# ଷଷ୍ଠ ଖଣ୍ଡ

# ଅବତରଣିକା

## ଏହି ଖଣ୍ଡରେ ନିହିତବିଷୟ

ପରମପୁରୁଷଙ୍କ ଅପାର କରୁଣାରୁ ମୁଁ ଅଦ୍ୟ ଭାଷାକୋଷର ଷଷ୍ଠଖଣ୍ଡ ମୋର ପୃଷ୍ଠପୋଷକ, ସହାୟକ ଓ ସର୍ବସାଧାରଣଙ୍କ ହାତରେ ଅର୍ପଣ କରିବାରେ କ୍ଷମ ହେଲି ।

ଆଦ୍ୟ ପାଞ୍ଚଖଣ୍ଡରେ ଓଡ଼ିଆ ବର୍ଣ୍ଣମାଳାର ପ୍ରଥମ ୩୯ ଟି ଅକ୍ଷର ଓ 'ଷ' ଶେଷ ହୋଇଥିଲା । ଏ ଖଣ୍ଡରେ ପରବର୍ତ୍ତୀ ୬ ଗୋଟି ଅକ୍ଷର ଶେଷ ହେଲା । ଅନ୍ତିମ ବା ୭ମ ଖଣ୍ଡପାଇଁ 'ସ' ଓ 'ହ' ଏହି ଦୁଇଟି ଅକ୍ଷର ମାତ୍ର ଅବଶିଷ୍ଟ ରହିଲା ।

ପ୍ରଥମ ପାଞ୍ଚଖଣ୍ଡରେ ଏକଲକ୍ଷ ପଞ୍ଚତ୍ରିଂଶ ହଜାର ଓଡ଼ିଆ ଭାଷାର ଶବ୍ଦ ଓ ବିଶିଷ୍ଟ ପ୍ରୟୋଗ ପ୍ରଦତ୍ତ ହୋଇଅଛି । ଏହି ଷଷ୍ଠଖଣ୍ଡରେ ପ୍ରଦତ୍ତ ଶବ୍ଦାଦିର ସଂଖ୍ୟା ୨୪ ହଜାର । ଅତଏବ ଷଷ୍ଠଖଣ୍ଡକୁ ମିଶାଇ ସମଗ୍ର ଶବ୍ଦସଂଖ୍ୟା ୧ଲକ୍ଷ ୫୯ ହଜାର ହେଲା । ଆଶାକରାଯାଏ ସପ୍ତମ ଖଣ୍ଡରେ ୨୫ ହଜାର ଶବ୍ଦ ପ୍ରଦତ୍ତ ହେବ । ଏହିରୂପେ ପୂର୍ଣ୍ଣାଙ୍ଗ ଭାଷାକୋଷରେ ସର୍ବମୋଟ ଏକଲକ୍ଷ ୮୪ ହଜାର ଶବ୍ଦ ସ୍ଥାନ ପାଇ ପାରିବ ।

ନୂତନ ଓଡ଼ିଶା ପ୍ରଦେଶର ଶୁଭାନୁଷ୍ଠାନର ଠିକ୍ ପୂର୍ବେ, ଅର୍ଥାତ୍ ୧୯୩୬ ମସିହା ମାର୍ଚ୍ଚମାସ ଶେଷରେ ଏହାର ୫ମ ଖଣ୍ଡ ପ୍ରକାଶିତ ହୋଇଥିଲା ଏବଂ ଏହାର ଷଷ୍ଠଖଣ୍ଡ ପରବର୍ତ୍ତୀ ଦଶ ମାସ ମଧ୍ୟରେ ପ୍ରକାଶିତ ହେବ ବୋଲି ସେତେବେଳେ କଳ୍ପନା କରାଯାଇଥିଲା, ମାତ୍ର ବଜାରରେ କାଗଜର ଅଭାବ ଓ ମୋର ସାମୟିକ ସ୍ୱାସ୍ଥ୍ୟଭଙ୍ଗ ହେତୁରୁ ଯଥାକାଳରେ ପ୍ରେସ୍‌କୁ ପାଣ୍ଡୁଲିପି ପଠାଇବାରେ ଅସୁବିଧା ହେଲା; ତେଣୁ ଏଖଣ୍ଡର ପ୍ରକାଶରେ ଅତିରିକ୍ତ ପାଞ୍ଚ ମାସ ଅଧିକ ସମୟ ଆବଶ୍ୟକ ହୋଇଅଛି । ବର୍ତ୍ତମାନ ଆଶାକରେ, ପରମାତ୍ମାଙ୍କର ଦୟା ଏବଂ ବିଦ୍ୟୋତ୍ସାହୀ ପୃଷ୍ଠପୋଷକମାନଙ୍କ କରୁଣା ହେଲେ ଆଗାମୀ ୧୯୩୮ ମାର୍ଚ୍ଚମାସ ମଧ୍ୟରେ ଏହାର ସପ୍ତମ ବା ଶେଷ ଖଣ୍ଡ ପ୍ରକାଶିତ ହେବ ।

## ଏ ଖଣ୍ଡର ଆର୍ଥିକ ପୃଷ୍ଠପୋଷକ

ପାଟନା ଷ୍ଟେଟର ଉଦୟମାନ ରାଜର୍ଷିକଳ୍ପ ମହାରାଜ ଶ୍ରୀ ରାଜେନ୍ଦ୍ରନାରାୟଣ ସିଂହଦେବ ଏହି ଖଣ୍ଡ ପ୍ରକାଶର ବ୍ୟୟଭାର ବହନ କରିବେ ବୋଲି ପୂର୍ବରୁ ପ୍ରତିଶ୍ରୁତ ହୋଇଥିଲେ ଓ ସେହି ପ୍ରତିଶ୍ରୁତି ପାଳନ ବାବଦରେ ମହାରାଜ ଦଶହଜାର ଟଙ୍କା ଦେଇସାରି ଅଛନ୍ତି ।

## ଏ ଖଣ୍ଡପାଇଁ ସନ୍ଦର୍ଭ ଲେଖକଗଣ

ନିମ୍ନୋକ୍ତ ଭଦ୍ରମହୋଦୟବୃନ୍ଦ ଏହି ଖଣ୍ଡର ବିଶେଷ ବିଶେଷ ବିଷୟରେ ପ୍ରବନ୍ଧମାନ ଲେଖିଅଛନ୍ତି । ପ୍ରତ୍ୟେକ ପ୍ରବନ୍ଧତଳେ ସେମାନଙ୍କର ନାମ ପ୍ରକାଶିତ ହୋଇଅଛି ।

ସାହିତ୍ୟସମ୍ରାଟ୍ ମହାରାଜ ଶ୍ରୀ ବିକ୍ରମଦେବ ବର୍ମା ଡ଼ି. ଲିଟ୍,
ବାବୁ ଜଗବନ୍ଧୁ ସିଂହ—ପୁରୀ,
ବାବୁ କେଦାରନାଥ ମହାପାତ୍ର ବି. ଏ., ଡି. ଇଡ—ଭୁବନେଶ୍ୱର,
ପଣ୍ଡିତ ବାଇକୋଳି ମହାପାତ୍ର, ଜ୍ୟୋତିଷବିଶାରଦ—ଖଲ୍ଲିକୋଟ,
ବାବୁ ଚନ୍ଦ୍ରଶେଖର ଦାସ—ଯାଜପୁର,
ସ୍ୱର୍ଗୀୟ ପଣ୍ଡିତ ନୀଳମଣି ମିଶ୍ର—ଯାଜପୁର,
ଡାକ୍ତର ରାଧାଚରଣ ପଣ୍ଡା—ଏଲ୍. ଏମ୍. ପି.,
ଡାକ୍ତର କୈଳାସଚନ୍ଦ୍ର ରାଓ, ଏଲ୍. ଏମ୍. ପି.—କଟକ,
ବାବୁ ନାରାୟଣପ୍ରସାଦ ସାଠିଆ ବି. ଏ—କଟକ,
ବାବୁ ମନୋମୋହନ ଘୋଷ ବି. ଏଲ୍—କଟକ,
ମହାମହୋପଦେଶକ ସୁନ୍ଦରାନନ୍ଦ ବିଦ୍ୟାବିନୋଦ—ସଚ୍ଚିଦାନନ୍ଦ ମଠ, କଟକ,
କୁମାର ଶ୍ରୀ ବିଦ୍ୟାଧର ସିଂହଦେବ ବି. ଏ., ବି. ଏଲ୍—ଜୟପୁର,
ବାବୁ ନରସିଂହ ଶତପଥି—ଆପ୍ରେଣ୍ଟିସ୍ ଇଞ୍ଜିନିଅର୍,
ବାବୁ ଅପୂର୍ବକୃଷ୍ଣ ସରକାର ବି. ଏ—କଟକ,
ରିଟାୟର୍ଡ୍ ପଣ୍ଡିତ ଶ୍ରୀ ବିଶ୍ୱନାଥ ରଥ କାବ୍ୟତୀର୍ଥ—ପୁରୀ,
ପ୍ରୋଫେସର୍ ବିପିନବିହାରୀ ରାୟ ଏମ୍. ଏ. ରେଭେନ୍‌ସା କଲେଜ,କଟକ,

## ଅଭିଜ୍ଞାନ ଗ୍ରନ୍ଥମାନ

ପୂର୍ବଖଣ୍ଡମାନଙ୍କରେ ଉଲ୍ଲିଖିତ ଥିବା ପୁସ୍ତକମାନଙ୍କ ବ୍ୟତୀତ ଏ ଖଣ୍ଡରେ ନିମ୍ନୋକ୍ତ ଲେଖକମାନଙ୍କର ପୁସ୍ତକ ଓ ପତ୍ରମାନଙ୍କରୁ ସାହାଯ୍ୟ ଗ୍ରହଣ କରାଯାଇଅଛି ।

୧ । ବଙ୍ଗଳା ବିଶ୍ୱକୋଷ (ପ୍ରଥମ ସଂସ୍କରଣ)—ପ୍ରାଚ୍ୟବିଦ୍ୟାମହାର୍ଣ୍ଣବ ରାୟସାହେବ ନଗେନ୍ଦ୍ରନାଥ ବସୁ
୨ । ଉତ୍କଳ ଇତିହାସ—ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ର ଏମ୍. ଏ
୩ । ଅରୁଣୋଦୟ ପ୍ରେସ୍‌ର ପଞ୍ଜିକା
୪ । ଶଙ୍କର ଦିଗ୍‌ବିଜୟ (ଓଡ଼ିଆ ଅନୁବାଦ)—ସ୍ୱାମୀ ସଚ୍ଚିଦାନନ୍ଦ ସରସ୍ୱତୀ, ଶଙ୍କରାନନ୍ଦ ମଠ, ପୁରୀ
୫ । କୋଣାର୍କ—ପଣ୍ଡିତ ନୀଳକଣ୍ଠ ଦାସ ଏମ୍. ଏ.
୬ । ଧର୍ମପଦ—ସ୍ୱର୍ଗୀୟ ପଣ୍ଡିତ ଗୋପବନ୍ଧୁ ଦାଶ
୭ । ଦୈନିକ ଆଶା (ଦୈନିକ ପତ୍ରିକା)—ବ୍ରହ୍ମପୁର
୮ । ଷ୍ଟେଟ୍‌ସ୍‌ମାନ୍ (ଇଂରାଜୀ ଦୈନିକପତ୍ରିକା)—କଲିକତା
୯ । ନବୀନ (ସାପ୍ତାହିକ ପତ୍ରିକା)—ବ୍ରହ୍ମପୁର
୧୦ । ଷ୍ଟୁଡେଣ୍ଟ୍‌ସ୍ ହିଷ୍ଟ୍ରି ଅଫ୍ ଇଣ୍ଡିଆ (ପ୍ରଥେରୋ ସାହେବ)

୧୧ । ଶ୍ରୀ ଭଗବତଚନ୍ଦ୍ର ଦାଶ, ବିଦ୍ୟାଭୂଷଣ, ବି. ଏ., ବି. ଏଲ୍—ମେଦିନୀପୁର

୧୨ । ସ୍ୱର୍ଗୀୟ ପଣ୍ଡିତ ରୁଦ୍ରନାରାୟଣ ଷଡ଼ଙ୍ଗୀ—ବାଲେଶ୍ୱର

୧୩ । ଶ୍ରୀ ପ୍ରାଣକୃଷ୍ଣ ଦାସ ବି. ଏଲ୍—ବାଲେଶ୍ୱର

ମୁଦ୍ରାକର ପ୍ରମାଦବଶତଃ ଏହି ଖଣ୍ଡର ୭୬୨୪ ଓ ୭୬୨୫ ପୃଷ୍ଠା ମଧ୍ୟରେ ଥିବା କେତେଗୁଡ଼ିଏ ଶବ୍ଦ ପ୍ରଥମେ ମୁଦ୍ରିତ ହୋଇ ଯାଇ ନ ଥିଲା । ପରେ ତାହା ଜଣା ପଡ଼ିବାରୁ ୭୬୨୫ କ ଠାରୁ ୭୬୨୫ ଡ ପର୍ଯ୍ୟନ୍ତ ୧୩ ପୃଷ୍ଠା ୭୬୨୪ ପୃଷ୍ଠାପରେ ମିଶାଗଲା । ଏହି ଖଣ୍ଡର ପୃଷ୍ଠା ସଂଖ୍ୟା ୧୧୭୪ ।

## ଏ ଖଣ୍ଡର ସହକର୍ମିଗଣ

ପଞ୍ଚମଖଣ୍ଡରେ ଉଲ୍ଲିଖିତ ହୋଇଥିବା ମୋର ସହକର୍ମୀ ଓ ସାହାଯ୍ୟକାରୀଙ୍କ ମଧ୍ୟରୁ ଶ୍ରୀମତୀ ପୀତାମ୍ବରୀ ଦେବୀ, ପଣ୍ଡିତ କୁଳମଣି ଦାଶ, ବାବୁ କୃଷ୍ଣଚନ୍ଦ୍ର ମିଶ୍ର ଏମ୍. ଏ., ବି. ଏଲ୍., ପଣ୍ଡିତ ନରସିଂହ ମହାପାତ୍ର, ବାବୁ ଭୁବନେଶ୍ୱର ମିଶ୍ର, ଶ୍ରୀଯୁକ୍ତ ସତୀନ୍ଦ୍ରନାରାୟଣ ରାୟ ମହାଶୟ ଏମ୍. ଏ., ବି. ଏଲ୍., ପଣ୍ଡିତ ସୁରେଶଚନ୍ଦ୍ର ଝା କାବ୍ୟସ୍ମୃତି-ତୀର୍ଥ ବ୍ୟାକରଣଶାସ୍ତ୍ରୀ ହିନ୍ଦୀ ବିଶାରଦ, ବାବୁ ବିକ୍ରମଚରଣ ପଟ୍ଟନାୟକ ବି. ଏ., ବାବୁ କୃଷ୍ଣଚନ୍ଦ୍ର କର ଓ ପଣ୍ଡିତ ଭଗବାନ ପତି, ଏ ଖଣ୍ଡର ସଙ୍କଳନରେ ସେମାନଙ୍କ ନିରୂପିତ କାର୍ଯ୍ୟକ୍ରମ ଅନୁସାରେ ମୋତେ ସାହାଯ୍ୟ କରିଅଛନ୍ତି । ଶ୍ରୀମାନ୍ ନରସିଂହ ସାମନ୍ତସିଂହାର ଓ ଶ୍ରୀମାନ୍ ସୂର୍ଯ୍ୟମଣି କର ଏହି ୭ମ ଖଣ୍ଡର ପାଣ୍ଡୁଲିପି ଲେଖନାଦିରେ ବିଶେଷ ସାହାଯ୍ୟ କରିଥିଲେ ।

ଭାଷାକୋଷ ଆରମ୍ଭରୁ ଶ୍ରୀଯୁକ୍ତ ସତୀନ୍ଦ୍ରନାରାୟଣ ରାୟ ମହାଶୟ ଓଡ଼ିଆ ଶବ୍ଦମାନଙ୍କର ବଙ୍ଗଳା ପ୍ରତିଶବ୍ଦ ଯୋଗାଉଥିଲେ । ଏଥି ମଧ୍ୟରେ ତାଙ୍କର ପିତା ରାୟ ବାହାଦୁର ହରେନ୍ଦ୍ରନାରାୟଣ ରାୟ ମହାଶୟ ଏମ୍. ଏ. ଙ୍କର ପରଲୋକପ୍ରାପ୍ତି ହେବାରୁ ସେ ଅଗତ୍ୟା କଟକ ଛାଡ଼ି ଲକ୍ଷ୍ମଣନାଥରେ ରହୁଅଛନ୍ତି । ଦୂରରେ ରହିଲେ ସୁଦ୍ଧା ଶେଷ ଦୁଇ ଅକ୍ଷରର ବଙ୍ଗଳା ପ୍ରତିଶବ୍ଦମାନ ସେ ଯେପରି ମୋତେ ଯୋଗାଇ ପାରିବେ, ସେ ତାହାର ବ୍ୟବସ୍ଥା କରୁଅଛନ୍ତି । ଏହି ଦୁଇ ଅକ୍ଷରର କେତେକ ବଙ୍ଗଳା ପ୍ରତିଶବ୍ଦ ମଧ୍ୟ ସେ ଏଥି ମଧ୍ୟରେ ଯୋଗାଇ ଅଛନ୍ତି ।

ଏହି ଗ୍ରନ୍ଥର ପ୍ରକାଶକ ବାବୁ ମହାନନ୍ଦ କର ପୂର୍ବପରି ଏହି ଖଣ୍ଡର ମୁଦ୍ରଣରେ ସ୍ୱକୀୟ ନିଷ୍ଠାପରତାର ସୂଚନା ଦେଇଅଛନ୍ତି ଏବଂ ତାଙ୍କର ମାନେଜର ବାବୁ କୁଳମଣି କର ପ୍ରୁଫ୍ ସଂଶୋଧନରେ ଏବଂ ହେଡ୍‌କମ୍ପୋଜିଟର ମୁନସି ସନର୍ ଖାଁ ମୁଦ୍ରଣର ବିଶୁଦ୍ଧି ରକ୍ଷାରେ ମୋତେ ଯଥେଷ୍ଟ ସାହାଯ୍ୟ କରିଅଛନ୍ତି ।

ଏ ଖଣ୍ଡ ଓ ଏଥିର ପୂର୍ବ ୩ ଖଣ୍ଡ କଟକର ଦପ୍ତରୀ ଅଜମଅଲି ଖାଁଙ୍କ ଦ୍ୱାରା ବନ୍ଧା ହୋଇଅଛି । କଟକର ବାବୁ ରଙ୍ଗଲାଲ ମୋଦି ଏମ୍. ଏଲ୍. ଏ. ଏ ଖଣ୍ଡପାଇଁ କାଗଜ ଯୋଗାଇଅଛନ୍ତି, କିନ୍ତୁ କାଗଜ ବଜାରରେ କାଗଜ ଅଭାବ ହେବାରୁ କେତେକ କାଗଜ କଲିକତାରୁ ମୋତେ ଆଣିବାକୁ ପଡ଼ିଅଛି ।

## ଗ୍ରନ୍ଥପାଇଁ ପ୍ରାଦେଶିକ ଶବ୍ଦ ସଂଗ୍ରାହକବର୍ଗ

ନିମ୍ନଲିଖିତ ଭଦ୍ରମହୋଦୟମାନେ ଏହି ଭାଷାକୋଷପାଇଁ ବହୁସଂଖ୍ୟକ ପ୍ରାଦେଶିକ ଶବ୍ଦ ଯୋଗାଇ ମୋତେ ସର୍ବଥା ଅନୁଗୃହୀତ କରିଅଛନ୍ତି :—

ବାବୁ ଦୁର୍ଗାଚରଣ ରାୟ ବି. ଏ. ପାଟନା ଷ୍ଟେଟର ସଦର ସବ୍-ଡିଭିଜନ୍ ଅଫିସର ଓ ଆସିଷ୍ଟାଣ୍ଟ ସେସନ୍ସ ଜଜ୍ ଓ ତାଙ୍କ ସ୍ତ୍ରୀ ଶ୍ରୀମତୀ ସୁମତି ଦେବୀ [ ଶ୍ରୀଯୁକ୍ତ ଶଶିଭୂଷଣ ରାୟଙ୍କ କନ୍ୟା ], ବାବୁ ଅଦ୍ୱୈତପ୍ରସାଦ ଦାସ ଏମ୍. ଏ. ପାଟନା ଷ୍ଟେଟର ଏଡୁକେଶନ ଅଫିସର, ପଣ୍ଡିତ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, ପାଟନା ଷ୍ଟେଟ ଟ୍ରେନିଙ୍ଗ୍ ସ୍କୁଲର ଶିକ୍ଷକ, ବାବୁ ଦିବ୍ୟସିଂହ ନାୟକ ବଲାଙ୍ଗିର, ପାଟନାଷ୍ଟେଟ, ବାବୁ ନଟବର ଗଡ଼ତିଆ ବି. ଏଲ୍., ଟିଟିଲାଗଡ଼ର ସେକେଣ୍ଡ୍ ଅଫିସର୍, ବାବୁ ତ୍ରିଲୋଚନ ପଟ୍ଟନାୟକ—ସାମ୍ପାଦକ, ପାଟନା ଷ୍ଟେଟ, ଲାଲ ଶିବନାରାୟଣ ଦେବ—ଖଡିଆଳ, ପଣ୍ଡିତ ବିନାୟକ ଦାଶ—ଉଭୟ ଭାଷାପ୍ରବୀଣ, ବଣାଇ ଷ୍ଟେଟ, ବାବୁ ଅଚ୍ୟୁତାନନ୍ଦ ପୁରୋହିତ ବି. ଏଲ୍—ସରକାରୀ ଓକିଲ, ସମ୍ବଲପୁର, ଅଶ୍ୱିନୀ କୃଷ୍ଣପ୍ରସାଦ ଦାସ—ଅତାବିରା, ସମ୍ବଲପୁର, ବାବୁ ବିଶ୍ୱକ୍ସେନ ବହିଦାର—ସମ୍ବଲପୁର, ନାରୀରତ୍ନ ଶ୍ରୀମତୀ ଅପର୍ଣ୍ଣା ଦେବୀ—ପୁରୀ, ପୂଜ୍ୟପାଦ ସ୍ୱାମୀ ସଚ୍ଚିଦାନନ୍ଦ ସରସ୍ୱତୀ—ଶଙ୍କରାନନ୍ଦ ମଠ, ପୁରୀ, ବାବୁ ବଂଶୀଧର ମହାନ୍ତି—ଅଫିସ ସୁପରିଣ୍ଟେଣ୍ଡେଣ୍ଟ, କେନ୍ଦୁଝର ଷ୍ଟେଟ, ଡାକ୍ତର କୈଳାସଚନ୍ଦ୍ର ରାଓ ଏଲ୍. ଏମ୍. ପି.—କଟକ, ରାଜା ଦୁର୍ଗାମାଧବ ପ୍ରସାଦସିଂହଦେଓ—ମଦନପୁର—ରାମପୁର, କଳାହାଣ୍ଡି ଷ୍ଟେଟ ।

ଆଠମଲ୍ଲିକର ଉପ୍ରାପ୍ତ ଦେବାନ ବାବୁ ବାମଦେବ ମିଶ୍ର ଓଡ଼ିଆ ଗଡ଼ଜାତ ଓ ଯାଜପୁର ପ୍ରଚଳିତ ଶତ ଶତ ପ୍ରାଦେଶିକ ଶବ୍ଦ ଏ ଗ୍ରନ୍ଥ ଆରମ୍ଭରୁ ଯୋଗାଇ ଆସି ଅଛନ୍ତି । ସେ ଯେତେବେଳେ କଟକ ଆସନ୍ତି, ଥରେ ଭାଷାକୋଷ ଆଶ୍ରମରେ ମୁହଁ ମାରି ନ ଗଲେ ତାଙ୍କ ମନ ବୋଧ ହୁଏ ନାହିଁ । ତାଙ୍କର ସାହାଯ୍ୟ ଓ ସହାନୁଭୂତି ମୋର ପରମ ମୂଲ୍ୟବାନ୍ ସମ୍ବଳ ଅଟେ ।

ପାଟନା ଷ୍ଟେଟ୍‌ର ଶିକ୍ଷାବିଭାଗ ଓ କର୍ମଚାରୀବୃନ୍ଦ ଏହି ପ୍ରାଦେଶିକ ଶବ୍ଦ ସଙ୍କଳନରେ ମୋର ଯେଉଁ ସହାୟତା କରିଅଛନ୍ତି, ତାହା ଏଠାରେ ମୁଁ ହୃଦୟର ଆବେଗପୂର୍ଣ୍ଣ କୃତଜ୍ଞତା ସହକାରେ ପ୍ରକାଶ କରୁଅଛି । ଶ୍ରୀମାନ୍ ମହାରାଜାଙ୍କ ସଙ୍କେତରେ ତାଙ୍କ ଏଡୁକେଶନ୍ ଅଫିସର୍ ବାବୁ ଶ୍ରୀ ଅଦ୍ୱୈତପ୍ରସାଦ ଦାସ ଏମ୍. ଏ. ପାଟନା ଷ୍ଟେଟ୍‌ର ଶିକ୍ଷକ ଓ ଶିକ୍ଷୟିତ୍ରୀମାନଙ୍କୁ ସେମାନଙ୍କ ନିଜ ନିଜ ଅଞ୍ଚଳର ପ୍ରଚଳିତ ପ୍ରାଦେଶିକ ଶବ୍ଦ ସଂଗ୍ରହକରି ପଠାଇବାକୁ ଆଦେଶ ଦେଲେ । ଏହି ଭାବରେ ମୁଁ ସେ ଅଞ୍ଚଳର ସହସ୍ର ସହସ୍ର ପ୍ରାଦେଶିକ ଶବ୍ଦ ପାଇଅଛି । ଏଥିପାଇଁ ପୂର୍ବୋକ୍ତ ଏଡୁକେଶନ୍ ଅଫିସରଙ୍କ ଜରିଆରେ ଶବ୍ଦ ସଂଗ୍ରାହକ ଶିକ୍ଷକ ଓ ଶିକ୍ଷୟିତ୍ରୀମାନଙ୍କୁ ମୁଁ ଅନ୍ତରର ଧନ୍ୟବାଦ ଅର୍ପଣ କରିଅଛି ।

ପ୍ରଧାନ ମନ୍ତ୍ରୀ ଲାଲ ରାଜକୁମାର, ଏମ୍. ଏ., ପି. ସି. ଏସ୍, ରାଜନଅରର ପରିଚାଳକ କୁମାର ରଣେନ୍ଦ୍ରପ୍ରତାପ ସିଂହଦେଓ, ଶ୍ରୀଗୋପାଲଚନ୍ଦ୍ର ବି. ଏ., ଏଲ୍. ଏଲ୍., ବି. ଏମ୍. ଆର୍. ଏ. ଏସ୍. ଜୁଡ଼ିସିଆଲ ମନ୍ତ୍ରୀ ସେସନ୍‌ସ ଜଜ୍, ରାଓ ସାହେବ ଡକ୍ଟର୍ ପି. ସି. ଜନ୍, ଏମ୍. ବି. ବି. ଏସ୍. ମେଡିକାଲ୍ ଅଫିସର, ବାବୁ ସତୀଶଚନ୍ଦ୍ର



**Raja Bahadur Sir Rajendra Narayan Bhanj Deo, O. B. E., M. L. A.**

କନକାର ରାଜାବାହାଦୁର
ସର୍ ରାଜେନ୍ଦ୍ରନାରାୟଣ ଭଞ୍ଜ ଦେଓ, ଓ. ବି. ଇ., ଏମ୍. ଏଲ୍. ଏ.

ଖାନାଜ ବି. ଏ., ସେଟେଲମେଣ୍ଟ୍ ଅଫିସର୍, ସର୍ଦ୍ଦାର ବସନ୍ତ ସିଂହ ପୁଲିସ ସାହେବ, ବାବୁ ବଳଭଦ୍ର ବାହିଦାର, ଟିଟିଲାଗଡର ଏସ୍. ଡି. ଓ, ବାବୁ ଚନ୍ଦ୍ରାମଣି ମିଶ୍ର ପାଟନାଗଡର ଏସ୍. ଡି. ଓ, ଶ୍ରୀ ଦିବ୍ୟସିଂହ ନାୟକ ଷ୍ଟେନୋଗ୍ରାଫର୍, ଶ୍ରୀ ବାବୁ ବଂଶୀଧର ଗ୍ରେପଦାର, ମହାରାଜାଙ୍କ ପେଷ୍କାର ପ୍ରମୁଖ ପାଟନା ଷ୍ଟେଟ୍‌ର ଉଚ୍ଚ ନିମ୍ନ ସମସ୍ତ ରାଜକର୍ମଚାରୀ, ଜମିଦାର ଓ ବିଶିଷ୍ଟ ବ୍ୟକ୍ତିମାନଙ୍କଠାରୁ ମୁଁ ସର୍ବଦା ଦୟାପୂର୍ଣ୍ଣ ବ୍ୟବହାର ଲାଭ କରି କୃତାର୍ଥ ହୋଇଅଛି ।

ପାଟନା ରାଜ୍ୟରେ ଭ୍ରମଣ କଲାବେଳେ ତହିଁର ଲାଣ୍ଡ୍‌ରେକର୍ଡ୍ ବିଭାଗର ସୁପରିଣ୍ଟେଣ୍ଡେଣ୍ଟ ସରଦାର ଅମର ସିଂହ ସ୍ୱତଃପ୍ରବୃତ୍ତ ହୋଇ ଭାଷାକୋଷପାଇଁ ଗ୍ରାହକ, ସାହାଯ୍ୟକାରୀ ଓ ପୃଷ୍ଠପୋଷକ ସଂଗ୍ରହ କରିବାରେ ମୋର ଯେଉଁଳି ସହାୟତା କରିଅଛନ୍ତି ତଦ୍ଦ୍ୱାରା ମୁଁ ହୃଦୟରେ ପରମପ୍ରୀତି ଅନୁଭବ କରିଅଛି । ତାଙ୍କର ଉତ୍ସାହ ଓ ପ୍ରଚେଷ୍ଟା ମୁଁ ସର୍ବଦା ସ୍ମରଣ ରଖିବି ।

ଶ୍ରୀମାନ୍ ଅଚ୍ୟୁତାନନ୍ଦ ରଥ,
„ ଦାଶରଥି ମାଝି,
„ ନବକିଶୋର ମହାପାତ୍ର,
„ ବିଶ୍ୱାମିତ୍ର ପଣ୍ଡା ଓ
„ ଯୋଗେନ୍ଦ୍ର ପ୍ରସାଦ ପଣ୍ଡା,

ସମ୍ବଲପୁର ଜିଲ୍ଲାର ବରଗଡ଼ ହାଇସ୍କୁଲର ଏହି ଛାତ୍ରମାନଙ୍କଠାରୁ ସେ ଅଞ୍ଚଳର ବ୍ୟବହୃତ ଅନେକଗୁଡ଼ିଏ ବିଶିଷ୍ଟ ଶବ୍ଦ ପାଇ ମୁଁ ଅତ୍ୟନ୍ତ ପ୍ରୀତ ହୋଇଅଛି ।

ସେମାନେ ସ୍ୱକୀୟ ମାତୃଭାଷା ପାଇଁ ଯେଉଁ ଉନ୍ମାଦନାରେ ପ୍ରଣୋଦିତ ହୋଇ ଅଯାଚିତଭାବରେ ଏହି କାର୍ଯ୍ୟ କଲେ, ତାହା ମୁଁ ଯଥାର୍ଥରେ ହୃଦୟରେ ଅନୁଭବ କରି ସେମାନଙ୍କୁ ଧନ୍ୟବାଦ ପ୍ରଦାନ କରୁଅଛି ଏବଂ ଆଶୀର୍ବାଦ କରୁଅଛି ଯେ, ସେମାନେ ସରସ୍ୱତୀଙ୍କ ସେବାକରି ମାତୃଭୂମିର ଓ ମାତୃଭାଷାର ମୁଖ ଉଜ୍ଜ୍ୱଳ କରନ୍ତୁ ।

## ଏ ଗ୍ରନ୍ଥର ପୃଷ୍ଠପୋଷକ ଓ ଶୁଭାକାଙ୍କ୍ଷିଗଣ

ବର୍ତ୍ତମାନ ଓଡ଼ିଶାର ଗଭର୍ଣ୍ଣର ସର୍ ଜନ୍ ଅଷ୍ଟେନ୍ ହବାକ କେ. ସି. ଏସ୍. ଆଇ, ଆଇ. ସି. ଏସ୍. ମହୋଦୟ ୧୯୨୯ ସାଲରୁ ମୋତେ ଯେଉଁ ଭାବରେ ସାହାଯ୍ୟ କରି ଆସିଅଛନ୍ତି, ଭାଷାକୋଷର ପୂର୍ବଖଣ୍ଡମାନଙ୍କରେ ବିଶେଷ ଭାବରେ ମୁଁ ସେସବୁ ଉଲ୍ଲେଖ କରିଅଛି । ତାଙ୍କର ଦୟାପୂର୍ଣ୍ଣ ଅନୁମତି ନେଇ ମୁଁ ଭାଷାକୋଷର ପ୍ରଥମଖଣ୍ଡ ତାଙ୍କ ନାମରେ ଉତ୍ସର୍ଗ କରିଥିଲି ।

ମାନ୍ୟବର ଲାଟ ମହୋଦୟ ଯେଉଁଦିନ ଓଡ଼ିଶା ପ୍ରଦେଶର ଦାୟିତ୍ୱ ଗ୍ରହଣ କଲେ, ତାର ଠିକ୍ ପରଦିନ ପ୍ରୀତିପୂର୍ଣ୍ଣ ହୃଦୟରେ ଭାଷାକୋଷ ପାଇଁ ମୋଠାରୁ ଦେଢଶତ ଟଙ୍କାର ଖଣ୍ଡିଏ ଚେକ୍ ସହ ପତ୍ରଖଣ୍ଡିଏ ଲେଖିଥିଲେ ।

ପାଟଣା ବିଶ୍ୱବିଦ୍ୟାଳୟ ଭାଷାକୋଷର ପରିସମାପ୍ତିପାଇଁ ଦ୍ୱିତୀୟଥର ଏକକାଳୀନ ବିଶିଷ୍ଟ ସାହାଯ୍ୟ ପ୍ରଦାନ କରିଥିବା ଶୁଣି ସେ ଅତ୍ୟନ୍ତ ପ୍ରୀତ ହୋଇଥିବା କଥା ସେ ପତ୍ରରେ ପ୍ରକାଶ କରିଥିଲେ ।

ଲଣ୍ଡନରେ ପ୍ରାଚ୍ୟ ବିଦ୍ୟାନୁଶୀଳନ ନିମିତ୍ତ ଯେଉଁ କଲେଜ୍ ଅଛି, ସେଠାରେ କି କି ଓଡ଼ିଆ ବହି ଅଛି ତାହା ଦେଖିବା ପାଇଁ ଲାଟସାହେବ ସେଠାକୁ ଯାଇଥିଲେ; ଭାଷାକୋଷ ଛଡ଼ା ସେଠାରେ ସଂଗୃହୀତ ଆଉ ଯେଉଁ ସବୁ ଓଡ଼ିଆପୁସ୍ତକ ଦେଖିଲେ ତାହା ଅତି ସାମାନ୍ୟ । ଓଡ଼ିଶାରେ ତାଙ୍କ କାର୍ଯ୍ୟକାଳ ମଧ୍ୟରେ ସେ ସେଠାର ଏହି ଅଭାବ ନିରାକରଣ କରିବା ପାଇଁ ଆଶା ପୋଷଣ କରିଅଛନ୍ତି ବୋଲି ସେ ଲେଖିଥିଲେ ।

ଭାଷାକୋଷ ତଥା ଓଡ଼ିଆ ଭାଷା ମାନ୍ୟବର ଲାଟ ମହୋଦୟଙ୍କ ହୃଦୟରେ କିପରି ସମୁଚ୍ଚସ୍ଥାନ ଅଧିକାର କରିଅଛି, ଏଥିରୁ ତାହା ସ୍ପଷ୍ଟରୂପେ ସମସ୍ତେ ବୁଝି ପାରିବେ । ଓଡ଼ିଶାର ରାଜପ୍ରତିନିଧିରୂପେ ଶାସନଭାର ଗ୍ରହଣ କରିବା ଠାରୁ ଲାଟ ଓ ତତ୍‌ପତ୍ନୀ ସସ୍ନେହ ଓ ସାଗ୍ରହ ଚିତ୍ତରେ ଭାଷାକୋଷର ପରିପୂର୍ଣ୍ଣତା ବିଷୟରେ ସର୍ବଦା ଅନୁସନ୍ଧାନ କରିଅଛନ୍ତି । ନୂତନ ଓଡ଼ିଶା ପ୍ରଦେଶର ନବବର୍ଷର ସମ୍ମାନ-ପଦବୀ ତାଲିକାରେ ଭାରତ ସରକାର ଏହି ଭାଷାକୋଷର ସଂଗ୍ରାହକକୁ 'ରାୟ ବାହାଦୁର' ଉପାଧିରେ ଭୂଷିତ କରିଅଛନ୍ତି । ପରମ ସମ୍ମାନାସ୍ପଦ ଲାଟ ମହୋଦୟଙ୍କର ଅନୁକୂଳତା ହିଁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ କାର୍ଯ୍ୟ କରୁଥିବା ଏହି ଦୀନ ସଂଗ୍ରାହକର ଏଭଳି ରାଜଦତ୍ତ ସମ୍ମାନଲାଭର ମୂଳ, ଏଥିରେ ସନ୍ଦେହ ନାହିଁ । ବଡ଼ ଆନନ୍ଦର ବିଷୟ ଯେ, ଯେ ଏହି ସାରସ୍ୱତ ମହା ମନ୍ଦିରର ଭିତ୍ତି ଦେଇଥିଲେ, ତାଙ୍କରି ଉପସ୍ଥିତିରେ ହିଁ ଏହି ମନ୍ଦିରର ମୂର୍ତ୍ତି ମିଳିବ । ମାନନୀୟ ଲାଟଦମ୍ପତିଙ୍କ ଦୟାପୂର୍ଣ୍ଣ ଅନୁମତି ଗ୍ରହଣକରି ସଂଗ୍ରାହକ ଏ ଭାଗରେ ସେମାନଙ୍କର ପ୍ରତିକୃତି ସଂଯୋଜିତ କରିଅଛି ।

ପାଟନା ଷ୍ଟେଟର ନରପତି ମହାରାଜ ଶ୍ରୀ ରାଜେନ୍ଦ୍ରନାରାୟଣ ସିଂହଦେବ ଭାଷାକୋଷର ଏହି ଖଣ୍ଡର ପୃଷ୍ଠପୋଷକ ଓ ଆର୍ଥିକ ପରିସ୍ଥିତିର ପ୍ରଧାନ ଅବଲମ୍ବନ । ମୁଁ ଯେତେବେଳେ ତାଙ୍କ ସଙ୍ଗେ ଦେଖା କରି ଭାଷାକୋଷର ପ୍ରଥମ ପାଞ୍ଚଖଣ୍ଡ ତାଙ୍କ ହସ୍ତରେ ସମର୍ପଣ କଲି, ସେତେବେଳେ ସେ ୬ଷ୍ଠ ଖଣ୍ଡ ପ୍ରକାଶର ଆର୍ଥିକ ପରିସ୍ଥିତି ବିଷୟ ଅନୁସନ୍ଧାନ କରିଥିଲେ ଏବଂ ତହିଁର ପ୍ରକାଶର ବ୍ୟୟଭାର ବହନ କରିବାକୁ ସୂଚନା କରିଥିଲେ ।

ମହାରାଜଙ୍କ ଦେବୋପମ ଗୁଣାବଳୀ ପ୍ରତି ମୋର ଆନ୍ତରିକ ସମ୍ମାନର ନିଦର୍ଶନରୂପେ ମୁଁ ତାଙ୍କର ଅନୁମତି ଗ୍ରହଣ କରି ଭାଷାକୋଷର ଏହି ଖଣ୍ଡ ତାଙ୍କ ପବିତ୍ର ନାମରେ ଉତ୍ସର୍ଗ କଲି ।

ପାଟନାରେ ଥିବାବେଳେ ସରାଇକେଲାର ଯୁବରାଜ ଟିକାଏତ ଶ୍ରୀମାନ୍ ନୃପେନ୍ଦ୍ରନାରାୟଣ ସିଂହଦେବ ବି. ଏ., ବି. ଏଲ୍‌ଙ୍କ ସଙ୍ଗେ ପରିଚିତ ହେବାର ସମ୍ମାନ ଲାଭ କରି ମୁଁ କୃତାର୍ଥ ହୋଇଅଛି । ଯୁବରାଜ ସାହେବ ଜଣେ ଉଦୟୀମାନ ଯୁବକ ଓ ସାହିତ୍ୟପ୍ରେମିକ ଥିବା ଦେଖିଲି । ତାଙ୍କୁ ଦେଖି "ଅଙ୍କରେ ପଦ୍ମରାଗାଣାଂ ଜନ୍ମ କାଚମଣେଃ କୁତଃ" ସଂସ୍କୃତ ଶ୍ଳୋକର ଏହି ଚରଣଟି ମୋର ମାନସପଟରେ ଉଦିତ ହେଲା ।

ଜୟପୁର (କୋରାପୁଟ) ଅଧିପତି ସାହିତ୍ୟ ସମ୍ରାଟ୍ ମହାରାଜ ଶ୍ରୀ ବିକ୍ରମଦେବ ବର୍ମା ଡି. ଲିଟ୍ ମହୋଦୟଙ୍କ ନାମରେ ଭାଷାକୋଷର ଚତୁର୍ଥ ଖଣ୍ଡ ଉତ୍ସୃଷ୍ଟ ହୋଇଥିଲା । ଏ ପର୍ଯ୍ୟନ୍ତ ଭାଷାକୋଷ କାର୍ଯ୍ୟର ଅଗ୍ରଗତି ପ୍ରତି ତାଙ୍କର ସେହି ପୂର୍ବାନୁରାଗ ଅକ୍ଷୁଣ୍ଣ ରହିଅଛି । ମୋର ଆର୍ଥିକ ଦୁଃସ୍ଥିତି ବିଷୟ ଶୁଣି ସେ ୫ମ ଖଣ୍ଡର ବ୍ୟୟ ନିର୍ବାହ ପାଇଁ ଯେଉଁ ୧୦ ସହସ୍ର ମୁଦ୍ରା ଦାନ କରିଥିଲେ ତା ଛଡ଼ା ସ୍ୱତଃପ୍ରବୃତ୍ତ ହୋଇ ଆଉ ଦୁଇ ହଜାର ଟଙ୍କା ଦାନ କରିଅଛନ୍ତି । ଆନ୍ଧ୍ର ଭାରତୀତୀର୍ଥ ବିଶ୍ୱବିଦ୍ୟାଳୟର ଚାନ୍ସେଲର୍‌ରୂପେ

ମହାରାଜା ମହୋଦୟ ମୋତେ "ସାହିତ୍ୟ ବିଶାରଦ" ଉପାଧି ବିରୁଦପତ୍ର (diploma) ପ୍ରଦାନ କରିଅଛନ୍ତି ।

ମୟୂରଭଞ୍ଜାଧୀଶ୍ୱର ମହାରାଜ ସର୍ ପ୍ରତାପଚନ୍ଦ୍ର ଭଞ୍ଜଦେବ, କେ. ଟି. କେ. ସି. ଆଇ. ଇଙ୍କ ନିର୍ଦ୍ଦେଶମତେ ଏହି ଭାଷାକୋଷ ତାଙ୍କ ଅଗ୍ରଜ ପୂର୍ଣ୍ଣଚନ୍ଦ୍ରଙ୍କ ନାମାନୁସାରେ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ନାମରେ ଅଭିହିତ ହେଉଅଛି । ଅଧ୍ୟାପକ ପରିଜା ଓ ପ୍ରିନ୍ସିପାଲ ତ୍ରିପାଠୀଙ୍କଠାରୁ ମୋହର ଅଧିକ ଶୋଚନୀୟତାର ସମ୍ବାଦ ପାଇ ମହାରାଜ ଏଥି ମଧ୍ୟରେ ଅଧିକ ୫ ହଜାର ଟଙ୍କା ଏକକାଳୀନ ଦାନ କରିଅଛନ୍ତି । କହିବା ବାହୁଲ୍ୟ ଯେ ମୟୂରଭଞ୍ଜାଧୀଶ୍ୱରଙ୍କଠାରୁ ପ୍ରଥମେ ୮ ହଜାର ଟଙ୍କାର ଅଙ୍ଗୀକାର ପାଇବା ପରେ ଏହି ଭାଷାକୋଷର ମୁଦ୍ରଣ କାର୍ଯ୍ୟ ଆରବ୍ଧ ହୋଇଥିଲା ।

ନୂତନ ଓଡ଼ିଶା ପ୍ରଦେଶର ଜନ୍ମଦାତା ଓ ଓଡ଼ିଶା ସରକାରଙ୍କ ମାନ୍ୟବର ପ୍ରଧାନ ସଚିବ ପାରଳାଖେମୁଣ୍ଡିର ସ୍ୱନାମଧନ୍ୟ ନରପତି କାପ୍ଟେନ୍ ମହାରାଜ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ନାମରେ ଏହି ଭାଷାକୋଷର ୫ମ ଖଣ୍ଡ ଉତ୍ସୃଷ୍ଟ ହୋଇଥିଲା; ସେ ମହୋଦୟ ମଧ୍ୟ ଜନକୋଚିତ ସସ୍ନେହ ଦୃଷ୍ଟିରେ ଏହି କାର୍ଯ୍ୟର ଅଗ୍ରଗତି ବିଷୟ ଲକ୍ଷ୍ୟ କରୁଅଛନ୍ତି ।

ଅଠମଲ୍ଲିକର ସ୍ୱନାମଧନ୍ୟ ଶାସକ ନରପତି ରାଜା ଶ୍ରୀ କିଶୋରଚନ୍ଦ୍ର ଦେବଙ୍କର ପରିପୂର୍ଣ୍ଣ ସହାନୁଭୂତି ଓ ବଦାନ୍ୟତା ଲାଭରୁ ମୁଁ ଏପର୍ଯ୍ୟନ୍ତ ବଞ୍ଚିତ ହୋଇନାହିଁ । ସେ ଏଥିପୂର୍ବେ ଭାଷାକୋଷ ପାଇଁ ୨୩୦୦ ଟଙ୍କା ଦାନ କରିଥିଲେ । ଏହି ଷଷ୍ଠ ଖଣ୍ଡର ମୁଦ୍ରଣ ମଧ୍ୟରେ ଅଧିକ ୫୦୦ ଟଙ୍କା ମଧ୍ୟ ଦାନ କରିଅଛନ୍ତି । ପ୍ରଥମ ଖଣ୍ଡର ପ୍ରକାଶ ପରେ ଗୁଣଗ୍ରାହୀ ରାଜାସାହେବଙ୍କ ଶ୍ରୀମୁଖରୁ ଯେଉଁ ଉତ୍ସାହପୂର୍ଣ୍ଣ ବାଣୀପରମ୍ପରା ନିଃସୃତ ହୋଇଥିଲା, ଆଜଯାଏ ତାହା ମୋ କର୍ଣ୍ଣକୁହରରେ ପ୍ରତିଧ୍ୱନିତ ହେଉଅଛି । କହିବା ବାହୁଲ୍ୟ, ଗ୍ରନ୍ଥକାର ରାଜାସାହେବଙ୍କୁ ନିଜର "ଲେଉଟିଆ ବଅଁର" ବୋଲି ଜ୍ଞାନ କରି ଆସିଅଛି ।

ଖଡ଼ିଆଳ (ନୂଆପଡ଼ା)ର ରାଜାସାହେବ ଲାଲ ଅର୍ତ୍ତତ୍ରାଣ ଦେବ ଏଥି ମଧ୍ୟରେ ପ୍ରତିଶ୍ରୁତି ଅନୁରୂପ ଏକ ସହସ୍ର ଟଙ୍କା ମୋତେ ପଠାଇ ଅଛନ୍ତି ଏବଂ ତାଙ୍କ ଯୁବରାଜ ସାହେବ ମଧ୍ୟ ଏହି କାର୍ଯ୍ୟର ଅଗ୍ରଗତି ପ୍ରତି ସସ୍ନେହ ଦୃଷ୍ଟି ରଖିଅଛନ୍ତି ।

ତିନି ବର୍ଷ ପୂର୍ବେ ପାଟନା ବିଶ୍ୱବିଦ୍ୟାଳୟ ଏହି କାର୍ଯ୍ୟ ପାଇଁ ପାଞ୍ଚହଜାର ଟଙ୍କା ଦାନ କରିଥିଲେ; ଆମ୍ଭମାନଙ୍କ ନୂତନ ପ୍ରଦେଶ ଗଠିତ ହେବାର ପ୍ରାକ୍‌କାଳରେ ସେ ଅଧିକ ୧୫୦୦ ଟଙ୍କା ଦାନ କରି ସ୍ୱକୀୟ ବଦାନ୍ୟତା ପ୍ରସାରିତ କରିଅଛନ୍ତି ।

ବଡ଼ାମ୍ବା ଷ୍ଟେଟର ଶାସକ ନରପତି ରାଜା ଶ୍ରୀ ନାରାୟଣଚନ୍ଦ୍ର, ବୀରବର ମଙ୍ଗରାଜ ମହାପାତ୍ର ଏଥିମଧ୍ୟରେ ଏକକାଳୀନ ୫୦୦ ଟଙ୍କା ଦାନ କରିଅଛନ୍ତି ।

ପୁରୀର ସରକାରୀ ଉକିଲ ଆଡ଼ଭୋକେଟ୍ ରାୟ ବାହାଦୁର ଲୋକନାଥ ମିଶ୍ର ତାଙ୍କ ଅଙ୍ଗୀକୃତ ଏକ ସହସ୍ର ଟଙ୍କାରୁ ଅବଶିଷ୍ଟ ଥିବା ୫୦୦ ଟଙ୍କା ଏଥିମଧ୍ୟରେ ପଠାଇ ଦେଇଅଛନ୍ତି ।

କେଉଁଝରରାଜ୍ୟର ଶାସକ ନରପତି ରାଜା ଶ୍ରୀ ନାରାୟଣପ୍ରସାଦ ଦେବଙ୍କ ମହନୀୟ ନାମରେ ଏହି ଭାଷାକୋଷର ୩ୟ ଖଣ୍ଡ ଉତ୍ସୃଷ୍ଟ ହୋଇଥିଲା । ଏହାର ଅଗ୍ରଗତି ବିଷୟରେ ସେ ମଧ୍ୟ ଯଥୋଚିତ ତତ୍ତ୍ୱ ନେଉଅଛନ୍ତି ।

କଳାହାଣ୍ଡି ଅନ୍ତର୍ଗତ ମହୁଲପାଟଣା ଜୟପାଟଣାର ରାଜା ଶ୍ରୀ ଉମାପ୍ରସାଦ ସିଂହ ପ୍ରତିଶ୍ରୁତ ସାହାଯ୍ୟ ୫୦୦ ଟଙ୍କାରୁ ଅବଶିଷ୍ଟ ଥିବା ଏକ ଶତ ଟଙ୍କା ଏଥିମଧ୍ୟରେ ପଠାଇ ଦେଇଅଛନ୍ତି ।

ପାଟନା ଅନ୍ତର୍ଗତ ଅଟଗାଁର ଜମିଦାର ଶ୍ରୀଯୁକ୍ତ ଧୀରେନ୍ଦ୍ରଚନ୍ଦ୍ର ମାଝି ମାନ୍ଧାତା ମହୋଦୟ ତାଙ୍କ ପ୍ରତିଶ୍ରୁତ ପାଞ୍ଚ ଶତ ଟଙ୍କା ସାହାଯ୍ୟ ମଧ୍ୟରୁ ଏକ ଶତ ଟଙ୍କା ଦେଇଅଛନ୍ତି ।

କଲିକତାର ସୁପରିଚିତ ବଣିକ୍ ଓ ଅର୍ଥ ବ୍ୟବସାୟୀ (Banker) ସର୍ ବଦ୍ରିଦାସ ଗୋଏଙ୍କା, କେ. ଟି. ବି. ଏ. ମହୋଦୟ ୫୦ ଟଙ୍କା ସାହାଯ୍ୟ ପଠାଇଅଛନ୍ତି ।

ସୁଦକ୍ଷ ଉଦ୍ୟାନପାଳ ଯେଉଁପରି ଜଳଦାନାଦିଦ୍ୱାରା ସ୍ୱରୋପିତ ସୁକୋମଳ ଶିଶୁବୃକ୍ଷମାନଙ୍କର ଅଭିବୃଦ୍ଧିକୁ ଅପେକ୍ଷା କରି ରହିଥାଏ, ଆମ୍ଭମାନଙ୍କ ଶିକ୍ଷାବିଭାଗର ଭୂତପୂର୍ବ ଡିରେକ୍ଟର ଶ୍ରୀଯୁକ୍ତ ଜି. ଇ. ଫକସ୍, ଏମ୍. ଏ., ସି. ଆଇ. ଇ., ଆଇ. ଇ. ଏସ. ମହୋଦୟ ଏହି ଗ୍ରନ୍ଥର ଅଭିବୃଦ୍ଧିକୁ ସେହିପରି ଦୃଷ୍ଟିରେ ଦେଖୁଅଛନ୍ତି । ଏହି ଭାଷାକୋଷର ପ୍ରକାଶ କାର୍ଯ୍ୟରେ ତାଙ୍କର ଉପକାର କଥା ପୂର୍ବଖଣ୍ଡମାନଙ୍କରେ ସ୍ପଷ୍ଟରୂପେ ବ୍ୟକ୍ତ କରାଯାଇଅଛି । ବର୍ତ୍ତମାନ ସେ ଡିରେକ୍ଟର ରୂପେ ଆମ୍ଭମାନଙ୍କ ମଧ୍ୟରେ ରହି ନ ଥିଲେହେଁ ପବ୍ଲିକ୍ ସର୍ଭିସ୍ କମିଶନ୍‌ର ସଭାପତିରୂପେ ସେ ଆମ ସମ୍ପର୍କ ତ୍ୟାଗ କରି ନାହାନ୍ତି । ସେ ଏ କାର୍ଯ୍ୟର ଅଗ୍ରଗତିକୁ ଯେ ଅତୀବ ଆଗ୍ରହ ଦୃଷ୍ଟିରେ ଲକ୍ଷ୍ୟ କରି ଅଛନ୍ତି, ନାନା ଭାବରେ ମୁଁ ଏହାର ବହୁ ସୂଚନା ପାଇଅଛି ।

ପାଟନା ହାଇକୋର୍ଟର ପ୍ରଧାନ ବିଚାରପତି ସର୍ କର୍ଟ୍‌ନି ଟେରେଲ୍‌ଙ୍କର ଜନକୋଚିତ ଅନୁରାଗ ଭାଷାକୋଷ ଏପର୍ଯ୍ୟନ୍ତ ଲାଭ କରି ଆସୁଅଛି ।

ମାନନୀୟ ସି. ଏଲ୍. ଫିଲିପ୍ ସି. ଆଇ. ଇ., ଆଇ. ସି. ଏସ୍., ଓଡ଼ିଶା ବିଭାଗର କମିସନର ଥିବା ବେଳେ ଭାଷାକୋଷର ପ୍ରଥମ ୩ ଖଣ୍ଡର ପ୍ରକାଶରେ ଆମ୍ଭମାନଙ୍କ ସହକର୍ମୀରୂପେ ଏହାର କାର୍ଯ୍ୟ କରୁଥିଲେ । ସେ ବର୍ତ୍ତମାନ ଇଂଲଣ୍ଡରେ ଥାଇ ସୁଦ୍ଧା ଏହାର ଅଗ୍ରଗତି ବିଷୟରେ ତୀକ୍ଷ୍ଣଦୃଷ୍ଟି ରଖିଅଛନ୍ତି, ମୁଁ ଏହାର ଯଥେଷ୍ଟ ପ୍ରମାଣ ପାଉଅଛି ।

ପୂର୍ବ ଗଡ଼ଜାତ ବିଭାଗର ଗଭର୍ଣ୍ଣର ଜେନରଲଙ୍କ ପୂର୍ବତନ ଏଜେଣ୍ଟ ଶ୍ରୀଯୁକ୍ତ ଇ. ସି. ଗିବ୍‌ସନ୍ ସି. ଆଇ. ଇ., ଆଇ. ସି. ଏସ. ମଧ୍ୟ ଏହି କାର୍ଯ୍ୟର ଅଗ୍ରଗତି ବିଷୟ ଜନକୋଚିତ ଅନୁରାଗସହ ଲକ୍ଷ୍ୟ କରୁଅଛନ୍ତି ।

ବିଶେଷଭାବରେ ଏହି ସମସ୍ତଙ୍କଠାରେ ଓ ଅନ୍ୟ ଯେଉଁ ମହାତ୍ମାମାନେ ଏ କାର୍ଯ୍ୟରେ ମୋର ପୃଷ୍ଠପୋଷକତା କରିଥିବାରୁ ଓ ଆର୍ଥିକ ସାହାଯ୍ୟ କରିଥିବାରୁ ମୁଁ ଏତେଦୂର ଅଗ୍ରସର ହୋଇ ପାରିଅଛି—ସେମାନଙ୍କ ନିକଟରେ ମୋର କୃତଜ୍ଞତା ଜ୍ଞାପନ କରୁଅଛି । ସେମାନଙ୍କ ଉଦାରତା ତଥା ମହତ୍ତ୍ୱଲାଭ କରି ନ ଥିଲେ ମୋ ଭଳି ସ୍ୱଳ୍ପଶକ୍ତି ଓ ସ୍ୱଳ୍ପଧନ ଲୋକ ପକ୍ଷରେ ଏ ବିରାଟବ୍ୟାପାରରେ ଏତେଦୂର ଅଗ୍ରସର ହେବା କେବେହେଁ ସମ୍ଭବପର ହୋଇ ନ ଥାନ୍ତା ।

## ଆଶ୍ରମର ପ୍ରସିଦ୍ଧ ପରିଦର୍ଶକଗଣ

ଗୁଜରାଟ ବିଦ୍ୟାପୀଠର ଆଚାର୍ଯ୍ୟ କାକା କାଲେଲ୍‌କାର ଗତ ୧୯୩୫ ଖ୍ରୀଷ୍ଟାବ୍ଦରେ କଟକକୁ ଆସିଥିଲେ । ସେତେବେଳେ ଅତର୍କିତଭାବରେ ତାଙ୍କର ଏହି ଭାଷାକୋଷ ଆଶ୍ରମ ପରିଦର୍ଶନ ବିଷୟ ପୂର୍ବ ଖଣ୍ଡରେ



**Sri Umasankar Prasad Singh,**
**Zamindar Saheb, Mahulpatna, Joypatna,**
**Kalahandi State.**

କଲାହାଣ୍ଡି ଷ୍ଟେଟ ଅନ୍ତର୍ଗତ ମହୁଲପାଟଣା ଜୟପାଟଣାର ଜମିଦାର ସାହେବ
ଶ୍ରୀ ଉମାଶଙ୍କର ପ୍ରସାଦ ସିଂହ

ଉଲ୍ଲେଖ କରିବାକୁ ମୁଁ ବିସ୍ମୃତ ହୋଇ ଯାଇଥିଲି । ୧୯୨୮ରେ ସେ ଯେତେବେଳେ ମହାତ୍ମା ଗାନ୍ଧିଙ୍କ ସଙ୍ଗେ କଟକ ଆସି ଏଠାରେ ମୋ ସଙ୍ଗରେ ରହିଥିଲେ ସେତେବେଳେ ସେ ଏହାର ପାଣ୍ଡୁଲିପି ଦେଖିଥିଲେ । ଏହା ମୁଦ୍ରିତ ହୋଇ ପ୍ରକାଶିତ ହୋଇଥିବା ଦେଖି ସେ ପରମପ୍ରୀତିପ୍ରକାଶପୂର୍ବକ ସ୍ପଷ୍ଟଭାବରେ କହିଥିଲେ ଯେ, ଓଡ଼ିଶାରେ ହିନ୍ଦୀ ଭାଷାକୁ ଲୋକପ୍ରିୟ କରିବାରେ ଭାଷାକୋଷ ସର୍ବାପେକ୍ଷା ଅଧିକ କାର୍ଯ୍ୟ କରିଅଛି ।

ଆମ୍ଭମାନଙ୍କ ଓଡ଼ିଶା ଶିକ୍ଷାବିଭାଗର ଡାଇରେକ୍ଟର ମି. ଜି. ଏମ୍. ଏ, ସି. ଆଇ. ଇ. ଆଇ. ଇ. ଏସ. ଏକାଧିକ ଥର ଏହି ଭାଷାକୋଷ ଆଶ୍ରମ ପରିଦର୍ଶନ କରି ମୋ ପରିଶ୍ରମକୁ ସର୍ବାନ୍ତଃକରଣରେ ଅନୁମୋଦନ କରି ଯାଇଅଛନ୍ତି ।

ଓଡ଼ିଶାର ଗଭର୍ଣ୍ଣମେଣ୍ଟଙ୍କ ପ୍ରଧାନ ସେକ୍ରେଟାରି ମି. ପି. ଟି. ମାନ୍ସଫିଲ୍ଡ ସି. ଆଇ. ଇ, ଆଇ. ସି. ଏସ୍ ଏହି ଆଶ୍ରମ ପରିଦର୍ଶନ କରିଥିଲେ ଏବଂ ସ୍ୱତଃପ୍ରବୃତ୍ତ ହୋଇ ପ୍ରୁଫ୍ସିଟ୍‌ମାନଙ୍କର ଇଂରେଜି ଅଂଶ ସଂଶୋଧନରେ ମୋତେ ସାହାଯ୍ୟ କରିବାକୁ ଅଙ୍ଗୀକାର କରି-ଥିଲେ । କିନ୍ତୁ ତାଙ୍କ ଉପରେ ସରକାରୀ କାର୍ଯ୍ୟର ଗୁରୁଭାର ଦେଖି ମୁଁ ଭାଷାକୋଷ ପାଇଁ ତାଙ୍କର ବହୁମୂଲ୍ୟ ସମୟ ଗ୍ରହଣ କରିବାକୁ ସାହସୀ ହୋଇ ନାହିଁ ।

ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କ ଡେଭଲପ୍‌ମେଣ୍ଟ ବିଭାଗର ଭୂତପୂର୍ବ ସେକ୍ରେଟାରି ମି. ଏ ଏଫ୍. ଡବ୍ଲ୍ୟୁ. ଡିକ୍ସନ୍ ମହୋଦୟ ଏହି ଆଶ୍ରମ ଥରେ ପରିଦର୍ଶନ କରିଥିଲେ ।

ଓଡ଼ିଶା ସାଧାରଣ ସ୍ୱାସ୍ଥ୍ୟବିଭାଗର ଡାଇରେକ୍ଟର କର୍ଣ୍ଣେଲ ଜି. ଭର୍ଗିଜ୍ ଏମ. ଡି, ପି. ଏଇଚ. ବି, ଡି. ପି. ଏଇଚ., ଡି. ଟି.ଏମ୍, ଡି. ଟି. ଏଇଚ, ଆଇ. ଏମ୍. ଏସ୍ ମହୋଦୟ କଟକ ମିଉନିସିପାଲିଟିର ହେଲ୍‌ଥ ଅଫିସର ଡାକ୍ତର ସତ୍ୟବାଦୀ ମିଶ୍ର ଏମ.ବିଙ୍କ ସଙ୍ଗେ ଭାଷାକୋଷ ଆଶ୍ରମ ପରିଦର୍ଶନ କରି ଏହି କାର୍ଯ୍ୟର ପ୍ରଶଂସା କରିଯାଇ ଅଛନ୍ତି ।

କଟକ ଜିଲ୍ଲାର ମାଜିଷ୍ଟ୍ରେଟ ଓ କଲେକ୍ଟର ମି. ଆର. ପି. ୱାର୍ଡ଼ ଏମ. ସି, ଡି. ଏଫ୍ ସି, ଆଇ. ସି. ଏସ୍. ମହୋଦୟ ସପତ୍ନୀକ ଆଶ୍ରମରେ ପଦାର୍ପଣ କରି ଏହାର ପ୍ରକାଶରେ ଯଥାଶକ୍ତି ସାହାଯ୍ୟ କରିବା ପାଇଁ ଆଗ୍ରହ ପ୍ରକାଶ କରିଯାଇ ଅଛନ୍ତି ।

ରାୟ ବାହାଦୁର ଭୂୟାଁ ଭାସ୍କରଚନ୍ଦ୍ର ମହାପାତ୍ର ସ୍ୱୟଂ ଅନେକ ଥର ଏହି ଆଶ୍ରମ ଦେଖି ଯାଇଅଛନ୍ତି । ଶେଷଥର ରେଭିନ୍ୟୁ କମିସନରଙ୍କ ପର୍ସନାଲ୍ ଆସିଷ୍ଟାଣ୍ଟ ରାୟ ବାହାଦୁର ଉମାଚରଣ ଦାସଙ୍କ ସଙ୍ଗେ ସେ ଭାଷାକୋଷ ଆଶ୍ରମ ପରିଦର୍ଶନ କରିଥିଲେ ।

କଟକ ଜିଲ୍ଲାବୋର୍ଡର ଚେଆରମାନ କନିକାର ଟିକାୟେତ୍ ଶ୍ରୀମାନ୍ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେବ ୧୯୩୬ ସାଲ ମେ ମାସରେ ଭାଷାକୋଷ ଅଫିସ ପରିଦର୍ଶନ କରି, ଏ କର୍ମରେ ତାଙ୍କ ପିତାଙ୍କର ଓ ତାଙ୍କ ନିଜର ସହାନୁଭୂତି ଥିବା ବିଷୟ ପ୍ରକାଶ କରିଅଛନ୍ତି ।

କଟକର ଇନକମ୍‌ଟାକ୍ସ ଅଫିସର ମୌଲବୀ ଏନାମୁର୍ ରହେମାନ୍ ମହୋଦୟ ଇନକମ୍‌ଟାକ୍ସ ଇନ୍‌ସପେକ୍ଟର ବାବୁ ଗୋପୀନାଥ ମହାପାତ୍ର ବି, ଏଙ୍କ ସଙ୍ଗେ ବନ୍ଧୁଭାବରେ ଏଥିମଧ୍ୟରେ ଥରେ ଭାଷାକୋଷ ଆଶ୍ରମ ପରିଦର୍ଶନ କରି ଯାଇଅଛନ୍ତି ।

## ବିଶିଷ୍ଟ ଶୁଭାକାଙ୍କ୍ଷୀ ଓ ସ୍ୱେଚ୍ଛାସେବକବୃନ୍ଦ

ଭାଷାକୋଷର ଶୁଭାକାଙ୍କ୍ଷୀ ନିମ୍ନୋକ୍ତ ସହୃଦୟ ମନୀଷୀମାନେ ସ୍ୱତଃପ୍ରଣୋଦିତ ହୋଇ ଏହାର ପୃଷ୍ଠପୋଷକ, ସହାୟକାରୀ ହୋଇ-ଅଛନ୍ତି ଓ ସାଧାରଣଙ୍କ ନିକଟରେ ଏହାର ପ୍ରଚାର ପାଇଁ ଯଥାଶକ୍ତି ଚେଷ୍ଟା କରିଅଛନ୍ତି—

ଭାଷାକୋଷ କାର୍ଯ୍ୟରେ ଯାହାଙ୍କ ଆନ୍ତରିକ ଯତ୍ନର କଥା ଶେଷ ଖଣ୍ଡରେ ଉଲ୍ଲିଖିତ ହୋଇଅଛି, ଖଡ଼ିଆଳର ସେହି ସୁନାମଧନ୍ୟ ମନୀଷୀ ଲାଲ ଶିବନାରାୟଣ ଦେବ ଏପର୍ଯ୍ୟନ୍ତ ସାହାଯ୍ୟ କରୁଅଛନ୍ତି ଏବଂ ଏଥିପାଇଁ ଗ୍ରାହକ ମଧ୍ୟ ସଂଗ୍ରହ କରୁଅଛନ୍ତି । ଆଜିପର୍ଯ୍ୟନ୍ତ ସେ ଭାଷାକୋଷ ପାଇଁ ପ୍ରାୟ ତିନି ହଜାର ଟଙ୍କାର ସାହାଯ୍ୟ ଓ ପ୍ରତିଶ୍ରୁତି ସଂଗ୍ରହରେ କୃତକାର୍ଯ୍ୟ ହୋଇଅଛନ୍ତି । ସେ ତାଙ୍କ ଅଞ୍ଚଳରେ ପ୍ରଚଳିତ ବହୁସଂଖ୍ୟକ ପ୍ରାଦେଶିକ ଶବ୍ଦ ଏଥିମଧ୍ୟରେ ଅନେକ ଥର ମୋତେ ଯୋଗାଇ ଅଛନ୍ତି । ତାଙ୍କ ସହାୟତା ଲାଭ କରି ନ ଥିଲେ ସେ ଶବ୍ଦଗୁଡ଼ିକ ମୋ ଦୃଷ୍ଟିର ଅନ୍ତରାଳରେ ରହି ଯାଇଥାଆନ୍ତା । ଭାଷାକୋଷର ଆର୍ଥିକ ପରିସ୍ଥିତିର ସଚଳତା ଉଦ୍ଦେଶ୍ୟରେ ପୃଷ୍ଠପୋଷକ ଓ ଗ୍ରାହକ ସଂଗ୍ରହ କରିବା ନିମନ୍ତେ ସେ ଗତ ବର୍ଷ କେତେକ ଗଡ଼ଜାତ ରାଜ୍ୟରେ ମଧ୍ୟ ଭ୍ରମଣ କରିଥିଲେ ।

କଟକ ରେଭେନ୍‌ସା କଲେଜର ପ୍ରିନ୍‌ସିପାଲ୍ ଶ୍ରୀଯୁକ୍ତ ଶ୍ୟାମଚରଣ ତ୍ରିପାଠୀ, ଆଇ. ଇ. ଏସ୍. ମହୋଦୟଙ୍କ ପରାମର୍ଶ ଅନୁସାରେ ମୟୂର-ଭଞ୍ଜର ମହାରାଜା ମହୋଦୟ ଏହି ଗ୍ରନ୍ଥର ପ୍ରାଥମିକ ବ୍ୟୟ ନିର୍ବାହ ପାଇଁ ଆଠ ହଜାର ଟଙ୍କା ସାହାଯ୍ୟ କରିଥିଲେ । ଏହି ଖଣ୍ଡର ପ୍ରକାଶକାଳ ମଧ୍ୟରେ ମହାରାଜାଙ୍କଠାରୁ ପୁନର୍ବାର ଯେଉଁ ପାଞ୍ଚହଜାର ଟଙ୍କା ସାହାଯ୍ୟ ମିଳିଲା ତହିଁରେ ଯେ ତ୍ରିପାଠୀ ମହାଶୟଙ୍କ ଯତ୍ନ ନିହିତ ଥିଲା, ଏହା ନିଃସନ୍ଦେହ ।

ରେଭେନ୍‌ସା କଲେଜର ଅନ୍ୟତମ ଅଧ୍ୟାପକ ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପରିଜା ଏମ୍. ଏ., ଆଇ. ଇ. ଏସ୍. ମହୋଦୟ ମଧ୍ୟ ମୟୂରଭଞ୍ଜର ମହାରାଜାଙ୍କ-ଠାରୁ ପରବର୍ତ୍ତୀ ସାହାଯ୍ୟ ମିଳିବା ବିଷୟରେ ତ୍ରିପାଠୀ ମହାଶୟଙ୍କ ସଙ୍ଗେ ମିଶି ଆନ୍ତରିକ ସହାୟତା କରିଅଛନ୍ତି ।

ମୟୂରଭଞ୍ଜ ଷ୍ଟେଟର ଦେୱାନ ଓ ପ୍ରଧାନ ମନ୍ତ୍ରୀ ଶ୍ରୀଯୁକ୍ତ କେ. ସି. ନିୟୋଗୀ,

ପୁରୀର ଭୂତପୂର୍ବ ଜିଲ୍ଲା କଲେକ୍ଟର ଶ୍ରୀଯୁକ୍ତ ଡ. ପି. ଶର୍ମା, ଆଇ. ସି. ଏସ୍,

ସମ୍ବଲପୁରର ଡେ: କମିଶନର, ରାୟ ବାହାଦୁର ରାଧାଚରଣ ଦାସ,

ପୁରୀର ସଦର ସବ୍‌ଡିଭିଜନାଲ୍ ଅଫିସର ବାବୁ ସତୀଶଚନ୍ଦ୍ର ମିତ୍ର,

କଟକର ଆଡ୍‌ଭୋକେଟ୍ ରାୟ ବାହାଦୁର ଲକ୍ଷ୍ମୀଧର ମହାନ୍ତି,

ରେଭିନ୍ୟୁ କମିଶନରଙ୍କ ପର୍ସନାଲ୍ ଆସିଷ୍ଟାଣ୍ଟ ରାୟ ବାହାଦୁର ଉମାଚରଣ ଦାସ,

କଟକ ମ୍ୟୁନିସିପାଲିଟିର ଭୂତପୂର୍ବ ଏକଜିକ୍ୟୁଟିଭ୍ ଅଫିସର୍ ରାୟସାହେବ ସୋମନାଥ ମହାପାତ୍ର,

ପାଟନା ଷ୍ଟେଟର ସଦର ଏସ୍. ଡି. ଓ. ଏବଂ ଆସିଷ୍ଟାଣ୍ଟ ସେସନ୍‌ସ ଜଜ ବାବୁ ଦୁର୍ଗାଚରଣ ରାୟ ଓ ତାଙ୍କ ସହଧର୍ମିଣୀ ଶ୍ରୀମତୀ ସୁମତି ଦେବୀ,

ଆଠମଲ୍ଲିକ ଷ୍ଟେଟର ଦେୱାନ ଓ ସେସନ୍‌ସ ଜଜ ବାବୁ ବାମଦେବ ମିଶ୍ର ବି. ଏ.,

ଖଡ଼ିଆଳର ଆକ୍ଟିଙ୍ଗ୍ ଦେୱାନ ବାବୁ ବଟକୃଷ୍ଣ ମହାନ୍ତି ବି. ଏ:,

ବାମଣ୍ଡାର ଷ୍ଟେଟ୍ ଜଜ ଶ୍ରୀମାନ୍ ଅମରବଲ୍ଲଭ ଦେ, ଏମ୍ ଏ, ବି.ଏଲ

କେନ୍ଦୁଝରର ଷ୍ଟେଟ୍‌ର ଦେୱାନ ରାୟ ବାହାଦୁର ଯୁଗଲକିଶୋର ତ୍ରିପାଠୀ ଏମ. ଏ.

କେନ୍ଦୁଝର ଷ୍ଟେଟ୍‌ର ଅଫିସ୍ ସୁପରିଣ୍ଟେଣ୍ଡେଣ୍ଟ ବାବୁ ବଂଶୀଧର ମହାନ୍ତି,

କଣିକା ଷ୍ଟେଟ୍ ରାଜାସାହେବଙ୍କ ପର୍ସନାଲ୍ କ୍ଲର୍କ ଉଭୟଭାଷାଭିଜ୍ଞ ପଣ୍ଡିତ ଶ୍ରୀ ବନମାଳୀ ଦାସ,

କଟକ ଟ୍ରେନିଙ୍ଗ୍ ସ୍କୁଲର ହେଡ୍‌ମାଷ୍ଟର ବାବୁ କୃଷ୍ଣଚନ୍ଦ୍ର ସେନଗୁପ୍ତ
ଏମ୍. ଏ, ବି. ଇଡ୍,

କଟକର ସରକାରୀ ଉକିଲ, ଆଡ୍‌ଭୋକେଟ୍ ବାବୁ ଚିନ୍ତାମଣି
ଆଗୃର୍ଯ୍ୟ ଏମ୍. ଏ, ବି. ଏଲ୍,

ପୁରୀ ପୁଲିସ୍ ହସ୍‌ପିଟାଲ୍‌ର ମେଡିକାଲ୍ ଅଫିସର୍ ଡାକ୍ତର
ଶ୍ରୀ କୈଳାସଚନ୍ଦ୍ର ସ୍ୱାଇଁ,

ପାଟନା ଷ୍ଟେଟର ସାମ୍ପାଦକ ବାବୁ ତ୍ରିଲୋଚନ ପଟ୍ଟନାୟକ,

ସମ୍ବଲପୁରର ସାମ୍ପାଦକ ବାବୁ ବଶ୍ୱକ୍‌ଷେନ ବହିଦାର,

ବ୍ରହ୍ମପୁର 'ଦି ନିଉ ଓଡ଼ିଶା' ପତ୍ରିକାର ସମ୍ପାଦକ
ବାବୁ ଶଶିଭୂଷଣ ରଥ,

ବ୍ରହ୍ମପୁର "ଓଡ଼ିଆ" ପତ୍ରିକାର ସମ୍ପାଦକ ବାବୁ
ଆନନ୍ଦ ଆଗୃର୍ଯ୍ୟ,

ସୁପରିଚିତ ଲେଖକ ଓ ଚିତ୍ରକାର ବାବୁ ଶଶିଭୂଷଣ ରାୟ, କଟକ,

ଶ୍ରୀମାନ୍ ପ୍ରଭାତକୁମାର ମୁଖୁର୍ଯ୍ୟା ଏମ୍. ଏ., ଡି. ଏଡ୍. କଟକ,

ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର, ସମ୍ବଲପୁର,

ଶ୍ରୀମାନ୍ ପୂର୍ଣ୍ଣଚନ୍ଦ୍ର ବୋଷ, କଟକ,

କଟକ 'ପବ୍ଲିଶିଙ୍ଗ୍ ହାଉସ୍'ର ସ୍ୱତ୍ୱାଧିକାରୀ ବାବୁ ଉମାଚରଣ
ମହାନ୍ତି,

କଟକର ସୁବିଖ୍ୟାତ ବୈଦ୍ୟରାଜ ପଣ୍ଡିତ ଶ୍ରୀ ବାଲୁକେଶ୍ୱର ଆଗୃର୍ଯ୍ୟ ଭିଷକ୍‌ରତ୍ନ ଗତ ୧୫ ବର୍ଷ ହେଲା ସ୍ୱାସ୍ଥ୍ୟରକ୍ଷା କାର୍ଯ୍ୟରେ ପ୍ରୀତି-ପୂର୍ଣ୍ଣ ହୃଦୟରେ ମୋର ସହାୟତା କରି ଆସୁଅଛନ୍ତି । ଏଥି ମଧ୍ୟରେ ଡାକ୍ତର କାଶୀନାଥ ମିଶ୍ର, ବି. ଏସ୍‌ସି, ଏମ୍. ବି., ଡି. ଟି. ଏମ୍ ବହୁ ପରିଶ୍ରମ କରି ପ୍ରସନ୍ନଚିତ୍ତରେ ମୋତେ ଦାରୁଣ ରୋଗର ଆକ୍ରମଣରୁ ରକ୍ଷା କରିଅଛନ୍ତି । ଗତ ୩୫ବର୍ଷ ହେଲା ମୋଠାରୁ ବହୁ ଦୂରରେ ରହିଥିବା ମୋର ବାଲ୍ୟସହଚର ଶ୍ଳୀପଦ ଏଥି ମଧ୍ୟରେ ମୋତେ ପୁନର୍ବାର ବନ୍ଧୁରୂପେ ଆଲିଙ୍ଗନ କରିବାକୁ ବାହୁ ପ୍ରସାରଣ କରିଥିଲା; ଡାକ୍ତର କାଶୀନାଥଙ୍କ ଚେଷ୍ଟାରେ ମୁଁ ତାହାର ଆଲିଙ୍ଗନୀୟ ଆକ୍ରମଣରୁ ଏଥିମଧ୍ୟରେ ରକ୍ଷା ପାଇଅଛି ।

ଝଲ୍ଲିକୋଟର ଜ୍ୟୋତିଷବିଶାରଦ ପଣ୍ଡିତ ଶ୍ରୀ କାଇକୋଲି ମହାପାତ୍ର ମୋର ଜନ୍ମକୋଷ୍ଠୀରେ ଅବସ୍ଥିତି ଗ୍ରହ ନକ୍ଷତ୍ରାଦିଙ୍କ ଗତି ବିଷୟ ଉତ୍ତମରୂପେ ନିରୀକ୍ଷଣ କରୁଅଛନ୍ତି ଓ ସେମାନଙ୍କ ସନ୍ତୋଷନିମିତ୍ତ ଶାସ୍ତ୍ରୀୟବିଧିରେ ପୂଜାସ୍ୱସ୍ତ୍ୟୟନାଦି କରୁଅଛନ୍ତି ।

ମୁଁ ବୁଝିପାଇଅଛି ଯେ, ଶଂସିତ ମନୀଷୀମାନେ ମୋର ଏହି କାର୍ଯ୍ୟକୁ ପବିତ୍ର ଜାତୀୟ କର୍ତ୍ତବ୍ୟ ବୋଲି ମନେ କରି ମୋପ୍ରତି ସ୍ନେହ ପ୍ରବଣତା ବଶତଃ ଏହିଭଳି ଭାବରେ ଶ୍ରମସ୍ୱୀକାର କରୁଅଛନ୍ତି ।

## ସ୍ୱର୍ଗବାସୀ ଓ ମର୍ତ୍ତ୍ୟବାସୀ ଆଶୀର୍ବାଦକଗଣ

ମୋର ବିଂଶତିବର୍ଷବ୍ୟାପୀ ଶ୍ରମର ପରିଣାମର ଆସନ୍ନବର୍ତ୍ତୀତାବେଳେ ମୋ ସ୍ୱର୍ଗୀୟ ପିତା ନରସିଂହ ପ୍ରହରାଜଙ୍କର ପବିତ୍ର ଆତ୍ମାଙ୍କ ନିକଟରେ ମୁଁ ଶ୍ରଦ୍ଧାପୂର୍ଣ୍ଣ ଅନ୍ତଃକରଣରେ ଭକ୍ତି ସମର୍ପଣ କରୁଅଛି । ମୋର ବିଶ୍ୱାସ, ସେ ସର୍ବଦା ଏହି କାର୍ଯ୍ୟର ଅଗ୍ରଗତି ଲକ୍ଷ୍ୟ କରୁଅଛନ୍ତି ।

ସୋନପୁରର ଭୂତପୂର୍ବ ମହାରାଜ ଧର୍ମନିଧି ଜ୍ଞାନଗୁଣାକର ସର୍ ବୀରମିତ୍ରୋଦୟ ସିଂହ ଦେବ, କେ. ସି. ଆଇ. ଇ., ଏମ୍. ଆର୍. ଏ. ଏସ୍, ଗତ ୩୨ବର୍ଷକାଳ ମୋର ପରାମର୍ଶଦାତା, ବନ୍ଧୁ ଏବଂ ପୃଷ୍ଠପୋଷକ ଥିଲେ । ଆମେ ଦୁହେଁ ସମବୟସ୍କ ଥିଲୁଁ । ସେ ନାନାବିଧ ସାଧାରଣ ଓ ବିଶିଷ୍ଟ ବଦାନ୍ୟତା ତଥା ସାହିତ୍ୟିକ ପ୍ରୀତି ଦ୍ୱାରା, ବିଶେଷତଃ କଲିକତା ବିଶ୍ୱବିଦ୍ୟାଳୟ ହସ୍ତରେ ଓଡ଼ିଆ ଭାଷାରେ ଏମ୍., ଏ, ପଢ଼ା ହେବା ପାଇଁ ସମର୍ପଣ କରିଥିବା ରାଜୋଚିତ ଦାନ ଦ୍ୱାରା, ଯେଉଁ ସୁନାମ ଅର୍ଜନ କରି ଯାଇଅଛନ୍ତି, ତାହା କେବେହେଁ ଲୁପ୍ତ ହେବ ନାହିଁ । ଭାଷାକୋଷ ତାଙ୍କ ଜୀବଦ୍ଦଶାରେ ତାଙ୍କ ଉଦାର ଦାତୃତ୍ୱପୂର୍ଣ୍ଣ ଦୃଷ୍ଟି ଆକର୍ଷଣ କରି ପାରି ନ ଥିଲେହେଁ, ଓଡ଼ିଆ ଜାତିର ପ୍ରଗତିପାଇଁ ସେ ଯେଉଁ କାର୍ଯ୍ୟମାନ କରି ଯାଇଅଛନ୍ତି ତଦ୍ଦ୍ୱାରା ସେ ଓଡ଼ିଶାର ସମ୍ଭ୍ରାନ୍ତ ସନ୍ତାନ-ମାନଙ୍କ ମଧ୍ୟରେ ସମ୍ମୁଖବର୍ତ୍ତୀ ଆସନର ଅଧିକାରୀ ହୋଇଅଛନ୍ତି । ସେ ସର୍ବଦା ମୋ ସାଧନାର ଭୂୟସୀ ପ୍ରଶଂସା କରୁଥିଲେ ଏବଂ ତାହା ସୁଧୀ ସମାଜ ସମ୍ମୁଖରେ ବହୁବାର ସ୍ପଷ୍ଟଭାବରେ ପ୍ରକାଶ କରୁଥିଲେ । ପରଲୋକଗତିର କେତେକ ମାସ ପୂର୍ବେ ସେ ତାଙ୍କ ଆଲୋକ-ଚିତ୍ରକୁ ଭାଷାକୋଷରେ ସ୍ଥାନ ଦେବାପାଇଁ ଅନୁମତି ଦେଇ ଯାଇ-ଥିଲେ; ମାତ୍ର ତାହା ଦେଖିବାକୁ ପ୍ରଭୁ ତାଙ୍କୁ ରଖିଲେ ନାହିଁ । ଏହି ଖଣ୍ଡରେ ତାଙ୍କର ଆଲୋକଚିତ୍ର ଗୋଟିଏ ବିଶିଷ୍ଟସ୍ଥାନ ଅଧିକାର କରିଅଛି ।

କଲିକତା ଗୌଡ଼ୀୟମଠର ବୈକୁଣ୍ଠବାସୀ ମହାରାଜ ଶ୍ରୀ ଭକ୍ତି ସିଦ୍ଧାନ୍ତ ସରସ୍ୱତୀ ।

ସାହିତ୍ୟକ୍ଷେତ୍ରରେ ମୋର ପଥପ୍ରଦର୍ଶକ ଓ ଗୁରୁ ସ୍ୱର୍ଗୀୟ ବିଶ୍ୱନାଥ କର ।

ଯାହାଙ୍କ ନିକଟରେ ମୁଁ କୃତଜ୍ଞତା ପାଶରେ ଆବଦ୍ଧ ଥିବା ବିଷୟ ପୂର୍ବଖଣ୍ଡରେ ପ୍ରକାଶ କରିଅଛି, ସେହି ସ୍ୱର୍ଗୀୟ ଶ୍ରୀଯୁକ୍ତ ଏମ୍. ଏସ୍. ଦାସ, ସି. ଆଇ. ଇ, (ମଧୁବାବୁ),

ସ୍ୱର୍ଗୀୟ ଅକ୍ଷୟଚନ୍ଦ୍ର ଦାସ—ଯାହାଙ୍କର ଭାଷାକୋଷପାଇଁ ଶବ୍ଦ ସଂଗ୍ରହ ବିଷୟ ମୁଁ ପ୍ରଥମ ଖଣ୍ଡରେ ଉଲ୍ଲେଖ କରିଅଛି ।

ପୁରୀ ଗୋବର୍ଦ୍ଧନ ଶଙ୍କରାନନ୍ଦ ମଠର ଅଧିପତି ସ୍ୱାମୀ ଶଙ୍କର ସଚ୍ଚିଦାନନ୍ଦ ସରସ୍ୱତୀ, ଯେ ଏହି ଗ୍ରନ୍ଥର ଆଶୁ ସମାପ୍ତି କାମନାରେ ପ୍ରତ୍ୟହ ପରମ ପୁରୁଷଙ୍କ ଆଶୀର୍ବାଦ ଭିକ୍ଷା କରୁଅଛନ୍ତି ।

ସତ୍ୟ ମହିମା ଧର୍ମର ପ୍ରଚାରକ ବନ୍ଧୁ ଅବଧୂତ ସନ୍ନ୍ୟାସୀ ବିଶ୍ୱନାଥ ବାବା ଯେତେବେଳେ କଟକ ଆସନ୍ତି ସେତେବେଳେ ଭାଷାକୋଷ ଆଶ୍ରମରେ ପଦାର୍ପଣ କରି ତତ୍‌ପ୍ରତି ପରମାତ୍ମାଙ୍କ ଆଶୀର୍ବାଦ ପ୍ରାର୍ଥନା କରିବାକୁ ସ୍ୱକୀୟ କର୍ତ୍ତବ୍ୟ ବୋଲି ମନେ କରନ୍ତି ।

ବଙ୍ଗଳା ଓ ହିନ୍ଦୁସ୍ଥାନୀ ବିଶ୍ୱକୋଷଦ୍ୱୟର ପ୍ରଣେତା ପ୍ରାଚ୍ୟ ବିଦ୍ୟା ମହାର୍ଣ୍ଣବ ରାୟସାହେବ ନଗେନ୍ଦ୍ରନାଥ ବସୁ ମହୋଦୟ ସର୍ବଦା ଉତ୍କଣ୍ଠାପୂର୍ଣ୍ଣ ହୃଦୟରେ ଏହି ଭାଷାକୋଷ କର୍ମର ଅଗ୍ରଗତି ବିଷୟରେ ତତ୍ତ୍ୱ ନେଉଅଛନ୍ତି । ତାହାଙ୍କ ସାହଚର୍ଯ୍ୟରେ ପଞ୍ଚମଖଣ୍ଡରେ ଓ ଏହି ଖଣ୍ଡରେ ପ୍ରଦତ୍ତ ଫଟୋ ଗୁଡ଼ିକର ବ୍ଲକ୍ ପ୍ରସ୍ତୁତ ହୋଇଅଛି ।

ଶଂସିତ ଜୀବିତ ଓ ମୃତ ମନୀଷୀମାନଙ୍କ ନିକଟରେ ତଥା ମୋର ପୃଷ୍ଠପୋଷକ, ସହାୟକ, ସାହାଯ୍ୟକାରୀ, ଶୁଭଶଂସୀ, ସହକର୍ମୀ, ସହାନୁଭୂତି ପ୍ରଦର୍ଶକ ଓ ପ୍ରଚାରକମାନଙ୍କ ନିକଟରେ ମୁଁ ହୃଦୟର କୃତଜ୍ଞତା ଜ୍ଞାପନ କରୁଅଛି । ଏହି ସୁବିପୁଳ ବ୍ୟାପାରରେ ଏତେଗୁଡ଼ିଏ ସହକର୍ମୀଙ୍କୁ ଓ ସାହାଯ୍ୟକାରୀଙ୍କୁ ପାଇ ନ ଥିଲେ ମୋଭଳି କ୍ଷୀଣଶକ୍ତି ଲୋକପକ୍ଷରେ ଏତେଦୂର ଅଗ୍ରସର ହେବା କେବେହେଁ ସମ୍ଭବପର ହୋଇ ନ ଥାନ୍ତା । ମୁଁ କୃତଜ୍ଞତା ପୂର୍ଣ୍ଣ ଅନ୍ତଃକରଣରେ ସେମାନଙ୍କ ସାହାଯ୍ୟ ଗ୍ରହଣ କରି ସେମାନଙ୍କ ଫଟୋ ମଧ୍ୟରୁ ଯେତେ ଖଣ୍ଡ ମୋ ହସ୍ତଗତ ହୋଇଅଛି ତାହା ଏହି ଗ୍ରନ୍ଥର ଭିନ୍ନ ଭିନ୍ନ ଖଣ୍ଡରେ ସନ୍ନିବେଶିତ କରୁଅଛି ।



**Raja Dharanidhar Indra Deo Deb,**
**Ruling Chief, Bonai State.**
ବଣାଇ ଷ୍ଟେଟର ରୁଲିଙ୍ଗ୍ ଚିଫ୍ ରାଜା ଶ୍ରୀ ଧରଣୀଧର ଇନ୍ଦ୍ର ଦେଓ ଦେବ ।
(ସାହାଯ୍ୟଦାତା)



**Raja Bahadur Ramchandra Mardaraj Dev,**
**Raja of Khallikote, Athagarh & Biruli estates.**
ଖଲିକୋଟ, ଆଠଗଡ଼ ଓ ବିରୁଳିର ରାଜାବାହାଦୁର,
ଶ୍ରୀ ରାମଚନ୍ଦ୍ର ମର୍ଦ୍ଦରାଜ ଦେବ (ସାହାଯ୍ୟଦାତା)

## ସମ୍ମାନ, ପ୍ରଶଂସା ଓ ଗୁଣାନୁବାଦ

ବର୍ତ୍ତମାନ କଟକ ମ୍ୟୁନିସିପାଲିଟିର ପହଚ୍ଗୃଲକ କଟକ ଜିଲ୍ଲାର ମାଜିଷ୍ଟ୍ରେଟ୍ ଶ୍ରୀଯୁକ୍ତ ଆର୍. ପି. ଡ୍ରାକ୍ ସାହେବ ଏହି ନଗରବାସୀ କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ଅନୁରୋଧ ଅନୁସାରେ କଟକର ଯେଉଁ ପୁରାତନ ନର୍ମାଲ୍ ସ୍କୁଲ ଲେନ୍‌ରେ ଭାଷାକୋଷର କାର୍ଯ୍ୟାଳୟ ପ୍ରତିଷ୍ଠିତ ହୋଇ-ଅଛି, ତାହାକୁ 'ଭାଷାକୋଷ ଲେନ୍' ନାମରେ ଅଭିହିତ କରି ଅଛନ୍ତି ଏବଂ ଗଳିର ଦୁଇ ପ୍ରାନ୍ତରେ ସାଇନ୍‌ବୋର୍ଡ (ପରିଚୟ-ପଟ୍ଟ) ଦ୍ୱାରା ଏହି ନାମ ସୂଚିତ କରିଅଛନ୍ତି; ଅନ୍ତୁର ମଧ୍ୟ ଏହି ନାମପରିବର୍ତ୍ତନ ସମ୍ବାଦ ସାଧାରଣରେ ଉଦ୍‌ଘୋଷିତ କରିଅଛନ୍ତି ।

ଭାରତ ସାମ୍ରାଜ୍ୟର ଗଭର୍ଣ୍ଣର୍ ଜେନେରଲ୍ ଓ ଭାଇସ୍‌ରାୟ ଭାଷାକୋଷ ସଂଗ୍ରାହକଙ୍କୁ ଗତ ନବବର୍ଷ ଉପଲକ୍ଷରେ ନୂତନ ଓଡ଼ିଶା ପ୍ରଦେଶର ଉପାଧି ବିତରଣବେଳେ 'ରାୟ ବାହାଦୁର' ଉପାଧିରେ ସମ୍ମାନିତ କରି ଅଛନ୍ତି ।

ବିଶାଖାପତ୍ତନ ନଗରସ୍ଥିତ ଆନ୍ଧ୍ରସର୍ଚ୍ଚ୍ ବିଶ୍ୱବିଦ୍ୟାଳୟ (ଭାରତୀ ତୀର୍ଥ)ର ଚାନ୍‌ସେଲର୍ ମହୋଦୟ ଭାଷାକୋଷର ସଂଗ୍ରାହକଙ୍କୁ 'ସାହିତ୍ୟ ବିଶାରଦ' ପଦବୀ ଓ ବିରୁଦପଟ୍ଟ (ସନନ୍ଦ) ପ୍ରଦାନ କରି ଅଛନ୍ତି ।

କବିବର ଚିନ୍ତାମଣି ମହାନ୍ତି ଭାଷାକୋଷ ସମ୍ବନ୍ଧରେ ଗୋଟିଏ ପ୍ରଶଂସାପୂର୍ଣ୍ଣ କବିତା ରଚନା କରି ତତ୍‌ପ୍ରଣୀତ ଗ୍ରନ୍ଥାବଳୀରେ ସଂଯୋଜିତ କରି ଅଛନ୍ତି । ତାଙ୍କ ଗ୍ରନ୍ଥାବଳୀ ବର୍ତ୍ତମାନ ଯନ୍ତ୍ରସ୍ଥ ।

ଯାଜପୁରର ପଣ୍ଡିତ ଏକାଦଶୀ ଦେବୀ ଓ ସମ୍ବଲପୁରର କଂଗ୍ରେସ କର୍ମୀ ପଣ୍ଡିତ ଶ୍ରୀ ଲକ୍ଷ୍ମୀନାରାୟଣ ମିଶ୍ର ମଧ୍ୟ ଭାଷାକୋଷ ସମ୍ବନ୍ଧରେ ଗୋଟିଏ ଗୋଟିଏ ପ୍ରଶଂସା-ମୂଳକ କବିତା ପ୍ରକାଶ କରି ଅଛନ୍ତି ।

ଦେଶବିଦେଶରେ ସୁପଣ୍ଡିତରୂପେ ପରିଚିତ କଲିକତା ବିଶ୍ୱ-ବିଦ୍ୟାଳୟର ଅଗ୍ରଣୀ ଡାକ୍ତର ସୁନୀତିକୁମାର ଚାଟର୍ଜି, ଏମ୍. ଏ, ଡି. ଲିଟ୍, ମହୋଦୟ ମହୀଶୂର ରାଜ୍ୟରେ ଅନୁଷ୍ଠିତ ହୋଇଥିବା ଗତ ଅଲ୍, ଇଣ୍ଡିଆ ଓରିଏଣ୍ଟାଲ୍ କନ୍‌ଫରେନ୍‌ସର ଭାରତୀୟ ଆର୍ଯ୍ୟଭାଷାବିଷୟକ ଶାଖାର ସଭାପତିରୂପେ ତାଙ୍କ ଅଭିଭାଷଣରେ ଭାଷାକୋଷ ବିଷୟ ଉଲ୍ଲେଖ କରିଥିଲେ । ସେ ମୋ ନିକଟକୁ ଏହି ଭାବରେ ଖଣ୍ଡିଏ ପତ୍ର ମଧ୍ୟ ଲେଖି ଅଛନ୍ତି :—

"ଆପଣଙ୍କର ସୁବୃହତ୍ ଅଭିଧାନକୁ ମୁଁ କଲିକତା ବିଶ୍ୱ-ବିଦ୍ୟାଳୟ ଲାଇବ୍ରେରୀରେ ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇଅଛି ଓ ଆପଣଙ୍କ ବିଦ୍ୱତ୍ତାର ଓ ପ୍ରଗାଢ଼ ଅଧ୍ୟବସାୟର ଭୂୟସୀ ପ୍ରଶଂସା କରୁଅଛି । ଭାରତୀୟ ଆର୍ଯ୍ୟଭାଷା ଅନୁଶୀଳନକାରୀଙ୍କ ପକ୍ଷରେ ଆପଣଙ୍କ ଅଭିଧାନ ଗୋଟିଏ ଅଦ୍ୱିତୀୟ ଗ୍ରନ୍ଥ । ଏହି ବିଶାଳ ଗ୍ରନ୍ଥ ଉତ୍କଳୀୟ ମନୀଷାର ସ୍ମୃତିସ୍ତମ୍ଭରୂପେ ବିରାଜୁଥିବ । ସୁଖର ବିଷୟ ଏହି ଯେ, ଉତ୍କଳଜନନୀ ସ୍ୱୀୟ ରାଜ୍ୟରେ ଅଧିଷ୍ଠାତ୍ରୀ ଦେବୀରୂପେ ପ୍ରତିଷ୍ଠିତ ହେବାର ସମକାଳରେ ଏହା ପ୍ରକାଶିତ ହୋଇଅଛି ।

ବଙ୍ଗଳା ଓ ହିନ୍ଦୀ ବିଶ୍ୱକୋଷ ପ୍ରଣେତା ପ୍ରାଚ୍ୟ ବିଦ୍ୟାମହାର୍ଣ୍ଣବ ରାୟସାହେବ ଶ୍ରୀ ନଗେନ୍ଦ୍ରନାଥ ବସୁ ତତ୍‌କୃତ ମହାଗ୍ରନ୍ଥ ବଙ୍ଗଳା ବିଶ୍ୱ-କୋଷର ୨ୟ ସଂସ୍କରଣରେ ଓଡ଼ିଶା ସମ୍ବନ୍ଧରେ ପ୍ରବନ୍ଧ ଲେଖିବାପାଇଁ ମୋତେ ଅନ୍ୟତମ ଲେଖକରୂପେ ଗ୍ରହଣ କରିଅଛନ୍ତି; ତହିଁର ପ୍ରଥମ ଓ ଦ୍ୱିତୀୟ ଖଣ୍ଡ ମାତ୍ର ପ୍ରକାଶିତ ହୋଇଅଛି ।

ବର୍ତ୍ତମାନ ଇଂଲଣ୍ଡରେ ଅଧ୍ୟୟନ କରୁଥିବା କେନ୍ଦୁଝରର ନରପତିଙ୍କ ଅନୁଜ ଜ୍ୟେଷ୍ଠରାୟ ଶ୍ରୀମାନ ଲକ୍ଷ୍ମୀନାରାୟଣ ଭଞ୍ଜଦେବ ଓ କେନ୍ଦୁଝରର ରାଜାଙ୍କର ବିଦୁଷୀ ପାଟମହିଷୀ, ଉଭୟେ ଏକ ସାର (ସେଟ) ଲେଖାଏଁ ଭାଷାକୋଷ ଓ ଅନ୍ୟ କେତେକ ଆଦର୍ଶ ଓଡ଼ିଆ ସାହିତ୍ୟ ପୁସ୍ତକ ଅକ୍ସଫୋର୍ଡ ଓ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଲାଇବ୍ରେରୀ-ମାନଙ୍କୁ ଏବଂ ଗ୍ରେଟବ୍ରିଟେନର ଓ ଇଉରୋପ ମହାଦେଶର ଅନ୍ୟ ସାଧାରଣ ଲାଇବ୍ରେରୀମାନଙ୍କୁ ଉପହାର ଦେବାକୁ କଳ୍ପନା କରୁଅଛନ୍ତି ।

ଅନ୍ତୁର ମଧ୍ୟ ପରମ ଆହ୍ଲାଦସହକାରେ ଜ୍ୟେଷ୍ଠ ରାୟସାହେବଙ୍କଠାରୁ ଅବଗତ ହେଲି ଯେ, ଗଞ୍ଜାମ ଜିଲ୍ଲା ଚିକିଟିର ରାଜକୁମାର—ଶ୍ରୀ ସାହେବ ଦେଓଙ୍କ ଚେଷ୍ଟାରେ ଇଂଲଣ୍ଡରେ ଓଡ଼ିଆ ଭାଷା ଗୋଟିଏ ଭାଷାରୂପେ ଗୃହୀତ ହୋଇଅଛି, ଏବଂ ଲଣ୍ଡନ ବିଶ୍ୱବିଦ୍ୟାଳୟର ମାଟ୍ରିକ୍ୟୁଲେସନ (ପ୍ରବେଶିକା) ପରୀକ୍ଷାର ପାଠ୍ୟ ନିର୍ଘଣ୍ଟର ଅନ୍ତର୍ଭୁକ୍ତ ହୋଇଅଛି ।

ବାଣପୁରର ସୁପରିଚିତ ପଣ୍ଡିତ ଶ୍ରୀ ଗୋଦାବରୀଶ ମିଶ୍ର ଏମ୍.ଏ, ବି. ଟି., ଏମ୍. ଏଲ୍. ଏ. ମହୋଦୟ ବାରିପଦା ସାହିତ୍ୟ ସମାଜର ଗତ ବାର୍ଷିକ ଅଧିବେଶନରେ ସଭାପତିରୂପେ ତାଙ୍କ ଅଭିଭାଷଣରେ ମୟୂରଭଞ୍ଜ ମହାରାଜଙ୍କର ଭାଷାକୋଷ ପ୍ରତି ବଦାନ୍ୟତା ପାଇଁ ମହା-ରାଜଙ୍କୁ ଓଡ଼ିଆ ଜାତିର ଧନ୍ୟବାଦ ଅର୍ପଣ କରିଥିଲେ ।

ବ୍ରହ୍ମପୁରର ଓଡ଼ିଆ ସାପ୍ତାହିକ ସମ୍ବାଦପତ୍ର 'ଓଡ଼ିଆ'ର ସମ୍ପାଦକ ଶ୍ରୀମାନ୍ ଅନନ୍ତ ଆଚାର୍ଯ୍ୟ ୧୪।୨।୩୭ ତାରିଖର ସଂଖ୍ୟାରେ ଭାଷାକୋଷର ଗୁଣାନୁବାଦ ପୂର୍ବକ ଗୋଟିଏ ପ୍ରବନ୍ଧ ପ୍ରକାଶ କରିଥିଲେ ଏବଂ ତହିଁରେ ସଂଗ୍ରାହକର ଗୋଟିଏ ଆଲୋକଚିତ୍ର ମଧ୍ୟ ଦେଇଥିଲେ ।

କଲିକତାର ବିଖ୍ୟାତ ଇଂରାଜୀ ପତ୍ରିକାଦ୍ୱୟ ଷ୍ଟେଟ୍‌ସମାନ୍ ଓ ଅମୃତବଜାର ପତ୍ରିକା ଓ ମାନ୍ଦ୍ରାଜର ହିନ୍ଦୁ ପତ୍ରିକା ୧୩।୬।୩୭ ତାରିଖର ସଂଖ୍ୟାରେ ଭାଷାକୋଷର ଅର୍ଥପରିସ୍ଥିତି ଓ ପରିସମାପ୍ତି ବିଷୟରେ କଟକ ସାମ୍ବାଦିକଙ୍କ ପ୍ରେରିତ ଗୋଟିଏ ଲେଖାଏଁ ସଂକ୍ଷିପ୍ତ ବିବୃତି ପ୍ରକାଶ କରିଅଛନ୍ତି ।

## ବିକ୍ରୀତ ଓ ଉପହାରରୂପେ ପ୍ରଦତ୍ତ ପୁସ୍ତକ—

ଆଜଯାଏ ୩୮୦ ସେଟ୍ ପୁସ୍ତକ ପାଇଁ ଅଗ୍ରିମ ଗ୍ରାହକ ହୋଇ ଅଛନ୍ତି । ପଞ୍ଚମ ଖଣ୍ଡର ପ୍ରକାଶପରେ ୧୫ ସେଟ୍ ଗ୍ରନ୍ଥପାଇଁ ଯେଉଁ ନୂତନ ଗ୍ରାହକ ହୋଇ ଅଛନ୍ତି, ସେମାନଙ୍କ ମଧ୍ୟରେ ନିମ୍ନଲିଖିତ ନାମ ଉଲ୍ଲେଖ ଯୋଗ୍ୟ—

ରେଙ୍ଗୁନ ବିଶ୍ୱବିଦ୍ୟାଳୟ ଲାଇବ୍ରେରୀ, ବଙ୍ଗଳାର ରୟାଲ ଏସିଆଟିକ୍ ସୋସାଇଟି, କାଶୀ ହିନ୍ଦୁ ବିଶ୍ୱବିଦ୍ୟାଳୟ, ନାଗପୁର ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱରସ୍ଥ ରାମକୃଷ୍ଣମଠ, ସମ୍ବଲପୁର ବରପାଲି ଜମିଦାରୀର ଅପ୍ରାପ୍ତବୟସ୍କା ଅଧିକାରିଣୀ ଶ୍ରୀମତୀ ପ୍ରଭାସ କୁମାରୀ ଦେବୀ (ଏହାଙ୍କ ପାଇଁ ସମ୍ବଲପୁରର ଡେପୁଟୀ କମିଶନର ସାହେବ ଏକ ସେଟ୍‌ର ତାତ୍‌କାଳିକ ମୂଲ୍ୟ ୧୧୫ ଟଙ୍କା ପରିବର୍ତ୍ତେ ୧୫୦ ଟଙ୍କା ପଠାଇ ଦେଇଅଛନ୍ତି), କଟକ ମିସନ୍ ପ୍ରେସର ସୁପରିଣ୍ଟେଣ୍ଡେଣ୍ଟ, ପ୍ରୋଫେସର ବିପିନ ବିହାରୀରାୟ. ଏମ୍. ଏ., ପାଟନା ଷ୍ଟେଟର ସଦର ସବଡିଭିଜନ ଅଫିସର୍ ବାବୁ ଶ୍ରୀ ଦୁର୍ଗାଚରଣ ରାୟ, ପାଟନା ଷ୍ଟେଟର ଏଡୁକେଶନ୍ ଅଫିସର୍, କେନ୍ଦୁଝର ଷ୍ଟେଟର ଦେବାନ (ରାଜାସାହେବଙ୍କ ଦ୍ୱାରା ପୂର୍ବରୁ ଗୃହୀତ ୧୦ ସେଟ୍‌ରୁ ଅଧିକା), ପାଟନା ଷ୍ଟେଟ ଅନ୍ତର୍ଗତ ଟିଟିଲାଗଡ଼ ଓ ପାଟନାଗଡ଼ ମାଇନର୍‌ସ୍କୁଲର ହେଡମାଷ୍ଟରମାନେ, ବଲାଙ୍ଗିରର ଜର୍ଜ କ୍ଲବ୍ ।

ବର୍ତ୍ତମାନ ସୁଦ୍ଧା ୭୦ ସାର ଗ୍ରନ୍ଥ ପୃଷ୍ଠପୋଷକ, ଉତ୍ସାହଦାତା ଓ ସହକର୍ମୀମାନଙ୍କୁ ଉପହାର ଦିଆଯାଇଅଛି । ପଞ୍ଚମ ଖଣ୍ଡର ପ୍ରକାଶ ପରେ ୬ ସାର ବହି ଉପହାର ଦିଆଯାଇଅଛି ।

## ଗ୍ରନ୍ଥର ଆର୍ଥିକ ପରିସ୍ଥିତି

ସପ୍ତମ ବା ଶେଷ ଖଣ୍ଡ ପାଇଁ ଓଡ଼ିଆ ବର୍ଣ୍ଣମାଳାର ଶେଷ ଅକ୍ଷର ଦୁଇଟି (ସ ଓ ହ) ବାକି ଅଛି । ଗ୍ରନ୍ଥମାନଙ୍କ ବନ୍ଧାଇ ଖରଚ ସହିତ ପ୍ରତ୍ୟେକ ଖଣ୍ଡର ପ୍ରକାଶ ପାଇଁ ହାରାହାରି ୧୬ ହଜାର ଟଙ୍କା ଲାଗିଛି । ସମଗ୍ର ସାତ ଖଣ୍ଡର ପ୍ରକାଶ ବ୍ୟୟ ପ୍ରାୟ ଏକ ଲକ୍ଷ ପନ୍ଦର ହଜାର ଟଙ୍କା ହେବ । ଏପର୍ଯ୍ୟନ୍ତ ଗ୍ରାହକମାନଙ୍କଠାରୁ ପ୍ରାପ୍ତ ଅଗ୍ରିମ ମୂଲ୍ୟ, ଋଣ, ବିହାର ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କଠାରୁ, ପାଟଣା ବିଶ୍ୱବିଦ୍ୟାଳୟରୁ, ମୟୂରଭଞ୍ଜ, ଜୟପୁର, ପାଟଣା, ପାରଳାଖେମଣ୍ଡି, କଳାହାଣ୍ଡି ମହାରାଜାଙ୍କଠାରୁ, ବୌଦ, ଆଠମଲ୍ଲିକ, ଖଲ୍ଲିକୋଟ, କେନ୍ଦୁଝର, ତିଗିରି, ଖଣ୍ଡପଡ଼ା ରାଜାଙ୍କଠାରୁ, ଏମାରମଠ ମହନ୍ତ ମହାରାଜାଙ୍କଠାରୁ ଏବଂ ଅନ୍ୟାନ୍ୟ ଉଦାର ହୃଦୟ ଦାତାଙ୍କଠାରୁ ସାହାଯ୍ୟ ପ୍ରାୟ ଏକ ଲକ୍ଷ ଟଙ୍କା ସଂଗୃହୀତ ହୋଇଅଛି । ଏ ଗ୍ରନ୍ଥର ପରିସମାପ୍ତି ନିକଟବର୍ତ୍ତୀ ହୋଇ ଆସିଲାଣି । ଏପରି ଅବସ୍ଥାରେ ମୁଁ ଆଶା କରୁଅଛି ଯେ, ଶେଷ ଖଣ୍ଡର ପ୍ରକାଶବ୍ୟୟ ଓ ଏ ଗ୍ରନ୍ଥ ସଂପର୍କରେ କରାଯାଇଥିବା ଋଣ ଓ ଅନ୍ୟାନ୍ୟ ବାକି ବ୍ୟୟ ନିର୍ବାହ ପାଇଁ ଯାହା ପ୍ରୟୋଜନୀୟ ହେବ ତାହା ଏଥି ମଧ୍ୟରେ ମୋ ହସ୍ତଗତ ହେବ । ଯେଉଁ ଦାତାମାନେ ଅଙ୍ଗୀକୃତ ଧନ ସମ୍ପୂର୍ଣ୍ଣରୂପେ ଦେଇ ନାହାନ୍ତି ଓ ସମଗ୍ର ଗ୍ରନ୍ଥ ପ୍ରକାଶ ନ ହୋଇପାରିବାର ଆଶଙ୍କା କରି ଯେଉଁ ସାହିତ୍ୟ-ପ୍ରେମୀ ପୃଷ୍ଠପୋଷକମାନେ ଏପର୍ଯ୍ୟନ୍ତ ସେମାନଙ୍କର ଦାନାଭ୍ୟସ୍ତ ହସ୍ତକୁ ଏହି ଉଦ୍ଦେଶ୍ୟରେ ସଂପ୍ରସାରିତ କରି ନାହାନ୍ତି, ଆଗାମୀ ବର୍ଷ ଏହାର ପରିସମାପ୍ତି ହେବ, ଏଥିରେ ଆଉ ସନ୍ଦେହ ନ କରି ସେମାନେ ଦାତୃତ୍ୱ ପ୍ରକାଶ କିମ୍ବା ଅଧିକା ସାହାଯ୍ୟ କଲେ ମୁଁ ଏହି କାର୍ଯ୍ୟ ଯଥାକାଳରେ ସାଙ୍ଗ କରି ପାରିବି । ନିମ୍ନୋକ୍ତ ଉଦାର ହୃଦୟ ପୃଷ୍ଠପୋଷକମାନଙ୍କ ବଦାନ୍ୟତାକୁ ସତୃଷ୍ଣ ନୟନରେ ଅନାଇ ମୁଁ ବିଶ୍ୱାସ କରୁଅଛି ଯେ, ସେମାନେ ଏହି ଜାତୀୟ ଜ୍ଞାନମନ୍ଦିରର ମୁଣ୍ଡିମାରିବାରେ ଓ ତେଜଲ ଉପରେ ନୀଳଚକ୍ର ବସାଇବାରେ ସମ୍ପୂର୍ଣ୍ଣ ସହାୟତା କରିବେ;—

ଓଡ଼ିଶା ଗଭର୍ଣ୍ଣମେଣ୍ଟ—( ଯହିଁର କର୍ଣ୍ଣଧାର ମହୋଦୟ ଏହି ମନ୍ଦିରର ଶୁଭ ଦେଇଥିଲେ ଏବଂ ବର୍ତ୍ତମାନ ଆମ୍ଭମାନଙ୍କ ମଧ୍ୟରେ ଥାଇଁ ଥାଇଁ ଏ ସାରସ୍ୱତ ମନ୍ଦିରର ମୁଣ୍ଡିମାରିବା ଦେଖିବେ ।

ବାମଣ୍ଡାର ସ୍ୱର୍ଗତ ଦାନଶୌଣ୍ଡ ସାହିତ୍ୟ ପ୍ରେମିକ, ବିଶ୍ରୁତକୀର୍ତ୍ତି ରାଜା ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କ ଧର୍ମପ୍ରାଣା ମହିଷୀ ଓ ଅଶେଷ ସଦ୍‌ଗୁଣ ନିଧାନ ବାମଣ୍ଡାର ବର୍ତ୍ତମାନ ଅଧୀଶ୍ୱର ଶ୍ରୀ ଭାନୁଗଙ୍ଗ ତ୍ରିଭୁବନ ଦେବଙ୍କ ପିତାମହୀ, ସତତ ଦାନପରାୟଣହସ୍ତା, ମହନୀୟ ଚରିତା, ସାହିତ୍ୟାନୁରାଗିଣୀ—ଶ୍ରୀମତୀ ଡମ୍ବରୁଧର ପ୍ରିୟା ଦେବୀ—(ଯେ ଅଳ୍ପ ଉତ୍ତର ବୟସରେ ସ୍ୱୀୟ ରାଜାନ୍ତଃପୁରରେ ବିଦୁଷୀ ମଣ୍ଡଳ ଗଠନ ପୂର୍ବକ ବାମଣ୍ଡା ରାଜବଂଶର ସାହିତ୍ୟସେବାର ପରମ୍ପରା ରକ୍ଷାକରି ପ୍ରତ୍ୟହ ନିୟମିତ ଓଡ଼ିଆ ସାହିତ୍ୟ ଚର୍ଚ୍ଚା କରନ୍ତି ଓ ଜାତୀୟ ସାହିତ୍ୟର ପ୍ରଗତି ବିଷୟରେ ସମ୍ବାଦ ରଖିବା ନିମନ୍ତେ ଇଂରାଜୀ ଓ ଅନ୍ୟ ଭାଷାରେ ପ୍ରକାଶିତ ପତ୍ର ପତ୍ରିକାମାନ ପାଠ କରନ୍ତି ଓ ପ୍ରତିଭାଶାଳୀ ଦୁଃସ୍ଥ ସାହିତ୍ୟିକ ଓ ଗ୍ରନ୍ଥକାର ମାନଙ୍କ ଦୁଃଖମୋଚନ ଯାହାଙ୍କର ଚିରାଚରିତ ବ୍ରତ ଏବଂ ଉତ୍କଳର ଏହି ଅକ୍ଷୟ ଅକ୍ଷରକୀର୍ତ୍ତି ଭାଷାକୋଷର ପରିପୂର୍ତ୍ତି ନିମନ୍ତେ ଯାହାଙ୍କ ସଦୟଦୃଷ୍ଟି ଆକର୍ଷଣ କରିବା ଭାର ତାଙ୍କର ଗୁଣଗ୍ରାହୀ ତନୁଜ ପୁରୀର ଗଜପତି ମହାରାଜା ବୀର ଶ୍ରୀ ରାମଚନ୍ଦ୍ର ଦେବ, ତାଙ୍କର ପୌତ୍ର ବାମଣ୍ଡାଧୀଶ୍ୱର ମହୋଦୟ, ତାଙ୍କର ଘନିଷ୍ଠ ବାନ୍ଧବଦ୍ୱୟ ତାଳଚେର ନରେଶ ଓ ବଣାଇ ନରେଶ ସ୍ୱତଃ ଗ୍ରହଣ କରି ମୋତେ କୃତାର୍ଥ କରି ଅଛନ୍ତି ) ।

ବାମଣ୍ଡାର ଶାସକ ନୃପତି ଶ୍ରୀ ଭାନୁଗଙ୍ଗ ତ୍ରିଭୁବନ ଦେବ—(ନବଜାତ ଯୁବରାଜଙ୍କୁ ମିଶାଇ ପାଞ୍ଚ ପୁରୁଷ ହେଲା ଯାହାଙ୍କ ପରିବାର ସଙ୍ଗେ ଏହି ସଂଗ୍ରାହକ ସଂପୃକ୍ତ ରହିଅଛି ଏବଂ ଯେ ଏହି ତରୁଣ ବୟସରୁ ସ୍ୱବଂଶର ସମୁଚ୍ଚ ସାହିତ୍ୟିକ ଯଶୋରାଶିକୁ ଅକ୍ଷୁଣ୍ଣ ରଖିବା ପାଇଁ ସମୁଜ୍ଜ୍ୱଳ ସୂଚନା ପ୍ରଦର୍ଶନ କଲେଣି ) ।

ସୋନପୁରର ଶାସକ ନରପତି ମହାରାଜା ସୁଧାଂଶୁ ଶେଖର ସିଂହ-ଦେବ (ଯାହାଙ୍କ ନିକଟରେ ସ୍ୱୟଂ ସଂଗ୍ରାହକ ଓ ତାହାର ମନିଶ୍ରମ ବାଲ୍ୟ-କାଳରୁ ସୁପରିଚିତ ଏବଂ ଯେ ସୋନପୁରର ମହନୀୟ ମହାରାଜ ପ୍ରାସାଦକୁ ସ୍ୱୀୟକୀର୍ତ୍ତି ପ୍ରଭାରେ ନିତ୍ୟ ଦୀପ୍ତିମୟ କରି ରଖିବେ) ।

ସରାଇକଳା ରାଜ୍ୟର ଅଧିପତି ରାଜା ଶ୍ରୀ ଆଦିତ୍ୟ ପ୍ରତାପ ସିଂହଦେବ (ଯାହାଙ୍କର ପିତାମହ ସ୍ୱର୍ଗୀୟ ମହାରାଜ ଉଦିତନାରାୟଣ ସିଂହଦେବ ୧୯୩୦ରେ ଏହି କାର୍ଯ୍ୟପାଇଁ ସାହାଯ୍ୟ କରିବାକୁ ପ୍ରତିଶ୍ରୁତ ହୋଇଥିଲେ ଏବଂ ପ୍ରତିଜ୍ଞା ପାଳନ ନ କରୁଣୁ ଯେ ସ୍ୱର୍ଗରାଜ୍ୟକୁ ପ୍ରୟାଣ କଲେ, ପାଟନା ରାଜ୍ୟର ରାଜଲକ୍ଷ୍ମୀ ବର୍ତ୍ତମାନ ଯାହାଙ୍କ ବଂଶଧରଙ୍କ ଆଶ୍ରିତ ଏବଂ ଯାହାଙ୍କ ଯୁବରାଜ ଜଣେ ଉଦୀୟମାନ ବିଶ୍ୱବିଦ୍ୟାଳୟର ଉଚ୍ଚ ଉପାଧିଧାରୀ ଯୁବକ ଅଟନ୍ତି) ।

କଳାହାଣ୍ଡିର ମହାରାଜ ଶ୍ରୀ ବ୍ରଜମୋହନ ଦେବ ଓ. ବି. ଇ.—(ଯାହାଙ୍କଠାରୁ ୧୯୨୮ ରେ ପ୍ରାରମ୍ଭିକ ସାହାଯ୍ୟ ଏକ ସହସ୍ର ଟଙ୍କା ପାଇ ମୁଁ ମୂଳ ପାଣ୍ଡୁଲିପିର ସମ୍ମାର୍ଜନ କର୍ମ ଆରମ୍ଭ କରିବାକୁ ସମର୍ଥ ହୋଇଥିଲି ଏବଂ ଯେ ସ୍ୱୟଂ ୨୫ ସେଟ୍ ପୁସ୍ତକର ଅଗ୍ରିମ ଗ୍ରାହକ ହୋଇ ଅଛନ୍ତି ।)

କେନ୍ଦୁଝର ରାଜ୍ୟର ଶାସକ ନରପତି ରାଜା ଶ୍ରୀ ବଳଭଦ୍ର ନାରାୟଣ ଭଞ୍ଜ ଦେବ ( ଯେ ଏକକାଳୀନ ଆଠ ଶତ ଟଙ୍କା ସାହାଯ୍ୟ କରିଥିଲେ ଓ ୧୦ ସେଟ ଗ୍ରନ୍ଥର ଗ୍ରାହକ ହୋଇ ଅଛନ୍ତି ।)

ବଣାଇ ରାଜ୍ୟର ଶାସକ ନରପତି ରାଜା ଶ୍ରୀ ଧରଣୀଧର ଇନ୍ଦ୍ର ଦେଓ ଦେବ (ଯେ ଏ କାର୍ଯ୍ୟରେ ସାହାଯ୍ୟ କରିବାକୁ ସଙ୍କଳ୍ପବଦ୍ଧ ହୋଇଅଛନ୍ତି ଓ ଏଥିର ଅଗ୍ରଗତି ବିଷୟ ମଧ୍ୟେ ମଧ୍ୟେ ଅନୁସନ୍ଧାନ କରୁଅଛନ୍ତି, ଓ ଭାଷାକୋଷ ସମ୍ବନ୍ଧରେ ଯାହାଙ୍କ ଉଚ୍ଚମତ ଗ୍ରନ୍ଥକାର ଅଳ୍ପ ଦିନପୂର୍ବେ ବଣାଇ ଗଡ଼କୁ ଯାଇ ତାଙ୍କ ଶ୍ରୀମୁଖରୁ ଶୁଣି ଆସିଅଛି ଓ ଏ ଗ୍ରନ୍ଥର ସପ୍ତମଖଣ୍ଡର ପ୍ରକାଶାର୍ଥ ପ୍ରୟୋଜନୀୟ ଅର୍ଥ ପାଇଁ ଯେ ପୁଣ୍ୟଶ୍ଳୋକା ବାମଣ୍ଡାରାଜ ଜେଜେମାତା ଶ୍ରୀମତୀ ଡମ୍ବରୁଧରପ୍ରିୟା ଦେବୀଙ୍କ ଦୃଷ୍ଟି ଓ ଦାତୃତ୍ୱ ଆକର୍ଷଣ କରିବାକୁ ସ୍ୱତଃ ପ୍ରତିଶ୍ରୁତି ପ୍ରଦାନ କରିଅଛନ୍ତି । )

ଦଶପଲ୍ଲାର ଶାସକ ନରପତି ରାଜା ଶ୍ରୀ କିଶୋରଚନ୍ଦ୍ର ଭଞ୍ଜଦେବ ( ଯେ ଏ ଗ୍ରନ୍ଥପାଇଁ ସାହାଯ୍ୟ କରିବାର ବାସନା ସଂଗ୍ରାହକଙ୍କୁ ଜଣାଇ-ଅଛନ୍ତି ।)

ପୁରୀର ଗଜପତି ମହାରାଜା ଓ କୋଟିଏ ଉତ୍କଳୀୟଙ୍କ ଠାକୁରରାଜା ଶ୍ରୀ ରାମଚନ୍ଦ୍ର ଦେବ (ଯେ ତାଙ୍କ ଜନନୀ ବାମଣ୍ଡା ଜେଜେମାତାଙ୍କ ଦୃଷ୍ଟି ଭାଷାକୋଷପ୍ରତି ଆକର୍ଷଣ କରିବେ ବୋଲି ଅଙ୍ଗୀକାର କରିଅଛନ୍ତି ।)

ଖଲ୍ଲିକୋଟ, ଆଠଗଡ ଓ ବରୁଆର ରାଜା ବାହାଦୁର ଶ୍ରୀ ରାମଚନ୍ଦ୍ର ମର୍ଦ୍ଦରାଜ ଦେବ ଏମ୍. ଏଲ୍. ଏ ( ଯେ ଏଥିପୂର୍ବେ ଏକହଜାର ଟଙ୍କା ସାହାଯ୍ୟ କରିଅଛନ୍ତି ଏବଂ ଓଡ଼ିଶାପ୍ରଦେଶର ଗଢ଼ାରେ ଯାହାଙ୍କ ଶୁଭଦୃଷ୍ଟି ଚିରକାଳ ଇତିହାସରେ ଲିପିବଦ୍ଧ ହୋଇ ରହିବ ।)

ତାଳଚେର ରାଜ୍ୟର ଶାସକ ନରପତି ରାଜା ଶ୍ରୀ କିଶୋରଚନ୍ଦ୍ର ବୀରବର ହରିଚନ୍ଦନ—( ସରସ୍ୱତୀ ସେବା ଯାହାଙ୍କ ବଂଶଧର ମାନଙ୍କର ଅସ୍ଥିମଜ୍ଜାଗତ ହୋଇଅଛି ଏବଂ ଯେ ସାହାଯ୍ୟ ଦେବା ପାଇଁ ଅଙ୍ଗୀକାର କରିଅଛନ୍ତି । )



**Raja Sri Ramchandra Dev,**
**Gajapati Raja of Puri.**

ପୁରୀର ଗଜପତି ରାଜା ଶ୍ରୀ ରାମଚନ୍ଦ୍ର ଦେବ ।
(ହିତକାମୀ)



**Raja Kishor Chandra Birabar Harichandan,**
**Ruling Chief, Talcher State.**

ତାଳଚେର ଅଧୀଶ୍ୱର ସାହିତ୍ୟପ୍ରେମିକ, ଗୁଣଗ୍ରାହୀ
ରାଜା ଶ୍ରୀ କିଶୋରଚନ୍ଦ୍ର ବୀରବର ହରିଚନ୍ଦନ (ସାହାଯ୍ୟକାରୀ)

ବାଲେଶ୍ୱର ଜିଲ୍ଲାର ଜମିଦାର ରାୟବାହାଦୁର ଭୂୟାଁ। ଭାସ୍କରଚନ୍ଦ୍ର ମହାପାତ୍ର—( ଯାହାଙ୍କ ସଙ୍ଗେ ସ୍ୱୟଂ ସଂଗ୍ରାହକ ଏବଂ ତାହାର ସହକର୍ମିଣୀ ଧର୍ମବନ୍ଧୁତା-ସୂତ୍ରରେ ଆବଦ୍ଧ ଏବଂ ଯେ ପ୍ରାଚୀନ ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ଏବଂ ଅନ୍ୟ ଅନେକ ସତ୍‌କର୍ମମାନଙ୍କ ପାଇଁ ପ୍ରଚୁର ଅର୍ଥ ସାହାଯ୍ୟ କରି ଆସିଅଛନ୍ତି । )

ପୁରୀ ଏମାର ମଠର ମହନ୍ତ ମହାରାଜ ଶ୍ରୀ ଗଦାଧର ରାମାନୁଜ ଦାସ ( ଯେ ଏଥିପୂର୍ବେ ଏକ ସହସ୍ର ଟଙ୍କା ଦାନ କରିଅଛନ୍ତି ଓ ଆଉ ଏକ ସହସ୍ର ଟଙ୍କା ଦାନ କରିବାକୁ ଅଙ୍ଗୀକାର କରିଅଛନ୍ତି, ଏବଂ ଯାହାଙ୍କ ବଦାନ୍ୟତାର ନିଦର୍ଶନ ଓଡ଼ିଶାର ବହୁ ଜନହିତକର ଅନୁଷ୍ଠାନ ଓ ଜ୍ଞାନାନୁଶୀଳନ ସମ୍ପର୍କୀୟ କର୍ମରେ ମିଳିଅଛି ।)

ଏହି ଗ୍ରନ୍ଥ ଦିନେ ଓଡ଼ିଆ ଭାଷାର ଓ ସାହିତ୍ୟର ଇତିହାସରେ ବିଶିଷ୍ଟ ସ୍ଥାନ ଅଧିକାର କରି ଓଡ଼ିଆ ଜାତିକୁ ଓ ଭାଷାକୁ ଆନ୍ତର୍ଜାତିକ ସଂସଦ୍‌ରେ ଉଚ୍ଚସ୍ଥାନର ଅଧିକାରୀ କରାଇବ ବୋଲି ଆଶା କରାଯାଏ; ଏହି ଜାତୀୟ ସାରସ୍ୱତ ବଡ଼ ଦେଉଳର ନୀଳଚକ୍ର ବସିବା ବା ମୁଣ୍ଡି ମରିବା ରୂପ କର୍ମ (ଭାଷାକୋଷ ୭ମ ଖଣ୍ଡର ପ୍ରକାଶ)ର ବ୍ୟୟଭାର ଲକ୍ଷ୍ମୀଙ୍କର ବରପୁତ୍ରମାନଙ୍କ ମଧ୍ୟରୁ କେହି ଜଣେ ଇଚ୍ଛା କଲେ ଅକ୍ଳେଶରେ ଏକା ତୁଲେଇ ପାରିବେ ବୋଲି ମୁଁ ଆଶା କରୁଅଛି ।

## ଗ୍ରନ୍ଥର ମୂଲ୍ୟ

ସମଗ୍ର ଗ୍ରନ୍ଥ ୨ଖଣ୍ଡରୁ କ୍ରମେ ୭ଖଣ୍ଡରେ ପୂର୍ଣ୍ଣତା ପ୍ରାପ୍ତ ହେବା ଦେଖାଯିବାରୁ ପ୍ରଥମେ ବିଜ୍ଞାପିତ ଅଗ୍ରିମ ମୂଲ୍ୟ ୩୦ ଟଙ୍କାରୁ ବଢ଼ି ବଢ଼ି ୫ମ ଖଣ୍ଡର ପ୍ରକାଶ ବେଳକୁ ଏକସାର ଗ୍ରନ୍ଥର ମୂଲ୍ୟ ୧୧୫ ଟଙ୍କା ହୋଇଥିଲା । ଯେଉଁମାନେ ତତ୍‌କାଳୀନ ଅଗ୍ରିମ ମୂଲ୍ୟ ଦେଇ ଗ୍ରାହକ ଶ୍ରେଣୀଭୁକ୍ତ ହୋଇଥିଲେ ସେମାନଙ୍କଠାରୁ ଆଉ ଅତିରିକ୍ତ ମୂଲ୍ୟ ନିଆ ନ ଯାଇ ୭ଖଣ୍ଡ ଯାକ ସେମାନଙ୍କ ଦିଆ ଯାଉଅଛି । ସେମାନଙ୍କ ପକ୍ଷରେ ଆଉ ଅଧିକ ମୂଲ୍ୟ ଦେବା ଧର୍ମତଃ ଉଚିତ କି ନାହିଁ, ତାହା ସେମାନେ ସ୍ୱୟଂ ବିଚାର କରିବେ; ସଂଗ୍ରାହକ ପକ୍ଷରେ ଏହା ଦାବି କରିବାର ଅବସର ନାହିଁ ।

ସମଗ୍ର ଗ୍ରନ୍ଥ ପ୍ରକାଶ ପୂର୍ବରୁ କାଳକ୍ରମେ ଯେଉଁ ଗ୍ରାହକମାନେ ଗ୍ରାହକ ଶ୍ରେଣୀ ଭୁକ୍ତ ହୋଇ କ୍ରମଶଃ ବିଜ୍ଞାପିତ ଅଗ୍ରିମ ମୂଲ୍ୟ ପ୍ରଦାନ କରିଥିଲେ, ମୋ କଥା ଉପରେହିଁ ସେମାନେ ବିଶ୍ୱାସ ସ୍ଥାପନ କରି ମୂଲ୍ୟ ଦେଇଥିଲେ, ଏଥିପାଇଁ ସେମାନେ ସମଗ୍ର ଗ୍ରନ୍ଥ ଶସ୍ତାରେ ପାଇଲେ । ବର୍ତ୍ତମାନ ୬ଷ୍ଠଖଣ୍ଡ ପ୍ରକାଶିତ ହେଲା ଓ ଶେଷଖଣ୍ଡର ପ୍ରକାଶର ସମ୍ଭାବନା ଏବେ ଆଖି ସମ୍ମୁଖରେ ଦେଖା ଦେଲାଣି । ବର୍ତ୍ତମାନ ସମଗ୍ର ୭ଖଣ୍ଡର ମୂଲ୍ୟ ଟ ୧୫୦୲ ଦେଢ଼ଶତ ଟଙ୍କା ନିର୍ଦ୍ଧାରିତ ହେଲା । ଯେବେ କୌଣସି ଗ୍ରାହକ ୭ମ ଖଣ୍ଡର ପ୍ରକାଶ ପୂର୍ବେ ଗ୍ରାହକ ହୋଇ ଅଗ୍ରିମ ମୂଲ୍ୟ ପ୍ରଦାନ କରିବେ, ତେବେ ତାଙ୍କୁ ସମଗ୍ର ଗ୍ରନ୍ଥ ( ୭ଖଣ୍ଡ ) ଟ ୧୩୨୲ (ଏକଶତ ବତିଶ) ଟଙ୍କାରେ ଦିଆଯିବ । ଯେଉଁ ଗ୍ରାହକମାନେ କୌଣସି ଏକଖଣ୍ଡ ମାତ୍ର କ୍ରୟ କରିବାକୁ ଇଚ୍ଛାକରିବେ, ତାଙ୍କୁ ୨୫୲ ( ପଚିଶ ) ଟଙ୍କା ମୂଲ୍ୟ ଦେବାକୁ ପଡ଼ିବ । ଯେଉଁ ଗ୍ରାହକ ମାନଙ୍କର ଆୟ ଅଳ୍ପ, ସେମାନଙ୍କ ସଙ୍ଗେ କିସ୍ତି ଧାର୍ଯ୍ୟ କରାଯାଇ ପାରିବ ।

## କାର୍ଯ୍ୟ ପରିସମାପ୍ତିର ସମ୍ଭାବନା

ସମ୍ମାର୍ଜନ ଓ ପରିଷ୍କରଣ ପରେ ସପ୍ତମ ଖଣ୍ଡର ପାଣ୍ଡୁଲିପିମାନ ପ୍ରେସକୁ ଦିବାପାଇଁ ପ୍ରସ୍ତୁତ ହୋଇ ରଖା ହେଲାଣି । 'ସ' ଓ 'ହ' ଅକ୍ଷରାଦ୍ୟ ଶବ୍ଦଗୁଡ଼ିକ ଏହି ଖଣ୍ଡରେ ପ୍ରଦତ୍ତ ହେବ । 'କ୍ଷ' ଅକ୍ଷରାଦ୍ୟ ଶବ୍ଦଗୁଡ଼ିକ ବର୍ଣ୍ଣମାଳା କ୍ରମରେ 'କ' ଅକ୍ଷର ପରେ ପ୍ରଦତ୍ତ ହୋଇଅଛି । ପୂର୍ବବର୍ତ୍ତୀ ଖଣ୍ଡମାନଙ୍କ ପ୍ରକାଶ ପରେ ଯେଉଁସବୁ ନୂତନ ଶବ୍ଦ, ନୂତନ ତତ୍ତ୍ୱ, ପରିତ୍ୟକ୍ତ ଶବ୍ଦ ଓ ଭ୍ରମପ୍ରମାଦମାନ ମୋ ଦୃଷ୍ଟିକୁ ଆସିଅଛି, ସେଗୁଡ଼ିକ ବର୍ଣ୍ଣମାଳା କ୍ରମରେ ସଙ୍କଳିତହୋଇ ପରିଶିଷ୍ଟ ଖଣ୍ଡପାଇଁ ପ୍ରସ୍ତୁତ ହେଉଅଛି । ଆଶାକରାଯାଏ, ଶେଷ ବା ୭ମଖଣ୍ଡର ଶେଷରେ ଏହି ପରିଶିଷ୍ଟ ଯୋଗ କରାଯାଇପାରିବ ଓ ଏହା ୧୯୩୮ ସାଲର ଏହିମାସସୁଦ୍ଧା ପ୍ରକାଶିତ ହେବ ।

## ଧନ୍ୟବାଦାର୍ପଣ

ମୋର ସମସ୍ତ ସହକର୍ମୀ, ସହାୟତାକାରୀ, ହିତାକାଂକ୍ଷୀ, ସହାନୁଭୂତି ପ୍ରଦର୍ଶକ ଓ ପୃଷ୍ଠପୋଷକମାନଙ୍କୁ ମୁଁ ଧନ୍ୟବାଦ ଅର୍ପଣ କରୁଅଛି । ମହାନୁଭବ ସମ୍ରାଟ ଷଷ୍ଠ ଜର୍ଜ ଓ ମହାରାଣୀ ଏଲିଜାବେଥଙ୍କ ଛାମୁରେ ଓ ତାଙ୍କ ଭାରତ ପ୍ରତିନିଧି ଭାଇସରୟଙ୍କ ଠାରେ ମୁଁ ସସମ୍ମାନ ରାଜଭକ୍ତି ସମର୍ପଣ କରୁଅଛି । ଆମ୍ଭମାନଙ୍କ ନୂତନ ପ୍ରଦେଶରେ ସମ୍ରାଟଙ୍କ ପ୍ରତିନିଧିରୂପେ ବିରାଜିତ ମହାମତି ସର୍ ଜନ୍ ଅଷ୍ଟିନ୍ ହବାକ୍ ଏ ଗ୍ରନ୍ଥର ପାଳକପିତାରୂପେ ବିରାଜିତ ହୋଇ ଏ ଗ୍ରନ୍ଥର ପରିସମାପ୍ତିର ଆଶାପଥ ସମୁଜ୍ଜ୍ୱଳ କରୁଅଛନ୍ତି; ତାଙ୍କୁ ମୁଁ କୃତଜ୍ଞତା ଅର୍ପଣ କରୁଅଛି ।

ଯାହାଙ୍କ ଅପାର କରୁଣାରୁ ମୁଁ ଏତେଦୂର ଅଗ୍ରସର ହୋଇ ପାରିଅଛି ଏବଂ ମୋ ଜୀବନକାଳର ୨୨ବର୍ଷର ପରିଶ୍ରମର ପରିପୂର୍ଣ୍ଣତା ଯାହାଙ୍କ କୃପାରେ ମୋ ଦୃଷ୍ଟିଗୋଚର ହେଲାଣି, ସେହି ପରମପୁରୁଷଙ୍କ ଶ୍ରୀଚରଣରେ ମୁଁ ଭକ୍ତି ଓ ଶ୍ରଦ୍ଧା ଅର୍ପଣ କରୁଅଛି ।

## ଉପସଂହାର

ସର୍ବଶକ୍ତିମାନ୍ ପରମପୁରୁଷ ଓଡ଼ିଆ ଭାଷାକୋଷର କ୍ରମିକ ଖଣ୍ଡମାନ ପ୍ରକାଶ କରାଇବା ସଙ୍ଗେ ସଙ୍ଗେ ନୂତନ ଓଡ଼ିଶା ପ୍ରଦେଶର ଗଠନ କରାଇଅଛନ୍ତି, ତାଙ୍କ ଦୟାରୁ ବିଶ୍ୱାସରେ ଏହି ଗ୍ରନ୍ଥର ପରିସମାପ୍ତି ସଙ୍ଗରେ ନୂତନ ଓଡ଼ିଶା ପ୍ରଦେଶର ସର୍ବାଙ୍ଗୀନ ଉନ୍ନତି ସଂସାଧିତ ହେବ ଏବଂ ଓଡ଼ିଆ ଭାଷା ତଥା ଓଡ଼ିଆ ଜାତି ସଭ୍ୟଜଗତ ଦୃଷ୍ଟିରେ ଅଦୂର ଭବିଷ୍ୟତରେ ଉପଯୁକ୍ତ ସମ୍ମାନର ଅଧିକାରୀ ହେବ ।

ଭାଷାକୋଷ ଆଶ୍ରମ<br>ଭାଷାକୋଷ ଲେନ୍<br>କଟକ, ଓଡ଼ିଶା<br>ଜୁନ ୧ ତାରିଖ ୧୯୩୭ ମସିହା

ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ<br>ସଂଗ୍ରାହକ



**Maharaja Sri Brajamohan Dev, O. B. E.**
**Ruler, Kalahandi State.**
କଳାହାଣ୍ଡି ଅଧୀଶ୍ୱର ମହାରାଜ ଶ୍ରୀ ବ୍ରଜମୋହନ ଦେବ ।
(ସାହାଯ୍ୟଦାତା)



**Raja Sri Balabhadranarayan Bhanj Dev,**
**Ruler, Keonjhar State.**
କେନ୍ଦୁଝରାଧୀଶ୍ୱର ରାଜା ଶ୍ରୀ ବଳଭଦ୍ରନାରାୟଣ ଭଞ୍ଜ ଦେବ ।
(ସାହାଯ୍ୟଦାତା)



**The Late Maharaja Sir Biramitrodaya Singh Deb**
**Dharmanidhi Gyanagunakara K. C. I. E., M. R. A. S., Sonepur.**

ସୋନପୁର ରାଜ୍ୟର ସ୍ୱର୍ଗୀୟ ମହାରାଜ ଶ୍ରୀ ବୀରମିତ୍ରୋଦୟ ସିଂହ ଦେବ,
ଧର୍ମନିଧି, ଜ୍ଞାନଗୁଣାକର, କେ.ସି.ଆଇ.ଇ., ଏମ୍.ଆର୍.ଏ. ଏସ୍ (ଦାନବୀର)

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ସଙ୍କଳନରେ ବ୍ୟବହୃତ ଅଭିଧାନ ଗ୍ରନ୍ଥ ଓ ଗ୍ରନ୍ଥକାରମାନଙ୍କର ନାମ ଓ ସାଙ୍କେତିକ :—

M. W.—ମନିଅର୍ ୱିଲିଅମ୍‌ସ୍‌ଙ୍କ କୃତ ସଂସ୍କୃତ-ଇଂରାଜୀ ଶବ୍ଦକୋଷ ।

କୀର୍ତ୍ତିକାର (Kirtikar)—ଡକ୍ଟର୍ କୀର୍ତ୍ତିକାରଙ୍କର 'Indian plants' (ଭାରତୀୟ ଉଦ୍ଭିଦ) ନାମକ ଗ୍ରନ୍ଥ ।

ଆପ୍ଟେ (Apte)—ପ୍ରୋଫେସର୍ ଆପ୍ଟେଙ୍କର Practical Sanskrit-English Dictionary (ସଂସ୍କୃତ-ଇଂରାଜୀ ଅଭିଧାନ) ।

ବିମ୍‌ସ୍ (Beames)—Beames Comparative Grammar of four Indo-Aryan languages. (ବୀମ୍‌ସ୍ ସାହେବଙ୍କ ସଙ୍କଳିତ ଚାରି ଭାଷାର ବ୍ୟାକରଣ ।)

ଚେମ୍ବର୍‌ସ୍ (Chambers)—Chambers's Twentieth Century English Dictionary.

ପ୍ରୋଥେରୋ (Prothero)—A short primer of Indian History by Mr. M. Prothero.

Haines—ହାଏନ୍‌ସ୍ ସାହେବଙ୍କ Botany of Bihar and Orissa (ବିହାର-ଓଡ଼ିଶାର ଉଦ୍ଭିଦତତ୍ତ୍ୱ) ।

Howells—ପାଦ୍ରୀ ହାଓ୍ୱେଲ୍‌ସ୍ ସାହେବଙ୍କ ଅପ୍ରକାଶିତ ଓଡ଼ିଆ-ଇଂରାଜୀ ଅଭିଧାନର ପାଣ୍ଡୁଲିପି ।

Fallon—ଡକ୍ଟର୍ ଫାଲନ୍‌ଙ୍କର ହିନ୍ଦୁସ୍ଥାନୀ-ଇଂରାଜୀ ଶବ୍ଦକୋଷ ।

Sir George Greierson—Linguistic Survey of India. (ଗ୍ରୀୟରସନ୍‌ଙ୍କ ଭାରତର ଭାଷାବିଚାର) ।

Grundy—ପାଦ୍ରୀ ଗ୍ରଣ୍ଡି ସାହେବଙ୍କର ଓଡ଼ିଆ-ଇଂରାଜୀ ଶବ୍ଦକୋଷ ।

Sutton—ପାଦ୍ରୀ ସଟନ୍‌ଙ୍କ ସଙ୍କଳିତ ଓଡ଼ିଆ ଅଭିଧାନ ।

ଗୋପୀନାଥ ନନ୍ଦ—ଗୋପୀନାଥ ନନ୍ଦଙ୍କ ଓଡ଼ିଆ 'ଶବ୍ଦତତ୍ତ୍ୱବୋଧ ଅଭିଧାନ' ।

ବୈଜ୍ଞାନିକ ପରିଭାଷା—ବଙ୍ଗୀୟ ବିଜ୍ଞାନ ପରିଷଦ୍ ସଙ୍କଳିତ ଇଂରାଜୀ-ବଙ୍ଗଳା କୋଷ ଗ୍ରନ୍ଥ ।

ଜଗନ୍ନାଥ ରାଓ—ଉତ୍କଳ ଅଭିଧାନ ।

ରାମନାରାୟଣ ଲାଲ—ଇଂରାଜୀ-ହିନ୍ଦି ଶବ୍ଦକୋଷ—The Student's practical English-Hindi Dictionary.

ଜ୍ଞାନେନ୍ଦ୍ର—ଜ୍ଞାନେନ୍ଦ୍ରମୋହନ ଦାସଙ୍କ ବଙ୍ଗଳା ଭାଷାର ଅଭିଧାନ ।

ବିଶ୍ୱକୋଷ—ପ୍ରାଚ୍ୟ ବିଦ୍ୟାମହାର୍ଣ୍ଣବ ନଗେନ୍ଦ୍ରନାଥ ବସୁଙ୍କ ପ୍ରଣୀତ ବଙ୍ଗଳା ବିଶ୍ୱକୋଷ, ପ୍ରଥମ ସଂସ୍କରଣ ।

ଯୋଗେଶଚନ୍ଦ୍ର—ରାୟ ବାହାଦୁର ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧିଙ୍କ ସଙ୍କଳିତ 'ବଙ୍ଗଳା ଶବ୍ଦକୋଷ' ।

ପ୍ରକୃତିବାଦ—ଶ୍ରୀଯୁକ୍ତ ରାମକମଲ ବିଦ୍ୟାଲଙ୍କାରଙ୍କ ପ୍ରଣୀତ ସଚିତ୍ର ବଙ୍ଗଳା 'ପ୍ରକୃତିବାଦ ଅଭିଧାନ ।'

ହିନ୍ଦି ଶବ୍ଦସାଗର—କାଶୀ ନାଗରୀ ପ୍ରଚାରିଣୀ ସଭାଙ୍କ ପ୍ରକାଶିତ 'ହିନ୍ଦୀ ଶବ୍ଦସାଗର' ବା ହିନ୍ଦୀ ଭାଷାର ବୃହତ୍ ଶବ୍ଦକୋଷ ।

ସୁବଳଚନ୍ଦ୍ର—ସୁବଳଚନ୍ଦ୍ର ମିତ୍ରଙ୍କ ସରଳ ବଙ୍ଗଳା ଅଭିଧାନ ।

ଗାଙ୍ଗୁଲି—The Student's Bengali and English Dictionary (ବି. ଗାଙ୍ଗୁଲିଙ୍କ ବଙ୍ଗଳା-ଇଂରାଜୀ ଅଭିଧାନ)

ଦ୍ରବ୍ୟଗୁଣ—କବିରାଜ ଦେବେନ୍ଦ୍ରନାଥ ଓ ଉପେନ୍ଦ୍ରନାଥ ସେନ୍‌ଗୁପ୍ତଙ୍କ ବଙ୍ଗଳା 'ଦ୍ରବ୍ୟଗୁଣ' ।

ସମର୍ଥକୋଷ—ରାଜା ରାଧାକାନ୍ତ ଦେବଙ୍କଦ୍ୱାରା ପ୍ରକାଶିତ 'ସମର୍ଥକୋଷ' ଅଭିଧାନ ।

ସ୍କୁଲପାଠ୍ୟ ଇତିହାସ—ପ୍ରୋଥେରୋ ସାହେବଙ୍କ ସଙ୍କଳିତ ଇଂରାଜୀ ଭାରତ ଇତିହାସ ।

ପ୍ରାଚୀନ ଉତ୍କଳ—ଶ୍ରୀ ଜଗବନ୍ଧୁ ସିଂହଙ୍କ ସଙ୍କଳିତ ପ୍ରାଚୀନ ଉତ୍କଳ ।

ସାହିତ୍ୟ ଦର୍ପଣ—ବିଶ୍ୱନାଥ କବିରାଜଙ୍କ ସଙ୍କଳିତ ।

ଶବ୍ଦକଳ୍ପଦ୍ରୁମ—ବଙ୍ଗାକ୍ଷରରେ ମୁଦ୍ରିତ ରାଜା ରାଧାକାନ୍ତ ଦେବଙ୍କ ସଂସ୍କୃତ ଅଭିଧାନ ।

ଶଙ୍କର ଦିଗ୍‌ବିଜୟ—ଶ୍ରୀ ଶଙ୍କର ସଚ୍ଚିଦାନନ୍ଦ ସରସ୍ୱତୀ ସ୍ୱାମୀଙ୍କ ସଂସ୍କୃତ ମୂଳ ଗ୍ରନ୍ଥର ଓଡ଼ିଆ ପଦ୍ୟାନୁବାଦ ।

ଚଳନ୍ତିକା—ଶ୍ରୀଯୁକ୍ତ ରାଜଶେଖର ବସୁଙ୍କ କୃତ ବଙ୍ଗ ଭାଷାର ସଂକ୍ଷିପ୍ତ ଅଭିଧାନ ।

ବର୍ତ୍ତମାନ ସମରର ଇତିବୃତ୍ତ—ବାବୁ ଭଗବତଚରଣ ଦାସ ମେଦିନୀପୁରଙ୍କ ସଙ୍କଳିତ ବଙ୍ଗଳା ଗ୍ରନ୍ଥ ।

ବିରାଟ ନଗର ଓ ସୁବର୍ଣ୍ଣରେଖା—ସ୍ୱର୍ଗୀୟ ପଣ୍ଡିତ ରୁଦ୍ରନାରାୟଣ ଷଡ଼ଙ୍ଗୀ ବାଲେଶ୍ୱରଙ୍କ ରଚିତ ଗ୍ରନ୍ଥ ।

ସମାଜ ସଂସ୍କାର—ଶ୍ରୀ ପ୍ରାଣକୃଷ୍ଣ ଦାସ ଓକିଲ ବାଲେଶ୍ୱରଙ୍କ ସଙ୍କଳିତ ଗ୍ରନ୍ଥ ।

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ବ୍ୟବହୃତ ଶିଷ୍ଟ ପ୍ରୟୋଗମାନଙ୍କ ଗ୍ରନ୍ଥକାରମାନଙ୍କ ନାମ ଓ ସାଙ୍କେତିକ ଚିହ୍ନ ।

( ଦ୍ରଷ୍ଟବ୍ୟ—ଗ୍ରନ୍ଥମାନଙ୍କ ନାମ ଯଥାସ୍ଥାନରେ ଦିଆ ଯାଇଅଛି )

ଅଚ୍ୟୁତ, ଅଚ୍ୟୁତାନନ୍ଦ—କଟକ ଜିଲ୍ଲାର ନେମାଳ ଗାଦିର ମହନ୍ତ ସ୍ୱର୍ଗୀୟ ଅଚ୍ୟୁତାନନ୍ଦ ଦାସ ।

ଅଜୟଚନ୍ଦ୍ର—ସ୍ୱର୍ଗୀୟ ରାୟ ବାହାଦୁର ଅଜୟଚନ୍ଦ୍ର ଦାସ ।

ଅଭିମନ୍ୟୁ—ପ୍ରାଚୀନ କବି ଅଭିମନ୍ୟୁ ସାମନ୍ତସିଂହାର ।

ଅରୁଣୋଦୟ ପ୍ରେସ୍‌ଙ୍କ ସଙ୍କଳିତ ଓଡ଼ିଆ ପଞ୍ଜିକା

ଅଳଙ୍କାର ତରଙ୍ଗିଣୀ—ପଣ୍ଡିତ ଚୂଳାମଣି ଦାଶଙ୍କ ସଙ୍କଳିତ ଅଳଙ୍କାର ଗ୍ରନ୍ଥ ।

ଆଶା—ଶ୍ରୀ ଶଶିଭୂଷଣ ରଥଙ୍କ ସମ୍ପାଦିତ ସାପ୍ତାହିକ ଓ ଦୈନିକ ପତ୍ରିକା ।

ଉତ୍କଳ-ସାହିତ୍ୟ—ସ୍ୱର୍ଗୀୟ ବିଶ୍ୱନାଥ କରଙ୍କ ପ୍ରତିଷ୍ଠିତ ମାସିକ ପତ୍ରିକା ।

ଓଡ଼ିଆ—ଶ୍ରୀ ଅନନ୍ତ ଅଗ୍ରୱାଲଙ୍କ ସମ୍ପାଦିତ ସାପ୍ତାହିକ ପତ୍ରିକା ।

କବିସୂର୍ଯ୍ୟ—ପ୍ରାଚୀନ କବି କବିସୂର୍ଯ୍ୟ ବଳଦେବ ରଥ ।

କୁନ୍ତଳା; କୁନ୍ତଳାକୁମାରୀ—ଶ୍ରୀମତୀ କୁନ୍ତଳାକୁମାରୀ ଦେବୀ ।

ଚୂଳାମଣି—ପଣ୍ଡିତ ଚୂଳାମଣି ଦାଶ କାବ୍ୟତୀର୍ଥ ।

କୃପାସିନ୍ଧୁ—ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ର ।

କୃଷ୍ଣସିଂହ—ଧରାକୋଟର ପ୍ରାଚୀନ ରାଜା ।

ଗଙ୍ଗାଧର—ସ୍ୱର୍ଗୀୟ କବି ଗଙ୍ଗାଧର ମେହେର ।

ଗଡ଼ଜାତବାସିନୀ—ତାଳଚେରରୁ ପ୍ରକାଶିତ ସାପ୍ତାହିକ ପତ୍ରିକା ।

ଗୋପବନ୍ଧୁ—ସ୍ୱର୍ଗୀୟ ଗୋପବନ୍ଧୁ ଦାସଙ୍କ ରଚିତ ଧର୍ମପଦ କବିତା ।

ଗୋପାଳକୃଷ୍ଣ—ଗଞ୍ଜାମର ପ୍ରାଚୀନ କବି ।

ଗୋଲୋକ—ଅଧୁନା ପ୍ରକାଶିତ କାବ୍ୟ ଇନ୍ଦୁରେଖାର କବି ।

ଟିକାଟି—ରାଜାସାହେବ, ଟିକାଟି ।
ଚିନ୍ତାମଣି—ଶ୍ରୀଯୁକ୍ତ ଚିନ୍ତାମଣି ଆଚାର୍ଯ୍ୟ ।
ଚିନ୍ତାମଣି (କବି)—କବିବର ଚିନ୍ତାମଣି ମହାନ୍ତି ।
ଜଗନ୍ନାଥ—ଓଡ଼ିଆ ଭାଗବତକାର ଭକ୍ତକବି ଜଗନ୍ନାଥ ଦାସ ।
ଜଗବନ୍ଧୁ—ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ ।
ତାରିଣୀ—ସ୍ୱର୍ଗୀୟ ତାରିଣୀଚରଣ ରଥ ।
ତୁଳସୀ-ବିକ୍ରମ—ଜୟପୁରର ମହାରାଜା ବିକ୍ରମଦେବଙ୍କ କୃତ ତୁଳସୀ
ଦାସଙ୍କ ହିନ୍ଦୀ ରାମାୟଣ ଅରଣ୍ୟକାଣ୍ଡର ପଦ୍ୟାନୁବାଦ ।
ଦାଶରଥି—ପ୍ରାଚୀନ କବି ଦାଶରଥି ଦାସ ।
ଦୀନକୃଷ୍ଣ—ଭକ୍ତକବି ଦୀନକୃଷ୍ଣ ଦାସ ।
ଦୈନିକ ଆଶା—ବ୍ରହ୍ମପୁରରୁ ପ୍ରକାଶିତ ଦୈନିକ ପତ୍ରିକା ।
ନନ୍ଦକିଶୋର—ସ୍ୱର୍ଗୀୟ କବି ନନ୍ଦକିଶୋର ବଳ ।
ନବଭାରତ—ଶ୍ରୀଯୁକ୍ତ ନୀଳକଣ୍ଠ ଦାଶଙ୍କ ପ୍ରତିଷ୍ଠିତ ଓଡ଼ିଆ ମାସିକ
ପତ୍ରିକା ।
ନବୀନ—ଶ୍ରୀ କୃପାସିନ୍ଧୁ ପଟ୍ଟଦେବଙ୍କ ସମ୍ପାଦିତ ସାପ୍ତାହିକ ପତ୍ରିକା ।
ନାରାୟଣ—କବି ନାରାୟଣ ଦାସ (ହରିବଂଶ) ।
ନୀଳକଣ୍ଠ—ନୀଳକଣ୍ଠ ଦାଶ ( ପିଲାଙ୍କ ରାମାୟଣ ଓ କୋଣାର୍କେ ) ।
ନୀଳମଣି—ସ୍ୱର୍ଗୀୟ ପଣ୍ଡିତ ନୀଳମଣି ମିଶ୍ର ।
ପଞ୍ଚାମୃତ—କଟକ ଟ୍ରେଡିଙ୍ଗ୍ କମ୍ପାନିଙ୍କ ପ୍ରକାଶିତ ଶିଶୁ ପତ୍ରିକା ।
ପୀତାମ୍ବର—କବି ପୀତାମ୍ବର ଦାସ ( ନୃସିଂହ ପୁରାଣ ] ।
ପୀତାମ୍ବରୀ—ଶ୍ରୀମତୀ ପୀତାମ୍ବରୀ ଦେବୀ ।
ପ୍ରତାପ—ପ୍ରାଚୀ ସମିତି ପ୍ରକାଶିତ ଶଶିସେଣା ।
ପ୍ରାଚୀ—କଟକ ପ୍ରାଚୀସମିତି ପ୍ରକାଶିତ ଗ୍ରନ୍ଥମାଳା ।
ପ୍ୟାରୀମୋହନ—ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ (ଇତିହାସ) ।
ଫକୀର; ଫକୀରମୋହନ—ସ୍ୱର୍ଗୀୟ ଫକୀରମୋହନ ସେନାପତି ।
ବଳରାମ—ପ୍ରାଚୀନ କବି ବଳରାମ ଦାସ ( ରାମାୟଣ ) ।
ବି. କେ. ପୁ—ବିଷ୍ଣୁକେଶରୀ ପୁରାଣ ।
ବିକ୍ରମ ଦେବ—ସାହିତ୍ୟସମ୍ରାଟ୍ ମହାରାଜ ବିକ୍ରମଦେବ, ଜୟପୁର ।
ବାଇକୋଳି—ବାଇକୋଳି ମହାପାତ୍ର ଜ୍ୟୋତିଷ ବିଶାରଦ
(ଜ୍ୟୋତିଃସାର ଗ୍ରନ୍ଥାବଳୀ) ।
ବିଜୟଚନ୍ଦ୍ର—ପ୍ରୋଫେସର୍ ଶ୍ରୀ ବିଜୟଚନ୍ଦ୍ର ମଜୁମଦାର ।
ବିନାୟକ—ପଣ୍ଡିତ ଶ୍ରୀ ବିନାୟକ ମିଶ୍ର ।
ବିଶ୍ୱନାଥ—ପ୍ରାଚୀନ କବି ବିଶ୍ୱନାଥ ଖୁଣ୍ଟିଆ (ବିଚିତ୍ରରାମାୟଣ) ।

ବିଶ୍ୱନାଥ ବାବା—ମହିମା ଧର୍ମ ପ୍ରତିପାଦକ ଅନେକ ଗ୍ରନ୍ଥର ରଚୟିତା,
ମହିମା ଧର୍ମ ପ୍ରଚାରକ ଅବଧୂତ ବିଶ୍ୱନାଥ ବାବା ।
ବିଷ୍ଣୁକେଶରୀ ପୁରାଣ—ପ୍ରାଚୀ ଗ୍ରନ୍ଥମାଳା ।
ବ୍ରଜନାଥ—ବ୍ରଜନାଥ ବଡ଼ଜେନାଙ୍କ ପ୍ରଣୀତ ସମରତରଙ୍ଗ ।
ଭକ୍ତଦାସ, ଭକ୍ତଚରଣ—ପ୍ରାଚୀନ କବି ଭକ୍ତଚରଣ ଦାସ ।
ଭଞ୍ଜ—କବି ଉପେନ୍ଦ୍ର ଭଞ୍ଜ ।
ଭୀମଭୋଇ—ନିରାକାରି ଭଜନାଦିର ରଚୟିତା ଅନ୍ଧକବି ଭୀମ ।
ଭୀମା—ଭୀମା ଧୀବର [କପଟପାଶା] ।
ଭିକାରୀଚରଣ—ରାୟ ବାହାଦୁର ଶ୍ରୀ ଭିକାରୀଚରଣ ପଟ୍ଟନାୟକ ।
ଭୂପତି—ପ୍ରାଚୀ ଗ୍ରନ୍ଥମାଳାର କବି ଭୂପତି ପ୍ରଣୀତ ପ୍ରେମପଞ୍ଚାମୃତ ।
ମଦନମୋହନ—ଶ୍ରୀଯୁକ୍ତ ମଦନମୋହନ ପଟ୍ଟନାୟକ (ତୀର୍ଥଦର୍ଶନ) ।
ମହାଦେବ—ପ୍ରାଚୀନ କବି ମହାଦେବ ଦାସ (ମାର୍କଣ୍ଡେୟ ପୁରାଣ) ।
ମଧୁସୂଦନ—ଭକ୍ତକବି ସ୍ୱର୍ଗୀୟ ମଧୁସୂଦନ ରାଓ ।
ଯଶୋବନ୍ତ—ପ୍ରାଚୀନ କବି ଯଶୋବନ୍ତ ସିଂହ ।
( ପ୍ରେମଭକ୍ତି ବ୍ରହ୍ମଗୀତା )
ରାଜକିଶୋର—ଡାକ୍ତର ଶ୍ରୀ ରାଜକିଶୋର ନନ୍ଦ ।
ରାଧାନାଥ—କବିବର ସ୍ୱର୍ଗୀୟ ରାଧାନାଥ ରାୟ ।
ରାଧାମୋହନ—ଟିକାଟିର ରାଜା ରାଧାମୋହନ ରାଜେନ୍ଦ୍ର ଦେବ ।
ରାଧାଚରଣ—ଡାକ୍ତର ରାଧାଚରଣ ପଣ୍ଡା ।
ରାମଦାସ—ପ୍ରାଚୀନ କବି ରାମଦାସ ( ଦାର୍ଢ୍ୟତାଭକ୍ତି ) ।
ରାମଶଙ୍କର—ସ୍ୱର୍ଗୀୟ ରାୟବାହାଦୁର ରାମଶଙ୍କର ରାୟ ।
ଶଶିଭୂଷଣ—ଶ୍ରୀ ଶଶିଭୂଷଣ ରାୟ
ଶିଶୁଶଙ୍କର—ପ୍ରାଚୀନ କବି ଶିଶୁଶଙ୍କର (ଉଷା ଅଭିଳାଷ) ।
ସତ୍ୟସମାଚାର—କଟକରୁ ପ୍ରକାଶିତ ସାପ୍ତାହିକ ସମ୍ବାଦପତ୍ର ।
ସମାଜ—କଟକରୁ ପ୍ରକାଶିତ ଦୈନିକ ସମ୍ବାଦପତ୍ର ।
ସହକାର—ଶ୍ରୀ ବାଳକୃଷ୍ଣ କରଙ୍କ ସମ୍ପାଦିତ ମାସିକ ପତ୍ରିକା ।
ସାରଳା—ପ୍ରାଚୀନ କବି ସାରଳା ଦାସ (ମହାଭାରତ) ।
ସୁବଳ ଦେବ—ବାମଣ୍ଡାର ରାଜା ସ୍ୱର୍ଗୀୟ ରାଜା ସର୍ ବାସୁଦେବ
ସୁବଳ ଦେବ ।
ସୋନପୁର—ସୋନପୁରର ସ୍ୱର୍ଗୀୟ ମହାରାଜା ସର୍ ବୀରମିତ୍ରୋଦୟ
ସିଂହଦେବ ଧର୍ମନିଧି, ଜ୍ଞାନଗୁଣାକର, K. C. I. E.
ଷ୍ଟେଟ୍ସ୍‌ମ୍ୟାନ୍—କଲିକତାରେ ପ୍ରକାଶିତ ଦୈନିକ ଇଂରାଜୀ ପତ୍ରିକା ।
ହରେକୃଷ୍ଣ—କବିରାଜ ହରେକୃଷ୍ଣ ମିଶ୍ର ।
ହି. ଶ—କାଶୀନାଗରୀପ୍ରଚାରିଣୀ ସଭାସଙ୍କଳିତ ହିନ୍ଦୀ ଶବ୍ଦସାଗର ।

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ୬ଷ୍ଠ ଖଣ୍ଡରେ ଥିବା କେତେକ ଶବ୍ଦ ବିଷୟରେ ସନ୍ଦର୍ଭଲେଖକଗଣଙ୍କ ନାମ ।

ଶ୍ରୀ ଅପୂର୍ବକୃଷ୍ଣ ସରକାର. ବି. ଏ.—କଟକ
ଶ୍ରୀ କୁମାର ବିଦ୍ୟାଧର ସିଂହ ଦେଓ, ବି.ଏଲ୍—ଜୟପୁର
ଶ୍ରୀ କେଦାରନାଥ ମହାପାତ୍ର ବି.ଏ., ଡି. ଏଡ୍—ଭୁବନେଶ୍ୱର
ଶ୍ରୀ କୈଳାସଚନ୍ଦ୍ର ରାଓ, ଡାକ୍ତର—କଟକ
ଶ୍ରୀ ଚନ୍ଦ୍ରଶେଖର ଦାସ—ଯାଜପୁର
ଶ୍ରୀ ଜଗବନ୍ଧୁ ସିଂହ ଓକିଲ—ପୁରୀ
ଶ୍ରୀ ନରସିଂହ ଗନ୍ତାୟତ ବି ଇ. ଅସିଷ୍ଟାଣ୍ଟ ଇଞ୍ଜିନିଅର୍
ଶ୍ରୀ ନାରାୟଣ ପ୍ରସାଦ ଷାଠିଆ ବି. ଏ.—କଟକ

ସ୍ୱର୍ଗୀୟ ପଣ୍ଡିତ ଶ୍ରୀ ନୀଳମଣି ମିଶ୍ର—ଯାଜପୁର
ଶ୍ରୀ ବାଇକୋଳି ମହାପାତ୍ର ଜ୍ୟୋତିଷ ବିଶାରଦ—ଖଲ୍ଲିକୋଟ
ଶ୍ରୀ ବିପିନ ବିହାରୀ ରାୟ, ପ୍ରୋଫେସର—କଟକ
ଶ୍ରୀ ବିଶ୍ୱନାଥ ରଥ କାବ୍ୟତୀର୍ଥ ରିସର୍ଚ୍ଚ ପଣ୍ଡିତ—ପୁରୀ
ଶ୍ରୀ ମନମୋହନ ଘୋଷ ଓକିଲ—କଟକ
ଶ୍ରୀ ରାଧାଚରଣ ପଣ୍ଡା, ଡାକ୍ତର—କଟକ ଓ ପୁରୀ
ଶ୍ରୀ ସାହିତ୍ୟ ସମ୍ରାଟ୍ ମହାରାଜ ବିକ୍ରମଦେବବର୍ମା-ଡି-ଲିଟ୍—ଜୟପୁର
ଶ୍ରୀ ସୁନ୍ଦରାନନ୍ଦ ବିଦ୍ୟାବିନୋଦ ମହାମହୋପଦେଶକ ବି. ଏ.
ସଚ୍ଚିଦାନନ୍ଦମଠ—କଟକ



**Sree Kherodra Singh Majhi Mandhata, Zamindar, Atgaon, Patna State**
ପାଟଣା ଷ୍ଟେଟର ଆଟଗାଁର ଜମିଦାର ଶ୍ରୀ କ୍ଷିରୋଦ୍ର ସିଂହ ମାଝୀ ମାନ୍ଧାତା ।
(ସାହାଯ୍ୟକାରୀ)



**Sree Sadanand Singh Bhoi, Zamindar of Bangmunda, Patna State**
ପାଟଣା ଷ୍ଟେଟର ବଙ୍ଗମୁଣ୍ଡାର ଜମିଦାର ଶ୍ରୀ ସଦାନନ୍ଦ ସିଂହ ଭୋଇ
(ସାହାଯ୍ୟକାରୀ)

## ଓଡ଼ିଆ ଶବ୍ଦମାନଙ୍କ ଉଚ୍ଚାରଣକୁ ଇଂରାଜୀ ଅକ୍ଷରରେ ଅକ୍ଷରାନ୍ତରୀକରଣରେ ବ୍ୟବହୃତ ବର୍ଣ୍ଣମାନଙ୍କର ପରିଚୟ ।

## LETTERS & SOUNDS USED IN THE ENGLISH TRANSLITERATION OF THE ORIYA WORDS IN THIS WORK.

| ଓଡ଼ିଆ ଅକ୍ଷର | Capital | Small | ଓଡ଼ିଆ ଅକ୍ଷର | Capital | Small |
|---|---|---|---|---|---|
| ଅ | A | a | ଟ | Ṭ | ṭ |
| ଆ | Ā | ā | ଠ | Ṭh | ṭh |
| ଇ | I | i | ଡ | Ḍ | ḍ |
| ଈ | Ī | ī | ଡ଼ | — | ṛḍ |
| ଉ | U | u | ଢ | Ḍh | ḍh |
| ଊ | Ū | ū | ଢ଼ | — | ṛḍh |
| ଋ | Ṛu | ṛu | ଣ | Ṇ | ṇ |
| ୠ | Ṛū | ṛū | ତ | T | t |
| ଌ | Ḷu | ḷu | ଥ | Th | th |
| ଏ | E | e | ଦ | D | d |
| ଐ | Ai | ai | ଧ | Dh | dh |
| ଓ | O | o | ନ | N | n |
| ଔ | Au | au | ପ | P | p |
| ଂ (ଅନୁସ୍ୱାର) | — | ṁ | ଫ | Ph | ph |
| ଃ (ବିସର୍ଗ) | — | ḥ | ବ | B | b |
| ଁ (ଚନ୍ଦ୍ରବିନ୍ଦୁ) | — | ñ | ଭ | Bh | bh |
| କ | K | k | ମ | M | m |
| ଖ | Kh | kh | ଯ | J̄ | j̄ |
| କ୍ଷ | Ksh | ksh | ୟ | Y | y |
| ଗ | G | g | ର | R | r |
| ଘ | Gh | gh | ଳ | Ḻ | ḻ |
| ଙ | Ṅ | ṅ | ଲ | L | l |
| ଚ | Ch | ch | ଅନ୍ତଃସ୍ଥ ବ ବା ୱ | W | w |
| ଛ | Chh | chh | ଶ | Ś | ś |
| ଜ | J | j | ଷ | Sh | sh |
| ଝ | Jh | jh | ସ | S | s |
| ଞ | Ñ | ñ | ହ | H | h |

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ବ୍ୟବହୃତ ସାଙ୍କେତିକ ଅକ୍ଷର ଓ ଚିହ୍ନମାନଙ୍କ ପରିଚୟ ।

ଅ=ଅବ୍ୟୟ ପଦ ।
ଅଦାଲତ=ଅଦାଲତଅର୍ଥରେ ବ୍ୟବହୃତ ଶବ୍ଦ ।
+ଅଧିକରଣ=ଅଧିକରଣ ବାଚ୍ୟରେ ପ୍ରତ୍ୟୟ ।
ଅନ୍ୟରୂପ=ଉପର୍ଯ୍ୟୁକ୍ତ ଶବ୍ଦର ଭିନ୍ନରୂପ ।
+ଅପାଦାନ=ଅପାଦାନ ବାଚ୍ୟରେ ପ୍ରତ୍ୟୟ ।
ଅଶୁଦ୍ଧ=କଥାବାର୍ତ୍ତାରେ ବା ଲେଖାରେ ବ୍ୟବହୃତ ଅଶୁଦ୍ଧ ଶବ୍ଦ ବା ଉଚ୍ଚାରଣ ।
ଆ=ଆରବୀ ଭାଷା ।
ଆଇନ୍=ଆଇନ୍ ବା ସ୍ମୃତିଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।
ଇଂ=ଇଂରାଜୀ ଭାଷା ।
ଇତର=ଇତରଜନ ବ୍ୟବହୃତ ଶବ୍ଦ ବା ଭାଷା ।
ଇତା=ଇଟାଲୀୟ ଭାଷା ।
ଇତ୍ୟାଦି=ପୂର୍ବବର୍ତ୍ତୀ ଶବ୍ଦ ଓ ସେହି ଶବ୍ଦ ସଙ୍ଗେ ବ୍ୟବହୃତ ବା ସେହିଜାତୀୟ ଅନ୍ୟ ଶବ୍ଦମାନ ।
ଉ, ଉର୍ଦ୍ଦୁ=ଉର୍ଦ୍ଦୁ ଭାଷା ।
ଏକାର୍ଥକ ସହଚର=ଯେଉଁ ଶବ୍ଦ ସଙ୍ଗେ ଏକାର୍ଥରେ ବା ସମାନାର୍ଥରେ ବ୍ୟବହୃତ ଶବ୍ଦ ବା ଶବ୍ଦାଂଶ ।
ଓ=ଓଡ଼ିଆ ଭାଷା ।
କଚଡ଼ିଆ=କଟକ ଓ ଜମିଦାରୀ ଓ ମହାଜନୀ ହିସାବ ଅର୍ଥରେ ଓ ଅଶିକ୍ଷିତ ଦଲାଲ ଲେଖାଳିଙ୍କ ଦ୍ୱାରା ବ୍ୟବହୃତ ଶବ୍ଦ ବା ଭାଷା ।
କନ୍ଧ, କୁଇ=କନ୍ଧମାନଙ୍କ ବ୍ୟବହୃତ ଭାଷା ।
+କରଣ=କରଣ ବାଚ୍ୟରେ ପ୍ରତ୍ୟୟ ।
+କର୍ତ୍ତୃ=କର୍ତ୍ତୃ ବାଚ୍ୟରେ ପ୍ରତ୍ୟୟ ।
+କର୍ମ=କର୍ମ ବାଚ୍ୟରେ ପ୍ରତ୍ୟୟ ।
କର୍ମଧା=କର୍ମଧାରୟ ସମାସ ।
କୋଙ୍କ=କୋଙ୍କ ଭାଷା ।
କ୍ରି=କ୍ରିୟାପଦ ।
କ୍ରି· ବିଣ=କ୍ରିୟା ବିଶେଷଣ ।
ଖ୍ରୀ=ଖ୍ରୀଷ୍ଟାବ୍ଦ ।
ଖ୍ରୀ· ପୂ=ଖ୍ରୀଷ୍ଟ ଜନ୍ମର ପୂର୍ବାବ୍ଦ ।

ଗଣିତ=ଗଣିତଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।
ଗାଳି=ଇତରଜନଙ୍କ ମଧ୍ୟରେ ଗାଳିରେ ବ୍ୟବହୃତ ଶବ୍ଦ ବା ବାକ୍ୟ ।
ଗୁ=ଗୁଜରାଟୀ ଭାଷା ।
ଗ୍ରା, ଗ୍ରାମ୍ୟ=ଗ୍ରାମ୍ୟ ବ୍ୟବହାର;ମାର୍ଜିତ ସାହିତ୍ୟରେ ପରିହାର୍ଯ୍ୟ ଶବ୍ଦ ।
ଗ୍ରୀ, ଗ୍ରୀକ୍=ଗ୍ରୀକ୍‌ଭାଷା ।
ଜର୍ମାନ=ଜର୍ମାନ୍ ଭାଷା ।
ଜ୍ୟୋତିଷ=ଜ୍ୟୋତିଃଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।
ତତ୍=ତତ୍‌ପୁରୁଷ ସମାସ ।
ତା=ତାମିଲ ଭାଷା ।
ତୁର୍କୀ=ତୁରସ୍କଦେଶୀୟ ଭାଷା ।
ତୁଳ=ଆଲୋଚିତ ବିଷୟକୁ ବା ଶବ୍ଦକୁ ପରବର୍ତ୍ତୀ ବିଷୟ ବା ଶବ୍ଦ ସଙ୍ଗେ ତୁଳନା କର ।
ତେ=ତେଲୁଗୁ ଭାଷା ।
ଦର୍ଶନ=ଦର୍ଶନ ଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।
ଦେ=ଦେଶଜ ଶବ୍ଦ ।
ଦେଖ=ଏ ଭାଷାକୋଷର ଶବ୍ଦକ୍ରମରେ ପୂର୍ବବର୍ତ୍ତୀ ଶବ୍ଦକୁ ଯଥାସ୍ଥାନରେ ଖୋଜ ।
ଦ୍ର=ଦ୍ରଷ୍ଟବ୍ୟ ।
ଦ୍ରା=ଦ୍ରାବିଡ଼ ଭାଷା ।
ଧା, ଧାତୁ=ସଂସ୍କୃତ ଧାତୁ ।
ଧ୍ୱନ୍ୟନୁକରଣ=ଧ୍ୱନିଅନୁକରଣରେ କଥିତ ବା ଉଚ୍ଚାରିତ ବା ଅର୍ଥସୂଚନାକାରୀ ଶବ୍ଦ ।
ଧ୍ୱନ୍ୟନୁକାରୀ ସହଚର=ପୂର୍ବ ଶବ୍ଦର ଧ୍ୱନି ବିଶିଷ୍ଟ ସହଚର ଶବ୍ଦ ବା ଶବ୍ଦାଂଶ ।
ନଞ୍ ତତ୍=ନଞ୍ ତତ୍‌ପୁରୁଷ ସମାସ ।
ନପୁଂ=ନପୁଂସକ ଲିଙ୍ଗ ।
ନାଟକ, ନାଟକୀୟ=ନାଟକରେ ବ୍ୟବହୃତ ଭାଷା ବା ଶବ୍ଦ ।
ନାମ=ସ୍ଥାନବିଶେଷର ବା ବ୍ୟକ୍ତିବିଶେଷଙ୍କ ନାମ ।
ନିରର୍ଥକ ସହଚର=ପୂର୍ବ ଶବ୍ଦ ସଙ୍ଗେ ବ୍ୟବହୃତ ଅର୍ଥହୀନ ସହଚର ଶବ୍ଦ ।
ନୋଟ୍=ଆଲୋଚିତ ଶବ୍ଦ ବିଷୟରେ ଟୀକା ।
ନ୍ୟାୟ=୧. ନ୍ୟାୟଶାସ୍ତ୍ର; ୨. ଦେଶପ୍ରଚଳିତ ନ୍ୟାୟ ବା ଉଲ୍ଲେଖ ଦିଆଯିବା ପ୍ରାମାଣିକ ଉକ୍ତି ।
ପଦ୍ୟ=କେବଳ ପଦ୍ୟରେ ବ୍ୟବହୃତ ଆକାର ।
ପର୍ତ୍ତୁ (ଚ)=ପର୍ତ୍ତୁ (ଚ) ଗୀଜ୍ ଭାଷା ।
ପା=ପାଲି ଭାଷା ।
ପୁଂ=ପୁଲ୍ଲିଙ୍ଗ ।
ପ୍ରା=ପ୍ରାକୃତ ଭାଷା ।
ପ୍ରାଚୀନ=ପ୍ରାଚୀନ ଗ୍ରନ୍ଥମାନଙ୍କରେ ବ୍ୟବହୃତ ଶବ୍ଦ ।
ଫା=ଫାରସୀ ବା ପାରସ୍ୟ ଦେଶ ପ୍ରଚଳିତ ଭାଷା ।
ବ=ବଚନ (୧ବ=ଏକବଚନ, ୨ବ=ଦ୍ୱିବଚନ; ବହୁ ବ=ବହୁବଚନ ।)
ବଂ=ବଙ୍ଗଳା ଭାଷା
ବି=ବିଶେଷ୍ୟ ପଦ ।
ବିଜ୍ଞାନ ପରିଭାଷା=ବିଜ୍ଞାନରେ ବ୍ୟବହୃତ ପାରିଭାଷିକ ଶବ୍ଦ ।
ବିଣ=ବିଶେଷଣ ପଦ ।
ବିଣର ବିଣ=ବିଶେଷଣର ବିଶେଷଣ ।
ବିପରୀତ=ପୂର୍ବୋକ୍ତ ଶବ୍ଦର ବିପରୀତାର୍ଥବୋଧକ ଶବ୍ଦ ।
ବୈଦେ=ବୈଦେଶିକ ଭାଷା (ଯଥା—ଇଂରାଜୀ, ଆରବୀ, ଫାରସୀ, ଫ୍ରେଞ୍ଚ, ଜର୍ମାନ)ରୁ ଆଗତ ବା ଗୃହୀତ ଶବ୍ଦ ।
ବୈଦ୍ୟକ=ବୈଦ୍ୟକ ଗ୍ରନ୍ଥ ବା ଆୟୁର୍ବେଦରେ ବ୍ୟବହୃତ ଶବ୍ଦ ।
ଭତରି, ଭତ୍ରୀ, ଭତଡ଼ି=ବସ୍ତର ରାଜ୍ୟର ଉତ୍ତରପୂର୍ବ କୋଣରେ ପ୍ରାୟ ୫ ହଜାର କୃଷିଜୀବୀ ଲୋକଙ୍କ କଥିତ ଭାଷା ।
+ଭାବ=୧. ଭାବାର୍ଥ ପ୍ରତ୍ୟୟ ।
୨. ଭାବ ବାଚ୍ୟରେ ପ୍ରତ୍ୟୟ ।
ଭିନ୍ନାର୍ଥକ ବା ବିପରୀତାର୍ଥ ସହଚର=ପୂର୍ବ ଶବ୍ଦ ସଙ୍ଗେ ପୃଥକ୍ ବା ବିପରୀତ ଅର୍ଥରେ ବ୍ୟବହୃତ ଶବ୍ଦ ବା ଶବ୍ଦାଂଶ ।
ମ=ମରହଟ୍ଟୀ ଭାଷା ।
ମ. ପ. ଲୋ=ମଧ୍ୟପଦଲୋପୀ କର୍ମଧାରୟ ।
ଯଥା=ପୂର୍ବୋକ୍ତ ଶବ୍ଦର, ଅର୍ଥର ବା ପ୍ରୟୋଗର ଉଦାହରଣ ।
ଲକ୍ଷଣାର୍ଥ=ଉକ୍ତ ଶବ୍ଦର ଆରୋପିତ ଅର୍ଥ ।
ଲରିଆ=ସମ୍ବଲପୁର ଓ ଛତିଶଗଡ଼ ଅଞ୍ଚଳରେ ବ୍ୟବହୃତ ଉପଭାଷା ।
ଶିଶୁବଚନ, ଶିଶୁଗୀତ, ଶିଶୁରଞ୍ଜନ=ଶିଶୁମାନଙ୍କ ମନୋରଞ୍ଜନାର୍ଥ ବୋଲାଯିବା ବା ଶିଶୁମାନଙ୍କ ଉଚ୍ଚାରିତ ବଚନ ବା ପଦ ।
ସଂ=ସଂସ୍କୃତ ଭାଷା ।
ସଙ୍ଗୀତ, ପ୍ରାଚୀନ ସଙ୍ଗୀତ—ପ୍ରାଚୀନ ଓଡ଼ିଆ ସଙ୍ଗୀତ ।
+ସଂଜ୍ଞାର୍ଥ=ସଂଜ୍ଞାର୍ଥ ପ୍ରତ୍ୟୟ ।
+ସମ୍ବ=ସମ୍ବନ୍ଧାର୍ଥ ପ୍ରତ୍ୟୟ ।
ସର୍ବ=ସର୍ବନାମ ପଦ ।
ସହଚର=ମୂଳ ଶବ୍ଦର ସହଚର ଶବ୍ଦରୂପେ ତାହିଁ ସଙ୍ଗେ ବା ପରେ ବ୍ୟବହୃତ ଶବ୍ଦ ।
ସାନ୍ତାଳ=ସାନ୍ତାଳମାନଙ୍କ କଥିତ ଭାଷା ।
ସ୍ତ୍ରୀ=ସ୍ତ୍ରୀଲିଙ୍ଗ ।
+ସ୍ୱାର୍ଥେ=ଶବ୍ଦର ମୌଳିକ ଅର୍ଥରେ ଯୁକ୍ତ ପ୍ରତ୍ୟୟ ।
ହି=ହିନ୍ଦୀ ବା ହିନ୍ଦୁସ୍ଥାନୀ ଭାଷା ।
ହେବ୍ରୁ=ହେବ୍ରୁ ଭାଷା ।

୧ବ=ଏକବଚନ
୧ମ=ପ୍ରଥମ
୧ମା=ପ୍ରଥମା ବିଭକ୍ତି
୨ବ=ଦ୍ୱିବଚନ ।
୨ୟ=ଦ୍ୱିତୀୟ
୨ୟା=ଦ୍ୱିତୀୟା ବିଭକ୍ତି ।
୩ୟ=ତୃତୀୟ
୩ୟା=ତୃତୀୟା ବିଭକ୍ତି ।
୪ର୍ଥ=ଚତୁର୍ଥ
୪ର୍ଥୀ=ଚତୁର୍ଥୀ ବିଭକ୍ତି ।
୫ମୀ=ପଞ୍ଚମୀ ବିଭକ୍ତି ।
୬ଷ୍ଠୀ=ଷଷ୍ଠୀ ବିଭକ୍ତି ।
୭ମୀ=ସପ୍ତମୀ ବିଭକ୍ତି ।
ବହୁବ=ବହୁବଚନ ।
+(ଯୁକ୍ତ)=ପରସ୍ପର ଯୁକ୍ତ ଶବ୍ଦ ବା ଧାତୁ-ପ୍ରତ୍ୟୟର ଯୁକ୍ତ ହେବା ଚିହ୍ନ ।
=(ସମାନ)=ଧାତୁ ପ୍ରତ୍ୟୟ ବା ଦୁଇ ପଦ ମିଶି ନିଷ୍ପନ୍ନ ଶବ୍ଦ ।
—ଡାସ୍=ଦୁଇଟି ଶବ୍ଦ ମଧ୍ୟରେ ବା ଶବ୍ଦ ଓ ଅର୍ଥ ମଧ୍ୟରେ ବା ଦୁଇ ଭାବ ମଧ୍ୟରେ ସମ୍ବନ୍ଧଜ୍ଞାପକ ଚିହ୍ନ ।
Etc—The words following. Law=Legal term.

## Wellwishers in heaven.
## ସ୍ୱର୍ଗତ ହିତକାମୀ ।



The late Madhusudan Das, C. I. E.
ସ୍ୱର୍ଗୀୟ ମଧୁସୂଦନ ଦାସ, ସି. ଆଇ. ଇ.



The late Sree Bhakti Siddhanta Saraswati Maharaj of Goudiyamath, Calcutta.
କଲିକତା ଗୌଡ଼ୀୟମଠର ଅଧ୍ୟକ୍ଷ
ସ୍ୱର୍ଗୀୟ ଶ୍ରୀ ଭକ୍ତିସିଦ୍ଧାନ୍ତ ସରସ୍ୱତୀ ମହାରାଜ ।



**Swami Sree Shankar Sachchidananda Saraswati,**
**Head of the Sankarananda math, Puri.**
ପୁରୀ ଭୋଗବର୍ଦ୍ଧନ (ଶଙ୍କରାନନ୍ଦ) ମଠାଧ୍ୟକ୍ଷ
ସ୍ୱାମୀ ଶ୍ରୀ ଶଙ୍କର ସଚ୍ଚିଦାନନ୍ଦ ସରସ୍ୱତୀ ।
(ସଦ୍ଗତ ହୃତକାମୀ)



**Sree Biswanath Baba**
**Missionary of the Satya Mahima faith.**
ସତ୍ୟମହିମାଧର୍ମପ୍ରଚାରକ ବ୍ରହ୍ମଅବଧୂତ ସନ୍ନ୍ୟାସୀ ଶ୍ରୀ ବିଶ୍ୱନାଥ ବାବା ।
(ହୃତକାମୀ ଓ ସନ୍ଦର୍ଭଲେଖକ)



**The late Visvanath Kar.**

ସ୍ୱର୍ଗତ ବିଶ୍ୱନାଥ କର

( ଏ ଗ୍ରନ୍ଥର ପ୍ରଥମ ପ୍ରକାଶକ ଓ ସଂଗ୍ରାହକର ସାହିତ୍ୟଗୁରୁ । )



**The late Rai Bahadur**
**Ajay Chandra Das, B. A.**

ସ୍ୱର୍ଗୀୟ ରାୟ ବାହାଦୁର ଶ୍ରୀ ଅଜୟଚନ୍ଦ୍ର ଦାସ, ବି. ଏ.

(ଶବ୍ଦସଂଗ୍ରାହକ)

## Constant wellwishers of the work.



**Prachyabidyamaharnnaba Rai Sahib Nagendra Nath Vasu,**
**Editor, The Bengalee & Hindi Viswakoshas.**
ବଙ୍ଗଳା ଓ ହିନ୍ଦି ବିଶ୍ୱକୋଷଦ୍ୱୟର ସମ୍ପାଦକ
ପ୍ରାଚ୍ୟବିଦ୍ୟାମହାର୍ଣ୍ଣବ ରାୟ ସାହେବ ଶ୍ରୀ ନଗେନ୍ଦ୍ର ନାଥ ବସୁ, କଲିକତା (ହିତକାମୀ)



**Rai Bahadur Laksmidhar Mahanti, B. L.,**
**Advocate, Cuttack.**
ରାୟବାହାଦୁର୍ ଲକ୍ଷ୍ମୀଧର ମହାନ୍ତି, ବି. ଏଲ୍.
ଆଡ୍‌ଭୋକେଟ୍, କଟକ (ହିତକାମୀ)



**G. E. Fawcus Esq., M.A., C.I.E., I.E.S.**
**Director of Public Instruction, B&O**
ବିହାର-ଓଡ଼ିଶା ଶିକ୍ଷାବିଭାଗର ଡାଇରେକ୍ଟର
ଶ୍ରୀଯୁକ୍ତ ଜି. ଇ. ଫକସ୍ ।
(ସତତ ହିତକାମୀ)



**Sreeman Chintamoni Acharya, M.A.,B.L.**
**Advocate, Govt. Pleader, Cuttack.**
ଶ୍ରୀମାନ୍ ଚିନ୍ତାମଣି ଆଚାର୍ଯ୍ୟ ଏମ୍. ଏ., ବି. ଏଲ୍.
ଗଭର୍ଣ୍ଣମେଣ୍ଟ ପ୍ଲିଡର୍, କଟକ ।
(ହିତକାମୀ)



**The Compiler, G. C. Praharaj**
ଏ ଗ୍ରନ୍ଥର ସଂଗ୍ରାହକ, ଗୋପାଳଚନ୍ଦ୍ର ପ୍ରହରାଜ



**Srimati Pitambari Debi (Associate)**
ଶ୍ରୀମତୀ ପୀତାମ୍ବରୀ ଦେବୀ (ସହକର୍ମିଣୀ)



**Pandit Kulamoni Das, Kavyatirtha.**
ପଣ୍ଡିତ କୁଳମଣି ଦାଶ, କାବ୍ୟତୀର୍ଥ



**Babu Mahananda Kar,**
**Publisher of this volume,**
**Editor, the Utkal Sahitya.**
ଏ ଖଣ୍ଡର ପ୍ରକାଶକ, ଶ୍ରୀ ମହାନନ୍ଦ କର,
ଉତ୍କଳ ସାହିତ୍ୟ ପତ୍ରିକାର ସମ୍ପାଦକ



ଶ୍ରୀମାନ୍ ବିଚ୍ଛନ୍ଦଚରଣ ପଟ୍ଟନାୟକ, ବି. ଏ.
**Sriman Bichhanda Charan Patnaik, B.A.**
**(Hons).**

# Co-workers
## ସହକର୍ମୀଗଣ



**Sreejukta S. N. Ray, M. A., B. L.**
**Zamindar & Advocate, Lakhannath, Balasore**
ଶ୍ରୀଯୁକ୍ତ ସତ୍ୟେନ୍ଦ୍ରନାରାୟଣ ରାୟ ଏମ୍. ଏ., ବି. ଏଲ୍.
ଜମିଦାର, ଆଡ୍‌ଭୋକେଟ୍, ଲକ୍ଷଣନାଥ,
ବାଲେଶ୍ୱର ।



**Babu Krishna Chandra Misra, M. A., B. L.**
ବାବୁ କୃଷ୍ଣଚନ୍ଦ୍ର ମିଶ୍ର, ଏମ୍. ଏ., ବି. ଏଲ୍.



**Pandit Sures Chandra Jha**
**Vyakaran Sastri**
**Teacher, Fawcus Vaisya Vidyalaya, Cuttack**
ପଣ୍ଡିତ ସୁରେଶ ଚନ୍ଦ୍ର ଝା, ହିନ୍ଦିବିଶାରଦ,
ବ୍ୟାକରଣଶାସ୍ତ୍ରୀ, କାବ୍ୟ-ଧର୍ମଶାସ୍ତ୍ରତୀର୍ଥ,
ଶିକ୍ଷକ, ଫକସ୍ ବୈଶ୍ୟ ବିଦ୍ୟାଳୟ, କଟକ ।



**Pandit Narasinha Mahapatra Samant.**
ପଣ୍ଡିତ ଶ୍ରୀ ନରସିଂହ ମହାପାତ୍ର ସାମନ୍ତ ।



**Sriman Bhubaneswar Misra.**
ଶ୍ରୀମାନ୍ ଭୁବନେଶ୍ୱର ମିଶ୍ର ।

## Workers.
## କର୍ମିଗଣ



**Sriman Kulamani Kar**
**Manager, Utkal Sahitya Press, Cuttack.**
ଉତ୍କଳ ସାହିତ୍ୟ ପ୍ରେସର ମାନେଜର
ଶ୍ରୀମାନ୍ କୁଳମଣି କର ସହକର୍ମୀ)



**Pandit Baikoli Mahapatra**
**Jyotisha Visarada, Khallikote**
ଜ୍ୟୋତିଷବିଶାରଦ
ପଣ୍ଡିତ ଶ୍ରୀ ବାଇକୋଳି ମହାପାତ୍ର, ଖଲ୍ଲିକୋଟ
(ସନ୍ଦର୍ଭଲେଖକ)



**Sriman Krushna Chandra Kar**
ଶ୍ରୀମାନ୍ କୃଷ୍ଣଚନ୍ଦ୍ର କର (କର୍ମୀ)



**Pandit Bhagaban Pati**
ପଣ୍ଡିତ ଭଗବାନ ପତି (କର୍ମୀ)



**Sriman Nrusingha Charan Samantasinghara**
ଶ୍ରୀମାନ୍ ନୃସିଂହ ଚରଣ ସାମନ୍ତସିଂହାର (କର୍ମୀ)



**Rai Bahadur R. C. Das, B. A.**
**Deputy Commissioner, Sambalpur.**
ରାୟବାହାଦୁର ଶ୍ରୀଯୁକ୍ତ ରାଧାଚରଣ ଦାସ, ବି. ଏ.
ସମ୍ବଲପୁରର ଡେପୁଟି କମିଶନର୍,
(ହିତକାମୀ ଓ ସାହାଯ୍ୟକାରୀ)



**D. P. Sinha Sharma Esq. I. C. S.**
**Sometime District Magistrate & Collector, Puri**
ପୁରୀ ଜିଲ୍ଲାର ପୂର୍ବତନ ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ ଓ କଲେକ୍ଟର
ଶ୍ରୀଯୁକ୍ତ ଦ୍ୱାରକାପ୍ରସାଦ ସିଂହଶର୍ମା, ଆଇ. ସି. ଏସ୍. (ହିତକାମୀ)



**Babu Amarballav De, M. A., B. L.**
**State Judge, Bamra State.**
ଶ୍ରୀଯୁକ୍ତ ଅମରବଲ୍ଲଭ ଦେ, ଏମ୍. ଏ., ବି. ଏଲ୍.
ଷ୍ଟେଟ୍ ଜଜ୍, ବାମଣ୍ଡା ଷ୍ଟେଟ୍
(ଶବ୍ଦସଂଗ୍ରାହକ, ସ୍ୱେଚ୍ଛାକର୍ମୀ)



**Babu Bamdeb Misra, B. A.,**
**Dewan, Athmallik State.**
ଆଠମଲ୍ଲିକ ଷ୍ଟେଟ୍‌ର ଦେୱାନ
ବାବୁ ବାମଦେବ ମିଶ୍ର, ବି, ଏ
(ଶବ୍ଦସଂଗ୍ରାହକ, ସ୍ୱେଚ୍ଛାକର୍ମୀ)



**Babu Batakrushna Mahanti, B. A.**
ବାବୁ ବଟକୃଷ୍ଣ ମହାନ୍ତି ବି. ଏ.
(ଶବ୍ଦସଂଗ୍ରାହକ, ସ୍ୱେଚ୍ଛାକର୍ମୀ)



**Sj. Sashibhushan Rai**
**Author and writer, Cuttack.**
ଶ୍ରୀଯୁକ୍ତ ଶଶିଭୂଷଣ ରାୟ,
ଲେଖକ ଓ ଗ୍ରନ୍ଥକାର, କଟକ ।



**Babu Durga Charan Rai**
**Sadar S. D. O. & Asst. Sessions Judge,**
**Patna State.**
ପାଟଣା ଷ୍ଟେଟ୍‌ର ସଦର ସବ୍‌ଡିଭିଜନାଲ୍ ଅଫିସର୍ ଓ
ସହକାରୀ ସେସନ୍‌ସ୍ ଜଜ୍
ବାବୁ ଦୁର୍ଗାଚରଣ ରାୟ (ସ୍ୱେଚ୍ଛାସେବକ)



**Pandit Binayaka Das, U. B. P.**
**Personal Clerk to the**
**Ruling Chief of Bonai State.**
ବଣାଇ ଷ୍ଟେଟର ରାଜା ସାହେବଙ୍କ ପର୍ସନାଲ୍ କ୍ଲର୍କ୍
ଶ୍ରୀମାନ୍ ପଣ୍ଡିତ ବିନାୟକ ଦାସ
ଉଭୟଭାଷା ପ୍ରବୀଣ, (ଶବ୍ଦସଂଗ୍ରାହକ ଓ ସ୍ୱେଚ୍ଛାକର୍ମୀ)



**Dr. Radhacharan Panda, L. M. P.**
ଡାକ୍ତର ଶ୍ରୀମାନ୍ ରାଧାଚରଣ ପଣ୍ଡା, ଏଲ୍. ଏମ୍. ପି
(ଶବ୍ଦ ସଂଗ୍ରାହକ)

# ପୂର୍ଣ୍ଣଚନ୍ଦ୍ର

# ଓଡ଼ିଆ ଭାଷାକୋଷ



## ଯ

**ଯ**—ସଂ.—ବ୍ୟଞ୍ଜନ ବର୍ଣ୍ଣମାଳାର ଷଡ଼ବିଂଶ ଅକ୍ଷର ଓ ପ୍ରଥମ ଅବର୍ଗ୍ୟ ବର୍ଣ୍ଣ । **Ja** [ ଦ୍ର—ଏହାର ଅନ୍ୟ ନାମ ଅନ୍ତଃସ୍ଥ ବା ଅବର୍ଗୀୟ ଯ । ଅନ୍ତଃସ୍ଥ ଶବ୍ଦର ଅର୍ଥ ମଧ୍ୟସ୍ଥ ବା ମଝିରେ ଥିବା । 'କ' ଠାରୁ 'ମ' ପର୍ଯ୍ୟନ୍ତ ଅକ୍ଷରମାନଙ୍କୁ ବର୍ଗ୍ୟବର୍ଣ୍ଣ ବୋଲାଯାଏ, ଶ, ଷ, ସ ଓ ହ ଏହି ଚାରି ବର୍ଣ୍ଣଙ୍କୁ ଊଷ୍ମବର୍ଣ୍ଣ ବୋଲାଯାଏ; ଏହି ଉଭୟ ବର୍ଣ୍ଣମାଳାର ମଧ୍ୟରେ ଥିବାରୁ ଯ, ର, ଲ ଓ ବ ଏହି ଚାରି ବର୍ଣ୍ଣର ନାମ 'ଅନ୍ତଃସ୍ଥ' ବର୍ଣ୍ଣ । ଏହା 'ଇ' ଓ 'ଅ' ଯୋଗରେ ଉତ୍ପନ୍ନ । ଏହାର ଉଚ୍ଚାରଣ ସ୍ଥାନ ତାଳୁ । ] The 26th consonant of the Sanskrit and Oriya alphabet, corresponding to the sound of J, in English. [ ଦ୍ର—ସଂସ୍କୃତରେ ଏହାର ଉଚ୍ଚାରଣ 'ୟ' ପରି, ମାତ୍ର ଓଡ଼ିଆ ଭାଷାରେ କଥାବାର୍ତ୍ତାରେ 'ଜ' ଓ 'ଯ ମଧ୍ୟରେ ପ୍ରଭେଦ ରଖାଯାଏ ନାହିଁ । ସଂସ୍କୃତ ଭାଷାରେ 'ଯ' ଏବଂ 'ୟ' ଦୁଇଟି ସ୍ୱତନ୍ତ୍ର ଉଚ୍ଚାରିତ ଅକ୍ଷର । ସଂସ୍କୃତ ଓ ତତ୍ସମ ଶବ୍ଦର ଆଦ୍ୟରେ 'ୟ' ହୁଏ ନାହିଁ । ପୁରୁଣାକାଳିଆ ପଣ୍ଡିତମାନେ 'ଜ' କୁ 'ଜ' ଓ 'ଯ'କୁ 'ଯ୍ୟ' ଉଚ୍ଚାରଣ କରିବା ଦେଖାଯାଏ । କଥାବାର୍ତ୍ତାରେ 'ଜ' 'ଯ' ର ଉଚ୍ଚାରଣରେ ଆଜିକାଲି ପ୍ରଭେଦ ରକ୍ଷା କରାଯାଉ ନ ଥିବାରୁ ଗ୍ରାମ୍ୟ ଓ କଚଟିଆ ଲିପିରେ 'ଜ' ସ୍ଥାନରେ 'ଯ' ଓ 'ଯ' ସ୍ଥାନରେ 'ଜ' ଲେଖାଯିବା ଦେଖାଯାଏ । ଏଥିପାଇଁ 'ଜ' ଆଦ୍ୟାକ୍ଷର ବିଶିଷ୍ଟ ଦେଶଜ, ଗ୍ରାମ୍ୟ ଓ ଅନ୍ୟଭାଷାରୁ ଆଗତ ଶବ୍ଦମାନ ଏ ଗ୍ରନ୍ଥରେ 'ଜ' ତଳେ ନ ମିଳିଲେ 'ଯ' ତଳେ ଖୋଜିବାକୁ ହେବ । ଭାଷାରେ 'ଜ' ଓ 'ଯ' ମଧ୍ୟରେ ଉଚ୍ଚାରଣ-ଭେଦ ଲକ୍ଷିତ ହେଉ ନ ଥିବାରୁ 'ଜ' କୁ 'ବର୍ଗ୍ୟ ଜ' ଓ 'ଯ' କୁ 'ଅବର୍ଗ୍ୟ ଯ' ବୋଲି ପିଲାଙ୍କୁ ବର୍ଣ୍ଣଶିକ୍ଷା ଦିଆଯିବାବେଳେ ଶିକ୍ଷା ଦିଆଯାଏ । ଇଂରାଜୀ 'J' ଅକ୍ଷରର ଉଚ୍ଚାରଣ=ଯ, Y ଅକ୍ଷରର ଉଚ୍ଚାରଣ=ୟ, ଓ G ଅକ୍ଷରର ଏକ ଉଚ୍ଚାରଣ=ଜ । ପୂର୍ବେ ବୋଲାଯାଇ ଅଛି ଯେ ଶବ୍ଦ ଆଦ୍ୟରେ 'ଯ' 'ୟ' ହୁଏ ନାହିଁ । ମାତ୍ର ଆଧୁନିକ ପ୍ରୟୋଗରେ ଇଂରାଜୀ ଓ ପାରସୀ ଆଦି ଭାଷାରୁ ଆଗତ 'ୟ' ଅକ୍ଷରାଦ୍ୟ ଶବ୍ଦମାନଙ୍କ ଆଦ୍ୟରେ 'ୟ' ଦିଆଯାଉଅଛି, ଯଥା 'ୟୁରୋପ' 'ୟୁନାନୀ' । ଉଚ୍ଚାରଣରେ ଓ ପ୍ରାଚୀନ ଗ୍ରନ୍ଥରେ 'ଏ' ସ୍ଥାନରେ 'ୟେ', ଏ, ଏହି, ଏକ, ଏହିକ୍ଷଣି, ଏବେ ଇତ୍ୟାଦି ସ୍ଥଳରେ ଯଥାକ୍ରମେ ୟେ, ୟେହି, ୟେକ, ୟେହିକ୍ଷଣି, ୟେବେ ଆଦି ବ୍ୟବହୃତ ହେବା ଦେଖାଯାଏ । ପ୍ରାଚୀନ ଗ୍ରନ୍ଥରେ 'ଏ' ସ୍ଥାନରେ 'ୟେ' ଯଥା (ରାଏ=ରାୟେ) ଏବଂ ୟ ସ୍ଥାନରେ ଏ ଯଥା—(ତନୟ=ତନଏ) ବ୍ୟବହୃତ ହେବା ଦେଖାଯାଏ । ହିନ୍ଦୀଭାଷାରେ 'ଯ' ଓ 'ଜ' ଯୁକ୍ତ ସଂସ୍କୃତ ଶବ୍ଦମାନ ଯଥାକ୍ରମେ 'ୟ' ଓ 'ଜ' ରୂପେ ଉଚ୍ଚାରିତ ହୁଏ; ମାତ୍ର ସଂସ୍କୃତଶବ୍ଦମାନ ଅପଭ୍ରଷ୍ଟ ହେଲେ ହିନ୍ଦୀରେ 'ଯ' ସ୍ଥାନରେ 'ଜ' ହେବା ଦେଖାଯାଏ । ଯଥା—କାଜ (କାର୍ଯ୍ୟ); ଜନ୍ତର (ସଂ. ଯନ୍ତ୍ର) । ] [ବିଶେଷ ଦ୍ରଷ୍ଟବ୍ୟ—'ଯ' ଅକ୍ଷରାଦ୍ୟ କୌଣସି ଦେଶଜ, ଗ୍ରାମ୍ୟ ବା ବୈଦେଶିକ ଶବ୍ଦ ଯେବେ 'ଯ' ଅକ୍ଷର ତଳେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଏହି ଗ୍ରନ୍ଥର 'ଜ' ଅକ୍ଷର ତଳେ ଦେଖିବାକୁ ହେବ । ]

**ଯ**—ସଂ. ବି, (ଯା ଧାତୁ—ଯିବା + କର୍ତ୍ତୃ. ଅ)—୧ । ବାୟୁ; ପବନ— **Ja** 1. Wind; air. ୨ । ତେଜ; ଆଲୋକ; ଦୀପ୍ତି—2. Light; lustre; radiance. ୩ । ଯବ—3. Barley. ୪ । (+ଭାବ.ଅ) ପ୍ରାପ୍ତି—4. Getting; acquisition. ୫ । ତ୍ୟାଗକରଣ, ପରିତ୍ୟାଗ—5. Abandonment. ୬ । ଛନ୍ଦଃ ଶାସ୍ତ୍ରରେ ଦଶ ଗଣ ଭାଗ

> ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଈ' ନ ମିଳିଲେ ଗାଇ' ଖୋଜିବେ; 'ମୂଢ଼' ନ ମିଳିଲେ 'ମୂଢ' ଖୋଜିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; ଆଙ୍ଗ୍ୟାଁ ନ ପାଇଲେ 'ଆଙ୍କ' ଦେଖିବେ;'ଅଳବଡ଼' ନ ପାଇଲେ 'ଅଳ୍‌ବଡ଼୍'ଦେଖିବେ ।

—6. The right part of the belly. ୭ । ଯଶଃ—7. Renown; fame. ୮ । ଗତି—8. Motion. ୯ । ଯାତ୍ରା—9. Starting. ୧୦ । (ଯମ ଧାତୁ=ଦମନ କରିବା + କର୍ତ୍ତୃ. ଅ) ଯମଦେବ—10. The God of death. ୧୧ । (ଯମ୍ ଧାତୁ+ଭାବ. ଅ) ଦମନ; ଯମନ; ନିୟମନ; ସଂଯମନ—11. Controlling, restraining; checking. ୧୨ । ଯୋଗ—12. Union; joining. ୧୩ । (+କରଣ. ଅ)ଯାନ—13. Vehicle; conveyance. ୧୪ । (ଯା ଧାତୁ+କର୍ତ୍ତୃ. ଅ) ଗମନକାରୀ ବ୍ୟକ୍ତି—14. Goer; mover (Apte). ୧୫ । (+କରଣ. ଅ) ଗାଡ଼ି—15. A carriage (Apte). ୧୬ । ଧ୍ୟାନ—16. Religious meditation (Apte). ୧୭ । ଯଗଣ (ଦେଖ)—17. Jagana (See). ସଂ. ବଣ. (ଯା ଧାତୁ ଯିବା+କର୍ତ୍ତୃ. ଅ)—ଗମନକାରୀ ଯାତ୍ରା—Going; moving. ଦେ. ବି (ସଂ. ଯବ)—ଯବଧାନ—Barley. ଗ୍ରା. କ୍ରି (ଯିବା ଧାତୁର ଅନୁଜ୍ଞା)—(ତୁମ୍ଭେ) ଯାଅ—(Imperative) Go.

**ଯଅ**—ଦେ. ବି (ସଂସ୍କୃତ ଯବ, ଯବକ, ପ୍ରା. ଯଅ)—
Ja-a ୧ । ଯବଧାନ୍ୟ—1. Barley, Hordeum
(ଯ—ଅନ୍ୟରୂପ) Vulgare (Haines). ୨ । ଯବ ପରିମିତ ଲମ୍ବ; ଏକ ଇଞ୍ଚର ¼—2. A standard of
ଯବ
जौ; यव length; ¼ of an inch. ପ୍ରାଦେ (ପୁରୀଜିଲ୍ଲା) କ୍ରି (ଯିବା ଧାତୁର ଅନୁଜ୍ଞା) (ତୁମ୍ଭେ ବା ତୁମ୍ଭେମାନେ)—ଯାଅ—(Ye or you) Go (in imperative mood). [ ଦ୍ର—ଓଡ଼ିଆ ଯିବା ଧାତୁର ଅନୁଜ୍ଞା, ୨ୟ ପୁରୁଷ, ସମ୍ମାନାର୍ଥକ ଏକ ବଚନ ଓ ବହୁବଚନ (ତୁମ୍ଭେ ଓ ତୁମ୍ଭେମାନେ) କର୍ତ୍ତା ସହିତ ବ୍ୟବହୃତ 'ଯାଅ'ର ସଂକ୍ଷିପ୍ତ ଆକାର । ]

**ଯଅଃ** - ପ୍ରାଦେ (ପୁରୀଜିଲ୍ଲା) ଅ—(ଅସମ୍ମତି ବା ଅବଜ୍ଞାର୍ଥକ—ଅର୍ଥ, ତୁମ୍ଭେମାନେ ଏ ସ୍ଥାନ ତ୍ୟାଗ କର ଚାଲିଯାଅ)—
Ja-aḥ
(ଯାଃ, ଯଅ ହେ—ଅନ୍ୟରୂପ) ୧ । ଦୂର, ଯାଃ; ଛିଃ—1. Fie;
ଯାଓହେ let you be gone. [ ଦ୍ର—ଯେଉଁ ବ୍ୟକ୍ତିକୁ 'ତୁମ୍ଭେ'
जाओजी; जाः ବୋଲି ସମ୍ବୋଧନ କରାଯାଏ, ତାଙ୍କ ପ୍ରତି ଯଃ ଓ ଯାହାକୁ 'ତୁ' ବୋଲି ସମ୍ବୋଧନ କରାଯାଏ, ତା ପ୍ରତି 'ଯାଃ' ବ୍ୟବହାର କରାଯାଏ । ] ୨ । ଏକଥା ଏପରି ନୁହେ—2. This is not so.

**ଯଅ ଧାନ**—ଦେ. ବି (ସଂ. ଯବଧାନ୍ୟ; ପ୍ରା. ଯଅଧାନ)—ଯବଧାନ—
Ja-a dhāna ଯବধান जवधान Barley.

**ଯଅର୍ଗଡ଼ି(ଳି)**—ଜନ୍ତ. ବି—ଜଳଚର ଜଳଜ; ସାନ ଜଳଜମାଛ—
Ja-arāḍi(ḷi) A kind of small freshwater fish.
ରୂପୋପାତୀମାଛ [ ଦ୍ର—ଏହା ଏକପ୍ରକାର ଶ୍ରେଷ୍ଠ ମଧୁର ପାଣିର
चल्हा ମାଛ; ଏମାଛର ଅନ୍ୟ ନାମ ରୂପାପାଡ଼ିଆ ବା ଖଙ୍କାର-ଖାଇ; ଏମାଛ ୭ ଅଙ୍ଗୁଳ ପର୍ଯ୍ୟନ୍ତ ବଢ଼େ; ଏମାନଙ୍କର ଦେହରେ ଅତି କ୍ଷୁଦ୍ର କାତି ଥାଏ ଓ ଏମାନଙ୍କର ଦେହ ପାତଳା ଓ ରୂପା ପାଡ଼ିଆ ପରି ଶୁଭ୍ର; ପିଠି ଉପର ନେଳିଆ । ]

**ଯଇ (ଇତ୍ୟାଦି)**—ଗ୍ରା. ବି—ଜଇ ଇତ୍ୟାଦି (ଦେଖ)
Jai (etc) Jai etc (See)

**ଯଇଁ**—ଗ୍ରା (ଉତ୍ତର ବ୍ୟବହୃତ) ବି (ସଂ. ଯାମାତା)—ଜୋଇଁ;
Jaiñ जामाई जमाइ ଜାମାତା—Son-in-law.

**ଯଇ(ଏ)ନ୍ କରିବା**—ବୈଦେ.—କ୍ରି (ଇଂ. ଯଏନ୍)—ଜଏନ୍
Jai(e)n karibā କରିବା; କାର୍ଯ୍ୟକ୍ଷେତ୍ରରେ କର୍ମ କରିବା
জএন করা ପାଇଁ ପ୍ରଥମେ ଉପସ୍ଥିତ ହେବା—To join
जैन करना one's post.

**ଯଇଶୁ(ଶୋ)ଳ ମାଧିଆ**—ପ୍ରାଦେ (କଟକ) ବି—ଘର୍ଣ୍ଣିପୁଅ ଅନଲ୍ସା
Jai śu(śo)ḷa mādhiā ପର ଯେଉଁ ଘରବାରହୀନ ବ୍ୟକ୍ତି ନିଷ୍କର୍ମୀ ଓ ଗୃହହୀନ ହୋଇ ଏଣେ ତେଣେ ବୁଲୁଥାଏ—A term applied to a homeless and wandering youth; a loafer. [ ଦ୍ର—ବୋଧହୁଏ କଟକ ଜିଲ୍ଲାର ଜଇଶୁଳ ନାମକ ଗ୍ରାମର ମାଧବ ବା ମାଧିଆ ନାମଧାରୀ ଜନୈକ ବ୍ୟକ୍ତିର ନାମରୁ ଏ ବ୍ୟବହାର ଚଳ ଅଛି । ]

**ଯଉଁ**—ଗ୍ରା. ସର୍ବନାମ (ସଂ. ଯତ୍)—୧ । ଯେଉଁ; ଯେ; ଯାହା—
Jauñ 1. Which. [ ଉ—ଯଉଁ ଯଉଭୁକ ଦେଲେ,
যে ସେ ତ ଅଶେଷ । ଭଞ୍ଜ. ପ୍ରେମସୁଧାନିଧି । ] ୨ । ଯହୁଁ;
जो ଯେଉଁଠାରୁ—2. From which. ୩ । ଯେହେତୁ; ଯହୁଁ (ଦେଖ)—3. Because.

**ଯଉଁଖି(ଷ,ଛି,ଛୁ)ଣି**—ଗ୍ରା. ଅ—ଯେଉଁକ୍ଷଣି (ଦେଖ)
Jauñkhi (ksha,chhi,chhu)ṇi Jeuñkshaṇi (See)
যেক্ষণে, যখন जीस,स मय जब
[ଯଉଁକ୍ଷି (ଷ,ଛି,ଛୁ)ଣିକା, ଯଉଛୁଣୁ(ଣି)କା—ଅନ୍ୟରୂପ]

**ଯଉଁଠା**—ଗ୍ରା ସର୍ବନାମ—ଯେଉଁଠା (ଦେଖ)
Jauñṭhā Jeuñṭhā (See)

**ଯଉଁଠି(ଠିଁ)**—ଗ୍ରା. ସର୍ବନାମ—ଯେଉଁଠି(ଠିଁ) (ଦେଖ)
Jauñṭhi(ṭhiñ) Jeuñṭhi(thiñ) (See)

**ଯଉଁଠିକି(କୁ)**—ଗ୍ରା ସର୍ବ.—ଯେଉଁଠିକି(କୁ) (ଦେଖ)
Jauñṭhiki(ku) Jeuñṭhiki(ku) (See)

**ଯଉଁଠୁ(ଠୁଁ)**—ଗ୍ରା. ସ.—ଯେଉଁଠୁ (ଠୁଁ) (ଦେଖ)
Jauñthu (ṭhuñ) Jeuñṭhu(ṭhuñ) (See)

**ଯଉଣ(ଣି)ସି**—ଗ୍ରା. ସ.—ଯେଉଣ(ଣି)ସି (ଦେଖ)
Jauṇa(ṇi)si Jeuṇa(ṇi)si (See)

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ୍ୟ | ଉଅ | ଲ୍ଲ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଵ | ନ୍‌ |

**ଯଉବନ**—ଗ୍ରା. ବି—୧ । ସ୍ତ୍ରୀ ସ୍ତନ—1. Breast of females.
Jaubana [ ଉ—ଗୋପିକା ସମ୍ଭାଳ ବସନ, ଲୁଣ୍ଟନ୍ତି ଜାନୁ
जउबन ଯଉବନ । ଭୂପତି. ପ୍ରେମପଞ୍ଚାମୃତ ।] ୨ । ଯୌବନ;
**जौबन** ଯୁବାବସ୍ଥା—2. Youth. [ ଉ—କାଳରେ ସେ
ନାଶ ପାଆନ୍ତେ ଯଉବନ । ]

**ଯଉବନୀ**—ଗ୍ରା. ବିଣ. ସ୍ତ୍ରୀ—ଯୌବନପ୍ରାପ୍ତା; ଯୁବତୀ—Youthful
Jaubanī (woman); one who has attained
her youth. [ ଉ—ନବ ଯଉବନୀ ଯେ କାମିନୀ
ସୁନ୍ଦରୀ । କୃଷ୍ଣସିଂହ. ମହାଭାରତ ଆଦି ।
[ ଦ୍ର—ଏ ଶବ୍ଦ ମଧ୍ୟ ନବ, ତର ଆଦି ଶବ୍ଦ ପରେ ବ୍ୟବହୃତ
ହୁଏ; ଯଥା ନବଯଉବନୀ । ]

**ଯଏଗ୍**—ପ୍ରାଦେ. ବି.—(ସମ୍ବଲପୁର) (ସଂ. ଯଜ୍ଞ, ଯାଗ)—ଯଜ୍ଞ—
Jaeg Vedic sacrifice.

**ଯଏ(ଇ)ଣ୍ଟ ମେଜେ(ଜି)ଷ୍ଟର୍**—ବୈଦେ. ବି. (ଇଂ) ଇଂରାଜ-ଶାସିତ
Jae(i)nṭ Meje(ji)shṭar ଜିଲ୍ଲାର ଫଉଜଦାରୀ ବିଚାର ବିଭାଗର
जएन्ट माजिष्ट्रेट କର୍ତ୍ତାଙ୍କର ବା ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ସହକାରୀ ରାଜ-
**জোআইণ্ট মাজিষ্ট্রেট** କର୍ମଚାରୀ—A Joint Magistrate of
a British district of India.

**ଯଏନିଙ୍ଗ ରିପୋର୍ଟ(ଟ୍)**—ବୈଦେ. ବି. [ଇଂ]—କର୍ମକ୍ଷେତ୍ରରେ କର୍ମା-
Jaening repoṭ(rt) ରମ୍ଭ କରିବା ପାଇଁ ଉପସ୍ଥିତ କର୍ମଚାରୀ
जएनिङ्ग रिपोर्ट କର୍ତ୍ତୃପକ୍ଷଙ୍କୁ ଏ ବିଷୟରେ ଯେଉଁ ରିପୋର୍ଟ ଦିଅନ୍ତି-
**জয়েনিং রিপোর্ট** Joining report.

**ଯକଟ(ଡ଼) ମକଟ(ଡ଼)**—ଗ୍ରା. କ୍ରି. ବିଣ—(ଯୁଗ୍ମ)—ଅତି ଦୃଢ଼ଭାବରେ;
Jakaṭa(rda) makaṭa(rda) ଜୋର୍‌ରେ ଜାବୁଡ଼ି କରି—
Very tightly.
**जकड मकड** [ଉ—ପଛଆଡ଼ୁ ଯକଟ ମକଟ କରି ଧରି ପକାଇଲା]
—ନୀଳକଣ୍ଠ ଦାଶ, ପିଲାଙ୍କ ରାମାୟଣ ।]

**ଯକାର**—ସଂ. ବି.—'ଯ' ବର୍ଣ୍ଣ—
Jakāra The letter 'ଯ' (Ja)

**ଯକାରାଦି(ଦ୍ୟ)**—ସଂ. ବି.—'ଯ' ଆଦି ଅନ୍ତଃସ୍ଥବର୍ଣ୍ଣମାନ—The letter
Jakārādi(dya) 'ଯ' and other final letters.
ସଂ ବିଣ—[ବହୁବ୍ରୀହି] ଯେଉଁ ଶବ୍ଦର ଆଦ୍ୟରେ ଯ
ଅକ୍ଷର ଥାଏ—(a word) Beginning with the
letter Ja.

**ଯକାରାନ୍ତ**—ସଂ. ବିଣ—[ବହୁବ୍ରୀହି]—'ଯ' ଅକ୍ଷର ଯେଉଁ ଶବ୍ଦର ଶେଷରେ
Jakārānta ଥାଏ—( word ) Ending with the
letter ଯ (Ja). [ଦ୍ର—ଶବ୍ଦର ଶେଷରେ 'ଯ' ଥିଲେ
ତାହା 'ଯ୍ୟ' ହୁଏ ।]

**ଯକୃଜ୍ଜଟା**—ସଂ. ବି.—[ଆଧୁନିକ]—ଯକୃତସ୍ଥ ସ୍ନାୟୁଜାଲ—
Jakṛujjaṭā Hepatic plexus.
[ଯକୃତସ୍ଥ ଜଟା—ଅନ୍ୟରୂପ]

**ଯକୃତ୍** ସଂ. ବି—(ଯ=କୁକ୍ଷିର ଦକ୍ଷିଣାଂଶ+କୃ ଧାତୁ+କର୍ତ୍ତୃ. କ୍ୱିପ୍)—
Jakṛut ୧ । ପେଟ ମଧ୍ୟରେ ଡାହାଣ ପାଖରେ ଥିବା ପିତ୍ତାଶୟ
ମାଂସପିଣ୍ଡ; କଳା ବୁକୁ—1. Liver. [ଦ୍ର—ଏହା
ରକ୍ତାଭ କୃଷ୍ଣବର୍ଣ୍ଣ । ଏହାର ଅନ୍ୟ ସଂ. ନାମ—
କରଣ୍ଡା, କାଳକ, କାଳଗଞ୍ଜୀ, କାଳଖଣ୍ଡ, କାଳେୟ,
ମହାସ୍ନାୟୁ । ] ୨ । ଯକୃତ୍‌ବୃଦ୍ଧିବିଶିଷ୍ଟ ରୋଗ—
2 Enlargement of the liver (a disease).
[ ଦ୍ର—ମାଲେରିୟା, କଳାଜର, ଓ ଗ୍ରହଣୀ ରୋଗ
ପରେ ରୋଗୀର ଯକୃତ୍ ବୃଦ୍ଧି ଲାଭ କରେ । ରୋଗୀ ଯକୃତ
ସ୍ଥାନରେ ତୀବ୍ର ଯନ୍ତ୍ରଣା ଅନୁଭବ କରେ ।]

**ଯକୃତ**—ଦେ. ବି—[ସଂ. ଯକୃତ୍]—ଯକୃତ୍ (ଦେଖ)
Jakṛuta Jakṛut (See)
[ଦ୍ର—ଆଧୁନିକ ପାଶ୍ଚାତ୍ୟ ଚିକିତ୍ସା ବିଜ୍ଞାନରେ ଯକୃତ୍-
ସମ୍ବନ୍ଧୀୟ ବିଭିନ୍ନ ଅଂଶ ଓ ରୋଗମାନଙ୍କର ଇଂରାଜୀ ବା
ଲାଟିନ୍ ନାମମାନଙ୍କର ଶାବ୍ଦିକ ଅନୁବାଦମାନ ବଙ୍ଗଭାଷାରେ
ଚଳୁଅଛି ଓ ତଦନୁସାରେ ଏମାନ ଓଡ଼ିଆ ଭାଷାରେ ମଧ୍ୟ
ଚଳିବାର ଆଶା କରାଯାଏ ।]

**ଯକୃତ୍ କୋଷ**—ସଂ. ବି—(ଆଧୁନିକ)—ଯକୃତର ଆଧାର—The gall
Jakṛut-kosha bladder. [ଦ୍ର—ଏଥିରେ ପିତ୍ତ ଥାଏ].

**ଯକୃତ୍ କ୍ଷତ**—ସଂ. ବି.—(ଆଧୁନିକ) (୬ଷ୍ଠୀ ତତ୍)—ଯକୃତର ଘାଆ—
Jakṛut-kshata Hepatelcosis.

**ଯକୃତ୍ ପଥରୀ**—ଦେ. ବି.—(ଆଧୁନିକ) ଯକୃତ ମଧ୍ୟରେ ଜାତ ଅଶ୍ମରୀ
Jakṛut-pāthari ରୋଗ—Hepatotitheasis.

**ଯକୃତ୍ ପ୍ରଣାଳୀ**—ସଂ. ବି.—(ଆଧୁନିକ)—ପିତ୍ତବାହୀ ନାଡ଼ୀ—
Jakṛut-praṇālī Bile duct; Ductus Hepatilus.

**ଯକୃତ୍ ସ୍ରାବ**—ସଂ. ବି (ଆଧୁନିକ) ଯକୃତରୁ ଅତ୍ୟଧିକ ପିତ୍ତନିଃସରଣ
Jakṛut-srāba ରୋଗ—ଦ୍ର—(ଏ ରୋଗରେ ଝାଡ଼ା ସଙ୍ଗେ
ଅଧିକ ପିତ୍ତ ପଡ଼େ)—Hepatorrhoea; a morbid
flow of bile; a species of diarrhoea.

**ଯକୃତ(ତା)ର୍ବୁଦ**—ସଂ. ବି.—(ଆଧୁନିକ)—ଯକୃତରେ ବଥ ବା ଅର୍ବୁ-
Jakṛutā(tā)rbuda ଦ ରୋଗ—Hepatocele.

**ଯକୃତୌଷ**—ଦେ. ବି.—(ଆଧୁନିକ)—ଯକୃତ୍ ଫୁଲି ପୋଡ଼ିବା ରୋଗ-
Jakṛutausha Hepatites; inflammation of the
(ଯକୃତ ପ୍ରଦାହ—ଅନ୍ୟରୂପ) liver.

**ଯକୃଦାତ୍ମିକା**—ସଂ. ବି—( ଯକୃତ୍+ଆତ୍ମନ୍+ଇକ+ଆ; ଏହା ଯକୃତ୍
Jakṛudātmikā ପରି ରକ୍ତାଭ କୃଷ୍ଣବର୍ଣ୍ଣ ହୋଇଥିବାରୁ)—
ତୈଳପାୟିକ; ଅସରପା—Cockroach.

**ଯକୃଦ୍‌ବେଦନା**—ସଂ. ବି—(ଆଧୁନିକ)—ଯକୃତରେ ବେଦନା ଯୁକ୍ତ ବ୍ୟଥା
Jakṛud-bedanā Hepatalgia; Hepatitis.

**ଯକୃଦ୍‌ବୈରୀ**—ସଂ. ବି.—(୬ଷ୍ଠୀ ତତ୍; ଯକୃତ୍+ବୈରୀ; ଏହା ଯକୃ-
Jakrud-bairi ତ୍‌ରୋଗରେ ଉପକାରୀ)—ରୋହିତକ ବୃକ୍ଷ (ଏହା
ଅନ୍ୟ ସଂ ନାମ—ରୋହୀ, ପ୍ଳୀହଶତ୍ରୁ, ଶ୍ୱେତ ଓ ରକ୍ତ ଭେଦରେ
ଦାଡ଼ିମ୍ବ ପୁଷ୍ପ, ରକ୍ତପୁଷ୍ପ, ମାଂସଜାଳକ, ଦୁଇ ପ୍ରକାର )—The
ତଳଛଦ, ରୋହିତକ, ରୋହିତେୟ, Indian redwood (tree):
ରକ୍ତପୁଷ୍ପ, ରୋହଣ, କୁଶାଲ୍ମଳ, Soymida Febrifuga;
ସଦା ପ୍ରସୂନ, ବିରେଚନ ଓ Andersonia Rohitaka.
ଶାଲ୍ମଳକ ।)

**ଯକ୍‌ଖ**—ସଂ ବି—ସିଂହଳର ବା ଲଙ୍କାର ଆଦିମ ଅସଭ୍ୟ ଅଧିବାସୀ
Jak-kha [ଏହି ଜାତି ଠାରୁ ବେଡା ନାମକ ଜାତି ଜାତିର ଉତ୍-
ପତ୍ତି]—The original aboriginal tribe of
Ceylon (the ancestors of the Veddas,)
ଦେ. ବି. ଓ ବିଣ—(ସଂ. ଯକ୍ଷ)—ଯକ୍ଷ (ଦେଖ)
Jaksha (See).

**ଯକ୍ଷ୍ (ଧାତୁ)**—ସଂ.—ଅର୍ଚ୍ଚନା କରିବା; ପୂଜା କରିବା—
Jaksh (root) To worship; to adore.

**ଯକ୍ଷ**—ସଂ. ବିଂ ପୁ. (ଯକ୍ଷ୍ ଧାତୁ=ପୂଜା କରିବା+କର୍ମ. ଅ)—
Jaksha ୧ । ଦେବଯୋନିବିଶେଷ; କୁବେରଙ୍କ ଧନର ଓ
( ଯକ୍ଷୀ, ଯକ୍ଷିଣୀ—ସ୍ତ୍ରୀ ) ଉଦ୍ୟାନର ରକ୍ଷକ, ଗୁହ୍ୟକ—1. A
mythological class of demigods entrusted with the care of the garden and the treasure of the Hindu God of riches.
[ଦ୍ର—ଏମାନଙ୍କର ସାଧନା କଲେ ସାଧକ ବହୁ ଧନଶାଳୀ
ହୁଏ । କୁବେରଙ୍କଦ୍ୱାରେ ନିର୍ବାସିତ ଗୋଟିଏ ଯକ୍ଷର କଳ୍ପିତ
ବିରହବେଦନା କାଳିଦାସ ମେଘଦୂତରେ ବର୍ଣ୍ଣନା କରିଅଛନ୍ତି]
ଯକ୍ଷ(କ) ୨ । ଭୂତଯୋନି ବିଶେଷ—2. A class of ghosts
ଚାଣ୍ଡ or evil spirits. ଦେ. ବି—୧ । ଅତି କୃପଣ
ବ୍ୟକ୍ତି—1. A miser. ୨ । ନିର୍ଦ୍ଦୟବ୍ୟକ୍ତି—2 A
cruel person. ୩ । ଖୁବ୍ ଧନୀଲୋକ—3. A very
rich man. ଦେ. ବିଣ—୧ । କୃପଣ—1. Miserly.
୨ । ନିର୍ଦ୍ଦୟ—2. Cruel. ୩ । ଧନୀ ଅଥଚ କୃପଣ—
3. Rich yet miserly.

**ଯକ୍ଷକର୍ଦ୍ଦମ**—ସଂ. ବି.—ଅଗୁରୁ କୁଙ୍କୁମାଦି ମିଶ୍ରିତ ସୁବାସ ଲେପ—
Jaksha karddama A fragrant ointment. [ଦ୍ର—
କର୍ପୂର, ଅଗୁରୁ, କସ୍ତୁରୀ, କଙ୍କୋଳ, (ମତାନ୍ତରରେ ଚନ୍ଦନ
ଓ ଜାଫ୍ରାନ)କୁ ଏକତ୍ର ବାଟି ଏ ଲେପ ତିଆରି କରାଯାଏ—
ଅପ୍ରେ । ]

**ଯକ୍ଷଗ୍ରହ**—ସଂ. ବି. ଓ ବିଣ. ପୁଂ (ଯକ୍ଷ+ଗ୍ରହ ଧାତୁ+କର୍ମ. ଅ)—
Jakshagraha ଯେଉଁ ବ୍ୟକ୍ତିକୁ ଯକ୍ଷ ବା ଭୂତ ଲାଗିଅଛି—
(ଯକ୍ଷଗ୍ରସ୍ତା—ସ୍ତ୍ରୀ) A person possessed by Jakshas or
evil spirits (Apte).

**ଯକ୍ଷ ତରୁ**—ସଂ. ବି—(ମ. ପ. କୋ)—ଯକ୍ଷାବାସ (ଦେଖ)
Jaksha taru Jakshābāsa (See)

**ଯକ୍ଷଧୂପ**—ସଂ. ବି ୧ । ଝୁଣା—1. Resin; incense. ୨ ।
Jaksha dhūpa ତାର୍ପିନ୍ ତେଲ—2. Oil of turpentine.

**ଯକ୍ଷବିତ୍ତ**—ସଂ. ବିଣ. ପୁଂ ( ବହୁବ୍ରୀହି )—ଯେଉଁ ଲୋକ କୃପଣ ଓ ଧନୀ
Jaksha bitta ଥିବାରୁ ଧନର ରକ୍ଷକ ମାତ୍ର ହୁଏ—
(ଯକ୍ଷବିତ୍ତା—ସ୍ତ୍ରୀ) A person who is the guardian
of wealth, but who never uses it
( Apte ).

**ଯକ୍ଷରସ**—ସଂ. ବି—ଏକପ୍ରକାର ମାଦକ ପାନୀୟ—
Jaksha rasa A kind of intoxicating drink
(Apte).

**ଯକ୍ଷରାଜ୍**—ସଂ. ବି—୧ । କୁବେର—1. Kubera. ୨ । ମଲ୍ଲଯୁଦ୍ଧ
Jaksharāj ପାଇଁ ପ୍ରସ୍ତୁତ ସ୍ଥାନ—2 A place
prepared for wrestling and boxing
(Apte).

**ଯକ୍ଷରାଜ(ଟ୍)**—ସଂ. ( ୬ଷ୍ଠୀ ତତ୍; ଯକ୍ଷ+ରାଜନ୍ ) ବି—କୁବେର—
Jaksha rāja (ṭ) The God of riches.

**ଯକ୍ଷରାଜ ପୁରୀ**—ସଂ. ବି—କୈଳାସ ପର୍ବତୋପରିସ୍ଥ କୁବେରଙ୍କ ଅଳକା-
Jaksharāja puri ପୁରୀ—The capital of Kubera.

**ଯକ୍ଷରାତ୍ରି**—ସଂ. ବି—କାର୍ତ୍ତିକ ପୂର୍ଣ୍ଣିମାର ରାତ୍ରି—The night
Jaksha rātri of the fullmoon of the month
of Kārttika. [ ଦ୍ର—ଏହି ରାତ୍ରିରେ ଯକ୍ଷମାନେ
ପୃଥିବୀର ଇତସ୍ତତଃ ବିଚରଣ କରିବା ଶାସ୍ତ୍ରରେ ଲେଖାଅଛି । ]

**ଯକ୍ଷ ସାଧନ(ନା)**—ସଂ. ବି ( ୬ଷ୍ଠୀ ତତ୍ )—ଧନ ଓ ଅଭୀଷ୍ଟ ଲାଭାର୍ଥ
Jaksha sādhana(nā) ଯକ୍ଷର ତନ୍ତ୍ରୋକ୍ତ ପୂଜା; ଯକ୍ଷୋପାସନା
—The worship of a Jaksha prescribed
for persons desirous of riches.

**ଯକ୍ଷାବାସ**—ସଂ. ବି (୬ଷ୍ଠୀ ତତ୍; ଏଥିରେ ଯକ୍ଷମାନେ ବାସ କରୁଥିବାରୁ)
Jakshābāsa —୧ । ଡିମ୍ବିରି ଗଛ—1. The fig tree.
୨ । ଅଶ୍ୱତ୍ଥ ଗଛ—2. The religious fig tree.

**ଯକ୍ଷାମଳକ**—ସଂ ବି—ପିଣ୍ଡି ଖର୍ଜ୍ଜୁର—
Jakshāmalaka A sort of dates.

**ଯକ୍ଷୀ(କ୍ଖୀ)**—ଦେ. ବି ( ପୁଂ ଓ ସ୍ତ୍ରୀ )—ଅତି କୃପଣ ବ୍ୟକ୍ତି—
Jakshi (kkhi) A very miserly person.
ସଂ. ବି. ସ୍ତ୍ରୀ ( ଯକ୍ଷ+ଈ )—ଯକ୍ଷରମଣୀ—
A female of the Jaksha class.

**ଯକ୍ଷିଣୀ**—ସଂ. ବି. ସ୍ତ୍ରୀ ( ଯକ୍ଷ+ଈ )—୧ । କୁବେର ପତ୍ନୀ—
Jakshini 1. The wife of Kubera. ୨ । ଯକ୍ଷ ସ୍ତ୍ରୀ,
ବିଦ୍ୟାଧରୀ—2. A Jaksha woman. ୩ । ପିଶାଚୀ
—3. A female fiend. ୪ । ଜୈନମାନଙ୍କ ପୂଜିତା
ଦେବୀ-ବିଶେଷ—4. A female Deity worshipped by the Jainas. ୫ । ସାଧକ ପୁରୁଷ-

ମାନଙ୍କ ସହବାସକାରିଣୀ ଦେବଯୋନି ବିଶେଷ—5. A sylph or fairy holding intercourse with mortals (Apte). ( ଦ୍ର—ଯେଉଁ ବ୍ୟକ୍ତି ଯକ୍ଷିଣୀ-ସାଧନା କରି ସିଦ୍ଧ ହୁଅନ୍ତି ସେ ଯକ୍ଷିଣୀଙ୍କୁ ଅପଣା ସ୍ତ୍ରୀରୂପେ ଭୋଗ କରନ୍ତି । ) ଦେ. ବିଣ. ସ୍ତ୍ରୀ—କୃପଣୀ—Miserly (woman).

ଯକ୍ଷେନ୍ଦ୍ର(ଶ)—ସଂ. ବି—(୬ଷ୍ଠୀ ତତ୍) କୁବେର—Jakshendra(śa) The God of riches. (ଯକ୍ଷାଧିପ, ଯକ୍ଷାଧିପତି, ଯକ୍ଷାଧୀଶ—ଅନ୍ୟରୂପ)

ଯକ୍ଷୋଡୁ(ଦୁ)ମ୍ବର—ସଂ. ବି.—ଅଶ୍ୱତ୍ଥ ଫଳ—Jakshodu(du)mbara The fruit of the Ficus Religiosa

ଯକ୍ଷ୍ମଗ୍ରସ୍ତ—ସଂ. ବିଣ. ପୁଂ-(୩ୟା ତତ୍)—ଯକ୍ଷ୍ମା ରୋଗ ଦ୍ୱାରା ଆକ୍ରାନ୍ତ—Jakshma grasta Consumptive. (ଯକ୍ଷ୍ମଗ୍ରସ୍ତା—ସ୍ତ୍ରୀ)

ଯକ୍ଷ୍ମଗ୍ରହ—ସଂ. ବି—(ଯକ୍ଷ୍ମନ୍+ଗ୍ରହ ଧାତୁ+ଭାବ. ଅ)-ଯକ୍ଷ୍ମା ରୋଗର Jakshmagraha ଆକ୍ରମଣ—An attack of consumption.

ଯକ୍ଷ୍ମଘ୍ନୀ—ସଂ. ବି (ଯକ୍ଷ୍ମନ୍+ହନ୍ ଧାତୁ କର୍ତ୍ତୃ+ଅ+ଈ)—୧ । ଦ୍ରାକ୍ଷା; Jakshmaghnī ଅଙ୍ଗୁର—1. Grapes. ୨ । କିସ୍‌ମିସ୍—2. Raisin; died grape.

ଯକ୍ଷ୍ମା(କ୍ଷ୍ମା)—ସଂ ବି (ଯକ୍ଷ ଧାତୁ=ପୂଜା କରିବା+ଅଧିକରଣ. ମନ୍)—Jakshmā(kshma) କ୍ଷୟକାଶ ରୋଗ—Tuberculosis; consumption; pulmonary disease; pthisis. [ ଦ୍ର—ରାଜ ଯକ୍ଷ୍ମା—ସଂ. ବି. ମାରାତ୍ମକ କ୍ଷୟକାଶ ରୋଗ । ]

ଯକ୍ଷ୍ମୀ—ସଂ. ବି. ପୁଂ ( ଯକ୍ଷ୍ମନ୍+ଅସ୍ତି ଅର୍ଥରେ ଇନ, ୧ମା. ୧ବ )—Jakshmī ଯକ୍ଷ୍ମାରୋଗଗ୍ରସ୍ତ—Suffering from (ଯକ୍ଷ୍ମିଣୀ—ସ୍ତ୍ରୀ) consumption; consumptive (person)

ଯକ୍ଷ୍ୟମାଣ—ସଂ. ବିଣ. ପୁଂ ( ଯକ୍ଷ ଧାତୁ+କର୍ତ୍ତୃ. ଆନ )—୧ । ପୂଜା Jakshyamāṇa କରଣେଚ୍ଛୁ—1. Desiring to worship; bent on worshipping. ୨ । ପୂଜା (ଯକ୍ଷ୍ୟମାଣା—ସ୍ତ୍ରୀ)ରେ ନିଯୁକ୍ତ—2. Engaged in worshipping.

ଯଗଣ—ସଂ. ବି—କବିତା ରଚନା ସମ୍ପର୍କରେ ୮ଟି ଗଣ ମଧ୍ୟରୁ ପ୍ରଥମେ Jagaṇa ଗୋଟିଏ ହ୍ରସ୍ୱବର୍ଣ୍ଣ ଓ ପରେ ୨ଟି ଦୀର୍ଘବର୍ଣ୍ଣ ସମ୍ବଳିତ ଗଣବିଶେଷ—One of the eight syllabic feet (Gaṇa) consisting of one short syllable followed by two long ones (Apte).

ଯଗ୍ରାଫି—ବୈଦେ. ବି ( ଇଂ. ଜିଓଗ୍ରାଫି )—ଭୂଗୋଳ ବିଦ୍ୟା—Jagrāphi जिअग्राफी जोग्रफी Geography.

ଯଙନ୍ତ—ସଂ. ବି ( ବ୍ୟାକରଣ )—ପୌନଃପୁନ୍ୟ ବା ଅତିଶୟାର୍ଥକ Jaṅanta କ୍ରିୟାବିଶେଷ; ଅତିଶୟାର୍ଥରେ ଧାତୁର ଦ୍ୱିତ୍ୱ ପ୍ରକାଶ ହେବା ଅବସ୍ଥା ( ଯଥା—ଯମ୍ ଧାତୁ ଅତିଶୟାର୍ଥେ ଜଙ୍ଗମ ଧାତୁ=ଅତିଶୟ ଗମନ କରିବା; ଦୀପ୍ ଧାତୁର ଯଙନ୍ତ—ଦେଦୀପ୍ ଧାତୁ=ଅତିଶୟ ଜଳିବା )—The frequentative deponent verb (Doubling of the root of a verb to indicate repetition)

ଯଙ୍‌ଲୁଗନ୍ତ—ସଂ. ବି ( ବ୍ୟାକରଣ )—ଅତିଶୟ ବା ପୌନଃପୁନ୍ୟାର୍ଥ Jaṅ luganta ଧାତୁର ଦ୍ୱିତ୍ୱଭାବ ଧାରଣ କରିବା ଅବସ୍ଥା—The frequentative active verb in Sanskrit grammar.

ଯଚ୍‌ନିଆ(ୟା)—ଦେ. ବିଣ ( ସମ୍ବଲପୁର )—ମାଗଣା; ଅଯାଚିତଭାବରେ Jach-niā(yā) ପ୍ରାପ୍ତ—Got gratis; got quite unasked. (ଯଥା—ଯଚ୍‌ନିଆ ମାଲର ରଙ୍ଗ୍ ନାହିଁ—ଅର୍ଥ=ଅଯାଚିତୋପସ୍ଥିତ ଦ୍ରବ୍ୟର ମୂଲ୍ୟ ନାହିଁ । )

ଯଚା—ଦେ. ବି ( ସଂ. ଯାଚଞ୍ଚା )—ଯାଚିବା ( ଦେଖ ) Jachā Jāchibā (See)

ଯଚା(ଚେ)ଇ—ଦେ. ବି ( ସଂ. ଯାଚଞ୍ଚା )—୧ । ମାଗିବା; ଯାଚଞ୍ଚା; Jachā(che)i ଇଚ୍ଛା କରିବା—1. Begging for a याचाई thing. ୨ । ସୁନା ରୂପା ଆଦିର ମୂଲ୍ୟ ପରୀକ୍ଷା जाँच ପୂର୍ବକ ନିରୂପଣ—2 The testing of gold etc as to its quality and value.

ଯଚା(ଚେ)ଇ କରିବା—ଦେ. କ୍ରି—୧ । କୌଣସି ଦ୍ରବ୍ୟକୁ ବଜାରରେ Jachā(che)i karibā ଏକାଧିକ ସ୍ଥାନରେ ଦେଖାଇ ତାହାର याचाईकर्ना, याचाना ମୂଲ୍ୟ ବା ସ୍ୱରୂପ ଜାଣିବା—1. To जाँचकरना, जांचना have a thing tested in the market to ascertain its value and quality. ୨ । ସ୍ୱର୍ଣ୍ଣାଦିର ମୂଲ୍ୟ ଓ ପ୍ରକାର ନିରୂପଣ କରିବା—2. To test a piece of gold as to its value and quality.

ଯଚା(ଚେ)ଇବା—ଦେ. କ୍ରି—୧ । ଯଚାଇ କରିବା ( ଦେଖ ) Jachā(che)ibā 1. Jachāi karibā (See) ୨ । ଅନ୍ୟ याचान ବ୍ୟକ୍ତିଙ୍କ ଦ୍ୱାରା ଯାଚିବା କିମ୍ବା କରାଇବା—2. To cause जंचवाना a thing to be offered by another.

ଯଚ୍ଛନ—ସଂ.ବି. ପୁଂ [ଦା ଧାତୁ=ଦାନ-କରିବା+କର୍ତ୍ତୃ. ଅନ(ଣବୁ)]—Jachchhan ଦାନକାରୀ—Giving; bestowing. (ଯଚ୍ଛନୀ—ସ୍ତ୍ରୀ)

ଯଛ(ଚ୍ଛ)—ଗ୍ରା. ବି. (ସଂ. ଯଶଃ)—୧ । ଯଶଃ; କୀର୍ତ୍ତି—1. Renown. Jachha(ckchha) ୨ । ସୁଖ୍ୟାତି; ସୁନାମ—2. Good यश जस reputation. ୩ । ବାହାଦୁରି; ପ୍ରଶଂସା—3. Praise.

ଯଜ୍ (ଧାତୁ)—ସଂ—୧ । ଦେବତାଙ୍କୁ ପୂଜା କରିବା—1. To wor- Jaj (root) ship a Diety. ୨ । ସଙ୍ଗ କରିବା—2. To associate with. ୩ । ଦାନ କରିବା—3. To present; to give. ୪ । ଯାଗ କରିବା—4 To offer; to sacrifice.

ଯଜ—ସଂ. ବି. (ଯଜ ଧାତୁ+ଅଧିକରଣ. ଅ)—୧ । ଅଗ୍ନି—1. Fire Jaja (Apte). ୨ । ଯଜ୍ଞ—2. Sacrifice (Apte).

**ଯଜତ**—ସଂ. ବି. ପୁଂ. ( ଯଜ୍ ଧାତୁ+କର୍ତ୍ତୃ. ଅତ )—
**Jajata** ୧। ଋତ୍ୱିକ୍; ପୁରୋହିତ—1. An officiating priest; ୨। ଶିବ—2. Siba (Apte). ୩। ଚନ୍ଦ୍ର—3. The moon (Apte). ବିଣ. ପୁଂ (କର୍ମ. ଅତ)—୧। ପବିତ୍ର—1. Holy (Apte). ୨। ପୂଜ୍ୟ—2. Adorable (Apte). ୩। ମହାନ୍—3. Dignified; sublime (Apte).

**ଯଜତି**—ସଂ. ବି. ( ଯଜ ଧାତୁ+କରଣ. ଅତି ) ଯଜ୍ଞୀୟ କର୍ମ—
**Jajati** Sacrificial ceremonies (Apte).

**ଯଜତି ଦେଶ**—ସଂ ବି—ଯଜ୍ଞ ବେଦୀର ଦକ୍ଷିଣରେ ଅବସ୍ଥିତ ସ୍ଥାନ—
**Jajati deśa** A place south of the sacrificial altar (Apte).
(ଯଯତି ସ୍ଥାନ—ଅନ୍ୟରୂପ)

**ଯଜତ୍ର**—ସଂ. ବି ( ଯଜ୍ ଧାତୁ+କର୍ତ୍ତୃ ଅତ୍ର )—୧। ଅଗ୍ନିହୋତ୍ରୀ—
**Jajatra** 1. A Brāhmaṇa who maintains the sacrificial fire at his house (Apte). ୨। ( +କରଣ. ଅତ୍ର )—ଅଗ୍ନିହୋତ୍ର—2. Maintenance of the sacred fire (Apte).

**ଯଜନ୍**—ସଂ. ବିଣ. ପୁଂ—[ଯଜ୍ ଧାତୁ+କର୍ତ୍ତୃ (ଶତୃ) ଅତ୍; ୧ମା. ୧ବ]—
**Jajan** ଯଜ୍ଞକାରୀ—Performing sacrifice.
(ଯଜନ୍ତୀ—ସ୍ତ୍ରୀ)

**ଯଜନ**—ସଂ. ବି—(ଯଜ୍ ଧାତୁ+ଭାବ. ଅନ)—୧। ଆପଣା ପାଇଁ
**Jajana** ଯାଗ କରିବା—1. Offering sacrifice for oneself. [ଦ୍ର—ଯଜମାନ ପାଇଁ ଯାଗ କରିବାକୁ ଯାଜନ ବୋଲାଯାଏ।] ୨। ପୂଜନ; ପୂଜା କରିବା—2. Worshipping. ୩। (+କରଣ ଅନ)—ଯାଗ 3. Sacrifice (Apte). ୪। ( +ଅଧିକରଣ ଅନ ) ଯଜ୍ଞସ୍ଥାନ—4. A place of sacrifice (Apte).

**ଯଜମାନ**—ସଂ. ବିଣ.—(ଯଜ ଧାତୁ+କର୍ତ୍ତୃ. ଆନ)—୧। ଯାଗକାରୀ—
**Jajamāna** 1. Offering sacrifice. ବି.—୧। ଯେଉଁ ବ୍ୟକ୍ତି ବ୍ରାହ୍ମଣଙ୍କୁ ଦକ୍ଷିଣା ଦେଇ ବ୍ରାହ୍ମଣଦ୍ୱାରା ଯାଗ କ୍ରିୟା କରାନ୍ତି—1. A person who has a vedic sacrifice performed by a priest on giving him presents. ୨। ସ୍ୱୟଂ ଯଜ୍ଞାନୁଷ୍ଠାନକାରୀ ବ୍ୟକ୍ତି—2. A person who himself performs a regular sacrifice (Apte). ୩। ପୁରୋହିତଙ୍କ ନିଯୋକ୍ତା ବ୍ୟକ୍ତି—3. A host; a patron (Apte). ୪। ପରିବାରର କର୍ତ୍ତା—4. The head of a family (Apte). ୫। ଜାତିର ମୁଖ୍ୟ ବ୍ୟକ୍ତି—5. The head of a tribe (Apte). ୬। ମହାଦେବଙ୍କର ଅଷ୍ଟମୂର୍ତ୍ତି ମଧ୍ୟରୁ ପ୍ରଧାନ ମୂର୍ତ୍ତି—6. One of the 8 incarnations of the Deity Śiva, represented as offering sacrifice to the gods through oblation unto the fire.

ଦେ. ବି.—୧। ପୁରୋହିତ ଯେଉଁ ବ୍ୟକ୍ତିଠାରୁ ଦକ୍ଷିଣା ନେଇ ଉକ୍ତ ବ୍ୟକ୍ତିର ପାରିବାରିକ ଦେବପୂଜା, ବିବାହାଦି କ୍ରିୟାରେ ହୋମ ଆଦି କରନ୍ତି—1 A person who engages a priest to officiate at his family ceremonies ୨। ଯେଉଁ ଯାତ୍ରୀ ତୀର୍ଥସ୍ଥ ଦେବତାମାନଙ୍କର ପୂଜା ପଣ୍ଡାଦ୍ୱାରା କରାଏ—2. A pilgrim who engages a Paṇḍā to do worship for him to the idol at any centre of pilgrimage,
[ଦ୍ର—ପ୍ରତ୍ୟେକ ପରିବାରର ନିତ୍ୟ ନୈମିତ୍ତିକ ପୂଜା ଆଦି କରିବା ପାଇଁ ନିର୍ଦ୍ଦିଷ୍ଟ ପୁରୋହିତ ପୁରୁଷାନୁକ୍ରମେ ଥାଆନ୍ତି। ସେହିପରି ମଧ୍ୟ ତୀର୍ଥକ୍ଷେତ୍ରକୁ ଆସୁଥିବା ଯାତ୍ରୀମାନଙ୍କର ନିର୍ଦ୍ଦିଷ୍ଟ ପଣ୍ଡା ପୁରୁଷାନୁକ୍ରମେ ଥାଆନ୍ତି। ଏ ଯଜମାନମାନେ ତତ୍ତତ୍ ପୁରୋହିତଙ୍କର ଓ ପଣ୍ଡାମାନଙ୍କର ପ୍ରଧାନ ଅବଲମ୍ବନ। ପଣ୍ଡା ଓ ପୁରୋହିତମାନଙ୍କ ମଧ୍ୟରେ ଭାଇଭାଗ ବଣ୍ଟନ ହେଲା ବେଳେ ମଧ୍ୟ ଯଜମାନ ଘରମାନ ବଣ୍ଟାହୁଏ, କିନ୍ତୁ କ୍ରମଶଃ ଏମାନ ଏଣିକି 'ମାନୀ ବୃତ୍ତି'ରେ ପରିଣତ ହେଉଅଛି।]

**ଯଜମାନି**—ଦେ. ବିଣ.—ଯଜମାନ ସମ୍ବନ୍ଧୀୟ—Relating to
**Jajamāni**
यजमानि **जजमानी** Jajamāna [ଯଥା—ମୋର ଯଜମାନି ବୃତ୍ତି ଅଛି।] (ଯଜମାନିଆ—ଅନ୍ୟ ବିଣ ରୂପ)
ଦେ. ବି—୧। ଯଜମାନି ବୃତ୍ତି—1. Priesthood. ୨। ଯଜମାନି ହେବାର ଅବସ୍ଥା—2. The state of being a Jajamāna.

**ଯଜମାନି ବୃତ୍ତି**—ଦେ. ବି.—ଯଜମାନଠାରୁ ଦକ୍ଷିଣା ଆଦି ପାଇ ଜୀବିକା
**Jajamāni brutti** ନିର୍ବାହ; ପୌରୋହିତ୍ୟ—The profession of priesthood

**ଯଜାକ**—ସଂ. ବିଣ. ପୁଂ—(ଯଜ୍ ଧାତୁ+କର୍ତ୍ତୃ. ଅକ)—୧। ଦାତା—
**Jajāka** 1. Liberal (Apte). ୨। ପୂଜାକାରୀ—2. Worshipping (Apte).

**ଯଜି**—ସଂ. ବି—(ଯଜ୍ ଧାତୁ+କର୍ତ୍ତୃ. ଇ)—୧। ଯଷ୍ଟା; ଯାଗକାରୀ
**Jaji** ବ୍ୟକ୍ତି—1. Performer of sacrifice; a sacrificer. ୨। (+ଭାବ. ଇ)—ଯଜ୍ଞ କର୍ମ—2. The act of sacrificing. ୩। (+କରଣ. ଇ)—ଯାଗ 3, A sacrifice.

**ଯଜୀ**—ସଂ. ବିଣ. ପୁ.—( ଯଜ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ )—
**Jajī** ୧। ଯଜ୍ଞକାରୀ—1. Sacrificing.
(ଯଜିନୀ—ସ୍ତ୍ରୀ) ୨। ପୂଜାକାରୀ—2. Worshipping; adoring.

**ଯଜୁଃ**—ସଂ. ବି—(ଯଜ୍ ଧାତୁ+କରଣ ଉସ୍)—୧। ଦ୍ୱିତୀୟ ବେଦ—
**Jajuḥ** 1. The Jajur Beda; the 2nd of the 4 Bedas or Hindu scriptures.
(ଯଜୁର୍ବେଦ—ଅନ୍ୟରୂପ) ୨। ଯଜ୍ଞୀୟ ସ୍ତବ ବା ମନ୍ତ୍ର—2. A sacirficial prayer or formula (Apte) ୩। ଯଜ୍ଞ

ବେଦୋକ୍ତ ଗଦ୍ୟ ମନ୍ତ୍ର—3 A text or body sacred mantras in prose muttered at sacrifices (Apte).

**ଯଜୁର୍ବେଦ**—ସଂ. ବି—ଯଜୁଃ ୧ (ଦେଖ)
**Jajurbeda** Jajuh 1 (See)
[ଯଜୁର୍ବେଦ ଦୁଇ ଭାଗରେ ବିଭକ୍ତ । ୧ ଶୁକ୍ଳ ବା ବାଜସନେୟ । ୨ । କୃଷ୍ଣ ବା ତୈତ୍ତିରୀୟ; ଏଥିରେ ଧର୍ମସମ୍ବନ୍ଧୀୟ କ୍ରିୟାକଳାପ ଏବଂ ଉପାସନାଦି ଅଛି । ଧନୁର୍ବେଦ ଯଜୁର୍ବେଦର ଉପବେଦ ଅଟେ । ଯଜୁର୍ବେଦର ମନ୍ତ୍ରମାନ ଗଦ୍ୟରେ ରଚିତ । ଏହି ବେଦରେ ଦର୍ଶ, ପୂର୍ଣ୍ଣମାସ, ଅଶ୍ୱମେଧ ଓ ନରମେଧ ଯଜ୍ଞ ବର୍ଣ୍ଣିତ ହୋଇଅଛି । ଯଜୁର୍ବେଦର ଦୁଇ ଶାଖା; ଏହାର ଅଧିପତି ଶୁକ୍ର; ବକ୍ତା କୃଷ୍ଣ ଦ୍ୱୈପାୟନ ଓ ଶ୍ରୋତା ବୈଶମ୍ପାୟନ । ଉତ୍କଳର ବ୍ରାହ୍ମଣମାନେ ଅଧିକାଂଶ ଯଜୁର୍ବେଦୀ । ଯଜୁର୍ବେଦର ଶୁକ୍ଳ ବା ବାଜସନେୟ ଅଂଶ ଯାଜ୍ଞବଲ୍କ୍ୟଙ୍କ ଦ୍ୱାରା କଥିତ; ଶୁକ୍ଳ ଯଜୁଃର ଅନ୍ୟ ନାମ ବାଜସନେୟ; (ବାଜସନି=ସୂର୍ଯ୍ୟ) ଅର୍ଥାତ୍ ସୂର୍ଯ୍ୟଙ୍କ ଠାରୁ ପ୍ରାପ୍ତ; ସୂର୍ଯ୍ୟ ଅଶ୍ୱରୂପ ଧାରଣ କରି ଯାଜ୍ଞବଲ୍କ୍ୟଙ୍କୁ ଏହା କହିଥିଲେ ଓ ଯାଜ୍ଞବଲ୍କ୍ୟ ଏହାକୁ ପୃଥିବୀରେ ଅବତାରଣା କଲେ) । କୃଷ୍ଣ ବା ତୈତ୍ତିରୀୟ ଅଂଶ ତିତ୍ତିର ମୁନିଙ୍କ ଦ୍ୱାରା କଥିତ ।]

**ଯଜୁର୍ବେଦୀ**—ସଂ. ବିଣ (ଯଜୁସ୍+ବେଦ+କର୍ତ୍ତୃ ଇନ୍)—୧ । ଯଜୁର୍ବେଦ ସମ୍ବନ୍ଧୀୟ—1. Relating to
**Jajurbedi**
Jajurbeda. ୨ । ଯଜୁର୍ବେଦାଧ୍ୟାୟୀ—2. Studying the Jajurbeda. ବି—୧ । ଯଜୁର୍ବେଦାଧ୍ୟାୟୀ ବ୍ରାହ୍ମଣ—1. A Brāhmana learned in the Jajurbeda. ୨ । ଯଜୁର୍ବେଦୋକ୍ତ କ୍ରିୟାକାଣ୍ଡର ଅନୁଷ୍ଠାତା ବ୍ରାହ୍ମଣ—2. A Brāhmana who follows the rituals of the Jajurbeda.

**ଯଜୁର୍ବେଦୀୟ**—ସଂ. ବିଣ (ଯଜୁର୍ବେଦ+ଈୟ)—ଯଜୁର୍ବେଦ ସମ୍ବନ୍ଧୀୟ
**Jajurbediya** —Relating to the Jajurbeda.

**ଯଜ୍ଞ**—ସଂ. ବି (ଯଜ୍ ଧାତୁ+ଭାବ. ନ)—୧ । ବେଦୋକ୍ତ ହୋମ ଓ
**Jajña** ପୂଜାବିଧି—1. The sacrificial and ceremonial rites enjoined by the Bedas. [ ଦ୍ର—ଏଥିର ପ୍ରଧାନ ଅଙ୍ଗ ହୋମ ବା ଅଗ୍ନିରେ ଘୃତଆଦି ଆହୁତି ଦେବା । ଯଜ୍ଞଦ୍ୱାରା ଦେବତାମାନେ ତୁଷ୍ଟ ହୋଇ ପୃଥିବୀକୁ ଅନ୍ନଦାନ ଓ ପ୍ରଜାଦାନ କରନ୍ତି । ଯଜ୍ଞ ନାନା-ପ୍ରକାର; ଏଥିମଧ୍ୟରୁ ଅଗ୍ନିଷ୍ଟୋମ, ଜ୍ୟୋତିଷ୍ଟୋମ, ରାଜସୂୟ, ବାଜପେୟ, ଅଶ୍ୱମେଧ, ଗୋମେଧ, ପୁରୁଷମେଧ, ପୁତ୍ରେଷ୍ଟି, ବୃଷୋତ୍ସର୍ଗ ପ୍ରଭୃତି ଉଲ୍ଲେଖଯୋଗ୍ୟ । ଅଗ୍ନିଷ୍ଟୋମ ଯଜ୍ଞର ପ୍ରଧାନ ଉପକରଣ ଅଗ୍ନି; ଏ ଅଗ୍ନି ତିନିଗୋଟି—ଦକ୍ଷିଣ, ଗାର୍ହପତ୍ୟ ଓ ଆହବନୀୟ । ବ୍ରାହ୍ମଣ ଏହି ଅଗ୍ନିତ୍ରୟ ଯତ୍ନ ସହିତ ରକ୍ଷା କରିବେ । ବ୍ରାହ୍ମଣର ଦୈନିକ ସମସ୍ତ ଅନୁଷ୍ଠାନହିଁ ଯଜ୍ଞାଙ୍ଗ । ଯଜ୍ଞବର୍ଜ୍ଜିତ ବ୍ରାହ୍ମଣ ଚଣ୍ଡାଳ ଅଟେ । ଯଜ୍ଞର ଅନ୍ୟ ସଂସ୍କୃତ ନାମ—କ୍ରତୁ, ମଖ, ଅଧ୍ୱର, ଅଭିଷବ, ଆହବ, ମନ୍ୟୁ, ହୋମ, ଇଷ୍ଟି, ଇଷ୍ଟ, ମନ୍ୟୁ, ମହ, ବିତାନ, ସପ୍ତତନ୍ତୁ, ସବ, ସବନ, ହବ, ହବନ । ] ୨ । ହିନ୍ଦୁଶାସ୍ତ୍ର ଅନୁସାରେ ପ୍ରତ୍ୟେକ ଗୃହସ୍ଥର ଓ ବିଶେଷତଃ ବ୍ରାହ୍ମଣର ନିତ୍ୟ କର୍ତ୍ତବ୍ୟ ବଳିଦାନାଦି କର୍ମ ( ଯଥା—ବ୍ରହ୍ମଯଜ୍ଞ=ବେଦ ପାଠ, ପିତୃଯଜ୍ଞ=ପିତୃ-ତର୍ପଣ; ନୃଯଜ୍ଞ=ଅତିଥିସେବା; ଭୂତଯଜ୍ଞ=ଭୂତମାନଙ୍କୁ ବଳିଦାନ; ଦେବଯଜ୍ଞ=ହୋମ )—2. The five devotional acts and offerings which a householder and specially a Brāhmana is enjoined by the Sāstras to do everyday ( Apte ). ୩ । ହୋମ; ଅଗ୍ନିରେ ଦେବତାଙ୍କ ଉଦ୍ଦେଶ୍ୟରେ ଆହୁତି ଦାନ—3. Oblations of ghee and other article of offering unto Dieties through fire. ୪ । ଯଜ୍ଞର ମୂର୍ତ୍ତିମାନ୍ ଦେବତା—4. The personification of sacrifice [ ଦ୍ର—ପୁରାଣମତରେ ଏହି ଦେବତା ମୃଗରୂପୀ । ସତୀଙ୍କର ଯଜ୍ଞକୁଣ୍ଡରେ ଝାସ ପରେ, ମହାଦେବଙ୍କ ପ୍ରେରିତ ବୀରଭଦ୍ର ଦକ୍ଷପ୍ରଜାପତିଙ୍କ ଯଜ୍ଞକୁ ନାଶ କରିବା ସମୟରେ ବୀରଭଦ୍ର ଏହି ମୃଗରୂପଧାରୀ ପଳାୟମାନ ଯଜ୍ଞର ମସ୍ତକ ଛେଦନ କଲେ ଓ ଏହି ମସ୍ତକ ଆକାଶରେ ମୃଗଶିରା ନକ୍ଷତ୍ରରୂପେ ପ୍ରତିଷ୍ଠିତ । ] ୫ । ରୁଚି ପ୍ରଜାପତିଙ୍କ ଔରସରେ ମନୁତନୟା ଆକୂତିଗର୍ଭଜାତ ପୁତ୍ର ଏବଂ ସ୍ୱାୟମ୍ଭୁବ ମନୁଙ୍କ ଦୌହିତ୍ର—5. Name of the daughter's, son of Swāyambhuba Manu. [ ଦ୍ର—ଏହି ରୁଚି ଏହାଙ୍କ ସହୋଦରା ଦକ୍ଷିଣାଙ୍କର ସଙ୍ଗେ ପାଣିଗ୍ରହଣ କରିଥିଲେ ଓ ଏହାଙ୍କ ଔରସରେ ଯାମ ନାମକ ଦେବଗଣ ଜନ୍ମିଥିଲେ ।] ୬ । ବିଷ୍ଣୁ (ହି. ଶ)—6. Bishnu.

**ଯଜ୍ଞକର୍ମ**—ସଂ. ବି—ହୋମ କାର୍ଯ୍ୟ—The ritual of offering
**Jajñakarma** oblations to Deities through fire.
(ଯଜ୍ଞକ୍ରିୟା—ଅନ୍ୟରୂପ)

**ଯଜ୍ଞକଳ୍ପ**—ସଂ. ବି—ବିଷ୍ଣୁ—A name of Bishnu.
**Jajña kalpa**
[ଯଜ୍ଞକ୍ରତୁ, ଯଜ୍ଞଧାତା, ଯଜ୍ଞଭୋକ୍ତା, ଯଜ୍ଞହୃଦୟ, ଯଜ୍ଞପୁରୁଷ, ଯଜ୍ଞଫଳଦ, ଯଜ୍ଞମୟ, ଯଜ୍ଞସାର, ଯଜ୍ଞଧର, ଯଜ୍ଞବୀର୍ଯ୍ୟ, ଯଜ୍ଞଭାବନ, ଯଜ୍ଞବାହନ, ଯଜ୍ଞସାଧନ—ଅନ୍ୟରୂପ ]

**ଯଜ୍ଞକାଳ**—ସଂ. ବି ( ମ. ପ. ଲୋ )—୧ । ଯଜ୍ଞାଦି ପାଇଁ ଶାସ୍ତ୍ରନିର୍ଦ୍ଦିଷ୍ଟ
**Jajñakāla** ସମୟ—1. Proper time fixed for perfomance of Jajñas. ୨ । ଅମାବାସ୍ୟା ଓ ପୂର୍ଣ୍ଣିମାସୀ—2. The last lunar day of every fortnight; the new moon and the full-moon day (Apte)

ଯଜ୍ଞକୀଳକ—ସଂ. ବି (ଷ. ପ. ଲୋ)—ଯେଉଁ ଖୁଣ୍ଟରେ ଯଜ୍ଞରେ
Jajña kiḷaka ବଧଯିବା ବଳି ବନ୍ଧା ହୁଏ—A post
ଯଜ୍ଞସ୍ଥାଣୁ } to which a sacrificial
ଯଜ୍ଞଯୂପ } ଅନ୍ୟରୂପ victim is fastened.
ଯଜ୍ଞସ୍ତମ୍ଭ }

ଯଜ୍ଞ କୁଣ୍ଡ—ସଂ. ବି—ଯେଉଁ କୁଣ୍ଡରେ ଦ୍ରବ୍ୟ ଆହୁତି ଦିଆଯାଏ—
Jajña kuṇda The sacrificial pit.

ଯଜ୍ଞ କୃତ୍—ସଂ. ବିଣ. ପୁଂ ଓ ସ୍ତ୍ରୀ. (ଯଜ୍ଞ+କୃ ଧାତୁ+କର୍ତ୍ତୃ. କ୍ୱିପ୍)—
Jajña kṛut ଯଜ୍ଞ ଅନୁଷ୍ଠାନକାରୀ—Performing sacrifice. ସଂ. ବି—ବିଷ୍ଣୁ—A name of Bishṇu.

ଯଜ୍ଞ ଘିଅ—ଦେ. ବି—ଯଜ୍ଞରେ ହୋମ କରାଯିବା ନିମନ୍ତେ ଉଦ୍ଦିଷ୍ଟ ଘୃତ;
Jajña ghia ଆଜ୍ୟ—The ghee set apart for
(ସଂ. ଯଜ୍ଞ ଘୃତ) offering unto fire. [ ଉ—ଯଜ୍ଞ ଘିଅ କୁକୁର ଖାଇବା ନ୍ୟାୟ—ପ୍ରବଚନ ।]

ଯଜ୍ଞଘ୍ନ—ସଂ. ବିଣ. ପୁଂ. ( ଯଜ୍ଞ+ହନ ଧାତୁ+କର୍ତ୍ତୃ. ଅ )—ଯଜ୍ଞରେ
Jajñaghna ବାଧା ଦେବାବାଲା—Obstructing a sacrifice. ସଂ. ବି. ପୁଂ—ରାକ୍ଷସ—A demon.

ଯଜ୍ଞ ଡିମି(ମ୍ବି)ରି—ଦେ. ବି. (ସଂ. ଯଜ୍ଞୋଡୁମ୍ବର)—ଏକ ପ୍ରକାର ବଡ଼
Jajña ḍimi(mbi)ri ଡିମ୍ବିରି—A kind of fig. [ଦ୍ର—
ଏହାର ଅନ୍ୟ ସଂ ନାମ— ଏହା ଔଷଧରେ ଲାଗେ ଓ ଏହାର
କ୍ଷୀରବୃକ୍ଷ, ହେମ ଦୁଗ୍ଧ, କାଠ ସମିଧ ରୂପେ ହୋମରେ
ସଦ୍ୟ ଫଳ, କାଳ ସ୍କନ୍ଧ, ଲାଗେ ।]
ଯଜ୍ଞ ଯୋଗ୍ୟ, ଯଜ୍ଞୀୟ, ସୁପ୍ରତିଷ୍ଠିତ, ଶୀତ ବଲ୍କ, ଯଜ୍ଞ ସାର, ପୁଷ୍ପଶୂନ୍ୟ;
ସୌମ୍ୟ ଓ ଶୀତ ଫଳ ଯଜ୍ଞ ଡୁମୁର ଗୁଲର, କୁନିଆ, କସା, ଗୁହ,
ମ. ଉମ୍ବର ତେଲୁଗୁ ତେ. ମେଡ଼ି

ଯଜ୍ଞ ଦ୍ରୁହ—ସଂ. ବି. (ଯଜ୍ଞ+ଦ୍ରୁହ୍ ଧାତୁ—ନାଶ କରିବା+କର୍ତ୍ତୃ.ଅ)-
Jajña druha ରାକ୍ଷସ—A demon.
(ଯଜ୍ଞ ଶତ୍ରୁ—ଅନ୍ୟରୂପ)

ଯଜ୍ଞ ଧ୍ୱଂସ—ସଂ. ବି. (୬ଷ୍ଠୀ ତତ୍)—ଯଜ୍ଞ କର୍ମରେ ବାଧା ଦାନ—
Jajña dhwaṁsa The breaking up or frustra-
(ଯଜ୍ଞ ନାଶ, ଯଜ୍ଞ ଭଙ୍ଗ—ଅନ୍ୟରୂପ) tion of the sacrificial rites.

ଯଜ୍ଞ ପତି—ସଂ. ବି (୬ଷ୍ଠୀ ତତ୍)—ବିଷ୍ଣୁ; ନାରାୟଣ—
Jajña pati Bishṇu.
(ଯଜ୍ଞ ପୁରୁଷ, ଯଜ୍ଞ ସାଧନ—ଅନ୍ୟରୂପ)

ଯଜ୍ଞ ପଶୁ—ସଂ. ବି. ( ଷ. ପ. ଲୋ ବା ୪ର୍ଥୀ ତତ୍ )—୧ । ଯଜ୍ଞରେ
Jajña paśu ବଳି ଦିଆଯିବା ପଶୁ—1. A victim of a sacrifice; a sacrificial victim. ୨ । ଘୋଡ଼ା—2. A horse. ୩ । ଛାଗ—3. A goat.

ଯଜ୍ଞ ପାତ୍ର—ସଂ. ବି—ଯଜ୍ଞରେ ପ୍ରୟୋଜନୀୟ ବିବିଧ ପାତ୍ର—Various
Jajña pātra vessels required for the per-
(ଯଜ୍ଞ ଭାଜନ, ଯଜ୍ଞ ଭାଣ୍ଡ—ଅନ୍ୟରୂପ) formance of Jajña.

ଯଜ୍ଞପାଳ—ସଂ. ବି.—(ଯଜ୍ଞ+ପାଳ ଧାତୁ+କର୍ତ୍ତୃ. ଅ)—ଯେ ଯଜ୍ଞକୁ
Jajñapāḷa ରାକ୍ଷସାଦିଙ୍କ ବାଧାରୁ ରକ୍ଷା କରେ—One who
(ଯଜ୍ଞ ରକ୍ଷକ—ଅନ୍ୟରୂପ) protects a Jajña from obstruction.

ଯଜ୍ଞପୁର—ଦେ. ବି—ଯାଜପୁର—A name of Jajpur.
Jajñapura
[ଉ—ଅଶ୍ୱମେଧ ଯଜ୍ଞ ଏଠା କରିଥିଲେ, ତେଣୁ ଯଜ୍ଞପୁର ଆଖ୍ୟା ବୋଲାଏ ଏ ଲୋକେ । ଚନ୍ଦ୍ରାମଣି. ବିକ୍ରମାଦିତ୍ୟ ।]

ଯଜ୍ଞ ଫଳ—ସଂ. ବି—ଯଜ୍ଞ ଡମିରି ( ଦେଖ )
Jajña phaḷa Jajña ḍimiri ( See )
(ଯଜ୍ଞ ଯୋଗ୍ୟ, ଯଜ୍ଞ ସାର—ଅନ୍ୟରୂପ)

ଯଜ୍ଞ ବରାହ—ସଂ. ବି. (ଷ. ପ. ଲୋ)—ବିଷ୍ଣୁ—A name of
Jajña barāha Bishṇu. [ଦ୍ର—ପୁରାଣରେ କଥିତ ଅଛି ଯେ, ବିଷ୍ଣୁ ବରାହ ଅବତାର ପରେ ନିଜ ଶରୀରକୁ ତ୍ୟାଗ କଲା ବେଳେ ତାହାଙ୍କର ଭିନ୍ନ ଭିନ୍ନ ଅଙ୍ଗରୁ ଯଜ୍ଞର ସାମଗ୍ରୀମାନ ନିର୍ମିତ ହୋଇଥିଲା—ହି. ଶ]

ଯଜ୍ଞ ବଲ୍କ—ସଂ. ବି—ମୁନି ବିଶେଷ; ଯାଜ୍ଞ୍ୟବଲ୍କ୍ୟ ଋଷିଙ୍କ ପିତା—
Jajña baḷka Name of an ancient sage.

ଯଜ୍ଞ ବଲ୍ଲୀ(ଲ୍ଲି)—ସଂ. ବି. ( ଷ. ପ. ଲୋ )—ସୋମ ଲତା—The
Jajña balli(lli) moon plant; Asclepias Acida.
(ଯଜ୍ଞ ଶ୍ରେଷ୍ଠା—ଅନ୍ୟରୂପ)

ଯଜ୍ଞ ବାଟ—ସଂ. ବି—ଯଜ୍ଞ ନିମନ୍ତେ ନିର୍ବାଚିତ ଓ ଚତୁର୍ଦ୍ଦିଗରେ ବେଷ୍ଟିତ
Jajña bāṭa ଭୂମି—The site selected and enclosed for the performance of a sacrifice (Apte)
(ଯଜ୍ଞ ଭୂମି, ଯଜ୍ଞସ୍ଥଳ, ଯଜ୍ଞସ୍ଥାନ, ଯଜ୍ଞ ସଂସ୍କାର, ଯଜ୍ଞ ମଣ୍ଡଳ—ଅନ୍ୟରୂପ)

ଯଜ୍ଞ ବାହ—ସଂ. ବି.—(ଯଜ୍ଞ+ବହ ଧାତୁ+କର୍ତ୍ତୃ. ଅ)—ଯଜ୍ଞକାରୀ
Jajñabāha ବ୍ୟକ୍ତି—A performer of sacrifice.
(ଯଜ୍ଞବ୍ରତ—ଅନ୍ୟରୂପ)

ଯଜ୍ଞ ବାହୁ—ସଂ.ବି.—(ବହୁବ୍ରୀହି; ଯଜ୍ଞ ଅଟେ ବାହୁ ଯାହାର)—ଅଗ୍ନି—
Jajña bāhu Fire.

ଯଜ୍ଞବୃକ୍ଷ—ସଂ. ବି.—୧ । ବଟବୃକ୍ଷ (ହି. ଶ.)—1. The banian
Jajña bṛuksha tree. ୨ । ବିକଙ୍କତ ଗୁଳ୍ମ—
2. Flacourtia Ramontchi (plant).

ଯଜ୍ଞବେଦୀ—ସଂ. ବି—(ଷ. ପ. ଲୋ)—ଯେଉଁ ବେଦୀ ଉପରେ ଯଜ୍ଞ
Jajña bedi କରାଯାଏ—The sacrificial altar.
(ଯଜ୍ଞ ବେଦିକା—ଅନ୍ୟରୂପ)

ଯଜ୍ଞଭାଗ—ସଂ. ବି—୧ । (୬ଷ୍ଠୀତତ୍)—ଯଜ୍ଞର ଅଂଶ, ଯାହା ଭିନ୍ନ ଭିନ୍ନ
Jajña bhāga ଦେବତାଙ୍କୁ ଦିଆଯାଏ—1. A share in the sacrificial offering. ୨ । (ବହୁବ୍ରୀହି)—ଯେଉଁ ଦେବତାଙ୍କୁ ଯଜ୍ଞର ଭାଗ ବା ଆହୁତି ଅର୍ପିତ ହୁଏ [ଯଥା—ଇନ୍ଦ୍ର]—2. A Deity to whom a share of the sacrificial oblations is offered.

ଯଜ୍ଞାରି—ସଂ. ବି—(୬ଷ୍ଠୀତତ୍)—୧ । ଶିବ—1, Śiba. ୨ । ରାକ୍ଷସ
Jajñāri 2, A demon.

ଯଜ୍ଞ ମଣ୍ଡପ —ସଂ. ବି.—(ମ. ପ. ଲୋ)—ଯେଉଁ ମଣ୍ଡପରେ ଯଜ୍ଞ କରାଯାଏ—
Jajña mandapa An open pavillion where a sacrifice is performed.

ଯଜ୍ଞରସ—ସଂ ବି ( ମ. ପ. ଲୋ. )—ସୋମ ରସ—
Jajñarasa The juice of the Soma plant.

ଯଜ୍ଞରାଜ—ସଂ. ବି—ଚନ୍ଦ୍ରମା ( ହ୍ରି. ଶ )—
Jajñarāja The moon.

ଯଜ୍ଞଶାଳା - ଯେଉଁ ଗୃହରେ ଯାଗ ହୁଏ—
Jajñaśālā A hall of sacrifice.
(ଯଜ୍ଞସଦନ, ଯଜ୍ଞମନ୍ଦିର, ଯଜ୍ଞାଗାର—ଅନ୍ୟରୂପ)

ଯଜ୍ଞଶୀଳ —ସଂ. ବିଣ ପୁଂ ( ବହୁବ୍ରୀହି )—ଯେ ବାରମ୍ବାର ଯଜ୍ଞ କରେ—
Jajñaśīla Habituated to perform sacrifices.
ସଂ. ବି—ବ୍ରାହ୍ମଣ—A Brāhmana.

ଯଜ୍ଞଶେଷ—ସଂ. ବି—ଯଜ୍ଞ ଅନୁଷ୍ଠିତ ହେବା ପରେ ଯଜ୍ଞଭୂମିରେ
Jajñaśesha ରହିଥିବା ବସ୍ତୁଚୟ—The remains of a sacrifice ( Apte ).

ଯଜ୍ଞସଦଃ—ସଂ. ବି (ବହୁବଚନ)—ଯଜ୍ଞସ୍ଥଳରେ ସମବେତ ମନୁଷ୍ୟଗଣ
Jajñasadah —A number of people assembled at a sacrifice ( Apte ),

ଯଜ୍ଞସମ୍ଭାର—ସଂ. ବି ( ୬ଷ୍ଠୀ ତତ୍ )—ଯଜ୍ଞ କାମରେ ଅବଶ୍ୟକୀୟ
Jajñasambhāra ବସ୍ତୁଗଣ—Materials necessary for a sacrifice.

ଯଜ୍ଞସାଧନ – ସ.ବି (ଯଜ୍ଞ+ସାଧ୍ ଧାତୁ+କର୍ତ୍ତୃ.ଅନ) — ୧ । ଯଜ୍ଞରକ୍ଷକ—
Jajñasādhana 1. A protector of sacrifices
୨ । ବିଷ୍ଣୁ—2. Bishnu.

ଯଜ୍ଞସାର—ସଂ. ବି—ଡମ୍ବିରି ଗଛ—
Jajñasāra Fig tree.

ଯଜ୍ଞସୂତ୍ର—ସଂ. ବି ( ମ. ପ. ଲୋ )—ଯଜ୍ଞୋପବୀତ; ବ୍ରାହ୍ମଣ, କ୍ଷତ୍ରିୟ
Jajña sūtra ଓ ବୈଶ୍ୟଙ୍କର ବ୍ରତ ହେବା ସମୟରୁ ସ୍କନ୍ଧରେ ଲମ୍ବାଯିବା ପଇତା—The sacred thread worn by the twice-born castes since their initiation.

ଯଜ୍ଞସେନ—ସଂ. ବି—୧ । ଦ୍ରୁପଦ ରାଜା; ଦ୍ରୌପଦୀଙ୍କ ପିତା—1. The
Jajñasena father of Draupadī. ୨ । ବିଷ୍ଣୁ ( ହ୍ରି. ଶ. )—2. Bishnu ୩ । ଦାନବବିଶେଷ—3. Name of a demon.

ଯଜ୍ଞାଙ୍ଗ—ସଂ. ବି ( ୬ଷ୍ଠୀ ତତ୍ )—୧ । ଯଜ୍ଞର ଅବୟବ ବା ଅବଶ୍ୟକ
Jajñānga ଅଂଶ—1. The essential part of sacrificial ceremony. ୨ । ଯଜ୍ଞ ଡମ୍ବିରି (ଗଛ) ( ଦେଖ )—2. Jajña dimiri (tree) ( See ) ୩ । ଖଇର ବୃକ୍ଷ—3. The catechu tree. ୪ । ବ୍ରାହ୍ମଣଯଷ୍ଟିଆ ଗଛ—4. Saponanthus Indica. ୫ । ସୋମଲତା—5. The Soma creeper. ୬ । ବିଷ୍ଣୁ—6. A name of Bishnu.

ଯଜ୍ଞାତ୍ମା —ସଂ. ବି—ବିଷ୍ଣୁ—Bishnu.
Jajñātmā (ଯଜ୍ଞାତ୍ମନ୍—ଅନ୍ୟରୂପ)

ଯଜ୍ଞିକ—ସଂ. ବି ( ଯଜ୍ଞ+ଇକ )—୧ । ପଳାଶ ଗଛ—1. The
Jajñika Butea Frondosa tree. ୨ । ଦ୍ୱାପରଯୁଗ—2. The 3rd cycle or age of the Hindus. ୩ । ଯଜ୍ଞର ପ୍ରସାଦରୁ ପ୍ରାପ୍ତ ପୁତ୍ର ( ହ୍ରି. ଶ. )—3. A son begotten as the result of a sacrifice.

ଯଜ୍ଞିୟ—ସଂ. ବିଣ ( ଯଜ୍ଞ+ହିତାର୍ଥ ଇୟ )—୧ । ଯଜ୍ଞ ସମ୍ବନ୍ଧୀୟ—
Jajñiya 1. Sacrificial ( Apte ). ୨ । ପବିତ୍ର—2. Holy ( Apte ). ୩ । ପୂଜ୍ୟ—3. Adorablt ( Apte ). ୪ । ପୁଣ୍ୟାତ୍ମା—4. Pious; devoue ( Apte ). ସଂ. ବି—୧ । ଦେବତା—1. A god; Deity ( Apte ). ୨ । ଦ୍ୱାପରଯୁଗ—2. The 3rd or Dwāpara Juga.

ଯଜ୍ଞୀୟ—ସଂ. ବିଣ ( ଯଜ୍ଞ+ସମ୍ବନ୍ଧାର୍ଥେ ଈୟ )—୧ । ଯଜ୍ଞ ସମ୍ବନ୍ଧୀୟ—
Jajñiya 1. Sacrificial. ୨ । ଯଜ୍ଞ ଡମ୍ବିରି ( ଦେଖ )
2. Jajña dimiri ( See ) ସଂ. ବି—ଡମ୍ବିରି ଗଛ ( ହ୍ରି. ଶ. )—Fig tree.

ଯଜ୍ଞେଶ—ସଂ. ବି—ବିଷ୍ଣୁ—Bishnu.
Jajñeśa (ଯଜ୍ଞେଶ୍ୱର—ଅନ୍ୟରୂପ)

ଯଜ୍ଞୋଡ଼(ଡୁ)ମ୍ବର—ସଂ. ବି—ଯଜ୍ଞ ଡମ୍ବିରି ( ଦେଖ )
Jajñodu(du)mbara Jajña dimiri ( See )

ଯଜ୍ଞୋପବୀତ—ସଂ. ବି ( ମ. ପ. ଲୋ; ଯଜ୍ଞଦ୍ୱାରା ସଂସ୍କୃତ ଉପବୀତ)—
Jajñopabīta ଯଜ୍ଞସୂତ୍ର (ଦେଖ)—Jajñasūtra ( See )

ଯଜ୍ଞୋପବୀତୀ—ସଂ. ବି. ପୁଂ ( ଯଜ୍ଞୋପବୀତ+ଇନ୍ ୧ମା. ୧ବ )—
Jajñopabīti ପଇତାଧାରୀ ବ୍ରାହ୍ମଣ—A Brāhmana wearing the sacred thread.

ଯଜ୍ୱ—ସଂ. ବିଣ ( ଯଜ୍ ଧାତୁ+କର୍ମ. ବ )—ପୂଜନୀୟ—
Jajwa Adorable ( Apte ).
ସଂ. ବି ( +ଭାବ. ବ )—୧ । ପୂଜାକର୍ମ—1. Worshipping ( Apte ). ୨ । ଯଜ୍ଞ—2. A sacrifice ( Apte ).

ଯଜ୍ୱନାଂ ପତି—ସଂ ବି—ଦ୍ୱିଜନାଥ; ଚନ୍ଦ୍ର; ସୋମ—
Jajwanām pati The moon.

ଯଜ୍ୱା—ସଂ. ବି. ପୁଂ ( ଯଜ୍ ଧାତୁ+କର୍ତ୍ତୃ. ବନ୍; ୧ମା. ୧ବ ]—
Jajwā ୧ । ଯାଜ୍ଞିକ; ବେଦବିଧାନାନୁସାରେ ଯାଗକର୍ତ୍ତା—
ସ୍ତ୍ରୀ [ଯଜ୍ୱରୀ—ସ୍ତ୍ରୀ] 1 A performer of Jajña according to the vedic rules. ୨ । [ ଭାବ+ବନ୍ ] ପୂଜା—2. Worshipping (Apte), ୩ । [ + ଅଧିକରଣ ବନ୍ ] ଯଜ୍ଞ—3. A sacrifice (Apte). ୪ । (+କର୍ତ୍ତୃ.ବନ୍)—ବିଷ୍ଣୁ—4. Bishnu (Apte).
ସଂ. ବିଣ. ପୁଂ—୧ । ଯଜ୍ଞକାରୀ—1. Sacrificing. ୨ । ପୂଜାକାରୀ—2. Worshipping.

ଯଜ୍ୟ—ସ. ବିଣ ( ଯଜ ଧାତୁ + କର୍ମି. ଯ )- ଯଜନ କରିବା ଯୋଗ୍ୟ
Jajya —Fit to be sacrificed. ୨ । ପୂଜନୀୟ—
2. Adorable

ଯଜ୍ୟୁ—ସ. ବିଣ ( ଯଜ ଧାତୁ + କର୍ତ୍ତି. ଯୁ )—୧ । ଧାର୍ମିକ; ପୁଣ୍ୟାତ୍ମା
Jajyu —1. Pious; devout ( Apte ). ୨ ।
ପୂଜାକାରୀ—2. Worshipping ( Apte ).
ବି—୧ । ଯଜୁର୍ବେଦୀ ବ୍ରାହ୍ମଣ ( ହି. ଶ )—1. A Brāhmaṇa studying the Jajurbeda
୨ । ଯଜୁର୍ବେଦଜ୍ଞ ପୁରୋହିତ—2. A priest familiar with the Jajurbeda ( Apte ).
୩ । ଯଜମାନ ( ହି. ଶ )—3. A perfomer of sacrifices.

ଯଞ୍ଜ(ଞ୍ଜି)ର(ରା, ରି) (ଇତ୍ୟାଦି)—ଦେ. ବି—ଜଞ୍ଜିର ଇତ୍ୟାଦି (ଦେଖ)
Jañja(ñji)ra(rā, ri) (etc) Jañjira etc ( See )

ଯତ୍—ସ. ସର୍ବନାମ ( ସ. ଯଦ୍‌ଶବ୍ଦ ୧ମା. ୧ବ. ନପୁଂ )—ଯେ; ଯେଉଁ; ଯାହା—Which; what. [ ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ମଧ୍ୟ ବ୍ୟବହୃତ ହୁଏ, ଯଥା—ଯତ୍‌କିଞ୍ଚିତ୍, ଯତ୍‌କାଳ । ଏହାର ସମ୍ବନ୍ଧଯୋଗୀ ଶବ୍ଦ ତତ୍=ତାହା, ସେ । ]
Jat

ଯତ୍—ଦେ. ବି ( ସ. ଯତି )—ସଙ୍ଗୀତର ତାଳ ବିଶେଷ—
Jat A sort of beating time in music.

ଯତ୍ ( ଧାତୁ ) · ସଂ—୧ । ଚେଷ୍ଟା କରିବା; ଯତ୍ନ କରିବା—1, To
Jat (root) try; to endeavour, to strive after. ୨ । ମନସ୍ଥ କରିବା—2, To resolve.
୩ । ଯାତନା ଦେବା, ଉତ୍ପୀଡ଼ନ କରିବା—3. To afflict. ୪ । ପ୍ରହାର କରିବା—4. To beat; to assault. ୫ । ଆଦେଶ କରିବା—5. To order.
୬ । ସଂଗ୍ରହ କରିବା—6. To collect. ୭ । ନିର୍ମାଣ କରିବା—7. To make. ୮ । ନିବାରଣ କରିବା—8. To prevent. ୯ । ଅପନୋଦନ କରିବା—9. To remove. ୧୦ । ଫେରାଇ ଦେବା—10 To return. ୧୧ । ବଦଳ କରିବା—11. To barter or exchange. ୧୨ । ଶୋଧନ କରିବ—12. To purify. ୧୩ । ପରିଶ୍ରମ କରିବା—13. To labour ୧୪ । ଆକାଙ୍କ୍ଷା କରିବା—14. To long for. ୧୫ । ଉତ୍କଣ୍ଠିତ ହେବା—15. To be anxious for. ୧୬ । ସାବଧାନ ହେବା—16. To be watchful; to be cautious.

ଯତ୍‌କତ୍—ପ୍ରାଦେ (ସମ୍ବଲପୁର) ଏ. ବିଣ (ସ. ଯତ୍ ଓ ଲୁକ୍)—ଏଣେ
Jat-kat ତେଣେ; ଯହିଁ ତହିଁ—Here and there; anywhere. [ ଯଥା—ସେ ଯତ୍‌କତ୍ ବୁଲୁଛେ । ]

ଯତ୍‌କାଳ—ସ. ବି—ଯେଉଁ ସମୟ—
Jat-kāla Which time.

ଯତ୍‌କିଞ୍ଚିତ—ସ. ସର୍ବନାମ—୧ । ଅତି ସାମାନ୍ୟ ପରିମିତ—
Jat-kiñchit 1. Very little in quantity.
୨ । ଅତି ତୁଚ୍ଛ—2. Very negligible.

ଯତ୍‌କ୍ଷଣ—ସ. ବି—ଯେଉଁକ୍ଷଣ—
Jat-kshaṇa Which moment.

ଯତ୍‌ପରୋନାସ୍ତି—ସ. ବିଣ ( ଯତ୍=ଯାହାଠାରୁ + ପରଃ=ଶ୍ରେଷ୍ଠ + ନାସ୍ତି=ନାହିଁ )—ଯାହାଠାରୁ ବଳି
Jat-paronāsti ଅଉ ନାହିଁ; ଅତ୍ୟନ୍ତ—Very much (literally, beyond which not ). [ ଯଥା—ମୁଁ ଯତ୍‌ପରୋନାସ୍ତି ପରିଶ୍ରମ କରୁଅଛି । ]

ଯତ୍‌ସମୟ—ସ. ବି—ଯେଉଁ ସମୟ—
Jat-samaya Which time.

ଯତ୍‌ସକାଶାତ୍—ସଂ ଅ—ଯାହାଠାରୁ—From whom. ଦେ.ଅ—
Jat-sakāsāt ଯେଉଁ କାରଣରୁ—From which cause;
যাহার জন্যে जीसकारणसे on account of which.

ଯତ୍ ସାମାନ୍ୟ—ସ. ବିଣ—୧ । ଅତି ସାମାନ୍ୟ—1 Very slight.
Jat-sāmānya ୨ । ଅତି କ୍ଷୁଦ୍ର—2. Very little.
୩ । ନଗଣ୍ୟ - 3. Insignificant.

ଯତ୍ ସାୟଂଗୃହ—ସ. ବିଣ. ପୁଂ—ଯାହିଁ ଯାହିଁ ବାଟରେ ଯେଉଁଠାରେ
Jat-sāyamgṛuha ସନ୍ଧ୍ୟା ହୁଏ ଯାଏ, ସେଠାରେ ସେ ରହେ
—One who stops at a place on the road where evening overtakes him.
(ଯତ୍ ସାୟଂଗୃହା—ସ୍ତ୍ରୀ)

ଯତ—ଗ୍ରା. ବି. (ସ. ଯତ୍ନ)—ଯତ୍ନ (ଦେଖ)—Care (see). ବିଣ—
Jata यत्न जतन ସୁନ୍ଦର—Graceful.
सुन्दर (ଯଥା—ସେ ଯତ୍ନ କରି ମୁଣ୍ଡରେ ଖୋସାଟିଏ ପାରିଛି ।)
खुबसुरत ସ. ବିଣ. (ଯମ୍ ଧାତୁ + କର୍ମି. ତ)—୧ । ସଯତ, ବଦ୍ଧ—1. Tied; bound. ୨ । ନିୟମିତ; ନିୟନ୍ତ୍ରିତ—2. Restrained; controlled; regulated.
୩ । ପରିମିତ—3. Limited; moderate (Apte)
୪ । ଶାସିତ; ବଶୀଭୂତ ଅଧୀନ—4. Governed; controlled. ସ. ବି. (ଯମ୍ ଧାତୁ + ଭାବ. ତ)—ସଂଯମ—Restraint; control. [ ଦ୍ର—ସତ ଯତ ଦମ୍ଭ ଶାନ୍ତ ମନ୍ତ୍ର ଯନ୍ତ୍ରମାନ, ଛାୟା ଯେ ଅବାଙ୍ଛ ଦେଖାଇ ସମାଧି ସାଧନ । ପ୍ରାଚୀ—ଶ୍ରୀଗୁରୁଭକ୍ତି. ଗୀତା ।] ସ. ବି—ପଦ ଦ୍ୱାରା ଗଜ ଚାଳନ—Goading an elephant by the rider's feet

ଯତଃ—ସ. ଅ ( ଯଦ୍ + ତସ୍ )—୧ । ଯେହେତୁ—1. Whereas.
Jatah because; as. ୨ । ସୁତରାଂ—2. Hence
୩ । ଯେତେବେଳେ—3. When. ୪ । ଯେପରି—4. How. ୫ । ଯେଉଁଠାରୁ; ଯେଉଁ ସ୍ଥାନରୁ—5. From which place. ୬ । ଯାହାଠାରୁ; ଯେଉଁ ବ୍ୟକ୍ତିଠାରୁ—6. From which person. ୭ । ଯେଉଁ କାରଣରୁ—7. From which cause; where-

fore; in consequence of which. ୮ । ଯେଉଁ ସମୟରୁ—8. From which time forward, ever since.

ଯତ ଚିତ୍ତ—ସ. ବିଣ. ପୁଂ (ବହୁବ୍ରୀହି; ଯତ+ଚିତ୍ତ)—ଯେ ଆପଣାର Jata chitta ଚିତ୍ତକୁ ସଂଯତ ବା ବଶୀଭୂତ କରିଅଛି—One ଯତ ମାନସ—ଅନ୍ୟରୂପ who has controlled his mind ଯତ ଚିତ୍ତା } —ସ୍ତ୍ରୀ or feelings; subdued in ଯତ ମାନସା mind.

ଯତ ଚେତାଃ—ସ. ବିଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି; ଯତ+ଚେତସ୍; ୧ମା. Jata chetāḥ ୧ବ)—ଯତ ଚିତ୍ତ (ଦେଖ)—Jata chitta (ଯତମନାଃ—ଅନ୍ୟରୂପ) (See)

ଯତନ—ସ. ବି. (ଯତ ଧାତୁ+ଭାବ. ଅନ)—୧ । ପ୍ରଚେଷ୍ଟା; Jatana ଉଦ୍ଯୋଗ; ଉଦ୍ୟମ—1. Endeavour; effort. ଯତନ ୨ । ପରିଶ୍ରମ—2. Exertion; labour. ୩ । ଯତ୍ନ; ଉପାୟ ପ୍ରଯତ୍ନ—3. Care. (ଉ—ଅଣିଥିଲୁ ଭାବ କେତେ ସୁନ୍ଦର କଥା ଘନପ୍ରଭା ସୁନ ଗଭା ଅଛି ଯତନେ ସଜାଡ଼ିରେ । ଖୁବସୁରତ କବିସୂର୍ଯ୍ୟ, ସଙ୍ଗୀତ ।) ୪ । ସାବଧାନତା; ହୁସିଆରୀ—4. Caution. ଦେ. ବି—ଉପାୟ; ଫିକର—Means. (ଉ—ନୂତନବୟସୀ ଜାଣିବା ଯତନ ଭୁ ନ ଜାଣୁ ପଡ଼ିଲେ । କବିସୂର୍ଯ୍ୟ, ସଙ୍ଗୀତ ।) ଦେ. ବିଣ—୧ । ସୁନ୍ଦର 1. Beautiful; graceful. (ଉ—ବିଶିବ ଧରାଧର ଶୋଭା ଯତନ—ଗ୍ରାଧାନାଥ. ମେଘଦୂତ ।) ୨ । ସୁଠାମ—2. Symmetrical. (ଉ—ଅଣିଛନ୍ତି ବଳ୍ଗେ, ହୋଇଛି ସେ ଯତନ । କୃଷ୍ଣସିଂହ, ମହାଭାରତ. ସଭା ।)

ଯତନା(ନେ)ଇବା—ଦେ. କ୍ରି—ଯତ୍ନ ପୂର୍ବକ ରଖିବା; ସାଇତିବା—Jatanā(ne)ibā To preserve with care.

ଯତନୀୟ—ସ. ବିଣ. (ଯତ୍ ଧାତୁ+କର୍ମ. ଅନୀୟ)—ଚେଷ୍ଟିତବ୍ୟ—Jatanīya To be endeavoured; worth trying; triable.

ଯତବାକ୍—ସ. ବିଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି)—୧ । ବାକ୍ୟରେ ସଂଯମ Jatabāk ଅବଲମ୍ବନକାରୀ—1. Restraining one's speech. ୨ । ମୌନାବଲମ୍ବୀ—2. Reticent; observing silence;

ଯତ ବ୍ରତ—ସ. ବିଣ. ପୁଂ. (ବହୁବ୍ରୀହି)—୧ । ଦୃଢ଼ବ୍ରତ—1. Persevering; observing vows. ୨ । Jata brata (ଯତବ୍ରତା—ସ୍ତ୍ରୀ) ଯଥାନିୟମ ନିତ୍ୟ ନୈମିତ୍ତିକ କ୍ରିୟାକର୍ମରେ ରତ—2. Firm in the observance of daily rites.

ଯତମ—ସ. ବିଣ. ପୁଂ. (ଯଦ୍+ବହୁ ମଧ୍ୟରେ ଏକର ନିର୍ଦ୍ଧାରଣାର୍ଥ Jatama ତମ)—ଏମାନଙ୍କ ମଧ୍ୟରୁ ଯେଉଁଟି—Who or which (ଯତମା—ସ୍ତ୍ରୀ) one of all these.

ଯତମାନ—ସ. ବିଣ. ପୁଂ (ଯତ୍ ଧାତୁ+କର୍ତ୍ତୃ. ଅନ)—୧ । ଚେଷ୍ଟା Jatamāna କରୁଥିବା—Trying; endeavouring. (ଯତମାନା—ସ୍ତ୍ରୀ)

ଯତ ମୈଥୁନ—ସ. ବିଣ. ପୁଂ (ଯତ+ମୈଥୁନ, ବହୁବ୍ରୀହି)—Jata maithuna ୧ । ସହବାସବିମୁଖ—1. Averse or (ଯତ ମୈଥୁନା—ସ୍ତ୍ରୀ) disinclined to sexual intercourse. ୨ । ସହବାସ ସମ୍ବନ୍ଧେ ସଂଯତ—2. Abstemious in sexual intercourse.

ଯତର—ସ ବିଣ. ପୁଂ (ଯଦ୍+ଦୁଇ ମଧ୍ୟରେ ଏକର ନିର୍ଦ୍ଧାରଣାର୍ଥେ ତର) Jatara ଏ ଦୁହିଁଙ୍କ ମଧ୍ୟରୁ ଯେଉଁଟି—Who or which of (ଯତରା—ସ୍ତ୍ରୀ) the two.

ଯତର କତର—ଦେ. ଅ—ଯତ୍ର କତ୍ର (ଦେଖ) Jatara katara Jatra katra (See) ପ୍ରାଦେ. (ସମ୍ବଲପୁର) ବି—ଦ୍ୱିଧାଭାବ—Hesitation.

ଯତର କତର କରିବା—ପ୍ରାଦେ. (ସମ୍ବଲପୁର) କ୍ରି—ଦ୍ୱିଧା କରିବା—Jatara katara karibā To hesitate.

ଯତର ତତର—ପ୍ରାଦେ. (ସମ୍ବଲପୁର) ଅ—ଯତ୍ର ତତ୍ର (ଦେଖ) Jatara tatara Jatra tatra (See) ପ୍ରାଦେ. (ସମ୍ବଲପୁର) କ୍ରି. ବିଣ—ଦ୍ୱିଧା କରଣ—Hesitancy.

ଯତସ୍ତତଃ—ସ. ଅ. (ଯତଃ+ତତଃ)—୧ । ଯେ କୌଣସି ସ୍ଥାନରୁ—Jatastataḥ 1. From which place soever. from any quarter whatever. ୨ । ଯେ କୌଣସି ବ୍ୟକ୍ତିଠାରୁ—2. From any person whatever ୩ । ଯେ କୌଣସି ସ୍ଥାନରେ—3. Anywheresoever. ୪ । ସବୁ ଦିଗରେ; ଚତୁର୍ଦ୍ଦିଗରେ—4. On all sides. ୫ । ଯେ କୌଣସି ଦିଗରେ—5. In any direction.

ଯତାତ୍ମା—ସ. ବିଣ. ପୁଂ (ଯତ+ଆତ୍ମନ୍ ଯାହାର; ବହୁବ୍ରୀହି; Jatātmā ୧ମା. ୧ବ)—ଯତଚିତ୍ତ (ଦେଖ)—Jata chitta (See)

ଯତାହାର—ସ. ବିଣ. ପୁଂ (ଯତ+ଆହାର, ବହୁବ୍ରୀହି)—ମିତାହାରୀ; Jatāhāra ଭୋଜନ; ଖାଇବା ବିଷୟରେ ସଂଯତ—Abstemious; (ଯତଭୋଜନ—ଅନ୍ୟରୂପ) temperate or (ଯତାହାରା, ଯତଭୋଜନା—ସ୍ତ୍ରୀ) moderate in eating.

ଯତି—ସ. ବି. [ଯତ୍ ଧାତୁ=(ମୋକ୍ଷ ପାଇ) ଯତ୍ନ କରିବା+କର୍ତ୍ତୃ. ଇ] Jati —୧ । ଯମୀ; ଜିତେନ୍ଦ୍ରିୟ ବ୍ୟକ୍ତି; ତପସ୍ୱୀ; ମୁନି—1. A sage; an ascetic; one who has controlled his passions. ୨ । ସଂସାରତ୍ୟାଗୀ ସନ୍ନ୍ୟାସୀ; ତ୍ୟାଗୀ-ଯୋଗୀ—2. An anchorite who has renounced the world; a recluse. [ଦ୍ର—ମନୁସଂହିତାର ଷଷ୍ଠ ଅଧ୍ୟାୟରେ ଯତି ଧର୍ମ ବର୍ଣ୍ଣିତ ହୋଇଅଛି । ଯଥା—ଅହିଂସା, ସତ୍ୟ, ଅସ୍ତେୟ (ଚୌର୍ଯ୍ୟରାହିତ୍ୟ), ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ (ଦାନପରିଗ୍ରହ) ଏହି ୫ ଗୋଟି 'ଯମ' ଯାହାର ଅଛି ସେ ଯମୀ ବା ଯତି ।] ୩ । ବ୍ରହ୍ମଚାରୀ—3. A person observing continence

୪ । ଭିକ୍ଷୁ; ପରିବ୍ରାଜକ—4. An itinerant mendicant. ୫ । ( ଯମ ଧାତୁ + ଭାବ. ତି ) ନିବୃତ୍ତି—5. Cessation. ୬ । ଦମନ—6. Restraining; controlling; checking. ୭ । (ଯମ ଧାତୁ + ଅଧିକରଣ. ତି) ଛନ୍ଦର ବା ଶ୍ଳୋକର ମଧ୍ୟରେ ଜିହ୍ୱାର ବିଶ୍ରାମ ସ୍ଥାନ; ପାଠ ବିଚ୍ଛେଦ—7. A stop or rest; a pause in poetry or metre; the caesura; a harmonious pause which takes place during the recitation of a verse.

[ଦ୍ର—ଉଦାହରଣ ସ୍ୱରୂପ--ନଅ ଅକ୍ଷରିଆ ଓଡ଼ିଆ ଭାଗବତର ଛାନ୍ଦରେ ୩ ଅକ୍ଷର ପରେ ଯତିପାତ, ପରେ ୬ ଅକ୍ଷର ପରେ ଯତିପାତ ହୁଏ ।

ଶୁଣ ହେ—ରାଜା—ପରୀକ୍ଷିତ
କହିବି—ମୁହିଁ—ଭାଗବତ ।

କିନ୍ତୁ ଏହି ୯ ଅକ୍ଷରକୁ ଯଦି ଏହି ରୂପେ ରଚନା କରାଯିବ:—

ପରୀକ୍ଷିତ ରାଜା ହେ ଶୁଣ
ଭାଗବତ କହିବି ଗାନ,

ତେବେ ନିର୍ଦ୍ଦିଷ୍ଟ ସ୍ଥଳରେ ଯତି ନ ପଡ଼ି

ପରୀକ୍ଷି—ତରା—ଜାହେ ଶୁଣ
ଭାଗବ—ତକ—ହିବ ଗାନ, ହେବ ।

ଏଥିରେ ଯତିଭଙ୍ଗ ଦୋଷ ଘଟି ଏହା କାନକୁ ଭାରି କର୍କଶ ଲାଗିବ ।

ସଂସ୍କୃତ ପଦ୍ୟରେ ହ୍ରସ୍ୱ ଦୀର୍ଘ ସ୍ୱର ଅନୁସାରେ ଯତିପାତର ନିୟମ ଥିବାରୁ ସଂସ୍କୃତ ପଦ୍ୟ ରଚନା କରିବା କଷ୍ଟକର । ଓଡ଼ିଆରେ ପଦ୍ୟରେ ହ୍ରସ୍ୱ ଦୀର୍ଘର ବାରଣ କିଛି ନ ଥିବାରୁ "ସଜନୀ ସଙ୍ଗ ମୂଳେ ଲୁଚିଥିଲି ସାଇଁ ଶ" ଭଳି ପଦ୍ୟ ରଚନା କରିବା ବଡ଼ ସହଜ ହୋଇ ପଡ଼ିଅଛି । ]

୮ । ବିଧବା—8. A widow. ୯ । ପଦାଂଶ—9. Syllable. ୧୦। ଅନୁଭୂତି—10. Experience conception. ୧୧ । ଯତ୍ ନାମକ ତାଳ; କି ସଙ୍ଗୀତ ତାଳର ପ୍ରକାରଭେଦ—11. Name of a musical measure. [ ଦ୍ର—ଏହାର ମାତ୍ରା ସଂଖ୍ୟା ୧୪ ଓ ତାହା ୪ ପଦରେ ବିଭକ୍ତ । ପ୍ରଥମ ପଦରେ ୩ ମାତ୍ରା, ଦ୍ୱିତୀୟ ପଦରେ ୪, ତୃତୀୟ ପଦରେ ୩, ଓ ଚତୁର୍ଥ ପଦରେ ୪; ଦୁଇଟି ଦ୍ରୁତ ତାଳ ପରେ ୨ଟି ଲଘୁ ବା ୨ଟି ଲଘୁ ପରେ ୨ଟି ଦ୍ରୁତ ତାଳ ବିଧିଅଛି ।] ୧୨ । ବ୍ରହ୍ମାଙ୍କର ଏକ ପୁତ୍ର (ଭାଗବତ) (ହି. ଶ.)—12. Name of a son of Brahmā. ୧୩ । ନହୁଷଙ୍କ ଏକ ପୁତ୍ର (ମହାଭାରତ) [ହି. ଶ]—13. Name of a prince, son of King Nahūsha.

**ଯତିତବ୍ୟ**—ସଂ. ବିଣ—(ଯତ୍ ଧାତୁ + କର୍ମ. ତବ୍ୟ)—ଚେଷ୍ଟଣୀୟ— **Jatitabya** Triable; fit to be endeavoured for.

**ଯତି ଚିହ୍ନ**—ଦେ. ବି.—ପାଠ କରିବା ସମୟରେ ଉଚ୍ଚାରଣର ବିଚ୍ଛେଦ-ସୂଚକ ଜିହ୍ୱାର ବିଶ୍ରାମାର୍ଥ ବ୍ୟବହୃତ ଚିହ୍ନ **Jati chihna** (ଯଥା ଅଧୁନିକ ବ୍ୟବହୃତ କମା(,) ସେମିକୋଲନ (;) କୋଲନ (:) ଓ ପୂର୍ଣ୍ଣଚ୍ଛେଦ (.) ବା (।); ପ୍ରଶ୍ନସୂଚକ ଚିହ୍ନ (?); ସମ୍ବୋଧନାଦି (!); ଉଦ୍ଧାର ଚିହ୍ନ (" "); ଡାସ୍ ଚିହ୍ନ (—); ବନ୍ଧନୀ ଚିହ୍ନ ( ) { } [ ] ବର୍ଣ୍ଣଲୋପ ଚିହ୍ନ ('), ଉଦାହରଣ ଚିହ୍ନ (;—) ବା (:—)—Signs of stops used in writing, as comma, fullstop, semicolon etc

**ଯତିତ**—ସଂ. ବିଣ.—(ଯତ ଧାତୁ+କର୍ମ. ତ)—ଯାହା ଚେଷ୍ଟା କରାଯାଇଅଛି—Attempted; striven after. **Jatita**

**ଯତିତ୍ୱ**—ସଂ. ବି.—(ଯତି+ଭାବରେ)—୧ । ଯତିର ଧର୍ମ, ଭାବ ବା କର୍ମ—1. The conduct, state or act of a Jati. ୨ । ବ୍ରହ୍ମଚର୍ଯ୍ୟ—2. Continence. **Jatitwa**

**ଯତିଧର୍ମ**—ସଂ. ବି--ଯତିର କର୍ତ୍ତବ୍ୟ ନିୟମମାନ—The rules to be observed by an ascetic. **Jati dharma**

[ଦ୍ର—ଏହି ନିୟମଗୁଡ଼ିକ ଯଥା—ପ୍ରାଣଧାରଣ ପାଇଁ ଭିକ୍ଷା ବୃତ୍ତି, ନିର୍ଜନ ପ୍ରଦେଶରେ ଅବସ୍ଥାନ, ଇନ୍ଦ୍ରିୟ ନିରୋଧ ବା ବ୍ରହ୍ମଚର୍ଯ୍ୟ, ପୂରକ, କୁମ୍ଭକ, ରେଚକ ବିଧି ଅନୁସାରେ ପ୍ରାଣାୟାମ, ପରଂବ୍ରହ୍ମଙ୍କ ଧ୍ୟାନ, ଅହିଂସା, ନିର୍ଲୋଭ, ନିସ୍ପୃହା, ଅନାସକ୍ତି, ମାନାପମାନ, ସୁଖ ଦୁଃଖ ଓ ଶୀତୋଷ୍ଣାଦିରେ ସମାନ ଦୃଷ୍ଟି । ( ମନୁସଂହିତା ୬ଷ୍ଠ ଅଧ୍ୟାୟ ।)]

**ଯତିନୀ**—ସଂ. ବି. ସ୍ତ୍ରୀ—(ଯତ୍ ଧାତୁ+ଇନ୍+ସ୍ତ୍ରୀ. ଈ)—୧ । ବିଧବା—1. A widow (Apte) ୨ । ସନ୍ନ୍ୟାସିନୀ—2. A female recluse. **Jatini**

**ଯତି ପଡ଼ିବା**—ଦେ. କ୍ରି.—୧। ପଦ୍ୟର ସ୍ଥାନବିଶେଷରେ ଉଚ୍ଚାରଣର ବିଶ୍ରାମ ଘଟିବା—1. The happening of pauses in a poem. ୨ । (ଲକ୍ଷଣାର୍ଥ) ଦୁଇ ଜଣଙ୍କ ମନର ମେଳ ବା ଐକ୍ୟ—Agreement between two persons. **Jati padibā**

**ଯତି ପାତ**—ସଂ. ବି.—(୭ମୀ ତତ୍) ପଦ୍ୟାବୃତ୍ତି କରିବା ସମୟରେ ଯେଉଁ ଯେଉଁ ଠାରେ ଟିକିଏ ଟିକିଏ ବିଶ୍ରାମ କରିବାକୁ ହୁଏ—The pauses made at intervals while singing or reciting a poem. **Jati pāta**

**ଯତିପାତ ଦୋଷ**—ସଂ. ବି—ଛନ୍ଦୋଦୋଷ ବିଶେଷ; ଛନ୍ଦୋବଦ୍ଧ ରଚନାରେ ଅଧିକାକ୍ଷର ବା ନ୍ୟୂନାକ୍ଷର ଯୋଗୁ (ଯତିଭଙ୍ଗ ଦୋଷ, ଯତିଦୋଷ—ଅନ୍ୟରୂପ) କିମ୍ବା ଦୀର୍ଘସ୍ୱର ସ୍ଥଳରେ ହ୍ରସ୍ୱ ଓ ହ୍ରସ୍ୱ ସ୍ଥଳରେ ଦୀର୍ଘ ସ୍ୱର ପ୍ରୟୋଗ ଯୋଗୁଁ ନିର୍ଦ୍ଦିଷ୍ଟ ସ୍ଥାନରେ ଯତିପାତ ନ ହେବା ରୂପ ରଚନାଦୋଷ-A defect in the composition of a poem which consists in the pauses not being properly punctuated. **Jatipāta dosha**

**ଯତି ଯମକ**—ସଂ. ବି.—ଯମକ ବିଶେଷ—
Jati jamaka A kind of alliteration.
[ଉ—ଭୁବଳୟ ଯୋଷାଭୂଷା ଭୁବଳୟ ନେଣ୍ଡୀ, ଶୁବଳୟ-ଶୋଭୀ ଯୁବଳୟ କେଳ ପାଣ୍ଡୀ । ଭଞ୍ଜ—ପ୍ରେମମଞ୍ଜରୀ ।]

**ଯତୀ**—ସଂ. ବି. ପୁଂ (ଯତ୍ ଧାତୁ + କର୍ତ୍ତୃ ଇନ୍)—
Jati ୧ । ଜିତେନ୍ଦ୍ରିୟ ମୁନି—1. A sage of subdued passions. ୨ । ସନ୍ନ୍ୟାସୀ—2. An ascetic.

**ଯତୀନ୍ଦ୍ର**—ସଂ. ବି. ( ୬ଷ୍ଠୀ ତତ୍, ଯତି + ଇନ୍ଦ୍ର )—ପ୍ରଧାନ—ଯତି
Jatindra Chief amongst anchorites.
(ଯତୀଶ, ଯତିଶ୍ରେଷ୍ଠ— ଅନ୍ୟରୂପ)

**ଯତୁକା**—ସଂ. ବି—ଚକ୍ରମର୍ଦ୍ଦ ଗଛ (ହ୍ର. ଶ.)—
Jatuka Cassia Tora (tree).

**ଯତେନ୍ଦ୍ରିୟ**—ସଂ. ବିଣ. ପୁଂ (ବହୁବ୍ରୀହି; ଯତ + ଇନ୍ଦ୍ରିୟ)—ଯେ ଇନ୍ଦ୍ରିୟ-
Jatendriya ମାନଙ୍କୁ ସଂଯତ କରିଅଛି—One who has
(ଯତେନ୍ଦ୍ରିୟା – ସ୍ତ୍ରୀ) subdued his passions

**ଯତ୍କାରଣ**—ସଂ. କ୍ର—ଯେଉଁ କାରଣ—Which cause.
Jatkārana

**ଯତ୍କାରଣରୁ**—ଦେ. ଅ. (ସଂ. ଯତ୍କାରଣାତ୍)—୧ । ଯେଉଁ କାରଣରୁ
Jatkāranaru 1. Wherefore, ୨ । ଯେହେତୁ—
2. Because.

**ଯତୋଧର୍ମ୍ମସ୍ତତୋଜୟଃ**—ସଂ ପ୍ରବଚନ—ଧର୍ମ୍ମବାନ୍ ପ୍ରାଣୀ ସର୍ବଦା ଜୟ-
Jatodharmmastatojayah ଲାଭ କରେ—Victory follows righteousness.

**ଯତ୍ତ**—ସଂ. ବିଣ. ପୁଂ (ଯତ୍ ଧାତୁ + କର୍ତ୍ତୃ.ତ)—୧ । ଚେଷ୍ଟା କରୁଥିବା,
Jatta ପ୍ରଯତ୍ନ ବିଶିଷ୍ଟ—1. Exerting (Apte). ୨ । ଯତ୍ନ-
(ଯତ୍ତା—ସ୍ତ୍ରୀ) ନେଉଥିବା—2. Taking care (Apte). ୩ । ପ୍ରସ୍ତୁତ; ଉଦ୍ୟତ—3. Prepared; ready (Apte). ୪ । ଯେ ସଂକଳ୍ପ କରିଅଛି—4. Resolved (Apte). ୫ । (+କର୍ମ୍ମ.ତ) ଯାହା ପ୍ରତି ଯତ୍ନ କରା ଯାଇଅଛି—5. Cared for;attended to(Apte).

**ଯତ୍ନ**—ସଂ. ବି (ଯତ୍ ଧାତୁ + ଭାବ. ନ)—୧ । ଚେଷ୍ଟା; ଉଦ୍ୟୋଗ;
Jatna ପ୍ରଯତ୍ନ—1. Endeavour; effort; care. ୨ । ଉଦ୍ୟମ; ପରିଶ୍ରମ—2. Exertion. ୩ । ଅଧ୍ୟବସାୟ—3. Perseverance; diligence. ୪ । ଆଦର; ମନୋଯୋଗ—4. Careful attention; fondness. ୫ । ସତର୍କତା; ସାବଧାନତା—5. Watchfulness; vigilance. ୬ । ଆଗ୍ରହ—6. Zeal. ୭ । କଷ୍ଟ ସ୍ୱୀକାର—7. Taking pains or trouble.
ଦେ. ବି.—୧ । ରୋଗୀର ସେବା ଶୁଶ୍ରୂଷା—
ଯତ୍ନ, ଯତ୍ନ 1. Taking care of a sick person. ୨ । ଚିକିତ୍ସା—2. Medical treatment. ୩ । ତଦାରଖ—3. Looking after a thing.
୪ । ଉପାୟ—4. Means.

**ଯତ୍ନ କରିବା**—ଦେ. କ୍ରି—ଉଦ୍ୟମ କରିବା; ଚେଷ୍ଟା କରିବା—
Jatna kariba To try; to endeavour. [ଯଥା—
यत्नकरना, प्रयत्नकरना ଯତ୍ନ କଲେ ରତ୍ନ ମିଳେ—ଭଗ ।]

**ଯତ୍ନତଃ**—ସଂ. କ୍ରି ବିଣ (ଯତ୍ନ + ତସ୍)—୧ । ବିଶେଷ ଯତ୍ନ କରି—
Jatnatah 1. Carefully. ୨ । ବହୁ ଚେଷ୍ଟା କରି—
(ଯତ୍ନ ପୂର୍ବକ, ଯତ୍ନ ସହିତ, ଯତ୍ନ ସହକାରେ —ଅନ୍ୟରୂପ) 2. With much effort, ୩ । ଆଦର ପୂର୍ବକ--With fondness.

**ଯତ୍ନ ନେବା**—ଦେ. କ୍ରି—୧ । ଯତ୍ନ ନେବା; ହେପାଜତ କରିବା—
Jatna neba 1. To take care of. ୨ । ଦୃଷ୍ଟି ରଖିବା—
यत्नलओयां, यत्नलेना 2 To attend to. ୩ । ସମାଦର କରିବା—3.To have a fond eye on

**ଯତ୍ନପାଳିତ**—ସଂ. ବିଣ. ( ୩ୟା ତତ୍ )—ଯତ୍ନ ସହିତ ପାଳିତ ହୋଇ
Jatna pālita ଥିବା—Brought up with care.
(ଯତ୍ନବର୍ଦ୍ଧିତ —ଅନ୍ୟରୂପ)

**ଯତ୍ନଲଭ୍ୟ**—ସଂ. ବି ( ୩ୟା ତତ୍ )—ପରିଶ୍ରମ ବା ଚେଷ୍ଟାଦ୍ୱାରା ପ୍ରାପ୍ୟ—
Jatna labhya Attainable with great effort.

**ଯତ୍ନବାନ୍**—ସଂ. ବିଣ ପୁଂ ( ଯତ୍ନ + ମତ୍ )—୧ । ଚେଷ୍ଟାଯୁକ୍ତ—
Jatnabān 1. Endeavouring; diligent. ୨ ।
(ଯତ୍ନଶୀଳ—ଅନ୍ୟରୂପ) ଆଗ୍ରହ ଯୁକ୍ତ—2. Eager. ୩ ।
(ଯତ୍ନବତୀ, ଯତ୍ନଶୀଳା—ସ୍ତ୍ରୀ) ଅଧ୍ୟବସାୟୀ—3. Persevering.

**ଯତ୍ନ ହୋଇ**—ଦେ. କ୍ରି. ବିଣ—ଉତ୍ତମରୂପେ—Well. [ ଉ—
Jatna hoi ଯତ୍ନ ହୋଇ ଯେତେବେଳେ ସିଝିଲା ଶୁଣ୍ଠରେ ।
ଭାଲହସେ अच्छीरीतसे, अच्छासे ପ୍ରାଚୀ. କଳତରିତ ।]

**ଯତ୍ନାକ୍ଷେପ**—ସଂ. ବି ( କାବ୍ୟାଳଙ୍କାର )—ଅପତ୍ତି ବନ୍ଦ କରିବା ପାଇଁ
Jatnākshepa ଚେଷ୍ଟା କରାଯାଇଥିବା ସତ୍ତ୍ୱେ କରାଯିବ ଆପତ୍ତି—( in rhetoric ) An objection raised even though there is an attempt to stop it ( Apte).

**ଯତ୍ନେ କୃତେ ଯଦି ନ ସିଧ୍ୟତି କୋଽତ୍ର ଦୋଷଃ**—ସଂସ୍କୃତ ପ୍ରବଚନ,
Jatne krute jadi na sidhyati kotra doshah
ଶ୍ଳୋକାଂଶ—କୌଣସି କାର୍ଯ୍ୟ ପାଇଁ ଚେଷ୍ଟା କରି କୃତ-କାର୍ଯ୍ୟ ନ ହେଲେ ଅପଣାଲୁ ଦୋଷ ଲଗେ ନାହିଁ —One is not to blame for failure if one has striven one's utmost for it.

**ଯତ୍ର**—ସଂ. ଅ—( ଯଦ୍ + ସ୍ଥାନାଧିକରଣ ତ୍ର )—୧ । ଯେଉଁଠାରେ; ଯହିଁ
Jatra —1. Where; whither. ୨ । ଯେଉଁ ବିଷୟରେ—2. In which matter, in which subject. [ ଉ—ଏହାର ସଯୋଗୀ ଶବ୍ଦ ତତ୍ର ।]

**ଯତ୍ର ଆୟ ତତ୍ର ବ୍ୟୟ**—ଦେ. ପ୍ରବଚନ (=ଯେଉଁଠାରେ ଆୟ ସେହି-
Jatra āya tatra byaya ଠାରେହିଁ ବ୍ୟୟ )—ଯେତିକ ଆୟ ସେତିକ ବ୍ୟୟ ହେବା ସ୍ଥଳରେ ଏ ପ୍ରବଚନ
जहाँ आमद(आय) तहाँ खर्च(व्यय) ପ୍ରଯୁକ୍ତ ହୁଏ—Anyhow making both ends meet; whatever one gets, one spends.
যত আয তত ব্যয়

**ଯତ୍ର କତ୍ର**—ଦେ. ଅ ( ସ. ଯତ୍ର+କୁତ୍ର )—୧ । ଯଥା କଥଞ୍ଚିତ୍; ଯେନ Jatra katra ତେନ ପ୍ରକାରେଣ; ଅତି କଷ୍ଟରେ—Anyhow; যেমন তেমন somehow or other; with great जहाँ तहाँ difficulty. ୨ । ଯେଉଁଠାରେ ଇଚ୍ଛା ସେଠାରେ—2 At any place whatsoever.

**ଯତ୍ରକୁତ୍ର**—ସ. ଅ—୧ । ଯେ କୌଣସି ସମୟରେ—1. Whereso- Jatra kutra ever; in whatever place. ୨ । ଯେ କୌଣସି ସମୟରେ—2. Whensoever ( Apte ). ୩ । ଏଠାରେ ଓ ସେଠାରେ—3. Hither and thither ( Apte ).

**ଯତ୍ରତତ୍ର**—ସଂ. କ୍ରି. ବଣ—ଯେ କୌଣସିଠାରେ; ଯେଉଁଠାରେ ଇଚ୍ଛା Jatra tatra ସେଠାରେ, ଯଥା ତଥା; ସବୁଠାରେ—At any place whatever; anywhere and every-where.

**ଯତ୍ରତ୍ୟ**—ସଂ. ବଣ ( ଯତ୍ର+ତ୍ୟ )—୧ । ଯେଉଁ ସ୍ଥାନର—1. Of Jatratya which place. ୨ । ଯେଉଁ ସ୍ଥାନର ଅଧିବାସୀ —2. Dwelling in which place.

**ଯତ୍ର ଯତ୍ର**—ସ. ଅ ( ଯତ୍ର+ଯତ୍ର )—ଯେଉଁ ଯେଉଁ ସ୍ଥାନରେ— Jatra jatra Wherever; at whichever place.

**ଯତ୍ର ସାୟଂ ପ୍ରତିଶ୍ରୟଃ**—ସ. ପ୍ରବଚନ—ବାଟରେ ଯାଉଁ ଯାଉଁ ଯେଉଁ Jatra sāyam pratiśrayaḥ ଠାରେ ସନ୍ଧ୍ୟା ହୁଏ ସେଠାରେ ବିଶ୍ରାମ କରିବା ସ୍ୱଭାବ—(a proverb) The practice of halt ing in the journey wherever evening overtakes a person.

**ଯତ୍ରୁ**—ସ. ବ—ଶରୀର ଉପରେ ଓ ଗଳାର ତଳେ ଥିବା ମଣ୍ଡଳାକାର Jatru ଅସ୍ଥି ( ପ୍ରା. ଶ. )—The circular bone above the breast and below the throat.

**ଯତ୍ସକାଶାତ୍**—ସ. ଅ ( ସ. ଯତ୍+ସକାଶାତ୍ )—ଯାହାଙ୍କଠାରୁ— Jatsakāśāt From whom.

**ଯତ୍ସତ୍ୟ**—ସଂ କ୍ରି. ବଣ ( ଅବ୍ୟୟୀଭାବ; ଯତ-ସତ୍ୟ )—ଯଥାର୍ଥରେ— Jatsatya Truly; foresooth (Apte)

**ଯଥଂ କଥଂ**—ଦେ. କ୍ରି. ବଣ ( ସଂ. ଯଥା କଥଞ୍ଚିତ୍ )— Jatham katham ଯଥା କଥଞ୍ଚିତ୍ ( ଦେଖ ) जैसेतैसे যেমন তেমন Jathā kathañchit ( See )

**ଯଥା**—ସଂ. ଅ ( ଯଦ୍+ପ୍ରକାରାର୍ଥେ ଥା )—୧ । ଯେଉଁ ପ୍ରକାରେ, Jathā ଯେଉଁ ପରି, ଯାଦୃଶ—1. As; like; in which manner. [ ଉ—ଏଥିର ଅପେକ୍ଷିକ ସହଚର ଶବ୍ଦ ତଥା । ] ୨ । ଉପର୍ଯ୍ୟୁକ୍ତରୂପେ—2. In the above manner. ୩ । ଉଦାହରଣ ସ୍ୱରୂପ—3. Namely; as for example; e. g; viz. ୪ । ( ଅନ୍ୟ ଶବ୍ଦ ପୂର୍ବେ ଅବ୍ୟୟୀଭାବ ସମାସରେ ଯୁକ୍ତ )—ଅନୁସାରେ— 4. According to. ( ଯଥା—ଯଥେଚ୍ଛା; ଯଥେଷ୍ଟ ) ୫ । ଅତିକ୍ରମ ନ କରି—5. Not exceeding. ( ଯଥା —ଯଥାଶକ୍ତି, ଯଥାସାଧ୍ୟ । ) ଦେ. ବ—ଜଥା (ଦେଖ) Jathā ( See )

**ଯଥା ଋତୁ**—ସଂ. କ୍ରି. ବଣ—ଉଚିତ ଋତୁ ଅନୁସାରେ— Jathā ṛutu According to the right season.

**ଯଥା କଥଞ୍ଚିତ୍**—ସ. କ୍ରି. ବଣ— (ଯଥା+କଥଂ+ଚିତ୍)—୧ । ଯେ— Jathā kathañchit କୌଣସି ପ୍ରକାରେ—1. Anyhow, (ଯଥା କଥଂ—ଅପଭ୍ରଂଶ) somehow or other. ୨ । କଷ୍ଟେ ସୃଷ୍ଟେ; ଅତି କଷ୍ଟରେ—2. With great difficulty.

**ଯଥା କଥା**—ଦେ. କ୍ରି. ବଣ—(ସ. ଯଥା କଥଂ)—୧ । ଯଥା କଥଞ୍ଚିତ୍ Jathā kathā (ଦେଖ)—Jathā kathañchit (See) যেমন তেমন, যথা কথা। जैसे तैसे (ଯଥକେଥା, ଯଥା କେଥା—ଗ୍ରାମ୍ୟରୂପ)
୨ । (ସ. ଯଥା କଥିତ) କହିବା ଅନୁସାରେ; କଥା ମୁତାବକ 2. According to what was told. [ଉ— ଯଥା କଥା କରି ତାଙ୍କୁ ଜଣାଣ, ଲେଖିବା ଭୁଲକ କାଗଜ ଅଣ । ଉଞ୍ଜ. ଲାବଣ୍ୟବତୀ । ] ସଂ ବ.—ଯେତେ- ଭୁର ସମ୍ବନ୍ଧ ତେତେ—As much as ( Apte ).

**ଯଥା କଥିତ**—ସଂ. କ୍ରି.ବଣ—୧। କହିବା ଅନୁସାରେ—1. As it is Jathā kathita or was spoken or stated. ୨ । ଯାହା ବୋଲା ଯାଉଅଛି—2. What is told; as alleged.

**ଯଥା କର୍ତ୍ତବ୍ୟ**—ସଂ ଅ. —ଯେପରି କରିବା ଉଚିତ— Jathā karttabya As ought to be done. ବ.—କର୍ତ୍ତବ୍ୟ କର୍ମ—An act which ought to be done: proper action; what is right to be done.

**ଯଥା କର୍ମ**—ସଂ. କ୍ରି. ବଣ—୧ । ନିଜର କର୍ତ୍ତବ୍ୟ କର୍ମ ଅନୁସାରେ— Jathā karma 1. According to one's duties (Apte). ୨ । ଦେଶ, କାଳ, ପାତ୍ର ବା ଅବସ୍ଥା ଅନୁସାରେ—2. According to the circum- stances (Apte)

**ଯଥା କର୍ମେ**—ଗ୍ରା. କ୍ରି. ବଣ.—(ସଂ. ଯଥାକ୍ରମ)—ଯଥା କ୍ରମେ (ଦେଖ) Jathā karme Jathākrame (See)

**ଯଥା କଳ୍ପ**—ସ. କ୍ରି. ବଣ—(ଯଥା+କଳ୍ପ)—୧ । କଳ୍ପିତ ହେବା Jathā kalpa ପ୍ରକାରେ—1. As designed. ୨। ନିୟମ (ଯଥା କଲପ—ଅନ୍ୟରୂପ) ଅନୁସାରେ—2. According to rules.

**ଯଥା କାମ**—ଦେ. କ୍ରି. ବଣ—୧ । ନିଜର ଇଚ୍ଛା ଅନୁସାରେ; ଅଯଥା— Jathā kāma 1. Arbitrarily; according to one's pleasure.

**ଯଥାକାମୀ(ନ୍)**—ସଂ. ବଣ. ପୁଂ.—( ଯଥା+କାମ+ଇନ୍; କ୍ଷ ଧାତୁ Jathā kāmī(n) +ଇନ୍ )—ଯଥେଚ୍ଛାଗାମୀ; ସ୍ୱେଚ୍ଛାଗାମୀ— ଯଥା କାମିନୀ, } ଯଥାକାରିଣୀ } —ସ୍ତ୍ରୀ Arbitrary; wilful; following one's free will.

**ଯଥାକାଳ**—ସଂ. କ୍ରି. ବଣ.—(ଯଥା+କାଳ, ଅବ୍ୟୟୀଭାବ) ଯଥା—
**Jathā kāḻa** ସମୟରେ; ଉପଯୁକ୍ତ ସମୟରେ; ନିର୍ଦ୍ଦିଷ୍ଟ ସମୟରେ—In due course of time; at the proper time. ସଂ. ବ—ଉପଯୁକ୍ତ ସମୟ—Proper time.

**ଯଥା କାଳେ**—ଦେ. କ୍ରି. ବଣ—ଯଥା କାଳ (ଦେଖ)
**Jathā kāḻe** Jathā kāḻa (See)
(ଯଥା କାଳରେ—ଅନ୍ୟରୂପ)

**ଯଥାକୁଳେ ଜନ୍ମ ତଥା ଗରିଷ୍ଠଃ**—ସଂ. ପ୍ରବଚନ, ଶ୍ଳୋକାଂଶ)—ଯେ ଯେଉଁ
**Jathā kuḻe janma tathā garishṭhah** ପର (ଉଚ୍ଚ) କୁଳରେ ଜନ୍ମ ହୁଏ, ସେ ସେହିପର ଗରିଷ୍ଠ ବା ମହାନ୍ ହୁଏ—A man is as noble as the family in which he is born

**ଯଥା କୃତ**—ସଂ. କ୍ରି. ବଣ—ସ୍ୱୀକୃତ ହୋଇଥିବା ଅନୁସାରେ—
**Jathā kruta** As agreed upon (Apte)
ସଂ. ବଣ—ସ୍ୱାଭ ଅନୁସାରେ କରା ଯାଇଥିବା—Done according to rule or custom; customary (Apte).

**ଯଥା କ୍ରମ**—ସଂ.କ୍ରି.ବଣ. (ଅବ୍ୟୟୀଭାବ ସମାସ, କ୍ରମକୁ ଅତିକ୍ରମ ନ କରି)-
**Jathā krama** କ୍ରମ ଅନୁସାରେ, କ୍ରମାନୁସାରେ; କ୍ରମାନୁରୂପେ—In proper seqence; respectively; successively; in regular order.

**ଯଥା କ୍ରମେ**—ଦେ. କ୍ରି ବଣ. (ସଂ. ଯଥାକ୍ରମ)—ଯଥାକ୍ରମ ( ଦେଖ )
**Jathā krame** Jathā krama (See)
यथाक्रमे क्रमानुसारे

**ଯଥା କ୍ଷମ**—ସଂ. କ୍ରି. ବଣ (ଅବ୍ୟୟୀଭାବ)—୧ । ଶକ୍ତି ଅନୁସାରେ—
**Jathā kshama** 1. According to one's power or capacity. ୨ । ଯେତେ ଦୂର ସମ୍ଭବ—2. As far as possible.

**ଯଥା ଗତ**—ସଂ. କ୍ରି. ବଣ. (ଅବ୍ୟୟୀଭାବ ସମାସ; ଯଥା+ଅଗତ)—
**Jathā gata** ୧ । ଯେଉଁ ରୂପେ ଉପସ୍ଥିତ ବା ଅଗତ—1. As it came, ୨ । (ଯଥା+ଗତ) ଯେଉଁ ରୂପେ ଗତ ବା ପ୍ରସ୍ଥିତ—2. As it went. ୩ । ଯେଉଁ ରୂପେ ଅ ଗତ—3. As it passed. ୪ । (ଯଥା+ଅଗତ) ଯେଉଁ ବାଟେ ଅସିଥିଲା ସେହି ବାଟେ—4. In the same way as one had come. ସଂ. ବଣ—ନିର୍ବୋଧ; ମୂର୍ଖ—Foolish; stupid (Apte)

**ଯଥାଗମ**—ସଂ. କ୍ରି. ବଣ. (ଅବ୍ୟୟୀ ଭାବ; ଯଥା+ଆଗମ)—ଆଗମ ବା
**Jathāgama** ପାରମ୍ପରିକ ସ୍ୱାଭ ବା କୁଳମର୍ଯ୍ୟାଦା ଅନୁସାରେ—According to tradition; as handed down from generation to generation (Apte).

**ଯଥାଚାର**—ସଂ. କ୍ରି. ବଣ ( ଅବ୍ୟୟୀଭାବ; ଯଥା+ଆଚାର )—ଆଚାର
**Jathāchāra** ବା ବିଧି ଅନୁସାରେ—As customary; as usual (Apte).

**ଯଥା ଜାତ**—ସଂ. ବଣ. ( ଯଥା=ଯେପରି+ଜାତ=ଉତ୍ପନ୍ନ )—
**Jathā jāta** ୧ । ଅସଭ୍ୟ; ବର୍ବର—1. Barbarian; uncivilised. ୨ । ବନ୍ୟ—2. Wild. ୩ । ନୀଚ; ନିକୃଷ୍ଟ; ହୀନ—3. Inferior; low; mean. ୪ ମୂର୍ଖ—4. Ignorant. ୫ । ନିର୍ବୋଧ—5. Foolish; stupid.

**ଯଥା ଜାତି**—ସଂ.କ୍ରି. ବଣ—ଜାତି ବା ବର୍ଣ୍ଣ ଅନୁସାରେ—According to the caste or sect.
**Jathā jāti**

**ଯଥା ଜ୍ଞାନ**—ସଂ. କ୍ରି. ବଣ. ( ଅବ୍ୟୟୀଭାବ )—ଜ୍ଞାନମତେ; ବୋଧା-
**Jathā jnāna** ନୁସାରେ—To the extent of one's knowledge; to the best of one's judgment or knowledge

**ଯଥା ଜ୍ୟେଷ୍ଠ**—ସଂ. କ୍ରି. ବଣ. ( ଅବ୍ୟୟୀଭାବ )—୧ । ଜ୍ୟେଷ୍ଠତା ବ-
**Jathā jyeshṭha** ୟସର ଅଧିକ୍ୟ ଅନୁସାରେ—1. According to seniority (Apte). ୨ । ପଦଗ୍ନ ବା ମର୍ଯ୍ୟାଦା ଅନୁସାରେ—2. According to rank (Apte).

**ଯଥା ତଥ**—ସଂ. ବ—୧ । ପୁରାବୃତ୍ତ; ପ୍ରାଚୀନ ଇତିହାସ—1. An-
**Jathā tatha** cient history. ୨ । କୌଣସି ବିଷୟର ସମଗ୍ର ପ୍ରକୃତ ବିବରଣ—2. A narrative or particulars or details of any thing; a detailed or minute account. ବଣ—ଯଥାର୍ଥ; ପ୍ରକୃତ—Actual; true, exact; accurate. କ୍ରି. ବଣ—ଯେଉଁପରି ଘଟିଥିଲା; ସେହିପରି—1. As it happened; exactly; precisely ୨ । ଉଚିତ ରୂପେ—2. Properly; fitly. ଦେ. କ୍ରି. ବଣ. (ସଂ. ଯଥା ତଥା)—ଯେନକେନ ପ୍ରକାରେ—Anyhow.

**ଯଥାତଥା**—ସଂ. କ୍ରି. ବଣ.—୧ । ଯେଉଁଠାରେ ଇଚ୍ଛା ସେଠାରେ
**Jathā tathā** 1 Wheresoever, anywhere. ୨ । ସ୍ଥାନାସ୍ଥାନ ବିଚାର ନ କରି—2. Without the least consideration of the proper place or situation; irrespective of the place. ୩ । (ଅପେକ୍ଷିକ ଶବ୍ଦ ଦ୍ୱୟରୂପେ ବାକ୍ୟରେ ପ୍ରଯୁକ୍ତ,—ମୁଁ ଯଥା ଶୁଣିଲି ତଥା ଲେଖିଲି) ଯେଉଁପରି—ସେହିପରି—3. As×× so. ଦେ. କ୍ରି. ବଣ—ଯେ କୌଣସି ପ୍ରକାରେ—Any how, (ଯଥା—ବଇବଦାକ ଯଥାତଥା ହୋଇଗଲା ।)

**ଯଥା ତୃପ୍ତି**—ସଂ. କ୍ରି. ବଣ (ଅବ୍ୟୟୀଭାବ)—ମନବୋଧ ହେବା ଅନୁ-
**Jathā trupti** ସାରେ; ନିଜର ସନ୍ତୋଷ ଜନ୍ମିବା ପ୍ରକାରେ—To the heart's content (Apte).

**ଯଥା ଦର୍ଶନ**—ସଂ. କ୍ରି. ବଣ (ଅବ୍ୟୟୀଭାବ)—ଦେଖିବା ପ୍ରକାରେ—
**Jathā darsana** According to observation; as one had observed or seen a thing.

**ଯଥା ଦିକ୍(ଶ)**—ସଂ. କ୍ରି. ବିଣ. (ଅବ୍ୟୟୀଭାବ)—ସବୁ ଦିଗରେ; ସବୁ
Jathā dik(śa) ଅଡ଼େ—In all directions (Apte).

**ଯଥାଦିଷ୍ଟ**—ସଂ. ବି ଓ କ୍ରି. ବିଣ ( ଯଥା+ଆଦିଷ୍ଟ )—ଯେଉଁ ପରି
Jathādishṭa ଆଦେଶ ପ୍ରାପ୍ତ ହୋଇଥିଲା ସେହି ପ୍ରକାରେ; ଆଦେଶ ଅନୁସାରେ—As ordered; as directed; conforming to the orders received

**ଯଥା ଦୃଷ୍ଟ**—ସଂ. କ୍ରି. ବିଣ- ଦେଖିଥିବା ଅନୁସାରେ—
Jathā dṛushṭa According to what one saw.

**ଯଥା ଦୃଷ୍ଟଂ ତଥା କଥିତମ୍**—ସଂ. ବାକ୍ୟାଂଶ—ଯାହା ଦେଖିଥିଲି ତାହା
Jathā dṛushṭaṁ tathā kathitaṁ କହିଲି—
I have said what I saw.

**ଯଥା ଦୃଷ୍ଟଂ ତଥା ଲିଖିତଂ**—ସଂ. ବାକ୍ୟାଂଶ—ଯାହା ଦେଖିଥିଲି ତାହା
Jathā dṛushṭaṁ tathā likhitaṁ ଲେଖିଲି—
I write what I saw.

**ଯଥା ଦେହେ ତଥା ଦେବେ**—ସଂ. ବାକ୍ୟାଂଶ—ମନୁଷ୍ୟର ଦେହରେ
Jathā dehe tathā debe ଯେପରି, ଦେବତାଙ୍କଠାରେ ମଧ୍ୟ ସେହିପରି; ମନୁଷ୍ୟ ଈଶ୍ୱରଙ୍କ ବା ଦେବତାଙ୍କଠାରେ ଆପଣାର ଦେହ ଓ ଅନୁଭୂତି ଅନୁସାରେ ଗୁଣ ଆଦି କଳ୍ପନା କରିବାର ପ୍ରଣାଳୀ—Anthropomorphism; anthropometry; ascribing human form and attributes to the Deity.

**ଯଥା ନିୟମ**—ସଂ. ବିଣ ଓ କ୍ରି. ବିଣ—ଯଥା ବିଧି ( ଦେଖ )
Jathā niyama Jathā bidhi ( See )

**ଯଥା ନିର୍ଦ୍ଦିଷ୍ଟ**—ସଂ. କ୍ରି. ବିଣ ( ଅବ୍ୟୟୀଭାବ )—ପୂର୍ବରୁ ନିର୍ଦ୍ଦିଷ୍ଟ ବା
Jathā nirddishṭa ନିର୍ଦ୍ଧାରିତ ହେବା ପ୍ରକାରେ—1. As prescribed or laid down. ୨ । ପୂର୍ବୋକ୍ତ ପ୍ରକାରେ—2. As mentioned or specified before. ସଂ. ବିଣ—ପୂର୍ବ ନିର୍ଦ୍ଦିଷ୍ଟ—Prescribed before; preordained

**ଯଥାନୁପୂର୍ବ(ର୍ବ୍ୟ)**—ସଂ. କ୍ରି. ବିଣ ( ଯଥା+ଅନୁପୂର୍ବ;+ଯ )—ଯଥା-
Jathānupūrba(rbya) କ୍ରମରେ—Successively; in regular order or succession (Apte).

**ଯଥାନୁଭୂତ**—ସଂ. କ୍ରି. ବିଣ—୧ । ଅନୁଭବ ଅନୁସାରେ—1. Accor-
Jathānubhūta ding to experience. ୨ । ପୂର୍ବର ଅନୁଭୂତ ଭାବ—2. By previous experience.

**ଯଥାନୁରୂପ**—ସଂ. କ୍ରି. ବିଣ—ସମ୍ପୂର୍ଣ୍ଣ ମେଳ ହେବା ପ୍ରକାରେ—In ex-
Jathānurūpa act conformity; exactly (Apte).

**ଯଥା ନ୍ୟାୟ**—ସଂ. ବିଣ. (ଅବ୍ୟୟୀଭାବ )—୧ । ଯଥାର୍ଥ—1. True
Jathā nyāya right. ୨ । ନ୍ୟାୟସଙ୍ଗତ—2. Just; proper. କ୍ରି. ବିଣ—ନ୍ୟାୟମାର୍ଗାନୁସାରେ—According to justice; justly; properly.

**ଯଥାପୁର**—ସଂ କ୍ରି. ବିଣ—ପୂର୍ବପରି—
Jathāpura As before (Apte).

**ଯଥା ପୂର୍ବ**—ସଂ. କ୍ରି. ବିଣ—୧ । ପୂର୍ବପରି; ପୂର୍ବବତ୍—1. As of
Jathā pūrba old. ୨ । ଆଗ ପରି—2. As before. ୩ । ପୂର୍ବେ ଯେପରି ଘଟିଥିଲା ସେହିପରି—3. As it took place in the past. ୪ । ଯଥା କ୍ରମେ—4. In due order or succession (Apte). ସଂ. ବିଣ—ପୂର୍ବେ ବା ଆଗେ ଥିବା; ପୂର୍ବବର୍ତ୍ତୀ—Former (Apte).

**ଯଥା ପ୍ରାର୍ଥିତ**—ସଂ. କ୍ରି. ବିଣ—ପ୍ରାର୍ଥନା ଅନୁସାରେ—As reques-
Jathā prārthita ted; as prayed for.

**ଯଥାବକାଶ**—ସଂ. କ୍ରି. ବିଣ—୧ । ସମ୍ଭାଇବାକୁ ସ୍ଥାନ ଥିବା ଅନୁସାରେ-
Jathābakāśa 1. According to room or space (ଯଥାବସର—ଅନ୍ୟରୂପ) available (Apte). ୨ । ଦେଶକାଳ ପାତ୍ରର ସୁଯୋଗ ଅନୁସାରେ—2. According to occasion; as occasion may occur (Apte). ୩ । ଆପଣାର ଅବକାଶ ବା ଫୁରୁସତ ଅନୁସାରେ—3. According to leisure (Apte). ୪ । ଉପଯୁକ୍ତ ସ୍ଥାନରେ—4. In proper place (Apte).

**ଯଥାବତ୍**—ସଂ.କ୍ରି. ବିଣ ଓ ବିଣ (ଯଥା+ବତ୍)—୧ । ଯଥାର୍ଥରୂପେ—
Jathābat 1. Rightly; truly. ୨ । ଅବିକଳ—2. Correctly; accurately; exactly. ୩ । ଧାରାବାହିକରୂପେ; ଯେଉଁପରି ଘଟିଥିଲା ସେହି ଅନୁସାରେ—3. In due order or succession, exactly as events happened. ୪ । ସଙ୍ଗତରୂପେ—4. Properly; duly. ୫ । ନିୟମାନୁସାରେ—5 As enjoined by rules (Apte).

**ଯଥାବନ୍ତ**—ଦେ. ବିଣ. ଓ କ୍ରି ବିଣ (ସ.ଯଥାବତ୍)—ଯଥାବତ୍ (ଦେଖ)
Jathābanta Jathābat (See). (ଉ—ଏବେ ଯଥାବନ୍ତ ଯଥାବତ୍, ଠିକ୍, **यथावत** କହି ସେ ଚରିତ । ଶୁଣିବାକୁ ଆମ୍ଭର ହେଉଅଛି ଚିତ୍ତ—କୃଷ୍ଣସିଂହ ମହାଭାରତ ଆଦି ।

**ଯଥାବଳ**—ସଂ. କ୍ରି. ବିଣ. (ଅବ୍ୟୟୀଭାବ)—୧ । ନିଜର ବଳକୁ ଗୃହିଁ—
Jathābaḷa 1. To the best of one's strength or capacity. ୨ । ନିଜର କ୍ଷମତା ଅନୁସାରେ—2. To the best of one's power.

**ଯଥାବସ୍ତୁ**—ସଂ. କ୍ରି. ବିଣ (ଅବ୍ୟୟୀଭାବ)—୧ । ଯଥାର୍ଥରୂପେ—
Jathābastu 1. Exactly; accurately. ୨ । ଘଟନା ଅନୁସାରେ—2. As the fact stands (Apte).

**ଯଥାବସ୍ଥ**—ସଂ. କ୍ରି. ବିଣ—(ଅବ୍ୟୟୀଭାବ;ଯଥା+ଅବସ୍ଥା)—ଅବସ୍ଥାର
Jathābastha ଅନୁରୂପେ—According to condition or circumstances.

**ଯଥାବସ୍ଥିତ**—ସଂ.ବିଣ ଓ କ୍ରି.ବିଣ—୧ । ଯେଉଁପରି ଥିଲା ସେହିପରି—
Jathābasthita 1. Exactly as it had been. ୨ । ସ୍ଥିର; ଅଚଳ (ହି. ଶ)—2. Stable; immuteable. ୩ । ସତ୍ୟ, ଠିକ୍ (ହି. ଶ)—3. Right; exact

**ଯଥାବାସ**—ସଂ. କ୍ରି. ବିଣ (ଅବ୍ୟୟୀଭାବ, ଯଥା + ଆବାସ)—ଯେଝା
**Jathābāsa** ଘରକୁ ସେ—Each to his own dwelling (Apte).

**ଯଥାବିଧ**—ସଂ. ବିଣ—ଯେଉଁ ପ୍ରକାରର—Of which kind or
**Jathābidha** (ଯଥାବିଧା—ସ୍ତ୍ରୀ) sort (Apte).

**ଯଥାବିଧି**—ସଂ. କ୍ରି. ବିଣ (ଅବ୍ୟୟୀଭାବ, ବିଧିକୁ ଅତିକ୍ରମ ନ କରି)—
**Jathābidhi** ୧ । ନିୟମାନୁଯାୟୀ; ବିଧିପୂର୍ବକ—1 According to rules; duly; conformably to the precepts. ୨ । ଆଇନ୍ ଅନୁସାରେ—2. Legally

**ଯଥାବିଭବ**—ସଂ.କ୍ରି. ବିଣ—ନିଜର ଆୟ ବା ଧନସାମର୍ଥ୍ୟ ଅନୁସାରେ—
**Jathābibhaba** According to one's income or means (Apte).

**ଯଥାବିହିତ**—ସଂ. କ୍ରି. ବିଣ—ଯଥୋଚିତ ଭାବରେ—As is proper;
**Jathābihita** with due propriety. ବିଣ—ଯଥୋଚିତ—Proper.

**ଯଥାବୃତ୍ତ**—ସଂ. କ୍ରି. ବିଣ—ଯେପରି ଘଟିଥିଲା ସେହିପରି—Conform-
**Jathābrutta** ably to what actually took place, as it happened or as it was done. ସଂ. ବି—୧ । ପ୍ରକୃତରେ ଘଟିଥିବା ବିଷୟମାନ—1. The actual facts; the circumstances or details of an event (Apte). ୨ । ପୂର୍ବେ ଘଟିଥିବା ଘଟଣା—2. A former event (Apte).

**ଯଥା ଭାଗ**—ସଂ. ବିଣ. ଓ କ୍ରି. ବିଣ—୧ । ଯଥୋଚିତ—
**Jathā bhāga** 1. Proper; properly. ୨ । ଭାଗ ବା ହିସା ଅନୁସାରେ—2. Proportionate; according to the shares.

**ଯଥା ଭାବ**—ସଂ. ବି—ଭାଗ୍ୟ; କପାଳ—
**Jathā bhāba** Destiny (Apte).

**ଯଥାଭିମତ**—ସଂ. କ୍ରି. ବିଣ—ଆପଣା ଇଚ୍ଛାନୁସାରେ—Agreeably
**Jathābhimata** to one's wish or desire.

ଯଥାଭିପ୍ରେତ, ଯଥାଭିଲଷିତ, ଯଥାଭିଷ୍ଟ }—ଅନ୍ୟରୂପ ସଂ. ବିଣ—ଅଭିଳାଷ ଅନୁସାରେ ଘଟିବା — Happening as intended or desired (Apte).

**ଯଥାଭିରୁଚି**—ସଂ. କ୍ରି. ବିଣ—ଆପଣାର ଅଭିରୁଚି ଅନୁସାରେ—
**Jathābhiruchi** According to one's taste or liking.

**ଯଥାଭିରୁଚିତ**—ସଂ. ବିଣ—(ଅବ୍ୟୟୀଭାବ; ଯଥା+ଅଭିରୁଚିତ)—
**Jathābhiruchita** ମନୋଜ୍ଞ—Pleasant; agreeable (Apte).

**ଯଥା ମତ**—ଦେ. ଅ.—ଯେଉଁପରି ଘଟିଥିଲା ସେହି ପ୍ରକାରେ—
**Jathāmata** Exactly as it happened.
[ ଉ—ପୂର୍ବ ଜନ୍ମର ଯଥାମତ, ମୋ ଆଗେ କହିବ ସମସ୍ତ । ଗ୍ରାଠୀ. ଯଶୋବନ୍ତ—ପ୍ରେମଭକ୍ତି ଗୀତା ]

**ଯଥା ମତି**—ସଂ. କ୍ରି. ବିଣ.—(ଅବ୍ୟୟୀଭାବ ସମାସ)—ଆପଣାର ଜ୍ଞାନ
**Jathā mati** ବା ବୁଦ୍ଧି ଅନୁସାରେ—According to one's wisdom, knowledge or senses
[ଉ—ପୁଣି ହୋଇଲେ ଯଥାମତି, ଅଳ୍ପଲେ କୃଷ୍ଣଙ୍କୁ ଶୋଇଛନ୍ତି ଭୂପତି ପ୍ରେମପୀୟୂଷ ।]

**ଯଥାମୁଖୀନ**—ସଂ. ବିଣ. ପୁଂ—(ଅମୁକର) ମୁହଁକୁ ସିଧାରେ ଚାହିଁଥିବା—
**Jathāmukhīna** Looking straight at
(ଯଥାମୁଖୀନା—ସ୍ତ୍ରୀ) (Apte).

**ଯଥାଯଥ**—ସଂ. ବିଣ—(ଯଥା+ଯଥା, ଅବ୍ୟୟୀଭାବ)—୧ । ଯଥା-
**JathāJatha** ଯୋଗ୍ୟ—1 As is fit; suitable. କ୍ରି. ବିଣ—୧ । ପୂର୍ବାନୁଯାୟୀ—1. As of old. ୨ । ଯେପରି ଘଟି ଥିଲା ସେହିପରି—2. As it happened. ୩ । ପ୍ରକୃତରେ ଯେଉଁପରି ଅଛି ସେହିପରି—3. As it is; in the actual order or form. ୪ । ସମୁଚିତ ରୂପେ—4. Fitly; properly (Apte). ୫ । ଯଥାକ୍ରମେ—5. Respectively; in regular order (Apte).

**ଯଥା ଯଥା**—ସଂ. କ୍ରି. ବିଣ.-(ଯଥା+ଯଥା) -୧ । ଯେଉଁ ଯେଉଁ ଠାରେ-
**Jathā Jathā** 1. At whatever places. ୨ । ଭିନ୍ନ ଭିନ୍ନ ସ୍ଥାନରେ—2. At different places. ୩ । ଯେଉଁ ଯେଉଁ ପ୍ରକାରେ—3. In various ways or manners.

**ଯଥାଯୋଗ୍ୟ**—ସଂ. ବିଣ.—ଯଥୋପଯୁକ୍ତ; ଯାହାକୁ ଯାହା ଉପଯୁକ୍ତ—
**JathāJogya** Proper; suitable
(ଯଥାଯୁକ୍ତ; ଯଥାଯୋଗ - ଅନ୍ୟରୂପ) to each.
କ୍ରି. ବିଣ—ଯାହା ଯାହାକୁ ଉପଯୁକ୍ତ ସେହି ଭାବରେ—As is fit or suitable to each.

**ଯଥାରଥ**—ଗ୍ରା. ବିଣ. ଓ କ୍ରି. ବିଣ.—(ସଂ. ଯଥାର୍ଥ)—ଯଥାର୍ଥ (ଦେଖ)
**Jathāratha** ଯଥାର୍ଥ Jathāratha (See)

**ଯଥାରୀତି**—ସଂ. ବିଣ. ଓ କ୍ରି. ବିଣ—(ଅବ୍ୟୟୀଭାବ ସମାସ)—ରୀତି
**Jathā rīti** ଅନୁସାରେ—In the customary manner.

**ଯଥା ରୁଚି**—ସଂ. ବିଣ ଓ କ୍ରି. ବିଣ—(ଅବ୍ୟୟୀଭାବ)—ସ୍ୱଇଚ୍ଛାମତେ;
**Jathā ruchi** ଆପଣାର ରୁଚି ଅନୁସାରେ—According to one's taste or liking.

**ଯଥା ରୂପ**—ସଂ. କ୍ରି. ବିଣ.—(ଅବ୍ୟୟୀଭାବ)—୧ । ରୂପ ବା ଆକାର
**Jathā rūpa** ଅନୁସାରେ—1. According to form or appearance or shape (Apte). ୨ । ଉଚିତ ରୂପେ—2. Duly; properly; fitly (Apte).

**ଯଥାର୍ଥ**—ସଂ. ବିଣ.—(ଯଥାଭୂତ ଅର୍ଥ=ଯଥାର୍ଥ; ଯଥା=ଯଥା-
**Jathārtha** ଭୂତ+ଅର୍ଥ=ସତ୍ୟ ସହିଁରେ; ବହୁବ୍ରୀହି) ୧ । ବାସ୍ତବିକ; ପ୍ରକୃତ; ସତ୍ୟ—1 True; actual; real. ୨ । ନିଶ୍ଚିତ—2. Certain. ୩ । (ସ୍ୱରୂପକୁ ଅତିକ୍ରମ ନ କରି; ଅବ୍ୟୟୀଭାବ) ଉପଯୁକ୍ତ—3. Proper; appropriate. ୪ । ଯୋଗ୍ୟ—

୪ Fit. ୫ । ପ୍ରକୃତ ଅର୍ଥ ଅନୁସାରେ—5. Conformable to the true meaning or sense. କ୍ରି. ବଣ.—୧ । ପ୍ରକୃତରେ—1. Truly; actually. ୨ । ସତ୍ୟ ସତ୍ୟ—2. Rightly; veritably. ୩ । ଉପଯୁକ୍ତରୂପେ—3. Fitly; suitably ୪ । ଉଚିତରୂପେ—4. Properly.

ଯଥାର୍ଥତା—ସଂ.ବ.—(ଯଥାର୍ଥ+ଭାବ. ତା)—ଯାଥାର୍ଥ୍ୟ; ବାସ୍ତବକତା—
Jatharthata Actuality; reality.

ଯଥାର୍ଥତଃ—ସଂ. କ୍ରି. ବଣ.—୧ । ପ୍ରକୃତରେ—1. Actually
Jatharthatah (Apte). ୨ । ବସ୍ତୁତଃ—2. Virtually. (ଯଥାର୍ଥରେ—ଦେଶଜରୂପ) ୩ । ନ୍ୟାଯ୍ୟତଃ—3. Justly.

ଯଥାର୍ଥ ନାମା—ସଂ. ବଣ. ପୁଂ ଓ ସ୍ତ୍ରୀ—(ବହୁବ୍ରୀହି; ଯଥାର୍ଥ+ନାମନ୍,
Jathartha nama ୧ମା. ୧ବ.)—ଯେଉଁ ବ୍ୟକ୍ତିର ନାମର ଅର୍ଥ ସଙ୍ଗେ କର୍ମର ମେଳ ଥାଏ—One whose name in true to its meaning; one whose deeds are according to his name (Apte).

ଯଥାର୍ଥ ବକ୍ତା—ସ. ବଣ. ପୁଂ—ସତ୍ୟବାଦୀ (ବ୍ୟକ୍ତି)—Truthful
Jathartha bakta (person); speaking truth; (ଯଥାର୍ଥବାଦୀ—ଅନ୍ୟରୂପ) speaking plain truth; (ଯଥାର୍ଥ ବକ୍ତ୍ରୀ, ଯଥାର୍ଥବାଦିନୀ—ସ୍ତ୍ରୀ) plainspoken.
ଯଥାର୍ଥ ବକ୍ତୃତ୍ୱ, ଯଥାର୍ଥବାଦିତା }
ଯଥାର୍ଥ ବକ୍ତୃତା, ଯଥାର୍ଥବାଦ } —ବିଶେଷ୍ୟ ସ. ବ. ପୁଂ—ସତ୍ୟବାଦୀ ବ୍ୟକ୍ତି—A truthful person.

ଯଥାର୍ଥ(ର୍ହ) ବର୍ଣ୍ଣ—ସଂ ବ. ପୁଂ—ଗୁପ୍ତଚର—
Jathartha(rha) barnna A spy (Apte).

ଯଥାର୍ଥ ବିଦ୍ୟା—ସଂ. ବ.—ଦର୍ଶନ ଶାସ୍ତ୍ର; ଅଧ୍ୟାତ୍ମବିଦ୍ୟା—
Jathartha bidya Philosophy; theology.

ଯଥାର୍ଥ ବ୍ୟୟୀ—ସ. ବଣ. ପୁଂ.—[ଯଥାର୍ଥ+ବ୍ୟୟୀ (ବ୍ୟୟ+ଇନ୍]
Jathartha byayi ମିତବ୍ୟୟୀ—Frugal; economical. (ଯଥାର୍ଥବ୍ୟୟିନୀ—ସ୍ତ୍ରୀ)

ଯଥା ଲଭ—ଦେ. ବ.—ଯତ୍‌କିଞ୍ଚିତ୍ ବା ଅଳ୍ପ ସାମାନ୍ୟ ଲାଭ—
Jatha labha A small amount of profit
ଯଥାଲାଭ ସଂ. କ୍ରି. ବଣ.—ଲାଭ ଅନୁସାରେ—
According to the profit.

ଯଥାଶକ୍ତି—ସଂ. କ୍ରି. ବଣ. ଓ ବଣ.—(ଶକ୍ତିକୁ ଅତିକ୍ରମ ନ କରି;
Jathasakti ଅବ୍ୟୟୀଭାବ)—ସାମର୍ଥ୍ୟାନୁସାରେ—According to one's ability; to the best of one's ability.

ଯଥାଶାସ୍ତ୍ର—ସଂ. ବଣ—( ଅବ୍ୟୟୀଭାବ ) ୧ । ଶାସ୍ତ୍ରସମ୍ମତ—
Jatha sastra 1. Conformable to the scripture. ୨ । ଆଇନସଙ୍ଗତ—2. Legal. କ୍ରି. ବଣ.—୧ । ଶାସ୍ତ୍ରାନୁସାରେ—1. Conformably to the Scriptures. ୨। ଆଇନ୍ ଅନୁସାରେ—2. As the law ordains; legally.

ଯଥା ଶୀଘ୍ର—ସଂ. କ୍ରି. ବଣ—( ଅବ୍ୟୟୀଭାବ )—ଯେତେ ଶୀଘ୍ର
Jatha sighra ହେବା ସମ୍ଭବ ସେତେ ଶୀଘ୍ର—As quickly as possible (Apte)

ଯଥା ଶୀଳ—ସଂ. କ୍ରି. ବଣ—୧ । ଶୀଳ ବା ସ୍ୱଭାବ ଅନୁସାରେ—1. According to one's nature ୨। ମିଜାଜ ଅନୁସାରେ
Jathasila 2. According to one's temper (Apte).

ଯଥାଶ୍ରୁତ—ସ. କ୍ରି. ବଣ—ଶୁଣା କଥା ଅନୁସାରେ (କହିବା ବା
Jatha sruta ଲେଖିବା); ଯେଉଁପରି ଶୁଣିଥିଲି ସେହିପରି—According to what one has heard, according to the report.

ଯଥାଶ୍ରୁତଂ ତଥା କଥିତଂ—(ସ. ବାକ୍ୟାଂଶ)—ଯାହା ଶୁଣିଥିଲି ତାହା
Jathasrutam tatha kathitam କହିଲି—I have said what I heard.

ଯଥାଶ୍ରୁତଂ ତଥା ଲିଖିତଂ—(ସ. ବାକ୍ୟାଂଶ)—ଯାହା ଶୁଣିଥିଲି ତାହା
Jatha srutam tatha likitam ଲେଖିଲି—I have written what I heard.

ଯଥାଶ୍ରେଷ୍ଠ—ସ. କ୍ରି. ବଣ—ଶ୍ରେଷ୍ଠତା ଅନୁସାରେ—In order of
Jathasreshtha precedence or merit (Apte).

ଯଥାସଂଖ୍ୟ—ସ. ବ (ଅବ୍ୟୟୀଭାବ; ଯଥା+ସଂଖ୍ୟା)—ବାକ୍ୟାଳଙ୍କାର
Jathasamkhya ବିଶେଷ—A figure of speech(Apte).

ଯଥା ସମୟ—ସଂ. କ୍ରି. ବଣ (ଅବ୍ୟୟୀଭାବ)—୧। ଉପଯୁକ୍ତ ସମୟରେ—
Jatha samaya 1. At the proper time. ୨ । ସ୍ୱୀକୃତ
ଯଥା ସମୟେ }
ଯଥା ସମୟରେ } —ଦେ. ରୂପ ବା ସାବ୍ୟସ୍ତ ଅନୁସାରେ—2. According to agreement or established usage (Apte).

ଯଥା ସମ୍ଭବ—ସ. କ୍ରି. ବଣ (ଅବ୍ୟୟୀଭାବ, ଯଥା+ସମ୍ଭବ)—ଯେତେ
Jatha sambhaba ଦୂର ସମ୍ଭବପର—As far as it is conceivably possible; as far as circumstances will permit. ସ. ବଣ—ସମ୍ଭବପର—Possible.

ଯଥା ସମ୍ଭାବିତ—ସ. ବଣ (ଅବ୍ୟୟୀଭାବ; ଯଥା+ସମ୍ଭାବିତ)—ସମୁଚିତ;
Jatha sambhabita ଉପଯୁକ୍ତ—Suitable; appropriate (Apte).

ଯଥାସର୍ବସ୍ୱ—ସଂ. ବ—ସମସ୍ତ ବାସ୍ତୁ ଧନ ସମ୍ପତ୍ତି; ଯାହା କିଛି ଥିଲା ସବୁ—
Jatha sarbaswa Everything or property whatever.

ଯଥାସାଧ୍ୟ—ସଂ. ବଣ ଓ କ୍ରି. ବଣ—ଯଥାଶକ୍ତି ( ଦେଖ )
Jatha sadhya Jathasakti (See).

ଯଥାସୁଖ—ସଂ. କ୍ରି. ବଣ (ଅବ୍ୟୟୀଭାବ)—୧ । ସୁଖପୂର୍ବକ; ଖୁସିରେ—
Jatha sukha 1. Happily; pleasantly. ୨ । ମନ ଖୁସିରେ; ଆପଣା ଇଚ୍ଛା ଅନୁସାରେ—2. At will; at pleasure (Apte). ୩ । ଆପଣାର ସ୍ୱାଚ୍ଛନ୍ଦ୍ୟ ଅନୁସାରେ—୪. Comfortably.

**ଯଥାସ୍ଥାନ**—ସଂ. ବି. (ଅବ୍ୟୟୀଭାବ)—ଯାହାର ଯେଉଁ ସ୍ଥାନ ଉପଯୁକ୍ତ, **Jathā sthāna** ତାହାର ସେହି ସ୍ଥାନ; ଉପଯୁକ୍ତ ସ୍ଥାନ—Proper place. ସଂ. କ୍ରି. ବଣ—୧ । ଉପଯୁକ୍ତ ସ୍ଥାନରେ—1. In the proper place. ୨ । ତତ୍କ୍ଷଣାତ୍—2. Instantly (Apte). ୩ । ପଦ ମର୍ଯ୍ୟାଦା ଅନୁସାରେ—3. According to rank (Apte). (ଯଥା ସ୍ଥାନରେ—ଦେ. ରୂପ)

**ଯଥାସ୍ଥାନାବସ୍ଥିତ**—ସଂ. ବଣ. (ଯଥାସ୍ଥାନ+ଅବସ୍ଥିତ)—ନିଜ ନିଜର **Jathāsthānābasthita** ଉପଯୁକ୍ତ ସ୍ଥାନରେ ଅବସ୍ଥାନ କରୁଥିବା—Situated at the respective proper places

**ଯଥାସ୍ଥିତ**—ସଂ. କ୍ରି. ବଣ (ଯଥା+ସ୍ଥିତ)—୧ । ଯେଉଁଠାରେ ଥିଲ **Jathā sthita** ସେହିଠାରେ; ପୂର୍ବ ସ୍ଥାନରେ—1. In status quo ante; as it had stood before. ୨ । ଯଥାର୍ଥରେ—2 Truly. ୩ । ଘଟନାନୁସାରେ—3. According to circumstances. ବଣ. ୧ । ପ୍ରକୃତ; ସତ୍ୟ—1. True; right. ୨ । ଉପଯୁକ୍ତ—2. Proper; fit (Apte).

**ଯଥାସ୍ୱ**—ସଂ. କ୍ରି. ବଣ—ଯେଯାହାକୁ ଯେ—Each his own; res- **Jathāswa** pectively.

**ଯଥେକ୍ଷିତ**—ସଂ. କ୍ରି. ବଣ (ଅବ୍ୟୟୀଭାବ; ଯଥା+ଈକ୍ଷିତ)—ନିଜେ **Jathekshita** ଦେଖିଥିବା ପ୍ରକାରେ—As personally; seen.

**ଯଥେଚ୍ଛ**—ସଂ. କ୍ରି. ବଣ (ଯଥା+ଇଚ୍ଛା, ଅବ୍ୟୟୀଭାବ)—୧ । ସ୍ୱେଚ୍ଛା- **Jathechchha** କ୍ରମେ; ଇଚ୍ଛାନୁସାରେ—1. Arbitrarily; despotically, according to one's free will. ୨ । ମନବୋଧ ହେବା ପ୍ରକାରେ—2. To the heart's content. ସଂ. ବଣ—ସ୍ୱେଚ୍ଛାକ୍ରମେ ଅନୁଷ୍ଠିତ—Arbitrary; despotic. (ଯଥେଚ୍ଛା—ଦେଶଜରୂପ)

**ଯଥେଚ୍ଛାଚାର**—ସଂ. ବି. (ଯଥା+ଇଚ୍ଛା+ଆଚାର)—୧ । ସ୍ୱେଚ୍ଛାଚାର— **Jathechchhāchāra** 1 Arbitrary conduct ୨ । ଉଚ୍ଛୃଙ୍ଖଳତା—2. Despotism,

**ଯଥେଚ୍ଛାଚାରରାଜତ୍ୱ**—ସଂ. ବି (ଆଧୁନିକ)—ରାଜାଙ୍କର ଇଚ୍ଛାମତେ ପ୍ରଜା- **Jathechchhāchāra rājatwa** ଶାସନ—Despotic rule. (ଯଥେଚ୍ଛାଚାର ଶାସନ—ଅନ୍ୟରୂପ)

**ଯଥେଚ୍ଛାଚାର ଶାସନ ପ୍ରଣାଳୀ**—ସଂ. ବି. (ଆଧୁନିକ)—ରାଜାଙ୍କ ଇଚ୍ଛା **Jathechchhāchāra śasanapraṇālī** ମତେ ପ୍ରଜାଙ୍କୁ ଶାସନ କରିବା ରୀତି—Despotism; absolute monarchy.

**ଯଥେଚ୍ଛାଚାରୀ**—ସଂ. ବଣ. ପୁଂ (ଯଥେଚ୍ଛାଚାର+ଇନ୍)—ନିଜର **Jathechchhāchārī** ଇଚ୍ଛାମତେ କାର୍ଯ୍ୟକାରୀ—Acting without restraint; acting arbitrarily or despotically. [ଯଥେଚ୍ଛାଚାରିଣୀ (ସ୍ତ୍ରୀ)—ବିଶେଷ୍ୟ]

**ଯଥେଚ୍ଛାଚାରୀ ରାଜା**—ସଂ. ବି. ପୁଂ.—ଉଚ୍ଛୃଙ୍ଖଳ ରାଜା—A despot. **Jathechchhāchārī rājā**

**ଯଥେପ୍ସିତ**—ସଂ. ବଣ.—( ଯଥା+ଈପ୍ସିତ=ଅଭିଳଷିତ )—ବାଞ୍ଛାନୁ- **Jathepsita** ରୂପ; ବାଞ୍ଛାନୁସାରେ ସମ୍ଭବା; ବାଞ୍ଛାକଳିତ—Wished for; cherished; desired. ସଂ. କ୍ରି. ବଣ.—ଯଥେଚ୍ଛ (ଦେଖ)—Jathechchha (See)

**ଯଥେଷ୍ଟ**—ସଂ. ବଣ.—(ଯଥା+ଇଷ୍ଟ=ଅଭିଳଷିତ)—୧ । ବାଞ୍ଛାନୁରୂପ- **Jatheshṭa** 1. Wished for; desired. ୨ । ପ୍ରଚୁର; ଅନେକ—2. Enough, ample; sufficient. ସଂ. କ୍ରି. ବଣ—ଯଥେଚ୍ଛା ( ଦେଖ ) Jathechchhā (See)

**ଯଥେଷ୍ଟାଚରଣ**—ସଂ. ବି.—ଯଥେଚ୍ଛାଚାର (ଦେଖ) **Jetheshṭācharaṇa** Jāthechchhāchāra (See) (ଯଥେଷ୍ଟାଚାର—ଅନ୍ୟରୂପ)

**ଯଥେଷ୍ଟାଚାରୀ**—ସଂ. ବି—ପକ୍ଷୀ—Bird. **Jatheshṭāchārī** ସଂ.ବଣ.ପୁଂ—ଯଥେଚ୍ଛାଚାରୀ—Despotic

**ଯଥୋକ୍ତ**—ସଂ. ବଣ.—( ଯଥା+ଉକ୍ତ )—ଯେପରି କୁହାଯାଇଅଛି; **Jathokta** ପୂର୍ବୋକ୍ତ; ଉପର୍ଯ୍ୟୁକ୍ତ—As has been said a foresaid. (ଯଥୋଦିତ—ଅନ୍ୟରୂପ)

**ଯଥୋଚିତ**—ସଂ ବଣ.—(ଯଥା+ଉଚିତ)—ଯଥା ଯୋଗ୍ୟ; ଯଥା— **Jathochita** ବିହିତ—Proper; suitable. ସଂ. କ୍ରି. ବଣ—ଉଚିତରୂପେ—Duly; properly; suitably.

**ଯଥୋତ୍ତର**—ସଂ କ୍ରି. ବଣ.—(ଅବ୍ୟୟୀଭାବ; ଯଥା+ଉତ୍ତର)— **Jathottara** ଏକାଦିକ୍ରମେ—In regular order of succession; one after another (Apte).

**ଯଥୋଦ୍ଦିଷ୍ଟ**—ସଂ. ବଣ.—ପୂର୍ବ ବର୍ଣ୍ଣିତ; ପୂର୍ବ ସୂଚିତ— **Jathoddishta** Described before, indicated before. ସଂ. କ୍ରି. ବଣ.—ଯଥୋଦ୍ଦେଶ (ଦେଖ) Jathoddeśa (See)

**ଯଥୋଦ୍ଦେଶ**—ସଂ. କ୍ରି. ବଣ.—(ଅବ୍ୟୟୀଭାବ, ଯଥା+ଉଦ୍ଦେଶ)— **Jathoddeśa** ଯେଉଁପରି ବର୍ଣ୍ଣିତ ବା ସୂଚିତ ହୋଇଅଛି—As indicated or described.

**ଯଥୋପଦେଶ**—ସଂ. କ୍ରି. ବଣ.—(ଅବ୍ୟୟୀଭାବ, ଯଥା+ଉପଦେଶ) **Jathopadeśa** ଯେଉଁପରି ଉପଦେଶ ଦିଆ ଯାଇଅଛି—As advised or instructed. (ଯଥୋପଦିଷ୍ଟ—ବଣ)

**ଯଥୋପଯୁକ୍ତ**—ସଂ. ବଣ [ଯଥା+ଉପଯୁକ୍ତ]—ଯଥାଯୋଗ୍ୟ (ଦେଖ) **Jathopajukta** Jathājogya (See)

**ଯଥୋପଯୋଗ**—ସଂ. କ୍ରି. ବଣ (ଅବ୍ୟୟୀଭାବ; ଯଥା+ଉପଯୋଗ)— **Jathopajoga** ଆବଶ୍ୟକତା ଅନୁସାରେ—According to use or requirement (Apte).

**ଯଥୌଚିତ୍ୟ**—ସଂ. ବି—ଔଚିତ୍ୟ; ଉପଯୋଗିତା—Propriety, **Jathauchitya** suitableness, fitness (Apte)

**ଯଦ୍**—ସଂ. ସର୍ବନାମ ଶବ୍ଦ (ଯଜ୍ ଧାତୁ=ପୂଜା କରିବା+କର୍ମ ଅଦ୍)—
J̄ad (**ଅପେକ୍ଷିକଶବ୍ଦ—ତଦ୍**) ଯାହା; ଯେ—Who; which.
[ବ୍ୟ—ସଂ. ଯଦ୍ ଶବ୍ଦ ପୁଂଲିଙ୍ଗ ଏକ ବଚନରେ ଯଃ, ସ୍ତ୍ରୀଲିଙ୍ଗ ଏକବଚନରେ ଯା, କ୍ଳୀବଲିଙ୍ଗ ଏକବଚନରେ ଯତ୍ ହୁଏ ଓ ଅନ୍ୟ ଶବ୍ଦ ସଙ୍ଗେ ସନ୍ଧି ବା ସମାସ ହେଲେ 'ଯଦ୍' ଆକାର ଧାରଣ କରେ।] ସଂ. ଅ.—ଯେହେତୁ—Whereas.

**ଯଦପି**—ସଂ. ସର୍ବ (ଯଦ୍+ଅପି)—ଯେ କୌଣସି ବସ୍ତୁ ବା ବ୍ୟକ୍ତି—
J̄adapi Whatever; any whatever (Apte).
ସଂ.ଅ—ଯଦ୍ୟପି--Though; although (Apte).

**ଯଦବଧି**—ସଂ. ଅ (ଯତ୍+ଅବଧି)—୧ । ଯେଉଁ ସମୟଠାରୁ—
J̄adabadhi 1. Since which time. ୨ । ଯେଉଁ ସମୟ ପର୍ଯ୍ୟନ୍ତ—2. Till which time.

**ଯଦର୍ଥ(ର୍ଥେ)**—ସଂ କ୍ରି. ବିଣ—୧ । ଯେଉଁ କାରଣରୁ—1. For
J̄adartha(rthe) which; why. ୨ । ଯେଉଁ ଉଦ୍ଦେଶ୍ୟରେ—2. For which aim. ୩ । ଯାହାଙ୍କ ନିମନ୍ତେ—3. For whom.

**ଯଦା**—ସଂ. ଅ (ଯଦ୍+କାଳାଧିକରଣ ଅ.)—୧ । ଯେବେ, ଯେଉଁ
J̄adā କାଳରେ—1. When. ୨। ଯେହେତୁ—2. Whereas:
(ହି. ଜବ୍, ଜଦ୍) since (Apte).

**ଯଦାତଦା**—ସଂ.କ୍ରି.ବିଣ (ଦେଶଜବ୍ୟବହାର)—ଯେବେ ଇଚ୍ଛା ତେବେ;
J̄adā tadā ଯେ କୌଣସି ସମୟରେ—Whenever at any time whatsoever.

**ଯଦାପ୍ରଭୃତି**—ସଂ. କ୍ରି. ବିଣ.—ଯେଉଁ ସମୟରୁ—From which
J̄adāprabhruti time forward

**ଯଦି**—ସଂ. ଅ. (ଯତ୍ଧାତୁ=ଚେଷ୍ଟା କରିବା+ଭାବ. ଇ)—
J̄adi ୧ । ଯେବେ—1. If; though; although. [ବ୍ୟ—ଏହା ନିମ୍ନଲିଖିତ ସ୍ଥଳରେ ପ୍ରଯୁକ୍ତ ହୁଏ—୧ । ସମ୍ଭାବନାର୍ଥକ 1. Supposition; ଯଥା—"ଥାଆନ୍ତା ଯଦି ମୋର ବିହଙ୍ଗ ପକ୍ଷ । ଲଙ୍ଘି ଭୀଷଣ ଗିରି ସମୁଦ୍ର ବକ୍ଷ । ଦେଖନ୍ତି ପ୍ରିୟତନ ମୁଖକମଳ" (ମଧୁସୂଦନ) ୨ । ସନ୍ଦେହାର୍ଥକ—2 Doubt ଯଥା:—ମୁଁ ଯୁଦ୍ଧ କରିବାକୁ ବାହାରିଛି; ଯଦି ହାରିଯାଏଁ ତେବେ ମୋ ଅବସ୍ଥା କଅଣ ହେବ ? ୩ । ପକ୍ଷାନ୍ତରରେ—3. On the other hand; in the alternative.—"ଥାଇ କରି ଯଦି ଖାଇ ମନ କଲା ତା ମୁଁ କୁହା ପୋଡ଼ୁ" (ଢଗ)—୪ । ଅବଧାରଣ—4. Certainty. ଯଥା—"ଯଦି ବରଷଇ ମାଘର ଶେଷ, ଧନ୍ୟ ସେ ରଜା ଧନ୍ୟ ସେ ଦେଶ" କୃଷିବଚନ । ୫ । କିମ୍ବା—5. Whether (Apte) ୬ । ସମ୍ଭବତଃ 6. If per chance; perhaps (Apte) ୭। ପ୍ରକଶ ଥାଉଚ—7. Provided that (Apte) ୮ ।ଯେବେ-8. When (Apte).

**ଯଦିଓ**—ଦେ. ଅ—(ବଙ୍ଗଳାରୁ ଅନୁକୃତ)—ଯଦ୍ୟପି (ଦେଖ)
J̄adio ଯଦିও **যদিও** J̄adyapi (See)

**ଯଦିଚ (ବା)**—ସଂ. ଅ.—ପକ୍ଷାନ୍ତରେ; ଯେବେ ଅବା—
J̄adicha(bā) If on the other hand.

**ଯଦି ସ୍ୟାତ୍**—ସଂ. ଅ.—(ସଂ. ଯଦି+କ୍ରିୟା ସ୍ୟାତ୍=ହୁଏ)—୧ ।
J̄adi syāt କେଜାଣି ଯେବେ; କେଜାଣି ଅବା—1. Who
(ଯଦ୍ୟପି ସ୍ୟାତ୍—ଅନ୍ୟରୂପ) knows if. ୨ । ସମ୍ଭବତଃ—2. Perhaps. ୩ । ଯେବେ ସୁଦ୍ଧା—3. Even if.

**ଯଦୀୟ**—ସଂ. ବିଣ. (ଯଦ୍+ଈୟ; ତୁଳ. ମଦୀୟ, ତ୍ୱଦୀୟ, ତଦୀୟ)—
J̄adiya ୧ । ଯାହା ସମ୍ବନ୍ଧୀୟ—1. Relating to which or whom. ୨ । ଯାହାର—2. Whose; of whom or what.

**ଯଦୁ**—ସଂ. ବି—୧ । ଦେବଯାନୀଙ୍କ ଗର୍ଭରେ ଚନ୍ଦ୍ରବଂଶୀୟ ପଞ୍ଚମ ରାଜା
J̄adu ଯଯାତିଙ୍କ ଔରସ ଜାତ ଜ୍ୟେଷ୍ଠ ପୁତ୍ର—1. Name of the eldest son of king J̄ajāti.
[ବ୍ୟ—ଏ ଯଯାତିଙ୍କ ବଡ଼ ପୁଅ ଥିଲେ । ମହାଭାରତରେ ଲେଖା ଅଛି କି, ଯଯାତି ଏହାଙ୍କ ଯୌବନ ସଙ୍ଗେ ଆପଣାର ବାର୍ଦ୍ଧକ୍ୟକୁ ବଦଳାଇବାକୁ କହିବାରୁ ଏ ନାହିଁ କଲେ । ଏଥିପାଇଁ ଯଯାତିଙ୍କ ଶାପରେ ଏ ରାଜ୍ୟଭ୍ରଷ୍ଟ ହେଲେ । ପରେ ଇନ୍ଦ୍ରଙ୍କ ଦୟାରୁ ଏହାଙ୍କୁ ରାଜ୍ୟ ମିଳିଲା । ଏ ଯଦୁ ବଂଶର ଆଦିପୁରୁଷ; ଶ୍ରୀକୃଷ୍ଣ ଯଦୁବଂଶରେ ଜନ୍ମଗ୍ରହଣ କରିଥିଲେ—ହି. ଶ]
୨ । ଯଦୁଙ୍କ ନାମ ଅନୁସାରେ ଅଭିହିତ ରାଜବଂଶ; ଯାଦବ-ବଂଶ—2. The dynasty of kings named after king J̄adu. ୩ । ମଥୁରା ନିକଟସ୍ଥ ପ୍ରାଚୀନ ଦଶାର୍ହ ଦେଶ—3. Name of an ancient country near Mathurā.

**ଯଦୁ ନାଥ**—ସଂ. ବି—(ଯଦୁମାନଙ୍କର ନାଥ, ଷଷ୍ଠୀ ତତ୍)—ଶ୍ରୀକୃଷ୍ଣ—
J̄adu nātha Srikrushna.
[ଯଦୁନନ୍ଦନ, ଯଦୁପତି, ଯଦୁମଣି, ଯଦୁଶ୍ରେଷ୍ଠ—ଅନ୍ୟରୂପ]

**ଯଦୁ ବଂଶ**—ସଂ.ବି—(ଷଷ୍ଠୀ ତତ୍)—ଯାଦବ ବଂଶ; ଚନ୍ଦ୍ରବଂଶୀୟ ଯଦୁରାଜାଙ୍କ
J̄adu bamśa ବଂଶ—The dynasty deriving its name from king J̄adu.

**ଯଦୁବଂଶୀ**—ସଂ. ବିଣ.—(ଯଦୁବଂଶ+ଭବାର୍ଥେ. ଇନ୍; ୧ମା. ୧ବ.)—
J̄adu bamśi ଯଦୁବଂଶରୁ ଜାତ—Born of the dynasty
(ଯଦୁବଂଶୀୟ—ଅନ୍ୟରୂପ) of the J̄adus ଦେ. ବି—ଗୋପାଳମାନଙ୍କ ଶାଖାବିଶେଷ ବା ମଥୁରାବାସୀଙ୍କ ଉପାଧି (ଏମାନଙ୍କୁ ଯାଦବ ବୋଲାଯାଏ)—Title of a sect of cowherds.

**ଯଦୁବ(ବୀ)ର**—ସଂ. ବି—(୭ମୀ ତତ୍)—ଶ୍ରୀକୃଷ୍ଣ—
J̄aduba(bi)ra A name of Srikrushna.
[ଯଦୁଶ୍ରେଷ୍ଠ, ଯଦୂତ୍ତମ, ଯଦୁରାଜ(ଜ୍)—ଅନ୍ୟରୂପ]

**ଯଦୁମଣି ମହାପାତ୍ର**—ଦେ. ବ. - (ନାମ)—ଜଣେ ଉତ୍କଳୀୟ କୌତୁକ-
Jadumaṇi mahāpātra ପ୍ରିୟ ଆଶୁକବି । An Oriya poet. [ ଏ କବି ଜାତିରେ ବଢ଼େଇ ଥିଲେ । ନୂଆଗଡ଼ ଗଡ଼ଜାତର ରାଜାଙ୍କ ସଭାରେ ଏହାଙ୍କର ପ୍ରତିଷ୍ଠା ଥିଲା । ଏହାଙ୍କ ହାସ୍ୟୋକ୍ତି ସମ୍ବନ୍ଧେ ଏ ଉତ୍କଳର ସର୍ବତ୍ର ପରିଚିତ । 'ଯଦୁମଣି ରହସ୍ୟ' ନାମକ ପୁସ୍ତକ ଖଣ୍ଡେ ଉତ୍କଳର ଘରେ ଘରେ ସମାଦୃତ । 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' ଏ କବିଙ୍କ ଲିଖିତ ପ୍ରଧାନ କାବ୍ୟ । ତାରିଣୀ—ଉତ୍କଳସାହିତ୍ୟ ଇତିହାସ ।]

**ଯଦୁମଣି ଭଞ୍ଜ**—ଦେ. ବ. (ନାମ) —ବ ୨୫୦ ବର୍ଷ ତଳର ଜଣେକ
Jadumaṇi bhañja କବି—Name of a classical Oriya poet. ( ଦ୍ର—ରୁକ୍ମିଣୀବିଳାସ ଏହାଙ୍କ ଦ୍ୱାରା ରଚିତ—ଜଗବନ୍ଧୁ. ପ୍ରାଚୀନ ଉତ୍କଳ । )

**ଯଦୃଚ୍ଛୟା**—ସଂ. କ୍ରି. ବିଣ—( ଯଦୃଚ୍ଛା ଶବ୍ଦର ତୃତୀୟାବିଭକ୍ତି ୧ବଂ ) —୧ ।
Jadṛuchchhayā ନିଜର ସ୍ୱାଧୀନ ଇଚ୍ଛା ଅନୁସାରେ— 1. According to one's free will. ୨ । ଦୈବକ୍ରମେ—2 By chance. ୩ । ଅକସ୍ମାତ୍— 3. Suddenly.

**ଯଦୃଚ୍ଛୟାଭିଜ୍ଞ**—ସଂ. ବି. ପୁଂ —ଯଦୃଚ୍ଛାଭିଜ୍ଞ (ଦେଖ)
Jadṛuchchhayābhijña Jadṛuchchhābhijña (See)

**ଯଦୃଚ୍ଛା**—ସଂ. ବି —(ସଂ. ଯଦ୍=ଯାହା+ଋଚ୍ଛ ଧାତୁ=ଯିବା+ଭାବ.
Jadṛuchchhā ଅ+ଆ; ଅଥବା ଯା+ଇଚ୍ଛା, କର୍ମଧାରୟ) — ୧ । ସ୍ୱୈରବୃତ୍ତି; ସ୍ୱେଚ୍ଛାଚାର—1. Wilfulness; arbitrary conduct. ୨ । ସ୍ୱାଧୀନତା, ସ୍ୱାତନ୍ତ୍ର୍ୟ — 2. Independence; freedom. ୩ । ଅନାୟାସ; ଅକ୍ଳେଶ —3. Easiness; facility; ease. ୪ । ଦୈବ ଘଟଣା—4. Accident; chance. ୫ । (ବ୍ୟାକରଣର ନାମବାଚକ ବିଶେଷ୍ୟ ପଦ—5. (In grammar) Proper nouns. ୬ । ନିଜର ସ୍ୱାଧୀନ ଇଚ୍ଛା —6. Self-will. ଦେ. କ୍ରି. ବିଣ — (ସଂ. ଯଦୃଚ୍ଛୟା ) ଦୈବକ୍ରମେ—By chance; accidentally.

**ଯଦୃଚ୍ଛାକ୍ରମେ**—ଦେ. କ୍ରି. ବିଣ ( ସଂ ଯଦୃଚ୍ଛାକ୍ରମେଣ)
Jadṛuchchhākrame —୧ । ସ୍ୱେଚ୍ଛାମତେ; ମନଇଚ୍ଛାରେ—
ଯଦୃଚ୍ଛାକ୍ରମେ 1. According to one's free will or pleasure. ୨ । ସ୍ୱାଧୀନତା ମତେ—2. Freely.

**ଯଦୃଚ୍ଛାଗତି**—ସଂ. ବି —ନିଜ ଇଚ୍ଛା ଅନୁସାରେ ଗତି; ଯେଉଁଆଡ଼କୁ
Jadṛuchchhāgati ଯିବାକୁ ଇଚ୍ଛା କରିବ, ସେଆଡ଼େ ଗମନ କରିବା— Free movement; unfettered motion.

**ଯଦୃଚ୍ଛାଚରଣ**—ସଂ. ବି —ସ୍ୱେଚ୍ଛାଚାର; ଯଥେଚ୍ଛାଚରଣ —
Jadṛuchchhācharaṇa Arbitrary action or
(ଯଦୃଚ୍ଛାଚାର—ଅନ୍ୟରୂପ) conduct.

**ଯଦୃଚ୍ଛାଚାରୀ**—ସଂ. ବିଣ. ପୁଂ—ଯଥେଚ୍ଛାଚାରୀ ( ଦେଖ )—
Jadṛuchchhāchārī Jathechchhāchārī ( See )
(ଯଦୃଚ୍ଛାଚାରିଣୀ—ସ୍ତ୍ରୀ) [ ଦ୍ର—ଏହିପରି ଯଦୃଚ୍ଛାବିହାର, ଯଦୃଚ୍ଛାବିଚରଣ, ଯଦୃଚ୍ଛାବିହାରୀ ଆଦି ଶବ୍ଦ ହୁଏ । ]

**ଯଦୃଚ୍ଛାପ୍ରବୃତ୍ତ**—ସଂ. ବିଣ ( ଯଦୃଚ୍ଛା+ପ୍ରବୃତ୍ତ )—ସ୍ୱେଚ୍ଛାନୁସାରେ ନିଯୁକ୍ତ
Jadṛuchchhā prabṛutta —Engaged of one's own free will.

**ଯଦୃଚ୍ଛାଭିଜ୍ଞ**—ସଂ ବି. ପୁଂ ( ହିନ୍ଦୁ ସ୍ମୃତି )—୧ । ଯେ ସ୍ୱେଚ୍ଛାକ୍ରମେ
Jadṛuchchhābhijña ଉପସ୍ଥିତ ହୋଇ ସାକ୍ଷ୍ୟ ଦିଏ—
(ଯଦୃଚ୍ଛାଭିଜ୍ଞା ସ୍ତ୍ରୀ) 1. ( Hundu law ) A voluntary or self-offered witness ( Apte ). ୨ । ଯେଉଁ ସାକ୍ଷୀ ଘଟଣା ସ୍ଥଳରେ ଦୈବାତ୍ ଉପସ୍ଥିତ ଥାଏ (ହି.ଶ.) —2. A chance witness.

**ଯଦୃଚ୍ଛାଲବ୍ଧ**—ସଂ ବିଣ ( ଯଦୃଚ୍ଛା+ଲବ୍ଧ )—ଅନାୟାସଲବ୍ଧ—
Jadṛuchchhā labdha Got easily.

**ଯଦୃଚ୍ଛାଶବ୍ଦ**—ସଂ. ବି (ବ୍ୟାକରଣ)—ପ୍ରାଣିବିଶେଷର ବା ସ୍ଥାନ ବିଶେଷର
Jadṛuchchhā śabda ନାମ—( grammar ) Proper name ( Apte ).

**ଯଦୃଚ୍ଛସଂବାଦ**—ସଂ ବି—୧ । ଦୈବାତ୍ କୌଣସି ଲୋକ ସଙ୍ଗେ କଥା
Jadṛuchchha sambāda ଭାଷା—1. Accidental conversation ( Apte ). ୨ । ଦୈବାତ୍ କୌଣସି ଲୋକସଙ୍ଗେ ଭେଟ—2. Accidental meeting ( Apte ).

**ଯଦୃଚ୍ଛିକ**—ସଂ. ବି. ପୁଂ ( ଯଦୃଚ୍ଛା+ଇକ )—ଯେ ନିଜକୁ ଅନ୍ୟ ବ୍ୟକ୍ତିର
Jadṛuchchhika ପୋଷ୍ୟପୁତ୍ର ରୂପରେ ଗୃହୀତ ହେବାପାଇଁ ପ୍ରସ୍ତାବ କରେ- A son who offers himself for adoption.

**ଯଦ୍ୱତ୍**—ସଂ. ଅ—ଯେଉଁପରି—Likewise. [ ଦ୍ର—ଏହାର
Jadbat ଆପେକ୍ଷିକ ଶବ୍ଦ ତଦ୍ୱତ୍ । ]

**ଯଦ୍ୱା** ସଂ. ଅ ( ସଂ. ଯଦ୍+ବା )—୧ । କିମ୍ବା—1. Or; else.
Jadbā ୨ । ପକ୍ଷାନ୍ତରେ—2. On the other hand.

**ଯଦ୍ୱା ତଦ୍ୱା**—ସଂ. ଅ ( ଯଦ୍ୱା+ତଦ୍ୱା )—କେବେ କେବେ (ହି. ଶ.)
Jadba tadbā Occasionally.

**ଯଦୃତ୍ତ**—ସଂ. ବି ( ଯଦ୍+ବୃତ୍ତ )—ଦୈବାତ୍ ଯେଉଁ ଘଟଣା ଘଟେ—
Jadrutta An adventure ( Apte ).

**ଯଦ୍ଭବିଷ୍ୟ**—ସଂ. ବିଣ ( ଯଦ୍+ଭବିଷ୍ୟ )—୧ । ଭାଗ୍ୟବାଦୀ; ଯାହା-
Jadbhabishya ଭାଗ୍ୟରେ ଥିବ ତାହା ଘଟିବ, ଏହାହିଁ ଯେ କହୁଥାଏ; ଅଦୃଷ୍ଟବାଦୀ; ଯେ ଅଦୃଷ୍ଟ ଉପରେ ନିର୍ଭର କରେ— 1. Fatalist. ୨। ଯେଉଁ କଥା ଘଟିବା ଭାଗ୍ୟ ଉପରେ ନିର୍ଭର କରେ—2. Depending upon fate, fatalistic. ବି—ଯାହା ଘଟିବାର ଅଦୃଷ୍ଟରେ ଥିବ, ତାହା—Any thing which is pre-ordained by fate to happen.

**ଯଦ୍ଭବିଷ୍ୟବାଦୀ**—ସଂ.ବିଣ ଓ ବି. ପୁଂ (ଯଦ୍‌ଭବିଷ୍ୟ+ବାଦିନ୍)—ଅଦୃଷ୍ଟବାଦୀ
Jadbhabishyabādī A fatalist.
( ଯଦ୍‌ଭବିଷ୍ୟବାଦିନୀ—ସ୍ତ୍ରୀ ) (ଯଦ୍‌ଭବିଷ୍ୟବାଦ—ବି)

**ଯଦ୍ୟପି**—ସଂ. ଅ.( ଯଦି+ଅପି )—ଯେବେ ସୁଦ୍ଧା; ଯେବେ ମଧ୍ୟ—
Jadyapi Even if; although.

**ଯନ୍ତ**—ଦେ. ବି ( ସଂ. ଯନ୍ତ୍ର)—ଜନ୍ତ ( ଦେଖ )
Janta Janta ( See )

**ଯନ୍ତର୍** (ଇତ୍ୟାଦି)—ପ୍ରାଦେ ( ସମ୍ବଲପୁର )—ଜନ୍ତର୍ ଇତ୍ୟାଦି (ଦେଖ)
Jantar (etc) Jantar etc ( See )

**ଯନ୍ତର** ( ଇତ୍ୟାଦି )—ଗ୍ରା. ବ.—(ସଂ. ଯନ୍ତ୍ର)—ଯନ୍ତ୍ର ଇତ୍ୟାଦି—
Jantara (etc) यन्तर, यंतर Jantra etc (See)
[ଉ—ଯନ୍ତର ତ ଜାଣୁ ଯେବେ, ଯେମନ୍ତ ହୋଇଲେ ଯବେ । କବିସୂର୍ଯ୍ୟ. ରତ୍ନାକରତମ୍ଭୁ ଯ. ଗୀତ ।]

**ଯନ୍ତା**—ଦେ. ବ.—ଜନ୍ତା (ଦେଖ)
Jantā यान्ता यंतर Jantā (See)
[ଉ—ବ୍ୟାଘ୍ର ପଡ଼ନ୍ତ ଯନ୍ତାକୁ ଗୃହିଁଲା ମତ ।
ଭଞ୍ଜ. ବୈଦେହୀଶବିଳାସ ।]

**ଯନ୍ତା**—ସଂ. ବିଣ. ପୁଂ—(ଯମ ଧାତୁ=ନିବୃତ୍ତ କରିବା+କର୍ତ୍ତୃ. ତୃ, ୧ମା. ୧ବ.)—୧ । ଦମନକାରକ—1. Restraining.
Jantā
(ଯନ୍ତ୍ରୀ—ସ୍ତ୍ରୀ) ୨ । ଶାସକ; ନିୟାମକ—2. Regulating. ୩ । ନିବୃତ୍ତିକର—3. Preventing. ବି.—୧ । ସାରଥି, ରଥଚାଳକ; କଚୁଆନ୍—1. A charioteer; a coachman; driver of a carriage. [ଉ—ଶାଳିହୋତ୍ର ଋଷି ଯେ ଅଶ୍ୱଶାସ୍ତ୍ରକର୍ତ୍ତା, ସେ ବା ହେଲେ ଅସି ବାହୁକ ରୂପେ ଯନ୍ତା । କୃଷ୍ଣସିଂହ. ମହାଭାରତ ବନ] ୨ । କର୍ମ ନିୟନ୍ତ୍ରଣ କରିବା କର୍ମଚାରୀ; ତଦାରଖିବା ବ୍ୟକ୍ତି—2. A director; a governor. ୩ । ହାତୀର ଚାଳକ; ହସ୍ତିପକ—3. The driver of an elephant. ଦେ. ବି—ଜନ୍ତା ଇତ୍ୟାଦି (ଦେଖ)—Jantā etc (See). ପ୍ରାଦେ. (ସମ୍ବଲପୁର) ବି—ଚକି—Grinding mill; mill-stone.

**ଯନ୍ତା ଯନ୍ତ(ନ୍ତି)**—ଦେ. ବ. ଓ ବିଣ—ଜନ୍ତାଜନ୍ତ(ନ୍ତି) (ଦେଖ)
Jantā janta(nti) Jantā janta(nti) (See)
[ଉ—ବାଜୀ ଝମ୍ପଠାରୁ ଗଜ ଉତ୍ପଠାରୁ ସ୍ଥାନ ନୋହି ଯନ୍ତା ଯନ୍ତି । ଭଞ୍ଜ. ବୈଦେହୀଶବିଳାସ ।]

**ଯନ୍ତିବା**—ଦେ. କି.—ଜନ୍ତିବା (ଦେଖ)—Jantibā (See)
Jantibā (ଯନ୍ତ୍ର ହେବା—କର୍ମବାଚ୍ୟ ରୂପ)

**ଯନ୍ତ୍ର** (ଧାତୁ)—ସ.—୧ । ସଙ୍କୁଚିତ କରିବା—
Jantra (root) 1. To contract.
୨ । ଦମନ କରିବା—2 To restrain; to check, to curb. ୩ । ବନ୍ଧନ କରିବା—3. To bind. ୪ । ପୀଡ଼ା ଦେବା—4. To oppress; to afflict. ୫ । ପେଷିବା—5. To press; to grind. ୬ । ବାଧ୍ୟ କରିବା—6. To force; to oblige.

**ଯନ୍ତ୍ର**—ସଂ. ବି.—(ଯନ୍ତ୍ର ଧାତୁ+କରଣ. ଅ)—୧ । ଯେଉଁ ପଦାର୍ଥର
Jantra ସାହାଯ୍ୟରେ ଅଳ୍ପ ବଳର ପ୍ରୟୋଗଦ୍ୱାରା ବହୁ ବଳସାଧ୍ୟ କାର୍ଯ୍ୟ ସମ୍ପନ୍ନ ହୁଏ; ଇଞ୍ଜିନ୍—1. Apparatus; machine; engine. [ଦ୍ର—ଏହାର ଅପଭ୍ରଂଶ ଯନ୍ତ୍ର, ଯନ୍ତା, ଯନ୍ତର ।] ୨ । ଅସ୍ତ୍ର ଶସ୍ତ୍ର; ହତିଆର; ଯୁଦ୍ଧ-ଯନ୍ତ୍ର; ଅସ୍ତ୍ରରକ୍ଷା ଓ ଶତ୍ରୁକୁ ଆକ୍ରମଣ କରିବା ପାଇଁ ବ୍ୟବହୃତ ଅସ୍ତ୍ରାଦି—2. Weapon of offence and defence. [ଦ୍ର—ଯୁଦ୍ଧ ଯନ୍ତ୍ରମାନ ୨ ଶ୍ରେଣୀରେ ବିଭକ୍ତ, ଯଥା—୧ । ଅସ୍ତ୍ର=ଯାହା ଶତ୍ରୁ ଆଡ଼କୁ ନିକ୍ଷେପ କରାଯାଏ । ଯଥା—ବାଣ, ବନ୍ଧୁକ, ୨ । ଶସ୍ତ୍ର=ଯାହାକୁ ହାତରେ ଧରି ପ୍ରହାର କରାଯାଏ । ଯଥା—ଗଦା, ଖଡ୍ଗ ।] ୩ । ଅଳ୍ପ ପରିଶ୍ରମରେ ଓ ସମୟରେ ବହୁପରିଶ୍ରମସାଧ୍ୟ ଓ ବହୁକାଳସାଧ୍ୟ କର୍ମ କରିବା ଉପାୟ—3. Any labour-saving or time-saving appliance. ୪ । କାରିଗରମାନଙ୍କ ହତିଆର; ଶିଳ୍ପୀର ବା କଳାବିଦ୍‌ର କର୍ମସାଧନୀ—4. Workman's tools; implements; instruments or implements used by craftsmen or artisans. [ଦ୍ର—ଭିନ୍ନ ଭିନ୍ନ କାର୍ଯ୍ୟର ନାମ ଦୃଷ୍ଟିରେ ଯନ୍ତ୍ରର ଭିନ୍ନ ଭିନ୍ନ ନାମ ଦିଆଯାଏ ଯଥା—ସୀବନ ଯନ୍ତ୍ର, ବେଧନ ଯନ୍ତ୍ର, ଛେଦନ ଯନ୍ତ୍ର ।] ୫ । ଯନ୍ତା; ଚକି; ପେଷିବା କଳ; ପେଷଣ ଯନ୍ତ୍ର—5. A mill. ୬ । ଅନାୟାସରେ ପଦାର୍ଥର ପରିମାଣ, ସ୍ୱରୂପ, ବେଗ ଆଦି ନିରୂପଣ କରିବାର କୌଶଳ; କଳ—6. A meter, an instrument for ascertaining easily the quantity, nature and velocity of things. ୭ । ଅଗ୍ନି ଯନ୍ତ୍ର; ନାଳକାଷ୍ଠ, ବନ୍ଧୁକ—7. Gun; firearm. ୮ । ଏକ ସ୍ଥାନରେ ପ୍ରଯୁକ୍ତ ବା ଉଦ୍ଭୂତ ଶକ୍ତିକୁ ସ୍ଥାନାନ୍ତରକୁ ନେଇ ତାହା କାର୍ଯ୍ୟରେ ନିଯୁକ୍ତ କରାଇବା ପାଇଁ ବ୍ୟବହୃତ କୌଶଳ—8. A contrivance for the transmission of force or energy from one place to another. ୯ ଘଣା—9. An oilmill. ୧୦ । ଦେବପୂଜାର୍ଥ ଭୂମି ଆଦିରେ ଚିତ୍ରିତ ତନ୍ତ୍ରୋକ୍ତ ଭିନ୍ନ ଭିନ୍ନ ଚକ୍ର ବା ଚିହ୍ନ; ଦେବତାମାନଙ୍କର ଅଧିଷ୍ଠାନଚକ୍ର—10. Mystic diagrams or figures drawn on the ground etc. in connection with the worship of Deities according to Tantra. [ଦ୍ର—ଭିନ୍ନ ଭିନ୍ନ ଦେବତାଙ୍କ ପାଇଁ ତନ୍ତ୍ରରେ ଭିନ୍ନ ଭିନ୍ନ ପ୍ରକାର ଯନ୍ତ୍ରର ବିଧାନ ଅଛି । ଯନ୍ତ୍ର ବିନା ମନ୍ତ୍ର ସମ୍ୟକ କାର୍ଯ୍ୟକାରୀ ହୁଏ ନାହିଁ । ଭିନ୍ନ ଭିନ୍ନ ଯନ୍ତ୍ର ପାଇଁ ଭିନ୍ନ ଭିନ୍ନ ଲେଖନ ଉପାଦାନ ଓ ସ୍ଥାନମାନ ମଧ୍ୟ ନିର୍ଦ୍ଦିଷ୍ଟ ହୋଇଅଛି ।] ୧୧ । ବାଦ୍ୟ ଯନ୍ତ୍ର—11. Musical instrument. [ଦ୍ର—ଭିନ୍ନ ଭିନ୍ନ ବାଦ୍ୟ ଯନ୍ତ୍ରର ଭିନ୍ନ ଭିନ୍ନ ନାମ ଅଛି । ଯଥା—ତତ ଯନ୍ତ୍ର, ଆନଦ୍ଧ ଯନ୍ତ୍ର, ବୀଣା ଯନ୍ତ୍ର ।] ୧୨ । ଜ୍ୟୋତିଷୋକ୍ତ ଚକ୍ର: ଜନ୍ମରାଶିନକ୍ଷତ୍ରାଦିଘଟିତ ପତାକା—12. Astrological diagrams. ୧୩ । ବୈଦ୍ୟଶାସ୍ତ୍ରୋକ୍ତ ଅସ୍ତ୍ର ଶସ୍ତ୍ର; ଡାକ୍ତରଙ୍କ ଅସ୍ତ୍ର—13. Surgical instruments. [ଦ୍ର—ଚିକିତ୍ସକମାନେ ଅସ୍ତ୍ର ବ୍ୟବହାର କରନ୍ତି ନାହିଁ, ଶସ୍ତ୍ର ବ୍ୟବହାର କରନ୍ତି । କିନ୍ତୁ ସାଧାରଣତଃ ଚିକିତ୍ସକଙ୍କ ଶସ୍ତ୍ରକୁ ଅସ୍ତ୍ର ବୋଲାଯାଇ ଥାଏ । ପୂର୍ବେ ଆର୍ଯ୍ୟମାନେ ଅସ୍ତ୍ରଚିକିତ୍ସାରେ

ନିପୁଣ ଥିଲେ । ଅସ୍ତ୍ର ପ୍ରୟୋଗ କଲାବେଳେ, ସୁଶ୍ରୁତରେ ୧୨୫ ପ୍ରକାର ଅସ୍ତ୍ରର ଉଲ୍ଲେଖ ଅଛି । ସେଗୁଡ଼ିକ ୨ ଭାଗରେ ବିଭକ୍ତ ।—ଯନ୍ତ୍ର ଓ ଶସ୍ତ୍ର । ଯନ୍ତ୍ରର ଧାର ନ ଥାଏ, ଶସ୍ତ୍ରର ଧାର ଥାଏ (Apte). ଯନ୍ତ୍ର ସର୍ବସମେତ ୧୦୧ଟି । ହିନ୍ଦୁ ଚିକିତ୍ସାଗ୍ରନ୍ଥମାନଙ୍କରେ ନିର୍ଦ୍ଦିଷ୍ଟ ଯନ୍ତ୍ରଶସ୍ତ୍ର ମଧ୍ୟରୁ କେତେଗୁଡ଼ିଏ, ଯଥା :—ସ୍ୱସ୍ତିକଯନ୍ତ୍ର—ହାଡ଼ରେ ବନ୍ଧ ହୋଇଥିବା ବାଣ ବା ଶଲ୍ୟ ବାହାର କରିବାପାଇଁ ବ୍ୟବହୃତ । ସନ୍ଦଂଶ—ଚର୍ମ, ମାଂସ, ଶିରା ଓ ସ୍ନାୟୁରୁ କ୍ଷୁଦ୍ର ଶଲ୍ୟ ବା କଣ୍ଟା ବାହାର କରିବା ପାଇଁ । ତାଳ ଯନ୍ତ୍ର—କର୍ଣ୍ଣ ନାସିକାଦିରୁ ମଳ ବାହାର କରିବା ପାଇଁ ବ୍ୟବହୃତ ଯନ୍ତ୍ର । ଏତଦ୍ଭିନ୍ନ ଶଙ୍କୁ, ଯୋନ୍ୟାବେକ୍ଷଣ, ଭଗନ୍ଦର, ଅର୍ଶ, ଦନ୍ତମୂଳ, ନାଡ଼ୀ, ଶଲାକା ଆଦି ନାନା ଯନ୍ତ୍ର ଥିଲା । ଆଧୁନିକ ପାଶ୍ଚାତ୍ୟ ବିଜ୍ଞାନ ନାନା ଅଭିନବ ଯନ୍ତ୍ର (ସହସ୍ରାଧିକ) ଆବିଷ୍କାର କରିଅଛି ।] ୧୪ । ଔଷଧାଦି ପାକାର୍ଥ ବ୍ୟବହୃତ କୌଶଳ ବା ଉପାୟ—14. Appliances used in the preparation of medicines. [ଦ୍ର—ଔଷଧ ପାକାର୍ଥ ଯନ୍ତ୍ରାଦି ମଧ୍ୟରୁ କେତେକ,—ବାଲୁକା ଯନ୍ତ୍ର—ହାଣ୍ଡି ମଧ୍ୟରେ ବାଲି ଭର୍ତ୍ତି କରି ତାହା ନିଆଁ ଉପରେ ବସାଇ ବାଲି ମଧ୍ୟରେ ବୋତଲରେ ବା ଘଡ଼ିରେ ଔଷଧପାକକରଣ । ଦୋଲାଯନ୍ତ୍ର-ନିଆଁ ଉପରେ ବସିଥିବା ହାଣ୍ଡିର ପାଣିରେ ଝୁଲାଇ ରଖି ପଦାର୍ଥକୁ ପାକ କରିବା ଉପାୟ । ସ୍ୱେଦନ ଯନ୍ତ୍ର—ଚୁଲିରେ ବସିଥିବା ପାଣି ହାଣ୍ଡି ମୁହଁରେ ଅଖାଟକନା ବାନ୍ଧି ସେହି କନା ଉପରେ ପଦାର୍ଥ ରଖି ହାଣ୍ଡିରୁ ବାହାରୁଥିବା ବାଷ୍ପ ଦ୍ୱାରା ପାକକରଣ । ଏତଦ୍ଭିନ୍ନ ବିଦ୍ୟାଧର ଯନ୍ତ୍ର, ଭୂଧର ଯନ୍ତ୍ର, ଡମରୁ ଯନ୍ତ୍ରାଦି ନାନା ଯନ୍ତ୍ର ଅଛି ।] ୧୫ । ତନ୍ତ୍ରୋକ୍ତ ମାରଣ, ସ୍ତମ୍ଭନ, ମୋହନ, ବଶୀକରଣ, ଉଚ୍ଚାଟନ, ବିଦ୍ରାବଣାଦି କ୍ରିୟା କାମରେ ବ୍ୟବହୃତ ମନ୍ତ୍ର, କୌଶଳ ବା ପ୍ରୟୋଗ—15. Mystic appliances or charms employed in Tantric rites, which are performed to affect other people. e. g. killing, charming, maddening ୧୬ । କୁଯନ୍ତ୍ର; ପରର ଅନିଷ୍ଟାର୍ଥ ପ୍ରଯୁକ୍ତ ଗୁଣୀ ଗାରେଡ଼ି—16. Black magic (employed to injure others). ୧୭ । ଜୀବ ଦେହର ଭିନ୍ନ ଭିନ୍ନ କ୍ରିୟା କରୁଥିବା ଶରୀରାଭ୍ୟନ୍ତରସ୍ଥ ନାଡ଼ି ଆଦି 17. Internal organs of the animal system which perform different functions. ୧୮ । କବାଟର କିଳଣୀ ବା କୋଲପ—18. Bolt or lock of a door (Apte). ୧୯ । କୌଣସି ଦ୍ରବ୍ୟକୁ (ଘର କାନ୍ଥରେ ) ଡେରି ରଖିବାର ଠେଆ; ଠେସ; ଥିର—19. A prop; a support; a stay. ୨୦ । ବସ୍ତୁକୁ ବାନ୍ଧିବାର ଉପକରଣ (ଯଥା ଶିକୁଳି; ପଟି )—20. Fetter; band; tie (Apte) ୨୧ । ଅଭିମନ୍ତ୍ରିତ ତେଉଁରିଆ ବା ପଦକାଦି—21. Amulet. ୨୨ । କୌଣସି କଳର ଅଙ୍ଗ ବା ନିର୍ମାଣକୌଶଳ—22. Mechanism of a machinery. ୨୩ । (+ଭାବ ଅ)—ନିୟନ୍ତ୍ରଣ—23. Restraint. (ଦ୍ର—ଯେ କୌଣସି ଅଭୀଷ୍ଟସାଧନାର୍ଥ ବ୍ୟବହୃତ ସହଜସାଧ୍ୟ କୌଶଳକୁ ଯନ୍ତ୍ର ବୋଲାଯାଏ; ଯଥା, ମୁଦ୍ରାଯନ୍ତ୍ର, କୂପଯନ୍ତ୍ର, ଜଳଯନ୍ତ୍ର, ଗୃହଯନ୍ତ୍ର, ବାଲୁକାଯନ୍ତ୍ର, ବାୟୁନିଷ୍କାସନ ଯନ୍ତ୍ର, ଶୂନ୍ୟମାନଯନ୍ତ୍ର, ଦୂରବୀକ୍ଷଣଯନ୍ତ୍ର, ଅଣୁବୀକ୍ଷଣ ଯନ୍ତ୍ର)—ଦେ. ବି. ୧ । ଭାତି—1. Bellows; ୨ । ଦ୍ର—ବନ୍ଧୁଣ୍ଡି ଯନ୍ତ୍ର ଡାକୁଛନ୍ତି କାମାର । ଲୋହ ଶର ଗଢ଼ା ବୋଲି ଯେ ଭଞ୍ଜ. ବୈଦେହୀଶବିଳାସ ।—୨ । କୁହୁକ; ବାଜିଗରୀ—2. Magic.

**ଯନ୍ତ୍ରକ**—ସଂ. ବି (ଯନ୍ତ୍ର+ସ୍ୱାର୍ଥେ କ)--ଯନ୍ତା (ଦେଶ)—Jantā (See) Jantraka ୧ । ଯନ୍ତ୍ରକାଷ୍ଠ; କୁନ୍ଦ—1. A lathe; turner's wheel. ୨ । ପେଷଣ ଯନ୍ତ୍ର; ଚକି—2. A hand-mill. ୩ । ଘାଆ ଆଦିରେ ବନ୍ଧା ଯିବା ପଟି—3. Ligature; bandage. ୪ । (ଯନ୍ତ୍ରଧାତୁ+ଭାବ. ଅକ)—ବେଦନା; ବ୍ୟଥା; କଷ୍ଟ—4. Pain; anguish. ୫ । ବାନ୍ଧିବା—5. Binding. ୬ । ଅଟକାଇ ରଖିବା—6. Restraining; confining. ୭ । ନିବାରଣ—7. Checking. ୮ । ଶାସନ—8. Controlling. ୯ । ପୁଂ (ଯନ୍ତ୍ର ଧାତୁ+କର୍ତ୍ତୃ ଅକ)—ଯନ୍ତ୍ର ପରିଚାଳକ—9. A mechanist; engineer (ଯନ୍ତ୍ରିକା—ସ୍ତ୍ରୀ) (Apte). ୧୦ । ଶାସକ; ନିୟାମକ—10. Controller; restrainer; regulator (Apte). ସଂ. ବିଣ. ପୁଂ—୧ । ଯନ୍ତ୍ର ପରିଚାଳନକାରୀ—1. Managing or driving a machine. ୨ । ନିୟନ୍ତ୍ରଣକାରୀ—2. Controlling.

**ଯନ୍ତ୍ର କରଣ୍ଡିକା**—ସଂ. ବି—(ମ. ପ. ଲୋ)—କୁହୁକିଆର ପେଡ଼ି—Jantra karandikā A magician's basket.

**ଯନ୍ତ୍ର କରିବା**—ଦେ. କ୍ରି.—୧ । ଯନ୍ତ୍ର ନିର୍ମାଣ କରିବା—1 To prepare a machine or contrivance. Jantra karibā ଯନ୍ତ୍ରକରା जन्तरकरना ୨ । କୌଶଳ ପ୍ରୟୋଗ କରିବା—2. To employ a contrivance. ୩ । କୌଣସି ବ୍ୟକ୍ତି ବିରୁଦ୍ଧରେ ତାନ୍ତ୍ରିକ ଅଭିଚାର ପ୍ରୟୋଗ କରିବା—3. To employ the black art or charm against a person.

**ଯନ୍ତ୍ରକଳା**—ସଂ. ବି—ଯନ୍ତ୍ରବିଦ୍ୟା; ଯେଉଁ ବିଦ୍ୟାଦ୍ୱାରା ଯନ୍ତ୍ର ସାହାଯ୍ୟରେ Jantra kalā ସୂକ୍ଷ୍ମ କାର୍ଯ୍ୟମାନ କରାଯାଏ—Mechanical art; mechanical engineering.

**ଯନ୍ତ୍ରକା(ଣୀ)**—ସଂ. ବି. ସ୍ତ୍ରୀ ( ଯନ୍ତ୍ରକ+ଅ )—କନିଷ୍ଠା ଶାଳିକା; ଅର୍ପଣ, Jantrakā(ṇi) ସ୍ତ୍ରୀଙ୍କ କନିଷ୍ଠ ଭଗିନୀ; ଦେଳକୁଣ୍ଟିକା; ଶାଳୀ—One's wife's younger sister; younger sister-in-law.

**ଯନ୍ତ୍ରକାଷ୍ଠ**—ସଂ. ବି—କୁନ୍ଦ; ଯେଉଁ ଯନ୍ତ୍ରରେ କାଠକୁ ଲଗାଇ କୁନ୍ଦାଯାଇ Jantra kāshṭha ହୁଏ—A turning lathe

**ଯନ୍ତ୍ର କୁଶଳ**—ସ. ବଣ. ପୁଂ ( ଯନ୍ତ୍ରରେ କୁଶଳ; ୭ମୀ ତତ୍ )—
**Jantra kuśala** ଯନ୍ତ୍ର ନିର୍ମାଣ ବା ପରିଚାଳନ ବିଷୟରେ ଦକ୍ଷ—
(ଯନ୍ତ୍ରକୁଶଳା—ସ୍ତ୍ରୀ) Expert in making or handling
(ଯନ୍ତ୍ରକୁଶଳତା—ବିଶେଷ୍ୟ) a machine.

**ଯନ୍ତ୍ର କୌଶଳ**—ସ. ବ ( ୭ମୀ ତତ୍ )—ଯନ୍ତ୍ର ନିର୍ମାଣରେ ପ୍ରଯୋଜିତ
**Jantra kauśala** କୌଶଳ—Ingenuity in making a machine.

**ଯନ୍ତ୍ର କୌଶଳୀ**—ସ. ବଣ. ପୁଂ—ଯନ୍ତ୍ର ଶିଳ୍ପୀ; ଯନ୍ତ୍ର କଳାବିତ୍—
**Jantra kauśali** Mechanic; fully conversant
(ଯନ୍ତ୍ର କୌଶଳିନୀ—ସ୍ତ୍ରୀ) with the mechanism of machines.

**ଯନ୍ତ୍ରଗୃହ**—ସ. ବ—୧ । ଯେଉଁ ଘରେ ଯନ୍ତ୍ରଦ୍ୱାରା କାମ ଚଳେ—
**Jantra gruha** 1. A machine-house; a work-
(ଯନ୍ତ୍ରଭବନ—ଅନ୍ୟରୂପ) shop; engine room; a mill-house. ୨ । ତେଲିଙ୍କ ଘଣା ଶାଳ—2. An oil-mill ( Apte ); oilman's workshop.

**ଯନ୍ତ୍ରଣ**—ସ. ବ ( ଯନ୍ତ୍ର ଧାତୁ+ଭାବ. ଅନ )—୧ । ଦମନ; ଶାସନ;
**Jantrana** ନିୟନ୍ତ୍ରଣ—1. Restraining; controlling; checking. ୨ । ପୀଡ଼ନ—2. Pressing. ୩ । ପୀଡ଼ା - 3. Pang. ୪ । ବନ୍ଧନ - 4. Binding; confining; fastening. ୫ । ସଙ୍କୋଚନ — 5 Contracting. ୬ । ରକ୍ଷା କରିବା; ଜଗିବା—6. Guarding; protecting. ୭ । ( +କରଣ ଅନ )—ବନ୍ଧନୀ; ପଟି—7. Bandage ( Apte ).

**ଯନ୍ତ୍ରଣା**—ସ. ବ ( ଯନ୍ତ୍ରଧାତୁ ଭାବ. ଅନ+ଆ )—୧ । ପୀଡ଼ା—
**Jantranā** 1. Oppression. ୨ । ବେଦନା; ଯାତନା; ଦୁଃଖ, ବ୍ୟଥା—2. Pang; pain; anguish. ୩ । ଦେହରେ ଚନ୍ଦନ, କସ୍ତୁରୀ ଆଦିଦ୍ୱାରା ଚିତ୍ର ରଚନା—3. Smearing the body with sandal paste etc. by drawing various figures

**ଯନ୍ତ୍ରଣାକର**—ସ ବଣ. ( ଯନ୍ତ୍ରଣା + କୃ ଧାତୁ + କର୍ତ୍ତୃ. ଅ )—ଦୁଃଖ-
**Jantranākara** ପ୍ରଦ—Giving pang; painful
(ଯନ୍ତ୍ରଣାଦାୟକ, ଯନ୍ତ୍ରଣାପ୍ରଦ—ଅନ୍ୟରୂପ)

**ଯନ୍ତ୍ରଣାଗ୍ନି**—ସ. ବ ( ରୂପକ )—ଅଗ୍ନି ସଙ୍ଗେ ତୁଳନୀୟ ଯାତନା—
**Jantranāgni** Fiery pangs; pang compared to
(ଯନ୍ତ୍ରଣାନଳ—ଅନ୍ୟରୂପ) fire.

**ଯନ୍ତ୍ରଣାଦାତା**—ପୁଂ. ସ. ବଣ. ପୁ ( ଉପପଦ, ଯନ୍ତ୍ରଣା+ଦାତା )—
**Jantranā dātā** ଉତ୍ପୀଡ଼କ—Oppressive; oppres-
(ଯନ୍ତ୍ରଣାଦାୟକ, ଯନ୍ତ୍ରଣାପ୍ରଦ—ଅନ୍ୟରୂପ) sing.
(ଯନ୍ତ୍ରଣାଦାତ୍ରୀ, ଯନ୍ତ୍ରଣାଦାୟିକା, ଯନ୍ତ୍ରଣାପ୍ରଦା—ସ୍ତ୍ରୀ)

**ଯନ୍ତ୍ରଣାଭୋଗ**—ସ. ବ ( ୬ଷ୍ଠୀ ତତ୍ )—କଷ୍ଟଭୋଗ, ଯାତନା ଭୋଗ
**Jantranā bhoga** —The undergoing or suffering of pangs.

**ଯନ୍ତ୍ର ତନ୍ତ୍ର**—ସ. ବ ( ସହଚର )—୧ । ଶିଳ୍ପୀର ଉପକରଣ ଓ ଶସ୍ତ୍ରାଦି—
**Jantra tantra** 1. The materials and contrivances of an artisan or mechanic. ୨ । ଯନ୍ତ୍ର ମନ୍ତ୍ର ( ଦେଖ )—2. Jantra mantra ( See )

**ଯନ୍ତ୍ର ତୋରଣ**—ସ. ବ ( ମ. ପ. ଲୋ )—କଳଦ୍ୱାରା ପରିଚାଳିତ
**Jantra torana** ସିଂହଦ୍ୱାର—A mechanical arch, an arch fitted with contrivance to move it (Apte ).

**ଯନ୍ତ୍ରଦୃଢ଼**—ସ ବ ( ୩ୟା ତତ୍ ) - କଳଣୀ ଦ୍ୱାରା କିଳିତ (ଦ୍ୱାର)—
**Jantradrurdha** (a door) Secured by bolt (Apte).

**ଯନ୍ତ୍ରନାଳ**—ସ. ବ ( ମ. ପ. ଲୋ )—ଯେଉଁ ନଳଦ୍ୱାରା କୂଅଆଦିରୁ
**Jantranāla** ପାଣି ଉଠାଯାଏ—A mechanical tube; a tube for lifting water by machinary.

**ଯନ୍ତ୍ରନିର୍ମାଣ** ସ ବ ( ଯନ୍ତ୍ର+ନିର୍ମାଣ ୬ଷ୍ଠୀ ତତ୍ )—୧ । ଯନ୍ତ୍ର ଗଢ଼ିବା
**Jantra nirmāna** —1. Manufacture of a machine or instrument. ୨ । ଯନ୍ତ୍ର ମାତୃକା ( ଦେଖ )—2. Jantra matrukā ( See )

**ଯନ୍ତ୍ର ନିର୍ମାତା**—ସ. ବ. ପୁଂ—ଯେ ଯନ୍ତ୍ର ତିଆରି କରିଥାଏ; ଯାନ୍ତ୍ରିକ—
**Jantra nirmātā** The manufacturer of an
(ଯନ୍ତ୍ର ନିର୍ମାତ୍ରୀ—ସ୍ତ୍ରୀ) engine; instrument maker.

**ଯନ୍ତ୍ର ପତର**—ଦେ. ବ ( ନିରର୍ଥକ ୨ୟ ସହଚର )—ଯନ୍ତ୍ରାଦି; ଯନ୍ତ୍ର ତନ୍ତ୍ର
**Jantra patara** —Instruments and materials.
(ଯନ୍ତ୍ରପତ୍ର, ଯନ୍ତ୍ର ୱାର୍ତ୍ତି—ଅନ୍ୟରୂପ) যন্ত্রপাতি

**ଯନ୍ତ୍ର ପିତୁଳା(ଳି)**—ଦେ. ବ ( ସ ଯନ୍ତ୍ର + ପୁତ୍ତଳିକା )—ଯନ୍ତ୍ରଚାଳିତ
**Jantra pitulā(li)** ପିତୁଳା—Mechanical doll
[ ଉ—କହୁ ଯନ୍ତ୍ରପିତୁଳା ପରିଚେୟ କରି—ଭଞ୍ଜ. ବୈଦେହୀଶବିଳାସ । ]

**ଯନ୍ତ୍ର ପୁତ୍ରକ ପୁତ୍ରିକା**—ସଂ. ବ ( ମ. ପ. ଲୋ )—ଯନ୍ତ୍ରଦ୍ୱାରା ପରି-
**Jantra putraka(putrikā)** ଚାଳିତ କଣ୍ଢେଇ; କଳ କଣ୍ଢେଇ
ଯନ୍ତ୍ର ପୁତ୍ତଳ } ଅନ୍ୟରୂପ —Mechanical doll; a puppet
ଯନ୍ତ୍ର ପୁତ୍ତଳିକା } furnished with contrivances to move it.

**ଯନ୍ତ୍ର ପେଷଣୀ**—ସ ବ—୧ । ଚକି—1. Grinding mill;
**Jantra peshani** handmill ( Apte ). ୨ । କଳ ଚକି—2. A mill driven by machine

**ଯନ୍ତ୍ର ପ୍ରବାହ**—ସ. ବ ( ମ. ପ. ଲୋ )—ଯନ୍ତ୍ର ପରିଚାଳିତ ବା କୃତ୍ରିମ
**Jantra prabāha** ଜଳସ୍ରୋତ—An artificial stream of water.

**ଯନ୍ତ୍ର ବିଜ୍ଞାନ**—ସ. ବ ( ଆଧୁନିକ )—ଯନ୍ତ୍ର ନିର୍ମାଣ ଓ ପରିଚାଳନାଦିର
**Jantra bijnana** ଜ୍ଞାନ ସମ୍ବନ୍ଧୀୟ ଶାସ୍ତ୍ର—The science of
(ଯନ୍ତ୍ର ବିଦ୍ୟା—ଅନ୍ୟରୂପ) mechanics; mechanics.

**ଯନ୍ତ୍ର ଭୃତ୍ୟ**—ସ. ବ (ଆଧୁନିକ)—ମିଲ୍‌ରେ ବା କଳରେ କାମ କରୁଥିବା
**Jantra bhrutya** କୁଲି—Millhand; workman in a factory.

ଯନ୍ତ୍ର ମନ୍ତ୍ର—ସଂ. ବି.—(ସହଚର)—୧ । ଯନ୍ତ୍ର ଓ ମନ୍ତ୍ର—1 Mystic
Jantra mantra figures and formulas. ୨ ।
यन्त्र मन्त्र ଗୁଣି ଗାରଡ଼—2. Black art.

ଯନ୍ତ୍ରମାତୃକା—ସଂ. ବି.—ଚଉଷଠି କଳା ମଧ୍ୟରୁ ଏକ; ଯନ୍ତ୍ରନିର୍ମାଣ ବିଦ୍ୟା;
Jantra mātrukā ଯେଉଁ କଳାଦ୍ୱାରା ନାନା ଯନ୍ତ୍ର ତିଆରି
କରାଯାଏ—One of the 64 fine arts, namely,
the feat of making many mechanical
domestic devices. (କଳା ଶବ୍ଦ ତଳେ ଟୀକା ଦେଖ)

ଯନ୍ତ୍ର ମାର୍ଗ—ସଂ.ବି. (ମ. ପ. ଲେ)—କୃତ୍ରିମ ନାଳ; କେନାଲ—
Jantra mārga A canal; aqueduct (Apte).

ଯନ୍ତ୍ରରାଜ—ସଂ. ବି. (ଷଷ୍ଠୀ ତତ୍)—୧ । ନକ୍ଷତ୍ର ଓ ଗ୍ରହମାନଙ୍କ ଗତି-
Jantrarāja ଜ୍ଞାପକ ଜ୍ୟୋତିଷିକ ଯନ୍ତ୍ର ବା ଚକ୍ର ବିଶେଷ (ହି.
ଶ)—1. A kind of astronomical diagram.
୨ । ଶ୍ରେଷ୍ଠ ଯନ୍ତ୍ର —2. An excellent machine
or diagram.

ଯନ୍ତ୍ର ଶର—ସଂ. ବି. (ମ ପ. ଲେ)—ଯନ୍ତ୍ର ଦ୍ୱାରା ଫିଙ୍ଗାଯିବା ବାଣ—
Jantra śara An arrow or missile shot off by
means of machinary.

ଯନ୍ତ୍ର ଶାଳା—ସଂ. ବି. (ମ. ପ. ଲେ)—୧ । ବେଧଶାଳା ( ହି. ଶ )—
Jantra śālā 1. Observatory. ୨ । ଅନେକ ପ୍ରକାର
ଯନ୍ତ୍ର ଥିବା ଗୃହ; କାରଖାନା—1 Factory; work-
shop; machine-house.

ଯନ୍ତ୍ର ଶିଳ୍ପ—ସଂ. ବି. (ଅଧୁନିକ)—ଯନ୍ତ୍ରଦ୍ୱାରା କୃତ ଶିଳ୍ପ—Things of
Jantra śilpa art made by means of machi-
nary.

ଯନ୍ତ୍ର ଶିଳ୍ପୀ—ସଂ. ବି. (ଅଧୁନିକ)—ଯନ୍ତ୍ର ପରିଚାଳନରେ ଦକ୍ଷ ବ୍ୟକ୍ତି—
Jantra śilpi A mechanic.

ଯନ୍ତ୍ର ସୂତ୍ର—ସଂ. ବି. (ମ. ପ. ଲେ)—ଯେଉଁ ସୂତା ଦ୍ୱାରା କଳକଣ୍ଢେଇଙ୍କୁ
Jantra sūtra ଚାଳିତ କରାଯାଏ (ହି. ଶ)—A string for
making puppets dance.

ଯନ୍ତ୍ରାଳୟ—ସଂ. ବି. (ମ. ପ. ଲେ)—୧ । କଳ ବା କାରଖାନା ଘର-
Jantrālaya 1. Machinary house; workshop;
factory. ୨ । ମୁଦ୍ରାଯନ୍ତ୍ରାଳୟ—2. Printing
house; press (Apte).

ଯନ୍ତ୍ରୀ—ଦେ. ବି. ( ସଂ. ଯନ୍ତ୍ର )—୧ । ଯନ୍ତ୍ରମନ୍ତ୍ର ବା ଗୁଣିଗାରଡ଼ିରେ
Jantri ପ୍ରୟୋଗ କରାଯିବା ଛୋଟ କାଠି—1. Small twigs
यन्त्री used in the employment of black magic.
यन्त्री [ଉ—ଅଠ ଖଣ୍ଡି କାଠିକି ୧୬ ଖଣ୍ଡି ଯନ୍ତ୍ରି, ଅଭୁକ୍ତମନା
ରକାକୁ ପାଳବନ୍ଧା ମନ୍ତ୍ରୀ । ତଗ ] ୨ । କାଲେଣ୍ଡରୁ; ପନ୍ଥ
ପଞ୍ଜିକା—2. Sheet calender. ପ୍ରାଦେ. (ସମ୍ବଲପୁର)—
ଚକି; ପେଷଣା ଚକି—Grinding mill; hand mill.

ଯନ୍ତ୍ରିକା—ସଂ. ବି. ( ଯନ୍ତ୍ର+କ୍ଷୁଦ୍ରାର୍ଥେ. କ+ଆ )—୧ । ଗୁଆକାଟ—
Jantrikā 1. Nut-cracking contrivance; nut-
cracker. ୨ । ହାତ ଚକି—2. A hand-mill.
୩ । ଛୋଟ କଳ—3. A small machine. ୪ ।
ଯନ୍ତ୍ରକା, ଶାଳୀ—4. Wife's younger sister.
୫ । ଛୋଟ କୋଲପ (ହି ଶ)—5 A small pad-
lock

ଯନ୍ତ୍ରିଣୀ—ସଂ. ବିଣ. ସ୍ତ୍ରୀ (ଯନ୍ତ୍ରୀନ୍+ଈ)—ଯନ୍ତ୍ରୀର ସ୍ତ୍ରୀଲିଙ୍ଗ—
Jantriṇi Feminine of Jantri.
ସଂ. ବି. ସ୍ତ୍ରୀ—୧ । ଯନ୍ତ୍ରୀର ସ୍ତ୍ରୀଲିଙ୍ଗ—1. Feminine
of Jantri. ୨ । ଶାଳୀ—2. One's wife's younger
sister (Apte).

ଯନ୍ତ୍ରିତ—ସଂ. ବିଣ. (ଯନ୍ତ୍ର ଧାତୁ+କର୍ମ. ତ)—୧ । ବଦ୍ଧ—1. Tied;
Jantrita bound; fastened. ୨ । ଶୃଙ୍ଖଳିତ—
2. Fettered; enchained. ୩ । ଦମିତ—
3. Restrained; checked; controlled.
୪ । କୋଲପ ପଡ଼ିଥିବା ବା ଖିଲା ଯାଇଥିବା (ହି. ଶ)—
4. Locked or bolted (door).

ଯନ୍ତ୍ରିତକଥ—ସଂ. ବିଣ. ପୁଂ. (ବହୁବ୍ରୀହି; ଯନ୍ତ୍ରିତ ହୋଇଅଛି କଥା
Jantritakatha ଯାହାର)—ଯାହାକୁ ବାଧ କରି କଥା କହିବା
(ଯନ୍ତ୍ରିତବାକ୍—ଅନ୍ୟରୂପ, ପୁଂ ଓ ସ୍ତ୍ରୀ) ବିଷୟରୁ ବନ୍ଦ କରାଯାଇ
(ଯନ୍ତ୍ରିତ କଥା—ସ୍ତ୍ରୀଲିଙ୍ଗ) ଅଛି—Tongue-tied; forced
to be silent.

ଯନ୍ତ୍ରିବା—ଦେ. (ପଦ୍ୟ) କ୍ରି.(ସଂ ଯନ୍ତ୍ର ଧାତୁ)—୧ । ନିଯୋଜିତ କରିବା—
Jantribā 1. To apply; to join; to attach.
लगाना, जोड़ना (ଉ—ନିଜ ଧନୁର୍ଗୁଣରେ ନେଇଣ ଯନ୍ତ୍ରିଲେ ।
यन्त्रा କୃଷ୍ଣସିଂହ. ମହାଭାରତ. ବନ ।) ୨ । ଯନ୍ତ୍ରଣା ପାଇବା;
यन्त्रा କଷ୍ଟ ପାଇବା—2. To suffer pain or anguish.
[ଉ—ସଂସାର ଅନୁତାପେ ଯନ୍ତ୍ରି
ସୁହୃଦ ଭକ୍ତି ମାର୍ଗେ ଚଳନ୍ତି
ହୃଦରେ ସ୍ଥାପି ତୋର ରୂପ
ଦେଖେ ସ୍ୱତନ୍ତ୍ର ଭକ୍ତ ଭାପ । ଜଗନ୍ନାଥ. ଭାଗବତ ।]

ଯନ୍ତ୍ରୀ—ସଂ. ବିଣ. ପୁଂ. (ଯନ୍ତ୍ର+ଅସ୍ତି ଅର୍ଥରେ ଇନ୍, ୧ମା. ୧ବ)—୧ ।
Jantri ଯନ୍ତ୍ରଯୁକ୍ତ—1. Having instrument. ୨ । ଚକ୍ରାନ୍ତ-
(ଯନ୍ତ୍ରିଣୀ—ସ୍ତ୍ରୀ) କାରୀ—2. Conspiring; designing;
plotting. ୩ । ଯନ୍ତ୍ର ସମ୍ବନ୍ଧୀୟ—3. Mechanical;
instrumental. ୪ । ଧୂର୍ତ୍ତ—4. Ingenuous;
crafty. ୫ । ଉଦ୍ଭାବନଶୀଳ—5. Inventive;
projecting. ୬ । ଜିନ୍ ଓ ଲଗାମ ଆଦିରେ ସଜ୍ଜିତ
(ଘୋଡ଼ା)—6. Harnessed; furnished with
trappings (Apte). ୭ । ତେଉଁରିଆ ଦ୍ୱାରା ସୁରକ୍ଷିତ
(ବ୍ୟକ୍ତି)—7. ( a person ) Protected by
charms or amulet, ୮ । ଉତ୍ପୀଡ଼ନକାରୀ—8.
Tormenting. ୯ । ନିୟନ୍ତ୍ରଣକାରୀ—9. Restrain-
ing; controlling. ବି.ପୁଂ.—୧ । ଶିଳ୍ପକାର; ଶିଳ୍ପୀ—
1. A mechanic; an artisan. ୨ । ଯନ୍ତ୍ରସ୍ୱାମୀ—

2. The master of a machine. ୩ । ଯନ୍ତ୍ରକୁଶଳ ବ୍ୟକ୍ତି—3. An engineer. ୪ । କୌଣସି ଅନୁଷ୍ଠାନର ସୂତ୍ରଧର ବ୍ୟକ୍ତି—4. The superintendent or head of an institution. ୫ । ଯନ୍ତ୍ରସ୍ଥ ବାଦକ—5. A musician. ୬ । କଳ କାରଖାନା ଘରର ମାଲିକ, ମେନେଜର; ଯନ୍ତ୍ର ଚଳନା ସମ୍ବନ୍ଧେ ତତ୍ତ୍ୱାବଧାରକ; ପ୍ରଧାନ ଚାଳକ—6. Manager of a workshop or factory. ୭ । ଗୁଣୀ ଜନ—7. A wise man. ୮ । ଚକ୍ରାନ୍ତକାରୀ; ମେଳଖିଆ—8. A conspirator, a plotter. ୯ । ପଞ୍ଜିକା—9. An almanac. ୧୦ । ସଣ୍ଡୁଆସି; ଚିମୁଟା—10. A pair of tongs ୧୧ । ଗୁଣିଆ; ତନ୍ତ୍ର ମନ୍ତ୍ରରେ ପ୍ରବୀଣ ବ୍ୟକ୍ତି (ହି. ଶ)—11. A person skilled in the art of magic or in applying charms. ୧୨ । ନିୟାମକ ବ୍ୟକ୍ତି—12. A controller; regulator. ଦେ. ବି—୧ । ଯନ୍ତ୍ରବିଦ୍ୟାରେ ବ୍ୟବହୃତ ମନ୍ତ୍ର କାଠି କରିବା କ୍ରମରେ ତହିଁ ସଙ୍ଗେ ପ୍ରୟୋଗ କରାଯିବା ଉପାୟ—1. Charms accompanying magical incantations. ୨ । ଯେଉଁ ଫଳକରେ ବା ପଟ୍ଟରେ ବର୍ଷର ବା ମାସର ସମସ୍ତ ଦିବସର ପାଞ୍ଜି ଲେଖାଥାଏ—2. Calendar, wallcalendar. ପ୍ରାଦେ (ସମ୍ବଲପୁର) ବି—ଚକି—Grinding stone; handmill.

ଯନ୍ତ୍ରୀ
ଯନ୍ତ୍ରୀ
ରୋଜା
ଜାନ୍ତୁଗରଗୁଣୀ

**ଯବ୍‌ତକ୍‌**—ବୈଦେ. କ୍ରି. ବିଣ (ଉର୍ଦ୍ଦୁ)—ଯେବଯାଏ; ଯେତେବେଳ Jab-tak ପର୍ଯ୍ୟନ୍ତ; ଯେତେବେଳ ଯାକେ—Till which time. (ଯବ୍‌ତଲକ୍‌—ଅନ୍ୟରୂପ) यतक्षन्‌ जब तक्‌

**ଯବ**—ସ. ବି (ଯୁ ଧାତୁ ମିଶ୍ରିତ କରିବା + କର୍ତ୍ତୃ. ଅ)—୧ । କୃଷିଜାତ Jaba ଶୂକଧାନ୍ୟ, ଯଅଧାନ—1. Barley; Hordeum Vulgare; Hordeum Haxasticum. [ଦ୍ର—ଏହା ଧାନ୍ୟାଦିବର୍ଗର ପ୍ରସିଦ୍ଧ କୃଷିଜାତ ଶସ୍ୟ । ଏହାର କେଣ୍ଡାରେ ଛଅ ଧାଡ଼ି ଶସ୍ୟ ଫଳେ । ଏହାକୁ ଚୂର ପିଠା ଓ ଜାଉ ଆଦି କରି ଖିଆଯାଏ । ଯେଉଁ ଯବ ଧାନର ଶୂକ (ଶିଂଘ) ଥିଲା ତାହାର ନାମ ଯବ; ଶୂକଶୂନ୍ୟ ଯବକୁ ଅତିଯବ, ହରିଦ୍‌ବର୍ଣ୍ଣ ଯବକୁ ତୋକ୍ୟ ଓ ଶ୍ରେଷ୍ଠ ଯବକୁ ସ୍ୱଳ୍ପଯବ ବୋଲାଯାଏ । ବୈଦ୍ୟଶାସ୍ତ୍ରମତରେ ଏହା କଷାୟ-ମଧୁର, ଶୀତଳ, ଲେଖନ ଗୁଣଯୁକ୍ତ, ମୃଦୁବୀର୍ଯ୍ୟ, ବ୍ରଣରୋଗରେ ତିଳପରି ହିତକର, ରୁକ୍ଷ, ଅଗ୍ନିବର୍ଦ୍ଧକ, କଟୁବିପାକ; ଅନଭିଷ୍ୟନ୍ଦୀ, ସ୍ୱରପ୍ରସାଦକ, ବଳକାରକ, ଗୁରୁ ଓ ବାୟୁର ଏବଂ ମଳର ଅତିଶୟ ବର୍ଦ୍ଧକ, ବର୍ଣ୍ଣପ୍ରସାଦକ, ଶରୀରର ସ୍ଥିରତାସମ୍ପାଦକ ଓ ପିଚ୍ଛିଳ । ଏହା କଣ୍ଠରୋଗ, ଚର୍ମରୋଗ, ପିତ୍ତ, ମେଦଃ, ପୀନସ, ଶ୍ୱାସ, କାସ, ଉରୁସ୍ତମ୍ଭ, ରକ୍ତଦୋଷ ଓ ତୃଷ୍ଣାନାଶକ । ନୂତନ ଯବ ହିତକର । ଦୁଇ ବର୍ଷର ପୁରୁଣା ଯବ ନିରସ, ରୁକ୍ଷ ଓ ଗୁଣହୀନ ହୁଏ । ପୁରୁଣା ଯବ ରୋଗୀର ପଥ୍ୟ—ଦ୍ରବ୍ୟଗୁଣ । ] ୨ । ପରିମାଣ ବା ଓଜନ ବିଶେଷ, (ଏହା ୪ ଧାନ ବା ୬ ସୋରିଷର ଓଜନ ସଙ୍ଗେ ସମାନ)—2. A unit of weight representing the weight of a barley corn or 4 paddy seeds or 6 mustard seeds. ୩ । ହାତ ଆଙ୍ଗୁଠିର ପବ-ସନ୍ଧିମାନଙ୍କରେ ଥିବା ଯବାକାର ରେଖା—3. Natural lines on the joints of the fingers of the human hand, resembling barley corn and indicative of the possessor's prosperity, according to palmistry. [ଦ୍ର—ସାମୁଦ୍ରିକ ଶାସ୍ତ୍ର ଅନୁସାରେ ଏହି ସବୁ ରେଖାରୁ ଧନ, ସନ୍ତାନ, ସୌଭାଗ୍ୟାଦି ସୂଚିତ ହୁଏ ।] ୪ । ଦୈର୍ଘ୍ୟ ପରିମାଣ ବିଶେଷ, ଯବଧାନକୁ ଚଉଡ଼ା ବାଗରେ ରଖିଲେ ତାହା ଯେତେ ସ୍ଥାନ ଅଧିକାର କରେ ସେତିକି ପରିମାଣ; ଯବୋଦର ପରିମିତ ଦୈର୍ଘ୍ୟ—4. A unit of length = $\frac{1}{8}$ of an inch. ୫ । ବେଗ—5. Velocity; speed. ୬ । ଦ୍ୱିପୃଷ୍ଠପୃଷ୍ଠ କାଚ—6. A double convex lens. ୭ । ଯବ ଦ୍ୱୀପ—7. The island of Jāva. ୮ । ଦୁଇ ମୁଣ୍ଡ ସରୁଆ ଓ ମଝି ମୋଟା ହୋଇଥିବା ବସ୍ତୁ (ହି. ଶ)—8. Anything tapering to a narrow point at each end and swollen in the middle. ପ୍ରାଦେ (ବାମଣ୍ଡା) ବିଣ—ବହୁତ—Great, much; many.

ଯବ, ଯ
जौ, जई
ଅନ୍ୟ ସ ନାମ—ଅକ୍ଷତ, କଥୁକା, ତୀକ୍ଷ୍ଣଶୂକ, ତୁରଗ ପ୍ରିୟ, ଧାନ୍ୟରାଜ, ଦିବ୍ୟ, ପବିତ୍ରଧାନ୍ୟ, ମହେଷ୍ଟ, ମେଧ୍ୟ, ଶକ୍ତୁ, ଶୀତଶୂକ, ସିତଶୂକ ।
ତେ. ଯବଲଲେଣ୍ଡୁ ଧାନ୍ୟମୁ, ବାର୍ଲିବିଯ୍ୟମ
ମ. ଜବ, ଜୌଁ
ତା. ବାର୍ଲିଅରସୁ
ଗୁ. ଜବ
ବା. ଜବ
ଅ. ଶଇର୍‌

**ଯବକ**—ସ. ବି (ଯବ + ସ୍ୱାର୍ଥେ. କ)—ଯବଧାନ—Barley. Jabaka

**ଯବକ୍ୟ (କ୍ୟା)**—ସ. ବିଣ (ଯବକ + ଯ:+ଅ)—ଯବ ଶସ୍ୟ ଜନ୍ମିବାର Jabakya(kyā) ଉପଯୁକ୍ତ (କ୍ଷେତ୍ର)—(a field) Fit for producing barley

**ଯବକ୍ରୀତ**—ସ. ବି—ମୁନି ବିଶେଷ; ଭରଦ୍ୱାଜ ମୁନିଙ୍କ ପୁତ୍ର—Name of Jabakrita a sage; son of sage Bharadwāja. (ଦ୍ର—ଭରଦ୍ୱାଜଙ୍କର ପୁତ୍ର ଯବକ୍ରୀତ । କୃଷ୍ଣସିଂହ. ମହାଭାରତ. ବନ ।)

**ଯବକ୍ଷାର**—ସ. ବି (ଯବ + କ୍ଷାର=ପାଉଁଶ)—[ଦ୍ର—ଏହା ଦଗ୍ଧ ଯବରୁ Jaba kshāra ଉତ୍ପନ୍ନ ହୁଏ ବୋଲି କିମ୍ବା ମତାନ୍ତରରେ ଏହାର ଦାନା (crystal) ସବୁ ଯବ ପରି ଲମ୍ବା ଥିବାରୁ ଏହାକୁ ଯବକ୍ଷାର କୁହାଯାଏ ।]—୧ । ଯବ ଉଦ୍ଭିଜ୍ଜାତ (ବିଶେଷତଃ ଯବଶୂକ ଉଦ୍ଭିଜ୍ଜାତ) କ୍ଷାର—1. Carbonate of potash; Potassium car-

(ଯବଖାର—ଦେଶଜରୂପ)
यवखार;
साजी, सोरा, जवाखार
ଅ. ନୂତରୁନ୍‌
ତେ. ଯବକ୍ଷାରମ୍‌
ମ—ଜବଖାର

ଗୁ—ଜବଖାର୍
[ଅନ୍ୟ ସଂ. ନାମ—
କ୍ଷାର, ତକ୍ଷ, ଖାର୍ଣରସ,
ପାକ୍ୟ, ରେଚକ, ସାରକ,
ଯାବଶୂକ.]
ଯବନାଳଜ (କ)
ଯବଶୂକଜ
ଯବାଗ୍ରଜ
ଯବାପତ୍ୟ
ଯବାଶକ
ଯବାହ୍ୱ
} ଅନ୍ୟରୂପ

bonate. ୨ । ସୋରା—2. Potassium nitrate; nitre. [ ଦ୍ର—ବୈଦ୍ୟଶାସ୍ତ୍ର ମତରେ ଏହା ଲଘୁ, ସ୍ନିଗ୍ଧ ଓ ଅଗ୍ନିଦୀପକ; ଏବଂ ଶୂଳ, ବାୟୁ, ଆମଦୋଷ, କଫ, ଶ୍ୱାସ, ଗଳରୋଗ, ପାଣ୍ଡୁ, ଅର୍ଶଃ, ଗ୍ରହଣୀ, ଗୁଳ୍ମ, ଆନାହ, ପ୍ଲୀହା ଓ ହୃଦ୍ରୋଗ-ବିନାଶକ । ]—[ଦ୍ର—ଯବଧାନର ଶିଂଘ ପୋଡ଼ିକରି ପ୍ରସ୍ତୁତ କ୍ଷାର ପ୍ରକୃତରେ Potassium carbonate; କିନ୍ତୁ ହିନ୍ଦୀରେ, ଓଡ଼ିଆରେ ଓ ବଙ୍ଗଳାରେ ଯବକ୍ଷାରର ନାମାନ୍ତର ସୋରା ବା Potassium Nitrate ହୋଇଅଛି । ଗୁହାଳ ଘରର କାନ୍ଥ ଓ ମୂତଜଳା ଖାଖର କାନ୍ଥ ଯାହାକୁ ଲୋକେ ଲୁଣି ମାରି ଯାଇଥିବା କହନ୍ତି ଓ ଯାହାର ମାଟି ଧଳା ପଡ଼ିଯାଇ ଝୁରୁ ଝୁରୁ (ଚୂନା) ହୋଇ ଖସି ପଡ଼ୁଥାଏ ତାକୁ ଗୁଣ୍ଡି କରି ପାଣିରେ ବତୁରାଇ ସିଝାଇଲେ ହାଣ୍ଡି ତଳେ ଦାନା (ଓଡ଼ିଆ ପଗଡ଼—ସଂ. ପ୍ରଗ୍ରହ) ବସିଯାଏ, ତାକୁ ଯବକ୍ଷାର କହନ୍ତି । ଯବକ୍ଷାରକୁ ଅଙ୍ଗାର ଓ ଗନ୍ଧକଚୂନା ସଙ୍ଗେ ମିଶାଇଲେ ବାରୁଦ ହୁଏ । ଯବକ୍ଷାର ମଧ୍ୟ ଔଷଧରେ ଲାଗେ । ପ୍ରସ୍ରାବ ନ ହେଉଥିଲେ ଲାହମୂତ୍ରାରେ ଯବକ୍ଷାର ବୋଳିଲେ ବା ଯବକ୍ଷାର ପାଣି ପିଇଲେ ପ୍ରସ୍ରାବ ହୁଏ ।)

**ଯବକ୍ଷାରଜ**—ସଂ. ବି (ଆଧୁନିକ)—ଯବକ୍ଷାରରୁ ଉତ୍ପନ୍ନ—Nitrous; nitric.
Jabakshāraja

**ଯବକ୍ଷାରଜ(ଜା)ନ**—ସଂ.ବି(ଆଧୁନିକ)—ବାୟୁର ଗୋଟିଏ ପ୍ରଧାନ ମୌଳିକ ବାଷ୍ପ-ଉପାଦାନ—Nitrogen. [ଦ୍ର—ବାୟୁର ଅନ୍ୟ ଉପାଦାନ ଅମ୍ଳଜାନ ବା ଅକ୍ସିଜେନ୍ ବାଷ୍ପ ।)
Jabakshāraja(jā)na

**ଯବକ୍ଷାର ଦ୍ରାବକ**—ସଂ.ବି (ଆଧୁନିକ)—ଯବକ୍ଷାରରୁ ରାସାୟନିକ ପ୍ରକ୍ରିୟା ଦ୍ୱାରା ପ୍ରସ୍ତୁତ ଖଟା ଦ୍ରବ୍ୟ—(ଯବକ୍ଷାରଜାମ୍ଳ;ଯବକ୍ଷାରାମ୍ଳ—ଅନ୍ୟରୂପ) Nitric acid; acqua fortis.
Jabakshāra drābaka

**ଯବକ୍ଷୋଦ**—ସଂ. ବି (୬ଷ୍ଠୀ ତତ୍)—ଯବର ଚୂନା; ବାର୍ଲି—Barley-meal.
Jaba kshoda (ଯବଚୂର୍ଣ୍ଣ, ଯବପିଷ୍ଟ—ଅନ୍ୟରୂପ)

**ଯବଖାର**—ଦେ. ବି (ସଂ. ଯବକ୍ଷାର)—ଯବକ୍ଷାର (ଦେଖ) Jabakshāra (See)
Jabakhāra

**ଯବଗଣ୍ଡ**—ସଂ. ବି. (ଯବ =ଯବାକାର+ଗଣ୍ଡ =ଗଣ୍ଡ ସ୍ଥଳଜ)—ଯୁବଗଣ୍ଡ; କାଠ ବରୁଣ—Pimples on the face of young people.
Jaba gaṇḍa

**ଯବ ଚତୁର୍ଥୀ**—ସଂ. ବି—ବୈଶାଖ ଶୁକ୍ଳ ଚତୁର୍ଥୀ—The 4th day of the bright lunar fortnight of Baiśākha.
Jaba chaturthi

**ଯବଜ**—ସଂ. ବି (ଯବ+ଜନ୍ ଧାତୁ+କର୍ତ୍ତୃ ଅ)—୧ । ଯବକ୍ଷାର—1. Nitre. ୨ । ଯୁଆଣି—2. Ajwān. ୩ । ତବକ୍ଷୀର; ପାଲୁଅ; ଅରାରୁଟ (ଦ୍ରବ୍ୟଗୁଣ)—3. Arrow-root. (ଦ୍ର—ଏହାର ଅନ୍ୟ ସଂ. ନାମ ଓ ତବକ୍ଷୀର, ପୟଃକ୍ଷୀର, ଗବସ୍ତୋଦ୍ଭବ, ଗୋଧୂମଜ, ପିଷ୍ଟିକାତଣ୍ଡୁଳୋଦ୍ଭବ, ତାଳ ସମ୍ଭୂତ, ତାଳକ୍ଷୀର ।)
Jabāja

ତବକ୍ଷୀବ
ତବାଶୀର
ମ. ତବକୀଲ
ଗୁ. ତବଖୀର
ଫା. ତବାସୀର

ବୈଦ୍ୟଶାସ୍ତ୍ରମତରେ ଏହା ମଧୁର-ରସ, ଶୀତବୀର୍ଯ୍ୟ; ଏବଂ ଦାହ, ପିତ୍ତ-ଦୁଷ୍ଟି, କ୍ଷୟ, କାସ, କଫ, ଶ୍ୱାସ ଓ ରକ୍ତଦୁଷ୍ଟି ନାଶକ—ଦ୍ରବ୍ୟଗୁଣ )

**ଯବତିକ୍ତା**—ସଂ.ବି.—ଭୁଇଁ ନିମ୍ବ;ବାସକାଦି ବର୍ଗର ବର୍ଷାୟୁଃ ଶାକ ବିଶେଷ—(ଭଦ୍ରତିକ୍ତା ଦେଖ)—Andro graphis Paniculata (plant).
Jabatiktā

**ଯବଦୋଷ**—ସଂ.ବି—ରତ୍ନର ଦୋଷବିଶେଷ; କେତେକ ରତ୍ନର ଦେହରେ ପଡ଼ିବା ଯବାକାର ରେଖା—A line like a barley-grain appearing on some gems and considered as a blemish.
Jabadosha

**ଯବଦ୍ୱୀପ**—ସଂ. ବି-(ମ. ପ. ଲୋ; ଯବାକୃତିଦ୍ୱୀପ)—ଭାରତ ମହାସାଗରସ୍ଥ ସୁମାତ୍ରା ଓ ଅଷ୍ଟ୍ରେଲିଆର ଅନ୍ତର୍ବର୍ତ୍ତୀ ଜାଭାଦ୍ୱୀପ—The Java island in the Indian archipelago. [ଦ୍ର—ଏହା ଯବାକାର ଥିବାରୁ ଏହି ଦ୍ୱୀପକୁ ଯବଦ୍ୱୀପ କୁହାଯାଏ; ଯବଦ୍ୱୀପ ବିଷୟ ବାଲ୍ମୀକି ରାମାୟଣରେ ଅଛି । ପୂର୍ବକାଳରେ ଯବଦ୍ୱୀପ ସଙ୍ଗେ ଭାରତବର୍ଷର ବାଣିଜ୍ୟ ସମ୍ବନ୍ଧ ଥିବାର ଐତିହାସିକ ପ୍ରମାଣ ମିଳୁଅଛି । ଭାରତର କଳିଙ୍ଗବାସୀମାନେ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଯବଦ୍ୱୀପରେ ଉପନିବେଶ ସ୍ଥାପନ କରିଥିଲେ । ଯବଦ୍ୱୀପରେ ଅଦ୍ୟାବଧି ହିନ୍ଦୁ ଦେବାଳୟମାନଙ୍କର ଭଗ୍ନାବଶେଷ ରହିଅଛି । ଓଡ଼ିଆମାନେ ପୂର୍ବେ ବୋଇତରେ ଯବଦ୍ୱୀପ ପର୍ଯ୍ୟନ୍ତ ଯାଇ ବାଣିଜ୍ୟ କରୁଥିବାର ମଧ୍ୟ ପ୍ରମାଣ ମିଳୁଅଛି । ବର୍ତ୍ତମାନ ଯାଭାବାସୀମାନେ ମୁସଲମାନ ଧର୍ମାବଲମ୍ବୀ, କିନ୍ତୁ ଅଦ୍ୟାପି ଯାଭାଦ୍ୱୀପର ଅଧିବାସୀମାନେ ପ୍ରାଚୀନକାଳରେ କ୍ଲିଙ୍ଗ୍ ବା କଳିଙ୍ଗଦେଶରୁ ଯାଇ ଥିବାର ପରିଚୟ ଦିଅନ୍ତି ଓ ସେଠାରେ ସଂସ୍କୃତ ଭାଷାର ଖୋଦିତ ଲିପିମାନ ମିଳୁଅଛି । ଯାଭା ନିକଟବର୍ତ୍ତୀ ବାଲିଦ୍ୱୀପରେ ବର୍ତ୍ତମାନ ହିନ୍ଦୁ ଅଛନ୍ତି ଓ ହିନ୍ଦୁ ସମାଜସ୍ଥ ଚାରି ଜାତିର ଭେଦ ସେଠାରେ ଅଛି । ଯାଭାଦ୍ୱୀପରେ ସଂସ୍କୃତ ଧର୍ମ ପୁସ୍ତକ ଓ କବିତାମାନ ମିଳିଅଛି ।]
Jaba dwipa

**ଯବନ**—ସଂ. ବି (ଯୁ ଧାତୁ=ମିଶ୍ରିତ କରିବା+କର୍ମ. ଅନ)—୧ । ଗୋଧୂମ; ଗହମ—1. Wheat. ୨ । ଗାଜର; ଶାକବିଶେଷ; ଗାଜର—2 Carrot. ୩ । ୟୁନାନ୍ ଦେଶ; ଦେଶବିଶେଷ; ଆରବ, ପାରସ୍ୟ, ତୁରସ୍କ ଓ ଗ୍ରୀସ୍‌ଦେଶ—3. Arabia, Persia, Turkey and Ionia ( Greece ). ୪ । ( + ଅଧିକରଣ ଅନ )—ମ୍ଲେଚ୍ଛଜାତି, ଅହିନ୍ଦୁ; ବିଦେଶୀୟ ଜାତି—4. Non-Hindu foreigners. [ ଦ୍ର—ଯୁଧାତୁ=ମିଶ୍ରିତ କରିବା+ଅଧିକରଣ ଅନ, ଯବନମାନେ ଚାତୁର୍ବର୍ଣ୍ୟ-
Jabana (ଯବନୀ—ସ୍ତ୍ରୀ)

ବ୍ୟବସ୍ଥା ରହିତ ହୋଇ ସମସ୍ତେ ଏକତ୍ର ମିଶି ଜାତିସଙ୍କରରେ ଆହାରାଦି କରନ୍ତି ବୋଲି, କମ୍ବା ଯୋନି+ଜାତାର୍ଥେ ଅନ =ଯବନ; ପୁରାଣାଦି ମତରେ ବଶିଷ୍ଠଙ୍କ ଧେନୁର ଯୋନିରୁ ଜାତ ହୋଇ ଏ ଜାତି ପ୍ରଥମେ ସୃଷ୍ଟ ହୋଇ ଥିବାରୁ; କମ୍ବା 'ଯୌନ=ୟୋନିଆ=ଆଇଓନିଆନ୍‌ଦ୍ୱୀପ=ଗ୍ରୀସ୍ ଦେଶର ଅଧିବାସୀ ଥିବାରୁ ଏହି ନାମ ହୋଇଅଛି । ଯବନମାନଙ୍କ ସମ୍ବନ୍ଧେ ପୁରାଣରେ ବର୍ଣ୍ଣିତ ଅଛି ଯେ, ବିଶ୍ୱାମିତ୍ର ରାଜର୍ଷି ହେବାର ବହୁକାଳ ପୂର୍ବେ ଥରେ ବଶିଷ୍ଠଙ୍କ ଆଶ୍ରମକୁ ଯାଇ ସେଠାରେ ବଶିଷ୍ଠଙ୍କ କାମଧେନୁ (ସୁରଭି ଦୁହିତା)ର କାମଧେନୁତ୍ୱ ଶକ୍ତି ଦେଖି ଲୁବ୍‌ଧ ହୋଇ ବଶିଷ୍ଠଙ୍କୁ ସେହି ଗାଈଟି ମାଗିଲେ । ବଶିଷ୍ଠ ନାହିଁ କରିବାରୁ ବିଶ୍ୱାମିତ୍ର ଯୁଦ୍ଧ କରିବାକୁ ପ୍ରସ୍ତୁତ ହୁଅନ୍ତେ, ବଶିଷ୍ଠ ଏହି ଆସନ୍ନ ବିପଦ ବିଷୟ କାମଧେନୁଙ୍କୁ ଜଣାଇଲେ । କାମଧେନୁ ବିଶ୍ୱାମିତ୍ରଙ୍କ ସୈନ୍ୟଙ୍କୁ ପରାଭୂତ କରିବାପାଇଁ ସ୍ୱୀୟ ଯୋନିରୁ ଗୁଡ଼ିଏ ଯୋଦ୍ଧା ଜାତ କଲେ ଏବଂ ସେହି ଯୋଦ୍ଧାମାନେ ଯବନ ନାମରେ ଅଭିହିତ ହେଲେ । ପକ୍ଷାନ୍ତରରେ ବିଷ୍ଣୁପୁରାଣରେ ଲେଖା ଅଛି ଯେ, ଗୁରୁତର ଅପରାଧ ହେତୁରୁ ଶକ, କାମ୍ବୋଜ, ପାରଦ, ଦରଦ, ବର୍ବ୍ବର, ପହ୍ଲବ, କେରଳଆଦି ଜାତୀୟ କେତେକ ପାଷଣ୍ଡଙ୍କର ମସ୍ତକ ମୁଣ୍ଡନ କରି ସଗର ରାଜା ସେମାନଙ୍କୁ ନିର୍ବାସନାଜ୍ଞା ଦେଇଥିଲେ; ସେହିମାନେ ଭାରତରୁ ବହିଷ୍କୃତ ହୋଇ ଯବନ ଆଖ୍ୟା ଧାରଣ କରିଥିଲେ । ସମ୍ଭବତଃ ଉକ୍ତ ଅପରାଧୀମାନଙ୍କ ଯୌନ ସମ୍ବନ୍ଧରେ ଓ ଆହାରାଦିରେ ମିଶ୍ରଣ ଦୋଷ ସ୍ପର୍ଶ କରିଥିବାରୁ ସେମାନେ ଏ ରାଜଦଣ୍ଡ ପାଇଥିଲେ । ଫଳତଃ ହିନ୍ଦୁମାନେ କାବୁଲଠାରୁ ଗ୍ରୀସ୍‌ଦେଶର ପଶ୍ଚିମ ଭାଗରେ ଅବସ୍ଥିତ ଆୟୋନିଆ (ୟୋନିଆ) ଦ୍ୱୀପ ପର୍ଯ୍ୟନ୍ତ ଅଞ୍ଚଳର ଅଧିବାସୀ ଗ୍ରୀକ୍‌ମାନଙ୍କୁ 'ଯବନ' ଆଖ୍ୟା ପ୍ରଦାନ କରିଥିବାର ପ୍ରମାଣ ମିଳେ ଓ ପରେ ୟିହୁଦୀ (Jews), ତୁର୍କ (Turks), ପାର୍ଶୀ (Persian) ଓ ମୁସଲମାନ୍, ଖ୍ରୀଷ୍ଟାନ୍ ଆଦି ବିଧର୍ମୀମାନଙ୍କୁ ଏହି ଆଖ୍ୟା ପ୍ରଦାନ କରିଥିଲେ । ତୁଳନାକର—ହିବ୍ରୁ—ଯବନ୍, ଗ୍ରୀକ୍—ଆୟୋନିଆନ୍, ସଂସ୍କୃତ—ଯବନ, ପ୍ରାକୃତ—ୟୋନ୍ ବା ଯୋନ୍, ଆରବୀ ୟୁନାନ୍ । ପୁରୀ ଦେଉଳରେ ରକ୍ଷିତ ମାଦଳାପାଞ୍ଜିରୁ ଦେଖାଯାଏ ଯେ ଖ୍ରୀଷ୍ଟାବ୍ଦର ତୃତୀୟ, ଚତୁର୍ଥ ଶତାବ୍ଦୀ ମଧ୍ୟରେ ଓଡ଼ିଶାକୁ ଯବନମାନେ ଆକ୍ରମଣ କରିଥିଲେ ଓ ପ୍ରାୟ ୫୦ ବର୍ଷକାଳ ଉତ୍କଳରେ ରାଜତ୍ୱ କରିଥିଲେ, ରକ୍ତବାହୁ ନାମକ ଜଣେ ଯବନରାଜ ଅର୍ଣ୍ଣବପୋତରେ ଚଢ଼ି ଓଡ଼ିଶାକୁ ଆକ୍ରମଣ କରିଥିଲେ ଓ ପଞ୍ଚମ ଶତାବ୍ଦୀରେ ଯଯାତିକେଶରୀ ଯବନମାନଙ୍କୁ ତଡ଼ି ଦେଇ ଉତ୍କଳର ସ୍ୱାଧୀନ ହିନ୍ଦୁ ରାଜା ହୋଇଥିଲେ । ] ୫ । ୟୁନାନ୍ ଦେଶବାସୀ ବ୍ୟକ୍ତି—5. A non-Hindu; an Ionian; a Greek. ୬ । (ନାମ) କାଳଯବନ—6. Name of a non-Hindu king of ancient India. [ ଦ୍ର—ଏ ମହାଦେବଙ୍କ ବର ପ୍ରଭାବରୁ ମହାପରାକ୍ରମଶାଳୀ ଯବନ ରାଜା ଥିଲେ । ଶ୍ରୀକୃଷ୍ଣଙ୍କ କୌଶଳରେ ରାଜା ମୁଚୁକୁନ୍ଦଙ୍କ କୋପରେ ଏ ଭସ୍ମୀଭୂତ ହୋଇଥିଲେ । ] ୭ । ମୁନି-ବିଶେଷ—7. Name of a sage. ୮ । (ଜୁ ଧାତୁ =ବେଗରେ ଗତି କରିବା+ଭାବ.ଅନ)—ବେଗ—8. Speed; velocity. ୯ । (+କର୍ତ୍ତୃ. ଅନ)—ବେଗବାନ୍ ଅଶ୍ୱ—9. A fleet horse; steed. ସଂ. ବି—ବେଗବାନ୍—Speedy; swift-footed.

**ଯବନ ଦ୍ୱିଷ୍ଟ**—ସଂ. ବି—ଗୁଗ୍‌ଗୁଳ—
Jabana dwishta Bdellium.

**ଯବନ ପୁର**—ଦେ. ବି—ଆଲେକ୍‌ଜାଣ୍ଡ୍ରିଆର ପ୍ରାଚୀନ ଭାରତୀୟ ନାମ—
Jabana pura The ancient Indian name of Alexandria.

**ଯବନପ୍ରିୟ**—ସଂ. ବି—ମରିଚ—Black pepper.
Jabana priya

**ଯବନାଚାର୍ଯ୍ୟ**—ସଂ. ବି.—ଜ୍ୟୋତିଃଶାସ୍ତ୍ର ଗ୍ରନ୍ଥ ପ୍ରଣେତା ଜନୈକ
Jabanāchārjya ପଣ୍ଡିତ;—(ଦ୍ର—ବରାହ ମିହିର ତାଙ୍କ ଗ୍ରନ୍ଥରେ ଯବନାଚାର୍ଯ୍ୟଙ୍କ ମତର ସୂଚନା ଦେଇ ଅଛନ୍ତି; ସମ୍ଭବତଃ ଏତଦ୍ୱାରା ଟଲେମୀ (Ptolemy) ଆଦି ଗ୍ରୀକ୍ ଜ୍ୟୋତିଷିକ ପଣ୍ଡିତମାନଙ୍କୁ ଲକ୍ଷ୍ୟ କରାଯାଇ ଅଛି ।)—An author on astronomy quoted by Barāhamihira and other Hindu astronomers.

**ଯବନାନୀ**—ସଂ. ବି (ଯବନ+ଆନୀ)—୧ । ଆରବୀ, ପାର୍ଶୀ, ଗ୍ରୀକ୍ ଆଦି
Jabanāni ଯାବନିକ ଲିପି—1. The alphabet of the Jabanas, (Arabic, Persian, Greek)—(ଦ୍ର—ପାଣିନିରେ ଯବନାନୀ ଲିପିର ଉଲ୍ଲେଖ ଅଛି—(ହି. ଶ)—୨ । ୟୁନାନୀ ଭାଷା—2 The language of the Jabanas. ସଂ. ବିଣ—ଯବନଦେଶୀୟ; ୟୁନାନୀ—Relating to the Jabana country.

**ଯବନାରି**—ସଂ. ବି (ଯବନ=କାଳଯବନ+ଅରି; ୬ଷ୍ଠୀ ତତ୍)—
Jabanāri ଶ୍ରୀକୃଷ୍ଣଙ୍କ ନାମାନ୍ତର—A name of Śrikṛushna.

**ଯବନାଳ**—ସଂ. ବି. (ଯବ+ନାଳ; ଯବ ପରି ନାଡ଼ି ଯାହାର)—
Jabanāla ୧ । ଧାନ୍ୟ ବିଶେଷ; ଦେଧାନ; ବାଜରା; ଜୁଆର; (ଅନ୍ୟସଂଯମ; ଦେବଧାନ୍ୟ (ଆଖୁଗଛ ପରି ଗଛ । ଏହାର ଡାଙ୍ଗ ଯାବନାଳ; ଜୋନ୍ଧାଲା; ମଞ୍ଜ ଥିବାରୁ ଗୋରୁଙ୍କ ଖାଦ୍ୟ ହୁଏ ।) ଯୋନାଳ; ଜଣ୍ଡିାଦୁୟ) 1 Broom Corn; Sorghum
ଜୁଆର ଜୁଆର Saccharim. ୨ । ଯବଗଛର ନଡ଼ା—2. Barley-straw.

**ଯବନାଳଜ**—ସଂ ବି.—ଯବକ୍ଷାର—Carbonate of potash;
Jabanālaja nitre

**ଯବନାଶ୍ୱ**—ସଂ. ବି (ନାମ)—ମିଥିଳା ଦେଶର ଏକ ପ୍ରାଚୀନ ରାଜା;
Jabanāśwa ବହୁକାଶ୍ୱଙ୍କ ପିତା—Name of an ancient king of Mithilā.

**ଯବନିକା**-ସଂ. ବି. ସ୍ତ୍ରୀ (ଜୁ ଧାତୁ=ବେଗେ ଚଳିବା + କରଣ.ଅନ+କ+ଆ
Jabanikā କିମ୍ବା ଯବନ+କ+ଆ)—୧ । ତିରସ୍କରଣୀ; ପରଦା—
1. A screen. ୨ । କନାତ ବାଡ଼—2. A screen of cloth; curtain. ୩ । ତମ୍ବୁଟିର ଚତୁର୍ପାଖେ ଘେରା କନାର ବାଡ଼—3. A screen round a tent. ୪ । ରଙ୍ଗାଳୟର କନ୍ଧସ୍ଥ ପରଦା ବା ପଟ—4. A dropscene. ୫ । ଯବନସ୍ତ୍ରୀ; ପଠାଣୀ—5. A muslim lady; a Jabana lady. ୬ । ଯୁଆଣି—6. Carraway; ajwan.

**ଯବନିକା ପତନ**—ସଂ. ବି (ଷଷ୍ଠୀ ତତ୍) —ପଟକ୍ଷେପଣ; ଅଙ୍କବିଶେଷର ବା
Jabanikā patana ଦୃଶ୍ୟବିଶେଷର ଅଭିନୟ ଶେଷରେ ନାଟ୍ୟ-
(ଯବନିକାପାତ—ଅନ୍ୟରୂପ) ଶାଳାର ସମ୍ମୁଖସ୍ଥ ପରଦା ପଡ଼ିବା—
The falling of the dropscene.

**ଯବନୀ**—ସଂ. ବି. ସ୍ତ୍ରୀ ( ଯବନ+ଈ )—୧ । ଯବନସ୍ତ୍ରୀ; ପଠାଣୀ—
Jabanī 1. A Jabana lady; a muslim women. ୨ । ଯୁଆଣି—2. Carraway seed; ajwan.

**ଯବନେଷ୍ଟ**—ସଂ. ବି ( ଯବନ+ଇଷ୍ଟ=ବାଞ୍ଛିତ )—୧ । ସୀସା—
Jabaneshta 1. Lead. ୨ । ମରିଚ—2. Black-pepper. ୩ । ଧୋଡ଼ ପିଆଜ—3. Onion. ୪ । ରସୁଣ—4. Garlic. ୫ । ନିମ୍ବ ବୃକ୍ଷ—5. The Neem tree. ୬ । ଗାଜର—6. Carrot. ୭ । ସାଲ୍‌ଗମ୍—7. Turnip.

**ଯବନେଷ୍ଟା**—ସଂ. ବି (ଯବନ+ଇଷ୍ଟ+ଆ)—ଖଜୁରୀ—
Jabaneshtā Date palm.

**ଯବ ଫଳ**—ସଂ. ବି (ବହୁବ୍ରୀହି; ଯବ ପରି ଫଳ ଯାହାର)-୧ । ବାଉଁଶ —
Jabā phala 1. Bamboo ୨ । ଜଟାମାଂସୀ—2. Indian spikenard. ୩ । କୁଟଜ—3. A medicinal plant; Wrightea Antidysenterica. ୪ । ଇନ୍ଦ୍ରଯବ (ଦେଖ)—4. Indrajaba (See) ୫ । ପିଆଜ (ହ୍ରି. ଶ.)—5. Onion. ୬ । ବାଉଁଶ (ହ୍ରି. ଶ.)—5. Bamboo. ୭ । ପ୍ଲକ୍ଷ ବୃକ୍ଷ (ହ୍ରି. ଶ.) (ଦେଖ)—7. Plaksha (See)

**ଯବ ବିନ୍ଦୁ**—ସଂ. ବି (ବହୁବ୍ରୀହି)—ଯବନ୍ଦୁ ଯବରେଖାବିଶିଷ୍ଟ ହୀରକ—
Jaba bindu A diamond with a barley mark on it. [ ଦ୍ର—ଏ ହୀରା ବ୍ୟବହାର କରିବା ବ୍ୟକ୍ତି ସ୍ୱଦେଶତ୍ୟାଗୀ ହୁଅନ୍ତି—ହ୍ରି. ଶ]

**ଯବ ମଣ୍ଡ**—ସଂ. ବି (ବୈଦ୍ୟକ; ଷଷ୍ଠୀ ତତ୍ )—ଯବକୁ ସିଦ୍ଧ କରି ଛାଣୁ
Jaba manda ଲୁଗାରେ ଛାଣି ବାହାର କରାଯିବା ମଣ୍ଡ—
Gumlike jelly prepared by sifting boiled barley through cloth. [ ଦ୍ର—ଏହା ନବଜ୍ୱରରୋଗୀର ପଥ୍ୟ; ବୈଦ୍ୟଶାସ୍ତ୍ର ମତରେ ଏହା ଲଘୁ ଓ ଗ୍ରାହକ ଏବଂ ଶୂଳ ଓ ତ୍ରିଦୋଷନାଶକ—ହ୍ରି. ଶ.]

**ଯବ ମଦ୍ୟ**—ସଂ. ବି. ( ମ. ପ. ଲୋ. )—ଯବଧାନ ସିଝା ଯାଇ
Jaba madya ପ୍ରସ୍ତୁତ ମଦ୍ୟ—Wine distilled from barley.

**ଯବ ମଧ୍ୟ**—ସଂ. ବି (ବହୁବ୍ରୀହି)—୧ । ଚାନ୍ଦ୍ରାୟଣବିଶେଷ; କୃଷ୍ଣ ପ୍ରତିପଦ
Jaba madhya ଠାରୁ ଅମାବାସ୍ୟା ପର୍ଯ୍ୟନ୍ତ ଖାଦ୍ୟର ପରିମାଣ କ୍ରମଶଃ କମାଇ ଶୁକ୍ଳ ପ୍ରତିପଦ ଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପୁଣି ଖାଦ୍ୟ ବଢ଼ାଇବାରୂପ ବ୍ରତବିଶେଷ—1. A kind of penance by which the quantity of one's usual food is lessened day by day during the dark fortnight and is again increased day by day during the bright fortnight till it reaches the normal quantity
୨ । ପାଞ୍ଚ ଦିନରେ ସମାପ୍ତ ଯଜ୍ଞବିଶେଷ ( ହ୍ରି. ଶ. )—
2. A kind of sacrifice which takes 5 days.
ସଂ. ବିଣ—ଯାହାର ଦୁଇ ମୁଣ୍ଡ ଅପେକ୍ଷା ମଧ୍ୟସ୍ଥଳ ସ୍ଥୂଳ—
Having the middle thicker or wider than the ends.

**ଯବମଧ୍ୟା**—ସଂ. ବି. ( ବହୁବ୍ରୀହି )—ଛନ୍ଦୋବିଶେଷ; ୩ ଚରଣଯୁକ୍ତ
Jabamadhyā ଛନ୍ଦୋବିଶେଷ, ଯହିଁର ମଝି ଧାଡ଼ିରେ ଉପର ଓ ତଳ ଧାଡ଼ି ଅପେକ୍ଷା ଗୋଟିଏ ଅକ୍ଷର ବେଶୀ ଥାଏ—
Name of a Sanskrit metre of 3 lines, the middle line having one syllable more than the remaining two.

**ଯବ ମନ୍ଥ**—ସଂ. ବି —ଯବ ଧାନର ଛତୁଆ—
Jaba mantha Flour of powdered barley.

**ଯବ ରୋଟିକା**—ସଂ. ବି (ମ. ପ. ଲୋ; ଯବ+ରୋଟିକା)—ଯଅ ରୁଟି—
Jaba rotikā Roll or bread made from barley-meal.

**ଯବଲକ**—ସଂ. ବି —ପକ୍ଷିବିଶେଷ—A kind of bird. [ ଦ୍ର—
Jabalaka ବୈଦ୍ୟକମତରେ ଏହାର ମାଂସ ମଧୁର, ଲଘୁ, ଶୀତଳ ଓ କଷାୟ—ହ୍ରି. ଶ. ]

**ଯବଲାସ**—ସଂ. ବି—ଯବକ୍ଷାର—
Jabalāsa Nitre.

**ଯବ ଶକ୍ତୁ**—ସଂ. ବି (ଯବ+ଶକ୍ତୁ)—ଯଅ ଛତୁଆ; ଯବ ଧାନକୁ ଭାଜି
Jaba śaktu କରି ଚୂର କରି ଥିବା ଚୂନା—Powdered fried barley.

**ଯବ ଶର୍କରା**—ସଂ. ବି—ସିଦ୍ଧ ଯବରୁ ପ୍ରସ୍ତୁତ ଚିନି—Sugar made
Jaba śarkarā from boiled barley.

**ଯବ ଶାକ**—ସଂ. ବି—ଏକପ୍ରକାର ଶାଗ—A kind of potherb.
Jaba śāka [ଦ୍ର—ବୈଦ୍ୟକମତରେ ଏହା ମଧୁର, ରୁକ୍ଷ, ଶୀତବୀର୍ଯ୍ୟ ଓ ମଳଭେଦକ—ହ୍ରି. ଶ. ]

**ଯବଶୂକ**—ସଂ. ବି (ଷଷ୍ଠୀ ତତ୍)—୧ । ଯବ ଧାନର ଅଗରେ ଥିବା
Jaba śūka ଶିଙ୍ଘ—1. The horns or awn of a grain of barley. ୨ । ଯବକ୍ଷାର—2. Nitre.

**ଯବ ଶ୍ରାଦ୍ଧ**—ସଂ. ବି (ମ. ପ. ଲୋ)—ବୈଶାଖ ଶୁକ୍ଳପକ୍ଷରେ, ବିଷୁବ
**Jaba śrāddha** ସଂକ୍ରାନ୍ତି ବା ଅକ୍ଷୟତୃତୀୟା ଦିନ ଯବଚୂର୍ଣ୍ଣର ପିଣ୍ଡରେ କରାଯିବା ଶ୍ରାଦ୍ଧ—An offering of balls of barley flour made to the deceased ancestors.

**ଯବସ**—ସଂ. ବି (ଯୁ ଧାତୁ=ମିଶ୍ରିତ କରିବା+କର୍ମ. ଅସ)—
**Jabasa** ୧ । ତୃଣ; ଘାସ—1. Grass; meadow-grass. ୨ । ଗୋରୁଙ୍କ ଭକ୍ଷ୍ୟ—2. Fodder (Apte). ସଂ. ବିଣ.
(ଯବସା—ସ୍ତ୍ରୀ) ପୁଂ(+କର୍ତ୍ତୃ.ଅସ)—ଦକ୍ଷ—Able

**ଯବ ସୁରା**—ସଂ. ବି (ମ. ପ. ଲୋ)—ଯବରୁ ପ୍ରସ୍ତୁତ ମଦ୍ୟ—Wine
**Jaba surā** distilled from boiled barley.

**ଯବାଗୂ**—ସଂ. ବି (ଯୁ. ଧାତୁ=ମିଶ୍ରିତ କରିବା+କର୍ମ. ଅଗୂ)—
**Jabāgū** ୧ । (ଯାହାକୁ ମିଶ୍ରିତ କରାଯାଏ) ଯାଉ; ଷଡ଼ଗୁଣ ଜଳରେ ପକ୍ୱ ତଣ୍ଡୁଳ ବା ଯବଚୂର୍ଣ୍ଣ—1. Gruel made of barley. ୨ । ଯବର ବା ଚାଉଳର ବାସୀ ତୋରାଣି—2. Fermented barley water or rice-water. [ଦ୍ର—ବୈଦ୍ୟକମତରେ ଏହା ରୋଗୀର ପଥ୍ୟ, ଗ୍ରାହକ, ବଳକାରକ ଓ ବାତନାଶକ—ହି. ଶ. ]

**ଯବାଗ୍ର**—ସଂ. ବି (୬ଷ୍ଠୀ ତତ୍)—ଯବର ଭୁଷି (ହି. ଶ)—
**Jabāgra** The chaff of barley.

**ଯବାଗ୍ରଜ**—ସଂ. ବି (ଯବ+ଅଗ୍ରଜ)—୧ । ଯବକ୍ଷାର (ଦେଖ)—
**Jabāgraja** 1. Jabakshāra (See). ୨ । ଯୁଆଣି—2. Ajwan; carraway seed.

**ଯବାନ୍ (ଇତ୍ୟାଦି)**—ବୈଦେ. ବି. ଓ ବିଣ—ଜବାନ୍ ଇତ୍ୟାଦି (ଦେଖ)
**Jabān (etc)** Jabān etc (See).

**ଯବାନ**—ସଂ. ବିଣ. ପୁଂ.(ଯବ=ବେଗ+ଅ+ନୀ ଧାତୁ+କର୍ତ୍ତୃ.ଅ)—
**Jabāna** ବେଗବାନ୍; ଦ୍ରୁତଗାମୀ—Swift; fleet.

**ଯବାନୀ**—ସଂ. ବି (ଯବ+ଅ+ନୀ. ଧାତୁ+କର୍ତ୍ତୃ ଅ+ସ୍ତ୍ରୀଈ)—
**Jabānī** ଜୁଆଣି—Ajwan; carraway.
(ଯବାନିକା—ଅନ୍ୟରୂପ) জোয়ান अजवाइन
(ଅନ୍ୟ ସଂ ନାମ—ଉଗ୍ରଗନ୍ଧା, ଉଗ୍ରା, ଖାଣ୍ଡବନ୍ଧା, ଦୀପକା, ଦୀପକାଖ୍ୟ, ଦୀପ୍ୟ, ଦୀପ୍ୟକ, ଭୂକଦମ୍ବ, ଯବକ, ଯବସାହ୍ୱ, ଯବାଗ୍ରଜ, ବାହ୍ଲୀକ, ଶୂଳହନ୍ତ୍ରୀ ।)

**ଯବାନ୍ନ**—ସଂ. ବି (ଯବ+ଅନ୍ନ; ୬ଷ୍ଠୀ ତତ୍)—ଜଳପକ୍ୱ ଯବ—
**Jabānna** Boiled barley.

**ଯବାପତ୍ୟ**—ସଂ. ବି (୬ଷ୍ଠୀ ତତ; ଯବ+ଅପତ୍ୟ)—ଯବକ୍ଷାର—
**Jabāpatya** Saltpetre; nitre

**ଯବାମ୍ଳ**—ସଂ. ବି (ଯବ+ଅମ୍ଳ)—୧ । ବାସୀ ଯାଉ—1. Sour
**Jabāmla** gruel. ୨ । ଯବର କାଞ୍ଜି—2. Stale barley water. ୩ । ଯବାଗୂ—3. Barley-gruel.

**ଯବାସ**—ସଂ.ବି (ଯୁଧାତୁ=ମିଶ୍ରିତ ହେବା+କର୍ତ୍ତୃ.ଅସ)—୧। କଣ୍ଟକୀ ଗୁଳ୍ମ
**Jabāsa** ବିଶେଷ; ଦୁରାଳଭା; ଜବାସା—1. A prickly plant; Hedyseram Alhagi [ଅନ୍ୟ ସଂ. ନାମ—ଅନନ୍ତା, ଅଳ୍ପକ, କଚ୍ଛୁରା, କଣ୍ଟକାଳୁକା, କ୍ଷୁଦ୍ରଗନ୍ଧା, ଅବାଗ୍ନି, ଦିଗ୍ଧିକା, ଦଳପକ, ଦୀର୍ଘମୂଳ, ଯାସ, ରୋଦନିକା, ବହୁକଣ୍ଟକ, ଯବସ, ଦୁରାଳଭା, ଦୁର୍ଲଭା, ଦୁରବଗ୍ରହା, ପଦ୍ମମୁଖୀ, ଅଷ୍ଟମୂଲ୍ୟ, ହରିକଣ୍ଟକ, ସମୁଦ୍ରାନ୍ତା, ପ୍ରବୋଧନୀ, ଧନୁର୍ଯାସ, ଧନ୍ୱୀ, ଧନ୍ୱ, ଯବାସକ, ଦୁର୍ଧର୍ଷ, ଭୂନାଶକ, ଖେଦନୀ, ଉଦଂକାର୍ଯ୍ୟ, ସୂକ୍ଷ୍ମଦଳା, ଦୁସ୍ପର୍ଶ ।] ୨। ଖଦିର ଭେଦ—2. As sort of catechu.

**ଯବାସ ଶର୍କରା**—ସଂ. ବି—ଦୁରାଳଭାରୁ ପ୍ରସ୍ତୁତ ଏକ ପ୍ରକାର ଚିନି (ଏହା
**Jabāsaśarkarā** ଔଷଧରେ ଲାଗେ)—Sugar made from Jabāsa plant.

**ଯବିଷ୍ଠ**—ସଂ. ବିଣ. ପୁଂ ( ଯୁବନ୍+ଅତିଶଯ୍ୟାର୍ଥେ ଇଷ୍ଠ )—୧ । ଅତ୍ୟନ୍ତ
**Jabishtha** ଯୁବା—1. Very young; too young.
(ଯବିଷ୍ଠା—ସ୍ତ୍ରୀ) ୨ । କନିଷ୍ଠ—2 Youngest. ବି. ୧ । ସବୁ ସାନ ଭାଇ; ସର୍ବକନିଷ୍ଠଭ୍ରାତା—1. The youngest brother. ୨ । ଅଗ୍ନି (ହି. ଶ)—2. Fire. ୩ । ଋଗ୍ବେଦର ଏକ ମନ୍ତ୍ରଦ୍ରଷ୍ଟା ଋଷି; ଅଗ୍ନିଯବିଷ୍ଠ ମନ୍ତ୍ର—3. Name of a Vedic sage.

**ଯବୀୟାନ୍**—ସଂ. ବିଣ. ପୁଂ. (ଯୁବନ୍+ଈୟସ୍, ୧ମା. ୧ବ)—୧ । ଅତି
**Jabīyān** ଯୁବା—1. Very young. ୨ । କନୀୟାନ୍;
( ଯବୀୟସୀ, ଯବୀୟା—ସ୍ତ୍ରୀ ) ଦୁଇଜଣଙ୍କ ମଧ୍ୟରେ ସାନ—2. Younger; younger of the two. ବି. ପୁଂ. ଆପଣାଠାରୁ ସାନଭାଇ—One's younger brother.

**ଯବୋଦ୍ଭବ**—ସଂ. ବି. (ବହୁବ୍ରୀହି; ଯବରୁ ଉଦ୍ଭବ ଯାହାର)—ଯବକ୍ଷାର—
**Jabodbhaba** Saltpetre.

**ଯଭ(ଧାତୁ)**—ସଂ.—ମୈଥୁନ କରିବା, ସଙ୍ଗମ କରିବା—To cohabit, to copulate.
**Jabh(root)**

**ଯଭନ**—ସଂ.ବି (ଯଭ୍ଧାତୁ+ଭାବ. ଅନ)—ମୈଥୁନ—Copulation
**Jabhana** sexual intercourse.

**ଯମ୍(ଧାତୁ)**—ସଂ.୧ । ବିରତ ହେବା—1. To cease; to refrain,
**Jam(root)** ୨ । ପରିବେଷଣ କରିବା; ପରଷିବା—2. To serve or distribute food in dishes. ୩ । ବେଷ୍ଟନ କରିବା; ବେଢ଼ିବା—3. To encompass. ୪ । ଦମନ କରିବା—4. To restrain; to curb; to check. ୫ । ଦେବା—5. To offer; to give, to bestow. ୬ । ଯିବା—6. To go. ୭ । ବର୍ଦ୍ଧିତ କରିବା—7. To extend; to increase. ୮ । ଦେଖାଇବା—8. To exhibit; to show. ୯ । ପାଳନ କରିବା—9. To bring up; to rear. ୧୦ । ବନ୍ଦ କରିବା—10. To stop; to suppress.

**ଯମ୍-ବା**—ଗ୍ରାଦେ. (ସମ୍ବଲପୁର).କ୍ରିୟା, — ଜମିବା; ଏକତ୍ର ହେବା;
**Jam-bā** ଠୁଳ ହେବା—To gather; to assemble ; to accumulate.

**ଯମ**—ସଂ. ବଣ. (ଯମ୍ ଧାତୁ + କର୍ତ୍ତୃ. ଅ) — ୧ । ଯୁଗ୍ମଜାତ; ଯମଜ—
Jama 1. Twin; born together. ୨। ଯୁଗ୍ମ ହୋଇଥିବା—
2. Coupled (Apte). ସଂ. ବି—୧ । ଯମଜ ସନ୍ତାନରୁ ଜଣେ—1 One of the twin-born; a twin ୨ । (+ ଭାବ ଅ) ଶରୀରସାଧନାପେକ୍ଷ ନିତ୍ୟ-କର୍ତ୍ତବ୍ୟ ନୈତିକ ବା ଧାର୍ମିକ କର୍ତ୍ତବ୍ୟକର୍ମ ବା ବ୍ରତ—2 Any moral or religious duty or observance. [ଦ୍ର—କେହି କେହି ଯମ ସଂଖ୍ୟାରେ ୧୦ଟି ବୋଲି କହିଅଛନ୍ତି—ଅନୃଶଂସ୍ୟ, କ୍ଷମା, ସତ୍ୟ, ଅହିଂସା, ଦମ, ଅସ୍ପୃହା, ଧ୍ୟାନ, ପ୍ରସାଦ, ମାଧୁର୍ଯ୍ୟ ଓ ଆର୍ଜ୍ଜବ; କେହି କେହି ଯମ ୫ଟି ଥିବା କହିଅଛନ୍ତି—ଅହିଂସା, ସତ୍ୟବଚନ, ବ୍ରହ୍ମଚର୍ଯ୍ୟ, ଅକଲ୍କତା (ଅପରିଗ୍ରହ), ଅସ୍ତେୟ (ଅଚୌର୍ଯ୍ୟ) । ଯମ ଓ ନିୟମ ନିତ୍ୟକର୍ତ୍ତବ୍ୟ (ମନୁସଂହିତା ୪ର୍ଥ ଅଧ୍ୟାୟ) । ବିଦ୍ୱାନ୍ ଯମ ଓ ନିୟମ (ଶୌଚ, ସନ୍ତୋଷ, ତପ, ସ୍ୱାଧ୍ୟାୟ ଓ ଈଶ୍ୱର ପ୍ରଣିଧାନ) ପାଳନ କରିବେ । ନିୟମାଚରଣ ନିତ୍ୟ ନ ହେଲେ ଚଳେ, ମାତ୍ର ଯମାଚରଣ ପରିତ୍ୟାଗ କରି କେବଳ ନିୟମାଚରଣ କଲେ ସୁଦ୍ଧା ମନୁଷ୍ୟ ପତିତ ହୁଏ (ମନୁସଂହିତା ୪ର୍ଥ ଅଧ୍ୟାୟ)—୩ । ସଂଯମ; ଇନ୍ଦ୍ରିୟ ନିଗ୍ରହ—
3. Self-control; self-restraint. ୪ । (+ କର୍ତ୍ତୃ. ଅ) ସଂହିତାକାର ଋଷିବିଶେଷ—4. Name of a sage who composed a Hindu law-book ୫। କାକ; କୁଆ—5. Crow. ୬। ଶନିଗ୍ରହ—
6. The planet Saturn ୭ । ଧର୍ମ୍ମରାଜ, ଦକ୍ଷିଣ ଦିକ୍‌ପାଳ—7 The Hindu God of death and king of the Hell (corresponding to the Greek god Pluto presiding over the Hedes).

[ଦ୍ର—ସୂର୍ଯ୍ୟଙ୍କ ଔରସରେ ବିଶ୍ୱକର୍ମ୍ମାଙ୍କ ତନୟା ସଞ୍ଜ୍ଞାଙ୍କ ଗର୍ଭରୁ ଧର୍ମ୍ମରାଜ ଜାତ । ଏ ମନୁଷ୍ୟମାନଙ୍କ ପାପପୁଣ୍ୟର ବିଚାରକର୍ତ୍ତା ଅଟନ୍ତି; ନରକ ଏହାଙ୍କ ରାଜ୍ୟ ଓ ନରକସ୍ଥ ସଂଯମନୀପୁରୀ ଏହାଙ୍କର ରାଜଧାନୀ । ଏ ପାପୀମାନଙ୍କୁ ନରକରେ ଦଣ୍ଡ ଦିଅନ୍ତି ଓ ପୁଣ୍ୟବାନ୍‌ମାନଙ୍କୁ ସ୍ୱର୍ଗକୁ ପଠାନ୍ତି । ଏହାଙ୍କର ଯାଆଁଳା ଭଗିନୀ ଯମୁନା; ବାହନ ମହିଷ; ଆୟୁଧ ଦଣ୍ଡ; ଏହାଙ୍କ ମନ୍ତ୍ରୀ ଚିତ୍ରଗୁପ୍ତ ପ୍ରତ୍ୟେକ ମନୁଷ୍ୟର ପାପ ପୁଣ୍ୟକୁ ଖାତାରେ ଲେଖି ରଖୁଥାଆନ୍ତି ଓ ମନୁଷ୍ୟର ମୃତ୍ୟୁ ପରେ ତାହା ସବୁ ଯମରାଜାଙ୍କ ଆଗରେ ପେଶ୍ କରନ୍ତି । ଯମଙ୍କର ଅନ୍ୟ ନାମ—ଅନ୍ତକ, ଔଦୁମ୍ବର, କଙ୍କ, କର୍ମ୍ମକର, କାଳ, କୀନାଶ, କୃତାନ୍ତ, ଜୀବିତେଶ, ଦଣ୍ଡଧର, ଦଣ୍ଡଧାର, ଦଧ୍ନ, ଧର୍ମ୍ମ, ଧର୍ମ୍ମରାଜ, ଧର୍ମ୍ମରାଟ୍, ପରେତପତି, ପରେତରାଟ୍, ପିତୃପତି, ପ୍ରେତରାଟ୍, ଶମନଶାସନ, ମହିଷଧ୍ୱଜ, ମହିଷବାହନ, ଯମରାଟ୍, ଯମୁନାଭ୍ରାତା, ବୈବସ୍ୱତ, ଶୀର୍ଣ୍ଣପାଦ, ଶମନ, ଶ୍ରାଦ୍ଧଦେବ, ଦଣ୍ଡ, ମୃତ୍ୟୁ, ସର୍ବଭୂତକ୍ଷୟ, ନୀଲ, ପରମେଷ୍ଠୀ, ବୃକୋଦର, ଚିତ୍ର, ଚିତ୍ରଗୁପ୍ତ । ] ୮ । (+ ଭାବ. ଅ) ସଂଯମ; ଅନ୍ତଃକରଣର ବହିର୍ବୃତ୍ତି ନିରୋଧ ପୂର୍ବକ ଈଶ୍ୱରଙ୍କଠାରେ ନିଯୋଗ; ଯୋଗର ଆଠଗୋଟି ଅଙ୍ଗ ମଧ୍ୟରେ ପ୍ରଥମ—8. Religious abstraction from the world and concentration on the Ego; the first step in the exercise of Joga. [ଦ୍ର—ଯୋଗ ସାଧନର ଆଠଗୋଟି ଅଙ୍ଗ ଯଥା—ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି । ] ୯ । ଧର୍ମ ସମ୍ବନ୍ଧୀୟ ବାରଣ ବା ଶାସନ—
9. Religious restraint. ୧୦ । ବିରତି; ନିବୃତ୍ତି—
10. Cessation; stoppage. ୧୧ । ଉପସଂହାର; ଶେଷ; ଅନ୍ତ, ଚରମ—11. Conclusion; the end. ୧୨ । ପ୍ରାୟଶ୍ଚିତ୍ତ—12. Religious penance; purificatory ceremony; expiation. ୧୩ । ମୃତ୍ୟୁ—13. Death. ୧୪ । ସହିଷ୍ଣୁତା—14. Forbearance. ୧୫ । ଉତ୍ସବ ବିଶେଷ—15. Name of a festival. ୧୬ । ଯୁଗ୍ମ; ମିଥୁନ—
16. Couple; a brace; a pair. ୧୭ । ଯମ ନାମକ ପିତୃଗଣ—17. Name of a group of deceased progenitors of mankind. (ଦ୍ର—ଏହାଙ୍କୁ କବ୍ୟବାଳାନଳାଦି, ପିତୃଗଣଙ୍କ ସହ ତର୍ପଣ କରାଯାଏ । ତର୍ପଣରେ ୧୪ ଯମଙ୍କୁ ୩ ଅଞ୍ଜୁଳା ନେଇଥାଏ ଜଳ ଦିଆଯାଏ—ଯମ, ଧର୍ମରାଜ, ମୃତ୍ୟୁ, ଅନ୍ତକ, ବୈବସ୍ୱତ, କାଳ, ସର୍ବଭୂତକ୍ଷୟ, ଔଦୁମ୍ବର, ଦଧ୍ନ, ନୀଳ, ପରମେଷ୍ଠୀ, ବୃକୋଦର, ଚିତ୍ର ଓ ଚିତ୍ରଗୁପ୍ତ । ] ୧୮ । ଯୁଗ୍ମ ବା ଯୋଡ଼ା ମଧ୍ୟରୁ ଏକତର—18. One of a pair or couple; a fellow (Apte). ୧୯ । ଦୁଇ ସଂଖ୍ୟା—19. The number two (Apte). ୨୦ । (ବ୍ୟାକରଣ) ଦୁଇଥର ଏକାଦି ଉଚ୍ଚାରିତ ବ୍ୟଞ୍ଜନ ବର୍ଣ୍ଣ (ଯଥା—ଙ, ନ୍ନ, ଢ, ଦ୍ଧ । )—
20. (grammar) The twin letter of a consonant (Apte). ୨୧ । (ସଙ୍ଗୀତ) ସ୍ୱରର ଉଚ୍ଚତା—21. (music) Pitch of the voice (Apte). ୨୨ । ବାୟୁ (ହି. ଶ)—22. The air.

**ଯମଆଳ**—ଗ୍ରା. ବି (ସଂ. ଯମ ଆଳୟ)—ଯମପୁରୀ—The abode
Jama Āla of Jama. (ଉ—ମତେ ଅଦ୍ଭ ପ୍ରାଣିତ ଯିବେ ଯମଆଳେ—କୃଷ୍ଣସିଂହ. ମହାଭାରତ ବନ । )
ଯମାଳୟ
**ଯମପୁରୀ**

**ଯମକ**—ସଂ. ବି (ଯମ + ସ୍ୱାର୍ଥେ କ)—୧ । ଯମଜ ସନ୍ତାନ ଦ୍ୱୟରୁ
Jamaka ଏକତର—1. One of the twins. ୨ । ସଂଯମ—2. Self-control. ୩ । ଶବ୍ଦାଳଙ୍କାର-ବିଶେଷ; ଏକ ବାକ୍ୟରେ ଭିନ୍ନାର୍ଥ ବ୍ୟଞ୍ଜକ ସମୋଚ୍ଚାରିତ ଶବ୍ଦ ମାନଙ୍କର ପୁନରାବୃତ୍ତି (ଏହା ଆଦ୍ୟ, ମଧ୍ୟ ଓ ଅନ୍ତ୍ୟ ଯମକ ଭେଦରେ ପ୍ରଧାନତଃ ୩ ପ୍ରକାର)—3. A figure of

speech; analogue; a species of alliteration; repetition of similar words or letters or sentences in various parts of the same stanza. ୪ । ନିୟନ୍ତ୍ରଣ—4. Restraint, check ( Apte ). ୫ । ଯୋଡ଼ାକ ମଧ୍ୟରୁ ଏକ—5. One of a pair ( Apte ). ୬ । ଡବଲ୍ ପଟ୍ଟି—6. A double bandage (Apte). ସ. ବିଣ—୧ । ଯାଆଁଳା—1. Twin; born-twin ( Apte ). ୨ । ଦୋହରିଆ; ଡବଲ୍—2 Two fold; double ( Apte ). ( ଦ୍ର—ଶବ୍ଦାଳଙ୍କାର ତଳେ ଉଦାହରଣ ଦେଖ । ) ଦେ. ବି—ସମାରୋହ; ଆଡ଼ମ୍ବର—Pomp; splendour; grandeur. ଦେ. ବିଣ—୧ । ଆଡ଼ମ୍ବରମୟ—1. Splendid; pompous. ୨ । କର୍ଣ୍ଣସୁଖକର—2. Pleasing to the ear. ( ଉ—ରଚ୍ଚ ସଙ୍ଗୀତ ଚମକ, କେତେ ଯମକ—ଭଞ୍ଜ. ପ୍ରେମସୁଧାନିଧି । )

यमक जमाव

ଯମ କତିରେ ବସିବା—ଦେ. କ୍ରି—ମୃତ ହେବା; ମରିବା—To die; Jama katire basibā to breathe one's last. যমের কাছে বাসা [ ଉ—ହାତୀ ଭୂଇଁରେ ଅଙ୍ଗ ମୋଡ଼ିଛି ଛିଡ଼ୁ यमकेपासबैठना ଅଛେ କର ବସିଲେ ଯମକତି । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ । ]

ଯମ କରଗତ—ସ. ବିଣ. ପୁଂ ( ୬ଷ୍ଠୀ ତତ୍ ) —ମୃତ—Dead. Jama karagata (ଉ—ହୋଇ ହେବେ କେତେ ଯମ (ଯମକରଗତା —ସ୍ତ୍ରୀ) କରଗତ—କୃଷ୍ଣସିଂହ. ମହାଭାରତ ବନ)

ଯମକରେ—ଦେ. କ୍ରି. ବିଣ—ସମାରୋହରେ; ଆଡ଼ମ୍ବରରେ—Jamakare With pomp and splendour. जमकर; जमायसे ( ଉ—ଅଛ ଯମକରେ ଯେସନେ କର ସେ ଆଡ଼ମ୍ବରେ ମିଳିଲେ ଚଳିଅଁ ଘର—ଉକାସ ସାଅନ୍ତୁଆ ବାହା । )

ଯମ କିଂକର—ସ. ବି (୬ଷ୍ଠୀ ତତ୍)—ଯମଦୂତ—Jama kimkara Messenger of death.

ଯମ କୀଟ—ସ. ବି—୧ । ଘୁର୍ଘୁରିଆ ପୋକ; ବାଲିମେଣ୍ଡି ପୋକ—Jama kiṭa 1. Sand-borer insect ୨ । କେଞ୍ଚୁଆ—2. Earthworm (Apte) ୩ । କାଠ-କଣା ପୋକ—3. Wood louse (Apte).

ଯମକୀଲ—ସ. ବି—ବିଷ୍ଣୁ—Jamakiḷa Bishṇu (See)

ଯମକୁ ଭେଟିବା—ଦେ. କ୍ରି—ମରିବା—Death. (ଉ—ପୋଡ଼ଗଲାଇ Jamaku bhetibā ଯମକୁ ଭେଟିଲେ ସମସ୍ତେ—କୃଷ୍ଣସିଂହ. यमके देखा यमसे मीलना ମହାଭାରତ. ବନ ।)

ଯମଗୀତା—ସ. ବି—ଅଗ୍ନିପୁରାଣାନ୍ତର୍ଗତ ଯମମାହାତ୍ମ୍ୟ ବର୍ଣ୍ଣନାତ୍ମକଗ୍ରନ୍ଥ—Jama gītā Name of treatise in the Agni Purāṇa, relating to the God Jama.

ଯମ ଗ୍ରାମ—ସ. ବି—ଯମପୁର—The abode of Yama. Jama grāma (ଉ—ନ କରୁଁ ପାଣ୍ଡବେ ପେଷିବି ଯମଗ୍ରାମ—କୃଷ୍ଣସିଂହ. ମହାଭାରତ. ଆଦି)

ଯମଘଣ୍ଟ—ସ. ବି—୧ । ଜ୍ୟୋତିଷୋକ୍ତ ଯାତ୍ରା କରିବା ବାର ଓ Jama ghaṇṭa ନକ୍ଷତ୍ରର ଅଶୁଭ ଯୋଗବିଶେଷ—(Astrology) An inauspicious conjunction of some weekdays with certain asterisms. [ ଦ୍ର—ଏହି ଅଶୁଭ ଯୋଗଗୁଡ଼ିକ ଯଥା—

ରବିବାରରେ—ମଘା ବା ପୂର୍ବଫାଲ୍‌ଗୁନୀ ନକ୍ଷତ୍ର ।

ସୋମବାରରେ—ପୁଷ୍ୟ ବା ଅଶ୍ଳେଷା ।

ମଙ୍ଗଳବାରରେ—ଜ୍ୟେଷ୍ଠା ବା ଅନୁରାଧା, ଅଶ୍ୱିନୀ ବା ଭରଣୀ ।

ବୁଧବାରରେ—ହସ୍ତା ବା ଆର୍ଦ୍ରା ।

ଗୁରୁବାରରେ—ମୂଳା, ପୂର୍ବାଷାଢ଼ା, ରେବତୀ ବା ଉତ୍ତରଭାଦ୍ରପଦ ।

ଶୁକ୍ରବାରରେ—ସ୍ୱାତୀ ବା ରୋହିଣୀ ।

ଶନିବାରରେ—ଶ୍ରବଣା ବା ଶତଭିଷା ନକ୍ଷତ୍ରମାନ ପଡ଼ିଲେ ଏହି ଯୋଗ ଘଟେ । ଏହି ଯୋଗରେ ଯାତ୍ରା, ବିବାହାଦି ସର୍ବବିଧ କାର୍ଯ୍ୟ ନିଷିଦ୍ଧ । ] ୨ । କାର୍ତ୍ତିକ ଶୁକ୍ଳ ପ୍ରତିପଦା (ଜ୍ୟୋ. ଶା.)—2. The first day of the bright lunar fortnight of Kārttika. ୩ । ରାକ୍ଷସ-ବିଶେଷ; ରାବଣର ପୁତ୍ର—3. The name of a son of demon Rābaṇa. ( ଉ—ବାଜିଁ କାଳଘଣ୍ଟ ଯମଘଣ୍ଟ ଘଣ୍ଟି ଯମ ଉପସମ ଭାବ—ଭଞ୍ଜ. ବୈଦେହୀଶବିଳାସ । ]

ଯମଘର—ଦେ. ବି—ଯମପୁର—Jamaghara The abode of Yama. যমের বাড়ি यमघर

ଯମଜ—ସ. ବିଣ (ଯମ+ଜନ୍ ଧାତୁ+କର୍ତ୍ତୃ. ଅ)—୧ । ଯାଆଁଳା; Jamaja ସହଜାତ—1. Twin; born together. ୨ । ତୁଲ୍ୟ; ସଦୃଶ—2. Closely resembling each other.

ଯମଜୟୀ—ସ. ବିଣ (ଯମ+ଜି ଧାତୁ+କର୍ତ୍ତୃ. ଇନ୍) -ମୃତ୍ୟୁଞ୍ଜୟ; ଅମର-Jamajayī Immortal. ( ଯମଜିତ୍—ଅନ୍ୟରୂପ )

ଯମଝାଳ—ଦେ. ବି—ଜମଝାଳ ( ଦେଖ ) Jama jhāḷa Jamajhāḷa (See).

କାଳଘାମ वघजर ( लगना )

ଯମ ତର୍ପଣ—ସ. ବି (ଯମ+ତର୍ପଣ)—ଯମ ନାମକ ପିତୃଗଣଙ୍କୁ ତର୍ପଣ Jama tarpaṇa କରିବା—An oblation of water to the Jama class of the Manes.

ଯମତା—ସ. ବି (ଯମ+ଭାବ. ତା)—ମୃତ୍ୟୁ—Jamatā Death.

**ଯମଦଗ୍ନି**—ସଂ. ବି—ପରଶୁରାମଙ୍କର ପିତା; ଋଷି ବିଶେଷ—
Jamadagni Name of a sage; the father of Parsurāma.

**ଯମଦଂଷ୍ଟ୍ରା**—ସଂ. ବି (୬ଷ୍ଠୀ ତତ୍) —୧ । ମୃତ୍ୟୁର ଆକ୍ରମଣ—1. The
Jamadamshtrā jaws of death. ୨। ଆଶ୍ୱିନ ଓ କାର୍ତ୍ତିକ ମାସର ବିଶିଷ୍ଟ ସମୟ, ଯହିଁରେ ସଂସାରରେ ରୋଗର ଓ ମୃତ୍ୟୁର ବିଶେଷ ଭୟ ଥାଏ—2. Particular periods during the months of Āswina and Kārttika, regarded as a period of general sickness and mortality. [ଦ୍ର—କାହା କାହା ମତରେ ଆଶ୍ୱିନ ମାସର ଶେଷ ଆଠ ଦିନ ଓ ପୁରା କାର୍ତ୍ତିକ ମାସ ଯମଦଂଷ୍ଟ୍ରା ଅଟେ। କାହାର କାହାର ମତରେ କାର୍ତ୍ତିକର ଶେଷ ଆଠ ଦିନ ଓ ମାର୍ଗଶିରର ପ୍ରାରମ୍ଭିକ ଆଠ ଦିନ ଯମଦଂଷ୍ଟ୍ରା ଅଟେ। ଏ ସମୟରେ ଅଳ୍ପ ଭୋଜନ ଓ ସଂଯମ କରିବା ପାଇଁ ଚିକିତ୍ସା ଶାସ୍ତ୍ରରେ ଉପଦେଶ ଅଛି—ହି. ଶ. ]

**ଯମଦଣ୍ଡ**—ସଂ.ବି(ମ.ପ.ଲୋ)—୧। ମୃତ୍ୟୁଦଣ୍ଡ—1. Death penalty.
Jamadanda ୨ । ମୃତ୍ୟୁ—2. Death. ( ଦ୍ର—ଯମଦଣ୍ଡରୁ ମୋ ରକ୍ଷା କେମନ୍ତେ ହେବଟି—କବିସୂର୍ଯ୍ୟ. ବିଶୋଉପାଖ୍ୟାନ—ସ. ଗୀତ ) ୩ । ( ସାମୁଦ୍ରିକ ) ମନୁଷ୍ୟର ଲଲାଟରେ ଥିବା ଊର୍ଦ୍ଧ୍ୱରେଖାରୁ ଏକତର—3. (cheiromancy) One of the lines on the brow of a man. [ଦ୍ର—ଅନ୍ୟ ରେଖାର ନାମ ରାଜଦଣ୍ଡ।] ୪ । (୬ଷ୍ଠୀତତ୍) ଯମରାଜାଙ୍କ ଧୃତ କଳ୍ପିତ ଦଣ୍ଡ ବା ଯଷ୍ଟି—4. The sceptre said to be held by Jama.

**ଯମଦାଢ଼**—ଦେ. ବି. (ସଂ ଯମଧାର) ୧ । ଉଭୟ ପାର୍ଶ୍ୱରେ ତୀକ୍ଷ୍ଣଧାର-
Jamadārdha ବିଶିଷ୍ଟ ଖଡ୍ଗ; କଟାରି—1. Name of a
यमधर sword, sharp on both sides; double edged
**यमकात, यमकातर** sword. ( ଯମକାତି—ଅନ୍ୟରୂପ ) [ଦ୍ର—"କାହାର କର ଯମଦାଢ଼ୁ ବାସ—ବାନ୍ଧିଲେ ଶାଢ଼ୀ ହେଲୁ ଲବେଶ" ଉପେ. ବୈଦେହୀଶବିଳାସ।] ୨ । (ସଂ. ଯମଦଂଷ୍ଟ୍ରା) ମୃତ୍ୟୁର ଆକ୍ରମଣ; ମୃତ୍ୟୁମୁଖ—2. Attack of death; jaws of death.

**ଯମ ଦୁତିଆ**—ଗ୍ରା. ବି. (ସଂ. ଯମଦ୍ୱିତୀୟା)—ଯମଦ୍ୱିତୀୟା ( ଦେଖ )—
Jama dutiā Jama dwitiyā (see)
**यमदितीया यमदुतिया**

**ଯମ ଦୂତ**—ସଂ. ବି. (ଯମଙ୍କର ଦୂତ; ୬ଷ୍ଠୀ ତତ୍)—୧ । ଯମରାଜାଙ୍କର
Jama dūta ଯେଉଁ ଭୃତ୍ୟମାନେ ମୃତବ୍ୟକ୍ତିର ଆତ୍ମାକୁ ପୃଥିବୀରୁ ଯମପୁରକୁ ନେବାପାଇଁ ଆସନ୍ତି—1. Messengers sent by the God of death to take the departing souls to hell. ୨। ଯମଦୂତଙ୍କ ପରି ବିକଟାକାର ଭୟଙ୍କର ମୂର୍ତ୍ତି—2. Persons having fearful appearance like the messengers of the God of death.

**ଯମଦୂତକ**—ସଂ. ବି ( ଯମଦୂତ+କ )—୧ । ଯମଦୂତ (ଦେଖ)—1.
Jamadūtaka Jamaduta (see). ୨। ଡାମରା କାଉ—2. Rook; Carrion crow.

**ଯମଦୂତିକା**—ସଂ. ବି—ତେନ୍ତୁଳି—
Jamadūtikā Tamarind.

**ଯମ ଦେବତା**—ସଂ. ବି (ବହୁବ୍ରୀହି; ଯାହାର ଦେବତା ଯମ)— ଭରଣୀ ବା
Jama debatā ଦ୍ୱିତୀ ନକ୍ଷତ୍ର—The second asterism. (ଯମନକ୍ଷତ୍ର, ଯମେଶ, ଯମେଶ୍ୱର—ଅନ୍ୟରୂପ)

**ଯମ ଦେଶ**—ଦେ. ବି—ଯମପୁର—The abode of ama
Jama desa (ଦ୍ର—ଏ ଶକ୍ତି ବାଜିଲେଟି ଯିବେ ଯମ ଦେଶ । କୃଷ୍ଣସିଂହ. ମହାଭାରତ ଆଦି ।)

**ଯମ ଦ୍ୱାର**—ସଂ. ବି—୧। ମୃତ୍ୟୁର ଦ୍ୱାର—1. The death's door.
Jama dwāra ୨ । ଯମପୁରର ପ୍ରବେଶ ପଥ—2. The door (ଯମ ଦୁଆର—ଦେଶଜ ରୂପ) leading to hell

**ଯମ ଦ୍ୱାରରୁ ଫେରି (ଲେଉଟି, ବାହୁଡ଼ି) ଆସିବା**—ଦେ. କ୍ରି—ଆସନ୍ନ
Jama dwāraru pheri (leuti, bāhurdi) āsibā) ମୃତ୍ୟୁର
যমের দ্বারথেকে ফিরেআসা କବଳରୁ ରକ୍ଷାପାଇ ବଞ୍ଚିବା—To
**जमद्वारसे लोटना** escape from the jaws of death.

**ଯମ ଦ୍ୱିତୀୟା**—ସଂ.ବି—ଭ୍ରାତୃଦ୍ୱିତୀୟା; କାର୍ତ୍ତିକ ଶୁକ୍ଳଦ୍ୱିତୀୟା [ ଏହି ଦିନ
Jama dwitiyā ଭଉଣୀମାନେ ଭାଇଙ୍କୁ ମିଷ୍ଟାନ୍ନ ଆଦି ଅର୍ପଣ ଓ
যমদ্বিতীয়া, ভাইদ্বিতীয়া ସତ୍କାର କରନ୍ତି]—The 2nd day of
**जम दुतीया, भाईदूज** the bright fortnight of Kārttika.

**ଯମ ଦ୍ରୁମ**—ସଂ. ବି—ଶିମିଳୀ ଗଛ (ହି ଶ)
Jama druma Silk-cotton tree.

**ଯମଧାର**—ସଂ. ବି—ଯମଦାଢ଼ ୧ (ଦେଖ)
Jama dhāra Jamadārdha 1 (See)

**ଯମନ**—ସଂ. ବି (ଯମ୍ ଧାତୁ + ଭାବ. ଅନ)—୧ । ବନ୍ଧନ; ବାନ୍ଧିବା—
Jamana 1. Binding. ୨ । ନିରୋଧନ; ସଂଯମନ—2. Controlling; restraining; checking. ୩ । ଉପରମ; ନିବୃତ୍ତି, ବିରାମ—3. Cessation; stoppage. ୪ । ଛେଦନ—4. Cutting. ୫ ବିନାଶ—5. Destruction. ୬ । ଶାସନ; ପରିଚାଳନ—6. Governing; managing (Apte)- ୭ । (+କର୍ତ୍ତୃ. ଅନ) ଯମରାଜ—6 . The God o. deathf

**ଯମନିକ**—ଦେ. ବି—ତୀର୍ଥ ବିଶେଷ (ଏହି ତୀର୍ଥରେ ଯମେଶ୍ୱର ଦେବତା.
Jamanika ଅଛନ୍ତି)—(ଦ୍ର—'ଯମନିକ ନାମେ ତୀର୍ଥ ଅଛଇ'—ପ୍ରାଚୀ. ରହସ୍ୟମଞ୍ଜରୀ ।)

**ଯମନିକା**—ସଂ. ବି (ଯମ୍ ଧାତୁ=ନିବୃତ୍ତ କରିବା+କରଣ. ଅନ+
Jamanikā କ+ଆ)—୧ । ଯମନିକ (ଦେଖ)—1. Jamanika ( See ). ୨ । ଯବନିକା—2. Screen ( Apte ).

**ଯମ ନିୟମ**—ସଂ. ବି (ଦ୍ୱନ୍ଦ୍ୱ)—ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ
Jama niyama ଓ ଅପରିଗ୍ରହ ଏହି ୫ଟି ଯମ ଓ ସ୍ୱାଧ୍ୟାୟ, ଶୌଚ, ସନ୍ତୋଷ ଓ ତପସ୍ୟାଦି ନିୟମ—Acts of self-

restraint and habitual practice o saintliness enjoined by the Śāstras.
[ଦ୍ର—ଯମ ୨ ଉଦଳ ଟୀକା ଦେଖ । ]

ଯମ ପତ୍ନୀ—ସଂ. ବି. (୬ଷ୍ଠୀ ତତ୍) —ଯମରାଜଙ୍କ ସ୍ତ୍ରୀ; ଧୂମୋର୍ଣ୍ଣା; ଵିଜୟା—
Jama patnī The queen of God Jama.

ଯମ ପଞ୍ଜି—ଦେ. ବି (ସଂ. ଯମ+ପଞ୍ଜୀ)—ଚିତ୍ରଗୁପ୍ତଙ୍କ ପାଞ୍ଜି, ଯହିଁରେ
Jama pañji ପ୍ରତ୍ୟେକ ବ୍ୟକ୍ତିର ପାପ ପୁଣ୍ୟର ହିସାବ ଲେଖାଯାଏ—
ଯମେର পাঁজী, চিত্রগুপ্তের পাংজী The almanac or the
यमपांजी daily ledger of a person's sins and good deeds kept in the court of Jama.

ଯମ ପାଞ୍ଜି ପୋଛିବା—ଦେ. କ୍ରି—ମୃତ୍ୟୁ ଆସନ୍ନ ହେବା—The
Jama pāñji pochhibā approach of death;
যমের তলব হওয়া impending death. [ ଉ—ଜାଣିଲି ଯମ
यम अठकमिटाना ତୋର ପୋଛିଲାଣି ପାଞ୍ଜି । କୃଷ୍ଣସିଂହ.
(ଯମ ପାଞ୍ଜିରୁ ପୋଛିବା—ଅନ୍ୟରୂପ ମହାଭାରତ. ବନ । ]

ଯମପୁର(ରୀ)—ସଂ. ବି (୬ଷ୍ଠୀ ତତ୍; ଯମ+ପୁର,°ପୁରୀ)—୧ । ନରକ—
Jamapura(rī) 1. The hell. ୨ । ଯମରାଜାଙ୍କ ରାଜଧାନୀ;
ସଂଯମନୀ ପୁରୀ—2. The capital of God Jama.
(ଯମ ଭବନ, ଯମ ସଦନ—ଅନ୍ୟରୂପ)

ଯମପୁରକୁ ପେଷିବା—ଦେ. କ୍ରି—ହତ୍ୟା କରିବା—To murder;
Jamapuraku peshibā to kill. [ଉ—ପେଷିବି ଯୁଦ୍ଧରେ
যমপুরে পাঠান ମୁଁ ଯମପୁରେ ରାଗେ । କୃଷ୍ଣସିଂହ. ମହାଭାରତ.
यमपुर पहुँचाना ବିରାଟ । ]
(ଯମପୁରକୁ ପଠା[ଠେ]ଇବା—ଅନ୍ୟରୂପ)

ଯମ ପ୍ରିୟ—ସଂ. ବି—୧ । ବଟବୃକ୍ଷ (ବୃ. ଶ)—1. The banian
Jama priya tree. ୨। ଡମ୍ବିରି ଗଛ—2. The fig tree.

ଯମବାନ୍—ସଂ. ବିଣ. ପୁଂ (ଯମବତ୍; ଯମ=ସଂଯମ+ଅସ୍ତ୍ୟର୍ଥେ. ବତ୍)—
Jamabān ଜିତେନ୍ଦ୍ରିୟ, ସଂଯମୀ—One who has subdued
(ଯମବତୀ— ସ୍ତ୍ରୀ) his passions.

ଯମବାସୀ—ଦେ. ବିଣ (ସଂ. ଯମପୁରବାସୀ)—ଯମପୁରସ୍ଥ, ଅର୍ଥାତ୍ ମୃତ
Jamabāsī ବା ହତ—Dead; killed. [ ଉ—ମୋ ମନ୍ତ୍ରେ ପଢ଼ିଲେ କରିବ ଯମବାସୀ । କୃଷ୍ଣସିଂହ. ମହାଭାରତ. ବନ ।]

ଯମ ବାହନ—ସଂ. ବି (୬ଷ୍ଠୀ ତତ୍, ଯମ+ବାହନ)—ମହିଷ—
Jama bāhana Buffalo.
( ଯମ ରଥ—ଅନ୍ୟରୂପ ) (ଯମ ବାହାନ- ଗ୍ରାମ୍ୟରୂପ)

ଯମ ବ୍ରତ—ସଂ. ବି ( ଯମ+ବ୍ରତ )—ରାଜଧର୍ମ ବିଶେଷ; ପକ୍ଷପାତ ରହିତ
Jama brata ହୋଇ ଅପରାଧୀଗଣଙ୍କୁ ଶାସନ କରିବା—
Impartial government of the offenders by the king.

ଯମ ଭଗିନୀ—ସଂ. ବି. ସ୍ତ୍ରୀ ( ୬ଷ୍ଠୀ ତତ୍; ଯମ+ଭଗିନୀ )—ଯମୁନା —
Jama bhaginī River Jamunā personified.

ଯମ ଭୟ—ସଂ. ବି. (୫ମୀ ତତ୍; ଯମ+ଭୟ)—ମୃତ୍ୟୁ ଭୟ—
Jama bhaya The fear of death.

ଯମ ମାସ—ସଂ. ବି. (ମ. ପ. ଲୋ; ଯମ+ମାସ)—କାର୍ତ୍ତିକ ମାସ—
Jama māsa The month of Kārttika.

ଯମ ଯନ୍ତ୍ରଣା—ସଂ. ବି. ( ମ. ପ. ଲୋ; ଯମ+ଯନ୍ତ୍ରଣା )—୧ । ମୃତ୍ୟୁର
Jama jantranā ଆନୁଷଙ୍ଗିକ ଯନ୍ତ୍ରଣା—1. The pangs
(ଯମ ଯାତନା—ଅନ୍ୟରୂପ) of death. ୨ । ନରକ ଯନ୍ତ୍ରଣା—
2. The punishment of sinners in hell. ୩ । ( ଲକ୍ଷଣାର୍ଥ ) ଅତି ଭୟଙ୍କର ଉତ୍ପୀଡ଼ନ—3. (figurative) Horrible torture; extreme pain.

ଯମ ର(ରା)ଜା—ଦେ. ବି. (ସଂ. ଯମରାଜ)—ମୃତ୍ୟୁର ଅଧିପତି ଯମ—
Jama ra(rā)jā The God of death.
যমরাজ यमराजा

ଯମର ଭେଟ—ଦେ. ବି—ମୃତ୍ୟୁ—Death.
Jamara bheṭā (ଉ—ଖାଇ ଶୋଇଲେ ବଢ଼ଇ ପେଟ, ଖାଇ
যমের সঙ্গে দেখা ଖାଇଲେ ଯମର ଭେଟ—ଢଗ ।)
यमसे मुलाकात

ଯମରାଟ(ଜ)—ସଂ. ବି. (ଯମରାଜ୍; ଯମ+ରାଜ୍ ଧାତୁ=ପ୍ରାପ୍ତି ପାଇବା+
Jamarāṭ(ja) କର୍ତ୍ତୃ. କ୍ୱିପ୍)—ଶମନ; କୃତାନ୍ତ; ମୃତ୍ୟୁରାଜ—
The Hindus' God of death.

ଯମଳ—ସଂ. ବି. ( ଯମ୍ ଧାତୁ+କର୍ମ. ଅଳ )—୧ । ଯୁଗ୍ମ; ଯୋଡ଼ା—
Jamaḷa 1. A pair; a couple; a brace. ୨ । ଦୁଇ
ସଂଖ୍ୟା—2. The number two (Apte). ୩ ।
ବୃନ୍ଦାବନସ୍ଥ ବୃକ୍ଷବିଶେଷ; ଯମଳାର୍ଜ୍ଜୁନ ( ଦେଖ )—
3. Twin trees of Bṛundābana; Jamaḷārjuna (See). ୪ । ଯୋଡ଼ାରୁ ଏକ—4. One of a couple (Apte).

ଯମଳଚ୍ଛଦ—ସଂ. ବି. (ବହୁବ୍ରୀହି; ଯମଳ+ଛଦ)—କାଞ୍ଚନ ଗଛ (ଦେଖ)
Jamaḷachchhada Kañchana tree (See)

ଯମଳ ପତ୍ରକ—ସଂ. ବି. (ବହୁବ୍ରୀହି)—କରବୀ (ଦେଖ)
Jamaḷa patraka Karabī ( See )

ଯମଳସୂ—ସଂ. ବି ଓ ବିଣ. ସ୍ତ୍ରୀ. ( ଯମଳ+ସୂ ଧାତୁ+କର୍ତ୍ତୃ. କ୍ୱିପ୍ )—
Jamaḷasu ଯାଆଁଳା ଶିଶୁ ପ୍ରସବକାରିଣୀ (ସ୍ତ୍ରୀ ଓ ଗାଈ)—
(a woman or cow) Giving birth to twins.

ଯମଳାର୍ଜ୍ଜୁନ—ସଂ. ବି. ( ଯମଳ+ଅର୍ଜ୍ଜୁନ )—ବୃନ୍ଦାବନସ୍ଥ ବୃକ୍ଷଦ୍ୱୟ—
Jamaḷārjuna Name of twin trees of Bṛundābana which were snapped asunder by Śrīkṛushṇa when he was a mere child.
[ଦ୍ର—କୁବେରପୁତ୍ର ନଳକୁବର ଓ ମଣିଗ୍ରୀବ ଦୁହେଁ ମଦ ପିଇ ଉନ୍ମତ୍ତାବସ୍ଥାରେ ନଗ୍ନ ହୋଇ ସ୍ତ୍ରୀମାନଙ୍କ ସଙ୍ଗେ ଜଳରେ କ୍ରୀଡ଼ା କରୁଥିବା ଯୋଗୁଁ ନାରଦ ମୁନିଙ୍କ ଅଭିଶାପରୁ ଯାଆଁଳା ଅର୍ଜ୍ଜୁନ ଗଛ ରୂପେ ଜନ୍ମି ଥିଲେ ଓ ଶ୍ରୀକୃଷ୍ଣ ବାଲ୍ୟକ୍ରୀଡ଼ାଛଳରେ ଏ ବୃକ୍ଷଦ୍ୱୟକୁ ଭାଙ୍ଗି ପକାଇ ଏ ଦୁହିଙ୍କୁ ଶାପମୁକ୍ତ କରିଥିଲେ ।]

ଯମଲୀ—ସ. ବ. ସ୍ତ୍ରୀ. ( ଯମଲ+ଈ )—ଦୁଇଖଣ୍ଡବିଶିଷ୍ଟ ପୋଷାକ
Jamali (ଯଥା—ଲୁଗା-ଚଦର, ସାଢ଼ୀ-ସେମିଜ୍, ଘାଘରା-କାଞ୍ଚୁଲା)—A dress consisting of 2 pieces.

ଯମ ଲୋକ—ସ. ବ. (ଯମ+ଲୋକ)—ଯମ ନାମକ ପିତୃଗଣଙ୍କ ଓ
Jama loka ଯମରାଜଙ୍କ ବାସସ୍ଥାନ—The abode of the manes called 'Jama' and of God Jama.
(ଯମ ଭୁବନ, ଯମ ରାଜ୍ୟ, ଯମରାଷ୍ଟ୍ର—ଅନ୍ୟରୂପ)

ଯମଲୋକ ଦେଖା(ଖେ)ଇବା—ଦେ. କ୍ରି—କୌଣସି ବ୍ୟକ୍ତିଙ୍କୁ ହତ୍ୟା
amaloka dekhā(khe)ibā କରିବା—To kill some-
ଯମ ଲୋক দেখান **यम लोक दिखाना** one.

ଯମ ଲୋକ ଦେଖିବା—ଦେ. କ୍ରି—ମରିବା; ପ୍ରାଣତ୍ୟାଗ କରିବା—
Jama loka dekhiba To die (ଉ—ଅଳପକାଳରେ
যম লোক দেখা ଦେଖିଲେ ଯମ ଲୋକ । କୃଷ୍ଣସିଂହ. ମହାଭାରତ
**यम लोक देखना** ବନ ।)

ଯମ ସଭା—ସ. ବ. ( ୬ଷ୍ଠୀ ତତ୍; ଯମ+ସଭା )—ଯମରାଜଙ୍କ ସଭା—
Jama sabhā The court of the God of death.

ଯମ ସହିବା—ଦେ. ବି—ଯମଦଣ୍ଡ ବା ମୃତ୍ୟୁ ଭୋଗ ନ କରି କିଛିକାଳ
Jama sahibā ବଞ୍ଚି ରହିବା—Being permitted or suf-
**बिघाता मानना** fered by the God of death to live.
(ଯଥା—ଏ ପିଲାଟିକୁ ଯମ ସହିଲେ ସିନା ହେବ ।)

ଯମ ସାତ୍—ସ.ବଣ.ପୁଂ. ଓ ସ୍ତ୍ରୀ(ଯମ+ଦେଶ୍ୟ ଅର୍ଥରେ, ସାତ୍)—ମୃତ—
Jama sāt Death.
(ଯମ ସାତ୍କୃତ—ଅନ୍ୟ ପୁଂ.ରୂପ)

ଯମ ସାଧନ—ସ. ବ—ସଂଯମ ସାଧନ—Abstinence; self-res-
Jama sādhana traint; self-control.
[ଦ୍ର—ଯମ ୨ ତଳେ ଟୀକା ଦେଖ ।]

ଯମସୂ—ସ. ବ. (ପୁଂ) ( ଯମ+ସୂ ଧାତୁ+କର୍ତ୍ତୃ. କ୍ୱିପ୍ )—ସୂର୍ଯ୍ୟ—
Jamasū The sun. ବି. (ସ୍ତ୍ରୀ)—ଯେଉଁ ସ୍ତ୍ରୀ ଯାଆଁଳା ପିଲା ପ୍ରସବ କରେ—A mother of twins

ଯମ ସୂର୍ଯ୍ୟ—ସଂ. ବ. (ବହୁବ୍ରୀହି)—ଯେଉଁ ଘରର ଗୋଟିଏ କୋଠରୀର
Jama sūrjya ମୁହଁ ଉତ୍ତରକୁ ଓ ଅନ୍ୟ କୋଠରୀର ମୁହଁ ପଶ୍ଚିମକୁ ହୋଇଥାଏ—A building with two halls or rooms, one facing the south and one facing the west (Apte).

ଯମ ସ୍ୱସା—ସଂ. ବ. ସ୍ତ୍ରୀ. ( ୬ଷ୍ଠୀ ତତ୍; ଯମ+ସ୍ୱସୃ=ଭଗିନୀ )—
Jama swasā ୧ । ଯମୁନା ନଦୀ—1. The river Jamunā. ୨ । ଦୁର୍ଗା—2. Goddess Durgā; the wife of Mahādeba (Apte).

ଯମସ୍ୟ କରୁଣା ନାସ୍ତି—ସଂ. ଶ୍ଳୋକାଂଶ—ମୃତ୍ୟୁର କାହା ପ୍ରତି ଦୟା
Jamasya karunā nāsti ନାହିଁ—(a saying) Death is relentless. [ଦ୍ର—ଶତ୍ରୁର ବ୍ୟକ୍ତି ପ୍ରତି ଏ ବଚନ ପ୍ରଯୁକ୍ତ ହୁଏ ।]

ଯମା (ଇତ୍ୟାଦି)—ବୈଦେ. ବ ଓ ବଣ ଓ କ୍ରି. ବଣ—ଜମା ଇତ୍ୟାଦି
Jamā (etc) (ଦେଖ) Jamā etc ( See )

ଯମା(ମେ)ଇବା—ଦେ. କ୍ରି—୧ । ଜମାଇବା (ଦେଖ)
Jamā(me)ibā 1. Jamāiba ( See )
୨ । ଆଡ଼ମ୍ବର ସହକାରେ ଶୋଭାଯାତ୍ରା କରିବା—2 To start very pompously with a procession

ଯମାଉ(ଏ)ତ୍ (ଇତ୍ୟାଦି)—ବୈଦେ. ବ—ଜମାଉତ୍ ଇତ୍ୟାଦି (ଦେଖ)
Jamāu(e)t (etc) Jamāut etc. ( See )

ଯମାଦି ଅ(ଉ)ଲ୍ ଅୱଲ୍—ବୈଦେ (ଫା) ବ—ମୁସଲମାନଙ୍କ ମାସ ବିଶେଷ—
Jamādi a(u)l'awal The name of a Mahomedan
জমাদিঅলঅওল; **यमादिउलअवल** month (ମାସତଳେ ଟୀକା ଦେଖ ।)

ଯମାଦି ଅସ୍ସାନି—ବୈଦେ (ଫା) ବ—ମୁସଲମାନଙ୍କ ମାସ ବିଶେଷ—
Jamādi as-sāni The name of a month of the
জমাদিঅসসানি; **यमादिअससानी** Mahomedan calendar (ମାସତଳେ ଟୀକା ଦେଖ)

ଯମାନା—ପ୍ରାଦେ (ସମ୍ବଲପୁର) ବୈଦେ. ବ (ଫା) (ଭୁଲ. ହି.ଜମାନା)—
Jamānā ସମୟ; ଯୁଗ; କାଳ; ଅମଳ—Time; epoch
[ଯଥା—ମୋ ଯମାନାରେ ଏ କାର୍ଯ୍ୟ ହୋଇ ନାହିଁ ।)

ଯମାନୀ—ସ. ବ. ସ୍ତ୍ରୀ—ଯୁଆଣୀ; ଯବାନୀ—The carraway
Jamānī ajwan; Carum Carui; Carum Capticum.
(ଯମାନିକା—ଅନ୍ୟରୂପ) (ଦ୍ର—ଯମାନୀ ୪ପ୍ରକାର—;ଯଥା—ସ.—ବହୁଦର୍ଭୀ, ଖେଦଯମାନୀ, ଯମାନୀ, ବନଯମାନୀ, ପାରସିକଯମାନୀ, ଯବାନୀ, ଭୂତିକା, ଦୀପ୍ୟକ, ସବସାହ୍ୱ ଓ ଖୋରାସାନୀ ଯମାନୀ ।)
ଓ—ଯୁଆଣୀ, যোয়ান **अजवाइन**
ମ—ଉବା; ତେ—ଓମମୀ, ତା—ଅମନା

ଯମାନୁଚର—ସ. ବ ( ୬ଷ୍ଠୀ ତତ୍)—ଯମଦୂତ—A servant or
Jamānuchara attendant of Jama.
(ଯମାନୁଗ—ଅନ୍ୟରୂପ)

ଯମାନୁଜା—ସ.ବ.ସ୍ତ୍ରୀ—(୬ଷ୍ଠୀ ତତ୍)—ଯମୁନା ନଦୀ—The river
Jamānujā Jamunā.

ଯମାନ୍ତକ— ସ. ବ. ପୁଂ—(ଯମ ଯମଦଣ୍ଡର+ଅନ୍ତକ=ନାଶକାରୀ)—
Jamāntaka ଶିବ, ମହାଦେବ—Mahādeba.

ଯମାରି—ସ. ବ, ପୁଂ (୬ଷ୍ଠୀ ତତ୍)—ବିଷ୍ଣୁ—Bishnu.
Jamāri (ଯମରିପୁ, ଯମଘ୍ନ—ଅନ୍ୟରୂପ)

ଯମାଲୟ—ସ. ବ—(୬ଷ୍ଠୀ ତତ; ଯମ+ଆଲୟ)—ଯମପୁରୀ—The
Jamālaya abode of the God of death.

ଯମି (ଇତ୍ୟାଦି)—ବୈଦେ. ବ—ଜମି ଇତ୍ୟାଦି (ଦେଖ)
Jami (etc) Jami etc (See)

ଯମିଦାର(ରୀ)(ଇତ୍ୟାଦି)—ବୈଦେ.ବ—ଜମିଦାର(ରୀ)ଇତ୍ୟାଦି (ଦେଖ)
Jamidāra(rī)(etc) Jamidara(ri) etc (See).

ଯମିବା—ଦେ. କ୍ରି—୧ । ଜମିବା (ଦେଖ)—1. Jamibā (See)
Jamibā ୨ । (ଯାତ୍ରା, ନାଚ ଆଦି) ଦର୍ଶକରେ ପୂର୍ଣ୍ଣହେବା; ବହୁ
জমা **जमना** ଦର୍ଶକ ଆକର୍ଷଣ କରିବା—2. To attract a crowd of spectators. ୩ । ( ଘୋଡ଼ା )—ଅଗ୍ରସର ନ ହୋଇ ଏକସ୍ଥାନରେ ଠିଆ ହୋଇ ରହିବା ବା

ଘୋଡ଼ା ଛିଡ଼ାହୋଇ ନାଚିବା—3. (a horse) To stand still or to dance at the same place without proceeding further. ୪ । (ଶୋଭାଯାତ୍ରା, ଉତ୍ସବାଦି) ଆଡମ୍ବରମୟ ହେବା—4. (A procession) To be pompous.

**ଯମୀ**—ସଂ. ବି. ସ୍ତ୍ରୀ—(ଯମ+ସ୍ତ୍ରୀ.ଈ)—ଯମଙ୍କ ଭଉଣୀ ଯମୁନାନଦୀ— **Jamī** The river Jamunā. ସଂ. ବିଣ. ପୁଂ. (ଯମିନ୍; ଯମ+ଅସ୍ତ୍ୟର୍ଥେ ଇନ୍)—ଜିତେନ୍ଦ୍ରିୟ; ସଂଯମବିଶିଷ୍ଟ—Self-controlled. (ସୁଭାଷିତ ବାକ୍ୟ—ଅହିଂସା ସତ୍ୟମସ୍ତେୟଂ ବ୍ରହ୍ମଚର୍ଯ୍ୟମକଳ୍କଂ । ଇତି ପଞ୍ଚ ଯମା ଯେଷାଂ ସନ୍ତୀତି ଯମିନଃ ସ୍ମୃତାଃ ।)

**ଯମୁନା**—ସଂ. ବି. ସ୍ତ୍ରୀ—(ଯମ୍ ଧାତୁ=ବିରତ ହେବା+କର୍ତ୍ତୃ. ଉନ+ସ୍ତ୍ରୀ ଆ)—୧ । ଦୁର୍ଗା; ଭବାନୀ; ଭଗବତୀ—1. The Goddess Durgā. **Jamunā** ୨ । ଉତ୍ତରଭାରତର ନଦୀବିଶେଷ—2. The river Jamuna which rises from the south of the Himalayas and falls into the Ganges at Allahabad after a course of 378 miles. (ସଂ ନାମ—କଳନ୍ଦିକା, କଳିନ୍ଦନନ୍ଦିନୀ, କାଳିନ୍ଦୀ, କଳିନ୍ଦାତ୍ମଜା, ତପନ ତନୟା, ତପନ ସୁତା, ତାପୀ, ଯମନୀ, ଯମସ୍ୱସା, ଯମୀ, ଶମନ ସ୍ୱସା, ଶ୍ୟାମା, ସୂର୍ଯ୍ୟ ତନୟା, ସୂର୍ଯ୍ୟସୁତା)
[ଦ୍ର—ଏହା ହିମାଳୟର ଦକ୍ଷିଣାଂଶର ଯମୁନୋତ୍ତରୀ ନାମକ ସ୍ଥାନରୁ ବାହାରି ପ୍ରୟାଗଠାରେ ଗଙ୍ଗାରେ ମିଶି ଅଛି । ପୁରାଣମତେ ଏ ସୂର୍ଯ୍ୟଙ୍କ କନ୍ୟା ଓ ଯମଙ୍କ ଭଉଣୀ । ଯମୁନା ଗଙ୍ଗା ନଦୀରେ ମିଶିଥିବା ସ୍ଥାନରେ ଅନ୍ୟ ଗୋଟିଏ ନଦୀ ସରସ୍ୱତୀ ମଧ୍ୟ ମିଶିଥିଲା । ମାତ୍ର ସରସ୍ୱତୀ ବର୍ତ୍ତମାନ ଅଦୃଶ୍ୟ ହୋଇଅଛି । ଏହି ସଙ୍ଗମସ୍ଥାନର ନାମ ପ୍ରୟାଗ ବା ତ୍ରିବେଣୀ । ଏଠାରେ ବ୍ରହ୍ମା ଯାଗ କରି ଥିବାରୁ ଏହାର ନାମ ପ୍ରୟାଗ । ଏହା ହିନ୍ଦୁମାନଙ୍କର ଗୋଟିଏ ପ୍ରଧାନ ତୀର୍ଥ ଓ ଏଠାରେ ୧୨ ବର୍ଷରେ ଥରେ ଲେଖାଏଁ କୁମ୍ଭମେଳା ହୁଏ । ଯମୁନା ନଦୀକୂଳରେ ଦିଲ୍ଲୀ, ଅଗ୍ରା, ମଥୁରା ଓ ବୃନ୍ଦାବନ ଅବସ୍ଥିତ । ଯମୁନା ନଦୀ କ୍ରମଶଃ ବୃନ୍ଦାବନଠାରୁ ଦୂରକୁ ଘୁଞ୍ଚି ଯାଉଥିବା ଦେଖାଯାଏ । ଏହି ଯମୁନା ଜଳରେ ଶ୍ରୀକୃଷ୍ଣ କାଳୀୟ ନାଗକୁ ଦଳନ କରିଥିଲେ । ଏହା କୂଳରେ ଗୋପୀମାନଙ୍କ ସଙ୍ଗେ ଶ୍ରୀକୃଷ୍ଣ ବାଲ୍ୟକାଳରେ ନାନାବିଧ ଲୀଳା କରିଥିଲେ ।] ଦେ.ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—A name given to women.

**ଯମୁନା କୂଳିଆ**—ଦେ. ବିଣ—(ଯମୁନାକୂଳସ୍ଥ କେଳି କଦମ୍ବ, ବଂଶୀବଟ, **Jamunā kuḷiā** କେଳି ବିପିନରେ ଓ କୁଞ୍ଜମାନଙ୍କରେ ଥାଇ ମୁରଲୀ- ଯମୁନା କୂଳବାସୀ ନାଦଦ୍ୱାରା ଗୋପୀଙ୍କୁ ମୋହିତ କରି ବିବିଧ ଲୀଳା ଯମୁନା କୁଲିଯା ରଚିଥିବାରୁ ଏହି ନାମ; ଯମୁନା କୂଳବିହାରୀ)— ଶ୍ରୀକୃଷ୍ଣଙ୍କର ବିଶେଷଣ—A epithet of Śrikṛushṇa

**ଯମୁନା ଗାଧୁଆ**—ଦେ. ବି— (ଯମୁନା+ଗାଧୁଆପଣ)—୧ । ହିନ୍ଦୁମାନଙ୍କ **Jamunā gādhuā** ଉତ୍ସବରେ ପବିତ୍ର ଯମୁନା ନଦୀରେ ସ୍ନାନ— ଯମୁନା ସ୍ନାନ 1. A bath in the sacred river ଯମୁନାସ୍ନାନ, ଯମୁନା ନହାନ Jamunā. ୨ । ଦୋଳପୂର୍ଣ୍ଣିମା ବାସୀ ଦିନ ବା ଚୈତ୍ର କୃଷ୍ଣ ତ୍ରୟୋଦଶୀ ତିଥିରେ ପଡ଼ିବା ବାରୁଣୀ ଦିନ ଶ୍ରୀକୃଷ୍ଣପ୍ରତିମାଙ୍କୁ ନଦୀ ପୁଷ୍କରିଣୀ ଆଦିରେ ସ୍ନାନ କରାଇବା ଉତ୍ସବ—2. The ceremony of giving a bath to the image of Śṛikṛushṇa on the morrow of Dolapūrnimā or in Chaitra.

**ଯମୁନା ଜନକ**—ସ ବି.—(ଯମୁନା+ଜନକ)—ସୂର୍ଯ୍ୟ ଦେବ— **Jamunā janaka** The Sun-god.

**ଯମୁନାଭିଦ୍**—ସ. ବି—( ଯମୁନା+ଭିଦ୍ ଧାତୁ+କର୍ତ୍ତୃ. କ୍ୱିପ୍ **Jamunābhid** =ଖଣ୍ଡକାରୀ)—ବଳରାମ—Baḷarāma.
[ଦ୍ର—ବଳରାମ ଲଙ୍ଗଳଦ୍ୱାରା ଯମୁନା ନଦୀକୁ ଦ୍ୱିଖଣ୍ଡ କରିଥିବାର କଥା ପୁରାଣରେ ଅଛି ।]

**ଯମୁନା ଭ୍ରାତା**—ସ. ବି.—( ୬ଷ୍ଠୀ ତତ୍; ଯମୁନା+ଭ୍ରାତୃ )—ଯମ **Jamunā bhrātā** ଦେବତା—The God of death.

**ଯମୁନୀ**—ଗ୍ରା. ବି. ସ୍ତ୍ରୀ—ଯମୁନା ନାମ୍ନୀ ସ୍ତ୍ରୀର ଡାକ ନାମ— **Jamunī** Name for calling women named ଯମୁନା ଯମୁନା Jamunā
ଦେ. ବି—ହିମାଳୟରୁ ଉତ୍ପନ୍ନ ହୋଇ ନେପାଳ ଓ ଯମୁନୀ ଯମୁନୀ ଦ୍ୱାରଭଙ୍ଗା ଦେଇ ଗଙ୍ଗାର ଉପନଦୀ ବାଘମତୀ ନଦୀରେ ମିଳିଥିବା ଛୋଟ ନଦୀ—Name of a small river passing through Nepal and Darbhanga and falling the Baghmati (which is a tributory of the Ganges).

**ଯମୁନୋତ୍ତରୀ**—ସଂ. ବି—ହିମାଳୟର ଗଢ଼ୱାଲ୍ ପ୍ରଦେଶସ୍ଥ ଏକ ପର୍ବତ, **Jamunottari** ଯହିଁରୁ ଯମୁନାନଦୀ ନିର୍ଗତ ହୋଇଅଛି— Name of the mountain from which the Jamuna river issues.

**ଯମେରୁକା**—ସ. ବି—୧ । ଜୟଢକ୍କା—1. A drum used on **Jamerukā** occassious of victory. ୨ । ଏକପ୍ରକାର ବଡ଼ ଝାଞ୍ଜ, ଯାହା ପ୍ରାଚୀନକାଳରେ ପ୍ରତି ଘଡ଼ି ସମୟ ପୂରିବା ବେଳେ ବଜା ଯାଉଥିଲା (ହି. ଶ.)— 2. A pair of big cymbals which were sounded in ancient times for indicating every ghaṛdi.

**ଯମେଶ୍ୱର**—ସ. ବି ( ମ. ପ. ଲୋ, ଯମପୂଜିତ ଈଶ୍ୱର )—୧ । ଶିବ **Jameswar** ( ହି. ଶ. )—1. Śiba. ଦେ. ବି—୧ । ଶିବଲିଙ୍ଗ ବିଶେଷ—1. Name of an image of Śiba. [ ଦ୍ର—ଯମଶୀଳ ନାମେ ତୀର୍ଥ ଆଦ୍ୟ, ତହିଁ ଯମେଶ୍ୱର ଦେବତା ପ୍ରସିଦ୍ଧ । ପ୍ରାଚୀ. ରହସ୍ୟମଞ୍ଜରୀ । ] ୨ । ପୁରୁଷଙ୍କୁ ଦିଆଯିବା ନାମ—2. A name given to males.

**ଯମ୍ବେଶ୍ୱର**—ଗ୍ରା. ବି. ପୁଂ—ଯମେଶ୍ୱରର ଡାକ ନାମ—Name for **Jambeśwara** calling Jameśwara.

**ଯଯାତି** — ସଂ. ବି — (ଯ=ବାୟୁ ପରି + ଯା ଧାତୁ=ଗମନ କରିବା + କର୍ତ୍ତୃ. ତି) — ଚନ୍ଦ୍ରବଂଶୀୟ ନହୁଷ ରାଜାଙ୍କ ପୁତ୍ର; ଚନ୍ଦ୍ରବଂଶର ପଞ୍ଚମ ରାଜା — A monarch of the ancient lunar dynasty of India. [ଦ୍ର — ପୁରାଣରେ ଅଛି — ଯଯାତି ଏକଦା ମୃଗୟାକୁ ଯାଇ ତୃଷାର୍ତ୍ତ ହୋଇ ଗୋଟିଏ କୂପ ନିକଟରେ ପହଞ୍ଚିଲେ। କୂପ ମଧ୍ୟରେ ଗୋଟିଏ ଯୁବତୀ ପଡ଼ିଥିବା ଦେଖି, ତାହାଙ୍କୁ କୂପରୁ କାଢ଼ି ତାଙ୍କର ପ୍ରାଣ ରକ୍ଷା କଲେ । ଉକ୍ତ ଯୁବତୀ ଶୁକ୍ରାଚାର୍ଯ୍ୟଙ୍କ ଦୁହିତା ଦେବଯାନୀ । କିଛି କାଳ ପରେ ଶୁକ୍ରାଚାର୍ଯ୍ୟଙ୍କ ଅନୁମତି-କ୍ରମେ ଯଯାତି ଦେବଯାନୀଙ୍କୁ ବିବାହ କଲେ। ଦେବଯାନୀ ଓ ଯଯାତି ଯାଇ ରାଜଧାନୀରେ ବାସ କଲେ। ଦେବଯାନୀଙ୍କ ଗର୍ଭରୁ ଯଦୁ ଓ ତୁର୍ବସୁ ନାମକ ଦୁଇ ପୁତ୍ର ଜନ୍ମ ହେଲେ। ଏଣେ ଯଯାତି ଦେବଯାନୀଙ୍କ ପରିଚାରିକା ଦୈତ୍ୟରାଜକନ୍ୟା ଶର୍ମିଷ୍ଠାଙ୍କ ରୂପରେ ମୋହିତ ହୋଇ ତାଙ୍କୁ ଗୋପନରେ ଗାନ୍ଧର୍ବ-ବିବାହ କଲେ । ଶର୍ମିଷ୍ଠାଙ୍କ ଗର୍ଭରୁ ଦ୍ରୁହ୍ୟ, ଅନୁ ଓ ପୁରୁ ନାମକ ତିନି ପୁତ୍ର ଜନ୍ମ ହେଲେ । ଦେବଯାନୀ ରାଜାଙ୍କର ଏ ଗୁପ୍ତ ବିବାହରେ କ୍ରୁଦ୍ଧ ହୋଇ ରାଜଧାନୀ ତ୍ୟାଗ କରି, ଶୁକ୍ରାଚାର୍ଯ୍ୟଙ୍କ ଆଶ୍ରମକୁ ଯାଇ ପିତାଙ୍କୁ ଏହା କହିବାରୁ ପିତା କ୍ରୁଦ୍ଧ ହୋଇ ଯଯାତିଙ୍କୁ ଅକାଳରେ ଜରାଗ୍ରସ୍ତ ହେବାକୁ ଅଭିଶାପ ଦେଲେ । ପରେ ଯଯାତିଙ୍କ ସ୍ତବରେ ତୁଷ୍ଟ ହୋଇ ତାଙ୍କର ଜରାବସ୍ଥାକୁ ପାତ୍ରାନ୍ତରରେ ସଂକ୍ରାମିତ କରି ତହିଁ ବଦଳରେ ସ୍ୱୟଂ ଯୌବନ ଲାଭ କରିବା କ୍ଷମତା ଯଯାତିଙ୍କୁ ଦେଲେ । ଶାପପ୍ରଭାବରେ ଯଯାତିଙ୍କୁ ଜରା ଆକ୍ରମଣ କରିବାରୁ ଯଯାତି ତାଙ୍କ ଜରାକୁ ପୁଅମାନଙ୍କୁ ଯାଚିଲେ । କିନ୍ତୁ ଚାରି ଜଣ ପୁଅ ଏଥିରେ ଅସ୍ୱୀକାର କଲେ। କନିଷ୍ଠ ପୁତ୍ର ପୁରୁ ପିତାଙ୍କ ଜରାକୁ ଗ୍ରହଣ କଲେ। ଯଯାତି ପୁରୁଙ୍କଠାରେ ପ୍ରସନ୍ନ ହୋଇ ଅନ୍ୟ ପୁତ୍ରମାନଙ୍କୁ ରାଜ୍ୟ ନ ଦେଇ ପୁରୁଙ୍କୁ ଉତ୍ତରାଧିକାରୀ ମନୋନୀତ କଲେ। ଯଯାତି ପୁରୁଙ୍କଠାରୁ ଯୌବନ ଗ୍ରହଣ କରି ଏକ ସହସ୍ର ବର୍ଷ ବିଷୟଭୋଗଦ୍ୱାରା ଆତ୍ମାରେ ଶାନ୍ତି ନ ପାଇବାରୁ, ପୁରୁଙ୍କୁ ପୁଣି ଯୌବନ ଫେରାଇ ଦେଇ, ଆପେ ଆପଣାର ଜରାକୁ ଗ୍ରହଣ କରି, ପୁରୁଙ୍କୁ ସିଂହାସନରେ ବସାଇ, ତପଶ୍ଚରଣାର୍ଥ ବାନପ୍ରସ୍ଥ ଅବଲମ୍ବନ କଲେ ଓ ଦେହାନ୍ତ ହେବାରୁ ସ୍ୱର୍ଗକୁ ଗଲେ। ସ୍ୱର୍ଗରେ ଥିବା ବେଳେ ସେ ନିଜର ତପସ୍ୟା ବିଷୟରେ ବଡ଼ାଇ କରିବାରୁ ଇନ୍ଦ୍ରଙ୍କ ଶାପରେ ସ୍ୱର୍ଗଚ୍ୟୁତ ହେଲେ। ସ୍ୱର୍ଗରୁ ଚ୍ୟୁତ ହେବାମାର୍ଗରେ ଅଷ୍ଟକ ନାମକ ଋଷି ଏହାଙ୍କୁ ଅଟକାଇ କରି ପୁଣି ସ୍ୱର୍ଗକୁ ଫେରାଇ ପଠାଇଲେ। ହି. ଶ. ]
Jajāti

**ଯଯାତି କେଶରୀ** — ଦେ. ବି — ସ୍ୱାଧୀନ ଉତ୍କଳର ଜଣେ ରାଜା — Name of a king of independent Orissa. [ଦ୍ର — କେଶରୀବଂଶର ପ୍ରଥମ ରାଜା ଜନମେଜୟଙ୍କ ପୁତ୍ର ଯଯାତିକେଶରୀ ଖ୍ରୀଷ୍ଟାବ୍ଦ ୫୫୬ ରେ ଉତ୍କଳ ସିଂହାସନ ଆରୋହଣ କଲେ (କୃପାସିନ୍ଧୁ ଇତିହାସ)। ଏ ଉତ୍କଳରେ ବୌଦ୍ଧଧର୍ମର ପ୍ରଭାବ ଦମନ କରିଥିଲେ। ଏ ଶୈବ ଥିଲେ । ଯଯାତି ପ୍ରଥମେ ପୁରୀ ନଗରୀରେ ଜଗନ୍ନାଥଙ୍କ ମନ୍ଦିର ନିର୍ମାଣ କରି ତାଙ୍କ ସେବାପାଇଁ ଜମି ଆଦି ଆଜ୍ଞା କରିଥିଲେ। ବର୍ତ୍ତମାନ ଯେଉଁ ମନ୍ଦିର ଦେଖାଯାଏ ତାହା ଯଯାତିଙ୍କ ମନ୍ଦିର ନୁହେ। ଏ ଚଉଦ୍ୱାରରୁ ରାଜଧାନୀ ଉଠାଇ ଯାଜପୁରଠାରେ ରାଜଧାନୀ ସ୍ଥାପନ କରିଥିଲେ । ଖଣ୍ଡଗିରିରେ ବୌଦ୍ଧ ପ୍ରାଦୁର୍ଭାବ ଦମନ କରିବା ପାଇଁ ଏ ଭୁବନେଶ୍ୱରଠାରେ ଶିବମନ୍ଦିରର ମୂଳପତ୍ତନ କରିଥିଲେ। ଏ କାନ୍ୟକୁବ୍ଜରୁ ଦଶହଜାର ବେଦଜ୍ଞ ବ୍ରାହ୍ମଣ ଆଣାଇ, ଯାଜପୁରଠାରେ ଗୋଟିଏ ମହାଯଜ୍ଞ କରାଇଥିଲେ, ଯାଜପୁରରେ ଓ ପୁରୀଜିଲ୍ଲାରେ ବ୍ରାହ୍ମଣମାନଙ୍କୁ ବହୁ ଭୂମି ଦାନ କରି ଶାସନମାନ ବସାଇଥିଲେ । ଏହାଙ୍କ ଅମଳରୁ ପୁରୀ-ମନ୍ଦିରରେ ମାଦଳାପାଞ୍ଜି ରଖା ହୋଇ ଆସୁଅଛି । କବିବର ରାଧାନାଥ 'ଯଯାତିକେଶରୀ' ନାମରେ ଗୋଟିଏ କାବ୍ୟ ରଚନା କରିଅଛନ୍ତି । ]
Jajāti kesari
यर्याितकेशरी
ययातिकेशरी

**ଯଯାତିପତନ** — ସଂ. ବି — ମହାଭାରତୋକ୍ତ ହିନ୍ଦୁମାନଙ୍କ ତୀର୍ଥ ବିଶେଷ — A sacred place of pilgrimage for the Hindus. (ଉ — ଯଯାତିପତନକୁ ଯାଏ ଯେଉଁ ନର, ଅଶ୍ୱମେଧ ଫଳଟି ହୁଅଇ ତାହାର । କୃଷ୍ଣସିଂହ. ମହାଭାରତ ବନ । )
Jajāti patana

**ଯଯାବର** — ସଂ ବିଣ. ପୁଂ — ଯାଯାବର (ଦେଖ)
Jajābara — Jājābara (See)
(ଯଯାବରୀ — ସ୍ତ୍ରୀ)

**ଯଯୀ(ଯି)** — ସଂ. ବି. ପୁଂ (ଯା ଧାତୁ=ଗମନ କରିବା + ସଂଜ୍ଞାର୍ଥେ, ଈ, ଇ; ଦ୍ୱିତ୍ୱ, ନିପାତନ) — ୧ । ଶିବ; ମହାଦେବ — 1. Siba. ୨ । ( + ଅଧିକରଣ ଈ ) ପଥ; ରାସ୍ତା — 2. Road. ୩ । ( + କରଣ ଈ ) ଘୋଡ଼ା (ହି. ଶ.) 3. Horse.
Jaji(ji)

**ଯଯୁ** — ସଂ. ବି. ପୁଂ (ଯା ଧାତୁ=ଗମନ କରିବା + କର୍ତ୍ତୃ. ଉ; ଦ୍ୱିତ୍ୱ, ନିପାତନ) — ୧ । ଅଶ୍ୱମେଧୀୟ ଅଶ୍ୱ — 1. A horse let loose before an Aśwamedha sacrifice. ୨ । ଅଶ୍ୱ — 2 Horse.
Jaju

**ଯଶ** — ଦେ. ବି (ସଂ. ଯଶଃ) — ୧ । ଯଶଃ (ଦେଖ) — 1. Jaśah (See). (ଉ — ଯାହାର ଯଶ ପୁଣ୍ୟଶ୍ଲୋକେ, ମୁଖେ ଭଣନ୍ତି ସର୍ବ ଲୋକେ — ଜଗନ୍ନାଥ. ଭାଗବତ । ) [ ଦ୍ର — ମନିଅର୍ ଉଇଲିଅମ୍ସ ତାଙ୍କ ଶବ୍ଦକୋଷରେ 'ଯଶ' ଶବ୍ଦକୁ ଯଶସ୍ ଶବ୍ଦର ଗୋଟିଏ ରୂପ ବୋଲି ନିର୍ଦ୍ଦେଶ କରିଅଛନ୍ତି । ] ୨ । ବାହାଦୁରି; ପ୍ରଶଂସା; ପୁରୁଷାର୍ଥ — 2. Praise; credit.
Jaśa
यश यशस्

**ଯଶ ଅପଯଶ** — ଦେ. ବି — (ସଂ. ଯଶଃ + ଅପଯଶଃ, ବିପରୀତ ସହଚର) — ଖ୍ୟାତି ଓ ଅଖ୍ୟାତି — Good name and bad name
Jaśa apajaśa
यशअपयश यशअपयश्

**ଯଶଆକାଙ୍କ୍ଷା** — ସଂ. ବି (ଯଶଃ + ଆକାଙ୍କ୍ଷା, ସନ୍ଧି ନିୟମ ଅନୁସାରେ ବିସର୍ଗର ଲୋପ) — ଯଶୋଲିପ୍ସା । — Desire for fame.
Jaśa-ākānkshā

**ଯଶଆକାଙ୍କ୍ଷୀ**—ସଂ. ବିଣ. ପୁଂ (ଯଶଃ+ଆକାଙ୍କ୍ଷୀ)—ଯଶୋଲିପ୍ସୁ-
**Jaśaākānkshī** Desirous of fame.
(ଯଶଆକାଙ୍କ୍ଷିଣୀ—ସ୍ତ୍ରୀ)

**ଯଶଃ**—ସଂ. ବି (ଯଶସ୍; ଅଶ୍ ଧାତୁ=ବ୍ୟାପ୍ତ ହେବା+କର୍ତ୍ତୃ. ଅସ୍;
**Jaśah** 'ୟ' ଆଗମ; ଯାହା ସଂସାରରେ ବ୍ୟାପ୍ତ ହୁଏ)—
୧ । ଖ୍ୟାତି; ସୁଖ୍ୟାତି; କୀର୍ତ୍ତି; ଦାନାଦିପ୍ରଭବା କୀର୍ତ୍ତି; ଭଲ କାମ କରିବା ଯୋଗୁଁ ଜନମୁଖରେ ଖ୍ୟାତ ସୁନାମ—
1. Glory; fame; renown, reputation.
[ ଦ୍ର—ପ୍ରାଚୀନ ଗ୍ରନ୍ଥମାନଙ୍କରେ ଯଶଃ ଓ କୀର୍ତ୍ତିର ପ୍ରଭେଦ ଲକ୍ଷିତ ହୁଏ । "ଦାନାଦିପ୍ରଭବା କୀର୍ତ୍ତି ଶୌର୍ଯ୍ୟାଦି ପ୍ରଭବ ଯଶଃ"; ଜୀବିତ ବ୍ୟକ୍ତିର 'ଖ୍ୟାତି ଓ ଯଶଃ'; ମୃତ ବ୍ୟକ୍ତିର କୀର୍ତ୍ତି—ଏହିପରି ବ୍ୟବହାର ଦେଖାଯାଏ । ]
୨ । ଯଶସ୍ୱୀ ବ୍ୟକ୍ତି—2. A person of distinction (Apte). ୩ । ( ବୈଦିକ; ଭୂବ+ଅସ୍ ) ବ୍ୟାପକତା—3 Diffuseness; diffusion. ୪ । (ବୈଦିକ)—ସୌନ୍ଦର୍ଯ୍ୟ—4. Beauty; splendour (Apte) ୫ । ଅନୁଗ୍ରହ; ପକ୍ଷପାତ—5. Favour; partiality ( Apte ). ୬ । ଧନ—6. Wealth (Apte). ୭ । ଖାଦ୍ୟଦ୍ରବ୍ୟ—7. Food (Apte). ୮ । ଜଳ—8. Water. ସଂ. ବିଣ—୧ । ସୁନ୍ଦର; ମନୋହର—1. Lovely; agreeable (Apte). ୨ । ଯୋଗ୍ୟ—2. Worthy (Apte). ୩ । ସମ୍ମାନିତ-
3. Honoured (Apte).

**ଯଶଃକୀର୍ତ୍ତନ**—ସଂ. ବି ( ୬ଷ୍ଠୀ ତତ୍; ଯଶଃ+କୀର୍ତ୍ତନ )—କୀର୍ତ୍ତି
**Jaśahkīrttana** ଘୋଷଣା କରିବା; ଯଶୋଗାନ—
Reciting of a person's glory or fame.

ଯଶଃଖ୍ୟାପନ
ଯଶଃପ୍ରକଟନ } ଅନ୍ୟରୂପ
ଯଶଃପ୍ରଚାର

**ଯଶଃକ୍ଷୟ**—ସଂ. ବି (୬ଷ୍ଠୀ ତତ୍; ଯଶଃ+କ୍ଷୟ)—ଯଶୋହାନି; ସୁନାମର
**Jaśahkshaya** ହାନି—Loss of one's fame.

**ଯଶଃକ୍ଷେତ୍ର**—ସଂ. ବି ( ୭ମୀ ତତ୍; ଯଶଃ+କ୍ଷେତ୍ର )—ମନୁଷ୍ୟ
**Jaśahkshetra** ଯେଉଁଠାରେ କୀର୍ତ୍ତି ଲାଭ କରେ—
The field of one's renown; a place where a person earns fame.

**ଯଶଃ ନାଶ**—ସଂ. ବି (ଯଶଃ+ନାଶ; ୬ଷ୍ଠୀ ତତ୍)—ଯଶୋହାନି—
**Jaśah nāśa** Loss of fame or reputation.
(ଯଶୋଲୋପ—ଅନ୍ୟରୂପ)

**ଯଶଃପଟହ**—ସଂ. ବି. ପୁଂ ( ଯଶଃ+ପଟହ)—ଜୟଢକ୍କା; ଢୋଲ—
**Jaśahpataha** A double drum (Apte).

**ଯଶଃ ପ୍ରଭବ**—ସଂ. ବିଣ. (ବହୁବ୍ରୀହି)—ଯଶରୁ ଉତ୍ପନ୍ନ—
**Jaśah prabhaba** Resulting from one's renown.
(ଯଶଃ ପ୍ରସୂତ—ଅନ୍ୟରୂପ)
(ଯଥା—ଯଶଃ ପ୍ରଭବ ଧନଲାଭ ।)

**ଯଶଃପ୍ରଭା**—ସଂ ବି (୬ଷ୍ଠୀ ତତ୍; ଯଶଃ+ପ୍ରଭା) କୌଣସି ବ୍ୟକ୍ତିର
**Jaśah prabhā** କୀର୍ତ୍ତିରୂପ ଆଲୋକ)—The brightness or halo of one's renown.

**ଯଶଃପ୍ରଭାବ**—ସଂ. ବି (୬ଷ୍ଠୀ ତତ୍)—କୀର୍ତ୍ତିର ମହତ୍ତ୍ୱ—
**Jaśahprabhaba** The greatness of one's renown

**ଯଶଃଶେଷ**—ସଂ. ବି (ବହୁବ୍ରୀହି; ଯଶଃ+ଶେଷ)—Death..
**Jaśahśesha** ସଂ. ବିଣ. ପୁଂ (ବହୁବ୍ରୀହି) ମୃତ—Dead.
(ଯଶଃଶେଷା—ସ୍ତ୍ରୀ)

**ଯଶଃଶୈଳ**—ସଂ. ବି—(ରୂପକ କର୍ମଧା, ଯଶଃ+ଶୈଳ)—ପର୍ବତ ସଙ୍ଗେ
**Jaśahśaila** ତୁଳନୀୟ ଯଶୋରାଶି—Fame compared to a mountain owing to its immensity.

**ଯଶଃଶ୍ରୀ**—ସଂ. ବି.—୧ । (ଦ୍ୱନ୍ଦ୍ୱ) କୀର୍ତ୍ତି ଓ ସମ୍ପଦ—1. Fame and
**Jasahśrī** wealth. ୨ । (୬ଷ୍ଠୀ ତତ୍ ବା ମ.ପ.ଲୋ)—
କୀର୍ତ୍ତିଜନିତ ଶ୍ରୀ ବା ସମ୍ପଦ—2. Glory due to fame. ୩ । (ରୂପକ) କୀର୍ତ୍ତିରୂପ ସମ୍ପଦ—3. Fame compared to wealth

**ଯଶଃଶ୍ରୀବାଞ୍ଛିତ ଶୁଭାଶୀର୍ବାଦ**—ସଂ. ବି.—(ବରିଷ୍ଠ ଓ ଅଶୀର୍ଭାଜନ
**Jaśahśrī bānchhita** ବ୍ୟକ୍ତିଙ୍କଠାରୁ ପ୍ରେରିତ ପତ୍ରରେ
**śubhāśirbāda** ବ୍ୟବହୃତ)—କୌଣସି ବ୍ୟକ୍ତିଙ୍କ ପାଇଁ କୀର୍ତ୍ତି ଓ ସମ୍ପଦ ପ୍ରାପ୍ତି ବାଞ୍ଛାଯୁକ୍ତ ଆଶୀର୍ବାଦ-Blessing or benediction wishing fame and prosperity to a person.

**ଯଶଃ ସମୂହ**—ସଂ. ବି—(ଯଶଃ+ସମୂହ)—ଯଶୋରାଶି (ଦେଖ)
**Jaśah samūha** Jaśorāśi (See)

**ଯଶଃ ସାଧନ**—ସଂ. ବିଣ.—(ଯଶଃ+ସାଧନ)—ଯଶସ୍କର—
**Jaśah sādhana** Causing one's fame or reputation

**ଯଶଃ ସୌଭାଗ୍ୟ**—ସଂ. ବି.—ଯଶୋଭାଗ୍ୟ (ଦେଖ)
**Jaśah saubhāgya** Jaśobhāgya (See)

**ଯଶଃ ସୌରଭ**—ସଂ. ବି.—(ରୂପକ କର୍ମଧା, ଯଶଃ+ସୌରଭ)—
**Jaśah saurabha** ସୁବାସ ପରି ଚତୁର୍ଦ୍ଦିଗରେ ବ୍ୟାପିବା ଯଶଃ—
Good name spreading like the odour of a sweet scent.

**ଯଶଃ ସ୍ତମ୍ଭ**—ସଂ.ବି.—(ମ ପ.ଲୋ, ଯଶଃ+ସ୍ତମ୍ଭ)—କୀର୍ତ୍ତି ସ୍ତମ୍ଭ; ରାଜା
**Jaśah stambha** ଆଦିଙ୍କ କୀର୍ତ୍ତିଜ୍ଞାପକ ସ୍ତମ୍ଭ—A pillar on which are depicted the glorious acts of a great personage.

**ଯଶ କରିବା**—ଦେ. କ୍ରି.—୧ । କୀର୍ତ୍ତିଗାନ କରିବା—
**Jaśa karibā** 1. To sing one's fame.
(ଯଶ ଦେବା—ଅନ୍ୟରୂପ) ୨ । ପ୍ରଶଂସା କରିବା—
যশ করা यश करना 2. To praise; to extol.

**ଯଶକାରି**—ଦେ. ବିଣ.—(ସଂ. ଯଶସ୍କର)—ଯଶସ୍ୱୀ—
**Jaśakārī** যশস্বী Famous, highly reputed.
यशकारि [ଦ୍ର—ଯେତେ ରାଜନ ଯଶକାରି; ତୋତେ ଦେଖିବେ ନରହରି—ଜଗନ୍ନାଥ. ଭାଗବତ ।]

ଯଶଦ—ସଂ. ବି. କ୍ଲୀ.—ଦସ୍ତା ଧାତୁ—
Jaśada Zinc.

ଯଶ ନେବା—ଦେ. କ୍ରି —୧ । ଯଶ ପାଇବା (ଦେଖ)
Jaśa nebā यश लेना 1. Jaśa pāibā (See)
यश लेना ୨ । ଜୟ ଲାଭ କରିବା—2. To attain victory.

ଯଶ ପାଇବା—ଦେ. କ୍ରି.—୧ । ଯଶୋଲାଭ କରିବା—1. To attain fame.
Jaśa pāebā ୨ । ପ୍ରଶଂସା ଲାଭ କରିବା;
( ଯଶ ଲଭିବା—ଅନ୍ୟରୂପ ) ପ୍ରଶଂସିତ ହେବା—2. To
যশপাওয়া यश पाना acquire praise; to be praised.

ଯଶ ମିଳିବା—ଦେ. ବି.—ଯଶୋଲାଭ—Earning of fame.
Jaśa milibā যশ মিলা यश मिलना

ଯଶସ୍—ସଂ. ବି.—(ଶବ୍ଦ)—ଯଶଃ (ଦେଖ)
Jaśas Jaśah (See)

ଯଶସ୍କର—ସଂ. ବିଣ.—(ଯଶସ୍+କୃ ଧାତୁ=କରିବା+କର୍ତ୍ତୃ. ଅ)—
Jaśaskara କୀର୍ତ୍ତିଜନକ; ଯେଉଁ କାର୍ଯ୍ୟଦ୍ୱାରା ଯଶୋଲାଭ ହୁଏ-
(ଯଶସ୍କରୀ—ସ୍ତ୍ରୀ) Causing good name.

ଯଶସ୍କାମ—ସଂ. ବିଣ. ପୁଂ—(ଯଶସ୍+କମ୍ ଧାତୁ=ଇଚ୍ଛା କରିବା+
Jaśaskāma କର୍ତ୍ତୃ. ଅ)—ଯଶୋଲିପ୍ସୁ (ଦେଖ)
Jaśolip-su (See)

ଯଶସ୍କାମୀ—ସଂ. ବିଣ. ପୁଂ—(ଯଶସ୍+କମ୍ ଧାତୁ=ଇଚ୍ଛା କରିବା+
Jaśaskāmi କର୍ତ୍ତୃ. ଇନ୍; ୧ମା. ୧ବ)—ଯଶୋଲିପ୍ସୁ (ଦେଖ)
(ଯଶସ୍କାମିନୀ—ସ୍ତ୍ରୀ) Jaśolipsu (See)

ଯଶସ୍କାମ୍ୟନ୍—ସଂ. ବିଣ. ପୁଂ—[ଯଶସ୍+କମ୍ ଧାତୁ+ଅନ୍ତ (ଶତୃ),
Jaśaskāmyan ୧ମ. ୧ବ] ଯଶୋଲିପ୍ସୁ (ଦେଖ)—Jaśolipsu (See)
(ଯଶସ୍କାମ୍ୟନ୍ତୀ—ସ୍ତ୍ରୀ)

ଯଶସ୍ୱାନ୍—ସଂ. ବିଣ. ପୁଂ.—( ଯଶସ୍+ବତୁ, ୧ମା. ୧ବ )—
Jaśaswān ଯଶସ୍ୱୀ (ଦେଖ)—Jaśaswi (See)
(ଯଶସ୍ୱତୀ—ସ୍ତ୍ରୀ)

ଯଶସ୍ୱିନୀ—ସଂ. ବିଣ. ସ୍ତ୍ରୀ (ଯଶସ୍+ଅସ୍ତ୍ୟର୍ଥେ. ବିନ୍+ସ୍ତ୍ରୀ ଈ)—ଯଶସ୍ୱୀର
Jaśaswini ସ୍ତ୍ରୀଲିଙ୍ଗ—Feminine of Jaśaswi.
ସଂ. ବି—୧ । କଟଗୁ; ମହାଜ୍ୟୋତିଷ୍ମତୀ ଗୁଳ୍ମ—
1. A phosphorescent plant diffusing light in the night; Cardiospermum Helicacabum
୨ । ଯବତିକ୍ତା; ଦୁରାଲଭା (ଦେଖ)—2 Jabatiktā; Durālabha (See) ୩ । ବଦର; ବନକାର୍ପାସୀ; ବଣକପା; ବୋଡ଼ିକପା—3. A kind of cotton growing wild; Gossypum Arboreum. ୪ । ଗଙ୍ଗାନଦୀ (ହୁ.ଶ)-4 The river Ganges. ଦେ. ବି—ଶରୀରସ୍ଥ ପ୍ରଧାନ ଦଶନାଡ଼ୀ ମଧ୍ୟରୁ ଏକତମ । (ଦଶ ନାଡ଼ୀ ଭଳେ ଳୋଟ୍ ଦେଖ)—One of the chief arteries of the body;

ଯଶସ୍ୱୀ—ସଂ. ବି. ପୁଂ (ଯଶସ୍+ଅସ୍ତ୍ୟର୍ଥେ. ବିନ୍; ୧ମା. ୧ବ)—
Jaśaswi ଖ୍ୟାତି; କୀର୍ତ୍ତିଶାଳୀ—Renowned; famous.
(ଯଶସ୍ୱିନୀ—ସ୍ତ୍ରୀ)

ଯଶସ୍ୟ—ସଂ. ବିଣ (ଯଶସ୍+ଯ)—୧ । ଯଶସ୍କର (ଦେଖ)—1. Jaśaskara (See).
Jaśasya ୨ । ଯଶୋଦାତା ( ଦେଖ )—
(ଯଶସ୍ୟା—ସ୍ତ୍ରୀ) 2 Jaśodātā (See).

ଯଶସ୍ୟା—ସଂ. ବି—ଜୀବନ୍ତୀ ବା ଋଦ୍ଧି ନାମକ ମହୌଷଧ—Name
Jaśasyā of a rare medicinal plant ସଂ.ବିଣ.ସ୍ତ୍ରୀ—
(ଯଶସ୍ୟ+ଆ) ଯଶସ୍ୟର ସ୍ତ୍ରୀଲିଙ୍ଗ—Feminine of Jaśasya.

ଯଶସ୍ ସୌଭାଗ୍ୟ—ସଂ. ବି—ଯଶଃସୌଭାଗ୍ୟ (ଦେଖ)
Jaśas saubhāgya Jaśah saubhāgya (See)

ଯଶହାନି—ଦେ. ବିଣ (ସଂ. ଯଶୋହାନି)—ଯଶୋହାନି (ଦେଖ)—
Jaśahāni Jasohāni (See). (ଜ—ଭରଥି ମୁଁ ଯେ ସାର
যশের হানি ପଦରେ ପଦନ୍ତର ଉଙ୍ଗେ ବରଙ୍ଗେ ଯଶହାନି । ଉଞ୍ଜ.
यशहानी ବୈଦେହୀଶବିଳାସ ।)

ଯଶାକାଙ୍କ୍ଷା—ସଂ. ବି ( ଯଶସ୍+ଆକାଙ୍କ୍ଷା, ନପାତନ )—ଯଶୋଲିପ୍ସା
Jaśākānkshā (ଦେଖ)—Jaśolipsā (See). [ ଦ୍ର—
ମନିଅର୍ ଉଇଲିଅମସ୍ ତାଙ୍କ ଶବ୍ଦକୋଷରେ 'ଯଶ' ଶବ୍ଦକୁ
'ଯଶସ୍'ର ଅନ୍ୟରୂପ ବୋଲି ନିର୍ଦ୍ଦେଶ କରିଅଛନ୍ତି ।]

ଯଶାକାଙ୍କ୍ଷୀ—ସଂ. ବିଣ. ପୁଂ (ଯଶଃ+ଆକାଙ୍କ୍ଷା+ଇନ୍; ନପାତନ)—
Jaśākānkshi ଯଶୋଲିପ୍ସୁ (ଦେଖ)—Jaśolipsu (See)
(ଯଶାକାଂକ୍ଷିଣୀ—ସ୍ତ୍ରୀ)

ଯଶୋକୀର୍ତ୍ତନ—ସଂ. ବି (୬ଷ୍ଠୀ ତତ୍; ଯଶଃ+କୀର୍ତ୍ତନ)—ଯଶଃକୀର୍ତ୍ତନ
Jaśokirttana (ଦେଖ)—Jaśah kirttana (See).

ଯଶୋଗାଥା—ସଂ. ବି (୬ଷ୍ଠୀ ତତ୍,ଯଶଃ+ଗାଥା)—କୌଣସି ବ୍ୟକ୍ତିଙ୍କର
Jaśogāthā କୀର୍ତ୍ତିଜ୍ଞାପକ ପଦାବଳି—Epistolary verses in praise of some high personage.

ଯଶୋଗାନ—ସଂ. ବି (ଯଶଃ+ଗାନ)—୧ । କୌଣସି ବ୍ୟକ୍ତିଙ୍କର
Jaśogāna ଖ୍ୟାତି କୀର୍ତ୍ତନ—1. Singing of a person's fame. ୨ । ଯଶୋଗୀତ (ଦେଖ)—2. Jaśogita (See)

ଯଶୋଗାୟନ—ସଂ. ବି (ଯଶଃ+ଗାୟନ)—କୌଣସି ବ୍ୟକ୍ତିର କୀର୍ତ୍ତି
Jaśogāyana ଗାଇବା—Singing of a person's fame.

ଯଶୋଗୀତ(ତି)—ସଂ. ବି (ମ. ପ. ଲୋ; ଯଶଃ+ଗୀତ[ତି])—କୌଣସି
Jaśogita(ti) ବ୍ୟକ୍ତିଙ୍କର ଯଶଃ ବର୍ଣ୍ଣନା କରି ବୋଲା ଯାଉଥିବା
(ଯଶୋଗୀତିକା—ଅନ୍ୟରୂପ) ଗୀତ; ଚେପେଡ଼ିକାର—Song sung in praise of some person by reciting his good acts.

ଯଶୋଘ୍ନ—ସଂ. ବିଣ. ପୁଂ (ଯଶଃ+ହନ୍ ଧାତୁ=ନାଶ କରିବା+କର୍ତ୍ତୃ
Jaśoghna ଅ)-ଯାହା ଯଶଃ ନାଶ କରେ; ଯଶୋହାନିକାରକ—
(ଯଶୋଘ୍ନୀ—ସ୍ତ୍ରୀ) Destroying one's fame; destructive of one's good name.

ଯଶୋଦ—ସଂ. ବିଣ. ପୁଂ (ଯଶଃ+ଦା. ଧାତୁ=ଦାନ କରିବା+କର୍ତ୍ତୃ
Jaśoda ଅ)—ଯଶୋଦାତା (ଦେଖ)—Jaśodātā (See)
(ଯଶୋଦା—ସ୍ତ୍ରୀ) ସଂ. ବି—ପାରଦ—Mercury

**ଯଶୋଦା**—ସଂ. ବି. ସ୍ତ୍ରୀ (ଯଶଃ+ଦା. ଧାତୁ=ଦାନ କରିବା+କର୍ତ୍ତୃ. ଅ+ ସ୍ତ୍ରୀ. ଆ)—୧ । ଗୋପରାଜ ନନ୍ଦଙ୍କ ପତ୍ନୀ; ଶ୍ରୀକୃଷ୍ଣଙ୍କ ପାଳୟିତ୍ରୀ ମାତା—1. Wife of king Nanda; Srikṛushṇa's foster-mother. [ଦ୍ର. ବସୁଦେବ-ପତ୍ନୀ ଦେବକୀ କାରାଗାରରେ ଓ ନନ୍ଦପତ୍ନୀ ଯଶୋଦା ଗୋପପୁରରେ ଏକ ସମୟରେ ଦୁଇଟି ସନ୍ତାନ ପ୍ରସବ କଲେ । ଦେବକୀଙ୍କ ଗର୍ଭରୁ ଶ୍ରୀକୃଷ୍ଣ ଓ ଯଶୋଦାଙ୍କ ଗର୍ଭରୁ କନ୍ୟାରୂପରେ ମହାମାୟା ଜାତ ହେଲେ । ଘାତକ କଂସଠାରୁ ପୁତ୍ରକୁ ରକ୍ଷା କରିବା ପାଇଁ ବସୁଦେବ ଶ୍ରୀକୃଷ୍ଣଙ୍କୁ ମଥୁରାରୁ ନେଇ ଯଶୋଦା ଅଚେତନ ଥିବା ଅବସ୍ଥାରେ ଯଶୋଦାଙ୍କ ଅନ୍ତୁଡ଼ିଶାଳରେ ରଖି ଦେଇ, ସେଠାରୁ କନ୍ୟାଟିକୁ ଆଣି ଦେବକୀଙ୍କ ଅନ୍ତୁଡ଼ିଶାଳରେ ରଖିଦେଲେ । ଏହିବିଷୟ ଯଶୋଦାଙ୍କୁ ଜଣା ନ ଥିଲା । ଯଶୋଦା ଚେତନା ଲାଭ କରି ଶ୍ରୀକୃଷ୍ଣଙ୍କୁ ଦେଖି ଆପଣାର ପୁତ୍ର ବୋଲି ଜାଣି ତାଙ୍କୁ ପୁତ୍ରବତ୍ ପାଳନ କଲେ । କଂସ ସକାଳୁ ଉଠି ଦେବକୀଙ୍କ ନିକଟରୁ ସେ କନ୍ୟାଟି ଆଣି (ତାଙ୍କୁ ଦେବକୀଗର୍ଭଜାତ ସନ୍ତାନ ମନେ କରି) ତାଙ୍କ ଧରି ଭୂଇଁରେ କଚାଡ଼ି ଦେବା ବେଳେ ସେ କନ୍ୟାଟି ଶୂନ୍ୟରେ ଉଭେଇ ଗଲା । ଯଶୋଦାଙ୍କର କୃଷ୍ଣଙ୍କ ପ୍ରତି ପୁତ୍ରବାତ୍ସଲ୍ୟ ଜଗତରେ ଆଦର୍ଶ । ଯଶୋଦା ଶ୍ରୀକୃଷ୍ଣଙ୍କ ପ୍ରତି ଦେଖାଇଥିବା ସ୍ନେହ ଜଗତରେ ସନ୍ତାନବାତ୍ସଲ୍ୟର ମାଧୁରୀ ଦେଖାଇଅଛି । କେହି କେହି ବୈଷ୍ଣବ ଶ୍ରୀକୃଷ୍ଣରୂପୀ ଭଗବାନଙ୍କୁ ସେହି ମଧୁର ବାତ୍ସଲ୍ୟ ଦ୍ୱାରା ଭଜନା କରନ୍ତି । ] ୨ । ରାଜା ଦିଲୀପଙ୍କ ମାତାଙ୍କ ନାମ (ହ. ଶ)—2. Name of the mother of King Dilipa. ଦେ. ବି—ସ୍ତ୍ରୀଙ୍କ ନାମ —Name given to females.

**ଯଶୋଦାତା**—ସଂ. ବିଣ. ପୁଂ. (ଯଶଃ+ଦାତା)—ଯେ କୌଣସି ବ୍ୟକ୍ତିକୁ Jasodātā ଯଶସ୍କର କରଏ—Conferring fame or (ଯଶୋଦାୟକ,ଯଶୋଦାୟୀ–ଅନ୍ୟରୂପ) renown on a person. (ଯଶୋଦାତ୍ରୀ, ଯଶୋଦାୟିକା, ଯଶୋଦାୟିନୀ—ସ୍ତ୍ରୀ)

**ଯଶୋଦା ଦୁଲାଳ**—ଦେ.ବି. (୬ଷ୍ଠୀ ତତ୍; ସ.ଯଶୋଦା+ଦ୍ୱିଲାଳିତ)—Jaśodā dulāla (ଯଶୋଦାଙ୍କ ଦ୍ୱାରା ଯେ ପିଲା ଦିନେ ଲାଳିତ ଯশোদা দুলাল ପାଳିତ ହୋଇଥିଲେ) ଶ୍ରୀକୃଷ୍ଣ—Name of यशोदा दुलार Śrikṛushṇa who was brought up with extreme tenderness by Jaśodā.

**ଯଶୋଦା ନନ୍ଦନ**—ସ. ବି. (୬ଷ୍ଠୀ ତତ୍; ଯଶୋଦା+ନନ୍ଦନ)—ଶ୍ରୀକୃଷ୍ଣ· Jaśodā nandana Srikṛushṇa. [ଦ୍ର—ପ୍ରକୃତରେ ଏ ଦେବକୀ ଗର୍ଭଜାତ ଥିଲେ, କିନ୍ତୁ ଯଶୋଦା ତାଙ୍କୁ ପୁତ୍ରବତ୍ ପାଳିଥିଲେ । ଯଶୋଦା ଶ୍ରୀକୃଷ୍ଣଙ୍କୁ ଆପଣା ଗର୍ଭଜାତ ସନ୍ତାନ ବୋଲି ବିଶ୍ୱାସ କରୁଥିଲେ ।]

**ଯଶୋଦି**—ଗ୍ରା. ବି ସ୍ତ୍ରୀ—ଯଶୋଦାର ଡାକ ନାମ—Jaśodi Name for calling Jaśodā. যশোদা यशोदा

**ଯଶୋଧନ**—ସ. ବିଣ. ପୁଂ. ( ବହୁବ୍ରୀହି; ଯଶଃ+ଧନ; ଯେ ଯଶକୁ Jaśodhana ଧନବତ୍ ଯତ୍ନତଃ ରକ୍ଷା କରନ୍ତି)— (ଯଶୋଧନା—ସ୍ତ୍ରୀ) ଯଶସ୍ୱୀ—Famous.

**ଯଶୋଧର** –ସ. ବିଣ. ପୁଂ—କୀର୍ତ୍ତି ରକ୍ଷାକାରୀ—Keeping up or Jaśodhara preserving one's glory ( Apte ). (ଯଶୋଧରା—ସ୍ତ୍ରୀ) ସଂ. ବି ( ନାମ )—ରୁକ୍ମିଣୀଙ୍କ ଗର୍ଭଜାତ ଶ୍ରୀକୃଷ୍ଣଙ୍କ ଏକ ପୁତ୍ର (ହ. ଶ)—Name of a son of Śrikṛushṇa.

**ଯଶୋଧାରା**—ସ. ବି ( ରୂପକ କର୍ମଧା; ଯଶ+ଧାରା )—ବୃଷ୍ଟିଧାରାରୂପ Jaśodharā ଅଜସ୍ର ଯଶ—A stream of fame. (ଯଶୋଧରା—ଅନ୍ୟରୂପ) ସଂ. ବି. ସ୍ତ୍ରୀ—ବୁଦ୍ଧଦେବଙ୍କ ଭାର୍ଯ୍ୟା—Wife of Buddhadeba.

**ଯଶୋବନ୍ତ ଦାସ**—ଦେ. ବି ( ନାମ )—ଚୈତନ୍ୟଙ୍କ ପଞ୍ଚସଖା ମଧ୍ୟରୁ Jaśobanta dāsa ଏକତମ—A contemporary যশোবন্ত দাস यशोवंत दास and one of the five disciples of Chaitanya Deba. [ଦ୍ର—ଏହାଙ୍କ ଜନ୍ମ କଟକ ଜିଲ୍ଲାର ଅଡ଼ଙ୍ଗ ନିକଟସ୍ଥ ନାଇଲୋ ଗ୍ରାମ । ଏ ଜ୍ଞାନମିଶ୍ରା ଭକ୍ତିର ବିଳାସୀ ଥିଲେ ।

**ଯଶୋବନ୍ତୀ**—ଦେ. ବି ( ସଂ ଯଶୋମତୀ )—ଯଶୋଦା; ଶ୍ରୀକୃଷ୍ଣଙ୍କ Jaśobanti ପାଳୟିତ୍ରୀ ମାତା—Srikṛushṇa's foster-যশোবতী यशोवती mother. (ଉ—ନନ୍ଦର ବୃଦ୍ଧ କାଳ ପୁତ୍ର, ଯଶୋବନ୍ତୀର ନିଜ ନେତ୍ର—ଭୂପତି ପ୍ରେମ-ପଞ୍ଚାମୃତ ।)

**ଯଶୋବିସ୍ତାର**—ସଂ. ବି. (ଯଶଃ+ବିସ୍ତାର)—ଯଶଃର ଚାରିଆଡ଼େ Jaśobistāra ବ୍ୟାପିବା—The spreading of a person's fame.

**ଯଶୋଭାଗ୍ୟ**—ସ. ବି (ଯଶଃ+ଭାଗ୍ୟ)—ଯଶସ୍ୱୀ ହେବାର ଶୁଭାଦୃଷ୍ଟ; Jaśobhāgya ଯଶୋଲାଭରୂପ ସୌଭାଗ୍ୟ—The good fortune of attaining renown.

**ଯଶୋମଣ୍ଡିତ**—ସ. ବିଣ. ପୁଂ (ତୃତୀୟା ତତ୍; ଯଶଃ+ମଣ୍ଡିତ)—ଯଶସ୍ୱୀ; Jaśomaṇḍita ପ୍ରାପ୍ତଯଶାଃ; ଗୌରବାନ୍ୱିତ—Adorned with (ଯଶୋମଣ୍ଡିତା—ସ୍ତ୍ରୀ) fame.

**ଯଶୋମତୀ**—ସ. ବି. ସ୍ତ୍ରୀ (ଯଶସ୍+ମତ୍+ସ୍ତ୍ରୀ. ଈ)—ଯଶୋଦା ରାଣୀ; Jaśomati ଶ୍ରୀକୃଷ୍ଣଙ୍କ ପାଳୟିତ୍ରୀ ମାତା—The foster-mother of Srikṛushṇa.

**ଯଶୋମନ୍ଦିର**—ସ. ବି (ରୂପକ କର୍ମଧା; ଯଶଃ+ମନ୍ଦିର)—୧ । କୀର୍ତ୍ତିରୂପ Jaśomandira ମନ୍ଦିର ବା ଗୃହ—1. Fame compared to a temple. ୨ । ବ୍ୟକ୍ତିବିଶେଷଙ୍କ କୀର୍ତ୍ତି ଚିହ୍ନରୂପେ ନିର୍ମିତ ମନ୍ଦିର—2. A temple erected as a mark of one's glory or fame.

**ଯଶୋମୟ**—ସ. ବିଣ. ପୁଂ (ଯଶସ୍+ମୟ)—୧ । ଯଶୋମଣ୍ଡିତ; Jaśomaya ଯଶସ୍ୱୀ—1. Famous. ୨ । କୌଣସି ବ୍ୟକ୍ତିଙ୍କର (ଯଶୋମୟୀ—ସ୍ତ୍ରୀ) କୀର୍ତ୍ତିଦ୍ୱାରା ପରିପୂରିତ (ସ୍ଥାନ)—2. (a place) Resounding with the fame of a person.

ଯଶୋରଶ୍ମି—ସଂ. ବି (ରୂପକ କର୍ମଧା; ଯଶଃ+ରଶ୍ମି)—୧ । ଯଶୋରୂପ ଆଲୋକ—1. Fame compared to rays of light. ୨ । (୬ଷ୍ଠୀ ତତ୍; ଯଶଃ+ରଶ୍ମି) ଯଶର ପ୍ରଭାବ ବା ଗ୍ରାନ୍ତି—2. The influence or glamour of a person's fame.
Jaśoraśmi

ଯଶୋରାଶି—ସ. ବି (୬ଷ୍ଠୀ ତତ୍, ଯଶଃ+ରାଶି)—ବହୁଖ୍ୟାତି; କୀର୍ତ୍ତି ସମୂହ—Volumes of fame.
Jaśorāśi

ଯଶୋଲାଭ—ସ. ବି (୬ଷ୍ଠୀ ତତ୍; ଯଶଃ+ଲାଭ)—କୀର୍ତ୍ତିଜନକ କାର୍ଯ୍ୟ ଦ୍ୱାରା ଯଶଃପ୍ରାପ୍ତି—Acquisition of fame by doing famous acts.
Jaśolābha

ଯଶୋଲିପ୍ସା—ସ. ବି (ଯଶଃ+ଲିପ୍ସା)—ଯଶୋଲାଭ କରିବାର ଆକାଂକ୍ଷା—Desire for fame.
Jaśolipsā (ଯଶୋଲିପ୍ସୁ—ବିଣ)

ଯଶୋହାନି—ସ. ବି (୬ଷ୍ଠୀ ତତ୍; ଯଶଃ+ହାନି)—କୀର୍ତ୍ତିର ନାଶ; ଖ୍ୟାତିର ନାଶ—Loss of one's renown or good name.
Jaśohāni

ଯଶୋହାନିକର—ସ. ବିଣ. (ଯଶୋହାନି+କର)—ଯାହାଦ୍ୱାରା କୌଣସି ବ୍ୟକ୍ତିର ଯଶଃ ନଷ୍ଟ ହୁଏ—Bringing about loss of one's fame.
Jaśohānikara

ଯଷ୍ଟବ୍ୟ—ସ. ବିଣ (ଯଜ୍. ଧାତୁ=ଦେବପୂଜା କରିବା+କର୍ମ. ତବ୍ୟ)—ଯଜ୍ଞାର୍ହ; ଯାଗ କରିବାର ଉପଯୁକ୍ତ—Fit for the performance of a sacrifice.
Jashṭabya

ଯଷ୍ଟା—ସ. ବି. ପୁଂ (ଯଜ୍. ଧାତୁ=ପୂଜା କରିବା+କର୍ତ୍ତୃ. ତୃ; ୧ମା. ୧ ବ)—୧ । ଯଜମାନ; ଯେ ପୁରୋହିତଙ୍କ ଦ୍ୱାରା ଯାଗ କରଏ—1. Perfomer of sacrifice through priests. ୨ । ଯାଗକର୍ତ୍ତା—2. A performer of sacrifice. ୩ । ପୂଜକ—3. A worshipper. ୪ । ଯଜ୍ଞ କରିବା ପୁରୋହିତ—4. A priest who officiates at a sacrifice.
Jashṭā
(ଯଷ୍ଟ୍ରୀ—ସ୍ତ୍ରୀ)

ଯଷ୍ଟି(ଷ୍ଟୀ)—ସ. ବି (ଯଜ୍. ଧାତୁ=ପୂଜା କରିବା+କର୍ମ. ତି, ଙୀ)—୧ । ଲଠି; ଠେଙ୍ଗା; ଦଣ୍ଡ; ବାଡ଼ି; ନଉଡ଼ି—1. A stick; a staff; a wand. [ କୃ—ଏହା ଲମ୍ବା ଓ ସରୁ; ଲଗୁଡ଼ ଲମ୍ବା ଓ ମୋଟ ।] ୨ । ଅଖାବାଡ଼ି—2. A crutch. ୩ । ଧ୍ୱଜଦଣ୍ଡ; ପତାକାର ଦଣ୍ଡ—3. Flagstaff. ୪ । ଭୁଜଦଣ୍ଡ; କାନ୍ଧଠାରୁ ଅଙ୍ଗୁଠି ଶେଷ ପର୍ଯ୍ୟନ୍ତ କର—4. The arm ( consisting of the hand and the forearm. ୫ । ତନ୍ତୁ; ସୂତା; ସୂତା ଅବର ସରୁ ବା ସରୁ—5. Thread; string of fibre. ୬ । ହାରଲତା; ଝିଥା ହୋଇ ଲମ୍ବିଥିବା ମାଳା—6. A long string of necklace. ୭ । ବୃକ୍ଷର ସରୁ ଶାଖା—7. A slender branch; a twing. ୮ । କ୍ଷୁଦ୍ର ଗଛର ଡାଙ୍ଗ—8. The stem of plants. ୯ । ବ୍ରାହ୍ମଣଯଷ୍ଟି; ବାମୁଣହାଟିଆ ଗୁଳ୍ମ; ଭାର୍ଗୀ—9. Name of a shrub. ୧୦ । ଲତା—10. Creeper. ୧୧ । ଯଷ୍ଟିମଧୁ; ଯାଠିମଧୁ—11. Liquorice. ୧୨ । ଲଗୁଡ଼; ଠେଙ୍ଗେଣି—12. Cudgel; club (Apte). ୧୩ । ଆଖୁ—13. Sugarcane (Apte). ୧୪ । ଫଳ ଫୁଲର ଭେଣ୍ଟ—14. Stem; stalk (Apte). ୧୫ । ଖମ୍ବ; ଖୁଣ୍ଟି—15. Column; pillar; pole (Apte). ୧୬ । ପୋଷାପକ୍ଷୀଙ୍କ ବସିବା ପାଇଁ ବ୍ୟବହୃତ ଯୁକ୍ତିଚନ୍ଦ୍ରସଦୃଶ କାଠି—16. A perch (Apte). ୧୭ । ସରୁ ଓ ଲମ୍ବ ବସ୍ତୁ (ଯଥା—ଅଙ୍ଗଯଷ୍ଟି )—17 Anything thin, slim or slender (Apte). ୧୮ । କାଣ୍ଡଶର—18. A kind of reed (Apte).
Jashṭi(shṭi)

ଯଷ୍ଟିକ—ସ. ବି. (ଯଷ୍ଟି+କ)—୧ । ଜଳ କୁକୁଡ଼ା; ଜଳ କାକ; ପାଣି କୁଆ ପକ୍ଷୀ—1. The black cormorant; the little cormorant. ୨ । ଭଉର ପକ୍ଷୀ (ହ୍ର. ଶ)—2. Quail (bird). ୩ । ମଂଜିଷ୍ଠା (ହ୍ର. ଶ)—3. The Indian madder plant. ୪ । ଦଣ୍ଡ; ବାଡ଼ି—4 A stick.
Jashṭika

ଯଷ୍ଟିକା—ସ. ବି. (ଯଷ୍ଟିକ+ଆ)—୧ । ଏକସରିଆ ହାର; ଚୋଷ—1. A necklace of one string. ୨ । ବାପୀ; ବାଖ୍ରୀ—2. A big well. ୩ । ଗାଡ଼ିଆ; ଲମ୍ବ ଚଉକୋଣ ସରୋବର—3. A square or oblong pond or tank. ୪ । ଯଷ୍ଟିମଧୁ—4 Liquorice. ୫ । ଲଗୁଡ଼; ଲଠି; ଦଣ୍ଡ; ଠେଙ୍ଗୁଣି—5. A staff; a stick; a bludgeon.
Jashṭikā

ଯଷ୍ଟି ଗ୍ରହ—ସ. ବିଣ. ପୁଂ. (ଯଷ୍ଟି=ଲଠି+ଗ୍ରହ ଧାତୁ+କର୍ତ୍ତୃ ଅ)—ଯଷ୍ଟିଧାରୀ—Carrying a staff. ବି—୧ । ଲାଠିଆଳ—1. Clubman. ୨ । ରାଜାଙ୍କ ଦଣ୍ଡବାହକ—2 Club bearer; staff bearer.
Jashṭi graha
(ଯଷ୍ଟି ଗ୍ରହା—ସ୍ତ୍ରୀ)

ଯଷ୍ଟି ନିବାସ—ସ. ବି(ପରଜାପାତ)—ମୟୂର ଆଦି ପକ୍ଷୀଙ୍କ ବସିବା କାଠ—1. A stick or rod serving as a perch for peacocks. ୨ । ଲମ୍ବ ଖୁଣ୍ଟ ଉପରେ ପାରାମାନେ ବସିବା ପାଇଁ ପ୍ରସ୍ତୁତ ଗୃହ ବା ଛତରୀ—2. A pigeon-house resting on long upright poles.
Jashṭi nibāsa

ଯଷ୍ଟି ପ୍ରହରଣ—ସ. ବିଣ. ପୁଂ (ବହୁବ୍ରୀହି)—ଠେଙ୍ଗା ଯାହାର ଅସ୍ତ୍ର ଅଛି—Having a stick or cudgel as one's weapon; armed with a lathi.
Jashṭi praharaṇa
(ଯଷ୍ଟି ପ୍ରହରଣା—ସ୍ତ୍ରୀ)

ଯଷ୍ଟି ପ୍ରହାର—ସ. ବି. ( ୬ଷ୍ଠୀ ତତ୍; ଯଷ୍ଟି+ପ୍ରହାର )—ଯଷ୍ଟି ଦ୍ୱାରା ଆଘାତ—A blow with a stick.
Jashṭi prahāra
(ଯଷ୍ଟି ପ୍ରହୃତ—ବିଣ ରୂପ)

ଯଷ୍ଟି(ଷ୍ଟୀ) ମଧୁ—ସ. କ୍ଳ. ( ଯଷ୍ଟି+ମଧୁ )—ଯାଠି ମଧୁ; ଏକ ପ୍ରକାର ବୃକ୍ଷର ଚେର ଯାହା ମିଠା ମୂଳ—A plant with sweet root; Glycyrrhiza Glabra; liquorice root. [ କୃ—ଏହା ବୃକ୍ଷବିଶେଷର ଶୁଖିଲା
Jashṭi(shṭi) madhu
ଅନ୍ୟ ସ. ନାମ—ଯଷ୍ଟି(ଷ୍ଟୀ), ମଧୁକ, କ୍ଲୀତକ, ମଧୁବର୍ଣ୍ଣୀ, ମଧୁଶ୍ରବା, ମଧୁସ୍ରବା, ଯଷ୍ଟି ମଧୁ

**मुलहटी, मिठी लकरी, मुलेठी, जेठीमधुज** ଜନ୍ମ । ଏହା ଶିମ୍ବାଦି ବର୍ଗର ବୃକ୍ଷ, ଭାରତର ଉତ୍ତରପଶ୍ଚିମ ପ୍ରାନ୍ତ ଦେଶରେ ଓ ବିଦେଶରେ ଜନ୍ମେ । (ଯୋଗେଶଚନ୍ଦ୍ର)
ମ. ଜ୍ୟେଷ୍ଠିମଧ, ମୂଲେଠୀ
ଗୁ. ଜେଠୀମଧନାମୂଲ
ତେ. ଯଷ୍ଟିମଧୁକମୁ — ଜଳଜ ଯଷ୍ଟିମଧୁର ନାମ କ୍ଲୀତନକ
ଫା. ବେଖମେହେକୁମଙ୍କୁ — ଓ ଧୂଳିକା । ଏହା ଶୀତଳ, ଗୁରୁ,
ଆ. ଅସଲୁସ୍ ସୁସମ୍ କସ୍ — ମଧୁର ରସ, ଚକ୍ଷୁର ହିତକର, ବଳ-
ସରବ୍ସାସୁସ୍ — କାରକ, ବର୍ଣ୍ଣ ପ୍ରସାଦକ, ସୁସ୍ନିଗ୍ଧ, ଶୁକ୍ରକାରକ, କେଶ୍ୟ ଓ ସ୍ୱର ବର୍ଦ୍ଧକ । ଏହା ପିତ୍ତ, ବାୟୁ, ରକ୍ତଦୁଷ୍ଟି, ବ୍ରଣ, ଶୋଥ, ବିଷଦୋଷ, ଛର୍ଦ୍ଦି, ତୃଷ୍ଣା, ଗ୍ଲାନି ଓ କ୍ଷୟ ପ୍ରଶମକ—ଦ୍ରବ୍ୟଗୁଣ ।]

**ଯଷ୍ଟି ଯନ୍ତ୍ର**—ସଂ. ବି—ସୂର୍ଯ୍ୟର ଗ୍ରତ୍ୟା ଦ୍ୱାରା ସମୟ ଜଣାଯିବା ପାଇଁ
Jashti jantra — କେନ୍ଦ୍ରରେ ଗୋଟିଏ ଯଷ୍ଟି ପୋତା ହୋଇଥିବ, ସୂର୍ଯ୍ୟ ଘଡ଼ି (ହି. ଶ)—A sun-dial in which a stick is set at the centre to indicate the time of the day by the shadow of the stick.

**ଯଷ୍ଟିସ୍(ସି)**—ବୈଦେ. (ଇଂ. ଜଷ୍ଟିସ୍=ମୂଳ ଅର୍ଥ ନ୍ୟାୟବିଚାର)—
Jashtis(si) ୧ । ହାଇକୋର୍ଟର ଜଜ୍‌ମାନଙ୍କ ନାମ ପୂର୍ବରେ
जष्टिस — ଲାଗିବା ଉପାଧି—1. A title prefixed to the
जस्टिस — name of a High-court Judge; Justice
୨ । (ଅଧୁନାକ) ମାନ୍ଦ୍ରାଜ ପ୍ରଦେଶର ବ୍ୟବସ୍ଥାପକ ସଭାର ସଭ୍ୟମାନଙ୍କ ମଧ୍ୟରେ ଅଳ୍ପ ଦିନ ହେଲା ଗଢ଼ା ଯାଇଥିବା ଗୋଟିଏ ରାଜନୀତିକ ଦଳ—A political party formed in the Legislative Council of the Madras. Presidency; the Justice party.

**ଯଷ୍ଟିସ୍ ଅଫ୍ ଦି ପିସ୍**—ବୈଦେ. ( ଇଂ. ଜଷ୍ଟିସ୍ ଅଫ୍ ଦି ପିସ୍ ) ବି—
Jashtis aph di pis ଇଂରାଜ ଶାସିତ ରାଜ୍ୟରେ କେତେକ ବିଶିଷ୍ଟ
यष्टिस अफ् दि पीस — କ୍ଷମତା ପ୍ରାପ୍ତ ମାଜିଷ୍ଟ୍ରେଟ—A Justice of
जष्टिस् अफ् दि पीस — the peace. [ଦ୍ର—ଏମାନେ ଭାରତରେ ଉଦ୍‌ବେଗପ୍ରିୟ ବା ଗୋଡ଼ ଅପରାଧୀମାନଙ୍କ ଅପରାଧକୁ ବିଚାର କରିବା ଓ ଅନ୍ୟ କେତେ ଅଧିକାର ପାଇଁ ସରକାରଙ୍କଠାରୁ ବିଶିଷ୍ଟ କ୍ଷମତା ପାଇଥାନ୍ତି ]

**ଯଷ୍ଟ୍ୟାଘାତ**—ସଂ. ବି. (୬ଷ୍ଠୀ ତତ୍; ଯଷ୍ଟି+ଆଘାତ)—ଠେଙ୍ଗା ବା ବାଡ଼ି
Jashtyāghāta ଦ୍ୱାରା ମାଡ଼—A blow with a stick.

**ଯଷ୍ଟ୍ୟାହତ**—ସଂ. ବିଣ. ପୁଂ. ( ୩ୟା ତତ୍ )—ଯାହାକୁ ବାଡ଼ି ଦ୍ୱାରା
Jashtyāhata ପ୍ରହାର କରାଯାଇ ଅଛି—Struck with a
(ଯଷ୍ଟ୍ୟାହତା—ସ୍ତ୍ରୀ) (ଯଷ୍ଟି ପ୍ରହୃତ—ଅନ୍ୟରୂପ) stick.

**ଯଷ୍ଟ୍ୟାହ୍ୱ**—ସ.ବି. (ଯଷ୍ଟି+ଆ+ହ୍ୱେ ଧାତୁ+କର୍ମ.ଅ)—ଯଷ୍ଟି ମଧୁ (ଦେଖ)
Jashtyāhwa — Jashti madhu (See)

**ଯସ୍ (ଧାତୁ)**—ସ—୧ । ଚେଷ୍ଟା କରିବା; ଯତ୍ନ କରିବା—1. To try,
Jas (root) to endeavour. ୨ । ପରିଶ୍ରମ କରିବା—2. To labour; to exert.

**ଯସବ(ମ)**—ବୈଦେ. ବି. (ଅ)—ଏକ ପ୍ରକାର ଆମ୍ବିଳ ପଥର—
Jasab (m) A kind of greenish stone. [ଦ୍ର—ଏହା
यशम — ଚୀନ୍‌ରେ ଓ ଲଙ୍କାରେ ମିଳେ । ଏହାକୁ ଲୋକେ ତାବିଜ ଭଳି
यशब(म) — ଛାତିରେ ପିନ୍ଧନ୍ତି । ଏ ପଥର ପିନ୍ଧିବା ଲୋକ ରୋଗମୁକ୍ତ ହୁଏ ଓ ତାଠାରେ ବଜ୍ର ପଡ଼େ ନାହିଁ—ହି ଶ]

**ଯସ୍କ**—ସ. ବି. (ଯସ୍ ଧାତୁ=ଚେଷ୍ଟା କରିବା+କର୍ତ୍ତ୍ରି. କ)—ଗୋଷ୍ଠ-
Jaska ପ୍ରବର୍ତ୍ତକ ମୁନି ବିଶେଷ—Name of a sage.

**ଯସ୍ୟ**—ସଂ.ବିଣ. (ଯସ୍ ଧାତୁ=ଚେଷ୍ଟା କରିବା+କର୍ମ.ଯ)—୧। ଅଧ୍ୟବସାୟ
Jasya ଦ୍ୱାରା କରଣୀୟ—1. Performable with perseverance. ୨ । (ଜସ୍ ଧାତୁ=ବଧ କରିବା+ଯ, ନଘାତ ନ) ହନନୀୟ—2. Deserving to be killed.

**ଯସ୍ୟତ୍ୱ**—ସ. ବି. ( ଯସ୍ୟ+ଭାବାର୍ଥେ. ତ୍ୱ )—୧ । ଯତ୍ନ; ଉଦ୍ୟମ—
Jasyatwa 1. Effort; endeavour. ୨ । ହତ୍ୟା—2. Murder. ୩ । ମୃତ୍ୟୁ—3. Death.

**ଯହଁ**—ପ୍ରାଦେ.(ଲରିଆ) ସଂ.—ଯହିଁ (ଦେଖ)
Jahañ — Jahiñ (See)

**ଯହଁ ତହଁ**—ପ୍ରାଦେ. (ଲରିଆ) ସବ.—ଯହିଁ ତହିଁ (ଦେଖ)
Jahañ tahañ — Jahiñ tahiñ (See)

**ଯହାଁ**—ପ୍ରାଦେ. (ସମ୍ବଲପୁର) କ୍ରି. ବିଣ.—(ଭୁଲ. ହି. ଜହାଁ) ଯହିଁ;
Jahāñ — ଯେଉଁଠାରେ—Where.

**ଯହାଁ ତହାଁ**—ପ୍ରାଦେ. (ସମ୍ବଲପୁର) କ୍ରି. ବିଣ—(ଭୁଲ ହି. ଜହାଁ ତହାଁ)
Jahāñ tahāñ ଯହିଁ ତହିଁ, ଯେଉଁଠାରେ ଇଚ୍ଛା ସେଠାରେ—Anywher

**ଯହିଁ**—ଦେ. ସବ.—(ସ. ଯସ୍ମିନ୍; ପ୍ରା. ଯହିଁ)—(ଏହାର ଆପେକ୍ଷିକ ଶବ୍ଦ
Jahiñ ତହିଁ)—୧। ଯେଉଁଠାରେ; ଯାହାଁ; ଯାହିଁ—1. Where. (ଆପେକ୍ଷିକ ଶବ୍ଦ—ତହିଁ) ୨ । ଯାହା ଉପରେ—
যেখানে जहाँ — 2. On which; on whom.
[ଉ—ଗଛର ଛାଇ, ମଣିଷ ହାଇ, ଯହିଁ ପଡ଼େ ତହିଁ ମିଳେଇ ଯାଇ । ଢଗ ।] ୩ । ଯେଉଁ ବିଷୟରେ—3. In which matter. [ଦ୍ର—ଯଦ୍ ଶବ୍ଦର ଉଭୟ ପ୍ରଥମା ବିଭକ୍ତି ଏକ ବଚନରେ ଯେ (ବ୍ୟକ୍ତି) ଓ ଯାହା (ବସ୍ତୁ, ବିଷୟ) ହୁଏ ଓ ସପ୍ତମୀ ବିଭକ୍ତି ୧ ବଚନରେ ଯହିଁ, ଯହିଁରେ ହୁଏ । 'ଯହିଁ' ଆକାର ପ୍ରଥମା ବିଭକ୍ତି ୧ବଚନରେ ବ୍ୟବହୃତ ହୁଏ ନାହିଁ କିନ୍ତୁ ଯହିଁ ଶବ୍ଦ ସଙ୍ଗେ ୨ୟା ବିଭକ୍ତିର 'କି, କୁ', ୩ୟା ବିଭକ୍ତିରେ 'ଦ୍ୱାରା', ୫ମୀ ବିଭକ୍ତିରେ 'ରୁ' ୬ଷ୍ଠୀରେ 'ର' ଓ ୭ମୀରେ 'ରେ' ଯୁକ୍ତ ହୁଏ । 'ଯହିଁ' ଶବ୍ଦ ସଙ୍ଗେ 'ପାଇଁ, ନିମନ୍ତେ, ଯୋଗୁଁ' ଆଦି ମଧ୍ୟ ଯୁକ୍ତ ହୁଏ ।]

**ଯହିଁକି(କୁ)**—ଦେ. ସବ.—୧ । ଯାହିଁକି; ଯେଉଁ ସ୍ଥାନକୁ; ଯେଉଁଠାକୁ
Jahiñki(ku) 1. To which place; whereto.
[ଆପେକ୍ଷିକ ଶବ୍ଦ—ତହିଁକି(କୁ)] ୨ । ଯେଉଁ ବିଷୟ ପ୍ରତି; ଯେଉଁ
যেখানকে जहाँकी, जीससे — କଥାକୁ—2. To which matter; in respect of which matter.
[ଯଥା—ମୁଁ ଯହିଁକି ଡରୁଥିଲି, ସେହି କଥା ଘଟିଲା ।] ୩ । ଯାହା ପାଇଁ—3. For which. ( ଉ—ଯହିଁକି ଯେ, ବିରହ ଶୃଙ୍ଖଳ ଛଡ଼େଇ ଦେ । । ଭଞ୍ଜ ।)

**ଯହିଁକି(କୁ) ଯେ**—ଦେ. ବାକ୍ୟାଂଶ—୧ । ଯେଉଁ ବିଷୟ ବା ବସ୍ତୁ ପ୍ରତି
Jahiñki(ku) je ଯେଉଁ ବିଷୟ ବା ବସ୍ତୁ ଉପଯୋଗୀ, ତାହା—
याके या **जिसकी जो** 1. That (thing or matter) which suits a thing or matter.
[ଉ—ଯହିଁକି ଯେ; ବାଘକୁ ଶୃଗାଳ ଛନ୍ଦେଇ ଦେ—ଭଗ]
୨ । ଯେଉଁ କାର୍ଯ୍ୟ ପ୍ରତି ଯେଉଁ ବ୍ୟକ୍ତି ଉପଯୁକ୍ତ, ସେ—
2 That person who is fit for a particular work.

**ଯହିଁତକ୍**—ଦେ. ଅ·—୧ । ଯାହାଁତକ୍; ଯେ ପର୍ଯ୍ୟନ୍ତ; ଯେଉଁ ସମୟ
Jahiñtak ପର୍ଯ୍ୟନ୍ତ—Till which time
যে পর্য্যন্ত **यहाँतक** ୨ । ଯେଉଁ ସ୍ଥାନ ପର୍ଯ୍ୟନ୍ତ—2. Upto which place. ୩ । ଯେଉଁ ଦୂରତ୍ୱ ପର୍ଯ୍ୟନ୍ତ—
3. Upto which length or distance.

**ଯହିଁ ତହିଁ**—ଦେ. ସଙ୍.—୧ । ଯାହିଁ ତାହିଁ; ଯେଉଁ ଇଚ୍ଛା ସେହି ସ୍ଥାନରେ;
Jahiñ tahiñ ସ୍ଥାନ ନିର୍ବିଶେଷରେ; ଯାହିଁ।ତାହିଁ।—Wheresoever; in any place
যেখানে সেখানে **जहाँ तहाँ** whatsoever. [ଉ—ଯାଅ ମନ ଭୂମ ହୋଇଛି ଯହିଁ ତହିଁ । କୃଷ୍ଣସିଂହ. ମହାଭାରତ. ବନ । ]
୨ । ସ୍ଥାନାସ୍ଥାନ ବିଚାର ନ କରି—2. Without consideration of the fitness or otherwise of a place. [ଯଥା—ସେ ଯହିଁ ତହିଁ ଖାଇ ଦେଉଛି ।]

**ଯହିଁ ତହିଁରେ**—ଦେ. ସଙ୍.—ଯେ କୌଣସି ବିଷୟରେ; ସମସ୍ତ
Jahiñ tahiñre ବିଷୟରେ—In all matters; in every
যে কোন বিষয়ে **जौनकौनसी** case.
(ଯହିଁରେ ତହିଁରେ—ଅନ୍ୟରୂପ) [ଉ—ସକଳ ଭୂତେ ଦୟା କର, ଯହିଁତହିଁରେ ତୋଷ ଧର । ଜଗନ୍ନାଥ. ଭଗବତ ।]

**ଯହିଁ ଦ୍ୱାରା**—ଦେ. ଅ—(ସଂ. ଯଦ୍ଦ୍ୱାରା)—ଯେଉଁ ବିଷୟ ବା ବସ୍ତୁଦ୍ୱାରା—
Jahiñ dwārā যাদ্বারা By or with which matter or thing.

**ଯହିଁ ପାଇଁ**—ଦେ. ଅ.—ଯେଉଁ ବିଷୟ ବା ବସ୍ତୁ ନିମନ୍ତେ—
Jahiñ pāiñ Wherefor; for which matter or
যার জন্যে **जीसवास्ते** [ଯ(ଯା)ହିଁ ପେଇଁ—ଗ୍ରାମ୍ୟରୂପ] thing.
(ଯହିଁ ଲାଗି—ଅନ୍ୟରୂପ) (ଆପେକ୍ଷିକ ଶବ୍ଦ—ତହିଁ ପାଇଁ)
(ଉ—ତାଳ ଗଛ ମୂଳେ ଡମଣା, ଦୂ ଯହିଁପାଇଁ ନସରପସର ହେଲେ କଏ ଦେବ ମାଗଣା ?—ଢଗ ।)

**ଯହିଁର**—ଦେ. ସଙ୍—ଯେଉଁ ସ୍ଥାନର ବା ପଦାର୍ଥର—Of which
Jahiñra place or matter.
(ଆପେକ୍ଷିକ ଶବ୍ଦ—ତହିଁର)
যার **जीसका**

**ଯହିଁରୁ**—ଦେ. ସଙ୍—୧ । ଯେଉଁଠାରୁ; ଯେଉଁ ସ୍ଥାନରୁ—
Jahiñru 1. From which place; whence;
(ଆପେକ୍ଷିକ ଶବ୍ଦ—ତହିଁରୁ) wherefrom. ୨ । ଯେଉଁ
যাথেকে **जीससे** ବସ୍ତୁରୁ ବା ବିଷୟରୁ—2. From which matter or thing. ୩ । ଯହିଁ; ଯେଉଁ ହେତୁରୁ; ଯେଉଁ କାରଣରୁ—3. For which reason, on account of which.

**ଯହିଁରେ**—ଦେ. ସଙ୍—୧ । ଯେଉଁ ସ୍ଥାନରେ—1. In which
Jahiñre place. ୨ । ଯେଉଁ ବିଷୟରେ—2. In which matter; wherein. ୩ । ଯେଉଁ ବସ୍ତୁରେ-
3. In which thing. ୪ । ଯହିଁ ଦ୍ୱାରା—
4. By or with which.

**ଯହିଁରେ କରି**—ଦେ. ଅ—ଯେଉଁ ବସ୍ତୁ ବା ବିଷୟ ଦ୍ୱାରା; ଯଦ୍ଦ୍ୱାରା—
Jahiñre kari By which thing or matter.

**ଯହୁ**—ସଂ. ବି (ଯା ଧାତୁ =ଗମନକରିବା+କର୍ତ୍ତୃ. ଉ)—୧ । ଶିଶୁ—
Jahu 1. A child (Apte). ୨ । ପୁତ୍ର; ସନ୍ତାନ—
2. Offspring (Apte).

**ଯହୁଁ**—ଦେ. ସର୍ବ ( ସଂ. ଯସ୍ମାତ୍ )—୧ । ଯହିଁରୁ ( ଦେଖ )—
Jahuñ 1. Jahiñru (See). ୨ । ଯେଉଁକାଳରୁ—
(ଆପେକ୍ଷିକ ଶବ୍ଦ—ତହୁଁ) 2. Form which time. ୩ ।
যাথেকে **जहाँसे** ଯେଉଁ ସ୍ଥାନରୁ—3. From which place. ୪ । ଯେଉଁ ବିଷୟରୁ—4. From which matter. ଅ—୧ । ଯେଉଁ ବିଷୟ ଘଟିବା ପରେ—
1. After which event. ୨ । ଯେଉଁ ହେତୁରୁ; ଯେଉଁ କାରଣରୁ—2. Owing to which reason; wherefor. ୩ । ଯେହେତୁ—3. Whereas; wherefore. ( ଉ—ତାହାର କୁଳରେ ଯହୁଁ ଜୋହନ୍ନାକ ପୁତ୍ର, ଦିନୁ ଦିନୁ ଦୁଃଖାନଳ ହେଲା ପ୍ରଜ୍ୱଳିତ-
ବିଶ୍ୱନାଥ. ବିଚିତ୍ରରାମାୟଣ । )

**ଯହୁଁ ଯହୁଁ**—ଦେ. ଅ—୧ । କ୍ରମଶଃ; ଯେଉଁପରି; ଅନୁକ୍ରମେ—
Jahuñ Jahuñ 1. By and by; gradually as.
(ଆପେକ୍ଷିକ ଶବ୍ଦ—ତହୁଁ ତହୁଁ) ( ଯଥା—ଯହୁଁ ଯହୁଁ ବେଳ
যত যত **जब जब, जेसे जेसे** ଉଚ୍ଚର ହେଲା, ତହୁଁ ତହୁଁ ମତେ ବେଶି ଶୋକ କଲା । ) ୨ । ଯଥାକ୍ରମେ—
2. Respectively. ୩ । ଅନୁପାତକ୍ରମେ—
3. Proportionately. (ଉ—ଯହୁଁ ଯହୁଁ ବଢ଼ିଲେକ ତହୁଁ ତହୁଁ ଓଲ୍ଟୁ—ଢଗ । ) ୩ । ଯେଉଁ ଯେଉଁ ସ୍ଥାନରୁ; ଯେଉଁ ସ୍ଥାନମାନଙ୍କରୁ)—3. From which places. (ଯଥା—ମୁଁ ଯହୁଁ ଯହୁଁ ଧନ ସଂଗ୍ରହକଲି, ସେ ତହୁଁ ତହୁଁ ବହୁ ସଂଗ୍ରହ କଲା ।

**ଯହ୍ୱ**—ସଂ. ବି ( ଯା ଧାତୁ=ଗମନ କରିବା+କର୍ତ୍ତୃ. ବ, କୃଦାଗମ, ହ୍ୱ)
Jahwa ଆଗମ)—ଯଜମାନ; ଯାଜ୍ଞିକ—A performer of sacrifices.

**ଯା (ଧାତୁ)**—ସଂ.—୧ । ଯିବା; ଗତି କରିବା—1. To go, to
Jā (root) move. ୨ । (ବିଜ୍ୟାର୍ଥ) ଆକ୍ରମଣ କରିବା; ବିରୁଦ୍ଧରେ ଅଭିଯାନ କରିବା—2. To invade, to march against (Apte). ୩ । କୌଣସି ଉଦ୍ଦେଶ୍ୟରେ ଯାତ୍ରା କରିବା—3. To start for; to march (Apte). ୪ । ସ୍ଥାନ ତ୍ୟାଗ କରି ଯିବା—4. To depart; to withdraw; to pass away (Apte) ୫ । ଉଭେଇ ଯିବା; ଅନ୍ତର୍ହିତ ହେବା—5. To vanish; to disappear (Apte). ୬ । (ସମୟ) ଅତିକ୍ରାନ୍ତ ହେବା; ଗଡ଼ିଯିବା—6. To pass away; to elapse.

(Apte). ୭ । ରହିବା; ବହୁକାଳ ସ୍ଥାୟୀ ହେବା—7. To last (Apte). ୮ । ଘଟିବା—8. To happen; to come to pass (Apte). ୯ । ଫଳରେ ପରିଣତ ହେବା—9. To become; to be reduced to any state; to turn into (Apte). ୧୦ । କୌଣସି କାର୍ଯ୍ୟରେ ହାତ ଦେବା—10. To undertake (Apte). ୧୧ । ସଙ୍ଗମ ବା ମୈଥୁନ କରିବା—11. To have carnal intercourse with (Apte). ୧୨ । ଅନୁରୋଧ କରିବା; ପ୍ରାର୍ଥନା କରିବା—12. To implore; to request (Apte). ୧୩ । ପାଇବା; ଆବିଷ୍କାର କରିବା—13. To find out; to discover (Apte). ୧୪ । ଆଚରଣ କରିବା; କାର୍ଯ୍ୟ କରିବା; କରିବା—14. To behave, to act (Apte). ୧୫ । ପରିବର୍ତ୍ତିତ ହେବା—15. To undergo a change.

ଯା—ସଂ. ବି.—(ଯା ଧାତୁ + କର୍ତ୍ତୃ. ଅ + ସ୍ତ୍ରୀ. ଆ)—୧ । ଲକ୍ଷ୍ମୀ—
Jā 1. The Goddess of wealth (Apte) ୨ । (କର୍ମଣି ଅ + ଆ)—ଯୋନି; ଭଗ—2. Pudendum Muliebre (Apte). ୩ । (+ଭାବ ଅ + ଆ)—ପ୍ରାପ୍ତି—3. Obtaining (Apte). ଦେ. କ୍ରି.—[ଯା ଧାତୁ; (ଯାଅ—ଅନ୍ୟରୂପ) ଅନୁଜ୍ଞା ୨ୟ ପୁରୁଷ ଏକ ବଚନ, ଅନାଦର (ଅ, ଅସ—ବିପର୍ଯ୍ୟସ୍ତ) ଦ୍ୟର୍ଥକ (କର୍ତ୍ତା. ତୁ]—ତୁ ଗମନ କର—
(तुई) जास जाओ (Imperative mood of the verb
याओया जाना 'to go' 2nd person, singular)—(you) Go; proceed. [ଉ—ଅ ପଡ଼ିଲୁ ଯା ପଡ଼ିଲୁ, ହାବୁଡ଼ି ଗଲି ମୁଁ ଡାଳ ଗଛିଲୁ—କେଳା ଗୀତ ।] [ଦ୍ର—'ତୁମ୍ଭେ' କର୍ତ୍ତା ହେଲେ ଏହାର ରୂପ 'ଯାଅ' ହୁଏ । 'ଆପଣ' କର୍ତ୍ତା ହେଲେ ଯାଅ, ଯାଆନ୍ତୁ, ଯିବା ହୁଅନ୍ତୁ, ଯିବା ହେଉନ୍ତୁ ହୁଏ ।] ଦେ. ବି.—(ସଂ. ଯା ଧାତୁ)—୧ । ଗମନ; ଯିବା—1. Going. [ଦ୍ର—'ଯା ଆସ' ଓ 'ଆସ ଯା' ଶବ୍ଦରେ ଏହି ଅର୍ଥରେ ବ୍ୟବହାର ଦେଖାଯାଏ ।] ୨ । (ସଂ. ଯାତୃ)—ସ୍ୱାମୀଙ୍କ ଭାଇଙ୍କ ସ୍ତ୍ରୀ, ସ୍ୱାମୀଙ୍କ
जा जेठनी देवरानी ଭ୍ରାତୃଜାୟା—2. The wife of one's husband's brother. (ଯଥା—ବଡ଼ ଯା, ସାନ ଯା, ମଝିଆଁ ଯା ।)

ଦେ. ସର୍ବ (ସଂ. ଯଦ୍ ଶବ୍ଦ ୧ମା. ୧ବ. କ୍ଲୀବଲିଙ୍ଗ; ଯତ୍; ପୁଂଲିଙ୍ଗ-ଯଃ; ସ୍ତ୍ରୀଲିଙ୍ଗ-ଯା)—୧ । ଯାହା; ଯେଉଁ ବିଷୟ (ଏହାର ଅପେକ୍ଷିକ ଶବ୍ଦ—ତା) ଯେଉଁ ପଦାର୍ଥ—1. Which
जो
यो
(neuter); which (thing or matter). ୨ । (ସଂ. ଯଦ୍ ୬ଷ୍ଠୀ. ୧ବ. ଯସ୍ୟ)—ଯେଉଁ ବ୍ୟକ୍ତିର ବା ବସ୍ତୁର; ଯାହାର—2. Whose; of whom; of which person or thing. (ଉ—ଯା ଶ୍ରବଣେ ମାତ୍ର ଅସେ ଦାରୁଣ ବ୍ୟଥା । ବଣୀଧର. ହଂସଦୂତ) [ ଦ୍ର—
जो
जाद
जोसका
या
जो
କେତେକ ଅଧୁନିକ ଲେଖକ ଅକ୍ଷରର ମୁଣ୍ଡ ପାଖେ (’)

ଯାଃ, ଯାଯା, ଯାଯାଃ, ଯାମ, ଯାମ୍, ଯାଆମ(ମ୍) } ଅନ୍ୟରୂପ apostrophe ଚିହ୍ନ ଦେଇ ତାହା ପରେ ଲୁପ୍ତ ରହିବା ଅକ୍ଷରର ସୂଚନା କରନ୍ତି; ଯଥା—ଯା’=ଯାହା, ତା’=ତାହା, କା’=କାହା, ତା’ଠାରୁ=ତାହାଠାରୁ କିନ୍ତୁ ଓଡ଼ିଆ ଲେଖାରେ ଏ ଗୋଟିଏ ନୂଆ ପଦ୍ଧତି ଅଟେ ।] ଦେ. ଅ—(ସଂ ଯତ୍)—୧ । ଯାହା—1. (ଉ—ବଡ଼ ବିଷମ ଏ, ଯା ନ ଡରୁ—କବିସୂର୍ଯ୍ୟ. ସଙ୍ଗୀତ) ୨ । (ଅପେକ୍ଷିକ ଶବ୍ଦରୂପେ ୨ଟି ବାକ୍ୟର ଭାବ ସଂଯୋଜକ ଅବ୍ୟୟରୂପେ ବ୍ୟବହୃତ) ଯାହା—2 That. (ଉ—ଡାକ୍ତା ବାଜୁଥାଇ ବ୍ରଜେ, ଲଳିତାର ହୃଦମ୍ବୁଜେ, କରୁଣା ଅଛି ବୋଲି ଯା, ନେଲା କେ ତା ହରି ଛଳରେ—କବିଶୋଷିତ ଛାନ୍ଦ. ଗୀତ ।) ୩ । (ସଂ. ଯାହି; ଘୃଣା ବା ବିରକ୍ତି-
या
जाओजी
ସୂଚକ ଅବ୍ୟୟ) ଦୂର; ଦୂର ହୋ—3. Go away; get off. [ଦ୍ର—ତୁ ଯା, ତୁ ଏଠାରୁ ଚାଲିଯା, ତୁ ଏ ସ୍ଥାନ ତ୍ୟାଗ କର—ଏଥିର ଏହି ଅର୍ଥ ]

ଯାଅ(ଅଁ)ଲା(ଳା)—ଦେ. ବି. (ସଂ. ଯାମଳ, ଯାମଳା)—ଯମଜ ସନ୍ତାନ;
Jā-a(aṅ)lā(lā) ଏକ ସମୟରେ ମାତୃଗର୍ଭରୁ ଭୂମିଷ୍ଠ ସନ୍ତାନ-ଦ୍ୱୟ—Twins; a pair born together. ଦେ. ବିଣ—ଯୁଗ ହୋଇ ଜନ୍ମିଥିବା—Born twins. (ଯଥା—ଯାଆଁଳା ପୁଅ ଝିଅ ।)
ଯାଅଳା, ଯାଆଁଳା(ଳା), ଯାଉଳା, ଯାଉଁଳା(ଳ), ଯାଏଁଳା } ଅନ୍ୟରୂପ]
यमज जोरला, जोडिया, जौआँ

ଯାଆ ଆସ—ଦେ. ବି—ଯାଆସ (ଦେଖ)
Jā-ā āsa Jā āsa (See)

ଯାଆଁ ବାଳ—ଦେ.ବି. (ସଂ.ଜନ୍ମ+ବାଳ)—ଶିଶୁର ମୁଣ୍ଡର ପ୍ରଥମ କେଶ
Jā-āṅ bāḷa (ହିଁ ଚୂଡ଼ାକର୍ମ ସମୟରେ ବା ତୀର୍ଥରେ ଯାହାର ମୁଣ୍ଡନ କରାଯାଏ)—The first crop of hairs growing on an infant's head
जनम चूल
जनम बाल

ଯାଆଁଳ—ଦେ. ବି. (ସଂ. ଯମଳ; ଯାଆଁଳା ପିଲାଙ୍କ ପରି ମାତୃ ଗର୍ଭରୁ
Jā-āṅla ଏକ ସମୟରେ ଜନ୍ମ ହେବାରୁ)—୧ । ବଡ଼ ମାଛଙ୍କର ପିଲା; ଶିଶୁ ମତ୍ସ୍ୟ—1. The fry or young of fishes; young fish. ୨ । ମତ୍ସ୍ୟଶିଶୁଙ୍କ ଦଳ; ଛୁଆମାଛଙ୍କ ମନ୍ଦା—2. A shoal of little fishes or fry. ପ୍ରାଦେ. (ବଲେଶ୍ୱର, ଗଡ଼ଜାତ) ବି—ମାଛ ମାରିବା ଯନ୍ତ୍ର ବିଶେଷ—A contrivance to catch fish.
पोना, पना
जीरा

ଯାଆଁଳ ଖେଳା(ଳେ)ଇବା—ଦେ. କ୍ରି—୧ । ମାଛର ଯାଆଁଳ ପାଣି
Jā-āṅla khelā(le)ibā ଉପରେ ଖେଳୁଥିବା ବେଳେ (ତାଙ୍କର ମାଆ) ଗଭୀର ପାଣି ମଧ୍ୟରେ ବୁଡ଼ି ରହି ଉକ୍ତ ପିଲାଙ୍କୁ ଜଗିବା—1. (said of the mother-fish) To watch the shoals or fry playing on the surface of the water. ୨ । (ଲକ୍ଷଣାର୍ଥ) ବହୁତ ଗୁଡ଼ାଏ ସନ୍ତାନର ମାତା ହେବା—2. (figurative) To be the mother of a bevy of children.
पना खेलान
जीराखेलाना

**ଯାଆଁଳ ଛାଡ଼ିବା**—ଦେ.କ୍ରି—୧ । ମାଛମାନେ ବଢ଼ିବା ପାଇଁ କହି ଅନ୍ଦରୁ Ja-āṅla chhārdibā ମାଛର ଯାଆଁଳ ଆଣି ପୋଖରୀରେ ଛାଡ଼ିବା— ପନାଛଡ଼ା **जीरा छोड़ना** 1. To rear up fishes in a pond ୨ । ବହୁ ସନ୍ତାନର ମାତା ବା ପିତା ହେବା— 2. (figurative) To bring forth a swarm of children; to become parents of a good number of children. ୩ । (ଲକ୍ଷଣାର୍ଥ) ଅନେକଗୁଡ଼ିଏ ଷେତ୍ରଜ ସନ୍ତାନର ପିତା ହେବା— 3. ( figurative ) To become the father of children on the wives of other people.

**ଯାଆ ତାଆ**—ଦେ. ସର୍ବନାମ (ସଂ ଯଦ୍ ତଦ୍)—ଯାଇତାଇ (ଦେଖ) Jā-ā tā-ā Jaitāi (See) ଯାତା **जीसतीस** ( ଯାଆତା—ଅନ୍ୟରୂପ )

**ଯାଆ ନଣନ୍ଦ(ନ୍ଦ)**—ଦେ. ବ ( ସହରର ଶବ୍ଦ; ସଂ. ଯାତୃ, ନନାନ୍ଦୃ ବା Jā-ā nanada(nda) ନନନ୍ଦୃ)—ସ୍ୱାମୀଙ୍କର ଭ୍ରାତୃଜାୟା ଓ ଭଗିନୀ- (ଯା ନଣନ୍ଦ—ଅନ୍ୟରୂପ) One's husband's brother's ଜା ननद **जेठानी(देवरानी)ननद** wife and husband's sister.

**ଯାଆନ୍ତେ**—ଦେ.ଅ (ସମୟ) ଗତ ହେବାରୁ—After the lapse of. Jā-ānte [ଉ—ଏରୂପେ କେତେକାଳ ଯାଆନ୍ତେ ସେ ନାଶ । ଗତହଲେ **जानेसे** ସବୁରୁ ଯାଇଥିଲେ ଦୈବେ ସ୍ନାନ କରୁ— କୃଷ୍ଣସିଂହ, ମହାଭାରତ. ବନ ।]

**ଯାଆ ଯେଉଳା**—ଗ୍ରା.ବ. ସ୍ତ୍ରୀ (ସହରର ଶବ୍ଦ; ଯେଉଳା କରର୍ଥକ ଶବ୍ଦ)— Jā-ā Jeulā କୌଣସି ସ୍ତ୍ରୀଙ୍କର ନିଜ ପରିବାରସ୍ଥା ପତିଙ୍କ ଭ୍ରାତୃଜାୟା (ଯା ଯେଉଳା—ଅନ୍ୟରୂପ ) ଓ ଅନ୍ୟାନ୍ୟ ସ୍ତ୍ରୀଗଣ— ମେୟେ ছেলে **जाल पोल** The females of a woman's own family (including one's husband's brother's wife) (ଉ—ଯାଆ ଯେଉଳାରେ ଘର, କ ଥାଇଁ କରବେ ଶାଶୁ ଶ୍ୱଶୁର ଲୋ ବନ୍ଧୁ ମୋହର ବର—ତଗ ।)

**ଯାଆଲ(ଲା)**—ଦେ. ବ—ଜାଲ(ଲା) (ଦେଖ) Jā-āla(lā) Jāla(lā) (See)

**ଯାଆଁଳ (ଇତ୍ୟାଦ)**—ଦେ. ବ ( ସଂ. ଯାମଳ )—ଯାଆଁଳା ଇତ୍ୟାଦ Jā-āṅla (etc) (ଦେଖ)—Jā-āṅla etc (See)

**ଯାଆଁଳା (ଇତ୍ୟାଦ)**—ଦେ. ବ. ଓ ବଣ—ଯାଆଳା (ଦେଖ) Jā-āṅla (etc) Jā-ālā (See)

**ଯା ଆସ**—ଦେ. ବ (ସଂ. ଯା· ଧାତୁ + ଓ. ଆସିବା)—୧ । ଆସ ଯା; ଯିବା Jā āsa ଓ ଆସିବା—1. Coming and going. ( ଉ— (ଯାଆସ ଆସ—ଅନ୍ୟରୂପ) ଦୁଇ ବର୍ଷ ହେଲା ବର୍ଷକ ଭିତରେ ଦୁଇ ତିନ ଥର କର ଯା ଆସ କରୁଛ । ଫକୀରମୋହନ— আসাযাওয়া, যাওয়াআসা, আনাগোনা ଚଳନ୍ତଲ୍ଲ ।) ୨ । ଚଳା- **आनाजाना, जानाआना** ଚଳ—2. Intercourse. ୩ । ଘନ ଘନ କୌଣସି ସ୍ଥାନକୁ ଯାତାୟତ କରିବା—3. Frequenting a place. (ଉ—ଲାଗି ରହି ଥାଉ ଯାଆସ ଅସ, ନ ଥାଉ ମୁଁ ଠିଏ ଭିତରେ ଆଶ । ତଗ ।)

**ଯାଆ ସଉତୁଣୀ**—ଦେ. ବ ସ୍ତ୍ରୀ (ସହରର ଶବ୍ଦ, ସଂ. ଯାତୃ ଓ ସପତ୍ନୀ)— Jā-ā sautuṇi ଯାଆ ଓ ସଉତୁଣୀ—One's husband's (ଯା ସଉତୁଣୀ ଅନ୍ୟରୂପ) brother's wife and one's ଜା সতীন **देवरानीसौतीन** co-wife.

**ଯାଇ (ଇତ୍ୟାଦ)**—ଦେ. ବ—ଜାଇ ଇତ୍ୟାଦ (ଦେଖ)—Jāi etc Jāi (etc) (See). ( ଉ—ଭୁଲୀ ତଳସ ର ଶେଯାଇ, ଦେବାର କୋମଳ ଯାଇ, ଯାହା ଅଙ୍ଗ ବସେ ଭୃଙ୍ଗ । କବିସୂର୍ଯ୍ୟ. ষাই ସଙ୍ଗୀତ । ) ଦେ. ସଙ୍କ ( ସଂ. ଯତ୍ ଓ ହି—ଯଦ୍ଧି; କମ୍ପା ଜୋ ଯତଃ) —୧ । ଯାହା—1. Which. ୨ । ଯତ୍କିଞ୍ଚିତ— 2. Very slight or little

**ଯାଇ କ(କି)ରି**—ଦେ.—୧ । କ୍ରିୟା (ଯିବା କ୍ରିୟାର ଅସମାପିକାରୂପ)— Jāi ka(ki)ri ଗମନ କ୍ରିୟା କରି—1. (Participle of the গিয়ে verb to go) Going. ଦେ. ଅ. ୧—ଅବଶେଷରେ **जाकर** 1. At last. ( ଯଥା—ଆଜି ପରୀକ୍ଷା ସରିଲା, କିନ୍ତୁ ଫଳ [ଯାଇକ(କି)ରିକ(କି)ରି—ଅନ୍ୟରୂପ] ଯାଇ କରି ତିନି ମାସ ପରେ গিয়ে ବାହାରିବ) ୨ । ( ବ୍ୟକ୍ତିଗତ ମୁଦ୍ରାଦୋଷ ବା ଅନର୍ଥକ **जाकर** ବାକ୍ୟପ୍ରୟୋଗ) ପରେ; ତତ୍ପରେ; ଅନନ୍ତର— 2 After; afterwards; then. ୩ । ଏବଂ— 3. And; also.

**ଯା ଇଚ୍ଛା ତା**—ଦେ. ସଙ୍କ (ମନ୍ଦାର୍ଥ; ସଂ. ଯଥେଚ୍ଛା ଓ ତତ୍)—୧ । ଅତି Jā ichchhā tā ମନ୍ଦ; ଅବର୍ଣ୍ଣନୀୟରୂପେ ମନ୍ଦ—1 Indescribably bad or miserable. ( ଯଥା—ନନାଙ୍କ ମରିବା ପରେ ଆମ ଗାଆଁର ଅବସ୍ଥା ଯାଚ୍ଛାତା ହୋଇଗଲା ।) ୨ । ସ୍ୱେଚ୍ଛା-ଶୃଙ୍ଖ; ଯଥେଚ୍ଛାଶୃଙ୍ଖ— 2. Despotic; self-willed.

ଯା ଇଚ୍ଛା ତାଇ, ଯାଚ୍ଛାତା, ଯାଚ୍ଛାତାଇ, ଯେଉଚ୍ଛା ତା, ଯେଚ୍ଛା ତା, ଯେ ଇଚ୍ଛା ତାଇ, ଯେଚ୍ଛାତାଇ—ଅନ୍ୟରୂପ

যাচ্ছাতাই, যাইচ্ছাতাই (ଯଥା—ଘରେ କେହି ମୁରବୀ **आपईज्ञा** ନ ଥିବାରୁ ପିଲାଗୁଡ଼ାକ ଯା ଇଚ୍ଛା ତା ହୋଇଗଲେଣି ) যাচ্ছা তাই, যাই খুসি তাই, যাইচ্ছাতাই

**ଯାଇ ତା**—ପ୍ରାଦେ. (କୋରାପୁଟ) କି—ଯାଆନ୍ତା— Jāi tā (he) Would go.

**ଯାଇ ତାଇ**—ଦେ. ବଣ (ସଂ. ଯର୍ହି ତର୍ହି, ଯତ୍ତତ୍)—୧ । ଯେନ ତେନ Jāi tāi ପ୍ରକାରେ ସମ୍ପାଦିତ—1. Done or finished যাইতাহি, যাহিতাহ, যা-তা somehow or other. ୨ । କାମ **जैसे, जैसातैसा** ଚଳିଲା ଭଳି—2. Tolerable. କ୍ରି. ବଣ— ୧ । କଷ୍ଟେ ମଷ୍ଟେ—1. Anyhow. (ଯଥା-ଅର୍ଥାଭାବରୁ ମୁଁ ଯାଇ ତାଇ ଏ ବିଭାଘରଟି ସମାଧା କରିଦେଲି) । ୨ । ସାମାନ୍ୟ ପ୍ରକାରେ—2. In a simple fashion or style. ୩ । କାମ ଚଳିଲା ଭଳି; ଗୁଜୁରାନ୍ ମେଣ୍ଟିବା ପ୍ରକାରେ; ଚଳନୀୟରୂପେ—3. Tolerably.

ଯାଇଥିବା—ଦେ. ବିଣ—୧ । ନଷ୍ଟ—1 Lost. (ଦୃ—ଯାଇଥିବା ଧନ Jāithibā ଆସଇ ତାହାଙ୍କର, ଯେଣୁ ଏ ପୁତ୍ରଭଳ ଭରତରେ ନଷ୍ଟ ହୋଇଥା ଯାଇ । କୃଷ୍ଣସିଂହ. ମହାଭାରତ ବନ ।) ୨ । ଗତ—ଗୟାହୁଆ 2. Gone. ୩ । ଅତୀତ—3. Past.

ଯାଇ(ହି) ବା—ଦେ.ସର୍ବ.(ସଂ.ଯଦ୍ ବା)—୧। ଯାହା କିଛି; ଯାହା ସାମାନ୍ୟ Jāi(hi) bā 1. Whatever little. (ଯଥା—ମୋଠାରେ ଯାବା, ଯାଈବା ଯାଇ ବା ଧନ ଥିଲା, ସେତିକ ଏବେ ଥରକେ ସବୁ ଜୋମୀ ଗଲା ।) ୨ । ଯାହା ସମସ୍ତ—2. All whatever.

ଯାଇ(ହି) ହ(ହେ)ଉ—ଦେ.ଅ.—(ସଂ. ଯଦ୍ ଭବତୁ)-୧। ଯାହା ଘଟନା Jāi(hi) ha(he)u ଘଟୁ ପଛକେ—1. Come what may. (ଯା ହଉ, ଯେ ହେଉ—ଅନ୍ୟରୂପ) ୨ । ପୂର୍ବ କଥିତ ବିଷୟକୁ ଯାହଉକ, ଯାଇ ହୋକ, ଯା ହୋକ ଛାଡ଼ ଦେଲେ ମଧ୍ୟ—2 In-ଜୋହୋ spite of what has been told. ୩ । ପକ୍ଷାନ୍ତରେ—3 However, on the other hand. (ଯଥା—ଏ ବୁଢ଼ା ଯେତେ ପୁଅମାନେ ବାପ ମାଆଙ୍କୁ ପୋଷିଲେ ନାହିଁ, ଯାଇ ହେଉ ପୁଅମାନେ ତାଙ୍କ ନିଜନିଜର ସଂସାରତ ଚଳାଉଛନ୍ତି ।)

ଯାଉ (ଇତ୍ୟାଦି)—ଦେ. ବି.—(ସଂ. ଯବାଗୁ)—ଜାଉ ଇତ୍ୟାଦି (ଦେଖ) Jāu (etc) Jāu etc. (See) ଦେ. ଅ .—ଯାଉ ସେ କଥା (ଦେଖ)—Jāu se kathā (See) ଦେ. କ୍ରି.—(ଯିବା କ୍ରିୟାର ଅନୁଜ୍ଞା, ତୃତୀୟ ପୁରୁଷ ଏକ ବଚନ)—ସେ ଗମନ କରୁ—Let (him) go.

ଯାଉଆ—ଦେ. ବିଣ.—ଜାଉଆ (ଦେଖ) Jāuā Jāuā (See)

ଯାଉଁ(ଉ)ଳି—ଦେ.ବି.—(ସଂ. ଯୁଗଳ)· ୧। କାନ୍ଧର ଆଗରେ ଓ ପଛରେ Jāuñ(u)li ପକାଇବାର ସୁବିଧା ନିମନ୍ତେ ଖଣ୍ଡେ ଲୁଗାର ଦୁଇ କାନରେ ପୁଟଳି ଗଠରୀ ବନ୍ଧା ହେବା ଦୁଇଟି ବୁଜୁଳା; ଯୋଡ଼ ବୁଜୁଳା—ଜୋଡ଼ା ଜୋଡା 1. A double-bagged knapsack put across the shoulder; 2 packs made at each end of a cloth turned into a bag for facility of carrying it suspended over the shoulder (one bag in the front and one in the back side) [ଦୃ—ଯକାସ୍ୱ ବ୍ରାହ୍ମଣମାନେ ଉପାର୍ଜିତ ଦ୍ରବ୍ୟଙ୍କୁ ଓ ପୁରୋହିତମାନେ ଯଜମାନଙ୍କଠାରୁ ପ୍ରାପ୍ତ ତଣ୍ଡୁଳାଦିକୁ ଯାଉଁଳି କରି କାନ୍ଧରେ ବୁହାଇ ଘରକୁ ଆଣନ୍ତି । ବୃତ୍ତି ଦେଖାରୁ ବ୍ରହ୍ମଚର୍ଯ୍ୟ ବାଳକ ଭେଷିଆଣି କରି ଗଲାବେଳେ କାନ୍ଧରେ ଯାଉଁଳି ପକାଇ ବାହାରିଯିବ ।] ୨ । ସମଶ୍ରେଣୀର ଦୁଇଗୋଟି ବା ଯୋଡ଼—2. A pair; a couple. (ଯଥା—ଯାଉଁଳି ଜନ, ଯାଉଁଳି ଦେଉ ଇତ୍ୟାଦି ।) ୩ । ଯୁଗ୍ମ ମଧ୍ୟରୁ ଏକତର—3. One of a pair; counterpart. ବିଣ.—୧ । ସମଶ୍ରେଣୀସ୍ଥ ଏକତ୍ରାବସ୍ଥିତ ଦୁଇଟି ବସ୍ତୁ)—1. Arranged in a pair; consisting of a pair. (ଯଥା—ଯାଉଁଳି ଘୋଡ଼ା, ଯାଉଁଳି କବାଟ ।) ୨ । ଏକ ସମୟରେ ଘଟିବା ଦୁଇ ସଂଖ୍ୟକ; ଯୁଗ୍ମ; ଦୁଇ—2. Consisting of two things happening at one and the same time, simultaneously taking place (two things). (ଯଥା—ଯାଉଁଳି ପାଲି ।)

ଯାଉଁ(ଉ)ଳିଆ—ଦେ. ବିଣ.—ଯେଉଁ ବ୍ୟକ୍ତି ଯାଉଁଳିଦ୍ୱାରା କୌଣସି Jāuñ(āu)liā ପଦାର୍ଥ ବହେ—Carrying things by means of double packs suspended from the shoulder. ବି.—ପୂର୍ବେ ଗଞ୍ଜାମ ଯାବା ঘাড়েকবে পুঁটলী বহে ଅଞ୍ଚଳରୁ ଆସି କଟକରେ ଗୁଆ ମସଲା ଗଠିରିୟା ଆଦି ବେପାର କରୁଥିବା ବ୍ରାହ୍ମଣ ମହାଜନ—Brahmin traders from Ganjam formerly carrying on trade in spices etc at Cuttack. [ଦୃ—ଏମାନେ ପୂର୍ବେ, ଅର୍ଥାତ୍ ରେଲ ଜାହାଜ ଆଦି ଚଳ ନ ଥିବା ସମୟରେ, ଦକ୍ଷିଣାଞ୍ଚଳରୁ ଯାଉଁଳି ଦ୍ୱାରା ପଣ୍ୟଦ୍ରବ୍ୟ ଓ ମସଲାମାନ ବୋହି ଆଣି ଏ ଦେଶରେ ବେପାର କରୁଥିଲେ ଓ ସେମାନଙ୍କ ବଂଶଧରମାନେ ଯାଉଁଳିଆ ନାମରେ ପରିଚିତ । କଟକ ଚଉଧୁରୀବଜାରର ଗୋଟିଏ ଗଳିର ନାମ ଯାଉଁଳିଆପଟୀ । ]

ଯାଉଁଳି କବା(ବ)ଟ—ଦେ. ବି. ( ସଂ. ଯୁଗଳ ଓ କପାଟ )—ଦୁଆର Jāuñli kabā(ba)ṭa ମୁହଁରେ ଲାଗିଥିବା ଯୋଡ଼ କବାଟ—ଜୋଡା କপাট, ঝাহল কপাট Double-sheeted door. ଜୋଡ଼ା କିବାର

ଯାଉଁ(ଉ)ଳି ଗୁଣା—ଦେ. ବି—ସ୍ତ୍ରୀମାନଙ୍କ ନାକପୁଡ଼ାରେ ପିନ୍ଧାଯିବା ଏକ Jāuñ(u)li guṇā ପ୍ରକାର ସୁନାର ଗୁଣା (ଏଥିରେ ଉପର୍ଯ୍ୟୁପରି ଜୋଡା বেসর ଦୁଇଟି ସମ ପରିଧିବିଶିଷ୍ଟ ବେଢ଼ ଥାଏ)—ଜୋଡ଼ା ଛକ A kind of double-rimmed golden flower worn on the side of the nostrils by females. (ଦୃ—ଯାଉଁଳି ନାକରେ ଯାଉଁଳି ଗୁଣା ମାରତ ପକେଇଲା—ଭଗ ।)

ଯାଉଁଳି ଜନ—ଦେ. ବି—୧ । ସ୍ତ୍ରୀ ପୁରୁଷ ଯୁଗଳ; ମିଥୁନ—1. A Jāuñli jana couple. ୨ । ଜାଉଁଳି ଜହ୍ନ (ଦେଖ) ଜୋଡ଼ା ଜୋଡା 2. Jāuñli jahna (See)

ଯାଉଁଳି ଜହ୍ନ—ଦେ. ବି—୧ । ଆକାଶରେ ଏକ ସମୟରେ ଉଇଁବା Jāuñli jahna ରୂପେ କଳ୍ପିତ ଦୁଇ ଗୋଟି ଚନ୍ଦ୍ର—1. Two জোড়া চাঁদ moons imagined to rise simulta-ଜୋଡା ଚାଁଦ neously in the sky. ୨ । ସୁନ୍ଦରୀ ବାଳକାଙ୍କୁ ଦିଆଯିବା ନାମ—2 A name given to lovely girls. [ଦୃ—ଲୋକେ ସୌନ୍ଦର୍ଯ୍ୟର ଉଦାହରଣରୂପେ ଜହ୍ନକୁ ଉଲ୍ଲେଖ କରନ୍ତି । ବାଳକାକୁ ଏ ନାମ ଦିଆଯିବାର ଅର୍ଥ;—ବାଳକାଟି ଜହ୍ନ ଅପେକ୍ଷା ଦୁଇଗୁଣ ସୁନ୍ଦର । ]

ଯାଉଁଳି ତାଡ଼—ଦେ. ବି—୧ । ବାହୁର ଅଳଙ୍କାର ବିଶେଷ—1. An Jāuñli tāṛa ornament worn on the arm.

ଜୋଡ଼ା ତାଡ (ଉ—ଯାଉଁଳ ତାଡ଼ ସଜାଡ଼ି ଜଲଥାଉ ଶଙ୍ଖରୁଚୁ
जोड़ा अनंत ସୁଗ୍ରୀବରେ, ଯେଶବାରୁ କାନ୍ତ ଅଧିକା । ଉଞ୍ଜ.
ଲାବଣ୍ୟବତୀ ।) [ଦ୍ର—ସାଧାରଣ ତାଡ଼ରେ ଗୋଟିଏ ବଳୟ ଥାଏ, ଯାଉଁଳ ତାଡ଼ରେ ଦୁଇଟି ବଳୟ ଏକସଙ୍ଗେ ଝୁଲା ହୋଇଥାଏ ।) ୨ । ଦୁଇ ବାହୁରେ ପିନ୍ଧାଯିବା ତାଡ଼ଦ୍ୱୟ-
2. A pair of Tārdas put on the two arms.
[ଦ୍ର—ସାଧାରଣତଃ ସ୍ତ୍ରୀଲୋକମାନେ ଏକ ବାହୁରେ ପଟେ ତାଡ଼ ଓ ଅନ୍ୟ ବାହୁରେ ମାଳେ ବଧ ପିନ୍ଧନ୍ତି । କିନ୍ତୁ କେବେ କେବେ କୌଣସି କୌଣସି ସ୍ତ୍ରୀ ଦୁଇ ବାହୁରେ ଦୁଇଟି ତାଡ଼ (ଯାଉଁଳ ତାଡ଼) ପିନ୍ଧନ୍ତି ।]

**ଯାଉଁଳ ନୋଳି**—ଦେ ବି. (ସଂ. ଯୁଗଳ ଓ ଲୋଳକ)—ଦୁଇଟି ନୋଳି
Jāuñli noli ବା ଚଉଡ଼ା ଏକକ ଯୋଡ଼ା ହୋଇ ତିଆରି କରା
ଜୋଡ଼ା କାନଫুল (মাকড়ী) ଯାଇଥିବା କାନର ନୋଳି—
जोड़ा कुंडल Double ear-ring for the lobe made by soldering two rings together.

**ଯାଉଁଳ ପାଲା**—ଦେ. ବି—ବାଦୀ ପାଲା; ଦୁଇ ଦଳ ଠିଆପାଲା ବାଲା
Jāuñli pālā ପ୍ରତିଯୋଗିତା ପୂର୍ବକ ଯେଉଁ ପାଲା କରନ୍ତି—
ଜୋଡ଼ା পালা A 'Pālā' performed by two par-
जोड़ा कीर्त्तन ties alternately vying with each other.

**ଯାଉଁଳ ଫାଶିଆ**—ଦେ. ବି—କାନର ଉପର ଅଂଶରେ ପିନ୍ଧାଯିବା
Jāuñli phāsiā ଯୋଡ଼ି ଫାଶିଆ—Doubled up ear-
উপব কানেব জোড়া মাকড়ী rings for the upper part of the ear.
जोड़ा कनौसी

**ଯାଉଁଳ ବନ୍ଧା**—ଦେ. ବିଣ—ଯେଉଁ ଲୋକ ଯାଉଁଳି ବାନ୍ଧି କାନ୍ଧରେ ବହି-
Jāuñli bandhā ନଏ—Carrying a Jāuñli on his
পুটলী বাংধা shoulder. ଦେ. ବି—ଯାଉଁଳରେ ଜିନିଷ
गठरी बांधने वाला ବାନ୍ଧିବା କର୍ମ—The act of tying
गठरी बांधना articles in a Jāuñli.

**ଯାଉଁଳ ବେତ**—ସଂ. ବି—ଅପରାଧୀଙ୍କୁ ବା ଛାତ୍ରଙ୍କୁ ପ୍ରହାର କରିବା ନିମନ୍ତେ
Jāuñli beta ଏକତ୍ର ବନ୍ଧା ଯାଇଥିବା ଯୋଡ଼ିଏ ବେତ—
ଜୋଡ଼ା বেত A pair of ratan cane tied together
जोड़ा बेंत to cane a criminal or a wicked boy.

**ଯାଉଁଳ ମୁଦି**—ଦେ. ବି—ଗୋଟିଏ ଅଙ୍ଗୁଠିରେ ଏକତ୍ର ପିନ୍ଧାଯିବା ଦୁଇଟି
Jāuñli mudi ମୁଦି—Two rings worn together
ଜୋଡ଼া আংটী on the finger. (ଉ—ପିନ୍ଧା ଶାଗ ମୁଦି-
जोड़ा अंगुठी ମୁଦି, ପିନ୍ଧେଇ ଗୋଡ଼ରେ ଯାଉଁଳ ମୁଦି, ଶୁଭୁଥାଏ ଝୁଦ୍ ଝୁଦ୍—ଗୀତ ।)

**ଯାଉଁଳ ଶଙ୍ଖ**—ଦେ. ବି—ଯୋଡ଼ି ଶଙ୍ଖ, ଏକ ବ୍ୟକ୍ତିର ଏକ ସମୟରେ
Jāuñli sankha ମୁହଁରେ ପୁଙ୍କିବା ଦୁଇଟି ଶଙ୍ଖ—
ଜୋଡ଼া শাংখ A pair of conch shells simultane-
जोड़ा शंख ously blown by a person.

**ଯାଉ ସେ କଥା**—ଦେ. ଅ—୧ । ସେ କଥା ଛାଡ଼ୁ; ସେ କଥା ଆଉ
Jāu se kathā ଆଲୋଚନା କରିବା ଦରକାର ନାହିଁ—
যাক, যাকগে 1. Let go! Drop the matter!
जाने दो ୨ । ଗଲା କଥା ଗଲାଣି—2. Let bygones be bygones.

**ଯାଏ(ୟ)**—ବୈଦେ. ବି. (କଚେରୀ) (ଫା. ଜାୟ୍=ବିବରଣ)—
Jāe(y) ୧ । ଫର୍ଦ୍ଦ; ବିବରଣ—1. Schedule; state-
জায় जाय ment. ୨ । ହିସାବ ମୁକାବିଲା କରିବା ସମୟରେ ମୁକାବିଲା ହୋଇଯିବା ଅଙ୍କଗୁଡ଼ିକ ନିକଟରେ ଦେବା ∠ ଚିହ୍ନ—2. A mark such as '∠' or '⁄' put, while examining accounts, against each item indicating that it has been
জায়দাদ considered or compared or dealt with.
जायदाद ୩ । (ଫା. ଜାୟଦାଦ୍) ସମ୍ପତ୍ତି; ଧନ—3. Property.
(ବିପରୀତ—ବେଜାଏ) ୪ । (ଫା. ଜା=ନ୍ୟାୟ) ନ୍ୟାୟସଙ୍ଗତ
জাএ जा କାର୍ଯ୍ୟ—4. Right or proper act. ବୈଦେ. ବିଣ—୧ । ନ୍ୟାୟସଙ୍ଗତ—1. Legal. ୨ । ଶୁଦ୍ଧ—2. Coreect; right. ୩ । ଉଚିତ—3. Proper.

যাবত, পর্য্যন্ত ଦେ. ଅ. (ସଂ. ଯାବତ୍) (ସମୟ ବା ସ୍ଥାନ ବା
तक ବ୍ୟକ୍ତି) ଯାକେ; ପର୍ଯ୍ୟନ୍ତ—Till; upto (a place or time or person). (ଉ—ପୂର୍ବଅଛି ଭୋର ପ୍ରହରୁ ଚାକୁରପାଶ ଯାଏ ସୁଧା ଝରରେ । କବିସୂର୍ଯ୍ୟ. ସଙ୍ଗୀତ ।)
[ଦ୍ର—ଯାଏ ଶବ୍ଦ ପୂର୍ବରେ ସେ, ଏ, ତାହା, ଏହା, ଏଥି, ମୋ ଇତ୍ୟାଦି ସର୍ବନାମ ପଦ ମଧ୍ୟ ଲାଗେ । ଯଥା—
ସେ ଯାଏ—ସେ ସମୟ ବା ସ୍ଥାନ ପର୍ଯ୍ୟନ୍ତ ।
ଏ ଯାଏ—ଏ ସମୟ ବା ସ୍ଥାନ ପର୍ଯ୍ୟନ୍ତ ।
ଯେଉଁ ଯାଏ—ଯେଉଁ ସ୍ଥାନ ବା ସମୟ ପର୍ଯ୍ୟନ୍ତ ।
ମୋ ଯାଏ—ମୋ ପର୍ଯ୍ୟନ୍ତ; ମୋ ନିକଟ ।]
[ଉ—ବାପୀ ଖୋଳା ହେବ ସେ ଯାଏ, ଯେ ଯାଏ କଳସୁଁ ଜଳହିଁ ସ୍ରାବ—ରାଧାନାଥ. ଯାଜ୍ଞ ।] ଦେ. କି ଯ୍ରା. (ଯିବା କ୍ରିୟାର
যায় ନିତ୍ୟ ପ୍ରବୃତ୍ତ ବର୍ତ୍ତମାନ କାଳ, ତୃତୀୟ ପୁରୁଷ, ଅନାଦରାର୍ଥକ,
जाता ଏକବଚନ ରୂପ)—(ସେ) ଗମନ କରେ—(he) Goes.

**ଯାଏଁ**—ଦେ. ଅ. (ସଂ. ଯାବତ୍)—ଯାବତ୍; ପର୍ଯ୍ୟନ୍ତ—Upto; till
Jāeñ ଦେ. କି. (ଯିବା କ୍ରିୟାର ନିତ୍ୟପ୍ରବୃତ୍ତ ବର୍ତ୍ତମାନକାଳ,
যাবত तक ୧ମ ପୁରୁଷ ଅନାଦରାର୍ଥ, ଏକ ବଚନରେ ରୂପ)—
যাই (मैं)जाताहूँ (I) Do go; (I) go.

**ଯାଏକ**—ଦେ. ଅ—ପର୍ଯ୍ୟନ୍ତ—Upto. (ଉ—କୋଶେ ଯାଏକ
Jāeka ବାସୁ ଥାଏ ଏ ବାଟେ ପୂର୍ବ । କୃଷ୍ଣସିଂହ. ମହାଭାରତ.
পর্য্যন্ত तक ବନ ।)

**ଯାଏ କେତେ ଆସେ କେତେ**—ଦେ. ବାକ୍ୟାଂଶ—ଏ ବିଷୟରେ
Jāe kete āse kete (ଅମୁକର) ବ୍ୟକ୍ତିଗତ ଲାଭ ନାହିଁ ବା
যাএ কত আসে কত କ୍ଷତି ନାହିଁ; ଏ ବିଷୟ (ଅମୁକଙ୍କୁ) ଗୁରୁତର
जाता क्या आता क्या ଭାବରେ ସ୍ପର୍ଶ କରିବ ନାହିଁ—It mat-
(ଯାଏ ଆସେ କେତେ—ଅନ୍ୟରୂପ)ters little to (someone)
(ଯଥା—ଦେଶରେ ଦୁର୍ଭିକ୍ଷ ପଡ଼ିଲେ ମୋଟାଦରମାବାଲା ସରକାରୀ କର୍ମଚାରୀଙ୍କର ଯାଏ କେତେ ଆସେ କେତେ ।)

**ଯାଏ ଦେବା**— ଦେ. କି. (କଟକରେ)—ହିସାବ ମୁକାବିଲା କରିବା ସମୟରେ ମୁକାବିଲା ସରିଥିବା ଅଙ୍କ ବା ବିଷୟରେ '✓'ଚିହ୍ନ ଦେବା—To put a tick mark against a figure.
Jāe debā
जाय देओया
जाय देना

**ଯାଏ ବାଲା**— ବୈଦେ. ବିଣ. ପୁଂ. (ଫା. ଜାୟ୍ + ବାଲା)—ସମ୍ପତ୍ତିବାନ୍—Having property; (a person) of substance.
Jāe bālā
विषयवान
जायदाद वाला
(ଯାଏବାଲୀ, ଯାଏ ଵାଲୀ—ସ୍ତ୍ରୀ) (ଯାଏ ଵାଲା—ଅନ୍ୟରୂପ)

**ଯାଏ(ୟ) ବେଜାଏ(ୟ)**—ବୈଦେ.ବି ଓ ବିଣ (କଟକରେ) (ନ୍ୟାୟାନ୍ୟାୟାର୍ଥ ସହରର ଫା.ଜା+ବେଜା)—ନ୍ୟାୟ ଓ ଅନ୍ୟାୟ—Right and wrong.
Jāe(y) bejāe(y)
जाय बेजाय
जा बेजा

**ଯାଏ ବେଜାଏ ବୁଝିବା**—ଦେ. କି—ନ୍ୟାୟାନ୍ୟାୟ ବିଚାର କରିବା—To judge if any act is just or unjust.
Jāe bejāe bujhibā
जाय बेजाय बोझा
जा बेजा बुझना

**ଯାଏଁ**—ଦେ. ଅ. (ସଂ. ଯାବତ୍)—ପର୍ଯ୍ୟନ୍ତ—Till; upto. [ଉ—ସୁମିତ୍ର ଯାଏଁ କଲ ଯୁଗେ, ଏତେ ନୃପତି ହେବେ ଭୋଗେ । ଜଗନ୍ନାଥ. ଭାଗବତ ।]
Jāeṅ
पर्य्यन्त
तक
ଦେ କ୍ରି—(ମୁଁ) ଗମନ କରେଁ—(I) go.

**ଯାଁଚ୍**—ଦେ. ବି (କଟକରେ) ସଂ. ଯାଚନ; ହିନ୍ଦିରୁ ଅନୁକୃତ; ସେଟଲମେଣ୍ଟ ଅଫିସ୍ ଭାଷା, ପଶ୍ଚିମା କର୍ମଚାରୀମାନଙ୍କ ଦ୍ୱାରା ବ୍ୟବହୃତ)—
Jāñch
जाँच
जाँच
୧ । ଭୂଇଁଜମି ବନ୍ଦୋବସ୍ତ ବା ସେଟଲମେଣ୍ଟର ଅମିନମାନଙ୍କ ଦ୍ୱାରା ମାପ ହୋଇଥିବା କ୍ଷେତ୍ରମାନଙ୍କ ବିବରଣ ଠିକ୍‌ରୂପେ କାଗଜରେ ଚଢ଼ି ଅଛି କି ନାହିଁ, ଏହା ପରୀକ୍ଷିବା—1. Checking of the maps and records of a surveyor by a higher authority. ୨ । ତଦାରଖ—2. Inspection ୩ । ସମୀକ୍ଷଣ; ତନଖୀ; ହିସାବ ଆଦିର ପରୀକ୍ଷା—3. Audit; examination of accounts. ୪ । ମୁକାବିଲା; ତୁଳନା 4. Comparison. [ଦ୍ର—ଓଡ଼ିଶାର ଭୂଇଁଜମି ସେଟଲମେଣ୍ଟ (Provincial Settlement) ବିଭାଗରେ କର୍ମ କରୁଥିବା ହିନ୍ଦୁସ୍ଥାନୀ କର୍ମଚାରୀମାନଙ୍କ ବ୍ୟବହୃତ ଯାଁଚ୍ ଶବ୍ଦ ସମ୍ପର୍କରେ ଯାଁଚ୍ ଅଫିସର୍, ଯାଁଚ୍ ଅମିନ, ଯାଁଚ ହାକମ ଆଦି କେତେଗୁଡ଼ିଏ ଶବ୍ଦ ଭାଷାରେ ପଶିଅଛି । ସେଟଲମେଣ୍ଟ ଅଫିସ୍‌ମାନଙ୍କରେ ମଧ୍ୟ ଇଂରାଜୀ ଲେଖାରେ ଏ ଶବ୍ଦ 'Janch' ବ୍ୟବହୃତ ହୋଇଅଛି ।]

**ଯାଁଚ୍ ଅଫିସର୍**—ଦେ. ବି (କଟକରେ)—ଅଧସ୍ତନ କର୍ମଚାରୀଙ୍କ ଓ ଅମିନମାନଙ୍କ କର୍ମକୁ ତନଖିବା ପାଇଁ ନିଯୁକ୍ତ (ଯାଁଚ୍ ହାକମ—ଅନ୍ୟରୂପ) ଊର୍ଦ୍ଧ୍ୱତନ କର୍ମଚାରୀ—Auditing or checking authority.
Jāñch aphisar
যাঁচআপিসির্
जाँचअफसर

**ଯାଁଚ୍ କରିବା**—ଦେ. କି (କଟକରେ)—୧ । କୌଣସି ବିଷୟ ବା ଲେଖ ଠିକ୍ ଅଛି କି ନାହିଁ, ଏହା ମୁକାବିଲା କରିବା—1. To check the correctness of a matter. ୨ । ତୁଳନା କରିବା—2. To compare. ୩ । ପରୀକ୍ଷା କରିବା—3. To test; to examine. ୪ । ହିସାବ ତନଖିବା—4. To audit.
Jāñch karibā
জাঞ্চকরা
जाँचना

**ଯାଁଚ୍ ପଡ଼(ଢ଼)ତାଲ**—ଦେ. ବି—(କଟକରେ; ଭୂଇଁଜମି ବନ୍ଦୋବସ୍ତ କର୍ମଚାରୀଙ୍କଦ୍ୱାରା ବ୍ୟବହୃତ, ଏକାର୍ଥକ ସହଚର)—ହିସାବଆଦିର (ଯାଁଚ୍ ପ୍ରତାଲ—ଅନ୍ୟରୂପ) ପରୀକ୍ଷା checking.
Jāñch parḍa(ṛa) tāla
যাঁচ পৰতাল
जाँच पडताल

**ଯାଁଚ୍ ମୋହ(ହୋ)ର(ରି)ର୍**—ଦେ. ବି—(କଟକରେ, ସେଟଲମେଣ୍ଟ ବିଭାଗ ବ୍ୟବହୃତ) (ସଂ. ଯାଚନ+ ଫା. ମୁହରିର୍)—ଯେଉଁ ମୋହରର ଅନ୍ୟର ଲେଖା ଆଦିକୁ ପରୀକ୍ଷା ବା ମୁକାବିଲା କରେ-Comparing, or checking or auditing clerk. [ଦ୍ର—ଏହିପରି ଯାଁଚ୍ ଅମିନ, ଯାଁଚ୍ ଅଫିସର୍ ଆଦି ଶବ୍ଦମାନ ହୁଏ ।]
Jāñch moha(ho)ra(ri)r
যাচ মহুৰী
जाँच मुहरिर

**ଯାଁଚ୍ ରିପୋର୍ଟ**—ଦେ. ବି.—(କଟକରେ)--ଯାଚ୍ କରିବା ବ୍ୟକ୍ତି କର୍ତ୍ତୃକ ପକ୍ଷଙ୍କ ଯେଉଁ ରିପୋର୍ଟ ଦିଅନ୍ତି—Audit(t) report
Jāñch report
যাঁচ রিপোর্ট
जाँच रिपोर्ट
[ଦ୍ର—ଏହିପରି ଯାଚ ତାଲିକା ଆଦି ଶବ୍ଦମାନ ହୁଏ ।]

**ଯାଁଲା(ଳା)**—ଦେ. ବି ଓ ବିଣ—ଯାଅଲା (ଳା) (ଦେଖ)
Jāṅlā(ḷā)
Jāalā(ḷā) (See)

**ଯାକ**—ଦେ. ଅ (ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ; ସଂ. ଯାବତ୍)—
Jāka
समस्त
भर
तामाम
भर
୧ । ସମସ୍ତ; ସମୁଦାୟ—1. All. (ଉ—ତିନ ଲୋକଯାକ ଅଲଦ୍ଧ୍ୟେ ଛଣିବେ । କୃଷ୍ଣସିଂହ. ମହାଭାରତ. ବନ ।) ୨ । ବିବାକ୍; ସମୁଦାୟ ଅଂଶ—2. The whole. (ଉ—ପିଇ ଦିଅନ୍ତି କି ଗୋଟିଯାକ ସେ କଶୋଗୀକି ରେ । କବିସୂର୍ଯ୍ୟ. କଶୋଗୀରତ୍ନ. ଚ ଗୀତ ।) ୩ । ମାନେ; ଗୁଡ଼ାକ—3. Indicating the plural number (ଯଥା—ଇଂରାଜପିଲ୍ଲାଏ ଟୋକାଯାକ ମୂର୍ଖଙ୍କୁ ମାନୁ ନାହାନ୍ତି) ୪ । (କାଳ, ସ୍ଥାନ, ଦେହ, ଜୀବନକାଳ) ତମାମ୍; (କାଳ) ବ୍ୟାପୀ -4. Throughout (a time, place, the body). (ଯଥା—ମୁଁ ଜୀବନଯାକ ଏହି କାମରେ ଲାଗିଛି ) [ଦ୍ର—ଏହି ଯାକ ଶବ୍ଦ ସ୍ୱତନ୍ତ୍ର ସର୍ବନାମ ଶବ୍ଦରୂପେ କଳ୍ପିତ ହୋଇ ଏଥିର ୨ୟାରେ ଯାକୁ, ୫ମୀରେ ଯାକରୁ, ୬ଷ୍ଠୀରେ ଯାକର, ୭ମୀରେ ଯାକେ, ଯାକରେ ଆଦି ଶବ୍ଦ ନିଷ୍ପନ୍ନ ହୁଏ, ଯଥା - ତୋ କଥା ଜଗତଯାକରେ ବିଖ୍ୟାତ ହେବ ।]
ଦେ. ବିଣ—ଯାକସାର (ଦେଖ)—Jākasāra (See)

**ଯାକସାର**—ଦେ. ବିଣ—୧ । ଯାହା ଦେହରେ ଲାଗି ହୋଇ ଲାଗିଯାଏ—1 Fitting exactly; tight. ୨ । ଯାକୁଆ (ଦେଖ)—2 Jākuā (See) ୩ । ସଂକୀର୍ଣ୍ଣ—3. Narrow.
Jākasāra
চুস্ত,চোস্ত
चुस्त, सिकस्त
( ଯାକସାରଆ—ଅନ୍ୟରୂପ )

**ଯାକି(କେ)ଟ୍**—ବୈଦେ. ବି—(ଇଂ. ଯାକେଟ୍)—ଯାକେଟ (ଦେଖ) (ଯାକଟ—ଅନ୍ୟରୂପ) Jaket (See).
Jāki(ke)t
(ଯଥା—ଯାକଟରେ ପାକଟ ଲଗେଇ ଦେ—ତଗ ।)

**ଯାକିବା (ଇତ୍ୟାଦ୍)**—ଦେ. କ୍ରି.—ଜାକିବା ଇତ୍ୟାଦ୍ (ଦେଖ)
Jākibā (etc) Jākibā etc (See)
[ଯକା (ଦେ) [ ଇବା—ଣିଜନ୍ତ ରୂପ]

**ଯାକି ଯୁକି** ହୋଇ ବସିବା—ଦେ. କ୍ରି — ୧ । ହସ୍ତପଦାଦିକୁ ସଙ୍କୁଚିତ
Jāki juki hoi basibā କରି ଉପବେଶନ କରିବା—
ଯେକେ ଯୁକେ ବସା **घुसुर मुसुर हो कर बैठना** 1. To sit by contracting on'es limbs. ୨ । (ଏକାଧିକ ବ୍ୟକ୍ତି) ଲଗା ଲଗି ହୋଇ ବସିବା—2 To sit close to one another. [ଉ—ଅଳସ ଖାଇ ଲୋକେ ବଳୁଛ ବାଢ଼ିକି, ବସୁଛନ୍ତି ଅଗ୍ନିକୁ ହୋଇ ଯାକଯୁକ । କୃଷ୍ଣସିଂହ. ମହାଭାରତ. ଉଦ୍ଯୋଗ । ]

**ଯାକୁ**— ଦେ. ସଙ୍. —(ସଂ. ଯଦ୍ ଶବ୍ଦର ୨ୟାବିଭକ୍ତି ୧ବ)—ଯାହାକୁ—
Jāku ଯାକେ **जीसको** Whom.
(ଉ—ଯାକୁ ମିଳଇ ଦ୍ରବ୍ୟ ଶାଳ ଅନ୍ନ, ତାର ଜଗଡ଼ା
(ଯାଙ୍କୁ—ବହୁବଚନେ ଆକାର) ଭାତେ କାହିଁ ମନ ।)

**ଯାକୁଆ**— ଦେ ବିଣ—ଜାକୁଆ (ଦେଖ)
Jākuā [ଯାକେ (କୋ) ଇ—ସ୍ତ୍ରୀ] Jākuā (See)

**ଯାକୁଇ(ତି, ହି, ହିଁ)**—ଦେ. ସର୍ବନାମ—(ସଂ. ଯଂ ହି, ଯାଂହି, ଯତ୍)—
Jakui(ti,hi,hiñ) Whom or which certainly.
(ଯାହାକୁହି, [ହିଁ, ଟି]—ଅନ୍ୟରୂପ)

**ଯାକୁଟି**—ଦେ. ଅ.—୧ । ସମୁଦାୟ—1. All. ୨ । (ଅନ୍ୟ ଶବ୍ଦ
Jākuṭi সারা **तमाम** ପରେ ଯୁକ୍ତ)—ତମାମ—
(ଯାକଟ—ଅନ୍ୟରୂପ] 2. Throughout. (ଉ – ହୋଇବତ ବଖାଣିଲି ଜଗତ ଯାକୁଟି । କୃଷ୍ଣସିଂହ. ମହାଭାରତ. ବନ ।)

**ଯାକୁସି**—ଦେ. ବି —ଚର୍ମରୋଗ, କାଖ ଓ ବେକସନ୍ଧିରେ ହେବା ଏକ
Jākusi ପ୍ରକାର ଚର୍ମରୋଗ, ବଉଁଚିକା—A skin disease commonly seen in the groins, axilla and on the neck.

**ଯାକେ**—ଦେ. ଅ.—(ସଂ. ଯାବତ୍)—୧ । (ବ୍ୟକ୍ତି, ସମୟ ବା ସ୍ଥାନ)
Jāke **तक** ପର୍ଯ୍ୟନ୍ତ; ଯାଏ—1. Till; upto (time or
ପର୍ଯ୍ୟନ୍ତ place or person.) ( ଉ—ଶ୍ରମର ଆଜଯାକେ ହେଲା ସଫଳ— କବିସୂର୍ଯ୍ୟ. କଳୋଶୀ ଚମ୍ପୂ. ଶଃ ଗୀତ ।)
୨ । ତମାମ୍—2. Throughout. (ଯଥା—କାହିଁକି ଯାକେ ଉତ୍ସବ ଲାଗିଲି ।)

**ଯାଗ (ଇତ୍ୟାଦ୍)**—ସଂ. ବି—(ଯଜ ଧାତୁ=ପୂଜା କରିବା + କରଣ ଅ)
Jāga (etc) ୧ । ଯଜ୍ଞ ଇତ୍ୟାଦ୍ ( ଦେଖ )—1. Jajna etc ( See ) ୨ । ହୋମ—2. Oblation to fire. [ ଦ୍ର— ଶାସ୍ତ୍ରମାନଙ୍କରେ ନିମ୍ନଲିଖିତ ଯାଗମାନଙ୍କ ନାମ ମିଳେ । ଯଥା—ଶ୍ରୌତାଗ୍ନି କୃତ୍ୟ ହବିର୍ଯଜ୍ଞ ୭ଟି—( ୧ ) ଅଗ୍ନ୍ୟାଧାନ, ଅଗ୍ନିହୋତ୍ର, ( ୨ ) ଦର୍ଶପୌର୍ଣ୍ଣମାସ, ( ୩ ) ପିଣ୍ଡପିତୃଯଜ୍ଞ, ( ୪ ) ଆଗ୍ରାୟଣ, ( ୫ ) ଚାତୁର୍ମାସ୍ୟ, ( ୬ ) ନିରୂଢ଼ପଶୁବନ୍ଧ, ( ୭ ) ସୌତ୍ରାମଣୀ । ସ୍ମାର୍ତ୍ତାଗ୍ନି କୃତ୍ୟ ପାକଯଜ୍ଞ—( ୧ ) ; ଉପାସନ, ( ୨ ) ବୈଶ୍ୱଦେବ, ( ୩ ) ସ୍ଥାଲୀପାକ, ( ୪ ) ଆଗ୍ରାୟଣ, ( ୫ ) ସର୍ପବଳି, ( ୬ ) ଈଶାନବଳି, ( ୭ ) ଅଷ୍ଟକାନ୍ୱଷ୍ଟକା ।
ଶ୍ରୌତାଗ୍ନି ସପ୍ତସଂସ୍ଥା, ସୋମଯାଗ—୧ । ଅଗ୍ନିଷ୍ଟୋମ, ୨ । ଅତ୍ୟଗ୍ନିଷ୍ଟୋମ, ୩ । ଉକ୍ଥ୍ୟ, ୪ । ଷୋଡ଼ଶୀ, ୫ । ବାଜପେୟ, (କ) ସଂସ୍ଥା, (ଖ) କ୍ରତୁ, ୬ । ଅତିରାତ୍ର, ୭ । ଅପ୍ତୋର୍ଯ୍ୟାମ ।
ଉତ୍ତରକ୍ରତୁ—୧ । ମହାଶ୍ରୁତ, ୨ । ସର୍ବତୋମୁଖ, ୩ । ରାଜସୂୟ, ୪ । ପୌଣ୍ଡରୀକ, ୫ । ଅଭିଜିତ୍, ୬ । ବିଶ୍ୱଜିତ୍, ୭ । ଅଶ୍ୱମେଧ, ୮ । ବୃହସ୍ପତି, ୯ । ଅଙ୍ଗିରସ, ୧୦—୨୨ ଉତ୍ସବ ।
ଯଜ୍ଞଶବ୍ଦତଳେ ନୋଟ୍ ଦେଖ । ଯଜ୍ଞ ଶବ୍ଦ ସଙ୍ଗେ ଯେଉଁ ଶବ୍ଦମାନ ଯୁକ୍ତ ହୋଇଅଛି, ଯାଗ ଶବ୍ଦ ସଙ୍ଗେ ମଧ୍ୟ ସେହି ଶବ୍ଦମାନ ଯୁକ୍ତ ହୁଏ; ଯଥା—ଯାଗକୁଣ୍ଡ, ଯାଗାଗ୍ନି, ଯାଗଶାଳା । ]

**ଯାଗନିକ**—ଗ୍ରା ବିଣ ଓ ବି (ସଂ. ଯାଜ୍ଞିକ)—ଯଜ୍ଞକର୍ତ୍ତା; ଯାଜ୍ଞିକ (ଦେଖ)
Jāganika Performer of sacrifices; Jājnika
(ଯାଗ୍ନିକ—ଅନ୍ୟରୂପ) যাজ্ঞিক **जागनिक** ( See )

**ଯାଗ ଘିଅ କୁକୁର ଖାଇବା**—ଦେ. ପ୍ରବଚନ ( ନ୍ୟାୟ )—ଦେବତାଙ୍କ
Jāga ghia kukura khāibā ପାଇଁ ଉଦ୍ଦିଷ୍ଟ ବା ଅଭିପ୍ରେତ
(ଯାଗ ଘିଅ କୁକୁରକୁ ଦେବା ନ୍ୟାୟ—ଅନ୍ୟରୂପ) ବସ୍ତୁକୁ କୁକୁର
যাগের ঘি কুকুর খাওয়া ପରି ହୀନ ପ୍ରାଣୀ ଭୋଗ କରିବା;
**यागका घी कुत्तेको देना** ଦେବଭୋଗ୍ୟ ଓ ପବିତ୍ର ବସ୍ତୁକୁ ଅପାତ୍ରରେ ସମର୍ପଣ କରିବା; ଉତ୍ତମ ପଦାର୍ଥର ଅପବ୍ୟବହାର କରିବା—To turn a good thing into a bad use.

**ଯାଗ ଯଜ୍ଞ**—ସଂ. ବି ( ଏକାର୍ଥକ ସହଚର ଶବ୍ଦ )—ଯାଗ—
Jāga jajna Sacrifice.

**ଯାଗିର୍(ରି) (ଇତ୍ୟାଦ୍)**—ବୈଦେ. ବି—ଜାଗିର୍ ଇତ୍ୟାଦ୍ ( ଦେଖ )
Jāgir(ri) (etc) Jāgir etc ( See )

**ଯାଗିର୍ (ରି) ମାହାଲ୍**—ବୈଦେ. ବି ( ଫା. ଜାଗୀର୍ + ମହଲ୍ )—
Jāgir(ri) māhāla ଜାଗିରଦାରଙ୍କୁ ଇଂରାଜଙ୍କ ପ୍ରଦତ୍ତ କର୍ଷର ଜମି—The Jaghir Mahals. [ଦ୍ର—ଓଡ଼ିଶାର ପ୍ରସିଦ୍ଧ 'ଯାଗିର ମାହାଲ' ପୁରୀ ଜିଲ୍ଲାର ସଦର ସବ୍‌ଡିଭିଜନରେ କୃଷ୍ଣପ୍ରସାଦ ଓ ବ୍ରହ୍ମଗିରି ଥାନାରେ ଅବସ୍ଥିତ । ଏହା ନିମ୍ନ ପାଞ୍ଚଗୋଟି ପ୍ରଗଣାରେ ଗଠିତ । ୧। ବଜ୍ରକୋଟ, ୨ । ମାଲୁଦ, ୩ । ପାରିକୁଦ, ୪ । ମାଣିକ-ପାଟଣା, ଓ ୫ । ଅଟାରି । ଖ୍ରୀ ୧୮୦୩ ରେ ଇଂରାଜମାନେ ଏହି ବାଟ ଦେଇ ପୁରୀକୁ ଆସି ଓଡ଼ିଶା ଅଧିକାର କରିଥିଲେ । ସେ ସମୟରେ ମରହଟ୍ଟାଙ୍କ ସ୍ଥାନୀୟ ଜମାଦାର ଫତେ ମହମ୍ମଦ୍ ଇଂରାଜମାନଙ୍କୁ ସାହାଯ୍ୟ କରିଥିବାରୁ ଏହି ମାହାଲ ତାଙ୍କୁ କର୍ଷର ଦିଆଯାଇ ଥିଲା । (ସାଧାରଣ—ପାରିକୁଦ ଇତିହାସ) ଜାଗିରଦାର୍ ତଳେ ଟୀକା ଦେଖ । ]

ଯା ସେକ—ଦେ. ଅ—୧ । ଯାହାର ହେତୁରୁ; ଯହିଁ ଯୋଗୁଁ—1. Jā gheni For which or whom. [ ଉ—ଛଥାପି ସେହୁ ଦୁର୍ମେଧା ଯାଚନା ବହି, ଅଦ୍ଭୁତ ଉକ୍ତିପିତ ହୁଏ ଯା ସେକ—ବଶୀଧର. ହଂସଦୂତ । ] ୨ । ଯେଉଁ କାରଣରୁ—2. For which cause. ୩ । ଯାହା ପାଇବା ଉଦ୍ଦେଶ୍ୟରେ—3. For getting which. ୪ । ଯାହାର ସାହାଯ୍ୟରେ—4. With whose (ଯାହା ସେକ—ଅନ୍ୟରୂପ) help; with the help of which.
ଯା ଲାଗି, ଯା' ଯୋଗୁ(ଗୁଁ), ଯା ପାଇଁ [ଅନ୍ୟରୂପ]
यावजन्ये
जीतवास्ते

ଯାଙ୍କ—ଦେ. ସର୍ବ (ସମ୍ବନ୍ଧରେ ବ୍ୟବହୃତ)—୧। (ସମ୍ମାନାର୍ଥକ); ଏକବଚନ Jāṅka ଯେଉଁ ବ୍ୟକ୍ତିଙ୍କର—1. Whose (singular); of whom ୨ । (ବହୁବଚନ) ଯେଉଁମାନଙ୍କର—2. Of whom; whose (plural)., [ଉ—ବଢ଼ଇ କହେ, ଧନବୁଦ୍ଧି ସଙ୍ଗେ ଯାଙ୍କ ଧନର ଲାଳସା । ରାଧାନାଥ ମହାଯାତ୍ରା । ]
याव
जीनका

ଯାଚ୍ (ଧାତୁ)—ସ—୧ । ଯାଚଞ୍ଜା କରିବା; ମାଗିବା; ଭିକ୍ଷା କରିବା—Jāch (root) 1. To ask for; to beg for. ୨ । ଅନୁରୋଧ କରିବା—2. To request. ୩ । ଆବେଦନ କରିବା—3. To petition. ୪ । ପ୍ରାର୍ଥନା କରିବା—4. To pray for. ୫ । ସମର୍ପଣ କରିବା—5. To surrender. ୬ । ବିବାହ ପାଇଁ (କନ୍ୟା ପାଇବାକୁ) ପ୍ରାର୍ଥନା କରିବା—6. To demand (bride) in marriage (Apte).

ଯାଚ୍ଞା—ସଂ ବି (ଯାଚ ଧାତୁ=ଯାଚଞ୍ଜା କରିବା+ଭାବ. ନ+ସ୍ତ୍ରୀ ଆ, Jāch-ñā ନିପାତନ)—୧ । ମାଗିବା, ଭିକ୍ଷା କରିବା—1. Begging for alms, mendicancy. [ ଉ—ଗୋପାଳଙ୍କ ସଙ୍ଗତେ ଯାଚଞ୍ଜା ପଥ ବହିଦେଲ । ରାଧାନାଥ. ମହାଯାତ୍ରା । ] ୨ । ବିନୀତ ଅନୁରୋଧ; ପ୍ରାର୍ଥନା—2. Request; entreaty. ୩ । କନ୍ୟାକୁ ବିବାହ କରିବା ପ୍ରସ୍ତାବ—3. Making an offer of marriage (with a girl) (Apte).

ଯାଚ—ଦେ. ବି (ମାଗ ଶବ୍ଦର ଏକାର୍ଥକ ସହଚରରୂପେ ବ୍ୟବହୃତ; Jācha ଯଥା—ମାଗଯାଚ; କିନ୍ତୁ ଓଡ଼ିଆ ଭାଷାରେ ଯାଚିବାର ଅର୍ଥ ସ୍ୱତନ୍ତ୍ର ଯାଚ୍‌ଧାତୁଠାରୁ ପୃଥକ୍)—କୌଣସି ଦ୍ରବ୍ୟ ପ୍ରାପ୍ତି ନିମନ୍ତେ ପ୍ରାର୍ଥନା—Asking for getting a thing.
याचञ्जा
याच

ଯାଚକ—ସ. ବିଣ. ପୁଂ (ଯାଚ ଧାତୁ=ଯାଚଞ୍ଜା କରିବା+କର୍ତ୍ତୃ. ଅକ) Jāchaka —୧ । ଭିକ୍ଷାକାରୀ—1. Asking. ୨ । (ଯାଚକୀ—ସ୍ତ୍ରୀ-ବି) ପ୍ରାର୍ଥନାକାରୀ—2. Requesting; supplicating. ବି—୧ । ଭିକ୍ଷୁକ—1. Beggar; mendicant. ୨ । ଦରଖାସ୍ତକାରୀ ବ୍ୟକ୍ତି—2. Petitioner. ୩ । କୌଣସି କନ୍ୟାର ପାଣିଗ୍ରହଣାର୍ଥ ପ୍ରାର୍ଥୟିତା ବ୍ୟକ୍ତି—3. A suitor for the hands of a girl. ଦେ. ବି—ମହାରାଷ୍ଟ୍ର ବ୍ରାହ୍ମଣଙ୍କ ବଂଶୋପାଧିବିଶେଷ—A family-title of Marhatta Brāhmaṇas. ପ୍ରାଦେ (ସମ୍ବଲପୁର) ବି—ଗଉଡ଼-ମାନଙ୍କର ଶ୍ରେଣୀଭେଦ—A sub-caste of the gaurdas in Sambalpur.

ଯାଚ(ଚି,ଚେ)ଞ୍ଜା—ଗ୍ରା. ବି (ସଂ ଯାଚଞ୍ଜା)—ଯାଚଞ୍ଜା; ପ୍ରାର୍ଥନା; ଭିକ୍ଷା-Jācha(chi, che)jñā Begging; entreating.
याचञ्जा याचनीया

ଯାଚନ(ନା)—ସ. ବି (ଯାଚ ଧାତୁ=ଯାଚଞ୍ଜା କରିବା+ଭାବ. ଅନ+ Jāchan(nā) ସ୍ତ୍ରୀ. ଆ)—୧ । ପ୍ରାର୍ଥନା—1. Entreaty; petitioning. [ ଉ—ଦାରୁଦୁଦଙ୍କର ସମ୍ବନ୍ଧକର ଅଛି, ତେଣୁ ଏ ଯାଚନ ହେ । ରାଧାନାଥ. ମେଘଦୂତ । ] ୨ । ଭିକ୍ଷା—2. Begging. ୩ । (+କରଣ ଅନ; +ଆ)—ଦରଖାସ୍ତ—3. A petition (Apte).

ଯାଚନକ—ସ. ବି. ପୁଂ (ଯାଚ ଧାତୁ+କର୍ତ୍ତୃ. ଅନ+କଣ୍)—୧ । Jāchanaka ଯାଚକ; ଭିକ୍ଷୁକ—1 Beggar. ୨ । (ଯାଚନିକା—ସ୍ତ୍ରୀ) ଦରଖାସ୍ତକାରୀ ବ୍ୟକ୍ତି—2. A petitioner. ୩ । କ୍ଲୀ (ଯାଚ୍ ଧାତୁ+ଭାବ. ଅନ+କଣ୍)—ପ୍ରାର୍ଥନା—3. Entreaty.

ଯାଚନୀୟ—ସ. ବିଣ. (ଯାଚ ଧାତୁ+କର୍ମ. ଅନୀୟ)—ପ୍ରାର୍ଥନୀୟ—Jāchaniya Fit to be prayed for.

ଯାଚମାନ—ସ. ବିଣ. ପୁଂ (ଯାଚ ଧାତୁ+କର୍ତ୍ତୃ. ଅନ)—ଭିକ୍ଷା Jāchamāna କରୁଥିବା—Begging. [ ଉ—ଯୁଧିଷ୍ଠିର (ଯାଚମାନା—ସ୍ତ୍ରୀ) ବୋଇଲେ ଏକ ଯାଚମାନ, ବ୍ରାହ୍ମଣେ ତାହାଅର୍ଥି ନାହିଁ ଏ ବଚନ । କୃଷ୍ଣସିଂ. ମହାଭାରତ. ବନ । ]

ଯାଚିତ—ସ. ବିଣ (ଯାଚ ଧାତୁ+କର୍ମ. ତ)—୧ । ପ୍ରାର୍ଥିତ—Jāchita 1. Begged for; prayed for. ୨ । ମୃତ—2. Dead; deceased. ୩ । ଆବଶ୍ୟକ—3. Requisite, necessary (Apte). ସ. ବି (ଯାଚ ଧାତୁ+ଭାବ. ତ)—୧ । ପ୍ରାର୍ଥନା—1 Entreaty. ୨ । ଭିକ୍ଷୁକ ବୃତ୍ତି—2. The profession of a beggar (Apte).

ଯାଚିତକ—ସ. ବି (ଯାଚିତ+କର୍ତ୍ତୃ ସ୍ୱାର୍ଥେ. କ)—୧ । ପ୍ରାର୍ଥିତ ବସ୍ତୁ Jāchitaka —1. Prayed for thing. ୨ । ଭିକ୍ଷାଲବ୍ଧ ବସ୍ତୁ—2. A thing got by begging (Apte). ୩ । ବ୍ୟବହାର ପାଇଁ ଉଧାର କରି ଆଣିଥିବା ବସ୍ତୁ—3. Any thing borrowed for use (Apte).

ଯାଚିତା—ସ. ବିଣ. ପୁଂ—(ଯାଚ୍ ଧାତୁ=ଯାଚଞ୍ଜା କରିବା+କର୍ତ୍ତୃ. ତୃ; Jāchitā ଯାଚିତୃ ଶବ୍ଦ ୧ମା. ୧ବ.)—ଯାଚଞ୍ଜାକାରୀ—(ଯାଚିତ୍ରୀ—ସ୍ତ୍ରୀ) Begging, ସ. ବି. ପୁଂ—୧ । ଭିକ୍ଷୁକ—1. A beggar. ୨ । କନ୍ୟାର ପାଣି ଗ୍ରହଣାର୍ଥ ପ୍ରାର୍ଥୟିତା ବ୍ୟକ୍ତି—2. A suitor for a girl (Apte). ୩ । ଦରଖାସ୍ତକାରୀ ବ୍ୟକ୍ତି—3. A petitioner.

**ଯାଚ ଦେବା**—ଦେ. କି.—( ସଂ ଯାଚ୍ ଧାତୁ ) – ପ୍ରାର୍ଥନା କରୁ ନ Jāchi debā ଥିବା ବ୍ୟକ୍ତିକୁ କୌଣସି ପଦାର୍ଥ ଦେବା— यचे देओया To give a thing without the asking. **जांचकर देना** (ଉ—ପଦ ପଦକରେ ଯାଚ ଦେଉ ଥାଏ, ଶକ୍ତପଦ ମଣିକଥ ଥଳା । କବିସୂର୍ଯ୍ୟ. ସଙ୍ଗୀତ । )

**ଯାଚିବା**—ଦେ. କି (ସ. ଯାଚ୍. ଧାତୁର ଓଡ଼ିଆରେ ଭିନ୍ନାର୍ଥଦ୍ୟୋତକ Jāchibā ଅର୍ଥ )—୧ । କୌଣସି ବ୍ୟକ୍ତିଙ୍କୁ କୌଣସି ପଦାର୍ଥ याचा ଦେବାକୁ ସ୍ୱେଚ୍ଛାରେ କହିବା—1. To offer **जांचकर देना** a thing voluntarily to a person. ୨ । କୌଣସି ବ୍ୟକ୍ତି ମାଗୁ ନ ଥିବା ସ୍ଥଳେ ତାକୁ କୌଣସି ବସ୍ତୁ ଦେବାକୁ ଉଦ୍ୟତ ହେବା—2. To offer a thing unasked. ( ଯଥା—ମାଗି ଔଲଗି, ଯାଚ କଲ୍ୟାଣ ।—ଭଗ ) ୩ । ମନୋବାଞ୍ଛା ସିଦ୍ଧ ହେଲେ ଦେବତାଙ୍କୁ କୌଣସି ପଦାର୍ଥ ବା ବଳି ଦେବାକୁ ମାନସିକ मानत करा କରିବା;ମାନତ କରିବା—3.To vow to give a **मन्नत करना** thing or sacrifice to a Deity on the fulfilment of one's wish. (ଉ—ଅଭଙ୍ଗ କାଳେ ଯାଚନ୍ତି କୁକୁଡ଼ା, କାମ ସରିଲେ ଦିଅନ୍ତି ଲୋଫଡ଼ା — ଭଗ ) देवेबल। ୪ । ପରେ ଦେବାକୁ ଅଙ୍ଗୀକାର କରିବା—4. To **देनेको बोलना** promise to give. ୫ । ଦେବାକୁ ହାତ दिते हातबाढ़ान ବଢ଼ାଇବା—5. To extend one's hand **जांचना** to give away a thing. (ଉ—ମାଗି ଖାଉଥାଏ ବାଗି ଚୋଡ଼ାଣି, ଯାଚଲେ ନ ଖାଏ ସର ଲବଣୀ— ଭଗ ) [ଦ୍ର—ଓଡ଼ିଆରେ ଯାଚିବା କ୍ରିୟାର ଏ ସବୁ ଅର୍ଥ ସଂସ୍କୃତ ଯାଚ୍ ଧାତୁର ଅର୍ଥଠାରୁ ପୃଥକ୍ । ] ୬ । କୌଣସି याच्ञा करा ପଦାର୍ଥ ପାଇବାକୁ ପ୍ରାର୍ଥନା କରିବା—6. To pray **जांचना** for a thing. (ଉ—[ ଗୃହେ ] ଅମୃକଣା ଯାଚନ୍ତି ଆରତ ସ୍ୱରେ । ରାଧାନାଥ. ମେଘଦୂତ ।) ୭ । ପ୍ରାର୍ଥନା କରିବା; ଅନୁରୋଧ କରିବା—7. To pray for; to याचा request. (ଉ—ଯେ ଯାଚକ ଯେବେ ଯେଉଁ ଉପକାର, **याचना** ମୋ ଧର୍ମପେ, ହେଉ ପଛେ ସାଧାଗତ ତାହା । ଚିନ୍ତାମଣି. ବିଦଗ୍ଧମାଧବ୍ୟ ।)

**ଯାଚିଲା ପଦାର୍ଥ (ଦରବ) ଛାଡ଼ିବ ନାହିଁ**—ଦେ. ପ୍ରବଚନ (ଉପଦେଶ)— Jāchilā padārtha (daraba) chhārdiba nāhiṅ याचा जिनिस छाड़बेना କୌଣସିଲୋକ ସ୍ୱତଃପ୍ରଣୋଦିତ ହୋଇ **देना चीज छोड़ना नहीं** କୌଣସି ପଦାର୍ଥଙ୍କୁ ଦେବାକୁ ଇଚ୍ଛା କଲେ ତାକୁ ଦାନ ଗ୍ରହଣ କରିବାକୁ ଅସ୍ୱୀକାର କରିବ ନାହିଁ—Do not refuse to take a gift which a person offers you voluntarily.

**ଯାଚିଷ୍ଣୁ**—ସଂ. ବିଣ (ଯାଚ୍. ଧାତୁ + ଅଭ୍ୟସ୍ତ ଅର୍ଥରେ. ଇଷ୍ଣୁ)-ମାଗିବାରେ Jāchishṇu ଅଭ୍ୟସ୍ତ ବା ଅଭିଳାଷୀ—Habitually begging; disposed to beg (Apte).

**ଯାଚ୍ୟ**—ସଂ. ବିଣ. (ଯାଚ୍. ଧାତୁ=ଯାଚଞ୍ଚା କରିବା+କର୍ମ. ଯ)— Jāchya ପ୍ରାର୍ଥନୀୟ—Fit to be begged for. ସଂ. ବି— (ଯାଚ୍. ଧାତୁ+ଭାବ. ଯ)—ଅନୁରୋଧ କରିବା— Making a request (Apte).

**ଯାଚ୍ୟମାନ**—ସଂ. ବିଣ [ ଯାଚ୍. ଧାତୁ+କର୍ମ. ଅନ (ଶାନଚ୍) ]— Jāchyamāna ପ୍ରାର୍ଥନାର ବିଷୟୀଭୂତ—Forming the subject of a prayer.

**ଯାଚ୍ଛା ତା**—ଦେ. କି. ବିଣ (ସ. ଯଦ୍ + ଇଚ୍ଛା + ତଦ୍)—ଯା ଇଚ୍ଛା ତା Jāchchhā tā (ଦେଖ)—Jā ichchhā tā (See). (ଯାଚ୍ଛା ତାଇ—ଅନ୍ୟରୂପ) याच्छेताई यीइच्छासो

**ଯାଜ**—ସ. ବି (ଯଜ୍. ଧାତୁ=ପୂଜା କରିବା+ ଭାବ. ଅ)—୧ । ଅନ୍ନ; Jāja ଭକ୍ତ; ଭାତ—1. Boiled rice. ୨ । ଖାଦ୍ୟ ଦ୍ରବ୍ୟ— 2. Food. ୩ । (+କର୍ତ୍ତୃ. ଅ) ଯଜ୍ଞାନୁଷ୍ଠାତା ବ୍ୟକ୍ତି — 3. A sacrificer (Apte).

**ଯାଜକ**—ସ. ବି (ଯଜ୍. ଧାତୁ=ଯଜ୍ଞ କରିବା; ପୂଜା କରିବା+କର୍ତ୍ତୃ. Jājaka ଅକ)—୧ । ହୋତା; ଯାଜ୍ଞିକ—1. Performer of sacrifices. ୨ । ଋତ୍ୱିକ୍; ପୁରୋହିତ—2. A priest; a person who officiates for a principal at a sacrifice. ୩ । ରାଜହସ୍ତୀ— 3 A king's elephant. ୪ । ମତ୍ତହସ୍ତୀ—4. An elephant in rut. ଦେ. ବି—ଧର୍ମପ୍ରଚାରକ— A missionary. [ ଦ୍ର—ଋତ୍ୱିକ୍ ଶବ୍ଦର ଅର୍ଥ ପୁରୋହିତ । ଯଜ୍ଞର ମୋଟ ପୁରୋହିତ ଗୁରୁଜଣ, ହୋତା, ଅଧ୍ୱର୍ଯ୍ୟୁ, ବ୍ରହ୍ମା, ଉଦ୍ଗାତା । ଏହାଙ୍କର ପ୍ରତ୍ୟେକଙ୍କର ଅଧୀନ ତିନିଜଣ ଋତ୍ୱିକ୍ ଥାଆନ୍ତି । ଏମାନଙ୍କ ମଧ୍ୟରୁ କେତେକ ଋଗ୍‌ବେଦୀ, କେତେକ ଯଜୁର୍ବେଦୀ, କେତେକ ସାମବେଦୀ ଓ କେତେକ ଅଥର୍ବବେଦୀ । ଏତଦ୍‌ଭିନ୍ନ ଅଥର୍ବବେଦରେ ଅନ୍ତୁର ୭ଜଣ ଯାଜକଙ୍କ ନାମ ମିଳେ । ସାଧାରଣତଃ ବେଦରେ 'ସପ୍ତହୋତା'ଙ୍କର ନାମ ଦେଖାଯାଏ, ଯଥା— ୧ । ଯଜମାନ—ଯେ ଯଜ୍ଞର ଅନୁଷ୍ଠାନ କରନ୍ତି, ୨ । ହୋତା—ଯେ ମନ୍ତ୍ର ପାଠ କରନ୍ତି, ୩ । ଉଦ୍ଗାତା—ଯେ ମନ୍ତ୍ର ଗାନ କରନ୍ତି, ୪ । ପୋତା—ଯେ ହବ୍ୟ ପ୍ରସ୍ତୁତ କରନ୍ତି, ୫ । ନେଷ୍ଟା—ଯେ ହବ୍ୟକୁ ଅଗ୍ନିରେ ନିକ୍ଷେପ କରନ୍ତି, ୬ । ବ୍ରହ୍ମା—ଯେ ସମୁଦାୟ ବିଷୟର ତତ୍ତ୍ୱାବଧାନ କରନ୍ତି, ୭ । ରକ୍ଷ—ଯେ ଦ୍ୱାର ରକ୍ଷା କରନ୍ତି । ]

**ଯାଜକତା(ତ୍ୱ)**—ସ. ବି [ଯାଜକ +ଭାବାର୍ଥେ. ତା (ତ୍ୱ)]— Jājakatā (twa) ପୌରୋହିତ୍ୟ—Priesthood.

**ଯାଜତ୍ୟ**—ପ୍ରାଦେ (ଯାଜପୁର) ବି—ଯାଜପୁରବାସୀ କୁଳୀନ ବ୍ରାହ୍ମଣଙ୍କ Jājatya ଶାଖାବିଶେଷ—A sect of Brāhmaṇas inhabiting Jajpur.

**ଯାଜନ**—ସଂ. ବି—(ଯଜ୍ ଧାତୁ ଣିଚ୍=ଯାଜିଧାତୁ=ଯଜ୍ଞ କରାଇବା+ Jājana ଭାବ ଅନ) ୧ । ଅନ୍ୟ ଦ୍ୱାରା ଯଜ୍ଞକ୍ରିୟାର ସମ୍ପାଦନ— 1. Causing the performance of a sacri-

fice by another. ୨ । ଯଜ୍ଞର ପୌରୋହିତ୍ୟ—2. Officiating as a priest at a sacrifice; performing or conducting a sacrifice.

**ଯାଜପୁର**—ଦେ. ବି ( ସଂ. ଯାଜପୁର=ଯାଜୀ ବା ଯାଜ୍ଞିକମାନଙ୍କ ନଗର)—କଟକ ଜିଲ୍ଲାର ଉତ୍ତରଭାଗସ୍ଥ ଗୋଟିଏ ସବ୍‌ଡିଭିଜନ୍ ଓ ନଗର—The subdivision and town of Jājpur in the north part of the district of Cuttack.

**Jājapura**

**याजपुर**

**যাজপুব**

[ଦ୍ର—ଏହି ସବ୍‌ଡିଭିଜନରେ ଥିବା ଲଳିତଗିରି, ରତ୍ନଗିରି ଓ ଉଦୟଗିରିରେ ବୌଦ୍ଧ-ମହାଯାନ ସଂପ୍ରଦାୟର ଅନେକ ପ୍ରାଚୀନ କୀର୍ତ୍ତି ଅଛି । ଚୀନ-ପରିବ୍ରାଜକ ହୁଏନ୍‌ସାଙ୍ଗ ବର୍ଣ୍ଣିତ ପୁଷ୍ପଗିରି ଏଠାରେ ଥିଲା । ଏହାକୁ "ଉତ୍କଳର ନାଳନ୍ଦ" କୁହାଯାଏ । ପୂର୍ବେ ଭାରତର ଭିନ୍ନ ଅଞ୍ଚଳରେ ଥିବା ମହାଯାନ ବୌଦ୍ଧମାନେ ଏଠାକୁ ଆସି ନାନା ଜ୍ଞାନଲାଭ କରୁଥିଲେ । ଯାଜପୁରର ପୌରାଣିକ ଇତିହାସ; —ଯାଜପୁର ଉତ୍କଳର କଟକଜିଲ୍ଲାଅନ୍ତର୍ଗତ ଭାରତବିଦିତ ଗୋଟିଏ ପୁରାଣପ୍ରସିଦ୍ଧ ପ୍ରାଚୀନ ତୀର୍ଥ । ଏହା ଯାଜୀ ଅର୍ଥାତ୍ ଯାଗକାରୀ ବ୍ରାହ୍ମଣମାନଙ୍କର ପୁର । ଏଠାରେ ବେଦବେଦାଙ୍ଗପାରଗ ପୁରାଣ ଇତିହାସ ଦର୍ଶନାଦି ନାନା ଶାସ୍ତ୍ରବିଶାରଦ ଷଟ୍‌କର୍ମନିରତ ଦଶ ସହସ୍ର ଯାଜ୍ଞିକ ବ୍ରାହ୍ମଣ ବାସ କରୁଥିଲେ । ସୋମଯାଜୀ, ବାଜପେୟୀ ପ୍ରମୁଖ ଯଜ୍ଞନିରତ ବ୍ରାହ୍ମଣମଣ୍ଡଳୀର ସାୟଂ ପ୍ରାତଃ ହୋମଧୂମରେ ଏହି ପବିତ୍ର-କ୍ଷେତ୍ରର ନଭୋମଣ୍ଡଳ ପ୍ରତ୍ୟହ ଧୂମମୟ ହେଉଥିଲା । ଏ ସ୍ଥାନରେ ବହୁ ଆୟାସ ଓ ଅର୍ଥସାଧ୍ୟ ଦଶଗୋଟି ଅଶ୍ୱମେଧ ଯାଗ ଅନୁଷ୍ଠିତ ହୋଇଥିଲା । ଯାଜପୁରର ପୂର୍ବ ଗୌରବର ମୂକ ସାକ୍ଷୀସ୍ୱରୂପ ଦଶାଶ୍ୱମେଧ ଘାଟ ଅଦ୍ୟାପି ବିଦ୍ୟମାନ । ଏହାର ନାମାନ୍ତର ବିରଜାକ୍ଷେତ୍ର । ବିରଜାକ୍ଷେତ୍ର-ମାହାତ୍ମ୍ୟ ନାମରେ ଏହି କ୍ଷେତ୍ର ସମ୍ବନ୍ଧରେ ଊନବିଂଶଅଧ୍ୟାୟାତ୍ମକ ଖଣ୍ଡିଏ ପ୍ରାଚୀନ ଗ୍ରନ୍ଥ ମିଳେ । ଏହି କ୍ଷେତ୍ରମାହାତ୍ମ୍ୟରୁ ଜଣାଯାଏ ଯେ ଲୋକପିତାମହ ବ୍ରହ୍ମା ଏଠାରେ ପୁଣ୍ୟତୋୟା ବୈତରଣୀ ତଟରେ ଗୋଟିଏ ବିଶାଳ ଯାଗର ଅନୁଷ୍ଠାନ କରିଥିଲେ । ଏହି ବ୍ରହ୍ମଯଜ୍ଞକୁ ହରିହର ଇନ୍ଦ୍ରାଦି ଦେବବୃନ୍ଦ, ବ୍ରହ୍ମର୍ଷି, ଦେବର୍ଷି, ମହର୍ଷି, ସିଦ୍ଧ ଗନ୍ଧର୍ବାଦି ଆହୂତ ହୋଇଥିଲେ । ସେହି ଯାଗର ଗାର୍ହପତ୍ୟ ନାମକ ଅଗ୍ନିକୁଣ୍ଡରୁ ଜ୍ୟୋତିଃପୁଞ୍ଜସ୍ୱରୂପା ଶ୍ରୀ ବିରଜା ଦେବୀ ଦଶଦିଗ ଉଦ୍ଭାସିତ କରି ଆବିର୍ଭୂତା ହେଲେ ଏବଂ ପିତାମହଙ୍କର ଭକ୍ତି, ଶ୍ରଦ୍ଧା ଓ ସ୍ତୁତିରେ ପ୍ରସନ୍ନା ହୋଇ ଏହି ତୀର୍ଥର ଅଧିଷ୍ଠାତ୍ରୀ ଦେବତା-ସ୍ୱରୂପ ସର୍ବଦା ତାହାଙ୍କର ଏଠାରେ ସାନ୍ନିଧ୍ୟ ହେବ ବୋଲି ବ୍ରହ୍ମାଙ୍କୁ ବର ପ୍ରଦାନ କଲେ । ଯଜ୍ଞ ଶେଷରେ ଅବଭୃଥ ସ୍ନାନ ନିମନ୍ତେ ବ୍ରହ୍ମା ବିଷ୍ଣୁପଦ୍‌ଗଙ୍ଗା ମନ୍ଦାକିନୀଙ୍କୁ ତପଃପ୍ରଭାବରେ ଏହି କ୍ଷେତ୍ରକୁ ଆଣାଇଥିଲେ । ଦେବତା ଓ ଋଷିବୃନ୍ଦ ଯେଉଁ ଯେଉଁ ସ୍ଥାନରେ ଅବଭୃଥ ସ୍ନାନ କରିଥିଲେ ସେହି ସେହି ସ୍ଥାନ ବର୍ତ୍ତମାନ 'ସପ୍ତରେଖା' ତୀର୍ଥ ନାମରେ ପ୍ରସିଦ୍ଧ । ସପ୍ତରେଖା ଯଥା—ସିନ୍ଧୁରେଖା, ଜମ୍ବୁରେଖା, ହଂସରେଖା, ବାସବୀରେଖା, ଚନ୍ଦ୍ରରେଖା, ପଦ୍ମରେଖା ଓ ଶଶିରେଖା । ପିତାମହଙ୍କର ଭକ୍ତିରେ ଓ ଅର୍ଚ୍ଚନାରେ ପରିତୁଷ୍ଟ ହୋଇ ଭୂତଭାବନ ସଦାଶିବ ଓ ତ୍ରୈଲୋକ୍ୟନାଥ ହରି ଏହି କ୍ଷେତ୍ରରେ ସର୍ବଦା ବାସ କରିବାକୁ ବ୍ରହ୍ମାଙ୍କୁ ବର ପ୍ରଦାନ କଲେ ।

ବିରଜାଦେବୀ ଯେତେବେଳେ ଜ୍ୟୋତିର୍ମୟୀ ମୂର୍ତ୍ତି ପରିଗ୍ରହ କରି ଯଜ୍ଞକୁଣ୍ଡରୁ ଆବିର୍ଭୂତା ହେଲେ, ତାହାଙ୍କ ମାନସରୁ ନବ ଦୁର୍ଗା, ଅଷ୍ଟ ଚଣ୍ଡୀ ଓ ଚତୁଃଷଷ୍ଟି ଯୋଗିନୀ ପ୍ରାଦୁର୍ଭୂତା ହୋଇ ଏହି କ୍ଷେତ୍ରର ସ୍ଥାନେ ସ୍ଥାନେ ବିରାଜିତା ହୋଇ ଅଛନ୍ତି । ଶ୍ରୀ ସଦାଶିବଙ୍କର ଶରୀରରୁ ମଧ୍ୟ ଭୈରବ ଚତୁଷ୍ଟୟ ଜାତ ହୋଇ ଏଠାରେ କ୍ଷେତ୍ରପାଳ-ସ୍ୱରୂପ ବିଦ୍ୟମାନ ଅଛନ୍ତି । ଭଗବାନ୍ ବିଷ୍ଣୁଙ୍କ ଶରୀରରୁ ଦ୍ୱାଦଶ ମାଧବ ଉଦ୍ଭୂତ ହୋଇ ଭିନ୍ନ ଭିନ୍ନ ଆଖ୍ୟାରେ ଏହି କ୍ଷେତ୍ରରାଜକୁ ପୂତ କରି ସ୍ଥାନେ ସ୍ଥାନେ ବିରାଜମାନ ଅଛନ୍ତି । ଗୋନାସିକାସମ୍ଭୂତା ବୈତରଣୀ ନଦୀ ବିରଜାକ୍ଷେତ୍ରର ପ୍ରଧାନ ତୀର୍ଥ । ଏଠାରେ ସ୍ନାନ, ତର୍ପଣ, ଗୋଦାନାଦି କଲେ ଅଶେଷ ପୁଣ୍ୟ ହୁଏ । "ପ୍ରୟାଗାତ୍ ପୁଷ୍କରାତ୍ କାଶ୍ୟାଃ ସାଗରାତ୍ ସିନ୍ଧୁସଙ୍ଗମାତ୍ । ଦୃଷ୍ଟଂ ବୈତାରଣ୍ୟେ ବିଶିଷ୍ଟଂ ସ୍ୱାଦ୍ୱୈତରଣୀ ମତା ।" ଏତଦ୍‌ବ୍ୟତୀତ ବିରଜାକ୍ଷେତ୍ରରେ ଆଉ ୬୮ ଗୋଟି ପ୍ରସିଦ୍ଧ ତୀର୍ଥ ଅଛନ୍ତି । ବିରଜା ଦେବୀଙ୍କର ମନ୍ଦିରର ପ୍ରାକାର ମଧ୍ୟରେ 'ଗୟାନାଭି' ତୀର୍ଥ ଅବସ୍ଥିତ । ଏହି ତୀର୍ଥରେ ପ୍ରତି ବର୍ଷ ନାନାଦିଗ୍‌ଦେଶାଗତ ସହସ୍ର ସହସ୍ର ଯାତ୍ରୀ ପିତୃ-ଲୋକଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ କରି କୃତକୃତ୍ୟ ହେଉ ଅଛନ୍ତି । ଅକ୍ଷୟ ତୃତୀୟା କିମ୍ବା ଶ୍ରାବଣ ଦ୍ୱାଦଶୀ ଦିବସରେ ଏହି ତୀର୍ଥରେ ପିଣ୍ଡଦାନ କଲେ ଶତବାର ଗୟାରେ ପିଣ୍ଡଦାନ କରିବାର ସମ ଫଳ ଲାଭ ହୁଏ ବୋଲି କ୍ଷେତ୍ରମାହାତ୍ମ୍ୟରେ ଉକ୍ତ ଅଛି । ବୈତରଣୀ ତଟ ପ୍ରଦେଶରେ ପ୍ରସିଦ୍ଧ ଯଜ୍ଞ ବରାହଙ୍କର ମନ୍ଦିର ଅବସ୍ଥିତ । "ବରାହ ବିରଜା ଦେବୀ ବିପ୍ରାଃ ବୈତରଣୀ ନଦୀ । କ୍ଷେତ୍ରେ ବୈବସ୍ୱତାଂ ସ୍ୱନ ବନ୍ଧବାସଃ ପଞ୍ଚ ଦୁର୍ଲ୍ଲଭାଃ ।"

ଏହି କ୍ଷେତ୍ରମାହାତ୍ମ୍ୟ ସମ୍ବନ୍ଧରେ ଭିନ୍ନ ଭିନ୍ନ ପୁରାଣମାନଙ୍କରେ ଏହିପରି ଉକ୍ତି ଅଛି ।

( ୧ ) ବ୍ରହ୍ମ ପୁରାଣରେ ଏହିରୂପ ଉଲ୍ଲେଖ ଅଛି ଯଥା—

ବିରଜେ ବିରଜାମାତା ବ୍ରହ୍ମଣା ସଂପ୍ରତିଷ୍ଠିତା ।
ଯସ୍ୟାଃ ସଂଦର୍ଶନାତ୍ ମର୍ତ୍ତ୍ୟଃ ପୁନାତ୍ୟାସପ୍ତମଂ କୁଳଂ । ୧ ।
ସକୃଦ୍ଦୃଷ୍ଟ୍ୱା ତୁ ତାଂ ଦେବୀଂ ଭକ୍ତ୍ୟା ସଂପୂଜ୍ୟ ପ୍ରଣମ୍ୟ ଚ ।
ନରଃ ସ୍ୱବଂଶମୁଦ୍ଧୃତ୍ୟ ମମଲୋକଂ ସ ଗଚ୍ଛତି । ୨ ।
ଅନ୍ୟାଶ୍ଚ ତତ୍ର ତିଷ୍ଠନ୍ତି ବିରଜେ ଲୋକମାତରଃ ।
ସର୍ବପାପହରା ଦେବ୍ୟୋ ବରଦା ଭକ୍ତବତ୍ସଳାଃ । ୩ ।

ଅସ୍ତେ ବୈତରଣୀ ତତ୍ର ସର୍ବପାପହରା ନଦୀ ।
ଯସ୍ୟାଂ ସ୍ନାତ୍ୱା ନରଶ୍ରେଷ୍ଠଃ ସର୍ବପାପୈଃ ପ୍ରମୁଚ୍ୟତେ । ୪ ।
ଅସ୍ତେ ସ୍ୱୟମ୍ଭୁ ସ୍ତତ୍ରୈବ କ୍ରୋଡ଼ରୂପୀ ହରିଃ ସ୍ୱୟଂ ।
ଦୃଷ୍ଟ୍ୱା ପ୍ରଣମ୍ୟ ତଂ ଭକ୍ତ୍ୟା ପରଂ ବିଷ୍ଣୁଂ ବ୍ରଜନ୍ତି ତେ । ୫ ।
କାପିଳେ ଗୋଗ୍ରହେ ସୋମେ ତୀର୍ଥେ ଶୃଙ୍ଗରୁସଂଜ୍ଞିତେ ।
ମୃତ୍ୟୁଞ୍ଜୟେ କ୍ରୋଡ଼ତୀର୍ଥେ ବାସୁକେ ସିଦ୍ଧକେଶ୍ୱରେ । ୬ ।
ତୀର୍ଥେଷ୍ୱେତେଷୁ ମତିମାନ୍ ବିରଜେ ସଂଯତେନ୍ଦ୍ରିୟଃ ।
ଗତ୍ୱା ଚ ତୀର୍ଥଂ କଥିତଂ ସ୍ନାତ୍ୱା ଦେବାନ୍ ପ୍ରଣମ୍ୟ ଚ । ୭ ।
ସର୍ବପାପବିନିର୍ମୁକ୍ତୋ ବିମାନବରମାଶ୍ରିତଃ ।
ଉପଗୀୟମାନୋ ଗନ୍ଧର୍ବୈର୍ମମଲୋକେ ମହୀୟତେ । ୮ ।
ବିରଜେ ଯୋ ମମକ୍ଷେତ୍ରେ ପିଣ୍ଡଦାନଂ କରିଷ୍ୟତି ।
ସ କରୋତ୍ୟକ୍ଷୟାଂ ତୃପ୍ତିଂ ପିତୃଣାଂ ନାତ୍ର ସଂଶୟଃ । ୯ ।
ମମକ୍ଷେତ୍ରେ ମୁନିଶ୍ରେଷ୍ଠା ବିରଜେ ଯେ କଳେବରଂ ।
ପରିତ୍ୟଜନ୍ତି ପୁରୁଷାସ୍ତେ ମୋକ୍ଷଂ ପ୍ରାପ୍ନୁବନ୍ତିବୈ । ୧୦ ।

(୨) ମହାଭାରତ ବନ ପର୍ବର ୮୫ ଓ ୧୧୪ ଅଧ୍ୟାୟରେ ମଧ୍ୟ ବୈତରଣୀ କ୍ଷେତ୍ରର ଉଲ୍ଲେଖ ଦେଖାଯାଏ । ଯଥା—
"ତତୋ ବୈତରଣୀଂ ଗଚ୍ଛେତ୍ ସର୍ବପାପପ୍ରମୋଚନୀଂ ।
ବିରଜଂ ତୀର୍ଥମାସାଦ୍ୟ ବିରାଜତି ଯଥା ଶଶୀ ।୧।
ପ୍ରଭବେଚ୍ଚ କୁଳେ ପୁଣ୍ୟେ ସର୍ବପାପଂ ବ୍ୟପୋହତି ।
ଗୋସହସ୍ର ଫଳଂ ଲବ୍ଧ୍ୱା ପୁନାତି ସ୍ୱକୁଳଂ ନରଃ ।୨।
× × × ×
ଏତେ କଳିଙ୍ଗାଃ କୌନ୍ତେୟ ଯତ୍ର ବୈତରଣୀ ନଦୀ ।
ଯତ୍ରାଯଜତ ଧର୍ମୋଽପି ଦେବାଞ୍ଚରଣମେତ୍ୟ ବୈ ।
ତତୋ ବୈତରଣୀଂ ସର୍ବେ ପାଣ୍ଡବା ଦ୍ରୌପଦୀ ତଥା ।
ଅବତୀର୍ଯ୍ୟ ମହାଭାଗାସ୍ତର୍ପୟାଞ୍ଚକ୍ରିରେ ପିତୃନ୍ ।

(୩ କପିଳ ସଂହିତାରେ ବର୍ଣ୍ଣିତ ଅଛି ଯେ ଦଶ ସହସ୍ର ବର୍ଷ ବାରାଣସୀରେ ନିରନ୍ତର ହରପୂଜନରେ ଯେଉଁ ଫଳ, ଥରେ ମାତ୍ର ବିରଜା ଦେବୀଙ୍କର ଦର୍ଶନରେ ସେହି ଫଳ ।

କ୍ଷେତ୍ରମଧ୍ୟସ୍ଥ ପ୍ରସିଦ୍ଧଦେବ ଦେବୀ ଓ ତୀର୍ଥମାନଙ୍କର ନାମ—

ନବଦୁର୍ଗା—ଶୈଳପୁତ୍ରୀ, ବ୍ରହ୍ମଚାରିଣୀ, କୁଷ୍ମାଣ୍ଡା, ସ୍କନ୍ଦମାତା, କାତ୍ୟାୟନୀ, କାଳରାତ୍ରି, ମହାଗୌରୀ, ସିଦ୍ଧିଦାତ୍ରୀ, ଚଣ୍ଡଘଣ୍ଟା ।

ଅଷ୍ଟଚଣ୍ଡୀ—ଉଗ୍ରଚଣ୍ଡା, ପ୍ରଚଣ୍ଡା, ଚଣ୍ଡୋଗ୍ରା, ଚଣ୍ଡନାୟିକା, ଅତିଚଣ୍ଡା,ଚାମୁଣ୍ଡା, ଚଣ୍ଡା, ଚଣ୍ଡବତୀ ।

ସପ୍ତମାତୃକା—ବାରାହୀ, ଐନ୍ଦ୍ରୀ, ବୈଷ୍ଣବୀ, ବ୍ରାହ୍ମୀ, କୌମାରୀ, ମାହେଶ୍ୱରୀ, ନାରସିଂହୀ ।

ମହାଦେବୀତ୍ରୟ—ମହାକାଳୀ, ମହାଲକ୍ଷ୍ମୀ, ମହାସରସ୍ୱତୀ ।

ଅଷ୍ଟଭୈରବୀ—ସିଦ୍ଧେଶ୍ୱରୀ, ମୀନାକ୍ଷୀ, ଭଦ୍ରେଶ୍ୱରୀ, ଭଗବତୀ, ଚକ୍ରେଶ୍ୱରୀ, ଶ୍ୟାମାବତୀ, କୋଡ଼ବାସିନୀ, ସନ୍ତେଶ୍ୱରୀ ।

ଅଷ୍ଟ ଭୈରବ—ମହାଭୈରବ, ସଂହାର ଭୈରବ, ଅସିତାଙ୍ଗ ଭୈରବ, ରୁରୁ ଭୈରବ, କାଳଭୈରବ, କ୍ରୋଧ ଭୈରବ, ତାମ୍ରଚୂଡ଼ ଭୈରବ, ଚନ୍ଦ୍ରଚୂଡ଼ ଭୈରବ ।

ଦ୍ୱାଦଶ ମାଧବ—ଆଦି ମାଧବ, ବରାହ ମାଧବ, ଅନନ୍ତ ମାଧବ, ଯୋଗ ମାଧବ, ଚମ୍ପକ ମାଧବ, ହରିହର ମାଧବ, ସିଦ୍ଧ ମାଧବ, ଗଦାଧର ମାଧବ, ପୁରୁଷୋତ୍ତମ ମାଧବ, ଲକ୍ଷ୍ମୀକାନ୍ତକ ମାଧବ, ଭୋଗ ମାଧବ, ବାସୁଦେବ ମାଧବ ।

ବରାହ ମୂର୍ତ୍ତିତ୍ରୟ—ଯଜ୍ଞ ବରାହ, ଲକ୍ଷ୍ମୀ ବରାହ, ଶ୍ୱେତ ବରାହ ।

ନୃସିଂହ ମୂର୍ତ୍ତି—ଅଭୟ ନୃସିଂହ, ଲକ୍ଷ୍ମୀ ନୃସିଂହ, ଉଗ୍ର ନୃସିଂହ, ଭୀମ ନୃସିଂହ, ବୀର ନୃସିଂହ ।

ଗଣେଶ ପ୍ରତିମା—ଏକଦନ୍ତ, ମହାକାୟ, କପିଳ, ଗଜକର୍ଣ୍ଣ, ଲମ୍ବୋଦର, ବିକଟ, ବିଘ୍ନନାଶ,ବିନାୟକ, ଧୂମ୍ରକେତୁ, ଗଣାଧ୍ୟକ୍ଷ, ଭାଲଚନ୍ଦ୍ର, ଗଜାନନ ।

ରାମ ମୂର୍ତ୍ତି—ସୀତାପତି ରାମ, ଧନୁର୍ଦ୍ଧାରୀ ରାମ ।

୬୮ ତୀର୍ଥ—୧ ଅଶ୍ୱମେଧ ତୀର୍ଥ, ୨ ଅଗ୍ନିକ୍ଷେପ ତୀର୍ଥ, ୩ ଅନ୍ତର୍ବେଦୀ, ୪ ଅଗ୍ନି ତୀର୍ଥ, ୫ ଅଗସ୍ତି ତୀର୍ଥ, ୬ ଅନନ୍ତ ତୀର୍ଥ, ୭ ଅଲାମ୍ବୁତୀର୍ଥ, ୮ ଅଲାବୁ ତୀର୍ଥ, ୯ ଉଜ୍ଜ୍ୱଳ ତୀର୍ଥ, ୧୦ ଉର୍ବଶୀ ତୀର୍ଥ, ୧୧ କଶ୍ୟପ ତୀର୍ଥ, ୧୨ କନ୍ଦର ତୀର୍ଥ, ୧୩ କାମ୍ବଳ ତୀର୍ଥ, ୧୪ କପିଳ ତୀର୍ଥ, ୧୫ କ୍ରୋଡ଼ ତୀର୍ଥ, ୧୬ ଗଦା ତୀର୍ଥ, ୧୭ ଗଙ୍ଗା ତୀର୍ଥ, ୧୮ ଗାରୁଡ଼ ତୀର୍ଥ, ୧୯ ଗୋକର୍ଣ୍ଣ ତୀର୍ଥ, ୨୦ ଚନ୍ଦ୍ର ତୀର୍ଥ, ୨୧ ଚକ୍ର ତୀର୍ଥ, ୨୨ ଜଟା ତୀର୍ଥ, ୨୩ ଜମ୍ବୁ ତୀର୍ଥ, ୨୪ ଦୁର୍ବାସା ତୀର୍ଥ, ୨୫ ଦଣ୍ଡୀ ତୀର୍ଥ, ୨୬ ନାରାୟଣ ତୀର୍ଥ, ୨୭ ନିଷାଦ ତୀର୍ଥ, ୨୮ ପ୍ରଭାସ ତୀର୍ଥ, ୨୯ ପ୍ରାଜାପତ୍ୟ ତୀର୍ଥ, ୩୦ ପାବକ ତୀର୍ଥ, ୩୧ ପଦ୍ମ ତୀର୍ଥ, ୩୨ ପୌରବ ତୀର୍ଥ, ୩୩ ବରାହ କୁଣ୍ଡ ତୀର୍ଥ, ୩୪ ବ୍ରହ୍ମ ତୀର୍ଥ, ୩୫ ବରୁଣ ତୀର୍ଥ, ୩୬ ବାରୁଣୀ ତୀର୍ଥ, ୩୭ ବାସୁକୀ ତୀର୍ଥ, ୩୮ ବାୟୁ ତୀର୍ଥ, ୩୯ ବିଶ୍ୱରୂପ ତୀର୍ଥ, ୪୦ ବିନାୟକ ତୀର୍ଥ, ୪୧ ବେଣୀ ତୀର୍ଥ, ୪୨ ବୈତରଣୀ ତୀର୍ଥ, ୪୩ ବିମଳ ତୀର୍ଥ, ୪୪ ମତ୍ସ୍ୟ ତୀର୍ଥ, ୪୫ ମଣିକର୍ଣ୍ଣିକା, ୪୬ ମହର୍ଷି ତୀର୍ଥ, ୪୭ ମାତୃକା ତୀର୍ଥ, ୪୮ ମୃତ୍ୟୁଞ୍ଜୟ ତୀର୍ଥ, ୪୯ ଯଜାତି ତୀର୍ଥ, ୫୦ ଯମ ତୀର୍ଥ, ୫୧ ରସକୂପ, ୫୨ ରମ୍ଭା ତୀର୍ଥ, ୫୩ ରେବା ତୀର୍ଥ, ୫୪ ରେଣୁ ତୀର୍ଥ, ୫୫ ରୌଦ୍ର ତୀର୍ଥ, ୫୬ ଲିଙ୍ଗ ତୀର୍ଥ, ୫୭ ସମ୍ବର୍ତ୍ତ ତୀର୍ଥ, ୫୮ ସୀତାକୁଣ୍ଡ, ୫୯ ସେନାନୀ ତୀର୍ଥ, ୬୦ ସୋମ ତୀର୍ଥ, ୬୧ ଶଚୀ ତୀର୍ଥ, ୬୨ ଶଶୀ ତୀର୍ଥ, ୬୩ ଶୂଳନୀ ତୀର୍ଥ, ୬୪ ଶାତାତପ ତୀର୍ଥ, ୬୫ ଶ୍ୱେତ ଗଙ୍ଗା, ୬୬ ସିଦ୍ଧ ତୀର୍ଥ, ୬୭ ହଂସ ତୀର୍ଥ, ୬୮ କ୍ଷେତ୍ର ଦ୍ୱାର ।

## ପ୍ରସିଦ୍ଧ ଶିବଲିଙ୍ଗମାନଙ୍କର ନାମ ।

୧ ଅଟ୍ଟକେଶ୍ୱର, ୨ ଅପ୍ସରେଶ୍ୱର, ୩ ଅଗସ୍ତ୍ୟେଶ୍ୱର, ୪ ଅଚଳେଶ୍ୱର, ୫ ଅଗ୍ନୀଶ୍ୱର, ୬ ଅର୍ଦ୍ଧନାରୀଶ୍ୱର, ୭ ଅଖଣ୍ଡଳେଶ୍ୱର, ୮ ଈଶାନେଶ୍ୱର, ୯ ଉତ୍ତରେଶ୍ୱର, ୧୦

କପିଳେଶ୍ୱର, ୧୧ କଶ୍ୟପେଶ୍ୱର, ୧୨ କାଳେଶ୍ୱର, ୧୩ କାମେଶ୍ୱର, ୧୪ କାଳାଗ୍ନିରୁଦ୍ରେଶ୍ୱର, ୧୫ କୀର୍ତ୍ତିକେଶ୍ୱର, ୧୮ କୁମାରେଶ୍ୱର, ୧୭ କୁବେରେଶ୍ୱର, ୧୮ କୁସୁମେଶ୍ୱର, ୧୯ କେଦାରେଶ୍ୱର, ୨୦ କୋଦଣ୍ଡେଶ୍ୱର, ୨୧ ଖଣ୍ଡେଶ୍ୱର, ୨୨ ଖଗେଶ୍ୱର, ୨୩ ଗଙ୍ଗେଶ୍ୱର, ୨୪ ଗଞ୍ଜେଶ୍ୱର, ୨୫ ଗରେମେଶ୍ୱର, ୨୬ ଗାରୁଡ଼େଶ୍ୱର, ୨୭ ଗୋକର୍ଣ୍ଣେଶ୍ୱର, ୨୮ ଗୋଧନେଶ୍ୱର, ୨୯ ଗୋପାଳେଶ୍ୱର, ୩୦ ଘଟେଶ୍ୱର, ୩୧ ଚମ୍ପକେଶ୍ୱର, ୩୨ ଚଣ୍ଡେଶ୍ୱର, ୩୩ ଚନ୍ଦ୍ରଗୁପ୍ତେଶ୍ୱର, ୩୪ ଜମ୍ବେଶ୍ୱର, ୩୫ ଝାଡ଼େଶ୍ୱର, ୩୬ ଜଟେଶ୍ୱର, ୩୭ ଜାହ୍ନବ୍ୟେଶ୍ୱର, ୩୮ ଜାମଦଗ୍ନ୍ୟେଶ୍ୱର, ୩୯ ତାରକେଶ୍ୱର, ୪୦ ତିଳକେଶ୍ୱର, ୪୧ ତ୍ରିଲୋଚନେଶ୍ୱର, ୪୨ ସ୍ଥାନେଶ୍ୱର, ୪୩ ତ୍ରୈଲୋକ୍ୟନାଥ, ୪୪ ଦକ୍ଷେଶ୍ୱର, ୪୫ ଦଣ୍ଡୀଶ୍ୱର, ୪୬ ଦାରୁକେଶ୍ୱର, ୪୭ ଧବଳେଶ୍ୱର, ୪୮ ଧର୍ମେଶ୍ୱର, ୪୯ ନନ୍ଦିକେଶ୍ୱର, ୫୦ ନାରଦେଶ୍ୱର, ୫୧ କ୍ଷେତ୍ରେଶ୍ୱର, ୫୨ ନାରାୟଣେଶ୍ୱର, ୫୩ ପରଦାରେଶ୍ୱର, ୫୪ ପାଣ୍ଡବେଶ୍ୱର, ୫୫ ପଦ୍ମେଶ୍ୱର, ୫୬ ପର୍ଣ୍ଣନାଥ, ୫୭ ପାପମୋଚନେଶ୍ୱର, ୫୮ ପାତାଳେଶ୍ୱର, ୫୯ ପ୍ରଭାକରେଶ୍ୱର, ୬୦ ପ୍ରାଣାତ୍ମେଶ୍ୱର, ୬୧ ଫାଲ୍‌ଗୁନେଶ୍ୱର, ୬୨ । ବରୁଣେଶ୍ୱର, ୬୩ ବାସୁ ପୃଷ୍ଠେଶ୍ୱର, ୬୪ ବଟେଶ୍ୱର, ୬୫ ବାସୁକେଶ୍ୱର ୬୬ ବ୍ରହ୍ମେଶ୍ୱର, ୬୭ ବଟେଶ୍ୱର, ୬୮ ବିଶ୍ୱରୂପେଶ୍ୱର, ୬୯ ବିନ୍ଦେଶ୍ୱର, ୭୦ ବିମୁକ୍ତେଶ୍ୱର, ୭୧ ବୈଦ୍ୟନାଥ, ୭୨ ବାଣେଶ୍ୱର, ୭୩ ବାରୁଣେଶ୍ୱର, ୭୪ ଭଣ୍ଡେଶ୍ୱର, ୭୫ ଭାରଭୂତେଶ୍ୱର, ୭୬ ଭାର୍ଗବେଶ୍ୱର, ୭୭ ଭୀମେଶ୍ୱର, ୭୮ ଭୁବନେଶ୍ୱର, ୭୯ ଭୃଙ୍ଗୀରିଟେଶ୍ୱର, ୮୦ ମାର୍କଣ୍ଡେୟେଶ୍ୱର, ୮୧ ମଲ୍ଲିକେଶ୍ୱର, ୮୨ ମହାକାଳେଶ୍ୱର, ୮୩ ମାନେଶ୍ୱର, ୮୪ ମାନବେଶ୍ୱର, ୮୫ ମୁକ୍ତେଶ୍ୱର, ୮୬ ମୃତ୍ୟୁଞ୍ଜୟେଶ୍ୱର, ୮୭ ଯଜାତେଶ୍ୱର, ୮୮ ଯମେଶ୍ୱର, ୮୯ ଯୁଗେଶ୍ୱର, ୯୦ ରୁଦ୍ରେଶ୍ୱର, ୯୧ ରକ୍ତେଶ୍ୱର, ୯୨ ରାମେଶ୍ୱର, ୯୩ ଲଳିତେଶ୍ୱର, ୯୪ ରାଜରାଜେଶ୍ୱର, ୯୫ ଲିଙ୍ଗରାଜ, ୯୬ ଲୋମହର୍ଷଣେଶ୍ୱର, ୯୭ ଶ୍ରୀସକଳେଶ୍ୱର, ୯୮ ସନ୍ଦେଶ୍ୱର, ୯୯ ସ୍ୱପ୍ନେଶ୍ୱର, ୧୦୦ ନୈବେଦ୍ୟେଶ୍ୱର, ୧୦୧ ସିଦ୍ଧେଶ୍ୱର, ୧୦୨ ଶୀତଳେଶ୍ୱର, ୧୦୩ ସୁକୁମାରେଶ୍ୱର, ୧୦୪ ଶୃଙ୍ଗେଶ୍ୱର, ୧୦୫ ସୋମେଶ୍ୱର, ୧୦୬ ହରକେଶ୍ୱର; ୧୦୭ ହରନ୍ତେଶ୍ୱର, ୧୦୮ ହାଟକେଶ୍ୱର ।

ନାରାୟଣ ପ୍ରତିମା — ୧ ଅନନ୍ତଶାୟୀ ନାରାୟଣ । ୨ ଲକ୍ଷ୍ମୀନାରାୟଣ ।

ଗରୁଡ଼ — ମାଧପୁର ଗ୍ରାମରେ ପ୍ରସିଦ୍ଧ ମୂର୍ତ୍ତି ।

ଶୁଭ ସ୍ତମ୍ଭ — ଜନପ୍ରସିଦ୍ଧ ଓ ଇତିହାସ ପ୍ରସିଦ୍ଧ ସ୍ତମ୍ଭ ।

ବିରଜା — ରଜୋଗୁଣ ରହିତା କ୍ଷେତ୍ରାଧୀଶ୍ୱରୀ ଶ୍ରୀ ଶ୍ରୀ ବିରଜା ଦେବୀ ।

———

ସନ୍ଦର୍ଭ ଲେଖକ

(ସ୍ୱର୍ଗତ) ଶ୍ରୀ ନୀଳମଣି ମିଶ୍ର, ଯାଜପୁର

ବୃ — ଇତିହାସପ୍ରସିଦ୍ଧ ଯାଜପୁର ନଗର ବୈତରଣୀ ତଟରେ ଅବସ୍ଥିତ । ଏହି ସ୍ଥାନ ଗଦା କ୍ଷେତ୍ର, ଯଜ୍ଞ କ୍ଷେତ୍ର ବା ଯାଜପୁର, ବିରଜା କ୍ଷେତ୍ର, ନାଭି କ୍ଷେତ୍ର ପ୍ରଭୃତି ଭିନ୍ନ ଭିନ୍ନ ନାମରେ ପ୍ରସିଦ୍ଧ । ଏହିପରି ପ୍ରବାଦ ଅଛି ଯେ ଗୟା କ୍ଷେତ୍ରରେ ଗୟାସୁରର ମସ୍ତକ ଅବସ୍ଥିତ ଓ ଯାଜପୁରରେ ତାହାର ନାଭି ସଂସ୍ଥାପିତ । ଏଥି ସକାଶେ ଯାଜପୁର ନାଭିକ୍ଷେତ୍ର ନାମରେ ମଧ୍ୟ ଅଭିହିତ ।

ଯଯାତି କେଶରୀ ନାମକ କେଶରୀବଂଶୀୟ ନୃପତି ୫୬୪ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଜୟ କରିବା ପରେ ଯାଜପୁରରେ ପ୍ରଥମତଃ ରାଜଧାନୀ ସ୍ଥାପନ କରିଥିଲେ ଓ କାନ୍ୟକୁବ୍ଜରୁ ଦଶହଜାର ବ୍ରାହ୍ମଣ ଆଣାଇ ଏଠାରେ ଯଜ୍ଞ କରିଥିଲେ । ଏଥିପାଇଁ ଏହାର ନାମ ଯଜ୍ଞପୁର ବା ଯାଜପୁର ହେଲା ଓ ଚଳନ୍ତି କଥାରେ ଯାଜପୁର ହେଲା । ୧୫୫୮ ଖ୍ରୀଷ୍ଟାବ୍ଦରେ ହିନ୍ଦୁଧର୍ମବିଦ୍ୱେଷୀ ସୁପ୍ରସିଦ୍ଧ କଳାପାହାଡ଼ ସହିତ ଓଡ଼ିଶାବାସିମାନଙ୍କର ଯାଜପୁର ସନ୍ନିକଟବର୍ତ୍ତୀ ଗୋହିରାଠାରେ ଭୟାନକ ଯୁଦ୍ଧ ଘଟିଥିଲା । ସେହି ଯୁଦ୍ଧରେ ଓଡ଼ିଶାର ତାତ୍‌କାଳୀନ ରାଜା ମୁକୁନ୍ଦଦେବ ନିହତ ହୋଇଥିଲେ ଓ ଓଡ଼ିଶାବାସିମାନେ ପରାଜିତ ହୋଇ ମୁସଲମାନ୍‌ମାନଙ୍କ ଅଧୀନତା ସ୍ୱୀକାର କଲେ । ଯାଜପୁରରେ ଯେ ସବୁ ହିନ୍ଦୁ ମନ୍ଦିର ଥିଲା କଳାପାହାଡ଼ର ଅତ୍ୟାଚାରରେ ସେଗୁଡ଼ିକ ଚୂର୍ଣ୍ଣୀଭୂତ ଓ ଭଗ୍ନଧ୍ୱସ୍ତ ଦେବମୂର୍ତ୍ତି ବିଖଣ୍ଡିତ ହୋଇ ବୈତରଣୀ ଗର୍ଭରେ ନିକ୍ଷିପ୍ତ ହୋଇଥିଲା । ସେହି ଦିନଠାରୁ ଯାଜପୁର ଶ୍ରୀଭ୍ରଷ୍ଟ ।

କଳାପାହାଡ଼ର ପଠାଣ ସେନାପତି ସୈୟଦ୍ ଅଲି ବୁଖାରିଙ୍କ ସମାଧି ସ୍ଥାନ ଯାଜପୁରରେ ଅବସ୍ଥିତ । ଗୋଟିଏ ହିନ୍ଦୁ ଦେବମନ୍ଦିର ଧ୍ୱଂସ କରି ସେଠାରେ ଏହି ମୁସଲମାନ୍ ସେନାପତିଙ୍କ କବର ନିର୍ମିତ ହୋଇଥିଲା ।

ଯାଜପୁରରେ ବିସ୍ତର ଦେବପୂଜକ ବ୍ରାହ୍ମଣଙ୍କ ବାସ । କଥିତ ଅଛି ଯେ ବଙ୍ଗର ଆଦିଶୂରଙ୍କ ପରି ରାଜା ଯଯାତିକେଶରୀ ଯଜ୍ଞାର୍ଥେ ବହୁ ବେଦଜ୍ଞ ସୁବ୍ରାହ୍ମଣ କନୌଜଠାରୁ ଆନୟନ କରି ଯଥାଯୋଗ୍ୟ ବୃତ୍ତି ପ୍ରଦାନପୂର୍ବକ ଏହି ସ୍ଥାନରେ ରଖାଇ ଥିଲେ ।

ପ୍ରାଚୀନ କୀର୍ତ୍ତି ମଧ୍ୟରେ ବୈତରଣୀ ତୀରରେ ବରାହନାଥଙ୍କ ମନ୍ଦିର, ଦଶାଶ୍ୱମେଧ ଘାଟ, ସପ୍ତମାତୃକା ମଣ୍ଡପ ଏବଂ ବିରଜାଦେବୀଙ୍କ ମନ୍ଦିର ସବିଶେଷ ଉଲ୍ଲେଖଯୋଗ୍ୟ ।

ରାଜା ପୁରୁଷୋତ୍ତମ ଦେବଙ୍କ ପୁତ୍ର ପ୍ରତାପରୁଦ୍ରଙ୍କ ଦ୍ୱାରା ଖ୍ରୀଷ୍ଟ ଷୋଡ଼ଶ ଶତାବ୍ଦୀରେ ବରାହନାଥଙ୍କ ମନ୍ଦିର ନିର୍ମିତ ହୋଇଥିଲା । ଏହି ମନ୍ଦିରରେ ଗୋଦାନ କଲେ ମରଣାନ୍ତେ ଗୋପୁଚ୍ଛ ଧାରଣ କରି ତପ୍ତବୈତରଣୀ ପାର ହେବାର ଅଧିକାର ଲାଭ ହୁଏ । ଗୋପରିବର୍ତ୍ତରେ ମୂଲ୍ୟ ସ୍ୱରୂପ ୫ଟଙ୍କା ଦାନ କଲେ ମଧ୍ୟ ସେହି ଫଳ ଲାଭ ହୁଏ ବୋଲି ପଣ୍ଡାମାନେ କହନ୍ତି ।

ବରାହନାଥଙ୍କ ମନ୍ଦିର ସମ୍ମୁଖରେ ବୈତରଣୀକୂଳରେ ଯେଉଁ ଘାଟ ଅବସ୍ଥିତ, ତାହାର ନାମ ଦଶାଶ୍ୱମେଧ ଘାଟ ।

ପ୍ରବାଦ ଅଛି ଯେ, ବ୍ରହ୍ମା ଏହି ସ୍ଥାନରେ ଦଶଟି ଅଶ୍ୱମେଧ ଯଜ୍ଞ ସମ୍ପାଦନ କରି ଭଗବାନ୍ ବିଷ୍ଣୁଙ୍କୁ ସନ୍ତୁଷ୍ଟ କରାଇ ବେଦଙ୍କୁ ଉଦ୍ଧାର କରିଥିଲେ । କେହି କେହି କହନ୍ତି ରାଜା ଯଯାତି-କେଶରୀଙ୍କ ଦ୍ୱାରା ସେହି ଯଜ୍ଞ ଅନୁଷ୍ଠିତ ହୋଇଥିଲା ଏବଂ ସେଥି ସକାଶେ ସେ କନୌଜରୁ ବେଦଜ୍ଞ ବ୍ରାହ୍ମଣ ଆନୟନ କରିଥିଲେ ।

ବରାହନାଥଙ୍କ ମନ୍ଦିର ପଛରେ ଜଗନ୍ନାଥ ଦେବଙ୍କର ଗୋଟିଏ ମନ୍ଦିର ଅଛି । ଏହି ସ୍ଥାନର ପ୍ରାୟ ଏକ କୋଶ ଦୂରରେ ବିରଜା ଦେବୀଙ୍କ ମନ୍ଦିର । ଏ ଗୋଟିଏ ପୀଠ ସ୍ଥାନ । ମନ୍ଦିର ମଧ୍ୟରେ କ୍ଷୁଦ୍ରକାୟ ପାଷାଣମୟୀ ଦେବୀମୂର୍ତ୍ତି ପ୍ରତିଷ୍ଠିତା ରହିଅଛନ୍ତି । ମନ୍ଦିର ପ୍ରାଙ୍ଗଣରେ ଗୋଟିଏ କ୍ଷୁଦ୍ର ପୁଷ୍କରିଣୀ ଅଛି । ତାହାକୁ ବ୍ରହ୍ମକୁଣ୍ଡ ବା ବିରଜାକୁଣ୍ଡ କହନ୍ତି । ଏ ସ୍ଥାନରେ ଆଉ ଗୋଟିଏ କୂପ ମଧ୍ୟ ଅଛି । ତାହା ନାଭିଗୟା ନାମରେ ପ୍ରସିଦ୍ଧ ।

ବୈତରଣୀର ତୀରଦେଶରେ ସପ୍ତମାତୃକା ମଣ୍ଡପ । ସାତ ଗୋଟି ପାଷାଣମୟୀ ଦେବୀମୂର୍ତ୍ତି ସେଠାରେ ଅଛନ୍ତି । ଐରାବତା-ଧିରୂଢ଼ା, ସୁବେଶା,ସାଲଙ୍କାରା, ବଜ୍ରହସ୍ତା ଇନ୍ଦ୍ରାଣୀ: ଗରୁଡ଼ା-ସନା ଶଙ୍ଖମୂର୍ତ୍ତି ବୈଷ୍ଣବୀ: ବୃଷାରୂଢ଼ା ତ୍ରିଶୂଳବରଧାରିଣୀ ଚନ୍ଦ୍ରରେଖାବିଭୂଷଣା ମାହେଶ୍ୱରୀ: ଶିଖିବାହାନା କାନ୍ତବପୁ: କୌମାରୀ: ହଂସପୃଷ୍ଠସମାରୂଢ଼ା ସର୍ବାଭରଣଭୂଷିତା ବ୍ରହ୍ମାଣୀ: ମହିଷାସନା ବରାହବଦନା ବାରାହୀ; ନଗ୍ନଦେହା ସର୍ପଭୂଷିତ-କବରୀ ମୁଣ୍ଡମାଳିନୀ ଭୀଷଣା ଚାମୁଣ୍ଡା: ପୂର୍ବୋକ୍ତ ଏହି ସପ୍ତ ମାତୃକା ମୂର୍ତ୍ତି ମଣ୍ଡପ ମଧ୍ୟରେ ପ୍ରତିଷ୍ଠିତ ହୋଇଅଛନ୍ତି । ମୂର୍ତ୍ତି-ଗୁଡ଼ିକ ସାଧାରଣ ମନୁଷ୍ୟକୃତି ଅପେକ୍ଷା ଈଷତ ଉଚ୍ଚ, ନୀଳ ପ୍ରସ୍ତର ନିର୍ମିତ ଏବଂ ଚତୁର୍ଭୁଜ । ଏମାନଙ୍କର ନିର୍ମାଣରେ ସବିଶେଷ ନୈପୁଣ୍ୟ ପ୍ରଦର୍ଶିତ ହୋଇଅଛି ।

ଯାଜପୁରର ଅନତିଦୂରରେ 'ଶୁଭସ୍ତମ୍ଭ' ନାମକ ୩୭ ଫୁଟ ଉଚ୍ଚ ଅଖଣ୍ଡ ପ୍ରସ୍ତରରେ ନିର୍ମିତ ଗୋଟିଏ ସ୍ତମ୍ଭ ଅବସ୍ଥିତ ଅଛି । ଏହା ଉପରେ ପୂର୍ବେ ଗୋଟିଏ ଗରୁଡ଼ ମୂର୍ତ୍ତି ଥିଲା, କଳାପାହାଡ଼ ତାହା ନଷ୍ଟ କରି ଦେଇଛି । ମୁସଲମାନ୍‌ମାନେ ଏହି ସ୍ତମ୍ଭ ଧ୍ୱଂସ କରିବା ସକାଶେ ବିଶେଷ ଚେଷ୍ଟା କରିଥିଲେ କିନ୍ତୁ କୌଣସି ପ୍ରକାରେ କୃତକାର୍ଯ୍ୟ ହୋଇପାରି ନ ଥିଲେ । ଏହା କେଶରୀବଂଶୀୟ ରାଜାମାନଙ୍କର ଜୟସ୍ତମ୍ଭରୂପେ ନିର୍ଦ୍ଦେଶିତ ହୋଇଥାଏ ।

ପୂର୍ବେ ଏହି ସ୍ଥାନରେ ଶାନ୍ତମାଧବ ନାମରେ ଗୋଟିଏ ବୃହତ୍ ପ୍ରସ୍ତରମୟ ମୂର୍ତ୍ତି ଅବସ୍ଥିତ ଥିଲା । ମୂର୍ତ୍ତିର ନାଭି-ଦେଶ ପର୍ଯ୍ୟନ୍ତ ଭୂମି ଉପରେ ଅବସ୍ଥିତ ଏବଂ ଅଧୋଭାଗ ଭୂଗର୍ଭରେ ପ୍ରୋଥିତ ଥିଲା । ବର୍ତ୍ତମାନ ସେ ମୂର୍ତ୍ତି ଆଉ ନାହିଁ ।

ପୁରୀର ଅଠରନଳା ପରି ଯାଜପୁରର ଅନତିଦୂରରେ 'ଏଗାର ନଳା' ନାମକ ଗୋଟିଏ ଜଳପଥ ଓ ତହିଁଉପରେ ଗୋଟିଏ ସେତୁ ଅଛି । ଯାଜପୁରଠାରୁ କିଛି ଦୂରରେ ଗୋଟିଏ ଶିବଲିଙ୍ଗ ପ୍ରତିଷ୍ଠିତ ଅଛନ୍ତି, ତାହାଙ୍କ ନାମ ଅଗ୍ନୀଶ୍ୱର । ସ୍ଥାନୀୟ ଲୋକଙ୍କର ବିଶ୍ୱାସ ଯେ, ପ୍ରତିଦିନ ତାଙ୍କର ବର୍ଣ୍ଣର ପରିବର୍ତ୍ତନ ହୋଇଥାଏ । [ନବୀନ ପତ୍ରିକା—୨୦-୮-୩୪]

**ଯାଜମାନ**—ସଂ. ବି (ଯଜମାନ+ଅ)-ଯଜମାନଙ୍କ ଦ୍ୱାରା ସମ୍ପାଦନୀୟ ଯଜ୍ଞର ଅଂଶ—That part of a sacrifice which is performed by the Jajamāna himself (Apte).
Jājamāna

**ଯାଜୟିତା**—ସଂ. ବି. ପୁଂ—(ଯଜ୍‌ଧାତୁ ଣିଚ୍+ତୃ; ୧ମା. ୧ବ) ଯଜ୍ଞର ପୁରୋଧା—The officiating priest at a sacrifice (Apte).
Jājayitā

**ଯାଜି(ଜୀ)**—ସଂ. ବି—( ଯଜ୍‌ଧାତୁ=ଯାଗ କରିବା+କର୍ତ୍ତୃ. ଇ; ଇନ୍, ୧ମା. ୧ବ.)—ଯାଜକ—(ଦେଖ)—Jajaka (See).
Jāji(jī)

**ଯାଜିପୁର**—ସଂ. ବି (୬ଷ୍ଠୀ ତତ୍; ଯାଜିନ୍+ପୁର)—ଯାଜପୁର (ଦେଖ)
Jājipura Jājapura (See)

**ଯାଜିପୁରାତ୍ରେୟ**—ପ୍ରାଦେ (ଯାଜପୁର) ବି—ଯାଜତ୍ୟ—(ଦେଖ)
Jajipurātreya Jājatya (See) [ଦ୍ର—ଯାଜପୁରବାସୀ (ଯାଜପୁରଶ୍ରେଣୀ—ଅନ୍ୟରୂପ) କୁଳୀନ ବ୍ରାହ୍ମଣଙ୍କର ଅନ୍ୟ ଶାଖା ଦକ୍ଷିଣାତ୍ରେୟ ବା ଦକ୍ଷିଣଶ୍ରେଣୀ]

**ଯାଜୁଷ**—ସଂ.ବିଣ—(ଯଜୁଷ୍+ସମ୍ବନ୍ଧୀୟାର୍ଥେ.ଅ)—ଯଜୁର୍ବେଦ ସମ୍ବନ୍ଧୀୟ—
Jājusha Relating to the Jajurbeda.
(ଯାଜୁଷୀ—ସ୍ତ୍ରୀ) ସଂ. ବି—ଯଜୁର୍ବେଦାଧ୍ୟାୟୀ ବ୍ରାହ୍ମଣ—
A student of the Jajurbeda (Apte).

**ଯାଜୁଷୀ ଗାୟତ୍ରୀ**—ସଂ.ବି—ଛଅବର୍ଣ୍ଣବିଶିଷ୍ଟ ଯଜୁର୍ବେଦର ଛନ୍ଦୋବିଶେଷ—
Jājushī gāyatrī A vedic metre of 6 syllables.
[ଦ୍ର—ବିଭିନ୍ନ ସଂଖ୍ୟକ ବର୍ଣ୍ଣବିଶିଷ୍ଟ ଯଜୁର୍ବେଦର ଛନ୍ଦ-ମାନଙ୍କରେ ଭିନ୍ନ ଭିନ୍ନ ନାମ ଅଛି ଯଥା—
୭ ବର୍ଣ୍ଣ ବିଶିଷ୍ଟ—ଯାଜୁଷୀ ଉଷ୍ଣିକ୍
୮ ବର୍ଣ୍ଣ ବିଶିଷ୍ଟ—ଯାଜୁଷୀ ଅନୁଷ୍ଟୁପ୍
୯ ବର୍ଣ୍ଣ ବିଶିଷ୍ଟ—ଯାଜୁଷୀ ବୃହତୀ
୧୦ ବର୍ଣ୍ଣ ବିଶିଷ୍ଟ—ଯାଜୁଷୀ ପଂକ୍ତି
୧୧ ବର୍ଣ୍ଣ ବିଶିଷ୍ଟ—ଯାଜୁଷୀ ତ୍ରିଷ୍ଟୁପ୍
୧୨ ବର୍ଣ୍ଣ ବିଶିଷ୍ଟ—ଯାଜୁଷୀ ଜଗତୀ—ହି. ଶ]

**ଯାଜ୍ଞ**—ସଂ. ବିଣ (ଯଜ୍ଞ+ଅ)—ଯଜ୍ଞ ସମ୍ବନ୍ଧୀୟ; ଯଜ୍ଞୀୟ—
Jājna Sacrificial; relating to a vedic sacrifice.

**ଯାଜ୍ଞଦତ୍ତି**—ସଂ. ବି—(ଯଜ୍ଞ ଦତ୍ତ=ମୁନିବିଶେଷ+ଅପତ୍ୟାର୍ଥେ.ଇ)—କୁବେର—The God of riches.
Jājnadatti

**ଯାଜ୍ଞବଲ୍କ୍ୟ(ଲ୍କ)**—ସଂ.ବି. ପୁଂ—(ଯଜ୍ଞବଲ୍କ=ମୁନି+ଅପତ୍ୟାର୍ଥେ.ଯ; ଅ)
Jājnabalkya ୧ । ଶୁକ୍ଳ ଯଜୁର୍ବେଦ ବା ବାଜସନେୟୀ ସଂହିତାର ଆଚାର୍ଯ୍ୟ ଋଷି—1. Name of a vedic sage.
[ଦ୍ର—ଏ ପ୍ରଥମେ ବୈଶମ୍ପାୟନଙ୍କ ଶିଷ୍ୟ ଥିଲେ । ଏକଦା କୌଣସି କାରଣରୁ ବୈଶମ୍ପାୟନ ଏହାଙ୍କଠାରେ ଅପ୍ରସନ୍ନ ହୋଇ ଏହାଙ୍କୁ କହିଲେ 'ତୁମ୍ଭେ ଆମ୍ଭଠାରୁ ଯାହା ଶିକ୍ଷା ଲାଭ କରିଛ ତାହା ଫେରାଇ ଦିଅ ।' ଏହା ଶୁଣି ଯାଜ୍ଞବଲ୍କ୍ୟ

ଗୁରୁଙ୍କଠାରୁ ପଢ଼ିଥିବା ପାଠମାନ ବାନ୍ତ କରିପକାଇଲେ ଓ ବାନ୍ତ ବଦ୍ୟାମାନଙ୍କୁ ବୈଶମ୍ପାୟନଙ୍କ ଅନ୍ୟ ଶିଷ୍ୟମାନେ ତିତ୍ତିରି ପକ୍ଷୀରୂପ ଧାରଣ କରି ଖୁଣ୍ଟି ନେଲେ । ଏହି ଶିଷ୍ୟମାନଙ୍କ ପ୍ରବର୍ତ୍ତିତ ଶାଖା ଓ ସଂହିତା 'ତୈତ୍ତିରୀୟ' ନାମରେ ଖ୍ୟାତ ହେଲା । ତତ୍ପରେ ଯାଜ୍ଞବଲ୍କ୍ୟ ସୂର୍ଯ୍ୟଙ୍କୁ ଉପାସନାଦ୍ୱାରା ସନ୍ତୁଷ୍ଟ କରିବାରୁ ସୂର୍ଯ୍ୟ ଅଶ୍ୱରୂପ ଧାରଣ କରି ଏହାଙ୍କୁ ଶୁକ୍ଳ ଯଜୁର୍ବେଦ କହିଥିଲେ ଓ ଏ ଶୁକ୍ଳଯଜୁର୍ବେଦକୁ ପୃଥିବୀରେ ଅବତାରଣା କଲେ । 'ଯଜୁଃ' ତଳେ ନୋଟ୍ ଦେଖ ।] ୨ । ରାଜା ଜନକଙ୍କ ସଭାସ୍ଥ ଜଣେ ଋଷି—2. Name of a sage of the court of king Janaka. (ଦ୍ର—ମୈତ୍ରେୟୀ ଓ ଗାର୍ଗୀ ଏହାଙ୍କ ପତ୍ନୀ ଥିଲେ ହି. ଶ.) ୩ । ଧର୍ମସଂହିତାକାର ଋଷିବିଶେଷ—3. Name of a Hindu lawgiver. (ଦ୍ର—ଏହାଙ୍କ ରଚିତ ଦାୟଭାଗ ଗୋଟିଏ ପ୍ରସିଦ୍ଧ ହିନ୍ଦୁସ୍ମୃତି ଅଟେ—ହି. ଶ.)

**ଯାଜ୍ଞସେନୀ**—ସଂ. ବି. ସ୍ତ୍ରୀ. (ଯଜ୍ଞସେନ=ଦ୍ରୁପଦ ରାଜା+ଅପତ୍ୟାର୍ଥେ. ଅ+ସ୍ତ୍ରୀ. ଈ)—ପାଣ୍ଡବ ମହିଷୀ ଦ୍ରୌପଦୀ—
Jājnaseni — Draupadi; the Pāṇḍaba queen.

**ଯାଜ୍ଞିକ**—ସଂ. ବିଣ. (ଯଜ୍ଞ+ସମ୍ବନ୍ଧାର୍ଥରେ. ଇକ)—ଯଜ୍ଞ ସମ୍ବନ୍ଧୀୟ
Jājnika (ଯାଜ୍ଞିକୀ—ସ୍ତ୍ରୀ) Sacrificial ବି—୧ । ଯଜ୍ଞ କର୍ତ୍ତା—1. The performer of a sacrifice. ୨ । ଯଜ୍ଞ କାର୍ଯ୍ୟରେ ପୁରୋହିତ—2. The priest officiating at a sacrifice. ୩ । ଯଜ୍ଞର କର୍ମକାଣ୍ଡରେ ଅଭିଜ୍ଞ ବ୍ୟକ୍ତି—3. A ritualist (Apte). ୪ । ଦର୍ଭ; କୁଶ-4. A grass used in sacrifice. ୫ । ଖଦିର ବୃକ୍ଷ—5. The catechu tree; Serra Japonica. ୬ । ପଳାଶ ବୃକ୍ଷ—6. Butea Frondosa. ୭ । ଅଶ୍ୱତ୍ଥ ବୃକ୍ଷ—7. The holy fig tree; Ficus Religiosa. ୮ । ଯଜ୍ଞସାଧକ ଦ୍ରବ୍ୟାଦି—8. The materials required for a sacrifice.

**ଯାଜ୍ଞିକାନ୍ନ**—ସଂ. ବି. କ୍ଲୀ (କର୍ମଧା)—ଯଜ୍ଞରେ ବ୍ୟବହୃତ ଚରୁ—The
Jājnikānna — boiled sweet rice used as offering in sacrifice.

**ଯାଜ୍ଞିକାଶ୍ରୟ**—ସଂ. ବି. (୬ଷ୍ଠୀ ତତ୍)—ବିଷ୍ଣୁ—
Jājnikāsraya — Bishṇu (Apte).

**ଯାଜ୍ଞିୟ**—ସଂ. ବିଣ. (ଯଜ୍ଞ+ଇୟ)—୧। ଯଜ୍ଞ ସମ୍ବନ୍ଧୀୟ—1. Sacri-
Jājniya ficial. ୨ । ଯଜ୍ଞର ଉପଯୋଗୀ—2. Fit for a sacrifice (Apte) ୩ । ଯଜ୍ଞ କର୍ମରେ ପ୍ରବୀଣ—3. Skilled in sacrificial rites.

**ଯାଜ୍ୱନ**—ସଂ. ବି. ( ଯଜ୍ୱନ୍+ଅପତ୍ୟାର୍ଥେ. ଅ )—ଯାଜ୍ଞିକ ବ୍ୟକ୍ତିଙ୍କ
Jājwana ପୁତ୍ର—The son of a sacrificer (Apte).

**ଯାଜ୍ୟ**—ସଂ. ବିଣ. ( ଯଜ୍ ଧାତୁ=ପୂଜା କରିବା+କର୍ମ. ଯ )—
Jājya ୧ । ଯଜ୍ଞରେ ବଳି ରୂପେ ଦଆଯିବା ଯୋଗ୍ୟ—1. Fit to be offered as sacrifice. ୨ । ଯଜ୍ଞୀୟ—2. Sacrificial. ୩ । ବଳି କମନ୍ତେ ଅଭିପ୍ରେତ—3. Intended for a sacrifice. ବି—୧ । ଯାହାଙ୍କ ପାଇଁ ଯଜ୍ଞ କରାଯାଏ; ଯଜମାନ—1. The principal for whom a sacrifice is performed. ୨ । ଯଜ୍ଞର ପୁରୋଧା—2. The performer of a sacrifice for another (Apte). ୩ । ଯାଗଲବ୍ଧ ଦକ୍ଷିଣା—3. A fee presented to Brāhmaṇas at a sacrifice.

**ଯାଜ୍ୟା**—ସଂ. ବି. ସ୍ତ୍ରୀ. ( ଯଜ୍ ଧାତୁ+ଅଧିକରଣ. ଯ+ସ୍ତ୍ରୀ. ଆ )—
Jājya ୧ । ଯଜ୍ଞ ଭୂମି—1. The site for the performance of a sacrifice. ୨ । (+କର୍ମ. ଯ+ଆ) ଦେବ ପ୍ରତିମା—2. Image of a Deity. ୩ । ଯଜ୍ଞରେ ହୋତାଙ୍କ ପଠିତ ଋକ୍ ବା ସ୍ତୋତ୍ର—3. The hymn recited by the 'Hota' or reciting priest at a sacrifice.

**ଯାଠି**—ଦେ. ବି.—(ସଂ. ଯଷ୍ଟି)—୧। ପୁରାଣ ବର୍ଣ୍ଣିତ ଯୁଦ୍ଧାସ୍ତ୍ର ବିଶେଷ—
Jāṭhi ଜାଠି ଜାଠୀ 1. A weapon of offence mentioned in the Oriya Purāṇas. ୨ । ଲୌହ ଯଷ୍ଟି—2. An iron rod used as weapon of offence. ପ୍ରାଦେ. (ଜୟପୁର) ବି—ଗାଣ୍ଡିକା (ଦେଖ) Gāndikā ( See )

**ଯାଠି(ଷ୍ଟି, ଠ)ମଧୁ(ଧୁ)**—ଦେ. ବି. (ସଂ. ଯଷ୍ଟିମଧୁ)—ଯଷ୍ଟିମଧୁ (ଦେଖ)
Jāṭhi(shṭi, ṭha)madhu(hu) Jashṭi madhu (See)
ଜେଷ୍ଟ ମଧୁ जेठी मधु, मुलेठी

**ଯାଢ଼**—ପ୍ରାଦେ. (ସିଂହଭୂମ) ବି—ହାଣ୍ଡିଆ ମଦ ତିଆରି କରିବା ପାଇଁ
Jāṛha ଭାତକୁ ସଢ଼ାଇବାରେ ବ୍ୟବହୃତ ଔଷଧ ଦ୍ରବ୍ୟବିଶେଷ—A medicinal drug mixed with the boiled rice to be fermented for preparing 'hāṇḍiā' wine.

**ଯାତ**—ସଂ. ବିଣ. ( ଯା ଧାତୁ=ଯିବା+କର୍ତ୍ତୃ. ତ )—୧ । ଗତ—
Jāta 1. Gone, departed. ୨ । ଅତୀତ—2. Past; elapsed. ୩ (+କର୍ମ. ତ) ଲବ୍ଧ; ପ୍ରାପ୍ତ—3. Got; received; attained. ୪ । ଜ୍ଞାତ; ବିଦିତ—4. Known. ବି. (+ଭାବ. ତ)—୧ । ଗମନ; ଗତି—1. Going; motion. ୨ । ପ୍ରାପଣ—2. Getting; obtaining. ୩ । ଜ୍ଞାନ—3. Knowledge. ୪ । ଅଙ୍କୁଶାଘାତ ଦ୍ୱାରା ହସ୍ତୀକୁ ତାଡ଼ନ—4. Driving an elephant with a goad. ୫ ଅତୀତ କାଳ—5. The past time (Apte.) ଦେ. ବି. (ସଂ ଯାତ୍ରା)- ୧ । ଧର୍ମ ସମ୍ବନ୍ଧୀୟ ଉତ୍ସବ; ଦେବତାଙ୍କ ଉତ୍ସବ—
ମେଳା ଯାତ୍ରା 1. Religious festival. [ଦ୍ରି—×××ସମସ୍ତେ ବଳଦେବ ଯାତ ଦେଖିବାକୁ ଧାଇଁଛନ୍ତି । ପଦ୍ମାର ମୋହନ. ଚ ମାଣ ଆଠ ଗୁଣ ] ୨ । ନୃତ୍ୟଗୀତାଦି ଉତ୍ସବ—2. Festivity; dance. ୩ । ମେଳା; ଜନ ସମାଗମ

ବା ଗହଳ—3. Gathering of many people; fair. [ ଉ—ଘରଲୁଗା ପିନ୍ଧି ଯାତକୁ ଯାଏ; ଲୋକେ ଘଗ୍ଘରଲେ ମୁଣ୍ଡ ଟେକାରୁ ଥାଏ । ଭଗ ।] ୪ । କୁତର—4. A queer act. ୫ । ଗୋଳମାଳ—5. Ado. ୬ । (ଲକ୍ଷଣାର୍ଥ) କଳ କଜିଆ; ମାରପିଟ ଅର୍ଥ—6. (figurative) An affray. [ଦୃ—କୌଣସି ଲୋକର ଘରେ କଳକଜିଆ ବା ମାଡ଼ ମରାମରି ଲାଗିଲେ ଲୋକେ କହନ୍ତି "ଅଜ ତା ଘରେ ଭାରି ଯାତ ଲାଗିଛି ।"]

ଯାତ (ତ୍ରା)ଉ (ଓ) ପାସ-ଦେ.ବ.(ସଂ ଯାତ୍ରା+ଉପବାସ)—ଜଗନ୍ନାଥ ମହା-
Jāta(trā)u (o)pāsa ପ୍ରଭୁଙ୍କ ବା ଲିଙ୍ଗରାଜଙ୍କ ନିର୍ଦ୍ଦିଷ୍ଟ ଯାତ୍ରା ଦିବସ-
যাত উপবাস ମାନଙ୍କରେ ମାନସିକ କରି ଶ୍ରୀମୂର୍ତ୍ତିଙ୍କୁ ଦର୍ଶନ କରିବା ଓ
यात्रोपवास ଉପବାସ କରିବା—Fasts and visits performed by certain devotees during the fixed festivals of Lord Jagannātha of Puri and Lord Liṅgarāja of Bhubaneswar. (ଦୃ—ଯାତ୍ରା ଶବ୍ଦର ଟୀକା ଦେଖ ।)

ଯାତ ତିଥ—ଦେ. ବ. ( ସହଚର ଶବ୍ଦ; ସ. ଯାତ୍ରା ଓ ତୀର୍ଥ )—ଯାତ୍ରା
Jāta titha ଅର୍ଥ—Religious festivals.
তীর্থ ব্রত यात्रा तीरथ

ଯାତନ(ନା)—ସ ବ ( ଯତ ଧାତୁ=ଯନ୍ତ୍ରଣା ଦେବା ଣିଚ୍ +ଭାବ. ଅନ୍+ଅ)—୧ । ଯନ୍ତ୍ରଣା; ତୀବ୍ରବେଦନା;
Jātana(nā) ବେଦନା—1. Acute and extreme pain or suffering; anguish; pang; torment. ୨ । ବୈରି ପ୍ରତିଶୋଧ—2. Requital; retaliation ( Apte ). ୩ । ଯମ ଯାତନା; ପାପୀମାନଙ୍କ ଉପରେ ଯମଙ୍କ ଉତ୍ପୀଡ଼ନ, ନରକଯନ୍ତ୍ରଣା—3. The torments inflicted by Jama on sinners, the tormets of hell. [ ଦୃ—ଯେଉଁ ଶବ୍ଦମାନଙ୍କ ସଙ୍ଗେ ଯନ୍ତ୍ରଣା ଶବ୍ଦ ଯୁକ୍ତ ହୁଏ ସେମାନଙ୍କ ସଙ୍ଗେ ଯାତନା ଶବ୍ଦ ମଧ୍ୟ ଯୁକ୍ତ ହୋଇପାରେ । ଯଥା —ଯମଯାତନା, ଗର୍ଭଯାତନା ଇତ୍ୟାଦି । ]

ଯାତ ନାଟ—ଦେ ବ (ସହଚର.ଶବ୍ଦ; ସ. ଯାତ୍ରା ଓ ନାଟ୍ୟ)—ନୃତ୍ୟ-
Jāta nāṭa ଗୀତାଦି ଉତ୍ସବ—Festivities and
যাত্রানাচ, নাচগাওনা यात्रानाच dancing; amusements.

ଯାତନା ଦେବା—ଦେ. କ୍ରି—ଦୁଃଖ ଦେବା, କଷ୍ଟ ଦେବା—
Jātanā debā To give pain.
যাতনা দেওয়া यातना देना

ଯାତନା ଭୋଗ—ସ. ବ (୬ଷ୍ଠୀ ତତ୍)—ଯନ୍ତ୍ରଣା ଭୋଗ—
Jātanā bhoga Undergoing suffering.

ଯାତବ୍ୟ—ସ. ବଣ (ଯା. ଧାତୁ+କର୍ମ. ତବ୍ୟ)—୧ । ଅଭିଗନ୍ତବ୍ୟ;
Jātabya ଅଭିଗମ୍ୟ—1 Fit to be approached. ୨ । ଆକ୍ରମଣୀୟ—2. Fit to be invaded or attacked.

ଯାତଯାମ—ସ. ବଣ (ଯାତ=ଗତ ହୋଇଅଛି+ଯାମ=ପ୍ରହର କାଳ
Jātajāma ଯାହାର)—୧ । ପର୍ଯ୍ୟୁଷିତ; ବାସି (ଖାଦ୍ୟ ଅର୍ଥ)—1. Stale; tainted; soiled; impaired. ୨। ଜୀର୍ଣ୍ଣ ଶୀର୍ଣ୍ଣ—2. Worn out; rickety. ୩ । ଶୀର୍ଣ୍ଣ—3. Lean; emaciated. ୪ । ପୁନଃ ପୁନଃ ବ୍ୟବହୃତ ପରିଭୁକ୍ତ—4. Enjoyed; used repeatedly. ୫ । ତ୍ୟକ୍ତ; ପରିତ୍ୟକ୍ତ—5. Abandoned; rejected. ୬ । ଉଚ୍ଛିଷ୍ଟ ( ଖାଦ୍ୟାଦି ), ଅଇଁଠା—6. Spitted out; left as orts. ୭ । ହତଶ୍ରୀ—7. Faded. ୮ । ଅପକ୍ୱ; ଅର୍ଦ୍ଧସିଦ୍ଧ—8. Raw; half-dressed. ୯ । କ୍ଳାନ୍ତ—9. Exhausted; worn out (Apte)

ଯାତର—ଗ୍ରା. (ପଦ୍ୟ) ବ. (ସ. ଯାତ୍ରା)—ଯାତ; ଯାତ୍ରା—
Jātarā जातरा Religious festival or fair.
(ଉ—ବାଇଧନ ! ବାଇଧନ । ବାଇଧନକୁ ମୁଁ ଖଣ୍ଡେ ଅଇଲି, ଜାଗର ଯାତର ଦିନ । କେଳା. ଗୀତ)

ଯାତ ଲଗା(ଗେ)ଇବା—ଦେ. କ୍ରି—କୌଣସି ସ୍ଥାନରେ କଳହ ଓ
Jāta lagā(ge)ibā ଗୋଳମାଳ ପ୍ରଭୃତି ଉପୁଜାଇବା—
जातरा लगाना গোল লাগান To cause a bustle or noise.

ଯାତା—ସ. ବ. ପୁଂ ( ଯା ଧାତୁ+କର୍ତ୍ତୃ. ତୃ ୧ମା. ୧ବ )—୧ ।
Jātā ଗମନକାରୀ—1. Goer. ୨ । ବାଟୋଇ; ପଥିକ—
(ଯାତ୍ରୀ—ସ୍ତ୍ରୀ) 2. Traveller; wayfarer. ୩ । ରଥଚାଳକ; ସାରଥି—3. Charioteer; driver; coachman. ୪ । ଇନ୍ଦ୍ରଙ୍କ ରଥଚାଳକ; ମାତଳି—4. Indras charioteer Mātali. ୫ । ଘାତକ (ହ୍ରି. ଷ.)—5. Murderer. ୬ । (ସ୍ତ୍ରୀ. ଯାତୃ ଶବ୍ଦ ୧ମା. ୧ବ). ଯାଆ; ସ୍ୱାମୀଙ୍କର ଭ୍ରାତୃଜାୟା—6. The wife of the brother of one's husband.

ଯାତାୟାତ—ସ. ବ ( ଯାତ=ଗମନ+ଆୟାତ=ଆଗମନ )—୧ ।
Jātāyāta ଗମନାଗମନ; ଚଳପ୍ରଚଳ; ଯା ଆସ—1. Intercourse; going and coming. ୨ । କୌଣସି ସ୍ଥାନକୁ ସତତ ଯିବା ଆସିବା—2. Constant visit to a place.

ଯାତାୟାତ କରିବା—ଦେ. କ୍ରି—ଯା ଆସ କରିବା—To have
Jātāyāta karibā constant intercourse
যাতায়াত করা यातायात करना

ଯାତିକ—ସ. ବ. ପୁଂ ( ଯା ଧାତୁ+କର୍ତ୍ତୃ. ତିକ )—ପଥିକ—
Jātika (ଯାତିକା—ସ୍ତ୍ରୀ) Traveller.

ଯାତୁ—ସ. ବଣ ( ଯା ଧାତୁ+କର୍ତ୍ତୃ. ତୁ )—ଗମନକାରୀ—Going.
Jātu moving, walking. ବ—୧ । ରାକ୍ଷସ—1. Demon. ୨ । ଉପଦେବତା; ଭୂତ ପ୍ରେତ—2. A ghost; an evil spirit. ୩ । ସମୟ—3. Time.

୪ । ପଥିକ—4. Traveller; wayfarer. ୫ । ବାୟୁ—5. Wind. ୬ । ଅସ୍ତ୍ର ଶସ୍ତ୍ର—6. Weapon ( Apte ).

**ଯାତୁଘ୍ନ**—ସଂ. ବି ( ଯାତୁ=ଭୂତ+ହନ୍ ଧାତୁ+କର୍ତ୍ତୃ. ଅ )—ଗୁଗ୍ଗୁଳ
Jātughna —Bdellium.

**ଯାତୁଧାନ**—ସଂ. ବି ( ଯାତୁ=ରାକ୍ଷସ+ଧା ଧାତୁ=ଧାରଣ କରିବା+କର୍ତ୍ତୃ ଅନ)—୧ । ନିଶାଚର; ରାକ୍ଷସ—1. A
Jātudhāna demon. ୨ । ଭୂତ; ପ୍ରେତ—2. Goblin; an evil spirit.

**ଯାତ୍ରୁକ**—ସଂ. ବି ( ଯାତ୍ରୁ+ସ୍ୱାର୍ଥେ. କ )—ପଥିକ—
Jātruka Traveller.

**ଯାତ୍ୟ**—ସଂ. ବିଣ (ଯତ୍ ଧାତୁ ଣିଚ୍ + କର୍ମ.ଯ)—ଯତ୍ନ କରିବା ଯୋଗ୍ୟ;
Jātya ଯତ୍ନଚେଷ୍ଟା—Triable.

**ଯାତ୍ରା**—ସଂ. ବି ( ଯା ଧାତୁ+ଭାବ. ତ୍ର+ଆ )—୧ । ଭ୍ରମଣ; ଗମନ—
Jātrā 1. Going; travelling; moving; journey. ୨ । କୌଣସି ଉଦ୍ଦେଶ୍ୟରେ କୌଣସି ସ୍ଥାନରୁ ବାହାରିବା—2. Setting out; proceeding; beginning a journey for a particular purpose. [ଦ୍ର—ହିନ୍ଦୁ ଜ୍ୟୋତିଷଶାସ୍ତ୍ର ଅନୁସାରେ ଶୁଭକର୍ମ ଓ ଯାତ୍ରା କରିବା ପାଇଁ ଶୁଭ ଓ ଅଶୁଭ ମୁହୂର୍ତ୍ତ ବା ଯୋଗମାନ ନିର୍ଦ୍ଦିଷ୍ଟ ଅଛି । ଯାତ୍ରା କରିବା ମୁହୂର୍ତ୍ତର ଶୁଭାଶୁଭତା ଉପରେ ଉଦ୍ଦେଶ୍ୟଲାଭର ଫଳ ମଧ୍ୟ ନିର୍ଭର କରେ । ବାରବେଳା, କାଳବେଳା, ଯାତ୍ରାବର୍ଜିତ ତିଥି, ବ୍ୟତିପାତ ତିଥି, ବାରଶୂଳ, ଦିକଶୂଳ, ଅଶୁଦ୍ଧକାଳ, ଯାତ୍ରାଶୂଳ, ନିଷିଦ୍ଧ ନକ୍ଷତ୍ର, ଘାତଚନ୍ଦ୍ର, ଦକ୍ଷିଣ ଓ ସମ୍ମୁଖ ଯୋଗିନୀଆଦି ଯୋଗ ଯାତ୍ରାପାଇଁ ଅଶୁଭ । କେତେକ ଯୋଗରେ ଯାତ୍ରା ଏକାବେଳକେ ନିଷିଦ୍ଧ । କେତେକ ଯୋଗରେ ନିର୍ଦ୍ଦିଷ୍ଟ ଦିଗକୁ ଯାତ୍ରା ନିଷିଦ୍ଧ । ଜ୍ୟୋତିଷମତରେ ଶୁଭଯୋଗ ନ ମିଳିଲେ ଶିବାଗୌରୀ ମତରେ ଯାତ୍ରା କରିବା ପାଇଁ ଓ ଉଷାଗୋଧୂଳି ଯାତ୍ରା କରିବା ପାଇଁ ନିୟମ ଅଛି । ] ୩ । କୌଣସି କାର୍ଯ୍ୟର ନିର୍ବାହର ଉପାୟ ବା ଅବଲମ୍ବନ—3. Expedient; means of accomplishment of a certain work or aim. ୪ । ନିର୍ବାହ—4. Performance. ୫ । ଅଭିଯାନ; ଯୁଦ୍ଧାର୍ଥ ଗମନ 5. Expedition or march of an army; invasion. ୬ । ତୀର୍ଥକୁ ଯିବା—6. Starting on a pilgrimage. ୭ । ଯାତ; ଦେବତାଙ୍କ ଉତ୍ସବ—7. A festival of a Deity; a holy ceremony.

[ଦ୍ର—ପୁରୀର ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ବର୍ଷକ ମଧ୍ୟରେ ଅନୁଷ୍ଠିତ ଦ୍ୱାଦଶ ଯାତ୍ରା, ଯଥା—

୧ ଅକ୍ଷୟତୃତୀୟା ବା ଚନ୍ଦନଯାତ୍ରା—ବୈଶାଖ ଶୁକ୍ଳ ତୃତୀୟା । ୨ ଦେବସ୍ନାନ ପୂର୍ଣ୍ଣିମା—ଜ୍ୟେଷ୍ଠ ପୂର୍ଣ୍ଣିମା । ୩ ଶ୍ରୀଗୁଣ୍ଡିଚା ବା ରଥଯାତ୍ରା—ଆଷାଢ଼ ଶୁକ୍ଳ ଦ୍ୱିତୀୟା । ୪ ହରିଶୟନ—ଆଷାଢ଼ ଶୁକ୍ଳ ଦ୍ୱାଦଶୀ । ୫ କର୍କଟ (ଚଡ଼ାଲାଗି) ସଂକ୍ରାନ୍ତି—ଶ୍ରାବଣ ସଂକ୍ରାନ୍ତି । ୬ ପାର୍ଶ୍ୱପରିବର୍ତ୍ତନ—ଭାଦ୍ର ଶୁକ୍ଳ ଏକାଦଶୀ । ୭ ଦେବୋତ୍ଥାନ—କାର୍ତ୍ତିକ ଶୁକ୍ଳ ଏକାଦଶୀ । ୮ ପ୍ରାବରଣ ଷଷ୍ଠୀ—ମାର୍ଗଶିର ଶୁକ୍ଳ ଷଷ୍ଠୀ । ୯ ପୁଷ୍ୟାଭିଷେକ—ପୌଷ ପୂର୍ଣ୍ଣିମା । ୧୦ ମକର ସଂକ୍ରାନ୍ତି-ମାଘ ସଂକ୍ରାନ୍ତି । ୧୧ ଦୋଳଯାତ୍ରା—ଫାଲ୍ଗୁନ ପୂର୍ଣ୍ଣିମା । ୧୨ ଦମନକ ଚତୁର୍ଦ୍ଦଶୀ (ଦଅଣାଚୋରି)—ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ । ସ୍କନ୍ଦପୁରାଣାଦିରେ ବର୍ଣ୍ଣିତ ବର୍ଷକର ୧୨ ମାସର ଦ୍ୱାଦଶ ଯାତ୍ରା ସଙ୍ଗେ ପୁରୀରେ ଅନୁଷ୍ଠିତ ଅଧିକାଂଶ ଯାତ୍ରାମାନଙ୍କର କିଞ୍ଚିତ୍ ପ୍ରଭେଦ ଲକ୍ଷିତ ହୁଏ । ଯଥା—

୧ ଚନ୍ଦନଯାତ୍ରା—ବୈଶାଖ ଶୁକ୍ଳ ତୃତୀୟା । ୨ ସ୍ନାନଯାତ୍ରା—ଜ୍ୟେଷ୍ଠ ପୂର୍ଣ୍ଣିମା । ୩ ରଥଯାତ୍ରା – ଆଷାଢ଼ ଶୁକ୍ଳ ଦ୍ୱିତୀୟା । ୪ ଶୟନଯାତ୍ରା—ଶ୍ରାବଣ ଶୁକ୍ଳ ଦ୍ୱାଦଶୀ । ୫ ଦକ୍ଷିଣପାର୍ଶ୍ୱପରିବର୍ତ୍ତନ—ଭାଦ୍ର ଶୁକ୍ଳ ଏକାଦଶୀ । ୬ ବାମପାର୍ଶ୍ୱପରିବର୍ତ୍ତନ—ଆଶ୍ୱିନ ଶୁକ୍ଳ ଏକାଦଶୀ । ୭ ଉତ୍ଥାନଯାତ୍ରା—କାର୍ତ୍ତିକ ଶୁକ୍ଳ ଏକାଦଶୀ । ୮ ପ୍ରାବରଣଯାତ୍ରା—ମାର୍ଗଶିର ଶୁକ୍ଳ ଷଷ୍ଠୀ । ୯ ପୁଷ୍ୟାଭିଷେକ—ପୌଷ ପୂର୍ଣ୍ଣିମା । ୧୦ ଶାଲ୍ୟୋଦନ ( ନୂଆଖିଆ )—ମକର ସଂକ୍ରାନ୍ତି ବା ମାଘ ସଂକ୍ରାନ୍ତି । ୧୧ ଦୋଳଯାତ୍ରା—ଫାଲ୍ଗୁନ ପୂର୍ଣ୍ଣିମା । ୧୨ ମଦନଭଞ୍ଜିକା ବା ଦମନକ ଭଞ୍ଜିକା—ଚୈତ୍ର ଶୁକ୍ଳ ତ୍ରୟୋଦଶୀ ।

ଭୁବନେଶ୍ୱରର ଶ୍ରୀ ଲିଙ୍ଗରାଜ ମହାପ୍ରଭୁଙ୍କର ବର୍ଷକ ମଧ୍ୟରେ ଅନୁଷ୍ଠିତ ଚତୁର୍ଦ୍ଦଶ ଯାତ୍ରା, ଯଥା -

୧ ଅକ୍ଷୟତୃତୀୟା—ବୈଶାଖ ଶୁକ୍ଳ ତୃତୀୟା । ୨ ପରଶୁରାମାଷ୍ଟମୀ—ଆଷାଢ଼ ଶୁକ୍ଳାଷ୍ଟମୀ । ୩ ଶୟନ ଚତୁର୍ଦ୍ଦଶୀ-ଆଷାଢ଼ ଶୁକ୍ଳ ଚତୁର୍ଦ୍ଦଶୀ । ୪ ପବିତ୍ରାରୋପଣ—ଶ୍ରାବଣ ଶୁକ୍ଳ ଚତୁର୍ଦ୍ଦଶୀ । ୫ ଯମ ଦ୍ୱିତୀୟା—କାର୍ତ୍ତିକ ଶୁକ୍ଳ ଦ୍ୱିତୀୟା । ୬ ଶିବୋତ୍ଥାପନ—କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ । ୭ ପ୍ରଥମାଷ୍ଟମୀ-ମାର୍ଗଶିର କୃଷ୍ଣାଷ୍ଟମୀ । ୮ ପ୍ରାବରଣ ଷଷ୍ଠୀ—ମାର୍ଗଶିର ଶୁକ୍ଳ ଷଷ୍ଠୀ । ୯ ପୁଷ୍ୟାଭିଷେକ—ପୌଷ ପୂର୍ଣ୍ଣିମା । ୧୦ ମକର ଯାତ୍ରା—ମାଘ କୃଷ୍ଣ ଚତୁର୍ଦ୍ଦଶୀ । ୧୧ ମାଘ ସପ୍ତମୀ—ମାଘ ଶୁକ୍ଳ ସପ୍ତମୀ । ୧୨ ଶିବରାତ୍ରି—ଫାଲ୍ଗୁନ କୃଷ୍ଣ ଚତୁର୍ଦ୍ଦଶୀ । ୧୩ । ଅଶୋକାଷ୍ଟମୀ—ଚୈତ୍ର ଶୁକ୍ଳ ଅଷ୍ଟମୀ । (ଲିଙ୍ଗରାଜଙ୍କ ରଥଯାତ୍ରା) ୧୪ ଦମନକ ଚତୁର୍ଦ୍ଦଶୀ-ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ ।]

୮ । ଧର୍ମସମ୍ବନ୍ଧୀୟମେଳା - 8 A religious fair. ୯ । ବ୍ୟବହାର; ଅଭ୍ୟାସ; ପ୍ରଥା—9. Practice; custom. ୧୦ । ନୃତ୍ୟବାଦ୍ୟାଦି ସହିତ ସାଡ଼ମ୍ବର ଯାତ୍ରା; ଶୋଭାଯାତ୍ରା—10. A procession; festive train. ୧୧ । ନୌକାଦିଦ୍ୱାରା ଯିବା—11. Voyage. ୧୨ । ସମୟ ଯାପନ; ଅତିବାହନ ବା କ୍ଷେପଣ—12. The passing away of time. ୧୩(+ କର୍ତ୍ତୃ. ତ୍ର+ଆ) ତୀର୍ଥଯାତ୍ରୀଦଳ—13. A company of pilgrims (Apte). ୧୪ ।

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇଯ୍ଁ | ଉଅ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଙ | ନ୍ତ |

(+ଅଧିକରଣ. ତ୍ର+ଅ)—ପଥ—14. Road (Apte). ୧୫। ଜୀବନଯାତ୍ରା; ପେଷା; ବୃତ୍ତି; ଜୀବିକା; ଭରଣପୋଷଣ—15. Support of life, livelihood; maintenance (Apte) ୧୬ । ଏକପ୍ରକାର ନାଟକାଭିନୟ—16. A kind of dramatic performance (Apte). ୧୭ । ସହବାସ—17. Intercourse (Apte). ୧୮ । (+କରଣ. ତ୍ର+ଅ)—ଉପାୟ—18. Means; expedient (Apte). ୧୯ । ଯାନ—19. A vehicle in general (Apte). ଦେ. ବି—୧ । ଯାତରା; ପଟହୀନ ଗ୍ରାମ୍ୟ ନାଟ୍ୟାଭିନୟ; ନୃତ୍ୟଗୀତାଦି ଅଭିନୟ; ଯେଉଁ ନୃତ୍ୟଗୀତାଦିରେ ଓ ଅଭିନୟରେ ରଙ୍ଗମଞ୍ଚ ପ୍ରସ୍ତୁତ କରିବାକୁ ହୁଏ ନାହିଁ ଓ ଅଭିନେତୃଗଣଙ୍କ ସାଜସଜ୍ଜା ପ୍ରତି ନାଟକାଭିନୟ ଭଳି ଦୃଷ୍ଟି ଦିଆଯାଏ ନାହିଁ—1. A musical or theatrical performance and dancing without a stage; pantomime [ ଦ୍ର—ଆନନ୍ଦ ଉପଭୋଗ କରିବାର ବାସନା ପ୍ରତ୍ୟେକ ପ୍ରାଣୀଙ୍କର ଅଛି । ମାନବ ଏ ସଂସାର ଯାତ୍ରା ନିର୍ବାହ କରୁଛି କାହିଁକି ? କେବଳ ସୁଖଭୋଗ ପାଇଁ ସିନା । ମାନବ ଗୋଟିଏ ଜୀବନହୀନ ସମ୍ମୂର୍ତ୍ତ ଜଡ଼ବସ୍ତୁ ନୁହେଁ । ମାନବ ସର୍ବଦା ସୁଖାଭିଳାଷୀ । ସୁଖାନ୍ୱେଷଣ ମାନବର ପ୍ରକୃତି । କୌଣସି ଲୋକ ଦୁଃଖ ଲୋଡ଼େ ନାହିଁ । ମାନବ ଯେଉଁ ସୁଖାନ୍ୱେଷଣ କରେ ସେ ସୁଖର ଆକାର ପ୍ରକାର ଅସୀମ । ସୁଖ ଦୁଃଖ ଦୁଇଟି ପ୍ରକୃତ ବିଭିନ୍ନ ବସ୍ତୁ ନୁହେ । ସୁଖ ଦୁଃଖ, ଏ ଦୁଇଟି ମାନବ ମନର ଦୁଇଟି ବିକୃତ ଅବସ୍ଥା ମାତ୍ର । ଜଣେ ଯାହାକୁ ସୁଖ ବୋଲି ମନେକରେ ଅନ୍ୟ ଜଣେ ତାକୁଇ ଦୁଃଖ ବୋଲି ମନେକରେ । ମାନବ ସଂସାରର କ୍ଷଣିକ ସୁଖରେ ଜଡ଼ିତ ହୋଇଯାଏ । କାହାର କେଉଁ ବିଷୟରୁ ସୁଖଲାଭ ହୁଏ ତାହାର ଇୟତ୍ତା କରି ହେବ ନାହିଁ । ସୁଖଦାୟକ ବସ୍ତୁ ମଧ୍ୟରେ ନୃତ୍ୟ-ଗୀତ-ବାଦ୍ୟ ଗୋଟିଏ । ଏଥିରେ ଅଧିକାଂଶ ଲୋକ ସୁଖାନୁଭବ କରନ୍ତି ଏବଂ ତଦ୍ଦ୍ୱାରା ଆକୃଷ୍ଟ ହୁଅନ୍ତି । ଶ୍ରମାପନୋଦନ ପାଇଁ ଏହା ପ୍ରକୃଷ୍ଟ ଉପାୟ । ଅବସରବେଳେ ସଙ୍ଗୀତ ଆସି ମନରେ ସ୍ୱତଃ ଉଦିତ ହୁଏ । ମନୁଷ୍ୟ ଆଉ କିଛି ନ ପାଇଲେ ନିଜେ ଗୀତ ଗାଏ ଏବଂ ତାକୁ ଅନ୍ୟ କିଛି ଯନ୍ତ୍ର ନ ମିଳିଲେ ହାତରେ ତାଳ ପକାଏ । ଭ୍ରମର ଗୋଟିଏ ଛଟ ଅଛି, ମନ ଫୁଲିଣିଆ ଗୀତ ଗାଏ । ପୃଥିବୀର ସକଳ ଜାତି ଓ ସକଳ ଶ୍ରେଣୀର ଲୋକଙ୍କର ଉଣାଅଧିକେ ଉନ୍ନତ ଅବନତ ଅବସ୍ଥା ରହି ଥିଲା ଓ ଥିବ । କିନ୍ତୁ ମାନବସମାଜର ଏ ସଙ୍ଗୀତପ୍ରିୟତା କେବେ ଲୋପ ପାଇବ ନାହିଁ । ସଭ୍ୟ ଜଗତ୍ ହେଉ ବା ଅସଭ୍ୟ ଜଗତ୍ ହେଉ, ସଙ୍ଗୀତ ସର୍ବତ୍ର ଆଦୃତ । କାର୍ଯ୍ୟ କରୁଥିବାବେଳେ ବା କାର୍ଯ୍ୟରୁ ଅବସର ନେଲାବେଳେ ମନୁଷ୍ୟର ମୁହଁରୁ ସଙ୍ଗୀତ ସ୍ରୋତ ସ୍ୱତଃ ଫିଟିଯାଏ । ଆମ ଉତ୍କଳ ପ୍ରଦେଶରେ ସକଳ ଶ୍ରେଣୀର ଲୋକେ ସଙ୍ଗୀତପ୍ରୟାସୀ । ହଳୁଆ ହଳ କରୁଛି ଅଥଚ ଗୀତ ଗାଉଛି । ପାଣିବୁହାଳମାନେ ପାଣି ବୁହାଉ ଅଛନ୍ତି ଅଥଚ ଗୀତ ଗାଉଛନ୍ତି; ଶଗଡ଼ିଆ ଶଗଡ଼ ବୁହାଉଛି ଓ ଗୀତ ଗାଉଛି । ଏହାଦ୍ୱାରା ଶଗଡ଼ିଆ, ହଳୁଆ ଓ ପାଣିବୁହାଳଙ୍କ ମନ ପ୍ରଫୁଲ୍ଲ ହେଉଛି । ଏ ଗୁଡ଼ିକ ଗ୍ରାମ୍ୟ ସାହିତ୍ୟ-ସଙ୍ଗୀତ । ଓଡ଼ିଆ ସାହିତ୍ୟର ଏ ଗୁଡ଼ିକ ମୂଳଦୁଆ । ଏ ସବୁ କୌଣସିଠାରେ ପୁସ୍ତକରେ ଲିଖିତ ହୋଇ ନାହିଁ । ଲୋକଙ୍କ ମୁହେଁ ମୁହେଁ ଅଛି । ଏହାର ଉଚ୍ଚତର ସ୍ତର ହେଉଛି ଭାଗବତ ଘରର ଭଜନ, କୀର୍ତ୍ତନ, ପୁରାଣ ପାଠ ଇତ୍ୟାଦି । ଲୋକ କେବଳ ଏତିକିରେ ସନ୍ତୁଷ୍ଟ ରହେ ନାହିଁ, ଟିକିଏ ରଙ୍ଗରହସ୍ୟ ମଧ୍ୟ ଲୋଡ଼େ । ଏହି ରଙ୍ଗ ରହସ୍ୟରୁ ଯାତ୍ରାର ଉତ୍ପତ୍ତି । ଯାତ୍ରାରେ କେବଳ ରଙ୍ଗ ରହସ୍ୟ ନ ଥାଏ, ନାନା ପୌରାଣିକ ଆଖ୍ୟାନ ସଙ୍ଗେ ସଙ୍ଗେ ରଙ୍ଗରହସ୍ୟମିଶ୍ରିତ ଥାଏ । ପାଲା, ଶବରଶବରୁଣୀଙ୍କ ଯାତ୍ରା, ମଧୁମଙ୍ଗଳ, ଚଇତିଘୋଡ଼ା, ରାମଲୀଳା, ଭାରତଲୀଳା, ପାଠୁଆଯାତ୍ରା, ଝାମୁଯାତ ପ୍ରଭୃତି ଆମଦେଶର ମୌଳିକ ଓ ଲୌକିକ ଯାତ୍ରା । ଏ ସବୁ ଯାତ୍ରାରେ ଓଡ଼ିଆ ସଙ୍ଗୀତର ବା ପଦ୍ୟର ମୌଳିକତା ଦେଖାଯାଏ । କ୍ରମବିକାଶ ଜଗତର ନିୟମ । ପଦ୍ୟକୁ ଗୀତରେ ଗାଇ ହେବ; ଗଦ୍ୟକୁ ଗୀତରେ ଗାଇ ହେବ ନାହିଁ । ଗୀତ ଜନସାଧାରଣଙ୍କ ମନକୁ ଯେଉଁପରି ଆକୃଷ୍ଟ କରେ ଗଦ୍ୟ ସାହିତ୍ୟ ସେପରି ଆକର୍ଷଣ କରି ପାରେ ନାହିଁ । ପଦ୍ୟ ରଚନା ସହଜ ନୁହେ । କବିମାନେ ଗୀତ ବାନ୍ଧନ୍ତି । ସମାଜରେ ସମସ୍ତେ କବି ନୁହନ୍ତି । ଲୋକସାଧାରଣ ମଧ୍ୟରେ କି ପ୍ରକାର କବିତା ପ୍ରଚଳିତ ଥିଲା ତହିଁର ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଦେଲେ ପାଠକମାନେ ବୁଝି ପାରିବେ । "ଶୃଙ୍ଖଳ ଭାଙ୍ଗିଲି ଝାଇଁ (କା ପୋଖରୀରେ ରଙ୍ଗ କଇଁ) ଡାକି ଡାକି ମୋର ତଣ୍ଟି ଶୁଖିଗଲା, ସାଆନ୍ତ ଶୁଣିଲେ ନାହିଁ ।" ଏଥିରୁ ଦେଖାଯାଏ, ପ୍ରକୃତ କଥା ପ୍ରକାଶ କରିବାକୁ ଯାଇ ଗାୟକ ଏଥିରେ ଅନାବଶ୍ୟକ ପ୍ରଥମ ପାଦ ଯୋଡ଼ିଅଛି । ଯେତେବେଳେ ଲୋକେ ପାଠ ପଢ଼ି ପଣ୍ଡିତ ହୋଇ ନ ଥିଲେ, ଯେତେବେଳେ ଲୋକସାଧାରଣ ମଧ୍ୟରେ ଉଚ୍ଚ ଶିକ୍ଷା ପ୍ରବେଶ କରି ନ ଥିଲା, ଲୋକଙ୍କର ରଚନାଶକ୍ତି ଯେତେବେଳେ ପରିପକ୍ୱ ହୋଇ ନ ଥିଲା, ସେତେବେଳେ ଉପର୍ଯ୍ୟୁକ୍ତ ପ୍ରକାରର ରଚନାମାନ ପ୍ରଚଳିତ ଥିଲା । ଏଗୁଡ଼ିକ ସୁଗ୍ରଥିତ ହୋଇ

ସାଇତା ହେବା ଆବଶ୍ୟକ । ବିଲାତରେ ଉଷର ପ୍ରଭୃତିଙ୍କ ଲେଖାର ଯେଉଁ ସ୍ଥାନ, ଆମ ଦେଶର ଏ ଗୀତମାନଙ୍କର ସେହି ସ୍ଥାନ । ଲୋକେ ଏ ସବୁ ଗୀତ ତାତ୍କାଳିକ ରଚନା କରି ଗାଇ ଯାଆନ୍ତି । ଏଥିରୁ ଲୋକସାଧାରଣଙ୍କ କବିତା-ଶକ୍ତିର ପରିଚୟ ମିଳେ । ବୈଶ୍ୟ ହରି, ସଦାଶିବ ପ୍ରଭୃତି କବିମାନେ ଯାତ୍ରା ପାଇଁ ଗୀତ ରଚନା କରୁଥିଲେ । ଯାତ୍ରା-ମାନଙ୍କରେ ଏହି ସବୁ ଗୀତ ବୋଲା ଯାଉଥିଲା । ଯାତ୍ରା-ଗୁଡ଼ିକ ବ୍ୟୟସାପେକ୍ଷ ନ ଥିଲା । ଯାତ୍ରାପାଇଁ ରଙ୍ଗମଞ୍ଚର ଆବଶ୍ୟକତା ନ ଥିଲା, ସାଜସଜ୍ଜାର ବିଶେଷ ଆବଶ୍ୟକତା ନ ଥିଲା, ଉଚ୍ଚ ମୂଲ୍ୟର ବାଦ୍ୟ ଯନ୍ତ୍ରର ଆବଶ୍ୟକତା ନ ଥିଲା, କିମ୍ବା ବିଜୁଳି ତେଜାସ୍ପ୍ରାନ୍ ଆଲୋକର ଆବଶ୍ୟକତା ନ ଥିଲା । ଯାତ୍ରାର ଆଲୁଅ ମଶାଲ; ବାଦ୍ୟ ପଖାଉଜ, କରତାଳ, ଗିନି, ମୃଦଙ୍ଗ, ଡୁମରି, ଖଞ୍ଜଣୀ, ଝାଞ୍ଜ; ସାଜସଜ୍ଜା ମଧ୍ୟରେ ଶାଢ଼ି, ପାଟ, ଖଣ୍ଡୁଆ, ଚଡ଼ୁ, ପାହୁଡ଼, ନୋଥ, ଗୁଣା ଅଳଙ୍କାର, ଯାହା ସମସ୍ତଙ୍କ ଘରୁ ମିଳିବ, ଓ ଯାହା ଧାର କରିଆଣି ଯାତ୍ରା ପରେ ଫେରାଇ ଦିଆଯିବ; ସାବୁନ୍ ବା ପାଉଡର୍ ନ ଥିଲା । ରଙ୍ଗ ମଧ୍ୟରେ ହଳଦି, କଳା, ସିନ୍ଦୂର, ଯାହା ମଫସଲର ପଲ୍ଲୀରେ ସହଜରେ ସୁବିଧାରେ ମିଳିବ । ଏସବୁ ଥିଲା ଯାତ୍ରାର ପ୍ରଧାନ ସାମଗ୍ରୀ । ରଙ୍ଗମଞ୍ଚ ପରିବର୍ତ୍ତେ ନଡ଼ିଆ, ବରଡ଼ା ଗୁଣ୍ଠ, ନଭୁବା କିଛିସ । ଦେବା ନେବା ବିଷୟରେ ଲୁଗା ପଇସା, ଯାହାର ଯାହା ଇଚ୍ଛା ସେ ତାହା ଦେଉ ଥିଲା; ବିଷୟ ଥିଲା ରାମାୟଣ, ମହାଭାରତ, ମଥୁରାମଙ୍ଗଳ । ଏହିସବୁ ଶାସ୍ତ୍ରକୁ ଅବଲମ୍ବନ କରି ଯାତ୍ରା ଉପ-ଯୋଗୀ ଲେଖା ପ୍ରକାଶିତ ହେଉଥିଲା । ଲୋକସାଧାରଣ ଏତ-ଦ୍ଦ୍ୱାରା ସେମାନଙ୍କ କୌତୂହଳ ଚରିତାର୍ଥ କରୁଥିଲେ । ରାମ ଓ କୃଷ୍ଣଙ୍କ ଚରିତ୍ର ନେଇ ନାନାପ୍ରକାର ଯାତ୍ରାମାନ ହେଉଥିଲା । ଏହାଛଡ଼ା ସତ୍ୟନାରାୟଣ ବା ସତ୍ୟପୀରଙ୍କ ପୂଜା ପୋଥିଦ୍ୱାରା ଓ ନୃତ୍ୟ ଗୀତାଦିଦ୍ୱାରା ବୋଲାଯାଉଥିଲା । ଏହା ଯଥା-କ୍ରମେ ପୋଥିପାଲା ଓ ଠିଆପାଲା ନାମରେ ଅଭିହିତ । ପାଲାର ଗାୟକମାନେ ଅଗାଧ ପାଣ୍ଡିତ୍ୟ ଲାଭ କରୁଥିଲେ । ଏତଦ୍ଦ୍ୱାରା ଲୋକସମାଜରେ ବିଦ୍ୟାଚର୍ଚ୍ଚା, ଧର୍ମଚର୍ଚ୍ଚା, ନୀତି-ଚର୍ଚ୍ଚା ଓ ସଙ୍ଗେ ସଙ୍ଗେ ସଙ୍ଗୀତଚର୍ଚ୍ଚା ହେଉଥିଲା । ଲୋକେ ନିରକ୍ଷର ଥାଇ ମଧ୍ୟ ବହୁତ କଥା ଶୁଣୁ ଥିଲେ, ଜାଣୁଥିଲେ, ମନେ ରଖୁଥିଲେ, ଏବଂ ତଦ୍ଦ୍ୱାରା ଲୋକଙ୍କ ମଧ୍ୟରେ ଧର୍ମଭାବ ସତତ ଜାଗ୍ରତ ରହୁଥିଲା । ପାଲାବାଲାମାନେ ବହୁତ ଶାସ୍ତ୍ର ମୁଖସ୍ଥ କରୁଥିଲେ । ପରଦା ଭିତରୁ ଅଭିନେତା ବା ଗାୟକଙ୍କୁ ମନେ ପକାଇ ଦେବା (Prompt କରିବା) ପ୍ରଥା ନ ଥିଲା । ସ୍କୁଲ କଲେଜ ଶିକ୍ଷା ନ ପାଇ, ଅକ୍ଷରଜ୍ଞାନ ନ ଥାଇ ମଧ୍ୟ ଯାତ୍ରାଦଳଙ୍କ ମୁଖରୁ ରାମାୟଣ, ମହାଭାରତ, ଭାଗବତ, ଅଷ୍ଟାଦଶ ପୁରାଣ ଆଦିର କଥା ଶୁଣି ଲୋକେ ବହୁତ ଜ୍ଞାନ ଲାଭ କରୁଥିଲେ । ଏହାଦ୍ୱାରା ଧର୍ମକଥା, ନୀତି-କଥା ସେମାନଙ୍କ କାନରେ ପଡ଼ୁଥିଲା; ଆମୋଦ ପ୍ରମୋଦ ସଙ୍ଗେ ସଙ୍ଗେ ଧର୍ମଶିକ୍ଷା, ନୀତିଶିକ୍ଷା ହେଉଥିଲା । ପଲ୍ଲୀବାସୀ ନିରକ୍ଷର ବ୍ୟକ୍ତି ଶୁଣି ଶୁଣି ବହୁତ କଥା ଜାଣେ ଏବଂ ବହୁତ ଅଭିଜ୍ଞତା ଲାଭ କରେ, ବହୁତ କଥା ମନେ ରଖେ, କଥା ପଡ଼ିଲେ ବହୁତ କଥା ଆବୃତ୍ତି କରେ । ଯାତ୍ରାରେ ହାସ୍ୟ ରସ ପ୍ରଧାନ ଅଭିନେତା ଥିଲା ହାଡ଼ି । ହାଡ଼ିମୁଖରେ ସକଳ ପ୍ରକାର ରଙ୍ଗରହସ୍ୟ, ଥଟ୍ଟା ତାମସା ପ୍ରକାଶ କରା-ଯାଏ ଓ ତଦ୍ଦ୍ୱାରା ଶ୍ରୋତୃସମାଜରେ ହାସ୍ୟରସର ଉଦ୍ରେକ ହୁଏ । ହାସ୍ୟରସ ଗୋଟିଏ ପ୍ରଧାନ ରସ । ଶୃଙ୍ଗାର, କରୁଣ, ବୀଭତ୍ସ, ବୀର, ହାସ୍ୟ, ଭୟାନକ ପ୍ରଭୃତି ଯେତେ ରସ ଅଛି ତହିଁ ମଧ୍ୟରୁ ହାସ୍ୟରସ ଶୁଣି ଲୋକେ ବିଶେଷ ମୁଗ୍ଧ ହୁଅନ୍ତି । ଅନ୍ୟାନ୍ୟ ରସ ଶୁଣି ଶୁଣି ଯେବେ ମନରେ ବିରକ୍ତି ବା ଅବସାଦ ଆସେ ସେତେବେଳେ ହାସ୍ୟରସ ପୁନର୍ବାର ମନକୁ ଆନନ୍ଦ ଉତ୍‌ଫୁଲ୍ଲ କରିଦିଏ; ଏଥି ସକାଶେ ଯାତ୍ରା ପ୍ରଭୃତିରେ ହାସ୍ୟରସର ବିଶେଷ ଆବଶ୍ୟକତା । ହାସ୍ୟରସ ବଡ଼ ଉପାଦେୟ ରସ । ତହିଁର ମାତ୍ରା ଅତିରିକ୍ତ ହୋଇଗଲେ ଲୋକେ ତାକୁ ଅଶ୍ଳୀଳ ବୋଲି କହନ୍ତି । ଯାତ୍ରା-ମାନଙ୍କରେ ହାଡ଼ି କିଛିଏ ରସିକତାର ମାତ୍ରା ବଳାଇ ପକାଏ ଓ କଥାଗୁଡ଼ାକ ଖୋଲା ଓ ଅସଂଯତ ଭାଷାରେ କହି ପକାଏ; ଅଙ୍ଗ-ଭଙ୍ଗୀ କିଛିଏ ଅତିରିକ୍ତ ମାତ୍ରାରେ କରେ; କଥା କହିଲାବେଳେ ପାତ୍ରାପାତ୍ରର ବିବେଚନା ରଖେନାହିଁ । ତାର କେବଳ ଲକ୍ଷ୍ୟ, କଥା ଶୁଣିଲେ ଲୋକେ ହୋ ହୋ ହୋଇ ହସିବେ । ଏହି ସବୁ କାରଣରୁ ଆମ ପ୍ରାଚୀନ ଯାତ୍ରାଗୁଡ଼ିକ ଆଧୁନିକ ନବ୍ୟସଭ୍ୟମାନଙ୍କ ରୁଚିସମ୍ମତ ହେଉ ନାହିଁ । ଯେଉଁ-ମାନେ ରଙ୍ଗମଞ୍ଚରେ ନାଟକାଭିନୟ ପ୍ରଭୃତି ଦେଖୁଛନ୍ତି ସେମାନେ ଦେଶୀୟ ଯାତ୍ରାକୁ ପସନ୍ଦ କରୁ ନାହାନ୍ତି, ଘୃଣାଚକ୍ଷୁରେ ଦେଖୁଛନ୍ତି ଏବଂ ସେଗୁଡ଼ିକର ଲୋପ ବାଞ୍ଛା କରୁଅଛନ୍ତି । ଏପରି ଅବସ୍ଥାରେ ଆମ୍ଭମାନଙ୍କ କର୍ତ୍ତବ୍ୟ କଅଣ ? ଦେଶର ଏହିପରି ପରିସ୍ଥିତି ଥିଲାବେଳେ ଏଦେଶକୁ ରେଳ ଆସିଲା । ଲୋକେ କଲିକତା ଯାଇ ସେଠାରେ ରଙ୍ଗମଞ୍ଚ ପ୍ରଭୃତି ଦେଖିଲେ, ରଙ୍ଗମଞ୍ଚରେ ନାଟକାଭିନୟ ଦେଖୁ ଦେଖୁ କ୍ରମେ ତହିଁ ପ୍ରତି ଆକୃଷ୍ଟ ହେଲେ । କ୍ରମେ ଏ ଦେଶର ଯାତ୍ରାଦଳ ଭିତରେ କିଛିଏ ସଂସ୍କାର ପ୍ରବେଶ କଲା । ପ୍ରଥମ ସଂସ୍କାରପ୍ରବର୍ତ୍ତକ ବୈଷ୍ଣବ ପାଣି ଅଟନ୍ତି । ସେ ଅନେକଗୁଡ଼ିଏ ଗୀତାଭିନୟ ଲେଖି ପ୍ରଚାର କଲେ ଏବଂ ପୋଷାକପତ୍ର, ଯନ୍ତ୍ର ପ୍ରଭୃତି ଓ ବଚନକାରେ କିଛିଏ ଆଧୁନିକ ଧରଣ ପ୍ରବେଶ କରାଇଲେ । ଆଉ କେତେଜଣ ତାଙ୍କ ସମସାମୟିକ (ଗୋପାଳ ଦାସ ଆଦି) ଏଦିଗରେ ବ୍ରତୀ ହେଲେ । ଏମାନେ ଉଚ୍ଚଶିକ୍ଷିତ ହୋଇ ନ ଥିବାରୁ ମଧ୍ୟ ଯୁଗୋଚିତ

ପ୍ରତି ସଂସ୍କାର ଆଣି ପାରିଲେ ନାହିଁ । ଏମାନେ ନାଟକୀୟ ରୀତିର ଅନେକ ଅନୁକରଣ କରିବାକୁ ଆରମ୍ଭ କଲେ । ଏମାନେ ପ୍ରଥମେ କେବଳ ଗୀତରେ ଅଭିନୟ ଦେଖାଇଲେ ପରେ କିଛି କିଛି ଗଦ୍ୟ ଭାଷା ବ୍ୟବହାର କଲେ । ଏମାନଙ୍କ ପରେ କବି ବାଳକୃଷ୍ଣ ମହାନ୍ତି କେତେଗୁଡ଼ିଏ ଗୀତାଭିନୟ ଲେଖିଲେ । ଏ ମହାଶୟ ଗୀତାଭିନୟକୁ ନାଟକ ଛାଞ୍ଚରେ ଢାଳିବାକୁ ଚେଷ୍ଟା କଲେ । ଏହାଙ୍କ ଲେଖାରେ ଗଦ୍ୟାଂଶର ବହୁଳତା ଦେଖାଗଲା ଏବଂ ନାଟକୀୟ ଛଟା, ପୋଷାକ ଓ ଯନ୍ତ୍ର ପ୍ରଭୃତିର ବହୁଳ ଆବଶ୍ୟକତା ଦେଖାଗଲା, ତଥାପି ଏ ସମସ୍ତ ପରିବର୍ତ୍ତନ ଆଧୁନିକ ରୁଚିର ପ୍ରତି ଅନୁମୋଦିତ ହେଲା ନାହିଁ ଓ ଶିକ୍ଷିତ ସମାଜର ପୂର୍ଣ୍ଣ ଦୃଷ୍ଟି ଆକର୍ଷଣ କରି ପାରିଲା ନାହିଁ । କ୍ରମେ ଦେଶରେ ସ୍ଥାନେ ସ୍ଥାନେ ନାଟକାଭିନୟର ସୂତ୍ରପାତ ହେଲା । ପ୍ରଥମେ ସ୍ୱର୍ଗୀୟ ଡାକ୍ତର ଗଗନ ବାବୁ ପୁରୀ ସହରରେ ନାଟକାଭିନୟ ଆରମ୍ଭ କଲେ । ଏହି ଅନୁଷ୍ଠାନ ଆଜି ଜଗନ୍ନାଥ କ୍ଲବ୍ ନାମରେ ପରିଚିତ । ଗଗନ ବାବୁଙ୍କ ପରେ ସ୍ୱର୍ଗୀୟ ବନମାଳୀ ପତି ମହାଶୟ ବଲଙ୍ଗାଠାରେ ଗୋଟିଏ ନାଟକାଭିନେତୃ-ଦଳର ସୃଷ୍ଟି କଲେ । ସେ ମହାଶୟ ଏହି ନାଟକ ଦଳକୁ ଓଡ଼ିଶାର ନାନା ସ୍ଥାନକୁ ପଠାଇ ନାଟକାଭିନୟ ଦେଖାଇଲେ, କିନ୍ତୁ ସେ ଏଥିରେ ଲାଭବାନ୍ ହୋଇ ପାରିଲେ ନାହିଁ । ବହୁତ କ୍ଷତିଗ୍ରସ୍ତ ହୋଇ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ସେ ଏ ଦଳକୁ ବଞ୍ଚାଇ ରଖିଥିଲେ । ପରେ ତାଙ୍କ ଉତ୍ତରାଧିକାରୀମାନେ ଏ ରଙ୍ଗମଞ୍ଚ ଓ ସାଜସଜ୍ଜାକୁ ବିକ୍ରି କରି ଦେଲେ । କଟକରେ ଏହି ଦଳ ଯାଇ ଆର୍ଟ ଥିଏଟର ନାମରେ ପରିଚିତ ହେଲେ ଓ କେତେକ ବର୍ଷ ପରେ ମ୍ରିୟମାଣ ଅବସ୍ଥାକୁ ଆସିଲେ । ପୁରୀର ଶ୍ରୀ ମୋହନଗୋସ୍ୱାମୀ, ଶ୍ରୀ ଗୋବିନ୍ଦଚନ୍ଦ୍ର ସୁରଦେଓ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ଅଶ୍ୱିନୀ ବାବୁ ଗୋଟିଏ ଗୋଟିଏ ନାଟକଦଳ ସୃଷ୍ଟି କରିଅଛନ୍ତି, କିନ୍ତୁ ଶିକ୍ଷିତ ଓ ଧନୀକମାନଙ୍କଠାରୁ ସମୁଚିତ ସମାଦର ନ ପାଇବାରୁ ସେ ଦଳମାନ ମୃତ ବା ମ୍ରିୟମାଣ । ଫଳତଃ ଓଡ଼ିଶାର କୌଣସି ଅଞ୍ଚଳରେ ଏ ପର୍ଯ୍ୟନ୍ତ ଗୋଟିଏ ସ୍ଥାୟୀ ନାଟକ ଦଳ ସ୍ଥାୟୀ ହୋଇ ପାରିଲା ନାହିଁ । ଇତିମଧ୍ୟରେ କେତେକ ଲେଖକ ନାଟକ ଲେଖିବା ପାଇଁ ମନ ବଳାଇଲେ । କଟକର ଅଶ୍ୱିନୀ ବାବୁ କେତେଗୁଡ଼ିଏ ନାଟକ ଲେଖିଅଛନ୍ତି ଓ ସେମାନ କଟକର ଆର୍ଟ ଥିଏଟରରେ ଅଭିନୀତ କରାଇଅଛନ୍ତି । ଅଶ୍ୱିନୀ ବାବୁଙ୍କ ଲେଖାଗୁଡ଼ିକ ମୋଟ ଉପରେ ଭଲ ହୋଇ ପାରେ, ମାତ୍ର ଅନେକ ସ୍ଥଳରେ ଓଡ଼ିଆ ଭାଷାର ରୀତିଗତ ବ୍ୟବହାର (idiomatic use) ସର୍ବଜନସମ୍ମତ ନୁହେଁ । ଉତ୍କଳର ଅନେକ ସ୍ଥାନରେ ସୌଖୀନ ନାଟକ ଦଳର ସୃଷ୍ଟି ହେଲା । ସ୍କୁଲ କଲେଜର ଛାତ୍ରମାନେ ଇତିମଧ୍ୟରେ ସୌଖୀନ୍ ନାଟକାଭିନୟ କରୁଅଛନ୍ତି । ଯାତ୍ରାଦଳମାନେ ଏହି ସବୁ ପାରିପାର୍ଶ୍ୱିକ ଅବସ୍ଥା ଦେଖି ଅଳ୍ପେ ଅଳ୍ପେ ସଂସ୍କୃତ ହେବାକୁ ଚେଷ୍ଟା କରୁଅଛନ୍ତି, ମାତ୍ର ସେମାନେ ସେପରି ଶିକ୍ଷା ଦୀକ୍ଷା ପାଇ ପାରୁ ନାହାନ୍ତି, କିମ୍ବା ଅର୍ଥ ସାହାଯ୍ୟ ପାଇ ପାରୁ ନାହାନ୍ତି । ଏସବୁ ଅନୁଷ୍ଠାନ ପୂର୍ଣ୍ଣରୂପେ ଆଧୁନିକ ରୁଚିସମ୍ମତ କରି ଗଢ଼ିବାକୁ ହେଲେ ପ୍ରଭୂତ ଧନବଳ ଓ ଜନବଳ ଆବଶ୍ୟକ । ଓଡ଼ିଶାରେ ରଙ୍ଗମଞ୍ଚ ସ୍ଥାୟୀ ହେବା ସହଜ ନୁହେଁ । ରଙ୍ଗମଞ୍ଚ ବହୁ ବ୍ୟୟସାଧ୍ୟ । ବହୁତ ପଇସା ଦେଇ ପ୍ରତିଦିନ ନାଟ କୀର୍ତ୍ତନଆଦିର ଅଭିନୟ ଦେଖିବା ଲୋକ ଓଡ଼ିଶାରେ ବେଶି ନାହାନ୍ତି । ସୁତରାଂ ରଙ୍ଗମଞ୍ଚ ସ୍ଥାୟୀଭାବରେ ଓଡ଼ିଶାରେ ତିଷ୍ଠିବ ନାହିଁ । ଅଥଚ ଦେଶରେ ଲୋକମାନେ ଆମୋଦ ପ୍ରମୋଦ, ରଙ୍ଗ ରହସ୍ୟ ଛାଡ଼ି ପାରିବେ ନାହିଁ; ଏଥିପାଇଁ ଅଳ୍ପ ପଇସା ଖରଚ କରି ବାୟୋସ୍କୋପ, ସିନେମା, ଠଟ୍ଟା ଆଡ଼କୁ ଆକୃଷ୍ଟ ହେଉ ଅଛନ୍ତି । କେହି କେହି କହନ୍ତି ଏ ଯାତ୍ରା ପ୍ରଭୃତି ଦେଶରୁ ସମୂଳ ଲୁପ୍ତ ହେବା ଉଚିତ, ଏତଦ୍ୱାରା ଲୋକଙ୍କର ବହୁତ ପଇସା ବ୍ୟୟ ହୋଇ ଯାଉଛି । ଏ କଥାର ଯୁକ୍ତିଯୁକ୍ତତା ଆମ୍ଭେ କିଛି ବୁଝି-ପାରୁ ନାହୁଁ । ଲୋକ ସାଧାରଣ ଏ କଥା ଶୁଣିବେ କାହିଁକି ?

ଧନୀ ଓ ଶିକ୍ଷିତମାନେ ବେଶି ପଇସା ଖରଚ କରି ରଙ୍ଗମଞ୍ଚରେ ନାଟକାଭିନୟ ଦେଖିବେ । ସବାକ୍ ଚଳଚ୍ଚିତ୍ର ଦେଖିବେ, ନିର୍ବାକ୍ ଚଳଚ୍ଚିତ୍ର ଦେଖିବେ, ଗ୍ରାମୋଫୋନ୍ ରଖି ଗୀତ ଶୁଣିବେ, ଓ ସଙ୍ଗୀତ ଆଖଡ଼ାରେ ସଙ୍ଗୀତ ଶୁଣିବେ । ଏ ସବୁ ସୁବିଧା ସହରମାନଙ୍କରେ ଅଛି, ମାତ୍ର ପଲ୍ଲୀ ପାଇଁ କଅଣ ଅଛି ? ପଲ୍ଲୀରେ ରଙ୍ଗମଞ୍ଚ ନାହିଁ, କି ପଲ୍ଲୀବାସୀ ରଙ୍ଗମଞ୍ଚ କରି ପାରିବ ନାହିଁ; ଅନ୍ୟ. କେହି କଲେ ତାର ପଇସା ନାହିଁ ଯେ ଟିକଟ କିଣି ସେ ସବୁ ଦେଖି ପାରିବ । ଅନ୍ୟାନ୍ୟ ଆମୋଦ ପ୍ରମୋଦ ସାମଗ୍ରୀ ପାଇଁ ମଧ୍ୟ ତାର ଅର୍ଥ ନାହିଁ । ଅର୍ଥାଭାବରୁ ଏ ସବୁ ଅନୁଷ୍ଠାନ ସହରମାନଙ୍କରେ ତିଷ୍ଠି ପାରୁ ନାହିଁ, ପଲ୍ଲୀରେ ବା ତିଷ୍ଠିବ କିପରି ? ପଲ୍ଲୀରେ ଦୋଳ, ଚନ୍ଦନ ରାସ ପ୍ରଭୃତି ସମୟରେ ଠାକୁରଙ୍କ ଉଦ୍ଦେଶ୍ୟରେ ଯାତ୍ରାମାନ ହୋଇଥାଏ । ଆଉ ଅନ୍ୟ ସମୟରେ ଯାତ୍ରା କରିବା ବିରଳ ଦେଖାଯାଏ । ଠାକୁରମାନଙ୍କ ଯାନଯାତ୍ରାରେ ପଲ୍ଲୀବାସୀଙ୍କ ଅନନ୍ତ ଉତ୍ସବ ହୁଏ । ଠାକୁରଙ୍କ ଯାନ ଯାତ୍ରାକୁ ଉପଲକ୍ଷ କରି ପଲ୍ଲୀରେ ଭେଟା ପଞ୍ଚା ଆଦାୟ ହୋଇ ଯାତ୍ରା ହୁଏ । ଏତକ ବନ୍ଦ କରିଦେଲେ ପଲ୍ଲିବାସୀ ନିରାନନ୍ଦ ହୋଇ କାଳ କାଟିବେ । ଏପରି ପ୍ରସ୍ତାବ ଏକ ପ୍ରକାର ନୃଶଂସତା ହେବ ନାହିଁ କି ?

ଯାତ୍ରାଦଳର ସଂସ୍କାର ନିତାନ୍ତ ଆବଶ୍ୟକ । ଆଧୁନିକ ରୁଚି ଅନୁମୋଦିତ ଭାଷା ଓ ଭାବ ନେଇ ଗୀତାଭିନୟ ଗ୍ରନ୍ଥମାନ ଲେଖାଯାଉ । ଶିକ୍ଷିତ ସମାଜ କଲମ ନ ଧରିଲେ କେବଳ ସମାଲୋଚନାରେ କାର୍ଯ୍ୟ ହେବ ନାହିଁ । ଯାତ୍ରାକୁ ସଂସ୍କାର କରି ପାରିଲେ ବହୁତ କାର୍ଯ୍ୟ ହେବ । ଯାତ୍ରା ପ୍ରଭୃତି ପଲ୍ଲିଶିକ୍ଷାର ଏକମାତ୍ର ଉପାୟ । ଲୋକମାନଙ୍କୁ ଯେଉଁପରି ଶିକ୍ଷା ଦେବାର ଆବଶ୍ୟକ ତାହା ଯାତ୍ରା ପାଲା ପ୍ରଭୃତିଦ୍ୱାରା ସହଜରେ ଦିଆଯାଇ ପାରେ । ସଭା ସମିତିରେ ବକ୍ତୃତା ବା ଖବର

କାଗଜରେ ଲେଖା ଅପେକ୍ଷା ଏହା ବେଶୀ କାର୍ଯ୍ୟକାରୀ ହେବ। ପଲ୍ଲୀରେ ଖବରକାଗଜ କେତେ ଜଣ ପଢ଼ନ୍ତି ? ସଭାସମିତିର ବକ୍ତୃତାଦ୍ୱାରା କେତେ ଜଣ ଶିକ୍ଷିତ ହୁଅନ୍ତି ? ଯାହା ଶୁଣନ୍ତି ତାହା ଏକାନରେ ପଶି ସେ କାନରେ ବାହାରିଯାଏ । ମାତ୍ର ଯାତ୍ରାରେ ଯେଉଁ ଚରିତ ଶୁଣନ୍ତି ତାହା ସେମାନଙ୍କ ହୃଦୟପଟରେ ଅଙ୍କିତ ହୋଇ ରହେ । ଯାତ୍ରାରେ ଯେଉଁ ରାମାୟଣ ମହାଭାରତ ଚରିତ ଶୁଣନ୍ତି ସେ ସବୁ ଚରିତ ସେମାନେ ସବୁ ମନେ ରଖନ୍ତି ଏବଂ ଆବଶ୍ୟକ ବେଳେ ସବୁ କହନ୍ତି । ଏଥିରୁ ଦେଖାଯାଏ ଯେ ଯାତ୍ରାର ଚରିତ ଶ୍ରବଣ କରି ସେମାନଙ୍କ ଜ୍ଞାନ ପ୍ରସାରିତ ହୁଏ । ଆମ୍ଭେମାନେ ଇଚ୍ଛା କଲେ ସବୁ ଶିକ୍ଷଣୀୟ ବିଷୟ ଯାତ୍ରାଦ୍ୱାରା ଲୋକଙ୍କ ମନରେ ବିଶେଷ ଭାବରେ ଅଙ୍କିତ କରି ଦେଇ ପାରିବା । ସାମାଜିକ ବିଷୟ ହେଉ, ରାଜନୀତିକ ବିଷୟ ହେଉ, ପୌରାଣିକ ବିଷୟ ହେଉ, ଗୀତାଭିନୟଦ୍ୱାରା ଲୋକସାଧାରଣଙ୍କୁ ଯେତେ ସହଜରେ ଶିକ୍ଷିତ କରାଯାଇ ପାରିବ, ସଭା ସମିତି, ଖବର କାଗଜ ଦ୍ୱାରା ସେତେ ହୋଇ ପାରିବ ନାହିଁ । ପୁସ୍ତକ ପାଠ କଥା ଛାଡ଼; ଦେଶରେ କେତେ ଜଣ ସାକ୍ଷର ଅଛନ୍ତି ଯେ, ସେମାନେ ପୁସ୍ତକ ପଢ଼ି ଶିକ୍ଷିତ ହେବେ ?

ଯେ କୌଣସି ବିଷୟ ନେଇ ଗୀତାଭିନୟଗୁଡ଼ିକ ସୁନ୍ଦର ସରଳ ଭାବଗର୍ଭକ ଭାଷାରେ ଲେଖାଗଲେ ସେଗୁଡ଼ିକ ଦ୍ୱାରା ଶିକ୍ଷିତ, ଅଶିକ୍ଷିତ, ଉଭୟ ସମ୍ପ୍ରଦାୟ ଶିକ୍ଷା ଲାଭ କରିବେ । ଏହି ଅଭାବ ଅନୁଭବ କରି ଏ ସନ୍ଦର୍ଭର ଲେଖକ କେତେ ଖଣ୍ଡ ଗୀତାଭିନୟ ଲେଖିଥିଲେ ଏବଂ ଅଭିନୟ କରାଇ ଥିଲେ । ଦେଖାଗଲା ଯେ, ଶିକ୍ଷିତ ଅଶିକ୍ଷିତ ଉଭୟ ସମ୍ପ୍ରଦାୟ ତଦ୍ଦ୍ୱାରା ଆକୃଷ୍ଟ ହୋଇ ମୁଗ୍ଧ ହୋଇଥିଲେ ଏବଂ ଅନେକ ଶିକ୍ଷିତ ଲୋକ ରାତିପାହିବା ପର୍ଯ୍ୟନ୍ତ ବସି ଅନିଦ୍ରା ହୋଇ ଯାତ୍ରା ଦେଖିଲେ । ଲେଖକଙ୍କର ନାଟକାଦି ଲେଖିବାରେ ଅଭିଜ୍ଞତା ନାହିଁ । ଯେଉଁମାନଙ୍କର ଏ ଦିଗରେ ବିଶେଷ ଅଭିଜ୍ଞତା ଅଛି, ସେମାନେ ଲେଖିଲେ ଆହୁରି ଅଧିକ କୃତକାର୍ଯ୍ୟ ହୁଅନ୍ତେ । ଗୀତାଭିନୟକୁ ବର୍ତ୍ତମାନ ଯାତ୍ରା ଓ ନାଟକର ମଧ୍ୟବର୍ତ୍ତୀ କରିବାକୁ ହେବ । ଏପରି ଗୀତାଭିନୟ ଲେଖାଯିବା ଉଚିତ, ଯାହା ନୁହେଁ ପୁରୁଣାକାଳିଆ ସୁଆଙ୍ଗ, ନାଁ ନୁହେଁ ନାଟକ । ଏତଦ୍ଦ୍ୱାରା ରଙ୍ଗମଞ୍ଚର ଆବଶ୍ୟକତା ମଧ୍ୟ ଦୂର ହେବ, ବହୁ ବ୍ୟୟସାଧ୍ୟ ରଙ୍ଗମଞ୍ଚ ଆବଶ୍ୟକ ହେବ ନାହିଁ । ଏହା ମଫସଲର ଗ୍ରାମେ ଗ୍ରାମେ ଅଳ୍ପ ବ୍ୟୟରେ ହୋଇ ପାରିବ । ବଙ୍ଗ ପ୍ରଦେଶରେ ଗୀତାଭିନୟ ଏହିପରି ବହୁଉନ୍ନତି ଲାଭ କରିଅଛି । ପ୍ରହସନଗୁଡ଼ିକୁ ମଧ୍ୟ ସଂସ୍କାର କରାଯିବ । ଆମ ଦେଶରେ ଗୋଟିଏ ହାଡ଼ି ପ୍ରହସନ ଅଭିନୀତ ହୁଏ । ତହିଁରେ ହାଡ଼ି ହାତରେ ମଦ ବୋତଲ, ମଦ ଖାଇ ହାଡ଼ିଟୋକା ମାତାଲ, ଏହି ସବୁ ଦୃଶ୍ୟ ଦେଖାଯାଏ । ଏ ସବୁ ଉଠାଇ ଦେଇ ତାକୁ ବିଶୁଦ୍ଧ ପ୍ରକାରରେ କରିବାକୁ ହେବ । ପାଠୁଆ ପ୍ରଭୃତି ଯାତ୍ରାରେ ବୁଢ଼ା ବରବୁଢ଼ା ମାନେ ସ୍ତ୍ରୀ ବେଶ ହୋଇ ନାଚ କରନ୍ତି । ଏମାନ ବିସଦୃଶ ଦେଖାଯାଏ । ବୁଢ଼ାଙ୍କ ପରିବର୍ତ୍ତରେ ଟୋକାମାନେ ବେଶ ପିନ୍ଧିଲେ ସେମାନେ ଆହୁରି ସୁନ୍ଦର କରି ନୃତ୍ୟାଦି କରିବେ ଏବଂ ସେମାନଙ୍କ ଗୀତ ଶ୍ରୁତିମଧୁର ହେବ । ପାଲା ମଧ୍ୟ କ୍ରମେ ଲୋପ ହୋଇ ଆସୁଛି । ପାଲା ମଧ୍ୟ ବୁଢ଼ା ବର ବୁଢ଼ାମାନେ କରନ୍ତି । ପାଲାରେ ଅନେକ ଶାସ୍ତ୍ରାଲୋଚନା ହୋଇଥାଏ । ଜଣେ ଜଣେ ପାଲାଗାୟକ ଅଠରବର୍ଗ ଅଭିଧାନ ମୁଖସ୍ଥ କରିଥାଆନ୍ତି; ଅଷ୍ଟାଦଶ ପୁରାଣ ମଧ୍ୟ ସେମାନଙ୍କର ଆୟତ୍ତ; ଗୋଟିଏ ଗୋଟିଏ ଗୀତ ଛାନ୍ଦ ଚଉପଦୀର ଭିନ୍ନ ଭିନ୍ନ ପ୍ରକାର ଅର୍ଥ କରି ଜାଣନ୍ତି । ଗୋଟିଏ ଚଉପଦୀ, ମୂଳଆଡ଼ୁ ବୋଲି ଗଲେ ଗୋଟିଏ ଅର୍ଥ ହୁଏ, ଅଗଆଡ଼ୁ ବୋଲି ଆସିଲେ ଆଉ ପ୍ରକାରେ ଅର୍ଥ ହୁଏ । ପାଲା ଆମ ଦେଶରେ ଦୁଇ ପ୍ରକାର,—ଠିଆ ପାଲା ଓ ପୋଥିପାଲା । ଠିଆ ପାଲାରେ ପାଳିଆମାନେ ଗାୟକ ସଙ୍ଗେ ପାଳି ଧରନ୍ତି । ମଝିରେ ମଝିରେ ଥଟ୍ଟା ତାମସା କଥା କି ଚାଲିଥାଏ । ଓଡ଼ିଆ ଗୀତ ଓ ସଙ୍ଗୀତରେ ବଡ଼ ବଡ଼ ରାଗରାଗିଣୀମାନ ପାଲାବାଲାମାନେ ଗାଇ ପାରୁଥିଲେ । ପାଲାବାଲାଙ୍କର ବାଦ୍ୟଯନ୍ତ୍ର ଓ ପୋଷାକର ପରିବର୍ତ୍ତନ ଆବଶ୍ୟକ । ଷୋଳପାଲା, ରାସ, କୀର୍ତ୍ତନ, ଏଗୁଡ଼ିକର ଭାଷା ମଧ୍ୟ ଅତି କଦର୍ଯ୍ୟ; ଅଧେ ବଙ୍ଗଳା ଓ ଅଧେ ଓଡ଼ିଆ । ଓଡ଼ିଆ ଭାଷା ପକ୍ଷରେ ଏଗୁଡ଼ିକ କଳଙ୍କ । ଅଳ୍ପ ଆୟାସ ଓ ଅଳ୍ପ ପରିଶ୍ରମରେ ଏଗୁଡ଼ିକର ଭାଷା ବିଶୁଦ୍ଧ କରାଯାଇ ପାରିବ । ଲେଖକ ଏ ଦିଗରେ ଚେଷ୍ଟା କରି କୀର୍ତ୍ତନ ରସାମୃତ ଲେଖିଥିଲେ । ସେ ଇନ୍ଦୁମତୀ, ପ୍ରବୀର, ହରିଶ୍ଚନ୍ଦ୍ର, କର୍ଣ୍ଣାର୍ଜ୍ଜୁନ, ନନ୍ଦିକା, ଚନ୍ଦ୍ରହାସ, ପାଣ୍ଡବଗୌରବ, ମେଘନାଦବଧ ପ୍ରଭୃତି କେତେ ଖଣ୍ଡ ଗୀତାଭିନୟ ଲେଖିଥିଲେ । ସେଥିମଧ୍ୟରୁ ୪ ବା ୫ ଖଣ୍ଡ ଅଭିନୀତ ମଧ୍ୟ ହୋଇଅଛି । ମାତ୍ର ସେମାନ ମୁଦ୍ରିତ ହୋଇ ନାହିଁ । (ସନ୍ଦର୍ଭ ଲେଖକ ଶ୍ରୀ ଜଗବନ୍ଧୁ ସିଂହ ।) ୨ । ଏକ ସ୍ଥାନରେ ବହୁଲୋକଙ୍କ ସମାଗମ; ଲୋକଗହଳି; ମେଳା—2. A fair; gathering of a crowd of people at a place

**ଯାତ୍ରା ଅନ(ନୁ)କୂଳ**—ଦେ. ବି. (ସଂ. ଯାତ୍ରା ଓ ଅନୁକୂଳ)—କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟ ପାଇଁ ବା ନିର୍ଦ୍ଦିଷ୍ଟ ସ୍ଥାନକୁ ବାହାରିବା—The starting for a specified place or for a specified purpose.
Jātrā ana(nu)kūla
যাত্রা করে বেরুন
यात्रा अनुकूल

**ଯାତ୍ରା କରିବା**—ଦେ. କ୍ରି—୧ । କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟ କରିବା ପାଇଁ ଅନୁକୂଳ କରିବା—1. To make a star for a journey for a particular purpose. ୨ । ସାଧାରଣଙ୍କ ପରିଦର୍ଶନାର୍ଥ ନୃତ୍ୟ ଗୀତାଦିର ଅଭିନୟ କରିବା—2. To make a musical performance without a stage, for public show.
Jātrā karibā
যাত্রা করা
यात्रा करना

**ଯାତ୍ରା କାଳ**—ସ. ବି—୧ । ଯାତ୍ରା କରିବାର ମୁହୂର୍ତ୍ତ—1. The
Jātrā kāla moment of making a start for a journey. ୨ । ଉତ୍ସବର ସମୟ—2. The time of a festival.
(ଯାତ୍ରା ଶବ୍ଦ - ଦେଶଜରୂପ)

**ଯାତ୍ରା କାଳି**—ଦେ. ବି. (ଯାତ୍ରା + କାଳ = ସମୟ; କାଳୀନ = ସମୟର)—
Jātrā kāḷi ଯାତ୍ରା ଦେଖିବାକୁ ଆସିଥିବା ବ୍ୟକ୍ତି—Spectators who attend a festival.
(ଯାତ୍ରା କାଳିଆ—ଅନ୍ୟରୂପ)
যাবা মেলা দেখতে এসেছে
ଦେ. ବିଣ—୧ । ଯାତ୍ରା ଦେଖିବାକୁ ସମାଗତ—1. Come or assembled at a place for a festival. ୨ । ଯାତ୍ରା ଉତ୍ସବ କାଳୀନ—2. Relating to the time of a festival.
यात्रा देखने वाला

**ଯାତ୍ରା କାଳି ଭଗାରି**—ଦେ. ବି—ଅକସ୍ମାତ୍ ଉପସ୍ଥିତ ପ୍ରତିଦ୍ୱନ୍ଦ୍ୱୀ ବା ଶତ୍ରୁ
Jātrā kāḷi bhagāri ବା ସମ୍ପତ୍ତିରେ ଭାଗ ବସାଇବା ବ୍ୟକ୍ତି—
(ଯାତ୍ରା କାଳିଆ ଭଗାରି—ଅନ୍ୟରୂପ) An enemy or rival or claimant who appears unexpectedly. (ଉ—ଭଗାରି ନ ଥିଲେ ଯାତ୍ରାକାଳି ଭଗାରି ବାହାରିଲା—ଡଗ ।)
হঠাৎ উপস্থিত ভাগিদার
अजगबी दुषमन

**ଯାତ୍ରା ଖରଚ**—ଦେ. ବି—ଚାକରଙ୍କୁ ଓ ଘରର ପିଲାଅଙ୍କୁ ଉତ୍ସବ
Jātrā kharacha ଉପଲକ୍ଷେ ଦିଆଯିବା ଧନ—Tips given to servants and children on occasions of festivals.
যাত্রা খবচ
तेवाहारी

**ଯାତ୍ରା ଗହଳ(ଳି)**—ଦେ. ବି—ଉତ୍ସବାଦି ଉପଲକ୍ଷରେ ରୁଣ୍ଡ ହୋଇଥିବା
Jātrā gahaḷa(ḷi) ଜନତା ବା ଗୋଳମାଳ—Crowd congregating at a place on the occasion of a festival or fair
যাত্রা গোল
यात्राकी भीड
(ଯାତ୍ରା ଭିଡ଼, ଯାତ୍ରା ଗୋଳ—ଅନ୍ୟରୂପ)

**ଯାତ୍ରା ଗୁରୁ**—ଦେ. ବି—ଯାତ୍ରା ଦଳର ଶିକ୍ଷକ ବା ଓସ୍ତାଦ୍, ନାଟର ଗୁରୁ-
Jātrā guru The teacher or trainer of a party of dancers.
যাত্রাব গুৰু यात्रा गुरु

**ଯାତ୍ରା ଜ(ଜୁ)ମକ**—ଦେ ବି—ଯାତ୍ରାରେ ସୁଆଙ୍ଗ ଅଭିନୟ ବାହାରିବା ଓ
Jātrā ja(ju)maka ଉତ୍ତମ ଅଭିନୟ ବୋଲାଯିବା ଯୋଗୁ ବହୁତ
[ଯାତ୍ରା ଜ(ଜୁ)ମିବା—ଅନ୍ୟରୂପ] ଲୋକ ଆକୃଷ୍ଟ ହୋଇ ଗଦା ହେବା
আসব জমা অବସ୍ଥା—The heat of a pantomime; the condition or moment when the crowd of spectators to a pantomime is immense, owing to mimes and popular songs.
यात्रा जमना

**ଯାତ୍ରା ଜ(ଜୁ)ମା(ମେ)ଇବା**—ଦେ. କି—୧ । ଗୋଟିଏ ସ୍ଥାନରେ ବହୁ-
Jātrā ja(ju)mā(me)ibā ଲୋକଙ୍କୁ ଆକର୍ଷଣ କରି ରୁଣ୍ଡ କରାଇବାର ଉପାୟ କରିବା—1. To cause a big crowd to assemble at a place by exhibiting or doing something to attract a big crowd to the place of entertainment. ୨ । ଗୋଳମାଳ କଲାଇବା—2. To create a row ୩ । ବହୁ ଲୋକଙ୍କ ମନ ଆକର୍ଷଣ କରି ରୁଣ୍ଡ କରାଇବା ପାଇଁ ଯାତ୍ରାଅଭିନୟରେ ଚିତ୍ତମୋହକର ସୁଆଙ୍ଗ ଅଭିନୟ ବାହାର କରିବା—3. To exhibit mimes in a pantomime so as to attract a large crowd of spectators.
যাত্রা জমান, যাত্রা জমকান, আসর জমাকান
यात्रा जमाना

**ଯାତ୍ରା ତିଥ**—ଗ୍ରା. ବି. ( ସ. ଯାତ୍ରା ଓ ତୀର୍ଥ; ସହଚର ଶବ୍ଦ )—ଯାତ୍ରା
Jātrā titha ଉତ୍ସବାଦି—Festivals etc.
(ଯାତ୍ରା ପରବ, ଯାତ୍ରା ପର୍ବ, ଯାତ୍ରା ବ୍ରତ—ଅନ୍ୟରୂପ)
যাত্রা উৎসব जातरा तीरथ

**ଯାତ୍ରା ତିଥି**—ସ. ବି—୧ । ବିଶିଷ୍ଟ ଉତ୍ସବର ନିର୍ଦ୍ଦିଷ୍ଟ ଦିନ—
Jātrā tithi 1. Holiday; a day of a particular festival.
ଯାତ୍ରା ଦିନ } —ଅନ୍ୟରୂପ
ଯାତ୍ରା ଦିବସ }
[ଦ୍ର—ଯେଉଁ ତିଥିରେ ବା ଦିବସରେ ଯେଉଁ ଯାତ୍ରା ହେବାର ନିର୍ଦ୍ଦିଷ୍ଟ ଅଛି ତହିଁରୁ କେତେକ ନିମ୍ନରେ ପ୍ରଦତ୍ତ ହେଲା । ଯଥା—
୧. ଜ୍ୟୈଷ୍ଠ ପୂର୍ଣ୍ଣିମା—ସ୍ନାନ ଯାତ୍ରା ।
୨. ଆଷାଢ଼ ଶୁକ୍ଳ ଦ୍ୱିତୀୟା—ଗୁଣ୍ଡିଚା ଯାତ୍ରା ।
୩. ଫାଲ୍ଗୁନ ପୂର୍ଣ୍ଣିମା—ଦୋଳ ଯାତ୍ରା ।
୪. ଫାଲ୍ଗୁନ କୃଷ୍ଣ ଚତୁର୍ଦ୍ଦଶୀ—ଜାଗର ଯାତ୍ରା ।
୫. ଚୈତ୍ର ଶୁକ୍ଳ ଅଷ୍ଟମୀ—ଅଶୋକାଷ୍ଟମୀ ଯାତ୍ରା ଇତ୍ୟାଦି ।]
୨ । ବିଦେଶ ଯିବାର ଅନୁକୂଳ ଦିନ—
2. A day propitious for starting on a journey.

**ଯାତ୍ରା ଦଳ**—ଦେ. ବି—ଯାତ୍ରା ବା ନାଟ ଅଭିନୟ କରିବା ପାଇଁ ଗଠିତ
Jātrā daḷa ଦଳ ବା ପଞ୍ଝା = A party of performers of a pantomime.
যাত্রাব দল यात्राका दल
(ଯାତ୍ରା ପଞ୍ଝା—ଅନ୍ୟରୂପ)

**ଯାତ୍ରା ନାଟ**—ଦେ. ବି. (ସହଚର ଶବ୍ଦ)—ଜନ ମୋହକର ଅଭିନୟାଦି-
Jātrā nāta Pantomime.
নাচ গান यात्रा नाच

**ଯାତ୍ରା ପ୍ରସଙ୍ଗ**—ସ. ବି—୧ । ତୀର୍ଥ ଦର୍ଶନାର୍ଥ ଯାତ୍ରା କରିବା କ୍ରିୟା—
Jātrā prasaṅga 1. The performing or undertaking of a pilgrimage. ୨ । ବିଦେଶ ଯିବାର ସମ୍ପର୍କ—2. The connection of a journey.

**ଯାତ୍ରା ଫେର(ରେ)ଇବା**-ଦେ.କି--କୌଣସି ଉଦ୍ଦେଶ୍ୟପାଇଁ ଯାତ୍ରାକରିବା
Jātrā pherā(re)ibā ପରେ ବା ସମୟରେ ଅଶୁଭ ଲକ୍ଷଣମାନ ଦେଖା ଗଲେ, ସେ-ଥରକ ଫେରି ଆସି ଆଉ ଥରେ ଶୁଭ ଯୋଗ ଓ ଲକ୍ଷଣ ଦେଖି ଦ୍ୱିତୀୟବାର ଯାତ୍ରା କରିବା—To cancel a starting (which is found afterwards to be ominous) and make a new start under better auspicious indications.
ଯାତ୍ରା ନେ(ଲେ)ଉଟା(ଟେ)ଇବା } —ଅନ୍ୟରୂପ
ଯାତ୍ରା ବଦଳା(ଲେ)ଇବା }
যাত্রা বদলান यात्रा बदलाना

**ଯାତ୍ରାବାଲା**—ଦେ. ବି.—୧ । ଯେ ଅଭିନୟ କରେ—1. Performer; actor or dancer in a performance. ୨। ଯାତ୍ରାର ଅଭିନେତୃ ଦଳ—2. A party of performers of pantomime.
Jātrābālā
যাত্রার দল **যাত্রাবালা**
(ଯାତ୍ରାବାଲୀ—ସ୍ତ୍ରୀ)
(ଯାତ୍ରା ଵାଲା—ଗ୍ରାମ୍ୟରୂପ)

**ଯାତ୍ରା ବିଧି**—ସ. ବି.—ସ୍ଥାନାନ୍ତର ଗମନ କରିବା ସମୟରେ ପାଳନୀୟ ନିୟମ—Rules for observance by a person undertaking a journey.
Jātrā bidhi

**ଯାତ୍ରା ଭାଙ୍ଗିବା**—ଦେ. କ୍ରି.—୧ । ଯାତ୍ରା ଓ ନାଟ ଆଦିରେ ଲୁବ୍ଧ ହୋଇ ଥିବା ଲୋକଙ୍କର ଗହଳ କ୍ରମଶଃ କମିବା—1. The melting of the crowd in a festival or pantomime ୨ । ଅଗରେ ଅନୁକୂଳରେ କରି ଯାଇଥିବା ଯାତ୍ରା ସେହି ସମୟରେ ବା ପରେ ଦୃଷ୍ଟ ଅଶୁଭ ଘଟଣା ବା ଦୃଶ୍ୟ ଦ୍ୱାରା ଭଙ୍ଗିହେବା—2. The frustration of an auspicious starting by some inauspicious omen or sight. [ବି—ଯାତ୍ରା କରିବା ସମୟରେ ତେଲ ବୋଝ ଘେନି ଆସୁଥିବା ତେଲି, କନ୍ଦ କରୁଥିବା ବିରାଡ଼ି, ସାପ, ଖାଲି ମାଠିଆ, ରଜସ୍ୱଳା ସ୍ତ୍ରୀ, ଏକାକୀ ବ୍ରାହ୍ମଣ ଦେଖିଲେ ଯାତ୍ରା ଅଶୁଭ ହୁଏ; ଏବଂ ନେଉଳ, ବାଆଁ ପାଖରେ ବାଲୁଅ, ଜଳପୂର୍ଣ୍ଣ କୁମ୍ଭ, ଦହି, ମାଛ, ଶଙ୍ଖଚିଲ, ଉଦବଦଳଥ ଇତ୍ୟାଦି ଆଦି ଦେଖିଲେ ଯାତ୍ରା ଶୁଭକର ହୁଏ ବୋଲି ଲୋକବିଶ୍ୱାସ ଅଛି । ଏ ସମ୍ବନ୍ଧେ ସ୍ଥାନେ ଲୌକିକ ଓ ଶାସ୍ତ୍ର ବଚନ ମଧ୍ୟ ଦେଖାଯାଏ । ଏପରି ଅଶୁଭ ଘଟଣା ଦେଖିଲେ ସେ ଯାତ୍ରାକୁ ଫେରାଇବ, ଅର୍ଥାତ୍ ସେଠାରୁ ଫେରି ଆସି ଆଉ ଥରେ ଶୁଭ ଲକ୍ଷଣ ଓ ଯୋଗ ଦେଖି ଯାତ୍ରା କରିବ ।
Jātrā bhāṅgibā

ଏ ସମ୍ବନ୍ଧେ କେତେକ ବଚନ—

ବାମେ ଶବ ଶିବା କୁମ୍ଭାଃ, ଦକ୍ଷିଣେ ଗୋ ମୃଗ ଦ୍ୱିଜାଃ,
ନକୁଲଃ ସର୍ବକାର୍ଯ୍ୟାର୍ଥଃ, ଅଗ୍ରଃ ସର୍ବଂ ବାଧତେ ।
ବାଡ଼ି ଠୁକୁ ଠୁକୁ କାନ ଲୁଡ଼ୁକା, ବାଟେ ବ୍ରାହ୍ମଣର ଦେଖିବ ଏକା, ପାଆନ୍ତେ ଗୁଡ଼ିଆ କୋଣକେ ତେଲି, ବାପଘର ହେଲେ ନ ଯିବ ଚେଲି ।]

**ଯାତ୍ରା ଲଗା(ଗେ)ଇବା**—ଦେ.କ୍ରି.—(ଲକ୍ଷଣାର୍ଥ)—୧। କୌଣସି ସ୍ଥାନରେ କଳହ ବା ଗୋଲମାଲ ବା ଅନ୍ୟ କାର୍ଯ୍ୟ କରିବା ଦ୍ୱାରା ବହୁଲୋକ ରୁଣ୍ଡ ହେବାର କାରଣ ହେବା—1. To attract a crowd to a place. ୨ । କୌଣସି ସ୍ଥାନରେ ଗୋଲମାଲ କରିବା—2. To create a row at a place
Jātrā lagā(ge)ibā
যাত্রা লাগান **यात्रा लगना**

**ଯାତ୍ରା ସୁଆଙ୍ଗ**—ଦେ. ବି.—ଯାତ୍ରାରେ କୌତୁକଜନକ ବା ହାସ୍ୟୋଦ୍ଦୀପକ ଅଭିନୟ—The mime exhibited in a pantomime.
Jātrā suāṅga
যাত্রা সঙ্গ, যাত্রা সং **यात्रासांग**

**ଯାତ୍ରିକ**—ସ. ବିଣ.—( ଯାତ୍ରା+ସମ୍ବନ୍ଧାର୍ଥେ, ଇକ )—୧ । ଯାତ୍ରା ସମ୍ବନ୍ଧୀୟ—1. Relating to a journey. ୨ । ପ୍ରଥାନୁଯାୟୀ—2. Customary; usual. ୩ । ଯାତ୍ରାର ଉପଯୋଗୀ; ଯାତ୍ରା ପାଇଁ ଶୁଭସୂଚକ—3. Fit for a journey, auspicious for a journey. ୪ । ଯେଉଁଠାକୁ ଯାତ୍ରା କରାଯାଇ ପାରେ—4. (A place) Where one can march to. ୫ । ଯେଉଁ ଯାନାଦିଦ୍ୱାରା ଯାତ୍ରା କରି ଯାଇପାରେ—5. (conveyance or means) By which a person can perform a journey. ବି—୧ । ତୀର୍ଥଯାତ୍ରୀ—1. Pilgrim. ୨ । ପଥିକ; ପାନ୍ଥ-2. Traveller. ୩ । ଉତ୍ସବ; ଯାତ୍ରା—3. A festival. ୪ । ଉପାୟ—4. Expedient.
Jātrika

**ଯାତ୍ରୀ**—ସ. ବିଣ. ପୁଂ—(ଯାତ୍ରା+ଅସ୍ତି ଅର୍ଥରେ ଇନ୍, ୧ମା. ୧ବ)—୧ । ଯାତ୍ରାକାରୀ—1. Marching; journeying. ୨ । ଭ୍ରମଣକାରୀ—2. Travelling. ୩ । ତୀର୍ଥ ଯାତ୍ରାକାରୀ—3. Starting on pilgrimage. [ଯଥା—ଗଙ୍ଗାଯାତ୍ରୀ, ତୀର୍ଥଯାତ୍ରୀ ଇତ୍ୟାଦି]—ବି—ତୀର୍ଥକୁ ଯିବା ବ୍ୟକ୍ତି—A pilgrim.
Jātrī
(ଯାତ୍ରିଣୀ—ସ୍ତ୍ରୀ)

**ଯାତ୍ରୀ ଆଣିବା**—ଦେ କ୍ରି.—(ପଣ୍ଡା ବା ପଣ୍ଡାଙ୍କର ଗୁମାସ୍ତାମାନେ)—ଭାରତର ନାନା ଅଞ୍ଚଳକୁ ଯାଇ ସେଠାରୁ ଯାତ୍ରୀମାନଙ୍କୁ ମନାଇ (ପୁରୀ ଆଦି ତୀର୍ଥସ୍ଥାନକୁ) ଆଣିବା—To bring pilgrims to a centre of pilgrimage by recruiting them from their houses (said of Pandas and their agents.
Jatrī ānibā
যাত্রী আনা **यात्री लाना**

**ଯାତ୍ରୀ ଖାତା**—ଦେ.ବି.—ପ୍ରତ୍ୟେକ ପଣ୍ଡାଙ୍କ ନିକଟରେ ନିଜ ନିଜର ଯାତ୍ରୀମାନଙ୍କ ନାମ ଧାମ ଓ ଦସ୍ତଖତ ଥିବା ପୁସ୍ତକ—Books containing the names addresses and signatures of the pilgrims of every 'Paṇḍā'.
Jātrī khātā
যাত্রীর বহি **यात्रीबही**

**ଯାତ୍ରୀ ଗାଡ଼ି**—ଦେ. ବି.—୧ । ଯେଉଁ ଗାଡ଼ିରେ ତୀର୍ଥଯାତ୍ରୀମାନଙ୍କୁ ନିଆଯାଏ—1. Vehicles used for conveying pilgrims. ୨ । ପାସେଞ୍ଜର୍ ରେଲଗାଡ଼ି; ଯେଉଁ ରେଲଗାଡ଼ିରେ ଯାତ୍ରୀମାନଙ୍କୁ ନିଆଅଣା କରି ଯାଏ—2. Passenger train. ୩ । ଦେବଦର୍ଶନାର୍ଥ ତୀର୍ଥକୁ ଆସିଥିବା ଯାତ୍ରୀ ବସନ୍ତ ଆଦି ମାରାତ୍ମକ ରୋଗଗ୍ରସ୍ତ ହେଲେ, ସେମାନଙ୍କୁ ଯେଉଁ ଗାଡ଼ିରେ ଡାକ୍ତରଖାନାକୁ ନେଇ ନିଆଯାଏ—3. Ambulance carts used for conveying cholera-stricken pilgrims to a hospital.
Jātrī gāṛi
যাত্রী গাড়ী **यात्री गाडी**
(ଯାତ୍ରୀ ଗୁଡ଼ା ଗାଡ଼ି—ଅନ୍ୟରୂପ)

**ଯାତ୍ରୀ ଗୁମାସ୍ତା**—ଦେ.ବି.—(ସ.ଯାତ୍ରୀ+ଫା. ଗୁମାଶ୍ତାହ୍)—ତୀର୍ଥସ୍ଥାନକୁ ଯାତ୍ରୀ ଆଣିବା ପାଇଁ ପଣ୍ଡାଙ୍କ ପକ୍ଷରୁ ପ୍ରେରିତ ପ୍ରତିନିଧି—Itinerant agents of Paṇḍās who visit the Paṇḍās' pilgrims at their homes and bring them to,
Jātrī gumāstā
যাত্রী গোমাস্তা **यात्री गुमाश्ता**

them to the pilgrim-centre; pilgrim-recruiter; pilgrim-hunter. [ଦ୍ର—ସାଧାରଣତଃ ପଣ୍ଡାଶ୍ରେଣୀୟ ଲୋକମାନେ ଏ କାର୍ଯ୍ୟ କରନ୍ତି ନାହିଁ; ବ୍ରାହ୍ମଣ, କରଣ ଓ ଶୁଦ୍ର ଜାତୀୟ ଲୋକଙ୍କୁ ପଣ୍ଡାମାନେ ଏ କାର୍ଯ୍ୟରେ ନିଯୁକ୍ତ କରନ୍ତି । ଏମାନେ ପଣ୍ଡାଙ୍କଠାରୁ ଦରମା, ଯାତାୟତ ଖରଚ ଓ କମିଶନ ପାଆନ୍ତି । ଗୁମାସ୍ତାମାନେ ଭାରତର ବିଭିନ୍ନ ଅଞ୍ଚଳମାନ ବୁଲି ନିଜନିଜର ପଣ୍ଡାଙ୍କ ଯାତ୍ରୀମାନଙ୍କ ସଙ୍ଗେ ସେମାନଙ୍କ ବାସସ୍ଥାନରେ ଦେଖା କରି ସେମାନଙ୍କୁ ମହାପ୍ରସାଦ ଉପଢୌକନ ଦେଇ ସେମାନଙ୍କୁ ତୀର୍ଥକୁ ଆଣନ୍ତି; ଓ ଯାତ୍ରୀ-ମାନେ ତୀର୍ଥକୁ ଆସି ଆପଣା ପଣ୍ଡାଠାରୁ ଧାର ନେବା ଧନ ପରେ ଯାତ୍ରୀଙ୍କଠାରୁ ତାଙ୍କ ଦେଶରୁ ଆଦାୟ କରି ଆଣନ୍ତି । ଏମାନେ ଅନ୍ୟ ପଣ୍ଡାର ଯାତ୍ରୀମାନଙ୍କୁ ମଧ୍ୟ ଫୁସୁଲାଇ କରି ଆପଣା ପଣ୍ଡାଙ୍କ ନିକଟକୁ ଆଣନ୍ତି । ଏହି ପଦ୍ଧତିକୁ ଧୂଳିଆ ବା ଭୁଙ୍ଗୁଣିଆ ମାରିବା ବୋଲିଯାଏ । ଏକ ପଣ୍ଡାର ଗୁମାସ୍ତା ବାଟରେ ଅନ୍ୟ ପଣ୍ଡାର ଆସୁଥିବା ଯାତ୍ରୀଙ୍କ ସଙ୍ଗ ଧରି ତାଙ୍କୁ ଫୁସୁଲାଇ ଭଙ୍ଗାଇ ନେବାର ଭୟ ଦେଖାଇ ଉକ୍ତ ଯାତ୍ରୀଙ୍କ ପଣ୍ଡା ଠାରୁ କମିଶନ ଆଦାୟ କରନ୍ତି । ଏପରି କରିବା ଲୋକଙ୍କୁ ଭଗାରି ବା ଭାଗାରି ବୋଲିଯାଏ ।]

**ଯାତ୍ରୀ ଘର**—ଦେ. ବି—୧। ଯାତ୍ରା ଆଦି ସମୟରେ ତୀର୍ଥକୁ ସମାଗତ ଯାତ୍ରୀ-ମାନଙ୍କ ସାମୟିକ ବାସ ନିମନ୍ତେ ପ୍ରସ୍ତୁତ ଗୃହ—
Jātri ghara
ଯାତ୍ରୀଘର **यात्रीघर** 1. Huts or rest-sheds built for accomodating pilgrims during festivals ୨। ଯାତ୍ରୀମାନଙ୍କ ରହିବାପାଇଁ କର୍ତ୍ତୃପକ୍ଷଙ୍କ ମଞ୍ଜୁରୀରେ ନିର୍ମିତ ଗୃହ—2. Lodging houses built for accomodating pilgrims.

**ଯାତ୍ରୀ ଟି(ଟା, ଟେ)କସ୍**—ଦେ. ବି (ସଂ. ଯାତ୍ରୀ+ ଇଂ. ଟାକ୍ସ)—ତୀର୍ଥକୁ ଆସୁଥିବା ପ୍ରତ୍ୟେକ ଯାତ୍ରୀଙ୍କଠାରୁ
Jātri ṭi(ṭa, ṭe)kas
ଯାତ୍ରୀଟାକସ **यात्रीटैक्स** ସରକାରଙ୍କଦ୍ୱାରା ପୂର୍ବେ ଆଦାୟ ହେଉଥିବା ଶୁଳ୍କ—Pilgrim tax; a tax formerly levied from every pilgrim visiting a holy place, by the Government. [ଦ୍ର—୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜ ସରକାର ଯେତେବେଳେ ପୁରୀ ଜଗନ୍ନାଥ ମନ୍ଦିର ପରିଚାଳନାର ଭାର ନେଲେ, ସେହି ସମୟରେ ପୁରୀକୁ ଦେବଦର୍ଶନାର୍ଥ ଆସୁଥିବା ଯାତ୍ରୀମାନଙ୍କଠାରୁ ଶୁଳ୍କ ଆଦାୟ କରି ସେହି ଧନରୁ ଜଗନ୍ନାଥଙ୍କ ସେବା ପୂଜାର ବ୍ୟୟ ଚଳାଉଥିଲେ; କିନ୍ତୁ କେତେ କାଳ ପରେ ବିଲାତ ପାର୍ଲିଆମେଣ୍ଟରେ ଆନ୍ଦୋଳନ ଉଠିଲା ଯେ, ଖ୍ରୀଷ୍ଟାନଧର୍ମାବଲମ୍ବୀ ସରକାର ହିନ୍ଦୁଧର୍ମାବଲମ୍ବୀ ଯାତ୍ରୀ-ମାନଙ୍କଠାରୁ ଶୁଳ୍କ ଆଦାୟ କରିବା ଧର୍ମବିରୁଦ୍ଧ ଅଟେ । ତା ପରେ ଉକ୍ତ ଟିକସ ବନ୍ଦ କରାଗଲା ।]

**ଯାତ୍ରି ତଣ୍ଟିଚିପା**—ଦେ. ବିଣ(ବ୍ୟଙ୍ଗ୍ୟ)—ଯେଉଁ ପଣ୍ଡା ବା ଗୁମାସ୍ତାମାନେ ତୀର୍ଥକୁ ସମାଗତ ଯାତ୍ରୀମାନଙ୍କଠାରୁ ନାନା ଉପାୟରେ ଜୁଲୁମପୂର୍ବକ ଅର୍ଥ ନିଅନ୍ତି—
Jātri tanṭichipā
(ଯାତ୍ରୀଚିପା—ଅନ୍ୟରୂପ)
ଯାତ୍ରୀଗଲାଟେପା **यात्रीओंको कंठदबानेवाला** (Pandas or pilgrim-recruiters) Who exact or extort money from pilgrims. [ଦ୍ର—ରେଲ ଷ୍ଟେସନରେ ଭିନ୍ନ ଭିନ୍ନ ପଣ୍ଡାଙ୍କ ଯାତ୍ରୀ ଗୁମାସ୍ତାମାନେ ନିଜ ଯାତ୍ରୀ ନିଜର ପଣ୍ଡାଙ୍କଠାକୁ ନେବାପାଇଁ ଅନେକ ଟଣା ଓଟରା କରନ୍ତି । ସେଥିରେ 'ଅଟକା କରିବା' ପ୍ରଭୃତି ପାଇଁ କହି ଅଯଥା ଖର୍ଚ୍ଚାନ୍ତ ମଧ୍ୟ କରନ୍ତି । ଏଥିପାଇଁ ଏହି ପଣ୍ଡାଙ୍କୁ ଯାତ୍ରୀ ଗୁମାସ୍ତାଙ୍କୁ ବ୍ୟଙ୍ଗୋକ୍ତିରେ 'ଯାତ୍ରୀ ତଣ୍ଟିଚିପା' କହନ୍ତି ।] (ଦ୍ର—ଯାତ୍ରି ତଣ୍ଟିଚିପା ପଣ୍ଡା ଶିବ ବାଳକଙ୍କୁ—ଫକୀରମୋହନ ଉତ୍କଳଭ୍ରମଣ ।)

**ଯାତ୍ରୀ ଦର୍ଶନ**—ଦେ. ବି—ଯାତ୍ରୀମାନଙ୍କର ଦେବଦର୍ଶନ—
Jātri darśana
ଯାତ୍ରୀଦର୍ଶନ **देवदर्शन** The visit of a pilgrim paid to the Deity in a centre of pilgrimage.

**ଯାତ୍ରୀ ଦର୍ଶନ କରା(ରେ)ଇବା**—ଦେ. କ୍ରି—ନିଜନିଜର ଯାତ୍ରୀଙ୍କ ସଙ୍ଗେ ଦେବମନ୍ଦିରକୁ ଯାଇ ସେମାନେ ଦେବତା-ଦର୍ଶନ କରିବାର ସୁବିଧା କରିବା—
Jātri darśana karā(re)ibā
ଯାତ୍ରୀଙ୍କୁ ଦର୍ଶନ କରା(ରେ)ଇବା
ଯାତ୍ରି ଦେଖା(ଖେ)ଇବା } —ଅନ୍ୟରୂପ
ଯାତ୍ରୀଙ୍କୁ ଦେଖା(ଖେ)ଇବା
ଯାତ୍ରୀକେଦର୍ଶନ କବାନ **यात्रको दर्शन कराना** To accompany pilgrims to the Deity and show them the idol.

**ଯାତ୍ରୀଦାଣ୍ଡ**—ଦେ. ବି—ବହୁ ସଂଖ୍ୟାରେ ଯାତ୍ରୀମାନଙ୍କର ତୀର୍ଥକୁ ଆସିବା ଅବସ୍ଥା (ଯହିଁ ଉପରେ ପଣ୍ଡାମାନଙ୍କର ଆୟ ନିର୍ଭର କରେ)—The state of things regarding the influx of pilgrims to a holy place.
Jātridānda
(ଯାତ୍ରୀବାଟ—ଅନ୍ୟରୂପ)
ଯାତ୍ରୀବ ବାଜାବ **यात्री रास्ता** [ଦ୍ର—କେଉଁ ବର୍ଷ ଯାତ୍ରୀଦାଣ୍ଡ ମାଡ଼ା ହୋଇଯାଏ, ଅର୍ଥାତ୍ ତୀର୍ଥକୁ ଆସିବା ଯାତ୍ରୀଙ୍କ ସଂଖ୍ୟା କମିଯାଏ । କେଉଁ ବର୍ଷ ଯାତ୍ରୀଦାଣ୍ଡ ତେଜ ହୁଏ, ଅର୍ଥାତ୍ ବେଶି ଯାତ୍ରୀ ଦର୍ଶନକୁ ଆସନ୍ତି ।]

**ଯାତ୍ରୀ ପଟର**—ଦେ. ବି (ନିରର୍ଥକ ଦ୍ୱିରୁକ୍ତିସହିତର ଶବ୍ଦ)—୧। ଯାତ୍ରୀ ଆଦି—1. Pilgrims etc. ୨। ଯାତ୍ରିଦଳ—2. A number of pilgrims.
Jātri patara
(ଯାତ୍ରୀପତ୍ର—ଅନ୍ୟରୂପ)
ଯାତ୍ରୀପତ୍ର
(ତୁଳନାକର—ଜିନିସପଟର, କାଗଜପତର)

**ଯାତ୍ରୀ ବୃତ୍ତି(ତ୍ତ)**—ଦେ. ବି (ସଂ. ଯାତ୍ରୀ ଓ ବୃତ୍ତି)—୧। ଯାତ୍ରୀମାନଙ୍କ-ଠାରୁ ପାଇବା ଧନଦ୍ୱାରା ଜୀବିକାନିର୍ବାହ; ପଣ୍ଡାଗିରି—1. The profession of subsisting on the earnings from pilgrims, as a 'Panḍā' ୨। ଯାତ୍ରୀଗୁମାସ୍ତାଗିରି; ଯାତ୍ରୀସଂଗ୍ରହାର୍ଥ ପଣ୍ଡାମାନଙ୍କର ପ୍ରତିନିଧି ସ୍ୱରୂପ ଦେଶବିଦେଶ ବୁଲି ଜୀବିକା ନିର୍ବାହ କରିବା-2. The profession of a pilgrim-
Jātri brutti(tta)
ଯାତ୍ରୀପେଶା
ଯାତ୍ରୀବ୍ୟବସାୟ } ଅନ୍ୟରୂପ
ଯାତ୍ରୀବୃତ୍ତ
ଯାତ୍ରୀବୃତ
ଯାତ୍ରୀବେଉଣା } ଗ୍ରା.ରୂପ
ଯାତ୍ରୀ ବ୍ୟବସାୟ
**यात्रीपेशा**

hunter or pilgrim-recruiter. ଦ୍ର—ଏହି ଯାତ୍ରୀବୃତ୍ତି ବା ଯାତ୍ରୀଗୁମାସ୍ତାଗିରି କରି ଓଡ଼ିଶାର ଭଦ୍ର ଭଦ୍ର ବଂଶର ବହୁ ଶତ ବ୍ୟକ୍ତି ଜୀବିକା ନିର୍ବାହ କରୁଅଛନ୍ତି । ପୂର୍ବେ ରେଲ ଆଦି ନ ଥିବା ସମୟରେ ମଧ୍ୟ ଯାତ୍ରୀଗୁମାସ୍ତାମାନେ ଭାରତର ଶେଷ ସୀମା ( କାଶ୍ମୀର, ନେପାଳ, ବ୍ରହ୍ମଦେଶ, ରାମେଶ୍ୱର ଆଦି ) ପର୍ଯ୍ୟନ୍ତ ଯାଇ ଯାତ୍ରୀ ଆଣୁଥିଲେ ଓ ବର୍ତ୍ତମାନ ରେଲ ହେବାଦ୍ୱାରା ସହସ୍ରାଧିକ ଗୁମାସ୍ତା ଏହି ବୃତ୍ତି ଅବଲମ୍ବନ କରିଅଛନ୍ତି । ଯାତ୍ରୀ ଗୁମାସ୍ତାମାନେ କେବଳ ଯେ ଯାତ୍ରୀମାନଙ୍କ ଦେଶକୁ ଯାଆନ୍ତି ତାହା ନୁହେଁ, ଏମାନେ ବଡ଼ ବଡ଼ ମେଳାକୁ ( ଯଥା—ହରିଦ୍ୱାରକୁ କୁମ୍ଭମେଳା ସମୟରେ, ହରିହର ଛତ୍ରକୁ, ଗୟାଠାକୁ ଶ୍ରାଦ୍ଧ ସମୟରେ) ଯାଇ ଥାନ ବସିଥାଆନ୍ତି ଓ ସେଠାରେ ସେମାନେ ଯାତ୍ରୀମାନଙ୍କୁ ପ୍ରବର୍ତ୍ତାଇ ନିଜନିଜର ପଣ୍ଡା ପାଇଁ ଯାତ୍ରୀ ସଂଗ୍ରହ କରନ୍ତି । ଗୁମାସ୍ତାମାନେ ପଣ୍ଡାମାନଙ୍କ ପକ୍ଷରୁ ଯାତ୍ରୀ ସଂଗ୍ରହ କରିବା ପାଇଁ ଦେଶ ଭ୍ରମଣ କରିବାକୁ 'ବାଟକୁ ଯିବା' ବୋଲାଯାଏ ଏବଂ ପୁରୀକୁ ରେଲ ଲାଗି ନ ଥିବା ସମୟରେ ଅଧିକାଂଶ ଗୁମାସ୍ତା ବଙ୍ଗଦେଶକୁ ଯାଉଥିବାରୁ ଯାତ୍ରୀ ଗୁମାସ୍ତାଙ୍କର ପରିଭ୍ରମଣାର୍ଥ ବିଦେଶବାସକୁ 'ବଙ୍ଗଳାବାଟ କରିବା, ବୋଲାଯାଏ । ଭଗରେ ଅଛି—

ଏହି ପେଟ ! ଏହି ପେଟ ଲାଗି ନଟପଟ, ଏହି ପେଟଲାଗି ଧାଳକୁଟ, ଏହି ପେଟ ଲାଗି 'ବଙ୍ଗଳା ବାଟ' । ଏହି ଗୁମାସ୍ତାମାନେ ବିଦେଶରେ 'ପଣ୍ଡା' ନାମରେ ଅଭିହିତ ହୁଅନ୍ତି । ପୁରୀର ପଣ୍ଡାମାନଙ୍କ ଗୁମାସ୍ତାମାନେ ଯାତ୍ରୀ-ସଂଗ୍ରହାର୍ଥ ମେଳା ଓ ତୀର୍ଥ ସ୍ଥାନମାନଙ୍କରେ (ଯଥା—କାଳୀଘାଟ, ଗୟା, ପ୍ରୟାଗ, କାଶୀ, ବୃନ୍ଦାବନ, ମଥୁରା, କୁରୁକ୍ଷେତ୍ର, ଦ୍ୱାରକା, ହରିଦ୍ୱାର, ବାବା ବୈଦ୍ୟନାଥ, ରାମେଶ୍ୱର ଆଦି ତୀର୍ଥ ରେ) ମାସେ ମାସେ, ଦୁଇ ଦୁଇ ମାସ ଅପେକ୍ଷାକରି ଜଗି ବସନ୍ତି ଓ ସେମାନଙ୍କୁ ନିଜ ନିଜର ପଣ୍ଡାମାନେ ଖୋରାକ ଓ ଦରମା ଯୋଗାଇ ଥାଆନ୍ତି । ପୁରୀଜିଲ୍ଲାର ବ୍ରାହ୍ମଣ ଶାସନର ଅନେକ ବ୍ରାହ୍ମଣ ଓ ପୁରୀର, କଟକର ଅନେକ ବ୍ରାହ୍ମଣ ଓ କରଣ ଏହି ଗୁମାସ୍ତାଗିରି କରି ଅଳ୍ପ ପଇଶ କାହାଣେ ଅର୍ଥ କରି ଚଳିବା ଭଳି ସମ୍ପତ୍ତି କରିବାକୁ ସମର୍ଥ ହୋଇ ଅଛନ୍ତି । ଆଉ ଏକ ଶ୍ରେଣୀର ଯାତ୍ରୀ ଗୁମାସ୍ତା ଅଛନ୍ତି, ଯେ ସେମାନେ ପୁରୀ, କଟକ, ବାଲେଶ୍ୱର, ଜଟଣୀ-ଆଦି ରେଲ ଷ୍ଟେସନମାନ ଭୂଲ ଅପଣା ଅପଣା ପଣ୍ଡାଙ୍କ ପାଇଁ ଯାତ୍ରୀ ସଂଗ୍ରହର ଉଦ୍ୟମରେ ଥାଆନ୍ତି ଓ ସେଥିରେ ଅକୃତକାର୍ଯ୍ୟ ହେଲେ 'ଧୂଳିଅ ମାରନ୍ତି' ବା 'ଭଗାର ହୁଅନ୍ତି' । ପଣ୍ଡାମାନଙ୍କର ଯେଉଁ 'ଯାତ୍ରୀଖାତା' ମାନ ଥାଏ ସେଥିରେ ସେହା ଜନମାନୀ ରାଜ୍ୟର ସୀମା ମଧ୍ୟସ୍ଥ ରାଜା ମହାରାଜଠାରୁ କୃଷକ ପର୍ଯ୍ୟନ୍ତ ସମସ୍ତଙ୍କର ନାମଧାମ ଲେଖାଥାଏ ଓ କୌଣସି ଯାତ୍ରୀଙ୍କୁ ଦେଖିବା ମାତ୍ରେ ଗୁମାସ୍ତାମାନେ ଉକ୍ତ ଯାତ୍ରୀ ତାଙ୍କ ପଣ୍ଡାଙ୍କ ଇଲାକାଭୁକ୍ତ କି ନୁହେଁ, ତାହା ଉକ୍ତ ଖାତାର ସାହାଯ୍ୟରେ ଠିକଣା କରି ପାରନ୍ତି । ]

**ଯାତ୍ରୀ ଭିଡ଼**—ଦେ. ବି—ଯାତ୍ରୀ ବହୁଳତା; ବହୁସଂଖ୍ୟକ ଯାତ୍ରୀ ଏକତ୍ର
**Jātri bhirda** ହେବାରୁ ଜନତା—Crowd due to a large concourse of pilgrims; rush of pilgrims to a place.
ଯାତ୍ରୀର ଭୀଡ଼
**यात्रीओंकी भीड**

**ଯାଥା କଥାଚ**—ସଂ. ଅ—୧ । ଯାହା କିଛି ଘଟିବ—1. Happen-
**Jāthā kathācha** ing under any circumstance (Apte). ୨ । କେବେ କେବେ ଘଟିବା—2. Happening occasionally ( Apte ).

**ଯାଥା କାମୀ(ମ୍ୟ)**—ସଂ. ବିଣ. ପୁଂ (ଯଥା କାମ+ଇନ୍; ଯ)—ସ୍ୱେଚ୍ଛାଗ୍ରସ୍ତ
**Jāthā kāmi ( mya )** —Acting according to one's will (Apte).
(ଯାଥା କାମିନୀ, ଯାଥା କାମ୍ୟା—ସ୍ତ୍ରୀ)

**ଯାଥା ତଥ୍ୟ**—ସଂ. ବି ( ଯଥା ତଥା+ଭାବ. ଯ )—୧ । ଯଥାର୍ଥତା—
**Jāthā tathya** 1. Reality. ୨ । ଔଚିତ୍ୟ—2. Propriety (.Apte ). ୩ । ଠିକ୍ ପଣ—3. Rectitude ( Apte

**ଯାଥାର୍ଥିକ**—ସଂ. ବି ( ଯଥାର୍ଥ+ଇକ )—୧ । ବାସ୍ତବିକ—1; Real.
**Jātharthika** ୨ । ପ୍ରକୃତ—2. Actual; genuine ୩ । ସତ୍ୟ—3. True.

**ଯାଥାର୍ଥ୍ୟ**—ସଂ. ବି ( ଯଥାର୍ଥ + ଭାବ. ଯ )—୧ । ଯଥାର୍ଥତା; ପ୍ରକୃତତ୍ୱ
**Jātharthya** —1. Reality; actuality. ୨ ସତ୍ୟତା—2. Truth. ୩ । ବିନିଯୋଗ; ପ୍ରୟୋଗ—3. Application. ୪ । ଉପଯୋଗିତା—4. Suitableness ( Apte ). ୫ । ସମାପ୍ତି; ସିଦ୍ଧି—5. Accomplishment. ୬ । ଉଦ୍ଦେଶ୍ୟସିଦ୍ଧି—6. Attainment of an object. ୭ । ନ୍ୟାଯ୍ୟତା—7. Justness ( Apte ).

**ଯାଦଈଶ**—ସଂ. ବି. (୬ଷ୍ଠୀ ତତ୍; ଯାଦଃ+ଈଶ; ସନ୍ଧିଯୋଗୁଁ ଃ ଲୋପ)
**Jādaisa** ସମୁଦ୍ର—The sea.

**ଯାଦଃ**—ସଂ. ବି. [ଯା ଧାତୁ=(ଶୀଘ୍ର) ଯିବା+କର୍ତ୍ତୃ ଅସ୍=ଯାଦସ୍ ଶବ୍ଦ
**Jādaḥ** ୧ ମା ୧ବ]—୧ । ଜଳଚର ଜୀବ; ଜଳଜନ୍ତୁ—1. An aquatic animal. ୨ । ବୃହଦାକାର ଜଳଜନ୍ତୁ—2. Any large aquatic animal; a sea-monster ( Apte ). ୩ । ଜଳ—3. Water ( Apte ). ୪ । ନଦୀ—4. A river ( Apte ). ୫ । ଶୁକ୍ର; ବୀର୍ଯ୍ୟ—5. Semen ( Apte ). ୬ । ଇଚ୍ଛା—6. Desire ( Apte ).

**ଯାଦଃ ପତି**—ସଂ. ବି ( ୬ଷ୍ଠୀ ତତ୍; ଯାଦସ୍+ପତି )—୧ । ସମୁଦ୍ର—
**Jādaḥ pati** 1. The ocean. ୨ । ବରୁଣ—2. The Sea-god.

**ଯାଦବ**—ସଂ. ବିଣ. ପୁଂ ( ଯଦୁ+ଅପତ୍ୟାର୍ଥେ. ଅ )—୧ । ଯଦୁବଂଶୀୟ
**Jādaba** 1. Belonging to or descended from the Jādu dynasty. ୨ । ଯଦୁବଂଶ
(ଯାଦବୀ—ସ୍ତ୍ରୀ)

ସମ୍ବନ୍ଧୀୟ—2. Relating to the Jadus. ବି—୧ | ଯଦୁନନ୍ଦନ; ଶ୍ରୀକୃଷ୍ଣ —1. Śrikṛushṇa. ୨ | ଗୋ-ମହିଷାଦିରୂପ ଧନ; ଗୋଧନ—2. Stock of cattle ( counted as riches ). ୩ | ଦ୍ୱାଦଶ ଗୋପାଳ ମଧ୍ୟରୁ ଏକତମ—3. One of the twelve cowherd classes. [ଦ୍ର—ବାରସୁତ ଶବ୍ଦ ଦେଖ | ] ଦେ. ବି—ଗଉଡ଼ମାନଙ୍କ ଶାଖାବିଶେଷ—A sect of cowherds. [ଦ୍ର—ଆଜିକାଲି ଭାରତ-ବର୍ଷରେ ଯାଦବ ଆନ୍ଦୋଳନ ପ୍ରଖରଭାବରେ ଚାଲିଅଛି | ଯାଦବମାନେ କ୍ଷତ୍ରିୟ ବୋଲି ଏହି ମୂଳ ଆନ୍ଦୋଳନ ଚାଲିଛି | ଉତ୍କଳରେ ମଧ୍ୟ ଏ ଆନ୍ଦୋଳନ କ୍ରମେ ବିସ୍ତାର ଲାଭ କରୁଛି | ଯେଉଁମାନେ ଓଡ଼ିଶାର ବା ଭାରତର ନାନା ଅଂଶରେ ଗଉଡ଼, ଗୋପାଳ, ବେହେରା, ଗୋୟାଲା, ଆହୀର ପ୍ରଭୃତି ନାମରେ ପରିଚିତ ସେମାନେ ଯାଦବ କ୍ଷତ୍ରିୟ ବୋଲି ଦାବି କରୁଛନ୍ତି; କ୍ରମେ ସେମାନେ ଉପବୀତ ଧାରଣ କରୁଅଛନ୍ତି | ଗୋପାଳମାନଙ୍କର ଏ ଆନ୍ଦୋଳନ ଦେଖି ଅନ୍ୟାନ୍ୟ ଜାତି ନାସିକା କୁଞ୍ଚନ କରୁଛନ୍ତି ଏବଂ କେତେ ସ୍ଥଳରେ କ୍ଷତ୍ରିୟ ଓ ଗୋପାଳଙ୍କ ମଧ୍ୟରେ ନାନା ଗଣ୍ଡଗୋଳ ଘଟିବା ଖବରକାଗଜରେ ପ୍ରକାଶିତ ହେଉଅଛି | ସେହି ଗୋପାଳମାନଙ୍କର ପ୍ରାଚୀନ ଇତିହାସ ପ୍ରକାଶିତ ହେଲେ କାହାର ମନରେ କିଛି ସନ୍ଦେହ ରହିବ ନାହିଁ | ପ୍ରାଚୀନ ଭାରତରେ ଯଦୁବଂଶ ବଡ଼ ପ୍ରତାପଶାଳୀ ଥିଲା, ଓ ଯଦୁବଂଶରେ ଶ୍ରୀକୃଷ୍ଣ ଅବତୀର୍ଣ୍ଣ ହୋଇଥିଲେ | ଶ୍ରୀକୃଷ୍ଣଙ୍କ ସମୟରେ ଯଦୁବଂଶ ବଡ଼ ଶକ୍ତିଶାଳୀ ଥିଲା ଏବଂ ଧନ ଜନ ଗୋପ ଲକ୍ଷ୍ମୀରେ ପୂର୍ଣ୍ଣ ଥିଲା | ଯାଦବ-ମାନେ ଶ୍ରୀକୃଷ୍ଣଙ୍କ ନାରାୟଣୀ ସେନାଭୁକ୍ତ ହୋଇ ଅଠର ଅକ୍ଷୌହିଣୀ ସୈନ୍ୟ ହୋଇଥିଲେ | ମହାଭାରତରେ ଓ ହରିବଂଶରେ ଓ ଭାଗବତର ଏହି ଯଦୁବଂଶର ବର୍ଣ୍ଣନା ଅଛି | ଯଦୁବଂଶ ଚନ୍ଦ୍ରବଂଶର ଅନ୍ତର୍ଗତ | ପ୍ରାଚୀନ ଭାରତରେ ସୂର୍ଯ୍ୟବଂଶ ଓ ଚନ୍ଦ୍ରବଂଶ ନାମରେ ଦୁଇଟି ପ୍ରଧାନ କ୍ଷତ୍ରିୟବଂଶ ଥିଲେ | ସୂର୍ଯ୍ୟବଂଶରୁ ଚନ୍ଦ୍ର-ବଂଶର ଉତ୍ପତ୍ତି | ସୂର୍ଯ୍ୟବଂଶର ଇଳା କନ୍ୟା ଚନ୍ଦ୍ରଙ୍କୁ ବିବାହ କରି ଚନ୍ଦ୍ରବଂଶର ଉତ୍ପତ୍ତି କରିଥିଲେ | ପ୍ରକୃତ ପକ୍ଷରେ ଏକ ସୂର୍ଯ୍ୟବଂଶରୁ ନାନା କ୍ଷତ୍ରିୟବଂଶର ଉତ୍ପତ୍ତି ହେଲା | ସେହି ଚନ୍ଦ୍ରବଂଶରେ ଯଯାତି ଜନ୍ମଗ୍ରହଣ କରିଥିଲେ | ଯଯାତିଙ୍କ ପୁତ୍ର ଯଦୁ |

ଯଯାତି
|
ଯଦୁ
|
କ୍ରୋଷ୍ଟୁ — ହୈହୟ
|
ଦେବମୀଢ଼ୁଷ

ଦେବମୀଢ଼ୁଷଙ୍କର ଦୁଇ ପତ୍ନୀ ଥିଲେ | ଜଣେ କ୍ଷତ୍ରିୟା ପତ୍ନୀ ଓ ଅନ୍ୟଟି ବୈଶ୍ୟା ପତ୍ନୀ | ସେ କାଳରେ ଅନୁଲୋମ ବିବାହ ପ୍ରଚଳିତ ଥିଲା | କ୍ଷତ୍ରିୟ ପତ୍ନୀଙ୍କଠାରୁ ଜନ୍ମ ହେଲେ ଶୂର; ତାଙ୍କ ପୁତ୍ର ବସୁଦେବ; ବସୁଦେବଙ୍କ ପୁତ୍ର ଶ୍ରୀକୃଷ୍ଣ | ବୈଶ୍ୟାପତ୍ନୀଙ୍କଠାରୁ ଜନ୍ମ ହେଲେ ପର୍ଜନ୍ୟ; ପର୍ଜନ୍ୟଙ୍କର ପାଞ୍ଚ ପୁତ୍ର, ୧—ଉପାନନ୍ଦ, ୨—ଅଭିନନ୍ଦ, ୩—ନନ୍ଦ, ୪—ସନନ୍ଦ, ୫—ନନ୍ଦନ | ଏହି ନନ୍ଦଙ୍କ ଦ୍ୱାରା ଶ୍ରୀକୃଷ୍ଣ କଂସଭୟରେ ପାଳିତ ହୋଇଥିଲେ | ସୂର୍ଯ୍ୟବଂଶ ଅତ୍ରି ମୁନିଙ୍କଠାରୁ ସମ୍ଭୂତ | ଚନ୍ଦ୍ରବଂଶର ୭ମ ପୁରୁଷ ଯଦୁ ଏବଂ ୪୩ଶ ପୁରୁଷ ଦେବମୀଢ଼ୁଷ |

ପ୍ରାଚୀନ କାଳରେ ବୃତ୍ତିଭେଦରେ ବର୍ଣ୍ଣଭେଦ ଥିଲା | ଜାତି ଜନ୍ମଗତ ନ ଥିଲା ଏବଂ ପିତାଠାରୁ ପୃଥକ୍ ପୁତ୍ର ବର୍ଣ୍ଣରେ ପରିଚିତ ଥିବାର ପ୍ରମାଣ ମିଳୁଛି | ଏକବଂଶଜ ବସୁଦେବ କ୍ଷତ୍ରିୟବୃତ୍ତି କରୁଥିଲେ ଏବଂ ନନ୍ଦ ବୈଶ୍ୟବୃତ୍ତି କରୁଥିଲେ | ଗୋଚାରଣ, ଗୋପାଳନ ଓ ଗୋରକ୍ଷା ନନ୍ଦ-ଙ୍କର ପ୍ରଧାନ ବୃତ୍ତି ଥିଲା; ଏହା ବୈଶ୍ୟର ବୃତ୍ତି | ବସୁଦେବ ମଥୁରାରେ ବାସ କରୁଥିଲେ ଏବଂ ନନ୍ଦ ଗୋପପୁରରେ ବାସ କରୁଥିଲେ | ନନ୍ଦବଂଶୀୟ ଗୋପାଳକମାନେ ଗୋପପୁରିଆ ଗୋପାଳ ନାମରେ ପରିଚିତ ଏବଂ ବସୁଦେବବଂଶୀୟ ଗୋପାଳମାନେ ମଥୁରାପୁରିଆ ଗୋପାଳ ନାମରେ ପରିଚିତ | ଓଡ଼ିଶାରେ ଏ ଦୁଇ ଶାଖାରେ ଗୋପାଳମାନେ ପରିଚିତ | ଏମାନଙ୍କ ଗୋଠବନ୍ଦାଣରେ ପ୍ରଭେଦ ଅଛି | ମଥୁରାପୁରିଆମାନଙ୍କର ସଜବନ୍ଦାଣ ଏବଂ ଗୋପପୁରିଅଙ୍କର ବାସୀବନ୍ଦାଣ | ସଜବନ୍ଦାଣ ଦୋଳପୂର୍ଣ୍ଣିମା ଦିନ ହୁଏ | ବାସୀ ବନ୍ଦାଣ ପୂର୍ଣ୍ଣିମାବାସିଦିନ ହୁଏ | ପ୍ରାଚୀନ ସୂର୍ଯ୍ୟ ଚନ୍ଦ୍ରବଂଶର ବଂଶବୃକ୍ଷ ନିମ୍ନରେ ଦିଆଗଲା—

ବୈବସ୍ୱତ ମନୁ
|
ଇକ୍ଷ୍ୱାକୁଙ୍କ ଠାରୁ — ଇଳାଙ୍କଠାରୁ (ଚନ୍ଦ୍ରଙ୍କୁ ବିବାହ କରିବା ଦ୍ୱାରା)
|
ସୂର୍ଯ୍ୟବଂଶ — ଚନ୍ଦ୍ରବଂଶ
|
ପୁରୁରବା
|
ଆୟୁ
|
ନହୁଷ
|
ଯଯାତି
|
ଯଦୁ

ମଥୁରାପୁରିଆମାନେ ଯାଦବ ନାମରେ ପରିଚିତ | ଉତ୍ତର ଭାରତର ମଥୁରା ପ୍ରଭୃତି ଅଞ୍ଚଳରେ ଗୋପାଳମାନେ ଯାଦବ

ନାମରେ ପରିଚିତ । ସେମାନଙ୍କର କ୍ଷତ୍ରିୟୋଚିତ ବ୍ୟବହାର ଅଛି । ସେମାନେ ପଇତା ଧାରଣ କରନ୍ତି ଏବଂ ଉପନୟନଦ୍ୱାରା ସଂସ୍କାର ହୁଅନ୍ତି । ସେମାନଙ୍କ ଉପାଧି ମଧ୍ୟ ସିଂହ ପ୍ରଭୃତି ଅଛି । ଯଥା—ବଳଭଦ୍ର ସିଂହ ଯାଦବ । ଗୋପପୁରୁଆମାନେ ବୈଶ୍ୟ ବୃତ୍ତିକରନ୍ତି । ଯାଦବ କୁଳ ମହାକୁଳ ନାମରେ ପରିଚିତ । ଆଜିକାଲି ଓଡ଼ିଆ ଗୋପାଳଙ୍କ ମଧ୍ୟରେ ମହାଖୂଡ଼ ଉପାଧି ଦେଖାଯାଏ । ମହାଖୂଡ଼ ମହାକୁଳଶବ୍ଦର ଅପଭ୍ରଂଶ । ବ୍ରହ୍ମା ଗୋପ କନ୍ୟା ଗାୟତ୍ରୀଙ୍କୁ ବିବାହ କରିଥିଲେ (ପଦ୍ମପୁରାଣ) । ମହାଦେବ ନନ୍ଦତନୟା ଦୁର୍ଗାଙ୍କୁ ବିବାହ କରିଥିଲେ । ଗୋପେନ୍ଦ୍ର ସ୍ୟାନୁଜେଜେନ୍ୟେଷ୍ଟ ନନ୍ଦଗୋପ କୁଳୋଦ୍ଭବ ( ମହାଭାରତ ) । ମାର୍କଣ୍ଡେୟ ପୁରାଣାନ୍ତର୍ଗତ ଚଣ୍ଡୀରେ ଅଛି "ନନ୍ଦଗୋପଗୃହେ ଜାତା ଯଶୋଦାଗର୍ଭସମ୍ଭବା" । ବିଷ୍ଣୁ ଗୋପକନ୍ୟା ସୁଶୀଳା ରାଧାଙ୍କୁ ବିବାହ କରିଥିଲେ (ବ୍ରହ୍ମ ବୈବର୍ତ୍ତ) । ବ୍ରହ୍ମାଙ୍କ କନ୍ୟା କଳାବତୀ । କଳାବତୀଙ୍କ କନ୍ୟା କୀର୍ତ୍ତିଦାଙ୍କୁ ବୃଷଭାନୁ ଗୋପ ବିବାହ କରିଥିଲେ; ତାଙ୍କ ଗର୍ଭରୁ ଜନ୍ମ ହେଲେ ଶ୍ରୀମତୀ ରାଧା । ଏହି ରାଧାକୃଷ୍ଣ ଆଜି ଦେବ ଦେବୀ ହୋଇ ହିନ୍ଦୁ ଜଗତରେ ପୂଜା ପାଉଛନ୍ତି । ଶ୍ରୀକୃଷ୍ଣ ଗୋପାଳମାନଙ୍କ ସମ୍ବନ୍ଧେ କଅଣ କହିଛନ୍ତି ଦେଖନ୍ତୁ । ମତ୍ ସଂହନନ ତୁଲ୍ୟାନାଂ ଗୋପାନାଂ ଅର୍ବୁଦଂ ମହତ୍ । ନାରାୟଣୀ ଇତି ଖ୍ୟାତାଃ ସର୍ବେ ସଂଗ୍ରାମ ଯୋଧିନଃ (ମହାଭାରତ) । କାଳକ୍ରମେ ଏ ଗୋପାଳମାନଙ୍କର ଅବନତି ହୋଇଛି । ଏମାନେ ନିର୍ଦ୍ଧନ ହୋଇ ପଡ଼ିଛନ୍ତି । ଅର୍ଥାଭାବରୁ କିଏ ପାଣି ମିଶାଇ ଦୁଗ୍ଧ ବିକ୍ରୟ କରି ପେଟ ପୋଷୁଛି, କିଏ ବା ପାଲିଙ୍କି କାନ୍ଧେଇ ପଇସା ରୋଜଗାର କରୁଛି । ଗୋପାଳମାନେ ଭାରତର ଚତୁର୍ଦ୍ଦିଗରେ ବିକ୍ଷିପ୍ତ ହୋଇ ରହିଛନ୍ତି; ବିଭିନ୍ନ ଅଞ୍ଚଳରେ ବିଭିନ୍ନ ନାମ ହୋଇ ଯାଇଛି । ଦିଲ୍ଲୀ, ପଞ୍ଜାବ, ଆଗ୍ରା, ଅଯୋଧ୍ୟା, ରାଜପୁତାନା, ମହାରାଷ୍ଟ୍ର ଅଞ୍ଚଳରେ ଏମାନେ ଯାଦବ ବୋଲି ପରିଚିତ । କାନ୍ୟକୁବ୍ଜରେ ଅହିର ବା ଆହୀର । ବଙ୍ଗଦେଶରେ ଗୋଆଲା ବା ଗୋପ । ଗୋପ ପୁଣି ଦୁଇ ଶ୍ରେଣୀରେ ବିଭକ୍ତ ଯଥା—ସଦ୍‌ଗୋପ, ପଲ୍ଲବ । ଓଡ଼ିଶାରେ ଏମାନେ ଗୋପାଳ ଓ ଗୌଡ଼ ନାମରେ ପରିଚିତ । ବଣେଇ, ଗାଙ୍ଗପୁର, ରାଏଗଡ଼, ଯାସପୁରରେ ଏମାନେ ମହାକୁଳ ଗୋପ; ତେଲିଙ୍ଗା, ତାମିଲ, ମାନ୍ଦ୍ରାଜରେ ଗୋଲ୍ଲା ନାମରେ ପରିଚିତ । ବାମଣ୍ଡା ପ୍ରଭୃତି ଅଞ୍ଚଳରେ ଏମାନେ ମହାକୁଳ ଓ ପାଣ୍ଡବ ନାମରେ ପରିଚିତ । ପାଣ୍ଡବମାନେ ସାବେତିଆ କାର୍ଯ୍ୟ କରନ୍ତି ଏବଂ ମହାକୁଳମାନେ ଗୋପାଳନ କରନ୍ତି । ଖ୍ରୀ୧୯୨୧ର ଜନସୁମାରିରୁ ଜଣାଯାଏ ସମଗ୍ର ଭାରତରେ ଗୋପାଳ ସଂଖ୍ୟା ୧୩ କୋଟି । ଖାଲି ଓଡ଼ିଶାରେ ୭ ଲକ୍ଷ ୪୭ ହଜାର ୨୮୫ ଗୋପାଳ ଅଛନ୍ତି; ଗଞ୍ଜାମରେ ୨ ଲକ୍ଷ, ସିଂହଭୂମି ପ୍ରଭୃତିରେ ୯୫୦୦୦୦

ଗୋପାଳମାନେ ଗୋଟିଏ ପୁରାଣପ୍ରସିଦ୍ଧ ଜାତି । ଓଡ଼ିଶାର ଗୋପାଳମାନେ ଦରିଦ୍ର । ଏମାନେ ଅପଣାର ଜାତିକୁଳର ଅଶୁଦ୍ଧବ୍ୟବହାର, ରୀତିନୀତି ଓ ସଂସ୍କାର ଛାଡ଼ି ଦେଇ ଅତି ହୀନହୀନଭାବରେ ଚଳୁଛନ୍ତି । ଗୋପାଳଙ୍କ ଜାତିରେ ମାଛ ଖାଇବା ନିଷିଦ୍ଧ । ଏମାନଙ୍କ ସାମାଜିକ ଖାଣପିଅଣ ବେଳେ ସଭାରେ ଆମିଷ ପ୍ରବେଶ କରେ ନାହିଁ । ଏମାନେ ୨୧ ଦିନ୍ ମୃତାହ ଅଶୌଚ ପାଳନ କରନ୍ତି । ଦୋଳପୂର୍ଣ୍ଣିମା ଦିନ ଏମାନେ ହଳଦିଆ ଲୁଗା ପିନ୍ଧନ୍ତି, ନଉଡ଼ି ଖେଳନ୍ତି, ଓଗାଳ ଗୀତ ବୋଲନ୍ତି; ଡାଙ୍କସଙ୍କ ନେଇ ଗୋଠରେ ଗୋରୁବନ୍ଦାଣ କରନ୍ତି । ଏମାନଙ୍କ ଜାତୀୟ କାଇଦା କଟକଣା ବେଶ୍ ଦୃଢ଼ । ଏମାନଙ୍କ ଜାତିରେ ବେହେରା ଅଛନ୍ତି । ଓଡ଼ିଶାରେ ଗୋପାଳମାନଙ୍କର ଜଣେ ମହନ୍ତ ଅଛନ୍ତି । କଟକଜିଲ୍ଲାର ନେମାଳ ମଠରେ ତାଙ୍କ ଗାଦୀ । ମହାପୁରୁଷ ଅଚ୍ୟୁତାନନ୍ଦ ଏହିଠାରେ ଥିଲେ । ଅଚ୍ୟୁତାନନ୍ଦ ଶ୍ରୀଚୈତନ୍ୟଙ୍କର ସମସାମୟିକ ଏବଂ ପଞ୍ଚସଖା ମଧ୍ୟରୁ ଜଣେ । ସେ ଜଣେ ଭାରି ଜ୍ଞାନୀ ପୁରୁଷ ଥିଲେ । ସେ ସ୍କୁଲ କଲେଜରେ ପାଠ ପଢ଼ି ନ ଥିଲେ, ତଥାପି ଓଡ଼ିଆରେ ୩୬ ସଂହିତା ୭୨ ଗୀତା ଲେଖି ଯାଇଛନ୍ତି । ନେମାଳ ମଠ ଏହି ଅଚ୍ୟୁତାନନ୍ଦଙ୍କ ହେତୁ ପ୍ରସିଦ୍ଧି ଲାଭ କରିଛି । ଗୋପାଳମାନେ ଏ ଗାଦିକୁ ଏବଂ ମହନ୍ତଙ୍କୁ ଭାରି ମାନନ୍ତି । ପ୍ରତ୍ୟେକ ଗୋପାଳପରିବାର ଏ ଗାଦିର ମହନ୍ତଙ୍କୁ ବାର୍ଷିକ ଦେଉଥିଲେ । ସେହି ଗାଦିର ବଂଶଧରମାନେ ଏବେ ଆପଣାକୁ କରଣ ବୋଲି ପରିଚୟ ଦେଉଛନ୍ତି ଏବଂ କରଣ ସମ୍ପ୍ରଦାୟରେ ବୈବାହିକ ସଂବନ୍ଧ କରୁଛନ୍ତି । ଅଧୁନିକ ଗୋପାଳମାନେ ଏଥିର ପ୍ରତିବାଦ କରୁଛନ୍ତି ଏବଂ କେତେକ ଅଞ୍ଚଳର ଗୋପାଳମାନେ ବାର୍ଷିକ ଦେଉ ନାହାନ୍ତି । ବର୍ତ୍ତମାନ ଭାରତର ସବୁ ଜାତି ମଧ୍ୟରେ ଗୋଟାଏ ଚେତନା ଆସିଛି । ପ୍ରତ୍ୟେକ ଜାତି ଆପଣା ଆପଣା ଜାତୀୟ ସମ୍ମାନ ବଢ଼ାଇବାକୁ ଚେଷ୍ଟା କରୁଛନ୍ତି । ଗୋପାଳମାନଙ୍କ ମଧ୍ୟରୁ ଅନେକ କଲିକତା ପ୍ରଭୃତିକୁ ଯାଇ ଦେଶର ଏହି ଜାଗରଣ ବେଳେ ଆପଣା ଜାତିକି ଜାଗ୍ରତ କରିବା ଚେଷ୍ଟାରେ ଅଛନ୍ତି । ନାନା ସ୍ଥାନରେ ଯାଦବ ସମ୍ମିଳନୀ ସଭା ପ୍ରଭୃତି ହୋଇ ଏହି ଜାତୀୟ ଜାଗରଣକୁ ଉଦ୍‌ବୁଦ୍ଧ କରୁଛି । ଏଥିରେ ଦୋଷାବହ କଥା କିଛି ନାହିଁ । ଅନ୍ୟ ଜାତି ଏଥିଲାଗି ସେମାନଙ୍କୁ ଆକ୍ରମଣ ବା ଆକ୍ଷେପ କରିବାର କିଛି କାରଣ ନାହିଁ । ଏପରି କଲେ ଆପଣାର ନୀଚତା ପ୍ରକାଶ ପାଇବ । ସବୁ ଜାତି ଉନ୍ନତ ଜାଗ୍ରତ ହୃଷ୍ଟପୁଷ୍ଟ ବଳିଷ୍ଠ ହେଲେ ଭାରତର ମଙ୍ଗଳ । ଗୋପ ଜାତିର ପ୍ରାଚୀନ ଇତିହାସ ଅଛି, ଗୌରବ ଅଛି, ପ୍ରସିଦ୍ଧି ଅଛି । ବେଦରେ ଗୋପ ଜାତିର କଥା ଉଲ୍ଲେଖ ଅଛି (ଋକ୍ ୧।୮ ମଣ୍ଡଳ, ସୂ ୪୧।୫୨; ୧୦ମ, ସୂ ୨୧, ୮୮) ରାମାୟଣରେ ଶ୍ରୀଧର ଗୋପାଳ କଥା ଅନେକେ ଜାଣିଥିବେ । ରାମଚନ୍ଦ୍ର ତାଠାରୁ ଦୁଗ୍ଧ ଖାଇଥିଲେ । "ଶ୍ରୀରାମ ବୋଇଲେ ଆମ୍ଭେ ହେବୁ ତୋର ସୁତ । ଏବେ ତୁହି ଦିବ୍ୟ ଲୋକ ହୋଇବୁ ପ୍ରାପତ । ଦ୍ୱାପରେ ଗୋପବଂଶରେ ତୁ ହେବୁ ରାଜନ । ଅମ୍ଭେ ଦୁଇ ଭାଇ ହେବୁ ତୋହର ନନ୍ଦନ ।"

(ରାମାୟଣ ଅରଣ୍ୟକାଣ୍ଡ) ।

ଗୋପାଳମାନଙ୍କୁ ପଇତା ପକାଇବାର ଦେଖି ଅନ୍ୟ ଜାତିର ଲୋକେ ଈର୍ଷାନ୍ୱିତ ହେଉଛନ୍ତି, ଥଟ୍ଟା ତାମସା କରୁଛନ୍ତି । ମାତ୍ର ଏପରି କରିବାର କିଛି କାରଣ ନାହିଁ । ଗୋପାଳମାନେ କ୍ଷତ୍ରିୟ ହୁଅନ୍ତୁ ବା ବୈଶ୍ୟ ହୁଅନ୍ତୁ ସେମାନଙ୍କର ଉପନୟନ ଶାସ୍ତ୍ରସମ୍ମତ ଏବଂ ସେମାନେ ପଇତା ଧାରଣ କରିବା ଶାସ୍ତ୍ରସମ୍ମତ । ଭାଗବତରେ ଶ୍ରୀକୃଷ୍ଣ କହିଅଛନ୍ତି—"ସ୍କନ୍ଧରେ ପଇତା ଧାରଣ, ବେଦାଧ୍ୟୟନ ପ୍ରତିଦିନ, ନ ରହି ପରର ଦାସତ୍ୱେ, ନିରାମିଷ ଆହାର ନିତ୍ୟେ" । ଅଚ୍ୟୁତାନନ୍ଦ ଶୂନ୍ୟସଂହିତାରେ କହିଅଛନ୍ତି—"ପଇତା ଗୋଟିଏ ଥିବ ଦକ୍ଷେଣ ଯେ କନ୍ଧେ, ବ୍ରାହ୍ମଣ ଗୋପାଳ ବେଶ ଧରିବ ଯେ ତୁମ୍ଭେ । ବ୍ରାହ୍ମ ସାରସ୍ୱତ ସଂହିତାରେ ଅଛି—"ଦକ୍ଷିଣେ ପଇତା ପାଦେ କଠାଉ" ଇତ୍ୟାଦି । ଅଚ୍ୟୁତାନନ୍ଦଙ୍କୁ କେହି କେହି ଖଣ୍ଡାଏତ ବୋଲି କହୁଛନ୍ତି । ଓଗାଳ ଗୀତରେ ଅଚ୍ୟୁତାନନ୍ଦ ନିଜେ କହୁଛନ୍ତି—"ଗୋପାଳକୁମର ଘେନ ଅଚ୍ୟୁତ କହି" । ପରସ୍ପର ବାଟ ଓଗାଳ ପରମ୍ପରାରେ ହେବା କଥାକୁ ଓଗାଳ ଗୀତ କହନ୍ତି । ଓଗାଳ ଗୀତରେ ଅନେକ ତତ୍ତ୍ୱ ପ୍ରଶ୍ନ ଉତ୍ତର କରାଯାଏ । ଗୋପାଳ କେଉଁଠୁଁ ଜନ୍ମ ହେଲେ ? ବଂଶୀ କେଉଁଠୁଁ ଜାତ ହେଲା ? ଇତ୍ୟାଦି ନାନା ତତ୍ତ୍ୱ ଏଥିରେ ପ୍ରଶ୍ନ ଉତ୍ତର କରାଯାଏ । ସାଧାରଣତଃ ଗୋପାଳମାନେ ଗୋଚାରଣ ଗୋପାଳନ ବୃତ୍ତି ଅବଲମ୍ବନ କରି ଆସୁଛନ୍ତି । ଏହା ବୈଶ୍ୟ ବୃତ୍ତି । ଗୀତାରେ ଶ୍ରୀକୃଷ୍ଣ କହୁଛନ୍ତି—କୃଷି ଗୋରକ୍ଷ୍ୟ ବାଣିଜ୍ୟଂ ବୈଶ୍ୟକର୍ମ ସ୍ୱଭାବଜଂ । ଗୋପାଳ ଦୁଇ ଅର୍ଥ ବୁଝାଏ,—ଗୋ ଅର୍ଥ ପୃଥିବୀ ଏବଂ ଗୋ ଅର୍ଥ ଗୋରୁ । ଗୋପାଳ ଅର୍ଥ ରାଜା ଏବଂ ଗୋପାଳ ଅର୍ଥ ଗୋରୁପାଳକ । ଗୋଚାରଣ ବ୍ୟବସାୟ ଯେଉଁମାନେ କରନ୍ତି ସେମାନେ ସର୍ବଦା ବନ ଜଙ୍ଗଲରେ ରହନ୍ତି । ଶ୍ରୀକୃଷ୍ଣ ଭାଗବତରେ କହୁଛନ୍ତି—"କର୍ମହିଁ ସୁଖ ଦୁଃଖ ଦାତା, ବିଶ୍ୱ ସଂସାରେ ବଳବନ୍ତା । ନିର୍ଝର ଜଳ ପାନ କରି, ଆମ୍ଭ ଦେବତା ବନ ଗିରି" । ଗୋସେବାଠାରୁ ବଳି ଧର୍ମକାର୍ଯ୍ୟ ନାହିଁ । ଶ୍ରୀକୃଷ୍ଣ ନିଜେ ଗୋଚାରଣ ବୃତ୍ତି କରୁଥିଲେ । ଆଧୁନିକ ଶିକ୍ଷିତମାନେ ହାତରେ ଗୋବର ଲାଗିଯିବା ଭୟରେ ଗୋ-ସେବାକୁ ଘୃଣାଜନକ କାର୍ଯ୍ୟ ବୋଲି ମନେ କରନ୍ତି । ଆଧୁନିକ ବାବୁଆଣୀମାନେ ମଧ୍ୟ ଗୋସେବାକୁ ଘୃଣା କରନ୍ତି । ମାତ୍ର ଏହା ଅତି ପବିତ୍ର ଧର୍ମକାର୍ଯ୍ୟ ଓ ସ୍ୱାସ୍ଥ୍ୟକର ଅଟେ । ପଞ୍ଚଗବ୍ୟ ପାନ କଲେ ଆତ୍ମଶୁଦ୍ଧି ଓ ଦେହଶୁଦ୍ଧି ହୁଏ । ଗୋରୁଠାରୁ ଦୁଧ, ଦହି, ଛେନା, ଲହୁଣୀ, ଘିଅ ପ୍ରଭୃତି ଅମୃତ ଆମେ ପାଉଁ । ଗୋରୁ ଚାଷ କରିବାରୁ ଆମ ଡାହାଣ ହାତ ଚଳେ । ଏ ପ୍ରକାର ଉପକାରୀ ଜନ୍ତୁର ସେବା ଘୃଣ୍ୟ ହୋଇ ନ ପାରେ । ଗୋପାଳମାନେ ଅତି ସରଳ ଭାବରେ ଜୀବନ ଯାପନ କରନ୍ତି । ଗୋରୁ ସେମାନଙ୍କ ଶିକ୍ଷା, ଦୀକ୍ଷା, ଜୀବିକା । ଗୋରୁଙ୍କ ପଛରେ ବନ ଜଙ୍ଗଲରେ ବୁଲି ବୁଲି ସେମାନେ କାଳ କଟାନ୍ତି । ନାଗରିକ ଆଧୁନିକ ସଭ୍ୟତା ସେମାନଙ୍କୁ ସ୍ପର୍ଶ କରେ ନାହିଁ । ତେଣୁ ସେମାନଙ୍କୁ ଲୋକେ ମୂର୍ଖ ଅଧମ ଜାତି ବୋଲି କହିଥାଆନ୍ତି । "ଘରେ ନ ରହନ୍ତି ଗଉଡ଼େ ବଡ଼ ଅଧମ ଜାତି, ଧେନୁ ବଛାଧେନୁ ବାଳକ ବନେ ବୁଲନ୍ତି ନିତି" ଗୋପୀଭାଷା ଲେଖକ ଲେଖିଯାଇଛନ୍ତି । ଗୋପାଳ-ମାନେ ସେମାନଙ୍କ କୌଳିକ ରୀତିନୀତି ଛାଡ଼ିବାରୁ ଅବନତ ହୋଇଛନ୍ତି । ଶାସ୍ତ୍ରରୁ ଦେଖାଯାଏ ଗୋପୀମାନେ ଅଷ୍ଟରତ୍ନର ଅଳଙ୍କାର ପିନ୍ଧୁଥିଲେ; ବର୍ତ୍ତମାନ ଗୋପାଳ-ସ୍ତ୍ରୀମାନେ ପିତ୍ତଳ ଖଡ଼ୁ ବାହି ପିନ୍ଧି ବୁଲନ୍ତି । ଏମାନଙ୍କର ଧାରଣା ଯେ, ପିତ୍ତଳ ଖଡ଼ୁର ପରିବର୍ତ୍ତରେ କାଚ ପ୍ରଭୃତି ପିନ୍ଧିଲେ ଜାତି ଯିବ ଏବଂ କୌଣସି ଅଧିଦୈବିକ ଅନିଷ୍ଟ ହେବ । ଏମାନେ ଆପଣା ଆଚାର ବ୍ୟବହାର ହେତୁ ଅନେକ ସ୍ଥଳରେ ଘୃଣ୍ୟ ହୋଇଛନ୍ତି । ମାତ୍ର ପ୍ରାଚୀନ ପୁରାଣ ପ୍ରଭୃତି ଦେଖିଲେ ଏମାନଙ୍କ ମାହାତ୍ମ୍ୟ ଜଣା ପଡ଼େ ।

ଯଦୋର୍ବଂଶଂ ନରଃଶ୍ରୁତ୍ୱା ସର୍ବଲୋକେ ମହୀୟତେ
ଯଦୋର୍ବଂଶଂ ନରଃଶ୍ରୁତ୍ୱା ସର୍ବ ପାପାତ୍ ପ୍ରମୁଚ୍ୟତେ ।
ଯୂୟଂ ସର୍ବେପି ଗୋପାଳାଃ ଗୋଲୋକାଦାଗତା ଭୁବି
ତଥା ଗୋପୀଗଣା ଗୋପାଃ ଗୋଲୋକେ ରାଧିକେଚ୍ଛୟା,
ଯାଦବାନାଂ ହିତାର୍ଥାୟ ଧୃତୋ ଗିରିବରୋ ମୟା,
(ସ୍କନ୍ଦ ପୁରାଣ)

ଯାଦବେଷ୍ୱପି ସର୍ବେଷୁ ଭବନ୍ତୁ ମମ ବାନ୍ଧବା,
(ହରିବଂଶ ବିଷ୍ଣୁ ପର୍ବ)

ଯାଦବୌଚୌ ରଣେ ଗୋପୌ ବାସୁଦେବ ସୁତାବୁଭୌ ।
ଗୋପାନାଂ ବଚନଂ ଶ୍ରୁତ୍ୱା କୃଷ୍ଣଃ ପଦ୍ମଦଳେକ୍ଷଣଃ
ପ୍ରତ୍ୟୁବାଚ ସ୍ମିତଂ କୃତ୍ୱା କ୍ଷାତ୍ରିକାନ୍ ସର୍ବାନ୍ ସମାଗତାନ୍,
ମନ୍ୟନ୍ତେମାନ୍ ଯଥା ସର୍ବେ ଭବନ୍ତୁ ଭୀମବିକ୍ରମାଃ ।
ତଥାହି ନାବମନ୍ତବ୍ୟ ସ୍ୱଜାତୟୋ ସବାନ୍ଧବାଃ,
ଯଞ୍ଚିରେ ବୃଷ୍ଣି କୁରୁଷୁ, ମହାତ୍ମାନୋ ମହୌଜସଃ,
ନନ୍ଦାଦ୍ୟା ଗୋପବେଶାଢ୍ୟା ଶ୍ରୀଦାମାଦ୍ୟଶ୍ଚ ବାଳକାଃ
(ବ୍ରହ୍ମାଣ୍ଡ ପୁରାଣ ଉତ୍ତର)

ନନ୍ଦୋପନନ୍ଦ ଭଦ୍ରାଦ୍ୟାଃ ରାମକୃଷ୍ଣାନୁବର୍ତ୍ତିନଃ ।
ଅକ୍ଷୌହିଣୀଭିର୍ଦ୍ୱାଦଶଭିଃ ସମେତୋ ସର୍ବତୋଦିଶମ୍,
ରୁରୁଧୁର୍ବାନଗନ୍‌ରାତ୍ ସମନ୍ତାତ୍ ସାତ୍ୱତର୍ଷଭଃ ।
(ଭାଗବତ ୧୦ । ୬୩)

ପଶୁପାଳାସ୍ତ୍ରିଧା ବୈଶ୍ୟା ଆଭୀର ଗୁର୍ଜ୍ଜରାଃ ସ୍ମୃତାଃ
ଗୋପବଲ୍ଲଭ ପର୍ଯ୍ୟାୟା ଯଦୁବଂଶ ସମୁଦ୍ଭବାଃ ।
(ଶ୍ରୀକୃଷ୍ଣ ଗଣେଶ ଦୀପିକା)

ଗୋପାନାମର୍ଦ୍ଧଂ ମହତ୍ (ଗର୍ଗସଂହିତା)
ନିତ୍ୟ ଶତ ସର୍ବାଙ୍ଗସ୍ୟ ନିତ୍ୟ ଗୋଗୃହ ମାର୍ଜ୍ଜନେ ।
ସର୍ବାର୍ତ୍ତେ ଉତ୍ତମା ଗୋଧୀଃ ପଞ୍ଚଗବ୍ୟନ୍ତୁ ବର୍ଜ୍ଜୟେତ୍
(ବ୍ରହ୍ମବୈବର୍ତ୍ତ)

ଆମ୍ଭମାନଙ୍କର ସକଳ ଶୁଭ କାର୍ଯ୍ୟ ବେଳେ ମଙ୍ଗଳାଷ୍ଟକ ପାଠ କରା ଯାଇଥାଏ । ସେଥିରେ ଅଛି—

ଗଙ୍ଗା ଗୋମତି ଗୋପତି ର୍ଗଣପତି ର୍ଗୋବିନ୍ଦ
ଗୋବର୍ଦ୍ଧନୋ
ଗୀତା ଗୋ ଗୋରଜୋ ଗିରି ଗିରିସୁତା, ଗଙ୍ଗାଧରୋ
ଗୌତମ ।
ଗାୟତ୍ରୀ ଗରୁଡ଼ୋ ଗଦା ଗିରିଗୁହା ଗମ୍ଭୀର ଗୋଦାବରୀ
ଗନ୍ଧର୍ବ ଗ୍ରହ ଗୋପ ଗୋକୁଲ ଜନାଃ କୁର୍ବନ୍ତୁତେ ମଙ୍ଗଳଂ ।

ଏ ସମସ୍ତ ବିଷୟ ଆଲୋଚନା କଲେ ଜଣାଯାଏ ଯେ, ଯାଦବ ବଂଶ କ୍ଷତ୍ରିୟ ଥିଲେ ଓ ପରେ ସେଥିରୁ ବୈଶ୍ୟ ବୃତ୍ତି କରୁଥିଲେ । କେହି କହି ପାରେ ଯେ, ଏକଥା କିପରି ସମ୍ଭବ ହୋଇ ପାରେ ? ପ୍ରାଚୀନ ଜାତିବିଭାଗ ବିଷୟ ପୁଙ୍ଖାନୁପୁଙ୍ଖ ଭାବେ ଆଲୋଚନା କଲେ ଜଣାଯାଏ, ଏକ ବ୍ରାହ୍ମଣ ଜାତିରୁ ସବୁ ଜାତିର ଜନ୍ମ । ବୃତ୍ତି ଭେଦରେ ନାନା ପ୍ରକାର ଜାତିର ସୃଷ୍ଟି ହୋଇଅଛି । ଯାଦବମାନେ ଆପଣା ସମାଜର ଯେତେ ସଂସ୍କାର କରି ପାରନ୍ତି, ତେତେ ଅତି ଉତ୍ତମ କଥା । ଆଧୁନିକ ଯୁଗରେ ଶିକ୍ଷା ଓ ଅର୍ଥ ଉନ୍ନତିର ମୂଳଦୁଆ । ଯେତେ ଜାତି ଅଛନ୍ତି ସର୍ବାପେକ୍ଷା ଗୋପାଳ ଜାତି ଅତି ଅନୁନ୍ନତ ଅବସ୍ଥାରେ ଅଛି । ପ୍ରଥମେ ଶିକ୍ଷା ପ୍ରଚାର କରି ଆର୍ଥିକ ଉନ୍ନତି ଦିଗରେ ଚେଷ୍ଟା କରିବା ଉଚିତ । ପଇତା ପକାଇବା ପାଇଁ ଇଚ୍ଛା କଲେ ଉପନୟନ କରିବା ଉଚିତ । କେବଳ ସଭା ସମିତିରେ ପଇତା ପକାଇ ଦେଲେ ହେବ ନାହିଁ । ଶାସ୍ତ୍ରବିଧି ଅନୁସାରେ ଉପନୀତ ହୋଇ ପଇତା ପକାଇବା ଉଚିତ ହେବ । ଲୋକ ହେଉ ବା ଜାତି ହେଉ, ସେ ଆପଣା ଦୋଷରୁ ପତିତ ହୁଏ । କଥା ଅଛି, ଆଲୋ ସଖୀ ! ଆପଣା ମହତ ଆପେ ରଖି । ଅନ୍ୟେ ଯଦି ନିଜକୁ ଯାଦବ କ୍ଷତ୍ରିୟ ବା ବୈଶ୍ୟ ବୋଲି ପରିଚିତ ନ କରାଇବା ଏବଂ ଅନୁଚିତ କର୍ମ ନ କରିବା ତେବେ ଆମ୍ଭଙ୍କୁ କେହି ବୈଶ୍ୟ ବା କ୍ଷତ୍ରିୟ କରି ଦେବ ନାହିଁ । ଏଥିପାଇଁ ଅନ୍ୟ ଉପରେ ଆକ୍ରୋଶ ନ ରଖି, ଅନ୍ୟ ଜାତି ପ୍ରତି ଦ୍ୱେଷ ହିଂସା ନ ରଖି ଆପଣା କର୍ମ ଆପେ କରିବା ଉଚିତ ।

(ସନ୍ଦର୍ଭ ଲେଖକ— ଶ୍ରୀ ଜଗବନ୍ଧୁ ସିଂହ)

ପୁରାଣପ୍ରସିଦ୍ଧ ଯଦୁବଂଶରେ ଯେଉଁମାନଙ୍କର ଜନ୍ମ ସେମାନଙ୍କୁ ଯାଦବ କହନ୍ତି । ଏହି ଜାତି ପୌରାଣିକ ଯୁଗଠାରୁ ଆରମ୍ଭ କରି ଆଜି ସୁଦ୍ଧା ଆମ ଦେଶରେ ଘରେ ଘରେ ପରିଚିତ; ତାହାର କାରଣ ଭଗବାନ୍ ଶ୍ରୀକୃଷ୍ଣ ଏହି ବଂଶରେ ଜନ୍ମଗ୍ରହଣ କରିଥିଲେ ।

ପୁରାଣ ପ୍ରସିଦ୍ଧ ଚନ୍ଦ୍ରଙ୍କ ପିତା ଅତ୍ରି ଋଷିଙ୍କ ୭ମ ପୁରୁଷରେ ଯଦୁ ନାମରେ ଏକ ପ୍ରବଳପରାକ୍ରମୀ ଭୁବନବିଖ୍ୟାତ ରାଜା ଜନ୍ମ ଗ୍ରହଣ କରିଥିଲେ । ଏହି ଯଦୁଙ୍କ ବଂଶରେ ଏକ ମହାରାଜଙ୍କର ଦୁଇ ପୁତ୍ର ଥିଲେ । ସେମାନଙ୍କ ମଧ୍ୟରୁ ଜଣେ ରାଜ୍ୟଭାର ଗ୍ରହଣ କରି ଏହି ବଂଶର ସମ୍ମାନ ଓ ମର୍ଯ୍ୟାଦା ରକ୍ଷା କରିଥିଲେ । ଅନ୍ୟ ଜଣେ ଗୋଧନ ରକ୍ଷଣାବେକ୍ଷଣର ଭାର ଗ୍ରହଣ କରିଥିଲେ । ଶାସକଙ୍କ ବଂଶ ଯଦୁବଂଶ ଓ ଗୋଧନ ରକ୍ଷକଙ୍କ ବଂଶ ମଥୁରାପୁରିଆ ଗୋପାଳ ବଂଶ । କିନ୍ତୁ ବାସ୍ତବରେ ସେମାନଙ୍କୁ ଅଭିନ୍ନ ଏକ ବଂଶ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । (ନବୀନ ପତ୍ରିକା)]

**ଯାଦବୀ**—ସଂ. ବି. ସ୍ତ୍ରୀ. ( ଯଦୁ+ଅପତ୍ୟାର୍ଥେ. ଅ+ସ୍ତ୍ରୀ. ଈ )—
Jādabi ୧ । ବାସନ୍ତୀ ଦେବୀ; ଦୁର୍ଗା—1 Durgā. ୨ । ଗୋଧନ—2. Stock of cattle. ୩ । ମଦିରା—3. Wine. ୪ । କୁଟୁଣୀ; କୁଟ୍ଟିନୀ—4. A bawd; procuress.

**ଯାଦସାଂ ନାଥ**—ସଂ. ବି. ପୁଂ (ଯାଦସାଂ=ଜଳଜନ୍ତୁମାନଙ୍କ+ନାଥ)—
Jādasām nātha ୧ । ବରୁଣ—1. The Sea-god (ଯାଦସାଂ ପତି—ଅନ୍ୟରୂପ) ୨ । ସମୁଦ୍ର—2. The sea, ocean (Apte)

**ଯା(ଯ୍ୟା)ଦା**—ବୈଦେ. ବି. ( ଫା. ଯ୍ୟାଦା; ଜିୟାଦା; ଜ୍ୟାଦା )—
Jā(jyā)dā ୧ । ଯିଆଦା; ଅତ୍ୟଧିକ—1. Very much
जयादा ୨ । ଅତିରିକ୍ତ—2. Excessive. ୩ । ଅପେକ୍ଷାକୃତ ଭଲ—3. Better. ବିଶେଷ ବିଣ— ୧। ଅପେକ୍ଷାକୃତ ରୂପେ—1 Comparatively. ୨ । ଅତ୍ୟଧିକ ରୂପେ—2. Excessively.

**ଯାଦୁ**—ସଂ. ବି—୧ । ଜଳ (ହ୍ରି. ଶ)—1. Water (Apte). ୨ ।
Jādu ତରଳ ପଦାର୍ଥ (ହ୍ରି. ଶ)—2. A liquid; a fluid (Apte).

**ଯାଦୁ (ଇତ୍ୟାଦି)**—ଦେ ଓ ବୈଦେ. ବି—ଜାଦୁ ଇତ୍ୟାଦି ( ଦେଖ )
Jādu (etc) Jādu etc. ( See )

**ଯାଦୁମଣି(ନି)**—ଦେ. ବି. ( ସଂ. ଯଦୁମଣି=ଶ୍ରୀକୃଷ୍ଣଙ୍କ ସମ୍ବୋଧନ )—
Jādumaṇi(ni) ଅତି ସ୍ନେହର ପାତ୍ର—A dear person;
যাদুমনি प्यारे darling.

**ଯାଦୃଚ୍ଛିକ**—ସଂ. ବିଣ. ପୁଂ. ( ଯଦୃଚ୍ଛା+ଇକ )—୧ । ସ୍ୱେଚ୍ଛାଚାରୀ—
Jādṛuchchhika 1. Arbitrary; wilful; despotic
(ଯାଦୃଚ୍ଛିକୀ—ସ୍ତ୍ରୀ) ୨ । ସ୍ୱାଧୀନ—2. Independent. ୩ । ସ୍ୱେଚ୍ଛାକୃତ—3. Voluntary; spontaneous (Apte). ୪ । ଆକସ୍ମିକ—4. Accidental ; unexpected (Apte). ବି. ପୁଂ—ସ୍ୱେଚ୍ଛାଚାରୀ ଯାଜକ—A officiating priest who acts or performs a sacrifice as he pleases (not according to the rules).

**ଯାଦୃଶ୍(ଶ, କ୍ଷ)**—ସଂ. ବି. ପୁଂ. (ଯଦ୍+ଦୃଶ୍ ଧାତୁ+କ୍ୱିପ୍; କର୍ମ.
Jādṛuś(śa, ksha) ଅ+ସ)—ଯେଉଁ ପ୍ରକାରର—Of
(ଯାଦୃଶୀ, ଯାଦୃକ୍ଷୀ—ସ୍ତ୍ରୀ) which sort; like which; whatlike.

**ଯାଦୋଗଣ**—ସଂ. ବି (ଯଦଃ+ଗଣ; ସନ୍ଧି ଯୋଗୁଁ ଃ ସ୍ଥାନରେ 'ଓ')—
Jādogaṇa ଜଳଜନ୍ତୁସମୂହ—The aquatic animals

**ଯାଦୋଗଣେଶ୍ୱର**—ସଂ. ବି ( ୬ଷ୍ଠୀ ତତ୍; ଯାଦୋଗଣ+ଈଶ୍ୱର; ଯାଦସ୍=ଜଳଚରଗଣ+ନାଥ )—୧ ସମୁଦ୍ର—1. The ocean. ୨ । ବରୁଣ—2. The Sea-god.
Jādogaṇeśwara
(ଯାଦୋନାଥ, ଯାଦୋଗଣନାଥ—ଅନ୍ୟରୂପ)

**ଯାଦୋନିବାସ**—ସଂ. ବି.- (୬ଷ୍ଠୀ ତତ୍; ଯାଦଃ+ନିବାସ, ଜନ୍ତୁମାନଙ୍କ ବାସସ୍ଥାନ)—୧ । ସମୁଦ୍ର—1. The ocean. ୨ । ଜଳ—2. Water.
Jādonibāsa

**ଯାଦ୍ୱ**—ସଂ. ବିଣ. ପୁଂ—(ଯଦୁ+ଅ)—୧ । ଯଦୁବଂଶୀୟ (ହି. ଶ)—1. Belonging to the Jadu dynasty. ୨ । ଯଦୁ ସମ୍ବନ୍ଧୀୟ (ହିନ୍ଦି ଶବ୍ଦସାଗର)—2. Relating Jadu.
Jādwa
(ଯାଦ୍ୱୀ—ସ୍ତ୍ରୀ)

**ଯାନ୍** (ଇତ୍ୟାଦି)—ବୈଦେ. ବି.—ଜାନ୍ ଇତ୍ୟାଦି (ଦେଖ)
Jān (etc) Jān etc. (See)

**ଯାନ**—ସଂ. ବି.—(ଯା ଧାତୁ+କରଣ. ଅନ; ଯହିଁରେ ଲୋକେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇ ପାରନ୍ତି)—୧ । ବାହନ (ହସ୍ତ୍ୟଶ୍ୱ-ଶକଟାଦି )—1 Conveyance. [ ଦ୍ର—ଯାନ ଓ ବାହନ ଏକାର୍ଥକ, କିନ୍ତୁ ସାଧାରଣତଃ ହସ୍ତ୍ୟଶ୍ୱାଦି ଜୀବଙ୍କୁ ବାହନ ଓ ନିର୍ଜୀବ ବସ୍ତୁ (ଶକଟ, ରଥ ଆଦି)କୁ ଯାନ ବୋଲାଯାଏ । ] ୨ । ( +ଭାବ. ଅନ ) ଗମନ; ଭ୍ରମଣ; ଗତି; ଯାତ୍ରା—2. Going; moving, advancing; proceeding. ୩ । ଦେଶାଟନ—3. Travel. ୪ । ଶତ୍ରୁର ପ୍ରତିକୂଳରେ ଯାତ୍ରା—4. Expedition against an enemy, marching against. ୫ । ଆକ୍ରମଣ—5 Attacking; invasion. ୬ । ( +ଅଧିକରଣ ଅନ )—ଦଳବଦ୍ଧ ହୋଇ କରାଯିବା ଯାତ୍ରା; ଶୋଭାଯାତ୍ରା—6 Procession; train (Apte). ୭ । (+କରଣ. ଅନ)—ନୌକା, ଜାହାଜ—7. Ship, boat. (ଯଥା—ଯାନ ଭଙ୍ଗ ।) ଦେ. ବି.—(ସଂ. ଉପଯାନ)—ଆଗମନ; ନିକଟକୁ ଗମନ—Arrival; coming near. [ଉ—ପଡନ୍ତି ପଡ଼ ଚଳନ୍ତେ, ଯନ୍ତ୍ର ବିଚଳିତ ହୋନ୍ତେ, ଶଙ୍କିତ କରାଇ ଯାନ, ମନେ ବିଚାର । ପ୍ରାଚୀ. ରସବାରିଧି ।]
Jāna

**ଯାନକ**—ସଂ. ବି.—(ଯାନ+ସ୍ୱାର୍ଥେ. କ)—ଗାଡ଼ି ଆଦି—Vehicle, conveyance (Apte).
Jānaka

**ଯାନକର**—ସଂ ବି.—(ଯାନ+କୃ ଧାତୁ+କର୍ତ୍ତୃ. ଅ)—ବଢ଼େଇ—A carpenter (Apte).
Jānakara

**ଯାନକୀ**—ସଂ. ବିଣ —(ଯାନକ+ଅସ୍ତି ଅର୍ଥରେ ଇନ୍, ଭଙ୍ଗୀଯୁ ପ୍ରୟୋଗ) ଯାନାରୂଢ଼; ଯାନ ଚଢ଼ିଥିବା—Seated on a conveyance. [ଉ—ବିସ୍ମାନ ଲକ୍ଷଣେ ଯେହୁ ସଂହିତ ଲକ୍ଷଣେ ସେହି ଯାନକୀ ନୋହି ଜାନକୀ ଆଶା । ଭଞ୍ଜ. ବୈଦେହୀଶ ବିଳାସ ।]
Jānakī

**ଯାନ ପାତ୍ର**—ସଂ. ବି—ଅର୍ଣ୍ଣବ ପୋତ; ବୋଇତ—A sea-going vessel.
Jāna pātra
(ଯାନ ପାତ୍ରକ—ଅନ୍ୟରୂପ)

**ଯାନ ବାହ**—ସଂ. ବିଣ.—(ଯାନ+ବହ ଧାତୁ+କର୍ତ୍ତୃ. ଅ)—ଯେ ଯାନକୁ ବହନ କରେ ବା ଟାଣେ—Drawing or carrying a conveyance.
Jāna bāha
ଯାନବାହକ / ଯାନବାହୀ }—ଅନ୍ୟରୂପ
ବି.—୧ । ଯାନବହନକାରୀ ଜୀବ—1. An animal drawing a vessel or vehicle. ୨ । ସବାରି ଆଦି ବୋହିବା ଲୋକ—2. People bearing or drawing a conveyance.

**ଯାନ ବାହନ**—ସଂ. ବି—(ଏକାର୍ଥକ ସହଚର ଶବ୍ଦ )—ଗମନାଗମନାର୍ଥ ବ୍ୟବହୃତ ନାନା ପ୍ରକାରର ବାହନ (ଜୀବନ୍ତ ଓ ନିର୍ଜୀବ)—Conveyances and animals drawing conveyances [ଦ୍ର—ସାଧାରଣତ ଯେଉଁ ପାତ୍ରାକୃତି ବସ୍ତୁରେ ଚଢ଼ି ଲୋକେ ଯିବା ଆସିବା କରନ୍ତି ତାକୁ ଯାନ ବୋଲାଯାଏ, ଯଥା—ଗାଡ଼ି, ସବାରି, ନୌକା, ରେଳଗାଡ଼ି, ଉଡ଼ାଜାହାଜ, ରଥ । ଯେଉଁ ଜୀବମାନେ ଲୋକଙ୍କୁ ପିଠିରେ ବହନ କରନ୍ତି ବା ଗାଡ଼ି ଆଦିକୁ ଟାଣନ୍ତି ତାଙ୍କୁ ବାହନ ବୋଲାଯାଏ ଯଥା—ମନୁଷ୍ୟ, ଘୋଡ଼ା, ବଳଦ, ହାତୀ ।]
Jāna bāhana
[ଯାନ ବାହାନ—ଗ୍ରାମ୍ୟରୂପ]

**ଯାନ ଭଙ୍ଗ**—ସଂ. ବି—(୬ଷ୍ଠୀ ତତ୍; ଯାନ+ଭଙ୍ଗ)—ଜାହାଜ ମାଡ଼ି-ଯାଇଯିବା—Shipwreck.
Jāna bhaṅga

**ଯାନ ମୁଖ**—ସଂ. ବି—ଶକଟାଦିର ଅଗ୍ରଭାଗ; ଯୁଆଳି—The fore part of a carriage; the part where the yoke is fixed.
Jāna mukha

**ଯାନଯାନ**—ସଂ. ବିଣ. ପୁଂ (ଯାନ+ଯା ଧାତୁ+କର୍ତ୍ତୃ. ଅନ )—ଗାଡ଼ିରେ ବସି ଯାଉଥିବା; ଯାନାରୋହୀ—Driving or riding in a carriage.
Jānajāna
(ଯାନଯାନା—ସ୍ତ୍ରୀ)

**ଯାନଶାଳା**—ସଂ. ବି—ଯେଉଁ ଘରେ ଗାଡ଼ିଆଦି ରଖାଯାଏ—Coach-house; garage ( Apte).
Jānaśālā

**ଯାନାବରୋହଣ**—ସଂ. ବି ( ୫ମୀ ତତ୍ )—ଯାନରୁ ଓହ୍ଲାଇବା—Alighting from a conveyance.
Jānābarohaṇa
(ଯାନାବରୂଢ଼(ଢ଼ା)—ବିଣ)

**ଯାନାରୋହଣ**—ସଂ. ବି ( ୭ମୀ ତତ୍ )—ଯାନରେ ଚଢ଼ିବା—Riding on or using a conveyance.
Jānārohaṇa
(ଯାନାରୂଢ଼, ଯାନାରୋହୀ—ପୁଂ, ଯାନାରୂଢ଼ା, ଯାନାରୋହଣୀ—ସ୍ତ୍ରୀ—ବିଣ )

**ଯାନାସ(ସ୍ତା, ସ୍ଥା)ନ୍**—ବୈଦେ. ବି ( ଫା. ଜାନ୍=ଜୀବନ୍ ଓ ଅସ୍ତାନ୍=ବାସସ୍ଥଳ; ତୁଳ. ସଂ. ଯାନ ଓ ଆସନ )—୧ । ଚଳନ୍ତି ଅଚଳନ୍ତି ସମସ୍ତ ସମ୍ପତ୍ତି; ସର୍ବସ୍ୱ—1. All property ( moveable and immoveable ). ( ଯଥା—ଚୋରମାନେ ମୋର ଯାନାସ୍ତାନ୍ ବୋହି ନେଲେ । ଦେବଣା ଯୋଗୁଁ ତାର ଯାନାସନ୍ ନିଲାମ ହୋଇଗଲା । ) ୨ । ଜୀବନ ଓ ସମ୍ପତ୍ତି—2. Life and property.
Jānāsa(stā, sthā)n
ସର୍ବସ୍ୱ
सबचिज, चिजबस्त

**ଯାନି**—ପ୍ରାଦେ. ( ଗଡ଼ଜାତ ) ବି. ପୁଂ—୧ । ମଙ୍ଗଳା ଠାକୁରାଣୀଙ୍କର ପୁରୁଷ ସେବକ ବା କାଳଶୀ—1. The male servant of the Deity Mangalā
**Jāni**
(ଯାନିଆଣୀ—ସ୍ତ୍ରୀ)
୨ । କନ୍ଧଜାତିର ବଂଶୋପାଧି ବିଶେଷ—2. A family-title amongst the Kandhas.

**ଯାନି ଯାତରା**—ଗ୍ରା. ବି ( ସଂ. ଯାନ+ଯାତ୍ରା, ଏକାର୍ଥକ ଶବ୍ଦ ଦ୍ୱୟ )—
**Jāni jātarā**
(ଯାନିଯାତ୍ରା—ଅନ୍ୟରୂପ)
উৎসব পার্ব্বণ
**जानिजातरा**
୧ । ଦେବ ଉତ୍ସବ; ପୁଣ୍ୟପର୍ବ, ଦେବତାଙ୍କର ଉତ୍ସବାଦି—1. Festivals observed in respect of a Deity; religious ceremonies and festivals of a Deity. ୨ । ଦେବତାଙ୍କ ଉତ୍ସବ ଓ ଶୋଭାଯାତ୍ରା —2. Religious festivals and processions

**ଯାନି ଯୌତୁକ**—ଦେ. ବି ( ଶବ୍ଦ ଦ୍ୱୟ, ସଂ. ଯାନ+ଯୌତୁକ )—
**Jāni jautuka**
**बरविदाइ**
୧ । ବହୁବିଧ ଉପଢୌକନ—1. Various presents. ୨ । ବିବାହ ପରେ ବରଙ୍କୁ କନ୍ୟାର ପିତୃଗୃହରୁ ମିଳିବା ଯାନବାହନ ଓ ଦ୍ରବ୍ୟସମ୍ଭାର—2. Conveyances and presents given to a bridegroom by the bride's family

**ଯାନ୍ତି**—ପ୍ରାଦେ (ବିଜୟପୁର ଓ ଉତ୍ତର ବାଲେଶ୍ୱର; ଭୁଲ. ବଂ. ଯାଁତି ) ବି
**Jānti**
(ଯାଁତି—ଅନ୍ୟରୂପ)
( ସଂ. ଯନ୍ତ୍ର )—ଗୁଆକାତି—Nut cracker.
ଦେ. କ୍ରିୟା (ଯିବା କ୍ରିୟାର ବର୍ତ୍ତମାନ ପ୍ରବୃତ୍ତି ବହୁ-ବଚନ, ତୃତୀୟ ପୁରୁଷ ଏକ ଓ ବହୁବଚନରେ ବ୍ୟବହୃତରୂପ)—
**जातेहैं**
( He or they ) Do go

**ଯାନୀ(ନ୍ୟ)**—ସଂ. ବିଣ. ପୁଂ ( ଯାନ+ଇନ୍ ୧ ମା. ୧ବ; +ଯ )—
**Jāni(nya)**
(ଯାନିନୀ, ଯାନ୍ୟା—ସ୍ତ୍ରୀ)
ଯାନ ବାହ ( ଦେଖ )—Jāna bāha (See.

**ଯାନ୍ତ୍ରିକ**—ସଂ. ବିଣ ( ଯନ୍ତ୍ର+ଇକ )—୧ । ଯନ୍ତ୍ର ସମ୍ବନ୍ଧୀୟ—
**Jāntrika**
(ଯାନ୍ତ୍ରିକୀ—ସ୍ତ୍ରୀ)
1. Mechanical; belonging to machines. ୨ । କୃତ୍ରିମଉପାୟରେ ଶୋଧିତ—2. Artificially refined ( Apte ).

**ଯାପକ**—ସଂ. ବିଣ. ପୁଂ ( ଯା ଧାତୁ ଣିଚ, ଯାପି ଧାତୁ+କର୍ତ୍ତୃ. ଅକ )—
**Jāpaka**
(ଯାପିକା—ସ୍ତ୍ରୀ)
୧ । ଯେ ଗତି କରାଏ—1. Causing to go ( Apte ). ୨ । ଦାତା—2. Giving away; bestowing

**ଯାପଟା**—ଦେ. ବି ( ସଂ. ଘୃପ )—ଦୃଢ଼ଭାବରେ ବାହୁରେ ଧରିବା; ଚପି ଧରିବା—Holding tightly with the arms.
**Jāpaṭā**
জাপটান **चिपटा**

**ଯାପଟିବା (ଇତ୍ୟାଦି)**—ଦେ. କି ( ସଂ. ଘୃପ )—ଜାପଟିବା ଇତ୍ୟାଦି ( ଦେଖ )—Jāpaṭibā etc (See)
**Jāpaṭibā (etc)**

**ଯାପନ**—ସଂ. ବି ( ଯା ଧାତୁ+ଣିଚ=ଯାପି ଧାତୁ=କାଳକ୍ଷେପଣ କରିବା +ଭାବ. ଅନ )—୧ । ଅନ୍ୟକୁ ଗତି କରାଇବା, ଚଳାଇବା—1. Causing to go or move. ୨। କାଳକ୍ଷେପଣ; ସମୟ କଟାଇବା—2. Spending or passing away of time. ୩ । ଦୂରକରଣ; ତାଡ଼ିତ କରଣ; ବହିଷ୍କରଣ—3. Expulsion; ejection; driving out; causing to go away. ୪ । ଉପଶାନ୍ତ କରଣ,—4. Allaying; alleviating; mitigating. ୫ । ରୋଗର ଦୂରୀକରଣ—5 Curing of a disease. ୬ । ବିଳମ୍ବ; ବୃଥା କାଳକ୍ଷେପଣ—6 Delay, procrastination ( Apte ). ୭ । ଭରଣ; ପୋଷଣ—7 Support; maintenance (Apte) ৮ । ଅଭ୍ୟାସ—8 Practice, exercise (Apte). ୯ । କୌଣସି ସ୍ଥାନରେ କିଛିକାଳ ଥାକିବା; ନାଟକେଇବା—2. Loitering ( Apte ).
**Jāpana**

**ଯାପନ କରିବା**—ଦେ କି—କଟାଇବା; (ସମୟ) ଅତିବାହନ କରିବା—
**Jāpana karibā**
যাপন করনা **यापन करना**
To spend (time).

**ଯାପନା**—ସଂ. ବି ( ଯା ଧାତୁ ଣିଚ, ଯାପି ଧାତୁ+ଭାବ. ଅନ+ଆ )—
**Jāpanā**
୧ । ଯାପନ ( ଦେଖ )—1. Jāpana ( See ) ୨ । ( କରଣ ଅନ+ଆ )—ଜୀବନକାଳଯାକ ସକାଶେ କୌଣସି ବ୍ୟକ୍ତିଙ୍କୁ ଦିଆଯିବା ଧନ ( ହି. ଶ. )—2. Money-grant made to a person for maintenance. ୩ । ବ୍ୟବହାର ( ହି. ଶ. )—3. Use,

**ଯାପନୀୟ**—ସଂ. ବିଣ ( ଯା ଧାତୁ+ଣିଚ୍ ଯାପି ଧାତୁ+କର୍ମ. ଅନୀୟ )—
**Jāpaniya**
କ୍ଷେପଣୀୟ—To be passed or spent.

**ଯାପି (ଧାତୁ)**—ସଂ. ( ଯା ଧାତୁ+ଣିଚ )—୧ । (କାଳ) କ୍ଷେପଣ କରିବା
**Jāpi (root)**
—To pass; to spend ( time ). ୨ । ଚଳାଇବା; ଗତି କରାଇବା—2 To cause to move; to ply. ୩ । ତଡ଼ିବା—3. To expel; to eject.

**ଯାପିତ**—ସଂ. ବିଣ (ଯାପି ଧାତୁ+କର୍ମ. ତ)—୧ । ଅତିବାହିତ (ସମୟ)-
**Jāpita**
1. Spent (time). ୨ । ଅପସାରିତ; ଦୂରୀକୃତ—2. Expelled, removed.

**ଯାପିବା**—ଦେ. କି (ସଂ. ଯାପି ଧାତୁ)—୧ । (କାଳ) ଯାପନ କରିବା—
**Jāpibā**
যাপা
**यापनकरना, जापना**
1. To pass or spend (time). [ ଉ—ଚନ୍ଦ୍ରାଲୁକ ଚନ୍ଦ୍ରେ ଉଦିତେ ରଜନୀ ଯାପିଲା ବାଳୀ—ରାଧାନାଥ. ଉଷା । ] ୨ । (ସଂ. ଘୃପ) ଘୃପିବା—2. To press, to squeeze.

**ଯାପ୍ତା**—ସଂ. ବି (ଯାପି ଧାତୁ+କର୍ମ. ତ+ସ୍ତ୍ରୀ. ଆ)—ଜଟା—Plaited or matted hair; twisted hair (Apte).
**Jāptā**

**ଯାପ୍ୟ**—ସଂ. ବିଣ (ଯାପି ଧାତୁ+କର୍ମ ଯ )—୧ । ଅଧମ; ନିନ୍ଦନୀୟ; ହେୟ; ଘୃଣ୍ୟ—1. Contemptible; blameworthy. ୨ । ଯାପନୀୟ—2. Requiring to be spent or passed. ୩ । ଅତିବାହନୀୟ;
**Jāpya**

ଯେଉଁ ରୋଗକୁ ନିଃଶେଷରୂପେ ଆରୋଗ୍ୟ କରି ଯାଇ ନ ପାରେ, କିନ୍ତୁ ଦବାଇ ରଖା ଯାଇ ପାରେ—3. Passable, not capable of being radically cured, but capable of being alleviated to continue in a tolerably mild form. [ ବ୍ର—ରୋଗ ତିନି ବିଧ ଯଥା—ସାଧ୍ୟ, ଯାହା ଔଷଧାଦି ପ୍ରୟୋଗଦ୍ୱାରା ଭଲ ହୁଏ; ଅସାଧ୍ୟ—ଯାହା ଆଦୌ ଭଲ ହୁଏ ନାହିଁ; ଯାପ୍ୟ—ଯାହା ମୂଳରୁ ନଷ୍ଟ ହୁଏ ନାହିଁ, କିନ୍ତୁ ଔଷଧାଦି ପ୍ରୟୋଗଦ୍ୱାରା ଦେହରେ ଗୁପ୍ତ ରହି ହୁଏ ଓ ଔଷଧ ପ୍ରୟୋଗ ନ କଲେ ବା ସାବଧାନ ନ ରହିଲେ ଯାହା ପୁଣି ମାଡି ଉଠେ । ] ୪ । ଗୋପନୀୟ—4. Secret. ୫ । ଆବରଣୀୟ—5. To be covered. ୬ । ତାଡ଼ନୀୟ; ଦୂରୀକରଣୀୟ—6. To be expelled or ejected.୭ । ଲଘୁ—7. Trifling; unimportant. ୮ । ରକ୍ଷଣୀୟ—(ହି. ଶ.)—୮. To be protected.

**ଯାପ୍ୟଯାନ**—ସଂ. ବି (ଯାପ୍ୟ=ନିନ୍ଦନୀୟ+ଯାନ=ବାହନ)—ଶିବିକା; **Jāpyajāna** ପାଲିଙ୍କି; ଡୋଲି, ଖଟୁଲି—A litter; a palanquin (Apte).

**ଯାବ**—ସଂ. ବିଣ ( ଯବ+ସମ୍ବନ୍ଧାର୍ଥେ ଅ )—ଯବସମ୍ବନ୍ଧୀୟ—**Jāba** Relating to barley. ବି ( ଯୁ ଧାତୁ=ମିଶ୍ରିତ କରିବା+କର୍ମ ଅ )—୧ । ଅଲକ୍ତକ, ଅଳତା—1, A reddye; lac-dye. ୨ । ଯବାଗୁ; ଯାଉ—2. Gruel ୩ । ଗବାଦିଙ୍କ ଖାଦ୍ୟ, ଚିଡିଆମିଶା କୁଟା—3. Crushed straw for cattle. ୪ । ଯବଧାନର ଛତୁଆ (ହି. ଶ.)—4. Powdered fried barley, ୫ । ଲାକ୍ଷା (ହି. ଶ.)—5. Shell lac.

**ଯାବକ**—ସଂ. ବି ( ଯାବ+ସ୍ୱାର୍ଥେ କ )—୧ । ଅଲକ୍ତକ; ଅଳତା—**Jābaka** 1. A dye made of lac (used in painting the border of the soles of females). ୨ । ଅପକ୍ୱ ଯବ—2. Half-ripe barley. ୩ । ତୁଷଶୂନ୍ୟ ଯବ—3. Chaffless or awnless barley. ୪ । ମୁଦ୍ଗବିଶେଷ; ମାଷ; ଶିମ୍ବି (ହି. ଶ.)—4. A kind of phaseolus pulse ୫ । କୁଲତ୍ଥ; କୋଲଥ—5. Kulthi grain; Dalochus Biflorus. ୬। ଦାଲୁଅ ଧାନ; ଗ୍ରୈଷ୍ମିକ ଧାନ; କୁଲ୍ମଷ—6. Summer paddy. ୭ । ଭାତ ପରି ସିଦ୍ଧ ଯବ; ଯବାନ୍ନ—7. Barley boiled like rice. ( ଉ—ଯାବକ ଭକ୍ଷେ ଗୋରୁ ମୂତ୍ରେ, ବଲ୍କଲ ପିନ୍ଧି କଷ୍ଟସୂତ୍ରେ—ଜଗନ୍ନାଥ. ଭାଗବତ । ) ୮ । ଯବରେ ପ୍ରସ୍ତୁତ ଖାଦ୍ୟ—8. Food prepared from barley (Apte). ୯ । ଯବଧାନର ଛତୁଆ ( ହି. ଶ. )—9. Powdered fried barley. ୧୦ । ଲାକ୍ଷା ( ହି. ଶ. )—10. Shell lac.

**ଯାବକ୍ଷାର**—ସଂ. ବିଣ ( ଯବକ୍ଷାର+ଅ )—ଯବକ୍ଷାର ସମ୍ବନ୍ଧୀୟ—**Jābakshāra** Nitric; nitrous. (ଯାବକ୍ଷାରିକ—ଅନ୍ୟରୂପ)

**ଯାବକ୍ଷାରାମ୍ଳ**—ସଂ. ବି (ଆଧୁନିକ, ରସାୟନପରିଭାଷା)—ଯବକ୍ଷାରଜାନ—**Jābakshārāmla** Nitric acid

**ଯାବଚ୍ଚନ୍ଦ୍ରଦିବାକର**—ସଂ. କ୍ରି. ବିଣ ( ଅବ୍ୟୟୀଭାବ, ଯାବତ୍+ଚନ୍ଦ୍ର, **Jābachchandradibākara** ଦିବାକରଂ )—ଚନ୍ଦ୍ର (ଯାବଚ୍ଚନ୍ଦ୍ରାର୍କ—ଅନ୍ୟରୂପ) ଓ ସୂର୍ଯ୍ୟ ଥିବା ପର୍ଯ୍ୟନ୍ତ; ପୃଥିବୀର ଶେଷ ପର୍ଯ୍ୟନ୍ତ; ଚିରକାଳ ପାଇଁ—Till the end of time; for ever.

**ଯାବଚ୍ଚନ୍ଦ୍ରାର୍କେ**—ଦେ. କ୍ରି. ବିଣ—(କଥିତ)—(ସଂ. ଯାବଚ୍ଚନ୍ଦ୍ରାର୍କ)—**Jābachchandrārke** ଚିରକାଳ ପାଇଁ—For ever; eternally.

**ଯାବଚ୍ଛ(ଚ୍ଛ)**—ଦେ. କି. ବିଣ—(ସଂ. ଯାବତ୍ ଓ ଇଚ୍ଛା; ଯାବଚ୍ଛକ୍ୟ)—**Jābachha(chchha)** ୧ । ଯାଇଚ୍ଛା ତା (ଦେଖ)—यावपव नाई यावच्छक 1. Jāichchhā tā (See) ୨ । ଅତ୍ୟନ୍ତ; ବେଜାଏ—2. Excessive. (ଯଥା—ମୁଁ ତାକୁ ଯାବଚ୍ଛ ଗୋଧିଲି ।)

**ଯାବଚ୍ଛକ୍ତି(କ୍ୟ)**—ସଂ. କି. ବିଣ—(ଯାବତ୍+ଶକ୍ତି, ଶକ୍ୟ; ସନ୍ଧି ଯୋଗୁ **Jābachchhakti(kya)** ତ୍+ଶ=ଚ୍ଛ)—ଯେତେଦୂର ପର୍ଯ୍ୟନ୍ତ [ଯାବଚ୍ଛକ୍ତି, ଯାବତ୍‌ସାମର୍ଥ୍ୟ—ଅନ୍ୟରୂପ] ଶକ୍ତି ବା ବଳ ଅଛି ସେ ପର୍ଯ୍ୟନ୍ତ—As far as possible; to the best of one's power.

**ଯାବଜ୍ଜୀବ**—ସଂ. ଅ.—( ଅବ୍ୟୟୀ ଭାବ; ଯାବତ୍+ଜୀବ; )—୧ । **Jābajjiba** ଆମରଣ, ଆଜୀବନ—1. Till death. ୨ । (ଯାବଜ୍ଜୀବନ, ଯାବଜ୍ଜନ୍ମ—ଅନ୍ୟରୂପ) ଜୀବିତ ଥିବା କାଳ ପର୍ଯ୍ୟନ୍ତ; ବଞ୍ଚିଥିବା କାଳ ତମାମ—2 For life; throughout life.

**ଯାବଜ୍ଜୀବ କାରାଦଣ୍ଡ**—ସଂ. ବି.—(ଆଧୁନିକ)—ବଞ୍ଚିଥିବା ପର୍ଯ୍ୟନ୍ତ **Jābajjiba kārādanda** ଜେଲ୍‌ଖାନାରେ ରହିବା ଦଣ୍ଡ—(ଯାବଜ୍ଜୀବନ କାରାଦଣ୍ଡ—ଅନ୍ୟରୂପ) Imprisonment for life.

**ଯାବଜ୍ଜୀବ ଦ୍ୱୀପାନ୍ତର**—ସଂ. ବି.—(ଆଧୁନିକ ପ୍ରୟୋଗ)—ବଞ୍ଚିଥିବାଯାକେ **Jābajjiba dwipāntara** କଳାପାଣି ବା ଅଣ୍ଡାମାନ୍ ଦ୍ୱୀପରେ ନିର୍ବାସନ (ଦଣ୍ଡ)—Transportation for life (as punishment).

ଯାବଜ୍ଜୀବ ନିର୍ବାସନ
ଯାବଜ୍ଜୀବନ ଦ୍ୱୀପାନ୍ତର
ଯାବଜ୍ଜୀବନ ନିର୍ବାସନ
ଯାବଜ୍ଜୀବନ ଦେଶାନ୍ତର } —ଅନ୍ୟରୂପ

**ଯାବଡ଼** (ଇତ୍ୟାଦି)—ଜାବଡ଼ ଇତ୍ୟାଦି (ଦେଖ) **Jābarda** (etc) Jābarda etc (See)

**ଯାବଡ଼ରେ**—ଦେ. କ୍ରି. ବିଣ —(ସଂ. ଶୁଷ୍)—୧ । ଶୀଘ୍ର ଗତିରେ; ଦ୍ରୁତ **Jābardare** ବେଗରେ—1. Swiftly. ୨ । ଘଞ୍ଚରୂପେ; ଜାପଟେ ଘନ ଭାବରେ—2. Thickly; densely. ୩ । जलदी, घन, जोरसे ଦୃଢ଼ରୂପେ—3. Tightly.

ଯାବତ୍—ସଂ. ଅ.—( ଯଦ୍=ଯେ+ପରିମାଣାର୍ଥେ ବତ୍ ) ( ଏହା Jābat ନାନା ଅର୍ଥରେ ବ୍ୟବହୃତ ହୁଏ ଓ ଏଥି ସଙ୍ଗେ ଆପେକ୍ଷିକ [ତାବତ୍—ଆପେକ୍ଷିକ ଶବ୍ଦ] ରୂପେ ତାବତ୍ ବ୍ୟବହୃତ ହୁଏ)—୧। ଯେତେ ଦିନ ଯାଏ; ସେତେକ୍ଷଣ ପର୍ଯ୍ୟନ୍ତ—1. Till; until, as long (as); till which (limit of time). ୨। ଯେତେ ସଂଖ୍ୟା ପର୍ଯ୍ୟନ୍ତ—2. As many as. ୩। ଯେତେକ ପରିମାଣ ପର୍ଯ୍ୟନ୍ତ 3. As much as. ୪। ଯେତେ ଆକାର ବା ଦୈର୍ଘ୍ୟ ପର୍ଯ୍ୟନ୍ତ; ଯେତେ ବଡ଼—4. As great as. ୫। ଯେତେକ, ସମୁଦାୟ—5. All whatever. ୬। ଯାହାଁତକ; ଯେତେଦୂର ପର୍ଯ୍ୟନ୍ତ—6. As far as; upto. ୭। ଯେଉଁ କ୍ଷଣିକା—7. As soon as; no sooner than; just as. ୮। ଯଦା; ଯେବେ—8. If; when; while; as. [ ଦ୍ର—ଏ ଶବ୍ଦ ତାବତ୍ ଶବ୍ଦର ବିନା ସାହାଯ୍ୟରେ ଅବ୍ୟୟରୂପେ ନିମ୍ନଲିଖିତ ଅର୍ଥମାନଙ୍କରେ ବ୍ୟବହୃତ ହୁଏ—Used in the following instances independently of Jābat. (ଯଥା- ୧। ଅବଧାରଣ-1. Ascertainment ୨। ପ୍ରଶଂସା—2 Praise. ୩। ସାକଲ୍ୟ—3. Wholeness; entirety; totality. ୪। ପରିଚ୍ଛେଦ—4. Section; chapter. ୫। ସମୟର ବା ସ୍ଥାନର ବା ସଂଖ୍ୟାର ସୀମା, ପର୍ଯ୍ୟନ୍ତ—5. Limit; boundary (of time, place or number), upto; till. ୬। ମାପ—6. Measure. ୭। ପରିମାଣ—7. Quantity. ୮। ସମ୍ଭ୍ରମ—8. Rank; dignity. ୯। ପକ୍ଷାନ୍ତର—9. On the other hand. ୧୦। ଅଧିକାର—10. Possession.] ସର୍ବନାମ—ସମସ୍ତ—All; whole ବିଣ.—୧। ଯେତେ; ଯେଉଁ ପରିମାଣରେ—1. (Denoting quantity or measure) As much as). ୨। ଯେତେ ବେଶି—2. As many (as). ୩। ଯେତେ ବଡ଼—3. As great (as). ୪। ଯେତେଦୂର—4. As far (as). ୫। ସମୁଦାୟ—5. Whole of; all. ( ଯଥା—ସଂସାର ଯାକର ଯାବତ୍ କଷ୍ଟମାନ ଆସି ମୋ ଘରେ ରୁଣ୍ଡ ହୋଇଅଛନ୍ତି। ] ଦେ. ବି.—ସୀମା—Limit. (ଯଥା—ମୋ କଷ୍ଟର ଯାବତ୍ ନାହିଁ। )

ଯାବତ୍‌କାଳ—ସଂ. ଅ—ଯେତେ ଦିନ ପର୍ଯ୍ୟନ୍ତ; ଯାହାଁତକ୍—Jābat-kāla As long (as); so long (as). (ଯାବତ୍କାଳ, ଯାବତ୍କାଳ ପର୍ଯ୍ୟନ୍ତ—ଅନ୍ୟରୂପ)

ଯାବତ୍ ପରିମାଣ—ସଂ. ଅ—ଯେତେ ପରିମାଣ—Jābat-parimāṇa As much ( as ).

ଯାବତ୍ ପରିମିତ—ସଂ. ବିଣ—ଯେତେ ପରିମାଣ ବିଶିଷ୍ଟ—Jābat-parimita As much ( as ).

ଯାବତ୍ ପ୍ରମାଣ—ସଂ. ବିଣ—ଅନ୍ୟକ ପରି ବଡ଼—Jābat-pramāṇa As great; as big.

ଯାବତ—ଦେ. ଅ ( ସଂ. ଯାବତ୍ )—୧। ଯାବତ୍ ( ଦେଖ )—Jābata 1. Jābat ( See ) [ ଉ—ଯାବତ ନ ପୂରେ ଉଦର, ତାବତ କ୍ଷୀଣ କାହିଁ ମୋର ? ଜଗନ୍ନାଥ. ଭାଗବତ। ] ୨। ଯାକେ; ଯାଏ, ପର୍ଯ୍ୟନ୍ତ—2. Till; upto. [ ଉ—ଯାବତ କର୍ମଫଳ ପୂରେ, ରହିଲେ ସେବକ ବେଶରେ। ଭୂପତି. ପ୍ରେମପଞ୍ଚାମୃତ। ] ବିଣ—ସମୁଦାୟ—Whole of; all. [ ଉ—ସଂସାରେ ଯାବତ କଳଙ୍କ ତାର ଅଙ୍କୁ କରନ୍ତା। ସୁଧାନାଥ. ଚନ୍ଦ୍ରଭାଗା। ]
যাবত
যাবত

ଯାବତା (ଇତ୍ୟାଦି)—ବୈଦେ ଓ ଦେ. ବ ଓ ବିଣ—ଜାବତା ଇତ୍ୟାଦି Jābatā (etc) ( ଦେଖ )—Jābatā etc ( See )

ଯାବତିଥ—ସଂ. ବିଣ ( ଯାବତ୍+ଇଥ )—ଯାବତ୍ ପରିମିତ—Jābatitha As much ( as )

ଯାବତୀୟ—ସଂ. ବିଣ ( ଯାବତ୍+ଈୟ )—୧। ସମୁଦାୟ—1. All, Jābatīya whole; entire. ୨। ପ୍ରତ୍ୟେକ ପ୍ରକାରର—2. Every kind of.

ଯାବତ୍ତାବତ୍—ସଂ. ଅ ( ଯାବତ୍+ତାବତ୍ )—୧। ଯେତେ ପରିମାଣ Jābattābat ତେତେ—1. So much as; quantum tantum. ୨। ( ବୀଜଗଣିତ ) ଅଜ୍ଞାତ ରାଶିର ସହିତ ତାହାର ଗୁଣନୀୟକର ସମ୍ବନ୍ଧ—2. ( Algebra) The relation of an unknown number with its coefficient. ଦେ. କ୍ରି. ବିଣ—ଯାବତ୍ତାବତ୍ କରି ( ଦେଖ )—Jābattābat kari ( See ).

ଯାବତ୍ତାବତ୍ କରି—ଦେ. କ୍ରି. ବିଣ—୧। ଯେ କୌଣସି ପ୍ରକାରେ—Jābattābat kari 1. Anyhow. ୨। ଅତି କଷ୍ଟରେ—2. With great difficulty.
যেমনতেমন করে
যাবত্তাবত করকে

ଯାବଦନ୍ତ—ସଂ. ଅ ( ଯାବତ୍+ଅନ୍ତ, ସନ୍ଧି ଯୋଗୁ, ତ୍+ଅ=ଦ )—Jābadanta ଶେଷ ପର୍ଯ୍ୟନ୍ତ—Upto the end; to the last ( Apte ).

ଯାବଦର୍ଥ—ସଂ. ଅ ( ଯାବତ୍+ଅର୍ଥ; ସନ୍ଧିଯୋଗୁ ତ୍+ଅ=ଦ )—୧। Jābadartha ଯେତିକି ଲୋଡ଼ା ସେତିକି—1. As much as is necessary. ୨। ସବୁ ଅର୍ଥରେ—2; In all senses ( Apte ).

ଯାବଦିତ୍ଥ—ସଂ. ଅ ( ଯାବତ୍+ଇତ୍ଥ; ସନ୍ଧିଦ୍ୱାରା ତ୍+ଇ=ଦି )—Jābadittha ଯେତିକି ଲୋଡ଼ା ସେତିକି—As much as is necessary.

ଯାବଦୀପ୍ସିତ—ସଂ. ଅ ( ଯାବତ୍+ଈପ୍ସିତ; ସନ୍ଧିଯୋଗୁ ତ୍+ଈ=ଦୀ ) Jābadīpsita —ଯେତିକି ଇଚ୍ଛା ସେତିକି—As much as is desired ( Apte ). (ଯାବଦିଷ୍ଟ—ଅନ୍ୟରୂପ)

ଯାବଦୁକ୍ତ—ସ. ଅ ( ଯାବତ୍+ଉକ୍ତ; ସନ୍ଧିଦ୍ୱାରା ତ୍+ଉ=ଦୁ )—
Jābadukta ଯେତିକି କୁହାଯାଇ ଅଛି ; ସେତିକି—As
(ଯାବଭାଷିତ—ଅନ୍ୟରୂପ) much as said ( Apte ).

ଯାବଦ୍ଦେଶ—ସ. କି. ବଣ (ଯାବତ୍+ଦେଶ)—ସର୍ବତ୍ର—
Jābaddesa Everywhere; throughout.

ଯାବନ—ସ. ବଣ ( ଯବନ+ସମ୍ବନ୍ଧାର୍ଥେ. ଅ )—୧ । ଯବନ ( ଦେଶ
Jābana ଓ ଜାତି ) ସମ୍ବନ୍ଧୀୟ—1. Relating to the
(ଯାବନୀ—ସ୍ତ୍ରୀ) Jabana ( country and nation ).
୨ । ଗ୍ରୀକ୍; ଅୟୋନୀୟ—2. Greek; Ionian. ବ
—୧ । ଗନ୍ଧଦ୍ରବ୍ୟବିଶେଷ; ଲୋବାନ୍—1. Name of
an incense, olibanum. ୨ । ( ଯୁ ଧାତୁ ଣିଚ୍;
ଯାବ ଧାତୁ+ଭାବ. ଅନ )—ମିଶ୍ରଣ; ମିଶାଇବା—
Mixing; mingling ( Apte ).

ଯାବନକ—ସ. ବ—ରକ୍ତ ଏରଣ୍ଡ (ବୈ. ଶ. )—The red variety
Jābanaka of castor seed plant.

ଯାବନ କଲ୍କ—ସ. ବ—ଶିଳାରସ ( ବୈ. ଶ. )—
Jābana kalka Liquid amber

ଯାବନାଳ—ସ. ବ. ( ଯବନାଳ+ଅ )—୧ । ଜୁଆର ( ଦେଖ )
Jābanāla 1. Indian millet. ୨ । ଏକ ପ୍ରକାର ଶର
ଓ. କୁଆର ତୃଣ—A kind of reed.
ଜନାବ, ଜୁଆବା ଭୁଟ୍ଟା, मकक्ष ତେ. ମକ୍କା, ଜୋନ୍ନଲୁ
ତା. ମକ୍କଶୋଲମ ಜೋಳ

ଯାବନାଳ ଶର୍କରା—ସ. ବ—ଯବନାଳରୁ ପ୍ରସ୍ତୁତ ଚିନି—Sugar
Jābnāla sarkarā made from Indian millet.
(ଯାବନାଳୀ—ଅନ୍ୟରୂପ)

ଯାବନୀ—ସ. ବଣ. ସ୍ତ୍ରୀ. ( ଯାବନ+ଈ )—ଯାବନର ସ୍ତ୍ରୀଲିଙ୍ଗ—
Jābani Feminine of Jābana.
(ଯଥା—ଯାବନୀ ସେନା, ଯାବନୀ ଭାଷା ।)
ସ. ବ—ଖୁରସାନୀ ଜୁଆଣି—Henbane; Hyocyamus Niger.

ଯାବନ୍ତ—ଦେ. ଅ. (ସ. ଯାବତ୍)—୧ । ଯାବତ୍ ( ଦେଖ )
Jābanta 1. Jābat ( See )
यावंत, यावत ୨ । ଯେତେକାଳ ପର୍ଯ୍ୟନ୍ତ—2. Till. ସର୍ବ—
ଯାବତ୍ ସମୁଦାୟ—All; whole of. (ଉ—ଯୋଗ ଥିଲା ଏକ
ଭିଲେ, ଯାବନ୍ତ ତେଜିବା ଚର୍ହି କର ତାହି । କବିସୂର୍ଯ୍ୟ.
ଭାକରଚମ୍ପୂ ୯ ଗୀତ ।)

ଯାବଶୂକ—ସ. ବ (ଯବଶୂକ+ସ୍ୱାର୍ଥେ. ଅ)—ଯବକ୍ଷାର; ସୋରା—
Jābasūka Nitre; salt petre.

ଯାବସ—ସ ବ. ( ଯବସ=ଘାସ+ପ୍ରାଚୁର୍ଯ୍ୟାର୍ଥେ. ଅ )—୧ । ଘାସ
Jābasa ଗଦା—1. A heap of grass (Apte).
୨ । ଗୋମେଷାଦିଙ୍କ ଖାଦ୍ୟ ନଡ଼ା କୁଟା—2 Fodder
(Apte). ୩ । ରନ୍ଧା ହୋଇ ନ ଥିବା ଖାଦ୍ୟସାମଗ୍ରୀ—
3. Provisions (Apte).

ଯାବା(ଭା)—ଦେ. ବ. (ନାମ) ( ସ. ଯବ )—ଯବଦ୍ୱୀପ, ଭାରତୀୟ
Jābā(bhā) ଦ୍ୱୀପପୁଞ୍ଜର ଏକତମ—Jābhā; an island of
যাভা जावा the East Indian archipelago.
[ଦ୍ର—ଯବ ଧାନ୍ୟ ଅଦ୍ଭୁତବୀଜ ( ୨ ମୁଣ୍ଡ ସରୁ, ମଝି
ଚଉଡ଼ା) ଥିବାରୁ ଏହି ନାମ । ଏହା ସୁମାତ୍ରା ଓ ବୋର୍ଣ୍ଣିଓ
ଦ୍ୱୀପର ଦକ୍ଷିଣରେ ପୂର୍ବ-ପଶ୍ଚିମକୁ ବିସ୍ତୃତ ହୋଇ ଅବସ୍ଥିତ ।
ପୂର୍ବେ ଉତ୍କଳୀୟମାନେ ଜାହାଜ ଦ୍ୱାରା ଏ ଦ୍ୱୀପକୁ ବାଣିଜ୍ୟ
କରିବାକୁ ଯାଉଥିଲେ । ବର୍ତ୍ତମାନ ଏହା ଡଚ୍‌ମାନଙ୍କ
ଅଧିକୃତ । ଏହା ଦ୍ରାଘିମା ୧୧୦ ଓ ଅକ୍ଷାଂଶ ୮ରେ ଅବସ୍ଥିତ ।
ବଟେଭିୟା ଏହାର ପ୍ରଧାନ ନଗର । ଏ ଦ୍ୱୀପରେ ଅନେକ
ପ୍ରାଚୀନ ହିନ୍ଦୁଳୀୟ ମନ୍ଦିରର ଭଗ୍ନାବଶେଷ ଦେଖାଯାଏ ।]

ଯାବା(ଭା) ଉପସାଗର—ଦେ. ବ. (ନାମ)—ବୋର୍ଣ୍ଣିଓ ଓ ଯାବା ଦ୍ୱୀପ
Jābā(bhā) upasāgara ମଧ୍ୟସ୍ଥ ଉପସାଗର—The Sea
যাভা উপসাগর जावाकी खाडी of Jāvā.
[ଯାବା(ଭା)ସାଗର—ଅନ୍ୟରୂପ]

ଯାବିକ—ସ. ବ—ମକ୍କା (ବୈ. ଶ)—
Jābika Indian corn; maize.

ଯାବି(ବେ)ତା (ଇତ୍ୟାଦି)—ଦେ ଓ ପ୍ରାଦେ. ( ଗଞ୍ଜାମ ) କ୍ରି- ଜାବିତା
Jābi(be)tā (etc) ଇତ୍ୟାଦି (ଦେଖ)—Jābitā etc.
(See)

ଯାଷୀ—ସ. ବ—୧ । ଯବତିକ୍ତା; ଭଦ୍ରତିକ୍ତା (ଦେଖ)—1. Bhadra
Jābi tiktā ( See ) ୨ । ଶଙ୍ଖିନୀ (ବୈ. ଶ) ( ଦେଖ )
2. Sankhini ( See )

ଯା ବେ(ବେଃ)—ଦେ. ଅ. ( ଅତି ଘୃଣାର୍ଥକ )—ଦୂର୍; ଦୂର୍‌ବେ;
Jā be(beh) ଦୂର୍‌ହୋ—Fie ! Be off ! Be gone !
(ଯାବେ ଯା, ଯାବେ ଯାଃ—ଅନ୍ୟରୂପ) ଦୂର୍‌ହଓ जावे, अबे जा

ଯାବ୍ବୁ—ପ୍ରାଦେ (ଗଞ୍ଜାମ) ବ. (ତେ. ଯାବ୍ବୁ)—ରୋଗ—
Jābbu Disease; illness.

ଯାବ୍ୟ—ସ. ବ. (ଯୁ ଧାତୁ=ମିଶାଇବା+କର୍ମ. ଯ)—୧ । ମିଶ୍ରଣୀୟ—
Jābya 1. To be mixed together.
୨ । ଯୋଜନୀୟ—2. Fit to be joined to.

ଯାଭ—ସ. ବ. ( ଯଭ୍ ଧାତୁ=ସ୍ତ୍ରୀସଙ୍ଗମ କରିବା+ଭାବ. ଅ; )—
Jābha ଜମ୍ଭକ; ମୈଥୁନ—Cohabition; copulation;
coition.

ଯାମ—ସ. ବ ( ଯା ଧାତୁ=ଯିବା+କର୍ତ୍ତୃ. ମ; ଯାହା ଦିନର ମଧ୍ୟ ଦେଇ
Jāma ଯାଏ, ଅଥବା ଯମ୍ ଧାତୁ=ଦମନ କରିବା+କର୍ତ୍ତୃ. ଅ,
ଯାହା କାଳକୁ ନିୟମିତ କରେ )—୧ । ଅହୋରାତ୍ରର
ଏକଅଷ୍ଟମାଂଶ; ପ୍ରହର; ୩ ଘଣ୍ଟା କାଳ—1. A
period of 3 hours; a watch of 3 hours.
୨ । (ଯମ. ଧାତୁ+ଭାବ. ଅ) ସଂଯମ; ଜିତେନ୍ଦ୍ରିୟତା—
2. Self control. ୩ । ନିବୃତ୍ତି—3. Cessation.
୪ । (ଯା. ଧାତୁ+କର୍ତ୍ତୃ. ମ) ସମୟ—4 Time. ୫ ।
(ଯମ. ଧାତୁ+କର୍ମ. ଅ) ସମୟର ସୀମା; ମିଆଦ—

5. Limit of time; term. ୬ । (ଯା. ଧାତୁ+ ଇର୍ତ୍ତି. ମ) ଦେବଗଣ ବିଶେଷ—6. A group of 12 Deities. [ ଦ୍ର—ଏମାନେ ସଂଖ୍ୟାରେ ୧୨ ଗୋଟି । ଏମାନେ ସ୍ୱାୟମ୍ଭୁବମନୁଙ୍କ ଅମଳରେ ଯଜ୍ଞଙ୍କ ଔରସରେ ଦକ୍ଷିଣାଙ୍କ ଗର୍ଭରେ ଜନ୍ମଗ୍ରହଣ କରିଥିଲେ—ହି. ଶ. ।] ୭ । (ଯା. ଧାତୁ+ଭାବ. ମ) ଗତି—7. Motion. ୮ । ଗମନ—8 Going; proceeding (Apte). ୯ । (+କରଣ ମ) ଯାନ—9 Conveyance; carriage (Apte). ବିଣ—(ଯମ+ଅ) ଯମ ସମ୍ବନ୍ଧୀୟ—Relating to Jama. ଦେ. ବି—(ସଂ. ଯାମ୍ୟ)—ଡାହାଣ—Right side. [ଉ—ବାମେ ରାଧିକା ଯାମେ ତୁଳକା, ମଧ୍ୟେଣ ଶ୍ରୀକୃଷ୍ଣ ଶୋଭେ ବେଢ଼ି ଗୋପିକା—ପ୍ରାଚୀ. ରହସ୍ୟମଞ୍ଜରୀ ।]

**ଯାମକ**—ସଂ. ବି—ପୁନର୍ବସୁ ନକ୍ଷତ୍ର (ହି. ଶ)
**Jāmaka** The 7th lunar mansion.

**ଯାମକିନୀ**—ସଂ. ବି. ସ୍ତ୍ରୀ (ଯାମ+କ+ଇନ୍+ସ୍ତ୍ରୀ. ଈ)—୧ । କୁଳବଧୂ
**Jāmakini** (ହି. ଶ)—1. Daughte-rin-law. ୩ । ଭଗିନୀ (ହି. ଶ)—3. Sister.

**ଯାମ(ମୁ)କୁଣ୍ଡା(ଣ୍ଡ)**—ଦେ.ବି-ସୁବର୍ଣ୍ଣରେଖା ନଦୀର ଦକ୍ଷିଣ ତୀରରେ ଅବସ୍ଥିତ
**Jāma(mu)kuṇḍā(ṇḍa)** ବାଲେଶ୍ୱର ଜିଲ୍ଲାର ଗୋଟିଏ ପ୍ରାଚୀନ ଜମିଦାରି—A Zemindari of this name situate along the southern bank of the Subarṇṇarekhā in the district of Balasore. [ଦ୍ର—ଏଥିର ପ୍ରାଚୀନ ଜମିଦାର ବଂଶଙ୍କର ଉପାଧି ଭୂୟାଁ ।]

**ଯାମ ଘୋଷ**—ସଂ. ବି (ବହୁବ୍ରୀହି; ଯାମ=ପ୍ରହର+ଘୋଷ=ଶବ୍ଦ; ରବ;
**Jāma ghosha** ଯେଉଁମାନେ ପ୍ରତି ପ୍ରହରରେ ଶବ୍ଦ କରନ୍ତି)—୧ । କୁକ୍କୁଟ—1. Cock. ୨ । ଶୃଗାଳ—2. Jackal. ୩ । ଯାମଜ୍ଞାପକ ଘଣ୍ଟା ବା ପଟହବିଶେଷ—3. A kind of drum or gong formerly struck to indicate the time. [ଦ୍ର—ଏହା ଆଗେ ପ୍ରହରକୁ ପ୍ରହର ପ୍ରହରୀମାନଙ୍କଦ୍ୱାରା ଶବ୍ଦାୟିତ ହୋଇ ସାଧାରଣଙ୍କୁ ସମୟ ଜ୍ଞାପନ କରାଯାଉଥିଲା । ] ୪ । ଘଣ୍ଟା; ଘଡ଼ି—4. Clock. ୫ । ପିଟା ଘଣ୍ଟା—5. A gong.

**ଯାମଘୋଷା**—ସଂ. ବି—୧। ଘଣ୍ଟକା ଯନ୍ତ୍ର; ବାଜିବା ଘଣ୍ଟା—1. Clock,
**Jāmaghoshā** striking clock. ୨ । ପିଟା ଘଣ୍ଟା—2. A gong. ୩ । ପଟହ ବିଶେଷ—3. A kind of drum. [ ଦ୍ର—ପୂର୍ବେ ପ୍ରହରକୁ ପ୍ରହର ସର୍ବସାଧାରଣଙ୍କୁ 'ପ୍ରହର'ମାନ ଜଣାଇବା ପାଇଁ ପ୍ରହରୀମାନେ ପିଟାଘଣ୍ଟା, ଢୋଲ ବା ତୂରୀ ବଜାଉଥିଲେ ।]

ଯାମନାଳୀ
ଯାମଦୁନ୍ଦୁଭି } ଅନ୍ୟରୂପ
ଯାମ ତୂର୍ଯ୍ୟ

**ଯାମନେମୀ**—ସଂ. ବି—(ବହୁବ୍ରୀହି) - ଇନ୍ଦ୍ର—
**Jāmanemi** Indra.

**ଯାମବତୀ**—ସଂ.ବି. ସ୍ତ୍ରୀ (ଯାମ=ପ୍ରହର+ଅସ୍ତି ଅର୍ଥରେ ବତ୍+ସ୍ତ୍ରୀ.ଈ)—
**Jāmabati** ଯାମିନୀ; ତ୍ରିଯାମା; ରାତ୍ରି—The night.

**ଯାମଳ**—ସଂ.ବି. (ଯମଳ+ସ୍ୱାର୍ଥେ. ଅ)—୧ । ଯୋଡ଼ା—1. A pair;
**Jāmaḷa** couple, a brace. ୨ । ଯମଜ ସନ୍ତାନ ଦ୍ୱୟ—
(ଯାମଳା—ସ୍ତ୍ରୀ) 2. Twins. ୩ । ତନ୍ତ୍ରଶାସ୍ତ୍ରବିଶେଷ—3. Name of a group of Hindu Tantras (or mystic lore). [ ଦ୍ର—ସୃଷ୍ଟି, ଜ୍ୟୋତିଷାଖ୍ୟାନ, ନିତ୍ୟକୃତ୍ୟ, ପ୍ରଯାପନକ୍ରମସୂତ୍ର, ବର୍ଣ୍ଣଭେଦ, ଜାତିଭେଦ, ଯୁଗଧର୍ମ ଓ ସଂଖ୍ୟା ଏହି ଅଷ୍ଟବିଧ ଲକ୍ଷଣାକ୍ରାନ୍ତ ତନ୍ତ୍ରଶାସ୍ତ୍ରବିଶେଷ । ଏହା ଷଡ଼ବିଧ—ଆଦିଯାମଳ, ବ୍ରହ୍ମଯାମଳ, ବିଷ୍ଣୁଯାମଳ, ରୁଦ୍ରଯାମଳ, ଗଣେଶଯାମଳ ଓ ଆଦିତ୍ୟ ଯାମଳ—(ହି. ଶ)—

ଆଦିଯାମଳରେ ୩୫ହଜାର୩୦୦
ବ୍ରହ୍ମଯାମଳରେ ୨୪ହଜାର୨୦୦
ବିଷ୍ଣୁ ଯାମଳରେ ୨୪ହଜାର୨୨୦
ରୁଦ୍ରଯାମଳରେ ୪ହଜାର୪୩୫
ଗଣେଶଯାମଳରେ ୧୦ହଜାର୩୩୨
ଓ ଆଦିତ୍ୟଯାମଳରେ ୧୨ହଜାର ଶ୍ଳୋକ ଅଛି । ]

**ଯାମଳା**—ଦେ. ବି—୧ । ଯାମଳ (ଦେଖ)—1. Jāmaḷa (See).
**Jāmaḷā** ୨ । ଯମଳାର୍ଜୁନ (ଦେଖ)—2. Jāmalārjuna (See). ଦେ. ବିଣ—୧ । ଯୋଡ଼ି ହୋଇ ଜନ୍ମିଥିବା—1. Born as twins. ୨ । ଯୋଡ଼ିକିଆ—2. In a pair; a pair of. [ ଉ—ଯାମଳା ଯାମଳା ପୁତ୍ର ଶାମ୍ବ ତରଙ୍ଗ—ଅଭିମନ୍ୟୁ ବିଦଗ୍ଧଚିନ୍ତାମଣି । )

**ଯାମଳା ଅର୍ଜୁନ**—ଗ୍ରା. ବି—ଯମଳାର୍ଜୁନ (ଦେଖ)—Jamaḷārjuna
**Jāmaḷā arjuna** (See) ( ଉ—ହେ କଳା ଭୁଜଙ୍ଗ
ଯାମଳାର୍ଜୁନ ଯାମଲଅରଜୁନ ଗଞ୍ଜନ, ଯାମଳା ଅର୍ଜୁନ ଭଞ୍ଜନ-ଭୂପତି. ପ୍ରେମପଞ୍ଚାମୃତ । )

**ଯାମଳାର୍ଜୁନ**—ସଂ. ବି—ଯମଳାର୍ଜୁନ (ଦେଖ)
**Jāmaḷārjuna** Jamaḷārjuna (See).

**ଯାମାତା**—ସଂ. ବି. ପୁଂ—ଜାମାତା ୧ (ଦେଖ)—Jāmātā 1 (See).
**Jāmātā** [ ଦ—ଜାମାତା ଓ ଯାମାତା ଉଭୟ ଉଚ୍ଚାରଣ ସଂସ୍କୃତ ଭାଷାରେ ଶୁଦ୍ଧ । ]

**ଯାମାୟନ**—ସଂ. ବି. ଓ ବିଣ ( ଯମ+ଅୟନ )—ଯମଙ୍କ ଗୋତ୍ରଜ
**Jāmāyana** ( ବ୍ୟକ୍ତି ) ( ହି. ଶ. )—(a person) Born in the family of Jama

**ଯାମାର୍ଦ୍ଧ**—ସଂ. ବି ( ୬ଷ୍ଠୀ ତତ୍, ଯାମ+ଅର୍ଦ୍ଧ )—ଅର୍ଦ୍ଧ ପ୍ରହର ବା
**Jāmārddha** ଦେଢ଼ ଘଣ୍ଟା ସମୟ—A period of one and half hours.

**ଯାମି**—ସଂ. ବି. ସ୍ତ୍ରୀ (ଯା ଧାତୁ=ଯିବା+କର୍ତ୍ତୃ. ମି; କିମ୍ବା ଜେ ଧାତୁ
**Jāmi** =ଯଯୁକରବା+କର୍ତ୍ତୃ. ମି, କିମ୍ବା ଜମ ଧାତୁ=ଭକ୍ଷଣ କରିବା+କର୍ତ୍ତୃ. ଇ; କିମ୍ବା ଯମଧାତୁ+କର୍ମ ଅ+ଇ)+
୧ । ଭଗିନୀ; ଭଉଣୀ—1. Sister. ୨ । ଝିଅ;

ଦୁହିତା; କନ୍ୟା—2. Daughter. ୩ । କୁଳସ୍ତ୍ରୀ; କୁଳବଧୂ—3. A young housewife. ୪ । ବଧୂ; ବୋହୂ—4. A daughter-in-law. ୫ । ନବବଧୂ—5. A newly married daughter-in-law. ୬ । ଧର୍ମପରାୟଣା ସ୍ତ୍ରୀ—6. A virtuous lady; a noble woman. ୭ । ଧର୍ମଙ୍କର ଏକ ପତ୍ନୀ; ଦକ୍ଷଙ୍କର ଦୁହିତା ଓ ନାଗବୀଥିଙ୍କର ମାତା (ଅଗ୍ନିପୁରାଣ)—7. Name of a wife of God Dharma. ୮ । (ଯାମ+ଇ) ରାତ୍ରି; ନିଶା; ଯାମିନୀ—8 The night. ୯ । ( ଯମ+ଇ; ଯମଙ୍କ ଶାସିତ ଦିଗ୍ )—ଦକ୍ଷିଣ ଦିଗ—9. The south. ୧୦ । ବୈଦିକ ଯାଚଞ୍ଚା—10 Begging as prescribed in the Bedas

ଯାଉଛି (ସମ୍ବଲପୁର) କ୍ରି—[ମୁଁ] ଯିବି—(I) Will go.

**ଯାମିକ**—ସଂ. ବି. ( ଯାମ+ଇକ )—୧ । ଯାମ ବା ପ୍ରହର ସମ୍ବନ୍ଧୀୟ—
**Jāmika** 1. Relating to or connected with the Jāmas or watches of the day and night. ୨ । ପ୍ରହରକ ପାଇଁ ନିଯୁକ୍ତ—2. Engaged for one prahara or three hours. ସଂ. ବି. ପୁଂ—୧ । ପ୍ରହରୀ; ପହରାବାଲା—1. A watchman on duty. ୨। ରାତ୍ର ଜଗୁଆଳ—2. One on night-duty or guard; sentry. (Apte).

**ଯାମିକ ଭଟ**—ସଂ ବି.—ପ୍ରହରୀ; ରୌଦଦାର—
**Jāmika bhaṭa** A watchman,
[ଭି—ଦୁରୁଁ ଚାହୁଁଥାନ୍ତି ଯାମିକଭଟ, ଆସି ପରା ଭୂମେ ତା ସେବା ଶଠ । ଲବଣ୍ୟବତୀ. କବିତା । ]

**ଯାମିକା**—ସଂ. ବି—(ଯାମ+କ+ଆ)—୧ ଯାମିନୀ; ରାତ୍ର—
**Jāmikā** 1. The night. ୨ । ହଳଦୀ—2. Turmeric (Apte).

**ଯାମିକା ପତି**—ସଂ. ବି (୬ଷ୍ଠୀ ତତ୍)—୧ । ଚନ୍ଦ୍ର—1. The moon
**Jāmikā pati** (Apte), ୨ । କର୍ପୂର—2. Camphor (Apte).

**ଯାମିତ୍ର (ଇତ୍ୟାଦି)**—ସଂ. ବି ( ଯାମି=ସ୍ତ୍ରୀ+ତ୍ରୈ. ଧାତୁ=ତ୍ରାଣ
**Jāmitra (etc)** କରିବା+ଅ )—ଜାମିତ୍ର ଇତ୍ୟାଦି (ଦେଖ) Jāmitra etc (See)

**ଯାମିତ୍ରବେଧ ପ୍ରତିପ୍ରସବ**—ସଂ. ବି ( ଫଳିତ ଜ୍ୟୋତିଷ )—ଯାମିତ୍ର-
**Jāmitrabedha pratiprasaba** ବେଧ ଘଟିଲେ ଓ ଚନ୍ଦ୍ର (ଯାମିତ୍ରବେଧ ଦୋଷନାଶ—ଅନ୍ୟରୂପ) ବୃଷରାଶିରେ କିମ୍ବା ପୂର୍ଣ୍ଣ ଅଥବା ମିତ୍ର ଗ୍ରହର ବା ଶୁଭଗ୍ରହର ଗୃହରେ ଥିଲେ କିମ୍ବା ମିତ୍ରଗ୍ରହ ବା ଶୁଭଗ୍ରହକର୍ତ୍ତୃକ ଦୃଷ୍ଟ ହେଉ ଥିଲେ ଯାମିତ୍ରବେଧ ଦୋଷ ବିନାଶ କରି ଚନ୍ଦ୍ରଙ୍କର ସୁଖଦ ହେବା ଅବସ୍ଥା—(astrology) An auspicious conjunction of the planet moon which nullifies the evil effects of a 'Jāmitra-bedha',

**ଯାମିତ୍ରଯୁତବେଧ**—ସଂ. ବି (ଫଳିତ ଜ୍ୟୋତିଷ )—ଚନ୍ଦ୍ର ପାପ ଗ୍ରହର
**Jāmitrajutabedha** ୭ମ ସ୍ଥାନରେ ରହି ଯାମିତ୍ରବେଧ ଘଟିବା (ଅର୍ଥାତ୍ ଚନ୍ଦ୍ର ପାପଗ୍ରହଯୁକ୍ତ ହେବା) ଅବସ୍ଥା—(astrology ) A most inauspicious position of the planet moon. [ ଦ୍ର—ଏପରି ଘଟିଲେ ଶୁଭକର୍ମ ପରିହାର୍ଯ୍ୟ । ଏ ଯୋଗରେ ଯାତ୍ରା କଲେ, ବିପଦ, ଗୃହାରମ୍ଭ ବା ଗୃହ ପ୍ରବେଶ କଲେ ପୁତ୍ରହାନି, କ୍ଷୌର କର୍ମ କଲେ ରୋଗ, ବିବାହ କଲେ ବୈଧବ୍ୟ, ଉପନୟନ କଲେ ମରଣ ଓ ପୁଂସବନ କଲେ ଶୂଳରୋଗ ହୁଏ ।]

**ଯାମିତ୍ର ସଂସ୍ଥ**—ସଂ. ବିଣ (ଜ୍ୟୋତିଷ)—ରାଶିଚକ୍ରରେ ଲଗ୍ନଠାରୁ ୭ମ
**Jāmitra saṁstha** ସ୍ଥାନରେ ସ୍ଥିତ (ଗ୍ରହ)—(astrology) (a planet) Situated on the 7th position from 'Lagna'.

**ଯାମିନୀ**—ସଂ. ବି. ସ୍ତ୍ରୀ (ଯାମ+ଅସ୍ତି ଅର୍ଥରେ. ଇନ୍+ସ୍ତ୍ରୀ. ଈ)—
**Jāminī** ୧ । ରାତ୍ରି; ନିଶା—1. The night. ୨ । ହଳଦୀ; ହଳଦୀ—2 Turmeric.

**ଯାମିନୀ କାନ୍ତ**—ସଂ. ବି (୬ଷ୍ଠୀ ତତ୍; ଯାମିନୀ+କାନ୍ତ)—୧ । ନିଶାନାଥ;
**Jāminī kānta** ଚନ୍ଦ୍ର—1. The moon. ୨। କର୍ପୂର—2. Camphor (Apte)

ଯାମିନୀ ନାଥ, ଯାମିନୀ ପତି, ଯାମିନୀ ବଲ୍ଲଭ —ଅନ୍ୟରୂପ] ଦେ. ବି. ପୁଂ—ଲୋକଙ୍କ ନାମ—A name given to males.

**ଯାମିନୀଚର**—ସଂ. ବିଣ. ପୁଂ (ଯାମିନୀ+ଚର. ଧାତୁ+କର୍ତ୍ତୃ. ଅ)—
**Jāminīchara** ରାତ୍ରିରେ ବିଚରଣକାରୀ; ରାତ୍ରିଚର; ନିଶାଚର—Roaming in the night. ସଂ. ବି—୧ନିଶାଚର; ରାକ୍ଷସ—1. Demon. ୨ । ପେଚା—2 Owl. ୩ । ଗୁଗ୍ଗୁଳ(ବୃ.ଶ)—3, Bdellium.

**ଯାମିନୀ ଯୋଗେ**—ଦେ. କ୍ରି. ବିଣ—୧ । ନିଶାଯୋଗେ; ରାତ୍ରିରେ;
**Jāminī joge** ରାତ୍ରିକାଳରେ—1. In the night. ୨ । ରାତ୍ର ଯାମିନଯୋଗେ ହୋଇ ଥିବାର ସୁବିଧା ପାଇବାରୁ—2. Under
**यामिनी योगे** cover of night; taking advantage of night time, in the course of the night. ( ଯଥା—ସେ ଯାମିନୀଯୋଗେ ଶତ୍ରୁମଧ୍ୟରୁ ପଳାୟନ କଲେ ।)

**ଯାମୀ**—ସଂ. ବି. ସ୍ତ୍ରୀ (ଯମ+ଅ+ସ୍ତ୍ରୀ. ଈ)—୧ । ଯାମି (ଦେଖ)—
**Jāmī** 1. Jāmi (See). ୨ । ଯମ ସମ୍ବନ୍ଧୀୟ ଦିଗ୍; ଦକ୍ଷିଣ ଦିଗ—2. The south quarter. ୩ । ଯମ ସମ୍ବନ୍ଧୀୟ ଯାତନା; ନରକ ଯନ୍ତ୍ରଣା—3. Hellish torture. ୪ । ଦ୍ୱିତୀୟ ବା ଭରଣୀ ନକ୍ଷତ୍ର—4. The second asterism (consisting of 3 stars); Musca. ୫ । କୁଳସ୍ତ୍ରୀ—5. A housewife.

**ଯାମୀର**—ସଂ.ବି (ଯାମୀ=ରାତ୍ରି+ଈର. ଧାତୁ=ଉଦ୍ଭବ+ଅ)—ଚନ୍ଦ୍ର—
**Jāmīra** The moon.

ଯାମୀରା—ସଂ. ବି (ଯାମୀର+ଅ)—ରାତ୍ରି—
Jāmirā The night.

ଯାମୁନ—ସଂ. ବିଣ (ଯମୁନା+ସମ୍ବନ୍ଧାର୍ଥେ. ଅ)—ଯମୁନା ସମ୍ବନ୍ଧୀୟ—
Jāmuna Relating to the Jamnā river. ବି—(ଯାମୁନୀ—ସ୍ତ୍ରୀ) ୧ । ରସାଞ୍ଜନ; ସୌବୀରାଞ୍ଜନ—1. Antimony; sulphate of antimony. ୨ । ଅକ୍ଷିର କଜ୍ଜଳ—2. Collyrium for the eye. ୩ । ସୀସକ; ସୀସା—3. Lead. ୪ । ଯମୁନାକୂଳବାସୀ ବ୍ୟକ୍ତି—4. A person residing on the bank of the Jamunā river. ଦେ ବି—(ନାମ) ରାମାନୁଜାଚାର୍ଯ୍ୟଙ୍କ ଗୁରୁ; ଜଣେକ ଦାକ୍ଷିଣାତ୍ୟବାସୀ ବୈଷ୍ଣବ ଆଚାର୍ଯ୍ୟ—Name of a learned Baishnaba reformer. [ ଦ୍ର—ଏ ସଂସ୍କୃତରେ ମହାପଣ୍ଡିତ ଥିଲେ । ଏ ଭଗବଦ୍ ଗୀତାର ଟୀକା, ଆଳମନ୍ଦାର ସ୍ତୋତ୍ର, ଆଗମ ପ୍ରାମାଣ୍ୟ ସିଦ୍ଧିତ୍ରୟ, ଭଗବଦ୍‌ଗୀତା ସଂଗ୍ରହ ଆଦି ସଂକଳନ କରିଥିଲେ—ହି. ଶ. ]

ଯାମୁନଗିରି—ସଂ. ବି—୧ । ପର୍ବତ ବିଶେଷ—1. Name of a Jāmuna giri mountain. (ଉ—ସେଠାରୁ ଯାମୁନ ଗିରିର ବାହାରିଲେ, ଯାଅ ଦେ ବୋଲି ଘଟୋତ୍କଚଙ୍କୁ ବୋଇଲେ । କୃଷ୍ଣସିଂହ. ମହାଭାରତ. ବନ । ) ୨ । କଳନ୍ଦଗିରି; ଯମୁନା ନଦୀର ଉତ୍ପତ୍ତି—ପର୍ବତ (କ୍ଷୀରୋଦ)—2. The name of the mountain from which the river Jamunā issues.

ଯାମୁନେଷ୍ଟକ—ସଂ. ବି. (ଯାମୁନ+ଇଷ୍ଟକ)—ସୀସା; ସୀସକ—
Jāmuneshtaka Lead.

ଯାମେୟ—ସଂ. ବି ପୁଂ (ଯାମି=ଭଉଣୀ+ଅପତ୍ୟାର୍ଥେ. ଏୟ)—
Jāmeya ଭଣଜା, ଭାଗିନେୟ—Sister's son. (ଯାମେୟା, ଯାମେୟୀ—ସ୍ତ୍ରୀ)

ଯାମୁଛତୁ—ପ୍ରାଦେ. (ଜୟପୁର) ବି—ଏକପ୍ରକାର ଛତୁ—
Jāmuchhatu A kind of mushroom.

ଯାମ୍ୟ—ସ. ବି. ( ଯମ+ସମ୍ବନ୍ଧାର୍ଥେ. ଯ )—୧ । ଯମରାଜାଧିଷ୍ଠିତ ଦିଗ; ଦକ୍ଷିଣ ଦିଗ—1. The south ୨ । ଯମ ଦୂତ—
Jāmya 2. The messengers of the God of death. ୩ । ଅଗସ୍ତ୍ୟ ମୁନି—3. Sage Agastya. ୪ । (ଯା ଧାତୁ+କର୍ତ୍ତୃ. ମ୍ୟ) ଅନୁଚର—4. Attendant. ୫ । ( ଯାମି=ସ୍ତ୍ରୀ+ଅପତ୍ୟାର୍ଥେ. ଯ ) ତନୟ; ପୁତ୍ର—5. Son. ୬ । ଚନ୍ଦନ (ହେ. ଶ)—6. Sandal wood. ୭ । ଶିବ—7. Siba. ୮ । ବିଷ୍ଣୁ—8 Bishnu. ୯ । ଭରଣୀ ନକ୍ଷତ୍ର—9. The 2nd asterism. ସ. ବିଣ—୧ । ଦକ୍ଷିଣଦିକ୍ ସମ୍ବନ୍ଧୀୟ—1. Southern. ୨। ଯମ ସମ୍ବନ୍ଧୀୟ—2. Relating to Jama. ୩ । ଯମ ତୁଲ୍ୟ—3. Resembling Jama.

ଯାମ୍ୟ ଦ୍ରୁମ—ସ. ବି—ଶାଳ୍ମଳି ବୃକ୍ଷ (ହେ. ଶ)—
Jāmya druma The silk-cotton tree.

ଯାମ୍ୟ ଧ୍ରୁବ—ସଂ ବି—ଦକ୍ଷିଣ ମେରୁ ଉପରେ ଥିବା ଧ୍ରୁବ ତାରା—
Jāmya dhruba The pole star on the south pole. (ଯାମ୍ୟ ଧ୍ରୁବ ତାରା—ଅନ୍ୟରୂପ) [ଦ୍ର—ଏ ତାରାକୁ ଆମ୍ଭେମାନେ ଦେଖି ପାରୁ ନାହିଁ ବୋଲି ଦକ୍ଷିଣ ଧ୍ରୁବ ବିନ୍ଦୁର ଉପରକୁ ଥିବା କିଛିକୁ ମଣ୍ଡଳର ଦକ୍ଷିଣତମ ଉଜ୍ଜ୍ୱଳ ତାରାକୁ ଦକ୍ଷିଣ ଧ୍ରୁବ ତାରା ବୋଲି ଧରାଯାଏ । ]

ଯାମ୍ୟ ବୃତ୍ତ—ସଂ. ବି—୧ । କୁମେରୁ; ଦକ୍ଷିଣ ମେରୁ—1. The
Jāmya brutta south pole. ୨ । କୁମେରୁ ବୃତ୍ତ—2. The south polar circle.

ଯାମ୍ୟା—ସଂ. ବି. ( ଯାମ୍ୟ+ଆ )—୧ । ଦକ୍ଷିଣ ଦିଗ—1. The
Jāmyā south. ୨ । ଭରଣୀ ନକ୍ଷତ୍ର—2. The 2nd asterism. ୩ । ଯାମିନୀ; ରାତ୍ରି—3. The night.

ଯାମ୍ୟାୟନ—ସଂ. ବି. ( ଯାମ୍ୟ+ଅୟନ )—ଦକ୍ଷିଣାୟନ; ସୂର୍ଯ୍ୟଙ୍କର
Jāmyāyana ବିଷୁବ ରେଖାର ଦକ୍ଷିଣକୁ ଗତି—The sun's course south of the equator; the winter solstice.

ଯାମ୍ୟୋତ୍ତର—ସଂ. ବିଣ. ( ବହୁବ୍ରୀହି; ଯାମ୍ୟ+ଉତ୍ତର )—ଦକ୍ଷିଣରୁ
Jāmyottara ଉତ୍ତରକୁ ଯାଉଥିବା—Going from south to north (Apte).

ଯାମ୍ୟୋତ୍ତର ବୃତ୍ତ—ସଂ. ବି. (ଆଧୁନିକ)—(ଭୂଗୋଳ) ଯେଉଁ କାଳ୍ପନିକ
Jāmyottara brutta ବୃତ୍ତ ଦର୍ଶକର ମସ୍ତକୋପରି ଯାଇ (ଯାମ୍ୟୋତ୍ତର ରେଖା—ଅନ୍ୟରୂପ) ଉଭୟ ମେରୁକୁ ସ୍ପର୍ଶ କରୁଅଛି; ଦ୍ରାଘିମା—The meridian line. [ଦ୍ର—ଦ୍ରାଘିମା ତଳେ ଟୀକା ଦେଖ ।]

ଯାଯଜୁ(ଯୂ)—ସଂ.ବି.(ଯାଜ୍ ଧାତୁ,ଯଙ୍ ଲୁଗନ୍ତ, ପୌନଃପୁନ୍ୟାର୍ଥେ. ଯାଯଜ୍
Jājaju(jū) ଧାତୁ+କର୍ତ୍ତୃ. ଉ)—ଇଜ୍ୟାଶୀଳ; ଯେ ପୁନଃ ପୁନଃ ଯାଗ କରେ—The frequent performer of sacrifices.

ଯାଯଜୂକ—ସଂ. ବିଣ. ପୁଂ. (ଯଜ୍ ଧାତୁ, ଯଙ୍ ଲୁଗନ୍ତ, ଅର୍ଥାତ୍ ପୌନଃ
Jājajūka ପୁନ୍ୟାର୍ଥେ ଯାଯଜ୍ ଧାତୁ+ଶୀଳାର୍ଥେ. ଊକ )—ପୁନଃ ପୁନଃ ଯାଗଶୀଳ—Habituated to offering sacrifices often

ଯା ଯା(ଯାଃ)—ଦେ. ଅ—ଦୂର୍ ହୋ—
Jā jā(jāh) ଜା ଜା ଯାସ୍, ଦୂରହଓ Be off.

ଯାଯାବର—ସଂ. ବିଣ. ପୁଂ [ଯା ଧାତୁ ପୌନଃ ପୁନ୍ୟାର୍ଥେ (ଯଙ୍ ଲୁଗନ୍ତ)
Jājābara ଦ୍ୱିତ୍ୱ+କର୍ତ୍ତୃ. ବର)—୧ । ସଦା ଭ୍ରମଣକାରୀ— (ଯାଯାବରୀ—ସ୍ତ୍ରୀ) 1, Itinerant; vagrant; nomadic. ୨ । ବାସସ୍ଥାନ ଓ ଭ୍ରମଣକାରୀ—2. Wandering and homeless. ବି—୧ । ଅଶ୍ୱମେଧ ପାଇଁ ଉତ୍ସୃଷ୍ଟ ଘୋଡ଼ା—1. A horse let loose before being offered at a sacrifice. ୨ । ଜରତ୍କାରୁ ମୁନି; ନାଗରାଜ ବାସୁକିଙ୍କ ଭଗିନୀ ମନସାଦେବୀଙ୍କ ପତି ଓ ଆସ୍ତିକ ମୁନିଙ୍କ ପିତା—2. Name of a sage. ୩ । ନିୟତ ଭ୍ରମଣକାରୀ ବାସସ୍ଥାନଶୂନ୍ୟ ତାପସ—3. A class of

itinerant ascetics who have no hermitage, a vagrant mendicant. ୪ । ସନ୍ନ୍ୟାସୀ—4. A mendicant. ୫ । ଅଗ୍ନିହୋତ୍ରୀ ବ୍ରାହ୍ମଣ-ବିଶେଷ; ସାଗ୍ନିକ ବ୍ରାହ୍ମଣ—5. A Brāhmaṇa who performs 'Agnihotra' sacrifice. [ଦ୍ର—ଏହାଙ୍କ ଗୃହରେ ସର୍ବଦା ଗାର୍ହପତ୍ୟ ଅଗ୍ନି ରକ୍ଷିତ ହୋଇଥାଏ ।] ୬ । ପରିବ୍ରାଜକ; ପର୍ଯ୍ୟଟକ—6. A wanderer; a traveller. ୭ । ମୁନିମାନଙ୍କ ଗଣ ବା ଗୋତ୍ର ବିଶେଷ—7. Name of a family or sept of sages. ୮ । ଯାଚ୍ଞା (ହ୍ର. ଶ)—8. Begging. ୯ । (+ଭାବ. ବର) ଭ୍ରମଣଶୀଳ ଭ୍ରମଣକାରୀ ସାଧୁଙ୍କ ଜୀବନ—9. The life of a vagrant mendicant (Apte).

ଯାୟୀ—ସଂ. ବିଣ. ପୁଂ. (ଯା ଧାତୁ+କର୍ତ୍ତୃ ଇନ୍; ଯାୟିନ୍ ୧ମା. ୧ବ, ଏ Jāyi ଶବ୍ଦ ପ୍ରାୟଶଃ ଅନ୍ୟ ଶବ୍ଦ ପରେ ପ୍ରଯୁକ୍ତ ହୁଏ, ଯଥା— (ଯାୟିନୀ—ସ୍ତ୍ରୀ) ଅନୁଯାୟୀ)—୧ । ଗମନକାରୀ—1. Going. ୨ । ଗତିଶୀଳ—2. Moving. ୩ । ଯାନ ଚଢ଼ି ଗମନ କରୁଥିବା—3. Driving in; riding or going in (Apte). ୪ । ଅନୁକ ସ୍ଥାନକୁ ଯାଉଥିବା (ରାସ୍ତା)—4. (way) Leading to (Apte).

ଯାର—ଦେ ସର୍ବ. (ସଂ. ଯତ ଶବ୍ଦର ୬ଷ୍ଠୀ ୧ବ)—ଯାହାର—
Jāra ଯାର जीसका Whose.

ଯାଷ୍ଟୀକ—ସଂ. ବି. ପୁଂ. (ଯଷ୍ଟି+ପ୍ରହରଣାର୍ଥେ. ଇକ)—୧ । ଲଠିଆଳ—Jāshṭika 1. A person armed with a club. (ଯାଷ୍ଟୀକା—ସ୍ତ୍ରୀ) ୨ । ଯଷ୍ଟିଧାରୀ ଯୋଦ୍ଧା—2. A warrior armed with a club. ସଂ. ବିଣ. ପୁଂ—ଯଷ୍ଟିଧାରୀ—Armed with a club.

ଯାଷ୍ଟି ମଧୁ(ହୁ)—ଦେ. ବି. (ସଂ. ଯଷ୍ଟି ମଧୁ)—ଯଷ୍ଟି ମଧୁ—
Jāshṭi madhu(hu) Liquorice.

ଯାସ—ସଂ. ବି. ( ଯସ୍ ଧାତୁ=ଚେଷ୍ଟା କରିବା+କରଣ. ଅ )—
Jāsa ୧ । ରକ୍ତବର୍ଣ୍ଣ ଦୁରାଲଭା—1. The red variety of Hedysarum Alhagi (plant). ୨। (+ଭାବ ଅ) ଚେଷ୍ଟା; ଉଦ୍ୟମ—2. Endeavour; effort (Apte).

ଯାସା—ସଂ. ବି—୧ । ଶାଳକ; ବଣି ଚଢ଼େଇ; ମଦନ ଶାରିକା—
Jāsā 1. The myna bird. ୨ । କୋଇଲି; କୋକିଳ (ହ୍ର. ଶ)—2. The Indian cuckoo.

ଯାସ୍କ—ସ. ବି.—ନିରୁକ୍ତପ୍ରଣେତା ଋଷି—1. Name of a sage
Jāska who was the author of the vedic vocabulary. ସ. ବିଣ.—ଯସ୍କ ଋଷିଙ୍କ ଗୋତ୍ରରେ ଉତ୍ପନ୍ନ-Born of the family of sage Jāska.

ଯାସ୍କାୟନ—ସ. ବି. ପୁଂ—(ଯସ୍କ+ଅପତ୍ୟାର୍ଥେ. ଆୟନ)—ଯସ୍କ ଋଷିଙ୍କ Jāskāyana ଗୋତ୍ରୋତ୍ପନ୍ନ ପୁରୁଷ—A person born of (ଯାସ୍କାୟନୀ—ସ୍ତ୍ରୀ) the family of Jāska.

ଯାସ୍ୟନ୍—ସଂ ବିଣ. ପୁଂ—(ଯା ଧାତୁ+ଭବିଷ୍ୟତ୍ ଶତୃ ୧ମା. ୧ବ)—
Jāsyan ଯେ ଯିବ; ଯାହାର ଯିବାକୁ ଅଛି =Having to go; (ଯାସ୍ୟନ୍ତୀ, ଯାସ୍ୟନ୍ତୀ—ସ୍ତ୍ରୀ) who will go; which will be moving.

ଯା ହ(ହେ)ଉ—ଦେ. ଅ.—ଯାହା ହଉ (ଦେଖ)
Jā ha(he)u ଯାହୋକ୍ जो हो Jāhā hau (See)

ଯାହା—ଦେ. ସର୍ବ.—(ସ. ଯତ୍ ଶବ୍ଦ, କ୍ଲୀବଲିଙ୍ଗ. ୧ବ.)—୧ । Jāhā ଯେଉଁ ବିଷୟ ବା ବସ୍ତୁ—1. Which (thing or ଯା जो matter). ୨ । ଯାହାର; ଯେଉଁ ବ୍ୟକ୍ତିର—2. Whose. ୩ । ଯେଉଁ ବିଷୟର ବା ବସ୍ତୁର—3. Of which [ଦ୍ର'—ଯାହା' ଶବ୍ଦର ବହୁବଚନ ଯେଉଁମାନେ । 'ଯାହା' ୧ମା. ବିଭକ୍ତିରେ କେବଳ ବସ୍ତୁକୁ ବା ବିଷୟକୁ ବୁଝାଏ; କିନ୍ତୁ ଅନ୍ୟ ବିଭକ୍ତିମାନଙ୍କରେ (ଯଥା—ଯାହାକୁ ଯାହାଙ୍କୁ, ଯାହାଠାରୁ, ଯାହାଠାରେ) ବ୍ୟକ୍ତିକୁ ମଧ୍ୟ ବୁଝାଏ ।] ଅ—(ବାକ୍ୟର ପୂରଣାର୍ଥକ) ଯେ—(Conjunction) That.

ଯାହାଇ—ଦେ. ସ —ଯାହି (ଦେଖ)
Jāhāie Jāhi (See)

ଯାହାଁ—ଦେ. ସର୍ବନାମ—(ହିନ୍ଦୀରୁ ଗୃହୀତ)—ଯହିଁ, ଯେଉଁଠାରେ—
Jāhān̄ Where; in which place. ଯେଖାନେ जहाँ [ଦ୍ର—ହେବନ ଅବିବେକ ଯାହାଁ ସବନ କରେ । ଶିଶୁଶଙ୍କର—ଉଷାଅଭିଳାଷ । ]

ଯାହାଁ (ଇତ୍ୟାଦି —ଜାହାଁ ଇତ୍ୟାଦି (ଦେଖ)
Jāhān̄ (etc) Jāhān̄ etc (See)

ଯାହାଁ ତକ୍—ବୈଦେ.ଅ.—(ଫା· ଓ ହିନ୍ଦୀ—ଜହାଁତକ୍)—୧ । ଯେତେ
Jāhān̄ tak ପର୍ଯ୍ୟନ୍ତ—1. As much as. ୨ । ଯେତେବେଳ (ଯାହାଁ ତଲକ୍—ଅନ୍ୟରୂପ) ପର୍ଯ୍ୟନ୍ତ—2. Till. ଯେ ପଯ୍ୟନ୍ତ जहाँतक

ଯାହାକୁ ଇଚ୍ଛା ତାହାକୁ(ତାକୁ)—ଦେ. ବାକ୍ୟାଂଶ—(ସହଚର ଶବ୍ଦ)—୧
Jāhāku ichchhā tāhāku(tāku) ଯାଇଚ୍ଛା ତା (ଦେଖ)
ଯାକେ ଇଚ୍ଛା ତାକେ 1. Jāichchha tā (See)
जीसको इचा उसको ୨ । ଯେଉଁ ବ୍ୟକ୍ତିକୁ ଇଚ୍ଛା ସେ ବ୍ୟକ୍ତିକୁ—2. To whichever person.
ତାହାକୁ ପାଉ ତାକୁ
ଯାହାକୁ ପାଉ ତାହାକୁ —ଅନ୍ୟରୂପ
ଯାକୁ ପାଉ (ଇଚ୍ଛା) ତାକୁ

ଯାହାକୁ ବୋଲି—ଦେ. ବିଣ.—ଅସାଧାରଣ; ଅନନ୍ୟସାଧାରଣ; ବହୁ
Jāhāku boli ମଧ୍ୟରେ ବିଶିଷ୍ଟ; ଉତ୍କୃଷ୍ଟ—Extraordinary; ଯାକେ ବଲେ जीसको बोलते हैं excellent.
(ଯଥା—ଗୋପବନ୍ଧୁ ଦାସ ଯାହାକୁ ବୋଲି ମନୀଷୀ ଥିଲେ ।)

ଯାହାକୁ ଯେ—ଦେ. ଅ.—ଯେଉଁ ବ୍ୟକ୍ତି ବା ବସ୍ତୁ ପ୍ରତି ଯେ ବା ଯାହା
Jāhāku je ଉପଯୁକ୍ତ—Whatever is appropriate ଯାକେ ଯେମନ to a thing or person.
[ଉ—ଯାହାକୁ ଯେ ! ବିରହ ସୁହୁଳ.ଉଚ୍ଚୈଳ ଦେ—ଇଗ]

ଯାହାକୁ ଯେତେ—ଦେ. ସର୍ବ.—୧ । ଯେତେ ଲୋଡ଼ା ତେତେ; Jāhāku jete ଯଥେଷ୍ଟ; ବହୁତ; ପ୍ରଚୁର—1. Quite sufficient; as much as required. ଯାକେ ଯତ जो जीतनाचाहताहै बह इतना ୨ । ଅପର୍ଯ୍ୟାପ୍ତ—2. Unlimited; more than sufficient.

ଯାହା(ହିଁ) ତାହା(ହିଁ) କରି—ଦେ. କ୍ରି. ବିଣ.—ଯେ କୌଣସି Jāhā(hiṅ) tāhā(hiṅ) kari ପ୍ରକାରେ—Anyhow. ଯା ତା କରେ जैसेतैसे करके [ଉ—ଯାହା ତାହା କରିଣ କଲି ଯାହା ଗୀତ, ଏ ଦୋଷ କ୍ଷମା କର ସକଳ ପଣ୍ଡିତ । କୃଷ୍ଣସିଂହ. ମହାଭାରତ ବନ ।]

ଯାହା(ହି) ହୁ(ହେ)ଉ—ଦେ. ଅ.—୧ । ଯେ ହେଉ— Jāhā(hi) ha(he)u 1. However ୨ । ପକ୍ଷାନ୍ତରରେ—ଯାହ ହଉକ जोहो 2. On the other hand. ୩ । ଯେଉଁ କେଉଁ ପ୍ରକାରେ—3 Anyhow. ୪ । ଯତ୍ସାମାନ୍ୟ—4. Slightly.

ଯାହି—ଦେ. ସର୍ବ.—( ସ. ଯତ୍+ହି )—୧ । ଯାହାଁ ହିଁ— Jāhi ଯାହି जोभी 1.Whatever. ୨ । ଯାହା ମାତ୍ର—2. Which only.

ଯାହିଁ (ଇତ୍ୟାଦି)—ଯହିଁ ଇତ୍ୟାଦି (ଦେଖ) Jāhiṅ (etc) Jahiṅ etc (See) [ତାହିଁ—ଅପେକ୍ଷିକ ଶବ୍ଦ]

ଯାହିଚ୍ଛା ତା—ଦେ. ସର୍ବ.—ଯାଇଚ୍ଛା ତା (ଦେଖ) Jāhichchhā tā Jāichchhā tā (See) [ଯାଇଚ୍ଛା ତାହି(ଇ), ଯାହି ତାଇ (ହି)—ଅନ୍ୟରୂପ]

ଯାହୁଁ (ଇତ୍ୟାଦି)—ଯହୁଁ (ଇତ୍ୟାଦି) (ଦେଖ) Jāhuṅ (etc) Jahuṅ (etc) (See)

ଯିଅ—ଦେ. ଅ (ସଂ. ଜୀବ)—ପିଲାମାନେ ଛିଙ୍କିଲେ ବଡ଼ମାନେ ଉଚ୍ଚାରଣ Jia କରିବା ଆଶୀର୍ବାଦ) ତୁ ଚିରଞ୍ଜୀବୀ ହୋ—( Do you) Live long. ଜୀଯ଼ जीय

ଯିଅ(ହ)ଲ (ଇତ୍ୟାଦି)—ବୈଦେ.ଗ୍ରା. ବି (ଇଂରାଜୀ)—ଜେଲ୍ (ଇତ୍ୟାଦି) Jia(ha)la(etc) (ଦେଖ)—Jel (etc) (See) (ଯେହଲ—ଅନ୍ୟରୂପ)

ଯିଅତି—ଗ୍ରା. ଅ (ସ. ଯତ୍+ଜାତୀୟ, ସଦୃଶାତୀୟ)—ଯେଉଁପରି— Jiati As; like. (ଉ—ବଅଡ଼ି । ଚଇତ୍ର ମାସରେ କୁଅ (ଯିଅତି—ଅପେକ୍ଷିକ ଶବ୍ଦ) ଗୁଡ଼ ଖାଇ କଣ୍ଢ ଭୁକୁଟୁଏଲେ ଯେମନ जैसा ଯିଅତି—ଉଗ ।)

ଯିଅତିକା—ଗ୍ରା. ବିଣ ( ସ. ଯତ+ଜାତୀୟ )—ଯେଉଁ- Jiatikā ପ୍ରକାରର; ଯେଉଁପରକା; ଯେଉଁଜାତୀୟ— (ଯିଅତିକଥ—ଅନ୍ୟରୂପ) Of which kind or species.

ଯିଅତିକା } —ଅପେକ୍ଷିକ ଶବ୍ଦ
ଯିଅତିକଥ }
ଯେମନ जैसा

ଯିଉ—ଦେ. ବି—ଯିହୁଦୀ (ଦେଖ) Jiu Jihudī (See) (ଯିହୁଦୀ—ଅନ୍ୟରୂପ)

ଯିଏ—ଗ୍ରା. ସର୍ବ (ସ.ଯତ୍ ଶବ୍ଦ, ବ୍ୟକ୍ତିବାଚକ ୧ମା. ୧ବ)—ଯେ (ଦେଖ) Jie Je (See) (ଉ—ଯିଏ ଯାହାଠାରୁ ଜନମ ହୁଅଇ, ଯେ जो ତାଙ୍କୁ ତାହାର ଆତ୍ମା ବୋଲିକରି କହି—କୃଷ୍ଣସିଂହ. ମହାଭାରତ. ଶାନ୍ତି ।)

ଯିଙ୍ଗିତ—ଦେ. ବି—ଜିଗର (ଦେଖ)—Jigara (See) (ଉ— Jingita ଯିଙ୍ଗିତ କାହିଁ ନାହିଁ ରାଜା, ଯିବ କେମନ୍ତ ତାକୁ ଜିଗିର जिगर ପାଇ ଲଙ୍କା—ବ୍ରଜନାଥ ସମରତରଙ୍ଗ ।)

ଯିଧା(ଦା)—ଗ୍ରାଦେ (ସମ୍ବଲପୁର) ବିଣ—ଏକଜିଦିଆ ଲୋକ— Jidhā(dā) Obstinate.

ଯିବ—ଦେ. କ୍ରି—୧ । ( ସେ ବା ତୁମ୍ଭେ ) ଗମନ କରିବ— Jiba 1 (you or he) Will go. ୨ । ( ତାହା ) ଲୁପ୍ତ ଯାବେ जायेगा ହେବ—2 (that) Will be extinct; will disappear. (ଉ—ଏକ ବାକ୍ୟ ହେଲେ ଯିବ ଏ ଦୁଃଖଯାକ—କୃଷ୍ଣସିଂହ. ମହାଭାରତ. ବନ ।)

ଯିବା—ଦେ. କ୍ରି ( ସ. ଯା ଧାତୁ )—୧ । ଗମନ କରିବା— Jibā 1. To walk; to go; to move. ୨ । ସ୍ଥାନାନ୍ତରକୁ (ଆସିବା—ବିପରୀତ) ଗମନ କରିବା—2. To go away. ଯାଓୟା जाना ୩ । ସ୍ଥାନତ୍ୟାଗ କରିବା—3. To leave a place. ୪ । ନଷ୍ଟହେବା—4. To be damaged. ୫ । ( ରୋଗାଦି ) ପ୍ରଶମିତ ହେବା—5. To be assuaged (said of a disease) ୬ । ଆରୋଗ୍ୟ ହେବା—6. To be cured. (ଉ—ଗୋଡ଼ ଖସି ଖେଦ ହେବାର ଦରଦ ଯିବାର ଉପାୟ କହ—କବିସୂର୍ଯ୍ୟ ବଳୋଶ୍ରୀ ଚମ୍ପୁ ଗ ଗୀତ ।) ୭ । ମୃତ ହେବା—7. To be dead; to die. ୮ । ଅତୀତ ହେବା; ବିତିବା— 8. To pass; to be past. (ଉ—ରଜା ଆଜ୍ଞା କରୁ ଯିବ ବଇଷେ, ମନ୍ତ୍ରୀ ଦଉ ଦଉ ଯିବ ପୁରୁଷେ—ଭଗ) ୯ । ସହବାସ କରିବା—9 To cohabit. (ଉ—ପୁଣି ମନରେ କଲେ ଏ ଋଷି ଭାର୍ଯ୍ୟା, ଯାଙ୍କଠାରୁ ଯିବ ବରୁପେ ଭଡ଼ ଲଜ୍ଜା—କୃଷ୍ଣସିଂହ. ମହାଭାରତ. ବନ ।) ୧୦ । ପରିଣତ ହେବା—10.To result in. ୧୧। (କୌଣସି ବ୍ୟକ୍ତିର) କ୍ଷତି ବୃଦ୍ଧି ହେବା—11.To matter (to a person); to affect. (ଉ—ବାପ୍ପାର ବ ଯାଏ, କାଅ କଲେ ବସା ବୋହୋଲୁଥାଏ—ଶିଶୁଗୀତ ।) ୧୨ ।ପ୍ରବେଶ କରିବା— 12. To enter. ( ଉ—ତୋଠାକୁ ଯିବୁ ? ଆମ୍ ଖାଇବୁ ? ଭରିବୁ ତ ନାହିଁ ?—ଶିଶୁରଞ୍ଜନ ପଦ୍ୟ) । ୧୩ । ଦୃଶ୍ୟଭୂତ ହେବା; ଅଦୃଶ୍ୟ ହେବା; ଅନ୍ତର୍ହିତ ହେବା— 13. To disappear; to vanish. (ଯଥା—ଦିନ ଯିବ, ରାତି ଆସିବ, ପୁରୁଣା ଯିବେ, ନୂଆ ଆସିବେ ।) ୧୪ । ସହମତ ହେବା—14.To agree (with a person.)

(ଯଥା—ମୋ ଦେହରେ ଘଅ ଯାଏ ନାହିଁ । ) ୧୫ । ତ୍ୟାଗ କରିବା; ଛାଡ଼ିବା—15. To give up; to leave. ( ଉ—ସଙ୍ଗ ସଖୀ ଏହା କରିବ, ଯେବେ ମୋ ଜୀବ ଯିବ—ସଙ୍ଗୀତ । ) ୧୬ । ପ୍ରେରିତ ହେବା—16. To be sent. ( ଯଥା—ଏଠାରୁ ପ୍ରତିଦିନ ସନ୍ଧ୍ୟାବେଳେ ଡାକ ଯାଏ । ୧୭ । ଚ୍ୟୁତ ହେବା; ହାନି ହେବା, ଲୁପ୍ତ ହେବା—17. To be lost. (ଯଥା—ପ୍ରତିଦିନ ନିୟମିତରୂପେ ହାଜର ନ ହେଲେ ମୋ ଚାକିରୀଖଣ୍ଡି ଯିବ । ଉ—ସବୁ ଯାଉ, ମହତ ଥାଉ, ମହତ ଗଲେ ନ ମିଳଇ ଆଉ—ଢଗ । ) ୧୮ । ଯାତ୍ରା କରିବା; କୌଣସି ସ୍ଥାନକୁ ଯିବାକୁ ଅନୁକୂଳ କରିବା—18. To start for a place. (ଉ—ଯିବୁ ପରା ପରାଣସଙ୍ଗିନ ! ଉଠ ଆ ରେ—ସଙ୍ଗୀତ ।) ୧୯ । ଉଦ୍ୟତ ହେବା—19. To be ready (ଯଥା—ସେ ପିଲାକୁ ମାରିବାକୁ ମୋ ହାତ ଯାଉ ନାହିଁ ।) ୨୦ । ରାଜି ହେବା—20. To agree. (ଯଥା—ତାଙ୍କୁ ଯେତେ ପ୍ରବର୍ତ୍ତାଇଲି, ସେ ଆଦୌ ମୋ କଥାରେ ଯାଉନାହିଁ) ୨୧ । ରହିବା; ସ୍ଥାୟୀ ହେବା—21. To last for. (ଯଥା—ଏ ଲୁଗାଖଣ୍ଡି ଦୁଇ ବର୍ଷ ଯିବ ।) ୨୨ । ଭଜିବା, ଅବସ୍ଥାରେ ରହିବା—22. To take to, to be in a state (ଉ—କେତେ ନିଦ୍ରା ଯାଉଛ ବେନୁପାଣି—ପ୍ରଭାତୀ ଭଜନ ।) ( ସେ କରୁଣା କ ଯାଏ କେବେ ବିଫଳେ—ରାଧାନାଥ. ମେଘଦୂତ । ) [ବି—ଅନ୍ୟ କ୍ରିୟାର ଅସମାପିକାରୂପ ସଙ୍ଗେ ଯିବା କ୍ରିୟା ଯୋଗ ହୋଇ ପ୍ରଥମ କ୍ରିୟାର ସମାପ୍ତି ବୁଝାଏ (ଯଥା—ଗୋରୁ ଫସଲପାକ ଖାଇ-ଯିବେ); ପୌନଃପୁନ୍ୟ (ଯଥା—ସେ ତ ଗପିଯାଉଛି, ମୁଁ ତା ମୁହଁକୁ ଚାହିଁଛି); ବାକ୍ୟ ଉପରେ ଜୋର୍ (emphasis). ( ଯଥା—ବସି ଖାଇଲେ ନଇବାଲି ସରିଯିବ ) ବୁଝାଏ । କ୍ରିୟାର ବିଶେଷଣରୂପରେ ଯୁକ୍ତ ହୋଇ ( ଯଥା—କାଟିବା କ୍ରିୟାର କଟା, ଖାଇବା କ୍ରିୟାର ଖିଆ, ଶୁଣିବା କ୍ରିୟାର ଶୁଣା, ଦେଖିବା କ୍ରିୟାର ଦେଖା ) ସେହି କ୍ରିୟାର କର୍ମବାଚ୍ୟ ବୁଝାଏ । (ଯଥା—କଟାଯିବା; ଖିଆଯିବା; ଶୁଣା-ଯିବା, ଦେଖାଯିବା ) ବି—୧ । ଯିବା ଭଙ୍ଗୀ; ଗତି—1. Gait. ୨ । ଗମନ—2. Going.

ଯିବା ଆସିବା—ଦେ. କ୍ରି.—ଗମନ କରିବା ଓ ଆଗମନ କରିବା—
Jibā āsibā To go and come to and fro.
যাওয়া আসা ବି.—ଯା ଆସ; ଗମନାଗମନ—
जाना आना Going in and coming out.

ଯିବାର—ଦେ. ବି—୧ । ନଷ୍ଟି; ଚ୍ୟୁତି—1. Loss, deposition.
Jibāra [ଉ—ନଳ ରାଜାଙ୍କର ରାଜ୍ୟ ଯିବାର ଶୁଣି । କୃଷ୍ଣସିଂହ. যাওয়া जाना ମହାଭାରତ. ବନ ।] ୨ । ଯିବା ବିଷୟ—2. The fact of going. [ଉ—ତୁରୁ ମୁଁ ଯିବାର ଜାଣି ହରି । କବିସୂର୍ଯ୍ୟ. ବଳୋରାମ୍ଭ. ଦ. ଗୀତ ।] ପ୍ରାଦେ.—(ଗଞ୍ଜାମ) କ୍ରି—(ଆପଣ, ସେ, ମୁଁ, ତୁମେ)—୧ । ଯାଉଛନ୍ତି, ଯାଉଛି, ଯାଉଛ—Am or is or are going. ୨। ଯିବ—2. Will go. ୩। ଯାଆନ୍ତି—Am, is or are in the habit of going. [ବି—ଗଞ୍ଜାମବାସୀମାନେ କ୍ରିୟା ସଙ୍ଗେ 'ର' ଯୋଗ କରି ନାନା କାଳର କ୍ରିୟା ଓ କ୍ରିୟାବାଚକ ବିଶେଷ୍ୟ ବ୍ୟକ୍ତ କରନ୍ତି ।]

ଯିମିତି—ଗ୍ରା.ଅ.(ସଂ.ଯଦ୍ ବତ୍)—୧। ଯେଉଁପରି; ଯେଉଁ ପ୍ରକାରରେ; ଯେମନ୍ତେ;
Jimiti ଯେଉଁରୂପେ—1. By which means; in which
[ ଯିମିତିକା—ଅନ୍ୟରୂପ ] manner. ୨ । ଯେଉଁକ୍ଷଣି—
[ସିମିତି—ଆପେକ୍ଷିକ ଶବ୍ଦ] 2. As soon as; no sooner than.
যেমন जैसा ସଂ.=ଯେମନ୍ତ; ଯେଉଁ ପ୍ରକାରର—Of which kind. ଉ—ଯିମିତି ଦର୍ଶନକୁ ସିମିତି ପୂଜା, ବାଲି-ଗରଡ଼ାକୁ ଗୁଡ଼ଲ ଭଜା—ଢଗ ।]

ଯିମିତିକିଆ—ଗ୍ରା. ସର୍ବ ଓ ଅ—ଯିମିତି (ଦେଖ)
Jimitikiā যেমন जैसा Jimiti (See)
[ଯିମିତିକା—ଅନ୍ୟରୂପ]

ଯିମିତି ସିମିତି—ଗ୍ରା. କ୍ରି. ବିଣ.—ଯଥା କଥା (ଦେଖ)
Jimiti simiti Jathā kathā (See)
[ଯିମିତିକା ସିମିତିକା - ଅନ୍ୟରୂପ] ବିଣ.—ସାଧାରଣ—
যেমন তেমন जैस तैसा Common. [ଉ—ବିଷ୍ଣୁମିଶ୍ର କହନ୍ତି ଯିମିତି ସିମିତି ଋଷି ନୁହନ୍ତି । ନୀଳକଣ୍ଠ. ପିଲାଙ୍କ ରାମାୟଣ ।]

ଯିମିତି ହ(ହେ)ଉ—ଗ୍ରା. ଅ.—୧ । ଯେ କୌଣସି ପ୍ରକାରେ—
Jimiti ha(he)u যেমন হউক जैसा हो 1. Anyhow.
ଯିମିତି ହେଲେ } —ଅନ୍ୟରୂପ ୨ । ଅବଶ୍ୟ—2. Must.
ଯିମିତି ଇଚ୍ଛା ସିମିତି ; ୩ । ନିଶ୍ଚେ 3. Certainly.
ଯିମିତି ପାର ସିମିତି

ଯିଯକ୍ଷମାଣ—ସଂ. ବିଣ. ପୁଂ—(ଯଜ୍ ଧାତୁ=ଯଜ୍ଞ କରିବା, ଇଚ୍ଛାର୍ଥେ
Jijakshamāṇa ବା ସନ୍+କର୍ତ୍ତୃ. ଆନ)—ଯିଯକ୍ଷୁ (ଦେଖ)
(ଯିଯକ୍ଷମାଣା—ସ୍ତ୍ରୀ) Jijakshu (See)

ଯିଯକ୍ଷା—ସଂ. ବି.—(ଯଜ୍ ଧାତୁ, ଇଚ୍ଛାର୍ଥେ ବା ସନ୍+ଭାବ. ଅ+ଆ)—
Jijakshā ଯଜ୍ଞକରଣେଚ୍ଛା—Desire to perform a sacrifice or worship

ଯିଯକ୍ଷୁ—ସଂ. ବିଣ.—(ଯଜ୍ ଧାତୁ+ସ୍ୱାର୍ଥେ ସନ୍+କର୍ତ୍ତୃ. ଉ)—ଯଜ୍ଞ-
Jijakshu କରଣେଚ୍ଛୁ—Desirous of performing sacrifice or worship.

ଯିଯବିଷା—ସଂ. ବି.—(ଯୁ ଧାତୁ=ମିଶ୍ରିତ କରିବା+ଇଚ୍ଛାର୍ଥେ ସନ୍+
Jijabishā ଭାବ. ଅ+ଆ—ଏକତ୍ର ମିଶାଇବାର ଇଚ୍ଛା—
[ଯିଯବିଷୁ—ବିଣ] Desire to mix together or blend.

ଯିଯାସା—ସଂ. ବି—(ଯା ଧାତୁ ଇଚ୍ଛାର୍ଥେ. ସନ୍+ଭାବ. ଅ+ଆ)—
Jijāsā ଗମନ କରିବାର ଇଚ୍ଛା—Desire to go.

ଯିଯାସୁ—ସଂ. ବିଣ.—( ଯା ଧାତୁ, ଇଚ୍ଛାର୍ଥେ ସନ୍+କର୍ତ୍ତୃ. ଉ )—
Jijāsu ଗମନେଚ୍ଛୁ—Desirous of going.

ଯିସ୍—ଦେ. ସର୍ବ.—(ସଂ. ଯତ୍ ଶବ୍ଦ; ଫା. ଓ ହିନ୍ଦୀ—ଅକାର, ୧ମା.୧ବ.
Jis যা जो ୧ । ଯାହା—1. Which; what. [ଉ—ଏଥି ଅନନ୍ତରେ ଯିସ, କହିବା ଗୋବିନ୍ଦ ରସ, ଜୟଦେବ

ଯେଉ଼ ଭାଷା ପ୍ରକାଶ ଶୁଣ । ପ୍ରାଚୀ. ରସବାରିଧି । ]
୨ । ଯେଉଁ—2. Which. [ଉ—କୁମର ସକଳ କଥା କହିଲ ଯିବ ବେବସ୍ଥା । ପ୍ରାଚୀ. ପ୍ରତାପ. ଶଶିଶେଣା । ]
[ଦ୍ର—ଏ ଶବ୍ଦର ପ୍ରୟୋଗ ପୁରାତନ ଓଡ଼ିଆ (ଯଥା—ନୃସିଂହପୁରାଣ (୧) ଲେଖାରେ ଦେଖାଯାଏ, କିନ୍ତୁ ବର୍ତ୍ତମାନ ଏହାକୁ ଏହି ଆକାରରେ କେହି ବ୍ୟବହାର କରିବା ଦେଖାଯାଏ ନାହିଁ ।]

**ଯୀଉ**—ବୈଦେ ବି—୧ । ଯୀହୁଦୀ (ଦେଖ)
**Jīu** 1. Jīhudī (See)
୨ । ଜୀଉ (ଦେଖ)—2. Jīu (See).

**ଯୀଶୁ**—ବୈଦେ. ବି (ଇଂ. ନାମ) [ଇଂ. ସମ୍ବୋଧନରେ 'Jesu' (ଯେଶୁ)
**Jīsu** ଇଂ. Jesus ( ଯେସସ୍ ), Jesus Christ ( ଯେସସ୍ (ଯୀଶୁ ଖ୍ରୀଷ୍ଟ—ଅନ୍ୟରୂପ) କ୍ରାଇଷ୍ଟ), ଲା. Jesus ( ଯେସସ୍ ),
**ଯୀଶୁ** ହେବ୍ରୁ Jeshua (ଯେଶୁଆ) ]—ଖ୍ରୀଷ୍ଟାନ ଧର୍ମର ପ୍ରବର୍ତ୍ତକ—
**ଈସା** Jesus Christ; the Founder of Christianity.
[ ଦ୍ର—ହେବ୍ରୁ ଶବ୍ଦ ଯା=ଈଶ୍ୱର ଓ ହୋଶିଆ=ସାହାଯ୍ୟ କରିବା, ଯେ ଧର୍ମ ପ୍ରଚାରପୂର୍ବକ ଲୋକଙ୍କୁ ପାପ-ମୁକ୍ତ କରିବା ଦ୍ୱାରା ଈଶ୍ୱରଙ୍କୁ ସାହାଯ୍ୟ କରୁଅଛନ୍ତି । ଯୀଶୁଙ୍କର ବ୍ୟକ୍ତିଗତ ନାମ ଯୀଶୁ ଓ ଉପାଧିଗତ ନାମ କ୍ରାଇଷ୍ଟ ବା ଖ୍ରୀଷ୍ଟ ।

ଆଜକୁ ପ୍ରାୟ ୨ହଜାର ବର୍ଷ ପୂର୍ବରେ ଆସିଆ ମାଇନର୍ ଦେଶ ଅନ୍ତର୍ଗତ ଜୁଡ଼ିୟା (Judia) ପ୍ରଦେଶରେ 'ନାଜାରେଥ୍' (Nazareth) ନଗରରେ କୁମାରୀ ମେରୀ (Virgin Mary) ଙ୍କ ଗର୍ଭରୁ ଏ ଜାତ ହୋଇଥିଲେ । ଖ୍ରୀଷ୍ଟୀୟ ଧର୍ମଶାସ୍ତ୍ର ବାଇବଲ୍‌ରେ ଲେଖାଅଛି ଯେ, ଈଶ୍ୱରଙ୍କ କୌଣସି ଦୂତ (angel) ଅବିବାହିତା ମେରୀଙ୍କୁ ସ୍ୱପ୍ନରେ ଦେଖାଦେବା ପରେ ମେରୀ ଗର୍ଭବତୀ ହୋଇ ଏହାଙ୍କୁ ଜନ୍ମ କଲେ । ଏ ଈଶ୍ୱରଙ୍କ ପୁତ୍ର ବୋଲି ଖ୍ରୀଷ୍ଟିୟାନ୍‌ମାନେ ବିଶ୍ୱାସ କରନ୍ତି ଓ ଏ ପୃଥିବୀର ସମସ୍ତ ମନୁଷ୍ୟଙ୍କ ପାପ ନିମନ୍ତେ ଆପଣାର ରକ୍ତ ବା ଜୀବନ ଦାନ କରି ରାଜଦଣ୍ଡବିହିତ କ୍ରୁଶ (ଯୁକ୍ତ ଚିହ୍ନ † ପରି cross) ରେ ବିଦ୍ଧ ହୋଇ ରାଜକର୍ମଚାରୀମାନଙ୍କ ଦ୍ୱାରା ହତ ହୋଇଥିଲେ । ସେ କ୍ରୁଶରେ ନିଜର ରକ୍ତପାତ କରି ସମସ୍ତ ଲୋକଙ୍କର ମୌଳିକ ପାପ ପାଇଁ ସୃଷ୍ଟିର ପ୍ରଥମ ମନୁଷ୍ୟ ଆଦମ (Adam) ଓ ସ୍ତ୍ରୀ ଇଭ୍ (Eve) ପ୍ରଥମେ ଈଶ୍ୱରାଦେଶ ଲଙ୍ଘନ କରିଥିବାରୁ ତଜ୍ଜନିତ ପାପ ତାଙ୍କର ବଂଶଧରମାନଙ୍କୁ ଅର୍ଥାତ୍ ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ଓ ଭବିଷ୍ୟତରେ ଜନ୍ମ ହେବା ମନୁଷ୍ୟମାନଙ୍କୁ ଛୋଟିଅଛି ଓ ଲୋକ ମାନେ ମାତୃଗର୍ଭରୁ ପାପୀ ହୋଇ ଜନ୍ମ ହୁଅନ୍ତି । ଈଶ୍ୱର ଯୀଶୁଙ୍କର ଏହି ରକ୍ତ ଦାନରୂପ ପ୍ରାୟଶ୍ଚିତ୍ତକୁ ସମସ୍ତ ଜନମଣ୍ଡଳୀର ପାପର ପ୍ରାୟଶ୍ଚିତ୍ତରୂପେ ଗ୍ରହଣ କରିଅଛନ୍ତି ଓ ଏହି ଆଦେଶ କରିଅଛନ୍ତି ଯେ, ଯେଉଁ ବ୍ୟକ୍ତି ଈଶ୍ୱରଙ୍କ ଯୀଶୁଙ୍କ ନାମରେ ଭଜନା କରିବ ସେ ସମସ୍ତ ପାପରୁ ମୁକ୍ତ ହୋଇ ସ୍ୱର୍ଗପ୍ରାପ୍ତ ହେବ ଓ ଯେ ତାହା ନ କରିବ ସେ ମୃତ୍ୟୁ ପରେ ଚିର-ନରକ-ଯନ୍ତ୍ରଣା ଭୋଗ କରିବ । ହିନ୍ଦୁମାନଙ୍କ ସୀତା ଯେପରି ଅଯୋନିସମ୍ଭବା, ଖ୍ରୀଷ୍ଟାନମାନଙ୍କ ଯୀଶୁ ମଧ୍ୟ ସେହିପରି ଅଶିଶ୍ନସମ୍ଭବ ଥିଲେ । ତାଙ୍କ ଜନ୍ମସମୟରେ ତତ୍କାଳୀନ ଦୁର୍ବୃତ୍ତ ରାଜା ହେରଡ (Herod) ରାଜ୍ୟର ସମସ୍ତ ପୋଡ଼ୁଆଁ (first born) ଶିଶୁଙ୍କୁ ହତ୍ୟା କରିବା ପାଇଁ ଆଦେଶ ଦେଇ ଥିବାରୁ ଯୀଶୁଙ୍କୁ ମିଶର (Egypt) ଦେଶରେ (ଶ୍ରୀକୃଷ୍ଣଙ୍କୁ କଂସର ଦାଉରୁ ଗୋପପୁରରେ ଲୁଚାଇଲା ପରି) ଲୁଚାଇ କରି ରଖାଯାଇ ଥିଲା । ଯୀଶୁ ବାଲ୍ୟକାଳରୁ ଧର୍ମପରାୟଣ ଥିଲେ ଓ ମେଣ୍ଢା ଜଗୁ ଥିଲେ । ୧୪ ବର୍ଷ ବୟଃକ୍ରମରେ ଏ ଯୀହୁଦି (Jews) ମାନଙ୍କ ଧର୍ମଶାସ୍ତ୍ର ପଢି ଜନ୍ (John) ନାମକ ଗୁରୁଙ୍କଠାରୁ ଦୀକ୍ଷାଗ୍ରହଣ କଲେ । ଏ ୩୦ ବର୍ଷ ବୟସ ପର୍ଯ୍ୟନ୍ତ କଠୋର ସାଧନା ଓ ଈଶ୍ୱରଦ୍ରୋହୀ ସଇତାନ୍ (Satan)ର ପ୍ରଲୋଭନରୁ ଜୟଲାଭ କରିବାରେ ପ୍ରବୃତ୍ତ ହେଲେ । ତତ୍-ପରେ ସେ ଏକ ନୂତନ ଧର୍ମ ପ୍ରଚାର କଲେ । "ଏକ ଅଦ୍ୱିତୀୟ ପରମେଶ୍ୱରଙ୍କ ଠାରେ ବିଶ୍ୱାସ ଓ ସର୍ବ ପାପ କ୍ଷୟପାଇଁ ଯୀଶୁଙ୍କ ନାମରେ ପରମେଶ୍ୱରଙ୍କୁ ଆରାଧନା ଓ ଜାତିଧର୍ମ-ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତିଠାରେ ଓ ପଡ଼ୋଶିଠାରେ ବିଶେଷମାନ ଭ୍ରାତୃଭାବ, ଅକ୍ରୋଧ, କ୍ଷମା, ପରଦ୍ରବ୍ୟ ଓ ପର ସ୍ତ୍ରୀ ପ୍ରତି ଅନାସକ୍ତି, ଦୟା, ପବିତ୍ର ଭାବରେ ଜୀବନ-ଯାପନ, ଜନସେବା ଓ ବିଶେଷତଃ ଦରିଦ୍ରସେବା, ଦୀକ୍ଷାଗ୍ରହଣ ବା ଡୁବନ (Baptism) ଆଦି ତାଙ୍କର ପ୍ରଚାରିତ ଧର୍ମର ସାରାଂଶ ବା ପ୍ରଧାନ ଅଙ୍ଗ ଅଟେ । "ଜଣେ ଯେବେ ରାଗରେ ତୁମ ବାଆଁ ଗାଲରେ ଚାପୁଡ଼ାଏ ବଜାଇ ଦେବ ତେବେ ତୁମେ ରାଗ ନ କରି ତାଠାରୁ ଆଉ ଗୋଟିଏ ଚାପୁଡ଼ା ପାଇବା ପାଇଁ ତୁମ ଡାହାଣ ଗାଲଟି ଉକ୍ତ ବ୍ୟକ୍ତିକୁ ଦେଖାଇ ଦେବ ବୋଲି ତାଙ୍କର ଗୋଟିଏ ପ୍ରଧାନ ଉପଦେଶ । ଆଧୁନିକ ଅଧିକାଂଶ ପାଶ୍ଚାତ୍ୟ ସଭ୍ୟ ଜାତି ଖ୍ରୀଷ୍ଟଧର୍ମାବଲମ୍ବୀ ଅଟନ୍ତି ଓ ସମଗ୍ର ପୃଥିବୀର ଅଖ୍ରୀଷ୍ଟୀୟମାନେ କପଟ ପ୍ରତିମା ପୂଜା ତ୍ୟାଗ କରି ଖ୍ରୀଷ୍ଟଧର୍ମ ଗ୍ରହଣ କରିବେ, ଏହାହିଁ ପ୍ରଚାର କରିବା ନିମନ୍ତେ ଦେଶା-ନ୍ତରକୁ ଧର୍ମପ୍ରଚାରକ (Preacher ବା missionary) ମାନଙ୍କୁ ପଠାଇ ପୌତ୍ତଳିକମାନଙ୍କୁ ଖ୍ରୀଷ୍ଟ ଧର୍ମରେ ଦୀକ୍ଷିତ କରିବାରେ ଲାଗି ଅଛନ୍ତି । କିନ୍ତୁ ଯୀଶୁଙ୍କର ଶେଷୋକ୍ତ ଉପଦେଶ (ଯାହାକି ଯୀଶୁ ଗୋଟିଏ ପାହାଡ଼ ଉପରେ ଠିଆ ହୋଇ ପ୍ରଚାର କରିଥିଲେ ଓ ସେଥିପାଇଁ ଯାହାକୁ Sermon on the mount ବୋଲାଯାଏ ତାହା) କୁ ପାଶ୍ଚାତ୍ୟ ସୁସଭ୍ୟ ଖ୍ରୀଷ୍ଟାନ୍ ଜାତିମାନେ କାର୍ଯ୍ୟତଃ ପାଳନ କରିବାର ଆଉ ଦେଖା ନାହିଁ ଓ ଅନ୍ୟ ଧର୍ମମାନଙ୍କରେ ଲକ୍ଷିତ ଦୃଷ୍ଟାନ୍ତ ପରି ଏହି ଧର୍ମର ଦ୍ୱାହିରେ ଏହି ଧର୍ମର ପ୍ରସାର ବୃଦ୍ଧି ହେବା ଛଳରେ ଅନେକ ବିଭତ୍ସ ଓ ଧର୍ମବିରୁଦ୍ଧ କାଣ୍ଡମାନ ସଭ୍ୟ ଜଗତରେ ଘଟୁଅଛି ।)

ଯୀଶୁ ୩ ବର୍ଷ ଏହି ଧର୍ମ ପ୍ରଚାର କଲେ ଓ ଜାଲୁଆ (କେଉଟ) ଆଦି ଇତର ଶ୍ରେଣୀର ୧୨ ଜଣ ବ୍ୟକ୍ତି ଏହାଙ୍କର ପ୍ରଧାନ ଶିଷ୍ୟ ହୋଇ ଏହି ଧର୍ମ ପ୍ରଚାର କରିବାରେ ଲାଗିଲେ । ଏହି ନୂତନ ଉପଧର୍ମ (କାରଣ ଯୀହୁଦି ଧର୍ମର ଏହା ଗୋଟିଏ ସଂସ୍କୃତ ଓ ପରିବର୍ଦ୍ଧିତ ଶାଖା ଅଟେ) ଦେଶରେ ପ୍ରଚାର କରିବା ଯୋଗୁଁ ପୁରୁଣାକାଳିଆ ଯୀହୁଦି (Jews)ମାନେ ଏହାଙ୍କ ପ୍ରତି ଖଡ୍ଗହସ୍ତ ହୋଇ ଉଠିଲେ ଓ ରାଜଦ୍ୱାରରେ ଯୀଶୁଙ୍କ ନାମରେ ଅଭିଯୋଗ ଉପସ୍ଥାପିତ କଲେ । ଯୀଶୁଙ୍କର ପ୍ରିୟ ଶିଷ୍ୟ ମଧ୍ୟରୁ ଜଣେ (Judas Iscariot) ବିଶ୍ୱାସଘାତକତାପୂର୍ବକ ଏହାଙ୍କୁ ରାଜକର୍ମଚାରୀଙ୍କ ହାତରେ ଧରି ପକାଇ ଦେଲେ । ତାତ୍କାଳୀନ ପୌତ୍ତଳିକ ଧର୍ମାବଲମ୍ବୀ ରୋମ୍ ସାମ୍ରାଜ୍ୟର ବିଚାରାଳୟରେ ପଣ୍ଟିଅ (Pontus Pilate)ନାମକ ବିଚାରପତି ଏହାଙ୍କ ପ୍ରତି ପ୍ରାଣଦଣ୍ଡର ଆଦେଶ କଲେ ଓ ଯୀହୁଦିମାନେ (Jews) ଯୁକ୍ତଚିହ୍ନ † ପରି ଗୋଟିଏ କାଠର ହରିକାଠ ବା କ୍ରୁଶ୍ (Cross)କୁ ଭୂଇଁରେ ପୋତି ସେଥିରେ ତାଙ୍କୁ ଠିଆ ବାଟରେ ରଖି ଲୁହା ପେରେକ୍ କଣ୍ଟା (ମୁଣ୍ଡରେ ୧, ଲାହିରେ ୧ ଓ ଦୁଇ ବାହୁକୁ ଲମ୍ବାଇ କରି ଦୁଇ ହାତର ଲେଉଟିରେ ୨, ଏପରି ୪ଟି କଣ୍ଟା) ବାଡେଇ ମାରି ପକାଇଲେ । କିନ୍ତୁ କ୍ରୁଶ୍‌ବିଦ୍ଧ ଓ ଯନ୍ତ୍ରଣା ଜର୍ଜରିତ ଅବସ୍ଥାରେ ଯୀଶୁ ପ୍ରଶାନ୍ତ ମୂର୍ତ୍ତିରେ ଓ ଦରହସିତ ବଦନରେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥାଆନ୍ତି :—"ହେ ଈଶ୍ୱର ! ମତେ ଯେଉଁମାନେ ଦଣ୍ଡ ଦେଉଅଛନ୍ତି ସେମାନଙ୍କୁ କ୍ଷମା ଦିଅ; କାରଣ ସେମାନେ ଯାହା କରୁଅଛନ୍ତି ତହିଁର ଗୁରୁତ୍ୱ ବୁଝି ପାରୁ ନାହାନ୍ତି ।" (ଏହାହିଁ ଖ୍ରୀଷ୍ଟ ଧର୍ମର ଆଦର୍ଶ ରୂପରେ ଜଗତରେ ସ୍ଥାପିତ ଓ କଥିତ) । ସଭ୍ୟ ଜଗତରେ ଆଧୁନିକ ଖ୍ରୀଷ୍ଟୀୟାନ୍ ସଭ୍ୟତାଭିମାନୀ ଜାତିମାନଙ୍କର ଯୁଦ୍ଧବ୍ୟାପାର, ସାମ୍ରାଜ୍ୟବିସ୍ତାର ବ୍ୟାପାର, ଅନ୍ୟ ଜାତିଙ୍କୁ କରାୟତ୍ତକରିବା ବ୍ୟାପାର, ଖ୍ରୀଷ୍ଟାନେତର ଓ ଶ୍ୱେତକାୟେତର ଜାତିମାନଙ୍କ ପ୍ରତି ଭେଦବ୍ୟବହାର ଆଦି ଯୀଶୁଙ୍କ ପ୍ରଚାରିତ ଉପଦେଶ ଉପରେ ଜ୍ୱଳନ୍ତ ସାକ୍ଷୀରୂପେ ଆଧୁନିକ ସଭ୍ୟ ସମାଜର ଅନ୍ତଃସାରଶୂନ୍ୟତାକୁ ପଦେ ପଦେ ଘୋଷଣା କରୁଅଛି । ଏ କଥା ଖ୍ରୀଷ୍ଟୀୟାନ୍ ଭାବୁକ ଓ ଧର୍ମପ୍ରାଣ ମହାପୁରୁଷମାନେ ଅନୁଭବ କରି ନିଜର ମର୍ମବେଦନା ସଭ୍ୟ ଜଗତକୁ ଜଣାଉ ଅଛନ୍ତି । ଯୀଶୁ ଏପ୍ରିଲ୍ ମାସର ଶୁକ୍ରବାରରେ ଶେଷ ନିଶ୍ୱାସ ନିକ୍ଷେପ କରିଥିଲେ, ତହିଁର ସ୍ମୃତି (Good Friday) ଗୁଡ୍ ଫ୍ରାଇଡେ ନାମକ ପର୍ବଦିବସ ପାଳିତ ହୁଏ । ଯୀଶୁଙ୍କ ଜନ୍ମଦିନ ଡିସେମ୍ବର୍‌ମାସ ୨୫ ତାରିଖରେ ପଡ଼ିଥିବାରୁ ତହିଁର ସ୍ମୃତି (Christmas) ଖ୍ରୀଷ୍ଟମସ୍ ବା ବଡ଼ଦିନ ନାମକ ପର୍ବଦିବସ ପାଳିତ ହୁଏ । ଯୀଶୁଖ୍ରୀଷ୍ଟଙ୍କର ଜନ୍ମ ପରେ ଆଧୁନିକ ପାଶ୍ଚାତ୍ୟ ଜାତିମାନଙ୍କର ଅବ୍ଦ ବା ବର୍ଷ ଗଣନା ହୁଏ ଓ ଖ୍ରୀଷ୍ଟାବ୍ଦକୁ A. D. ଏବଂ ଖ୍ରୀଷ୍ଟପୂର୍ବାବ୍ଦକୁ B. C. ବୋଲାଯାଏ । ଯୀଶୁଖ୍ରୀଷ୍ଟ ଦେହତ୍ୟାଗର ତୃତୀୟ ଦିବସରେ କବରରୁ ଉଠି ତାଙ୍କ ଭକ୍ତମାନଙ୍କୁ ସ୍ୱଦେହରେ ଦେଖା ଦେଇଥିଲେ । ଏହି ଘଟନାକୁ ପୁନରୁତ୍ଥାନ (Resurrection) ବୋଲାଯାଏ । ଏଥିପାଇଁ ଖ୍ରୀଷ୍ଟାନ୍‌ମାନେ ଇଷ୍ଟର୍ ପର୍ବ ପାଳନ୍ତି । ଖ୍ରୀଷ୍ଟ ଧର୍ମଶାସ୍ତ୍ରରେ ଲେଖାଅଛି ଯେ ଯୀଶୁ ପୁନର୍ବାର ପୃଥିବୀରେ ଅବତାର ଗ୍ରହଣ କରି ପୃଥିବୀରେ ସତ୍ୟର ରାଜ୍ୟ ଓ ଧର୍ମର ରାଜ୍ୟ ଚିରକାଳ ପାଇଁ ସୁପ୍ରତିଷ୍ଠିତ କରିବେ । ଖ୍ରୀଷ୍ଟିୟାନ୍‌ମାନେ ବର୍ତ୍ତମାନ୍ ସ୍ଥୂଳତଃ ଚାରି ସମ୍ପ୍ରଦାୟରେ ବିଭକ୍ତ—ପ୍ରୋଟେଷ୍ଟାଣ୍ଟ୍, ରୋମାନ୍ କାଥଲିକ୍, ଗ୍ରୀକ୍ ଚର୍ଚ୍ଚ, ୟୁନିଟେରିଆନ୍, କିନ୍ତୁ ଅଧୁନା ଏହି ସବୁ ଶାଖାରୁ ଅନେକ ଉପଶାଖା ଦେଖାଗଲାଣି ।]

**ଯୀହୁଦା**—ବୈଦେ. ବି (ହେବ୍ର-ଯୁଡିଆ)—ଯୀହୁଦୀମାନଙ୍କର ଆଦିମ ନିବାସ
**Jihudā** ଯୌହଦା ଯହୂଦା ସ୍ଥଳ; ଯୁଡିଆ—Judea.

**ଯୀହୁଦୀ**—ବୈଦେ ବି.—(ଇଂ. ଜିଉ; ହେବ୍ର ୟୁଦାହିୟୁସ୍=ୟିହୁଦୀ-
**Jihudi** ନିବାସୀ)-ଯୀଉ ବା 'ୟିହୁଦୀ' ଧର୍ମ; ଖ୍ରୀଷ୍ଟ ଧର୍ମର ପୂର୍ବାକାର ଓ ସେହି ଧର୍ମ ସମ୍ପ୍ରଦାୟ ଓ ବ୍ୟକ୍ତି—The Jews, a sect following the sayings and religions of the old Testament. [ଦ୍ର—ଖ୍ରୀଷ୍ଟ ଧର୍ମଶାସ୍ତ୍ର ଦୁଇ ଭାଗରେ ବିଭକ୍ତ । ପୁରାତନ ଗ୍ରନ୍ଥ (Old Testament) ଓ ନୂତନ ଗ୍ରନ୍ଥ (New Testament) । ପୁରାତନ ଗ୍ରନ୍ଥରେ ଖ୍ରୀଷ୍ଟଙ୍କ ଜନ୍ମ ପୂର୍ବର ଘଟଣାମାନ ଓ ନୂତନ ଗ୍ରନ୍ଥରେ ଖ୍ରୀଷ୍ଟଙ୍କର ଜନ୍ମ ଓ ତତ୍‌ପରର ଘଟଣାମାନ ବର୍ଣ୍ଣିତ ହୋଇଅଛି । ପୁରାତନ ଗ୍ରନ୍ଥରେ ଲେଖାଅଛି ଯେ ଈଶ୍ୱର ପୃଥିବୀରେ ଅବତାରରୂପେ ଆବିର୍ଭୂତ ହେବେ । ଖ୍ରୀଷ୍ଟୀଆନ୍‌ମାନେ କହନ୍ତି ଯେ 'ନାଯାରେଥ୍'ରେ ଜାତ କୁମାରୀ ମେରୀଙ୍କ ପୁତ୍ର ପୁରାତନ ଗ୍ରନ୍ଥବର୍ଣ୍ଣିତ ଈଶ୍ୱରାବତାର ଅଟନ୍ତି । କିନ୍ତୁ ଯୀହୁଦିମାନେ ଯୀଶୁଙ୍କୁ ଈଶ୍ୱରଙ୍କର ଉକ୍ତ ଅବତାର ବୋଲି ସ୍ୱୀକାର କରନ୍ତି ନାହିଁ ଓ କହନ୍ତି ଯେ ପୁରାତନ ଗ୍ରନ୍ଥ ବର୍ଣ୍ଣିତ ଅବତାର ଏ ପର୍ଯ୍ୟନ୍ତ ଅବତୀର୍ଣ୍ଣ ହୋଇ ନାହାନ୍ତି ଓ ଭବିଷ୍ୟତରେ ଧରାରେ ଅବତୀର୍ଣ୍ଣ ହେବେ । ଏଥିପାଇଁ ଯୀହୁଦୀମାନେ ନୂତନ ଗ୍ରନ୍ଥ (New Testament)ର ଧର୍ମକୁ ଓ ଯୀଶୁଙ୍କୁ ଈଶ୍ୱରପ୍ରେରିତ ତ୍ରାଣକର୍ତ୍ତା ବୋଲି ମାନନ୍ତି ନାହିଁ ।

ଆସିୟିକ୍ ତୁରସ୍କସ୍ଥ ପ୍ରାଚୀନ ଜେରୁଜାଲମ୍ (Jerujalem) ର ଯାକବ (Jacob) ନାମକ ରାଜାଙ୍କ ପୁତ୍ର ଯୁଦା (Juda) ଙ୍କ ନାମ ଅନୁସାରେ ତାଙ୍କ ରାଜ୍ୟ ଯୁଦିୟା (Judea) ବା ଜେରୁଶାଲମ୍ (Jerusalem) ନାମରେ ଅଭିହିତ । ଏହି ରାଜ୍ୟବାସୀଙ୍କୁ 'ଯୀଉ' ନାମ ଦିଆ ଯାଇଥିଲା, ଏମାନେ ଏକେଶ୍ୱରବାଦୀ ଥିଲେ ଓ ଈଶ୍ୱରଙ୍କୁ ବଳି ଆଦି ଦେଇ ପୂଜା କରୁଥିଲେ । ଯୀଶୁଖ୍ରୀଷ୍ଟ ବଳି ଆଦି ପ୍ରଥା ବନ୍ଦ କଲେ ଓ ପୁରାତନ ଗ୍ରନ୍ଥବର୍ଣ୍ଣିତ ଈଶ୍ୱର ପ୍ରେରିତ ପୁତ୍ର ବୋଲି ଆପଣାକୁ ଘୋଷଣା କରିବାରୁ ଯୀହୁଦିମାନେ ବିରକ୍ତ ହୋଇ ଯୀଶୁଙ୍କୁ ରାଜଦ୍ୱାରରେ ଅଭିଯୁକ୍ତ କରାଇ 'କ୍ରୁଶ' ଦ୍ୱାରା

ତାଙ୍କର ପ୍ରାଣଦଣ୍ଡ କରାଇଲେ । ଏଥିପାଇଁ ଖ୍ରୀଷ୍ଟିୟାନ୍‌ମାନେ ଯୀହୁଦୀମାନଙ୍କୁ ଘୃଣା କରନ୍ତି । ପୂର୍ବେ ଖ୍ରୀଷ୍ଟିୟାନ୍‌ମାନେ ଯୀହୁଦୀମାନଙ୍କୁ ଦେଖିଲେ ତାଙ୍କ ଉପରେ ଘୃଣାରେ ଛେପ ପକାଉଥିଲେ । ଯୀହୁଦୀମାନଙ୍କ ଆଦମକାସ ଜେରୁଜାଲମରେ ଥିଲେ ମଧ୍ୟ ସେମାନେ ଈଶ୍ୱରଙ୍କ ଅଭିଶାପ ଫଳରେ ସ୍ୱଦେଶରୁ ବିତାଡ଼ିତ ହୋଇ କ୍ଷତଶ୍ରୁ ଓ ଦେଶହୀନ ହୋଇ ପୃଥିବୀରେ ବିଚରଣ କରୁଅଛନ୍ତି । ଏମନ୍ତ କି ଖ୍ରୀଷ୍ଟୀୟାନ୍ ରାଜ୍ୟରେ ଏମାନେ ସମସ୍ତ ରାଜମାନଙ୍କ ସମ୍ମାନ ଓ ଅଧିକାରରୁ ବଞ୍ଚିତ ହୋଇଥିଲେ । ଏମାନେ ପାଶ୍ଚାତ୍ୟ ଜଗତରେ ଋଣ ଦାନ ଓ ବ୍ୟବସାୟ ଦ୍ୱାରା ଧନୀ ହୋଇଥିଲେ ଓ ଅଧୁନାକ ସଭ୍ୟ ଜଗତରେ ଅନେକ ଧନୀ ଏହି ସମ୍ପ୍ରଦାୟଭୁକ୍ତ ଅଟନ୍ତି । କ୍ରମଶଃ ଖ୍ରୀଷ୍ଟୀୟାନ୍ ଜାତିର ଘୃଣାଦୃଷ୍ଟି ଏମାନଙ୍କଠାରୁ କମି ଅଛି ଓ ବର୍ତ୍ତମାନ ଏମାନେ ସର୍ବୋଚ୍ଚ ରାଜପଦ ଓ ସମ୍ମାନ-ଲାଭ କରୁଅଛନ୍ତି । ଭାରତର ପୂର୍ବତନ ସାମ୍ରାଜ୍ୟ ମନ୍ତ୍ରୀ ସେକ୍ରେଟେରି ଅଫ୍ ଷ୍ଟେଟ୍ (Secretary of State) ମଣ୍ଟେଗୁ ଓ ଭାରତର ବଡ଼ ଲାଟ ରୂପରେ ଆସିଥିବା ଲର୍ଡ଼ ରେଡିଙ୍ଗ୍ ଯୀହୁଦୀ ଜାତୀୟ ଥିଲେ ।

ଏମାନେ ପଯ୍ଗମ୍ବର ମୂଷା (ମୋସେସ୍)ଙ୍କ ଶିଷ୍ୟ । ଏମାନଙ୍କ ଧର୍ମଶାସ୍ତ୍ର ତର୍‌ରେତ୍ । ଏଥିରେ ମହାତ୍ମାଙ୍କ ଜନ୍ମ ହେବାର ଭବିଷ୍ୟତବାଣୀ ଅଛି ଓ ଲୋକମାନଙ୍କୁ ପାପରୁ ତ୍ରାଣ କରିବା ପାଇଁ ଈଶ୍ୱର ପୁତ୍ର ଜନ୍ମିବାର ଉଲ୍ଲେଖ ଅଛି । ଖ୍ରୀଷ୍ଟାନ୍‌ମାନେ କହନ୍ତି - ସେହି ଈଶ୍ୱର ପୁତ୍ର ଯୀଶୁ । ଯୀହୁଦୀମାନେ କହନ୍ତି—ସେ ଏ ପର୍ଯ୍ୟନ୍ତ ପୃଥିବୀରେ ଜନ୍ମଗ୍ରହଣ କରି ନାହାନ୍ତି ।]

**ଯୁ** (ଧାତୁ)—ସଂ—୧ । ଯୋଗ କରିବା—1 To join together, Ju (root) to unite. ୨ । ମିଶାଇବା—2. To mix, to combine. ୩ । ବାନ୍ଧିବା—3. To bind; to fasten (Apte). ୪ । ପୃଥକ୍ କରିବା—4. To detach, to separate (Apte).

**ଯୁ**—ଗ୍ରା. ସର୍ବ (ସଂ. ଯତ)—ଯେଉଁ—Which. ଗ୍ରା. ଅ. (ସଂ. ଯୁଗ)- Ju ଯୁଆଳରେ କାନ୍ଧ ଲଗାଇବା ପାଇଁ ବଳଦଙ୍କୁ ଡାକିବା—(ଯୁଇ—ଅନ୍ୟରୂପ) An exclamation used by cart- ଯେ men and ploughmen exhorting the bul- जो locks to put their shoulders to the yoke ୪ବୈଦେ. ବି—ଜୁ (ଦେଖ)—Ju (See)

**ଯୁଆଡ଼**—ଗ୍ରା. ସର୍ବ—୧ । ଯେଉଁ ଆଡ଼, ଯେଉଁ ଦିଗ, ଯେଉଁ ପକ୍ଷ— Juarda 1. Which side, which direction. (ସିଆଡ଼. ଆପେକ୍ଷିକ ଶବ୍ଦ) [ଦ୍ର—ତୁ ଯୁଆଡ଼େ ଯିବୁ, ମୁଁ ଯିବି । ଯି ଦିଗ୍ ଗୋପାଳକୃଷ୍ଣ. ପିଲାଙ୍କ ରାମାୟଣ ।] ୨ । ଯେଉଁ ଦେଶ; जीधर ଯେଉଁ ଅଞ୍ଚଳ—2. Which locality or country. ୩ । ଯେଉଁ ଦିଗର—3. Of which side. [ଦ୍ର—ଏଥିରୁ ୨ୟାରେ—ଯୁଆଡ଼କୁ, ଯୁଆଡ଼େ ୫ମୀରେ—ଯୁଆଡ଼ୁ, ଯୁଆଡ଼ରୁ ୬ଷ୍ଠୀରେ—ଯୁଆଡ଼, ଯୁଆଡ଼ର ୭ମୀରେ—ଯୁଆଡ଼େ, ଯୁଆଡ଼ରେ ହୁଏ ।]

**ଯୁଆଡ଼ି**—ପ୍ରାଦେ. (ସମ୍ବଲପୁର) ବି—ଲଙ୍ଗଳ ଲୋହ— Juardi A plough-share.

**ଯୁଆଡ଼(ଡ଼)କା**—ଗ୍ରା. ଅ—୧ । ଯେଉଁ ଦିଗର, ଯେଉଁ ପକ୍ଷର— Juardi(rda)ka 1. Of which side. ୨ । ଯେଉଁ ଦେଶର; (ଯୁଆଡ଼କାର—ଅନ୍ୟରୂପ) ଯେଉଁ ଅଞ୍ଚଳର—2. Of which যে দিগের जीधरका side.

**ଯୁଆଡ଼କି**—ଗ୍ରା. ଅ—ଯେଉଁ ଆଡ଼କୁ; ଯେଉଁ ଦିଗକୁ— Juardiki To which side or direction. যে দিগে जीधरको (ସିଆଡ଼କି—ଆପେକ୍ଷିକ ଶବ୍ଦ)

**ଯୁଆନ୍** (ଇତ୍ୟାଦି)—ବି ଓ ବିଣ—ଜୁଆନ୍ ଇତ୍ୟାଦି (ଦେଖ) Juan (etc) Juan etc. ( See )

**ଯୁଆଳି** (ଇତ୍ୟାଦି)—ଦେ. ବି - ଜୁଆଳି ଇତ୍ୟାଦି ( ଦେଖ ) Juali (etc) Juali etc. ( See )

**ଯୁଇ** (ଇତ୍ୟାଦି)—ଦେ. ବି. ( ସଂ. ଯୂଥୀ, ଯୂଥିକା )—ଜୁଇ ଇତ୍ୟାଦି Jui (etc) (ଦେଖ)—Jui etc. ( See )

**ଯୁଉଁ**—ଗ୍ରା. ବି—ଯେଉଁ—Which. Ju-un যে, যা जो

**ଯୁଉଠିଁ**—ଗ୍ରା. ସର୍ବ—ଯେଉଁଠାରେ—Where. Juuthin (ଯୁଉଁଠେଇଁ—ଅନ୍ୟରୂପ) ଯେଖାନେ जहाँ

**ଯୁଉଠି(ଠିଁ)କି(କୁ)**—ଗ୍ରା. ଅ—ଯେଉଁ ସ୍ଥାନକୁ— Ju-uthi(thin)ki(ku) To which place. (ଯୁଉଠାକୁ—ଅନ୍ୟରୂପ) ଯେଖାନେ जहाँ

**ଯୁଉଁଠୁ**—ଗ୍ରା. ଅ—୧ । ଯେଉଁଠାରୁ; ଯେଉଁ ସ୍ଥାନରୁ—1. Whence; Juuthun from which place. ୨ । ଯେଉଁ ବ୍ୟକ୍ତିଠାରୁ ଯେଖାନଥେକେ ବା ଲୋକଠାରୁ—2. From which person. ୩ । जहाँसे ଯେଉଁ କାରଣରୁ – 3. From which cause.

**ଯୁଁ**—ଗ୍ରା ସର୍ବନାମ (ସଂ. ଯଦ୍)—ଯେଉଁ ଯାହା— Jun যে जो Which.

**ଯୁକ** (ଇତ୍ୟାଦି)—ସଂ.—୧ । ମିଶ୍ରିତ କରିବା—1. To mix up. Juk (root) ୨ । ପୃଥକ୍ କରିବା—2. To separate. ୩ । ନିନ୍ଦା କରିବା—3. To blame. ୪ । ତାଚ୍ଛଲ୍ୟ କରିବା—4. To censure. ୫ । ବନ୍ଧନ କରିବା— 5. To bind.

**ଯୁକ୍**—ସ. ବିଣ ( ଯୁକ୍ ଧାତୁ=ନିନ୍ଦା କରିବା+କର୍ମ. କ୍ୱିପ୍ )— Juk ୧ । ମନ୍ଦ—1. Bad. ୨ । ନିନ୍ଦିତ—3. Blame-worthy. ୩ । ଘୃଣିତ—2. Hateful. ୪ । ସମାଧିରତ—4. Contemplative; engaged in meditation. ବି—(ଯୁଜ୍. ଧାତୁ=ଯୋଗ କରିବା+କର୍ମ. କ୍ୱିପ୍)—୧ । ଯୁଗଳ; ଯୁଗ୍ମ—1. A pair, a couple. ୨ । ଦୈର୍ଘ୍ୟପରିମାଣବିଶେଷ; ଏକ ମାଇଲକୁ

ବଚ୍ଛ ଅଲ୍ପ ଦୂରତା—2. A unit of measure (i. e. 300 poles). ୩ । ଯୁଗ୍ (ଦେଖ)—3. Jug (See)

**ଯୁକ(କୁ)ତ**—ଗ୍ରା. (ପଦ୍ୟ) ବିଣ. (ସଂ. ଯୁକ୍ତ)—ଯୁକ୍ତ (ଦେଖ)
Juka(ku)ta ଯୁକତ युकत Jukta (See)

**ଯୁକ(କୁ)ତି** (ଇତ୍ୟାଦି)—ଗ୍ରା. ବି—ଯୁକ୍ତି (ଇତ୍ୟାଦି) (ଦେଖ)
Juka(ku)ti (etc) Jukti (etc) (See)
যুকতি युकति

**ଯୁକତେ**—ଗ୍ରା. (ପଦ୍ୟ) ଅ—ଫଳତଃ; ପ୍ରକୃତରେ—In reality; Jukate as a matter of fact. [ଉ—ପଦ୍ଧ ସେ ଥିଲା ଯୁକତେ ମୋହଗତେ, ଶାଲ୍ୱର ମନ୍ତ୍ରୀ ସେ ଯୁକତେ । ଜଗନ୍ନାଥ. युकतै ଭାଗବତ । ]

**ଯୁକ୍ତ**—ସଂ. ବିଣ (ଯୁଜ୍. ଧାତୁ=ଯୋଗ କରିବା+କର୍ମ. ତ)—Jukta ୧ । ମିଳିତ; ସଲଗ୍ନ; ଯୋଡ଼ା ହୋଇଥିବା—(ବିଯୁକ୍ତ—ବିପରୀତ) 1. Joined; combined; united, attached. ୨ । ଏକ ବସ୍ତୁ ସଙ୍ଗେ ଯୋଗ କରାଯିବା ବା ମିଶାଯିବା—2. Added with. ୩ । ନ୍ୟାଯ୍ୟ, ନ୍ୟାୟାନୁଗତ—3 Reasonable; just. ୪ । ପ୍ରମାଣୀକୃତ—4. Proved by evidence. ୫ । ଯୋଗ୍ୟ—5. Fit; right; proper. ୬ । (ଗୁଣାଦି ଦ୍ୱାରା) ଭୂଷିତ; ଶୋଭିତ—6. Possessed of or endowed with good qualities. ୭। ବ୍ୟାପୃତ—7. Engaged; employed in a business. ୮ । ପରିମିତ; ସାମାନ୍ୟ—8. Moderate; common; ordinary; limited. ୯ । ଅବଶିଷ୍ଟ—9 Remaining. ୧୦ । ଆସକ୍ତ—10. Attached to; bent on; addicted to, intent on (a pursuit): absorbed in, devoted to ୧୧ । ଯୋଗାରୂଢ଼ (ବ୍ୟକ୍ତି); ଯୋଗୀ; ଜିତେନ୍ଦ୍ରିୟ (ବ୍ୟକ୍ତି); ଯୋଗନିରତ—11. (a person) Engaged or absorbed in Joga. [ ଦ୍ର—ଯେଉଁ ବ୍ୟକ୍ତି ଜ୍ଞାନବିଜ୍ଞାନ ତୃପ୍ତାତ୍ମା, କୂଟସ୍ଥ, ବିଜିତେନ୍ଦ୍ରିୟ ଓ ସମଲୋଷ୍ଟାଶ୍ମକାଞ୍ଚନ, ସେହି ବ୍ୟକ୍ତି ଯୁକ୍ତ ପଦବାଚ୍ୟ । ଭଗବଦ୍ଗୀତା. ୬ଷ୍ଠ ଅଧ୍ୟାୟ । ] (ଯୁକ୍ତ ଅନ୍ୟ ଶବ୍ଦ ସଙ୍ଗେ ଯୋଗ କରାଯାଇ ସମାସରେ ବିଶେଷଣ ପଦ ସୃଷ୍ଟି କରେ । ଯଥା—ପ୍ରେମଯୁକ୍ତ, ଭକ୍ତିଯୁକ୍ତ, ଖେଦଯୁକ୍ତ, ଚେଷ୍ଟାଯୁକ୍ତ, ଦୋଷଯୁକ୍ତ ) ୧୨ । ଅଧିକୃତ—12. Possessed of. ୧୩ । ମିଶ୍ରିତ—13. Mixed with. (ଯଥା—ଘୃତଯୁକ୍ତ ତଣ୍ଡୁଳ) ୧୪ । ଯୁଆଳିରେ ଯୋଚ୍ଚ ଯାଇଥିବା—14. Yoked; harnessed (Apte) ୧୫ । ବ୍ୟବସ୍ଥିତ—15. Arranged; fitted out. ୧୬ । ସମଭିବ୍ୟାହାରରେ ଗତ—16. Accompanied. ୧୭ । ନିଯୋଜିତ—17. Engaged; employed; appointed. ୧୮ । ପ୍ରମାଣିତ—18. Proved; inferred. ୧୯ । କର୍ମଠ—19 Active. ୨୦ । ଉପଯୁକ୍ତ—20 Fit; proper; suitable. ୨୧ । କୁଶଳ—21. Skilful. ୨୨ । (ବ୍ୟାକରଣ) ମୌଳିକ (ଶବ୍ଦ)—22. (grammar) Primitive; not derived from another word. ୨୩ । ସଂଯୁକ୍ତ—23. Connected with. ସଂ ବି ପୁଂ—୧ । ଯେଉଁ ଯୋଗୀ ଭଗବତ୍ ସାକ୍ଷାତ୍କାର ଲାଭ କରିଅଛନ୍ତି—1. A saint who has become one with the Supreme Being. ୨ । ଯୁଗ କାଷ୍ଠ; ଯୁଆଳି—2. Yoke (Apte). ୩ । ଯୁଆଳିରେ ଯୋଚ୍ଚ ହୋଇଥିବା ଜୀବଦ୍ୱୟ—3. Team (Apte). ୪ । ନ୍ୟାୟମାର୍ଗୋପାର୍ଜ୍ଜିତ ଧନ—4. Money lawfully obtained. ୫ । ଚାରି ହାତର ଏକ ମାପ (ହି. ଶ)—5. A measure of 4 cubits (Apte). ସଂ. କ୍ରି. ବିଣ—୧। ନ୍ୟାଯ୍ୟତଃ—1. Justly (Apte). ୨ । ଉଚିତରୂପେ—2. Properly (Apte). ବି—ଯେଉଁ ବ୍ୟକ୍ତି ଯୋଗସାଧନରେ ସିଦ୍ଧିଲାଭ କରି ଅଛନ୍ତି; ଅଭ୍ୟସ୍ତଯୋଗ ବ୍ୟକ୍ତି—A person who has succeeded in controlling his soul and passions.

**ଯୁକ୍ତକର**—ସଂ. ବି (କର୍ମଧା, ଯୁକ୍ତ+କର)—ଯୋଡ଼ ହାତ; ହାତ Jukta kara ଯୋଡ଼ିବା—Folded hands; hands folded together (as in supplication) ବିଣ. (ଯୁକ୍ତକରା—ସ୍ତ୍ରୀ) ପୁଂ (ବହୁବ୍ରୀହି)—କୃତାଞ୍ଜଳି—With folded hands.

**ଯୁକ୍ତକର୍ମା**—ସଂ. ବିଣ (ବହୁବ୍ରୀହି; ଯୁକ୍ତ+କର୍ମନ୍; ୧ମା. ୧ବ)—Juktakarmā କୌଣସି କର୍ମରେ ନିଯୁକ୍ତ—Entrusted with or employed in some work.

**ଯୁକ୍ତ ଚିହ୍ନ**—ଦେ. ବି (ଗଣିତ)—ଦୁଇଟି ବସ୍ତୁ ଯୋଗ କରି ଯାଇଥିବା Jukta chihna ବିଷୟସୂଚକ ଚିହ୍ନ; +ଚିହ୍ନ—(mathematics) The sign of addition (viz+); the plus sign

**ଯୁକ୍ତ ଦଣ୍ଡ**—ସଂ. ବିଣ. ପୁଂ ବହୁବ୍ରୀହି)—ଯେ ନ୍ୟାଯ୍ୟତଃ ଦଣ୍ଡ ଦିଏ—Jukta danda Punishing rightly (Apte)
( ଯୁକ୍ତଦଣ୍ଡା - ସ୍ତ୍ରୀ )

**ଯୁକ୍ତ ନିଦ୍ରାବବୋଧ**—ସଂ. ବିଣ. ପୁଂ (ବହୁବ୍ରୀହି; ଯୁକ୍ତ+ନିଦ୍ରା+ Jukta nidrābabodha ଅବବୋଧ)—ଯେ ନିୟମିତ ସମୟରେ (ଯୁକ୍ତ ସ୍ୱପ୍ନାବବୋଧ—ଅନ୍ୟରୂପ) ନିଦ୍ରିତ ହୁଏ ଓ ନିଦ୍ରା ତ୍ୟାଗ କରେ—One who is given to sleeping and rising in regular hours.
ଯୁକ୍ତ ନିଦ୍ରାବବୋଧା } ସ୍ତ୍ରୀ
ଯୁକ୍ତ ସ୍ୱପ୍ନାବବୋଧା }

**ଯୁକ୍ତ ପ୍ରାନ୍ତ**—ଦେ. ବି—ଅଯୋଧ୍ୟା ଓ ଆଗ୍ରା ଅଞ୍ଚଳଦ୍ୱୟ ମିଳିତ ବୃହତ୍ Jukta prānta ଭାରତୀୟ ପ୍ରଦେଶ ବିଶେଷ—The United (ଯୁକ୍ତ ପ୍ରଦେଶ—ଅନ୍ୟରୂପ) Provinces of Oudh and Agra (in India).
যুক্ত প্রদেশ युक्त प्रांत

**ଯୁକ୍ତ ବର୍ଣ୍ଣ** - ସ. ବି—ଯୁକ୍ତାକ୍ଷର ( ଦେଖ )
Jukta barṇṇa Juktākshara ( See )

**ଯୁକ୍ତ ବେଣୀ**—ସ. ବି. (କର୍ମଧା)—୧ । ବନ୍ଧବେଣୀ; ବନ୍ଧା ବେଣୀ—
Jukta beṇi 1. Plait tied into a knot; plaited hair. ୨ । ଦୁଇ ବା ତତୋଽଧିକ ନଦୀର ପ୍ରବାହର ସମ୍ମେଳନ—2. The confluence of two or more streams. [ଦ୍ର—ଅଲ୍ଲାହାବାଦ୍(ପ୍ରୟାଗ)ଠାରେ ଗଙ୍ଗା, ଯମୁନା ଓ ସରସ୍ୱତୀ ନଦୀତ୍ରୟ ମିଳିତ ହୋଇଥିବାରୁ ଏହାର ନାମ ଯୁକ୍ତବେଣୀ ।]

**ଯୁକ୍ତମନାଃ**—ସ. ବିଣ. ( ବହୁବ୍ରୀହି; ଯୁକ୍ତ+ମନସ୍; ୧ମା. ୧ବ )—
Juktamanāh ମନୋଯୋଗୀ—Attentive (Apte).

**ଯୁକ୍ତ ରସା**—ସ. ବି—ରାସନା, ରାସ୍ନା ( ଔଷଧରେ ବ୍ୟବହୃତ ଗୁଳ୍ମ )—
Jukta rasā A plant; Mimosa Octandra.
(ଯୁକ୍ତା—ଅନ୍ୟରୂପ)

**ଯୁକ୍ତ ରାଜ୍ୟ**—ସ.ବି (ଆଧୁନିକ)—୧ । ଆମେରିକାର ସମ୍ମିଳିତ ରାଜ୍ୟମାନ—
Jukta rājya 1. The United States of America.
युक्त राज्य ୨ । ଇଂଲଣ୍ଡ, ସ୍କଟଲଣ୍ଡ ଓ ଆୟରଲଣ୍ଡ—
**युक्त राज्य** 2. The United Kingdom of England, Scotland and Ireland.

**ଯୁକ୍ତ ରୂପ**—ସ. ବି. ( ବହୁବ୍ରୀହି; ଯୁକ୍ତ+ରୂପ )—୧ । ସମୁଚିତ—
Jukta rūpa 1. Fit; proper; suitable (Apte)
୨ । ଯୋଗ୍ୟ - 2 Worthy (Apte).

**ଯୁକ୍ତ ହେବା**—ଦେ. କ୍ରି—୧ । ମିଶିବା—1. To be mixed, to
Jukta hebā be added. ୨ । ଭୂଷିତ ହେବା—2. To
যুক্ত হওয়া be adorned. [ଉ—ରୂପ ଗୁଣ ଦୁଇ କଥାରେ
**युक्त होना** ଯୁକ୍ତ ହେଲେ । କୃଷ୍ଣସିଂ. ମହାଭାରତ. ଆଦି ।]

**ଯୁକ୍ତାକ୍ଷର**—ସ. ବି. (ବ୍ୟାକରଣ)—ସଂଯୁକ୍ତ ବର୍ଣ୍ଣ; ଦୁଇ ବା ତତୋଽଧିକ
Juktākshara ବ୍ୟଞ୍ଜନ ବର୍ଣ୍ଣର ମିଳନରେ ଉତ୍ପନ୍ନ ବର୍ଣ୍ଣ—
A compound letter; dipthong or tripthong. [ଦ୍ର—ସଂସ୍କୃତ ବର୍ଣ୍ଣମାଳାରେ 'କ୍ଷ' ଗୋଟିଏ ଯୁକ୍ତାକ୍ଷର (କ୍+ଷ) ।
ଏହାଛଡ଼ା ବ୍ୟଞ୍ଜନ ବର୍ଣ୍ଣରେ 'ଫଳା' ଲାଗିଗଲେ ତାହା ଯୁକ୍ତାକ୍ଷର ହୁଏ । ଯଥା—କ+ଯ=କ୍ୟ, ର୍+କ=ର୍କ; କ୍+ର=କ୍ର; ଏହିପରି କ୍କ, କ୍ଣ, କ୍ନ, କ୍ମ, କ୍ର, କ୍ଲ, କ୍ସ, କ୍ଷ=କ୍ଷ ।]

**ଯୁକ୍ତାହାର**—ସ. ବିଣ. ପୁଂ ( ବହୁବ୍ରୀହି, ଯୁକ୍ତ+ଆହାର )—
Juktāhāra ୧ । ଆହାରରେ ଆସକ୍ତ—1. Addicted to
[ଯୁକ୍ତାହାରା—ସ୍ତ୍ରୀ] food. ୨ । ପରିମିତାହାର—2. Frugal; temperate. ବି. ( କର୍ମଧାରୟ )—ପରିମିତ ଆହାର—Moderate eating; frugal fare; temperance

**ଯୁକ୍ତାହାରବିହାର**—ସ. ବିଣ. ପୁଂ ( ବହୁବ୍ରୀହି; ଯୁକ୍ତ+ଆହାର+
Juktāhārabihāra ବିହାର )—ଯାହାର ଆହାର ଓ ବିହାର
(ଯୁକ୍ତାହାରବିହାରା—ସ୍ତ୍ରୀ) ପରିମିତ—Of temperate habits.

**ଯୁକ୍ତି**—ସ. ବି. (ଯୁଜ୍ ଧାତୁ=ମିଳିତ ହେବା; ଯୋଗ କରିବା; ବାନ୍ଧିବା
Jukti +ଭାବ. ତି)—୧ । ବାଦାନୁବାଦ; ନ୍ୟାୟ; ତର୍କ—
1. Reasoning, logic, argument. [ଦ୍ର—ଏକ ବା ଏକାଧିକ ଅନୁଭୂତ ବିଷୟର ସାହାଯ୍ୟରେ କୌଣସି ଅନନୁଭୂତ ବିଷୟର ଜ୍ଞାନ ଜନ୍ମିଲେ, ଉକ୍ତ ଜ୍ଞାନକୁ ଯୁକ୍ତି ବୋଲାଯାଏ । ଯୁକ୍ତି ତର୍କବିଜ୍ଞାନର ଗୋଟିଏ ପାରିଭାଷିକ ଶବ୍ଦ । ଇଂରେଜୀରେ ଏହାକୁ ଇନ୍‌ଫରେନ୍ସ (Inference) କହନ୍ତି । ଯୁକ୍ତି ଦ୍ୱ୍ୟର୍ଥସୂଚକ । ଯେଉଁ ଜ୍ଞାନ ହସ୍ତଗତ ହୁଏ ତାହା ପ୍ରତି ଓ ଯେଉଁ ପ୍ରଣାଳୀ ଦ୍ୱାରା ଉକ୍ତ ଜ୍ଞାନ ଅଧିଗତ ହୁଏ ତାହା ପ୍ରତି ମଧ୍ୟ ଏହି ଶବ୍ଦ ପ୍ରଯୁଜ୍ୟ । ଯୁକ୍ତି ପ୍ରତ୍ୟକ୍ଷ ଅଥବା ଅପ୍ରତ୍ୟକ୍ଷ, ଯୁକ୍ତିଲବ୍ଧ ଜ୍ଞାନ ଅପ୍ରତ୍ୟକ୍ଷ । ଯୁକ୍ତି ବଳରେ ଭୂତ, ଭବିଷ୍ୟତ ଓ ପରୋକ୍ଷ ବିଷୟ ଜାଣିବାରେ ଆମ୍ଭେମାନେ ସମର୍ଥ ହେଉଁ । ଯୁକ୍ତି ଦୁଇ ପ୍ରକାର, (କ) ଆରୋହୀ ଯୁକ୍ତି (Induction) ଏବଂ (ଖ) ଅବରୋହୀ ଯୁକ୍ତି(=Deduction).
ପାଶ୍ଚାତ୍ୟ ଦର୍ଶନରେ ଏହି ଦୁଇ ପ୍ରଣାଳୀ ପରସ୍ପର ଠାରୁ ପୃଥକ୍ । ଏତଦ୍‌ବ୍ୟତୀତ ନିରପେକ୍ଷ (Immediate inference) ଓ ସାପେକ୍ଷ ଯୁକ୍ତି ( Mediate inference), ଏହି ପ୍ରକାର ପ୍ରଭେଦ ପାଶ୍ଚାତ୍ୟ ଜଗତରେ ସ୍ୱୀକୃତ ହୋଇଥାଏ । 'ନ୍ୟାୟ' ଓ 'ଅନୁମାନ' ଉଭୟେ ସାପେକ୍ଷ ଯୁକ୍ତିः ଅର୍ଥାତ ଉଭୟରେ ଲିଙ୍ଗ-ଲିଙ୍ଗୀ ସମ୍ପର୍କ ବିଦ୍ୟମାନ । ହିନ୍ଦୁ ଦର୍ଶନରେ ନିରପେକ୍ଷ ଯୁକ୍ତିର ଅବତାରଣା ନାହିଁ । କେତେକ ପାଶ୍ଚାତ୍ୟ ତର୍କବିଜ୍ଞାନୀ ମଧ୍ୟ ନିରପେକ୍ଷ ଯୁକ୍ତିକୁ ଯୁକ୍ତି ରୂପେ ଗ୍ରହଣ କରିବାକୁ କୁଣ୍ଠିତ । ନ୍ୟାୟ ଗୋଟିଏ ଯୁକ୍ତି ଏବଂ ଗୌତମଙ୍କ ନ୍ୟାୟରେ ଆରୋହୀ ଓ ଅବରୋହୀ ଉଭୟ ପ୍ରଣାଳୀ ଏକତ୍ର ବ୍ୟବହୃତ ହୁଏ ।
ସନ୍ଦର୍ଭ ଲେଖକ
ଅଧ୍ୟାପକ ଶ୍ରୀ ବିପିନବିହାରୀ ରାୟ, ଏମ୍. ଏ.]
୨ । ମିଳନ; ସଂଯୋଗ—2. Union; connection; joining; conjunction. ୩ । ଉପଯୋଗିତା; ଯୋଗ୍ୟତା—3 Fitness; propriety. ୪ । ରୀତି; ପ୍ରଥା—4. Usage; custom. ୫ । ଲୋକ-ବ୍ୟବହାର—5 Traditional law; unwritten law. ୬ । ଅନୁମାନ—6. Inference; deduction ୭ । କାରଣ; ହେତୁ—7. Reason; cause, ground. ୮ । ମୀମାଂସା—8. Conclusion. ୯ । ମନ୍ତ୍ରଣା; ପରାମର୍ଶ—9. Consultation; advice; counsel. ୧୦ । ସାକ୍ଷୀର ପ୍ରଦତ୍ତ ବିବରଣର ଉଲ୍ଲେଖ—10. Note or written memorandum of the evidence given by a witness. ୧୧ । ପରିଚ୍ଛିନ୍ନ ବାକ୍ୟ ମଧ୍ୟସ୍ଥିତ ଉହ୍ୟ ବାକ୍ୟର ବା ପଦର ସଂଯୋଜନ—11. Filling up of an ellipsis in a sentence. ୧୨ । ବାକ୍ୟାଲଙ୍କାର ବିଶେଷ;

ଯଦ୍ଦ୍ୱାରା ଭାବବ୍ୟଞ୍ଜକ ଶବ୍ଦପ୍ରୟୋଗରେ ମୁଖ୍ୟ ଅଭିପ୍ରାୟ ବା ଉଦ୍ଦେଶ୍ୟ ଗୁପ୍ତ ରଖାଯାଏ—12. A figure in rhetoric; emblematical or mystical or covert expression of purpose. ୧୩। ନାଟ୍ୟାଙ୍ଗ ବିଶେଷ; ନାଟ୍ୟୋଲ୍ଲିଖିତ ଘଟନାର ଐକ୍ୟ ବା ମିଳନ ବା ଧାରାବାହିକତା—13. Dramatic sequence of plots; interdependence of the plots in a drama; the regular chain of events in a drama. ୧୪। ଯୋଚିବା—14. Yoking; harnessing. ୧୫। ନିଯୁକ୍ତି—15. Appointment; engagement; employment. ୧୬। ଉପାୟ—16 Means; expedient. ୧୭। ଫିକର—17. Plan; contrivance. ୧୮। ରଚନା; ବ୍ୟବସ୍ଥାନ—18. Arrangement. ୧୯। କାଳ, ସ୍ଥାନାଦିର ବର୍ଣ୍ଣନା ବା ଉଲ୍ଲେଖ—19. Specification or enumeration of circumstances (e.g. time, place) (Apte). ୨୦। ଧାତୁରେ ଖାଦ ମିଶାଇବା—20. Alloying of metals (Apte). ୨୧। ମନ୍ତ୍ରଯନ୍ତ୍ର; ଗୁଣି—21. Charm; spell (Apte). ୨୨। ପ୍ରୟୋଗ, ବ୍ୟବହାର—22. Application; use (Apte). ୨୩। ଅଦାଲତରେ ସାକ୍ଷୀମାନଙ୍କ ପ୍ରଦତ୍ତ ବିବରଣର ସତ୍ୟାସତ୍ୟ ବିଚାର—23 Adjudication about the truth or falsity of the evidence of a witness. ୨୪। ମକଦ୍ଦମାରେ ପ୍ରମାଣ ଗୃହୀତ ହେବା ପରେ ଉଭୟ ପକ୍ଷଙ୍କ ବାଦାନୁବାଦ—24. Argument in a case.

**ଯୁକ୍ତିକର**—ସ. ବିଣ—୧। ଉପଯୋଗୀ—1. Fit; suitable; proper (Apte). ୨। ପ୍ରମାଣିତ—2. Proved (Apte).
Juktikara

**ଯୁକ୍ତି କରିବା**—ଦେ. କ୍ରି—ବାଦାନୁବାଦ କରିବା; ତର୍କ କରିବା—To argue.
Jukti kariba
ଯୁକ୍তି করা युक्ति करना

**ଯୁକ୍ତି ଖଟା(ଟେ)ଇବା**—ଦେ. କ୍ରି—କୌଣସି ବିଷୟର ମୀମାଂସାର୍ଥ ତର୍କ ପ୍ରୟୋଗ କରିବା—To employ reasoning or logic in deciding a matter.
Jukti khaṭā(ṭe)ibā
যুক্তি খাটান युक्ति जुटाना
(ଯୁକ୍ତି ଖଟିବା—ବିଶେଷ୍ୟ ରୂପ)

**ଯୁକ୍ତିତଃ**—ସ. କ୍ରି. ବିଣ. (ଯୁକ୍ତି+ତସ୍)—୧। କୌଶଳକ୍ରମେ—1. Cleverly. ୨। ସମୁଚିତରୂପେ—2. Duly; properly. ୩। ଯୁକ୍ତି ଦ୍ୱାରା—3 By argument; logically.
Juktitah

**ଯୁକ୍ତି ତର୍କ**—ସ. ବି. (ସହଚର ଶବ୍ଦ)—୧। ଯୁକ୍ତି ଓ ତର୍କ—1. Reason and logic; logic and argument. ୨। ବାଦାନୁବାଦ—2. Argument.
Jukti tarka

**ଯୁକ୍ତିଦାତା**—ଦେ. ବିଣ. ପୁଂ—ପରାମର୍ଶଦାତା; ମନ୍ତ୍ରଣାଦାତା—Counsellor; advisor.
Juktidātā
(ଯୁକ୍ତିଦାତ୍ରୀ—ସ୍ତ୍ରୀ) যুক্তিদাতা विचारदेनेवाला

**ଯୁକ୍ତି ଦେବା**—ଦେ. କ୍ରି—କୌଣସି ପ୍ରଶ୍ନର ମୀମାଂସା ପାଇଁ ଯୁକ୍ତିଯୁକ୍ତ ଉତ୍ତର ଦେବା—To give a reasonable solution or argument to a question.
Jukti debā
विचारदेना

**ଯୁକ୍ତି ବିହୀନ**—ସ. ବିଣ (ଷଷ୍ଠୀ ତତ୍)—ଯୁକ୍ତିଶୂନ୍ୟ (ଦେଖ) Juktiśūnya (See)
Jukti bihīna

**ଯୁକ୍ତିମାନ୍**—ସ. ବିଣ. ପୁଂ (ଯୁକ୍ତି+ମତ୍)—୧। ଚତୁର—1. Clever. ୨। ଉପାୟ ଉଦ୍ଭାବନରେ ଦକ୍ଷ—2. Fertile in finding out expedients; inventive. ୩। ଯୁକ୍ତି ଉପରେ ପ୍ରତିଷ୍ଠିତ—3. Logical; based on arguments. ୪। ସଂଯୁକ୍ତ—4. United; joined (Apte)
Juktimān
(ଯୁକ୍ତିମତୀ—ସ୍ତ୍ରୀ)
(ଯୁକ୍ତିମତ୍—କ୍ଲୀ)

**ଯୁକ୍ତି ମାର୍ଗ**—ସ. ବି (ରୂପକ; ଯୁକ୍ତି+ମାର୍ଗ)—୧। ଯୁକ୍ତିରୂପ ପନ୍ଥା—1. Logical argument or reasoning compared to a road. ୨। ନ୍ୟାୟମାର୍ଗ—2. Righteousness; the path of righteousness.
Jukti mārga

**ଯୁକ୍ତି ମାର୍ଗାନୁସାରୀ**—ସ. ବିଣ. ପୁଂ (ରୂପକ ଓ ଉପପଦ ସମାସ)—୧। ଯୌକ୍ତିକ; ନ୍ୟାୟାନୁଗତ—1 Logical; reasonable; just. ୨। ନ୍ୟାୟମାର୍ଗାବଲମ୍ବୀ—2. Righteous; pursuing a just or reasonable course.
Jukti mārgānusārī
(ଯୁକ୍ତି ମାର୍ଗାନୁସାରିଣୀ—ସ୍ତ୍ରୀ)

**ଯୁକ୍ତି ଯୁକ୍ତ**—ସ. ବିଣ (ତୃତୀୟା ତତ୍; ଯୁକ୍ତି+ଯୁକ୍ତ)—୧। ଯୌକ୍ତିକ; ନ୍ୟାଯ୍ୟ; ନ୍ୟାୟାନୁମୋଦିତ—1. Reasonable; logical. ୨। କୌଶଳୀ—2. Skilful; expert (Apte). ୩। ପ୍ରମାଣିତ—3 Proved, established (Apte); ୪। ଯୁକ୍ତିରେ ପ୍ରମାଣ—4 Argumentative (Apte).
Jukti jukta
ଯୁକ୍ତିସଂଗତ } ଅନ୍ୟରୂପ
ଯୁକ୍ତିସମ୍ମତ

**ଯୁକ୍ତିଶୂନ୍ୟ**—ସ. ବିଣ (ଷଷ୍ଠୀ ତତ୍)—ଯୁକ୍ତିହୀନ (ଦେଖ)—Juktihīna (See)
Jukti śūnya
(ଯୁକ୍ତିରହିତ, ଯୁକ୍ତିବର୍ଜିତ—ଅନ୍ୟରୂପ)

**ଯୁକ୍ତିସିଦ୍ଧ**—ସ. ବିଣ (ତୃତୀୟା ତତ୍)—୧। ଯୁକ୍ତିଦ୍ୱାରା ନିଶ୍ଚିତ—1. Deduced by reasoning. ୨। ମନ୍ତ୍ରଣାଦ୍ୱାରା ନିଶ୍ଚିତ—2. Arrived at after due consultation. ୩। ଯୁକ୍ତି ଉପରେ ପ୍ରତିଷ୍ଠିତ—3 Based on reason reasonable.
Jukti siddha

**ଯୁକ୍ତିହୀନ**—ସ. ବିଣ (ଷଷ୍ଠୀ ତତ୍)—୧। ଅଯୌକ୍ତିକ; ଯାହା ଯୁକ୍ତି ସିଦ୍ଧ ନୁହେଁ—1. Unreasonable; not supported by reason. ୨। ଅନ୍ୟାଯ୍ୟ—2. Illogical; unjust. ୩। ନାଯ୍ୟହେତୁବିହୀନ—3.
Jukti hīna

Without reasonable cause. ୪ । ସଂଯୋଗ ବା ସମ୍ପର୍କବିହୀନ — 4. Unconnected.

**ଯୁକ୍ତିହୀନ ବିଚାର**—ସଂ. ବି—ଅଶାସ୍ତ୍ରୀୟ ସିଦ୍ଧାନ୍ତ; ଅନ୍ୟାଯ୍ୟ ମୀମାଂସା
Juktihina bichāra —Unreasonable conclusion; conclusion not supported by logic; illogical decision

**ଯୁଜ୍ (ଧାତୁ)**—ସଂ—ବର୍ଜନ କରିବା—
Jug (root) To abandon.

**ଯୁଗ**—ସଂ. ବି ( ଯୁ ଧାତୁ=ମିଳନ କରିବା + କର୍ତ୍ତୃ. ଗ )—୧ ।
Juga ଯୁଆଳି, ଧୂର୍ଯ୍ୟସ୍କନ୍ଧଗତ ଯାନାଙ୍ଗ; ହଳର ବା ଶଗଡ଼ର ଯେଉଁ ଅଂଶ ପଶୁଙ୍କ କାନ୍ଧ ଉପରେ ରହେ—1. Yoke. ୨ । ( ଏହା ବିଶେଷ୍ୟ ପରେ ବ୍ୟବହୃତ ଯଥା—ଅଶ୍ୱଯୁଗ ) ଯୁଗ୍ମ; ଯୋଡ଼ା; ଯୁଗଳ—2. Pair; couple; two [ ଉ—ଉଦ୍ଭବ ଭବ ବାରି ନିଃସରିବ ଗୃହ ପଦ୍ମରେ ନୟନ-ଯୁଗୁଁ । କବିସୂର୍ଯ୍ୟ. ବିଶୋସିଂହଣ୍ଡୁ ଚ. ଗୀତ । ] ୩ । ଦ୍ୱାଦଶ ବର୍ଷକାଳ—3. A period of 12 years. ୪ । ପଞ୍ଚବର୍ଷ ପରିମିତ କାଳ—4. A period of 5 years. ୫ । ଋଦ୍ଧି ନାମକ ଔଷଧ—5. Name of a rare drug. ୬। ଏକ ଧନୁ ପରିମାଣ; ଚାରିହାତ ଲମ୍ବ ପରିମାଣ—6. A length of 4 cubits. ୭ । ବହୁବର୍ଷ—7. A long period of years ( Apte ). ୮ । ଅମଳ; ଜୀବନକାଳ—8. Generation; life (Apte). ୯ । ଚାରି ସଂଖ୍ୟା—9. The number four (Apte). ୧୦ । ଦ୍ୱାଦଶ ସଂଖ୍ୟା—10. The number twelve ( Apte ) ୧୧ । ( ହିନ୍ଦୁଶାସ୍ତ୍ର ) ସତ୍ୟ, ତ୍ରେତା, ଦ୍ୱାପର, କଳି ଏହି ଚାରିକାଳ—11. The four ages of Hindu mythology.

[ଦ୍ର—ହିନ୍ଦୁଶାସ୍ତ୍ରକାରମାନେ କାଳକୁ ଚାରି ଯୁଗରେ ବିଭକ୍ତ କରିଅଛନ୍ତି ।—୧ । ସତ୍ୟଯୁଗ ବା କୃତଯୁଗର ପରିମାଣ ଦେବତାଙ୍କର ୪୮୦୦ ବର୍ଷ=ମନୁଷ୍ୟର ୪୮୦୦ × ୩୬୦ =୧୭,୨୮୦୦୦ ବର୍ଷ—୨ । ତ୍ରେତାଯୁଗ—ଦେବତାଙ୍କର ୩୬୦୦ ବର୍ଷ=ମନୁଷ୍ୟର ୩୬୦୦ × ୩୬୦= ୧୨,୯୬୦୦୦ ବର୍ଷ—୩ । ଦ୍ୱାପରଯୁଗ—ଦେବତାଙ୍କର ୨୪୦୦ବର୍ଷ=ମନୁଷ୍ୟର ୨୪୦୦ × ୩୬୦=୮,୬୪୦୦୦ ବର୍ଷ—୪ । କଳିଯୁଗ—ଦେବତାଙ୍କର ୧୨୦୦ ବର୍ଷ= ମନୁଷ୍ୟର ୧୨୦୦×୩୬୦=୪,୩୨୦୦୦ ବର୍ଷ । ଚତୁର୍ଯୁଗର ମୋଟ ପରିମାଣ=୪୩,୨୦୦୦୦ ବର୍ଷ ଅର୍ଥାତ୍ ୪୩ ଲକ୍ଷ ୨୦ ହଜାର ବର୍ଷ । ଏହାକୁ ମହାଯୁଗ ବୋଲାଯାଏ । ଏଥିରୁ ଦେଖା ଯାଉଅଛି ଯେ ସତ୍ୟ, ତ୍ରେତା, ଦ୍ୱାପର ଓ କଳିଯୁଗର ଅନୁପାତ ଯଥାକ୍ରମେ ୪-୩-୨-୧ । ପ୍ରଥମେ ସତ୍ୟଯୁଗରେ ବ୍ରହ୍ମା ଭୂତସମସ୍ତର ସୃଷ୍ଟି କରନ୍ତି ଓ ଶେଷରେ ରୁଦ୍ର କଳିଯୁଗରେ ସମସ୍ତ ସୃଷ୍ଟିର ବିଲୟ ସାଧନ କରନ୍ତି । ପ୍ରତ୍ୟେକ ଯୁଗର ପରିମାଣର ୧୦/୧୨=ଯୁଗ କାଳ, ୧/୧୨ ଯୁଗ ସନ୍ଧ୍ୟା ଓ ୧/୧୨ ଯୁଗସନ୍ଧ୍ୟାଂଶ । ଯଥା କଳିଯୁଗ ଯୁଗକାଳ—ଦେବତାଙ୍କର ୧୦୦୦ ବର୍ଷ. ଯୁଗସନ୍ଧ୍ୟା ୧୦୦ ବର୍ଷ. ଯୁଗସନ୍ଧ୍ୟାଂଶ ୧୦୦ ବର୍ଷ=୧୨୦୦ ଦେବ ବର୍ଷ=୪୩୨୦୦୦ ମନୁଷ୍ୟ ବର୍ଷ । ଚାରିଯୁଗ ଶେଷରେ ଖଣ୍ଡ ପ୍ରଳୟ ଘଟେ । ଚାରିଯୁଗ କାଳକୁ ମହାଯୁଗ ବୋଲାଯାଏ । ୭୧ଟି ମହାଯୁଗ ହେଲେ ଗୋଟିଏ ମନ୍ୱନ୍ତର ହୁଏ । ମନ୍ୱନ୍ତରର ଶେଷରେ ଗୋଟିଏ ମହାପ୍ରଳୟ ହୁଏ । ୧୦୦୦ଟି ମହାଯୁଗ ହେଲେ ଗୋଟିଏ କଳ୍ପ ହୁଏ, ଅର୍ଥାତ୍ ଆମ୍ଭମାନଙ୍କର ୪୩୨୦୦୦୦୦୦୦ ବା ୪୩୨ କୋଟି ବର୍ଷରେ ।

ଗୋଟିଏ କଳ୍ପ ହେଲେ ବ୍ରହ୍ମାଙ୍କର ୧ ଦିନ ହୁଏ ଓ ଗୋଟିଏ କଳ୍ପ ହେଲେ ଏକ ରାତ୍ରି ହୁଏ । ଅର୍ଥାତ୍ ୧୦୦୦ ମହାଯୁଗ ବା ୪୩୨ କୋଟି ବର୍ଷ ବ୍ରହ୍ମାଙ୍କର ୧ ରାତ୍ରି । କଳ୍ପ ଶେଷରେ ବ୍ରହ୍ମା ସୃଷ୍ଟି ସଂହାର କରି ନିଦ୍ରା ଯାଆନ୍ତି ଓ ସେ ସମୟରେ ସମସ୍ତ ଅନ୍ଧକାରମୟ ଥାଏ । ରାତ୍ରି ଶେଷ ହେଲେ ବ୍ରହ୍ମାଙ୍କର ନିଦ୍ରା ଭଙ୍ଗ ହୁଏ ଓ ସେ ପୁଣି ସୃଷ୍ଟି ଆରମ୍ଭ କରନ୍ତି । ଏହିପରି କଳ୍ପକଳ୍ପବ୍ୟାପୀ ସୃଷ୍ଟିସ୍ଥିତିପ୍ରଳୟ କ୍ରିୟା ଲାଗିଅଛି ।

ହିନ୍ଦୁଶାସ୍ତ୍ର ମତରେ—

୧ । ସତ୍ୟଯୁଗର ଉତ୍ପତ୍ତି, ଧର୍ମ ଓ ବିବରଣ ଃ—ଉତ୍ପତ୍ତି, ବୈଶାଖ ଶୁକ୍ଳ ତୃତୀୟା ବା ଅକ୍ଷୟ ତୃତୀୟା, ରବିବାର । ପରିମାଣ—୧୭ ଲକ୍ଷ ୨୮ ହଜାର ବର୍ଷ । ସତ୍ୟଯୁଗରେ ବିଷ୍ଣୁଙ୍କର ଅବତାର—ମତ୍ସ୍ୟ, କୂର୍ମ, ବରାହ, ନୃସିଂହ ( ମତାନ୍ତରରେ ବାମନ ସତ୍ୟଯୁଗର ଅବତାର ) । ଏ ସମୟରେ ୬ ଜଣ ଚକ୍ରବର୍ତ୍ତୀ ରାଜତ୍ୱ କରିଥିଲେ, ଯଥା— ବଳି, ବେଣୁ, ମାନ୍ଧାତା, ପୁରୁରବା, ଧୁନ୍ଧୁମାର (ମାଦଳା ପାଞ୍ଜିରେ ଜାନୁଘଣ୍ଟ) ଓ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ । ଏ ଯୁଗରେ ପୁଣ୍ୟ ଚତୁଷ୍ପାଦ, ପାପ ନାସ୍ତି, ମନୁଷ୍ୟଙ୍କ ପରମାୟୁ ୧ ଲକ୍ଷ ବର୍ଷ; ମାନବ ଦେହର ଉଚ୍ଚତା ୨୧ ହାତ; ମଜ୍ଜାଗତ ପ୍ରାଣ ଓ ଇଚ୍ଛା ମୃତ୍ୟୁ; ବ୍ୟବହାରପାତ୍ର ସୁବର୍ଣ୍ଣ, ସାମବେଦର ଅଧିକାର; ତୀର୍ଥ ପୁଷ୍କର, ମନୁଷ୍ୟର କର୍ତ୍ତବ୍ୟ ଭକ୍ତି । ତାରକ ବ୍ରହ୍ମନାମ-
ନାରାୟଣପରା ବେଦାଃ, ନାରାୟଣପରାକ୍ଷରାଃ
ନାରାୟଣପରା ମୁକ୍ତି ନାରାୟଣପରା ଗତିଃ ।
ଶାସ୍ତ୍ରୋକ୍ତ ସତ୍ୟଯୁଗର ଲକ୍ଷଣ—

ନିତ୍ୟଧର୍ମରତ, ତୀର୍ଥାଶ୍ରୟୀ ଓ ସତ୍ୟପରାୟଣତା ଯୋଗୁଁ ମନୁଷ୍ୟମାନେ ଦେବତାମାନଙ୍କୁ ସୁଦ୍ଧା ନିନ୍ଦା କରନ୍ତି ।

୨ । ତ୍ରେତାଯୁଗ—ଉତ୍ପତ୍ତି, କାର୍ତ୍ତିକ ଶୁକ୍ଳପକ୍ଷ ନବମୀ=ଅଁଳା ନବମୀ, ସୋମବାର ।

ପରିମାଣ—୧୨ ଲକ୍ଷ ୯୬ ହଜାର ବର୍ଷ ।

ଅବତାର—ବାମନ, ପରଶୁରାମ, ଶ୍ରୀରାମ (ମତାନ୍ତରରେ ବାମନ ତ୍ରେତାଯୁଗର ଅବତାର ନୁହନ୍ତି) ।

ଚକ୍ରବର୍ତ୍ତୀ—ସୂର୍ଯ୍ୟବଂଶୀୟ ରାଜଗଣ ।

ପୁଣ୍ୟ ତ୍ରିପାଦ, ପାପ ଏକ ପାଦ, ମନୁଷ୍ୟଙ୍କ ପରମାୟୁ ଦଶ ହଜାର ବର୍ଷ, ମାନବଦେହର ଉଚ୍ଚତା ୧୪ ହାତ, ପ୍ରାଣ— ଅସ୍ଥିଗତ; ପାତ୍ର—ରୌପ୍ୟ; ବେଦ—ଋଗ୍ବେଦ; ତୀର୍ଥ— ନୈମିଷାରଣ୍ୟ; ମନୁଷ୍ୟର କର୍ତ୍ତବ୍ୟ ଜ୍ଞାନ ।

ତାରକ ବ୍ରହ୍ମନାମ—

ରାମ ନାରାୟଣାନନ୍ତ ମୁକୁନ୍ଦ ମଧୁସୂଦନ ।
କୃଷ୍ଣ କେଶବ କଂସାରେ ହରେ ବୈକୁଣ୍ଠ ବାମନ ।

ତ୍ରେତାଯୁଗର ଶାସ୍ତ୍ରୋକ୍ତ ଲକ୍ଷଣ—

ଲୋକମାନେ ଦାନ, ଧର୍ମ, ତପସ୍ୟା ଓ ତୀର୍ଥଦର୍ଶନରତ ଏବଂ ରାଜାମାନେ ଯଜ୍ଞଶୀଳ ।

୩ । ଦ୍ୱାପର ଯୁଗ — ଉତ୍ପତ୍ତି— ଭାଦ୍ର କୃଷ୍ଣ ତ୍ରୟୋଦଶୀ ଗୁରୁବାର । ପରମାଣ — ୮ ଲକ୍ଷ ୬୪ ହଜାର ବର୍ଷ ।

ଅବତାର—ଶ୍ରୀକୃଷ୍ଣ, ବୁଦ୍ଧ (ମତାନ୍ତରରେ ବୁଦ୍ଧ ଦ୍ୱାପର ଯୁଗର ଅବତାର ନୁହନ୍ତି) ।

ପୁଣ୍ୟ ଦୁଇ ପାଦ, ପାପ ଦୁଇ ପାଦ;
ଚକ୍ରବର୍ତ୍ତୀ—ଶାଲ୍ୱ,ବିରାଟାଦିଙ୍କଠାରୁ,କଂସପର୍ଯ୍ୟନ୍ତ୧୬ଜଣ,
ମନୁଷ୍ୟର ପରମାୟୁ—ଏକ ହଜାର ବର୍ଷ;
ମାନବଦେହର ଉଚ୍ଚତା - ୭ ହାତ;
ପ୍ରାଣ—ରୁଧିରଗତ, ପାତ୍ର—ତାମ୍ର;
ବେଦ—ଯଜୁର୍ବେଦ, ତୀର୍ଥ— କୁରୁକ୍ଷେତ୍ର;
କର୍ତ୍ତବ୍ୟ—ଯଜ୍ଞ ।

ତାରକ ବ୍ରହ୍ମ ନାମ—

ହରେ ମୁରାରେ ମଧୁକୈଟଭାରେ, ଗୋବିନ୍ଦ ଗୋପାଳ
ମୁକୁନ୍ଦ ଶୌରେ ।
ଯଜ୍ଞେଶ ନାରାୟଣ କୃଷ୍ଣବିଷ୍ଣୋ; ନିରାଶ୍ରୟଂ ମାଂ ଜଗଦୀଶ ରକ୍ଷ ।

ଦ୍ୱାପର ଯୁଗର ଶାସ୍ତ୍ରୋକ୍ତ ଲକ୍ଷଣ—

ଲୋକମାନେ ଧର୍ମାଧର୍ମରତ, ପ୍ରଳାପୀ ଓ ଚପଳ ।
ରାଜା —ଜ୍ଞାନଭ୍ରଷ୍ଟ ଓ କପଟବାକ୍ ।

୪ । କଳିଯୁଗ- ଉତ୍ପତ୍ତି—ମାଘ ପୂର୍ଣ୍ଣିମା ଶୁକ୍ରବାର । ପରମାଣ ୪ ଲକ୍ଷ ୩୨ ହଜାର ବର୍ଷ । ପୁଣ୍ୟ—୧ ପାଦ, ପାପ—ତ୍ରିପାଦ; ଅବତାର—କଳିଯୁଗର ଶେଷ, ଅର୍ଥାତ୍ ପୁଣି ସତ୍ୟଯୁଗର ଆରମ୍ଭ ହେବା ସମୟରେ କଳ୍କି ଅବତାର ଆବିର୍ଭୂତ ହେବେ । (ମତାନ୍ତରରେ ବୁଦ୍ଧ କଳିଯୁଗର ଅବତାର)

ଚକ୍ରବର୍ତ୍ତୀ—ପ୍ରଥମେ ଯୁଧିଷ୍ଠିରାଦି ୧୨୦ ଜଣ ହିନ୍ଦୁ ରାଜା ୩୬୯୫ ବର୍ଷ ଓ ତତ୍ପରେ ସାହା, ସୁଲତାନାଦି ୨୧ ଜଣ ଯବନ ରାଜା ୧୬୪୪ ବର୍ଷ ରାଜତ୍ୱ କଲେ । ତତ୍ପରେ ଆଜି ପର୍ଯ୍ୟନ୍ତ ଇଂଲଣ୍ଡ ଦେଶୀୟ ରାଜାମାନେ ରାଜତ୍ୱ କରୁଅଛନ୍ତି ।

ମନୁଷ୍ୟର ପରମାୟୁ—୧୨୦ ବର୍ଷ, ଉଚ୍ଚତା ୩୪ ହାତ । ପ୍ରାଣ—ଅନ୍ନଗତ; ମନୁଷ୍ୟମାନେ ପାପାନୁରତ ଓ ସ୍ତୈଣ । ପାତ୍ରର ନିର୍ଣ୍ଣୟ ନାହିଁ; ତୀର୍ଥ—ଗଙ୍ଗା; କର୍ତ୍ତବ୍ୟ—ଦାନ ।

ତାରକବ୍ରହ୍ମନାମ—

ହରେକୃଷ୍ଣ ହରେକୃଷ୍ଣ, କୃଷ୍ଣକୃଷ୍ଣ ହରେ ହରେ ।
ହରେରାମ ହରେରାମ, ରାମରାମ ହରେ ହରେ ।

କଳିଯୁଗର ଶାସ୍ତ୍ରବର୍ଣ୍ଣିତ ଲକ୍ଷଣ—

ସଂସାର ଧର୍ମହୀନ, ତପୋବିରହିତ, ସତ୍ୟହୀନ; ଲୋକେ ପାପରତ; ବ୍ରାହ୍ମଣମାନେ ଲୋଭୀ ଓ ମୂର୍ଖ; ନୃପତି ଲୋଭୀ ଓ କପଟୀ; ମନୁଷ୍ୟମାନେ ସ୍ତ୍ରୀବଶ ଓ ପାପାନୁରକ୍ତ । ସ୍ତ୍ରୀମାନେ ଚପଳା, ପୃଥିବୀ ହୀନବୀର୍ଯ୍ୟା ଓ ନିରୌଷଧିରସା ଓ ମନ୍ଦଫଳା । ଦୁର୍ଜନଙ୍କର ପ୍ରଭାବବୃଦ୍ଧି ଓ ସଜ୍ଜନଙ୍କର ଦୁରବସ୍ଥା । (ଅରୁଣୋଦୟ ପ୍ରେସ୍ ପ୍ରକାଶିତ ଖଡ୍ଗଚକ୍ର ପଞ୍ଜିକା)

ଆଧୁନିକ ଗଣନାନୁସାରେ କଳି ଯୁଗର ଆରମ୍ଭକାଳ ଖ୍ରୀଷ୍ଟପୂର୍ବ ୩୧୦୧ ସାଲ । ଅତଏବ ୧୯୩୬ ସାଲ ପର୍ଯ୍ୟନ୍ତ କଳିଯୁଗର ୫୦୩୭ ବର୍ଷ ଭୋଗ ହୋଇଅଛି ଓ ୪ ଲକ୍ଷ ୨୬ ହଜାର ୯୩୬ ବର୍ଷ ବାକି ଅଛି ।

ଘୋର କଳି ଉପସ୍ଥିତ ହେଲେ, ଅର୍ଥାତ୍ ଜଗତକୁ ପାପ ଗ୍ରାସିଲେ ଭଗବାନ୍ କଳ୍କୀ ଅବତାର ଗ୍ରହଣ କରି ପାପିଙ୍କୁ ସଂହାର କରି ଜଗତରେ ସତ୍ୟର ପ୍ରତିଷ୍ଠା କରିବେ ବୋଲି ଶାସ୍ତ୍ରରେ ଲେଖାଅଛି । ଶାସ୍ତ୍ରରେ କଳିଯୁଗର ବିକଟ ଅବସ୍ଥା ଘଟିବାର ଯାହା ବର୍ଣ୍ଣିତ ହୋଇଅଛି ତାହା କ୍ରମେକ୍ରମେ ଘନୀଭୂତ ହେଉଥିବା ଦେଖା ଯାଉଅଛି ।

**ଯୁଗ**
ଯୁଗ୍

ଦେ. ବି—୧ । (ସଂ. ଯୁଗ୍ମ) ପଶାକାଠିରେ ପଡ଼ିବା ଦାନବିଶେଷ; ଯେଉଁ ଦାନରେ ପଶାର ୩ଗୋଟି କାଠିମଧ୍ୟରୁ ୨ଟି (ଯୁଗ୍ମ) କାଠି ଉପରେ ଦେଖାଯିବା ବିନ୍ଦୁ ସଂଖ୍ୟା ସମାନ ହୋଇଥାଏ—1. A throw of the dice resulting in 2 of the dice turning up with the same number of points. [ଦ୍ର— ପଶାଖେଳରେ କେତେଗୁଡ଼ିଏ ଦାନ ଅଛି ଯାହା କି 'ଯୁଗ' ହୋଇପାରେ ନତେତ୍ 'ଯୁଗ' ନ ହୋଇ ମଧ୍ୟ ସେହି ସଂଖ୍ୟାର ସମଷ୍ଟି ହୋଇପାରେ । ଯଥା—

ଯୁଗ ୯ ବା ପଞ୍ଚାଶୁର=(୧ କାଠିରେ) ୨+(୧ କାଠିରେ) ୨+(୧ କାଠିରେ) ୫;

ଯୁଗ ନ ହୋଇ ୯ ବା ଛଅ ଛକି=(୧ କାଠିରେ) ୨+(୧ କାଠିରେ) ୧+(୧ କାଠିରେ) ୬

ଯୁଗ ୧୨ ବା ଦଶଦୁଇ=୫+୫+୨

ଯୁଗ ନ ହୋଇ ୧୨ ବା କଚ୍ଛେ ବାଆର=୬+୫+୧;

ପଶାରେ '୧୦' ଦାନ କେବଳ ଯୁଗରେ ପଡ଼େ (୬+୨+୨); ଯୁଗ ନ ହୋଇ '୧୦' ଦାନ ଘଟି ନ ପାରେ ।

ପଶାର ଗୋଟି କେତେ 'ଯୁଗ' ଦାନର ଡାକ ନାମ ।
ଅଠର—୩ଟି କାଠିରେ ୬ ଲେଖାଏଁ ପଡ଼ିବା;
ସତର—୨ଟି କାଠିରେ ୬ ଲେଖାଏଁ ଓ ଗୋଟିକରେ ୫;
ଷୋହଳ—୨ଟି କାଠିରେ ୫ ଲେଖାଏଁ ଓ ଗୋଟିକରେ ୬;
ପନ୍ଦର—୩ଟି କାଠରେ ୫ ଲେଖାଏଁ;
ଚଉଦ—୨ଟି କାଠିରେ ୬ ଲେଖାଏଁ ଓ ଗୋଟିକରେ ୨;

( ଯୁଗ ) ତେଏର—୨ ହରେ ୬ ଲେଖାଏ ଓ ଗୋଟି-
କରେ ୧; (ଗୋଟିକରେ ୬, ଗୋଟିକରେ ୫ ଓ ଗୋଟି-
କରେ ୨ ପଡ଼ି ୧୩ ହେଲେ ବାହ୍ୟ ଯୁଗ ହେଲା କାହିଁ ।)
( ଯୁଗ ) ବାଆର—ଦୁଇହରେ ୫ ଲେଖାଏଁ ଓ
ଗୋଟିକରେ ୨ ( ଗୋଟିକରେ ୬, ଗୋଟିକରେ ୫ ଓ
ଗୋଟିକରେ ୧ ପଡ଼ି ୧୨ ହେଲେ ଯୁଗ ହେଲା କାହିଁ । )
ଏଗାର—ଦୁଇହରେ ୫ ଲେଖାଏଁ ଓ ଗୋଟିକରେ ୧;
ଦଶ—ଦୁଇହରେ ୪ ଲେଖାଏଁ ଓ ଗୋଟିକରେ ୨;
ନଅ—ଦୁଇହରେ ୨ ଲେଖାଏଁ ଓ ଗୋଟିକରେ ୫; ବା
ଗୋଟିକରେ ୨, ଗୋଟିକରେ ୧, ଗୋଟିକରେ ୬;
ଆଠ—ଦୁଇହରେ ୧ ଲେଖାଏଁ ଓ ଗୋଟିକରେ ୬;
କମ୍ବା ଗୋଟିକରେ ୨, ଗୋଟିକରେ ୧ ଓ ଗୋଟିକରେ ୫;
ସାତ—ଦୁଇହରେ ୧ ଲେଖାଏଁ ଗୋଟିକରେ ୫
ଛଅ—( ଛ କଡ଼ା ) ବା ୩ହରେ ୨ ଲେଖାଏଁ;
ପାଞ୍ଚ—ଦୁଇହରେ ୨ ଲେଖାଏଁ ଗୋଟିକରେ ୧ (ପଞ୍ଚଡ଼)
ଗୁର—ଦୁଇହରେ ୧ ଲେଖାଏଁ ଗୋଟିକରେ ୨
(ଗୁର ଦାନା )
ତିନି—୩ହରେ ୧ ଲେଖାଏଁ ( ତିନି ଦାନା ) ]
୨ । ( ସଂ. ଯୋଗ ) ମିଳନ—2 Mixing. [ ଉ
—ବାସରେ ଯୁଗ କରଇ ବିଚ୍ଛୁର, ବାସରେ ଯୁଗ ନୋହୁ
ପଞ୍ଚଶର; ବନାଶିଲେ ପୁନ, ବନା ଗଢରେ ତ ଗଲ୍ପ ଜୀବନ ।
ଉଞ୍ଜ. ବୈଦେହୀଶବିଳାସ । ] ବଣ ( ସଂ. ଯୁଗ୍ମ ) ଦୁଇ
—Two. [ ଉ ଉଚ୍ଛୋଳ ଯୁଗ ତଡ଼ାଗ ଆକାର,
ବାମ ଦକ୍ଷିଣ ପାର୍ଶ୍ୱ ମନୋହର । ପ୍ରାଚୀ. ରସତାଳ୍ପ । ]
ପ୍ରାଦେ ( ମେଦିନୀପୁର ) ବି ( ସଂ. ଯୁଗରଜ୍ଜୁ )—ଯୋତ
ଦଉଡ଼ି-Ropes for tying beasts to the yoke.

**ଯୁଗ ଆସି ଲ୍‌ଥାରେ ପଶିଲାଣି** – ଦେ. ବାକ୍ୟ—ସଂସାରକୁ ଅଧ୍ର ଅଧର୍ମ ଓ
Juga āsi latāre pasilāni ଘୋର ପାପ ଗ୍ରାସ କଲାଣି —
(ଯୁଗ ଲଥାରେ ପଶିଲାଣି—ଅନ୍ୟରୂପ) Sin and impiety
have dominated the earth, the times
are out of joint.

**ଯୁଗ କାଷ୍ଠ**—ସଂ. ବି (ମ.ଘ.ଲୋ)—ଯୁଆଳ—
Juga kāshtha Yoke.

**ଯୁଗକୀଳକ**—ସଂ. ବି—ବଳଦଙ୍କ କାନ୍ଧକୁ ଯୁଆଳରେ ଅଟକାଇ ରଖିବା
Juga kilaka ପାଇଁ ଯୁଆଳ ଅଗରେ ବ୍ୟବହୃତ ଖିଲ ବା କାଲା
—The pins attached to the ends of the
yoke. [ ଦ୍ର—ଶଗଡ଼ର ଯୁଆଳରେ ଲାଗିଥିବା କାଲାକୁ
ବାଲୁଲ୍ ଓ ଲଙ୍ଗଳର ଯୁଆଳରେ ଲାଗିଥିବା କାଲାକୁ ଶୋଉଲ
ବା ଶଇଲ କହନ୍ତି । ଶଗଡ଼ର ବାଲୁଲ୍ ଉପରଆଡ଼୍‌
ବଅଯାଏ ଓ କୁଟୁଳା ଥାଏ । ଲଙ୍ଗଳର ଶୋଉଲ ତଳଆଡ଼୍‌
ଦୃଢ଼ରୂପେ ଯୁଆଳ ଅଗରେ ସଲଗ୍ନ କରାଯାଇ ଥାଏ । ]

**ଯୁଗକୁ ଯୁଗ**—ଦେ. କ୍ରି – ବହୁଯୁଗ ପାଇଁ; ଯୁଗେ ଯୁଗେ; ପ୍ରତି ଯୁଗରେ
Jugaku juga —For ages. [ଉ—ଯୁଗକୁ ଯୁଗ
ଯୁଗକେଯୁଗ ଏହିଁ ମତେ, ପରମାନନ୍ଦ ଏ ଜଗତେ । ଜଗନ୍ନାଥ.
ଯୁଗକୈଯୁଗ ଭାଗବତ । ]

**ଯୁଗ କ୍ଷୟ**—ସଂ ବି (ଷଷ୍ଠୀ ତତ୍) —ଯୁଗାନ୍ତ ( ଦେଖ )
Juga kshaya Juganta ( See )

**ଯୁଗତ**—ଗ୍ରା. ବଣ ( ସଂ. ଯୁକ୍ତ ) — ୧ । ଯୁକ୍ତ ( ଦେଖ )—1. Jukta
Jugata ( See ). ୨ । ଦୈବବଶେ ଘଟୁଥିବା—2.
ଯୁକତ Happening by chance. [ ଉ—ଉତ୍ଥାନ
ଯୁକତ ଏକାଦଶୀ ବ୍ରତ, ସେଦିନ ହୋଇଛି ଯୁଗତ । ଭୂପତି.
ପ୍ରେମପଞ୍ଚାମୃତ । ] ଦେ. କ୍ରି. ବଣ—୧ । ଯୁଗତେ,
ଘଟନାକ୍ରମେ; ଦୈବବଶେ—1 By chance. ୨ ।
ନିଶ୍ଚୟ—୨. Certainly. [ ଉ—ଆମ୍ଭେ ବୋଇଲୁ
ଶୁଣ ମାତ, ଧର୍ମ ସେ ଲଙ୍ଘିଲେ ଯୁଗତ । ଯଶୋବନ୍ତ.
ପ୍ରେମଭକ୍ତି ଗୀତା । ]

**ଯୁଗ(ଗୁ)ତି**—ଗ୍ରା. ବି ( ସଂ. ଯୁକ୍ତି )—୧ । ଯୁକ୍ତି ( ଦେଖ )—
Juga(gu)ti 1. Jukti ( See ) ( ଉ—କରମ ବନା
ଯୁକତି ନାହିଁ ହେଉଛୁ ପ୍ରାପତି, କରଇ ନୃପବର ଏଥିକି ଯୁଗତି ।
ଯୁକ୍ତାତି କୃଷ୍ଣସିଂହ. ମହାଭାରତ. ବନ । ) ୨ । ନ୍ୟାୟ—
2. Justice

**ଯୁଗତେ**—ଗ୍ରା. କ୍ରି.ବଣ (ସଂ. ଯୁକ୍ତିତଃ)— ୧ । ନ୍ୟାୟତଃ—1. Justly,
Jugate legally. ୨ । ଯୁକ୍ତିବଶେ—2. Reasonably;
ଯୁକତେ in reason. ୩ । ଘଟଣାବଶରେ; କାର୍ଯ୍ୟକ୍ରମେ—
ଯୁଗତେ 3. In due course; in due order of things,
in the course of events. ୪ । ଦୈବବଶେ—
4. By chance. ୫ । ଉପଯୁକ୍ତରୂପେ – 5. Fitting-
ly; adequately. ( ଉ—ଜଗତେ ଯୁଗତେ ପ୍ରାକୃତ
ଆଗତେ ପ୍ରକଟ ହୁଅଇ ସେ ଖେଳ । ଉଞ୍ଜ. କୋଟିବ୍ରହ୍ମାଣ୍ଡ
ସୁନ୍ଦରୀ । ) ୬ । ବିଧିରେ; ଶାସ୍ତ୍ର ଅନୁସାରେ—
6. Reasonably; duly. (ଉ – ଯୁଗତେ ଏ ନାରୀ
ଭାରିଯା ଆମ୍ଭର ବିଭା ହୋଇଅଛୁ ଆମ୍ଭେ । ଧର୍ମପୁରାଣ ।) ୭ ।
ପ୍ରକୃତରେ—7. Really. (ଉ— ନିର୍ଲେପ ଯୋଗୀ ସେ
ଯୁଗତେ, ସଂଶୟ ନାହିଁ ମୋର ଚିତ୍ତେ । ଜଗନ୍ନାଥ.
ଭାଗବତ । ]

**ଯୁଗ ଧର୍ମ** – ସ. ବି (ମ. ପ. ଲୋ; ଯୁଗୋଚିତ ଧର୍ମ )—୧ । ଯୁଗ ଲକ୍ଷଣ
Juga dharma (ଦେଖ)—Juga lakshana (See). ୨ ।
ଯୁଗୋଚିତ ଧର୍ମ; ଭିନ୍ନଭିନ୍ନ ଯୁଗରେ କରଣୀୟ ଧର୍ମ—
2. The spirit of the age; the special
conditions or duties or pursuits pres-
cribed for each 'Juga'; duties peculiar
to a particular age of the world. ଦେ. ବି
—ସ୍ୱର୍ଗୀୟ ରାମଶଙ୍କର ରାୟଙ୍କ କୃତ ଓଡ଼ିଆ ନାଟକର ନାମ—
The name of an Oriya drama by the late
Rāmasankara Rāya

**ଯୁଗନ୍ଧର**— ସ. ବି (ଉପପଦ ତତ୍ପୁରୁଷ, ଯୁଗଂ=ଯୁଗକୁ+ ଧୃ ଧାତୁ=
Jugandhara ଧାରଣ କରିବା+ କର୍ତ୍ତୃ. ଅ; ଯୁଗ ବା ଯୁଆଳକୁ
ଯେ ଧାରଣ କରେ)—୧ । ଯୁଆଳରେ ସଲଗ୍ନ ଥିବା
ଶକଟର ବା ଲଙ୍ଗଳାଦିର ଦଣ୍ଡ; ଧୁରମୁଣ୍ଡି; କୁବର; ଲଙ୍ଗଳର

ଈଷ—1. The front end of the beam of a cart or plough which is attached to the middle of the yoke. ୨ । ପର୍ବତ ବିଶେଷ—2 Name of a mountain. ୩ । ଗାଡ଼ିର ଦଣ୍ଡ—3 The beam of a carriage; the pole of a carriage. ୪ । (ନାମ) ସାତ୍ୟକିଙ୍କ ପୌତ୍ର (ହି. ଶ)—4. Grandson of Sātyaki

ଯୁଗନ୍ଧରା—ସ. ବି. ସ୍ତ୍ରୀ (ଯୁଗନ୍ଧର+ସ୍ତ୍ରୀ. ଆ)—
Jugandharā Goddess Pārbati

ଯୁଗନ୍ଧରାମ୍ଳ—ସ. ବି (ବୈଦ୍ୟକ)—ପାକଳାଳ ବା ଯୁଅସରୁ ପ୍ରସ୍ତୁତ
Jugandharāmla ଏକପ୍ରକାର କାଞ୍ଜି—Fermented juice of boiled maize-water.

ଯୁଗପ—ସ. ବି (ଯୁଗ+ପା. ଧାତୁ+କର୍ତ୍ତୃ. ଅ)—ଗନ୍ଧର୍ବ (ହି. ଶ)—
Jugapa Gandharba.

ଯୁଗପତ୍—ସ. ଅ (ଯୁଗ=ଯୋଡ଼ା+ପଦ୍. ଧାତୁ=ଗମନ କରିବା+
Jugapat କର୍ତ୍ତୃ. କ୍ୱିପ୍)—ଏକକାଳୀନ; ଏକକାଳରେ; ଏକ ସମୟରେ ଘଟିବା (ଏକାଧିକ ଘଟଣା)—Simultaneously; at one and the same time (more than one thing taking place).

ଯୁଗପତ୍ର—ସ.ବିଶ (ବହୁବ୍ରୀହି)—ଯୁଗ୍ମପର୍ଣ୍ଣବିଶିଷ୍ଟ--Bipinnated. ବି—
Jugapatra ୧ । ଯୁଗ୍ମପର୍ଣ୍ଣ ବୃକ୍ଷ; ଯେଉଁ ଗଛର ପତ୍ରମାନ (ଯୁଗପତ୍ରକ—ଅନ୍ୟରୂପ) ଯୋଡ଼ା ଯୋଡ଼ା ହୋଇ ଅବସ୍ଥିତ—1. Any tree the foliage of which is doubly attached to the stem; a tree with Folium Binatum; bipinnated tree. ୨ । କୋବିଦାର; ରକ୍ତକାଞ୍ଚନ; ନାଲି କାଞ୍ଚନ ବୃକ୍ଷ—2. The mountain ebony tree; Bauhinia Variegata.

ଯୁଗପତ୍ରିକା—ସ. ବି—ଶିଶୁ ଗଛ—
Jugapatrikā The Sisso tree; Dalbergia Sisu.

ଯୁଗ ପାର୍ଶ୍ୱଗ—ସ. ବି. ପୁଂ (ଯୁଗ+ପାର୍ଶ୍ୱ+ଗମ୍. ଧାତୁ+କର୍ତ୍ତୃ. ଅ,
Juga pārswaga ଅନ୍ୟ ସ. ନାମ. ପୃଷ୍ଠବାହ୍)—ଯୁଆଳି ପାଖରେ ବନ୍ଧା ହୋଇ ମଣ କରାଯିବା ବାଛୁରି ବଳଦ; କର୍ଷଣାଦିର ଅଭ୍ୟାସାର୍ଥ ଯୁଆଳିର ପାର୍ଶ୍ୱରେ ଆବଦ୍ଧ ଶକଟାଦି ଜନ୍ତୁ; ଅଭ୍ୟାସାର୍ଥ ଯୁଆଳିର କଡ଼ରେ ବନ୍ଧା ହୋଇଥିବା ତୃତୀୟ ବଳଦ—The third young ox tied to the end of a yoke by a rope in order to be habituated to the drawing of a cart or a plough.

ଯୁଗ ପୁରୁଷ—ସ. ବି (ଆଧୁନିକ ପ୍ରୟୋଗ; ମ. ପ. ଲୋ) - ଯୁଗୋଚିତ
Juga purusha ଭାବକୁ ବା ସଂସ୍କାରକୁ ଯେ ଜନସମାଜରେ ଚଳାଇବା ଲୋକମାନଙ୍କ ମଧ୍ୟରେ ଅଗ୍ରଣୀ—Representative of the age. (ଯଥା—ଲୋକ ଲୋକମାନ୍ୟ, ମହାତ୍ମାଗାନ୍ଧି, ବାଳଗଙ୍ଗାଧର ତିଳକ ଏମାନେ ଯୁଗପୁରୁଷ ବା ଯୁଗପ୍ରବର୍ତ୍ତକ ବୋଲି କଥିତ) ।

ଯୁଗ ପ୍ରବର୍ତ୍ତକ—ସ. ବି ଓ ବିଣ—(ଆଧୁନିକ ପ୍ରୟୋଗ)—ସମାଜରେ ବା
Juga prabartaka ଜାତିରେ ବା ରାଜନୀତିରେ ନୂତନ ଭାବ ଓ ସଂସ୍କାରାଦି ଚଳାଇବା (ବ୍ୟକ୍ତି)—A person who introduces timely reforms in society or politics

ଯୁଗ ବାହୁ—ସ. ବିଣ (ବହୁବ୍ରୀହି)—ଯାହାର ବାହୁ ଲମ୍ବ; ଦୀର୍ଘବାହୁ
Juga bāhu (ହି. ଶ)—Long-armed (Apte)

ଯୁଗ(ଗୁ) ବୁଡ଼(ଡ଼ୁ)—ଦେ. ବି—୧। ଅତ୍ୟନ୍ତ ବିପଦ ବା ଅକାଳ ଅବସ୍ଥା;
Juga(gu)burd(rdu) ଅସମ୍ଭାଳ ଅବସ୍ଥା—1. An un-
ପ୍ରାଣାନ୍ତ ଯୁଗବୁଡ଼ bearable condition; a condition of very trying circumstances. [ଉ—ରଜାଙ୍କୁ ଘାଏ ଘାଏ, ରାଣୀଙ୍କୁ ଯୁଗ ବୁଡ଼ୁ—ଢଗ ।] ୨ । ଯୁଗାନ୍ତ ଖଣ୍ଡ ପ୍ରଳୟ—2. Partial deluge or dissolution overtaking the creation at the end of a cycle of ages.

ଯୁଗ ବୁଡ଼ା—ଦେ ବିଣ. (ଗାଳି)—୧ । ଅତ୍ୟନ୍ତ ଦୁଷ୍ଟ (ବ୍ୟକ୍ତି); ଯେ
Juga burdā ଅନ୍ୟର ସର୍ବନାଶ ଘଟାଏ—1. Ruinous. (ଯୁଗ ବୁଡ଼େଇ—ସ୍ତ୍ରୀ) ୨ । ଅତି ଅନ୍ୟାୟ ବା ପାପଜନକ (କର୍ମ)—
ସର୍ବନେশে 2 Sinful or unrighteous (act). ବି—
যুগবুড়া ଯୁଗ ବୁଡ଼ିବା (ଦେଖ)—Juga burdibā (See)

ଯୁଗ ବୁଡ଼ିବା—ଦେ. ବି—୧ । ଯୁଗାନ୍ତ ଖଣ୍ଡ ପ୍ରଳୟ—1. Partial
Juga burdibā dissolution taking place at the
সর্বনাশ হওয়া end of a cycle of 4 ages. ୨ । ଯୁଗାନ୍ତ-
যুগ ডুবনা 2 The end or evening of a Juga or age. ୩। ସର୍ବନାଶ ଘଟିବା—3. Ruination;

ଯୁଗମ – ଗ୍ରା. (ତଦ୍ଭ) ବି ଓ ବିଣ. (ସ. ଯୁଗ୍ମ)—ଯୁଗ୍ମ ( ଦେଖ )
Jugama Jugma ( See )
युगम যুগম

ଯୁଗ ଯୁଗ—ଦେ.କ୍ରି.ବିଣ—୧। ଯୋଡ଼ ଯୋଡ଼—1. In pairs. [ଉ—
Juga juga ବ୍ରହ୍ମା ଆଶ୍ଚର୍ଯ୍ୟ ବେଢ଼କେ ଯୁଗ ଯୁଗ ହେଲେ । ଉକ୍ଷ.
युगयुग ବୈଦେହୀଶବିଳାସ ।] ୨ । ଯୁଗକାଳ ପାଇଁ—
যুগযুগ 2 For ages.

ଯୁଗ ଯୁଗକୁ—ଦେ. କ୍ରି. ବିଣ—୧ । ବହୁଯୁଗ ପର୍ଯ୍ୟନ୍ତ—1. For a
Juga Jugaku great many years; for ages. [ଯୁଗ(ଗେ)ଯୁଗେ—ଅନ୍ୟରୂପ] ୨ । କାଳ କାଳକୁ; ବହୁକାଳକୁ
युगयुग ଦୂର ଭବିଷ୍ୟତ କାଳ ଯାଏଁ—2. To a long time,
যুগ যুগ upto a distant future. [ଉ—ଯାଉଛୁ ମା ! ମୋତେ ଯୁଗେ ଯୁଗେ ମିଳୁ ତୋ ପଦ ଛଟଣା ଭବେ । ରାଧାନାଥ. ପାର୍ବତୀ ।]

ଯୁଗ ଯୁଗାନ୍ତର—ସ. ବି. ( ଦ୍ୱନ୍ଦ୍ୱ; ଯୁଗ ଓ ଯୁଗାନ୍ତର )—ଏ ଯୁଗ ଓ ଅନ୍ୟ
Juga jugāntara ଯୁଗ; ବହୁଯୁଗ—This and the following ages; many an age.

**ଯୁଗର ଗ(ରୀ)ତି**—ଦେ. ବି—ଯୁଗର ଢଙ୍ଗ; ଯୁଗର ଲକ୍ଷଣ—The
Jugara ga(ri)ti sign of the times; the spirit
যুগের গতি युगकी रिति of the age.
ଯୁଗର ଗଢ଼ଣିଢ଼ } ଅନ୍ୟରୂପ (ଢ଼—ଘୋଡ଼ ଯାଉ ଏ ଯୁଗର
ଯୁଗର ଗାଢ଼ଗଢ଼ } ଗାଢ଼, ଅଜା ଥାଇଁ ଥାଉଁ ମରଇ ନାଇ—ଢଗ।)

**ଯୁଗ ରାଇଜ**—ଦେ. ବି. (ସଂ. ଯୁଗ+ରାଜ୍ୟ)—ବହୁକାଳବ୍ୟାପୀ ରାଜ୍ୟ
Juga rāija ଭୋଗ—Enjoyment of a kingdom
চিরকাল রাজ্য ভোগ युगराज for a long time.
(ଯୁଗ ରାଜ୍ୟ—ଅନ୍ୟରୂପ)

**ଯୁଗ ରାଇଜ କରିବା**—ଦେ. କି. (ଆଶୀର୍ବାଦ)—୧। ବହୁକାଳ ରାଜ୍ୟ
Juga rāija karibā ଭୋଗ କରିବା—1. To reign for
(ଯୁଗ ରାଜ୍ୟ କରିବା—ଅନ୍ୟରୂପ) a long period. ୨।
চিরকাল রাজত্ব করা ବହୁକାଳ ଯୁଗରେ ସଂସାର ଭୋଗ କରିବା—
युगराज करना 2. To enjoy worldly blessings
for a long time ୩। ସୁଖୀ ହୋଇ ଚିରଞ୍ଜୀବୀ
ହେବା—3. To live a long and happy life.
(ଯଥା—ତୁମେ ପୁଅ, ଝିଅ, ନାତି, ନାତୁଣୀ ଘେନି ଯୁଗ
ରାଇଜ କର। ଆଶୀର୍ବାଦ ବଚନ।)

**ଯୁଗଳ**—ସଂ ବିଣ. (ଯୁଗ+ଅଚ୍ଚ ଅର୍ଥରେ. ଲ)—ଯୁଗ୍ମ; ଯୋଡ଼ାଏ—
Jugala A pair of. ବି—ଯୁଗ୍ମ; ଯୋଡ଼ା; ଦ୍ୱୟ; ଦ୍ୱନ୍ଦ୍ୱ;
(ଯୁଗଳୀ—ସ୍ତ୍ରୀ) ମିଥୁନ—Team; couple; pair; brace
[ଦ୍ର—ଏହା ଯଉଷ୍ଠିରପେକ୍ଷୀ ଦ୍ୱିତ୍ୱସଂଖ୍ୟାବାଚକ ଶବ୍ଦ ପରେ
ଯୁକ୍ତ ହୁଏ।-ଯଥା—
ବସ୍ତ୍ର ଯୁଗଳ—ଯୋଡ଼େ ଲୁଗା—A pair of cloths.
ଅଶ୍ୱ ଯୁଗଳ—ଯୋଡ଼ ଘୋଡ଼ା—A team of horses.
ପକ୍ଷି ଯୁଗଳ—ଯୋଡ଼ାଏ ଚଢ଼େଇ—A brace of birds.
ପ୍ରାଣି ଯୁଗଳ—ସ୍ତ୍ରୀ ଓ ପୁରୁଷ ଜୀବଦ୍ୱୟ—A couple of animals
ଗୋ ଯୁଗଳ—ହଳେ ବଳଦ—A team or yoke of oxen
ଦମ୍ପତି ଯୁଗଳ—ସ୍ତ୍ରୀ ସ୍ୱାମୀ ଦୁହେଁ—A couple (husband and wife).
ଚରଣଯୁଗଳ;—ଦୁଇ ଗୋଡ଼; ଜଣକର ବାମ ଓ ଡାହାଣ)
ଗୋଡ଼ one's pair of legs. ଦେ.ବି. ପୁଂ—ଯୁଗଳ-
କଶୋରର ଡାକନାମ—A name for calling
Jugalakisora.[ଢ଼—ଯୋଗୀ ଯୁଗଳ, ଚକ୍ରଧର, ମୂଳକ
ଖଣ୍ଡିକ ବଳି କରୁ—ଢଗ]

**ଯୁଗଳକ**—ସଂ. ବି.—(ଯୁଗଳ+ସ୍ୱାର୍ଥେ. କ)—୧। ଯୁଗଳ (ଦେଖ)
Jugalaka 1. Jugala (See) ୨। ଯୁଗ୍ମକ; ଏକ-
ବାକ୍ୟବିଶିଷ୍ଟ ଦୁଇଟି ଶ୍ଳୋକ--2. A couple of verses
forming one sentence.

**ଯୁଗଳ କଶୋର**—ସଂ ବି.—୧। ଏକତ୍ରାବସ୍ଥିତ ଯୁବକ ଯୁବତୀ ଦ୍ୱୟ—
Jugala kisora 1. A couple consisting of a
young man and woman. ୨। ରାଧାକୃଷ୍ଣଙ୍କର
ଯୁଗଳ ମୂର୍ତ୍ତି—2. The form of Rādhā and
Krushna standing together. ୩। ରାଧାଙ୍କୁ
ଆଲିଙ୍ଗନ କରିଥିବା ଶ୍ରୀକୃଷ୍ଣଙ୍କ ରୂପ—3. The figure
of Srikrushna embracing Rādhā. ଦେ
ବି. ପୁଂ—ଲୋକଙ୍କ ନାମ—A name given to
males.

**ଯୁଗଳ ମନ୍ତ୍ର**—ସଂ. ବି.—ଏକତ୍ରୋଚ୍ଚାରିତ ଦେବତାଯୁଗଳଙ୍କର ମନ୍ତ୍ର—
Jugala mantra A mystic formula in which
the names of 2 Deities are joined together.
[ଦ୍ର—ଏହି ମନ୍ତ୍ର ଲକ୍ଷ୍ମୀନାରାୟଣ, ରାଧାକୃଷ୍ଣ,
ହରଗୌରୀ, ହରିହର, ଲକ୍ଷ୍ମୀନୃସିଂହ, ପ୍ରଭୃତି ଯୁଗଳ-
ମୂର୍ତ୍ତିଙ୍କର ମନ୍ତ୍ର। ଏହିପରି ଯୁଗଳ ଧ୍ୟାନ, ଯୁଗଳୋପାସନା
ହୁଏ।]

**ଯୁଗଳମୂର୍ତ୍ତି**—ସଂ. ବି (କର୍ମଧା; ଯୁଗଳ+ମୂର୍ତ୍ତି)—୧। ଲକ୍ଷ୍ମୀନାରାୟଣ,
Jugala mūrti ଶିବ ପାର୍ବତୀ, ରାଧାକୃଷ୍ଣ, ବା ହରିହରଙ୍କ ମୂର୍ତ୍ତି—
(ଯୁଗଳରୂପ—ଅନ୍ୟରୂପ) 1. An image consisting of 2
Deities or one God and one Goddess
seated or standing together. ୨।ରାଧାକୃଷ୍ଣଙ୍କର
ଏକତ୍ର ଅବସ୍ଥିତ ମୂର୍ତ୍ତି—2. The figure assumed
by Srikrushna while embracing Rādhā
୩। ଏକତ୍ରାବସ୍ଥିତ ସ୍ୱାମୀ ଓ ସ୍ତ୍ରୀ—3. The figure of
a couple placed side by side.

**ଯୁଗଳୀ**—ସଂ. ବିଣ. ସ୍ତ୍ରୀ (ଯୁଗଳ+ଈ)—ଯୋଡ଼—
Jugali Double; a pair of.

**ଯୁଗ ସନ୍ଧି**—ସଂ. ବି (୬ଷ୍ଠୀ ତତ୍)—ଏକ ଯୁଗର ଶେଷ ଓ ଅନ୍ୟ ଯୁଗର
Jugā sandhi ଆରମ୍ଭ କାଳ—The junction of two
ଯୁଗ ସନ୍ଧ୍ୟା } ଅନ୍ୟରୂପ ages; the time about
ଯୁଗ ସନ୍ଧ୍ୟାଂଶ } the end of one and the
beginning of another age.

**ଯୁଗାଂଶକ**—ସଂ. ବି (ଯୁଗାଂଶ+କ)—କାଳ ବା ଯୁଗର ଅଂଶ,
Jugāmsaka ବର୍ଷର—The year; the component
part of an age.

**ଯୁଗାଗମ**—ସଂ. ବି (୬ଷ୍ଠୀ ତତ୍; ଯୁଗ+ଆଗମ)—ଯୁଗାଦ୍ୟ (ଦେଖ)
Jugāgama Jugādi (See)

**ଯୁଗାଡ଼**—ପ୍ରାଦେ (ଉତ୍ତର ବାଲେଶ୍ୱର) ବି—ପରିବା—
Jugārda Kitchen-vegetable.

**ଯୁଗାଡ଼ିବା**—ପ୍ରାଦେ (ଉତ୍ତର ବାଲେଶ୍ୱର) କି—ପରିବା କନାଇବା—
Jugārdibā To chop kitchen-vegetables for
cooking.

**ଯୁଗାଦି(ଦ୍ୟ)**—ସଂ. ବି [୬ଷ୍ଠୀ ତତ୍; ଯୁଗ+ଆଦି (ଦ୍ୟ)]—୧।
Jugādi(dya) କଳିଅାଦି ଯୁଗର ପ୍ରଥମ ଉପସ୍ଥିତି—1. The
(ଯୁଗାଦ୍ୟ—ବିଶେଷଣ) advent of an age. ୨। ଗୋଟିଏ
ମହାଯୁଗର ଆରମ୍ଭ—2 The beginning or
dawning of a cycle of 4 ages. ୩।
ତିଥି—3. Lunar day.

ଯୁଗାଦ୍ୟା—ସ. ବ ( ଯୁଗାଦ୍ୟ+ଆ )—ଯୁଗ ଆରମ୍ଭ ହେବାର ତିଥି—
Jugādyā The lunar day of the year on which one of the 4 ages first dawned. ( ଯଥା—ସତ୍ୟ ଯୁଗାଦ୍ୟା, ବୈଶାଖ ଶୁକ୍ଳ ତୃତୀୟା; ଯୁଗ ଶବ୍ଦ ତଳେ ଟୀକା ଦେଖ । )

ଯୁଗାନ୍ତ—ସ. ବ ( ୬ଷ୍ଠୀ ତତ୍; ଯୁଗ+ଅନ୍ତ )—୧ । ଯୁଗକ୍ଷୟ; ଯୁଗର
Jugānta ଅନ୍ତ ବା ଶେଷ ସମୟ—1. The end of an (ଯୁଗାବସାନ—ଅନ୍ୟରୂପ) age. ୨ । ମହାଯୁଗର ଅନ୍ତ; ପ୍ରଳୟ କାଳ—2. The end of a cycle of 4 ages; the time of dissolution.

ଯୁଗାନ୍ତକ—ସ. ବ—ବିଷ୍ଣୁଙ୍କର ନାମାନ୍ତର—A name of Bishnu.
Jugāntaka ବଣ—ଯୁଗାନ୍ତ ପ୍ରଳୟକାରୀ—Bringing about the dissolution of the creation at the end of a cycle.
ଯୁଗାନ୍ତକର } —ଅନ୍ୟରୂପ
ଯୁଗାନ୍ତକୃତ୍ }

ଯୁଗାନ୍ତଜୀବୀ—ସ. ବଣ. ପୁଂ ( ଯୁଗାନ୍ତ+ଜୀବ୍ ଧାତୁ+କର୍ତ୍ତୃ ଇନ୍;
Jugāntajibi ୧ମା. ୧ବ )—ଯେ ଯୁଗାନ୍ତ ପର୍ଯ୍ୟନ୍ତ ବଞ୍ଚି ରହେ—Living till the end of a cycle of ages.
[ ଦୃ—ପୁରାଣମତେ ମାର୍କଣ୍ଡେୟ ମୁନି ଯୁଗାନ୍ତଜୀବୀ ଅଟନ୍ତି । ]

ଯୁଗାନ୍ତ ପ୍ରଳୟ—ସ. ବ—ମହାଯୁଗ ଶେଷରେ ଘଟିବା ଖଣ୍ଡପ୍ରଳୟ—
Jugānta pralaya The partial dissolution of the creation at the end of every cycle of 4 ages.

ଯୁଗାନ୍ତ ବ୍ୟାପୀ—ସ. ବଣ—ଏକ ଯୁଗାନ୍ତ ସମୟ ପର୍ଯ୍ୟନ୍ତ ରହିବା ବା
Jugānta byāpi ଘୋଟିବା ( ପ୍ରଳୟ )—Existing for the period of one 'Jugānta'.

ଯୁଗାନ୍ତର—ସ. ବ ( ନିତ୍ୟ ସମାସ; ଅନ୍ୟ+ଯୁଗ )—ଅନ୍ୟ ଯୁଗ—
Jugāntara Another age.

ଯୁଗାନ୍ତ ସ୍ଥାୟୀ—ସ. ବଣ—୧ । ଯୁଗାନ୍ତ ପର୍ଯ୍ୟନ୍ତ ରହିଥିବା—1.
Jugānta sthāyi Existing till the end of a cycle. ୨ । ଚିରସ୍ଥାୟୀ—2. Permanent.

ଯୁଗାବଧି—ସଂ. ବ (୬ଷ୍ଠୀ ତତ୍; ଯୁଗ+ଅବଧି )—ଯୁଗକ୍ଷୟ ( ଦେଖ )
Jugābadhi Jugakshaya ( See ). ଦେ. କ୍ରି. ବଣ—ବହୁକାଳ ହେଲା—For an age.

ଯୁଗାବ୍ଦ(ବ୍ଦା)—ସ. ବ ( ୬ଷ୍ଠୀ ତତ୍; ଯୁଗ+ଅବ୍ଦ )—କୌଣସି ଯୁଗରେ
Jugābda(bdā) ଭୋଗ ହୋଇଥିବା ବରଷମାନ—The number of years traversed by a Juga.

ଯୁଗାରମ୍ଭ—ସ ବ—ଯୁଗାଦି ( ଦେଖ )
Jugārambha Jugādi ( See )

ଯୁଗୀ—ପ୍ରାଦେ. ( ସିଂହଭୂମ୍, ବାଲେଶ୍ୱର ଓ ମେଦନୀପୁର ) ବ—ହିନ୍ଦୁ
Jugi ଭିକ୍ଷୁକ ଜାତି ବିଶେଷ, ଯୋଗୀ—A caste of beggars amongst the Hindus.

ଯୁଗୁ—ଦେ. ଅ—୧ । ହେତୁ; ପାଇଁ; ଯୋଗେ—1. For. [ ଦୃ
Jugu —ଭୁବନମୋହନ ବଢ଼େଇ ସ୍ୱର୍ଗ ଲାଗି ଉକାଳିତ ଲାଗୁ ଲାଗୁ । କବିସୂର୍ଯ୍ୟ. ସଙ୍ଗୀତ । ] ୨ । ଦୁଇଙ୍କ ମଧ୍ୟରୁ—2. From the pair of. [ଦୃ—ରୋମାଞ୍ଚ ହୋଇଲା ଶରୀର, ଲୋଚନଯୁଗୁଁ ବହେ ନୀର । ଜଗନ୍ନାଥ. ଭାଗବତ । ]

ଯୁଗେ—ପ୍ରାଦେ (ଉତ୍ତର ଭାଷା) ବିଶେଷ ବଣ—ଅତ୍ୟନ୍ତ—
Juge Very much.
( ଯଥା—ଯୁଗେ ନିକୋ=ଅତି ସୁନ୍ଦର । )

ଯୁଗେ ଯୁଗେ—ସଂ. ଅ—ପ୍ରତି ଯୁଗରେ—
Juge juge In every age; for ages.

ଯୁଗେଶ—ସଂ. ବ ( ଜ୍ୟୋତିଷ )—ରାଶିଚକ୍ରରେ ବୃହସ୍ପତିଙ୍କ ୬୦ ବର୍ଷର
Jugesa ଗତି ଅନୁସାରେ ପ୍ରତି ପାଞ୍ଚବର୍ଷ ବ୍ୟାପିଷ୍ଣୁ ଯୁଗର ଅଧିପତି ଦେବ—( Astronomy ) The presiding Deity over each cycle of 5 of the years of Jupiter, [ ଦୃ—ବୃହସ୍ପତି ମାଘମାସରେ ଧନିଷ୍ଠା ନକ୍ଷତ୍ରର ପ୍ରଥମାଂଶରେ ଉଦୟ ହେବା ବେଳେ ଏ ଗଣନାର ଆରମ୍ଭ ହୁଏ । ବୃହସ୍ପତିଙ୍କ ୬୦ ବର୍ଷରେ ୫ ବର୍ଷରେ ଗୋଟିଏ ଲେଖାଏଁ ଯୁଗ ହୁଏ । ଏପରି ୧୨ଟି ଯୁଗର ଅଧିପତି ଯଥାକ୍ରମେ ବିଷ୍ଣୁ, ସୁରେଜ୍ୟ, ବଳଭିତ୍, ଅଗ୍ନି, ତ୍ୱଷ୍ଟା, ଉତ୍ତର, ପ୍ରୋଷ୍ଠପଦ, ପିତୃଗଣ, ବିଶ୍ୱ, ସୋମ, ଶକ୍ରାନଳ, ଅଶ୍ୱି ଓ ଭଗ ଅଟନ୍ତି । ପ୍ରତିଯୁଗର ୫ ବର୍ଷର ଯଥାକ୍ରମେ ନାମ, ସଂବତ୍ସର, ପରିବତ୍ସର, ଇଦାବତ୍ସର, ଅନୁବତ୍ସର ଓ ଇଦ୍‌ବତ୍ସର—ବୃ. ଶ ]

ଯୁଗ୍ମ—ସ. ବ—(ଯୁଜ୍ ଧାତୁ=ଯୋଗ କରିବା+କର୍ମ. ମ)—୧ ।
Jugma ଯୁଗଳ; ଯୋଡ଼ା—1 Pair; couple. ୨ । (ଯୁଗଳ—ଗ୍ରାମ ରୂପ) (ଜ୍ୟୋତିଷ) ମିଥୁନ ରାଶି—2. (Astrology) The 3rd sign of the zodiac; the Gemini; or the twins. ୩ । ଯାଆଁଳା ପିଲା—3. Twins. ୪ । ଏକତ୍ର ସମ୍ବଦ୍ଧ ଦୁଇଟି ଶ୍ଳୋକ—4. A couple of stanzas connected with each other by construction, i. e. forming one grammatical sentence. ୫ । (ଗଣିତ) ଯୋଡ଼ରାଶି; ଯେଉଁରାଶି ଦୁଇରେ ହରଣ କଲେ ଛିଣ୍ଡି ଯାଏ—5. ( Arithmetic ) An even number; a multiple of 2. ୬ । ( +ଭାବ. ମ )—ସଂଯୋଗ; ମିଳନ—6. Union. ୭ । ଦୁଇଜଣଙ୍କ ଭେଟାଭେଟି—7. A meeting together of two persons. ୮ । ( +ଅଧିକରଣ )—ଦୁଇନଦୀର ମିଳନସ୍ଥାନ—8. The confluence of two rivers. ବଣ—୧ । ଯୋଡ଼ାଏ; ଯୋଡ଼ିଏ—1. A couple of; a pair of. ୨ । ଦୁଇରେ ହରିଲେ ଭାଗଶେଷ ନ ରହିବା ( ସଂଖ୍ୟା )—2. Even ( number ).

ଯୁଗ୍ମକ—ସ. ବ ( ଯୁଗ୍ମ+ସ୍ୱାର୍ଥେ କ)—ଏକତ୍ର ଅନ୍ୱିତ ଦୁଇଟି ଶ୍ଳୋକ
Jugmaka —Two stanzas connected with each other by grammatical construction.

ଯୁଗ୍ମ କଳା—ସଂ. ବି—୧ । ଇନ୍ଦ୍ରଚର୍ମୀ—1. A medicinal
Jugma kalā shrub ୨ । ବୃଶ୍ଚିକାଳୀ; ବିଛୁଅତି—
2. The stinging nettle; Targia Involucruta.

ଯୁଗ୍ମଜ—ସଂ. ବିଣ. ପୁଂ ( ଯୁଗ୍ମ+ଜନ୍ ଧାତୁ+କର୍ତ୍ତୃ. ଅ )—ଯାଆଁଳା
Jugmaja ( ପିଲା )—Twin-born; twin.
(ଯୁଗ୍ମଜା—ସ୍ତ୍ରୀ)

ଯୁଗ୍ମ ତିଥି—ସଂ. ବି—ଏକାଦିନରେ ପଡ଼ୁଥିବା ଦୁଇଟି ତିଥି—Two
Jugma tithi lunar days falling on one solar day.

ଯୁଗ୍ମ ପର୍ଣ୍ଣ(ତ୍ର)—ସଂ. ବି—୧ । ଯୁଗ ପତ୍ର ( ଦେଖ )—
Jugma parṇṇa(tra) 1. Juga patra ( See )
୨ । ସପ୍ତପର୍ଣ୍ଣୀ ବା ଛତିଆନା ଗଛ—2. A tree; Alotonia Scholaris.

ଯୁଗ୍ମ ବର୍ଣ୍ଣ—ସଂ ବି—ଏକ ଅକ୍ଷର ଦୁଇଥର ଯୁକ୍ତ ହୋଇ ଉଚ୍ଚାରିତ ବର୍ଣ୍ଣ
Jugma barṇṇa —A letter made by doubling the same letter; a double letter ( e. g. double b; double t ). ( ଯଥା—କ୍କ, କ୍କ, ଟ୍ଟ, ଲ୍ଲ, ଦ୍ଦ, ମ୍ମ । )

ଯୁଗ୍ମ ଯମକ—ସଂ. ବି—ଯମକ ବିଶେଷ—A kind of allitera-
Jugma jamaka tion. [ ଦ୍ର—ନିମ୍ନଲିଖିତ ପଦଟି ଯୁଗ୍ମ ଯମକ ଅଟେ । ଯଥା—କରକରଦନ ! କର କର ଅନୁକମ୍ପା, ଫୁଲ ଶର ଶର ସହି ! ସହିବି ମୁଁ କମ୍ପା ।
ଗୋଲୋକ ଇନ୍ଦୁରେଖା । ]

ଯୁଗ୍ମ ଯୁଗ—ଦେ. ବି—ଜୈନ ତୀର୍ଥଙ୍କରମାନଙ୍କ ସମୟରେ ଭୂମିଷ୍ଠ ହୋଇଥିବା
Jugma juga ପ୍ରସିଦ୍ଧ ସ୍ତ୍ରୀ-ପୁରୁଷ—A pair of great persons (a male and a female) who were born at the same time during the time of the Jaina Tirthankaras ( Nahar, Epitome of Jainism ).

ଯୁଗ୍ମ ସ୍ୱର—ସଂ. ବି ( ଯୋଗସାଧନ )—ଚନ୍ଦ୍ରସ୍ୱର ସହିତ ରବିସ୍ୱର ଓ
Jugma swara ରବିସ୍ୱର ସହିତ ଚନ୍ଦ୍ରସ୍ୱର ଏକତ୍ର ଥିବା ସ୍ୱର ଓ ଯୋଗ—(Joga) The conjunction of the lunar swara with the solar swara
[ ଦ୍ର—ଚନ୍ଦ୍ର ମଧ୍ୟେ ରବିସ୍ଥିତି ରବି ଚନ୍ଦ୍ରେ ପୁଣି, ଏମନ୍ତ ବେଳେ ପୁଚ୍ଛିଲେ ଜାଣିବ କୁମାଣି, ଯୁଗ୍ମସ୍ୱର ଏ ବୋଲାଇ ଚତ୍ତେ ହେତୁ କର । ପ୍ରାଚୀ. ଶିବସ୍ୱରୋଦୟ । ]

ଯୁଗ୍ମାନ୍ତାନୁପ୍ରାସ—ସଂ. ବି ( ଅଳଙ୍କାର )—ଅନୁପ୍ରାସ ବିଶେଷ—
Jugmāntānuprāsa A kind of alliteration in rhetoric [ ଦ୍ର—ନିମ୍ନଲିଖିତ ପଦ୍ୟରେ ଯୁଗ୍ମାନ୍ତାନୁପ୍ରାସ ଦେଖାଯାଏ । ଯଥା—ଶରବାଣ ମାରର ଟଙ୍କାରି ଉଦୁରେ ସମସ୍ତ ବଳନ୍ତି ଘାତର ! ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି । ]

ଯୁଗ୍ୟ—ସଂ. ବିଣ.—(ଯୁଗ+ବହିବା ଅର୍ଥରେ ଯ)—୧ । ଯୁଗବାହୀ (ପଶୁ)
Jugya 1. Bearing burden by a yoke. ୨ । ଯୁଆଳରେ ଯୋଗ୍ଯ ହେବା ଉପଯୁକ୍ତ—2. Fit to be yoked. ୩ । ଯୁଆଳରେ ଯୋଗ୍ଯ ହେଇଥିବା (ପଶୁ)—3. Yoked; harnessed (Apte) ୪ । ( ଅନ୍ୟ ବାହନ ବାଚକ ଶବ୍ଦ ସଙ୍ଗେ ଲାଗେ; ଯଥା ଅଶ୍ୱ ଯୁଗ୍ୟ-ରଥ) ଯୋଗ୍ଯ ହୋଇଥିବା ଜୀବଦ୍ୱାରା ଆକର୍ଷିତ—4. Drawn by (an animal) (Apte.)
ସଂ. ବି.—୧ । ଯାନ—1. Conveyance; vehicle. ୨ । ବାହନ; ଯାନବାହୀ ଜୀବ—2. Draught-animal (Apte.) ୩ । ଗାଡ଼ି ଟାଣିବା ଘୋଡ଼ା—3. Charit-horse. (Apte) ୪ । ଗାଡ଼ି ଆଦି ଟାଣିବା ପାଇଁ ମଣ ହୋଇଥିବା ଜୀବ—4. An animal trained for the yoke

ଯୁଗ୍ୟବାହ—ସଂ. ବି. ପୁଂ—(ଯୁଗ୍ୟ+ବହ ଧାତୁ+କର୍ତ୍ତୃ ଅ)—ସାରଥି,
Jugyabāha ରଥଚାଳକ; କଚୁଆନ୍—A charioteer.
(ଯୁଗ୍ୟବାହା—ସ୍ତ୍ରୀ) coachman; chauffeur.

ଯୁଚ୍ଛ୍ (ଧାତୁ)—ସଂ. ବି—୧ । ଅମନୋଯୋଗୀ ହେବା—
Juchchh (root) 1. To be inattentive.
୨ । ପ୍ରମାଦ ବା ଭୁଲ କରିବା—2. To err; to commit mistake.

ଯୁଜ୍ (ଧାତୁ)—ସଂ.—୧ । ଯୋଗ କରିବା; ଏକତ୍ର କରିବା—1. To
Juj (root) add up; to join. ୨ । ମିଳାଇବା; ମିଶାଇବା 2. To unite; to mix up. ୩ । ନିନ୍ଦା କରିବା—3. To blame. ୪ । ବାନ୍ଧିବା—4 To bind; to tie ୫ । ସଂଯମ କରିବା—5. To. control; to regulate. ୬ । ଧ୍ୟାନରେ ବା ସମାଧିରେ ମନକୁ ନିଯୁକ୍ତ କରିବା; ଧ୍ୟାନ କରିବା—6. To concentrate one's mind in abstract meditation; to meditate upon. ୭ । ଚିନ୍ତାକୁ କେନ୍ଦ୍ରୀଭୂତ କରିବା, ମନୋଯୋଗ ଦେବା—7. To concentrate one's thoughts or attention. ୮ । ସଂଯୁକ୍ତ କରିବା; ଯୋଖିବା; ଯୋଡ଼ିବା—8. To connect; to attach. ୯ । ଯୋଚିବା—9. To yoke; to harness. ୧୦ । ପ୍ରୟୋଗ କରିବା—10. To employ; to apply. ୧୧ । ଲାଗିବା; ଲାଖିବା—11. To adhere; to cleave to (Apte). ୧୨ । ଆଦେଶ କରିବା—12. To enjoin; to charge (Apte) [ ଦ୍ର—ଯୁଜ୍ ଧାତୁର ପୂର୍ବରେ ଭିନ୍ନ ଭିନ୍ନ ଉପସର୍ଗ ଲାଗି ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କରେ, ଯଥା—
ଅନୁ+ଯୁଜ୍ ଧାତୁ=୧ । ପଚାରିବା—1. To ask.
୨ । ତିରସ୍କାର କରିବା—2. To reprove.
ଅଭି+ଯୁଜ୍ ଧାତୁ=୧। ଉଚ୍ଚାରଣ କରିବା-1. To utter.
୨। ଦୋଷାରୋପ କରିବା—2. To accuse or charge a person with an offence.

୩। ଧରିବା; ଧାରଣକରିବା—3 To seize. ୪। ଅଧିକାର କରିବା—4. To lay hold of.

ଉପ+ଯୁଜ୍ ଧାତୁ=୧। ଆକ୍ରମଣ କରିବା--1. To attack. ୨। ଗ୍ରହଣ କରିବା—2. To take. ୩। ଖାଇବା—3. To partake of (food).

ଉଦ୍ + ଯୁଜ୍ ଧାତୁ=ଚେଷ୍ଟା କରିବା—To try; to make effort.

ନି+ଯୁଜ୍ ଧାତୁ=୧। ଆଦେଶକରିବା—1. To order. ୨। ବିଶଦ କରିବା—2. To order beforehand. ୩। କାର୍ଯ୍ୟରେ ମୁକର କରିବା—3. To appoint.

ବି+ନି+ଯୁଜ୍ ଧାତୁ=୧। ଯୋଗ କରିବା—1. To join. ୨। ବ୍ୟୟ କରିବା-2. To spend. ୩। ପଠାଇବା 3. To send ୪। ବିଜଡ଼ିତ କରିବା—4. To involve in.

ପ୍ର+ଯୁଜ୍ ଧାତୁ=୧। ପ୍ରୟୋଗ କରିବା--1. To apply. ୨। ଅର୍ଥାଦିକୁ ଲାଭରେ ଖଟାଇବା-2. To invest money; ୩। ଚେଷ୍ଟା କରିବା—3. To make effort. ୪। ମିଳାଇବା—4. To connect; to combine; ୫। ବ୍ୟୟ କରିବା- 5. To spend. ୬। ନିଯୁକ୍ତ କରିବା—6 To appoint. ୭। ପୃଥକ୍ କରିବା—7. To divide.

ବି+ଯୁଜ ଧାତୁ=୧। ଫେଡ଼ିବା -1. To subtract. ୨। ପୃଥକ୍ କରିବା—2. To separate. ୨। ପଠାଇବା—2. To send.

ସମ୍+ଯୁଜ୍ ଧାତୁ=ଏକତ୍ର କରିବା—To combine; to unite. ]

ଯୁଜାନ—ଗ୍ରା. ବିଣ ଓ ବି—ଯୁଞ୍ଜାନ ( ଦେଖ )
Jujāna Junjāna ( See )

ଯୁଜିର—ସଂ. ବି ( ଯୁଜ୍ ଧାତୁ+କର୍ମ. ଇର )—୧। ଯୁଗ୍ମ; ଯୁଗଳ—
Jujira 1. Pair couple. ୨। ( +କର୍ତ୍ତୃ. ଇର )—ଯୋଗୀ—2. A sage, an anchorite

ଯୁଜି(ଜେ, ଝି, ଝେ)ଷ୍ଟି(ଷ୍ଠି)—ଗ୍ରା. ବି (ସଂ.ଯୁଧିଷ୍ଠିର)—ଯୁଧିଷ୍ଠିର (ଦେଖ)
Ju(je, jhi, jhe)shti(shthi) Judhishthira ( See )
ଯୁଧିଷ୍ଠିର [ ଉ—ତୋ ଅଗେ କହୁଛୁ ଯୁଜେଷ୍ଟି ଭାଇ।
ଯୁଜଷ୍ଠୀର ପ୍ରାର୍ଥୀ. ଘରଚେଗୀତା। ]

ଯୁଜୁତ୍ସୁ—ବୈଦେ. ବି ( ଜାପାନୀଭାଷା )—ଜାପାନ ଦେଶୀୟ କସରତ୍
Jujutsu —A kind of athletic feat or westling
ଯୁଯୁତ୍ସୁ ଜ୍ୟୁଜୁତସୁ practised in Jāpan; Jujutsu.
[ ବ୍ୟ—ଏ କସରତରେ ଖେଳୁଥିବା ଲୋକ୍ ନିପୁଣତା ସହକାରେ ବିପକ୍ଷର ଭିନ୍ନ ଭିନ୍ନ ମର୍ମସ୍ଥାନରେ ଆଘାତ କରେ; ଗୋଟିଏ ଗୋଟିଏ ସ୍ଥାନରେ ସାମାନ୍ୟମାତ୍ର ଆଘାତ କଲେ ବିପକ୍ଷ ବଳଶୂନ୍ୟ ଓ ଅସହାୟ ହୁଏ, ଏମନ୍ତ କି, ଭୂମିରେ ପଡ଼ିଯାଏ ଓ ବେଳେ ବେଳେ ପକ୍ଷାଘାତଗ୍ରସ୍ତ ହୁଏ। ଯୁଜୁତ୍ସୁ ଖେଳରେ ବଳଠାରୁ କଳ ବେଶି ଲାଗିଯାଏ। ]

ଯୁଜ୍ୟ—ସଂ. ବିଣ (ଯୁଜ୍ ଧାତୁ+କର୍ମ. ଯ; ବୈଦିକ)—୧। ସଂଯୁକ୍ତ—
Jujya 1. United; connected (Apte). ୨। ରକ୍ତ ସମ୍ପର୍କ ବା ବିବାହାଦି ସମ୍ପର୍କଯୁକ୍ତ—2. Related to (Apte). ୩। ଯୋଗ୍ୟ; ଉପଯୁକ୍ତ—3. Fit; proper (Apte). ୪। ସମଶ୍ରେଣୀୟ—4. Of the same class or kind (Apte). ସଂ. ବି—୧। କୁଟୁମ୍ବ; ସଗୋତ୍ର ବ୍ୟକ୍ତି—1. A kinsman (Apte). ୨। (+ଭାବ. ଯ) ସଂଯୋଗ; ସମ୍ମେଳନ—2. Union; connection (Apte). ୩। ରକ୍ତ ସମ୍ପର୍କ—3. Blood relationship (Apte).

ଯୁଜ୍ୟମାନ—ସଂ. ବିଣ—( ଯୁଜ୍. ଧାତୁ+କର୍ତ୍ତୃ. ଆନ )—ମିଳିତ
Jujyamāna ହେଉଥିବା—Under the process of
(ଯୁଜ୍ୟମାନା—ସ୍ତ୍ରୀ) being joined or united.

ଯୁଜ୍ଝ (ଇତ୍ୟାଦି)—ଗ୍ରା. ବି—ଯୁଝ (ଇତ୍ୟାଦି) (ଦେଖ)
Jujjha (etc) Jujha (etc) (See)

ଯୁଝ—ଗ୍ରା. ବି (ସଂ. ଯୁଦ୍ଧ)—ଯୁଦ୍ଧ—Fight. [ ଉ—ଯେ ପରାକ୍ରମୀ
Jujha ହେବ ସେ ଯିବ ଯୁଝକୁ। କୃଷ୍ଣସିଂହ. ମହାଭାରତ—ସଭା।]
ଯୁଧ ଯুଘ

ଯୁଝ ଭୂଇଁ—ଗ୍ରା.ବି—ଯୁଦ୍ଧକ୍ଷେତ୍ର—Battle-field. [ଉ—ଯୁଝଭୂଇଁ କୁ
Jujha bhuiñ ଚୋରି ଯାଉ, ଲୁଟ ବେଳକୁ ପୁଅ ଯାଉ। ଢଗ ]
ଯୁଦ୍ଧଭୂମି ଯুঘভূঁই

ଯୁଝା(ଝେ)ଇବା—ଗ୍ରା. କ୍ରି—ଯୁଜ୍ଝାଇବା (ଦେଖ)—
Jujhā(jhe)ibā Jujjhāibā (See)
ଯୁଦ୍ଧକବାନ ଯুঘবানা

ଯୁଝାଯୁଝି—ଗ୍ରା. ବି—ଅନ୍ୟୋନ୍ୟରେ ଯୁଦ୍ଧ କରିବା—
Jujhājujhi Mutual fighting.
ଲଡାଲଡ଼ି ଯুঘাযুঘী

ଯୁଝି ଇଚ୍ଛିବା—ଗ୍ରା. କ୍ରି (ସଂ. ଯୁଦ୍ଧ+ଇଚ୍ଛା)—ଯୁଦ୍ଧ କରିବାକୁ ଇଚ୍ଛା
Jujhi ichchhibā କରିବା—To desire to fight.
ଯুঘ চাহনা ( ଉ—କାମ ବସନ୍ତ ମିତ୍ର ଲଭୁହେଲେ, ଯୁଝି ଇଚ୍ଛନ୍ତି
ଯୁଦ୍ଧ ଚାଓୟା ବସନ୍ତ କୋକିଳେ। ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି।)

ଯୁଝିବା—ଦେ. କ୍ରି ( ସଂ. ଯୁଧ୍. ଧାତୁ. ପ୍ରା. ଜୁଝ୍. ଧାତୁ )—
Jujhibā ୧। ଯୁଦ୍ଧ କରିବା—1. To fight. (ଉ—ସଙ୍ଗରେ
ଯୁଦ୍ଧକରা ଦେଖି ବନ୍ଧୁଜନ, ଦୟାରେ ନ ଯୁଝେ ଅର୍ଜୁନ।
ଯুঘনা ଜଗନ୍ନାଥ. ଭାଗବତ ) ୨। ବାଗ୍‌ଯୁଦ୍ଧ କରିବା; କଳି କରିବା—2. To wrangle; to quarrel. ୩। ପ୍ରାଣପଣେ ଚେଷ୍ଟା କରିବା—3. To struggle hard.

ଯୁଝ୍ୟ(ଧ୍ୟ)—ଗ୍ରା. ବି (ସଂ. ଯୁଦ୍ଧ)—୧। ଯୁଦ୍ଧ—1. Battle.
Jujhya(dhya) ୨। ବାଗ୍‌ଯୁଦ୍ଧ—2. Wrangling.
ଯুঘ ଯୁଦ୍ଧ

ଯୁଞ୍ଜାତକ—ଦେ. ବି—ଏକପ୍ରକାର ଔଷଧ ବୃକ୍ଷ—Name of a tree
Junjātaka used in medicine. [ବ୍ୟ—ଏହାର ଅଭାବରେ ଔଷଧାଦିରେ ତାଳଗଛର କଅଁଳ ପ୍ରୟୋଗ କରାଯାଏ।]

**ଯୁଞ୍ଜାନ**—ସଂ. ବଣ. ପୁଂ—(ଯୁଜ୍. ଧାତୁ+କର୍ତ୍ତୃ. ଆନ)—୧ । ଯୋଗା-
Jūnjāna ଭ୍ୟାସକାରୀ—1. Practising penance. ୨।ଯେ
(ଯୁଞ୍ଜାନା—ସ୍ତ୍ରୀ) ଯୋଗ କରେ—2. Joining; uniting.
୩ । ଯେ ଯୋତେ—3. Yoking. ୪ । ଉପଯୋଗୀ—
4. Proper; fit (Apte). ୫। ସମ୍ପଦଯୁକ୍ତ—5. Prosperous (Apte). ୬ । କୃତକାର୍ଯ୍ୟ—6 Successful (Apte). ବ—୧ । ସାରଥି –1. A Charioteer. ୨ । ବ୍ରାହ୍ମଣ—2 A Brāhmana. ୩ । ସର୍ବଜ୍ଞ ବ୍ୟକ୍ତି—2. An omniscient person. ୪ । ଯେଉଁ ଯୋଗସାଧକ ଯୋଗାଭ୍ୟାସ କରୁଥାଆନ୍ତି, କିନ୍ତୁ ମୁକ୍ତ ହୋଇ ନାହାନ୍ତି—4. A person who is engaged in practising Joga but has not yet attained salvation. [ବି—ଏ ଶ୍ରେଣୀର ଯୋଗୀ ସମାଧିଦ୍ୱାରା ସର୍ବଜ୍ଞ ହୁଅନ୍ତି—ହ. ଶ]

**ଯୁଟ୍** (ଧାତୁ)— ସଂ.—ମିଳିତ ହେବା—
Jut (root) To be united.
( ଯୋଟ ଧାତୁ—ଭିନ୍ନ ରୂପ )

**ଯୁଟା**—ଦେ. ବ—୧ । (ପାନବରଜର ଭାଷା)—ପାନଗଛର ଯୋଡ଼ା—
Jutā 1. A pair of betel creepers. ୨ । ଜୁଟା ଇତ୍ୟାଦି (ଦେଖ)—2. Jutā etc (See)

ଦେ. ବଣ—ଜୁଟା ( ଦେଖ )—jutā ( See )
(ଯେଉଁଟା—ଅନ୍ୟ ସର୍ବନାମ ରୂପ) ଗ୍ରା. ସର୍ବ (ଅନାଦରାର୍ଥକ)—
ଷେଟୋ ଜୋଠୋ ଯେଉଁ ଗୋଟାକ—Which one
(ଯୁଟ୍, ଯୁଟ୍ଟ—ଅନାଦରାର୍ଥକ ସର୍ବନାମ ରୂପ)

**ଯୁଟା(ଟେ)ଇବା**—ଦେ. କ୍ରି—ଜୁଟାଇବା (ଦେଖ)
Jutā(te)ibā Jutaibā (See)

**ଯୁଟିବା**—ଦେ. କ୍ରି—ଜୁଟିବା (ଦେଖ)
Jutibā Jutibā (See)

**ଯୁଡ଼ି**—ପ୍ରାଦେ (ସମ୍ବଲପୁର ଓ ବାଲେଶ୍ୱର) ବ—୧। ପାଣିର ଜୋଡ଼; ଲମ୍ବ
Jurdi ଅଗଭୀର ଜଳାଧାର—1. A long strip of shallow water ୨ । ଜୁଡ଼ି (ଦେଖ)—2. Jurdi (See)

**ଯୁଡ଼ିବା**—ପ୍ରାଦେ (ବାଲେଶ୍ୱର ଓ ସମ୍ବଲପୁର) ବ—ଯୋଡ଼ିବା (ଦେଖ)
Jurdibā jordibā (See)

**ଯୁଡ୍ଗେ**—ପ୍ରାଦେ (କୌଚ) ବଣ ଓ ବ—ଯୋଡ଼େ; ଦୁଇଟି; ଏକହଳ—
Jurge Two; a pair.

**ଯୁଣ** (ଇତ୍ୟାଦି)—ଦେ. ବ—ଜୁଣ ଇତ୍ୟାଦି (ଦେଖ)
Juna (etc) Juna etc (See)

**ଯୁତ୍**—ସଂ. ବ (ଯୁଧ୍ ଧାତୁ=ଯୁଦ୍ଧ କରିବା+ଭାବ କ୍ୱିପ୍=ଯୁଧ୍ ଶବ୍ଦ
Jut ୧ମା ୧ବ)—୧ । ଯୁଦ୍ଧ—1. Battle; fight.
୨ । ନିନ୍ଦା—2. Censure; blame. ୩ । ( + କର୍ତ୍ତୃ. କ୍ୱିପ୍ )—ଯୋଦ୍ଧା; ସୈନିକ—3. A hero; a soldier ( Apte ).

ଦେ. ବ. ଓ ବଣ.—ଜୁତ୍ ( ଦେଖ )—Jut ( See )

**ଯୁତ୍** (ଧାତୁ)—ସଂ—ଚକଚକ ହେବା, ଦୀପ୍ତି କରିବା; ଜକ୍ ଜକ୍ ହେବା—
Jut (root) To shine.

**ଯୁତ**—ସଂ. ବଣ—(ଯୁ ଧାତୁ=ମିଶ୍ରିତ କରିବା, ଯୋଗ କରିବା+କର୍ମ.ତ;
Juta ଏହା ଅନ୍ୟ ଶବ୍ଦ ସହିତ ଯୁକ୍ତ ହୁଏ । ଯଥା—ଶ୍ରୀଯୁତ)—
(ଯୁତା—ସ୍ତ୍ରୀ) ୧ । ମିଶ୍ରିତ; ମିଳିତ; ଯୁକ୍ତ—1. Joined to; connected with; united with; combined with. ୨ । ସଂଯୁକ୍ତ—2. Attached to; being in contact with ୩ । ପୃଥକ୍‌କୃତ—3. Separated (Apte) ୪ । ( ଗୁଣାଦି ଦ୍ୱାରା ) ଶୋଭିତ; ଭୂଷିତ—4. Endowed with; possessed of. ୫। ଅପୃଥଗ୍‌ଭୂତ—5. Unseparated from; identical with. ୬ । ପୂର୍ଣ୍ଣ; ପୂରିତ—6. Filled with. ୭ । ଅବୃତ—7. Coversed with (Apte). ୮ । ବନ୍ଧା ଯାଇଥିବା—8. Fastened to (Apte). ୯ । ( ଅମୁକର ) ସଙ୍ଗେ ଥିବା; ଅନୁଗତ-ପରିବୃତ—9. Accompanied or attended by (a person)- ୧୦ । ବେଷ୍ଟିତ—10 Surrounded by. ୧୧। ଯୋଖୁ ହୋଇଥିବା—11. Yoked too ବ—୧ । ବରକନ୍ୟା- 1. A newly married couple; bride-groom and bride. ୨ । ଦୈର୍ଘ୍ୟର ପରିମାଣ ବିଶେଷ; ଚାରିହାତ—2. A length of 4 cubits. ୩ । (+ଭାବ.ତ ) ଯୋଗ; ମିଳନ; ବିବାହ—3. Meeting; union; marriage (Apte); ୪ । (+କରଣ ତ) ଯୋଚ; ଗାଡ଼ି ଆଦିରେ ପଶୁ ଯୋତିବାର ଦଉଡ଼ି—4. Rope for yoking beasts to carts etc.

**ଯୁତକ**—ସଂ. ବ (ଯୁତ+ସ୍ୱାର୍ଥେ କ)—୧ । ସନ୍ଦେହ—1. Doubt;
Jutaka uncertainty (Apte) ୨ । ( ଯୁଜ ଧାତୁ + କର୍ମ ତ + କ ) ଯୋଡ଼ା; ଦ୍ୱନ୍ଦ୍ୱ—2. A pair; a couple; a brace. ୩ । ( ଯୁତ+କ )—ମୈଥୁନ; ଯୌନ ସଂଯୋଗ—3. Relationship through sex; marital or sexual connection. ୪ । ବିବାହର ଉପହାର; ଯୌତୁକ—4. Nuptial presents; dowry. ୫ । ଶାଢ଼ୀର କାନି ବା ଅଞ୍ଚଳା ବା ଗୁଡ଼—5. The end of a lady's cloth. ୬ । ଲୁଗାର ଶେଷଭାଗ ବା କାନି—6. The end of a cloth. ୭ । ଶାଢ଼ୀ ଓ ଓଢ଼ଣା—7. The cloth worn by a woman and the upper veil. ୮ । ସୂର୍ପ ପାର୍ଶ୍ୱ; କୁଲାର ପାଖ ବା ଧାର—8. The edge or sides of a winnowing fan (Apte). ୯ । ଆଶ୍ରୟ—9. Assylum;

refuge. ୧୦ । କ୍ଷମା—10. Forgiveness; pardon. ୧୧ । ଉପେକ୍ଷା—11. Forbearance. ୧୨ । ସାହାଯ୍ୟ-12. Help; support. ୧୩ । ସଖ୍ୟ; ବନ୍ଧୁତା-13. Alliance; friendship. ୧୪ । ଆଳାପ; ପରିଚୟ—14. Acquaintance. ୧୫ । ବନ୍ଧୁତା-ବନ୍ଧନ—15. Forming an alliance or friendship. ୧୬ । ଲୁଗାର ଜୋଡ଼ା; ପିନ୍ଧାଲୁଗା ଓ ଗୁଡ଼ିବା; ଧୋତି ଓ ପାଛୁଡ଼ା—16. A pair of cloth consisting of the loincloth and the upper sheet. ୧୭ । ପାଦର ଅଗ୍ରଭାଗ—17. The foremost part of the foot (Apte). ୧୮ । ଶାଢ଼ୀର ଧଡ଼ୀ—18 The edge of a woman's garment; hem; border of a woman's Sārḍhī (Apte). ୧୯ । ସମ୍ମେଳନ; ସଂଯୋଗ—19. Union (Apte).

**ଯୁତା** (ଇତ୍ୟାଦି)—ଦେ. ବି—ଜୋତା ଇତ୍ୟାଦି (ଦେଖ)
Jutā (etc) Jotā etc (See)

**ଯୁତା(ତେ)ଇବା**—ଦେ. କ୍ରି—୧ । ଯୁତିବା କ୍ରିୟାର ଣିଜନ୍ତରୂପ—
Jutā(te)ibā 1. The causative form of Jutibā
ଜୋତାନ ୨ । ଜୋତାରେ ମାଡ଼ ମାରିବା—
जुतवाना 2. To beat with the shoes

**ଯୁତି**—ସଂ. ବି (ଯୁ ଧାତୁ+ଭାବ. ତି)—୧ । ଯୋଗିବା; ଯୋଜନ—
Juti 1. Uniting; connecting. ୨ । ଶକଟାଦିରେ ପଶୁ ଯୋତିବା—2. Tying or yoking of beasts to a cart or plough. ୩ । (ଗଣିତ) ସଙ୍କଳନ; ଯୋଗ କରଣ—3. (Arithmetic) Addition. ୪ । (ଜ୍ୟୋତିଷ) ସଂକ୍ରମଣ—4. (astronomy) Conjunction (Apte). ୫ । ବହୁ ସଂଖ୍ୟାର ଯୋଗଫଳ—5. Sum total; the total number (Apte). ୬ । ସଂଯୋଗ—6. Union; junction (Apte). ଗ୍ରା. ବି (ଇତର) (ସଂ. ଜ୍ୟୋତି)—ଔଜ୍ଜ୍ୱଲ୍ୟ; ଜ୍ୟୋତିଃ—Radiance, brightness.

**ଯୁତିବା**—ଦେ. କ୍ରି (ସଂ. ଯୁ. ଧାତୁ, ଯୁଜଧାତୁ)—ଗୋରୁ ଆଦି ପଶୁଙ୍କୁ
Jutibā ଶଗଡ଼ରେ ବା ଗାଡ଼ିରେ ବା ହଳରେ ଲଗାଇବା—
ଜୋତା To yoke beasts to a cart or plough.
जोतना ପ୍ରଦେ. (ସମ୍ବଲପୁର) କ୍ରି—କର୍ଷଣ କରିବା—
To plough.

**ଯୁତେ**—ଦେ. (ପଦ୍ୟ) କ୍ରି. ବିଣ (ଅନ୍ୟ ଶବ୍ଦ ପରେ ଲାଗେ)—ଅମୁକ
Jute ସଙ୍ଗେ ଯୁକ୍ତ ହୋଇ—Being joined with or
ଯୁତେ attached to. (ଉ—ଷଡ଼ରିପୁ ତାପ କ୍ଲେଶ ଯୁତେ,
युते କରନ୍ତେ ଅଛି ଗୁରୁତ୍ୱରେ । ଜଗନ୍ନାଥ. ଭାଗବତ ।)

**ଯୁଦ୍**—ସଂ. ବି (ଯୁଧ୍. ଧାତୁ+ଭାବ. କ୍ୱିପ୍)—ସଂଗ୍ରାମ; ଯୁଦ୍ଧ—
Jud Fight; battle.

**ଯୁଦ୍ଧ**—ସଂ. ବି.—(ସଂ. ଯୁଧ୍ ଧାତୁ+ଭାବ. ତ)—୧ । ସମର; ଲଢ଼ାଇ—
Juddh 1. War; fight; battle.

[ଦ୍ର—ପ୍ରାଚୀନ କାଳରେ ରଥ, ହାତୀ, ଘୋଡ଼ା ଓ ପଦାତି, ଯୁଦ୍ଧର ୪ଟି ପ୍ରଧାନ ଅଙ୍ଗ ଥିଲେ; ଏଥି ପାଇଁ ସେନାକୁ ଚତୁରଙ୍ଗିଣୀ ବୋଲି ଯାଉଥିଲା । ଏହି ଚାରି ଅଙ୍ଗର ସଂଖ୍ୟା-ଭେଦରେ ସୈନ୍ୟ ଦଳର ଭିନ୍ନ ଭିନ୍ନ ନାମ (ଯଥା ପତ୍ତି, ଗୁଲ୍ମ, ଗଣ) ଥିଲା । ସେନା ସନ୍ନିବେଶ (ବ୍ୟୂହ) ମଧ୍ୟ ନାନା ପ୍ରକାରର ଥିଲା (ଯଥା, ସୂଚୀବ୍ୟୂହ, ଶ୍ୟେନ, ମକର, ଶକଟ) । ସୈନିକମାନଙ୍କୁ ସଙ୍କେତ ଧ୍ୱନି ଦ୍ୱାରା ସମ୍ମିଳନ, ପ୍ରସରଣ, ପ୍ରଭ୍ରମଣ, ଆକୁଞ୍ଚନ, ଯାନ, ପ୍ରୟାଣ, ଅପଯାନ ଆଦି ଅନେକ ପ୍ରଗତିରେ ଚାଳିତ କରା ଯାଉଥିଲା । ଯୁଦ୍ଧ ୨ ପ୍ରକାର ଥିଲା, ଯଥା—ଦ୍ୱନ୍ଦ୍ୱ ଯୁଦ୍ଧ ଓ ନିର୍ଦ୍ୱନ୍ଦ୍ୱ ଯୁଦ୍ଧ । କୃତ୍ରିମ ଓ ଅକୃତ୍ରିମ ଦୁର୍ଗରେ ରହି ଶତ୍ରୁ ସଙ୍ଗେ କରାଯିବା ଯୁଦ୍ଧର ନାମ ଦ୍ୱନ୍ଦ୍ୱ ଯୁଦ୍ଧ; ଦୁର୍ଗରୁ ବାହାରି ଖୋଲା ଯାଗାରେ ଶତ୍ରୁର ସମ୍ମୁଖୀନ ହୋଇ କରାଯିବା ଯୁଦ୍ଧ ନିର୍ଦ୍ୱନ୍ଦ୍ୱ ଯୁଦ୍ଧ । ନିର୍ଦ୍ୱନ୍ଦ୍ୱ ଯୁଦ୍ଧରେ ସମଭୂମିରେ ରଥ ଯୁଦ୍ଧ, ବିଷମ ଭୂମିରେ ହସ୍ତି ଯୁଦ୍ଧ, ମରୁଭୂମିରେ ଅଶ୍ୱ ଯୁଦ୍ଧ, ପାର୍ବତ୍ୟ ସ୍ଥାନରେ ପଦାତି ଯୁଦ୍ଧ ଓ ଜଳରେ ନୌକା ଯୁଦ୍ଧ କରା ଯାଉଥିଲା । ଯୁଦ୍ଧରେ ପ୍ରବୃତ୍ତ ବ୍ୟକ୍ତିମାନଙ୍କ ପାଇଁ ଗୁଡ଼ିଏ ଅବଶ୍ୟ ପାଳନୀୟ ନିୟମ ଥିଲା । ଯଥା—(୧) ରାଜା ଓ ଯୁଦ୍ଧବିଶାରଦ ପଣ୍ଡିତ ଓ ପରାମର୍ଶଦାତା ଓ ମନ୍ତ୍ରୀମାନେ ଯୁଦ୍ଧକ୍ଷେତ୍ରକୁ ଯିବେ ନାହିଁ । (୨) ରଥସ୍ଥାନ ରଥୀ, ଗଜସ୍ଥାନ ଗଜାରୋହୀ ସେନା, ଅଶ୍ୱସ୍ଥାନ ଅଶ୍ୱାରୋହୀ ସେନା ଓ ଶସ୍ତ୍ରସ୍ଥାନ ପଦାତିଙ୍କୁ ଆକ୍ରମଣ କରିବା ନିଷିଦ୍ଧ । (୩) ବାଳ, ବୃଦ୍ଧ, ନପୁଂସକ, ଅନ୍ୟାହତ ଓ ଶାନ୍ତିପତାକା ଉଡ଼ାଇବା ବ୍ୟକ୍ତିଙ୍କ ପ୍ରତି ଶସ୍ତ୍ରାସ୍ତ୍ର ପ୍ରୟୋଗ ନିଷିଦ୍ଧ । (୪) ଭଗ୍ନହସ୍ତ, ଶରଣାଗତ, ଯୁଦ୍ଧବିମୁଖ ବ୍ୟକ୍ତିକୁ ଆଘାତ କରିବା ନିଷିଦ୍ଧ । ଯୁଦ୍ଧ-କ୍ଷେତ୍ରରେ ମରିବା ବ୍ୟକ୍ତିର ସ୍ୱର୍ଗଲାଭ ଓ ଯୁଦ୍ଧରୁ ପଳାଇବା ବ୍ୟକ୍ତିର ପାତକ ବିବେଚିତ ହେଉଥିଲା । ଯୁଦ୍ଧଭୂମିରୁ ପଳାଇ ଯିବା ପାତକୀ ବ୍ୟକ୍ତି ପୁଣି ଥରେ ଯୁଦ୍ଧରେ ଯୋଗ ଦେଇ ଯୁଦ୍ଧରେ ଶୂରତା ନ ଦେଖାଇବା ପର୍ଯ୍ୟନ୍ତ ତାର ପାତକ ଦୂର ହେଉ ନ ଥିଲା (ହି. ଶ) ଯୁଦ୍ଧରେ ନାଳୀକାସ୍ତ୍ର (ବନ୍ଧୁକ), ଶତଘ୍ନୀ, (ତୋପ), ଆଗ୍ନେୟାସ୍ତ୍ର, ମୋହାସ୍ତ୍ର, ଧନୁଃଶର, ଗଦା, ଖଡ୍ଗ, ପାଶ ଆଦି, ଅସ୍ତ୍ର ଶସ୍ତ୍ର ବ୍ୟବହୃତ ହେଉଥିଲା । ସ୍ତ୍ରୀ, ବାଳକ, ମୂକ, ବୃଦ୍ଧଙ୍କୁ ବଧ କରିବା ନିଷିଦ୍ଧ ଥିଲା । ବିପକ୍ଷର ଦୂତ ମଧ୍ୟ ଅବଧ୍ୟ ଥିଲା । ଯୁଦ୍ଧରେ ନାନା ଅଲୌକିକ ଓ ମାନ୍ତ୍ରିକ ପ୍ରକ୍ରିୟା ମଧ୍ୟ କରା ଯାଉଥିଲା । ଆକାଶ ବିମାନ ମଧ୍ୟ ଯୁଦ୍ଧରେ ବ୍ୟବହୃତ ହେଉଥିଲା । ଶତ୍ରୁ ସଙ୍ଗେ ମାୟା ଯୁଦ୍ଧ ବା ଯୁଦ୍ଧରେ ମାୟା, ଛଳ ଆଦିର ପ୍ରୟୋଗ ନିଷିଦ୍ଧ ଥିଲା ।

ଯୁଦ୍ଧ କ୍ଷେତ୍ରର ନାମ ଅନୁସାରେ ବା ଯୁଦ୍ଧ କରୁଥିବା ପକ୍ଷଙ୍କ ନାମ ଅନୁସାରେ ଓ ଯୁଦ୍ଧ ହେଉଥିବା ଦେଶର ନାମ ଅନୁସାରେ ମଧ୍ୟ ଯୁଦ୍ଧର ନାମ ହୁଏ । ଯଥା—

ମରହଟ୍ଟା ଯୁଦ୍ଧ—The Marhatta war.
ପାଣିପଥ ଯୁଦ୍ଧ—The war at the field of Panipath in N. India.
ବ୍ରହ୍ମ ଯୁଦ୍ଧ—The Burmese war.
କାବୁଲ ଯୁଦ୍ଧ—The war with Kabul.
ବୁଅର୍ ଯୁଦ୍ଧ; ଅଫ୍ରିକାର ଉପନିବେଶୀଙ୍କ ସଙ୍ଗେ ଇଂରାଜଙ୍କ ଯୁଦ୍ଧ—The Boor war.
ପିଣ୍ଡାରୀ ଯୁଦ୍ଧ—The battle with the Pindaries.
ଜର୍ମାନ୍ ଯୁଦ୍ଧ—The battle with the Germans.
ମହୀଶୂର ଯୁଦ୍ଧ—The battle of Mysore (in S. India).
ଚୀନ୍ ଯୁଦ୍ଧ—The Chinese war.
ରୁଷିଆ ଯୁଦ୍ଧ—The Russian war.
ପଲାସୀ ଯୁଦ୍ଧ, ପଲାସୀ ନାମକ ସ୍ଥାନରେ ଯୁଦ୍ଧ—The battle of Plassey.
ପଶୁ ଓ ପକ୍ଷୀମାନଙ୍କ ମଧ୍ୟରେ ମଧ୍ୟ ଯୁଦ୍ଧ ହୁଏ । ଯଥା—ବୃଷ ଯୁଦ୍ଧ, ମେଷ ଯୁଦ୍ଧ, କୁକ୍କୁଟ ଯୁଦ୍ଧ ଇତ୍ୟାଦି ।]
୨ । ବିବାଦ—2. Contest; conflict. ୩ । ଦୁଇ ପକ୍ଷଙ୍କର ଶତ୍ରୁତା ହେତୁକ ବଳକଷାକଷି—3. A struggle between two antagonistic parties. ୪ । (ଜ୍ୟୋତିଷ) ଗ୍ରହମାନଙ୍କର ପରସ୍ପର ବିରୁଦ୍ଧ ଅବସ୍ଥିତି—4. (astrology) The opposition or conflict of planets (Apte).

**ଯୁଦ୍ଧ ଆଇନ୍**—ଦେ. ବି—ଯୁଦ୍ଧ ସମୟରେ ଲୋକଶାସନାର୍ଥ ପ୍ରଚଳିତ କଠୋର ବିଧାନ; ସାମରିକ ବିଧି—Martial law.
Juddha āin
ଯୁଦ୍ଧ ଆଇନ ଯୁଦ୍ଧକୀ କାନୁନ

**ଯୁଦ୍ଧଂ ଦେହି**—ସ. ବାକ୍ୟ (ତୁମେ ଯୁଦ୍ଧକୁ ଆସି ମୋ ସଙ୍ଗେ ଲଢ଼ାଇ କର)—ବିପକ୍ଷକୁ ସମ୍ମୁଖ ସମର କରିବା ପାଇଁ ଅହ୍ୱାନ—A call to an antagonist to come out to give battle; a challenge.
Juddham dehi

**ଯୁଦ୍ଧ କଣ୍ଡୁ**—ସ. ବି. ( ମ. ପ. ଲେ )—ଯୁଦ୍ଧ କରିବା ପାଇଁ ପ୍ରବଳ ବାସନା—Martial eagerness eagerness to fight.
Juddha kandu
(ଯୁଦ୍ଧ କାଣ୍ଡୁ—ବେଦଶଜ ରୂପ)

**ଯୁଦ୍ଧ କରିବା**—ଦେ. କି—ଶତ୍ରୁ ସଙ୍ଗେ ଲଢ଼ାଇ କରିବା—To fight, to engage in a battle.
Juddha kariba
ଯୁଦ୍ଧ କରା ଯୁଦ୍ଧ করনা

**ଯୁଦ୍ଧ କର୍ତ୍ତା**—ସ. ବି. ପୁଂ—ଯୋଦ୍ଧା; ଭଟ, ସୈନିକ—A warrior.
Juddha karttā
ବିଣ—ଯୁଦ୍ଧକାରକ ( ଦେଖ ) Juddha kāraka ( See )

**ଯୁଦ୍ଧ କାରକ**—ସ. ବିଣ. ପୁଂ—ଯେ ଯୁଦ୍ଧରେ ପ୍ରବୃତ୍ତ ଥାଏ—Fighting; making war; contending.
Juddha kāraka
(ଯୁଦ୍ଧକାରୀ—ଅନ୍ୟରୂପ)
(ଯୁଦ୍ଧ କାରିକା, ଯୁଦ୍ଧ କାରିଣୀ—ସ୍ତ୍ରୀ)

**ଯୁଦ୍ଧ କୁଶଳ**—ସ. ବିଣ. ପୁଂ. (୭ମୀ ତତ୍)—ଯୁଦ୍ଧ କରିବାରେ ପଟୁ ବା ପାରଦର୍ଶୀ ।—Skilful in war.
Juddha kuśala
(ଯୁଦ୍ଧକୁଶଳା—ସ୍ତ୍ରୀ) [ ଯୁଦ୍ଧଦକ୍ଷ, ଯୁଦ୍ଧପଟୁ, ଯୁଦ୍ଧ ନିପୁଣ—ଅନ୍ୟରୂପ । ]

**ଯୁଦ୍ଧ କୌଶଳ**—ସ. ବି. ( ୬ଷ୍ଠୀ ତତ୍ )—ଯୁଦ୍ଧ କରିବା ବିଷୟରେ ନୈପୁଣ୍ୟ—Manœuvre; skill in war
Juddha kauśala

**ଯୁଦ୍ଧ କ୍ଷମ**—ସ. ବିଣ. ପୁଂ (୪ର୍ଥୀ ତତ୍ ବା ୭ମୀ ତତ୍)—ଯୁଦ୍ଧ କରିବା ପାଇଁ ସମର୍ଥ ବା ବଳଶାଳୀ—Able to fight; able-bodied for fighting.
Juddha kshama
(ଯୁଦ୍ଧ କ୍ଷମା—ସ୍ତ୍ରୀ)

**ଯୁଦ୍ଧ କ୍ଷୟ**—ସ. ବି—୧ । ( ୬ଷ୍ଠୀ ତତ୍ )ଯୁଦ୍ଧର ଅବସାନ—1. Cessation of battle. ୨ । (ମ. ପ. ଲେ) ଯୁଦ୍ଧଜନିତ ଲୋକ ଓ ବଳ ଆଦିର କ୍ଷୟ—2. Loss of men and strength due to war.
Juddha kshaya

**ଯୁଦ୍ଧ କ୍ଷାନ୍ତି**—ସ. ବି ( ୫ମୀ ତତ୍ )—ଯୁଦ୍ଧ ନିବୃତ୍ତି ( ଦେଖ ) Juddha nibrutti ( See )
Juddha kshānti

**ଯୁଦ୍ଧ କ୍ଷେତ୍ର**—ସ. ବି—ଯେଉଁ ସ୍ଥାନରେ ଯୁଦ୍ଧ ଲାଗେ—Battlefield; the scene of battle.
Juddha kshetra

**ଯୁଦ୍ଧ ଜୟ**—ସ. ବି ( ୭ମୀ ତତ୍ )—ଯୁଦ୍ଧରେ ଜୟଲାଭ—Victory in battle.
Juddha jaya

**ଯୁଦ୍ଧ ଜାହାଜ**—ଦେ. ବି—ଯୁଦ୍ଧ ପୋତ ( ଦେଖ ) Juddha pota ( See )
Juddha jāhāja
ଯୁଦ୍ଧଜାହାଜ ଯୁଦ୍ଧ जहाज

**ଯୁଦ୍ଧଜ୍ଞ**—ସ. ବିଣ. ପୁଂ—୧ । ଯୁଦ୍ଧ ବିଦ୍ୟାରେ ପଣ୍ଡିତ—1. Versed in the military art. ୨ । ଯୁଦ୍ଧ କୁଶଳ (ଦେଖ)—2. Juddha kuśala (See)
Juddhajña
ଯୁଦ୍ଧ ଜ୍ଞାତା, ଯୁଦ୍ଧ ପଣ୍ଡିତ } ଅନ୍ୟରୂପ
(ଯୁଦ୍ଧଜ୍ଞା—ସ୍ତ୍ରୀ)

**ଯୁଦ୍ଧ ଢକ୍କା**—ସ. ବି (ମ. ପ. ଲେ)—ରଣ ଢକ୍କା; ଯୁଦ୍ଧରେ ବ୍ୟବହୃତ ଢୋଲ—Battle drum. [ଦ୍ର—ଏହିପରି ଯୁଦ୍ଧ ବାଦ୍ୟ, ଯୁଦ୍ଧ ଭେରୀ,ଯୁଦ୍ଧ ଶୃଙ୍ଗ ଆଦି ହୁଏ]
Juddha dhakkā

**ଯୁଦ୍ଧ ତରୀ**—ସ.ବି—ଯୁଦ୍ଧ ପୋତ (ଦେଖ)—Juddha pota (See)
Juddha tari

**ଯୁଦ୍ଧ ତଳ**—ସ. ବି—ଯୁଦ୍ଧଭୂମି—Battlefield. [ ଉ—କେତେ ହାତୀଙ୍କର ଯାଅନ୍ତେ ମୁଣ୍ଡ ଫାଟି । ଯୁଦ୍ଧତଳେ ହେଲା ମୁକୁତା ଧାର ବୃଷ୍ଟି । କୃଷ୍ଣସିଂ. ମହାଭାରତ.କର୍ଣ୍ଣ ।]
Juddha tala

**ଯୁଦ୍ଧ ଦକ୍ଷ**—ସ. ବିଣ. ପୁଂ—ଯୁଦ୍ଧ କୁଶଳ ( ଦେଖ )—Juddha kuśala (See).
Juddha daksha
(ଯୁଦ୍ଧ ଦକ୍ଷା—ସ୍ତ୍ରୀ)
(ଯୁଦ୍ଧନିପୁଣ—ଅନ୍ୟରୂପ)

**ଯୁଦ୍ଧ ଦାତା**—ସ. ବିଣ - ଯେ ଯୁଦ୍ଧ କରିବାକୁ ବାହାରେ—One who comes out to fight; one who gives battle.
Juddha dātā

**ଯୁଦ୍ଧ ଦାଣ୍ଡ**—ଦେ. ବି—ଯୁଦ୍ଧସ୍ଥଳ—Battlefield. [ଉ—ମୋତେ
Juddha dānda ଦେଖା ଦେଲ ଆସି ସେ ଯୁଦ୍ଧଦାଣ୍ଡେ।
ଯୁଦ୍ଧଭୂମି **युद्धभूइँ** କୃଷ୍ଣସିଂହ. ମହାଭାରତ. ବନ।]

**ଯୁଦ୍ଧ ଦେବା**—ଦେ. କ୍ରି—(ଭୁଲ. ସଂ. ଯୁଦ୍ଧଂ ଦେହି)—(କୌଣସି
Juddha debā ବ୍ୟକ୍ତି ସଙ୍ଗେ) ଯୁଦ୍ଧରେ ପ୍ରବୃତ୍ତ ହେବା—
ଯୁଦ୍ଧଦେଓୟା **युद्ध देना** To be engaged in fight (with);
to give battle)

**ଯୁଦ୍ଧ ଦ୍ୟୁତ**—ସଂ. ବି. (ରୂପକ)—ଜୁଆଖେଳ ସଙ୍ଗେ ତୁଳନୀୟ ଯୁଦ୍ଧ—
Juddha dyuta Chance of war (Apte).

**ଯୁଦ୍ଧ ନିବୃତ୍ତି**—ସଂ. ବି—(୬ଷ୍ଠୀ ତତ୍; ଯୁଦ୍ଧ + ନିବୃତ୍ତି)—୧। ଯୁଦ୍ଧ
Juddha nibrutti ବନ୍ଦ ହେବା—1. Cessation of
hostilities; armistice. ୨। ସନ୍ଧି—
2. Truce.

**ଯୁଦ୍ଧ ନୀତି**—ସଂ ବି—୧। ଯୁଦ୍ଧ କରିବା ସମ୍ବନ୍ଧେ ନିୟମାଦି—1. The
Juddha niti laws or rules for conducting a
war. ୨। ଯୁଦ୍ଧ ବିଦ୍ୟା (ଦେଖ)—2. Juddha
bidyā (See).

**ଯୁଦ୍ଧ ପରାଙ୍ମୁଖ**—ସଂ ବିଣ. ପୁଂ (୭ମୀ ତତ୍)—୧। ଯୁଦ୍ଧ କରିବାକୁ
Juddha parāṅmukha ଇଚ୍ଛୁକ—1. Unwilling to
(ଯୁଦ୍ଧପରାଙ୍ମୁଖୀ—ସ୍ତ୍ରୀ) fight; averse to war. ୨। ଯେ
ଯୁଦ୍ଧ ଭୂମିରୁ ପଳାଇ ଯାଇଥାଏ—2 Fleeing from
the battlefield; fugitive.

**ଯୁଦ୍ଧ ପୋତ**—ସ.ବି—(ମ.ପ.ଲେ)—ରଣତରୀ; ଯେଉଁ ଜାହାଜରେ ଚଢ଼ି
Juddha pota ଯୋଦ୍ଧାମାନେ ଅପର ପକ୍ଷ ସଙ୍ଗେ ଯୁଦ୍ଧ କରନ୍ତି—
(ଯୁଦ୍ଧ ତରୀ—ଅନ୍ୟରୂପ) Warship; man-o-war.
(ଦ୍ର—ଆଜିକାଲି ନାନା ପ୍ରକାର କଳ, କୌଶଳ ଓ
ଆଗ୍ନେୟାସ୍ତ୍ରଯୁକ୍ତ ଜାହାଜମାନ ପାଶ୍ଚାତ୍ୟ ରଣକୁଶଳ
ଜାତିମାନେ ଆବିଷ୍କାର ଓ ବ୍ୟବହାର କରୁଅଛନ୍ତି। ଯଥାଃ—
ତୋପ ଜାହାଜ—Gun ship. ବୁଡ଼ା ଜାହାଜ—
Torpedo. ବୁଲା ଜାହାଜ—Cruiser. ଉଡ଼ା
ଜାହାଜ—Sea plane।)

**ଯୁଦ୍ଧ ପୋଷାକ**—ଦେ. ବି—ଯୁଦ୍ଧ ସଜ (ଦେଖ)—Juddha saja
Juddha poshāka (See).

**ଯୁଦ୍ଧ ପ୍ରତ୍ୟାଗତ**—ସଂ. ବିଣ ପୁଂ (୫ମୀ ତତ୍)—ଯୁଦ୍ଧ କରି ଯୁଦ୍ଧ-
Juddha pratyāgata କ୍ଷେତ୍ରରୁ ଫେରି ଆସିଥିବା (ଯୋଦ୍ଧା)—
(ଯୁଦ୍ଧପ୍ରତ୍ୟାଗତା—ସ୍ତ୍ରୀ) (a warrior) Returned from
the field of battle.

**ଯୁଦ୍ଧ ପ୍ରାଙ୍ଗଣ**—ସ. ବି—ଯୁଦ୍ଧକ୍ଷେତ୍ର (ଦେଖ)—Juddha kshetra
Juddha prāṅgana (See)

**ଯୁଦ୍ଧ ପ୍ରାପ୍ତ**—ସଂ. ବିଣ (୩ୟା ତତ୍)—୧। ଯୁଦ୍ଧରେ ବନ୍ଦୀକୃତ ବ୍ୟକ୍ତି
Juddha prāpta (ସ୍ମୃ. ଶା.)—1. Taken as a
prisoner of war. [ଦ୍ର—ସ୍ମୃତିଶାସ୍ତ୍ର ମତରେ
ବାର ପ୍ରକାର ଦାସଙ୍କ ମଧ୍ୟରୁ ଯୁଦ୍ଧପ୍ରାପ୍ତ ଦାସ ଏକତମ।]
୨। ଯୁଦ୍ଧରେ ମିଳିଥିବା (ଧନାଦି)—2. Taken as
booty in war.

**ଯୁଦ୍ଧପ୍ରିୟ**—ସଂ. ବିଣ. ପୁଂ (ବହୁବ୍ରୀହି)—ଯେ ଯୁଦ୍ଧ କରିବାକୁ ସୁଖ ପାଏ
Juddhapriya —Fond of war; warlike.
(ଯୁଦ୍ଧପ୍ରିୟା—ସ୍ତ୍ରୀ) (ଯୁଦ୍ଧପ୍ରିୟତା—ବି)

**ଯୁଦ୍ଧ ବନ୍ଦୀ**—ସ ବି—ଯୁଦ୍ଧରେ ପରାଜିତ ହୋଇ ରଖାଯାଇ ଥିବା କଏଦୀ
Juddha bandī —Prisoner of war.

**ଯୁଦ୍ଧ ବିକ୍ରମ**—ସ. ବି (୭ମୀ ତତ୍)—ଯୁଦ୍ଧରେ ପ୍ରଦର୍ଶିତ ସାହସ—
Juddha bikrama Martial courage; valour in
(ଯୁଦ୍ଧବିକ୍ରମୀ—ବିଣ. ପୁଂ) fight.

**ଯୁଦ୍ଧ ବିଗ୍ରହ**—ସ. ବି (ସହଚର ଶବ୍ଦ)—ସଂଗ୍ରାମାଦି—
Juddha bigraha Battle; conflict etc.

**ଯୁଦ୍ଧ ବିଜ୍ଞାନ**—ସ. ବି—ଯୁଦ୍ଧ ସମ୍ବନ୍ଧୀୟ ବିବିଧ ନିୟମ ଓ କୌଶଳାଦି
Juddha bijnāna ଯେଉଁ ବିଦ୍ୟାରୁ ଶିକ୍ଷା କରାଯାଏ—
ଯୁଦ୍ଧ ବିଦ୍ୟା } ଅନ୍ୟରୂପ The art of war, the
ଯୁଦ୍ଧ ଶାସ୍ତ୍ର } military science or art.

**ଯୁଦ୍ଧ ବିଦ୍ୟାଳୟ**—ସ. ବି—ଯେଉଁ ବିଦ୍ୟାଳୟରେ ଯୁଦ୍ଧବିଦ୍ୟା ଶିକ୍ଷା
Juddha bidyālaya ଦିଆଯାଏ—A school or
college for military training.

**ଯୁଦ୍ଧ ବିଭାଗ**—ସ. ବି—ସରକାରଙ୍କ ପଲଟଣ ବିଭାଗ; ସୈନ୍ୟ ବିଭାଗ—
Juddha bibhāga The military department.
[ଦ୍ର—ଆଧୁନିକ ଯୁଦ୍ଧ ବିଭାଗର ଅନେକଗୁଡ଼ିଏ ଉପବିଭାଗ
ଅଛି। ଯଥା—ସ୍ଥଳ ସୈନ୍ୟ ବିଭାଗ—The Army
department.
ନୌ ବିଭାଗ—The Navy department;
Admirality.
ବ୍ୟୋମଯାନ ବିଭାଗ—The Air department.
ସ୍ୱେଚ୍ଛା ସୈନ୍ୟ ବିଭାଗ—The Volunteer department.
ରସଦ ଯୋଗାଇବା ବିଭାଗ—The Supply or
Commissariat department.
ସୈନ୍ୟ ସଂଗ୍ରହକାରୀ ବିଭାଗ—The recruiting
department.
ପୂର୍ତ୍ତ ବିଭାଗ—The Engineering department.
ଅସ୍ତ୍ର ଓ ବାରୁଦରଖା ବିଭାଗ—The Ammunition
department.
ଏହିପରି ନାନା ଉପବିଭାଗର ସୃଷ୍ଟି ଓ ନାମକରଣ ହୋଇ-
ଅଛି।]

**ଯୁଦ୍ଧ ବିମୁଖ**—ସଂ. ବିଣ. ପୁଂ (୭ମୀ ତତ୍; ଯୁଦ୍ଧ + ବିମୁଖ)—
Juddha bimukha ଯୁଦ୍ଧ ପରାଙ୍ମୁଖ (ଦେଖ)
(ଯୁଦ୍ଧବିମୁଖା—ସ୍ତ୍ରୀ) Juddha parāṅmukha (See)
(ଯୁଦ୍ଧବିମୁଖତା—ବି)

**ଯୁଦ୍ଧ ବିରତି**—ସଂ. ବି (୫ମୀ ତତ୍)—ଯୁଦ୍ଧ ନିବୃତ୍ତି (ଦେଖ)
Juddha birati Judda nibrutti (See)
(ଯୁଦ୍ଧ ବିରାମ—ଅନ୍ୟରୂପ) (ଯୁଦ୍ଧବିରତ—ବିଣ. ପୁଂ)

ଯୁଦ୍ଧ ବିଶାରଦ—ସଂ. ବିଣ. ପୁଂ (୭ମୀ ତତ୍)—୧ । ଯୁଦ୍ଧଜ୍ଞ (ଦେଖ)
Juddha bisārada 1. Juddhajña ( See )
(ଯୁଦ୍ଧ ବିଶାରଦା—ସ୍ତ୍ରୀ) ୨ । ଯୁଦ୍ଧ କୁଶଳ ( ଦେଖ )
2. Juddha kusala ( See )

ଯୁଦ୍ଧ ବ୍ରୀଡ଼ା—ସଂ. ବି.—( ମ. ପ. ଲୋ.)—ପରାଜୟଜନିତ ଲଜ୍ଜା—
Juddha brīḍā The shame due to defeat in a battle. [ ଉ—ଏରୂପେ ସେ ଦେବଙ୍କ ସମ୍ପାଦିଣ ପୀଡ଼ା, ଛଡ଼ାଇଲା ଦୈତ୍ୟମାନଙ୍କ ଯୁଦ୍ଧବ୍ରୀଡ଼ା ।]

ଯୁଦ୍ଧ ଭଙ୍ଗ—ସଂ. ବି.—୧ । (୬ଷ୍ଠୀ ତତ୍) ଯୁଦ୍ଧନିବୃତ୍ତି (ଦେଖ)
Juddha bhanga 1. Juddha nibrutti (See)
୨ । (୬ମୀ ତତ୍) ରଣ ଭଙ୍ଗ, ଯୁଦ୍ଧରୁ ଛିନ୍ନଭିନ୍ନ ହୋଇ ପଳାଇ ଯିବା—2. A rout. ୩ । (୭ମୀ ତତ୍) ଶତ୍ରୁ ସୈନ୍ୟର ଶ୍ରେଣୀଭଙ୍ଗ—3. The breaking of the enemy's lines or ranks.

ଯୁଦ୍ଧ ଭୂମି—ସ.ବି.—(୬ଷ୍ଠୀ ତତ୍)—ଯୁଦ୍ଧ କ୍ଷେତ୍ର; ରଣ ଭୂଇଁ—
Juddha bhūmi Battle-field; seat of war.
(ଯୁଦ୍ଧ ଭୂଇଁ—ଦେ॰ ରୂପ) [ଯୁଦ୍ଧଭୂ—ଅନ୍ୟରୂପ]

ଯୁଦ୍ଧ ମତ୍ତ—ସଂ. ବିଣ. ପୁଂ—(୩ୟା ତତ୍; ବା ୭ମୀ ତତ୍)—ରଣ-
Juddha matta ମଦରେ ମାତ୍ତ ଥିବା—Intoxicated
[ଯୁଦ୍ଧ ମତ୍ତା—ସ୍ତ୍ରୀ] with a rage for fighting; in the rage of battle.

ଯୁଦ୍ଧମଦ—ସଂ. ବି.—(ମ. ପ. ଲୋ.; ଯୁଦ୍ଧ ଜନ୍ୟ ମଦ)—ରଣମଦ;
Juddha mada ଯୁଦ୍ଧ କରିବା ପାଇଁ ଯୋଦ୍ଧାମାନଙ୍କ ମନରେ ଜନ୍ମିବା ନିଶା—Martial fury; intoxication of battle.

ଯୁଦ୍ଧ ମାଗିବା—ଦେ. କ୍ରି.—କୌଣସି ବ୍ୟକ୍ତିଙ୍କୁ ଯୁଦ୍ଧ କରିବାକୁ
Juddha māgibā ଆହ୍ୱାନ କରିବା—To challenge a person to fight; to challenge a person to come forward to fight with the challenger.

ଯୁଦ୍ଧ ମାର୍ଗ—ସଂ. ବି.—୧ । (୬ଷ୍ଠୀ ତତ୍) ଯୁଦ୍ଧ କୌଶଳ—
Juddha mārga 1. Military stratagems or tactics; manoeuvres (Apte). ୨। (ରୂପକ) ଯୁଦ୍ଧରୂପ ମାର୍ଗ—2, Battle compared to a path. ୩ । ଅଭୀଷ୍ଟଲାଭାର୍ଥ ଅବଲମ୍ବିତ ଯୁଦ୍ଧରୂପ ଉପାୟ—3. Recourse to war for gaining one's aims.

ଯୁଦ୍ଧ ବିଶ୍ରାମ—ସଂ. ବିଣ (୬ମୀ ତତ୍)—ଯୁଦ୍ଧାଭ୍ୟନ୍ତର ବିଶ୍ରାମ (ଦେଖ)
Juddha bisrāma Juddhābhyantara bisrāma (See)

ଯୁଦ୍ଧବୀର—ସଂ. ବି (୭ମୀ ତତ୍)—୧ । ରଣ ବିଷୟରେ; ବୀର, ପ୍ରଧାନ
Juddha bīra ଯୋଦ୍ଧା—1. A valiant hero or champion. ୨ । (ଅଳଙ୍କାର) ଯୁଦ୍ଧ ବିକ୍ରମ ଜନିତ ବୀର ରସ—2. (in Rhetoric) The sentiment of heroism arising out of military prowess; the sentiment of chivalrous heroism. (Apte)

ଯୁଦ୍ଧମୁଖ—ସଂ.ବି—(୬ଷ୍ଠୀ ତତ୍)—ଉଭୟ ସେନା ମିଳିତ ହେବା ସ୍ଥାନ;
Juddha mukha ଯୁଦ୍ଧର ସମ୍ମୁଖୀନ ସେନା ଶ୍ରେଣୀ—The
(ଯୁଦ୍ଧ ମୁହଁ - ଦେ. ରୂପ) front of battle; the front-line of battle; the brunt of fight.

ଯୁଦ୍ଧଯନ୍ତ୍ର—ସଂ. ବି (ମ. ପ. ଲୋ)—ଯୁଦ୍ଧାର୍ଥ ବ୍ୟବହୃତ ଯନ୍ତ୍ର ବା କଳ—
Juddha jantra Machines of war, warlike machines.

ଯୁଦ୍ଧ ଯାତ୍ରା—ସ. ବି.—(୪ର୍ଥୀ. ଯୁଦ୍ଧାର୍ଥ ଯାତ୍ରା)—ଅଭିଯାନ; ଯୁଦ୍ଧ
Juddha jātrā କରିବା ପାଇଁ ବାହାରିବା—A military expedition; a marching out to fight; a battle-march.

ଯୁଦ୍ଧ ଯାତ୍ରୀ—ସ. ବିଣ.—(ମ. ପ. ଲୋ;)—ଯୁଦ୍ଧ କ୍ରମରେ ଯାତ୍ରା କରୁ-
Juddha jātri ଥିବା—Marching in battle array; expeditionary.

ଯୁଦ୍ଧ ଯାନ—ସ. ବି.—(ମ. ପ. ଲୋ)—ଯୁଦ୍ଧରେ ବ୍ୟବହୃତ ଯାନ—
Juddha jāna Vehicles used in war.

ଯୁଦ୍ଧ ରଙ୍ଗ—ସ. ବି.—୧ । (ରୂପକ) ଯୁଦ୍ଧରୂପ ନାଟକର ଅଭିନୟ—
Juddha ranga 1. Actual fight; the revelry of battle. ୨ । ( ବହୁବ୍ରୀହି ) ଦେବସେନାପତି; କାର୍ତ୍ତିକେୟ, ଷଡ଼ାନନ--2. The God Kārttikeya, the leader of the divine hosts. ୩ । (୬ଷ୍ଠୀ ତତ୍) ଯୁଦ୍ଧଭୂମି (ହ୍ର. ଶ.)—
3. Battlefield (Apte).

ଯୁଦ୍ଧ ରଥ—ସ. ବି.— (ମ. ପ. ଲୋ.)—ଯୁଦ୍ଧରେ ବ୍ୟବହୃତ ରଥ—
Juddha ratha War chariots; vehicles used by warriors while fighting.

ଯୁଦ୍ଧ ରୀତି—(୬ଷ୍ଠୀ ତତ୍)—ଯୁଦ୍ଧ କରିବାର ପଦ୍ଧତି ବା ପ୍ରଣାଳୀ—
Juddha rīti The mode or manner of fighting.

ଯୁଦ୍ଧଶାଳୀ—ସ. ବିଣ. ପୁଂ—୧ । (ଯୁଦ୍ଧ + ଅଚ୍ଛ ଅର୍ଥରେ ଶାଳନ୍, ୧ମା
Juddha śāli ଏ.ବ.)—୧ । ଯୁଦ୍ଧ କର୍ମରେ ବ୍ୟାପୃତ—
1. Engaged in fighting. [ ଉ - ,ସାତ୍ୟକି ବୀର୍ଯ୍ୟସ୍ତ ମୂର୍ଖ ଭୂରୁର ସୈନ୍ୟ ହେଲ, ସେ ଗଲେ ସେ ଆଉ କୋହିଲେ ଯୁଦ୍ଧଶାଳୀ । କୃଷ୍ଣସିଂ. ମହାଭାରତ. ଦ୍ରୋଣ]
୨ । ଯୁଦ୍ଧରେ ବିକ୍ରମୀ; ଯୁଦ୍ଧ ପ୍ରିୟ—
2. Valiant; heroic; warlike (Apte).

ଯୁଦ୍ଧ ଶିକ୍ଷା—ସ. ବି.—( ୬ଷ୍ଠୀ ତତ୍ )—ଯୁଦ୍ଧ ବିଦ୍ୟା ଶିଖିବା—
Juddha śikshā Training for war; military training.

ଯୁଦ୍ଧ ଶୁକ୍ରବାର—ଗ୍ରା. ବି.—ବହୁ ଲୋକକ୍ଷୟକାରୀ ଯୁଦ୍ଧ—A destructive war..
Juddha śukrabāra
ଲୋକ କ୍ଷୟକାରୀ ଯୁଦ୍ଧ

ଲୋକକ୍ଷୟକାରୀ ଯୁଦ୍ଧ [ଉ—ମୋ ଦେହକେ ଏରୂପେ ଯୁଦ୍ଧ ଶୁଣିବାର, କର ନାହିଁ ଅଛେ ଅର୍ଜୁନ ସାର । କୃଷ୍ଣସିଂହ. ମହାଭାରତ. ବନ ।]

ଯୁଦ୍ଧ ସଂବା(ମ୍ବା)ଦ—ସଂ. ବି.—(୬ଷ୍ଠୀ ତତ୍)—ଯୁଦ୍ଧବିଷୟକ ବିବରଣ—
Juddha samba(mba)da News of war; war news.

ଯୁଦ୍ଧ ସଚିବ—ସଂ. ବି. ରାଜାଙ୍କୁ ଯୁଦ୍ଧ ସମ୍ବନ୍ଧେ ପରାମର୍ଶ ଦେବା ମନ୍ତ୍ରୀ—
Juddha sachiba War-minister, the minister for war.

ଯୁଦ୍ଧ ସଜ୍ଜା—ସଂ. ବି.—(ମ. ପ. ଲୋ;)—୧ । ରଣସଜ୍ଜା; ସଂଗ୍ରାମାର୍ଥ
Juddha sajjā ବେଶଭୂଷା—1. The accoutrements or equipments for battle; a warrior's dress. ୨ । ବର୍ମ; ସାଞ୍ଜୁ—2. Armour. ୩ । ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ହୋଇ ରହିବା; ଯୁଦ୍ଧ ପାଇଁ ସଜ ହେବା—3. Preparations for a battle. ୪ । ଯୁଦ୍ଧ ନିମନ୍ତେ ଶ୍ରେଣୀବଦ୍ଧ ହେବା; ବ୍ୟୂହରଚନ—4. Battle-array.

ଯୁଦ୍ଧ ସ(ସା)ଜ—ଦେ. ବି—(ସ 'ଯୁଦ୍ଧ ସଜ୍ଜା')—ଯୁଦ୍ଧ ସଜ୍ଜା (ଦେଖ)
Juddha sa(sā)ja Juddha sajjā (see)
যুদ্ধের সাজ যুদ্ধ সাজ

ଯୁଦ୍ଧ ସାଧନ—ସଂ. ବି.—(୬ଷ୍ଠୀ ତତ୍)—ଯୁଦ୍ଧ କରିବାର ଉପକରଣ-
Juddha sādhana ମାନ—The sinews of war, [ଯୁଦ୍ଧ ସାମଗ୍ରୀ—ଅନ୍ୟରୂପ] war materials; military stores; arms and ammunition.

ଯୁଦ୍ଧସାର—ସଂ. ବି (ଯୁଦ୍ଧ + ସୃ. ଧାତୁ=ଗମନ କରିବା + କର୍ତ୍ତୃ. ଅ)—
Juddhasāra ଘୋଟକ; ଅଶ୍ୱ—Horse.

ଯୁଦ୍ଧ ସୃଷ୍ଟି—ଦେ. ବି—ଯୁଦ୍ଧଭୂମି; ଯୁଦ୍ଧକ୍ଷେତ୍ର--Battle-field. (ଉ—
Juddha srushti ଏ ସକାଶୁଁ ଲୁଅପଥର ପର ବୃଷ୍ଟି, ଲୁଅନ୍ତେ ଶରେ ପୂରିଗଲା ଯୁଦ୍ଧସୃଷ୍ଟି । କୃଷ୍ଣସିଂହ. ମହାଭାରତ. ଦ୍ରୋଣ । )

ଯୁଦ୍ଧ ସ୍ଥଳ—ସଂ. ବି (୬ଷ୍ଠୀ ତତ୍)—ଯୁଦ୍ଧକ୍ଷେତ୍ର—
Juddha sthaḷa Battlefield; the scene of battle.

ଯୁଦ୍ଧ ହସ୍ତୀ—ସଂ. ବି (ମ. ପ. ଲୋ)—ଯୁଦ୍ଧ କାର୍ଯ୍ୟରେ ସାହାଯ୍ୟ କରିବା
Juddha hasti ପାଇଁ ନିଯୋଜିତ ହସ୍ତୀ—War elephants; elephants employed or utilized for purposes of war.

ଯୁଦ୍ଧା(ଦ୍ଧି)—ଗ୍ରା. ବି ଓ ବିଣ (ସଂ. ଯୋଦ୍ଧା)—ଯୋଦ୍ଧା (ଦେଖ)
Juddhā(ddhi) Joddhā (See)

ଯୁଦ୍ଧାକାଙ୍କ୍ଷା—ସଂ. ବି (୬ଷ୍ଠୀ ତତ୍)—ଯୁଦ୍ଧ କରିବାକୁ ଇଚ୍ଛା—
Juddhākāṅkshā A desire for war.

ଯୁଦ୍ଧାକାଙ୍କ୍ଷୀ—ସଂ. ବିଣ. ପୁଂ (୭ମୀ ତତ୍)--ଯୁଦ୍ଧ କରିବା ପାଇଁ ଇଚ୍ଛୁକ—
Juddhākāṅkshi Desirious of war.
( ଯୁଦ୍ଧାକାଙ୍କ୍ଷିଣୀ—ସ୍ତ୍ରୀ )

ଯୁଦ୍ଧାଚାର୍ଯ୍ୟ—ସଂ. ବି (ମ. ପ. ଲୋ)—ଯୁଦ୍ଧବିଦ୍ୟା ଶିକ୍ଷାଦେବା ଗୁରୁ—
Juddhācharjya A military preceptor (Apte)

ଯୁଦ୍ଧାଜୀବ—ସଂ. ବି (ବହୁବ୍ରୀହି, ଯୁଦ୍ଧ ଅଟେ ଆଜୀବ=ଜୀବିକା
Juddhājiba ଯାହାର)—୧ । ଯୋଦ୍ଧା—1. Warrior. ୨ । ସୈନ୍ୟରୂପେ ଜୀବିକା ନିର୍ବାହ କରିବା ବ୍ୟକ୍ତି—2. A soldier by profession; a mercenary soldier.

ଯୁଦ୍ଧାନୁସନ୍ଧାନ—ସଂ. ବି (୬ଷ୍ଠୀ ତତ୍)—ଯୁଦ୍ଧ କରିବା ପାଇଁ ସୁବିଧା
Juddhānusandhāna ଖୋଜି ବୁଲିବା—The seeking (ଯୁଦ୍ଧାନ୍ୱେଷଣ—ଅନ୍ୟରୂପ) of occasions for making war.

ଯୁଦ୍ଧାନୁସନ୍ଧାନୀ—ସଂ. ବିଣ. ପୁଂ—ଯେ ଯୁଦ୍ଧ କରିବା ପାଇଁ ସୁବିଧା
Juddhānusandhāni ଖୋଜୁଥାଏ—Seeking occa- (ଯୁଦ୍ଧାନ୍ୱେଷକ, ଯୁଦ୍ଧାନ୍ୱେଷୀ—ଅନ୍ୟରୂପ) sions for war.

ଯୁଦ୍ଧାବସର—ସଂ. ବି—୧ । (୭ମୀ ତତ୍) ଯୁଦ୍ଧ ମଧ୍ୟରେ ମିଳିବା ବିଶ୍ରାମ;
Juddhābasara 1. Truce; a temporary cessation of hostilities. ୨ । (ମ. ପ. ଲୋ) ଯୁଦ୍ଧ ହେବା ପାଇଁ ସୁଯୋଗ—2. An occasion for war.

ଯୁଦ୍ଧାବସାନ—ସଂ. ବି (୬ଷ୍ଠୀ ତତ୍)—୧ । ଯୁଦ୍ଧନିବୃତ୍ତି—1. The
Juddhābasāna cessation of hostilities ୨ । ଯୁଦ୍ଧର ଶେଷ—2. The end of fighting.

ଯୁଦ୍ଧାଭିଳାଷ—ସଂ. ବି—ଯୁଦ୍ଧାକାଙ୍କ୍ଷା (ଦେଖ)
Juddhābhiḷāsha Juddhākāṅkshā (See)

ଯୁଦ୍ଧାଭିଳାଷୀ—ସଂ. ବିଣ. ପୁଂ—ଯୁଦ୍ଧାକାଙ୍କ୍ଷୀ (ଦେଖ)—
Juddhābhiḷāshi Juddhākāṅkshi. (See)
( ଯୁଦ୍ଧାଭିଳାଷିଣୀ—ସ୍ତ୍ରୀ )

ଯୁଦ୍ଧାଭ୍ୟନ୍ତର ବିଶ୍ରା(ଶ୍ରା)ମ—ସଂ. ବି—ଯୁଦ୍ଧରୁ ଉଭୟ ପକ୍ଷ କିଛିକାଳ ପାଇଁ
Juddhābhyantara bisrā(rā)ma ନେବା ବିଶ୍ରାମ—A truce; a temporary cessation of hostilities.

ଯୁଦ୍ଧାଭ୍ୟାସ—ସଂ. ବି—୧ । ଯୁଦ୍ଧବିଦ୍ୟା ଶିକ୍ଷା—1. The training
Juddhābhyāsa for war. ୨ । କ୍ରୀଡ଼ାଯୁଦ୍ଧଦ୍ୱାରା ଯୁଦ୍ଧବିଦ୍ୟା ଶିକ୍ଷା—2. Training given by means of mock fighting; manoeuvres.

ଯୁଦ୍ଧାୟୋଜନ—ସଂ. ବି (ମ. ପ. ଲୋ;—ଯୁଦ୍ଧ ପାଇଁ ଉଦ୍ୟମ ଓ
Juddhāyojana ଉପକରଣାଦି ସଂଗ୍ରହ—Warlike preparations; preparations for war.

ଯୁଦ୍ଧାରମ୍ଭ—ସଂ. ବି (୬ଷ୍ଠୀ ତତ୍)—ଯୁଦ୍ଧର ପ୍ରଥମ ଚେଷ୍ଟା ବା ଅବସ୍ଥା—
Juddhārambha The beginning of battle, the commencement of hostilities.

ଯୁଦ୍ଧାର୍ଥ(ର୍ଥେ)—ଦେ. ଅ (ସଂ. ଯୁଦ୍ଧାର୍ଥଂ)—ଯୁଦ୍ଧ କରିବା ପାଇଁ—
Juddhārtha(rthe) For the purpose of war.
যুদ্ধার্থ যুদ্ধার্থে

ଯୁଦ୍ଧାର୍ଥୀ—ସଂ. ବିଣ. ପୁଂ (ଉପପଦ ତତ୍ପୁରୁଷ)—ଯୁଦ୍ଧାକାଙ୍କ୍ଷୀ (ଦେଖ)
Juddhārthi Juddhākāṅkshi. (See)
( ଯୁଦ୍ଧାର୍ଥିନୀ—ସ୍ତ୍ରୀ )

ଯୁଦ୍ଧାଶ୍ୱ—ସଂ. ବି. -(ମ. ପ. ଲୋ)—ଯୁଦ୍ଧରେ ନିଯୋଜିତ ଘୋଡ଼ା—
Juddhāswa War-horse; steed.

ଯୁଦ୍ଧାସ୍ତ୍ର ସ. ବି. (ମ. ପ. ଲୋ)—ଯୁଦ୍ଧରେ ବ୍ୟବହୃତ ଅସ୍ତ୍ର—
Juddhāstra Weapons of war.

ଯୁଦ୍ଧିବା—ଗ୍ରା. କି. (ସ. ଯୁଧ୍ ଧାତୁ)—ଯୁଝିବା; ଯୁଦ୍ଧ କରିବା—
Juddhibā To fight.

ଯୁଦ୍ଧେଚ୍ଛା—ସ. ବି—ଯୁଦ୍ଧାକାଙ୍କ୍ଷା ( ଦେଖ )
Juddhechchhā Juddhākānkshā ( See )
(ଯୁଦ୍ଧେଚ୍ଛୁ, ଯୁଦ୍ଧେଚ୍ଛୁକ—ବିଣ)

ଯୁଦ୍ଧୋଦ୍ୟତ—ସ. ବିଣ. ପୁଂ (୭ମୀ ତତ୍)-ଯୁଦ୍ଧ କରିବାକୁ ପ୍ରସ୍ତୁତ—
Juddhodyata Ready to fight.
(ଯୁଦ୍ଧୋଦ୍ୟତା—ସ୍ତ୍ରୀ)

ଯୁଦ୍ଧୋଦ୍ୟମ—ସ. ବି. (ମ. ପ. ଲୋ)—ଯୁଦ୍ଧ ପାଇଁ ପ୍ରସ୍ତୁତ ହେବା—
Juddhodyama Preparation or readiness for a battle.
[ଯୁଦ୍ଧୋଦେ୍ୟା (ଦ୍ୟୋ)ଗ—ଅନ୍ୟରୂପ]

ଯୁଦ୍ଧୋନ୍ମତ୍ତ—ସ. ବିଣ. ପୁଂ—ରଣମଦରେ ପାଗଳ—
Juddhonmatta Frantic with battle-rage.
(ଯୁଦ୍ଧୋନ୍ମତ୍ତା—ସ୍ତ୍ରୀ) ସ. ବି—ରାବଣର ଭାଇ ମନ୍ଦୋଦର ରାକ୍ଷସର ନାମ—Name of a brother of Rābana.
[ଦ୍ର—ଏ ନୀଳ ନାମକ ବାନରର ହାତରେ ହତ ହୋଇଥିଲା—
(ଯୁଦ୍ଧୋନ୍ମତ୍ତତା—ବିଶେଷ୍ୟ) ହି. ଶବ୍ଦସାଗର ।]

ଯୁଦ୍ଧୋନ୍ମାଦ—ସ. ବି. (ମ. ପ. ଲୋ)—ଯୁଦ୍ଧର ନିଶା; ଯୁଦ୍ଧରେ ଜାତ
Juddhonmāda ହେବା ମତ୍ତତା; ଯୁଦ୍ଧ ମଦ—Rage of battle; the state of being frantic or mad to fight; intoxication of battle.

ଯୁଦ୍ଧୋପକରଣ—ସଂ. ବି. ( ୬ଷ୍ଠୀ ତତ୍ )—ଯୁଦ୍ଧ ପାଇଁ ପ୍ରୟୋଜନୀୟ
Juddhopakarana ଅସ୍ତ୍ରଶସ୍ତ୍ରାଦି ଦ୍ରବ୍ୟମାନ—Sinews of war, war implements & materials.

ଯୁଧ୍—ସଂ. ବି. ( ଯୁଧ୍ ଧାତୁ+ଭାବ. କ୍ୱିପ୍ )—୧ । ସଂଗ୍ରାମ; ଯୁଦ୍ଧ—
Judh 1. Fight; battle. ୨ । (+କର୍ତ୍ତୃ. କ୍ୱିପ୍) ଯୋଦ୍ଧା-2. Warrior; soldier. ୩ । ବୀର—3. Hero.

ଯୁଧ୍ (ଧାତୁ)—ସଂ—୧ । ଲଢ଼ାଇ କରିବା—1. To fight. ୨ ।
Judh (root) ଶତ୍ରୁ ପ୍ରଭୃତି ପରାଭବକୁ ପରାସ୍ତ କରିବାକୁ ଚେଷ୍ଟା କରିବା—2. To contend in battle. ୩ । ହତ୍ୟା କରିବା; ସଂହାର କରିବା—3. To slay.

ଯୁଧା—ସଂ. ବି. (ଯୁଦ୍ଧ୍ ଧାତୁ+କ୍ୱିପ୍+ଆ)—ଯୁଦ୍ଧ—
Juddhā Fight; battle.

ଯୁଧାଜିତ୍ - ସଂ. ବି. (ଯୁଧା=ଯୁଦ୍ଧ+ଜି ଧାତୁ=ଜୟ କରିବା+କର୍ତ୍ତୃ.
Judhājit କ୍ୱିପ୍)—୧ । କେକୟ ରାଜପୁତ୍ର; ଭରତଙ୍କ ମାମୁଁ ଓ କୈକେୟୀଙ୍କ ଭାଇ—1. The maternal uncle of Prince Bharata. ୨। ଯଦୁ ବଂଶୀୟ ବୃଷ୍ଣିଙ୍କ ପୁତ୍ର—2. Name of a prince of the Jadu dynasty. ୩ । କୃଷ୍ଣଙ୍କର ଜନୈକ ପୁତ୍ର (ହ. ଶ)—3. Name of a son of Krushna

ଯୁଧାନ—ସଂ. ବି. ( ଯୁଧ ଧାତୁ+କର୍ତ୍ତୃ. ଆନ )—୧ । ଯୋଦ୍ଧା—
Judhāna 1. Warrior. ୨ । ସୈନିକ—2. Soldier. ୩ । କ୍ଷତ୍ରିୟ—3. A person of the military caste amongst the Hindus. ୪ । ଶତ୍ରୁ—4. Enemy; adversary.

ଯୁଧାମନ୍ୟୁ—ସଂ. ବି—ପାଞ୍ଚାଳରାଜ ଯଜ୍ଞସେନଙ୍କ ପୁତ୍ର ଓ ଦ୍ରୌପଦୀଙ୍କ ଭାଇ-
Judhāmanyu Name of the brother of Draupadi.

ଯୁଧି(ଦ୍ଧି)—ଗ୍ରା. ବି. (ସଂ. ଯୁଧିକ)—ବୀର; ଯୋଦ୍ଧା—
Judhi(ddhi) Hero; warrior.

ଯୁଧିକ—ସଂ. ବି. ପୁଂ. (ଯୁଧ ଧାତୁ+କର୍ତ୍ତୃ. ଇକ)—ଯୋଦ୍ଧା—
Judhika Warrior.
ବିଣ—ଯୁଦ୍ଧକାରୀ—Fighting.

ଯୁଧି(ଧେ)ଷ୍ଟି(ଷ୍ଠି)—ଗ୍ରା. ବି (ସଂ. ଯୁଧିଷ୍ଠିର)—ଯୁଧିଷ୍ଠିର ( ଦେଖ )
Judhi(dhe)shti(shthi) Judhishthira ( See )
ଯୁଧିଷ୍ଠିବ [ଉ—ଯୁଧିଷ୍ଠି ବୋଇଲେ ମୋ ବାରୁ ପାଣ୍ଡୁ ରଜା ।
**ଯୁଧିଷ୍ଠୀର** କୃଷ୍ଣସିଂହ. ମହାଭାରତ. ବନ ।]

ଯୁଧିଷ୍ଠିର—ସଂ. ବି ( ନାମ ) ( ଅଲୁକ୍; ଯୁଧି=ଯୁଦ୍ଧରେ+ସ୍ଥିର=
Judhishthira ଅଟଳ )—ଜ୍ୟେଷ୍ଠ ପାଣ୍ଡବ—The eldest of the Pāndaba brothers. [ଦ୍ର - ପାଣ୍ଡୁଙ୍କ ପ୍ରଥମା ପତ୍ନୀ କୁନ୍ତୀଙ୍କ ଗର୍ଭରେ ଧର୍ମ ( ଯମ ) ଦେବତାଙ୍କ ଔରସରେ ଯୁଧିଷ୍ଠିରଙ୍କର ଜନ୍ମ । ଏ ବାଲ୍ୟକାଳରୁ ବିଶେଷ ଧର୍ମପରାୟଣ ଥିଲେ । ପାଣ୍ଡୁଙ୍କ ମୃତ୍ୟୁପରେ ମାତା ଓ ଭ୍ରାତାମାନଙ୍କ ସହିତ ଏ ଧୃତରାଷ୍ଟ୍ରଙ୍କ ଆଶ୍ରୟରେ ପ୍ରତିପାଳିତ ହୋଇ, ଦୁର୍ଯ୍ୟୋଧନାଦି କୌରବଙ୍କ ସଙ୍ଗେ କୃପ ଓ ଦ୍ରୋଣଙ୍କଠାରୁ ଅସ୍ତ୍ରବିଦ୍ୟା ଶିକ୍ଷା କଲେ ଓ ପ୍ରାପ୍ତ-ବୟସ୍କ ହେବାରୁ ଯୌବରାଜ୍ୟାଭିଷିକ୍ତ ହୋଇ ଅପତ୍ୟ-ନିର୍ବିଶେଷରେ ପ୍ରଜାପାଳନ କଲେ । ଧୃତରାଷ୍ଟ୍ରଙ୍କ ଜ୍ୟେଷ୍ଠପୁତ୍ର ଦୁର୍ଯ୍ୟୋଧନ ପରଶ୍ରୀକାତର ହୋଇ ପଞ୍ଚ-ପାଣ୍ଡବଙ୍କର ବିନାଶ ସାଧନ କରିବାକୁ ନାନା ଉପାୟ ଓ କୂଟ କୌଶଳ କରି ଅକୃତକାର୍ଯ୍ୟ ହେଲେ । ଦୁର୍ଯ୍ୟୋଧନ ପରିଶେଷରେ ବାରଣାବତ ନଗରୀରେ ଗୋଟିଏ ଜତୁଗୃହ ନିର୍ମାଣ କରାଇ ପାଣ୍ଡବ ପାଞ୍ଚ ଭାଇଙ୍କୁ ରହିବାକୁ କହିଲେ । ସେ ଗୃହ ମଧ୍ୟରେ ଏମାନେ ଥିବା ସମୟରେ ସେ ଘରେ ନିଆଁ ଲଗାଇ ଏମାନଙ୍କୁ ପୋଡ଼ି ଦେବାକୁ ଦୁର୍ଯ୍ୟୋଧନ କୌଶଳ କରିଥିଲେ । କିନ୍ତୁ ଏମାନେ ତାହା ଆଗରୁ ଜାଣିପାରି ସେଠାରୁ ପଳାଇ ଯାଇ ପ୍ରାଣରକ୍ଷା କଲେ ଓ ଅଜ୍ଞାତ ଭାବରେ ମାତାଙ୍କ ସହିତ ବୁଲିଲେ ।

ଏହି ସମୟରେ ପଞ୍ଚାଳ ରାଜକନ୍ୟା ଦ୍ରୌପଦୀଙ୍କର ସ୍ୱୟମ୍ବର ହେବା ବିଷୟ ଅବଗତ ହୋଇ ଏମାନେ ଉକ୍ତ ରାଜଧାନୀକୁ ବ୍ରାହ୍ମଣ ବେଶରେ ଯାଇ ଦୁର୍ଯ୍ୟୋଧନାଦି ବହୁଶତ ରାଜା ବିଦ୍ଧ କରିବାକୁ ଅକ୍ଷମ ହୋଇଥିବା ଲକ୍ଷ୍ୟକୁ ଅର୍ଜୁନ ଭେଦ କଲେ ଓ ଦ୍ରୌପଦୀଙ୍କୁ ପ୍ରାପ୍ତ ହେଲେ । କୁଟୀରକୁ ଆସି

ମାତାଙ୍କର ଆଦେଶକ୍ରମେ ପାଞ୍ଚ ଭାଇ ଯାକ ଦ୍ରୌପଦୀଙ୍କୁ ବିବାହ କଲେ । ତତ୍‌ପରେ ଧୃତରାଷ୍ଟ୍ର ବିଦୁରଙ୍କୁ ପଠାଇ ଏମାନଙ୍କୁ ଡକାଇ ଅଣିଲେ ଓ ଦୁର୍ଯ୍ୟୋଧନଙ୍କୁ ହସ୍ତିନାପୁର ଓ ଯୁଧିଷ୍ଠିରଙ୍କୁ ଇନ୍ଦ୍ରପ୍ରସ୍ଥ ରାଜ୍ୟ ଦେଲେ । ଯୁଧିଷ୍ଠିରାଦି ପଞ୍ଚଭ୍ରାତା ସେହିଠାରେ ସୁଖରେ ରାଜ୍ୟ କଲେ । ଯୁଧିଷ୍ଠିରଙ୍କ ଔରସରେ ଦ୍ରୌପଦୀଙ୍କ ଗର୍ଭରୁ ପ୍ରତିବିନ୍ଧ୍ୟ ନାମକ କୁମାର ଜନ୍ମ ହେଲେ ।

ଅର୍ଜୁନଙ୍କ ସଖା ଶ୍ରୀକୃଷ୍ଣଙ୍କ ପରାମର୍ଶରେ କିଛିଦିନ ପରେ ଯୁଧିଷ୍ଠିର ରାଜସୂୟ ଯଜ୍ଞ ଆରମ୍ଭ କଲେ ଓ ଜରାସନ୍ଧ ନାମକ ପ୍ରବଳ ପରାକ୍ରାନ୍ତ ଓ ଅତ୍ୟାଚାରୀ ଅସୁରରାଜାଙ୍କୁ ଭୀମାର୍ଜୁନଙ୍କ ଦ୍ୱାରା ନିହତ କରାଇ ମହାଡ଼ମ୍ବର ସହିତ ଉକ୍ତ ଯଜ୍ଞ ଶେଷ କଲେ । ସେହି ସମୟରେ ଦୁର୍ଯ୍ୟୋଧନ ଇନ୍ଦ୍ରପ୍ରସ୍ଥକୁ ନିମନ୍ତ୍ରିତ ହୋଇ ଆସି ସେଠାରେ ଆପମାନ ପାଇ ଫେରି- ଯାଇ ଯୁଧିଷ୍ଠିରଙ୍କୁ ପଶା ଖେଳିବାପାଇଁ ଆହ୍ୱାନ କଲେ । ଦୁର୍ଯ୍ୟୋଧନଙ୍କ ମାମୁଁ ଶକୁନି କପଟ-ପଶା ଖେଳରେ ଯୁଧିଷ୍ଠିରଙ୍କୁ ପରାସ୍ତ କଲେ ଓ ଯୁଧିଷ୍ଠିର ସେହି ପଶା ଖେଳରେ ରାଜ୍ୟକୁ, ଭାଇମାନଙ୍କୁ ଓ ଆପଣାକୁ ହରାଇ ପରିଶେଷରେ ଦ୍ରୌପଦୀଙ୍କୁ ପଣ ରଖି ହାରିଗଲେ । ପଣରୂପରେ ଦ୍ରୌପଦୀଙ୍କୁ ପାଇ ଦୁର୍ଯ୍ୟୋଧନ ସ୍ୱୟମ୍ବରକାଳୀନ ଅପମାନକୁ ମନେ ରଖି ତାହାର ପ୍ରତିଶୋଧାର୍ଥ ଦୁଃଶାସନଦ୍ୱାରା ରଜସ୍ୱଳା ଦ୍ରୌପଦୀଙ୍କୁ ଅନ୍ତଃପୁରରୁ କେଶ ଧରି ଟାଣିଆଣି ପଞ୍ଚପାଣ୍ଡବଙ୍କ ସମ୍ମୁଖରେ ରାଜସଭା ମଧ୍ୟରେ ବିବସ୍ତ୍ରା କଲେ । ତଥାପି ଯୁଧିଷ୍ଠିର ଧର୍ମନାଶ ଭୟରେ ଦ୍ରୌପଦୀଙ୍କର ଏବମ୍ଭୂତ ନିର୍ଯାତନକୁ ନତମସ୍ତକରେ ସହ୍ୟ କଲେ ଓ ଶ୍ରୀକୃଷ୍ଣଙ୍କର ଅପାର କରୁଣାରୁ ଦ୍ରୌପଦୀଙ୍କର ଶରୀର ଏପରି ବସ୍ତ୍ରମୟ ହେଲା ଯେ ଦୁଃଶାସନ ତାଙ୍କୁ ବିବସ୍ତ୍ରା କରି ପାରିଲେ ନାହିଁ । ଶେଷକୁ ଧୃତରାଷ୍ଟ୍ର ମଧ୍ୟସ୍ଥ ହୋଇ ଯୁଧିଷ୍ଠିରଙ୍କୁ ଉକ୍ତ ଦ୍ୟୂତର ଯାବତୀୟ ପଣରୁ ମୁକ୍ତିଦାନ କଲେ ଓ ପାଣ୍ଡବମାନେ ଦ୍ରୌପଦୀଙ୍କ ସହିତ ଇନ୍ଦ୍ରପ୍ରସ୍ଥକୁ ଫେରିବା ପରେ ଦୁର୍ଯ୍ୟୋଧନ ପୁଣି ପରଶ୍ରୀକାତରତାଦ୍ୱାରା ଚାଳିତ ହୋଇ ପୁନର୍ବାର ଅକ୍ଷକ୍ରୀଡ଼ା କରିବା ନିମନ୍ତେ ଯୁଧିଷ୍ଠିରଙ୍କୁ ଡାକିଲେ । କ୍ଷତ୍ରିୟୋଚିତ ବିଧାନ ଅନୁସାରେ ଯୁଧିଷ୍ଠିର ଉକ୍ତ ନିମନ୍ତ୍ରଣକୁ ବାଧ୍ୟ ହୋଇ ଗ୍ରହଣ କଲେ ଓ ଏଥରକ ପ୍ରଥମେ ସମସ୍ତ ରାଜ୍ୟ ହାରିଲେ । ପରେ ଏହି ପଣ ରହିଲା ଯେ ଯୁଧିଷ୍ଠିର ହାରିଗଲେ ପଞ୍ଚପାଣ୍ଡବ ଓ ଦ୍ରୌପଦୀ ୧୨ ବର୍ଷ ବନବାସ ଓ ପରେ ଅନ୍ତତଃ ୧ ବର୍ଷ ଅଜ୍ଞାତବାସ କରିବେ । ଦୈବଗତ୍ୟା ଯୁଧିଷ୍ଠିର ହାରିଗଲେ । ଆପଣାର ମାତାଙ୍କୁ ବିଦୁରଙ୍କ ଆଶ୍ରୟରେ ରଖି ପାଞ୍ଚଭାଇ ଓ ଦ୍ରୌପଦୀ ବନବାସକୁ ଗଲେ । ବନବାସ ସମୟରେ ଦୁର୍ଯ୍ୟୋଧନଙ୍କୁ ଯୁଦ୍ଧରେ ପରାସ୍ତ କରି ଚିତ୍ରସେନ ନାମକ ଜଣେ ଗନ୍ଧର୍ବ ବାନ୍ଧି ନେଇ ଗଲା । ଏହା ଶୁଣି ଯୁଧିଷ୍ଠିର ଭୀମ ଓ ଅର୍ଜୁନଙ୍କୁ ପଠାଇ ଦୁର୍ଯ୍ୟୋଧନଙ୍କୁ ମୁକୁଳାଇ ଆଣିଲେ । ଦୁର୍ଯ୍ୟୋଧନଙ୍କ ଭଗିନୀପତି ଜୟଦ୍ରଥ ଦ୍ରୌପଦୀଙ୍କୁ ହରଣ କରିବାକୁ ଚେଷ୍ଟା କରି ଭୀମଙ୍କ ଦ୍ୱାରା ଲାଞ୍ଛିତ ହେଲା, କିନ୍ତୁ ଯୁଧିଷ୍ଠିର ତାଙ୍କୁ କ୍ଷମା କରି ମୁକ୍ତି ଦେଲେ । ଏହିପରି ୧୨ବର୍ଷ ଅତୀତ ହେଲାରୁ ପଞ୍ଚପାଣ୍ଡବ ଓ ଦ୍ରୌପଦୀ ଏକବର୍ଷ କାଳ ଅଜ୍ଞାତ- ବାସାର୍ଥ ବିରାଟ ରାଜସଭାରେ ଉପସ୍ଥିତ ହେଲେ । ସେଠାରେ ଯୁଧିଷ୍ଠିର କଙ୍କନାମ ଧାରଣ କରି ଓ ଅନ୍ୟ ଭାଇମାନେ ଅନ୍ୟ ଛଦ୍ମନାମ ଓ ବେଶ ଧାରଣ କରି ଓ ଦ୍ରୌପଦୀ ରାଣୀଙ୍କର ଦାସୀ (ସୈରିନ୍ଧ୍ରୀ) ବେଶ ଧାରଣ କରି ବିରାଟ ଭବନରେ ଅବସ୍ଥାନ କଲେ । ଯୁଧିଷ୍ଠିର ବିରାଟଙ୍କ ସଙ୍ଗେ ପଶା ଖେଳିବା କାର୍ଯ୍ୟରେ ନିଯୁକ୍ତ ହେଲେ । ବିରାଟ- ରାଜାଙ୍କ ଶଳା ଓ ସେନାପତି କୀଚକ ଦ୍ରୌପଦୀଙ୍କ ସତୀତ୍ୱ ନାଶ କରିବାକୁ ଉଦ୍ୟତ ହେବାରୁ ସେ ଭୀମଙ୍କ ହସ୍ତରେ ନିହତ ହେଲା । ଏହି ସମୟରେ କୌରବମାନଙ୍କ ପକ୍ଷୀୟ ସୁଶର୍ମା ନାମକ ଜଣେ ରାଜା ବିରାଟଙ୍କ ରାଜ୍ୟକୁ ଆକ୍ରମଣ କରିବାରୁ ଯୁଧିଷ୍ଠିର ଛଦ୍ମବେଶଧାରୀ ଭୀମଙ୍କୁ ପଠାଇ ଆକ୍ରମଣକାରୀ ସୈନ୍ୟଙ୍କୁ ପରାସ୍ତ କଲେ । ପୁଣି କୌରବ- ମାନେ ସସୈନ୍ୟ ବିରାଟରାଜ୍ୟ ଆକ୍ରମଣ କରିବାରୁ ବିରାଟ- ତନୟ ଉତ୍ତରଙ୍କ ରଥରେ ବୃହନ୍ନଳା ନାମଧାରୀ ଅର୍ଜୁନ ସାରଥି ରୂପରେ ଗଲେ ଓ ଅର୍ଜୁନଙ୍କ ବୀରତ୍ୱ ଯୋଗୁଁ ମହାରଥୀରୁ ଉତ୍ତର ମଧ୍ୟ ଜୟଲାଭ କରି ଫେରି ଆସିଲେ । ଏହି ସମୟରେ ବିରାଟରାଜାଙ୍କ ଆଗରେ ଯୁଧିଷ୍ଠିର ଉତ୍ତରର ପ୍ରଶଂସା ନ କରି ବାରମ୍ବାର 'ବୃହନ୍ନଳା'ର ପ୍ରଶଂସା କରିବାରୁ ବିରାଟ କ୍ରୁଦ୍ଧ ହୋଇ ପଶାକାଠି ଦ୍ୱାରା କଙ୍କ ନାମଧାରୀ ଯୁଧିଷ୍ଠିରଙ୍କୁ ଏପରି ଆଘାତ କଲେ ଯେ ତାଙ୍କ ମୁଣ୍ଡରୁ ରକ୍ତ ବୋହିଲା । ତଥାପି ଯୁଧିଷ୍ଠିର ଧର୍ମକୁ ଜଗି ଆଶ୍ରୟଦାତାଙ୍କ ପ୍ରତି କ୍ରୋଧ ପ୍ରକାଶ କଲେ ନାହିଁ ।

ଏହିପରି ଅଜ୍ଞାତ ଭାବରେ ଏକବର୍ଷ ଗତ ହେବାରୁ ବିରାଟ ନଗରରେ ପାଣ୍ଡବମାନଙ୍କର ଆତ୍ମପ୍ରକାଶ ହେଲା । ବିରାଟ ରାଜା ଏହା ଜାଣିପାରି ସ୍ୱୀୟ ଅପରାଧ ପାଇଁ କ୍ଷମା ପ୍ରାର୍ଥନା କଲେ ଓ ଆପଣାର କନ୍ୟା ଉତ୍ତରାଙ୍କୁ ଅର୍ଜୁନଙ୍କ ପୁତ୍ର ଅଭିମନ୍ୟୁ ସହିତ ବିବାହ କରାଇଲେ । ପଞ୍ଚପାଣ୍ଡବ ବର୍ତ୍ତମାନ ସ୍ୱରାଜ୍ୟ ପ୍ରତ୍ୟର୍ପଣ କରିବା ପାଇଁ ଦୁର୍ଯ୍ୟୋଧନଙ୍କ ନିକଟକୁ ଶ୍ରୀକୃଷ୍ଣଙ୍କୁ ଦୂତ ସ୍ୱରୂପ ପଠାଇଲେ; କିନ୍ତୁ ଦୁର୍ଯ୍ୟୋଧନଙ୍କର ରାଜ୍ୟ ଫେରାଇବା କଥା ଦୂରରେ ଥାଉ, ଏ ପାଞ୍ଚ ଭାଇଙ୍କୁ ପାଞ୍ଚଖଣ୍ଡି ଗ୍ରାମ ମଧ୍ୟ ଦେବାକୁ ଅସମ୍ମତ ହୋଇ କହିଲେ ଯେ, ବିନା ଯୁଦ୍ଧରେ ପାଣ୍ଡବମାନଙ୍କୁ ସୂଚ୍ୟଗ୍ରପରିମିତ ଭୂମି ସୁଦ୍ଧା ଦେବେ ନାହିଁ । ସୁତରାଂ କୌରବ ଓ ପାଣ୍ଡବଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହେଲା । ଶ୍ରୀକୃଷ୍ଣ ନିଜେ ଅର୍ଜୁନଙ୍କ ରଥରେ ସାରଥି ହେଲେ, କିନ୍ତୁ ତାଙ୍କର ଅସଂଖ୍ୟ ନାରାୟଣୀ ସେନା କୌରବପକ୍ଷଙ୍କୁ ଦେଲେ । ଭାରତବର୍ଷର ତଦାନୀନ୍ତନ ଯାବତୀୟ ରାଜା ଏ ଯୁଦ୍ଧରେ, କେହି କୌରବଙ୍କ ଓ କେହି ପାଣ୍ଡବଙ୍କ ପକ୍ଷରେ, ଯୋଗ ଦେଲେ । କୁରୁକ୍ଷେତ୍ର ନାମକ ସମର- ପ୍ରାଙ୍ଗଣରେ ୧୮ ଦିନ ବ୍ୟାପୀ ମହାଯୁଦ୍ଧ ହେଲା । ଯୁଦ୍ଧର

ପ୍ରାକ୍କାଳରେ ଅର୍ଜୁନ ରାଜ୍ୟଲୋଭରେ ସ୍ୱଜନମାନଙ୍କୁ ହତ୍ୟା କରିବାକୁ ଯୁଦ୍ଧ କରିବା ପାଇଁ ଅନିଚ୍ଛୁକ ହେବାରୁ ଶ୍ରୀକୃଷ୍ଣ ୧୮ ଅଧ୍ୟାୟ ଶ୍ରୀମଦ୍‌ଭଗବଦ୍‌ଗୀତାକୁ ଉପଦେଶ ଛଳରେ ଅର୍ଜୁନଙ୍କୁ କହିଲେ ଓ ବୁଝାଇଲେ ଯେ ଫଳାଫଳ ପ୍ରତି ଅପେକ୍ଷା ନ ରଖି ନିର୍ମମ ହୋଇ କର୍ତ୍ତବ୍ୟାନୁରୋଧରେ ଧର୍ମ ରକ୍ଷା ପାଇଁ ଯୁଦ୍ଧ କଲେ ପାପ ହୁଏ ନାହିଁ । ଯୁଧିଷ୍ଠିର ଆଜନ୍ମ ମିଥ୍ୟା କହି ନ ଥିଲେ, କିନ୍ତୁ କୌରବ ସେନାର ପରିଚାଳକ ଦ୍ରୋଣଙ୍କର ମୃତ୍ୟୁ ନ ଘଟିଲେ ପାଣ୍ଡବମାନଙ୍କ ଜୟଲାଭ ଅସାଧ୍ୟ ଜାଣି ଶ୍ରୀକୃଷ୍ଣ କୌଶଳ - ଅବଲମ୍ବନପୂର୍ବକ ଯୁଧିଷ୍ଠିରଙ୍କ ଦ୍ୱାରା ଉଚ୍ଚୈଃସ୍ୱରରେ 'ଅଶ୍ୱତ୍ଥାମା ହତଃ' ଓ କ୍ଷୀଣ ସ୍ୱରରେ 'ଇତି ଗଜଃ' ଦ୍ରୋଣଙ୍କ ଆଗରେ କୁହାଇଲେ । ଫଳତଃ ଦ୍ରୋଣଙ୍କର ପ୍ରିୟପୁତ୍ର 'ଅଶ୍ୱତ୍ଥାମା' ଅମର ଥିଲା ଓ 'ଅଶ୍ୱତ୍ଥାମା' ନାମରେ ଗୋଟିଏ ହାତୀ ଥିଲା । ଦ୍ରୋଣଙ୍କୁ ଭୁଲାଇବା ପାଇଁ ସେହି ହାତୀଟି ମରି ଯିବାର ସମ୍ବାଦ ଯୁଧିଷ୍ଠିରଙ୍କ ଦ୍ୱାରା ଶ୍ରୀକୃଷ୍ଣ କୁହାଇଲେ, ଅର୍ଥାତ୍ ଯୁଧିଷ୍ଠିର ଦ୍ରୋଣଙ୍କୁ ଶୁଣାଇକରି କହିଲେ 'ଅଶ୍ୱତ୍ଥାମା ହତ ହେଲା' ଓ ତହିଁ ସଙ୍ଗେ ସଙ୍ଗେ ଦ୍ରୋଣ ନ ଶୁଣି ପାରିବା ପରି କହିଲେ 'ଇତି ଗଜଃ' ଅର୍ଥାତ୍, 'ଗଜ ଅଶ୍ୱତ୍ଥାମା ମଲା' । ଦ୍ରୋଣ ଯୁଧିଷ୍ଠିରଙ୍କୁ ସତ୍ୟବାଦୀ ବୋଲି ଜାଣିଥିଲେ ଓ ତାଙ୍କ ମୁହଁରୁ 'ଅଶ୍ୱତ୍ଥାମା ହତ ହେଲା' ବାକ୍ୟ ଶୁଣି ଓ 'ଇତିଗଜଃ' ଏହା ଶୁଣି ନ ପାରିବାରୁ ବିଶ୍ୱାସ କଲେ ଯେ ତାଙ୍କ ପୁତ୍ର ଅଶ୍ୱତ୍ଥାମା ( ଯେ କି ଅମରବର ପାଇଥିବାର ଦ୍ରୋଣ ଜାଣିଥିଲେ ) ମରିଗଲା । ପୁତ୍ରର ମୃତ୍ୟୁବାର୍ତ୍ତା ଶୁଣି ଦ୍ରୋଣ ପ୍ରାଣତ୍ୟାଗ କଲେ, ଓ ଏଥିର ଫଳରେ କୌରବ ସେନା ଦ୍ରୋଣାଚାର୍ଯ୍ୟଙ୍କ ନେତୃତ୍ୱ ହରାଇ ପରାସ୍ତ ହେଲେ । ଯୁଧିଷ୍ଠିର ଏହି ଗୋଟିକ ମିଥ୍ୟାକଥନ ଦ୍ୱାରା ପାପ କରିଥିବା ଯୋଗୁଁ ଦଣ୍ଡ ସ୍ୱରୂପ ତାଙ୍କୁ ଦେହତ୍ୟାଗ ପରେ କିଛିକ୍ଷଣ ନରକ ଦର୍ଶନ କରିବାକୁ ପଡ଼ିଥିଲା । ମହାଭାରତ ଯୁଦ୍ଧରେ କୌରବ ଓ ପାଣ୍ଡବପକ୍ଷୀୟ ସମସ୍ତ ବୀର ଓ ସୈନ୍ୟମାନେ ହତ ହେଲେ । କେବଳ ଅଭିମନ୍ୟୁଙ୍କ ପୁତ୍ର ପରୀକ୍ଷିତ ମହାରାଜ ଓ ପଞ୍ଚପାଣ୍ଡବ ଓ ଆଉ ଅଳ୍ପ କେତେଜଣ ବଞ୍ଚିଥିଲେ । ଯୁଧିଷ୍ଠିର ଯୁଦ୍ଧରେ ଜୟଲାଭ କରି କ୍ଷତ୍ରିୟଶୂନ୍ୟ ରାଜ୍ୟ ଭୋଗ କଲେ । ଏହି ଜ୍ଞାତିବଧ ପାପ ପାଇଁ ଶ୍ରୀକୃଷ୍ଣଙ୍କ ଓ ବ୍ୟାସଦେବଙ୍କ ଉପଦେଶକ୍ରମେ ସେ ଅଶ୍ୱମେଧ ଯଜ୍ଞ କଲେ ଓ କିଛିକାଳ ରାଜତ୍ୱ କରିବା ପରେ ଶ୍ରୀକୃଷ୍ଣଙ୍କର ଦେହତ୍ୟାଗ ସମ୍ବାଦ ପାଇ ସେ ଦ୍ରୌପଦୀଙ୍କୁ ଓ ଭାଇମାନଙ୍କୁ ସଙ୍ଗରେ ନେଇ ସଂସାର ତ୍ୟାଗ କରି, ରାଜ୍ୟଭାର ପରୀକ୍ଷିତଙ୍କଠାରେ ଅର୍ପଣ ପୂର୍ବକ ହିମାଦ୍ରି ଅଭିମୁଖରେ ମହାପ୍ରସ୍ଥାନ କଲେ । ଏହାର କିଛିଦିନ ପୂର୍ବରୁ ଦ୍ୱାପର ଯୁଗର ଅବସାନରେ କଳିଯୁଗ ଆସି ପୃଥିବୀରେ ପହଞ୍ଚି ଥିଲା । ଦ୍ରୌପଦୀ, ପାଞ୍ଚଭାଇ ଓ ଗୋଟିଏ କୁକୁର (ଯୁଧିଷ୍ଠିରଙ୍କ ଧର୍ମପାଳନର ଶେଷପରୀକ୍ଷା କରିବା ପାଇଁ କୁକ୍କୁରବେଶଧାରୀ ଧର୍ମରାଜ) ଯାଉଁ ଯାଉଁ ହିମାଳୟ ଅତିକ୍ରମ କରି ସୁମେରୁରେ ପହଞ୍ଚିଲା ବେଳକୁ ବାଟରେ ଯଥାକ୍ରମେ ଦ୍ରୌପଦୀ, ସହଦେବ, ନକୁଳ, ଅର୍ଜୁନ ଓ ଭୀମ ମୃତ୍ୟୁମୁଖରେ ପତିତ ହେଲେ । କେବଳ ଯୁଧିଷ୍ଠିର ଓ କୁକୁର ବାକି ରହିଲେ । ଯୁଧିଷ୍ଠିର ସ୍ୱର୍ଗର ଦ୍ୱାରଦେଶରେ ପହଞ୍ଚିବାରୁ ସେ ଏକାକୀ ସ୍ୱର୍ଗଦ୍ୱାର ମଧ୍ୟକୁ ପ୍ରବେଶ କରିବାକୁ ଆଦିଷ୍ଟ ହେଲେ, କିନ୍ତୁ ଦ୍ୱାରରକ୍ଷକ ଉକ୍ତ କୁକ୍କୁରଟିକୁ ସ୍ୱର୍ଗ ମଧ୍ୟକୁ ବାଟ ଛାଡ଼ିଦେବାକୁ ଅନିଚ୍ଛା ପ୍ରକାଶ କଲା । ଏଥିରେ ଯୁଧିଷ୍ଠିର ଆଶ୍ରିତ କୁକ୍କୁରଟିକୁ ଛାଡ଼ି ଦେଇ ସ୍ୱର୍ଗରେ ପ୍ରବେଶ କରିବାକୁ ରାଜି ହେଲେ ନାହିଁ । କୁକୁରରୂପୀ ଧର୍ମଦେବ ଏହା ଦେଖି ନିଜ ମୂର୍ତ୍ତି ଧାରଣ କରି ଯୁଧିଷ୍ଠିରଙ୍କୁ ଆଶୀର୍ବାଦ କଲେ । ଯୁଧିଷ୍ଠିର କହିଲେ ଯେ ତାଙ୍କ ଚାରି ଭାଇଙ୍କୁ ଓ ଦ୍ରୌପଦୀଙ୍କୁ ସଙ୍ଗରେ ନ ନେଇ ସେ ସ୍ୱର୍ଗକୁ ଯିବେ ନାହିଁ । ଏହା କହିବାରୁ ଧର୍ମରାଜ 'ତଥାସ୍ତୁ' ବର ଦେଲେ ଓ ନରକରେ ପଡ଼ିଥିବା ଚାରି ଭାଇ ଓ ଦ୍ରୌପଦୀଙ୍କୁ ଆଣିବା ସକାଶେ ଯୁଧିଷ୍ଠିର ନରକକୁ ଗଲେ ଓ ନରକ ଯନ୍ତ୍ରଣାର ଘଟନାମାନ କିଛିକ୍ଷଣ ପର୍ଯ୍ୟନ୍ତ ସ୍ୱଚକ୍ଷୁରେ ଦେଖିଲେ । ଏହାହିଁ ଯୁଧିଷ୍ଠିରଙ୍କର ମିଥ୍ୟା କଥନ ପାପର ପ୍ରାୟଶ୍ଚିତ୍ତ ହେଲା । ତତ୍ପରେ ନରକରୁ ଫେରି ଯୁଧିଷ୍ଠିର ଗଙ୍ଗାସ୍ନାନପୂର୍ବକ ମାନବ ଦେହ ତ୍ୟାଗ କରି ଦିବ୍ୟଶରୀର ଧାରଣ ପୂର୍ବକ ସ୍ୱର୍ଗକୁ ଗଲେ । ]

ଦେ॰ ବି. ପୁ.—୧ । ଲୋକଙ୍କୁ ଦିଆଯିବା ନାମ—
1. A name given to males. ୨ । ଧର୍ମପ୍ରାଣ ବ୍ୟକ୍ତି—2. A very righteous person.

**ଯୁଧ୍ମ**—ସଂ. ବି—(ଯୁଧ୍. ଧାତୁ+ଭାବ. ମ)—୧ । ଯୁଦ୍ଧ; ସଂଗ୍ରାମ—
Judhma 1. Battle; war; fight ୨ । (+କରଣ ମ) ଧନୁ; ଧନୁକ—2. Bow. ୩। ତୀର; ଶର; ବାଣ—3. Arrow ୪ । (+କର୍ତ୍ତୃ.ମ) ଯୋଦ୍ଧା—4. Warrior; combatant. ୫ । ଶେଷ ଯୁଦ୍ଧ—5. Final battle; last fighting. ୬ । ସୁସଂଶୋକ୍ତ ଶରଭ; ଅଷ୍ଟପଦୀ ମୃଗବିଶେଷ—6. A fabled deer having 8 legs. [ଦ୍ର—ଏମାନେ ତୁଷାରାବୃତ ପ୍ରଦେଶରେ ବାସ କରୁଥିବା କଥିତ ।]

**ଯୁଧ୍ୟ**—ଗ୍ରା. ବି—(ସଂ. ଯୁଦ୍ଧ)—ଯୁଦ୍ଧ—Battle; fighting.
Judbya ସଂ. ବିଣ. ପୁଂ. ( ଯୁଧ ଧାତୁ+କର୍ମ ଯ )—ଯାହା ସଙ୍ଗେ (ଯୁଧ୍ୟା—ସ୍ତ୍ରୀ) ଯୁଦ୍ଧ କରା ଯାଇ ପାରେ (ହି.ଶ)—
With whom one can fight.

**ଯୁଧ୍ୟମାନ**—ସଂ. ବିଣ. ପୁଂ—( ଯୁଧ୍ ଧାତୁ+କର୍ତ୍ତୃ ଅନ )—ଯୁଦ୍ଧରେ
Judhyamāna ନିପ୍ତ ଥିବା ବ୍ୟକ୍ତି—Fighting; warring; engaged in fight.
(ଯୁଧ୍ୟମାନା—ସ୍ତ୍ରୀ)

**ଯୁଧ୍ୟ ମୁଷ୍ଟି**—ସଂ. ବି—(ନାମ)—ଭୋଜବଂଶୀୟ ରାଜା ଉଗ୍ରସେନଙ୍କ ପୁତ୍ର—
Judhya mushṭi Name of a king of Bhoja dynasty.

**ଯୁନାଁ**—ପ୍ରାଦେ(ବାମଣ୍ଡା) ବିଣ—(ସଂ. ଜୀର୍ଣ୍ଣ)—ପୁରୁଣା—Old.
Junāñ

**ଯୁପ୍(ଧାତୁ)**—ସଂ. ୧ । ଲିଭାଇ ଦେବା; ପୋଛି ଦେବା—1. To
Jup(root) efface; to blot out (Apte) ୨ । କଷ୍ଟ

ଦେବା—2. To trouble (Apte). ୩ । ସମତଳ କରିବା—3. To make level (Apte) ୪ । ଚିକ୍କଣ କରିବା—4. To make smooth (Apte).

**ଯୁ(ଯୁଁ)ପରି**—ଗ୍ରା. ଅ—ଯେଉଁପରି; ଯେଉଁ ପ୍ରକାରେ—
u (Jun)pari In which manner.

ଯୁ(ଯୁଁ)ପିରି
ଯୁ(ଯୁଁ)ପ(ପି)ରିକା } —ଗ୍ରାମ୍ୟରୂପ
ଯୁ(ଯୁଉଁ)ପ(ପି)ରି

**ଯୁବକ**—ସଂ. ବିଣ. ପୁଂ.—( ଯୁବନ୍‌ଶବ୍ଦ+ସ୍ୱାର୍ଥେ+କ )—ତରୁଣ, Jubaka ଯୁବା; ୧୬ଠାରୁ ୩୦ବର୍ଷ ବୟସ ମଧ୍ୟରେ (ଲୋକ)—
Young (male); adult.
ବି—ଯୁବା ପୁରୁଷ; ତରୁଣ ବ୍ୟକ୍ତି—
Young man; an adult.

**ଯୁବକ ଯୁବତୀ**—ସଂ. ବି. (ସହଚର ଶବ୍ଦ)—ତରୁଣ ଓ ତରୁଣୀ; ଯୁବା Jubaka jubati ପୁରୁଷ ଓ ଯୁବତୀ ସ୍ତ୍ରୀ—A young man and a young woman.

**ଯୁବ ଖଲତି**—ସଂ. ବିଣ. ପୁଂ ଓ ସ୍ତ୍ରୀ—ଯୌବନରେ ଇନ୍ଦ୍ରଲୁପ୍ତ ନାମକ Juba khalati ରୋଗଯୁକ୍ତ (ଲୋକ); ଯୁବାକାଳରେ ଯାହାର (ଯୁବ ଖଲତୀ—ସ୍ତ୍ରୀ) ମୁଣ୍ଡ ଝାଙ୍ଗର ହୋଇ ଯାଇଥାଏ, ବା ଶିଖିଲ ଖାଇ ଥାଏ—Bald while youth.

**ଯୁବ ଗଣ୍ଡ**—ସଂ. ବି. (ଯୁବନ୍+ଗଣ୍ଡ=ବ୍ରଣ)—କାଠ ବରୁଣ; ଯୁବାଜନଙ୍କ Juba ganda ମୁହଁରେ ବାହାରିବା କ୍ଷୁଦ୍ର ବ୍ରଣ—Small pimples which appear on the face of young people.

**ଯୁବ(ବା)ଜରନ୍**—ସଂ. ବିଣ. ପୁଂ (ଯୁବନ୍+ଜୃ ଧାତୁ+କର୍ତ୍ତୃ. ଅତ୍, ୧ମା. Juba(ba)jaran ୧ବ. ଯୁବଜରତ୍ ଶବ୍ଦ)—ଅକାଳପକ୍ୱ; ଯୌବ-(ଯୁବ ଜରତୀ,ଯୁବତୀ ଜରତୀ—ସ୍ତ୍ରୀ) ନରେ ବାର୍ଦ୍ଧକ୍ୟ ପ୍ରାପ୍ତ—Grown prematurely old.

**ଯୁବଜାନି**—ସଂ. ବି. ପୁଂ (ଯୁବତୀ+ଜାୟା ଯାହାର; ବହୁବ୍ରୀହି ସମାସରେ Jubajani 'ଜାୟା'ଠାରେ ଜାନି ଆଦେଶ ହୁଏ)—ଯୁବତୀର ପତି; ଯାହାର ସ୍ତ୍ରୀ ଯୁବତୀ ଅଟେ—
A man having a young wife.
[ତୁଳନା କର—ସୀତାଜାନି, ପାର୍ବତୀଜାନି, ରାଜାବଳୀବଳୀ-ଜାନି—ଇତ୍ୟାଦି ।]

**ଯୁବତି(ତୀ)**—ସଂ. ବିଣ. ପୁଂ ( ଯୁବନ୍+ତି; ଯୁବତି+ଈ )—ପ୍ରାପ୍ତ— Jubati(ti) ଯୌବନା—Youthful (girl); young.
ବି—୧ । ପ୍ରାପ୍ତଯୌବନା ସ୍ତ୍ରୀ, ତରୁଣୀ; ୧୬ ବର୍ଷଠାରୁ ୩୦ ବର୍ଷ ବୟସ୍କା ସ୍ତ୍ରୀ—1. A youthful woman; a young woman (between the ages of 16 and 30). ୨ । ନବଯୌବନା ବାଳିକା—2. A girl who has recently attained puberty.
[ଦ୍ର—୧୬ ବର୍ଷ ବୟସରେ ବାଳା, ୩୦ ବର୍ଷ ବୟସ ପର୍ଯ୍ୟନ୍ତ ତରୁଣୀ, ୫୫ ବର୍ଷ ପର୍ଯ୍ୟନ୍ତ ପ୍ରୌଢ଼ା, ତଦୂର୍ଦ୍ଧ୍ୱ ବୟସ୍କା ବା ବୃଦ୍ଧା । କାମଶାସ୍ତ୍ର ମତରେ ବାଳା ପ୍ରାଣଦା, ତରୁଣୀ ସ୍ୱ ସ୍ତ୍ରୀଦାୟିନୀ, ପ୍ରୌଢ଼ା ବାର୍ଦ୍ଧକ୍ୟ ଉତ୍ପାଦନକାରିଣୀ ଓ ବୃଦ୍ଧା ପ୍ରାଣହାରିଣୀ ଅଟନ୍ତି ।
ନିଦାଘ ଓ ଶରତ୍‌କାଳରେ ବୃଦ୍ଧା, ବର୍ଷା ଓ ବସନ୍ତରେ ପ୍ରୌଢ଼ା, ହେମନ୍ତ ଓ ଶିଶିରରେ ଯୁବତୀ ସୁଖପ୍ରଦା ହୁଅନ୍ତି ।]
୩ । ହଳଦୀ; ହଳଦୀ—3. Turmeric. ୪ (ଜ୍ୟୋତିଷ) କନ୍ୟା ରାଶି—4. The Virgo sign of the zodiac.

**ଯୁବତୀଷ୍ଟା**—ସଂ.ବି (ଯୁବତୀ+ଇଷ୍ଟ+ଆ) ସ୍ୱର୍ଣ୍ଣ ଯୂଥିକା; ହଳଦିଆ) ଯୂଥି ଫୁଲ-Jubatishta A sort of yellow tiny Jasmine

**ଯୁବନ୍**—ସଂ. ବିଣ. ପୁଂ. (ଯୁ ଧାତୁ=ମିଶ୍ରିତ ହେବା; ଯୋଗ ହେବା+ Juban ଅନ୍; ଏହାର ୧ମା. ୧ବ; ପୁଂଲିଙ୍ଗରେ ଯୁବା ଓ ସ୍ତ୍ରୀ ଲିଙ୍ଗରେ ଯୁବତୀ ହୁଏ)—ଯୁବା (ଦେଖ)—Juba (See).
[ଦ୍ର—ଯୁବନ୍ ଶବ୍ଦ ସଙ୍ଗେ ଅଳ୍ପାର୍ଥରେ ଇୟସ୍ ଓ ଇଷ୍ଠ ପ୍ରତ୍ୟୟ ହୋଇ ଯବୀୟସ୍ ଓ ଯବିଷ୍ଠ ପଦ ହୁଏ ।]

**ଯୁବନାଶ୍ୱ**—ସଂ.ବି—୧। ସୂର୍ଯ୍ୟବଂଶୀୟ ଜନୈକ ରାଜା; ମାନ୍ଧାତାଙ୍କ ପିତା- Jubanaswa 1. Name of a king of the Solar dynasty of ancient India.
[ଦ୍ର—ଏହାଙ୍କ ପିତା ପ୍ରସେନଜିତ୍ ଓ ମାତା ଗୌରୀ । ଏ ସତ୍ୟଯୁଗରେ, ମତାନ୍ତରରେ ତ୍ରେତା ଯୁଗରେ, ରାଜତ୍ୱ କରୁଥିଲେ; କାରଣ, ଏହାଙ୍କର ପୁତ୍ର ମାନ୍ଧାତା ସତ୍ୟ ଯୁଗର ଷଡ଼ଚକ୍ରବର୍ତ୍ତୀ ମଧ୍ୟରୁ ଜଣେ ବୋଲି ଶାସ୍ତ୍ରରେ ଲେଖା ଅଛି ଓ ତ୍ରେତା ଯୁଗରେ ରାଜା ହରିଦାସ ଓ ରାଜା ମୁଚୁକୁନ୍ଦଙ୍କ ରାଜତ୍ୱର ମଧ୍ୟରେ ଏ ରାଜତ୍ୱ କରିଥିବାର ଉଲ୍ଲେଖ ଅଛି । ସମ୍ଭବତଃ ଦୁଇଜଣ ଏହି ନାମଧାରୀ ହୋଇଥିବେ ।] ୨ । (ରାମାୟଣ) ରାଜା ଧୁନ୍ଦୁମାରଙ୍କ ଏକ ପୁତ୍ର (ହି. ଶ)—2. Name of a son of King Dhundumara.

**ଯୁବନାଶ୍ୱଜ**—ସଂ. ବି—ଯୁବନାଶ୍ୱଙ୍କ ପୁତ୍ର ସୂର୍ଯ୍ୟବଂଶୀୟ ମାନ୍ଧାତା— Jubanaswaja King Mandhata, son of Jubanaswa.

**ଯୁବନ୍ୟୁ**—ସଂ. ବିଣ. (ଯୁବନ୍+ସ୍ୱାର୍ଥେ ୟୁ)—ଯୁବକ (ହି. ଶ।— Jubanyu Young.

**ଯୁବ(ବା)ପଳିତ**—ସଂ. ବିଣ. ପୁଂ—ଯୌବନରେ ପକ୍ୱକେଶବିଶିଷ୍ଟ— Juba(ba)palita Grey-haired in youth.
(ଯୁବତୀ ପଳିତା—ସ୍ତ୍ରୀ) [ଯୁବ(ବା)ପାଳିତ୍ୟ—ବି]

**ଯୁବରାଜ(ଜ)**—ସଂ.ବି ପୁଂ. (ଯୁବନ୍+ରାଜନ୍; କର୍ମଧା)—୧ । ରାଜା ଥାଉଁ Jubaraj(ja) ଥାଉଁ ରାଜ୍ୟର ଭାବୀ ଉତ୍ତରାଧିକାରୀ ରୂପେ ରାଜାଙ୍କ (ଯୁବରାଜ୍ଞୀ—ସ୍ତ୍ରୀ) ଦ୍ୱାରାତ ଶାସନ କର୍ମରେ ସାହାଯ୍ୟକାରୀ ରାଜକୁମାର; ଟିମ୍ବିକି ସାଆନ୍ତ—1. The heir-apparent to the throne. [ଦ୍ର—ପୂର୍ବେ ହିନ୍ଦୁ ରାଜାମାନେ ବୟଃପ୍ରାପ୍ତ ଓ ଗୁଣ ସମ୍ପନ୍ନ ପୁତ୍ରଙ୍କୁ 'ଯୁବରାଜ' ପଦରେ ଅଭିଷିକ୍ତ କରୁଥିଲେ ଓ ଯୁବରାଜ ଅଧିକାଂଶ ରାଜକାର୍ଯ୍ୟ ଚଳାଉଥିଲେ ଏବଂ ରାଜା ନିଶ୍ଚିନ୍ତ ମନରେ ପାରମାର୍ଥିକ ଚିନ୍ତାରେ ରତ ହେଉଥିଲେ । ଯୁବରାଜ ରାଜନୀତିବିଶାରଦ ହୋଇ ରାଜକାର୍ଯ୍ୟ ପରିଚାଳନରେ ଦକ୍ଷ ହେଲେ ରାଜା ତାଙ୍କ ଉପରେ ପୂର୍ଣ୍ଣ ରାଜ୍ୟଭାର ଅର୍ପଣ କରି ବାନପ୍ରସ୍ଥ ଅବଲମ୍ବନ କରୁଥିଲେ ।]

୨ । ରାଜକୁମାର—2. A prince. ୩ । ଭାବୀ ବୁଦ୍ଧବିଶେଷ—3. Name of a Buddhist saint who is to come.

ଯୁବରାଜ୍ୟ—ସଂ ବି. (ଯୁବରାଜ+ଯ)—ଯୌବରାଜ୍ୟ ( ଦେଖ )
Jubarājya — Jaubarājya ( See )
(ଯୁବରାଜତ୍ୱ—ଅନ୍ୟରୂପ)

ଯୁବରାଣୀ—ଦେ. ବି. ସ୍ତ୍ରୀ. (ସ. ଯୁବରାଜ୍ଞୀ)—ଯୁବରାଜଙ୍କର ସ୍ତ୍ରୀ—The Jubarāṇi princess, wife of the 1st son of a king.
युवराणी যুবরাণী

ଯୁବା—ସ. ବିଣ. ପୁଂ (ଯୁବନ୍ ଶବ୍ଦ, ୧ମା. ୧ବ)—୧ । ତରୁଣ—Jubā 1. Young; youthful. ୨ । ଶ୍ରେଷ୍ଠ; ଅତ୍ୟୁତ୍ତମ—2. Best; excellent. ୩ । ବଳିଷ୍ଠ; ନିସର୍ଗବଳଶାଳୀ—3. Endowed with natural strength. ୪ । ସୁନ୍ଦର—4. Graceful; well-built. ବି--୧୬ ଠାରୁ ୩୦ ବର୍ଷ ବୟସ୍କ ପୁରୁଷ—A youth between the ages of 16 and 30 years [ଦ୍ର—୧୬ ବର୍ଷ ବୟସ ପର୍ଯ୍ୟନ୍ତ ବାଳ, ୩୦ ବର୍ଷ ପର୍ଯ୍ୟନ୍ତ ଯୁବା, ୭୦ ବର୍ଷ ପର୍ଯ୍ୟନ୍ତ ପ୍ରୌଢ଼, ୯୦ ବର୍ଷ ପର୍ଯ୍ୟନ୍ତ ବୃଦ୍ଧ ଓ ୯୦ ରୁ ଊର୍ଦ୍ଧ୍ୱ ବର୍ଷୀୟାନ୍] ଦେ. ବିଣ—ଯୁବତୀ — Youthful (woman).
ଯୁବତୀ } ସ୍ତ୍ରୀ
ଯୁବତି[ତୀ] }

ଯୁବା କନ୍ୟା - ଦେ. ବି—ରଜସ୍ୱଳା କନ୍ୟା; ଯୁବତୀ କନ୍ୟା; ବଢ଼ିଲା ଝିଅ—A grown up daughter; a daughter who has attained puberty. [ଦ୍ର—ଯାହା ଘରେ ରହେ ଯୁବା ଝିଅ, ବନା କାଁଅରେ ପୋଡ଼େ ତା ହୃଦ—ଇତ । ]
Jubā kanyā
(ନୁବା ଝିଅ—ଅନ୍ୟରୂପ)
[ନୁବାଝିଅ—ଗ୍ରାମ୍ୟରୂପ]
युवतीकन्या
যুবতী মেয়ে

ଯୁବା କାଳ—ସ. ବି(ଯୁବନ୍+କାଳ)—ଯୌବନ—
Jubā kāla — Youth.
(ଯୁବା ବୟସ—ଦେଶଜରୂପ) [ଯୁବା ବଅ(ଏ)ସ—ଗ୍ରାମ୍ୟରୂପ]

ଯୁବାକାଳିଆ—ଦେ. ବିଣ-୧ । ଯୁବକ ପିତାଠାରୁ ଜାତ—1. Born Jubākāḷiā of a father in his youth. ୨ । ଯୁବକ ପିତା ଓ ଯୁବତୀ ମାତାଙ୍କଠାରୁ ଜାତ—2. Born of young parents. [ ଦ୍ର—ଏମାନେ ସଚରାଚର ବଳିଷ୍ଠ ହୁଅନ୍ତି । ] ୩ । ଯୁବା କାଳ ସମ୍ବନ୍ଧୀୟ—3. Relating to the youth.
युवाकालेर
युवाअमरका

ଯୁବାନ୍—ଦେ.ବିଣ ଓ ବି(ସ. ଯୁବନ୍)—୧। ଯୁଆନ; ଯୁବା; ଜୈଣ୍ଡା—Jubān 1. Youthful. ୨ । ଯୁବା ଏବଂ ବଳିଷ୍ଠ—2. Youthful and strong; young and well-built.
জোয়ান जवान
(ଯୁବାନୀ—ସ୍ତ୍ରୀ)

ଯୁବାବୟସିଆ—ଦେ. ବିଣ—୧ । ଯୁବାବସ୍ଥାପ୍ରାପ୍ତ—1. Youthful; Jubābayasiā young. ୨ । ଯୁବାକାଳିଆ (ଦେଖ)—2. Jubākāḷiā (See)
[ଯୁବାବୟସୀ—ସ୍ତ୍ରୀ] युवावयसी যুবাবয়সী
(ଯୁବା ବଅ[ଏ]ସିଆ—ପୁଂ,
ଯୁବା ବାଅ(ଏ)ସୀ—ସ୍ତ୍ରୀ } ଗ୍ରାମ୍ୟରୂପ

ଯୁବାବୟସ୍କ—ଦେ.ବିଣ.ପୁଂ(ଯୁବନ୍+ବୟସ୍+କ)—ଯୁବା; ୧୬ଠାରୁ ୩୦ବର୍ଷ ବୟସ୍କ—Young; youthful; adult.
Jubābayaska
( ଯୁବାବୟସ୍କା—ସ୍ତ୍ରୀ )

ଯୁବାବସ୍ଥା—ସ. ବି—ଯୌବନ—
Jubābasthā — Youth.

ଯୁବା ହେବା—ଦେ. କ୍ରି (ବାଳିକା ପ୍ରତି ପ୍ରଯୋଜ୍ୟ)—ରଜସ୍ୱଳା ହେବା; Jubā hebā ଜ୍ଞାନ ପାଇବା; ବଢ଼ିବା—To attain puberty (said of a girl).

ଯୁମ୍—ଦେ. ବି—ଜୁମ୍ (ଦେଖ)
Jum — Jum (See)

ଯୁମକ୍ (ଇତ୍ୟାଦି)—ଦେ. ବି—ଜୁମକ୍ ଇତ୍ୟାଦି (ଦେଖ)
Jumak (etc) — Jumak etc (See)

ଯୁଯୁ—ସ. ବି—ଅଶ୍ୱ; ଘୋଟକ—
Juju — The horse.

ଯୁଯୁକ୍ ଖୁର—ସଂ. ବି (ବହୁବ୍ରୀହି; ଯୁଯୁକ୍—ଯୁ କ୍ତ+ଖୁର)—ହେଣ୍ଟା ବାଘ—Wolf, hyena.
Jujuk-khura

ଯୁଯୁକ୍ଷମାଣ—ସ. ବିଣ. ପୁଂ (ଯୁଜ୍. ଧାତୁ=ସମାଧିସ୍ଥ ହେବା+ଇଚ୍ଛାର୍ଥେ. ଦ୍ୱିତ୍ୱ ବା ସନ୍=ଯୁଯୁକ୍ଷ. ଧାତୁ+କର୍ତ୍ତୃ. ଆନ) - ୧ । ଯୋଗସାଧନ କରିବାକୁ ଅଭିଳାଷୀ—1. Wishing to perform spiritual communion with the Divinity. ୨ । ମୁକ୍ତି ପାଇଁ ଅଭିଳାଷୀ-2, Desiring salvation. ୩। ଧାର୍ମିକ—3, Devout; pious. ୪ । ମିଳନେଚ୍ଛୁ—4, Wishing to join or unite.
Jujukshamāṇa
(ଯୁଯୁକ୍ଷମାଣା—ସ୍ତ୍ରୀ)

ଯୁଯୁକ୍ଷା—ସଂ. ବି (ଯୁଜ୍. ଧାତୁ=ଯୁକ୍ତହେବା ବା ମିଳିତ ହେବା+ସନ୍+ଭାବ. ଅ+ଆ)—ମିଳନେଚ୍ଛା—A desire to unite.
Jujukshā

ଯୁଯୁକ୍ଷୁ—ସଂ. ବିଣ (ଯୁଜ. ଧାତୁ+ସନ୍+କର୍ତ୍ତୃ. ଉ)—୧ । ଯୋଗାଭିଳାଷୀ—1, Wishing communion with God. ୨ । ମିଳନେଚ୍ଛୁ—2. Desirous of union.
Jujukshu

ଯୁଯୁତ୍ସା—ସଂ. ବି (ଯୁଧ୍. ଧାତୁ=ଯୁଦ୍ଧ କରିବା+ଇଚ୍ଛାର୍ଥେ. ସନ୍+ଆ)—ଯୁଦ୍ଧ କରିବାର ଇଚ୍ଛା—Desire to fight.
Jujutsā

ଯୁଯୁତ୍ସୁ—ସ. ବିଣ ( ଯୁଧ୍ ଧାତୁ+ସନ=ଯୁଯୁତ୍ସ ଧାତୁ+ଭାବ. ଅ+ଉ )—୧ । ରଣକରଣେଚ୍ଛୁ—1. Wishing to fight; pugnacious. ୨ । ଶତ୍ରୁତା କରିବାକୁ ଇଚ୍ଛୁକ—2. Of hostile intentions. ୩ । ଦୁରାକାଙ୍କ୍ଷିତ—3. Ambitious. ବି—୧ । ଯୋଦ୍ଧା—1. Warrior; combatant. ୨ । ଧୃତରାଷ୍ଟ୍ରଙ୍କ ଔରସରେ ବୈଶ୍ୟାଗର୍ଭଜାତ ପୁତ୍ର ବିଶେଷ—2. Name of an illegitimate son of Dhṛutarāshṭra. [ ଦ୍ର—ଧୃତରାଷ୍ଟ୍ରଙ୍କର ଦୁର୍ଯ୍ୟୋଧନାଦି ପୁତ୍ରମାନଙ୍କ ପରି ଏ ଅଧର୍ମୀଶ୍ୱର ନ ଥିଲେ । କୁରୁକ୍ଷେତ୍ର ଯୁଦ୍ଧରେ ଏ କୁରୁ ସୈନ୍ୟଙ୍କ ସହିତ ଯୁଦ୍ଧଭୂମିରେ ଉପସ୍ଥିତ ଥିଲେ । କୌରବପକ୍ଷୀୟ କୌଣସି ବୀର ପାଣ୍ଡବ ପକ୍ଷ ଅବଲମ୍ବନ କଲେ ତାଙ୍କୁ
Jujutsu

ପାଣ୍ଡବ ପକ୍ଷ ମହାସମାଦରରେ ଗ୍ରହଣ କରିବେ ବୋଲି ଯୁଧିଷ୍ଠିର ଘୋଷଣା କରିବାରୁ ଯୁଯୁତ୍ସୁ ପାଣ୍ଡବମାନଙ୍କର ଆଶ୍ରୟ ଗ୍ରହଣ କଲେ । ଯୁଦ୍ଧାନ୍ତେ ଧୃତରାଷ୍ଟ୍ରଙ୍କର ପୁତ୍ର ମଧ୍ୟରୁ ଏ ଏକମାତ୍ର ଜୀବିତ ରହିଥିଲେ । ଯୁଧିଷ୍ଠିର ସଂସାର ପରିତ୍ୟାଗ କରି ତପସ୍ୟା କରିବା ପାଇଁ ଭାଇମାନଙ୍କୁ ନେଇ ହିମାଳୟକୁ ଯିବା ସମୟରେ ଅଭିମନ୍ୟୁଙ୍କ ପୁତ୍ର ନାବାଳକ ପରୀକ୍ଷିତଙ୍କୁ ରାଜ୍ୟଭାର ଦେଇ ଯୁଯୁତ୍ସୁଙ୍କୁ ପ୍ରଧାନମନ୍ତ୍ରୀ ପଦରେ ନିଯୁକ୍ତ କରି ଯାଇଥିଲେ । ]

**ଯୁଯୁଧାନ**—ସଂ. ବିଣ. ପୁଂ ( ଯୁଧ୍ ଧାତୁ+ପୁନଃ ପୁନଃ ଅର୍ଥରେ ଯୁଯୁଧ୍ ଧାତୁ+କର୍ତ୍ତୃ. ଆନ୍ )—ଯୁଦ୍ଧରେ ବ୍ୟାପୃତ — Fighting; engaged in war.
Jujudhāna
(ଯୁଯୁଧାନା—ସ୍ତ୍ରୀ)
ବି—୧ । ଯୋଦ୍ଧା—1. Warrior. ୨ । କ୍ଷତ୍ରିୟ—2. A person of the warrior caste. ୩ । ଇନ୍ଦ୍ର—3. Indra. ୪ । ପାଣ୍ଡବସଖା ସାତ୍ୟକି—4. Sātyaki; an ally of Pāndaba brothers.

**ଯୁଷ୍ମଦ୍**—ସଂ. ସର୍ବ ( ଯୁଷ୍ ଧାତୁ=ସେବା କରିବା+କର୍ତ୍ତୃ ମଦ୍; ମଧ୍ୟମ ପୁରୁଷ ବାଚକ )—ତୁମ୍ଭେ—You. [ ଦ୍ର—
Jushmad
ଏହାର ସ୍ୱତନ୍ତ୍ର ବ୍ୟବହାର ଓଡ଼ିଆରେ ନାହିଁ, କିନ୍ତୁ ସଂସ୍କୃତଜ୍ଞ ତାତ୍ପର୍ଯ୍ୟମାନେ ଓଡ଼ିଆଭାଷାରେ ଏଥି ସଙ୍ଗେ ଅନ୍ୟ ପଦକୁ ସମାସଯୁକ୍ତ କରି ଏହା ଲଗାଇ ବ୍ୟବହାର କରନ୍ତି । ଯଥା—
ଯୁଷ୍ମତ୍ସକାଶାତ୍=ଆପଣଙ୍କ ନିକଟରୁ
ଯୁଷ୍ମଚ୍ଚିନ୍ତା=ତୁମ୍ଭ ଚିନ୍ତା
ଯୁଷ୍ମଦାଦି=ତୁମ୍ଭେ ଓ ଅନ୍ୟମାନେ
ଯୁଷ୍ମଦ୍‌ଗୃହ=ତୁମ୍ଭ ଘର
ଯୁଷ୍ମତ୍ପ୍ରେରିତ=ତୁମ୍ଭ ପ୍ରେରିତ
ଯୁଷ୍ମତ୍ପ୍ରେମ=ତୁମ୍ଭ ପ୍ରେମ । ]

**ଯୁଷ୍ମଦୀୟ**—ସଂ. ବିଣ ( ଯୁଷ୍ମଦ୍+ସମ୍ବନ୍ଧାର୍ଥେ ଈୟ )—୧ । ତୁମ୍ଭର; ତୁମ୍ଭମାନଙ୍କର—1. Your; of you; yours, thy; thine. ୨ । ତୁମ୍ଭ ବା ତୁମ୍ଭମାନଙ୍କ ସମ୍ବନ୍ଧୀୟ—2. Relating to you. [ ଦ୍ର—ଏକ ବଚନରେ ଯୁଷ୍ମଦ୍ ଶବ୍ଦରେ ଯ୍ୟ 'ଈୟ' ପ୍ରତ୍ୟୟ କଲେ 'ଯୁଷ୍ମଦ୍' ସ୍ଥାନରେ ତ୍ୱଦ୍ ଓ ଅସ୍ମଦ୍ ସ୍ଥାନରେ ମଦ୍ ଆଦେଶ ହୋଇ ଯଥାକ୍ରମେ ତ୍ୱଦୀୟ ଓ ମଦୀୟ ଶବ୍ଦ ନିଷ୍ପନ୍ନ ହୁଏ । ବହୁବଚନରେ ଯୁଷ୍ମଦୀୟ ଓ ଅସ୍ମଦୀୟର ବ୍ୟବହାର ଦେଖାଯାଏ । ]
Jushmadiya
(ଯୁଷ୍ମଦୀୟା—ସ୍ତ୍ରୀ)

**ଯୁଷ୍ମାଦୃକ୍(ଶ)**—ସଂ. ବିଣ. ପୁଂ ( ଯୁଷ୍ମଦ୍+ଦୃଶ୍ ଧାତୁ+କର୍ତ୍ତୃ. କ୍ୱିପ୍=ଯୁଷ୍ମାଦୃଶ, ୧ମା. ୧ବ )—ତୁମ୍ଭପରି—Like you; similar to you.
Jushmādruk(śa)
(ଯୁଷ୍ମାଦୃଶୀ—ସ୍ତ୍ରୀ)

**ଯୂ(ଯୂଃ)**—ସଂ. ବି ( ଯୁ ଧାତୁ=ମିଶ୍ରିତ କରିବା+କର୍ମ କ୍ୱିପ୍ )—ଯୂଷ, କ୍ୱାଥ—Broth. [ ଦ୍ର—ଯେଉଁସବୁ ଦେଶଜ ଶବ୍ଦ 'ଯୁ' ଆଦ୍ୟ ହୋଇ ବ୍ୟବହୃତ ହୁଏ ସେମାନେ 'ଯୂ' ଆଦ୍ୟ ଲେଖାଯାଇ ମଧ୍ୟ ବ୍ୟବହୃତ ହୁଅନ୍ତି । ]
Jū(jūh)

**ଯୂଇ**—ଦେ. ବି ( ସଂ. ଯୂଥୀ, ଯୂଥିକା )—ମଧୁରସୁବାସଯୁକ୍ତ ଫୁଲ ବିଶେଷ—Jasminum Auriculatum. [ ଦ୍ର—ଏହା ମଲ୍ଲିକାଦି ବର୍ଗର ପୁଷ୍ପବୃକ୍ଷ ବିଶେଷ; ଏହା ଲତାଜାତୀୟ, ଫୁଲ ଧଳା; ଡେମ୍ଫ ଲମ୍ବ ଓ ସରୁ; ଫୁଲର ଗନ୍ଧ ଅତି ମୃଦୁ ଓ ମଧୁର; ଗ୍ରୀଷ୍ମକାଳରେ ଫୁଟେ । ଫୁଲର ପାଖୁଡ଼ାମାନ ଏକସରିଆ ଓ ସରୁ, ଏକ ବୃନ୍ତରେ ବହୁ ଫୁଲ ଧରେ; ଯୂଥଯୂଥ ହୋଇ ଫୁଲ ଫୁଟିବାରୁ ଏଥିର ନାମ ଯୂଥିକା । ଏହି ଜାତୀୟ ହଳଦିଆ ବର୍ଣ୍ଣର ଗନ୍ଧହୀନ ଫୁଲକୁ ସ୍ୱର୍ଣ୍ଣ ଯୂଇ (Jasminum Heterophylum) କହନ୍ତି । ବୈଦ୍ୟଶାସ୍ତ୍ର ମତରେ ଏହା ହୃଦୟଗ୍ରାହୀ, ଶୀତବୀର୍ଯ୍ୟ, କଟୁବିପାକ, ଲଘୁ, ପିତ୍ତ-ନାଶକ, କଫ ଓ ବାୟୁକାରକ । ଏହା ବ୍ରଣ, ରକ୍ତଦୋଷ, ମୂଖରୋଗ, ଦନ୍ତରୋଗ, ନେତ୍ରରୋଗ, ଶିରୋରୋଗ ଓ ବିଷନାଶକ—ଦ୍ରବ୍ୟଗୁଣ । ]
Jūi
ଜୁଇ ଜୁହୀ
ସଂ. ନାମ—ଯୂଥିକା, ଯୂଥୀ, ମାଗଧୀକୁସୁମ, ପ୍ରହସନ୍ତୀ, ଭୃଙ୍ଗାନନ୍ଦା, ବହୁଗନ୍ଧା, ଗଣିକା, ଅମ୍ବଷ୍ଠା, ବାଲପୁଷ୍ପିକା, ବାସନ୍ତୀ, ଶିଖଣ୍ଡିନୀ
ମ. ପାଣ୍ଡ୍ରସ୍ୱାଲ ହାକଳୁଇ
ଗୁ. ଜୁଇଙ୍ଗସ
ତେ. ଜୁଇପୁଷ୍ପାଲୁ
ହଳଦିଆ ଯୂଇଫୁଲର ସଂ. ନାମ—ସ୍ୱର୍ଣ୍ଣଯୂଥୀ, ହେମପୁଷ୍ପିକା

**ଯୂକ**—ସଂ. ବି. ପୁଂ ( ଯୁ ଧାତୁ=ମିଶିବା+କର୍ତ୍ତୃ. କ୍ୱିପ୍, କ ଯୋଗ, ଉ ସ୍ଥାନରେ ଊ; ଯାହା କେଶ ସଙ୍ଗେ ମିଶିଯାଏ)—ମଥାଉକୁଣି; ଉକୁଣୀ—Louse.
Jūka
(ଯୂକା—ସ୍ତ୍ରୀ)

**ଯୂତ**—ସଂ. ବିଣ ( ଯୁ ଧାତୁ+କର୍ମ. ତ )—ମିଶ୍ରିତ—Mixed; joined. ଦେ. ବି ( ସଂ. ଦ୍ୟୁତ)—ଯୂଆ ଖେଳ—Gambling. [ ଉ—ଯୂତ ଖେଳାଇଲେ ସ୍ୱର୍ଣ୍ଣବଟିକା ଦେଇ ସେ । ଉପେ. ଲାବଣ୍ୟବତୀ । ]
Jūta

**ଯୂତି**—ସଂ. ବି ( ଯୁ ଧାତୁ=ମିଶ୍ରିତ କରିବା+ଭାବ. ତି; ଉ=ଊ, ନିପାତନ )—୧ । ଏକତ୍ରୀକରଣ; ମିଶ୍ରଣ—1. Mixing; mixture. ୨ । ସଂଯୋଗ—2. Union. ୩ । ( ଗଣିତ ) ସଙ୍କଳନ; ଯୋଗ—3. (Arithmetic) Addition.
Jūti

**ଯୂଥ**—ସଂ. ବି ( ଯୁ ଧାତୁ=ମିଶିବା+କର୍ତ୍ତୃ ଥ. ଉ ସ୍ଥାନରେ ଊ)—ସ୍ୱଜାତୀୟ ପଶୁ ପକ୍ଷୀଆଦିଙ୍କ ଦଳ; ପଲ—A herd or flock ( of birds or beasts ) [ ଦ୍ର—ସଂସ୍କୃତରେ ଯୂଥର ଅର୍ଥ ପଶୁପକ୍ଷୀଙ୍କ ଗୋଷ୍ଠୀ, ମନୁଷ୍ୟ-ଗୋଷ୍ଠୀକୁ ଯୂଥ ବୋଲାଯାଏ ନାହିଁ; କିନ୍ତୁ ଯୂଥ ଶବ୍ଦରୁ ଅଧୁନାପ୍ରଚଳିତ 'ଯୌଥ' ମନୁଷ୍ୟର ଦଳସମ୍ବନ୍ଧୀୟ ଭାବବାର ଅବଧିକୁ ବୁଝାଉଅଛି ]
Jūtha

**ଯୂଥଚ୍ୟୁତ**—ସଂ. ବିଣ (୫ମୀ ତତ୍)—ଯୂଥଭ୍ରଷ୍ଟ (ଦେଖ)
Jūthachyuta — Jūthabhrashta (See)

**ଯୂଥନାଥ**—ସଂ. ବିଣ. ପୁଂ—( ୬ଷ୍ଠୀ ତତ୍ )—୧ । ଅରଣ୍ୟବାସୀ ଜୀବଦଳର ନେତା ବା ଦଳପତି—1. The leader of a herd of wild animals. [ ଦ୍ର—ମାର୍କଣ୍ଡେୟଙ୍କର ମେଘ ଓ ହାତୀଙ୍କର ବିନ୍ଦା ଯୂଥପତି ଅଟେ ।]
Jūthanātha
ଯୂଥପ, ଯୂଥପତି, ଯୂଥମୁଖ୍ୟ } —ଅନ୍ୟରୂପ

୨ । ଅରଣ୍ୟ ହସ୍ତୀମାନଙ୍କର ନେତା—2. The leader of a wild herd of elephants. ଦେ. ବି.—ସେନାପତି—A leader of an army. [ଉ—ବଳବାନ । ବୃନ୍ଦ ବୃନ୍ଦ ଯୂଥପେ ପୂର୍ଣ୍ଣ । ଉଞ୍ଜ. ବୈଦେହୀଶବିଳାସ ।]

ଯୂଥ ବଣା—ଦେ ବିଣ.—ଯୂଥ ଭ୍ରଷ୍ଟ (ଦେଖ)
Jūtha baṇā Jūtha bhrashṭa (See)
[ଦ୍ର—କେବଳ ବୋଲୁଛନ୍ତି ଭୁଣ୍ଡେ ସମବାଣୀ, ଗୃହ୍ଣ ଛନ୍ତି ଯେସନେ ଯୂଥବଣା ଏଣୀ । କୃଷ୍ଣସିଂହ, ମହାଭାରତ ବନ ।]

ଯୂଥ ଭ୍ରଷ୍ଟ—ସଂ.ବିଣ.ପୁଂ—(୫ମୀ ତତ୍; ଯୂଥ+ଭ୍ରଷ୍ଟ)—ଗୋଠଛଡ଼ିଆ; ଯେଉଁ ପଶୁ ବା ଜୀବ ନିଜର ଦଳରୁ ଅଲଗା ହୋଇ ଥାଏ; (ଯଥା—ଏକୁଟିଆ ବାରହା)—
Jūtha bhrashṭa (ଯୂଥ ଭ୍ରଷ୍ଟା—ସ୍ତ୍ରୀ)
(an animal) Straying or straggling from the herd; stray (animal); straggler.

ଯୂଥଶଃ—ସ. ଅ.—(ଯୂଥ+ଶସ୍)—ଦଳ ଦଳ ହୋଇ—
Jūthasaḥ In herds; in flocks; gregrariously.

ଯୂଥି(ଥୀ)—ସ. ବି.—୧ । ମାଗଧୀ କୁସୁମ; ଯୂଇ (ଦେଖ)
Jūthi(thī) 1. A sort of jasmine; Jasminum (ଯୂଥି[ଥୀ]କା—ଅନ୍ୟରୂପ) Auriculatum. ୨ । ଅକାନବିନ୍ଧ ବା ପାଠାଲତା—2. Name of a medicinal plant; Stephania Hernandifolia. ୩ । ଅମ୍ଳାନକ ପୁଷ୍ପ—3 The globe amaranth flower.

ଯୂଥିନ—ସ. ବିଣ. ପୁଂ—(୬ଷ୍ଠୀ ତତ୍, ଯୂଥ+ଇନ=ପ୍ରଭୁ)—
Jūthina ଯୂଥନାଥ (ଦେଖ)—Jūthanātha (See)

ଯୂନୀ—ସ. ବି. ସ୍ତ୍ରୀ.—(ଯୁବନ୍+ସ୍ତ୍ରୀ ଈ; ନିପାତନ)—ଯୁବତୀ;ତରୁଣୀ—
Jūnī A young woman.

ଯୂପ—ସ. ବି.—(ଯୁ ଧାତୁ=ବନ୍ଧନ କରିବା+ଅଧିକରଣ. ପ; ଏଥିରେ ବଳି ବନ୍ଧା ଯିବାରୁ)—୧ । ଯଜ୍ଞରେ ପଶୁବନ୍ଧନାର୍ଥ ଭୂମିରେ
Jūpa ପୋତା ଯିବା ସଂସ୍କୃତ ସ୍ତମ୍ଭ—1. A sacrificial post to which the victim is tied at the time of its immolation. [ଦ୍ର—ଯଜ୍ଞୋଡ଼ୁମ୍ବର ବୃକ୍ଷର ଚତୁର୍ଦ୍ଦିସ୍ଥ ପରିମିତ କାଷ୍ଠକୁ ଗୋଲାକାର ଓ ସ୍ଥୂଳ ଓ ସୁଶୋଭନ କରି ଯୂପ ତିଆରି କରାଯାଏ ଓ ଏହା ମନ୍ତ୍ରଦ୍ୱାରା ସଂସ୍କୃତ ହୁଏ ।

ଅନ୍ୟ ମତରେ ଖଦିର, ବିଲ୍ୱ ବା ବକୁଳ କାଷ୍ଠରେ ଏହା ମଧ୍ୟ ତିଆରି ହୁଏ ।] ୨ । ଜୟଚିହ୍ନ ସ୍ୱରୂପ ଅଜିତ ପଦାର୍ଥ—2. A trophy. ୩ । ଜୟସ୍ତମ୍ଭ—3. A column erected in honour of a victory. ୪ । ଯଜ୍ଞସ୍ତମ୍ଭ—4. A sacrificial post.

ଯୂପ କଟକ—ସଂ.ବି.—୧। ଯୂପର ଅଗ୍ରଭାଗରେ ଖୋଦିତ ଡିମ୍ବିରି ଫଳପରି
Jūpa kaṭaka ବା ବଳୟାକାର ଗୋଲକ—1. A wooden ball carved on the top of a sacrificial post. ୨ । ଯୂପ ମୂଳରେ ବା ଅଗରେ ଲାଗିଥିବା ଲୌହ ବା କାଷ୍ଠବଳୟ—2 An iron or wooden ring attached to the foot or top of a sacrificial post.

ଯୂପ କର୍ଣ୍ଣ—ସଂ. ବି.—ଯୂପର ଯେଉଁ ଅଂଶରେ ଘିଅ ଛିଞ୍ଚା ଯାଏ—
Jūpa karṇṇa That part of the sacrificial post which is sprinkled with ghee (Apte).

ଯୂପ କାଷ୍ଠ—ସଂ. ବି—ଯୂପ ୧ (ଦେଖ)
Jūpa kāshṭha Jūpa 1 (See)
(ଯୂପ ସ୍ତମ୍ଭ—ଅନ୍ୟରୂପ) [ଯୂପଖୁଣ୍ଟ(ଣ୍ଟି)—ଦେ. ରୂପ]

ଯୂପଦ୍ରୁ—ସଂ. ବି.—(ମ. ପ. ଲୋ)—୧ । ଖଦିର ବୃକ୍ଷ—
Jūpadru The catechu tree; Mimosa Catechu.
(ଯୂପଦ୍ରୁମ—ଅନ୍ୟରୂପ)

ଯୂପ ଧ୍ୱଜ—ସଂ. ବି.—(ବହୁବ୍ରୀହି)—ଦେବରୂପେ କଳ୍ପିତ ଯଜ୍ଞ—
Jūpa dhwaja Sacrifice (personified) (Apte).

ଯୂପବ୍ରସ୍କ—ସ. ବି—ଯେଉଁ ଲୋକ (ଧୋବା ବା ବଢ଼େଇ) ଯୂପ ପାଇଁ
Jūpa braska ଗଛ ବା ଡାଳ କାଟେ—The cutter of a sacrificial post (Apte).

ଯୂପାକ୍ଷ—ସ.ବି.—(ନାମ)—ହନୁମାନ୍ ପ୍ରମଦାବନ ଉଜାଡ଼ିବା ସମୟରେ
Jūpāksha ତା ଦ୍ୱାରା ହତ ରାବଣର ଜଣେକ ସେନାପତି—Name of a general of Rābaṇa killed by Hanumān,

ଯୂପାହୁତି—ସଂ. ବି.—(ମ. ପ. ଲୋ)—ଯୂପ ଖୁଣ୍ଟ ପୋତାଯିବା
Jūpāhuti ସମୟରେ ଯେଉଁ ଆହୁତି ଦିଆ ଯାଏ—An oblation at the erection of a sacrificial. (Apte)

ଯୂଷ୍ (ଧାତୁ)—ସଂ.—୧ । ବଧ କରିବା—1, To kill.
Jūsh (root) ୨ । ଆହତ କରିବା—2. To wound.
୩ । ହିଂସା କରିବା—3. To injure, to hurt.

ଯୂଷ—ସଂ. ବି.—(ଯୂଷ୍ ଧାତୁ+କର୍ତ୍ତୃ. ଅ)—୧ । ଝୋଳ; କ୍ୱାଥ—
Jūsha 1. Broth; soup. ୨ । ମୁଗ ଅଦର ସିଝା ପାଣି; ୧୮ ଗୁଣ, ମତାନ୍ତରରେ ୪ ଗୁଣ, ଜଳରେ ଡାଲି ସିଝା ହୋଇ ଥିବା ପାଣି—2. Pease soup; porridge. ୩ । ବ୍ରହ୍ମଦାରୁ; ତୁତ୍ର ବୃକ୍ଷ—3. The Indian mulberry tree; Morus Indica.

ଯେ—ଦେ· ସର୍ବ.—(ସ. ଯଦ୍; ତୁଳ ପ୍ରା. ଜେ)—୧ । ଯେଉଁ ବ୍ୟକ୍ତି—
Je ये जो (ସେ—ଆପେକ୍ଷିକ ଶବ୍ଦ) 1. Who.
[ଉ—ଅଷ୍ଟ ଦୁର୍ଗର ଯେ, ନିତି ସେ ମୋ ପାଦେ ଭଜେ । କବିସୂର୍ଯ୍ୟ. ଚଣ୍ଡୋଶାରସ୍ତ, ଛ. ଗୀତ ।] ୨ । ଯାହା; ଯେଉଁ ସ୍ଥାନ, ସମୟ, ବିଷୟ ବା ବସ୍ତୁ—2. Which.

[ଉ—ଚମ୍ପା ନାଗେଶ୍ୱର ବଉଳ କେଶର, ସେ ଫୁଲ ଫୁଟଇ କାହିଁ ? ସେ ଫୁଲ ଫୁଟଇ ସେହି ଦେଶରେ, ସେ ଦେଶେ ରସିକା ନାହିଁ । ଭଗ ।] ୩ । ( ବହୁବଚନ; ସଂ. ଯଦ୍ ଶବ୍ଦର ପୁଂଲିଙ୍ଗ ବହୁବଚନ)—ଯେଉଁମାନେ—Those. ଅ.—୧ । ପାଦପୂରଣାର୍ଥକ ଅବ୍ୟୟ—1. That; for that. [ଉ—କଣ୍ଠାକଣ୍ଠ, କଣ୍ଠାଗଛ ମୂଳେ ପାଇଲ ଭେଟ ନାଗର ! ତୁମେ ସେ ଏଡ଼େକ ଶଠ ! ଭଗ ] ୨ । କ୍ରମସୂଚକ ଅବ୍ୟୟ—2. Too. [ଉ—କାହାଗେ କହିବ ଶୁଣିବ କେ ? ସାଥିର ଅବୁଝା ମାଇବ ସେ । ଭଗ ।] ୩ । ଯେବେ (ହେତ୍ୱର୍ଥକ ବା ଅପେକ୍ଷାର୍ଥକ ଅବ୍ୟୟ)—3. ( Causative ), If. [ ଉ—ନରସିଂହଭୋଗ ଖିରକି, କେତେ ଅକଲଚୁ କରସି, ଫଳ ହୋଇଛ ଯେ ଖାଇବୁ ? ଫୁଲ ହୋଇଛ ଯେ ନାଇବୁ ? ଭୁ ଯାହିଁପାଇଁ ଉହଳିବକଳ, ସାତ ଜନମରେ ପାଇବୁ ?—ଭଗ ।] ୪ । ପଦ୍ୟରେ ଅକ୍ଷର-ପୂରଣାର୍ଥ କରର୍ଥକ ଅବ୍ୟୟ—4. An indeclinable used to fill up the shortage of syllables in a poetical line. [ଉ—କାଳ ସେ ପୁରୁଷ ତାର କରଣ ଅଟଇ । ସ୍ୱାତୀ—ଶ୍ରୀ ଗୁରୁଭକ୍ତି ଗୀତା ।] [ଦ୍ର—୧ମା ବିଭକ୍ତି ୧ ବଚନ 'ଯେ'—ବହୁବଚନ 'ଯେମାନେ, ଯେଉଁମାନେ, ଯେଉଁ ସବୁ, ଯେଉଁ ଯେଉଁ । ଅନ୍ୟ ବିଭକ୍ତିର ୧ ବଚନରେ ଏହାର ଆକାର 'ଯା' ଓ 'ଯାହା' ହୁଏ । ଯଥା—ଯାକୁ, ଯାହାକୁ; ଯାଦ୍ୱାରା, ଯାହାଦ୍ୱାରା; ଯା ଠାରୁ, ଯାହାଠାରୁ; ଯାର, ଯାହାର, ଯା ଠାରେ, ଯାହାଠାରେ ।]

**ଯେ ଅବଧି**—ଦେ. ଅ—୧ । ଯେଉଁ ସ୍ଥାନରୁ—1. From which
Je abadhi place; whence. ୨ । ଯେଉଁକାଳରୁ—
ଯଖନ ଥେକେ 2. From which time. ୩ । ଯେଉଁ ସ୍ଥାନ ବା
**ଜବସେ** କାଳ ଯାଏ—3. Till which time or place.

**ଯେଇ (ଇତ୍ୟାଦି)**—ଗ୍ରା. ବି. ( ସଂ. ଯଦ୍+ହି )—ଯେଉଁ ଇତ୍ୟାଦି
Jei (etc. ( ଦେଖ )—Jeuñ etc. ( See)
ଯେଇ **जोहि**

**ଯେ ଇଚ୍ଛା ସେ**—ଦେ. ସର୍ବନାମ—୧ । ଯେ କୌଣସି ବ୍ୟକ୍ତି—
Je ichchhā se 1. Any person whatever.
ଯେ କୋନ ୨ । ଯେ କୌଣସି ବ୍ୟକ୍ତି ଇଚ୍ଛା କଲେ—2. Any
**जो कोइ** person who wishes.

**ଯେଉଁ**—ଦେ. ସର୍ବନାମ (ସଂ. ଯଦ୍ ଶବ୍ଦ )—୧ । ଯେ ( ବ୍ୟକ୍ତି, ବସ୍ତୁ,
Jeuñ ସ୍ଥାନ, ସମୟ, ବିଷୟ )—1. Which—
ଯେ **जो; जौन** ୨ । ଅମୁକ ନିର୍ଦ୍ଦିଷ୍ଟ ବ୍ୟକ୍ତି, ବସ୍ତୁ, ସମୟ ବା ସ୍ଥାନ—2. That ( particularising a person, thing, time or place.)

[ ଦ୍ର—ଏ ଶବ୍ଦର ରୂପମାନ

| ଏକବଚନ | | ବହୁବଚନ |
|---|---|---|
| ୧ମା ବିଭକ୍ତି | —ଯେଉଁ | ଯେଉଁମାନେ, ଯେଉଁ ସବୁ, ଯେଉଁ ଯେଉଁ |
| ୨ୟା | —ଯାହାକୁ | ଯେଉଁମାନଙ୍କୁ |
| ୩ୟା | —ଯାହାଦ୍ୱାରା | ଯେଉଁମାନଙ୍କଦ୍ୱାରା |
| ୫ମୀ | —ଯାହାଠାରୁ, ଯେଉଁଠାରୁ | ଯେଉଁମାନଙ୍କଠାରୁ |
| ୬ଷ୍ଠୀ | —ଯାହାର | ଯେଉଁମାନଙ୍କର |
| ୭ମୀ | —ଯହିଁରେ, ଯାହିଁରେ, ଯେଉଁଠାରେ | ଯେଉଁମାନଙ୍କଠାରେ । ] |

**ଯେଉ(ଉଁ) କ୍ଷଣି**—ଦେ. ଅ (ସଂ. ଯତ୍କ୍ଷଣଂ) —୧ । ଯେଉଁ ମୁହୂର୍ତ୍ତରେ;
Jeu(uñ)kshaṇi ଯେତେବେଳେ; ଯେଉଁବେଳେ—
ଯେଉ(ଉଁ)ଖି(ଷି,ଛି,ଛୁ)ଣି } ଗ୍ରାମ୍ୟରୂପ 1. At which time;
ଯେଉ(ଉଁ)ଖି(ଛି,ଛୁ)ଣିକା } at which moment
ଯଖନି **जबहि** (ଉ—ଯେଉଁକ୍ଷଣି ଏହା କହିଲେ ଯୁଧିଷ୍ଠିର—
[ ଯେଇ(ହି)କ୍ଷ(ଖି,ଛି,ଛୁ,ଷି)ଣି—ଆପେକ୍ଷିକ ଶବ୍ଦ ] କୃଷ୍ଣସିଂହ. ମହାଭାରତ ସଭା) ୨ । ମାତ୍ରକେ—2. No sooner than.

**ଯେଉ(ଉଁ)ଠା**—ଗ୍ରା. ସର୍ବନାମ—୧ । ଯେଉଁ ସ୍ଥାନ—1. Which
Jeu(uñ)ṭhā place. [ଦ୍ର—ଏ ଶବ୍ଦର ୨ୟା ବିଭକ୍ତିରେ
ଯେଖାନ **जहाँ** ଯେଉଁଠାକୁ, ୫ମୀ ବିଭକ୍ତିରେ ଯେଉଁଠାରୁ,ଯେଉଁଠୁ;
[ଯେଇ(ହି)ଠା—ଆପେକ୍ଷିକ ଶବ୍ଦ] ୬ଷ୍ଠୀରେ ଯେଉଁଠାର; ୭ମୀରେ ଯେଉଁଠାରେ, ଯେଉଁଠା(ଠେ)ଇଁ, ଯେଉଁଠି ହୁଏ] ୨ । ଯେଉଁ ସ୍ଥାନର—2. Of which place.

**ଯେଉ(ଉଁ)ଠି(ଠିଁ)**—ଗ୍ରା. ସର୍ବ ( ଯେଉଁଠା ଶବ୍ଦର ୭ମୀ ବିଭକ୍ତି
Jeu(uñ)ṭhi(thiñ) ୧ ବଚନ —୧ । ଯେଉଁ ସ୍ଥାନରେ—
ଯେଖାନେ **जहाँ जहीं** 1. At which place; where.
ଯେଉ(ଉଁ)ଠା(ଠେ)ଇଁ } ୨ । ଯେଉଁ
ଯେଉ(ଉ)ଠାରେ } ଅନ୍ୟ ୭ମୀ ବିଭକ୍ତି ରୂପ] ବିଷୟରେ—
ଯେଉଁଠେ } 2. In
which matter. ସର୍ବନାମ—ଯେଉଁ ସ୍ଥାନ—Which place. [ ଦ୍ର—ଯେଉଁଠି ଶବ୍ଦର ୨ୟା ବିଭକ୍ତିରେ—ଯେଉଁଠିକି(କୁ), ୫ମୀ ବିଭକ୍ତିରେ ଯେଉଁଠିରୁ ଯେଉଁଠୁ, ୬ଷ୍ଠୀ ରେ ଯେଉଁଠିର, ଯେଉଁଠିକା, ଯେଉଁଠିକାର, ୭ମୀ ବିଭକ୍ତିରେ ଯେଉଁଠି, ଯେଉଁଠେଇଁ ହୁଏ ।]

**ଯେଉ(ଉଁ)ଠିକା**—ଗ୍ରା. ସର୍ବନାମ ଯେଉଁଠା ଶବ୍ଦର ୬ଷ୍ଠୀ ୧ବ ,—
Jeu(uñ)ṭhikā ଯେଉଁ ସ୍ଥାନର—Of which place.
ଯେଉ(ଉଁ)ଠିକାର— ନ୍ୟରୂପ ]
ଯେଖାନକାର **जहाँका** [ଯେଇ(ହି)ଠିକା—ଆପେକ୍ଷିକ ଶବ୍ଦ]

**ଯେଉ(ଉଁ)ଠିକି(କୁ)**—ଦେ. ସର୍ବନାମ ( ଯେଉଁଠି ଶବ୍ଦର ୨ୟା
Jeu(uñ)ṭhiki(ku) ବିଭକ୍ତି, ୧ବ )—ଯେଉଁ ସ୍ଥାନକୁ—
[ ଯେଇ(ହି)ଠିକି(କୁ)—ଆପେକ୍ଷିକ ଶବ୍ଦ ] To which place; whereto.
ଯେଉଁଠାକୁ }
ଯେଉଁ(ଠେ, ଠ)ଇଁକି(କୁ) } —ଅନ୍ୟରୂପ
ଯେଖାନକେ **ज ह**

ଯେଉ(ଙ୍)ଠୁ(ଠୁଁ)—ଗ୍ରା. ସର୍ବନାମ (ଯେଉଁଠା ବା ଯେଉଁଠି ଶବ୍ଦର ୫ମୀ ବିଭକ୍ତି, ୧ବ)—୧ । ଯେଉଁ ସ୍ଥାନରୁ— Jeu(uñ)thu(thuñ) [ଯେଇ(ହି)ଠଉଁ—ଆପେକ୍ଷିକ ଶବ୍ଦ] 1. From which (ଯେଉଠଉଁ—ଅନ୍ୟରୂପ) place; whence. ୨ । ଯେଉଁ ସମୟରୁ—2. From which time. ୩ । ଯେଉଁ ବ୍ୟକ୍ତିଠାରୁ—3. From which person.
যেখানথেকে जहाँसे

যখন जब ଗ୍ରା. ଅ—୧ । ଯେହେତୁ—Whereas; ( ଯଥା—ମୁଁ ଯେଉଁଠଉଁ ତାଙ୍କୁ ପାଙ୍ଗ ନ ଫିଙ୍ଗାଇଲି, ସେ ମୋ ପାଖରୁ ଉଠି ଚାଲିଗଲେ ) । ୨ । ଯେବେ— 2. When. ୩ । ଯେଣୁ; କାରଣ— 3. Because; as. ( ଯଥା—ଯେଉଁଠଉଁ ମେଘ ଉଠାଇଲା ଆମେ ସମସ୍ତେ ଘରକୁ ପଳାଇଗଲୁଁ ) ।

ଯେଉ(ଙ୍)ଣ(ଣି)ସି—ଗ୍ରା. ସର୍ବ ( ସଂ. ଯଦ୍+କମ୍)—ଯେ କୌଣସି Jeu(uñ)na(ni)si ( ବସ୍ତୁ, ବ୍ୟକ୍ତି ବା ବିଷୟ ); କୌଣସି অনির্দ্দিষ্ট—Any of which; which ever; any indefinite (matter): any (thing, person or matter).
যেকোন जो कोइ

ଯେଚ୍ଛା ତା—ଗ୍ରା. ଅ. ( ବିଷୟ, ବସ୍ତୁ; ଯଦ୍+ଇଚ୍ଛା+ତତ୍)— Jechchha ta ଯା ଇଚ୍ଛା ତା ( ଦେଖ ) Ja ichchha ta ( See ) (ଯେଚ୍ଛା ତାଇ—ଅନ୍ୟରୂପ)
যাচ্ছা তাই

ଯେଚ୍ଛା ସେ—ଗ୍ରା. ସର୍ବ. (ବ୍ୟକ୍ତି)—୧ । ଯେ କୌଣସି ବ୍ୟକ୍ତି— Jechchha se 1. Any one. ୨ । ଯେ ଇଚ୍ଛା କରିବ ସେ—2. Any one who will wish.
যে ইচ্ছা সে जोइच्छासो

ଯେଜେ(ଯେ) (ଇତ୍ୟାଦି)—ଦେ.ବ ଓ ବିଣ—ଜେଜେ ଇତ୍ୟାଦି(ଦେଖ) Jeje(je) (etc) Jeje etc ( See )
যেযে, যাযা ଦେ. ସର୍ବନାମ ( ବହୁବଚନାର୍ଥରେ ଦ୍ୱିତ୍ୱ )— (ବହୁବଚନ) ଯେଉଁ ଯେଉଁ, ଯାହା ଯାହା (ନିର୍ଦ୍ଦିଷ୍ଟ ବ୍ୟକ୍ତିଗଣ, ବସ୍ତୁଗଣ, ସ୍ଥାନମାନ, ବିଷୟମାନ)—Those.
जोजो, जेजे

ଯେଝା—ଦେ ସର୍ବ ( ସ. ଯୋଯସ୍ୟ )—୧ । ଯେ ଯାହାର, ଯେଉଁ Jejha ବ୍ୟକ୍ତି ଯାହାର (ପ୍ରତ୍ୟେକ ବ୍ୟକ୍ତି ଆପଣାର)— 1. The person whose; each person his. (ଉ—ପିଲାମାନେ ପାଠ ପଢ଼ି ସାରି ଯେଝା ଘରକୁ [ଯେ ଯାହା—ଅନ୍ୟରୂପ] ଯାଅନ୍ତି ।) ୨ । ପ୍ରତ୍ୟେକ ବ୍ୟକ୍ତିଙ୍କର— 2. Every body's. (ଉ—ଯେଝ ହାତରେ ଯେ ଉଦ୍ଧ ପାଖ—ଭଗ ।) [ଦ୍ର—ଯେଝା ଶବ୍ଦର ଆପେକ୍ଷିକ ଶବ୍ଦ ରୂପେ 'ସେ' ବା 'ସେ' ବ୍ୟବହୃତ ହୁଏ, ଯଥା-ଯେଝା ଘରକୁ ସେ (ସେ) ଯାଉ ।]
যে যার
जो जीस

ଯେଟି—ଦେ. ସଂ, ବ. ଅ. (ସ. ଯତ୍)—୧ । ( ଆଦରାର୍ଥକ ) ଯେଉ; Jeti ଯେଉଁଟି—1. Which. ୨ । ଯେ ଅଟେ—2. Which is. ( ଉ—ହିତରେ ଯେଟି ବୁଇ ସହସ୍ର ଯୋଜନ । କୃଷ୍ଣସିଂହ. ମହାଭାରତ. ବନ । ) ( ଯେଉଁଟି—ଅନ୍ୟରୂପ; ଯେଉଁଠା—ଅନାଦରାର୍ଥକରୂପ)
যে
জৌটা

ଯେଠା—ଗ୍ରା. ସର୍ବ (ସଂ. ଯତ୍ର ସ୍ଥାନ°)—୧ । ଯେଣ, ଯେଉଁ ସ୍ଥାନ— Jetha 1. Which place. ୨ । ଯେଠାର ( ଦେଖ ) 2. Jethara ( See )
যে খান जीस जगह

ଯେଠା(ଠେ)ଇଁ—ଗ୍ରା. ସର୍ବ (ସଂ. ଯତ୍ର ସ୍ଥାନେ)—୧ । ଯେଣିକି; ଯେଉଁ Jetha(the)iñ ସ୍ଥାନକୁ—1. To which place. ୨ । ଯେଉଁଠି ( ଦେଖ ) 2. Jeuñthi ( See )
যেখানে
जीसजगह पर

ଯେଠା(ଠ)ଉଁ—ଗ୍ରା. ସର୍ବ ( ସ. ଯତ୍ସ୍ଥାନାତ୍ )—ଯେଠାରୁ; ଯେଉଁ Jetha(tha)uñ ସ୍ଥାନରୁ—Whence; from which place. ଅ—ଯେଉଁଠୁ (ଦେଖ) (ଯେଠୁ—ଅନ୍ୟରୂପ) Jeuñthu (See)
যেখানথেকে जीसजगहसे

ଯେଠାଏଁ—ଗ୍ରା. ସର୍ବ (ସ. ଯତ୍ସ୍ଥାନେ) —ଯେଉଁ ସ୍ଥାନରେ Jethaeñ Where [ଉ—ଗୁହାର ଶୁଣନ୍ତ ଯେଠାଏଁ ପଚ୍ଚଚରଣ ଆଗ ନୋହେ । ଭୂପତି. ପ୍ରେମପଞ୍ଚାମୃତ ।]
যেখানে
जीसजगहमे

ଯେଠାର—ଗ୍ରା. ସର୍ବ (ସ. ଯତ୍ସ୍ଥାନସ୍ୟ)—ଯେଉଁ ସ୍ଥାନର— Jethara Of which place. (ଯେଠିକା, ଯେଟିକାର—ଅନ୍ୟରୂପ)
যেখানকার जीसजगहका

ଯେଠାରେ—ଗ୍ରା. ସର୍ବ—(ସ. ଯତ୍ସ୍ଥାନେ)—ଯେଉଁଠି (ଦେଖ) Jethare Jeuñthi (See) (ଯେଠେଇଁ—ଅନ୍ୟରୂପ)
যেখানে जीसजगहमे

ଯେଠି—ଗ୍ରା. ସର୍ବ (ସ. ଯତ୍ସ୍ଥାନେ)—୧ । ଯେଠା (ଦେଖ) Jethiñ 1. Jetha (See) ୨ । ଯେଠାଇଁ (ଦେଖ) 2 Jethaiñ (See)
যেখানে जहाँ

ଯେଠିକ(କୁ)—ଗ୍ରା. ସର୍ବ—ଯେଠାଇଁ (ଦେଖ) Jethaiñ (See) Jethiki(ku) (ଯେଠିକ—ଆପେକ୍ଷିକ ଶବ୍ଦ)

ଯେଡ଼ିକି—ଗ୍ରା. ବିଣ—ଯେଉଁ ଆକୃତିବିଶିଷ୍ଟ— Jerdiki Of which dimension. [ଉ—ଯେଡ଼ିକି ବାଉଁଶ ତେଡ଼ିକି ପୋଲ । (ତେଡ଼ିକି, ସେଡ଼ିକି—ଆପେକ୍ଷିକ ଶବ୍ଦ) ଭଗ ।]
যতবড় जीतावडा

ଯେଡ଼େ ଇଚ୍ଛା ତେ(ସେ)ଡ଼େ—ଗ୍ରା. ବିଣ—୧ । ଅତି ବଡ଼— Jerde ichchha te(se)rde 1. Very big; very great. ୨ । ଯଥାସମ୍ଭବ ବଡ଼— 2. As big or large as possible.
যতইচ্ছা তত
जीतनी इच्छाउतनी

ଯେଣିକି—ଦେ. ଅ—ଯେଉଁ ଆଡ଼କୁ; ଯେଉଁ ଦିଗକୁ— Jeniki To which side or direction. (ତେଣିକି, ସେଣିକି—ଆପେକ୍ଷିକ ଶବ୍ଦ)
যেদিকে जीसतरफ

ଯେଣୁ(ଣୁଁ)—ଦେ. ଅ—୧ । ଯେଉଁ ଆଡ଼ୁ; ଯେଉଁ ଦିଗରୁ— Janu(nuñ) 1. From which side or direction. ୨ । ଯେହେତୁ—2. Because; whereas. (ଉ—ସବୁ ରାଜସୁତ-ଦର୍ପ ଏଥି ଯେଣ [ତେଣୁ(ଣୁଁ)—ଆପେକ୍ଷିକ ଶବ୍ଦ] ହେଲାଟି ଚୂନା, ଦର୍ପି-ଦର୍ପହର-ସୁଲା ବୋଲି ଅଛି କଥା ପୁରୁଣା । ରାଧାନାଥ—ଉଷା )
যেদিগথেকে
जीसतरफसे; जोसलिये

ଯେଣୁ କରି—ଦେ. ଅ—ଯେହେତୁ—Because; whereas.
Jenu kari
ଯେହେତୁ (ଉ—ଯେଣୁକରି ମୀନକେତନ,
जीसहेतु କମଳା କୋମଳ କରକମଳରେ
(ଯେଣୁକରି—ଗ୍ରା.ରୂପ) କରନ୍ତି ସନ୍ତତେ ଯତନ ।
(ତେଣୁକରି—ଆପେକ୍ଷିକଶବ୍ଦ) ଗୀତକୃଷ୍ଣ-ଜଗମୋହନ)

ଯେଣେ—ଦେ. ଅ—୧ । ଯେଉଁ ଆଡ଼େ—
Jene 1. Where. ୨ । ଯେଉଁ ପ୍ରକାରେ;ଯେଉଁପରି—
ଯେଦିଗେ 2. By which means; how.
जहाँ (ଉ—ଏବେ ହୋ ଶୁଣ ନୃପମଣି
(ତେଣେ, ସେଣେ—ଆପେକ୍ଷିକ ଶବ୍ଦ) ଯେଣେ ହସାଇ ତରେ ପ୍ରାଣୀ
ଯେମନ ଜଗନ୍ନାଥ ଭାଗବତ ।)
जैसा ୩ । ଯହିଁରେ; ଯାହାଦ୍ୱାରା—3. By which.
ଯାତେ (ଉ—କହ ଏହାର ହେତୁ କର୍ମ
जीससे ଯେଣେ ଖଣ୍ଡଇ ଭବ ଭ୍ରମ ଭୂପଞ୍ଚ• ପ୍ରେମପଞ୍ଚାମୃତ)
୪ । ଯେହେତୁ; ଯହିଁର ଫଳରେ—
ଯେମନ 4. In consequence whereof.
जैसा [ଉ—ବ ଅବା ଅଛୁ ତପ କରି
ଯେଣେ ଦେଖିବ ନରହରି । ଜଗନ୍ନାଥ. ଭାଗବତ । ]

ଯେଣେ ଇଚ୍ଛା ତେ(ସେ)ଣେ—ଦେ• ଅ—ଯେ କୌଣସି ସ୍ଥାନକୁ ବା
Jene ichchhā te(se)ne ସ୍ଥଳକୁ—To whichever
[ଯେଣେଚ୍ଛା ତେଣେ—ଗ୍ରାମ୍ୟରୂପ] place. (ଉ—ଯେଣେ ଇଚ୍ଛା
ଯେଖାନେ ଈଚ୍ଛା ସେଖାନେ ତେଣେ ଯା, କର୍ମ ଘିନି ବୁଲୁ ଥା । ଉଗ । )
जहाँ ईच्छा तहाँ

ଯେତ[ତେ]କ—ଦେ. ସର୍ବ (ସଂ. ଯତ୍; ପ୍ରା. ଜେତ୍ତକ)—(ବସ୍ତୁ ବା
Jeta(te)ka ବ୍ୟକ୍ତି) ଯାବତୀୟ; ସମୁଦାୟ—All whatever;
ଯତ all whoever. (things or persons) [ଉ—ଲଙ୍କା-
जीतना ଗଡ଼ୁଁ ଯେତେକ କାଢ, ସମସ୍ତେ ଅସୁରଙ୍କ ସୁତ । ଉଗ ।]

ଯେତକ—ଦେ. ସର୍ବ. ଓ ବିଣ (ଭୁଲ. ପ୍ରା. ଜେତ୍ତକ)—୧ । ଯେତେ
Jetiki ପରିମାଣ ବା ପରିମିତ—1. As much. [ଉ—ଅବଗାରେ
(ତେତକ, ସେତକ—ଆପେକ୍ଷିକ ଶବ୍ଦ) ପଶୁ ଯେ ଅଛନ୍ତି ଯେତକ ।
ଯତ जीतनी କୃଷ୍ଣସିଂହ• ମହାଭାରତ. ଆଦ ।]

ଯେତେ—ଦେ. ସର୍ବ (ସଂ. ଯତ୍; ପ୍ରା. ଜତ୍ତ)—ଯାବତ୍ ପରିମିତ—
Jete As much as. [ଉ—ମତେ ଯେତେ ମାଠିରୁ ମାଠ୍, ମୁଁ
( ଯେତେକ—ଅନ୍ୟରୂପ ) ସେହି ଦରପୋଡ଼ା କାଠ୍ । ଉଗ ।]
[ଯେତେକଇଁ—ଗ୍ରାମ୍ୟରୂପ] ଯତ जितना
(ତେତେ, ସେତେ—ଆପେକ୍ଷିକ ଶବ୍ଦ)

ଯେତେ ଇଚ୍ଛା—ଦେ. ଅ (ସଂ. ଯଥେଚ୍ଛା; ଯତ୍+ଇଚ୍ଛା; ଯଦୃଚ୍ଛା)—
Jete ichchhā ୧ । ଇଚ୍ଛାନୁରୂପ—1. According to
(ଯେତେଚ୍ଛା—ଗ୍ରାମ୍ୟରୂପ) one's wish. ୨ । ଯଥେଷ୍ଟ—
ଯତ ଈଚ୍ଛା जीतनी ईच्छा 2. Enough; sufficient.

ଯେତେ ଇଚ୍ଛା ତେ(ସେ)ତେ—ଦେ. ଅ—୧ । ଇଚ୍ଛାନୁରୂପ
Jete ichchhā te(se)te ପରିମାଣରେ—1, As much as
ଯତ ଈଚ୍ଛା ତତ you like. ୨ । ଯଥେଷ୍ଟ ପରିମାଣରେ—
जीतनी ईच्छा उतनी 2. Enough

ଯେତେ(ତୁ,ତୋ)ଟା[ଟି]—ଦେ. ସର୍ବ—ଯେତେ ସଂଖ୍ୟକ—
Jete(tu,to)tā(ti) As many. [ ଦ୍ର—ଯେତେଟା—ଅନା-
ଯତଟା, ଯତଟି जितना, जीताठो ଦରାର୍ଥକ; ଯେତେଟି—
ତେତେ[ତୁ,ତୋ]ଟା, } —ଆପେକ୍ଷିକ ଶବ୍ଦ ଅଦରାର୍ଥକ ]
ସେତେ(ତୁ,ତୋ)ଟା }

ଯେତେଠାଉଁ—ଗ୍ରା. ଅ—୧ । ଯେତେ ସ୍ଥାନରୁ—1. From as
Jetethaun many places ୨ । ଯେତେ ବ୍ୟକ୍ତିଙ୍କଠାରୁ—
(ଯେତେଠୁ—ଅନ୍ୟରୂପ) 2. From as many persons.
ଯତ ଜାୟଗାଥେକେ जीतनीजगहसे (ତେତେଠାଉଁ—ଆପେକ୍ଷିକ ଶବ୍ଦ)

ଯେତେଠା(ଠି)—ଗ୍ରା. ସର୍ବ—ଯେତେ ସ୍ଥାନ—As many places.
Jetethā(thi) [ଦ୍ର—ଯେତେଠା(ଠି) ଶବ୍ଦର—
ଯତ ଜାୟଗା ୨ୟା ବିଭକ୍ତି—ଯେତେଠାକୁ, ଯେତେଠିକୁ(କି);
जितनी जगह ୫ମୀ ବିଭକ୍ତି—ଯେତେଠାରୁ, ଯେତେଠୁଁ. ଯେତେଠୁ,
(ଯେତେଠାଅ—ଅନ୍ୟରୂପ) ୬ଷ୍ଠୀ ବିଭକ୍ତି—ଯେତେଠାର;
୭ମୀ—ଯେତେଠାରେ, ଯେତେଠିଁ, ଯେତେଠା(ଠେ)ଇଁ ।]

ଯେତେଠା(ଠେ)ଇଁ—ଗ୍ରା. ଅ—୧ । ଯେତେ ସ୍ଥାନରେ—1. In as
Jetethā(the)iñ many places. ୨ । ଯେତେ ବ୍ୟକ୍ତିଙ୍କ
(ଯେତେଠାରେ, ଯେତେଠିଁ—ଅନ୍ୟରୂପ) ନିକଟରେ—2. Near
ଯତ ଜାୟଗାୟ जितनी जगहमे as many persons.
(ସେତେଠାଇଁ—ଆପେକ୍ଷିକ ଶବ୍ଦ)

ଯେତେଠାକୁ—ଗ୍ରା. ଅ—୧ । ଯେତେ ସ୍ଥାନକୁ—1. To as many
Jetethāku places. ୨ । ଯେତେ ଲୋକଙ୍କ ନିକଟକୁ—To
ଯତ ଜାୟଗାୟ जीतनीजगहको as many people.
(ଯେତେଠାଅକୁ, ଯେତେଠା(ଠେ)ଇଁକି, ଯେତେଠିକି, ଅନ୍ୟରୂପ)—
[ସେତେଠାକୁ, ସେତେଠିକି, ତେତେଠେଇଁକି—ଆପେକ୍ଷିକ ଶବ୍ଦ]

ଯେତେ ବେଳ—ଦେ. ସର୍ବ—୧ । ଯେଉଁ ସମୟ—1. Which time.
Jete bela ୨ । ଯେତେ ପରିମିତ ସମୟ—2 As much
ଯତବେଳା time. ୩ । ଯେତେ କାଳବିଳମ୍ବ—3. As
जितनावखत much delay. [ ଦ୍ର—ଏ ଶବ୍ଦର ୨ୟା
ବିଭକ୍ତି—ଯେତେବେଳକୁ ;
୫ମୀ—ଯେତେବେଳଉଁ (ରୁଁ), ଯେତେବେଳୁ(ରୁ);
୬ଷ୍ଠୀ—ଯେତେବେଳର
୭ମୀ—ଯେତେବେଳେ । ]
[ ସେ(ତେ)ତେ ବେଳ—ଆପେକ୍ଷିକ ଶବ୍ଦ ]

ଯେତେବେଳେ—ଦେ. ଅ ( ସ. ଯଦ୍+ବେଳାୟାଂ )—୧ । ଯଦା;
Jetebele ଯେଉଁ ସମୟରେ—1. When; at what
ଯଖନ time, at which time. ୨ । ଯଦି—2 If.
जब, जिसवख्त ୩ । ଯେହେତୁ—3. Whereas;
[ସେ(ତେ)ତେ ବେଳେ—ଆପେକ୍ଷିକ ଶବ୍ଦ] because.

ଯେତେ ମତେ—ଦେ. ଅ—ଯେତେ ପ୍ରକାରେ—In as many
Jete mate ways. [ ଉ—ବହୁତ ଥିବାଠାରେ ତାହା
ଯତପ୍ରକାର जीतना କହାଗଲେ, ନ କହନ୍ତି ପଣ୍ଡିତରେ ଯେତେମତେ ।
[ସେ(ତେ)ତେ ମତେ—ଆପେକ୍ଷିକ ଶବ୍ଦ] କୃଷ୍ଣସିଂହ. ମହାଭାରତ.
ଆଦ । ]

**ଯେନ୍**—ପ୍ରାଦେ ( ସମ୍ବଲପୁର ) ବଣ—ଯେଉଁ—
Jen Which.

**ଯେନ୍ ତେନ୍ତା**—ପ୍ରାଦେ ( ସମ୍ବଲପୁର ) ସର୍ବ—ଯେ କୌଣସି; ଯା
Jen ten-ṭā ଇଚ୍ଛା ତା—Anything whatever.

**ଯେନ କେ(ତେ)ନ**—ଦେ. କି. ବଣ ( ସଂ. ଯେନକେନ[ତେନ] ପ୍ରକାରେଣ)—୧ । ଯେ କୌଣସି ଉପାୟରେ;
Jena ke(te)na
ଯେନ କେ(ତେ)ନ ପ୍ରକାରେ
ଯେନ କେ(ତେ)ନ ପ୍ରକାରେଣ } ଅନ୍ୟରୂପ
ଯେନ କେ(ତେ)ନ କରି
ଯେ କୌଣସି ପ୍ରକାରେ —1. Anyhow, by means fair or foul; by any means
যেনকেন(তেন); যেমনতেমন
जैसेतैसेसतरहसे, जसेतैसे, जेनकेनप्रकारेण ୨ । ଅତି କଷ୍ଟରେ —2. With great difficulty.

**ଯେନ୍ତା**—ପ୍ରାଦେ ( ସମ୍ବଲପୁର ଓ ଗଡ଼ଜାତ ) ଅ—୧ । ଯେପରି—
Jentā 1. As. ୨ । ଯେଉଁକ୍ଷଣି—2. As soon as; no sooner than.
(ତେନ୍ତା—ଆପେକ୍ଷିକ ଶବ୍ଦ)

**ଯେନ୍ତା କେନ୍ତା**—ପ୍ରାଦେ. (ସମ୍ବଲପୁର)—ଅ.—ଯେ କୌଣସି ପ୍ରକାରେ
Jentā kentā Anyhow.

**ଯେନ୍‌ହେ**—ଦେ. ଅ.—ଯେହ୍ନେ (ଦେଖ)
Jen he Jehne (See)
[ଉ—ତକ୍ଷଣେ ରୂପ ଲୋପ କଲେ, ଦର୍ପଣ ଯେନ୍‌ହେ ଲେଉଟିଲେ । ଭୂପତି. ପ୍ରେମପଞ୍ଚାମୃତ । ]

**ଯେପରି**—ଦେ. ଅ (ସଂ. ଯତ୍‌ପ୍ରକାରେଣ)—୧ । ଯେଉଁପ୍ରକାରେ—
Jepari 1. In which manner. ୨ । ଯେଉଁକ୍ଷଣରେ
যেমন जैसा 2. No sooner than; as soon as.
(ଯେପରିକି—ଅନ୍ୟରୂପ) ୩ । (ବାକ୍ୟରେ ଜୋର୍ ଦେବାପାଇଁ)
[ଯେପ(ପି)ରିକା—ଗ୍ରା. ରୂପ ] ଫଳତଃ—3. So that; be careful that. [ଯଥା—ସାବଧାନ ରହିବ, କଥାଟା ଯେପରି ପ୍ରକାଶ ନ ହୁଏ । ] ୪ । ଯେଉଁପ୍ରକାରର—4 Of which kind. ( ଯଥା—ଯେପରି ଦେବଙ୍କୁ ସେପରି ପୂଜା, ବାଇ ଗରଡ଼ାଙ୍କୁ ଗୁଜୁଳି ଭଜା—ଢଗ] ୫ । ଯଥା; ଉଦାହରଣସ୍ୱରୂପ—5. As for instance. (ଯଥା—ମରହଟ୍ଟି ଆ ଲୋକେ ଛଳ କପଟ ଜାଣନ୍ତି ନାହିଁ, ଯେପରି ରାମ ନନ୍ଦେ, ଶ୍ୟାମ ମିଶ୍ରେ । )

**ଯେପାରି(ରୁ)ସେ**—ଦେ. ସର୍ବନାମ—୧ । ଯେ କୌଣସି ସମର୍ଥ ବ୍ୟକ୍ତି—
Je pāri(ru) se 1. Any able person. ୨ । ଯେ
যেপারেসে जोहोसकेसो କୌଣସି ବ୍ୟକ୍ତି—2. Any person whatever; whoever.

**ଯେବ**—ଗ୍ରା. ସର୍ବ—ଯେଉଁ ସମୟ—
Jeba Which time.
যেসময় जब

**ଯେବକା**—ଗ୍ରା. ଅ—ଯେଉଁ ସମୟର—
Jebakā যেসময়ের जबका Of which time.
( ଯବକାର—ଅନ୍ୟରୂପ )

**ଯେବକୁ**—ଗ୍ରା. ଅ—୧ । ଯେଉଁ ସମୟକୁ—1. To which time.
Jebaku ୨ । ଯେଉଁ ସମୟରେ; ଯେବେ—2. At which time.
যে সময় जब,

**ଯେବଠଉଁ**—ଗ୍ରା. ଅ—ଯେଉଁ ସମୟରୁ—
Jebaṭhaun̐ যে সময় থেকে जबसे From which time.
( ଯେବଠୁଁ, ଯେବଣ୍ଠୁଁ—ଅନ୍ୟରୂପ )

**ଯେବଣ**—ଦେ. (ପଦ୍ୟ) ସର୍ବ—(ଏକ ବଚନ) ଯେଉଁ (ବ୍ୟକ୍ତି)—
Jebaṇa Which one; who. [ଉ—ଅତି ସମରଥ ଯେବଣ ଯେ ଲୋକ, ବୋଇଁ ଭାର ବୋହି ଲୋଡ଼ି ତା ବେକ । ଢଗ । ]
जौन ୨ । ଯେଉଁ; ଯେ—2. Which [ଉ—ଯେବଣ ପ୍ରକାରେ କାର୍ଯ୍ୟ ହୋଇବଟ ସିଦ୍ଧି । ବିଶ୍ୱନାଥ. ବିଚିତ୍ରରାମାୟଣ । ]

**ଯେବେ**—ଦେ. ଅ (ସଂ. ଯଦା; ଯଦାବା)—୧ । ଯେଉଁ ସମୟରେ—
Jebe 1. When; at which time. [ଉ—ବିଷୟାରତ ଚିତ୍ତ
যখন ଯେବେ, ଜୀବର ବନ୍ଧ ଭାବ ତେବେ । ଜଗନ୍ନାଥ. ଭାଗବତ ]
जब ୨ । ଯଦି—2. If. [ ଉ—କାଲ ଯେବେ କର ବସିବୁ, (ତେବେ—ଆପେକ୍ଷିକ ଶବ୍ଦ) ସାଙ୍ଗରେ ଥିବ ଭାଇ । ଢଗ ।]

**ଯେବେକେ(କି)**—ଗ୍ରା. ଅ—ଯଦି—If. [ଉ—ପାପୀ ଯେବେକେ ଦଣ୍ଡ
Jebeke(ki) ସହସ୍ର ବ୍ରାହ୍ମଣ, ଭୁଞ୍ଜାଏ ଘରେ ପାପୁ ମୁକ୍ତ ହୋଏ
যদি जब ଜାଣ । କୃଷ୍ଣସିଂହ. ମହାଭାରତ. ଅନୁଶାସନ ।]

**ଯେବେ କେବେ**—ଦେ. ଅ—୧ । ଯଦିବା କୌଣସି ସମୟରେ—
Jebe kebe 1. If when; if at any time. ୨ । ଯଦି
যদি কখন, ଅକସ୍ମାତ୍—2. If unexpectedly; if ever.
जब कब

**ଯେବେଟି(ବି,ଭି)**—ଦେ. ଅ (ସଂ. ଯଦ୍ୟପି)—୧ । ଯେଉଁ ସମୟରେ
Jebeṭi(bi,bhi) ମଧ୍ୟ; ଯେ କୌଣସି ସମୟରେ—2. When-
যদিও ever. ୨ । ଯଦି; ଯଦ୍ୟପି—2. Even if. ୩ । ଯଦି
जबभी ଯେବେ ବା (ଅନ୍ୟରୂପ) ନିଶ୍ଚେ—3. If certainly.

**ଯେବେ ଯେବେ**—ଦେ. ଅ—୧ । ଯେ କୌଣସି ସମୟମାନଙ୍କରେ;
Jebe jebe ଯେଉଁ ଯେଉଁ ସମୟରେ—1 At times; on
যখন যখন those occasions. (ଯଥା—ଯେବେ ଯେବେ ସେ
जब जब ରାଜଦ୍ୱାରକୁ ଆସୁଥିବେ ତେବେ ତେବେ ତାଙ୍କୁ ଠକାଉଥିବ ( ତେବେ, ତେବେତେବେ—ଆପେକ୍ଷିକ ଶବ୍ଦ ) ଲୋଖାଏଁ ରାଜଭଣ୍ଡାରରୁ ଦିଆଯାଉଥିବ ।)

**ଯେବେହେଲେ**—ଦେ. ଅ—୧ । ଯେ କୌଣସି ସମୟରେ—
Jebe hele 1. Whenever; at any time whatever.
जबभी ୨ । ଯଦି ଅକସ୍ମାତ୍—2. If ever.
(ଯେବେହେଁ, ଯେବେଇ, ଯେବେହିଁ—ଅନ୍ୟରୂପ)

**ଯେମତ(ତି,ତେ,ନ୍ତ,ନ୍ତି,ନ୍ତେ)**—ଦେ. ଅ (ସଂ. ଯଦ୍ଦତ୍; ପ୍ରା ଜେମ୍)—
Jemata(ti,te,nta,nti,nte) ୧ । ଯେଉଁପରି; ଯେପରି; ଯେଉଁ
[ତେ(ସେ)ମତ(ତି,ତେ,ନ୍ତ,ନ୍ତି,ନ୍ତେ)—ଅପେକ୍ଷିକ ଶବ୍ଦ] ପ୍ରକାରେ—
যেমন 1. Like which; in which way. [ଉ—
जैसेतरह, जसे ସର୍ବୋବିଚ୍ଛେଦ୍ୟ ପ୍ରଜା ପୁଣ୍ଡ୍ରି ସ୍ରଷ୍ଟା ଯେମନ୍ତ । ରାଧାନାଥ.
(ଯେମିତି—ଗ୍ରାମ୍ୟରୂପ) ତୁଳସୀ ସ୍ତବକ ।] ୨ । ଯଥା—2. As.

ଯେରୂପେ—ଦେ ଅ (ସଂ. ଯଦ୍ରୂପ୍)—ଯେଉଁ ପ୍ରକାରେ—
Jerūpe যেরূপে जैसे In which manner; which-
(ଯେଉରୂପେ, ଯେର୍ପେ, ଯେରେପେ—ଗ୍ରାମ୍ୟରୂପ) wise.

ଯେଲ୍ (ଇତ୍ୟାଦି)—ବୈଦେ. ବି—ଜେଲ୍ ଇତ୍ୟାଦି (ଦେଖ)
Jel (etc) Jel etc. (See)

ଯେସନ(ନେ)—ଦେ. (ପଦ୍ୟ) ଅ—୧ । ଯେଉଁ ପରି—1. In which
Jesana(ne) manner. ୨ । ଯଥା—2. As; like. [ ଭୂ—
[ ଯେସନ(ନେ)କ—ପଦ୍ୟରେ ବ୍ୟବହୃତ ଆକାର ] ବିବୁଧାଦ୍ରିରେ
যেমন ଯେସନେକ ହୋଇ, ବାରଣେନ୍ଦ୍ର ଦଶନ ଭେଦି ରହି । ଉଞ୍ଜ.
जैसा ବୈଦେହୀଶବିଳାସ । ସ୍ଥାବର ଜଙ୍ଗମ କଠାରେ, ପବନ
ଯେସନେ ସଞ୍ଚରେ । ଜଗନ୍ନାଥ. ଭାଗବତ । ସମସ୍ତ ପୁଷ୍ପରୁ
ଯେସନ, ଭୃଙ୍ଗ ଘେନଇ ସାରମାନ । ଜଗନ୍ନାଥ.
ଭାଗବତ । ]

ଯେସାକୁ ତେସା—ଦେ. ବାକ୍ୟ ( ହି. ଜୈସାକୋ ତୈସା; କୌଣସି
Jesāku tesā ବ୍ୟକ୍ତିଙ୍କୁ ଉପଯୁକ୍ତ ବ୍ୟବହାର ବା ପ୍ରତିଶୋଧ
যাকে যেমন তাকে তেমন କରାଗଲେ ଏହି ବଚନ ବୋଲାଯାଏ)—
जैसाको तैसा ଯେ ଯେଉଁପରି ଲୋକ ତାକୁ ସେହିପରି ବ୍ୟବହାର—
Deserving treatment to a person.
ବି—ଯଥୋପଯୁକ୍ତ ବ୍ୟବହାର—Tit for tat.
ଅ—ଯଥୋପଯୁକ୍ତରୂପେ—In return.

ଯେ(ଯୈ)ସୁଆର୍(ଲ୍)—ଦେ. ବି. (ହିନ୍ଦୀ. ଜୈସବାର୍)—ପଶ୍ଚିମା ବୈଶ୍ୟ
Je(jai)suār(l) ଜାତି ବିଶେଷ—A class of Baisyas
জৈস্বাল जैसवार of N. W. India; Jayswal.

ଯେ ସେ ଲୋକ—ଗ୍ରା.ବି—୧ । ଯେ କୌଣସି ଲୋକ—1. Anyone.
Je se loka ୨। ଅନ୍ୟ କୌଣସି ବ୍ୟକ୍ତି—2. Any other
যে সে লোক person. ୩ । ସାଧାରଣ ବ୍ୟକ୍ତି—3. An
ऐसा वैसा ordinary person. (ଭୂ—ପରମାଣିକ ପୁଅ,
ପରମାଣିକ ହେବ, କମ୍ବା ତାହା ବଶରୁ କେହି ଜଣେ ହେବ,
ଯେସେ ଲୋକ ହୋଇ ପାରିବ ନାହିଁ । ଫକୀରମୋହନ.
ଛମାଣ ଆଠଗୁଣ୍ଠ ।)

ଯେ ହ(ହେ)ଉ—ଗ୍ରା. ଅ—୧ । ଯାହା ଘଟୁ ପଛକେ; ଯାହା ହେଉ—
Je ha(he)u 1. However. ୨ । ଯେ କୌଣସି ପ୍ରକାରେ—
যাই হউক, যে হউক 2. Anyhow. ୩ । ଯାହା ହେବାର
जोहो ହେଉ ପଛକେ—3. Come what may.

ଯେହି(ହୁ)—ଗ୍ରା. ସର୍ବ ( ସଂ ଯଦ୍+ହି )—୧ । ଯେ; ଯେଉଁ ବ୍ୟକ୍ତି;
Jehi(hu) ଯେଉଁଣ ଲୋକ—1. Which person; who.
যে जोहि (ଭୂ—ସ୍ୱତନ୍ତ୍ର ପ୍ରଭୁ ଝଟେ ଯେହି । ଜଗନ୍ନାଥ.
ଭାଗବତ ।) ୨ । ଯେଉଁ ପ୍ରାଣୀ—2. Which animal;
whichever animal.
୩ । ଯେ କୌଣସି ବ୍ୟକ୍ତି ବା ପ୍ରାଣୀ—3. Whoever.

ଯେହ୍ନେ—ଦେ. (ପଦ୍ୟ) ଅ (ଗ୍ରା.ଯେହ୍ନେ)—୧ । ଯେଉଁପରି; ଯେପରି—
Jehne যেমন जैसा 1. As, like.
(ଯେହ୍ନେକ—ପଦ୍ୟବ୍ୟବହୃତ ରୂପ) (ଭୂ—ଗନ୍ଧର୍ବେତି ଯୁଦ୍ଧରେ ଅନ୍ତେ
ମନୁଆଁ, ବାଳ କାଣ୍ଡ କୋଧେ ଜଳଲେ ଯେହ୍ନେ ଛାଆଁ ।
କୃଷ୍ଣସିଂହ. ମହାଭାରତ. ବନ ।)
୨ । ଯେତେ ପରି; ଯେତେ ଅବା—2. As if

ଯେହ୍ନେକାର—ଦେ. ଅ. (ପ୍ରାଚୀନ)—ଯେହ୍ନେ ( ଦେଖ )
Jehnekāra Jehne ( See )
(ଭୂ—କାଳସର୍ପ ଗରଳ ଲହରୀ ଯେହ୍ନେକାର । ପ୍ରାଚୀ.
ରସବାରିଧି ।)

ଯୋ—ଗ୍ରା. ସର୍ବ—(ସଂ. ଯଦ୍)—ଯେ; ଯେଉଁ; ଯାହା—
Jo যে जो What; which.
[ଯୋଉ(ଉଁ)—ଅନ୍ୟରୂପ] ବୈଦେ—ଜୋ (ଦେଖ)—Jo (See)

ଯୋଆନ୍ (ଇତ୍ୟାଦି)—ଗ୍ରା. ବି ଓ ବିଣ. (ସଂ. ଯୁବା)—ଜୁଆନ୍ ଇତ୍ୟାଦି
Joān (etc) (ଦେଖ)—Juān etc ( See )

ଯୋକ(କା) (ଇତ୍ୟାଦି)—ଦେ. ବି—ଜୋକ(କା) ଇତ୍ୟାଦି ( ଦେଖ )
Joka(kā) (etc) Joka(kā) etc ( See )

ଯୋକିଆ—ଦେ. ବି. ( ସଂ. ଯୋଗ )—୧ । ଦୁଇ ମୁଣ୍ଡରେ ବଙ୍କାକାର
Jokiā ଯେଉଁ ଲୌହ କଣ୍ଟା ଦ୍ୱାରା ଲଙ୍ଗଳମୁଣ୍ଡାରେ
ଫାଳକୁ ବା ଲଙ୍ଗଳଲୁହାକୁ ଦୃଢ଼ ରୂପରେ ସମ୍ବନ୍ଧ
କରାଯାଏ—1. An iron nail bent on both
ends and put over the groove of a
plough-blade to keep the ploughshare
in position. ୨ । ଜୋକିଆ ( ଦେଖ )—2. Jokiā
( See )

ଯୋକ୍ତବ୍ୟ—ସଂ. ବିଣ. (ଯୁଜ୍ ଧାତୁ+କର୍ମ. ତବ୍ୟ)—୧ । ଯୁକ୍ତ ହେବା
Joktabya ଯୋଗ୍ୟ—1. Fit to be joined or united.
୨ । ସାଧ୍ୟ—2. Performable. ୩ । ଯୋଗ-
ସାଧନ ଦ୍ୱାରା ଯୁକ୍ତ ହେବା ଯୋଗ୍ୟ—3. To be united
spiritually. ୪ । ଯୋଚି ଦିବା ଯୋଗ୍ୟ—4. Fit
to be yoked.

ଯୋକ୍ତା—ସଂ. ବିଣ. ପୁଂ. ( ଯୁଜ୍ ଧାତୁ+କର୍ତ୍ତୃ. ତୃ; ୧ମା. ୧ବ )—
Joktā ଯେ ଯୋଗ କରେ; ଯୋଗକାରୀ—Uniting;
(ଯୋକ୍ତ୍ରୀ—ସ୍ତ୍ରୀ) that which unites.
ବି—୧ । ରଥ ଆଦିର ଚାଳକ—1. Driver or con-
ductor of a car. ୨ । ଯେ ପଶୁଙ୍କୁ ରଥ ଆଦିରେ
ଯୋଚେ—2. One who yokes beasts to a
plough or cart.

ଯୋକ୍ତ୍ର—ସଂ. ବି. ( ଯୁଜ୍ ଧାତୁ+କରଣ. ତ୍ର )—୧ । ଯୋତ; ଲଙ୍ଗଳ-
Joktra ଦଣ୍ଡ; ଯେଉଁ ଦଉଡ଼ି ଦ୍ୱାରା ଈଶକୁ ଯୁଆଳି
ସଙ୍ଗେ ବନ୍ଧାଯାଏ—1. The rope that ties the
beam with the yoke. [ଦ୍ର—ଏହାର ଅପଭ୍ରଂଶ
ଶବ୍ଦ ଯୋତ ।] ୨ । (+ଅଧିକରଣ. ତ୍ର)—ଯୁଆଳି—
2. Yoke.

ଯୋଖ (ଇତ୍ୟାଦି)—ଦେ. ବି—ଜୋଖ ଇତ୍ୟାଦି ( ଦେଖ )
Jokha (etc) Jokha etc. ( See )

**ଯୋଖା (ଇତ୍ୟାଦି)**—ଦେ. ବି. ଓ ବିଣ—ଜୋଖା ଇତ୍ୟାଦି (ଦେଖ)
Jokhā (etc) Jokhā etc ( See )

**ଯୋଖା(ଖେ)ଇବା**—ଦେ. କ୍ରି—ଜୋଖାଇବା ( ଦେଖ )
Jokhā(khe)ibā Jokhāibā (See)

**ଯୋଖିବା**—ଦେ କ୍ରି—ଜୋଖିବା ( ଦେଖ )
Jokhibā Jokhibā ( See )

**ଯୋଗ**—ସଂ. ବି. (ଯୁଜ୍ ଧାତୁ=ଯୋଗ କରିବା; ଯୁକ୍ତ ହେବା+କର୍ତ୍ତୃ. Joga ଅ)—୧ । ଧ୍ୟାନ ଓ ସାଧନାଦି ଦ୍ୱାରା (ମନୁଷ୍ୟ ଶରୀରସ୍ଥ) ଜୀବାତ୍ମା ଓ ପରମାତ୍ମାଙ୍କର ଭଗବାନଙ୍କ ସଙ୍ଗେ ମିଳନ—1. Spiritual communion of man with God; the union of a man's soul with the Divine Spirit; 'when man-in-God is one with God-in-man'(Tennyson)
[ଦ୍ର—ଭିନ୍ନ ଭିନ୍ନ ପ୍ରଣାଳୀରେ ଯୋଗ ସାଧନ କରିବା ବିଷୟ ଭଗବଦ୍ଗୀତାରେ ବର୍ଣ୍ଣିତ ହୋଇଅଛି । ପ୍ରତ୍ୟେକ ଅଧ୍ୟାୟ ଶେଷରେ ଅମୁକ ଯୋଗ ନାମ ଅମୁକ ଅଧ୍ୟାୟ ବୋଲି ଲେଖାଅଛି ।] ୨ । ତପସ୍ୟା, ଜୀବାତ୍ମା ଓ ପରମାତ୍ମାର ମିଳନ ଘଟାଇବା ପାଇଁ ଅବଲମ୍ବିତ ୮ଟି ପନ୍ଥା—2. The eight steps leading to the accomplishment of spiritual communion.
[ଦ୍ର—ଏହାର ଅନ୍ୟ ନାମ ଅଷ୍ଟାଙ୍ଗ ଯୋଗ । ଯୋଗର ଅଷ୍ଟାଙ୍ଗ ବା ଆଠ ଗୋଟି ଅଙ୍ଗ, ଯଥା—ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧ୍ୟାନ, ଧାରଣା ଓ ସମାଧି ।
ଯମ ୫ଟି—ଅହିଂସା, ସତ୍ୟ, ଅଚୌର୍ଯ୍ୟ, ବ୍ରହ୍ମଚର୍ଯ୍ୟ ଓ ସର୍ବବିଧ ଭୋଗ ପରିତ୍ୟାଗ ।
ନିୟମ ୫ଟି—ବାହ୍ୟ ଓ ଅଭ୍ୟନ୍ତର ଶୌଚ, ସନ୍ତୋଷ, ଇନ୍ଦ୍ରିୟ ନିଗ୍ରହରୂପ ତପଃ, ବେଦାଧ୍ୟୟନ, ପ୍ରଣିଧାନ ।
ଆସନ—ପଦ୍ମାସନ, ସ୍ୱସ୍ତିକାସନ ଆଦି ବସିବାର ଢଙ୍ଗ ।
ପ୍ରାଣାୟାମ—ରେଚକ (ନାକର ଡାହାଣ ପୁଡ଼ାରେ ନିଶ୍ୱାସ ଦ୍ୱାରା ଦେହ ମଧ୍ୟରୁ ବାୟୁକୁ ଛାଡ଼ିବା), ପୂରକ (ନାକର ବାମ ପୁଡ଼ାରେ ନିଶ୍ୱାସ ଦ୍ୱାରା ଦେହ ମଧ୍ୟକୁ ବାୟୁ ପୂରାଇବା) ଓ କୁମ୍ଭକ (ଦେହରେ ପୂରାଇଥିବା ବାୟୁକୁ କିଛି କାଳ ସହାଏ ଦେହ ମଧ୍ୟରେ ସମ୍ଭାଳିବା) କ୍ରିୟାଦ୍ୱାରା ପ୍ରାଣବାୟୁର ସର୍ବବିଧ ସଞ୍ଚାଳନ ଓ ସ୍ଥିରୀକରଣ ।
ପ୍ରତ୍ୟାହାର—ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧାଦି ବାହ୍ୟ ବିଷୟରୁ ମନକୁ ପ୍ରତିନିବୃତ୍ତ କରାଇବା ।
ଧ୍ୟାନ—ବ୍ରହ୍ମଚିନ୍ତା ଓ ଆତ୍ମଚିନ୍ତା । ହୃଦୟରେ ବ୍ରହ୍ମଙ୍କର କଳ୍ପିତ ରୂପଗୁଣାଦି ଚିନ୍ତନ ।
ଧାରଣା—ବ୍ରହ୍ମବସ୍ତୁରେ ମନର ସ୍ଥିତି ବା କେନ୍ଦ୍ରୀଭବ ।
ସମାଧି—ବ୍ରହ୍ମବସ୍ତୁରେ ଲୟ; 'ଅହଂ ବ୍ରହ୍ମାସ୍ମି'—ଅର୍ଥାତ୍ 'ମୁଁ ବ୍ରହ୍ମ' ଏହିରୂପ ଜ୍ଞାନରେ ଅବସ୍ଥିତି । ପରମାତ୍ମା ସହିତ ଜୀବାତ୍ମାର ମିଳନ ।
ଫଳତଃ—ଅଷ୍ଟାଙ୍ଗ ମଧ୍ୟରୁ ଶେଷ ଅଙ୍ଗ ବା ସମାଧିହିଁ ଯୋଗ ଅଟେ ଏବଂ ଏହି ସମାଧି ଅବସ୍ଥାକୁ ଲାଭ କରିବା ପାଇଁ ପୂର୍ବୋକ୍ତ ଅନ୍ୟ ୭ ଗୋଟି ସୋପାନ ଲୋଡ଼ା ଓ ଉକ୍ତ ସୋପାନ ବାଟେ ନ ଆସିଲେ ସମାଧିରେ ପହଞ୍ଚ ପାରିବା ଅସମ୍ଭବ । ପ୍ରାଚୀନ ହିନ୍ଦୁ ମୁନି ଋଷିମାନେ ଏହି ସମାଧିଯୁକ୍ତ ଅବସ୍ଥାରେ ପହଞ୍ଚ ପରମାନନ୍ଦ ଓ ମୁକ୍ତି ଲାଭ କରୁଥିଲେ । ଏହି ଅଷ୍ଟାଙ୍ଗ ସାଧନହିଁ ଯୋଗସାଧନ । ବୌଦ୍ଧମାନେ ଏହାକୁହିଁ 'ନିର୍ବାଣ' ନାମ ଦେଇଥିଲେ ଓ ଖ୍ରୀଷ୍ଟିୟାନ୍‌ମାନେ ଆଧ୍ୟାତ୍ମିକ ସମ୍ମେଳନ 'Spiritual communion' ନାମ ଦେଇଥିଲେ । ମନକୁ ସଂସାରର ସୁଖଦୁଃଖରୁ ନିବୃତ୍ତ କରି ତଦ୍ଦ୍ୱାରା ଏକାଗ୍ରତା ଲାଭ କରିବା ଓ ମନକୁ ସଂସାରଚିନ୍ତାରୁ କାଢ଼ି ନେଇ ଆତ୍ମପ୍ରସାଦରୂପ ଅନାବିଳ ଆନନ୍ଦ ଓ ଶାନ୍ତି ଭୋଗ କରିବାହିଁ ଯୋଗ । ଭାରତ ପ୍ରାଚୀନକାଳରେ ନାନାପ୍ରକାର ବିଦ୍ୟାରେ ପାରଦର୍ଶିତା ଲାଭ କରିଥିଲା । ବେଦ, ସଂହିତା, ଦର୍ଶନ, ସ୍ମୃତି, ଶ୍ରୁତି, ଜ୍ୟୋତିଷ, ତନ୍ତ୍ର, ଯୋଗ ପ୍ରଭୃତି ନାନାଶାସ୍ତ୍ର ବିଶାରଦ ହୋଇ ଭାରତ ସମଗ୍ର ଜଗତର ଗୁରୁ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଭାରତ ଜଡ଼ବିଜ୍ଞାନ ଓ ମନୋବିଜ୍ଞାନ ଉଭୟ ବିଦ୍ୟାରେ ଚୂଡ଼ାନ୍ତ ଉନ୍ନତିଲାଭ କରିଥିଲା । କାଳକ୍ରମେ ଭାରତର ଅନେକ ପୋଥି ପତ୍ର କାଳର କରାଳ ଗର୍ଭରେ ନିକ୍ଷିପ୍ତ ହୋଇଅଛି । ଯାହା କିଛି ମିଳୁଛି ତହିଁରୁ ଜ୍ଞାନର ଅନେକ ଶାଖା ପ୍ରକାଶିତ ହେଉଅଛି । ଯୋଗ ଶାସ୍ତ୍ର ହିନ୍ଦୁଶାସ୍ତ୍ରମାନଙ୍କ ମଧ୍ୟରେ ପ୍ରଧାନ ଶାସ୍ତ୍ର । ଯୋଗବିଦ୍ୟାର ଅଦ୍ଭୁତ ଶକ୍ତି । ଯୋଗର ପ୍ରଧାନ ଉଦ୍ଦେଶ୍ୟ କଅଣ ? ଏହା ଦ୍ୱାରା ମାନବ ପାର୍ଥିବ ସୁଖସମ୍ଭୋଗରେ ଅନାଶକ୍ତ, ସାଂସାରିକ ମୋହମାୟା ପାଶରୁ ମୁକ୍ତ, ଆଧ୍ୟାତ୍ମିକ ଉତ୍କର୍ଷର ଅଧିକାରୀ, ସର୍ବଭୂତରେ ସମଦର୍ଶୀ, ସୁଖଦୁଃଖରେ ସମଜ୍ଞାନୀ, ଜିତେନ୍ଦ୍ରିୟ, ସର୍ବସିଦ୍ଧ, ନିତ୍ୟକୃପାପୂର୍ଣ୍ଣଚିତ୍ତ, ଜୀବନ୍ମୁକ୍ତ ହୁଏ, ପରମବ୍ରହ୍ମପଦପ୍ରାପ୍ତ ବା ପରମବ୍ରହ୍ମରେ ଲୀନ ହୁଏ । ଯୋଗସିଦ୍ଧି ଦ୍ୱାରା ଲୋକ ତ୍ରିକାଳଦର୍ଶୀ ଓ ସର୍ବକ୍ଷମତା ସମ୍ପନ୍ନ ହୁଏ । ଯୋଗୀ ଅସାଧ୍ୟ ସାଧନ କରେ । ଯୋଗୀ ନ କରି ପାରିବ, ଏପରି କିଛି କର୍ମ ନାହିଁ । ଯୋଗରେ ସିଦ୍ଧିଲାଭ କଲେ ଲୋକ ମେଘ, ବାୟୁ ପ୍ରଭୃତିକୁ ସ୍ତମ୍ଭନ କରି ଶୂନ୍ୟ ମାର୍ଗରେ ବିଚରଣ କରେ, ଜଳ ଉପରେ ସଞ୍ଚରଣ, ଜଳକୁ ଓ ମୃତ୍ତିକାକୁ ସ୍ତମ୍ଭନ କରି ତା ମଧ୍ୟରେ ଅବସ୍ଥିତି କରେ ଓ ଜଳ ଏବଂ ମୃତ୍ତିକା ଭିତରେ ପ୍ରବେଶ କରେ, ପର୍ବତ ଓ ଅରଣ୍ୟ ଭେଦ କରେ, ସମୁଦ୍ର ଆଦି ପାର ହୋଇପାରେ; ମୁହୂର୍ତ୍ତକେ ନାନାସ୍ଥାନକୁ ଯାଇ ଫେରି ଆସେ, ଅଗ୍ନିତାପ ଓ ହିମ ପ୍ରଭୃତି ସ୍ତମ୍ଭନ କରେ ଏବଂ ତା ମଧ୍ୟରେ ସ୍ଥିତି ଓ ଯାତାୟାତ କରେ, ଅନ୍ତର୍ହିତ ହୁଏ, ବିବିଧ ସୁନ୍ଦର ଓ ଭୀଷଣ ମୂର୍ତ୍ତି ଧାରଣ କରେ, ସର୍ବରୋଗ ବିମୁକ୍ତ, ତ୍ରିକାଳଦର୍ଶୀ ଓ ତ୍ରିକାଳଜ୍ଞାନୀ ହୁଏ । ଯୋଗବଳରେ ବାକ୍‌ସିଦ୍ଧି, କ୍ଷୁଧା ତୃଷ୍ଣା ସୁଖ ଦୁଃଖ ଆଦିର ବୋଧ-ରାହିତ୍ୟ, ସର୍ବଜୀବନ, ଇଚ୍ଛାମୃତ୍ୟୁ, ଇତ୍ୟାଦି ନାନା ବିଧଶକ୍ତି ଲାଭ ହୁଏ । ପ୍ରାଚୀନ ଯୋଗୀ ଋଷିମାନେ

ଯୋଗ ବିଦ୍ୟାରେ ବିଶେଷ ପାରଦର୍ଶୀ ଥିଲେ ଏବଂ ସିଦ୍ଧ ହୋଇ ଥିଲେ । ପୂର୍ବେ ଏପରି ସିଦ୍ଧ ଯୋଗୀ ଅନେକ ଥିଲେ, ମାତ୍ର ଆଜି କାଲି ସେପରି ଯୋଗୀ ସାଧାରଣ କ୍ଷେତ୍ରରେ ଦେଖାଯାଆନ୍ତି ନାହିଁ । ଆଧୁନିକ ଶିକ୍ଷିତ ସମାଜରେ ଯୋଗଶାସ୍ତ୍ରରେ ବିଶ୍ୱାସ ନାହିଁ ସୁତରାଂ ସାଧନା କଥା ଆଉ କଅଣ କହିବା । ଫଳରେ ଯୋଗଶାସ୍ତ୍ରର ଅବନତି ଅବଶ୍ୟଂଭାବୀ ହୋଇଅଛି ।

ପୂର୍ବେ ଅନେକ ଯୋଗୀ ଥିଲେ, ଯେଉଁମାନେ ଯୋଗ ବଳରେ ଅସାଧ୍ୟ ସାଧନ କରି ପାରୁଥିଲେ । ଯୋଗଶାସ୍ତ୍ର ସମ୍ବନ୍ଧେ ବର୍ତ୍ତମାନ ଯୁଗରେ ଇଭାନ୍ସ ସାହେବ ଖଣ୍ଡେ ପୁସ୍ତକ ଇଂରେଜୀ ଭାଷାରେ ପ୍ରଣୟନ କରିଛନ୍ତି । ସେ ଲେଖିଛନ୍ତି, ଭାରତର ଯୋଗଶାସ୍ତ୍ର ପ୍ରକୃତ ସତ୍ୟ ଶାସ୍ତ୍ର; ଏପରି ଶାସ୍ତ୍ର ଇଉରୋପରେ ନାହିଁ । ସେ ଯୋଗ ଶାସ୍ତ୍ରରେ ଆକୃଷ୍ଟ ହୋଇ ଯୋଗ ସାଧନା କରୁଅଛନ୍ତି । ତାଙ୍କ ଗ୍ରନ୍ଥରେ ଯୋଗଶାସ୍ତ୍ରର ମାହାତ୍ମ୍ୟ ଓ ଯୋଗୀର ଅଦ୍ଭୁତ କ୍ଷମତା ଅନେକ ବ୍ୟାଖ୍ୟାତ ହୋଇଅଛି । ଅତି ଅଳ୍ପ କାଳ ପୂର୍ବେ ଯୋଗୀ ତୈଲଙ୍ଗ ସ୍ୱାମୀ ଯୋଗବଳରେ ଅଦ୍ଭୁତ ବ୍ୟାପାର ମାନ ଦେଖାଇ ଯାଇଛନ୍ତି ।

ଯୋଗ ପ୍ରଧାନତଃ ୨ ପ୍ରକାର—ହଠ ଓ ସାଂଖ୍ୟ ବା ଜ୍ଞାନ । ହଠ ଯୋଗ ଦ୍ୱାରା ଅନେକଗୁଡ଼ିଏ ପ୍ରକ୍ରିୟା ସାଧନ କରିବାକୁ ହୁଏ, ଯଥା : - ଶୋଧନ, ଧୌତି, ବସ୍ତି, ନେତି, ଆସନ, ମୁଦ୍ରା, ବନ୍ଧ, ପ୍ରତ୍ୟାହାର, ପ୍ରାଣାୟାମ, ଯୋଗ-ଧ୍ୟାନ, ଧାରଣା, ସମାଧି । ଏସବୁ ଯୋଗର ବାହ୍ୟ ଅଙ୍ଗ ଉପାଙ୍ଗ । ଏ ସମସ୍ତ ସିଦ୍ଧିରେ ହେଲେ ଅବଶେଷରେ ଆଧ୍ୟାତ୍ମିକ ଯୋଗ ଦ୍ୱାରା ବ୍ରହ୍ମ ନିରୂପଣ, ବ୍ରହ୍ମଜ୍ଞାନ ଲାଭ, ଲୟସିଦ୍ଧି ଆଦି ଉପାୟ ଅବଲମ୍ବନ କରି ଅନାଦି ଅନନ୍ତ ଅଚିନ୍ତ୍ୟ ଅବ୍ୟକ୍ତ ପରମାତ୍ମାଙ୍କଠାରେ ଲୀନ ହେବାକୁ ହୁଏ ।

ଯୋଗ ସମ୍ବନ୍ଧେ ଅନେକ ଶାସ୍ତ୍ର ଅଛି—ଯୋଗସଂହିତା, ଶିବ ଗୀତା, ହଠପ୍ରଦୀପିକା, ଘେରଣ୍ଡ ସଂହିତା, ଗୋରକ୍ଷ ସଂହିତା, ଦତ୍ତାତ୍ରେୟ ଯୋଗ, ଷଟ୍‌ଚକ୍ର ଯୋଗାର୍ଣ୍ଣବ, ଜ୍ଞାନ ସାର, ସମ୍ମୋହନ, ତାରା ରହସ୍ୟ, ନିର୍ବାଣତନ୍ତ୍ର, ଯାମଳ । ଏସବୁ କର୍ମଯୋଗର ପ୍ରଧାନ ଶାସ୍ତ୍ର । ପାତଞ୍ଜଳ ଦର୍ଶନ, ସାଂଖ୍ୟଦର୍ଶନ, ଅଷ୍ଟାବକ୍ର ସଂହିତା, ଯୋଗ ପ୍ରଦୀପିକା, ଭଗବଦ୍‌ଗୀତା, ଜ୍ଞାନ ସଙ୍କଳନ ପ୍ରଭୃତି ଅଧ୍ୟାତ୍ମଯୋଗର ପ୍ରଧାନ ଶାସ୍ତ୍ର । ଯୋଗଶାସ୍ତ୍ର ଶିବୋକ୍ତ ବୋଲି କଥିତ । ଏହା ଛଡ଼ା ଘେରଣ୍ଡ, ବ୍ୟାସ, ଚଣ୍ଡକପାଳିକ, ଗୋରକ୍ଷନାଥ, ଆଦିନାଥ, ଅଷ୍ଟାବକ୍ର, ଦତ୍ତାତ୍ରେୟ, ପତଞ୍ଜଳି, ପୂର୍ଣ୍ଣାନନ୍ଦ, ବ୍ରହ୍ମାନନ୍ଦ ପ୍ରଭୃତି ମହର୍ଷି-ମାନେ ଅନେକ ଗ୍ରନ୍ଥ କରିଯାଇଛନ୍ତି । ଶିବ, ଦତ୍ତାତ୍ରେୟ, ପତଞ୍ଜଳି, କପିଳ ପ୍ରଭୃତି ପ୍ରାଚୀନ କାଳର । ଘେରଣ୍ଡ, ଗୋରକ୍ଷନାଥ ପ୍ରଭୃତି ମଧ୍ୟଯୁଗର । ପୂର୍ଣ୍ଣାନନ୍ଦ, ବ୍ରହ୍ମାନନ୍ଦ ପ୍ରଭୃତି ଆଧୁନିକ ଯୁଗର ।

ସ୍ୱରୋଦୟ ଶାସ୍ତ୍ର ମଧ୍ୟ ଯୋଗ ସମ୍ବନ୍ଧୀୟ । ଏହା ଦ୍ୱାରା ନାଡ଼ୀନିରୂପଣ, ପ୍ରାଣାଦିବାୟୁର ସଂସ୍ଥାନ, ସ୍ୱର ସାଧନ ପ୍ରଭୃତି ଦ୍ୱାରା ଭୂତ, ଭବିଷ୍ୟତ, ବର୍ତ୍ତମାନ, ତ୍ରିକାଳଜ୍ଞତା ଲାଭ ହୁଏ । ଏହାକୁ ପବନବିଜୟ ସ୍ୱରୋଦୟ କହନ୍ତି । ଏ ଶାସ୍ତ୍ର ମଧ୍ୟ ଶିବ-କଥିତ । ଏହା ବ୍ୟତୀତ ଅନ୍ୟାନ୍ୟ ସ୍ୱରୋଦୟ ଶାସ୍ତ୍ର ଅଛି :—ଗରୁଡ଼ ପୁରାଣୋକ୍ତ ସ୍ୱରୋଦୟ, ନରପତିଜୟଚର୍ଯ୍ୟା, ଯୋଗ, ବର୍ତ୍ତି ଆଦି ନାନା ପ୍ରକାର ସ୍ୱରୋଦୟ ଗ୍ରନ୍ଥଅଛି । ଏ ସମସ୍ତ ଶାସ୍ତ୍ର ଅମୂଲ୍ୟ । ଏସବୁ ଶାସ୍ତ୍ରଚର୍ଚ୍ଚା କରିବା ପାଇଁ ଆମଦେଶର ଲୋକେ ହୀତଶ୍ରଦ୍ଧ, ମାତ୍ର ଆମେରିକା ପ୍ରଭୃତି ସମୁଦ୍ର ପରଂପାରସ୍ଥ ଦେଶର ପଣ୍ଡିତମାନେ ଏସବୁ ଶାସ୍ତ୍ର ଆଲୋଚନା କରି ତହିଁରୁ ସାର ସଂଗ୍ରହ କରୁଅଛନ୍ତି । ମୁସଲମାନମାନଙ୍କ ରାଜତ୍ୱ ସମୟରେ ଏହିପରି ଅସଂଖ୍ୟ ଯୋଗଶାସ୍ତ୍ର ଲୋପ ହୋଇଛି ଏବଂ ବର୍ତ୍ତମାନ ଯାହା କିଛି ଅବଶିଷ୍ଟ ଅଛି ତାହା ମଧ୍ୟ ଆମ୍ଭମାନଙ୍କ ଅବହେଳା ଓ ଅନାସ୍ଥା ହେତୁ ଧ୍ୱଂସ ହେଉଅଛି, ଯାହା ବା ପୁସ୍ତକ ଯେଉଁଠି ଅଛି ତାକୁ ମଧ୍ୟ ଲୋକେ କୁସଂସ୍କାରବଶବର୍ତ୍ତୀ ହୋଇ ପଦାକୁ ବାହାର କରୁନାହାନ୍ତି । ଯାହା କିଛି ଅବା ପଦାକୁ ବାହାରୁଛି ତାହା ପ୍ରତି ଲୋକଙ୍କର ଶ୍ରଦ୍ଧା ନାହିଁ ।

ଯୋଗ ଶାସ୍ତ୍ର ପାଠ କଲେ ଅନେକ ବିଷୟ ଜଣାଯାଏ, ଯଥା,—ତତ୍ତ୍ୱଜ୍ଞାନ, ଅବିଦ୍ୟା ଓ ମାୟା, ଅଧିବ୍ୟକ୍ତିବାଦ, ପ୍ରଜ୍ଞାବାଦ, ବିଜ୍ଞାନରେ ଈଶ୍ୱର, ବ୍ରହ୍ମ କଅଣ, ଜୀବ ଓ ଈଶ୍ୱର ଭେଦ, ବ୍ରହ୍ମସ୍ୱରୂପ, ଜୀବର ସ୍ୱାଧୀନତା, ଈଶ୍ୱର ଉପାସନାର ପ୍ରୟୋ-ଜନ କଅଣ ? ଧର୍ମ କଅଣ ? ଧର୍ମ ଶକ୍ତି, ଯୋଗତତ୍ତ୍ୱ, କର୍ମ-ଯୋଗ, ସତ୍ ଓ ଅସତ୍ କର୍ମର ଶକ୍ତି, କର୍ମର ଆବଶ୍ୟକତା, ସକାମ ଓ ନିଷ୍କାମ କର୍ମ, ନିତ୍ୟକର୍ମ, ମଧ୍ୟାହ୍ନ କ୍ରିୟା, ଆହାର, ଅଧିକାରଭେଦରେ କାର୍ଯ୍ୟଭେଦ, ଅର୍ଥୋପାର୍ଜ୍ଜନ, ପରାର୍ଥ କୃତ୍ୟ, ଦାରପରିଗ୍ରହ ଓ ଚିତ୍‌ଶକ୍ତି, କର୍ମଯୋଗୀର ସିଦ୍ଧ ଅବସ୍ଥା, ଜ୍ଞାନ ଯୋଗ, ଜ୍ଞାନର ଉତ୍କର୍ଷ, ଜ୍ଞାନଯୋଗର ସିଦ୍ଧାବସ୍ଥା, ଭକ୍ତି ଯୋଗ, ଜ୍ଞାନ, ଭକ୍ତି ଓ ବିଶ୍ୱାସ, ବିଶ୍ୱାସ ମୂଳରେ ଈଶ୍ୱର, ଭକ୍ତିଲଭ୍ୟ ଭଗବାନ, ଭକ୍ତି ଓ ଭାବ, ପ୍ରେମ, ପ୍ରେମର ଅବଲମ୍ବନ, ପ୍ରେମର ସାଧନା, ଭକ୍ତିଯୋଗରେ ସିଦ୍ଧାବସ୍ଥା, ଯୋଗାନୁଶାସନ, ଯମ, ନିୟମ, ଆସନ ପ୍ରାଣାୟାମ, ପ୍ରାଣାୟାମ ଶିକ୍ଷାର୍ଥୀ ପକ୍ଷରେ ଜ୍ଞାତବ୍ୟ, କୁଣ୍ଡଳିନୀ, କୁଣ୍ଡଳିନୀର ବିବରଣ, କୁଣ୍ଡଳିନୀ ଶକ୍ତିର ଜାଗରଣ, ଷଟ୍‌ଚକ୍ର-ଭେଦ, ପ୍ରାଣାୟାମ ଶିକ୍ଷା କରିବାର ସହଜ ଉପାୟ, ପ୍ରତ୍ୟାହାର, ସାଧନ, ଧାରଣା, ଧ୍ୟାନ, ସମାଧି, ତ୍ରାଟକ ଯୋଗ, ଅଷ୍ଟୈ-ଶ୍ୱର୍ଯ୍ୟ, ବିଭୂତି ଲାଭ, କୈବଲ୍ୟ, ମୃତ୍ୟୁଜ୍ଞାନ, ବିନା ଔଷଧରେ ରୋଗମୁକ୍ତି ।

ଯୋଗ ଏକ ପ୍ରକାଣ୍ଡ ବିଷୟ । ସେ ସମସ୍ତର ପୁଙ୍ଖାନୁପୁଙ୍ଖ ଆଲୋଚନା ଏ ସନ୍ଦର୍ଭରେ କରିବା ଅସମ୍ଭବ । ସେ ସମସ୍ତ ବିଷୟର ସମ୍ୟକ୍ ପ୍ରକାରେ ଆଲୋଚନା ପାଇଁ ସ୍ୱତନ୍ତ୍ର ଏକ ପ୍ରକାଣ୍ଡ ପୁସ୍ତକ ହେବ । ଯୋଗର ସାଧାରଣ ଅର୍ଥ ଏକ ପଦାର୍ଥକୁ ଅନ୍ୟ ପଦାର୍ଥ ସହିତ ମିଶାଇବା । ଏକ ସଂଖ୍ୟା ସଙ୍ଗେ ଏକ ସଂଖ୍ୟା ମିଶାଇଲେ ଦୁଇ ହେବ; ଏହାକୁ ଅଙ୍କ ଶାସ୍ତ୍ରରେ ଯୋଗ କହନ୍ତି । ଯୋଗ ଶାସ୍ତ୍ରରେ ଯୋଗର ଅର୍ଥ ଜୀବକୁ ବ୍ରହ୍ମ ସଙ୍ଗେ ଯୋଗ କରିବା । ବ୍ରହ୍ମ

ଖାଣ୍ଟି ସୁନା, ଜୀବ ମିଶା ସୁନା । ଖାଦ କାଢ଼ି ନେଲେ ଜୀବ ବ୍ରହ୍ମ ଏକ । ଯୋଗ ଦ୍ୱାରା, ବହିର୍ଜଗତ୍, ଅନ୍ତର୍ଜଗତ୍, ବୌଦ୍ଧିକଜଗତ୍ ଓ ଅଧ୍ୟାତ୍ମ ଜଗତ୍ ବଶୀଭୂତ ହୋଇ ବ୍ରହ୍ମଙ୍କ ସାକ୍ଷାତ୍ ହୁଏ । ଯୋଗ ତିନି ପ୍ରକାର, ୧ – କର୍ମ ଯୋଗ, ୨-ଜ୍ଞାନଯୋଗ, ୩— ଭକ୍ତିଯୋଗ । ଏଥିରୁ ଗୋଟିକ ଦ୍ୱାରା ବା ୨ଟି ଦ୍ୱାରା ବା ୩ଟି ସାଧନା କଲେ ବାଞ୍ଛିତ ଫଳ ବା ମୁକ୍ତି ଲାଭ ହେବ । ଯୋଗ ଶାସ୍ତ୍ର ଅନୁସାରେ ଅନେକ ପ୍ରକାର ଯୋଗ ଅଛି — ରାଜ ଯୋଗ, ରାଜାଧିରାଜ ଯୋଗ, ପଞ୍ଚାଙ୍ଗ ଯୋଗ, ଜପ ନିୟମ, ଅଷ୍ଟାଙ୍ଗ ଯୋଗ, ଷଡ଼ଙ୍ଗ ଯୋଗ, ହଠ ଯୋଗ, ନେତି ଯୋଗ, ଧୌତି ଯୋଗ, ନେଉଳୀ ଯୋଗ, ଗଜ-କରଣୀ ଯୋଗ, ବସ୍ତି ଯୋଗ, ନୌଳିକୀ ଯୋଗ, କପାଳ-ଭାତି ଯୋଗ, ପଶ୍ଚିମୋତ୍ତାନ ଯୋଗ ଇତ୍ୟାଦି । ଏ ସମସ୍ତ ପ୍ରକାର ଯୋଗ ଉପରୋକ୍ତ ତିନି ପ୍ରକାର ଯୋଗ ମଧ୍ୟରୁ କୌଣସେ ନାଁ କୌଣସି ଗୋଟିକର ଅନ୍ତର୍ଗତ ।

ଯୋଗ ସାଧନା ବଳରେ ଯୋଗୀ ବ୍ୟକ୍ତି ବହିର୍ଜଗତ ଓ ଅନ୍ତର୍ଜଗତର ସମସ୍ତ ତତ୍ତ୍ୱ ଜାଣିପାରେ, ସବୁ ରସ ଆସ୍ୱାଦନ କରିପାରେ, ଅସାଧାରଣ କର୍ତ୍ତୃତ୍ୱ କରିବାର ଅଲୌକିକ କ୍ଷମତା ଲାଭ କରିପାରେ । ସେହି କ୍ଷମତାବଳରେ ଯୋଗୀର ବହୁ ପ୍ରକାର ଅଦ୍ଭୁତ ଓ ଅଭାବନୀୟ ଶକ୍ତି ହୁଏ, ବାକ୍‌ସିଦ୍ଧି, ଇଚ୍ଛାନୁସାରେ ଗମନାଗମନ, ଦୂରଦୃଷ୍ଟି, ଦୂର ଶ୍ରବଣ, ଅତି ସୂକ୍ଷ୍ମଦର୍ଶନ, ପରକାୟ ପ୍ରବେଶ, ଅନ୍ତର୍ଦ୍ଧାନ, ଅନ୍ତର୍ଯାମିତ୍ୱ, ଶୂନ୍ୟ ପଥରେ ଅନାୟାସରେ ଓ ଅବରୋଧରେ ବିଚରଣ, କାୟବ୍ୟୂହ ଦେହଧାରଣ, ଅଣିମା ଲଘିମାଦି ଅଷ୍ଟସିଦ୍ଧି ଲାଭ, ଦେବତ୍ୱ ଲାଭ ଓ ମୃତ୍ୟୁକାଳଜ୍ଞାନ ଲାଭ ହୁଏ । ଯୋଗ ସାଧନ-ଦ୍ୱାରା ଯୋଗୀ ବ୍ୟକ୍ତି ହୃଦୟସ୍ଥିତ ଦୀପକଳିକାର ଜୀବାତ୍ମାକୁ ମୂଳାଧାରସ୍ଥିତ କୁଣ୍ଡଳିନୀ ଶକ୍ତି ସହିତ ସୁଷୁମ୍ନା ବାଟରେ ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର, ଅନାହତ, ବିଶୁଦ୍ଧ ଏବଂ ଆଜ୍ଞା ନାମକ ଚକ୍ରମାନ ଭେଦ କରି ଶିରସ୍ଥିତ ଅଧୋମୁଖୀ ସହସ୍ରଦଳ ପଦ୍ମର କର୍ଣ୍ଣିକାର ମଧ୍ୟଗତ ପରମାତ୍ମା ସଙ୍ଗେ ଯୋଗ କରେ ଏବଂ ସେଠାରୁ କ୍ଷରିତ ସୁଧା ପାନ କରେ ଏବଂ ପରମାନନ୍ଦ ଓ ପରମ ଜ୍ଞାନ ଲାଭ କରେ । ଏପରି ଦର୍ଶନ ହେଲେ ଆଉ ଭଗବାନଙ୍କ ଠାରେ ଅବିଶ୍ୱାସ ରହେ ନାହିଁ । ମୁଁ କିଏ ? ଭଗବାନ କିଏ ? ଏ ଭ୍ରମ ମଧ୍ୟ ଦୂର ହୁଏ । ଉପରେ ଯେଉଁ ଚକ୍ରମାନ କୁହାଗଲା ସେଗୁଡ଼ିକ ଯଥାକ୍ରମେ ୪, ୬, ୧୦, ୧୨ ଓ ୧୬ ଦଳ ବିଶିଷ୍ଟ ।

ଯୋଗୀ ଲୋକ ଯୋଗ ସାଧନଦ୍ୱାରା ଈଶ୍ୱରଙ୍କ ସ୍ୱରୂପ ଦେଖି ପାରେ ଏବଂ ତାହାର ଦୃଢ଼ଭକ୍ତି ଓ ଅହେତୁକ ପ୍ରେମ ଜନ୍ମେ । ସେତେବେଳେ ସାଯୁଜ୍ୟ, ସାରୂପ୍ୟ, ଯେ କୌଣସି ମୁକ୍ତିଲାଭ ହୁଏ । ସେକାଳରେ ଯୋଗୀ ବ୍ୟକ୍ତି ଯେଉଁ ଶ୍ୟାମସୁନ୍ଦର ଚିଦ୍‌ଘନ ରୂପ ଦେଖେ, ସେ ଆଉ କେବେ ତାହା ଭୁଲି ପାରେ ନାହିଁ । ସେତେବେଳେ ମନେ ହୁଏ, ପୁତ୍ର, କଳତ୍ର, ଧନ, ଐଶ୍ୱର୍ଯ୍ୟ, ଦେହ, ଚନ୍ଦ୍ର, ସୂର୍ଯ୍ୟ ଇତ୍ୟାଦି କିଛି ନୁହେଁ । ସେତେବେଳେ ଯୋଗୀ ବିଶ୍ୱରୂପ ଦର୍ଶନ କରେ । ଏଥିରେ ଅବିଶ୍ୱାସ କରିବାର କଥା କିଛି ନାହିଁ । ଆମେରିକା ପ୍ରଭୃତି ଦେଶରେ ମନଃଶକ୍ତିଦ୍ୱାରା ଆରୋଗ୍ୟ, ବିଶ୍ୱାସଦ୍ୱାରା ଆରୋଗ୍ୟ, ପ୍ରେତତତ୍ତ୍ୱ, ଯୋଗନିଦ୍ରା ପ୍ରଭୃତି ଯେଉଁ ସବୁ ଅଦ୍ଭୁତ ବିଦ୍ୟାର ପ୍ରଚଳନ ଅଛି ଏବଂ ପ୍ରତିଦିନ ଆଲୋଚନା ହେଉଛି ଏବଂ ତାଦ୍ୱାରା ତଦ୍ଦେଶବାସୀମାନେ ଜଗତକୁ ମୁଗ୍ଧ କରି ପକାଉଛନ୍ତି ସେ ସବୁ ଯୋଗ ବିଦ୍ୟାର ଅନ୍ତର୍ଗତ ।

ଅଲୌକିକ ଶକ୍ତିଲାଭ ଯୋଗସାଧନର ମୁଖ୍ୟ ଉଦ୍ଦେଶ୍ୟ ନୁହେଁ । କାରଣ, ତଦ୍ୱାରା ଯୋଗୀ ମାନବ ସମାଜରେ, ଦେଶ ବିଦେଶ ମଧ୍ୟରେ ବାହାଦୁରି ଲାଭ କରି ପାରେ, ମାତ୍ର ଯୋଗୀ ଯେଉଁ ମାନବ, ସେହି ମାନବ ରହିବ, ତାହାର ବ୍ରହ୍ମ ସାକ୍ଷାତ ହେବ ନାହିଁ । ସୁତରାଂ ବ୍ରହ୍ମର ସାକ୍ଷାତ ଉଦ୍ଦେଶ୍ୟରେ ଯୋଗ ସାଧନ କରିବା ଆବଶ୍ୟକ । ବିଭୂତି ଆପଣା ଆପଣାକୁ ପ୍ରକଟିତ ହେବ । ଆସକ୍ତି ଶୂନ୍ୟ ହେବାକୁ ଯାଇ ଯେପରି ଆସକ୍ତିଅଗ୍ନିରେ ଦଗ୍ଧ ନ ହେବ, ତତ୍ ପ୍ରତି ଲକ୍ଷ୍ୟ ରଖିବ ।

ଯୋଗ ସାଧନ କରିବା ପାଇଁ ଗୁରୁଙ୍କ ସାହାଯ୍ୟ ଆବଶ୍ୟକ । ଗୁରୁଙ୍କର ପ୍ରତ୍ୟକ୍ଷ ସାହାଯ୍ୟ ବ୍ୟତୀତ ସିଦ୍ଧି ଲାଭ ଦୁର୍ଘଟ ବ୍ୟାପାର । ଯୋଗ ପଥରେ ଅନେକ ବିଘ୍ନ ଅଛି । ଭଗବାନ୍ ନିଜେ କହିଛନ୍ତି "ଗୁରୁ ନ ଥାଇ ଅରଜୁନ । କାହୁଁ ହୋଇବ ସଦଜ୍ଞାନ ?"

ଯୋଗବିଦ୍ୟା ସାଧନ ଗୁରୂପଦେଶ ସାପେକ୍ଷ । ଯୋଗର ଅଙ୍ଗ ୮ —ଯଥା; ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧ୍ୟାନ, ଧାରଣା, ସମାଧି । ଏହି ଅଷ୍ଟାଙ୍ଗ ଯୋଗର ସାଧନା ବା ଅଭ୍ୟାସ କଲେ ମନୁଷ୍ୟ ପୂର୍ଣ୍ଣ ମନୁଷ୍ୟ ହୋଇ ସ୍ୱରୂପଜ୍ଞାନ ଲାଭ କରି ପାରିବ ।

ଯମର ଅର୍ଥ ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଏବଂ ଅପରିଗ୍ରହ । ଅଭ୍ୟାସ କରି ଏଗୁଡ଼ିକ ସାଧନ କରିବାକୁ ହେବ । କାହାର ପ୍ରତି କାୟମନୋବାକ୍ୟରେ ହିଂସା କରିବ ନାହିଁ । ସର୍ବଦା ସତ୍ୟ କହିବ, ପର ଦ୍ରବ୍ୟ ଅପହରଣ କରିବ ନାହିଁ । ବ୍ରହ୍ମଚର୍ଯ୍ୟ ଧାରଣ କରିବ । ଦୁରାକାଂକ୍ଷା ପରିତ୍ୟାଗ କରିବ । ବିଳାସ ସାଧନ ଦ୍ରବ୍ୟର ଆକାଙ୍‌କ୍ଷା ଏବଂ ଯାଚ୍‌ଞା ପରିତ୍ୟାଗ କରିବ । ବ୍ରହ୍ମଚର୍ଯ୍ୟ ବା ବୀର୍ଯ୍ୟ ଧାରଣ ସର୍ବାପେକ୍ଷା ଉତ୍କୃଷ୍ଟ ତପସ୍ୟା । ଶରୀରସ୍ଥ ଶୁକ୍ର ଧାତୁକୁ ଅବିଚଳିତ ଓ ଅବିକୃତ ରଖିବା ଉପାୟକୁ ବ୍ରହ୍ମଚର୍ଯ୍ୟ କୁହାଯାଏ । ଶୁକ୍ର ଶରୀର ରକ୍ଷାର ସର୍ବସ୍ୱ । ରସରୁ ରକ୍ତ, ରକ୍ତରୁ ମାଂସ, ମାଂସରୁ ମେଦ, ମେଦରୁ ଅସ୍ଥି, ଅସ୍ଥିରୁ ମଜ୍ଜା; ମଜ୍ଜାରୁ ଶୁକ୍ରର ଉତ୍ପତ୍ତି ହୁଏ । ଶୁକ୍ର ସୌମ୍ୟ, ଶୁକ୍ଲବର୍ଣ୍ଣ, ସ୍ନିଗ୍ଧ ଏବଂ ବଳକର ଓ ପୁଷ୍ଟିକାରକ । ଏହା ସୃଷ୍ଟିର ବୀଜ ସ୍ୱରୂପ, ଶରୀରର ସାର, ଜୀବର ବା ଜୀବନର ଆଶ୍ରୟ । ରସାଦି ଶୁକ୍ର ପର୍ଯ୍ୟନ୍ତ ସପ୍ତ ଧାତୁର ତେଜକୁ ଓଜଃ କୁହାଯାଏ । ହୃଦୟ ଏହାର ପ୍ରଧାନ ଆଧାର ହେଲେ ମଧ୍ୟ ଏହା ସର୍ବଶରୀରବ୍ୟାପୀ ଏବଂ ଶରୀର

ରକ୍ଷାର ପ୍ରଧାନ ସାଧନ । ଓଜଃ ପଦାର୍ଥକୁ ବ୍ରହ୍ମତେଜଃ ବୋଲି କୁହାଯାଏ । ପାଶ୍ଚାତ୍ୟ ପଣ୍ଡିତମାନେ ଏହାକୁ ମାନବର "magnetism" ବା ଚୁମ୍ବକଶକ୍ତି ବୋଲି କହନ୍ତି । ଓଜଃ ନଷ୍ଟ ହେଲେ ମନୁଷ୍ୟର ସୌନ୍ଦର୍ଯ୍ୟ, ଦୈହିକ ବଳ, ଇନ୍ଦ୍ରିୟମାନଙ୍କର ସ୍ଫୂର୍ତ୍ତି, ବୁଦ୍ଧି, ସ୍ମରଣଶକ୍ତି, ଧାରଣାଶକ୍ତି ପ୍ରଭୃତି ସମସ୍ତ ନଷ୍ଟ ହୋଇଯାଏ ଏବଂ ସେହି ଦେହ ଯକ୍ଷ୍ମା, ପ୍ରମେହ ପ୍ରଭୃତିରୋଗର ଆଶ୍ରୟସ୍ଥାନ ହୁଏ, ସକଳ କାର୍ଯ୍ୟରେ ଉଦାସୀନତା ଏବଂ ଜଡ଼ତା ମନୁଷ୍ୟକୁ ଆକ୍ରମଣ କରେ ଏବଂ ସେ ଅକାଳମୃତ୍ୟୁଗରେ ପଡ଼େ । ସୁତରାଂ ଦେହରକ୍ଷା ପ୍ରଧାନ ଧର୍ମ । "ଶରୀରମାଦ୍ୟଂ ଖଳୁ ଧର୍ମସାଧନଂ" ଏ ପ୍ରବାଦ ପ୍ରାଚୀନ ଯୁଗରୁ ଅଛି । ଆଗେ ଶରୀର ରକ୍ଷା, ପରେ ଅନ୍ୟ ସବୁ କଥା । ଶରୀର ସୁସ୍ଥ ସବଳ ନ ଥିଲେ ଲୋକ ଧର୍ମ ସାଧନ କରି ପାରିବ ନାହିଁ; ସୁତରାଂ ଶରୀରରକ୍ଷା ପ୍ରଥମ କର୍ତ୍ତବ୍ୟ । ସାଧନା ଅର୍ଥ ଅଭ୍ୟାସ । କୌଣସି କାର୍ଯ୍ୟ ବାରମ୍ବାର କରିବାକୁ ଅଭ୍ୟାସ କୁହାଯାଏ । ଥରେକେ ହେଲା ନାହିଁ, ଦିଥରକେ ହେଲା ନାହିଁ, ତିନି ଥରକେ ହେଲା ନାହିଁ ବୋଲି ନିରାଶ ହେବ ନାହିଁ । ତପସ୍ୟାର ସିଦ୍ଧି ପର୍ଯ୍ୟନ୍ତ ବରାବର ତାହା କରୁଥିବ । ବିଶ୍ୱାସ କରିବାକୁ ହେଉଥିବ ଯେ, ଦିନେ ଅବଶ୍ୟ ସିଦ୍ଧି ଲାଭ ହେବ ।

ନିୟମ କଅଣ ? ନିୟମ ବୋଲିଲେ ଶୌଚ ସନ୍ତୋଷ, ସ୍ୱାଧ୍ୟାୟ ଏବଂ ଈଶ୍ୱରପ୍ରଣିଧାନ । ଶୌଚ ଅର୍ଥ ଶୁଦ୍ଧଭାବରେ ରହିବା । ଏହା ଦୁଇପ୍ରକାର; ବାହ୍ୟ ଶୌଚ ଓ ଆଭ୍ୟନ୍ତର ଶୌଚ । ଜଳ ଓ ଗୋମୟଦ୍ୱାରା ବାହ୍ୟ ଶୌଚ, ସତ୍ତ୍ୱ ଗୁଣର ବୃଦ୍ଧିକାରକ । ଆହାରଦ୍ୱାରା ଚିତ୍ତର ପରିମାର୍ଜନକୁ ଅଭ୍ୟନ୍ତର ଶୌଚ କୁହାଯାଏ । ମନରେ ସର୍ବଦା ଏହି ସଂକଳ୍ପ ଥିବା ଆବଶ୍ୟକ, ମୁଁ ଈଶ୍ୱର ଉପାସନା କରିବି, ଜ୍ଞାନଲାଭ କରିବି, ପାପବନ୍ଧନରୁ ମୁକ୍ତ ହେବି । ସନ୍ତୋଷର ଅର୍ଥ ପ୍ରାଣଧାରଣର ଅନୁକୂଳ ତୃଷ୍ଣାର ଅତିରିକ୍ତ ତୃଷ୍ଣାତ୍ୟାଗ । ତୃଷ୍ଣାର ତ ଅନ୍ତ ନାହିଁ, ଯେତେ ପାଇବ ତେତେ ଲାଳସା ବଢ଼ିବ; ଏହିପରି ଅତିରିକ୍ତ ଲାଳସା-ତ୍ୟାଗର ନାମ ସନ୍ତୋଷ । ଯେତିକି ହେଲେ ଜୀବନଧାରଣ ପକ୍ଷରେ ସୁଲଭ ହେବ ସେତିକି ମିଳିଲେ ହେଲା । ମାଟି ଘରେ ବାସ କରି ଜୀବନଧାରଣ କରିବାରେ କିଛି ବାଧା ନାହିଁ; କୋଠା, ପୁଣି ଦୁଇ ତିନି ମହଲା କୋଠା ପାଇଁ ବ୍ୟାକୁଳ ହେବାର ଅର୍ଥ ଅତି ତୃଷ୍ଣା; ସେପରି ଅତିତୃଷ୍ଣା ତ୍ୟାଜ୍ୟ । ପ୍ରଣବ ଏବଂ ସୂକ୍ତ ମନ୍ତ୍ରାଦି ଜପ ଏବଂ ବେଦ ଓ ଭକ୍ତିଶାସ୍ତ୍ର ପାଠ କରିବାକୁ ସ୍ୱାଧ୍ୟାୟ କୁହାଯାଏ । ଈଶ୍ୱରପ୍ରଣିଧାନର ଅର୍ଥ ଭକ୍ତିପୂର୍ବକ ଈଶ୍ୱର ଉପାସନା । ଏହି ଉପାସନାଦ୍ୱାରା ସମାଧି ଲାଭ ହୁଏ । କାୟିକ, ବାଚିକ, ମାନସିକ ସକଳ ବ୍ୟାପାରରେ ଆପଣାକୁ ଈଶ୍ୱରାଧୀନ ଜ୍ଞାନ କରି ତାଙ୍କଠାରେ ଆତ୍ମସମର୍ପଣ କରିବ ଏବଂ ଫଳର ଆଶା ନ ରଖି ଧ୍ୟାନ କରିବ । ସ୍ମରଣ, ମନନ, କୀର୍ତ୍ତନ ପ୍ରଭୃତି ଈଶ୍ୱରପ୍ରଣିଧାନ । ଈଶ୍ୱର କିଏ ? ଯାହାଙ୍କୁ କ୍ଲେଶ, କର୍ମ, ବିପାକ ଓ ଆଶୟ ସ୍ପର୍ଶ କରେ ନାହିଁ, ସମୁଦାୟ ସଂସାରୀ ଆତ୍ମା ଓ ସମୁଦାୟ ମୁକ୍ତାତ୍ମାଠାରୁ ଯେ ପୃଥକ୍ ବା ସ୍ୱତନ୍ତ୍ର ସେ ଈଶ୍ୱର ।-

ଆସନ କଅଣ ? ଯୋଗଶାସ୍ତ୍ରରେ ନାନାପ୍ରକାର ଆସନର କଥା ଉଲ୍ଲେଖ ଅଛି । ୮୪ ପ୍ରକାର ଆସନ ମଧ୍ୟରେ ସିଦ୍ଧାସନ ପଦ୍ମାସନ, ଉଗ୍ରାସନ, ସ୍ୱସ୍ତିକାସନ, ବୀରାସନ, ମଣ୍ଡୂକାସନ, କୁକ୍କୁଟାସନ, ଯୋଗାସନ, ଗୁପ୍ତାସନ, ଶବାସନ, ସିଂହାସନ, ପ୍ରଧାନ । ଏ ସବୁ ବସିବାର ଗୋଟିଏ ଗୋଟିଏ ପ୍ରକାର । ସିଦ୍ଧାସନରେ ବସିଲେ ସ୍ନାୟୁବିକାଶ ଏବଂ ସମସ୍ତ ଶରୀରରେ ତଡ଼ିତ୍ ଶକ୍ତି ଚଳାଚଳର ସୁବିଧା ହୁଏ । ପଦ୍ମାସନରେ ବସିଲେ ଯଥାବିଧାନ ପ୍ରାଣ ଓ ଅପାନ, ବାୟୁର ପୂରକ, ରେଚକ, କୁମ୍ଭକ କରିବାପାଇଁ କ୍ଷମତା ଜନ୍ମେ । ଏତଦ୍ୱାରା ଶୁଭ ଅଶୁଭ ସର୍ବପ୍ରକାର ବନ୍ଧନରୁ ମୁକ୍ତି ହୁଏ । ଉଗ୍ରାସନରେ ବସିଲେ ସକଳ ଯୋଗ-ସିଦ୍ଧିର ସମ୍ଭାବନା ହୁଏ । ସ୍ୱସ୍ତିକାସନରେ ବସିଲେ ଅଳ୍ପ ସମୟ ମଧ୍ୟରେ ବାୟୁସିଦ୍ଧି ଲାଭ ହୁଏ ଏବଂ ବାୟୁସାଧନଜନିତ କୌଣସି ବ୍ୟତିକ୍ରମ ହେଲେ ମଧ୍ୟ କୌଣସି ପ୍ରକାର ବ୍ୟାଧି ଆକ୍ରମଣ କରି ପାରେ ନାହିଁ ।

ପ୍ରଥମେ ଆସନ ସିଦ୍ଧ କରି ତା ପରେ ପ୍ରାଣାୟାମ କଲେ ତାହା ଅତି ସହଜରେ ହୁଏ । ଷୋଡ଼ଶ ପ୍ରାଣାୟାମ କଲେ ସାଧକ ପୂର୍ବଜନ୍ମ ଓ ଇହଜନ୍ମକୃତ ଜ୍ଞାନାଜ୍ଞାନକୃତ ବହୁପ୍ରକାର ପାପ ଓ ପୁଣ୍ୟ ବିନଷ୍ଟ କରିପାରେ । ପାପପୁଣ୍ୟର ଉଭୟ ବନ୍ଧନର ହେତୁ । ପ୍ରଭେଦ ସୁବର୍ଣ୍ଣ ଶିକୁଳି ଓ ଲୁହା ଶିକୁଳି ପରି । ପ୍ରାଣାୟାମସାଧନଦ୍ୱାରା କର୍ମବୀଜ ନଷ୍ଟ ହୁଏ । ପ୍ରାଣାୟାମ ଦ୍ୱାରା ଅଣିମାଦି ଅଷ୍ଟୈଶ୍ୱର୍ଯ୍ୟ ଲାଭ ହୁଏ । ୩ ଘଣ୍ଟାକାଳ ବାୟୁ-ଧାରଣ (କୁମ୍ଭକ) କରିବାର ଅଭ୍ୟାସ କରି ପାରିଲେ ସମସ୍ତ ଅଭିଳଷିତ ପଦାର୍ଥ ଲାଭ ହୁଏ ।

ପ୍ରାଣାୟାମର ଅର୍ଥ ପ୍ରାଣର ଆୟାମ ବା ସଂଯମ । ପ୍ରାଣାୟାମ । କି ଯା ଶ୍ୱାସପ୍ରଶ୍ୱାସର ସ୍ୱାଭାବିକ ଗତିଭଙ୍ଗ କରି ଶ୍ୱାସକୁ ଶାସ୍ତ୍ରୋକ୍ତ ନିୟମାଧୀନ କରିବା । ପଞ୍ଚତତ୍ତ୍ୱମୟ ଶରୀରରେ ୫ ତତ୍ତ୍ୱ ସୂକ୍ଷ୍ମଭାବରେ ବିଦ୍ୟମାନ ଅଛି । ତତ୍ତ୍ୱଜ୍ଞାନୀମାନେ ଏ କଥା ଜାଣନ୍ତି । ଶରୀରସ୍ଥ ସ୍ୱରୋଦୟ-ହଂସ ଜୀବଶରୀରରେ ସର୍ବଦା ଶ୍ୱାସ ବହନ କରୁଅଛି । ତଦ୍ୱାରା ଭୂତ ଭବିଷ୍ୟତ ବର୍ତ୍ତମାନ ତ୍ରିକାଳଜ୍ଞାନ ଲାଭ ହୁଏ । ପ୍ରତ୍ୟେକଥର ଶ୍ୱାସ ପ୍ରଶ୍ୱାସରେ 'ହଂସଃ' ଉଚ୍ଚାରିତ ହୁଏ । ଶ୍ୱାସ ନେଲାବେଳେ ହଂ ଏବଂ ଛାଡ଼ିଲାବେଳେ ସଃ ଉଚ୍ଚାରିତ ହୁଏ । ହଂ ଶିବ, ସଃ ଶକ୍ତି । ଶ୍ୱାସ ଟାଣି ଛାଡ଼ି ନ ପାରିଲେ ମୃତ୍ୟୁ ଘଟେ, ଅର୍ଥାତ୍ ହଂ ଶିବସ୍ୱରୂପ ବା ମୃତ୍ୟୁ । ସକାର ପ୍ରଶ୍ୱାସ ବା ଶ୍ୱାସର ତ୍ୟାଗ; ଏହା ଶକ୍ତି । ଶ୍ୱାସଛାଡୁଥିବା ପର୍ଯ୍ୟନ୍ତ ମୃତ୍ୟୁ ହୁଏ ନାହିଁ । ଶ୍ୱାସରୋଧ ହେଲେ ମୃତ୍ୟୁ । ଏହି ଶ୍ୱାସ ପ୍ରଶ୍ୱାସରେ ଜୀବର ଜୀବତ୍ୱ । ଦିବା ରାତି ମଧ୍ୟରେ ୨୧ ହଜାର ୬୦୦ ଥର ଶ୍ୱାସ ପ୍ରବାହିତ ହୁଏ । ହଂସ ଜୀବାତ୍ମା, ପ୍ରାଣ ବା ଜୀବନଶକ୍ତି ।- ଜଗତ୍ସଂରକ୍ଷଣଶକ୍ତି ଶ୍ୱାସ; ତାର ସ୍ଥୂଳସ୍ୱରୂପ ଅର୍ଥାତ୍ ଶ୍ୱାସପ୍ରଶ୍ୱାସଦ୍ୱାରା ଜୀବଦେହର ସର୍ବାଙ୍ଗ ଶକ୍ତିସଞ୍ଚାରିତ ହୁଏ । ଶ୍ୱାସପ୍ରଶ୍ୱାସ ଶକ୍ତିର ଗମନାଗମନ ପଥ । ଏହି ସ୍ଥୂଳ,

ପଥରେ ସୂକ୍ଷ୍ମଶକ୍ତିର କ୍ରିୟାକୁ ଆୟତ୍ତ କରିବାର ନାମ ପ୍ରାଣାୟାମ । ପ୍ରାଣଶକ୍ତିକୁ ସଂଯମ କରିବାକୁ ହେଲେ ଶ୍ୱାସକ୍ରିୟାର ସ୍ଥୂଳ ସାହାଯ୍ୟ ଆବଶ୍ୟକ । ପ୍ରାଣାୟାମ ସାଧନ କଷ୍ଟକର ଏହାକୁ ଅଳ୍ପେ ଅଳ୍ପେ ଅଭ୍ୟାସ କରିବ । ପ୍ରାଣବାୟୁ ବା ଅପାନବାୟୁକୁ ବେଗରେ ଛାଡ଼ିବ ନାହିଁ, ଖୁବ୍ ଅଳ୍ପେ ଅଳ୍ପେ ଛାଡ଼ିବ । ଏହାକୁ ଶିକ୍ଷାଗୁରୁଙ୍କ ଉପଦେଶ ନେଇ ଅଭ୍ୟାସ କରିବ । ପ୍ରାଣବାୟୁ ନାକଠାରୁ ବାହାର ୧୨ ଅଙ୍ଗୁଳ ପର୍ଯ୍ୟନ୍ତ ଗତି କରିବା ସ୍ୱାଭାବିକ । ବୃଦ୍ଧା ଅଙ୍ଗୁଠିଦ୍ୱାରା ଦକ୍ଷିଣ ନାସାପୁଟ ଅଳ୍ପ ଚାପି ଧରି ବାମ ନାସିକାଦ୍ୱାରା ଯଥାଶକ୍ତି ବାୟୁ ଟାଣିନେବ ଏବଂ କ୍ଷଣମାତ୍ର ସମୟ ବିଶ୍ରାମ ନ କରି ବାମ ନାସିକାକୁ ଅନାମିକା ଓ କନିଷ୍ଠା ଦ୍ୱାରା ବନ୍ଦକରି ଦକ୍ଷିଣ ନାସିକାଦ୍ୱାରା ବାୟୁକୁ ରେଚନ କରିବ ଅର୍ଥାତ ଛାଡ଼ିଦେବ । ପୁନଶ୍ଚ ଦକ୍ଷିଣ ନାସାଦ୍ୱାରା ବାୟୁ ଗ୍ରହଣ କରି ବାମ ନାସିକା ଦ୍ୱାରା ଛାଡ଼ିଦେବ । ଦିନରାତି ମଧ୍ୟରେ ୪ ଥର ଏପରି କରିବ । କେତେଦିନ ପର୍ଯ୍ୟନ୍ତ ଏପରି କଲେ ନାଡ଼ି ଶୋଧନ ହେବ । ଏଥିରେ ସିଦ୍ଧ ହେବାକୁ ମାସେ ଦେଢ଼ ମାସ ସମୟ ଲାଗି ପାରେ । ଏହାହେଲେ ଦେହ ହାଲୁକା ହେବ, ନିଦ୍ରା, ଆଳସ୍ୟ, ଜଡ଼ତା ଦୂର ହେବ; ତେବେ ଜଣାଯିବ ଯେ ନାଡ଼ି ଶୋଧିତ ହେଲା । ତତ୍ପରେ କିଛି କିଛି ଲୋକାତୀତ ବ୍ୟାପାର ଦେଖାଯିବ । ଏହାପରେ ପ୍ରାଣାୟାମର ଅନ୍ୟାନ୍ୟ ପ୍ରକ୍ରିୟା ଅଭ୍ୟାସ କରିବ । ପୂରକ, ରେଚକ, କୁମ୍ଭକ । ଏ ବିଷୟ ସାଧନା କେବଳ ଶାସ୍ତ୍ର ପଢ଼ି ହୋଇ ପାରିବ ନାହିଁ, ଉପଯୁକ୍ତ ଗୁରୁଙ୍କଠାରୁ ଉପଦେଶ ନେଇ ଏହା ଅଭ୍ୟାସ କରିବ ।

ପୂର୍ବେ କୁହାଯାଇଅଛି, ନିଶ୍ୱାସର ସ୍ୱାଭାବିକ ଗତି ନାକପାଖରୁ ୧୨ ଅଙ୍ଗୁଳ । ସେଥିରୁ ବେଶି ହେଲେ ଜାଣିବ ଯେ, ପ୍ରାଣର କ୍ଷୟ ହେଉଛି ବା ଜୀବନୀଶକ୍ତିର କ୍ଷୟ ହେଉଛି । ଯେତେବେଳେ କୌଣସି କାର୍ଯ୍ୟ କରିବ, ସେତେବେଳେ ନିଶ୍ୱାସର ଗତି ୧୨ ଅଙ୍ଗୁଳରୁ ବେଶି ହେଲେ ଜାଣିବ, ଜୀବନୀଶକ୍ତିର କ୍ଷୟ ହେଉଛି । ପ୍ରାଣାୟାମଦ୍ୱାରା ଏହି ଅସ୍ୱାଭାବିକ କ୍ଷୟକୁ ସଂଯତ କରିବାକୁ ହେବ । ମୈଥୁନଦ୍ୱାରା ଯେ ଜୀବନୀଶକ୍ତି କ୍ଷୟ ହୁଏ ତାର ମଧ୍ୟ ଏହି କାରଣ । ମୈଥୁନ ବେଳେ ନିଶ୍ୱାସର ଦୀର୍ଘତା ହୁଏ । ଯେଉଁମାନଙ୍କର ଦୌର୍ବଲ୍ୟ ରୋଗ ଜନ୍ମିଛି ସେମାନଙ୍କ ଶ୍ୱାସ ପ୍ରଶ୍ୱାସ ଅତି ଘନ ଘନ ହୁଏ ଏବଂ ୮୦ ଅଙ୍ଗୁଳ ପର୍ଯ୍ୟନ୍ତ ଯାଏ; ସୁତରାଂ ସେମାନଙ୍କ ମୃତ୍ୟୁ ଅତି ନିକଟ । ପ୍ରାଣାୟାମଦ୍ୱାରା ଏହି ଶ୍ୱାସକୁ ସବୁ ସମୟରେ ବାର ଅଙ୍ଗୁଳମଧ୍ୟରେ ରଖିବାକୁ ହେବ । ପ୍ରାଣାୟାମର ଉଚ୍ଚାବସ୍ଥାରେ ଯୋଗୀ ଏକାବେଳକେ ବାୟୁକୁ ନିରୋଧ କରି ବହୁଦିନ କଟାଇ ପାରେ । ପ୍ରାଣାୟାମ ପୂର୍ବରୁ ନାଡ଼ିଶୋଧନ ନିତାନ୍ତ ଆବଶ୍ୟକ । ହଠଯୋଗଦ୍ୱାରା ଯେଉଁ ନାଡ଼ୀଶୋଧନର ବ୍ୟବସ୍ଥା ଅଛି, ଅର୍ଥାତ୍ ନେତି ଧୌତି ପ୍ରଭୃତି ବହୁକ୍ରିୟା, ତାହା ସବୁ ଗୃହୀ ପକ୍ଷରେ ବଡ଼ କଷ୍ଟସାଧ୍ୟ । ଅନ୍ତର ପ୍ରୟୋଗଦ୍ୱାରା ଯେପରି ନାଡ଼ୀ ଶୋଧନ ହୁଏ, ତାହା ପୂର୍ବେ କୁହା ଯାଇଛି । ତାହା ସମସ୍ତଙ୍କ ପକ୍ଷରେ ସୁଲଭ । ପରମଯୋଗୀ ଶଙ୍କରାଚାର୍ଯ୍ୟଙ୍କ ମତରେ ତାହାହିଁ ପ୍ରଶସ୍ତ ଓ ସହଜ ।

ଜୀବର ଜୀବନୀଶକ୍ତିକୁ ବା ଶକ୍ତିକେନ୍ଦ୍ରକୁ କୁଣ୍ଡଳିନୀ କୁହାଯାଏ । କୁଣ୍ଡଳିନୀର ସ୍ଥାନ କେଉଁଠି ? ମେରୁଦଣ୍ଡ ମଧ୍ୟରେ ଇଡ଼ା ଓ ପିଙ୍ଗଳା ନାମରେ ୨ଟି ସ୍ନାୟୁସ୍ରୋତ ଶକ୍ତି-ପ୍ରବାହ ଅଛି ଏବଂ ମେରୁଦଣ୍ଡସ୍ଥ ମଜ୍ଜା ମଧ୍ୟରେ ସୁଷୁମ୍ନା ନାମରେ ଗୋଟିଏ ଶୂନ୍ୟ ନାଳୀ ଅଛି; ଏହି ଶୂନ୍ୟନାଳୀର ନିମ୍ନରେ କୁଣ୍ଡଳିନୀର ଆଧାରଭୂତ ପଦ୍ମ ଅବସ୍ଥିତ । ଏ ପଦ୍ମ ତ୍ରିକୋଣାକାର ଏବଂ ଚତୁର୍ଦ୍ଦଳ ବିଶିଷ୍ଟ । ତାହାଁର ଆକୃତି ସର୍ପପ୍ରାୟ ।

ପଶ୍ଚିମାଭିମୁଖୀ ଯୋନିଃ ଗୁଦମେଢ୍ରାନ୍ତରାଳଗା<br>
ତତ୍ର କନ୍ଦଂ ସମାଖ୍ୟାତଂ ତତ୍ରାସ୍ତି କୁଣ୍ଡଳୀ ସଦା ।<br>
ସଂବେଷ୍ଟ୍ୟ ସକଳା ନାଡ଼ୀଃ ସାର୍ଦ୍ଧତ୍ରିକୁଟିଳାକୃତିଃ<br>
ମୁଖେ ନିବେଶ୍ୟ ସା ପୁଚ୍ଛଂ ସୁଷୁମ୍ନା ବିବରେ ସ୍ଥିତା ।

ପ୍ରାଣାୟାମଦ୍ୱାରା ଏହି କୁଣ୍ଡଳିନୀ ଜାଗ୍ରତା ହୁଏ । ଏ ସବୁର ବିଶଦ ବିବରଣ ଜାଣିବା ପାଇଁ ଯୋଗଶାସ୍ତ୍ର ପାଠ କରିବାକୁ ହେବ । ଏ କ୍ଷୁଦ୍ର ସନ୍ଦର୍ଭରେ ତାହାଁର ସବିଶେଷ ଆଲୋଚନା ଅସମ୍ଭବ । ପାଠକମାନଙ୍କ ଚିତ୍ତାକର୍ଷଣ ଲାଗି ଠିକେ ଟିକେ କେତେ କଥା କହିଲୁଁ । ପାଠକଙ୍କର ଯୋଗବିଦ୍ୟା ପ୍ରତି ଶ୍ରଦ୍ଧା ଜନ୍ମିଲେ ସେମାନେ ଗୁରୁଙ୍କ ସାହାଯ୍ୟରେ ଯୋଗଶାସ୍ତ୍ର ପାଠ ଓ ସାଧନ କରିବେ ।

ପବନବିଜୟ ସ୍ୱରୋଦୟ ଗ୍ରନ୍ଥରେ ଇଡ଼ା, ପିଙ୍ଗଳା, ସୁଷୁମ୍ନାକୁ ଯଥାକ୍ରମେ ଗଙ୍ଗା, ଯମୁନା, ସରସ୍ୱତୀ ବୋଲି କୁହାଯାଏ । ବାମ ନାସା ଇଡ଼ା, ଦକ୍ଷିଣନାସା ପିଙ୍ଗଳା, ଇଡ଼ାକୁ ଚନ୍ଦ୍ରନାଡ଼ୀ ଏବଂ ପିଙ୍ଗଳାକୁ ସୂର୍ଯ୍ୟନାଡ଼ୀ କୁହାଯାଏ । ପ୍ରତି ନାସାରେ ୧୧ ଘଣ୍ଟା ବା ୨ ଘଡ଼ି ନିଶ୍ୱାସ ବହେ । ବାମ ନାସାରେ ନିଶ୍ୱାସ ଯାଉଥିଲାବେଳେ ଭୋଜନ କଲେ ରୋଗ ହେବ । ଦକ୍ଷିଣ ନାସାରେ ନିଶ୍ୱାସ ଯାଉଥିଲାବେଳେ ସ୍ନାନଭୋଜନ କରିବ । ଏପରି କଲେ ଅନ୍ନ ସହଜରେ ଜୀର୍ଣ୍ଣ ହେବ, ରୋଗ ହେବ ନାହିଁ । ବାମ ଅଙ୍ଗ ମାଡ଼ି ଶୋଇବ, ଅଙ୍ଗ ଲେଉଟାଇବ ନାହିଁ । ଅଳ୍ପ ଶୋଇବ । ସୂର୍ଯ୍ୟଙ୍କ ଉଦୟ ଓ ଅସ୍ତମଧ୍ୟରେ ପରିମିତ ଆହାର କରିବ । ରବି, ଶନି, ଗୁରୁ ଓ ମଙ୍ଗଳବାର ରବିସ୍ଥଳ । ଏ ବାରମାନଙ୍କରେ ଗାଧୋଇବ । ଏ ବାର ମାନଙ୍କରେ ମଧ୍ୟ ଯାତ୍ରା ଶୁଭ । ଏ ବାର ମାନଙ୍କରେ ରତିକ୍ରିୟା ନିଷିଦ୍ଧ । ସୋମ, ବୁଧ, ଶୁକ୍ରବାର ଚନ୍ଦ୍ରସ୍ଥଳ । ଏ ବାର-ମାନଙ୍କରେ ସ୍ନାନ କରିବ ନାହିଁ ଓ ଏଥିରେ ଯାତ୍ରା ଅଶୁଭ, ଏ ବାରମାନଙ୍କରେ ରତିକ୍ରିୟା କରାଯାଇ ପାରେ । ଶରୀରବିଜ୍ଞାନ ସମ୍ବନ୍ଧରେ ଓଡ଼ିଶାରେ ଅନେକ ପୁସ୍ତକ ଅନେକ ସାଧକ ଲେଖିଯାଇଛନ୍ତି । ଅଚ୍ୟୁତାନନ୍ଦ ଦାସ ଓ ଜଗନ୍ନାଥ ଦାସ ପ୍ରଭୃତି ମହାପୁରୁଷମାନେ ଏ ବିଷୟରେ ଅନେକ ପୁସ୍ତକ ଲେଖି ଯାଇଛନ୍ତି । ଅଚ୍ୟୁତାନନ୍ଦଙ୍କ ଦ୍ୱାଦଶ ପଟଳ, ତ୍ରିବିଂଶ ପଟଳ, ଜଗନ୍ନାଥ ଦାସଙ୍କ ତୁଳାଭିଣା,

ବଳରାମ ଦାସଙ୍କ ବ୍ରହ୍ମାଣ୍ଡ ଭୂଗୋଳ, ଗୁପ୍ତଗୀତା, ଚନ୍ଦ୍ରମଣି ଦାସଙ୍କ ସୁଧାସାର ଗୀତା ଦ୍ରଷ୍ଟବ୍ୟ । ଗୁପ୍ତ ଭାଗବତ, ବିରାଟଗୀତା, ଅମରକୋଷ ଗୀତା, ଆଗତ ଭବିଷ୍ୟ, ଅଷ୍ଟ-ଗୁହ୍ୟସ୍ରୀ, ଗରୁଡ଼ଗୀତା, ଅମରଯୁମ୍ବର, ବୈଚନ୍ଦ୍ରଗୀତା, ମହୀମଣ୍ଡଳଗୀତା, ଅଷ୍ଟକ ବିହାଙ୍ଗ ଗୀତା, ସଂସାରସାର ଗୀତା, ଜ୍ଞାନ ପରଚେ ଚୂଡ଼ାମଣି, ଏ ସବୁ ପୁସ୍ତକରେ ଶରୀରବିଜ୍ଞାନ ବିଷୟରେ ଅନେକ କଥା ଲେଖାଅଛି, ଶରୀର ମଧ୍ୟସ୍ଥ ନାଡ଼ୀ ସଂଖ୍ୟା, ଇଡ଼ା ପିଙ୍ଗଳା ପ୍ରଭୃତି ବିଷୟ ବିଶଦ ଭାବେ ଲେଖା ଅଛି । ଶରୀରକୁ ବ୍ରହ୍ମାଣ୍ଡ ସଙ୍ଗେ ତୁଳନା କରାଯାଇଛି, ଶରୀର ମଧ୍ୟରେ ୩୫୦୦୦୦୦ ନାଡ଼ି ଅଛି ତହିଁ ମଧ୍ୟରୁ ୧୪ ନାଡ଼ି ପ୍ରଧାନ—ସୁଷୁମ୍ନା, ଇଡ଼ା, ପିଙ୍ଗଳା, ଗାନ୍ଧାରୀ, ହସ୍ତିଜିହ୍ୱିକା, କୁହୁ, ସରସ୍ୱତୀ, ପୁଷା, ସଙ୍ଖିନୀ ପୟସ୍ୱିନୀ, ବାରୁଣୀ, ଅଳମ୍ବୁଷା, ବିଶ୍ୱୋଦରୀ, ଯଶସ୍ୱିନୀ, ଏଥି ମଧ୍ୟରେ ଇଡ଼ା ପିଙ୍ଗଳା ସୁଷୁମ୍ନା ସର୍ବପ୍ରଧାନ । ଚକ୍ର ଶରୀରର ପ୍ରଧାନ ଅଂଶ ଏଥିରେ ଜୀବନୀ ଶକ୍ତି ଅଛି । ଏ ସବୁ ବିଷୟରେ ଓଡ଼ିଆ ଭାଷାରେ ବହୁତ ପୁସ୍ତକ ଅଛି । ଶରୀର, ମନ, ପଞ୍ଚେନ୍ଦ୍ରିୟ, ପଚିଶ ପ୍ରକୃତିକି ନାନା ଆକାର ଓ ଉପମାଦେଇ ଗ୍ରନ୍ଥକାରମାନେ ବୁଝାଇ ଦେଇଛନ୍ତି ।

ଆମ ସାଧାରଣ କଥାରେ କହନ୍ତି, ପାଞ୍ଚମନ ପଚିଶ ପ୍ରକୃତି । ପାଞ୍ଚମନ କଅଣ ? ସତ୍ୟମନ, ଆନନ୍ଦମନ, ଚଞ୍ଚଳମନ, ଉଚାଟ ମନ, ଧୀରମନ । ପ୍ରତ୍ୟେକ ମନର ୫ଟି ଲେଖାଏଁ ପ୍ରକୃତି । ରାଗ, ତମ, ହିଂସା, ଅହଂକାର, କାମ, ମାୟା, ମୋହ, ଅବିଶ୍ୱାସ, କ୍ରୋଧ, କୁଟିଳତା, ଲମ୍ପଟ, କପଟ, ଛନ୍ଦ, ଲୋଭ, ମାନ; ମଦନ, ଖଳ, ଦୁର୍ଜନ, ଅରିଶ, ବଇରୀ; ଦାମ୍ଭିକ, ନାସ୍ତିକ, ମାନ, ମଦନ, ମତ୍ସର;—୨୫ । ଚଉଦନାୟକ=ମନ, ୫ ଦଳେଇ=୫ ମନ, ଦୟାଳୁ ସୁସାଧୁବିବେକ=ମନ୍ତ୍ରୀ, କୃପାସିନ୍ଧୁ=କଟୁଆଳ, ମାର୍ଜାର=କାଳ, ମୂଷା=ମନ, ନ୍ୟାୟ ମୀମାଂସା ଆଦି=ବେବର୍ତ୍ତା, ବୈକୁଣ୍ଠଗଡ଼ର ୪ଦ୍ୱାର; ଯଥା—ସତ୍ୟ, ଶାନ୍ତି, ଦୟା, କ୍ଷମା, ୪ ବେଦ=୪ କବାଟ, ୬ ଚକ୍ର=ଗୁରୁଜ, ୧୬ ଡମ୍ବରୁ କାଙ୍ଗୁଲି ବାଘମୁହାଁ କଳଶିଗୁଳ, ୬ ରଥୀ=କହନ୍ତା, ବହନ୍ତା, ଶୁଣନ୍ତା, ଦେଖନ୍ତା, ଚେତା, ଚଇତନ । ମେରୁ ଅଟାଳି=ଦାନ ମହତ୍ତ୍ୱ କ୍ଷମା ଆଦି । ଖଣ୍ଡା ଖୁଆର=ଧ୍ୟାନ ଧାରଣା ସମାଧି ଯୋଗ । ସୁଶୀଳ ପଣ୍ଡିତ=ବିବେକ ମହତ ଧୀର ଗମ୍ଭୀର ଆଦି । ଶୂର ଦରୋଜାରେ ଦ୍ୱାର ଜଗିଥିବେ ବରତନ ଖାଇ ନିତ୍ୟେ । ପୂର୍ବପୁଣ୍ୟ=ଖଣ୍ଡା ତରବାର ଢାଲ ଚକ୍ର କାଣ୍ଡ । ଓଡ଼ିଆ ସାଧକମାନେ ଏସବୁକୁ କିପରି ବର୍ଣ୍ଣନା କରିଛନ୍ତି, ଦୃଷ୍ଟାନ୍ତ ଦେଖନ୍ତୁ—

ସୁବର୍ଣ୍ଣ କାଙ୍ଗୁଲି ବାଘମୁହାଁ ଫେର ବଜ୍ରର କବାଟ ପାଡ଼ି,
କ୍ଷୀର ବାଦ୍ୟମାନ ବଜାଇ ଆନନ୍ଦେ ଦେଉଥିବେ ସିଂହ ରଡ଼ି ।

ସୁପୁଣ୍ୟ କର୍ମକୁ ଦଉଡ଼ି କରିଣ ନ୍ୟନ୍ତ ପଥରକୁ ଉଡ଼ି,
ଭକ୍ତ ସେବାକାରୀ ଯେତେକ ଅଟନ୍ତି ବସିଥିବେ ଦ୍ୱାର ମାଡ଼ି ।

ପ୍ରେମୋଦ୍ଗମ ପ୍ରେମ ପୁଲକିତ ଆଦି ଅଶ୍ରୁପାତ ଭକ୍ତି ସ୍ତୁତା,
ମୁକ୍ତିମାନଙ୍କର ସ୍ଥାନ ସେ ଅଟନ୍ତି ଆତ୍ମଜ୍ଞାନ ସୁଖଦାତା ।
ମାର ମାର ଧ୍ୱନି ଡାକ ପଡ଼ୁଥିବ ନର୍ବଳ ନୋହିବ ବନ୍ଧ,
ସଂଗ୍ରାମକାଳେ ଉନ୍ମ ଉନ୍ମ ନୋହିବୁ ଶୁଣ ତୁ ନୃପତି ଇନ୍ଦ୍ର ।
ସଂସାରକ ଜନେ ଇନ୍ଦ୍ରିୟ ଦୁଆରେ ହେଉଥାନ୍ତି ଆତଜାତ,
ଏ ଗାଁକୁ ଯାଇଣ ସେ ଗାଡେ ପଶନ୍ତି ବେପାର ଜନଙ୍କ ମତ ।

ଜୀବ ପରମ ଏକଇ ଅକ୍ଷର, ନାମ ଏକା ଦୁଇ ଅକ୍ଷର । ହଂସ, ହକାରୁ ଜାତ ସକାର ଅସ୍ତ, ହଂସ ନିଜ ନାମ ଜପୁଛି, ସୋହୋଽହ ନାମ ମୁହିଁ ଭଜୁଥାଇଁ, ଏହା ନ ଜାଣନ୍ତି ସଂସାରରେ କେହି ।

ବାହାରେ ବାର ସେ ଭିତରେ ବାର
ବାର ଭିତରୁ ସେ ବାର ବାହାର ।
ବାର ଭିତରେ ସେ ଅଟଇ ତିନି
ବାର ପ୍ରକାରରେ ସେ ତାହାକୁ ଚିହ୍ନି ।
ବାରକୁ ବାର ପାଲଟାଇ ଆସି
ଏହା ବାରଘର ବାହାରେ ବସି ।
ବିଶ୍ୱରେ ଜ୍ୟୋତିରେ ପୁରୁଷ ଏହି
ବାରତନାକୁ ହିରତ ଅଟଇ ।

ଶରୀରକୁ ଫୁଙ୍କାବନ୍ଧ ବୋଲି ବର୍ଣ୍ଣନା କରାଯାଇଛି । "ପବନ ପଶି ସେ ରହିଛି ମୋଟେ, ରହିଛି ବନ୍ଧ ସେ ତାହାର ଆଣ୍ଟେ" । ଗାୟତ୍ରୀଙ୍କ ଗାଈ ବୋଲି ବର୍ଣ୍ଣନା କରାଯାଇଛି, ପ୍ରାତଃକାଳରେ ତାର ବର୍ଣ୍ଣ ଆରକ୍ତ, ମଧ୍ୟାହ୍ନରେ ସ୍ଫଟିକ, ସନ୍ଧ୍ୟାରେ ନୀଳବର୍ଣ୍ଣ, ସକଳ ସମୟରେ ଧବଳବର୍ଣ୍ଣ । ତାର ୬ ବଦନ, ୬ପାଦ, ୧୬ଗେର, ୧୬ ବସ୍ତ୍ର, ୮କଳାରେ ବନ୍ଧା ୮ ଫାଶ । ତ୍ରିବେଣୀ ମଧ୍ୟରେ ଗୁହାଳ ୯ ଦ୍ୱାର, ତେରୁଆ ଗଉଡ଼ । "ସମୁଦ୍ର ମଧ୍ୟରେ ଉବଜିଲ ଲୋଭ ମଧୁର ବହୁତ ତୃଣ ଚରଇ, ବାଛୁରି ଯେନ ଉଜିପୁର ଖେପଇ ଗଉଡ଼କୁ ମାନଇ ନାହିଁ" । ପୁନଶ୍ଚ କହିଛନ୍ତି "ସବୁ ଧର୍ମକୁ ମନହିଁ କରତା, ମନ ପୂଜାହାରି ମନ ଦେବତା" । ମନ ଯେଉଁ ଦେଉଳ ମଧ୍ୟରେ ଅଛି ତାର ପ୍ରମାଣ ୧୪ ତାଳ । ୧ ତାଳ=୬ ଆଙ୍ଗୁଳ । ଦେଉଳରେ ୯ ଦ୍ୱାର । ଏହିପରି ନାନାପ୍ରକାରର ସୂଚନାତ୍ମକ ଓ ଲକ୍ଷଣାର୍ଥକ ବର୍ଣ୍ଣନା ଦେଖାଯାଏ । ଜୀବକୁ ହରିଣୀ ବୋଲି ବର୍ଣ୍ଣନା କରାଯାଇଛି । ଏହାକୁ ସାଧାରଣରେ, ଶରୀରଭେଦ ବୋଲାଯାଏ ।

ଯୋଗ ଶାସ୍ତ୍ରର ଏହି ସଂକ୍ଷିପ୍ତ ପରିଚୟ ଦିଆଗଲା । ଯେଉଁମାନେ ଏ ଶାସ୍ତ୍ରରେ ପାରଦର୍ଶିତା ଲାଭ କରିବାକୁ ଇଚ୍ଛା କରନ୍ତି ସେମାନେ ଗୁରୁଙ୍କ ଠାରୁ ଉପଦେଶ ନେଇ ଶାସ୍ତ୍ର ଅଧ୍ୟୟନ ପୂର୍ବକ ସାଧନା କରିବେ । ଏ ଶାସ୍ତ୍ରକୁ ତୁଚ୍ଛା ପଢ଼ିଲେ କିଛି ଲାଭ ନାହିଁ । ଯୋଗବିଦ୍ୟା ସାଧନମୂଳକ ବିଦ୍ୟା । ଯୋଗଶାସ୍ତ୍ରର ସତ୍ୟତା ସାଧନ ଦ୍ୱାରା ପରୀକ୍ଷିତ ହୋଇ ପାରିବ । ଏ ବିଦ୍ୟା ଅସାଧ୍ୟ ନୁହେଁ, ମାତ୍ର ସାଧନ ଲାଗି ଧୈର୍ଯ୍ୟ ଅବଶ୍ୟକ । ଆଜିକାଲି ସମ୍ମୋହନ ବିଦ୍ୟା ପରୀକ୍ଷିତ

ହୋଇଛି । ଇଂରେଜରେ ହିପ୍‌ନଟିଜିମ୍ ବା ମେସ୍‌ମେରିଜିମ୍ ଯାହା, ସମ୍ମୋହନ ବିଦ୍ୟା ତାହା । ସମ୍ମୋହନ ବିଦ୍ୟା ଦ୍ୱାରା ଆଶ୍ଚର୍ଯ୍ୟଜନକ ବ୍ୟାପାର ଦେଖା ଯାଉଛି । ଏହା ଜାଟକ ଯୋଗ । ଜାଟକ ଯୋଗଦ୍ୱାରା ଅଣିମ ଶ୍ରୈଶ୍ୱର୍ଯ୍ୟ ଆସେ । ଅଣିମ ଏହି ଶକ୍ତି ଆସିଲେ ଯାହାକୁ ଗୃହିବ ସେ ଆସୃକ୍ତ ହେବ, ଯାହାକୁ ଆସୃଷ୍ଟ କରାଯିବ, ତାଙ୍କୁ ଯାହା କହିବ ସେ ତାହା କରିବ । ଏହା ପ୍ରତ୍ୟକ୍ଷରେ ଦେଖା ଯାଉଛି । ଏଥିରେ ପାଶ୍ଚାତ୍ୟ ଦେଶରେ ସାଧନା ଲାଗିଛି । ସେମାନେ ଯାହା ସୂଚନା ପାଇଲେ ତାକୁ କାର୍ଯ୍ୟରେ ପରିଣତ କରିବାକୁ ପ୍ରାଣପଣେ ଚେଷ୍ଟା କରୁଛନ୍ତି । ସୁତରାଂ ସେମାନେ ଉନ୍ନତ । ଅମ୍ଭେମାନେ ଶାସ୍ତ୍ରକୁ ବିଶ୍ୱାସ କରୁ ନ ଥାଇଁ, କିମ୍ବା ସାଧନା ପାଇଁ ଆମ୍ଭମାନଙ୍କର ଧୈର୍ଯ୍ୟ ନାହିଁ, ସୁତରାଂ ଆମ୍ଭେମାନେ ଅନୁନ୍ନତ । ଆମ ଘରେ ପୋଥି ଅଛି ସତ୍ୟ, ମାତ୍ର ତାହା ପୋଥିବାଇଗଣ । ଅମ୍ଭେମାନେ ତାକୁ ବାଣ୍ଡି ବାଇଗଣ କରି ପାରୁ ନ ଥାଇଁ, ସୁତରାଂ ଆମ ଦେଶରେ ପାଠକମାନଙ୍କୁ ଅନୁରୋଧ, ସେମାନେ କୌଣସି ଶାସ୍ତ୍ରକୁ ଅବିଶ୍ୱାସ ନ କରି ତହିଁର ସତ୍ୟତା ଉପଲବ୍ଧି କରିବା ପାଇଁ ବ୍ରତୀ ହୁଅନ୍ତୁ ।

ଏ ବିଷୟରେ ଅନେକ ଭଜନମାନ ଅଛି । ମହାପୁରୁଷ ଅର୍ଜୁ ଦାସ, ହାଡ଼ି ଦାସ ପ୍ରଭୃତିଙ୍କର ବହୁତ ଭଜନ ଅଛି । ସେମାନେ ମଧ୍ୟ ସେହିପରି ପ୍ରଚ୍ଛନ୍ନ ଭାଷାରେ ବା ଠାରଠୁରେ ଲେଖିଛନ୍ତି । "ଓଲଟ ବୃକ୍ଷେ ଖେଳୁଛି ଲୋଟଣି ପାରା । ଅଠା କାଠି ପଞ୍ଜୁରିରେ ନ ପଡ଼େ ଧରା । ଅମୃତ୍ୟୁ ଦେଉଳେ ବାଇଁ ଅଛଇଁ । ଅମାବାସ୍ୟା ଜାଣିରେ ଚନ୍ଦ୍ର ଉଦୟ" ଇତ୍ୟାଦି ପ୍ରକାରେ ଲେଖାଅଛି । ଶୂନ୍ୟ ଭଜନ, ଅଜପା ଜପିବା, ଅମପା ମାପିବା, ଅବନା ବନିବା ପ୍ରଭୃତି ନାନା କଥା ସେ ପୁସ୍ତକରେ ଦେଖିବାକୁ ମିଳେ । ଏ ସମସ୍ତ 'ଶରୀରଭେଦ' କଥା । ଶରୀର ଭିତରର ସକଳ ବିଷୟ ଏଥିରେ ବର୍ଣ୍ଣିତ ଅଛି । ଏପରି ପ୍ରଚ୍ଛନ୍ନ ଲେଖା ପୁସ୍ତକ ଓଡ଼ିଆରେ ବହୁତ ଅଛି ।

[ସନ୍ଦର୍ଭ ଲେଖକ—
ଶ୍ରୀ ଜଗବନ୍ଧୁ ସିଂହ ।]

୩ । ମିଳନ; ଐକ୍ୟ; ସଙ୍ଗତି—3. Union; conjunction; meeting together; joining. ୪ । ଧ୍ୟାନ—Religious meditation; profound religious abstraction; concentration of mental powers. ୫ । ଦୃଢ଼ ସମ୍ପର୍କ—5. Firm connection; contact. ୬ । କାର୍ଯ୍ୟକାରଣ ସମାବେଶ ବା ସମ୍ପର୍କ—6. Co-relation; the relation of one thing with another as cause and effect. ୭ । ଅପୂର୍ବ ଅର୍ଥାଦି ପ୍ରାପ୍ତି ବା ସୌଭାଗ୍ୟ ପ୍ରାପ୍ତି—7. Acquisition of wealth or good fortune which was not possessed before. ୮ । ଏକାଧିକ ବସ୍ତୁର ବା ବ୍ୟକ୍ତିର ସଂଯୋଗ; ସହିତ; ସଂସର୍ଗ—8 Cohesion; combination; association; conflux. ୯ । ସଦ୍ଭାବ; ମନର ମେଳ—9. Mental agreement; concord. ୧୦ । ଯୋଗ୍ୟତା—10 Fitness; propriety. ୧୧ । (ବ୍ୟାକରଣ) ପ୍ରୟୋଗ; ଶବ୍ଦ ବା ବାକ୍ୟ ପ୍ରତି ବିଶେଷ ଅର୍ଥାଦିର ଯୋଜନା—11. (Grammar) Special application assigned to any unusual construction of words and compounds not warranted by rules but sanctioned by the authority of the users ୧୨ । ସୂତ୍ର; ନିୟମ—12. Aphorism; precept ୧୩ । ଦେହ ସ୍ଥୈର୍ଯ୍ୟ; ଦେହକୁ ନିର୍ଦ୍ଦିଷ୍ଟ ଅବସ୍ଥିତିରେ ସ୍ଥିର ଭାବରେ ରଖିବା—13 Keeping the body in a fixed position. [ଦ୍ର—ଗୀତାରେ ବର୍ଣ୍ଣିତ ଅଛି ଯେ ଯୋଗସାଧକ ବ୍ୟକ୍ତି ଏକାସନରେ ବସି ଦେହ, ମୁଣ୍ଡ ଓ ଗ୍ରୀବାକୁ ଅଚଳ ଓ ସ୍ଥିର ଭାବରେ ସମାନ କରି ରଖିବ । ଦୃଷ୍ଟିକୁ ନାସିକାଗ୍ରରେ କେନ୍ଦ୍ରୀଭୂତ କରିବ ଓ ଅନ୍ୟ ଦିଗକୁ ଗୃହିଁବ ନାହିଁ । ଦେହକୁ ଏପରି ସ୍ଥିର କରି ସାରି ଯୋଗ ସାଧନ କରିବ ।] ୧୪ । ଚିତ୍ତବୃତ୍ତି ନିରୋଧ; ମନକୁ ବିଷୟାନ୍ତରରୁ ନିବୃତ୍ତି କରାଇବା—14 Concentration of mind to one object and withdrawing it from all other objects or thoughts. ୧୫ । ଧନ ସମ୍ପତ୍ତିର ଉପାର୍ଜ୍ଜନ, ବର୍ଦ୍ଧନ ଓ ରକ୍ଷଣ—15. Acquisition and increment and accumulation or preservation of wealth. ୧୬ । ବର୍ମାଦି ଧାରଣ; ବର୍ମ ବନ୍ଧନ—16. Putting on of armour; accoutring. ୧୭ । ଶତ୍ରୁକୁ ଜିଣିବା ପାଇଁ ଦାନାଦି ଚତୁର୍ବିଧ ଉପାୟ; ସାମ, ଦାନ, ଦଣ୍ଡ, ଭେଦ—(ଯଥା—୧. (ସାମ) ଶତ୍ରୁକୁ କୋମଳ ବ୍ୟବହାର ଦ୍ୱାରା ବଶ କରିବା, ୨. (ଦାନ) ଧନାଦି ଦାନ କରିବା, ୩. (ଦଣ୍ଡ) ଦଣ୍ଡ ଦେବା, ୪. (ଭେଦ) ଶତ୍ରୁଦଳରେ ବିବାଦ ଜନ୍ମାଇବା ।) 17. Fourfold means of success used in overcoming an enemy (viz. (1) Conciliation, (2) Gift, (3) Chastissement, (4) Sowing dissension. ୧୮ । ଲାଭ—18. Gain; profit; acqusition. ୧୯ । ଭେଷଜ; ଔଷଧ; ବହୁ ଦ୍ରବ୍ୟର ସମଷ୍ଟିରେ ପ୍ରସ୍ତୁତ ଔଷଧ—19. A medicine or mixture made of various ingredients. ୨୦ । ଇନ୍ଦ୍ରଜାଲ; ଭୌତିକବିଦ୍ୟା; ତାନ୍ତ୍ରିକ ଯନ୍ତ୍ରମନ୍ତ୍ରାଦି ବଶୀକରଣାଦିର ଉପାୟ—20. Magic; acquisition of supernatural powers (e. g. of bringing a person under control) by mystic rites or employment of charms. ୨୧ । ଫଳ; ପରିଣାମ—21. Result; conseqen-

ence. ୨୨ । କୌଣସି କାର୍ଯ୍ୟର ମୁଖ୍ୟ ଉଦ୍ଦେଶ୍ୟ—22. The main end or object in view. ୨୩ । ଯୁକ୍ତି—23. Argument. ୨୪ । ଦ୍ରବ୍ୟ; ବିଷୟ—24. Thing; matter; substance. ୨୫ । ଧନ; ସମ୍ପତ୍ତି—25 Wealth. ୨୬ । ଠକାମି; ପ୍ରତାରଣା; ଛଳ—26. Trick; fraud; tact; deception. ୨୭ । ନୈୟାୟିକ—27 Logician. ୨୮ । ଚର; ପ୍ରଣିଧି—28. A spy; informer. ୨୯ । ଯାନ; ବାହନ—29. Conveyance. ୩୦ । ଶୁଭକାଳ ବା ସମୟ—30. Time of prosperity; a fortunate time; a happy conjunction. ୩୧ । ଶୁଭଯୋଗ; ଅନୁକୂଳ ଅବସର; ସୁଯୋଗ—31. A favourable opportunity. ୩୨ । (ଅଙ୍କ)—ସମଷ୍ଟିକରଣ; ଏକାଧିକ ରାଶିର ସଙ୍କଳନ; ମିଶାଣ—32. (Arithmetic) Addition of more than one number. ୩୩ । (ଜ୍ୟୋତିଷ) ଯୋଗତାରା; ପ୍ରଧାନ ନକ୍ଷତ୍ର; ନକ୍ଷତ୍ରପୁଞ୍ଜ ମଧ୍ୟସ୍ଥ ପ୍ରଧାନ ତାରା—33. (astrology) The principal star of a lunar mansion or a group of stars. ୩୪ । (ଗଣିତ ଜ୍ୟୋତିଷ) ବୃହତ୍ତର ଅଣ୍ଡାକାର ବୃତ୍ତର ସତେଇଶ ଭାଗର ଏକଭାଗ—34. (astronomy) $\frac{1}{27}$th part of a great circle measured on the plane of the ecliptic and used in calculating the latitude and longitude of the sun and the moon. ୩୫ । (ଫଳିତ ଜ୍ୟୋତିଷ)—ନିତ୍ୟଯୋଗ, ବିଷ୍କୁମ୍ଭାଦି ୨୭ଟି ଯୋଗ ବା ଗ୍ରହନକ୍ଷତ୍ରାଦିର ଅବସ୍ଥିତିଯୁକ୍ତ କାଳ—35. (astrology) The periods of 27 particular conjunctions of the planets with the stars and signs of the zodiac. [ଦ୍ର—(୩୩, ୩୪ ଓ ୩୫ ଅର୍ଥ)—ଜ୍ୟୋତିଷ ମତରେ ସୂର୍ଯ୍ୟଙ୍କର ଗତିଜ୍ଞାପକ ଅଣ୍ଡାକାର ବୃତ୍ତ (Ecliptic)କୁ ୩୬୦ ଡିଗ୍ରୀରେ ଭାଗ କରି ସେଥିର ୨୭ ଭାଗରୁ ୧ ଭାଗ ରୂପେ ଗ୍ରହଣ କରି ଯୋଗ ଗଣନା କରାଯାଏ । ପ୍ରତ୍ୟେକ ଯୋଗର ଅବସ୍ଥାନକାଳ ୨୩ଘଣ୍ଟା ୪୭ ମିନିଟ୍ ଓ ୪୪ ସେକେଣ୍ଡ, ଅର୍ଥାତ୍ ସୌର ଦିବସରୁ ପ୍ରାୟ ୧୨ ମିନିଟ୍ କମ୍ । ଏ ଯୋଗମାନ ଯାତ୍ରା ଆଦି ବିଷୟରେ ଶୁଭ ଓ ଅଶୁଭ ବୋଲି ବିବେଚିତ ହୁଏ । ଜ୍ୟୋତିଷରେ ୨୭ଟି ଯୋଗ ନିର୍ଦ୍ଧାରିତ ଅଛି । ଏମାନଙ୍କୁ ନିତ୍ୟ ଯୋଗ ବୋଲାଯାଏ । କାରଣ, ପ୍ରତି ଦିନ ଧାରାବାହିକ ମତେ ଗୋଟିଏ ଯୋଗ ପଡ଼େ ।

ଯଥା—୧ ବିଷ୍କୁମ୍ଭ(ଏଥିର ୫ ଦଣ୍ଡ ଶୁଭକର୍ମରେ ବର୍ଜନୀୟ), ୨ ପ୍ରୀତି, ୩ ଆୟୁଷ୍ମାନ, ୪ ସୌଭାଗ୍ୟ, ୫ ଶୋଭନ, ୬ ଅତିଗଣ୍ଡ, ୭ ସୁକର୍ମା, ୮ ଧୃତି, ୯ ଶୂଳ (ଏଥିର ୭ ଦଣ୍ଡ ବର୍ଜନୀୟ), ୧୦ ଗଣ୍ଡ (ଏଥିର ୬ଦଣ୍ଡ ବର୍ଜନୀୟ), ୧୧ ବୃଦ୍ଧି, ୧୨ ଧ୍ରୁବ, ୧୩ ବ୍ୟାଘାତ (ଏଥିର ୬ ଦଣ୍ଡ ବର୍ଜନୀୟ), ୧୪ ହର୍ଷଣ (ଏଥିର ୯ ଦଣ୍ଡ ବର୍ଜନୀୟ), ୧୫ ବଜ୍ର (ଏଥିର ୯ ଦଣ୍ଡ ବର୍ଜନୀୟ), ୧୬ ଅସୃକ୍, ୧୭ ବ୍ୟତୀପାତ (ଏଥିର ସମସ୍ତ ଅଂଶ ବର୍ଜନୀୟ), ୧୮ ବରୀୟାନ୍, ୧୯ ପରିଘ (ଏଥିର ଅର୍ଦ୍ଧେକ ବର୍ଜନୀୟ), ୨୦ ଶିବ, ୨୧ ସିଦ୍ଧି, ୨୨ ସାଧ୍ୟ, ୨୩ ଶୁଭ, ୨୪ ଶୁକ୍ଳ ବା ଶୁକ୍ର, ୨୫ ବ୍ରହ୍ମ, ୨୬ ଇନ୍ଦ୍ର, ୨୭ ବୈଧୃତି (ଏଥିର ସମସ୍ତ ଅଂଶ ବର୍ଜନୀୟ) ।

ଉପରୋକ୍ତ ୨୭ ଗୋଟି ଯୋଗ ମଧ୍ୟରୁ ବ୍ୟତୀପାତ ଓ ବୈଧୃତି ଯୋଗ ଅତି ଅମଙ୍ଗଳଜନକ ଓ ଏଥିରେ କୌଣସି ଶୁଭକର୍ମ କରିବା ନିଷିଦ୍ଧ । ଅନ୍ୟାନ୍ୟ ଯୋଗ ମଧ୍ୟରୁ ବିଷ୍କୁମ୍ଭ, ଶୂଳ, ଗଣ୍ଡ, ବ୍ୟାଘାତ, ହର୍ଷଣ, ବଜ୍ର ଓ ପରିଘ ଯୋଗମାନଙ୍କରେ କେତେକ ଦଣ୍ଡ ଶୁଭକର୍ମରେ ବର୍ଜନୀୟ । ଉକ୍ତ ୭ଟି ଯୋଗର ଅବଶିଷ୍ଟ ଦଣ୍ଡମାନ ଓ ଅନ୍ୟାନ୍ୟ ଯୋଗମାନ ଶୁଭ କର୍ମ ପାଇଁ ପ୍ରଶସ୍ତ ।] ୩୬ । ପତଞ୍ଜଳି ପ୍ରଣୀତ ଦର୍ଶନଶାସ୍ତ୍ର ବିଶେଷ; ପାତଞ୍ଜଳ ଦର୍ଶନ ବା ଯୋଗ ସୂତ୍ର—36. Name of a Sanscrit work on philosophy by sage Patañjali. [ଦ୍ର—ପତଞ୍ଜଳି ଋଷିଙ୍କ ପ୍ରଣୀତ ଯୋଗ ଶାସ୍ତ୍ରର ସୂତ୍ର ଗ୍ରନ୍ଥକୁ 'ପାତଞ୍ଜଳ ଦର୍ଶନ' ବୋଲାଯାଏ । ଯୋଗ ଦର୍ଶନକାର ପତଞ୍ଜଳି ଆତ୍ମା ଓ ଜଗତ ସମ୍ବନ୍ଧେ କପିଳଙ୍କ ସାଂଖ୍ୟ ଦର୍ଶନର ସିଦ୍ଧାନ୍ତକୁ ପ୍ରତିପାଦନ ଓ ସମର୍ଥନ କରି ଅଛନ୍ତି । ଏ ମଧ୍ୟ ୨୫ ତତ୍ତ୍ୱ ସ୍ୱୀକାର କରି ଅଛନ୍ତି । କିନ୍ତୁ ଏ କପିଳଙ୍କ ଅପେକ୍ଷା ଅଧିକା ଷଡ଼୍ବିଂଶ ତତ୍ତ୍ୱ 'ପୁରୁଷ ବିଶେଷ' ବା 'ଈଶ୍ୱର' ମାନି ଅଛନ୍ତି । (ହି. ଶ)

ଏ ଗ୍ରନ୍ଥର ଯୋଗ କାଣ୍ଡ ନିରୂପକ ୪ଟି ପାଦ ଅଛି—୧ ଯୋଗପାଦ ବା ଯୋଗର ଲକ୍ଷଣାଦି, ୨ ସାଧନ ପାଦ ବା କ୍ରିୟା ଯୋଗାଦି ସାଧନ ପ୍ରକରଣ, ୩ ବିଭୂତି ପାଦ ବା ଧ୍ୟାନ ଧାରଣାଦି ବିଭୂତି ବିବରଣ, ୪ କୈବଲ୍ୟ ପାଦ ବା ସିଦ୍ଧି ପଞ୍ଚକାଦି କୈବଲ୍ୟ ବା ସମାଧି ଲାଭର ବିବରଣ ।

ସଂକ୍ଷେପରେ ଯୋଗ ଦର୍ଶନର ମତ:—ମନୁଷ୍ୟର ଅବିଦ୍ୟା, ଅସ୍ମିତା, ରାଗ, ଦ୍ୱେଷ ଓ ଅଭିନିବେଶ, ଏହି ୫ ପ୍ରକାର କ୍ଳେଶ ଅଛି ଓ ମନୁଷ୍ୟ ନିଜର କର୍ମଫଳ ଅନୁସାରେ ଜୀବନ କଟାଏ । ଏ ସବୁରୁ ବର୍ତ୍ତିବା ଉପାୟ ଯୋଗ ଅଟେ । ଯୋଗର ଅଙ୍ଗମାନ ସାଧନ କରି ମନୁଷ୍ୟ ସିଦ୍ଧ ହୁଏ ଓ ମୋକ୍ଷ ଲାଭ କରେ । ଯୋଗଦର୍ଶନବାଦୀମାନେ ସଂସାରକୁ ଦୁଃଖମୟ ଓ ହେୟ ବୋଲି ବିଶ୍ୱାସ କରନ୍ତି । ଚିତ୍ତବୃତ୍ତି ବା ଚିତ୍ତଭୂମି ୫ ପ୍ରକାରର, ଯଥା—କ୍ଷିପ୍ତ, ମୂଢ଼, ବିକ୍ଷିପ୍ତ, ନିରୁଦ୍ଧ ଓ ଏକାଗ୍ର । ପ୍ରଥମ ୩ ବୃତ୍ତି ଯୋଗସାଧନର ବିରୋଧୀ; ଶେଷୋକ୍ତ ଦୁଇ ବୃତ୍ତିରେ ଯୋଗ ସାଧିତ ହୋଇ ପାରେ । ଅଭ୍ୟାସ, ବୈରାଗ୍ୟ, ଈଶ୍ୱର ପ୍ରଣିଧାନ, ପ୍ରାଣାୟାମ ଓ ସମାଧି ଦ୍ୱାରା ଯୋଗ ସାଧନ କରାଯାଏ । ଏଥିପାଇଁ ଯୋଗର ଆଠ ଅଙ୍ଗ ( ଯମନିୟମାଦି ) ସାଧିବାକୁ ହୁଏ । ପତଞ୍ଜଳିଙ୍କ ଯୋଗ ସୂତ୍ର ସଙ୍ଗେ ତନ୍ତ୍ରଶାସ୍ତ୍ର ମିଳିତ ହୋଇ 'କାୟବ୍ୟୂହ' ବା ଶରୀର ଭେଦ ନାମକ ଏକ ସାଧନର

ଉତ୍ପତ୍ତି ହେଲା ।) ଏହି କାୟବ୍ୟୂହ ମତରେ ଶରୀର ମଧ୍ୟରେ ଷଟ୍‌ଚକ୍ର କଳ୍ପିତ ହେଲା ଓ ଯୋଗର 'ହଠଯୋଗ' ନାମକ ଏକ ଶାଖା ହେଲା । ଏଥିରେ ନେତି, ଧୌତି, ବସ୍ତି ଆଦି ଷଟ୍‌କର୍ମ ଓ ନାଡ଼ୀଶୋଧନାଦି କ୍ରିୟା କରିବାକୁ ଯୋଗ ସାଧକଙ୍କୁ ଉପଦେଶ ଦିଆଗଲା । ହଠଯୋଗର ପ୍ରଧାନ ଆଚାର୍ଯ୍ୟ ମତ୍ସ୍ୟେନ୍ଦ୍ରନାଥ ଓ ତାଙ୍କ ଶିଷ୍ୟ ଗୋରଖନାଥ—ହି. ଶ] ୩୭ । (ଫଳିତ ଜ୍ୟୋତିଷ) ଶିବାଗୌରୀ ମତରେ ଯାତ୍ରା କରିବା ପାଇଁ ବିଚାର୍ଯ୍ୟ ୪ ଗୋଟି ଯୋଗ—37.(astrology) Name of 4 special periods or spaces of time according to a special rule, for starting on a mission, [ଦ୍ର—ଜ୍ୟୋତିଷ ମତରେ ଶୁଭଯୋଗ ନ ମିଳିଲେ ଶିବାଗୌରୀ ମତରେ ଯୋଗ ନିର୍ଣ୍ଣୟ କରି ଯାତ୍ରାକାଳ ସ୍ଥିର କରିବାକୁ ହୁଏ । ଶିବାଗୌରୀ ମତରେ ଅହୋରାତ୍ରରେ ପଡ଼ିବା ଯୋଗ ୪ ଗୋଟି, ଯଥା—୧ ମାହେନ୍ଦ୍ର—କାର୍ଯ୍ୟୋଦୟ, ୨ ବକ୍ର—କାର୍ଯ୍ୟନାଶ, ୩ ଅମୃତ—କାର୍ଯ୍ୟସିଦ୍ଧି, ୪ ଶୂନ୍ୟ—ମୃତ୍ୟୁ ବା ଅପମାନ । ମାଘ, ଫାଲ୍‌ଗୁନ, ଚୈତ୍ର, ବୈଶାଖ, ଶ୍ରାବଣ ଓ ଭାଦ୍ର, ଏହି ୬ ମାସରେ ଭିନ୍ନ ଭିନ୍ନ ବାରରେ ଭିନ୍ନ ଭିନ୍ନ ଦିବାଦଣ୍ଡରେ ଓ ଭିନ୍ନ ଭିନ୍ନ ରାତ୍ରିଦଣ୍ଡରେ ଏହି ଚାରି ଯୋଗ ଭିନ୍ନ ଭିନ୍ନ ଭାବରେ ପଡ଼େ ।

ଏହି ଯୋଗମାନ ଆଶ୍ୱିନ, କାର୍ତ୍ତିକ, ମାର୍ଗଶିର ଓ ପୌଷ, ଏ ୪ ମାସରେ ପୂର୍ବୋକ୍ତ ୬ ମାସ ଅପେକ୍ଷା ପୃଥକ୍ ଭାବରେ ପଡ଼େ ।

ପୁଣି ଜ୍ୟେଷ୍ଠ ଓ ଆଷାଢ଼ ଏହି ଦୁଇ ମାସରେ ଯୋଗମାନ ଉକ୍ତ ୧୦ ମାସ ଅପେକ୍ଷା ପୃଥକ୍ ଭାବରେ ପଡ଼େ ।

ଏ ଯୋଗମାନ ଦିବା ୩୦ ଦଣ୍ଡ ଓ ରାତ୍ରି ୩୦ ଦଣ୍ଡ ମଧ୍ୟରେ କେବେ କେବେ ୨ ଦଣ୍ଡ, କେବେ ୪, କେବେ ୬, କେବେ ୮, କେବେ ୧୦, କେବେ ୧୪, କେବେ ୧୬, ଏହିପରି ଯୁଗ୍ମ ସଂଖ୍ୟାଯୁକ୍ତ ଦଣ୍ଡ ଲେଖାଏଁ ପଡ଼ିଥାଏ ।

ଜ୍ୟୋତିଷ ଗ୍ରନ୍ଥର ବିନା ସାହାଯ୍ୟରେ ଏହି ଚାରିଦଣ୍ଡର କାଳ ନିର୍ଣ୍ଣୟ କରିବା ଦୁଃସାଧ୍ୟ ଅଟେ ।] ୩୮ । ବ୍ୟକ୍ତି-ବିଶେଷଙ୍କ ଜାତକରେ ଥିବା ରାଶିନକ୍ଷତ୍ରାଦିର ଗଣନାଦ୍ୱାରା ଦେଖାଯିବା ଶୁଭ ବା ଅଶୁଭ—38. Special conjunction of stars and planets and signs in a person's horoscope leading to certain results to be achieved by that person. [ଦ୍ର—ବ୍ୟକ୍ତିବିଶେଷଙ୍କ ଜାତକରେ ଥିବା ଗ୍ରହ, ରାଶି, ନକ୍ଷତ୍ରାଦିଙ୍କର ବିଶିଷ୍ଟ ମିଳନ ଘଟିଲେ ଉକ୍ତ ମନୁଷ୍ୟର ଜୀବନରେ ବିଶିଷ୍ଟ ଘଟନାମାନ ଘଟିବା ଫଳିତ ଜ୍ୟୋତିଷରେ ଲେଖାଅଛି । ଏହି ବିଶିଷ୍ଟ ମିଳନମାନଙ୍କୁ ଯୋଗ ବୋଲାଯାଏ । ଏଥିର ଉଦାହରଣରୂପେ ନିମ୍ନରେ କେତେଗୋଟି ଦିଆଗଲା । ଯଥା—

ତୀର୍ଥମୃତ୍ୟୁଯୋଗ — ଯେଉଁ ଲୋକର ଜାତକରେ ନବମାଧିପତି ଗ୍ରହ ନବମକୁ ଦେଖୁ ଥାଆନ୍ତି, ଲଗ୍ନାଧିପତି ଲଗ୍ନକୁ ଦେଖୁ ଥାଆନ୍ତି, ଅଷ୍ଟମାଧିପତି ଅଷ୍ଟମକୁ ଦେଖୁଥାଆନ୍ତି, ଜନ୍ମ ଲଗ୍ନର ଅଷ୍ଟମ ସ୍ଥାନରେ ବୃହସ୍ପତି ଥାଆନ୍ତି, ତାହାର ତୀର୍ଥମୃତ୍ୟୁ ଯୋଗ ହୁଏ । ଅର୍ଥାତ୍ ଉକ୍ତ ବ୍ୟକ୍ତି କୌଣସି ତୀର୍ଥରେ ମୃତ୍ୟୁ ଲଭି ସ୍ୱର୍ଗଗାମୀ ହୁଏ ।

ରାଜଯୋଗ — ଯେଉଁ ପୁରୁଷର ଜାତକର ରାଶିଚକ୍ରର ଗୋଟିଏ ଗୃହରେ ୫ ଗୋଟି ଶୁଭଗ୍ରହ ଏକତ୍ର ଥାଆନ୍ତି, ସେ ରାଜସିଂହାସନ ଅଧିକାର କରେ ଓ ସ୍ତ୍ରୀ ହେଲେ ବେଶ୍ୟା ହୁଏ ।

ମକରମଙ୍ଗଳ ଯୋଗ—( ମକରମଙ୍ଗୁଳୀ ଦେଶଜ ନାମ )—ଜାତକରେ ମକର ରାଶିର ଗୃହରେ ମଙ୍ଗଳଗ୍ରହ ଥିଲେ ଉକ୍ତ ବ୍ୟକ୍ତି ଭାଗ୍ୟବାନ୍ ହୁଏ ।

ଏହିପରି ରବିମେଷ ଯୋଗ, ମୀନଶୁକ୍ର ଯୋଗ, କୁମ୍ଭ-ଶନି ବା ଶନିକୁମ୍ଭା ଯୋଗ, କକଡ଼ାବୃହସ୍ପତି ଯୋଗବିଶିଷ୍ଟ ବ୍ୟକ୍ତିମାନେ ସୁଖୀ ଓ ସୌଭାଗ୍ୟଶାଳୀ ହୁଅନ୍ତି ।

କକଡ଼ାମଙ୍ଗଳ ( ବା କୁଜ କରକଟ ) ଯୋଗ, ମୀନରାହୁ ( ବା ମାଛ ରାହୁତା ) ଯୋଗ, ବିଛା ବୃହସ୍ପତି ଯୋଗ, ମୀନମଙ୍ଗଳ ଯୋଗ, ତୁଳମଙ୍ଗଳ ଯୋଗମାନ ଯାହା ଜାତକରେ ଥାଏ ସେ ରାଜପୁତ୍ର ହେଲେ ମଧ୍ୟ ଦୁଃଖ-ଭୋଗ କରେ । ଏହାକୁ ଦାରିଦ୍ର୍ୟ ଯୋଗ ବୋଲାଯାଏ । ଏ ସମ୍ବନ୍ଧରେ ଡାକବୃଷି ବଚନମାନ ମଧ୍ୟ ଅଛି ।

ରବିବୁଧା ଯୋଗ—ଜାତକରେ ରବି ଓ ବୁଧ ଗ୍ରହମାନେ ଏକ ଘରେ ଥିଲେ ଉକ୍ତ ବ୍ୟକ୍ତି ସୁଖୀ ହୁଏ ।

ବିନିମୟ ଯୋଗ—ଜାତକରେ କୌଣସି ଗ୍ରହଙ୍କର ଉପଯୁକ୍ତ ଗୃହରେ ଅନ୍ୟ ଗୋଟିଏ ଗ୍ରହ ଥିବାର ଓ ୨ୟ ଗ୍ରହର ଘରେ ୧ମ ଗ୍ରହ ଥିବାର ଶୁଭଜନକ ଅବସ୍ଥା; ଯଥା—ଜାତକରେ ଚନ୍ଦ୍ରଗ୍ରହଙ୍କ ଘରେ ( କକଡ଼ା ରାଶି ଘରେ ) ବୁଧଗ୍ରହ ଥିବା ଓ ବୁଧଗ୍ରହଙ୍କ ଘରେ ( ମିଥୁନ ରାଶିର ଘରେ ) ଚନ୍ଦ୍ର ଥିବା ଅବସ୍ଥା । ଏହା ଭାଗ୍ୟକାରକ ଯୋଗ ।] ୩୯ । ଜାତକରୁ ମନୁଷ୍ୟର ଦଶା ଗଣନା କରାଯିବା ବେଳେ ଦେଖାଯିବା ଫଳିତ ଜ୍ୟୋତିଷୋକ୍ତ ଶୁଭାଶୁଭକର ଗ୍ରହଦଶା, ଅନ୍ତର୍ଦ୍ଦଶା ଓ ପ୍ରତ୍ୟନ୍ତର ଦଶା । ( ଯଥା—ମାରକ ଯୋଗ, ବନ୍ଧନ ଯୋଗ )—39. Particular conjunctions of one's natal planets leading to certain results. [ଦ୍ର—ଜାତକର ଗ୍ରହସ୍ଥିତିଆଦି ଚକ୍ର ଗଣନାରୁ ମନୁଷ୍ୟର 'ଦଶା' ଗଣନା କରାଯାଏ । ପ୍ରତ୍ୟେକ ଗ୍ରହଙ୍କ ମହାଦଶାର ଭୋଗକାଳ ନିର୍ଦ୍ଦିଷ୍ଟ ଅଛି । ଯଥା—ରବି ବା ସୂର୍ଯ୍ୟଙ୍କ ମହାଦଶା—୬ ବର୍ଷ; ଚନ୍ଦ୍ର ମହାଦଶା—୧୦ ବର୍ଷ; ମଙ୍ଗଳ ମହାଦଶା—୭ ବର୍ଷ; ରାହୁ ମହାଦଶା—୧୮ ବର୍ଷ ବୃହସ୍ପତି ମହାଦଶା—୧୬ ବର୍ଷ; ଶନି ମହାଦଶା—୧୯ ବର୍ଷ; ବୁଧ ମହାଦଶା—୧୭ ବର୍ଷ, କେତୁ ମହାଦଶା—୭ ବର୍ଷ; ଶୁକ୍ର ମହାଦଶା—୨୦ ବର୍ଷ—ମୋଟ ୧୨୦ ବର୍ଷ।

ମନୁଷ୍ୟର ପରମାୟୁ ୧୨୦ ବର୍ଷରେ ଏହି ୯ ଟି ଗ୍ରହଙ୍କ ଦଶାର କାଳ ପଡ଼େ । ଶିଶୁର ଜନ୍ମ ସମୟରେ ଗ୍ରହନକ୍ଷତ୍ର-ମାନଙ୍କର ରାଶିଚକ୍ରରେ ସ୍ଥିତି ଅନୁସାରେ ଯେଉଁ ଗ୍ରହଙ୍କ ମହାଦଶା ମଧ୍ୟରୁ ଯେତିକି ସମୟ ଭୋଗ ଯାଇଥାଏ, ଶିଶୁ ଜନ୍ମହେବା ପରେ ଉକ୍ତ ଗ୍ରହଙ୍କ ଦଶାର ଅବଶିଷ୍ଟକାଳ ଭୋଗ ହୁଏ ଓ ତତ୍ପରେ ଯଥାକ୍ରମେ ତତ୍ପରବର୍ତ୍ତୀ ଗ୍ରହମାନଙ୍କ ମହାଦଶାମାନ ପଡ଼େ । ପ୍ରତ୍ୟେକ ଗ୍ରହଙ୍କ ମହାଦଶାରେ ପୁଣି ନବଗ୍ରହଙ୍କର ଅନ୍ତର୍ଦ୍ଦଶା ଯଥାକ୍ରମେ ପଡ଼େ ଓ ପ୍ରତ୍ୟେକ ଅନ୍ତର୍ଦ୍ଦଶାରେ ପୁଣି ନବଗ୍ରହଙ୍କର ପ୍ରତ୍ୟନ୍ତର ଦଶା ପଡ଼େ । ଏହି ସବୁ ମହାଦଶା ଓ ଅନ୍ତର୍ଦ୍ଦଶା ଓ ପ୍ରତ୍ୟନ୍ତରଦଶା ଭୋଗ ହେବା ସମୟରେ ମନୁଷ୍ୟ-ଜୀବନରେ ଫଳିତ ଜ୍ୟୋତିଷ ବଚନ ଅନୁସାରେ ଶୁଭ ବା ଅଶୁଭ ବା ମିଶ୍ର ଫଳମାନ ଘଟେ ।

ମାରକ ଯୋଗ—ଜାତକସ୍ଥ ଗ୍ରହମାନଙ୍କର ବିଶିଷ୍ଟ ଅବସ୍ଥିତି ଯୋଗୁଁ ଯେଉଁ 'ଯୋଗ'ରେ ମନୁଷ୍ୟର ମୃତ୍ୟୁ ଘଟେ ।

ବନ୍ଧନ ଯୋଗ—ଯେଉଁ ଯୋଗରେ ମନୁଷ୍ୟଙ୍କୁ କାରାବାସ ଆଦି ବନ୍ଧନ ଘଟେ ।

ଅନ୍ୟୋନ୍ୟ ଷଷ୍ଠାଷ୍ଟମ ଯୋଗ—ଦୁଇଟି ରାଶି ବା ଗ୍ରହ ପରସ୍ପରର ଯଥାକ୍ରମେ ୬ଷ୍ଠ ଓ ୮ମ ଘରେ ଥିବା ଅବସ୍ଥାରେ ମନୁଷ୍ୟଙ୍କୁ ନାନା ଆପଦ ଘଟେ ।

ଏହି ସବୁ ଗ୍ରହଦଶାଜନିତ ମନ୍ଦଯୋଗ ପଡ଼ିଲେ ଗ୍ରହ-ଯଜ୍ଞାଦି କରି ଏହି ଅଶୁଭ ଯୋଗମାନଙ୍କର ଅଶୁଭତା ନିବାରଣ କରାଯାଏ । ] ୪୦ । ଜ୍ୟୋତିଃଶାସ୍ତ୍ର ମତରେ ସମୟସମୟରେ ଗ୍ରହ, ନକ୍ଷତ୍ର, ତିଥି, ବାର, ରାଶିଆଦିର ବିଶିଷ୍ଟ ମିଳନ, ଯାହାକି ତୀର୍ଥଦର୍ଶନ, ତୀର୍ଥସ୍ନାନଆଦି ଧର୍ମ-କାର୍ଯ୍ୟ ପକ୍ଷରେ ପ୍ରଶସ୍ତ ( ଯଥା—ସାଗର ସ୍ନାନ ବା ବାରୁଣୀଯୋଗ )—40. Particular conjuction of more than one astronomical units ( planet, asterism, day of the week, zodiac sign etc ) which is considered as very auspicious for certain religious performances and baths.

[ଦ୍ର—ସମୟସମୟରେ ଜ୍ୟୋତିଃଶାସ୍ତ୍ରୋକ୍ତ ଗଣନା ଅନୁସାରେ ଏ ଶ୍ରେଣୀର ଗୋଟିଏ ଗୋଟିଏ ଯୋଗ ଘଟେ । ଯଥା—

ରବ୍ୟାର୍ଦ୍ରା ଯୋଗ—ମିଥୁନ ମାସରେ ରବି ଆର୍ଦ୍ରା-ନକ୍ଷତ୍ର ଯୁକ୍ତ ହେଲେ ସୌର ମିଥୁନ ବା ଆଷାଢ ମାସର ଅଷ୍ଟମ ଦିନରେ ପଡ଼ିବା ଯୋଗବିଶେଷ । ଏହି ଯୋଗ ପଡ଼ିବାର ମୁହୂର୍ତ୍ତ ଅନୁସାରେ ଏହା ପୃଥିବୀପ୍ରତି ଶୁଭକର ବା ଅଶୁଭକର ହୁଏ ।

ବାରୁଣୀଯୋଗ — ଚୈତ୍ର କୃଷ୍ଣପକ୍ଷ ତ୍ରୟୋଦଶୀ ଦିନ ପଡ଼ିବା ତୀର୍ଥସ୍ନାନଯୋଗ । ଏଥିରେ ଗଙ୍ଗା ଆଦି ତୀର୍ଥରେ ସ୍ନାନ କଲେ ମହାଫଳ ଲାଭ ହୁଏ । ଏହି ବାରୁଣୀଯୋଗର 'ମହାବାରୁଣୀ' ଓ 'ମହା ମହା ବାରୁଣୀ' ପ୍ରକାର ମଧ୍ୟ ଅଛି ।

ରୋହିଣୀଚନ୍ଦ୍ରପଦ୍ ସ୍ନାନଯୋଗ—ପୂର୍ଣ୍ଣିମାର ଓ ବିଶେଷତଃ କାର୍ତ୍ତିକପୂର୍ଣ୍ଣିମାର ପରବର୍ତ୍ତୀ ତିଥିରେ ଯେବେ ଚନ୍ଦ୍ର, ରୋହିଣୀନକ୍ଷତ୍ର ଯୁକ୍ତ ହୁଅନ୍ତି ତେବେ ଏହି ଯୋଗ ହୁଏ ଓ ଏଥିରେ ତୀର୍ଥସ୍ନାନ ପ୍ରଶସ୍ତ ।

ଗୋବିନ୍ଦଦ୍ୱାଦଶୀଯୋଗ—ଫାଲ୍‌ଗୁନ ଶୁକ୍ଳ ଦ୍ୱାଦଶୀ ଦିନ ପୁରୁଷୋତ୍ତମକ୍ଷେତ୍ରରେ ପଡ଼ିବା ଯୋଗ । (ଏହା 'ସମ୍ପୂର୍ଣ୍ଣ' ଓ 'ସାମାନ୍ୟ' ଏପରି ୨ ପ୍ରକାରର ହୋଇଥାଏ; ସମ୍ପୂର୍ଣ୍ଣ ଗୋବିନ୍ଦଦ୍ୱାଦଶୀଯୋଗ ୨୦।୨୫।୩୦ ବର୍ଷରେ ଥରେ ପଡ଼େ ।]

ପାପନାଶିନୀ ଯୋଗ—ଫାଲ୍‌ଗୁନ ଶୁକ୍ଳ ଏକାଦଶୀ ଦିନ ପଡ଼ିବା ଯୋଗ ( ଏହା ସାମାନ୍ୟ ଓ ସମ୍ପୂର୍ଣ୍ଣ ୨ ପ୍ରକାରର ।)

ଏହିପରି 'ମହୋଦଧିଅମାବାସ୍ୟା' 'ବ୍ୟତୀପାତ ସ୍ନାନ-ଯୋଗ', 'ସ୍ନାର୍ତ୍ତବ୍ୟତୀପାତସ୍ନାନଯୋଗ', 'ତ୍ରିବେଣୀସ୍ନାନ-ଯୋଗ',

ଏହିପରି ନାନା ଯୋଗ ସମୟସମୟରେ ପଡ଼େ । କେତେକ ଯୋଗ ପ୍ରତିବର୍ଷ ପଡ଼େ ନାହିଁ ।

ପଞ୍ଚଗ୍ରହକୂଟ, ଷଡ଼ଗ୍ରହକୂଟ, ସପ୍ତଗ୍ରହକୂଟ—ଏକ ସମୟରେ ୫, ୬ ବା ୭ଟି ଗ୍ରହ ଏକ ରାଶିରେ ଉପସ୍ଥିତ ହେବାର ଅତି ଅଶୁଭ ଯୋଗ (ଏଥିରେ ପୃଥିବୀରେ ରାଷ୍ଟ୍ରଭଙ୍ଗାଦି ନାନାପ୍ରକାର ଅଶୁଭ ଘଟେ ଓ ସେହି ରାଶିରେ ଜାତ ବ୍ୟକ୍ତିମାନଙ୍କର ଅମଙ୍ଗଳ ହୁଏ) ।

ବିବାହାଦି ଶୁଭକର୍ମରେ ମଧ୍ୟ କେତେଗୁଡ଼ିଏ ଯୋଗ ଅଛି । ଯଥା—

ସୁତହିବୁକଯୋଗ—ବିବାହ ସମୟରେ ବରର ଲଗ୍ନର ୪ର୍ଥ, ୫ମ, ୯ମ ଓ ୧୦ମ ଘରେ ବୃହସ୍ପତି ବା ଶୁକ୍ର ଥିଲେ ଏହି ଯୋଗ ଘଟେ । ଏଥିରେ ଲଗ୍ନର ସମସ୍ତ ଦୋଷ ନଷ୍ଟ ହୋଇ ଦମ୍ପତିଙ୍କର ସୁଖବୃଦ୍ଧି ହୁଏ ।

ରାଜଯୋଟକଯୋଗ—(ରାଜଯୋଗ )—ବରକନ୍ୟାଙ୍କ ରାଶି ଏକ, ସମସପ୍ତକ, ଚତୁର୍ଥ ଦଶମ ବା ତୃତୀୟ ଏକାଦଶ ଥିଲେ ଏ ଯୋଗ ହୁଏ । ଏଥିରେ ବିବାହ କଲେ ଶୁଭ ।

ଅଷ୍ଟାଙ୍ଗଯୋଗ, ଅମୃତଯୋଗ, ମାହେନ୍ଦ୍ରଯୋଗ, ବଜ୍ରଯୋଗ, ଶୂନ୍ୟଯୋଗ, କର୍ମଯୋଗ, ଭକ୍ତିଯୋଗ, ଜ୍ଞାନଯୋଗ, ସୁଯୋଗ, ପାପଯୋଗ, ଦୁର୍ଯୋଗ ପ୍ରଭୃତି ଶବ୍ଦମାନ ଯୋଗ ଶବ୍ଦ ଯୁକ୍ତ ହୋଇ ନିଷ୍ପନ୍ନ ହୁଏ । ]

୪୧ । ଘଟଣା—41. Incident, happening event. ୪୨ । ଅବଶ୍ୟମ୍ଭାବୀ ଘଟଣା—42. Inevitable event ୪୩ । ଉପାୟ—43. Means; expedient; plan (Apte) ୪୪ । ପ୍ରକାର—44 Mode; manner (Apte). ୪୫ । ଯୁଆଳି—45. Yoke (Apte). ୪୬ । ସାଞ୍ଜୁ; କବଚ—46.

Armour (Apte). ୪୭ । ବ୍ୟବସାୟ; ବୃତ୍ତି—47. Occupation; business ( Apte ). ୪୮ । କୌଶଳ; ସ୍ତୁକୁଶ୍ତ—48. Cleverness device (Apte). ୪୯ । ଚେଷ୍ଟା; ପ୍ରଯତ୍ନ—49. Endeavour; assiduity (Apte). ୫୦ । ଗୁଣିବିଦ୍ୟା;ଇନ୍ଦ୍ରଜାଲ; ମନ୍ତ୍ର ଯନ୍ତ୍ର—50. Magic, charm; spell; incantation (Apte). ୫୧ । ସୈନ୍ୟମାନଙ୍କ ସଜ୍ଜା—5. Equipment of an army (Apte) ୫୨ । ଶବ୍ଦର ବ୍ୟୁତ୍ପତ୍ତି—52. Etymology; derivation of the meaning of a word (Apte). ୫୩ । ନିୟମ; ବିଧି—53. Rule; precept (Apte). ୫୪ । ଭକ୍ତି—54. Devotion; pious seeking after God(Apte ୫୫ ବିଶ୍ୱାସଘାତକ ବ୍ୟକ୍ତି—55. A traitor; a violator of truth or confidence (Apte). ବେ) ବଣ.—(ସ. ଯୋଗ୍ୟ)—୧ । ( ବ୍ୟଙ୍ଗାର୍ଥ )—ଯେଉଁ ବ୍ୟକ୍ତି ଆପଣାର ଯୋଗ୍ୟତା ବା ବାହାଦୁର ଦେଖାଇ କୁଏ - 1. (Ironical) Desirous of showing off one's excellence. ( ଯଥା—ସେ ଟୋକାଟା ଯୋଗ ହୋଇ ବସି ସବୁ ନଷ୍ଟ କରି ଦେଇଅଛି ।) ୨ । ଯୋଗ୍ୟ; ଭଜନ—2. Fit; competent; deserving. [ଦ୍ର—ନୂତନ୍ତୁ ରାଜ ପଶେ ଯୋଗ, ଆମ୍ଭର ଦେଇ ରାଜ ଭୋଗ । ଜଗନ୍ନାଥ. ଭାଗବତ ।] ବ.—କାରଣ—Reason. ( ଯଥା—ଏହି ଯୋଗରୁ ମୁଁ ଏଠାକୁ ଆସିଅଛି ।)

**ଯୋଗ କନ୍ୟା**—ସ. ବ.—ଦେବକୀଙ୍କ ଗର୍ଭରୁ ମଥୁରାରେ କଂସର ବନ୍ଦୀଶାଳାରେ ଶ୍ରୀକୃଷ୍ଣଙ୍କ ଭୂମିଷ୍ଠ ହେବା ସମୟରେ ଯଶୋଦାଙ୍କ ଗର୍ଭରୁ ଗୋପପୁରରେ ନନ୍ଦଙ୍କ ଘରେ ଜନ୍ମଲାଭ କରିଥିବା କନ୍ୟାରୂପଧାରିଣୀ ଯୋଗମାୟା—
Joga kanya — Goddess Jogamāyā who assumed the form of a child and took birth from the womb of Jasodā just when Srikrushna was born from Debakī. [ଦ୍ର—ଦେବକୀ ତଳେ (ଯୋଗ କନ୍ୟକା—ଅନ୍ୟରୂପ) ନୋହି ଦେଖ ।]

**ଯୋଗକର**—ସ. ବଣ. —ଯୋଗକାରକ (ଦେଖ)
Jogakara — Jogakāraka (See)

**ଯୋଗ କରିବା**—ଦେ. କି.—୧ । (ଗଣିତ)—ଏକାଧିକ ରାଶିକୁ ମିଶାଣ କରିବା—1. To add up more than one number.
Jogakaribā
ଯୋଗ କରା ଯୋଗ କରନା
୨ । କୌଣସି ପଦାର୍ଥ ସଙ୍ଗେ ଅନ୍ୟ ପଦାର୍ଥ ମିଶାଇବା—2. To join or mix up a thing with another. ୩ । କୌଣସି ବ୍ୟକ୍ତିଙ୍କ ସଙ୍ଗେ କାର୍ଯ୍ୟରେ ମିଶିବା—3 To collaborate with another. ୪ । ଉଦ୍ୟମ ବା ଚେଷ୍ଟା କରିବା; ଯତ୍ନ କରିବା; ଉଦ୍‌ଯୋଗ କରିବା—4. To endeavour; to try; to exert. ୫ । କୌଣସି କାର୍ଯ୍ୟ କରିବା ପାଇଁ କୌଣସି ବ୍ୟକ୍ତିଙ୍କୁ ଆଦର ବା ନିମନ୍ତ୍ରଣ କରିବା—5. To call or pray to a person to do a thing. ୬ । ଯୋଗ ସାଧିବା— 6. To be engaged in meditation or spiritual communion with God.

**ଯୋଗକାରକ**—ସ. ବଣ—୧ । ଭାଗ୍ୟଜନକ—
Joga kāraka — 1. Fortunate; lucky.
୨ । ଯେ ମିଳାଇ ଦିଏ—2. Causing union.

**ଯୋଗକୁ**—ଦେ ଅ.—୧ । ଘଟନା ଭଳରେ—1 Incidentally.
Jogaku ୨ । ଘଟନାକ୍ରମେ—2. In the course of event
୩ । ଭାଗ୍ୟକ୍ରମେ—3. As luck would have it.
୪ । ସୁଯୋଗକ୍ରମେ—4. Fortunately; luckly.
୫ । ଦୈବାତ୍—5. Accidentally; by chance.
দৈবে (ଯଥା—ଯୋଗକୁ ଆପଣଙ୍କୁ ଭେଟିଲି ନଚେତ୍ ଆପଣଙ୍କୁ
दैवात् ଖୋଜି ଖୋଜି ବଡ଼ ହଇରାଣ ହୋଇ ଥାଆନ୍ତି ।)

**ଯୋଗ କ୍ଷେମ**—ସ. ବ.—(ଦ୍ୱନ୍ଦ୍ୱ; ଯୋଗ + କ୍ଷେମ)—୧ । ଅଲବ୍ଧ
Joga kshema ବସ୍ତୁର ଲାଭ ଓ ଲବ୍ଧ ବସ୍ତୁର ରକ୍ଷଣ—
1. Acquisition of a thing which had not been got and preservation of a thing which has been acquired. ୨ । ଶରୀରର ସ୍ଥିତି ଓ ପାଳନ, ଜୀବିକା ନିର୍ବାହ—2. The act of preserving and maintaining the body; livelihood; the eking out of one's subsistence; living and maintenance. ୩ । ଧନ ସମ୍ପତ୍ତିର ରକ୍ଷଣାବେକ୍ଷଣର ଭାର—3. Charge of any property; custody ୪ (ଵିସ୍ତୀ ଭିତ୍) ଧନ ସମ୍ପତ୍ତିର ରକ୍ଷା—4. Preservation of property. ୫ । ଅନ୍ୟର ସମ୍ପତ୍ତିର ତତ୍ତ୍ୱାବଧାନ; ଅନ୍ୟର ଧନକୁ ମାରଫତଦାର ସ୍ୱରୂପେ ରକ୍ଷା—5. Preservation or taking care of another's property as a custodian. ୬ । ଖରିଦ ଦାମ ଓ ଖର୍ଚ୍ଚ ଆଦର ବିବେଚନାରେ ପଣ୍ୟ ଦ୍ରବ୍ୟର ମୂଲ୍ୟ ନିର୍ଦ୍ଧାରଣ—6. Settling the price of a commodity in consideration of its purchase-price and the incidental charges. ୭ । ଲଭ୍ୟ; ଲାଭ; ମୁନାଫା — 7. Gain, profit.

୮ । ଉତ୍ତରାଧିକାରୀମାନଙ୍କ ମଧ୍ୟରେ ବିଭାଗ ହୋଇ ନ ପାରିବା ସମ୍ପତ୍ତି (ଯଥା—ଦେବବିଗ୍ରହ ରାଜସିଂହାସନ); ଅବିଭାଜ୍ୟ ସମ୍ପତ୍ତି—8. Impartible property, such property as by its nature or incidents is incapable of partition amongst heirs,

୯ । କୁଶଳ; ଶୁଭ—9. Wellbeing; welfare.
୧୦। ଜାତୀୟ ସମୃଦ୍ଧି—10. National prosperity.
୧୧ । ରାଷ୍ଟ୍ରର ସୁବ୍ୟବସ୍ଥା ( ହି. ଶ. )—12. Good administration of a kingdom·

ଯୋଗକ୍ଷେମକର—ସଂ.ବଣ ଓ ବି ପୁଂ—୧। ଯେ ଅନ୍ୟ ଲୋକର ସମ୍ପତ୍ତିକୁ Jogakshemakara ରକ୍ଷା କରେ—1. Custodian of (ଯୋଗକ୍ଷେମକରୀ --ସ୍ତ୍ରୀ) a trust property; taking proper care of another's property; a trustee. ୨ । ରକ୍ଷକ—2. Keeper; custodian

ଯୋଗ ଗତି— ସଂ.ବି ( ମ. ଘ. ଲେ )—ମୌଳିକ ବା ଆଦିମ ଅବସ୍ଥା— Joga gati Primitive condition (Apte ).

ଯୋଗ ଚକ୍ଷୁଃ—ସଂ. ବି (ବହୁବ୍ରୀହି; ଯୋଗର ସାହାଯ୍ୟରେ ଯେ ଆଖିରେ Joga chakshuḥ ଦେଖିବା ଭଳି ଦେଖି ପାରେ )—ବ୍ରାହ୍ମଣ —A Brāhmaṇa ( Apte ).

ଯୋଗ ଚର—ସଂ. ବି ( ଯୋଗ=ଅଲୌକିକ ଶକ୍ତିର ଅଧିକାର+ Joga chara ଚର୍ ଧାତୁ+କର୍ତ୍ତୃ. ଅ; ଉପପଦ ତତ୍ପୁରୁଷ ) —ଶ୍ରୀରାମଦୂତ; ହନୁମାନ୍ ] ( ହି. ଶ )—Hanumān, the trusted attendant of Rāmachandra.

ଯୋଗ ଚୂର୍ଣ୍ଣ—ସଂ. ବି ( ବହୁବ୍ରୀହି )—ମୋହଚୂର୍ଣ୍ଣ; ଯେଉଁ ଚୂନାର Joga chūrṇṇa ଐନ୍ଦ୍ରଜାଲିକ ଶକ୍ତି ଅଛି; ମନ୍ତ୍ରର ଧୂଳି— (ଯୋଗଧୂଳି— ଅନ୍ୟରୂପ) Magical powder; a powder having magical virtues ( Apte ).

ଯୋଗଜ—ସଂ. ବଣ. ( ଯୋଗ+ଜନ୍ ଧାତୁ+କର୍ତ୍ତୃ. ଅ )—1. Jogaja Caused by mixing up many things ଯୋଗଜନ୍ୟ } ଅନ୍ୟ ବଣରୂପ ୨ । ଯୌଗିକ—2. Resulting ଯୋଗଜନିତ } from a compound. ୩ । ଯୋଗାଭ୍ୟାସରୁ ଜାତ—3. Resulting from the exercise of Joga. ବି—୧ । ଅଗୁରୁ—1. 1. Aloes-wood; agallochum. ୨ । ପ୍ରତ୍ୟକ୍ଷସାଧନ ଅଲୌକିକ ସନ୍ନିକର୍ଷ ବିଶେଷ—2. Extraordinary or supernatural proximation. [ ଦ୍ର— ଏହା ଦ୍ୱିବିଧ । ଯଥା—ଯୁକ୍ତ ଓ ଯୁଞ୍ଜନ; ଯୋଗସାଧନର ଏ ଅବସ୍ଥା ଘଟିଲେ ସାଧକ ଦର୍ଶକମାନଙ୍କୁ ଅଲୌକିକ ବସ୍ତୁମାନ ଦେଖାଇ ପାରେ ଓ ନିଜେ ଦେଖିପାରେ—ହି. ଶ. ] ୩ । ଯୋଗାଭ୍ୟାସ ଜନିତ ଧର୍ମ—3. Results arising from the practice of austerities or penance.

ଯୋଗଜନ୍ମା—ସଂ. ବଣ. ପୁଂ ( ଯୋଗ+ଜନ୍ମନ୍; ୧ମା. ୧ବ. )— Jogajanma ୧ । ଯେଉଁ ବ୍ୟକ୍ତି ଶୁଭଯୋଗରେ ଜନ୍ମଗ୍ରହଣ କରି ଥାଆନ୍ତି ଓ ସେଥିଯୋଗୁଁ ଜଗତରେ ଅସାଧାରଣ ଗୁଣ ଓ କୀର୍ତ୍ତିସମ୍ପନ୍ନ ହୁଅନ୍ତି; କ୍ଷଣଜନ୍ମା—1. Born under auspicious stars; born under the influence of auspicious planets. ୨ । ସବିଶେଷ ଭାଗ୍ୟବାନ୍—2. Very lucky ୩ । କୀର୍ତ୍ତିଶାଳୀ; ଯଶସ୍ୱୀ—3. Famous.

ଯୋଗଜ ଫଳ—ସଂ. ବି ( କର୍ମଧା )—( ଗଣିତ ) ଏକାଧିକ ସଂଖ୍ୟାର Jogaja phala ଯୋଗ ଫଳ ( ହି. ଶ. )—(Arithmetic) The sum total of more than one number.

ଯୋଗଣ (ଇତ୍ୟାଦି)—ଦେ· ବି ( ସଂ. ଯୋଜନ )—ଜୋଗଣ ଇତ୍ୟାଦି Jogaṇa (etc) ( ଦେଖ )—Jogaṇa etc. ( See )

ଯୋଗଣାହାରୀ—ଦେ. ବି—ଜୋଗଣାହାରୀ ( ଦେଖ ) Jogaṇāhāri Jogaṇāhāri ( See )

ଯୋଗଣିଆ(ଆଁ)—ଦେ. ବି—ଜୋଗଣାହାରୀ ( ଦେଖ ) Jogaṇiā(āṅ) Jogaṇāhāri ( See )

ଯୋଗଣୀ (ଇତ୍ୟାଦି)—ଗ୍ରା· ବି ( ସଂ. ଯୋଗିନୀ )—ଯୋଗିନୀ ଇତ୍ୟାଦି Jogaṇi (etc) ( ଦେଖ )—Jogini etc ( See ) যোগিনী योगिनी

ଯୋଗଣୀଖିଆ—ଗ୍ରା. ବଣ—ଯୋଗନୀଖିଆ ( ଦେଖ ) Joganikhiā Joganikhiā ( See ) তোৰ কলেৰ। হউক जो हैजामे मर

ଯୋଗତଃ—ସଂ. କି. ବଣ ( ଯୋଗ+ତସ୍ )—୧ । ଉପଯୁକ୍ତରୂପେ— Jogataḥ 1. Suitably, properly. ୨ । ସମୟାନୁରୂପ —2. Seasonably; timely; in the proper moment; in due season. ୩ । ଯୋଗରେ— 3. By virtue of or through Joga. ୪ । ଏକଯୋଗ ହୋଇ—4. Conjointly. ୫ । ଯୋଗରୁ; ଯୋଗର ଫଳରେ—5. From junction; as a result of Joga. ୬ । ଅନୁସାରେ—6. In accordance with; according to ( Apte ). ୭ । କୁହୁକବଳରେ—7. By the power of magic ( Apte ).

ଯୋଗ ତାରା—ସଂ ବି ( ଜ୍ୟୋତିଷ )—୧ । ନକ୍ଷତ୍ର ପୁଞ୍ଜ ମଧ୍ୟରେ ଥିବା Joga tārā ବା ରାଶି ମଧ୍ୟରେ ଥିବା ଉଜ୍ଜ୍ୱଳତମ ବା ବୃହତ୍ତମ (ଯୋଗ ତାରକା—ଅନ୍ୟରୂପ) ତାରକା—1. The leading star of a constellation or sign. [ଦ୍ର-ରୋହିଣୀ ନକ୍ଷତ୍ରରେ ଥିବା ୫ ଗୋଟି ତାରାକୁ ଯୋଗ କଲେ ତାହା ଶକଟାକୃତି ହୁଏ । ଏଥିମଧ୍ୟରୁ ଜଗନ୍ନାଥଙ୍କର ଗୋଟିଏ ମୁଣ୍ଡରେ ଥିବା ଉଜ୍ଜ୍ୱଳ ତାରାଟି ରୋହିଣୀ ନକ୍ଷତ୍ରର ଯୋଗ-ତାରା ଅଟେ—Aldeberan. ଏହା ମଧ୍ୟ ବୃଷରାଶିରେ ଯୋଗତାରା ।

ପୁନର୍ବସୁ ନକ୍ଷତ୍ରରେ ଥିବା ୫ଟି ତାରାକୁ ଯୋଗ କଲେ ତାହା ଧନୁ ଆକାର ଦେଖାଯାଏ । ଏଥି ମଧ୍ୟରେ ଯୋଗ ତାରା ପ୍ରଶ୍ୱା—The dog star, Sirius.

ମେଷ ରାଶିରେ ଯୋଗ ତାରା ଓ ଅଶ୍ୱିନୀ ନାମକ କି ତାରା ବିଶିଷ୍ଟ ନକ୍ଷତ୍ରରେ ମଧ୍ୟ ତାରା—Hamal, Aries Alpha.

ନକ୍ଷତ୍ର ଉଳେ ନୋଟ (ଦେଖ) ।] ୨ । ପରସ୍ପର ସହିତ ମିଳିତ ହୋଇ ଦେଖା ଯିବା ତାରାଗଣ—2. Stars seen together. (Apte).

ଯୋଗ ଦର୍ଶନ—ସଂ. ବି—ମହର୍ଷି ପତଞ୍ଜଳି କୃତ ଯୋଗ ସୂତ୍ର—The Joga darśana Joga philosophy propounded by Patañjali.

ଯୋଗ ଦାନ—ସଂ.ବି.—୧। ଛଳଦ୍ୱାରା ଦାନ; କପଟ ଦାନ—(ମନୁ ୮।୧୬୫) Jogadāna 1. A fraudulent gift. ୨। ଶିଷ୍ୟକୁ ଯୋଗଶାସ୍ତ୍ର ଶିକ୍ଷା ଦେବା—2. Initiating a person with the doctrines or mysteries of 'Joga Sāstra'; communicating the Joga doctrines to a disciple (Apte). ୩ । କୌଣସି କାର୍ଯ୍ୟରେ ସହଯୋଗିତା କରିବା—3. Joining in a work as a colleague; contributing one's collaboration to a work. ୪। କର୍ମୀଙ୍କ ଦଳରେ ମିଶିବା—4. Joining a party of workers. ଦେ. ବି.—୧। ମିଳିତ ହେବା; ମିଳନ—1. Mixing; joining. ୨ । କାର୍ଯ୍ୟକ୍ଷେତ୍ରରେ ଉପସ୍ଥିତ ହେବା—2. Joining or first appearing in one's employment or field of action.

ଯୋଗ ଦାନ କରିବା—ଦେ. କ୍ରି— ମିଶିବା—To join; to co-Joga dāna kariba ଯୋଗ ଦେଓଯା **योग देना** operate. (ଯୋଗ ଦେବା—ଅନ୍ୟରୂପ)

ଯୋଗ ଧର୍ମୀ—ସଂ. ବିଣ. ପୁଂ. (ଯୋଗ+ଧର୍ମ+ଇନ୍; ୧ମା. ୧ବ)— Joga dharmī ଯୋଗାଭ୍ୟାସକାରୀ—Practising Joga. ସଂ. ବି. ପୁଂ—ଯୋଗୀ (ହ୍ନ. ଶ)— An anchorite.

ଯୋଗ ଧାରଣା –ସଂ. ବି. (୭ମୀ ତତ୍ - ଭକ୍ତି ବିଷୟରେ ଅଧ୍ୟବସାୟ— Joga dhāraṇā Perseverance or steady continuance in devotion.

ଯୋଗ ଧାରା—ସଂ. ବି. (ନାମ)— ବ୍ରହ୍ମପୁତ୍ରର ଏକ ଉପନଦୀ (ହ୍ନ ଶ)— Joga dhārā Name of a tributary of the Brahmaputra river.

ଯୋଗ ଧାରୀ—ସଂ. ବିଣ. ପୁଂ—ଯୋଗରେ ମଗ୍ନ; ଧ୍ୟାନ ମଗ୍ନ— Joga dhārī Always engaged in abstract (ଯୋଗ ଧାରିଣୀ ସ୍ତ୍ରୀ) contemplation of the Divinity.

ଯୋଗ ନାଥ ସଂ. ବି(୬ଷ୍ଠୀ ତତ୍)—ଶିବ (ହ୍ନ. ଶ)— Joga nātha Śiba (Apte).

ଯୋଗ ନାନୀ—ଗ୍ରା. ବି. ସ୍ତ୍ରୀ. (ଶିଶୁ ଭାଷା; ବ୍ୟଙ୍ଗ୍ୟାର୍ଥ, ସଂ. ଯୋଗ୍ୟ)— Joga nānī ଶିଶୁମାନଙ୍କ ଦଳ ମଧ୍ୟରେ ମୁରବିପଣିଆ ବା ବାହାଦୁରୀ ଦେଖାଇ ହେବା ବାଳିକା—(ironical) A girl who tries to pass as the leader and excel all other girls amongst a bevy of children. सर्दारनी

ଯୋଗ ନାବିକ—ସଂ. ବି—ମତ୍ସ୍ୟ ବିଶେଷ; ଗଡାଟ; ଗଣିଥ ଭୋଡ଼— Joga nābika A sort of fish; Siluris Ascitta.

ଯୋଗ ନିଦ୍ରା—ସଂ. ବି. ( ରୂପକ; ଯୋଗ+ନିଦ୍ରା )—୧ । ଯୋଗରତ Joga nidrā ଚିତ୍ତର ବିଷୟାନ୍ତର ନିବୃତ୍ତି ରୂପ ନିଦ୍ରା; ସମାଧି— 1. Distraction of the mind of a person engaged in contemplation from the outer things (compared to slumber). ୨ । ଯୁଗାନ୍ତ ପ୍ରଳୟ କାଳରେ ଭଗବାନଙ୍କର ନିଦ୍ରା ରୂପ ବ୍ୟାପାର— 2. The profound sleep of Bishṇu (the Creator and Preserver of the universe) during the great dissolution of the creation. ୩ । ନିଦ୍ରା ରୂପରେ କଳ୍ପିତା ଦୁର୍ଗା;ଭଗବତୀ- 3. Goddess Durgā personified in slumber. [ଦ୍ର—ମାର୍କଣ୍ଡେୟ ପୁରାଣାନ୍ତର୍ଗତ ଚଣ୍ଡୀରେ ଉକ୍ତ ଅଛି ଯେ ପ୍ରଳୟପୟୋଧିଜଳଶାୟୀ ଭଗବାନଙ୍କ କର୍ଣ୍ଣମଳରୁ ମଧୁ ଓ କୈଟଭ ନାମକ ଦୁଇ ଦୈତ୍ୟ ଜାତ ହୋଇ ବିଷ୍ଣୁଙ୍କ ନାଭିକମଳରୁ ବାହାରିଥିବା ଓ ସୃଷ୍ଟି ପାଇଁ ଉଦ୍ୟମ କରୁଥିବା ବ୍ରହ୍ମାଙ୍କୁ ହତ୍ୟା କରିବାକୁ ଉଦ୍ୟତ ହେଲେ । ଏହା ଦେଖି ଯୋଗନିଦ୍ରାରେ ଅଭିଭୂତ ବିଷ୍ଣୁଙ୍କ ନିଦ୍ରା ଭାଙ୍ଗିବା ପାଇଁ ବ୍ରହ୍ମା ଯୋଗନିଦ୍ରାଙ୍କୁ ସ୍ତବ କଲେ ।] ୪ । ଚୈତନ୍ୟ ଓ ନିଦ୍ରାର ମିଳିତ ଅବସ୍ଥା;ଅଧ ନିଦ—4. A state between consciousness and sleep; a state of half wakefulness and half sleep (Apte). ୫ । ରଣଭୂମିରେ ଵୀରର ମୃତ୍ୟୁ (ହ୍ନ. ଶ)— 5. The death of a warrior in the battlefield. ଦେ. ବି—ମହା ନିଦ୍ରା, ମୃତ୍ୟୁ—Death; the sleep that knows no waking

ଯୋଗ ନିଦ୍ରାଳୁ—ସଂ. ବି. (ଯୋଗ+ନିଦ୍ରା+ଆଳୁ)—ବିଷ୍ଣୁ (ହ୍ନ.ଶ)— Joga nidrālu Bishṇu. ସଂ.ବିଣ—ଯୋଗନିଦ୍ରାରେ ନିଦ୍ରିତ— Sleeping the Joganidrā.

ଯୋଗ ନିରତ—ସଂ. ବିଣ. (୭ମୀ ତତ୍)—ଯୋଗ ସାଧନରେ ରତ— Joga nirata Engaged in deep meditation (ଯୋଗନିରତା—ସ୍ତ୍ରୀ)

ଯୋଗ ନିଳୟ—ସଂ. ବି – (୬ଷ୍ଠୀ ତତ୍) – ଶିବ (ହ୍ନ. ଶ)— Joga nilaya Siba (Apte).

ଯୋଗନୀ— ଗ୍ରା. ବି—ଯୋଗିନୀ ( ଦେଖ ) Joganī Joginī ( See )

ଯୋଗ ପଟ୍ଟ—ସଂ. ବି—ଯୋଗସାଧନ କାଳରେ ବ୍ୟବହୃତ ବସ୍ତ୍ରବିଶେଷ; Joga paṭṭa (ଯାହା ଦ୍ୱାରା ଯୋଗୀଙ୍କର ପୃଷ୍ଠ ଓ ଜାନୁ ବନ୍ଧନ (ଯୋଗ ପଟ୍ଟିକା—ଅନ୍ୟରୂପ) କରାଯାଏ)—A sort of cloth drawn round the back and the hips of an ascetic as he squats to practise 'Joga' or abstract meditation.

ଯୋଗ ପତି—ସଂ. ବି (୬ଷ୍ଠୀ ତତ୍)— ୧ । ବିଷ୍ଣୁ (ହ୍ନ. ଶ)— Joga pati 1. Bishṇu (Apte). ୨ । ଶିବ (ହ୍ନ. ଶ)— 2. Śiba.

**ଯୋଗ ପଦକ**—ସ. ବି—ଯୋଗସାଧନା ଓ ପୂଜାକାଳରେ ଧାରଣୀୟ
**Joga padaka** ବସ୍ତ୍ରାର୍ଦ୍ଧ ଉତ୍ତରୀୟ ବିଶେଷ (ଯାହା ବାମକାନ୍ଧ ଓ ଡାହାଣ କକ୍ଷାଳିବାଟେ ପଇତାପରି ପଡ଼ିଥାଏ)—A sheet put along the left shoulder and the right side of a person engaged in 'Joga' or abstract meditation. [ଦ୍ର—ଏହାର ଚଉଡ଼ା ୪ଅଙ୍ଗୁଳ। ଏହା ବାଘଛାଲରେ, ମୃଗଛାଲରେ ବା ସୂତାରେ ହୁଏ ଓ ଯଜ୍ଞସୂତ୍ର (ପଇତା) ପରି ପିନ୍ଧାଯାଏ—(ହି. ଶ)]

**ଯୋଗ ପାଦୁକା**—ସ. ବି (ମ. ପ. ଶ୍ଳୋ)—ଅସାଧାରଣ ଗୁଣବିଶିଷ୍ଟ ମନ୍ତ୍ର-
**Joga pāduka** ପ୍ରଭାବମୟ ପାଦୁକା—Magical shoe or sandal (Apte).

**ଯୋଗ ପାରଗ**—ସ.ବି.ପୁଂ—୧। ଶିବ (ହି. ଶ)—1. Siba (Apte).
**Joga pāraga** ୨। ସିଦ୍ଧଯୋଗୀ (ହି. ଶ)—2. A successful Jogi.
(ଯୋଗପାରଗା—ସ୍ତ୍ରୀ)
(ଯୋଗପାରଙ୍ଗ, ଯୋଗ ପାରଙ୍ଗମ—ଅନ୍ୟରୂପ)

**ଯୋଗ ପୀଠ**—ସ. ବି—ଯୋଗାସନ (ଦେଖ)
**Joga pitha** Jogāsana (See)

**ଯୋଗ ଫଳ**—ସ. ବି (ଗଣିତ)—ଏକାଧିକ ରାଶିର ସମଷ୍ଟି—
**Joga phala** The sum or total of more than one number.

**ଯୋଗ ବର୍ତ୍ତିକା**—ସ ବି (ମ.ପ. ଶ୍ଳୋ)—ଅସାଧାରଣ ଶକ୍ତିବିଶିଷ୍ଟ ବଳିତା—
**Joga barttikā** A magical wick (Apte).

**ଯୋଗ ବଳ**—ସ. ବି (ମ. ପ, ଶ୍ଳୋ; ଯୋଗ+ବଳ)—୧। ଯୋଗ-
**Joga bala** ସାଧନଜନିତ ଅସାଧାରଣ ଶକ୍ତି ବା କ୍ଷମତା—1. Supernatural power or strength derived by a person practising 'Joga' or abstract meditation. ୨। ଐନ୍ଦ୍ରଜାଲିକ ଶକ୍ତି—2. Magical power (Apte).

**ଯୋଗବାଶିଷ୍ଠ ରାମାୟଣ**—ସ. ବି (ନାମ; ଯୋଗ+ବଶିଷ୍ଠ+ଅ+
**Jogabāsishta rāmāyana** ରାମାୟଣ)—ବେଦାନ୍ତ ସମ୍ବନ୍ଧୀୟ ତଥ୍ୟ ଓ ଉପଦେଶମାନ ବର୍ଣ୍ଣିତ କରାଯାଇଥିବା ସଂସ୍କୃତ ଗ୍ରନ୍ଥବିଶେଷ (ମହର୍ଷି ବଶିଷ୍ଠ ଏହାର ବକ୍ତା ଓ ଶ୍ରୀରାମ ଏହାର ଶ୍ରୋତା)—Name of a Sanscrit work on the Bedānta Philosophy. [ଦ୍ର—ଏଥିରେ ବୈରାଗ୍ୟ ପ୍ରକରଣ, ମୁମୁକ୍ଷୁ ବ୍ୟବହାର ପ୍ରକରଣ, ଉତ୍ପତ୍ତି ପ୍ରକରଣ, ସ୍ଥିତି ପ୍ରକରଣ, ଉପଶମ ପ୍ରକରଣ ଓ ନିର୍ବାଣ ପ୍ରକରଣ, ଏହି ୬ଟି ପ୍ରକରଣରେ ବିଭକ୍ତ। ଏ ଗ୍ରନ୍ଥରେ ଜୀବାତ୍ମା ଓ ପରମାତ୍ମା, ମୁମୁକ୍ଷୁବ୍ୟକ୍ତିର କର୍ତ୍ତବ୍ୟ, ଜଗତର ଉତ୍ପତ୍ତି, ସ୍ଥିତି ଓ ଲୟ, ଚିତ୍ତବୃତ୍ତି, ସୁଖଦୁଃଖ, ଭୋକ୍ତା-ଭୋଗ୍ୟ, ମନୋମଧ୍ୟେ ବିଶାଳବ୍ରହ୍ମାଣ୍ଡର ବିକାଶ, ଜୀବନ୍ମୁକ୍ତ ବ୍ୟକ୍ତିର ବିବରଣ, ଚିତ୍ତଦମନ, ଅବିଦ୍ୟା ନିରାକରଣ, ପରମାର୍ଥ ଯୋଗ, ଆତ୍ମଜ୍ଞାନୋପଦେଶ, ସମାଧି, ଅଣିମାଦି ଐଶ୍ୱର୍ଯ୍ୟ, ଜାଗ୍ରତ୍‌ସ୍ୱପ୍ନସୁଷୁପ୍ତି-ବର୍ଣ୍ଣନ ଆଦି ବହୁ ଉପାଖ୍ୟାନ ସହ ବିବୃତ ହୋଇଅଛି—ସୁବଳ ଚନ୍ଦ୍ର।]

**ଯୋଗବାହ**—ସ.ବି (ଯୋଗ+ବହ୍ ଧାତୁ+କର୍ତ୍ତୃ ଅ)—୧। ଅନୁସ୍ୱାର ଓ
**Jogabāha** ବିସର୍ଗ ଏହି ଦୁଇଟି ଜିହ୍ୱାମୂଳୀୟ ଓ ଉପଧ୍ମାନୀୟ ବର୍ଣ୍ଣ—1. The two letters ᳚ (ṁ) and ଃ (aspirate h). [ଦ୍ର—'ଅଯୋଗବାହ' ଶବ୍ଦ ମଧ୍ୟ ଏହି ଅର୍ଥରେ ପ୍ରଯୁକ୍ତ ହୁଏ।] ୨। ଏକ ଦ୍ରବ୍ୟ ଅନ୍ୟ ଦ୍ରବ୍ୟ ସହିତ ମିଳିତ ହେଲେ ଉକ୍ତ ଦ୍ରବ୍ୟର ନାନା ରୋଗ ନାଶ କରିବାର ଗୁଣ—(ହଇକୃଷ୍ଣ ଦ୍ରବ୍ୟଗୁଣ)—2. The power of curing many diseases possessed by an article when mixed with others.

**ଯୋଗବାହୀ**—ସ. ବିଣ (ଯୋଗ+ବହ୍. ଧାତୁ+କର୍ତ୍ତୃ. ଇନ୍; ୧ମା.
**Jogabāhi** ୧ବ)—ଯୋଗଦ୍ୱାରା ବହନଶୀଳ—Carrying or
(ଯୋଗବାହିନୀ—ସ୍ତ୍ରୀ) conveying by 'Joga' ବି—୧। ଔଷଧାଦିର ମିଶ୍ରଣର ମଧ୍ୟବର୍ତ୍ତୀ ଉପାଦାନ ବିଶେଷ; ଭେଷଜାଙ୍ଗ ବିଶେଷ; ଯେଉଁ ଦ୍ରବ୍ୟ ଏକ ବା ବହୁ ଦ୍ରବ୍ୟ ସଙ୍ଗେ ମିଶାଗଲେ ଉକ୍ତ ଔଷଧ ସେବନଯୋଗ୍ୟ ହୁଏ, ଯଥା ମହୁ—1. A menstruum or medium for mixing medicines to make them eatable; e. g. honey. ୨। କ୍ଷାର ବିଶେଷ; ସାଜି କ୍ଷାର—2. Alkali. ୩। ପାରଦ; ପାରା—3. Mercury.

**ଯୋଗବାହ୍ୟ**—ସ. ବି—୧। ପାରଦ; ପାରା—1. Mercury.
**Jogabāhya** ୨। କ୍ଷାର—2 Alkali.

**ଯୋଗ ବିକ୍ରୟ**—ସ. ବି—(ମ. ପ. ଶ୍ଳୋ) ଛଳ ବା ପ୍ରତାରଣାଦ୍ୱାରା
**Joga bikraya** ବିକ୍ରୟ, ଛଳକପଟମୟ ବିକ୍ରୀ; (ମନୁ, ୮।୧୬୫)—(ଯୋଗବିକ୍ରୀ—ଦେଶଜ ବି ରୂପ) A fraudulent sale.
(ଯୋଗବିକ୍ରୀତ—ବିଣ)

**ଯୋଗବିତ୍(ଦ୍)**—ସ ବିଣ ପୁଂ (ଯୋଗ+ବିଦ୍ ଧାତୁ+କର୍ତ୍ତୃ.କ୍ୱିପ୍; ୧ମା.
**Jogabit(d)** ୧ବ)—୧। ଯୋଗାଭ୍ୟାସକାରୀ—1. Practising
(ଯୋଗବିଦ୍—ସ୍ତ୍ରୀ) 'Joga'. ୨। ଯୋଗଶାସ୍ତ୍ରଜ୍ଞ—2. Well conversant with the rules of Joga. ୩। ପାରଙ୍ଗମ—3. Skilful (Apte). ୪। ଚତୁର—4. Clever (Apte).
ବି—୧। ଯୋଗୀ; ତାପସ; ଯୋଗାଭ୍ୟାସୀ ବ୍ୟକ୍ତି—1. Ascetic, a practiser of Joga. ୨। ଯାଦୁଗର—2. Magician. ୩। ଯେ ଔଷଧାଦି ମିଶ୍ରିତ କରେ—3. A compounder of medicines (Apte). ୪। ଯୋଗଦର୍ଶନ ମତାନୁସାରୀ ବ୍ୟକ୍ତି—4 A follower of the Joga doctrines. ୫। ଶିବ (ହି. ଶ.)—5. Siba (Apte).

**ଯୋଗବିଭାଗ**—ସ. ବି (୬ଷ୍ଠୀ ତତ୍)—୧। ମିଶ୍ର ବସ୍ତୁର ପୃଥକ୍‌କରଣ—
**Joga bibhāga** 1. Separation of that which is usually combined together (Apte). ୨। ସୂତ୍ରର ଶବ୍ଦମାନଙ୍କ ପୃଥକ୍‌କରଣ—2. The separation of the words of a Sutra (Apte) or

aphorism ୩ । ବିଧିକୁ ଭଙ୍ଗି କରି ଏକାଧିକ ବିଧିରେ ପରିଣତ କରିବା—3. The splitting up of one rule into two or more (Apte)

**ଯୋଗ ବିଯୋ(ୟୋ)ଗ**—ସଂ. ବି (ଦ୍ୱନ୍ଦ୍ୱାର୍ଥ ସହଚର)—୧ । (ଗଣିତ) Joga bijo(yo)ga ମିଶାଣ ଓ ଫେଡାଣ; ସଂକଳନ ଓ ବ୍ୟବକଳନ—1. Addition and subtraction. ୨ । ମିଳନ ଓ ବିଚ୍ଛେଦ—2. Meeting and separation.

**ଯୋଗ ଭାବନା**—ସଂ. ବି (ବୀଜଗଣିତ)—ରାଶିମାନଙ୍କ ଗୁଣଫଳର ସମଷ୍ଟି Joga bhābanā ଦ୍ୱାରା ରାଶି ସ୍ଥାପନ—(Algebra) The composition of numbers by the sum of their products. (Apte).

**ଯୋଗ ଭ୍ରଂଶ**—ସଂ.ବି (ଷଷ୍ଠୀ ତତ୍)—ଯୋଗମାର୍ଗରୁ ସ୍ଖଳନ—Joga bhramśa Slipping from the ways of 'Joga' or austerities.

**ଯୋଗ ଭ୍ରଷ୍ଟ**—ସଂ. ବିଣ. ପୁଂ (ଷଷ୍ଠୀ ତତ୍)—ଯୋଗମାର୍ଗରୁ ଚ୍ୟୁତ, ବିଘ୍ନ Joga bhrashṭa ବିକ୍ଷେପ ଓ ବିଘ୍ନାଦିଦ୍ୱାରା ଯୋଗ ସାଧନ (ଯୋଗଭ୍ରଷ୍ଟା—ସ୍ତ୍ରୀ) କରିବାକୁ ଅସମର୍ଥ—Fallen from the path of austerities by obstacles.

**ଯୋଗମୟ**—ସଂ. ବିଣ—କୁହୁକ ପୂର୍ଣ୍ଣ—Full of magic. ସଂ. ବି—Jogamaya ବିଷ୍ଣୁ (ହି. ଶ)—Bishṇu.

**ଯୋଗମାତା**—ସଂ.ବି—୧ । ଦୁର୍ଗା (ହି. ଶ)—1. Durgā. Jogamātā ୨ । ପୀବରୀ (ହି. ଶ); ଯୁବତୀ ସ୍ତ୍ରୀ—2. A young woman.

**ଯୋଗମାୟା**—ସଂ. ବି. ସ୍ତ୍ରୀ—୧ । ଦୁର୍ଗା; ଭଗବତୀ; ( ରୂପଧାରିଣୀ Jogamāyā ବିଷ୍ଣୁଙ୍କର ମାୟା)—1. Goddess Durgā. ୨ । ସଂସାରର ମାୟା—2. Earthly illusion (personified). ୩ । ବିନ୍ଧ୍ୟାଚଳବାସିନୀ ଦୁର୍ଗା—3. Name of a Goddess presiding at the Bindhya hills. [ ଦ୍ର—ପୁରାଣରେ ବର୍ଣ୍ଣିତ ହୋଇଅଛି ଯେ ଏ ପ୍ରଥମେ ଯଶୋଦାଙ୍କ ଗର୍ଭରୁ ଜନ୍ମି ବସୁଦେବଙ୍କଦ୍ୱାରା ନୀତ ହୋଇ ଶ୍ରୀକୃଷ୍ଣଙ୍କ ସ୍ଥାନରେ ଦେବକୀଙ୍କ ସୂତିକାଗାରରେ ରହିଥିଲେ। ଏହା ପରେ କଂସ ଏହାଙ୍କୁ ଦେବକୀଙ୍କ ଗର୍ଭର ଅଷ୍ଟମ ସନ୍ତାନ ବୋଲି ମନେ କରି ଏହାଙ୍କୁ ପଥରରେ କଚାଡ଼ି ଦେବାରୁ ଏ ଆକାଶକୁ ଉଡ଼ିଯାଇ କଂସକୁ ସାବଧାନ କରି ଅନ୍ତର୍ହିତା ହେଲେ ଏବଂ ପରେ ଯାଇ ବିନ୍ଧ୍ୟାଚଳରେ ଅବସ୍ଥାନ କଲେ । ] ୪ । ସାନ୍ଦିପନି ମୁନିଙ୍କର ମାତା—4. Mother of sage Sandipani. [ ଦ୍ର—ଏ ମାୟା ବିସ୍ତାର କରି ରାଧାକୃଷ୍ଣଙ୍କର ମିଳନ କରାଇଥିଲେ । ]

**ଯୋଗ ଯାତ୍ରା**—ସଂ. ବି (ପରନିପାତ)—କୌଣସି ଉଦ୍ଦେଶ୍ୟ ସାଧନ ପାଇଁ Joga jātrā ଯାତ୍ରା କରିବାକୁ ଫଳିତ ଜ୍ୟୋତିଷ ମତରେ ଉପଯୁକ୍ତ ଯୋଗ (ହି. ଶ)—Auspicious time or state of astrological elements for starting on a particular mission.

**ଯୋଗଯୋଗୀ**—ସଂ. ବି. ପୁଂ (ମ. ପ. ଲୋ)—ଯୋଗାସନରେ ଉପବିଷ୍ଟ Jogajogi ଯୋଗୀ—An anchorite in the posture of practising Joga.

**ଯୋଗ(ଗା)ରଙ୍ଗ**—ସଂ. ବି (ବହୁବ୍ରୀହି)—ନାରଙ୍ଗ (ହି. ଶ)—Joga(gā)ranga Orange (Apte).

**ଯୋଗରତ୍ନ**—ସଂ. ବି. (ମ. ପ ଲୋ)—ଅଲୌକିକ ଶକ୍ତିବିଶିଷ୍ଟ ରତ୍ନ—Jogaratna A magical gem.

**ଯୋଗରାଜ**—ସଂ. ବି—୧ । ଯୋଗରେ ସିଦ୍ଧହସ୍ତ ବ୍ୟକ୍ତି—1. One Jogarāja well versed in Joga (Apte). ୨ । ଆୟୁର୍ବେଦୋକ୍ତ ଔଷଧ ବିଶେଷ—2. A kind of medicinal preparation. [ ଦ୍ର - ଯୋଗରାଜ ଗୁଗ୍ଗୁଳର ପ୍ରଧାନ ଉପକରଣ ଗୁଗ୍ଗୁଳ ଅଟେ ଓ ଏହା ଗଣ୍ଠିବାତ ଆଦିରେ ବିଶେଷ ଉପକାରପ୍ରଦ—(ହି. ଶ ) ]

**ଯୋଗରୁ**—ଦେ. ଅ—ଯୋଗୁଁ (ଦେଖ)—Jogun (See). Jogaru (ଯୋଗୁରୁ—ଗ୍ରାମ୍ୟରୂପ)

**ଯୋଗରୂଢ଼**—ସଂ. ବିଣ (ଯୋଗ+ ରୁହ୍ ଧାତୁ+କର୍ତ୍ତୃ. ତ)—Jogarurdha (ବ୍ୟାକରଣ) ଅବୟବଶକ୍ତି ଓ ଅର୍ଥଶକ୍ତିଦ୍ୱାରା ଯେଉଁ ଶବ୍ଦର ଅର୍ଥ ବୋଧ ହୁଏ; ଯେଉଁ ଶବ୍ଦର ପ୍ରକୃତି ପ୍ରତ୍ୟୟ ଅନୁସାରେ ହେଉଥିବା ଅର୍ଥ ଅନେକଗୁଡ଼ିଏ ବସ୍ତୁକୁ ବୁଝାଏ, କିନ୍ତୁ ବ୍ୟବହାରରେ ଗୋଟିଏ ବିଶିଷ୍ଟ ବସ୍ତୁକୁ ବୁଝାଏ—(Grammar) (A word) conveying a peculiar sense or conventional meaning though etymologically denoting many other things. ( ଯଥା—ପଙ୍କଜ = ପଙ୍କରୁ ଜାତ; ପଙ୍କରୁ ଅନେକ ପଦାର୍ଥ ଜାତ ହୁଏ, କିନ୍ତୁ ପଙ୍କଜ ଶବ୍ଦ କେବଳ ପଦ୍ମକୁ ବୁଝାଏ; ଶୂଳପାଣି; ଆତପତ୍ର; ପଞ୍ଚଶର ମଧ୍ୟ ଯୋଗରୂଢ଼ ଶବ୍ଦ) ।

**ଯୋଗରୂଢ଼ି**—ସଂ. ବି (ବ୍ୟାକରଣ)—ଯୋଗରୂଢ଼ ଶବ୍ଦ—( Grammar) A word conveying a particular meaning though etymologically denoting many other things. Jogarurdhi

**ଯୋଗ ରୋଚନା**—ସଂ ବି (ମ. ପ. ଲୋ)—ଏକପ୍ରକାର ଐନ୍ଦ୍ରଜାଲିକ Jogā rochanā ଲେପ, ଯାହାକୁ ଦେହରେ ଲଗାଇବା ବ୍ୟକ୍ତି ସାଧାରଣଙ୍କ ଚକ୍ଷୁର ଅଦୃଶ୍ୟ ହୁଏ ବା ଅକାଟ୍ଯ ହୁଏ—A kind of magical ointment said to possess the power of making one invisible or invulnerable (Apte).

**ଯୋଗ ଶକ୍ତି**—ସଂ. ବି (ମ. ପ. ଲୋ)—ଯୋଗଦ୍ୱାରା ପ୍ରାପ୍ତ ଶକ୍ତି; ଯୋଗ Joga śakti ବଳ—The power derived by the exercise of Joga.

**ଯୋଗ ଶବ୍ଦ**—ସଂ. ବି (ମ. ପ. ଲୋ)—(ବ୍ୟାକରଣ) ପ୍ରକୃତିପ୍ରତ୍ୟୟ Joga śabda ଅନୁସାରେ ଅର୍ଥ ନିଷ୍ପନ୍ନ ହେଉଥିବା ଶବ୍ଦ; ବ୍ୟୁତ୍ପତ୍ତ୍ୟର୍ଥବୋଧକ ଶବ୍ଦ—(Grammar) A word,

the meaning of which is plain from the etymology.

ଯୋଗ ଶାସ୍ତ୍ର—ସଂ. ବ (ମ. ପ ଲୋ; ଯୋଗବିଷୟକ ଶାସ୍ତ୍ର)—ଯେଉଁ Joga śāstra ଶାସ୍ତ୍ରରେ ଯୋଗ ବିଷୟ ବର୍ଣ୍ଣିତ ହୋଇଅଛି (ଯଥା—ପତଞ୍ଜଳ ପ୍ରଣୀତ ଦର୍ଶନ)—Works or science cr system of Philosophy teaching 'Joga' or abstract meditation on the Divine Essence.

ଯୋଗ ସାଜ(ଜି)ସ(ସି)—ଦେ. ବ (କଚରିଆ)—ଜୋଗସାଜସ (ଦେଖ) Joga sāja(ji)sa(si) जोड Jogasājasa. (See)

ଯୋଗ ସାଧକ—ସଂ. ବିଣ. ପୁଂ ( ଉପପଦ ତତ୍ପୁରୁଷ )—ଯୋଗାଭ୍ୟାସ-Joga sādhaka ରତ; ଯେ ଯୋଗସାଧନା କରେ—Practi- (ଯୋଗସାଧିକା—ସ୍ତ୍ରୀ) sing the system of profound meditation.

ଯୋଗ ସାଧନ(ନା)—ସ. ବ (୬ଷ୍ଠୀତତ୍)—ଯୋଗାଭ୍ୟାସ; ଯୋଗର ପଥର Joga sādha na(nā) (ନ୍ୟମାଦିର) ଅନୁସରଣ—The practising of the ways for the attainment of divine abstraction; the practising of abstract meditation.

ଯୋଗ ସାଧିବା—ଦେ କ୍ରି—ଯୋଗାଭ୍ୟାସ କରିବା—To practis. Joga sādhibā योग साधना austere meditation [ଉ—ଅନ୍ଧ ବିନୁନେ ହଂସ ହାନ; ଯୋଗ ସାଧିବ କାହା ଯେହ । ଜଗନ୍ନାଥ. ଭାଗବତ ।]

ଯୋଗ ସାର—ସ. ବ—୧ । ସର୍ବରୋଗହର ଔଷଧ ବା ଉପାୟ-Joga sāra ହୌଷଧ—1 A panacea for all diseases; a universal remedy. ୨ । ଯେଉଁ ଉପାୟ ବା ସାଧନ ଦ୍ୱାରା ମନୁଷ୍ୟ ଚିରକାଳ ପାଇଁ ରୋଗମୁକ୍ତ ହୁଏ (ହି. ଶ )—2. Means or exercises by which a person becomes permanently healthy. [ଉ—ଆୟୁର୍ବେଦରେ ଋତୁଚର୍ଯ୍ୟା ପ୍ରସଙ୍ଗରେ 'ଯୋଗସାର' ଉପାୟମାନଙ୍କ ବର୍ଣ୍ଣନ ଅଛି—ହି. ଶ]

ଯୋଗ ସିଦ୍ଧ—ସ.ବିଣ.ପୁଂ—(୭ମୀ ତତ୍)ଯେ ଯୋଗସାଧନରେ କୃତକାର୍ଯ୍ୟ Joga siddha ହୋଇଅଛି—Perfected in the art of (ଯୋଗ ସିଦ୍ଧା—ସ୍ତ୍ରୀ) profound abstraction. (ଯୋଗ ସିଦ୍ଧି—ବ)

ଯୋଗ ସୂତ୍ର—ସ. ବ—ପତଞ୍ଜଳଙ୍କ ଯୋଗଦର୍ଶନର ସୂତ୍ରଗଣ—Joga sūtra The aphorisms of the Joga system of Philosophy attributed to Patañjali.

ଯୋଗ ସେବା—ସ. ବ. (୬ଷ୍ଠୀ ତତ୍)—ଯୋଗ ସାଧନ—The prac- Joga sebā tice of abstract meditation (Apte).

ଯୋଗା—ଦେ. ବିଣ. (ସ. ଯୋଗ୍ୟ)—ଜୋଗା ( ଦେଖ ) Jogā योग्य _ যোগ্য Jogā ( See )

ସ. ବ. ସ୍ତ୍ରୀ. (ନାମ)—ସୀତାଙ୍କର ଏକ ସଖୀ (ହି. ଶ)—Name of a female companion of Sītā.

ଯୋଗା(ଗେ)ଇବା—ଦେ. କ୍ରି. ( ସ. ଯୁଜ୍ ଧାତୁ )—୧ । (ସକର୍ମକ) Jogā(ge)ibā ଆବଶ୍ୟକ ବସ୍ତୁ ଆଣି ପହଞ୍ଚାଇବା—1. To যোগান जुटाना supply. ୨ । (ଅକର୍ମକ) (ବିବାହ, ବ୍ରତ ଆଦି) ଯୋଗ হওয়া ଜ୍ୟୋତିଷ ମତରେ ଶୁଭଯୋଗ ଯୁକ୍ତ ହେବା-2.To suit योगआना to the planets of a person's horoscope (said of marriage etc. which have to be performed if a person's stars are in auspicious positions. (ଯଥା—ଏ ଝିଅକୁ ଆଗାମୀ ୨ ବର୍ଷକାଳ ବିଭା ଯୋଗାଉ ନାହିଁ ।) ୩ । ଯୋଗ୍ୟ যোগ্য হওয়া, যো হওয়া ହେବା—3. To befit; to be fit योगय होना for. (ଯଥା—ଭାଇବୋହୂଠେଇଁ କଥ ହେଲେ ଦେଖି ଯୋଗାଏ ନାହିଁ କ, ଛୁଇଁ ଯୋଗାଏ ନାହିଁ ।) ୪ । ( କୌଣସି କାର୍ଯ୍ୟ କରିବାକୁ ) ଉଚିତ ହେବା—4. योगय होना To be proper;to be becoming. [ଉ—ଋଜୁ ମୃଦୁ ହୃଦ୍ୟମନ୍ତ୍ର ସତ୍ୟବାଣୀ ହୋଇ, ଏତେ ପାପ କଥା କହିବା ନ ଯୋଗାଇ । କୃଷ୍ଣସିଂହ. ମହାଭାରତ ବନ ।] ୫ । ମନକୁ মনে যাওয়া ପାଇବା—5 To seem fitting; to accord to one's desires. ୬ । ରୁଚିକର ହେବା; ରୁଚିବା—6. To suit one's tastes. (ଉ—ଏ ମହାଭାରତକୁ କର୍ଣ୍ଣରେ ଶୁଣିଲେ, ଆନ କଥା ମନକୁ ନ ଯୋଗାଏ ଭଲେ । କୃଷ୍ଣସିଂହ. ମହାଭାରତ. ଆଦି ।)

ଯୋଗାକର୍ଷଣ—ସ. ବ· ( ପଦାର୍ଥବିଜ୍ଞାନ ପରିଭାଷା)—ପଦାର୍ଥରୁ ପରମାଣୁ-Jogākarshaṇa ସମୂହର ପରସ୍ପର ଆକର୍ଷଣ; ଯେଉଁ ଆକର୍ଷଣ ବଳରେ ଆକୃଷ୍ଟ ହୋଇ ପଦାର୍ଥର ପରମାଣୁ ସମୂହ ଏକତ୍ର ସମ୍ବଦ୍ଧ ହୋଇ ରହେ ଓ ବିଚ୍ଛିନ୍ନ ହୁଏ ନାହିଁ—(physics) Cohesion.

ଯୋଗାଙ୍ଗ—ସଂ. ବ. (୬ଷ୍ଠୀ ତତ୍)—ପତଞ୍ଜଳଙ୍କ ଯୋଗଶାସ୍ତ୍ର ମତରେ Jogānga ଯୋଗସାଧନାର୍ଥ ଆବଶ୍ୟକ ଆଠ ଗୋଟି ଉପାୟ (ଯଥା—ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧ୍ୟାନ, ଧାରଣା ଓ ସମାଧି (ହି. ଶ)—The 8 means of attaining Joga (Apte).

ଯୋଗାଚରଣ—ସଂ. ବ (୬ଷ୍ଠୀ ତତ୍)—ଯୋଗ ସାଧନ ( ଦେଖ ) Jogācharaṇa Joga sādhana ( See )

ଯୋଗାଚ୍ଚାର—ସଂ. ବ—୧ । ଯୋଗ ସାଧନ ( ଦେଖ )—1. Joga Jogāchāra sādhana ( See ) ୨ । ବୌଦ୍ଧ ପଣ୍ଡିତ-ବିଶେଷ—2. A sect of Buddhist philosophers. ୩ । ବୌଦ୍ଧ ଦର୍ଶନର ମତ ବିଶେଷ— 3. A doctrine of Buddhist philosophy. [ଉ—ଏହି ମତରେ ବାହ୍ୟ ବସ୍ତୁ ସବୁ ଶୂନ୍ୟ ଓ ବିଜ୍ଞାନହିଁ ଚିରସ୍ଥାୟୀ ।]

ଯୋଗାଚାର୍ଯ୍ୟ—ସଂ. ବି. ( ୭ମୀ ବା ୬ଷ୍ଠୀତତ୍ )—୧ । ଯୋଗଶାସ୍ତ୍ରର Jogāchārjya ଉପଦେଷ୍ଟା—1. A teacher of the Joga philosophy (Apte). ୨ । ଇନ୍ଦ୍ରଜାଲ ଶିକ୍ଷକ—2. A teacher of magic (Apte).

ଯୋଗାଞ୍ଜନ – ସଂ. ବି. (ମ. ପ. ଲୋ)—୧ । ଯୋଗ ରୋଚନା (ଦେଖ) Jogānjana 1. Joga rochanā (See) ୨। କ୍ଷତ-ନାଶକ ମଲମ—2. A healing ointment. ୩ । ଚକ୍ଷୁରୋଗନାଶକ ମଲମ—3. An ointment for healing eye-diseases.

ଯୋଗାଡ଼ (ଇତ୍ୟାଦି)—ଦେ. ବି—ଜୋଗାଡ଼ ଇତ୍ୟାଦି ( ଦେଖ ) Jogārda (etc) Jogārda etc ( See ) যুগাড়, জোগাড় प्रबन्ध, जुगुति

ଯୋଗାଡ଼ିଆ—ଦେ. ବି ଓ ବିଣ—ଜୋଗାଡ଼ିଆ ( ଦେଖ ) Jogārdiā जुगुतिआ Jogārdiā ( See ) (ଯୋଗାଡ଼ୀ—ଅନ୍ୟରୂପ) জেগোড়ে

ଯୋଗାଡ଼ିବା—ଦେ. କ୍ରି—ଜୋଗାଡ଼ିବା ( ଦେଖ ) Jogārdibā Jogārdibā ( See ) जुगुति करना, प्रबंध करना জোগাড় কৰা

ଯୋଗାଣ—ଦେ. ବି. (ସଂ. ଯୋଜନ)—ଯୋଗାଇବା— Jogāna যোগান जुटाना Supplying

ଯୋଗାଧମନ—ସଂ. ବି. ( ଯୋଗ=ଛଳ+ଆଧମନ=ବନ୍ଧକ ଦେବା)- Jogādhamana ଛଳ ପୂର୍ବକ ଦଆଯିବା ବନ୍ଧକ (ମନୁ ୮।୧୬୫) —A fraudulent pledge (Apte).

ଯୋଗାଧି—ଦେ. ବିଣ. ( ସଂ. ଯୋଗାରାଧକ )—ଯୋଗନିରତ; Jogādhi ଯୋଗାରୂଢ଼—Engaged in deep meditation. [ଦ୍ର—ଈଶ୍ୱର ଯୋଗାଧି ପୁରୁଷ, ତାହାଙ୍କୁ ଏ କଥା ଅଦୃଷ୍ଟ । ପ୍ରାଚୀ. ନିର୍ଗୁଣ ମାହାତ୍ମ୍ୟ ।]

ଯୋଗାନ୍ତରାୟ—ସ. ବି (୬ଷ୍ଠୀ ବା ସପ୍ତମୀ ତତ୍)—ଯୋଗସାଧନରେ ବିଘ୍ନ Jogāntarāya ଉତ୍ପାଦକ ଆଳସ୍ୟାଦି ଦୋଷ—Idleness etc which act as hindrance to the exercise of Joga.

ଯୋଗାବଲମ୍ବନ—ସ. ବି (୬ଷ୍ଠୀ ତତ୍)—ଯୋଗ ସାଧନ ( ଦେଖ ) Jogābalambana Joga sādhana ( See ) (ଯୋଗାବଲମ୍ବୀ—ବିଣ. ପୁଂ)

ଯୋଗାଭ୍ୟସନ—ସ. ବି ( ୬ଷ୍ଠୀ ତତ୍ )—ଯୋଗମାର୍ଗ ଅଭ୍ୟାସ କରିବା; Jogābhyasana ନିୟମିତରୂପେ ଯୋଗ ସାଧନ—Regular (ଯୋଗାଭ୍ୟାସ—ଅନ୍ୟରୂପ) practice of 'Joga'. (ଯୋଗାଭ୍ୟାସୀ—ବିଣ. ପୁଂ)

ଯୋଗାମ୍ବର—ଦେ. ବିଣ—ଯୋଗ ପରାୟଣ; ଯୋଗନିରତ— Jogāmbara Immersed in meditation. [ ଦ୍ର—ଅସ୍ଥାଗମାନରେ ଧ୍ୟାନ ଦେଇ, ବହିଲେ ଯୋଗାମ୍ବର ହୋଇ । ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ । ]

ଯୋଗାଯୋଗ—ଦେ. ବି ( କଥିତ )—ଜୋଗାଜୋଗ ( ଦେଖ ) Jogājoga Jogājoga ( See )

ଯୋଗାରାଧନ(ନା)—ସ ବି ( ୬ଷ୍ଠୀ ତତ୍; ଯୋଗ+ଆରାଧନ )— Jogārādhana(nā) ଯୋଗସାଧନ ( ଦେଖ )— Jogasādhana ( See )

ଯୋଗାରୂଢ଼—ସ.ବିଣ ପୁଂ (୭ମୀ ତତ୍;ଯୋଗ+ଆରୂଢ଼)—ଯୋଗନିରତ— Jogārūrdha Engaged in deep meditation. (ଯୋଗାରୂଢ଼ା—ସ୍ତ୍ରୀ) ବି—( ଗୀତା ) କାମନାଶୂନ୍ୟ ଜିତେନ୍ଦ୍ରିୟ ଯୋଗୀ—An ascetic who has extinguished all desires and passions.

ଯୋଗାସନ—ସ. ବି ( ମ. ପ. ଲୋ; କର୍ମଧାରୟ )—ଯୋଗସାଧନାର୍ଥ Jogāsana ଉପବେଶନ, ଧ୍ୟାନାସନ; ବଦ୍ଧାସନ—A position or posture in which a devotee is enjoined to sit while practising Joga.

ଯୋଗାସୀନ—ସ. ବିଣ. ପୁଂ ( ୭ମୀ ତତ୍ )—ଯୋଗସାଧନ ପାଇଁ Jogāsina ଯୋଗାସନରେ ଉପବିଷ୍ଟ—Sitting in the (ଯୋଗାସୀନା—ସ୍ତ୍ରୀ) required posture and practising 'Joga'.

ଯୋଗିଦଣ୍ଡ—ସ. ବି ( ୬ଷ୍ଠୀ ତତ୍; ଯୋଗିନ୍+ଦଣ୍ଡ )—ବେତ୍ର; ବେତ Jogidanda ( ଉ. ଶ )—Ratan cane.

ଯୋଗିନିଦ୍ରା—ସ. ବି ( ୬ଷ୍ଠୀ ତତ୍ )—ଅଳ୍ପନିଦ୍ରା; ତନ୍ଦ୍ରା, ଜାଗ୍ରତ Joginidrā ଅଥଚ ସୁପ୍ତାବସ୍ଥା—Light sleep; (ଯୋଗିନିଦ୍ରିତ—ବିଣ. ପୁଂ) wakefulness in sleep.

ଯୋଗିନୀ—ସ. ବି. ସ୍ତ୍ରୀ ( ଯୋଗିନ୍+ସ୍ତ୍ରୀ. ଈ )—୧ । ତପସ୍ୱିନୀ; Jogini ଯୋଗସାଧନକାରିଣୀ ନାରୀ—A female ascetic or devotee; a female recluse. ୨ । ଦୁର୍ଗାଙ୍କ ସଙ୍ଗିନୀ ଓ ଦୁର୍ଗାଙ୍କ ଅବତାରଧାରିଣୀ ଦେବୀଗଣ—2 Female companions of Durgā who are her incarnations also. [ଦ୍ର—ପୁରାଣମାନଙ୍କରେ ଅଷ୍ଟ ଯୋଗିନୀ ଓ ଚଉଷଠି ଯୋଗିନୀଙ୍କର ନାମ ଉଲ୍ଲେଖ ଅଛି । କାଳୀଙ୍କର ସହଚରୀ ୬୪ଯୋଗିନୀ ଓ ନବକୋଟୀ କାତ୍ୟାନୀ ( କାତ୍ୟାୟନୀ ) ବୋଲି ଲୋକବିଶ୍ୱାସ । ଏହିମାନେ ଭିନ୍ନ ଭିନ୍ନ ସ୍ଥାନରେ ଗ୍ରାମଦେବତାରୂପେ ପୂଜା ପାଉଅଛନ୍ତି । ଦକ୍ଷଯଜ୍ଞରେ ଅଗ୍ନିରେ ଝାସ ଦେଇଥିବା ସତୀଙ୍କ ଶବକୁ ଶିବ କାନ୍ଧରେ ପକାଇ ବୁଲୁଥିବା ବେଳେ ବିଷ୍ଣୁ ସୁଦର୍ଶନ ଚକ୍ରଦ୍ୱାରା ଉକ୍ତ ଶବକୁ ଛିନ୍ନଭିନ୍ନ କରିବାରୁ ଉକ୍ତ ଶବର ଅଙ୍ଗମାନ ଯେଉଁ ଯେଉଁ ସ୍ଥାନରେ ପଡ଼ିଥିଲା ସେ ସେ ସ୍ଥାନରେ ଗୋଟିଏ ଲେଖାଏଁ ଯୋଗିନୀ ବା ଭୈରବୀ ଥିବାର ଲୋକବିଶ୍ୱାସ । ଦେଶରେ ଓଲାଉଠା ବା ବସନ୍ତ ହେଲେ ତାହା ଯୋଗିନୀମାନଙ୍କ ଉପଦ୍ରବ ବୋଲି ଲୋକେ ବିଶ୍ୱାସ କରନ୍ତି । ଯୋଗିନୀମାନେ ଭୟଙ୍କର ରୂପଧାରିଣୀ, ଏଥିପାଇଁ ଅସ୍ଥିକଙ୍କାଳସାର ବିକଟବଦନା ସ୍ତ୍ରୀକୁ ଦେଖିଲେ ଲୋକେ ଯୋଗିନୀ ସଙ୍ଗେ ତୁଳନା କରନ୍ତି ।

କାଳିକା ପୁରାଣରେ ଓ ଅଗ୍ନିପୁରାଣରେ ଓ ବୃହନ୍ନନ୍ଦିକେଶ୍ୱର ପୁରାଣରେ ଏ ୬୪ ଯୋଗିନୀଙ୍କ ନାମ ଲିଖିତ ହୋଇଅଛି ।

ଅଷ୍ଟଯୋଗିନୀ ଯଥା—ଶୈଳପୁତ୍ରୀ, ଚନ୍ଦ୍ରଘଣ୍ଟା, ସ୍କନ୍ଦମାତା, କାଳରାତ୍ରୀ, ଚଣ୍ଡିକା, କୁଷ୍ମାଣ୍ଡୀ, କାତ୍ୟାୟନୀ, ମହାଗୌରୀ । ଚତୁଃଷଷ୍ଟୀ ଯୋଗିନୀ (ବୃହନ୍ନନ୍ଦିକେଶ୍ୱର ପୁରାଣମତରେ)— ୧. ନାରାୟଣୀ, ୨. ଗୌରୀ, ୩. ଶାକମ୍ଭରୀ, ୪. ଭୀମା, ୫. ରକ୍ତଦନ୍ତିକା, ୬. ଭ୍ରାମରୀ, ୭. ପାର୍ବତୀ, ୮. ଦୁର୍ଗା, ୯. କାତ୍ୟାୟନୀ, ୧୦. ମହାଦେବୀ, ୧୧. ଚଣ୍ଡଘଣ୍ଟା, ୧୨. ମହାବିଦ୍ୟା, ୧୩. ମହାତପା, ୧୪. ସାବିତ୍ରୀ, ୧୫. ବ୍ରହ୍ମବାଦିନୀ, ୧୬. ଭଦ୍ରକାଳୀ, ୧୭. ବିଶାଳାକ୍ଷୀ, ୧୮. କୃଷ୍ଣପିଙ୍ଗଳା, ୧୯. ରୁଦ୍ରାଣୀ, ୨୦. ଅଗ୍ନିଜ୍ୱାଳା, ୨୧. ରୌଦ୍ରମୁଖୀ, ୨୨. କାଳରାତ୍ରୀ, ୨୩. ତପସ୍ୱିନୀ, ୨୪. ମେଘସ୍ୱନା, ୨୫. ସହସ୍ରାକ୍ଷୀ, ୨୬. ବିଷ୍ଣୁମାୟା, ୨୭. ଜଳୋଦରୀ, ୨୮. ମହୋଦରୀ, ୨୯. ମୁକ୍ତକେଶୀ, ୩୦. ଘୋରରୂପା, ୩୧. ମହାବଳା, ୩୨. ଶ୍ରୁତି, ୩୩. ସ୍ମୃତି, ୩୪. ଧୃତି, ୩୫. ତୁଷ୍ଟି, ୩୬. ପୁଷ୍ଟି, ୩୭. ମେଧା, ୩୮. ବିଦ୍ୟା, ୩୯. ଲକ୍ଷ୍ମୀ, ୪୦. ସରସ୍ୱତୀ, ୪୧. ଅପର୍ଣ୍ଣା, ୪୨. ଅମ୍ବିକା, ୪୩. ଯୋଗିନୀ, ୪୪. ଡାକିନୀ, ୪୫. ଶାକିନୀ, ୪୬. ହାକିନୀ, ୪୭. ଲାକିନୀ, ୪୮. ତ୍ରିଦଶେଶ୍ୱରୀ, ୪୯. ମହାଷଷ୍ଠୀ, ୫୦. ସର୍ବମଙ୍ଗଳା, ୫୧. ଲଜ୍ଜା, ୫୨. କୌଶିକୀ, ୫୩. ବ୍ରହ୍ମାଣୀ, ୫୪. ମାହେଶ୍ୱରୀ, ୫୫. କୌମାରୀ, ୫୬. ବୈଷ୍ଣବୀ, ୫୭. ଐନ୍ଦ୍ରୀ, ୫୮. ନାରସିଂହୀ, ୫୯. ବାରାହୀ, ୬୦ ଚାମୁଣ୍ଡା, ୬୧. ଶିବଦୂତୀ, ୬୨. ବିଷ୍ଣୁଦୂତୀ, ୬୩. ଚଣ୍ଡିକା, ୬୪. ମତୃକା । ପାଠାନ୍ତରେ ଟୀକା ଦେଖ]

୩ । (ଫଳିତ ଜ୍ୟୋତିଷ) କାଳଯୋଗିନୀ; ତିଥିବିଶେଷରେ ଦିଗ୍‌ବିଶେଷକୁ ଅଧିକାର କରିବା ଦେବୀଗଣ; ତିଥି-ଯୋଗିନୀ—3. (Astrology) Goddesses who are said to occupy different quarters of the globe on different lunar days [ଦ୍ର—ବ୍ରହ୍ମାଣୀ—ପ୍ରତିପଦ ଓ ନବମୀରେ ପୂର୍ବରେ; ମାହେଶ୍ୱରୀ—୨ୟା ଓ ୧୦ମୀରେ ଉତ୍ତରରେ, କୌମାରୀ—୩ୟା ଓ ଏକାଦଶୀରେ ଅଗ୍ନେୟ କୋଣରେ; ନାରାୟଣୀ—୪ର୍ଥୀ ଓ ଦ୍ୱାଦଶୀରେ ନୈର୍‌ଋତରେ; ବାରାହୀ—୫ମୀ ଓ ତ୍ରୟୋଦଶୀରେ ଦକ୍ଷିଣରେ, ଇନ୍ଦ୍ରାଣୀ ବା ଐନ୍ଦ୍ରୀ—୬ଷ୍ଠୀ ଓ ଓ ଚତୁର୍ଦ୍ଦଶୀରେ ପଶ୍ଚିମରେ; ଚାମୁଣ୍ଡା—୭ମୀ ଓ ପୂର୍ଣ୍ଣିମାରେ ବାୟୁକୋଣରେ; ମହାଲକ୍ଷ୍ମୀ—୮ମୀ ଓ ଅମାବାସ୍ୟାରେ ଈଶାନରେ ଆଥାନ୍ତି । ଯାତ୍ରା ସମୟରେ ଯାତ୍ରାକାରୀର ସମ୍ମୁଖରେ ବା ଦକ୍ଷିଣ (ଡାହାଣ) ଦିଗରେ ଯୋଗିନୀ ଥିଲେ ମୃତ୍ୟୁ ଘଟେ । ଏହାକୁ ସମ୍ମୁଖଯୋଗିନୀ ବା ଦକ୍ଷିଣ ଯୋଗିନୀ କହନ୍ତି । ବାମ ଦିଗରେ ବା ପୃଷ୍ଠ ଭାଗରେ ଯୋଗିନୀ ଥିବା ଅବସ୍ଥାରେ ଯାତ୍ରା କଲେ ଶୁଭ ଘଟେ । ଏହାକୁ ବାମଯୋଗିନୀ ବା ପୃଷ୍ଠ ଯୋଗିନୀ ବୋଲାଯାଏ ।] ୪। ତନ୍ତ୍ରୋକ୍ତ ବିଧିରେ ସର୍ବକାମସିଦ୍ଧି ନିମନ୍ତେ ସାଧକ ପୂଜ୍ୟ ଦୁର୍ଗାଙ୍କ ଅବତାରବିଶେଷ—4. A Goddess (incarnation of Durgā) worshipped by Tantric devotees for attainment of worldly prosperity. [ଦ୍ର—ସାଧକର ମନ୍ତ୍ରସିଦ୍ଧି ହେଲେ ଯୋଗିନୀ ଆସି ସାଧକ ଆଗରେ ଠିଆ ହୁଅନ୍ତି ଓ ସାଧକ ଯେଉଁ ରୂପରେ ତାଙ୍କୁ ପାଇବାକୁ ଇଚ୍ଛା ପ୍ରକାଶ କରେ (ମାତା, ଭଗିନୀ ବା ଭାର୍ଯ୍ୟା ରୂପରେ) ଦେବୀ ତାହାହିଁ ଅଙ୍ଗୀକାର କରନ୍ତି । ମାତା ହେଲେ ସାଧକକୁ ଦ୍ରବ୍ୟ, ବସ୍ତ୍ର ଓ ରାଜ୍ୟ ଦିଅନ୍ତି । ଭଗ୍ନୀ ହେଲେ ଦ୍ରବ୍ୟ, ବସ୍ତ୍ର ଓ ଦିବ୍ୟକନ୍ୟା ଆଣି ଦିଅନ୍ତି । ଭାର୍ଯ୍ୟା ହେଲେ ସାଧକକୁ ରାଜେନ୍ଦ୍ର ପଦ ଓ ବିପୁଳ ଧନାଦି ଦେଇ ଭାର୍ଯ୍ୟାରୂପରେ ସାଧକର ଯାବତୀୟ ସେବା କରନ୍ତି ।] ୫ । ଜ୍ୟୋତିଷୋକ୍ତ ଦଶବିଧ ମହାଦଶାନ୍ତର୍ଗତ ଦଶାବିଶେଷ—5. Name of certain positions of planets in the course of a man's 10 planetary periods of life. [ଦ୍ର—ଦଶା-ଯୋଗିନୀ ସଂଖ୍ୟାରେ ଆଠ :—ମଙ୍ଗଳା, ପିଙ୍ଗଳା, ଧନ୍ୟା, ଭ୍ରାମରୀ, ଭଦ୍ରିକା, ଉଲ୍କା, ସିଦ୍ଧା, ସଙ୍କଟା ।—

ମଙ୍ଗଳାଦଶା (ଶୁଭ)—୧ ବର୍ଷ ଭୋଗ କାଳ;
ପିଙ୍ଗଳା (ଅଶୁଭ)—୨ ବର୍ଷ,
ଧନ୍ୟା (ଶୁଭ)—୩ ବର୍ଷ,
ଭ୍ରାମରୀ (ଅଶୁଭ)—୪ ବର୍ଷ,
ଭଦ୍ରିକା (ଶୁଭ)—୫ ବର୍ଷ,
ଉଲ୍କା (ଅଶୁଭ)—୬ ବର୍ଷ,
ସିଦ୍ଧା (ଶୁଭ)—୭ ବର୍ଷ,
ସଙ୍କଟା—(ଅଶୁଭ)—୮ ବର୍ଷ ।]

୬ । ରଣ ପିଶାଚିନୀ (ହି.ଶ); ରଣଚଣ୍ଡୀ—6. A Goddess said to preside over battles and battlefields. ୭ । ଅଷାଢ଼ କୃଷ୍ଣା ଏକାଦଶୀ (ହିଂ.ଶ.) 7. The 11th day of the dark lunar fortnight of Āshārdha. ୮ । ଡାକିନୀ; ଡାହାଣୀ—8. Witch (Apte). ୯ । ଗୁଣି ବିଦ୍ୟାରେ ପାରଙ୍ଗମା ନାରୀ—9. Sorceress; a female magician (Apte). ୧୦ । ଦୁର୍ଗା—10. Durgā (Apte). ଦେ. ବି.—

କଳେବା **ଯୋଗୀନୀ** ୧ । ହଇଜା; ବାଡ଼ୁ; ଓଲାଉଠା—1. Cholera (personified). ୨ । (ଗାଳି)—ଯୋଗିନୀ ପରି ବିକଟରୂପଧାରିଣୀ, ଅସ୍ଥିକଙ୍କାଳବିଶିଷ୍ଟା ଓ ରୁକ୍ଷରୂପା ସ୍ତ୍ରୀ—2. A woman with a fierce and haggard face or deportment.

**ଯୋଗିଣିଆ** (ଆଁ)—ଦେ.ବିଣ.ପୁଂ—୧ । ଯୋଗିନୀ ପରି କ୍ରୂର ରୂପବିଶିଷ୍ଟ; oginiā(āṅ) ଅସ୍ଥି କଙ୍କାଳମୟ—1. Haggard; looking [ଯୋଗିନୀ—ସ୍ତ୍ରୀ] like a 'Jogini'. ୨ । ଯୋଗିଣିଖିଆ (ଦେଖ)—Joginikhiā (See)

**ଯୋଗିନୀ ଖାଇବା**—ଦେ. କ୍ରି (ଗାଳିରେ ବ୍ୟବହୃତ) ମୁଁ ଓଲାଉଠାଦ୍ୱାରା Jogini khāibā ଅକାଳରେ ହୋଇ ମରିବା—Succombing (ଯୋଗିନୀରେ ଯିବା—କ୍ରିୟାରୂପ) to cholera; falling a

କଲେରାୟ ମରା **योगिनी खाना** victim to cholera.
(ବ୍ୟବହାର—ତତେ ଯୋଗିନୀ ଖାଉ କମ୍ବା ତୁ ଯୋଗିନୀରେ ଯା ।)

**ଯୋଗିନୀଖିଆ**—ଦେ. ବିଣ. ପୁଂ (ଗାଳି) ଓଲଉଠା ଦେବୀଙ୍କର ଆସନ୍ନବଳ
Jogini̇khiā (a curse) (a person) Who will fall-
( ଯୋଗିନୀଖାଇ—ସ୍ତ୍ରୀ ) a victim to cholera.
ଯେକଲେବାୟ ମରବେ **जिसको योगिनी खाजाय** [ ଦ୍ର—ଏହି ପୁଂଲିଙ୍ଗ ରୂପ ସ୍ତ୍ରୀମାନଙ୍କ ଦ୍ୱାରା ପୁରୁଷମାନଙ୍କପ୍ରତି ସାଧାରଣତଃ ପ୍ରଯୁକ୍ତ ହୁଏ । ]

**ଯୋଗିନୀ ଚକ୍ର**—ସ. ବି—୧ । ତାନ୍ତ୍ରିକମାନଙ୍କ ଯୋଗିନୀସାଧନ କରିବା
Jogini chakra ଚକ୍ରବିଶେଷ (ହି.ଶ)—1. A figure drawn by worshippers of the Jogini.
୨ । ଫଳଜ୍ୟୋତିଷର ଚକ୍ରବିଶେଷ, ଯହିଁରୁ ଯୋଗିନୀଙ୍କ ବିଭିନ୍ନ ଦିଗରେ ଅବସ୍ଥିତି ବିଷୟ ଜଣାପଡ଼େ (ହି. ଶ.)—
2. An astrological figure indicating the points of the compass occupied by the Jogini.

**ଯୋଗିନୀ ପଶିବା**—ଦେ. ବି—କୌଣସି ସ୍ଥାନର ବ୍ୟକ୍ତିଙ୍କୁ ଓଲଉଠା
Jogini pasibā ରୋଗ ଆକ୍ରମଣ କରିବା—(a place)
କଲେରା ହଓୟା **योगिनीका प्रवेश** Being visited by
(ବ୍ୟବହାର—ତୋ ଘରେ ଯୋଗିନୀ ପଶୁ) cholera.

**ଯୋଗିବେଶ**—ସ. ବି (୬ଷ୍ଠୀ ତତ୍) ସନ୍ନ୍ୟାସୀର ପରିଚ୍ଛଦ—
Jogibesa The dress of an ascetic.

**ଯୋଗୀ**—ସ. ବି. ପୁଂ (ଯୋଗ+ଅସ୍ତି ଅର୍ଥରେ ବା ଯୁଜ୍ ଧାତୁ=ଯୋଗ
Jogi କରିବା+କର୍ତ୍ତୃ. ଇନ୍; ଯୋଗିନ୍, ୧ମା ୧ବ)—୧ ଯୋଗ
( ଯୋଗିନୀ—ସ୍ତ୍ରୀ ) ସାଧକ ବ୍ୟକ୍ତି—1. A person who practices abstract meditation. ୨ । ସନ୍ନ୍ୟାସୀ—2. Ascetic. ୩ । ବୁଦ୍ଧବତ୍; ଯେ ଫଳପ୍ରାପ୍ତିର ଆଶା ନ ରଖି ଧର୍ମ କରେ—3. One who practices righteousness for its own sake without expecting any benefit or result. [ ଦ୍ର—ସର୍ବତ୍ର ସମଦର୍ଶନ ଓ ସୁଖ ଦୁଃଖ, ସ୍ତୁତିନିନ୍ଦା, ଶତ୍ରୁ ମିତ୍ର, ଗୃହାରଣ୍ୟ, ଶୀତୋଷ୍ଣ, ମାନାପମାନ ଇତ୍ୟାଦିରେ ସମଜ୍ଞାନବିଶିଷ୍ଟ ବ୍ୟକ୍ତି ଯୋଗିପଦବାଚ୍ୟ—ଭଗବଦ୍ଗୀତା । ] ୪ । ଐନ୍ଦ୍ରଜାଲିକ—4. Magician; sorcerer. ୫ । ଅଲୌକିକ କ୍ଷମତାଶାଳୀ ବ୍ୟକ୍ତି—5. A person having supernatural powers. ୬ । ଯୋଗଦର୍ଶନର ଅନୁଗାମୀ ବ୍ୟକ୍ତି—6. A follower of the Joga system of philosophy. ୭ । ଯାଜ୍ଞବଲ୍କ୍ୟ—7. A name of Jājnabalkya (Apte). ୮ । ବିଷ୍ଣୁ—8. Bishnu (Apte). ୯ । ଶିବ—9. Siba ( Apte ). ୧୦ । ଅର୍ଜୁନ—10. Arjuna (Apte). ୧୧ । ମିଶ୍ରଜାତିବିଶେଷ—11. Name of a mixed caste (Apte).
ସ. ବିଣ—୧ । ଯୋଗସାଧନକାରୀ—1. Practising Joga (Apte). ୨ । ସମ୍ପୃକ୍ତ; ଯୁକ୍ତ; ଯୁକ୍ତ—2. Connected with; endowed with (Apte). ୩ । ଐନ୍ଦ୍ରଜାଲିକ ଶକ୍ତିବିଶିଷ୍ଟ—3 Possessing magical powers. ଦେ. ବି. ପୁଂ—୧ । ଓଡ଼ିଶାରେ
ଯୁଗୀ **जोगी, गुजरीया बाबाजी** ଭିକ୍ଷାବ୍ୟବସାୟୀ ଜାତିବିଶେଷ—
(ଯୋଗୀଥିଣୀ—ସ୍ତ୍ରୀ) 1. A beggar caste of Orissa.
[ ଦ୍ର—ଏମାନଙ୍କ ବଂଶୋପାଧି 'ନାଥ' । ଏମାନେ ପୂର୍ବେ ତାନ୍ତ୍ରିକ ବୌଦ୍ଧ ଥିଲେ । ଏମାନେ ପିତଳ ଥାଳ धର ଦ୍ୱାରେ ଦ୍ୱାରେ ଭିକ୍ଷା କରନ୍ତି । ଏମାନେ ଗୋପୀଚନ୍ଦ୍ର, ଭର୍ତ୍ତୃହରି, ଦାତାକର୍ଣ୍ଣ ଆଦି ସମ୍ବନ୍ଧୀୟ ଗୀତ ବୋଲି କେନ୍ଦରା ବଜାଇ ଭିକ୍ଷା କରନ୍ତି । ] ୨ । ଲୋକଙ୍କୁ ଦିଆଯିବା ନାମ—
2. A name given to males.

**ଯୋଗୀ ଘରେ ଢିଙ୍କି**—ଦେ. ବାକ୍ୟ (ନ୍ୟାୟ)—କୌଣସି ବ୍ୟକ୍ତିର
Jogi ghare dhinki ଅନାବଶ୍ୟକ ବସ୍ତୁକୁ ତା ଘରେ ପାଇବାପାଇଁ ଦୁରାଶା—A saying applied to a case where one expects to find a thing in a person's house which the latter doet not require and consequently has nos got. [ଦ୍ର—ଯୋଗୀମାନେ ଭିକ୍ଷାଲବ୍ଧ ତଣ୍ଡୁଳ ଖାଆନ୍ତି । ସେମାନଙ୍କର ଧାନ କୁଟିବାପାଇଁ ଢିଙ୍କି ଦରକାର ହୁଏ ନାହିଁ । ]

**ଯୋଗୀ ଥାଳ**—ଦେ. ବି. —୧ । ଯୋଗୀମାନଙ୍କର ଭିକ୍ଷାପାତ୍ର—
Jogi thāla ଭିକ୍ଷାବ ଥାଳ 1. Beggar's bowl.
**जोगीका पात्र, करवा** [ଦ୍ର—ଏହା ପିତଳର ଖୋଳପାରେ ପାତ୍ରାକୃତିରେ ତିଆରି ହୁଏ ।] ୨ । (ଲକ୍ଷଣାର୍ଥ) ଆଶ୍ରୟ ସ୍ଥଳ (ପୁତ୍ର ଓ ପୋଷକ ଆଦିଙ୍କ ପ୍ରତି ସ୍ନେହ ସମ୍ବୋଧନ)—(An affectionate term of address to sons and supporters) One's support.

**ଯୋଗୀ(ଗେ)ନ୍ଦ୍ର**—ସ.ବି.—(୭ମୀ ତତ୍; ଯୋଗୀ+ଇନ୍ଦ୍ର;ଯୋଗ+ଇନ୍ଦ୍ର)
Jogi(ge)ndra ୧ । ପ୍ରଧାନ ଯୋଗୀ ବା ମୁନି—1.An eminent sage. ୨ ।ଯାଜ୍ଞବଲ୍କ୍ୟ—2 Sage Jājnabalkya (Apte). ୩ । ଶିବ—3 God Siba. ଦେ.ବି.ପୁଂ—ଲୋକଙ୍କର ନାମ—A name given to males. [ଦ୍ର—ଯୋଗୀ(ଗେ)ନ୍ଦ୍ର ଚନ୍ଦ୍ର, ଯୋଗୀ(ଗେ)ନ୍ଦ୍ର ନାଥ, ଯୋଗି(ଗେ)ନ୍ଦ୍ର ନାରାୟଣ, ଯୋଗୀ(ଗେ)ନ୍ଦ୍ରକୁମାର 'ଆଦି ନାମ ପୁରୁଷଙ୍କୁ ଦିଆ ଯାଏ ।]

**ଯୋଗୀନ୍ଦ୍ର ଦାଣ୍ଡଧୁଆ**—ଦେ. ବି.—ସ୍ୱରଭେଦ ଓ ତାନ୍ତ୍ରିକ ଯୋଗ-
Jogindra dānda dhuā ସାଧନ ବିଷୟକ ଲୋକପ୍ରିୟ ଗୀତର ନାମ—Name of a popular esoteric song.
[ଦ୍ର—ଓଡ଼ିଶାରେ କୃଷକ ଶ୍ରେଣୀର ଲୋକଙ୍କ ମୁଖରୁ ଏ ଗୀତ ଶୁଣା ଯାଏ । ଏଥିରେ ସ୍ୱରଭେଦ ସମ୍ବନ୍ଧୀୟ ଅନେକ ରହସ୍ୟ ସାଧାରଣଙ୍କ ଅବୋଧ୍ୟ ଭାଷାରେ ବର୍ଣ୍ଣିତ ଅଛି ।]

**ଯୋଗୀ ଭିଖା(କା)ରି**—ଦେ. ବି.—(ସହଚର ଶବ୍ଦ)-ସାଧାରଣ ଭିକ୍ଷୁକ—
Jogi bhikhā kā)ri An ordinary beggar.

**ଯୋଗୀଶ**—ସ. ବି.—( ଯୋଗୀ + ଈଶ, ୬ଷ୍ଠୀ ତତ୍ )—
Jogisa ଯୋଗୀଶ୍ୱର—(ଅନ୍ୟରୂପ) ଯୋଗେଶ (ଦେଖ)—Jogesa (See)

**ଯୋଗୁ(ଗୁଁ)**—ଦେ. ଅ.—(ଅମୁକ) ହେତୁରୁ; କାରଣରୁ—
Jogu(guñ) ଜନ୍ୟେ Because of; owing to. वास्ते, लिये (ଯୋଗୁରୁ—ଗ୍ରାମ୍ୟରୂପ)

**ଯୋଗେ**—ଦେ. ଅ.—୧ । କାରଣରୁ—1. Owing to. ୨ ।
Joge ଜନ୍ୟେ ପାଇଁ; ନିମିତ୍ତ—2. For. ୩ । ଦୈବାତ୍—3. By chance. ୪ । ସୁବିଧା ପାଇବାରୁ—4. Under cover of. [ଯଥା—ମୁଁ ରାତ୍ରି ଯୋଗେ ପଳାଇ ଆସିଲି ।] ୫ । ଅବଲମ୍ବନପୂର୍ବକ—5. With the help of.

**ଯୋଗେଶ**—ସ. ବି.—(୬ଷ୍ଠୀ ତତ୍, ଯୋଗ + ଈଶ)—୧ । ପ୍ରଧାନ
Jogesa ଯୋଗୀ—1. An eminent sage. ୨ । ଶିବ, ମହାଦେବ—2. God Siba. ୩ । ଯାଜ୍ଞବଲ୍କ୍ୟ ଋଷି—3. Sage Jajñyabalkya. ୪ । ବ୍ରହ୍ମାଙ୍କ ରାଜଧାନୀ-4. The city of Brahmā. ୫ । ଶ୍ରୀକୃଷ୍ଣ—5. Srikrushna. ୬ । ଐନ୍ଦ୍ରଜାଲିକ—6. Magician.
[ଯୋଗେନ୍ଦ୍ର, ଯୋଗେଶ୍ୱର—ଅନ୍ୟରୂପ]
ଦେ. ବି. ପୁଂ.—ଲୋକଙ୍କ ନାମ—A name given to males.

**ଯୋଗେଶ୍ୱରୀ**—ସ. ବି. ସ୍ତ୍ରୀ—୧ । ଦୁର୍ଗା—1. Durgā. ୨ ।
Jogeswari ବନ୍ଧ୍ୟା କର୍କୋଟକୀ ଗୁଳ୍ମ—2. A sort of plant.

**ଯୋଗେଷ୍ଟ**—ସ. ବି.—୧ । ସୀସକ; ସୀସା—1. Lead (Apte.)
Jegeshta ୨ । ଟିଣ; ରଙ୍ଗା—2. Tin (Apte)

**ଯୋଗ୍ନୀ (ଇତ୍ୟାଦି)**—ଗ୍ରା. ବି.—ଯୋଗିନୀ ଇତ୍ୟାଦି (ଦେଖ)
Jogni (etc) Jogini etc (See)

**ଯୋଗ୍ୟ**—ସ. ବିଣ. ପୁଂ.—(ଯୁଜ୍ ଧାତୁ+କର୍ମ. ଯ)—୧ । ଉପଯୁକ୍ତ;
Jogya ଉଚିତ—1. Fit; proper; suitable; qualified.
[ଯୋଗ୍ୟା—ସ୍ତ୍ରୀ] ୨ । ସମର୍ଥ—2. Able; worthy; competent. ୩ । ନିପୁଣ—3. Expert; skilful. ୪ । ପ୍ରବୀଣ; ଦକ୍ଷ—4. Proficient; clever. ୫ । ଗୁଣୀ; ଗୁଣବାନ୍—5. Possessing good qualities. ୬ । ଯୋଗାର୍ହ—6. Fit for religious contemplation. ୭ । ପବିତ୍ର—7. Pure. ୮ । ପ୍ରତ୍ୟକ୍ଷ—8. Preceptible; cognisable. ୯ । ଯୋଚ୍ଚ୍ ଯିବା ପାଇଁ ଉପଯୁକ୍ତ—9. Fit to be yoked. ୧୦ । ଦର୍ଶନୀୟ; ସୁନ୍ଦର (ହି. ଶ.)—10. Graceful. ୧୧ । ମାନନୀୟ (ହି. ଶ.)—11. Respectable. ୧୨ । ଯୋଡ଼ା ହେବାର ଉପଯୁକ୍ତ (ହି. ଶ)—12. Fit to be joined. ୧୩ । (ନ୍ୟାୟଦର୍ଶନ) ଇନ୍ଦ୍ରିୟଦ୍ୱାରା ଉପଭୋଗ୍ୟ—13. (Nyāya philosophy) Amenable to the senses; capable of being directly cognised (Apte). ବି.—୧ । ପୁଷ୍ୟା ନକ୍ଷତ୍ର—1. The 8th lunar mansion. ୨ । (+କର୍ମ. ଯ)—ଶକଟାଦିରେ ଲାଗିବା ପଶୁ—2. Beasts yoked to carts. ୩ । ଚନ୍ଦନ—3. Sandal. ୪ । ପିଷ୍ଟକ ବିଶେଷ—4. A kind of cake. ୫ । ଋଦ୍ଧି ନାମକ ମହୌଷଧ—5. Name of a rare herb. ୬ । [+ଅଧିକରଣ ଯ]—ରଥ; ଶକଟ; ଗାଡ଼ି [ହି. ଶ.]—6 Car; carriage; vehicle. ୭ । ଦୁଗ୍ଧ—7. Milk (Apte).

**ଯୋଗ୍ୟତା[ତ୍ୱ]**—ସ. ବି.—[ ଯୋଗ୍ୟ+ଭାବ. ତା , ତ୍ୱ ]—୧ ।
Jogyatā(twa) ଉପଯୁକ୍ତତା—1 Fitness; appropriateness. ୨ । ଦକ୍ଷତା—2. Competence; proficiency. ୩ । କୌଣସି କାର୍ଯ୍ୟ ପାଇବା ପାଇଁ ଉପଯୋଗିତା—3. Eligibility. ୪ । ସୁଗୁଣ—4. Merit. ୫ । ପଦାର୍ଥ ସମୂହର ପରସ୍ପରସମ୍ବନ୍ଧରେ ବାଧାର ଅଭାବ—5, Want of incongruity between more than one thing. ୬ । (ନ୍ୟାୟ ଦର୍ଶନ) ବାକ୍ୟରେ ବ୍ୟବହୃତ ହୋଇଥିବା ପଦମାନଙ୍କର ଅର୍ଥର ଅନ୍ୱୟରେ ପରସ୍ପର ବାଧାର ଅଭାବ; ପଦାର୍ଥମାନଙ୍କର ପରସ୍ପର ସମ୍ବନ୍ଧରେ ବାଧାର ଅଭାବ (ଆପ୍ଟେ) (ନ୍ୟାୟ-ବାକ୍ୟାନ୍ତର୍ଗତ ପଦମାନଙ୍କର ଅର୍ଥରେ ପରସ୍ପର ଅସାମଞ୍ଜସ୍ୟ ଲକ୍ଷିତ ନ ହେଲେ ବାକ୍ୟଟି ଯୋଗ୍ୟତାଯୁକ୍ତ ହେବାର ବୁଝାଯାଏ )—6. ( Nyāya philosophy) Want of inconsistency in the senses conveyed by the words of a sentence; fitness or compatibility of sense; the absence of absurdity in the mutual connection of the things signified by the words (Apte ). [ ଯଥା—ସେ ଜଳ ଛିଞ୍ଚି ଅଗ୍ନି ଲିଭାଉଛି—ଏଠାରେ ବାକ୍ୟର ପଦମାନଙ୍କ ମଧ୍ୟରେ ପରସ୍ପରସହିତ ଅର୍ଥରେ ଅସାମଞ୍ଜସ୍ୟ ନ ଥିବାରୁ ଏହା ଯୋଗ୍ୟତାର ଉଦାହରଣ । କିନ୍ତୁ ଯଦି କୁହାଯାଏ ଯେ 'ସେ ଅଗ୍ନି ପ୍ରୟୋଗ କରି ଦେହକୁ ଶୀତଳ କରୁଛି'—ଏଠାରେ ଯୋଗ୍ୟତାର ଅଭାବ ହେଲା । ] ୭ । ଔଚିତ୍ୟ—7. Propriety. ୮ । ଆବଶ୍ୟକତା—8. Usefulness; necessity.

**ଯୋଗ୍ୟତାନୁସାରେ**—ଦେ. କ୍ରି. ବିଣ—ଦକ୍ଷତାକ୍ରମରେ—
Jogyatānusāre In order of merit
[ଯୋଗ୍ୟତାକ୍ରମେ (ପ୍ରମାଣେ)—ଅନ୍ୟରୂପ]
যোগ্যতানুসারে योग्यता माफिक

**ଯୋଗ୍ୟ ପାତ୍ର**—ସ. ବିଣ (କର୍ମଧା)—୧ । ଉପଯୁକ୍ତ ଆଧାର—
Jogya pātra 1. A fit receptacle. ୨ । ଉପଯୁକ୍ତ ବ୍ୟକ୍ତି; କୌଣସି ବିଷୟ ବା ବସ୍ତୁ ବା କନ୍ୟା ପାଇବାପାଇଁ ଉପଯୁକ୍ତ ବ୍ୟକ୍ତି—2. A worthy person; a deserving person.

**ଯୋଗ୍ୟପୁତ୍ର**—ସ. ବି (କର୍ମଧା)—ପରିବାରର ବା ପିତାଙ୍କର ଗୁଣବାନ୍
Jogya putra ବା ଉପଯୁକ୍ତ ପୁତ୍ର—A worthy son.

**ଯୋଗ୍ୟ ବ୍ୟକ୍ତି**—ସ. ବି (କର୍ମଧା)—୧ । ଗୁଣବାନ୍ ବ୍ୟକ୍ତି—1. A
Jogya byakti worthy person. ୨ । ଉପଯୁକ୍ତ ବ୍ୟକ୍ତି—2. A fit or competent person.

**ଯୋଗ୍ୟା**—ସଂ. ବିଣ. ସ୍ତ୍ରୀ— ଉପଯୁକ୍ତା—Fit ( female ). ବି—
Jogyā ୧ । ଅନୁଶୀଳନ—1. Exercise. ୨ । ଅଭ୍ୟାସ —2. Practice ( Apte ). [ଯଥା—ଧନୁର୍ଯୋଗ୍ୟା, ଅସ୍ତ୍ରଯୋଗ୍ୟା । ] ୩ । ସୂର୍ଯ୍ୟଦେବଙ୍କ ପତ୍ନୀ—3. The wife of the Sun-god. ୪ । ଯୁଦ୍ଧ ବିଦ୍ୟାଭ୍ୟାସ; ଡ୍ରିଲ୍—4. Martial exercise; drill (Apte).

**ଯୋଚା**—ଦେ. ବି ( ସଂ. ଯୁଜ୍ ଧାତୁ )—ରଥଆଦିରେ ପଶୁଙ୍କୁ ଯୋଚିବା
Jochā କ୍ରିୟା—Yoking. [ ଉ—ପବନ ସମ ହୋଇ
যোতা, যুতা ଡହିଁ ବାଜି ଯୋଚା । କୃଷ୍ଣସିଂହ. ମହାଭାରତ.
जोतना ସଭା । ] ବିଣ ( ରଥାଦିରେ ) ସଂଯୋଜିତ ( ପଶୁ )—Yoked. [ ଉ—ଏହା ବାହାରେ ଦେବ ସୁଜାରଥଷ୍ଟଏ, ଥିବେଷ୍ଟ ଯୋଚା ସୁଜାଘୋଟକ ଯୋଡ଼ିଏ । କୃଷ୍ଣସିଂହ. ମହାଭାରତ. ବନ । ]

**ଯୋଚା(ଚେ)ଇବା**—ଦେ. କ୍ରି ( ସଂ. ଯୁଜଧାତୁ ଣିଚ )—( ଯୋଚିବା
Jochā(che)ibā କ୍ରିୟାର ଣିଜନ୍ତରୂପ—The causative
যোতান form of Jochibā). ଅନ୍ୟଦ୍ୱାରା ଯୋଚିବା
जोतवाना କ୍ରିୟା କରାଇବା—To cause to be yoked.

**ଯୋଚାଯୋଚି**—ଦେ. କ୍ରି ( ସହଚର ଶବ୍ଦ )—ଯୋଚିବା ଆଦି କାର୍ଯ୍ୟ—
Jochājochi Acts of yoking etc.
যোতাযোতি जोताजोती

**ଯୋଚିବା**—ଦେ. କ୍ରି ( ସଂ. ଯୁଜ୍ ଧାତୁ )—୧ । ପଶୁଆଦିଙ୍କୁ ଯୁଆଳରେ
Jochibā ବା ଯାନରେ ସଂଯୋଜିତ କରିବା—1 To yoke
(ଯୁଚିବା—ଗ୍ରାମ୍ୟରୂପ) beasts to a cart etc. [ଉ—
যুতা ବାହୁକ ସେହିକ୍ଷଣି ଯୋଚି ସେ ଘୋଡ଼ାଙ୍କୁ । କୃଷ୍ଣସିଂହ
जोतना ମହାଭାରତ. ବନ । ] ୨ । କୌଣସି ପଦାର୍ଥକୁ ଅନ୍ୟ ପଦାର୍ଥ ସଙ୍ଗେ ସଂଯୋଜିତ କରିବା; ଯୋଜନା କରିବା; ଯୋଡ଼ିବା—2. To join or unite a thing to another. [ ଉ—ମାରଗଣଗଣଙ୍କୁ ବନ୍ଧେ ଗୁଣେ ଯୋଚି । କୃଷ୍ଣସିଂହ. ମହାଭାରତ. ବନ । ]

**ଯୋଜକ**—ସଂ. ବିଣ ( ଯୁଜ୍ ଧାତୁ+କର୍ତ୍ତୃ. ଅକ )—୧ । ଯେ ବା
Jojaka ଯାହା ଯୋଗ କରେ—1. Joining; uniting
(ଯୋଜିକା—ସ୍ତ୍ରୀ) ୨ । ସଂଯୋଗକାରକ—2. Causing union.
[ଯୋଜକତା(ତ୍ୱ)—ବି] ୩ । ଦୁଇ ପଦାର୍ଥକୁ ଏକତ୍ର ଆଣିବା—3. Bringing together. ୪ । ରଥାଦିରେ ପଶୁଆଦିଙ୍କୁ ଯୋଚୁଥିବା—4. Yoking. ୫ । ଯୋଜନାକାରୀ; ବ୍ୟବସ୍ଥାକାରୀ—5. Arranging. ବି—୧ । ବିବାଦଆଦିରେ ମଧ୍ୟସ୍ଥ; ଯେ ବିବାଦୀ ପକ୍ଷମାନଙ୍କୁ ମିଳାଇ ଦିଏ—1. Peace-maker; arbitrator. ୨ । ( ଭୂଗୋଳ ) ଯେଉଁ ସଂକୀର୍ଣ୍ଣ ଭୂଭାଗ ଦୁଇ ବୃହତ୍ତର ଭୂଭାଗକୁ ସଂଯୁକ୍ତ କରେ—2. ( Geography ) Isthmus. ୩ । ଯୋଜନକାରୀ ବ୍ୟକ୍ତି—3. A joiner; an arranger; a contriver ( Apte ).

**ଯୋଜନ**—ସଂ. ବି. ( ଯୁଜ୍ ଧାତୁ+ଭାବ. ଅନ )—୧ । ମିଳାଇବା;
Jojana ଯୋଗ କରାଇବା—1. Act of mixing up. ୨। (+କର୍ତ୍ତୃ. ଅକ) ପରମାତ୍ମା—2 The Divine Essence or Soul pervading the universe ୩ । (+କର୍ମ. ଅକ) ଚାରି କୋଶ ପରିମିତ ଦୂରତ୍ୱ—3. A standard of distance of about 8 miles [ଦ୍ର—ଏହାର ଅପଭ୍ରଂଶ ଶବ୍ଦ ଜୁଣ, ଯୁଣ ।] ୪ । (+ଭାବ. ଅନ) ଯୋଚିବା କର୍ମ—4. Yoking. ୫। ଯୋଡ଼ିବା କର୍ମ—5 Act of joining, linking. ୬। ବ୍ୟବସ୍ଥା କରିବା; ଯୋଗାଡ଼—6. Arrangement, ୭ । ମତାଇବା—7. Exciting; instigating (Apte). ୮ । ବାକ୍ୟର ଅନ୍ୱୟ—8. Grammatical construction; constructing the sense of a passage (Apte). ୯। ଯୋଗ—9. Concentra. tion of the mind; abstraction (Apte). ୧୦ । ଗୃହାଦିର ରଚନ—10. Constructing; erecting (a house) (Apte). ୧୧।( +କର୍ମ.ଅନ) ପଥ; ମାର୍ଗ—11. Road; way (Apte). ୧୨ । (ବୈଦିକ) ( +ଭାବ. ଅନ ) ଚେଷ୍ଟା; ପ୍ରଯତ୍ନ—12. Exertion; effort (Apte).

**ଯୋଜନ ଗନ୍ଧା**—ସଂ. ବି ସ୍ତ୍ରୀ. (ବହୁବ୍ରୀହି; ଯୋଜନ ପର୍ଯ୍ୟନ୍ତ ଗନ୍ଧ
Jojana gandhā ପ୍ରସାରିତ ହୁଏ ଯାହାଠାରୁ)—୧। କସ୍ତୁରୀ—
(ଯୋଜନ ଗନ୍ଧିକା—ଅନ୍ୟରୂପ) 1. Musk. ୨ । ସୀତା—2. Sitā. ୩ । ବ୍ୟାସ ଦେବଙ୍କ ମାତା; ମତ୍ସ୍ୟଗନ୍ଧା; ଧୀବରକନ୍ୟା ସତ୍ୟବତୀ—3. Name of a fish-girl who was ravished by sage Parāśara and gave birth to sage Byāsa. [ଦ୍ର—ବସୁରାଜଙ୍କ ଔରସରେ ମତ୍ସ୍ୟରୂପା ଅପ୍ସରା ଅଦ୍ରିକା ଗର୍ଭରୁ ଏହାଙ୍କର ଜନ୍ମ । ମତ୍ସ୍ୟର ଉଦରରୁ ଜନ୍ମି ଥିବାରୁ ଏହାଙ୍କ ଦେହରୁ ମତ୍ସ୍ୟଗନ୍ଧ ବାହାରୁଥିଲା । ତେଣୁ ଏହାଙ୍କର ନାମ ମତ୍ସ୍ୟଗନ୍ଧା ହେଲା । ବସୁ ରାଜା ଏହାଙ୍କୁ ଶିଶୁ ଅବସ୍ଥାରେ ଦାସରାଜଙ୍କ ହସ୍ତରେ ପାଳନାର୍ଥ ଅର୍ପଣ କଲେ । ଏ ବୟଃପ୍ରାପ୍ତା ହେବାରୁ ଯମୁନା ନଦୀରେ ଘାଟଡଙ୍ଗା ଚଳାଇବା କର୍ମରେ ଦାସରାଜ ଏହାଙ୍କୁ ନିଯୋଜିତ କରିଥିଲେ । ଏକଦା ପରାଶର ମୁନି ଯମୁନା ନଦୀକୁ ପାରି ହେଲା ବେଳେ ଏହାଙ୍କ ରୂପରେ ମୁଗ୍ଧ ହୋଇ ଏହାଙ୍କ ସହବାସ କଲେ ଓ ଏହାଙ୍କ ଦେହର ମତ୍ସ୍ୟଗନ୍ଧ ଦୂର କରି ଏହାଙ୍କ ଦେହକୁ ପଦ୍ମଗନ୍ଧମୟ କଲେ ଓ ଏହାଙ୍କୁ ସତ୍ୟବତୀ ନାମ ଦେଲେ । ପରାଶରଙ୍କ ଔରସରୁ ଏହାଙ୍କଠାରୁ କାନୀନ ପୁତ୍ର ବ୍ୟାସଦେବ ଜନ୍ମିଲେ । ପରେ ଶାନ୍ତନୁ ରାଜା ଏହାଙ୍କ ଶରୀରର ପଦ୍ମଗନ୍ଧରେ ଆକୃଷ୍ଟ ହୋଇ ଏହାଙ୍କୁ ବିବାହ କରିବାକୁ ପ୍ରସ୍ତାବ କଲେ । ଶାନ୍ତନୁଙ୍କ ଧର୍ମପତ୍ନୀ ଗଙ୍ଗାଙ୍କ ଗର୍ଭରୁ ଜାତ ଦେବବ୍ରତ (ଭୀଷ୍ମ) ଶାନ୍ତନୁଙ୍କ ଉତ୍ତରାଧିକାରୀରୂପେ ବିଦ୍ୟମାନ ଥିବାରୁ ସତ୍ୟବତୀଙ୍କ

ଗର୍ଭଜାତ ସନ୍ତାନ ଶାନ୍ତନୁଙ୍କ ରାଜ୍ୟର ଉତ୍ତରାଧିକାରୀ ହୋଇ ପାରିବେ ନାହିଁ, ଏହି ଆଶଙ୍କାରେ ଦାସରାଜ ଶାନ୍ତନୁଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲେ । ପିତୃଭକ୍ତ ଦେବବ୍ରତ ପିତାଙ୍କର ସତ୍ୟବତୀଙ୍କର ଲାଳସା ଅବଗତ ହୋଇ ଦାସରାଜଙ୍କ ନିକଟରେ ଉପସ୍ଥିତ ହେଲେ। ପିତାଙ୍କ ଅନ୍ତେ ସେ ସ୍ୱୟଂ ପିତୃସିଂହାସନରେ ବସିବେ ନାହିଁ ଓ ବିବାହ କରିବେ ନାହିଁ, ଏପରି ପ୍ରତିଜ୍ଞା କରି ଦାସରାଜଙ୍କ ନିକଟରୁ ସତ୍ୟବତୀଙ୍କୁ ଆଣି ପିତାଙ୍କ ହସ୍ତରେ ଅର୍ପଣ କଲେ । ଶାନ୍ତନୁଙ୍କ ଔରସରେ ସତ୍ୟବତୀଙ୍କ ଗର୍ଭରୁ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ନାମକ ଦୁଇ କୁମାର ଜାତ ହେଲେ । ଶାନ୍ତନୁଙ୍କ ମୃତ୍ୟୁ ପରେ ଚିତ୍ରାଙ୍ଗଦ ଅଳ୍ପାୟୁଃ ହୋଇ ମଲେ ଓ ଭୀଷ୍ମ ବିଚିତ୍ରବୀର୍ଯ୍ୟଙ୍କୁ ରାଜସିଂହାସନରେ ବସାଇଲେ ଏବଂ କାଶୀରାଜକନ୍ୟା ଅମ୍ବିକା ଓ ଅମ୍ବାଳିକାଙ୍କ ସଙ୍ଗେ ବିଚିତ୍ରବୀର୍ଯ୍ୟଙ୍କୁ ବିବାହିତ କରାଇଲେ; ବିଚିତ୍ରବୀର୍ଯ୍ୟ ନିଃସନ୍ତାନ ହୋଇ ମରିବାରୁ ସତ୍ୟବତୀ ସ୍ୱାମୀଙ୍କ ବଂଶରକ୍ଷାର୍ଥ ଦେବବ୍ରତଙ୍କ ପରାମର୍ଶରେ ସ୍ୱୀୟ କାନୀନ ପୁତ୍ର ବ୍ୟାସଦେବଙ୍କ ଦ୍ୱାରା ନିୟୋଗ ବିଧିରେ ଦୁଇ ପୁତ୍ରବଧୂଙ୍କ କ୍ଷେତ୍ରରେ ଧୃତରାଷ୍ଟ୍ର ଓ ପାଣ୍ଡୁ ନାମକ ଦୁଇ ପୁତ୍ର ଉତ୍ପାଦନ କରାଇଲେ । ଜ୍ୟେଷ୍ଠ ଧୃତରାଷ୍ଟ୍ର ଜନ୍ମାନ୍ଧ ଥିବାରୁ କନିଷ୍ଠ ପାଣ୍ଡୁ ରାଜସିଂହାସନରେ ବସିଲେ । ପୌତ୍ରମାନେ ବୟଃପ୍ରାପ୍ତ ହେବା ପୂର୍ବରୁ ସତ୍ୟବତୀ ଭୀଷ୍ମଙ୍କ ଆଶ୍ରୟରେ ପରମ ସୁଖରେ ରହିଲେ । ପାଣ୍ଡୁ ବୟଃପ୍ରାପ୍ତ ହେବାରୁ ଓ ଅକାଳରେ ମୃତ ହେବାରୁ ସତ୍ୟବତୀ ପୁତ୍ରବଧୂଦ୍ୱୟଙ୍କ ସହ ବନବାସ କଲେ ଓ ତପସ୍ୟା କରୁ କରୁ ପ୍ରାଣତ୍ୟାଗ କଲେ—ସୁବଳଚନ୍ଦ୍ର ।] ୪ । ରୁଚୀକ ଋଷିଙ୍କ ପତ୍ନୀ, ବିଶ୍ୱାମିତ୍ରଙ୍କ ଭଉଣୀ ଓ ଶୁନଃଶେଫଙ୍କ ଜନନୀ ( ସୁବଳଚନ୍ଦ୍ର )—4. Name of the wife of sage Ruchika. [ଦ୍ର—ଏ ସଶରୀର ସ୍ୱର୍ଗାରୋହଣ କରିବା ପରେ ପୃଥିବୀର ହିତକାମନାରେ ସ୍ରୋତସ୍ୱତୀ ରୂପେ ହିମାଳୟରୁ ବାହାରିଲେ ଏହି ସ୍ରୋତସ୍ୱତୀର ନାମ କୌଶିକୀ—(ସୁବଳଚନ୍ଦ୍ର) । ]

**ଯୋଜନପର୍ଣ୍ଣୀ**—ସଂ. ବି—ମଞ୍ଜିଷ୍ଠା; ମଞ୍ଜୁଆଟି—The Indian
Jojanaparṇṇī madder; Lawsonia Inermis. (ଯୋଜନବଲ୍ଲିକା, ଯୋଜନବଲ୍ଲୀ—ଅନ୍ୟରୂପ) Rubia Cordifolia.

**ଯୋଜନା**—ସଂ. ବି (ଯୁଜ. ଧାତୁ+ ଭାବ. ଅନ+ଆ)—୧ । ଯୋଚିବା—
Jojanā 1. Yoking. ୨ । ଯୋଖିବା—2. Joining. ୩ । ଯୋଗାଇବା—3. Act of supplying articles. ୪ । ଏକାଧିକ ବସ୍ତୁକୁ ଏକତ୍ର କରାଇବା; ଯୋଗ କରାଇବା—4 Act of uniting things. ୫ । ମିଶାଣ—5. Adding up. ୬ । (କୌଣସି ବିଷୟରେ) ସ୍ଥିରୀକୃତ ଉପାୟ—6. Scheme; project. ୭ । ସମ୍ମେଳନ; ଯୋଡ଼—7. Union. ୮ । ସମ୍ପର୍କ—8. Connection. ୯ । ( ବ୍ୟାକରଣ ) ବାକ୍ୟର ଅନ୍ୱୟ—9. Grammatical construction. ୧୦ । ବ୍ୟବସ୍ଥା; ବନ୍ଦୋବସ୍ତ—10. Arrangement; disposition. ଦେ. ବି—ଆଗାମୀ ବ୍ୟବସ୍ଥା—Plan; scheme.

**ଯୋଜନିକ**—ସଂ. ବିଣ (ଯୋଜନ+ଇକ)—(ଅନ୍ୟ ସଂଖ୍ୟାବାଚକ ଶବ୍ଦ
Jojanika ପରେ ଲାଗେ, ଯଥା—ଦ୍ୱିଯୋଜନିକ )—ଏତେ (ଯୋଜନୀୟ—ଅନ୍ୟରୂପ) ଯୋଜନ ଦୂରତା ବିଶିଷ୍ଟ—
Measuring so many Jojanas (Apte).

**ଯୋଜନଫଟା**—ଦେ. ବିଣ (ସଂ. ଯୋଜନ ବ୍ୟାପ୍ତ)—ବହୁଦୂରବ୍ୟାପୀ
Jojanphaṭā (ଦୁର୍ଗନ୍ଧ)—Spreading far and wide **बहुदूरतक फैलीहुई,, नाकफटनेवाली** **नाकफाटा** (bad odour).

**ଯୋଜନି ଫାଟିବା**—ଦେ. କ୍ରି—ବହୁଦୂର ପର୍ଯ୍ୟନ୍ତ ଦୁର୍ଗନ୍ଧ ବିସ୍ତୃତ ହେବା—
Jojani phāṭibā The spread of bad odour to a **नाकफटना** নাক ফেটে যাওয়া great distance.

**ଯୋଜନୀୟ**—ସଂ. ବିଣ—( ଯୁଜ୍ ଧାତୁ. ଣିଚ୍, ଯୋଜ ଧାତୁ+କର୍ମ.
Jojaniya ଅନୀୟ)—୧ । ଯୋଗାଇବାର ଉପଯୋଗୀ—1. Fit to be supplied. ୨ । ଏକତ୍ରୀକରଣୀୟ—2 To be joined or united. ୩ । ଏକତ୍ର ସଂଯୁକ୍ତ ହେବାର ଯୋଗ୍ୟ—3. Fit to be brought together. ୪ । ବ୍ୟବହାର୍ଯ୍ୟ; ପ୍ରୟୋଜନୀୟ; ଯାହାକୁ କାର୍ଯ୍ୟରେ ଲଗା ଯାଇ ପାରେ—4. Necessary; useful; serviceable.

**ଯୋଜୟିତା**—ସଂ. ବିଣ. ପୁଂ (ଯୁଜ୍.ଧାତୁ ଣିଚ୍+କର୍ତ୍ତୃ. ତୃ, ୧ମା.୧ବ)—
Jojayitā ୧ । ସଂଯୋଗକାରକ; ଯେ ଯୋଡ଼େ—1. Combi- (ଯୋଜୟିତ୍ରୀ—ସ୍ତ୍ରୀ) ning; causing union; joining. ୨ । କାର୍ଯ୍ୟରେ ଲଗାଇବା (ବ୍ୟକ୍ତି)—2. Employing. ସଂ. ବି. ପୁଂ—କାର୍ଯ୍ୟରେ ନିଯୁକ୍ତକାରୀ ବ୍ୟକ୍ତି; ମାଲିକ—An employer (Apte).

**ଯୋଜିତ**—ସଂ. ବିଣ (ଯୁଜ୍. ଧାତୁ ଣିଚ୍, ଯୋଜ. ଧାତୁ+କର୍ମ. ତ)—
Jojita ୧ । ଯୁକ୍ତ—1. Joined. ୨ । ଯୋଗ କରାଯାଇଥିବା—2. Caused to be joined. ୩ । ମିଶ୍ରିତ—3. Mixed up. ୪ । ଯୋଚା ହୋଇଥିବା—4. Yoked. ୫ । ମିଳିତ—5. Caused to be united. ୬ । ନିୟମିତ—6. Regulated. ୭ । ରଚିତ—7. Composed: constructed.

**ଯୋଜିବା**—ଦେ. କ୍ରି (ଯୁଜ ଧାତୁ ଣିଚ୍, ଯୋଜ. ଧାତୁ)—୧ । ଯୁକ୍ତ
Jojibā କରିବା—1. To join [ହି—ନିଷ୍ଟେ ସେ କାଞ୍ଚନେ ଯୋତା(ଡ଼ା) ମୁହିଁ ଯୋଜିବି ରତନ । ଚିନ୍ତାମଣି ବିନ୍ଦମାହାତ୍ୟ । ] **जोत(ड ना** ୨ । ଯୋଚିବା—2. To yoke. [ଯୋଜା(ଜେ)ଇବା—ଣିଜନ୍ତରୂପ]

**ଯୋଜ୍ୟ**—ସଂ. ବିଣ. (ଯୁଜ୍. ଧାତୁ+କର୍ମ. ଯ)—ଯୋଜନୀୟ (ଦେଖ)
Jojya Jojaniya (See). ସଂ. ବିଣ (ଗଣିତ)—ମିଶାଇବାର ଯୋଗ୍ୟ (ସଂଖ୍ୟାମାନ)—(arithmetic) (numbers; To be added up.

**ଯୋଟ୍(ଟ) (ଇତ୍ୟାଦି)**—ଜୋଟ୍ (ଟ) (ଇତ୍ୟାଦି) (ଦେଖ)
Jot(ṭa) (etc) Jot (ṭa) (etc) (See),

**ଯୋଟକ**—ସଂ. ବିଣ—(ଯୁଟ୍. ଧାତୁ ଣିଚ୍+କର୍ତ୍ତୃ. ଅକ)—୧ । ଯେ
Joṭaka ଯୁଟାଇ ଦିଏ; ମଧ୍ୟସ୍ଥ—1. Negotiating. ୨ । ଯେ ମିଳାଇ ଦିଏ—2. Bringing about an union. ବି—୧ । (+ଯୁଟ ଧାତୁ+ଭାବ. ଅକ) ମିଳନ—1. An union. ୨ । ବରକନ୍ୟାଙ୍କ ଜାତକରେ ଗ୍ରହନକ୍ଷତ୍ରର ଅବସ୍ଥିତିରେ ଅନୁକୂଳତା—2. The favorable positions of stars and planets in the horoscopes of the bridgroom and the bride ୩ । ଭଡ଼ୁଆ—3 A bawd ୪ । ଘଟକ; ବିବାହପ୍ରସଙ୍ଗରେ ମଧ୍ୟସ୍ଥବ୍ୟକ୍ତି—4. Match maker. ୫ । ଦଲାଲ—4. Commission agent.

**ଯୋଟଣ**—ଦେ. ବି—ଜୋଟଣ (ଦେଖ)
Joṭaṇa Joṭaṇa (See)

**ଯୋଟା (ଇତ୍ୟାଦି)**—ଦେ. ବି ଓ ବିଣ—ଜୋଟା ଇତ୍ୟାଦି (ଦେଖ)
Joṭā (etc) Joṭā etc (See)

**ଯୋଟା(ଟେ)ଇବା**—ଦେ. କ୍ରି—ଜୋଟାଇବା (ଦେଖ)
Joṭā(ṭe)ibā Joṭāibā (See)

**ଯୋଟିବା**—ଦେ.କ୍ରି (ସ. ଯୁଜ୍ ଧାତୁ, ଯୁଟ ଧାତୁ)—୧ । ଜୁଟିବା (ଦେଖ)
Joṭibā 1. Juṭibā (See) ୨ । (ସ. ଯୁଟ ଧାତୁ ଣିଚ୍
जोतना ଯୋଟ ଧାତୁ, ଯୁଜ ଧାତୁ ଣିଚ୍ ଯୋଜ ଧାତୁ) ଯୋଚିବା (ଯୋଟା(ଟେ)ଇବା—ଣିଜନ୍ତ ରୂପ) (ଦେଖ)—Jochibā (See) [ଉ—ଏହା କହି ଗାଣ୍ଡିବ ଶୂପେ ଗୁଣ ଯୋଟି, ବିକ୍ରମେ ଗଳବେ ଦେଖାଇ ବିକଟୁଟି—କୃଷ୍ଣସିଂହ. ମହାଭାରତ. ବନ । ] ୩ । ଉପମାରେ ସମତୁଲ ହେବା; ସମକକ୍ଷ ହେବା—3. To be found equal in comparison; to tally with.

**ଯୋଡ (ଇତ୍ୟାଦି)**—ଦେ. ବି. ଓ ବିଣ.—ଜୋଡ଼ ଇତ୍ୟାଦି (ଦେଖ)
Jorda (etc) Jorda etc (See)

**ଯୋଡ଼ା (ଇତ୍ୟାଦି)**—ଦେ. ବି. ଓ ବିଣ.—ଜୋଡ଼ା ଇତ୍ୟାଦି (ଦେଖ)
Jordā (etc) Jordā etc (See)

**ଯୋଡ଼ା(ଡ଼େ)ଇ**—ଦେ. ବି. ଓ ବିଣ.—ଜୋଡ଼ାଇ (ଦେଖ)
Jordā(rde)i Jordāi (See)

**ଯୋଡ଼ାଇକୁଳି**—ଦେ. ବି—ଦୁରକୁଳି (ଦେଖ)
Jordāikuḷi Durakuḷi (See)

**ଯୋଡାଣ**—ପ୍ରାଦେ (ସମ୍ବଲପୁର) ବି. (ସ. ଯୋଜନ)—୧ । ଇଟାର ବା
Jordāṇa ପଥରର ଗାନ୍ଥନି—1. Stone or brick masonry. ୨ । ଗାନ୍ଥନିରେ ବସାଯାଇଥିବା ଦୁଇଟି ଇଟା ବା
ଜୋଡା ପଥରର ମଝିରେ ଥିବା ଫାଟ—2. The crevice
जोड़ना between two pieces of bricks or stones set in a masonry work. ୩ । ଯୋଜନ; ଯୋଗ କରିବା—3. Act of uniting.

**ଯୋଡ଼ି (ଇତ୍ୟାଦି)**—ଦେ. ବି ଓ ବିଣ—ଜୋଡ଼ି ଇତ୍ୟାଦି (ଦେଖ)—
Jordi (etc) Jordi etc (See)—ପ୍ରାଦେ (ବାଣପୁର) କାଞ୍ଜିହାଉସ—Cattle pound.

**ଯୋଡ଼ିଆ**—ପ୍ରାଦେ (ସିଂହଭୂମ) ବି—ନାଳ; ପାଣିମାହାଳି—
Jordiā Water channel.

**ଯୋଡ଼ିଏ(କ)**—ଦେ. ବିଣ ଓ ବି (ଆଦରାର୍ଥକ)—୧ । ଦୁଇ ଖଣ୍ଡ—
Jordie(ka) 1. Two pieces. [ଉ—ଯୋଡ଼ିଏ ଲୁଗା ଦେଇ
ଏକଜୋଡ଼ା(ଡ଼ି) ଗଲେ ଅନ୍ତର୍ଦ୍ଧାନେ । କୃଷ୍ଣସିଂହ. ମହାଭାରତ
एकजोड़ा ବନ । ] ୨ । ଦୁଇ ଜଣ—2. Two (persons). [ଉ—ତନ୍ଦୁଁ ପୁଅ ଝିଅ ଯୋଡ଼ିଏ ଜାତ ହେଲେ । କୃଷ୍ଣସିଂହ ମହାଭାରତ. ଆଦି । ] ୩ । ସଂଖ୍ୟାରେ ଦୁଇଟି—3. Two
जोड़ा in number. ୪ । ଦୁଇଟି ମାତ୍ର—4. Two only.
[ଯୋଡ଼ା(କ)—ଅନାଦରାର୍ଥକ ରୂପ] [ଉ—ଧୋବା ମଳକ ! ସଙ୍ଖାଳି କରନ୍ତୁ ଝିଅ ଯୋଡ଼ିକ—ଗୀତ । ]

**ଯୋଡ଼ିଘର**—ପ୍ରାଦେ (ଗଞ୍ଜାମ) ବି—କାଞ୍ଜିହାଉସ; ପଶୁ ଜେଲ—
Jordi ghara Cattle-pound.

**ଯୋଡ଼ି ପାଲି**—ଦେ. ବି—ଯାଉଁଳି ପାଲି (ଦେଖ)
Jordi pālā ଜোড়াপালা Jāuṅḷi pālā (See)

**ଯୋଡ଼ି ପିଆଦା**—ଦେ. ବି—ଜମିଦାରଙ୍କର ବା ମହାଜନଙ୍କର ପ୍ରଜା ବା
Jordi piādā ଖାତକ ପ୍ରତି ତଲବର ଗୁରୁତ୍ୱର ପ୍ରତିପାଦନ ନିମିତ୍ତ
যোড়া পেয়াদা ଜଣକ ପରିବର୍ତ୍ତେ ପଠାଯିବା ଦୁଇ ଜଣ ଚପରାଶି—
जोड़ी पयादा Double peons deputed by Zemindars or creditors to their tenants or debtors to impress the urgency of the demand upon the latters' minds.

**ଯୋଡ଼ିବା**—ଦେ. କ୍ରି (ସଂ. ଯୁଜ, ଯୁଟ ଧାତୁ)—ଜୋଡ଼ିବା (ଦେଖ)—
Jordibā জোড়া जेड़ना Jordibā (See)
[ଯୋଡ଼ା(ଡ଼େ)ଇବା—ଣିଜନ୍ତରୂପ]
[ଯୋଡ଼ାଯି(ହେ)ବା, ଯୋଡ଼ି ହେବା—କର୍ମବାଚ୍ୟରୂପ]

**ଯୋଡ଼ି ଯମକ**—ଦେ. ବି—୧ । ଯାଉଁଳି ଯମକ; ପଦ୍ୟ ରଚନାରେ
Jordi jamaka ଆଦ୍ୟ ଓ ପ୍ରାନ୍ତ ଯମକଯୁକ୍ତ ପଦ୍ୟ—1. A
জোড়া যমক poem alliterated in the beginning
जोड़ी यमक and at the end. ୨ । ଆଦ୍ୟ ଓ ପ୍ରାନ୍ତ ଯମକ—2. Double alliteration. ୩ । ଦୁଇଟି ସଦୃଶ ବସ୍ତୁର ଏକତ୍ରାବସ୍ଥିତି—3 Symmetrical arrangement of two similar things. ବିଣ—(ଦୁଇଟି ସଦୃଶବସ୍ତୁ) ଏକତ୍ରାବସ୍ଥିତି ଯୋଗୁଁ ଶୋଭାଯୁକ୍ତ—(two things) Symmetrically or artistically arranged in a pair.

**ଯୋଡ଼ିରଦି**—ଦେ. ବି (ବଣିଆ ଶବ୍ଦ)—ଗୋଡ଼ର ବୁଢ଼ାଆଙ୍ଗୁଠିରେ
Jordiradi ପିନ୍ଧାଯିବା ପାଇଁ ଖଣ୍ଡିଏ ରୂପା ତାର ଦୁଇ ପ୍ରସ୍ଥ ଗୁଡ଼ା
জোড়াআংঠি ହୋଇ ତିଆରି କରାଯାଇଥିବା ମୁଦି—A ring
जोड़ीअंगुठी made by twining two strings or coils of wire for putting on the toes.

**ଯୋତ୍ସ୍ୟମାନ**—ସଂ. ବିଣ. ପୁଂ (ଯୁଧ୍ ଧାତୁ+ଭବିଷ୍ୟତ୍‌କାଳ ଅର୍ଥେ.
Jotsyamāna ସ୍ୟମାନ)—ଯୁଦ୍ଧ କରିବାକୁ ଉଦ୍‌ଯୋଗୀ—
(ଯୋତ୍ସ୍ୟମାନା—ସ୍ତ୍ରୀ) Ready to fight, about to fight.

**ଯୋତ (ଇତ୍ୟାଦି)**—ଦେ. ବି—ଜୋତ ଇତ୍ୟାଦି (ଦେଖ)
Jota (etc) Jota etc (See)

**ଯୋ'ତର**—ଗ୍ରା. ବି—ଜୋତର (ଦେଖ)
Jotara Jotara (See)

**ଯୋତା (ଇତ୍ୟାଦି)**—ଦେ. ବି—ଜୁ(ଜୋ)ତା ଇତ୍ୟାଦି (ଦେଖ)
Jotā (etc) Ju(jo)tā etc (See)

**ଯୋତା(ତେ)ଇବା**—ଦେ. କ୍ରି—ଜୋତାଇବା (ଦେଖ)
Jotā(te)ibā Jotāibā (See)

**ଯୋତି**—ଗ୍ରା. ବି.—(ସଂ. ଜ୍ୟୋତିଃ)—ଜ୍ୟୋତିଃ (ଦେଖ)
Joti Jyotiḥ (See)

**ଯୋତିବା**—ଦେ. କ୍ରି—ଜୋତିବା 'ଦେଖ'
Jotibā Jotibā (See)

**ଯୋତୁଃ**—ସଂ. ବି—୧ । ପରିମାଣ—1. A measure in general;
Jotuḥ ୨ । ପରିଷ୍କରଣ—2. Cleaning; purifying.

**ଯୋତ୍ର**—ସଂ. ବି (ଯୁ.ଧାତୁ=ଯୋଗ କରିବା+କରଣ, ବା ଯୁଜ୍. ଧାତୁ+
Jotra କରଣ ତ୍ର)—୧ । ଯୋତ ଦଉଡ଼ି; ଲଙ୍ଗଳ ଦଉଡ଼ି—1. A
[ଯୋକ୍ତ୍ର—ଅନ୍ୟରୂପ] rope used for tying the shaft or beam of a plough to the yoke. ୨।ଯୁଆଳି-
2. Yoke ୩ । ସମ୍ପତ୍ତି—3, Riches, ବୈଦେ. ବି—
ଜୋତ୍ର ଇତ୍ୟାଦି (ଦେଖ)—Jotra etc (See)

**ଯୋଦ୍ଧା**—ସଂ. ବିଣ. ପୁଂ—(ଯୁଧ୍. ଧାତୁ=ଯୁଦ୍ଧ କରିବା+କର୍ତ୍ତୃ. ତୃ=
Joddhā ଯୋଦ୍ଧୃ; ୧ମା.୧ବ)—୧। ଯୁଦ୍ଧକାରୀ—1, Combat-
[ଯୋଦ୍ଧ୍ରୀ—ସ୍ତ୍ରୀ] ing; fighting; engaged in fight, ୨ । ରଣକୁଶଳ—2. Skilled in the art of war.
ବି—୧। ଯୁଦ୍ଧକାରୀ ବ୍ୟକ୍ତି—1. Combatant, warrior. ୨ । ସୈନିକ—2. A soldier. ୩ । ରଣକୁଶଳ ବ୍ୟକ୍ତି; ବୀର—3. A hero. ଦେ. ବି—୧ । ସାହସୀ ବ୍ୟକ୍ତି—1. A brave person. ୨ । ବଳବାନ୍ ବ୍ୟକ୍ତି—2. A strong person, [ଦ୍ର—ଅନ୍ୟ ଶବ୍ଦ ସଙ୍ଗେ ସମାସ ହେଲେ 'ଯୋଦ୍ଧୃ'ରୂପ ହେବ; ଯଥା—
ଯୋଦ୍ଧୃଗଣ, ଯୋଦ୍ଧୃବେଶ । ]

**ଯୋଦ୍ଧୃଗଣ**—ସଂ. ବି—ଯୋଦ୍ଧାମାନେ—A collection of war-
Joddhṛugaṇa riors; a number of combatants.
[ଯୋଦ୍ଧୃବର୍ଗ, ଯୋଦ୍ଧୃବୃନ୍ଦ, ଯୋଦ୍ଧୃସମୂହ—ଅନ୍ୟରୂପ]

**ଯୋଦ୍ଧୃଜନ**—ସଂ. ବି—ସୈନିକ—
Joddhṛujana A soldier.
[ଯୋଦ୍ଧୃପୁରୁଷ, ଯୋଦ୍ଧୃବ୍ୟକ୍ତି—ଅନ୍ୟରୂପ]

**ଯୋଦ୍ଧୃ ଜାତି**—ସଂ. ବି. (୬ଷ୍ଠୀ ତତ୍)—ଯୁଦ୍ଧପଟୁ-ବ୍ୟକ୍ତି-ବହୁଳ ଜାତି—
Jodhṛu jāti A nation of warriors; a martial tribe.

**ଯୋଦ୍ଧୃପତି**—ସଂ. ବି. (୬ଷ୍ଠୀ ତତ୍)—ସେନାପତି—
Jodhṛupati A general; a commander.

**ଯୋଦ୍ଧୃ ବେଶ**—ସଂ. ବି (୬ଷ୍ଠୀ ତତ୍)—ବୀର ବେଶ; ସୈନିକ ପୁରୁଷର
Jodhṛu beśa ପରିଚ୍ଛଦ—Military dress.

**ଯୋଧ**—ସଂ. ବି. ( ଯୁଧ୍ ଧାତୁ+କର୍ତ୍ତୃ. ଅ )—୧ । ଯୋଦ୍ଧା—
Jodha 1. Warrior; soldier. ୨ । (+ଭାବ.ଅ) ଯୁଦ୍ଧ—2. Fight; war; battle.

**ଯୋଧକ**—ସଂ. ବିଣ. ପୁଂ (ଯୁଧ୍ ଧାତୁ+କର୍ତ୍ତୃ. ଅକ)—
Jodhoka ଯୋଦ୍ଧା; ସିପାହି—Warrior; soldier.
(ଯୋଧିକା—ସ୍ତ୍ରୀ)

**ଯୋଧ ଧର୍ମ**—ସଂ. ବି. ( ୬ଷ୍ଠୀ ତତ୍ )—୧ । ସୈନିକର କର୍ତ୍ତବ୍ୟ—
Jodha dharma 1. The duty of a soldier. ୨। ଯୁଦ୍ଧ ଆଇନ୍—2. Military law.

**ଯୋଧନ**—ସଂ. ବି. (ଯୁଧ୍ ଧାତୁ+ଭାବ. ଅନ)—୧ । ଯୁଦ୍ଧ କରିବା—
Jodhana 1. Fighting. ୨ । (+କର୍ତ୍ତୃ. ଅନ) ଯୋଦ୍ଧା-
(ଯୋଧନୀୟ—ବିଣ) 2. Warrior; combatant. ୩ । (+କରଣ.ଅନ) ଯୁଦ୍ଧାସ୍ତ୍ର—3 A weapon of war.

**ଯୋଧ ପୁର**—ଦେ. ବି. (ନାମ)—ରାଜପୁତାନାର ଯୋଦ୍ଧୃପ୍ରସବୀ ରାଜ୍ୟ-
Jodha pura ବିଶେଷ; ମାରବାଡ଼୍ ରାଜ୍ୟ—Name of a
ষোধপুৰ योधपुर State of Rajputana.
[ଦ୍ର—ଏହା ରାଜପୁତାନାର ରାଜ୍ୟମାନଙ୍କ ମଧ୍ୟରେ ବୃହତ୍ତମ ରାଜ୍ୟ । ଏଥିର କ୍ଷେତ୍ରଫଳ ୩୭ ହଜାର ବର୍ଗ ମାଇଲ୍ । ଏ ରାଜ୍ୟର ଅଧିକାଂଶ ମରୁମୟ ଅଟେ । ଏଥିର ଦକ୍ଷିଣପୂର୍ବ ସୀମାରେ ଆରାବଳୀ ପର୍ବତମାଳା ଅବସ୍ଥିତ । ଏ ରାଜ୍ୟ ଓ ଜୟପୁର ରାଜ୍ୟ ମଧ୍ୟରେ ଲବଣପ୍ରସୂ ସମ୍ବରହ୍ରଦ ଅବସ୍ଥିତ । ଏ ରାଜ୍ୟରେ ଥିବା ଅନ୍ୟ ୬ଟି ହ୍ରଦରୁ ମଧ୍ୟ ଲୁଣ ମିଳିପାଏ । ଆଜମୀରର ଗୋଟିଏ ହ୍ରଦରୁ ବାହାରିଥିବା ଲୁଣୀ ନଦୀ ଏ ରାଜ୍ୟ ମଧ୍ୟରେ ପ୍ରବାହିତ । ଏ ରାଜ୍ୟରେ ବୃଷ୍ଟିର ପରିମାଣ ଅତି ଅଳ୍ପ । ଲୋକେ ବହୁଗଭୀର କୂଅମାନ ଖୋଳି କ୍ଷେତ୍ରରେ ଜଳ ମଡ଼ାନ୍ତି । ଏ ରାଜ୍ୟର ପ୍ରଧାନ ଫସଲ ଗହମ, ଯବ ଓ ବାଜରା । ଏ ରାଜ୍ୟର ଅଧିପତି ସୂର୍ଯ୍ୟବଂଶୀୟ ରାଠୋର ରାଜପୁତ ଅଟନ୍ତି । ଭାରତର ସର୍ବତ୍ର ବ୍ୟବସାୟ କରୁଥିବା ମାରବାଡ଼ୀମାନେ ଏ ରାଜ୍ୟର ଅଧିବାସୀ ଅଟନ୍ତି । ଏ ରାଜ୍ୟର ରାଜଧାନୀ ଯୋଧପୁର । ଏହା ଗୋଟିଏ ସ୍ୱାଧୀନ ରାଜ୍ୟ । କାନ୍ୟକୁବ୍ଜର ଅନ୍ତିମ ରାଠୋର ରାଜା ଶିବାଜୀଙ୍କ ଦ୍ୱାରା ଏ ରାଜ୍ୟ ଦ୍ୱାଦଶ ଶତାବ୍ଦୀରେ ପ୍ରତିଷ୍ଠିତ ହୋଇଥିଲା । ଖ୍ରୀ ୧୫୬୧ ରେ ମୋଗଲସମ୍ରାଟ୍ ଅକବର ଏହାକୁ ଜୟ କଲେ । ତତ୍ପରେ ଏ ମରହଟ୍ଟାମାନଙ୍କ ଅଧିକାରଭୁକ୍ତ ହେଲା ଓ ଖ୍ରୀ ୧୮୧୮ ରେ ଏହା ଇଂରାଜଙ୍କ ମିତ୍ରରାଜ୍ୟ ରୂପେ ପରିଗଣିତ ହେଲା । ଏଠାରେ ବ୍ରିଟିଶ୍ ସରକାରଙ୍କର ଜଣେ ଏଜେଣ୍ଟ୍ ବା ରେସିଡେଣ୍ଟ୍ ଥାଆନ୍ତି । ]

**ଯୋଧ ବୀର**—ସଂ. ବି. ପୁଂ (୭ମୀ ତତ୍)—୧। ପ୍ରଧାନ ଯୋଦ୍ଧା—1. A
Jodha bīra chief warrior, ୨ । ଯୋଦ୍ଧୃବର୍ଗର
(ଯୋଧ ମୁଖ୍ୟ—ଅନ୍ୟରୂପ) ନେତା—2. A leader of warriors or soldiers.

**ଯୋଧୟୁନ୍**—ସ. ବିଣ. ପୁଂ ( ଯୁଧ୍ ଧାତୁ+କର୍ତ୍ତୃ. ଅନ୍ )—ଯୁଦ୍ଧରେ
Jodhayan ଲିପ୍ତ; ଯୁଦ୍ଧ କରୁଥିବା—Fighting; engag-
(ଯୋଧୟୁନ୍ତୀ—ସ୍ତ୍ରୀ) ed in fight

**ଯୋଧ ସଂରାବ**—ସ. ବି. ( ୬ଷ୍ଠୀ ତତ୍ )—ଯୋଦ୍ଧୃଗଣଙ୍କର ପରସ୍ପରକୁ
Jodha saṁrāba ସ୍ପର୍ଦ୍ଧା ସହିତ ଯୁଦ୍ଧକୁ ଆହ୍ୱାନ—A mutual
call to fight by warriors; the chal-
lenge of combatants.

**ଯୋଧା**—ଦେ ବି. ( ସ. ଯୋଦ୍ଧା, ଯୋଧ ) —୧ । ଯୋଦ୍ଧା—
Jodhā 1. Warrior; combatant. [ପ୍ର—ଦେଖନ୍ତୁ
ବୀର **ଯୋଧା** ଏ ମାଳ ଦଶ ହଜାର ଯୋଧା ଧର ରୂନ୍ଧନ୍ତି । ମାଳକଣ୍ଠ.
ଫିଲ୍ଲିଙ୍କ ରାମାୟଣ ।] ୨ । ବୀର ପୁରୁଷ—2. A hero.
୩ । ବଳବାନ୍ ବ୍ୟକ୍ତି—3. A strong person.
୪ । ନେତା ବ୍ୟକ୍ତି—4. A leader. ୫ । ବନ୍ଧୁଲୋକଙ୍କ
ମଧ୍ୟରେ ଗୁଣବାନ୍ ବ୍ୟକ୍ତି; ଯୋଗ୍ୟ ବ୍ୟକ୍ତି—5. An ex-
cellent or worthy person. ବିଣ —୧ । ବୀରତା-
ପୂର୍ଣ୍ଣ—1. Heroic. ୨ । ବଳୁଆ —2. Strong. ୩ ।
ଯୋଗ୍ୟ; ଗୁଣୀ—3. Worthy.

**ଯୋଧାଗାର**—ସଂ. ବି. (୬ଷ୍ଠୀ ତତ୍)—ସେନା ନିବାସ—
Jodhāgāra Barrack (Apte).

**ଯୋଧୀ**—ସ. ବି. ପୁଂ ( ଯୁଧ ଧାତୁ+କର୍ତ୍ତୃ. ଇନ୍, ୧ମା. ୧ବ )—
Jodhi ୧ । ଯୋଦ୍ଧା—1. Warrior, combatant. ୨ ।
(ଯୋଧିନୀ—ସ୍ତ୍ରୀ) ବୀର—2. Hero. ଦେ. ବି ଓ ବିଣ.ପୁଂ ଓ ସ୍ତ୍ରୀ—
ଯୋଧା (ଦେଖ) —Jodhā (See)

**ଯୋଧେୟ**—ସଂ. ବି. ପୁଂ (ଯୋଧ+ସ୍ୱାର୍ଥେ. ଏୟ)—ଯୋଦ୍ଧା—,
Jodheya Warrior; combatant

**ଯୋନଳ**—ସଂ. ବି. (ଯବନଳର ରୂପାନ୍ତର; ଯବ ସ୍ଥାନରେ ଯୋ) —
Jonaḷa ଜୁଅର (ଦେଖ)—Juārā (See)

**ଯୋନି(ଣି)**—ସଂ. ବି. (ଯୁ ଧାତୁ=ଯୋଗ କରିବା+କର୍ତ୍ତୃ. ନି;+ଈ) —
Joni(ṇi) ୧ । ସ୍ତ୍ରୀଜନନେନ୍ଦ୍ରିୟ; ଭଗ—1. Vagina; the
vulva; the female organ
of generation. ୨ । କାରଣ,
ହେତୁ—2 Cause, origin.
୩ । ଉତ୍ପତ୍ତି ସ୍ଥଳ—3. The
place of origin, source;
spring. [ପ୍ର—ଜୀବମାନଙ୍କର
ଉତ୍ପତ୍ତିସ୍ଥଳ ହିନ୍ଦୁ ଶାସ୍ତ୍ରରେ ୮୪
ଲକ୍ଷ ପ୍ରକାର ବୋଲି ବର୍ଣ୍ଣିତ ହୋଇ
ଅଛି, କିନ୍ତୁ ପ୍ରଧାନତଃ ଜୀବମାନେ
ଏହି ଦୃଷ୍ଟିରେ ୪ ଶ୍ରେଣୀରେ ବିଭକ୍ତ
ଯଥା—ଅଣ୍ଡଜ, ସ୍ୱେଦଜ, ଉଦ୍ଭିଜ୍ଜ,
ଜରାୟୁଜ । ସଂସାରରେ ଜଳଜନ୍ତୁ—୯
ଲକ୍ଷ, ସ୍ଥାବର ୨୦ ଲକ୍ଷ, କୃମି ୧୧ ଲକ୍ଷ,
ପକ୍ଷୀ ୧୦ ଲକ୍ଷ, ପଶୁ ୩୦ ଲକ୍ଷ, ମନୁଷ୍ୟ ୪ ଲକ୍ଷ, ସର୍ବ-

ପ୍ରଥମ ଅର୍ଥରେ ଅନ୍ୟ ସ. ପ୍ରତିଶବ୍ଦ—ଅଧ, ଅଧର, ଅଥ, ଅପ୍ରଦେଶ, ଅବାଚ୍ୟ ଦେଶ, ଉପସ୍ଥ, କନ୍ଦର୍ପ କୂପ, କନ୍ଦର୍ପ ସନ୍ଧି, କନ୍ଦର୍ପ ସମ୍ବାଧ, କଳତ୍ର, ଗୁହ୍ୟ, ଜନ୍ମବର୍ତ୍ମ, ପୁଷ୍ପୀ, ପ୍ରକୃତି, ପ୍ରକୃଷ୍ଟ, ରତି-କୁହର, ରତିଗୃହ, ରତିମନ୍ଦିର, ରହସ୍ୟ, ବରାଙ୍ଗ, ସଂସାରମାର୍ଗ, ସଂସାର ମାର୍ଗକ, ସ୍ତ୍ରୀ ଚିହ୍ନ, ସ୍ମର କୂପକ, ସ୍ମର ଗୃହ, ସ୍ମର ଧ୍ୱଜ, ସ୍ମର ମନ୍ଦିର, ସ୍ମରାଗାର, ସ୍ମରକୂପ ।

ମୋଟ ୮୪ ଲକ୍ଷ ଜୀବ ବୋଲି ଶାସ୍ତ୍ରରେ କଥିତ । ଜୀବ ସ୍ୱୀୟ
କର୍ମ ଫଳରେ ଏ ସବୁଯୋନିରେ ଭ୍ରମଣ କରେ । ମନୁଷ୍ୟ-
ଯୋନି ସବୁଠାରୁ ଶ୍ରେଷ୍ଠ ଓ ଦୁର୍ଲଭ—ହି. ଶ] ୪ । ଜୀବ-
ଗଣର ମାତୃ ଗର୍ଭରୁ ଉତ୍ପତ୍ତି ସ୍ଥାନ—4. The passage
through which animals are born.
୫ । ଜଳ—5. Water. ୬ । କୌଣସି ଜୀବରୂପରେ
ଜାତ ପ୍ରାଣୀମାନଙ୍କ ବିଭାଗ, ଜାତି ବା ବର୍ଗ ( ହି. ଶ. )—
6. Species of animals.୭ । ଉତ୍ପତ୍ତିର କାରଣ
—7. Generating cause (Apte). ୮ । ଖଣି;
ଆକର (ହି. ଶ)—8. Mine. ୯ । ଆଧାର—9.
Seat;repository; receptacle (Apte ).୧୦ ।
ଆବାସ —10. Home; abode (Apte). ୧୧। ଜୀବ-
ରୂପେ ଅବସ୍ଥିତି—11.Form of animal existence
( Apte ). ( ଯଥା—ପାପୀଲୋକ ପରଜନ୍ମରେ ପଶୁ-
ଯୋନି ପ୍ରାପ୍ତ ହୁଏ । ) ୧୨ । ପୂର୍ବଫାଲ୍‌ଗୁନୀ ନକ୍ଷତ୍ର—
12. The 11th asterism ( Apte ). ୧୩ ।
ଅନ୍ତଃକରଣ ( ହି. ଶ )—13. Heart ( Apte ).
୧୪ । ଗର୍ଭ; ଗର୍ଭାଶୟ ( ହି. ଶ )—14. Womb;
uterus ( Apte ). ୧୫ । ଜନ୍ମ ( ହି. ଶ )—
15. Birth.

**ଯୋନି କନ୍ଦ**—ସଂ. ବି [ ବୈଦ୍ୟକ ]—ରକ୍ତ ଓ ପୂଜସ୍ରାବୀ ଯୋନିରୋଗ-
Joni kanda ବିଶେଷ—A disease of the vulva.

**ଯୋନି କପାଟ**—ସ. ବି.—(ବୈଦ୍ୟକ)—ଯୋନିର ପାର୍ଶ୍ୱ ଦେଶସ୍ଥ ସ୍ଥିତି-
Joni kapāṭa ସ୍ଥାପକ ଆବରଣ ଦ୍ୱୟ—Labia Majora

**ଯୋନି କୀଟ**—ସ. ବି.—ଲମ୍ପଟ ବା କାମୁକ ବ୍ୟକ୍ତି—A lecher; a
Joni kiṭa lascivious person,

**ଯୋନି ଗାତ୍ର**—ସ. ବିଣ. ପୁଂ(୬ଷ୍ଠୀତତ୍)—ଭଗର ଅଙ୍ଗ—
Joni gātra The body of the vulva.

**ଯୋନିଜ**—ସ. ବିଣ. ପୁଂ—ଜରାୟୁଜ ଓ ଅଣ୍ଡଜ (ପ୍ରାଣୀ); ମାତୃଯୋନି
Jonija ନିଃସୃତ ଶରୀରବିଶିଷ୍ଟ—Viviparous; born
from the mother's womb. [ପ୍ର—ସୀତା
[ଯୋନିଜା—ସ୍ତ୍ରୀ] ମାତୃଗର୍ଭରୁ ଜାତ ହୋଇ ନ ଥିବାରୁ ତାଙ୍କର
[ଅଯୋନିଜ—ବିପରୀତ] ଏକ ବିଶେଷଣ ଅଯୋନିଜା । ] ସ.
ବି.—ଜରାୟୁଜ ବା ଅଣ୍ଡଜ ପ୍ରାଣୀ—Viviparous animal.

**ଯୋନି ତୀର୍ଥ**—ସ. ବି—ହିନ୍ଦୁମାନଙ୍କର ତୀର୍ଥ ବିଶେଷ—Name of a
Joni tirtha place of Hindu pilgrimage. [ପ୍ର—
ଭୀମା ଦେବୀଙ୍କ ସ୍ଥାନ ଯୋନି ତୀର୍ଥେ ଯାଇ । ସ୍ନାନ କଲେ ଯେ
ଦେଖା ପୁଣ ସେ ହୁଅଇ । କୃଷ୍ଣସିଂହ. ମହାଭାରତ. ବନ ।]

**ଯୋନି ଦେବତା**—ସ. ବି.(ବହୁବ୍ରୀହି)—ପୂର୍ବଫାଲ୍‌ଗୁନୀ ନକ୍ଷତ୍ର—
Joni debatā The 11tht lunar mansion.

**ଯୋନି ଦୋଷ**—ସ. ବି.—ଉପଦଂଶ ରୋଗ [ହି. ଶ.] —
Joni dosha Syphilis.

**ଯୋନି ନାସା**—ସଂ. ବି.—[ବୈଦ୍ୟକ]—ଭଗର ଊର୍ଦ୍ଧ୍ୱଭାଗସ୍ଥ ନାସିକା-
Joni nāsā ବତ୍ ମାଂସ ଖଣ୍ଡ—The upper part of the
(ଯୋନିନାସିକା—ଅନ୍ୟରୂପ) vulva or the union of the Libae

**ଯୋନି ପାର୍ଶ୍ୱ**—ସଂ. ବି.—[ବୈଦ୍ୟକ]—ଭଗକପାଟର ପାର୍ଶ୍ୱଭାଗ—
Joni pārswa The lips of the vulva; labia Pudendi

**ଯୋନି ଭଞ୍ଜ**—ସଂ. ବି.—[ବୈଦ୍ୟକ]—ଯୋନିକପାଟର ଅନ୍ତର୍ଭାଗସ୍ଥ
Joni bhāñja ସୂକ୍ଷ୍ମ ଝିଲ୍ଲୀଦ୍ୱୟ—The nymphae; the Labia Minora; semicircular glandular membranes situate below the Labia Majora.

**ଯୋନି ଭ୍ରଂଶ**—ସଂ. ବି.—(୬ଷ୍ଠୀ ତତ୍)—ଯୋନି ରୋଗବିଶେଷ;
Joni bhramsa ଗର୍ଭାଶୟ ସ୍ୱସ୍ଥାନରୁ ଚ୍ୟୁତ ହେବା ରୋଗ; ସ୍ତ୍ରୀ-ମାନଙ୍କ ପଦ୍ମ ଖସିବା; ପେଦ୍ମ—Displacement of the uterus; Prolapsus Uteri (Apte).

**ଯୋନି ଭ୍ରମଣ**—ସଂ. ବି.—(୭ମୀ ତତ୍)—ପୁନର୍ଜନ୍ମ; ପୁନଃ ପୁନଃ ଜନ୍ମ-
Joni bhramana ଗ୍ରହଣ—Rebirth [ ଭୁ—ଭେଦ ପାରଲେ ଧ୍ୟାନ ଘର, ଯୋନି ଭ୍ରମଣ ହେବ ଦୂର ।
ପ୍ରାଚୀ. ଚତୁର୍ବର୍ଣ୍ଣମାହାତ୍ମ୍ୟ ।]

**ଯୋନି ମୁକ୍ତ**—ସଂ. ବିଣ.—[୫ମୀ ତତ୍]—ପୁନଃ ପୁନଃ ସଂସାରରେ
Joni mukta ଜନ୍ମଗ୍ରହଣ କରିବାରୁ ମୁକ୍ତ; ମୋକ୍ଷପ୍ରାପ୍ତ (ହି. ଶ.)—Emancipated from repeated births.

**ଯୋନି ମୁଦ୍ରା**—ସଂ. ବି.—(ତନ୍ତ୍ର)—ଦେବାରାଧନା କାଳରେ ପ୍ରଦର୍ଶନୀୟ
Joni mudrā କରତଳ ଓ ଅଙ୍ଗୁଳମାନଙ୍କର ସନ୍ନିବେଶବିଶେଷ (ଏହା ଯୋନି ପରି ଦେଖା ଯିବାରୁ)—A mystic gesticulation of the palms employed during worship,
[ଦ୍ର—ଏକ ହାତର କନିଷ୍ଠାଦ୍ୱାରା ଅପର କନିଷ୍ଠା ବନ୍ଦ କରି, ତର୍ଜନୀଦ୍ୱୟ ଦ୍ୱାରା ଅନାମିକା ଦ୍ୱୟ ବନ୍ଦ କରିବ, ଅନାମିକା ଦ୍ୱୟ ଉନ୍ନତ କରିବ ଏବଂ ଅଙ୍ଗୁଷ୍ଠ ଦ୍ୱୟର ଅଗ୍ରଭାଗ ମଧ୍ୟମାର ଅଗ୍ରଭାଗ ପର୍ଯ୍ୟନ୍ତ ସିଧା କରି ଦେଲେ ଯୋନି-ମୁଦ୍ରା ହୁଏ ।—ପ୍ରକୃତିବାଦ ।]

**ଯୋନି ଯନ୍ତ୍ର**—ସଂ. ବି.—କାମାକ୍ଷା, ଗୟା ଆଦି ବିଶିଷ୍ଟ ତୀର୍ଥରେ ଥିବା
Joni jantra ଏକ ସଂକୀର୍ଣ୍ଣ ମାର୍ଗ ବା ଛିଦ୍ର, ଯହିଁରେ ଗଳି କରି ବାହାରି ଯିବା ବ୍ୟକ୍ତିର ପୁନର୍ଜନ୍ମ ହୁଏ ନାହିଁ ବୋଲି ଲୋକବିଶ୍ୱାସ ଅଛି (ହି.ଶ.)—A narrow aperture existing in certain sacred places, the passers through which are believed not be reborn in the world.

**ଯୋନି ରଞ୍ଜନ**—ସଂ. ବି.—ସ୍ତ୍ରୀ ରଜଃ; ନେତ୍ର—
Joni rañjana Menstrual flux or secretion

**ଯୋନି ରୋଗ**—ସଂ. ବି.—ଯୋନିକୁ ଆକ୍ରମଣ କରିବା ରୋଗ—
Joni roga Diseases of the vulva.

**ଯୋନି ଲିଙ୍ଗ**—ସଂ. ବି.—(୬ଷ୍ଠୀ ତତ୍; ଯୋନି + ଲିଙ୍ଗ)—ଯୋନିନାସା-
Joni linga ସଲଗ୍ନ ଉଦ୍ରେକଶକ୍ତିଯୁକ୍ତ ମାଂସପିଣ୍ଡ; ଭଗାଙ୍କୁର; ଗୁହ୍ୟମଣି (ଅଶିଷ୍ଟ-ଶେଷ୍ଟ)—Clitoris.

**ଯୋନି ଶୂଳ**—ସଂ.ବି.—ଯୋନିରେ ଅନୁଭୂତ ତୀବ୍ର ବେଦନା;ରୋଗବିଶେଷ—
Joni sula Pangs felt in the female organ.

**ଯୋନିଶୂଳଘ୍ନୀ**—ସଂ. ବି.—ଶତପୁଷ୍ପା; ଶତୁପ—
Jonisūlaghni Dill seed.

**ଯୋନି ସମ୍ବରଣ**—ସଂ. ବି.—ଗର୍ଭବତୀ ସ୍ତ୍ରୀମାନଙ୍କ ରୋଗବିଶେଷ, ଯହିଁରେ
Jonisambarana ଯୋନିମାର୍ଗ ସଙ୍କୁଚିତ ହୁଏ ଓ ଗର୍ଭାଶୟର ଦ୍ୱାର ରୁଦ୍ଧ ହୋଇଯାଇ ଗର୍ଭସ୍ଥ ଭ୍ରୂଣ ମରିଯାଏ ଓ ସମୟେ ସମୟେ ଗର୍ଭିଣୀ ମଧ୍ୟ ମରିଯାଏ ( ହି. ଶ. )—A female desease, contraction of the uterus

**ଯୋନି ସମ୍ବୃତି**—ସଂ.ବି (ବୈଦ୍ୟକ)—୧ । (୬ଷ୍ଠୀ ତତ୍) ଯୋନି କପାଟ
Joni sambruti ଓ ଗାତ୍ର ରୁଦ୍ଧ ହେବା; ଯୁକ୍ତ—
(ଯୋନି ସଙ୍କୋଚନ—ଅନ୍ୟରୂପ) 1. The contraction or closure of the vagina. ୨ । ଶିଥିଳ ଯୋନି-କପାଟର ସଂକୋଚକ ଔଷଧ (ହି. ଶ.)—2. Medicine for contracting slack vagina.

**ଯୋନି ସଙ୍କର**—ସଂ.ବି—୧ । ମାତୃବଂଶର ହୀନତାନିବନ୍ଧନ ଜନ୍ମଦୋଷ—
Jonisankara 1. Fault or blemish or lowness of birth due to the mother being of an inferior caste. ୨ । ବର୍ଣ୍ଣସଙ୍କର—2. A person of mixed parentage.

**ଯୋନି ସମ୍ବନ୍ଧ**—ସଂ. ବି (ମ. ସ. ଲୋ)—ବିବାହଦ୍ୱାରା ସ୍ଥାପିତ ସମ୍ବନ୍ଧ—
Joni sambandha Relationship by marriage.
(ଯୋନିସମ୍ବନ୍ଧ—ବିଣ. ପୁଂ)

**ଯୋନି ସମ୍ଭବ**—ସଂ. ବିଣ—ଯୋନିଜ (ଦେଖ)
Joni sambhaba Jonija (See)

**ଯୋନ୍ୟର୍ଶଃ**—ସଂ ବି (ବୈଦ୍ୟକ; ଯୋନି + ଅର୍ଶସ୍; ଯୋନ୍ୟର୍ଶସ୍ ଶବ୍ଦ)—
Jonyarsah ୧ । ଯୋନିଜାତ ରୋଗବିଶେଷ; ଯୋନିକନ୍ଦ—
1. A desease of the vulva. ୨ । ରକ୍ତପ୍ରଦର—
2. Menorrhagia; profuse bleeding from the uterus.

**ଯୋପନ**—ସଂ. ବି (ଯୁପ୍ ଧାତୁ + ଭାବ ଅନ)—୧ । ଲିଭାଇଦେବା—
Jopana 1. Effacing; blotting out (Apte).
୨ । (+କରଣ ଅନ) ଯାହାଦ୍ୱାରା ଲିଭାଇ ହୁଏ—
2. Anything used for effacing or blotting (Apte) ୩ । (+ଭାବ ଅନ)—କଷ୍ଟଦେବା; ପୀଡ଼ନ—3. Molesting; oppressing (Apte).
୪ । ଯାହା ଗୋଳମାଳରେ ପକାଏ—4. Confusing; perplexing (Apte).

**ଯୋଷ୍ମ (ଏ)**—ପ୍ରାଦେ (ଉଦ୍ଭିଭାଷା) ବି (ସଂ. ଜ୍ୟୋତିଃ)—ନିଆଁ—
Joy(e) Fire,

**ଯୋର**—ଦେ. ବ—ଜୋର ( ଦେଖ )—Jora (See). ଗ୍ରାଦେ
Jora ( ବଣେଇ ) ବ—ଉପନଦୀ—A tributray river

**ଯୋଲି**—ଦେ. ବ—ଜୋଲି (ଦେଖ)
Joli Joli (See)

**ଯୋଶୀମଠ**—ଦେ. ବି—ଅଲକାନନ୍ଦା ନଦୀକୂଳରୁ ପ୍ରାୟ ଦୁଇ ମାଇଲ୍
Josimatha ଦୂରରେ ଏକ ଉଚ୍ଚ ଭୂମି ଉପରେ ସ୍ଥାପିତ ମଠ
যোষীমঠ जोसीमठ The name of a Matha situated on a high mound of earth two miles from the river Alakānandā.
[ ଦ୍ର—ଏହା ହିମାଳୟର ଶ୍ରୀ ବଦରୀନାଥଙ୍କ ନିକଟରେ ଅବସ୍ଥିତ । ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ଶ୍ରୀ ଶଙ୍କରାଚାର୍ଯ୍ୟ ଉକ୍ତ ମଠ ସ୍ଥାପନ କରିଥିଲେ । ଏଠାରେ ଶ୍ରୀଜ୍ୟୋତିରୀଶ୍ୱର ନାମକ ଶିବଲିଙ୍ଗ ବିରାଜିତ । ଏହାଙ୍କ ନାମାନୁସାରେ ସ୍ଥାନର ନାମ ଜ୍ୟୋତି ମଠ ବା ଯୋଶି ମଠ ହୋଇଅଛି । ବଦରୀନାଥଙ୍କ ମନ୍ଦିର ବରଫ ଆବୃତ ହେବାରୁ ଏ ମଠରେ କାର୍ତ୍ତିକ ଶୁକ୍ଳ ତୃତୀୟାଠାରୁ ୬ ମାସ ଶ୍ରୀ ବଦରୀନାଥଙ୍କର ସେବାପୂଜା ହୁଏ । ଏଠାରେ ଥିବା ଦଣ୍ଡଧାର ନାମକ ଜଳଧାରରେ ସ୍ନାନ ଓ ତର୍ପଣ କରିବା ବିଧାନ ଅଛି । ମଦନମୋହନ. ତୀର୍ଥଦର୍ଶନ । ]

**ଯୋଷଣା**—ସଂ. ବ ( ଯୁଷଧାତୁ=ସେବା କରିବା+କର୍ତ୍ତୃ. ଅନ+ଆ )—
Joshanā ୧ । ଦୁଶ୍ଚରିତ୍ରା ସ୍ତ୍ରୀ ( ପ୍ର. ଶ. )—1. A dissolute woman. ୨ । କୁମାରୀ—2. Maiden ( Apte ). ୩ । ଯୁବତୀ—3. A young girl ( Apte ).

**ଯୋଷା**—ସଂ. ବି. ସ୍ତ୍ରୀ ( ଯୁଷ୍ ଧାତୁ=ସେବା କରିବା+କର୍ତ୍ତୃ. ଅ+ଆ )—୧ । ନାରୀ; ସ୍ତ୍ରୀ—1. Woman; lady.
Joshā
ଯୋଷିତ୍, ଯୋଷିତା } ଅନ୍ୟରୂପ ୨ । ପତ୍ନୀ—2. Wife. ୩ । ଯୁବତୀ—3. A young woman in general. ( Apte ).
[ଅନ୍ୟ. ସଂ. ପ୍ରତିଶବ୍ଦ— ସ୍ତ୍ରୀ, ବଧୂ, ଅବଳା, ନାରୀ, କୋଷା, କାନ୍ତା, ଜୋଷିତ୍, ଜୋଷିତା, ସିମନ୍ତିନୀ, ଭାବିନୀ, ପ୍ରତୀପଦର୍ଶିନୀ, ବାମା, ବନିତା, ମହିଳା, ଲଳନା, ନିଶେଷା, ଅଙ୍ଗନା, ଭୀରୁ, କାମିନୀ, ବାମଲୋଚନା, ନିତମ୍ବିନୀ, ସୁନ୍ଦରୀ, ରମଣୀ, ରାମା, କୋପନା, ଭାମିନୀ, ବରାରୋହା, ମତ୍ତକାଶିନୀ, ଉତ୍ତମା, ବରବର୍ଣ୍ଣିନୀ, ପ୍ରମଦା, ପ୍ରିୟା, ସାମା, ଜନି, ଜନୀ, । [ ଦ୍ର—ଏ ଶବ୍ଦ ଜୋଷା, ଜୋଷିତ୍ ଓ ଜୋଷିତା-ରୂପେ ମଧ୍ୟ ଲେଖାଯାଏ । ]]

**ଯୋଷାପ୍ରିୟା**—ସଂ. ବ ( ୬ଷ୍ଠୀତତ୍ )—ହଳଦୀ—
Joshapriyā Turmeric ( Apte ).

**ଯୋଷାବର**—ସଂ. ବ—ଉତ୍କୃଷ୍ଟା ସ୍ତ୍ରୀ—An excellent lady. [ଭୁ
Joshābara — ଯୋଷାବରରେ ! ଯଥାର୍ଥରେ ଜାଣ ମୁଁ ତୋହରରେ । କବିସୂର୍ଯ୍ୟ. ବଣୋଇଚନ୍ଦ୍ର । ]
(ଯୋଷାବର, ଯୋଷିଦ୍‌ବର, ଯୋଷିଦ୍ବର—ଅନ୍ୟରୂପ)

**ଯୋଷିତ୍‌କୃତ**—ସଂ. ବଣ ( ୩ୟା ତତ୍ )—ନାରୀଦ୍ୱାରା ସମ୍ପାଦିତ—
Joshit-kruta Done by a woman.

**ଯୋଷିତ୍‌ପ୍ରିୟା**—ସଂ. ବ ( ୬ଷ୍ଠୀ ତତ୍ )—ହଳଦୀ; ହରିଦ୍ରା—
Joshit-priyā Turmeric.

**ଯୋଷିଦ୍‌ବର୍ଗ**—ସଂ. ବ ( ୬ଷ୍ଠୀ ତତ୍; ଯୋଷିତ୍+ବର୍ଗ )—
Joshidbarga ନାରୀ ସମୂହ—Females.
(ଯୋଷିଦ୍‌ଗଣ—ଅନ୍ୟରୂପ)

**ଯୋହଲ**—ଦେ. ବ—ଜୋଲ ( ଦେଖ )
Johala Joli ( See )

**ଯୋ ହୁକୁମ୍**—ଦେ. ବଣ ଓ ବ ( ମତାର୍ଥ ହି. ଜୋହୁକୁମ୍=
Jo hukum ଆପଣଙ୍କର ଯାହା ଆଜ୍ଞା, ତାହାହିଁ ଆମ୍ଭର ଶାଳନୀୟ )—ମାଲିକଙ୍କ ଆଦେଶ ପାଳନକାରୀ ଅତି ତୋଷାମଦିଆ ଅଧୀନ ବ୍ୟକ୍ତି—Toady; a base
যোহুকুম जोहुकम flatterer; sycophant.

**ଯୋହ୍ଲା**—ଦେ. ବ ( ପାନବରଜୀ )—ପଙ୍କେଇ ( ଦେଖ )
Johlā Pankei ( See )

**ଯୌକ୍ତିକ**—ସଂ. ବଣ ( ଯୁକ୍ତି+ଇକ )—୧ । ଯୁକ୍ତି ସଙ୍ଗତ—1.
Jauktika Reasonable. ୨ । ନ୍ୟାୟଶାସ୍ତ୍ରସଙ୍ଗତ—
(ଯୌକ୍ତିକୀ—ସ୍ତ୍ରୀ) 2. Logical. ୩ । ଯୁକ୍ତି ଉପରେ ସ୍ଥାପିତ —3. Founded or based on reasoning or argument. ୪ । ଯୁକ୍ତିସିଦ୍ଧ; ଯୁକ୍ତିଦ୍ୱାରା ପ୍ରମାଣିତ; ପ୍ରାମାଣିକ—4. Inferable; deducible. ୫ । ଉପଯୁକ୍ତ; ଯୋଗ୍ୟ—5. Proper; right. ୬ । ଯୁକ୍ତିକାରୀ—6. Arguing. ୭ । ଚଳିତ; ଅଭ୍ୟସ୍ତ; ପ୍ରଥାଗତ—7. Customary; current; usual. ୮ । ଯୁକ୍ତ—8. Connected. ବ. ପୁଂ—ନର୍ମସଚିବ; ଆମୋଦ ସହଚର—A companion in one's amusements; boon companion.

**ଯୌଗ**—ସଂ. ବଣ ( ଯୋଗ+ଅ )—ଯୋଗ ସମ୍ବନ୍ଧୀୟ—
Jauga Relating to Joga.
ସଂ. ବ—ଯୋଗଦର୍ଶନର ମତାବଲମ୍ବୀ ବ୍ୟକ୍ତି—A follower of the oga system of Philosophy ( Apte ).

**ଯୌଗକ**—ସଂ. ବଣ ( ଯୋଗ+ଅକ )—ଯୋଗ ସମ୍ବନ୍ଧୀୟ ( ପ୍ର. ଶ. )
Jaugaka Relating to Joga.

**ଯୌଗପଦ୍ୟ**—ସଂ ବ ( ଯୁଗପତ୍+ଯ )—ଯୁଗପତ୍ ଘଟିବା ଅବସ୍ଥା—
Jauga padya Simultaneity; concurrence.

**ଯୌଗିକ**—ସଂ. ବଣ—( ଯୋଗ+ସମ୍ବନ୍ଧାର୍ଥେ ଇକ )—୧ । ଯୋଗ
Jaugika ସମ୍ବନ୍ଧୀୟ—1. Relating to Joga. ୨ ।
(ଯୌଗିକୀ—ସ୍ତ୍ରୀ) ପ୍ରଚଳିତ; ଅଭ୍ୟସ୍ତ; ସାଧାରଣ—2. Usual;
(ରୂଢ଼—ବିପରୀତ) common, customary. ୩ । (ବ୍ୟାକରଣ) ପ୍ରକୃତି ପ୍ରତ୍ୟୟ ସମ୍ବନ୍ଧୀୟ—3. (Grammar) Etymological. ୪ । ପ୍ରକୃତି ପ୍ରତ୍ୟୟ ଅନୁସାରେ ଅର୍ଥବିଶିଷ୍ଟ ( ଶବ୍ଦ )—4. ( a word) Having its sense agreeing with its derivation; derivative in form and meaning. [ଦ୍ର—ଏ ଶବ୍ଦର ବିପରୀତ ଶବ୍ଦ 'ରୂଢ଼' —conventional). ବୈୟାକରଣମାନେ ଶବ୍ଦମାନଙ୍କୁ

ବ୍ୟୁତ୍ପତ୍ତି ଓ ଅର୍ଥ ଦୃଷ୍ଟିରେ ୩ ଶ୍ରେଣୀରେ ବିଭକ୍ତ କର ଅଛନ୍ତି ଯଥା, ଯୌଗିକ, ଯୋଗରୂଢ଼ ଓ ରୂଢ଼ । ଯେଉଁ ଶବ୍ଦ ବ୍ୟୁତ୍ପତ୍ତି ଅନୁସାରେ ବ୍ୟବହୃତ ତାକୁ ଯୌଗିକ ବୋଲାଯାଏ; ଯଥା ଗମନ, ପାଦପ; [ଯେଉଁ ଶବ୍ଦ ବ୍ୟୁତ୍ପତ୍ତି ଅନୁସାରେ ସିଦ୍ଧ ଅର୍ଥମାନଙ୍କମଧ୍ୟରୁ ଗୋଟିଏ ମାତ୍ର ଅର୍ଥକୁ ବୁଝାଏ ତାକୁ ଯୋଗରୂଢ଼ ଶବ୍ଦ ବୋଲାଯାଏ; ଯଥା ପଙ୍କଜ, ବିହଙ୍ଗ, ଯେଉଁ ଶବ୍ଦ ବ୍ୟୁତ୍ପତ୍ତି ଅନୁସାରେ ଅର୍ଥ ନ ବୁଝାଇ ଅନ୍ୟ ଅର୍ଥ ବୁଝାଏ ତାକୁ ରୂଢ଼ ଶବ୍ଦ ବୋଲାଯାଏ; ଯଥା. ମଣ୍ଡପ, କୁଶ ।] ୫ । ବ୍ୟବହାର୍ଯ୍ୟ; ପ୍ରୟୋଜନୀୟ—5. Useful, serviceable. ୬ । ପ୍ରତିକାର ସମ୍ବନ୍ଧୀୟ—6. Remedial (Apte). ୭ । (ବ୍ୟାକରଣ) ଦୁଇ ବା ବହୁ ଶବ୍ଦର ମିଳନରେ ଜାତ (ଶବ୍ଦ) (ହି. ଶ)—7. (grammar) Compound (word)

**ଯୌଗିକ ରୂଢ଼**—ସ. ବିଣ (ଦ୍ୱନ୍ଦ୍ୱ)—(ବ୍ୟାକରଣ) ବ୍ୟୁତ୍ପତ୍ତିଗତ ଓ ବ୍ୟବହାର-ଗତ (ଅର୍ଥ) ବା ଉକ୍ତ ଅର୍ଥରେ ବ୍ୟବହୃତ (ଶବ୍ଦ)—(grammar) Etymological and conventional (meanings) or (word) conveying such meanings. (ଯଥା, ଉଦ୍ଭିଦ ଶବ୍ଦର ଯୌଗିକରୂଢ଼ ଅର୍ଥ ବୃକ୍ଷଲତାଦି) ।
Jaugika rurdha

**ଯୌଜନଶତିକ**—ସ. ବିଣ ପୁଂ—( ଯୋଜନ ଶତ+ଇକ )—୧ । ଯୋଜନଶତ ଗାମୀ—1. Proceeding for 800 miles; walking a distance of 800 miles. ୨ । ଯୋଜନଶତବ୍ୟାପୀ—2. Extending over 800 miles.
Jaujana satika
(ଯୌଜନଶତିକୀ—ସ୍ତ୍ରୀ)

**ଯୌଜନିକ**—ସ. ବିଣ—(ଯୋଜନ+ଇକ)—୧ । ଯୋଜନଦୂର ପଥ ଗମନକ୍ଷମ—1. Able to walk a distance of 8 miles. ୨ । ଯୋଜନବ୍ୟାପୀ—2. Extending over 8 miles.
Jaujanika
(ଯୌଜନିକୀ—ସ୍ତ୍ରୀ)

**ଯୌତ୍(ତୃ)ଧାତୁ**—ସ.—ଯୋଗକରିବା; ଯୋଡ଼ିବା—To join together (Apte).
Jaut (rd) root

**ଯୌତ(ତୁ)କ**—ସ. ବି—(ଯୁତ=ବରକନ୍ୟା, ବିବାହ+କ+ଅ, ବରକନ୍ୟାଙ୍କ ଦ୍ୱାରା ବା ବିବାହକାଳରେ ପ୍ରାପ୍ତ)—୧ । ଔଦାହିକ; ବିବାହ କାଳରେ ଦମ୍ପତିଙ୍କ ଦ୍ୱାରା ଲବ୍ଧ ଧନସମ୍ପତ୍ତି ଆଦି—1. Dower; dowry; marriage-gift or present. ୨ । ଅନ୍ନପ୍ରାଶନାଦି ସମୟରେ ଶିଶୁ ଦ୍ୱାରା ଉପହାରରୂପେ ପ୍ରାପ୍ତ ଧନ—2. Presents given to an infant on the occassion of its various ceremonies such as annaprāśana (taking rice for the first time). ୩ । କନ୍ୟା ବିବାହ କାଳରେ ଯେଉଁ ଧନ ଉପହାରରୂପେ ପ୍ରାପ୍ତ ହୁଏ—3. Any property got by a bride on the occasion of her marriage. [ଦ୍ର—ହିନ୍ଦୁଶାସ୍ତ୍ର ଅନୁସାରେ ସ୍ତ୍ରୀର ବିବାହ କାଳରେ ପ୍ରାପ୍ତ ହୋଇଥିବା ଧନ ତାହାର ଏକାଧିକାରଭୁକ୍ତ ଧନ (ସ୍ତ୍ରୀଧନ) ଅଟେ । ଏ ଧନକୁ ସ୍ତ୍ରୀର ମୃତ୍ୟୁପରେ ସ୍ୱାମୀର ଉତ୍ତରାଧିକାରୀମାନେ ନ ପାଇ ତହିଁରେ ପ୍ରଥମରେ ତାହାର କନ୍ୟା ଅଧିକାରିଣୀ ହୁଏ । ମୁସଲମାନ୍-ମାନଙ୍କ ଯୌତୁକ ପ୍ରଥା ହିନ୍ଦୁମାନଙ୍କଠାରୁ ପୃଥକ୍ । ହିନ୍ଦୁ କନ୍ୟାର ପିତ୍ରାଳୟରୁ ପାଇବା ଯୌତୁକରେ ସ୍ୱାମୀ ଓ ସ୍ତ୍ରୀ ଉଭୟେ ଅଧିକାରୀ ହୁଅନ୍ତି । କିନ୍ତୁ ମୁସଲମାନ୍ ସ୍ତ୍ରୀକୁ ସ୍ୱାମୀ ନଗଦ କିମ୍ବା ଚୁକ୍ତି ଦ୍ୱାରା ଯେଉଁ ଯୌତୁକ (ଦେନ-ମେହେର୍) ଦିଅନ୍ତି ବା ଦେବାକୁ ଉତ୍ସର୍ଗ ବା ଅଙ୍ଗୀକାର କରନ୍ତି, ତହିଁରେ ସ୍ୱାମୀଙ୍କ ଜୀବଦ୍ଦଶାରେ ଓ ସ୍ୱାମୀଙ୍କ ମୃତ୍ୟୁପରେ ସ୍ତ୍ରୀର ପୂର୍ଣ୍ଣ ଅଧିକାର ପ୍ରବର୍ତ୍ତେ ଓ ଏହା ବିବାହ ସମୟରେ ବା ପରେ ସ୍ତ୍ରୀକୁ ଦିଆ ନ ଯାଇ ବାକି ରହିଥିଲେ, ମୃତ ସ୍ୱାମୀଙ୍କ ତ୍ୟକ୍ତ ସମ୍ପତ୍ତିରୁ ସ୍ତ୍ରୀର ପ୍ରାପ୍ୟ ଯୌତୁକ ଆଦାୟ ନ ହେବା ପର୍ଯ୍ୟନ୍ତ ଉକ୍ତ ତ୍ୟକ୍ତ ସମ୍ପତ୍ତିକୁ ସ୍ୱାମୀଙ୍କ ଉତ୍ତରାଧିକାରୀମାନେ ଖାଇ ପାରନ୍ତି ନାହିଁ ।] ୪ । କୌଣସି ବ୍ୟକ୍ତିର ସ୍ୱକୀୟ ଧନ—4. Any private property (Apte). ସ. ବିଣ—୧ । କୌଣସି ବ୍ୟକ୍ତିଙ୍କ ଏକାଧିକାରଭୁକ୍ତ (ଧନ)—1. (property) Rightfully or exclusive belonging to a person (Apte). ୨ । ବିବାହ କାଳରେ ପ୍ରାପ୍ତ (ଧନ)—2 (property) Got as dowry or marriage gift.
Jauta (tu) ka

**ଯୌତବ**—ସ. ବି —(ଯୋତୁ+ଅ)—ପରିମାଣ—A measure in general (Apte.)
Jautaba

**ଯୌଥ**—ସ. ବିଣ – (ଆଧୁନିକ ବ୍ୟବହାର) (ଯୁଥ+ଅ; ଯୁଥ=ପଶୁ ପକ୍ଷୀଙ୍କ ଗୋଷ୍ଠୀ; ଯୁଥ ଶବ୍ଦ ସାଧାରଣତଃ ମନୁଷ୍ୟ ସମୂହର ଅର୍ଥରେ ବ୍ୟବହୃତ ହୁଏ ନାହିଁ)—୧ । ଗୋଷ୍ଠୀ ବା ଯୂଥ ବା ଦଳ ସମ୍ବନ୍ଧୀୟ—1 Relating to a crowd or company. ୨ । ଦଳର ଅଧିକାରଭୁକ୍ତ; ଗୋଷ୍ଠୀର ସମସ୍ତ ବ୍ୟକ୍ତିଙ୍କ ଅଧିକାର ଭୁକ୍ତ; ଇଜମାଲି—2. Joint.
Jautha
**সাঝা**
यौथ

**ଯୌଥ କ(କୋ)ମ୍ପାନୀ**—ଦେ. ବି—(ଆଧୁନିକ ବ୍ୟବହାର; ସଂ. ଯୌଥ+ଇଂ. କୋମ୍ପାନୀ) —ବହୁ ଲୋକଙ୍କ ସମବାୟରେ ଗଠିତ, ଦଳ—Joint-stock company.
Jauthaka[ko]mpāni
(ଯୌଥ ସଂଘ – ସଂସ୍କୃତରୂପ)
**সাঝাকারবার, সাঝীকম্পানী** यौथ कुम्पानी

**ଯୌଥ କାରବାର**—ଦେ. ବି —ଏକାଧିକ ବ୍ୟକ୍ତିଙ୍କ ସମ୍ମିଳିତ ଧନଦ୍ୱାରା ଚଳିତ ବ୍ୟବସାୟ; ଯେଉଁ ବ୍ୟବସାୟରେ ବହୁସଂଖ୍ୟକ ସ୍ୱାମୀଙ୍କ ଧନ ଲାଗେ—Jointstock business.
Jautha kārabāra
यौथ व्यवसाय
**সাঝা কারবার**

**ଯୌଥ ଧନ**—ସଂ. ବି.—(ଆଧୁନିକ) - ଇଜମାଲି ଧନ ବା ପାଣ୍ଠି—Joint fund; fund raised from many people or belonging jointly to many persons.
Jautha dhana
यौथ धन
**সাঝা ধন**

**ଯୌଥ ସମ୍ପତ୍ତି**—ସଂ. ବି.— (ଆଧୁନିକ) (କର୍ମଧା)—ଇଜମାଲି ସମ୍ପତ୍ତି Joint property.
Jautha sampatti

**ଯୌଥିକ**—ସଂ ବିଣ —(ଯୂଥ+ଇକ)—୧ । ଯୂଥ ବା ଦଳ ସମ୍ବନ୍ଧୀୟ—
Jauthika 1. Belonging to or relating to a flock or herd. ୨ । ଦଳବଦ୍ଧ ହୋଇ ରହୁଥିବା (ଜୀବ)— [ହି. ଶ.] —2. (animals) Living in flocks; gregarions. ସଂ. ବି. ପୁଂ—ସଙ୍ଗୀ—Companion; (ଯୌଥିକୀ—ସ୍ତ୍ରୀ) comrade (Apte).

**ଯୌଧି**—ସଂ. ବିଣ ପୁଂ—ଯୁଦ୍ଧପ୍ରିୟ—Warlike; martial (Apte).
Jaudhi ସଂ. ବି. ପୁଂ—ଯୋଦ୍ଧା (ହି. ଶ.)— Warrior; soldier.

**ଯୌଧିଷ୍ଠିର**—ସଂ. ବିଣ.—( ଯୁଧିଷ୍ଠିର+ସମ୍ବନ୍ଧାର୍ଥେ ଅ )—ଯୁଧିଷ୍ଠିର
Jaudhisthira ସମ୍ବନ୍ଧୀୟ—Relating to Judhishthira.

**ଯୌଧେୟ**—ସଂ. ବି.—(ଯୋଧ+ସ୍ୱାର୍ଥେ ଏୟ)—୧ । ଯୋଦ୍ଧା—
Jaudheya 1. Warrior. ୨ । ଯୋଦ୍ଧାର ପୁତ୍ର—2. The son of a warrior. ୩ । ପ୍ରାଚୀନ କାଳର ଯୁଦ୍ଧପ୍ରିୟ ଭାରତବାସୀ ଜାତି ବିଶେଷ—3 Name of a warlike tribe of ancient India.
[ ଦ୍ର—ଏ ଯୋଦ୍ଧା ଜାତି ଉତ୍ତରପଶ୍ଚିମ ଭାରତରେ ରହୁଥିଲେ । ପାଣିନି ଏ ଜାତିର ଉଲ୍ଲେଖ କରିଅଛନ୍ତି । ବୌଦ୍ଧ ଯୁଗରେ ଏ ଜାତିର ଖୁବ୍ ବଳ ଓ ଆଦର ଥିଲା । ଏ ଜାତିର ରାଜାମାନଙ୍କ ଅମଳର ମୁଦ୍ରାମାନ ଆଜିକାଲି ଭୂଗର୍ଭରୁ ମିଳୁଅଛି । ପୁରାଣ ମତରେ ଏ ଜାତି ଯୁଧିଷ୍ଠିରଙ୍କ ବଂଶରୁ ଉତ୍ପନ୍ନ ହୋଇଥିଲେ—ହି. ଶ.]
୪ । ଯୁଧିଷ୍ଠିରଙ୍କ ପୁତ୍ର ଓ ରାଜା ଶୈବ୍ୟଙ୍କ ଦୌହିତ୍ର ( ହି. ଶବ୍ଦସାଗର) —
4. Name of a son of Judhishthira.

**ଯୌନ**—ସଂ. ବିଣ.—( ଯୋନି+ସମ୍ବନ୍ଧେ. ଅ; ଯୋନିର ଯୋଗରୁ ବା
Jauna ସମ୍ବନ୍ଧରୁ ଆଗତ )—୧ । ଯୋନି ସମ୍ବନ୍ଧୀୟ—
(ଯୌନୀ—ସ୍ତ୍ରୀ) 1. Relating to the female organ. ୨ । ମାତୃଗର୍ଭ ସମ୍ବନ୍ଧୀୟ—2. Uterine. ୩ । ମାତୃଗର୍ଭ ଜାତ—3. Born from the mother's womb. ୪ । ବିବାହସମ୍ବନ୍ଧୀୟ—4. Matrimonial; resulting from marriage. ବି.— ୧ । ଯୋନି ସମ୍ବନ୍ଧୀୟ ପାପ, ନୀତ ଯୋନି ବା ନିଷିଦ୍ଧ ଯୋନିରେ ସଙ୍ଗମ କରିବା ଜନିତ ପାପ—1. Incest; sexual sin committed by a man; sin due to a man cohabiting with a female of prohibited decree. ୨ । ବିବାହ—2. Marriage (Apte). ୩ । ବିବାହ ସମ୍ବନ୍ଧ— 3. Matrimonial alliance (Apte). ୪ । ମହାଭାରତରେ ଉଲ୍ଲିଖିତ ଉତ୍ତରାପଥର ଏକ ପ୍ରାଚୀନ ଜାତି (ଏମାନେ ପୂର୍ବେ ଯବନ ଥିବା ଅନୁମିତ) (ହି. ଶବ୍ଦସାଗର) 4. Name of an ancient tribe of North India.

**ଯୌନ ନିର୍ବାଚନ**—ସଂ. ବି.—(ଆଧୁନିକ)—ଆଧୁନିକ ବିଜ୍ଞାନ ମତରେ
Jauna nirbāchana ଜୀବମାନଙ୍କର ସଙ୍ଗମ କରି ସମ୍ବନ୍ଧରେ ନିର୍ବାଚନ ସମ୍ବନ୍ଧୀୟ ମତବାଦ—The theory of sexual selection in the mordern scientific theory of Evolution. [ଦ୍ର—ଯେଉଁ ପ୍ରାଣୀ ସଙ୍ଗେ ଅନ୍ୟ ଯେଉଁ ବିପରୀତ ଲିଙ୍ଗ ବିଶିଷ୍ଟ ପ୍ରାଣୀର ସାମଞ୍ଜସ୍ୟ ଥାଏ ସେ ତାହାକୁ ବାଛି କରି ତାହାର ସହବାସ କରେ ଓ ଉଭୟ ମିଳନରୁ ତଜ୍ଜାତୀୟ ପ୍ରାଣୀଙ୍କ ବଂଶ ବୃଦ୍ଧି ହୁଏ, ଯୌନ ନିର୍ବାଚନ ମତବାଦ ଏହାହିଁ ଘୋଷଣା କରୁଅଛି । ]

**ଯୌନ ପାପ**—ସଂ. ବି.—(କର୍ମଧା)—ନୀଚ ବା ନିଷିଦ୍ଧ ଯୋନି ସଙ୍ଗମ-
Jauna pāpa ଜନିତ ପାପ—Sexual sin; incest; adultery. [ଦ୍ର—ଗୁରୁପତ୍ନୀ ଗମନ, ପରସ୍ତ୍ରୀ ଗମନ, ଉଚ୍ଚ ବର୍ଣ୍ଣର ପୁରୁଷର ନୀଚ ସ୍ତ୍ରୀ ଗମନ, ନୀଚ ବର୍ଣ୍ଣର ପୁରୁଷର ଉଚ୍ଚ ଜାତୀୟା ସ୍ତ୍ରୀ ସଙ୍ଗେ ସହବାସ, ନିକଟ ସମ୍ପର୍କୀୟା ସ୍ତ୍ରୀ ଓ ବୃଷଳୀ ସଙ୍ଗେ ସହବାସ ଇତ୍ୟାଦି କଲେ ଯୌନପାପ ହୁଏ ।]

**ଯୌନ ସମ୍ବନ୍ଧ**—ସଂ. ବି.—(କର୍ମଧା)—୧ । ବୈବାହିକ ସମ୍ବନ୍ଧ—
Jauna sambandha 1. Marital relationship; relationship by marriage. ୨ । ଏକ ମାତାଙ୍କ ଗର୍ଭରୁ ଭିନ୍ନଭିନ୍ନ ପିତାଙ୍କ ଔରସରେ ଜାତ ହୋଇଥିବା ଜନିତ ସମ୍ବନ୍ଧ—2. Uterine relationship. ୩ । ବୈବାହିକ ମିଳନ—3. Marital alliance. ( ଯୌନ ସଂବନ୍ଧ—ବିଣ. ପୁଂ )

**ଯୌବତ**—ସଂ. ବି (ଯୁବତୀ+ସମୂହାର୍ଥେ. ଅ)—୧ । ଯୁବତୀସମୂହ—
Jaubata 1. A gathering of young ladies; a bevy of young ladies. ୨ । ଉତ୍ତମ ବସ୍ତ୍ରାଳଙ୍କାରରେ ସୁସଜ୍ଜିତା ଯୁବତୀ ନର୍ତ୍ତକୀମାନଙ୍କର ନୃତ୍ୟ; ଲାସ୍ୟ ନୃତ୍ୟର ପ୍ରକାରବିଶେଷ—2. A ring-dance by well-decorated young girls. [ ଦ୍ର—ଏ ନୃତ୍ୟରେ ବହୁତଗୁଡ଼ିଏ ନଟୀ ଏକ ସଙ୍ଗେ ନାଚନ୍ତି । ଘଉଳା, ଗଦବା, ସାସୀ, କନ୍ଧଆଦିଙ୍କ କରମା ନାଚ ଯୌବତ ଅଟେ । ] ୩ । ପରିମାଣ; ମାପ—3. Measure. ୪ । ଯୁବତୀର ଭାବ ବା ଅବସ୍ଥା—4. The state or quality of a young woman (Apte).

**ଯୌବତେୟ**—ସଂ. ବି. ପୁଂ (ଯୁବତୀ+ଅପତ୍ୟାର୍ଥେ. ଏୟ)—ଯୁବତୀ-
Jaubateya ଗର୍ଭଜାତ ପୁତ୍ର—The son of a young (ଯୌବତେୟୀ—ସ୍ତ୍ରୀ) woman.

**ଯୌବନ**—ସଂ. ବି (ଯୁବନ୍+ଭାବେ. ଅ)—ଯୁବାବସ୍ଥା; ତାରୁଣ୍ୟ; ୧୬
Jaubana ବର୍ଷ ବୟସରୁ ୩୦ ବର୍ଷ ବୟସ ପର୍ଯ୍ୟନ୍ତ ଜୀବତକାଳ—Youth; prime of life; adolescence (between 16 and 30 years of age); puberty. [ ଦ୍ର—ବାଲ୍ୟକାଳ ଓ ବାର୍ଦ୍ଧକ୍ୟର ମଧ୍ୟାବସ୍ଥାକୁ ଯୌବନ ବୋଲାଯାଏ । କେହି କେହି ବାଲ୍ୟକାଳର ଶେଷ ଓ

ବାର୍ଦ୍ଧକ୍ୟର ଆରମ୍ଭ ମଧ୍ୟରେ ପ୍ରଥମେ ଯୌବନ ଓ ପରେ ପ୍ରୌଢ଼ତ୍ୱ, ଏପରି ୨ଟି ଅବସ୍ଥା ଥିବା କହନ୍ତି । ବାଲ୍ୟକାଳ ୧୫ବର୍ଷ ବୟସରେ ଶେଷ ହୁଏ । ୧୬ ବର୍ଷ ବୟସରେ ଯୌବନ ଆରମ୍ଭ ହୁଏ । ୩୦ ବର୍ଷ ବୟସ ପର୍ଯ୍ୟନ୍ତ ଯୌବନ ରହେ, ତା ପରେ ପ୍ରୌଢ଼ତ୍ୱ ହୁଏ ଓ ୬୦ ବର୍ଷ ବୟସ ପରେ ବାର୍ଦ୍ଧକ୍ୟ ଆସେ ।] ୨। ଯୁବକକୋଚିତ କର୍ମ—2. Any youthful or juvenile act (Apte). ୩। ଯୁବକଙ୍କ ବା ଯୁବତୀଙ୍କ ଦଳ—3. A number of young persons, especially young women (Apte). ଦେ. ବି (ସଂ. ଯୌବନ ଲକ୍ଷଣ)—ଯୁବତୀ ସ୍ତ୍ରୀର କଠିନ ବର୍ତ୍ତୁଳ ସ୍ତନ—The plump breasts of a youthful girl. [ ଉ—ରୁଣ୍ଡ ଝୁଣ୍ଡ ହୋଇ ଗାଧୋଇ ପାଧୋଇ କରୁଛୁ ଅସୁଛି ଗୋସ୍ତି, ତାକୁ ଯୌବନ ସବୁ ଦିଶୁଅଛି ସବୁଲୁଗା ଫୁଟି କରି । ଭଗ ।]

**ଯୌବନକ**—ସଂ. ବି (ଯୌବନ + ସ୍ୱାର୍ଥେ. କ)—ଯୌବନ—
Jaubanaka Youth (Apte).

**ଯୌବନ କଣ୍ଟକ**—ସଂ. ବି (ମ. ପ. ଲୋ)—କଠବରୁଣ (ଦେଖ)
Jaubana kantaka Kāthabaruṇa. (See)
(ଯୌବନ ପିଡ଼କା—ଅନ୍ୟରୂପ)

**ଯୌବନ ଗର୍ବ**—ସଂ. ବି (ମ. ପ. ଲୋ) - ଯୁବା ହୋଇଥିବା ଯୋଗୁଁ
Jaubana garba ଗର୍ବ—The pride of youth; (ଯୌବନ 'ଦର୍ପ—ଅନ୍ୟରୂପ) youthful pride.
[ଯୌବନ ଗର୍ବିତ, ଯୌବନଦୃପ୍ତ—ସଂ. ବିଣ ପୁ °

**ଯୌବନ ଚାଞ୍ଚଲ୍ୟ**—ସଂ. ବି (୬ଷ୍ଠୀ ତତ୍)—ଯୌବନ କାଳରେ ଉପସ୍ଥିତ
Jaubana chānchalya ହେବା ସ୍ୱାଭାବିକ ଚଞ୍ଚଳତା—Restlessness natural to youth
( ଯୌବନଚାପ [ଚାପଲ୍ୟ]—ଅନ୍ୟରୂପ )

**ଯୌବନ ଚିହ୍ନ**—ସଂ. ବି—ଯୌବନ ଲକ୍ଷଣ (ଦେଖ)
Jaubana chihna Jaubana lakshaṇa. (See)

**ଯୌବନ ଦଶା**—ସଂ. ବି—ଯୌବନାବସ୍ଥା (ଦେଖ)
Jaubana daśā Jaubanābasthā. (See)

**ଯୌବନବାନ୍**—ସଂ. ବିଣ. ପୁଂ (ଯୌବନ+ ବତୁ; ୧ମା. ୧ବ)—
Jaubānabān ଯୁବା; ଯୁବକ— Youthful.
[ ଯୌବନବତୀ—ସ୍ତ୍ରୀ ]

**ଯୌବନ ଭାର**—ସଂ.ବି(ମ.ପ.ଲୋ)—ଯୌବନର ପୂର୍ଣ୍ଣତାଜନିତ ରୂପାଦ୍ଧ
Jaubanabhāra ଗର୍ବର ଗୁରୁତ୍ୱ—The majesty of youth possessing a young person (specially a woman).

**ଯୌବନ ଲକ୍ଷଣ**—ସଂ. ବି. ( ୬ଷ୍ଠୀ ତତ୍ )—୧ । ସ୍ତ୍ରୀ ଓ ପୁରୁଷଙ୍କ
Jaubana lakshaṇa ଅଙ୍ଗରେ ଓ ମନରେ ଯୌବନ ଉଦୟ ସଙ୍ଗେ ସଙ୍ଗେ ପ୍ରକାଶିତ ହେବା ଚିହ୍ନମାନ—1. The signs or indications of youth. [ଯଥା—ପୁରୁଷଙ୍କର ଶ୍ମଶ୍ରୁ, ସ୍ୱରର କଠୋରତା, ସ୍ତ୍ରୀଙ୍କର ଋତୁସ୍ରାବ, ସ୍ତନ ଜଘନାଦିର ପୃଥୁଳତା, କେଶ ଚାପଲ୍ୟାଦି ଯୌବନଲକ୍ଷଣ ଅଟେ ।] ୨ । ଯୌବନଜନ୍ୟ ସୌନ୍ଦର୍ଯ୍ୟ—2. Youthful charm or loveliness (Apte). ୩ । ଯୁବତୀ ସ୍ତନ (ହ. ଶ)—3. The female breast (Apte).

**ଯୌବନ ଲାବଣ୍ୟ**—ସଂ. ବି. ( ମ. ପ. ଲୋ )—ଯୁବାକାଳ ଉପସ୍ଥିତ
Jaubana lābanya ହେଲେ ଯୁବକଯୁବତୀଙ୍କଠାରେ ଲକ୍ଷିତ ମଧୁର ରମଣୀୟତା—The sweet charm of youth.

**ଯୌବନ ଶ୍ରୀ**—ସଂ. ବି. (୬ଷ୍ଠୀ ତତ୍)—ତରୁଣ ବୟସରେ ସ୍ତ୍ରୀ ପୁରୁଷଙ୍କ-
Jaubana śri ଠାରେ ଜାତ ହେବା ସ୍ୱାଭାବିକ ସୌନ୍ଦର୍ଯ୍ୟ—The beauty or natural charm of youth.

**ଯୌବନ ସଙ୍ଗୀ**—ସଂ. ବି. ପୁଂ—ଯୁବାକାଳର ସାଙ୍ଗ—One's com-
Jaubana sangi panion of youth.
(ଯୌବନ ସଙ୍ଗିନୀ, ଯୌବନ ସହଚରୀ—ସ୍ତ୍ରୀ)
(ଯୌବନ ସହଚର, ଯୌବନ ସୁହୃଦ୍—ଅନ୍ୟରୂପ)

**ଯୌବନ ସଞ୍ଚାର**—ସଂ. ବି. (୬ଷ୍ଠୀ ତତ୍)—ଯୌବନୋଦୟ ( ଦେଖ )
Jaubana sanchāra Jaubanodaya ( See )

**ଯୌବନ ସୁଲଭ**—ସଂ. ବିଣ. (୭ମୀ ତତ୍)—ଯୁବାବସ୍ଥାରେ ସ୍ୱାଭାବିକ —
Jaubana sulabha Natural to youth.
(ଯଥା—ଯୌବନସୁଲଭଚାପଲ୍ୟ ।)

**ଯୌବନାବସ୍ଥା**—ସଂ. ବି. ( ରୂପକ; ଯୌବନ + ଅବସ୍ଥା )—ଯୁବାକାଳ;
Jaubanābasthā ଯୁବାବସ୍ଥା—The time or state of youth.

**ଯୌବନାରମ୍ଭ**—ସଂ. ବି. ( ୬ଷ୍ଠୀ ତତ୍; ଯୌବନ+ଅରମ୍ଭ )—
Jaubanārambha ୧ । ଯୌବନର ଅବିର୍ଭାବ—1. The prime of youth. ୨ । ନବ ଯୁବାବସ୍ଥା—
(ଯୌବନାଗମ—ଅନ୍ୟରୂପ) 2. Budding youth

**ଯୌବନାଶ୍ୱ**—ସଂ ବି. ( ଯୁବନାଶ୍ୱ+ଅପତ୍ୟାର୍ଥେ. ଅ )—ଯୁବନାଶ୍ୱ
Jaubanāśwa ରାଜାଙ୍କ ପୁତ୍ର ମାନ୍ଧାତା—Māndhātā, son
(ଯୌବନାଶ୍ୱକ—ଅନ୍ୟରୂପ) of King Jubanāśwa.

**ଯୌବନିକ**—ସଂ ବିଣ. (ଯୌବନ+ଇକ)—ଯୌବନ ସମ୍ବନ୍ଧୀୟ (ହ.ଶ)-
Jaubanika Youthful.

**ଯୌବନୋଦୟ**—ସଂ. ବି. ( ୬ଷ୍ଠୀ ତତ୍, ଯୌବନ+ଉଦୟ )—
Jaubanodaya ୧ । ଯୌବନର ଅବିର୍ଭାବ—1. The dawning or beginning of youth in a person. ୨ । ନବଯୁବାବସ୍ଥା—2. Budding youth.

**ଯୌବନସ୍ଥ**—ସଂ. ବିଣ. ପୁଂ ( ଯୌବନ+ସ୍ଥା ଧାତୁ+କର୍ତ୍ତୃ. ଅ )—
Jaubanastha ୧ । ଯୁବାବସ୍ଥା ପ୍ରାପ୍ତ—1. Youthful. ୨ । ବିବାହ କରିବା ଉପଯୁକ୍ତ—2. Marriageable
(ଯୌବନସ୍ଥା—ସ୍ତ୍ରୀ) (Apte).

**ଯୌବନୋଦ୍ଭବ**—ସଂ. ବି. ( ବହୁବ୍ରୀହି )—କାମଦେବ (ହ. ଶ)—
Jaubanodbhaba Cupid. ସଂ. ବିଣ—ଯୁବାବସ୍ଥାରୁ ଉତ୍ପନ୍ନ-Due to or produced by youth.

**ଯୌବନୋଦ୍ଭେଦ**—ସଂ.ବି.(୬ଷ୍ଠୀ ତତ୍)—୧ । ଯୁବକ ସୁଲଭ ଔତ୍ସୁକ୍ୟ-
**J̄au**banodbheda 1. Ardour of youthful passion (Apte). ୨ । (ମ. ଷ. ଭେ) ସକାମ ପ୍ରଣୟ—2. Sexual love (Apte). ୩ । (ବହୁବ୍ରୀହି) କାମ; ମଦନ—3. A name of Cupid (Apte).

**ଯୌବରାଜିକ**—ସଂ. ବିଣ. ( ଯୁବରାଜ+ସମ୍ବନ୍ଧାର୍ଥ. ଇକ )—ଯୁବରାଜ
**J̄au**barājika ସମ୍ବନ୍ଧୀୟ—Relating to an heir apparent.

**ଯୌବରାଜ୍ୟ**—ସଂ. ବି. (ଯୁବରାଜ+ଭାବ. ଯ)—ପିତାଙ୍କ ଉପସ୍ଥିତିରେ
**J̄au**barājya ପୁତ୍ରଙ୍କର ଯୁବରାଜ ପଦ ଓ ଅଧିକାର—The rank and duties of the heir-apparent to the throne when he becomes his father's associate in the administration

**ଯୌବରାଜ୍ୟାଭିଷିକ୍ତ**—ସଂ.ବିଣ. ପୁଂ(୭ମୀ ତତ୍)—ଯୁବରାଜ ରୂପେ ପିତାଙ୍କ
**J̄au**barājyābhishikta ଦ୍ୱାରା ପ୍ରତିଷ୍ଠିତ—Installed in the rank of the heir-apparent by the reigning king; crowned as heir-apparent. [ ଦ୍ର—ପ୍ରାଚୀନ କାଳରେ ରାଜାମାନେ ବୃଦ୍ଧ ହେଲେ ରାଜକାର୍ଯ୍ୟରୁ କିଛି ବିଶ୍ରାମ ନେବା ପାଇଁ ଯୁବରାଜଙ୍କୁ ଯୌବରାଜ୍ୟାଭିଷିକ୍ତ କରୁଥିଲେ ଓ ଯୁବରାଜମାନେ ରାଜକାର୍ଯ୍ୟ ବୁଝୁଥିଲେ ଓ ରାଜକାର୍ଯ୍ୟରେ ଅଭିଜ୍ଞତା ଲାଭ କରୁଥିଲେ ଓ ପିତାଙ୍କ ମୃତ୍ୟୁପରେ ରାଜାରୂପେ ଅଭିଷିକ୍ତ ହେଉଥିଲେ । ]

**ଯୌବରାଜ୍ୟାଭିଷେକ**—ସଂ. ବି—ଯୁବରାଜ ପଦରେ ପ୍ରତିଷ୍ଠିତ ହେବା
**J̄au**barājyābhisheka ଉପଲକ୍ଷରେ କରଣୀୟ ଉତ୍ସବ—The ceremony of installation of the heir-apparent to the rank of 'J̄ubarāja'; the crowning of the prince as the heir-apparent in the lifetime of the reigning king.

**ଯୌବରାଜ୍ୟାଭିଷେଚନ**—ସଂ. ବି—ପିତାଙ୍କ ଦ୍ୱାରା ପୁତ୍ରଙ୍କର ଯୁବରାଜ
**J̄au**barājyābhishechana ପଦରେ ପ୍ରତିଷ୍ଠା କରଣ—Installing of the heir apparent in the rank of J̄ubarāja by the reigning sovereign.

**ଯୌଷିଣ୍ୟ**—ସଂ. ବି.—(ଯୋଷା+ଇଣ୍ୟ)—୧ । ନାରୀତ୍ୱ—
**J̄au**shinya 1. Womanhood. (Apte). ୨ । ସ୍ତ୍ରୀଜାତି 2. The female world; womankind.

**ଯୌଷ୍ମାକ**—ସଂ. ବିଣ.—(ଯୁଷ୍ମଦ୍+ଅ; କଶାଭିନ)—୧ । ତୁମ୍ଭ
**J̄au**shmāka ସମ୍ବନ୍ଧୀୟ; ଭବଦୀୟ; ତ୍ୱଦୀୟ—1. Relating to you. ୨ । ତୁମ୍ଭର—2. Yours

**ଯୌଷ୍ମାକୀନ(ଣ)**—ସଂ. ବିଣ.—(ଯୁଷ୍ମଦ୍+ସମ୍ବନ୍ଧେ ଇନ; କଶାଭିନ)—
**J̄au**shmākina(ṇa) ୧ । ତୁମ୍ଭ ସମ୍ବନ୍ଧୀୟ—1. Relating to you. ୨ । ତୁମ୍ଭର—2. Your.

# ଯ୍

ଯ୍—'ଯ' ଅକ୍ଷରର 'ଯ୍' ଅନ୍ୟରୂପ ଅଟେ ଓ ଏହା 'ଯ'ର ଉଚ୍ଚାରଣଭେଦ ମାତ୍ର ।
Ya ଯେଉଁପରି ଅନ୍ତସ୍ଥ 'ଯ'ର ଉଚ୍ଚାରଣଭେଦଜ୍ଞାପକ 'ୟ' ବା 'ଯ୍'ର ସ୍ୱତନ୍ତ୍ର ଉଚ୍ଚାରଣ ଭାଷାରେ ଅଛି, ଅନ୍ତସ୍ଥ 'ବ'ର ଉଚ୍ଚାରଣଭେଦ 'ୱ' ର ସ୍ୱତନ୍ତ୍ର ଉଚ୍ଚାରଣ ଜ୍ଞାପକ ଅକ୍ଷର ଭାଷାରେ ନାହିଁ । ବର୍ତ୍ତମାନ ଯେଉଁପରି 'ଯ' ଓ 'ଯ୍' ସ୍ୱତନ୍ତ୍ର ଉଚ୍ଚାରଣ ହେଉଅଛି ପୂର୍ବେ ଅନ୍ତସ୍ଥ 'ବ' ସ୍ପଷ୍ଟରୂପେ 'ୱ' ବୋଲି ଉଚ୍ଚାରିତ ହେଉନଥିବାରୁ ସଂସ୍କୃତରେ ଅନ୍ତସ୍ଥ 'ବ'ର ସ୍ୱତନ୍ତ୍ର ଉଚ୍ଚାରଣ ପାଇଁ ଭିନ୍ନ ଅକ୍ଷର ନ ଥିଲା । ଏ ସମ୍ବନ୍ଧେ ଅନ୍ତଃସ୍ଥ 'ବ' ତଳେ ଲେଖାଥିବା ଟୀକା ଦେଖ ।

ସଂସ୍କୃତ ବ୍ୟାକରଣର ନିୟମ ଅନୁସାରେ 'ଯ' ଅକ୍ଷର ଶବ୍ଦର ଆଦ୍ୟରେ 'ଯ' ରୂପେ ଉଚ୍ଚାରିତ ହୁଏ ଓ ଅନ୍ୟତ୍ର 'ଯ୍' ହୁଏ । "ପଦ ମଧ୍ୟେ ପଦାନ୍ତେ ଚ 'ଯକାର' 'ଯ୍' ଉଚ୍ୟତେ ।" ଏଥିପାଇଁ 'ଯ୍'ଆଦ୍ୟରେଥିବା ଶବ୍ଦ ସଂସ୍କୃତରେ ନାହିଁ । କିନ୍ତୁ ଆଧୁନିକ ଇଂରାଜୀର 'y' ଅକ୍ଷର ଆଦ୍ୟଯୁକ୍ତ ଓ ଅନ୍ୟ କେତେକ ବୈଦେଶିକ ଶବ୍ଦକୁ 'ଯ୍' ରୂପେ ଉଚ୍ଚାରଣ କରାଯାଉଅଛି ଓ ପାଶ୍ଚାତ୍ୟ ପଣ୍ଡିତମାନେ 'ଯ' ଆଦ୍ୟରେ ଥିବା ଶବ୍ଦମାନଙ୍କୁ ଇଂରାଜୀରେ 'y' ଆଦ୍ୟକରି ଲେଖୁଅଛନ୍ତି । A variation of J̄ corresponding to y in English, ଯଥା—ଯବନ—Yavana ଯୋଗ—Yoga; କିନ୍ତୁ ଓଡ଼ିଆରେ 'ଯ' ଓ 'ଯ୍'ର ସ୍ୱତନ୍ତ୍ର ଉଚ୍ଚାରଣଗତ ପାର୍ଥକ୍ୟ ଥିବାରୁ 'ଯ୍' ଅକ୍ଷରାଦ୍ୟ ଶବ୍ଦମାନ ଏହି ଭାଷାକୋଷରେ ସ୍ୱତନ୍ତ୍ର 'ଯ୍' ଅକ୍ଷରତଳେ ଦିଆଗଲା ।

**ଯ୍ୟା**—ଦେ. ସର୍ବ (ସଂ. ଏତଦ୍)—୧ । ଏହା; ଏହି (ବସ୍ତୁ)—1 This;
Yā it. [ ଉ—ଯ୍ୟା ଶୁଣି ଦମୟନ୍ତୀ ନୟନ କମଳ, ଲୋତକ ଏ; କମଳରେ ହୋଇ ଛଳ ଛଳ । କୃଷ୍ଣସିଂହ. ମହାଭାରତ. ଯହ ବନ । ] ୨ । ଏହାର; ଏହି ବ୍ୟକ୍ତିର, ବସ୍ତୁର ବା ବିଷୟର—ଏବ 2. Its. [ ଉ—ତା ଯଶ କୀର୍ତ୍ତିର ବର୍ଦ୍ଧନ, ହୋଇବ କପିଳ ଈସକା ଯ୍ୟା ନାମ । ଜଗନ୍ନାଥ. ଭାଗବତ । ] [ ଦ୍ର—'ଯ୍ୟା' ଶବ୍ଦର

ବିଭିନ୍ନ ବିଭକ୍ତିରେ ୧ବଚନରେ ରୂପ, ଯଥା—୧ମା—ଯ୍ୟା, ୨ୟା—ଯ୍ୟାକୁ, ଯ୍ୟାଠାକୁ, ୩ୟା—ଯ୍ୟାଦ୍ୱାରା, ୫ମୀ—ଯ୍ୟାଠଉଁ, ଯ୍ୟାଠୁଁ, ଯ୍ୟାଠାରୁ, ୬ଷ୍ଠୀ—ଯ୍ୟା, ଯ୍ୟାର, ୭ମୀ—(ଯ୍ୟା—ଅନାଦରାର୍ଥକରୂପ; ଯ୍ୟେ—ଆଦରାର୍ଥକରୂପ) ଯ୍ୟାଠିଁ, ଯ୍ୟାଠେଇଁ, ଯ୍ୟାଠାରେ ।]

**ଯ୍ୟାକୁ**—ଦେ· ସର୍ବ (ଏକବଚନ)—୧ । ଏହାକୁ; ଏହି ବସ୍ତୁକୁ—
Yāku 1. To this; to it. ୨ । (ଅନାଦରାର୍ଥକ) ଏହି ଏକେ ବ୍ୟକ୍ତିକୁ ବା ଜନ୍ତୁକୁ—2. To this man or it ईसको (animal)

**ଯ୍ୟା ଘେନି**—ଦେ. ଅ—୧ । (ଅନାଦରାର୍ଥକ) ଏହି ବ୍ୟକ୍ତି ନିମନ୍ତେ—
Yā gheni 1. For this person. ୨ । ଏହି ବସ୍ତୁ ବା ବିଷୟ ଏବଜନ୍ତେ ନିମନ୍ତେ—2. For this thing or matter. ୩ । [ ଯ୍ୟା ଲାଗି, ଯ୍ୟା ଯୋଗେ(ଗୁଁ)—ଅନ୍ୟରୂପ ] ଏହି କାରଣରୁ—(ଯ୍ୟାଙ୍କ ଘେନି—ଆଦରାର୍ଥକ ଏକବଚନ ଓ ବହୁବଚନରୂପ) 3. For इसवास्ते this cause.

**ଯ୍ୟାଙ୍କ**—ଦେ. ସର୍ବନାମ—୧ । (ଆଦରାର୍ଥକ ୧ବ.)—ଏହି ବ୍ୟକ୍ତିଙ୍କର—
Yānka ଏଁବ ईनका 1. Of this person.
[ଯ୍ୟାଙ୍କର—ଅନ୍ୟରୂପ] ୨ । (ବହୁବଚନ) ଏହି ବ୍ୟକ୍ତିମାନଙ୍କର—2. Of these persons,

**ଯ୍ୟାଙ୍କ ଠଉଁ**—ଦେ. ସର୍ବ (ଆଦରାର୍ଥକ ଏକବଚନ ଓ ବହୁବଚନ) ୧ ।
Yānka ṭhaun̄ ଏହାଙ୍କଠାରୁ—1. From these. ୨ । ଏଁବ ଚେୟେ ईनसे ଏହାଙ୍କ ଅପେକ୍ଷା—2 Than these; [ଯ୍ୟାଙ୍କଠାରୁ, ଯ୍ୟାଙ୍କଠୁଁ—ଅନ୍ୟରୂପ] from this gentleman.

**ଯ୍ୟାଙ୍କ ଠା(ଠେ)ଇଁ**—ଦେ. ସର୍ବ—୧ । (ଆଦରାର୍ଥକ, ୧ବଚନ ଓ
Yānka thā(ṭhe)in̄ ଏଁରକାଛେ ईनसे ବହୁବଚନ) ଏହାଙ୍କ [ଯ୍ୟାଙ୍କଠାରେ, ଯ୍ୟାଙ୍କଠିଁ—ଅନ୍ୟରୂପ] ନିକଟରେ—Near this person; with this person or these persons.

**ଯ୍ୟାଙ୍କ ଠା(ଠେ)ଇଁକି**—ଦେ.ସର୍ବ—୧ । (୧ବଚନ)—ଏହାଙ୍କ ନିକଟକୁ—
Yānka ṭhā(ṭhe)in̄ki 1. To this; to this person.
(ଯ୍ୟାଙ୍କଠାକୁ, ଯ୍ୟାଙ୍କଠିକି, —ଅନ୍ୟରୂପ)
ଏଁବ କାଛେ इनको ୨ । (ବହୁବଚନ)—ଏହିମାନଙ୍କ ନିକଟରେ—
ଏଦେବକାଛେ इनलोगोंको 2. With these persons.

**ଯ୍ୟାଙ୍କ ମାନଙ୍କ**—ଦେ. ସର୍ବନାମ (ବହୁବଚନ)—ଏମାନଙ୍କ; ଏ ବ୍ୟକ୍ତି-
Yānka mānanka ମାନଙ୍କର—Of these persons.
ଏଦେବ ईन लोगोंका

**ଯ୍ୟାଙ୍କୁ**—ଦେ. ସର୍ବ-୧ । (ମାନ୍ୟାର୍ଥକ ୧ବ. ଓ ବହୁ) ଏହି ବ୍ୟକ୍ତିଙ୍କୁ—
Yānku 1. To this gentleman. ୨ । ଏହି ବ୍ୟକ୍ତି-
ଏଁକେ ईनको ଏଦିଗକେ ମାନଙ୍କୁ ବା ଜୀବମାନଙ୍କୁ—2. To इनलोगोंको these persons or animals.

**ଯ୍ୟାଙ୍କେ**—ପ୍ରାଦେ (ଗଞ୍ଜାମ) ସର୍ବ—୧ । (ମାନ୍ୟାର୍ଥକ ୧ବ)—ଏ ବ୍ୟକ୍ତି—
Yānke 1. This person. ୨ । (ବହୁବଚନ) ଏବ୍ୟକ୍ତିମାନେ—2. These persons.

**ଯ୍ୟାଠଉଁ**—ଦେ. ସର୍ବ (ଅନାଦରାର୍ଥକ)—୧ । ଏହି ବ୍ୟକ୍ତି ନିକଟରୁ;
Yāthaun̄ ଏହାଠାରୁ—1. From this person. ୨ । ଏ(ହି) ଏଚେୟେ ईससे ବ୍ୟକ୍ତି ବା ବିଷୟ ଅପେକ୍ଷା—2. Than this [ ଯ୍ୟାଠୁଁ, ଯ୍ୟାଠାରୁ—ଅନ୍ୟରୂପ ] person or thing

**ଯ୍ୟାଠାକୁ**—ଦେ. ସର୍ବ—ଏହି ବ୍ୟକ୍ତିର ନିକଟକୁ—
Yāṭhāku ଏଁରକାଛେ ईसको To this person.
(ଯ୍ୟାଠିକି, ଯ୍ୟାଠେଇଁକି—ଅନ୍ୟରୂପ)

**ଯ୍ୟାଠିଁ**—ଦେ ସର୍ବ—ଏହାଠାରେ—
Yāṭhin̄ ଏବ କାଛେ इससे In or with this man.
[ ଯ୍ୟାଠେଇଁ—ଅନ୍ୟରୂପ ]

**ଯ୍ୟାଡ଼ (ଇତ୍ୟାଦି)**—୧ । ଇଆଡ଼ ଇତ୍ୟାଦି (ଦେଖ)—1. Iārda etc
Yārda (etc) (See) ୨ । ଏଆଡ଼ ଇତ୍ୟାଦି (ଦେଖ)—
ईसतर 2. Eārda etc (See) [ଦ୍ର—ଯ୍ୟାଡ଼ ଶବ୍ଦର ୨ୟାବିଭକ୍ତି—ଏ(ହି)ଦିଗ ଯ୍ୟାଡ଼(ଡ଼ୁ)କୁ; ୫ମୀ· ଯ୍ୟାଡ଼ଠଉଁ, ଯ୍ୟାଡ଼ଠୁଁ, ୬ଷ୍ଠୀ ଯ୍ୟାଡ଼, ଯ୍ୟାଡ଼ର, ଯ୍ୟାଡ଼କା, ଯ୍ୟାଡ଼କାର, ୭ମୀ. ଯ୍ୟାଡ଼େ ହୁଏ । ]
୩ । ଏହି ଦିଗର; ଏହି ଅଞ୍ଚଳର—
3. Of this quarter or locality.

**ଯ୍ୟା ତା**—ଦେ. ସର୍ବ (ସ· ଏତଦ୍+ତଦ୍)—ଏହା ଏବଂ ତାହା—
Yā tā ଏଓ इसउस This and that.

**ଯ୍ୟାଦ୍ (ଇତ୍ୟାଦି)**—ବୈଦେ. ବି (ଫା)—ଇଆଦ୍ ଇତ୍ୟାଦି (ଦେଖ)
Yād (etc) Iād etc (See)

**ଯ୍ୟାଦ୍(ଦ)ଦ(ଦା)ସ୍ତ**—ବୈଦେ. ବି (ଫା. ଯ୍ୟାଦ୍ଦାଶ୍ତ୍)—
Yād(da)da(dā)st ଇଆଦ୍ଦାସ୍ତ (ଦେଖ)—Iād-dast (See)

**ଯ୍ୟା ପ(ସ)ରି**—ଦେ.ବି—ଏହି ବ୍ୟକ୍ତି ବା ବସ୍ତୁ ପରି—Like this.
Yā pa(sa)ri [ ଉ—ଯାଇ ଭୃତ୍ୟ ନିବେଦିବ ନିଜ ସ୍ୱାମୀହିତ. ଓବମତନ ସଭିରେ ଚତୁର ଦୂତ ନାହିଁ ଯ୍ୟା ପରି । ବଂଶୀଧର ऐसा ହଂସଦୂତ ଅନୁବାଦ ] (ଯ୍ୟାପରିକା, ଯ୍ୟାପରି, ଯ୍ୟାପିରିକ, —ଗ୍ରାମ୍ୟରୂପ)

**ଯ୍ୟାର**—ବୈଦେ. ବି—ଇଆର (ଦେଖ)
Yār Iār (See)

**ଯ୍ୟାର୍କି (ଇତ୍ୟାଦି)**—ବୈଦେ. ବି—ଇଆର୍କି ଇତ୍ୟାଦି (ଦେଖ)
Yār-ki (etc) Iār-ki etc (See)

**ଯ୍ୟାର**—ଦେ. ସର୍ବ (ଯ୍ୟା ଶବ୍ଦର ୬ଷ୍ଠୀ ୧ବ)—ଏ ବ୍ୟକ୍ତିର ବା ବସ୍ତୁର—
Yāra ଏର इसका Of this person or thing.

**ଯି(ୟୀ)ହୁଦୀ**—ବୈଦେ ବି ଓ ବିଣ—ଯୀହୁଦୀ (ଦେଖ)
Yii(yi)hudi यहुदी यीहुदी Jihudi (See)

**ୟୁ**—ବୈଦେ. ବି (ଇଂ)—ବୃକ୍ଷ-ବିଶେଷ—The name of a tree.
Yu [ଦ୍ର—ଇଂଲଣ୍ଡର ପର୍ଥ୍ ସାୟାର୍‌ରେ ଥିବା ଗୋଟିଏ ୟୁ ଗଛ ୩ହଜାର ବର୍ଷରୁ ଅଧିକ ଓ ଡର୍ବିସାୟାର୍‌ରେ ଆଉ ଗୋଟିଏ ଗଛ ୨ହଜାର ବର୍ଷରୁ ଅଧିକ ବଞ୍ଚି ରହିଅଛି ।] यू यु

**ୟୁକାଲିପ୍ଟଲ୍**—ବୈଦେ. ବି (ଇଂ)—ଇଉକାଲିପ୍ଟସ୍ ପତ୍ରରୁ ପ୍ରସ୍ତୁତ ତେଲ—
Yukāliptāl Eucalyptal; Eucalyptus oil.
ୟୁକାଲିପ୍‌ଟାଲ युकालिप्टल

**ୟୁକାଲିପ୍ଟସ୍**—ବୈଦେ. ବି (ଇଂ)—ଅଷ୍ଟ୍ରେଲିଆ ଆଦିରୁ ସୁଗନ୍ଧପତ୍ର-
Yukāliptas ବିଶିଷ୍ଟ ବୃକ୍ଷ ବିଶେଷ—Eucalyptus.
ୟୁକାଲିପ୍‌ଟାସ युकालिप्टस [ଇଉକାଲିପ୍ଟସ ତଳେ ଟୀକା ଦେଖ ।]

**ୟୁକ୍ଲିଡ୍**—ବୈଦେ. ବି. (ଏ ପୁସ୍ତକର ପ୍ରଥମ ଖଣ୍ଡ ସଂଶୋଧିତ ହେବ)—
Yuklid ଇଉକ୍ଲିଡ୍ (ଦେଖ) Iuklid (See)
[ଦ୍ର—ଏହି ଭାଷାକୋଷ ଗ୍ରନ୍ଥର ପ୍ରଥମ ଖଣ୍ଡ ୮୪୯ ପୃଷ୍ଠାର ପ୍ରଥମ ସ୍ତମ୍ଭରେ ଇଉକ୍ଲିଡ ଖ୍ରୀଷ୍ଟ ସପ୍ତଦଶ ଶତାବ୍ଦୀରେ ଜୀବିତ ଥିଲେ ବୋଲି ଭ୍ରମକ୍ରମେ ଲେଖା ହୋଇଅଛି । ପ୍ରକୃତରେ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଇଉକ୍ଲିଡ୍ ଜୀବିତ ଥିଲେ । ଅତଏବ ପ୍ରଥମ ଖଣ୍ଡରେ ଲେଖାଥିବା ବିଷୟ ପରିବର୍ତ୍ତେ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀ ପଢ଼ିବାକୁ ହେବ ।]

**ୟୁନାଇଟେଡ୍ ଷ୍ଟେଟ୍‌ସ୍**—ବୈଦେ. ବି. (ଇଂ)—ଇଉନାଇଟେଡ୍ ଷ୍ଟେଟ୍ସ
Yunāited shtet-s (ଦେଖ)—Iunāited shtets
য়ুনাইটেড ষ্টেটস युक्तराज्य (See)
[ଦ୍ର—ଏହା ଉତ୍ତର ଅମେରିକାର ୪୯ଟି ସ୍ୱାୟତ୍ତଶାସିତ ରାଜ୍ୟର ସମଷ୍ଟି । ଏଥିର ଉତ୍ତରରେ କାନାଡ଼ା, ଦକ୍ଷିଣରେ ମେକ୍ସିକୋ, ପୂର୍ବରେ ଅଟ୍‌ଲାଣ୍ଟିକ୍ ଓ ପଶ୍ଚିମରେ ପ୍ରଶାନ୍ତ ମହାସାଗର । ସବୁ ରାଜ୍ୟର ନିର୍ବାଚିତ ପ୍ରତିନିଧିମାନଙ୍କ ଦ୍ୱାରା ନିର୍ବାଚିତ ଜଣେ ପ୍ରେସିଡେଣ୍ଟଙ୍କ ଦ୍ୱାରା ଏ ଯୁକ୍ତରାଜ୍ୟ ଶାସିତ । ନିଉ ୟର୍କ୍ ଏହି ଯୁକ୍ତରାଜ୍ୟର ପ୍ରଧାନ ନଗର ।]

**ୟୁନାନ୍**—ବୈଦେ. ବି. (ଆ. ଗ୍ରୀକ୍ ଅୟୋନିୟା)—୧ । ଗ୍ରୀସ୍ ଦେଶର
Yunān ପଶ୍ଚିମ ଉପକୂଳ ନିକଟସ୍ଥ ଦ୍ୱୀପପୁଞ୍ଜ—1. Ionia;
য়ুনান युनान Ionian archipelago.
୨ । ଏସିଆର ପଶ୍ଚିମକୁ ଲାଗିଥିବା ପ୍ରାଚୀନ କାଳର ୟୁରୋପୀୟ ଅଞ୍ଚଳ—2. The ancient European countries lying just to the west of Asia
[ଦ୍ର—ପ୍ରାଚୀନ କାଳରେ ସଭ୍ୟତା, ଶିଳ୍ପକଳା, ସାହିତ୍ୟ, ଦର୍ଶନ ଇତ୍ୟାଦି ପାଇଁ ଏ ଅଞ୍ଚଳ ପ୍ରସିଦ୍ଧ ଥିଲା । ଅୟୋନିଆ ଦ୍ୱୀପ ଏହି ଅଞ୍ଚଳର ଅନ୍ତର୍ଗତ ଥିବାରୁ ୟୁରୋପର ଏ ସମସ୍ତ ଅଞ୍ଚଳ ୟୁନାନ୍ ନାମରେ ପ୍ରସିଦ୍ଧ ଥିଲା । ଭାରତୀୟ 'ଯବନ' ଶବ୍ଦ ଏହି 'ଅୟୋନୀୟ' ଶବ୍ଦରୁ ଆଗତ । ସିକନ୍ଦର (Alexander) ଏହି ଦେଶର ରାଜା ଥିଲେ ।]
୩ । ପ୍ରାଚୀନ ଗ୍ରୀସ୍ ଦେଶ—3. The ancient country of Greece.

**ୟୁନାନୀ**—ବୈଦେ. ବିଣ. (ଆ)—୧। ଗ୍ରୀସ୍ ଦେଶୀୟ—1. Grecian;
Yunāni Greek. ୨ । ୟୁନାନ୍ ଦ୍ୱୀପ ସମ୍ବନ୍ଧୀୟ—
য়ুনানী 2. Ionian. ୩ । ୟୁନାନ୍ ଦେଶୀୟ—3. Relating
युनानी to the country of Ionia.

**ୟୁନାନୀ ଚିକିତ୍ସା**—ଦେ. ବି. (ଆ. ୟୁନାନୀ+ସଂ. ଚିକିତ୍ସା)—ୟୁନାନ
Yunāni chikitsā ଦେଶରୁ ଗ୍ରୀକ୍‌ମାନଙ୍କ ଦ୍ୱାରା ପ୍ରଥମେ
য়ুনানী চিকিৎসা ଭାରତକୁ ଆନୀତ ଚିକିତ୍ସା ପ୍ରଣାଳୀ—
युनानी चिकित्सा The Ionian system of medicine first introduced in India by the Greeks.

**ୟୁନିଅନ୍**—ବୈଦେ. ବି. (ଇଂ)—ଗ୍ରାମ୍ୟ ଚୌକିଦାରି ଆଇନ୍ ଅନୁସାରେ
Yunian ଚୌକିଦାରି ଟାକ୍ସ ଆଦାୟ କରିବା ପାଇଁ ରାଜକର୍ମଚାରୀଙ୍କ
য়ুনিঅন ଦ୍ୱାରା ଯେଉଁ ଗ୍ରାମପୁଞ୍ଜରୁ ପଞ୍ଚାଏତ୍ ବ୍ୟକ୍ତିମାନେ
युनियन मनोनीत ହୁଅନ୍ତି—Village union formed under the Village Chowkidāri Act.
[ଦ୍ର—ଏହି ପଞ୍ଚାଏତ୍‌ରେ ସଭ୍ୟ ୫ ଜଣ ଥାଆନ୍ତି, ସେମାନଙ୍କୁ ସାଧାରଣ ପଞ୍ଚାଏତ୍ ଓ ସେମାନଙ୍କ ମଧ୍ୟରୁ ଟାକ୍ସ ଅସୁଲ କରିବା ବ୍ୟକ୍ତିଙ୍କୁ ତହସିଲ୍ ପଞ୍ଚାଏତ୍ ଓ ସଭାପତିଙ୍କୁ ପ୍ରେସିଡେଣ୍ଟ୍ ବା ପ୍ରେସିଡେଣ୍ଟ୍ ପଞ୍ଚାଏତ୍ ବୋଲାଯାଏ ।]

**ୟୁନିଅନ୍ କମି(ମେ)ଟି**—ବୈଦେ. ବି. (ଇଂ)—ଇଂରାଜ ସରକାରଙ୍କ
Yunian kami(me)ṭi ପ୍ରବର୍ତ୍ତିତ ସ୍ୱାୟତ୍ତଶାସନ ଆଇନ
(ୟୁନିଅନ ବୋର୍ଡ—ଅନ୍ୟରୂପ) ଅନୁସାରେ ଗଠିତ ଗ୍ରାମପୁଞ୍ଜ
য়ুনিঅন কমিটি (ଇଉନିଅନ୍)ରୁ ଟାକ୍ସ ଆଦାୟ କରି ତହିଁର ସ୍ୱାସ୍ଥ୍ୟ,
युनियन कमि(मे)टी ବିଦ୍ୟା ଶିକ୍ଷା, ନ୍ୟାୟ ବିଚାର, ଗ୍ରାମ୍ୟ ପଥ ଆଦିର ସୁବ୍ୟବସ୍ଥା କରିବା ପାଇଁ ଗ୍ରାମବାସୀମାନଙ୍କ ନିର୍ବାଚିତ ପ୍ରତିନିଧିମାନଙ୍କର ସଭା—Union Committee formed under the Local Self-government Act.
[ଦ୍ର—ଏ ସଭାର ମେମ୍ବର୍ (ସଭ୍ୟ) ଓ ଚେୟାରମାନ୍ (ସଭାପତି) ଥାଆନ୍ତି ।]

**ୟୁନିଅନ୍ ଟାକ୍ସ**—ବୈଦେ. ବି. (ଇଂ)—ୟୁନିୟନ୍ କମିଟିଙ୍କ ଦ୍ୱାରା
Yunian ṭāks ନିର୍ଦ୍ଧାରିତ ଟାକ୍ସ—The tax assessed by
য়ুনিঅন টাকস युनियन टैक्स the Union Committee.
(ୟୁନିଅନ୍ ଟିକସ୍—ଅନ୍ୟରୂପ)

**ୟୁନିଅନ୍ ଜାକ୍**—ବୈଦେ. ବି. (ଇଂ)—ବ୍ରିଟିଶ୍ ସାମ୍ରାଜ୍ୟର ପତାକା—
Yunian jāk The Union Jack (flag of the
য়ুনিঅন জ্যাক युनियन जैक British Empire.
[ଦ୍ର—ଗୋଟିଏ ଆୟତାକାର ନୀଳ ଦେହ ବିଶିଷ୍ଟ କନାରେ ପରସ୍ପରକୁ କାଟିଥିବା ଧଳା ଓ ନାଲି ରଙ୍ଗର ଡବଲ୍ ଛକ ଅଙ୍କିତ ହୋଇ ଏ ପତାକା ତିଆରି ହୁଏ ।]

**ୟୁନିଭର୍ସିଟି**—ବୈଦେ. ବି. (ଇଂ)—ବିଶ୍ୱବିଦ୍ୟାଳୟ—
Yunibharsiṭi University.
য়ুনিভার্সিটি [ଦ୍ର—ଦେଶର ଓ ସ୍ଥାନ ବିଶେଷର ନାମ ଅନୁସାରେ
युनिभर्सिटी ୟୁନିଭର୍ସିଟିର ନାମ ହୋଇଥାଏ । ଯଥା—ମାନ୍ଦ୍ରାଜ, କଲିକତା, ବମ୍ବେ, ପାଟନା, କେମ୍ବ୍ରିଜ୍ ଓ ଅକ୍ସଫୋର୍ଡ଼ ଇତ୍ୟାଦି ।]

**ୟୁରାଫ୍ରିକାନ୍**—ବୈଦେ. ବିଣ. (ଇଂ)—ଇଉରୋପୀୟ ଓ ଆଫ୍ରିକାବାସୀ
Yurāphrikān ମିଶ୍ରିତ ପିତାମାତାଙ୍କ ଔରସ ଜାତ—
য়ুরাফ্রিকান Eurafrican, of mixed European and
युराफ्रिकान African parentage or descent.
ବି., (ଇଂ)—ଇଉରୋପୀୟ ଓ ଆଫ୍ରିକାବାସୀ ମିଶ୍ରିତ ପିତାମାତାଙ୍କ ଔରସ ସନ୍ତାନ—An Eurafrican, a half-caste European and African.

ୟୁରାଲ୍—ଦେ· ବି. (ନାମ)—୧ । ଅସିଆ୍ଟିକ ରୁଷିୟା ଓ ଇଉରୋପୀୟ
Yural ରୁଷିୟାର ମଧ୍ୟବର୍ତ୍ତୀ ପର୍ବତ—1. The Ural mountains. ୨ । ଏହି ପର୍ବତର ଦକ୍ଷିଣରୁ ବାହାରି କାସ୍ପିୟାନ୍
যুরাল ହ୍ରଦରେ ପଡ଼ୁଥିବା ଗୋଟିଏ ନଦୀ—2 The Ural river.
युराल

ୟୁରିକ୍ ଏସିଡ୍—ବୈଦେ. ବି. (ଇଂ)—ମୂତ୍ରରୁ ପ୍ରାପ୍ତ ରାସାୟନିକ ଅମ୍ଳରସ-
Yurik esiḍ ବିଶେଷ—Uric acid.
যুরিক এসিড युरिक एसिड

ୟୁରୁପା—ବୈଦେ, ବି.(ଲାଟିନ୍)—ୟୁରୋପ ମହାଦେଶର ପ୍ରାଚୀନ ନାମ—
Yurupā Eurupa; the old Latin name of
যুরুপা Europe. [ଦ୍ର—ଅସିଆ, ୟୁରୁପା, ଅଫ୍ରିକା, ଅମେରିକା
युरोप ସଙ୍ଗତେ । ମଧୁସୂଦନ. ଉତ୍କଳ ଗାଥା ।]

ୟୁରେସିଆ—ବୈଦେ. ବି. (ଇଂ)—ୟୁରୋପ୍ ଓ ଅସିଆ ମହାଦେଶଦ୍ୱୟର
Yresiā ସମାହାର—Europe and Asia; Eurasia.
যুরেসিআ युरेसिया

ୟୁରେସିୟାନ୍—ବୈଦେ. ବିଣ ( ଇଂ )—୧। ୟୁରୋପ୍ ଓ ଏସିଆ ସମ୍ବନ୍ଧୀୟ
Yuresiyān —1, Eurasian. ୨ । ଭାରତୀୟ ଓ
(ୟୁରେସୀୟ—ଦେ. ରୂପ) ଇଉରୋପୀୟ ମିଶ୍ରିତ ପିତାମାତାଙ୍କ
যুরেসিয়ান ଔରସଜାତ—2.Born of mixed parents
युरेसियन (Indian and European), ବୈଦେ.
ବି—ଫିରଙ୍ଗୀ; ଭାରତୀୟ ଓ ୟୁରୋପୀୟ ରକ୍ତର ମିଶ୍ରଣରେ ଜାତ ଜାତି ବିଶେଷ—The Eurasians.

ୟୁରୋପ(ପ୍)—ଦେ. ବି ( ନାମ )—ଇଉରୋପ; ଅସିଆର ପଶ୍ଚିମକୁ
Yuropa(p) ଲାଗିଥିବା ମହାଦେଶ—Europe.
যুরোপ यो(यु)रोप,

ୟୁରୋପୀୟାନ—ବୈଦେ. ବିଣ ( ଇଂ )—ୟୁରୋପ ମହାଦେଶୀୟ—
Yuropiyān European.
(ୟୁରୋପୀୟ—ଦେ. ରୂପ) ବି—ୟୁରୋପବାସୀ ବ୍ୟକ୍ତି—
যুরোপিয়ান यो(यु)रोपियन An European.

ୟେ (ଇତ୍ୟାଦି—)ଦେ ( ସର୍ବନାମ )—୧ । ଏ ଇତ୍ୟାଦି (ଦେଖ )
Ye (etc) 1. E etc ( See )
ए इस ୨ । ଏହି ଇତ୍ୟାଦି ( ଦେଖ )—2. Ehi etc ( See )
[ ଦ୍ର—ସଂ. ଏତଦ୍ ଶବ୍ଦର ଅନାଦରାର୍ଥକ ୧ବଚନ ରୂପ 'ୟା' ଓ ଆଦରାର୍ଥକ ରୂପ 'ୟେ' । ୟେ ଶବ୍ଦର ରୂପମାଳ

| | ଏକବଚନ | ବହୁବଚନ |
|---|---|---|
| ୧ମା ବିଭକ୍ତି— | ୟେ | ୟେ, ୟେମାନେ, ୟେସବୁ । |
| ୨ୟା — | ୟାଙ୍କୁ | ୟେମାନଙ୍କୁ, ୟେସବୁଙ୍କୁ, ୟେ-ମାନଙ୍କୁ, ୟାଙ୍କମାନଙ୍କୁ, ୟାଙ୍କୁ । |
| ୩ୟା — | ୟାଙ୍କ ଦ୍ୱାରା<br>ୟାଙ୍କ ଦେଇ | ୟାଙ୍କଦ୍ୱାରା; ୟେମାନଙ୍କ [ୟେସବୁଙ୍କ]ଦ୍ୱାରା,ୟାଙ୍କମାନଙ୍କ ଦ୍ୱାରା । |
| ୫ମୀ — | ୟାଙ୍କଠାରୁ<br>ୟାଙ୍କଠଉଁ<br>ୟାଙ୍କଠୁଁ | ୟାଙ୍କଠାରୁ [ଠଉଁ, ଠୁଁ]; ୟେମାନଙ୍କଠାରୁ[ଠଉଁ, ଠୁଁ] ୟାଙ୍କମାନଙ୍କଠାରୁ [ ଠଉଁ, ଠୁଁ ] । |
| ୬ଷ୍ଠୀ — | ୟାଙ୍କର | ୟାଙ୍କର, ୟାଙ୍କମାନଙ୍କର, ୟେମାନଙ୍କର । |
| ୭ମୀ — | ୟାଙ୍କଠାରେ | ୟାଙ୍କଠାରେ; ୟେମାନଙ୍କ-ୟାଙ୍କଠି [ଠେଇଁ] ଠାରେ, ୟାଙ୍କମାନଙ୍କଠାରେ [ ଠେଇଁ, ଠିଁ ] । |

ୟେ ଶବ୍ଦର ଗଞ୍ଜାମ ପ୍ରାଦେଶିକ ରୂପ—୧ ମା ବିଭକ୍ତି ୧ ବଚନ ଓ ବହୁବଚନ ୟାଙ୍କେ—]

ୟେହି—ଦେ. ସର୍ବନାମ (ସଂ. ଏତଦ୍+ହି; ଏତଦ୍ଧି)—ଏହି [ ଦେଖ ]
Yehi (ବହୁବଚନ—ୟେହିମାନେ) Ehi ( See )

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଲ' ନ ମିଳିଲେ ଗାଈ' ଖୋଜିବେ; 'ମୂଢ' ନ ମିଳିଲେ 'ମୂଢ଼' ଖୋଜିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; ଆଗ୍ୟାଁ ନ ପାଇଲେ 'ଆଜ୍ଞା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

# ର

**ର**—ସପ୍ତବିଂଶ ବ୍ୟଞ୍ଜନବର୍ଣ୍ଣ ( ଏହାର ଉଚ୍ଚାରଣସ୍ଥାନ ମୂର୍ଦ୍ଧା, ତେଣୁ ଏହା
**Ra** ମୂର୍ଦ୍ଧନ୍ୟ ବର୍ଣ୍ଣ )—The 27th consonant corresponding to 'r' in English. [ ଦ୍ର—ଏ ବର୍ଣ୍ଣ ଉଚ୍ଚାରଣ କରିବା ବେଳେ ଜିଭର ଅଗ୍ରଭାଗଦ୍ୱାରା ମୂର୍ଦ୍ଧାକୁ ସାମାନ୍ୟଭାବରେ ସ୍ପର୍ଶ କରାଯାଏ । ଏ ବର୍ଣ୍ଣ ବର୍ଗ୍ୟ ଓ ଉଷ୍ମବର୍ଣ୍ଣ( ଯ୍, ଲ, ବ )ମାନଙ୍କର ଅନ୍ତର୍ବର୍ତ୍ତୀ ଥିବାରୁ ଏହାକୁ ଅନ୍ତଃସ୍ଥ ( ମଧ୍ୟସ୍ଥ ) ବର୍ଣ୍ଣ ବୋଲାଯାଏ ( ହି. ଶ. ) । ଏହା ଅନ୍ୟ ବ୍ୟଞ୍ଜନ ବର୍ଣ୍ଣ ସଙ୍ଗେ ଯୁକ୍ତାକ୍ଷର ହେଲେ ଭିନ୍ନ ଆକାର ଧାରଣ କରେ । ବର୍ଣ୍ଣର ପରେ ଯୁକ୍ତ ହେଲେ ବର୍ଣ୍ଣର ତଳେ '୍ର' ର ଫଳା ବୋଲାଯାଏ । ଯଥା—କ୍ର । ବର୍ଣ୍ଣର ପୂର୍ବରେ ଯୁକ୍ତ ହେଲେ ବର୍ଣ୍ଣର ମୁଣ୍ଡ ଉପରେ 'ର୍' ରେଫ୍ ବୋଲାଯାଏ । ଯଥା—ର୍କ । ର, ସ୍, ଃ ( ବିସର୍ଗ ) ଏହି ତିନୋଟି ଏକଜାତୀୟ ବର୍ଣ୍ଣ । ଏଥିପାଇଁ ଏମାନେ କେତେକ ସ୍ଥଳରେ ଓ ସନ୍ଧିରେ ପରସ୍ପରର ପରିବର୍ତ୍ତରେ ବ୍ୟବହୃତ ହୁଅନ୍ତି । ଯଥା—ତେଜସ୍ = ତେଜଃ; ପ୍ରାତଃ=ପ୍ରାତର୍; ପ୍ରାଦୁସ୍=ପ୍ରାଦୁର୍, ପ୍ରାଦୁଃ; ଧନୁସ୍+ଗୁଣ=ଧନୁର୍ଗୁଣ; ବହିସ୍, ବହିଃ+ଦେଶ=ବହିର୍ଦ୍ଦେଶ; ଯଶସ୍, ଯଶଃ+କର=ଯଶସ୍କର; ଧନୁସ୍, ଧନୁଃ+ଟଙ୍କାର=ଧନୁଷ୍ଟଙ୍କାର; ଧନୁସ୍+ଧର=ଧନୁର୍ଦ୍ଧର।

'ର'କୁ ଉଚ୍ଚାରଣ କରିବା ପାଇଁ 'ଲ' ଅପେକ୍ଷା ଅଧିକତର ଆୟାସ ଓ କୌଶଳ ଆବଶ୍ୟକ ହେଉଥିବାରୁ ଶିଶୁମାନେ ପ୍ରଥମେ ବାକ୍ୟ ବା ବର୍ଣ୍ଣ ଉଚ୍ଚାରଣ କରିବା ସମୟରେ 'ର' ସ୍ଥାନରେ 'ଲ' ( ଏହିପରି 'ଟ' ସ୍ଥାନରେ 'ତ', ଶ ସ୍ଥାନରେ ଚ ବା ଛ ) ଉଚ୍ଚାରଣ କରି ଥାଆନ୍ତି । ଯଥା—'ମେଘ ବରଷଇ ଟପର ଟପର' ସ୍ଥଳରେ 'ମେଘ ବଲଷଇ ତପଲ ତପଲ' ବୋଲନ୍ତି । 'ଢ'କୁ ଉଚ୍ଚାରଣ କରିବା ପାଇଁ 'ଲ' ଅପେକ୍ଷା ମଧ୍ୟ ଅଧିକତର ଆୟାସ ଓ କୌଶଳ ଲୋଡ଼ା ହେଉ ଥିବାରୁ ବାଉରି, କଣ୍ଡରା, ପାଣ ଆଦି ଇତର ଲୋକେ 'ଲ' ଅକ୍ଷରକୁ 'ର' ଉଚ୍ଚାରଣ କରନ୍ତି । ଯଥା—'କୋଉଲଟିଏ କିଣିଥିଲି ଗୁଡ଼ିଲ ଗଣ୍ଡିଏ ଦେଇ' ବାକ୍ୟକୁ 'କୋଉରଟିଏ କିଣିଥିଲି ଗୁଡ଼ିର ଗଣ୍ଡିଏ ଦେଇ' ଉଚ୍ଚାରଣ କରନ୍ତି ।

ଏହି 'ର' ର ଘୌଳାଃପୂନକ ଉଚ୍ଚାରଣ ମଧ୍ୟ ଅଛି । ଏହା ଇଂରାଜୀରେ burring sound. ଉକ୍ତ ଉଚ୍ଚାରଣ 'ଅର୍‌ର୍‌ମେଁ' (ଛେଳିର ବୋବାଳି), ଘଡ଼େଇ'ଫୁର୍‌ର୍' କରି ଉଡ଼ିଗଲା ଓ ପିଲାମାନଙ୍କ କାନରେ କୌତୁକାର୍ଥ ବୟଃସ୍ଥମାନେ 'କାନମାଳ ଭୁର୍‌ର୍‌ର୍' କହିବା ସମୟରେ ଶୁଣା ଯାଏ ।] ସଂ. ବି (ରା.ଧାତୁ=ଦାନ କରିବା+କର୍ତ୍ତୃ. ଅ; କିମ୍ବା ରମ୍ ଧାତୁ=କ୍ରୀଡ଼ା କରିବା+କର୍ତ୍ତୃ. ଅ )—୧ । ଅଗ୍ନି; ବହ୍ନି—1. Fire. ୨ । ଉତ୍ତାପ; ତାପ—2. Heat; warmth. ୩ । ଦାହନ—3. Scorching; burning. ୪ । କାମାନଳ, ଇନ୍ଦ୍ରିୟବୃତ୍ତି ଚରିତାର୍ଥ କରିବାର ବଳବତୀ ବାସନା—4. Burning sensation or lust. ୫। ପ୍ରେମ; ପ୍ରଣୟ—5. Love. ୬ । ବେଗ—6. Speed. ୭ । ସ୍ୱର୍ଣ୍ଣ—7. Gold. ୮ । ରଙ୍ଗ; ବର୍ଣ୍ଣ—8. Hue; colour. ସଂ. ବିଣ—ତୀକ୍ଷ୍ଣ, ପ୍ରଖର ( ହି. ଶ. )—Sharp; keen. ଦେ. ପ୍ରତ୍ୟୟ ( ସଂ. ଙସ )—୧ । ୬ଷ୍ଠୀ ବିଭକ୍ତିରେ ବିଶେଷ୍ୟ ପଦର ଶେଷରେ ଲାଗିବା ପ୍ରତ୍ୟୟ—1. An inflection corresponding to the English ( apostrophe 's ) to denote 6th or genitive case-ending. ( ଯଥା—ରାମର ପିତା ଆଜି କଲିକତା ଗଲେ । ) ୨ । ୧ମା ବିଭକ୍ତିରେ କର୍ତ୍ତୃପଦ ସଙ୍ଗେ ସ୍ୱାର୍ଥରେ ଯୁକ୍ତ ବିଭକ୍ତି ଅଳୁକ—2. The first case-ending; a suffix to denote the nominative case. ( ଯଥା—ସେ ଚୋରି କରିବାର ଗୃହଅଡ଼େ ସ୍ପଷ୍ଟ ହେଲା । ) ୩ । ୨ୟା ବିଭକ୍ତିସୂଚକ ବିଭକ୍ତି ଚିହ୍ନ—3. Second case-ending; a suffix to denote the objective case. ( ଯଥା—ହରିଚ ଚୋରି କରିବାର ମାନିଗଲା । )
୪ । ( ପଦ୍ୟ ) ୩ୟା ବିଭକ୍ତିସୂଚକ ବିଭକ୍ତି ଚିହ୍ନ—4. (Poetry) Third case-ending; a suffix to denote instrumental case. [ ଉ—ଆଲଟ ପିଛ ସୁଗ୍ରୀମର, ରାଜା ଖଟନ୍ତି ଶ୍ରୀହସ୍ତର । ଭୂପତି. ପ୍ରେମପଞ୍ଚାମୃତ ]୫ । (ପଦ୍ୟ) ୫ମୀ ବିଭକ୍ତିସୂଚକ ପ୍ରତ୍ୟୟ—5. (Poetry) A suffix denoting fifth case-ending; From; out of. [ ଉ—ଧୃତରାଷ୍ଟ୍ର ପାଣ୍ଡୁ ବିଦୁର, ଜନ୍ମିଲେ ବ୍ୟାସଙ୍କ ବୀର୍ଯ୍ୟର । ଜଗନ୍ନାଥ. ଭାଗବତ । ] ୬ । (ପଦ୍ୟ) ୭ମୀ ବିଭକ୍ତିସୂଚକ ବିଭକ୍ତି ଚିହ୍ନ (ଉ—ମେଘ ମନ୍ଦ୍ର ଆବରି, ଧ କାଳୀ ଆକାଶର । ମଧୁସୂଦନ. କବିପ୍ରଭା ।)
6. (Poetry) Seventh case-ending; suffix to denote time, place or matter. [ଉ—ସଖି ଅଛୁଟିକି ଭୁମ୍ଭ ମନର, ହିତେ ଯାହା କଲେ ଭୁଞ୍ଜିବାର ବିଭକ୍ତଚରଣ. ଗୋପୀଭାଷା ।

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ୍ଞ | ଶ,ଷ | କ୍ଷ | ଇୟ | ଉଅ | ଝ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଏ୍ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଘ | ସ | ଗଁ୍ୟ | ଇଅ | କ୍ଷ | ନ୍ନ |

ଦେଖି କଂସାସୁର, କମ୍ପେ ଥର ହର, ବୋଲଇ ଶୁଣ ହେ ଡଗର, ନନ୍ଦ ଯଶୋଦା ଦେବକୀ ବସୁଦେବ, ବନ୍ଧନ ବସାଅ ଶୂଳର । ଭକ୍ତଚରଣ. ମଥୁରାମଙ୍ଗଳ ।]

**ରଅ ଠଅ**—ଦେ.ବଣ.ଓ କ୍ରି.ବଣ.—(ଓଡ଼ିଆ. ରହିବା+ସ.ସ୍ଥା ଧାତୁ) - Ra-a tha-a ୧ । ଅଧା ପାଠୁଆ; ଲେଖା ହୋଇଥିବା ଅକ୍ଷରମାନଙ୍କୁ (ରଅ ଠ, ର'ଠ—ଅନ୍ୟରୂପ) ଅତି କଷ୍ଟରେ ପଢ଼ିବା ପ୍ରକାରେ; ଯେଁବଠ **କ'ହ'କେ** କୌଣସି ପ୍ରକାରେ—1. In a halting matter; anyhow; (said of a half literate person roughly deciphering a writing or print.) [ ଦ୍ର—ଅଧାପାଠୁଆ ବ୍ୟକ୍ତି ସ୍ୱାଭାବିକରୂପେ ଅକ୍ଷରମାନଙ୍କ ପଢ଼ି ନ ପାରି କୌଣସି ଲେଖାକୁ ପଢ଼ିଲାବେଳେ 'ର' ସ୍ଥାନରେ 'ଠ' ପଢ଼ିଯାଏ, କମା ରହି ରହି ବିଳମ୍ବ କରି ପଢ଼େ । ଏହିପରି ପଢ଼ିବା ବ୍ୟକ୍ତି ସମ୍ବନ୍ଧେ ଏହି ଉକ୍ତି ବୋଲାଯାଏ । ଯଥା—ସିମା ସେ ଚିଠି ଖଣ୍ଡ ରଅଠଅ କରି ପଢ଼ିଲା ।] ୨ । ସମ୍ପୂର୍ଣ୍ଣରୂପେ ଅକ୍ଷର ପରିଚୟ କରି ନଥିବା ସାମାନ୍ୟ ପାଠ ପଢ଼ିଥିବା (ବ୍ୟକ୍ତି)—2. (A person) Who has not even read so far as to be able to read out a passage fluently; unlettered (person). ୩ । ବଙ୍କା ଟଙ୍କା ବା ଥାଇଲା ମାଇଲା କରି କାମ କରିବା; କୌଣସି କାର୍ଯ୍ୟକୁ ଚଳଚଳ କରି ସମ୍ପାଦନ ନ କରି ଅସମ୍ପୂର୍ଣ୍ଣରୂପେ ସାଧନା କରିବା ପ୍ରକାରେ—3 Doing a work in a haphazrad manner or clumsily or slovenly. (ଯଥା—ମଫସଲିଆ ବଢ଼େଇ ଏ ଅଲମାରି ଖଣ୍ଡ ରଅ ଠଅ କରି ତିଆରି କରିଛି । )

**ରଅଣୀ**—ଗ୍ରା. (ପ୍ରାଚୀନ ପଦ୍ୟ) ବି.=(ସଂ. ରଜନୀ, ପ୍ରା. ରଅଣି)—୧ । Ra-ani ରଜନୀ **ରୈନୀ** ରଜନୀ; ରାତ୍ରୀ—1. Night. ୨ । ରହଣି (ଦେଖ)—2. Rahani (See) ୩ । ରୟଣୀ (ଦେଖ)—3. Rayani (See)

**ରଇ**—ଦେ. ବି.—(ସଂ. ରବି=ସୂର୍ଯ୍ୟ; ପ୍ରା. ରଇ)—୧ । ଚିତାଗ୍ନି; Rai ଶବଦାହାଗ୍ନି—1. Cremation-fire; funeral fire; ଚିତାର ଆଗୁନ fire for burning a dead body. [ଭ୍ରୁ—**ଚିତାକା ଆଗ** ଚନ୍ଦନ କାଠ ଜାଳ ରଇକ ଶ୍ରୀକୃଷ୍ଣଙ୍କୁ, ବୁଲାଇଲେ ରଇ ମଧ୍ୟରେ ଲହିବାକୁ । କୃଷ୍ଣସିଂହ. ମହାଭାରତ. ଅନୁଶାସନ ।] ୨ । ଜୁଇ ଗାତ—2. A pit on which the funeral pyre is put. (ଭ୍ରୁ—ସହସ୍ର ଶଶ୍ୟା ରଇ ହୋଇଅଛି ତହିଁ, ଭୂତ ପ୍ରେତ ବୁଲୁ ଅଛନ୍ତି ସୁଖ ପାଇ । କୃଷ୍ଣସିଂହ. ମହାଭାରତ ଶାନ୍ତି ।) ୩ । ଉଚ୍ଚ ସ୍ଥାନରୁ ନିମ୍ନ ସ୍ଥାନକୁ ପାଣି ବୋହି ଯିବା ନିମନ୍ତେ ଖୋଳା ଯିବା ସରୁ ଓ ଲମ୍ବା ପହଣି—3 A long and narrow channel made for the flow of water from a high level. [ ଦ୍ର—ମାଛମାନଙ୍କର ସ୍ୱଭାବ ଯେ, ସେମାନେ (ବିଶେଷତଃ ବର୍ଷାଦିନେ ନୂଆ ପାଣି ବର୍ଷା ହେବା ସମୟରେ) ଉଚ୍ଚ ସ୍ଥାନରୁ ନିମ୍ନ ସ୍ଥାନକୁ ବୋହି ଯାଉଥିବା ଜଳ ସ୍ରୋତର ବିପରୀତ ଦିଗରେ ଉଚ୍ଚ ଆଡ଼କୁ ଚଢ଼ି କରନ୍ତି ବା ଉଠନ୍ତି ।

ବର୍ଷାଦିନେ ଉଚ୍ଚ ସ୍ଥାନରେ ପାଣି ଜମା ରହିଲେ ସେଠାରୁ ନିମ୍ନ ସ୍ଥାନରେ ପାଣି ଜମାଥିବା ଭଣ୍ଡାରକୁ, ଅର୍ଥାତ୍ ଗଡ଼ିଆ, ପୋଖରୀ, ଜୋଡ଼ ଆଦିକୁ 'ରଇ' କାଟି ଦେଲେ ଉଚ୍ଚ ସ୍ଥାନରୁ ନିମ୍ନ ସ୍ଥାନକୁ ବୋହି ଯାଉଥିବା ଜଳସ୍ରୋତର ପ୍ରତିକୂଳରେ ମାଛମାନେ ନିମ୍ନସ୍ଥାନରୁ ଉଚ୍ଚ ଆଡ଼କୁ ଉଠି ଯାଆନ୍ତି ଓ ଲୋକେ କିଛି ସମୟ ପରେ ରଇର ମୁହଁ ବନ୍ଦ କରି ଦେଇ 'ରଇ' ମଧ୍ୟରୁ ପାଣି ଛାଡ଼ିଗଲେ ମାଛମାନଙ୍କୁ ଅନାୟାସରେ ଧରନ୍ତି ।

ବଙ୍ଗଳାରେ 'ରଇ' ଶବ୍ଦର ଅର୍ଥ ପୁଷ୍କରିଣୀର ମଧ୍ୟସ୍ଥଳ, ଯେଉଁଠାରେ 'ଯାପିଦଣ୍ଡୀ' ଖୁଣ୍ଟ (ବ. ରଇକାଠ) ପୋତା ଯାଏ । ନୌକା ଉପରେ ଥିବା ଘୁଲଘରକୁ ବଙ୍ଗଳାରେ 'ରଇ ଘର' ବୋଲାଯାଏ । ]

**ରଇଁସା**—ଗ୍ରାଦେ. (ବାମଣ୍ଡା) ବି.—ଝୁଡ଼ଙ୍ଗ ଛୁଇଁ—Raiñsa Vigina Typsa (pod).

**ରଇ କାଟିବା**—ଦେ. କ୍ରି ( ମାଛ ଉଠିଲେ ମାଛକୁ ଧରିବାପାଇଁ ) ଉଚ୍ଚ Rai katiba ସ୍ଥାନରୁ ନିମ୍ନରେ ଥିବା ଜଳଭଣ୍ଡାର ଆଡ଼କୁ [ରଇ ଗଡ଼ା(ଡ଼େ)ଇବା—ଅନ୍ୟରୂପ] ପାଣି ବୋହିଯିବାପାଇଁ ସରୁଆ ନାଳାକାଟା **ନାଲୀ(ପୋଟ)ଖୋଦ୍‌ନା** ପହଣି ଖୋଳିବା—To cut a narrow channel from a higher level towards a tank situated in a lower level (with a view to catch the fishes trying to go up against the current towards the higher level).

**ରଇ କାଠ**—ଦେ. ବି—ଚିତାଗ୍ନି ଜଳାଇବା ପାଇଁ ବ୍ୟବହୃତ କାଠ—Rai katha Fuel for cremation; fuel for funeral ଚିତାର କାଠ **ମୁର୍ଦ୍ଦା ଜଲାନେକୀ ଲକଡ଼ୀ** pyre. ଗ୍ରାଦେ. (ମେଦିନୀପୁର) ବି (ତୁଳ. ବ. ରଇକାଠ) ପୋଖରୀର ମଧ୍ୟସ୍ଥଳରେ ପୋତାଯିବା ବେଳ ଆଦି କାଠର ଖମ୍ବ; ଜଳାଶୟ-ପ୍ରତିଷ୍ଠା ଉପଲକ୍ଷରେ ବ୍ୟବହୃତ ଯୂପ—A post of wood driven to the bottom of a pond at the middle on the occasion of its consecration. [ ଦ୍ର—ଏହାକୁ ଓଡ଼ିଆରେ ଯାପିଦଣ୍ଡୀ ଓ ଗଞ୍ଜାମରେ ଜଳାଦାଣ୍ଡୀ କହନ୍ତି । ]

**ରଇ ଗାଡ଼(ତ)**—ଦେ. ବି—ଜୁଇ ଗାଡ଼ (ଦେଖ) Rai garda(ta) Jui garda (See) ଚିତାର ଗର୍ତ୍ତ **ଦାହକା କୁଣ୍ଡ**

ରଇଜଳା—ଦେ. ବିଣ. ପୁଂ (ସ୍ତ୍ରୀଲୋକଙ୍କ ଗାଳି;—ରୁ ରଇ ରେ ବା Raijaḷā ଚିତାଗ୍ନିରେ ଜଳି ଭସ୍ମ ହୋ)—ଯେ ଶୀଘ୍ର ଚିତାଗ୍ନି (ରଇଜଳୀ—ସ୍ତ୍ରୀ) ଦ୍ୱାରା ଭସ୍ମୀଭୂତ ହେବ (ଅର୍ଥାତ୍ ମରିବ)—ମୁଖପୋଡା **मुहँजरुआ** (a curse or abuse) (a person) Who will soon be burnt in a funeral pyre.

ରଇ ଜଳା(ଳେ)ଇବା—ଦେ. କ୍ରି—୧ । ଚିତାଗ୍ନି ପ୍ରଜ୍ୱାଳିତ କରିବା—Rai jaḷā(ḷe)ibā 1. To set fire to the funeral [ରଇ ଲଗା(ଗେ)ଇବା—ଅନ୍ୟରୂପ] pyre. ୨ । କାଠ ଗଦା କରି ଚିତା ଜ୍ଵାଲାନ ଉହିଁରେ ନିଆଁ ଲଗାଇବା—2. To set fire to **मुर्दाजिलाना** a heap of wood. ୩ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିର କ୍ରୋଧାଗ୍ନି ଉଦ୍ଦୀପ୍ତ ହେବାର କାରଣ ହେବା—3. (figurative) To cause a person's wrath; to exasperate a person.

ରଇ ଜଳିବା—ଦେ. ବି—୧ । ଚିତାଗ୍ନିର ପ୍ରଜ୍ୱଳନ—1. The Rai jaḷibā burning of the funeral pyre. ୨ । ଚିତାଜ୍ୱଲା **मुर्दाजलना** କାଠଗଦା ଜଳିବା—2. The burning of a heap of wood. ୩ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିର ମନରେ (ଚିତାଗ୍ନିପରି) କ୍ରୋଧାଗ୍ନି ଜଳିବା—3. (figurative) The burning of a person with anger; a person becoming much enraged or exasperated.

ରଇତ—ବୈଦେ. ବି. (ଆ.ରାଆଇୟା଼ତ୍, ରଅୟ଼ତ୍=ରାଜ୍ୟବାସୀ ପ୍ରଜା)—Raita ଜମିଦାରଙ୍କ ଅଧୀନ ଖଜଣା ଦେଇ ଜମି ଚାଷ କରୁଥିବା ବାୟତ, ବାୟେତ **रअय्यत, रइअत्** ବ୍ୟକ୍ତି; ପ୍ରଜା—Royat; rayat; raiyat; a tenant; a person holding land under a landlord on rent.

[ଦ୍ର—ଏହି ଶବ୍ଦ ଇଂରାଜୀ ଭାଷାରେ ମଧ୍ୟ ଚଳନ୍ତିଣି । ଜମିଦାରଙ୍କ ଜମିକୁ ଖଜଣା ଦେଇ ଚାଷ କରୁଥିବା ବ୍ୟକ୍ତି ନାନା ଶ୍ରେଣୀରେ ବିଭକ୍ତ । ପୂର୍ବେ ଜମିଦାରମାନେ ରାଜାଙ୍କର ଗୁମାସ୍ତାରୂପେ ପ୍ରଜାମାନଙ୍କଠାରୁ ରାଜସ୍ୱ ଆଦାୟ କରି ସେଥିରୁ ଆପଣାର ନିର୍ଦ୍ଧାରିତ ପାରିଶ୍ରମିକ ଗ୍ରହଣ କରି ବାକି ଧନ ରାଜକୋଷରେ ଅର୍ପଣ କରୁଥିଲେ । ଇଂରାଜମାନେ ଏ ଦେଶକୁ ଆସି ଉକ୍ତ 'ଜମିଦାର' ମାନଙ୍କୁ 'ମାଲିକ' ବା 'ଭୂସ୍ୱାମୀ' ବୋଲି ସ୍ୱୀକାର କଲେ ଓ ପ୍ରଜାମାନେ ଖଜଣା ଅଦାୟ କରୁଥିବା ପର୍ଯ୍ୟନ୍ତ ନିଜ ନିଜର ଜୋତରେ ପ୍ରଜାଙ୍କର 'ଦଖଲ ସ୍ୱତ୍ୱ' ରହିବ ବୋଲି ନିର୍ଦ୍ଧାରଣ କଲେ । ପ୍ରଜାଙ୍କଠାରୁ ଜମିଦାରମାନେ ଆଦାୟ କରିବା ଜମା(ମଫସଲ ଜମା) ଆଦାୟ କରି ତହିଁରୁ ଆପଣାର ନିର୍ଦ୍ଦିଷ୍ଟ ପାରିଶ୍ରମିକ (ମାଲିକାନା) କାଟି ନେଇ ବାକି ଟଙ୍କା (ସଦର ଜମା) ରାଜକୋଷରେ ଦାଖଲ କରିବାପାଇଁ ସରକାରଙ୍କୁ କବୁଲ୍-ନାମା ବା କବୁଲିୟ଼ତ୍ ଲେଖି ଦେଇ ଭୂମିର ମାଲିକ ବା ଭୂସ୍ୱାମୀ ରୂପେ ଗଣ୍ୟ ହେଲେ । ତାଙ୍କଠାରୁ ନିଜେ ଚାଷ କରିବାପାଇଁ ଖଜଣାରେ ଜମି ନେବା ବ୍ୟକ୍ତି 'ରଇତ' (Rayat) ଓ ଅନ୍ୟ ବ୍ୟକ୍ତିଙ୍କୁ ଉକ୍ତ ଜମି ଲଗାଇ ତାହାଙ୍କଠାରୁ ଖଜଣା ଆଦାୟ କରି ଆଣି ଆପଣାର ପାରିଶ୍ରମିକ କାଟି ନେଇ ବାକି ଧନ ଜମିଦାରଙ୍କ ନିକଟ ଦାଖଲ କରିବାପାଇଁ ଚୁକ୍ତି କରି ଜମିଦାରଙ୍କଠାରୁ ଜମି ନେଇଥିବା ବ୍ୟକ୍ତି ମଧ୍ୟସ୍ୱତ୍ୱାଧିକାରୀ ବା ଯୋତଦାର (Tenureholders) ରୂପେ ଗଣ୍ୟ ହେଲେ ।

ଫଳତଃ ଖଜଣା ବା ଜମା ଦେବାର ଚୁକ୍ତି କରି ଜମିଦାରଙ୍କଠାରୁ ଜମି ପଟ୍ଟା ନେବା ବ୍ୟକ୍ତି ୨ଶ୍ରେଣୀରେ ବିଭକ୍ତ ହେଲେ । ଯଥା :—୧ । ମଧ୍ୟସ୍ୱତ୍ୱାଧିକାରୀ—Tenure-holders. ୨ । ରଇତ—Raiyat. ଏହି ରଇତ-ମାନେ ପୁଣି ପ୍ରଧାନ ୩ ଶ୍ରେଣୀରେ ବିଭକ୍ତ ହେଲେ, (କ) ଚାଷୀ ରଇତ (ଖ) ଶିକମି ରଇତ (ଗ) ଚନ୍ଦନା ରଇତ ।

୨ (କ)—ଯେଉଁ ବ୍ୟକ୍ତି ନିଜ ହାତରେ କମା ଆପଣା ପରିବାରର ବ୍ୟକ୍ତିଙ୍କ ଦ୍ୱାରା କମା ମୂଲିଆ ଲଗାଇ ମୂଲିଆଙ୍କ ଦ୍ୱାରା କମା ଅନ୍ୟ ବ୍ୟକ୍ତିକୁ ଅଂଶୀଦାର ବସାଇ ତା ସାହାଯ୍ୟରେ ଚାଷ କରି ଜମିରେ ଫସଲ ଉତ୍ପନ୍ନ କରି ଜମିଦାରଙ୍କୁ ଖଜଣା ଦେଇ ଉକ୍ତ ଭୂଇଁକୁ ଦଖଲ କରିବାକୁ ଅଧିକାରୀ ହୁଏ ତାହାକୁ ପ୍ରଜାସତ୍ତ୍ୱ ଆଇନରେ 'ରଇତ' ବୋଲାଯାଇ ଅଛି । ପ୍ରଜା 'ଖଜଣା' ନ ଦେଇ ଖଜଣା ପରିବର୍ତ୍ତରେ ଜମିଦାରଙ୍କର କୌଣସି କାର୍ଯ୍ୟ କଲେ କମା ଜମିଦାର ଅନୁଗ୍ରହ ସ୍ୱରୂପ ଉକ୍ତ ଖଜଣା ଦେବା ଦାୟିତ୍ୱରୁ ଉକ୍ତ ବ୍ୟକ୍ତିକୁ ମୁକ୍ତ ଦେଇଥିଲେ ମଧ୍ୟ ସେ 'ରଇତ' ପଦବାଚ୍ୟ ଅଟେ ।

ଖଜଣା ଦୁଇ ପ୍ରକାର—୧ । ନଗଦ ଟଙ୍କା, ୨ । ଉତ୍ପନ୍ନ ଫସଲର ଅଂଶ ।

୨ (ଖ)—ଉକ୍ତରୂପେ ଚାଷ କରିବାକୁ ଜମିଦାରଙ୍କଠାରୁ ଜମି ପଟ୍ଟା ନେଇ ଯେବେ ଅସଲ ରଇତ ଅନ୍ୟ କାହାକୁ ଉକ୍ତ ଜମିକୁ ନଗଦ ଖଜଣାରେ ବା ଉତ୍ପନ୍ନ ଫସଲର ଭାଗରେ ଲଗାଏ, ତେବେ ତାହାର ଅଧୀନ ରଇତ 'ଶିକମି' ରଇତ ପଦବାଚ୍ୟ ହୁଏ ।

୨ (ଗ)—ଜମି ଉପରେ ଘରବାଡ଼ି କରିବାପାଇଁ ଜମିଦାରଙ୍କଠାରୁ ଖଜଣାରେ ଜମି ନେଇ ତାହା ଦଖଲ କରୁଥିବା ପ୍ରଜା 'ଚନ୍ଦିନାଦାର୍' ବା 'ଚନ୍ଦନା' ରଇତ ପଦବାଚ୍ୟ ହୁଏ ।

୨ (କ) ଶ୍ରେଣୀର ରଇତ ଖଣ୍ଡିଏ ଜମିକୁ ୧୨ ବର୍ଷରୁ ଊର୍ଦ୍ଧ୍ୱକାଳ ଚଷିଲେ ସେଥିରେ ରଇତର 'ଦଖଲ ସ୍ୱତ୍ୱ' ବା 'ସ୍ଥିତିବାନ୍ ସ୍ୱତ୍ୱ' (occupancy right) ଜନ୍ମେ; ଏବଂ ଗୁରୁତର କାରଣ ଛଡ଼ା ଜମିଦାର ଉକ୍ତ ରଇତକୁ ସେହି ଭୂଇଁରୁ ବେଦଖଲ କରି ପାରନ୍ତି ନାହିଁ ।

'ଶିକମି' ରଇତର ଓ 'ଚନ୍ଦନା' ରଇତର ଏପ୍ରକାରର ସ୍ଥିତିବାନ ସ୍ୱତ୍ୱ ଉଦ୍ଭବ ହୋଇ ପାରେ ନାହିଁ; ଅର୍ଥାତ୍ ଜମିଦାର ଚନ୍ଦନା ରଇତକୁ ଓ ଅସଲ ରଇତ ଶିକମି ରଇତକୁ ଅନାୟାସରେ ଜମିରୁ ଉଠାଇ ଦେଇପାରେ ।

ଓଡ଼ିଶାର ପୂର୍ବ ରାଜସ୍ୱ-ବନ୍ଦୋବସ୍ତ ସମୟରେ ଯେଉଁ ମହାଲରେ ରଇତର ଚାଷ ଜମି ଥିଲା ସେହି ମହାଲରେ ଯେବେ ରଇତର ବସବାସ ଗୃହ ଥିଲା, ତାଙ୍କୁ ଥାନୀ ରଇତ ଓ ଅନ୍ୟ ଗ୍ରାମବାସୀ ରଇତଙ୍କୁ ପାହି ରଇତ ବୋଲା ଯାଉଥିଲା; କିନ୍ତୁ ପରବର୍ତ୍ତୀକାଳର ବନ୍ଦୋବସ୍ତରେ ଗଭର୍ଣ୍ଣମେଣ୍ଟ ଥାନୀ, ପାହି ଶ୍ରେଣୀବିଭାଗ ଉଠାଇଦେଇ ନିମ୍ନଲିଖିତ ୩ ପ୍ରଧାନ ଶ୍ରେଣୀରେ ରଇତମାନଙ୍କୁ ବିଭକ୍ତ କରିଅଛନ୍ତି। ଯଥା—

୧। ସ୍ଥାୟୀ ଜମାରେ ଜମି ଧରିବା ରଇତ।
୨। ସ୍ଥିତିବାନ୍ ବା ଦଖଲସ୍ୱତ୍ୱବିଶିଷ୍ଟ ରଇତ।
୩। ଦଖଲସ୍ୱତ୍ୱଶୂନ୍ୟ ରଇତ।

୧୨ ବର୍ଷରୁ ଅଳ୍ପକାଳ ଜମି ଚାଷ କରିଥିବା ରଇତ ଓ ଶିକିମି ରଇତ ଓ ଶିକିମି ରଇତମାନେ ଦଖଲସ୍ୱତ୍ୱଶୂନ୍ୟ ଅଟନ୍ତି।

ସ୍ଥିତିବାନ୍ ରଇତ ଆପଣାର ବୃତ୍ତିକୁ ଜମିଦାରଙ୍କ ବିନା ମଞ୍ଜୁରରେ ବିକି ବା ହସ୍ତାନ୍ତରିତ ବା ବିଭକ୍ତ କରି ପାରେ ନାହିଁ।

ଯେଉଁ ରଇତକୁ ଜମିଦାର ଅନୁଗ୍ରହସ୍ୱରୂପ ବା ଚାକିରିର ଦରମା ପରିବର୍ତ୍ତରେ ବିନା ଖଜଣାରେ ଜମି ଦେଇଥାଆନ୍ତି ସେ ରଇତକୁ 'ଜାଗିର ବା 'ନିଶ୍ଚା' ରଇତ ବୋଲାଯାଏ।

ଜମିଦାରଙ୍କ ଖାସ ଦଖଲ ବା 'ନିଜଚୋଷ' ଜମିକୁ ଜମିଦାର ପ୍ରଜାଙ୍କୁ କିଛିକାଳ ପାଇଁ ପଟ୍ଟା ଦେଲେ ଓ ଏପରି ଜମିକୁ ଉକ୍ତ ରଇତ ୧୨ ବର୍ଷ ଦଖଲ କଲେ ମଧ୍ୟ ସେଥିରେ ରଇତର ସ୍ଥିତିବାନ୍ ସ୍ୱତ୍ୱ ଉଦ୍ଭବ ହୋଇ ନ ପାରେ।

ପୁରୁଷାନୁକ୍ରମେ ଜମିଦାରଙ୍କ ସେବା ବା ଗ୍ରାମସେବା କରିବାପାଇଁ ପାରିଶ୍ରମିକସ୍ୱରୂପ ଖଞ୍ଜା ହୋଇଥିବା ଧୋବା, ଭଣ୍ଡାରି, କମାର, ବଢ଼େଇ ଆଦିଙ୍କ ଚାକରାନ୍ ଜାଗିର ବା ଦେବୋତ୍ତର ଜାଗିରକୁ ଦଖଲ କରୁଥିବା ରଇତମାନଙ୍କର ମଧ୍ୟ ଉକ୍ତ ଜାଗିର ଜମିରେ ଦଖଲ ସ୍ୱତ୍ୱ ଉଦ୍ଭବ ହୁଏ।

ନଦୀଗର୍ଭସ୍ଥ ପଡ଼ି ପଡ଼ିଥିବା ଜମି ଓ ପ୍ରତିବର୍ଷ ଜଯୁମିଂତରୂପେ ଓ ଜଯୁମିଂତ ସୀମା ମଧ୍ୟରେ ଅବାଦ କରି ଯାଉ ନ ଥିବା ଅନାବାଦୀ ଜମିକୁ ଜମିଦାର ପ୍ରତିବର୍ଷ ନୂଆ ନୂଆ ପ୍ରଜା ବିଲି କରନ୍ତି। ଉକ୍ତ 'ଉଠନ୍ଦବାନ୍ଟି' ଜମିର ଅସ୍ଥାୟୀ ରଇତକୁ 'ଉଠନ୍ଦବାନ୍ଟି' ରଇତ ବୋଲାଯାଏ।

ବ୍ରାହ୍ମଣ, କ୍ଷତ୍ରିୟ ଓ କରଣ ଆଦି ରଇତଙ୍କୁ (ଯେଉଁମାନେ ସାମାଜିକ ପ୍ରଥା ଅନୁସାରେ ନିଜେ ହଳ ବୁଲାଇ ପାରନ୍ତି ନାହିଁ ଓ ମୂଲିଆ ବା ଚାକରଆଙ୍କ ଦ୍ୱାରା ଜମିକୁ ଆବାଦ କରାନ୍ତି, ତାଙ୍କୁ) ଖୁସ୍‌ବାସ୍ ବା ଖୁସିବାସୀ ରଇତ ବୋଲାଯାଏ।

ଏକ ଗ୍ରାମବାସୀ ବ୍ୟକ୍ତି ଅନ୍ୟ ଗୋଟିଏ ମହଲର ଜମିକୁ ରଇତସ୍ୱରୂପ ଚାଷ କଲେ ଜମି ଥିବା ମହଲା ସମ୍ବନ୍ଧେ ଉକ୍ତି ରଇତକୁ 'ପାହିଆ ରଇତ' ବା 'ବେରୁପରି ରଇତ' ବୋଲାଯାଏ।

ଶିକିମି ରଇତକୁ 'କୋଡ଼ପାହି' ବା କୋରପାହି (ବ. କୋର୍ଫା ବା କୋଲ୍‌ସମ୍ପୃକ୍ତ) ବୋଲାଯାଏ।]

**ରଇତଉଆର(ରି)**—ଦେଦେ. ବିଣ (ଫା. ରାଇୟାଉ ଵାର୍)—୧। ରଇତ-Raitauār(ri) ସମ୍ବନ୍ଧୀୟ—1. Relating to a ରାୟେତଓୟାରୀ **रयतवार** rayat ୨। ରଇତଦ୍ୱାରା ଅଧିକୃତ—2. Held by a tenant. [ ଯଥା—ରଇତଉଆର ଜମି=ରଇତ ଚାଷ କରୁଥିବା ଜମି।]

**ରଇତ ଉଠା(ଠେ)ଇବା**—ଦେ. କ୍ରି.—ରଇତର ଅଧିକୃତ ବୃତ୍ତିରୁ Raita uṭhā (ṭhe)ibā ରଇତର ଦଖଲକୁ ଉଚ୍ଛେଦ କରିବା- ବାୟତକେ ଉଠିଯେ ଦେଓୟା To evict a rayat from a **रइअतको उठाना** holding. [ରଇତକୁ ଉଠା(ଠେ)ଇ ଦେବା—ଅନ୍ୟରୂପ]

**ରଇତ ବସା(ସେ)ଇବା**—ଦେ. କ୍ରି.—କୌଣସି ଅନଧିକୃତ ଜମିରେ Raita basā(se)ibā ନୂଆ ବ୍ୟକ୍ତିଙ୍କୁ ରଇତରୂପେ ଦଖଲ ଦେବା- ବାୟତ ବସାନ To settle new rayats on a vacant **रइअत बसाना** land.

**ରଇତ ବାଇତ**—ଦେ. ବି.—(ଜିରର୍ଥକ ସହଚର)—ରଇତ ଆଦି; ସବୁ Raita bāita ଶ୍ରେଣୀର ରଇତ—All classes of tenants. ବାଯେତ ଟାଏତ **रैअत वयत**

**ରଇତ ବିଲି କରିବା**—ଦେ. କ୍ରି.—ଜମିକୁ ଚାଷ ବା Raita bili karibā ଦଖଲ କରିବା ପାଇଁ ରଇତମାନଙ୍କୁ ପଟ୍ଟା ବାୟତ ବିଲି କବା, ରାୟତ ଲାଗାନ ଦେବା—To lease out **रैअत लगाना** lands to rayats. [ରଇତ ଲଗା(ଗେ)ଇବା—ଅନ୍ୟରୂପ]

**ରଇତ ଭାଗିଆ**—ପ୍ରାଦେ. (ଜୟପୁର) ବି.—ଖମାରୋଇ; ରଇତମାନଙ୍କ-Raita bhāgiā ଠାରୁ ଖଜଣା ଅସୁଲ କରିବାକୁ ଓ ଜମିବାଡ଼ି ଦେଖା ଶୁଣା କରିବାକୁ ନିଯୁକ୍ତ ଭୃତ୍ୟ (ମହାରାଜ ବିକ୍ରମ-ଉକ୍ଷଳ ସାହିତ୍ୟ)- A servant who is engaged to supervise his master's agriculture and tenantry.

**ରଇତାନ(ନି)**—ଦେଦେ. ବି.—(ଅ. ରୟୀୟାତାନ୍, ବହୁବଚନ)—Raitān(ni) ରଇତମାନେ; ରଇତ ମଣ୍ଡଳୀ—Rayats; a ବାୟେତବା **रैअतान** body of rayats. ବିଣ.—୧। (ରଇତିଆ, ରଇତଆଳ-ଦେ. ବିଣ. ରୂପ) ରଇତଦ୍ୱାରା ଅଧିକୃତ (ଭୂମି)- ବାୟତୀ **रैयतिया, रैयतानी** 1. Held by a rayat. ୨। ରଇତ; ରଇତ ସମ୍ବନ୍ଧୀୟ—2 Relating to a rayat. (ଯଥା—ରଇତାନ ଖଣ୍ଡଆନ।)

**ରଇତି**—ଦେ. ବିଣ.—ରଇତ ସମ୍ବନ୍ଧୀୟ—Raiti ରାୟେତି **रईअती** Relating to a rayat. ବି.—ରଇତ ଦଖଲ କରୁଥିବା ବୃତ୍ତି—The holding of a rayat.

**ରଇବା**—ପ୍ରାଦେ (ସମ୍ବଲପୁର) କ୍ରି—ରହିବା (ଦେଖ)—Rahibā
Raibā (See) [ଦ୍ର—ଉଲ୍ ବରତା ଖସୁଛେ; ର, ର, ରେ ମହି ବରଉ୍ଛା। ଛୋର୍ ଧନକାଲ୍ ଆସୁଛେ। ଉଗ।]

**ରଇବାର**—ଗ୍ରା. ବି—ରବିବାର (ଦେଖ)
Raibāra ରବିবার **रइबार** Rabibāra. (See)

**ରଇ ଶୀତଲା**—ଦେ. ବି—ଶବଦାହର ତୃତୀୟ ଦିନ ଚିତାଗ୍ନିର ନିର୍ବାପନ
Rai śitaḷā କର୍ମ—The rite of formal sprinkling [ରାଇଶୀତଲା—ଅନ୍ୟରୂପ] of water or extinguishing
চীতা নিভান the funeral fire on the third day
**चीताम्फांकना (ढांपना)** of cremation. [ଦ୍ର—ଏ ଦିନ ମନ୍ତ୍ରାଦି ପାଠପୂର୍ବକ ରଇରେ ପାଣି ଢାଳି ଅଗ୍ନିକୁ ଲିଭାଇ ଉହିଁରୁ ଖଣ୍ଡିଏ ଅର୍ଦ୍ଧଦଗ୍ଧ ଅସ୍ଥି ସଂଗ୍ରହ କରି ଭବିଷ୍ୟତରେ ଗଙ୍ଗାଆଦି ତୀର୍ଥରେ ପକାଇବା ପାଇଁ ରଖାଯାଏ।]

**ରଇ ଶୀତ(ତୁ)ଳା(ଳେ) ଇବା**—ଦେ. କ୍ରି—ଶବଦାହର ତୃତୀୟ ଦିନ
Rai śita(tu)ḷā(ḷe)ibā ଚିତାଭସ୍ମ ଉପରେ ଜଳାଦି ଢାଳି ତାହା
চিতা নিভান ଲିଭାଇବା—To extinguish the fire of
**चीताम्फांकना (ढांपना)** the cremation ashes (with water) on the 3rd day of cremation.

**ରଇଶୁଆ**—ଦେ. ବିଣ. ପୁଂ (ଗାଳି, ଯେ ରଇରେ ବା ଚିତାଗ୍ନିରେ
Raiśuā ଶୋଇବ)—ଯେ ଶୀଘ୍ର ଚିତାଗ୍ନିରେ ଶୋଇବ [ରଇଶୋଇ—ସ୍ତ୍ରୀ] (ଅର୍ଥାତ୍ ମରିବ)—(a curse) (a person)
পোড়াবমুখো Who will soon sleep on the
**मुहँजरुआ** cremation pyre.

**ରଉ**—ଗ୍ରା. ବି (ସଂ. ରଥ)—ରହୁବର (ଦେଖ)
Rau Rahubara (See)
[ ରହୁବର—ଅନ୍ୟରୂପ ]

**ରଉ(ଓ)ଆଜ୍(ଦ୍)**—ବୈଦେ. ବି. (ଆ. ରିୱାଜ୍)—
Rau(o)āj(d) ୧। ଅବସ୍ଥା; ଅବସ୍ଥା—1. Condition;
রেওয়াজ state. ୨। ସାମୟିକ ଅବସ୍ଥା; ହାଲ—2. State of
**रिवाज** things; state of events. ୩। ସମୟ; କାଳ—
[ରିଆଜ୍(ଜ୍)—ଅନ୍ୟରୂପ] 3. Time.

**ରଉ(ଓ)ଆନା**—ବୈଦେ. ବି. (ଆ. ରୱାନା)—୧। ରମାନା; ଅନ୍ୟତ୍ର
Rau(o)ānā ଗମନାର୍ଥ କୌଣସି ସ୍ଥାନ ତ୍ୟାଗ, ଯାତ୍ରା—
রওনা **रवाना** 1. Starting from a place.
(ରୱାନା—ଅନ୍ୟରୂପ) ୨। ଦ୍ରବ୍ୟାଦିର ଚାଲାଣ; ସ୍ଥାନାନ୍ତର ପ୍ରେରଣ- 2. The sending of a thing from one place to another. [ଦ୍ର—ଏହି ଆରବୀ 'ରୱାନା' ଶବ୍ଦରୁ ଆରବୀ 'ପରୱାନା' (ଅର୍ଥାତ୍ ପ୍ରେରିତ ଆଦେଶ) ଶବ୍ଦର ଉତ୍ପତ୍ତି।]

**ରଉ(ଓ)ଆନା କରିବା**—ଦେ. କ୍ରି—ଦ୍ରବ୍ୟାଦିକୁ ସ୍ଥାନାନ୍ତରକୁ ପଠାଇବା
Rau(o)ānā karibā ବା ଚାଲାଣ କରିବା—To send a
রওনা করা thing from one place to another.
**रवाना करना**

**ରଉ(ଓ)ଆନା ହେବା**—ଦେ. କ୍ରି—ସ୍ଥାନାନ୍ତରକୁ ଯାତ୍ରା କରିବା—
Rau(o)ānā hebā To set off or start for
রওনা হওয়া **रवाना होना** another place.

**ରଉ(ଓ)ଆବ**—ବୈଦେ. ବି. (ଆ. ରୌଆବ)—
Rau(o)āb ୧। ଗାମ୍ଭୀର୍ଯ୍ୟ—1. Gravity.
বোয়াব ୨। ଭୟ—2. Fear.
**रोबाब** ୩। ପ୍ରଭାବ—3. Influence.

**ରଉରବ**—ଗ୍ରା. ବି—ରୌରବ (ଦେଖ)
Rauraba Rauraba (See)
বউবব **रउरब**

**ରଏଖା**—ପ୍ରାଦେ. (ସମ୍ବଲପୁର) ବି. (ସଂ. ରକ୍ଷା)—ରକ୍ଷା (ଦେଖ)
Raekhā Rakshā (See)

**ରଏତ(ତି) (ଇତ୍ୟାଦି)**—ରଇତ(ତି) ଇତ୍ୟାଦି (ଦେଖ)
Raeta(ti) (etc) Raita (ti) etc. (See)

**ରଏଲ୍‌ଟି**—ବୈଦେ. ବି. (ଇଂ)—ରୟାଲ୍‌ଟି (ଦେଖ)
Rael-ṭi Rayāl-ṭi (See)
(ରଏଲ୍ଟି—ଅନ୍ୟରୂପ) বয়ালটী **रयालटी**

**ରଂହ(ଧାତୁ)**—ସଂ—୧। ଶୀଘ୍ର ଗତି କରିବା—1. To move with
Ramha(root)speed. ୨। ବହିବା—2. To flow (Apte).

**ରଂହଃ**—ସଂ. ବି. (ରମ୍ ଧାତୁ=କ୍ରୀଡ଼ା କରିବା ବା ରଂହ ଧାତୁ=ଯିବା
Ramhah +ଭାବ. ଅସ୍; ହ ଆଗମ)—ବେଗ; ଗତିର ଶୀଘ୍ରତା-
Speed; velocity.

**ରଂହଣ**—ସଂ. ବି (ରଂହ୍ ଧାତୁ+ଭାବ. ଅନ)—ଶୀଘ୍ରଗତି—
Rambaṇa Swift motion.

**ରଂହତି**—ସଂ. ବି (ରଂହ ଧାତୁ ବା ରମ୍ ଧାତୁ+କରଣ ବା ଭାବ. ତି; Ramhati ନିପାତନ)—୧। ବେଗ; ଗତିର ଶୀଘ୍ରତା—
1. Speed; velocity. ୨। ରଥର ବେଗ—
2. The speed of a chariot (Apte).

**ରଃ**—ଦେ. ଅ [ନିବୃତ୍ତି କରାଇବା ଅର୍ଥରେ ବ୍ୟବହୃତ; 'ରହିବା'
Rah କ୍ରିୟାର ଅନୁଜ୍ଞାରେ ହେବା ରୂପ; ରହ(=ତୁ ରହିତ
ରହ
ରହ } ଅନ୍ୟରୂପ] ହୋ) ର ସଂକ୍ଷେପ]—ତୁ ନିବୃତ୍ତ ହୋ; ତୁ
ରହଃ ବିରତ ହୋ; ଚୁପ୍ ହୋ—(Interjection)
থাম **रः** Stay! Stop! Shut up!

**ରଁଚେ**—ପ୍ରାଦେ (ସମ୍ବଲପୁର) ବି ଓ ବିଣ (ତୁଳ- ହି. ରଞ୍ଚକ;
Rañche ରଂଚ)—୧। ଟିକିଏ; ଅତି ସାମାନ୍ୟ—
1. Slight; very little; a bit of. ୨। ଟୋପାଏ; ବୁନ୍ଦାଏ—2 A drop of. ୩। ଖୁବ ସରୁ; ବାରିକ୍; ଖୁବ୍ ସୂକ୍ଷ୍ମ—3. Very fine.

**ରିଁଡ଼ା**—ପ୍ରାଦେ (ସମ୍ବଲପୁର) ବିଣ (ସଂ. ରଣ୍ଡା)—ମୃତଦାର—
Rañrḍā Widower.

**ରିଁଧିକଆ(ଆଁ)**—ପ୍ରାଦେ (ସମ୍ବଲପୁର) ବି (ପୁଂ)—ରନ୍ଧନିଆ (ଦେଖ)
Rañdh-niā(āñ) Randh-niā (See)

**ରିଁଧ୍ନୀ**—ପ୍ରାଦେ (ସମ୍ବଲପୁର) ବି (ସ୍ତ୍ରୀ)—ରନ୍ଧନୀ (ଦେଖ)
Rañdh-ni Randh-nī (See)

ରିହଁଠା—ପ୍ରାଦେ (ସମ୍ବଲପୁର) ବି—ରହଁଠା ( ଦେଖ )
Rañhaṭā , Rahañṭā ( See )

ରକ୍ (ଧାତୁ)—ସ—୧ । ଚାଖିବା—1. To taste. ୨ । ପାଇବା—
Rak (root) 2 To obtain.

ରକ୍—ଦେ. (ଧ୍ୱନ୍ୟନୁକରଣ) ଅ—୧ । ଶରୀରର ଚର୍ମାଚ୍ଛନ୍ନ ହାଡ଼ର
Rak ଗଣ୍ଠି ଖସିଯିବା ଯୋଗୁଁ ସ୍ଥାନୁଭୂତ ରକ୍ ରକ୍ ଶବ୍ଦ—1. A
ବକବକ: करकर croaking or cracking sound or sensation experienced when a boin-joint is dislocated. ୨ । ଦ୍ୱାରର ବାଇଁଶ ଆଦିର ମୂଳ ସ୍ଥାନଚ୍ୟୁତ ହେବା ଯୋଗୁଁ ମଠକିବା ବା ମଚ୍ ମଚ୍ ଶବ୍ଦ କରିବା—2. A squeaking sound produced by a piece of woodwork dis located from its proper groove. ୩ । ରକା ପଶିବା ସ୍ଥାନରେ ବେଦନା ଅନୁଭୂତ—3. Spasm or spasmodic pain (e. g. at the neck and at the sides) due to wind.

ରକ୍‌କିନା (କି,ରି)—ଦେ କି.ବିଣ—ଗୋଡ଼ର ଗଣ୍ଠି ଆଦି ହଠାତ୍ ମୋଡ଼ି
Rak-kinā (ni,ri) ହୋଇଯିବା ପ୍ରକାରେ—Suddenly in a
ବକ୍‌କବେ squeaking manner (said of a joint
करकरके साथ suddenly sprained).

ରକ୍‌ଠକ୍—ଦେ. ଅ - ରୋକ୍‌ଠୋକ୍ ( ଦେଖ )
Rak-ṭhak Rok-ṭhok ( See )

ରକ୍‌ରକ୍—ଦେ. ଅ—ରକ୍ ( ଦେଖ )
Rak-rak Rak ( See )
हाईपाई करकर ବି—୧ । ଅପ୍ରାପ୍ୟ ବା ଅପ୍ରାପ୍ତ ବସ୍ତୁ ପାଇବାର ଇଚ୍ଛା—1. A desire to get a thing which one can not or has not attained. ୨ । ନଷ୍ଟ ଧନାଦିର ପୁନଃପ୍ରାପ୍ତି ଇଚ୍ଛା—2. Desire to get back a lost thing. ବିଣ—ଅପ୍ରାପ୍ୟ ବା ନଷ୍ଟ ବସ୍ତୁ ପାଇବାକୁ ଇଚ୍ଛୁକ (ବ୍ୟକ୍ତି)—Desirous to get a lost or unattainable thing.

ରକ—ସଂ. ବି (ରକ୍. ଧାତୁ + ସଂଜ୍ଞାର୍ଥେ. ଅ)—୧ । ଅଗ୍ନିସମ୍ମଣି; ସୂର୍ଯ୍ୟକାନ୍ତ
Raka ମଣି—1 A precious stone said to concentrate sun's rays; sun-stone. ୨।ସ୍ଫଟିକ—2. Crystal. ୩ । ଘନ ବୃଷ୍ଟି—3. A heavy shower.

ରକଠା—ଦେ. ବି—୧ । ମଜା ହୋଇ ନ ଥିବା ଅଇଁଠା ବାସନରେ
Rakaṭā ଲାଗି ରହିଥିବା ଭାତ ଅନ୍ନାଦିର ଶୁଷ୍କ ଓ ଟାଣୁଆ କଣା—
( ରେକଠା—ଅନ୍ୟରୂପ ) 1. Dried and hardened
माड़ी particles of rice and food which remain
रकटा sticking to a plate after it is used in a meal and before it is well rinsed. ୨ ।
चिबान ଟାଣ ବସ୍ତୁକୁ (ଯଥା—ମାଂସ ଲାଗିଥିବା ହାଡ଼) ଧୀରେ ଧୀରେ
चाबचाबकर खाना ଦାନ୍ତରେ ଚୋବାଇବା ବା ରେକେଟିବା କର୍ମ—2. The act of chewing or nibbling at a hard thing with the teeth. [ ବ୍ରି—ହାଡ଼କୁ ମାଢ଼ିଙ୍କୁ ଧୀରେ ଧୀରେ ଅଥଚ ବଳପୂର୍ବକ ଦାନ୍ତରେ ଚୋବାଇବାକୁ ର(ରେ)କଠା ବା ର(ରେ)କଟିବା ବୋଲା-
एठौं ଯାଏ ।] ବିଣ—୧ । (ଖାଇବାରେ ବ୍ୟବହୃତ ଅମଜା ବାସନ)
जठा ଯହିଁରେ ଭାତ ଖାଦ୍ୟାଦିର ଶୁଷ୍କକଣାମାନ ଦୃଢ଼ ଭାବରେ ଲାଗିଥାଏ—1. (uncleaned plates) To which particles of food remain sticking. [ବ୍ରି—ଖାଇବା ବା ପରଷିବା ବାସନକୁ ସଙ୍ଗେ ସଙ୍ଗେ ଧୋଇ ନ ଦେଲେ ତହିଁର ଅଙ୍ଗରେ ଭାତ ଅନ୍ନାଦିର କଣାମାନ ଲାଗିରହି ଶୁଖିଗଲେ କର୍କଶ ହୋଇଯାଏ ଓ ଭାତ ରକଠାକୁ ବାସନରୁ ଛଡ଼ାଇବା ପାଇଁ ବାସନକୁ କିଛିକାଳ ପାଣିରେ ବଉଳାଇବାକୁ ହୁଏ।] ୨ । ଅତି ଟାଣୁଆ—2.Very hard. ୩ । ସ୍ପର୍ଶ କଲେ ଯାହା କର୍କଶ ଜଣାଯାଏ—3. Rough to touch. ୪ । ମଳଯୁକ୍ତ; ମଳିଆ—4. Dirty ପ୍ରାଦେ ( ସମ୍ବଲପୁର ଓ ଗଡ଼ଜାତ ) ବି—କୋଳଥ—Horse-gram; Dolichos Biflorus.

ରକଠା ଛଡ଼ା(ଡ଼େ)ଇବା—ଦେ. କ୍ରି—୧ । ଅଇଣ୍ଠା ବା ଶଙ୍ଖୁଡ଼ି ବାସନକୁ
Rakaṭā chhaṛā(ṛe)ibā ପାଣିରେ ବଉଳାଇ ଓ ଉତ୍ତମ-
बासन मांजा ରୂପେ ମାଜି ତହିଁରେ ଲାଗି ଶୁଖିଯାଇଥିବା ଖାଦ୍ୟ
रकटा छोडाना ଦ୍ରବ୍ୟର କଣାମାନଙ୍କୁ ଛଡ଼ାଇବା—1. To cleanse the dry particles of food etc. sticking to a plate remaining long unwashed after use. ୨ । କୌଣସି ପଦାର୍ଥରେ ବସିଥିବା ମଳକୁ ପରିଷ୍କାର କରିବା—2. To cleanse the dirt sticking to an article.

ରକଟିବା—ଦେ. କ୍ରି—ହାଡ଼ରେ ଲାଗିଥିବା ମାଂସର କ୍ଷୁଦ୍ର ଅଂଶକୁ ପୃଥକ୍
Rakaṭibā କରିବା ପାଇଁ ଉକ୍ତ ହାଡ଼କୁ ଦାନ୍ତ ଦ୍ୱାରା ପୁନଃ ପୁନଃ
चिबान ଚର୍ବଣ କରିବା—To nibble at a hard thing
चाबना with the teeth to separate the softer parts adhering to it (e. g. bone .

ରକତ—ପ୍ରାଦେ (ସମ୍ବଲପୁର) ବି—ରକ୍ତ (ଦେଖ)
Rakat Rakta (See)

ରକତ (ଇତ୍ୟାଦି)—ଗ୍ରା. ବି—ରକ୍ତ ଇତ୍ୟାଦି (ଦେଖ)
Rakata (etc) Rakta etc. (See)
वक्त रकत

ରକବା—ବୈଦେ ବି (ଆ) (କଚେରୀ)—୧ । ଜମିର କ୍ଷେତ୍ରଫଳ—
Rakabā 1. The area of a land. ୨ । ମୌଜାର ସମସ୍ତ
रकबा ଜମିର ମୋଟ ପରିମାଣ ବା କ୍ଷେତ୍ରଫଳ—2. Total area
रकबा of the lands of a village.

ରକବା ଜମାଖରଚ—ବୈଦେ. ବି (ଆ) (କଚେରୀ)—ଯେଉଁ ଜମିଦାରିଆ
Rakabā jamā kharacha କାଗଜରେ ମୌଜାର ଭିନ୍ନ ଭିନ୍ନ
बकबा जमाखबच ଶ୍ରେଣୀର ଜମିର ପରିମାଣ ଲେଖାଥାଏ ଓ ସମସ୍ତ
रकबा जमाखर्च ପ୍ରକାରର ଜମିର ମୋଟ ପରିମାଣ ମଧ୍ୟ ହିସାବ କରାଯାଇଥାଏ—A statement in which the

areas of different classes of lands and the whole area of the lands of a village are specifically mentioned.

ରକମ୍—ବୈଦେ. ବି (ଅ)—୧। ଶ୍ରେଣୀ; ପ୍ରକାର—1. Kind; sort;
Rakam class. ୨। ଧରଣ; ଯାଇ—2. Mode. ୩। ଜମିଦାରୀ
ਰਕਮ ହିଁସା; ଅଂଶ—3. Share. (ଯଥା—ଜମିଦାରର ରକମ
**रकम** ଛଅ ଅଣା=ଜମିଦାରର ୬/୧୬ ଅଂଶ)। ୪। ସାମଗ୍ରୀ; ଚଳ;
ବସ୍ତୁ; ପଦାର୍ଥ—4. Thing; article. (ଯଥା—ନାନା ରକମ, ବଣିଆଛ ରକମ, ଅଲଗ ରକମ, ଭିନ୍ନ ରକମ୍, ଦରେକ୍ ରକମ।)

ରକମ୍ ରକମ୍—ବୈଦେ. ବିଣ (ଅ)—ନାନା ପ୍ରକାରର—
Rakam rakam Of various sorts.
(ରକମ ରକମାର, ରକମ ରକମାର—ଅନ୍ୟରୂପ) ବି—ନାନାପ୍ରକାର—
ਰਕਮ ਰਕਮ **रकमरकम** Various kinds.

ରକା(କ୍କା)—ଦେ.ବି (ରକ୍ ରକ୍ ଅନୁଭୂତ ହେଉଥିବାରୁ)—କଙ୍କାଳ, ବେକ
Rakā(kkā) ପ୍ରଭୃତିରେ ଅଟକି ଯାଇ ବେଦନା ଦେବା ଶରୀରସ୍ଥ
**बाईरुकजाना** କୁପିତବାୟୁ; ଶ୍ଳେଷ—A stitch; stitching
ਫਿਕ, ਰਕਾ; ফিক্‌ব্যথা; ফিকধরা pain; acute pain felt inside parts of the body due to the stoppage of air circulation in those parts. [ଦ୍ର—ସମୟସମୟରେ ହଠାତ୍ ବେକରେ ପିଠିରେ ବା କଙ୍କାଳରେ ପବନ ଅଟକି ଗଲେ (ରକା ପଶିଲେ) ବେକକୁ ବା କଙ୍କାଳକୁ ବୁଲାଇ ହୁଏ ନାହିଁ ଓ ବୁଲାଇଲେ ବେଳକୁ ଅତ୍ୟନ୍ତ କଷ୍ଟ ଓ ବେଦନା ହୁଏ ଓ ଶ୍ୱାସ ପ୍ରଶ୍ୱାସ ନେବାକୁ ମଧ୍ୟ କଷ୍ଟ ବୋଧ ହୁଏ। ଏହାକୁ ସାଧାରଣ ଲୋକେ 'ଶ୍ଳେଷ ପଶିବା' ବୋଲି କହନ୍ତି। ରକା ପଶିଥିବା ଅଙ୍ଗର ଚମଡ଼ାକୁ ହାତଦ୍ୱାରା ଚିମୁଟି କରି ଟାଣି ଧରି ଓ ଝଡ଼ାଫୁଙ୍କା କରି ରକା ଛଡ଼ାଇ ଜାଣିବା ଲୋକେ ରକା ଛଡ଼ାନ୍ତି। ଡାକ୍ତରମାନେ ରକା ଧରିଥିବା ଲୋକକୁ ବୈଦ୍ୟୁତିକ ଯନ୍ତ୍ର (Battery) ଧରାଇ ରକାକୁ ଛଡ଼ାନ୍ତି।] ପ୍ରାଦେ. (ସମ୍ବଲପୁର) ବି—ହାଡ଼ର ଗଣ୍ଠି ଖସିଯିବା—Dislocation of a bone. ପ୍ରା—(ମେଦିନୀପୁର) ବି—ଚିଠା; ରସିଦ—A slip of paper containing an order or receipt.

ରକା ଛଡ଼ା(ଡ଼େ)ଇବା—ଦେ. କ୍ରି—ଝଡ଼ାଫୁଙ୍କା ଦ୍ୱାରା ବା ବୈଦ୍ୟୁତିକ ଯନ୍ତ୍ର
Raka chhar̲ḏā(r̲ḏe)ibā ସାହାଯ୍ୟରେ ରକାକୁ ଭଲ କରିବା—
ফিকব্যথা ছাড়ান To cure nervous spasm due to
**बाइ झोडाना** wind by blowing with the mouth or by muttering incantations or by electric current.

ରକା ଛାଡ଼ିବା—ଦେ. କ୍ରି—ଦେହସ୍ଥ କୁପିତ ବାୟୁ ପୁଣି ସ୍ୱସ୍ଥାନକୁ ଯିବାଦ୍ୱାରା
Rakā chhār̲ḏibā ବେଦନାର ଉପଶମ ହେବା—The cure
(ରକା ଧରିବା—ବିପରୀତ) of nervous spasm due to
ফিকব্যথাছাড়া **बाइछोडना** wind.

ରକା ଝାଡ଼ିବା—ଦେ. କ୍ରି—ମନ୍ତ୍ର ଉଚ୍ଚାରଣ ପୂର୍ବକ ମୁହଁରେ ଫୁଙ୍କି
Rakā jhār̲ḏibā ରକାକୁ ଛଡ଼ାଇବା ପାଇଁ ରକାଯୁକ୍ତ ଅଙ୍ଗରେ
ফিক ঝাড়া ହାତ ବୁଲାଇବା—To practise massage and
**बाइ झाडना** blow wind by the mouth on the part of the body affected with nervous spasm

ରକା ଧରିବା—ଦେ. କ୍ରି—ପବନ ଅଟକି ଯିବା, ଦେହମଧ୍ୟସ୍ଥ କୁପିତବାୟୁ
Rakā dharibā ସ୍ୱସ୍ଥାନ ତ୍ୟାଗ ପୂର୍ବକ ବେକକୁ ବା ପିଠିକୁ ବା
ফিক্‌ধরা କଙ୍କାଳକୁ ଆଶ୍ରୟ କରି ବେଦନା ଦେବା—
**बाई रुकजाना** Suffering of spasms due to wind.
(ରକା ପଶିବା, ରକା ଲାଗିବା—ଅନ୍ୟରୂପ)
(ରକା ଛାଡ଼ିବା—ବିପରୀତ)

ରକ୍ତ—ସଂ. ବିଣ—(ରଞ୍ଜ୍ ଧାତୁ=ରଙ୍ଗ କରିବା+କର୍ମ ତ—
Rakta ୧। ରଞ୍ଜିତ; ରଙ୍ଗକରା ଯାଇଥିବା—1. Dyed; tinged; coloured; stained. ୨। (+କର୍ତ୍ତୃ ତ) ରତ; ଆସକ୍ତ; ଅନୁରକ୍ତ—2 Fond, attached to; addicted to. ୩। କ୍ରୀଡ଼ାରତ, କ୍ରୀଡ଼ାସକ୍ତ—3. Addicted to play; engaged in sport. ୪। ଶ୍ରୁତିମଧୁର; ସୁଶ୍ରାବ୍ୟ—4. Sweet to the ear. ୫। ଲୋହିତ; ରଙ୍ଗ; ନାଲିଆ—5. Red. ୬। ଶୋଧିତ (ହି.ଶ.)—6. Purified. ବି—(+ଭାବ ତ) ୧। ଲୋହିତ ବର୍ଣ୍ଣ—1. Red colour. ୨। କୁସୁମ୍; କୁସୁମ ଫୁଲ—2. Safflower; Carthamus Tinctoris. ୩। ହିଜ୍ଜଳ; ହିଜ୍ଜଳ ଗଛ—3. A tree; Barringtonia Acutangulia. ୪। କୁଙ୍କୁମ; ଜାଫ୍ରାନ୍—4. Saffron; Crocus Sativus. ୫। ତାମ୍ର; ତମ୍ବା—5 Copper. ୬। ପ୍ରାଚୀନାମଳକ; ଫଳବିଶେଷ; ପାଣିଆଁଳା—6. The fruit of Flacouretia Cataphracta. ୭। ହିଙ୍ଗୁଳ—7 Vermillion. ୮। ସିନ୍ଦୂର—8. Red lead; minium. ୯। ପଦ୍ମକ; ପଦ୍ମକାଷ୍ଠ; ଔଷଧକାଷ୍ଠବିଶେଷ—9. A sort of fragrant wood used in medicine; Prunus Padam. ୧୦। ରକ୍ତଚନ୍ଦନ—10. Teracarpus Santalum. ୧୧। ବକମ କାଠ—11. Sappan wood. ୧୨। ବନ୍ଧୁଳି ଫୁଲ—12. Pentapetes Phoenicia. ୧୩। ରଡା ମାଛ (ହି. ଶ.)—13. A small reddish species of Clarius Magur (fish). ୧୪। ଏକପ୍ରକାର ବିଷାକ୍ତ ବେଙ୍ଗ (ହି.ଶ.)—14. A kind of venemous frog. ୧୫। ଏକ ପ୍ରକାର ବିଛା (ହି. ଶ.)—15. A kind of scorpion. ୧୬। ଶିବ—16 A name of Śiba (Apte).
ଅନ୍ୟ-ସଂ ପ୍ରତିଶବ୍ଦ—ଅଙ୍ଗଜ, ଅସୃକ୍, ୧୭। ଶୋଣିତ; ରୁଧିର; ଅସ୍ର, କୀଲାଲ, କ୍ଷତଜ, ହୃତ୍ପିଣ୍ଡରୁ ଧାରାରେ ପ୍ରବାହିତ ଶରୀରସ୍ଥ

ଚର୍ମଜ, ଭୃଗଜ, ପଳଙ୍କାର, ରଙ୍ଗଜ, ରୁଧିର, ରୋଧିର, ରଙ୍ଗକ, ରୋହିତ, ଲୋହ, ଶୋଣ, ଶୋଣିତ, ସ୍ୱଜ, କାସିଷ୍ଟ, ପ୍ରାଣଦ, ରସତେଜଃ ଲୋହିତ
ରକତ— ଗ୍ରାମ୍ୟରୂପ
ରକ୍ତ
ଜହ୍ରୁ
ଫା. ଖୁନ୍

ସପ୍ତଧାତୁ ମଧ୍ୟରୁ ଏକତମ; ଲହୁ— 17. Blood. [ ଦ୍ର— ଭୁକ୍ତ ଦ୍ରବ୍ୟ ପରିପାକ ହୋଇ ପ୍ରଥମେ ରସ (Chyle)ରେ ପରିଣତ ହୁଏ। ରସ ପୁଣି ପରିପକ୍ୱ ହେଲେ ରକ୍ତ ରୂପରେ ସମଗ୍ର ଶରୀରରେ ବାଣ୍ଟି ହୁଏ। ଏହା ନାଲିଆ, ତରଳ, ନାତି ଶୀତୋଷ୍ଣ, ମଧୁରଲବଣରସ। ଏହା ଶରୀରର ସବୁ ସ୍ଥାନରେ ଅଛି, କିନ୍ତୁ ଯକୃତ ଓ ପ୍ଲୀହା ରକ୍ତର ପ୍ରଧାନ ଆଧାର। ରକ୍ତ ପ୍ରଥମେ ହୃଦୟକୁ ଯାଇ ହୃଦୟରୁ ସବୁଆଡ଼େ ଶିରାପ୍ରଶିରା ଦ୍ୱାରା ଚାଳିତ ହୁଏ। ରକ୍ତ ଦୂଷିତ ହେଲେ ନାନା ରୋଗ ଜନ୍ମାଏ। ରକ୍ତହିଁ ଜୀବଶରୀରର ପ୍ରଧାନ ଉପାଦାନ। ରକ୍ତକୁ ବୈଜ୍ଞାନିକ ପ୍ରକ୍ରିୟାରେ ବିଶ୍ଳେଷଣ କଲେ ଦେଖାଯାଏ ଯେ, ସେଥିରେ ଦୁଇଟି ଉପାଦାନ ଅଛି, ଯଥା—୧। ସିରମ୍ (Serum ବା Plasma )— ଈଷତ୍ ହଳଦିଆ ଜଳୀୟ ପଦାର୍ଥ (ଯହିଁରେ ଜଳ ଓ ଲବଣାଂଶ ଅଛି)। ୨। କ୍ରୋସାମେଣ୍ଟମ୍ (Crossamentum ବା blood corpuscles)— ନାଲିବର୍ଣ୍ଣ ଅଂଶ। ରକ୍ତକୁ ଇଂରାଜୀରେ ବ୍ଲଡ୍ (Blood) ଓ ଲାଟିନରେ (Liquor Sanguinis— ପ୍ରାଣର ପାନୀୟ) ବୋଲାଯାଏ। ରକ୍ତକୁ ରାସାୟନିକ ବିଶ୍ଳେଷଣ କଲେ, ଏଥିରେ ଜଳ, ଆଲବୁମେନ୍ (Albumen), ପୋଟାସିଅମ୍, ସୋଡିଅମ୍ (କ୍ଷାର), ଫସ୍ଫରସ୍, ଅଙ୍ଗାର, ଲୁହା ଆଦି ଉପାଦାନ ଥିବା ଦେଖାଯାଏ। ଜୀବଦେହରୁ ରକ୍ତ ବାହାର କଲେ କିଛିକ୍ଷଣ ପରେ ଏହା ଫାଟି ଫାଟିଯାଇ ବସିଯିବା ଅଂଶ ଗୋଟାଳିଆ (coagulum) ଓ ଜଳୀୟ ଅଂଶ (Serum)ରେ ପରିଣତ ହୁଏ। ରକ୍ତରେ ଦୁଇ ପ୍ରକାରର ଅଣୁ (Corpuscles) ଅଛି। ଏକ ପ୍ରକାର ଧଳା ଓ ଅନ୍ୟ ପ୍ରକାର ନାଲି। ଧଳା ଅଣୁର ସଂଖ୍ୟା ଅପେକ୍ଷା ନାଲିଆ ଅଣୁର ସଂଖ୍ୟା ବେଶୀ।

ଶରୀର ମଧ୍ୟରେ ପ୍ରବାହିତ ରକ୍ତ ୨ ପ୍ରକାର; ୧। ଆର୍ଟେରିୟାଲ୍ ବ୍ଲଡ୍ (Arterial blood)—ଯାହା ନାଡ଼ି ଦ୍ୱାରା ପ୍ରବାହିତ ହୁଏ। ଏହାର ବର୍ଣ୍ଣ ଟୋପା ନାଲି। ୨। ଭେନସ୍ ବ୍ଲଡ୍ (Veinous blood) ଯାହା ଶିରାପ୍ରଶିରା ଦ୍ୱାରା ପ୍ରବାହିତ ହୁଏ। ସ୍ଥୂଳରେ ଧରିବାକୁ ଗଲେ ରକ୍ତରେ ଜଳୀୟ ପଦାର୍ଥ ୮୦ ଭାଗ, ଘନ ପଦାର୍ଥ ୨୦ ଭାଗ। ସାଧାରଣ ମନୁଷ୍ୟ ଦେହରେ ପ୍ରାୟ କଟକ ୧୧ ସେର ରକ୍ତ ଥାଏ। ମନୁଷ୍ୟର ରକ୍ତର ଉଷ୍ଣତା ପ୍ରାୟ ୯୮ ଡିଗ୍ରୀ।]

ଦେ. ବି—୧। ଜଙ୍ଘ, କାଖ ଆଦି ବେଦନାଯୁକ୍ତ ହୋଇ ଫୁଲିବା—1. Bubonic swelling of the thigh etc due to glandular disease. ୨। ଆର୍ତ୍ତବ; ପ୍ରତିମାସରେ ସ୍ତ୍ରୀଗର୍ଭରୁ ନିଃସୃତ ରଜଃ(ଅଶିଷ୍ଟ,— ନେତ୍ର)— 2. Menstrual flow; menses.

[ଦ୍ର— ଶାସ୍ତ୍ର ମତରେ ଓ ଆଧୁନିକ ବିଜ୍ଞାନ ମତରେ ମଧ୍ୟ ଏହା ଅତି ଅଶୁଚି ଓ ଅସ୍ପୃଶ୍ୟ ଅଟେ।] ୩। ରକ୍ତ ସମ୍ପର୍କୀୟ ବ୍ୟକ୍ତି; କୁଟୁମ୍ବ—3. Blood relation; kinsman; kindred. ୪। ରକ୍ତସମ୍ପର୍କ—4. Blood relationship; kinship.

**ରକ୍ତ ଅବୁ**—ଦେ. ବି ( ସଂ. ରକ୍ତ ଓ ଅର୍ବୁଦ )— ପ୍ରସବ ସମୟରେ ଶିଶୁର ମୁଣ୍ଡରେ ଖୁବ୍ ଚାପ ପଡ଼ିବା ଯୋଗୁଁ ତା ମୁଣ୍ଡରେ ବାହାରିବା ରକ୍ତ ବର୍ଣ୍ଣର ଅବୁ (ଡାକ୍ତର ରାଜକିଶୋର–ପ୍ରସୂତିଚର୍ଯ୍ୟା)—Haematoma.
Rakta ābu
ରକ୍ତଆବ

**ରକ୍ତ ଆମାଶା**—ଦେ. ବି ( ସଂ. ରକ୍ତାମାଶୟ )—୧। ଝାଡ଼ା ସଙ୍ଗେ ରକ୍ତ ପଡ଼ିବା ରୋଗ—1. A disease accompanied with bloody stools. ୨। ରକ୍ତାତିସାର; ନାଲିରକ୍ତ ଝାଡ଼ା— 2. Dysentery.
Rakta āmāśā
(ରକ୍ତ ଆମାଶୟ— ଅନ୍ୟରୂପ)
ରକ୍ତ ଆମାଶା
**रक्त आमाशय**

**ରକ୍ତ ଉପୁଚିବା**—ଦେ. ବି—୧। ରକ୍ତ ଥୋପି ପଡ଼ିବା ( ଦେଖ ) 1. Rakta thopi pardibā (See) ୨। ରକ୍ତ ପିଚକିବା ( ଦେଖ ) 2. Rakta pichikibā ( See )
Rakta upuchibā
(ରକ୍ତ ଉପୁଚି ପଡ଼ିବା—ଅନ୍ୟରୂପ)
ପିଚକିରୀବ ମତ ବକ୍ତ ପଡା
**रक्त पिचका देना**

**ରକ୍ତକ**—ସଂ. ବି ( ରକ୍ତ+କ )—୧। ଅମ୍ଳାନକ ବୃକ୍ଷ—1. Globe Amaranth ( red variety ); Gomphraena Globosa. ୨। ବନ୍ଧୁକ ଗୁଳ୍ମ; ବଧୁଲି ( ଗଛ ଓ ଫୁଲ )—2. A plant with red blssom, Pentapetes Phoenicia; Ixora Bandhuka. ୩। ରକ୍ତ ବସ୍ତ୍ର—3. Red cloth. ୪। ଅନୁରାଗୀ ବ୍ୟକ୍ତି—4. A person affected with love; an impassioned person ( Apte ). ୫। ବିନୋଦୀ, କ୍ରୀଡ଼ାରତ ବ୍ୟକ୍ତି— 5. A player; a sporter. ୬। କୁସୁମ ଫୁଲ— 6. Safflower. ୭। ରକ୍ତଶିଗ୍ରୁ; ରକ୍ତ ସଜନା— 7. Red variety of horse radish, Morunga Hyperanthera. ୮। ରକ୍ତୈରଣ୍ଡ; ନାଲିଗବ—8. The red variety of castor-seed plant. ୯। ରକ୍ତୋତ୍ପଳ; ନାଲିକଇଁ— 9. The red water lily; Nymphae Rubra. ୧୦। ରକ୍ତକାଷ୍ଠ; ବକମ ଗଛ—10. The sappan wood. ୧୧। କୁଙ୍କୁମ; କେଶର ( ହ୍ର. ଶ. )— 11. Saffron ୧୨। କାମୁକ ବ୍ୟକ୍ତି—12. An amorous man ( Apte )—୧୩। ରକ୍ତ; ରୁଧିର —13. Blood ( Apte ). ବିଣ—୧। ଅନୁରାଗୀ— 1 Fond; affectionate. ୨। ଅନୁରକ୍ତ— 2. ( Person ) Attached to; ensmoured of. ୩। ବିନୋଦୀ ( ହ୍ର. ଶ. )—3. Sportive; frolicsome. ୪। ରକ୍ତବର୍ଣ୍ଣ ବିଶିଷ୍ଟ—4 Red.
Raktaka

୫ । ରକ୍ତରଞ୍ଜିତ—5. Bloody ( Apte ). ୬ । ମନୋହର—6. Pleasing; amusing (Apte).

**ରକ୍ତ କଇଁ**—ଦେ. ବି ( ସଂ. ରକ୍ତ କୁମୁଦ )—ରଙ୍ଗକଇଁ; ନାଲିକଇଁ; କୋକନଦ—The red water lily.
Rakta kaiñ
लालसुंदी लालकूई

**ରକ୍ତ କଙ୍ଗୁ**—ସଂ. ବି—ଯେଉଁ ସାଲବୃକ୍ଷରୁ ନିର୍ଯ୍ୟାସ ବାହାରେ—
Rakta kaṅgu — Gum-exuding Sal tree.

**ରକ୍ତକଣ୍ଟା**—ସଂ. ବି ( ବହୁବ୍ରୀହି )—ବଙ୍କଚଢ ଗୁଳ୍ମ ( ହି. ଶ )
Raktakaṇṭā — Flacourtia Ramontchi plant.

**ରକ୍ତକଣ୍ଠ(ଣ୍ଠୀ)**—ସଂ. ବିଣ ପୁଂ ( ବହୁବ୍ରୀହି; ରକ୍ତ=ସୁଶ୍ରାବ୍ୟ+କଣ୍ଠ=ସ୍ୱର ଯାହାର)—୧ । ମନୋହର କଣ୍ଠ
Rakta kaṇṭha(ṇṭhī)
ରକ୍ତକଣ୍ଠା } —ସ୍ତ୍ରୀ
ରକ୍ତକଣ୍ଠୀ }
ନାଲିଅ—1. Red-necked. ୨ । ସୁକଣ୍ଠ: ଯାହାର ସ୍ୱର ସୁମିଷ୍ଟ—2. Having a melodious tone or voice. ସଂ. ବି—୧ । କୋଇଲି ( ହି. ଶ. )—1. Indian cuckoo. ୨ । ବାଇଗଣ ( ହି. ଶ )—2. Brinjal. ୩ । ହରିତ୍ର ଚଢେଇ; ହରିତ ( ଦେଖ ) ( ଦ୍ରବ୍ୟଗୁଣ )—3. Harita ( See )

**ରକ୍ତ କଦମ୍ବ**—ସଂ. ବି—ନାଲି ଫୁଲ ବିଶିଷ୍ଟ କଦମ୍ବ ଗଛ ( ହି. ଶ. )—
Rakta kadamba — A variety of the Nucela Cadamba with red flowers.

**ରକ୍ତ କଦଳୀ**—ସଂ. ବି—ଚମ୍ପା କଦଳୀ (ଦେଖ)
Rakta kadaḷī — Champā kadaḷī ( See )

**ରକ୍ତ କନା**—ଦେ. ବି.—୧ । ରକ୍ତାକ୍ତ ବସ୍ତ୍ରଖଣ୍ଡ—1. Rag soaked with blood. ୨ । ଋତୁ ସମୟରେ ସ୍ତ୍ରୀମାନଙ୍କ ଦ୍ୱାରା ପରିହିତ ହେବା ଯୋଗୁଁ ରକ୍ତାକ୍ତ ବସ୍ତ୍ରଖଣ୍ଡ; ଋତୁ କନା—2. Rags used by females during menses and soaked with the menstrual blood; sanitary rag or towel. ୩ । ପ୍ରସବ କାଳରେ ଗର୍ଭରୁ ସ୍ରୁତ ଥିବା ରକ୍ତାଦିରେ ବୁଡ଼ିଥିବା କନା—3. Bloody rag; rags soaked with bloody discharge from the womb at child-birth.
Rakta kanā
रक्तेर नेकड़ा
रक्त कपड़ा

**ରକ୍ତ କନ୍ଦ**—ସଂ. ବି.—(ବହୁବ୍ରୀହି)—୧ । ପ୍ରବାଳ; ପୋହଳା—
Rakta kanda 1. Coral. ୨ । ପିଆଜ (ହି. ଶବ୍ଦସାଗର)—2 Onion. ୩ । ନାଲି ଅଳୁ (ହି. ଶ.)—3. Red-bulbed yam.
(ରକ୍ତ କନ୍ଦକ—ଅନ୍ୟରୂପ)

**ରକ୍ତ କମଳ**—ସଂ. ବି.—ନାଲି ପଦ୍ମ; ରକ୍ତୋତ୍ପଳ—
Rakta kamaḷa — The red lotus.
(ଅନ୍ୟ ସଂ ନାମ—ଅରବିନ୍ଦ, ଅରୁଣ କମଳ, ରବି ପ୍ରିୟ, ଶୋଣପଦ୍ମ, କୋକନଦ)
रक्त पदम लालपद्म

**ରକ୍ତ କମ୍ବଳ**—ସଂ. ବି.—୧ । ନେଳ କଇଁ (ହି. ଶବ୍ଦସାଗର)—
Rakta kambaḷa 1. The blue water lily. ୨ । ରକ୍ତବର୍ଣ୍ଣ ପଦ୍ମ (ପ୍ରକୃତିବାଦ)—2. Red lotus.

**ରକ୍ତ କରବୀର**—ସଂ. ବି.—ନାଲି କରବୀ ଫୁଲ—The red Oleander; Nerium Odorum, var' Rubra.
Rakta karabira
लाल करवी ज ज
ସଂ—ହୟମାର, ଗଣେଶ କୁସୁମ, ଚଣ୍ଡୀ କୁସୁମ, ଭୂତଦ୍ରାବୀ, ରବିପ୍ରିୟ [ଦ୍ର—ଏହାର ମୂଳ ବିଷାକ୍ତ ।]

**ରକ୍ତ କହ୍ଲାର**—ସଂ. ବି.—ନାଲି କଇଁ—
Rakta kalhāra — The red water-lily.
(ରକ୍ତ କୁସୁମ, ରକ୍ତ କୋକନଦ, ରକ୍ତ କୈରବ—ଅନ୍ୟରୂପ)

**ରକ୍ତ କାଞ୍ଚନ**—ସଂ. ବି.—ନାଲି ଫୁଲବିଶିଷ୍ଟ କାଞ୍ଚନ ଗଛ—
Rakta kāñchana — The red-flowered variety of mountain ebony; Bouhenia Variegata.
ସଂ.—କାଞ୍ଚନାଳ, କାଞ୍ଚନାର, କୁଦାର, ଗଣ୍ଡାରି, କାଞ୍ଚନକ, ଚମରିକ, ତାମ୍ରପୁଷ୍ପ, କୋବିଦାର, କୁଣ୍ଡଳୀ, ଶୋଣ ପୁଷ୍ପକ
लाल कांचन
लाल कचनार
[ଦ୍ର—ଏହା କାଞ୍ଚନ ଜାତୀୟ ଗଛ ବନ୍ୟ ତରୁ । ଏହା ଶୀତବୀର୍ଯ୍ୟ, ଧାରକ; କଷାୟରସ, କଫଘ୍ନ ଓ ପିତ୍ତନାଶକ, ଏହା ଶ୍ୱେତ କାଞ୍ଚନ ସଦୃଶ ଗୁଣଯୁକ୍ତ ।]
(ରକ୍ତ କଞ୍ଚଣ[ନ] - ଦେ. ରୂପ)

**ରକ୍ତ କାଟି ଦେବା**—ଦେ. କ୍ରି—୧ । ରକ୍ତସମ୍ପର୍କୀୟ କୁଟୁମ୍ବିତାକୁ ଅଗ୍ରାହ୍ୟ କରି ଶତ୍ରୁ ଆଚରଣ କରିବା—1. To disregard the ties of blood-relations. ୨ । ସାମାଜିକ ଉତ୍ସବାଦିରେ ରକ୍ତସମ୍ପର୍କୀୟ କୌଣସି ବ୍ୟକ୍ତିଙ୍କୁ ନିମନ୍ତ୍ରଣ ନ କରିବା—2. To exclude a blood relation from invitation to one's social ceremonies.
Rakta kāṭi debā
लहु काटदेना
[ରକ୍ତରେ ବାଡ଼ ଦେବା—ଅନ୍ୟରୂପ]
बक्तसम्पर्क केटेदेओया
(ରକ୍ତ ଛୁଟା(ଟେ)ଇବା—ଅନ୍ୟରୂପ)
(ରକ୍ତ କଟିଯିବା, ରକ୍ତ ଛୁଟିଯିବା—ବିଶେଷ୍ୟରୂପ)

**ରକ୍ତକାଣ୍ଡ(ଣ୍ଡା,ନ୍ତା)**—ସଂ.ବି—ନାଲି ପୁରୁଣି ଶାଗ--Red variety of hogweed; Serpent Ophyoxilon; Baerhavia Alata Rubra.
Raktakāṇda(ṇḍā,ntā)
ଅ. ସଂ. ନାକୁଲୀ, ଅହିଭୁକ୍, ଈଶ୍ୱରୀ, ନାଗ୍ନି, ନାଗଗନ୍ଧା, ବ୍ୟାଳଗନ୍ଧା,ସୁରସା,ସର୍ପଗନ୍ଧା, ସର୍ପାଦନୀ, ସୁଗନ୍ଧା, ସୁରସ, ନକୁଳ, କଚ, ପୁନର୍ଭବ, ପ୍ରାବୃଷେଣ୍ୟା, ଭୈମ, ମଣ୍ଡଳ-ପର୍ଣ୍ଣିକା, ଲୋହିତା, ବର୍ଷକେତୁ, ବିଷଘ୍ନୀ, ବୈଶାଖୀ, ଶୋଣପତ୍ର, ଶୋଫଘ୍ନୀ, ସାରିଣୀ ।
[ଦ୍ର—କଥିତ ଅଛି ଯେ ନକୁଳ ବା ନେଉଳ ସାପଦ୍ୱାରା ଦଷ୍ଟ ହେଲେ ଏହି ଗଛର ଚେରକୁ ଖାଇ ସର୍ପ-ଦଂଶନଜ୍ୱାଳାରୁ ମୁକ୍ତ ହୁଏ । ସାଧାରଣତଃ ଏ ଗଛକୁ 'ଅମରମୌଷଧ' କହନ୍ତି ।]

**ରକ୍ତ କାନ୍ଦିବା**—ଦେ. କ୍ରି—୧ । ଅତି ମାନସିକ ଯନ୍ତ୍ରଣା ଭୋଗକରିବା—1. To suffer a great mental agony. ୨ । ଅତି ବିକଳଭାବରେ କାନ୍ଦିବା—2. To weep very piteously; ( ପ୍ରୟୋଗ—ଅମୁକ ଜମିଦାରଙ୍କ ଜୁଲମ୍‌ରେ ପ୍ରଜାମାନେ ଲୁହ ନ କାନ୍ଦି ରକ୍ତ କାନ୍ଦୁଛନ୍ତି । ତୁଳନା କର ଇଂ His heart bleeds).
Rakta kāndibā
लहुरोना

ରକ୍ତ କାର୍ପାସିକା — ସଂ. ବି—ନାଲି କପା—The red-flowered
Rakta kārpāsikā variety of the cotton plant.
(ରକ୍ତକାର୍ପାସ—ଅନ୍ୟରୂପ) [ ଦ୍ର—ଏହା ମଧୁରକଷାୟରସ, ଈଷତ୍ ଉଷ୍ଣବୀର୍ଯ୍ୟ, ସ୍ତନ୍ୟବର୍ଦ୍ଧକ ଓ ବଳକର—ଦ୍ରବ୍ୟଗୁଣ । ]

ରକ୍ତ କାଶ—ସଂ. ବି—(ମ. ପ. ରୋ) ଯେଉଁ କାଶରୋଗରେ ଖଙ୍କାର
Rakta kāsa ସଙ୍ଗେ ରକ୍ତ ପଡ଼େ—Bloody expectoration; Sputeum Cruentum.

ରକ୍ତ କାଷ୍ଠ—ସଂ. ବି—ବକମ ଗଛ—The sappan wood;
Rakta kāshṭha Caesalpina Sappan.
[ଅନ୍ୟ ସଂ. ରକ୍ତକ, କୁଚନ୍ଦନ, ପଟ୍ଟରଞ୍ଜନ,'ପତ୍ରାଙ୍ଗ, ପତ୍ରାଶ୍ୟ, ଭାର୍ଯ୍ୟାବୃକ୍ଷ, ସୁରକାଷ୍ଠ, ଲୋହିତ, ସୁରଙ୍ଗ, ସୁରଙ୍ଗଦ ।]

ରକ୍ତ କୀଟାଣୁ—ସଂ. ବି (ଆଧୁନିକ ପ୍ରୟୋଗ)—ରକ୍ତ ମଧ୍ୟରେ ଥିବା କ୍ଷୁଦ୍ର
Rakta kitāṇu ଜୀବ—Hoematoza; animalculae discovered in blood

ରକ୍ତ କୁରଣ୍ଟ(ଣ୍ଡ)କ—ସଂ. ବି—ନାଲି ଝଣ୍ଟି ଗୁଳ୍ମ; ନାଲି ଦାସକେରେଣ୍ଟା-
Rakta kuranṭa(ṇḍa)ka Barleria Cristata.
লালঝিন্টি लालकटसरैया (କୁରବକ ଦେଖ)

ରକ୍ତ କୁଷ୍ଠ—ସଂ. ବି—ବିସର୍ପ ନାମକ ରୋଗ—A kind of
Rakta kushṭha skin-disease. [ ଦ୍ର—ଏଥିରେ ଦେହତମାମ୍ର ଜଳାପୋଡ଼ା କରେ ଓ ଦେହସାକ ରକ୍ତବର୍ଣ୍ଣ ଓ କୁଷ୍ଠରୋଗ ପରି କ୍ଷତ ହୁଏ—ହି. ଶ. ]

ରକ୍ତ କୁସୁମ—ସଂ. ବି—୧ । ପାରିଭଦ୍ର; ପାଲଧୁଆ ଗଛ—1. The
Rakta kusuma coral tree; Erithrina Falgens.
[ଅନ୍ୟ ସଂ. କୃମିଘ୍ନ, ପାରିଜାତକ, ମନ୍ଦାର] ୨ । ଛାମଣ ଗଛ; ଧନ୍ୱନ ବୃକ୍ଷ—2. A wild timber tree; Cordia Macleodii.
फरहद
৩ । পালিটামাঁদার ରକ୍ତକାଞ୍ଚନ—3. The red-flowered variety of Kanchana tree.
৪ । ধামিনিয়া. ধামুয়া डेनगान ରକ୍ତ ଅରଖ ଗଛ—4. The red variety of Arka plant.

ରକ୍ତ କୁସୁମା—ସଂ. ବି (ବହୁବ୍ରୀହି)—ଡାଳିମ୍ବଗଛ (ହି. ଶ.)—
Rakta kusumā Pomegranate tree.

ରକ୍ତ କୃମିଜା—ସଂ. ବି—ଲାଖ (ହି. ଶ.)—
Rakta krumijā Shell-lac.

ରକ୍ତ କେଶ(ସ)ର—ସଂ. ବି—୧ । ପାରିଭଦ୍ର, ପାଲଧୁଆ—
Rakta kesa(sa)ra 1. The coral tree.
[ଅନ୍ୟ ସଂ. ରକ୍ତପୁଷ୍ପ, ରକ୍ତରେଣୁ, ପୁନ୍ନାଗ, ନାଗକେଶର; ଅରୁଣ-କେଶର, କୃମ୍ପୀକ, ଭୃଙ୍ଗ, ଦେବବଲ୍ଲଭ, ପାଷାଣଦ୍ରୁମ, ପୁରୁଷ]
नागकेशर नागकेशर ୨ । ନାଗେଶ୍ୱର ଗଛ—2. A tree with scented flowers. Rotlaria Tinctoria.

ରକ୍ତକେଶୀ—ସଂ.ବିଣ(ରକ୍ତ + କେଶ + ଇନ୍; ୧ମା. ୧ବ)—ଯାହାର କେଶ
Raktakesi ରକ୍ତବର୍ଣ୍ଣ ବା କଡ଼ୁଗ୍ (ହି.ଶ)—Having
[ ରକ୍ତକେଶିନୀ—ସ୍ତ୍ରୀ ] reddish or auburn hair.

ରକ୍ତ କ୍ଷରଣ—ସଂ.ବି(୬ଷ୍ଠୀତତ୍)—କ୍ଷତ ଆଦିରୁ ଟୋପା ଟୋପା ହୋଇ ରକ୍ତ
Rakta ksha(ra)ṇa ଝରିବା; ରକ୍ତସ୍ରାବ—The oozing of
[ରକ୍ତକ୍ଷୟ—ଅନ୍ୟରୂପ] blood from a wound.

ରକ୍ତ ଖଦିର—ସଂ. ବି—ରକ୍ତବର୍ଣ୍ଣ କାର୍ଯ୍ୟସାର୍ଦ୍ରା ଖଦିର ବୃକ୍ଷ—
Rakta khadira The red-juiced sort of Mimosa
[ଅନ୍ୟ ସଂ.ନାମ—ଅରୁ, ଅସୃଖଦିର, କୁଷ୍ଠଘୋଦନ, ତାମ୍ରସାରକ, ପାଙ୍କ୍ତିକ, ମୃଗଦ୍ରୁ, ବହୁଶଲ୍ୟ, ସୁସାର ] Catechu; Acacia Catechu. [ଖଦିର ଦେଖ]

ରକ୍ତ ଖରାପ ହେବା—ଦେ. କ୍ରି—ରକ୍ତଦୁଷ୍ଟି; ରକ୍ତ ଦୂଷିତ ହେବା—
Rakta kharāpa hebā Impurity of blood.
বক্ত খারাপ হওয়া लहू खराब होना

ରକ୍ତଖାଇ—ପ୍ରାଦେ. (ଗଡ଼ଜାତ) ବି—ଔଷଧ ଗୁଳ୍ମ ବିଶେଷ—
Raktakhāi A sort of medicinal plant. [ ଦ୍ର—
বক্তখাই ଏହା ୧ । ୧½ ହାତ ପର୍ଯ୍ୟନ୍ତ ଉଚ୍ଚ ହୁଏ । ଏଥିର ମୂଳ କର୍କଶ ଓ ଖଣ୍ଡଖଣ୍ଡିଆ । ଏଥିର ମୂଳକୁ ଓ ଫଳ ଦାନ୍ତରେ ଥିବା ମଞ୍ଜିକୁ ଚନ୍ଦନ ପରି ବାଟି ଲେପ ଦେଲେ ଗୋଡ଼ହାତରେ ଗଢ଼ିଥିବା ଗଳଆ ରକ୍ତ ଓ ଉଚ୍ଛନ୍ନତ ଫୁଲା ଶୁଖିଯାଏ । ]

ରକ୍ତ ଖାଣ୍ଡ(ଡ଼)ବ—ସଂ. ବି—ଏକପ୍ରକାର ଖଜୁରି ଗଛ (ହି. ଶ)
Rakta khāṇḍa(ṛḍa)ba A kind of date palm.

ରକ୍ତଖିଆ—ଦେ. ବିଣ. ପୁଂ (ଗାଳି)—୧ । ଯେ ଅର୍ତ୍ତବ ପାନ କରେ;
Raktakhiā ସ୍ତ୍ରୀରଜଃପାନକାରୀ—1. (A term of filthy
বক্তখেকো, বক্তখেকুয়া abuse) One who drinks the
लहूखौका menstrual flux. ୨ । ଶୋଣିତ ଲିପ୍ସୁ; ଜୀବର ରକ୍ତପାନକାରୀ—2 Blood-thirsty; sanguinary. [ ଦ୍ର—ଏହାର ସ୍ତ୍ରୀଲିଙ୍ଗବାଚକ ଶବ୍ଦ (ରକ୍ତଖାଇ) ଭାଷାରେ ବ୍ୟବହୃତ ହୁଏ ନାହିଁ ।] ପ୍ରାଦେ. (ଗଡ଼ଜାତ)—
(ରକ୍ତଚଟା—ଅନ୍ୟ ବିଣ. ରୂପ) ରକ୍ତଖାଇ(ଦେଖ)—Raktakhāi. (See)

ରକ୍ତ ଗଙ୍ଗା—ସଂ ବି (ସଂସ୍କୃତ ଶବ୍ଦ ବିନ୍ଦୁ ଦେଶଜ ବ୍ୟବହାର)—( ଯୁଦ୍ଧ-
Rakta gangā କ୍ଷେତ୍ରାଦିରେ ଓ ଜୀବହତ୍ୟା ସ୍ଥାନରେ) ନଦୀ ପ୍ରବାହ
[ରକ୍ତନଦୀ—ଅନ୍ୟରୂପ] ପରି ଧାରାକାରରେ ବହୁଥିବା ରକ୍ତସ୍ରୋତ; ଭୟଙ୍କର ରକ୍ତପ୍ରବାହ—River of blood; copious flow of blood (on a field of battle or in a slaughter-house).

ରକ୍ତଗ(ପ)ଡ଼ିବା--ଦେ.କ୍ରି--ଗୋଡ଼ ଆଦି ଗୋଦର ହେବା; ବାତଜର ହେତୁ
Rakta ga(pa)ṛdibā ହାତ, ଗୋଡ଼, କୋଷ, ଲିଙ୍ଗ, ସ୍ତନ
[ରକ୍ତଗଡ଼ା—ଅନ୍ୟରୂପ] ଆଦି ବେଦନାଯୁକ୍ତ ହୋଇ ଫୁଲିଯିବା—
বক্তপড়া The swelling of the limbs (legs, hands,
लहूफुलना scrotum, penis, female breast) due to

elephantiasis. [ଦ୍ର—ହାତଗୋଡ଼କୁ ରକ୍ତ ଗଡ଼ିବାକୁ ଗୋଦର, କୋଷକୁ ଇରୁଣ୍ଡ, ଲଙ୍ଗକୁ ହାତିଶୁଣ୍ଢ଼ା, ସ୍ତନକୁ ଥନହସ୍ତ ବୋଲାଯାଏ ।]

ରକ୍ତ ଗନ୍ଧକ—ସଂ. ବି—ଆରବ ଓ ଆଫ୍ରିକାଦେଶାଗତ ଗୁଗ୍ଗୁଳ—
Rakta gandhaka The gum myrrh; Balsamodendron Myrrh.
बोल गन्धबोल

ରକ୍ତଗନ୍ଧା—ସଂ. ବି—ଅଶ୍ୱଗନ୍ଧା (ଦ୍ର. ଶ)—
Raktagandhā Aswagandhā (See)

ରକ୍ତ ଗରମ ହେବା—ଦେ. ବି—୧। (ଲକ୍ଷଣାର୍ଥ) ହଠାତ୍ କ୍ରୋଧରେ
Rakta garama hebā ଅସ୍ଥିର ହେବା; ପିତ୍ତ ଚଢ଼ିବା—
[ରକ୍ତ ଚଢ଼ିବା—ଅନ୍ୟରୂପ] 1. (figurative) Being in a fit of rage.
রক্ত গরম হওয়া
लहु गरम होना ୨। ବାଉଳା ହୋଇଯିବା—2. Becoming mad.

ରକ୍ତ ଗୁଞ୍ଜା—ସଂ. ବି (କର୍ମଧା)—ନାଲି କାଇଞ୍ଚ—
Raktā gunjā Abrus Prectorius (red-seeded variety)

ରକ୍ତ ଗୁଳ୍ମ—ସଂ. ବି—ମୂତ୍ରଗର୍ଭ ରୋଗ; ସ୍ତ୍ରୀଲୋକଙ୍କର ଗୁଳ୍ମବୃଦ୍ଧି ରୋଗ-
Rakta gulma ବିଶେଷ; କଇଞ୍ଚା ବେମାର—A female disease; a hard lump formed in the abdomen; ovarian tumour; Scirrhus of the ovarium. [ଦ୍ର—ଏହା ପେଟ ଭିତରେ କ୍ରମେ କ୍ରମେ ବଢ଼ି ପେଟସାକ ପୂର୍ଣ୍ଣ ହୋଇଯାଏ ଓ ପ୍ରସ୍ରାବ, ଝାଡ଼ା ବନ୍ଦ କରାଇ ଶେଷରେ ମାରିଦିଏ ।]

ରକ୍ତଗ୍ରୀବ—ସଂ. ବିଣ-ପୁଂ. (ବହୁବ୍ରୀହି; ରକ୍ତ+ଗ୍ରୀବା)—ଯାହାର ବେକ
Raktagriba ନାଲି—Red-throated. ସ ବି—ପାରା—
[ରକ୍ତଗ୍ରୀବା—ସ୍ତ୍ରୀ] Pigeon (Apte.)

ରକ୍ତଘର୍ମ ନିଃସରଣ—ସଂ. ବି (ଆଧୁନିକ ପ୍ରୟୋଗ)—ରୋଗବିଶେଷ;
Raktagharma niḥsaraṇa ଦେହରୁ ରକ୍ତବର୍ଣ୍ଣ ସ୍ୱେଦ ନିର୍ଗମନ—Hœmathydrosis; oozing out of blood-coloured perspiration.

ରକ୍ତ ଘେ(ଭେ,ହେ)ରା—ଦେ.ବି—୧। କୌଣସି ବ୍ୟକ୍ତିର ଗୃହ ପାଖରେ
Rakta ghe(bhe,he)rā ବାରମ୍ବାର ଘୂରି ବୁଲିବା—1. Going
[ରକ୍ତଘେରା ବୁଲିବା—ବି] round and round a person.
চারদিগে ঘুরা चारोंतरफ घूमना ୨। ମଣ୍ଡଳାକାରରେ ଘୂରିବା—2. Whirling in a circle.

ରକ୍ତଘ୍ନ—ସଂ. ବି—ରୋହିତକ (ଦେଖ)
Raktaghna Rohitaka (See).

ରକ୍ତଘ୍ନୀ—ସଂ. ବି—ଗଣ୍ଠିଆ ଦୁବ—
Raktaghni A kind of Doob grass; Panicum Dactylon.

ରକ୍ତ ଚକ୍ଷୁଃ—ସଂ. ବି—୧। (ରୋଗ, କଷ୍ଟ, କ୍ରୋଧ ବା ଶୋକାଦିଜନିତ)
Rakta chakshuḥ ଅକ୍ଷି ରକ୍ତବର୍ଣ୍ଣ ହେବା; ରଙ୍ଗ ଅକ୍ଷି—
ରକ୍ତନେତ୍ର } ଅନ୍ୟରୂପ 1. Effusion of blood in the globe of the eye; blood-shot eye; Hæmalopia. ୨। ନାଲିଆଖି;
ରକ୍ତ ଲୋଚନ }
ରାଗରେ ଆରକ୍ତଲୋଚନ—2. Eyes reddened through a fit of anger.

ରକ୍ତଚକ୍ଷୁ କାଢ଼ିବା—ଦେ. କ୍ରି—(ଲକ୍ଷଣାର୍ଥ) କୌଣସି ବ୍ୟକ୍ତି ଉପରେ
Raktachakshu kārḍhibā ଅତି କ୍ରୁଦ୍ଧ ହେବା; ନାଲିଆଖି
ରକ୍ତଚକ୍ଷୁ ଦେଖା(ଖେ)ଇବା } ଅନ୍ୟରୂପ କାଢ଼ିବା—( figurative) To show red eyes; to burn with rage
ରକ୍ତଚକ୍ଷୁ ବାହାର କରିବା }
রক্তচক্ষু দেখান (বাহকরা)
लालआँख निकालना

ରକ୍ତ ଚଞ୍ଚୁ—ସଂ. ବି—(କର୍ମଧା, ରକ୍ତ+ଚଞ୍ଚୁ)- ନାଲି ଥଣ୍ଟ—
Rakta chanchu Red beak. ବିଣ (ବହୁବ୍ରୀହି)-ନାଲିଥଣ୍ଟିଆ—Red-beaked.

ରକ୍ତ ଚନ୍ଦନ—ସଂ. ବି—୧। ଏକପ୍ରକାର ରକ୍ତବର୍ଣ୍ଣ କାଷ୍ଠ—
Rakta chandana 1. The red sandal;
[ଅନ୍ୟ ସଂ—ଛିଲପର୍ଣ୍ଣି,ରଞ୍ଜନ Pterocarpus Santaninus, କୁଚନ୍ଦନ, କୁସୀଦ, ରକ୍ତାକ୍ତ, Pterocarpus Santalinus ତାମ୍ରସାର, ତାମ୍ରବୃକ୍ଷ, ଚନ୍ଦନ, (Kirtikar). ତାମ୍ରାଭ, ଲୋହିତ, ଲୋହିତଚନ୍ଦନ, [ ଦ୍ର—ଏହା ଚନ୍ଦନ ଜାତୀୟ ରକ୍ତସାର, ରକ୍ତାଙ୍ଗ, କ୍ଷୁଦ୍ରଚନ୍ଦନ, ନୁହେ ଓ ଏହାର କାଠ ସୁଗନ୍ଧ ଅର୍କଚନ୍ଦନ, ରକ୍ତସାକ, ପ୍ରବାଳଫଳ] ନୁହେ ।] ୨। ବକମ ଗଛ—2. The red Sappan wood.
বক্ত চন্দন ୩। କାଫ୍ରାନ୍—3. Saffron.
लालचन्दन, रक्तचन्दन
ଓ୍ଵେ ଏଲିରଗନ୍ଧ ପୁଟେକ୍କୁ ତା. ସେନସାଓନମ
ଆ ସନ୍ଦଲେ ଅହ୍ମର୍ ଫା. ସନ୍ଦଲେ ସୁର୍ଖ୍

ରକ୍ତଗୃହ୍ଲ ଗୈବା(ବେ)ଇବା—ଦେ. କ୍ରି--ଅତ୍ୟନ୍ତ କ୍ରୋଧରେ(ବାହାରେ
Rakta chaula chobā(be)ibā ପ୍ରକାଶ ନ କରି) ମନେ ମନେ
বেগে খিচমিচ কবা ଜର୍ଜରିତ ହେବା—To be burning in anger.
लहु चावल चिबाना

ରକ୍ତ ଗ୍ରପ—ସଂ. ବି (ଆଧୁନିକ ପ୍ରୟୋଗ) ୧। ଦେହରେ ରକ୍ତ ସଂଗ୍ରହର
Rakta chāpa ବେଗ—1. Blood pressure.
[ଦ୍ର—ହୃତ୍‌ପିଣ୍ଡରୁ ରକ୍ତ ପ୍ରଶିରାମାନଙ୍କ (arteries) ବାଟେ ଦେହସାକ ସଞ୍ଚାରିତ ହୋଇ ପୁଣି ଶିରା (veins) ବାଟେ ହୃଦୟକୁ ଫେରି ଆସେ । ଏହି ସଂଗ୍ରହ ମାର୍ଗର ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ପରିମାଣରେ ରକ୍ତ ଉପରେ ଚାପ ଥାଏ । ହୃଦୟରେ ଥିବା ଚାପର ପରିମାଣ କ୍ରମଶଃ ଶିରା ପ୍ରଶିରାରେ କମି ଯାଏ । ସୁସ୍ଥ ଶରୀରରେ ଅନୁଭୂତ ରକ୍ତଚାପ ଅପେକ୍ଷା ଅସୁସ୍ଥ ଶରୀରର ରକ୍ତଚାପ ବେଶୀ ହୁଏ—ହାଲିବର୍ଟନ୍ ଓ ମାକଡାଉେଲ୍‌ଙ୍କ Handbook of Physiology ଗ୍ରନ୍ଥ ।
ବର୍ତ୍ତମାନ ଡାକ୍ତରମାନେ ସ୍ଥିର କରିଅଛନ୍ତି, ଯେବେ ନିମ୍ନଲିଖିତ ସଂଖ୍ୟା ଅପେକ୍ଷା ଉତ୍ତରୋତ୍ତର ବୟସରେ ରକ୍ତର ଚାପର ଡିଗ୍ରୀ ବେଶୀ ଦେଖାଯାଏ ତାହାହେଲେ ରୁଗ୍ଣ ବ୍ୟକ୍ତିର

ବେଶି ଦିନ ବଞ୍ଚିବାର ଆଶା ରହେ ନାହିଁ । ରକ୍ତ ଗମନାଗମନ କରିବା ଶିରମାନଙ୍କ ଭିତର ଘରରେ କ୍ରମଶଃ ବୟୋବୃଦ୍ଧି ସଙ୍ଗେ ଚୂନ ପରି ଜିନିଷର ସ୍ତର ଜମି ଯାଇ ଶିରର ନଳୀ ମାନ ସରୁଆ ହୋଇ ଗଲେ ରକ୍ତର ଗୃପ ବେଶି ହୁଏ ।

୨୦ ବର୍ଷରେ ୧୨୦, ୩୦ ବର୍ଷରେ ୧୨୫, ୪୦ ବର୍ଷରେ ୧୨୮, ୫୦ ବର୍ଷରେ ୧୩୦, ୬୦ ବର୍ଷରେ ୧୩୫, ୭୦ ବର୍ଷରେ ୧୪୫ [ କଲିକତାର Advance ପତ୍ରିକା ୨୪ । ୩ । ୩୨ ]

**ରକ୍ତଗୃପମାନ ଯନ୍ତ୍ର**—ସଂ. ବି (ଅଧୁନାତନ)-ଯେଉଁ ଯନ୍ତ୍ରଦ୍ୱାରା ଦେହାଭ୍ୟନ୍ତରରେ ସଞ୍ଚରିତ ରକ୍ତର ଗୃପର ପରିମାଣ ନିର୍ଣ୍ଣୀତ ହୁଏ—Haemodynamometer; sphygometer.
Raktachāpamāna jantra

**ରକ୍ତ ଚିତା**—ଦେ. ବି—୧ । ରକ୍ତ ଚିତ୍ରକ (ଦେଖ)—1. Rakta chitraka (see)
Rakta chitā
ରକ୍ତେର ଫୋଁଟା ୨ । ହତଜୀବର ରକ୍ତଦ୍ୱାରା ହତ୍ୟାକାରୀର ଲଲାଟରେ କରାଯିବା ତିଳକ—2. Painting on one's forehead with the blood of the killed being.
ଲହୁକା ଟିକା
ରକ୍ତଚିତାମୂଳ / ରକ୍ତଚିତାପାରୁ }—୨ଅର୍ଥର ଅନ୍ୟରୂପ

**ରକ୍ତଚିତା କରିବା**—ଦେ. କ୍ରି—ହତ ବ୍ୟକ୍ତିର ରକ୍ତକୁ ଆଣି କପାଳରେ ତିଳକ କାଟିବା—To smear one's brow with the blood of a victim.
Raktachitā karibā
ରକ୍ତେର ଫୋଁଟା ପରା
ଲହୁକା ଟୀକା ଲେନା
[ରକ୍ତଚିତା ଦି(ଦେ)ଇବା—ଅନ୍ୟରୂପ]

[ଦ୍ର—କାହାଣୀରେ ବର୍ଣ୍ଣିତ ଅଛି ଯେ ରାଜାମାନେ କୌଣସି ବ୍ୟକ୍ତିକୁ ମାରି ପକାଇବାକୁ ଆଦେଶ ଦେଲେ ରାଜା ଉକ୍ତ ଆଦେଶପାଳନକାରୀ ଘାତକକୁ କହୁଥିଲେ ଯେ, ଦଣ୍ଡପ୍ରାପ୍ତ ବ୍ୟକ୍ତିକୁ ହାଣି ତାହାର ରକ୍ତ ମତେ ଆଣି ଦେଲେ ମୁଁ ସେହି ରକ୍ତରେ ଚିତା ଦେଇ ଜଳ ଗ୍ରହଣ କରିବି, ଅର୍ଥାତ୍ ଉକ୍ତ ବ୍ୟକ୍ତି ହତ ହୋଇଥିବା ବିଷୟରେ ନିଃସନ୍ଦେହ ହେବି; ଓ କାହାଣୀରେ ମଧ୍ୟ ଅଛି ଯେ ହତ୍ୟା କରିବାକୁ ଭାରପ୍ରାପ୍ତ ବ୍ୟକ୍ତି ବଧ୍ୟ ବ୍ୟକ୍ତିଠାରେ ଦୟାପରବଶ ହୋଇ ତାକୁ ନ ମାରି, ଲୁଚାଇ ରଖି ଓ ଗୋଟିଏ ଛେଳିର ରକ୍ତ ଆଣି ରାଜାଙ୍କୁ ଦେଇ ବୋଧ କରି ଦେଉଥିଲେ ଓ ପରେ ରାଜାଙ୍କ ରାଗ ଶାନ୍ତ ହୋଇ ରାଜା ଅନୁତପ୍ତ ହେଲେ ବଧାଦେଶପ୍ରାପ୍ତ ବ୍ୟକ୍ତିକୁ ଆଣି ରାଜାଙ୍କ ନିକଟରେ ଉପସ୍ଥିତ କରୁଥିଲେ ।]

**ରକ୍ତ ଚିତ୍ରକ**—ସଂ. ବି—କ୍ଷୁପବିଶେଷ, ନାଲି ଚିତାଗଛ; ରଙ୍ଗଚିତା—Plumbago Rosea; Plumbago Coccinea.
Rakta chitraka
[ଅନ୍ୟ ସଂ.ନାମ—ଉଷର୍ବୁଧ, କାଳ, କାଳମୂଳ, ଅତ୍ୟାଳ, ଅତିଦୀପ୍ୟ, ମାର୍ଜାର, ଅଗ୍ନି, ଦାହକ, ପାବକ, ଚିତ୍ରାଙ୍ଗ, ମହାଙ୍ଗ,
ଲାଲଚିତ୍ରକ

(ଦ୍ର—ଏଥିର ଫୁଲ ନାଲିଆ; ଏହାର ମୂଳ ବିଷାକ୍ତ । ଏହାକୁ ବାଟି ଦେହରେ ଲଗାଇ ଦେଲେ ଚମଡ଼ା ସିଝି ଯାଇ ଘାଆ ଓ ଫୋଟକା ହୋଇ ଯାଏ । ଏହା ମଧ୍ୟ ଔଷଧରେ

ବଙ୍ଗଚିତା, ରକ୍ତଚିତା, ଲାଲଚିତା ରସାୟନାଦି କାର୍ଯ୍ୟରେ ଲାଗେ ।)
ମ. ରକ୍ତଚିତ୍ରକୁ, ତେ. ଏର୍ରଚିତ୍ର, ତା. ଶିବପ୍ପୁଚିତ୍ତିର ।

**ରକ୍ତ ଚୂର୍ଣ୍ଣ**—ସଂ. ବି—୧। ସିନ୍ଦୂର—1. Red lead. ୨ । ନାଲି ଗୁଣ୍ଡ—2. Red powder.
Rakta chūrnna

**ରକ୍ତଛଉ**—ଦେ. ବି (ସଂ. ରକ୍ତ+ଛବି)—ଦେହରେ ରକ୍ତାଭ ମଳା ମଳା ଦାଗ—Red scurf.
Raktachhau
ଲାଲଛୁଲୀ ଲାଲଚକେତା

**ରକ୍ତ ଛିଟି(ଡ଼ି)କା**—ଦେ·ବି—ଛିଟିକି ହୋଇ କାନ୍ଥରେ ବା ଲୁଗା ଆଦିରେ ପଡ଼ିଥିବା ରକ୍ତବିନ୍ଦୁମାନ—Splashes of blood.
Rakta chiti(rdi)kā
ରକ୍ତେର ଛିଟା ଲହୁ ଛିଟକନା
[ରକ୍ତ ଛିଟ(ଡ଼ି)କିବା, ରକ୍ତ ଛିଟା—ଅନ୍ୟରୂପ]

**ରକ୍ତଜ**—ସଂ. ବିଣ (ରକ୍ତ+ଜନ୍‌ଧାତୁ+କର୍ତ୍ତୃ.ଅ)—ରକ୍ତରୁ ଜାତ—Produced from blood.
Raktaja

**ରକ୍ତ ଜନକ**—ସଂ· ବିଣ (ରକ୍ତ+ଜନ୍‌ଧାତୁ+କର୍ତ୍ତୃ.ଅ)—ଶରୀରରେ ରକ୍ତ ଉତ୍ପାଦନକାରୀ (ଔଷଧାଦି)—Hæmapoietic; blood-producing (medicine etc).
Rakta janaka

**ରକ୍ତ ଜନ୍ତୁକ**—ସଂ. ବି—୧ । ଭୂନାଗ; ଭୂଗର୍ଭଜାତ କୀଟବିଶେଷ; ଜିଆ—1. Earthworm. ୨। ରକ୍ତବର୍ଣ୍ଣ ପ୍ରାଣୀ—2 Any red animal.
Rakta jantuka

**ରକ୍ତ ଜବା**—ସଂ. ବି—ନାଲିଆ ମନ୍ଦାର ଫୁଲ—Red china rose.
Rakta jabā (ରକ୍ତ ମନ୍ଦାର—ଅନ୍ୟରୂପ)

**ରକ୍ତ ଜମିବା**—ଦେ. କ୍ରି—୧ । ଜଳୀୟ ରକ୍ତ କିଛିକ୍ଷଣ ବାହାରେ ରହିଲେ ତାହା ଠାଣୁଆ ହେବା—1. Coagulation of blood. ୨ । ରକ୍ତ ଗଡ଼ିବା (ଦେଖ)—2. Rakta gardibā (See)
Rakta jamibā
ରକ୍ତ ଜମା
ଲହୁ ଜମନା

**ରକ୍ତ ଜିହ୍ୱ**—ସଂ. ବି. (ବହୁବ୍ରୀହି; ରକ୍ତ=ରକ୍ତବର୍ଣ୍ଣ+ଜିହ୍ୱା)—ସିଂହ—The lion. ବିଣ ପୁଂ—ରକ୍ତବର୍ଣ୍ଣ ଜିହ୍ୱାବିଶିଷ୍ଟ—Having a red tongue.
Rakta jihwa
(ରକ୍ତଜିହ୍ୱା—ସ୍ତ୍ରୀ)

**ରକ୍ତ ଜ୍ୱର**—ସଂ. ବି(ମ.ପ.ଲୋ)—ଏକ ପ୍ରକାର ଜ୍ୱର—Scarlatina, scarlet fever.
Rakta jwara
[ଦ୍ର—ଏହି ଜ୍ୱରର ଆକ୍ରମଣର ତୃତୀୟ ଦିନ ମୁହଁ ଓ ଦେହସାକ ନାଲିଆ ବ୍ରଣମାନ ବାହାରିଯାଏ ଓ ୭ମ ଦିନ ଚମର ସ୍ତର ଉଠିଯାଏ ।]

**ରକ୍ତ ଜ୍ୱରା**—ସଂ. ବି—ରକ୍ତ ଦୂଷିତ ହେବା ଯୋଗୁଁ ଜାତ ହେବା ଦାରୁଣ ତାପଯୁକ୍ତ ଜ୍ୱର ବିଶେଷ—An inflamatory fever attributed to vitiated blood.
Rakta jwarā

**ରକ୍ତ ଝାଡ଼ା**—ଦେ. ବି—ରକ୍ତାତିସାର—Dysentery.
Rakta jhārdā
(ରକ୍ତ ହଗା, ରକ୍ତ କାଡ଼ାରକ୍ତ, ରକ୍ତ ପୋଖରୀ—ଅନ୍ୟରୂପ)
ରକ୍ତ ବାହ୍ୟୀ ଲହୁ ଟଟ୍ଟୀ

**ରକ୍ତ ଝିଣ୍ଟୀ**—ସଂ. ବି—କୁରବକ; ନାଲି ଦାସକେରେଣ୍ଡା ଗଛ—A purple species of Barleria.
Rakta jhinti

**ରକ୍ତ ଟାଣ ହେବା**—ଦେ. ବି—ଯୁବାବସ୍ଥାରେ ମନୁଷ୍ୟର ରକ୍ତର ତେଜ (ଅର୍ଥାତ୍ କାମକ୍ରୋଧାଦିର ଆଧିକ୍ୟ)—
Rakta ṭāṇa hebā Excess of passions due to youth.
ରକ୍ତ ଚଡା
लहू चढना

**ରକ୍ତ ଟୀକା**—ଦେ. ବି—ରକ୍ତ ଚିତା ୨ ( ଦେଖ )
Rakta ṭikā Rakta chitā 2 ( See )

**ରକ୍ତ ଟୋ(ଥୋ)ପା**—ଦେ. ବି—ରକ୍ତର ବିନ୍ଦୁ—
Rakta ṭo(tho)pā Drop of blood.
রক্তের ফোঁটা लहूका बिन्दु

**ରକ୍ତ ଟୋ(ଥୋ)ପି**—ଦେ. ବି—୧ । ରକ୍ତର କ୍ଷୁଦ୍ର ବିନ୍ଦୁ—
Rakta to(tho)pi 1. Small drop of blood.
রক্তের টিপ ୨ । କପାଳରେ ଅଙ୍କିତ ରକ୍ତବର୍ଣ୍ଣ (ଯଥା—ରକ୍ତ
लहूकी बिन्दी ଚନ୍ଦନ, ସିନ୍ଦୂର, ଲିପ୍ସ) ବିନ୍ଦୁ—2. A small point put on the forehead with some red paint.

**ରକ୍ତ ତୁଣ୍ଡ**—ସଂ. ବିଣ. ପୁଂ (ବହୁବ୍ରୀହି)—ଲୋହିତବର୍ଣ୍ଣ ମୁଖ ବିଶିଷ୍ଟ—
Rakta tuṇḍa Red-mouthed.
(ରକ୍ତ ତୁଣ୍ଡା—ସ୍ତ୍ରୀ) ବି—ଶୁକ ପକ୍ଷୀ; ଶୁଆ—Parrot.

**ରକ୍ତ ତୁଣ୍ଡକ**—ସଂ. ବି. ( ରକ୍ତ ତୁଣ୍ଡ+କ୍ଷୁଦ୍ରାର୍ଥେ. କ )—କ୍ଷୁଦ୍ର ନାଗ; ଜିଆ-
Rakta tuṇḍaka ନାଡ଼ୁ—Earthworm.

**ରକ୍ତ ତୃଣା**—ସଂ. ବି—ଧାନ ବିଲରେ ଜନ୍ମିବା ଏକ ପ୍ରକାର ତୃଣ;
Rakta truṇā ଗୋମୁଛିକା;ଗୋରୁ ମୁଥା—A sort of grass growing in cornfields.
তাম্বাড় गोदबी
[ ବି—ଏହା ମେଷାଦି ଗୋଙ୍କର ପୁଷ୍ଟିକାରକ ଖାଦ୍ୟ । ]

**ରକ୍ତ ତୃଷା(ଷ୍ଣା)**—ସଂ. ବି (ମ. ପ.ଲେ)—ରକ୍ତ ପିପାସା ( ଦେଖ )
Rakta trushā(shṇā) Rakta pipāsā ( See )
(ରକ୍ତତୃଷିତ—ବିଣ, ପୁ)

**ରକ୍ତ ତେଜ**—ଦେ ବି. (ଲକ୍ଷଣାର୍ଥ)—୧ । ଶରୀରରେ ବିଶୁଦ୍ଧ ରକ୍ତର
Rakta teja ଉପସ୍ଥିତି ଜନିତ ସ୍ୱାସ୍ଥ୍ୟ—1. (figurative)
রক্তের তেজ Healthy and sound condition of
लहूका तेज the body due to healthy blood.
୨ । ଯୌବନ ଜନିତ ବା ରକ୍ତର ସୁସ୍ଥାବସ୍ଥାଜନିତ ଅଙ୍ଗ ବା ସ୍ଫୂର୍ତ୍ତି—2. Sprightliness due to healthy blood (on account of youth or sound health); exuberance of spirits due to healthy blood in the system.

**ରକ୍ତ ତେଜଃ**—ସଂ. ବି—ମାଂସ—
Rakta tejaḥ Flesh (Apte).

**ରକ୍ତ ତ୍ରିବୃତ୍**—ସଂ. ବି—୧ । ନାଲି ତିଉଡ଼ି ଲତା—1. A sort of
Rakta tribṛut creeper; Operculina Turpethum.
लाल तिउडी (ତିଉଡ଼ି ଦେଖ)
লালতেউড়ি ୨ । ମସୂର (ଡାଲି)—2. A sort of lentil;
ମ. ଲୋହିତ ଛଅର Lens Esculenta; Ervum Hirsutem.
୩ । ଖେସାରି (ଡାଲି)—3. A sort of lentil; Ervum Ciccalens; Lathyrus Sativus.

**ରକ୍ତ ଥୋପି ପଡ଼ିବା**—ଦେ. ବି—ସୁସ୍ଥ ଶରୀରରେ ବିଶୁଦ୍ଧ ରକ୍ତର ଆଧିକ୍ୟ
Rakta thopi paḍibā ଯୋଗୁଁ ମୁହଁ ଓ ଦେହ ରକ୍ତାଭ
রক্ত থুপে পড়া ଦେଖାଯିବା—Rosy appearance of a
लहू टपकना person due to exuberance of healthy
(ରକ୍ତ ଟପକିବା—ଅନ୍ୟରୂପ) blood in the body.

**ରକ୍ତ ଦାଗ**—ଦେ. ବି—ଲୁଗା, କାନ୍ଥ, ଭୂମି ଆଦିରେ ଲାଗିଥିବା ଶୁଖିଲା
Rakta dāga ରକ୍ତର ଚିହ୍ନ—Marks of blood left on
রক্তদাগ लहूका दाग cloth, wall or ground.
(ରକ୍ତ ଚିହ୍ନ—ସ. ରୂପ)

**ରକ୍ତ ଦନ୍ତିକା**—ସଂ. ବି (ରକ୍ତ+ଦନ୍ତ+କ+ଆ)—ଚଣ୍ଡିକା; ଦୁର୍ଗାଙ୍କ
Rakta dantikā ରୂପବିଶେଷ—Goddess Chaṇḍi.
(ରକ୍ତ ଦନ୍ତୀ—ଅନ୍ୟରୂପ)

**ରକ୍ତ ଦଳା**—ସଂ. ବି—ନାଡ଼ି—
Rakta daḷā Pulse; vein.
(ଅନ୍ୟ ସଂ. ନାମ—ଅଧ୍ୱାନ୍ତା, କପୋତ ବାଣା, ନଳୀ, ନର୍ତ୍ତକୀ, ନଳିକା, କର୍ମିଣ୍ୟା, ପଠାସି, ପ୍ରବାଳୀ, ବିଦ୍ରୁମ ଲତିକା, ସୁଷିରା, ସୁରା ) ।

**ରକ୍ତ ଦାନ**—ସ. ବି—୧ । (ଆଧୁନିକ)—କୌଣସି ରକ୍ତହୀନ ରୋଗୀଙ୍କୁ
Rakta dāna ବଞ୍ଚାଇବା ପାଇଁ ତା ଦେହରେ ପାଶ୍ଚାତ୍ୟ ଚିକିତ୍ସା
(ରକ୍ତ ଦେବା—କ୍ରିୟାରୂପ) ବିଜ୍ଞାନସିଦ୍ଧ ରୀତିରେ କେତେକ ବିଶୁଦ୍ଧ ରକ୍ତ ପୂରାଇବା ପାଇଁ ନିଜଦେହରୁ ଡାକ୍ତରଙ୍କ ଦ୍ୱାରା ରକ୍ତ ନିଆଯିବା ପାଇ ଦେବା—Letting some blood to be taken out of one's body by the doctor to infuse it into the body of a bloodless patient. ୨ । ( ଲକ୍ଷଣାର୍ଥ ) ଅନ୍ୟ ପାଇଁ ନିଜର ପ୍ରାଣ ଉତ୍ସର୍ଗ ବା ପ୍ରାଣପାତ କରିବା—2 Sacrificing one's life for the benefit of another.

**ରକ୍ତ ଦୁଷ୍ଟ(ଷ୍ଟି)**—ସ. ବି—ରକ୍ତର ଦୂଷିତ ଅବସ୍ଥା—Impoverished
Rakta dushṭa(shṭi) or impure blood; tainted or vitiated condition of blood [ ବି— ଏଥିଯୋଗୁଁ ନାନା ରୋଗ ହୁଏ । ରକ୍ତରେ କୌଣସି ବିଷ ପ୍ରବେଶ କଲେ ଚର୍ମରୋଗ, ବ୍ରଣ, ବିଚର୍ଚ୍ଚିକା, କୁଷ୍ଠଆଦି ରୋଗ ହୁଏ ଓ ମୃତ୍ୟୁ ମଧ୍ୟ ଘଟେ । ]

**ରକ୍ତଦୃକ୍**—ସ. ବିଣ. ପୁଂ ( ରକ୍ତ+ଦୃଶ୍ ଧାତୁ+କର୍ତ୍ତୃ. କ୍ୱିପ୍; ରକ୍ତଦୃଶ୍
Raktadṛuk ଶବ୍ଦ )—ରକ୍ତବର୍ଣ୍ଣ ଚକ୍ଷୁ ବିଶିଷ୍ଟ—Having
(ରକ୍ତନେତ୍ର—ଅନ୍ୟରୂପ) blood-shot eyes, having blood-red eyes. ବି—୧ । କପୋତ; କାପଡ଼ା ଚଢ଼େଇ—1. Dove. ୨ । ପାରା—2. Pigeon ( Apte ).

**ରକ୍ତ ଦୃଷ୍ଟି**—ସ. ବି—ଅରକ୍ତନୟନ—Eyes red with anger.
Rakta dṛushṭi [ ଉ—ବିରକ୍ତ ହୋଇଣ କରଇଲା ରକ୍ତଦୃଷ୍ଟି । ଉଦ. ବୈଦେହୀଶବିଳାସ । ]

**ରକ୍ତ ଧାତୁ**—ସ. ବି—୧ । ( କର୍ମଧା ) ରକ୍ତବର୍ଣ୍ଣ ଧାତୁ—1. Any
Rakta dhātu red metal. ୨ । ତାମ୍ର; ତମ୍ବା—2. Copper. ୩ । ଗେରୁ ମାଟି—3. Red chalk;

red ochre ୪ । ( ରୂପକ ) ଦେହସ୍ଥ ଧାତୁ ବିଶେଷ; ରକ୍ତ—4 The blood; an element of the body. ୫ । ହରିତାଳ—5. Orpiment ( Apte ).

**ରକ୍ତ ଧାର**—ଦେ. ବି (ସଂ. ରକ୍ତ ଧାରା)—ରକ୍ତର ସ୍ରୋତ; ଧାରାକାରରେ
Rakta dhara ବହୁଥିବା ରକ୍ତ—Flow of blood; the
(ରକ୍ତଧାରା—ସଂ. ରୂପ) flow of blood like a current.
ରକ୍ତେରଧାର लहूकाधार

**ରକ୍ତ ନଦୀ**—ସଂ. ବି ( ରୂପକ; ରକ୍ତ+ନଦୀ )—୧ । ବହୁପରିମାଣରେ
Rakta nadī ରକ୍ତ ପ୍ରବାହ—1. River of blood;
(ରକ୍ତନଈ—ଦେ. ରୂପ) blood flowing like river.
୨ । ପ୍ରଚୁର ରକ୍ତସ୍ରାବ—2. Copious discharge of blood.

**ରକ୍ତ ନୟନ**—ସ.ବି—୧ । (କର୍ମଧା)—ଲୋହିତ ଚକ୍ଷୁ—1. Blood-
Rakta nayana shot eyes, blood-red eyes.
୨ । (ବହୁବ୍ରୀହି) ଚକୋର ପକ୍ଷୀ—2. The partridge;
(ରକ୍ତ ନୟନା—ସ୍ତ୍ରୀ) Perdix Rufa. ବିଣ. ପୁଂ (ବହୁବ୍ରୀହି)
—ରକ୍ତଚକ୍ଷୁବିଶିଷ୍ଟ—Red-eyed.

**ରକ୍ତ ନାଳ**—ସଂ. ବି—ଶାକ ଶାକ—
Rakta nāla A kind of pot herb.

**ରକ୍ତ ନାସିକ**—ସଂ. ବିଣ. ପୁଂ ( ରକ୍ତ+ନାସିକା; ବହୁବ୍ରୀହି )—
Rakta nāsika ନାଲି ନାକଯୁକ୍ତ—Having red nose.
(ରକ୍ତ ନାସିକା—ସ୍ତ୍ରୀ) ବି—ପେଚକ; ପେଚା—The owl.

**ରକ୍ତ ନିଃସରଣ**—ସଂ. ବି ( ୬ଷ୍ଠୀ ତତ )—ରକ୍ତସ୍ରାବ—
Rakta niḥsaraṇa Discharge of blood.

**ରକ୍ତ ନିଃସାରକ**—ସଂ. ବିଣ—ଯେଉଁ ଔଷଧଦ୍ୱାରା ଦେହରୁ ରକ୍ତସ୍ରାବ
Rakta niḥsāraka ହୁଏ—(medicine) Promoting haemorrhoidal discharge; Haemagogue.

**ରକ୍ତ ନିଃସାରଣ**—ସଂ. ବି—ଦେହରୁ ରକ୍ତସ୍ରାବ କରାଇବା—
Rakta niḥsāraṇa Causing blood to be discharged from the body.

**ରକ୍ତ ନିର୍ମାଣ**—ସଂ. ବି ( ଆଧୁନିକ ପ୍ରୟୋଗ )—ଶାରୀରିକ କ୍ରିୟାଦ୍ୱାରା
Rakta nirmāṇa ଖାଦ୍ୟାଦିରୁ ରକ୍ତ ପ୍ରସ୍ତୁତ ହେବା—
Sanguification; blood-making; a function of the system which changes chyle into blood.

**ରକ୍ତ ନୌ(ଲୌ)ନୁ (ଲୁ)ହାଣ**—ଦେ. ବିଣ.—(ସ. ରକ୍ତଲୋହିତ)—
Rakta nau(lau)nu (lu)hāṇa ସର୍ବାଙ୍ଗ ରକ୍ତାକ୍ତ—
सर्वांङ्ग रक्ताक्त Besmeared with blood throughout the whole body.

[ରକ୍ତ ଲ(ନ)ହ(ହୁ) ଲୁହାଣ—ଅନ୍ୟରୂପ]

**ରକ୍ତପ**—ସ. ବିଣ. ପୁଂ.—(ରକ୍ତ+ପା ଧାତୁ+କର୍ତ୍ତୃ. ଅ)—ରକ୍ତ-
Raktapa ପାନକାରୀ; ଯେ ରକ୍ତ ପିଏ—Blood-drinking;
(ରକ୍ତପା—ସ୍ତ୍ରୀ) blood-sucking. ବି.—ରାକ୍ଷସ—A blood-sucking goblin or demon.

**ରକ୍ତ ପକ୍ଷ**—ସଂ. ବି.—(କର୍ମଧା, ରକ୍ତ+ପକ୍ଷ)—୧ । ନାଲିଆ ଡେଣା—
Rakta paksha 1. Red wings. ୨ । (ବହୁବ୍ରୀହି)—
ଗରୁଡ଼—2. Garurda, the king of birds.
ବିଣ. ପୁଂ.—ରକ୍ତପକ୍ଷଯୁକ୍ତ—Having red wings.

**ରକ୍ତ ପକ୍ଷତି**—ସଂ. ବି.—(ବହୁବ୍ରୀହି)—ରୋହିମାଛ [ଦ୍ରବ୍ୟଗୁଣ]—
Rakta pakshati Rohi fish.

**ରକ୍ତପଟା ଜାଗିର**—ପ୍ରାଦେ. (ଗଡ଼ଜାତ) ବି—ଯୁଦ୍ଧରେ ରାଜାଙ୍କୁ
Raktapaṭā jāgiri ସାହାଯ୍ୟ କରିଥିବା ଯୋଦ୍ଧାଦ୍ୱାରା ନିହତ
ଶତ୍ରୁର ରକ୍ତରେ ଲେଖା ସନନ୍ଦଦ୍ୱାରା ଦିଆ ଯିବା ଜାଗିର—
The service-tenure granted to a warrior in writing done with the blood of his victim.

**ରକ୍ତ ପଡ଼ିବା**—ଦେ. କ୍ରି—୧ । ରୋଗ ଯୋଗୁଁ ଦେହରୁ ରକ୍ତ ବାହାରିବା;
Rakta paṛibā ରକ୍ତସ୍ରାବ; ମୁଖବାଟେ ବା ଗୁହ୍ୟ ବାଟେ ବା
रक्तपड़ा ପ୍ରସ୍ରାବ ସଙ୍ଗେ ରକ୍ତସ୍ରାବ ହେବା—Bleeding due to
लहु गीरना disease; hemorrhage. [ ଦ୍ର—ଗୁହ୍ୟ ବାଟେ
ରକ୍ତ ପଡ଼ିବା—ଅର୍ଶଃ, ଗୁହ୍ୟାର୍ଶଃ ।
ପ୍ରସ୍ରାବ ବାଟେ ରକ୍ତ ପଡ଼ିବା—ରକ୍ତ ମେହ ।
ସ୍ତ୍ରୀମାନଙ୍କର ଅସ୍ୱାଭାବିକ ରକ୍ତସ୍ରାବ—ରକ୍ତପ୍ରଦର ।
ନାକ ବାଟେ ରକ୍ତ ପଡ଼ିବା—ପୀନସ ।
ପାଟି ବାଟେ ରକ୍ତ ପଡ଼ିବା—ରକ୍ତ ବାନ୍ତି ।
ଦାନ୍ତରୁ ରକ୍ତ ପଡ଼ିବା—ସରସା, ଦନ୍ତାର୍ଶଃ ।
ଝାଡ଼ା ସଙ୍ଗେ ରକ୍ତ ପଡ଼ିବା—ରକ୍ତାମାଶୟ, ରକ୍ତାତିସାର ।
ଖଙ୍କାର ବା ଶିଂଘାଣି ସଙ୍ଗେ ରକ୍ତ ପଡ଼ିବା—ରାଜଯକ୍ଷ୍ମା ।]
୨ । ହାତର ବା ଗୋଡ଼ର ଅଂଶ ବିଶେଷ ହଠାତ୍ ଫୁଲିଯିବା;
ରକ୍ତ ଗଡ଼ିବା—2. Temporary swelling of any part of the limb; affectation of the glands.

**ରକ୍ତ ପତାକା**—ସଂ. ବି.—୧ । ନାଲିଆ ବର୍ଣ୍ଣର ପତାକା—
Rakta patākā 1. Red flag. ୨ । ( ଲକ୍ଷଣାର୍ଥ )—
ଯୁଦ୍ଧରେ ବା ହତ୍ୟାରେ ରକ୍ତ କ୍ଷୟ ହେବାର ଆନ୍ଦୋଳନରେ
ବା ଉଦ୍ୟମରେ ନେତୃତ୍ୱ—2 Leadership of a movement where bloodshed is inevitable.
୩ । ହତ ଶତ୍ରୁର ରୁଧିରରଞ୍ଜିତ ପତାକା—3. Bloody flag, flag besmeared with the blood of the killed enemy.

**ରକ୍ତ ପତ୍ର**—ସଂ. ବି.—୧ । (କର୍ମଧା) ନାଲିଆ ପତ୍ର—1. Red leaf.
Rakta patra ୨ । ( ବହୁବ୍ରୀହି ) ରକ୍ତ କଇଁ—2. Red
water-lily. ବିଣ.—( ବହୁବ୍ରୀହି )—୧ । ନାଲି
ପତ୍ରଯୁକ୍ତ—1. Red-leafed. ୨ । ନାଲି ପାଖୁଡ଼ା-
ଯୁକ୍ତ—2. Red-petalled.

**ରକ୍ତ ପତ୍ରିକା**—ସଂ. ବି.—୧ । ରକ୍ତ କାଣ୍ଡା (ଦେଖ)—
Rakta patrikā 1. Rakta kāṇḍā (See).
୨ । ନାଲି ପତ୍ର—2. Red leaf.
୩ । ନାଲି କାଗଜରେ ଲେଖା ଚିଠି—3. A red note.

ରକ୍ତ ପଦୀ—ସ. ବି- ଲଜ୍ଜାଳୁ; ଲାଜକୁଳୀ କ୍ଷୁପ—
Rakta padi A sensitive creeper or plant;
[ଅନ୍ୟ ସଂ—ଲଜ୍ଜାବତୀ, ଲଜ୍ଜାଳୁ, Lycopodium; Mymosa
ନମସ୍କାରୀ, ଗଣ୍ଡକାଲୀ, Pudica. [ଦ୍ର—ଏହା
ସମଙ୍ଗା, ଖଦିରୀ,] ପ୍ରକୃତରେ ଲତା ନୁହେଁ; କ୍ଷୁପ ଅଟେ,
ବାଲୁ ଭୂମିରେ ମାଡ଼େ ।]

ରକ୍ତ ପଦ୍ମ—ସ. ବି—ରକ୍ତକମଳ (ଦେଖ)—
Rakta padma Rakta kamala (See)

ରକ୍ତ ପରୀକ୍ଷା—ସଂ ବି (ଷଷ୍ଠୀତତ୍)—(ଆଧୁନିକ) ରୋଗର ନିଦାନ ଆଦି
Rakta pariksha ନିରୂପଣାର୍ଥ କୌଣସି ବ୍ୟକ୍ତିର ଦେହର
ରକ୍ତର ବୈଜ୍ଞାନିକ ପରୀକ୍ଷା—Blood-examination.

ରକ୍ତ ପରିଷ୍କାରକ—ସ.ବିଣ.—ରକ୍ତଶୁଦ୍ଧି କୁ ଆରୋଗ୍ୟ କରିବା(ଔଷଧ)—
Rakta parishkaraka Blood-purifying (medicine, herb.)

ରକ୍ତ ପରିସ୍ରା—ଦେ. ବି.—[ସଂ ରକ୍ତ ପ୍ରସ୍ରାବ]—ରକ୍ତମୂତ୍ର (ଦେଖ)—
Rakta parisra Rakta mūtra (See)
[ରକ୍ତପ୍ରସା(ସ୍ରା)—ଅନ୍ୟରୂପ] [ରକ୍ତପ୍ରସ୍ରାବ—ସଂ ରୂପ]

ରକ୍ତ ପଲ୍ଲବ—ସଂ. ବି.—୧ । [କର୍ମଧା]—ନାଲିଆ ପତ୍ର—1. Red
Rakta pallaba leaf. ୨ । [ବହୁବ୍ରୀହି] ଅଶୋକ ବୃକ୍ଷ—
2. The Asoka tree; Janesia Asoka.

ରକ୍ତପା—ସ. ବିଣ.—ରକ୍ତପର ସ୍ତ୍ରୀଲିଙ୍ଗ—The feminine of
Raktapā Raktapa. ବି.—୧ । ଜୋକ; ଜଳୌକା—
1. Leech. ୨ । ରାକ୍ଷସୀ; ଡାହାଣୀ; ଡାକିନୀ—
2. A female goblin; an imp.

ରକ୍ତ ପାକୀ—ସ. ବି.—(ଏହା ରକ୍ତ ପରିଷ୍କାର କରୁଥିବାରୁ)—ଅଙ୍କରାନ୍ତି;
Rakta pāki କଣ୍ଟକାରୀ, ବୃହତୀ—Solanum Indicum;
ବ୍ୟାକୁଡ Solanum Hirsutum. [ଦ୍ର—ଏହାର ମୂଳ ଦଶ-
ମୂଳ ପାଚନରେ ଲାଗେ ।]

ରକ୍ତ ପଣି—ଦେ. ବି.—(ସ. ରକ୍ତ+ପାନୀୟ)—ରକ୍ତ ମିଶ୍ରିତ ଜଳ—
Rakta pāṇi Blood mixed with water.
ରକ୍ତ ଓ ଜଲ ଲହୁପାନୀ ୨।(ରକ୍ତ ପରି ଗାଢ଼ା ନ ହୋଇ ପତଳା ଓ ପତଳା,
ରକ୍ତ ଦେଖା ଯିବାରୁ) ସ୍ତ୍ରୀଲୋକମାନଙ୍କ ରଜଃ; ନେଡ଼ା ପାଣି—
2. Menstrual flow; menstrual discharge.

ରକ୍ତ ପାଣି ହେବା—ଦେ. ବି.—(ଲକ୍ଷଣାର୍ଥ)—ଚିନ୍ତାରେ ବା ଭୟରେ
Rakta pāṇi hebā ଆତୁର ବା ଶଙ୍କିତ ହେବା—Being
ରକ୍ତ ଜଲ ହযে যাওয়া ଲହୁ ପାନୀ ହୋନା struck with
terror or anxiety.
[ରକ୍ତ ପାଣି ଫାଟି ଯିବା, ରକ୍ତ ପାଣେଇ ଯିବା—ଅନ୍ୟରୂପ]

ରକ୍ତ ପାତ—ସଂ. ବି—(ଷଷ୍ଠୀ ତତ୍)—୧ । ହତପ୍ରାଣୀର ଦେହରୁ
Rakta pāta ରକ୍ତ ବାହାରିବା—1. The spilling of
blood of a slaughtered animal on the
ground. ୨ । ରକ୍ତ ବାହାର କରିବାଦ୍ୱାରା ହତ୍ୟା ବା
ଗୁରୁତର ଆଘାତ—2. Murder or grievous
hurt caused by shedding of blood;
bloodshed. ୩ । ରକ୍ତନିର୍ଗମନ; ରକ୍ତ ବୋହିବା,
ରକ୍ତସ୍ରାବ—3. Flowing of blood; haemorrhage. ୪ । ଗର୍ଭରୁ ପ୍ରସବକାଳୀନ ରକ୍ତନିଃସରଣ—
4. Uterine haemorrhage.

ରକ୍ତପାତା—ସଂ. ବି. ସ୍ତ୍ରୀ—(ରକ୍ତପାତ+ଆ; ରକ୍ତ ଶୋଷିବାଦ୍ୱାରା
Raktapātā ଜୀବ ଶରୀରରୁ ଯାହା ରକ୍ତପାତ କରାଏ)—ଜଳୌକା;
ଜୋକ—Leech.

ରକ୍ତ ପାଦ—ସ. ବି—(କର୍ମଧା;ରକ୍ତ+ପାଦ)—୧ । ନାଲିଆ ଗୋଡ଼—
Rakta pāda 1. Red leg. ୨ । (ବହୁବ୍ରୀହି) ଶୁକପକ୍ଷୀ—
2. Parrot. ୩ । ଯୁଦ୍ଧରଥ—3. A war-chariot
(Apte). ୪। ହସ୍ତୀ—4. An elephant (Apte).
ବିଣ (ବହୁବ୍ରୀହି) ଲୋହିତ ଚରଣଯୁକ୍ତ—Red-legged.

ରକ୍ତ ପାଦୀ—ସଂ. ବି—ରକ୍ତପଦୀ (ଦେଖ)—Raktapadi (See)
Rakta pādi

ରକ୍ତ ପାନ—ସଂ. ବି (ଷଷ୍ଠୀ ତତ୍)—୧ । (ଜୋକ,ଟିକ ଆଦି ଜୀବ)—
Rakta pāna ଅନ୍ୟ ଜୀବର ଦେହରୁ ମୁହଁ ଦ୍ୱାରା ରକ୍ତ ଶୋଷିବା
1. Sucking of blood from the body of
animals (said of blood-sucking animals)
୨ । ହତଜୀବର ରକ୍ତକୁ ପିଇବା—2. Drinking of the blood of a killed being.

ରକ୍ତପାୟୀ—ସଂ. ବିଣ. ପୁଂ (ରକ୍ତ+ପା ଧାତୁ=ପିଇବା+କର୍ତ୍ତୃ. ଇନ୍)-
Rakta pāyi ୧। ଯେଉଁ ଜୀବ ରକ୍ତ ପାନକରେ—1. Blood-
(ରକ୍ତପାୟିନୀ—ସ୍ତ୍ରୀ) sucking; drinking blood. ୨।ଯେଉଁ
କୀଟ ବା ଜୀବମାନେ ଅନ୍ୟ ଜୀବର ଦେହରୁ ରକ୍ତପାନ କରନ୍ତି
(ଯଥା—ମଶା, ଘରପୋକ, ଟିକ୍, ଇତ୍ୟାଦି)—
2. Any blood-sucking animal. ୩ । ଉକୁଣି
—3. Louse. ୪ । ଘରପୋକ—4. Bed bug. ୫।
୍। ଜୋକ—5 Leech.

ରକ୍ତ ପାରଦ—ସଂ. ବି—ହିଙ୍ଗୁଳ—Vermilion; cinnabar.
Rakta pārada

ରକ୍ତ ପିଇବା—ଦେ. କ୍ରି—୧। ହତ ଜୀବଦେହରୁ ରକ୍ତପାନ କରିବା—
Rakta pi-ibā 1. To drink blood. ୨ । ଜୀବ ଦେହରୁ
ରକ୍ତପାନକରା ଲହୁପୀନା ରକ୍ତ ଶୋଷଣ କରିବା—2. To suck
blood out of an animal's body.
୩ । (ଲକ୍ଷଣାର୍ଥ) (ଯେଉଁପରି ଜୀବଙ୍କ ଛୋଟ କଣା କରି
ବାଘ ରକ୍ତ ପିଏ ) କୌଣସି ବ୍ୟକ୍ତିକୁ ହତ୍ୟା କରିବା—
3. (figurative) To kill a person. ୪ ।
(ଲକ୍ଷଣାର୍ଥ) ମନୁଷ୍ୟକୁ ଅନ୍ତଃସାରଶୂନ୍ୟ ବା ହୀନବଳ କରିବା-
4. To make a person lose strength
( figurative ). ( ଯଥା— ମୁଁ ଋଣ-
ଜାଲରେ ଜଡ଼ିତ ହେବାରୁ ମହାଜନମାନେ ମୋ
ଦେହରୁ ରକ୍ତ ପିଇଗଲେଣି) । ୫ । (ଗାଳି) ଅତ୍ୟପମାନ-
ସୂଚକ ଘୃଣାଜନକ କାର୍ଯ୍ୟ କରିବା—5. (a term of
vile reproach) To drink the menstrual
discharge.

ରକ୍ତ ପିଚ୍(ଚ)କା ମାରିବା—ଦେ. କ୍ରି.—ଦେହର କୌଣସି ସ୍ଥାନ
Rakta pich-(chi)kā māribā କଟିଗଲେ ତହିଁରୁ ରକ୍ତ ପିଚ-
ରକ୍ତ ପିଚ୍(ଚ)କିବା } ଅନ୍ୟରୂପ କାରି ମାରିବା ପରି ଛୁଟିବା—To spurt out (said of gushing
ରକ୍ତ ପିଚ୍(ଚ)କା } blood from a wound).
लहूपिचकना बक्त पिचिकिरी मावा

ରକ୍ତ ପଛୁଲି—ପ୍ରାଦେ (ଖୋରଧା ଓ ଗଡ଼ଜାତ) ବି—ଏକପ୍ରକାର ଔଷଧ
Rakta pichhuli ଗୁଳ୍ମ—Name of a medicinal plant; Gouania Leptostachya [ କୃ—ଏହି ଗଛ ୮।୧୦ ହାତ ପର୍ଯ୍ୟନ୍ତ ଉଚ୍ଚ ହୁଏ । ଗଛର ମୂଳରୁ ଗଣ୍ଡିର ଶେଷ ପର୍ଯ୍ୟନ୍ତ ବକଳ ନାଲି ଓ ଅଗଅଡ଼ାଳୁ ଧଳା । ଏହାର ଚେରକୁ ଗୋଲମରିଚ ମିଶାଇ ବାଟି ପିଛୁଳ, ବାଘୀ ଓ ବ୍ରଣ ଉପରେ ଦେଲେ ସେ ସବୁ ନାଶ ହୋଇଯାଏ । ]

ରକ୍ତପିଣ୍ଡ—ସଂ ବି.—୧ । (୬ଷ୍ଠୀ ତତ୍) ପିଣ୍ଡୀକୃତ ରକ୍ତ; ରକ୍ତର
Rakta pinda ଗୋଲକ—1. A ball of clotted blood, ୨ । [କର୍ମଧା] ରକ୍ତବର୍ଣ୍ଣ ଗୋଲକ—2. A bloody-red ball. ୩ । (ବହୁବ୍ରୀହି) ଜବା ବା ମନ୍ଦାର ଫୁଲ—3. Red china rose; Habiscus Rosa; Sinensis. ୪ । ବନ୍ୟ ବୃକ୍ଷ ବିଶେଷ—4. Name of a small-tree; Ventilago Madraspatana. ୫ । ଶରୀରରେ ରକ୍ତାଧିକ୍ୟ ଜନିତ ଏକପ୍ରକାର ରୋଗ—5. Plethora. ୬ । ଗୁହ୍ୟ, ନାସା ଓ ମୁଖରୁ ଅବିରତ ଚେଲା ଚେଲା ରକ୍ତ ପଡ଼ିବା ରୋଗ—6. Spontaneous discharge of clots of blood through the mouth, the nostrils and the anus. ୭ । ନାଲିଆ ବଥ—7. Red boil; red pimple (Apte). ୮ । କୁଷ୍ଠ ମହାବ୍ୟାଧିର ପୂର୍ବଲକ୍ଷଣସୂଚକ ରକ୍ତାଭ ସ୍ଫୋଟକବିଶେଷ—8. Eruptions of red colour which are the symptoms of approaching leprosy.

ରକ୍ତ ପିଣ୍ଡକ—ସଂ. ବି—ନାଲି ପିଣ୍ଡ ଆଳୁ—
Rakta pindaka Red kind of yam; Dioscorea Sativa.
लाल चुबुडि आलु रक्तालु
[ ରକ୍ତପିଣ୍ଡାଳୁ—ଅନ୍ୟରୂପ ]

ରକ୍ତ ପିଣ୍ଡୁଲା(ଲି)—ଦେ. ବି (ସଂ. ରକ୍ତପିଣ୍ଡ)—ରକ୍ତପିଣ୍ଡ (ଦେଖ)—
Rakta pindulā(li) Raktapinda. (See) [ ଉ—ବକ୍ଷେବ ପିଣ୍ଡ ହରଚଣ୍ଡୀଙ୍କର ଭାଇ ମଲ୍ଲ, ରକ୍ତ ପିଣ୍ଡୁଲା ବୋହିଗଲା—ଶିଶୁଗୀତ । ]
लहूका थेग्हा

ରକ୍ତ ପିତ୍ତ—ସଂ. ବି—୧ । ରୋଗବିଶେଷ; ଯେଉଁ ରୋଗରେ ନାକ ଓ
Rakta pitta ମୁଖବାଟେ ଝଲକା ଝଲକା ରକ୍ତ ପଡ଼େ—1. A disease consisting of bloody discharge through mouth and nostrils. ୨ । ପିତ୍ତପ୍ରକୋପଜନିତ ରକ୍ତଦୁଷ୍ଟି—2. Derangement of blood produced by bile (Apte).
ଦେ. ବି—ବନ୍ୟବୃକ୍ଷ ବିଶେଷ—Ventilago Madraspatana (tree).

ରକ୍ତପିତ୍ତଘ୍ନ—ସଂ ବିଣ—ରକ୍ତପିତ୍ତ ରୋଗର ଉପଶମକ—
Raktapittaghna Antidote for hœmorrhage.
[ ରକ୍ତପିତ୍ତହା—ଅନ୍ୟରୂପ ] ବି—ରକ୍ତଘ୍ନୀ (ଦେଖ)—Raktaghni. (See)

ରକ୍ତ ପିପାସା—ସଂ.ବି(ମ.ପ.ଲେ) - ୧ । (ବ୍ୟାଘ୍ରାଦିଙ୍କର)ରକ୍ତପାନ କରିବାର
Rakta pipāsā ଇଚ୍ଛା—1. (of tiger etc) Desire to drink blood; thirst for blood. ୨ ।(ଲକ୍ଷଣାର୍ଥ) ନରହତ୍ୟା କରିବାର ପ୍ରବଳ ବାସନା; ଜିଘାଂସା—2. (figurative) A desire to kill people.

ରକ୍ତପିପାସୁ—ସଂ. ବିଣ—୧ । ରକ୍ତ ପାନ କରିବାକୁ ଇଚ୍ଛୁକ—
Rakta pipāsu 1. Blood-thirsty. ୨ । ନରହତ୍ୟା କରିବାକୁ ଅଗ୍ରସର—2. Thirsty after human blood. ୩ । ଜିଘାଂସୁ—3. Murderous.

ରକ୍ତ ପୁନର୍ନବା—ସଂ. ବି—ରକ୍ତକାଣ୍ଡା (ଦେଖ)
Rakta punarnabā Raktakāndā. (See)
( ରକ୍ତ ପୁରୁଣୀ—ଦେଶଜରୂପ )

ରକ୍ତପୁଷ୍ପ—ସଂ. ବିଣ ( ବହୁବ୍ରୀହି )—ନାଲି ଫୁଲଯୁକ୍ତ—Red-
Rakta pushpa flowered. ବି—୧ । ( କର୍ମଧା ) ନାଲିଆ ଫୁଲ—1. A red flower. ୨ । (ବହୁବ୍ରୀହି) ରକ୍ତ-କରବୀ ଗଛ—2. Red oleander; Nerium Odorum. ୩ । ରୋହିତକ ବୃକ୍ଷ—3. Andersonia Rohitaka (tree). ୪ । ରକ୍ତକାଞ୍ଚନ—4. Mountain Ebony; Bouhenia Variegata. ୫ । ଡାଳିମ୍ବ ଗଛ—5. Pomegranate tree. ୬ । ବକ ବୃକ୍ଷ; ଅଗସ୍ତି ଗଛ—6. Sesbania Grandiflora. ୭ । ବନ୍ଧୁଳି; ବନ୍ଧୁକ ଗୁଳ୍ମ ଓ ଫୁଲ—7. Ixora Bandhuca (tree and flower). ୮ । ନାଗକେଶର ବୃକ୍ଷ—8. A flower tree; Mesua Ferra ୯ । ନାଲି ଅରଖ ଗଛ ( ଦ୍ରବ୍ୟଗୁଣ )—9. The red-flowering variety of Calotropis Gigantea,

ରକ୍ତ ପୁଷ୍ପକ—ସଂ. ବି—୧ । ପଳାଶ ବୃକ୍ଷ—1. Butea Frondosa
Rakta pushpaka (tree). ୨ । ଶିମିଳି ଗଛ—2. Silk cotton tree; Bombax Heptaphyllum. ୩ । ରୋହିତକ ବୃକ୍ଷ-3. Andersonia Rohitaka (tree). ୪ । ନାଗେଶ୍ୱର; ନାଗକେଶର—4. Mesua Ferra. ୫ । ପର୍ପଟ—5. A medicinal plant; Oldenlandia Biflora. ୬ । ପାଲଧୁଅ ଗଛ—6. The coral tree; Erithrina.

ରକ୍ତ ପୁଷ୍ପା—ସଂ. ବ—୧ । ଶିମିଳି ଗଛ—1. The silk cotton
Rakta pushpā tree; Bombax Heptaphyllum. ୨ । ରକ୍ତ ପୁନର୍ନବା (ଦ୍ରବ୍ୟଗୁଣ)—2. The red variety of hog weed.

ରକ୍ତପୁଷ୍ପିକା—ସ.ବ—୧। ଲଜ୍ଜାଳୁ; ଲାଜକୋଳି—1. Lycopodium
Rakta pushpikā plant. ୨ । ରକ୍ତ ପୁନର୍ନବା—2. Red variety of hog weed.

ରକ୍ତ ପୁଷ୍ପୀ—ସଂ. ବ—୧ । ପାଟଳୀ ଗଛ—1. The trumpet
Rakta pushpī flower; Bignonia Suaveolens ୨ । ଆବର୍ତ୍ତକୀ ଲତା—2 Name of a red-flowered creeper. ୩ । ନାଗ ଦମନ, ନାଗ ଦଅଣା ଗୁଳ୍ମ—3. Indian wormwood; Artimisa Vulgaris. ୪ । ବରୁଣ ଗଛ—4. Croteava Roxburghi (tree). ୫ । ଜବା;ମନ୍ଦାର—5. China rose; Hibiscus Rosa; Synensis ୬ । ରକ୍ତବର୍ଣ୍ଣ ପୁଷ୍ପ ବିଶିଷ୍ଟ ବୃକ୍ଷ—6. Trees having red flowers.

ରକ୍ତ ପୂତିକା—ସଂ. ବ—ନାଲି ପୋଇ ଲତା—The red species
Rakta pūtikā of Poi creeper; Basella Rubra.

ରକ୍ତ ପୂରକ—ସଂ. ବ—ବୃକ୍ଷାମ୍ଳ; ବୃକ୍ଷରୁ ଉତ୍ପନ୍ନ ଅମ୍ଳ—Acid
Rakta pūrka extracted from vegetables or herbs.

ରକ୍ତ ପ୍ରଧାନ ଧାତୁ—ସଂ. ବ—ରକ୍ତ ପ୍ରାବଲ୍ୟ ଯୁକ୍ତ ଶାରୀରିକ ଅବସ୍ଥା—
Rakta pradhāna dhātu Sanguine temperament (characterised by soft skin, ruddy complexion, blue eyes, auburn hair, frequent pulse, large veins, and vivid sensation.) [ଦ୍ର—ଏଥିର ଲକ୍ଷଣ—ଦେହର ବର୍ଣ୍ଣ ରକ୍ତାଭ, ପତଳା ଚମଡ଼ା, ନୀଳ ଆଖି, କଦବ୍ରବାଳ, ନାଡ଼ୀର ଶୀଘ୍ର ଗତି, ଦେହର ଶିରା ଠାଣି ହୋଇ ରହିବା ।]

ରକ୍ତ ପ୍ରବହ—ସଂ. ବ—ଦେହରେ ଶିରାଦ୍ୱାରା ସଞ୍ଚାଳିତ ରକ୍ତସ୍ରୋତ—
Rakta prabaha Circulation of blood in the body.

ରକ୍ତ ପ୍ରବାହ—ସଂ. ବ—ରକ୍ତର ସ୍ରୋତଃ—Current or flow of
Rakta prabāha blood.

ରକ୍ତ ପ୍ରବାହକ ନାଡ଼ି (ଡ଼ୀ)—ସଂ. ବ—ଦେହର ଶିରା; ନାଡ଼ୀ—
Rakta prabāhaka nārdi (rdi) Artery.
(ରକ୍ତ ପ୍ରବାହ ନାଡ଼ି (ଡ଼ୀ)—ଅନ୍ୟରୂପ)

ରକ୍ତ ପ୍ରସବ—ସଂ. ବ—୧ । ରକ୍ତ କରବୀର—1. The red
Rakta prasaba Oleander; Nerium Odorum. लाल झिंटि ୨ । ନାଲି କେଶଦୁଦୁରି; ଅମ୍ଲାନକ—2. Red लाल कटसरैया variety of globe amaranth.

ରକ୍ତ ଫଳ—ସଂ. ବ (ବଙ୍ଗଗ୍ରନ୍ଥ)—ବଟ ବୃକ୍ଷ—The banyan
Rakta phala tree.

ରକ୍ତ ଫଳା—ସଂ. ବ—୧ । ବିମ୍ବିକା; ବିମ୍ବ; ଗୋଲୁ ଖିଆ ଲତା—
Rakta phalā 1. A cucurbitatious creeper; Memordica Monadeplha. ୨ । ସ୍ୱର୍ଣ୍ଣବଲ୍ଲୀ ନାମକ ଲତା—2. A variety of creeper. [ଦ୍ର—ଏହାର ଅନ୍ୟ ସଂ. ନାମ ସ୍ୱକାୟସ୍ଥ, କାକବଲ୍ଲରୀ । ଏହା ଶିରୋରୋଗ ଓ ତ୍ରିଦୋଷ ନାଶକ ଏବଂ ସ୍ତନ୍ୟବର୍ଦ୍ଧକ—ଦ୍ରବ୍ୟଗୁଣ ।].

ରକ୍ତ ଫେନଜ—ସଂ. ବ—ଫୁସ୍ ଫୁସ୍—
Rakta phenaja The lungs.

ରକ୍ତ ବଟୀ—ସଂ. ବ—ମସୂରିକା; ଛୋଟ ବସନ୍ତ—
Rakta batī Small pox; variola.
(ରକ୍ତ ବରଟୀ—ଅନ୍ୟରୂପ)

ରକ୍ତ ବନ୍ଧତ୍ୱ—ସଂ. ବ—ଶରୀରରେ ରକ୍ତ ପ୍ରବାହ ବନ୍ଦ ହେବା—
Rakta bandhatwa Stagnation of blood; Hœmostatis; the stoppage of blood circuation.

ରକ୍ତ ବନ୍ଧୀ—ସଂ. ବ—କ୍ଷତ ଆଦିରୁ ବୋହୁଥିବା ରକ୍ତର ପ୍ରବାହ ବନ୍ଦ
Rakta bandhī କରିବା—The stooping of the flow of blood by styptics.

ରକ୍ତ ବମନ—ସଂ. ବ—ରକ୍ତ ବାନ୍ତି—Vomitting of blood;
Rakta bamana Hæmatemesis.

ରକ୍ତ ବର୍ଗ—ସଂ ବ—୧ । ଡାଳିମ୍ବ—1. Pomegranate. ୨ ।
Rakta barga ପଳାଶ—2. Butea Frondosa. ୩ । ଲାକ୍ଷା—3. Lac. ୪ । ବନ୍ଧୁକ ପୁଷ୍ପ—4. Ixora Bandhuca. ୫ । କୁସୁମ ଫୁଲ—5. Safflower. ୬ । ମଞ୍ଜିଷ୍ଠା—6. Indian Madder. ୭ । ଗୋମେଦ ରତ୍ନ (ହି. ଶ)—7. Topaz. ୮ । ଦାରୁ ହଳଦୀ (ହି. ଶ) (ଦେଖ)—8. Dāru haladī (See). ୯ । ପ୍ରବାଳ (ହି. ଶ)—9. Coral. ୧୦ । କମଲା ଗୁଣ୍ଡି (ହି. ଶ)—10. Kamila (powder).

ରକ୍ତ ବର୍ଣ୍ଣ—ସଂ. ବ. (କର୍ମଧା)—୧ । ନାଲି ରଙ୍ଗ—1. Red
Rakta barnna colour. ୨ । ଇନ୍ଦ୍ରଗୋଡ଼ା ପୋକ; ସାଧବ (ରକ୍ତ ବର୍ଣ୍ଣୀ—ସ୍ତ୍ରୀ) ବୋହୂ ପୋକ—2. Cochineal insect. ୩ । ସ୍ୱର୍ଣ୍ଣ—3. Gold (Apte). ବଣ. (ବଙ୍ଗଗ୍ରନ୍ଥ) ନାଲିଆ—Red.

ରକ୍ତ ବର୍ତ୍ତକ—ସ. ବ—ନାଲି ବଟର ଚଢ଼େଇ (ହି. ଶ.)—
Rakta barttaka The Red variety of gray quail bird.

ରକ୍ତବର୍ତ୍ମା—ସ. ବ (ରକ୍ତ+ବର୍ତ୍ମନ୍; ୧ମା. ୧ବ.)—କୁକ୍କୁଟ (ହି.ଶ.)
Raktabartmā —Cock.

ରକ୍ତ ବର୍ଦ୍ଧକ—ସ. ବଣ—ଯାହା ଦେହର ରକ୍ତ ପରିମାଣକୁ ବଢ଼ାଏ—
Rakta barddhaka Increasing the quantity of blood in the body.

ରକ୍ତ ବର୍ଦ୍ଧନ—ସଂ. ବି. (ବହୁବ୍ରୀହି)—ବାର୍ତ୍ତାକୀ; ବାଇଗଣ—The egg
Rakta barddhana plant ସଂ.ବିଣ—ରକ୍ତ ବର୍ଦ୍ଧକ (ଦେଖ)
—Rakta barddhaka ( See)

ରକ୍ତ ବର୍ଷାଭୂ—ସଂ. ବି—ରକ୍ତ କାଣ୍ଡା ( ଦେଖ )
Rakta barshābhū Rakta kāṇḍā ( See )

ରକ୍ତ ବ(ବା)ସନ—ସଂ. ବି—୧ । (କର୍ମଧା)—ନାଲି ଲୁଗା—
Rakta ba(bā)sana 1. Red cloth. ୨ । ଗେରୁଆ ଲୁଗା
(ରକ୍ତବସ୍ତ୍ର—ଅନ୍ୟରୂପ) —2. Red-coloured cloth.
୩ । ( ବହୁବ୍ରୀହି ) ସନ୍ନ୍ୟାସୀ—3. A mendicant
ସଂ. ବିଣ. ପୁଂ—ନାଲି ବା ରଞ୍ଜିତ ବସ୍ତ୍ରଧାରୀ—
ରକ୍ତ ବସନା } —ସ୍ତ୍ରୀ Wearing red-coloured cloth.
ରକ୍ତ ବର୍ଣ୍ଣା }

ରକ୍ତ ବସିବା—ଦେ. ବି—୧ । ରକ୍ତ ଜମିବା—1. Coagulation
Rakta basibā of blood. ୨ । ବୟୋବୃଦ୍ଧି ଯୋଗୁଁ
(ରକ୍ତ ବସିଯିବା—ଅନ୍ୟରୂପ) କାମକ୍ରୋଧାଦିର ବେଗ କମିଯିବା—
বক্ত জমেযাওয়া 2. The cooling of one's passions
लहू जमना with the advance of years.

ରକ୍ତବହ—ସଂ. ବିଣ. ପୁଂ—ଯେଉଁ ବାଟେ ରକ୍ତ ବୋହିଯାଏ
Raktabaha ( ନାଡ଼ୀଆଦି )—Conveying blood,
(ରକ୍ତବାହୀ—ଅନ୍ୟରୂପ) by means of which blood is
circulated through the system.
(ରକ୍ତ ବହା, ରକ୍ତ ବାହିକା, ରକ୍ତ ବାହିନୀ —ସ୍ତ୍ରୀ)

ରକ୍ତ ବହିବା—ଦେ. କ୍ରି (ସଂ. ରକ୍ତ ଓ ବହ୍ ଧାତୁ)—ଶରୀରସ୍ଥ
Rakta bahibā କ୍ଷତରୁ ରକ୍ତଧାରା ପ୍ରବାହିତ ହେବା—
বক্ত বহা To bleed (said of bleeding from a
लहू बहना wound ).

ରକ୍ତ ବର୍ଷଣ—ସଂ. ବି—ରକ୍ତ ବୃଷ୍ଟି ( ଦେଖ )
Rakta barshaṇa Rakta bṛushṭi ( See )
(ରକ୍ତ ବରଷା, ରକ୍ତ ବର୍ଷିବା—ଦେଶଜ ରୂପ)

ରକ୍ତ ବାଟ୍ୟାଲକ—ସଂ. ବି—ରକ୍ତବର୍ଣ୍ଣର ବାଡ଼ି ଅର୍ଥଲା—
Rakta bātyālaka Sida Rhombifolia.

ରକ୍ତ ବାତ—ସଂ. ବି—ବାତରକ୍ତ; ରୋଗ ବିଶେଷ—
Rakta bāta A sort of disease.

ରକ୍ତବାନ—ଦେ. (ପଦ୍ୟ) ବିଣ ( ସଂ. ରକ୍ତବତ୍ )—ରକ୍ତାକ୍ତ—
Raktabāna Soaked with blood.
রক্তাক্ত [ ଉ—ବିନ୍ଧିଲେ । ବାହରେ ରକ୍ତବାନ ଫଳ ।
लोहूलोहान ଉଞ୍ଜ. ବୈଦେହୀଶବିଳାସ । ]

ରକ୍ତ ବାନ୍ତି—ସଂ. ବି—ରକ୍ତ ବମନ; ପାଟିବାଟେ ଝଲକା ଝଲକା ରକ୍ତ
Rakta bānti ବାହାରିବା—Vomiting of blood.
রক্তবমী लहूवल्टी

ରକ୍ତ ବାଲୁକ(କା)—ସଂ. ବି—ସିନ୍ଦୂର—
Rakta bāluka(kā) Red lead; vermilion.

ରକ୍ତ ବାହୁ—ସଂ. ବିଣ. ପୁଂ ( ବହୁବ୍ରୀହି )—ରକ୍ତବର୍ଣ୍ଣ ବାହୁ ବିଶିଷ୍ଟ—
Rakta bāhu Having red arms. ଦେ. ବି—
ଖ୍ରୀଷ୍ଟ ଚତୁର୍ଥ ଶତାବ୍ଦୀର ପ୍ରାରମ୍ଭରେ ସମୁଦ୍ରପଥରେ
ଜାହାଜରେ ଆସି ଓଡ଼ିଶାକୁ ଆକ୍ରମଣ କରିଥିବା ଯବନ-
ବିଶେଷ—Name of a non-Hindu invader
who attacked Orissa by the sea in
the beginning of the 4th century A. D.
( ଉ—ସେହି ମୂର୍ତ୍ତି ତୋର ଉତ୍କଳେ ଚଳାଉ, କର
ଦେଖିଥିଲୁ ଦୈତ୍ୟ ରକ୍ତବାହୁ । ରାଧାନାଥ. ଚନ୍ଦ୍ରିକା । )
[ ଦ୍ର—ଜଗନ୍ନାଥ ମନ୍ଦିରର 'ମାଦଳା ପାଞ୍ଜିରେ' ଲେଖାଅଛି,
ଅଙ୍କ ରାଜତ୍ୱକାଳରେ ରକ୍ତବାହୁ ନାମରେ ଜଣେ ଜଳଦସ୍ୟୁ
ସମୁଦ୍ରବାଟେ ଆସି ଉତ୍କଳ ଆକ୍ରମଣ କରିଥିଲେ ଏବଂ
ଜଗନ୍ନାଥଙ୍କୁ ବହୁ ପୀଡ଼ା ଦେଇଥିଲେ । ସେ ଜଣେ ଯବନ
ରାଜା ଥିଲେ । ତାଙ୍କ ବଂଶୀୟ ରାଜାମାନେ ଉତ୍କଳରେ
୧୪୬ ବର୍ଷ ରାଜତ୍ୱ କରିଥିଲେ । ଏଥିରୁ ବୋଧ ହୁଏ ଏ
ଆଫ୍ରଦେଶର ସେନାପତି ବା ରାଜା ଥିଲେ । ଏବେ
ସେମାନେ ଦ୍ରାବିଡ଼, ସେଥିରେ ପୁଣି ବୌଦ୍ଧ, ତେଣୁ
ଉତ୍କଳୀୟ ଆର୍ଯ୍ୟମାନେ ତାହାଙ୍କୁ ଯବନ ରାଜା ବୋଲି
ଲେଖିଥିଲନ୍ତି । କୃପାସିନ୍ଧୁ. ଇତିହାସ ।
କେହି କେହି ଏହାଙ୍କୁ ଆୟୋନୀୟ ବା ଗ୍ରୀକ୍ ମୁସଲମାନ
ବୋଲି କହନ୍ତି; କିନ୍ତୁ ଅନେକଙ୍କ ମତରେ ଏ ବୌଦ୍ଧ
ଧର୍ମାବଲମ୍ବୀ ଥିଲେ । ଏହାଙ୍କ ନାମ ମାଦଳାପାଞ୍ଜିରେ
ଲେଖା ଅଛି । ତଦବଧି ପ୍ରାୟ ୧୫୦ ବର୍ଷ କାଳ ଓଡ଼ିଶା
ଯବନାଧିକାରଭୁକ୍ତ ଥିଲା । ପରିଶେଷରେ ୪୭୪ ଖ୍ରୀଷ୍ଟାବ୍ଦରେ
ଯଯାତିକେଶରୀ ଯବନମାନଙ୍କୁ ତଡ଼ି ଓଡ଼ିଶାରେ ରାଜା
ହେଲେ । ]

ରକ୍ତ ବିକାର—ସଂ. ବି ( ୬ଷ୍ଠୀ ତତ୍ )—ରକ୍ତ ଦୂଷିତ ହେବା ଅବସ୍ଥା
Rakta bikāra Deteriorated condition of
(ରକ୍ତ ବିକୃତ—ଅନ୍ୟରୂପ) the blood of the system;
cachemia.

ରକ୍ତବୃନ୍ତ—ସଂ. ବି—ନାଲି ଅପମାର୍ଗ ଗୁଳ୍ମ—Red variety of
Raktabṛt 'Apamārga', Achyranthes Aspera
Rubra.

ରକ୍ତ ବିଦ୍ରଧି—ସଂ.ବି (ମ.ଫ.ଲେ, ରକ୍ତବିକୃତି ଯୋଗୁଁ ଜାତ ବିଦ୍ରଧି)—
Rakta bidradhi କ୍ଷତରୋଗ ବିଶେଷ—A sore or
ulcer due to vitiated blood.

ରକ୍ତ ବିନ୍ଦୁ—ସଂ. ବି ( ୬ଷ୍ଠୀ ତତ୍ )—୧ । ରକ୍ତର ଟୋପା; ଶୋଣିତ-
Rakta bindu କଣା—1. Drop of blood. ୨ ।
ରତ୍ନରେ ଲୋହିତ ବର୍ଣ୍ଣର ଦାଗ ( ରତ୍ନର ଦୋଷବିଶେଷ )
—2. A red spot forming a flaw in a
gem. ୩ । ନାଲି ଅପାମାର୍ଗ ଗୁଳ୍ମ ( ବୈ. ଶ. )—
3. The red variety of Achyranthes
Aspera.

ରକ୍ତ ବୀଜ—ସଂ. ବି( ବହୁବ୍ରୀହି; ରକ୍ତ+ବୀଜ=ଉତ୍ପତ୍ତିକାରଣ ଯାହାର)
Rakta bija —୧ । ଦୁର୍ଗାଙ୍କ ସଙ୍ଗେ ଯୁଦ୍ଧ କରି ନିହତ
ହୋଇଥିବା ଶୁମ୍ଭ ନିଶୁମ୍ଭଙ୍କର ସେନାପତି ଅସୁରବିଶେଷ—
1. Name of a demon from whose blood
sprang forth demons ( killed by

Durgā ). [ଦ୍ର—ଏହାର ରକ୍ତର ବିନ୍ଦୁମାନ ଭୂମିରେ ପଡ଼ିବା ମାତ୍ରକେ ସେଥିରୁ ତାହାର ପରି ଅସୁରମାନେ ଜାତ ହୋଇ ଚଣ୍ଡୀଙ୍କ ସଙ୍ଗେ ଯୁଦ୍ଧ କରୁଥିଲେ, କିନ୍ତୁ ଚଣ୍ଡୀଙ୍କର ବିଶେଷ ଶକ୍ତି ଉକ୍ତ ଅସୁରର ମୁଣ୍ଡ କାଟିବା ସଙ୍ଗେ ସଙ୍ଗେ ଜିହ୍ୱା ପ୍ରସାରଣ ପୂର୍ବକ ସବୁ ରକ୍ତପାନ କରିବାରୁ ତାହାର ରକ୍ତଭୂମିରେ ଆଉ ପଡ଼ିଲା ନାହିଁ । ତେଣୁ ସେ ତାଙ୍କୁ ବିନାଶ କରିବାକୁ ସମର୍ଥ ହୋଇଥିଲେ । ଏହାର ବଧ ବୃତ୍ତାନ୍ତ ମାର୍କଣ୍ଡେୟ ପୁରାଣାନ୍ତର୍ଗତ ଚଣ୍ଡୀରେ ବର୍ଣ୍ଣିତ ହୋଇଅଛି । ] ୨ । ( ରକ୍ତବର୍ଣ୍ଣ ଅଟେ ବୀଜ ଯାହାର )—ଡାଳିମ୍ବ—2. Pomegranate. ୩ । ରିଠା ( ଗ୍ରୁ. ଶ. )—3. Soapnut. ଦେ. ବି—ରକ୍ତବୀଜ ବଂଶ ( ଦେଖ ) Raktabija bamśa ( See )

**ରକ୍ତବୀଜକ**—ସଂ. ବି—ଡାଳିମ୍ବ—
Raktabijaka Pomegranate.

**ରକ୍ତବୀଜକା**—ସଂ. ବି—କରଣୀ ଲତା; ଏକପ୍ରକାର ନାଲି ମଞ୍ଜିଥିବା Raktabijakā ଛଡ଼ୁଆ ଲତା ଓ ଫଳ—Name of a (ଅନ୍ୟ ସଂ—ଚରମି, ଗାରମି, creeper. [ଦ୍ର—ଏହାର ବୀଜ ଗୁଞ୍ଜା, ଖର୍ବୁଗ) ରକ୍ତବର୍ଣ୍ଣ । ସୋଲାପୁର ଆଦି ସ୍ଥାନରେ ବଦ୍ଦୀ ଏହା ଜନ୍ମେ ଓ ଔଷଧରେ ଲାଗେ । ]

**ରକ୍ତବୀଜ ବଂଶ**—ଦେ. ବି—ରକ୍ତବୀଜ ଅସୁର ପରି ଯାହାର ବଂଶ ମାଡ଼ି Raktabija bamśa ଯାଉଥାଏ ( ଯଥା—ଖରପୋକ । )—রক্তবীজের বংশ A term applied to beings who रक्तवीजका वंश multiply swiftly. [ଦ୍ର—କୌଣସି ଲୋକର ବଂଶବୃଦ୍ଧି ହେଲେ ବା କଣ୍ଟସନ୍ତାନ ଜନ୍ମିଲେ ଲୋକେ କହନ୍ତି, ତା ବଂଶ ରକ୍ତବୀଜ ଭଳି ମାଡ଼ି ଯାଉଛି । ]

**ରକ୍ତ ବୁହା**—ଦେ. ବି (ସଂ. ରକ୍ତ ବହନ)—ରକ୍ତ ବହିବା—
Rakta buhā Bleeding.
বক্ত বহা ବିଣ—ଯହିଁରୁ ରକ୍ତ ବହୁ ଥାଏ—
लहु बहना Bleeding.
বক্তাক্ত (ଯଥା—ସେ ତାଙ୍କୁ ରକ୍ତବୁହା କରି ମାଇଲା ।)
लहु बहाकर

**ରକ୍ତ ବୁହା ବୁ(ବୋ)ହି**—ଦେ. ବି ଓ ବିଣ. (ସଂ. ରକ୍ତ+ବହ ଧାତୁ)—
Rakta buhā bu(bo)hi ରକ୍ତାରକ୍ତି ( ଦେଖ )
বক্তারক্তি लहु लहुआन Raktārakti ( See )

**ରକ୍ତ ବୃନ୍ତକ**—ସଂ. ବି. (ରକ୍ତ+ବୃନ୍ତ+କ; ବହୁବ୍ରୀହି)—
Rakta bruntaka ପୁନର୍ନବା (ଗ୍ରୁ. ଶ)—Hog weed.

**ରକ୍ତ ବୃନ୍ତା**—ସଂ. ବି—ଶେଫାଳିକା; ଗଛ ଶିଉଳୀ—Nyctanthes Rakta bruntā Trystes; a plant with red-stemmed white-petalled flowers.

**ରକ୍ତ ବୃଷ୍ଟି**—ସଂ. ବି—ଜଳ ପରି ଆକାଶରୁ ରୁଧିର ବର୍ଷଣ—
Rakta brushti Raining of blood.
[ଦ୍ର—ଲୋକବିଶ୍ୱାସ ଅଛି ଯେ, ରକ୍ତବୃଷ୍ଟି ହେଲେ ଦେଶରେ ମହାମାରୀ ଆଦି ଅନେକ ଅକଷ୍ଟ ଘଟେ ।] (ରକ୍ତବର୍ଷା—ଅନ୍ୟରୂପ)

**ରକ୍ତ ବେଲା**—ସଂ. ବି—ଅଙ୍ଗଗଳିକା; ଶିଶୁମାନଙ୍କର ମଣ୍ଡରେ ଓ ଦେହରେ Rakta belā ନାଲିଆ ବ୍ରଣ ବା ବିସ୍ଫୋଟକ ବାହାରିବା ରୂପ ଚର୍ମରୋଗ; ବର୍ଷିଫୋଟକା—Gumrash, strophulus; a cutaneous disease peculiar to infants. [ଦ୍ର—ଏହା ୩ ପ୍ରକାରର ହୁଏ—୧ । ପାଣ୍ଡୁଲୋହିତ ବେଲା—1. Strophulus Candidus. ୨ । ପ୍ରସିତଲୋହିତ ବେଲା—2. Strophulus Confurtus. ୩ । ଋଜୁ ଚର୍ମିତ ବେଲା—3. Strophulus Intertinctus.]

**ରକ୍ତ ବୋଲା**—ଦେ. ବିଣ—୧ । ରକ୍ତ ରଞ୍ଜିତ; ରକ୍ତାକ୍ତ—
Rakta bolā 1. Besmeared with blood.
বক্ত মাখা ୨ । ନାଲି ରଙ୍ଗ କରି ଯାଇଥିବା—2. Dyed red.

**ରକ୍ତ ବୋହିବା**—ଦେ. ବି—କ୍ଷତ ଆଦିରୁ ରକ୍ତ କ୍ଷରଣ ହେବା—
Rakta bohibā Bleeding from wounds.
বক্ত বহা लहु बहना

**ରକ୍ତ ବ୍ରଣ**—ସଂ. ବି. (ମ. ପ. ଲୋ)—ଯେଉଁ ବ୍ରଣରୁ ପୂଜ ପରିବର୍ତ୍ତେ Rakta brana ରକ୍ତ ବାହାରେ (ଗ୍ରୁ. ଶ)—Boil which emits blood instead of pus

**ରକ୍ତ ଭବ**—ସଂ. ବି. (ରକ୍ତ+ଭୂ ଧାତୁ+କର୍ତ୍ତୃ. ଅ)—ରକ୍ତରୁ ଜାତ—
Rakta bhaba Produced from blood.
ସଂ. ବି—ମାଂସ—Flesh.

**ରକ୍ତ ଭାଙ୍ଗିବା**—ଦେ. ବି—ପ୍ରସବ ପରେ କେତେ ଦିନ ପର୍ଯ୍ୟନ୍ତ ଜରାୟୁରୁ Rakta bhāngibā ରକ୍ତ ସ୍ରାବ—Lochia; discharge বক্ত ভাঁগা of watery blood from the uterus लहु निकलना for some days after childbirth.

**ରକ୍ତ ଭାବ**—ସଂ. ବିଣ—୧ । ନାଲିଆ—1. Red (Apte)
Rakta bhāba ୨ । ଅନୁରାଗୀ—2. Loving (Apte).
୩ । କାମାତୁର—3. Amorous (Apte).

**ରକ୍ତ ମଞ୍ଜରୀ**—ସଂ. ବି—ହିଜଳ ବୃକ୍ଷ—A plant; Baringtonea Rakta mañjara Acutangula

**ରକ୍ତ ମଣ୍ଡଳ**—ସଂ. ବି—ରକ୍ତ କମଳ ( ଦେଖ )
Rakta mandala Rakta kamala ( See )

**ରକ୍ତ ମୟ**—ସଂ. ବିଣ—୧ । ରୁଧିର ପୂର୍ଣ୍ଣ—1. Full of blood.
Rakta maya ୨ । ରକ୍ତ ରଞ୍ଜିତ—2. Smeared or (ରକ୍ତମୟୀ—ସ୍ତ୍ରୀ) coloured with blood.

**ରକ୍ତ ମତ୍ସ୍ୟ**—ସଂ. ବି—୧ । ନାଲି ମାଛ—1. Red fish. ୨ । ରଙ୍ଗା Rakta matsya ମାଛ—2. A reddish scaleless fish.

**ରକ୍ତ ମାଂସ**—ସଂ. ବି. (ଦ୍ୱନ୍ଦ୍ୱ ସମାସ)—ରକ୍ତ ଓ ମାଂସ—
Rakta māmsa (ରକ୍ତ ମାଉଁସ—ଦେ. ରୂପ) Blood and flesh.

**ରକ୍ତ ମାଂସ ଦେହ**—ସଂ. ବି. (ଦ୍ୱନ୍ଦ୍ୱ ଓ ମ. ପ. ଲୋ)—୧ । ରକ୍ତ ଓ Rakta māmsa deha ମାଂସରେ ନିର୍ମିତ ଜୀବଦେହ—1. Body (ରକ୍ତ ମାଂସ ଶରୀର—ଅନ୍ୟରୂପ) made of blood and রক্ত মাংসের শরীর flesh. ୨ । ସାଧାରଣ ଜୀବ ଶରୀର—

2. The body of an ordinary being. ॰ । ଜୀବଶରୀରଧାରୀ ବ୍ୟକ୍ତି—3. A person of flesh and blood. [ଦ୍ର—ଶରୀରଧାରୀ ବ୍ୟକ୍ତିର କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ଅଛି । ଶରୀରଧାରୀ ମାନବକେ ଏଥିରୁ କେହି ମୁକ୍ତ ନୁହନ୍ତି । ଏପରି ସ୍ଥଳରେ ଉକ୍ତ ରିପୁମାନଙ୍କ ଉଦ୍ରେକକର କୌଣସି ଘଟନା ଘଟିଲେ ଲୋକେ କହି ଥାଆନ୍ତି "ମୁଁ ରକ୍ତ ମାଂସ ଦେହ ଧରି ଏ କଥା ଆଉ କେତେ ସହିବି?" ଅର୍ଥାତ୍ ରକ୍ତ ମାଂସର ଦେହ ବା ଷଡ଼୍‌ରିପୁ-ଜର୍ଜରିତ ଶରୀର ଧାରଣ କରି ଏହା ସହ୍ୟ କରିବା ମୋ ପକ୍ଷରେ ଅସମ୍ଭବ ।]

**ରକ୍ତ ମାଗିବା**—ଦେ. କ୍ରି—୧ । (ଦେବୀ) କୌଣସି ଜୀବକୁ ବଳି ରୂପେ ପାଇବାକୁ ସପନାଇବା ବା ସୂଚନା କରିବା—
Rakta māgibā 1. To ask for the blood of a certain animal as victim. ୨ । (ଲକ୍ଷଣାର୍ଥ) ଶତ୍ରୁକୁ ଯୁଦ୍ଧାର୍ଥ ଆହ୍ୱାନ କରିବା—2. (figurative) To call an enemy forth to a mortal fight.
বক্ত চাওয়া
लहू मांगना

**ରକ୍ତ ମୁଖ**—ସ. ବିଣ. ପୁଂ (ବହୁବ୍ରୀହି)—୧ । ଯାହାର ମୁହଁର ବର୍ଣ୍ଣ ରକ୍ତ—
Rakta mukha 1. Red-faced. ୨ । ଯାହାର ମୁହଁ ରୁଧିରାକ୍ତ—2 Having the face besmeared with blood. ସ. ବି—ରୋହି ମାଛ (ଦ୍ରବ୍ୟଗୁଣ)—Rohi fish
(ରକ୍ତ ମୁଖା—ସ୍ତ୍ରୀ)

**ରକ୍ତ ମୁଖା(ଖୀ)**—ଦେ. ବିଣ. ( ସଂ. ରକ୍ତ ମୁଖ )—୧ । ଜୀବ ହତ୍ୟା କରି ତାହାର ରକ୍ତ ପିଇଥିବା ଯୋଗୁଁ ଯେଉଁ ହିଂସ୍ର ଜନ୍ତୁର ମୁହଁ ରୁଧିରାକ୍ତ ହୋଇଥାଏ—1. (an animal) Which has recently sucked blood of its victim and has its month smeared with blood. ୨ । ରକ୍ତ ପିପାସୁ; ରକ୍ତଲୋଲୁପ-2 Blood thirsty. [ଦ୍ର—କଥିତ ଅଛି ଯେ ଅନ୍ୟ ଜୀବଙ୍କ ରକ୍ତ ଅପେକ୍ଷା ମନୁଷ୍ୟର ରକ୍ତ ସ୍ୱାଦୁ । ଯେଉଁ ବାଘ ଥରେ ମନୁଷ୍ୟ ମାରି ମନୁଷ୍ୟର ରକ୍ତର ସ୍ୱାଦ ପାଇଥାଏ ସେ ନରରକ୍ତଲୋଲୁପ ହୁଏ ଓ ମଣିଷଖିଆ ବାଘ ବୋଲି ବିଖ୍ୟାତ ହୁଏ । ସେହି ବାଘକୁ ଲୋକେ କହନ୍ତି 'ଏ ବାଘ ରକ୍ତମୁଖା ହୋଇଛି ।'] ୩ । ଋତୁମତୀ (ସ୍ତ୍ରୀ)-3. Menstruated (woman); in her menses.
Rakta mukhā(khī)
বক্ত মুখো
लहू मुहाँ

**ରକ୍ତ ମୁଣ୍ଡା**—ଦେ. ବି—ରକ୍ତ ପିଣ୍ଡ ( ଦେଖ )
Rakta muṇḍā Rakta piṇḍa ( See )
বক্ত পিণ্ড लहूका श्लेष्मा

**ରକ୍ତ ମୁହାଁ**—ଦେ.ବିଣ. ପୁଂ. (ସ. ରକ୍ତ ମୁଖ )—୧ । ରୁଧିରାକ୍ତ ମୁଖ ଯୁକ୍ତ—1. Having the face or mouth stained with blood. ୨ । ରକ୍ତ ମୁଖା ( ଦେଖ )—2. Rakta mukhā ( See )
Rakta muhāñ
বক্ত মুখো
लहू मुँहा

**ରକ୍ତ ମୁହିଁ**—ଦେ. ବିଣ—ରକ୍ତମୁହାଁର ସ୍ତ୍ରୀଲିଙ୍ଗ—The feminine of Rakta muhāñ.
Rakta muhīñ

বক্ত মুখী
लहू मुहीं
ବି—୧ । ରୁଧିରାକ୍ତମୁଖୀ କାଳୀ ଠାକୁରାଣୀ—1. Goddess Kālī whose mouth and face are represented as stained with blood. ୨ । ଶାରଦୀୟ ଦୁର୍ଗାପୂଜାର ଷୋଳ ପୂଜା (ଆଶ୍ୱିନ କୃଷ୍ଣ ଅଷ୍ଟମୀ ବା ମୂଳାଷ୍ଟମୀଠାରୁ ଆଶ୍ୱିନ ଶୁକ୍ଳ ଅଷ୍ଟମୀ ବା ମହାଷ୍ଟମୀ ପର୍ଯ୍ୟନ୍ତ) ସମୟରେ ପଶୁବଳି ପାଇବା ପାଇଁ ଉଦ୍‌ଗ୍ରୀବା ଚଣ୍ଡୀ ବା ଦୁର୍ଗା ଦେବୀ—2. Goddess Durgā or Chaṇḍī during the 16 days of the autumnal Durgā pūjā. [ଦ୍ର—ଏ ସମୟରେ ଦେବୀଙ୍କ ଆଗରେ ବଳି ପଡ଼େ, ଅତଏବ ସେହି ସମୟରେ ଦେବୀ ରକ୍ତଲୋଲୁପା ହୋଇଥିବା ଲୋକେ କଳ୍ପନା କରନ୍ତି ।]

**ରକ୍ତ ମୁତିବା**—ଦେ. କ୍ରି—୧ । ଦେହ ବିଶେଷ ଗରମ ହେବା (ଅଧିକ ଖରା ଖଟିବା ବା ଖରାରେ ରହିବା କିମ୍ବା ଉପବାସ କରିବା) ଯୋଗୁଁ ରକ୍ତ ପରି ନାଲି ପ୍ରସ୍ରାବ କରିବା—1. To pass blood-red urine. ୨। ପ୍ରମେହାଦି ଯୋଗୁଁ ମୂତ୍ର ସହିତ ରକ୍ତ ପ୍ରସ୍ରାବ କରିବା—2. To pass blood in urine (due to gonorrhea).
Rakta mūtibā
বক্ত পেচ্ছাব করা
लहू मूतना

**ରକ୍ତ ମୂତ୍ର**—ସ. ବି—ମୂତ୍ର ସହିତ ରକ୍ତ ନିଃସରଣ ରୋଗ—
Rakta mūtra Hæmaturia; discharge of bloody urine.

**ରକ୍ତ ମୂଳା**—ସ. ବି—ଲଙ୍କାଡୁ ଗୁଳ୍ମ—(ରକ୍ତ+ମୂଳ+ଆ)
Rakta mūlā Lycopodium (red variety).

**ରକ୍ତ ମେଧ ଯାଗ**—ସ. ବି—ରକ୍ତକୁ ଆହୁତି ଦେଇ ସମ୍ପାଦନ କରିବା ଯଜ୍ଞ—A sacrifice of blood. ଦେ. ବି. (ଲକ୍ଷଣାର୍ଥ) ବହୁ ରକ୍ତପାତ—(figurative) A great bloodshed.
Rakta medha jāga

**ରକ୍ତ ମେହ**—ସ. ବି—ପ୍ରସ୍ରାବ ଦ୍ୱାର ବାଟେ ରକ୍ତ ମିଶ୍ରିତ ପୂଯ ପଡ଼ିବା ରୋଗ—Gonorrhea accompanied with bloody discharge.
Rakta meha

**ରକ୍ତ ମୋକ୍ଷ**—ସ. ବି. ( ୬ଷ୍ଠୀ ତତ୍ )—୧ । ରକ୍ତସ୍ରାବ—
Rakta moksha 1. Bleeding. ୨ । ରକ୍ତ ମୋକ୍ଷଣ (ଦେଖ) 2. Rakta mokshaṇa ( See )

**ରକ୍ତ ମୋକ୍ଷକ**—ସ. ବିଣ—ରକ୍ତସ୍ରାବକାରୀ—One who bleeds a person; one who lets blood from a patient.
Rakta mokshaka

**ରକ୍ତ ମୋକ୍ଷଣ**—ସ. ବି. ( ୬ଷ୍ଠୀ ତତ୍ )—ଅସ୍ତ୍ର ପ୍ରୟୋଗ ଦ୍ୱାରା କିମ୍ବା ଜୋକ ଲଗାଇ ଦେହରୁ ଗନ୍ଦରକ୍ତ ବାହାର କରାଇବା କ୍ରିୟା—The operation of letting out blood from the body by instruments or by applying leeches.
Rakta mokshaṇa

**ରକ୍ତ ଯଷ୍ଟି**—ସ. ବି. (ବହୁବ୍ରୀହି)—ମଞ୍ଜିଷ୍ଠା—Indian madder; Rubia Manjith.
Rakta jashṭi (ରକ୍ତ ଯଷ୍ଟିକା—ଅନ୍ୟରୂପ)

**ରକ୍ତ ଯାବନାଳ**—ସଂ. ବି—ଭୁବର ଯାବନାଳ; ଏକପ୍ରକାର ହରଡ଼-
Rakta jābanāla ଜାତୀୟ ଶସ୍ୟ—A kind of grain
[ଅନ୍ୟ ସଂ—କଶାଯୁଯାବନାଳ, Cajanus, Andropogen
ଲୋହିତ ଭୁଟ୍ଟମୁଭୁ or Holcus Bicolor·
ଭୁବର, ଭୁବରଯାବନାଳ] ରକ্তকষ্ণ জনার ম. ভুৱৈৰকৌলৈ

**ରକ୍ତଯିବା**—ଦେ. ବି—୧ । ରକ୍ତ ବୋହିବା—1. Flowing of
Rakta jibā blood. ୨ । ସ୍ତ୍ରୀମାନଙ୍କର ଋତୁକାଳରେ
রক্তযাওয়া ରକ୍ତସ୍ରାବ—2. Flow of menstrual blood.
लहूजाना ୩ । ପ୍ରସବାନ୍ତେ ବନ୍ଧ୍ୟାବାକ ଜରାୟୁରୁ ରକ୍ତ ମିଶ୍ରିତ
ରସ ବହିବା—3. Discharge of lochia

**ରକ୍ତର ଗରମି**—ଦେ. ବି—୧ । ଯୁବା ବୟସ ଓ ସ୍ୱାସ୍ଥ୍ୟ ଯୋଗୁଁ ରକ୍ତର
Raktara garami ଉଷ୍ଣତା ଜନିତ ସ୍ଫୁର୍ତ୍ତି—1. Exu-
(ରକ୍ତର ତେଜ—ଅନ୍ୟରୂପ) berence of spirits due to
রক্তেরগরমী youth. ୨ । ସାମାନ୍ୟ କଥାରେ ଜଳିବା ଯୁବକ-
लहूकीगरमी ସୁଲଭ ଉତ୍ତେଜନା—2 Passionateness
due to youth. ୩ । ( ମନ୍ଦ ଅର୍ଥ ) ଯୁବକସୁଲଭ
ଚପଳ୍ୟ ବା ଔଦ୍ଧତ୍ୟ—3. ( bad sense ) Youth-
ful agility or arrogance.

**ରକ୍ତ ରଞ୍ଜିତ**—ସଂ. ବିଣ ( ଷଷ୍ଠୀ ତତ୍ )—ରକ୍ତାକ୍ତ ( ଦେଖ )
Rakta rañjita Raktākta ( See )

**ରକ୍ତରାଜି**—ସଂ. ବି—୧ । ସ୍ୱଳ୍ପ ଛୋଟ କୀଟ ବିଶେଷ; ସର୍ଷପିକା (ହି. ଶ )
Raktarāji —1. A kind of small insect.
୨ । ନେତ୍ରରୋଗ ବିଶେଷ—2. A particular
disease of the eye ( Apte ).

**ରକ୍ତରୁ ଜନ୍ମିବା**—ଦେ. କ୍ରି—ପିତାମାତାଙ୍କଠାରୁ ଜାତ ହେବା—
Raktaru janmibā To be begotten by the
রক্তহইতে জন্ম হওয়া लहूसे जनम लेना parents.

**ରକ୍ତରେ ଚିତା ଘି(ଘେ)ନିବା**—ଦେ.କ୍ରି—ରକ୍ତଚିତା କରିବା ( ଦେଖ )
Raktare chitā ghi(ghe)nibā Raktachitā
karibā ( See )

**ରକ୍ତ ରେଣୁ**—ସଂ. ବି—୧ । ( କର୍ମଧା )—ନାଲି ଗୁଣ୍ଡା—1. Red
Rakta reṇu powder. ୨ । ସିନ୍ଦୂର—2. Red lead;
vermilion. ୩ । (ବହୁବ୍ରୀହି) ପଳାଶ ଫୁଲର କଢ଼—
3. Bud of the Butea Frondosa flower
( Apte ). ୪ । ନାଗେଶ୍ୱର ଗଛ—4. Mesua
Ferra. ୫ । କ୍ରୁଦ୍ଧବ୍ୟକ୍ତି—5. An angry
person; a person furious with rage.

**ରକ୍ତ ରେଣୁକା**—ସଂ.ବି—ଅଙ୍ଗାରିକା; ପଳାଶ କଳିକା—The blosom
Rakta reṇukā of Butea Frondosa ( tree )

**ରକ୍ତରେ ବୁଡ଼ିବା**—ଦେ. କ୍ରି—ରକ୍ତାକ୍ତ ବା ରକ୍ତଜର୍ଜରିତ ହେବା—
Raktare buḍibā To be drenched or smeared
with blood
ରକ୍ତ ସରସର ହେବା } ଅନ୍ୟରୂପ
ରକ୍ତରେ ବୁଡ଼ୁବୁଡ଼ୁ ହେବା }
রক্তেডুবে যাওয়া लहूमे डुबयाना

**ରକ୍ତ ରୈବତକ**—ସଂ. ବି.—ମହାପାରେବତ; ଏକପ୍ରକାର ପିଜୁଳି ବା
Rakta raibataka ଖଜୁରୀ—A kind of guava or
[ଅନ୍ୟ ସ.—ସ୍ୱର୍ଣ୍ଣପାରେବତ, date
ମହା ପାରେବତ, ସାମ୍ରାଜକ, ଖାରକ, ଦ୍ୱୀପ ଖର୍ଜୁର ।]

**ରକ୍ତ ରୋଗ**—ସ. ବି ( ମ. ପ. ଲୋ )—ରକ୍ତଦୋଷଜନିତ ରୋଗ
Rakta roga ( ଯଥା—କୁଷ୍ଠ )—Disease due to
impurity in blood

**ରକ୍ତ ରୋଧ**—ସ. ବି—ବୋହୁଥିବା ରକ୍ତ ବନ୍ଦ କରିବା—Stopping
Rakta rodha of the flow of blood; arrest of
(ରକ୍ତରୋଧନ—ଅନ୍ୟରୂପ) bleeding.

**ରକ୍ତ ରୋଧକ**—ସଂ. ବି—ଯାହା ଶୋଣିତସ୍ରାବ ବନ୍ଦ କରାଏ—
Rakta rodhaka Styptic; astringent; which
arrests bleeding.

**ରକ୍ତ ରୋହିତକ**—ସଂ. ବି—କୂଟଶାଳ୍ମଳି ( ଦ୍ରବ୍ୟଗୁଣ )—
Rakta rohitaka A kind of silk-cotton tree

**ରକ୍ତ ଲଗା**—ଦେ. ବିଣ.—(ସ. ରକ୍ତ+ଲଗ୍ନ)—ରକ୍ତରଞ୍ଜିତ—
Rakta lagā Blood stained.

**ରକ୍ତ ଲଶୁନ**—ସ. ବି.—୧ । ନାଲି ରଶୁଣ—
Rakta lasuna 1. A red kind of garlic.
[ଅନ୍ୟ ସ.—ଗୃଞ୍ଜନ, ଯାର୍ଯପତ୍ରକ, ୨। ଗାଜର—2. Carrot.
ମହାକନ୍ଦ, ଯବନେଷ୍ଟ, ସ୍ଥୂଳକନ୍ଦ ।]

**ରକ୍ତଲା**—ସ. ବି.—୧ । କାକଭୁଣ୍ଡୀ; ଭୁଆଁଅେଣ୍ଡିଆ ଗଛ—1 A
Raktalā plant; Solamum Indicum
୨ । କାକତିନ୍ଦୁକ; କେନ୍ଦୁ—2. Diospiros
Tomentosa. ୩ । ନାଲି କାଇଞ—
3. The red-seeded variety of Abrus
Prectorus

**ରକ୍ତ ଲୋଚନ**—ସ. ବି.—(କର୍ମଧାରୟ)—୧ । ଅତିରକ୍ତ ନେତ୍ର—
Rakta lochana 1. Blood-red eyes.
୨ । କ୍ରୋଧକଷାୟିତ ଚକ୍ଷୁ—2. Eyes reddened
with rage ୩। (ବହୁବ୍ରୀହି) ପାରା—3. Pigeon·
୪ । କପୋତ—4. Dove. ୫ । ଶିବ; ମହାଦେବ·—
5. God Śiba ବିଣ.—( ବହୁବ୍ରୀହି )—ରକ୍ତ.
ଚକ୍ଷୁଯୁକ୍ତ—Red-eyed; having red eyes-

**ରକ୍ତଲୋଧ୍ର**—ସ. ବି.—ପଟ୍ଟିକା ଲୋଧ୍ର—The red variety of
Rakta lodhra Symplocos Racemosa.

**ରକ୍ତ ଶମନ**—ସ. ବି.—କମଲା ଗୁଣ୍ଡି (ହି, ଶ)—
Rakta śamana Kamila (powder)

**ରକ୍ତ ଶାକ**—ସ. ବି.—ଶାକ ବିଶେଷ; ନାଲି କୋଶଳା—A red
Rakta śāka variety of pot herb; Amaranthus
Gangeticus.

**ରକ୍ତ ଶାଳି**—ସ ବି-ରକ୍ତବର୍ଣ୍ଣିକ ଲଘୁ ଶାରଦ ଧାନ(ଯଥା—କାଲିଚୁଇ ।)
Rakta śāli —Red variety of early winter
দাউদখানি paddy; Orciza Sativa.

ଡେ. ଏରକନକର୍ଣ୍ଣମ ଗଳଧାନ୍ୟମ୍ [ଦ୍ର—ଶାଳ ଧାନ ମଧ୍ୟରେ ରକ୍ତଶାଳ ଧାନ୍ୟ ଶ୍ରେଷ୍ଠ। ଏହା ବଳକର ବର୍ଣ୍ଣ ପ୍ରସାଦକ, ତ୍ରିଦୋଷ-ନାଶକ, ଚକ୍ଷୁର ହିତକର, ମୂତ୍ରକାରକ, ସ୍ୱରବର୍ଦ୍ଧକ, ଶୁକ୍ର-ଜନକ, ଅଗ୍ନିଦୀପକ, ପୁଷ୍ଟିକର । ଏହା ପିପାସା, ଜ୍ୱର, ବିଷ ଦୋଷ, ବ୍ରଣ, ଶ୍ୱାସ, କାସ ଓ ଦାହ ନିବାରକ—ଦ୍ରବ୍ୟଗୁଣ ।]

ରକ୍ତ ଶାଳୁକ—ସଂ. ବି.—କୋକନଦର ମୂଳପିଣ୍ଡ (ହି. ଶ.)—
Rakta śaḷuka The bulbous root of red water-lily.

ରକ୍ତ ଶାଳ୍ମଳି—ସଂ. ବି—ନାଲି ଫୁଲବାଲା ଶିମିଳି ଗଛ—The red-
Rakta śāḷmaḷi flowered variety of silk cotton tree.

ରକ୍ତ ଶାସନ—ସଂ, ବି.—(ରକ୍ତ=ନାଲିଆ+ଶାସନ=ସ୍ୱଜାଜ୍ଞା ଅର୍ଥ, ସମୂଦ୍ରଜଃ ସ୍ୱଜାଜ୍ଞାପତ୍ରାଦି ଏହି ପଦାର୍ଥଦ୍ୱାରା
Rakta śāsana
ନାଲି ରଙ୍ଗ ଚଢ଼ିତ ହେଉଥିବାରୁ)—ସିନ୍ଦୁର—Red lead

ରକ୍ତ ଶିଗ୍ରୁ—ସ ବି—ନାଲି ସଜନା—Red variety of horse-
Rakta śigru radish tree. [ଦ୍ର—ଏହା ସଜନାର
[ଅନ୍ୟ ସ. ନାମ—କେଶସ୍ୱ, ମଧୁ, ମଧୁଶିଗ୍ରୁ, ମୁଗାର, ଵଲ୍କକ, ବହୁଲଚ୍ଛଦ, ସିଂହ] ସବୁ ଗୁଣଯୁକ୍ତ ଓ ବିଶେଷତଃ ଏହି ଅଗ୍ନି ପ୍ରଦୀପକ ଓ ସାରକ । ଏଥିର ବଲ୍କଳର ଓ ପତ୍ରର ରସ ବେଦନା-ପ୍ରଶମକ—ଦ୍ରବ୍ୟଗୁଣ । ]

ରକ୍ତ ଶୀର୍ଷକ—ସ. ବି—୧ । ସରଳ ଦ୍ରବ; ଦେବଦାରୁ ଗଛର ନିର୍ଯ୍ୟାସ;
Rakta śirshaka ଗନ୍ଧବିରୂଯା—1. Resin from the pine tree. ୨ । ସାରସ ପକ୍ଷୀ (ହି. ଶ.)—The red-headed crane; a kind of heron.

ରକ୍ତ ଶୁଖିଯିବା—ଦେ. ବି—୧ । ନିର୍ଜୀବଥ ହେବା; ଅତି ଦୁର୍ବଳ
Rakta śukhijibā ହେବା—1. Becoming weak;
ବକ୍ତ ଶୁକିୟେ ଯାଓଯା want of blood in
ଲହୂ ସୁଖଜାନା the system. ୨ । (ଲକ୍ଷଣାର୍ଥ)—
ଅତ୍ୟନ୍ତ ଭୟରେ ବିବର୍ଣ୍ଣ ହୋଇଯିବା; ପିଲେହି ଚମକିବା; ପିଲେହି ପାଣି ହୋଇଯିବା—2. (figurative) Becoming pale through fear (similar expression in English, the blood to become curdled). [ଦ୍ର—କୌଣସି ବ୍ୟକ୍ତିର ଅତ୍ୟନ୍ତ ଭୟାଭିଭୂତ ଅବସ୍ଥାକୁ ଲକ୍ଷ୍ୟ କରି ଲୋକେ କହନ୍ତି, ତା ଦେହରୁ ରକ୍ତ ଶୁଖିଗଲା; ସେ କଳାକାଠ ପଡ଼ିଗଲା; ତାକୁ କାଟି ଦେଲେ ତା ଦେହରୁ ଟୋପାଏ ରକ୍ତ ବାହାରିବ ନାହିଁ । ]

ରକ୍ତ ଶୃଙ୍ଗିକ—ସ. ବି—ମେଣ୍ଢାଶିଙ୍ଗା ମହୁରା—
Rakta śṛungika Aconitum Ferox.

ରକ୍ତ ଶେଖର—ସ. ବି ( ବହୁବ୍ରୀହି )—ନାଗକେଶର; ନାଗେଶ୍ୱର
Rakta śekhara (ହି. ଶ.)—Mesua Ferra (tree).

ରକ୍ତ ଶୋଭାଞ୍ଜନ—ସ. ବି - ରକ୍ତ ଶିଗ୍ରୁ ( ଦେଖ )
Rakta śobhāñjana Rakta śigru ( See )

ରକ୍ତ ଶୋଷକ—ସ. ବିଣ. ପୁଂ ( ଉପପଦ; ରକ୍ତ+ଶୋଷକ )—
Rakta śoshaka ୧ । ଯେ ରକ୍ତ ଶୋଷିନିଏ—
(ରକ୍ତ ଶୋଷିକା—ସ୍ତ୍ରୀ) 2. Blood-sucking. ୨ । ଶରୀରରୁ ରକ୍ତକୁ ଶୁଖାଇ ଦେବା ( ଔଷଧ )—2. (medicine) Having the power or effect of drying the blood in the system. ସ. ବି. ପୁଂ—ରକ୍ତ ଶୋଷଣକାରୀ ଜୀବ—Blood-sucker.

ରକ୍ତ ଶୋଷଣ—ସ. ବି ( ୬ଷ୍ଠୀ ତତ୍ )—ରକ୍ତକୁ ଶୋଷିବା—
Rakta śoshaṇa Blood-sucking.

ରକ୍ତ ଶୋଷା—ଦେ. ବିଣ ( ସ. ରକ୍ତ ଶୋଷକ )—୧ । ଯେ ରକ୍ତ
Rakta śoshā ଶୋଷଣ କରେ—1. Blood-sucking.
ବକ୍ତ ଚୁ(ଶୋ)ଷା ୨ । ( ଲକ୍ଷଣାର୍ଥ )—ଧନ ଶୋଷକ ( ଯଥା
ଲହୂଚୂସନେୱାଲା ବା ମହାଜନ )—2. (Figurative) ( a tyrant or usurer ) Sucking riches from people.

ରକ୍ତ ଶୋଷିବା—ଦେ. କ୍ରି—୧ । (ବାଘ ଯେପରି ହତ ଜୀବର ଝଣ୍ଟି କଣା
Rakta śoshibā କରି ରକ୍ତ ଶୋଷେ) ପ୍ରାଣୀର ଦେହରେ କଣା
ବକ୍ତ ଚୁ(ଶୋ)ଷା କରି ମୁହଁ ଲଗାଇ ରକ୍ତକୁ ଶୋଷିନେବା—1. To
ଲହୂଚୂସନା suck blood out of the body of an animal. ୨ । (ଲକ୍ଷଣାର୍ଥ) ( ଡାହାଣୀ ପରି) ମନୁଷ୍ୟକୁ ଅନ୍ତଃସାରଶୂନ୍ୟ କରିବା ( ଡାହାଣୀ ତଳେ ଟୀକା ଦେଖ ) —2. (Figurative) To suck the life-blood out of a person ( as a witch ).

ରକ୍ତ ଶ୍ୱେତ—ସ. ବିଣ. ( ରକ୍ତ+ଶ୍ୱେତ )—ନାଲି ଓ ଧଳା ମିଶା—
Rakta śweta Red and white. ସ. ବି—ସୂକ୍ଷ୍ମ-ତୋଳ୍କୁ ଏକପ୍ରକାର ବିଷାକ୍ତ ବିଛା (ହି. ଶ.)—A kind of very poisonous scorpion.

ରକ୍ତଷ୍ଠୀବି—ସ. ବି—ଘାତକ ସନ୍ନିପାତ ରୋଗ ବିଶେଷ—A kind
Raktashṭhibi of fatal collapse ( disease ).
[ଦ୍ର—ଏ ରୋଗୀର ମୁହଁରୁ ଛେପ ସଙ୍ଗେ ବହୁପରିମାଣରେ ରକ୍ତ ବାହାରେ; ଦୀର୍ଘନିଶ୍ୱାସ ଓ ପେଟ ଫୁଲି ଯାଏ; ଜିଭରେ ଚକା ଦାଗମାନ ପଡ଼ିଯାଏ ଓ ସେଥିରୁ ରକ୍ତ ବାହାରେ । ଏ ରୋଗ ଅସାଧ୍ୟ—ହି. ଶ. ]

ରକ୍ତ ସଂକୋଚ—ସ. ବି—କୁସୁମ ଫୁଲ—
Rakta saṁkocha Safflower.

ରକ୍ତ ସଙ୍କୋଚକ—ସ. ବି—୧ । ଇନ୍ଦୀବର; ନୀଳପଦ୍ମ—1. The
Rakta saṁkochaka blue lotus. ୨ । ନାଲିପଦ୍ମ—2. The red lotus flower (Apte).

ରକ୍ତ ସଂଜ୍ଞ—ସ. ବି—କୁଙ୍କୁମ; ଜାଫ୍ରାନ—
Rakta saṁjña Saffron.
(ରକ୍ତ ସଂଜ୍ଞକ—ଅନ୍ୟରୂପ)

ରକ୍ତ ସନ୍ଦଂଶିକା—ସ. ବି—ଜୋକ—Leech.
Rakta sandaṁśikā (ରକ୍ତ ସନ୍ଦେଶିକା—ଅନ୍ୟରୂପ ହି. ଶ.)

ରକ୍ତ ସଞ୍ଚୟ—ସଂ. ବ (୬ଷ୍ଠୀ ତତ୍) (ଆଧୁନିକ ପ୍ରୟୋଗ) ଶରୀରର Rakta sañchaya କୌଣସି ସ୍ଥାନରେ ରକ୍ତ ଜମା ହୋଇଯିବା (ରୋଗ)—Congestion of blood; accumulation of blood in any part of the body.

ରକ୍ତ ସଞ୍ଚାର—ସଂ. ବ (୬ଷ୍ଠୀ ତତ୍)—ଦେହାଭ୍ୟନ୍ତରସ୍ଥ ରକ୍ତପ୍ରବାହର Rakta sañchāra ଗତି—Circulation of blood in the system. (ରକ୍ତ ସଞ୍ଚାଳନ—ଅନ୍ୟରୂପ)

ରକ୍ତସନ୍ଧ୍ୟକ—ସଂ. ବ—ରକ୍ତ କମଳ—The red lotus. Rakta sandhyaka (ଅନ୍ୟ ସଂ. ନାମ—ହଲ୍ଲକ) (ରକ୍ତ ସରସିଜ, ରକ୍ତ ସରୋରୁହ, ରକ୍ତ ସୌଗନ୍ଧିକ—ଅନ୍ୟରୂପ)

ରକ୍ତ ସମ୍ପର୍କ—ସଂ. ବ—(ମ.ପ.ଲୋ)—ଜନ୍ମ ବା ବିବାହଦ୍ୱାରା ଦୁଇଜଣଙ୍କ Rakta samparka ମଧ୍ୟରେ ଜାତ ସମ୍ପର୍କ—Blood relationship; relationship and ties of kindred and marriage. [ରକ୍ତ ସମ୍ବନ୍ଧ—ଅନ୍ୟରୂପ] ରକ୍ତ ସମ୍ପର୍କିତ, ରକ୍ତ ସମ୍ପର୍କୀୟ, ରକ୍ତ ସମ୍ପୃକ୍ତ, ରକ୍ତ ସମ୍ବନ୍ଧ }—ବିଶ. ପୁଂ. ରୂପ

ରକ୍ତ ସମ୍ବରଣ—ସଂ. ବ.—ସୁର୍ମା (ହି. ଶ.)—Sulphuret of Rakta sambaraṇa antimony used as collyrium.

ରକ୍ତ ସରସର—ଦେ. ବିଣ.—(ସଂ. ରକ୍ତ ଜର୍ଜର)—୧। ରକ୍ତରଞ୍ଜିତ— Rakta sarasara 1. Besmeared with blood. [ରକ୍ତ ସର୍ସର, ରକ୍ତ ଜୁଡ଼ୁ(ଡ଼ୁ)ବୁଡ଼ୁ(ଡ଼ୁ)—ଅନ୍ୟରୂପ] ୨। ରକ୍ତ ବକ୍ତାକ୍ତ ଲ(ଲୌ)ହୁ ଲ(ଲୌ)ହୁଆନ ରଞ୍ଜିତ; ଯେଉଁ ବସ୍ତୁରୁ ଠୋପା ଠୋପା ହୋଇ ରକ୍ତ ବହୁଥାଏ—2. (a thing) From which blood is falling down by drops.

ରକ୍ତ ସର୍ଷପ—ସଂ. ବ.—ରାଇକା; ସାଧାରଣ ସୋରିଷ—The mus-Rakta sarshapa tard seed; Brassica Nigra; Sinapis Racemosa.

ରକ୍ତ ସହା—ସଂ. ବ—ରକ୍ତାମ୍ଲାନ—The red variety of globe Rakta sahā amaranth.

ରକ୍ତ ସାର—ସଂ. ବ.—୧। ରକ୍ତ ଚନ୍ଦନ (ଦେଖ) Rakta sāra 1. Rakta chandana (See) ୨। ବକମ ଗଛ—2. Sappan wood. ୩। ରକ୍ତ ଖଦିର (ଦେଖ)—3. Rakta khadira (See) ୪। ଅମ୍ଳବେତସ—4. A sort of sorrel or dock. ୫। ବାରାହୀକନ୍ଦ (ହି. ଶ.)—5 A kind of yam.

ରକ୍ତ ସିକ୍ତ—ସଂ. ବିଣ.—(୩ୟା ତତ୍)-ଶୋଣିତାକ୍ତ; ରକ୍ତରେ ବୁଡ଼ିଥିବା- Rakta sikta Wet or moistened with blood; soaked with blood

ରକ୍ତ ସିନ୍ଧୁ—ସଂ. ବ.—(ରୂପକ; ରକ୍ତ+ସିନ୍ଧୁ)—(ଯୁଦ୍ଧାଦିରେ) ସମୁଦ୍ର Rakta sindhu ପରି ବୋହୁବା ରକ୍ତ ସ୍ରୋତ—A sea of blood.

ରକ୍ତ ସ୍ତମ୍ଭନ—ସଂ. ବ.—(୬ଷ୍ଠୀ ତତ୍) ବହୁଥିବା ରକ୍ତର ବେଗ ରୋଧ Rakta stambhana କରିବା (ହି.ଶ.)—The stoppage of bleeding.

ରକ୍ତ ସ୍ନାତ—ସଂ. ବିଣ. ପୁଂ.—(୩ୟା ତତ୍)—ଯେ ରକ୍ତରେ ଗାଧୋଇଛି Rakta snāta ଭଳି ରକ୍ତଜର୍ଜର ହୋଇଅଛି—Bathed [ରକ୍ତସ୍ନାତା—ସ୍ତ୍ରୀ] in blood; thoroughly drenched with blood.

ରକ୍ତ ସ୍ନା(ସ୍ରା)ଆ(ହା)ନ—ଗ୍ରା.ବିଣ—(ସଂ.ରକ୍ତ ସ୍ନାତ)—ରକ୍ତସ୍ନାତ (ଦେଖ) Rakta snā(srā)-ā(hā)na Rakta snāta (See). ବକ୍ତସ୍ନାନ ଗ୍ରା. ବ.—(ସଂ. ରକ୍ତସ୍ନାନ)—ରକ୍ତସ୍ନାନ (ଦେଖ) लहूस्नान Raktasnāna (See).

ରକ୍ତସ୍ନାନ—ସ ବ.—(୩ୟା ତତ୍)—ଦେହଯାକ ରକ୍ତାକ୍ତ ହେବା ଅବସ୍ଥା- Raktasnāna The state of being drenched in blood.

ରକ୍ତ ସ୍ରାବ—ସଂ.ବ.—(୬ଷ୍ଠୀ ତତ୍)—୧। ଦେହରୁ ରକ୍ତଧାର ବୋହିବା— Rakta srāba 1. Copious bleeding; discharge of blood; sanguifluxus. ୨। ଘୋଡ଼ାଙ୍କ ଆଖିରୁ ରକ୍ତ ବା ନାଲି ପାଣି ବହିବା ରୋଗବିଶେଷ (ହି. ଶ.)—2. A disease of the horse in which blood or red watery substance comes out of its eyes.

ରକ୍ତସ୍ରୋତଃ—ସଂ. ବ.—(୬ଷ୍ଠୀ ତତ୍)—ରକ୍ତ ନଦୀ; ସ୍ରୋତ ଆକାରରେ Rakta srotaḥ ପ୍ରବାହିତ ରକ୍ତ—A river of blood; [ରକ୍ତସ୍ରୋତ—ଦେ. ରୂପ] copious blood flowing like a current.

ରକ୍ତହଂସା ସଂ. ବ.—ରାଗିଣୀ ବିଶେଷ—Name of a secondary tune. Rakta hamsā

ରକ୍ତ ହଗା—ଦେ. ବ.—ରକ୍ତଝାଡ଼ା (ଦେଖ) Rakta hagā Rakta jhārdā (See) ବକ୍ତବାହୀ लहूकीटट्टी (ରକ୍ତ ବାହାରକ୍ତ; ରକ୍ତ ପୋଷଣ—ଅନ୍ୟରୂପ)

ରକ୍ତହର—ସଂ. ବିଣ (ରକ୍ତ+ହୃ ଧାତୁ+କର୍ତ୍ତୃ. ଅ)—ଯାହା ଦେହରୁ Raktahara ରକ୍ତ ଶୁଖାଇ ଦିଏ—Causing loss of blood. ସଂ. ବ—ଭଲିଆ (ହି. ଶ.)—Marking nut.

ରକ୍ତ ହୀନ—ସଂ. ବିଣ (୩ୟା ତତ୍)—୧। ଯାହାର ଦେହରେ ରକ୍ତ ନାହିଁ Rakta hīna —1. Bloodless; cold blooded. (ରକ୍ତଶୂନ୍ୟ—ଅନ୍ୟରୂପ) ୨। ନିରକ୍ତିଆ; ଯାହାର ଶରୀରରେ ରକ୍ତର ଅଳ୍ପତା ଘଟିଅଛି—2. Anaemic. ୩। ଯେଉଁ ବିପ୍ଳବାଦିରେ ନରହତ୍ୟା ହୁଏ ନାହିଁ—3. Bloodless (revolution), not accompanied with bloodshed.

ରକ୍ତ ହୀନତା—ସଂ. ବ (ରକ୍ତହୀନ+ତା)—ଦେହରେ ପ୍ରୟୋଜନୀୟ Rakta hinatā ରକ୍ତର ପରିମାଣ କମିଯିବା—Anaemia; (ରକ୍ତ ଶୂନ୍ୟତା, ରକ୍ତହୀନ—ଅନ୍ୟରୂପ) bloodlessness.

ରକ୍ତା—ସଂ. ବଣ. ସ୍ତ୍ରୀ ( ରକ୍ତ+ଆ )—ରକ୍ତ ( ଦେଖ )—Rakta
Raktā (See) ବି—୧ । ଗୁଞ୍ଜା; କାଇଞ୍ଚ—1. A creeper; Abrus Precatorius. ୨ । ଲାକ୍ଷ; ଲକ୍ଷା—2. Lac; shellac. ୩ । ରକ୍ତ ପୁଷ୍ପୀ ( ଦେଖ ) 3. Rakta pushpī ( See ) ୪ । ମଞ୍ଜିଷ୍ଠା ( ବୃ. ଶ. )—4. Indian madder. ୫ । ରକ୍ତଝିଣ୍ଟୀ—5. Barlaria Cristata. ୬ । ନାଲି ଶିମ୍ବ ( ବୃ. ଶ. )—6. The red bean. ୭ । ଲକ୍ଷଣା କନ୍ଦ ( ବୃ. ଶ. )—7. A kind of reddish root. ୮ । ବଚ ( ବୃ. ଶ. )—8. The sweet flag. ୯ । ଏକପ୍ରକାର କୀଟ ବା ମାକଡ଼ସା ( ବୃ. ଶ. )—9. A kind of spider. ୧୦ । ( ସଙ୍ଗୀତ ) ପଞ୍ଚମସ୍ୱରର ଦ୍ୱିତୀୟ ଶ୍ରୁତି ମଧ୍ୟରୁ ଦ୍ୱିତୀୟ ଶ୍ରୁତି—10. Name of a secondary tune in music. ୧୧ । କାନ ପାଖର ଏକଶିରା ( ବୃ. ଶ. )—11. A vein passing by the ear. ୧୨ । ( ରଞ୍ଜଧାତୁ+କର୍ତ୍ତୃ. କ୍ତ; ରକ୍ତ ଶବ୍ଦ ୧ମା. ୧ବ. )—ରଞ୍ଜକର; ରଙ୍ଗ କରିବା (ରକ୍ତୀ—ସ୍ତ୍ରୀ) ବ୍ୟକ୍ତି—12. A painter; a dyer (Apte).

ରକ୍ତାକାର—ସଂ. ବି ( ବହୁବ୍ରୀହି )—ପ୍ରବାଳ; ପୋହଳା—
Raktākāra Coral

ରକ୍ତାକ୍ତ—ସଂ. ବଣ ( ୩ୟା ତତ୍; ରକ୍ତ+ଅକ୍ତ )—୧ । ରକ୍ତରଞ୍ଜିତ; ରକ୍ତ ବୋଳା ହୋଇଥିବା—1. Coloured
Raktākta with blood; blood-reddened; bloody. ୨ । ନାଲି ରଙ୍ଗ କରାଯାଇ ଥିବା—2. Dyed red; coloured red; blood-red. ବି—ରକ୍ତଚନ୍ଦନ ( ଦେଖ )—Raktachandana ( See )

ରକ୍ତାକ୍ଷ—ସଂ. ବି ( କର୍ମଧା; ରକ୍ତ+ଅକ୍ଷି )—୧ । ରକ୍ତବର୍ଣ୍ଣ ଚକ୍ଷୁ—
Raktāksha 1. Red eye. ୨ । ( ବହୁବ୍ରୀହି ) କପୋତ—2. Dove. ୩ । ପାରା—3. Pigeon. ୪ । ଚକୋର ପକ୍ଷୀ—4. The Hymalayan partridge; Caccabis Chucar. ୫ । ସାରସ ପକ୍ଷୀ—5. The crane. ୬ । ମହିଷ—6. Buffaloe. ୭ । କ୍ରୂର ବ୍ୟକ୍ତି—7. A cruel person. ୮ । ଦୁର୍ବୃତ୍ତ ବ୍ୟକ୍ତି—8. A wicked person. ୯ । ରୋହିମାଛ ( ଦ୍ରବ୍ୟଗୁଣ )—8. Rohi fish. ବଣ. ପୁଂ—୧ । ରକ୍ତବର୍ଣ୍ଣ ଚକ୍ଷୁବିଶିଷ୍ଟ; ରକ୍ତଲୋଚନ—(ରକ୍ତାକ୍ଷୀ—ସ୍ତ୍ରୀ) 1. Red-eyed. ୨ । କ୍ରୂର—2. Cruel. ୩ । ଖଳ—3. Wicked. ୪ । ଅତ୍ୟାଚାରୀ—4. Tyrannical. ୫ । ଅଭଦ୍ର; ଅଶିଷ୍ଟ—5. Barbarous; uncivil.

ରକ୍ତାଙ୍କ—ସଂ. ବି ( ବହୁବ୍ରୀହି )—ପ୍ରବାଳ—
Raktāṅka Coral ( Apte ).

ରକ୍ତାଙ୍ଗ—ସଂ. ବଣ ପୁଂ—(ବହୁବ୍ରୀହି) ରକ୍ତବର୍ଣ୍ଣ ଦେହ ବିଶିଷ୍ଟ—Having a
Raktāṅga red body. ବି—୧ । କୁଙ୍କୁମ; କାମ୍ପିଲ୍ଲ—

ରକ୍ତାଙ୍ଗା } ବଣ. ସ୍ତ୍ରୀ 1. Saffron. ୨ । ମଙ୍ଗଳଗ୍ରହ; ଉକୁଣି—
ରକ୍ତାଙ୍ଗୀ 2. Louse. ୩ । ଖଟମଲ; ଓଡ଼ଶ—3. Bed bug. ୪ । ପ୍ରବାଳ—4. Red coral. ୫ । ମଙ୍ଗଳଗ୍ରହ—5. The planet Mars. ୬ । କୁଷ୍ଠରୋଗବିଶେଷ; ମଣ୍ଡଳ—6. A sort of leprosy with circular red spots or patches. ୭ । ସୂର୍ଯ୍ୟ ବା ଚନ୍ଦ୍ରଙ୍କ ମଣ୍ଡଳ—7. The disc of the sun or the moon ( Apte ). ୮ । କମଲା ଗୁଣ୍ଡି ( ଦ୍ରବ୍ୟଗୁଣ )—8 Kamila ( powder ). ୯ । ରକ୍ତଚନ୍ଦନ ( ଦ୍ରବ୍ୟଗୁଣ )—9. Red sandal-wood.

ରକ୍ତାଙ୍ଗୀ—ସଂ. ବି—୧ । ଜୀବନ୍ତୀ—1. A medicinal plant.
Raktāṅgī ୨ । ମଞ୍ଜିଷ୍ଠା—2. Indian madder; Rubia Cordifolia; Rubia Manjith.

ରକ୍ତାଢ଼କୀ—ସଂ. ବି—ନାଲି ହରଡ଼—
Raktāṛhakī A red species of lentil.

ରକ୍ତାତି(ତୀ)ସାର—ସଂ. ବି—ନାଳରକ୍ତ ଝାଡ଼ା ରୋଗ; ଯେଉଁ ଉଦରାମୟ
Raktāti(tī)sāra ରୋଗରେ ରକ୍ତମିଶ୍ରିତ ମଳ ବାହାରେ—(ରକ୍ତାମାଶୟ—ଅନ୍ୟରୂପ) (ରକ୍ତାମାଶୟ—ଦେ ରୂପ) Dysentery.

ରକ୍ତାଧର—ସଂ. ବି ( କର୍ମଧା; ରକ୍ତ+ଅଧର )—ରକ୍ତବର୍ଣ୍ଣ ଓଠ—
Raktādhara Red lips. ସଂ. ବଣ. ପୁଂ ( ବହୁବ୍ରୀହି )—ଯାହାର ଓଷ୍ଠ ରଙ୍ଗ—Red-lipped.

ରକ୍ତାଧରା—ସଂ. ବଣ. ସ୍ତ୍ରୀ ( ରକ୍ତାଧର+ଆ )—ରକ୍ତାଧରର ସ୍ତ୍ରୀଲିଙ୍ଗ—
Raktādharā Feminine of Raktādhara. ସଂ. ବି. ସ୍ତ୍ରୀ—କିନ୍ନରୀ—A Kinnarī.

ରକ୍ତାଧାର—ସଂ. ବି ( ୬ଷ୍ଠୀ ତତ୍; ରକ୍ତ+ଆଧାର )—ଚର୍ମ—
Raktādhāra Skin.

ରକ୍ତାଧିକ୍ୟ—ସଂ. ବଣ—୧ । ଦେହରେ ରକ୍ତର ବହୁଳତା—1.
Raktādhikya Excess of blood, hyperemia; super-abundance of blood in the body. ୨ । ମେଦୋବୃଦ୍ଧି ରୋଗ—2. Plethora.

ରକ୍ତାଧିମନ୍ଥ—ସଂ. ବି ( ମ. ପ. ଲୋ; ରକ୍ତଦୁଷ୍ଟି ଜନିତ ଅଧିମନ୍ଥ )—
Raktādhimantha ଆକ୍ଷିଧର ରୋଗ—Opthalmia; inflamation of the eyes.

ରକ୍ତାପହ—ସଂ. ବି ( ରକ୍ତ+ଅପ+ହା ଧାତୁ+କର୍ତ୍ତୃ. ଅ )—ବୋଳ;
Raktāpaha ବୋଳ; ଗୁଗ୍ଗୁଳ—The gum myrrh.

ରକ୍ତାପାମାର୍ଗ—ସଂ. ବି—ନାଲି ଅପମାରଙ୍ଗ ଗୁଳ୍ମ—Red variety
Raktāpāmārga of a medicinal plant; (ଅନ୍ୟ ସଂ—ରକ୍ତବିନ୍ଦୁ, ରକ୍ତଫଳ, Achyranthes Aspera ବୃତ୍ତଫଳ, କଲ୍ୟଫଳିକା, Rubra. [ ଦ୍ର—ଏହା ମାରିଷାଦି କ୍ଷୁଦ୍ରାପାମାର୍ଗ, ଧାମାର୍ଗବ, ବର୍ଗର କଣ୍ଟକ ଶାକଗୁଳ୍ମ । ଏହାର ଦୁଦ୍ଧୁକଳିକା, କପିର, ପତ୍ର ଓ ଡାଙ୍ଗ ନାଲିଆ । ବୈଦ୍ୟଶାସ୍ତ୍ର ପ୍ରତ୍ୟକ୍ପର୍ଣ୍ଣୀ, କେଶପର୍ଣ୍ଣୀ, ମତେ ଏହା ବାୟୁ ବର୍ଦ୍ଧକ, ବିଷ୍ଟମ୍ଭକାରକ, କପିପିପ୍ପଳୀ ] କଫକର, ଶୀତଗର୍ଭ ଓ ରୁକ୍ଷ । ଏହା

୫. ନାଲ ଅପମାରଙ୍ଗ ରାଙ୍ଗାଆପାଙ୍ଗ୍ ଲାଲ ଚିଟଚିଟୀ ମ ଢାବଡ଼ା, ଅଘାଡ଼ା ରକ୍ତ ଲଟଜୀର ଶ୍ୱେତ ଅପାମାର୍ଗ ଅପେକ୍ଷା କିଞ୍ଚିତ୍ ଅଳ୍ପ ଗୁଣ ବିଶିଷ୍ଟ । ଏହାର ସ୍ୱାଦ ମଧୁର-ରସ, ମଧୁରବିପାକ, ଦୁଷ୍ପାଚ୍ୟ, ବିଷ୍ଟମ୍ଭୀ, ବାୟୁବର୍ଦ୍ଧକ ଓ ରକ୍ତପିତ୍ତ-ପ୍ରସାଦକ—ଦ୍ରବ୍ୟଗୁଣ । ]
ଗୁ. ହ୍ନପଟୋ ତେ. ଉତ୍ତରସ୍ୱୃମା, କେମ୍ପୁଗୁତ୍ତରଣେ ]

ରକ୍ତାବରୋଧକ—ସଂ. ବିଣ (୬ଷ୍ଠୀ ତତ୍) —ରକ୍ତପ୍ରବାହକୁ ରୋଧ କରିବାକୁ ସମର୍ଥ—Restraining the flow of blood.
Raktābarodhaka

ରକ୍ତାବସେଚନ—ସଂ. ବି—ରକ୍ତ ମୋକ୍ଷଣ ( ଦେଖ )
Raktābasechana Rakta mokshaṇa ( See )

ରକ୍ତାଭ—ସଂ. ବିଣ ( ବହୁବ୍ରୀହି; ରକ୍ତ+ଆଭା=କାନ୍ତି; ତେଜ )—
Raktābha ୧ । ରକ୍ତବର୍ଣ୍ଣ ବିଶିଷ୍ଟ—1. Red-coloured. ୨ । ଗୋଲାପୀ (ରଙ୍ଗ); ଈଷତ୍ ନାଲିଆ—2 Reddish; slightly red; rosy. ବି—ସାଧବଘର ବୋଦ୍ଦ ପୋକ—Cochineal insect.

ରକ୍ତାଭା—ସଂ. ବି ( ରକ୍ତ+ଆଭା )—୧ । ( କର୍ମଧା ) ରକ୍ତବର୍ଣ୍ଣ—
Raktābhā Red colour. ୨ । ( ବହୁବ୍ରୀହି ) ନାଲି-ମନ୍ଦାର ( ହି. ଶ. )—2. Red china rose ସଂ. ବିଣ. ସ୍ତ୍ରୀ ( ରକ୍ତାଭ+ଆ )—ରକ୍ତାଭର ସ୍ତ୍ରୀଲିଙ୍ଗ—Feminine of Raktābha.

ରକ୍ତାଭିଷ୍ୟନ୍ଦ—ସଂ. ବି—୧ । ଅଶ୍ରୁ ବର୍ଷଣ ଜନିତ ନୟନ ଯୁଗଳର
Raktābhishyanda ରକ୍ତିମା —1. Redness of the eyes due to copious flow of tears. ୨ । ନେତ୍ର ରୋଗ ବିଶେଷ—2. An eye disease. [ ଦ୍ର—ଏଥିରେ ଆଖି ନାଲି ପଡ଼ିଯାଏ, ଆଖିରୁ ନାଲି ପାଣି ଗଡ଼େ ଓ ଆଖି ଆଗରେ ନାଲି ରେଖାମାନ ଦେଖାଯାଏ — ହି. ଶ. ]

ରକ୍ତାଭ୍ର—ସଂ. ବି.—(କର୍ମଧା)—ନାଲି ମେଘନାଳ—
Raktābhra The red variety of mica.

ରକ୍ତାମାଶୟ—ସ. ବି.—ରକ୍ତାତିସାର (ଦେଖ)
Raktāmāśaya Raktātisāra (See)
( ରକ୍ତାମାଶା—ଗ୍ରାମ୍ୟରୂପ )

ରକ୍ତାମ୍ବର—ସ. ବି.—୧ । ( କର୍ମଧା )—ରକ୍ତବର୍ଣ୍ଣ ବସ୍ତ୍ର—1. Red
Ratkāmbara cloth. ୨ । କଷାୟାମ୍ବର; ରକ୍ତରଞ୍ଜିତ ବସ୍ତ୍ର—2. A cloth dyed red. ୩ । (ପୁଂ)—କଷାୟବସନଧାରୀ ସନ୍ନ୍ୟାସୀ—3. A mendicant wearing red coloured cloth. ବିଣ. ପୁଂ—ରକ୍ତବସ୍ତ୍ର ପରିହିତ—Wearing red cloth; clad in red garments.
(ରକ୍ତାମ୍ବରା—ସ୍ତ୍ରୀ)

ରକ୍ତାମ୍ର—ସଂ. ବି.—କୋଶାମ୍ର; ଫଳବୃକ୍ଷ ବିଶେଷ; କୁସୁମ ୨ (ଦେଖ)
Raktāmra Scleicheria Trijuga (tree).
ଅନ୍ୟ ସଂ.—କୋଶାମ୍ର, କ୍ରୁମିବୃକ୍ଷ, କ୍ଷୁଦ୍ରାମ୍ର, ସୁକୋଷ, ଘନସ୍କନ୍ଧ, ବନାମ୍ର, ଜନ୍ତୁପାଦପ, କ୍ରିମି ବୃକ୍ଷ, ଲାକ୍ଷାବୃକ୍ଷ, ସୁରକ୍ତକ, ସୁକୋଶକା
ଓ. କୁସୁମ
କେଓଡ଼ା
କୋସମ, କାସମ
ମ. ଝାଡ଼ୀଆଁବା ବାସଁଆଁବା
[ ଦ୍ର—ଏହାର ଫଳ ବଡ଼ ବର କୋଳି ପରି । ଏଥିର କୋଳ ଆଞ୍ଚୁର ହୁଏ ।]

ରକ୍ତାମ୍ଳାନ—ସଂ. ବି.—ନାଲି କେଶଦୁଦୁରୁ; ରକ୍ତଝିଣ୍ଟୀ—
Raktāmlāna Red-flowered species of Barleria plant.
ଲାଲଝିଣ୍ଟି ଲାଲ କଟସରୈୟା
ମ. କାଣଝାଡ଼

ରକ୍ତାରକ୍ତି—ଦେ. ବି.—(ବଙ୍ଗଳାରୁ ଅନୁକୃତ)—ପରସ୍ପର ରକ୍ତପାତ ପୂର୍ବକ ଦ୍ୱନ୍ଦ୍ୱଯୁଦ୍ଧ—Mutual fighting ending in bloodshed or bleeding wounds. ବିଣ.—ପରସ୍ପର ରକ୍ତବୁହା ବୋହି ହୋଇ ଦ୍ୱନ୍ଦ୍ୱ ଯୁଦ୍ଧ କରୁଥିବା ( ବ୍ୟକ୍ତି ଦ୍ୱୟ )—(two persons) Fighting with each other, so that bleeding wounds are produced.
Raktārakti
ରକ୍ତାରକ୍ତି
लहुलहान

ରକ୍ତାର୍କ—ସଂ ବି.—ନାଲି ଅର୍କ ଗଛ (ଏହାର ମୂଳ ରକ୍ତବର୍ଣ୍ଣ)—
Raktārka Calatropis Gigantea (red veriety).
ଅନ୍ୟ ସଂ. ନାମ—ଅର୍କପର୍ଣ୍ଣି, ବିକୀରଣ, ରକ୍ତପୁଷ୍ପ, ଶୁକ୍ଳଫଳ ଅସ୍ଫୋତ, ରକ୍ତକନ୍ଦ
ଓ. ନାଲି ଅରଖ
ଲାଲ ଆକନ୍ଦ ମଦାର
[ଦ୍ର—ଏହା ଆକନ୍ଦ ଜାତୀୟ ଗୁଳ୍ମ; ଏଥିର ଫୁଲ ରକ୍ତାଭ; ଏହା ଶ୍ୱେତ ଆକନ୍ଦ ପରି ଗୁଣକାରକ; ରକ୍ତଆକନ୍ଦର ଫୁଲ ମଧୁରତିକ୍ତରସ ଓ ଧାରକ; ଏହା କୁଷ୍ଠ, କୃମି, କଫ, ଅର୍ଶ, ବିଷଦୋଷ ଓ ରକ୍ତପିତ୍ତନାଶକ । ଏହା ଗୁଳ୍ମ ଓ ଶୋଥର ହିତକର । ଏଥିର ଅଠା ଶ୍ରେଷ୍ଠ ବିରେଚକ—ଦ୍ରବ୍ୟଗୁଣ ।]

ରକ୍ତାର୍ବୁଦ—ସଂ. ବିଂ —ରକ୍ତକ୍ଷରଣ ଜନିତ ମୁଷ୍କସ୍ଫୀତି—1. Heama-
Raktārbbuda tocele; swelling of the scrotum due to effusion of blood. ୨ । ରକ୍ତସ୍ରାବୀ ଆବୁ—2. Bloody tumour (Apte). ୩ । ଏକ ପ୍ରକାର ରୋଗ, ଯହିଁରେ ଲିଙ୍ଗ ଉପରେ ଶୁକ୍ର ଦୋଷରୁ ଉତ୍ପନ୍ନ କୃଷ୍ଣବର୍ଣ୍ଣ ବ୍ରଣ ଓ ନାଲି ଘିମିରି ଫଳିଯାଏ (ହି. ଶ) — 3. A kind of disease attacking the male organ. ୪ । ଏକପ୍ରକାର ବ୍ରଣରୋଗ—4. A kind of disease. [ ଦ୍ର—ଏ ରୋଗରେ ଦେହରେ ଗୁଡ଼ିଏ ବଥ ବାହାରି ତହିଁରୁ ପୂଜ ଓ ରକ୍ତ ବହେ ଓ ଦେହର ବର୍ଣ୍ଣ ହଳଦିଆ ହୁଏ—(ହି. ଶ) ]

ରକ୍ତାର୍ମ—ସ. ବି (ରକ୍ତ+ଅର୍ମନ୍; ୧ମା. ୧ବ)—ଆଖି ଡୋଳାଉପରେ
Raktārma ମାଂସ ଜମା ହୋଇ ନାଲି କଇଁପର ଦେଖାଯିବା ରୋଗ [ହି. ଶ]—A disease of the eye in which the eyeballs are covered with a layer of red flesh.

ରକ୍ତାର୍ଶଃ—ସ. ବି—ଅର୍ଶୋରୋଗ ବିଶେଷ—A sort of piles;
Raktārśaḥ haemorrhords. [ ଦ୍ର—ଏଥିରେ ଗୁହ୍ୟଦ୍ୱାର ବାଟେ ବହୁତ ରକ୍ତସ୍ରାବ ହୁଏ ।]
[ରକ୍ତାର୍ଶ—ଦେଶଜରୂପ]

ରକ୍ତାଳୁ—ସଂ. ବି—ନାଲି ଆଳୁ; ରକ୍ତକନ୍ଦ—
Raktālu Red variety of yam.

ରକ୍ତାଳ୍ପତା—ସଂ. ବି—(୬ଷ୍ଠୀ ତତ୍)—ରକ୍ତହୀନତା; ଦେହରେ ରକ୍ତର
Raktālpatā ନ୍ୟୂନତା ବା ହ୍ରାସ—Anœmia; deficiency of blood, Leiplicœma.

ରକ୍ତାଶୟ—ସଂ. ବି ( ୬ଷ୍ଠୀ ତତ୍—ରକ୍ତ+ଅଶୟ—ସ୍ଥାନ; ରକ୍ତ
Raktāśaya ରହିବାର ସ୍ଥାନ )—୧ । ହୃତ୍ପିଣ୍ଡ—1. The heart, blood vessel. [ଦ୍ର—ଏହା ବକ୍ଷୋଦେଶରେ ଅବସ୍ଥିତ । ଏହାର ନିମ୍ନରେ ଶ୍ଳେଷ୍ମାଶୟ ଓ ତନ୍ନିମ୍ନରେ ଆମାଶୟର ସ୍ଥାନ । ] ୨ । ଦେହ ମଧ୍ୟରେ ରକ୍ତସଞ୍ଚୟର ବା ରକ୍ତସଞ୍ଚାରର ଯନ୍ତ୍ର [ଯଥା-ହୃତ୍ପିଣ୍ଡ, ପ୍ଳୀହା, ଯକୃତ୍]—
2. Any visous containing or secreting blood. (e. g. the heart, spleen; liver).

ରକ୍ତାଶୋକ—ସଂ. ବି—ନାଲି ଫୁଲ ଫୁଟିବା ଅଶୋକ ଗଛ (ହି. ଶ)—
Raktāśoka The red-flowered variety of Aśoka tree.

ରକ୍ତାଶ୍ୱାର—ସଂ. ବି ( ରକ୍ତ+ଅଶ୍ୱାର )—ରକ୍ତଫୁଲବିଶିଷ୍ଟ କରବୀ ଗଛ
Raktāśwāri [ହି.ଶ]—The red-flowered variety of Nerium Odorum (tree).

ରକ୍ତି—ସଂ. ବି (ରଞ୍ଜ. ଧାତୁ=ଅନୁରକ୍ତ ହେବା+ଭାବ. ତି)—
Rakti ୧ । ଅନୁରକ୍ତି; ଅନୁରାଗ, ସ୍ନେହ, ଭକ୍ତି—1. Affection; attachment; devotion. ୨ । ଆସକ୍ତି—
2. Addiction to. ୩ । ଏକ କାଇଞ୍ଚ ପରିମାଣ; ରତି; ଧାତୁଆଦି ଦ୍ରବ୍ୟର ଓଜନ ପରିମାଣ ବିଶେଷ [୧ ଭରି=୧୦ ମସା, ୧ ମସା=୮ ରକ୍ତି ]—A standard of weight; $\frac{1}{80}$ of 1 rupee weight; $2\frac{1}{2}$ grains English weight. ୪ । ଗୁଞ୍ଜା; କାଇଁଚ—4. A red seed used by goldsmiths in weighing metal; the seed of Abrus Precatcrius. ୫ । ମନୋହାରିତା—
5. Loveliness; charmingness. (Apte)

ରକ୍ତିଆ—ଦେ. ବିଣ—୧ । ରକ୍ତାଭ—1. Reddish. ୨ । ରକ୍ତଯୁକ୍ତ—
Raktiā 2. Bloody. ୩ । ରକ୍ତପୂର୍ଣ୍ଣ—3. Full of blood.

ରକ୍ତିକା—ସଂ. ବି (ରକ୍ତ+କ+ଆ)—୧ । ନାଲି କାଇଞ୍ଚ—1. A
Raktikā hooded red seed of a creeper; Abrus Precatorius. ୨ । କାଇଞ୍ଚ ପରିମାଣ; ରତି ଓଜନ—
2. A standard of weight=$2\frac{1}{2}$ grains.

ରକ୍ତିମ—ଦେ. ବିଣ (ସଂ. ରକ୍ତିମା)—ରକ୍ତବର୍ଣ୍ଣ ବିଶିଷ୍ଟ—Red-
Raktima coloured. [ଦ୍ର—ଏ ଶବ୍ଦର ପ୍ରୟୋଗ ଭ୍ରମମୂଳକ, ସଂସ୍କୃତଭାଷାରେ 'ରକ୍ତିମା' ଶବ୍ଦ ବିଶେଷ୍ୟରୂପେ ବ୍ୟବହୃତ ହୁଏ; କେତେକ ଆଧୁନିକ ଲେଖକ 'ରକ୍ତିମ' ଶବ୍ଦ ବିଶେଷ୍ୟରୂପେ ବ୍ୟବହାର କରୁଥିବା ଦେଖାଯାଏ । ]

ରକ୍ତିମା—ସଂ. ବି (ରକ୍ତ+ଭାବ. ଇମନ୍; ରକ୍ତିମନ୍, ୧ମା, ୧ବ)—
Raktimā ୧ । ରକ୍ତବର୍ଣ୍ଣତ୍ୱ; ଲାଲ ଆଭା—1. Red hue; redness. ୨ । ନାଲିରଙ୍ଗ—2. Red colour.

ରକ୍ତେକ୍ଷଣ—ସଂ. ବିଣ. ପୁଂ (ବହୁବ୍ରୀହି)—ରକ୍ତବର୍ଣ୍ଣ ଚକ୍ଷୁବିଶିଷ୍ଟ—
Raktekshaṇa Red-eyed.
[ ରକ୍ତେକ୍ଷଣା—ସ୍ତ୍ରୀ ]

ରକ୍ତେକ୍ଷୁ—ସଂ. ବି—ନାଲି ଆଖୁ; କଳାର ଆଖୁ—The red variety
Raktekshu of sugarcane.
[ଅନ୍ୟ ସଂ—ସୂକ୍ଷ୍ମପତ୍ର, ଶୋଣ, ଲୋହିତ, ଉତ୍କଟ, ମଧୁର, ହ୍ରସ୍ୱମୂଳ, ଲୋହିତେକ୍ଷୁ । ଓ. କଳାର ଆଖୁ କାଜଲା আক]

ରକ୍ତୈରଣ୍ଡ—ସଂ. ବି—ନାଲି ଗବ—Red variety of castor
Raktairaṇḍa oil seed plant.
[ଅନ୍ୟ ସଂ—ଉତ୍ତାନପତ୍ରକ, ଉରୁବକ, କରପର୍ଣ୍ଣ, ଚଞ୍ଚୁ, ଚିତ୍ରବୀଜ, ବାତାରି, ନାଗକର୍ଣ୍ଣ, ପାଚନ, ରକ୍ତକ, ବ୍ୟାଘ୍ର, ବ୍ୟାଘ୍ରବୃକ୍, ସ୍ନିଗ୍ଧ, ହସ୍ତିକର୍ଣ୍ଣ, ହ୍ରସ୍ୱୈରଣ୍ଡ, ରୁବୁ । ଓ. ନାଲି ଗବ লাল ভেরেণ্ডা]

ରକ୍ତୈର୍ବାରୁ—ସଂ. ବି—ଇନ୍ଦ୍ରବାରୁଣୀ; ମହାକାଳ ଲତା—
Raktairbāru Colocynth

ରକ୍ତୋତ୍ପଳ—ସଂ. ବି—୧ । ରକ୍ତ କମଳ ( ଦେଖ )
Raktotpaḷa 1. Rakta kamaḷa ( See )
୨ । ଶିମିଳି (ହି. ଶ)—2. Silk cotton tree.

ରକ୍ତୋଦର—ସଂ ବି (ବହୁବ୍ରୀହି)—ଯାହାର ପେଟ ନାଲିଆ—
Raktodara Having a red belly.
(ରକ୍ତୋଦରୀ—ସ୍ତ୍ରୀ) ସଂ. ବି—୧ । ରୋହି ମାଛ (ଦ୍ରବ୍ୟଗୁଣ)—
1. The Rohi fish. ୨ । ସୁଶ୍ରୁତୋକ୍ତ ଏକ ପ୍ରକାର ବିଷାକ୍ତ ବିଛା (ହି. ଶ)—2. A kind of venemous scorpion.

ରକ୍ତୋପଦଂଶ—ସଂ. ବି. ( ମ. ପ. ଲେ )—ରକ୍ତ ବିକୃତି ଯୋଗୁଁ ଉତ୍ପନ୍ନ
Raktopadaṁśa ଗରମି ରୋଗ—Syphilis due to tainted blood.

ରକ୍ତୋପଳ—ସଂ. ବି (କର୍ମଧା; ରକ୍ତ+ଉପଳ)—ଗେରୁ ମାଟି—
Raktopaḷa Red chalk; red ochre.

ରକ୍ଷ (ଧାତୁ)—ସଂ—୧ । ପାଳନ କରିବା—1. To cherish; to
Raksha (root) rear up. ୨ । ବିପଦାଦିରୁ ଉଦ୍ଧାର କରିବା; ରକ୍ଷା କରିବା—2. To save from danger; to spare. ୩ । ଆପଦ ଆଦିରୁ ଘୋଡ଼ାଇ ରଖିବା
3. To protect from danger. ୪ । ରଖିବା—
4. To keep. ୫ । ଜଗିବା—5. To guard; to tend. ୬ । (ରାଜ୍ୟ) ଶାସନ କରିବା—6 To rule; to govern. ୭ । (ଗୁପ୍ତ କଥା) ପ୍ରକାଶ ନ କରିବା—
7. Not to divulge. ୮ । ଯତ୍ନ ନେବା—8. To take care. ୯ । (ପରି+ରକ୍ଷ ଧାତୁ) ଧ୍ୱଂସରୁ ରକ୍ଷା କରିବା—9. To save from ruin. ୧୦ । (ସମ୍+ରକ୍ଷ ଧାତୁ) ବିଶେଷ ଯତ୍ନ ସହକାରେ ରଖିବା—To keep with care

ରକ୍ଷ—ସଂ. ବି. ( ରକ୍ଷ ଧାତୁ+ଭାବ. ଅ )—୧ । ରକ୍ଷଣ; ତ୍ରାଣ—
Raksha 1. Preserving; protecting from harm; saving from danger. ୨ । (+କର୍ତ୍ତୃ. ଅ) ରକ୍ଷକ, ତ୍ରାଣକର୍ତ୍ତା—2. Protector; saviour. ୩ । ଜଗୁଆଳି—3 A guard. ୪ । ଲାକ୍ଷା (ଦ୍ରୁ. ଶ)—4. Shell lac. ବିଣ. ପୁଂ. (+କର୍ତ୍ତୃ. ଅ) ରକ୍ଷାକାରୀ—Protecting; preserving. ଦେ.ବି.(ସଂ. ରକ୍ଷସ୍)—Demon. (ଦ୍ର—ବ୍ୟାଘ୍ର ଗନ୍ଧ ଅଘ୍ରାଣେ ଗୋ ପର ପଳାୟିତ,
ରକ୍ଷ ରକ୍ଷ
ବୋଲି ବେନି ଅର୍ଥେ ରକ୍ଷ ରକ୍ଷ ରୂଷି ବ୍ରାତ । ଉଞ୍ଜ. ବୈଦେହୀଶ ବିଳାସ ।) କ୍ରି—(ତୁମ୍ଭେ) ରକ୍ଷା କର—(you) save (you) protect

ରକ୍ଷ ଈଶ—ସଂ. ବି. (୬ଷ୍ଠୀ ତତ୍; ରକ୍ଷା+ଈଶ; ସନ୍ଧି ଦ୍ୱାରା ବିସର୍ଗ
Raksha īśa ଲୋପ)—ରକ୍ଷୋନାଥ ( ଦେଖ )
Rakshonātha ( See)

ରକ୍ଷଃ—ସଂ. ବି. (ରକ୍ଷ ଧାତୁ+ଅପାଦାନ ଅସ୍=ରକ୍ଷସ୍; ୧ମା. ୧ବ;
Rakshaḥ ଯାହାର ଅତ୍ୟାଚାରରୁ ଲୋକେ ଧନଜନାଦିକୁ ଓ ଯଜ୍ଞାଦି ରକ୍ଷା କରନ୍ତି) – ରାକ୍ଷସ—A demon; an evil spirit; goblin.

ରକ୍ଷଃକୁଳ—ସଂ. ବି. (୬ଷ୍ଠୀ ତତ୍)—୧ । ରାକ୍ଷସ ବଂଶ – 1. A family
Rakshaḥkula of demons. ୨ । ରାକ୍ଷସ ସମୂହ—2. An assemblage of demons; a number of demons

ରକ୍ଷଃ ପତି— ସଂ. ବି. (୬ଷ୍ଠୀ ତତ୍)— ରକ୍ଷୋନାଥ ( ଦେଖ )
Rakshaḥ pati Rakshonātha ( See )

ରକ୍ଷଃ ପାଶ—ସଂ. ବି. ( ରକ୍ଷଃ+କୁତ୍ସାର୍ଥେ. ପାଶ ) - ଅଧମ ରାକ୍ଷସ—
Rakshaḥ pāśa A contemptible demon.

ରକ୍ଷଃ ସଭ—ସଂ. ବି (ରକ୍ଷଃ=ରାକ୍ଷସ+ସଭା=ଜନତା, ୬ଷ୍ଠୀ ତତ୍;
Rakshaḥ sabha ସଭା ସ୍ଥଳରେ ସଭ)—ରାକ୍ଷସ ସମୂହ – An assemblage of demons.

ରକ୍ଷକ—ସଂ. ବିଣ. ପୁଂ. ( ରକ୍ଷ ଧାତୁ+କର୍ତ୍ତୃ. ଅକ )—
Rakshaka ୧ । ରକ୍ଷାକର୍ତ୍ତା—1. Saving.
(ରକ୍ଷିକା—ସ୍ତ୍ରୀ) ୨ । ପାଳନକର୍ତ୍ତା—2. Protecting.
ବି—୧ । ଅଭିଭାବକ—1 Guardian. ୨ । ପାଳକ—2. Protector. ୩ । ତ୍ରାଣକାରୀ ବ୍ୟକ୍ତି—3. Saviour. ୪ । ଜଗୁଆଳି; ପହରାବାଲା—4. Watch, guard. ୫ । ମାରପଦ୍‌ଦାର୍—5. Keeper; custodian. ୬ । ଶାସକ—6. Ruler. [ଦ୍ର—ରକ୍ଷକ ଭକ୍ଷକ ହେବା ନ୍ୟାୟ—ଯାହା ଉପରେ କୌଣସି ପଦାର୍ଥକୁ ରକ୍ଷା କରିବା ଭାର ଥାଏ, ସେ ଯେବେ ରକ୍ଷିତ ପଦାର୍ଥକୁ ଆତ୍ମସାତ୍ କରେ, କିମ୍ବା ପାଳନକର୍ତ୍ତା ଯେବେ ବିନାଶ ଘଟାଇବାକୁ ବସେ ତେବେ ସେ ସ୍ଥଳରେ ଏହି ଉପମା ଦିଆଯାଏ ।]

ରକ୍ଷଣ—ସଂ. ବି. ( ରକ୍ଷ ଧାତୁ+ଭାବ. ଅନ )—୧ । ରକ୍ଷା; ପାଳନ—
Rakshaṇa 1. Preserving; protecting. ୨ । ପରିତ୍ରାଣ—2. Saving. ୩ । ଆଶ୍ରୟ ଦାନ—3. Sheltering; giving shelter. ୪ । ପାଖରେ ରଖିବା—4. Keeping; custody. ୫ । (+କର୍ତ୍ତୃ. ଅନ) ବିଷ୍ଣୁ—5. A name of Bishṇu (Apte). ସଂ. ବିଣ. (+କର୍ତ୍ତୃ. ଅନ)—ରକ୍ଷକ—Protecting.

ରକ୍ଷଣ କର୍ତ୍ତା—ସଂ. ବିଣ ଓ ବି. ପୁଂ—ରକ୍ଷକ ( ଦେଖ )
Rakshaṇa karttā Rakshaka ( See )
(ରକ୍ଷଣକର୍ତ୍ତ୍ରୀ—ସ୍ତ୍ରୀ)

ରକ୍ଷଣା—ସଂ ବି. ( ରକ୍ଷ୍ ଧାତୁ+ଭାବ. ଅନ+ଆ )—ରକ୍ଷଣ; ରକ୍ଷା
Rakshaṇā କରିବା—Protecting.

ରକ୍ଷଣାବେକ୍ଷଣ—ସଂ. ବି. (ସହଚର ଶବ୍ଦ; ରକ୍ଷଣ+ଅବେକ୍ଷଣ)—ପାଳନ
Rakshaṇābekshaṇa ଓ ତତ୍ତ୍ୱାବଧାରଣ; ଜଗାରଖା—Maintenance and supervision.

ରକ୍ଷଣା(ଣୀ)ରକ—ସଂ. ବି—ମୂତ୍ରକୃଚ୍ଛ୍ର ରୋଗ—Painful mictura-
Rakshaṇā(ṇī)raka tion; difficulty in passing urine; morbid retention of urine

ରକ୍ଷଣାର୍ହ—ସଂ. ବିଣ (ରକ୍ଷଣ+ଅର୍ହ)—ରକ୍ଷିତ ହେବାର ଯୋଗ୍ୟ—
Rakshaṇārha Deserving to be protected.
(ରକ୍ଷଣାର୍ହା—ସ୍ତ୍ରୀ)

ରକ୍ଷଣି(ଣୀ)—ସଂ. ବି—ତ୍ରାୟମାଣା (ଦେଖ)—Name of a creeper,
Rakshaṇi(ṇī) Thalictrum Faliolosum; Ficus Heterophylla.
[ଅନ୍ୟ ସଂ—ବଳଭଦ୍ରା, ତ୍ରାୟମାଣା, ତ୍ରାୟନ୍ତୀ, ଗିରିଜା, ଅନୁଜା, ବଳଭଦ୍ରିକା, ବାର୍ଷିକ, ବାର୍ଷିକା, ବଳଦେବା, ସୁଭଦ୍ରାଣ, ଭଦ୍ରନାମିକା, କୃତଜ୍ଞା, ତ୍ରାୟମାଣିକା, ସୁକାମା, ମଙ୍ଗଲ୍ୟାର୍ହା, ଦେବବଳା, ପାଳନୀ, ଭୟନାଶିନୀ, ଅବନୀ, ତ୍ରାଣା ।]
ଓ. ଉଦଭଦ କଳଅ ବନାଡୁମୁର, ବନଭାଣ୍ଡୁଲିଆ
ত্রায়মানা(ণা)

ରକ୍ଷଣୀ—ଦେ. ବି—ରକ୍ଷାକର୍ତ୍ତା—Protector. [ଦ୍ର—ବିହ୍ୱାସ୍ତୁ
Rakshaṇi ଦେବବାଣୀ, ଚିନ୍ତା ପ୍ରସୁ ପୃଥ୍ୱୀ ରକ୍ଷଣୀ, କଣ୍ଠ ଦୋଷା ହୋଇଲା ସ୍ୱକାରେ ସେ—ଉଞ୍ଜବୈଦେହୀଶବିଳାସ।]
ସଂ. ବି - ୧ । ରକ୍ଷଣି (ଦେଖ)—1 Rakshaṇi (See).
୨ । ଲଗାମ—2. Rein; bridle (Apte).

ରକ୍ଷଣୀୟ—ସଂ. ବିଣ (ରକ୍ଷ୍ ଧାତୁ+କର୍ମ ଅନୀୟ)—୧ । ରକ୍ଷିତ ହେବା
Rakshaṇiya ଯୋଗ୍ୟ; ପାଳନୀୟ—1. Fit to be
( ରକ୍ଷଣୀୟା—ସ୍ତ୍ରୀ ) preserved or guarded or protected. ୨ । ଆଶ୍ରୟ ପାଇବା ଯୋଗ୍ୟ—2 Fit to be afforded shelter.

ରକ୍ଷନ୍—ସଂ. ବିଣ ପୁଂ (ରକ୍ଷ ଧାତୁ+କର୍ତ୍ତୃ ଅନ୍=ରକ୍ଷନ୍ ୧ମା ୧ବ)—
Rakshan ଯେ ରକ୍ଷା କରେ—Saving; protect-
(ରକ୍ଷନ୍ତୀ—ସ୍ତ୍ରୀ) ing.

ରକ୍ଷନିପୁଣ—ଦେ. ବି ( ସଂ. ରକ୍ଷଃ+ନିପୁଣ ) ରାକ୍ଷସଶ୍ରେଷ୍ଠ—
Rakshanipuṇa A chief demon. [ଦ୍ର—ବଡ଼ ଛାତେ ମାରିଣ, ଗୁଣ୍ଡା ହେଲା ତକ୍ଷଣ, ଅନ୍ତ୍ରୁସହ ରକ୍ଷନିପୁଣ ସେ ଉଞ୍ଜ. ବୈଦେହୀଶବିଳାସ । ]

ରକ୍ଷପାଳ—ସଂ. ବି ପୁଂ ( ରକ୍ଷ+ପାଳ ଧାତୁ+କର୍ତ୍ତୃ ଅ ); ଜଗୁଆଳ,
Rakshapāla ରକ୍ଷକ—Protector; a guard (Apte)
(ରକ୍ଷପାଳକ—ଅନ୍ୟରୂପ)

ରକ୍ଷୟିତା—ସଂ ବିଣ. ପୁଂ (ରକ୍ଷ ଧାତୁ+କର୍ତ୍ତୃ ତୃ; ରକ୍ଷୟିତୃ ୧ମା ୧ବ)
Rakshayitā ୧ । ରକ୍ଷକ ( ଦେଖ )—1. Rakshaka
(ରକ୍ଷୟିତ୍ରୀ—ସ୍ତ୍ରୀ) (See) ୨ । ଜଗିବା ବାଲା—
Watching; guarding.

ରକ୍ଷରଜା—ସଂ ବି ସ୍ତ୍ରୀ—ବାଲି ଓ ସୁଗ୍ରୀବଙ୍କ ମାତା—Name of a
Raksharajā mythological being said to be the mother of Bāli and Sugriba, the monkey-kings. [ ବ୍ର—ଏ ବ୍ରହ୍ମାଙ୍କ ଅଶ୍ରୁଜଳରୁ ଜାତ ହୋଇଥିଲେ । ଏ ପ୍ରଥମେ ପୁରୁଷ ଥିଲେ । ଏ ମେରୁ ଶିଖରରେ ଅବସ୍ଥିତ ସରୋବରବିଶେଷରେ ସ୍ନାନ କରିବାରୁ ରମଣୀ ରୂପ ପ୍ରାପ୍ତ ହେଲେ ଓ ଏହାଙ୍କ ଗର୍ଭରେ ବାଲୀ ଓ ସୁଗ୍ରୀବ ଜନ୍ମଗ୍ରହଣ କରିଥିଲେ । କିଛିକାଳ ପରେ ଦୈବାନୁଗ୍ରହରୁ ଏ ମାନବ ରୂପ ତ୍ୟାଗ କରି ବାନରୀ ରୂପ ଧାରଣ କରି ବ୍ରହ୍ମାଙ୍କ ଆଦେଶରେ କିଷ୍କିନ୍ଧ୍ୟାରେ ରାଜତ୍ୱ କଲେ—ସୁବଳତନ୍ତ୍ର ।]

ରକ୍ଷରାଜ—ଦେ. ବି (ସଂ ରକ୍ଷୋରାଜ)—ଅସୁରମାନଙ୍କ ରଜା—
Raksharāja A king of demons.

ରକ୍ଷସ୍—ସଂ (ରକ୍ଷ ଧାତୁ+ଅପାଦାନ ଅସ୍=ରକ୍ଷସ୍; ଯାହାଙ୍କଠାରୁ ଯଜ୍ଞୀୟ
Rakshas ହବି ରକ୍ଷା କରାଯାଏ; ଏଥିର ପ୍ରଥମା ବିଭକ୍ତି ଏକବଚନରେ ରକ୍ଷଃ ହୁଏ ) ରାକ୍ଷସ—The root word of Rākshasa (demon).

ରକ୍ଷସ—ଦେ ବି (ସଂ ରକ୍ଷସ୍)—ରାକ୍ଷସ—
Rakshasa A demon.

ରକ୍ଷସୃଷ୍ଟି—ଦେ. ବି (ସଂ. ରକ୍ଷଃ ସୃଷ୍ଟି)—ରାକ୍ଷସବଂଶ; ରାକ୍ଷସସମୂହ—The
Raksha rushti demonworld; all the demons.
[ଉ—ବନାଗିବେ ଏ ରକ୍ଷ-ସୃଷ୍ଟିକି କାହିଁ ରକ୍ଷ, ଉଠୁ ଅଛନ୍ତି ତେଜ ଯେ—ଭଞ୍ଜ ବୈଦେହୀଶବିଳାସ]

ରକ୍ଷସ୍ତ୍ୱ—ସଂ ବି ( ରକ୍ଷସ+ଭାବାର୍ଥେ ତ୍ୱ )—୧ । ରାକ୍ଷସପ୍ରକୃତି—
Rakshastwa 1. Demoniacal nature ( Apte ).
୨ । ରାକ୍ଷସଜନୋଚିତ କ୍ରୂରତା—2. Fiendish cruelty; malignity.

ରକ୍ଷା—ସଂ. ବି. (ରକ୍ଷ ଧାତୁ+ଭାବ ଅ+ଆ)—୧ । ପାଳନ; ରକ୍ଷଣ—
Rakshā 1. Preserving; protecting; defending; maintenance. ୨। ପୃଥିବୀର ପାଳନ ବା ରକ୍ଷଣ—2. The protecting of the world and its beings. [ବ୍ର—ପୁରାଣର ଦଶ ଲକ୍ଷଣ ମଧ୍ୟରୁ ରକ୍ଷା ଏକତମ ଅଟେ । ଏଥିର ଅର୍ଥ ପୃଥିବୀର ବା ପୃଥିବୀସ୍ଥ ପ୍ରାଣୀଙ୍କର ପାଳନ । ଜଗନ୍ନାଥ ଭାଗବତ ଦ୍ୱାଦଶ ସ୍କନ୍ଧ ସପ୍ତମ ଅଧ୍ୟାୟ ଅନୁସନ୍ଧେୟ ।] ୩ । ଲାଖ; ଲାଖ—3. Lac. ୪ । ଭସ୍ମ; ପାଉଁଶ—4. Ashes. ୫ । (+କରଣ. ଅ) ରାକ୍ଷୀ; ହାତରେ ବନ୍ଧାଯିବା ଡାଗା—5. A string worn round the wrist to act as a preservative [ବ୍ର—ଏହା ଶ୍ରାବଣ(ଗହ୍ମା ବା ରାକ୍ଷି)ପୂର୍ଣ୍ଣିମା ଦିନ ହାତରେ ବନ୍ଧା ଯାଏ ।] ୬ । ଅବ୍ୟାହତି; ବିପଦାଦିରୁ କଷ୍ଟ ଛଡ଼—6. Extrication; liberation; acquittance. ୭। ତ୍ରାଣ; ମୁକ୍ତି—7. Salvation; deliverance; acquittal. ୮ । ଜଗିବା—8. Watching; guarding. ୯ । ଆଶ୍ରୟ ଦେବା—9. Giving of shelter. ୧୦ । ତତ୍ତ୍ୱାବଧାରଣ—10. Superintendence. ୧୧ । ବିନାଶରୁ ବା ବିପଦରୁ ବା କଷ୍ଟରୁ ରକ୍ଷିବା—11. Saving from danger, trouble or ruin. ୧୨ । ବିପଦ ଆପଦରେ ନ ପଡ଼ିବା ଅବସ୍ଥା—12. Security from danger or calamity; warding off of danger. ୧୩ । ରକ୍ଷା କବଚ ବା ତେଉଁରିଆ—13. An amulet or mystical object worn as a charm or preservative (Apte). ଦେ. ଅ—ରକ୍ଷା ହେଲା ( ଦେଖ )—Rakshā helā ( See )

ରକ୍ଷା କବଚ-ସ.ବି.(ମ.ପ ଲୋ)--୧। ଶତ୍ରୁର ଆକ୍ରମଣରୁ ଶରୀରକୁ ବଞ୍ଚାଇବା
Rakshā kabacha ପାଇଁ ବ୍ୟବହୃତ ସାଞ୍ଜୁ—1. Protective armour. ୨ । ବ୍ୟାଧିରୁ ବା ଭୌତିକ ଅତ୍ୟାଚାରରୁ ବା ବିପଦରୁ ରକ୍ଷା ପାଇବା ନିମନ୍ତେ ଦେହରେ ଧାରଣ କରାଯିବା ଅଭିମନ୍ତ୍ରିତ ତେଉଁରିଆ—2. Consecrated amulet or casket worn to save one's self from calamity. ୩ । ରାକ୍ଷି ( ଦେଖ )—3. Rākhhi ( See )

ରକ୍ଷାକର—ସ. ବିଣ. ପୁଂ(ରକ୍ଷା+କୃ ଧାତୁ+ଅ)—ରକ୍ଷାକାରୀ (ଦେଖ)
Rakshākara Rakshākāri ( See )

ରକ୍ଷା କରଣ—ସ. ବି—ବିପଦରୁ ଉଦ୍ଧାର କରଣ—Warding off
Rakshā karaṇa danger; saving from danger.

ରକ୍ଷା କରଣ ମନ୍ତ୍ର—ସ. ବି.(ମ.ପ ଲୋ)—ରକ୍ଷା ମନ୍ତ୍ର ( ଦେଖ )
Rakshā karaṇa mantra Rakshā mantra (See)

ରକ୍ଷା କରଣ୍ଡ—ସ. ବି—ରକ୍ଷା କବଚ ( ଦେଖ )
Rakshā karaṇḍa Rakshā kabacha ( See )
(ରକ୍ଷା କରଣ୍ଡକ—ଅନ୍ୟରୂପ)

ରକ୍ଷା କରିବା—ଦେ. କ୍ରି—୧ । ବିପଦରୁ ବଞ୍ଚାଇବା—1. To save
Rakshā karibā from danger. ୨ । ଜଗିବା—
ରକ୍ଷାକରା रक्षा करना 2. To guard; to watch.
[ଉ—ଦୁର୍ଯ୍ୟୋଧନ ଶକୁନି କର୍ଣ୍ଣ ପ୍ରମୁଖ ଦେଖ, ରକ୍ଷା କରଣ ଯୁଦ୍ଧ କଲେ ବହୁ ତୋଷ । କୃଷ୍ଣସିଂହ. ମହାଭାରତ. ବନ)
୩ । ହେପାଜତ କରିବା—3. To take care of ୪ । ସାଇତିବା—4. To keep. ୫ । ଜିମା ନେବା—5. To be in the custody of. ୬ । (ଲକ୍ଷଣାର୍ଥ) ଉତ୍ତମ ବା ମଙ୍ଗଳମୟ କାର୍ଯ୍ୟ କରିବା—6.(figurative To save a situation by certain action.

(ଯଥା—ଭୁ ରକ୍ଷା କଲୁ ଯେ, ମତେ ଏ ବିପଦ ବେଳେ ସାହାଯ୍ୟ କଲୁ ।)

**ରକ୍ଷା କାଣ୍ଡ**—ସଂ. ବି—ଅମଙ୍ଗଳରୁ ରକ୍ଷା କରିବା ପାଇଁ ବ୍ୟବହୃତ ଦୁବାଦି Rakshā kāṇḍa ଗୁଚ୍ଛ—A bundle of Dub grass used to ward off danger. [ଦ୍ର—ଏହା ରକ୍ଷା-ପଞ୍ଚମୀ ଦିନ ରାତ୍ରିରେ ଘରର ଦାଣ୍ଡଘରଲରେ ଓ ବାଡ଼-ଘରଲରେ ବନ୍ଧାଯାଏ ।]

**ରକ୍ଷାକାରୀ**—ସଂ. ବି. ପୁଂ (ରକ୍ଷା+କୃ ଧାତୁ+କର୍ତ୍ତୃ. ଇନ୍)—୧ । ରକ୍ଷକ; Rakshākāri ତ୍ରାଣକର୍ତ୍ତା—1, Protector. ୨ । ଯମ—(ରକ୍ଷାକାରିଣୀ—ସ୍ତ୍ରୀ) 2 God of death. ବିଣ. ପୁଂ—ଯେ ରକ୍ଷା କରେ—Protecting.

**ରକ୍ଷା ଗୃହ**—ସଂ ବି ( ୬ଷ୍ଠୀ ତତ୍ )—ସୂତିକାଗାର; ଅନ୍ତୁଡ଼ିଶାଳ—Rakshā gṛuha Lying-in room; a room where a woman is delivered.

**ରକ୍ଷାଧିକୃତ**—ସଂ. ବିଣ—(ରାଜାଙ୍କଦ୍ୱାରା) ଜଗିବା ପାଇଁ ନିଯୁକ୍ତ—Rakshādhikṛuta Employed or appointed ( by the Government ) to guard—ବି—ରାଜାଙ୍କ ନିଯୁକ୍ତ ଶାସନକର୍ତ୍ତା—A Governor; a magistrate, a Superintendent.

**ରକ୍ଷା ପଞ୍ଚମୀ**—ସଂ. ବି (ମ. ପ. ଲୋ)—ରେଖାପଞ୍ଚମୀ; ଭାଦ୍ର କୃଷ୍ଣ ପଞ୍ଚମୀ—Raksha pañchamī The 5th day of the dark fortnight of the month of Bhādra. [ଦ୍ର—ପ୍ରତିବର୍ଷ ଏ ଦିନ ଗୃହକୁ ରାକ୍ଷସାଦିଙ୍କ ଆକ୍ରମଣରୁ, ରୋଗରୁ ଓ ସର୍ପାପଦରୁ ରକ୍ଷା କରିବାପାଇଁ ଗୃହର ଦ୍ୱାର ନିକଟସ୍ଥ କାନ୍ଥରେ ଗଣେଶ, ମହାଦେବ ଓ ( ଏକଗୋଡ଼ିଆ ) ଭୈରବ ମୂର୍ତ୍ତିମାନ ଲେଖାଯାଏ ଏବଂ ଦାଣ୍ଡଘରଲରେ ଓ ବାଡ଼ଘରଲରେ ରକ୍ଷାକାଣ୍ଡ ଭୁଞ୍ଜି ଯାଏ ।

"ଘୋରାକର୍ଣ୍ଣ ମହାଘୋର ସର୍ବବ୍ୟାଧିନିବାରଣ
ସର୍ବୋପଦ୍ରବନାଶାୟ ବିଦ୍ରାବଣକରପ୍ରିୟ ।
କଣ୍ଠେ ଯସ୍ୟ ମହାମାଳଂ ଭୂଷଣଂ ଯସ୍ୟ ପନ୍ନଗାଃ
ତେଜାଂସି ତସ୍ୟ ଦେବସ୍ୟ ରକ୍ଷନ୍ତୁ ମମ ମନ୍ଦିରଂ ।
ଯେନ ବଦ୍ଧୋ ବଳୀରାଜା ଦାନବେନ୍ଦ୍ରୋ ମହାବଳଃ
ତେନ ତ୍ୱାମପି ବଧ୍ନାମି ରକ୍ଷମାଚଳମାଚଳ ।
ଦ୍ୱାରଦେବ ନମସ୍ତୁଭ୍ୟଂ ନମସ୍ତେ ନନ୍ଦିକେଶ୍ୱର
ମାଂ ଭଦ୍ର କୃଷ୍ଣପଞ୍ଚମ୍ୟାଂ ରକ୍ଷ ରକ୍ଷ ମହେଶ୍ୱର ।"

ଏହି ମନ୍ତ୍ରଟି ତାଳପତ୍ରରେ ଲେଖି ସେ ତାଳପତ୍ର ଖଣ୍ଡି ମୋଡ଼ା (ରକ୍ଷାକାଣ୍ଡ)ରେ ଗୁନ୍ଥିଦେଇ ରାତ୍ରିରେ ଦାଣ୍ଡଘରଲରେ ଓ ବାଡ଼-ଘରଲରେ ସେ ମୋଡ଼ାଟି ଲଟକାଇ ଦିଆଯାଏ ଓ ପିଠା ପୂଜା କରି 'ବାଘମାମୁଁ' ଉଦ୍ଦେଶ୍ୟରେ ଘରର ବାହାରେ ଭିନ୍ନ ଭିନ୍ନ ଦିଗକୁ ପିଠାଖଣ୍ଡମାନ ପକାଇବାକୁ ହୁଏ । ଏ ଦିନ ଜଗନ୍ନାଥଙ୍କର 'ରେଖା—ଲଗି, ହୁଏ' ଅର୍ଥାତ୍ ରଥଯାତ୍ରାରୁ ଫେରି ଚିତ୍ରରେ ରେଖା କରାଯାଏ । ଏହାକୁ ରେଖାପଞ୍ଚମୀ କହନ୍ତି । ଏହାକୁ ମଧ୍ୟ ଲୋକେ ବାଘମାମୁଁ ପଞ୍ଚମୀ କହନ୍ତି ।]

**ରକ୍ଷା ପଟ୍ଟାଳିକା**—ସଂ. ବି—ରକ୍ଷା କବଚ (ଦେଖ) Rakshā pattālikā Rakshā kabacha (See)

**ରକ୍ଷା ପତି**—ସଂ. ବି—ନଗରବାସୀଙ୍କ ରକ୍ଷାର୍ଥ ନିଯୁକ୍ତ ପ୍ରାଚୀନକାଳର Rakshā pati ରାଜକର୍ମଚାରୀବିଶେଷ (ହି. ଶ.)—An official of ancient times whose duty was to look after the safety of the inhabitants of a town.

**ରକ୍ଷା ପତ୍ର**—ସଂ ବି(ମ.ପ.ଲୋ.)—୧ । ଭୂର୍ଜ୍ଜବୃକ୍ଷ—1. The Birch Rakshā patra tree; Papyrus. [ଦ୍ର—ଏହାର ଛାଲରେ ରକ୍ଷା ମନ୍ତ୍ର ଲେଖାଯାଇ ରକ୍ଷାକବଚରୂପରେ ପିନ୍ଧାଯାଏ । ] ୨ । ଭୂର୍ଜପତ୍ର; ଭୂର୍ଜ ବୃକ୍ଷର ଛାଲ—2. The paper-like bark of Birch tree. ୩ । ଧଳା ସୋରିଷ (ହି. ଶ.)—3 White rye.

**ରକ୍ଷା ପାଇବା**—ଦେ କ୍ରି—ବିପଦାଦିରୁ ଉଦ୍ଧାରଲାଭ କରିବା—Rakshā pāibā To be saved from danger
রক্ষাপাওয়া **रक्षापाना**

**ରକ୍ଷାପୁରୁଷ**—ସଂ. ବି. ପୁଂ (ମ. ପ ଲୋ.)—ଜଗୁଆଳ; ଚଉକିଦାର—Rakshā pūrusha A watchman, a guard ( Apte ).

**ରକ୍ଷା ପୂର୍ଣ୍ଣିମା**—ସଂ. ବି—ଶ୍ରାବଣ ପୂର୍ଣ୍ଣିମା; ରାକ୍ଷି ପୂର୍ଣ୍ଣିମା; ଗହ୍ମା ପୂର୍ଣ୍ଣିମା—Rakshā purnnimā The fullmoon day of the lunar month of Srābana. [ ଦ୍ର—ଏ ଦିନ ଲୋକଙ୍କ ହାତରେ ରାକ୍ଷି ବନ୍ଧନ କରାଯାଏ । ]

**ରକ୍ଷାପେକ୍ଷକ**—ସଂ. ବି. ପୁଂ ( ରକ୍ଷା+ଅପେକ୍ଷକ )—୧ । ଦ୍ୱାସ୍ଥ; ଦ୍ୱାର-Rakshāpekshkaa ରକ୍ଷକ—1. Door-keeper, a (ରକ୍ଷାପେକ୍ଷିକା—ସ୍ତ୍ରୀ) porter. ୨ । ଅନ୍ତଃପୁରରକ୍ଷକ—2. A person engaged to guard the female compartments. ୩ । ନପୁଂସକ ବ୍ୟକ୍ତି-3. An eunoch. [ ଦ୍ର—ପୂର୍ବେ ନପୁଂସକମାନଙ୍କୁ ରାଜାନ୍ତଃପୁରର ରକ୍ଷା କାର୍ଯ୍ୟରେ ନିଯୁକ୍ତ କରି ଯାଉଥିଲା । ] ୪ । ନଟ—4. An actor. ୫ । ଭଣ୍ଡ—5. A jester, ୬ । ଅପ୍ରାକୃତିକ ଉପାୟରେ ଇନ୍ଦ୍ରିୟତୃପ୍ତି ଚରିତାର୍ଥ କରିବାପାଇଁ ରକ୍ଷିତ ବାଳକ · 6. A catamite (Apte).

**ରକ୍ଷା ପ୍ରଦୀପ**—ସଂ. ବି. ( ମ. ପ. ଲୋ )—ଭୂତ ପ୍ରେତ ଆଦିଙ୍କ ବାଧାରୁ Rakshā pradipa ରକ୍ଷା ପାଇବା ନିମନ୍ତେ ତନ୍ତ୍ରୋକ୍ତ ବିଧାନ ଅନୁସାରେ ପ୍ରଜ୍ୱାଳିତ ଦୀପ (ହି. ଶ)—A lamp lighted as a charm against the influence of evil spirits.

**ରକ୍ଷା ବନ୍ଧନ**—ସଂ. ବି—୧ । ରକ୍ଷା କବଚ ( ଦେଖ ) Rakshā bandhana 1. Rakshā kabacha ( See ) ୨ । ରାକ୍ଷି (ଦେଖ)—2. Rākhi ( See )

ରକ୍ଷା ଭୂଷଣ—ସଂ. ବି (ମ. ପ. ଲୋ)—ଭୂତ ପ୍ରେତ ଆଦିଙ୍କ ଦାଉରୁ
Rakshā bhūshana ରକ୍ଷା ପାଇବା ପାଇଁ ବ୍ୟବହୃତ ଅଳଙ୍କାର—
An ornament worn as a charm against evil spirits.

ରକ୍ଷା ମଙ୍ଗଳ—ସଂ. ବି (ମ. ପ. ଲୋ)—ଭୂତ ପ୍ରେତ ଆଦିଙ୍କ ପ୍ରକୋପରୁ
Rakshā mangala ରକ୍ଷା ପାଇବା ପାଇଁ ଅନୁଷ୍ଠିତ କର୍ମ (ବୃ. ଶ)—A ceremony performed for protection against evil spirits (Apte).

ରକ୍ଷା ମଣି—ସଂ. ବି (ମ. ପ. ଲୋ)—ଗ୍ରହ ବା ଭୂତ ପ୍ରେତଙ୍କ ପ୍ରକୋପରୁ
Rakshā mani ରକ୍ଷା ପାଇବା ପାଇଁ ପରିହିତ ରତ୍ନ—
(ରକ୍ଷା ରତ୍ନ—ଅନ୍ୟରୂପ) A jewel worn as a protection against evil stars or spirits.

ରକ୍ଷା ମନ୍ତ୍ର—ସଂ. ବି (ମ. ପ. ଲୋ)—ପ୍ରାଣରକ୍ଷା ପାଇଁ ବ୍ୟବହୃତ ମନ୍ତ୍ର;
Rakshā mantra ଯେଉଁ ମନ୍ତ୍ରବଳରେ ଅନିଷ୍ଟରୁ ବା ଅମଙ୍ଗଳରୁ ରକ୍ଷା ମିଳେ—Mystic formulae used in saving a person from danger or calamity etc. [ଦ୍ର—ରକ୍ଷା ପଞ୍ଚମୀ ତଳେ ନୋଟ୍ ଦେଖ।]

ରକ୍ଷା ମିଳିବା—ଦେ. କି—ବିପଦରୁ ଅବ୍ୟାହତି ଲାଭ—
Rakshā milibā Extrication from danger etc;
रक्षा मिलना a person being saved from danger.

ରକ୍ଷା ସୂତ୍ର—ସଂ. ବି (ମ. ପ. ଲୋ)—ଆତ୍ମରକ୍ଷାର୍ଥ ହାତରେ ବନ୍ଧାଯିବା
Rakshā sūtra ଅଭିମନ୍ତ୍ରିତ ସୂତା; ରାକ୍ଷି—A knot of consecrated string tied round the hand, in order to save one's self from evil influences

ରକ୍ଷା ହେଲା—ଦେ. ଅ—ଈଶ୍ୱର ବିପଦରୁ ଉଦ୍ଧାର କଲେ; ମନୁଷ୍ୟକୁ
Rakshā helā ଉପସ୍ଥିତ ବିପଦରୁ ମୁକ୍ତିଲାଭ ମିଳିଲା—
रक्षा हुआ (interjection) God saved me! Thank
(ରକ୍ଷା ହେଲା ଯେ—ଅନ୍ୟରୂପ) God that I am saved.

ରକ୍ଷି—ସଂ. ବି (ରକ୍ଷ ଧାତୁ+କର୍ତ୍ତୃ. ଇ)—୧। ରକ୍ଷକ—1. Protec-
Rakshi tor. ୨। ପହରାବାଲା—2. Watchman; guard; police man (Apte).

ରକ୍ଷିକ—ସଂ. ବି (ରକ୍ଷି+କ)—ରକ୍ଷି (ଦେଖ)
Rakhika Rakshi (See)

ରକ୍ଷିକା—ସଂ. ବିଣ. ସ୍ତ୍ରୀ (ରକ୍ଷକ+ସ୍ତ୍ରୀ. ଆ)—ରକ୍ଷାକାରିଣୀ—
Rakhikā Saving or protecting (female).
ବି. (ରକ୍ଷା+କ+ଆ)—୧। ରକ୍ଷା କବଚ (ଦେଖ)
1. Rakshā kabacha (See) ୨। ପହରାବାଲୀ—
2. A female guard. ୩। ରକ୍ଷକର ସ୍ତ୍ରୀଲିଙ୍ଗ—
3. Protectress.

ରକ୍ଷି ଠାର—ଦେ.ବି—ଦୁର୍ଗ ମଧ୍ୟରେ ପ୍ରବେଶ କରିବା ବ୍ୟକ୍ତି ସ୍ୱପକ୍ଷୀୟ କି
Rakhi thāra ବିପକ୍ଷୀୟ, ଏହା ଜାଣିବା ପାଇଁ ସ୍ୱପକ୍ଷୀୟ ବ୍ୟକ୍ତି-
रक्षीव इसारा ମାନଙ୍କ ମଧ୍ୟରେ ପ୍ରଚଳିତ ଠାର ବା ପଦ ବା
रक्षिकों इसारा या संकेत ଇସାରା—Watchword.
(ଦ୍ର—ବଦଳାଅ କହୁଛି ରକ୍ଷିଠାର, ଲିବିଦ୍ ଛାଡ଼ଇ ତେଦେବେ ସ୍ୱାଧିକାର । ଅଜୟୁତକ୍ର. ଶେଷବନ୍ଦୀ ।
[ଦ୍ର—ଏହି ଠାରକୁ ସ୍ୱପକ୍ଷୀୟ ବ୍ୟକ୍ତିମାନେ ଜାଣି ଥାଆନ୍ତି । ରକ୍ଷୀ ବା ପହରାବାଲାମାନେ କୌଣସି ବ୍ୟକ୍ତିଙ୍କୁ ଦେଖିଲାକ୍ଷଣି ତାଙ୍କୁ ପ୍ରଶ୍ନ କରନ୍ତି 'କିଏ ରେ'? ସେ ସ୍ୱପକ୍ଷୀୟ ବ୍ୟକ୍ତି ହୋଇଥିଲେ 'ରକ୍ଷିଠାର' ଜାଣି ଥାଏ ଓ ସେହି ଠାରଟି ଉଚ୍ଚାରଣ କରି ଉତ୍ତର ଦିଏ ଓ ପହରାବାଲା ଜାଣି ପାରେ ଯେ, ଆଗନ୍ତୁକ ଆମ ଦଳର ବ୍ୟକ୍ତି । କିନ୍ତୁ ଅନ୍ୟ ଦଳର ବ୍ୟକ୍ତି ହୋଇଥିଲେ ସେ 'ରକ୍ଷିଠାର' ଜାଣି ନ ଥିବାରୁ ସେ ଠାରରେ ଉତ୍ତର ଦେଇ ପାରେ ନାହିଁ ଓ ବିପକ୍ଷୀୟ ବୋଲି ଧରା ପଡ଼ି ଦଣ୍ଡିତ ହୁଏ । ଦୁର୍ଗରକ୍ଷକ ମାଲିକଙ୍କ ଆଦେଶ ଅନୁସାରେ ଏ 'ରକ୍ଷିଠାର' ରାତି ରାତି ବଦଳାଯାଏ ।]

ରକ୍ଷିଣୀ—ସଂ. ବିଣ. ସ୍ତ୍ରୀ (ରକ୍ଷିନ୍+ସ୍ତ୍ରୀ. ଈ)—ରକ୍ଷୀର ସ୍ତ୍ରୀ ଲିଙ୍ଗ—
Rakshini Feminine of Rakshi.

ରକ୍ଷିତ—ସଂ. ବିଣ (ରକ୍ଷ ଧାତୁ+କର୍ମ. ତ)—୧। ବିପଦରୁ ପରିତ୍ରାତ—
Rakshita 1. Saved from danger. ୨। ପ୍ରତିପାଳିତ—
(ରକ୍ଷିତା—ସ୍ତ୍ରୀ) 2. Reared up; maintained. ୩।
(ଅରକ୍ଷିତ—ବିପରୀତ) ସଂଗୋପିତ; ଜଗା ହୋଇଥିବା—
3. Guarded; protected; treasured.
୪। ଆଶ୍ରୟକୁ ଆଣି—4. Taken under one's protection. ବି—ବୈଦ୍ୟକ ଗ୍ରନ୍ଥ ବିଶେଷ—Name of a Hindu medicinal work. ଦେ. ବି—ବଙ୍ଗୀୟମାନଙ୍କର ବଂଶୋପାଧି ବିଶେଷ—A family-title in Bengal.

ରକ୍ଷିତ ଜଙ୍ଗଲ—ଦେ. ବି—ଅଟକ୍ ଜଙ୍ଗଲ; ଯେଉଁ ଜଙ୍ଗଲରୁ କାଠ
Rakshita jangala ଆଦି ନେବାକୁ ଗଭର୍ଣ୍ଣମେଣ୍ଟଙ୍କର ବା
বক্ষিত জঙ্গল, আটক জঙ্গল ରାଜାଙ୍କର ନିଷେଧ ଥାଏ—
अटक जंगल Protected forest.

ରକ୍ଷିତ ଫଳ—ସଂ. ବି (ଆଧୁନିକ)—ଦ୍ରବ୍ୟଗୁଣ ଦ୍ୱାରା ବହୁକାଳ ଅବିକୃତ
Rakshita phala ଅବସ୍ଥାରେ ରଖାଯିବା ଫଳ; ଅଗୁର—
Preserved fruit; preserves.

ରକ୍ଷିତ ରାଜ୍ୟ—ସଂ. ବି (ଆଧୁନିକ)—କୌଣସି ରାଜାଙ୍କର ଅଧିକାରଭୁକ୍ତ
Rakshita rājya ନ ହୋଇ ତାଙ୍କ ତତ୍ତ୍ୱାବଧାନରେ ଶାସିତ ରାଜ୍ୟ—A protectorate; a mandated territory.

ରକ୍ଷିତା—ସଂ. ବିଣ. ପୁଂ (ରକ୍ଷ ଧାତୁ+କର୍ତ୍ତୃ. ତୃ; ରକ୍ଷିତୃ; ୧ମା ୧ବ)—
Rakshitā ରକ୍ଷକ (ଦେଖ)—Rakshaka (See)
(ରକ୍ଷିତ୍ରୀ—ସ୍ତ୍ରୀ) ସଂ. ବିଣ. ସ୍ତ୍ରୀ (ରକ୍ଷିତ+ଆ)—ରକ୍ଷିତର ସ୍ତ୍ରୀଲିଙ୍ଗ
(ବିବାହିତା—ବିପରୀତ) —Feminine of Rakshita.
ବି. ସ୍ତ୍ରୀ—ଉପପତ୍ନୀ; ରକ୍ଷେଲ୍ ମାଇପ; ଯେଉଁ ସ୍ତ୍ରୀକୁ କୌଣସି ପୁରୁଷ ବିବାହ ନ କରି ସ୍ତ୍ରୀ ରୂପେ ରକ୍ଷିଥାଏ; ପୋଇଲି—A concubine.

**ରକ୍ଷିତା ଦାସୀ**—ସଂ. ବି. ସ୍ତ୍ରୀ—ପୋଇଲି; ଉପପତ୍ନୀରୂପେ ପାଳିତା ଦାସୀ—
Rakshitā dāsi A maid-servant who is made a concubine. [ଦ୍ର—ଓଡ଼ିଶାରେ କ୍ଷତ୍ରିୟମାନଙ୍କ ପରିବାରରେ ଓ କରଣମାନଙ୍କ ପରିବାରରେ ଏବଂ ସେମାନଙ୍କ ଦେଖାଦେଖି ଓଡ଼ିଶାର ଉପକଣ୍ଠବାସୀ ବଙ୍ଗାଳିଙ୍କ ପରିବାରରେ ମଧ୍ୟ 'ପୋଇଲି ପ୍ରଥା' ଥିଲା । ଆନନ୍ଦର ବିଷୟ ଯେ ଏ ପ୍ରଥା ବର୍ତ୍ତମାନ କମି ଆସୁଛି ।]

**ରକ୍ଷିତା ସ୍ତ୍ରୀ**—ସଂ. ବି. ସ୍ତ୍ରୀ—ରକ୍ଷିତା (ଦେଖ)
Rakshitā stri Rakshitā (See)
(ରକ୍ଷିତା ଭାର୍ଯ୍ୟା—ଅନ୍ୟରୂପ)

**ରକ୍ଷିବର୍ଗ**—ସଂ. ବି (ଷଷ୍ଠୀ ତତ୍)—ପ୍ରହରୀସମୂହ—A body of
Rakshibarga guards; a number of watchmen.
[ରକ୍ଷିଗଣ, ରକ୍ଷିବୃନ୍ଦ—ଅନ୍ୟରୂପ ]

**ରକ୍ଷି ସେନା**—ସଂ.ବି (ରକ୍ଷିନ୍ + ସେନା)-୧ । ପ୍ରଭୁଙ୍କ ଶରୀରରକ୍ଷା ନିମନ୍ତେ
Rakshi senā ନିଯୁକ୍ତ ସୈନ୍ୟଦଳ—1. A troop of bodyguards. ୨ । ନଗରାଦି ରକ୍ଷା ନିମନ୍ତେ ନିଯୁକ୍ତ ପଲଟଣ—2. An army engaged to guard a town; town police.

**ରକ୍ଷି ସୈନ୍ୟ**—ସଂ. ବି (କର୍ମଧା; ରକ୍ଷି + ସୈନ୍ୟ) —୧ । ରାଜାଙ୍କ ଶରୀର
Rakshi sainya ରକ୍ଷାର୍ଥ ନିଯୁକ୍ତ ବ୍ୟକ୍ତି—1. A soldier
[ରକ୍ଷି ସୈନିକ—ଅନ୍ୟରୂପ] acting as a bodyguard. ୨ । ନଗର ଦୁର୍ଗାଦି ରକ୍ଷାର୍ଥ ନିଯୁକ୍ତ ବ୍ୟକ୍ତି—2. A soldier employed to guard a town or fort. ୩ । ପହରାବାଲା—3. Guardsman; sentinel. [ଦ୍ର—ଇନ୍ ଭାଗାନ୍ତ ଶବ୍ଦମାନ ଏକାକୀ ବ୍ୟବହୃତ ହେଲେ ଈକାରାନ୍ତ ହୁଏ; ଯଥା—ହସ୍ତୀ, ରକ୍ଷୀ ଇତ୍ୟାଦି; କିନ୍ତୁ ଅନ୍ୟ ଶବ୍ଦ ପୂର୍ବେ ସମାସ ହୋଇ ଯୁକ୍ତ ହେଲେ ଇ-ରୂପ ରହେ । ଯଥା—ରକ୍ଷିସେନା, ରକ୍ଷିସୈନ୍ୟ, ହସ୍ତିଶାଳା, ହସ୍ତିବାହ ଇତ୍ୟାଦି ।]

**ରକ୍ଷୀ**—ସଂ. ବିଣ. ପୁଂ (ରକ୍ଷ୍ ଧାତୁ + କର୍ତ୍ତୃ. ଇନ୍; ରକ୍ଷିନ; ୧ମା. ୧ବ)—
Rakshi ୧ । ଯାହା ରକ୍ଷା କରେ—1. Saving. ୨ । ରକ୍ଷକ; ପ୍ରହରୀ—2. Guarding; protecting. ୩ । ଯାହା ବିପଦରୁ ବା ଅଶୁଭରୁ ମନୁଷ୍ୟଙ୍କୁ ରକ୍ଷା କରେ—3. Saving or protecting from evil or danger. ବି—୧ । ପ୍ରହରୀ—1. Sentinel; a guardsman.
ଦେ. ବି—ରାଖି (ଦେଖ)—Rākhi (See)

**ରକ୍ଷୋଗଣ**—ସଂ ବି (ଷଷ୍ଠୀ ତତ୍; ରକ୍ଷସ୍ + ଗଣ, ସନ୍ଧିଦ୍ୱାରା ସ୍ =
Rakshogaṇa ସ୍ଥାନରେ ଓ)-ରାକ୍ଷସମାନେ—Demons.

**ରକ୍ଷୋଘ୍ନ**—ସଂ. ବିଣ. ପୁଂ ( ରକ୍ଷସ୍ + ହନ୍ ଧାତୁ + କର୍ତ୍ତୃ. ଅ )—ଯେ
Rakshoghna ରାକ୍ଷସମାନଙ୍କୁ ବିନାଶ କରେ—Destroying demons. ସଂ. ବି. ୧ । ଭଲ୍ଲାତକ; ଭାଲିଆ—1. The marking nut; Semicarpus Anacardium. ୨ । ଶ୍ୱେତ ସର୍ଷପ; ଧଳ ସୋରିଷ—2. White sort of mustard seed. ୩ । କାଞ୍ଜିକ; କାଞ୍ଜି—3. Sour rice water; fermented rice water. ୪ । ହିଙ୍ଗୁ; ହେଙ୍ଗୁ—4. Asafœtida; Ferula asafœtida.

**ରକ୍ଷୋଘ୍ନୀ**—ସଂ. ବି—ବଚ; ବଚ—The Orris root; Aconus
Rakshoghni Calamus; Zingiber Zedoaria. ସଂ. ବିଣ. ସ୍ତ୍ରୀ—ରକ୍ଷୋଘ୍ନର ସ୍ତ୍ରୀଲିଙ୍ଗ—Feminine of Rakshoghna.

**ରକ୍ଷୋଜନନୀ**—ସଂ. ବି. ସ୍ତ୍ରୀ (ଷଷ୍ଠୀ ତତ୍; ରକ୍ଷଃ + ଜନନୀ)—୧ । ରାକ୍ଷସଙ୍କ
Rakshojanani ମାତା—1. Mother of demons. ୨ । ରାତ୍ରି—2 The night.

**ରକ୍ଷୋନାଥ**—ସଂ. ବି (ଷଷ୍ଠୀ ତତ୍; ରକ୍ଷଃ + ନାଥ)-ରକ୍ଷୋରାଜ (ଦେଖ)
Rakshonātha Rakshorāja (See)

**ରକ୍ଷୋବଳ**—ସଂ. ବି (ଷଷ୍ଠୀ ତତ୍; ରକ୍ଷଃ + ବଳ)—ରାକ୍ଷସସେନା—
Rakshobaḷa An army of demons.

**ରକ୍ଷୋରଥୀ**—ସଂ. ବି. ପୁଂ (୭ମୀ ତତ୍; ରକ୍ଷଃ + ରଥିନ୍; ୧ମା. ୧ବ)—
Rakshorathi ରଥାରୋହୀ ରାକ୍ଷସବୀର—A demon-warrior fighting on a car.

**ରକ୍ଷୋରାଜ**—ସଂ. ବି (ଷଷ୍ଠୀ ତତ୍; ରକ୍ଷଃ + ରାଜନ୍)—ରାକ୍ଷସମାନଙ୍କର
Rakshorāja ରାଜା—A king of demons.

**ରକ୍ଷୋହା**—ସଂ ବିଣ (ରକ୍ଷସ୍ + ହନ୍ ଧାତୁ କର୍ତ୍ତୃ. କ୍ୱିପ୍; ରକ୍ଷୋହନ୍,
Rakshohā ୧ମା. ୧ବ )—ରକ୍ଷୋଘ୍ନ ( ଦେଖ )—Rakshoghna ( See ). ବି—ଗୁଗ୍ଗୁଲ—Indian Bdellium.

**ରକ୍ଷ୍ମ[କ୍ଷ୍ଣ]**—ସଂ. ବି (ରକ୍ଷ୍ ଧାତୁ + ଭାବ. ମ, ନ)—ରକ୍ଷଣ (ଦେଖ)
Rakshma[kshna] Rakshaṇa (See)

**ରକ୍ଷ୍ୟ**—ସଂ. ବିଣ ( ରକ୍ଷ୍ ଧାତୁ + କର୍ମ. ଯ )—ରକ୍ଷଣୀୟ; ରକ୍ଷିତ
Rakshya ହେବାର ଯୋଗ୍ୟ—Deserving to be
[ରକ୍ଷ୍ୟା—ସ୍ତ୍ରୀ] protected or preserved.

**ରକ୍ଷ୍ୟମାଣ**—ସଂ. ବିଣ. ପୁଂ (ରକ୍ଷ୍ ଧାତୁ + କର୍ମ. ଆନ)—୧ । ରକ୍ଷିତ—
Rakshyamāṇa 1. Preserved. ୨ । ଯାହାକୁ ରକ୍ଷାକରା-
[ରକ୍ଷ୍ୟମାଣା—ସ୍ତ୍ରୀ] ଯାଉଅଛି—2. Under the process of preservation.

**ରଖ୍ (ଧାତୁ)**—ସଂ. ଗତି କରିବା—
Rakh (root) To move (Apte).

**ରଖ୍**—ଦେ. କ୍ରି—( ରଖିବା କ୍ରିୟାର ଅବଜ୍ଞାପକ କର୍ତ୍ତା 'ତୁ' ସଙ୍ଗେ
Rakh ବ୍ୟବହୃତ ଆକାର )—(ତୁ) ରଖିବା କ୍ରିୟା କର୍—
ରାଖ ୟୱ (Let thou) Keep.
[ ଉ—ରଖ୍ ତୋ ଜମିଦାର ବାବୁକୁ ତୋ ଘରେ । କୁନ୍ତଳାକୁମାରୀ. ନଅଭୁଣୀ ]
ଦେ. ଅ—ଛାଡ଼୍ (ଅମୁକ ବିଷୟ ବା କଥା) ତ୍ୟାଗକର୍—Give up (that matter).

**ରଖ୍ନିଆ(ଆଁ)**—ପ୍ରାଦେ (ସମ୍ବଲପୁର) ବି. ପୁଂ—ରକ୍ଷିତ ଉପପତି; ଜାର-
Rakh-niā(āñ) ପୁରୁଷ—A paramour; a gallant.

ବିଣ. (ପୁଂ) ଜାରଜ (ସନ୍ତାନ); ଉପପତ୍ନୀ ଗର୍ଭଜାତ (ସନ୍ତାନ)—Illegitimate (child); born out of wedlock.

ରଖ୍‌ନୀ—ପ୍ରାଦେ (ସମ୍ବଲପୁର) ବି ସ୍ତ୍ରୀ—(ସଂ. ରକ୍ଷିତା) ରକ୍ଷିତା ସ୍ତ୍ରୀ; Rakh-ni ଉପପତ୍ନୀ—Concubine; a mistress.

ରଖ୍‌ବା—ପ୍ରାଦେ (ସମ୍ବଲପୁର) କ୍ରି (ସଂ. ରକ୍ଷ୍ ଧାତୁ; ତୁଳ. ହି. ରଖ୍‌ନା)—Rakh-bā ରଖିବା (ଦେଖ)—Rakhibā (See.

ରଖନ୍ତା—ଦେ. ବିଣ—(ସଂ ରକ୍ଷତ୍ ଶବ୍ଦ)—ରକ୍ଷାକାରୀ—Rakhantā Protecting; keeping.
রক্ষাকারী ବି—ରକ୍ଷକ ବ୍ୟକ୍ତି—Protector; keeper.
रखनेवाला [ଉ—ସତରୁ ରଖନ୍ତା ସର୍ବପ୍ରି ଅଟଇ, ଆପଣା କନ୍ୟାକୁ ରଖି ନ ପାରଇ। ନନ୍ଦକିଶୋର କୃଷ୍ଣକୁମାରୀ।]

ରଖସ୍—ପ୍ରାଦେ (ସମ୍ବଲପୁର) ବି—(ସଂ ରକ୍ଷଃ)—ରାକ୍ଷସ—Rakhas Demon.

ରଖା—ଦେ. ବି—(ସଂ. ରକ୍ଷା)—୧। ରଖିବା—1. Keeping; Rakhā preserving. ୨। ଜଗିବା—2 Watching.
রাখা ବିଣ—୧। ରକ୍ଷକ—1. Saving. ୨। ଜଗୁଆଳ;
रखाई ଜଗିଥିବା—2 Guarding. [ଉ—ରଖା ସୁରମାନଙ୍କୁ
রক্ষক ଜୀବନେ ମାରି, ହରିଲା। ବିଶ୍ୱନାଥ ବିଚିତ୍ରରାମାୟଣ।]
रखवाला ୩। ରକ୍ଷିତ—3. Saved; kept ୪। ଯହିଁରେ କୌଣସି ବସ୍ତୁ ରଖାଯାଏ—4. In which something is kept. ୫। ଯାହାଦ୍ୱାରା କୌଣସି ବିଷୟର ରକ୍ଷା ହୁଏ—5. Enabling one to save something.

ରଖା(ଖେ)ଇ ଥୋଇ ନ ଦେବା—ଦେ. କ୍ରି—କୌଣସି ବ୍ୟକ୍ତିକୁ Rakhā(khe)i thoi na debā ଅସ୍ଥିର କରି ପକାଇବା;
উঠতে বসতে না দেওয়া ବ୍ୟତିବ୍ୟସ୍ତ କରିବା—Not to let a
रहने न देना person live in peace; to pester a person much; to persecute or harass a person.

ରଖା(ଖେ)ଇବା—ଦେ. କ୍ରି—(ରକ୍ଷ. ଧାତୁ ଣିଜନ୍ତ; ରଖିବା କ୍ରିୟାର Rakhā(khe)ibā ପ୍ରଯୋଜକ ରୂପ—The causative
রাখান form of Rakhibā). ୧। ଅନ୍ୟ ବ୍ୟକ୍ତି ଦ୍ୱାରା ରଖିବା
रखाना କ୍ରିୟା କରାଇବା—1. To cause to be kept; to
रखवाना cause one to keep. ୨। ଅପେକ୍ଷା କରାଇବା—2. To cause to wait. ୩। ଜଗାଇବା; ଜଗୁଆଳ ରୂପେ ରଖିବା—3. To keep as a guard.
[ଉ—ପଡ଼ିଜ ଭୁଲେ କୁଞ୍ଜଦ୍ୱାରେ ରଖାଅ ବେତ୍ରବଲ୍ଲୀ ଧାରଣୀକ। କବିସୂର୍ଯ୍ୟ. ବଳଦେବରଥ୍ଙ୍କ ଫ. ଗୀତ।]

ରଖା(ଖେ)ଇ—ଦେ. ବିଣ. ସ୍ତ୍ରୀ (ସଂ. ରକ୍ଷିତା)—ରକ୍ଷିତା; ପାଳିତା-Rakhā(khe)i Kept; maintained (female).
(ବେଶ୍ୟା—ବିପରୀତ) (ଯଥା—ରଖେଇ ଝିଅଟା, ରଖେଇ (ରଖିଆ—ପୁଂ) ମାଇପ)—ବି—୧। ରକ୍ଷିତା ସ୍ତ୍ରୀ; ପୋଇଲୀ—
রাখনী रखनी रखेली 1. Concubine; a mis-
রাখা মজুর रखवाई tress. ୨। କୌଣସି ଦ୍ରବ୍ୟକୁ ରଖିବାପାଇଁ ପ୍ରଦତ୍ତ ମଜୁରି—2. Remuneration paid to a custodian or watchman.

ରଖା ଥୁଆ—ଦେ ବି (ଏକାର୍ଥକ ସହଚର; ସଂ. ରକ୍ଷଣ; ସ୍ଥାପନ)—୧। Rakhā thuā ଜଗାରଖା; ତତ୍ତ୍ୱାବଧାନ—1 Custody; care
রাখা রাখি रखरखाव of anything. ୨। ସଂସାରରେ ନିରାପଦ ଅବସ୍ଥିତି—2. Safe existence in the world; well-being ୩। ସାଇତା କର୍ମ—3. Storing. ୪। ବହୁ ଦ୍ରବ୍ୟକୁ ସଜାଡ଼ିକରି ରଖିବା କର୍ମ—4. Keeping of many things in order; arrangement.

ରଖା ରଖି—ଦେ. ବି. ଓ ବିଣ—(ସହଚର ଶବ୍ଦ)—୧। ରଖିବା ଆଦି Rakhā rakhi କର୍ମମାନ—1. Acts of keeping.
রাখারাখি रखारखी ୨। ବହୁ ବସ୍ତୁ ସଜାଡ଼ି କରି ରଖିବା; ସଜଡ଼ା ସଜଡ଼ି—2. Keeping of many things in order. ୩। ରକ୍ଷଣାବେକ୍ଷଣ, ଦ୍ରବ୍ୟକୁ ଯତ୍ନରେ ରଖିବା—3 Custody; taking care of thing. ୪। ପରସ୍ପରକୁ ରକ୍ଷା କରିବା—4. Protecting each other. [ଉ—ଅନ୍ୟୋନ୍ୟେ ତୁମ୍ଭେ ଆମ୍ଭେ ରଖା ରଖି ପ୍ରାଣ, ହୋଇ ଥାଇଁତ ମୋତେ ନ କହ ବଚନ। କୃଷ୍ଣସିଂହ ମହାଭାରତ ଶାନ୍ତି।]

ରଖିଆ—ଦେ. ବିଣ. ଓ ବି. ପୁଂ.—(ସଂ. ରକ୍ଷିତ)—ସ୍ତ୍ରୀଦ୍ୱାରା ସ୍ୱାମୀରୂପେ Rakhiā ବ୍ୟବହୃତ ଉକ୍ତ ସ୍ତ୍ରୀକୁ ବିବାହ କରି ନ ଥିବା ବ୍ୟକ୍ତି—
রাখা, রাখনা (a person) Maintained by a woman
रखिया as her paramour. ବିଣ.—୧। ରକ୍ଷିତ—(ରଖା[ଖେ]ଇ—ସ୍ତ୍ରୀ) 1. Kept. ୨। ରକ୍ଷାକର୍ତ୍ତା—2. Protecting. ଦେ ବି.—(ସଂ. ରକ୍ଷକ)—ରକ୍ଷକ; ପାଳକ—1. Protector; saver. ୨। ଜଗୁଆଳ—2. Guard; watchman. ୩। ମୁରବି—3. Guardian. ଗ୍ରା. ବି.—(ସଂ. ରକ୍ଷା)—ରକ୍ଷା (ଦେଖ)—Rakshā (See).

ରଖି ଥୋଇ ନ ଦେବା—ଦେ. କ୍ରି.—ରଖାଇ ଥୋଇ ନ ଦେବା—Rakhi thoi na debā (ଦେଖ)—Rakhāi thoi na debā (See).

ରଖି ଦେବା—ଦେ. କ୍ରି.—୧। ସଞ୍ଚିତ କରି ରଖିବା; ସାଇତି ରଖିବା Rakhi debā 1. To store up a thing. ୨। ଯଥା-
রেখে দেওয়া; রাখিয়া দেওয়া ସ୍ଥାନରେ ସ୍ଥାପନ କରିବା—
रखदेना 2. To place a thing in its proper place. ୩। ନ କାଢ଼ିବା, କୌଣସି ବିଷୟକୁ ବାହାରେ ପ୍ରକାଶ ନ କରିବା—3. Not to bring out a thing. [ଯଥା—ତୋ ପାଟ ଲୁଗାକୁ ସିନ୍ଦୁକରେ ରଖି ଦେ। ତୋ ଚଳଣି ରଖି ଦେ।] ୪। ବ୍ୟବହାରରେ ନ ଲଗାଇବା-4. Not to apply to use; not to utilise. ୫। ଉଲ୍ଲେଖ ନ କରିବା—5. Not to mention. [ଯଥା—ରଖି ଦେଇ ଥା ତୋ ବିଦ୍ୟାବୁଦ୍ଧି।]

**ରକ୍ଷି ନେବା**—ଦେ. କ୍ରି.—୧ । ଆଣିଥିବା କୌଣସି ଦ୍ରବ୍ୟକୁ ଫେରସ୍ତ ନ
Rakhi nebā ଦେବା—1. Not to return a thing brought.

୨ । କୌଣସି ବ୍ୟକ୍ତିକୁ ନିଜ ପାଖରେ ଭୃତ୍ୟରୂପେ ସମ୍ଭାଳିବା ବା ପୋଷିବା—2. To retain a person as a servant

**ରକ୍ଷି ପକା(କେ)ଇବା**—ଦେ. କ୍ରି—(ବ୍ୟଙ୍ଗ)—ରଖିବାକୁ ସମର୍ଥ
Rakhi pakā(ke)ibā ହେବା—To be able to keep
**ରେଖେ ଫେଲା ରକ୍ଷା ସକନା** or maintain or save.
[ରକ୍ଷି ପାରିବା—ଅନ୍ୟରୂପ] [ଯଥା—ତାଙ୍କର ଯେଉଁ ଅବସ୍ଥା, ତା ମୁଁ ଜାଣେ, ସେ ଗୋଟିଏ ପାଞ୍ଚଶହ ଟଙ୍କିଆ ଘୋଡ଼ା ରକ୍ଷି ପକାଇବେ, ତାଙ୍କ ମୁହଁ ଦଶୁଛି।]

**ରଖିବା**—ଦେ. କ୍ରି.—(ସଂ. ରକ୍ଷ ଧାତୁ; ସଂ. ରକ୍ଷଣ; ପ୍ରାକୃ ରକ୍ଖଣ)—୧ ।
Rakhibā ବିପଦରୁ ରକ୍ଷା କରିବା; ବିପଦରେ ପଡ଼ିବାକୁ ନ
**ରଖା ରଖନା** ଛାଡ଼ିବା—1. To protect a person from
[ରଖା(ଖେ)ଇବା—ଣିଜନ୍ତରୂପ] danger. [ଉ—ଗୁରୁର୍ବ୍ୟ କୃପାକୁ ଗୁଣକରି ରଖିଲୁଁ ପ୍ରାଣ । କବିସୂର୍ଯ୍ୟ. ବଳୋରାମ ଚମ୍ପୂ ଚ. ଗୀତ ।] ୨ । ଉପସ୍ଥିତ ବିପଦରୁ ମୁକ୍ତ କରାଇବା; ଉଦ୍ଧାର କରିବା—2. To deliver from danger; to free a person from danger. ୩ । (ଗାଈ ଗୁଆ ଆଦି ଜୀବଙ୍କୁ) ପାଳନ କରିବା; ପାଳିବା; ପୋଷିବା—3. To keep; to domesticate. ୪ । ନିଜର ସେବାର୍ଥ କୌଣସି ବ୍ୟକ୍ତିକୁ ନିଯୁକ୍ତ କରିବା; କୌଣସି ବ୍ୟକ୍ତିକୁ ଭୃତ୍ୟରୂପେ ନିଯୁକ୍ତ କରିବା; ଚାକର ରଖିବା—4. To take a person into service; to engage a person as a servant; to retain a person in service. [ଉ—ପଇସ ଦେଇ ମୁଁ ରଖିଲି ଦାସୀ, ସେ ହେଲେ ସାଆନ୍ତାଣୀ ମୁଁ ହେଲି ଦାସୀ । ଢଗ ।] ୫ । ଜୀଆଇଁ ରଖିବା; ମାରି ନ ପକାଇବା; ବଞ୍ଚାଇବା-5. To cause to live. [ଉ—କୃପା କରେ ମୁଁ ଧାତାକୁ, କାହିଁକି ସରଜ ତାକୁ, ତପସ୍ୟୁ ରଖିଲା ଜରଜାରେ । କବିସୂର୍ଯ୍ୟ ବଳୋରାମ ଚମ୍ପୂ ଜ. ଗୀତ ।] ୬ । ମୃତ୍ୟୁମୁଖରୁ ରକ୍ଷା କରିବା—6. To save one's life. [ଉ—ରଖେ ହରି ମାରେ କିଏ ? ମାରେ ହରି ରଖେ କିଏ ?—ଢଗ] ୭ । (ପୁରୁଷ ପକ୍ଷରେ) କୌଣସି ସ୍ତ୍ରୀକୁ ବିବାହ ନ କରି ସ୍ତ୍ରୀରୂପେ ବ୍ୟବହାର କରିବା—7. To keep or entertain a concubine or a mistress. ୮ । (ସ୍ତ୍ରୀ ପକ୍ଷରେ) କୌଣସି ପୁରୁଷକୁ ବିବାହ ନ କରି ଆପଣାର ସ୍ୱାମୀରୂପେ ପାଖରେ ରଖାଇବା—8. To keep a man as one's paramour. ୯ । ଜଗିବା—9. To guard; to keep watch. [ଉ—ବିବିଧ ବିରୂପାସୁରା, ଯାହା ଦେଖି ଭୟ କରୁ, ଯେମାନେ ଏବେ ଅଛନ୍ତି ରଖିରେ । ବିଶ୍ୱନାଥ. ବିଚିତ୍ର ରାମାୟଣ ।] ୧୦ । (ଆଦେଶ) ପାଳନ କରିବା—10. To obey or carry out (an order). ୧୧ । (କୌଣସି ବ୍ୟକ୍ତିର ଅନୁରୋଧ) ଅନୁସାରେ କାର୍ଯ୍ୟ କରିବା; କଥା ରଖିବା—11. To act according to (a person's request.) ୧୨ । ନିଜ କୃତ ପ୍ରତିଜ୍ଞା ବା ସତ୍ୟ ବା ପ୍ରତିଶ୍ରୁତି ପାଳନ କରିବା, ସତ୍ୟ ପାଳିବା—12. To keep one's promise. ୧୩ । (ଅନ୍ତଃକରଣରେ କପଟ, କ୍ରୋଧ, ଆଶା ଆଦିକୁ) ପୋଷଣ କରିବା; ସ୍ଥାନ ଦେବା—13. To entertain (certain feelings in the mind). [ଉ—ଚମତ୍କାର କଥା ଦେଖି ପେଟରେ କପଟ ରଖି । କବିସୂର୍ଯ୍ୟ. ବଳୋରାମ ଚମ୍ପୂ ତ ଗୀତ ।] ୧୪ । ଅନ୍ୟ ବ୍ୟକ୍ତିର ଇଚ୍ଛା ଅନୁସାରେ କାର୍ଯ୍ୟ କରି ତାହାକୁ ପ୍ରସନ୍ନ କରାଇବା—14. To keep a person in good humour; to humour a person, to please a person by following his desires. ୧୫ । (କୌଣସି କଥାକୁ) ନ ଭୁଲିବା; ସ୍ମୃତିରେ ଚିରସ୍ଥାୟୀରୂପେ ସ୍ଥାନ ଦେବା—15. To remember; not to forget [ଉ—ଗୋଲକ ନ ରଖି କହ ଚନ୍ଦ୍ରମୁଖୀ । କବିସୂର୍ଯ୍ୟ. ବଳୋରାମ ଚମ୍ପୂ. ଗ ଗୀତ ।] ୧୬ । ଅଟକାଇବା; ରୋଧ କରିବା; ସମ୍ଭାଳିବା—16. To check; to restrain; to stop. (ଯଥା—ସେ ରାଗିଲେ ତାକୁ ରଖେ କିଏ ?) ୧୭ । ସ୍ଥାପନ କରିବା; ଉପସ୍ଥାପିତ କରିବା; ଥୋଇବା—17. To place. [ଉ—ଘୃତ ଘଟକୁ ଶିଖି ଶିଖା ପାଖରେ ରଖି-କବିସୂର୍ଯ୍ୟ. ବଳୋରାମ ଚମ୍ପୂ. ଘ ଗୀତ ।] ୧୮ । ଜମା ଦେବା, ଡିପୋଜିଟ୍ କରିବା; ଅନ୍ୟର ନିକଟରେ ଗଚ୍ଛିତ ରଖିବା—18. To entrust; to keep in another's custody. [ଯଥା—ସେ ବାଙ୍କ୍‌ରେ ଟଙ୍କା ରଖିଅଛନ୍ତି] ୧୯ । ନଖ କେଶ ଆଦି ନ କାଟି ତାହା ବଢ଼ିବାକୁ ଛାଡ଼ିଦେବା; ବଢ଼ାଇବା—19. To let a thing grow. [ଉ—ନଖ ବାଳ ରଖି ଭାଲୁଏ କେତେ ଯୋଗୀ ହେଲେଣି ? ଢଗ । ] ୨୦ । ସଞ୍ଚୟ କରିବା; ଜମା କରିବା—20. To store up; to hoard; to amass. [ଯଥା—ଧନ ରଖିବା ] ୨୧ । ଗ୍ରହଣ କରିବା—21. To accept. [ଯଥା—ସେ ମୋଠାରୁ ବଇନା ରଖିଛି] ୨୨ । ନିଃଶେଷ ନ କରିବା—22. Not to exhaust a thing. [ଯଥା—ଚାଅଣରେ ପାଣି ରଖିବା ] ୨୩ । ବାଟ ବା ନିର୍ଗମନ ପଥ ଛାଡ଼ିଦେବା—23. To leave (an opening or outlet.) [ଉ—ସେ ଗାଣ୍ଡିମଣା ପିଲେ ସେ ପରସ୍ତା କରିବାକୁ ବାଟ ରଖେ । ଢଗ ।] ୨୪ । ନେଇଥିବା ବସ୍ତୁକୁ ଫେରସ୍ତ ନ ଦେବା—24. To retain; not to return a thing taken. ୨୫ । ନଷ୍ଟ ହେବାକୁ ନ ଛାଡ଼ିବା—25. To maintain in tact. ୨୬ । ଜମା

ନେବା—26. To take into custody; to keep under one's custody ୨୭ । ଆପଣାର ଅଧିକାରକୁ ନେବା—27. To take under one's control. ୨୮ । ବନ୍ଧକ ନେବା—28 To take as a pledge. ୨୯ । ଧନ ବଳାଇ କରି ରଖିବା—29 To save (money). ୩୦ । ଜମି ବା ଜୋତ ଆଦିକୁ ପ୍ରଜାଙ୍କୁ ଓ ଘରକୁ ଭଡ଼ାଦାରଙ୍କୁ ଲଗାଇବା—30 To let-out (a land or house) to tenants. ୩୧ । ଗଡ଼ାଇବା; ମୁଲତବି କରିବା-31. To adjourn; to defer. ୩୨ । ଛାଡ଼ି ଦେଇ ଯିବା—32. To leave. (ଉ—ଷଣ୍ଢ ପଛେ ପଛେ ଧାଇଁ ଶୃଗାଳ, କଥା ରଖିଗଲା ଅପାଇ କାଳ—ଢଗ ।) [ଦ୍ର—ରଖିବା କ୍ରିୟାର ଅସମାପିକା ରୂପ ସଙ୍ଗେ ଦେବା, ନେବା, ପକାଇବା, ଯିବା ଆଦି କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ]

[ଦ୍ର— **ଅକୀର୍ତ୍ତି ରଖିବା**—ଦେ. କ୍ରି,— ଅପକୀର୍ତ୍ତି ରଖିବା (ଦେଖ)

**ଅକ୍ତିଆରରେ ରଖିବା**—ଦେ· କ୍ରି.—ହାତମୁଠାରେ ରଖିବା (ଦେଖ)

**ଅଟକ ରଖିବା, ଅଟକାଇ ରଖିବା**—ଦେ.କ୍ରି.—୧ । କୌଣସି ବ୍ୟକ୍ତିର ଗତି ରୋଧ କରିବା । ୨ । କୌଣସି ବ୍ୟକ୍ତିକୁ କିଛିକାଳ ପାଇଁ ଜାତକ୍ରୁଦ୍ଧ କରିବା ।

**ଅଣ୍ଡିରା ରଖିବା**—ଦେ, କ୍ରି.—(ସ୍ତ୍ରୀ ପକ୍ଷରେ) ପରପୁରୁଷକୁ ଉପପତି-ରୂପେ **ଆଶ୍ରୟ** ଦେବା ।

**ଅଦା(ଦା)ଇତି ରଖିବା**—ଦେ. କ୍ରି.—ପ୍ରତିଶୋଧ ନେବା ପାଇଁ ମନରେ **ସଂକଳ୍ପ ପୋଷଣ** କରିବା ।

**ଅନାଶା ରଖିବା**—ଦେ. କ୍ରି.—କୌଣସି ବିଷୟ ପାଇଁ ଅପେକ୍ଷା କରିବା ।

**ଅନୁରୋଧ ରଖିବା**—ଦେ. କ୍ରି.—କୌଣସି ବ୍ୟକ୍ତିର କଥା ରକ୍ଷା କରିବା ବା କଥା ଅନୁସାରେ କାର୍ଯ୍ୟ କରିବା ।

**ଅପକୀର୍ତ୍ତି (ଅପଯଶ) ରଖିବା**—ଦେ. କ୍ରି.—ନିନ୍ଦାଜନକ ବା ଅକୀର୍ତ୍ତିକର କାର୍ଯ୍ୟ କରି ଭବିଷ୍ୟତ ପାଇଁ ଦୁର୍ନାମ ଛାଡ଼ି ଯିବା— (ଅପକଳଙ୍କ ରଖିବା, ଅପଦଣ୍ଡ ରଖିବା—ଗ୍ରା.ରୂ ।)

**ଏହନ୍ତା ରଖିବା**—ଦେ. କ୍ରି.—ଅବରୁଦ୍ଧ ରଖିବା (ଦେଖ)

**ଆଖି ଉପରେ ରଖିବା**—ଦେ. କ୍ରି.—ଚକ୍ଷୁର ଅନ୍ତରାଳକୁ ଯିବାକୁ ଛାଡ଼ି ନ ଦେବା; ସର୍ବଦା ତୀକ୍ଷ୍ଣ ଦୃଷ୍ଟି ରଖିବା; ଆଖି ସାମନାରୁ ଅନ୍ତର ନ କରିବା ।

**ଆଖି ରଖିବା**—ଦେ. କ୍ରି.—ନଜର ରଖିବା (ଦେଖ)

**ଆବଦ୍ଧ ରଖିବା**—ଦେ କ୍ରି.—ବନ୍ଧକ ରଖିବା [ଦେଖ]

**ଆଶା ରଖିବା**—ଦେ. କ୍ରି.—ଭରସା ରଖିବା [ଦେଖ]

**ଇଜ(ଜ୍ଜ)ତ ରଖିବା**—ଦେ· କ୍ରି.—କୌଣସି ବ୍ୟକ୍ତିର ମର୍ଯ୍ୟାଦାହାନି ନ ଘଟାଇବା ।

**ଋଣ ଆବଦ୍ଧ ରଖିବା**—ଦେ. କ୍ରି·—ବନ୍ଧକ ରଖିବା [ଦେଖ]

**ଓଳାର ରଖିବା**—ଦେ. କ୍ରି.—ଝିଙ୍କି ରଖିବା [ଦେଖ]

**କଥା ରଖିବା**—ଦେ. କ୍ରି—ଅନୁରୋଧ ରଖିବା [ଦେଖ]

**କବଳରେ (କରଗତ) ରଖିବା**—ଦେ. କ୍ରି.—ହାତମୁଠାରେ ରଖିବା [ଦେଖ]

**କଣପୀ(ପା) ରଖିବା**—ଦେ କ୍ରି.—ଦାସ୍ତି ରଖିବା (ଦେଖ)

**କହି (କୁହା ବୋଲା) କରି ରଖିବା**—ଦେ. କ୍ରି.—ପୂର୍ବରୁ କୌଣସି ବିଷୟ କହିବା ।

**କୀରତ (କୀର୍ତ୍ତି) ରଖିବା**—ଦେ. କ୍ରି.—ଯଶ ରଖିବା (ଦେଖ)

**କୁଳ ରଖିବା**—ଦେ କ୍ରି—କୌଣସି ବ୍ୟକ୍ତିର ବଂଶ ରକ୍ଷା କରିବା; କୌଣସ ବ୍ୟକ୍ତିର ବଂଶନାଶ ନ ହେବାର ଉପାୟ କରିବା ।

**କୋଧ ରଖିବା**—ଦେ. କ୍ରି.—ରାଗ ରଖିବା (ଦେଖ)

**ଖିଆଲ ରଖିବା**—ଦେ. କ୍ରି.—ହେଜିବା; ମନରେ ରଖିବା ।

**ଖୋଲା ରଖିବା**—ଦେ. କ୍ରି.—କୌଣସି ଘରକୁ ବା ସ୍ଥାନକୁ ଉନ୍ମୁକ୍ତ କରି ଛାଡ଼ି ଯିବା ।

**ଗାଡ଼ି ରଖିବା**—ଦେ. କ୍ରି.—ନିଜର ବ୍ୟବହାର ପାଇଁ ଗାଡ଼ି ଘରେ ସାଇତିବା । [ଯଥା—ଏହିପରି ବଗି ରଖିବା, ପାଲିଙ୍କି ରଖିବା, ମଟର ରଖିବା ଆଦି ହୁଏ ।]

**ଗୋରୁ ରଖିବା**—ଦେ. କ୍ରି.—ଗୋରୁ ଜଗିବା; ଗୋରୁ ଚରିବାବେଳେ ସେମାନେ ଫସଲ ଆଦି ନଷ୍ଟ ନ କରିବା ପ୍ରତି ଦୃଷ୍ଟି ରଖିବା । (ଯଥା—ଏହିପରି ଗାଈ, ଛେଳି, ମେଣ୍ଢା, ଘୁଷୁରି ଆଦି ଶବ୍ଦ ସଙ୍ଗେ ରଖିବା ପ୍ରୟୋଗ ହୁଏ ।)

**ଘୋଡ଼ା ରଖିବା**—ଦେ. କ୍ରି—ଆପଣାର ବ୍ୟବହାର ପାଇଁ ଘୋଡ଼ା ପାଳିବା । (ଯଥା—ହାତୀ, ନେଉଳ, ଶୁଆ, ଶାରୀ, କୁକୁର, ମିରିଗ, ବଣି ଆଦି ଶବ୍ଦ ପରେ ରଖିବା ଶବ୍ଦ ପ୍ରୟୋଗ ହୁଏ ।)

**ଚକ୍ଷୁଲଜ୍ଜା ରଖିବା**—ଦେ. କ୍ରି.—୧ । ଅନ୍ୟ ବ୍ୟକ୍ତିଙ୍କ ମନ ରଖିବା; ମନ ଯୋଗାଇବା । ୨ । ଅନ୍ୟ ବ୍ୟକ୍ତିଙ୍କ ଅନୁରୋଧ ରକ୍ଷା କରିବା ।

**ଚାକର ରଖିବା**—ଦେ. କ୍ରି.—୧ । ନିଜର ସେବା କରିବା ପାଇଁ ଭୃତ୍ୟ ନିଯୁକ୍ତ କରିବା । ଯଥା—ଏହିପରି ଦାସୀ, ପୋଇଲି, ମାଷ୍ଟର, ଚପରାସୀ ଆଦି ଶବ୍ଦ ସଙ୍ଗେ ରଖିବା ଶବ୍ଦ ଯୁକ୍ତ ହୁଏ ।) ୨ । [ଲକ୍ଷଣାର୍ଥ] ଧନରେ ବା ଗୁଣାଦିରେ ଉତ୍କୃଷ୍ଟ ହେବା । [ଉ—କେତେ ଅନାଉଛୁ ମତେ, ତୋଠାରୁ ସୁନ୍ଦର ମୋର ବିନୋଦିଆ, ଚାକର ରଖିବ ତତେ । ଢଗ ।]

**ଚିତ୍ତ ରଖିବା**—ଦେ. କ୍ରି.—୧ । ଚିତ୍ତ ବଳାଇବା; ଆନ୍ତରିକ ସ୍ନେହ କରିବା; ଆସକ୍ତ ହେବା । ୨ । ମନରେ ରଖିବା [ଦେଖ]

**ଚୁଟି ରଖିବା**—ଦେ. କ୍ରି.—ବାଳ ଛାଡ଼ିବା; **ମସ୍ତକରେ ଲମ୍ବ** କେଶ ବଢ଼ାଇବା ।

**ଚୂଟପିଠ ରଖିବା**—ଦେ. କ୍ରି.—ଚୁଟି ଧରି ପିଠିରେ ପ୍ରହାର ନ କରିବା । [ଯଥା—ସେ ଏ କଥା ଶୁଣିଲେ ମୋ ଚୁଟିପିଠି ରଖିବ ନାହିଁ ।]

**ଚୁର(ରୁ)କ ରଖିବା**—ଦେ. କ୍ରି,—ମସ୍ତକରେ ଶିଖା ରଖିବା—

**ଜାନ୍ (ଜୀବ, ଜୀବନ) ରଖିବା**—ଦେ. କ୍ରି.—ପ୍ରାଣ ରଖିବା [ଦେଖ]

**ଝିଙ୍କି (ଟାଣି) ରଖିବା**—ଦେ. କ୍ରି.—ଆକର୍ଷଣପୂର୍ବକ ଗତିରୋଧ କରିବା ।

**ଥାତି ରଖିବା**—ଦେ. କ୍ରି.—ଧନ ଗଚ୍ଛିତ ରଖିବା ।

**ଦାଉ ରଖିବା**—ଦେ. କ୍ରି.—ଅବରୁଦ୍ଧ ରଖିବା [ଦେଖ]

ଦାସ୍ୟ ରଖିବା—ଦେ. କ୍ରି —ବେଶ୍ୟାକୁ ଉପପତ୍ନୀରୂପେ ପାଳିବା ।

ଦାସୀ ରଖିବା—ଦେ. କ୍ରି.—କୌଣସି ସ୍ତ୍ରୀ କୁ ଉପପତ୍ନୀରୂପେ ପାଳିବା ।

ଦେ(ଦୋ)ହ ରଖିବା—ଦେ. କ୍ରି.—୧ । ଶରୀରରକ୍ଷା କରିବା; ଦେହ ଜଗିବା; ସ୍ୱାସ୍ଥ୍ୟରକ୍ଷା ପ୍ରତି ଦୃଷ୍ଟି ରଖିବା । [ଉ—ଦେହ ରଖି ଧର୍ମ କର । ଢଗ ।] ୨ । ଦେହକୁ ପୋଡ଼ି ନ ବାଧିବ ସେହିପରି ପରିଶ୍ରମ କରିବା । [ଯଥା—ଦେହ ରଖି କାମ କର୍ ।]

ଦୁନିଆଁ ରଖିବା—ଦେ. କ୍ରି.—ସଂସାର ରଖିବା [ଦେଖ]

ଦୃଷ୍ଟି ରଖିବା—ଦେ. କ୍ରି.—ନଜର ରଖିବା [ଦେଖ]

ଧନ ରଖିବା—ଦେ. କ୍ରି.—ଧନ ସଞ୍ଚୟ କରିବା ।

ଧରମ (ଧର୍ମ) ରଖିବା—ଦେ. କ୍ରି.—୧। ଧର୍ମାନୁମୋଦିତ କାର୍ଯ୍ୟ କରିବା; ଧର୍ମ ପାଳନ କରିବା । ୨ । କୌଣସି ବ୍ୟକ୍ତିର ଧର୍ମନାଶ ନ କରିବା ।

ନକଲ(କପି) ରଖିବା—ଦେ. କ୍ରି.—କୌଣସି ଲେଖାର ବ ବହିର ପ୍ରତିଲିପି ଆପଣା ନିକଟରେ ସାଇତିବା । [ଦ୍ର—ଏହିପରି ନୋଟ୍ ରଖିବା, ଛପା ରଖିବା ।]

ନଖ ବାଳ ରଖିବା—ଦେ. କ୍ରି—ନଖକୁ ଓ କେଶକୁ ନ କାଟି ବଢ଼ାଇବା ।

ନଜର ରଖିବା—ଦେ. କ୍ରି—୧ । କୌଣସି ବ୍ୟକ୍ତି ପ୍ରତି ଆକୃଷ୍ଟ ବା ଅନୁରକ୍ତ ହେବା । ୨ । ମନୋଯୋଗୀ ହେବା । ୩ । କୌଣସି ବିଷୟ ପ୍ରତି ଲୁବ୍ଧ ହେବା । ୪ । ତତ୍ତ୍ୱ ନେବା । ୫ । ଯତ୍ନ କରିବା ।

ନାଁ(ନାଆଁ) } ରଖିବା—ଦେ. କ୍ରି—ଯଶ ରଖିବା (ଦେଖ)
ନାମ } (ଯଥା—ସେ ବାପଅଜାଙ୍କ ନାଁ ରଖିବ ।)

ନିନ୍ଦା ରଖିବା—ଦେ. କ୍ରି—ଅପକୀର୍ତ୍ତି ରଖିବା (ଦେଖ)

ନିଲାମ } ରଖିବା—ଦେ. କ୍ରି—କୌଣସି ସମ୍ପତ୍ତିକୁ ନିଲାମ ଡାକ
ନିଲାମରେ } କିଣିବା; ନିଲାମ ଧରିବା ।

ପକା(କେ)ଇ ରଖିବା—ଦେ. କ୍ରି—୧। କୌଣସି ପଦାର୍ଥକୁ ସ୍ଥାନାନ୍ତରିତ ବା ବ୍ୟବହାର ନ କରି ଏକସ୍ଥାନରେ ପଡ଼ି ରହିବାର ଉପାୟ କରିବା ।
(ଯଥା—ମୂର୍ଦ୍ଧାରିକୁ ଗାଆଁବାଲାମାନେ ବନ୍ଧନ ପକେଇ ରଖିଲେ । ହୃଦ୍ଧଅରକୁ ବ୍ୟବହାର ନ କରି ପକେଇ ରଖିଲେ କଳଙ୍କି ହୋଇଯାଏ ।)
୨। (ଲକ୍ଷଣାର୍ଥ)କୌଣସି କାର୍ଯ୍ୟକୁ ଶୀଘ୍ର ଶେଷ ନ କରିବା ।

ପଣ ରଖିବା—ଦେ. କ୍ରି—ବାଜି ରଖିବା (ଦେଖ)

ପାଣି ରଖିବା—ଦେ. କ୍ରି—୧ । ତରକାରୀ ଆଦିରୁ ସମୁଦାୟ ଜଳ ଶୁଖି ନ ଯିବାର ଉପାୟ କରିବା । ୨। କୌଣସି ସ୍ଥାନର ବା ବଂଶର ବା ଜାତିର ସୁନାମ ବଜାୟ ରହିବାର ଉପାୟ କରିବା ।
(ଯଥା—ଝୋଳାଯାକ ଏ ମୋକଦ୍ଦମାରେ ଲଢ଼ି ଆମଗାଆଁର ପାଣି ରଖିଲେ ।)

ପେଟ ରଖିବା ଦେ. କ୍ରି—ଖାଇବାବେଳେ ପୂର୍ଣ୍ଣଭୋଜନ ନ କରିବା ।
(ଯଥା—ପେଟ ରଖି ଖାଇଲେ କେବେହେଁ ରୋଗ ହେବ ନାହିଁ ।)

ପେଟ(ହୃଦ)ରେ କପଟ ରଖିବା—ଦେ.କ୍ରି—ହୃଦୟରେ ଛଳକୁ ସ୍ଥାନ ଦେବା । [ଉ—ଚମତ୍କାର କଥା ଦେଖି ହୃଦରେ କପଟ ରଖି । କବିସୂର୍ଯ୍ୟ. ବଳଦେବ ରଥ. ଚ. ଗୀତ ]

ପେଟରେ } ରଖିବା—ଦେ. କ୍ରି—କୌଣସି ବିଷୟ
ପେଟରେ କୋଲପ ପକାଇ } ପ୍ରକାଶ ନ କରିବା ।

ପ୍ରଣୟ ରଖିବା—ଦେ. କ୍ରି.—ବନ୍ଧୁତା ରଖିବା (ଦେଖ)

ପ୍ରାଣ ରଖିବା—ଦେ. କ୍ରି—୧ । ମୃତ୍ୟୁରୁ ଅନ୍ୟର ଜୀବନକୁ ବଞ୍ଚାଇବା ।
[ଉ—ଷଡ଼ୁର୍ମ୍ମିଯ୍ୟ କୃପାଳୁ ଗୁଣନିଧି ରଖିଲୁ ବ ପ୍ରାଣ । କବିସୂର୍ଯ୍ୟ ବଳଦେବ. ରଥ. ଚ. ଗୀତ ]
୨ । ଆପଣାର ଜୀବନ ଧରି ରହିବା; ବଞ୍ଚି ରହିବା ।

ଫୁଙ୍ଗୁଳା ରଖିବା—ଦେ. କ୍ରି—ଖୋଲା ରଖିବା (ଦେଖ)

ବଅଣା } ରଖିବା—ଦେ. କ୍ରି—ବିକ୍ରେୟ ବସ୍ତୁର ଚୁକ୍ତି ହୋଇଥିବା
ବଇ(ହି)ନା } ବା ସ୍ଥିରୀକୃତ ମୂଲ୍ୟ ବାବଦକୁ ଆଗତୁରା କିଛି ଅଂଶ (ବଇନା) କ୍ରେତାଠାରୁ ଗ୍ରହଣ କରିବା ।

ବଂଶ ରଖିବା—ଦେ. କ୍ରି—କୁଳ ରଖିବା (ଦେଖ)

ବଜାଏ(ୟ) ରଖିବା—ଦେ କ୍ରି—ପୂର୍ବର ବିଷୟ ଅକ୍ଷୁଣ୍ଣ ରହିବାର ଉପାୟ କରିବା ।

ବନ୍ଧକ } ରଖିବା—ଦେ. କ୍ରି—ଋଣର ଯାମିନ୍ ସ୍ୱରୂପ ସମ୍ପତ୍ତି ଆଦି
ବନ୍ଧା } ମହାଜନର ଅଧିକାରରେ ସ୍ଥାପନ କରିବା ।

ବନ୍ଧୁତା ରଖିବା—ଦେ. କ୍ରି—୧ । ବହୁକାଳପାଇଁ ବନ୍ଧୁତା ପୋଷଣ କରିବା । ୨ । କୌଣସି ବ୍ୟକ୍ତି ସଙ୍ଗେ ବନ୍ଧୁତା ସ୍ଥାୟୀ ହେବାର ଉପାୟ କରିବା ।
( ଦ୍ର—ଏହିପରି ଭକ୍ତି, ଭକତି, ପ୍ରେମ ରଖିବା ଆଦି ହୁଏ )

ବଳ ରଖିବା—ଦେ. କ୍ରି—ଭରସା ରଖିବା (ଦେଖ)

ବସା(ସେ)ଇ ରଖିବା—ଦେ. କ୍ରି—୧ । ବହୁକାଳ ଅପେକ୍ଷା କରାଇବା ।
୨ । ନିକମା କରି ବସାଇବା । ୩ । ଚିରଜୀବୀ କରିବା ।

ବାକି ରଖିବା—ଦେ. କ୍ରି—୧ । ଅସମ୍ପୂର୍ଣ୍ଣ କରି ଛାଡ଼ି ଯିବା; ସମସ୍ତ କାର୍ଯ୍ୟକୁ ଶେଷ ନ କରି କେତେକ ଅଂଶ ଛାଡ଼ିବା ।
(ଯଥା—ଭୁତ ତାଙ୍କର ସାତ ପୁରୁଷ ଧରି ଶୋଧିଦେଲୁ ଭୁ କ ଆଉ ବାକି ରଖିଛୁ ?) ୨ । ସମସ୍ତ ଦେୟ ପୂର୍ଣ୍ଣ ରୂପେ ନ ସୁଝିବା ।
(ଯଥା—ଏ ତମସୁକର ସୁଧ ଯାକ ସୁଝି ମୂଳଟକ ବାକି ରଖିଲ ।)

ବାଜି ରଖିବା—ଦେ. କ୍ରି—ଦ୍ୟୂତାଦି କ୍ରୀଡ଼ାରେ ନିର୍ଦ୍ଦିଷ୍ଟ ଧନ ପଣରୂପେ ସ୍ଥାପନ କରିବା ।

ବାଟ ରଖିବା—ଦେ. କ୍ରି—୧ । କୌଣସି ସ୍ଥାନକୁ ଯିବାପାଇଁ ସୁଗମ ଉପାୟ ବା ସୁବିଧା ପୂର୍ବରୁ କରିବା ।
( ଦ୍ର—ଏହିପରି ଫାଙ୍କ ରଖିବା, ଛିଦ୍ର ରଖିବା, କଣା ରଖିବା ଆଦି ହୁଏ ।)

ବାନ୍ଧି ରଖିବା—ଦେ. କ୍ରି—୧ । ଅବଦ୍ଧ କରି ରୋଧ କରିବା ।
(ଯଥା—ଢଙ୍ଗାଲୁ ବାନ୍ଧି ରଖିବା)
୨ । ପେଡ଼ିରେ ବା ଫରୁଆରେ ବନ୍ଦ କରି ରଖିବା ।
(ଉ—ପାଣି ଦେଲ ମରୁଆରେ, ବାଢ଼େଣୀ ବଚନ ବାନ୍ଧି ରଖିବ, ହାଗଦାନ୍ତ ଫରୁଆରେ । ଢଗ)

୩ । ଶରୀରକୁ ଅଭଗ୍ରହରୁ ରକ୍ଷା କରିବା ।
(ଯଥା—ଦେହକୁ ବାନ୍ଧି ନ ରଖିଲେ ବ୍ରହ୍ମଚର୍ଯ୍ୟ ସାଧ୍ୟ ହେବ ନାହିଁ ।)
(ଦ୍ର—ଏହିପରି ଧରି ରଖିବା, କାଢ଼ି ରଖିବା, ସଜାଡ଼ି ରଖିବା, ସଜାଇ ରଖିବା, ସାଇତି ରଖିବା, ଜଗି ରଖିବା, ଘୋଷି ରଖିବା, ଲେଖି ରଖିବା, ଲୁଚେଇ ରଖିବା, ଛଟପଇ ରଖିବା ଇତ୍ୟାଦି ଶବ୍ଦ ହୁଏ ।)

ବାଲ ରଖିବା—ଦେ. କ୍ରି—ବାଲ ଛାଡ଼ିବା; ମସ୍ତକରେ ଲମ୍ବ କେଶ ଛାଡ଼ିବା ।

ବାହା(ହ୍ୱ, ହେ)ଲ୍ ରଖିବା—ଦେ. କ୍ରି—(କୌଣସି ଆଦେଶ ଆଦିକୁ) ରଦ୍ଦ କରିବା ଏବଂ କରିବା ।

ବେଖ୍ୱର ରଖିବା—ଦେ. କ୍ରି—ଚନ୍ଦ୍ରଘରୁ ପ୍ରେରିତ ବେଖ୍ୱରକୁ ଗ୍ରହଣ କରିବା ।

ବେଶ୍ୟା ରଖିବା—ଦେ. କ୍ରି—ଦାସୀ ରଖିବା (ଦେଖ)

ଭରସା ରଖିବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ଆପଣାର ସହାୟ ବୋଲି ମନରେ ଆଶା ପୋଷଣ କରିବା ।

ଭାବ / ଭାବୁସି } ରଖିବା—ଦେ. କ୍ରି—ବନ୍ଧୁତା ରଖିବା (ଦେଖ)

ମଲୁବ୍ ରଖିବା—ଦେ. କ୍ରି—କୌଣସି ବିଷୟକୁ ପରବର୍ତ୍ତୀ କାଳକୁ ଗଡ଼ାଇଦେବା ।

ମନ ରଖିବା—ଦେ. କ୍ରି—୧ । ମନ ଯୋଗାଇବା; ସନ୍ତୁଷ୍ଟ କରିବା । ୨ । କୌଣସି ବିଷୟ ପ୍ରତି ଆକୃଷ୍ଟ ହେବା ବା ଉକ୍ତ ବିଷୟ ଚିନ୍ତା କରିବା ।

ମନରେ / ମନେ } ରଖିବା—ଦେ. କ୍ରି—ଭୁଲି ନ ଯିବା; ସ୍ମୃତିରୁ ଅନ୍ତର ନ କରିବା ।

ମନେ ମନେ ରଖିବା—ଦେ. କ୍ରି—ବାହାରେ ପ୍ରକାଶ ନ କରିବା ।

ମରଦ / ମର୍ଦ୍ଦ } ରଖିବା—ଦେ. କ୍ରି—ପର ପୁରୁଷକୁ ଉପପତିରୂପେ ପାଳିବା ।

ମହତ (ତ୍ତୁ) ରଖିବା—ଦେ. କ୍ରି—ଇଜ୍ଜତ ରଖିବା (ଦେଖ)
(ମାନ ରଖିବା—ଅନ୍ୟରୂପ)

ମାଇକିନିଆଁ (ଆ) ରଖିବା—ଦେ. କ୍ରି—ଦାସୀ ରଖିବା (ଦେଖ)

ମୁଠାଭଳେ ରଖିବା—ଦେ କ୍ରି—ହାତମୁଠାରେ ରଖିବା (ଦେଖ)

ମୁଠାଭିତରେ / ମୁଠାରେ, କବଜାରେ } ରଖିବା—ଅନ୍ୟରୂପ

ମୁଣ୍ଡ ରଖିବା—ଦେ. କ୍ରି—୧ । ମନୁଷ୍ୟର ଜୀବନ ରକ୍ଷା କରିବା । ୨ । ଉପାଧାନ ଆଦିରେ ମସ୍ତକ ସ୍ଥାପନ କରିବା । ୩ । କୌଣସିଠାରେ ଆଶ୍ରୟ ଗ୍ରହଣ କରିବା ।

ମୁହଁ ରଖିବା—ଦେ. କ୍ରି—୧। ମନ ରଖିବା; ମନ ଯୋଗାଇ ସନ୍ତୁଷ୍ଟ କରିବା। ୨ । ମୋହବତ ରଖିବା; ଚକ୍ଷୁଲଜ୍ଜା ରଖିବା । ୩ । ମୌଖିକ ଅନୁରୋଧ ରକ୍ଷା କରିବା ।

ମେଲି ରଖିବା—ଦେ କ୍ରି—ଖୋଲି ରଖିବା (ଦେଖ)

ମୋହବତ ରଖିବା—ଦେ. କ୍ରି—ଚକ୍ଷୁଲଜ୍ଜା ରଖିବା (ଦେଖ)

ଯତ୍ନ ରଖିବା—ଦେ. କ୍ରି—ହେପାଜତ ରଖିବା (ଦେଖ)

ଯଶ ରଖିବା—ଦେ. କ୍ରି—କୀର୍ତ୍ତି ଅର୍ଜ୍ଜନ କରିବା; କୀର୍ତ୍ତିଜନକ କାର୍ଯ୍ୟ କରି ଭବିଷ୍ୟତକୁ ସୁନାମ ଛାଡ଼ିଯିବା ।
(ଦଇ ରଖିବା—ଗ୍ରା. ରୂପ)

ର(ରା)ଗ ରଖିବା—ଦେ କ୍ରି—କୌଣସି ବ୍ୟକ୍ତି ବିପକ୍ଷରେ ମନରେ କ୍ରୋଧ ପୋଷଣ କରିବା । (ଦ୍ର—ଏହିପରି ଈର୍ଷା ରଖିବା ହୁଏ)

ରଡ଼ି ରଖିବା—ଦେ. କ୍ରି—ଅଦଉଡ଼ି ରଖିବା (ଦେଖ)

ଲଗ୍ନା ରଖିବା—ଦେ. କ୍ରି—ବାଡ଼ ରଖିବା (ଦେଖ)

ଲୋକ ରଖିବା—ଦେ କ୍ରି—ଚାକର ରଖିବା (ଦେଖ)

ଶରୀର ରଖିବା—ଦେ. କ୍ରି—ଦେହ ରଖିବା (ଦେଖ)

ସଂସାର ରଖିବା—ଦେ. କ୍ରି—ବିନାଶରୁ ସୃଷ୍ଟିକୁ ରକ୍ଷା କରିବା ।

ସଦ୍ଭାବ ରଖିବା—ଦେ. କ୍ରି—ବନ୍ଧୁତା ରଖିବା (ଦେଖ)

ସଭ୍ୟବାଳ ରଖିବା—ଦେ କ୍ରି—ମୁଣ୍ଡ ଓ ମୁଖର କୌଣସି ଅଂଶ କ୍ଷୌର ନ ହୋଇ ବାଳ ଛାଡ଼ିବା (ଏହିପରି ବେଣୀରଖିବା, ମୁଛ ବା ଦାଢ଼ି ରଖିବା, ଗାଲମୁଛ ରଖିବା, ଚାଳୁରି ରଖିବା ଆଦି ହୁଏ)

ସମ୍ପତ୍ତି ରଖିବା—ଦେ. କ୍ରି—୧ । ଧନ ସଞ୍ଚୟ କରିବା । ୨ । ସମ୍ପତ୍ତିର ରକ୍ଷଣାବେକ୍ଷଣ କରିବାର ଭାର ଗ୍ରହଣ କରିବା ।

ସମ୍ମାନ ରଖିବା—ଦେ. କ୍ରି—ଇଜ୍ଜତ ରଖିବା (ଦେଖ)

ସ୍ତ୍ରୀ ରଖିବା—ଦେ. କ୍ରି—ଦାସୀ ରଖିବା (ଦେଖ)

ସ୍ନେହ ରଖିବା—ଦେ. କ୍ରି—ବନ୍ଧୁତାଲାଗି ସ୍ନେହ କରିବା ।
(ସିନେହ ରଖିବା—ଗ୍ରା. ରୂପ)

ହାତମୁଠାରେ / ହାତରେ } ରଖିବା—ଦେ କ୍ରି—୧ । ହସ୍ତଗତକରି କିଛିକାଳ ପାଇଁ ସମ୍ଭାଳିବା । ୨ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ କରାୟତ୍ତ କରିବା ।

ହୁ(ହୋ)ଡ଼ ରଖିବା—ଦେ. କ୍ରି—ବାଡ଼ ରଖିବା (ଦେଖ)

ହୃଦରେ ରଖିବା—ଦେ. କ୍ରି—ପେଟରେ ରଖିବା (ଦେଖ)

ହେଜ ରଖିବା—ଦେ. କ୍ରି—ଖିଆଲ ରଖିବା (ଦେଖ)

ହେପାଜ(ଜ)ତ୍ ରଖିବା—ଦେ. କ୍ରି—ଯତ୍ନପୂର୍ବକ ବସ୍ତୁପ୍ରତି ଦୃଷ୍ଟି-ଦେବା ।

ହେମଜ(ଜ୍ର) ରଖିବା—ଦେ. କ୍ରି—ଭରସା ରଖିବା (ଦେଖ) ]

ରଖି ଯିବା—ଦେ. କ୍ରି—୧ । ପରିବାରସ୍ଥ ଅନ୍ୟ ବ୍ୟକ୍ତିଙ୍କ ବା ଉତ୍ତରା-ଧିକାରୀଙ୍କୁ ତ୍ୟାଗ କରି ମୃତ ହେବା; ଛାଡ଼ିବା—
Rakhi jibā
ৰেখে যাওয়া 1. To leave (persons surviving as
ରଖଜାନା heirs). ୨ । ଆପଣା ମୃତ୍ୟୁ ପରେ କୌଣସି ବିଷୟ ସ୍ଥାୟୀ ହୋଇ ରହିବାର ଉପାୟ କରି ମରିବା—2. To die after making provision for a matter.

ରଖୁଆଳ(ଳ)—ଦେ. ବିଣ (ସଂ. ରକ୍ଷାପାଳ; ରକ୍ଷାକର, ରକ୍ଷାକାରୀ)—
Rakhuāḷa(ḷ)
ରକ୍ଷା କାରକ—Saving; protecting.
ৰাখাল, রখোয়াল ବି—୧ । ରକ୍ଷକ ବ୍ୟକ୍ତି—1. Protector;
ରଖୱାଳା(ର) patron. [ଉ—ଆମ୍ଭେ ତୁମ୍ଭଙ୍କୁ ରଖୁଆଳ, ଭୟ ନ କର ତୁମ୍ଭେ ଚଳ—ରାମଦାସ. ଦାର୍ଢ୍ୟତାଭକ୍ତି ।] ୨ । ଗୋରୁ ଆଦି ଜଗିବା ବ୍ୟକ୍ତି; ଜଗୁଆଳ; ପାଳକ—2. A person who tends cattle [ଉ—ଯଥା ମହାବଳି, ରଖୁଆଳଶୂନ୍ୟ ଗୋଷ୍ଠେ ପଶି, ଅବହେଳେ ବିନାଶେ ଗୋଯୂଥ । ଚିନ୍ତାମଣି. ବିଚିତ୍ରରାମାୟଣ । ] [ଦ୍ର—ଗୋମେଷାଦି ପାଳିତ ଜୀବମାନଙ୍କ ସଙ୍ଗେ ଏ ଶବ୍ଦ ଯୁକ୍ତ ହୁଏ

ଯଥା—ଗୋରୁ ରଖୁଆଳ, ଛେଳି ରଖୁଆଳ ଇତ୍ୟାଦି ।]
୩ । ପହରୀ୍ବାଲା—3. Watchman.

**ରଖେଇଅ**—ଗ୍ରା. ବି (ପୁଂ)—ପ୍ରକାଶ୍ୟଭାବ ଉପପତି—
Rakheiā उपपति A paramour.
(ରଖେଇଆ—ଅନ୍ୟରୂପ)

**ରଖେଇ**—ଗ୍ରା. ବିଣ (ସ୍ତ୍ରୀ)—ରକ୍ଷିତା (ସ୍ତ୍ରୀ)—Kept (woman.)
Rakhei ବି. ସ୍ତ୍ରୀ—୧ । ରଖେଇ ମାଇପ ( ଦେଖ )
राखनी 1. Rakhei māipa ( See )
**रखनी, रखेली** ୨ । ପାଳିବାର ବା ରଖିବାର ମଜୁରି ବା ପାରିଶ୍ରମିକ-
(ରଖେଁ—ଅନ୍ୟରୂପ) 2. Wages paid to a person for
राखा मजुर **रखवाइ** keeping or watching.

**ରଖେଇ ଅଡ଼**(ଅଡ଼ର)ପିଲା —ଦେ.ବି—ରକ୍ଷିତା ସ୍ତ୍ରୀ ଗର୍ଭଜାତ ସନ୍ତାନ –
Rakhei ārda (ārdara) pilā A child born of a
राखनीर छेले **रखेलीका लडका** concubine.

**ରଖେଇ ମାଇପ**—ଦେ. ବି (ସ୍ତ୍ରୀ) ( ସ. ରକ୍ଷିତା ସ୍ତ୍ରୀ )—ରକ୍ଷିତା ସ୍ତ୍ରୀ;
Rakhei māipa ଉପପତ୍ନୀ; ଗୋଇଲି—Concubine; a
राखनी, बक्षिता स्त्री **रखेली** mistress.
[ରେଇ(ସ୍ତ୍ରୀ) ମାଇପ(ସ୍ତ୍ରୀଲୋକ)—ବିପଗ୍ରାହ]

**ରଗ୍** (ଧାତୁ)—ସ—୧ । ହଲିବା; ଚଳିବା—1. To move; to
Rag (root) go. ୨ । ସନ୍ଦେହ କରିବା—2. To doubt
(Apte).

**ରଗ୍**—ବୈଦେ. ବି (ଇଂ)—କ୍ଷୁଦ୍ର କମ୍ବଳ—
Rag रग **रग** Rug; small blanket.

**ରଗ୍‌ଡ଼ିବା**—ପ୍ରାଦେ. (ସମ୍ବଲପୁର) କ୍ରି—୧ । ରଗଡ଼ିବା (ଦେଖ)
Rag-rdibā 1. Ragardibā (See)
୨ । ଚକଟିବା (ଦେଖ)—2. Chakatibā (See)

**ରଗ୍ ରଗ୍**—ଦେ. ଅ—ଗଲ୍ ଗଲ୍; କଣ୍ଡୁ; କାଣ୍ଡ—
Rag-rag Itching sensation.
रगरग **सबसब**

**ରଗ୍‌ରଗ୍**—ଦେ. ଅ—୧ । କ୍ରୋଧ, ରାଗ—1. Anger. ୨ । ଆଖିରେ
Rag-rag ବାଲି ପଶି ଶେଁକିବା ବା ବିନ୍ଧିବା—2. Aching of
रग रग the eyes due to the presence of
**दुखना** sand in it. ୩ । ଶିରା ଅତି ବିନ୍ଧିବା—3. Throbb-
**धमधम** ing pain of veins. ବିଣ—କ୍ରୋଧରେ ଜର୍ଜର—
Raging; furious with anger.

**ରଗ** (ଧାତୁ)—ସଂ.—୧ । ସନ୍ଦେହ କରିବା—1. To suspect; to
Raga (root) doubt. ୨ । ଶଙ୍କା କରିବା—2. To fear.
୩ । ଚାଖିବା—3. To taste. ୪ । ପ୍ରାପ୍ତ ହେବା—
4. To get. ୫ । ଗମନ କରିବା; ଗତି କରିବା—
5. To go; to move.

**ରଗ**—ବୈଦେ. ବି (ଫା. ରଗ୍)—୧ । ଲଲାଟର ଦୁଇପାଖର ଶିରା—
Raga 1. Temporal artery. ୨ । ଶିରା—2. Vein.
रग ଦେ. ବି—(ସ. ଋଞ୍ଜ. ଧାତୁ)—୧ । କ୍ରୋଧ; ରାଗ—
**रग** 1. Anger; rage. ୨ । ଗଲୁ; କଣ୍ଡୁ—2. Itcting.
राग ୩ । ଅହଙ୍କାର—3. Grudge. ୪ । ଯୌବନଜନିତ ସ୍ଫୁର୍ତ୍ତି—
**रंज** 4. Sprightfulness of youth. ୫ । ବ୍ୟଗ୍ରତା—
5 Paroxysm.

**ରଗ ଉଠିବା**—ଦେ. କ୍ରି—୧ । ସ୍ଫୁର୍ତ୍ତି ଜାତ ହେବା—1. Sprightful-
Raga uthibā ness. ୨ । ଗଲୁ ଉଠିବା—2. Itching.
फुर्तिहओया

**ରଗଡ଼**—ଦେ. ବି (ସ. ଦ୍ରଗଡ଼=ବଡ଼ ଢକ୍କା; ବଡ଼କାଠ)—୧ । ଢୋଲ
Ragarda ବା ମୃଦଙ୍ଗକୁ କ୍ରୋଡ଼ରେ ବଜାଇବାର ଶବ୍ଦ; ଢୋଲ
रगड ଦ୍ୱାରା ଅବିରତ ବାଜା—1 Sound of a series of
**घनघनाना** quick beatings of a drum ୨ । ଆମୋଦ
रगड ପ୍ରମୋଦର ବୃଦ୍ଧି, କୌତୁକ; ମଉଜ—2. Hilarity, fun;
**रगड** amusement; fit of merriment. ୩ । ରାଗର
घोर ବା କଳିର ବୃଦ୍ଧି—3. A paroxysm or heat of
**पाडा** rage. ୪ । କଠିନ ବସ୍ତୁର ଘର୍ଷଣ; ମର୍ଦ୍ଦନ—4. Rubb-
बगडान ing of two hard things against each
**रगड** other; grinding. ୫ । ଦାନ୍ତର ପରସ୍ପର ଘର୍ଷଣ—
**कटकटाना** 5. Grinding of the teeth. [ ଉ—
ମେଘ ଘଡ଼ଘଡ଼ିକି ଦଳୀର ରଗଡ଼ । କୃଷ୍ଣସିଂହ.
कठिन मेहेनत् ମହାଭାରତ. ଅଦି । ] ୬ । କଠୋର ପରିଶ୍ରମ—
**रगड** 6. Hard labour. ୭ । ଜିଗର୍—7. Obstinacy.
୮ । ପୌନଃପୁନ୍ୟ—8. Repeatedness. ବିଣ—
**रगड** ୧ । ଠାଣ; ଦୃଢ଼—1. Hard; strong. [ ଉ—ଅନ୍ତକ
ରଗଡ଼େ ଚିକ୍କିବ ଚେତକ । ଗ୍ରାଧାନାଥ. ଦରବାର ।]
୨ । ଖେଗଡ଼ା-2. Rough-grained. ୩ ଜିଗରଦାର୍—
3. Obstinate; importune.

**ରଗଡ଼ କରିବା**—ଦେ. କ୍ରି—୧ । ଘନଘନ ଯାତାୟାତ କରିବା—
Ragarda kariba 1. To visit a place in quick
ରଗଡ଼ ପକା(କେ)ଇବା } ଅନ୍ୟରୂପ succession. ୨ । ମଉଜ
ରଗଡ଼ ମାରିବା } କରିବା—2 To make
बगड़ करा a fun; to make merriment.
**रगड करना; रगड उठाना**

**ରଗଡ଼ ଜମା(ମେ)ଇବା**—ଦେ. କ୍ରି—ମଉଜର ବୃଦ୍ଧିରେ ଲିପ୍ତ ହେବା—
Ragarda jamā(me)ibā To devote one's self to
बगड़ जमान **रगड जमाना** a fit a merriment.

**ରଗଡ଼ ଝଗଡ଼**—ଦେ. ବି (ସହଚର ଶବ୍ଦ)—୧ । ଟଣା ଓଟରା—
Ragarda jhagarda 1. Drawing and dragging.
रगड़ झगड़ ୨ । ଧିକମାଳ; ଭାଉରେ ଟଣା ଓଟରା—2. Higg-
**रगडा झगडा** ling and haggling. [ ଉ—ମୋଟା
କାରବାର, ରଗଡ଼ ଝଗଡ଼ ନାହିଁ, କଥା ପଦପଦକେ
ସଉଦା । ଫକୀରମୋହନ. ଗଳ୍ପସ୍ୱଳ୍ପ । ] ୩ । ଅତ୍ୟାଚାର;
ଜୁଲମ-3. Oppression. ୪ । ରଗଡ଼ାଝଗଡ଼ା (ଦେଖ)-
4. Ragardā jhagardā. (See)

**ରଗଡ଼ଦାର୍**—ଦେ ବିଣ—୧ । ପରିଶ୍ରମୀ—1. Laborious.
Ragardadār ୨ । ଯେ କଠିନ ପରିଶ୍ରମ କରିପାରେ—

(ରଗଡ଼ଦାରୁଆ—ଅନ୍ୟରୂପ) ୨. Capable of very
ৰগড়দাৰ hard labour. ୩ । ମଉଜିଆ—3. Fond of
रगड़दार merriment; frolicsone.

ରଗଡ଼ବାଜ୍ ଦେ. ବିଣ—୧ । କୌତୁକ ପ୍ରିୟ; ମଜାଦାର୍—
Ragardabāj 1. Fond of amusement
মজাদাৰ ୨ । ମଉଜ, ଆମୋଦ ପ୍ରିୟ—2. Fond of mer-
रगड़बाज, आमोदी, रगड़ी riment; merry.
ରଗଡ଼ ବାଜିଆ, ରଗଡ଼ମ୍ବାଜ, ରଗଡ଼ିଆ } ଅନ୍ୟରୂପ ୩ । ଜିଦ୍ଖୋର ପ୍ରିୟ—3. Fond of paroxyme; acting according to the whim or heat of the moment.
(ରଗଡ଼ବାଜ, ରଗଡ଼ମ୍ବାଜ, ରଗଡ଼ିଆପଣ—ବି)

ରଗଡ଼ ଲଗା(ଗେ)ଇବା—ଦେ. କ୍ରି—୧ । ରଗଡ଼ ଜମାଇବା (ଦେଖ)
Ragarda lagā(ge)ibā 1. Ragarda jamāibā (See)
ৰগড় লাগান ୨ । କଳି କରିବା—2. To quarrel.
रगड़ लगाना ୩ । ଜିଗର କରିବା—3. To importune
(ରଗଡ଼ ଲଗିବା—ବି. ରୂପ)

ରଗଡ଼ା—ଦେ. ବି. ( ସଂ. ଘର୍ଷଣ )—୧ । ଟାଣ ବସ୍ତୁଦ୍ୱୟର ଘଷିହେବା
Ragardā ଘର୍ଷଣ—1. Rubbing; grinding. (ଯଥା—
ৰগড়া ଦାନ୍ତ ରଗଡ଼ା) ୨ । (ମୁଗ ଇତ୍ୟାଦିଙ୍କୁ) ଚକିରେ
रगड़ना, रगड़ा ପେଷିବା—2. Pulverising; grinding or splitting of grains and lentils.
୩ । କାନ ମୋଡ଼ା—3. Crushing of the ears.
ବିଣ—୧ । କଙ୍କରମୟ— Gravelly. ୨ । ପେଷା
ৰগড়া ହୋଇଥିବା—2. Pulversed, ground; rubbed; split. ୩ । ରଗଡ଼ା; ଖଦଡ଼ା—3. Rough.
(ଯଥା—ରଗଡ଼ା ପଥର) ୪ । ମୋଟା—4. Course.
(ଯଥା—ରଗଡ଼ା ଗାମୁଛା) ୫ । ଟାଣ; କର୍କଶ—
খুব মোটা 5. Rough; harsh.

ରଗଡ଼ା(ଡ଼େ)ଇବା—ଦେ. କ୍ରି (ରଗଡ଼ିବା କ୍ରିୟାର ଣିଜନ୍ତ ରୂପ—
Ragardā(rde)ibā The causative form of
ৰগড়ান Ragardibā)—ଅନ୍ୟ ଦ୍ୱାରା ରଗଡ଼ିବା କାର୍ଯ୍ୟ
रगड़ाना, रगड़वाना କରାଇବା—To cause to be ground by another.

ରଗଡ଼ା ଝଗଡ଼ା—ଦେ. ବି—୧ । କଳି କଜିଆ—1. Quarrel. ୨ ।
Ragardā jhagardā କଳି ଓ ମାଡ଼ପିଟାପିଟି—2. Quarrel
ৰগড়ান; ৰগড়ঝগড় रगड़ा झगड़ा and affray. ୩ । ଝିକା-
ମାରି; ବାଦାନୁବାଦ—3. Higgling and haggling.

ରଗଡ଼ା ପଥର—ଦେ. ବି—ଯେଉଁ ପଥର ଚିକ୍କଣ ନୁହେଁ—
Ragardā pathara Coarse-grained stone.
ৰগড়া পাথৰ खुरखुरा पत्थर

ରଗଡ଼ା ବାଲି—ଦେ. ବି—ଖଦଡ଼ା ବାଲି; ଯେଉଁ ବାଲିର କଣାମାନ
Ragardā bāli ବଡ଼ବଡ଼—Coarse sand; sand
মোটা বালি मोटा बालु having coarse grains.

ରଗଡ଼ା ବାଲିଆ—ଦେ. ବି—ଯେଉଁ ବାଲିଆ ପଥର ମସୃଣ ନୁହେଁ—
Ragardā bāliā Coarse sandstone
বালি পাথৰ [ଦ୍ର—ଏହିପରି ରଗଡ଼ା ମୁଗୁର, ରଗଡ଼ା କାଦୁ,
बलुआहा पत्थर ରଗଡ଼ା ଖଣ୍ଡିଆ ଇତ୍ୟାଦି ରୂପ ।]

ରଗଡ଼ା ମୁଗ—ଦେ. ବି—ଡାଲି କରିବା ପାଇଁ ଭାଙ୍ଗି ରଗଡ଼ି ରଖିଥିବା
Ragardā muga ମୁଗ—Pounded or split pulse.
বগড়ান মুগ दला हुआ मुंग

ରଗଡ଼ା ଲୁଗା—ଦେ. ବି—ମୋଟା ଲୁଗା; ଖଦଡ଼ା ଲୁଗା—
Ragardā lugā Coarse cloth.
খুব মোটা কাপড় खद्दड़, मोटा कपड़ा

ରଗଡ଼ା ରଗଡ଼ି—ଦେ. ବି-୧ । ବହୁବାର ରଗଡ଼ିବା କର୍ମ—
Ragardā ragardi 1. Grinding several times;
ৰগড়া ৰগড়ি repeated friction. ୨ । ମଜାମଜି; ଉତ୍ତମ
रगड़ा रगड़ी ରୂପେ ମାଜିବା—2. Polishing well. ୩ ।
କଜିଆ; ଝଗଡ଼ା; ବାଦ ବିବାଦ—3. Quarrel. (ଯଥା—
ତାର ମୋର ଭିତରେ ରଗଡ଼ା ରଗଡ଼ି ଲାଗିଗଲା ।)

ରଗଡ଼ା ଶିଳ - ଦେ. ବି—ଯେଉଁ ଶିଳର ଦେହ ମସୃଣ ନୁହେଁ—
Ragardā śila A coarse slab of stone used
এবড়ো খেবড়ো শিল खुरखुरा सिलौट for grinding.

ରଗଡ଼ା ହେ(ଯି)ବା—ଦେ. ବି—ରଗଡ଼ିବାର କର୍ମବାଚ୍ୟ ରୂପ—
Ragardā he(ji)bā To be ground or split.
ৰগড়া হওয়া (ଯଥା—ମୁଗ ରଗଡ଼ା ହେଉଛି, ଶ୍ୟାମ ମୁଗ ରଗଡ଼ୁଛି)
रगड़ाजाना

ରଗଡ଼ି - ଦେ. ବି—ଗୋଡ଼ି; କଙ୍କର—Peebles; gravel.
Ragardi ବିଣ—ଗୋଡ଼ିଆ; କଙ୍କରମୟ—Gravelly
কঙ্কৰ (ଉ—ଠାବେ ଠାବେ ପୁଣି ଠାଙ୍ଗର ମଣ୍ଡିଆ; ଉଭା
कङ्कड़ ଭୁଷ ଠାଙ୍କ ରଗଡ଼ି ମଣ୍ଡିଆ । ରାଧାନାଥ. ମହେନ୍ଦ୍ରଗିରି ।)

ରଗଡ଼ିଆ—ଦେ. ବିଣ—୧ । ରଗଡ଼ବାଜ୍ ( ଦେଖ )
Ragardiā বগড়িয়া रगड़ी 1. Ragardabāj (See)
মোটা खद्दड़ ୨ । ରଗଡ଼ା; ବଗଡ଼ା; ଖଦଡ଼ା (ଲୁଗା)—
কাংকৰময় 2. Coarse. ୩ । କଙ୍କରମୟ—3. Gravelly.
कङ्कड़वाला

ରଗଡ଼ିବା—ଦେ. କ୍ରି ( ସଂ. କ୍ରଗଡ଼=ଚକ୍କା ବିଶେଷ; ସଂ. ଘର୍ଷଣ )—
Ragardibā ୧ । (ସ୍ତ୍ରୀ ଚକଟ ଘର୍ଷଣ ଶବ୍ଦ ଯୁକ୍ତ) ଚକିରେ
বগড়া ମୁଗ ଆଦିକୁ ଖଣ୍ଡ ଖଣ୍ଡ କରି ପେଷିବା—1. To
रगड़ना grind or split corn into pieces with the hand mill. (ଯଥା—ମୁଗ, ବିରି, ଚୁଡ଼ିଲ,
କୋଳଥ ଆଦି ରଗଡ଼ିବା ।) ୨ । ଦଳିବା; ଢାଳିବା;
ପେଷିବା; ମଳିବା - 2. To grind, to scour; to
bruise. (ଯଥା—ଭୁଙ୍ଗ ରଗଡ଼ିବା, ଘଷି ରଗଡ଼ିବା,
ଚୂନ ପତ୍ର ରଗଡ଼ିବା ଇତ୍ୟାଦି । ୩ । ଚୋବାଇବା—3. To
chew. (ଯଥା—ସେ ପାନ ଭିଟଇଲା ରଗଡ଼ି ଦେଲା ।)
୪ । ଅନ୍ୟର କାନକୁ ମୋଡ଼ିବା—4. To rub or

press another's ears. ୫ । (ଦୁଇ ପାଟର ଦାନ୍ତକୁ) ପରସ୍ପର ସହିତ ଘଷିବା—5. To grind (the teeth). (ଉ—ହସ୍ତରେ ହସ୍ତ ପେଷି ଦନ୍ତ ରଗଡ଼ିଲେ । କୃଷ୍ଣଙ୍କ. ମହାଭାରତ. ସଭା ।) ୬ । (ବାସନ ଓ ଅଙ୍ଗ ପ୍ରଭୃତି) ଘଷିବା; ମାଜିବା—6 To rub; to scour. (ଉ—କେତେକ ଜଣ ସୁନ୍ଦରୀ ମୁଖର ଅଙ୍ଗୁର ସୌନ୍ଦର୍ଯ୍ୟ ବଢ଼ାଇବା ନିମନ୍ତେ ପଶଲ୍ଲକ ନିରେ ମର୍ଦ୍ଦ ରଗଡ଼ୁ ଅଛନ୍ତି । ଫକୀରମୋହନ. ଛମାଣ. ଆଠଗୁଣ ।)

**ରଗଡ଼ି ହେବା**—ଦେ. କି—୧ । ଅକ୍ଷି ମଧ୍ୟରେ ବାଲି ଅବା ପଶିବା ଯୋଗୁଁ କୁଣ୍ଡାଇ ହେବା—1 To have itching sensation in the eye owing to the presence of sand etc in it. ୨ । (ଗୋଡ଼ର ବା ହାତର ଗଣ୍ଠି) ପଥରରେ ବା ଭୂମିରେ ଘଷି ହେବା—2. To be bruised (said of the wrist or ankle). ୩ । ରଗଡ଼ା ହୋଇ ପାରିବା—3. To be capable of being ground.
Ragardi heba
चुलकाना दुखना
मसे जाओयां घिसजाना रगड़ा जाओयां दलाजाना

**ରଗଣ**—ସ ବି—ଛନ୍ଦରେ ବ୍ୟବହୃତ ପ୍ରଥମ ଓ ତୃତୀୟ ଅକ୍ଷର ଗୁରୁ ଏବଂ ଦ୍ୱିତୀୟ ଅକ୍ଷର ଲଘୁ ହୋଇଥିବା ବର୍ଣ୍ଣତ୍ରୟ—A unit of 3 syllables (of which the 1st and 2nd are long and the 3rd short) used in poetical composition.
Ragana

**ରଗ ବିନ୍ଧିବା**—ଦେ. କି.—ଶିରା ବିନ୍ଧିବା—Throbbing pain of the veins
Raga bindhiba बग व्याथाकबा
रग दुखना

**ରଗ ମରିଯିବା**—ଦେ. ବି.—୧ । ଉପଯୁକ୍ତ ପ୍ରତିଘାତଦ୍ୱାରା ରାଗର ଶାନ୍ତ ହେବା—1. The cooling of rage on being met with rage ୨ । ପରିଶ୍ରମାଦିଦ୍ୱାରା ସ୍ଫୂର୍ତ୍ତିର ଶାନ୍ତ—2. Cooling of itching or sprightliness by hard labour. [ଯଥା—ବୁଢ଼ା ହୋଇ ଯିବାରୁ ତାର ରଗ ମରି ଗଲାଣି ।]
Raga marijiba
राग मरे जाओयां
मन ठंडाहोना

**ରଗ ମାରିବା**—ଦେ.କି—୧ । ରାଗଦ୍ୱାରା ଅନ୍ୟର ରାଗକୁ ଶାନ୍ତ କରାଇବା—1. To cool a person's rage by meeting it with equivalent rage. ୨ । (ବ୍ୟଙ୍ଗ୍ୟ) କଠିନ ପରିଶ୍ରମାଦି କରାଇ କାଣ୍ଡୁ ମାରି ଦେବା—2. To kill or cool one's sprightliness or itching by making him labour hard. ୩ । ଶିରା ଦେଖି ତାତୁ ଦେବା; ଶିରାରେ ତାତୁ ଦେଇ ବିନ୍ଧା ବନ୍ଦ କରିବା—3 To stop or cure throbbing or aching by searing the proper vein.
Raga mariba
ठांडा करा क्रोध ठंडा करदेना
रग तोडना

**ରଗ ରଗ**—ଦେ: ଅ.—୧ । ରଗ୍ ରଗ୍ (ଦେଖ)—1. Rag rag (See) ୨ । ଅତ୍ୟନ୍ତ କ୍ରୋଧାନ୍ୱିତ—2. Angry; raging with anger. ୩ । କ୍ରୋଧରେ ଫୁଁ ଫୁଁ ହେବା; ରାଗରେ ଡମ-ଡମ—3. Frowning with anger; foaming with rage; scowling.
Raga raga रगं रग, कनकम
कनकम

**ରଗ**—ବିଣ.—୧ । ବାଲିଥିବା ପଡ଼ିବା ଯୋଗୁଁ ଚକ୍ଷୁର କଣ୍ଡୁୟନ—1. Itching of the eyes due to the presence of sand. ବି.—୧ । କ୍ରୋଧ—1. Anger; rage. ୨ । କ୍ରୋଧର ଦୃଷ୍ଟା—2. A fit of rage. ୩ । କ୍ରୋଧଜନିତ ଭ୍ରୂକୁଟୀ—3. Bitterness due to rage, frowning due to anger.

**ରଗା(ଗେ)ଇବା**—ଦେ. କି.—ରଗିବା କ୍ରିୟାର ଣିଜନ୍ତରୂପ—The causative form of ragiba)— ଅନ୍ୟ ବ୍ୟକ୍ତିକୁ ରାଗାନ୍ୱିତ କରାଇବା—To irritate a person; to make a person angry. [ଉ—କହୁଛୁ ମତେ ରଗାନା, ମୋ ରାଗଟା ଭୁ ଲଗାନା । ଲଗ ।]
Raga(ge)iba
रागान
रंजकराना

**ରଗିବା**—ଦେ କି.—(ସ. ରଂଜ ଧାତୁ)—ରାଗାନ୍ୱିତ ହେବା—To be angry; to be in a fit of rage. ପ୍ରାଦେ. (ଗଡ଼ଜାତ) କି.—କଷେଇବା; ରଙ୍ଗ କରିବା—To dye with a colour.
Ragiba
रागा रंजहोना

**ରଗୁଆ**—ଦେ. ବିଣ. ପୁଂ—ରାଗୀ; କୋପନସ୍ୱଭାବ, ବଦ୍‌ରାଗୀ—Of a fiery temper; irritative. [ରଗେ(ଗୋ)ଇ—ସ୍ତ୍ରୀ]
Ragua बद रागी
गुस्सावाला

**ରଗୁଡ଼ି**—ପ୍ରାଦେ.—(ବାଲେଶ୍ୱର) ବି.—(ବଣିଆ ଶବ୍ଦ)—କଙ୍ଗନ୍ Kangan (See)
Ragurdi

**ରଘ୍ (ଧାତୁ)**—ସ.—୧ । ଗମନ କରିବା—1. To go. ୨ । ଗତି କରିବା—2. To move. ୩ । ଦୀପ୍ତି ପାଇବା—3. To shine.
Ragh (root)

**ରଘୁ**—ସ. ବି (ରଘ୍ ଧାତୁ+କର୍ତ୍ତୃ. ଉ)—୧ । ସୂର୍ଯ୍ୟବଂଶୀୟ ନୃପତି-ବିଶେଷ—1. Name of a king of the Solar dynasty of ancient India. [ ଦ୍ର—ଏ ମହାରାଜ ଦିଲୀପଙ୍କ ପୁତ୍ର, ଅଜଙ୍କ ପିତା, ଦଶରଥଙ୍କ ପିତାମହ ଓ ରାମଚନ୍ଦ୍ରଙ୍କ ପ୍ରପିତାମହ । ଏ ବାହୁବଳରେ ବହୁରାଜ୍ୟ ଜୟ କରିଥିଲେ ଓ ଏହାଙ୍କଠାରୁ 'ରଘୁବଂଶ' ନାମ ହୋଇଅଛି । ଏ ବହୁରାଜ୍ୟ ଜୟ କରି ଅବଶେଷରେ ବିଶ୍ୱଜିତ୍ ଯଜ୍ଞ ଅନୁଷ୍ଠାନ କରି ବ୍ରାହ୍ମଣମାନଙ୍କୁ ସର୍ବସ୍ୱ ଦାନ କରିଥିଲେ । ଏହାଙ୍କ ବଂଶୀୟ ରାଜାମାନେ ଅଯୋଧ୍ୟାରେ ରାଜତ୍ୱ କରୁଥିଲେ । ] ୨ । (ବହୁବଚନରେ ବ୍ୟବହୃତ ସ. ରଘବଃ)—ରଘୁବଂଶୀୟ ନୃପତି ଗଣ—2. The kings of the Raghu dynasty. ୩ । ରଘୁ ରାଜାଙ୍କ ବଂଶ—3. The family of king Raghu. ୪ । କାଳିଦାସ କୃତ ମହାକାବ୍ୟ ରଘୁବଂଶ—4. 'The Raghubamsa'; an epic poem by Kalidasa. ଦେ. ବି. ପୁଂ (ଅଦରାର୍ଥକ)—(ରଘୁଆ—ଅନାଦରାର୍ଥକ) ରଘୁନାଥ ନାମକବ୍ୟକ୍ତିର ଡାକନାମ ।
Raghu

(ରଘୁନା—ଅଦରାର୍ଥକ ଅନ୍ୟରୂପ) —Name for calling Raghunātha. [ ଦ୍ର—ପିଲାଏ ମାଇଲେ ଠେକା, ରଘୁ ଧଇଲେ ଏକା । ଶିଶୁଗୀତ । ]

ରଘୁକାର—ସଂ. ବି—ରଘୁବଂଶ କାବ୍ୟର ରଚୟିତା; କବି କାଳିଦାସ—Raghukāra Poet Kālidāsa, the author of the Raghubaṁsa.

ରଘୁ କୁଳ—ସଂ. ବି—ରଘୁବଂଶ; (ଷଷ୍ଠୀତତ୍) ଭାରତର ସୂର୍ଯ୍ୟବଂଶ—Raghu kula The Solar dynasty of kings of ancient India.

ରଘୁ କୁଳ ତିଳକ—ସଂ. ବି ( ରୂପକ; ରଘୁକୁଳ+ତିଳକ )—Raghu kula tilaka ରଘୁବଂଶର ପ୍ରଧାନ ବ୍ୟକ୍ତି; ରାମଚନ୍ଦ୍ର (ରଘୁକୁଳପ୍ରଦୀପ, ରଘୁକୁଳମଣି—ଅନ୍ୟରୂପ) —Name of Rāmachandra

ରଘୁ(ଘୋ)ଜୀ ଭୌଁସଲା—ଦେ. ବି (ନାମ)—ମଧ୍ୟପ୍ରଦେଶସ୍ଥ ନାଗପୁର Raghu(gho)jī bhoṅsalā ରାଜ୍ୟର (ଭୌଁସ୍‌ଲାଉପାଧିଧାରୀ) [ରଘୁ(ଘୋ)ଜୀଭୋ(ଭୌଁ)ସ୍ଲା—ଅନ୍ୟରୂପ] ମରହଟ୍ଟା ରାଜବଂଶର ପ୍ରଥମ ବଘୁଜୀଭୋଁସଲା ରାଜା ଓ ତାଙ୍କ ଅଣନାତି—Name of 2 रघुजीभोंसला Marhatta kings of Nagpur, from the latter of whom the English got Orissa by the treaty of Debagrāma. [ ଦ୍ର—ଏ ବଙ୍ଗର ନବାବ୍ ଅଲିବର୍ଦ୍ଦି ଖାଁଙ୍କଠାରୁ ଓଡ଼ିଶାକୁ ୧୭୫୧ ଖ୍ରୀଷ୍ଟାବ୍ଦରେ ଜୟ କରିଥିଲେ ଏବଂ ଏହାଙ୍କୁ ବଙ୍ଗଦେଶ ପାଇଁ ୧୨ ଲକ୍ଷ ଟଙ୍କା ବାର୍ଷିକ 'ଚୌଥ' ଦେବାକୁ ଅଲିବର୍ଦ୍ଦି ଖାଁ ସ୍ୱୀକାର କରିଥିଲେ । ଏହାଙ୍କ ପୁତ୍ର ଜାନୋଜୀଙ୍କର ନାତି ଅଟି ଜଣେ ପରବର୍ତ୍ତୀ ରାଜା ରଘୁଜୀ-ଭୋଁସ୍‌ଲାଙ୍କଠାରୁ ଇଂରାଜମାନେ ଦେବଗ୍ରାମର ସ୍ମରଣୀୟ ସନ୍ଧିଦ୍ୱାରା ଓଡ଼ିଶାକୁ ପ୍ରାପ୍ତ ହୋଇ ୧୮୦୩ ସାଲରେ ଓଡିଶା ଅଧିକାର କଲେ । ]

ରଘୁ ତିଳକ—ସଂ. ବି ( ଷଷ୍ଠୀ ତତ୍ )—ରାମଚନ୍ଦ୍ର—Raghu tilaka Rāmachandra ( Apte ).

ରଘୁ ନନ୍ଦନ—ସଂ. ବି—ରାମଚନ୍ଦ୍ର—Rāmachandra ଦେ. ବି. Raghu nandana ପୁଂ—୧ । ଲୋକଙ୍କ ନାମ—1. A name given to males ୨ । ରଘୁନନ୍ଦନ ଭଟ୍ଟାଚାର୍ଯ୍ୟ ( ଦେଖ )—2. Raghnnandana bhaṭṭāchārjya ( See ).

ରଘୁନନ୍ଦନ ଭଟ୍ଟାଚାର୍ଯ୍ୟ—ଦେ. ବି ( ନାମ )—ବଙ୍ଗୀୟ ସ୍ମୃତି ଗ୍ରନ୍ଥକାର Raghunandana bhaṭṭāchārjya —Name of a commentator on the Hindu law whose opinion prevails in Bengal. [ ଦ୍ର—ଏ ଚୈତନ୍ୟଦେବଙ୍କ ସମସାମୟିକ ଥିଲେ । ନବଦ୍ୱୀପ ଏହାଙ୍କ ଜନ୍ମସ୍ଥାନ । ଏ ସମ୍ପାଦିତ ସ୍ମୃତିରୁ ଓ ପୁରାଣରୁ ସାର ସଂଗ୍ରହ କରି ବର୍ତ୍ତମାନକାଳୋପଯୋଗୀ ଅଷ୍ଟାବିଂଶତି ତତ୍ତ୍ୱଯୁକ୍ତ ବ୍ୟବସ୍ଥାଗ୍ରନ୍ଥ ରଚନା କରି ଯାଇ ଅଛନ୍ତି । ଏହାଙ୍କ ମତ ଅନୁସାରେ ବଙ୍ଗୀୟ ହିନ୍ଦୁସମାଜ ବର୍ତ୍ତମାନ ପରିଚାଳିତ । (ସୁବଳଚନ୍ଦ୍ର) ]

ରଘୁ ନାଥ—ସଂ. ବି ( ଷଷ୍ଠୀ ତତ୍ )—୧ । ରାମଚନ୍ଦ୍ର—1. Rāma-Raghu nātha chandra. ୨ । ଶାଳଗ୍ରାମ ବିଶେଷ—2. Name of one species of Śālagrāma. [ ଦ୍ର—ଶାଳଗ୍ରାମ ଶବ୍ଦ ନୋଟ୍ ଦେଖ । ] ଦେ. ବି ପୁଂ—ପୁରୁଷଙ୍କୁ ଦିଆଯିବା ନାମ—A name given to males.

ରଘୁନାଥ ଦାସ—ଦେ. ବି ( ନାମ )—୧ । ପଞ୍ଚଦଶ ଶତାବ୍ଦୀର ବଙ୍ଗୀୟ Raghunātha dāsa କବିବିଶେଷ—1. Name of a very pious Bengali Baishnaba poet who was contemporary of Chaitanya. [ ଦ୍ର—ଏ ଚୈତନ୍ୟଦେବଙ୍କ ସମସାମୟିକ ଜଣେ ଧନପୁତ୍ର ଓ ଭକ୍ତପ୍ରବର ଥିଲେ । ଏହାଙ୍କ ପିତା ଗୋବର୍ଦ୍ଧନ ଚତୁର୍ଦ୍ଦଶ ଶତାବ୍ଦୀରେ ବଙ୍ଗଳାର ନବାବଙ୍କଠାରୁ 'ସପ୍ତଗ୍ରାମ' ନାମକ 'ପର୍‌ଗନ୍' ତାଲୁକର ଇଜାରଦାରି ପାଇଥିଲେ; ରଘୁନାଥ ପରମବୈଷ୍ଣବ ହୋଇ ନିର୍ଲିପ୍ତଭାବରେ ସଂସାରଯାତ୍ରା ନିର୍ବାହ କରୁଥିଲେ ଓ ଶ୍ରୀ ଚୈତନ୍ୟଦେବଙ୍କର ପ୍ରଧାନ ଭକ୍ତ ଥିଲେ । ଶ୍ରୀ ଚୈତନ୍ୟଙ୍କ ଦେହତ୍ୟାଗ ପରେ ଏ ବୃନ୍ଦାବନକୁ ଯାଇ ରାଧାକୁଣ୍ଡନିକଟରେ ବାସ କଲେ ଓ ସେହିଠାରେ ଦେହତ୍ୟାଗ କଲେ । ଏହାଙ୍କ ରଚିତ ବଙ୍ଗଳା ଉପଦେଶା-ମୃତ, ମନଃଶିକ୍ଷା, ଶ୍ରୀ ଚୈତନ୍ୟ ସ୍ତବ କଳ୍ପବୃକ୍ଷ, ବିଳାପ-କୁସୁମାଞ୍ଜଳି, ଶ୍ରୀ ପ୍ରେମାମ୍ବୁଜ ମକରନ୍ଦାଖ୍ୟ ବୈଷ୍ଣବସମାଜରେ ପରମାଦୃତ—ସୁବଳଚନ୍ଦ୍ର । ] ୨ । ଅଷ୍ଟାଦଶ ଶତାବ୍ଦୀର ଉତ୍କଳୀୟ କବିବିଶେଷ—2. Name of an Oriya poet of the 18th century. [ ଦ୍ର—ଏ ବିଦ୍ୟାକଳ୍ପଲତିକା, ପ୍ରାୟଶ୍ଚିତ୍ତ ତରଙ୍ଗିଣୀ ଓ ଉତ୍ସବ ତରଙ୍ଗିଣୀ ପ୍ରଭୃତି ସଂସ୍କୃତ ଗ୍ରନ୍ଥ ପ୍ରଣୟନ କରିଥିଲେ । ଜଗବନ୍ଧୁ. ପ୍ରାଚୀନ ଉତ୍କଳ । ]

ରଘୁନାଥ ଭଞ୍ଜ—ଦେ. ବି (ନାମ)—ମୟୂରଭଞ୍ଜ ରାଜ୍ୟର ଜନୈକ ସ୍ୱର୍ଗୀୟ Raghunātha bhañja ରାଜା—Name of a king of Mayurabhanja State. [ଦ୍ର—ଏ ଖ୍ରୀ ୧୭୨୮ରୁ ୧୭୫୦ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ। 'ରସଲହରୀ ଏହାଙ୍କ ରଚିତ କାଳ୍ପନିକ କାବ୍ୟ—ବିନାୟକ ଉତ୍କଳ ସାହିତ୍ୟ ଇତିହାସ । ]

ରଘୁନାଥ ଭଟ୍ଟାଚାର୍ଯ୍ୟ—ଦେ. ବି (ନାମ)—ସ୍ୱନାମଧନ୍ୟ ବଙ୍ଗୀୟ ପଣ୍ଡିତ-Raghunātha bhaṭṭāchārjya A famous Bengali Pandit (the descendant of Swāmi Rāmā nanda the annotator of Amara Kosha). [ଦ୍ର—ଏ ଅମରକୋଷ ଟୀକାକାର ସ୍ୱାମୀ ରାମାନନ୍ଦଙ୍କ ବଂଶର ଜଣେ ପ୍ରାଚୀନ ପଣ୍ଡିତ ଥିଲେ । ]

ରଘୁନାଥ ରାଓ(ବ)—ଦେ. ବି—ପୁନାର ଚତୁର୍ଥ ପେଶୱାଙ୍କ ଭାଇ—Raghunātha rāo(wa) Name of a brother of the Peśwa. [ ଦ୍ର—ଏ ଖ୍ରୀ ୧୭୫୮ ରେ ପଞ୍ଜାବ ଅବମଣ କଲେ ଓ ଏଥିଯୋଗୁଁ ଅଯୋଧ୍ୟାର ନବାବ୍ ଅହାମଦ୍‌ସାହା ଅବ୍‌ଦାଲି ଓ ରୋହିଲାମାନଙ୍କ ସହାୟତାରେ

ମରହଟ୍ଟାଙ୍କ ସଙ୍ଗେ ତୃତୀୟ ପାଣିପଥ ଯୁଦ୍ଧ ଖ୍ରୀ ୧୭୬୧ ରେ କରି ମରହଟ୍ଟାମାନଙ୍କୁ ପରାସ୍ତ କଲେ—ପ୍ରୋଥେରା ଭାରତ ଇତିହାସ ।]

**ରଘୁନାଥ ରାଜଗୁରୁ**—ଦେ. ବି (ନାମ)—ଉତ୍କଳୀୟ ପଣ୍ଡିତବିଶେଷ—Raghunātha rājaguru Name of an Oriya Pandit. [ଦ୍ର—ଏ ଖଲ୍ଲିକୋଟର ସ୍ୱର୍ଗୀୟ ରାଜା (ବର୍ତ୍ତମାନ ରାଜା ରାମଚନ୍ଦ୍ରଙ୍କ ପିତାମହ) ନାରାୟଣ ମର୍ଦ୍ଦରାଜ ଦେବଙ୍କ ଦେୱାନ ଥିଲେ । ଏ ଜଣେ ଓଡ଼ିଆ ବ୍ରାହ୍ମଣ ଓ ସଂସ୍କୃତଜ୍ଞ ପଣ୍ଡିତ ଥିଲେ । ଏ କବିସୂର୍ଯ୍ୟଙ୍କ ଚଉପଦୀରତ୍ନାକରର ଅନୁକରଣରେ 'ଚଉପଦୀ କଳାନିଧି' ନାମରେ ଖଣ୍ଡିଏ ସଙ୍ଗୀତ (ଚଉପଦୀ) ଗ୍ରନ୍ଥ ରଚନା କରିଥିଲେ ଓ ଏ ଅନେକଗୁଡ଼ିଏ ଓଡ଼ିଆ ଚଉତିଶା ରଚନା କରିଥିଲେ । ଚିକିଟି ରାଜ୍ୟରେ ଅଧୁନା ଅପ୍ରକାଶ ରାସଲୀଳା ଗ୍ରନ୍ଥର ମଧ୍ୟ ଏ ରଚକ ଥିଲେ ।]

**ରଘୁନାଥ ଲେଲେ**—ଦେ. ବି (ନାମ)—ବମ୍ବେ ପ୍ରଦେଶର ନାସିକ୍‌ବାସୀ Raghunātha lele ଜ୍ୟୋତିର୍ବିଦ୍‌ବିଶେଷ Name of an astronomer of Nasik [ଦ୍ର—ଏ ପାଶ୍ଚାତ୍ୟ ନାବିକ ପଞ୍ଜିକା (Nautical almanac) ସାହାଯ୍ୟରେ ସାୟନପଞ୍ଚାଙ୍ଗ ନାମକ ଜ୍ୟୋତିଷ ପଞ୍ଜିକା ସଂକଳନ କରିଥିଲେ । ]

**ରଘୁନାଥ ଶିରୋମଣି**—ଦେ. ବି (ନାମ)—ବଙ୍ଗୀୟ ପ୍ରସିଦ୍ଧ ନ୍ୟାୟଗ୍ରନ୍ଥକାର Raghunātha śiromaṇi Name of a logician of Bengal, contemporary of Chaitanya. [ଦ୍ର—ଏ ଚୈତନ୍ୟଦେବଙ୍କ ସମସାମୟିକ ଥିଲେ । ଏହାଙ୍କର ଜନ୍ମସ୍ଥାନ ନବଦ୍ୱୀପ । ପ୍ରାଚୀନ ନ୍ୟାୟଦର୍ଶନର ସାଇସଂସ୍କାର କରି ଏ ନବ୍ୟ ନ୍ୟାୟସମ୍ବନ୍ଧୀୟ ଗ୍ରନ୍ଥ ରଚନା କରିଥିଲେ ।

**ରଘୁନାଥ ହରିଚନ୍ଦନ**—ଦେ. ବି (ନାମ)—ବାଣପୁରର ଜଣେ ରାଜା—Raghunātha harichandana Name of a king of Bāṇapura in Puri District. [ଦ୍ର—ଏ ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ରାଜା ଥିଲେ ଓ ଲୀଳାବତୀ ନାମକ ଓଡ଼ିଆ କାବ୍ୟ ରଚନା କରିଥିଲେ ।]

**ରଘୁନାଥିଆ**—ପ୍ରାଦେ (ସମ୍ବଲପୁର) ବି—ଏକଶ୍ରେଣୀର ବ୍ରାହ୍ମଣ—A class Raghunāthiā of Brahmans of Sambalpur [ଦ୍ର—କିମ୍ବଦନ୍ତୀ ଅଛି ଯେ ସମ୍ବଲପୁରର ଜଣେ ରାଜା ରଘୁନାଥଦେବ ପୂର୍ବେ ଏମାନଙ୍କ ପୂର୍ବପୁରୁଷମାନଙ୍କୁ ଏଣିକି ଗ୍ରାମ ଦାନ କରି ଆଣି ତାଙ୍କ ରାଜ୍ୟରେ ବସାଇଥିଲେ ଓ ଏହିମାନଙ୍କ ବଂଶ ସମ୍ବଲପୁରରେ ଓ ଅନ୍ୟାନ୍ୟ ଗଡ଼ଜାତରେ ବ୍ୟାପିଲେ । ଓଡ଼ିଶାର ଅନ୍ୟ ଅଞ୍ଚଳର ମାସ୍ତାନ ବା ବଳଭଦ୍ରଗୋଷ୍ଠୀ ବ୍ରାହ୍ମଣଙ୍କ ପରି ସମ୍ବଲପୁର ବ୍ରାହ୍ମଣ-ସମାଜରେ ଏମାନଙ୍କର ସ୍ଥାନ । ସମ୍ବଲପୁରର ବ୍ରାହ୍ମଣମାନେ ସାଧାରଣତଃ ୩ ଶ୍ରେଣୀରେ ବିଭକ୍ତ; ଓଡ଼ିଆ, ଝାଡ଼ୁଆ ଓ ରଘୁନାଥିଆ ।]

ପ୍ରାଦେ. (ଗଞ୍ଜାମ) ବି—ପଣ୍ଡା ପଢ଼ିଆରିଙ୍କଠାରୁ ନିକୃଷ୍ଟତର ବ୍ରାହ୍ମଣ ବିଶେଷ—A class of inferior Brāhmaṇas. ଦେ. ବି. ପୁଂ—(ଅନାଦରାର୍ଥକ) ରଘୁନାଥର ଡାକ ନାମ—A name for calling Raghunātha.

**ରଘୁ ନାୟକ**—ସଂ. ବି.—(୬ଷ୍ଠୀ ବା ୭ମୀ ତତ୍)—ରାମଚନ୍ଦ୍ର—Raghu nāyaka Rāmachandra.

**ରଘୁ ନାହା**—ଦେ. ବି.—(ସଂ. ରଘୁନାଥ)—ରାମଚନ୍ଦ୍ର—Raghu nāhā Rāmachandra. [ଦ୍ର—ରାଘବ ହେଲେ ସାହା, ଲକ୍ଷଣ ଥିବ ଯାହା, ଗୋଟିଏ ମାରିବ ରଘୁନାହା । ଉପେ. ବୈଦେହୀଶବିଳାସ ।]

**ରଘୁ ପତି**—ସଂ. ବି. (୬ଷ୍ଠୀ ତତ୍)—ରାମଚନ୍ଦ୍ର—Raghu pati Rāmachandra. (ରଘୁବର, ରଘୁପୁଙ୍ଗବ—ଅନ୍ୟରୂପ)

**ରଘୁ ପ୍ରତିନିଧି**—ସଂ. ବି—(୬ଷ୍ଠୀ ତତ୍)—୧ । ରାଜା ରଘୁଙ୍କ ପ୍ରତିନିଧି Raghu pratinidhi ବା ସ୍ଥଳାଭିଷିକ୍ତ ବ୍ୟକ୍ତି 1. A representative of king Raghu. ୨ । ରାଜା ଅଜ ( କାଳିଦାସଙ୍କ ରଘୁବଂଶ )—2 King Aja

**ରଘୁ ବଂଶ**—ସଂ. ବି.—(୬ଷ୍ଠୀ ତତ୍; ରଘୁ+ବଂଶ)—୧ । ରଘୁ Raghu baṁśa ରାଜାଙ୍କର ବଂଶ; ରଘୁକୁଳ—1. The dynasty of king Raghu. ୨ । (ବହୁବ୍ରୀହି; ରଘୁବଂଶ ବର୍ଣ୍ଣିତ ହୋଇଅଛି ଯହିଁରେ)—କାଳିଦାସ ପ୍ରଣୀତ ମହାକାବ୍ୟ—2. Name of the Sanskrit epic poem by Kālidāsa. [ଦ୍ର—ରଘୁବଂଶ ମହାକାବ୍ୟରେ ରଘୁଙ୍କ ପିତା ଦିଲୀପଙ୍କଠାରୁ କୁଶଙ୍କ ପୁତ୍ର ଅଗ୍ନିବର୍ଣ୍ଣ ପର୍ଯ୍ୟନ୍ତ ଅଯୋଧ୍ୟାର ରାଜାମାନଙ୍କ ବିଷୟ ବର୍ଣ୍ଣିତ ଅଛି । ଏ ମହାକାବ୍ୟ ୧୯ ସର୍ଗରେ ବିଭକ୍ତ । ପ୍ରଥମ ୮ ସର୍ଗରେ ଦିଲୀପ, ରଘୁ ଓ ଅଜଙ୍କ ବିଷୟ, ୯ମ ଠାରୁ ୧୫ଶ ସର୍ଗରେ ଦଶରଥ ଓ ଶ୍ରୀରାମଚନ୍ଦ୍ରଙ୍କ ଓ ଅବଶିଷ୍ଟ ୪ ସର୍ଗରେ କୁଶ ଓ ତାଙ୍କ ପୁତ୍ର ଅଗ୍ନିବର୍ଣ୍ଣଙ୍କ ବିଷୟ ବର୍ଣ୍ଣିତ ହୋଇଅଛି । ରଚନାର ଲାଳିତ୍ୟ ଓ ମାଧୁର୍ଯ୍ୟ ଓ ଭାଷାର ସରଳତାରେ ଏହି କାବ୍ୟ ସଂସ୍କୃତରେ ଅଦ୍ୱିତୀୟ । ଏ କାବ୍ୟର ମଲ୍ଲିନାଥକୃତ ଟୀକା ସର୍ବତ୍ର ଆଦୃତ ଓ ପ୍ରସିଦ୍ଧ ।]

**ରଘୁବଂଶ ତିଳକ**—ସଂ. ବି.—୭ମୀ ତତ୍, ରଘୁବଂଶ+ତିଳକ)—ରଘୁ-Raghubaṁśa tilaka ବଂଶୀୟ ରାଜାମାନଙ୍କ ମଧ୍ୟରେ ଶ୍ରେଷ୍ଠ; ରାମଚନ୍ଦ୍ର—Rāmachandra.

**ରଘୁବଂଶିକ**—ସଂ. ବି. ପୁଂ (ରଘୁବଂଶୀକ+ସ୍ୱାର୍ଥେ କ)—୧ । ରଘୁବଂଶଜାତ Raghubaṁśika ବ୍ୟକ୍ତି—1. A person born in the family of Raghu. ୨ । ରାମଚନ୍ଦ୍ର—2. Rāmachandra. (ଉ—ବୋଲଦେଲା ପ୍ରାୟେ ଗୋଳ ଚନ୍ଦନଙ୍କୁ ହୋଇଲେ ରଘୁବଂଶିକ ଯେ ଉପେ. ବୈଦେହୀଶବିଳାସ ।)

**ରଘୁବଂଶୀ**—ସଂ.ବିଣ. ପୁଂ (ରଘୁବଂଶ+ଇନ୍; ୧ମା ୧ବ) ରଘୁବଂଶରେ ଜାତ Raghubaṁśī ରାମଚନ୍ଦ୍ର—Rāmachandra. (ଉ—ରାମ ମଣ୍ଡଳୁ ଶୁଦ୍ଧ କରି କି ବାଜିଲାକ ଶୁଣ ଧାର୍ମିକ ରଘୁବଂଶୀ—ବିଶ୍ୱନାଥ. ବିଚିତ୍ରରାମାୟଣ ।)

ରଘୁବଂଶୀୟ—ସଂ.ବିଣ. ପୁଂ(ରଘୁବଂଶ + ଈୟ)—୧ । ରଘୁବଂଶସମ୍ବନ୍ଧୀୟ—
Raghubamśiya 1. Relating to the family of
(ରଘୁବଂଶୀୟା—ସ୍ତ୍ରୀ) Raghu. ୨ । ରଘୁବଂଶଜାତ—2. Born in
the family of king Raghu.

ରଘୁବୀର—ସଂ. ବି. ପୁଂ (୭ମୀ ତତ୍)—ରାମଚନ୍ଦ୍ର—
Raghu bīra Rāmachandra.

ରଘୁମଣି—ସଂ. ବି (୬ଷ୍ଠୀ ତତ୍) —ରାମଚନ୍ଦ୍ର—
Raghumaṇi Rāmachandra.
(ରଘୁଶ୍ରେଷ୍ଠ, ରଘୁସିଂହ—ଅନ୍ୟରୂପ)

ରଘୂଦ୍ଵହ—ସଂ.ବି. ପୁଂ (୬ଷ୍ଠୀ ତତ୍, ରଘୁ+ଉଦ୍ଵହ=ସନ୍ତାନ)-ରାମଚନ୍ଦ୍ର—
Raghūdbaha Rāmachandra.
(ରଘୂଦ୍ଭବ—ଅନ୍ୟରୂପ)

ରଙ୍କ—ସଂ. ବିଣ. ପୁଂ ( ରମ ଧାତୁ=କ୍ରୀଡ଼ାକରିବା+କର୍ତ୍ତୃ. କ )—୧ ।
Raṅka କୃପଣ—1. Miserly; niggardly. ( ଉ—
(ରଙ୍କା—ସ୍ତ୍ରୀ) କଣାରୁ ଭଙ୍କ ! ବଡ଼ଘରପୁଅ ଏଡ଼େ ରଙ୍କ !—ଢଗ)
୨ । ଦରିଦ୍ର—2. Poor; indigent. (ଉ—ରଙ୍କ
ଭିନ ଜନମ କଥା ଜାଣେ; ରଙ୍କକୁ ଭିନ ଜନମ କଥା
ଜଣା—ଢଗ । ଏହାର ଅର୍ଥ ଏହି ଯେ—'ଯେ ଏ ଜନ୍ମରେ
ଗରିବ ହୋଇଥାଏ, ସେ ପୂର୍ବଜନ୍ମରେ ଦାନ କରି ନ ଥିବାରୁ
ଏ ଜନ୍ମରେ ଦରିଦ୍ର ହୋଇଅଛି ଓ ଏ ଜନ୍ମରେ ଦାନ କରୁ
ନ ଥିବାରୁ ପରଜନ୍ମରେ ଦରିଦ୍ର ହେବ' ଏହିପରି ପୂର୍ବଜନ୍ମର,
ଇହଜନ୍ମର ଓ ପରଜନ୍ମର ବିଷୟ ରଙ୍କ ଜାଣିପାରେ ।) ୩ ।
ମନ୍ଦ; ଅଳସ—3. Idle; slow; dull. ୪ । ନୀଚ;
କ୍ଷୁଦ୍ର—4. Base; vile; low; mean. ୫ । ଦୁଃଖୀ;
ଦୁର୍ଦ୍ଦଶାଗ୍ରସ୍ତ—5. Wretched; miserable (Apte).
ସଂ. ବି. ପୁଂ—୧ । ଭିକ୍ଷୁକ—1. A beggar (Apte).
(ଉ—ରଙ୍କ ହାତକୁ ମାଣିକ ଗଲା, ମାଣିକ ବୋଇଲା ମୋ
ମହତ ଗଲା—ଢଗ ) ୨ । ଦୁର୍ଦ୍ଦଶାଗ୍ରସ୍ତ ବ୍ୟକ୍ତି—
2. A wretch (Apte). ୩ । କ୍ଷୁଧାର୍ତ୍ତ ଓ ଉପବାସୀ
ବ୍ୟକ୍ତି—3. A hungry and half starved
being (Apte) [ ଉ—ରଙ୍କ ପାଇଲୁ ଝୁଲା, ପାଣି ପିଇ
ପିଇ ମଲା—ଢଗ] ୪ । ଗରିବ ଲୋକ—4. An
indigent person. ( ଉ—ରଙ୍କ ଘରେ
ଲୋଲୁପ ରଂକ ରାଜକୁ ଲୁହା—ଢଗ) ଦେ. ବିଣ—୧ । ଲୋଭୀ—
1. Avaricious. ( ଉ—ଭୂମିର ମନ୍ତ୍ରିମାନେ ଅତି
ଦରିଦ୍ରଙ୍କ, ଧନ ଅଣିବାରେ ନୁହନ୍ତି ଟିକି ରଙ୍କ—କୃଷ୍ଣସିଂହ.
ମହାଭାରତ ସଭା ।) ୨ । କୌଣସି ବିଷୟରେ ଅଭାବ
ଅନୁଭବ କରିବାଯୋଗୁଁ ସେହି ବିଷୟପାଇଁ ଲାଳାୟିତ ବା
ଲୁବ୍ଧ—2. Hankering after a particular
thing which one has not got. [ଦ୍ର—
ରଙ୍କ ଇଚ୍ଛାରେ କି ଭୋଜନ ? - ଢଗ । ଭୋଜନ ପାଇ
ଲାଳାୟିତ ଗରିବ ବ୍ୟକ୍ତିକୁ ତାହାର ଇଚ୍ଛାନୁରୂପ ଭୋଜନ
ମିଳେ ନାହିଁ; ଦାତାର ଇଚ୍ଛା ଅନୁସାରେ ସିନା ରଙ୍କକୁ
ଭୋଜନ ମିଳେ ।
ଖାଇଲାଘରର ପୁଅ ରଙ୍କ !
ଖାଇଲା ପିଇଲା ପୁଅ ରଙ୍କ ! } ପ୍ରବଚନ; ଏଥିର ଅର୍ଥ :—
ଯେଉଁ ପରିବାରରେ ଭୋଜନର ଅଭାବ ନାହିଁ ସେହି
ପରିବାରର ପିଲାମାନେ ଯେବେ ଖାଦ୍ୟ ଦେଖିଲେ
ଲାଳାୟିତ ହୁଅନ୍ତି ତେବେ ଏହି ପ୍ରବଚନର ଉଲ୍ଲେଖ
କରାଯାଏ ।]

ରଙ୍କଣା—ଦେ. ବି. ପୁଂ (ସଂ. ରଙ୍କ) - ରଙ୍କୁଣା (ଦେଖ)
Raṅkaṇā (ରଙ୍କଣୀ—ସ୍ତ୍ରୀ) Raṅkuṇā (See)

ରଙ୍କ ଧନ—ଦେ.ବି.—(ସଂ. ରଙ୍କ+ଧନ)—ରଙ୍କର ବା ଦୁଃଖୀ ବ୍ୟକ୍ତିର
Raṅka dhana ଧନ ବା ରତ୍ନ ଯେପରି ଆଦରଣୀୟ ବା ପ୍ରିୟ,
गरिबेर धन; रङ्कका धन ସେହିପରି ପ୍ରିୟତମ ବ୍ୟକ୍ତି—
(ରଙ୍କୁଣୀଧନ—ଅନ୍ୟରୂପ) Dearest or beloved person;
a person as dear to a man as are riches to
the poor.

ରଙ୍କ ନାଥ—ସଂ ବି—ଦୀନନାଥ; ଭଗବାନଙ୍କ ନାମ—Name of
Raṅka nātha God, the Lord of the poor.
দীননাথ; रङ्कनाथ ଦେ ବି. ପୁଂ.—ଲୋକଙ୍କ ନାମ—Name
given to males.

ରଙ୍କ ନିଧି—ସଂ. ବି—ରଙ୍କନାଥ (ଦେଖ)—Raṅkanātha (See)
Raṅka nidhi ଦେ. ବି—ରଙ୍କ ଧନ (ଦେଖ)—Raṅka
गरिबेर निधि; रङ्कनिधि dhana (See).

ରଙ୍କପଣ—ଦେ. ବି—ଲାଳାୟିତହେବାର ଭଙ୍ଗୀ; ଲୁବ୍ଧପଣ; ଲୋଭୀପଣ—
Raṅkapaṇa Avariciousness. [ଉ—ଅସୁର ସୁରଙ୍କ
ଲୋଭ रङ्कपना ରମ୍ୟ ଦ୍ରବ୍ୟ ରଙ୍କପଣ ଶୁଣି ସିନ୍ଧୁ କୂଳରେ
[ରଙ୍କପଣିଆ(ଆଁ), ରଙ୍କ(ଙ୍କୁ)ଣାପଣ—ଅନ୍ୟରୂପ] କବିସୂର୍ଯ୍ୟ—ସଙ୍ଗୀତ ।]

ରଙ୍କ ରତନ—ଦେ. ବି—ରଙ୍କ ଧନ (ଦେଖ)—Raṅka dhana
Raṅka ratana गरिबेर माणिक रङ्करतन (See)
(ରଙ୍କ ଖଜାନା—ଅନ୍ୟରୂପ)

ରଙ୍କା—ଦେ. ବି—( ସଂ. ରଙ୍କ )—କୌଣସି ବିଷୟପ୍ରତି ଲାଳସା;
Raṅkā ଭୋଜ୍ୟବସ୍ତୁ ପ୍ରତି ଲାଳସା; ଟେକ—Hankering
ଲୋଭ after a thing; inordinate hankering
लालच after a peculiar food. ବିଣ—୧ । ଲୋଭୀ—
ଲୋଭୀ 1. Avaricious ୨ । ଭୋଜନ ଲୋଭୀ—2.
रङ्क, लालची Greedy; avaricious after food.
୩ । କୌଣସି ବିଷୟ ପାଇଁ ଲାଳାୟିତ—3. Hankering after any thing.

ରଙ୍କା ଛଡ଼ା(ଢ଼େ)ଇବା—ଦେ.କ୍ରି—କୌଣସି ଦ୍ରବ୍ୟର ପୂର୍ତ୍ତି ଭୋଜନ ବା
Raṅkā chhardaibā ଭୋଗ ଦ୍ୱାରା ତଜ୍ଜନ୍ୟ ମନର ଲାଳସାକୁ
लालसामेटान ତୃପ୍ତି କରିବା—To satiate one's hanker-
लालसा मिटाना ing after something by partaking
(ରଙ୍କା ଛଡ଼ିବା—ବି) of it or enjoying it to the fill.

**ରଙ୍କା ଛାଡ଼ିବା**—ଦେ. କ୍ରି—ଲାଳସାର ତୃପ୍ତି—Satiety of one's Rankā chhārḍibā hankering. (ରଙ୍କା ଛାଡ଼ିଯିବା—ଲାଳସା ମିଟା **लालसा मिटना** (ରଙ୍କା ମେଣ୍ଟିବା—ଅନ୍ୟରୂପ)

**ରଙ୍କାଳ**—ଦେ. ବିଣ. ପୁଂ—( ସଂ. ରଙ୍କ )—୧ । ଅତି କ୍ଷୁଧାତୁର—Rankāla 1. Very hungry ୨ । ଅତିଶଯ୍ୟ ଲାଳସାତୁର—(ରଙ୍କାଳିଆ—ଅନ୍ୟରୂପ) 2. Greedily hankering after ଅତିକ୍ଷୁଧାର୍ତ୍ତ **रङ्क; लालची** (a thing) (ରଙ୍କାଳୀ, ରଙ୍କାଳେଇ—ସ୍ତ୍ରୀ)

**ରଙ୍କି**—ଦେ. ବିଣ. ଓ ବି. ପୁଂ—(ସଂ ରଙ୍କ)—ରଙ୍କ (ଦେଖ—Ranki ଗରୀବ **रंकी** Ranka (See)

**ରଙ୍କି ଦୁଃ(ଦୁ)ଖୀ**—ଦେ. ବିଣ—(ଏକାର୍ଥକ ସହଚର ଶବ୍ଦ)—ଦୁଃଖୀରଙ୍କି Ranki duh(du)khī (ଦେଖ)—Duhkhī ranki (See). ଗରୀବ ଦୁଃଖୀ **रंकीदुखी** ଦେ.ବି. (ବହୁବଚନ। ଗରିବ ଲୋକମାନେ—The poor.

**ରଙ୍କୁ**—ସଂ. ବି (ରମ୍. ଧାତୁ=କ୍ରୀଡ଼ା କରିବା+କର୍ତ୍ତୃ. କୁ)—କର୍ବୁର Ranku ବର୍ଣ୍ଣ ପୃଷ୍ଠ ବିଶିଷ୍ଟ ମୃଗବିଶେଷ; ବାଳୁଙ୍ଗିଆ - Spotted dear; a deer having a multicoloured back; antelope.

**ରଙ୍କୁ ଈକ୍ଷଣୀ**—ଦେ. ବିଣ. ସ୍ତ୍ରୀ—( ସଂ ରଙ୍କୁଈକ୍ଷଣା )—ମୃଗଲୋଚନା; Ranku īkshaṇī ଏଣୀନୟନା; ସୁଲୋଚନା—(a woman) Having eyes as graceful as those of a roe.

**ରଙ୍କୁଣା**—ଦେ. ବିଣ. ପୁଂ—( ସଂ. ରଙ୍କ )—୧ । ଦରିଦ୍ର—1. Poor. Rankuṇā ୨ । କୃପଣ—2. Miserly. ୩ । ଖାଦ୍ୟଲୋଲୁପ—ଗରୀବ **रङ्क** 3. Avaricious after food. ୪ । କୌଣସି (ରଙ୍କୁଣୀ—ସ୍ତ୍ରୀ) ବସ୍ତୁ ପାଇଁ ଲାଳାୟିତ—4. Eagerly hankering after something (ଉ—ସେ ଯେ କୃପଣ **मक्खीचूस** ଲୋଭୀ **लालची** ତରୁଣୀ ଶିରୋମଣି, ଶ୍ରୀକୃଷ୍ଣଚରିତ ରଙ୍କୁଣୀ । ରାମଦାସ—ଦାର୍ଢ୍ୟତାଭକ୍ତି ।)—(ଦ୍ର—ଏ ଶବ୍ଦ ଗାଳିରେ ମଧ୍ୟ ବ୍ୟବହୃତ ହୁଏ । ) ଦେ. ବି—ରଙ୍କ (ଦେଖ)—Ranka ( See ) [ ଉ—ରଙ୍କୁଣା(ଣୀ) ଧାଇଁଛି ଇଳସୀ, କଣ୍ଠାମଣ୍ଡା କରି ଗିଳୁଛି—ଭଗ ]

**ରଙ୍କୁଣୀ ରତନ**—ଦେ ବି—(ଲକ୍ଷଣାର୍ଥ—ଦରିଦ୍ର ଅକ୍ଷିରେ ରତ୍ନର ଆଦର; Rankuṇī ratana ଏହି ଭାବରୁ (ସ୍ନେହ-ସମ୍ବୋଧନ) ପ୍ରିୟତମ ଗରିବେର ଧନ ବ୍ୟକ୍ତି—(a term of loving adress) One's **रंकनिका रतन** beloved being. [ ଉ—ରଙ୍କୁଣୀ ରତନ ମୋର ମହୁଡ଼ିର ମଣି । ଜନକିଶୋର. ସୀତାବନବାସ] (ରଙ୍କୁଣୀ ଖଙ୍ଖାଳ, ରଙ୍କୁଣୀଧନ, ରଙ୍କୁଣୀ ଥାଳ—ଅନ୍ୟରୂପ)

**ରଙ୍ଗ (ଧାତୁ)**—ସଂ.—ଗତି କରିବା—Ranga (root) To move.

**ରଙ୍ଗ**—ସଂ. ବି (ରଞ୍ଜ୍ ଧାତୁ=ରଙ୍ଗାଇବା; ମନ ମୋହିବା+କରଣ. Ranga ଅ)—୧ । ରଞ୍ଜକଦ୍ରବ୍ୟ; ଯାହା ଦ୍ୱାରା ଅନ୍ୟ ଦ୍ରବ୍ୟକୁ ରଞ୍ଜିତ ବା ରଞ୍ଜିତ କରାଯାଏ—1. A dye; pigment; paint. [ ଦ୍ର—ନାନା ବସ୍ତୁକୁ ରଙ୍ଗ କରିବା ପାଇଁ ବଜାରରେ ବିଭିନ୍ନ ରଙ୍ଗ ମିଳେ । ଲୁଗା, କାଠ, ଧାତୁ, କାଗଜ, ପ୍ରତିମା, କାନ୍ଥ, ଆଦିକୁ ରଞ୍ଜିତ କରିବାରେ ଭିନ୍ନ ଭିନ୍ନ ରଙ୍ଗ ବ୍ୟବହୃତ ହୁଏ । କେତେକ ରଙ୍ଗ ପାଣିମିଶା (water colour) ଓ କେତେକ ତେଲମିଶା (oil paint) । ପାଣିମିଶା ରଙ୍ଗ ଧୋଇଲେ ଛାଡ଼ିଯାଏ, ତେଲମିଶା ରଙ୍ଗ ସହଜରେ ଛାଡ଼େ ନାହିଁ । କେତେକ ରଙ୍ଗ ବହୁକାଳ ସ୍ଥାୟୀ (ପକ୍କା) ଓ କେତେକ ରଙ୍ଗ ଅଳ୍ପକାଳ ସ୍ଥାୟୀ (କଞ୍ଚା) । ] ୨ । (+କର୍ତ୍ତୃ ଅ) ଶୁକ୍ଳରକ୍ତାଦି ବର୍ଣ୍ଣ—2 Colour; hue (e. g white, red etc). [ଦ୍ର—କୌଣସି ବସ୍ତୁ ପ୍ରତି ଆମ୍ଭମାନଙ୍କ ଦୃଷ୍ଟି ଗଲେ ତାହାର ଆକାର ଓ ବର୍ଣ୍ଣ ସମ୍ବନ୍ଧେ ଆମ୍ଭମାନଙ୍କ ଜ୍ଞାନ ଜନ୍ମେ । ବସ୍ତୁର ଆକାର ସ୍ପର୍ଶ ଦ୍ୱାରା ଜଣାଯାଇ ପାରେ, କିନ୍ତୁ ଦୃଷ୍ଟି ବ୍ୟତିରେକେ ବସ୍ତୁର ରଙ୍ଗ ଜଣାଯାଇ ନ ପାରେ । ଆଲୋକର ବା କିରଣର ବିଭିନ୍ନତା ଯୋଗୁଁ ରଙ୍ଗର ବିଭିନ୍ନତା ହୁଏ । ବୈଜ୍ଞାନିକମାନେ ବିଶ୍ଳେଷଣପୂର୍ବକ ସ୍ଥିର କରିଅଛନ୍ତି ଯେ, ୭ଗୋଟି ରଙ୍ଗହିଁ ମୌଳିକ ରଙ୍ଗ, ଯଥା—୧. ବାଇଗଣୀ(violet), ୨. ନେଳି(indigo), ୩. ଶ୍ୟାମଳ ବା ଆକାଶ ବର୍ଣ୍ଣ (blue), ୪. ଶାଗୁଆ (green), ୫. ହଳଦିଆ (yellow), ୬. ନାରଙ୍ଗୀ (orange) ଓ ୭. ନାଲିଆ (red) । ଏହି ସାତରଙ୍ଗର ମିଳନରେ ଧଳାରଙ୍ଗ ଓ ସାତ ରଙ୍ଗର ଅନୁପସ୍ଥିତି କଳାରଙ୍ଗ । ଏହାଛଡ଼ା ଦୁଇଟି ତିନୋଟି ରଙ୍ଗ ମିଶାଇଲେ ମିଶ୍ରରଙ୍ଗର ଉତ୍ପତ୍ତି ହୁଏ । ସୂର୍ଯ୍ୟକିରଣରେ ଏ ୭ଟି ରଙ୍ଗ ଅଛି । ସୂର୍ଯ୍ୟକିରଣ ମେଘରେ ପ୍ରତିଫଳିତ ହୋଇ ଇନ୍ଦ୍ରଧନୁ ଜାତ ହେଲେ ଇନ୍ଦ୍ରଧନୁରେ ଉକ୍ତ ୭ଟି ରଙ୍ଗ ଯଥାକ୍ରମେ ଦେଖାଯାଏ । ସୂର୍ଯ୍ୟକିରଣ ବା ଆଲୋକ ସାହାଯ୍ୟରେ ଆମ୍ଭେମାନେ ରଙ୍ଗ ଦେଖିପାରୁଁ । ନାଲି ରଙ୍ଗର ବସ୍ତୁରେ ସୂର୍ଯ୍ୟକିରଣ ବା ଆଲୋକ ପଡ଼ିଲେ, ତାହା ଆଉ ୬ଟି ରଙ୍ଗକୁ ଶୋଷି ନିଏ, କେବଳ ନାଲି ରଙ୍ଗ ବାକି ରହିଯାଏ ଓ ଉକ୍ତ ବସ୍ତୁ ଆମକୁ ନାଲିଆ ଦିଶେ । କଳାବସ୍ତୁ ସୂର୍ଯ୍ୟକିରଣର ସବୁ ରଙ୍ଗକୁ ଶୋଷିନିଏ, ଏଥିପାଇଁ ରଙ୍ଗର ଅନୁପସ୍ଥିତି ଯୋଗୁଁ ଉକ୍ତ ବସ୍ତୁ ଆମ ଆଖିକୁ କଳା ଦେଖାଯାଏ । ସୂର୍ଯ୍ୟକିରଣରେ ଉକ୍ତ ସାତୋଟି ରଙ୍ଗ ଯେଉଁ ଅନୁପାତରେ ମିଶିଅଛି, ବଜାରରେ ବିକ୍ରିତ ହେଉଥିବା ରଙ୍ଗରେ ସେ ଅନୁପାତ ନ ଥିବାରୁ ତାକୁ ମିଶାଇଲେ ଏ ଫଳ ଘଟିବ ନାହିଁ—ହ. ଶ. । ] ୩ । (+କରଣ. ଅ) ନୃତ୍ୟଗୀତ ଅଭିନୟାଦି—3 Acting, dancing, singing etc. ୪ । ନାଚ—4. Dancing. ୫ । ରଙ୍ଗ ବା ଟିଣ ଧାତୁ—5. Tin (metal). ୬ । ( +ଅଧିକରଣ. ଅ) ନାଟ୍ୟଶାଳା; ନାଟ୍ୟସ୍ଥାନ; ରଙ୍ଗମଞ୍ଚ—6. Theatrical stage; arena; theatre; play house; a place of public amusement. ୭ । ରଣଭୂମି; ସଂଗ୍ରାମ ସ୍ଥଳ—7. Field of battle. ୮ । +କରଣ. ଅ) ଟଙ୍କଣ; ସୋହାଗା—8. Borax. ୯ । ଖଦିର ସାର—

9. Catechu; an extract of catechu. ୧୦ । କହାର; କ୍ରୀଡ଼ା—10 Play; frolic. ୧୧ । ଆମୋଦ; ମଉଜ; ମଜା—11. Amusement, mirth; diversion. ୧୨ । କୌତୁକ; ରହସ୍ୟ; ସୁଅଙ୍ଗ —12. Sport; merriment; fun. ୧୩ । ହସ୍ତାବୟବାଦିର ଭଙ୍ଗିଦ୍ୱାରା ଭାବ ପ୍ରକାଶ କରିବା ଛଳ—13. Act of expressing inward feelings by gestures etc. ୧୪ । ସଭା ଗୃହ—14. A place of assembly (Apte). ୧୫ । ସଭାର ସଦସ୍ୟବର୍ଗ; ଦେଖଣାହାରିମାନେ—15. The members of an assembly; audience (Apte). ୧୬ । ସ୍ୱରବର୍ଣ୍ଣର ଅନୁନାସିକ ପରିବର୍ତ୍ତନ—16. The nasal modification of a vowel (Apte). ଦେ. ବି.—୧ । ରକ୍ତବର୍ଣ୍ଣ

ବଂ ରଂଗ 1. Red colour. ୨ । ଲୋହିତାଦି ଓ ନାନା ବର୍ଣ୍ଣ ବିଶିଷ୍ଟ ବସ୍ତୁ; ମନୋହର ବସ୍ତୁଚୟ—2. Fancy articles of various attractive colours. [ଉ—ରଙ୍ଗ ପସରା ଲିନା ଭବ ସାଗର, ରଙ୍ଗ ଉଛରେ ଦେଖ କ ନାରଖାର । ଉକ୍ତଚରଣ ମନବୋଧ ଚଉତିଶା ।] ୩ । ଆନନ୍ଦ—3. Pleasure. ୪ । ପରିହାସ; ଥଟ୍ଟା; ତାମସା; ରଙ୍ଗରସ—4 Jesting; joking, fun. ୫ । ତାସ୍ ମଧ୍ୟର ଭିନ୍ନ ଭିନ୍ନ ଚାରିଗୋଟି ଚିହ୍ନ—5. The four classes in a pack of card. [ଦ୍ର—ପ୍ରକୃତରେ ଏହାର ବର୍ଣ୍ଣ ଦୁଇଟି, କଳା ଓ ନାଲି । କଳା ଦୁଇ ପ୍ରକାର—କଳାପାନ ଓ ଚିଡ଼ିତନ; ନାଲି ଦୁଇପ୍ରକାର—ଇସ୍କାପାନ ଓ ରୁଇତନ ।] ୬ । ତାସ୍ ଖେଳର ୪ ଗୋଟି ରଙ୍ଗ ମଧ୍ୟରୁ ନିର୍ବାଚିତ 'ରଙ୍ଗର' ତାସକୁ ସର୍ବୋଚ୍ଚ ସ୍ଥାନୀୟରୂପେ ଗଣନା କରି ଖେଳିବାର ଖେଳ—6. A kind of game at cards. ୭ । ନିର୍ବାଚିତ ରଙ୍ଗର ତାସ—7 The trump card. ୮ । ରକମ; ପ୍ରକାର—8.Kind. ୯ । ଗଞ୍ଜପାଖେଳର ଭିନ୍ନ ଭିନ୍ନ ଚିହ୍ନ—9. Different class of cards in Gañjapā. ୧୦ । ସୀସା—10. Lead. ୧୧ । କାମକ୍ରୀଡ଼ା—11. Amorous pastime; dalliance. [ଉ—ବିଭୋଳ ହୋଇ ତା ସଙ୍ଗେ କରିବାରୁ ରଙ୍ଗ । ଉଞ୍ଜ. ବୈଦେହୀଶବିଳାସ ।] ୧୨ । ହର୍ଷ—12. Gladness. [ଉ—ବହିବାକୁ ଶାଢ଼ ରଙ୍ଗେ, ଖାର ସାତ ସାତ ସଙ୍ଗେ । ଭଞ୍ଜ. ବୈଦେହୀଶବିଳାସ ।] ୧୩ । ଯୁଦ୍ଧ—13. Fight. [ଉ—ବୀର ରଙ୍ଗ ଅବସରେ ପିଡ଼ିକା କରି ମାରେ, ହିଳାସ ଲାସ୍ୟ ଧରି ସେ । ଭଞ୍ଜ. ବୈଦେହୀଶବିଳାସ ।] ୧୪ । ବିଷୟ—14. Matter. (ଉ—ବିଗତ ରଙ୍ଗ ଚଉର ଚଉରଙ୍ଗ ସଙ୍ଗର ବନ୍ଧ ସଙ୍ଗ ର । ଭଞ୍ଜ. ବୈଦେହୀଶବିଳାସ ।) ୧୫ । ଅବସ୍ଥା—15. Condition. ୧୬ । ଶୈଳୀ; ଢଙ୍ଗ—16. Mode; manner. ୧୭ । ଦେହର ବର୍ଣ୍ଣ—17. Complexion. ୧୮ । ଆଚରଣ; ଚାଲିଚଳନ—18. Conduct. (ଉ—ବାହୁଆ ! ଆଜ ତୋର ଏକ ରଙ୍ଗ ! ରଙ୍ଗ ଦେଖି ହେଲି ବଡ଼ ତଙ୍ଗ—ସଙ୍ଗୀତ ।) ୧୯ । ଭେଟହେବା—19. Appearance. ୨୦ । ଭଙ୍ଗୀ; ନବରଙ୍ଗ; ଛଇ—20. Airs; exhibition of peculiar conduct. ୨୧ । ରସିକତା—21. Gallantry. ବିଣ—ରକ୍ତବର୍ଣ୍ଣ-ବିଶିଷ୍ଟ; ନାଲିଆ—Red.

**ରଙ୍ଗ ଆଉଟଣ** — ଦେ. ବି—ରଙ୍ଗକୁ ବା ସୀସାକୁ ନିଆଁପରେ ତରଳାଇବା—Ranga āuṭaṇa Melting of tin or lead.
ବାঙ্গা আউটা **रांगा गलाना** (ରଙ୍ଗ ଆଉଟା — ଅନ୍ୟରୂପ)
বাঁগা গালান **रंगा गलाना**

**ରଙ୍ଗ ଉଠିବା**—ଦେ. କ୍ରି—୧ । ଅଭିପ୍ରେତ ବର୍ଣ୍ଣ ଉତ୍ପନ୍ନ ହେବା—Raṅga uṭhibā 1. The production of the wished-for colour ୨ । ରଙ୍ଗ ଛାଡ଼ିବା ( ଦେଖ ) 2. Ranga chhāṛdibā ( See )
ব. উতবা
**रंग उतरना**
(ରଙ୍ଗ ଉଭୁରିବା—ଅନ୍ୟରୂପ)

**ରଙ୍ଗ କଇଁ**—ଦେ. ବି. ( ସଂ. ରକ୍ତ କୁମୁଦ ବା କମଳ )—ରକ୍ତ କମଳ; ରକ୍ତୋତ୍ପଳ—Red water lily; Nymphia Rubra; Nymphia Lotus. [ ଦ୍ର—ଏହା କଇଁଜାତୀୟ, ରକ୍ତ ପୁଷ୍ପକ ଜଳଜ ଶାକ । ବୈଦ୍ୟଶାସ୍ତ୍ର ମତରେ ଏହା କଟୁତିକ୍ତମଧୁର, ଶୀତଳ, ରକ୍ତଦୋଷହର, ପିତ୍ତକଫନାଶକ, ସନ୍ତର୍ପଣକର ଓ ବୃଷ୍ୟ [ଦ୍ରବ୍ୟଗୁଣ ।]
Ranga kaiñ
ସଂ ରକ୍ତୋତ୍ପଳ, କୋକନଦ,
ହଲ୍ଲକ, ରକ୍ତ ସନ୍ଧ୍ୟକା,
ଲୁନାଳପ୍ତ, ଉଦ୍ଭା
বক্ত কমল
**लाल कमल, लाल कुमुदिनी**
ମ. ତାବଡ଼େଂ କମଳ
ତା. ଅମ୍ବଲ
ତେ. ଅଲ୍ଲିତାମେର; ଏର୍ରକାଲୁବା
ସୁ. ଲାଲଲା ଉପେଦ୍ରେଳେ

**ରଙ୍ଗ କାଞ୍ଚନ**—ଦେ. ବି. (ସଂ. ରକ୍ତ କାଞ୍ଚନ)—ରକ୍ତ କାଞ୍ଚନ (ଦେଖ)
Ranga kañchana Rakta kāñchana (See)

**ରଙ୍ଗ କନିଅର** —ଦେ. ବି. ( ସଂ. ରକ୍ତ କର୍ଣ୍ଣିକାର )—ଏକ ପ୍ରକାର କନିଅର ଜାତୀୟ ରକ୍ତାଭ ଫୁଲ—A red kind of Kanira flower.
Ranga kaniara
লাল কলকে ফুল
**लाल कनेर**

**ରଙ୍ଗ କର**—ସଂ. ବି—ଚିତ୍ରକର—Painter. ସଂ. ବିଣ—ଚିତ୍ରକାରୀ—Painting; dying.
Ranga kara

**ରଙ୍ଗ କରବୀ**—ଦେ. ବି—ରକ୍ତ କରବୀ—The red variety of Karabī flower.
Ranga karabī
লাল করবী **लाल करवी**

**ରଙ୍ଗ କରିବା**—ଦେ. କ୍ରି—୧ । ରଞ୍ଜିତ କରିବା; ରଙ୍ଗାଇବା—1. To paint; to dye. ୨ । ପରିହାସ କରିବା; କୌତୁକ କରିବା—2. To make fun.
Ranga karibā
রং করা
**रंग करना**

**ରଙ୍ଗ କାଇଞ୍ଚ**—ଦେ. ବ (ସ. ରକ୍ତ+ଚଞ୍ଚୁ)—କାଇଞ୍ଚ ( ଦେଖ )
Ranga kaincha — Kaincha ( See )

**ରଙ୍ଗ କାଢ଼ିବା**—ଦେ. କ୍ରି—୧ । ଛଇ କାହାର କରିବ, ଭଙ୍ଗୀ
Ranga kardhiba ଦେଖାଇବା—1. To sport; to display some sportive peculiarity.
ରঙ্গ বাহির করা
रंग निकालना ୨ । କୌତୁକ କରିବା—2. To make fun.

**ରଙ୍ଗକାର**—ସ. ବି. ପୁଂ—ଚିତ୍ରକର—
Rangakara — Painter.

**ରଙ୍ଗ କାଷ୍ଠ**—ସ. ବି. (ବହୁବ୍ରୀହି) – ବକମ ଗଛ—
Ranga kashtha — Sappan-wood.

**ରଙ୍ଗ ଖେଳିବା**—ଦେ. କ୍ରି—୧ । ହୋଲି ଉତ୍ସବରେ ପରସ୍ପର ଦେହକୁ
Ranga khelibа ରଙ୍ଗଗୋଳା ପାଣି ସିଞ୍ଚିବା ସମ୍ପର୍କରେହେବା—
রংখেলা रङ्गखेलना 1. To throw coloured water on each other during the Holi festival.
୨ । ତାସ୍‌ଖେଳର 'ରଙ୍ଗ' ଖେଳ ଖେଳିବା—2 To play the game of Ranga in card play.

**ରଙ୍ଗ ଖୋଲିବା**—ଦେ. କ୍ରି—୧ । ସ୍ୱାସ୍ଥ୍ୟ ଯୋଗୁଁ କୌଣସି ବ୍ୟକ୍ତିର
Ranga kholibа ଚେହେରା ବା ଦେହର ବର୍ଣ୍ଣ ଅଧିକମୟହେବା—
রংখুলা, রঙ্গখোলা 1, The deepening of the colour,
रंगनिकलना of one's skin or complexion on account of health. ୨ । କୌଣସି ବସ୍ତୁରେ ବୋଳାଯାଇଥିବା ରଙ୍ଗ ଖୁବ୍ ଶୋଭାମୟ ବା ଦୀପ୍ତିମୟ ହେବା—2. The shining of the colour put on a thing.

**ରଙ୍ଗ ଗୃହ**—ସ. ବି (ମ. ପ. ଲୋ)—ନାଟ୍ୟଶାଳା—
Ranga gruha — A theatre.

**ରଙ୍ଗ ଚଙ୍ଗ**—ଦେ. ବିଣ.—(ସ. ରଙ୍ଗ ଓ ଚଙ୍ଗ=ଶୋଭନ) - ୧ ।
Ranga changa ସୁନ୍ଦର ରଙ୍ଗଯୁକ୍ତ; ସୁଦୃଶ୍ୟ—1. Of
রঙ্গচঙ, রঙ্গ চঙ্গা, রঙ্গচঙ্গে beautiful colour. ୨ । ଚକ-
रंगीला ଚକିଆ; ଅଡ଼ମ୍ବରମୟ—2 Gaudy, fine; showy;
[ ରଙ୍ଗଚଙ୍ଗିଆ—ଅନ୍ୟରୂପ ] splendid. ୩ । ରଙ୍ଗିଆ; କୌତୁକ ପ୍ରିୟ—3. Funny; fond of fun. ୪ । ମଉଜୀ; ରସିଆ—4. Fond of sport; sportive; gallant.

**ରଙ୍ଗଚଙ୍ଗା**—ଦେ. ବିଣ—ରଙ୍ଗଚଙ୍ଗ ( ଦେଖ )—Rangachanga
Rangachanga (See) ଦେ. ବି—୧ । ଚିତ୍ର ବିଚିତ୍ରତା—
রংচং, রঙ্গচঙ্গ 1. Diversity in colour; variegation;
रङ्गरली particolouredness. ୨ । ଅଡ଼ମ୍ବର—2. Splendour; ado. ୩ । ଆମୋଦ ପ୍ରମୋଦ—3. Amusement; fun.

**ରଙ୍ଗ ଚଢ଼ା(ଢ଼େ)ଇବା**—ଦେ. କ୍ରି—ଲୁଗା ଆଦିରେ ରଙ୍ଗ ଦେବା—
Ranga chardha(rdhe)iba — To dye cloth etc.
রঙ্গ চড়ান रंग चढाना

**ରଙ୍ଗ ଚଢ଼ିବା**—ଦେ. କ୍ରି—କୌଣସି ବସ୍ତୁରେ ରଙ୍ଗ ଲେପନ—
Ranga chardhiba Dying or painting of a
রংচড়া रङ्गचढना thing; application of paint on a thing.

**ରଙ୍ଗଚର**—ସ. ବି (ରଙ୍ଗ+ଚର୍. ଧାତୁ+କର୍ତ୍ତୃ ଅ)—ନଟ—
Rangachara — An actor; a player, (Apte)

**ରଙ୍ଗ ଚାଉଳିଆ**—ଦେ. ବି—ନାଲି ଶସବିଶିଷ୍ଟ ପିଜୁଳି—
Ranga chaulia Red-fleshed guava; Psidium
লালপেয়ারা लाल पियारा Pyrifirum.

**ରଙ୍ଗ ଛାଡ଼ିବା**—ଦେ. କ୍ରି—ଖରା, ବର୍ଷା, ଜଳବାୟୁ ଓ ସମୟ ପ୍ରଭାବରେ
Ranga chhardiba କୌଣସି ଦ୍ରବ୍ୟରେ ଦିଆଯାଇଥିବା ରଙ୍ଗ
রং ছেড়েযাওয়া ଫିକା ପଡ଼ିଯିବା ବା ଲୁପ୍ତ ହେବା—The fad-
रङ्गउडना ing of a colour on exposure to sun, air or water
ରଙ୍ଗ ଛାଡ଼ିଯିବା, ରଙ୍ଗ ଉଠିଯିବା, ରଙ୍ଗ ଫିଡ଼ିଯିବା } ଅନ୍ୟରୂପ

**ରଙ୍ଗଜ**—ସ. ବି (ରଙ୍ଗ+ଜନ୍. ଧାତୁ+କର୍ତ୍ତୃ. ଅ)—ସିନ୍ଦୂର—
Rangaja — Red lead.

**ରଙ୍ଗ ଜନନୀ**—ସ ବି(ଷଷ୍ଠୀତତ୍)—ଲାକ୍ଷା (ହି. ଶ)
Ranga janani — Shell lac.

**ରଙ୍ଗ ଜମିବା**—ଦେ. କ୍ରି—ମଉଜର ବା କୌତୁକର ବା ପ୍ରେମର
Ranga jamiba ଘନୀଭାବ—The instensification
রংজমা रङ्गजमना of merriment or love.
[ ରଙ୍ଗ ଜମା(ମେ)ଇବା—ଣିଜନ୍ତରୂପ)

**ରଙ୍ଗ ଜୀବ(ବି)କ**—ସ. ବି. ପୁଂ (ରଙ୍ଗ+ଜୀବ୍. ଧାତୁ+ଅକ)—
Ranga jiba(bi)ka ୧ । ନାଟ୍ୟକାରକ; ନଟ; ଅଭିନେତା—
[ରଙ୍ଗୋପଜୀବୀ—ଅନ୍ୟରୂପ] 1. An actor; a dancer. ୨ । ଚିତ୍ରକର—2. Painter; dyer.

**ରଙ୍ଗ ଟହଟହ**—ଦେ. ବିଣ—ଘୋର ରକ୍ତବର୍ଣ୍ଣବିଶିଷ୍ଟ; ଖୁବ୍ ନାଲି; ନାଲି
Ranga tahataha ଟହଟହ—Very red; bright red.
ରଙ୍ଗ ଟହଟ, ରଙ୍ଗ ଟୁକୁଟୁ, ରଙ୍ଗ ଟୁକୁଟୁକୁ } ଅନ୍ୟରୂପ [ ଉ—ପଣସ ପତର ରଙ୍ଗ ଟୁକୁଟୁ, ମାରବ ଜାକୁଡ଼ା ଭାଙ୍ଗିବ ଭୁଲୁ । ଶିଶୁ କ୍ରୀଡ଼ା ଗୀତ ।]
লাল টুকটুকে रङ्गटहटह

**ରଙ୍ଗଟିଆ**—ଦେ. ବିଣ—ଈଷତ୍ ରକ୍ତବର୍ଣ୍ଣବିଶିଷ୍ଟ—Reddish;
Rangatia ruddy; slightly red. ଦେ.ବି—ଈଷତ୍ ରକ୍ତ
লালচে ବର୍ଣ୍ଣ – Slighty red colour; reddish
कमलपत्रीलाल dye.

**ରଙ୍ଗଡାଲିମ୍ବ(ମା)**—ଦେ.ବି—ଏକପ୍ରକାର ଈଷତ୍ ରକ୍ତବର୍ଣ୍ଣ ଚିକ୍କଣ ପଥର-
Ranga dalimba(ma) A kind of reddish smooth
লালপাথর sandstone. [ଦ୍ର—ଏହା ଝିକ୍ ଚାଣ ଓ ପାଲିସ୍
लालपत्थर କଲେ ଏହା ଖୁବ୍ ମସୃଣ ହୁଏ । ]

**ରଙ୍ଗ ଢଙ୍ଗ**—ଦେ ବି (ଦ୍ୱନ୍ଦ୍ୱ)—୧ । ଚାଲିଚଳନ; ଆଚରଣ—
Ranga dhanga 1. Conduct; deportment. ୨ ।
বংঢং, রঙ্গঢঙ্গ କୌତୁକ ଓ ଭଙ୍ଗୀ—2. Tricks or
रंगढंग pranks. ୩ । ଅଡ଼ମ୍ବର—3. Splendour. ଦେ.

(ରଙ୍ଗ ଚଙ୍ଗ ଥା — ଅନ୍ୟ ବର୍ଣରୂପ) ବିଣ — ରଙ୍ଗ ଢଙ୍ଗ (ଦେଖ) —
বঙ্গঢঙ্গ Ranga changa. (See)

ରଙ୍ଗଣ(ନ) — ସଂ. ବି (ରଜ୍ ଧାତୁ+ଭାବ ଅନ) — ୧ । ରଙ୍ଗାଇବା;
Rangaṇa(na) ଚିତ୍ରଣ — 1. Painting. ୨ । (+କରଣ
বাংগান ଅନ) ଟଙ୍କଣ; ସୋହାଗା — 2. Borax. ୩ । ଖଦିର-
रंगाना ସାର — 3. Extract of catechu. ୪ । ନୃତ୍ୟ —
4 Dancing (Apte). ଦେ. ବି — ରଙ୍ଗଣୀ (ଦେଖ)
Rangaṇi. (See) [ ଉ — ସୁନ୍ଦର ରଙ୍ଗଣେ ସଦା
ସିନ୍ଦୂରିତ । ରାଧାନାଥ. ଚନ୍ଦ୍ରଭାଗା । ]

ରଙ୍ଗଣା — ପ୍ରାଦେ. (ଗଞ୍ଜାମ) ବି — ଗଞ୍ଜାମ ଜିଲ୍ଲାର ଶୂଦ୍ର ଜାତି ବିଶେଷ —
Rangaṇā A caste of Sūdras of the district
of Ganjam.

ରଙ୍ଗଣୀ — ଦେ ବି. (ସଂ. ରଙ୍ଗିଣୀ; ରଙ୍ଗନ; କମ୍ବା ରେଙ୍ଗୁନ୍ = ନଗରର
Rangaṇi ନାମ) — ୧ । ହରିତକ୍ୟାଦି ବର୍ଗର ପୁଷ୍ପ ଲତା ବିଶେଷ —
রঙ্গন 1. The Rangoon creeper; Quisqualis
रंगुन लता Indica. [ବି — ଏହା ବ୍ରହ୍ମ ଓ ମାଲୟ ଦେଶର
ଲତା । ଆମ ଦେଶର ଫାଟକ ବା କାନ୍ଥ ଉପରେ ଲୋକେ
ସଉକରେ ଏହାକୁ ମଡ଼ାନ୍ତି; ପତ୍ର ସରୁ ସରୁ ଓ ଯୋଡ଼ା ଯୋଡ଼ା
ଓ ଛଅଗୁଣ ଗଛର ପତ୍ରପରି; ଫୁଲ ନାଲି ଓ ପଞ୍ଚଦଳ; ଫୁଲର
ଡେମ୍ଫ ଲମ୍ବା; ଫୁଲ ଈଷତ୍ ସୁଗନ୍ଧଯୁକ୍ତ । ଏହାକୁ କେହି
କେହି ରଙ୍ଗଲତା କହନ୍ତି ।] ୨ । ଏକ ପ୍ରକାର ପୁଷ୍ପ ଗୁଳ୍ମ —
2. A sort of flowering plant; Ixora
Coccinea; Scarlet Ixora. [ବି — ଏହା
ଅଙ୍କୁରାଦି ବର୍ଗର ପୁଷ୍ପକ୍ଷୁପ; ଏଥିରେ ୪ ପ୍ରକାରର
(ନାଲି, ଧଳା, ହଳଦିଆ ଓ ଚିତ୍ର ବର୍ଣ୍ଣର) ଫୁଲ ଫୁଟେ ।
ଏହାର ଫଳ ମଟର ପରି କଳା ଓ ଗୋଲ । ଏହାର ଡାଳ-
ଗୁଡ଼ିକ ଗଣ୍ଠିମୟ । ଭିନ୍ନ ଭିନ୍ନ ବର୍ଣ୍ଣର ରଙ୍ଗଣିକୁ ଧଳା ରଙ୍ଗଣି,
ହଳଦିଆ ରଙ୍ଗଣୀ, ଛିଟଛିଟିଆ ରଙ୍ଗଣୀ ବୋଲିଥାଏ ।]
[ଉ — କହଇ କାହିଁକି ଝିଙ୍କ ଚଳ ଅବିରତ, ବିଶେଷ ତରଙ୍ଗ
ରଙ୍ଗ ରଙ୍ଗଣୀ ଶୋଭିତ । ଭଞ୍ଜ. ବୈଦେହୀଶବିଳାସ ।]
୩ । ଏକ ପ୍ରକାର ବିଦେଶାଗତ ପୁଷ୍ପ ଲତା — 3 The
বঙ্গিনী Sandwich island creeper; Antigonon
Leptopus. [ବି — ଏହାକୁ ଲୋକେ ଫାଟକ ଅବି
ଉପରେ ଶୋଭା ପାଇଁ ମଡ଼ାନ୍ତି । ପତ୍ର ପାନ ପରି; ଫୁଲ
ଗୋଲାପୀ ଓ ତ୍ରିଦଳ । ଫୁଲର ଅଗରୁ ପ୍ରଭାମା ବାହାରେ ।
ବର୍ଷା ଓ ଶୀତ ଋତୁରେ ଫୁଲ ଫୁଟେ — ଯୋଗେଶ୍ଚନ୍ଦ୍ର] ୪ ।
रंगन, कोटा गंधल ଏକ ପ୍ରକାର ଡାଳଶାର୍ଘ ବନ୍ୟ ଗଛ — 4. A
kind of wild tree. [ବି — ଏହାର ମଞ୍ଜ କାଠ
ଶକ୍ତ ଓ ଦୃଢ଼; କୋଠା କାମରେ ଲାଗେ । ବଙ୍ଗ, ମଧ୍ୟ-
ପ୍ରଦେଶ ଓ ମାନ୍ଦ୍ରାଜ ଅଞ୍ଚଳ ଜଙ୍ଗଲରେ ଏ ଗଛ ଜନ୍ମେ —
ହି. ଶ] ୫ । ତନ୍ତୁବାୟ ଜାତି ବିଶେଷ — 5. A class
of weavers. ୬ । ନାଲି ରଙ୍ଗଣୀ ପୁଷ୍ପକ୍ଷୁପ —
6. A red-flowered shrub.

ରଙ୍ଗ ତମା(ମ)ସା — ଦେ. ବି. (ସହଚର, ସଂ. ରଙ୍ଗ+ଫା. ତମାସା) —
Ranga tamā(ma)sā ରଙ୍ଗ ତାମସା ( ଦେଖ ) — Ranga
বং তামাসা रंग तमाशा tāmasā ( See )

ରଙ୍ଗତା — ଦେ. ବି. (ସଂ. ରଙ୍ଗ ପତ୍ର) — ୧ । ରଙ୍ଗା ଧାତୁର ପତଳା ପତ୍ର —
Rangatā 1. Tinfoil ୨ । ପତ୍ର — 2. Coloured
বাঙ্গতা रांगका बरफ, पन्नी metal foil.

ରଙ୍ଗତା କଣ୍ଠି — ଦେ. ବି. — ପନ୍ନିର କଣ୍ଠି, ନାନା ବର୍ଣ୍ଣର କାଚ କଣ୍ଠି —
Rangatā kanṭhi Coloured glass-beads.
বাঙ্গতাব মালা पन्नीका कंठ

ରଙ୍ଗତା କାଚ — ଦେ. ବି — ପନ୍ନି ମଡ଼ା ହୋଇଥିବା ହାତର କାଚ-
Rangatā Kācha ବଳୟ — Glass bangles over-
বাংতা চুড়ী पन्नीका चूड़ी laid with tinfoils.

ରଙ୍ଗ ତାମ(ମା)ସା — ଦେ. ବି. (ସହଚର+ସଂ. ରଙ୍ଗ+ଫା. ତମାସା) — ୧ ।
Ranga tāma(mā)sā ହାସ୍ୟ କୌତୁକ — 1. Fun. ୨ ।
বঙ্গ তমাসা ନାଚରଙ୍ଗ — 2. Dancing and frolic. ୩ ।
रङ्ग तमाशा ଥଟ୍ଟା — 3. Joke; jest.

ରଙ୍ଗଦ — ସଂ. ବି. ( ରଙ୍ଗ+ଦା ଧାତୁ+କର୍ତ୍ତୃ. ଅ ) — ୧ । ସୋହାଗା;
Rangada ଟାଙ୍କଣା — 1. Borax. ୨ । ଖଦିରସାର — 2. The
Catechu juice; an extract of Catechu
(Apte)

ରଙ୍ଗ ଦଉଡ଼ିଆ — ଦେ. ବି. (ବୈଦ୍ୟକ) — (ସଂ. ରଙ୍ଗ+ଦୂର୍ବା) — ଏକ
Ranga daurdiā ପ୍ରକାର ଘାସ — A kind of grass.
[ସଂ. କଣ୍ଟିଦୂବା, ଗଣ୍ଠିଲା, ଶ୍ୱେତଦୂବା (ଦ୍ରବ୍ୟଗୁଣ କଳ୍ପଦ୍ରୁମ)]

ରଙ୍ଗଦା — ସଂ. ବି ( ରଙ୍ଗ+ଦା ଧାତୁ+କର୍ତ୍ତୃ. ଅ+ଆ ) — ଫିଟିକିରି;
Rangadā ଫିଟିକିରି — Alum.

ରଙ୍ଗଦାର୍ — ଦେ. ବିଣ — ୧ । ରଙ୍ଗିଆ ( ଦେଖ )
Rangadār 1. Rangiā ( See )
রঙ্গদাব ୨ । ମଜାଦାର୍ — 2. Faceteous; jocular
रंगदार

ରଙ୍ଗ ଦାର(ୟ)କ — ସଂ. ବି — କଙ୍କୁଷ୍ଠ; ମୃତ୍ତିକା ବିଶେଷ — A kind of
Ranga dāra(ya)ka medicinal earth. [ବି — ଏହା
ଅନ୍ୟ ସଂ. ନାମ — କଙ୍କୁଷ୍ଠ, ଧଳା ଓ ସୁନେଲି; ଔଷଧରେ
କାଳକୁଷ୍ଠ, ବିରଙ୍ଗ ବ୍ୟବହୃତ ହୁଏ (କଙ୍କୁଷ୍ଠ ଦେଖ); ଏହା
कंकुष्ठ ରେଚକ, କଟୁତିକ୍ତରସ, ଉଷ୍ଣବୀର୍ଯ୍ୟ
ମ. କଂକୁଷ୍ଠ ଓ ବର୍ଣ୍ଣପ୍ରଦ । ଏହା କ୍ରିମି, ଶୋଥ୍ୟ
ଗୁ. ପୀଲିୟୋ ଉଦରାଧ୍ମାନ, ଗୁଳ୍ମ, ଅନାହ ଓ କଫ,
ନାଶକ — ଦ୍ରବ୍ୟଗୁଣ ।]

ରଙ୍ଗ ଡାଳିକା — ସଂ. ବି — ନାଗବଲ୍ଲୀ ଲତା (ହି. ଶ); ପାନଲତା —
Ranga ḍaḷikā Betel creeper.

ରଙ୍ଗ ଦୃଢ଼ା — ସଂ. ବି (ବହୁବ୍ରୀହି, ରଙ୍ଗ+ଦୃଢ଼+ଆ) —
Ranga druṛhā ରଙ୍ଗଦା; ଫିଟିକିରି — Alum.

ରଙ୍ଗ ଦେଖା(ଖେ)ଇବା — ଦେ. କ୍ରି — ରଙ୍ଗ କାଢ଼ିବା. ( ଦେଖ )
Ranga dekhā(khe)ibā Ranga kāṛhibā (See)
(ରଙ୍ଗ କାଢ଼ାର କରିବା — ଅନ୍ୟରୂପ)

ରଙ୍ଗ ଦେଖିବା—ଦେ. କ୍ରି—ଅନ୍ୟର ଦୁଃଖରେ ବା ପ୍ରମାଦରେ ବା
Ranga dekhibā କଳରେ ଆମୋଦ ଉପଭୋଗ କରିବା—To
বঙ্গ দেখা enjoy fun at the expense of another.
रंग देखना

ରଙ୍ଗ ଦେବତା - ସ. ବି—୧ । କ୍ରୀଡ଼ାରଙ୍ଗାଦିର ଅଧିଷ୍ଠାତ୍ରୀରୂପେ କଳ୍ପିତା
Ranga debatā ଦେବୀ—1. The Goddess supposed to preside over sports and public diversions generally (Apte). ୨। ରଙ୍ଗଭୂମିର ଅଧିଷ୍ଠାତ୍ରୀ ଦେବତା—2. The Goddess supposed to preside over arenas and theatres.

ରଙ୍ଗ ଦେବା—ଦେ. କ୍ରି—କୌଣସି ବସ୍ତୁକୁ ରଞ୍ଜିତ କରିବା; ରଙ୍ଗାଇବା—
Ranga debā To dye.
রঙ্গ দেওয়া रङ्ग देना, रंगना

ରଙ୍ଗ ଦେବୀ—ସ.ବି—୧। ରାଧାଙ୍କର ସଖୀବିଶେଷ—1. One of the
Ranga debī companions of Rādhā ୨। ରଙ୍ଗ ଶିଉଳି—2. Night-flowering jasmine; the weeping Nyctanthus. [ ଉ—ଗ୍ରାବନ୍ତି ରଙ୍ଗଦେବୀ ଚମ୍ପକଲତା ମଧୁସୂଦନର ଭ୍ରମଣେ ( ୧ମ ଓ ୨ୟ ଅର୍ଥ ) —ଭଞ୍ଜ କୋଟିବ୍ରହ୍ମାଣ୍ଡସୁନ୍ଦରୀ । ]

ରଙ୍ଗ ଦ୍ୱାର—ସଂ. ବି ( ୬ଷ୍ଠୀ ତତ୍ )—୧ । ରଙ୍ଗମଞ୍ଚର ଦ୍ୱାର—
Ranga dwāra 1. Stage door (Apte) ୨ । ନାଟକର ପ୍ରସ୍ତାବନା—2. The prologue of a drama.

ରଙ୍ଗନ—ସ. ବି ( ରନ୍ଜ୍ ଧାତୁ + କରଣ. ଅନ )—୧ । ବଧୂଲି ଗୁଳ୍ମ;
Rangana ରୂପହରଥା ଫୁଲର ଗଛ—1. A sort of flowering shrub; Pentapetes Phoenicia; Ixora Bandhuka.
ଅନ୍ୟ ସ —ଅର୍କବଲ୍ଲଭ, ଓଷ୍ଠପୁଷ୍ପ, ମଧ୍ୟନ୍ଦିନ, ମାଧ୍ୟାହ୍ନିକ, ରକ୍ତ, ରକ୍ତପୁଷ୍ପ, ରାଗପୁଷ୍ପ, ବନ୍ଧୁ, ବନ୍ଧୁକ, ବନ୍ଧୁଜୀବ, ବନ୍ଧୁଜୀବକ, ବନ୍ଧୁର, ବନ୍ଧୂକ, ବନ୍ଧୁକ, ବନ୍ଧୁଜୀବକ, ବନ୍ଧୁଲି, ହରପ୍ରିୟ ।
୨ । (+ଭାବ ଅନ)—ରଙ୍ଗାଇବା, ଚିତ୍ରାଇବା—2. Painting; dying; colouring.

ରଙ୍ଗନାଥ—ଦେ.ବି—ଦାକ୍ଷିଣାତ୍ୟ ଶ୍ରୀରଙ୍ଗପତ୍ତନରେ ବିରାଜିତ ବିଷ୍ଣୁମୂର୍ତ୍ତି—
Ranga nātha Name of the image of Bishnu
বঙ্গনাথ रंगनाथ situated in Seringapatam in the Deccan.

ରଙ୍ଗପତ୍ରୀ—ସ. ବି—୧ । ନୀଳୀ ଗୁଳ୍ମ—
Rangapatrī 1. The indigo plant.

ରଙ୍ଗ ପସରା—ଦେ ବି—ଖେଳନାଯୁକ୍ତବର୍ଣ୍ଣଯୁକ୍ତ ପଣ୍ୟସାମଗ୍ରୀପୂର୍ଣ୍ଣ ପସରା ବା
Ranga pasarā ଡାଲା—A tray full of fancy
খেলনাব ডালী रंगपसरा articles. ( ଉ—ରଙ୍ଗପସରା ବିନା ଭବସାଗର, ରଙ୍ଗ ଉପରେ ଦେଖ ବ ନାରଖାର—ମନବୋଧ ଚଉତିଶା ।)

ରଙ୍ଗ (ଙ୍ଗି) ପିମ୍ପୁଡ଼ି—ଦେ.ବି (ସ.ରକ୍ତ + ପିପୀଲିକା)--ରକ୍ତବର୍ଣ୍ଣ ପିପୀଲିକା-
Ranga (ngi) pimpurdi Red ant.
লালপীপড়া लालचींटी

ରଙ୍ଗ ପୀଠ – ସ ବି—ନୃତ୍ୟସ୍ଥଳ; ନୃତ୍ୟଭୂମି—
Ranga pītha A place for dancing (Apte).

ରଙ୍ଗପୁଷ୍ପ (ଷ୍ପୀ) –ସ. ବି—ନୀଳୀ ଗୁଳ୍ମ—The indigo plant;
Rangapushpa(shpī) Indigofera Tinctoria.

ରଙ୍ଗ ପ୍ରବେଶ—ସ. ବି ( ୭ମୀ ତତ୍ )—ଅଭିନୟ କରିବାପାଇଁ ନଟ-
Ranga prabesa ନଟୀଙ୍କର ରଙ୍ଗଭୂମିକୁ ଆସିବା (ହି. ଶ.)
The entry of an actor into the stage.

ରଙ୍ଗ ପ୍ରିୟ—ସ. ବିଣ. ପୁଂ (ବହୁବ୍ରୀହି)—କୌତୁକପ୍ରିୟ—
Ranga priya (ରଙ୍ଗପ୍ରିୟା - ସ୍ତ୍ରୀ) Fond of fun.

ରଙ୍ଗ ଫକା(କ୍କା) ପଡ଼ିବା—ଦେ. କ୍ରି—୧ । ଖରା, ପାଣି, ପବନ, ଜଳବାୟୁ
Ranga phakā(kkā) pardibā ବା କାଳର ପ୍ରଭାବରୁ
বং ফিকাপড়া रंग फिकापड़ना କୌଣସି ବସ୍ତୁ ଉପରେ ଦିଆଯାଇଥିବା ରଙ୍ଗ ମ୍ଳାନ ହେବା; ରଙ୍ଗ ଛାଡ଼ିଯିବା—1. The waning of the colour or paint of a thing owing to exposure to air, sun or water. ୨ । ଭୟ ବା ରୋଗ ଯୋଗୁଁ ଦେହର ବିବର୍ଣ୍ଣ ହେବା—2 Paleness of one's appearance or countenance due to fear or disease.

ରଙ୍ଗବତୀ—ଦେ. ବି. ସ୍ତ୍ରୀ—୧ । ସ୍ତ୍ରୀଲୋକଙ୍କ ନାମ—
Rangabatī 1. A name given to females
रंगवती ୨ । ରସିକା ସ୍ତ୍ରୀ; ନାଗରୀ—2. A coquette.

ରଙ୍ଗ ବଲ୍ଲୀ—ସ. ବି—ନାଗବଲ୍ଲୀ (ଦେଖ) (ହି. ଶ.)
Ranga ballī Nāgaballī (See)
(ରଙ୍ଗବଲ୍ଲିକା—ଅନ୍ୟରୂପ)

ରଙ୍ଗ ବାଟ—ସଂ. ବି(ମ.ପ.ଲୋ)—ରଙ୍ଗଭୂମି (ଦେଖ)
Ranga bāta Rangabhūmi (See)

ରଙ୍ଗବାଣ—ଦେ. ବି—୧ । ଉଚ୍ଛଫଳ ଗଛ—1. The Indian
Rangabāna shot; Canna Indica. [ଦ୍ର—ଏ ଗୁଳ୍ମ
কানা ଅଦା ଓ ହଳଦୀ ଗୁଳ୍ମ ପରି; ଫଳ କାଙ୍କଡ଼ ପରି; ମଞ୍ଜି କାଙ୍କଡ଼ମଞ୍ଜି ପରି, କଳୁ କଳା । ] ୨ । ପୁଷ୍ପବିଶେଷ; ନାଲି ଗୋଡ଼ବାଣ ( ଗୋଡ଼ବାଣ ଦେଖ ) 2. A species of red flower. ( ଉ—ବିଭୂଷା ରଙ୍ଗବାଣେ, ଭୂଷାଯିବ ମୋ ବାଣେ, ଏ ଉଣେ ଶରଣ କେ ତାର ସେ—ଭଞ୍ଜ. ବୈଦେହୀଶବିଳାସ । ]

ରଙ୍ଗ ବାତ—ଦେ. ବି—କୌଣସି କୌଣସି ଶିଶୁର ଜନ୍ମ ହେବା ପରେ
Ranga bāta ଦେହର ବର୍ଣ୍ଣ ନାଲି ପଡ଼ିଯିବା ରୋଗ—
বাঙ্গাবাত; রঙ্গ A disease resulting in the
रंगबात redness of the skin of a new-born child. [ ଦ୍ର—ରକ୍ତରେ ଖଣ୍ଡ ନାମକ ଉପାଦାନର ଅଭାବ ହେଲେ ଏ ରୋଗ ହୁଏ । ଗଧଦୁଧ ପିଆଇଲେ ଏହା ଭଲ ହୁଏ । ରାଜକିଶୋର. ପ୍ରସୂତିଚର୍ଯ୍ୟା । ]

ରଙ୍ଗ ବାହାର୍—ଦେ. ବି—କୌଣସି ବସ୍ତୁର ବର୍ଣ୍ଣର ଔଜ୍ଜ୍ୱଲ୍ୟ—The
Ranga bāhār brightness of the colour of a

रंगबहार thing. ଦେ. ବଣ—ଉଜ୍ଜ୍ୱଳବର୍ଣ୍ଣବିଶିଷ୍ଟ ( ବସ୍ତୁ )
বংবাহাব —(a thing) Of very bright colour.

ରଙ୍ଗ ବାହାର କରିବା—ଦେ. କି—ରଙ୍ଗ କାଢ଼ିବା ( ଦେଖ )
Ranga bāhāra karibā Ranga kārdhibā ( See )

ରଙ୍ଗ ବିଦ୍ୟା— ସ. ବି—୧ । ନୃତ୍ୟଗୀତାଦି ବିଦ୍ୟା—1. The art
Ranga bidyā of dancing and singing. ୨ ।
ନାଟ୍ୟବୃତ୍ତି—2. Theatrical profession.

ରଙ୍ଗ ବିଦ୍ୟାଧର—ସ. ବି—୧ । ଷାଠିଏ ତାଳ ମଧ୍ୟରୁ ଏକ (ସ୍ତ୍ରୀ. ଶ.)
Ranga bidyādhara —1. One of the 60 musical
cadence. ୨ । ନଟ (ସ୍ତ୍ରୀ. ଶ.)—2. An actor
ସ. ବି— ନାଟ୍ୟକୁଶଳ—Expert in dancing.

ରଙ୍ଗ ବୀଜ—ସ. ବି (ରଙ୍ଗ=ଧାତୁ+ବୀଜ=ସାର୍‌ଅଂଶ)—ରୌପ୍ୟ; ରୂପା
Ranga bija —Silver.

ରଙ୍ଗ ବେ(ବି)ରଙ୍ଗ—ଦେ. ବଣ—୧ । ନାନାପ୍ରକାରର ବର୍ଣ୍ଣଯୁକ୍ତ—
Ranga be(bi)ranga 1. Multicoloured. ୨ । ନାନା-
বংগবেবঙ্গ ପ୍ରକାରର—2. Of various kinds ଦେ.
रंगबिरंग ବି—ଏକ ବସ୍ତୁରେ ଥିବା ନାନାବର୍ଣ୍ଣ—Variegated
colour; many colours present in a thing.

ରଙ୍ଗ ଭଙ୍ଗ - ସ. ବି—ଆମୋଦପୂର୍ବକ ନାନା ଭାବଭଙ୍ଗୀ ପ୍ରକାଶ -
Ranga bhanga Lascivious gestures. ଦେ. ବି
বসেবভংগ ଆମୋଦର ସୋତରେ ବାଧାର ଉପସ୍ଥିତି; ରସଭଙ୍ଗ—
रंगभंग Impediment to merriment; interruption in gaiety

ରଙ୍ଗ ଭଙ୍ଗୀ—ସ. ବି ( ୬ଷ୍ଠୀ ତତ୍ )—ନାନାପ୍ରକାର କୌତୁକମୟ ଭଙ୍ଗୀ
Ranga bhangi —Amorous gestures, dalliance.

ରଙ୍ଗ ଭବନ—ସ. ବି (ମ. ପ. ଲୋ )—ରଙ୍ଗ ମହଲ ( ଦେଖ )
Ranga bhabana Ranga mahala ( See )

ରଙ୍ଗଭୁଲା— ଦେ. ବଣ —ମାୟାମୋହ ଜନକ—Producing illu-
Rangabhulā sion. ଦେ ବି—ଲୀଳା ଭଣ୍ଡାଣ; ବାଦ୍ୟ-
মনভো(ভু)লা କୁହୁକବିଦ୍ୟାର ମୋହ ଜନ୍ମାଇବା—Producing
रंगमे भुलानेवाला illusion by shows or magic.

ରଙ୍ଗ ଭୂତି—ସ. ବି (ବହୁବ୍ରୀହି, ରଙ୍ଗ=ନୃତ୍ୟଗୀତାଦି+ଭୂତି=ହେବା;
Ranga bhūti ଯେଉଁଥିରେ ଦ୍ୟୂତାଦିକ୍ରୀଡ଼ାଦ୍ୱାରା ଅତିବାହିତ ହୁଏ)
—କୋଜାଗର ପୂର୍ଣ୍ଣିମା; ଆଶ୍ୱିନ ପୂର୍ଣ୍ଣିମା; କୌମୁଦୀ ପୂର୍ଣ୍ଣିମା;
କୁମାର ପୂର୍ଣ୍ଣିମା; ଲକ୍ଷ୍ମୀପୂଜା—The fullmoon of
the month of Āswina [ଦ୍ର—ଏ ରାତ୍ରିରେ ଲକ୍ଷ୍ମୀ
ପୃଥିବୀକୁ ବୁଲିବାକୁ ଆସି ଯାହାଙ୍କୁ ରାତିରେ ଜାଗ୍ରତ ହେବାର
ଦେଖନ୍ତି ତାଙ୍କୁ ଧନଶାଳୀ କରନ୍ତି ବୋଲି ଲୋକ ବିଶ୍ୱାସ । ]

ରଙ୍ଗ ଭୂମି—ସ. ବି—୧ । ନାଟ୍ୟଭୂମି; ନାଟ୍ୟଶାଳା—1. A stage;
Ranga bhūmi a theatre; a dancing hall
(ରଙ୍ଗ ପ୍ରାଙ୍ଗଣ—ଅନ୍ୟରୂପ) ୨ । ଉତ୍ସବାଦି ପାଇଁ ଘେରାଯାଇ ଥିବା
ସ୍ଥାନ—2. A place enclosed for play,
dancing or other amusements. ୩ । ରଣଭୂମି
—3. Field of battle. ୪ । ମଲ୍ଲଭୂମି—4.
Wrestling ground; arena. ୫ । (ଲକ୍ଷଣାର୍ଥ)
ମନୁଷ୍ୟର କର୍ମକ୍ଷେତ୍ର—5. One's field of action;
field of one's activities.

ରଙ୍ଗ ମଞ୍ଚ(ଧ)—ସ. ବି—ନାଟ୍ୟଭୂମି; ରଙ୍ଗଭୂମି—
Ranga mancha(dhya) A stage; arena.
(ରଙ୍ଗମଣ୍ଡପ—ଅନ୍ୟରୂପ) (ରଙ୍ଗମଞ୍ଚା—ଦେଶଜ ରୂପ)

ରଙ୍ଗମଲ୍ଲୀ—ସ. ବି ( ରଙ୍ଗ=ଗୀତାଦି+ମଲ୍ଲ୍ ଧାତୁ=ଧାରଣ କରିବା,
Rangamalli +କର୍ତ୍ତୃ. ଅ+ଈ)—ବୀଣା—Lute; harp.

ରଙ୍ଗ ମସଲା—ପ୍ରାଦେ (ଯାଜପୁର) ବି—ପିଆଜ—
Ranga masalā Onion.

ରଙ୍ଗ ମହଲ୍—ବୈଦେ. ବି( ଫା )— ୧ । ରାଜପ୍ରାସାଦ—1. Palace.
Ranga mahal ୨ । ରାଜପ୍ରାସାଦ ତୁଲ୍ୟ ଅଟ୍ଟାଳିକା—
রাজমহল; বংগমহল 2. Palatial building. ୩
ବୈଠକଖାନା—3. Parlour; drawing room.
୪ । ସୁସଜ୍ଜିତ ନାଚଖାନା—4. A well furnished
dancing hall ୫ । ସୁସଜ୍ଜିତ ଶୟନାଗାର; କେଳି-
ମନ୍ଦିର—5. Well equipped sleeping room.
୬ । ଭୋଗବିଳାସର ସ୍ଥାନ—6. A place for
amusements enjoyments.

ରଙ୍ଗ ମାଗଣ—ଦେ. ବି ତାସଖେଳରେ ଏକପ୍ରକାର ରଙ୍ଗଖେଳ—
Ranga māgana A kind of card game at
(ରଙ୍ଗମାଗୁଣି—ଅନ୍ୟରୂପ ) trumps. [ ଦ୍ର—ଏଥିରେ
বং খলা ଜିତିବା ପକ୍ଷ ତା ଇଚ୍ଛା ମୁତାବକ ହାରିବା ଖେଳାଳି-
रंग मांगना ଠାରୁ କେତେ ପଠ ତାସ ମାଗି କରି ନିଏ । ]

ରଙ୍ଗମାଣ—ପ୍ରାଦେ (ଗଞ୍ଜାମ) ବି—ରଙ୍ଗବାଣ ( ଦେଖ )
Rangamāna Rangabāna ( See )

ରଙ୍ଗ ମାଣିକ୍ୟ—ସ. ବି.—ମାଣିକ୍ୟ ରତ୍ନ—
Ranga mānikya মানিক माणिक Ruby.
(ରଙ୍ଗମାଣିକ—ଦେ. ରୂପ) .

ରଙ୍ଗ ମାତା—ସ. ବି. ସ୍ତ୍ରୀ.—(୬ଷ୍ଠୀତତ୍, ରଙ୍ଗ=ଅନୁରାଗ, ବର୍ଣ୍ଣ+ମାତୃ)-
Ranga mātā ୧ । ଦୂତୀ; କୁଟ୍ଟନୀ—1. A procuress. ୨ ।
[ରଙ୍ଗ ମାତୃକା—ଅନ୍ୟରୂପ] ଲାକ୍ଷା—2. Lac. ୩ । ଲାକ୍ଷାକୀଟ
3. Lac insect.

ରଙ୍ଗ ମାର୍—ଦେ. ବି.—ଏକପ୍ରକାର ତାସ ଖେଳ—A kind of
Ranga mār বং মেলা रंग मार game of card.
trump. [ଦ୍ର—ଏ ଖେଳରେ ୨ ଜଣ ବା ୪ ଜଣ
ଖେଳାଳୀ ଖେଳନ୍ତି । ଜଣେ ଖେଳାଳୀ ତାସଗୁଡ଼ିକ ଫେଣ୍ଟିକରି
ହାତରେ ଧରେ ଓ ଆଉ ଜଣେ ଖେଳାଳୀ ଉକ୍ତ ତାସ୍
ମୁଠାରୁ ଥୋଡ଼ାଏ ଉଠାଇ (କାଟି)ଦିଏ । କଟାଯିବା ତାସ୍‌ର
ଯେଉଁ ରଙ୍ଗ ହୋଇଥାଏ, ସେହି ରଙ୍ଗର ତାସ୍ ମାନ ରଙ୍ଗ
ବୋଲି ଧରାଯାଏ । ଓ ତାସ୍‌ମାନ ଖେଳାଳୀଙ୍କ ମଧ୍ୟରେ
ବଣ୍ଟା ହୁଏ । ବଦରଙ୍ଗର ଯେ କୌଣସି ମୂଲ୍ୟର ତାସ୍‌କୁ
ରଙ୍ଗର ସାମାନ୍ୟ ମୂଲ୍ୟର ତାସ୍ ଜିଣି ନିଏ ।]

**ରଙ୍ଗ ମୁଣ୍ଡିଆ**—ଦେ. (ବ୍ୟଙ୍ଗ) ବିଣ ଓ ବି—ନାଲିପଗଡ଼ିଧାରୀ (ପୁଲିସ)— Ranga mundiā Wearing red trubans (literally red-headed) policeman
ଲାଲପାଗଡୀ **रङ्ग पगडिवाला** [ଉ—ଦେଉଳ ଉପରୁ ଶୃଙ୍ଖଳା ରକ୍ଷିବା କରିଣ୍ଡ ବନ୍ଦୋବସ୍ତ କରି ଯାଇଥିଲେ ମଧ୍ୟ କେତେକ ରଙ୍ଗମୁଣ୍ଡିଆଙ୍କ କାର୍ଯ୍ୟକଳାପରେ ଲୋକମାନେ ବିଶେଷ ଅସୁବିଧା ଭୋଗ କରିଥିଲେ—ଦୈନିକ ଆଶା ।]

**ରଙ୍ଗ ରଙ୍ଗ**—ଦେ. ବିଣ. (ବିକୃତ)—ରଙ୍ଗା ରଙ୍ଗା (ଦେଖ) Ranga ranga Rangā rangā (See)

**ରଙ୍ଗ ରଙ୍ଗିଆ**—ଦେ. ବିଣ ପୁଂ.—୧ । ନାନା ପ୍ରକାରର ରଙ୍ଗ ବା ବର୍ଣ୍ଣ ବିଶିଷ୍ଟ—1. Multi-coloured. ୨ । ରଙ୍ଗିଆ (ଦେଖ) 2. Rangiā (See)
Ranga rangiā
বাঙ্গা চোঙ্গে **रङ्गबेरङ्ग, रङ्गिला**
[ରଙ୍ଗ ରଙ୍ଗେଇ—ସ୍ତ୍ରୀ]

**ରଙ୍ଗ ରସ**—ଦେ. ବି.—(ସହଚର)—୧ । ଆମୋଦ ପ୍ରମୋଦ— 1. Amusements. ୨ । ନାଚ ରଙ୍ଗ, ନୃତ୍ୟ ଗୀତାଦି—2. Dancing etc. ୩ । କୌତୁକ; ପରିହାସ—3. Fun; sport.
Ranga rasa বঙ্গ রস **रङ्ग रस**

**ରଙ୍ଗ ରସିକ(ୟା)**—ଦେ. ବିଣ. ପୁଂ.—ରଙ୍ଗିଆ (ଦେଖ) Ranga rasika (yā) Rangiā (See)
আমুদে **रङ्गरसिया**
[ରଙ୍ଗ ରସିକା, ରଙ୍ଗ ରସେଇ—ସ୍ତ୍ରୀ]

**ରଙ୍ଗ ରହସ(ସ୍ୟ)**—ଦେ. ବି.—(ସଂ. ରଙ୍ଗ+ରହସ୍ୟ)—୧ । ଥଟ୍ଟା; ଥଟ୍ଟା ତାମସା—1. Jest; jokes. ୨ । ନାଚ ତାମସା—2. Sports; dancing, gaities.
Ranga rahasa(sya)
বঙ্গ রহস্য **रङ्ग रस, रङ्ग रहस**

**ରଙ୍ଗ ରଙ୍ଗ**—ଦେ. ବି.—(ନିରର୍ଥକ ସହଚର)—ରଙ୍ଗରସ (ଦେଖ) Ranga rānga Ranga rasa (See)

**ରଙ୍ଗ ରାଜ**—ବୈଦେ. ବି.(ଫା. ରଙ୍ଗ୍‌ରେଜ୍)—ଚିତ୍ରକାର—Painter. ସଂ ବି—୬୦ ପ୍ରକାର ତାଳ ମଧ୍ୟରୁ ଏକ (ସଙ୍ଗୀତ ଦାମୋଦର)—One of the 60 musical cadence.
Ranga rāja রঙ্গরেজ
**रंगरेज**

**ରଙ୍ଗରୁଟ୍**—ବୈଦେ. ବି.—(ଇଂ. ରିକ୍ରୁଟ୍)—୧ । ସେନାବାହିନୀରେ ବା ପୁଲିସରେ ନୂଆ ହୋଇ ଭର୍ତ୍ତି ହୋଇଥିବା ସିପାହୀ—1. A new recruit to the army or police. ୨ । (ଲକ୍ଷଣାର୍ଥ) କୌଣସି କାର୍ଯ୍ୟରେ ନୂଆ ପଶିଥିବା ଲୋକ 2. (figurative) A novice.
Rangarut

**ରଙ୍ଗ ରେଖ**—ଦେ. ବିଣ.—୧ । ରକ୍ତବର୍ଣ୍ଣ ରେଖାଯୁକ୍ତ—1. Having red outlines. ୨ । ସୁନ୍ଦର ବର୍ଣ୍ଣ ବିଶିଷ୍ଟ—2. Of charming colour. [ଉ—ସେ କୃଷ୍ଣ ଅନୁରାଗ ମୁଖ, ସୁନ୍ଦର ହାସ ରଙ୍ଗରେଖ । ଜଗନ୍ନାଥ. ଭାଗବତ ।]
Ranga rekha বঙ্গ চঙ্গে **रङ्गिमा**

**ରଙ୍ଗ ରେଜ୍**—ବୈଦେ. ବି.—(ଫା. ରଙ୍ଗ୍‌ରେଜ୍)—ଚିତ୍ରକାର— Painter.
Ranga rej রঙ্গরেজ **रङ्गरेज**

**ରଙ୍ଗ ଲତା**—ସଂ. ବି—ବିକୃତାଦି ବର୍ଗର ବୃହତ୍ ଗୁଳ୍ମ ଜାତୀୟ— A creeper used as medicine for colic; Helicteres Ixora, Convolvulus Argenteus. [ଦ୍ର—ଏହା ଏକ ପ୍ରକାର ଲତା । ପତ୍ର ଦନ୍ତୁର; ଫୁଲ ଫିକା ନାଲି, ଛୁଇଁ ୨।୩ ଅଙ୍ଗୁଳ ଲମ୍ବ, ଶ୍ଳେଷ୍ମଘ୍ନ, ବଳ୍ୟ ଓ ମୋହଉତ୍ପାଦକ । ଏହା ଶୂଳନାଶକ ।] ଦେ. ବି.—୧ । ରଙ୍ଗଣୀ (ଦେଖ) 1 Rangaṇī (1) (See) ୨ । ପାଲାରେ ବର୍ଣ୍ଣିତ ମନୋହର ଫାସିଆର କନ୍ୟା—2. The daughter of Manohara Phāsiārā described in the Pālā of that name.
Ranga latā
ସ.—ଆବର୍ତ୍ତକୀ, ଅଜଶୃଙ୍ଗୀ
ଅଁାତ ମୋଡା
**मरोडफली, मेन्ढुकपासी**
ତେ. ଗୁବାଦରୁ
ମ. ମେଷ୍ଵଦଣ୍ଡି, ତୋବାନ

**ରଙ୍ଗ ଲାଲ୍**—ଦେ. ବି. ପୁଂ (ବ୍ର)—୧ । ଶ୍ରୀକୃଷ୍ଣଙ୍କ ନାମାନ୍ତର—1. A name of Śrīkrushṇa, ୨ । ଲୋକଙ୍କ ନାମ—2. A name given to males.
Rangalāl
বঙ্গলাল
**रंगलाल**

**ରଙ୍ଗ ଲାସିନୀ**—ସଂ. ବି—ଶେଫାଳିକା; ଗଙ୍ଗଶିଉଳି ଫୁଲ—A flower Nychtanthes Trystes.
Ranga lāsinī

**ରଙ୍ଗ ଶାଳା**—ସଂ. ବି—୧ । ନାଟ୍ୟଶାଳା—1 A stage; a theatre. ୨ । ନାଚଶାଳା—2. Dancing hall
Ranga śālā

**ରଙ୍ଗ ସଭା**—ସଂ. ବି—୧ । ନୃତ୍ୟସଭା—1. A gathering where dancing takes place. ୨ । ନାଚଶାଳା—2. Dancing hall. [ଉ—ରଙ୍ଗ ସଭାର ଚଳେ ସାର, ଯେତେବେ ଯୋଡ଼ିବ ନୃତ୍ୟକାର । ଜଗନ୍ନାଥ. ଭାଗବତ ।] ଦେ. ବି—କଂସ ଶ୍ରୀକୃଷ୍ଣଙ୍କୁ ନିମନ୍ତ୍ରଣ କରି ଦେଖାଇବାକୁ ନେଇଥିବା ନୃତ୍ୟଶାଳା A dancing hall to which Kaṁsa had invited Śrīkrushṇa.
Ranga sabhā
বঙ্গসভা
**रंगसभा**

**ରଙ୍ଗ ସାଜ**—ବୈଦେ. ବି.—(ଫା.)—୧ । ରଞ୍ଜକ—1. A dyer. ୨ । ଚିତ୍ରକର—2 A painter.
Ranga sāja রঙ্গসাজ **रङ्ग साज**

**ରଙ୍ଗ ସାଜି**—ବୈଦେ. ବି.—୧ । ଚିତ୍ର କର୍ମ—1. Painting. ୨ ଚିତ୍ରକର ବୃତ୍ତି—2. The profession of a painter.
Ranga sāji বঙ্গসাজী **रङ्गसाजी**

**ରଙ୍ଗ ସ୍ଥଳ**—ସଂ ବି.—ରଙ୍ଗଭୂମି (ଦେଖ) Ranga sthala Ranga bhūmi (See)

**ରଙ୍ଗା**—ଦେ. ବିଣ.—(ସଂ. ରଙ୍ଗ)—୧ । ରକ୍ତାଭ—1. Red. ୨ । ରଞ୍ଜିତ—2. Dyed. [ଉ—ଶ୍ଵେତ ଲୋହିତେ ରଙ୍ଗା ତୋ ଶୁଭ୍ର ତନୁ । ମଧୁସୂଦନ.ଛନ୍ଦମାଳା ।] ୩ । ରକ୍ତବର୍ଣ୍ଣବିଶିଷ୍ଟ—3. Red. ଦେ.ବି.—୧ । ନାଲିଆ ବର୍ଣ୍ଣ—1. The red colour. ୨ । ରଙ୍ଗାଧର ନାମକ ବ୍ୟକ୍ତିର ଡାକ ନାମ—2. Name for calling Rangādhara. ୩ । ରଙ୍ଗାଇବା କର୍ମ— 3. Painting; dying.
Rangā রাঙ্গা **लाल, रङ्गिन**

ରଙ୍ଗା ଅବତାର—ଦେ. ବି.—ଶ୍ରୀକୃଷ୍ଣାବତାର—The incarnation
Rangā abatāra of Krushna.
[ଭି—ରଙ୍ଗା ଅବତାରେ ଜନ୍ମି ଣ, ସେ କନ୍ୟା କରନ୍ତୁ ରମଣ । ଯଶୋବନ୍ତ, ପ୍ରେମଭକ୍ତି ବ୍ରହ୍ମଗୀତା ।]

ରଙ୍ଗା(ଙ୍ଗେ)ଇବା—ଦେ. କ୍ରି.—(ସଂ. ରଞ୍ଜ ଧାତୁ ଜାତ)—୧ । ରଞ୍ଜିତ
Rangā(ṅge)ibā କରିବା—1. To paint. ୨ । ରକ୍ତ-
ବାଂଗାନ ରଂଗନା ବର୍ଣ୍ଣ କରିବା—2. To redden. ୩ । ରକ୍ତ ବର୍ଣ୍ଣ ଧାରଣ କରିବା—3 To become red. [ଭି— ତାଙ୍କ ର ରଙ୍ଗେଇଲା, ବନନଦ୍ରକର ଗ୍ରୀବପୀରଣ୍ଡ, ପଦ୍ମର ରଙ୍ଗେଇଲା—ଭଗ ।] ୪ । (ପ୍ରଯୋଜକ)—ଅନ୍ୟଦ୍ୱାରା ରଞ୍ଜନ କର୍ମ କରାଇବା—4. To cause to paint.

ରଙ୍ଗାଙ୍ଗନ(ଣ)—ସ. ବି.—ରଙ୍ଗଭୂମି (ଦେଖ)
Rangāngana(ṇa) Ranga bhūmi (See)

ରଙ୍ଗାଙ୍ଗା—ସଂ. ବି.—ଫିଟକିରି (ଦ୍ରବ୍ୟଗୁଣ)—
Rangāngā Alum.

ରଙ୍ଗାଜୀବ—ସଂ. ବି. ପୁଂ.—( ବହୁବ୍ରୀହି; ରଙ୍ଗ=ନାଟ୍ୟଶାଳା, ଚିତ୍ର
Rangājība ଇତ୍ୟାଦି+ଆଜୀବ=ଜୀବିକା ଯାହାର)—୧ । ନଟ;
[ରଙ୍ଗାଜୀବା—ସ୍ତ୍ରୀ] ନାଟ୍ୟକାର—1. An actor. ୨ । ଚିତ୍ର-କାର—2. A painter. [ଭି—ଯୋଡ଼ି ଏ ଦେଖ, ରଙ୍ଗାଜୀବ ନ ମିଳେ, ବୁଝି ଭ ତାହାର ଦର୍ଶନ । ଭକ୍ତ. ପ୍ରେମସୁଧାନିଧି] । ୩ । ଯେ ବସ୍ତ୍ରାଦିକୁ ରଙ୍ଗାଏ—3. A dyer. ୪ । ରଞ୍ଜନ ଦ୍ରବ୍ୟ ପ୍ରସ୍ତୁତକାରୀ—4. A manufacturer of dyes; colour-manufacturer.

ରଙ୍ଗାଜୀବୀ—ସଂ. ବିଣ. ପୁଂ ( ରଙ୍ଗ+ଆଜୀବ+ଇନ୍; ୧ମା. ୧ବ )—
Rangājībī ଯେ ଚିତ୍ର ବା ରଙ୍ଗ କରିବାଦ୍ୱାରା ପେଟ ପୋଷେ—Earning livelihood by
[ରଙ୍ଗାଜୀବନୀ—ସ୍ତ୍ରୀ] painting or dyeing. ସଂ. ବି. ପୁଂ— ରଙ୍ଗାଜୀବ (ଦେଖ)—Rangājība (See)

ରଙ୍ଗାଟିଆ—ଦେ. ବିଣ. (ସ. ରକ୍ତାଭ)—ରକ୍ତାଭ; ଈଷତ୍ ନାଲି—
Rangāṭiā ଲାଲଚେ ମଟରଂଗ Reddish.

ରଙ୍ଗା ଢୋକିବା—ପ୍ରାଦେ. ( ଆଠମଲ୍ଲିକ ) ବି.—ସନ୍ଧ୍ୟା ବୁଡ଼ିବା;
Rangā ḍhokibā ବେଳବୁଡ଼—Dusk.

ରଙ୍ଗାଧର—ଦେ. ବି. ପୁଂ ( ବହୁବ୍ରୀହି; ରଙ୍ଗ=ରକ୍ତବର୍ଣ୍ଣ+ଅଧର
Rangādhara ଯାହାର)—ଲୋକଙ୍କ ଦିଆଯିବା ନାମ—Name given to persons. ଦେ. ବିଣ. ପୁଂ.—ରକ୍ତବର୍ଣ୍ଣ
(ରଙ୍ଗାଧରୀ—ସ୍ତ୍ରୀ) ଅଧର ବଶିଷ୍ଟ—Red-lipped.

ରଙ୍ଗା ପାଟିଆ—ପ୍ରାଦେ (ବାଲେଶ୍ୱର) ବି—ମତ୍ସ୍ୟ ବିଶେଷ—
Rangā pāṭiā A kind of fish.

ରଙ୍ଗାବତରଣ—ସ. ବି (୭ମୀ ତତ୍; ରଙ୍ଗ+ଅବତରଣ)—୧ । ଅଭିନୟ
Rangābataraṇa ବା ନାଟ କରିବା ପାଇଁ ରଙ୍ଗଭୂମିରେ ଉପସ୍ଥିତ ହେବା—1. Appearance of an actor or actress on the stage; entrance into the stage. ୨। ନଟବୃତ୍ତି—2. An actor's profession.

ରଙ୍ଗାବତାର—ସ. ବି. ପୁଂ—୧ । ନଟ—1. An actor. ୨ । ସୂତ୍ର-
Rangābatāra ଧାର; ଯେ ପ୍ରଥମେ ରଙ୍ଗ ଭୂମିରେ ନାଟକର
ରଙ୍ଗାବତାରକ } ଅନ୍ୟରୂପ
ରଙ୍ଗାବତାରୀ }
ଅବତାରଣା କରେ—2. Manager of a theatre; the
ରଙ୍ଗାବତାରୀ, ରଙ୍ଗାବତାରକା, } —ସ୍ତ୍ରୀ
ରଙ୍ଗାବତାରଣୀ }
actor who introduces the play.

ରଙ୍ଗା ଯି(ହେ)ବା—ଦେ.କ୍ରିୟା (ରଙ୍ଗାଇବା କ୍ରିୟାର କର୍ମବାଚ୍ୟରୂପ)—
Rangā ji(he)bā ରଞ୍ଜିତ ହେବା—To be dyed or coloured.

ରଙ୍ଗା ରଙ୍ଗା—ଦେ. ବିଣ—ରକ୍ତବର୍ଣ୍ଣବିଶିଷ୍ଟ (ଏକାଧିକ ବସ୍ତୁ)—Of
Rangā rangā red colour (plural). [ ଭି—ତେଜ ବାଙ୍ଗାବାଙ୍ଗା ତେଜ ମନ୍ଦାରଙ୍ଗା, ଫୁଲ ଫୁଟେ ରଙ୍ଗା ରଙ୍ଗା— ଲାଲଲାଲ, ରංଗାරංଗා ଶିଶୁଗୀତ । ]

ରଙ୍ଗାରି—ସ. ବି—କରବୀ ଫୁଲ—
Rangāri The oleander (flower).

ରଙ୍ଗାଳୟ—ସ. ବି (୬ଷ୍ଠୀ ତତ୍)—ନାଟ୍ୟଶାଳା—
Rangālaya The stage of a theatre.

ରଙ୍ଗାଳିଆ—ଦେ. ବିଣ (ସ. ରକ୍ତାଭ)—ଈଷତ୍ ରକ୍ତବର୍ଣ୍ଣବିଶିଷ୍ଟ—
Rangāliā ଲାଲଚେ ମଟରଂଗ Reddish; rosy

ରଙ୍ଗି(ଙ୍ଗୁ)ଆ—ଦେ. ବିଣ. ପୁଂ (ସ. ରଙ୍ଗୀ)—୧ । କୌତୁକପ୍ରିୟ—
Rangi(ṅgu)ā 1. Fond of fun; funny. ୨।ରସିକ—
ରଙ୍ଗିଲା, ମଉଜୀ 2. Gallant; merry; jovial; humor-
ରଙ୍ଗୀଲା ous. ୩ । ଅନୁରାଗୀ—3. Passionate; attached. [ରଙ୍ଗୀ,ରଙ୍ଗେଇ—ସ୍ତ୍ରୀ] ୪। ପ୍ରଫୁଲ୍ଲ—4. Gay. ୫। ବାହ୍ୟସୁନ୍ଦର— 5. Splendid; showy. ଦେ. ବି.ପୁଂ—୧। ରଙ୍ଗାଧର
ରଙ୍ଗୈଯା ନାମକ ବ୍ୟକ୍ତିର ଡାକନାମ—1. Name for calling Rangādhara. ୨ । ରଙ୍ଗକାର— 2. Painter.

ରଙ୍ଗିଆ ରାଇ—ଦେ.ବି —ଏକପ୍ରକାର ନାଲିଧାନ—A kind of red
Rangiā rāi paddy producing white rice. [ଭି— ରାଙ୍ଗିମୋଳ ଧାନ ନାଆଁ ରଙ୍ଗିଅରାଇ, ସ୍ୱାଲୁ ନ ଛାଡ଼ନ୍ତୁ ତପାଭାଇ !— ଜାଜଧାନ କୃଷିବଚନ; ଧାନ କରଥିବ ରଙ୍ଗିଅରାଇ, ଭାତକୁ ସୁନ୍ଦର ଲାଗୁଥିବ ବାଇ—କୃଷିବଚନ । ] [ ଦ୍ର—ଏହା ପ୍ରଚୁର ପରିମାଣରେ ଫଳେ । ଏଥିରୁ ଧଳାଚାଉଳ ବାହାରେ ।]

ରଙ୍ଗିଣ— ଦେ. ବିଣ —୧ । ରକ୍ତବର୍ଣ୍ଣ ବଶିଷ୍ଟ—1. Reddish. ୨ ।
Rangiṇa ଈଷତ୍ ନାଲି—2. Reddish; rosy.
ରଙ୍ଗୀନ ରंगीन [ ଭି—ରଙ୍ଗିଣ ଧବଳ ଦେହ ଦିଶଇ ମଧ୍ୟମା । ଗ୍ରାଗୀ. ବ୍ରହ୍ମଜରୂପଣ ଗୀତା ।]

ରଙ୍ଗିଣୀ(ନୀ)—ସ. ବିଣ. ସ୍ତ୍ରୀ (ରଙ୍ଗ+ଇନ୍+ସ୍ତ୍ରୀ. )—୧ । କୌତୁକ-
Rangiṇī(nī) କାରିଣୀ; କୌତୁକପ୍ରିୟା—1. Sportive;
(ରଙ୍ଗୀ—ପୁଂ) fond of fun(woman). ୨। ରସିକା (ସ୍ତ୍ରୀ)— 2. Witty ( woman ). ୩ । ଅନୁରାଗିଣୀ—

3. Loving; affectionate. ୪ । ଯେ ରଙ୍ଗରେ ମାତିଥାଏ—4. Engaged in merriment.
[ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ମଧ୍ୟ ସମାସ ହୁଏ। ଯଥା—ରଣରଙ୍ଗିମା; ରତିରଙ୍ଗିମା। ] ସ. ବି—୧ । ଶତମୂଳୀ; ଛତୁଆସ୍ ଲତା —1 (a thorny creeper) Asparagus Recemosus. ୨ । କୈବର୍ତ୍ତିକା; କେଉଟଘାସ ମୁଥା—2. A sort of grass with fragrant bulbous root, Cyperus Rotundus. ଦେ. ବି—ରଙ୍ଗଣୀ (୧) ଦେଖ—Rangaṇi (1) (See) (ଉ—ଥୋପି ପଡ଼ିଲ୍ଲ ଯେ ରଙ୍ଗେ ରଙ୍ଗିଣୀ—ଗୋଲୋକ ଇନ୍ଦୁ ଦେଖ ।)

**ରଙ୍ଗିତ**—ସ. ବିଣ ( ରଙ୍ଗ+ଯୁକ୍ତାର୍ଥେ. ଇତ )—ରଞ୍ଜିତ
Rangita Coloured; painted.

**ରଙ୍ଗିନ୍(ନି)**—ବୈଦେ. ବିଣ ( ଫା )—୧ । ରଞ୍ଜିତ; ବର୍ଣ୍ଣବିଶିଷ୍ଟ—Rangin[ni] 1 Coloured. ୨ । ଚିତ୍ରିତ—
ବଙ୍ଗୀନ **रंगाहुआ, रंगीन** 2. Painted. ୩ । ଚିତ୍ରବିଚିତ୍ର—3. Painted in various colours. [ଯଥା—ରଙ୍ଗିନ୍ କାଗଜ, ରଙ୍ଗିନ୍ କାର୍ଡ ।]

**ରଙ୍ଗିବା**—ପ୍ରାଦେ (ଗଡ଼ଜାତ, ବୌଦ୍ଧ) କି ( ସ. ରଙ୍ଗଧାତୁ; ଭୁଲ. ହି. ରେଂଗନା)—ସାପ ପରି ବଙ୍କେଇ ବଙ୍କେଇ ଯିବା--
Rangiba [ରଙ୍ଗି ଯିବା—ଅନ୍ୟରୂପ] To move in a crooked manner. ପ୍ରାଦେ [ସମ୍ବଲପୁର] କି—ଚାଲିବା—To walk. ପ୍ରାଦେ[ଅଠମଲ୍ଲିକ] କି—ହାମୁଡ଼େଇବା—To crawl; to creep.

**ରଙ୍ଗିମା**—ଦେ. ବିଣ—ରକ୍ତବର୍ଣ୍ଣଯୁକ୍ତ— Red. ( ଉ—ରଙ୍ଗିମା ବିଶୁଦ୍ଧ
Rangima ନୟନ ବେଳ—ବିଶ୍ୱନାଥ. ବିଚିତ୍ରରାମାୟଣ ।)
ବଙ୍ଗୀନ **लाल**

**ରଙ୍ଗିରଙ୍ଗି**—ପ୍ରାଦେ (ବୌଦ୍ଧ) କି. ବିଣ—ଗୁରୁଣ୍ଡି ଗୁରୁଣ୍ଡି—
Rangi rangi Crawling.

**ରଙ୍ଗିଲ(ଲ)**—ଦେ. ବିଣ. ପୁଂ (ସ.ରଙ୍ଗ ଶବ୍ଦଜ)—୧ । ରଙ୍ଗିଆ (ଦେଖ)
Rangila(la) 1. Rangia (See) ୨ । ରଙ୍ଗିନ୍(ଦେଖ)
ବଂଗିଯା **रंगीला** Rangin (See)

**ରଙ୍ଗିଲା**—ଦେ. ବି. ସ୍ତ୍ରୀ—ଓଡ଼ିଶାର ଶେଷ ସ୍ୱାଧୀନ ନରପତି ପ୍ରତାପରୁଦ୍ର
Rangila ଦେବଙ୍କର ଜ୍ୟେଷ୍ଠ ପୁତ୍ର କଲ୍ୟଦେବଙ୍କ ପ୍ରଣୟିନୀ ବାଳକା (କଲ୍ୟଦେବ ନାମମାତ୍ର ଏକ ବର୍ଷ ରାଜତ୍ୱ କରି ବିଶ୍ୱାସଘାତକ ମନ୍ତ୍ରୀ ଗୋବିନ୍ଦବିଦ୍ୟାଧରଙ୍କ ଦ୍ୱାରା ନିହତ ହୋଇଥିଲେ)—Name of a girl loved by the eldest son of Pratāpa Rudra Deba, the last independent king of Orissa. ଦେ ବିଣ—ରଙ୍ଗିଲର ସ୍ତ୍ରୀଲିଙ୍ଗ—Feminine of Rangila.

**ରଙ୍ଗୀ**—ସ. ବିଣ. ପୁଂ (ରଙ୍ଗ+ଇନ୍, ୧ମା ୧ବ)—୧ । ରଙ୍ଗିଆ(ଦେଖ)
Rangi 1. Rangia (See) ୨ । (ଅନୁରକ୍ତ)
[ରଙ୍ଗିଣୀ(ଣୀ)—ସ୍ତ୍ରୀ] ଅସକ୍ତ—2. Attached to; devoted to. [ଦ୍ର—ଏହା ମଧ୍ୟ ଅନ୍ୟ ଶବ୍ଦ ସଙ୍ଗେ ସମାସରେ ଯୁକ୍ତ ହୁଏ । ଯଥା—ରଣରଙ୍ଗୀ, ନୃତ୍ୟରଙ୍ଗୀ । ] ୩ । ରଞ୍ଜନକାରୀ—3 Colouring; dyeing (Apte). ୪ । (ଅମୁକ ବିଷୟର) ପ୍ରିୟ—4. Fond of (Apte). ୫ । କ୍ରୋଧୀ; ସହଜରେ ଉତ୍ତେଜିତ—5. Passaionte (Apte); irritable. ୬ । ରଙ୍ଗଭୂମିରେ ଅଭିନୟକାରୀ—6. Acting on a stage (Apte).
ଲାଲ ଦେ. ବି—୧ । ନାଲିରଙ୍ଗବିଶିଷ୍ଟ—1. Red.
ବାংগা [ ନାଲୀ କସୁରୀ ଧଳା ରଙ୍ଗୀ—ଭୂପତି. ପ୍ରେମପଞ୍ଚାମୃତ । ]
୨ । (ପୁଂ) ରଙ୍ଗାଧର ନାମକ ବ୍ୟକ୍ତିର ଆଦରାର୍ଥକ ଡାକନାମ—2. Name for calling Rangādhara
୩ । (ସ୍ତ୍ରୀ) ରଙ୍ଗବତୀର ଡାକନାମ—3. A name for calling Rangabatī

**ରଙ୍ଗୁଣୀ ଉଠା**—ପ୍ରାଦେ. (ଗଞ୍ଜାମ ) ବି—ଦୁର୍ନାମର ହୁଣ୍ଡା—A crop of
Ranguṇi uthā evil repute or scandal [ଉ—ଯେଉଁ ଭାରତବାସୀ ନାମରେ ରାଜଦ୍ରୋହ ବୋଲି କଥେ ରଙ୍ଗୁଣୀଉଠା ଉଠିଲା, ତା ଉପରେ ବିଲାତି ପତ୍ରିକାମାନଙ୍କର ବିଷଦୃଷ୍ଟି ପଡ଼ିଲା—ଦୈ. ଆଶା—୪।୭।୨୯]

**ରଙ୍ଗୁନ**—ଦେ. ବି—ରେଙ୍ଗୁନ୍; ରେଙ୍ଗୁମ୍; ବ୍ରହ୍ମଦେଶର ପ୍ରଧାନ ବାଣିଜ୍ୟ
Rangun କେନ୍ଦ୍ର ଓ ନଗର—Rangoon in Burma.
ବେଙ୍গুন **रंगून**

**ରଙ୍ଗେ**—ଦେ. କି. ବିଣ. (ସ. ରଙ୍ଗେଣ)—୧ । କୌତୁକରେ; ଆନନ୍ଦ
Range ସହକାରେ—1. Joyfully; gleefully.
ବଙ୍গে **रंगमें** [ଉ—ଶୁଣକ ପଂକ୍ତି ଦେଖି ହସିବେ ରଙ୍ଗେ—ରାଧାନାଥ. ମେଘଦୂତ । ] ୨ । ନାନାପ୍ରକାରେ—2 In various ways. ( ଉ—ଦୁନ୍ଦୁଭିବାଦ୍ୟନାଦ କରି, ରଙ୍ଗେ ନାଚନ୍ତି ଅପସରା—ଜଗନ୍ନାଥ. ଭାଗବତ । )
୩ । ଅର୍ଥେ; ପାଇଁ; ସକାଶେ; ନିମିତ୍ତ—3. For. (ଉ—
ଅନେକ ଦଳ ତାଙ୍କ ସଙ୍ଗେ
ବିଦାହ ଦେଖିବାର ରଙ୍ଗେ
ସଙ୍ଗେ ଅଇଲେ ବେନି ଭାଇ
କହିଲୁ ଆମ୍ଭ ଦୋଷ ନାହିଁ—ଜଗନ୍ନାଥ ଭାଗବତ ।]
୪ । ନାନାପ୍ରକାର ମନୋହର ଭଙ୍ଗୀରେ—4. In various charming ways.

**ରଙ୍ଗେଇ**—ଦେ. ବିଣ. ସ୍ତ୍ରୀ—(ରଙ୍ଗିଆର ସ୍ତ୍ରୀଲିଙ୍ଗ)—ରସବତୀ—
Rangei Feminine of Rangiā.
ଆମୋଦିନୀ, ବସବତୀ, **रंगीली**

**ରଂଘ(ଧାତୁ)**—ସଂ—୧ । ଗତି କରିବା—1. To go. ୨ । ଶୀଘ୍ରଯିବା—
Rangha (root) 2. To go quickly; to hasten.

**ରଂଘଃ**—ସଂ ବି—(ର. ଘ ଧାତୁ—ବେଗେ ଗମନ କରିବା+ଭାବ.ଅସ୍)—
Ranghah ୧ । ବେଗ—1. Speed; velocity. ୨ । ଶୀଘ୍ରତା—2. Swiftness. ୩ । ତ୍ୱରା—3. Haste (Apte).

**ରଚ୍(ଧାତୁ)**—ସଂ—୧ । ସର୍ଜନା କରିବା; ସୃଷ୍ଟି କରିବା—1. To
Rach(root) create. ୨ । ତିଆର କରିବା; ପ୍ରସ୍ତୁତ କରିବା

—2. To build; to make; to construct, ୩। କୌଣସି ପଦାର୍ଥକୁ ଛାଞ୍ଚ କରିବା; ଗଢ଼ିବା; ବନାଇବା—3 To manufacture; to fabricate. ୪। ( ପୁସ୍ତକ ବା ରଚନା ) ମନରୁ ଫାନ୍ଦି ଲେଖିବା; ରଚନା କରିବା—4 To compose; to write (a poem or book) ୫। ଆବିଷ୍କାର କରିବା; ଉଦ୍ଭାବନ କରିବା—5. To invent. ୬। (ହାର ଆଦି) ଏକତ୍ର ଗୁନ୍ଥିବା; ଗ୍ରଥନ କରିବା; ଗାନ୍ଥିବା—6. To lay or string together. ୭। ସୁସଜ୍ଜିତ କରିବା—7. To equip; to make up. ୮। ଉପରେ ରଖିବା—8. To place upon; to set or fix on. ୯। ଅଳଙ୍କୃତ କରିବା—9. To adorn; to decorate (Apte). ୧୦। ଆପଣା ମନକୁ କୌଣସି ଆଡ଼କୁ ବଢ଼ାଇବା—10. To direct one's mind towards (Apte).

**ରଚ୍‌କା**—ପ୍ରାଦେ. (ବାଲେଶ୍ୱର) ବି. (ଧ୍ୱନ୍ୟନୁକରଣ)—ଝିଙ୍କା—
Rach-ka Jerk.

**ରଚ୍‌କା ମାରିବା**—ପ୍ରାଦେ (ବାଲେଶ୍ୱର) କି. (ଭୁଲ ସ୍ପ. ଲରକା ମାରନା)
Rach-kā māribā ଘୁଡ଼ି ଉଡ଼ୁଥିବା ଅବସ୍ଥାରେ ସୂତା ଛାଡ଼ୁ ଛାଡ଼ୁ ହଠାତ୍ ନିଜର ହାତକୁ କ୍ଷିପ୍ର ଭାବରେ ପଛକୁ ନେଇ ଯିବା—To draw the hand backward abruptly while pulling the string of a paper kite,

**ରଚ୍‌କିବା**—ପ୍ରାଦେ (ସମ୍ବଲପୁର) କି—ମଚକି ଯିବା (ଦେଖ)—
Rach-kibā Mach-kijibā (See)
(ରଚ୍‌କି ଯିବା—ଅନ୍ୟରୂପ)

**ରଚ୍‌ରଚ୍**—ଦେ. ଅ. (ଧ୍ୱନ୍ୟନୁକରଣ)—ଖାଦ୍ୟ ଦ୍ରବ୍ୟରେ ବାଲି ମିଶି ଥିବା ହେତୁ ଖାଇବାବେଳକୁ ଦାନ୍ତକୁ କର୍କଶ ଲାଗିବା ଅବସ୍ଥା; ରଜ୍‌ରଜ୍; ରିଜ୍‌ରିଜ୍—
Rach-rach
बच बच
**कच कच** The state of food being mixed with sand particles and so becoming jarring to the teeth.

**ରଚ୍‌ରଚିଆ**—ଦେ ବିଣ—(ଧ୍ୱନ୍ୟନୁକରଣ)—ବାଲି ଆଦି ମିଶି ଥିବାରୁ ଦାନ୍ତକୁ କର୍କଶ ଲାଗୁଥିବା (ଖାଦ୍ୟ)—
Rach-rachiā
बचबचे Jarring to the teeth (due to the
**कचकचिआ** food being mixed with sand).

**ରଚକ**—ସଂ ବିଣ. ପୁଂ. (ରଚ୍ ଧାତୁ+କର୍ତ୍ତୃ. ଅକ)—ଯେ ରଚନା କରେ, ରଚନା କାରୀ—Composing, building; fabricating.
Rachaka
(ରଚିକା—ସ୍ତ୍ରୀ)
ସଂ. ବି ପୁଂ—୧। ଗ୍ରନ୍ଥକର୍ତ୍ତା; ପ୍ରଣେତା—1. Author, composer. ୨। ନିର୍ମାଣ କର୍ତ୍ତା—2. Builder. ୩। ଆବିଷ୍କର୍ତ୍ତା—3. Inventor.

**ରଚନ**—ସଂ. ବି. ( ରଚ ଧାତୁ+ଭାବ. ଅନ )—୧। ନିର୍ମାଣ—
Rachana 1. Making. ୨। ଗଢ଼ିବା—2. Manufacture. ୩। ସର୍ଜନ—3. Creating; creation; formation. ୪। ଉଦ୍ଭାବନ—4. Invention. ୫। ଗ୍ରନ୍ଥନ—5. Stringing. ୬। ରଚନା (ଦେଖ)—6. Rachanā (See). ୭। ବିନ୍ୟାସ; ସଜାଇବା; ସଜ୍ଜିତ କରଣ; ବ୍ୟବସ୍ଥାପନ—7. Arranging; disposition. ୮। ଉତ୍ପାଦନ—8. Production. ୯। ସମ୍ପାଦନ—9. Performance; accomplistment (Apte). ୧୦। ସମାପ୍ତି 10. Completion (Apte).

**ରଚନ କର୍ତ୍ତା**—ସଂ. ବିଣ ଓ ବି—ରଚକ ( ଦେଖ )
Rachana kartā Rachaka ( See )
(ରଚନ କର୍ତ୍ତ୍ରୀ, ରଚନକାରିଣୀ—ସ୍ତ୍ରୀ; ରଚନକାର, ରଚନକାରୀ—ଅନ୍ୟରୂପ)

**ରଚନ ବିନ୍ୟାସ**—ସଂ. ବି. (ଷଷ୍ଠୀ ତତ୍)—ସଜାଇବାର ଢଙ୍ଗ—
Rachana binyāsa Mode of arrangement.
[ରଚନକ୍ରମ, ରଚନପର୍ଯ୍ୟାୟ, ରଚନ ଧାରା—ଅନ୍ୟରୂପ]

**ରଚନା**—ସଂ. ବି. ( ରଚ୍ ଧାତୁ+ଭାବ. ଅନ+ଆ )—୧। ରଚନ; ନିର୍ମାଣ; ଗଠନ—1. Building; structure.
Rachanā
୨। ସଜ୍ଜିବା; ସଜାଇବା; ବିନ୍ୟାସ—2. Arrangement; arraying; methodical arrangement ୩। (ମାଲ୍ୟାଦି) ଗୁମ୍ଫନ; ଗ୍ରନ୍ଥନ—3. Stringing together. ୪। ( କେଶାଦିର ) ଅଳଙ୍କରଣ; କେଶବେଶ କରଣ; ପ୍ରସାଧନ—4. Decoration (of the hair); hair-dressing. ୫। (ଗ୍ରନ୍ଥ, ପଦ୍ୟ ଆଦି) ଗଢ଼ିବା; ଗଦ୍ୟପଦ୍ୟମୟ ବାକ୍ୟର ବିନ୍ୟାସ—5. Literary composition. ୬। ଯୁଦ୍ଧାର୍ଥ ଶ୍ରେଣୀବନ୍ଧନ ପୂର୍ବକ ସୈନ୍ୟବିନ୍ୟାସ—6. Arraying of troops in order of battle; battle array. ୭। ଚମତ୍କାର ସର୍ଜନ; ଆବିଷ୍କରଣ—7. Invention. ୮। ମିଥ୍ୟା କଥାକୁ ଫାନ୍ଦି କରି ସତ ପରି ଉପସ୍ଥାପିତ କରିବା—8. Fabrication. ୯। (+କର୍ମ. ଅନ; ଯାହାକୁ ରଚନ କରାଯାଏ) ରଚିତ ଗ୍ରନ୍ଥ ବା ଲେଖ—9 Literary work or production. ୧୦। ବିନ୍ୟସ୍ତ କେଶ; କେଶବେଶ—10. Coiffure; dressed hair. ୧୧। ସୃଷ୍ଟ ବସ୍ତୁ—11. Created thing. ୧୨। ରଚିତ ବ୍ୟୂହ—12. Array of troops. ୧୩। ବେଶ—13. Dress; guise. ୧୪। କଳ୍ପିତ ବିଷୟ—14. A creation of the mind; fancy of the mind.
ଦେ. ବିଣ—୧। ଉଦ୍ଭାବିତ—1. Invented. ୨। କଳ୍ପିତ—2. Imagined; fancied. ୩। (କଚେରିଆ) ମିଥ୍ୟା ପ୍ରମାଣ ଆଦିର ଯୋଗାଡ଼ କରି ଯାଇ ବନା ହୋଇଥିବା (ମକଦ୍ଦମା)—3. Fabricated; got up (case). ୪। ରଚିତ—4. Built, constructed.

[ ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ କେଶ-ରଚନା, ଅଙ୍ଗରଚନା, ଅସ୍ୟରଚନା, କବିତାରଚନା, ପଦ୍ୟରଚନା, ବେଶରଚନା, ପ୍ରବନ୍ଧରଚନା, ସନ୍ଦର୍ଭରଚନା, ଗୃହରଚନା, ମନ୍ଦିରରଚନା, ପୁଷ୍ପରଚନା, ମାଲ୍ୟରଚନା, ଗୁଚ୍ଛରଚନା, ଯୁଦ୍ଧରଚନା, ରଣରଚନା, ସୈନ୍ୟରଚନା, ବ୍ୟୂହରଚନା, ଚନ୍ଦନରଚନା, ମୃଗମଦରଚନା, କଜ୍ଜଳରଚନା ଓ ତିଳକରଚନା ଆଦି ହୁଏ । ]

ରଚନା କରିବା—ଦେ. କି—୧ । ନିର୍ମାଣ କରିବା; ଗଢ଼ିବା—1. To
Rachanā karibā build. ୨ । ବାକ୍ୟାଦି ବିନ୍ୟାସ
ରଚନା କରା କରିବା—2. To compose. ୩ । ସଜାଇବା
**रचना करना** —3. To arrange. ୪ । କଳ୍ପନା ଶକ୍ତି-ଦ୍ୱାରା ଆବିଷ୍କାର କରିବା—4. To invent. ୫ । ( କଚେରୀ ) ମିଥ୍ୟା ବିଷୟକୁ ସତ୍ୟ ପରି ସଜାଇ ମକଦ୍ଦମା କରିବା—5. To fabricate a case; to get up a false case.

ରଚନା(ନ) କୁଶଳ—ସଂ. ବିଣ. ପୁଂ (୭ମୀ ତତ୍)—ରଚନା କରିବାରେ
Rachanā(na) kusala ପଟୁ ବା ନିପୁଣ—Expert in
(ରଚନା[ନ]କୁଶଳା—ସ୍ତ୍ରୀ) building; clever or skilful
(ରଚନା[ନ]କୁଶଳତା—ବି) in making an arrangement.

ରଚନା (ନ)କୌଶଳ—ସଂ. ବି ( ୭ମୀ ତତ୍ )—ରଚନା କରିବାରେ
Rachanā(na) kausala ଚାତୁର୍ଯ୍ୟ ବା ନିପୁଣତା—Dext-
ରଚନା ଚତୁରତା, ରଚନା ଚାତୁର୍ଯ୍ୟ } erity in composi-
ରଚନା ନିପୁଣତା, ରଚନା ନୈପୁଣ୍ୟ } ଅନ୍ୟରୂପ tion; skill in
ରଚନା ପଟୁତା, ରଚନା ପାଟବ } arrangement or dressing.

ରଚନା କ୍ରମ—ସଂ. ବି (୬ଷ୍ଠୀ ତତ୍)—ରଚନା ପଦ୍ଧତି ( ଦେଖ )
Rachanā krama Rachanā paddhati ( See )

ରଚନା ଚତୁର—ସଂ. ବିଣ ପୁଂ ( ୭ମୀ ତତ୍ )—ରଚନା ବିଷୟରେ
Rachanā chatura ପାରଙ୍ଗମ—Skilful in arranging.
(ରଚନା ନିପୁଣ, ରଚନା ପଟୀୟାନ୍, ରଚନା ପଟୁ—ଅନ୍ୟରୂପ)
(ରଚନା ଚତୁରା, ରଚନା ନିପୁଣା, ରଚନା ପଟୀୟସୀ, ରଚନା ପଟ୍ୱୀ – ସ୍ତ୍ରୀ)
[ ରଚନା ଚତୁରତା(ଚାତୁର୍ଯ୍ୟ), ରଚନା ନିପୁଣତା, ରଚନା ନୈପୁଣ୍ୟ ରଚନା ପଟୁତା(ପାଟବ)—ବିଶେଷ୍ୟରୂପ ]

ରଚନା ପଦ୍ଧତି—ସଂ. ବି.—(୬ଷ୍ଠୀ ତତ୍)—ରଚନା କରିବାର ସ୍ୱଭାବ,
Rachanā paddhati ଗଠନ ପ୍ରଣାଳୀ; ଗଢ଼ିବାର ଢଙ୍ଗ—
ରଚନା ପ୍ରଣାଳୀ } —ଅନ୍ୟରୂପ Mode of composition
ରଚନା ଭଙ୍ଗୀ } or arrangement.

ରଚନା ବିଧି—ସଂ. ବି (୬ଷ୍ଠୀ ତତ୍)—୧ । ରଚନା ପଦ୍ଧତି—1. Mode
Rachanā bidhi of arrangement. ୨ । ରଚନା କରିବାର ନିୟମ—2. Rules for composing; rules of composition

ରଚନା ସୌକର୍ଯ୍ୟ—ସଂ. ବି. ( ୬ଷ୍ଠୀ ତତ୍ )—ରଚନାର ସୁକରତା ବା
Rachanā saukarjya ସହଜତା—Ease in composi-
(ରଚନା ସୁକରତା—ଅନ୍ୟରୂପ) tion; facility of arrangement.

ରଚନା ସୌଷ୍ଠବ—ସଂ. ବି. (୬ଷ୍ଠୀ ତତ୍)—ରଚନାର ସୌନ୍ଦର୍ଯ୍ୟ ବା
Rachanā saushthaba ଉତ୍କର୍ଷ—Excellence or beauty of composition; elegance of arrangement

ରଚନୀୟ—ସଂ ବିଣ. ( ରଚ୍ ଧାତୁ+କର୍ମ. ଅନୀୟ )—୧ । ରଚିତ
Rachaniya ହେବାର ଯୋଗ୍ୟ—1. Fit or proper to be composed or arranged. ୨ । ଯାହା ରଚିତ ହେବ—2. To be arranged or composed.

ରଚୟିତା—ସଂ. ବିଣ ଓ ବି. ପୁଂ. (ରଚ୍ ଧାତୁ+କର୍ତ୍ତୃ. ତୃ; ରଚୟିତୃ ଶବ୍ଦ,
Rachayitā ୧ମା ୧ବ)—ରଚକ ( ଦେଖ )
(ରଚୟିତ୍ରୀ—ସ୍ତ୍ରୀ) Rachaka ( See )

ରଚା—ଦେ. ବି. (ସଂ. ରଚନ)—ରଚିବା କର୍ମ ( ଦେଖ )
Rachā रचा **रचना** The act of Rachibā ( See )
ଦେ. ବିଣ—ରଚିତ (ଦେଖ)—Rachita (See)

ରଚା(ଚେ)ଇବା—ଦେ· ବିଣ ( ସ ରଚ ଧାତୁ ଣିଚ, ରଚ ଧାତୁ )—
Rachā(che)ibā ରଚିବା କ୍ରିୟାର ଣିଜନ୍ତ ରୂପ—Causa-
रचान **रचवाना, रचाना** tive of Rachibā.
[ଉ—ଚନ୍ଦ୍ରମା ! ଶିରେ ରହସ୍ୟ ରଚାଇବ । ଭଞ୍ଜ. ପ୍ରେମସୁଧାନିଧି ।]

ରଚିତ—ସଂ. ବିଣ. ( ରଚ୍ ଧାତୁ+କର୍ମ. ତ )—୧ । କୃତ; ନିର୍ମିତ—
Rachita 1. Made; done; manufactured
୨ । ବିନ୍ୟସ୍ତ—2. Dressed up; arranged. ୩ । ଗ୍ରଥିତ—3. Strung together. ୪ । ଅଲଙ୍କୃତ—4. Decorated. ୫ । କଳ୍ପନା ସୃଷ୍ଟ, ସୃଷ୍ଟ; ଉଦ୍ଭାବିତ—5. Invented, created. ୬ । ପରିଷ୍କୃତ—6. Cleansed; purified. ୭ । ଲିଖିତ—7. Composed. ଦେ. ବି (+ଭାବ.ତ)—ରଚନା—Composition. [ଉ—ଉପଇନ୍ଦ୍ର ଉପଚନ୍ଦ୍ର ଧାତେ ଏ ଛନ୍ଦ, ରଚିତର ଚନ୍ଦ୍ର କର ଅଛି ଆନନ୍ଦ । ଭଞ୍ଜ. ପ୍ରେମସୁଧାନିଧି ।]

ରଚିତ ପୂର୍ବ—ସଂ. ବିଣ. ( ପର ନିପାତ; ପୂର୍ବ+ରଚିତ )—ଯାହା ପୂର୍ବେ
Rachita pūrba ରଚିତ ହୋଇଅଛି—What has been prepared or performed before (M. W.)

ରଚିତ ଶିଖର—ସଂ. ବିଣ. ପୁଂ (ବହୁବ୍ରୀହି; ରଚିତ+ଶିଖର)—ଯାହାର
Rachita sikhara ମସ୍ତକ ବା ଶିରୋଦେଶ ଅଲଙ୍କୃତ ହୋଇ-
(ରଚିତ ଶିଖରା—ସ୍ତ୍ରୀ) ଅଛି—Having the summit adorned; having the head decorated (M. W )

ରଚିତା—ଗ୍ରା. ବିଣ—ରଚିତ ( ଦେଖ )
Rachitā Rachita ( See )
[ ଉ—ମହାନାଟକ ବାଡ ସୁଚରେ ହେଲେ ରଚିତା ଯେ । ଭଞ୍ଜ. ବୈଦେହୀଶବିଳାସ ।]

**ରଚିତାତିଥ୍ୟ**—ସଂ. ବିଣ. ପୁଂ ( ରଚିତ+ଅତିଥ୍ୟ; ବହୁବ୍ରୀହି )—ଯେ
Rachitātithya ଅତିଥି ସତ୍କାର କରିଅଛି—One who
(ରଚିତାତିଥ୍ୟା—ସ୍ତ୍ରୀ) has shown hospitality (M.W.).

**ରଚିତାନତି**—ସଂ. ବିଣ. ପୁଂ ଓ ସ୍ତ୍ରୀ ( ବହୁବ୍ରୀହି )—ଯେ ନମସ୍କାର
Rachitānati କରିଅଛି—One who has made obeisance (M. W.)

**ରଚିତାର୍ଥ**—ସଂ. ବିଣ. ପୁଂ ( ବହୁବ୍ରୀହି; ରଚିତ+ଅର୍ଥ )—ଯାହାର
Rachitārtha ଉଦ୍ଦେଶ୍ୟ ସମ୍ପାଦିତ ହୋଇଅଛି—One who
ରଚିତାର୍ଥା—ସ୍ତ୍ରୀ } has obtained his object (M. W.)
ରଚିତାର୍ଥତା—ବି }

**ରଚିତୋତ୍ସବ**—ସଂ. ବିଣ. ପୁଂ (ବହୁବ୍ରୀହି)—ଯେ ଉତ୍ସବ ସମ୍ପାଦନ
Rachitotsaba କରିଅଛି—One who has celebrated
(ରଚିତୋତ୍ସବା—ସ୍ତ୍ରୀ) a festival (M. W.).

**ରଚିବା**—ଦେ. (ପଦ୍ୟ) କ୍ରି. ( ସଂ. ରଚ୍ ଧାତୁ )—୧ । ରଚନା କରିବା
Rachibā ( ଦେଖ )—1. Rachanā karibā ( See )
ରଚା ରଚନା [ଉ- ସଙ୍ଗୀତ ପଠିମି ଇଙ୍ଗିତ ଗୀତରେ ରଚି ପୁନଃ ପୁନଃ ଗାଇବ । ଭଞ୍ଜ. ପ୍ରେମସୁଧାନିଧି ।] ୨ । ଘଟାଇବା—2. To cause; to bring about. [ଉ—ମାନସ ଅଙ୍ଗ, ଭେଦ ପ୍ରସଙ୍ଗ, ଭଙ୍ଗ ରଚିଲି ସ୍ବେଦ । କବିସୂର୍ଯ୍ୟ. ବଳଶୋସ୍ତ ଚମ୍ପୂ ମ. ଗୀତ । ] ୩ । ଫିଙ୍ଗିବା, ବିନ୍ଧିବା—3. To fling. [ ଉ—ନିମିଷକ ମାତ୍ରକେ ଦ୍ରୋଣଙ୍କର କଳା, ଆନ ଧନୁ ଧରି ରଚିଲେ ଶରମାଳା । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।] ୪ । (ଅନ୍ୟ ବିଶେଷ୍ୟ ପଦ ଲାଗେ) କୌଣସି କର୍ମ କରିବା—4. To do or perform any act. [ଉ—ଫଗୁ ଖେଳ ରଚି ବନ-ପ୍ରସୁନ ପରାଗେ । ରାଧାନାଥ. ମହାଯାତ୍ରା । ]

**ରଚି ଯିବା**—ପ୍ରାଦେ. (ଖଡ଼ୁଆଳ) କ୍ରି. [ମୂଳ. ହି—ର(ଘ)ଚନା=ରଞ୍ଜିତ
Rachi jibā ହେବା]—୧ । (ତେଲ ଆଦି) ମାଲିସ୍ ପରେ ଦେହରେ ଭେଦ ଯିବା—1. To get into the body (said when oil is rubbed on it); to soak; to permeate. ୨ । ଲୁଗା ଆଦିରେ (ରଙ୍ଗ) ଲାଗିଯିବା; ରଞ୍ଜିତ ହେବା—2. To set on a cloth (said of a paint or dye).

**ରଚେଇବା**—ପ୍ରାଦେ. (ଖଡ଼ୁଆଳ)—କ୍ରି—ରଙ୍ଗେଇବା—
Racheibā To paint.

**ରଜ୍ ରଜ୍**—ଦେ. ଅ. (ଧ୍ୱନ୍ୟନୁକରଣ)—୧ । ଆଖି ଭିତରେ ଧୂଳି ବା
Raj raj ବାଲି ପଡ଼ିଗଲେ ମକଚ ହେବା ଅବସ୍ଥା—1. The
ରଜ ରଜ uneasy sensation when a grain of
କୁଟକୁଟ, କଚକଚ sand enters the eye. (ଯଥା—ବାଲି ପଶି ମୋ ଆଖି ରଜରଜ ହେଉଛି ।) ୨ । ଖାଦ୍ୟାଦିରେ ବାଲି ଆଦି ମିଶିଥିବାରୁ ଖାଇବାକୁ କର୍କଶ ଲାଗିବା—2. Jarring sensation due to presence of sand in food. ( ଯଥା—ଭାତଗୁଡ଼ାକ ରଜରଜ ଲାଗୁଛି, ଲୁଣଗୁଡ଼ାକ ରଜରଜ ହେବାଉଛି ।) ୩ । ପଥର
ଚୂର୍ଣ୍ଣଭାବ ଆଦି ଚୂନା ହୋଇ ବା ଝୁରୁଝୁରୁ ହୋଇ ଭାଙ୍ଗିଯିବା ଅବସ୍ଥା-
ଚୂରଚୂର 3. Pulverised state of a stone. (ଯଥା—ଏ କଳା ପଥର ରଜରଜ ହୋଇ ଭାଙ୍ଗି ଯାଉଛି ।) ୪ । ଭଙ୍ଗ ପ୍ରବଣ—4. Brittle; fragile.

**ରଜ୍ ରଜିଆ**—ଦେ. ବିଣ (ଧ୍ୱନ୍ୟନୁକାରୀ)—ବାଲି ମିଶ୍ରିତ [ଖାଦ୍ୟ]
Raj-rajiā ହୋଇ ଥିବାରୁ ଖାଇବାକୁ କର୍କଶ—Jarring to
ରଜରଜେ the palate or teeth due to the food
କଚକଚିଆ being mixed with sand.

**ରଜ(ଜଃ)**—ସଂ. ବି (ରଜ୍ ଧାତୁ=ରଙ୍ଗ କରିବା+କର୍ମ. ଅ;+
Raja(jah) କରଣ. ଅସ)—୧ । ଧୂଳି; ରେଣୁ—1 Dust [ଉ—ବସ୍ତ୍ର ଚରଣ ରଜ ଲାଗି, ସେ ନମା ଅଛ ସଉଭାଗୀ—ଜଗନ୍ନାଥ. ଭାଗବତ । ] ୨ । ପରାଗ; ପୁଷ୍ପରେଣୁ—2. Pollen of flower ୩ । ଚୂର୍ଣ୍ଣ—3. Powder. ୪ । ପ୍ରତି ମାସରେ ସ୍ତ୍ରୀଯୋନିରୁ ନିସୃତ ରକ୍ତ; ସ୍ତ୍ରୀ ଋତୁସ୍ରାବ—4. Menstrual flux. [ ଦ୍ର—ସ୍ତ୍ରୀର ରଜ ଓ ପୁରୁଷର ଶୁକ୍ରର ସଙ୍ଗମରେ ଗର୍ଭରେ ସନ୍ତାନର ସୃଷ୍ଟି ହୁଏ ।] ୫ । ଦୁଃଖ ଓ ମୋହଜନକ ପ୍ରକୃତି ବା ଗୁଣବିଶେଷ; ତ୍ରିଗୁଣ (ସତ୍ତ୍ୱ ରଜ ତମଃ) ମଧ୍ୟରୁ ଏକତମ [ଯଥା—କ୍ରୋଧ,ଲୋଭ, ଅହଂକାର ଓ ଦ୍ୱେଷାଦି]—5. One of the three attributes of human nature; the passions in human nature. [ ଦ୍ର—ଦେହଧାରୀର ଦେହକୁ ସତ୍ତ୍ୱ, ରଜଃ ଓ ତମଃ, ଏହି ତିନି ଗୁଣ ସଂସାରରେ ବାନ୍ଧି ରଖିଅଛନ୍ତି । ଦେହୀକୁ ସତ୍ତ୍ୱଗୁଣ ସୁଖରେ ନିଯୁକ୍ତ କରାଏ, ରଜୋଗୁଣ ସାଂସାରିକ ମାୟାରେ ଓ କର୍ମରେ ନିଯୁକ୍ତ କରାଏ ଏବଂ ତମୋଗୁଣ ଅଜ୍ଞାନରେ ଓ ପ୍ରମାଦରେ ନିଯୁକ୍ତ କରାଏ । ଏ ତିନୋଟି ଗୁଣ ଜୀବପ୍ରକୃତିରୁ ଜାତ । ରଜୋଗୁଣ ରାଗାତ୍ମକ, ଏହା ତୃଷ୍ଣାରୁ ଓ ଆସକ୍ତିରୁ ଜନ୍ମେ । ମନୁଷ୍ୟଠାରେ ରଜୋଗୁଣ ବୃଦ୍ଧି ଲଭିଲେ ଲୋଭପ୍ରବୃତ୍ତି, କର୍ମାରମ୍ଭ, ବିଷୟଲିପ୍ସା ଓ ଅଶାନ୍ତି ଜନ୍ମି ଶେଷରେ ଦୁଃଖରେ ପରିଣତ ହୁଏ । ରଜୋଗୁଣର ପରିଣାମ ଦୁଃଖମୟ, ସତ୍ତ୍ୱଗୁଣର ଫଳ ଆନନ୍ଦ ଓ ତମୋଗୁଣର ଫଳ ଅଜ୍ଞାନ । ରଜୋଗୁଣରୁ ଲୋଭ ଜନ୍ମେ । ଯାହା ଆସ୍ୱାଦ ଦୁଃଖସମାଯୁକ୍ତ, ଅପ୍ରୀତିକର ଓ ସର୍ବଦା ଶାସ୍ତ୍ରମାନଙ୍କର ଦୁର୍ନିବାର ବିଷୟତୃଷ୍ଣା ଜନ୍ମାଏ, ତାହା ରଜୋଗୁଣ ଅଟେ । ଜଗନ୍ନାଥ ଦାସଙ୍କ ଭାଗବତରେ ରଜୋଗୁଣର ଲକ୍ଷଣ ନିର୍ଦ୍ଦିଷ୍ଟ ହୋଇଅଛି, ଯଥା :—

> କାମ ବ୍ୟାପାର ତୃଷ୍ଣା ମଦ
> ଗର୍ବ ସକଳ ମତିଭେଦ
> ଯଶ ପ୍ରତିଷ୍ଠା ସୁଖ ଇଚ୍ଛା
> ଲୋକେ ଦେବତା ମନ୍ତ୍ରଦୀକ୍ଷା
> ଉଦ୍ୟମ ସ୍ୱାର୍ଥ୍ୟ ପରିହାସ
> ରଣେ ଉତ୍ସାହ ସୁଦ୍ଧ ଆଶ
> ଏତେ ଲକ୍ଷଣେ ରଜଗୁଣ ॥

ଏହି ସତ୍ତ୍ୱ, ରଜଃ ଓ ତମଃ ଗୁଣମାନଙ୍କର ବିଷୟ ଭଗବଦ୍-

ଗୀତା ୧୪ଶ ଅଧ୍ୟାୟରେ, ଗରୁଡ଼ ପୁରାଣର ୨୨୭ ଅଧ୍ୟାୟରେ ଓ ମନୁସଂହିତାର ୧୨ଶ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ]
୨ । ଇଚ୍ଛା—7 Wish. ଦେ. ବି—୧ । ପାଉଁଶ—1. Ashes [ଉ—ରଜ ଅଛି ଝଡ଼ୁ ଈଶ,ରସନ୍ତୁ ଦେଖ ମହେଶ — ଅଭିମନ୍ୟୁ.ବିଦଗ୍ଧଚିନ୍ତାମଣି ।] ୨ । ସ୍ତ୍ରୀଯୋନିରୁ ସଙ୍ଗମକାଳରେ ସଞ୍ଜାତ ଜଳୀୟ ପଦାର୍ଥ—2. Liquid slime emanating from the female organ during orgasm. ୩ । (ଦ୍ର. ରଜସ୍ୱଳା) ପୃଥିବୀ ରଜସ୍ୱଳା ହେବାର ଦିବସତ୍ରୟ; ମିଥୁନ, ଅର୍ଥାତ୍ ଆଷାଢ଼ ସଂକ୍ରାନ୍ତି ଓ ତତ୍‌ପୂର୍ବ ଓ ତତ୍‌ପର ଦିନ—3. A period of three days about the Rajasāmkrānti. [ଦ୍ର—ପୃଥିବୀ ରଜସ୍ୱଳା ହେବାର ପ୍ରମାଣ ବାକ୍ୟ:—

ବୃଷାନ୍ତେ ମିଥୁନସ୍ୟାଦୌ ଉଦ୍ଧ୍ୱଂ ଜ୍ଞେୟଂ ଦିନ ତ୍ରୟଂ
ରଜସ୍ୱଳା ସ୍ୟାତ୍ ପୃଥିବୀ କୃଷିକର୍ମବିଗର୍ହିତଂ ।
ହଳାନାଂ ବାହନଂ ନୈବ ସ୍ତ୍ରୀଜାନାଂ ବପନଂ ତଥା
ତାବଦେବ ନ କୁର୍ବୀତ ଯାବତ୍ ପୃଥ୍ୱୀ ରଜସ୍ୱଳା ।
ପୃଥ୍ୱୀ ରଜସ୍ୱଳାଯାବତ୍ ଖନନଂ ଛେଦନଂ ତ୍ୟଜେତ୍
ଅନ୍ୟ କର୍ମାଣି କୁର୍ବୀତ ପୈତ୍ରଂ ଦୈବଂ ନମାନୁଷଂ —
(ଅରୁଣୋଦୟ ପ୍ରେସ୍—ନୂତନପଞ୍ଜିକା) ।

ସୌରମାନ ଜ୍ୟୈଷ୍ଠ, ଅର୍ଥାତ୍ ବୃଷମାସର ମାସାନ୍ତ ବା ଶେଷ ଦିନ ଓ ଆଷାଢ଼, ବା ମିଥୁନ ମାସର ସଂକ୍ରାନ୍ତି ବା ପ୍ରଥମ ଦିନ ଓ ତହିଁର ପରଦିନ, ଏହିପରି ତିନି ଦିନକୁ 'ରଜ' ବୋଲାଯାଏ । ଏହି ତିନିଦିନ ପୃଥିବୀ ରଜସ୍ୱଳା ହେବାର ଶାସ୍ତ୍ରରେ କଳ୍ପିତ । ଏହି ଦିବସତ୍ରୟରେ ହଳ,ପୃଥିବୀଖନନ,ଶାଗବପନାଦି କୃଷିକର୍ମ ନିଷିଦ୍ଧ । ବୃଷମାସର ଶେଷଦିନକୁ 'ପହିଲିରଜ' ଓ ମିଥୁନ ମାସର ସଂକ୍ରାନ୍ତି ଦିନକୁ 'ଭୁଇଁନଅଣ' ଓ ମିଥୁନର ଦ୍ୱିତୀୟ ଦିନକୁ 'ଠାକୁରାଣୀ ଗାଧୁଆ' ବୋଲାଯାଏ । ପୃଥିବୀ ରଜସ୍ୱଳା ହେବା ପରେ ମିଥୁନ ଦ୍ୱିତୀୟ ଦିନ ଶୁଦ୍ଧି ସ୍ନାନ କରିବାର ଶାସ୍ତ୍ରରେ ଲେଖାଅଛି । ଆମ ଦେଶରେ ହିନ୍ଦୁ ସ୍ତ୍ରୀମାନେ ଏ ତିନିଦିନ ରାନ୍ଧନ୍ତି ନାହିଁ ଓ ଭୂମି ଉପରେ ଖାଲି ଗୋଡ଼ରେ ଚାଲନ୍ତି ନାହିଁ ଓ ଉତ୍ସବରୂପେ ଏହା ପାଳନ୍ତି ।]

**ରଜଃ କଣ ( ଣା )**—ସଂ. ବି. ( ଷଷ୍ଠୀତତ୍ )—ଧୂଳିର ରେଣୁ— Rajaḥ kaṇa ( ṇā ) P article of dust.

**ରଜଃ ପଟଳ**—ସଂ. ବି. ( ଷଷ୍ଠୀତତ୍ ) ୧ । ଧୂଳିର ଆବରଣ—1. A Rajah paṭala coating of dust (M. W.) ୨ । ଧୂଳିରାଶି—2. A mass or cloud of dust.

**ରଜଃ ଶୟ**—ସଂ. ବି. ( ଉପପଦ ତତ୍ପୁରୁଷ, ରଜଃ=ଧୂଳି+ଶୀ ଧାତୁ Rajah śaya ଶୋଇବା+କର୍ତ୍ତୃକ. ଅ; ଯେ ଧୂଳିରେ ଶୁଏ । )— ୧ । କୁକୁର— 1. The dog. ୨ । ରୁପା; ରୂପା; 2. Silver (M. W.)

**ରଜଃ ଶୁଦ୍ଧି**—ସଂ. ବି. ( ଷଷ୍ଠୀତତ୍ )—( ସ୍ତ୍ରୀ.ରୂ ) ସ୍ତ୍ରୀରଜଃର ବିଶୁଦ୍ଧ Rajaḥ śuddhi ଅବସ୍ଥା—Pure or healthy condition of the menses (M.W.)

**ରଜଃ ସାରଥି**—ସଂ. ବି. [ବହୁବ୍ରୀହି,ରଜଃ=ଧୂଳି ଅଟେ ସାରଥି ଯାହାର] Rajah sārathi ବାୟୁ; ପବନ—The wind.

**ରଜଃ ସୁବାସିନୀ**—ସଂ. ବି.—ରଜସ୍ୱଳା ହୋଇ ପିତୃଗୃହରେ ବାସ Rajaḥ subāsini କରୁଥିବା କନ୍ୟା—A girl who has menstruated, but still living in her father's house (M.W).

**ରଜଃସ୍ରାବ**—ସଂ. ବି.—ରଜସ୍ରାବ [ଦେଖ] Rajaḥ srāba Rajasrāba (See)

**ରଜକ**—ସଂ. ବିଣ. ପୁ.—[ ରଞ୍ଜଧାତୁ+କର୍ତ୍ତୃ ଅକ ] ଯେ ରଙ୍ଗକରେ; Rajaka ରଞ୍ଜକ—Dyeing; painting ସଂ. ବି ପୁ. ୧ । (ରଜକା, ରଜକୀ—ସ୍ତ୍ରୀ) ଧୋବା—1. Washerman. [ଦ୍ର—ପୂର୍ବେ ଧୋବାମାନେ ଲୁଗାକୁ କାଚ ସଫା କରୁଥିଲେ ଓ ତହିଁରେ ରଙ୍ଗ ଚଢାଉଥିଲେ । ଆଜକୁ ୨୦।୩୦ ବର୍ଷ ତଳେ ଧୋବାମାନେ ବାସିଧୋବ ଲୁଗାରେ ଈଷତ୍ ନେଳ ରଙ୍ଗ ମଡ଼ାଉଥିଲେ ଓ ଏଥିଯୋଗୁଁ ଉକ୍ତ ଲୁଗା ଶୀଘ୍ର ମଳଆ ଦେଖାଯାଉ ନ ଥିଲା, ଅର୍ଥାତ୍ ତହିଁରେ ସାମାନ୍ୟ ମଳ ଲାଗିଲେ ସେ ଲୁଗାର ନେଳ ରଙ୍ଗ ଉକ୍ତ ମଳର ରଙ୍ଗକୁ ଘୁଡ଼ାଇ ଦେଉଥିଲା । ଏବେ ମଧ୍ୟ ଧୋବା ଦ୍ୱାରା ନେଳ ମଡ଼ା ହୋଇଥିବା ଲୁଗା ମଫସଲରେ କେତେ ମରହଟ୍ଟି ଲୋକଙ୍କୁ ବ୍ୟବହାର କରିବା ଦେଖାଯାଏ ।

୨ । ରଙ୍ଗ କରିବା ବ୍ୟକ୍ତି—2. A dyer. ୩ । ବର୍ଣ୍ଣସଙ୍କର ନୀଚ ଜାତିବିଶେଷ; ତୀବର ପତ୍ନୀ ଗର୍ଭଜାତ ଧୀବରପୁତ୍ର—3 Name of a hybrid caste (born of a fisherman father and Tībara mother. [ଦ୍ର—ମତାନ୍ତରରେ ପାରଧେନୁକ ପିତା ଓ ବ୍ରାହ୍ମଣୀ ମାତାର; କଷ୍ଟ୍ୟ ପିତା ଓ ଭୃଗୀ ମାତାର ସନ୍ତାନକୁ ରଜକ ବୋଲି ଯାଉଥିଲା—ମନୁଅର୍ ଜିଲିଅମ୍ସ୍ ।] ୪ । ଶୁକ; ଶୁଆ—4. Parrot; (M. W; Apte) ୫ । ଅଂଶୁକ 5. Thin cloth (M.W).

**ରଜ ଘ(ଘୋ)ଷ**—ଦେ. ବି—(ସ. ରଞ୍ଜ ଧାତୁ+ଘୃଷ୍ ଧାତୁ)—୧ । Raja gha(gho)sha (ଅନ୍ୟର) ସମ୍ପର୍କରେ ଆସିବା; ଚଳପ୍ରଚଳ ମିଳାମିଶା, ମେଳାମିଶା 1. Constant association. ଆମଦ୍ ରଫ [ଉ—ସେ ଠୋକା ମାଇକିନିଆଙ୍କ ସାଙ୍ଗରେ ସବୁବେଳେ ରଜଘଷ ହେବାରୁ ଭାରି ଛୁଟ ହୋଇ ଯାଇଅଛି । ଫକୀରମୋହନ. ଗଳ୍ପସ୍ୱଳ୍ପ ।] ୨ । ଅତ୍ୟନ୍ତ ମିଶାମିଶି; ଅତି ଘନିଷ୍ଠତା—2. Too much familiarity. ଦେ. ବିଣ.—୧ । ଅଭ୍ୟସ୍ତ—1. Habituated. ୨ । ଯେ ଅନ୍ୟ ସଙ୍ଗେ ସର୍ବଦା ଚଳପ୍ରଚଳ ହୁଏ ବା ମିଶେ— 2. Associating constantly; familiarly mixing with another.

**ରଜଡ଼ି ଯିବା**—ପ୍ରାଦେ. ( ଗଞ୍ଜାମ ) କ୍ରି—କ୍ଷୀଣକାୟ ହେବା— Rajarḍi jibā To become emaciated, to become lean.

**ରଜତ**—ସଂ ବି.—(ରଞ୍ଜ ଧାତୁ+କରଣ ବା କର୍ତ୍ତୃ. ଅତ)—୧ । ରୂପା; Rajata ରୌପ୍ୟ—1. Silver. ୨ । ସ୍ୱର୍ଣ୍ଣ—2. Gold. ୩ । ହସ୍ତିଦନ୍ତ—3. Elephant's tusk. ivory. ୪ । କଣ୍ଠହାର—4. Necklace ୫ । ଶୋଣିତ; ରକ୍ତ 5. Blood. ୬ । କୈଳାସ ପର୍ବତ—6. The mountain Kailāsa. ୭ । ହ୍ରଦ—7. Lake. ୮ । ମୋତିର କଣ୍ଠହାର—8 Pearl necklace (Apte). ୯ । ନକ୍ଷତ୍ର, ତାରାପୁଞ୍ଜ 9 A constellation; an asterism (Apte) ୧୦ । ପର୍ବତ—10. A mountain (Apte). ୧୧ । ହ୍ରଦ ବିଶେଷ—11. Name of a lake (M. W). ସଂ. ବିଣ—୧ । ଶୁକ୍ଳ; ରୁପୁଲି—1. White, silvery. ୨ । ରୌପ୍ୟ ନିର୍ମିତ—2. Made of silver (Apte). ୩ । ଈଷତ୍ ଶୁକ୍ଳ—3. Whitish M W).

**ରଜତ କାନ୍ତି** ସଂ ବି.—(୬ଷ୍ଠୀ ତତ୍)—ରୂପାର ବର୍ଣ୍ଣ—Rajata kānti Silvery whiteness. ସଂ. ବିଣ—(ବହୁବ୍ରୀହି)—ରୁପୁଲି ରଙ୍ଗ ବିଶିଷ୍ଟ—Silvery; white as silver; glittering like silver.

**ରଜତ କୂଟ**—ସଂ. ବି.—(ବହୁବ୍ରୀହି)—ମଳୟ ପର୍ବତର ଶୃଙ୍ଗବିଶେଷ—Rajata kūta Name of a peak of the Malaya mountains (Apte).

**ରଜତ ଖଣ୍ଡ**—ସଂ ବି.—(୬ଷ୍ଠୀ ତତ୍)—ଖଣ୍ଡେ ରୂପା—Rajata khanda A bit of silver.

**ରଜତ ଗିରି**—ସଂ. ବି.—ହିମାଳୟର ଉତ୍ତରସ୍ଥ କୈଳାସ ପର୍ବତ—Rajata giri The Kailāsa mountain lying to the north of the Himalayas. (ରଜତ ପ୍ରସ୍ଥ, ରଜତାଚଳ, ରଜତାଦ୍ରି—ଅନ୍ୟରୂପ) [ଦ୍ର—ଏହା ହିମାଳୟର ଉତ୍ତରରେ ତିବତରେ ସ୍ଥିତ । ଏହା ନିକଟରେ ମାନସରୋବର ଓ ଏହି ପର୍ବତର ଶିଖର ମହାଦେବଙ୍କ ବାସସ୍ଥାନ ବୋଲି ବର୍ଣ୍ଣିତ । ଫଳତଃ ଏଥିର ଚିରତୁଷାରାବୃତ ଶୃଙ୍ଗ ରଜତ ପରି ଦେଖା ଯିବାରୁ ଏହି ନାମକରଣ ହୋଇଅଛି ।]

**ରଜତ ଗିରିନିଭ**—ସଂ.ବିଣ—ରଜତଗିରି ପରି ଅତି ଶୁଭ୍ର ଓ ଚକଚକିଆ—Rajata girinibha White and glittering like the Kailāsa mountains. (ରଜତଗିରିସଙ୍କାଶ—ଅନ୍ୟରୂପ)

**ରଜତ ଦ୍ୟୁତି**—ସଂ. ବି—୧ । (୬ଷ୍ଠୀ ତତ୍) ରୂପାପରି ଆଭା—1. A Rajata dyuti glitter like that of silver; silvery lustre. ୨ । (ବହୁବ୍ରୀହି) ହନୁମାନ୍—2. Hanumān, the monkey hero. ସଂ. ବିଣ—ରୂପାପରି ଆଭା ବିଶିଷ୍ଟ; ରଜତାଭ—Glittering like silver; silvery.

**ରଜତ ଧବଳ**—ସଂ. ବିଣ—ରୂପାପରି ଧଳା—Silvery; of silvery Rajata dhabala white colour. (ରଜତ ଶୁକ୍ଳ, ରଜତ ଶୁଭ୍ର, ରଜତ ଶ୍ୱେତ—ଅନ୍ୟରୂପ)

**ରଜତ ପାତ୍ର**—ସଂ. ବି (ମ. ପ. ଲୋ)—ରୂପାରେ ତିଆରି ବାସନ—Rajata pātra Silver-vessel. (ରଜତ ଭାଜନ—ଅନ୍ୟରୂପ)

**ରଜତ ମୁଦ୍ରା**—ସଂ. ବି (ମ. ପ. ଲୋ)—ରୂପାର ମୁଦ୍ରା; ଟଙ୍କାଅଧ—Rajata mudrā Silver coin.

**ରଜତ ମୂଲ୍ୟ**—ସଂ. ବି—ରୌପ୍ୟଆକାରରେ ଦିଆଯିବା ଧନ—Rajata mūlya Price paid in silver.

**ରଜତ ମୂଲ୍ୟୋପକଳ୍ପିତ**—ସଂ. ବିଣ (ତୃତୀୟା ତତ୍; ରଜତମୂଲ୍ୟ+ଉପକଳ୍ପିତ)—ଯେଉଁ ପଦାର୍ଥ Rajata mūlyopakalpita (ବ୍ରାହ୍ମଣଙ୍କୁ ଦିଆଯିବା ଦକ୍ଷିଣାଦି)ର ମୂଲ୍ୟ ରୌପ୍ୟରୂପେ କଳ୍ପିତ ହୋଇଥାଏ—The value of which is reduced to silver coins. (ଯଥା—ମୁ ବ୍ରାହ୍ମଣଙ୍କୁ ରଜତମୂଲ୍ୟୋପକଳ୍ପିତ ଦକ୍ଷିଣା ସମ୍ପ୍ରଦାନ କରୁଅଛି ।)

**ରଜତାକର**—ସଂ. ବି (୬ଷ୍ଠୀ ତତ୍)—୧ । ରୂପାଖଣି; ଯେଉଁ ଖଣିରୁ Rajatākara ରୂପା ମିଳେ—1. Silver-mine. ୨ । ସ୍ଥାନର ନାମ—2. Name of a place (M. W).

**ରଜତାଙ୍ଗୁରି**—ସଂ. ବି (ମ. ପ. ଲୋ)—ରୂପା ମୁଦି—Rajatānguri Silver ring. (ରଜତାଙ୍ଗୁରୀୟ, ରଜତାଙ୍ଗୁରୀୟକ, ରଜତମୁଦ୍ରିକା—ଅନ୍ୟରୂପ)

**ରଜତାନ୍ୱିତ**—ସଂ. ବିଣ, ପୁଂ (ତୃତୀୟା ତତ୍; ରଜତ+ଅନ୍ୱିତ)—Rajatānwita ୧ । ରୂପାରେ ଭୂଷିତ ହୋଇଥିବା (ମନୁ. (ରଜତାନ୍ୱିତା—ସ୍ତ୍ରୀ) ୩।୨୦୨)—1. Adorned with silver; overlaid with silver. ୨ । ରୂପା-ଅଳଙ୍କାର ପିନ୍ଧିଥିବା—2. Decked with silver ornaments,

**ରଜତାଭ**—ସଂ. ବିଣ (ବହୁବ୍ରୀହି; ରଜତ+ଆଭା)—ରୂପାପରି ଆଭା Rajatābha ବିଶିଷ୍ଟ—Lustrous like silver; silvery. (ରଜତାଭା—ସ୍ତ୍ରୀ)

**ରଜତୋପମ**—ସଂ, ବିଣ (ବହୁବ୍ରୀହି; ରଜତ+ଉପମା)—ରୂପା ପରି; Rajatopama ରୂପା ସଙ୍ଗେ ତୁଳନୀୟ—Resembling silver. ସଂ. ବି—ରୌପ୍ୟ ମାକ୍ଷିକ; ତାର ମାକ୍ଷିକ; ଉପଧାତୁ ବିଶେଷ (ବୈ. ଶା.)—Iron pyrites; Ferri Sulphuratum.

**ରଜନ୍**—ବୈଦେ ବି (ଇଂ. ରେଜିନ୍, ରଜନ୍)—ବିଶୁଦ୍ଧ ଝୁଣା—Rajan Pure resin; gum resin.

**ରଜନ**—ସଂ. ବି (ରଞ୍ଜ ଧାତୁ+ଭାବ. ଅନ)—୧ । ରଙ୍ଗାଇବା—Rajana 1. Dyeing. ୨ । (+କର୍ତ୍ତୃ. ଅନ)—କିରଣ—2. A ray (Apte). ୩ । (+କରଣ ଅନ)—କୁସୁମ ଫୁଲ—3. Safflower (Apte).

**ରଜନି(ନୀ)**—ସଂ. ବି (ରଞ୍ଜ ଧାତୁ+କର୍ମ ଅନି;+ଈ)—୧ । ରାତ୍ରି; ରାତି Rajani (ni) —1. Night. ୨ । (+କରଣ ଅନି)—ହରିଦ୍ରା; ହଳଦି—2. Turmeric; Curcuma

Longa. ୩ । ଲକ୍ଷା; ଲକ୍ଷ— 3. Red lac ୪ । ନୀଳ—4. Indigo. ୫ । ନୀଳଗୁଳ୍ମ—5. The indigo plant. ୬ । ଦୁର୍ଗା—6. Durga (Apte).

**ରଜନ(ନୀ)କର**—ସଂ. ବି ( ବହୁବ୍ରୀହି; ରଜନୀରେ କର=କିରଣ Rajani(ni)kara ଯାହାର )—୧ । ନିଶାକର; ଚନ୍ଦ୍ର—1. The moon. ୨ । କର୍ପୂର—2. Camphor. ୩ । ( ରଜ+ନିକର; ୬ଷ୍ଠୀ ତତ୍ )—ଧୂଳିସମୂହ—3. A mass or cloud of dust. (ଦୃ - କୁଞ୍ଜାଇ ନସ୍ପନ ରଜନିକରେ, ବନରେ ସୃଷ୍ଟି କବଳ କରେ -- ଉଞ୍ଜ. ବୈଦେହୀଶବିଳାସ । )

**ରଜନ(ନୀ) କାନ୍ତ**—ସଂ. ବି ( ୬ଷ୍ଠୀ ତତ୍ )—୧ । ଚନ୍ଦ୍ର—1. The Rajani(ni) kānta moon. ୨ । କର୍ପୂର—2. Camphor. ଦେ. ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—Name given to males.

**ରଜନ(ନୀ)ଗନ୍ଧ(ନ୍ଧା)**—ସଂ. ବି ( ବହୁବ୍ରୀହି; ରଜନୀରେ ଯାହାର ଗନ୍ଧ Rajani(ni)gandha(ndhā) ଉଚ୍ଛୁଟେ )—ହସନ ହେନା ଗଛ ଫା. ଗୁଲସବ୍‌ବୋ, ହୁସ୍‌ନେହେନା ଓ ଫୁଲ; ଉଦ୍ୟାନଜାତ ଗୁଳ୍ମ ଓ ରଜନୀଗନ୍ଧା ତାହାର ଫୁଲ; ଗନ୍ଧବଲ୍ଲୀ ଫୁଲ— **रजनीगंधा, हुसनेहेना, खुशगंधरा, खुशंधिराज** The tube rose; Polianthes Tuberosa. [ଦ୍ର—ଏହାର ବଳରୁ ପତ୍ରମାନ ବାହାରେ ଓ ଏହାର ମୂଳର ଗଣ୍ଠି ପର କନ୍ଦାକୁ ପୋତିଲେ ଗଛ ହୁଏ । ବର୍ଷାଦିନେ ଲମ୍ବ ଦଣ୍ଡର ଅଗରେ ଯୋଡ଼ା ଯୋଡ଼ା ଧଳା ଲମ୍ବ ଚୋଙ୍ଗଯୁକ୍ତ ମଧୁରଗନ୍ଧ, ଷଡ଼୍‌ଦଳ ଓ ଷଡ଼୍‌-କେଶରଯୁକ୍ତ ଫୁଲ ଧରେ । ଏଥିର ଫୁଲ ରାତିରେ ଫୁଟେ ଓ ରାତିରେ ଗୃହଅଙ୍ଗନ ସୁଗନ୍ଧ ବିସ୍ତାରଣ କରେ ।]

**ରଜନ(ନୀ)ଚର**—ସ.ବି ପୁଂ(ରଜନ+ଚର୍ ଧାତୁ+କର୍ତ୍ତୃ.ଅ, ଯେ ରାତିରେ Rajani(ni)chara ବୁଲେ)—୧। ରାତ୍ରିଚର; ନିଶାଚର; ରାକ୍ଷସ—1. A demon; goblin ( literally night-stalker). ୨ । ତସ୍କର; ଚୋର—2. Thief. ୩ । ଦିବାନ୍ଧ ପ୍ରାଣିଗଣ ( ଯଥା—ପେଚକ )—3. Animals that prowl in the night (e.g. bat, owl). ୪ । ଭୂତ; ପ୍ରେତ—4. Ghost; fiend. ୫ । ଯାମିକଭଟ; ପ୍ରହରୀ; ଚୌକିଦାର—5. A watchman. ୬ । ଚନ୍ଦ୍ରମା—6. Moon (Apte) ୭ । ରାତିରେ ବିଚରଣକାରୀ ଜୀବ—7. A night-rover ସଂ. ବିଣ. ପୁଂ—ରାତିରେ ବିଚରଣକାରୀ—Roving in the night (ରଜନୀଚରୀ—ସ୍ତ୍ରୀ)

**ରଜନ ଜଳ**—ସଂ. ବି ( ମ. ପ. ଲୋ )—୧ । ଶିଶିର; କାକର—Rajani jala 1. Dew. ୨ । କୁହୁଡ଼ି—2 Frost. ୩ । ତୁଷାର—3. Hoar frost.

**ରଜନ ଦ୍ୱନ୍ଦ୍ୱ**—ସ. ବି ( ୬ଷ୍ଠୀ ତତ୍ )—ଏକାଦିକ୍ରମେ ୨ଟି ରାତ୍ରି ଓ Rajani dwandwa ତନ୍ମଧ୍ୟବର୍ତ୍ତୀ ଦିବସ—A period of two consecutive nights with the intermediate day (M. W)

**ରଜନ ଦ୍ୱୟ**—ସଂ. ବି ( ୬ଷ୍ଠୀ ତତ୍ )—ହଳଦୀ ଓ ଦାରୁ ହଳଦୀ—Rajani dwaya Curcuma Longa and Curcuma Aromatica (M.W)

**ରଜନ(ନୀ) ନାଥ**—ସଂ. ବି (୬ଷ୍ଠୀ ତତ୍)—ଚନ୍ଦ୍ର—Rajani(ni) nātha The moon (ରଜନିପତି, ରଜନୀଶ, ରଜନୀରମଣ—ଅନ୍ୟରୂପ)

**ରଜନ(ନୀ) ମୁଖ**—ସଂ.ବି (୬ଷ୍ଠୀ ତତ୍, ରଜନୀର ମୁଖ=ଆରମ୍ଭକାଳ) -- Rajani(ni)mukha ନିଶାମୁଖ, ପ୍ରଦୋଷ; ସୂର୍ଯ୍ୟାସ୍ତର ପରବର୍ତ୍ତୀ ଗୃହ ଦଣ୍ଡକାଳ; ସନ୍ଧ୍ୟାବେଳ—Evening, eventide, nightfall.

**ରଜନୀ ଯୋଗରେ**—ଦେ. କ୍ରି. ବିଣ—ରାତିକାଳରେ; ରାତିର ଅନ୍ଧାରରେ, Rajani jogare —In the darkness of night रजनीयोगे **रजनी योगमे** under the cover of dark night. ରଜନୀ ଯୋଗେ—ଅନ୍ୟରୂପ

**ରଜନୀ ହାସ**—ସ. ବି.—(ଯେ ରାତିରେ ହସେ ବା ଫୁଟେ)—Rajani hāsa ଶେଫାଳିକା; ଗଙ୍ଗଶିଉଳୀ ଫୁଲ—A flower, Nyctanthes Arbor Tristes.

**ରଜନୀ (ଇତ୍ୟାଦି)**—ସ. ବି.—ରଜନ ଇତ୍ୟାଦି (ଦେଖ) Rajani (etc) Rajani etc (See) [ଦ୍ର—'ରଜନ' ଶବ୍ଦଯୁକ୍ତ ସମୁଦାୟ ଶବ୍ଦ ସଂ.ସ୍ତରରେ 'ରଜନୀ' ଶବ୍ଦ ଯୁକ୍ତ ହୋଇ ବ୍ୟବହୃତ ହୁଏ ।]

**ରଜନୀୟ**—ସଂ. ବିଣ.—( ରଜ୍ ଧାତୁ+କର୍ମ. ଅନୀୟ )—ପୂଜନୀୟ; Rajaniya ମନ୍ତବ୍ୟ—Adorable (M.W)

**ରଜପୁତ**—ଦେ. ବି. ପୁଂ—(ସଂ. ରାଜପୁତ୍ର)—୧ । କ୍ଷତ୍ରିୟ ଜାତିବିଶେଷ-Rajaputa 1. A caste of Kshatriyas. ୨ । କ୍ଷତ୍ରିୟ ଜାତିର ବର୍ଣ୍ଣସଙ୍କର ଜାତିବିଶେଷ—2 A mixed caste originating from Kshatriyas.

**ରଜ ପାଳନା**—ଦେ. ବି.—ରଜ ସମୟରେ ଭୂମି ଖନନ ନ କରିବା, Rajapālanā ଭୂମିରେ ନ ଲେଖିବା, ଭୂମିରେ ନ ଶୋଇବା, ନ [ରଜପାଳନା—କ୍ରିୟାରୂପ] ରାନ୍ଧିବା ଆଦି ନିୟମର ପାଳନ—अम्बुवाचिरउपवास The observance of the rules and prohibitions which should be observed during the Raja festival. [ ଦ୍ର--ଏହାକୁ ସ୍ତ୍ରୀଲୋକମାନେ ବିଶେଷଭାବରେ ପାଳନ କରନ୍ତି । ]

**ରଜ ପିଠା**—ଦେ. ବି—ରଜ ସମୟରେ ଭାତ ରାନ୍ଧିବା ନିଷିଦ୍ଧ ଥିବାରୁ Raja pithā ସେହି ସମୟରେ ଖାଇବା ପାଇଁ ପ୍ରସ୍ତୁତ ପିଠା—Cakes prepared to be taken during the Raja festival.

**ରଜବ୍**—ବୈଦେ. ବି (ଫା)—ଜମାଦିଅସ୍‌ସାନିର ପରବର୍ତ୍ତୀ ଓ ସାବାନ୍‌ର Rajab ପୂର୍ବବର୍ତ୍ତୀ ମୁସଲମାନ ମାସ—Name of a रजब **रजब** Mohomedan month.

**ରଜବତୀ(ନ୍ତୀ)**—ଗ୍ରା. ବିଣ. ସ୍ତ୍ରୀ (ସ. ରଜୋବତୀ) ରଜସ୍ୱଳା (ସ୍ତ୍ରୀ)—Rajabati(nti) Mensruated (women) रजस्वला **रजवती**

**ରଜବୀଜ**—ଦେ. ବି (ସଂ. ରଜ+ବୀର୍ଯ୍ୟ )—ସ୍ତ୍ରୀର ରଜ ଓ ପୁରୁଷର ଶୁକ୍ର
Raja bīja (ଯେଉଁ ଦୁଇ ପଦାର୍ଥର ଅନୁକୂଳାବସ୍ଥାରେ ମେଳନ
(ରଜ ବୀରଜ—ଗ୍ରାମ୍ୟରୂପ ) ହେଲେ ସନ୍ତାନୋତ୍ପତ୍ତି ହୁଏ)—
বজবীর্য্য **रजवीज** The ova of female and the semen of male.

**ରଜ ବୁଲା**—ଦେ. ବି—ରଜ ପର୍ବରେ ସ୍ତ୍ରୀଙ୍କର ଓ ବାଳକବାଳିକା-
Raja bulā ମାନଙ୍କର ଯାଇଯାଇ ଓ ଗ୍ରାମଗ୍ରାମ ବୁଲିବା—
Visiting of different villages or pleasure-trips taken by females and children during the Raja festivals.
[ଦ୍ର—ଏ ସମୟରେ ୩ ଦିନ ଘରଲିପା ଓ ବେପେଷେଇ ଆଦି ଗୃହକର୍ମ ନ ଥିବାରୁ ସ୍ତ୍ରୀ ଓ ବାଳିକାମାନେ ଏଣେ ତେଣେ ବୁଲି ଓ କଉଡ଼ି, ତାସ୍, ପଶା ଆଦି ଖେଳ ଓ ଦୋଳି ଖେଳି ଦିନ କଟାନ୍ତି ।]

**ରଜସ୍**—ସଂ. ବି (ଶବ୍ଦ)—ରଜଃ (ଦେଖ)
Rajas Rajaḥ (See)

**ରଜସ(ର୍ସ) ଛୁରି**—ବୈଦେ. ବି (ଇଂ. ରଜର୍ସ ନାମକ ଇଂଲଣ୍ଡ ଦେଶୀୟ
Rajas(rs) chhurī ସେଫିଲ୍ଡ଼ ନଗରସ୍ଥ ଜଣେ ଲୌହଯନ୍ତ୍ର
রজার্স **रेजिसचक्कू** କର୍ମୀଙ୍କ ନାମରୁ )—ବିଲାତର ରଜର୍ସ
[ରଜସ୍(ର୍ସ) ଚ୍ଛୁରି(ଖୁ)—ଅନ୍ୟରୂପ] କମ୍ପାନି ନିର୍ମିତ ଉତ୍କୃଷ୍ଟ ଛୁରି—
An excellent kind of knife made by the Rodgers Company of Sheffield in England.

**ରଜ ସଂକ୍ରାନ୍ତି**—ଦେ. ବି—ସୌର ଆଷାଢ଼, ଅର୍ଥାତ ମିଥୁନ, ମାସର ପ୍ରଥମ
Raja saṁkrānti ଦିନ—The 1st day of the
জ্যেষ্ঠসংক্রান্তি **आषाडसंक्रांति** solar month of Āshārḍha. [ଦ୍ର—ରଜ ତଳେ ନୋଟ୍ ଦେଖ ।

**ରଜସାନୁ**—ସଂ. ବି (ରଜକ ଧାତୁ+ସାନୁ)—୧ । ରଜ; ଧୂଳି; ରେଣୁ-
Rajasānu 1. Dust. ୨ । ପରାଗ—2. Pollen.
୩ । ସ୍ତ୍ରୀରଜ—3. Menstrual flux. ୪ ।
ଅନ୍ତଃକରଣ; ଚିତ୍ତ, ହୃଦୟ, ମନ—4. Mind; heart (Apte) ୫ । ଇଚ୍ଛା—5. Volition. ୬ । ରଜୋଗୁଣ—6. The human passions of a wordly person. ୭ । ମେଘ—7. Cloud (Apte). ୮ । ଆତ୍ମା—8. Soul (Apte).

**ରଜସାଧିକ୍ୟ**—ସଂ. ବି (ବୈଦ୍ୟକ, ରଜସ୍+ଆଧିକ୍ୟ)—ରକ୍ତମାଦ୍ର;
Rajasādhikya ଅସୃଗ୍‌ଦର; ଅତ୍ୟଧିକ ଋତୁସ୍ରାବ ରୋଗ—
Menorrhagia; excessive menstrual flow.

**ରଜସ୍କ**—ସଂ. ବିଣ. (ରଜସ+କ)—ରଜସ୍ୱଳ (ଦେଖ)
Rajaska [ରଜସ୍କା—ସ୍ତ୍ରୀ] Rajaswaḷa (See)

**ରଜସ୍ତମସ୍କ**—ସଂ.ବିଣ.ପୁଂ—ରଜୋଗୁଣ ଓ ତମୋଗୁଣ ଦ୍ୱାରା ଅଧିକୃତ ବା
Rajastamaska ପ୍ରଭାବିତ—(a man or thing)
Under the influence of the 2 qualities
(ରଜସ୍ତମସ୍କା—ସ୍ତ୍ରୀ) Rajas and Tamas.

**ରଜସ୍ତୋକ**—ସଂ. ବି (ଷଷ୍ଠୀ ତତ୍, ରଜସ୍+ତୋକ; ରଜୋଗୁଣର
Rajastoka ପୁତ୍ର)—ଲୋଭ—Avarice; greediness (M. W).

**ରଜସ୍ଫଳା**—ଗ୍ରା. ବିଣ. ସ୍ତ୍ରୀ [ସଂ. ରଜସ୍ୱଳା]—ରଜସ୍ୱଳା (ଦେଖ)
Rajasphaḷā Rajaswaḷā (See)

**ରଜସ୍ୱଳ**—ସଂ. ବିଣ. ପୁଂ (ରଜସ୍+ବିଦ୍ୟମାନାର୍ଥେ ବଳ)—
Rajaswaḷa ୧ । ଧୂଳିମୟ—1. Dusty. ୨ । ଧୂଳିରେ
(ରଜସ୍ୱଳା—ସ୍ତ୍ରୀ) ଆବୃତ—2. Covered with dust. ୩ ।
ରଜୋଗୁଣବିଶିଷ୍ଟ—3 Passionate; emotional.
ସଂ. ବି—ମହିଷ—Buffalo.

**ରଜସ୍ୱଳା**—ସଂ ବିଣ. ସ୍ତ୍ରୀ (ରଜସ୍+ବିଦ୍ୟମାନାର୍ଥେ ବଳ+ଆ)—
Rajaswaḷā ୧ । ଦୃଷ୍ଟରଜା (ସ୍ତ୍ରୀ)—1. (a girl) Whose menses have appeared. ୨ । ଋତୁମତୀ; ଆର୍ତ୍ତବା; ଛୁଆଁ ହୋଇଥିବା—2. Menstruated. ୩ । ରଜସ୍ୱଳର ସ୍ତ୍ରୀଲିଙ୍ଗ—3. Feminine of Rajaswaḷa; ସଂ. ବି. ସ୍ତ୍ରୀ—୧ । ଋତୁମତୀ ସ୍ତ୍ରୀ; ରଜୋଯୁକ୍ତା ନାରୀ—1. A woman in her menses. ୨ । ଦୃଷ୍ଟରଜସ୍କା ବାଳିକା—2. A girl whose menses have appeared. ୩ । ୧୧ ବର୍ଷରୁ, ମତାନ୍ତରେ ୧୦ ବର୍ଷରୁ, ଊର୍ଦ୍ଧ୍ୱବୟସ୍କା କନ୍ୟା—3. A girl who has passed her 10th year. ୪ । ବିବାହଯୋଗ୍ୟା କନ୍ୟା—4. A marriageable girl (Apte). [ଦ୍ର—୧ । ସ୍ତ୍ରୀ ଲୋକଙ୍କର ୧୨ ବର୍ଷଠାରୁ ୫୦ ବର୍ଷ ବୟସ ପର୍ଯ୍ୟନ୍ତ ସ୍ୱଭାବତଃ ପ୍ରତି ମାସରେ ଯୋନିଦ୍ୱାରବାଟେ ଗର୍ଭରୁ ଆର୍ତ୍ତବ ବା ରଜଃ ( ଶୋଣିତ ) ସ୍ରାବ ହୁଏ । ଏହା ୩ ଦିନ ପର୍ଯ୍ୟନ୍ତ ସ୍ରବେ । ରଜସ୍ରାବର ଆରମ୍ଭଠାରୁ ୧୬ ଦିନ ପର୍ଯ୍ୟନ୍ତ ଋତୁକାଳ ଓ ଏହାହିଁ ଗର୍ଭାଧାନର ଉପଯୁକ୍ତ କାଳ । ରଜୋସ୍ରାବର ପ୍ରଥମଠାରୁ ୪ର୍ଥ ଦିବସ ପର୍ଯ୍ୟନ୍ତ ଅହିଂସା, ବ୍ରହ୍ମଚର୍ଯ୍ୟ ଓ ପତିମର୍ଯ୍ୟାଦା ତାହାର କର୍ତ୍ତବ୍ୟ; ପତିସନ୍ଦର୍ଶନ, ପତିସହବାସ, କ୍ରନ୍ଦନ, ନଖଚ୍ଛେଦନ, ଉଚ୍ଚହାସ୍ୟ, ତୈଳାଭ୍ୟଙ୍ଗ, ସ୍ନାନ, ଦିବାନିଦ୍ରା, ଦ୍ରୁତଗମନ, ଅଧିକ ପରିଶ୍ରମ, ବହୁଭାଷଣ ଓ ଅଧିକ ବାୟୁସେବନ ନିଷିଦ୍ଧ । ରଜଃସ୍ରାବ ୩ ଦିନ ପର୍ଯ୍ୟନ୍ତ ହୁଏ ଓ ଚତୁର୍ଥ ଦିନ ରଜୋନିବୃତ୍ତି ହୁଏ । ୪ର୍ଥ ଦିବସରେ ଋତୁସ୍ନାନାନନ୍ତର ପତିଙ୍କ ଓ ପ୍ରିୟଜନଙ୍କ ମୁଖ ଅବଲୋକନ କରିବା ଉଚିତ, କାରଣ ଋତୁସ୍ନାନର ଅବ୍ୟବହିତ ପରେ ଯେଉଁ ରୂପ ଦର୍ଶନ କରାଯାଏ ତଦନୁରୂପ ସନ୍ତାନ ଗର୍ଭରେ ଜନ୍ମେ । ରଜସ୍ୱଳା ସ୍ତ୍ରୀର ସଙ୍ଗମ କରିବା ଶାସ୍ତ୍ରରେ ନିଷିଦ୍ଧ (ମନୁ ୪।୪୦–୪୧-୪୨) । ରଜସ୍ୱଳା ସ୍ତ୍ରୀର ସଙ୍ଗମ କଲେ ପୁରୁଷର ପ୍ରଜ୍ଞା, ତେଜଃ, ବଳ, ଚକ୍ଷୁ ଓ ଆୟୁର କ୍ଷୟ ଘଟେ । ଆଧୁନିକ ବିଜ୍ଞାନର ମତ ମଧ୍ୟ ଏହା । ରଜୋନିବୃତ୍ତି ପରେ ସ୍ନାନ କଲେ ରଜସ୍ୱଳା ସ୍ତ୍ରୀ ଶୁଦ୍ଧା ହୁଏ (ମନୁ ୫।୬୬) ।

ଅନ୍ୟ ସଂ.—ଅବୀରା, ଅତ୍ରେୟୀ, ଉଦକ୍ୟା, ଋତୁମତୀ, ନଷ୍ଟଳା, ପାଂଶୁଳା; ପୁଷ୍ପବତୀ, ପୁଷ୍ପହାସା, ପୁଷ୍ପିତା, ମଳିନୀ, ମ୍ଲାନା, ବିଫଳା, ସ୍ତ୍ରୀଧର୍ମିଣୀ, ଆର୍ତ୍ତବା—

୨ । କନ୍ୟାର ବୟସ ୧୦ ବର୍ଷ ବା ମତାନ୍ତରେ ୧୧ ବର୍ଷ ପୂରିଲେ ଶାସ୍ତ୍ରାନୁସାରେ ଉକ୍ତ କନ୍ୟାକୁ ରଜସ୍ୱଳା ବୋଲାଯାଏ । ରଜସ୍ୱଳା କନ୍ୟା ଅବିବାହିତାବସ୍ଥାରେ ପିତୃଗୃହରେ ରହିଲେ ପ୍ରତ୍ୟେକ ଋତୁସ୍ନାନ ଫଳ ପିତାମାତାଙ୍କୁ ଭ୍ରୂଣହତ୍ୟା ଦୋଷ ଲାଗେ । ଏଥିପାଇଁ କନ୍ୟା ରଜସ୍ୱଳା ହେବା ପୂର୍ବରୁ ତାଙ୍କୁ ବିବାହ ଦେବାର ବିଧି ଅଛି । ]

**ରଜସ୍ୱୀ**—ସଂ. ବିଣ. ପୁଂ (ରଜସ୍ + ଅସ୍ତି ଅର୍ଥରେ. ବିନ୍)-୧। ଧୂଳିମୟ—Rajaswī 1. Dusty; full of dust (M. W). ୨। ରଜୋ-(ରଜସ୍ୱିନୀ—ସ୍ତ୍ରୀ) ଗୁଣମୟ—2. Full of the quality Rajas. (M. W)

**ରଜସ୍ୟ**— ସଂ. ବିଣ. ପୁଂ (ରଜସ୍ + ଯ)—ରଜସ୍ୱୀ (ଦେଖ) Rajasya (ରଜସ୍ୟା—ସ୍ତ୍ରୀ) Rajaswī. (See)

**ରଜା**—ଦେ. ବି. ପୁଂ—(ସଂ. ରାଜନ୍ ଶବ୍ଦର ୧ମା. ୧ବ. ରାଜା; ତୁଳ. Rajā ତେ. ରାଜୁ)— ୧ । ରାଜା, ନରପତି—1. King. ୨ । রাজা राज(जा), रजा ଗଞ୍ଜପା ତାସର ଦ୍ୱାଦଶ ସଂଖ୍ୟାଙ୍କଚିହ୍ନିତ ତାସ [ରାଣୀ—ସ୍ତ୍ରୀ] (ଏଥିରେ ରାଜାଙ୍କ ରୂପ ଚିତ୍ରିତ ଥାଏ)—2. The 12th card in a set of country cards. ୩ । ତାସ୍ ଖେଳରେ ୧୩ ସଂଖ୍ୟାର ତାସ୍; ସାହେବ — 3. The king of cards. ୪ । ସର୍ବଶ୍ରେଷ୍ଠ ବ୍ୟକ୍ତି— 4. An eminent person. [ଢ଼ି—ବ୍ରାହ୍ମଣ ଗୃହ ବର୍ଣ୍ଣରେ ରଜା—ଉଗ ।] ୫ । ବହୁ ମଧ୍ୟରେ ପ୍ରଧାନ— 5. Chief amongst many. [ ଢ଼ି—ବାଳ ଥା ମାଛ ଥାଇ ବୋଇଲା ମୁଁ ମାଛଙ୍କ ଭିତରେ ରଜା—ଉଗ ।] [ଦ୍ର—ହିନ୍ଦୁମାନେ ରାଜାଙ୍କୁ ଦେବତାରୂପେ ମାନନ୍ତି, ଏଥିପାଇଁ ସାଧାରଣଙ୍କ ପ୍ରତି ଯେଉଁ ଯେଉଁ ଶବ୍ଦ ବ୍ୟବହାର କରାଯାଏ ରାଜାଙ୍କ ପ୍ରତି ସେ ଶବ୍ଦମାନ ବ୍ୟବହୃତ ହୁଏ ନାହିଁ । ରାଜାଙ୍କର ଦୈନିକ କ୍ରିୟାକଳାପକୁ 'ନୀତି' ବୋଲାଯାଏ । ଭିନ୍ନ ଭିନ୍ନ ନୀତିମାନଙ୍କର ମଧ୍ୟ ବିଶେଷ ବିଶେଷ ନାମ ଅଛି । ରାଜାଙ୍କ ଘରଦ୍ୱାର, ହାତୀ ଓ ଘୋଡ଼ା ଇତ୍ୟାଦିଙ୍କର ମଧ୍ୟ ସ୍ୱତନ୍ତ୍ର ନାମ ଅଛି । ରାଜାଙ୍କୁ ଛାମୁ, ମଣିମା, ଗୋସେଇଁ, ହଜୁର ବୋଲି ସମ୍ବୋଧନ କରାଯାଏ । ଏଠାରେ ଉଦାହରଣ ସ୍ୱରୂପ ରାଜାଙ୍କ ସମ୍ବନ୍ଧେ ବ୍ୟବହୃତ କେତେକ ଶବ୍ଦ ଓ ବାକ୍ୟ ଦିଆଗଲା ।

ରଜାଙ୍କ ନିକଟ—ରଜାଙ୍କ ଛାମୁ
ରଜାଙ୍କ ଘର—ନଅର, ନବର
ରଜାଙ୍କ ଅନ୍ତଃପୁର—ଡିଆସ; ନହର, ଅନ୍ତଃପୁର
ରଜାଙ୍କ ଅଗଣା—ପାଟ ଅଗଣା ।
ରଜାଙ୍କ ବ୍ୟବହାର୍ଯ୍ୟ ଖଣ୍ଡା—ପାଟ ଖଣ୍ଡା
ରଜାଙ୍କ ବ୍ୟବହାର୍ଯ୍ୟ ହାତୀ—ପାଟ ହାତୀ
ରଜାଙ୍କ ଘୋଡ଼ା—ପାଟ ଘୋଡ଼ା
ରଜାଙ୍କ ନିଦ୍ରା—ପହଡ଼
ରଜାଙ୍କ ଶେଜରୁ ଉଠିବା—ଉଠା ପହଡ଼
ପାନ ଖାଇବା—ବିଡ଼ିଆଲଟି ହେବା
ଦାନ୍ତଘଷା—ଦାନ୍ତୁଆଣି; କାଠିଲାଗି
ଭୋଜନ—ମୁଣୋହି, ଯୋଗଣ, ଠାଆଲାଗି
ଜଳଖିଆ—ଶୀତଳ ମୁଣୋହି
ଦୁଧ ପିଆ—ଓଷର ଯୋଗଣ
ଗାଧୁଆ—ମାଜଣା, ଦେହପାଣି
ବସିବା—ବେହେରଣ
ବସିବା ମେଲା—ବେହେରଣ ମଣ୍ଡପ
ଔଷଧ ଖାଇବା—ଓଷଦ ଯୋଗଣ
ଜୋତା ପିନ୍ଧିବା—ମହାଣ ଲାଗି
ଅନ୍ଧାରରେ ବା ରାତିରେ ଛଦ୍ମବେଶରେ ବୁଲିଯିବା }—ଅନ୍ଧାର ବିଜେ
ଖିଅର ହେବା—ମୁଖ ସଂସାର; ପଦ୍ମଅର
ଘୋଡ଼ା ଫେରିବା—ଶୁଟଲରେ ବିଜେ
ଲୁଗା ପିନ୍ଧିବା—ଖଟଣୀଲାଗି, ଉଡ଼ପଲାଗି
ପୀଡ଼ିତ ହେବା—ଶ୍ରୀଅଙ୍ଗ ଅଲସ ହେବା
ଘୋଡ଼ା ଫେରି ଆସି ମାଟିହାତ କରିବା—ଧୂଳିପାଣି ବଢ଼ିବା
ତେଲ ଲଗାଇବା—ଫୁଲୁରିଲାଗି, ମର୍ଦ୍ଦନ
ଶିକାର କରିବା—ପାରିଧି, ଆଡ଼
ଯିବା, ଆସିବା, ଉପସ୍ଥିତ ହେବା—ବିଜେ କରିବା; ବିଜେ ହେବା
ଠାକୁର ପୂଜା—ଦେବାର୍ଚ୍ଚନ
ବିବାହ—ମଙ୍ଗଳକୃତ୍ୟ
ମହାପ୍ରସାଦ ନିର୍ମାଲ୍ୟ—ପାଟମୁଣ୍ଡ, ଟୀକା
ବେଶ ହେବା—ଶିଂଘାର ବଢ଼ିବା
କୌଣସିସ୍ଥାନରୁ ଫେରି ଆସିବା—ବାହୁଡ଼ାବିଜେ କରିବା
ରଜା କେଉଁଠାକୁ ଯିବାବେଳେ ରାଜାଙ୍କ ଆଗେ ଆଗେ ଜଣେ ଯାଇକ ଡାକଡାକ ବାଟ କଢ଼ାଇବା }—ପହଣ୍ଡ ମଣୋଇବା
ରାଜାଙ୍କ ପିନ୍ଧିବା ଲୁଗା—ଖଟଣୀ, ଉଡ଼ପ
ରଜାଙ୍କ ଧନାଗାର—ଭଣ୍ଡାର
ବସ୍ତ୍ରାଗାର—ଗନ୍ତା, ଗନ୍ତାଘର
ରଜାଙ୍କ ପାଖକୁ ଦୋଷୀ ବ୍ୟକ୍ତିଙ୍କୁ ଯିବାର ନିଷେଧାଜ୍ଞା }—ଛାମୁ ମନା
ରାଜାଙ୍କ ଚିଠି—ଚିଟାଉ
ରଜାଙ୍କ ମୁଣ୍ଡ—ଗଭା
ରଜାଙ୍କ ଦେହ—ଶ୍ରୀଅଙ୍ଗ
ରଜାଙ୍କ ହାତ—ଶ୍ରୀହସ୍ତ
ରଜାଙ୍କ ହାତବାକ୍ସ—ଶ୍ରୀହସ୍ତ ବାକ୍ସ
ରଜାଙ୍କ ବ୍ୟବହୃତ ଅନ୍ନ—ଓରଅ
ରଜାଙ୍କ ଲଗାଇବା ତେଲ—ଫୁଲୁରି
ରଜାଙ୍କ ଗୋଡ—ପାଅ
ରଜାଙ୍କ ପ୍ରଧାନ ରାଣୀ—ପାଟରାଣୀ, ପାଟମହାଦେଈ, ପାଟମଣିମା

ରାଜାଙ୍କ କନ୍ୟାଭ୍ରାତୃଜା—କୁଆଁରମଣିମା, କଲ୍ୟାଣମଣିମା
ରାଜାଙ୍କ ସାଧାରଣସ୍ତ୍ରୀ—ମହାଦେଈ
ରାଜାଙ୍କ ରକ୍ଷିତା ଦାସୀ—ବେହେରାଣୀ
ରାଜାଙ୍କ ଅନୁଗୃହୀତା ଦାସୀ—ଛାମୁଆ, ଝିଅ
ରାଜା ଫୁଲଟିଏ ଦେଇ ଯାହାଙ୍କ ମଥାରେ ମନୋନୀତ କରନ୍ତି ସ୍ତ୍ରୀ }—ଫୁଲବାଈ
[ ଏହିପରି ମାଳବାଈ, ରତ୍ନବାଈ ଆଦି ଶବ୍ଦ ଅଛି ]
ରାଜାଙ୍କ ବଡ଼ ପୁଅ—ଗମ୍ଭୀର ସାଆନ୍ତ; ଦେଉ; ପାଟଦେଉ; ଟିକାଏତ
ବଡ଼ପୁଅଙ୍କ ଭଲପୁଅ—ପଟାଏତ
ଅନ୍ୟ ରାଜପୁତ୍ରଗଣ—ଲାଲସାହେବ; ରାଉତରା
ରଜାଙ୍କ ଭାର୍ଯ୍ୟା ବା କୁଟୁମ୍ବି—ବସ୍ତୁଦର; ସାଆନ୍ତ; ଭାଇପୁଅ
ରଜାଙ୍କ ଦାସୀପୁତ୍ର—ଅନ୍ତର
ରଜାଙ୍କ ଝିଅ—କେମା, କେମାଦେଈ, କେମାଦେଈ ମଣିମା
ରଜାଙ୍କ ଗୃହପାଳତା ଦାସୀ—ଘରଝିଅ
ରଜାଙ୍କ ପାଚକା ବ୍ରାହ୍ମଣୀ—ନାମୀ
ପାଚକ—ସୁଆର, ମହାସୁଆର
ଆଗନ୍ତୁକମାନଙ୍କ ଚର୍ଚ୍ଚା ବୁଝିବା ଲୋକ }—ଚର୍ଚ୍ଚାବେହେରା, ଚର୍ଚ୍ଚାଇତ
ରଜାଙ୍କ ପେଟାଳୁଗାର ଓ ଅଳଙ୍କାରାଦିର ରକ୍ଷକ }—ଶୃଙ୍ଗାରୀ ମେକାପ
ଭଣ୍ଡାର ଘର ରକ୍ଷକ—ଗନ୍ତାଇତ; ମେକାପ
ରାଣୀଙ୍କ ଭଣ୍ଡାର-ରକ୍ଷିକା ଦାସୀ }—ସଗଣୀ, ଗନ୍ତାଣୀ, ଗନ୍ତାଘରଆଣୀ
ଗୀତ ଗାଇବା ଦାସୀ—ଗାଆଣୀ
ବାଦ୍ୟ ବଜାଇବା ଦାସୀ—ବାଆଣୀ
ରଜା ଓ ରାଣୀଙ୍କ ସେବାର ପାଳି ଯାହାର ପଡ଼ିଥାଏ }—ପାଳିଆ
( ଯଥା—ପାଳିଆ ପାଇକ, ପାଳିଆ ଆପଟ । )
ରଜାଙ୍କ ଗଡ଼ୁଆ—ଆପଟ
ଅନ୍ତଃପୁରକୁ ଯିବା ଆସିବା କରିବା ପିଲା—ଭିତରିଆ ପିଲା
ମୃତ ରାଜାଙ୍କ ଅନ୍ତ୍ୟେଷ୍ଟି କ୍ରିୟା କରିବା ବ୍ରାହ୍ମଣ—ପୁଅବ୍ରାହ୍ମଣ
ରାଜାଙ୍କ ଅଙ୍ଗ ସେବାକାରୀ ଦାସ—ଛାମୁଆ, ପାଖଲୋକ
ଧାଈ—ଧାଈବେହେରା, ମୁଦୁସୁଲି
ପାକାର୍ଥ ଦ୍ରବ୍ୟାଦି ପାଚକ ନିକଟକୁ ଯୋଗାଇବା ଚାକର }—ଯୋଗାଣିଆ
ରଜାଙ୍କ ଖାଦ୍ୟଦ୍ରବ୍ୟକୁ ଦେଖି ପରୀକ୍ଷା କରିବା ବ୍ୟକ୍ତି }—ଦେଖୁଣିଆ
ରାଜାଙ୍କ ଖାଦ୍ୟଦ୍ରବ୍ୟକୁ ପ୍ରଥମେ ଚାଖି ପରୀକ୍ଷା କରିବା ବ୍ୟକ୍ତି }—ଚାଖୁଣିଆ
ଚପରାସୀ—ଖଣ୍ଡିଆ, ଛାମୁଖଣ୍ଡିଆ, ଭିତର ଖଣ୍ଡିଆ
ଅର୍ଦ୍ଦଳୀ—ସଙ୍ଗୁଳିଆ; ପଢ଼ିଆର
ଯେ ରାଜାଙ୍କୁ ବା ରାଣୀଙ୍କୁ ବେଶ କରେ—ଶିଙ୍ଗାରୀ

ସର୍ଦ୍ଦାର ବେହେରା—ଖଟଣି ସେବକ
ମେହେନ୍ତର—ମାହାର
ମୋହରିର—ଛାମୁକରଣ
ବେଶ୍ୟା—ମାହାରୀ
ଅନ୍ତଃପୁରର ଦ୍ୱାରରକ୍ଷକ—ନଅର ବଡ଼ଖୋଇ
ମନ୍ତ୍ରୀ—ତଡ଼ଉ, ପାତ୍ର, ଖରସୁଧା, ଦେୱାନ, ବେବର୍ତ୍ତା,
ପିଆଦା—ପାଇକ
ପ୍ରହରୀ—ପାହାରୀ ପାଇକ
ଦେବସେବା କର୍ମଚାରୀ—ପରିଛା, ପରିକରଣ, ଦେଉଳକରଣ, କୋଠକରଣ
ଗ୍ରାମର ରାଜକର୍ମଚାରୀ—ଦଳେଇ, ଦଳବେହେରା, ପଧାନ ।

ରାଜାମାନେ ରାଜ୍ୟରେ ନାନା ଉପାଧି ବାଣ୍ଟି ଉପାଧିପ୍ରାପ୍ତ ବ୍ୟକ୍ତି ମୁଣ୍ଡରେ ଶାଢ଼ୀ ବା ଶିରୋପା ବାନ୍ଧନ୍ତି ।

ଉଦାହରଣ ସ୍ୱରୂପ କେତେଗୁଡ଼ିଏ ରାଜପ୍ରଦତ୍ତ ଉପାଧିର ନାମ ଦିଆଗଲା ।

ବ୍ରାହ୍ମଣମାନଙ୍କୁ—ସାମନ୍ତରାୟ (ସାଆନ୍ତରା), ପ୍ରହରାଜ (ପହରାଜ), ପଞ୍ଚକ୍ରୋଶୀ—ପାଟକୋଶୀ (ପାଢ଼ୁଶୀ), ରାଏଗୁରୁ (ରାଜଗୁରୁ), ସଦଶ୍ୟ, ବ୍ରହ୍ମା, ସାଆନ୍ତରା ମହାପାତ୍ର, ବିଦ୍ୟାରତ୍ନ, ବଡ଼ପଣ୍ଡା, ବିଦ୍ୟାଭୂଷଣ, ବାହାନପତି, (ବାହିନୀ ପତି), ପରମଗୁରୁ, ଭଟ୍ଟମିଶ୍ର ।

କ୍ଷତ୍ରିୟମାନଙ୍କୁ—ବୀରବର, ହରିଚନ୍ଦନ, ନରେନ୍ଦ୍ର, ମର୍ଦ୍ଦରାଜ, ଶ୍ରୀଚନ୍ଦନ, ଭ୍ରମରବର, ଚମ୍ପତି, ବିଦ୍ୟାଧର, ରାଉତରା, ରାଏଟସିଂହ, ରାଏସିଂହ, ବକସୀ, ମାନ୍ଧାତା, ମଙ୍ଗରାଜ, ଦେଓ, ବଳିଆରସିଂହ ।

ପାଇକମାନଙ୍କୁ—ଝିମ୍ପଟସିଂହ, ବାଘ ସିଂହ, ଚମ୍ପତି, ବାହାବଳୀନ୍ଦ୍ର, ଦଳବେହେରା, ଦଳେଇ, ବଳିଆରସିଂହ, ବଳବନ୍ତରାଏ, ଉତ୍ତର କବାଟ, ଦକ୍ଷିଣ କବାଟ, ପଶ୍ଚିମ କବାଟ, ପାଇକରା, ବଡ଼ଯେନା, ଉଦଣ୍ଡରାଏ, ଉଦଣ୍ଡସିଂହ, ମର୍ଦ୍ଦରାଜ, ପାହାଡ଼(ଡ଼ା)ସିଂହ, ପାଲଟା ସିଂହ, ବାଧାର, ଜୁଆଳ ସିଂହ, ଖଣ୍ଡାସିଂହ, ରଣସିଂହ, ବାହାଦୁର ସିଂହ, ଚମ୍ପତିରା, ରାଉତରା, ମତ୍ତଗଜସିଂହ, ଶଙ୍ଖୁଶାଳ, ଝୌରଶାଳ, ପ୍ରତାପ ରାୟ(ଇ), ବୈରିଗଞ୍ଜନ, ରଣଭାନୁ, ବଳିଆର ସିଂହ, ରାୟ(ଇ)ପତାମ, ଯୁଗସାଇ ଦେଓ ।

କରଣମାନଙ୍କୁ—ରାଜ୍ୟ ବା ଚେଉ ପଟନାଏକ, ପଟ୍ଟନାଏକ, ପାଞ୍ଜିଆ, ଖରସୁଧା ପଟନାଏକ, ତଡ଼ଉ ପଟନାଏକ, ବେବର୍ତ୍ତା ପଟ୍ଟନାଏକ, କାନଗୋଇ, ଭିତର ଛଉ, ବକସି ପଟନାଏକ ।

ଜ୍ୟୋତିଷୀଙ୍କୁ—ଖଡ଼ିରତ୍ନ, ଖଡ଼ିକାରରତ୍ନ
ପାଚକଙ୍କୁ—ସୁଆରରତ୍ନ
ଗାୟକଙ୍କୁ—ସଙ୍ଗୀତରତ୍ନ, ଗୁଣିରତ୍ନ, ଗାୟକରତ୍ନ
କଥକଙ୍କୁ—ରସବିନୋଦ, ହାସ୍ୟବିନୋଦ, ଗଳ୍ପସାଗର
କାରିଗରଙ୍କୁ—ବିଜ୍ଞାଣିରତ୍ନ

ଉତ୍କଳୀୟ ରାଜା ଓ କ୍ଷତ୍ରିୟମାନଙ୍କର ଭିନ୍ନ ଭିନ୍ନ ବଂଶଗତ ଉପାଧି ଅଛି । ଉଦାହରଣସ୍ୱରୂପ କେତେଗୁଡ଼ିଏ ଦିଆଗଲା ।

ପାଟଣା, ସୋନପୁର }
ଖରସୁଆଁ, ସରେଇକଳା } ସିଂହ ଦେଓ (ବ)

ମୟୂରଭଞ୍ଜ,କେନ୍ଦୁଝର, }
କନିକା, ଧୁମୁସର, ହଲଦିଆ } ଭଞ୍ଜ.; ଭଞ୍ଜଦେଓ (ବ)

ଢେଙ୍କାନାଳ—ମହୀନ୍ଦ୍ର ବାହାଦୁର

ଆଠଗଡ଼—ଦେବଗର୍ଭ ପଟ୍ଟନାୟକ

ଖଣ୍ଡପଡ଼ା—ମର୍ଦ୍ଦରାଜ ଭ୍ରମରବର ରାୟ

ହିନ୍ଦୋଳ—ମର୍ଦ୍ଦରାଜ ଜଗଦ୍ଦେବ

ପାଲ ଲହଡ଼ା—{ ୧ ପୁରୁଷ—ଗଣେଶ୍ୱର ପାଲ
{ ଅନ୍ୟପୁରୁଷ—ମୁନିପାଲ

ତାଳଚେର—ବୀରବର ହରିଚନ୍ଦନ

ଦଶପଲ୍ଲା—ଦେଓଭଞ୍ଜ

ଗାଙ୍ଗପୁର, ବୌଦ୍ଧ ଓ ଆଠମଲ୍ଲିକ—ଦେଓ, ଦେବ

ବଡ଼ାମ୍ବା—ବୀରବର ମର୍ଦ୍ଦ(ର୍ଦ୍ଧ)ରାଜ ମହାପାତ୍ର

ନୂଆଗଡ଼—ସିଂହ ମାନ୍ଧାତା

ବାମଣ୍ଡା—{ ୧ମ ପୁରୁଷ—ତ୍ରିଭୁବନ ଦେବ
{ ଅନ୍ୟପୁରୁଷ—ସୁବଳଦେବ

ବେଡ଼ାଖୋଲ—ଯେନାମଣି ଦେଓ

ରଣପୁର—ବଜ୍ରଧର ନରେନ୍ଦ୍ର ମହାପାତ୍ର

ତିଗିରିଆ—କ୍ଷତ୍ରିୟ ବୀରବର ଚମ୍ପତିସିଂହ ମହାପାତ୍ର

ଖଲ୍ଲିକୋଟ—ମର୍ଦ୍ଦରାଜ ଦେବ

କଳାହାଣ୍ଡି—ଦେଓ (ଦେବ)

ସୁକିନ୍ଦା—ହରିଚନ୍ଦନ ମହାପାତ୍ର

ମଧୁପୁର—ଧୀର ନରେନ୍ଦ୍ର

କଣାଇ—ଇନ୍ଦ୍ରଦେଓ

ବଳରାମପୁର—ଧୀର ବୀରବର ହରିଚନ୍ଦନ ମହାପାତ୍ର

ବାଣପୁର (ଆଧୁନିକ ପାରିକୁଦ)—ମାନସିଂହ ହରିଚନ୍ଦନ
ମର୍ଦ୍ଦରାଜ ଭ୍ରମରବର ରାୟ

ଅଳୀ—ଦେଓ

ପାରଳାଖେମୁଣ୍ଡି, ପୁରୀ }
ବଡ଼ଖେମୁଣ୍ଡି, ସାନଖେମୁଣ୍ଡି } —ଗଜପତି ଦେବ

ନୀଳଗିରି—ମର୍ଦ୍ଦରାଜ ହରିଚନ୍ଦନ

ଧଳଭୂମି—ରଣ ସର୍ଦ୍ଦାର

ଟିକାଲି, ସୁରଙ୍ଗୀ—ହରିଚନ୍ଦନ ଜଗଦ୍ଦେବ

ପତ୍ନାଗଡ଼—ସୁରେନ୍ଦ୍ର ଦେଓ

ଡରଳା—ହରିଚନ୍ଦନ

ଚିକିଟି—ଭ୍ରମରବର

ଜମାପଡ଼ା—ବଶିଷ୍ଠ ସିଂହ

ଭୁଜଙ୍ଗ—ଷଣ୍ଢ

ବାଙ୍କି—ଶ୍ରୀଚନ୍ଦନ

ରାଜାମାନଙ୍କ ସମ୍ବନ୍ଧେ କେତେକ ଲୋକ ପ୍ରଚଳିତ ବଚନ :—

ରଜା ଗୋଜା—ରାଜାଙ୍କର ଅଣାଡ଼ୁଆ ବ୍ରାହ୍ମଣ।

ରଜା ଭୋଳ—ରାଜା ଆଗପଛକୁ ଖିଆଲ ନ ରଖି କାର୍ଯ୍ୟ
କରନ୍ତି ।

ରଜା ଅନୁଗତେ ଧର୍ମ—(ସଂ. ରାଜାନୁଗତୋ ଧର୍ମଃ) ରାଜା
ପ୍ରଜାମାନଙ୍କ ଧର୍ମ ରକ୍ଷା ନ କଲେ ଧର୍ମ ଲୋପ ହୁଏ ।

ରଜା ଘରେ ଦଇବ ପାଞ୍ଜି—ରାଜାମାନଙ୍କ ବିବାହରେ ବର-
କନ୍ୟାଙ୍କର ଜାତକ ମେଳ କରା ନ ଯିବା ପ୍ରଥାକୁ ଲକ୍ଷ୍ୟ
କରି ଏ ପ୍ରବଚନ ଚଳିଛି ।

ରଜା ନିଏ ଦଣ୍ଡି, କୋଲା ନିଏ ଭଣ୍ଡି, ଭଲେଇ ନିଏ ଖଣ୍ଡି,
ଚନ୍ଦ୍ରା ନିଏ ଗଣ୍ଡି—ରାଜା ଅନ୍ୟାୟରେ ମଧ୍ୟ ଅର୍ଥଦଣ୍ଡ
କରନ୍ତି ।

ରଜା ଆଗରେ କହିବ ସତ }
ମାଇପ ଆଗରେ କହିବ ମିଛ } —(ଉପଦେଶ) ରାଜା
ଦେବତା ସ୍ୱରୂପ ଥିବାରୁ
ତାଙ୍କ ଆଗରେ ମିଥ୍ୟା କହିବା ପାପ ।

ରଜାଙ୍କୁ ଘାଏ ଘାଏ, ରାଣୀଙ୍କି ଯୁଗୁ ବୁଢୁ—ଅତ୍ୟାଚାର
କରିବା ବ୍ୟକ୍ତି ଦଣ୍ଡର ଗୁରୁତା ବୁଝି ପାରେ ନାହିଁ,
ଅତ୍ୟାଚରିତ ବ୍ୟକ୍ତି ଦଣ୍ଡର ଗୁରୁତାକୁ ଅନୁଭବ କରେ।

ରଜା ପୁଅକୁ କି ଖଜା ଅପୂର୍ବ ?—ନ୍ୟାୟ—ରଜାପୁଅଙ୍କ
ଖଜା ପରି ସାମାନ୍ୟ ପଦାର୍ଥ ଅଲଭ୍ୟ ନୁହେଁ ।

ରଜା ପୁଅ ଯୋଗୀ ହେଲେ କି ସେ ରଜାବୁଦ୍ଧି ଛାଡ଼ିବ ?
ଯୋଗୀ ପୁଅ ରଜା ହେଲେ କି ସେ ଯୋଗୀ ବୁଦ୍ଧି ଛାଡ଼ିବ ?
—ରାଜବଂଶୀୟ ବ୍ୟକ୍ତି ଗରିବ ହେଲେ ମଧ୍ୟ ତାର ମହାନୁ-
ଭବତା ଛାଡ଼େ ନାହିଁ ।

ରଜା, ବର, ବାଈ, ଏ ତିନିଙ୍କି ଦେଖି ଯାଇ—ରାଜା, ବର ଓ
ବେଶ୍ୟା (ନର୍ତ୍ତକୀ)ଙ୍କୁ ଦେଖିବାକୁ ଲୋକେ ରୁଣ୍ଡ ହୁଅନ୍ତି ।

ଅବୁଝାମଣା ରଜାକୁ ପାଳବନ୍ଧା ମନ୍ତ୍ରୀ—ନ୍ୟାୟ—ଅନ୍ୟାୟ
ବିଚାରକ ରାଜାଙ୍କ ନିର୍ବୁଦ୍ଧିଆ ଉପଦେଶକ ମିଳିବା ନ୍ୟାୟ ।

ଅବୁଝା ରଜାକୁ ବେବୁଝା ମନ୍ତ୍ରୀ, ତହିଁ କାଣୀ ଦାସୀ ନାଚ -
ନ୍ୟାୟ—ରାଜା ଓ ମନ୍ତ୍ରୀ ଉଭୟେ ଅବିଚାରୀ ହେବା
ସ୍ଥଳରେ ନାନା ମନ୍ଦ ଓ ଅସୁନ୍ଦର କାର୍ଯ୍ୟ ଘଟିବା ନ୍ୟାୟ ।

{ ରଜା ବରକୋଳି ସାହା—
{ ରଜା ଶୁଣିଲେଇ ବିଜେ କରୁ ବରକୋଳିଟାଏ ଚୋବିଦେଲା
ନ୍ୟାୟ—

(କାହାଣୀ) ଜଣେ ଅପରାଧୀ ଗଛ ଉପରେ ଲୁଚି ବସିଥିବା-
ବେଳେ ତଳେ ରାଜା ଝାଡ଼ାଫେରି ବସି ଗଛମୂଳେ
ଝଡ଼ିପଡ଼ିଥିବା ଗୋଟିଏ ପାଚିଲା ବରକୋଳିକୁ ଖାଇଦେଇ-
ଥିବା କଥା ଦେଖି ଆସି ବିଚାର ସମୟରେ ଉକ୍ତ ଅପରାଧୀ
ପ୍ରଥମୋକ୍ତ ବାକ୍ୟ ଉଚ୍ଚାରଣପୂର୍ବକ ରାଜାଙ୍କଠାରେ ଦଣ୍ଡରୁ
ମୁକ୍ତିପାଇଥିବା କାହାଣୀ ।

ରଜାପୁଅ ସଙ୍ଗେ ଶୁଖୁଆବଣିଜ ବାଇ—ନ୍ୟାୟ, ବଡ଼
ଲୋକଙ୍କ ସଙ୍ଗେ ଗରିବ ଲୋକ ମାତିଲେ ଦୁଃଖ ଭୋଗ
କରେ ।

ରାଜ୍ୟପାପର ପାପ ରଜାମୁଣ୍ଡରେ ଯାଏ (ଶାସ୍ତ୍ରବଚନ)—
ରାଜ୍ୟର ଲୋକଙ୍କ ପାପର ଫଳ ରାଜା ଭୋଗ କରନ୍ତି ।

ନଅର ଦାସୀ ସଂସାର ବୁଲେ, ରଜା ବିଜେ କଲେ
କଲାକବାଟ ପଡ଼େ—ଲୋକ ।

ରାଜାଙ୍କ ରକ୍ଷିତା ବେଶ୍ୟା ରାଜାଙ୍କ ଅନୁପସ୍ଥିତିରେ ଅବରୋଧ ପ୍ରଥା ରକ୍ଷା କରେ ନାହିଁ, କିନ୍ତୁ ରଜାଙ୍କ ଆସିବା ସମୟରେ ରଜାଙ୍କ ଜାଣିବା ପାଇଁ ତା ଘରର ଝରକାକୁ ଖୋଲା ବନ୍ଦ କରି ଘର ଭିତରେ ରହିଥାଏ ।

ରଜାର ପ୍ରଜା ନୁହେଁ କି ସାହୁର ଖାତକ ନୁହେଁ— ଯେଉଁ ବ୍ୟକ୍ତି ସ୍ୱାଧୀନ ଓ ଅଋଣୀ ହୋଇ ଜୀବିକା ନିର୍ବାହ କରେ ।

**ରଜାଙ୍କୁ ରେ କହି(ରି)ବା**—ଦେ. କି.—ଅତ୍ୟନ୍ତ ଦୁର୍ବିନୀତ ହେବା— Rajāku re kahi(ri)bā To be very arrogant and রাজাকে অপমান করে কথাবলা insubordinate to great राजाको रे बोलना men.

**ରଜାଙ୍କ ଉଆସ**—ଦେ. ବି—୧ । ରାଜାଙ୍କ ଅନ୍ତଃପୁର—1. The Rajāṅka uāsa female apartment of a Rājā. রাজার মহল ୨ । ରାଜପ୍ରାସାଦ—2. The palace. राजाकी हवेली

**ରଜାଙ୍କ ଛାମୁ**—ଦେ. ବି—ସ୍ୱୟଂ ରାଜା—The Rājā himself; Rajāṅka chhāmu His Highness. [ ଯଥା—ମତେ রাজার কাছে ରଜାଙ୍କ ଛାମୁରୁ ଡାକରା ହୋଇଛି । ] ଦେ. ଅ— राजाके यहाँ ରଜାଙ୍କ ନିକଟ—The presence of His Highness. [ଯଥା—ରଜାଙ୍କ ଛାମୁରେ ମୁଁ ଗୁହାରି କରିବି ।]

**ରଜାଙ୍କ ନଅ(ହ, ବ)ର**—ଦେ. ବି—ରାଜପ୍ରାସାଦ— Rajāṅka na-a(ha, ba)ra The palace. [ରଜା ନଅ(ହ)ର—ଅନ୍ୟରୂପ] রাজ মহল राजमहल

**ରଜା ଜେମା**—ଦେ. ବି (ସଂ. ରାଜନ୍+ଜାମା)—ରାଜକନ୍ୟା— Rajā jemā A princess [ରଜାଜିଅ—ଅନ୍ୟରୂପ] রাজকুমারী राज कुँआरी

**ରଜା ପରଜା**—ଗ୍ରା. ବି (ସଂ.ରାଜା+ପ୍ରଜା)—୧ । ରାଜା ଓ ପ୍ରଜାଗଣ— Rajā parajā 1. A king and his subjects. [ ରଜା ପ୍ରଜା—ଦେ. ରୂପ ] ୨ । ଜମିଦାର ଓ ରଇତ—2. A রাজাপ্রজা राजाप्रजा land-lord and his tenantry.

**ରଜା ପୁଅ**—ଦେ. ବି (ସଂ. ରାଜପୁତ୍ର)—ରାଜପୁତ୍ର— Rajā pua A prince. রাজকুমার राजकुमार

**ରଜାପ୍ରଜା ସମ୍ପର୍କ**—ଦେ. ବି (କଚେରୀର ଭାଷା)—ଜମିଦାର ଓ ରଇତ Rajāprajā samparka ମଧ୍ୟରେ ଥିବା ସମ୍ବନ୍ଧ; କୌଣସି [ରଜା ପ୍ରଜା ସମ୍ବନ୍ଧ—ଅନ୍ୟରୂପ ] ରଇତ ସଙ୍ଗେ ଭିନ୍ନ ବ୍ୟକ୍ତିର রাজা প্রজা সম্পর্ক ଜମିଦାରଙ୍କର ଥିବା ସମ୍ବନ୍ଧ—Relationship राजाप्रजा सम्पर्क of landlord and tenant between two persons. [ଦ୍ର—ଜଣେ ବ୍ୟକ୍ତି ଜଣେ ରଇତ ନାମରେ ବାକି ଖଜଣା ପାଇଁ ନାଲିସ କଲେ, ଯଦ୍ୟପି ଅନ୍ୟ ଜଣେ ଭିନ୍ନ ବ୍ୟକ୍ତିର ଜମିଦାର ହୋଇଥାଏ, ତେବେ ଉକ୍ତ ରଇତ ଜବାବ୍ ଦିଏ ଯେ ବାଦୀଙ୍କ ସଙ୍ଗେ ମୋର 'ରଜା ପ୍ରଜା ସମ୍ପର୍କ' ନାହିଁ ।]

**ରଜା ରାଉତ(ତୁ)ରା**—ଦେ.ବି(ସହଚର)—ରାଜା ଓ ରାଜସମ୍ପର୍କୀୟ ବ୍ୟକ୍ତି— Rajā rāuta(tu)rā King and royal persons. রাজা টাজা राज राजवाडा

**ରଜା ରା(ର)ଜୁ(ଜୋ)ଡ଼ା(ଡ଼ି)**—ଦେ. ବି (ସହଚର)—ରାଜା ଆଦି— Rajā rā(ra)ju(jo)ṛā(ṛi) Kings etc. [ଉ—ରଜା- রাজারাজড়া ରାଜୁଡ଼ାରେ ସବୁଦିନ ଯୁଦ୍ଧ, ଦିନେ ବଣେ ଯାଇ ଯେଣେ राजारजवाडा ତା ଇଚ୍ଛା—କହନ୍ତି ମାଏ ଟୋ, ତରିଛି ଶା । ] [ରଜାରଜୁଡ଼ି, ରଜାଫଜା—ଅନ୍ୟରୂପ]

**ରଜା ରାଣୀ**—ଦେ. ବି (ସହଚର; ସଂ ରାଜା+ରାଜ୍ଞୀ)—ରାଜା ଓ ରାଣୀ— Rajā rāṇi The king and the queen. রাজারাণী राजारानी

**ରଜାରାଣୀ ଦେଉଳ**—ଦେ. ବି—ଭୁବନେଶ୍ୱରର କେଦାରକୁଣ୍ଡର Rajārāṇi deuḷa ଅଗ୍ନିକୋଣରେ ଅବସ୍ଥିତ କାରୁକାର୍ଯ୍ୟମୟ ମନ୍ଦିର—Name of a very fine temple to the north-east of the Kedārakuṇḍa tank. [ଦ୍ର—ଏଥିରେ କୌଣସି ଦେବବିଗ୍ରହ ନାହିଁ । ]

**ରଜାଶୟ**—ସଂ. ବି (ରଜ+ଆ+ଶୀ. ଧାତୁ+କର୍ତ୍ତୃ. ଅ)—୧ । ରୁପା— Rajāśaya 1. Silver (M. W) ୨ । କୁକୁର—2. Dog [ରଜୋଶୟ—ଅନ୍ୟରୂପ] (M. W). ସଂ. ବିଶ-ରୌପ୍ୟନିର୍ମିତ— Made of silver (M. W).

**ରଜି**—ସଂ.ବି—(ନାମ)ଚନ୍ଦ୍ରବଂଶୀୟ ରାଜପୁତ୍ର; ପୁରୁରବାଙ୍କ ପୌତ୍ର; ଆୟୁଙ୍କ Raji ପୁତ୍ର ଓ ନହୁଷଙ୍କ ସହୋଦର; ସିଂହଜାତୀୟ ରାଜାଙ୍କର ଦୌହିତ୍ର—Name of a prince of the Lunar dynasty of India.

**ରଜିକା**—ସଂ. ବି. ସ୍ତ୍ରୀ ( ରଜକ+ସ୍ତ୍ରୀ. ଆ )—୧ । ଯେଉଁ ସ୍ତ୍ରୀଲୋକ Rajikā ଜନଙ୍କ ଲୁଗା କାଚେ—1. Washer-woman ୨ । ତିନି ଦିନ ହେଲା ଋତୁମତୀ ହୋଇଥିବା ନାରୀ— 2. A woman on the third day of her menses. [ଦ୍ର—ରଜକ ଶବ୍ଦ ଜାତିବାଚକ ରୂପେ ବ୍ୟବହୃତ ହେଲେ ତହିଁର ସ୍ତ୍ରୀଲିଙ୍ଗ ରଜକୀ (=ଧୋବଣୀ, ଧୋବାର ସ୍ତ୍ରୀ) ଓ ଏହି ଶବ୍ଦ କାର୍ଯ୍ୟବାଚକରୂପେ ବ୍ୟବହୃତ ହେଲେ ତହିଁର ସ୍ତ୍ରୀଲିଙ୍ଗ ରଜିକା ହୁଏ; (ଧୋବା ଜାତିର ହେଉ ବା ନ ହେଉ) ଯେଉଁ ସ୍ତ୍ରୀ ଲୁଗା କାଚି ସଫା କରେ ।]

**ରଜିତ**—ସଂ. ବିଣ. ପୁଂ ( ରଞ୍ଜ୍ ଧାତୁ ଣିଚ୍ ରଜ ଧାତୁ+କର୍ମ. ତ )— Rajita ୧ । ଚଞ୍ଚଳିତ—1. Affected; excited; mov- (ରଜିତା—ସ୍ତ୍ରୀ) ed (M. W) ୨ । ମୁଗ୍ଧ; ମୋହିତ— 2. Captivated (M. W). ୩ । ପ୍ରଲୋଭିତ— 3. Allured (M. W); tempted.

**ରଜୀକୃତ**—ସଂ. ବିଣ. ( ରଜ+ଅଭୂତ ତଦ୍ଭାବେ. ଚ୍ୱି+କୃତ )— Rajīkṛuta ଧୂଳିରେ ପରିଣତ—Changed or reduced to dust (M.W).

**ରଜୁ(ଜୋ)ଡ଼ା(ଡ଼ି)**—ଦେ. ବି—ରାଜୋଡ଼ା,ରାଜ୍ୟ; ରାଜାଙ୍କ ଶାସିତ ଦେଶ
Raju(jo)ṛdā(ṛdi) —A state; kingdom.
বাজড়া रजवाडा

**ରଜୋକୃଚ୍ଛ୍ର**—ଦେ. ବି. ( ବୈଦ୍ୟକ; ରଜଃ+କୃଚ୍ଛ୍ର ) —୧ । ସ୍ତ୍ରୀ—
Rajokṛuchchhra ଲୋକଙ୍କର ରୋଗବିଶେଷ; ରଜଃସ୍ରାବର ଅଭାବ—1. Menorrhoea; stoppage of the menstrual flow. ୨ । ବାଧକ ରୋଗ—2 Painful menstruation.

**ରଜୋଗୁଣ**—ସଂ. ବି. (ରଜଃ+ଗୁଣ, ମ.ପ.ଲୋ; ରଜୋନାମକ ଗୁଣ)—
Rajoguṇa ରଜଃ ନାମକ ମାନବପ୍ରାକୃତିକ ଗୁଣ—One of the three attributes of human nature.

**ରଜୋଜନିତ**—ସ.ବିଣ.(୫ମୀ ତତ୍; ରଜଃ+ଜନିତ) —୧। ଧୂଳିରୁ ଜାତ—
Rajojanita 1. Born of dust ୨ । ରଜୋଗୁଣଜାତ—2. Born of passions ୩ । ସ୍ତ୍ରୀରଜରୁ ଉତ୍ପନ୍ନ—3. Produced from the menstrual flux.

**ରଜୋଦର୍ଶନ**—ସଂ. ବି. ( ୬ଷ୍ଠୀ ତତ୍ )—ସ୍ତ୍ରୀମାନଙ୍କର ଋତୁକାଳୀନ
Rajodarśana ରଜଃସ୍ରାବର ଆରମ୍ଭ—The beginning of the menstrual flow; the (first) appearance of the menstrual excretion.
[ ଦ୍ର—ହିନ୍ଦୁ ଜ୍ୟୋତିଷ ଶାସ୍ତ୍ର ଅନୁସାରେ ବାଳିକାର ପ୍ରଥମ ରଜୋଦର୍ଶନର ବାର ଓ ତିଥି ଅନୁସାରେ ବାଳିକାର ଭବିଷ୍ୟତର ଓ ତତ୍ସ୍ୱାମୀର ଭବିଷ୍ୟତର ସୂଚନା ଜଣା ପଡ଼େ । ରବିବାରରେ ପ୍ରଥମ ରଜୋଦର୍ଶନରେ ବାଳିକା ବିଧବା, ସୋମବାରରେ ପତିବ୍ରତା,ମଙ୍ଗଳବାରରେ ବେଶ୍ୟା-ବୁଧବାରରେ ସୌଭାଗ୍ୟଶାଳିନୀ,ଗୁରୁବାରରେ ପତିର ଶ୍ରୀବୃଦ୍ଧି-କାରିଣୀ,ଶୁକ୍ରବାରରେ ପତିବ୍ରତା,ଶନିବାରରେ ବନ୍ଧ୍ୟା ହୁଏ । ନନ୍ଦା ଓ ଭଦ୍ରା ତିଥିରେ ପତିଭକ୍ତା ଓ ପୁତ୍ରବତୀ ହୁଏ; ଜୟା ତିଥିରେ ସ୍ୱାମୀ-ସୌଭାଗ୍ୟଯୁକ୍ତା ଓ ରିକ୍ତା ତିଥିରେ କୁଳଟା ହୁଏ ।]

**ରଜୋଦ୍ଗମ**—ସଂ. ବି. ( ୬ଷ୍ଠୀ ତତ୍; ରଜ+ଉଦ୍ଗମ )—ରଜୋଦର୍ଶନ;
Rajodgama ରଜସ୍ୱଳା ହେବା—Appearance of the menses; menstruation.
(ରଜୋନିର୍ଗମ—ଅନ୍ୟରୂପ)

**ରଜୋଧର୍ମ** ସଂ. ବି—ସ୍ତ୍ରୀମାନଙ୍କର ମାସିକ ଋତୁସ୍ରାବ (ହି. ଶ)—The
Rajodharma monthly menstrual flow in women.

**ରଜୋଽଧିକ**—ସଂ. ବିଣ. (ରଜଃ+ଅଧିକ )—ଯେଉଁ ବ୍ୟକ୍ତିର ପ୍ରକୃତିରେ
Rajo'dhika ରଜୋଗୁଣର ପ୍ରାବଲ୍ୟ ଥାଏ—One in whom the quality of Rajas predominates (M. W); passionate.
(ରଜୋଽଧିକା—ସ୍ତ୍ରୀ)
ରଜୋଽଧିକତା } —ବି
ରଜ ଆଧିକ୍ୟ }

**ରଜୋଦ୍ୱାସା**—ସଂ. ବି ଓ ବିଣ ସ୍ତ୍ରୀ. ( ରଜ+ଉଦ୍ୱାସ+ଆ )—ରଜସ୍ୱଳା
Rajodbāsā ସମୟରେ ପିନ୍ଧା ଯାଇଥିବା ରଜୋରଞ୍ଜିତ ବସ୍ତ୍ରକୁ ପାଲଟି ଥିବା ସ୍ତ୍ରୀ—A woman who has put off her soiled cloth after her menstrual impurity (M. W).

**ରଜୋନିବୃତ୍ତି**—ସଂ ବି.(୬ଷ୍ଠୀ ତତ୍;ରଜଃ+ନିବୃତ୍ତି)—୧। ବୟସ୍କ ସ୍ତ୍ରୀ ମାସିକ
Rajonibṛutti ରଜୋଦର୍ଶନ ରହିତ ହୋଇଯିବା—1 The cessation or suppression of the menstrual flow in women of advanced age
[ଦ୍ର—ସ୍ତ୍ରୀମାନଙ୍କର ରୋଗ ହେଲେ, ଗର୍ଭାବସ୍ଥାରେ ଓ ୫୦ ବର୍ଷ ଟପି ଗଲେ ସେମାନଙ୍କର ମାସିକ ରଜସ୍ରାବ ବନ୍ଦହୋଇଯାଏ ।]
ରଜୋବନ୍ଧ }
ରଜୋରୋଧ } —ଅନ୍ୟରୂପ
ରଜୋନିରୋଧ }
୨ । ରଜସ୍ୱଳା ହେବାର ୩ ଦିନ ପରେ ରଜୋନିର୍ଗମ ବନ୍ଦ ହେବା—2. The stoppage of the menstrual flow after the 3rd day of the appearance of menses.

**ରଜୋପମ**—ସ. ବିଣ ( ବହୁବ୍ରୀହି; ରଜ+ଉପମା )—ଧୂଳି ପରି;
Rajopama ଧୂଳି ସଦୃଶ—Resembling dust (M. W).
(ରଜ ଉପମ—ଅନ୍ୟରୂପ)

**ରଜୋବଲ**—ସ. ବି. (ବହୁବ୍ରୀହି; ରଜସ୍+ବଳ; ଯହିଁରେ ରାଜସିକତା
Rajobaḷa ବଳବତୀ ହୁଏ)—ଅନ୍ଧକାର—Darkness.
(ରଜୋବଳ—ଅନ୍ୟରୂପ)

**ରଜୋମେଘ**—ସ. ବି.—(ରଜଃ+ମେଘ; ରୂପକ)—ଶୂନ୍ୟକୁ ବା
Rajomegha ଆକାଶକୁ ଆଚ୍ଛନ୍ନ କରିଥିବା ଧୂଳିପଟଳ—A cloud of dust.

**ରଜୋହର**—ସ. ବି. ପୁଂ—( ରଜଃ+ହୃ ଧାତୁ+କର୍ତ୍ତୃ. ଅ; ଯେ
Rajohara ବସ୍ତ୍ରାଦିରୁ ଧୂଳି, ମଇଳା ପ୍ରଭୃତି ହରଣ କରେ)—ରଜକ; ଧୋବା—Washerman.
[ରଜୋହରୀ—ସ୍ତ୍ରୀ]

**ରଜ୍ଜୁ**—ସ. ବି.—(ସୃଜ୍ ଧାତୁ=ସୃଷ୍ଟି କରିବା+କର୍ମ. ଉ; ନିପାତନ)-
Rajju ୧ । ଦଉଡ଼ି; ବନ୍ଧନୀ—1. Bond; cord; rope; string. ୨ । ବେଣୀ—2. Plait; braid. ୩ । ବେଣୀ ବନ୍ଧା ହୋଇଥିବା କେଶଗୁଚ୍ଛ—3. A plait of hair, a lock of braided hair. ୪ । ଘୋଡ଼ାର ବାଗଡୋର (ହି. ଶ.)—4. The rope attached to the bit of a horse. ୫ । ମେରୁଦଣ୍ଡରୁ ବାହାରିଥିବା ପେଶୀବିଶେଷ—5 Name of a sinew proceeding from the vertebral column (Apte).

**ରଜ୍ଜୁଦାଳକ**—ସ.ବି.—୧ । ଏକ ଜାତୀୟ ବନ୍ୟ କୁକୁଡ଼—1. A kind
Rajju dāḷaka of wild fowl (Apte). ୨ । ଜଳଚର ପକ୍ଷିବିଶେଷ—2. A kind of aquatic bird. [ଦ୍ର—ଏହାର ମାଂସ ଖାଇବା ଶାସ୍ତ୍ରରେ ନିଷିଦ୍ଧ —ହି. ଶ.]
[ରଜ୍ଜୁବାଳ—ଅନ୍ୟରୂପ]

**ରଜ୍ଜୁଧାନ**—ସ. ବି.—(ରଜ୍ଜୁ+ଧା ଧାତୁ+ଅଧିକରଣ. ଅନ)—ଗୋ-
Rajju dhāna ମେଷାଦି ପଶୁଙ୍କର ବେକର ଯେଉଁ ଅଂଶର ଚାରିପାଖେ ପଘା ବନ୍ଧା ଯାଏ—The part of the neck of a domestic animal round which a rope is fastened (M. W).

ରଜ୍ଜୁ ପେଡ଼ା—ସଂ. ବି. (ମ. ପ. ଲୋ)—ଦଉଡ଼ିରେ ବୁଣା ହୋଇଥିବା
Rajju perdā ଟୋକେଇ ବା ପେଡ଼ୀ—Rope-basket(Apte).
[ରଜ୍ଜୁ ପେଟ୍କା—ଅନ୍ୟରୂପ]

ରଜ୍ଜୁ ପିଠିକା—ସଂ. ବି.—(ମ. ପ. ଲୋ)—ଦଉଡ଼ିଦ୍ୱାରା ଝୁଲି ଯାଇ
Rajju pithikā ଥିବା ଚଉକି ବା ପୀଢ଼ା—A stool or
bench suspended by ropes (M. W)

ରଜ୍ଜୁ ବନ୍ଧ—ସଂ. ବି.—(ଷଷ୍ଠୀ ତତ୍)—ଦଉଡ଼ି ଗୁଡ଼ାଇ ବାନ୍ଧିବା—
Rajju bandha Binding with ropes; tying
[ରଜ୍ଜୁ ବନ୍ଧନ—ଅନ୍ୟରୂପ] with cords.

ରଜ୍ଜୁ ବର୍ତ୍ତନ—ସଂ. ବି.—(ଷଷ୍ଠୀ ତତ୍)—ଦଉଡ଼ି ବଳିବା—
Rajju barttana The twisting of rope (M.W)

ରଜ୍ଜୁ ଭ୍ରମ—ସଂ. ବି. (ମ. ପ. ଲୋ)—ଭ୍ରମବଶତଃ ରଜ୍ଜୁଭିନ୍ନ କୌଣସି
Rajju bhrama ବସ୍ତୁରେ ରଜ୍ଜୁଜ୍ଞାନ—Mistaking a
thing to be a rope which it is not.
[ଯଥା—କାମାନ୍ଧ ବ୍ୟକ୍ତି ରଜ୍ଜୁଭ୍ରମରେ ସର୍ପକୁ ଅବଲମ୍ବନ
କରି ଗୃହ ଉପରକୁ ଉଠିବାକୁ ଚେଷ୍ଟା କଲା—ନ୍ୟାୟ ।]

ରଜ୍ଜୁରେ ସର୍ପଭ୍ରମ—ଦେ. ବି—ଦଉଡ଼ିକୁ ଦେଖି ଭ୍ରମରେ ସାପ ବୋଲି
Rajjure sarpa bhrama ବୋଧ କରିବା—Mistaking
a rope for a serpent.

ରଜ୍ଜୁ ସନ୍ଦାନ—ସଂ. ବି.—(ଦ୍ୱନ୍ଦ୍ୱ;ରଜ୍ଜୁ+ସନ୍ଦାନ)—ଦଉଡ଼ି ଓ ଗୋଡ଼ର
Rajju sandāna ବେଡ଼ି—Rope and foot-fetters
(M. W.)

ରଜ୍ଜୁ ସର୍ଜ—ସଂ. ବି.—(ରଜ୍ଜୁ+ସୃଜ୍ ଧାତୁ+କର୍ତ୍ତୃ. ଅ)—ଯେ ଦଉଡ଼ି
Rajju sarja ତିଆରି କରେ—Rope-maker.

ରଜ୍ଜୁ କୃତ—ସଂ.ବିଣ.—(ରଜ୍ଜୁ+ଅଭୂତ ତଦ୍ଭାବେ, ଚ୍ୱି+କୃତ)—
Rajjū kruta ଦଉଡ଼ିରୂପେ ବ୍ୟବହୃତ (କନାଖଣ୍ଡ, ଲତା)—
Used as a rope.

ରଜ୍ଜୁତ—ସଂ. ବିଣ.—(ରଜ୍ଜୁ+ଉତ; ତୃତୀୟା ତତ୍)—ଦଉଡ଼ିଦ୍ୱାରା ବଳା
Rajjūta ଯାଇଥିବା—Plaited or twisted out of
ropes (M. W).

ରଜ୍ଜୂଦ୍ଧୃତ—ସଂ. ବି.—(ତୃତୀୟା ତତ୍; ରଜ୍ଜୁଦ୍ୱାରା ଉଦ୍ଧୃତ)—ଦଉଡ଼ିଦ୍ୱାରା
Rajjūddhruta ଉପରକୁ ଉଠା ଯାଇଥିବା—Lifted or
drawn up by means of a rope.

ରଜ୍ଜ୍ୱବଲମ୍ବୀ—ସଂ. ବିଣ. ପୁଂ—(ରଜ୍ଜୁ+ଅବଲମ୍ବିନ୍)—୧ । ଚାଲିବା
Rajjwabalambi ପାଇଁ ବା ଉପରକୁ ଉଠିବାପାଇଁ ଯେ
(ରଜ୍ଜ୍ୱବଲମ୍ବିନୀ—ସ୍ତ୍ରୀ) ଦଉଡ଼ିକୁ ଧରିଥାଏ—1. Holding a
rope for walking or going up. ୨ । ଦଉଡ଼ି
ଦ୍ୱାରା ଝୁଲୁଥିବା ବା ଓହୋଳ ଥିବା—2. Hanging
or suspended by a rope.

(ରଜ୍ଜ୍ୱବଲମ୍ବନ—ବିଶେଷ୍ୟ)

ରଞ୍ଚକ—ଗ୍ରା. ବିଣ ଓ ବି(ସଂ.ରଚକ)—୧ । ରଚକ—1.Composer.
Ranchaka ୨ । ଚିତ୍ରକାରକ—2. Painter. ଦେ. ବି.
বংচক रंचक ରଞ୍ଜକ (ଦେଖ)—Ranjaka (See)

ରଞ୍ଚନ—ଗ୍ରା. ବି (ସଂ.ରଚନ)—ରଚନ (ଦେଖ)—Rachana (See)
Ranchana [ଉ—ଦୃଷ୍ଟି ରଞ୍ଚେ ତାର ମନ, ପ୍ରତିହିଁ ହେଲେ
বংচন रंचन ସେ ଉତ୍ପନ୍ନ—ଭୂପତି. ପ୍ରେମପଞ୍ଚାମୃତ ।

ରଞ୍ଚନା—ଗ୍ରା ବି. ଓ ବିଣ (ସଂ. ରଚନା)—ରଚନା (ଦେଖ)—
Ranchanā Rachanā (See) [ଉ—ତାର ମଧ୍ୟରେ ଏ
বংচনা रंचन ବ୍ରହ୍ମାଣ୍ଡ, ରଞ୍ଚନା ଚତୁର୍ଦ୍ଦଶ ଖଣ୍ଡ—ପ୍ରାଚୀ.
ଯଶୋବନ୍ତ. ପ୍ରେମଭକ୍ତିବ୍ରହ୍ମଗୀତା । ]

ରଞ୍ଚିତ—ଗ୍ରା (ପ୍ରାଚୀନ ପଦ୍ୟ) ବିଣ—(ସଂ.ରଚିତ)—ରଚିତ (ଦେଖ)—
Ranchita Rachita (See)
বংচিত रंचित [ଉ—ଶିରେ ରଞ୍ଚିତ କୁଟିଳ କବରୀ—
ପ୍ରାଚୀ. ଶିଶୁଙ୍କର ଭୂଷା ଅଭିଳାଷ; ଉତ୍ତମ
ଆଭି ପୀତାମ୍ବର, ରଞ୍ଚିତ ଅଷ୍ଟ ଅଳଙ୍କାର—ଭୂପତି.
ପ୍ରେମପଞ୍ଚାମୃତ ।]

ରଞ୍ଚିତା—ଗ୍ରା (ପ୍ରାଚୀନ ପଦ୍ୟ) ବିଣ (ସଂ. ରଚିତ)—ରଚିତ (ଦେଖ)—
Ranchitā Rachita [See] [ଉ—ଏ ପିଣ୍ଡ-
ବ୍ରହ୍ମାଣ୍ଡ ସ୍ୱାମୀ ଆଜ୍ଞାରେ ରଞ୍ଚିତା—ପ୍ରାଚୀ. ବ୍ରହ୍ମନିରୂପଣ-
ଗୀତା ।]

ରଞ୍ଚିବା—ଗ୍ରା [ପଦ୍ୟ] କ୍ରି [ସଂ. ରଚ୍ ଧାତୁ]—ରଚିବା [ଦେଖ]—
Ranchibā Rachibā (See) [ଉ—କର୍ଣ୍ଣଙ୍କର ଶରକୁ
বচা रंचना ନ କର ଗଣନା, ଶରବୃଷ୍ଟି ରଞ୍ଚିଲେ ଭୀମ
ମହାମନା—କୃଷ୍ଣସିଂହ. ମହାଭାରତ. ଦ୍ରୋଣ ।]

ରଞ୍ଛା—ଗ୍ରା. ବିଣ [ସଂ. ରଚିତ; ରଞ୍ଜିତ]—ଶୋଭିତ—Adorned
Ranchhā with. [ଉ—କୁଷ୍ଟା ରଞ୍ଛା ଧଡ଼ି ବି
সুন্দর ଶୋଭନ ଗୋ—ଅଭିମନ୍ୟୁ.ବିଦଗ୍ଧଚିନ୍ତାମଣି ।] ଦେ ବି—
ଏକପ୍ରକାର କୃଷ୍ଣ ଜୀରକ [କବିରାଜ ହରେକୃଷ୍ଣ. ଦ୍ରବ୍ୟଗୁଣ]
A kind of black cumin seed.

ରଞ୍ଜ୍ [ଧାତୁ]—ସଂ—୧ । ରଙ୍ଗକରିବା, ରଙ୍ଗାଇବା—1. To dye.
Ranj[root] ୨ । ଆସକ୍ତ ହେବା; ଅନୁରକ୍ତ ହେବା—
[ରନ୍ଜ(ଧାତୁ)—ଅନ୍ୟରୂପ] 2.To be attached or
devoted to. ୩ । ରଞ୍ଜିତହେବା; ରଙ୍ଗ ଯିବା—
3. To be dyed or coloured ୪ । ନାଲି
ପଡ଼ିବା—4. To become red. ୫ । ପ୍ରଣୟାସକ୍ତ
ହେବା—5. To be enamoured of; to fall
in love with [Apte]. ୬ । ଆନନ୍ଦିତ ହେବା—
6. To be pleased; to be delighted.
୭ । ସନ୍ତୁଷ୍ଟ ହେବା—7. To be satisfied with.

ରଞ୍ଜ—ବୈଦେ. ବି (ଫା)—୧ । ରାଗ; କ୍ରୋଧ—1. Anger; rage.
Ranj ୨ । ଅହଙ୍କା—2. Grudge. ୩ । ଖେଦ; ମନୋ-
রাগ रंज ଦୁଃଖ—3. Grief; sorrow; affliction.
୪ । ଶୋକ—4. Mourning; bewailing.

ରଞ୍ଜ୍ ଦେବା—ଦେ.କ୍ରି [ଫା.ରଞ୍ଜ]—୧ । ଅନ୍ୟର ମନରେ ଦୁଃଖ ଦେବା
Ranj debā —1. To afflict; to aggrieve.
দুঃখ দেওযা रंज देना ୨ । ରଗାଇବା—2 To enrage.
[ରଞ୍ଜ ପହଞ୍ଚା(ଞ୍ଚେ)ଇବା—ଅନ୍ୟରୂପ]

**ରଞ୍ଜ**—ଦେ. ବି (ସଂ. ରଞ୍ଜନ)—ଲୋକଙ୍କ ମନୋମୋହକ—Pleasing
Rañja others. [ ଦ୍ର—ଲୋକରଞ୍ଜ କମନ୍ତେ ନାନା ଚରିତ କଲା—ପ୍ରାଚୀ. ଶିଶୁଶଙ୍କର ଭୃଷା ଅଭିଳାଷ]

**ରଞ୍ଜକ**—ସଂ. ବିଣ. ପୁଂ ( ରଞ୍ଜ ଧାତୁର ଣିଜନ୍ତ ରଞ୍ଜି ଧାତୁ=ରଙ୍ଗ କରିବା
Rañjaka + କର୍ତ୍ତୃ. ଅକ )—୧ । ଯେ ରଙ୍ଗ କରେ—
(ରଞ୍ଜିକା—ସ୍ତ୍ରୀ) 1. Dyeing; painting. ୨ । ଉତ୍ତେଜକ—2. Stimulating; exciting. ୩ । ଅନୁରାଗଜନକ—3. Producing attachment; exciting love or passion (Apte). ୪ । ସନ୍ତୋଷଜନକ; ମନୋରମ—4. Pleasing; amusing, charming. ସଂ ବି—୧ । (ପୁଂ)
(ରଞ୍ଜକୀ—ସ୍ତ୍ରୀ) ରଜକ—1. Washerman. ୨ । (ପୁଂ) ଚିତ୍ରକର—2. Dyer; painter. ୩ । ଉତ୍ତେଜକ ଔଷଧ—3. A stimulant medicine. ୪ । ପୈତ୍ତିକ ରସବିଶେଷ; (ଏହା ଦୃଷ୍ଟିଶକ୍ତିକୁ ଉତ୍ତେଜିତ କରେ)—4. Biliary humour (on which depends a person's vision). ୫ । ହିଙ୍ଗୁଳ—5. Vermilion. ୬ । ରକ୍ତ ଚନ୍ଦନ—6. Red sandal wood (Apte). ୭ । ଉତ୍ତେଜକ ବ୍ୟକ୍ତି—7. Exciter. ୮ । ଉତ୍ତେଜକ ବସ୍ତୁ ବା ବିଷୟ—8. Stimulus (Apte). ୯ । ଭଲିଆ (ଦ୍ର. ଶ.)—9 Marking nut. ଦେ. ବି—
ବংজুতঘব ୧ । ବନ୍ଧୁକର ପାର୍ଶ୍ୱସ୍ଥ ଛିଦ୍ର (ଯେଉଁ ବାଟେ ବନ୍ଧୁକ
रंजकका सुराख़ ମଧ୍ୟସ୍ଥ ବାରୁଦରେ ଅଗ୍ନି ସଂଯୋଗ କରାଯାଏ)—
রংজুতঘবের বারুদ 1. Touch hole. ୨ । ବନ୍ଧୁକର ମୂଳରେ
रंजक ଥିବା କାନରେ ଦିଆଯିବା ବାରୁଦ—2. Gun powder put on the touchhole of a gun. [ ଉ—ରଞ୍ଜକ ଖ୍ୟାତ ନଳଅଛୁ ଯୋଗି । ଉଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ । ] [ ଦ୍ର—ଏ ରଞ୍ଜକ ବାରୁଦରେ ନିଆଁ ଲଗାଇ ଦେଲେ ସେହି ନିଆଁ ବନ୍ଧୁକ ନଳୀଭିତରେ ଥିବା ବାରୁଦକୁ ଧରିବାରୁ ବନ୍ଧୁକ ଫଟର୍ ହୁଏ । ] ୩ । ବନ୍ଧୁକ ଓ
ঘোড়া ବାଣ ଆଦିରେ ନିଆଁ ଲଗାଇବା ପାଇଁ ବ୍ୟବହୃତ ବଳିତା ବା ତୋଡ଼ା—3. A match or wick for igniting a matchlock gun or firework. ୪ । (ଲକ୍ଷଣାର୍ଥ) ଝାଡ଼ା କରାଇବା ଔଷଧ—4 (figurative) A purgative.

**ରଞ୍ଜକ ଘର(ର)**—ଦେ. ବି—କମାଣ ଓ ବନ୍ଧୁକରେ ନିଆଁ ଲଗାଇବାର
Rañjaka ghara (ra) ରନ୍ଧ୍ର—Touchhole of a gun
বংজুত ঘব रंजकका छेद or cannon.

**ରଞ୍ଜକ(କି) ବନ୍ଧୁକ**—ଦେ. ବି—ଯେଉଁ ବନ୍ଧୁକ ରଞ୍ଜକଦ୍ୱାରା ଫଟର୍
Rañjaka(ki) bandhuka କରାଯାଏ; ତୋଡ଼ାଦାର୍ ବନ୍ଧୁକ
তোড়াদার বংধুক तोडेदार बंदुक—A matchlock gun.

**ରଞ୍ଜନ**—ସଂ. ବି ( ରନ୍ଜ ଧାତୁ+ଣିଜନ୍ତ ରଞ୍ଜି ଧାତୁ+ଭାବ. ଅନ )—
Rañjana ୧ । ରଙ୍ଗ କରିବା—1. Dyeing. ୨ । ସନ୍ତୋଷବିଧାନ—2. Satisfying; pleasing. ୩ । ଅନୁରାଗୋତ୍ପାଦନ—3. Affecting the heart; exciting the passions. [ ଦ୍ର—(୩।୪) ରଞ୍ଜନ ଅଭିଷେକ, ଶକର ସଙ୍ଗ, ପୟୋଧର ଫୁଲ ଭୁଙ୍ଗ, ପୁରୁଷ ପ୍ରକାଶି ରଞ୍ଜନକୁ ଯେ । ଉଞ୍ଜ. ବୈଦେହୀଶବିଳାସ । ] ୪ । ( +କରଣ ଅନ )—ହିଙ୍ଗୁଳ—4. Vermilion. ୫ । ରକ୍ତଚନ୍ଦନ—5. Red sandal wood, sappan wood. ୬ । ମୁଞ୍ଜ ତୃଣ—6. The munja grass; Saccharum Munja. ୭ । ଯେଉଁ ବସ୍ତୁମାନଙ୍କ ଦ୍ୱାରା ରଙ୍ଗ କରାଯାଏ (ଯଥା—ହଳଦୀ, ନୀଳ, କୁସୁମ ।)—7 Things used in dying. ୮ । ସୁନା (ଦ୍ର. ଶ.)—8 Gold. ୯ । ଜାଇଫଳ (ଦ୍ର. ଶ.)—9. Nutmeg. ୧୦ । କମଳାଗୁଣ୍ଡି ଗଛ (ଦ୍ର. ଶ.)—10. The camilla tree. ସଂ. ବିଣ. ପୁଂ—୧ । ଅନୁରାଗ ଜନକ—1.
(ରଞ୍ଜନୀ—ସ୍ତ୍ରୀ) Exciting passions. ୨ । ପ୍ରୀତିଜନକ—2. Affecting the heart; pleasing. ୩ । ଯାହା ରଙ୍ଗାଏ—3. Colouring; dyeing. ଦେ. ବିଣ—ସୁନ୍ଦର—Beautiful. [ ଉ—ବପୁବନ୍ତରୁ ହୋଇଛୁ ରଞ୍ଜନ । ଉଞ୍ଜ. ବୈଦେହୀଶବିଳାସ । ]

**ରଞ୍ଜନକ**—ସଂ. ବି (ରଞ୍ଜନ+କ)—୧ । କଟ୍‌ଫଳ; କାଫଡ଼;
Rañjanaka ହିମାଳୟର ଅରଣ୍ୟ ତରୁବିଶେଷ—1. Myrica Sapida; Myrica Nagi; a medicinal plant. ୨ । ପଣସ (ଦ୍ର. ଶ.)—2. Jack fruit.

**ରଞ୍ଜନ କଜ୍ଜଳ**—ଦେ.ବି—ଦେ. ବି—ଯେଉଁ କଳା ଆଖିରେ ଲଗାଇଲେ
Rañjana kajjala ଦେଖିବା ଲୋକେ ବଶ ହୁଅନ୍ତି; ବଶକଲା
মন্ত্রপূজকা জল—Collyrium which when
मंत्रित कज्जल, मंत्रायाहुआ काजल anointed subdues the spectators. [ ଦ୍ର—ଅଞ୍ଜନ ଏ ତ ରଞ୍ଜନ କଜ୍ଜଳ । ଉଞ୍ଜ. ପ୍ରେମସୁଧାନିଧି । ]

**ରଞ୍ଜନ କେଶୀ**—ସଂ. ବି—ନୀଳୀ ଗୁଳ୍ମ (ଦ୍ର. ଶ.)—
Rañjana keshi Indigo plant.

**ରଞ୍ଜନଦ୍ରୁ**—ସଂ. ବି—ଅଚ୍ଛୁକ ବା ଆଚ୍ଛୁଗଛ—
Rañjanadru A tree; Morinda Tinctoria.
(ରଞ୍ଜନ ଦ୍ରୁମ—ଅନ୍ୟରୂପ)

**ରଞ୍ଜନ ବଲ୍ଲୀ**—ସଂ. ବି—କଲରା ଲତା—Memordica Charantia
Rañjana balli creepers (M. W.)

**ରଞ୍ଜନ ରଶ୍ମି**—ଦେ. ବି ( ଆଧୁନିକ ପ୍ରୟୋଗ )—ରେଡିୟମ୍‌ରୁ ଜାତ
Rañjana rasmi ଆଲୋକ—Radium rays.
বঞ্জনরশ্মি रंजनरश्मि

**ରଞ୍ଜନୀ**—ସଂ. ବି ( ରଞ୍ଜନ+ସ୍ତ୍ରୀ. ଈ )—୧ । କମ୍ପିଲ୍ଲକ; କମଳାଗୁଣ୍ଡି—
Rañjani 1. Mellotus Phillippinenses; Kamilla. [ ଦ୍ର—ଏହା ସ୍ନୁହ୍ୟାଦି ବର୍ଗର ଅରଣ୍ୟ ଗୁଳ୍ମ । ଏହାର ଫଳର ପୃଷ୍ଠଜାତ ଲାଲ୍ ଗୁଣ୍ଡା ଔଷଧରେ ଲାଗେ ଓ

ଏହାଦ୍ୱାରା ପାଟଅଦିକୁ ନାରଙ୍ଗ ବର୍ଣ୍ଣରେ ରଙ୍ଗ କରାଯାଏ ।]
୨ । ନୀଳୀଗୁଳ୍ମ—2. Indigo plant. ୩ । ମଞ୍ଜିଷ୍ଠା—3. The Indian madder. ୪ । ଶେଫାଳିକା; ଗଙ୍ଗଶିଉଳି ଫୁଲ—4. A flower; Nyctanthes Arbor Tristes. ୫ । ହରିଦ୍ରା; ହଳଦୀ—5. Turmeric. ୬ । ପର୍ପଟୀ; ରକ୍ତବର୍ଣ୍ଣ ସୁଗନ୍ଧ ମୃତ୍ତିକା-ବିଶେଷ—6. A kind of red aluminious earth. ୭ । ନାଗବଲ୍ଲୀ ( ହି. ଶ )—7. Piper betel. ୮ । ଜତୁକାନାମ୍ନୀ ବନ୍ୟଲତା ( ହି. ଶ. )—8. A kind of wild creeper. ୯ । ବୃଷଭସ୍ୱରର ତିନି ଶ୍ରୁତି ମଧ୍ୟରୁ ଦ୍ୱିତୀୟ ଶ୍ରୁତି ( ହି. ଶ. )—9. The 2nd of the three secondary tunes of the first scale of Hindu music

ସଂ. ବିଣ.—ରଞ୍ଜକର ସ୍ତ୍ରୀଲିଙ୍ଗ—Feminine of Ranjana. [ଉ—କରେ ରଜନୀ କି ରଞ୍ଜନୀ କର ଏ ପ୍ରକାଶେ ତେମନ୍ତ । ଉପେ. କୋଟି ବ୍ରହ୍ମାଣ୍ଡସୁନ୍ଦରୀ ।]
ଦେ.ବି.—(ସଂ. ନଖ ରଞ୍ଜନୀ)—ନହୁରୁଣୀ—Barber's nail-cutter. [ଉ—ରଞ୍ଜନୀରେ, ଯତ୍ନେ ନଖ ମାଜି ଦେଲେ ଖରେ । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।]

**ରଞ୍ଜନୀ ପୁଷ୍ପ**—ସଂ. ବି.—ପୂତି କରଞ୍ଜ (ଦେଖ)
Ranjani pushpa Pūti karanja (See)

**ରଞ୍ଜନୀୟ**—ସଂ. ବିଣ—( ରଞ୍ଜ ଧାତୁ ଣିଚ,ରଞ୍ଜିଧାତୁ + କର୍ମ.ଅନୀୟ) —୧ । Ranjaniya ଯାହା ରଙ୍ଗା ଯାଇପାରେ—1. Fit to be coloured. ୨ । ଯାହାକୁ ସନ୍ତୁଷ୍ଟ କରାଯିବା ଉଚିତ—2. Deserving to be made happy. ୩ । (+ କର୍ତ୍ତୃ. ଅନୀୟ) ମନୋହର; ପ୍ରସନ୍ନତାଉତ୍ପାଦକ [ହି. ଶ ]—3. Pleasing; delightful (M. W.)

**ରଞ୍ଜା**—ଦେ. ବି.—୧ । ରଞ୍ଜନ (ଦେଖ)—1. Ranjana (See)
Ranjā ୨ । କାକୁଡ଼ି ଅଦି ଲତାକୁ ମଡ଼ାଇବା ପାଇଁ ଭୂମିରେ ଆଞ୍ଜା; ଡାଳପାଳା ପୋତା ହେବା ଶୁଖିଲା ଡାଳ ବା ଖୁଣ୍ଟ—ম্যাকি 2. Trellis or dry branches driven into the earth for training creepers along them. ଦେ. ବିଣ.—୧ । ରଞ୍ଜକ ( ଦେଖ ) 1. Ranjaka (See) ୨ । ରଞ୍ଜିତ (ଦେଖ)—2. Ranjita (See)

**ରଞ୍ଜା(ଞ୍ଜେ)ଇବା**—ଦେ. କି.—୧ । ରଞ୍ଜିବା କ୍ରିୟାର ଣିଜନ୍ତ ରୂପ—Ranjā(nje)ibā 1. Causative form of Ranjibā. রংজান रंजाना ୨ । ରଞ୍ଜିତ କରିବା—2. To dye. ୩ । ସନ୍ତୁଷ୍ଟ କରିବା—3 To please. [ ଉ—ଧର୍ମରେ ସେ ପ୍ରଜାମାନଙ୍କୁ ରଞ୍ଜିଲେ । କୃଷ୍ଣସିଂହ.ମହାଭାରତ ଅଦି ।] ୪ । (ଫା. ରଂଜ୍) ବିରକ୍ତ କରାଇବା; ରାଗ ଜନ୍ମାଇବା—4. To tease; to annoy. ୫ । ମୁଗ୍ଧ କରିବା; ମୋହିତ କରିବା—5. To charm; to enchant.
[ଉ—ଗଞ୍ଜାଇବ କିଣି ଲଗି ତାର ପୁଣି ରଞ୍ଜାଇଲା ମନ ଝଳ । କବିସୂର୍ଯ୍ୟ.କଶୋସ୍ୱ ଚମ୍ପୂ.ଗ.ଗୀତ ] ୬ । ରଞ୍ଜା ଦେବା (ଦେଖ)—6. Ranjā debā (See)
[ଉ—କାକୁଡ଼ି ପାଇଁକି ରଞ୍ଜା ରଞ୍ଜେଇଲି, ବଳେ ମାଡ଼ିଗଲା ଶୋଇ; କାନ୍ତଙ୍କ ପାଇଁକି ଶେଯ ଶେଯାଇଲି ଶୋଇଗଲା ନଣନ୍ଦେଇ । ଛିଗ ]

**ରଞ୍ଜା ତରା**—ଦେ. ବି. (ସଂ. ଲଞ୍ଜ + ତାରା)—ଲଞ୍ଜାତରା; ଧୂମକେତୁ—Ranjā tarā ধূমকেতু पुच्छलतारा तारा Comet.

**ରଞ୍ଜା ଦେବା**—ଦେ. କି.—କାକୁଡ଼ି ଅଦି ଗଛର ଲତା ମାଡ଼ିବା ପାଇଁ Ranjā debā ଗଛକୁ ଥିବା ଲତାର ମୂଳରେ ଭୂମିରେ ରଞ୍ଜା [ରଞ୍ଜା ମଡ଼ା(ଡ଼େ)ଇବା, ରଞ୍ଜା ପୋତିବା—ଅନ୍ୟରୂପ] ପୋତିବା—ডালপালা পোতা, আশ্রা দেওয়া To put or construct a मांकि देना frame or trellis for training creepers.

**ରଞ୍ଜା ରଞ୍ଜି**—ଦେ. ବି ଓ ବିଣ. - (ସଂ. ରଂଜନ) — ୧ । ଅନ୍ୟୋନ୍ୟ Ranjā ranji ମନୋରଞ୍ଜନ – 1 Pleasing each other. रंजिस, रंजा रंजि [ଉ —ବେଗେ ସଭାଗେ ଚାଲିଲେ,ଶିଷ୍ୟେ ଗୁରୁ ପ୍ରାପ୍ତେ ହେଲେ,ବେନି ଗୁଭ ମନ ରଞ୍ଜାରଞ୍ଜି- ବିଶ୍ୱନାଥ.ବିଚିତ୍ର ରାମାୟଣ ]—୨ ।'ଅନ୍ୟୋନ୍ୟ ପ୍ରତି ଅନୁରକ୍ତି—2.Attachment to each other. ୩ । (ଫା. ରଂଜ୍) --ପରସ୍ପର ପ୍ରତି କ୍ରୋଧାପନ୍ନ – 3 Angry with each other.

**ରଞ୍ଜାଲିଆ** – ଦେ. ବିଣ —୧ । କ୍ଷୁଧାର୍ତ୍ତ—1 Hungry. ୨ । କାର୍ଯ୍ୟରେ Ranjālia ଅତି ବ୍ୟସ୍ତ—2. Very busy with work. ক্ষুধার্ত্ত, ব্যস্ত रंजिदा

**ରଞ୍ଜାଲିଆ ବେଳ**—ଦେ. ବି —ଯେତେବେଳେ ମନୁଷ୍ୟ ନାନା କାର୍ଯ୍ୟରେ Ranjālia bela ବ୍ୟସ୍ତ ଥାଏ—Very busy time. (ରଞ୍ଜାଳିଆ ବକତ—ଅନ୍ୟରୂପ) ঝাঁঝাটের সময় रंजीदावखत

**ରଞ୍ଜାଳି ହେବା**—ଦେ. ବି —( ଉଦାହରଣ—ମୋ ଦେହ ରଞ୍ଜାଳି Ranjāli hebā ହେଉଛି)--ବେଗ ଅଦି ଯୋଗୁଁ ଦେହର ଉତ୍ତାପ ঝাঁঝাটেপড়া ବଢ଼ିବା ଓ ଝାଳ ବହିବାଯୋଗୁଁ ଦେହରେ ଅତ୍ୟନ୍ତ ଗରମ ଅନୁଭୂତ ହେବା—A feeling of heat on account of increase of temperature in the body and perspiration.
ଦେ. କି (ଉଦାହରଣ—ଦିନ ଦିନ ହେଲା ଏ କାମରେ ମୁଁ ରଞ୍ଜାଳି ହେଲିଣି) —୧ । ବ୍ୟତିବ୍ୟସ୍ତ ହେବା; ଦହଗଞ୍ଜ ହେବା—1. To be bothered or troubled. ୨ । ଅତ୍ୟନ୍ତ କାର୍ଯ୍ୟବ୍ୟସ୍ତ ହେବା—2.To be awfully busy. ୩ । ବ୍ୟସ୍ତ ହୋଇ ଖୋଜିବା—3. To search for a thing very anxiously.

**ରଞ୍ଜି** (ଧାତୁ)—ସ (ରନ୍ଜ ବା ରଞ୍ଜ୍ ଧାତୁ ଣିଚ୍)—ମୁଗ୍ଧ କରିବା—Ranji (root) To please; to charm.

**ରଞ୍ଜିତ**—ସଂ. ବିଣ (ରଞ୍ଜ ଧାତୁ ଣିଚ୍=ରଞ୍ଜି ଧାତୁ + କର୍ମ ତ)—Ranjita ୧ ରଙ୍ଗ କରା ଯାଇଥିବା—1. Dyed; coloured. ୨ । ଚିତ୍ରିତ—2. Painted. ୩ ।

ସନ୍ତୋଷିତ; ମୋହିତ; ତର୍ପିତ—3. Pleased; satisfied; gladdened. ୪ । ଯାହାଠାରେ ଅନୁରାଗ ଜନ୍ମାଇ ଦିଆ ଯାଇଅଛି—4. In whom the seeds of attachment have been sown. ୫ । ମୁଗ୍ଧ—5. Charmed (M.W). ୬ । ଅନୁରକ୍ତ (ଦ୍ର. ଶ)—6. Attached. ୭ । ଆଲୋକିତ—7. Illumined (M. W)

**ରଞ୍ଜିତ ଦୃଷ୍ଟି**—ସ. ବି (ଆଧୁନିକ)—ନେତ୍ର ରୋଗବିଶେଷ; ଯାହାଯୋଗୁଁ Rañjita drushṭi ପଦାର୍ଥମାନ ରୋଗୀର ଆଖିକୁ ରଞ୍ଜିତ ବା ରଙ୍ଗବିଶିଷ୍ଟ ଦେଖାଯାଏ—Chromatopsia; coloured vision.

**ରଞ୍ଜିତ୍‌ବସ୍ତ୍ର**—ସ. ବି (କର୍ମଧା)—୧ । ରଙ୍ଗାଯାଇଥିବା ଲୁଗା—Rañjita bastra 1. Dyed cloth. ୨ । ଛିଟ ଲୁଗା—2. Chintz cloth.

**ରଞ୍ଜିନୀ**—ସ. ବି. ସ୍ତ୍ରୀ (ରଞ୍ଜ ଧାତୁ + କର୍ତ୍ତୃ. ଇନ୍ + ସ୍ତ୍ରୀ ଈ)—୧ । ନୀଳ Rañjini ଗୁଳ୍ମ—1 Indigo plant. (M W). ୨ । ହଳଦୀ—2. Turmeric. ୩ । ମଞ୍ଜିଷ୍ଠା—3. Indian madder (M. W)

**ରଞ୍ଜିବା**—ଦେ. କି (ସ. ରଞ୍ଜ ଧାତୁ)—୧ । ରଙ୍ଗାଇବା; ରଞ୍ଜିତ କରିବା; Rañjibā ରଙ୍ଗ କରିବା—1. To paint; to dye. [ଦ୍ର—ଝୁରି ତାଙ୍କ ଶାକରୁ ଅଳତା, ରଞ୍ଜିଲେକ ତରୁ ଲତା ଏ ମଙ୍ଗଳ ସ୍ୱଗେ—ସୁଧାକାଥ. ମହାଯାତ୍ରା] ୨ । ସନ୍ତୁଷ୍ଟ କରିବା—2. To please, [ଦ୍ର—ପଦ୍ୟରେ ଚତୁର୍ବିଧ ଅନ୍ନ, ଦେଇ ରଞ୍ଜିଲେ ପୃଥ୍ୱୀ ମନ—ଜଗନ୍ନାଥ ଭାଗବତ ।] ୩ । ମୁଗ୍ଧ କରିବା – 3. To charm. (ଦ୍ର—ରଞ୍ଜି ନାଏ ସେ ତ ଯୁବତୀ ମନ, ଗନ୍ଧର୍ବଦେବ ଶତ ତରୁଣ ଧ୍ୱନି—ଗୋଲୋକ ଇନ୍ଦୁରେଖା । ] ୪ । ମୁଗ୍ଧ ହେବା—4. To be charmed. (ଦ୍ର—ଆପଣାର ଜନମକୁ ଦିଅ ରଞ୍ଜି—କୃଷ୍ଣସିଂହ. ମହାଭାରତ) । [ଦ୍ର—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ଦେବା, ନେବା କ୍ରିୟାର ସମାପିକା ରୂପ ଲାଗି, ଭାବ ଉପରେ ବେଶି ଜୋର୍ ଦିଆଯାଏ ।]

**ରଞ୍ଜୀ**—ଦେ. ବଣ (ଫା, ରଞ୍ଜ=ମନୋଦୁଃଖ, ଶୋକ)—୧ । ରାଗୁଥି; Ranji ରାଗୀ—1. Angry. ୨ । କୋପନସ୍ୱଭାବ—ରାଗୀ **रंजीदा** 2. Of an angry nature.

**ରଟ୍‌କନା(ନି)**—ଦେ.ବି. ବଣ (ଧ୍ୱନ୍ୟନୁକରଣ)—୧ । ଖୁବ୍ ବଳ Raṭ kinā(ni) ସହକାରେ ଟଣା ହେଲେ ଦଉଡ଼ି ଉଚ୍ଚ ଶବ୍ଦ କରି ଛିଣ୍ଡିଯିବା ପ୍ରକାରେ—1. Snapping with a croaking sound (said of a rope). (ଯଥା—ଦଉଡ଼ିଟା ରଟ୍‌କିନା ଛିଡ଼ିଗଲା) । ୨ । ହଠାତ୍ ଜୋର୍‌ପୂର୍ବକ କାମୁଡ଼ିବା ପ୍ରକାରେ—(biting) Sharply. [ଦ୍ର—ରଟ୍‌କିନା ସେ ଦାଏ କାମୁଡ଼ି, ଝୁକେ ଝୁକେ ବୋଲି ପକାଇ ବହି—ଶିଶୁଗୀତ. ବାଲୁଆକନା । ] [ଦ୍ର—କାମୁଡ଼ିବା ଅର୍ଥରେ ରଟ୍‌କନା ଅପେକ୍ଷା ରୁଟ୍‌କନା ଅଳ୍ପତର ଶକ୍ତିପ୍ରୟୋଗର ସୂଚନା କରେ ।] [ଯଥା—ବାଘ୍ଟା ମନୁଷ୍ୟଟା ମୋ ହାତକୁ ରଟ୍‌କନା କାମୁଡ଼ିଦେଲା, ଧୂଳିଆକନା ପିଲାକୁ ରୁଟ୍‌କନ କାମୁଡ଼ିଦେଲା ।]

ରଟ୍‌କ(କ)ର }
ରଟ୍‌ଦ(ଧ)ସ୍ } ଅନ୍ୟରୂପ

କଟକରେ **फटकरके**

**ରଟ୍‌ମଟ୍**—ଦେ. ଅ (ଧ୍ୱନ୍ୟନୁକରଣ)—୧। ବିଷ୍ଫାରିତ ଦୃଷ୍ଟିରେ (ଗୁହିଁବା); Raṭ-maṭ କଟମଟ କରି (ଗୁହିଁବା)—1.(To stare) With କଟମଟ expanded eyes. ୨ । ଏକ ଦୃଷ୍ଟିରେ (ଗୁହିଁବା)—**एकनजरसे** 2. In a staring manner. [ଯଥା—ସେ ମୋ ଆଡ଼କୁ ରଟ୍‌ମଟ୍ କରି ଗୁହି ଛି ।] [ଦ୍ର—'ରୁଟ୍‌ମୁଟ୍' 'ରଟ୍‌ମଟ୍' ଠାରୁ କ୍ଷୁଦ୍ରତର ଓ ମଧ୍ୟତର ଭାବ ସୂଚନା କରେ । ] ୩ । ଦାନ୍ତ ରଗଡ଼ିବାର ଶବ୍ଦ—3. The sound produced by grinding the teeth of both the jaws.

**ରଟ୍‌ରଟ୍**—ଦେ. ଅ ( ଧ୍ୱନ୍ୟନୁକରଣ; ତୁଳ. ସ. ରଟରଟାୟମାନ )—Raṭ-rat ୧ । ଦାନ୍ତରେ ଦଉଡ଼ି ଆଦି ଛିଣ୍ଡାଇବାର ଶବ୍ଦ—କଟକଟ 1. Cracking sound made by nibbling a **खटखट** cord. ୨। ବଳପୂର୍ବକ ଟାଣୁଆ ପଦାର୍ଥକୁ ଦାନ୍ତରେ କାମୁଡ଼ି ଦେକେଟିବା ପ୍ରକାରେ—2. Nibbling at a hard substance. [ଯଥା—ମୂଷା ବେତପେଡ଼ିକୁ ରଟ୍‌ରଟ୍ କାଟୁଛି ।] ୩ । ଟାଣଦଉଡ଼ିକୁ ବଳପୂର୍ବକ ଭିଡ଼ ଦେଲେ ତାହା କ୍ରମେ କ୍ରମେ ଛିଣ୍ଡିଯିବାର ଶବ୍ଦ—3. Successive snapping sounds made by a cord when it is tightly drawn. ୪ । ଖଟ, ଚକାର୍-ବାଉଁଶ ଆଦିର ଉପରେ ବେଶି ଭାର ପଡ଼ିଲେ ତହିଁରୁ ଯେଉଁ ଶବ୍ଦ ହୁଏ—4. Repeated creaking or snapping sounds made by a furniture under a heavy load. [ଦ୍ର—'ରୁଟ୍‌ରୁଟ୍' 'ରଟ୍‌ରଟ୍' ଠାରୁ କ୍ଷୁଦ୍ରତର ଶବ୍ଦ ସୂଚନା କରେ ।]

**ରଟ୍‌ରାଟ୍**—ଦେ. ଅ (ଧ୍ୱନ୍ୟନୁକରଣ)—ଅନେକ ଥର ବା ଅନେକ ବସ୍ତୁର Raṭ-rāṭ ରଟ୍‌ରଟ୍ ଶବ୍ଦ—Repeated snapping sounds. ପଟପାଟ [ଦ୍ର—'ରୁଟ୍‌ରାଟ୍' 'ରଟ୍‌ରାଟ୍'ଠାରୁ କ୍ଷୁଦ୍ରତର ଶବ୍ଦ ।] **खटखट, फटफट**

**ରଟ୍ (ଧାତୁ)**—ସ.—୧ । କହିବା; ବୋଲିବା—1. To speak. Raṭ (root) ୨ । ବାରଂବାର କହିବା—2. To speak repeatedly. ୩ । ଗର୍ଜନ କରିବା; ବକ୍ତି କରିବା; ଉଚ୍ଚୈଃସ୍ୱରରେ ଚିତ୍କାର କରିବା; କୁହାଟିବା—3. To roar; to yell; to shout; to scream; to cry (M. W). ୪ । ଉଚ୍ଚୈଃସ୍ୱରରେ ଡାକିବା ବା ଘୋଷଣା କରିବା—4. To proclaim or call out loudly (Apte). ୫ । ଆନନ୍ଦରେ ଚିତ୍କାର କରିବା; ଜୟଜୟକାର କରିବା—5. To shout with joy; to applaud (Apte). ୬ । (ଘଣ୍ଟା ଆଦି) ବାଜିବା—6. To ring (as a bell) (M. W). ୭। (କୁରାଢ଼ି ଆଦି) କୌଣସି ବସ୍ତୁକୁ କାଟିବାବେଳେ ଶବ୍ଦ କରିବା—7. To crash (as an axe) (M. W).

ରଟ—ଦେ. ବି (ସଂ. ରଟନ)—ଉଚ୍ଚ ଶବ୍ଦ—Loud sound [ଉ—
Rata ପ୍ରଜାଟ । ଚକ୍ର କଟକଟ ରଟରେ । ଭଞ୍ଜ. ଟକାଟୀବ୍ରହ୍ମାଣ୍ଡ
শব্দ रटना ସୁନ୍ଦରୀ ।]

ରଟକା—ପ୍ରାଦେ. (ଗଞ୍ଜାମ) ବିଣ—୧ । ଅଭିମାନୀ—1. Prone to
Rataka take offence; super-sensitive. ୨ ।
କଡ଼ୁଆ—2. Unpalatable. ପ୍ରାଦେ (ଗଡ଼ଜାତ)
ବି—କୋଳଥ—Kulthi; gram.

ରଟଟ—ଦେ.ଅ(ଧ୍ୱନ୍ୟନୁକରଣ)—ଦାନ୍ତ ଘଷିହେବାର ଶବ୍ଦ; କଡ଼ମଡ଼—
Ratața The sound produced by the grinding
কড়মড় of the teeth. [ଉ—ସମଦେ କଳକଳା ନିନାଦ, କରନ୍ତେ
कटकट ଶୁଭେ ରଟଟ ନାଦ । ଭଞ୍ଜ. ସୁଭଦ୍ରା ପରିଣୟ । ]

ରଟତି—ସଂ. କ୍ରି [ରଟ. ଧାତୁର ବର୍ତ୍ତମାନ କାଳ, ପ୍ରଥମ ପୁରୁଷ (ଅନ୍ୟ
Rațati ପୁରୁଷ) ଏକବଚନରେ ରୂପ; ଏହା ଓଡ଼ିଆ ପୁରାଣରେ ଓ
ପ୍ରାଚୀନ ଭଜନରେ ଓ ଗୀତମାନଙ୍କରେ ଏହି ଆକାରରେ
ବ୍ୟବହୃତ ହୋଇଥିବା ଦେଖାଯାଏ । ପ୍ରାଚୀନ
ବଙ୍ଗଳାରେ ମଧ୍ୟ ଏହି ଆକାରର ବ୍ୟବହାର ଦେଖା-
ଯାଏ]—(ସେ) ରଟୁଅଛି; ବାରମ୍ବାର ଉଚ୍ଚାରଣ କରୁଅଛି—
(he) Is uttering repeatedly; is repeating
loudly.

ରଟନ୍—ସଂ. ବିଣ. ପୁଂ ( ରଟ୍ ଧାତୁ+କର୍ତ୍ତୃ ଅତ୍; ୧ମା ୧ବ )—
Rațan ଯେ କୌଣସି ବିଷୟ ଘୋଷୁ ଥାଏ; ବାରଂବାର ଉଚ୍ଚାରଣ
(ରଟନ୍ତୀ—ସ୍ତ୍ରୀ) କରୁଥିବା—Uttering repeatedly; pro-
claiming.

ରଟନ(ନା)—ସଂ. ବି. (ରଟ୍ ଧାତୁ+ଭାବ. ଅନ; ଆ)—୧ । କଥନ—
Rațana (nā) 1. Speaking. ୨ । ବାରଂବାର କହିବା—
2. Speaking repeatedly. ୩ । ଘୋଷଣା;
ପ୍ରଚାର—3. Circulating; publication.
୪ । (+କର୍ମ. ଅନ;+ଆ) ଜନମୁଖରେ ପ୍ରଚାରିତ
ବିବରଣ—4. Report published by word
of mouth. ୫। ଖ୍ୟାତି—5. Fame. ୬। ଜନରବ-
6. Rumour. ୭ । (+ଭାବ. ଅନ;+ଆ) ଉଚ୍ଚୈଃ-
ସ୍ୱରରେ ଉଚ୍ଚାରଣ—7. Shout (M. W.) ୮ ।
ଚିତ୍କାର—8. Screaming (Apte) ୯। ଜୟଜୟକାର;
ଧନ୍ୟଧନ୍ୟ ପଦ ; ପ୍ରଶଂସାବାଦ—9. Applause (Apte)

ରଟନା କରିବା—ଦେ. କ୍ରି—ଗୁଜବ ଅଥବା ଜନରବ ଘୋଷଣା କରିବା;
Rațanā kariba ହୋ ଉଠାଇବା—To publish by
বটনা করা word of mouth; to proclaim; to
रटन करना noise abroad.

ରଟନା ମୂଳକ—ସଂ. ବିଣ.(ବହୁବ୍ରୀହି)—୧। ଜନରବ ଦ୍ୱାରା ପ୍ରଚାରିତ—
Rațanā mūlaka 1. Published by word of
mouth; originating from rumour.
୨ । (କଦର୍ଥ) ଅପବାଦ ଜନକ—2. Defamatory.

ରଟନ୍ତୀ—ସଂ. ବି. [ ରଟ୍ ଧାତୁ+କର୍ତ୍ତୃ. ଅତ୍(ଶତ୍)+ସ୍ତ୍ରୀ. ଈ ]—
Ratanti ମାଘ କୃଷ୍ଣା ଚତୁର୍ଦ୍ଦଶୀ—The 14th day of the
ରଟନ୍ତୀ ଚତୁର୍ଦ୍ଦଶୀ } ଅନ୍ୟରୂପ dark fortnight of
ରଟନ୍ତ୍ୟାପ ଚତୁର୍ଦ୍ଦଶୀ } Māgha month
[ଦ୍ର—ଶାସ୍ତ୍ରରେ ଅଛି ଯେ, ଏହି ଦିନ ବ୍ରହ୍ମଘ୍ନ, ସୁରାପ ଆଦି
ମହାପାପିଗଣ ସୂର୍ଯ୍ୟୋଦୟ ସମୟରେ କୌଣସି ତୀର୍ଥର
ଜଳରେ (ବିଶେଷତଃ ଯମୁନା ଜଳରେ) ସ୍ନାନ କଲେ
ସେମାନେ ପାପମୁକ୍ତ ହେବେ ବୋଲି ଜନମାନେ ରଟନ୍ତି
ବା ଘୋଷଣା କରନ୍ତି ।]

ରଟନ୍ତ୍ୟା ଚତୁର୍ଦ୍ଦଶୀ—ଦେ. ବି—ରଟନ୍ତୀ ( ଦେଖ )
Rațantyā chaturddaśī Rațanti ( See )
বটন্তি চতুর্দ্দশী रटंती चतुर्दसी

ରଟରଟାୟମାନ—ସଂ. ବିଣ ପୁଂ—୧ । ଯେ କଟକଟ ଶବ୍ଦ କରୁଅଛି—
Rațarațāyamāna 1. Croaking (M. W).
(ରଟରଟାୟମାନା—ସ୍ତ୍ରୀ) ୨ । ଯାହା ରଟ ରଟ ଶବ୍ଦ କରୁଅଛି—
2. Producing a snapping or creaking
sound.

ରଟା—ସଂ. ବି. ( ରଟ୍ ଧାତୁ+ଭାବ ଅ+ଆ )—୧ । ଘୋଷଣା—1,
Rațā Proclamation. ୨ । ବକ୍ତୃତା—2 Speech.

ରଟା(ଟେ)ଇବା—ଦେ. କ୍ରି—ରଟିବା କ୍ରିୟାର ଣିଜନ୍ତ ରୂପ—
Rațā(țe)ibā Causative form of Rațibā).
বটান ୧ । ଅନ୍ୟ ଦ୍ୱାରା ପ୍ରଚାରିତ କରାଇବା—1. To cause
रटाना to be published. ୨ । ଘୋଷଣା କରିବା—
2 To proclaim.

ରଟିତ—ସଂ. ବିଣ. ( ରଟ୍ ଧାତୁ+କର୍ମ. ତ )—୧ । ଘୋଷିତ—
Rațita 1. Repeatedly uttered ୨ । ପ୍ରଚାରିତ—
2. Proclaimed; published. ୩ । ଖ୍ୟାତ—
3. Renowned. ୪ । ଉଚ୍ଚାରିତ; କଥିତ—
4. Spoken; uttered. ସଂ. ବି. (+ଭାବ. ତ)—
୧ । କଥନ—1. Speaking; utterance. ୨ ।
ଗର୍ଜ୍ଜନ; ଚିତ୍କାର; ହୁରୁହାଟ—2. Scream; shout;
yell; cry (Apte).

ରଟିବା—ଦେ କ୍ରି. (ସଂ. ରଟ୍ ଧାତୁ)—୧ । ଉଚ୍ଚୈଃସ୍ୱରରେ କହିବା—
Rațibā 1. To speak out ୨। ରଡ଼ି କରିବା—2.
বটা To roar. (ଉ—ବିଚ୍ଛେଦୁଁ ନାଶା ଶ୍ରବଣ ସାର୍ଦ୍ଧେ ରଟିଲା
रटना ଭଞ୍ଜ. ବୈଦେହୀଶବିଳାସ ।) ୩ । ଘୋଷିବା; ବାରଂବାର
କହିବା—3. To repeat. [ଉ—ରାଧା ରାଧା ବୋଲି
ବଂଶୀ ରଟିଲାରେ । ସଙ୍ଗୀତ । ] ୪ । ରଟାଇବା; ପ୍ରଚାର
କରିବା—4. To publish; to proclaim. [ଉ—
ନାଚିଲେ ନର୍ତ୍ତକୀ, ଗାଇଲେ ଗାୟକ, ରଟିଲେ ଭାଟେ ।
ରାଧାନାଥ. ଉଷା । ] ୫ । ପ୍ରଚାରିତ ହେବା; ରଟିତ
ହେବା—5. To be published or circula-
ted. (ଯଥା—ତାଙ୍କ ନାମରେ ସବୁଠି ଦୁର୍ନାମ ରଟିଲାଣି ।)
୬ । (ପକ୍ଷୀ ଆଦି) ଧ୍ୱନି କରିବା—6. To make a
sound (e. g crowing). [ ଉ—ଚରଣାୟୁଧବୃନ୍ଦ
ରଟିଲେ ରେ, ଅରବିନ୍ଦହିଁ ବନ୍ଧୁ ଫୁଟିଲାରେ । କବିସୂର୍ଯ୍ୟ.
ସଙ୍ଗୀତ ।]

**ରଠ୍** (ଧାତୁ)—ସଂ.—କହିବା—
Rath (root) To speak (M. W.)

**ରଠ**—ଦେ. ଅ.—ରଅ ଠଅ (ଦେଖ)
Ratha (ର' ଠ'—ଅକ୍ଷରଗୀତ ରୂପ) Raa thaa (See)

**ରଡ଼**—ଦେ. ବି.—୧ । ଭବିଷ୍ୟତରେ ଅପକାରର ପ୍ରତିଶୋଧ ନେବା ପାଇଁ ମନରେ ସଂକଳ୍ପ; ଅହଙ୍କା; ଅକସ୍—1. Grudge; rancour; a determination to wreak vengeance. ୨ । (ଧ୍ୱନ୍ୟନୁକରଣ) ଶକଟାଦିର କଙ୍କରମୟ ଭୂମିରେ ଦ୍ରୁତ ଗତିରେ ଯିବାର କର୍କଶ ଶବ୍ଦ; ଘଡ଼ଘଡ଼ ଶବ୍ଦ—2. Rattling or jarring noise made by a cart moving rapidly on a gravelly road. ୩ । ଜଳନ୍ତା ଅଙ୍ଗାର—3. Line charcoal ୪ । ଜ୍ୱଳନ; ଜଳନ୍ତାବସ୍ତୁର ଚମକ ବା ତେଜ; ଦୀପ୍ତି—4 Light or brilliance of a burning thing or fire. [ଉ—ଆଗ୍ନେୟବାଣର ରଡ ଛୁଟିରେ ଅଗନ୍ତି ଛେ । ଗ୍ରୀଧାନାଥ. ମହାଯାତ୍ରା ।] [ଦ୍ର—ଲୋକେ, ବିଶେଷତଃ ସ୍ତ୍ରୀଲୋକମାନେ, ବିରକ୍ତି ପ୍ରକାଶ କଲାବେଳେ 'ରଡ଼' ଶବ୍ଦ ବ୍ୟବହାର କରନ୍ତି; ଯଥା ଭୁଅଣର ପୋଡ଼ିଗଲା, ଆଉ ରଡ଼ ହବ ? ତୁ ତ ମୋ ବୋଲ ଶୁଣୁ ନାହୁଁ, ଆଉ ଭୋଜନ ମାର ରଡ଼ କରବୁ ? ଏହିପରି କ୍ଷେତ୍ରରେ କାଆଁ, ଚୁଲି, ପାଉଁଶ, ଦର-ପୋଡ଼ା, ଲେମ୍ବୁ, ଲେମ୍ବୁ ଲୁଣ ଆଦି ଶବ୍ଦ ମଧ୍ୟ ବ୍ୟବହୃତ ହୁଏ । ] ଦେ. ବିଣ—ଜଳନ୍ତା—Burning.
Rarda
ଆକ୍ରୋଶ
लाग, डाह डाँट डपट
घडघड
खड़खड़
जलन्त अंगार
तेज
चमक
जलन्त

**ରଡ଼ କରିବା**—ଦେ କ୍ରି—୧ । ରଡ଼ ରଖିବା (ଦେଖ)—1. Rarda rakhiba. (See) ୨ । ରଡ଼ ସାଧିବା (ଦେଖ)—2. Rarda sadhiba. (See)
Rarda kariba

**ରଡ଼ ଖୁଣ୍ଟା**—ଦେ. ବି—ଜଳି ବଳୁଥିବା ଦରପୋଡ଼ା କାଠି—
Rarda khunta A blazing stick of fire; a blazing firebrand.
जलन्त काठ भड़कती हुई लकड़ी

**ରଡ଼ ନିଆଁ**—ଦେ. ବି—ଜଳନ୍ତା ଅଙ୍ଗାର; ଯେଉଁ ନିଆଁର ଦହନ ଲଘୁ ନ ଥାଏ; ଦହନ ନିଆଁ—A live fire; blazing fire. [ଦ୍ର—ଯେଉଁ ନିଆଁରୁ ଆଲୋକ ଶିଖା ବାହାରୁ ନ ଥାଏ, ଅଥଚ ତାହା ଦପ୍‌ଦପ୍ ହେଉଥାଏ, ତାକୁ ରଡ଼ନିଆଁ ବୋଲଯାଏ ।]
Rarda nian
जलन्त आगन आग का पटङ्गा

**ରଡ଼ ନେବା**—ଦେ. କ୍ରି—ରଡ଼ ସାଧିବା (ଦେଖ)
Rarda neba Rarda sadhiba. (See)
आक्रोष मिटान बदल लेना

**ରଡ଼ ମ(ର, ରା)ଡ଼**—ଦେ. ଅ (ଧ୍ୱନ୍ୟନୁକରଣ)—୧ । ବଡ଼ ଡାଳ ଆଦି ଭାଙ୍ଗି ପଡ଼ିବାବେଳେ ଉତ୍ପନ୍ନ ଉପର୍ଯ୍ୟୁପରି ଉଚ୍ଚ ଶବ୍ଦ—1. High repeated cracking sounds (as of big boughs breaking down). ୨ । କଠିନ ପଦାର୍ଥକୁ ଚୋବାଇବାର ଉଚ୍ଚ କର୍କଶଶବ୍ଦ, କଡ଼ମଡ଼; ଭଡ଼ଭଡ଼—2. A jarring sound produced by chewing hard things. [ଦ୍ର—'ରଡ଼ରଡ଼' 'ମଡ଼ମଡ଼' ଠାରୁ କର୍କଶତର ଶବ୍ଦ । କଡ଼ରଡ଼ ରୁଡ଼ୁରୁଡ଼ୁ ଠାରୁ ଉଚ୍ଚତର ଶବ୍ଦ । ରଡ଼ରଡ଼ ରଠରଠଠାରୁ ଉଚ୍ଚତର ଶବ୍ଦ ।] ୩ କ୍ରୋଧରେ ମୁଖବିକୃତ ଓ ଦାନ୍ତ କଡ଼ମଡ଼ କରି ଅସ୍ଥିର ହେବା—3. Grinding one's teeth in rage. [ଉ—ଘଡ଼ୁଶୁଣୀ ଘର ପିଠା ଦେଖି ମନ ରହିବେଇ ଖଟେଇ, ଖଷି ପଡ଼ାଏ ଗୁଡ଼ ଲଗେଇ ରଡ଼ମ(ରା)ଡ଼ ଚୋବେଇ । ରଗ ।]
Rarda ma(ra, ra)rda
କଡ଼ମଡ଼, ମଡ଼ମଡ଼
मड़मड़

**ରଡ଼ମଡ଼**—ଦେ. ବି—୧ । ଗୁରୁ ଦାୟିତ୍ୱ—1. Grave responsibility. (ଯଥା—ମୁଁ ଏ ଘରର ରଡ଼ମଡ ସବୁ ସାରିବି ନାହିଁ । ) ୨ । କର୍କଶ ଶବ୍ଦ—2. Harsh sound or noise (ଉ—ବଗ୍‌ବଳୟ ପାଦେ ମିଳାଇ ଯାଉଛୁ ଚଉଦିଗ ରଡ଼ମଡ଼ । ନନ୍ଦକିଶୋର. କାହ୍ନୁଗଣୀ । )
Rardamardi
गुरु दायित्व
उच्चशब्द
रगड़

**ରଡ଼ ରଖିବା**—ଦେ. କ୍ରି—କୌଣସି ବ୍ୟକ୍ତି ଉପରେ ଅହଙ୍କା ରଖିବା—
Rarda rakhiba To entertain grudge against a person.
आक्रोश बाखा लाग[डाह] रखना

**ରଡ଼ ସାଧିବା**—ଦେ. କ୍ରି—ଅହଙ୍କା ସାଧିବା; ପୂର୍ବକୃତ ଅପରାଧ ପାଇଁ ଦାଉ ସାଧିବା ବା ପ୍ରତିହିଂସା ନେବା—To feed fat a grudge; to take revenge; to be avenged (upon a person).
Rarda sadhiba
आक्रोश मिटान बदला लेना

**ରଡି**—ସ. ବି—କ୍ରୀଡ଼ା—
Rardi Play, sport (M. W).

**ରଡ଼ି(ଡ଼ି, ଡ୍ଡି)**—ଦେ. ବି ( ସ. ରଠ୍ ଧାତୁଜ ରଟିତ )—୧। ଉଚ୍ଚ ଶବ୍ଦ—1. A loud sound. (ଉ—ଏହି ସମୟରେ ଆକାଶେ ବାଦ୍ୟ ରଡ଼ି । କୃଷ୍ଣସିଂହ. ମହାଭାରତ. ବନ ।) ୨ । ଗର୍ଜନ ଶବ୍ଦ—2. Roaring sound; yelling. ୩ । ଉଚ୍ଚ ଡାକ, ଚିତ୍କାର—3. A halloo; shout. ୪ । ଗଧ ପ୍ରଭୃତିର କର୍କଶ ଶବ୍ଦ—4. Braying; croaking. ୫ । ଉଚ୍ଚୈଃସ୍ୱରରେ କାନ୍ଦ ବୋବାଳି; ଡକା—5. A loud wailing, screaming. (ଉ—ବ୍ୟାକୁଳରେ ଶୁଭ ରଡ଼ି ଘୋର, ବୃଣ ପୂରିଲା ଯକ୍ଷ ଶରୀର । ଉ. ବୈଦେହୀଶବିଳାସ ।) [ଦ୍ର—ସାଧାରଣତଃ କର୍କଶ ଓ କର୍ଣ୍ଣକଟୁ, ଉଚ୍ଚ ଓ ବହୁକାଳସ୍ଥାୟୀ ଶବ୍ଦକୁ ରଡ଼ି ବୋଲଯାଏ ।]
Rardi(di, ddi)
गर्जन

**ରଡ଼ିଆ**—ଦେ. ବିଣ. ପୁଂ—ଯେଉଁ ପିଲା ଅବୁଝା ହୋଇ କାନ୍ଦେ—
Rardia (a child) Used to unreasonable nagging and crying; fretful.
काँदने चीड़चीड़ा
(ରଡ଼େଇ—ସ୍ତ୍ରୀ)

ରଢ଼ି(ଡ୍ଡି)ଛାଡ଼ିବା—ଦେ.କ୍ରି —୧। ଗର୍ଜ୍ଜନ କରିବା—1. To roar; to Rardi(ddi)chhārdiba bray; to scream.(ଉ—ଚଉକବି ହୋଇ ଭକ୍ତି ବେଳ ଅମାକଙ୍କା ଛାଡ଼ିଲେ ଭୈରବ ରଢ଼ି। ରାଧାନାଥ.ମହାଯାତ୍ରା।)

ରଢ଼ି କରିବା / ରଢ଼ି ଦେବା / ରଢ଼ି ପକା(କେ)ଇବା } ଅନ୍ୟରୂପ

ଗର୍ଜନ କরা ୨। ଉଚ୍ଚୈଃସ୍ୱରରେ କାନ୍ଦବୋବାଳ କରିବା; ଭକା ରটনা ପାଡ଼ିବା; ଭକା ପକାଇବା—2. To lament or wail loudly. (ଉ—ଗୋବିନ୍ଦ ଗଲା ଏକା ଛାଡ଼ି, ଦେଖୁଛି ଦେଉଅଛୁ ରଢ଼ି। ଭୂପତି. ପ୍ରେମପଞ୍ଚାମୃତ।)

ରଢ଼ି ପାଡ଼(ରି)ବା—ଦେ.କ୍ରି—୧। ଚିତ୍କାର କରି କାନ୍ଦିବା;ବଡ଼ ପାଟି କରି Rardi pārdi(ri)bā କାନ୍ଦିବା—1. To cry aloud.୨। ବହୁ- ডাক ছাড়া କାଳ ଯାଏ ଚିତ୍କାର କରିବା – 2. To scream रटमचाना for a long time. (ଉ- ବଳଅଛି କପି ଗୋଟାଏ ଧ୍ୱଜ ହୋଇ। ରଢ଼ି ପାଡ଼ୁ ଥାଏ ଯେ ଯୁଦ୍ଧ କାଳ ଗୃହିଁ। କୃଷ୍ଣସିଂହ. ମହାଭାରତ. କର୍ଣ୍ଣ।)

ରଢ଼ିବା—ଦେ କ୍ରି. ( ସଂ. ରଟ୍ ଧାତୁ )—୧। ଉଚ୍ଚୈଃସ୍ୱରରେ ବହୁକ୍ଷଣ Rardibā କାନ୍ଦିବା; ଭକା ପାଡ଼ିବା—1. To wail loudly; উচ্চ স্বরে কাঁদা to lament loudly; to bewail. रट(ढ)ना (ଉ—ବନ୍ଧୁ କ୍ଷମା ସରସୀ,ହୋଇ ଅନ୍ୟାଭିଳାଷୀ,ଅରଣ୍ୟରେ ପକ୍ଷୀ ମୁଁ ରଢ଼ିଲିରେ। କବିସୂର୍ଯ୍ୟ. ସଙ୍ଗୀତ।) ୨। ଅଢ଼ିବା (ଦେଖ) —2. Ardibā ( See ) ୩। ବ୍ୟାପିବା; ଘୋଟିବା—3. To spread over; to be diffused. (ଉ—ସୈନ୍ୟଙ୍କ ପାଦ ଘାତେ ଉଡ଼ି ମହାଧୂଳି, ରହିଲା ସେ ଆକାଶମଣ୍ଡଳରେ ରଢ଼ି। କୃଷ୍ଣସିଂହ.ମହାଭାରତ. ଦ୍ରୋଣ।) ୪। ( ଶିଶୁ ) ଅବୁଝା ହୋଇ କାନ୍ଦିବା—4.To cry unreasonably (said of naughty children); to fret. ୫। ବହୁ ସମୟ ବକିବା ବା ପାଟି କରି କହିବା—5. To speak loudly for a length of time.

ରଢ଼ୁଆ—ଦେ. ବିଣ. ପୁଂ—୧। ଯେ ଅହଲ୍ୟା ରଖେ; ପ୍ରତିହିଂସାପରାୟଣ- Rarduā 1. Rancorous; revengeful. ୨। ଯେ (ରଢ଼େ[ଢ଼ୋ]ଇ—ସ୍ତ୍ରୀ)ରଢ଼ି କରିବାରେ ଅଭ୍ୟସ୍ତ (ଶିଶୁ)— হিংসুক, কাঁদুনে 2. Habituated to nagging; डाही crying; fretful.

ରଢ଼େଇ—ଦେ. ବିଣ. ସ୍ତ୍ରୀ—୧। ରଢ଼ିଆର ସ୍ତ୍ରୀଲିଙ୍ଗ—1. Feminine Rardei of Rardiā. (See) ୨। ରଢ଼ୁଆର ସ୍ତ୍ରୀଲିଙ୍ଗ— 2 Feminine of Rarduā. (See)

ରଣ୍ (ଧାତୁ)—ସଂ—୧। ଶବ୍ଦ କରିବା—1. To sound; to make Raṇ (root) a sound ୨। ଗତି କରିବା—2. To move; to go (Apte). ୩। ରଣରଣ ଶବ୍ଦ କରିବା; ଠଣ ଠଣ ଶବ୍ଦ କରିବା—3. To tinkle; to jingle; to ring. ୪। (ବୈଦିକ) ଆନନ୍ଦିତ ହେବା—4 To rejoice. ୫। (ବୈଦିକ) ଆନନ୍ଦିତ କରିବା—5. To cheer; to gladden.

ରଣ—ସଂ. ବି. ( ରଣ୍ ଧାତୁ+ଅଧିକରଣ. ଅ )—୧। ଯୁଦ୍ଧ; ସମର— Raṇa 1. War; battle; fight. ୨। ବିବାଦ— 2. Conflict. ୩। (+ଭାବ.ଅ) ଶବ୍ଦ—3. Sound; noise. ୪। ଗମନ; ଗତି—4 Going, moving. ୫। (ବୈଦିକ) ଆନନ୍ଦ—5. Pleasure; delight; joy (M. W). ୬। ରମଣ (ହି. ଶ)—6. Sexual congress; copulation. ୭। ଦୁମ୍ବା ମେଣ୍ଢା (ହି. ଶ)—7. A kind of sheep with a fatty ball-shaped tail. ୮। (+ଅଧିକରଣ. ଅ) ରଣ କ୍ଷେତ୍ର—8. Battle-field (Apte). ୯। (+କରଣ. ଅ) ବୀଣାର ଦଣ୍ଡ—9. The quill or bow of a lute (Apte). ଦେ. ବି (ନାମ)—ମହାନଦୀର ଗୋଟିଏ ନଦୀ;(ଏହା କଟକ ଜିଲ୍ଲାର ବାଙ୍କି ରାଜ୍ୟ ମଧ୍ୟରେ ପ୍ରବାହିତ)- A small tributary of the river Mahanadi in the Banki estate of the Cuttack district. [ଦ୍ର—ଏ ନଦୀର ମଇଦଆରୁ ବାଙ୍କି ରାଜ୍ୟର ଅନେକ ଆୟ ହୁଏ। ଗତ ଅଛି—'ରଣ, ବଣ, ଛଣ; ଛମ୍ପଡ଼ା ରାଜା ଥାଇ ବୋଇଲେ ମୋ ଛଉଆ କାଇଗଣ।' ଅର୍ଥାତ ପୂର୍ବେ ବାଙ୍କି ରାଜ୍ୟରେ ରାଜା ଥିବା ସମୟରେ ସେ କହିଲେ, ରଣ ନଇର ମଇଦଆ, ବଣକର ଓ ଧାନବିଲରୁ ମୋର ଖୁବ୍ ଆୟ ହୁଏ। ଏଥିର ପ୍ରତ୍ୟୁତ୍ତରରେ ଛମ୍ପଡ଼ା ରାଜା କହିଲେ, ତୁମର ଏ ତିନି ବିଷୟରୁ ହେଉଥିବା ଆୟ ମୋ ରାଜ୍ୟର ମହାନଦୀର ପଠାରେ ହେଉଥିବା ଛଉଆ କାଇଗଣର ଆୟରୁ ବେଶି ନୁହେଁ।]

[ଦ୍ର—ଯୁଦ୍ଧ ଶବ୍ଦ ସଙ୍ଗେ ଯେଉଁ ଶବ୍ଦ ଯୁକ୍ତ ହୋଇ ସ୍ୱତନ୍ତ୍ର ଶବ୍ଦ ହୁଏ, ରଣ ଶବ୍ଦ ସଙ୍ଗେ ସେହି ଶବ୍ଦମାନ ଯୁକ୍ତ ହୁଏ।]

ରଣ କଣ୍ଡୁ(ଣ୍ଡୂ)—ସ. ବି. (ମ. ପ. ଲୋ, ରଣାର୍ଥ ଉଦ୍‌ଭୂତ କଣ୍ଡୁ)— Raṇa kaṇḍu(ṇḍū) ଯୁଦ୍ଧ କରିବା ପାଇଁ ଆଗ୍ରହ—Itching or eagerness to fight. (ଉ—ଭୁଷି ଦେଲେ ତାଙ୍କ ଗଲେ ସୁଗନ୍ଧ କଠାରି, ଖଣ୍ଡି ତାଙ୍କ ରଣ କଣ୍ଡୁ ଛନ୍ଦେନ ଲାଗି। ରାଧାନାଥ. ମହାଯାତ୍ରା।)

ରଣ କରଣ—ଦେ. ବି. (ସ. ରତିରଣକ)—କାମ; କନ୍ଦର୍ପ— Raṇa karaṇa Cupid. (ଉ—କଳା ସୁରଣ,ରଣ କରଣ,ପୁରୁଷ ଭାବ ଧରି। ସାନକୃଷ୍ଣ ରସକଲ୍ଲୋଳ।)

ରଣ କର୍ମ—ସଂ. ବି. ( ରୂପକ )—ଯୁଦ୍ଧ— Raṇa karma Fighting; War.

ରଣ କାତର—ସଂ.ବିଣ. ପୁଂ (୭ମୀ ତତ୍)—ଯୁଦ୍ଧକରିବାକୁ ପଶ୍ଚାତ୍‌ପଦ- Raṇa kātara Averse to fighting. (ରଣକାତରା—ସ୍ତ୍ରୀ) (ରଣକାତରତା—ବି)

ରଣ କାମୀ—ସଂ. ବିଣ. ° ( ରଣ+କାମିନ୍, ୧ମା. ୧ବ )—ଯୁଦ୍ଧ Raṇa kāmi କରିବାକୁ ଇଚ୍ଛୁକ—Desirous of fighting (ରଣକାମିନୀ—ସ୍ତ୍ରୀ)

ରଣ କୁଶଳ—ସଂ. ବିଣ. ପୁଂ (୭ମୀ ତତ୍)—ଯୁଦ୍ଧବିଦ୍ୟାରେ ପାରଗ—
Raṇa kuśala Skilful in the art of warfare.
(ରଣନିପୁଣ, ରଣପଟୁ, ରଣକୃତୀ—ଅନ୍ୟରୂପ)
(ରଣକୁଶଳା, ରଣନିପୁଣା, ରଣକୃତିନୀ, ରଣପଟ୍ଵୀ—ସ୍ତ୍ରୀ)
(ରଣକୁଶଳତା, ରଣନିପୁଣତା, ରଣକୃତିତ୍ଵ, ରଣପଟୁତା—ବି. ରୂପ)

ରଣ କୁହୁଡ଼ି—ଦେ. ବି—ଦିନରେ ମେଘାଚ୍ଛନ୍ନ ହୋଇ କୁହୁଡ଼ି ଘୋଟିବା
Raṇa kuhuṛi ଘାଗ—A sort of mist during
ବଣ କୁୟାସା daytime creeping in cloudy weather.
रणकुयाशा [ଦ୍ର—ରଣକୁହୁଡ଼ି ଦେଶରେ ଅଣୁ ମଡ଼କ ଓ
ରଣକୁଆ ⎫ —ଅନ୍ୟରୂପ ଦୁର୍ଭିକ୍ଷର ସୂଚକ ବୋଲି ଲୋକ-
ରଣକୁଆ(ହା)ସା ⎭ ବିଶ୍ଵାସ । ]

ରଣ କୌଶଳ—ସ. ବି ୧ । (୭ମୀ ତତ୍)—ଯୁଦ୍ଧ ବିଷୟରେ ନିପୁଣତା
Raṇa kauśala —1. Martial skill. ୨ । (୬ଷ୍ଠୀ ତତ୍)
ରଣ ନୈପୁଣ୍ୟ ⎫ ଅନ୍ୟରୂପ ଯୁଦ୍ଧ କରିବାର ଉତ୍କୃଷ୍ଟ ପ୍ରଣାଳୀ—2.
ରଣ ପାଟବ ⎭ Excellent mode of conducting war.

ରଣ କ୍ଷେତ୍ର—ସ. ବି—ରଣ ଭୂମି ( ଦେଖ )—
Raṇa kshetra Raṇa bhūmi ( See )
(ରଣସ୍ଥିତ,ରଣକ୍ଷୋ(କ୍ଷୌ)ଣୀ, ରଣସ୍ଥଳ, ରଣସ୍ଥଳ—ଅନ୍ୟରୂପ)

ରଣଗୁଆ—ଦେ. ବି—ଗୁଆ ଜାତୀୟ ଏକପ୍ରକାର ବନ୍ୟଫଳ—A kind
Raṇaguā of palm producing nut-like fruits.
[ ଦ୍ର—ଏ ଗଛ ତାଳଗଛ ପରି । ]

ରଣ ଗୋଚର—ସ. ବିଣ. ପୁଂ—ଯୁଦ୍ଧରେ ପ୍ରବୃତ୍ତ—
Raṇa gochara Engaged in battle (Apte).
(ରଣଗୋଚରୀ—ସ୍ତ୍ରୀ)

ରଣ ଘଣ୍ଟା—ପ୍ରାଦେ ( ଗଞ୍ଜାମ ) ବି—( ସମ୍ବଲପୁରର ଡାଳଖାଇ ନାଚ
Raṇa ghaṇṭā ପରି )—ଗଞ୍ଜାମର ଉତ୍ତର ପ୍ରାନ୍ତ କୋକଲବା
ମୁଠାରେ ଦୋଳପୂର୍ଣ୍ଣିମା ସମୟରେ ଇତର ଲୋକଙ୍କ ମଧ୍ୟରେ
ହେଉଥିବା ନାଚ ବା ଉତ୍ସବ—Pantomine or festival held at the time of Dolapūrṇnimā at Kokalbā in Ganjam. [ ଦ୍ର—ଗ୍ରାମର ସବୁ
ଯୁବତୀ ( ଏପରିକି, ପତିଗୃହରୁ ଆସିଥିବା ନବବଧୂମାନେ
ମଧ୍ୟ ) ଏ ଉତ୍ସବରେ ଯୋଗ ଦେବାକୁ ବାଧ୍ୟ । ଏଥିରେ
ଯୁବତୀମାନେ କୁରୁଚିପୂର୍ଣ୍ଣ ଓ ଅଶ୍ଳୀଳ ଗୀତମାନ ବୋଲି
ନାଚନ୍ତି । ଏଥିରେ ଯୋଗ ନ ଦେବା ବ୍ୟକ୍ତିକୁ ବର୍ଷକ
ମଧ୍ୟରେ ବାଘ ଖାଇବ ବୋଲି ଲୋକଙ୍କ ମଧ୍ୟରେ
ଗୋଟିଏ କୁସଂସ୍କାର ଅଛି । ] ପ୍ରାଦେ ( ବାମଣ୍ଡା ) ବି—
ବାଦୁଡ଼ି—Bat.

ରଣ ଚଣ୍ଡ—ସଂ. ବିଣ ପୁଂ ( ୭ମୀ ତତ୍ )—ଯୁଦ୍ଧପ୍ରିୟ—
Raṇa chaṇḍa (ରଣଚଣ୍ଡୀ -ସ୍ତ୍ରୀ) Fond of fighting.

ରଣଚଣ୍ଡୀ—ସଂ. ବି. ସ୍ତ୍ରୀ—୧ । ଯୁଦ୍ଧକ୍ଷେତ୍ରର ଅଧିଷ୍ଠାତ୍ରୀ ଦେବୀ—
Raṇa chaṇḍī 1. The Goddess of war. ୨ ।
କାଳୀ ଠାକୁରାଣୀ—2. Goddess Kālī. ଦେ. ବି
—୧ । ଉଗ୍ରପ୍ରକୃତିକା ସ୍ତ୍ରୀ—1. A shrew; a
ବଣଚଣ୍ଡୀ termagant woman. ୨ । କଳହପ୍ରିୟା ସ୍ତ୍ରୀ—
रणचंडी 2. A quarrel some woman.

ରଣ ଚାଳ—ପ୍ରାଦେ ( ଗଡ଼ଜାତ ) ବି—ଅଟ୍ଟଚାଳର ଉପରେ ଥିବା ଛଣ
Raṇa chāla ନିର୍ମିତ ଚାଳ—The outer thatch of straw over the mud-roof of a two-thatched house.

ରଣ ଜୟ—ସଂ. ବି ( ୭ମୀ ତତ —ଯୁଦ୍ଧରେ ଜୟଲାଭ—
Raṇa jaya Victory in battle.

ରଣ ଜୟୀ—ସଂ ବିଣ. ପୁଂ ( ରଣ+ଜୟିନ୍; ୧ମା. ୧ବ )—
Raṇa jayī (ଯୁଦ୍ଧରେ ଜୟଲାଭକାରୀ ବ୍ୟକ୍ତି)—Victorious
(ରଣଜୟିନୀ—ସ୍ତ୍ରୀ) (ରଣଜିତ—ଅନ୍ୟରୂପ) in war.

ରଣଜିତ୍ ସିଂହ—ଦେ. ବି.—୧ । ପ୍ରସିଦ୍ଧ ଶିଖ ବୀର ଓ ପଞ୍ଜାବର ରାଜା—
Raṇajit simha 1. Ranjit Sinha, the Sikh hero
(ରଣଜିତ ସିଂହଜୀ- ଅନ୍ୟରୂପ) [ ଦ୍ର—୧୭୮୦—୧୮୩୯)
ବଣଜିଂସିଂହ ଏହାଙ୍କ ପିତାଙ୍କ ନାମ ମହାସିଂହ । ପିଲା ଦିନୁ ବସନ୍ତ
रणजितसिंह ରୋଗରେ ଏହାଙ୍କର ଗୋଟିଏ ଚକ୍ଷୁ ନଷ୍ଟ ହୋଇ
ଥିଲା । ଏ ବିରାଟ ଶାଖାଭୁକ୍ତ ସମସ୍ତ ଶିଖଙ୍କୁ ଏକତ୍ର କରି
ପଞ୍ଜାବରୁ ଅଫଗାନ୍‌ମାନଙ୍କୁ ଯୁଦ୍ଧ ଦ୍ଵାରା ବିତାଡ଼ିତ କରି
ପଞ୍ଜାବରେ ଓ କାଶ୍ମୀରରେ ଶିଖରାଜ୍ୟ ପ୍ରତିଷ୍ଠା କରିଥିଲେ;
ଇଂରାଜଙ୍କ ସଙ୍ଗେ ସନ୍ଧି କରି ଏ ରାଜତ୍ଵ କରୁଥିଲେ । ଏହାଙ୍କ
ମୃତ୍ୟୁ ପରେ ଶିଖ ରାଜ୍ୟ ଚୂର୍ଣ୍ଣୀଭୂତ ହେଲା । ଏହାଙ୍କ ସମୟରେ
ଇଂରାଜମାନେ ଭାରତରେ ସ୍ଥାନେ ସ୍ଥାନେ ରାଜ୍ୟବିସ୍ତାର
କରିଥିଲେ । ଇଂରାଜଅଧିକୃତ ଅଂଶମାନ ନକସାରେ ନାଲି
ରଙ୍ଗ ଚିହ୍ନିତ ହୋଇଥିବା ଦେଖି ଏ କହିଥିଲେ ଯେ 'ସବ୍
ଲାଲ୍ ହୋ ଯାଏଗା' ଅର୍ଥାତ୍ ଦିନେ ସମଗ୍ର ଭାରତ ଇଂରାଜ-
ଅଧିକୃତ ହେବ । ]
୨ । (ନାମ) ବମ୍ବେ ପ୍ରଦେଶର ଗୁଜରାଟର ଯାମ୍ ନଗରର ରାଜା
(ଏ ବିଲାତରେ ଅଧ୍ୟୟନ କରି କ୍ରିକେଟ୍ ଖେଳରେ
ଜଗଦ୍ଵିଖ୍ୟାତ ହୋଇଥିଲେ)--2. Name of the world
famous cricketer of Jāmnagar in Gujerat
the famous 'Ranji'.

ରଣ ଝଣ(ଣି)—ଦେ. ଅ ( ଧ୍ଵନ୍ୟନୁକରଣ ) ( ରଣ୍ ଧାତୁ )—ଧାତୁମୟ
Raṇa jhaṇa(ṇi) ଅଳଙ୍କାରର ଓ ମୁଦ୍ରାର ପରସ୍ପର ଘର୍ଷଣ ଶବ୍ଦ-
ବଣବଣ ବଣବଣି झनझन Jingling sound of ornaments
ठनठन or coins ( ଉ—ରଣଝଣ ହୋଏ ଶଙ୍ଖା ପାଛୁଡ଼ି
ତରଣେ—ଭଞ୍ଜ. ଲାବଣ୍ୟବତୀ । ) [ଦ୍ର—ଗୁଡ଼ିଏ ଅଳଙ୍କାର
ପିନ୍ଧି ଚାଲିଲାବେଳେ ରଣଝଣ ଧ୍ଵନି ହୁଏ । ଟଙ୍କା ପଇସାକୁ
ଉପର୍ଯ୍ୟୁପରି ଗଣିଲାବେଳେ ରଣଝଣ ଶବ୍ଦ ହୁଏ । 'ରଣଝଣ'
ଠାରୁ 'ରୁଣୁଝୁଣୁ' ଅନୁଚ୍ଚ ଓ ମଧୁରତର ଶବ୍ଦ ।] ଦେ. ବି.-
ଝନଝନ ୧ । ପ୍ରଚଣ୍ଡ ସୂର୍ଯ୍ୟକିରଣରେ ସମ୍ପୂର୍ଣ୍ଣରୂପେ ଶୁଖିଯିବା ଅବସ୍ଥା-
झनझनाहट 1. The state of a thing being dried up
completely by the sun. ୨ । ଧନଦରବ; ନଗଦ
ଟଙ୍କା, ଟଙ୍କା କଉଡ଼ି—2. Hard cash; riches in

the shape of money. [ଉ—ରଣଝୁଣ ( ଜଳନ୍ତ ସମ୍ପତ୍ତି—ଟଙ୍କା କଉଡ଼ି) କାହିଁଯିବ, ମାତ୍ର ଗୋଡ଼(ଭୂମି ବାଡ଼ି = ଭୂସମ୍ପତ୍ତି) ପଡ଼ିଥିବ- ଛଗ ।]

**ରଣଝୁଣିଆ**—ଦେ. ବିଣ—୧ । ଖରଦ୍ୱାର ସମ୍ପୂର୍ଣ୍ଣରୂପେ ଶୁଷ୍କ ହୋଇଥିବା—
Ranajhania 1. Completely dried up by the
ଝନଝନେ, ଝଟଝଟେ rays of the sun. ୨ । ରଣଝୁଣ ଶବ୍ଦ
**ঝনঝন, ঠনঠন** କରୁଥିବା—2 Jingling.

**ରଣଝାଇଁ**—ଦେ. ଅ (ଧ୍ୱନ୍ୟନୁକରଣ) ଧାତୁମୟ ପଦାର୍ଥ—(ଯଥା—
Ranajhain ଅଳଙ୍କାରାଦି)ର ଘର୍ଷଣ ଶବ୍ଦ; ରଣଝୁଣ ଶବ୍ଦ—
ଝଣଝଣି, ଝନଝନି Jingling sound of ornaments.
(ଉ—ଚରଣେ ଝୁମ୍ପୁକ ବଳା ଶୁଭିଲ ରଣଝାଇଁ—ପୀତାମ୍ବର
**ঝনঝনাহট** ନୃସିଂହପୁରାଣ ।)

**ରଣଝାଇଁବା**—ଦେ. କ୍ରି—ରଣଝୁଣ ଶବ୍ଦକରିବା—To make a
Ranajhainba jingling sound.
ঝনঝনশব্দ করা **ঝনঝনানা**

**ରଣ ଡ(ଢ)ଙ୍କା**—ଦେ. ବି (ସଂ. ରଣଢକା)—ରଣଢକ୍କା—
Rana da dha)nka War-drum
ରଣଢଙ୍କା **रणढक्का** ( ରଣଢୋଲ, ରଣକାଠ—ଅନ୍ୟରୂପ )

**ରଣ ଢକ୍କା**—ସଂ. ବି (ମ.ପ.ଜ୍ଞେ)—ଯୁଦ୍ଧବାଦ୍ୟ; ଯୁଦ୍ଧକ୍ଷେତ୍ରରେ ବଜାଯିବା
Rana dhakka ଢୋଲ—War drum.

**ରଣତ୍**—ସଂ. ବିଣ [ରଣ୍ ଧାତୁ+କର୍ତ୍ତୃ. ଅତ୍ (ଶତୃ); ଏହି ଶବ୍ଦରୁ
Ranat ପୁଂଲିଙ୍ଗ ୧ମା ୧ ବଚନରେ 'ରଣନ୍' ଓ ସ୍ତ୍ରୀଲିଙ୍ଗରେ
'ରଣନ୍ତୀ' ଶବ୍ଦ ହୁଏ]—୧ । ଶବ୍ଦାୟମାନ—1. Sounding. ୨ । ଗତି କରୁଥିବା—2. Moving.

**ରଣତ୍କାର**—ସଂ. ବି (ରଣତ୍+କୃ ଧାତୁ+ଭାବ ଅ)—୧ । ରଣରଣ
Rana-tkara ଶବ୍ଦ, ଝଣତ୍କାର—1. Jingling or tinkl-
( ରଣତ୍କାର—ଅନ୍ୟରୂପ ) ing sound; clanking sound.
( ରଣତ୍କୃତ—ବିଶରୂପ ) ୨ । ଗୁଣୁଗୁଣୁ ସ୍ୱର—2. Humming
(Apte) ୩ । ଶବ୍ଦ—3 Sound ( generally )
(Apte)

**ରଣ ତରି**—ସଂ. ବି ( ମ. ପ. ଜ୍ଞେ; ରଣାର୍ଥ ବ୍ୟବହୃତ ତରି )—ଯୁଦ୍ଧ-
Rana tari ଜାହାଜ—Man o' war; warship;
(ରଣପୋତ—ଅନ୍ୟରୂପ) frigate.

**ରଣତୂରୀ**—ସଂ. ବି ( ମ. ପ. ଜ୍ଞେ. )—ସମର ବାଦ୍ୟ; ଯୋଦ୍ଧାମାନଙ୍କୁ
Rana turi ଉତ୍ସାହିତ କରିବାପାଇଁ ଯୁଦ୍ଧକ୍ଷେତ୍ରରେ ବଜାଯିବା
ରଣତୂର୍ଯ୍ୟ, ରଣଭେରୀ } ଅନ୍ୟରୂପ— ନାନାପ୍ରକାରର ବାଦ୍ୟ—War
drums etc. ଦେ. ବି—
ଯୁଦ୍ଧରେ ବଜାଯିବା କାହାଳୀ—War trumpet.

**ରଣ ଦକ୍ଷ**—ସଂ. ବିଣ. ପୁଂ ( ୭ମୀ ତତ୍ )—ରଣ ନିପୁଣ ( ଦେଖ )
Rana daksha Rana nipuna ( See )
(ରଣଦକ୍ଷା—ସ୍ତ୍ରୀ) (ରଣଦକ୍ଷତା—ବି)

**ରଣ ଦାଣ୍ଡ**—ଦେ. ବି—ଯୁଦ୍ଧଭୂମି—Battle field [ ଉ—ମୁନ-
Rana danda ଦାଢ଼ ଥିବା କାଣ୍ଡେ ମୁଁ ଅଗ ମୁଣ୍ଡ, ତାର
ରଣଭୂମି ପକାଇବି ଛୁଣାଇ ରଣଦାଣ୍ଡ । କୃଷ୍ଣସିଂହ.
**रणभूमि** ମହାଭାରତ. ବନ । ]

**ରଣ ଧୀର**—ସଂ. ବିଣ. ପୁଂ ( ୭ମୀ ତତ୍ )—ଯୁଦ୍ଧରେ ଅଚଳ ବା ସ୍ଥିର
Rana dhira —Calm during a battle;
(ରଣଧୀରା—ସ୍ତ୍ରୀ) maintaining calmness during
(ରଣଧୀରତା—ବି) fight ଦେ. ବି—ସାରଥିପୁରୁଷଙ୍କୁ ରାଜଦତ୍ତ
ଉପାଧି ବିଶେଷ—A title given to a heroic person.

**ରଣଧୁରା**—ସଂ. ବି ( ୬ଷ୍ଠୀ ତତ୍ )—ସମାବେଶ ଯୁଦ୍ଧ ଲାଗିଥିବା ସ୍ଥାନ
Ranadhura ବା ଅବସ୍ଥା—The brunt of battle; the
(ରଣଧୂଃ—ଅନ୍ୟରୂପ) front or van of battle (Apte).

**ରଣଧ୍ୱଜା**—ଦେ. ବି ( ସଂ. ରଣଧ୍ୱଜ )—ଯୁଦ୍ଧ ପତାକା; ଯୁଦ୍ଧବେଳେ
Ranadhwaja ପକ୍ଷମାନଙ୍କ ବାହିତ ପତାକା—Flag used
ଯୁଦ୍ଧପତାକା in war. [ ଉ—ବାଜେ ସାର ବାଜା,
**रणझंडा** ଉଡ଼େ ରଣଧ୍ୱଜା, କମ୍ପେ ଅନ୍ତରେ ଗିରି କାନନ ।
(ରଣଧ୍ୱଜ—ସଂ. ରୂପ) ନନ୍ଦକିଶୋର. କୃଷ୍ଣକୁମାର ।]

**ରଣନ**—ସଂ. ବି ( ରଣ୍ ଧାତୁ+ଭାବ. ଅନ )—୧ । ରଣ ରଣ ଶବ୍ଦ—
Ranana 1. Jingling sound. ୨ । ଶବ୍ଦ; ଧ୍ୱନି—
2. Sound.

**ରଣ ନିପୁଣ**—ସଂ. ବିଣ. ପୁଂ (୭ମୀ ତତ୍)—ରଣ କୁଶଳ ( ଦେଖ )
Rana nipuna Rana kusala ( See )
(ରଣପଟୁ—ଅନ୍ୟରୂପ) (ରଣନିପୁଣା, ରଣପଟ୍ୱୀ—ସ୍ତ୍ରୀ)
(ରଣ ନିପୁଣତା, ରଣ ନୈପୁଣ୍ୟ, ରଣ ପଟୁତା—ବି)

**ରଣନୀତି**—ସଂ. ବି ( ୬ଷ୍ଠୀ ତତ୍ )—୧ । ଯୁଦ୍ଧ ଶାସ୍ତ୍ର; ଯୁଦ୍ଧ ବିଦ୍ୟା—
Rana niti 1 The science or art of war.
୨ । ଯୁଦ୍ଧରେ ପ୍ରଯୋଜ୍ୟ ନିୟମମାନ—2. Warlike
doctrines; the rules of fighting.

**ରଣ ପକ୍ଷୀ**—ସଂ. ବି ( ମ. ପ. ଜ୍ଞେ; ରଣପ୍ରିୟ ପକ୍ଷୀ ) - ଛଞ୍ଚାଣ—
Rana pakshi Falcon ( M. W. ).

**ରଣ ପଣ୍ଡିତ**—ସଂ. ବିଣ. ପୁଂ (୭ମୀ ତତ୍)—ରଣକୁଶଳ; ଯୁଦ୍ଧବିଦ୍ୟାରେ
Rana pandita ଅଭିଜ୍ଞ—Veteran in war; expert
ରଣ କୋବିଦ, ରଣମାର୍ଗ କୋବିଦ } ଅନ୍ୟରୂପ in the art of war
ସଂ. ବି. ପୁଂ - ଯୋଦ୍ଧା—
(ରଣ ପଣ୍ଡିତା—ସ୍ତ୍ରୀ) (ରଣ ପାଣ୍ଡିତ୍ୟ—ବି. A warrior
( M. W. )

**ରଣ ପଦ୍ଧତି**—ସଂ. ବି ( ୬ଷ୍ଠୀ ତତ୍ )—୧ । ଯୁଦ୍ଧ କରିବାର ଭିନ୍ନ ଭିନ୍ନ
Rana paddhati ଶୈଳୀ—1. Modes of warfare;
(ରଣ ପ୍ରଣାଳୀ—ଅନ୍ୟରୂପ) modes of conducting war.
୨ । ରଣ କୌଶଳ—2. Skill in war.

**ରଣପା**—ଦେ. ବି ( ସଂ. ରଣ ଓ ପାଦ )—୧ । କାଠର ବା ବାଉଁଶ
Ranapa ନିର୍ମିତ ଡେଙ୍ଗା ପାଦୁକା—1. Stilts. [ ଉ—
ରଣପା ବହିଛନ୍ତି ସେ ଦୀର୍ଘ ଶଳାକା ଅଦ୍ଧ ଚୋଲ, ଘଣ୍ଟନାଡ଼
ଅଭଙ୍ଗା ରଣପା ଯେ ମଞ୍ଜୁଳ ଯେ । ଉପେ. ଲାବଣ୍ୟବତୀ । ]
[ ଦ୍ର—ଏହା ୨।୩ ହାତ ଉଚ୍ଚ ଓ ଏହାର ମଝିରେ
ଗୋଡ଼ ରଖିବା ପାଇଁ ଖାଞ୍ଜ କରାଯାଇ ଥାଏ । ସେହି
ଖାଞ୍ଜରେ ପାଦକୁ ଦୃଢ଼ଭାବରେ ବାନ୍ଧିଲେ ମନୁଷ୍ୟ ସାଧାରଣ

ଅପେକ୍ଷା ଅପେକ୍ଷା ଡେଙ୍ଗା ଦେଖାଯାଏ ଓ ବଡ଼ ବଡ ପାହୁଣ୍ଡ ପକାଇ କୁଦ ଭଙ୍ଗରେ ଚାଲେ । ସାରଳା ଠାକୁରାଣୀଙ୍କ ସେବକମାନେ ରଣପା ଚଢ଼ି ଠାକୁରାଣୀଙ୍କ ଘଣ୍ଟ ମୁଣ୍ଡାଇ ନାଚନ୍ତି ।] ୬ । ଭୁଣ୍ଡେଇ ସ୍ତ୍ରୀ—2. A virago. ଦେ. ବିଣ.—ଖୁବ୍ ଡେଙ୍ଗା ବ୍ୟକ୍ତି—Very tall person.

**ରଣପାୟ୍ଯ(ଏ)**—ଗ୍ରା. ବି—ରଣପା (ଦେଖ) Rana pāya(e) Ranapā (See)

**ରଣପୁର**—ଦେ. ବି—ଗୋଟିଏ ଓଡ଼ିଆ ଗଡ଼ଜାତ—Name of an Ranapura Oriya State. [ଦ୍ର—ଅତି ପ୍ରାଚୀନ କାଳରେ 'ରଣାସୁର' ନାମରେ ଜଣେ ଅସୁର ଏଠାରେ ବାସ କରୁଥିବାରୁ ରାଜ୍ୟର ନାମ ରଣପୁର ହୋଇଥିଲା । ପ୍ରବାଦ ଅଛି, ବାସୁର ବାସୁକ ନାମକ ଜଣେ ଶିକାରୀ ୩୬୦୦ ବର୍ଷ ତଳେ ଏହି ରାଜ୍ୟ ସ୍ଥାପନ କରିଥିଲେ (କୃପାସିନ୍ଧୁ ଇତିହାସ) । ଏ ରାଜବଂଶର ସମ୍ପର୍କ ଇତିହାସ (ଜଗବନ୍ଧୁ ପ୍ରାଚୀନ ଉତ୍କଳ ) ।]

**ରଣପୁରୀ ଜଥା**—ଦେ. ବି—ରଣପୁର ଗଡ଼ଜାତରେ ପ୍ରସ୍ତୁତ ଓସରର ଫୁଲ- Ranapuri jathā ଧଡ଼ି ବିଶିଷ୍ଟ ସୁନ୍ଦର ଧୋତି ଓ ଚଦର— ( ରଣପୁରୀ ଯୋଡ଼ି—ଅନ୍ୟରୂପ ) (ଏକଜ ବୁଣା)—A pair of fine cloths with silk border (lower and upper pieces) woven in one length in the Ranapur state. [ଦ୍ର—ଏହିପରି ରଣପୁରୀ ଶାଢ଼ୀ, ରଣପୁରୀ ପେଟା, ରଣପୁରୀ ଦୋପଟା, ରଣପୁରୀ ପାଟୁଡ଼ା, ରଣପୁରୀ ଲୁଗା ଆଦି ଶବ୍ଦ ହୁଏ ।)

**ରଣ ପୋତ**—ସଂ. ବି—ରଣତରୀ ( ଦେଖ )—Ranatari (See). Rana pota [ଦ୍ର—ଆଜକାଲି ପାଶ୍ଚାତ୍ୟ ସଭ୍ୟତାପ୍ରାପ୍ତ ଜାତିମାନେ (ରଣ ଜାହାଜ—ଦେ. ରୂପ) ଉଡ଼ା, ବୁଡ଼ା, ଭସା ଆଦି ନାନା- ପ୍ରକାରର ଓ ଆକାରର ଏବଂ ନାନାରୂପେ ଆକ୍ରମଣାର୍ଥ ଓ ଆତ୍ମରକ୍ଷାର୍ଥ ସଜ୍ଜିତ ରଣପୋତମାନ ପ୍ରସ୍ତୁତ କରୁଅଛନ୍ତି ଯଥା :—Battleship; cruiser; dread- nought, torpedo, seaplane.]

**ରଣ ପ୍ରତ୍ୟାଗତ**—ସଂ. ବିଣ. ପୁଂ (୬ଷ୍ଠୀ ତତ୍)—କର୍ତ୍ତବ୍ୟସାଧନପୂର୍ବକ Rana pratyāgatā ଯୁଦ୍ଧକ୍ଷେତ୍ରରୁ ଫେରି ଆସିଥିବା (ଯୋଦ୍ଧା)— (ରଣ ପ୍ରତ୍ୟାବୃତ୍ତ—ଅନ୍ୟରୂପ) (warrior) Returned from (ରଣପ୍ରତ୍ୟାଗତା—ସ୍ତ୍ରୀ) the battle-field.

**ରଣ ପ୍ରାଙ୍ଗଣ**—ସଂ. ବି.—ଯୁଦ୍ଧ ଭୂମି (ଦେଖ)—Juddha bhūmi Ranaprāngana (See).

**ରଣ ପ୍ରିୟ**—ସଂ. ବିଣ. ପୁଂ—(ବହୁବ୍ରୀହି, ରଣ+ପ୍ରିୟ)—ଯେ ଯୁଦ୍ଧ Rana priya କରିବାକୁ ସୁଖପାଏ—Warlike; martial; (ରଣ ରସିକ —ଅନ୍ୟରୂପ) fond of war. ସଂ. ବି—୧ ।

ରଣପ୍ରିୟା } —ସ୍ତ୍ରୀ ଶ୍ୟେନ—1. Falcon (Apte).
ରଣରସିକା ୨ । ସୁଗନ୍ଧ ମୂଳବିଶେଷ;ବେଣାଚେର— 2. The fragrant root of Andropogen Muricatus.

**ରଣ ଫୁଲ**—ଦେ. ବି.—ରଣିଫୁଲ (ଦେଖ)— Rana phula Raniphula (See).

**ରଣ(ଣି)ଫୁଲପରି ଜହ୍ନ ପଡ଼ୁଛି**—ଦେ. ବାକ୍ୟ—ଟୋପା ବା ନିର୍ମଳ Rana(ni)phula pari jahna pardichhi. ରୂପରେ ଉଜ୍ଜ୍ୱଳ ଫୁଟଫୁଟେ ଜ୍ୟୋତ୍ସ୍ନା କହେ ପଡ଼ୁଛି—A brilliant moonlit night. [ଦ୍ର—ରଣ (ଣି) ଫୁଲ ନାମରେ କୌଣସି ଫୁଲ ନାହିଁ, କିନ୍ତୁ ନିର୍ମଳ ଶରତଚନ୍ଦ୍ର କହେ ପଡ଼ିଲେ ଲୋକେ ଜ୍ୟୋତ୍ସ୍ନାକୁ ରଣ(ଣି)ଫୁଲ ସଙ୍ଗେ ତୁଳନା କରନ୍ତି ।]

**ରଣବ(ଭ,ସ)ଣ**—ଦେ ଅ.—୧ । ଅସ୍ତ ବ୍ୟସ୍ତ ବା ଖେଳଆ ହୋଇ Ranaba(bha,sa)na ଏଣେ ତେଣେ ପଡ଼ିଥିବା—1. ଛଡ଼ାଛଡ଼ି Scattered pellmell; strewn on all sides. ବିକ୍ଷିପ୍ତ [ଦ୍ର—ମୂର୍ଖା ମାଣ୍ଡ ରଣଭଣ, ବିଗତ ଗୃହ ଶଣ ଶଣ । କାହାଣୀ—ଗୀତ] ୨ । ଖାଦ୍ୟରେ ବା ସଢ଼ା ପଦାର୍ଥରେ ମାଛି ଟନ ଟନ ବହୁ ପରିମାଣରେ ମାଛି ବେଢ଼ିବାର ଅବସ୍ଥା— 2. The state of food being putrid and infested with fleas. ୩ । ଓଳଆ ନ ହୋଇଥିବା ଅଳଆ ପୂର୍ଣ୍ଣ ଅବସ୍ଥା—3. Dirty, uncleaned and nasty condition of a house. ୪ । ଅସ୍ତବ୍ୟସ୍ତ; ବ୍ୟତିବ୍ୟସ୍ତ; ବିବ୍ରତ—4. Too much troubled; confused; pellmell. [ଦ୍ର—ଅର୍ଜୁନ ବାଣ ପାଇ ଭୂମ୍ବ ସେନାଗଣ, ପଳାଉଛନ୍ତି କର୍ଣ୍ଣି ହୋଇ ରଣ ଭଣ । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।] ୫ । ବ୍ୟତିବ୍ୟସ୍ତ— 5. Afflicted; troubled. [ଦ୍ର—ସ୍ନେହ ପାଶକୁ ବଢ଼ାଇଣ, କପାଇଁ କରୁ ରଣଭଣ । ଜଗନ୍ନାଥ. ଭାଗବତ ]

**ରଣ ବାଜା**—ଦେ. ବି. (ସଂ. ରଣ ବାଦ୍ୟ)—ରଣ ବାଦ୍ୟ ( ଦେଖ ) Rana bājā Rana bādya ( See ) ଯୁଦ୍ଧ ବାଜା, ବଣ ଡଙ୍କା ରଣବାଦ୍ୟ

**ରଣ ବାଦ୍ୟ**—ସ. ବି. (ମ. ପ. ଲୋ; ରଣରେ ବ୍ୟବହୃତ ବାଦ୍ୟ)— Rana bādya ଯୁଦ୍ଧ ସମୟରେ ବଜାଯିବା ବାଜା—Martial music.

**ରଣ ବିଦ୍ୟା**—ସ. ବି ( ମ. ପ ଲୋ )—ଯୁଦ୍ଧ ବିଦ୍ୟା; ଯେଉଁ ବିଦ୍ୟାରୁ Rana bidyā ଯୁଦ୍ଧ ସମ୍ବନ୍ଧେ ଜ୍ଞାନଲାଭ ହୁଏ—The art or (ରଣ ଶାସ୍ତ୍ର, ରଣ ଶିକ୍ଷା—ଅନ୍ୟରୂପ) science of war.

**ରଣ ବିଶାରଦ**—ସ. ବିଣ. ପୁଂ (୭ମୀ ତତ୍)—ଯୁଦ୍ଧ ବିଦ୍ୟାରେ ନିପୁଣ- Rana bisārada Expert or skilled in War. (ରଣ ବିଶାରଦା—ସ୍ତ୍ରୀ)

**ରଣ ବୀର**—ସ. ବିଣ—ଯୁଦ୍ଧରେ ବୀରତ୍ୱ ଦେଖାଇବା (ଯୋଦ୍ଧା)— Rana bira Valiant (warrior). ଦେ. ବି—ଯୋଦ୍ଧାଙ୍କୁ ରାଜଦତ୍ତ ଉପାଧି ବିଶେଷ— A title given to a brave person.

**ରଣ ବୃତ୍ତି**—ସ. ବି. (ରୂପକ)—ଜୀବିକା ରୂପେ ଗୃହୀତ ରଣ— Rana brutti War taken as a profession. ସ. ବିଣ—ଯୁଦ୍ଧ ଯାହାର ଜୀବିକା—Having war for a profession (M. W.)

ରଣ ବେଶ—ସ. ବି. ( ମ. ପ. ଲୋ )—ଯୋଦ୍ଧାର ସାଜସଜ୍ଜା—
Raṇa beśa A warrior's dress; war dress.

ରଣ ଭଙ୍ଗ—ସ. ବି. ( ୭ମୀ ତତ୍ ) —୧ । ଯୁଦ୍ଧକ୍ଷେତ୍ରରେ ସମ୍ପୂର୍ଣ୍ଣ
Raṇa bhaṅga ପରାଜୟ—1. A complete defeat in the battle field. ୨ । ସୈନ୍ୟମାନଙ୍କର ଛତ୍ର ଭଙ୍ଗ—2 A rout. ୩ । ଯୁଦ୍ଧରୁ ପଳାଇଯିବା—3. Fleeing away from the battle-field. ୪। (୬ଷ୍ଠୀ ତତ୍) ଯୁଦ୍ଧର ବିରତି; ରଣ ନିବୃତ୍ତି—4. Cessation of hostilities; armistice. ସ. ବିଣ. ପୁଂ(ବହୁବ୍ରୀହି) —୧ । ରଣକ୍ଷେତ୍ରରୁ ପଳାୟିତ—1. Fleeing from the battle-field, fugitive. ୨ । ରଣରୁ ବିରତ - 2. Refraining from fighting.

ରଣ ଭୀତ—ସଂ. ବିଣ. ପୁଂ (୫ମୀ ତତ୍)—ଯେ ଯୁଦ୍ଧକୁ ଡରେ—
Raṇa bhīta Fearing battle.
(ରଣଭୀତା—ସ୍ତ୍ରୀ) (ରଣଭୀତ—କ୍ଳୀ)

ରଣ ଭୀତୁ—ଦେ. ବିଣ. (ସଂ. ରଣଭୀତ) - ରଣ ଭୀରୁ ( ଦେଖ )
Raṇa bhītu Raṇa bhīru ( See )
ৰণ ভীতু रण कायर

ରଣ ଭୀରୁ —ସ. ବିଣ. ପୁଂ ଓ ସ୍ତ୍ରୀ—ଯେ ଯୁଦ୍ଧକୁ ଡରେ—
Raṇa bhīru Caward enough to face battle.

ରଣ ଭୁଇଁ—ଦେ. ବି. (ସ. ରଣଭୂମି)—ରଣଭୂମି ( ଦେଖ )
Raṇa bhuĩṅ Raṇa bhūmi ( See )
ৰণভূমি रणभूमि

ରଣ ଭୂମି—ସଂ. ବି. (ମ. ପ. ଲୋ )—ଯୁଦ୍ଧ କ୍ଷେତ୍ର; ରଣ ପ୍ରାଙ୍ଗଣ—
Raṇa bhūmi The seat of war; battle-field; scene of war.
(ରଣଭୁ, ରଣସ୍ଥଳ—ଅନ୍ୟରୂପ)

ରଣ ଭେରୀ(ରି)—ସଂ. ବି. (ମ. ପ. ଲୋ)—ରଣ କ୍ଷେତ୍ରରେ ବ୍ୟବହୃତ
Raṇa bherī(ri) ତୂରୀ ବା ଶିଂଘା; ବିଗୁଲ୍—War bugle.

ରଣ ମତ୍ତ—ସଂ. ବିଣ. ପୁଂ (୭ମୀ ତତ୍) —ଯୁଦ୍ଧରେ ମାତିଥିବା—
Raṇa matta Engrossed in fighting; intoxicated with the fury of war
(ରଣମତ୍ତା—ସ୍ତ୍ରୀ)
(ରଣ ମତ୍ତତା – ବି) ସଂ. ବି—ହସ୍ତୀ—Elephant.

ରଣ ମଦ—ସଂ. ବି. ( ମ. ପ. ଲୋ କର୍ମଧାରୟ)—ଯୁଦ୍ଧ କରିବା ପୂର୍ବରୁ
Raṇa mada ଓ ଯୁଦ୍ଧ କରିବା ସମୟରେ ଯୋଦ୍ଧାର ମନରେ ଉଠିବା ନିଶା—Martial spirit; intoxication of fighting.

ରଣ ମାଗିବା—ଦେ. କ୍ରି—ଯୁଦ୍ଧ କରିବା ପାଇଁ ବିପକ୍ଷକୁ ଆହ୍ୱାନ କରିବା
Raṇa māgibā —To challenge the opponent to fight.
যুদ্ধ চাওয়া
युद्ध मांगना (ଉ—ତେବେ ଅଛୁ ନ ଡର ରଣ ମୁଁ ମାଗୁଛି । କୃଷ୍ଣସିଂହ. ମହାଭାରତ. ବନ ।)

ରଣ ମାର୍ଗ—ସ. ବି. (୬ଷ୍ଠୀ ତତ୍)—୧ । ରଣ କୌଶଳ—1. The
Raṇa mārga art or way of war. ୨ । (ରୂପକ) ରଣ ରୂପ ବାଟ—2. War-path.
(ରଣପଥ—ଅନ୍ୟରୂପ)

ରଣ ମୁଖ—ସ ବିଣ. ପୁଂ (ବହୁବ୍ରୀହି)—ରଣ କରିବା ପାଇଁ ଉତ୍ସୁକ;
Raṇa mukha ରଣୋନ୍ମୁଖ—Eager to fight. ସ. ବି—
ରଣମୂର୍ଦ୍ଧା । ରଣଶିରଃ } —ଅନ୍ୟ ବି. ରୂପ ୧ । (ରୂପକ) ଯୋଦ୍ଧୃବୃନ୍ଦଙ୍କ ଭକ୍ଷକ ମୃତ୍ୟୁ—1. The jaws of death. ୨ । (୬ଷ୍ଠୀ ତତ୍) ଦୁଇ ପକ୍ଷର ସାମନା ସାମନି ଯେଉଁଠାରେ ଯୁଦ୍ଧ ଲାଗିଥାଏ—2. The front of an army while meeting the opponent, the front of battle; battle-front. ୩ । ଯେଉଁଠାରେ ଭୂମୂଳ ସଂଗ୍ରାମ ଲାଗିଥାଏ— 3. The brunt of fight.

ରଣମୁଖା—ଦେ. ବିଣ. ପୁଂ (ସ. ରଣମୁଖ)—୧ । ଉଗ୍ରମୂର୍ତ୍ତି ଧାରଣକାରୀ;
Raṇamukhā ଉଗ୍ରରଣ—1. Assuming a fierce countenance. ୨ । ରଣମୁହାଁ (ଦେଖ)— 2. Ranamuhāṅ. (See)
ৰণমুখো
रणमुखा

ରଣମୁଷ୍ଟି —ସ. ବି—କୋଚିଲା (ଦ୍ରି. ଶ)—
Raṇamushṭi Nux Vomica.

ରଣମୁହାଁ – ଦେ. ବିଣ (ସ. ରଣମୁଖ)—୧ । ଯେ ରଣଭୂମି ଅଭିମୁଖ
Raṇamuhāṅ ଅଗ୍ରସର ହେଉଅଛି—1. Proceeding or advancing to the field of battle.
ৰণমুখো, মারমুখো
रणमुखा ୨ । ରଣୋନ୍ମୁଖ—2. Eager to fight.

ରଣ ଯଜ୍ଞ —ସ. ବି (ରୂପକ ବା ଉପମିତ)—ଯଜ୍ଞରୂପେ କଳ୍ପିତ ଯୁଦ୍ଧ—
Raṇa jajna Battle regarded as a sacrifice.
(ରଣଯାଗ, ରଣସତ୍ର, ରଣମଖ—ଅନ୍ୟରୂପ)

ରଣଯାଇ ଖଜୁରା—ଦେ. ବି—ଏକ ପ୍ରକାର ମୋଟ ଧାନ—
Raṇajāī khajurā A species of coarse paddy.

ରଣ ଯାତ୍ରା—ସଂ. ବି (୪ର୍ଥୀ ତତ୍)—ଯୁଦ୍ଧଯାତ୍ରା; ଅଭିଯାନ—
Raṇa jātrā Expedition; marching for battle.

ରଣ ରଙ୍କ —ସଂ. ବିଣ. ପୁଂ (୭ମୀ ତତ୍, ରଣ + ରଙ୍କ = ଗତ)—
Raṇa raṅka ୧ । ରଣକାତର; ରଣଭୀରୁ—1. Fearing to fight. ୨ । ଯୁଦ୍ଧପ୍ରିୟ; ରଣଲୋଲୁପ—2. Eagerly wishing to be engaged in battle. [ଉ—କପିଳାସ ଖୋଲ ନିବାସୀ ଶବର, ରଣରଙ୍କ ରେଙ୍କା ଯା ଦଶଶେଖର । ରାଧାନାଥ. ନନ୍ଦକେଶ୍ୱରୀ । ] ସଂ. ବି—୧ । ରଣକାତର ହସ୍ତୀ—1. An elephant unwilling to stand in the battle field. ୨ । ଗଜର ଦନ୍ତଦ୍ୱୟ ମଧ୍ୟସ୍ଥ ମୁଖାଂଶ— 2. The part of an elephant's face between the tusks.
[ରଣରଙ୍କା—ସ୍ତ୍ରୀ]

ରଣ ରଙ୍କା—ଦେ. ବିଣ. ପୁଂ ଓ ସ୍ତ୍ରୀ (ସଂ. ରଣରଙ୍କ)—ରଣ କରିବାପାଇଁ
Raṇa raṅkā ଉତ୍ସୁକ; ରଣଲୋଲୁପ—Eagerly wishing to engage in fight. [ଉ—ବିବିଧ ବାଦ୍ୟ ଯୁଦ୍ଧୋନ୍ମୁଖ ନାଦେ ପୁରେ ଲଙ୍କା, ଅସୁରେ ହୋଇଛନ୍ତି ରଣରଙ୍କା । ବିଶ୍ୱନାଥ. ବିଚିତ୍ରରାମାୟଣ ।]
[ରଣରଙ୍କୀ—ସ୍ତ୍ରୀ]
रणांक

ରଣ ରଙ୍ଗ—ସଂ. ବି (୭ମୀତତ୍)—୧ । ଯୋଦ୍ଧା ମନରେ ଯୁଦ୍ଧଜନିତ
Raṇa raṅga ଆନନ୍ଦ—1. A warrior's joy derived

from fighting. ୨ । ରଣମତ୍ତତା; ରଣୋନ୍ମାଦ—2. Intoxication of or rage for fighting. ୩ । (୭ମୀ ତତ୍) ସଂଗ୍ରାମସ୍ଥଳ, ଯୁଦ୍ଧଭୂମି—3. Scene of battle; battle-field. ୪ । ନାନାପ୍ରକାରର ଯୁଦ୍ଧକ୍ରିୟା—4. Acts of fighting. [ ଉ—କର୍ଣ୍ଣ କାଟେ ଛାଡ଼ ପିବାର ସ୍ୱାଦ ଅଙ୍ଗ,ମାନଙ୍କୁ ପିଙ୍ଗି ଶ୍ରମ କଲେ ରଣରଙ୍ଗ । କୃଷ୍ଣସିଂହ ମହାଭାରତ, ଦ୍ରୋଣ ।] ୫ । ଯୁଦ୍ଧକୌଶଳ—5. Modes of fighting. ୬ । (ରୂପକ) ରଙ୍ଗ ବା କ୍ରୀଡ଼ାରୂପେ କଳ୍ପିତ ଯୁଦ୍ଧ—6 Battle compared to a game

**ରଣ ରଙ୍ଗୀ**—ବି. ବିଣ. ପୁଂ—୧ । ରଣୋନ୍ମତ୍ତ—1. Intoxicated
Rana rangi with battle-rage. ୨ । ଯୁଦ୍ଧରେ ବ୍ୟାପୃତ—
[ରଣରଙ୍ଗିଣୀ(ଣୀ)—ସ୍ତ୍ରୀ] 2. Engaged in fight. fighting. ସଂ. ବି—ଯୋଦ୍ଧା—Warrior.

**ରଣରଣ**—ସଂ. ବି (ରଣ=ଯୁଦ୍ଧ. ଦ୍ୱିତ୍ୱ)—୧ । ଅପହୃତ ବା ନଷ୍ଟ
Rana rana ବସ୍ତୁ ପାଇଁ ଅନୁଶୋଚନା—1. Regret for a lost or stolen thing. ୨ । ଉତ୍କଣ୍ଠା—2. Eagerness, hankering. ୩ । ଦୁର୍ଭାବନା—3. Anxiety. ୪ । ପ୍ରିୟବସ୍ତୁର ପ୍ରାପ୍ତି ପାଇଁ ଉତ୍କଣ୍ଠା ବା ଲାଳସା—4. Longing or anxiety for some beloved object (M. W). ୫ । କନ୍ଦର୍ପ; କାମ—5. Cupid. ୬ । ପ୍ରେମ; ପ୍ରଣୟ—6. Love. ୭ । ଇଚ୍ଛା—7. Desire. ୮ । ମଶକ; ମଶା—8. Gnat;
ঝনঝন mosquito (Apte) ଦେ ଅ—୧ । ରଣଝଣ
झनझन ଶବ୍ଦ—1. Jingling sound. [ ଉ—ବାଜଇ ରଣରଣ ବାଜେଣୀ ବଳା । ସୁଧାନାଥ ଚୈତ୍ରବୃତ୍ତ ।]
୨ । ଝଣଝଣି; ଯୁଦ୍ଧାସ୍ତ୍ରର ଝଣଝଣ ଶବ୍ଦ—2. Jingling
ঝনঝনি झनझनाहट of war weapons;

**ରଣ ରଣକ**—ସଂ. ବି—୧ । ନଷ୍ଟବସ୍ତୁ ପାଇଁ ଅନୁଶୋଚନା—1. Re-
Rana ranaka gret for a lost thing. ୨।ଦୁର୍ଭାବନା;
[ରଣରଣିକା—ଅନ୍ୟରୂପ] ଦୁଶ୍ଚିନ୍ତା—2, Anxiety. ୩।ଉତ୍କଣ୍ଠା—3. Eagerness; hankering. ୪ । କନ୍ଦର୍ପ; କାମ—4. Cupid. [ଉ—ରଣରଣକ ଦର୍ପ କାରଣ, ରଣରଣ ନୂପୁର ଚରଣ । ଉତ୍କଂ. ପ୍ରେମସୁଧାନିଧି ।] ୫ । ପ୍ରଣୟାସ୍ପଦ ବ୍ୟକ୍ତିପାଇଁ ମନ ଛଟଛଟ ହେବା—5. Anxiety or uneasiness for one's beloved object (Apte) ୬ । ପ୍ରେମଜନିତ କଷ୍ଟ ବା ବେଦନା—6. Affliction or torment due to love (Apte).

**ରଣରଣି**—ଦେ. ବି (ଧ୍ୱନ୍ୟନୁକରଣ)—୧ । ଯୁଦ୍ଧାସ୍ତ୍ରର ଝନତ୍କାର—1.
Ranarani Jingling of war-weapons. ୨ ।
ঝনঝনী झनझनाहट ଅଳଙ୍କାରର ଝଣଝଣ ଶବ୍ଦ—2. Jingling of ornaments.

**ରଣରଣିଆ**—ଦେ. ବିଣ—୧ । ଅତି ପ୍ରଖରଭାବରେ ପଡ଼ିଥିବା (ଖରା)—
Ranarania 1. Scorching (sun's rays) ୨ । ଅତି
କাঠফাটা ପ୍ରଖର ଖରାରେ କର୍କଳରୂପେ ଶୁଖି ଯାଇଥିବା—
খটখটে 2. Completely dried up by the sun's rays.

**ରଣରାଉ**—ଗ୍ରା. ବିଣ—ରଣ ରାହୁ (ଦେଖ)—Ranarahu (See)
Ranarau ଦେ. ବି—ବୀର ବ୍ୟକ୍ତିଙ୍କୁ ଦଅଯିବା ରାଜପ୍ରଦତ୍ତ
রণবাহু ଉପାଧିବିଶେଷ—A title given to a brave
रणराहु person.

**ରଣ ରାହୁ**—ସଂ. ବିଣ (୭ମୀ ତତ୍, ରଣ+ରାହୁ; ଯେଉଁ ବ୍ୟକ୍ତି ରଣରେ
Rana rahu ରାହୁ ପରି ପ୍ରଚଣ୍ଡ ତେଜ ଓ ବିକ୍ରମ ପ୍ରକାଶ କରେ
[ରଣରାଉ(ହୁ)ଆ—ଦେ. ରୂପ] ଓ ଶତ୍ରୁକୁ ଗିଳିଲା ପରି ଅନୁମିତ ହୁଏ)—ବୀର—Warlike; heroic; very brave, valiant (person) ଦେ. ବି—୧ । ଯୋଦ୍ଧା—1. Warrior. ୨ । ବୀର—2. Hero.

**ରଣ ଲକ୍ଷ୍ମୀ**—ସଂ. ବି (ମ. ପ. ଲୋ.)—୧ । ଯୁଦ୍ଧର ଅଧିଷ୍ଠାତ୍ରୀ ଦେବୀ—
Rana lakshmi 1. The Goddess of war. ୨ । ଯୁଦ୍ଧରେ ପକ୍ଷମାନଙ୍କ ଭାଗ୍ୟଫଳ—2. The fortunes of war.

**ରଣ ଶଯ୍ୟା**—ସଂ. ବି (ରୂପକ)—ସମରକ୍ଷେତ୍ରରୂପ ଶଯ୍ୟା; ଯେଉଁଠାରେ
Rana sajya ଯୋଦ୍ଧାଗଣ ମୃତ ହୋଇ ଶୟନ କରନ୍ତି—The battle-field compared to a bed for the warriors killed in battle.

**ରଣଶଯ୍ୟାଶାୟୀ**—ସଂ. ବିଣ. ପୁଂ (୭ମୀ ତତ୍)—ସମରକ୍ଷେତ୍ରରେ ହତ—
Ranasajyasayi Killed in batttle; sleeping the
[ରଣଶାୟୀ—ଅନ୍ୟରୂପ] last sleep in the field of
(ରଣଶଯ୍ୟାଶାୟିନୀ, ରଣଶାୟିନୀ—ସ୍ତ୍ରୀ) battle.

**ରଣ ଶିକ୍ଷକ**—ସଂ. ବି ( ୬ଷ୍ଠୀ ତତ୍ )—ଯୁଦ୍ଧବିଦ୍ୟାର ଶିକ୍ଷାଦାତା—
Rana sikshaka A teacher or trainer in the art of war.

**ରଣ ଶିକ୍ଷା**—ସଂ. ବି (୭ମୀ ତତ୍)—୧ । ଯୁଦ୍ଧବିଦ୍ୟାରେ ତାଲିମ୍ ହେବା
Rana siksha —1. Training in the art of war. ୨ । ଯୁଦ୍ଧନୀତି—2. The doctrines of war ୩ । ରଣବିଦ୍ୟା—3. The sceince or art of
[ରଣ ଶିକ୍ଷିତ(ତା)—ବିଣ] war.

**ରଣ ଶିଙ୍ଗା(ଘା)**—ଦେ. ବି (ସଂ. ରଣଶୃଙ୍ଗା)—ରଣଶୃଙ୍ଗା ( ଦେଖ )—
Rana singa(ngha) Ranasrunga ( See )
রণশিঙ্গা रनसिंघा [ଉ—ବଜା ରଣଶିଙ୍ଗା ଥରେ ଶୃଙ୍ଗଧର, ଶବ୍ଦ ଶିଙ୍ଗା ଶୁଣି କେବେ ଯାଉଛ !—ସୁଧାନାଥ. କବିତାବଳୀ । ]

**ରଣ ଶିରଃ**—ସଂ. ବି—ରଣମୁଖ ୨।୩ (ଦେଖ)
Rana sirah Ranamukha 2, 3 (See)
[ ରଣଶୀର୍ଷ—ଅନ୍ୟରୂପ ]

**ରଣଶୃଙ୍ଗା**—ସଂ. ବି—ଯୁଦ୍ଧ ସମୟରେ ବଜାଯିବା ଶୃଙ୍ଗନିର୍ମିତ ତୂରୀ,
Rana srunga ବିଗୁଲ୍—Warhorn; a bugle sounded in war; war-trumpet.

ରଣଶୌଣ୍ଡ—ସଂ. ବିଣ—ଯୁଦ୍ଧରେ ନିପୁଣ—
Raṇaśauṇḍa Skilled in war (M. W).

ରଣ ଶ୍ରାନ୍ତ—ସଂ ବିଣ, ପୁଂ—ଯୁଦ୍ଧ କରିବାହେତୁ କ୍ଲାନ୍ତ—
Raṇa śrānta Tired after fighting.
[ରଣଶ୍ରାନ୍ତା—ସ୍ତ୍ରୀ]

ରଣ ସଙ୍କୁଳ—ସଂ. ବିଣ. (୬ଷ୍ଠୀ ତତ୍)—ଯେଉଁଠାରେ ଘୋର ରଣ
Raṇa saṅkula ଲାଗିଥାଏ; ଯୁଦ୍ଧ ଦ୍ୱାରା ବ୍ୟାପ୍ତ (ସ୍ଥାନ)—
(a place) Where battle is raging.
ସଂ. ବି. ୧ । ଘୋର ଯୁଦ୍ଧ ଲାଗିଥିବା ଯୁଦ୍ଧକ୍ଷେତ୍ରର ଅଂଶ—
1. A part of the battlefield where furious fight is raging. ୨ । ତୁମୁଳ ସଂଗ୍ରାମ—
( ରଣ ସଂରମ୍ଭ—ଅନ୍ୟ ବି. ରୂପ ) 2. Furious fighting; tumultuous combat; the rage of battle; the thick of the fight.

ରଣ ସଜ୍ଜା—ସଂ. ବି (୪ର୍ଥୀ ତତ୍; ରଣାର୍ଥ. ସଜ୍ଜା)—୧ । ଯୁଦ୍ଧ ପାଇଁ
Raṇa sajjā ଆୟୋଜନ; ଯୁଦ୍ଧସଜ୍ଜା—1. Preliminary preparations for war; warlike preparations. ୨ । ବୀର ବେଶ—2. The warrior's dress. ୩। ରଣ ବେଶ—3. Battle dress, warlike accutrements. ୪ । ଯୁଦ୍ଧାର୍ଥ ସୈନ୍ୟ-
(ରଣ ସଜ୍ଜିତ—ବିଣ) ସମାବେଶ—4. Battle array.

ରଣସହାୟ—ସଂ. ବି [୭ମୀ ତତ୍]—ଯୁଦ୍ଧ ସମୟରେ ସାହାଯ୍ୟ କରିବା
Raṇa sahāya ମିତ୍ରଶକ୍ତି—A nally [M. W]

ରଣ ସାଜ—ଦେ. ବି (ସଂ. ରଣସଜ୍ଜା)—ଯୁଦ୍ଧ ବେଶ—
Raṇa sāja Martial dress.
বণসাজ रण साज

ରଣ ସିଂଘ—ଗ୍ରା. ବି—ରଣସିଂହ (ଦେଖ )
Raṇa siṁgha Raṇasiṁha [See]
বণসিংহ रण सिंह

ରଣସିଂହ—ସଂ. ବି (୭ମୀ ତତ୍, ରଣ+ସିଂହ=ପରାକ୍ରମୀ)—
Raṇa siṁha ଯୁଦ୍ଧକ୍ଷେତ୍ରରେ ସିଂହ ପରି ବିକ୍ରମ ପ୍ରକାଶ କରିବା ବ୍ୟକ୍ତି—A valiant warrior. ଦେ. ବି—
୧ । କ୍ଷତ୍ରିୟମାନଙ୍କର ଉପାଧିବିଶେଷ—1. A title of some Kshatriyas ୨ । ବୀର ବ୍ୟକ୍ତିଙ୍କୁ ଦିଆଯିବା ଉପାଧି—2. A title given to a heroic and valiant person.

ରଣ ସ୍ତମ୍ଭ—ସଂ. ବି [ମ.ପ.ଲୋ]—୧ । ସମରକ୍ଷେତ୍ରରେ ଯୁଦ୍ଧର ସ୍ମୃତିଚିହ୍ନ-
Raṇa stambha ରୂପେ ପ୍ରୋଥିତ ବା ରଚିତ ସ୍ତମ୍ଭ—
1. A pillar raised on the battlefield as a monument of battle. ୨ । ଜୟ ସ୍ତମ୍ଭ—2. A triumphal pillar; a pillar raised as a memorial of victory. ୩ । ଯୁଦ୍ଧର ସ୍ମୃତିଚିହ୍ନ ସ୍ୱରୂପ ଅନ୍ୟତ୍ର ପ୍ରୋଥିତ ସ୍ତମ୍ଭ—3. War-memorial column. ୪ । ଭାରତର ଉତ୍ତର ପଶ୍ଚିମ ରାଜପୁତନା ଅନ୍ତର୍ଗତ ଦେଶବିଶେଷ; ଚିତୋର—4. Chittor of Rājputana in N. W. India.

ରଣ ସ୍ଥଳ—ସଂ. ବି (୭ମୀ ତତ୍)—ଯୁଦ୍ଧକ୍ଷେତ୍ର—
Raṇa sthaḷa The scene of battle; battlefield.
[ ରଣସ୍ଥାନ—ଅନ୍ୟରୂପ ]

ରଣ ସ୍ୱାମୀ—ସଂ. ବି (୬ଷ୍ଠୀ ତତ୍; ଯୁଦ୍ଧର ସ୍ୱାମୀରୂପେ ପ୍ରତିଷ୍ଠିତ)—ଶିବ
Raṇa swāmī ଲିଙ୍ଗ—An image of Śiba, the Lord of battle. ଦେ. ବି—ଯୁଦ୍ଧର ପ୍ରଧାନ ସେନାପତି—Commander-in-chief.
ରଣେଶ } ଅନ୍ୟରୂପ
ରଣେଶ୍ୱର }

ରଣ ହଂସ—ସଂ. ବି—ବର୍ଣ୍ଣବୃତ୍ତ ବିଶେଷ—A kind of poetical
Raṇa haṁsa composition. [ ଦ୍ର—ଏଥିର ପ୍ରତ୍ୟେକ ଚରଣରେ ସଗଣ, ଜଗଣ, ଭଗଣ ଓ ରଗଣ ଥାଏ; ଏହାର ଅନ୍ୟ ନାମ ମନହଂସ,ମାନହଂସ ଓ ମାନସହଂସ—ବୃ. ଶ । ]

ରଣା—ଦେ. ବି (ସଂ. ରାଜସର୍ପ, ଶଙ୍ଖିନୀ)—୧ । ଏକପ୍ରକାର ବିଷଧର
Raṇā ସର୍ପ—1. A kind of poisonous snake;
বাজসাপ, শঙ্খিনী Bungarus Fasciatus. [ଦ୍ର—ଏହା
राज साँप ବୋଡ଼ା ଜାତୀୟ । ଏହାର ଦେହରେ ହଳଦିଆ ଓ କଳା ମୁଠାମୁଠା ଗଣ୍ଠାପରି ଦାଗ ଥାଏ । ଏହାର ଫଣା ନାହିଁ । ଏ ଶୂର ହାତ ପର୍ଯ୍ୟନ୍ତ ବଢ଼େ । ଏ କାମୁଡ଼ିଲେ ଲୋକ ଶୀଘ୍ର ମରିଯାଏ । ପ୍ରବାଦ ଅଛି :—ରଣା, ଘଡ଼ିକେ କରିବ ବଣା ଓ ରଣା କାମୁଡ଼ିଲେ ନ ଯିବ ପାଠ ଅଗଣା । କେହି କେହି ମଧ୍ୟ କହନ୍ତି ଏହାର ବିଷ ନାହିଁ । ]
୨ । ଫୁଲୁରି ମାଳମାନଙ୍କର ବଂଶୋପାଧି ବିଶେଷ—2. A family-title of a caste of florist-gardeners. ୩ । ଏକ ପ୍ରକାର ଓଡ଼ିଆ ପାଇକ ଜାତି—3. A caste of Oriya Pāikas. [ ଦ୍ର—ଏମାନେ ଝାଡ଼ଜୟପୁରର ପୂର୍ବ ରାଜାମାନଙ୍କର ପାଇକ କାର୍ଯ୍ୟ କରୁଥିଲେ । ଏମାନଙ୍କ ମଧ୍ୟରୁ କେତେକ ପଇତା ପକାନ୍ତି ଓ ବ୍ରାହ୍ମଣ ଛଡ଼ା ଅନ୍ୟ କାହାରି ଘରେ ଖାଆନ୍ତି ନାହିଁ । ]
୪ । ଶୂଦ୍ର ଜାତି ବିଶେଷ—4. A class of Śūdras. [ ଦ୍ର—ଏମାନେ ପ୍ରାୟଶଃ ଝାଡ଼ଜୟପୁର ଅଞ୍ଚଳରେ ବାସ କରନ୍ତି । ଏମାନେ ଅନାର୍ଯ୍ୟ ଶୂଦ୍ର ଜାତି । ଏମାନେ ପାଣି ଦେଲେ ବ୍ରାହ୍ମଣ ପ୍ରଭୃତି ଗୋଡ଼ହାତ ଧୁଅନ୍ତି, ଜଳ ପିଅନ୍ତି ନାହିଁ । ଏମାନେ ଗୃଷ ଓ ଶୂକର କରି ଜୀବିକା ଚଳାନ୍ତି । ଏମାନେ ମଦ୍ୟପ] । ଦେ. ବିଣ (ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହେଲେ ଯଥା—ନୃପରଣା, ମହାରଣା; ସଂ. ରାଜନ୍ )—
বাণা ୧ । ଶ୍ରେଷ୍ଠ—1 Chief (person). ୨ । କର୍ମହୀନ—
राणा 2. Idle. [ ଯଥା—ସେ ଲୋକଟା ରଣାପରି ବୁଲୁଛି ।]

ରଣାଗ୍ନି—ସଂ. ବି (ଉପମିତ)—ଅଗ୍ନି ପରି ସର୍ବନାଶକାରୀ ଯୁଦ୍ଧ—
Raṇāgni Battle compared to the all-devouring fire.

**ରଣାଗ୍ର**—ସଂ. ବି (୬ଷ୍ଠୀ ତତ୍)—ଯୁଦ୍ଧକ୍ଷେତ୍ରର ଯେଉଁ ସ୍ଥାନରେ ସମ୍ମୁଖ-ଯୁଦ୍ଧ ଲାଗିଥାଏ—The front or van of a battle.
Ranāgra

**ରଣାଙ୍ଗ**—ସଂ. ବି (୬ଷ୍ଠୀ ତତ୍)—୧ । ଯୁଦ୍ଧାସ୍ତ୍ର—1. Weapon of war. ୨ । ଖଡ୍ଗ—2. Sword [M. W].
Ranānga

**ରଣାଙ୍ଗଣା**—ଦେ. ବି—(ସଂ. ରଣାଙ୍ଗନ)—ରଣାଙ୍ଗନ (ଦେଖ)—Ranāngana (See)
Ranāngaṇā
ରଣାଙ୍ଗନ [ ଉ—ବାଜୁ ବାଜଣା ଜଣା, ସୁଗ୍ରୀବେ ରଣାଙ୍ଗଣା, ସ୍ଥିତ ହୋଇ ଅଗଣା । ଉଞ୍ଜ ବୈଦେହୀଶବିଳାସ ।]
रणांगन

**ରଣାଙ୍ଗନ**—ସଂ. ବି (୬ଷ୍ଠୀ ତତ୍)—ସମରକ୍ଷେତ୍ର; ଯୁଦ୍ଧକ୍ଷେତ୍ର—Battlefield; scene of battle.
Ranāngana
(ରଣାଜିର, ରଣାବନ—ଅନ୍ୟରୂପ)

**ରଣାତୋଦ୍ୟ**—ସଂ. ବି. ( ମ. ଘ. ଲୋ; ରଣ+ଆତୋଦ୍ୟ )—ଯୁଦ୍ଧ-ବାଦ୍ୟ—War drum (M. W); war-band.
Ranātodya

**ରଣାନ୍ତକୃତ୍**—ସଂ. ବିଣ. (ରଣ+ଅନ୍ତ+କୃ ଧାତୁ+କର୍ତ୍ତୃ. କ୍ୱିପ୍)—ଯେ ଯୁଦ୍ଧ ଉହ୍ତ କରେ—Making an end of war. ସଂ. ବି—ବିଷ୍ଣୁ—Bishṇu (M.W)
Ranāntakrut

**ରଣାପେତ**—ସଂ. ବିଣ. ପୁଂ (ରଣ+ଅପେତ=ନିର୍ଗତ; ୫ମୀ ତତ୍)—ଯୁଦ୍ଧରୁ ପଳାୟିତ ବ୍ୟକ୍ତି—Fleeing away from battle.
Ranāpeta
(ରଣାପେତା—ସ୍ତ୍ରୀ)

**ରଣାଭିଯାନ**—ସଂ. ବି (୪ର୍ଥୀତତ୍; ରଣାର୍ଥ ଅଭିଯାନ)—ଯୁଦ୍ଧଯାତ୍ରା—Military expedition.
Ranābhijāna

**ରଣାଭିଯୋଗ**—ସଂ. ବି (୬ଷ୍ଠୀ ବା ୭ମୀ ତତ୍)—ରଣରେ ନିଯୋଗ—Engagement in battle; war-like encounter.
Ranābhijoga
(ରଣାଭିଯୁକ୍ତ—ବିଣ)

**ରଣାୟୁଧ**—ସଂ. ବି. ( ମ. ଘ. ଲୋ )—୧ । ଯୁଦ୍ଧାସ୍ତ୍ର—1. Weapon of war. ୨ । (ବହୁବ୍ରୀହି) କୁକୁଡ଼ା—2. Cock (M. W).
Ranāyudha

**ରଣାଲଙ୍କରଣ**—ସଂ. ବି—(ଏମାନେ ସଜ୍ଜିତ ସୈନ୍ୟଙ୍କ ପରି ଧାଡ଼ି ଧାଡ଼ି ହୋଇ ବସିବାରୁ ଓ ଉଡ଼ିବାରୁ; ଭୁଲ ଇଂ Adjutant bird)—କଙ୍କ ପକ୍ଷୀ—A sort of heron.
Ranālankarana

**ରଣି**—ଦେ. ବି. (ସଂ. ରଣାଲଙ୍କରଣ)—କଙ୍କ ପକ୍ଷୀ; ବଗିଆ କାଙ୍କ—A sort of crane or heron.
Rani

**ରଣିତ**—ସଂ. ବିଣ. (ରଣ୍ ଧାତୁ=ଶବ୍ଦ କରିବା+କର୍ମ. କ୍ତ)—୧ । ଶବ୍ଦିତ—1. Sounded. ୨ । (ରଣ+କୃତାର୍ଥେ. ଇତ) କୃତରଣ—2. One who has fought. ସଂ. ବି. (ରଣ୍ ଧାତୁ+ଭାବ. କ୍ତ)—୧ । ଧ୍ୱନି; ଶବ୍ଦ—1. Sound; noise. ୨ । କ୍ୱଣନ; ରଣ-ଝଣ ଶବ୍ଦ—2. Rattling or jingling sound (Apte))
Ranita

**ରଣି ପାଇକ**—ଗ୍ରାଦେ. (ଗଞ୍ଜାମ) ବି—ରାତ୍ରିରେ ଲୋକଙ୍କୁ ସତର୍କ କରି ରଖିବା ପାଇଁ ନିଯୁକ୍ତ ପାଇକ—The chaukidar or watchman who keeps guard at dead of night and warns people.
Rani pāika

**ରଣି ଫୁଲ**—ଦେ. ବି. ( ସଂ. ଶର୍ଣ ପୁଷ୍ପ )—ନିର୍ମଳ ଚନ୍ଦ୍ର କିରଣ ସଙ୍ଗେ ତୁଳନା କରାଯିବା ଏକ ପ୍ରକାର ଶୁଭ୍ରପୁଷ୍ପ; ରାଣୀଫୁଲ—A flower named in comparing bright moonlight. (ଯଥା—ଆଜି ରଣି ଫୁଲ ପରି ଜହ୍ନ ପଡ଼ିଛି ।)
Rani phula

**ରଣେଚର**—ସଂ. ବିଣ. ପୁଂ ( ରଣେ+ଚର ଧାତୁ+କର୍ତ୍ତୃ. ଅ )—ଯୁଦ୍ଧଭୂମିରେ ଯୁଦ୍ଧ ବେଳେ ଯାଆସ କରୁଥିବା—Going or moving about in the field of battle. ସଂ. ବି - ବିଷ୍ଣୁ (ଦ୍ବି. ଶ) – Bishṇu
Ranechara

**ରଣେସ୍ୱଚ୍ଛ**—ସଂ. ବି—କୁକୁଡ଼ା—A cock (Apte).
Raneswachchha

**ରଣୈଷୀ**—ସଂ. ବିଣ. ପୁଂ. ( ରଣ+ଇଷ୍ ଧାତୁ+କର୍ତ୍ତୃ. ଇନ୍ )—ଯୁଦ୍ଧ କରିବାକୁ ଇଚ୍ଛୁକ—Eager for battle.
Ranaishi
(ରଣୋତ୍ସୁକ, ରଣୋଦ୍ଦାମ—ଅନ୍ୟରୂପ)
(ରଣୈଷିଣୀ; ରଣୋତ୍ସୁକା—ସ୍ତ୍ରୀ)

**ରଣୋତ୍କଟ**—ସଂ ବିଣ. ପୁଂ (୭ମୀ ତତ୍)—ଯୁଦ୍ଧରେ ଉନ୍ମତ୍ତ—Furious or mad in battle.
Ranotkata
(ରଣୋତ୍କଟା—ସ୍ତ୍ରୀ) ସଂ. ବି—୧ । ସ୍କନ୍ଦାନୁଚର ବିଶେଷ—Name of an attendant of Skanda. ୨ । ଦୈତ୍ୟ ବିଶେଷ (ହରି ବଂଶ)—2. Name of a demon.

**ରଣୋତ୍ସାହ**—ସଂ. ବି. (୭ମୀ ତତ୍)—ସମର ବିଷୟରେ ସାହସିକତା—Prowess in battle.
Ranotsāha
(ରଣୋତ୍ସାହୀ—ବିଣ. ପୁଂ ରଣୋତ୍ସାହିନୀ—ସ୍ତ୍ରୀ)

**ରଣ୍ଡ**—ସଂ. ବି. ପୁଂ ( ରମ୍ ଧାତୁ+କର୍ତ୍ତୃ. ଡ )—୧ । ଧୂର୍ତ୍ତ—1. Crafty; cunning. ୨ । ଧର୍ମହୀନ—2. Impious. ୩ । ଆଶ୍ରମ ବିହୀନ; ଯେ ସଂସାର-ଧର୍ମରେ ବା ଗାର୍ହସ୍ଥ୍ୟାଶ୍ରମରେ ପ୍ରବେଶ କରି ନାହିଁ—3. Homeless; houseless; one who has not married. ୪ । ବନ୍ଧ୍ୟ—4. Impotent or barren (person). ୫। ଅଜାତାପତ୍ୟ—5. Childless. ୬ । ଅଜାତ ଫଳ (ବୃକ୍ଷ)—6. Unfruitful; barren (tree). ୭ । ଅଣ୍ଡିର ଗଛ—7. Male (tree). ୮ । ଅର୍ଦ୍ଧଚର୍ମାବୃତ୍ତ ଅବୟବ ଯୁକ୍ତ—8. Having a limb, the skin of which is half opened. ୯ । ବର୍ମହୀନ—9. Armourless; destitute of armour. ୧୦ । ଅସ୍ଥିର (ଦ୍ବି. ଶ)—10. Restless. ୧୧ । ହୀନାଙ୍ଗ; ବିକଳାଙ୍ଗ—11. Maimed; mutilated. ସଂ. ବି—୧ । ଅଣ୍ଡିର
Randa
(ରଣ୍ଡା—ସ୍ତ୍ରୀ)

ଗଛ—1. A barren tree (Apte). ୨ । ନିଃସନ୍ତାନ ଅବସ୍ଥାରେ ମୃତ ବ୍ୟକ୍ତି—2. A person who dies without a male issue

ରଣ୍ଡକ—ସଂ. ବି. (ରଣ୍ଡ+ସ୍ୱାର୍ଥେ କ)—୧। ଅଫଳନ୍ତ ବା ଅଣ୍ଡିରା ଗଛ—Randaka 1. Barren tree. ୨ । (ଏଥିର ଫଳ ଫୁଲ ନାହିଁ) ମୂଷାକର୍ଣ୍ଣୀ; ମୂଷାକାନ ଦଳ—2. Salvania Culcullata; an aquatic plant. ୩ । ସଂସ୍କୃତ ଛନ୍ଦୋବିଶେଷ—3 Name of a Sanskrit metre.

ରଣ୍ଡା—ସଂ. ବି. ସ୍ତ୍ରୀ. (ରଣ୍ଡ+ଆ)—୧। ରାଣ୍ଡ; ବିଧବା—1. Widow. Randā ୨ । ବେଶ୍ୟା—2. Prostitute; harlot. ୩ । (ରାଣ୍ଡ, ରାଣ୍ଡୀ—ଦେ. ରୂପ) ମୂଷାକାନ ଦଳ—3. An aquatic plant; Salvania Cucullata.

ରଣ୍ଡାଶ୍ରମୀ—ସଂ. ବି. ପୁଂ (ରଣ୍ଡ=ବିଫଳ+ଆଶ୍ରମ+ଇନ୍; ୧ମା. ୧ବ)-Randāsrami ୪୮ ବର୍ଷ ବୟସ ପରେ ଯେଉଁ ଲୋକର ସ୍ତ୍ରୀ ମରିଥାଏ—A widower after the age of 48

ରଣ୍ଡୀ—ଦେ. ବି. (ସଂ. ରଣ୍ଡା)—୧। ବିଧବା—1. Widow. ୨ । Randi ବେଶ୍ୟା—2. Harlot. ୩। ସ୍ତ୍ରୀ—3. A woman. ବାଂଲ **रंडी** ୪ । ପତ୍ନୀ—4. Wife. ୫ । (ସଂ.ଏରଣ୍ଡ) ଆସାମଦେଶ ଜାତ ଏଣ୍ଡି ରେସମ; ଏରଣ୍ଡି—5. Assam silk; **रेंडी, अरंडी** Endi. ୬ । ଆସାମଜାତ ଏଣ୍ଡି ରେସମର ବସ୍ତ୍ର—6. A cloth made of Assam silk or Endi.

ରଣ୍ଡୀଆ—ଦେ. ବିଣ ପୁଂ—ରଣ୍ଡୀବାଜ୍ ( ଦେଖ ) Randiā Randibāj ( See )

ରଣ୍ଡୀବାଜ୍—ଦେ. ବିଣ. ପୁଂ—(ସ. ରଣ୍ଡୀ+ଫା.ପ୍ରତ୍ୟୟ ବାଜ୍)—Randibāj ୧ । କାମୁକ—1. Amorous. ୨ । ବେଶ୍ୟାପ୍ରିୟ—ବାংଡଖୋର. রাংডবাজ **रंडीबाज** 2. Addicted to whores; (ରଣ୍ଡୀବାଜିଆ—ଅନ୍ୟରୂପ) whoremonger. ୩ । ସ୍ତ୍ରୀ-ଆସକ୍ତ; ସ୍ତ୍ରୈଣ—3. Addicted to female society. ୪ । ଲମ୍ପଟ; ପରସ୍ତ୍ରୀରତ—4. Adulterous; lecherous, lewd.

ରଣ୍ଡୀବାଜି—ଦେ. ବି.—୧ । କାମୁକତା—1. Amorousness; Randibāji lewdness. ୨ । ବ୍ୟଭିଚାର; ଲମ୍ପଟତା—বেংডীবাজী; রাংডবাজী **रंडीबाजी** 2. Lechery; adultery. fornication. ୩ । ବେଶ୍ୟାପ୍ରିୟତା—3. Fondness for the company of Whores.

ରତ—ସ. ବିଣ. ପୁଂ. (ରମ୍‌ଧାତୁ=କ୍ରୀଡ଼ା କରିବା+କର୍ତ୍ତ୍ତ. ତ)—୧ । Rata ଅନୁରକ୍ତ; ଲିପ୍ତ; ଆସକ୍ତ—1 Devoted to; attached to; addicted to. (ରତା—ସ୍ତ୍ରୀ) [ଉ—ଦେବ ତୋ ଏକାନ୍ତ କାନ୍ତ, ଛଡ଼ରେ କସ୍ତୁରି ସ୍ମିତ-,ହାସି,ସେ ତୋରେ କରଇ ରତ ହେ । ଭଞ୍ଜ—ପ୍ରେମସୁଧାନିଧି ।] ୨ । ନିଯୁକ୍ତ; ବ୍ୟାପୃତ—2 Engaged in. ସ. ବି—୧ । (+ଭାବ ତ) ରମଣ; ରତି; ମୈଥୁନ—1. Copulation; sexual intercourse ୨ ।(+ଅଧିକରଣ ତ) ଗୁହ୍ୟ ଦେଶ—2. Anus; privities; private parts. ୩ । ଯୋନି ( ହ୍ରି. ଶ. )—3. Female organ. ୪ । ଲିଙ୍ଗ (ହ୍ରି. ଶ)—4 Male organ. ୫ । (+କର୍ମ.ତ —ପ୍ରେମ; ପ୍ରଣୟ;ଅନୁରାଗ (ହ୍ରି. ଶ)—5. Love; attachment. ଦେ.ବି.—୧ । କେଳି-କୌତୁକ; ଅମୋଦ ପ୍ରମୋଦ—1. Amusements; sport. [ଉ—କଛପ ମତ୍ସ୍ୟ ମଣ୍ଡୂକ ମତ୍ତ ହୋଇ ରହିଲେ ସୁଖରେ ରତ । ପାନକୃଷ୍ଣ. ରସକଲ୍ଲୋଳ ।] ୨ । ଆସକ୍ତି—2. Attachment; devotion. (ଯଥା—ତାର ଏ ବିଷୟରେ ଭାରି ରତ ଲାଗିଛି ।)

ରତ କୀଲ—ସ. ବି. ପୁଂ( ବହୁବ୍ରୀହି; ରତ=ମୈଥୁନ+କୀଳ=ବନ୍ଧନ Rata kila ଯାହାର )—କୁକୁର—Dog. (ଦ—କୁକୁରଙ୍କର ସଙ୍ଗମ କଷ୍ଟଦାୟକ ଓ ସ୍ୱାନଦଣ୍ଡଙ୍କର ଥରେ ସଙ୍ଗମ ଆରମ୍ଭ ହେଲେ ସହଜରେ ସେ ଦୁହିଙ୍କର ଛୋଟ ଛାଡ଼ଯାଏ ନାହିଁ ।] (ରତକୀଲକ—ଅନ୍ୟରୂପ,ରତକୀଲା—ସ୍ତ୍ରୀ)

ରତ କୂଜିତ—ସ ବି—(୭ମୀ ତତ୍) - ସ୍ତ୍ରୀସଙ୍ଗମ କାଳରେ ସ୍ତ୍ରୀକଣ୍ଠ-Rata kūjita ନିଃସୃତ ସୁଖବ୍ୟଞ୍ଜକ ଅବ୍ୟକ୍ତ ମଧୁର ଧ୍ୱନି; ଶୀତ୍କାର, ମଣିତ—Lascivious low murmur uttered by a woman during coition; Sonitus in Coita.

ରତ ଗୁରୁ—ସ. ବି. ପୁଂ—(୭ମୀ ତତ୍; ରତ ବିଷୟରେ ଗୁରୁ)—ସ୍ୱାମୀ; Rata guru ପତି—Husband

ରତ ଗୃହ—ସ. ବି. ଯୋନି—Female organ; Pudendum Rata gṛuha Muliebre (M. W )

ରତ ଜ୍ୱର—ସଂ. ବି—( ବହୁବ୍ରୀହି) —କାକ; ବାୟସ — Rata jwara Crow.

ରତ ତାଲୀ—ସଂ. ବି. ସ୍ତ୍ରୀ. (ରତ+ତାଳ ଧାତୁ=ପ୍ରତିଷ୍ଠିତ ହେବା+ Rata tāli କର୍ତ୍ତ୍ତ. ଇନ୍; ୧ମା. ୧ବ)—୧ । କାମୁକ ବ୍ୟକ୍ତି; ଲମ୍ପଟ—1. A libertine; lecher, a voluptuary. ୨ । କୁଟୁଣୀ; ରମଣଦୂତ—2. A panderer; whore monger. ୩ । (ସଂ.ବି. ସ୍ତ୍ରୀ; ରତ+ତାଳ+ଈ )—୩ । ଦୂତୀ, କୁଟୁଣୀ—3. A bawd, procuress.

ରତନ—ଗ୍ରା. ବି. (ସଂ.ରତ୍ନ)—୧ । ରତ୍ନ (ଦେଖ)—1. Ratna(See) Ratana [ଉ—ତେଡା କରାଇଲେ ଯତନେ ମହଣୀ-ରତନ ରତন **रतन** ପଣନ୍ତ ବିଷ । ରାଧାନାଥ. ପାର୍ବତୀ ।] ୨ । ରତ୍ନାକରର ଡାକ ନାମ—2. Name for calling Ratnakara. ୩ । ବହୁ ମଧ୍ୟରେ ଶ୍ରେଷ୍ଠ ବ୍ୟକ୍ତି—3. Preeminent person. ଗ୍ରା. ବିଣ—ଶ୍ରେଷ୍ଠ—Excellent; chief.

ରତନ ହାସା(ସୀ)—ଗ୍ରା. ବିଣ. ସ୍ତ୍ରୀ—'ସଂ. ରତ୍ନ+ହାସ; ଯାହାର ହାସ୍ୟ Ratana hāsā(si) ମଧୁରତାରେ ରତନ ସଙ୍ଗେ ତୁଳନ

କସ୍ୟାଏ । ]—ମଧୁର ହାସିନୀ—Sweet-smiling (woman)

ରତନା—ଗ୍ରା. ବି. ପୁଂ—ରତ୍ନାକରର ଅନାଦରାର୍ଥକ ଡାକ ନାମ—
Ratanā Name for calling Ratnākara.

ରତନା(ନେ)ଈ—ଦେ. ବି. ସ୍ତ୍ରୀ ( ସ. ରତ୍ନଦାୟିନୀ )—ଦେବୀ ବିଶେଷ
Ratanā(ne)ī —Name of a popular goddess.

ରତ ନାରୀ(ରା)ଚ—ସ. ବି ( ରତ+ନାରୀ+ଚ ଧାତୁ=ଏକତ୍ର କରିବା
Rata nārī(rā)cha +ସଂଜ୍ଞାର୍ଥ ଅ; ରତ+ନାରାଚ; ବହୁବ୍ରୀହି)
—୧ । କୁକ୍କୁର—1. Dog. ୨ । କାମଦେବ—2. Cupid. ୩ । ଷିଡ୍ଗ; ଲମ୍ପଟ ବ୍ୟକ୍ତି—3. A lecher; a libertine; a voluptuary. ୪ । ରତହିଣ୍ଡକ; ରମଣଚୌର—4. Ravisher. ୫ । ରତ କୂଜିତ; ଶୀତକାର; ମଣି ତ.5 Lascivious murmur of a lady in rapture during sexual congress.

ରତ ନିଧି—ସ. ବି (ବହୁବ୍ରୀହି )—ଖଞ୍ଜନପକ୍ଷୀ; କଜଳପାତି ପକ୍ଷୀ—
Rata nidhi The wagtail bird.

ରତନୀ—ଦେ. ବି—ରତ୍ନମଣିର ଡାକନାମ—A name for
Ratanī calling Ratnamaṇi.

ରତ ବନ୍ଧ—ସ. ବି (୭ମୀ ତତ୍ପୁ)—୧ । ରମଣ—1. Sexual
Rata bandha intercourse ( M.W.). ୨ । ରମଣ କରିବା ବିଷୟରେ ଭିନ୍ନ ଭିନ୍ନ ଅବସ୍ଥିତି—2. Different poses during sexual congress.

ରତବାନ୍—ସ. ବିଣ. ପୁ° (ରତ+ବତ୍; ୧ମା,୧ବ)—୧ । ସନ୍ତୁଷ୍ଟ—
Ratabān 1. Satisfied; pleased ( M W.).
(ରତବତୀ—ସ୍ତ୍ରୀ) ୨ । ସୁଖୀ—2. Happy ( M. W. ).

ରତ ବିଶେଷ—ସ ବି (ବହୁବଚନ )—ରମଣ ସମୟରେ ଅବଲମ୍ବିତ
Rata bisesha ବିବିଧ ଅବସ୍ଥିତି—The various kinds of sexual union (M.W.)

ରତ ବ୍ରଣ—ସ. ବି. ପୁଂ ( ବହୁବ୍ରୀହି, ରତ+ବ୍ରଣ=କ୍ଷତ, ରତିଦ୍ୱାର
Rata braṇa ଏମାନଙ୍କର ଜନନେନ୍ଦ୍ରିୟ କ୍ଷତଯୁକ୍ତ ହୁଏ)—କୁକୁର—
(ରତଶାୟୀ—ଅନ୍ୟରୂପ, ରତବ୍ରଣା, ରତଶାୟିନୀ—ସ୍ତ୍ରୀ) Dog.

ରତ ମାନସ—ସ.ବିଣ. ପୁଂ ( ବହୁବ୍ରୀହି )—ସନ୍ତୁଷ୍ଟମନାଃ—
Rata mānasa Having a delighted mind.

ରତ ରତ—ଦେ. ବିଣ ( ସ. ରକ୍ତ )—୧ । ଅସ୍ତୋନ୍ମୁଖ ( ସୂର୍ଯ୍ୟ )—
Rata rata 1. ( the sun ) About to set. ୨ । ଶେଷ ହେଉଥିବା ( ଦିବସ )—2. [ the day ] About to end. [ ଉ—ଉକନ୍ଦନ ଦିନ ଓପର-ଓଳ ବେଳ ରତରତ, ଗୋଟାଏ ମୂଳକରେ ତାହାର ଲଙ୍ଗର କଲା । ଫକୀରମୋହନ. ଗଳ୍ପସ୍ୱଳ୍ପ ] । ଦେ. ବି—
ରତବତ ୧ । (ସୂର୍ଯ୍ୟର) ଅସ୍ତୋନ୍ମୁଖ ଅବସ୍ଥା—1. The state
रतरत of the sun immediatel before setting. ୨ । ଦିବାବସାନ; ସନ୍ଧ୍ୟାର ପ୍ରାକ୍କାଳ—2. The time just before sunset.

ରତରତ ହେବା—ଦେ. କ୍ରି ( ସୂର୍ଯ୍ୟ କର୍ତ୍ତା ସଙ୍ଗେ ଯୁକ୍ତ )—
Ratarata hebā ରତା ମାରିବା—About to set. ଦେ.
ରତବତ କବା ବି (ଦିନ ବା ବେଳ କର୍ତ୍ତା ସଙ୍ଗେ ଯୁକ୍ତ)—କ୍ରିୟାବାର
रतरत होना ଅବ୍ୟବହିତ ପୂର୍ବାବସ୍ଥା—Time just before ( sunset ). [ ପ୍ରୟୋଗ—ଦିନ ରତରତ ହେଲାଣି =ବର୍ତ୍ତମାନ ସନ୍ଧ୍ୟା ହୁଅନ୍ତ, ସୂର୍ଯ୍ୟ ରତରତ ହେଲେଣି= ସୂର୍ଯ୍ୟ ଅସ୍ତାଚଳୋନ୍ମୁଖ ହେଲେଣି ( The sun is about to set ) ]

ରତର୍ଦ୍ଧିକ—ସଂ. ବି (ରତ=ଆନନ୍ଦ+ଋଦ୍ଧି=ବୃଦ୍ଧି +କୃ ଧାତୁ+କର୍ତ୍ତୃ.
Ratarddhika ଅ )—୧ । ଦିବସ—1. Day. ୨ । ସୁଖସ୍ନାନ—2. A pleasure-bath; bathing for pleasure. ୩ । ଅଷ୍ଟମଙ୍ଗଳ; ଆଠଗୋଟି ଶୁଭସୂଚକ ବସ୍ତୁର ସମନ୍ୱୟ; ଆଠପ୍ରକାର ମାଙ୍ଗଲ୍ୟ ଦ୍ରବ୍ୟ—3. The aggregate of 8 auspicious objects. [ ଯଥା—ବ୍ରାହ୍ମଣ, ଗୋ, ଅଗ୍ନି, ସ୍ୱର୍ଣ୍ଣ, ଘୃତ, ଆଦିତ୍ୟ, ଜଳ ଓ ରାଜା;

ମତାନ୍ତରରେ—ସିଂହ, ବୃଷ, ହସ୍ତୀ, ଜଳକୁମ୍ଭ, ବ୍ୟଜନ ଧ୍ୱଜ, ଶଙ୍ଖ ଓ ପ୍ରଦୀପ । ] ୪ । ଗ୍ରୀବାକେଶ, ପୁଚ୍ଛ, ମୁଖ, ବକ୍ଷସ୍ଥଳ ଓ ପୃଷ୍ଠ, ଏହି ଆଠଗୋଟି ସ୍ଥାନରେ ମଙ୍ଗଳସୂଚକ ଶ୍ୱେତଚିହ୍ନ ଯୁକ୍ତ ଅଶ୍ୱ—4. A horse with auspicious white patches on eight parts of its body.

ରତଶାୟୀ—ସଂ. ବି.ପୁ° ( ରତ=ରମଣ+ଶୀ ଧାତୁ+କର୍ତ୍ତୃ. ଇନ୍)—
Rataśāyī (ରତଶାୟିନୀ=ସ୍ତ୍ରୀ) କୁକ୍କୁର—Dog.

ରତ ହିଣ୍ଡକ—ସଂ. ବି. ପୁଂ ( ରତ+ହିଣ୍ଡି ଧାତୁ=ଗମନ କରିବା+
Ratahiṇḍaka କର୍ତ୍ତୃ. ଅକ)—୧ । ଲମ୍ପଟ—1. Lecher; adulterer. ୨ । ସ୍ତ୍ରୀଚୌର; ନାରୀ ଅପହାରକ ବ୍ୟକ୍ତି—2. One who carries off women for violating them, a seducer of women (M.W.) ୩ । ବଳାତ୍କାର ପୂର୍ବକ ସ୍ତ୍ରୀ ରମଣକାରକ ବ୍ୟକ୍ତି—3. A ravisher.

ରତା(ତ୍ତା)—ଦେ. ବି (ସ. ରକ୍ତ ମତ୍ସ୍ୟ)—୧ । ମାଗୁରଜାତୀୟ କ୍ଷୋଟ ଓ
Ratā(ttā) ଈଷତ ରକ୍ତାଭ ଅଶକଲୀ ମତ୍ସ୍ୟ—1. A kind
छोट मांगुर of scaleless fish; Clarius Raktāk. ୨ । ମୁଖର ଗ୍ଳାନିବିଶେଷ; ମୁଖର ରକ୍ତାଭ ହେବା ରୋଗବିଶେଷ—2. A kind of rosy discoloration of the face. ୩ । ସ. ରତ ) ଆସକ୍ତି—3. Attachment. [ଉ—ବାଧି ଭୂବି ସୀତା ମଧୁରତା ରତା ମୁଖ ଯେ—ଉଞ୍ଜ. ବୈଦେହୀଶବିଳାସ । ] ଦେ. ବିଣ—ଅନୁରକ୍ତ; ଆସକ୍ତ—Devoted to; attached to. [ ଉ—ବୈଜୟନ୍ତୀମାଳାଧର ଧରଣୀ କରତା, ବର୍ଣ୍ଣ ଧର କେହିଁ ଧର୍ତ୍ତାଗ ଭୁଲେ ରତା—ଉଞ୍ଜ. ବୈଦେହୀଶବିଳାସ । ] ଗ୍ରା. ବିଣ (ସଂ. ରକ୍ତାଭ)-

ରକ୍ତବର୍ଣ୍ଣବିଶିଷ୍ଟ—Red. [ ଉ—କଳତ କୋମଳ ବାହୁଲତା ରତା ପାଣି, ଶିରଷ ମାଳାରେ କୋକନଦ ଝୁମ୍ପା ଜାଣି—ଶିଶୁଶଙ୍କର. ଉଷାଅଭିଳାଷ । ]

ରତାନ୍ତ—ସଂ. ବ (୬ଷ୍ଠୀ ତତ୍; ରତ+ଅନ୍ତ)—ରତିର ସମାପ୍ତି—
Ratānta The end of sexual enjoyment.
(ରତାବସାନ—ଅନ୍ୟରୂପ)

ରତାନ୍ଦୁକ—ସଂ. ବ ( ବହୁବ୍ରୀହି; ରତ+ଅନ୍ଦୁକ=ଶୃଙ୍ଖଳ; ରତ ଯାହାର ଶୃଙ୍ଖଳସ୍ୱରୂପ )—କୁକ୍କୁର—
Ratānduka The dog.

ରତାନ୍ଧ୍ରୀ—ସଂ. ବ—କୁଜ୍ଝଟିକା; କୁହୁଡ଼—
Ratāndhri Fog; mist.

ରତା ବୁଡ଼ିବା—ଦେ.ବି— ସୂର୍ଯ୍ୟାସ୍ତବେଳା—
Ratā burdibā Time of sunset.
सूर्य्यास्त समय सूरज डूबना

ରତାମର୍ଦ୍ଦ—ସଂ. ବ (ବହୁବ୍ରୀହି; ରତ+ଅମର୍ଦ୍ଦ=ଉତ୍ପୀଡ଼ନ; ରତ ଯାହା ପକ୍ଷରେ ଆମର୍ଦ୍ଦ ଅଟେ )—କୁକ୍କୁର—
Ratāmardda The dog.
(ରତାମର୍ଦ୍ଦୀ—ସ୍ତ୍ରୀ)

ରତା ମାଟି—ପ୍ରାଦେ (ଗଡ଼ଜାତ) ବ. (ସଂ. ରକ୍ତାଭ+ମୃତ୍ତିକା)—ଈଷତ୍ ଲାଲଆବର୍ଣ୍ଣବିଶିଷ୍ଟ ମାଟି—Soil with a
Ratā māti redish colour.
लालचे माटि लाल मिट्टी

ରତା ମାରିବା ଦେ. ବି. (ସଂ. ରକ୍ତ; ସୂର୍ଯ୍ୟାସ୍ତ ସମୟରେ ପଶ୍ଚିମାକାଶର ରକ୍ତିମା)—ସୂର୍ଯ୍ୟାସ୍ତ ହେଉଥିବା ସମୟ; ଦିନ
Ratā māribā
( ଦିନ ରତା ମାରିବା, ସୂର୍ଯ୍ୟ ରତା ମାରିବା—ଅନ୍ୟରୂପ ) ରତରତ ହେବା—The time when the sun is setting.
ଦେ.କ୍ରି—୧ । (ସୂର୍ଯ୍ୟ କର୍ତ୍ତା ସଙ୍ଗେ ବ୍ୟବହୃତ)—ଅସ୍ତାଚଳୋନ୍ମୁଖ ହେବା; ବୁଡ଼ିବାର ଉପକ୍ରମ କରିବା—1,(The sun) About to set. ୨ । (ଦିନ କର୍ତ୍ତା ସଙ୍ଗେ ବ୍ୟବହୃତ); ବୁଡ଼ିବାର ଉପକ୍ରମ ହେବା—2, (The day) About to close.

ରତା ମୁହାଁ—ଦେ. ବଣ. ପୁଂ.—(ସଂ. ରକ୍ତ+ମୁଖ)—୧ । ଯେ ସବୁବେଳେ ମୁହଁକୁ ବିରସ କରିଥାଏ—1, Having
Ratāmuhān a frowning or scowling face. ୨ ।
ଗୋମଡ଼ାମୁହାଁ
चुपसयतान ଚୁପ୍ ସଇତାନ୍—2. A person who is outwardly meek but is very wicked.
(ରତାମୁହାଁ—ସ୍ତ୍ରୀ)
୩ । କୋପନ ସ୍ୱଭାବ ବ୍ୟକ୍ତି—3. A person of an angry temper. ୪ । ଯେଉଁ ବ୍ୟକ୍ତିର ମୁହଁ ସର୍ବଦା କ୍ରୋଧରେ ଆରକ୍ତ—4. With a countenance red with anger.

ରତାୟନୀ—ସଂ. ବ. ସ୍ତ୍ରୀ—(ବହୁବ୍ରୀହି, ରତ+ଅୟନ=ଗମନ+ଈ)—
Ratāyani ବେଶ୍ୟା—Harlot; whore; prostitute.

ରତାରମ୍ଭ—ସଂ. ବ—(୬ଷ୍ଠୀ ତତ୍)—ରତି କ୍ରିୟାର ଆରମ୍ଭ—The
Ratārambha beginning or commencement of sexual congress. (M. W).

ରତାର୍ଥୀ—ସଂ. ବଣ. ପୁଂ—(ରତ+ଅର୍ଥ+ଇନ୍; ୧ମା. ୧ବ.)—୧ ।
Ratārthi ମୈଥୁନାଭିଳାଷୀ—1. Libidinous; longing for copulation. ୨ । କାମୁକ—2, Lustful;
(ରତାର୍ଥିନୀ – ସ୍ତ୍ରୀ) lascivious; wanton.

ରତାଳିଆ—ପ୍ରାଦେ. (ଧାଳପୁର) କି. ବଣ.—ସମ୍ପୂର୍ଣ୍ଣରୂପେ ଶୁଖି ନ
Ratāliā ପାରି ରକ୍ତବର୍ଣ୍ଣ ଦେଖାଯିବା [ବଡ଼ି]—Looking reddish on account. of not being dried up completely (said of balls of corn-paste).
[ପ୍ରୟୋଗ—ବଡ଼ି ରତାଳିଆ ହୋଇଛି ।]

ରତାସକ୍ତ—ସଂ. ବଣ. ପୁଂ.—[୭ମୀ ତତ୍]—କାମୁକ—
Ratāsakta Lascivious; libidinous.
[ରତାସକ୍ତା—ସ୍ତ୍ରୀ] [ରତାସକ୍ତି—ବ]

ରତି—ସଂ. ବ ସ୍ତ୍ରୀ--(ରମ୍ ଧାତୁ=କ୍ରୀଡ଼ା କରିବା+ଭାବ. କ୍ତି)—୧ ।
Rati କ୍ରୀଡ଼ା—1. Play; sport. ୨ । ଆସକ୍ତି; ଅନୁରାଗ—2. Attachment; passion; fondness. ୩ । ପ୍ରୀତି; ପ୍ରଣୟ; ପ୍ରେମ—3. Love. [ ଦ୍ର—ଏହା ଶୃଙ୍ଗାର ରସର ସ୍ଥାୟୀ ଭାବ ଅଟେ ।] ୪ । ସନ୍ତୋଷ—4. Pleasure; delight; satisfaction. ୫ । ରମଣ;ସମ୍ଭୋଗ; ମୈଥୁନ—5. Copulation; sexual enjoyment. [ଦ୍ର—ହିନ୍ଦୁ କାମଶାସ୍ତ୍ରରେ ରତି ବା ମୈଥୁନ ପ୍ରକ୍ରିୟା ଉପଲକ୍ଷରେ ଭିନ୍ନ ଭିନ୍ନ ୧୬ ଗୋଟି ଓ ମତାନ୍ତରରେ ୬୪ ଟି ବନ୍ଧ ବର୍ଣ୍ଣିତ ହୋଇଅଛି । (ରତିବନ୍ଧ ଦେଖ) ।] ୬ । ଗୁହ୍ୟଦେଶ—6. Privities. ୭ । (+କର୍ତ୍ତୃ.କ୍ତି)—କାମଦେବଙ୍କ ପତ୍ନୀ—7. The wife of God Cupid. [ଦ୍ର—ଏ ଦକ୍ଷ ପ୍ରଜାପତିଙ୍କ ସ୍ୱେଦଜଳରୁ ନିର୍ଗତ ସ୍ୱେଦଜା କନ୍ୟା (ହ୍ର. ଶ.) ଏହାଙ୍କ ସ୍ୱାମୀ ମଦନ ହରକୋପାନଳରେ ଭସ୍ମୀଭୂତ ହେବାରୁ ଦେବାଦେଶରେ ଏ ଶମ୍ବର ଦୈତ୍ୟର ଘରେ ମାୟାବତୀ ନାମ ଧାରଣ କରି ଅବସ୍ଥାନ କରୁଥିଲେ ଓ ପରେ ସ୍ୱାମୀ ପ୍ରଦ୍ୟୁମ୍ନ ରୂପରେ ଜନ୍ମ ହେବାରୁ ତାଙ୍କ ସଙ୍ଗେ ମିଳିତା ହେଲେ । ରତିଙ୍କର ରୂପ ସଂସାରର ସବୁ ସ୍ତ୍ରୀଙ୍କ ମଧ୍ୟରେ ସୁନ୍ଦରତମ ବୋଲି ଶାସ୍ତ୍ରରେ ବର୍ଣ୍ଣିତ ।] ୮ । ସଙ୍ଗତି, ମିଳନ—8. Union; conjunction [ଉ—ଯେ ଯୋଗୀନ୍ଦ୍ର ଗଣେ ସେବ କଲେ, ସେ ରତି ଲଭେ ବ୍ରହ୍ମ ଭୁଲେ । ଜଗନ୍ନାଥ. ଭାଗବତ. । ] ୯ । ଇନ୍ଦ୍ରିୟ ସୁଖ; ରତି ସୁଖ—9. Sexual pleasure (Apte). ୧୦ । (+ଅଧିକରଣ. କ୍ତି) ଯୋନି—10. Pudenda (Apte). ୧୧ । ଚନ୍ଦ୍ରଙ୍କର ୬ଷ୍ଠ କଳାର ନାମ—11. Name of the 6th digit of the moon ( Apte ).
ଦେ. ବ (ସଂ. ରକ୍ତିକା; ରତ୍ତି; ରତ୍ତିକା)—୧ । ଗୁଞ୍ଜାଫଳ—1. A red berry ( used as goldsmiths' weight); Abrus Precatorius. ୨ । ରତିଫଳ (ଦେଖ)—2. Ratiphala (See). ୩ । ଓଜନର

ପରମାଣବିଶେଷ—3 A standard weight (=$2\frac{1}{2}$ grains of English weight) [ ଉ—ବିଶେଷ ରତିରେ କେ ହୋଇବ କିଣିବ, ବଣିକଗ୍ରାବରେ ଭିନ୍ନ ବଣିକ କର—ଉ୍ଭ. ବୈଦେହୀଶବିଳାସ । ] [ଦ୍ର—୧ ରତି=୧୦ ମସା; ୧ ମଷା=୮ ରତି; ୧ ରତି =୪ ଧନ ।] ୪ । (ଲକ୍ଷଣାର୍ଥ) ଅତି ସାମାନ୍ୟପରିମିତ ବସ୍ତୁ- 4. (figurative) A very little quantity of a thing. ୫ । ଅତି କ୍ଷୁଦ୍ରପରିମାଣ—5. A very little quantity. [ଉ—ରତିକର ଭୁଲା ଚୋରା, ରତି କରକ ରଦନା ଭ୍ରଣା ହେବ—କବିସୂର୍ଯ୍ୟ. ଭୁମ୍ଭା ଗୀତ । ]

**ରତିଏ**—ଦେ. ଅ—୧ । ଏକ ରତିମାତ୍ର; ଓଜନରେ ୧ ରତି—
Rati 1. One rati or 4 grains only.
এক রতি ୨ । (ଲକ୍ଷଣାର୍ଥ) ଅତି ସାମାନ୍ୟ ପରିମାଣବିଶିଷ୍ଟ—
एक रती 2. (figurative) Very slight; a particle of [ଯଥା—ତୋ କଥାରେ ରତିଏ ସତ ନାହିଁ ] ୩ । ଅତି ସାମାନ୍ୟରେ—3. Very slightly. [ ଉ—ରତିଏ ସେ ସଙ୍ଗେ ଭୁଲନା ନୋହିଲ—ଉ୍ଭ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ]।

**ରତିକର**—ସଂ. ବିଣ (ରତି+କୃ ଧାତୁ+କର୍ତ୍ତୃ. ଅ)—୧ । ଆନନ୍ଦଦାୟୀ-
Ratikara 1. Giving pleasure (Apte). ୨ । ପ୍ରେମ
[ରତିକରୀ—ସ୍ତ୍ରୀ] ମୁଗ୍ଧ—2. Enamoured; being in love [M. W. ] ସଂ. ବି—ସମାଧି ବିଶେଷ— Name of a particular Samādhi [ M. W. ]

**ରତିକରା**—ସଂ. ବି. ସ୍ତ୍ରୀ [ରତିକର+ସ୍ତ୍ରୀ. ଆ]—ଅପ୍ସରାବିଶେଷ—
Ratikarā Name of an Apsarā [M. W.]

**ରତି କରିବା**—ଦେ. କ୍ରି—ମୈଥୁନ କରିବା—
Rati karibā To copulate.
রতি করা रति करना

**ରତିକର୍ମ**—ସଂ. ବି (ରତି+କର୍ମନ୍; ରୂପକ)—ସ୍ତ୍ରୀ ପୁରୁଷଙ୍କର ମୈଥୁନ-
Rati karma ରୂପ କାର୍ଯ୍ୟ—The act of coition or
ରତିକ୍ରିୟା } ଅନ୍ୟରୂପ copulation: sexual inter-
ରତିକ୍ରୀଡ଼ା } course.

**ରତି କଳା**—ସଂ. ବି[ରୂପକ; ରତି+କଳା]—ରତି ବିଦ୍ୟା—The art
Rati kalā or science of copulation; sexual science. ଦେ. ବି. ସ୍ତ୍ରୀ.—ସ୍ତ୍ରୀଙ୍କୁ ଦିଆଯିବା ନାମ— A name given to females.

**ରତିକାମୀ**—ସଂ. ବିଣ. ପୁଂ (ରତି+କାମିନ୍; ୧ମା. ୧ବ)—ରମଣେଚ୍ଛୁ;
Ratikāmi କାମୁକ—Amorous; libidinous,
(ରତିକାମ, ରତୀଚ୍ଛୁ, ରତୀଚ୍ଛୁକ—ଅନ୍ୟରୂପ ) soliciting coition.
(ରତିକାମିନୀ—ସ୍ତ୍ରୀ)
(ରତିକାମନା, ରତୀଚ୍ଛା—ବିଶେଷ୍ୟ)

**ରତି କୁଶଳ**—ସଂ ବିଣ. ପୁଂ (୭ମୀ ତତ୍)—ରମଣ କ୍ରିୟାରେ ବା ରତି-
Rati kuśala ଶାସ୍ତ୍ରରେ ପଟୁ—Skilful in coition;
(ରତିକୁଶଳା—ସ୍ତ୍ରୀ) versed in sexual science.
(ରତିକୁଶଳତା, ରତିକୌଶଳ - ବି)

**ରତି କୁହର**—ସଂ. ବି ( ମ ପ. ଲୋ )—ସ୍ତ୍ରୀଯୋନି—Female
Rati kuhara organ; the vulva; vagina
(ରତିକୂପ, ରତିକୂପକ, ରତିକୂପିକା—ଅନ୍ୟରୂପ)

**ରତି ଖେଳ(ଲ)**—ଦେ. ବି.—(ସ.ରତିକ୍ରୀଡ଼ା)— ରତି କର୍ମ (ଦେଖ)—
Rati kherda(la) Rati karma (See)
বতি খেলা रति खेल

**ରତି ଗୃହ**—ସଂ. ବି (ମ. ପ. ଲୋ)—୧ । ରତିକୁହର (ଦେଖ)—
Rati gruha 1. Ratikuhara. (See) ୨ । କେଳିମନ୍ଦିର;
ରତି ସଦନ } ସ୍ତ୍ରୀ ପୁରୁଷଙ୍କର ରତିକ୍ରୀଡ଼ା ଯେଉଁ ଗୃହରେ
ରତି ଭବନ } ଅନ୍ୟରୂପ ହୁଏ—2. A room where a
ରତି ମନ୍ଦିର } couple copulate. ୩ । କ୍ରୀଡ଼ା-
ମନ୍ଦିର—3. A pleasure house. (Apte). ୪ । ବେଶ୍ୟାଗୃହ—4 A brothel. (See)

**ରତି କ୍ଷିନ୍ନ**—ସଂ. ବିଣ. ପୁଂ (୩ୟା ତତ୍)—ଅତିରିକ୍ତ ରତିକ୍ରିୟାଦ୍ୱାରା
Rati khinna ଅବସନ୍ନ—Fatigued by excessive
(ରତିକ୍ଷିନ୍ନା—ସ୍ତ୍ରୀ) sexual enjoyment; languid on
ରତିକ୍ଳାନ୍ତ } account of excessive co-
ରତିଗ୍ଲାନ } ଅନ୍ୟରୂପ— habitation.
ରତିଶ୍ରାନ୍ତ } [ରତିକ୍ଷିନ୍ନତା—ବିଶେଷ୍ୟ]

**ରତି ଖେଦ**—ସଂ. ବି (ମ. ପ. ଲୋ)—ରତିକ୍ରିୟାଜନିତ ଅବସାଦ ବା
Rati kheda ଗ୍ଲାନି—Langour due to sexual
[ ରତିକ୍ଳାନ୍ତି, ରତିଗ୍ଲାନି, ରତିଶ୍ରମ, ରତିଶ୍ରାନ୍ତି—ଅନ୍ୟରୂପ) enjoyment.

**ରତି ଚେଷ୍ଟା**—ସଂ. ବି (୭ମୀ ତତ୍)—କାମଚେଷ୍ଟା; ରମଣ ସମ୍ବନ୍ଧୀୟ
Rati cheshtā ବିବିଧ ଆନୁଷଙ୍ଗିକ ଓ ଆନୁପୂର୍ବିକ କର୍ମ—
[ରତିଚେଷ୍ଟିତ—ଅନ୍ୟରୂପ] [ଯଥା—ଆଲିଙ୍ଗନ, ଚୁମ୍ବନ, ଦନ୍ତ-ନଖ କ୍ଷତ, ଅଙ୍ଗସ୍ଖଳନ, ଅପାଙ୍ଗଦୃଷ୍ଟି, ସ୍ତନମର୍ଦ୍ଦନ)— Acts preliminary to and done in the course of sexual congress (e, g. embracing, kissing, scratching with the finger-nails and teeth, patting on different limbs to excite passion, casting amorous glances, assuming different suggestive postures, pressing of the woman's breast.)

**ରତି ଚୋର**—ଦେ. ବି (ସ. ରତିଚୌର)—ରତି ଚୌର (ଦେଖ)
Rati chora Rati chaura.

**ରତି ଚୋରି**—ଦେ. ବି (ସଂ. ରତିଚୌର୍ଯ୍ୟ)—ଗୁପ୍ତ ପ୍ରଣୟ; ଗୋପ୍ୟ ପ୍ରୀତି
Rati chori ବା ରତି—Secret love.
গুপ্তপ্রেম [ଉ—ଏହି ସମୟେ ଉତର ପାହାସ୍ତ, କହିଲା କନ୍ୟାପୁରେ
रतिचोरी ରତିଚୋର । ସିଶୁଶଙ୍କର. ଉଷାଅଭିଳାଷ ।]

**ରତି ଚୋର**—ସଂ. ବି. ପୁଂ (୭ମୀ ତତ୍)—୧ । ଗୁପ୍ତପ୍ରଣୟୀକାମୀ—
Rati chaura 1. A secret lover; seducer. ୨ । ଯେ ଚୌର୍ଯ୍ୟାବଲମ୍ବନପୂର୍ବକ ରତି କରେ—2. A ravisher.
[ରତି ତସ୍କର—ଅନ୍ୟରୂପ]
ରତିଚୌର୍ଯ୍ୟ, ରତିତସ୍କରତା, ରତିଚାସ୍କର୍ଯ୍ୟ } କର୍ମବାଚକ ବିଶେଷ୍ୟ]

**ରତିଜ୍ଞ**—ସଂ. ବିଣ. ପୁଂ (ରତି+ଜ୍ଞା. ଧାତୁ+କର୍ତ୍ତୃ. ଅ)—୧ । ରତି
Ratijna ବିଷୟରେ ଅଭିଜ୍ଞ—1. Skilled in the art of sexual intercourse. ୨ । ପ୍ରେମ ବିଷୟରେ ଅଭିଜ୍ଞ—2. Skilled in the art of love. (M. W).
[ରତିଜ୍ଞା—ସ୍ତ୍ରୀ]
[ରତିଜ୍ଞତା—ବି]

**ରତି ଦାନ**—ସଂ. ବି. (୬ଷ୍ଠୀ ତତ୍)—୧ । କୌଣସି ବ୍ୟକ୍ତିଙ୍କୁ ମୈଥୁନ-
Rati dāna ସୁଖ ଦେବା; ସହବାସକରଣ [ଦ୍ର—ସାଧାରଣତଃ ସ୍ତ୍ରୀ ପୁରୁଷକୁ ରତି ଦାନ କରିବା ବୋଲାଯାଏ] 1. Cohabitation; sexual intercourse; granting a person the pleasure of sexual enjoyment (said of a woman in relation to a man and vice versa.) ୨ । ଆନନ୍ଦ ଉତ୍ପାଦନ—2. Giving of pleasure to a person.
ରତିଦ—ପୁଂ } ବିଣ
ରତିଦା—ସ୍ତ୍ରୀ }

**ରତିଦାନ କରିବା**—ଦେ. କି—ସ୍ତ୍ରୀ ପୁରୁଷକୁ ଓ ପୁରୁଷ ସ୍ତ୍ରୀକୁ ସଙ୍ଗମ
Ratidāna kariba ସୁଖ ଭୋଗ କରିବାକୁ ସୁବିଧା ଦେବା—
To let a person cohabit with one's self.
রতিদান করা
রতি দান করনা
(ରତି ଦେବା—ଅନ୍ୟରୂପ)

**ରତି ଦୂତି**—ସଂ. ବି. ପୁଂ (୬ଷ୍ଠୀ ତତ୍)—ପ୍ରଣୟୀ ଓ ପ୍ରଣୟିନୀଙ୍କ ମଧ୍ୟରେ
Rati dūti ସଂବାଦ ବାହକ—Love-messenger.
(ରତି ଦୂତୀ—ସ୍ତ୍ରୀ)

**ରତି ନାଗ**—ସଂ ବି— ରତିବନ୍ଧ ବିଶେଷ; କାମଶାସ୍ତ୍ରୋକ୍ତ ଷୋଡ଼ଶ ବନ୍ଧ
Rati nāga ମଧ୍ୟରୁ ପଞ୍ଚଦଶ ବନ୍ଧ [ଦ୍ର—କାମୁକକୁ କାମିନୀ ଊରୁ ବା ଜଙ୍ଘ ଦ୍ୱାରା ଜାକି ସଙ୍ଗମ କରିବା—ରତିମଞ୍ଜରୀ]—
A sort or posture (out of the 16 postures described in the standard Sanskrit works on coition) in which the partners press their thighs against each other. [ଦ୍ର—ଏଥିର ବିପରୀତ ଷୋଡ଼ଶାଙ୍କ ବନ୍ଧ ।]

**ରତି ନାଥ**—ସଂ. ବି. ପୁଂ (୬ଷ୍ଠୀ ତତ୍)—କାମଦେବ; ମଦନ; କନ୍ଦର୍ପ—
Rati nātha Cupid; the Indian Venus; amorous passion (personified as a Deity).
(ରତି କାନ୍ତ, ରତି ପତି, ରତି ପ୍ରିୟ, ରତି ସଖ, ରତି ରମଣ—ଅନ୍ୟରୂପ)
[ଦ୍ର—ଏହାଙ୍କର ଅନ୍ୟ ସଂ. ନାମ—ମଦନ, ମନ୍ମଥ, ମାର, ପ୍ରଦ୍ୟୁମ୍ନ, ମୀନକେତନ, କନ୍ଦର୍ପ, ଦର୍ପକ, ଅନଙ୍ଗ, କାମ, ପଞ୍ଚଶର, ସ୍ମର, ପୁଷ୍ପଧନ୍ୱା, ମକରଧ୍ୱଜ, ଆତ୍ମଭୂ, ଅନନ୍ୟଜ, ଇକ୍ଷୁକୋଦଣ୍ଡକ, କାନ୍ତ, କାନ୍ତିମାନ, କାମଗ, କାମଚର, କାମଦ, କାମବର୍ଦ୍ଧନ, କାମୀ, କୁସୁମେଷୁ, ଖେଳକ, ଗାୟନ, ଗୀତଜ୍ଞ, ନନ୍ଦକ, ନନ୍ଦନ, ନନ୍ଦୟିତା, ନନ୍ଦୀ, ନର୍ତ୍ତକ, ନଗାଗର, ପଞ୍ଚବାଣ, ପଞ୍ଚବିଶିଖ, ପୁଷ୍ପବିଶିଖ, ପୁଷ୍ପେଷୁ, ବିଳାସ, ବିଶ୍ୱକେତୁ, ବସନ୍ତସଖ, ବୃହଦ୍ଭାନୁ, ଭୃଙ୍ଗ, ଭୃଙ୍ଗନାୟକ, ଭ୍ରାନ୍ତ, ଭ୍ରାନ୍ତଚର, ଭ୍ରମ, ଭ୍ରମଣ, ଭ୍ରମମାଣ, ଭ୍ରମାବହ, ଭ୍ରାମକ, ଭ୍ରାମଣ, ମନୋମୋହନ, ମହାଧନ, ମୋହ, ମୋହକ, ମୋହନ, ମୋହବର୍ଦ୍ଧନ, ମାତଙ୍ଗ, ରମ, ରମଣ, ରମମାନ, ଶର୍ବ୍ବରୀନାଥ, ଶ୍ୟାମ, ସ୍ନେହବର୍ଦ୍ଧନ ।

ହିନ୍ଦୁ ଶାସ୍ତ୍ରମାନଙ୍କରେ କନ୍ଦର୍ପ ରୂପବାନ୍ ଆଦର୍ଶ ଯୁବକ ରୂପେ ବର୍ଣ୍ଣିତ । ଏହାଙ୍କ ହାତରେ ଥିବା ଧନୁ ପୁଷ୍ପରେ ନିର୍ମିତ, ଧନୁର ଗୁଣ ଭ୍ରମରମାଳ ଓ ୫ଟି ଫୁଲ ପାଞ୍ଚଟି ଶରର କାର୍ଯ୍ୟ କରିଥାଏ । କନ୍ଦର୍ପର ପଞ୍ଚ ପୁଷ୍ପବାଣ ଯଥା—୧. ଅରବିନ୍ଦ, ୨. ଅଶୋକ, ୩. ଚୂତ ବା ଆମ୍ବ ବଉଳ, ୪. ନବମଲ୍ଲିକା ବା ନଅାଳୀ ଓ ୫ ନୀଳୋତ୍ପଳ (କାହାର କାହାର ମତରେ ନୀଳୋତ୍ପଳ) । ମନୁଷ୍ୟଠାରେ ଏହି ବାଣମାନଙ୍କର ପ୍ରଦର୍ଶିତ ଗୁଣ ଅନୁସାରେ ଏମାନଙ୍କର ଯଥାକ୍ରମେ ଭିନ୍ନ ଭିନ୍ନ ନାମ ମଧ୍ୟ ଅଛି । ଯଥା—ସମ୍ମୋହନ, ଉନ୍ମାଦନ, ଶୋଷଣ, ତାପନ ଓ ସ୍ତମ୍ଭନ ।

କାମଦେବଙ୍କ ସଖା ବସନ୍ତ, ଦୂତ କୋକିଳ ଓ ସ୍ତ୍ରୀ ରତି ଦେବୀ । ଏମାନେ ସର୍ବଦା ଏହାଙ୍କ ସଙ୍ଗରେ ଥାଆନ୍ତି । ସଂସାରର ପ୍ରତ୍ୟେକ ଜୀବ (କି ପୁରୁଷ, କି ସ୍ତ୍ରୀ) ଏହାଙ୍କ ବାଣର ଆକ୍ରମଣରୁ ରକ୍ଷା ପାଏ ନାହିଁ । ଏମନ୍ତ କି, ମହାଦେବଙ୍କ ପରି ମହାଯୋଗୀ ମଧ୍ୟ ଏହାଙ୍କ ସମ୍ମୋହନ ନାମକ ପ୍ରଥମୋକ୍ତ ବାଣର ଦାଉରେ ପ୍ରଥମେ ଅସ୍ଥିର ହୋଇଥିଲେ । ମଦନ ମହାଦେବଙ୍କ ପ୍ରତି ବାଣ ପ୍ରୟୋଗ କରିଥିବାରୁ ମହାଦେବ କ୍ରୋଧରେ ମଦନଙ୍କୁ ଭସ୍ମ କରି ଦେଇଥିଲେ, ପରେ ରତିଙ୍କର କାତରବିଳାପ ଶୁଣି ଓ ତାଙ୍କ ସ୍ତବରେ ତୁଷ୍ଟ ହୋଇ ଏହାଙ୍କୁ ପୁଣି ପୃଥିବୀରେ ଜନ୍ମିଷ୍ଠ ହେବା ପାଇଁ ବର ଦେଲେ । ଗ୍ରୀସ୍ ଦେଶୀୟ ପଣ୍ଡିତମାନେ ଏହି ଦେବତା (Eros ବା Venus)ଙ୍କୁ ଯୁବକ ଓ ଅନ୍ଧ ରୂପରେ ଚିତ୍ରିତ କରିଅଛନ୍ତି । କାମଦେବଙ୍କର ଅନ୍ୟ ଏକ ପତ୍ନୀ (ନାମ ପ୍ରୀତି) ଥିବା କଥିତ (M. W.)

ହିନ୍ଦୁ ଶାସ୍ତ୍ର (ଯଥା, ସ୍ମର ଦୀପିକା) ଅନୁସାରେ ଭିନ୍ନ ଭିନ୍ନ ତିଥିରେ ମନୁଷ୍ୟଙ୍କର (ବିଶେଷତଃ ସ୍ତ୍ରୀଙ୍କ) ଶରୀରର ନିମ୍ନୋକ୍ତ ଭିନ୍ନ ଭିନ୍ନ ସ୍ଥାନରେ ମଦନ ଆବିର୍ଭୂତ ହେବାର ବର୍ଣ୍ଣିତ ହୋଇଅଛି; କାମୋଦ୍ଦୀପନାର୍ଥ ତତ୍ତତ୍ ତିଥିରେ ସେହି ସେହି ଅଙ୍ଗମାନଙ୍କୁ ଉତ୍ତେଜିତ, ମର୍ଦ୍ଦିତ ବା କ୍ଷତ କରିବାର ବିଧି ମଧ୍ୟ ବର୍ଣ୍ଣିତ ହୋଇଅଛି । ପୁରୁଷର ଦକ୍ଷିଣାଙ୍ଗରେ ଓ ସ୍ତ୍ରୀର ବାମାଙ୍ଗରେ କାମ ଅବସ୍ଥାନ କରନ୍ତି । ଶୁକ୍ଳପକ୍ଷ ତିଥିରେ ଏବଂ କୃଷ୍ଣପକ୍ଷ ତିଥିମାନଙ୍କରେ ଏହି ଅବସ୍ଥାନମାନଙ୍କର ବିପର୍ଯ୍ୟୟ ଘଟିଥାଏ —
ପ୍ରତିପଦରେ—ପାଦ, ଗୁଳ୍ଫ

ଦ୍ୱିତୀୟାରେ—ଗୁଲ୍‌ଫ ବା ଗୋଇଠିର ଉପର
ତୃତୀୟା—ଊରୁ ବା ଜଙ୍ଘ
ଚତୁର୍ଥୀ—ଭଗ
ପଞ୍ଚମୀ—ନାଭି
ଷଷ୍ଠୀ—କୁଚମଣ୍ଡଳ
ସପ୍ତମୀ—ହୃଦୟ
ଅଷ୍ଟମୀ—କକ୍ଷ
ନବମୀ—କଣ୍ଠ
ଦଶମୀ—ଓଷ୍ଠ
ଏକାଦଶୀ—ଗଣ୍ଡ
ଦ୍ୱାଦଶୀ—ନୟନ
ତ୍ରୟୋଦଶୀ—ଶ୍ରବଣ ବା କର୍ଣ୍ଣ
ଚତୁର୍ଦ୍ଦଶୀ—ଲଲାଟ ବା କପାଳ
ପୂର୍ଣ୍ଣିମା, ଅମାବାସ୍ୟା—ଶିଖା ॥

ସାହିତ୍ୟ ଦର୍ପଣ ନାମକ ଆଧୁନିକ ସଂସ୍କୃତ ଗ୍ରନ୍ଥରେ ଭିନ୍ନ-ଭିନ୍ନ ଦେଶର ରମଣୀମାନଙ୍କର ଭିନ୍ନ ଭିନ୍ନ ଅଙ୍ଗରେ ରତିପତି ପ୍ରକାଶିତ ହେବା ବିଷୟ (ଅର୍ଥାତ୍ ଉକ୍ତ ଅଙ୍ଗ ଅତି ମନୋହର ଓ କାମୋଦ୍ଦୀପକ ଥିବା ବିଷୟ) ଗୋଟିଏ ଶ୍ଳୋକରେ ବର୍ଣ୍ଣିତ ହୋଇଅଛି ଯଥା—

ବାତ ଶ୍ରୀ ମାଥୁରାଣାଂ, ଜନକ ଜନପଦ ସ୍ଥାୟିନୀନାଂ କଟାକ୍ଷେ, ଦନ୍ତେ ଗୌଡ଼ାଙ୍ଗନାନାଂ, ସୁଲଳିତ ଜଘନେ ଗୁର୍ଜ୍ଜର-ପ୍ରେୟସୀନାଂ, ତୈଲଙ୍ଗୀନାଂ ନିତମ୍ବେ, ସଜଳ ଘନରୁଚୌ କେରଳୀ କେଶ ପାଶେ, କର୍ଣ୍ଣାଟୀନାଂ କଟୌତ ସ୍ଫୁରତି ରତିପତି ର୍ଗୁର୍ଜ୍ଜରାଣାଂ ସ୍ତନେଷୁ ।]

ରତି ପଣ୍ଡିତ—ସଂ. ବିଣ. ପୁଂ—(୭ମୀ ତତ୍) ରତିକୁଶଳ (ଦେଖ) Rati pandita Ratikuśala (See). (ରତି ପ୍ରବୀଣ, ରତି ବିଚକ୍ଷଣ—ଅନ୍ୟରୂପ) (ରତିପଣ୍ଡିତା, ରତି ପ୍ରବୀଣା, ରତି ବିଚକ୍ଷଣା—ସ୍ତ୍ରୀ)

ରତି ପରିଚୟ—ସଂ.ବି—ବହୁବାର ରମଣ—Frequent repetition Rati parichaya of sexual enjoyment (M. W)

ରତି ପାଶ—ସଂ.ବି—୧। କାମ ଶାସ୍ତ୍ର ବର୍ଣ୍ଣିତ ଷୋଡ଼ଶବନ୍ଧ ମଧ୍ୟରୁ ଏକତମ—Rati pāśa 1.One of the postures during coition. (ରତିପାଶକ—ଅନ୍ୟରୂପ) [ଦ୍ର—ଏ ବନ୍ଧରେ ରମଣକାଳରେ ଊରୁ-ଯୁଗ୍ମ ଦ୍ୱାରା କାମୁକ ରମଣୀକୁ ପୀଡ଼ନ କରେ। ଏହାର ବିପରୀତ ଉତ୍ତାନ ବନ୍ଧ]—୨। ନିଜର ଜଙ୍ଘର ତଳ ବାଟେ ନିଜର ଦୁଇ ହାତକୁ ବୁଲାଇ କର ଦ୍ୱାରା ସ୍ତନ ଧାରଣ ପୂର୍ବକ ପୁରୁଷର ମୈଥୁନ—2 Another posture in coition.

ରତି ପ୍ରାର୍ଥନା—ସଂ. ବି.—(ମ. ପ. ଲୋ; ରତି ବିଷୟକ ପ୍ରାର୍ଥନା)—Rati prārthanā କାମାତୁର ପୁରୁଷର ସ୍ତ୍ରୀକୁ କିମ୍ବା କାମାତୁରା

ରତି ପ୍ରାର୍ଥୀ—ପୁଂ }
ରତିପ୍ରାର୍ଥିନୀ—ସ୍ତ୍ରୀ } —ବିଣ.

ନାରୀର ପୁରୁଷକୁ ସମ୍ଭୋଗ କରିବା ପାଇଁ ଅନୁନୟ—Solicitation made to a man by a woman or vice versa, for satisfaction of one's lust,

ରତି ପ୍ରିୟ—ସଂ. ବିଣ. ପୁଂ.—(ବହୁବ୍ରୀହି) କାମୁକ; ରମଣପ୍ରିୟ—Rati priya Amorous; lecherous, fond of sexual intercourse. (ରତି ପ୍ରିୟା—ସ୍ତ୍ରୀ) (ରତି ପ୍ରିୟତା—ବି)

ସଂ. ବି.—(୬ଷ୍ଠୀ ତତ୍) କାମଦେବ; ମଦନ—Cupid

ରତି ପ୍ରୀତି—ସଂ ବି. (ଦ୍ୱନ୍ଦ୍ୱ) କାମଦେବଙ୍କ ଦୁଇ ସ୍ତ୍ରୀ ରତି ଓ ପ୍ରୀତି—Rati priti Rati (coition) and Priti (love), the two wives of God Cupid (M. W); coition and love personified.

ରତି ଫଳ—ସଂ. ବିଣ—(ବହୁବ୍ରୀହି) ରତିସୁଖ ଉତ୍ପାଦକ—Productive of sexual pleasure (M. W) Rati phala

ଦେ. ବି ଏକପ୍ରକାର ପୁଷ୍ପଧାରୀ ଗୁଳ୍ମ—The canna plant; the Indian shot;Canna Indica; Canna Indicum.

କାମାକ୍ଷୀ,ସର୍ବ୍ବଜୟା
सर्बजया, किआउर
ଫା—ସଂରଙ୍ଗ୍‌ଜୟା

(ରତିଫଳ ଗଛ—ଅନ୍ୟରୂପ). [ଦ୍ର—ଏହି ଜାତୀୟ ଭିନ୍ନ ଭିନ୍ନ ଗୁଳ୍ମର କାଣ୍ଡରେ ଚୋପା ଓ ଫିକା ନାଲି, ହଳଦିଆ ଓ ଛିଟ୍‌ଛିଟିକା, ଏହିପରି ନାନା ପ୍ରକାରର ଫୁଲ ଫୁଟେ। ଗଛ ହଳଦି ଗଛ ପରି ଓ ଉଚ୍ଚତାରେ ୨।୩ ହାତ ବଢ଼େ। ଏହାର ଫଳ କାଙ୍କଡ଼ ପରି ଓ ଏହି ଫଳକୋଷ ମଧ୍ୟରେ ଥିବ। ମଞ୍ଜି କାଇଁଛ ବା କପାମଞ୍ଜି ପରି ଗୋଲ ଓ କଳା କଳା। କାଇଁଛ ପରିବର୍ତ୍ତରେ ବଣିଆ-ମାନେ ନିକିତିରେ ଧାତୁ ଆଦି ଓଜନ କରିବାପାଇଁ ଏ ମଞ୍ଜି ବ୍ୟବହାର କରନ୍ତି। ଏ ଗଛ ବିଦେଶାଗତ। ଏ ଗଛର ଫୁଲ ଶୀତ ଦିନରେ ଫୁଟେ। ଫୁଲର ବାସନା ନାହିଁ, କିନ୍ତୁ ଫୁଲର ଚୋପା ଉଜ୍ଜ୍ୱଳ ବର୍ଣ୍ଣ ଯୋଗୁଁ ଲୋକେ ସଉକରେ ଫୁଲବଗିଚାରେ ଏ ଗଛକୁ ଧାଡ଼ି ଧାଡ଼ି କରି ଲଗାନ୍ତି। ଏହା ପ୍ରତିବର୍ଷ ମରିଯାଏ ଓ ମଞ୍ଜିରୁ ବା କନ୍ଦରୁ ପୁଣି ଗଛ ଉଠିଯାଏ।]

ରତି ବନ୍ଧ—ସଂ. ବି.—(ମ. ପ. ଲୋ; ରତିକାଳୀନ ବନ୍ଧ)—ରମଣ, Rati bandha କାଳୀନ ସ୍ତ୍ରୀପୁରୁଷଙ୍କର ଆଲିଙ୍ଗନଭଙ୍ଗୀ—Different sorts of embrace or postures assumed during coition, [ଦ୍ର—କାମ ଶାସ୍ତ୍ରରେ (ଯଥା ରତି ମଞ୍ଜରୀ ଗ୍ରନ୍ଥରେ) ଏହା ପ୍ରଧାନତଃ ଷୋଡ଼ଶ ପ୍ରକାର ଥିବା ବର୍ଣ୍ଣିତ ହୋଇଅଛି। କାହା କାହା ମତରେ ଏହା ୮୪ ପ୍ରକାର। ସ୍ମର ଦୀପିକା ଓ ରତି ମଞ୍ଜରୀ ବର୍ଣ୍ଣିତ ୧୬ଟି ରତିବନ୍ଧର ନାମ ଓ ପ୍ରକାର ଯଥା :—

୧—ପଦ୍ମବନ୍ଧ ବା ପଦ୍ମାସନବନ୍ଧ }—ପୁରୁଷ ପଦ୍ମାସନରେ ବସି ନାରୀକୁ ନିଜର ପଦ୍ମାସନ ଉପରେ ଅବସ୍ଥାପିତ କରି ନାରୀର ଦୁଇ ପାଦକୁ ପୁରୁଷର ଦୁଇ କଡ଼ ବାଟେ ଲମ୍ବାଇ ରଖି ନାରୀକୁ ସମାକର୍ଷଣ ପୂର୍ବକ ଗାଢ଼ାଲିଙ୍ଗନ କରିବା ସମୟରେ ରମଣୀର ଚେଷ୍ଟାଦ୍ୱାରା କୃତ ରମଣ।

୨—ନାଗପଦ ବା ନାଗପାଶ ବା ନାଗବନ୍ଧ }—ରମଣୀର ପଦଦ୍ୱୟକୁ ପୁରୁଷର ହସ୍ତ ଓ ସ୍କନ୍ଧ ଉପରେ ସ୍ଥାପିତ କରାଇ ପୁରୁଷର ଲଘୁ-ରମଣ।

୩—ଲତାବେଷ୍ଟ ବା ଲତାବେଷ୍ଟିତ ବା ଲତାବେଷ୍ଟିତକ }—ରମଣୀକୁ ପୁରୁଷ ନିଜର ବାହୁଦ୍ୱୟ ଓ ପାଦଦ୍ୱୟଦ୍ୱାରା ବେଷ୍ଟନ ବା ଆଲିଙ୍ଗନ ପୂର୍ବକ ପୁରୁଷର ଲଘୁରମଣ ।

୪—ଅର୍ଦ୍ଧସମ୍ପୁଟ ବା ସମ୍ପୁଟ }—ନାରୀର ଉଭୟ ପାଦକୁ ସମ୍ପ୍ରସାରିତ କରି ନାରୀର ମସ୍ତକକୁ ଶଯ୍ୟାରେ ଉପସ୍ଥାପନ ପୂର୍ବକ ପୁରୁଷର ମୈଥୁନ ।

୫—କୁଳଶ ବା କୁଳଶ ନାୟକ }—ସ୍ତ୍ରୀର ପାଦଦ୍ୱୟକୁ ପୁରୁଷର ସ୍ୱକରଦ୍ୱାରା ଆକର୍ଷଣ ପୂର୍ବକ ରମଣ ।

୬—ରତିସୁନ୍ଦର ବା ସୁନ୍ଦର }—ନାରୀର ପାଦଦ୍ୱୟକୁ ପୁରୁଷ ସ୍ୱୀୟ ହୃଦୟରେ ଧାରଣ କରି ଓ ନାରୀର ଦେହକୁ ହସ୍ତଦ୍ୱାରା ବେଷ୍ଟନ ପୂର୍ବକ ପୁରୁଷର ମୈଥୁନ ।

୭—କେଶବ(ର) ବନ୍ଧ ବା ବିରାମ(ଆରାମ) ବନ୍ଧ }—ଦଣ୍ଡବତ୍ ଉତ୍ତାନଶାୟୀ ପୁରୁଷର ଜଙ୍ଘ ଉପରେ ନିତମ୍ବ ସ୍ଥାପନ ଓ ପୁରୁଷର ଦୁଇ ପାର୍ଶ୍ୱରେ ଭୂମି ଉପରେ ପାଦଦ୍ୱୟ ସ୍ଥାପନ ପୂର୍ବକ ରତିକ୍ରିୟାର ଆରମ୍ଭରୁ ଭୂମିରେ ଦୁଇ ଆଣ୍ଠୁ ଲଗାଇ ପୁରୁଷ ଉପରେ ଶାୟିତା ହୋଇ ରମଣୀର ସ୍ୱେଚ୍ଛା ଓ ସ୍ୱାବସର ଓ ସ୍ୱସୁବିଧା କ୍ରମେ ସମ୍ପାଦିତ ରତି ।

୮—ହିନ୍ଦୋଳ ବନ୍ଧ—ରମଣୀର ପାଦକୁ ହୃଦୟରେ ସ୍ଥାପନ କରି ତାହାର ଦୁଇ ହସ୍ତକୁ ପୁରୁଷ ଦୁଇ ହସ୍ତଦ୍ୱାରା ଗ୍ରହଣ କରି ପୁରୁଷର ଯଥେଷ୍ଟ ରମଣ ।

୯—ନରସିଂହ ବା ନୃସିଂହ }—ସ୍ତ୍ରୀର ଇନ୍ଦ୍ରିୟକୁ ପ୍ରଥମେ ପାଦଦ୍ୱାରା ସମ୍ପୀଡ଼ନ କରି ହଠାତ୍ ମେଢ୍ର ପ୍ରବେଶନ ଓ ସ୍ତ୍ରୀଗାତ୍ରକୁ ଦୁଇହସ୍ତଦ୍ୱାରା ବେଷ୍ଟନ ପୂର୍ବକ ପୁରୁଷର ରମଣ ।

୧୦—ବିପରୀତ ବା ବିପରୀତକ }—ନାରୀ ନିଜର ଏକ ପାଦକୁ ପୁରୁଷର ଜଙ୍ଘ ଉପରେ ଓ ଅନ୍ୟ ପାଦକୁ ନିଜର କଟି ସଂଲଗ୍ନ କରି ନାରୀର ରମଣ ( ରତିମଞ୍ଜରୀ ) ।

ମତାନ୍ତରରେ—ରମଣୀର ଏକ ପାଦକୁ ପୁରୁଷର ଊରୁ ଉପରେ ଓ ଅନ୍ୟ ପାଦକୁ ପୁରୁଷର ସ୍କନ୍ଧ ଉପରେ ସ୍ଥାପନ କରି ନାରୀର ରମଣ ( ସ୍ମରଦୀପିକା ), ମତାନ୍ତରରେ ( ସାଧାରଣ ଲୋକେ ଯେଉଁ ଅର୍ଥରେ ବୁଝନ୍ତି ) ପୁରୁଷାୟିତ; ରମଣୀ ଶାୟିତ କାନ୍ତର ଊର୍ଦ୍ଧ୍ୱ ଦେଶରେ ଅବସ୍ଥାପନ ପୂର୍ବକ ( ଅର୍ଥାତ୍ ସାଧାରଣ ସଙ୍ଗମ ରୀତିର ବିପରୀତ ଭାବରେ ) ନିଜର ଶରୀର ଚାଳନ ପୂର୍ବକ ସ୍ତ୍ରୀର ରମଣ ।

୧୧—ଧ୍ରୁବ ବନ୍ଧ—ସ୍ତ୍ରୀର ଦୁଇ ପାଦକୁ ପୁରୁଷ ନିଜର ଦୁଇ ପାର୍ଶ୍ୱରେ ବା କଟିରେ ରଖାଇ ଗାଢ଼ାଲିଙ୍ଗନ ପୂର୍ବକ ପୁରୁଷର ରତି ।

୧୨—ଧେନୁକ ବନ୍ଧ—ପୁରୁଷ ଶଯ୍ୟାରେ ଶୋଇ ପାର୍ଶ୍ୱଦେଶରେ ଶାୟିତା ରମଣୀକୁ (ଅର୍ଥାତ୍ ଦୁହେଁ ଅଡେଇ ହୋଇ ଶୋଇ) ଲଘୁ ରମଣ କରିବା ।

୧୩—ଉତ୍କଣ୍ଠ ବନ୍ଧ—ଶାୟିତ ନାରୀର ପାଦଦ୍ୱୟକୁ ପୁରୁଷ ନିଜର ହସ୍ତଦ୍ୱୟର ଉପର ବାଟେ ଉଠାଇ ନାରୀର ପଦଦ୍ୱୟ ପୁରୁଷର କଣ୍ଠଦେଶକୁ ବେଷ୍ଟନ କରିବା ଅବସ୍ଥାରେ ପୁରୁଷର ହସ୍ତଦ୍ୱୟଦ୍ୱାରା ନାରୀର ସ୍ତନ ଧାରଣ ପୂର୍ବକ ପୁରୁଷର ମୈଥୁନ ।

୧୪—ସିଂହାସନ ବନ୍ଧ—ଯୋଷାର ପଦଦ୍ୱୟକୁ ପୁରୁଷ ନିଜ ଜଙ୍ଘଦ୍ୱୟ ଉପରେ ଅବସ୍ଥାପିତ କରି ସ୍ୱହସ୍ତଦ୍ୱାରା ନାରୀର ସ୍ତନଧାରଣ ପୂର୍ବକ ପୁରୁଷର ରମଣ ।

୧୫—(କ) ରତିନାଗ ବନ୍ଧ—କାମିନୀର ଊରୁଯୁଗଦ୍ୱାରା ପୁରୁଷକୁ ପୀଡ଼ନ ପୂର୍ବକ କାମିନୀର ରମଣ ।

(ଖ) ରତିପାଶ ବା ରତିପାଶକ } ବନ୍ଧ—ପୁରୁଷର ଊରୁ ଯୁଗଦ୍ୱାରା ସ୍ତ୍ରୀକୁ ପୀଡ଼ନ ପୂର୍ବକ ପୁରୁଷର ରମଣ ।

ମତାନ୍ତରରେ—ପୁରୁଷ ନିଜର ଜଙ୍ଘ ତଳବାଟେ ନିଜର ହସ୍ତଦ୍ୱୟକୁ ପୂରାଇ କରଦ୍ୱାରା ସ୍ତ୍ରୀର କୁଚପୀଡ଼ନପୂର୍ବକ ପୁରୁଷର ସଙ୍ଗମ ।

୧୬—ବିଦ୍ୟାଧର ବନ୍ଧ—ନାରୀର ଊରୁଯୁଗଳକୁ ପୁରୁଷର କରଦ୍ୱାରା ପୁନଃ ପୁନଃ ତାଡ଼ନପୂର୍ବକ ପୁରୁଷର ନିଃଶଙ୍କ ଭାବରେ ମୈଥୁନ ।

ଗ୍ରନ୍ଥାନ୍ତରରେ ୭୪ପ୍ରକାରର ରତିବନ୍ଧ କଥିତ ଅଛି; ତହିଁ ମଧ୍ୟରୁ,

ସିଂହଲୀଳ—ଶାୟିତ କାମୀର ଊର୍ଦ୍ଧ୍ୱରେ ଅବସ୍ଥାନପୂର୍ବକ ଦୁଇ ପାଦକୁ ଭୂମିରେ ରଖି ( ଅର୍ଥାତ ଚେଉଁ ହୋଇ ବସି ) ପୁରୁଷର ହୃଦୟରେ ବା ସ୍ତନଦେଶରେ ହସ୍ତପୀଡ଼ନପୂର୍ବକ କାମିନୀର ରମଣ ।

ଏହାକୁ ସାଧାରଣ ଲୋକେ ବିପରୀତ, ପୁରୁଷାୟିତ ବା ଓଲଟ ରତି ଆଦି ନାମରେ ବୁଝନ୍ତି ।

ରତିସିଦ୍ଧ—କାମୁକ ପୁରୁଷର ଊରୁଦ୍ୱୟ ଭୂମିରେ ପାତିତ ହେବା ଅବସ୍ଥାରେ ସ୍ତ୍ରୀର ନିଜର ପରାକ୍ରମ ପ୍ରକାଶପୂର୍ବକ ରମଣ ।

ଏହା ଛଡ଼ା ମୃଗାଦି ପଶୁପକ୍ଷୀଙ୍କର ସଙ୍ଗମରୀତି ଓ ଅବସ୍ଥିତି ଅନୁକରଣରେ ମୃଗବନ୍ଧ, ପଶୁବନ୍ଧ, ଶ୍ୱାନବନ୍ଧ, ପକ୍ଷିବନ୍ଧ, ବୃଷବନ୍ଧ, ସର୍ପବନ୍ଧ ( ଉଭୟ ଦଣ୍ଡାୟମାନ ଅବସ୍ଥାରେ ସଙ୍ଗମ) ଆଦି ନାନାପ୍ରକାରର ବନ୍ଧର ଉଲ୍ଲେଖ ଭିନ୍ନ ଭିନ୍ନ ଗ୍ରନ୍ଥରେ ଦେଖାଯାଏ । ]

ରତି ବନ୍ଧୁ—ସଂ. ବି [୬ଷ୍ଠୀ ତତ୍]—ସ୍ୱାମୀ—
Rati bandhu Husband (M. W.)

ରତି ବର୍ଦ୍ଧନ(କ)—ସଂ. ବିଣ [୬ଷ୍ଠୀ ତତ୍] - ପ୍ରେମବୃଦ୍ଧିକାରୀ—
Rati barddhana(ka) Increasing love (M. W)

ରତି ବିଦ୍ୟା—ସଂ. ବି (ମ. ପ ଲୋ, )—ରତିଶାସ୍ତ୍ର [ଦେଖ]
Rati bidyā Ratiśastra [See]

ରତି ଭୋଗ—ସଂ. ବି [୬ଷ୍ଠୀ ତତ୍]—ରମଣ; ସଙ୍ଗମ—
Rati bhoga Sexual enjoyment (M.W)

ରତି ମଞ୍ଜରି(ରୀ)—ସଂ. ବି—ରତିବିଦ୍ୟାସମ୍ବନ୍ଧୀୟ ସଂସ୍କୃତ ଗ୍ରନ୍ଥବିଶେଷ—
Rati mañjari[ri] Name of a Sanskrit work on the erotic science.

ରତିମଦା—ସଂ. ବି. ସ୍ତ୍ରୀ (ରତି+ମଦ୍. ଧାତୁ=ମତ୍ତ ହେବା+କର୍ତ୍ତୃ. ଅ+ସ୍ତ୍ରୀ. ଆ)—ଅପ୍ସରା; ସ୍ୱର୍ବେଶ୍ୟା; ବିଦ୍ୟାଧରୀ—
Ratimadā The ever youthful and ravishing heavenly nymphs of the court of Indra.

ରତି ମନ୍ଦିର—ସଂ. ବି—ରତି ଗୃହ (ଦେଖ)
Rati mandira Rati gṛuha. (See)

ରତି ମାଗିବା—ଦେ. କ୍ରି—( ସ୍ତ୍ରୀଠାରେ ବା ପୁରୁଷଠାରେ) ରତି ପ୍ରାର୍ଥନା
Rati māgibā କରିବା—To solicit coition.
রতি চাওয়া रती मांगना

ରତି ମିତ୍ର—ସଂ. ବି—ରତିବନ୍ଧ ବିଶେଷ—One of the 64
Rati mitra postures assumed during coition.
(M. W). [ଦ୍ର—ରତିବନ୍ଧ ତଳେ ନୋଟ୍ ଦେଖ ।]

ରତି ରଙ୍କ—ସଂ. ବିଣ. ପୁଂ—ସହବାସ ସୁଖରୁ ବଞ୍ଚିତ ହେବା ଯୋଗୁଁ
Rati raṅka ଅତି କାମାତୁର—Amorous for want of
[ରତି ରଙ୍କା—ସ୍ତ୍ରୀ] [ ରତିରଙ୍କା—ଦେଶଜ ରୂପ ] coition.

ରତି ରଙ୍ଗ—ସଂ. ବି—ନାନାପ୍ରକାରର ରତିକ୍ରିୟା—
Rati raṅga Various modes of coition.

ରତିରଙ୍ଗୀ—ସଂ. ବିଣ. ପୁଂ [ରତିରଙ୍ଗିନ୍; ୧ମା. ୧ବ]—୧ । ରତି-
Ratiraṅgi ରଙ୍ଗରେ ପାରଙ୍ଗମ; ରତିକୁଶଳ; ସୁରତରଙ୍ଗୀ—
ରତିରଙ୍ଗମା } —ସ୍ତ୍ରୀ 1. Expert in the art of copula-
ରତିରଙ୍ଗିଣୀ } tion. ୨ । (ରତିରଙ୍ଗ+ଇନ୍, ୧ମା. ୧ବ)
ସୁରତରେ ମାତିଥିବା; ରତିକ୍ରୀଡ଼ାରେ ମତ୍ତ—2. Engaged in the enjoyment of the pleasures of coition.

ରତି ରମଣ—ସଂ. ବି. ( ୬ଷ୍ଠୀ ତତ୍ )—କାମଦେବ—
Rati ramaṇa Cupid.

ରତି ରସ—ସଂ. ବି. (ମ. ପ. ଲୋ)—ରତି ଜନିତ ସୁଖ; ମୈଥୁନ ଦ୍ୱାରା
Rati rasa ସୁଖଭୋଗ—Pleasure derived from coition.

ରତି ରହସ୍ୟ—ସଂ. ବି. (୬ଷ୍ଠୀ ତତ୍)—୧ । ରତି ବା ପ୍ରେମ ସମ୍ବନ୍ଧୀୟ
Rati rahasya ଗୁପ୍ତ କଥା—1. The mysteries of
love or sexual enjoyment. ୨ । କୋକ୍କୋକ
ରଚିତ ରତି ଶାସ୍ତ୍ର ବିଶେଷ—2. Name of an erotic work by Kokkoka (M. W).

ରତି ଲକ୍ଷ—ସଂ. ବି ( ରତି+ଲକ୍ଷ ଧାତୁ+ କରଣ. ଅ )—ସଙ୍ଗମ;
Rati laksha ମୈଥୁନ—Sexual intercourse (M.W)

ରତି ଲମ୍ପଟ—ସଂ. ବିଣ. ପୁଂ ( ୭ମୀ ତତ୍ )—କାମାତୁର—
Rati lampaṭa Lustful; libidinous (M. W).
(ରତି ଲମ୍ପଟା—ସ୍ତ୍ରୀ) (ରତି ଲମ୍ପଟ; ରତି ଲମ୍ପଟିଆ—ଅନ୍ୟରୂପ)

ରତି ଶାଅ(ହା)ସ୍ର—ଗ୍ରା. ବି. (ସଂ. ରତିଶାସ୍ତ୍ର)— ରତି ଶାସ୍ତ୍ର ( ଦେଖ )
Rati śā-ā(hā)sra Rati śāstra ( See )
(ରତି ଶାସ୍ର—ଅନ୍ୟରୂପ) রতিশাস্ত্র रतिशास्त्र

ରତି ଶାସ୍ତ୍ର—ସଂ. ବି. (ମ, ପ ଲୋ; ରତି ସମ୍ବନ୍ଧୀୟ ଶାସ୍ତ୍ର)—ରତିବିଦ୍ୟା;
Rati śāstra ରତି (ସ୍ତ୍ରୀ ପୁରୁଷଙ୍କ ସହବାସ) ସମ୍ବନ୍ଧୀୟ ଗ୍ରନ୍ଥ—
The science of sex-works; the erotic art; sexual science. [ଦ୍ର—ଏଥିରେ ପୁରୁଷ ଓ ସ୍ତ୍ରୀମାନଙ୍କ ଶ୍ରେଣୀ ବିଭାଗ, କେଉଁ ଶ୍ରେଣୀର ପୁରୁଷକୁ କେଉଁ ଶ୍ରେଣୀର ନାରୀ ଉପଯୁକ୍ତା, ସ୍ତ୍ରୀ ପୁରୁଷଙ୍କର ପ୍ରଣୟ ସମ୍ବନ୍ଧୀୟ ନିୟମ, ରତି କ୍ରିୟାର ଉପଯୋଗୀ ନାନା ପ୍ରକାରର କାର୍ଯ୍ୟ ସମ୍ବନ୍ଧୀୟ ଉପଦେଶ, ରତିବନ୍ଧ, ସ୍ତ୍ରୀ ପୁରୁଷଙ୍କୁ ବା ପୁରୁଷ ସ୍ତ୍ରୀଙ୍କୁ ବଶୀକରଣ, ସ୍ତମ୍ଭନ ଓ ମୋହନାଦି, ରତିଶକ୍ତି ଲାଭର ଓ ବୃଦ୍ଧିର ଔଷଧ, ଉପାୟ, ମନ୍ତ୍ରଯନ୍ତ୍ର ପ୍ରୟୋଗ, ବହୁକାଳ ଯୌବନକୁ ସ୍ଥାୟୀ କରିବାର ଉପାୟ, କାମୋଦ୍ଦୀପନାର୍ଥ ନାନା ପ୍ରୟୋଗ, ଜନ୍ମନିୟନ୍ତ୍ରଣ, ସୁପ୍ରଜନନ ବିଦ୍ୟା, ସନ୍ତାନୋତ୍ପାଦନ, ସନ୍ତାନୋତ୍ପାଦନର ନିୟମନ, ସ୍ତ୍ରୀମାନଙ୍କର ଋତୁ କାଳୀନ କର୍ତ୍ତବ୍ୟ ସମ୍ବନ୍ଧୀ ଉପଦେଶ, ୬୪ କଳାବିଦ୍ୟା, ଗୃହସ୍ଥର କର୍ତ୍ତବ୍ୟ, ଦମ୍ପତିଙ୍କ ଜୀବନର ଶାନ୍ତି, ସୁଖ ଓ ସ୍ୱାସ୍ଥ୍ୟାଦି ବିଧାୟକ ଉପଦେଶ ମାନ ଲିପିବଦ୍ଧ ହୋଇଥାଏ । କାମଶାସ୍ତ୍ର, ରତିମଞ୍ଜରୀ, ସ୍ମରଦୀପିକା, କୋକଶାସ୍ତ୍ର ଉଡ୍ଡୀଶ ତନ୍ତ୍ର ଆଦି ଗ୍ରନ୍ଥ ଏହି ଶ୍ରେଣୀର ଅନ୍ତର୍ଗତ ଅଟେ । ହିନ୍ଦୁମାନେ ରତିଶାସ୍ତ୍ରକୁ ବିଜ୍ଞାନ ରୂପେ ଗ୍ରହଣ କରି ଧାରାବାହିକ ରୂପରେ ତାହାର ଚର୍ଚ୍ଚା କରୁଥିଲେ । ଆଧୁନିକ କପଟସଭ୍ୟତାନୁମୋଦିତ କାଇଦା ଅନୁସାରେ ଏହାକୁ ଲୋକେ ଅଶ୍ଳୀଳ ବୋଲି କହନ୍ତି; କିନ୍ତୁ ଏଥିରେ ଧର୍ମ, ପ୍ରେମ, ପବିତ୍ର ପ୍ରଣୟ, ସ୍ୱାସ୍ଥ୍ୟ ଆଦି ସମ୍ବନ୍ଧେ ବହୁ ଉପଦେଶ ଅଛି । ମହର୍ଷି ବାତ୍ସାୟନ 'କାମସୂତ୍ର' ନାମକ ଗୋଟିଏ ଗ୍ରନ୍ଥ ରଚନା କରି ସେଥିରେ ଏ ସମ୍ବନ୍ଧରେ ଯେଉଁ କୃତିତ୍ୱ ଓ ଅଭିଜ୍ଞତା ଦେଖାଇଅଛନ୍ତି ତାହା ଦେଖିଲେ ବିସ୍ମିତ ହେବାକୁ ହୁଏ । ପୂର୍ବେ ହିନ୍ଦୁମାନେ କାମଶାସ୍ତ୍ରକୁ ଗୋଟିଏ 'କଳା' ମଧ୍ୟରେ ଗଣନା କରୁଥିଲେ ଓ ଯୌବନକାଳ ପୂର୍ବରୁ ବାଳକ-ବାଳିକାଙ୍କୁ ଏ ସମ୍ବନ୍ଧୀୟ ତତ୍ତ୍ୱମାନ ହୃଦୟଙ୍ଗମ କରାଉଥିଲେ । ଏଥିଯୋଗୁଁ ଯୁବକ ଯୁବତୀମାନେ ସୁଖ, ଶାନ୍ତି ଓ ସ୍ୱାସ୍ଥ୍ୟ ଲାଭ କରୁଥିଲେ ।

ଏବେ ଏହା ଅଣଛୁଆଁ ବିଦ୍ୟାରେ ପରିଣତ ହେବାରୁ ଓ ଯୁବକ ଯୁବତୀମାନେ ଏ ବିଷୟରେ ଉପଯୁକ୍ତ ଶିକ୍ଷାଲାଭ କରିବାର ସୁଯୋଗ ପାଉ ନ ଥିବାରୁ ସେମାନେ ଯୌବନର ଅପବ୍ୟବହାର କରି ଅନ୍ତଃସାରଶୂନ୍ୟ ହୋଇ ପଡୁଅଛନ୍ତି ।

ପୃଥିବୀରେ ମନୁଷ୍ୟର ବଂଶରକ୍ଷା ଓ ବଂଶ ବୃଦ୍ଧି ଏବଂ ସ୍ତ୍ରୀ-ପୁରୁଷଙ୍କ ମଧ୍ୟରେ ଯୌନ ସମ୍ବନ୍ଧ ଗୋଟିଏ ପ୍ରଧାନ ଓ ପବିତ୍ରତମ ବିଷୟ ଅଟେ; କିନ୍ତୁ ଏ ସମ୍ବନ୍ଧରେ କିଛି କଥା ପ୍ରକାଶ କରିବା ମାତ୍ରେ 'ଅଶ୍ଳୀଳ' 'ଅଶ୍ଳୀଳ' ବୋଲି ସଭ୍ୟ ସମାଜ ଚିତ୍କାର ମାରନ୍ତି; ଏମନ୍ତ କି, ଯୁବକ ଯୁବତୀଙ୍କର ଓ ଭାବୀ ଦମ୍ପତିଙ୍କର ମଙ୍ଗଳମୟ ଉପଦେଶମାନ ଓ ତତ୍ ସମ୍ବନ୍ଧୀୟ ପ୍ରାଚୀନ ଗ୍ରନ୍ଥମାନ ପ୍ରକାଶ କରିବାକୁ ଚେଷ୍ଟା କରିବା ଲୋକ ରାଜଦ୍ୱାରରେ ଅଭିଯୁକ୍ତ ହେବା ଉଦାହରଣ ବିରଳ ନୁହେଁ ।

ଆଧୁନିକ ଶିକ୍ଷା ପ୍ରଣାଳୀର ଏହି ଗୁରୁତର ଅଭାବ ଯୋଗୁଁ ଯେଉଁ କ୍ଷତି ଘଟିଅଛି ଓ ଘଟୁଅଛି ତାହା ଆଧୁନିକ ଚିନ୍ତାଶୀଳ ପୁରୁଷମାନେ ଓ ଭିନ୍ନ ଭିନ୍ନ ଦେଶର ଗଭର୍ଣ୍ଣମେଣ୍ଟ ଉଚିତ ପରିମାଣରେ ଅନୁଭବ କରି ଆଧୁନିକ ଶିକ୍ଷାର ଏହି 'କିରାତି ବଇଷମ' ପଣକୁ ବଦଳାଇ ବାଳକ ବାଳିକାମାନଙ୍କୁ ଯୌନ ବିଜ୍ଞାନ ସମ୍ବନ୍ଧେ ଶୁଭକର ଶିକ୍ଷା ଦେବାର କଳ୍ପନା କରୁଅଛନ୍ତି ।]

ରତି ସଜ୍ଜ—ଦେ. ବି. (ସଂ. ରତିସଜ୍ଜା)—ରତି କରିବା ଅଭିପ୍ରାୟରେ
Rati sajja ସୁବେଶ ହେବା—Being well dressed for
ରତିସଜ୍ଜା ରତିସାଜ sexual revelry.
(ରତି ସଜ୍ଜା—ସ ରୂପ) (ଭି—ସଜ୍ଜମାର ଗୃହଁ ରତିସଜ୍ଜ, ସଜ୍ଜନତ ଚତ୍ରେ ମାନସଜ୍ଜ । ଭକ୍ତ. ପ୍ରେମସୁଧାନିଧି ।)

ରତି ସତ୍ବରା—ସଂ. ବି—ପୂତ୍କା; ପିଡ଼ିଙ୍ଗ ଶାଗ—A pot herb,
Rati satwarā Trigonela Corniculata.

ରତି ସୁନ୍ଦର—ସଂ. ବି—ଷୋଳ ପ୍ରକାରର ରତିବନ୍ଧ ମଧ୍ୟରୁ ଏକତମ
Rati sundara (ଏହାର ଅନ୍ୟ ନାମ ସୁନ୍ଦର)—One of the postures during copulation.
[ଦ୍ର—ରତିବନ୍ଧ ତଳେ ନୋଟ୍ ଦେଖ ।]

ରତୀ(ତେ)ଚ୍ଛା—ସଂ. ବି (ରତି, ରତ+ଇଚ୍ଛା, ଷଷ୍ଠୀ ତତ୍)—
Ratī(te)chchhā ରମଣେଚ୍ଛା; ରମଣ କରିବା ପାଇଁ ଅଭିଳାଷ—
Desire or passion for sexual intercourse; lasciviousness; venereal passion; sexual inclination

ରତୋଦ୍ଭବ—ସଂ. ବି. (ରତ=ସୁରତ+ଉଦ୍ଭବ=ଉଦ୍ରେକକାରୀ)—
Ratodbaha କୋକିଳ—The Indian cuckoo.

ରତୋନ୍ମାଦ—ସଂ. ବି. (୭ମୀ ତତ୍)—୧ । ଅପୂର୍ଣ୍ଣକାମବୃତ୍ତି ଯୁବକ-
Ratonmāda ଯୁବତୀଙ୍କଠାରେ ଦେଖାଯିବା ଉନ୍ମାଦ ରୋଗବିଶେଷ; କାମୋନ୍ମାଦ; ରମଣ କରିବା ପାଇଁ ଅସ୍ୱାଭାବିକ ଇଚ୍ଛାଯୁକ୍ତ ପାଗଳାମି; ମଦ୍ଭବାଇ (ଏହା ସ୍ତ୍ରୀ ଓ ପୁରୁଷ, ଉଭୟଙ୍କୁ ଧରେ)
—1. Andromania; nymphomania; Furor Uterinus, madness culminating in intense desire for coition, Satyriasis Hysteromania. ୨ । ଅତ୍ୟଧିକ ରମଣେଚ୍ଛା—
2. Excessive sexual desire.

ରତ୍ତି—ସଂ. ବି. (ରମ୍ ଧାତୁ+କରଣ. ତି; ନିପାତନସିଦ୍ଧ)—
Ratti ୧ । ରକ୍ତିକା; ଗୁଞ୍ଜା; କାଇଞ୍ଚ; ନାଲି କାଇଞ୍ଚ—1. A
(ରତ୍ତିକା—ଅନ୍ୟରୂପ) red berry or seed from a pod-bearing creeper, Abrus Precatorius (the seed of which is used as a standard of weight by goldsmiths). ୨। ମଞ୍ଜୀ କାଇଞ୍ଚ-
2. A red seed; Adonanthera Panonina.
୩ । ରତି, ଏକ କାଇଞ୍ଚ ପରିମାଣ ଓଜନ—3. A standard of weight of four grains.
[ଦ୍ର—୪ ଧାନ=୧ ରତି, ୮ ରତି=୧ ମସା,
୧୦ ମସା=୧ ଭରି=୧ ତୋଳା ।
ଧାନ୍ୟ=ଧାନ=ଯବ ଧାନର ଓଜନ
ରତି=ରକ୍ତିକା=କାଇଞ୍ଚର ଓଜନ
ମସା=ମାଷକ=ବିରର ଓଜନ
ତୋଳା=ତୋଲକ=୧ ଟଙ୍କାର ଓଜନ ।
୪ଧାନରେ ୧ ରତି ହୁଏ; ଏ ରତି ସାଧାରଣ କାଇଞ୍ଚ ନୁହେଁ । କାରଣ,ଗୋଟିଏ ସାଧାରଣ କାଇଞ୍ଚର ଓଜନ ୪ଟି ଯବଧାନର ଓଜନଠାରୁ କମ୍; ରତି ଏକ ମଞ୍ଜୀ କାଇଞ୍ଚର ଓଜନ ଅଟେ ।]

୪ । ଅତି ସାମାନ୍ୟ ପରିମାଣ; ଅତି ସାମାନ୍ୟ ପରିମିତ ପଦାର୍ଥ—4. A very little thing; very small thing.

ରତ୍ନ—ସଂ. ବି. (ରମ୍ ଧାତୁ=କ୍ରୀଡ଼ା କରିବା+କରଣ. ନ; ନିପାତନ)—
Ratna ୧ । ମଣି ମୁକ୍ତାଦି; ବହୁ ମୂଲ୍ୟ ପ୍ରସ୍ତରାଦି; ବଜ୍ର—
1. Jewel; gem; precious stone [ଦ୍ର—ଧନାର୍ଥୀଗଣ ଏହାକୁ ପ୍ରାପ୍ତ ହୋଇ ଆନନ୍ଦରେ କ୍ରୀଡ଼ା କରନ୍ତି ବୋଲି ଏଥିର ଏହି ନାମ । ରତ୍ନର ଉତ୍ପତ୍ତି ସମ୍ବନ୍ଧରେ ପୁରାଣରେ ଲେଖା ଅଛି ଯେ, ବଳ ନାମରେ ଗୋଟିଏ ଅସୁର ଥିଲା । ତାକୁ ଦେବତାମାନେ ବଧ କରି ପାରିଲେ ନାହିଁ । ତେଣୁ ଦେବତାମାନେ ଛଳ ପୂର୍ବକ ଗୋଟିଏ ଯଜ୍ଞ ଆରମ୍ଭ କଲେ ଓ ସେହି ଯଜ୍ଞ ପାଇଁ ତା ନିକଟକୁ ଯାଇ ତାକୁ ସତ୍ୟ କରାଇ ତା ନିଜ ଦେହକୁ ଯଜ୍ଞପଶୁ ରୂପେ ମାଗିଲେ । ସେ ତାହା ଦେଲା; ଇନ୍ଦ୍ର ତାହାର ମସ୍ତକରେ ବଜ୍ର ପ୍ରହାର କରିବାରୁ ବଜ୍ରାହତ ମସ୍ତକରେ ରତ୍ନକୁଟମାନ ଉତ୍ପନ୍ନ ହେଲା । ଦେବତାମାନେ ସେ କୁଟମାନଙ୍କର ନାମ ବଜ୍ର ଦେଲେ । ଅତଏବ ରତ୍ନର ଅନ୍ୟ ନାମ ବଜ୍ର । ମତାନ୍ତରରେ ବଳ ରାକ୍ଷସ ଆପଣାର ଦେହକୁ ଯଜ୍ଞୀୟ ପଶୁ ରୂପରେ ପ୍ରଦାନ କରି ଦେବତା ଓ ଜନଗଣଙ୍କର ହିତସାଧନ କରିବାରୁ ସେ ସ୍ୱର୍ଗାରୋହଣ କଲା ଓ ତାହାର ଦେହ ଓ ଅବୟବାଦି ରତ୍ନରେ ପରିଣତ ହେଲା । ଦେବତାମାନେ ବିମାନରେ ତାହାର ଦେହକୁ ଆକାଶ ମାର୍ଗରେ ନେଇ ଯିବାବେଳେ ତାହାର ଦେହର ଖଣ୍ଡମାନ ଯେଉଁ ଯେଉଁଠାରେ ଭୂତଳରେ ପଡ଼ିତ ହେଲା, ସେହି ସେହି ସ୍ଥାନ ରତ୍ନର ଆକର ହେଲା । ତାହାର ଅସ୍ଥି ପଡ଼ିବା ସ୍ଥାନରେ ହୀରକ, ଚର୍ମ ପଡ଼ିବା ସ୍ଥାନରେ ପୁଷ୍ପରାଗ, ପିତ୍ତ ପଡ଼ିବା ସ୍ଥାନରେ ମାଲମଣି ଜାତ ହେଲା ।

କେହି କେହି କହନ୍ତି ଦଧୀଚି ମୁନିଙ୍କ ଅସ୍ଥିରୁ ରତ୍ନ ଉତ୍ପନ୍ନ । କେହି କେହି କହନ୍ତି ପୃଥିବୀର ଉପଳମାନ ସ୍ୱଭାବ-ବଶତଃ ବିବିଧ ରୂପ ଧାରଣ କରି ରତ୍ନରେ ପରିଣତ ହୁଅନ୍ତି । ରତ୍ନ ୩୨ ପ୍ରକାରର । ସେମାନଙ୍କ ମଧ୍ୟରୁ ନଅ ଗୋଟି ପ୍ରଧାନ ବା ମହାରତ୍ନ ଅଟେ । ରତ୍ନ ଅପେକ୍ଷା ସେହି ଶ୍ରେଣୀର ନିକୃଷ୍ଟ ପଦାର୍ଥମାନଙ୍କୁ ଉପରତ୍ନ ବୋଲାଯାଏ (ଯଥା—କାଚମଣି, ସ୍ଫଟିକ ବା ମର୍ମର ।)

୩୨ ପ୍ରକାରର ରତ୍ନମାନଙ୍କର ନାମ ଯଥା—୧ ବଜ୍ର, ୨ ମରକତ, ୩ ପଦ୍ମରାଗ, ୪ ମୌକ୍ତିକ, ୫ ଇନ୍ଦ୍ରନୀଳ, ୬ ମହାନୀଳ, ୭ ବୈଦୁର୍ଯ୍ୟ, ୮ ଚନ୍ଦ୍ରକାନ୍ତ, ୯ ସୂର୍ଯ୍ୟକାନ୍ତ, ୧୦ ସ୍ଫଟିକ, ୧୧ ପୁଲକ, ୧୨ କର୍କେତନ, ୧୩ ପୁଷ୍ପରାଗ, ୧୪ ରାଜପଟ୍ଟ ବା ରାଜପର୍ଯ୍ୟଙ୍କ, ୧୫ ରାଜମୟ, ୧୬ ସୌଗନ୍ଧିକ, ୧୭ ଗଞ୍ଜ, ୧୮ ଶଙ୍ଖ, ୧୯ ବ୍ରହ୍ମମୟ, ୨୦ ଗୋମେଦ, ୨୧ ରୁଧିରାକ୍ଷ, ୨୨ ଭଲ୍ଲାତକ ବା ଭଲ୍ଲାତକ, ୨୩ ଧୂଳି, ୨୪ ତୁତ୍ଥକ, ୨୫ ସୀସ, ୨୬ ପୀଲୁ, ୨୭ ପ୍ରବାଳକ, ୨୮ ଗିରି ବଜ୍ର, ୨୯ ଭୁଜଙ୍ଗମଣି, ୩୦ ବଜ୍ରମଣି, ୩୧ ଟିଟ୍ଟିଭ, ୩୧ ପିଣ୍ଡ, ୩୨

ଭ୍ରାମର, ୩୩ ଉତ୍ପଳ, ୩୪ ଗନ୍ଧଶସ୍ୟକ, ୩୫ ଜ୍ୟୋତୀରସକ ଓ ୩୬ ଭଗ୍ୟ ।

ମହାରତ୍ନ ନଅ ଗୋଟି; ଏମାନଙ୍କୁ ନବରତ୍ନ ବୋଲାଯାଏ ।

୧ ବଜ୍ର—ହୀରକ, ହୀରା—Diamond.

୨ ମୁକ୍ତା—ମୋତି—Pearl.

୩ ପ୍ରବାଳ—ପୋହଳା—Coral.

୪ ଗୋମେଦ—ହଳଦିଆ ରତ୍ନ—Yellow stone; Onyx.

୫ ଇନ୍ଦ୍ରନୀଳ—ନୀଳା—Sapphire; blue gem.

୬ ବୈଦୂର୍ଯ୍ୟ—Cat's eye; Lapis lazuli.

୭ ପୁଷ୍ପରାଗ—ପୋଖରାଜ—ପଦ୍ମରାଗ—Topaz.

୮ ପାଚ—ମରକତ ବା ପନ୍ନା (ହରିଦର୍ଣ୍ଣ)—Emerald; Samaragdus.

୯ ମାଣିକ୍ୟ—ନାଲି ରତ୍ନ—Ruby; Rubinus.

ଶାସ୍ତ୍ରମାନଙ୍କରେ ରତ୍ନମାନ ମଙ୍ଗଳମୟ ଓ ଶୁଭକର ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ରାଜାମାନେ ଜୟାର୍ଥ ରତ୍ନମାନଙ୍କୁ ସୁବର୍ଣ୍ଣମଣ୍ଡିତ କରି ଦେହରେ ଧାରଣ କରିବାର ଉପଦେଶ ଅଛି । ରତ୍ନମାନଙ୍କ ମଧ୍ୟରେ ଶୁଭଙ୍କର ଓ ଅଶୁଭଙ୍କର ରତ୍ନ ଅଛି । ଗରୁଡ଼ ପୁରାଣରେ ରତ୍ନମାନଙ୍କର ଗୁଣ, ଜାତି, ମୂଲ୍ୟ ଓ ପରୀକ୍ଷା ସମ୍ବନ୍ଧେ ବିସ୍ତୃତ ବିବରଣ ଲେଖା ଅଛି ।

ସଂ. ହୀରକ, ହୀରା, हीरा — ୧ । ହୀରା—ନବରତ୍ନ ମଧ୍ୟରେ ସର୍ବାପେକ୍ଷା ଉଜ୍ଜ୍ୱଳ ଓ ମୂଲ୍ୟବାନ୍; ଏହା ଖଣିରୁ ବାହାରେ । ଖନିଜ ଅବସ୍ଥାରେ ଏହା କୋଣବିଶିଷ୍ଟ ଥାଏ ।

ଏହା ବହୁ୍ୟତ୍ପ୍ରଭ । ହିନ୍ଦୁ ଶାସ୍ତ୍ରକାରମାନେ ହୀରାକୁ ଉଜ୍ଜ୍ୱଳତା ଓ ଜ୍ୟୋତି ଅନୁସାରେ ବ୍ରହ୍ମଜାତି (ଶ୍ୱେତ-ଛାୟାଯୁକ୍ତ), କ୍ଷତ୍ରିୟ ଜାତି (ରକ୍ତ ଛାୟାଯୁକ୍ତ), ବୈଶ୍ୟ ଜାତି (ପୀତ ଛାୟାଯୁକ୍ତ), ଓ ଶୂଦ୍ର ଜାତି (ନୀଳ ଛାୟାଯୁକ୍ତ) ବୋଲି ଶ୍ରେଣୀ ବିଭାଗ କରିଅଛନ୍ତି ।

ଭାରତବର୍ଷରେ ଅନେକ ସ୍ଥାନରେ, ବିଶେଷତଃ ଦାକ୍ଷିଣାତ୍ୟର ଗୋଲକୁଣ୍ଡାରେ ହୀରା ଖଣିରୁ ବାହାରେ । ଭାରତସମ୍ରାଟ ଇଂଲଣ୍ଡରାଜାଙ୍କ ମୁକୁଟରେ ଭାରତୀୟ 'କୋହିନୂର' ନାମକ ହୀରା ଶୋଭା ପାଉଅଛି । ହୀରା ସବୁ ବସ୍ତୁ ଅପେକ୍ଷା କଠିନ ଓ ଏହାଦ୍ୱାରା କାଚ କଟାଯାଏ । ହୀରାକୁ ମଧ୍ୟ ହୀରା ଦ୍ୱାରା କଟା ଯାଇପାରେ । ଏହା ଉଜ୍ଜ୍ୱଳ ଓ ସୂର୍ଯ୍ୟତୁଲ୍ୟ ଜ୍ୟୋତିର୍ବିଶିଷ୍ଟ । ଏହା ଶୁକ୍ର ଗ୍ରହଙ୍କର ପ୍ରିୟ ରତ୍ନ । ରସାୟନିକ ବିଶ୍ଳେଷଣ ଦ୍ୱାରା ଦେଖାଯାଇଅଛି ଯେ ଏହା ଅଙ୍ଗାରର ରୂପାନ୍ତର ମାତ୍ର । ପୂର୍ବେ ସମ୍ବଲପୁରରୁ ହୀରା ମିଳୁଥିଲା ଓ ତାହା ଇଉରୋପରେ ସୁପରିଚିତ ଓ ଆଦୃତ ଥିଲା ଓ ସମ୍ବଲପୁରର ଗୋଟିଏ ପ୍ରାଚୀନ ନାମ ହୀରାଖଣ୍ଡ ।

ସଂ. ମୋତି, ମୁକ୍ତା, ମୌକ୍ତିକ, ମୁକ୍ତାଫଳ, ଶୌକ୍ତିକ । ମୋତି मोती — ୨ । ମୁକ୍ତା ବା ମୋତି—ଏହା ବୃତ୍ତତା, ଶୁଭ୍ରତା ଓ ସ୍ୱଚ୍ଛତା ଗୁଣଯୁକ୍ତ । ଏହା ହସ୍ତୀର କପୋଳ, ସର୍ପର ମସ୍ତକ, ମାଛର ମୁଣ୍ଡ, ଶୂକର, ଭୂକ୍ସାର (ବାଉଁଶଗଣ୍ଠି), ଶଙ୍ଖ, ମେଘ, (ମତାନ୍ତରରେ ଭେକମସ୍ତକ) ଓ ଶୁକ୍ତି (ଶାମୁକା), ଏରୂପ ୮ଗୋଟି ସ୍ଥାନରୁ ମିଳିବା ଶାସ୍ତ୍ରରେ ଲେଖାଅଛି । କିନ୍ତୁ ସମୁଦ୍ରରେ ଥିବା ଶାମୁକା ମଧ୍ୟରୁ ବାହାରିବା ମୁକ୍ତା ସାଧାରଣତଃ ପ୍ରଚଳିତ । ଉତ୍କୃଷ୍ଟ ଜାତୀୟ ହସ୍ତୀର କପୋଳରୁ ବାହାରିବା ମୁକ୍ତାକୁ ଗଜମୋତି ବୋଲାଯାଏ । ଏହା ମଧ୍ୟ ଗୃହଶ୍ରେଣୀ (ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର)ରେ ବିଭକ୍ତ । ମୁକ୍ତା ବୃହସ୍ପତିଗ୍ରହଙ୍କ ପ୍ରିୟରତ୍ନ ।

ସର୍ପମଣି—ଅହିରାଜ ଓ ନାଗଜାତୀୟ ସର୍ପଙ୍କ ମୁଣ୍ଡରୁ ମଣି ବାହାରେ । ନାଗ ଓ ଗୋଖର ଆଦି ସାପଙ୍କୁ କେଳାମାନେ ଧରି ତାଙ୍କ ଫଣା ଉପରୁ କପାଳମଧ୍ୟରୁ ଫିକା ହଳଦିଆ ବର୍ତ୍ତୁଳ-ସୋହରପରି ଦୁଇଟି ଲେଖାଏଁ ମୋତି କଢ଼ାଇବା ଦେଖାଅଛି ।

ମୀନମୁକ୍ତା ବା ପାଠୀନ ମଣି—ପାଠୀନ, ଅର୍ଥାତ୍ ବାଲିଆ ଜାତୀୟ ମତ୍ସ୍ୟଙ୍କଠାରୁ ଓ ତିମିଙ୍କ ମୁଣ୍ଡରୁ ମୁକ୍ତା ବାହାରେ ।

ଶୁକ୍ତିମୁକ୍ତା—ଏହା ସର୍ବତ୍ର ସୁଲଭ । ସିଂହଳ, ସୌରାଷ୍ଟ୍ର, ପାଣ୍ଡ୍ୟ ଓ ବରାଟ ଆଦି ଦେଶରୁ ମୁକ୍ତା ମିଳିବା ଶାସ୍ତ୍ରରୁ ଜଣାଯାଏ । ବର୍ତ୍ତମାନ ଲଙ୍କା ନିକଟସ୍ଥ ପ୍ରଣାଳୀ (ପକ୍ ପ୍ରଣାଳୀ) ଓ ମାନାର ଉପସାଗରରୁ ମୁକ୍ତା ଆମଦାନି ହୁଏ । ପୂର୍ବେ ହିନ୍ଦୁ ଓ ଗ୍ରୀକ୍‌ମାନେ ବିଶ୍ୱାସ କରୁଥିଲେ ଯେ, ଅନୁକୂଳ ଯୋଗରେ ଶୁକ୍ତି ଉପରେ ବୃଷ୍ଟିବିନ୍ଦୁ ପାତ ହୋଇ ତାହା ମୁକ୍ତାରେ ପରିଣତ ହେଉଥିଲା । ଶୁକ୍ତିଜ ମୁକ୍ତାକୁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର, ଏପରି ୪ ଶ୍ରେଣୀରେ ବିଭକ୍ତ କରା ଯାଇଅଛି ।

ବାଉଁଶ (ଭୂକ୍ସାର) ମଧ୍ୟରୁ ଯେଉଁ ମୁକ୍ତା ବାହାରେ ତାହା ଭୂଆପଥର ପରି ଧଳା ।

ସଂ. ଅଙ୍ଗାରକମଣି, ଅମ୍ଭୋଧିବଲ୍ଲଭ, ଭୌମରତ୍ନ, ରକ୍ତାଙ୍ଗ, ରକ୍ତାକାର, ଲତାମଣି, ପଲା, मूंगा — ୩ । ପ୍ରବାଳ, ବିଦ୍ରୁମ ବା ଅଙ୍ଗାରକ ରତ୍ନ (ପୋହଳା—Coral) ଏହାର ବର୍ଣ୍ଣ ନାଲି । ସମୁଦ୍ରଗର୍ଭରେ ଏକ ପ୍ରକାର କୀଟ ଜନ୍ମନ୍ତି ସେମାନଙ୍କ ଆକାର ବୃକ୍ଷର ଶାଖା ପରି । ଏଥିପାଇଁ ଏହାକୁ ଲତାମଣି ବୋଲାଯାଏ । ସେହି ମୃତ କୀଟବୃକ୍ଷମାନଙ୍କର ଶାଖାକୁ ଖଣ୍ଡ ଖଣ୍ଡ କରି ତାହା ପ୍ରବାଳ କରାଯାଏ । ସାଧାରଣତଃ ଏହା ନାଲି, କିନ୍ତୁ ଭୂମଧ୍ୟସାଗର ଆଦିରେ କେଳି, ଧଳା ଆଦି ବର୍ଣ୍ଣର ପୋହଳା ମିଳେ । ଏହା ଅନ୍ୟାନ୍ୟ ରତ୍ନ ଅପେକ୍ଷା ନିକୃଷ୍ଟ । ଏହା ମଧ୍ୟ ଶୂଦ୍ର ଶ୍ରେଣୀରେ ବିଭକ୍ତ । ଏ ମଙ୍ଗଳ ଗ୍ରହଙ୍କ ପ୍ରିୟମଣି ।

ସଂ. ରାହୁ ରତ୍ନ, ତମୋମଣି, ସ୍ୱର୍ଭାନବ, ପିଙ୍ଗସ୍ଫଟିକ, ପୀତମଣି, ଗୋମେଦ, गोमेद — ୪ । ଗୋମେଦ ବା ପୀତମଣି ବା ପିଙ୍ଗଳ ସ୍ଫଟିକ—ଏହା ସ୍ଫଟିକର ରୂପାନ୍ତର । ଏହା ଖଣିରୁ ବାହାରେ । ଏହାର ବର୍ଣ୍ଣ ହଳଦିଆ ବା ପିଙ୍ଗଳ । ଏହା ଅନ୍ୟାନ୍ୟ ରତ୍ନମାନଙ୍କ ଅପେକ୍ଷା ନିକୃଷ୍ଟ । ହିମାଳୟ ଓ ସିନ୍ଧୁ ପ୍ରଦେଶରେ ଏହା ମିଳେ ।

ଏହା ମଧ୍ଯ ଶୂଦ୍ରଶ୍ରେଣୀରେ ବର୍ତ୍ତ । ଏ ରତ୍ନ ଗ୍ରହଙ୍କ ପ୍ରିୟ ରତ୍ନ ।

ସଂ—ତୃଣଗ୍ରାହୀ, ମାଲାଶ୍ମ, ନୀଳୋପଳ, ମହାନୀଳ, ମୂକନକ, ସୌରିରତ୍ନ, ନୀଳମଣି
**ନୀଲମ**

୫ । ଇନ୍ଦ୍ରନୀଳ ବା ନୀଳା—ଅପରାଜିତା ଫୁଲ ପରି ଏହାର ବର୍ଣ୍ଣ ନେଳଥା । ଏହା ଶନି ଗ୍ରହଙ୍କ ପ୍ରିୟମଣି । ପୁଷ୍ପରାଗ ହଳଦିଆ, ପଦ୍ମରାଗ ନାଲି ଓ ଇନ୍ଦ୍ରନୀଳ ନେଳ; ଏ ତିନିହେଁ ଏକ ଶ୍ରେଣୀର ।

ସଂ—ଅଭ୍ରରୋହ, ଭୂରତ୍ନମଣି, କେତୁରତ୍ନ, କୈତବ, ଖର-ବ୍ରାଙ୍କୁର, ଲାଲବର୍ଦ୍ଧ, ପ୍ରାବୃଷ୍ୟ, ବାଳବାୟଜ, ଦୂରଜ, କେତୁ-ବଲ୍ଲଭ, ବିଦୁରଜ, ବିଦୂର ରତ୍ନ, ଲଶୁନା; ରୁଦ୍ରାକ୍ଷକ ।
**ଲହସୁନିୟା**

୬ । ବୈଦୂର୍ଯ୍ୟ—ଏହା ଦେଖିବାକୁ ବିରାଡ଼ି ଆଖି ପରି ଧୂମ୍ରାଭ, କୃଷ୍ଣ-ପୀତବର୍ଣ୍ଣ । ଏହା କେତୁଗ୍ରହଙ୍କ ପ୍ରିୟ ରତ୍ନ । ହିନ୍ଦିରେ ଏହାକୁ ଲହସୁନିଆ କହନ୍ତି । ଏହା ଖଣିଜ । ଏହା ମଧ୍ଯ ଶୂଦ୍ରଶ୍ରେଣୀରେ ବର୍ତ୍ତ, ରସୁଣା, ରସୁଣିଆ, ଲହମନିଆ ଓ ଲହସୁନିଆ । ଏହି ଶ୍ରେଣୀର ଏକପ୍ରକାର ରତ୍ନ ଭୂରତ୍ନ ଦେଶରେ ଖଣିରୁ ମିଳେ । ଏହାର ନାମ ଲାଲବର୍ଦ୍ଧ ବା ଭୂରତ୍ନମଣି ।

ସଂ. ପୁଷ୍ପରାଗ, ମଞ୍ଜୁମଣି, ବାଚସ୍ପତିବଲ୍ଲଭ
ପୋଖରାଜ **ପୁ(ଖୋ)ଖରାଜ**

୭ । ପୁଷ୍ପରାଗ—ଏହା ସାଧାରଣତଃ ଈଷତ୍ ପୀତ ଲୋହିତବର୍ଣ୍ଣ । ଏହା ଖଣିରୁ ମିଳେ । ଏହା ମଧ୍ୟ ୪ ଶ୍ରେଣୀରେ ବର୍ତ୍ତ । କେହି କେହି ଇନ୍ଦ୍ରନୀଳକୁ ଏହି ମଣିର ପ୍ରକାରଭେଦ କହିଅଛନ୍ତି । ଏହା ଜୀବ (ମତାନ୍ତରରେ ବୃହସ୍ପତି) ଗ୍ରହଙ୍କର ପ୍ରିୟମଣି ।

ସଂ. ଅଶ୍ମଗର୍ଭ, ଅଶ୍ମଗର୍ଭଜ, ଗରଳାର, ଗରୁଡ଼ାଙ୍କିତ, ଗରୁଡ଼ୋଦ୍‌ଗାର୍ଣ୍ଣ, ଗାରୁଡ଼, ଗାରୁତ୍ମତ, ବୁଧରତ୍ନ, ମରକ୍ତ, ରାଜନୀଲ, ରୌହିଣେୟ, ବାପବୋଲ, ସୌପର୍ଣ୍ଣ, ହରିନ୍ମଣି ।
ପାନ୍ନା **ପନ୍ନା**

୮—ପାଚ ବା ମରକତ—ଏହାର ହରିତ୍ ବର୍ଣ୍ଣ । ବୁଧ ଗ୍ରହଙ୍କର ପ୍ରିୟ ରତ୍ନ । ପୂର୍ଣ୍ଣ-ବପୃଷ୍ଠ ଶୁକପକ୍ଷିକଣ୍ଠ, ଶିରୀଷପୁଷ୍ପ, ଖଦ୍ୟୋତର ପୃଷ୍ଠଦେଶ, ନବପ୍ରର୍ଣ୍ଣ ଶୈବ, ଶୈବାଳ, କହ୍ଲାର ଓ ନବ ତୃଣର ବର୍ଣ୍ଣ ଏଥିରେ ଦୃଷ୍ଟ ହୁଏ ।

ସଂ. ଶୋଣରତ୍ନ, ରତ୍ନରାଜ, ରବିରତ୍ନ, ଶୃଙ୍ଗାରୀ, ରଙ୍ଗମାଣିକ୍ୟ, ତରୁଣ, ରାଗଯୁକ୍, ପଦ୍ମରାଗ, ରତ୍ନନାୟକ, ଶୋଣୋପଳ, ଶୋଣରତ୍ନ, ଲୋହିତକ, ସୌଗନ୍ଧିକ, ଲୋହିତ, କୁରୁବିନ୍ଦ, କୁରୁବିନ୍ଦକ,
ମାଣିକ
**ମାନିକ, ଲାଲ, ଚୁନ୍ନୀ**

୯ । ମାଣିକ୍ୟ ବା ପଦ୍ମରାଗ—ଏହାର ବର୍ଣ୍ଣ ବନ୍ଧୁଲି ବା ରଙ୍ଗଣୀ ଫୁଲ, ଇନ୍ଦ୍ରଗୋପକୀଟ, ଜବାଫୁଲ, ରକ୍ତ, ନାଲି କାଇଞ୍ଚ; ନାଲି କର୍ଣ୍ଣି, ସିନ୍ଦୂର, ଲାକ୍ଷାରସ, ପଲାଶ ଫୁଲ ଓ ଡାଳିମ୍ବମଞ୍ଜି ଆଦି ପରି ନାଲି । ରକ୍ତଶ୍ଵେତ ମାଣିକ୍ୟ ସର୍ବୋତ୍କୃଷ୍ଟ । ଏହା ମଧ୍ଯ ୪ଶ୍ରେଣୀରେ ବର୍ତ୍ତ । ସିଂହଳ ଦେଶଜାତ ମାଣିକ୍ୟ ସର୍ବୋତ୍କୃଷ୍ଟ । ଏହା ରବିଗ୍ରହଙ୍କର ପ୍ରିୟରତ୍ନ । ଏହା ରତ୍ନରାଜ ଅଟେ ଓ ହୀରାଠାରୁ ଉତ୍କୃଷ୍ଟ ବୋଲି ଶାସ୍ତ୍ରରେ ଲେଖାଅଛି ।

ଉପରତ୍ନଗଣ—କର୍କେତନ, ଶ୍ରୀକ୍ଷୁକ, ପୁଲକ, ରୁଧିରାଖ୍ୟ, ଇନ୍ଦ୍ରଗୋପମଣି, କାଚମଣି ବା ଖାଉମଣି, ସ୍ଫଟିକ (ସୂର୍ଯ୍ୟକାନ୍ତ ଓ ଚନ୍ଦ୍ରକାନ୍ତ ସ୍ଫଟିକ ଜାତୀୟ), ସୂର୍ଯ୍ୟକାନ୍ତ ଓ ଚନ୍ଦ୍ରକାନ୍ତ ।] ୨ । ଜହ୍ଲରତ୍ନ; ସ୍ଵର୍ଣ୍ଣାଦି ବହୁମୂଲ୍ୟ ଦ୍ରବ୍ୟ—2, Jewellery. ୩ । (ଲକ୍ଷଣାର୍ଥ) ସ୍ଵଜାତୀୟ ବସ୍ତୁ ବା ପ୍ରାଣୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ବସ୍ତୁ ବା ପ୍ରାଣୀ; ଉତ୍କୃଷ୍ଟ ବସ୍ତୁ—3. (figurative) Anything or being which is best of its kind; excellent thing (compared to a gem).

**ରତ୍ନ କଣ୍ଠ**—ସଂ. ବି (ନାମ)—ଜ୍ୟୋତିଷ ସାରଣୀଗ୍ରନ୍ଥ ରଚୟିତା—Ratna kaṇtha The author of an astronomical treatise named Sāraṇi.
[ଦ୍ର—ଏ ୧୬୫୫ ଶକାବ୍ଦର ସୁନାମଧନ୍ୟ ଜ୍ୟୋତିଷୀ ଥିଲେ ।]

**ରତ୍ନ କଦଳୀ**—ସଂ. ବି—ଏକପ୍ରକାର କଦଳୀ; ନାଲିକଦଳୀ (ପାଚିଲେ ଖାଇ ହୁଏ)—A kind of red plantain (edible when ripe); Musa Rubra.
ରାମକଳା
**ରାମକେଲା**

**ରତ୍ନ କନ୍ଦଳ**—ସଂ.ବି (ରତ୍ନ+କନ୍ଦଳ=ନବାଙ୍କୁର) ପ୍ରବାଳ; ପୋହଳା—Ratna kandaḷa Coral.

**ରତ୍ନ କମ୍ବଳ**—ସଂ. ବି—ସ୍ଵର୍ଣ୍ଣାଦିଖଚିତ ସାଲ—Ratna kambaḷa Cloth of gold; shawl set with gems.

**ରତ୍ନ କୁ(କୂ)ଟ**—ସଂ. ବି—ଯେଉଁ ପର୍ବତ ମଧ୍ୟରେ ରତ୍ନ ଥାଏ—Ratna ku(kū)ṭa A mountain containing gems. (ରତ୍ନଗିରି—ଅନ୍ୟରୂପ)

**ରତ୍ନ ଖଚିତ**—ସଂ. ବିଣ (ଅଂଗ୍ଯା ଇତ) --ମଣି ମୁକ୍ତାଦିରେ ଭୂଷିତ—Ratna khachita Set with gems.

**ରତ୍ନ ଖଟ**—ଦେ.ବି (ସଂ. ରତ୍ନ+ଖଟ୍ଵା)—ରତ୍ନଖଚିତ ଖଟ—Ratna khaṭa A bedstead set with gems.
ବତ୍ନଖାଟ **रतनखाट** (ରତ୍ନଖଟ୍ଵା—ସଂ. ରୂପ)

**ରତ୍ନ ଗଜ**—ସଂ. ବି (ମ. ପ. ଲୋ; ରତ୍ନୋତ୍ପାଦକ ଗଜ)—ଯେଉଁ ଶ୍ରେଷ୍ଠ-ଜାତୀୟ ହସ୍ତୀର ମସ୍ତକରେ ମୋତି ଥାଏ; ଶ୍ରେଷ୍ଠଗଜ—Ratna gaja A class of elephants in whose brow pearls are found.

**ରତ୍ନଗଡ଼**—ଦେ. ବି. (ନାମ)—ବିକାନିର୍ ନଗରର ପୂର୍ବରେ ଓ ବିକାନିର୍ ରାଜ୍ୟରେ ଥିବା ଗୋଟିଏ ନଗର ଓ ରେଳ ଷ୍ଟେସନ—Ratnagaṛda Name of a town and Ry station in the Bikaner State). [ଦ୍ର—ବିକାନିର୍ ରାଜଧାନୀ ସଙ୍ଗେ ଏ ନଗର ରେଳ ଦ୍ଵାରା ଯୁକ୍ତ ହୋଇଅଛି ଏବଂ ଏହିଠାରୁ ଗୋଟିଏ ଶାଖା ଲାଇନ୍ ଉତ୍ତରକୁ ସର୍ଦ୍ଦାର-ସହରଠାକୁ ଯାଇଅଛି ।]

**ରତ୍ନ ଗର୍ଭ**—ସଂ. ବି (ରତ୍ନ ଅଛି ଗର୍ଭରେ ଯାହାର; ବହୁବ୍ରୀହି; ସମୁଦ୍ରସ୍ଥ ଶୁକ୍ତିରୁ ମୁକ୍ତା ବାହାରିବାରୁ)—ରତ୍ନାକର; ସମୁଦ୍ର—1. The ocean (which is the mine

of pearls). ୨ । କୁବେର—2. The God of wealth. ସଂ. ବଣ. ପୁଂ—ଯାହାର ମଧ୍ୟସ୍ଥଳ ରତ୍ନରେ (ରତ୍ନଗର୍ଭା—ସ୍ତ୍ରୀ) ପୂର୍ଣ୍ଣ—Full of gems inside it.

ରତ୍ନଗର୍ଭା—ସଂ. ବଣ. ସ୍ତ୍ରୀ (ରତ୍ନଗର୍ଭ+ଆ)—୧ । ସତ୍ପୁତ୍ରବତୀ; Ratnagarbha ସୁସନ୍ତାନବତୀ—1 Mother of excellent or worthy children. ୨ । ରତ୍ନଗର୍ଭର ସ୍ତ୍ରୀଲିଙ୍ଗ—2. Feminine of Ratnagarbha. ସଂ. ବି. ସ୍ତ୍ରୀ—ବସୁମତୀ; ପୃଥିବୀ—The earth (containing mines of gems).

ରତ୍ନ ଗିରି—ସଂ. ବି—ରତ୍ନକୂଟ (ଦେଖ)—Ratnakuta. (See) Ratna giri ଦେ. ବି—ଦକ୍ଷିଣଭାରତର ବୋମ୍ବେ ପ୍ରଦେଶର ଗୋଟିଏ ରାଜ୍ୟ ବା ଜମିଦାରୀ—Ratnagiri; a zamindari (estate) in the Bombay Presidency. [ବି—ଏହାର ରାଜଧାନୀ ରତ୍ନଗିରି ମାଲବାର ଉପକୂଳସ୍ଥ ଆରବସାଗରର ଗୋଟିଏ ବନ୍ଦର ଅଟେ ।]

ରତ୍ନଚିରା—ଦେ. ବି. ସ୍ତ୍ରୀ—ପୁରୀ ଜିଲ୍ଲାର ସତ୍ୟବାଦୀ (ସାକ୍ଷିଗୋପାଳ) Ratnachira ନିକଟ ଦେଇ ବହି ଯାଉଥିବା ଗୋଟିଏ କ୍ଷୁଦ୍ର ନଦୀ—ৰত্নচিরা रतनचिरा Name of a small river flowing by the village Sakhigopal in the Puri district. [ବି—ଏହାର ଗର୍ଭ କ୍ରମଶଃ ପୋତି ହୋଇ ଅନେକ ସ୍ଥାନରେ ଶସ୍ୟକ୍ଷେତ୍ର ହୋଇଯାଇଛି ।] (ଉ—ରତ୍ନଚିରା ତୀରେ ବିରାଜନ୍ତ ଅଜ ଶିବ ରତ୍ନପୁର-ଜେତା—ରାଧାନାଥ. ଯାତ୍ରା ।)

ରତ୍ନଚୁଡ଼—ଦେ. ବି (ଦେଶଜ ଶବ୍ଦ)—ହାତର ମଣିବନ୍ଧ, ପାପୁଲି ଓ ପାଞ୍ଚ Ratnachurda ଅଙ୍ଗୁଠି, ଏ ସମସ୍ତ ଅଂଶ ଆବୃତ କରିବା ଭଳି ସୁନାର ଅଳଙ୍କାର ବିଶେଷ—A gold ornament to cover the wrist, palm and the five fingers. ସ. ବଣ. ପୁଂ.—(ବହୁବ୍ରୀହି; ରତ୍ନ+ଚୂଡ଼ା)—ଯାହାର [ରତ୍ନଚୂଡ଼ା—ସ୍ତ୍ରୀ] ଚୂଡ଼ାରେ ରତ୍ନ ଅଛି—Having gems on the peak or head.

[ରତ୍ନ ଜଡ଼(ଡ଼ା) ବି—ଦେ. ବିଶେଷ୍ୟ ରୂପ]

ରତ୍ନ ଚୁଡ଼ି—ଦେ. ବି—୧ । ରତ୍ନଖଚିତ ହସ୍ତବଳୟ ବିଶେଷ—Ratna churdi 1. Chooree or bangle set with বত্ন চুড়ী रतन चूड़ी gems. ୨ । ଧାନ୍ୟବିଶେଷ – 2. A species of fine paddy. [ବି—ଏ ଧାନ ବଡ଼ ଓ ଛୋଟଭେଦରେ ଦୁଇ ପ୍ରକାରର । ଏହାର ଅଗ ଧୋବ ଓ ମଧ୍ୟଭାଗ ଅରକ୍ତ ।]

ରତ୍ନ ଜଡ଼ିତ—ସ. ବଣ (ସଜ୍ଞା ତଦ୍)—ରତ୍ନରେ ଜଡ଼ିତ କରାଯାଇଥିବା; Ratna jardita ରତ୍ନଖଚିତ—Bejewelled, set with [ରତ୍ନ ଜଡ଼(ଡ଼ା)ଇ—ଦେ. ରୂପ] gems.

ରତ୍ନଜୀବୀ—ସ. ବି (ରତ୍ନ+ଜୀବ୍‌ଧାତୁ+ଇନ୍. ୧ମା. ୧ବ)—ରତ୍ନ-Ratnajibi ବ୍ୟବସାୟୀ; ଜହୁରୀ—Jeweller.

ରତ୍ନଜୋଡ଼ି—ପ୍ରାଦେ (କଟକ ଜିଲ୍ଲା) ବି—ରତ୍ନବଟ ନିକଟସ୍ଥ ଜଳାଶୟ—Katnajordi A sacred reservoir of water near Ratnabata in the district of Cuttack.

ରତ୍ନ ତ୍ରିତୟ—ସ. ବି (୬ଷ୍ଠୀ ତତ୍)—୧ । ସୁବୁଦ୍ଧି, ଜ୍ଞାନ ଓ ଚରିତ୍ର—Ratna tritaya 1. Foresight, wisdom and character (combined in a person) ୨ । ଧର୍ମ, ସଙ୍ଘ ଓ ବୁଦ୍ଧ, ବୌଦ୍ଧ ଧର୍ମର ଏ ତିନିଗୋଟି ଅମୂଲ୍ୟ ବସ୍ତୁ—2. The trinity of the Buddhistic faith.

ରତ୍ନ ଦୀପ—ସ.ବି (ମ.ପ ଲୋ)—ବହୁମୂଲ୍ୟ ମଣି ଆଦିରେ ନିର୍ମିତ ପ୍ରଦୀପ-Ratna dipa Jewel lamp; lamp made of precious (ରତ୍ନପ୍ରଦୀପ—ଅନ୍ୟରୂପ) stones.

ରତ୍ନ ଦ୍ୱୀପ—ସ. ବି—ରତ୍ନନିର୍ମିତ ସ୍ଥାନ ବା ପୀଠ—A mound Ratna dwipa made of or set with gems. ଦେ. ବି—ପ୍ରବାଳ ରାଶି ଉପରେ ଗଠିତ ଦ୍ୱୀପ—Coral island.

ରତ୍ନ ଧେନୁ—ସ. ବି—ରତ୍ନମଣ୍ଡିତ ଧେନୁଦାନରୂପ ମହାଦାନବିଶେଷ—Ratna dhenu Name of a gift of a cow adorned with gems to a Brāhmaṇa.

ରତ୍ନ ନିଧି—ସଂ. ବି.—ଖଞ୍ଜନପକ୍ଷୀ—The wagtail. ଦେ. ବି.—Ratna nidhi ରତ୍ନସମୂହ—Gems or jewels. [ଉ—ବନ ରତ୍ନନିଧି ଗୁଞ୍ଜାସଙ୍ଗ ଅସନରେ । ଉଞ୍ଜ. ବୈଦେହୀଶବିଳାସ ।]

ରତ୍ନ ପଲ(ଲ୍ୟ)ଙ୍କ—ଦେ.ବି. (ସଂ. ରତ୍ନ ପର୍ଯ୍ୟଙ୍କ)—ରତ୍ନ ଖଚିତ ପଲଙ୍କ-Ratna pala(lya)ṅka A bedstead ornamented বত্নপালঙ্ক रत्नपलङ्क with gemss

ରତ୍ନ ପାରାୟଣ—ସଂ.ବି—ଯେଉଁଠାରେ ସବୁ ରତ୍ନ ମିଳେ—A place Ratna pārāyaṇa where all sorts of gems abound.

ରତ୍ନପୁର—ଦେ. ବି—୧ । ମଣିପୁଞ୍ଜ—1. A cluster of gems Ratnapura ୨ । ଦେଶ ବିଶେଷ—2. Name of a country. [ଉ—ବିଭୂଷଣ ରତ୍ନପୁର ଶ୍ରୀ ନଗର, ବିଶାଳରେ କରଅଛ ସେ ଆଦର । ଉଞ୍ଜ. ବୈଦେହୀଶବିଳାସ ।] ୩ । ଲଙ୍କାର ଗୋଟିଏ ନଗର—3. Ratnapura, a town in Ceylon. [ବି—ଏହା ଲଙ୍କା ଦ୍ୱୀପର ଦକ୍ଷିଣ ପଶ୍ଚିମାଂଶରେ ମଧ୍ୟପ୍ରଦେଶର ଗୋଟିଏ ନଗର ଓ ରେଲଷ୍ଟେସନ୍) ୪ । ଭାରତର ମଧ୍ୟପ୍ରଦେଶର ବିଲାସପୁରର ଉତ୍ତରରେ ଥିବା ଗୋଟିଏ ନଗର—4 Ratanpur, a town in the Central Provinces of India.

ରତ୍ନ ପୁରୁଷ—ସଂ. ବି. (ବୈଦ୍ୟକ)—ଏକପ୍ରକାର ଔଷଧ ଗଛ—A Ratna purusha kind of medicinal plant.

ରତ୍ନ ପ୍ରତିମା—ସଂ. ବି—ରତ୍ନନିର୍ମିତ ପିତୁଳା—An image made Ratna pratimā of gems. [ଉ—ରତ୍ନ ପ୍ରତିମାକୁ ସର୍ବେ ଭୂମିକୁ ନ ଦିଅନ୍ତି ମୁହଁ ସଦା । ତଗ ।]

ରତ୍ନପ୍ରଭ—ସଂ. ବଣ. (ରତ୍ନ+ପ୍ରଭା+ଅ)—ରତ୍ନ ପରି ପ୍ରଭାଯୁକ୍ତ—Ratnaprabha (ରତ୍ନପ୍ରଭା—ସ୍ତ୍ରୀ) Glittering like gem.

ରତ୍ନପ୍ରଭା—ସଂ. ବି. (୬ଷ୍ଠୀ ତତ୍) —୧ । ରତ୍ନର ଉଜ୍ଜ୍ୱଲ୍ୟ—1. The
Ratnaprabhā brightness or lustre of gems,
୨ । ଜୈନମାନଙ୍କର ନରକ ବିଶେଷ—2. Name of
a hell of the Jainas.

ରତ୍ନ ପ୍ରସୂ—ସ.ବିଣ. ସ୍ତ୍ରୀ—୧ । ଯେ ରତ୍ନ ପ୍ରସବ କରେ; ରତ୍ନପ୍ରସବିନୀ-
Ratna prasū 1. Bringing forth gems. ୨। ସୁସନ୍ତାନ
(ରତ୍ନପ୍ରସୂତା—ଅନ୍ୟରୂପ) ପ୍ରସବିନୀ (ସ୍ତ୍ରୀ)—2. Bringing
forth worthy children. ସ.ବି ସ୍ତ୍ରୀ —ବସୁନ୍ଧରା;
ପୃଥିବୀ—The earth.

ରତ୍ନ ପ୍ରସୂତ—ସ.ବିଣ.—୧। (୫ମୀ ତତ୍) ରତ୍ନରୁ ଉତ୍ପନ୍ନ—1. Produced.
Ratna prasūta from jewels. ୨। (ବହୁବ୍ରୀହି) ରତ୍ନୋତ୍ପାଦକ
2. Producing gems.

ରତ୍ନବଟ—ପ୍ରାଦେ ( କଟକ ଜିଲ୍ଲା ) ବି—ଅଚ୍ୟୁତାନନ୍ଦ ଦାସଙ୍କ ଓଡ଼ିଆ
Ratnabaṭa ମାଳିକାରେ ବର୍ଣ୍ଣିତ କଟକ ଜିଲ୍ଲାରେ କଟକରୁ
୧୬ମାଇଲ ପୂର୍ବେ ସୁଗମ୍ଭୀର, ଦେବୀମନ୍ଦିରଗର୍ଭ କ ରତ୍ନକୋଡ଼
ନାମକ ଜଳାଶୟର ତୀରରେ ଥିବା ବର ଗଛ—Name
of a banian tree mentioned in the
Mālikā where it is foretold that the
devotees will assemble. [ବି—ଏହା
ନିକଟରେ ଗୁପ୍ତଏ ମାଳିକାବିଶ୍ୱାସୀ ସାଧୁସନ୍ଥଙ୍କର ଗର୍ଭକେ
ଥରେ ମେଳା ହୁଏ । ଏହିଠାରେ କଳିଯୁଗ ଶେଷରେ ଭକ୍ତ-
ମାନେ ମିଳିତ ହୋଇ ଧର୍ମର ଜୟ ଘୋଷଣା କରିବେ ବୋଲି
ମାଳିକା ଗାଉଛି । ]

ରତ୍ନ ବଣିକ୍—ସ. ବି (ମ.ପ.ଲୋ)—ରତ୍ନଜୀବୀ, ରତ୍ନବ୍ୟବସାୟୀ—
Ratna baṇik Jeweller; a trader in gems.

ରତ୍ନବତୀ—ସ. ବି. ସ୍ତ୍ରୀ— ପୃଥିବୀ—The earth. ଦେ. ବି. ସ୍ତ୍ରୀ—
Ratnabati ସ୍ତ୍ରୀଲୋକଙ୍କର ନାମ—A name given to
women.

ରତ୍ନବାନ୍—ସ. ବିଣ. ପୁଂ—ରତ୍ନବିଶିଷ୍ଟ; ରତ୍ନପୂର୍ଣ୍ଣ—
Ratnabān Having gems; full of gems.
(ରତ୍ନବତୀ—ସ୍ତ୍ରୀ)

ରତ୍ନ ବର୍ଷୁକ—ସ. ବିଣ—ଯେ ରତ୍ନ ବର୍ଷା କରେ—Showering
Ratna barshuka gems. ସ. ବି—ପୁଷ୍ପକ ରଥ;
କୁବେରଙ୍କ ରଥ—The car of the Hindu's
God of wealth.

ରତ୍ନ ବୃକ୍ଷ—ସ. ବି (ମ. ପ. ଲୋ.)—ପ୍ରବାଳ—
Ratna bruksha Coral.

ରତ୍ନ ବେଦି(ଦୀ)—ସ. ବି—ରତ୍ନଖଚିତ ସ୍ତୂପ—An altar decked
Ratna bedi(dī) with jewels. ( ଉ— ମଣ୍ଡପ ମଧ୍ୟେ
(ରତ୍ନବେଦିକା—ଅନ୍ୟରୂପ) ରତ୍ନବେଦି, ସେ ଚନ୍ଦ୍ରମଣିରେ ଅଛାନ୍ତି-
ଭୂଷଣ. ପ୍ରେମପଞ୍ଚାମୃତ ।]

ରତ୍ନ ମଣ୍ଡିତ—ସ.ବିଣ.ପୁଂ(୩ୟା ତତ୍) — ରତ୍ନଖଚିତ; ରତ୍ନଜଡ଼ିତ;ରତ୍ନଦ୍ୱାରା
Ratna maṇḍita ଅଳଙ୍କୃତ—Set or adorned with
(ରତ୍ନମଣ୍ଡିତା—ସ୍ତ୍ରୀ] gems.

ରତ୍ନମୟ—ସ. ବିଣ—୧ । ରତ୍ନଖଚିତ—1 Set with gems.
Ratnamaya ୨ । ମଣିମୟ, ରତ୍ନଦ୍ୱାରା ଗଢା—2. Made
( ରତ୍ନମୟୀ .-ସ୍ତ୍ରୀ ) of gems. ୩ । ରତ୍ନପୂର୍ଣ୍ଣ—3. Full of
gems.

ରତ୍ନମାଳ(ଳ)—ଦେ. ବି (ସ. ରତ୍ନମାଳା)—ରତ୍ନମୟ ହାର—
Ratna māḷa(ḷi) A string of gems.
ରତ୍ନମାଳା रतनमाला
( ରତ୍ନମାଳା; ରତ୍ନମାଳିକା—ସ. ରୂପ )

ରତ୍ନ ମୁଖ୍ୟ—ସଂ. ବି. (୭ମୀ ତତ୍; ରତ୍ନ ମଧ୍ୟରେ ମୁଖ୍ୟ=ଶ୍ରେଷ୍ଠ)
Ratna mukhya ହୀରା—Diamond.
[ରତ୍ନବର—ଅନ୍ୟରୂପ]

ରତ୍ନ ମୁଦ୍ରିକା—ସଂ. ବି (ମ.ପ.ଲୋ) - ରତ୍ନଖଚିତ ଅଙ୍ଗୁରୀୟ—
Ratna mudrikā A ring set with gems
(ରତ୍ନମୁଦି—ଦେଶଜରୂପ)

ରତ୍ନ ରାଜି - ସ. ବି. (୬ଷ୍ଠୀ ତତ୍)—ରତ୍ନ ସମୂହ—A collection
Ratna rāji of gems.

ରତ୍ନରାଟ୍—ସ. ବି. (ରତ୍ନ+ରାଜ୍ ଧାତୁ+କ୍ୱିପ୍)—୧ । ଶ୍ରେଷ୍ଠ ରତ୍ନ—
Ratnarāṭ 1. Chief amongst gems, the best
amongst jewels. ୨ । ମାଣିକ୍ୟ—2 Ruby.

ରତ୍ନଲିଙ୍ଗ—ସଂ ବି.—ରତ୍ନ ନିର୍ମିତ ଶିବଲିଙ୍ଗ—An image of
Ratna linga Siba made of gems.

ରତ୍ନ ସାନୁ—ସ. ବି. (ବହୁବ୍ରୀହି, ରତ୍ନନିର୍ମିତ ସାନୁ=ତଟଦେଶ ଯାହାର)-
Ratna sānu ମେରୁ ଗିରି; ସୁମେରୁ ପର୍ବତ —The mytho-
logical golden mountain to the north
of the Himalayas [ଉ—ବିପିନେ ତଥି
ମଧ୍ୟରେ ଦାଶରଥି, ଶୋଭି ରତ୍ନସାନୁ ତମ୍ୟ ସେ । ଉଞ୍ଜ.
ବୈଦେହୀଶବିଳାସ ।]

ରତ୍ନ ସିଂହାସନ—ସଂ.ବି.(ମ.ପ. ଲୋ) —ମଣିମାଣିକ୍ୟଖଚିତ ସିଂହାସନ—
Ratna simhāsana A throne set with gems.
ଦେ. ବି—ମନ୍ଦିର ମଧ୍ୟରେ ଯେଉଁ ବେଦି ଉପରେ ଦେବ-
ବିଗ୍ରହ ସ୍ଥାପିତ ଥାଆନ୍ତି—An alter inside a tem-
ple where the image is set up.

ରତ୍ନସୂ—ସଂ. ବିଣ.—ରତ୍ନ ପ୍ରସୂ (ଦେଖ)—Ratnaprasū (See).
Ratnasū ସଂ. ବି.—ରତ୍ନଗର୍ଭା; ପୃଥିବୀ—The earth.

ରତ୍ନହାର—ସଂ. ବି. (ମ. ପ. ଲୋ)—ରତ୍ନ ଗ୍ରଥିତମାଳା—A string
Ratna hāra of gems.

ରତ୍ନାଈ—ଦେ. ବି.—ରତନାଈ; ଦେବୀ ବିଶେଷ—Name of a
Ratnāī popular Goddess.

ରତ୍ନାକର—ସଂ. ବି. (୬ଷ୍ଠୀ ତତ୍)—୧ । ସମୁଦ୍ର—1. The ocean.
Ratnākara ୨ । ରତ୍ନର ଖଣି—2. A mine of gems.
୩ । ରାମାୟଣକାର ମହାମୁନି ବାଲ୍ମୀକିଙ୍କର ପୂର୍ବ ନାମ—
3. The name of sage Balmiki (author
of the Rāmāyaṇa) before he became a
sage. [ବି—କଥିତ ଅଛି ଯେ ରତ୍ନାକର ପ୍ରଥମେ

ଦସ୍ୟୁ ବୃତ୍ତି କରୁଥିଲେ ଏବଂ ଜଙ୍ଗଲରେ ପଥିକମାନଙ୍କର ପ୍ରାଣ ସଂହାର କରି ସେମାନଙ୍କର ସର୍ବସ୍ୱ ଲୁଣ୍ଠନ କରି କୁଟୁମ୍ବ ପୋଷୁଥିଲେ । ଏକଦା ନାରଦ ଜଙ୍ଗଲରେ ଯାଉଥିଲେ; ତାଙ୍କୁ ରତ୍ନାକର ବଧ କରିବା ପାଇଁ ଅଗ୍ରସର ହୁଅନ୍ତେ ନାରଦ ପଚାରିଲେ 'ତୁମ୍ଭେ କି ସକାଶେ ନିର୍ଦ୍ଦୋଷ ବ୍ୟକ୍ତିକୁ ବଧ କରିବାକୁ ଉଦ୍ୟତ ହେଉଅଛ'? । ରତ୍ନାକର କହିଲେ 'ଏ ମୋର କୁଟୁମ୍ବପୋଷା ବୃତ୍ତି' । ନାରଦ ପଚାରିଲେ 'ତୁମ୍ଭେ ଯାହାଙ୍କ ପାଇଁ ବ୍ରହ୍ମହତ୍ୟାଦି ଗୁରୁତର ପାପ କରୁଅଛ ସେମାନେ ଏହି ପାପର ଅଂଶ ଗ୍ରହଣ କରିବେଟି କି?' ରତ୍ନାକର ଉତ୍ତର କଲେ 'ହଁ, ଅବଶ୍ୟ କରିବେ ।' ନାରଦ କହିଲେ, 'ଆଚ୍ଛା, ତାଙ୍କୁ ଯାଇ ପଚାରି ଆସିଲ, ସେମାନେ ତୁମ୍ଭ ପାପର ଅଂଶ ଗ୍ରହଣ କରିବେ କି ନାହିଁ'? ରତ୍ନାକର ଏ ବିଷୟ କୁଟୁମ୍ବଙ୍କୁ ପଚାରିବାକୁ ଗଲେ । କାଳେ ନାରଦ ପଳାଇଯିବେ, ଏହି ଆଶଙ୍କାରେ ରତ୍ନାକର ନାରଦଙ୍କୁ ଗୋଟିଏ ଗଛରେ ଦୃଢ଼ରୂପେ ବାନ୍ଧି କରି ଗୃହକୁ ଗଲେ । ଘରେ ପାଇ ପିତା ଓ ମାତା ଓ ପୁତ୍ରଙ୍କୁ ପଚାରିବାରୁ ସେମାନେ କହିଲେ 'ଆମ୍ଭମାନଙ୍କୁ ପୋଷିବା ତୁମ୍ଭର କର୍ତ୍ତବ୍ୟ, ତୁମ୍ଭଙ୍କୁ ଅଧର୍ମ କରିବାକୁ ଆମେ କହି ନାହୁଁ, ଏପରି ସ୍ଥଳେ ଆମେ କାହିଁ ତୁମ ପାପର ଅଂଶ ଗ୍ରହଣ କରିବୁଁ'? ରତ୍ନାକର କୁଟୁମ୍ବଙ୍କ ଠାରୁ ଏହି ଉତ୍ତର ଶୁଣି ବିଷଣ୍ଣ ବଦନରେ ନାରଦଙ୍କ ନିକଟକୁ ଫେରି ଆସି ନାରଦଙ୍କୁ ବନ୍ଧନମୁକ୍ତ କଲେ ଓ ତାଙ୍କ ପାଦତଳେ ପଡ଼ି, କିପରି ଏ ପାପରୁ ମୁକ୍ତି ପାଇବେ ତହିଁର ବାଟ ବତାଇବାକୁ ପ୍ରାର୍ଥନା କଲେ । ନାରଦ ତାଙ୍କ ପ୍ରତି ଦୟା କରି ତାଙ୍କ କାନରେ ରାମନାମ ମନ୍ତ୍ର ଦେଲେ ଓ ଯୋଗସାଧନର ଉପାୟ ବତାଇ ଦେଲେ । କିନ୍ତୁ ଆଜନ୍ମ ପାପ କାର୍ଯ୍ୟରେ ଲିପ୍ତ, କଠୋର ଦସ୍ୟୁର ରସନା ରାମ ଶବ୍ଦ ଉଚ୍ଚାରଣ କରିବାକୁ ଅସମର୍ଥ ହୋଇ 'ମରା' 'ମରା' ଉଚ୍ଚାରଣ କରି ଲାଗିଲା । ଏକାଗ୍ରଚିତ୍ତରେ 'ମରା' 'ମରା', ଏକାଦିକ୍ରମେ ଉଚ୍ଚାରଣ କରୁ କରୁ ତାହା ବର୍ଣ୍ଣ ବିପର୍ଯ୍ୟୟ କ୍ରମେ 'ରାମ' 'ରାମ' ହେଲା । ନାରଦ ସେଠାରୁ ଚାଲିଗଲେ ଓ ରତ୍ନାକର ସେହି ସ୍ଥାନରେ ବସି ଏହି ନାମ ଉଚ୍ଚାରଣ କରୁ କରୁ ଷାଠିଏ ହଜାର ବର୍ଷ ବିତିଗଲା ଓ ତାଙ୍କ ଶରୀର ଯାକ ବଲ୍ମୀକ ବା ଉଇହୁଙ୍କା ପାଲଟିଗଲା । ଅନନ୍ତର ଏ ଯୋଗସିଦ୍ଧ ହୋଇ ସେହି ବଲ୍ମୀକରୁ ଉଠି ବାଲ୍ମୀକି ନାମରେ ଖ୍ୟାତ ହେଲେ ।] ୧ । ଦେ. ବି ପୀତାମ୍ବର ଦାସଙ୍କ ରଚିତ ଓଡ଼ିଆ ନୃସିଂହ ପୁରାଣ ଗ୍ରନ୍ଥର ୭ଖଣ୍ଡର ପ୍ରତ୍ୟେକ ଖଣ୍ଡର ନାମ (ଯଥା, ପ୍ରଥମ ରତ୍ନାକର) —1. Name of each of the 7 volumes of the Oriya Nṛusiṁha purāṇa by poet Pitāmbara, Dāsa.

୨ । (ନାମ)--ପ୍ରାଚୀନ ଓଡ଼ିଆ କବି—2. Name of an ancient Oriya poet. [ଦ୍ର-ଏହାଙ୍କ ଜନ୍ମସ୍ଥାନ ସମ୍ବଲପୁର; ଏ ଜାତିରେ ଭୁଲିଆ; ମହିମାଧର୍ମ ଗ୍ରହଣ କରିଥିଲେ । 'ସ୍ୱାନସ୍ୱତ ଗୀତା' ଏହାଙ୍କଦ୍ୱାରା ରଚିତ ହୋଇଥିଲା । ବିନାୟକ ଉତ୍କଳ-ଇତିହାସ ।] ୩ । ପୁରୁଷଙ୍କୁ ଦିଆଯିବା ନାମ—3. A name given to males

ରତ୍ନାକର ଚମ୍ପୂ—ଦେ. ବି.—କ ଠାରୁ କ୍ଷ କ୍ରମରେ ଅଦ୍ୟ ଅକ୍ଷରମାନ Ratnākara champū ଥିବା ଗୀତଯୁକ୍ତ ବଳଦେବ ରଥ କବିସୂର୍ଯ୍ୟଙ୍କ ରଚିତ କୃଷ୍ଣକେଳି ବର୍ଣ୍ଣନାତ୍ମକ ସଙ୍ଗୀତ ପୁସ୍ତକ- Name of a book of Oriya songs by poet Baḷadeba Ratha Kabisūrjya.

ରତ୍ନାଙ୍କ—ସଂ. ବି.—(ବହୁବ୍ରୀହି; ରତ୍ନ ହୋଇଅଛି ଅଙ୍କ=ଚିହ୍ନ ଯାହାର)· Ratnāṅka ୧ । ବିଷ୍ଣୁଙ୍କ ରଥ—1. Name of Bishnu's car. ୨ । (ମ. ପ. ଲୋ) ରତ୍ନ ପରି ଚିହ୍ନ— A sign resembling a gem.

ରତ୍ନାଙ୍ଗୁରୀୟ—ସଂ. ବି.- ରତ୍ନ ମୁଦ୍ରିକା; ରତ୍ନ ବସା ଯାଇଥିବା ମୁଦି— Ratnāṅguriya A ring set with gems. (ରତ୍ନାଙ୍ଗୁରୀୟକ—ଅନ୍ୟରୂପ)

ରତ୍ନାଚଳ—ସଂ. ବି.—୧ । ରତ୍ନଗିରି; ସୁମେରୁ ପର୍ବତ—1. The Ratnāchaḷa Sumeru mountain. ୨ । ଦାନ ନିମିତ୍ତ ପର୍ବତରୂପେ କଳ୍ପିତ ରତ୍ନସ୍ତୂପ—2. A high heap of gems dedicated to be given away as gift.

ରତ୍ନାବଳି—ସଂ· ବି (୬ଷ୍ଠୀ ତତ୍)—୧। ରତ୍ନହାର—1. A string of Ratnā baḷi gems. ୨। ରତ୍ନ ଶ୍ରେଣୀ-2. A row of pearls. ୩। (ନାମ) ବତ୍ସରାଜ ପତ୍ନୀ—3. Name of a queen. ୪ । ଶ୍ରୀହର୍ଷପ୍ରଣୀତ ନାଟ୍ୟଗ୍ରନ୍ଥ ବିଶେଷ—4. Name of a drama by poet Śriharsha. ୫ । ବାକ୍ୟାଳଙ୍କାର ବିଶେଷ—5. A figure of speech.

ରତ୍ନାଭରଣ—ସଂ. ବି.(ମ ପ.ଲୋ)-ମଣିମୟ ଅଳଙ୍କାର; ଜଡ଼ାଉ ଅଳଙ୍କାର- Ratnābharaṇa Jewellery; ornaments set with gems. [ରତ୍ନାଳଙ୍କାର—ଅନ୍ୟରୂପ]

ରତ୍ନି—ସଂ ବି.—( ର ଧାତୁ=ଗମନ କରିବା + କରଣ.ଅତ୍ନି )—୧ । Ratni ଏକ ମୁଦୁଣି ପରିମିତ ଲମ୍ବ; ୨୧ ଅଙ୍ଗୁଳି—1. Linear [ଅରତ୍ନି—ଅନ୍ୟରୂପ] measure consisting of a length from the elbow to the end of the closed fist. ୨ । ମୁଠା; ମୁଷ୍ଟି—2. Closed fist.

ରତ୍ନେଶ—ସଂ. ବି. (୬ଷ୍ଠୀ ତତ୍)—କୁବେର—The Hindus' God of wealth. Ratneśa (ରତ୍ନେଶ୍ୱର—ଅନ୍ୟରୂପ)

ରତ୍ନୋଦଧି—ଦେ. ବି.—(ନାମ)—ସୁବିଖ୍ୟାତ 'ନାଳନ୍ଦ' ବିଶ୍ୱ. Ratnodadhi ବିଦ୍ୟାଳୟର ସୁବିଶାଳ ପୁସ୍ତକାଗାର—The name of the library of the celebrated ancient University of Nāḷanda.

ରତ୍ୟଙ୍ଗ-ସ.ବି.--(ମ.ପ.ଲୋ)—୧। ସ୍ତ୍ରୀ ଯୋନି—1. Female organ; Ratyanga vagina. ୨ । ପୁରୁଷ ଲିଙ୍ଗ—2. Male organ; penis.

ରଥ—ସଂ. ବି.—(ରମ୍ ଧାତୁ=କ୍ରୀଡ଼ା କରିବା + କରଣ.ଥ)—୧ । ଶକଟାଦି
Ratha ଚକ୍ରଯାନ—1 Wheeled conveyance e.g. cart; carriage. ୨ । ସ୍ୟନ୍ଦନ—2. Car. ୩ । ଯୁଦ୍ଧ ଯାନ—3. A conveyance used in war; war chariot. ୪ । ବାହନ—4 Any conveyance; vehicle. ୫ । ଶରୀର—5. Body. ୬ । ପଦ; ଚରଣ - 6 Leg. ୭ । ଅବୟବ—7. Limb; member of the body. ୮ । ବେତସ ବୃକ୍ଷ—8. Cane; ratan; Calamus Rotung. ୯ । ରଥଦ୍ରୁ, ତିନସ ବୃକ୍ଷ; ବାନ୍ଧନ ଗଛ—9. A timber tree; Ougenia Dalbergioides. ୧୦ । ଜଳବେତସ; କାନ୍ତାର—10. A species of ratan growing near water. ୧୧ । ବଞ୍ଜୁଳ; ଅଶୋକ—11. The Aśoka tree. ୧୨ । ପୁରୀର ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ଏବଂ ଭୁବନେଶ୍ୱରର ଲିଙ୍ଗରାଜ ମହାପ୍ରଭୁଙ୍କ ଚଳନ୍ତି ପ୍ରତିମାଙ୍କୁ ବସାଇ ସ୍ଥାନାନ୍ତରକୁ ନେବା ଓ ଆଣିବା ପାଇଁ ବ୍ୟବହୃତ ରଥ—12. Car used in conveying the idols at Puri, Bhubaneswar and other places.
[ଦ୍ର-ପୂର୍ବେ ବୈଦିକ ଯୁଗରେ ଅର୍ଥାତ୍ ୪ହଜାର ବର୍ଷ ପୂର୍ବେ ଭାରତୀୟ ଆର୍ଯ୍ୟମାନେ ରଥର ବ୍ୟବହାର ଜାଣୁଥିବାର ସ୍ପଷ୍ଟ ପ୍ରମାଣ ଋଗ୍‌ବେଦ ଓ ଯଜୁର୍ବେଦରୁ ମିଳେ । ରଥରେ ଅଶ୍ୱମାନେ ସାରଥିଦ୍ୱାରା ନିୟନ୍ତ୍ରିତ ହେଉଥିଲେ । ରଥକୁ ଶିଳ୍ପୀ ଓ ସୂତ୍ରଧରମାନେ ପ୍ରସ୍ତୁତ କରୁଥିଲେ । ଯୁଦ୍ଧରଥ ଗୋଚର୍ମ ଆଦିରେ ଆଚ୍ଛାଦିତ ହେଉଥିଲା । ରଥରେ ରଥସ୍ୱାମୀଙ୍କର ପରିଚୟସୂଚକ ପତାକା ଉଡ଼ୁଥିଲା । ରଥର ଅଭ୍ୟନ୍ତରରେ ଯୋଦ୍ଧାମାନଙ୍କର ଅସ୍ତ୍ରଶସ୍ତ୍ର ରକ୍ଷିତ ହେଉଥିଲା । ଅଶ୍ୱମାନେ ରଶ୍ମିଦ୍ୱାରା ରଥରେ ସଂଯୁକ୍ତ ଓ ଶୃଙ୍ଖଳିତ ହେଉଥିଲେ । ପୁରାଣ ଆଦିରେ ଭିନ୍ନଭିନ୍ନ ରଥ ଓ ଭିନ୍ନ ରଥମାନଙ୍କୁ ଟାଣିବା ପାଇଁ ଭିନ୍ନଭିନ୍ନ ଜନ୍ତୁ ନିୟୋଜିତ ହେବା ଉଲ୍ଲେଖ ଅଛି । ଶ୍ରୀକୃଷ୍ଣ, ଅର୍ଜୁନ, ନଳ ଓ ରୁକ୍ମିଣୀ ଆଦି ସାରଥି ରୂପରେ ରଥ ଚଳାଇ ଥିବା ମଧ୍ୟ ଉଲ୍ଲେଖ ଅଛି । ଭିନ୍ନ ଭିନ୍ନ ଯୋଦ୍ଧାଙ୍କର ଭିନ୍ନ ଭିନ୍ନ ପତାକା ବା ଧ୍ୱଜ ସହିତ ରଥ ଥିଲା । ଯୋଦ୍ଧାମାନେ ରଥରେ ଚଢ଼ି ଧନୁବାଣ ପ୍ରୟୋଗ ପୂର୍ବକ ଯୁଦ୍ଧ କରୁଥିଲେ । ଏମାନଙ୍କୁ ରଥୀ ବୋଲି ଯାଉଥିଲା ।

ରଥମାନ ଶୂନ୍ୟମାର୍ଗରେ ମଧ୍ୟ ଗମନାଗମନ କରୁଥିଲା । ରାବଣ ଲଙ୍କାରୁ ରଥ (ପୁଷ୍ପକ ବିମାନ)ରେ ଆସି ସୀତାଙ୍କୁ ରଥରେ ବସାଇ ଶୂନ୍ୟମାର୍ଗରେ ନେଇ ଯାଇଥିଲା । ରାମଚନ୍ଦ୍ର ରଥରେ ବସି ସୀତାଙ୍କୁ ସଙ୍ଗରେ ଘେନି ଲଙ୍କାରୁ ଫେରି ଆସିଲେ । କାବ୍ୟମାନଙ୍କରେ ମଧ୍ୟ ରାଜାମାନେ ରଥରେ ଯିବା ଆସିବା କରିବା ଉଲ୍ଲେଖ ଅଛି । କିନ୍ତୁ ଐତିହାସିକ ଯୁଗରେ ରଥର ବ୍ୟବହାରର ପ୍ରମାଣ ଦେଖା ଯାଇନାହିଁ ।

ପରବର୍ତ୍ତୀ କାଳରେ ବୁଦ୍ଧଦେବଙ୍କ ଦନ୍ତକୁ ରଥଦ୍ୱାରା ନିଆଯାଇ ଶୋଭାଯାତ୍ରା କରାଯିବାର ନିଦର୍ଶନ ମିଳେ । ବର୍ତ୍ତମାନ ପୁରୀର ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ତିନିଗୋଟି ରଥରେ ପୁଷ୍ୟାନକ୍ଷତ୍ରଯୁକ୍ତ ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ ବିଜେ କରି ଗୁଣ୍ଡିଚା ମନ୍ଦିରକୁ ଯାଇ ସେଠାରେ ସପ୍ତାହକାଳ ଅବସ୍ଥାନ କରି ଦଶମୀ ଦିନ ସେଠାରୁ ବଡ଼ଦେଉଳକୁ ଆସିଥାନ୍ତି । ଗୁଣ୍ଡିଚା ମନ୍ଦିରକୁ ଯିବା ଦିନକୁ ରଥଯାତ୍ରା ବା ଗୁଣ୍ଡିଚା ଓ ଫେରିବା ଦିନକୁ ବାହୁଡ଼ାଯାତ୍ରା କୁହାଯାଏ ।

ଭୁବନେଶ୍ୱରରେ ଲିଙ୍ଗରାଜ ମହାପ୍ରଭୁଙ୍କ ଚଳନ୍ତି ପ୍ରତିମା ଚନ୍ଦ୍ରଶେଖରଙ୍କୁ ଚୈତ୍ର ଶୁକ୍ଳ ଅଷ୍ଟମୀ (ଅଶୋକାଷ୍ଟମୀ) ଦିନ ଗୋଟିଏ ରଥରେ ଏକ ମାଇଲ୍ ଦୂରବର୍ତ୍ତୀ ରାମେଶ୍ୱର ମନ୍ଦିରକୁ ନିଆଯାଇ କିଛିଦିନ ସେଠାରେ ଅବସ୍ଥାପିତ କରି ପୁଣି ବଡ଼ଦେଉଳକୁ ବାହୁଡ଼ାଇ ଅଣାଯାଏ । ଭୁବନେଶ୍ୱରର ରଥ ୪ ଚକବିଶିଷ୍ଟ; ରଥର ନାମ ରୁକ୍ମିଣୀ ବା ରୁକୁଣା ରଥ । ଏ ରଥ ଯେଉଁଆଡ଼େ ମୁହାଁଇ କରି ଯାଇଥାଏ ସେଆଡ଼ରୁ ଆଉ ମୁହାଁଇ ଫେରିଏ ନାହିଁ । ବାହୁଡ଼ା ଦିନ ରଥର ଆଗପାଖର ସାଜସଜ୍ଜାକୁ ଆଣି ପଛ ପାଖରେ ଲଗାଇ ରଥର ପଛପାଖକୁ ସମ୍ମୁଖ କରି ଠାକୁରଙ୍କୁ ବାହୁଡ଼ାଇ ଅଣାଯାଏ । ଏଥିପାଇଁ ଢଗ ଅଛି ଯେ 'ରୁକୁଣା ରଥ ଆଉ ନ ଫେରେ' ।

ପୁରୀ ଜଗନ୍ନାଥଙ୍କ ରଥ ୧୬ ଚକବିଶିଷ୍ଟ; ରଥର ନାମ 'ନନ୍ଦିଘୋଷ ରଥ' ଓ ଏହାର ପତାକା ଗରୁଡ଼ଚିହ୍ନାଙ୍କିତ ।

ସୁଭଦ୍ରାଙ୍କ ରଥ ୧୨ ଚକବିଶିଷ୍ଟ, ନାମ ଦେବଦଳନ; ଏହା ପଦ୍ମଧ୍ୱଜ ।

ବଳଭଦ୍ରଙ୍କ ରଥ ୧୪ ଚକବିଶିଷ୍ଟ; ନାମ ତାଳଧ୍ୱଜ; ଏହା ଲାଙ୍ଗଳଧ୍ୱଜ ।

ପୁରୀର ରଥଯାତ୍ରା ବୌଦ୍ଧଯାତ୍ରାର ଚିହ୍ନ ବୋଲି କେହି କେହି କହନ୍ତି । ] ଦେ. ବି—୧ । ବ୍ରାହ୍ମଣମାନଙ୍କ ବଂଶୋପାଧିବିଶେଷ—1. A family-title of some Brāhmaṇas. ୨ । ପୁରୁଷଙ୍କ ନାମ—2. A name given to males.

ରଥକ—ସଂ. ବି—ଦେବମନ୍ଦିରର ଅଂଶବିଶେଷର ନାମ; ଦେବମନ୍ଦିରର
Rathaka ବିମାନ—The upper dome-like half of a temple.

ରଥ କଟ୍ୟା(ଡ୍ୟା)—ସଂ ବି (ଦେଶୀତତ୍)—ରଥଶ୍ରେଣୀ—
Ratha kaṭyā(ḍyā) A row of cars.

ରଥକ(କା)ର—ସଂ. ବି—୧ । ରଥନିର୍ମାତା କାରିଗର—1. Artisan
Rathaka(kā)ra who builds the car. ୨ । ରଥନିର୍ମାତା ବଢ଼େଇଜାତି—2. A caste of carpenters who build cars.

ରଥ କୁଟୁମ୍ବୀ—ସଂ. ବି—ସାରଥି—
Ratha kuṭumbī Charioteer.

ରଥଗର୍ଭକ—ସଂ. ବି—ଶିବିକାଦି ନରବାହ୍ୟ ଯାନ—Conveyances
Rathagarbhaka or litters carried by men.

**ରଥ ଗୀତ**—ଦେ. ବି—ପୁରୀ ଓ ଭୁବନେଶ୍ୱର ଆଦିର ରଥମାନଙ୍କୁ ଟାଣିବା
Ratha gita ବ୍ୟକ୍ତିମାନଙ୍କୁ ଉତ୍ସାହିତ କରିବାପାଇଁ ରଥର
ରথটানার গান **रथ खींचने समयका गान** ସାରଥିମାନଙ୍କ ବୋଲିବା
ଅଶ୍ଳୀଳ ଗୀତ—Obscene songs sung by the drivers of the religious cars during their dragging.

**ରଥ ଗୁପ୍ତି**—ସଂ. ବି—ଶସ୍ତ୍ରାଦି ଓ ଶରୀର ରକ୍ଷା ନିମିତ୍ତ ରଥମଧ୍ୟସ୍ଥ ଗୁପ୍ତ
Ratha gupti ସ୍ଥାନ—A recess made inside the car for the rider's self protection and for depositing weapons.

**ରଥ ଚକ୍ର**—ସଂ. ବି—୧ । ରଥର ଚକ—1. The wheel of a
Ratha chakra car. ୨ । ଚକ—2. Wheel. ୩ ।
( ରଥଚରଣ—ଅନ୍ୟରୂପ ) ଚକ୍ରବାକ ପକ୍ଷୀ—3. The ruddy goose.

**ରଥ ଚଳା(ଳେ)ଇବା**—ଦେ. କ୍ରି—ରଥରେ ଯୋଗ୍ୟ ହୋଇଥିବା ପଶୁ
Ratha chalā(le)ibā ଆଦିଙ୍କୁ ପ୍ରଚୋଦିତ କରି ରଥକୁ
রথ চালান **रथ चलाना** ଚାଳିତ କରିବା—To drive a car

**ରଥ ଚଳିବା**—ଦେ. ବି—୧ । ରଥ ଗତି କରିବା—1. A car
Ratha chalibā being in motion. [ ଉ—ରଥ ଚଳେ
[ରଥ ଚାଲିବା—ଅନ୍ୟରୂପ] ଧୀରେ ଧୀରେ, ଶସ୍ୟ ମଉଳ ବେଳେ ।
রথচলা ଶିଶୁଗୀତ । ] ୨ । ( ଲକ୍ଷଣାର୍ଥ ) ଚଳପ୍ରଚଳ କରିବାକୁ
**रथ चलना** ସମର୍ଥ ହେବା—2. (figurative) Being able to walk and move about. [ ଯଥା—ଏଣିକି ୮୦ ବର୍ଷ ବୟସରେ ମୋ ରଥ ଚଳିବା କଷ୍ଟ ହେଲାଣି ।]

**ରଥ ଚାଳକ**—ସଂ. ବି. ପୁଂ (୬ଷ୍ଠୀ ତତ୍)—ସାରଥି—
Ratha chālaka Charioteer; driver of a car.
(ରଥଚାଳିକା—ସ୍ତ୍ରୀ)

**ରଥ ଚାଳନ**—ସଂ. ବି—ସାରଥିରୂପେ ରଥରେ ଲାଗିଥିବା ଅଶ୍ୱାଦିଙ୍କୁ
Ratha chālana ନିୟନ୍ତ୍ରିତ କରି ରଥକୁ ଚାଳିତ କରିବା—Driving of a chariot.

**ରଥ ଟାଣିବା**—ଦେ. କ୍ରି—ଗତି କରିବା ପାଇଁ ରଥକୁ ଓଟାରିବା—
Ratha ṭāṇibā To draw a car.
রথটানা **रथ खींचना**

**ରଥ ଦ୍ରୁ**—ସଂ. ବି (ମ. ତ. ଲୋ, ରଥ+ଦ୍ରୁ=ବୃକ୍ଷ; ଏହାର କାଠରେ
Ratha dru ରଥ ତିଆରି ହେଉଥିବାରୁ)—ତିନିଶ ବା ବାନ୍ଧନ ଗଛ-
A timber-tree used in making cars; Ougenia Dalbergioides.

**ରଥନ୍ତର**—ସଂ. ବି(ରଥମ୍=ରଥକୁ+ତୃ. ଧାତୁ. ଣିଚ୍; ତାର.ଧାତୁ+କର୍ତ୍ତୃ.
Rathantara ଅ)—୧ । ସାରଥି—1. Charioteer. ୨ ।
ସାମ ବେଦର ଶାଖା ବିଶେଷ—2. Name of a portion of the Sāma Beda.

**ରଥ ପାଦ**—ସଂ. ବି (୬ଷ୍ଠୀ ତତ୍)—ରଥର ଚକ—
Ratha pāda The wheel of a car.

**ରଥବାହ**—ସଂ. ବି. ପୁଂ (ରଥ+ବହ୍. ଧାତୁ ଣିଚ୍, ବାହ୍. ଧାତୁ+କର୍ତ୍ତୃ.
Rathabāha ଅ)—ସାରଥି—Charioteer.
(ରଥବାହକ—ଅନ୍ୟରୂପ) (ରଥବାହା, ରଥବାହିକା—ସ୍ତ୍ରୀ)

**ରଥ ବାହିବା**—ଦେ. କ୍ରି—ରଥ ଚଳାଇବା (ଦେଖ)
Rath bāhibā Ratha chalāibā. (See)

**ରଥବୁହା**—ଦେ. ବିଣ—(ସଂ. ରଥବାହନ) ରଥର ଚାଳନ—
Rathabuhā Driving of a car.
রথচালান **रथचलाना** [ଉ—ରଘୁପତି ବାହୁକ ରଥବୁହା ଦେଖି, ପ୍ରମୋଦ ଜଳେ ଭାସି ଗଲେ ହୋଇ ସୁଖୀ । କୃଷ୍ଣସିଂହ. ମହାଭାରତ. ବନ ।]

**ରଥ ବେଗ**—ସଂ. ବି. (୬ଷ୍ଠୀ ତତ୍)—ରଥର ଗତିର ଦ୍ରୁତତା—The
Ratha bega speed of a car.

**ରଥ ଭୋଗ**—ଦେ. ବି—ଠାକୁର ରଥରେ ଥାଉଥିବା ସମୟରେ ତାଙ୍କୁ
Ratha bhoga ଅର୍ପିତ ଭୋଗ—Offerings made to the
ঠাকুরকে রথেযাবার সময Deity while on the car.
যে ভোগ দেওযাযায **रथभोग**

**ରଥ ଯାତ**—ଦେ. ବି—ରଥଯାତ୍ରା ( ଦେଖ )—Rathajātrā
Ratha jāta (See).
রথযাত্রা **रथयात्रा** (ରଥଯାତର ଅନ୍ୟରୂପ)

**ରଥ ଯାତ୍ରା**—ଦେ. ବି—୧ । ଶ୍ରୀଗୁଣ୍ଡିଚା; ଆଷାଢ ମାସ ପୁଷ୍ୟା ନକ୍ଷତ୍ରଯୁକ୍ତ
Ratha jātrā ଶୁକ୍ଳ ଦ୍ୱିତୀୟା ଦିନ ପୁରୀର ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ୩ଟି ରଥରେ ଗୁଣ୍ଡିଚା ମନ୍ଦିରକୁ ନୀତ ହେବା ରୂପ ଉତ୍ସବ—1. The car festival of Puri; the ceremony of taking the Deieties Jagannath, Balabhadra and Subhadrā in 3 cars to their garden house; the Gundichā festival. [ ଦ୍ର—ପୁରୀର ରଥଯାତ୍ରା ସମୟରେ ମହାସମାବେଶ ହୁଏ ଓ ଭାରତର ଭିନ୍ନ ଭିନ୍ନ ଅଞ୍ଚଳରୁ, ବିଶେଷତଃ ବଙ୍ଗଦେଶରୁ, ବହୁ ସହସ୍ର ଯାତ୍ରୀ ସେହି ସମୟରେ ପୁରୀକୁ ଆସନ୍ତି । ପୂର୍ବେ ଯାତ୍ରୀମାନେ କେହି କେହି ରଥମାନଙ୍କର ଚକ ସାମନାରେ ପଡ଼ିଯାଇଁ ପ୍ରାଣ ହରାଉଥିଲେ ଓ ଏହା କରିବା ଦ୍ୱାରା ସେମାନଙ୍କର ସ୍ୱର୍ଗଲାଭ କରିବାର ଆଶା ଥିଲା । କେହି କେହି ଲୋକ-ଗହଳିରେ ରଥଚକରେ ପେଷି ହୋଇ ଯାଉଥିଲେ । ଏହି ଘଟଣାକୁ ଲକ୍ଷ୍ୟ କରି ଜଣେ ସାହେବ-ପର୍ଯ୍ୟଟକ (Burton) (ଯେ ୩୦୦ ବର୍ଷ ତଳେ ଜଗନ୍ନାଥଙ୍କ ରଥ ଦେଖିଥିଲେ ସେ) ଜଗନ୍ନାଥଙ୍କୁ ଏକ ପକ୍ଷପାତୀ ଅସୁର—ଦେବତା ବୋଲି ବର୍ଣ୍ଣନା କରିଥିଲେ ଓ ତାଙ୍କ ରଥ ଚକତଳେ ମନୁଷ୍ୟ ବଳି ଦିଆଯିବା କଥା ମଧ୍ୟ ଲେଖିଥିଲେ । ସେଥିପାଇଁ ଅଦ୍ୟାପି ଜଗନ୍ନାଥଙ୍କ ରଥ 'The car of Jagannath' ଶବ୍ଦ ଇଂରାଜୀଭାଷାରେ ଗୋଟିଏ ପ୍ରବଚନ ରୂପେ ବ୍ୟବହୃତ ହୋଇ ଆସୁଅଛି । ଏବେ ସରକାରଙ୍କର କଟକଣା ଯୋଗୁଁ ରଥମାନ ଚଳିବା ସମୟରେ ମାଜିଷ୍ଟ୍ରେଟ୍ ଓ ପୁଲିସ ସାହେବମାନେ ନିଜେ ଉପସ୍ଥିତ ରହି ଚଳୁଥିବା ରଥର ଚକ ପାଖରୁ ଲୋକଙ୍କୁ ଅଡ଼େଇ ଦିଅନ୍ତି । ତେଣୁ ଏବେ ସେପରି ଦୁର୍ଘଟଣା ପ୍ରାୟ ଘଟେ ନାହିଁ ।

ଶ୍ରୀ ଚୈତନ୍ୟ ଦେବ (ପଞ୍ଚଦଶ ଶତାବ୍ଦୀରେ) ପୁରୀରେ ଅବସ୍ଥାନ କରୁଥିବା ସମୟରେ ରଥଯାତ୍ରାରେ ଯୋଗ ଦେଇ ସଦଳ ନାମସଂକୀର୍ତ୍ତନ କରି ରଥ ଆଗେ ଆଗେ ଯାଉଥିଲେ ଓ ସେହି ସମୟରୁ ପୁରୀର ରଥଯାତ୍ରାରେ ଯୋଗ ଦେବା ପାଇଁ ବଙ୍ଗୀୟ ଯାତ୍ରୀମାନେ ସହସ୍ରଶଃ ଆସୁଅଛନ୍ତି ।

ପତିତ ଓ ଅସ୍ପୃଶ୍ୟ ଜାତିମାନେ (ବାଉରି, କଣ୍ଡରା, ପାଣ, ହାଡ଼ି ଆଦି, କି, ଯେଉଁମାନଙ୍କର ଦେଉଳ ମଧ୍ୟକୁ ପଶି ଜଗନ୍ନାଥଙ୍କୁ ଦର୍ଶନ କରିବାର ଅଧିକାର ନାହିଁ, ସେମାନେ) ରଥ ଉପରେ ବିରାଜିତ ଜଗନ୍ନାଥଙ୍କୁ ଦର୍ଶନ କରିବାର ସୁବିଧା ପାଆନ୍ତି । ଶାସ୍ତ୍ରରେ ଅଛି ଯେ ରଥରେ ବିରାଜିତ ଜଗନ୍ନାଥଙ୍କୁ ଦର୍ଶନ କଲେ ମନୁଷ୍ୟ ଭାବୀ ପୁନର୍ଜନ୍ମରୁ ଉଦ୍ଧାର ପାଏ । ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଦେଉଳ ମଧ୍ୟରୁ ରଥ ନିକଟକୁ ଆଣିବା ପାଇଁ ସେବକମାନେ ଉକ୍ତ ବିଗ୍ରହମାନଙ୍କ ଅଣ୍ଟାରେ ପାଟ ଡୋରି ଲଗାଇ ଉଚ୍ଚ ଉଚ୍ଚ ଓ ଟେକାଟେକି କରି ତଆଇଁ-ତଆଇଁ ଆଣନ୍ତି; ଏହାକୁ 'ପହଣ୍ଡି' ବା 'ପହଣ୍ଡି ବିଜେ' କହନ୍ତି ।

ପୁରୀର ରାଜା ସ୍ୱୟଂ ଜଗନ୍ନାଥଙ୍କ ଆଗେ ଆଗେ ଗୋଟି ସୁନା ଝାଡ଼ୁକା ଧରି ବାଟ ଓଳାଉ ଥାଆନ୍ତି ଓ କର୍ପୂର ଚନ୍ଦନାଦି ସୁବାସିତ ଜଳ ଛିଞ୍ଚୁ ଥାଆନ୍ତି; ଏହାକୁ 'ଛେରା ପହଁରା' କହନ୍ତି । ପୁରୀର ରାଜା ପୁରୁଷୋତ୍ତମ ଦେବ ଏହି 'ଛେରା ପହଁରା' କରୁଥିବାରୁ କାଞ୍ଚି ରାଜା ପୁରୀରାଜାଙ୍କୁ 'ହାଡ଼ି' ବୋଲି ଉପହାସ କରି ଆପଣାର କନ୍ୟା ପଦ୍ମାବତୀଙ୍କୁ ତାଙ୍କ ସଙ୍ଗେ ବିବାହ ଦେବାକୁ ମନା କରିଥିଲେ ଓ ଏ ଅପମାନର ପ୍ରତିଶୋଧ ନେବା ପାଇଁ ପୁରୀର ରାଜା ପଞ୍ଚଦଶ ଶତାବ୍ଦୀରେ ଦକ୍ଷିଣରେ କୃଷ୍ଣାନଦୀ ତୀରସ୍ଥ କାଞ୍ଚି ରାଜ୍ୟକୁ ଆକ୍ରମଣ ଓ ଜୟ କରି ରାଜକନ୍ୟା ପଦ୍ମାବତୀଙ୍କୁ ଆଣି ପରିଶେଷରେ ତାଙ୍କ ପାଣିଗ୍ରହଣ କରିଥିଲେ ।

ପୁରୀର ରାଜା ଯେତେବେଳେ ସମଗ୍ର ଉତ୍କଳର ଏକାଧିପତି ମହାରାଜା 'ବୀର ଶ୍ରୀ ଗଜପତି ଗଉଡ଼େଶ୍ୱର ନବ କୋଟି କର୍ଣ୍ଣାଟ କଳବର୍ଗେଶ୍ୱର ବିରାଧି ବୀରବର ପ୍ରତାପ' ଉପାଧି ଯୁକ୍ତ ହୋଇ 'ଲକ୍ଷେ ରାଜାଙ୍କ ମଉଡ଼ମଣି' ଥିଲେ, ସେହି ସମୟରୁ ଗଡ଼ଜାତରୁ ରଥ ପାଇଁ ଆବଶ୍ୟକ କାଠ ଯୋଗାଇବା ପାଇଁ ଦଶପଲ୍ଲାର ରାଜାଙ୍କୁ 'ଡୋଲୁଅମ୍' ନାମକ ଗୋଟିଏ ଜଙ୍ଗଲ ଦେଇଥିଲେ ଓ ଆଜି ପର୍ଯ୍ୟନ୍ତ ଦଶପଲ୍ଲାର ରାଜା ଉକ୍ତ ଜଙ୍ଗଲ ଭୋଗ କରି ପ୍ରତିବର୍ଷ ମହାନଦୀର ବଢ଼ି ସମୟରେ ନଦୀ ମାର୍ଗରେ ପଠାଇ କରି ରଥକାଠ ପୁରୀକୁ ପଠାଉ ଅଛନ୍ତି ।

ପୁରୀର ରଥ ତିଆରି କରିବା ପାଇଁ ବଢ଼େଇମାନେ ଜାଗିର ଖାଉ ଅଛନ୍ତି । ରଥମାନ ଟାଣିବା ପାଇଁ ମଧ୍ୟ ଜାଗିର-ଖିଆ ଲୋକେ ଅଛନ୍ତି । ସେମାନଙ୍କୁ 'କଳାବେଠିଆ' ବା 'କଳାପିଠିଆ' ବୋଲାଯାଏ । ରଥ ଟାଣିବା ଦଉଡ଼ି ଯୋଗାଇବା ପାଇଁ ମଧ୍ୟ ଜାଗିରଦାର ଅଛନ୍ତି ।

ରଥମାନଙ୍କୁ କଳାବେଠିଆ ଓ ଯାତ୍ରୀମାନେ ଟାଣନ୍ତି ଓ ସେମାନଙ୍କୁ ଉତ୍ସାହିତ କରିବା ପାଇଁ 'ସାରଥି' ନାମଧାରୀ ଜଣେ ବ୍ୟକ୍ତି ରଥ ଉପରେ ଠିଆ ହୋଇ ଉଚ୍ଚୈଃସ୍ୱରରେ ଅଶ୍ଳୀଳ ଗୀତ ବୋଲୁ ଥାଏ ।

ପୁରୀ ଓ ଭୁବନେଶ୍ୱରର ରଥଯାତ୍ରା ବୌଦ୍ଧ ଉତ୍ସବର ରୂପାନ୍ତର ମାତ୍ର ବୋଲି କେତେକ ପଣ୍ଡିତ ମତ ପ୍ରକାଶ କରି ଅଛନ୍ତି । ଜଗନ୍ନାଥଙ୍କ ରଥଯାତ୍ରା ଅନୁକରଣରେ ଜଗନ୍ନାଥ ମୂର୍ତ୍ତି ପ୍ରତିଷ୍ଠିତ ଥିବା ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ଏହି ରଥଯାତ୍ରା ଉତ୍ସବ ହୁଏ ।

ଭୁବନେଶ୍ୱରରେ ଅଶୋକାଷ୍ଟମୀ ସମୟରେ ହେବା ରଥ-ଯାତ୍ରା ଗୋଟିଏ ପ୍ରଧାନ ମେଳା ଓ ସେହି ଉପଲକ୍ଷରେ ଭୁବନେଶ୍ୱରଠାରେ ବହୁ ସହସ୍ର ଲୋକ ରୁଣ୍ଡ ହୁଅନ୍ତି ।

କୋଣାର୍କର ସୂର୍ଯ୍ୟ ମନ୍ଦିର ରଥ ଆକାରରେ ନିର୍ମିତ ହୋଇଥିବା ଅନୁମିତ ହୁଏ ଓ ପୂର୍ବେ କୋଣାର୍କରେ ମାଘ ସପ୍ତମୀରେ ରଥଯାତ୍ରା ହେଉଥିବାର ପ୍ରମାଣ ମିଳେ ।

ଦାକ୍ଷିଣାତ୍ୟ 'ଶ୍ରୀରଙ୍ଗମ୍'ର ଶ୍ରୀ ରଙ୍ଗ ସ୍ୱାମୀ ଦେବତାଙ୍କର 'ବୈକୁଣ୍ଠ ଏକାଦଶୀ' ଦିନ ରଥଯାତ୍ରା ହୁଏ । ସେଠାରେ ଗୋଟିଏ ସହସ୍ର ସ୍ତମ୍ଭଯୁକ୍ତ ମଣ୍ଡପ ଅଛି ।]

**ରଥ ଯାତ୍ରୀ**—ଦେ. ବି—ରଥଯାତ୍ରା ଉତ୍ସବ ଦେଖିବା ପାଇଁ ଆସିଥିବା ଯାତ୍ରୀ—
Ratha jātrī
ବଥଯାତ୍ରୀ
রথযাত্রী
Pilgrims visiting the car festival.

**ରଥଯୁକ୍**-ସ. ବି. (ରଥ + ଯୁଜ୍ ଧାତୁ + କର୍ତ୍ତୃ କ୍ୱିପ୍; ରଥଯୁଜ୍ ଶବ୍ଦ ୧ମା. ୧ବ)
Ratha juk ସାରଥି—Charioteer; driver of a car.

**ରଥ ରହିବା**—ଦେ. କ୍ରି. (ଲକ୍ଷଣାର୍ଥ)—୧ । ରଥର ଗତିର ରହିତତ୍ୟ—
Ratha rahibā 1. The stoppage of a moving car
ব্থ বন্দ হওয়া
রথ হরু যানা
(ରଥ ନ ଚଳିବା }—ଅନ୍ୟରୂପ)
ରଥ ରହିଯିବା
୨ । (ଲକ୍ଷଣାର୍ଥ) ବାର୍ଦ୍ଧକ୍ୟ ଯୋଗୁଁ ଶରୀର ଚଳିବାକୁ ବା କାର୍ଯ୍ୟ କରିବାକୁ ଅକ୍ଷମ ହେବା—2. (figurative) Loss of activity due to old age.

**ରଥ ସ୍ୱାମୀ**—ସ. ବି—୧ । ରଥର ମାଲିକ—1. The owner of a
Ratha swāmī car. ୨ । ରଥାରୋହୀ ବ୍ୟକ୍ତି; ରଥୀ—2 The passenger of a car. ୩। ସାରଥି—3 Charioteer.

**ରଥା**—ଦେ. ବି. (ସ. ରଥୀ)—ରଥୀ; ବୀର ପୁରୁଷ—
Rathā A hero.

**ରଥାଙ୍ଗ**—ସ. ବି. ( ରଥର ଅଙ୍ଗ, ୬ଷ୍ଠୀତତ୍)—୧ । ରଥର ଚକ—
Rathānga 1. The wheel of a car. ୨ । ଚକ୍ର; ଚକ—2. Wheel. ୩ । ଚକ୍ରବାକ ପକ୍ଷୀ—3. The ruddy goose. (ଉ— ୧।୩—) ବକ୍ଷସ୍ଥଳେ ଦେଖି ଗର୍ତ୍ତ; ରଥାଙ୍ଗ ଲକ୍ଷ ଭାବି ତ, ରଥାଙ୍ଗ ରଜନୀ, ହୋଇଥିଲା ଯେ ।
ଭଞ୍ଜ. ବୈଦେହୀଶବିଳାସ ।

ରଥାଙ୍ଗନାମା—ସ. ବି. (ରଥାଙ୍ଗ=ଚକ୍ର, ହୋଇଅଛି ନାମନ୍=ନାମ Rathānganāmā ଯାହାର)—ଚକ୍ରଥ ପକ୍ଷୀ—The ruddy goose.

ରଥାଙ୍ଗ ପାଣି—ସ. ବି. ( ରଥାଙ୍ଗ=ସୁଦର୍ଶନଚକ୍ର, ପାଣିରେ ଯାହାର; Rathānga pāni ବହୁବ୍ରୀହି)=ଚକ୍ରପାଣି; ବିଷ୍ଣୁ—A name of Bishnu.

ରଥାଙ୍ଗ ମିଥୁନ—ସ.ବି (୬ଷ୍ଠୀ ତତ୍)—ଚକ୍ରଥ ଓ ଚକୋଇ ପକ୍ଷୀଦ୍ୱୟ—Rathānga mithuna A couple of ruddy goose [ ଦ୍ର—ଏମାନେ ଦଳରେ ହଳହଳ ହୋଇ ଚରନ୍ତି ଓ ରାତିରେ ପୃଥକ୍ ହୋଇ ଯାଆନ୍ତି ବୋଲି ପ୍ରବାଦ ଅଛି । ]

ରଥାଙ୍ଗୀ—ସ. ବି. ପୁଂ (ରଥାଙ୍ଗ+ଇନ୍; ୧ମା. ୧ବ.)—୧ । ଚକ୍ରଧର; Rathāngi ବିଷ୍ଣୁ—1. A name of Bishnu. ୨ । ବୃଦ୍ଧି ନାମକ ମହୌଷଧି—2. Name of a rare herb. ୩ । ଦହିଦହିକା ( ଦେଖ )—3. Dahi dahikā (See) (କବିରାଜ ହରେକୃଷ୍ଣ ଦ୍ରବ୍ୟଗୁଣ)

ରଥାଣ୍ଡକ—ସ. ବି—ରଥାର୍ଭକ ( ଦେଖ ) Rathāndaka Rathārbhaka ( See )

ରଥାନ୍ତର—ସ ବି —(ରଥ+ଅନ୍ତର)—୧ । ଅନ୍ୟ ରଥ—1. Another car. Rathāntara ୨ । କଳ୍ପ ବା ବ୍ରହ୍ମାଙ୍କର ଦିବସ ବିଶେଷର ନାମ—2. Name of a day of Brahmā.

ରଥାବରୋହଣ—ସ. ବି—(୫ମୀ ତତ୍) ରଥରୁ ଓହ୍ଲାଇବା—Rathābarohana Alighting from the car. (ରଥାବରୋହୀ —ବିଣ. ପୁଂ)

ରଥାଭ୍ର—ସ. ବି—୧ । ବେତସ ବୃକ୍ଷ—1. The cane creeper; Rathābhra Calamus Rotang. ୨ । ନଳ ତୃଣ—2. A sort of reed (ରଥାଭ୍ରପୁଷ୍ପ—ଅନ୍ୟରୂପ)

ରଥାରୂଢ—ସ. ବିଣ. ପୁଂ ( ୭ମୀ ତତ୍ )—ରଥରେ ଚଢ଼ିଥିବା—Rathārūrdha Having ridden on a car; riding a car. (ରଥାରୂଢ଼ା—ସ୍ତ୍ରୀ)

ରଥାରୋହଣ—ସ. ବି—(୭ମୀ ତତ୍)—ରଥ ଉପରକୁ ଉଠ ବସିବା; Rathārohana ରଥ ଚଢ଼ିବା—Riding on a chariot.

ରଥାରୋହୀ—ସ. ବି. ପୁଂ—୧ । ଯେ ରଥରେ ଚଢ଼ିଥାଏ—Rathārohi 1. One who rides a car; the passenger of a car. ୨ । ରଥସ୍ୱାମୀ—2. The owner of a car (ରଥାରୋହଣୀ—ସ୍ତ୍ରୀ)

ରଥାରୋହୀ ସେନା—ସ. ବି—ପୂର୍ବେ ଯେଉଁ ସେନା ରଥରେ ଚଢ଼ି ଯୁଦ୍ଧ Rathārohi senā କରୁଥିଲେ—An army fighting from cars. [ ଦ୍ର—ପୂର୍ବେ ଯୁଦ୍ଧର 'ଚତୁରଙ୍ଗ' ମଧ୍ୟରୁ 'ରଥ' ଗୋଟିଏ ଅଙ୍ଗ ଥିଲା । ହସ୍ତୀ, ଅଶ୍ୱ, ରଥ ଓ ପଦାତି, ଏହି ୪ ଶ୍ରେଣୀର ସେନାମାନେ ଯୁଦ୍ଧ କରୁଥିଲେ । ]

ରଥାର୍ଭକ—ସ. ବି—(୭ମୀ ତତ୍)—କ୍ଷୁଦ୍ର ରଥ—Rathārbhaka A small car.

ରଥାଶ୍ୱ—ସ. ବି—(୬ଷ୍ଠୀ ତତ୍)—ରଥ ଟାଣିବା ଘୋଡ଼ା—Rathāswa Horses drawing a chariot.

ରଥିକ(ନ,ର)—ସ.ବି.ପୁଂ.(ରଥ+ଇକ; ଇନ; ଇର)—୧। ରଥୀ; ରଥାରୂଢ଼ Rathika(na,ra) ଯୋଦ୍ଧା—1. A warrior fighting from a car. [ରଥିକା(ନା,ରା)—ସ୍ତ୍ରୀ] ୨। ରଥାରୋହୀ ବ୍ୟକ୍ତି—2. A person riding a car. ୩ । ରଥସ୍ୱାମୀ—3. The master or owner of a car.

ରଥିଜାମା—ଦେ. ବି—ପୁରୀଜିଲ୍ଲା ଅନ୍ତର୍ଗତ ଗୋଟିଏ ଗ୍ରାମ—Name of Rathijāmā a village in Puri. [ ଦ୍ର—ଏ ସ୍ଥାନର କଂସାରିମାନେ ସୁନ୍ଦର କଂସାବାସନ କରନ୍ତି । ]

ରଥୀ—ସ. ବି. ପୁଂ ( ରଥ+ଇନ୍; ୧ମା. ୧ବ )—୧ । ରଥାରୂଢ଼ Rathi ହୋଇ ଯୁଦ୍ଧ କରିବା ଯୋଦ୍ଧା—1. A warrior fighting from a car. ୨ । ରଥସ୍ୱାମୀ; ରଥାରୋହୀ ବ୍ୟକ୍ତି—2. A person who rides on a car; passenger of a car. ୩ । ସାରଥି—3. Charioteer. ଦେ. ବି—୧ । ସାହସୀପୁରୁଷ—1. A hero. ୨। ବଳୁଆ ଲୋକ—2. A strong person

ରଥୋଦ୍ଧତା—ସ. ବି. ସ୍ତ୍ରୀ—ଏକାଦଶାକ୍ଷର ବୃତ୍ତିବିଶେଷ—Name Rathoddhatā of a metre of 11 syllables [ ଦ୍ର—ଏଥିରେ ୧ମ, ୩ୟ,୭ମ, ୯ମ ଓ ୧୧ଶ ବର୍ଣ୍ଣ ଗୁରୁ ଓ ଅନ୍ୟ ସମସ୍ତ ବର୍ଣ୍ଣ ଲଘୁ । ]

ରଥୋପସ୍ଥ—ସ.ବି—(୬ଷ୍ଠୀ ତତ୍, ରଥ+ଉପସ୍ଥ)—ସାରଥିର ଆସନ—Rathopastha The seat on the car for a driver.

ରଥ୍ୟ—ସଂ. ବିଣ ( ରଥ+ଯ )—ରଥ ସମ୍ବନ୍ଧୀୟ—Relating to Rathya a car. ସଂ. ବି—୧ । ରଥାଶ୍ୱ—1. Horse drawing a car. ୨ । ରଥାଂଶ—2. Part or limb of a car. ୩ । ରଥଚକ୍ର—3. The wheel of a car.

ରଥ୍ୟା—ସଂ. ସ୍ତ୍ରୀ.—(ରଥ+ଯ+ଆ)—୧ । ରଥ ସମୂହ—Rathyā 1. A collection of cars. ୨ । ରାଜପଥ; ରଥ ଯାଇ ପାରିବା ଭଳି ରାସ୍ତା—2. A road for cars; highway. ୩। ବର୍ତ୍ମ, ରାସ୍ତା; ପଥ; ସଡ଼କ—3. Road. ୪ । ପ୍ରାଙ୍ଗଣ; ଚତ୍ୱର—4. A square; courtyard.

ରଥ୍ୟା ବାହୀ—ସ. ବି. ପୁଂ.— (ରଥ୍ୟା+ବହ୍ ଧାତୁ+ଇନ୍; ୧ମା. ୧ବ) Rathyā bāhi ପଥିକ—Wayfarer; a person using a road. [ରଥ୍ୟାବାହିନୀ—ସ୍ତ୍ରୀ]

ରଦ୍ (ଧାତୁ)—ସଂ.—୧ । ଭେଦ କରିବା—1. To pierce. ୨। Rad (root) ପୃଥକ୍ କରିବା; ଭାଗ କରିବା—2. To divide. ୩ । ଫାଡ଼ିବା; ଚିରିବା—3. To split; to tear. ୪ । ଖନନ କରିବା—4. To dig. ୫ । ଉତ୍ପାଟ କରିବା; ଉଖାଡ଼ିବା; ଉପାଡ଼ିବା—5. To root out;

ରଦ୍(ଦ୍)—ବୈଦେ. ବ.—(ଅ. ରଦ୍; ରଦ୍ଦ୍)—ପରବର୍ତ୍ତୀ ଅଦେଶ-
Rad(dd) ଦ୍ୱାରା ପୂର୍ବ ହୁକୁମ ଅବର ପରବର୍ତ୍ତନ; ଖଣ୍ଡନ; ରଦ୍ଦକରଣ—Cancellation (of an order), setting aside; overruling; abrogation; abolition. ବୈବିଦେ. ବଣ —ପରିବର୍ତ୍ତିତ; ଖଣ୍ଡିତ—Cancelled; repealed, abrogated; rescinded; overruled.

ରଦ୍(ଦ୍) କ(ଖ)ଦ୍(ଦ୍)—ବୈଦେ. ବ.—(ଅ. ସହଚର)—୧ । ଉତ୍ତର
Kad(dd) ka(kha)d(dd) ପ୍ରତ୍ୟୁତ୍ତର ପୂର୍ବକ କୌଣସି ବିଷୟର
बद् कद्, बद बदल ଆଲୋଚନା—1. Thorough discussion.
**रद् कद्** higgling and haggling. ୨ । ତର୍କ ବିତର୍କ—2. Argument.

ରଦ୍(ଦ) କରିବା—ଦେ. କ୍ରି.—ପରବର୍ତ୍ତୀ ଆଦେଶ ଆବଦ୍ୱାରା ପୂର୍ବବର୍ତ୍ତୀ
Rad(dda) kariba ଆଦେଶ ଆବର ଅକାମୀ କରିବା; ରଦ୍ଦ କରିବା; ଖାରଜ କରିବା—To cancel, to repeal or overrule; to set aside; to nullify; to rescind. [ ଉ—ଏ ଦରବାରର ଅସଳ-ଫରଦ, ଚନ୍ଦ୍ରଗୁପ୍ତ ପାଞ୍ଚେ କରି ଦେବ ରଦ । ଗ୍ରଧାନାଥ· ଦରବାର ।]

ରଦ୍ ଜବାବ—ବୈଦେ. ବ. (ଫା.)—ମୁସଲମାନ୍‌ମାନଙ୍କ ଅମଳରେ
Rad jabab କାଜୀଙ୍କ ଅଦାଲତରେ ନାଲିସ୍ ହୋଇଥିବା ମକଦ୍ଦମାରେ ବାଦୀ ଦାଖଲ କରିବା ଅରଜୀର ପ୍ରତିବାଦୀ ଜବାବ ବା ଉତ୍ତର ଦେବା ପରେ ଉକ୍ତ ଜବାବକୁ ଖଣ୍ଡନ କରି ବାଦୀର ଦ୍ୱିତୀୟବାର ଦାଖଲ କରିବା ଜବାବ୍—A rejoinder; a counter-reply or statement made by a plaintiff to meet the first written statement of a defendant (during the Mahommedan reign in India. [ଦ୍ର—ପୂର୍ବେ ମୁସଲମାନ୍ ରାଜତ୍ୱରେ କାଜୀଙ୍କ ଅଦାଲତରେ ପ୍ରଥମେ ବାଦୀ ଅରଜ ଦାଖଲ କରୁଥିଲା, ତାହାର ଉତ୍ତରରେ ପ୍ରତିବାଦୀ ଜବାବ୍ ଦାଖଲ କରୁଥିଲା । ତାହାର ଉତ୍ତରରେ ବାଦୀ ପୁଣି ରଦ୍ ଜବାବ ଦାଖଲ କରୁଥିଲା । ଏଥିର ଉତ୍ତରରେ ପ୍ରତିବାଦୀ ପୁଣି 'ରଦ୍ ଜବାବ' ଦାଖଲ କରୁଥିଲା । ଏଥିର ଶେଷ ଉତ୍ତରରେ ବାଦୀ ଶେଷ ଥର 'ରଦ୍ ଜବାବ୍' ଦାଖଲ କରୁଥିଲା । ଏହିଠାରୁ ବାଦୀ ପ୍ରତିବାଦୀଙ୍କର ଉକ୍ତି ପ୍ରତ୍ୟୁକ୍ତିର ଶେଷ ହୋଇ ମକଦ୍ଦମାର ବିଷୟର ଆରମ୍ଭ ହୋଇ ପ୍ରମାଣ ନିଆ ଯାଉଥିଲା । ବର୍ତ୍ତମାନ ଇଂରେଜ ପ୍ରତିଷ୍ଠିତ ଅଦାଲତରେ ଅର୍ଜି ଓ ଜବାବ୍ ଛଡ଼ା ବାଦୀ ପ୍ରତିବାଦୀଙ୍କ ମଧ୍ୟରେ ଉକ୍ତି ପ୍ରତ୍ୟୁକ୍ତି ପ୍ରଶ୍ନ (Interrogatory) ଦ୍ୱାରା ଚଳେ ।]

ରଦ୍ ବଦଳ(ଳି)—ବୈଦେ.ବ (ଫା)—୧ । ହେର୍ ଫେର୍; ପରିବର୍ତ୍ତନ—
Rad badala(li) बदबदल **रद्‌बदल** 1. Change. ୨ । ପରସ୍ପର ପରିବର୍ତ୍ତନ—2. Exchange.

ରଦ ହେବା—ଦେ. କ୍ରି—କୌଣସି ଆଦେଶ ପରବର୍ତ୍ତୀ ଆଦେଶଦ୍ୱାରା
Rad heba ଖଣ୍ଡିତ ହେବା—To be nullified or over-
बद हुआ ruled: to be set aside or cancelled.
**रद्‌होना**

ରଦ—ସ. ବ (ରଦ୍ ଧାତୁ+କରଣ. ଅ; ଯାହାଦ୍ୱାରା କୌଣସି ବସ୍ତୁକୁ
Rada ଭେଦ କରାଯାଏ)—୧ । ଦନ୍ତ;ଦାନ୍ତ; ଦଶନ—1. Tooth ୨ । ( +ଭାବ ଅ ) ବିଦାରଣ; ବିଲେଖନ; ଖଣ୍ଡନ—2. Splitting; tearing; dividing.

ରଦଚ୍ଛଦ—ସ. ବ ( ରଦ=ଦାନ୍ତ+ଛଦ୍ ଧାତୁ=ଆଚ୍ଛାଦନ କରିବା+
Radachchhada କର୍ତ୍ତୃ. ଅ; ଯାହା ଦାନ୍ତକୁ ଘୋଡ଼ାଇ ଥାଏ । )—ଦନ୍ତଚ୍ଛଦ; ଅଧର; ଓଠ—Lips.

ରଦଚ୍ଛଦନ—ସ. ବ ( ୬ଷ୍ଠୀ ତତ୍ )—ଓଠ—Lips. [ଉ—
Radachchhadana କରକଙ୍କଣ ବାଦନ, ଇଚ୍ଛେ ମଦମର୍ଦ୍ଦନ, ସୁରଙ୍ଗ ରଦଚ୍ଛଦନ; ପୀଡ଼ୁ ରଦନ । ଭଞ୍ଜ. ପ୍ରେମସୁଧାନିଧି ।]

ରଦର୍ଦ୍ —ଦେ. ବଣ ( ଫା. ରଦ୍ )—( ବ୍ୟଙ୍ଗାର୍ଥକ ) ରଦ୍; ରଦ୍ଦି—
Radard रद्दि **रद्दी** Condemned; rejected

ରଦନ—ସ. ବ (ରଦ୍ ଧାତୁ+କରଣ.ଅନ)—୧ । ରଦ; ଦନ୍ତ; ଦାନ୍ତ-
Radana 1.Tooth. ୨। (+ଭାବ.ଅନ)ଖନନ—2. Digging ୩ । ଉତ୍‌ଖନନ—3. Uprooting. ୪ । ଛେଦନ; ଖଣ୍ଡନ—4. Tearing; splitting.

ରଦନଚ୍ଛଦ—ସ. ବ (ରଦନ+ଛଦ ଧାତୁ=ଘୋଡ଼ାଇବା+କର୍ତ୍ତୃ.ଅ)-
Radanachchhada ଅଧର; ଓଷ୍ଠ—Lips.

ରଦନାମ୍ବର—ସଂ. ବ—ଓଷ୍ଠ—Lips. [ ଉ—ମଧୁ ମଧୁର ବଧୂ
Radanambara ଅଧର କଶୋରବର ରଦନାମ୍ବର । କବିସୂର୍ଯ୍ୟ. କଳୋସ୍ରାତମ୍. ମ. ଗୀତ । ]

ରଦନୀ—ସଂ. ବ. ପୁଂ ( ରଦନ+ଇନ; ୧ମା· ୧ବ )—ଦନ୍ତୀ; ହସ୍ତୀ—
Radani (ରଦନିନୀ—ସ୍ତ୍ରୀ) Elephant.

ରଦ ପଦ—ସ. ବ ( ୬ଷ୍ଠୀ ତତ )—ଦନ୍ତକ୍ଷତ ଚିହ୍ନ—Trace of
Rada pada biting by teeth. [ଉ—ବହିଥିଲା ଯେ ଓଷ୍ଠେ ରଦ ପଦ, ବକ୍ତ୍ରମରେ ଯେମନ୍ତ କୀଟଭେଦ । ଭଞ୍ଜ. ବୈଦେହୀଶବିଳାସ । ]

ରଦ ବାସ—ସଂ. ବ—ରଦଚ୍ଛଦ; ଅଧର—Lips. [ଉ—ରଦବାସ
Rada basa ପଲ୍ଲବରେ, ପୀଡ଼ିବ ନାହିଁ ଦନ୍ତରେ । ସଙ୍ଗୀତ । ]

ରଦା(ଦ୍ଦା)—ବୈଦେ. ବ. (ଅ. ରଦ୍=ବହିଷ୍କରଣ; ଡଡ଼ ଦେବା)—
Rada(dda) ୧ । ଜୋର୍ ପୂର୍ବକ ଧକ୍କା—1. A vigorous
धाका **रद्दा** push. ୨ । ଗଳା ଧକ୍କା—2. A push by
बदा the neck. ୩ । କାନ୍ଥ ବା ଗାନ୍ଥନୀ ଅବର ଭୁଆ ବା
**रद्दा** ଥର—3. One layer or course in masonry work (ଯଥା—ରଦାଏ କାନ୍ଥ ।)

ରଦା ଦେବା—ଦେ. କ୍ରି—୧ । ରଦା ମାରିବା ( ଦେଖ )
Rada deba 1. Rada mariba ( See )
धाका देआ ୨ । କାନ୍ଥ ତିଆରି ପାଇଁ ଭୁଆ ଦେବା—2. To
**रद्दा देना** put successive layers of a wall.
रदा देआ **रद्दा देना**

**ରଦା ମାରିବା**—ଦେ. କ୍ରି—କୌଣସି ବ୍ୟକ୍ତିକୁ ଜୋର୍ ପୂର୍ବକ ଧକ୍କା ଦେବା—To give or deal a push to a person.
Radā māribā
रदा देओया, रद्दा मारा रद्दा लगाना
[ରଦା ପକା(କେ)ଇବା, ରଦା ଲଗା(ଗେ)ଇବା—ଅନ୍ୟରୂପ]

**ରଦି(ଦ୍ଦି)**—ବୈଦେ. ବିଣ. ( ଆ· ରଦୀ )—୧ । ଅପକୃଷ୍ଟ (ଦ୍ରବ୍ୟ)—1. Inferior (article). ୨ । ବ୍ୟବହାରର ଅଯୋଗ୍ୟ; ଅବ୍ୟବହାର୍ଯ୍ୟ—2. Unfit for use. ୩ । ନଷ୍ଟ; ଭଗ୍ନ—3. Damaged; spoiled
Radi(ddi)
बदि
रद्दी

**ରଦି କାଗଜ**—ଦେ. ବି—ଅବ୍ୟବହାର୍ଯ୍ୟ କାଗଜ—Waste paper.
Radi kāgaja
रद्दि कागज
रद्दी कागज
[ଦ୍ର—ଏହିପରି ରଦି ଲୁଗା, ରଦି ଜିନସ ଓ ରଦି ମାଲ ଆଦି ହୁଏ ।]

**ରଦି(ଦ୍ଦି)ଖାନା**—ବୈଦେ. ବି ( ଫା )—ଯେଉଁ ଘରେ ରଦି ବା ଅନାବଶ୍ୟକ ବସ୍ତୁମାନ ରଖାଯାଏ—A lumber room.
Radi(ddi)khānā
बद्दीखाना रद्दीखाना

**ରଦି ପଡ଼ିବା**—ଦେ. କ୍ରି—୧ । ଅବ୍ୟବହାର୍ଯ୍ୟ ହୋଇ ଛିଡିବା—1. To become useless. ୨ । (ଯେ (ରଦି ହେବା—ଅନ୍ୟରୂପ) ପୂର୍ବେ କାର୍ଯ୍ୟକ୍ଷମ ଥିଲା ସେ) ଅକ୍ଷମ ହେବା—2. To become unfit.
Radi pardibā
बदि हओया रद्दी होना

**ରଦ୍ଧ**—ସଂ.ବିଣ (ରଧ୍ ଧାତୁ=ଆଘାତ କରିବା+କର୍ମ.ତ)—୧ । ଆଘାତ ପ୍ରାପ୍ତ; ଆହତ—1. Wounded. ୨ । କ୍ଷତଗ୍ରସ୍ତ—2 Injured.
Raddha
(ରଦ୍ଧା—ସ୍ତ୍ରୀ)

**ରଦ୍ଧା**—ସଂ. ବିଣ. ପୁଂ ( ରଧ ଧାତୁ+ତୃ, ରଦ୍ଧୃ ଶବ୍ଦ ୧ମା. ୧ବ )—୧ । ଆଘାତକାରୀ—1. Striking; hurting. ୨ । କ୍ଷତକାରକ—2. Hurtful; injurious.
Raddhā
(ରଦ୍ଧ୍ରୀ—ସ୍ତ୍ରୀ)

**ରଧ୍ (ଧାତୁ)**—ସ—୧ । ଆଘାତ କରିବା—1. To hurt; to strike. ୨ । କ୍ଷତ କରିବା—2. To injure. ୩ । ଶେଷ କରିବା; ସମାଧା କରିବା; ସମ୍ପନ୍ନ କରିବା—3. To complete; to finish; to accomplish. ୪ । ଠିକ୍ ହେବା—4. To be right; or just or correct. ୫ । ପାକ୍ କରିବା—5. To cook; to mature.
Radh (root)

**ରଧିତ**—ସ. ବିଣ.ପୁଂ(ରଧ ଧାତୁ+କର୍ମ.ତ)—୧। କ୍ଷତଗ୍ରସ୍ତ—1. Injured. ୨ । କ୍ଷତଯୁକ୍ତ; ଆହତ—2. Injured; hurt.
Radhita
(ରଧିତା—ସ୍ତ୍ରୀ)

**ରଧିତା**—ସ. ବିଣ· ପୁଂ ( ରଧ୍ ଧାତୁ+ତୃ; ୧ମା. ୧ବ )—୧ । କ୍ଷତକାରୀ—1. Injuring ୨ । ଆଘାତକାରୀ—2. Hurting; wounding. ୩ । ଅନିଷ୍ଟକାରକ—3. Injurious, harmful.
Radhitā
(ରଧିତ୍ରୀ—ସ୍ତ୍ରୀ)

**ରନ୍**—ବୈଦେ. ବି ( ଇଂ ରନ୍ )—କ୍ରିକେଟ୍ ଖେଳପଡ଼ିଆରେ ଦୁଇପାଖରେ ପୋତା ହୋଇଥିବା କାଠି ** ଖଣ୍ଡି (wicket) ମଧ୍ୟରେ ବ୍ୟାଟ୍ ଧରି ଖେଳୁଥିବା ଖେଳାଳିଙ୍କର ଏକଥର ଦଉଡ଼—Run ( in cricket ).
Ran
रान
रन

**ରନ୍ଘଟା**—ପ୍ରାଦେ ( ସମ୍ବଲପୁର ) ବି—ବଡ଼ ବାଦୁଡ଼ି—Bat flying fox.
Ran-ghaṭā

**ରନ୍ଜ (ଧାତୁ)**—ସ—ରଞ୍ଜ ଧାତୁ ( ଦେଖ )—Rañja root ( See )
Ran-ja (root)

**ରନ୍ଭ (ଧାତୁ)**—ସ—ଶବ୍ଦ କରିବା—To sound.
Ran-bha (root)

**ରନର୍**—ବୈଦେ. ବି ( ଇଂ. ରନର୍ )—ଡାକ ଠଠର ମୁଣିମାନ ବୋହି ଏକ ନିର୍ଦ୍ଦିଷ୍ଟ ସ୍ଥାନରୁ ଅନ୍ୟ ନିର୍ଦ୍ଦିଷ୍ଟ ସ୍ଥାନକୁ ଦଉଡ଼ି କରି ନିବା ଡାକ ବିଭାଗର ପାଇକ—Postal runner.
Ranar
रानार
रनर दौराहा

**ରନା**—ପ୍ରାଦେ ( ସମ୍ବଲପୁର ) ବି ( 'ଣ' ସ୍ଥାନରେ 'ନ' ଉଚ୍ଚାରଣ )—ରଣା ( ସାପ )—A kind of serpent.
Ranā

**ରନ୍ତି**—ସଂ. ବି (ରମ୍ ଧାତୁ=କ୍ରୀଡ଼ା କରିବା ଇତ୍ୟାଦି+ଭାବ.ତି)—୧। କ୍ରୀଡ଼ା—1. Sport. ୨ । ଆମୋଦ—2. Amusements. ୩ । ଆନନ୍ଦ—3. Pleasure. ୪ । ବିରତି—4. Cessation. ସଂ. ବିଣ—୧ । ରମଣକାରୀ—1. Cohabiting; pleasing. ୨ । କ୍ରୀଡ଼ାକାରୀ—2. Sporting.
Ranti

**ରନ୍ତି ଦେବ**—ସଂ.ବି ( ରନ୍ତି=କ୍ରୀଡ଼ାକାରୀ ଯେ ଦେବ; କର୍ମଧା )—୧। ବିଷ୍ଣୁ—1. Bishnu. ୨ । ଶଶିଦେବ; ରାଜା ସାଙ୍କୃତ ଦେବଙ୍କ ପୁତ୍ର ଚନ୍ଦ୍ରବଂଶୀୟ ନୃପତି ବିଶେଷ—2. Name of a king of the ancient lunar dynasty of India. [ ଦ୍ର—ଏ 'ଦଶପୁର' ନାମକ ରାଜ୍ୟର ରାଜା ଥିଲେ ଓ ଚର୍ମଣ୍ୱତୀ ନଦୀ ଏହାଙ୍କର କୀର୍ତ୍ତି ବୋଲି ପୁରାଣରେ ବର୍ଣ୍ଣିତ ହୋଇଅଛି । ଚର୍ମଣ୍ୱତୀ ନଦୀ ରନ୍ତିଦେବଙ୍କ କୀର୍ତ୍ତି ଥିବା ବିଷୟ ମଧ୍ୟ ମେଘଦୂତର ପୂର୍ବମେଘର ୪୭ ଶ୍ଳୋକରେ ବର୍ଣ୍ଣିତ ଅଛି । ମହାରାଜ ରନ୍ତିଦେବ ସହସ୍ର ସହସ୍ର ବୃଷ ହତ୍ୟା କରି ଅତିଥି ବ୍ରାହ୍ମଣମାନଙ୍କୁ ଖୁଆଉ ଥିଲେ । ଏହି ହତବୃଷମାନଙ୍କ ଚର୍ମନିଃସୃତ ଶୋଣିତରୁ ଚର୍ମଣ୍ୱତୀ ( ଅଧୁନିକ ପଞ୍ଜାବର ଚମ୍ବଲ ) ନଦୀ ଉତ୍ପନ୍ନ ହୋଇଥିଲା ।] ୩। କୁକୁର—3 The dog.
Ranti deba

**ରନ୍ତୁ**—ସଂ. ବି. (ରମ୍ ଧାତୁ+ଅଧିକରଣ. ତୁ)—୧ । ବର୍ତ୍ମ; ପଥ—1. Road. ୨ । ନଦୀ—2. River; steam.
Rantu

**ରନ୍ଥାଳିଆ**—ଦେ. ବିଣ. ପୁଂ (ସ. ମନ୍ଥ ଧାତୁ ?)—୧ । ଯେ କୌଣସି ଦ୍ରବ୍ୟ ପାଇବା ପାଇଁ ବା ଖାଇବା ପାଇଁ ବ୍ୟାକୁଳ ହୋଇ ଦରଣ୍ଡି ପକାଏ; ବିକଳିଆ—1. Eagerly groping after anything or food restlessly. ୨ । ଯେ ବ୍ୟାକୁଳ ବା ଆତୁର ହୋଇ ହାତ ଗୋଡ଼ ଦ୍ୱାରା କୌଣସି ପଦାର୍ଥକୁ ଦରଣ୍ଡି ପକାଏ—2. Searching or groping for a thing with the hands or feet. ୩ । ଯେ ଅତି ଭୋକିଲା ଥିବାରୁ ପ୍ରଦତ୍ତ ଖାଦ୍ୟକୁ ଅତି ବ୍ୟଗ୍ରତା ସହିତ ଖାଏ—3. Eagerly eating or devouring the food (said of a famished person).
Ranthālia
(ରନ୍ଥାଳୀ—ସ୍ତ୍ରୀ)
आतुर
रत

ରନ୍ଥାଳି ପକା(କେ)ଇବା—ଦେ କି ୧। ଚଞ୍ଚଳ ହୋଇ କୌଣସି ପଦାର୍ଥକୁ
Ranthāli pakā(ke)ibā ବା ଖାଦ୍ୟକୁ ଦରଣ୍ଡିବା—
ଝାଁଟା 1. To grope after a thing or food with
टटोलना, मथना eagerness. ୨। ହଜିଥିବା ବସ୍ତୁକୁ ଅନ୍ଧ
ରନ୍ଥାଳିବା } ଅନ୍ୟରୂପ ଆଉରଚ୍ଛା ସନ୍ଧାନ ଦରଣ୍ଡିବା—
ରନ୍ଥିବା 2. To grope after a lost
ରନ୍ଥି ପକା(କେ)ଇବା or missing thing.
୩। କୌଣସି ସ୍ଥାନକୁ ମନ୍ଥି ପକାଇବା—3. To thoroughly stir or agitate a place.

ରନ୍ଥାଳି ହେବା—ଦେ. କି.—ଖୋଜି ହେବା; କୌଣସି ବସ୍ତୁ
Ranthāli hebā କେଉଁଠାରେ ଅଛି ତାହାଁ ସ୍ଥିରତା ନ ପାଇ
ଖୋଜା, ହାଁତଡ଼ା ଦରଣ୍ଡି ହେବା—To grope after a thing
ढूंढना in the dark.
(ରନ୍ଥି ହେବା—ଅନ୍ୟରୂପ)

ରନ୍ଦ—ବୈଦେ. ବି. (ଇଂ ରାଉଣ୍ଡ୍)—ପାଳକର ପହରା ଦେବା
Rand ଉଦ୍ଦେଶ୍ୟରେ ବୁଲିବା; ରୁନ୍ଦ—A watchman's
ବୌଁଦ round or turn of watching.
रौंद, चक्कर

ରନ୍ଦ ଗସ୍ତ—ବୈଦେ. ବି. (ଇଂ ରାଉଣ୍ଡ ଓ ଫା ଗସ୍ତ)—ପାଳକର ପହରା
Rand gasta ଦେବାପାଇଁ ପହରାବାଲାର ଭ୍ରମଣ—
ବୌଁଦଗସ୍ତ A round of visit by a watchman
चक्कर

ରନ୍ଦ ଗସ୍ତ କରିବା—ଦେ. କି—ପାଳକର ପହରା ଦେବା—To make
Rand gasta kariba a round ( said of a watch-
ବୌଁଦ ଦେଓୟା गस्त करना man.
(ରନ୍ଦ ଦେବା, ରନ୍ଦ କରିବା, ରନ୍ଦ ମାରିବା—ଅନ୍ୟରୂପ)

ରନ୍ଦା—ବୈଦେ. ବି. ( ଫା.ରନ୍ଦ )—ପିଲେନ୍; କାଠକୁ ଚିକ୍କଣ
Randā କରିବାପାଇଁ ବଢ଼େଇର ଯନ୍ତ୍ର ବିଶେଷ—A carpen-
ବାଁଦା ter's plane. [ବି.—ଗୋଟିଏ ଆୟତାକାର ଚତୁଷ୍କୋଣ
रन्दा କାଷ୍ଠ ମଧ୍ୟରେ ଖଞ୍ଜିବା ଲୁହାର ତୀକ୍ଷ୍ଣ ପାଟିଆ ଖଞ୍ଜା ହୋଇଥାଏ
ଓ ତାହାଦ୍ୱାରା କାଠର ଅସମାନ ଅଂଶ ସବୁ ଛେଲି ହୋଇଯାଏ]

ରନ୍ଦା(ନ୍ଦେ)ଇବା—ଦେ. କି—ରନ୍ଦା ଦ୍ୱାରା କାଠକୁ ସମତଳ କରି
Randā(nde)ibā ଛେଲିବା—To plane.
ବାନ୍ଦା କବା, ବାନ୍ଦା ମାବା, ବାନ୍ଦା रन्दा मारना (चलाना)
(ଚଢ଼ା କରିବା, ରନ୍ଦା ଠେଲିବା, ରନ୍ଦା ମାରିବା—ଅନ୍ୟରୂପ)

ରନ୍ଦା ଘଷିବା—ଦେ. କି– ରନ୍ଦା ଦ୍ୱାରା କାଠକୁ ଚିକ୍କଣ କରିବା—
Randā ghashibā To polish a wood by the
ବାନ୍ଦା ଘଷା रन्दा घीसना plane.

ରନ୍ଦା ପତର - ଦେ. ବି— ରନ୍ଦା ଯନ୍ତ୍ରରେ ବ୍ୟବହୃତ ତୀକ୍ଷ୍ଣ ଲୁହାର ପତ୍ର-
Randā patara Plane-iron.
ବାନ୍ଦା ପାତା रन्दाका पत्ता (ରନ୍ଦାପାତ—ଅନ୍ୟରୂପ)

ରନ୍ଦିବା—ଦେ. କି—ରନ୍ଦା ଦ୍ୱାରା କାଠକୁ ସମତୁଲ ବା ଚିକ୍କଣ କରିବା—
Randibā To plane a piece of wood.
ବାନ୍ଦା ମାବା रन्दा मारना

ରନ୍ଧ୍ର—ଗ୍ରା. ବି. (ସଂ. ରନ୍ଧ୍ର)—ରନ୍ଧ୍ର ( ଦେଖ )
Randra ବନ୍ଧ୍ର Randhra ( See )

ରନ୍ଧ୍‌ନୀ—ପ୍ରାଦେ (ସମ୍ବଲପୁର) ବି. ସ୍ତ୍ରୀ—ରାନ୍ଧୁଣୀ; ପାଚକା—
Randh-nī A female cook

ରନ୍ଧକ—ସଂ. ବି (ରଧ୍ ଧାତୁ = ଆଘାତ କରିବା + କର୍ତ୍ତୃ.ଅକ)—
Randhaka କ୍ଷତି କାରକ—Injurious.

ରନ୍ଧଣା—ଦେ. ବି—(ସଂ. ରନ୍ଧନ)୧ । ରାନ୍ଧଣା; ରନ୍ଧନ –1. The act
Randhanā of cooking. ୨। (ଅମୁକର) ରନ୍ଧନୋଦ୍ଭବ
ବାନ୍ନା रान्धना ଖାଦ୍ୟ—2. Food cooked by a person.

ରନ୍ଧନ—ସଂ.ବି.(ରଧ୍ ଧାତୁ + ଭାବ.ଅନ)—ରାନ୍ଧିବା; ରାନ୍ଧଣା; ପାକକରଣ—
Randhana Cooking; boiling or dressing a
thing over fire.

ରନ୍ଧନ କରିବା—ଦେ. କି—ରାନ୍ଧିବା; ପାକ କରିବା—
Randhana karibā To cook.
ବାନ୍ନା କବା रन्धन करना

ରନ୍ଧନ କର୍ମ—ସଂ. ବି—ରନ୍ଧାବଢ଼ା; ରାନ୍ଧିବା କାର୍ଯ୍ୟ—
Randhana karma Cooking; cookery.
(ରନ୍ଧନ କ୍ରିୟା—ଅନ୍ୟରୂପ)

ରନ୍ଧନକାରୀ—ସଂ. ବି. ପୁଂ—ପାଚକ—
Randhanakārī Cook.
(ରନ୍ଧନ କର୍ତ୍ତ୍ରୀ, ରନ୍ଧନକାରିଣୀ—ସ୍ତ୍ରୀ) (ରନ୍ଧନ କର୍ତ୍ତା—ଅନ୍ୟରୂପ);

ରନ୍ଧନ ଗୃହ—ସଂ ବି—ପାକଶାଳା; ହାଣ୍ଡିଶାଳ; ରୋଷେଇ ଘର.
Randhana gṛuha ରୋଷ ଘର—Cooking room;
kitchen; cuisine
(ରନ୍ଧନଶାଳା, ରନ୍ଧନାଗାର, ରନ୍ଧନାଳୟ—ଅନ୍ୟରୂପ)

ରନ୍ଧ(ନ୍ଧ)ନୀ—ପ୍ରାଦେ. (ସମ୍ବଲପୁର) ବି.ସ୍ତ୍ରୀ. (ଭୁଲ.ହି. ରଂଧନହା—ପୁଂ;
Randha(ndh)nī ରଂଧନୀ—ସ୍ତ୍ରୀ)—ରାନ୍ଧୁଣୀ; ପାଚକା—
(ରନ୍ଧନିଆ, ରନ୍ଧନିଆ—ପୁଂ) A female cook.

ରନ୍ଧ(ନ୍ଧ)ନୀ ଗାଧୁଆ—ପ୍ରାଦେ.(ସମ୍ବଲପୁର)ବି.–(ଏହି ସମୟରେ ପରିବାରର
Randha(ndh)nī gādhuā ପାଚକା ବଧୂମାନେ ସ୍ନାନ କରନ୍ତି)—
(ରନ୍ଧନୀ ଗାଧୁଆ ବେଳ—ଅନ୍ୟରୂପ) ସକାଳ ୭ଟାଠାରୁ ୯ଟା ବେଳ;
କଅଁଳ ଗାଧୁଆ ବେଳ—Time of the morning
between 7 and 9 A. M.

ରନ୍ଧନୀୟ—ସଂ.ବିଣ.(ରଧ୍ଧାତୁ + କର୍ମ. ଅନୀୟ)-ରନ୍ଧା ହେବାର ଯୋଗ୍ୟ—
Randhanīya Fit to the cooked.

ରନ୍ଧା—ଦେ. ବି. ( ସଂ. ରନ୍ଧନ )—ରନ୍ଧନ; ରାନ୍ଧଣା—Cooking
Randhā ଦେ. ବିଣ.—ଅଗ୍ନିରେ ପାକ କରା ହୋଇଥିବା—
ବାଁଧା रांधना Cooked.

ରନ୍ଧା(ନ୍ଧେ)ଇବା—ଦେ. କି.—ରାନ୍ଧିବା କ୍ରିୟାର ଣିଜନ୍ତ ରୂପ—
Randhā(ndhe)ibā Causative of Rāndhibā
ବାନ୍ଧାନ रंधाना, रंधवाना ( ଉ—ସୁପକାରମାନଙ୍କ ହାତେ ରନ୍ଧା-
ଇଲେ । କୃଷ୍ଣସିଂହ. ମହାଭାରତ.ବନ) ।

ରନ୍ଧା ଘର—ଦେ. ବି (ସଂ. ରନ୍ଧନ + ଗୃହ)—ରୋଷେଇଘର—
Randhā ghara ରାନ୍ନାଘର रसोईघर Kitchen.

ରନ୍ଧା ଜଡ଼ା—ଦେ.ବି.-ଗଦ ମଞ୍ଜିକୁ କାଞ୍ଚ ପାଣିରେ ସିଝାଇ ତହିଁରୁ ବାହାର Randhā jardā କରିବା ତେଲ—Castor oil prepared by boiling.
ବାନ୍ଧାବେড়িতেল **उबालाहुआ रेंडीकातेल**
ରନ୍ଧାଜଡ଼ା ତେଲ } —ଅନ୍ୟରୂପ [ଦ୍ର—ଏହା ଔଷଧରେ ଲାଗେ ।]
ରନ୍ଧାଜଡ଼ା ମାଲପା } (ଟେଲ୍ଲା ଜଡ଼ା ତେଲ—ବିପରୀତ)

ରନ୍ଧା **ନଡ଼ିଆ ତେଲ**—ଦେ. ବି—ପକ୍ୱ ନଡ଼ିଆ ତେଲ; ନଡ଼ିଆଶସ୍ୟ; Randhā nardiā tela ନଡ଼ିଆରସକୁ ନିଆଁରେ କାଳକ କରି ବାନ୍ଧানারকেলতেল ଛାଣିକରି କରାଯାଇଥିବା ତେଲ—Cocoanut **उबालाहुआ नरीयलका तेल** oil prepared by boiling (ରନ୍ଧା ନଡ଼ିଆମାଲପା—ଅନ୍ୟରୂପ) the juice pressed from cocoanut kernel.

ରନ୍ଧା ପାଳି—ଦେ. ବି.—ପରିବାରସ୍ଥ ଏକାଧିକ ବ୍ୟକ୍ତିଙ୍କ ମଧ୍ୟରୁ ଜଣକର Randhā pāli ରନ୍ଧନର କ୍ରମରେ ପଡ଼ିବା ପାଳି—Turn of ବান্নাবপালা **रांधनेकीपाली** cooking meals of a particular member of the family.

ରନ୍ଧା ବଢ଼ା—ଦେ. ବି (ସହଚର)—୧ । ଅନ୍ନାଦି ରନ୍ଧନ ଓ Randhā bardhā ପରିବେଷଣ କରିବା କ୍ରିୟା—1. Act of বান্নাবান্না cooking and serving meals. ୨ । **रसोइ उसोइ** ରନ୍ଧାରନ୍ଧି (ଦେଖ)—2. Randhārandhi (See)

ରନ୍ଧାରନ୍ଧି—ଦେ. ବି (ସହଚର) (ସଂ. ରନ୍ଧନ)—ଅନ୍ନ ବ୍ୟଞ୍ଜନାଦି Randhārandhi ରନ୍ଧନ; ଅନ୍ନାଦି ରନ୍ଧନ କାର୍ଯ୍ୟ—Act of বান্নাবান্না; বান্ধাবান্ধি; বান্ধাবাঢ়া cooking meal, **रसोइ, राँधारांधी**

ରନ୍ଧିତ—ସଂ.ବିଣ (ରଧ୍ ଧାତୁ+କର୍ମ.ତ)—କୃତପାକ; ରନ୍ଧା ହୋଇଥିବା- Randhita Cooked.

ରନ୍ଧ୍ର—ସଂ. ବି (ରମ ଧାତୁ=କ୍ରୀଡ଼ା କରିବା+କର୍ତ୍ତୃ କ୍ୱିପ୍=ରମ୍, ରମ+ Randhra ଧୃ ଧାତୁ=ଧାରଣ କରିବା+କର୍ତ୍ତୃ. ଅ)—୧ । କଣା; ଛିଦ୍ର; ଫାଟ; ଗାତ—1. Hole; fissure; rent; aperture. [ଦ୍ର—ଜୀବ ଦେହରେ ପୁରୁଷର ୧୦ ଓ ସ୍ତ୍ରୀର ୧୩ ଟି ଲେଖାଏଁ ରନ୍ଧ୍ର ଅଛି । ଯଥା—ସମସ୍ତଙ୍କର ୨ ଚକ୍ଷୁ+୨ କର୍ଣ୍ଣ+୨ ନାସିକା+୧ ମୁଖ+୧ଶିଶ୍ନ+୧ ଗୁହ୍ୟ+୧ ମସ୍ତକ=୧୦ ଟି ଓ ସ୍ତ୍ରୀଙ୍କର ଅଧିକା ୨ ସ୍ତନ +୧ ଗର୍ଭପଥ =୧୩ ଟି ।] ୨ । ଗୁହା; ବିବର—2. Chasm; cavity. ୩ । କୁକ୍ଷି; ପେଟ—3. The belly. ୪ । ଦୂଷଣ; ତ୍ରୁଟି; ଦୋଷ; ଛଳ (ଆଳସ୍ୟାଦି)—4. Fault; defect (e.g. idleness). ୫ । (ଜ୍ୟୋତିଷ) ଲଗ୍ନଠାରୁ ୮ମ ସ୍ଥାନ; ନିଧନସ୍ଥାନ; ମାରକସ୍ଥାନ—5. (astrology) The 8th mansion from one's Lagna.

ରନ୍ଧ୍ର କଣ୍ଟା—ସଂ. ବି—ଜାଲବବୁରିକ ନାମକ ଗୁଳ୍ମ— Randhra kanta A medicinal plant.

ରନ୍ଧ୍ରଗତ—ସଂ. ବିଣ (ଜ୍ୟୋତିଷ)—ଲଗ୍ନର ଅଷ୍ଟମ ସ୍ଥାନରେ ସ୍ଥିତ; Randhra gata ଗୋଚରସ୍ଥ; ନିଧନାଶ୍ରିତ (ଗ୍ରହ)—(astrology) (a planet) Situate on the 8th mansion from the Lagna of a person.

ରନ୍ଧ୍ରଗତ ଶନି—ସଂ. ବି (ଜ୍ୟୋତିଷ)—୧ । ଲଗ୍ନର ଅଷ୍ଟମ ସ୍ଥାନରେ Randhragata sani ଉପସ୍ଥିତ ହୋଇଥିବା ଶନିଗ୍ରହ— 1. (astrology) The position of Saturn getting into the 8th mansion from the point where the moon was at a person's nativity (the most critical point in a man's life). [ଦ୍ର—ଏହାହେଲେ ମୃତ୍ୟୁ ଘଟେ ।] ୨ । ଆସନ୍ନ ବା ଅନିବାର୍ଯ୍ୟ ମୃତ୍ୟୁ ଅବସ୍ଥା—2. The state of impending or unavoidable death.

ରନ୍ଧ୍ର **ବଂଶ**—ସଂ. ବି (ମ. ପ. ଲେ)—ଏକପ୍ରକାର ବାଉଁଶ; ବେଣୁଙ୍ଗ Randhra bamsa ବାଉଁଶ—A kind of bamboo. (ସଂ. ଭୂକସାର, କୀଚକ, ମସ୍କର, [ଦ୍ର—ଏଥିରେ ବଂଶୀ ତିଆରି ହୁଏ ।] ଶୁଷିରବଂଶ୍ୟ, ବାଦନାଙ୍ଗ ।)

ରନ୍ଧ୍ରବଭ୍ରୁ—ସଂ.ବି(ମ.ପ.ଲେ, ରନ୍ଧ୍ରକାରୀ ବଭ୍ରୁ; ରନ୍ଧ୍ର+ବଭ୍ରୁ=ନକୁଳ) Randhra babhru ମୂଷିକ; ମୂଷା— Rat; mouse.

ରନ୍ଧ୍ରାନ୍ୱେଷଣ—ସଂ. ବି (୬ଷ୍ଠୀ ତତ୍)—ଛିଦ୍ରାନ୍ୱେଷଣ; ଲୋକର ଦୋଷ Randhrānweshana ବା ତ୍ରୁଟି ଖୋଜିବୁଲିବା—Searching (ରନ୍ଧ୍ରାନ୍ୱେଷୀ—ବିଣ. ପୁଂ) for the faults or defects of a person.

ରପ୍(ଧାତୁ)—ସଂ.—କହିବା— Rap (root) To speak.

ରପ୍‌ରପ୍—ଦେ. ଅ (ଧ୍ୱନ୍ୟନୁକରଣ)—୧ । ଚର୍ମରୋଗ; ଦେହରେ Rap-rap ହୋଇଥିବା ଯାଦୁ ଓ କୁଣ୍ଡିଆକୁ କୁଣ୍ଡାଇବା ବା ଘର୍ଷିବା **खजलाना** ପ୍ରକାର—1. Scratching a ringworm. ୨ । କଣ୍ଡୁୟନ; ଦେହ କୁଣ୍ଡାଇ ହେବା; ଗଲୁଉଠିବା— 2. Itching. (ଯଥା—ମୋ ଦେହ ରପ ରପ ହେଉଛି ।).

ରପଟ୍—ବୈଦେ. ବି (ଫା. ରପଟ୍; ରଫ୍ତ୍)—୧ । ଗସ୍ତ, ଭ୍ରମଣ— Rapat 1. Walking; a round. ୨ । ପରିଶ୍ରମ; ବପ୍ତ **रफ्त, रपट,** ପରିଶ୍ରମ—2. Toil. ୩ । ଅଭ୍ୟାସ— রিপোর্ট **रिपोट** 3. Habit. ବୈଦେ. ବି. (ଇଂ. ରିପୋର୍ଟ)—୧ । ରିପୋର୍ଟ; ବିବରଣ; ଲକ୍ଷ୍ୟପତ୍ର— 1. Report. ୨ । ଜମିଦାରଙ୍କର ସଦର ଜମା— 2. Revenue payable to Government for a Zamindāri

ରପଟ୍‌ କରିବା—ଦେ. କ୍ରି—୧ । ଗସ୍ତ କରିବା; ବୁଲିବା—1. To Rapat karibā walk; to make a round. ୨ । ରିପୋର୍ଟ କରିବା—2. To submit a report. রপট্করা, রপট্মারা **रपटना** [ରପଟ୍ ମାରିବା—ଅନ୍ୟରୂପ]

ରପ(ଫ)ତାନି—ବୈଦେ.ବି (ଫା. ରଫ୍ତନ=ଦ୍ରବ୍ୟ ପ୍ରେରଣ, ଗମନ)—
Rapa(pha)tāni ୧ । ସ୍ୱଦେଶୀ ପଣ୍ୟଦ୍ରବ୍ୟଙ୍କୁ ବାଣିଜ୍ୟାର୍ଥେ
বপ্তানি, বফ্তানি ବିଦେଶକୁ ଚାଲାଣ ବା ପ୍ରେରଣ ; ମାଲ ଚାଲାଣି—
रफ्तनी 1. Export; sending of goods to a foreign country. ୨ । କୌଣସି ସ୍ଥାନରୁ ଗମନ; ରମାନା—2. Going or starting from a place.

ରପ୍ତାନି
ରଫ୍ତାନି } ଅନ୍ୟରୂପ

[ଆମଦାନି—ବିପରୀତ] ବୈଦେ. ବିଣ. (ଫା)—ବିଦେଶକୁ ବାଣିଜ୍ୟାର୍ଥେ ପ୍ରେରିତ (ଦ୍ରବ୍ୟ)—Exported.

ରପ୍ତା(ଫ୍ତା)ନି କରିବା—ଦେ. କ୍ରି—ବିଦେଶକୁ ପଣ୍ୟ ପ୍ରେରଣ କରିବା—
Raptā(phtā)ni karibā To export goods.
বপ্তানিকবা रफ्तनी करना

ରଫ (ଧାତୁ)—ସ.—୧ । ଗମନ କରିବା; ଗତି କରିବା—
Raph (root) 1. To go; to move. ୨ । ବଧ କରିବା—
2 To kill.

ରଫା—ବୈଦେ. ବି. (ଫା)—୧ । ବିବାଦର ନିଷ୍ପତ୍ତି ବା ଆପୋସିରେ
Raphā ମୀମାଂସା—1. Amicable settlement of a
বফা dispute. ୨ । ମକଦ୍ଦମାର ମିଟମାଟ୍—2. Compromise
रफा of a suit. ୩ । ମହାଜନ ଓ ଖାତକ ମଧ୍ୟରେ, ଜମିଦାର ଓ ପ୍ରଜା ମଧ୍ୟରେ ବା ଡିଗ୍ରୀଦାର ଓ ଦେଣଦାର ମଧ୍ୟରେ ଦେୟ ଧନ ସମ୍ବନ୍ଧେ ଉଭୟଙ୍କ ସମ୍ମତି ସହିତ ମୀମାଂସା—3. Amicable settlement of dues between the payer and the payee. ୪ । ଶେଷ ମୀମାଂସା—4 Final decision. ୫ । ସମାପ୍ତି—5. Finis; completion; end. ୬ । ପ୍ରତ୍ୟେକ ପ୍ରଜା ଉପରେ ତାହାର ଭିନ୍ନ ଭିନ୍ନ ଯୋତ୍ ପାଇଁ ମୋଟରେ ବାକି ଥିବା ଖଜଣାର ହିସାବ କୁଣ୍ଟଟ୍ ଫର୍ଦ୍ଦ; ଜମିଦାରୀ ଵାଦିଲ୍ ବାକି କାଗଜ—6. A statement of account of rent due from a tenant for all his holdings. ସ୍ଥାଦେ.(ଖଣ୍ଡୁଆଳ)ବି--ଫାଉଡ଼ା—
Broad hoe.

ରଫା ଉଆ(ଵା)ସିଲ୍ ବାକି—ଦେ.ବି—ରଫାଦାଦ୍ ଉଆସିଲ୍ ବାକି(ଦେଖ)-
Raphā ua(wā)sil bāki Raphādād uāsil bāki.(See)
বফা ওযাসিল বাকী रफावासिल बाकी

ରଫା କରିବା—ଦେ. କ୍ରି—ବିବାଦର ବା ପାଉଣାର ମୀମାଂସା କରିବା—
Raphā karibā To settle a dispute or claim or
বফা কবা रफा करना due.

ରଫା ଟଙ୍କି—ସ୍ଥାଦେ (ପୁରୀ) ବି—ପୁରୀ ଓ ଖୋରଧାରେ ଏକପ୍ରକାର ମଧ୍ୟ-
Raphā ṭanki ସତ୍ତ୍ୱ; ଏକପ୍ରକାର ମଧ୍ୟସତ୍ତ୍ୱ ବା ବାଜ୍ୟାପ୍ତି ଟଙ୍କା ବୃତ୍ତି; ଯେଉଁ ଜମିକୁ ପ୍ରଜା ଚିରସ୍ଥାୟୀ ଟଙ୍କୀରୂପେ ଦାବି
[ରଫା ଟଙ୍କି ବୃତ୍ତି—ଅନ୍ୟରୂପ] କରୁଥିଲେ, କିନ୍ତୁ ଗଭର୍ଣ୍ଣମେଣ୍ଟ ଉକ୍ତ ଦାବୀକୁ ଅଗ୍ରାହ୍ୟ କରି ଉର୍ଦ୍ଧ୍ୱର ଜମାକୁ ପ୍ରଜା ସଙ୍ଗେ ରଫା କରିଅଛନ୍ତି—A class of resumed rent-free tenure in Puri and Khurda.

ରଫାଟଙ୍କୀଦାର୍—ସ୍ଥାଦେ. (ପୁରୀ) ବି—ରଫା ଟଙ୍କୀବୃତ୍ତିର ଅଧିକାରୀ—
Raphā ṭankidār The holder of a Raphāṭanki tenure.

ରଫାଠଉଁ ଲଫା ନାହିଁ—ଦେ. ପ୍ରବଚନ—ମାମଲା ମକଦ୍ଦମା ନ କରି
Raphāṭhaun laphā nāhin ବିବାଦକୁ ଆପୋସିରେ
বফাচ্ছেযে লাভ নাই ନିଷ୍ପତ୍ତି କରିବାହିଁ ଲାଭଜନକ—It is
रफासे लाभ नहीं profitable to have a matter amicably settled rather than to fight out a case.

ରଫା ଡିକ୍ରି(ଗ୍ରି)—ବୈଦେ. ବି (ଫା. ରଫା ଓ ଇଂ. ଡିକ୍ରି)—ଉଭୟ
Raphā dikri(gri) ପକ୍ଷଙ୍କ ସ୍ୱଚ୍ଛାରେ ହୋଇଥିବା ଡିକ୍ରି—
বফাডিগ্রী रफाडिग्री Compromise decree.

ରଫାଦଫା—ବୈଦେ. ବି (ସହଚର; ଫା)—୧ । ଚୂଡ଼ାନ୍ତ
Raphādaphā ମୀମାଂସା—1. Final amicable settle-
দফারফা ment or decision. ୨ । ଦଫା ରଫା (ଦେଖ)—
रफादफा 2 Daphā raphā. (See) ବିଣ—ମୀମାଂସିତ—
Finally settled.

ରଫା ଦରଖାସ୍ତ—ବୈଦେ.ବି(ଫା)--ପକ୍ଷମାନେ ମକଦ୍ଦମାକୁ ଆପଣା ମଧ୍ୟରେ
Raphā darakhāsta ମୀମାଂସା କରି ଅଦାଲତଙ୍କୁ ସେହି
বফাদবখাস্ত रफादरखास्त ବିଷୟ ଜଣାଇଦେବା ସୂଚକ ଆବେଦନ-
(ରଫା ଦରଖାସ୍ତ—ଗ୍ରାମ୍ୟ) ପତ୍ର—Compromise petition filed by parties in court

ରଫା ଦାଦ୍—ବୈଦେ. ବି (ଫା; କଚେରୀ)—ରଫା ହୋଇଥିବା ବିଷୟ-
Raphādād Amicably settled matter.
বফাদাদ बफादाद ବୈଦେ. ବିଣ—୧ । ରଫା କରି ଯାଇଥିବା—
1. Amicably settled; compromised.
(ଯଥା—ଭଲଲୋକଙ୍କ ରଫାଦାଦ୍ ମତେ ଏ ମକଦ୍ଦମା ନିଷ୍ପତ୍ତି ହେଲା ।) ୨ । ରଫାସମ୍ବନ୍ଧୀୟ-
2. Relating to compromise.

ରଫା ଏବ
ରଫାଜାଦ୍(ତ୍) } —ଅନ୍ୟରୂପ

ରଫା ଦାଦ୍ ଉଆସିଲ୍ ବାକି—ବୈଦେ. ବି (ଫା)—ପ୍ରତ୍ୟେକ ପ୍ରଜାର
Raphādād uāsil bāki ଭିନ୍ନ ଭିନ୍ନ ଜୋତ୍ ପାଇଁ ତା
বফাদাদ্ ওয়াসিলবাকী रफादादवासिलबाकी ଉପରେ ଖଜଣାକୁ ମୋଟ କରି ତା ଉପରେ ହେଉଥିବା କିନ୍ତୁ ଜମାର ହିସାବ।
A consolidated statement of the account of rent due to a tenant for all his holdings

ରଫା ଦେବା—ଦେ. କ୍ରି (ଖାତକ ମହାଜନଙ୍କୁ କହିବା ବାକ୍ୟ)—
Raphādebā କୌଣସି ବ୍ୟକ୍ତିର ଦେୟକୁ ମୀମାଂସା କରି
বফাদেওয়া रफादेना, छुट्टीदेना ତାହାକୁ ଉକ୍ତ ଦେୟରୁ ମୁକ୍ତ କରିବା—To release a person from a liability or debt by settling the dues he has to pay.

ରଫାନାମା—ବୈଦେ. ବି (ଫା)—୧ । ଉଭୟପକ୍ଷଙ୍କ ମଧ୍ୟରେ ବିବାଦ
Raphānāmā ନିଷ୍ପତ୍ତିସୂଚକ ଲିପି—1. Deed of compro-
বফানামা रफानामा mise. [ଦ୍ରୁ—ବିବେକ ସହିତେ ସନ୍ଧି

ସ୍ଥାନେ କରିଦେଲେ ରଫାନାମା—ସ୍ଥାନାଥ. ଯଥାଇ । ]
୨ । ରଫା ଦରଖାସ୍ତ—2. A petition of compromise.

ରଫାନାମା ଦରଖାସ୍ତ(ସ)—ବୈଦେ. ବ (କଚହରୀ)—ରଫା ଦରଖାସ୍ତ; Raphānāmā darakhāsta(sa) ଯେଉଁ ଦରଖାସ୍ତରେ
ରଫାନାମା দরখাস্ত रफानामा दरखास्त ଉଭୟପକ୍ଷଙ୍କ ମଧ୍ୟରେ ଆପୋଷରେ ମୀମାଂସା ହୋଇଥିବାର ସର୍ତ୍ତ ଆଦି ଲେଖା ହୋଇ ଅଦାଲତରେ ଦାଖଲ ହୁଏ—Compromise petition filed in court.

ରଫା ମୁତାବକ୍—ଦେ. କ୍ରି. ବିଣ(କଚହରୀ)—ରଫାନାମା ଅନୁସାରେ—Raphā mutābak According to the terms of a compromise.
রফামোতাবেক रफामुताबिक
[ରଫା ସୂରତ୍—ଅନ୍ୟରୂପ]

ରଫୁ—ବୈଦେ. ବ [ଆ]—ଛିଦ୍ର ବସ୍ତ୍ରାଦିର ଋନ୍ଧ୍ରକୁ ବା ଫାଟକୁ ସୂତା ବୁଣି Raphu ସିଲେଇ କରିବା—Darning of a hole or rift.
রিফু रफ, रफु in a cloth. ବୈଦେ. ବିଣ—୧ । ନିଷ୍ଫଳ;
रफु ଅକୃତକାର୍ଯ୍ୟ—1. Unsuccessful. ୨ । ପରାସ୍ତ; ପରାଜିତ—2. Defeated; vanquished.

ରଫୁକ(ଗ)ର—ବୈଦେ. ବ [ଆ]—ଯେଉଁ ବ୍ୟକ୍ତି ବା କାରିଗର ଛିଦ୍ର-Raphuka(ga)ra ବସ୍ତ୍ରାଦିର ଋନ୍ଧ୍ରକୁ ବା ଫାଟକୁ ସୂତା ବୁଣି ସିଲେଇ କରେ—Darner.

ରଫୁ କରିବା—ଦେ. କ୍ରି—୧ । ଲୁଗାର ଋନ୍ଧ୍ରକୁ ବା ଫାଟକୁ ବୁଣିବା—Raphu kariba 1. To darn a hole in a cloth.
রিফুকরা रफुकरना ୨ । ରଫୁ ବନାଇବା (ଦେଖ) 2. Raphu banāibā (See)

ରଫୁ ବନା(ନେ)ଇବା—ଦେ.କ୍ରି—୧ । ପରାସ୍ତକରିବା—1. To defeat Raphu banā(ne)ibā or vanquish a person.
রফুকরা रफुचक्करबनाना ୨ । ଅକୃତକାର୍ଯ୍ୟ କରାଇବା—2. To cause a person to be unsuccessful.

ରଫୁ ବନିବା—ଦେ. କ୍ରି—୧ । ଅକୃତକାର୍ଯ୍ୟ ହେବା—Raphu banibā 1. To meet with failure.
রফু হওয়া ୨ । ପରାସ୍ତ ହେବା—2. To be vanquished.
रफुचक्कर बना ରଫୁ ହେବା—ଅନ୍ୟରୂପ)

ରବ୍(ଧାତୁ)—ସ.—୧ । ଶବ୍ଦ କରିବା—1. To make a sound. Rab(root) ୨ । ଗମନ କରିବା—2. To go; to move.

ରବ—ସ. ବ. (ରବ୍ ଧାତୁ+କର୍ମ. ଅ)—୧ । ଧ୍ୱନି; ନାଦ; ଶବ୍ଦ—Raba 1. Sound. ୨ । ଗୋଳମାଳ—2. Noise.
ସ.—ନାଦ, ନିନାଦ,ନିନଦ, ୩ । ଗର୍ଜନ—3. Roaring.
ଧ୍ୱନି, ଧ୍ୱାନ, ସ୍ୱନ, ସ୍ୱାନ, ୪ । ରାବ; ଡାକ; କ୍ରିଣଧ୍ୱନି—
ନିର୍ଘୋଷ, ନିସ୍ୱନ, ନିସ୍ୱାନ, 4. Voice; call.
ଆରବ, ଆସ୍ୱବ, ବିରାବ, ସ୍ୱବ

ରବଣ—ସ. ବ (ରବ୍ ଧାତୁ+ଭାବ. ଅନ)—୧ । ଶବ୍ଦ କରଣ—Rabaṇa 1. Making a sound. ୨ । କଂସା—2. Bell metal. ୩ । କୋକିଳ—3. Cuckoo. ୪ । ଉଷ୍ଟ୍ର—4. Camel ୫ । ଗର୍ଦ୍ଦଭ—5. Ass.
ସ. ବିଣ—୧ । ଶବ୍ଦକାରକ—1. Sounding; resonant; sonorus. ୨ । ତୀକ୍ଷ୍ଣ—2. Sharp; shrill ୩ । ଚଞ୍ଚଳ—3. Restless. ୪ । ଉଷ୍ଣ—4 Warm; hot. ୫ । ଭଣ୍ଡ, ଅଟ୍ଟେଲ—5. Jestive; jocular.

ରବଥ—ସ. ବ. (ରବ ଧାତୁ+କର୍ତ୍ତୃ.ଅଥ)—କୋକିଳ—Rabatha Cuckoo.

ରବସ୍ଥା—ବୈଦେ .ବ(ଫା)—୧ । ଅବସ୍ଥା—1. Condition; state. Rabayā ୨ । ଦେଶକାଳ ପାତ୍ରଗତ ଅବସ୍ଥା ବା ଘଟନା—
অবস্থা 2. Condition of things; state of things;
रवैया circumstances. ୩ । ଚଳଣ; ଆଚରଣ—3. Conduct.

ରବର—ବୈଦେ. ବ. (ଇଂ. ରବର୍ କାଗଜରୁ ପେନ୍‌ସିଲ୍ ଓ କାଳି Rabar ଦାଗ ଉଠାଇବା ପାଇଁ ବ୍ୟବହୃତ ରବର୍‌ଖଣ୍ଡ eraser)—
রবার ଏକପ୍ରକାର ଗଛର ଅଠା, ଯାହା ଶୁଖିଗଲେ ସ୍ଥିତିସ୍ଥାପକ
रबर ହୁଏ—India rubber
[ଦ୍ର—ରବର ସ୍ଥିତିସ୍ଥାପକ । ତାହା ପାଣିରେ ମିଳାଇ ଯାଏ ନାହିଁ । ତାହାକୁ ରାସାୟନିକ ପ୍ରକ୍ରିୟାରେ ତରଳାଇ ମୂର୍ତ୍ତି, ନଳ, ଗାଡ଼ିର ଚକ, ମଟର ଗାଡ଼ିର ଚକ, ଶୂନ ଗାଡ଼ିର ଚକ ଓ ଜୋତା ଆଦି ନାନା ପ୍ରକାରର ବ୍ୟବହାରୋପଯୋଗୀ ପଦାର୍ଥମାନ କରାଯାଉଅଛି । ଏହାର ବ୍ୟବସାୟ ସଭ୍ୟଜଗତରେ ଗୋଟିଏ ପ୍ରଧାନ ବ୍ୟବସାୟରେ ପରିଣତ ହୋଇଅଛି । ]

ରବର୍ ଗଛ—ଦେ. ବ—ଦକ୍ଷିଣ ଆମେରିକା ଓ ଦକ୍ଷିଣ ଏସିଆରେ Rabar gachha ଜନ୍ମିବା ଏକ ପ୍ରକାର ବଟ ଜାତୀୟ ଗଛ—
রবার গাছ India rubber tree.
रबरकाम्हाड़ [ଦ୍ର—ଆସାମ ଓ ବ୍ରହ୍ମଦେଶର ଅଠାଳିଆ ନାମକ ବଟ ଜାତୀୟ ଗଛକୁ ଚିରିଲେ ତହିଁରୁ ରବର୍ ହେବା ରସ ବାହାରେ; ( ଗଛର ନାମ=India rubber tree Ficus Elastica).
ଦକ୍ଷିଣ ଅମେରିକାର ଏହି ଜାତୀୟ ଗଛରୁ ରବର୍ ବାହାରେ (ଗଛର ନାମ=Caoutchouc, Siphonia, Elastica; Hevea Caoutchouc),
ମାଲୟ ଦ୍ୱୀପ ପୁଞ୍ଜର ଏହି ଜାତୀୟ ଗଛରୁ ରବର୍ ବାହାରେ (ଗଛର ନାମ=Guttapercha, Isonandra Gutta).
ବର୍ତ୍ତମାନ ରବର ଗଛର ଚାଷ କରାଯାଇ ଅନେକ ରବର୍ ଆମଦାନି କରା ଯାଉଅଛି । ]

ରବର ଜୋତା—ଦେ ବ—ବର୍ଷାରେ ପାଣି ନ ଭେଦିବା ପାଇଁ ପ୍ରସ୍ତୁତ Rabar jotā ଏକପ୍ରକାର ଯୋତା—
রবর জুতা रबरजूता India rubber shoes.

ରବର୍ ଟାୟାର୍—ବୈଦେ. ବି (ଇଂ ରବର୍ ଟାୟାର୍)—
Rabar ṭāyār ଶୂନ ଗାଡ଼ି ଓ ମଟର ଗାଡ଼ିର ଚକର ପରିଧିରେ
ববর টায়ার ମଡ଼ାଯିବା ରବରର ପଟ୍ଟିଆ—
रबर टायर Rubber tyre.

ରବର୍ ନଳ(ଲ)—ଦେ. ବି—ରବରରେ ପ୍ରସ୍ତୁତ ନଳ—India-
Rabar naḷa(ḷa) ববর নল रबरकी नली rubber tube.

ରବଲ୍—ବୈଦେ. ବି. (ଇଂ. ରବ୍ଲ)—୧ । ଗେଟ୍ଟ; ପାହାଡ଼ରୁ ଖୋଲା
Rabal ହୋଇ ଆସିବା ପଥର ଖଣ୍ଡମାନ—1. Rubble;brash.
বাবল रब्बल, कंकड ୨ । ବୈଦେ. ବି. (ଇଂ. ରବର୍)—ରବର୍—
India-rubber.

ରବଲ୍ କୋଇଲା—ଦେ.ବି.(ଇ.ରବ୍ଲ+କୋଇଲା)—ଚୂନା କୋଇଲା—
Rabal koilā চাপ কয়লা कायलाकाखाद(रवा) Rubble-coal.

ରବା—ବୈଦେ. ବି. (ଆ. ଫା—ରବାବ୍)—୧ । ବୀଣା ବା ଗୀତାର
Rabā ଜାତୀୟ ବାଦ୍ୟଯନ୍ତ୍ର—1.A kind of guitar. (ଉ-ରବା
ববাব रबाव ମୃଦଙ୍ଗ ବୀଣା ଢାଲ, ବିବିଧ ବାଦ୍ୟ ସୁରସାଲ. ଉପେନ୍ଦ୍ର—
ପ୍ରେମପଞ୍ଚାମୃତ ।) [ଦ୍ର—ଭାରତବର୍ଷରେ ଯବନାଧିକାର
ପୂର୍ବେ ଏହି ଯନ୍ତ୍ର 'ରୁଦ୍ର ବୀଣା' ନାମରେ ବ୍ୟବହୃତ
ହେଉଥିଲା । ମୁସଲମାନମାନଙ୍କ ଅମଳରେ ଏହି ଯନ୍ତ୍ରକୁ
ସେମାନେ 'ରବାବ୍' ନାମରେ ବ୍ୟବହାର କଲେ । ଏହାର
ଲାଉ (ଖୋଲ) ଓ ଦଣ୍ଡ ଗୋଟିଏ ଅଖଣ୍ଡ କାଷ୍ଠ ଦ୍ୱାରା
ନିର୍ମିତ । ଖୋଲ ଚମଡ଼ାର ପତଳା ଚମରେ ଛୁଆଣି
ହୋଇଥାଏ । ପ୍ରଥମେ ଏଥିରେ ଦୁଇଟି ତାର ଥିଲା, ପରେ
୩ଟି ଓ ତତ୍‌ପରେ ୪ଟି ତାର ଲଗାଗଲା । ପାରସ୍ୟର
ବସୁଦ୍‌ଗ୍ରାମ ନିବାସୀ ଅବଦୁଲ୍ଲା ନାମକ ଜଣେ ସଙ୍ଗୀତଜ୍ଞ
ଏହାକୁ ପ୍ରାୟ ୧୦୦୦ ବର୍ଷ ପୂର୍ବେ ପ୍ରଥମେ ମୁସଲମାନ୍‌ମାନଙ୍କ
ମଧ୍ୟରେ ଆବିଷ୍କାର କରି ଏହାର ନାମ 'ରୁବେବ୍' ଦେଇଥିଲେ ।
ସ୍ପେନ୍ ଦେଶ ପ୍ରଚଳିତ guitar (ଗୀତାର୍) ନାମକ ଗୀତାର
ପରି ଏହାର ଆକୃତି । ଏହାକୁ କାଠି ସାହାଯ୍ୟରେ
ବଜାଇବାକୁ ହୁଏ । ୨ । (ପ୍ରାଚୀନ ପଦ୍ୟ) (ଫା. ଅବାଜ)
ଧ୍ୱନି—2. Sound. [ଉ—ଶୀର ଯେତେ ସେତା ବାର
ରସାସାର ରବା ନାଗେ ଚେତେ ରବ । ଭଞ୍ଜ. ବୈଦେହୀଶ-
ବିଳାସ ।]

ରବା(ୱା)ଜ୍(ଦ୍)—ବୈଦେ.ବି (ଫା. ରବାଜ୍)—୧। ଦେଶ ବା ପରିବାର
Rabā(wā)j(d) ଆଦରେ ପ୍ରଚଳିତ ଚିରନ୍ତନ ପ୍ରଥା; ରୀତି;
রেওয়াজ ପ୍ରଥା—1. Custom; usage. ୨ । ଆଚରଣ—
रवाज 2. Conduct. ୩। ଅଭ୍ୟାସ—3. Habit. ୪। ସାମୟିକ
ଘଟଣା—4. Circumstances happening at
a time. ୫ । ଘଟନାର ଅବସ୍ଥା—5. State of
things; circumstances.

ରବା(ମା,ୱା)ନା (ଇତ୍ୟାଦି)—ବୈଦେ. ବି (ଫା. ରବାନା)—ରଉଆନା
Rabā(mā,wā)nā (etc) (ଇତ୍ୟାଦି) (ଦେଖ)—Rauānā
রওনা रवाना (etc) (See)

ରବା(ୱା)ବ୍—ବୈଦେ. ବି (ଫା. ରବାବ୍)—୧ । ରବା (ଦେଖ)—
Rabā(wā)b 1. Rabā. (See) ବୈଦେ. ବି (ଆ. ରବାଜ୍)—
রবাব रबाब ୨ । ରବାଜ୍ (ଦେଖ)—2. Rabāj. (See)
ବୈଦେ. ବି (ଆ. ରୁଅବ)—
বোআব ୧ । ଗାମ୍ଭୀର୍ଯ୍ୟ—1. Gravity. ୨ । ଭୟ—
रुआब 2. Fear. ୩ । ପ୍ରଭାବ; ପରାକ୍ରମ; ଶକ୍ତି—3. Might.

ରବାର୍—ବୈଦେ. ବି (ଇଂ. ରବର୍)—ରବର୍ (ଦେଖ)
Rabār Rabar. (See)

ରବାହୂତ—ସଂ. ବିଣ. ପୁଂ (ରବ୍ ଆ ହୂତ)—ରବ ବା ଶବ୍ଦ ଶୁଣି ଆଗତ
Rabāhūta ବା ଉପସ୍ଥିତ—Come to a place being
[ରବାହୂତା—ସ୍ତ୍ରୀ] attracted by the sound.

ରବି—ସଂ. (ରୁ ଧାତୁ=ଶବ୍ଦ କରିବା+କର୍ତ୍ତୃ,ଇ; ଯେ ଅବିରତ ଶବ୍ଦ
Rabi କରେ)—(ହିନ୍ଦୁ ଶାସ୍ତ୍ରମତରେ ଅବିରତ ଘୂର୍ଣ୍ଣାୟମାନ ଓ
ଶବ୍ଦାୟମାନ ଥିବାରୁ)—୧ । ସୂର୍ଯ୍ୟ; ସୌର ଜଗତର
କେନ୍ଦ୍ର; ଗ୍ରହେଶ୍ୱର—1. The sun. (ଉ—ରବି ତେଜ
ଦିନ ନାଶହେ କରେ ଭୋଗ । କୃଷ୍ଣସିଂହ. ମହାଭାରତ.
ବନ ।) [ଦ୍ର—ରବି ବା ସୂର୍ଯ୍ୟ ସୌର ଜଗତର
କେନ୍ଦ୍ର । ଏହାଙ୍କ ଚାରି ଦଗରେ ଗ୍ରହମାନେ ଘାଉଁରି ଖାଉ
ଅଛନ୍ତି । ଏହାହିଁ ହିନ୍ଦୁ ଜ୍ୟୋତିଷୀ ଓ ପାଶ୍ଚାତ୍ୟ ଜ୍ୟୋତିଷୀ-
ମାନଙ୍କର ସିଦ୍ଧାନ୍ତ । ସବୁ ଗ୍ରହଙ୍କ ମଧ୍ୟରେ ଏ ପ୍ରଧାନ ବୋଲି
ଏହାଙ୍କ ନାମ ଗ୍ରହେଶ୍ୱର,ସବୁ ଗ୍ରହଙ୍କର ଆଦି ବୋଲି ଆଦିତ୍ୟ।
ଏ ବସ୍ତୁମାନଙ୍କରୁ ତାପ ଦ୍ୱାରା ରସ ଶୋଷଣ କରନ୍ତି । ହିନ୍ଦୁ
ଜ୍ୟୋତିଷ ଅନୁସାରେ ଏ ପାପଗ୍ରହ । ପୃଥିବୀର ଲୋକଙ୍କୁ ଏ
ସାସ୍ତି, ଆରୋଗ୍ୟ, କ୍ଷମତା, ସମ୍ମାନ ପ୍ରଦାନ କରନ୍ତି ।
ଯୌବନକାଳରେ (୨୩ ବର୍ଷଠାରୁ ୪୦ ବର୍ଷ ପର୍ଯ୍ୟନ୍ତ) ଏ
ଗ୍ରହ ମାନବ ଜୀବନର ଅଧିପତି ଓ ନିୟନ୍ତା । ଜନ୍ମ କାଳରେ
ରବି ଅନୁକୂଳ ହୋଇଥିଲେ ମନୁଷ୍ୟ ବିଚକ୍ଷଣ, ପରାକ୍ରମ-
ଶାଳୀ, ମହଦନ୍ତଃକରଣ, ଦୟାଳୁ, ନରପତି ଓ କ୍ଷମତାଶାଳୀ
ହୁଏ । ରବି ପ୍ରତିକୂଳ ହୋଇଥିଲେ ରୋଗୀ, ଅହଙ୍କାରୀ,
ଅପବ୍ୟୟୀ, ପ୍ରଗଲ୍ଭ, କ୍ରୂରକର୍ମରତ ଓ ପୈତୃକ ସମ୍ପତ୍ତି-
ବିନାଶକ ହୁଏ । ମାଣିକ୍ୟ ଓ ବୈଦୂର୍ଯ୍ୟ ରବିଙ୍କର ପ୍ରିୟ
ରତ୍ନ । ରବିଙ୍କର ବର୍ଣ୍ଣ ଜବାକୁସୁମ ପରି ରକ୍ତବର୍ଣ୍ଣ । ରବି
୩୬୫ ଦିନ ୧୫ ଦଣ୍ଡ ୩୧ ପଳ ୩୧ ବିପଳ ଓ ୨୪ଅନୁପଳ
ସମୟରେ ପୃଥିବୀର ଚାରି ପାଖରେ ବୁଲନ୍ତି, ଅର୍ଥାତ୍ ପୃଥିବୀ
ରବିଙ୍କ ଚାରି ପାଖେ ବୁଲିବାକୁ ପ୍ରାୟ ୩୬୫ ଦିନ ୬ଘଣ୍ଟା
ଲାଗେ । ପୃଥିବୀରୁ ପର୍ଯ୍ୟବେକ୍ଷଣ କଲେ ରବିଙ୍କ ଗତିରେଖା
ବୃତ୍ତାକାର ନ ହୋଇ ବୃତ୍ତାଭାସ (Elliptical) ଅଟେ ।
ଜ୍ୟୋତିଷୋକ୍ତ ଦ୍ୱାଦଶ ରାଶିରେ ରବି ଏକ ଏକ ମାସ
ଅବସ୍ଥାନ କରନ୍ତି, ଏହା ସୌରମାସ । ବୈଶାଖରେ
(ମେଷରେ),ଜ୍ୟେଷ୍ଠରେ (ବୃଷରେ),ଆଷାଢ଼ରେ(ମିଥୁନରେ),
ଶ୍ରାବଣରେ (କର୍କଟରେ),ଭାଦ୍ରବରେ (ସିଂହରେ),ଆଶ୍ୱିନରେ
(କନ୍ୟାରେ),କାର୍ତ୍ତିକରେ(ତୁଳାରେ),ମାର୍ଗଶିରରେ(ବିଛାରେ)
ପୁଷରେ (ଧନୁରେ), ମାଘରେ (ମକରରେ), ଫାଲ୍‌ଗୁନରେ

(କୁମ୍ଭରେ) ଓ ଚୈତ୍ରରେ (ମୀନରେ) ରବି ଅବସ୍ଥାନ କରନ୍ତି । ରବି ଏକ ରାଶିରୁ ଅନ୍ୟ ରାଶିକୁ ଯିବା ସମୟ ସଂକ୍ରମଣ ବା ସଂକ୍ରାନ୍ତି ଅଟେ । ପ୍ରତ୍ୟେକ ସୌର ମାସର ଦୈର୍ଘ୍ୟ ଠିକ୍ ୩୦ ଦିନ ନ ହୋଇ କମ୍ ବେଶୀ ହୁଏ ।

ବର୍ଷସାକ ଦିବା ପରିମାଣ ଓ ରାତ୍ରି ପରିମାଣ ସମାନ ନୁହେଁ । କୌଣସି ଦିବସ ୩୦ ଦଣ୍ଡରୁ ବେଶି ଓ କେଉଁ କେଉଁ ଦିବସ ୩୦ ଦଣ୍ଡରୁ କମ । ସାଧାରଣତଃ ଶୀତ ଦିନେ ଦିନ ଛୋଟ ଓ ରାତି ବଡ଼ ହୁଏ ଏବଂ ଖରାଦିନେ ରାତି ଛୋଟ ଓ ଦିନ ବଡ଼ ହୁଏ । ବର୍ଷରେ ଦୁଇଟି ଦିନ ଦିବା ରାତ୍ରି ସମାନ ହୁଏ ।

ଅଶ୍ୱିନ ୮ (ସେପ୍ଟେମ୍ବର ୨୩) ଦିନ ଦିନରାତି ସମାନ ଥାଏ ଓ ସେହି ସମୟରୁ ଦିନ କମିଯାଏ ଓ ରାତି ବଢ଼େ । ଏହିପରି ବଢ଼ି ବଢ଼ି ପୌଷ ମାସ ୯ (ଡିସେମ୍ବର ୨୧ ବା ୨୨) ଦିନର ପରିମାଣ ୨୭ ଦଣ୍ଡ ହୋଇଯାଏ ଓ ରାତିର ପରିମାଣ ୩୩ ଦଣ୍ଡ ହୁଏ । ପୁଣି ସେହି ଦିନଠାରୁ ଦିନ ବଢ଼ିବାକୁ ଆରମ୍ଭ କରି ଚୈତ୍ର ମାସ ୮ (ମାର୍ଚ୍ଚ ୨୧) ରେ ଦିନ ରାତି ସମାନ ହୁଏ ଓ ପୁଣି ଦିନ ବଢ଼ି ବଢ଼ି ଆଷାଢ଼ ୮ (ଜୁନ୍ ୨୧) ଦିନର ପରିମାଣ ୩୩ ଦଣ୍ଡ ଓ ରାତିର ପରିମାଣ ୨୭ ଦଣ୍ଡ ହୋଇଯାଏ । ସେହି ଦିନଠାରୁ ଦିନ କମେ କମେ ଓ ରାତି ବଢ଼େ ଏବଂ ଆଶ୍ୱିନ ୮ (ସେପ୍ଟେମ୍ବର ୨୨ ବା ୨୩) ଦିନରାତି ସମାନ ହୁଏ । ପୁଣି ଦିନ କମିବାକୁ ଆରମ୍ଭ କରେ । ଅତଏବ ଦେଖାଯିବ ଯେ ବର୍ଷକ ମଧ୍ୟରେ କେବଳ ୨ଟି ଦିନ [ଯେଉଁ ଦିନ ସୂର୍ଯ୍ୟ ଠିକ୍ ବିଷୁବରେଖା ଉପରେ ଥାଆନ୍ତି] ଚୈତ୍ର ଓ ଅଶ୍ୱିନରେ ଦିବା ଓ ରାତିର ପରିମାଣ ସମାନ, ଅର୍ଥାତ ୩୦ ଦଣ୍ଡ ଲେଖାଏଁ ହୁଏ । ବର୍ଷକରେ ଗୋଟିଏ ଦିନ [ଅଷାଢ଼ରେ] ଦିନ ୩୭ ଦଣ୍ଡ ଓ ରାତି ୨୩ ଦଣ୍ଡ ହୁଏ । ସେହିପରି ମଧ୍ୟ ବର୍ଷକେ ଥରେ [ପୌଷରେ] ଦିନ ୨୭ ଦଣ୍ଡ ଓ ରାତି ୩୩ ଦଣ୍ଡ ହୋଇଯାଏ ।

ମୀନ ସଂକ୍ରାନ୍ତିରେ ବସନ୍ତକାଳର ସମ ଦିବାରାତ୍ର ହୁଏ । (ମୀନ ବା ଚୈତ୍ର ମାସ ୮, ମାର୍ଚ୍ଚ ୨୧ କୁ—Vernal or spring equinox ବୋଲାଯାଏ ।)

କନ୍ୟା ସଂକ୍ରାନ୍ତି ପରେ ଶରତ୍‌କାଳର ସମ ଦିବା ରାତ୍ର ହୁଏ । (କନ୍ୟା ବା ଆଶ୍ୱିନ ମାସ ୮=ସେପ୍ଟେମ୍ବର ୨୨ ବା ୨୩କୁ Autumnal equinox ବୋଲାଯାଏ) ।

ଧନୁ ସଂକ୍ରାନ୍ତିରେ ଶୀତକାଳରେ ଅତି ଛୋଟ ଦିନ ଓ ଅତି ବଡ଼ ରାତି ହୁଏ (ଧନୁ ବା ପୌଷ ମାସ ୮= ଡିସେମ୍ବର ୨୧ ବା ୨୨ କୁ Winter solstice ବୋଲାଯାଏ ।)

ମିଥୁନ ସଂକ୍ରାନ୍ତି ଓ ଗ୍ରୀଷ୍ମକାଳର ଅତି ବଡ଼ ଦିନ ଓ ଅତି ଛୋଟ ରାତି (ମିଥୁନ ବା ଅଷାଢ଼ ମାସ ୮=ଜୁନ ୨୧) କୁ Summer solstice ବୋଲାଯାଏ ।

ଅଶ୍ୱିନ ମାସରେ ସୂର୍ଯ୍ୟ ପୃଥିବୀର ବିଷୁବରେଖାର ଠିକ୍ ଊର୍ଦ୍ଧ୍ୱରେ ଥିବାରୁ ଦିନ ରାତି ସମାନ ହୁଏ (Autumnal equinox) । ସେହିଠାରୁ ସୂର୍ଯ୍ୟ ଦକ୍ଷିଣକୁ ଗତି କରି କରି ପୌଷ ମାସ ମକର ସଂକ୍ରାନ୍ତି (Tropic of Capricon) ପର୍ଯ୍ୟନ୍ତ ଆସନ୍ତି ଓ ମକର ସଂକ୍ରାନ୍ତି ସୂର୍ଯ୍ୟଙ୍କର ଦକ୍ଷିଣ ଗତିର ଶେଷ ସୀମା; ( ସେ ଦିନ ଦିନ ଛୋଟ ଓ ରାତି ବଡ଼, winter solstice). ସେହି ମକର ସଂକ୍ରାନ୍ତିଠାରୁ ସୂର୍ଯ୍ୟ ଆଉ ଦକ୍ଷିଣକୁ ନ ଯାଇ ଉତ୍ତରଆଡ଼କୁ ଫେରନ୍ତି (ଏଥିପାଇଁ ମାଘ ମାସର ସଂକ୍ରାନ୍ତିକୁ ଉତ୍ତରାୟଣ ସଂକ୍ରାନ୍ତି ବୋଲାଯାଏ); ଉତ୍ତରକୁ ଆସି ଆସି ବିଷୁବରେଖା ଉପରେ ଚୈତ୍ର ସୁଦ୍ଧା ପହଞ୍ଚନ୍ତି । ସେ ସମୟରେ ଦିନ ରାତି ସମାନ ହୁଏ (Vernal equinox) ଓ ବିଷୁବରେଖାକୁ ଡେଇଁ ପୁଣି ଉତ୍ତରଦିଗକୁ ଗତି କରି କରି ଆଷାଢ଼ ମାସ ସୁଦ୍ଧା କର୍କଟ କ୍ରାନ୍ତି (Tropic of Cancer) ପର୍ଯ୍ୟନ୍ତ ଆସନ୍ତି । କର୍କଟ କ୍ରାନ୍ତି ସୂର୍ଯ୍ୟଙ୍କ ଉତ୍ତର ଗତିରେ ଶେଷ ସୀମା । ସେ ଦିନ ଦିନ ବଡ଼ ଓ ରାତି ଛୋଟ (summer solstice) । ସେହି କର୍କଟ ସଂକ୍ରାନ୍ତିଠାରୁ ସୂର୍ଯ୍ୟ ଆଉ ଉତ୍ତରକୁ ନ ଯାଇ ଦକ୍ଷିଣ ଆଡ଼କୁ ଫେରନ୍ତି (ଏଥିପାଇଁ ଶ୍ରାବଣ ସଂକ୍ରାନ୍ତିକୁ ଦକ୍ଷିଣାୟନ ସଂକ୍ରାନ୍ତି ବୋଲାଯାଏ) । ସୂର୍ଯ୍ୟ ଦକ୍ଷିଣକୁ ଗତି କରି କରି ଆଶ୍ୱିନ ମାସ ସୁଦ୍ଧା ବିଷୁବରେଖାରେ ପହଞ୍ଚନ୍ତି । ଆଶ୍ୱିନ ମାସର ଶେଷ ଓ କାର୍ତ୍ତିକ ମାସର ଆରମ୍ଭରେ ସୂର୍ଯ୍ୟ ବିଷୁବରେଖା ଉପରେ ଥିବାରୁ କାର୍ତ୍ତିକ ସଂକ୍ରାନ୍ତିକୁ ଜଳ ବିଷୁବସଂକ୍ରାନ୍ତି ବୋଲାଯାଏ । ପୁଣି ଚୈତ୍ର ମାସ ଶେଷ ଓ ବୈଶାଖ ଆରମ୍ଭରେ ସୂର୍ଯ୍ୟ ବିଷୁବରେଖା ଉପରେ ଥିବାରୁ ବୈଶାଖ ସଂକ୍ରାନ୍ତିକୁ ମହାବିଷୁବ ସଂକ୍ରାନ୍ତି ବୋଲାଯାଏ ।

ହିନ୍ଦୁ ଜ୍ୟୋତିଷ ମତରେ ରବିଗ୍ରହଙ୍କର ପୁତ୍ର ଶନି ।

ଫଳିତଜ୍ୟୋତିଷ ମତରେ ରବିବାରରେ ଜନ୍ମ ହେବା ବ୍ୟକ୍ତି ଅତ୍ୟନ୍ତ ଧାର୍ମିକ, ତୀର୍ଥସେବୀ, ସନ୍ତୁଷ୍ଟ, ପ୍ରିୟମ୍ବଦ ଓ ସାମାନ୍ୟ ଧନରେ ଧନୀ ବୋଲି ଖ୍ୟାତିଲାଭ କରେ । ବ୍ୟକ୍ତିର ଜନ୍ମକାଳରେ ରବି ଯେଉଁ ରାଶିରେ ଉଦୟ ହୋଇଥାଆନ୍ତି ସେହି ରାଶି 'ଜାତକର 'ଲଗ୍ନ' ବୋଲି ଧରାଯାଏ । ଜାତକରେ ରବି ଶୁଭଗ୍ରହଯୁକ୍ତ ହୋଇ ଲଗ୍ନରେ ଥିଲେ ଉକ୍ତ ବ୍ୟକ୍ତି ଶୈଶବରେ ପୀଡ଼ିତ, ନେତ୍ରରୋଗୀ, ନୀଚ-ସେବାନୁରତ, ଦୀନ, ବିକଳମୂର୍ତ୍ତି ଓ ପୁତ୍ରକଳତ୍ରହୀନ ହୁଏ । ରବି ଶୁଭଗ୍ରହଦୃଷ୍ଟ ହୋଇ ଲଗ୍ନର ଦ୍ୱିତୀୟ ବା ଧନ ସ୍ଥାନରେ ଥିଲେ ଉକ୍ତ ବ୍ୟକ୍ତି ସଂସାରତ୍ୟାଗୀ ଓ ଧନହୀନ ହୁଏ ।

ରବି ତୃତୀୟ ବା ସୋଦର ସ୍ଥାନରେ ଥିଲେ ଉକ୍ତ ବ୍ୟକ୍ତି ଭ୍ରାତୃହନ୍ତା, ପୁତ୍ରକଳତ୍ରବାନ୍, ପ୍ରିୟଜନହିତକାରୀ, ସନ୍ତୁଷ୍ଟ ଓ ନାରୀପ୍ରିୟ ହୁଏ ।

ରବି ୪ର୍ଥ ବା ବନ୍ଧୁ ସ୍ଥାନରେ ଥିଲେ ବନ୍ଧୁନାଶ ଓ ସନ୍ତାପୀ । ରବି ୫ମ ବା ପୁତ୍ର ସ୍ଥାନରେ ଥିଲେ ପ୍ରଥମ ପୁତ୍ର ନଷ୍ଟ ହୁଏ ଓ ଧନହାନତା ଘଟେ ।

ରବି ୬ଷ୍ଠ ବା ରିପୁ ସ୍ଥାନରେ ଥିଲେ ମନୁଷ୍ୟ ସୁଖୀ, ଶତ୍ରୁହନ୍ତା, ବିଖ୍ୟାତ ଓ ଧାର୍ମିକ ହୁଏ ।

ରବ ୭ମ ବା ଜାୟା ଗୃହରେ ଥିଲେ ଜାୟାନାଶ ଘଟେ ।

ରବ ୮ମ ବା ନିଧନ ସ୍ଥାନରେ ଥିଲେ ମନୁଷ୍ୟ ଅତିକ୍ରୋଧୀ, ଶତ୍ରୁଯୁକ୍ତ ଓ କଷ୍ଟମୃତ୍ୟୁ ହୁଏ ।

ରବ ୯ମ ବା ଧର୍ମ ସ୍ଥାନରେ ଥିଲେ ମନୁଷ୍ୟ ଭାଗ୍ୟହୀନ ଓ ରୋଗୀ ହୁଏ ।

ରବ ୧୦ମ ବା କର୍ମ ସ୍ଥାନରେ ଥିଲେ ମନୁଷ୍ୟ ନୃତ୍ୟ-ଗୀତାନୁରକ୍ତ, ସୁବୁଦ୍ଧିବାନ୍, ତେଜସ୍ୱୀ, କୁଳଶ୍ରେଷ୍ଠ, ଧନୀ ଓ ରାଜା ହୁଏ ।

ରବ ୧୧ଶ ବା ଆୟ ସ୍ଥାନରେ ଥିଲେ ମନୁଷ୍ୟ ବହୁଧନୀ, ରାଜା ବା ରାଜାନୁଗୃହୀତ ଓ ଗୃହମେଧୀ ହୁଏ ।

ରବ ୧୨ଶ ବା ବ୍ୟୟ ସ୍ଥାନରେ ଥିଲେ ନେତ୍ରହାନି ବା ନେତ୍ରପୀଡ଼ା, ଜଡ଼ବୁଦ୍ଧି, ରୋଗୀ ଓ ଦୁଃଖୀ ।

ଏ ସମ୍ବନ୍ଧେ ନାନା ମୁନି ମଧ୍ୟ ନାନା ମତ ଓ ଫଳ ଲେଖି ଅଛନ୍ତି ।

ଜାତକରେ ରବଗ୍ରହ କେନ୍ଦ୍ରସ୍ଥ (ଅର୍ଥାତ୍ ଲଗ୍ନର ୪ର୍ଥ)—ବନ୍ଧୁସ୍ଥାନ, ୭ମ—ଜାୟାସ୍ଥାନ, ୧୦ମ ବା କର୍ମ ସ୍ଥାନରେ ଥିଲେ ଉକ୍ତ ବ୍ୟକ୍ତି କ୍ରୂର, ହିଂସ୍ର, ମାତୃହୀନ ଓ ପାପୀ ହୁଏ ।

ଜାତକରେ ରବଗ୍ରହ ତୁଙ୍ଗସ୍ଥ ହୋଇଥିଲେ (ମେଷ ରାଶି ରବର ଉଚ୍ଚ ସ୍ଥାନ ଥିବାରୁ, ରବ ମେଷ ରାଶିରେ ଅବସ୍ଥାନ କରୁଥିଲେ) ମନୁଷ୍ୟ ଶାସ୍ତ୍ରଜ୍ଞ, ଧାର୍ମିକ, ଦାତା, ସୁଖୀ, ନୃପତୁଲ୍ୟ, ଲୋକପାଳକ ଓ ମଣ୍ଡଳେଶ୍ୱର ହୁଏ । ଜାତକରେ ଲଗ୍ନରେ ରବ ସଙ୍ଗେ ଏକ ବା ଏକାଧିକ ଅନ୍ୟଗ୍ରହଯୁକ୍ତ ଥିଲେ ଫଳିତ ଜ୍ୟୋତିଷମତରେ ଭିନ୍ନ ଭିନ୍ନ ଫଳଘଟିବା ଲେଖାଅଛି । କୌଣସି କୌଣସି ଯୋଗ ଶୁଭକର ଓ କେହି କେହି ଅଶୁଭକର (ଯଥା—ରବ ଓ ବୁଧ ଏକ ଗୃହରେ ଥିଲେ ଉକ୍ତ ବ୍ୟକ୍ତି ଯଶସ୍ୱୀ, ଉଦାର ଓ ବିଦ୍ୱାନ୍ ହୁଏ । ଏହାକୁ ରବିବୁଧ ଯୋଗ କହନ୍ତି ।]

ଜନ୍ମକାଳରେ ରବ ଯେଉଁ ନକ୍ଷତ୍ରରେ ଥାଆନ୍ତି ତହିଁରୁ ଆରମ୍ଭ କରି ଜାତକର ଚକ୍ର ଅଙ୍କିତ କରାଯାଏ । ଏହି ଚକ୍ରକୁ ଜାତଚକ୍ର ବା ଜନ୍ମଚକ୍ର ବୋଲାଯାଏ । ଉକ୍ତ ଚକ୍ରକୁ ଗୋଟିଏ ମନୁଷ୍ୟ ଆକାରରେ ଅଙ୍କିତ କରି ଉକ୍ତ ମନୁଷ୍ୟର ଭିନ୍ନ ଭିନ୍ନ ଅଙ୍ଗରେ ୨୭ଟି ନକ୍ଷତ୍ର ସ୍ଥାପନ କରି ତଦନୁସାରେ ମନୁଷ୍ୟର ପରମାୟୁ ଓ ଜୀବନର ଶୁଭାଶୁଭ ଫଳ ନିର୍ଣ୍ଣୟ କରାଯାଏ । ଜନ୍ମକାଳରେ ଚନ୍ଦ୍ରାଶ୍ରିତ ନକ୍ଷତ୍ର ଅନୁସାରେ ବ୍ୟକ୍ତିର ଜନ୍ମ ନକ୍ଷତ୍ର ନିର୍ଣ୍ଣିତ ହୁଏ । ଜନ୍ମକାଳରେ ଚନ୍ଦ୍ର ଯେଉଁ ରାଶିରେ ଅବସ୍ଥାନ କରୁଥାଆନ୍ତି ତାହାହିଁ ଜାତକର ଜନ୍ମରାଶି ଓ ସୂର୍ଯ୍ୟ ଯେଉଁ ରାଶିରେ ଉଦୟ ହୋଇ ଥାଆନ୍ତି ତାହାହିଁ ଜାତକର ଲଗ୍ନ ଅଟେ । ରବ ଦଶା, ରବ ଗୋଚର ଓ ରବ ଶୁଦ୍ଧି ଆଦି ଯଥା ସ୍ଥାନରେ ଦିଆଯିବ ।

ଜ୍ୟୋତିଷ ଗଣନା ମତରେ ପ୍ରତିବର୍ଷ ପୃଥିବୀରେ (ରାହୁ ଓ କେତୁ ଛଡ଼ା) ଗୋଟିଏ ଲେଖାଏଁ ଗ୍ରହ କ୍ରମଶଃ ରାଜା, ମନ୍ତ୍ରୀ, ପୁରୋହିତ, ପଶୁପତି, କରଣ, ଭଗର, ଜ୍ୟୋତିଷ, ତାତ୍କାଳିକ, ଅର୍ଥରକ୍ଷକ, ଆସ୍ଥାନରକ୍ଷକ, ସଂଗ୍ରାମାଧିପ, ଶସ୍ୟାଧିପ, ଧାନ୍ୟାଧିପ, ଅର୍ଘ୍ୟାଧିପ, ମେଘାଧିପ, ରସାଧିପ, ନୀରସାଧିପ ଓ ପାଳକାଧିପ ହୁଅନ୍ତି ଓ ଭିନ୍ନ ଭିନ୍ନ ଗ୍ରହମାନେ ତତ୍ତତ୍ ସ୍ଥାନର ଅଧିପତି ହେଲେ ପୃଥିବୀରେ ଶୁଭାଶୁଭ ଫଳ ଘଟେ । ଉଦାହରଣସ୍ୱରୂପ—

ରବ ରାଜା ହେଲେ—ଦେଶରେ ଉପଦ୍ରବ, ମନ୍ଦବୃଷ୍ଟି, ବାତ ଓ ନେତ୍ରରୋଗ ଘଟେ ।

ରବ ମନ୍ତ୍ରୀ ହେଲେ—ମତ୍ସ୍ୟଦେଶରେ ଦୁର୍ଭିକ୍ଷ ଓ ମଗଧରେ ରାଜବିଦ୍ରୋହ ଘଟେ ।

ରବ ପୁରୋହିତ ହେଲେ—ଶସ୍ୟହାନି, ଅପଘାତ ଓ ଅମଙ୍ଗଳ ହୁଏ ।

ରବ ପଶୁପତି ହେଲେ—ପୂର୍ବଦେଶରେ ଦରିଦ୍ରତା, ବାତ-ବୃଷ୍ଟିଭୟ ଓ ଚୌରପୀଡ଼ା ହୁଏ ।

ରବ କରଣ ହେଲେ—ମନ୍ଦବୃଷ୍ଟି ଓ ଯୁଦ୍ଧଭୟ ।

ରବ ଭଗର ହେଲେ—ରାଜାଙ୍କର ଅସୁସ୍ଥତା, ଗୃହେ ଗୃହେ ଶସ୍ତ୍ରଘାତ ଓ ମନ୍ଦବୃଷ୍ଟି ।

ରବ ଜ୍ୟୋତିଷ ହେଲେ—ମନ୍ଦବୃଷ୍ଟି ଓ ନୃପମାନଙ୍କ ଉପରେ ଶସ୍ତ୍ରଘାତ ।

ରବ ତାତ୍କାଳିକ ହେଲେ—ପୃଥିବୀ ଜର୍ଜରିତା ଓ ଲୋକ-ମାନେ ଦୁର୍ଭିକ୍ଷଜୀବୀ ।

ପ୍ରାଚୀନ ସଭ୍ୟତାପନ୍ନ ଜାତିମାନେ ରବ ବା ସୂର୍ଯ୍ୟଙ୍କୁ ଦେବତାରୂପେ ପୂଜା କରୁଥିଲେ ଓ ହିନ୍ଦୁମାନଙ୍କର ବେଦ ସୂର୍ଯ୍ୟଙ୍କର ସ୍ତବରେ ପୂର୍ଣ୍ଣ ଓ ବେଦରେ ନାରାୟଣ ସବିତୃମଣ୍ଡଳ ମଧ୍ୟବର୍ତ୍ତୀ ବୋଲି କଳ୍ପିତ ହୋଇଅଛନ୍ତି । ସୂର୍ଯ୍ୟଙ୍କର ରଥ ଏକ ଚକ୍ର ବିଶିଷ୍ଟ ଓ ସପ୍ତାଶ୍ୱଯୋଜିତ ଥିବାର କଳ୍ପିତ ହୋଇ ଅଛି । ରବଙ୍କ ପତ୍ନୀ ଛାୟା ଓ ସଂଜ୍ଞା; ପୁତ୍ର ଶନି, ସୁଗ୍ରୀବ, ଯମ, ସାବର୍ଣ୍ଣିମନୁ ଓ ବୈବସ୍ୱତମନୁ; କନ୍ୟା ଯମୁନା । ଏହାଙ୍କର ପ୍ରିୟଧାତୁ ତାମ୍ର ଓ ରତ୍ନ ମାଣିକ୍ୟ । ଏହାଙ୍କଠାରୁ ଭାରତର ସୂର୍ଯ୍ୟବଂଶୀୟ ରାଜାଙ୍କର ଉତ୍ପତ୍ତି ।

ରବଙ୍କର ନାମାନ୍ତର ଯଥା—

ଅଂଶୁମାଳୀ, ଅଂଶୁମାନ୍, ଅରୁଣି, ଅର୍କ, ଅର୍ଯ୍ୟମା, ଅହସ୍କର, ଆଦିତ୍ୟ, ଉଷ୍ଣରଶ୍ମି, ଏକଚକ୍ରରଥ, କଳିଙ୍ଗ, କଶ୍ୟପାତ୍ମଜ, କେଶଶାୟୀକର, ଖଗ, ଗଭସ୍ତିହସ୍ତ, ଗ୍ରହେଶ୍ୱର, ଚଣ୍ଡାଂଶୁ, ଚିତ୍ରଭାନୁ, ଛନ୍ଦୋଶ୍ୱ, ତପନ, ତମିସ୍ରହା, ତମୋଘ୍ନ, ତରଣି, ତାପନ, ତାର୍କ୍ଷ୍ୟବାହନ, ତିଗ୍ମାଂଶୁ, ତ୍ରିଲୋକେଶ, ଦିବସପତି, ଦିବାକର, ଦିବାନାଥ, ଦୁର୍ନିରୀକ୍ଷ, ଦୈତ୍ୟହା, ଦ୍ୟୁମଣି, ଦ୍ୱାଦଶାତ୍ମା, ଧର୍ମରଶ୍ମି, ଧର୍ମାଧର୍ମପ୍ରକାଶକ, ପଦ୍ମିନୀନାଥ, ପାପହର୍ତ୍ତା, ପୂଷା, ପ୍ରଭାକର, ବ୍ରଧ୍ନ, ଭୟନାଶନ, ଭାନୁ, ଭାନୁମାନ୍, ଭାସ୍କର, ଭାସ୍ୱାନ୍, ମନ୍ଦେହାରି, ମାର୍ତ୍ତଣ୍ଡ, ମିତ୍ର, ମିହିର, ରବି, ଲୋକଚକ୍ଷୁ, ଲୋକସାକ୍ଷୀ, ବିକର୍ତ୍ତନ, ବିବସ୍ୱାନ୍, ବିଭାବସୁ, ବିଶ୍ୱକର୍ତ୍ତା, ବିଶ୍ୱକର୍ମା, ବିଶ୍ୱରୂପ, ବୃଷାକପି, ବେଦବେଦ୍ୟ, ଶାଶ୍ୱତ, ଶୁଚି, ଶ୍ରୀମାନ୍, ଲୋକ-

ହସ୍ତାଶ୍ୱ, ସପ୍ତହୟ, ସପ୍ତାଶ୍ୱବାହନ, ସପ୍ତାଶ୍ୱ, ସହସ୍ରାଂଶୁ, ସହସ୍ରାର୍ଚ୍ଚିଃ, ସୁମହ, ସୂର, ସୂର୍ଯ୍ୟ, ହଂସ, ହରି, ହରିଦଶ୍ୱ, ହେଳକ, ସ୍ୱନ, ସେଣାନ ।

ତୁଳନା କର ସଂ. ରେ ସୂର୍ଯ୍ୟ, ସେଣାନ, ସୂର, ହେଳକା
ଇଂ. ରେ—Sun (ସନ୍)
ପ୍ରାଚୀନ ଇଂ. ରେ—Sunna (ସନ୍ନା) Sunne (ସନ୍ନେ)
ପ୍ରାଚୀନ ସାକ୍ସନରେ—Sunna (ସୁନ୍ନା)
ପ୍ରାଚୀନ ଜର୍ମାନ୍—Sunna (ସୁନ୍ନା)
ପ୍ରାଚୀନ ଗଥିକ୍—Sunna (ସୁନ୍ନା), Sunno (ସୁନ୍ନୋ)
ଜର୍ମାନ୍—Sunne (ସୁନ୍ନେ)
ଓଲନ୍ଦାଜ—Zon (ଜୋନ୍), sonne (ସୋନ୍ନେ)
ଲାଟିନ୍—Sol ସୋଲ୍ , Solis (ସୋଲିସ୍)
ଫ୍ରେଞ୍ଚ୍—Solei (ସୋଲେଇ)
ଲେଟ୍ଟିକ୍—Saule (ସଲ୍)
ଡାନିସ୍—Soel (ସୋଏଲ୍) , Sol (ସୋଲ୍)
ଆଧୁନିକ ଗଥିକ୍—Sanil (ସାନିଲ୍)
ଗ୍ରୀକ୍—Helios (ହେଲିଓସ୍)

ଆଧୁନିକ ପାଶ୍ଚାତ୍ୟ ବିଜ୍ଞାନବେତ୍ତାମାନେ ଗବେଷଣାଦ୍ୱାରା ସ୍ଥିର କରିଅଛନ୍ତି ଯେ ସୂର୍ଯ୍ୟ ଗୋଟିଏ ଘୂର୍ଣ୍ଣାୟମାନ ଅତି ଉଷ୍ଣ ଧାତୁଜାତ ବାଷ୍ପମଣ୍ଡଳ ଓ ତାହା ଘୂରିବାବେଳେ ତହିଁରୁ ଖଣ୍ଡଖଣ୍ଡ ଅଂଶ ଛିଣ୍ଡି ଯାଇ ଭିନ୍ନ ଭିନ୍ନ ଗ୍ରହର ସୃଷ୍ଟି ହୋଇଅଛି ଓ ସୂର୍ଯ୍ୟ ସୌର ଜଗତର ସମସ୍ତ ଗ୍ରହଙ୍କୁ ଆକର୍ଷଣ କରିବାରୁ ସମସ୍ତ ଗ୍ରହ ସୂର୍ଯ୍ୟଙ୍କ ଚାରିପାଖରେ ଘୂରୁ ଅଛନ୍ତି । ]

୨ । ଅର୍କବୃକ୍ଷ—2. A plant; Calotpiors Gigantea; the swallow-wort. ୩ । ନାୟକ—3. Hero of a drama or novel. ୪ । ରକ୍ତାଶୋକ ବୃକ୍ଷ—4. The Asoka tree (Janesia Asoka). ୫ । ନିଃଶ୍ୱାସ ବାୟୁ ଯିବା ଆସିବା କରିବା ଶରୀରର ଦକ୍ଷିଣ ନାଡ଼ୀ—5. Name of the right canal in the body for the passage of the vital air. ୬ । ରବିବାର—6. Sunday.
[ଉ—ରବି ଦଶଘଡ଼ି ସୋମ ଚଉଠା
ବାର ମଙ୍ଗଳ ପଣ୍ଡିତ ଷଠା
ଗୁରୁ ଚଉଦ ମନ୍ଦୀ ଆଠ
ଉଦୟୁ ଅସ୍ତ ଶନିର ପାଠ — ଡାକ ବଚନ । ]

ରବିନ ରବୀ ଦେ. ବି. ୧ । ରବିକବି; ଚମ୍ପୂରଚୟିତା ଉତ୍କଳୀୟ କବିସୂର୍ଯ୍ୟ ରାୟଗୁରୁ 1. Name of an Oriya classical poet. ୨ । ରବୀନ୍ଦ୍ରଆଦିଙ୍କର ଡାକ ନାମ—
2. Name for calling Rabindra etc.
ବୈଦେ· ବି—( ଆ.ରବି=ବସନ୍ତ ଋତୁ )—ରବି ଫସଲ (ଦେଖ)—Rabi phasala (See).

ରବି ଅନ୍ତର—ସଂ. ବି—(ଜ୍ୟୋତିଷ) ଜାତକର ଗଣନା ଅନୁସାରେ ଅନ୍ୟାନ୍ୟ ଗ୍ରହମାନଙ୍କର ଏବଂ ରବିଙ୍କର ମହାଦଶା
Rabi antara
ପଡ଼ିବା ସମୟ ମଧ୍ୟରେ ରବିଙ୍କର ଯୋଗକାଳୀନ ଅନ୍ତର୍ଦ୍ଦଶା—Intervention of the planet Rabi while the other Mahādaśās are in operation in a person's life. [ଦ୍ର—ଅନ୍ତର୍ଦ୍ଦଶାର ଚକ୍ର=୧]
ର୧ର=ରବି ମହାଦଶା ମଧ୍ୟରେ ରବିଙ୍କର ଅନ୍ତର୍ଦ୍ଦଶାର କାଳ ୨୦ ଦିନ ମାତ୍ର ଏହି ଅନ୍ତର୍ଦ୍ଦଶା ଦୁଃଖପ୍ରଦ ।
ଚ୧ର=ଚନ୍ଦ୍ର ମହାଦଶା ମଧ୍ୟରେ ରବିଙ୍କର ଅନ୍ତର୍ଦ୍ଦଶା ୧୦ ମାସ, ଫଳ—ରାଜାନୁଗ୍ରହଲାଭ, ଧନଲାଭ ଓ ସୁଖ ଲାଭ ।
ମ୧ର=ମଙ୍ଗଳ ମହାଦଶା ମଧ୍ୟରେ ରବିଙ୍କ ଅନ୍ତର୍ଦ୍ଦଶା ୫ ମାସ ୧୦ ଦିନ, ଫଳ—ଅର୍ଥଲାଭ, ରାଜସମ୍ମାନ, ସ୍ତ୍ରୀଲାଭ ଓ ପଦବୃଦ୍ଧି ।
ବୁ୧ର=ବୁଧ ମହାଦଶାରେ ରବିଙ୍କ ଅନ୍ତର୍ଦ୍ଦଶା ୧୧ ମାସ୧୦ ଦିନ; ଫଳ—ପରଧନଲାଭ, ଯଶୋଲାଭ, ଶ୍ରୀଲାଭ ଓ ବାହନଲାଭ ।
ଶ୧ର=ଶନି ମହାଦଶାରେ ରବି ଅନ୍ତର୍ଦ୍ଦଶା ୬ମାସ ୨୦ ଦିନ; ଫଳ- ଧନପୁତ୍ରବଳନାଶ, ଦୁଃଖବୃଦ୍ଧି ଓ ଜୀବନନାଶ ।
ବୃ୧ର=ବୃହସ୍ପତି ମହାଦଶାରେ ରବି ଅନ୍ତର୍ଦ୍ଦଶା ୧ବର୍ଷ ୨୦ ଦିନ; ଫଳ—ମିତ୍ରଲାଭ, ଧନାଗମ, ସ୍ତ୍ରୀଲାଭ ଓ ରାଜସମ୍ମାନ ଲାଭ (ମତାନ୍ତରରେ ଶତ୍ରୁପୀଡ଼ା ଚୌର-ଭୟ ଓ ରୋଗ ।
ରା୧ର } କେ୧ର }—ରାହୁ ବା କେତୁ ମହାଦଶାରେ ରବି ଅନ୍ତର୍ଦ୍ଦଶା ୮ମାସ; ଫଳ—ଶତ୍ରୁଭୟ, ରୋଗ, ଅର୍ଥନାଶ ।
ଶୁ୧ର=ଶୁକ୍ର ମହାଦଶାରେ ରବି ଅନ୍ତର୍ଦ୍ଦଶା ୧ବର୍ଷ ୨ମାସ; ଫଳ—ଚକ୍ଷୁରୋଗ, ବନ୍ଧନ, ମହାଭୟ ଓ ଅମଙ୍ଗଳ । ]

ରବିଅଲ୍ ଅଓ୍ୱଲ୍—ବୈଦେ. ବି ( ଫା )—ମୁସଲମାନମାନଙ୍କର ମହରମ ମାସର ପରବର୍ତ୍ତୀ ୨ୟ ମାସ; ସଫରର ପରବର୍ତ୍ତୀ ଓ ରବିଅସ୍ସାନିର ପୂର୍ବବର୍ତ୍ତୀ ମାସ—Name of a Mahomedan month. [ଦ୍ର—ଏ ମାସ ୩୦ ଦିନ । ]
Rabial aowal
ববিঅল অওঅল
रबीअल औवल

ରବି ଅସ୍ସାନି—ବୈଦେ· ବି. (ଫା)—ରବିଅଲ୍ ଅଓ୍ୱଲ୍ ମାସର ପରବର୍ତ୍ତୀ ଓ ଜମାଦିଅଲ୍ ଅଓ୍ୱଲ୍ ମାସର ପୂର୍ବବର୍ତ୍ତୀ ମୁସଲମାନ ମାସ—Name of a Mahomedan month. [ଦ୍ର—ଏ ମାସ ୨୯ ଦିନ ।]
Rasi as-sāni
ববিঅসমানী
रबिअससानी

ରବି(ବ)ଆ(ୟା)—ପ୍ରାଦେ (ସମ୍ବଲପୁର) ବି—ହଇଜା, ଝାଡ଼ାବାନ୍ତି—Cholera.
Rabi(ba)ā(yā)

ରବି କବି—ଦେ. ବି (ରାଜଦତ୍ତ କବିସୂର୍ଯ୍ୟ ଉପାଧିର ଆକାରାନ୍ତର)—୧ । କବିଶେଖରଚନ୍ଦ୍ରାନନ ଚମ୍ପୂ ଆଦି ସଙ୍ଗୀତର
Rabi kabi

ରଚୟିତା କବିସୂର୍ଯ୍ୟ ବଳଦେବ ରଥ—1 Poet Baladeba Ratha the author of Kiśora Chandrānanda Champū. [ ଦ୍ର—କବିସୂର୍ଯ୍ୟ ଶବ୍ଦେ ନୋଟ୍ ଦେଖ । ] ୨ । କବିସୂର୍ଯ୍ୟ ଉପାଧିଧାରୀ ସଦାନନ୍ଦ ବ୍ରହ୍ମା ନାମକ ଜଣେ ଭକ୍ତି ଗ୍ରନ୍ଥ ରଚୟିତା କବି—2. Sadānanda Brahmā, the author of a religious book, who had got the title of Kabisūrjya. [ଦ୍ର—ଓଡ଼ିଶାର ନୂଆଗଡ଼ ଗଡ଼ଜାତର (ଖ୍ରୀ ୧୭୩୬—୧୭୭୩) ଅଧିବାସୀ ଥିଲେ । ପୁରୀ ରାଜା ବୀରକିଶୋର ଦେବ ତାଙ୍କୁ କବିସୂର୍ଯ୍ୟ ଉପାଧି ଦେଇଥିଲେ ଓ ସେ ଅନେକ ଭକ୍ତିଗ୍ରନ୍ଥ ଗୀତରେ ରଚନା କରିଯାଇ ଅଛନ୍ତି ।

**ରବି କର**—ସଂ. ବି (୬ଷ୍ଠୀ ତତ୍)—ସୂର୍ଯ୍ୟକିରଣ—
Rabi kara Sun's rays.

**ରବି କାନ୍ତ**—ସଂ.ବି.(ରବି=ସୂର୍ଯ୍ୟ+କାନ୍ତ=କାନ୍ତିଯୁକ୍ତ; ରମ୍ୟ ରବି ଅଟେ
Rabi kānta କାନ୍ତ=ପ୍ରିୟ ଯାହାର; ବହୁବ୍ରୀହି । )—ସୂର୍ଯ୍ୟକାନ୍ତ ମଣି; ଏକ ପ୍ରକାର ମଣି—The sunstone; a sort of crystal stone; a precious stone, said to concentrate the sun's rays into burning heat. [ ଦ୍ର—ଏହାକୁ ସୂର୍ଯ୍ୟ କିରଣରେ ଦେଖାଇଲେ ତଳେ ନିଆଁ ପଡ଼େ । ]

**ରବିକାଷ୍ଠା ପ୍ରଦେଶ**—ସଂ. ବି. ( ଅଧୁନିକ )—ପୃଥିବୀର ବିଷୁବ ରେଖାର
Rabikāshthā pradeśa ଉତ୍ତର ଓ ଦକ୍ଷିଣ ପାର୍ଶ୍ୱରେ ବିସ୍ତୃତ ଗ୍ରୀଷ୍ମକଟିବନ୍ଧସ୍ଥ ସ୍ଥାନ—The tropics; tropical countries (between the Tropics of Cancer and Capricorn lying on both sides of the equator )

**ରବି ଖଣ୍ଡ**—ଦେ. ବି. (ଆ: ରବୀ=ବସନ୍ତ କାଳ; ବସନ୍ତକାଳର ଫସଲ,
Rabi khanda ରମ୍ୟ ସଂ. ରବି; କାରଣ ରବିକିରଣ
ରବି ଫସଲ ସାହାଯ୍ୟରେ ଏ ଫସଲ ହୁଏ )—ଧାନ
**ରବି ଫସଲ** ଫସଲ ପରେ ଶୀତ ଓ ଖରା ଦିନେ ଅଥାତ୍ ବର୍ଷା ଋତୁ
ରବି ଫସଲ }—ଅନ୍ୟରୂପ] ପରେ ହେବା ଫସଲ—Cold season
ରବି ଶସ୍ୟ } crops; the cereals. (ଯଥା—ବିରି, ଗହମ, ଯବ, ଛଣା, ମୁଗ, କୋଳଥ, ରାଶି, ବରଗୁଡ଼ି, ହରଡ଼ ।)

**ରବି ଗୋଚର**—ସଂ. ବି. ( ଜ୍ୟୋତିଷ )—ମନୁଷ୍ୟର ଲଗ୍ନଠାରୁ ୧୨
Rabi gochara ଘର ପର୍ଯ୍ୟନ୍ତ ରାଶିରେ ରବିଗ୍ରହର ଅବସ୍ଥାନ କରୁଥିବା ଅବସ୍ଥା (ରବି ଗୋଟିଏ ରାଶିରେ ୧ ମାସ ଅବସ୍ଥାନ କରନ୍ତି)—The state of the sun's position from one's natal sign. [ ଦ୍ର—ଏଥିର ଫଳ; ୩ୟ, ୬ଷ୍ଠ, ୧୦ମ ଓ ୧୧ଶ ଶୁଭକର; ଅନ୍ୟାନ୍ୟ ଅଶୁଭ । ରବି ଜନ୍ମରାଶିରେ ଥିଲେ ସ୍ଥାନ ନାଶ, ୨ୟରେ ଭୟ, ୩ୟ ରେ ମଙ୍ଗଳ ବା ଶୁଭ, ୪ର୍ଥରେ ମାନହାନି, ୫ମରେ ଦୀନତା, ୬ଷ୍ଠ ରେ ଶତ୍ରୁନାଶ, ୭ମରେ ଅର୍ଥହାନି, ୮ମରେ ପୀଡ଼ା, ୯ମରେ କାନ୍ତିକ୍ଷୟ, ୧୦ମରେ କାମବୃଦ୍ଧି, ୧୧ଶରେ ସମ୍ପତ୍ତି ବୃଦ୍ଧି ଓ ୧୨ଶରେ ଧନନାଶ ଓ ମହା ବିପଦ ଉପସ୍ଥିତ ହୁଏ । ରବିବାର ଦିନ ମନୁଷ୍ୟର ଜନ୍ମ ନକ୍ଷତ୍ର ପଡ଼ିଲେ ଭ୍ରମଣ ଘଟେ । ରବିଗ୍ରହ ରାଶିପ୍ରବେଶ କାଳରେ ଗୋଚର ଫଳ ଦିଅନ୍ତି । ]

**ରବି ଗ୍ରହ**—ସଂ.ବି.—ସୌର ଜଗତର ପ୍ରଧାନ ଗ୍ରହ—The sun; the
Rabi graha central planet of the solar
(ରବି ମହାଗ୍ରହ—ଅନ୍ୟରୂପ) system.

**ରବି ଚକ୍ର**—ସଂ.ବି. ( ଜ୍ୟୋତିଷ )—ଜାତଚକ୍ର; ଜନ୍ମଚକ୍ର; ଜାତକରେ
Rabi chakra ସୌର ଗ୍ରହର ଫଳ ଗଣନାର୍ଥ ମନୁଷ୍ୟାକାରରେ ଅଙ୍କିତ ଚକ୍ର—An astrological circle drawn in the shape of a human figure from a person's horoscope. [ ଦ୍ର— ମନୁଷ୍ୟର ଜନ୍ମ କାଳରେ ରବିଗ୍ରହ ଯେଉଁ ନକ୍ଷତ୍ରରେ ଥାଆନ୍ତି ସେହି ନକ୍ଷତ୍ରରୁ ଆରମ୍ଭ କରି ଯଥାକ୍ରମେ ୨୭ଟି ନକ୍ଷତ୍ରଙ୍କୁ ଉକ୍ତ ମନୁଷ୍ୟର ଦେହର ଭିନ୍ନ ଭିନ୍ନ ସ୍ଥାନରେ ନିବେଶିତ କରି ମନୁଷ୍ୟ ଜୀବନର ଶୁଭାଶୁଭ ନିର୍ଣ୍ଣୟ କରାଯାଏ ।

ଜାତକରେ ଜନ୍ମକାଳୀନ ରବିଭୋଗ୍ୟ ନକ୍ଷତ୍ରଠାରୁ ଆରମ୍ଭ କରି ଉକ୍ତ ଚକ୍ରର ନିମ୍ନଲିଖିତ ସ୍ଥାନମାନଙ୍କରେ ନକ୍ଷତ୍ରମାନଙ୍କୁ ଯଥାକ୍ରମେ ନିମ୍ନଲିଖିତ ମତରେ ସ୍ଥାପନ କରାଯାଏ ଓ ତଦନୁସାରେ ବ୍ୟକ୍ତିର ଶୁଭାଶୁଭ ସ୍ଥିର କରାଯାଏ । ଯଥା—

ମସ୍ତକରେ ୩—ଫଳ—ରାଜପୂଜ୍ୟ, ସୁଖୀ
ମୁଖରେ ୩—ମିଷ୍ଟାନ୍ନଭୋଗୀ, ବାକ୍‌ପଟୁ
ବାମସ୍କନ୍ଧରେ ୧ } —ଧନପତି
ଦକ୍ଷିଣସ୍କନ୍ଧରେ ୧ }
ବାମବାହୁ ୧ } —ସ୍ଥାନଭ୍ରଷ୍ଟ
ଦକ୍ଷିଣବାହୁ ୧ }
ବାମହସ୍ତ ୧ } —ଚୋର
ଦକ୍ଷିଣହସ୍ତ ୧ }
ହୃଦୟରେ ୫—ରାଜା, ଧନୀ
ନାଭି ୧—ଅଳ୍ପରେ ସନ୍ତୁଷ୍ଟ
ଗୁହ୍ୟ ୧—ପରଦାରାନୁରକ୍ତ
ବାମଜାନୁ ୧ } —ବିଦେଶଗାମୀ
ଦକ୍ଷିଣଜାନୁ ୧ }
ବାମପାଦ ୩ } —ଅଳ୍ପାୟୁ
ଦକ୍ଷିଣପାଦ ୩ }
ମୋଟ ୨୭ ନକ୍ଷତ୍ର । ]

୨ । (ଜ୍ୟୋତିଷ)—ସଂକ୍ରାନ୍ତି ସମୟର ଗଣନା ଅନୁସାରେ କଳ୍ପିତ ନରରୂପ; ସଂକ୍ରାନ୍ତି ପୁରୁଷଚକ୍ର; ପ୍ରତି ସଂକ୍ରାନ୍ତିରେ ସୂର୍ଯ୍ୟ ଯେଉଁ ନକ୍ଷତ୍ରରେ ଚଳ ଥାଆନ୍ତି ସେହି ନକ୍ଷତ୍ରରୁ ଆରମ୍ଭ କରି ଭିନ୍ନ ଭିନ୍ନ ସଂକ୍ରାନ୍ତି ଚଳନ ଅନୁସାରେ ଶାସ୍ତ୍ରଲିଖିତ ଭିନ୍ନ ଭିନ୍ନ କ୍ରମରେ ପୁରୁଷ ଚକ୍ରରେ ନକ୍ଷତ୍ରମାନ ସ୍ଥାପନ କରି ଆଗାମୀମାସରେ ତତ୍ତତ୍ ନକ୍ଷତ୍ରଜାତ ବ୍ୟକ୍ତିମାନଙ୍କର ଶୁଭାଶୁଭ ଫଳ ନିର୍ଣ୍ଣାୟକ ଚକ୍ର—(astrology) The figure of a man on which are noted the

27 lunar mansions in different orders from which the future of a person for the following month can be deduced. [ ଦ୍ର—ଗୋଟିଏ ଉଦାହରଣ—

| | | |
|---|---|---|
| ମୂର୍ଦ୍ଧାରେ | ୭ଟି ନକ୍ଷତ୍ର—ଫଳ | ରାଜପୂଜା |
| ମୁଖରେ | ୩ ,, ,, | ବିଦ୍ୟାଲାଭ, ପଟୁତା |
| ହୃଦୟରେ | ୫ ,, ,, | ଧନଲାଭ ଓ ସମ୍ପତ୍ତି |
| ଦକ୍ଷିଣ ହସ୍ତରେ | ୩ ,, ,, | ଅର୍ଥପ୍ରାପ୍ତି, ଉତ୍ସାହଲାଭ |
| ବାମହସ୍ତରେ | ୩ ,, ,, | ଦୁଃଖ, ପ୍ରବାସ |
| ଦକ୍ଷିଣପାଦରେ | ୩ ,, ,, | ସୁଖ |
| ବାମପାଦରେ | ୩ ,, ,, | ଭ୍ରମଣ । |

କୌଣସି କୌଣସି ସଙ୍କ୍ରାନ୍ତିରେ ନେତ୍ର ଓ ଗୁହ୍ୟରେ ମଧ୍ୟ ନକ୍ଷତ୍ରମାନ ସନ୍ନିବେଶିତ ହୁଏ । ]

ରବିଜ—ସଂ. ବି. ପୁଂ ( ରବି ବା ସୂର୍ଯ୍ୟଙ୍କଠାରୁ ଜାତ )—୧ । ସୂର୍ଯ୍ୟଙ୍କ Rabija ପୁତ୍ର—1. A son of the Sun-god. ୨ । ଯମ—2. The God of death. ୩ । ଶନିଗ୍ରହ—3. Saturn (planet). ୪ । ସୁଗ୍ରୀବ—4. The famous monkey-ally of Rāmachandra. ୫ । ସାବର୍ଣ୍ଣିମନୁ—5. The name of a progenitor of mankind. ୬ । ବୈବସ୍ୱତମନୁ—6. The name of another progenitor of mankind.

{ରବିତନୟ, ରବିନନ୍ଦନ, ରବିସୁତ, ରବିସୂନୁ—ଅନ୍ୟରୂପ}
(ରବିଜା—ସ୍ତ୍ରୀ)

ରବିଜା—ସଂ. ବି. ସ୍ତ୍ରୀ—ଯମୁନା ନଦୀ—The river Jamunā Rabijā said to have its descent from the Sun-god.

(ରବିତନୟା, ରବିନନ୍ଦନୀ, ରବିସୁତା—ଅନ୍ୟରୂପ)

ରବି ଠାକୁର—ଦେ. ବି—ରବୀନ୍ଦ୍ରନାଥ ( ଦେଖ )
Rabi thākur Rabindranātha ( See )
ରବିଠାକୁର ৰবিঠাকুর

ରବି ତଳ—ସଂ. ବି (୭ମୀ ତତ୍ପୁ)—ପୃଥିବୀ—The earth. [ ଉ Rabi tala —ଅରେ ଦୁଷ୍ଟ, କେ ରଖିବ ତୋତେ ରବି ତଳେ । ସୁଧାକାଥ. ବେଣୀହାର । ]

ରବି ଦଶା—ସଂ. ବି [ଜ୍ୟୋତିଷ]—ଉତ୍କଳ ଦେଶ ପ୍ରଚଳିତ କେରଳୀୟ Rabi daśā ୯ ଗୋଟି ଦଶା ଗଣନା ଅନୁସାରେ ରବିଗ୍ରହଙ୍କ [ରବିମହାଦଶା—ଅନ୍ୟରୂପ] ଭୋଗ; ଜାତକର ଗଣନା ଅନୁସାରେ ମନୁଷ୍ୟର ପରମାୟୁ କାଳରେ ଘଟିବା ରବିଗ୍ରହର ଫଳଭୋଗକାଳ —(astrology) A period of 6 years which comes in a person's life of 120 years, calculated according to the Kerala school of astrology prevalent in Orissa. [ ଦ୍ର—'ରବି ଶଶୀ କୁଜରାହୁ ଜୀବମନ୍ଦଜ୍ଞ କେତୁ ଭୃଗବୋ ଭବନ୍ତି ନବାନାଂ କୃତ୍ତିକାଦି କ୍ରମେଣ' ଏହି ବଚନ ଅନୁସାରେ କୃତ୍ତିକା ନକ୍ଷତ୍ରଠାରୁ ଆରମ୍ଭ କରି ୩ଥର ଆବର୍ତ୍ତନ କରି ଗଣନା କଲେ ୨୭ ନକ୍ଷତ୍ରରେ ୯ ଗୋଟି ଦଶା ନିମ୍ନଲିଖିତ ରୂପେ ଗଣନା କରାଯାଏ ।

| | |
|---|---|
| ରବି ଦଶା | ୬ ବର୍ଷ |
| ଚନ୍ଦ୍ର ଦଶା | ୧୦ ବର୍ଷ |
| ମଙ୍ଗଳ ଦଶା | ୭ ବର୍ଷ |
| ରାହୁ ଦଶା | ୧୮ ବର୍ଷ |
| ବୃହସ୍ପତି ଦଶା | ୧୬ ବର୍ଷ |
| ଶନି ଦଶା | ୧୯ ବର୍ଷ |
| ବୁଧ ଦଶା | ୧୭ ବର୍ଷ |
| କେତୁ ଦଶା | ୭ ବର୍ଷ |
| ଶୁକ୍ର ଦଶା | ୨୦ ବର୍ଷ |
| | ୧୨୦ ବର୍ଷ |

ବୃହଜ୍ଜାତକ ଗ୍ରନ୍ଥମତରେ ରବି ଦଶାରେ ମନୁଷ୍ୟ ନଖ, ବସ୍ତ୍ର, ଚର୍ମ, ସୁବର୍ଣ୍ଣ, କ୍ରୂରକର୍ମ, ପଥ ଓ ଭୂପତିଙ୍କ ପକ୍ଷଙ୍କ ଦ୍ୱାରା ଧନଲାଭ କରେ ଓ ତାହାର ଶାସ୍ତ୍ରଚିନ୍ତା, ଧୈର୍ଯ୍ୟ, ଉଦ୍ୟମ, କୀର୍ତ୍ତି ଓ ପ୍ରତାପ ବୃଦ୍ଧି ହୁଏ; ବନ୍ଧୁ ପୁତ୍ର, କଳତ୍ର, ଧନ, ଅରି, ଅସ୍ତ୍ର, ଅନଳ ଓ ଭୂପାଳଙ୍କ ଦ୍ୱାରା ଆପଦ୍‌ଗ୍ରସ୍ତ ହୁଏ ଏବଂ ପାପକାର୍ଯ୍ୟରେ ଆସକ୍ତି, ଭୃତ୍ୟସଙ୍ଗେ କଳହ, ହୃଦୟରେ ଓ ଅଙ୍ଗରେ ରୋଗ ହୁଏ । ସ୍ଥୂଳତଃ ରବିଦଶା ଅଶୁଭକର ଅଟେ ।

ର୧ର (ରବି ଦଶାରେ ରବି ଅନ୍ତର)

| | | |
|---|---|---|
| ଅଶୁଭଫଳ—ପୀଡ଼ା, ହାନି, ଭୋଗକାଳ | ୩ମାସ | ୧୮ଦିନ । |
| ର୧ଚ—ଶୁଭ, ଶତ୍ରୁକ୍ଷୟ, ଧନଲାଭ, ରୋଗଶାନ୍ତି | ,, | ୬ ମାସ |
| ର୧ମ—ଶୁଭ, ଧନଲାଭ, ଜୟଲାଭ | ,, | ମା୪।୬ ଦିନ |
| ର୧ରା—ଅଶୁଭ, ପୀଡ଼ା, ହାନି | ,, | ମା୧୦।୨୪ଦିନ |
| ର୧ବୃ—ଲକ୍ଷ୍ମୀବୃଦ୍ଧି, ଧର୍ମବୃଦ୍ଧି, ପୁତ୍ରଲାଭ | ,, | ମା୯।୧୮ ଦିନ |
| ର୧ଶ—ଅଶୁଭ, ଅର୍ଥହାନି, ପରାଜୟ, କାର୍ଯ୍ୟହାନି | ,, | ମା୧୧।୧୨ଦିନ |
| ର୧ବୁ—ଅଶୁଭ, ପୀଡ଼ା, ଧନହାନି | ,, | ମା୧୦।୨ ଦିନ |
| ର୧କେ—ଅଶୁଭ, ଦେଶତ୍ୟାଗ, ବନ୍ଧୁନାଶ, ଧନକ୍ଷୟ, ପଦଚ୍ୟୁତ, ବ୍ୟାଧି | ,, | ମା୪।୨ ଦିନ |
| ର୧ଶୁ—ଶୁଭ: ଧନପ୍ରାପ୍ତି, ରୋଗଶଙ୍କା | ,, | ବ ୧।୦।୦ |
| ମୋଟ | | ୬ ବର୍ଷ |

| | |
|---|---|
| ମତାନ୍ତରେ ର୧ର | ୪ ମାସ |
| ର୧ଚ | ୧୦ ମାସ |
| ର୧ମ | ମା ୬।୧୦ ଦିନ |
| ର୧ରା | ମା ୧୧।୧୦ ଦିନ |
| ର୧ଶ | ମା ୭।୨୦ ଦିନ |
| ର୧ବୃ | ବ ୧।୦।୨୦ ଦିନ |
| ର୧ବୁ ଓ କେ | ୮ ମାସ |
| ର୧ଶୁ | ୧।୨ ମାସ |
| ମୋଟ | ୬ ବର୍ଷ । |

ଏହି ଅନ୍ତର୍ଦ୍ଦଶାମାନଙ୍କରେ ମଧ୍ୟ ପୁଣି ଗ୍ରହମାନଙ୍କର ପ୍ରତ୍ୟନ୍ତର୍ଦ୍ଦଶାଭୋଗର ଭିନ୍ନ ଭିନ୍ନ ଫଳ ଅଛି ।
ମନୁଷ୍ୟ କୃତ୍ତିକା, ରୋହିଣୀ ଓ ମୃଗଶିର ନକ୍ଷତ୍ରରେ ଜନ୍ମଗ୍ରହଣ କଲେ ମନୁଷ୍ୟର ରବିଦଶାରେ ଜନ୍ମ ହୋଇଅଛି ବୋଲି ଜାଣିବାକୁ ହେବ । ]

**ରବି ନାଥ**—ସଂ. (ରବି ଅଟେ ନାଥ ଯାହାର; ବହୁବ୍ରୀହି)—୧ । ପଦ୍ମ—
Rabi nātha 1. Lotus. ୨ । ବନ୍ଧୁକ ଫୁଲ (ଦେଖ)
2 Bandhuka phula (See)

**ରବିନାରାୟଣ ବ୍ରତ**—ସଂ.ବି—ରବିବାର ଦିନ ଏକାଦଶୀ ହେଲେ ସୂର୍ଯ୍ୟଙ୍କୁ ଓ ବିଷ୍ଣୁଙ୍କୁ ପୂଜା କରିବା ବ୍ରତ—
Rabinārāyana brata
A religious ceremony observed if the 11th day of the lunar month falls on a Sunday.

**ରବି(ଣ୍ଡ)ଦ**—ସଂ. ବି (ରବିଂ=ରବିଙ୍କୁ+ଦା ଧାତୁ=ଦାନକରିବା+ଅ)
Rabi(bi)nda ପଦ୍ମ—Lotus.

**ରବିପତ୍ର**—ସଂ. ବି—ନାଲି ଅରଖ ଗଛ—The swallow-wort
Rabipatra (red species)

**ରବି ପ୍ରତ୍ୟନ୍ତର**—ସଂ. ବି (ଜ୍ୟୋତିଷ) ରବି ଓ ଅନ୍ୟ ମହାଗ୍ରହମାନଙ୍କ
Rabi pratyantara ମହାଦଶାମଧ୍ୟସ୍ଥ ଅନ୍ତର୍ଦ୍ଦଶାମାନଙ୍କରେ
(ରବିପ୍ରତ୍ୟନ୍ତର୍ଦ୍ଦଶା—ଅନ୍ୟରୂପ) ରବିର ପ୍ରତ୍ୟନ୍ତରଦଶାଭୋଗକାଳ—
(astrology) The time in which the planet Sun is within the Antara daśā of other planets. [ ଦ୍ର—କେରଳୀ ଗଣନାମତେ ମନୁଷ୍ୟର ୧୨୦ ବର୍ଷ ପରମାୟୁ ମଧ୍ୟରେ ୯ ଗ୍ରହଙ୍କ ଦଶାରେ ପ୍ରତ୍ୟେକଙ୍କର ୯ଟି ଲେଖାଏଁ ଅନ୍ତର୍ଦ୍ଦଶା ପଡ଼େ ଓ ଏହି ୮୧ଟି ଅନ୍ତର୍ଦ୍ଦଶାରୁ ପ୍ରତ୍ୟେକ ଅନ୍ତର୍ଦ୍ଦଶାରେ ପୁଣି ୯ଟି ଗ୍ରହଙ୍କ ପ୍ରତ୍ୟନ୍ତର ଦଶା ପଡ଼େ । ଏହି ୭୨୯ ପ୍ରତ୍ୟନ୍ତରଦଶା ମଧ୍ୟରୁ ରବିପ୍ରତ୍ୟନ୍ତର ଦଶା ୮୧ଟି ଓ ଅନ୍ୟ ଗ୍ରହମାନଙ୍କର ପ୍ରତ୍ୟେକଙ୍କର ୮୧ଟି ଲେଖାଏଁ ପ୍ରତ୍ୟନ୍ତରଦଶା । ଏଥିର ଭିନ୍ନ ଭିନ୍ନ ଫଳ ଅଛି । ]

**ରବି ପ୍ରିୟ**—ସଂ. ବି. (୬ଷ୍ଠୀ ତତ୍)—୧ । ରକ୍ତ କମଳ—
Rabi priya 1. The red lotus; Nymphea Rubra.
୨ । ତାମ୍ର—2. Copper. ୩ । ମାଣିକ୍ୟ; ପଦ୍ମରାଗମଣି—3. Ruby. ୪ । ରକ୍ତକରବୀର—4. The red oleander; the rosebay flower. ୫ । ନାଲି ଅରଖ ଗଛ—5. The red swallow wort. ୬ । ଲକୁଚ; ଜେଉଟ ଫଳ—6. Artocarpus Locucha.

**ରବିପ୍ରୀତା**—ସଂ. ବି—ସୂର୍ଯ୍ୟମୁଖୀ ଗଛ ଓ ଫୁଲ—The sun
Rabipritā flower; Helianthus Annunus.
(ଅନ୍ୟ ସଂ. ସୁବର୍ଚ୍ଚଳା, ସୂର୍ଯ୍ୟଭକ୍ତା, ବରଦା, ବଦରା, ସୂର୍ଯ୍ୟାବର୍ତ୍ତ ।)

**ରବି ଫସଲ**—ବୈଦେ. ବି (ଆ. ରବି=ବସନ୍ତଋତୁ; ବସନ୍ତଋତୁରେ
Rabi phasala ଅମଳ ହେବା+ଫସଲ)—ଗହମ, ହରଡ଼, ମୁଗ,
ରବୀ, ରବି ଫସଲ **रबि, रबि फसल** ଗହମ, ଚଣା, ମଟର ଆଦି
(ଯେଉଁ ଫସଲ ବସନ୍ତ ଓ ଶୀତ ସମୟରେ ଅମଦାନି ହୁଏ)—
Cereals harvested in spring and winter.

**ରବି ବର୍ମା**—ଦେ ବି (ନାମ)—ଦକ୍ଷିଣ ଭାରତର ତ୍ରିବାଙ୍କୁଡ଼ର ପୃଥିବୀ
Rabi barmā ପ୍ରସିଦ୍ଧ ସ୍ୱର୍ଗୀୟ ଚିତ୍ରକର—Name of a famous Indian painter of the present and last century. [ଦ୍ର—ଜନ୍ମ ଖ୍ରୀ୧୮୪୮ । ଏହାଙ୍କର ୩ ଭାଇ ଓ ଏକ ଭଗିନୀ । ଏମାନେ ସ୍ୱଭାବ-ଶିଳ୍ପୀ । ଏହାଙ୍କର ମାତା ଜଣେ ଯଶସ୍ୱିନୀ କବି ଥିଲେ । ଏ ୧୩ ବର୍ଷରୁ ଚିତ୍ରବିଦ୍ୟାପ୍ରତି ଅନୁରାଗୀ ଥିଲେ । ଏ ତ୍ରିବାଙ୍କୁଡ଼ ମହାରାଜାଙ୍କ ଭଗିନୀପତି । ଏ ଅତି ସୁନ୍ଦର ତୈଳଚିତ୍ରମାନ, ଦେବ-ଦେବୀଙ୍କ ଚିତ୍ର ଓ ସଂସ୍କୃତ ନାଟକ ଓ ପୁରାଣାଦିବର୍ଣ୍ଣିତ କଳ୍ପନାଗୁଡ଼ିକମାନଙ୍କ ଚିତ୍ର ଅଙ୍କନରେ ପଟୁତା ଦେଖାଇ ଭାରତବର୍ଷରେ, ଲଣ୍ଡନରେ ଓ ଆମେରିକାରେ ପ୍ରସିଦ୍ଧିଲାଭ କରିଅଛନ୍ତି ।]

**ରବି ବାର**—ସଂ. ବି—ସପ୍ତାହର ଗୋଟିଏ ବାର—Sunday; one
Rabibāra of the seven days of the week.
**इतवार रविवार** [ଦ୍ର—ଖ୍ରୀଷ୍ଟିୟାନ୍‌ମାନଙ୍କ ଧର୍ମଶାସ୍ତ୍ର ଅନୁସାରେ
(ରବିବାସର—ଅନ୍ୟରୂପ) ଈଶ୍ୱର ଛଅ ଦିନକାଳ ପୃଥିବୀର ସୃଷ୍ଟି-କ୍ରିୟାରେ ଲାଗି ରବିବାର ଦିନ ବିଶ୍ରାମ ନେଇଥିଲେ ଓ ଖ୍ରୀଷ୍ଟିୟାନ୍‌ମାନଙ୍କର ମଧ୍ୟ ଏହା ବିଶ୍ରାମ ବାସର ( Sabbath ) ଅଟେ ।
ହିନ୍ଦୁ ଜ୍ୟୋତିଷ ମତରେ—
ରବିବାରରେ ସ୍ତ୍ରୀ ପ୍ରଥମେ ରଜସ୍ୱଳା ହେଲେ ବିଧବା ହୁଏ । ରବିବାରରେ ଜ୍ୱର ଆକ୍ରମଣ କଲେ ୭ ଦିନ କଷ୍ଟଭୋଗ କରାଏ । ରବିବାରରେ କେତେକ ଶୁଭ କର୍ମ ନିଷିଦ୍ଧ । ରବିବାର ଦିନ ଏକାଦଶୀ ପଡ଼ିଲେ ରବିନାରାୟଣ-ବ୍ରତ ହୁଏ । ]

**ରବିବୁଧା ଯୋଗ**—ଦେ. ବି. ( ସଂ. ରବିବୁଧ )—ଜାତକରେ ରବି
Rabibudhā joga ଓ ବୁଧଗ୍ରହ ଏକରାଶିରେ ଥିବା ଯୋଗ—
ରବିବୁଧାଯୋଗ **रविबुध** The situation of the 2 planets Sun and Mercury in the same sign in a person's horoscope. [ ଦ୍ର—ଏହି ଯୋଗ-ବିଶିଷ୍ଟବ୍ୟକ୍ତି ସୁଖୀ ଓ ବିଦ୍ୱାନ୍ ହୁଏ । ]

**ରବି ମଣ୍ଡଳ**—ସଂ. ବି. ( ୬ଷ୍ଠୀ ତତ୍ )—ସୂର୍ଯ୍ୟମଣ୍ଡଳ; ସୂର୍ଯ୍ୟଙ୍କ ପରିଧି—
Rabi mandala The orb of the sun.

**ରବି ମାର୍ଗ**—ସଂ. ବି. (୬ଷ୍ଠୀ ତତ୍)—ସୂର୍ଯ୍ୟଙ୍କ ଭ୍ରମଣପଥ; ପୃଥିବୀ ସୂର୍ଯ୍ୟଙ୍କୁ
Rabimārga ପରିଭ୍ରମଣ କରିବା ଅବସ୍ଥାରେ ପୃଥିବୀର ଲୋକେ ଯେଉଁ ବୃତ୍ତାଭାସ ରେଖାରେ ସୂର୍ଯ୍ୟଙ୍କୁ ଦେଖନ୍ତି; ଅୟନଦଣ୍ଡ—
The path of the sun; the ecliptic.

**ରବିମାର୍ଗ ଭଙ୍ଗ**—ସଂ.ବିଣ.—୧ । ରବିଙ୍କ ପଥରୋଧକାରୀ—1. Barring
Rabimārga bhanga the course of the sun.
୨ । ଅତ୍ୟୁଚ୍ଚ—2. Very high.

**ରବି ରତ୍ନ**—ସ. ବି. (ମ.ପ. ରେ; ରବିଗ୍ରହଙ୍କ ପ୍ରିୟ ରତ୍ନ)—ମାଣିକ୍ୟ—Rabi ratna (ରବିରତନ—ଅନ୍ୟରୂପ) Ruby.

**ରବି ରଶ୍ମି**—ସ. ବି. (୬ଷ୍ଠୀ ତତ୍) —ସୂର୍ଯ୍ୟକିରଣ—Sun's rays. Rabi rasmi

**ରବି ରୁବା**—ଦେ. ବି. (ଅନର୍ଥକ ସହଚର)—ରବି ଖଣ୍ଡ (ଦେଖ)—Rabi rubā (ରବିରୁବାଣ—ଅନ୍ୟରୂପ) Rabikhanda (See)

**ରବି ଲୋଚନ**—ସ.ବି. ( ବହୁବ୍ରୀହି, ରବି ଅଟନ୍ତି ଲୋଚନ ସ୍ୱରୂପ Rabi lochana ଯାହାଙ୍କର) ବିଷ୍ଣୁ—Bishnu.

**ରବି ଲୋହ**—ସ. ବି.—(ରବିଙ୍କ ପ୍ରିୟଧାତୁ) — ତାମ୍ର—Copper Rabi loha

**ରବି ଶସ୍ୟ**—ଦେ.ବି.—ରବି ଖଣ୍ଡ (ଦେଖ) —Rabikhanda (See). Rabi śasya

**ରବି ଶୁଦ୍ଧି**—ସ.ବି.(୬ଷ୍ଠୀତତ୍) (ଜ୍ୟୋତିଷ)—ରବିଗ୍ରହ କୌଣସି ବ୍ୟକ୍ତିର Rabi śuddhi ଜନ୍ମରାଶି ଠାରୁ ତୃତୀୟ, ଷଷ୍ଠ, ଦଶମ ବା ଏକାଦଶ ସ୍ଥାନରେ ରହିବା ଅବସ୍ଥା ଏବଂ ସୌର ମାସର ୧୫ଦିନ ପରେ ୨ୟ, ୫ମ ଓ ୯ମ ସ୍ଥାନରେ ରହିବା ଅବସ୍ଥା—The state of the Sun being in certain auspicious places from a man's natal sign. [ବି—ଏହା ଶୁଭକର ଓ ଏଥିରେ ବିବାହାଦି ଶୁଭକର୍ମ କରାଯାଏ ।]

**ରବି ସଂକ୍ରମଣ**—ସ. ବି.—ସଂକ୍ରାନ୍ତି (ଦେଖ)—Samkrānti (See). Rabi samkramaṇa (ରବିସଂକ୍ରାନ୍ତି; ରବି ସଞ୍ଚାର—ଅନ୍ୟରୂପ)

**ରବୀନ୍ଦ୍ରନାଥ**—ଦେ. ବି.—(ନାମ) ଆଧୁନିକ ଯୁଗର ଭାରତ ଓ ପୃଥିବୀ-Rabīndranātha ବିଖ୍ୟାତ ବଙ୍ଗୀୟ କବୀନ୍ଦ୍ର—The great ববীন্দ্রনাথ रवीन्द्रनाथ world-renowned poet of (ରବୀନ୍ଦ୍ରନାଥ ଠାକୁର—ଅନ୍ୟରୂପ) Bengal of the present age. [ବି—ଏ କଲିକତା ଜମିଦାର ବଂଶର ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କର କନିଷ୍ଠ ପୁତ୍ର; ଜନ୍ମ ୧୮୬୦ ସାଲ । ଏ ପଞ୍ଚମ ବର୍ଷ ବୟସରୁ ଗୀତ ବୋଲି ପାରୁଥିଲେ ଓ ୯ମ ବର୍ଷ ବୟସରୁ କବିତା ରଚନା କରୁଥିଲେ । ଗୀତି-କାବ୍ୟ, କବିତା, ନାଟକ, ଉପନ୍ୟାସ, ପ୍ରହସନ, ଗଦ୍ୟରଚନା, ସମ୍ବାଦ ପତ୍ରର ସମ୍ପାଦକତ୍ୱ ଓ ପ୍ରବନ୍ଧ ରଚନାରେ ଏ ପୃଥିବୀବ୍ୟାପୀ ପ୍ରତିଷ୍ଠା ଲାଭ କରିଅଛନ୍ତି । ଏ ଯେପରି ସାହିତ୍ୟ-ସେବୀ ସେହିପରି ସ୍ୱଦେଶଭକ୍ତ । ଏ ନିଜର ଜମିଦାରୀ କଲିକତା ନିକଟସ୍ଥ ବୋଲପୁରରେ 'ବିଶ୍ୱଭାରତୀ' ନାମରେ ଗୋଟିଏ ବୈଶିଷ୍ଟଜନକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାକରିବାରେ ବ୍ରତୀ ହୋଇଅଛନ୍ତି । ଏ ସଭ୍ୟ ଜଗତର ପ୍ରଧାନ ଶିକ୍ଷାଗୁରୁ ମଧ୍ୟରେ ଗଣ୍ୟ ହୋଇଅଛନ୍ତି ଓ ବୋଲପୁର ପଣ୍ଡିତମାନଙ୍କର ଗୋଟିଏ ତୀର୍ଥ ହୋଇଅଛି । ଏହାଙ୍କ କବିତା ପୃଥିବୀର ସର୍ବୋତ୍କୃଷ୍ଟ ନୋବେଲ୍ ପୁରସ୍କାର ପାଇଅଛି । ଏହାଙ୍କ ପୁସ୍ତକମାନ ଇଂରାଜି, ଫ୍ରେଞ୍ଚ, ଜର୍ମାନ୍ ଓ ଜାପାନୀ ଆଦିଭାଷାରେ ଅନୂଦିତ ହୋଇ ପୃଥିବୀରେ ଆଦୃତ ହୋଇଅଛି । ]

**ରବେଇ ଖବେଇ**—ଦେ. ବିଣ (ସ.ରଭ୍ ଧାତୁ=ଉତ୍ସୁକ ହେବା)—୧ । Rabei khabei ଅନ୍ୟ ବ୍ୟକ୍ତିର କୌଣସି କର୍ମ ଦେଖି ଅସୂୟାନ୍ୱିତ ବିସବିସ ଲଲଚାନା ବା ଉକ୍ତ କାର୍ଯ୍ୟ କରିବା ପାଇଁ ଉତ୍କଣ୍ଠାଯୁକ୍ତ; ମକ ମକ—1. Envious at another's weal; eager to do a thing on seeing another doingit. ୨ । ଅସୂୟାବଶତଃ ହୃଦୟରେ ଅଶାନ୍ତି ଭୋଗ କରୁଥିବା—2. Restless due to envy. ୩ । କାମପ୍ରବୃତ୍ତି ଚରିତାର୍ଥ କରିବାକୁ ଅସ୍ଥିର—2. Restlessly amorous, amorously excited. ଦେ. ବି—ମନର ଅଶାନ୍ତି; ମନର ଅସ୍ଥିରତା—1. Mental restlessness. ୨ । ମନ କାଣ୍ଡୁ—2. Mental itching. ୩ । ଅନ୍ୟର ଅନୁକରଣ କରିବାର ବଳବତୀ ଇଚ୍ଛା—3. A strong desire to imitate another. [ଉ—ସନ୍ତୁଣୁଣୀ ଘର ପିଠା ଦେଖି ମନ ରବେଇ ଖବେଇ, ଘସି ଫଡ଼ାକରେ ଗୁଡ଼ ଲଗେଇ ଉଡ଼ ଉଡ଼ ଗ୍ଲେବେଇ—ଢଗ ।] ୪ । ଅନ୍ୟଙ୍କୁ ଗାଳିଦେବାକୁ ବା ମାରିବାକୁ ମୁତ୍ତେଜିତ ହେବା; ଗାଳିଦେବାକୁ ବାହି ବିଦାର ହେବା—4. Eagerness to quarrel or attack another. ଦେ. ବିଣ—୫ । ଅସୂୟା—5 Envy. ଦେ. ବିଣ. ସ୍ତ୍ରୀ—କଳହପ୍ରିୟା ( ସ୍ତ୍ରୀ )—Quarrelsome ( woman )

**ରବେଇ ଖବେଇ ହେବା**—ଦେ. କି—୧ । ଅନ୍ୟଙ୍କୁ ଜବେ ଖୋଜିବା—Rabei khabei hebā 1. To call names vehe; বিসরিস করা mently to person. ୨ । ବାହି ବିଦାର ललचाना ହେବା; ଅତି ଅସ୍ଥିର ହେବା—2. To be inordinately restless.

**ରବେଇ ଛତ୍ର(ତା)**—ଦେ.ବିଣ.(ସ.ବିକ୍ଷିପ୍ତ)—୧ । ଇତସ୍ତତଃ ବିକ୍ଷିପ୍ତ—Rabei chhatra(tā) 1. Scattered here and there. ছন্ ছিত্রী ୨ । (ଲକ୍ଷଣାର୍ଥ) ନଷ୍ଟଭ୍ରଷ୍ଟ; ନାରଖାର; ଛାରଖାର—छिन्नभिन्न, छितराया हुआ 2. (figurative) Destroyed ruined.

**ରବେୟା**-ବୈଦେ. ବି (ଅ. ରବୈୟା)—ରବୟା (ଦେଖ)—Rabeyā Rabayā. (See) ବୈଦେ. ବିଣ -ଜବର୍ଦସ୍ତ; ବବেয়া କଡ଼ା—Strict. [ ଉ—ସେଖ୍ ତୋରାବଲୀ ଜଣେ रवैया ରବେୟା ହାକିମ । ଫକୀରମୋହନ. ଛମାଣ ଆଠଗୁଣ ।] জবরদস্ত ज़बरदस्त

**ରବ୍ଧ**—ସ. ବିଣ (ରଭ୍. ଧାତୁ+କର୍ମ. ତ)—ଆରବ୍ଧ; କୃତାରମ୍ଭ—Rabdha Commenced; begun.

**ରବ୍ୟାର୍ଦ୍ରା ଯୋଗ**—ସ. ବି (ଜ୍ୟୋତିଷ)—ଆଷାଢ଼ ବା ସୌର ମିଥୁନ Rabyārdrā joga ମାସର ୮ଦିନ ପଡ଼ିବା ଯୋଗ ବିଶେଷ—(astrology) An astrological combination happening on the 8th day of the solar month of Āsārdha.

**ରଭ୍ (ଧାତୁ)**—ସ.—୧ । ଆରମ୍ଭ କରିବା—1. To begin; to Rabh (root) commence. ୨ । ସନ୍ତୁଷ୍ଟ ହେବା—2. To be pleased with. ୩ । କ୍ରୀଡ଼ା କରିବା; ଆମୋଦ କରିବା; ବିଳାସ କରିବା—3. To sport; to make

merry. ୪ । ଉତ୍ସୁକ ହେବା—4. To be eager. ୫ । ବେଗରେ ଗମନ କରିବା—5. To walk briskly. ୬ । ଶବ୍ଦ କରିବା—6. To make a sound. ୭ । ରମଣ କରିବା—7. To copulate. ୮ । ଗୁପ୍ତ ଭାବରେ ମିଳିତ ହେବା—8. To meet in secret.

**ରଭସ**—ସଂ.ବି (ରଭ୍ ଧାତୁ+ଭାବ.ଅସ)—୧ । ବେଗ—1. Velocity; speed; force. ୨ । ଭୟ—2. Haste. ୩ । ଔତ୍ସୁକ୍ୟ—3. Eagerness. ୪ । ବିଳାସ; ଆମୋଦ—4. Amusement, sport. ୫ । ଆନନ୍ଦ; ହର୍ଷ—5. Pleasure. ୬ । ସୁଖ—6. Happiness. ୭ । ବଳାତ୍କାର—7. Outrage on female modesty, violence; rape. ୮ । ଅନୁତାପ—8. Repentance; regret. ୯ । ଶୋକ—9. Sorrow. ୧୦ । ପୂର୍ବାପର ବିବେଚନା—10. Mature consideration. ୧୧ । କାର୍ଯ୍ୟ-କାରଣ ନିର୍ଣ୍ଣୟ—11. Ascertainment of cause and effect. ଦେ. ବି (ସଂ. ରଭସି=ଗୋପନରେ)—୧ । ଗୁପ୍ତ ମିଳନ; ନିର୍ଜନରେ ଦୁଇଜଣଙ୍କର ଦେଖା—1 Secret meeting. ୨ । ରତି; ରମଣ—2. Cohabitation; copulation. ୩ । ଥଟ୍ଟା; ରହସ୍ୟ—3. Jesting. ୪ । ରସିକତା—4. Gallantry. ଦେ. ବିଣ—ଚଞ୍ଚଳ—Swift. [ ଉ—ବନ୍ଦଣ ବଣ ଅଦୃଶ୍ୟ ଶଲଙ୍କା ସ୍ୱଶଲ ବଶ ଝାଡ଼ି ଝାଡ଼ି କ ରଭସ ଗଛ । ଉଞ୍ଜ. ବୈଦେହୀଶବିଳାସ । ] ଦେ. କ୍ରି. ବିଣ—ଶୀଘ୍ର—At once; swiftly. [ଉ—ବସନ୍ତ ସମୟ ଅଛି ରସମୟ ରଭସ ପ୍ରବେଶ ଆସି । ଉଞ୍ଜ. ବୈଦେହୀଶବିଳାସ ।]

Rabhasa

**ରଭସା**—ଦେ. କ୍ରି. ବିଣ (ପ୍ରାଚୀନ ପଦ୍ୟ) (ସଂ. ରଭସା=ଗୋପନରେ)—ରଭସ (ଦେଖ)—Rabhasa [See]. [ ଉ—ଶୋକରେ ରଭସା ଭସା—ଇଲ ସେ ଉଜ୍ଜ୍ୱଳସା—ଗୃହୁଁ ଥିର କର ଆଶା ଆଶା । ଉଞ୍ଜ. ପ୍ରେମସୁଧାନିଧି ।]

Rabhasā

**ରଭସି(ସେ)**—ଦେ.କ୍ରି• ବିଣ.(ସଂ.ରଭସି) ୧। ନିର୍ଜନରେ—1. Alone. ୨। ଗୋପନରେ; ଜନ ନୟନ ଅଗୋଚରରେ—2. Secretly; away from the gaze of the people. ୩। ହଠାତ୍—3. Suddenly. [ଉ—ବଦରିକା ବନ ଭାବିଲୁ ସେ ବନ ସେବନ କଲା ରଭସେ । ଉଞ୍ଜ. ବୈଦେହୀଶ ବିଳାସ । ] ୪ । ବେଗ ସହିତ—4. Swiftly.

Rabhasi(se)

বভসি रभसि

**ରମ** (ଧାତୁ)—ସ.—୧ । କ୍ରୀଡ଼ା କରିବା—1. To play; to sport. ୨ । ରମଣ କରିବା—2. To cohabit.

Ram (root)

**ରମ**—ବୈଦେ. ବି. (ଇଂ.ରମ୍)—ଏକପ୍ରକାର ଅରଖୀ ମଦ—Rum; a kind of coarse brandy; distilled wine.

Ram

রম; रम

**ରମ**—ସଂ. ବି. (ରମ୍ ଧାତୁ+କର୍ତ୍ତୃ. ଅ)—୧ । କାନ୍ତ; ସ୍ୱାମୀ; ପତି—1. Husband. ୨ । ନାୟକ; ପ୍ରେମିକ—2. Lover. ୩। କନ୍ଦର୍ପ;ମଦନ—3. Cupid. ୪। ରକ୍ତାଶୋକବୃକ୍ଷ—4. The red variety of Janessia Asoka tree. ୫ । (+ଭାବଅ)କ୍ରୀଡ଼ା—5. Sporting; playing; ୬ । ବିହାର—6. Dalliance; amorous sport. ୭ । ରମଣ—7. Coition; copulation. ସଂ. ବିଣ.—୧ । ରମଣୀୟ; ଆହ୍ଲାଦକ—1. Pleasant; charming; pleasing. ୨ । ପ୍ରିୟ—2. Dear; beloved.

Rama

**ରମକ**—ସଂ. ବି. ପୁଂ (ରମ୍ ଧାତୁ+କର୍ତ୍ତୃ.ଅକ)—୧ । ଜାର; ଉପପତି—1. A woman's gallant. ୨ । ପ୍ରେମିକ—2. Lover. ସଂ.ବିଣ.ପୁଂ—ରମଣକାରୀ—Cohabiting.

Ramaka

**ରମଜାନ୍**—ବୈଦେ.ବି. (ଆ. ରମ୍‌ଜାନ୍; ଏଥିର ଅକ୍ଷରିକ ଅର୍ଥ ଜଳିଯିବା, ଯେଉଁ ମାସରେ ଧର୍ମ କର୍ମ ଦ୍ୱାରା ପାପରାଶି ଜଳିଯାଏ)—ସାବାନ୍‌ର ପରବର୍ତ୍ତୀ ଓ ସବାଲ୍‌ର ପୂର୍ବବର୍ତ୍ତୀ ମାସ; ମୁସଲମାନ୍ ବର୍ଷର ୯ମ ମାସ—The 9th Mahomedan month. [ଦ୍ର—ଏ ମାସରେ ମୁସଲମାନ୍‌ମାନେ ଦିବସରେ ନିର୍ଜଳ ଉପବାସ ବ୍ରତ କରନ୍ତି । ଏହି ମାସ ଶେଷରେ ମୁସଲମାନମାନଙ୍କ ଇଦ୍ ବା ଇଦୁଲ୍ ଫିତର୍ ପର୍ବ ହୁଏ ।]

Ramajān

বমজান रमजान

**ରମଠ**—ସଂ. ବି. (ରମ ଧାତୁ+କରଣ.ଅଠ)—ହେଙ୍ଗୁ—Assafoetida. (ରମଠ ଧ୍ୱନି—ଅନ୍ୟରୂପ)

Ramaṭha

**ରମଣ**—ସଂ. ବି. (ରମ୍ ଧାତୁ+ଭାବ.ଅନ)—୧ । କ୍ରୀଡ଼ା; ଖେଳ—1. Play; sport. ୨ । ସୁରତକ୍ରୀଡ଼ା; ରତିକ୍ରୀଡ଼ା;କେଳି;ମୈଥୁନ—2. Coition; copulation. ୩ । ରତିରସ; ବିହାର—3. Amorous dalliance. ୪। (କରଣ.ଅନ) ଜଘନ; ଜଙ୍ଘ; କାମାଦ୍ରି—4. Thigh; the Mores Veneris. ୫। (+କର୍ତ୍ତୃ.ଅନ) ମଦନ; କାମଦେବ-5. Cupid. ୬। ପତି,ସ୍ୱାମୀ—6. Husband. ୭ । କାନ୍ତ; ବଲ୍ଲଭ—7. Lover. ୮ । ଗଧ—8. Ass. (+କରଣ. ଅନ) ୯ । ବୃଷଣ; ମୁଷ୍କ, ଅଣ୍ଡକୋଷ—9. Testicle. ୧୦ । ମହାରିଷ୍ଟ; ମହାନିମ୍ବ; ଘୋଡ଼ାନିମ୍ବ—10. A sort of medicinal plant. Melia Azadarachta. ସଂ. ବିଣ—୧ । ପ୍ରିୟ—1. Beloved; dear ୨ । ରମଣୀୟ—2. Pleasing; charming.

Ramaṇa

**ରମଣକ**—ସଂ. ବି—ରମ୍ୟକ ବର୍ଷ; ପୌରାଣିକ ଜମ୍ବୁଦ୍ୱୀପାନ୍ତର୍ଗତ ବର୍ଷ ବା ଦେଶ ବିଶେଷ—Name of a country in mythological India.

Ramaṇaka

**ରମଣ କରିବା**—ଦେ. କ୍ରି—ମୈଥୁନ କରିବା—To copulate.

Ramaṇa karibā

বমণ করা रमण करना

ରମଣା—ସଂ ବି ସ୍ତ୍ରୀ ( ରମଣ+ଆ )—୧ । ରମଣୀ; ନାରୀ—
Ramaṇā 1. Woman. ୨ । ପତ୍ନୀ; ସ୍ତ୍ରୀ—2. Wife.
୩ । ବରନାରୀ—3. An excellent woman. ୪ । ପ୍ରିୟା—4. Mistress; sweetheart ୫ । ସଂସ୍କୃତ ଅର୍ଦ୍ଧ ସମବୃତ୍ତବିଶେଷ—5. Name of a Sanskrit metre. [ ଦ୍ର—ଏହାର ୧ମ ଓ ୪ର୍ଥ ପାଦରେ ୧୧ ଅକ୍ଷର ଲେଖାଏଁ ଥାଏ ଓ ୨ୟ ଓ ୩ୟ ପାଦରେ ୧୨ଟି ଲେଖାଏଁ ଅକ୍ଷର ଥାଏ ।]

ରମଣୀ—ସଂ. ବି. ସ୍ତ୍ରୀ (ରମ୍ ଧାତୁ+କର୍ତ୍ତୃ.ଅନ+ସ୍ତ୍ରୀ ଈ)—୧ । ନାରୀ—
Ramaṇī 1. Woman. ୨ । ଉତ୍ତମା ସ୍ତ୍ରୀ—2. An
ସଂ. ଅଙ୍ଗନା, ରାମା, ସ୍ତ୍ରୀରୁ, excellent lady. ୩ । ସୁନ୍ଦରୀ ସ୍ତ୍ରୀ
ଲଳନା, ଅବଳା, ନାରୀମ୍ବିନୀ, 3. A charming woman.
ବାମଲୋଚନା, ସୁନ୍ଦରୀ, ବାଳା ୪ । ପତ୍ନୀ—4. Wife. ୫ । ପ୍ରିୟା—5. Sweet-heart; mistress. ୬ । ବାଲା ନାମକ ବୃକ୍ଷବିଶେଷ; କୁରୁବେଲ ଫୁଲ ଓ ଗଛ—6. A flower tree, Pavonia Odorata. ୭ । ସଂସ୍କୃତ ଅର୍ଦ୍ଧ ସମବୃତ୍ତବିଶେଷ—7. Name of a Sanskrit metre. ଗ୍ରା. ବି. ( ସଂ. ରମଣ )—ସୁରତ; ରମଣ—Coition; copulation.

ରମଣୀ କୁଳ—ସଂ.ବି(୬ଷ୍ଠୀ ତତ୍)—୧। ନାରୀସମୂହ—1. Women.
Ramaṇī kula ୨। ନାରୀଜାତି—2. Women as a class.

ରମଣୀକୁଳ ଦୁର୍ଲ୍ଲଭ—ସଂ.ବିଣ—ସ୍ତ୍ରୀମାନଙ୍କଠାରେ ଯାହା ମିଳିବା କଷ୍ଟ—
Ramaṇīkula durllabha Not found amongst females.

ରମଣୀ ଚରିତ—ସଂ. ବି (୬ଷ୍ଠୀ ତତ୍)—ନାରୀସ୍ୱଭାବ—
Ramaṇī charita Woman's nature;female nature.

ରମଣୀ ଜନ—ସଂ. ବି.—ସ୍ତ୍ରୀଲୋକ; ମାଇପିଲୋକ—A woman; a
Ramaṇī jana female; a mere woman.

ରମଣୀଜନ ସୁଲଭ—ସଂ. ବିଣ—ସ୍ତ୍ରୀସୁଲଭ, ରମଣୀସୁଲଭ—Common
Ramaṇījana sulabha to women; which is often found in women. ( ଯଥା—ରମଣୀଜନସୁଲଭ କୋମଳତା ।)

ରମଣୀ ପ୍ରିୟ—ସଂ.ବିଣ.ପୁଂ (୬ଷ୍ଠୀ ତତ୍)- ସ୍ତ୍ରୀ ଜାତିର ମନୋହରଣକାରୀ—
Ramaṇī priya Charming the mind of woman.
(ରମଣୀ ମନୋହର, ରମଣୀ ମୋହନ—ଅନ୍ୟରୂପ)

ରମଣୀୟ—ସଂ. ବିଣ (ରମ୍ ଧାତୁ+କରଣ. ଅନୀୟ)—ରମ୍ୟ; ସୁନ୍ଦର;
Ramaṇīya ମନୋହର—Charming. [ ଦ୍ର—ଯେଉଁ ରୂପ (ରମଣୀୟା—ସ୍ତ୍ରୀ) ଦର୍ଶକର ମନରେ କ୍ଷଣ କ୍ଷଣ ନବତା ଉତ୍ପାଦନ କରି [ରମଣୀୟତା(ସ୍ତ୍ରୀ)—ବି] ମନୁଷ୍ୟକୁ ମୁଗ୍ଧ କରେ ତାହାହିଁ ରମଣୀୟ ।]

ରମଣୀ ରତ୍ନ—ସଂ. ବି. (ରୂପକ ଓ ୭ମୀ ତତ୍)—ସ୍ତ୍ରୀ ରତ୍ନ; ଉତ୍କୃଷ୍ଟା ସ୍ତ୍ରୀ—
Ramaṇī ratna An excellent woman; a paragon
(ରମଣୀରତନ—ଦେଶଜରୂପ) amongst women; a jewel of a woman.

ରମଣ୍ୟ—ସଂ. ବିଣ. (ରମଣ+ଯ)—ରମଣୀୟ; ରମ୍ୟ—Pleasing;
Ramaṇya charming. ସଂ. ବି—୧ । ରତିରସ—1. Dalliance. ୨ । ରଙ୍ଗରସ—2. Sport; amusement.

ରମଣ୍ୟକ—ସଂ. ବି (ରମଣ୍ୟ+କ)—ରମ୍ୟକ (ଦେଖ)
Ramaṇyaka Ramaṇyaka. (See)

ରମତି—ସଂ. ବି (ରମ୍. ଧାତୁ+କର୍ତ୍ତୃ. ଅତି)—୧ । ନାୟକ; ପ୍ରେମିକ—
Ramati 1. A lover; a gallant. ୨ । ସ୍ୱର୍ଗ—2. Heaven. ୩ । କାକ-3. Crow ୪।କାମଦେବ—4. Cupid.

ରମମାନ—ସଂ. ବିଣ. ପୁଂ(ରମଧାତୁ+କର୍ତ୍ତୃ. ଆନ)—କ୍ରୀଡ଼ା କରୁଥିବା—
Ramamāna Playing; sporting.
( ରମମାନା—ସ୍ତ୍ରୀ )

ରମୟନ୍ତି—ଦେ. କ୍ରି (ପ୍ରାଚୀନ ପଦ୍ୟ, ସଂ. ରମ. ଧାତୁର ବର୍ତ୍ତମାନକାଳ
Ramayanti ତୃତୀୟପୁରୁଷ ବହୁବଚନରୂପ)-ରମଣ କରୁଅଛନ୍ତି—
Is or are cohabiting. (ଦ୍ର—କେତେ ବ୍ରାହ୍ମ ରମୟନ୍ତି ମନର ଉଲ୍ଲାସେ । ପ୍ରାଚୀ. ଭସବାର୍ଦ୍ଧ ।)

ରମା—ସଂ. ବି. ସ୍ତ୍ରୀ (ରମ୍. ଧାତୁ+କର୍ତ୍ତୃ. ଅ+ଆ)—୧ । ଲକ୍ଷ୍ମୀ—
Ramā 1. Lakshmī; Goddess of wealth. ୨ । ପ୍ରିୟା; ସ୍ତ୍ରୀ; କାନ୍ତା—2. Wife. ୩ । ଉପପତ୍ନୀ—3 Mistress. ୪ । ଶଶିଦେବଙ୍କ କନ୍ୟା ଓ କଳ୍କିଦେବଙ୍କ ପତ୍ନୀ—4. Wife of Kalkī and daughter of Śaśideba. ୫ । କାନ୍ତି; ଶୋଭା; ଶ୍ରୀ—5. Beauty; lustre, grace. [ଦ୍ର—ଶ୍ୟାମଳିକା ନବ ତମାଳ ରମା; ଚିକ୍କି ଅଣି ଅଙ୍ଗେ କଲ୍ୟାଣି କ୍ଷମା । କବିସୂର୍ଯ୍ୟ. ବଳୋଶ୍ୱ ଗମ୍ଭୁ ୯ ଗୀତ ।] ଦେ. ବି—ସ୍ତ୍ରୀଙ୍କୁ ଦିଆଯିବା ନାମ—A name given to females.

ରମା(ମେ)ଇବା—ଦେ· (ପଦ୍ୟ) କ୍ରି—ରମିବା କ୍ରିୟାର ଣିଜନ୍ତ ରୂପ—
Ramā(me)ibā Causative of Ramibā.
ରମାନ [ଦ୍ର—ସବୁ ସୁଖ ତେଜି ମନ ରମାଇଲେ କାହିଁ । ପ୍ରାଚୀ.
ରମନା ବିହଙ୍ଗମଣ୍ଡଳୀ । ]

ରମା କାନ୍ତ—ସଂ. ବି(୬ଷ୍ଠୀ ତତ୍)—ବିଷ୍ଣୁ—Bishṇu. ଦେ. ବି. ପୁଂ—
Ramā kānta ଲୋକଙ୍କ ନାମ—A name given to
(ରମାଧବ, ରମାନାଥ, ରମାପତି, ରମାସୁନ୍ଦର, ରମାପ୍ରିୟ, males.
ରମାବଲ୍ଲଭ—ଅନ୍ୟରୂପ

ରମାନା—ବୈଦେ. ବି (ଫା. ରୱାନା)—ରବାନା (ଦେଖ)
Ramānā Ravānā. See)

ରମାନା ହେବା—ଦେ. କ୍ରି—ରବାନା ହେବା (ଦେଖ)—Ravānā
Ramānā hebā hebā. (See) (ଦ୍ର—ବନ୍ଦା ଖଡ୍ଗେଦମ୍ ଭିତୁ ସ୍ଥାନକୁ ରମାନା ହୋଇ × × × × । ଫକୀରମୋହନ ଛମାଣ ଆଠଗୁଣ ।)

ରମା ବାଈ—ଦେ. ବି—ପଣ୍ଡିତା ରମାବାଈ; ଦକ୍ଷିଣଭାରତର ସ୍ୱର୍ଗତା ପ୍ରସିଦ୍ଧା
Ramā bāī ବିଦୁଷୀ—Name of a late learned lady of

ବମାବାଈ Bombay. [ଦ୍ର—ଏ ସଂସ୍କୃତ, ଇଂରାଜୀ ଓ ଅନ୍ୟାନ୍ୟ
ରମାବାଈ ଅନେକ ଭାଷାରେ ପଣ୍ଡିତା ଥିଲେ । କଲିକତାର ପଣ୍ଡିତମାନେ ଏହାଙ୍କର ବିଦ୍ବତ୍ତାରେ ମୁଗ୍ଧ ହୋଇ ଏହାଙ୍କୁ ସରସ୍ୱତୀ ଉପାଧି ଦେଇଥିଲେ । ଏ ଚଟ୍ଟଗ୍ରାମର ଜଣେ ବଙ୍ଗୀୟଙ୍କୁ ବିବାହ କରିଥିଲେ, କିନ୍ତୁ ଅଳ୍ପ ଦିନ ପରେ ସ୍ୱାମୀଙ୍କ ମୃତ୍ୟୁ ଘଟିଲା । ଆର୍ଯ୍ୟ ସ୍ତ୍ରୀ ଓ ବିଧବାମାନଙ୍କର ଶିକ୍ଷା, ବ୍ରହ୍ମଚର୍ଯ୍ୟ ଓ ଉନ୍ନତି କଲ୍ପେ ଏ ଭାରତରେ, ଇଂଲଣ୍ଡରେ ଓ ଆମେରିକାରେ ବହୁ ଚେଷ୍ଟା କରି ଅବଶେଷରେ ବମ୍ବେଠାରେ (ପରେ ପୁନାକୁ ସ୍ଥାନାନ୍ତରିତ) ଗୋଟିଏ ବିଧବାଶ୍ରମ ସ୍ଥାପନ କରିଥିଲେ । ଏ ଇଂଲଣ୍ଡରେ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହୋଇଥିଲେ । 'The high caste Hindu woman' ନାମକ ଖଣ୍ଡିଏ ଗ୍ରନ୍ଥ ଏ ଇଂରାଜୀଭାଷାରେ ପ୍ରଣୟନ କରିଥିଲେ ।]

ରମାବି(ବେ)ଷ୍ଟ—ସ. ବି.—ଶ୍ରୀବାସ; ଶ୍ରୀବେଷ୍ଟ, ଗନ୍ଧ ବିରଜା; ତାର୍ପିନ—Ramabi(be)shta Turpentine; Gomeopal Sandazack. (ଦ୍ରବ୍ୟଗୁଣ)

ରମାରମି—ଦେ. ବିଣ.—ହାରାହାରି—On the average. [ଉ—Ramarami ଯନ୍ତ ପ୍ରତ୍ୟେକ ଜାହାଜରେ ରମାରମି ପନ୍ଦର ଜଣ ହାବାହାବୀ କର୍ମଚାରୀ ଧରାଯାଏ, ତେବେ ସେମାନଙ୍କ ସଂଖ୍ୟା ପ୍ରାୟ ଔସତ୍ ସେ ସାଢ଼େ ଚାରି ହଜାର । ଫକୀର ମୋହନ ଗଳ୍ପସ୍ୱଳ୍ପ ।]

ରମି (ଧାତୁ)—ସ. (ରମ୍ ଧାତୁ+ଣିଚ୍)—କ୍ରୀଡ଼ା କରାଇବା; Rami (root) · ଖେଳାଇବା—To cause to play.

ରମିତ—ସ. ବିଣ. ପୁଂ. (ରମି ଧାତୁ+କର୍ମ କ୍ତ)—୧ । କ୍ରୀଡ଼ିତ—Ramita 1. Made to play ୨ । ଆନନ୍ଦିତ—2. Pleased. ୩ । ସୁଖ ପ୍ରାପ୍ତ—3. Made happy. ୪ । ପ୍ରଫୁଲ୍ଲ—4. Delighted.
(ରମିତା—ସ୍ତ୍ରୀ.)

ରମିତା—ସ. ବିଣ. ସ୍ତ୍ରୀ—ଉପଭୁକ୍ତା (ସ୍ତ୍ରୀ); ରମଣ ପ୍ରାପିତା; ଯେଉଁ Ramita ସ୍ତ୍ରୀକୁ ରମଣ କରାଯାଇଅଛି—Deflowered; already enjoyed or cohabited (woman) ସ.ବି. ଉପଭୁକ୍ତା ସ୍ତ୍ରୀ—A woman who has already been cohabited by a man.

ରମିବା—ଦେ. (ପଦ୍ୟ) କ୍ରି. (ସ. ରମ୍ ଧାତୁ)—୧ । କ୍ରୀଡ଼ା Ramiba କରିବା—1. To play. [ଉ—ଗୋବିନ୍ଦ ବିଶ୍ୱବନ୍ଧୁ ବମା ମନେ, ଅଛ ରମିବା ବୃନ୍ଦାବନେ । ଜଗନ୍ନାଥ—ଭାଗବତ] ରମନା ୨ । ବିହାର କରିବା; ରମଣ କରିବା—2. To cohabit. [ଉ—ରମଣ ଭୁଲେ ନାରୀଗଣେ, ରମନ୍ତି ଶିବ ସ୍ତ୍ରୀମାନେ । ଜଗନ୍ନାଥ ଭାଗବତ] ୩ । ତୋଷ କରିବା—3. To please. [ଉ-ଶତ ପୁଷ୍ପ ବିକାଶଇ ବିଶ୍ୱପ୍ରାଣ ରମି, -ମଧୁସୂଦନ—ବସନ୍ତ ଗାଥା] ୪ । ରତ ହେବା—4. To be attached to. (ଉ—ଦରିଦ୍ର ଜନ କ୍ଲେଶ ପାଇ,ଇନ୍ଦ୍ରିୟ ଚୋରେ ନ ରମଇ । ଜଗନ୍ନାଥ ଭାଗବତ] ୫ । ସୁଖ ପାଇବା 5 To like. [ଉ-ବ୍ରହ୍ମା ଯେ ମୋହର ନନ୍ଦନ, ତାଙ୍କୁ ନ ରମେ ମୋର ମନ । ଜଗନ୍ନାଥ ଭାଗବତ] ୬। (ମନ, ଆଖି) ହରଣ କରିବା; ଆକର୍ଷଣ କରିବା—6. To attract [ଉ—ଅର୍ଦ୍ଧେନ୍ଦୁ ଲଲାଟେ ସିନ୍ଦୂର-ବିନ୍ଦୁ ରମଇ ଆଖି । ରାଧାନାଥ ଚନ୍ଦ୍ରଭାଗା] ୭ । ଲୀଳା କରିବା—7. To sport.

ରମେନ୍ଦ୍ର—ସଂ. ବି. (ଷଷ୍ଠୀତତ୍)—ରମା ରମଣ; ବିଷ୍ଣୁ—Bishnu. Ramendra (ରମେଶ, ରମେଶ୍ୱର—ଅନ୍ୟରୂପ)

ରମେଶଚନ୍ଦ୍ର ଦତ୍ତ—ଦେ. ବି. (ନାମ)—କଲିକତାର ବଶିଷ୍ଠ ଦତ୍ତ Ramesa chandra datta ବଂଶ ସମ୍ଭୂତ ପ୍ରସିଦ୍ଧ ସ୍ୱର୍ଗୀୟ ବ୍ୟକ୍ତି
ରମେଶଚନ୍ଦ୍ରଦତ୍ତ —The late R. C. Dutta, I. C. S., C. I.
ରମେଶଚନ୍ଦ୍ର ଦତ୍ତ E. of Bengal ଦ୍ର—(ଖ୍ରୀ୧୮୪୮—୧୯୦୯) ଏ ବିଲାତର ସିଭିଲ୍ ସର୍ଭିସ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଲେକ୍ଟର୍ ଓ ବିଭାଗୀୟ କମିଶନର୍ ପର୍ଯ୍ୟନ୍ତ ଉନ୍ନୀତ ହୋଇଥିଲେ । ଗଭର୍ଣ୍ଣମେଣ୍ଟ ଏହାଙ୍କୁ C. I. E ଉପାଧିରେ ଭୂଷିତ କରିଥିଲେ । ଏ ଜୀବନବ୍ୟାପୀ ବଙ୍ଗ ସାହିତ୍ୟର ସେବା କରୁଥିଲେ ଓ ଇଂରାଜୀରେ ପ୍ରାଚୀନ ଭାରତ ସଭ୍ୟତାର ଇତିହାସ (Ancient civilization of India),ରାମାୟଣ ଓ ମହାଭାରତର ଇଂରାଜୀ ପଦ୍ୟାନୁବାଦ, ବ୍ରିଟିଶ ଶାସିତ ଭାରତର ବୈଷୟିକ ଇତିହାସ (Economical History of India) ଓ ଇଂରାଜୀ ଉପନ୍ୟାସ ରଚନା କରିଥିଲେ । ଏ ବଙ୍ଗ ଭାଷାରେ ମଧ୍ୟ ଅନେକ ଗୁଡ଼ିଏ ଉପନ୍ୟାସ ରଚନା କରିଥିଲେ । ଏ ପେନ୍‌ସନ୍ ଗ୍ରହଣ କରି ଇଂରାଜୀ ସରକାରଙ୍କ ରାଜସ୍ୱ ନୀତିର ପ୍ରତିବାଦ କରି ଖଣ୍ଡିଏ ପୁସ୍ତକ ରଚନା କରିଥିଲେ । ପରିଶେଷରେ ବରୋଦାର ଗାଇକବାଡ଼ ମହାରାଜ ଏହାଙ୍କୁ ପ୍ରଧାନ ମନ୍ତ୍ରୀରୂପେ ଗ୍ରହଣ କରିବାର କିଛିଦିନ ପରେ ଏହାଙ୍କର ମୃତ୍ୟୁ ଘଟିଥିଲା ।]

ରମେଶଚନ୍ଦ୍ର ମିତ୍ର—ଦେ. ବି. (ନାମ)— ସର୍ ରମେଶଚନ୍ଦ୍ର ମିତ୍ର—Ramesa chandra mitra Sir Romesh Mitter
ରମେଶଚନ୍ଦ୍ରମିତ୍ର K. C. I. E. [ଦ୍ର—(ଖ୍ରୀ ୧୮୪୦—୧୮୯୯) ଏ
ରମେଶଚନ୍ଦ୍ରମିତ୍ର ପ୍ରଥମେ ଓକାଲତି କରି ପରେ କଲିକତା ହାଇକୋର୍ଟର ଜଜ୍ ଓ ମଝିରେ କିଛିକାଳ ପ୍ରଧାନ ଜଜ୍ ହୋଇଥିଲେ । ବଙ୍ଗାଳୀମାନଙ୍କ ମଧ୍ୟରେ ଏ ହାଇକୋର୍ଟର ପ୍ରଥମ ଚିଫ୍ ଜଷ୍ଟିସ୍ ସମ୍ମାନ ଲାଭ କରିଥିଲେ । ଗଭର୍ଣ୍ଣମେଣ୍ଟ ଏହାଙ୍କୁ ସର୍ ଓ K. C. I. E. ଉପାଧିରେ ଭୂଷିତ କରିଥିଲେ ।]

ରମ୍ପରମ୍ପ—ଦେ. ଅ.—ରପ୍ ରପ୍ (ଦେଖ)
Rampa rampa Rap rap (See)

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇୟ | ଉଅ | ହ୍ଣ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗିଁ୍ୟ | ଇଅ | ଡ଼ | ନ୍ନ |

**ରମ୍ପା**—ଦେ. ବି.—ରମ୍ପିବା କର୍ମ—The act of scratching.
Rampā ବିଣ-କୁଣ୍ଡାଇ ହେଉଥିବା--Itching. ପ୍ରାଦେ(ସମ୍ବଲପୁର)
ଆଁଚଡ଼ାନ ଚুলকুনি খুরচনা ବି—୧ । କାଙ୍ଗ; ମାଟି ହାଣିବା
କୁରାଢ଼ି—1. An axe or long-handled spade to cut earth. ୨ । ଅସମତଳ ବିଲର ଖାଲକୁ ଢିପରୁ ମାଟି ଟାଣି ନେଇ ତାହାକୁ ସମତଳ କରିବା ପାଇଁ ବ୍ୟବହୃତ ମହିଷ-ବାହ୍ୟ ପଟାମଇ—2. A kind of plank drawn by buffaloes and used to level up uneven fields by drawing earth from high places and putting it in low places.

**ରମ୍ପା(ମ୍ପେ)ଇବା**—ଦେ. କ୍ରି—ରମ୍ପିବା କ୍ରିୟାର ଣିଜନ୍ତରୂପ—Causa-
Rampā(mpe)iba tive of Rāmpibā.
আঁচড়ান খুরচানা; খুরচবানা

**ରମ୍ପା କୁଣ୍ଡିଆ**—ଦେ.ବି.—ଏକପ୍ରକାର ଶୁଖିଲା କୁଣ୍ଡିଆ—A kind of
Rampā kundiā dry itches; scabies. [ ଦ୍ର—ଏହା
চুলকুনি সুখীখুজলী ବିଶେଷ କୁଣ୍ଡାଇ ହୁଏ ।]

**ରମ୍ପାଲୁ**—ଦେ. ବି—ଚମାରମାନଙ୍କର ଓ ବଢ଼େଇ ମାନଙ୍କର କାଠ ଆଦି ଉପରୁ
Rampālu ରଙ୍ଗ ଚାଞ୍ଛିବାର ପତଳା ଲୁହାପତ୍ର—A thin
খুরচন(নী) metal scraper.

**ରମ୍ଫା**—ପ୍ରାଦେ (ସମ୍ବଲପୁର) ବି. (ତୁଳ• ହି. ଏହି ଅର୍ଥରେ ଏହି. ଶବ୍ଦ)
Ramphā (ଯହିଁରେ ଭୂମି ରମ୍ପାଯାଏ) କୋଡ଼ି—Spade.

**ରମ୍ବଏଡ଼**—ବୈଦେ. ବି. (ଇଂ. ରମ୍‌ବଏଡ୍ — କ୍ଷେତ୍ର ତତ୍ତ୍ୱ) ଯେଉଁ
Rambaed ସମାନ୍ତରିକ ଚତୁର୍ଭୁଜ କ୍ଷେତ୍ରର ପରସ୍ପର ସମ୍ମୁଖବର୍ତ୍ତୀ
(ରମ୍ବୋଇଡ୍—ଅନ୍ୟରୂପ) ବାହୁମାନ ସମାନ ଓ କୋଣମାନ ସମାନ, କିନ୍ତୁ
বম্বএড রংবঘড କୋଣମାନ ସମକୋଣ ନୁହେଁ ଓ ପରସ୍ପର ପାର୍ଶ୍ୱସ୍ଥ ବାହୁ ଦ୍ୱୟ ସମାନ ନୁହେଁ--Rhomboid; an oblique-angled parallelogram having its two adjoining sides unequal.

**ରମ୍ବସ୍**—ବୈଦେ. ବି. (ଇଂ.ରମ୍‌ବସ୍)—(କ୍ଷେତ୍ର ତତ୍ତ୍ୱ) ଯେଉଁ ସମାନ୍ତରିକ
Rambas ଚତୁର୍ଭୁଜ କ୍ଷେତ୍ରର ସମସ୍ତ ବାହୁମାନ ସମାନ କିନ୍ତୁ
বম্বস রংবস କୋଣମାନ ସମକୋଣ ନୁହେଁ—Rhombus; an equilateral parallelogram.

**ରମ୍ଭ**—ସଂ. ବି (ରଭ୍ ଧାତୁ+କର୍ତ୍ତୃ. ଅ)—୧ । ମହିଷାସୁରର ପିତା—
Rambha 1. Name of the father of the demon Mahishāsura ୨ । ବାନର ବିଶେଷ—2. Name of a monkey. ୩ । ବେଣୁ; ବାଉଁଶ—3. Bamboo.

**ରମ୍ଭକ**—ସଂ ବିଣ. ପୁଂ (ରଭ୍ ଧାତୁ+କର୍ତ୍ତୃ. ଅକ)—୧ । ଶବ୍ଦକାରୀ—
Rambhaka 1. Sounding. ୨ । ଆରମ୍ଭକାରୀ—
(ରମ୍ଭିକା—ସ୍ତ୍ରୀ) 2. Beginning.

**ରମ୍ଭା**—ସଂ.ବି (ରଭ୍ ଧାତୁ+ଅ+କର୍ତ୍ତୃ.ଆ)-କଦଳୀ—1, Plantain;
Rambhā banana, ୨ । ଅପ୍ସରା ବିଶେଷ—2. Name of a heavenly nymph. (ଉ—(୧+୨) ଉର୍ବଶୀ ନାଚେ ରମ୍ଭା ଶୁକାଳାପେ ମତ୍ତ—ଗୋଲୋକ-ଇନ୍ଦୁରେଖା ।] [ଦ୍ର—ଏକଦା ରମ୍ଭା କୁବେର ତନୟ ନଳକୁବରଙ୍କ ନିକଟ ଗମନ କରୁଥିବା ଅବସ୍ଥାରେ ଲଙ୍କେଶ୍ୱର ରାବଣ ବାଟରେ ତାହାକୁ ବଳପୂର୍ବକ ଧରି ଧର୍ଷଣ କଲେ । ପରେ ରମ୍ଭା ଏ ବିଷୟ ନଳକୁବରଙ୍କୁ ଜଣାଇବାରୁ ନଳକୁବର ଅଭିଶାପ ଦେଲେ ଯେ ଅତଃପର ରାବଣ କୌଣସି ସ୍ତ୍ରୀକୁ ତାହା ଇଚ୍ଛା· ବିରୁଦ୍ଧରେ ରମଣ କରି ପାରିବେ ନାହିଁ ଓ କଲେ ତତ୍‌କ୍ଷଣାତ୍ ପଞ୍ଚତ୍ୱ ପ୍ରାପ୍ତ ହେବେ । ଏହି କାରଣରୁ ସୀତାଙ୍କୁ ରାବଣ ବଳପୂର୍ବକ ହରଣ କରି ନେଇଥିଲେ ମଧ୍ୟ ସୀତା ରାବଣ-ହସ୍ତରୁ ଆପଣାର ସତୀତ୍ୱ ରକ୍ଷା କରିବାକୁ ସମର୍ଥା ହୋଇଥିଲେ ।

ମହାଦେବଙ୍କଠାରୁ ବ୍ରହ୍ମା ସଙ୍ଗୀତ ବିଦ୍ୟା ପ୍ରାପ୍ତ ହୋଇ ତାହା ପ୍ରଥମେ ଯେଉଁ ପାଞ୍ଚ ଜଣଙ୍କୁ ଶିକ୍ଷା ଦେଇଥିଲେ ତହିଁ ମଧ୍ୟରୁ ରମ୍ଭା ଜଣେ ବୋଲି ପୁରାଣରେ କଥିତ ।] ୩ । ଗୌରୀ; ଦେବୀ ବିଶେଷ—3. Name of a Goddess. ୪ । ଗୋଧ୍ୱନି; ହମ୍ବାରବ—4. The lowing of a cow, ୫ । ବେଶ୍ୟା; ବାରାଙ୍ଗନା—5. Prostitute. ୬ । ଉତ୍ତର ଦିଗ—6 The north, ଦେ. ବିଣ—
যে গাছ আপনা আপনি উঠেছে ଯେଉଁ ଗଛ ମନୁଷ୍ୟ ମଞ୍ଜି ପକା
आपसे आप जमनेवाला ବିନା ଯତ୍ନରେ ଉଠିଥାଏ—(a plant) Growing without man's sowing (ଯଥା—ରମ୍ଭା କଖାରୁ ଗଛ; ରମ୍ଭା ଲାଉ ଗଛ)
ଦେ. ବି—୧ । ଚିଲିକା ହ୍ରଦକୂଳସ୍ଥ ଗଞ୍ଜାମ ଜିଲ୍ଲାର ଗୋଟିଏ ବଡ଼ଗ୍ରାମ ଓ ରେଲଷ୍ଟେଶନ୍—1. Rambhā, a small town on the Lake Chilka in the Ganjam district. [ ଦ୍ର—ଏଠାରେ ଖଲ୍ଲିକୋଟ ରାଜାଙ୍କ ଗ୍ରୀଷ୍ମ ନିବାସ ପ୍ରାସାଦ ଅଛି । ପୂର୍ବେ ଏହା ଚିଲିକାର ଗୋଟିଏ ବନ୍ଦର ଥିଲା । ] ୨ । ଗଞ୍ଜାମର ପ୍ରସିଦ୍ଧ ପର୍ବତ—2. A famous mountain in the Ganjam district. [ ଉ—ସୌର କରେ ଭାସି ମାଲ ରମ୍ଭା ନାସୀ । ରାଧାନାଥ. ଚିଲିକା । ] ୩ । ସ୍ତ୍ରୀଲୋକଙ୍କ ନାମ—3. A name given to females.

**ରମ୍ଭା ଊରୁ**—ଦେ. ବିଣ. ସ୍ତ୍ରୀ (ପଦ୍ୟରେ ବ୍ୟବହୃତ) (ସଂ. ରମ୍ଭୋରୁ)—
Rambhā uru ରମ୍ଭୋରୁ ( ଦେଖ )—
Rambhoru ( See )

ରମ୍ଭା ଊରୁବଶୀ—ଦେ. ବ (ସ. ରମ୍ଭା ଓ ଊର୍ବଶୀ)—(ପଦ୍ୟରେ Rambhāurubaśi ବ୍ୟବହୃତ) ରମ୍ଭା ଓ ଊର୍ବଶୀ ନାମ୍ନୀ ଅପ୍ସରାଦ୍ୱୟ—The two heavenly nymphs, Rambhā and urbaśi. [ ଉ—ରମ୍ଭାଊରୁ ବସି —ପାଶେ ଥିଲେ ନ ଗଣେ ମୁଁ ରମ୍ଭାଊରୁବଶୀ— ସଙ୍ଗୀତ । ]

ରମ୍ଭା ଗଛ—ଦେ. ବ—ମଞ୍ଜିରୁ ଉଠିଥିବା ଗଛ—A tree growing Rambhā gachha from a seed which has not been sown. যেগাছ অপনাআপনি উঠেছে আপসেআপ জমনেবালা পৌধা

ରମ୍ଭା ତୃତୀୟା—ସ. ବ—ମାଘ (ମତାନ୍ତରରେ ମାର୍ଗଶିର ବା ଜ୍ୟୈଷ୍ଠ) Rambhā trutiyā ଶୁକ୍ଳ ତୃତୀୟା—The 3rd day of the bright fortnight of the month of Māgha (according to some, Mārgaśira or Jyaishtha).

ରମ୍ଭା ଫଳ—ସ. ବ—କଦଳୀ ଫଳ— Rambhā phala Plantain fruit.

ରମ୍ଭା ବକଳ—ଦେ. ବ (ସ. ରମ୍ଭା+ବଲ୍କଳ)—କଦଳୀ ବାସୁଙ୍ଗା— Rambhā bakala The bark of the plantain tree. কলাবাসনা केलाका बकला

ରମ୍ଭୋରୁ—ସ. ବିଣ (ରମ୍ଭା+ଊରୁ; ରମ୍ଭା=କଦଳୀ ଗଛ ପରି ଊରୁ Rambhoru ଯାହାର; ବହୁବ୍ରୀହି)—ରମ୍ଭା ବୃକ୍ଷ ପରି ଘନ-ଜଘନା; ବର୍ତ୍ତୁଳ ଜଘନା—(a woman) Having thighs round like the trunk of a plantain tree. ସ. ବ. ସ୍ତ୍ରୀ—ଘନଜଘନା ସ୍ତ୍ରୀ— A woman having well developed thighs. [ ଦ୍ର—କଦଳୀ ଗଛର ଗୋଡ଼ାର ମୂଳପାଖ ମୋଟ ଓ ଉପର ପାଖ ସରୁ, କିନ୍ତୁ ସ୍ତ୍ରୀଜଘନର ଉପରପାଖ ମୋଟ ଓ ନିମ୍ନପାଖ ସରୁ । ଏଥିପାଇଁ ଓଡ଼ିଆ କବିମାନେ 'ରମ୍ଭୋରୁ' ନ କହି 'ଓଲଟ ରମ୍ଭାପରି ଊରୁ ଯାହାର' ବୋଲି ଉପମାଟିକୁ ସ୍ପଷ୍ଟରେ କରି ଦେଇଅଛନ୍ତି । ]

ରମ୍ୟ—ସ. ବିଣ (ରମ୍ ଧାତୁ+କରଣ ଯ)—୧ । ରମଣୀୟ; ସୁନ୍ଦର; Ramya ମନୋହର—1. Charming. beautiful; (ରମ୍ୟା—ସ୍ତ୍ରୀ) agreeable; pleasing. ୨ । ବଳକର— 2. Strength-giving. ୩ । ପୁରୁଷତ୍ୱପ୍ରଦ— 3. Giving potency or virility. ସ. ବ— ୧ । ଚମ୍ପକ—1. The Champaka tree; Michelia Champak). ୨ । ବକ ବା ଅଗସ୍ତିଗଛ—2. A tree; Sesbania Grandiflora. ୩ । ପଟୋଳ-ମୂଳ—3. The root or tubers of the Patola creeper. ୪ । ଶୁକ୍ର—4. Semen; the semen virile.

ରମ୍ୟକ—ସ. ବ (ରମ୍ୟ+କ)—ଜମ୍ବୁଦ୍ୱୀପାନ୍ତର୍ଗତ ନବବର୍ଷ ମଧ୍ୟରୁ Ramyaka ଗୋଟିଏ ବର୍ଷ ବା ଦେଶ ବିଶେଷ—Name of a tract in the mythological island of Jambu (in which India was included). [ ଦ୍ର—ଏହା ମେରୁର ଉତ୍ତରରେ ଅବସ୍ଥିତ । ଏହା ଇଳାବୃତ୍ତ ବର୍ଷର ଉତ୍ତରରେ । ରମ୍ୟକ ବର୍ଷର ମଧ୍ୟସ୍ଥଳରେ ସୁମେରୁ । ଇଳାବୃତ୍ତର ଉତ୍ତରରେ ଥିବା ନୀଳ ପର୍ବତର ଉତ୍ତରରେ ରମ୍ୟକ ବର୍ଷ । ଏଠାରେ ଗରୁଡ଼ ବାସ କରୁଥିବା କଥା ପୁରାଣରେ ଅଛି । ] ୨ । (ବୈଦ୍ୟକ) ପଟୋଳ ମୂଳ—2. The root or tubers of Patola creeper. ୩ । ମହାନିମ୍ବ; ଘୋଡ଼ାଲିମ୍ବ ଗଛ —3. A tree, Melia Azadarachta.

ରମ୍ୟତା(ତ୍ୱ)—ସ. ବ.—୧ । ରମଣୀୟତ୍ୱ—1. Agreeableness. Ramyatā(twa) ୨ । ମାଧୁର୍ଯ୍ୟ—2. Gracefulness; sweetness. ୩ । ସୌନ୍ଦର୍ଯ୍ୟ—3. Beauty.

ରମ୍ୟ ପୁଷ୍ପ—ସ. ବ. (ରମ୍ୟ ଅଟେ ପୁଷ୍ପ ଯାହାର; ବହୁବ୍ରୀହି)—ଶାଲ୍ମଳୀ; Ramya pushpa ଶିମିଳି ଗଛ—The silk-cotton tree.

ରମ୍ୟ ଫଳ—ସ. ବ. (ବହୁବ୍ରୀହି)—କାଚସ୍ପର ବୃକ୍ଷ; କୋଚିଲାବୃକ୍ଷ— Ramya phala A kind of medicinal tree, Strychnos Nuxvomica tree; poison-nut tree.

ରମ୍ୟ ମୁଖ—ସଂ.ବିଣ. ପୁଂ (ବହୁବ୍ରୀହି)- ସୁନ୍ଦର ମୁଖ ଯୁକ୍ତ--Having Ramya mukha [ରମ୍ୟମୁଖା(ଖୀ)—ସ୍ତ୍ରୀ]a beautiful face.

ରମ୍ୟା—ସଂ. ବିଣ. ସ୍ତ୍ରୀ—ସୌନ୍ଦର୍ଯ୍ୟଯୁକ୍ତା; ରମଣୀୟା; ସୁନ୍ଦରୀ— Ramyā Graceful; charming. ସଂ. ବ.—୧ । ରାତ୍ରି. ରଜନୀ—1. The night. ୨ । ସ୍ଥଳପଦ୍ମ; ସ୍ଥଳ-କମଳ—2. A flower; Jonidinam Suffruticosum. ୩ । ନଦୀ ବିଶେଷ—3 Name of a river.

ରମ୍ର—ସଂ.ବ. (ରମ୍ ଧାତୁ+କର୍ତ୍ତୃ.ର)—୧ । ଅରୁଣ ବର୍ଣ୍ଣ—1. The Ramra colour of the dawn; ruddy colour. ୨ । ଶୋଭା—2. Beauty.

ରୟ (ଧାତୁ)—ସଂ.—୧ । ଗମନ କରିବା—1. To go. ୨ । ଗତି Raya (root) କରିବା—2. To move.

ରୟ—ସ.ବ. (ରୟ ଧାତୁ+ଭାବ.ଅ)—୧। ବେଗ—1. Velocity. Raya ୨ । ଦ୍ରୁତତା—2 Fleetness; swiftness. ୩ । ପ୍ରବାହ; ସ୍ରୋତ; ଜଳଧାର—3. A stream of water; current.

ରୟଣୀ—ଦେ. ବ. (ପ୍ରାଚୀନ ଓଡ଼ିଆ ସ. ରଜନୀ; ପ୍ରା. ରଅଣୀ)—୧ । Rayaṇi ରଜନୀ;ରାତ୍ରି—1. The night. [ଉ—ସମ୍ପୂର୍ଣ୍ଣ ରୟଣୀ ବୟନା(ନୀ) रहनी अथ ହୋଇଲେକ କିଶି । ପ୍ରାଚୀ—ରଦ୍ୟମଞ୍ଜରୀ ।] रहन विश्राम ୨ । ରହଣି; ରହିବା—2. Resting; stopping. ୩ । ବିଶ୍ରାମ—3. Rest. ୪ । ବିଶ୍ରାମ ସ୍ଥାନ; ଆଶ୍ରୟ— 4. Shelter; a place for resting. ୫ । ଅବକାଶ; ଅବସର—5. Leisure.

**ରୟୃତ୍**—ବୈଦେ. ବି.—ରଇତ (ଦେଖ)—Raita (See)
Rayat

**ରୟତି**—ବୈଦେ. ବି.—ରଇତି (ଦେଖ)—Raiti (See).
Rayati

**ରୟାଟୀ**—ସଂ. ବି. (ରୟ୍+ଅଟ ଧାତୁ+କର୍ତ୍ତୃ.ଈ)—ଲଲାଟ—Brow.
Rayāṭī

**ରୟାଲ୍‌ଟି**—ବୈଦେ ବି. (ଇଂ.)—କୌଣସି ପଦାର୍ଥର ବ୍ୟବସାୟ
Rayāl-ṭi ସ୍ୱତ୍ୱାଧିକାରୀ ବା ଲେଖକଙ୍କୁ ଯେଉଁ ମାଲିକାନା
ରয়ালটি **रॉयल्टी** ଦିଆଯାଏ—Royalty.

**ରୟିଷ୍ଠ**—ସଂ.ବଣ. (ରୟ୍+ଅତିଶୟାର୍ଥେ ଇଷ୍ଠ)—ଅତି ଦ୍ରୁତ—Very.
Rayishṭa fleet or swift.
(ରୟିଷ୍ଠା—ସ୍ତ୍ରୀ) ସ. ବି—୧।କୁବେର—1. The God of wealth.
Rayishṭā ୨। ବ୍ରହ୍ମା—2. Brahmā, the Creator. ୩।
ଅଗ୍ନି; ଅନଳ—3. Fire

**ରରାଟ(ଟୀ)**—ସଂ. ବି.—ଲଲାଟ—Brow; forehead.
Rarāṭa(ṭī)

**ରଲା**—ପ୍ରାଦେ. (ଭଡ଼ି ଭାଷା). କ୍ରି—('ସ୍ଥା' ଧାତୁର ଅତୀତକାଳର ଅର୍ଥ)
Ralā ଥିଲା—Was.

**ରଲି(ଲ୍ଲି)**—ଦେ. ବି. (ସଂ. ରଲ୍ଲକ)—ଅକ୍ଷିବାଳ; ଅକ୍ଷି ପତାର କେଶ—
Rali(lli) চোখেরপাতাবচুল **बरौनी** Eye-lash.

**ରଲ୍ଲକ**—ସଂ.ବି. [ରମ୍ ଧାତୁ=ହୃଷ୍ଟ ହେବା,କ୍ରୀଡ଼ା କରିବା+କର୍ତ୍ତୃ ଵ୍ୟୁ;
Rallaka ରମ୍=ଆନନ୍ଦ; ରମ୍+ଲାଧାତୁ=ଦେବା, ଗ୍ରହଣ
କରିବା+କର୍ତ୍ତୃ. ଅକ, ଯାହା ଆନନ୍ଦ ଦିଏ]—୧।କମ୍ବଳ—
1. Blanket. ୨। ମୃଗ ବିଶେଷ—2. A species
of deer. ୩। ଅକ୍ଷିପତାର ଲୋମ—3. Eye-lash.
୪। ପଦ୍ମ—4. Lotus.

**ରଶ୍(ଧାତୁ)**—ସଂ.—ଶବ୍ଦ କରିବା—To make a sound.
Rāś(root)

**ରଶମଶ**—ଦେ. ଅ—୧। ଛୋଟ ଡାଳ ଭାଙ୍ଗିବାର ଅନୁଚ୍ଚ ଶବ୍ଦ—
Raś-maś 1. Low cracking sound of the break-
মস্‌মস্ **चुरचुर, खुरखुर** ing of small twigs.
୨। ପତ୍ରର ଅବା ଉପରେ ଚାଲିବା ଶବ୍ଦ—2. Low
rustling sound. ୩। କଣ୍‌ମଶ; ଜ୍ୱର ହେବା ପୂର୍ବରୁ
ଦେହ ଭାଙ୍ଗମୋଡ଼ ହେବା—3. Languidity
and twisting of limbs before an attack
কসমস **टुटना** of fever. ୪। ଜ୍ୱର ଜ୍ୱର ବୋଧ ହେବା—
4. Feeling feverish. ୫। ରଶ୍‌ରଶ୍ (ଦେଖ)—
5. Raś-raś (See)

**ରଶମସିଆ**—ଦେ. ବଣ—ଅସୁସ୍ଥତା ବୋଧହେଉଥିବା (ଶରୀର)—
Raś-masiā Sickly; feverish.
কসমস **आलस**

**ରଶରଶ**—ଦେ. ଅ (ଧ୍ୱନ୍ୟନୁକରଣ)—୧। ଜୋତାର ବା ଲୁଗାର ଶବ୍ଦ
Raś-raś ହେଉଥିବାପ୍ରକାରେ; ଚଞ୍ଚଳ ଚାଲିବା ପ୍ରକାରେ—
মটমট মচমচ **चमचम** 1. Mode of walking brisk
(ରଶରଶ—ଅନ୍ୟରୂପ ) ly; by making a rustling
কচকচ **कचरकचर** sound with the shoes or
clothes. ୨। କାକୁଡ଼ି ଆଦି ଚୋବାଇବାପ୍ରକାରେ—
2. Like chewing cucumbers. ୩। ଚାପୁଡ଼ା
ମାରିବାର ଶବ୍ଦ—3. Cracking sound of slaps.
(ଯଥା—ସେ ତାକୁ ରଶରଶ ଦୁଇଟା ଚାପୁଡ଼ା ମାରିଦେଲା ।)
୪। କହିଁ କହିଁ ହୋଇ କାନ୍ଦିବାପ୍ରକାରେ—4. Sobb-
ingly. (ଉ—ଦେଖି ସପତ୍ନୀଙ୍କ ହସ, ପୁଣି କାନ୍ଦଇ
ରସରସ—ଭୂପତି. ପ୍ରେମପଞ୍ଚାମୃତ ।)

**ରଶରଶିଆ**—ଦେ. ବଣ—ରଶ୍‌ରଶ୍‌ଶବ୍ଦକାରୀ—
Raś-rasiā Making rustling sound.
মটমটে মচমচে **कचकचिया**

**ରଶ(ଶେ)ଦ୍**—ବୈଦେ. ବି (ଫା. ରସଦ୍)—୧। ହାକିମମାନେ ମଫସଲକୁ
Raśa(śe)d ଗଲେ ଜମିଦାରମାନଙ୍କର ସେମାନଙ୍କୁ ଯୋଗାଇବା
(ଗଞ୍ଜାମ—ସପ୍ଲେଇ) ଦୈନିକ ଅପକ୍ୱ ଭୋଜ୍ୟବସ୍ତୁ ବା ବ୍ୟବହାର୍ଯ୍ୟ
রসদ **रसद्** ସରଞ୍ଜାମ—1. Supply of victuals;
victuals and other daily necessaries
supplied to public servants while tour-
ing in moffasal. ୨। ପଲଟଣମାନଙ୍କୁ ଯୋଗାଯିବା
ଖାଦ୍ୟାଦି—2. Supplies for an army. [ଦ୍ର—
ହାକିମମାନେ ମଫସଲକୁ ଗସ୍ତରେ ବାହାରିବା ପୂର୍ବରୁ ଓ
ପୂର୍ବେ ସୈନ୍ୟମାନେ ସ୍ଥାନାନ୍ତରକୁ ବାହାରିବା ପୂର୍ବରୁ
ସେମାନେ ଯାଇଁ ଯେଉଁଠାରେ ମୁକାମ କରିବେ ସେହି
ସ୍ଥାନର ଜମିଦାରମାନେ ଉଚିତ ମୂଲ୍ୟ ନେଇ ସେମାନଙ୍କ
ପାଇଁ ଆବଶ୍ୟକ ଚାଉଳ, ଡାଲି, କାଠ, ଖାସୀ, କୁକୁଡ଼ି,
ଅଣ୍ଡା, ହାଣ୍ଡି, ଦାନା ଓ ଘାସବିଚାଲି (ଅବଶ୍ୟ ହାକିମଙ୍କପାଇଁ
ନୁହେ, ହାକିମଙ୍କର ଗଧ ଓ ଘୋଡ଼ାଙ୍କ ପାଇଁ) ଯୋଗାଇ-
ବାପାଇଁ ପୂର୍ବରୁ ଘରୁଥିଲା କରାଯାଏ । ଏବେ ରେଳ ଆଦି
ହେବାରୁ ରଶଦ୍ ପ୍ରଥା କମି ଯାଉଅଛି । ଏ ପ୍ରଥାଦ୍ୱାରା
ସମୟେ ସମୟେ ଲୋକଙ୍କ ଉପରେ ନାନା ଜୁଲମ ହେଉଥିଲା ।
ଏ ପ୍ରଥା ବର୍ତ୍ତମାନ ଅନ୍ଧାର ମୁଲକରେ ଅଛି ।] ୩। ରଶିଦ୍
(ଦେଖ). 3. Raśid (See).

**ରଶଦ୍‌ଖାନା**—ବୈଦେ.ବି(ଫା)—ଯେଉଁ ସ୍ଥାନରେ ହାକିମ ବା ସୈନ୍ୟଙ୍କ
Raśad khānā ପାଇଁ ସଂଗୃହୀତ ମାଲମାନ ରଖା ଯାଇଥାଏ
রসদখানা **रसदखाना** A place where the supplies
required for an army or an officer on
tour are stored.

**ରଶଦ୍‌ଜମା**—ବୈଦେ. ବି (ଫା. ଜମିଦାରୀ ସିରସ୍ତା) କ୍ରମଶଃ ବୃଦ୍ଧିକରାଯିବା
Raśad-jamā ଜମିର ଖଜଣା—Gradually increasing
রসদজমা **रसद्‌जमा** rent or revenue.

**ରଷଦ୍ ଦେବା**—ଦେ. କ୍ରି (କଚରଖା)—ହାକମ ଓ ସେନାଅନ୍ଦଙ୍କୁ
Rasad deba ଅବଶ୍ୟକ ଭୋଜ୍ୟଦ୍ରବ୍ୟାଦ ଯୋଗାଇଦେବା—
ବଶଦଯୋଗାନ **रसददेना** To supply victuals and
[ରଷଦ୍ ଯୋଗା(ଗେ)ଇବା—ଅନ୍ୟରୂପ] forage to officers on tour and an army on march.

**ରଷଦ୍ ପର(ରୁ)ୱ୍(ଆ)ନା**—ବୈଦେ. ବ (କଚରଖା)—ଗସ୍ତରେ
Rasad para(ru)wa(a)na ଯିବା ହାକମଙ୍କୁ ଓ ସୈନ୍ୟଙ୍କୁ
(ରଷଦପରବାନା—ଅନ୍ୟରୂପ) ରଷଦ୍ ଯୋଗାଇବାପାଇଁ ଜମିଦାର
ରସଦପବୋୟାନା **रसदपरवाना** ଅନ୍ଦଙ୍କ ନକଟକୁ ଅଗରୁ ପଠାଯିବା
ହୁକୁମନାମା—Orders sent to Zamindars beforehand to supply necessaries to touring officers and to a marching army.

**ରଷଦ୍‌ବିଭାଗ**—ଦେ. ବ—ପଲଟଣଙ୍କୁ ଖାଦ୍ୟ ଯୋଗାଇବା ପାଇଁ ନିଯୁକ୍ତ
Rasad bibhaga କର୍ମଚାରୀଗଣ—The Supply Depart-
ବସଦବିଭାଗ **रसदविभाग** ment of an army.

**ରଶନ**—ଦେ. ବ (ସଂ. ରଶନା)—ରଶନା (ଦେଖ)—Rasana (See)
Rasana ରଶନା (ଦ୍ର—କଟୀରେ କଠୀ ରଶନ ଜଘନ
ପୀତବସନ ଘୋଷେ ଗଞ୍ଜେ ମଦନ ଗାରମା—ପ୍ରାଚୀ. ରସକାଲ୍ଲ ।)

**ରଶନା**—ସ. ବ (ରଶ୍ ଧାତୁ + କରଣ ଅନ + ଆ)—୧ । ଜିହ୍ବା;ଜିଭ—
Rasana 1. Tongue. ୨ । ସ୍ତ୍ରୀଙ୍କ କଟୀଭୂଷଣ; କାଞ୍ଚୀ;
ଗୋଠ ଓ ଚନ୍ଦ୍ରହାର ଇତ୍ୟାଦ—A woman's waist-chain or girdle. [ଦ୍ର—ସ୍ତ୍ରୀକଟୀ-
ଭୂଷଣଟର ଅଗେ ଘୁଙ୍ଗୁର ଲଗୁଥିଲା ଓ ଏହା ରୁଣୁଝୁଣୁ
ଶବ୍ଦ କରୁଥିବାରୁ ଏହି ନାମ ହୋଇଅଛି । ]

**ରଶନେନ୍ଦ୍ରିୟ**—ସ. ବ—ଜିଭ; ସ୍ବାଦିବାର ଇନ୍ଦ୍ରିୟ—Tongue;
Rasanendriya the organ of taste.

**ରଶଲ୍‌ଦାର୍**—ବୈଦେ. ବ (ଅ. ରସାଲା=ଅଶ୍ବାରୋହୀ ସେନା+ଫା.
Rasal-dar ଦାର୍=ନାୟକ)—ଅଶ୍ବାରୋହୀ ସେନାର ନାୟକ—
ବିସାଲଦାବ **रिसालदार** The captain or commander of a cavalry regiment.

**ରଶି(ଶୀ)**—ଦେ. ବ (ସ. ରଶ୍ମି, ଫା. ରସୀ)—୧ । ରଜ୍ଜୁ; ଦଉଡ଼ି—
Rasi(si) 1. Rope. ୨ । ୮୦ ହାତ ଲମ୍ବ ମାପଦଉଡ଼ି-
ବସୀ **रस्सी** 2. A measuring rope about forty yards long. ୩ । ୫୦ ହାତରୁ ୧୦୦ ହାତ ଦୂରତ୍ବ;
ଏକରଶି ଲମ୍ବା—3. A distance or length of 50 to 100 cubits.

**ରଶିଆ**—ବୈଦେ. ବ (ଇଂ. ରସିଆ)—ରୁଷିଆ ଦେଶ—
Rasia Russia (country).
ବସିୟା **रुस**

**ରଶିଆନ**—ବୈଦେ. ବଣ (ଇଂ. ରସିଅନ୍)—ରସିଆ ଦେଶ ସମ୍ବନ୍ଧୀୟ—
Rasian Russian.
ବସିୟାନ **रुस, रुसके**

**ରଶି(ସେ)ଦ(ଦ)**—ବୈ ଦେ. ବ (ଫା. ରସୀଦ୍; ଭୁଲ ଇଂ. ରସିଟ୍
Rasi(se)da(di) (riceipt) ଜନ୍ଯ ଏହା ଇଂରାଜ ରସିଟ୍ ଶବ୍ଦରୁ
ବସୌଦ ବାହାରି ନାହି)—୧ । ପାଉତି; ପ୍ରାପ୍ତିସ୍ବୀକାର ପତ୍ର—
**रसीद** 1. A receipt; acknowledgment; a document acknowledging receipt. ୨ । ମୁସଲମାନ-
ମାନଙ୍କ ନାମ ବିଶେଷ—2. A name amongst the Mahomedans.

**ରସିଦ ଗ୍ରହୀତା**—ଦେ.ବଣ (କଚରଖା)—ଯେଉଁ ଲୋକ ଧନ ଆଦ ଦେଇ
Rasid grahita ଗ୍ରାହକଠାରୁ ରସିଦ୍ ଗ୍ରହଣ କରେ—
ବସିଦଗ୍ରହିତା Grantee of a receipt; the acceptor
**रसिद पानेवाला** or receiver of a receipt.

**ରଶିଦ୍ ଦାତା**—ଦେ.ବଣ. (କଚରଖା)—ରସିଦ୍‌ଦ୍ବାରା ପ୍ରାପ୍ତିସ୍ବୀକାରକାରୀ—
Rasid data The grantor of a receipt.
ବସିଦଦାତା **रसिद देनेवाला**

**ରଶିଦ୍ ଦେବା**—ଦେ. କ୍ରି—କୌଣସି ଧନ ଆଦ ପାଇବା ପରେ ପ୍ରାପ୍ତି-
Rasid deba ସ୍ବୀକାର କରିବା—To grant a receipt;
ବସିଦ୍ ଦେଓୟା to acknowledge receipt. [ଦ୍ର—ଏହିପରି
**रसिद देना** ରସିଦ୍ ଗ୍ରହିବା, ନେବା, ମାଗିବା, ପାଇବା ଆଦ ହୁଏ । ]

**ରଶିଦ୍ ପୁସ୍ତକ**-ଦେ.ବ-୧ । ଯେଉଁ ବହିରେ ଗୁଡ଼ାଏ ମୁଦ୍ରିତ ରସିଦ୍ ଫାରମ
Rasid pustaka କା ମୁଣ୍ଡା ରସିଦ୍ ଥାଏ—1. A book of
(ରସିଦ୍‌ବହି[ଇ]—ଅନ୍ୟରୂପ) receipts, receipt book.
ବସିଦବଈ ୨ । ଯେଉଁ ପୁସ୍ତକରେ ପ୍ରାପ୍ତିସ୍ବୀକାରମାନ ଲିପିବଦ୍ଧ ହୁଏ—
**रसिद वही** 2. A book for filing or keeping receipts.

**ରଶି ଦେବା**—ଦେ. କ୍ରି—୧ । ଦଉଡ଼ି ଦେବା; ଆପଣା ବେକରେ
Rasi deba ଦଉଡ଼ି ଲଗାଇ ଉବ୍ଦନ୍ଧନରେ ପ୍ରାଣତ୍ୟାଗ କରିବା—
ବଶି ଲଗାନ 1. To commit suicide by hanging.
**रस्सी लगाना** ୨ । ଅନ୍ୟକୁ ଫାସି ଦେବା—2. To hang a
(ରଶି ଲଗାଇବା—ଅନ୍ୟରୂପ) person to death.

**ରଶୁଣ**—ଦେ.ବ (ସ. ଲଶୁନ, ରସୁନ; ରସୋନ)—ଲଶୁନ, ପଲାଣ୍ଡୁସଦୃଶ
Rasuna କନ୍ଦ ଶ୍ବେତବର୍ଣ୍ଣ ଓ ପଲାଣ୍ଡୁଠାରୁ ଉଗ୍ରଗନ୍ଧ ଓ ଉଗ୍ରବୀର୍ଯ୍ୟ
ସ.—ରସୋନ, ରସୋନକ, ମୂଳବିଶେଷ—Garlic; Allium
ରସୁନ, ଲଶୁନ, ଉଗ୍ରଗନ୍ଧ, Sativum. [ଦ୍ର—ରସୁଣ
ମହୌଷଧ, ଅରିଷ୍ଟ, ମ୍ଳେଚ୍ଛକନ୍ଦ, ସାଧାରଣତଃ ଧଳା ଦେଖାଯାଏ, କନ୍ତୁ
ଯବନେଷ୍ଟ; ରସୋନକା, ଏକ ପ୍ରକାର କାଳିଆ ରସୁଣ ଅଛି ।
ଗୃଞ୍ଜନ, ମହାକନ୍ଦ, କଟୁକନ୍ଦ, ଉଭୟ ପ୍ରକାର ରସୁଣର ଗୁଣ
ଦୀର୍ଘପତ୍ର, ସ୍ବଚ୍ଛପତ୍ର, ଭୂତଘ୍ନ।] ସମାନ । ରସୁଣର ମୂଳର କଟୁରସ,
ବଶୁନ୍, ଲଶୁନନ୍ ପତ୍ରରେ ତିକ୍ତରସ, ନାଡ଼ କା ଡାଙ୍ଗରେ
**लसुन, लहसुन** କଷାୟ, ମୂଳର ଅଗ୍ରଭାଗରେ ଲବଣ
ଫା. ସୋସୀର ଓ ମଞ୍ଜିରେ ମଧୁରରସ । ଏପରି
ଆ. ସୁମଉଲ୍ ଅର୍ଦୀୟନ୍, ୫ ଗୋଟି ରସ ଥିବାରୁ ଓ ଗୋଟିଏ
ସୁମ୍ ଲହସୀୟ୍ ରସ (ଅମ୍ଳ) ଊଣା ଥିବାରୁ ଏହାକୁ

ସ. ଶାଙ୍ଗଧରସଂଶ ଷଣ୍ଡି ଭମାନେ ରସୋନ (ରସ+ଉନ) ଭେ. ଭେଷଜ୍ୟକୃଷ୍ଟି ନାମ ଦେଇ ଅଛନ୍ତି ।
ଭା. ବଳଇ ପାଣ୍ଡୁ ଏହା ପୁଷ୍ଟିକର, ବୀର୍ଯ୍ୟବର୍ଦ୍ଧକ, ସ୍ନିଗ୍ଧ, ପରିପାଚକ, ସାରକ, କଟୁରସାତ୍ମକ, ଭଗ୍ନସନ୍ଧାନସଂଯୋଜକ, କଣ୍ଠପରିଷ୍କାରକ, ରକ୍ତବର୍ଦ୍ଧକ, ବଳକର, ବର୍ଣ୍ଣପ୍ରସାଦକ, ମେଧାହିତକର ଓ ଜ୍ୱର, ଜୀର୍ଣ୍ଣଜ୍ୱର, ଶୂଳ, ଅରୁଚି, ଶ୍ୱାସ, ଅର୍ଶ, କୁଷ୍ଠ ଓ ଅଗ୍ନିମାନ୍ଦ୍ୟାଦି ରୋଗନାଶକ ।

ପୁରାଣରେ କଥିତ ଅଛି ଯେ ଯେଉଁ ସମୟରେ ଗରୁଡ଼ ଆପଣା ମାତା ବିନତାଙ୍କୁ ତାଙ୍କ ସପତ୍ନୀ କଦ୍ରୁଙ୍କ ଦାସୀତ୍ୱରୁ ମୁକ୍ତ କରିବା ପାଇଁ ବିମାତାଙ୍କ ଆଦେଶରେ ସ୍ୱର୍ଗକୁ ଯାଇଁ ଇନ୍ଦ୍ରଙ୍କଠାରୁ ସୁଧା ହରଣ କରି ସୁଧା ଘେନି ଫେରି ଆସିଲେ, ସେହି ସମୟରେ ଉହିଁରୁ ଏକ ବିନ୍ଦୁ ଭୂତଳରେ ପତିତ ହୋଇ ତାହା ରସୁଣରେ ପରିଣତ ହେଲା ।

ଏହା ନାନା ଔଷଧରେ ବ୍ୟବହୃତ ହୁଏ । ଯବନମାନେ ଏବଂ ସେମାନଙ୍କ ଦେଖାଦେଖି କେତେକ ହିନ୍ଦୁ ଏହାକୁ ତରକାରିରେ ମସଲାରୂପେ ବ୍ୟବହାର କରନ୍ତି । ପ୍ରସୂତି ପକ୍ଷରେ ଏହା ଉପକାରକ । ଏହାକୁ ଅଭ୍ୟାସ କରି ଖାଇଲେ ବାତଜ୍ୱର ହୁଏ ନାହିଁ । ରସୁଣଭୋଜୀ ପକ୍ଷରେ ମଦ୍ୟ, ମାଂସ ଓ ଅମ୍ଳଦ୍ରବ୍ୟ ଭୋଜନ ଉପକାରକ ଏବଂ ଦୁଗ୍ଧ, ଗୁଡ଼, ଅଧିକ ଜଳପାନ, ରୌଦ୍ରତାପ, ପରିଶ୍ରମ ଓ କ୍ରୋଧ ଅପକାରକ । ଏହାର ଗନ୍ଧ ଅତି ଉଗ୍ର ।]

**ରଶୁଣ ଗନ୍ଧ**—ଦେ. ବି ( ସଂ. ଲଶୁନ ଗନ୍ଧ )—ରସୁଣପରି ଉଗ୍ରଗନ୍ଧ—
Rasuṇa gandha Strong smell of garlic.
ବସୁନେଗନ୍ଧ लहसुनकी गंध

**ରଶୁଣା**—ଦେ. ବି—୧ । ରସୁଣିଆ ଦଳ; ଏକପ୍ରକାର ଜଳଜଶାକ—
Rasuṇā 1. A kind of aquatic plant with a
ବସୁନା white tuber. [ଦ୍ର—ଏଥିର ପତ୍ରମାନ ଗଦପତ୍ର (ରସୁଣିଆ—ଅନ୍ୟରୂପ) ପରି; ଏହାର ମୂଳର କନ୍ଦ ରସୁଣ ପରି ଧଳା ଦେଖାଯାଏ । ] ୨ । ଧଳାକନ୍ଦ ବିଶିଷ୍ଟ ତୃଣ ବିଶେଷ—
2. A kind of grass. ୩ । ଏକପ୍ରକାର ଛୋଟ ରସୁଣ—3. A small species of garlic, Shallot Chive. ୪ । ସ୍ତ୍ରୀ ଲୋକମାନଙ୍କ ବାହୁରେ ପିନ୍ଧିବା ଏକପ୍ରକାର ଡେଉଁରିଆ ସ୍ୱଳ୍ପ ବଦମାଳି ବା ବାହୁଡେଉଁରିଆମାଳି—4. A string of armlet worn as an ornament by women.
ଲହସନିୟା ୫ । ଲଶୁନା; ଲଶୁନିଆ; ବୈଦୂର୍ଯ୍ୟ ରତ୍ନ—5. A
लहसुनिया species of gem; lapis lazuli. ଦେ. ବିଣ
ବସୁନେ ( ସ. ରଶୁନ )—୧ । ରସୁଣ ପରି ଉଗ୍ରଗନ୍ଧ ବିଶିଷ୍ଟ—
लहसुनिया 1. Smelling like garlic. ୨ । ( ସ. ରସ )
ବସବାଲା ଅଧିକ ରସଯୁକ୍ତ; ରସୁଆଳ—2. Full of juice.
रसवाला ( ଦ୍ର—ରସୁଣିଆ ଅମ୍ବ-ଯେଉଁ ଅମ୍ବକୁ ଗଛରୁ ଭାଙ୍ଗି-ଆଣିଲେ ସେଥିର ଲସୀରୁ ବହୁତ ରସ ବୁହେ । )

**ରଶୁଣା ଦଳ**—ଦେ. ବି—ରଶୁଣା ୧ ( ଦେଖ )
Rasuṇā dala Rasuṇā 1 ( See )
(ରଶୁଣିଆ ଦଳ—ଅନ୍ୟରୂପ)

**ରଶୁମ୍**—ବୈଦେ. ବି—ରୋଶମ୍ ( ଦେଖ )
Rasum Rosam ( See )

**ରଶୁମ୍ ରଶୁମାତ୍**—ବୈଦେ. ବି—ରୋଶମ୍ ରୋଶମାତ୍ ( ଦେଖ )
Rasum rasumāt Rosam rosamāt ( See )

**ରଶୁଲ୍**—ବୈଦେ. ବି ( ଆ. ରସୂଲ୍ )—୧ । ପୃଥିବୀକୁ ପ୍ରେରିତ
Rasul ଈଶ୍ୱରଙ୍କ ଦୂତ; ପଇଗମ୍ବର—1. God's messenger
ବସ୍ଥଲ to the earth. [ ଦ୍ର—ମୁସଲମାନ ଧର୍ମପ୍ରବର୍ତ୍ତକ
रसूल ମହମ୍ମଦ୍ ଈଶ୍ୱରପ୍ରେରିତ ଦୂତ 'ରସୁଲ୍-ଇଲ୍ଲାହା' ଥିବା ମୁସଲମାନ୍‌ମାନେ ବିଶ୍ୱାସ କରନ୍ତି ଓ ସେ ଈଶ୍ୱରଙ୍କ ଆଜ୍ଞାମାନ କୋରାନ୍‌ରେ 'ସୁରା' ବା ସୂକ୍ତରୂପରେ ପ୍ରଚାର କରିଅଛନ୍ତି । ]
୨ । ଦୂତ—2. Messenger. ୩ । ମୁସଲମାନଙ୍କ ନାମ ବିଶେଷ—3. A name given to a Mahomedan.

**ରଶୁଲ୍ ଇ(ଆ)ଲ୍ଲା**—ବୈଦେ. ବି (ଫା. ରସୁଲଇଲ୍ଲାହା)—ମୁସଲମାନ୍ ଧର୍ମ-
Rasul i(ā)llā ପ୍ରଚାର କରିବା ପାଇଁ ପୃଥିବୀକୁ ଈଶ୍ୱର ପ୍ରେରିତ
ବସ୍ଥଲାଇଲା ଦୂତ; ମହମ୍ମଦ—God's messenger on
रसूल इल्लाहा earth; Mahommed, the founder of the Mahomedan faith
ରଶୁଲଇଲ୍ଲାହ(ହା), ରେଶୁଲିଲ୍ଲା, ରେଶୁଲ୍ଲା, ରଶୁଲ୍ଲା } ଅନ୍ୟରୂପ ( believed by the Moslems to have been God's messenger on earth ). ( ଯଥା—ମହମ୍ମଦିଆ ରସୁଲଇଲ୍ଲା । )

**ରଶ୍ମି**—ସଂ. ବି ( ଅଶ୍ ଧାତୁ=ବ୍ୟାପିବା+କର୍ତ୍ତୃ. ମି. ନିପାତନ )—
Raśmi ୧ । କିରଣ—1. Ray of light. ୨ । ପ୍ରଗ୍ରହ; ଲଗାମ—2. Reins of a horse; bridle. ୩ । ରଜ୍ଜୁ; ଦଉଡ଼ି—3. Rope. ୪ । ପକ୍ଷ; ଡେଣା—4. Wing of the bird. ୫ । ପକ୍ଷ୍ମ; ଆଖିପତା—5. Eye-lid.

**ରଶ୍ମି କେନ୍ଦ୍ର**—ସ. ବି(୬ଷ୍ଠୀ ତତ୍) (ଆଧୁନିକ ବିଜ୍ଞାନ)—ଅଗ୍ନିପ୍ରସୂଣ;ଆଲୋକର
Raśmi kendra କିରଣମାନ ଦୂରବୀକ୍ଷଣର ମୁକୁରର ବା କାଚର ମଧ୍ୟଦେଇ ଗମନ କରି ଯେଉଁଠାରେ ମିଳିତ ହୁଏ—The focus; the point where the converging rays of light (passing through a lens) meet-

**ରଶ୍ମିଜାଲ**—ସ. ବି ( ୬ଷ୍ଠୀ ତତ୍ )—୧ । କିରଣସମୂହ—
Raśmi jāla 1. Several rays of light. ୨ । କିରଣମାଳ-
2. A stream of light ( consisting of a cluster of rays).

**ରଶ୍ମିପତି**—ସ. ବି (୬ଷ୍ଠୀ ତତ୍)—୧ । ସୂର୍ଯ୍ୟ—1. The sun. ୨ ।
Raśmi pati ଅର୍କବୃକ୍ଷ—2. The swallow wort, Calotropis Gigantea-

**ରଶ୍ମିପାତ**—ସଂ. ବି.—(ଷଷ୍ଠୀ ତତ୍)—କୌଣସି ବସ୍ତୁରେ କିରଣ Raśmi pāta ପଡ଼ିବା; କିରଣପାତ; ଆଲୋକର ପ୍ରତିଫଳନ—Refraction of the rays; the falling of the rays on a thing.

**ରସ୍ (ଧାତୁ)**—ସ୍ବ—୧। ଶବ୍ଦ କରିବା—1. To make a sound. Ras (root) ୨। ଆସ୍ୱାଦନ କରିବା—2. To taste. ୩। ସ୍ନେହ କରିବା—3. To love. ୪। ଭକ୍ତି କରିବା—4. To regard.

**ରସ୍**—ବୈଦେ. ବି (ଇଂ ରସ୍)—ରସିଆଦେଶୀୟ—Ras Russian.

**ରସ**—ସଂ. ବି (ରସ୍ ଧାତୁ+କର୍ମ. ଅ)—୧। ଆସ୍ୱାଦ; ସ୍ୱାଦ; ପଦାର୍ଥର Rasa ୨୪ ଗୁଣ ମଧ୍ୟରୁ ରସନା ଦ୍ୱାରା ଗ୍ରାହ୍ୟ ଗୁଣ—1. Taste of a thing. [ଦ୍ର—ରସ ଦ୍ରବ୍ୟର ଗୁଣ ବା ଧର୍ମବିଶେଷ। ଏହା ଦ୍ରବ୍ୟମାନଙ୍କରୁ ରସନା ବା ଜିଭ ଦ୍ୱାରା ଅନୁଭୂତ ହୁଏ। ବୈଦ୍ୟଶାସ୍ତ୍ରରେ ଦ୍ରବ୍ୟର ଆସ୍ୱାଦନ ୬୩ ପ୍ରକାରର ବର୍ଣ୍ଣିତ ହୋଇଅଛି କିନ୍ତୁ ସାଧାରଣତଃ ୬ଟି ରସ ( ଷଡ଼ ରସ ) ଅନୁଭୂତ ହୁଏ ( Taste, sovour or flavour of a thing)

(କ) ମଧୁର ବା ମିଠା—Sweet (କ୍ଷିତ୍ୟମ୍ବୁ ସଂସର୍ଗଜ)

(ଖ) ଅମ୍ଳ ବା ଖଟା—Sour, acidish ( ଜଳାଗ୍ନି ସଂସର୍ଗଜ )

(ଗ) ଲବଣ ବା ଲୁଣିଆ—Saline, salt ( କ୍ଷିତ୍ୟଗ୍ନି-ସଂସର୍ଗଜ )

(ଘ) କଟୁ ବା ରାଗ—Pungent (ବାୟୁ ଓ ଅଗ୍ନି ସଂସର୍ଗଜ )

(ଙ) ତିକ୍ତ ବା ପିତା—Bitter ( ବାୟୁ ଓ ଆକାଶ ସଂସର୍ଗଜ )

(ଚ) କଷାୟ ବା କଷା—Astringent ( କ୍ଷିତ୍ୟ-ନିଳସଂଯୋଗଜ )

ଏହି ଛଅଟି ରସକୁ ଷଡ଼ରସ ବୋଲାଯାଏ। ଖାଦ୍ୟ ଦ୍ରବ୍ୟର ସାମଗ୍ରୀ ମାନ ଖାଇବା ଲୋକର ରୁଚି ଅନୁସାରେ ଏହି ଷଡ଼ରସ ଯୁକ୍ତ ହେଲେ ରୁଚିକର ହୁଏ। ଜଣେ ଜଣେ ବ୍ୟକ୍ତିଙ୍କୁ ଗୋଟିଏ ଗୋଟିଏ ବିଶିଷ୍ଟରସର ଅଧିକତର ପ୍ରିୟ ଥିବା ଦେଖାଯାଆନ୍ତି। ] ୨। ଜଳ—2. Water. ୩। ପଦାର୍ଥରୁ, ଫଳାଦିରୁ, ବୃକ୍ଷାଦିରୁ ନିର୍ଗତ ଜଳବତ୍ ତରଳ ସାର; ନିର୍ଯ୍ୟାସ—3. Juice, liquid extract from fruits, vegetables and other bodies.

[ ଦ୍ର—ଦ୍ରବ୍ୟାଦିରୁ ନିର୍ଗତ ହେବା ଜଳବତ୍ ପଦାର୍ଥକୁ ରସ ବୋଲାଯାଏ। ଗୋରୁଠାରୁ କାଢ଼ାଯିବା ଦୁଧକୁ ଗୋରସ ବୋଲାଯାଏ। ଗଛ ଆଦିରୁ ଯେଉଁ ଦ୍ରବ ପଦାର୍ଥ ବହେ ବା ଚୁପୁଡ଼ାଯାଏ ତାହାକୁ ରସ ବୋଲାଯାଏ। ଯଥା—ଆଖୁରସ, ଖଜୁରିରସ। ଗଛ ଦେହରୁ ବହିବା ନିର୍ଯ୍ୟାସ ଓ କ୍ଷୀର ମଧ୍ୟ ରସ (Juice)। ଆଦ୍ର ଫଳପତ୍ରାଦିକୁ ଚିପୁଡ଼ିଲେ ରସ ବାହାରେ; ଯଥା—ନଡ଼ିଆରସ, ଅଦାରସ, ପାନରସ; ଗଛରୁ ବୋହିବା ଅଠା ମଧ୍ୟ ରସ ଅଟେ, ଯଥା—ଝୁଣା, ଗୁନ୍ଦଅଠା, ଗୁଗୁଳ (ଗନ୍ଧ ରସ)। ଏହି ଅର୍ଥରେ ଯେ କୌଣସି ବସ୍ତୁରୁ ଯେ କୌଣସି ପ୍ରକ୍ରିୟାଦ୍ୱାରା ବାହାରିବା ଜଳୀୟ ପଦାର୍ଥକୁ ବା ତରଳସାରକୁ ରସ ବୋଲାଯାଏ। ଜଳ ସଙ୍ଗେ ଦ୍ରବ୍ୟାଦି ପାକ କରାଯାଇ ଜଳ ମିଶ୍ରିତ ଉକ୍ତଦ୍ରବ୍ୟମାନଙ୍କର କ୍ୱାଥକୁ ମଧ୍ୟ ରସ (ଝୋଳ, ଯୂଷ, ଅର୍କ )ବୋଲାଯାଏ। ୪। କାବ୍ୟାଲଙ୍କାରରେ ଶୃଙ୍ଗାରାଦି ଭାବ—4. Sentiment in poetical or literary composition. [ ଦ୍ର—କୌଣସି ବିଷୟ (କାବ୍ୟନାଟକାଦି) ପାଠ, ଦର୍ଶନ, ଶ୍ରବଣ ବା ଚିନ୍ତା କଲେ ତହିଁର ଫଳରେ ମନୁଷ୍ୟ ମନରେ ସୁଖ, ଦୁଃଖ, କ୍ରୋଧାଦି ଯେଉଁ ସ୍ଥାୟୀଭାବ ଜନ୍ମେ କାବ୍ୟାଦିର ସେହି ସ୍ଥାୟୀଭାବୋତ୍ପାଦିକା ଶକ୍ତିକୁ ରସ ବୋଲାଯାଏ। ଏହି ରସ (sentiment, emotion) ନଅପ୍ରକାର।

ପ୍ରତ୍ୟେକ ରସର ବିଶେଷ ବିଶେଷ ସ୍ଥାୟୀଭାବ,ଆଲମ୍ବନ, ଉଦ୍ଦୀପନ ବିଭାବ, ଅନୁଭାବ ଓ ବ୍ୟଭିଚାରୀ ଭାବ ଅଛି।

ରସମାନଙ୍କର ନାମ ଓ ବିବରଣ ଯଥା—

୧। ଶୃଙ୍ଗାର ବା ଆଦିରସ (Sentiment of love)।

ମନୁଷ୍ୟ ମନରେ କାମ ବା ପ୍ରେମ ଜନ୍ମାଇବା ଏ ରସର ପ୍ରଧାନ ଅଙ୍ଗ। ଏହା କାବ୍ୟରସ ମଧ୍ୟରେ ପ୍ରଧାନ। କେହି କେହି କବି ଏହି ରସକୁ ରସମାନଙ୍କ ମଧ୍ୟରେ ସାର ରସ ବୋଲି ବର୍ଣ୍ଣନା କରିଅଛନ୍ତି।

ଏହି ରସର ରତି ବା ପ୍ରେମ ବା ଅନୁରାଗ ସ୍ଥାୟୀଭାବ, ନାୟକ ନାୟିକା ଏହାର ଆଲମ୍ବନ।

ଚନ୍ଦ୍ର, ଚନ୍ଦନ, କୋକିଳ ଓ ବସନ୍ତଋତୁ ଆଦି ଏହାର ଉଦ୍ଦୀପନ ବିଭାବ।

ଭ୍ରୂବିକ୍ଷେପ, କଟାକ୍ଷାଦି ଏହାର ଅନୁଭାବ।

ଉଗ୍ରତା, ମରଣ, ଆଳସ୍ୟ ଓ ଜୁଗୁପ୍ସା ଛଡ଼ା ଅନ୍ୟଭାବ ଏହାର ବ୍ୟଭିଚାରୀ ଭାବ।

ଏହି ରସ ଦ୍ୱିବିଧ—

୧। ସମ୍ଭୋଗ ବା ନାୟକନାୟିକାଙ୍କ ମିଳନ।

୨। ବିପ୍ରଲମ୍ଭ ବା ନାୟକନାୟିକାଙ୍କ ବିଚ୍ଛେଦ।

୨। ହାସ୍ୟରସ—Sentiment of mirth.

ଆକାର, ବାକ୍ୟ, ବେଶ ଓ ଚେଷ୍ଟାଦିର ବିକୃତିଜନିତବିକଳ ମନୁଷ୍ୟକୁ ହସାଇବା ଏହାର ଲକ୍ଷ୍ୟ।

ହାସ୍ୟ ଏହାର ସ୍ଥାୟୀଭାବ।

ଆକାର ବାକ୍ୟ ବେଶାଦିର ବିକୃତ ଏହାର ଆଲମ୍ବନ।

ଏହି ରୂପ ଚେଷ୍ଟା ଏହାର ଉଦ୍ଦୀପନ ବିଭାବ।

ଅକ୍ଷି ସଙ୍କୋଚ ଓ ବଦନ ବିକଶନାଦି ଏହାର ଅନୁଭାବ।

ନିଦ୍ରା ଆଳସ୍ୟାଦି ଭଙ୍ଗୀ ଏହାର ବ୍ୟଭିଚାରୀଭାବ।

୩। କରୁଣ ରସ—Pathos.

ପ୍ରିୟବିୟୋଗ, ଅପ୍ରିୟସଂଯୋଗ, ପରର ଦୁଃଖ ଆଦି ଦେଖି ବା ଶୁଣି ମନରେ ଯେଉଁ ଶୋକଯୁକ୍ତଭାବ ଉଦୟ ହୁଏ ।

ଏହାର ସ୍ଥାୟୀଭାବ ଶୋକ ।

ଶୋଚ୍ୟ ବିଷୟ ଏହାର ଆଲମ୍ବନ ।

ଶୋଚ୍ୟ ବିଷୟର ଦୀନାବସ୍ଥା ଏହାର ଉଦ୍ଦୀପନ ବିଭାବ । ଦୈବନିନ୍ଦା, ଭୂତଳରେ ପତନ, କ୍ରନ୍ଦନ, ଅଙ୍ଗାଦିରେ କରାଘାତ, ବୈବର୍ଣ୍ଣ୍ୟ, ଦୀର୍ଘନିଃଶ୍ୱାସ, ସ୍ତମ୍ଭ, ପ୍ରଳାପ, ମୂର୍ଚ୍ଛା ଓ ଅପସ୍ମାରାଦି ଏହାର ଅନୁଭାବ ।

ବିଷାଦ, ଜଡ଼ତା, ଉନ୍ମାଦ ଓ ଚିନ୍ତା ଆଦି ଏହାର ବ୍ୟଭିଚାରୀ ଭାବ ।

୪ । ରୌଦ୍ର ରସ—Sentiment of anger or wrath.

ମନରେ କ୍ରୋଧୋତ୍ପାଦକ ସ୍ଥାୟୀଭାବ ।

ଶତ୍ରୁ ଏଥିର ଆଲମ୍ବନ, ଶତ୍ରୁର ଚେଷ୍ଟା ଓ ପ୍ରହାରାଦି ଏହାର ଉଦ୍ଦୀପନ ବିଭାବ ।

ଭ୍ରୂଭଙ୍ଗ, ଓଷ୍ଠଦଂଶନ, ବାହୁସ୍ଫୋଟନ, ତର୍ଜନ, ଗର୍ଜନ, ଅସ୍ତ୍ରାଦି ଉତ୍କ୍ଷେପ, ଆକ୍ଷେପ, ତିରସ୍କାର ଓ କ୍ରୂରଦୃଷ୍ଟି-ବଲୋକନାଦି ଏହାର ଅନୁଭାବ ।

ଉଗ୍ରତା, ଆବେଗ, ରୋମାଞ୍ଚ, ସ୍ୱେଦ, ବେପଥୁ ଓ କମ୍ପାଦି ଏହାର ବ୍ୟଭିଚାରୀ ଭାବ ।

୫ । ବୀର ରସ—Heroism, heroic sentiment. ଯହିଁରେ ସତ୍‌କାର୍ଯ୍ୟ ଓ ସାହସିକ କାର୍ଯ୍ୟ କରିବାକୁ ନାୟକର ଉତ୍ସାହ ଓ ଉଦ୍ୟମ ଦେଖାଯାଏ ।

ଉତ୍ତମ ଓ ସାହସ ପ୍ରକୃତିକ ନାୟକ ଏହାର ବୀର ।

ଉଦ୍ୟମ ଏ ରସର ସ୍ଥାୟୀଭାବ ।

ଦାନୀୟ ଧର୍ମ, ଅନୁକମ୍ପନୀୟଗଣଙ୍କ ଗ୍ରହଣ, ବିଜେତବ୍ୟ ବସ୍ତୁ ଆଦି ଏହାର ଆଲମ୍ବନ ।

ବୀରର କର୍ତ୍ତବ୍ୟ ସମ୍ବନ୍ଧେ ଧର୍ମ ଶାସ୍ତ୍ରାଦି, ଦୟାପାଇଁ ଦୀନ ବ୍ୟକ୍ତିର କାତରୋକ୍ତି, ଯୁଦ୍ଧରେ ବିପକ୍ଷର ଚେଷ୍ଟାଦି ଏହାର ଉଦ୍ଦୀପନ ବିଭାବ ।

ଦାନବୀର ପକ୍ଷରେ ଧନ, ଧର୍ମବୀର ପକ୍ଷରେ ଧର୍ମ, ଦୟାବୀର ପକ୍ଷରେ ତ୍ୟାଗଶୀଳତା ଓ ଯୁଦ୍ଧବୀର ପକ୍ଷରେ ସୈନ୍ୟାଦିଙ୍କ ସହାୟତା—ଏହାର ଅନୁଭାବ ।

ବ୍ୟଭିଚାରୀ ଭାବ—ଶୂରତା ଓ ଧୈର୍ଯ୍ୟାଦି ।

ଏହି ରସ ଦାନ, ଧର୍ମ, ଦୟା ଓ ଯୁଦ୍ଧ ଭେଦରେ ଚତୁର୍ବିଧ ।

୬ । ଭୟାନକ ରସ—Sentiment of terror or fear.

ଯଦ୍ଦ୍ୱାରା ମନରେ ଭୟର ଉଦ୍ରେକ ହୁଏ ।

ଏହାର ସ୍ଥାୟୀ ଭାବ ଭୟ ।

ଭୀତିଜନକ ବସ୍ତୁ ଏହାର ଆଲମ୍ବନ ।

ଭୀତିପ୍ରଦ କାରଣର ଘୋରତର ଚେଷ୍ଟା ଏହାର ଉଦ୍ଦୀପନ ବିଭାବ । ବୈବର୍ଣ୍ଣ୍ୟ, ଗଦ୍‌ଗଦସ୍ୱର (ପାଟି ଆଉ ଆଉ ହୋଇଯିବା ବା ଖନି ମାରିଯିବା), ନଷ୍ଟଚିତ୍ତତା, ପ୍ରଳୟ, ସ୍ୱେଦ, ରୋମାଞ୍ଚ, କମ୍ପ, ଦିକ୍‌ପ୍ରେକ୍ଷଣ (ଅକ୍ଳାନ୍ତ ହୋଇ ଏଣେ ତେଣେ ବଲ ବଲ କରି ଚାହିଁବା) ଏହାର ଅନୁଭାବ । ଜୁଗୁପ୍ସା, ଆବେଗ, ସମ୍ମୋହ, ସନ୍ତ୍ରାସ, ଗ୍ଳାନି, ଦୀନତା, ଶଙ୍କା, ଅପସ୍ମାର, ସମ୍ଭ୍ରାନ୍ତ ଓ ମୃତ୍ୟୁ ଏହାର ବ୍ୟଭିଚାରୀ ଭାବ ।

୭ । ବୀଭତ୍ସରସ—Sentiment of disgust. ଯାହା ଦ୍ୱାରା ଘୃଣାର ଉଦ୍ରେକ ହୁଏ ।

ଘୃଣା—ଏହାର ସ୍ଥାୟୀ ଭାବ ।

ଦୁର୍ଗନ୍ଧ, ମାଂସ, ରୁଧିର, ମେଦ, ବିଷ୍ଠାଦି ଏହାର ଆଲମ୍ବନ । ଏ ସବୁ ଅବଲମ୍ବିତ ଦ୍ରବ୍ୟରେ କୃମିପାତାଦି (ପୋକ ପଡ଼ିବା) ଏହାର ଉଦ୍ଦୀପନ ବିଭାବ ।

ନିଷ୍ଠୀବନ, ଆସ୍ୟବଳନ ଓ ନେତ୍ରସଙ୍କୋଚାଦି ଏହାର ଅନୁଭାବ ।

ମୋହ, ଅପସ୍ମାର, ଆବେଗ, ବ୍ୟାଧି ଓ ମରଣ ଏହାର ବ୍ୟଭିଚାରୀ ଭାବ ।

୮ । ଅଦ୍ଭୁତ ରସ—Sentiment of surprise, ଯାହା ବିସ୍ମୟ ଜାତ କରାଏ ।

ଏହାର ସ୍ଥାୟୀଭାବ ବିସ୍ମୟ ।

ଅଲୌକିକ ବସ୍ତୁ ଏହାର ଆଲମ୍ବନ ।

ଆଲମ୍ବିତ ବସ୍ତୁର ଗୁଣ ମହିମା ଏହାର ଉଦ୍ଦୀପନ ।

ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ଗଦ୍‌ଗଦସ୍ୱର, ସମ୍ଭ୍ରମ, ନେତ୍ରବିସ୍ଫାରଣାଦି ଏହାର ଅନୁଭାବ ।

ବିତର୍କ, ଆବେଗ, ସମ୍ଭ୍ରାନ୍ତ ଓ ହର୍ଷାଦି ଏହାର ବ୍ୟଭିଚାରୀଭାବ ।

୯ । ଶାନ୍ତରସ—Sentiment of tranquility or calmness.

ଯାହା ଦ୍ୱାରା ହୃଦୟରେ ଶାନ୍ତି ଜନ୍ମେ ।

ଶମ ଏହାର ସ୍ଥାୟୀ ଭାବ ।

ଅନିତ୍ୟ ଅଶେଷ ବସ୍ତୁର ନିଃସାରତା ଓ ପରମାତ୍ମସ୍ୱରୂପ ଏହାର ଆଲମ୍ବନ ।

ପୁଣ୍ୟାଶ୍ରମ, ତୀର୍ଥ, ହରିକ୍ଷେତ୍ର, ମହାପୁରୁଷ ଓ ସାଧୁସଙ୍ଗ ଏହାର ଉଦ୍ଦୀପନ ବିଭାବ ।

ରୋମାଞ୍ଚାଦି ଏହାର ଅନୁଭାବ ।

ନିର୍ବେଦ, ହର୍ଷ, ସ୍ମରଣ ଓ ଅଦ୍ଭୁତ ଦୟାଦି ଏହାର ବ୍ୟଭିଚାରୀ ଭାବ ।

ଶାନ୍ତ ରସରେ ନାୟକର କୌଣସି ରୂପେ ଅହଙ୍କାର ରହିବ ନାହିଁ; ରହିଲେ ତାହା ବୀର ରସରେ ପରିଣତ ହେବ । କାରଣ, ବୀର ରସରେ ଦୟା ବୀର ନାୟକଙ୍କର ଦୟାରେ ଅହଙ୍କାର ପରିସ୍ଫୁଟ ଥାଏ । ଯେଉଁ ରସରେ ଦୁଃଖ, ସୁଖ, ଚିନ୍ତା, ଦ୍ୱେଷ, ରାଗ, ସ୍ପୃହା, ଶତ୍ରୁ ନିର୍ଯ୍ୟାତନେଚ୍ଛା ଓ ଆସକ୍ତି ଆଦି ନ ଥାଏ, ଅଥଚ ସବୁ ବିଷୟରେ ଶମ ବା ଶାନ୍ତି ଓ ତଦ୍ବିଷୟ ନିବୃତ୍ତି ଜନ୍ମେ ତାହାହିଁ ଶାନ୍ତରସ ।

୧୦ । ବତ୍ସଳ ରସ—Sentiment of affection; paternal tenderness.

କେହି କେହି ପଣ୍ଡିତ ଏହାକୁ ୧୦ମ ରସ ବୋଲି ନିର୍ଦ୍ଦେଶ କରିଅଛନ୍ତି ।

ଏହା ଦ୍ୱାରା ବାତ୍ସଲ୍ୟ ଭାବର ଉଦୟ ହୁଏ । ଶିଷ୍ୟ ପୁତ୍ରାଦିଙ୍କ ପ୍ରତି ବତ୍ସଳତା ବା ସ୍ନେହ ଏଥିର ସ୍ଥାୟୀ ଭାବ ।

ପୁତ୍ର ଶିଷ୍ୟାଦି ଏହାର ଆଲମ୍ବନ ।

ପୁତ୍ରାଦିଙ୍କ ଚେଷ୍ଟା, ବିଦ୍ୟା ଓ ଶୌର୍ଯ୍ୟାଦି ଏହାର ଉଦ୍ଦୀପନ ବିଭାବ ।

ଆଲିଙ୍ଗନ, ଅଙ୍ଗ ସଂସ୍ପର୍ଶ, ଶିରଶ୍ଚୁମ୍ବନ, ଦର୍ଶନ, ପୁଲକ ଓ ଆନନ୍ଦାଶ୍ରୁ ଏହାର ଅନୁଭାବ ।

ଅନିଷ୍ଟାଶଙ୍କା, ହର୍ଷ ଓ ଗର୍ବାଦି ଏହାର ବ୍ୟଭିଚାରୀଭାବ ।

ସାଧାରଣତଃ ରସକୁ ପ୍ରଥମୋକ୍ତ ୯ ଶ୍ରେଣୀରେ ବିଭକ୍ତ କରାଯାଏ । କେହି କେହି ବାତ୍ସଲ୍ୟକୁ 'ରସ' ମଧ୍ୟରେ ଗଣନ୍ତି । ପୁଣି କେହି କେହି ଶାନ୍ତ ରସକୁ କରୁଣ ରସର ଅନ୍ତର୍ଗତ କରି ରସର ସଂଖ୍ୟା ୮ଟି ଗଣନା କରନ୍ତି ।

ଉପରୋକ୍ତ ରସମାନଙ୍କ ମଧ୍ୟରେ ନିମ୍ନଲିଖିତ ରୂପେ ପରସ୍ପର-ବିରୋଧ ଲକ୍ଷିତ ହୁଏ; ଏହାକୁ ରସବିରୋଧ ବୋଲାଯାଏ ।

ଆଦି ରସର ବିରୋଧୀ କରୁଣ, ରୌଦ୍ର, ବୀର, ଭୟାନକ ଓ ବିଭତ୍ସ ।

ହାସ୍ୟର ବିରୋଧୀ କରୁଣ ଓ ଭୟାନକ ।

କରୁଣର ବିରୋଧୀ ହାସ୍ୟ ଓ ଆଦି ।

ରୌଦ୍ରର ବିରୋଧୀ ଆଦି, ହାସ୍ୟ ଓ ଭୟାନକ ।

ବୀରର ବିରୋଧୀ ଭୟାନକ ଓ ଶାନ୍ତ ।

ଅଦ୍ଭୁତର ଓ ଭୟାନକର ବିରୋଧୀ ଆଦି, ହାସ୍ୟ, ରୌଦ୍ର, ବୀର ଓ ଶାନ୍ତ ।

ବିଭତ୍ସର ବିରୋଧୀ ଆଦି ।

ଶାନ୍ତ ରସର ବିରୋଧୀ ହାସ୍ୟ, ରୌଦ୍ର, ବୀର ଓ ଭୟାନକ ।

ରସର ଓ ଭାବର ନିତ୍ୟ ସମ୍ବନ୍ଧ, ଅର୍ଥାତ୍ କୌଣସି ଭାବବିହୀନ ରସ ନାହିଁ କିମ୍ବା ରସବିହୀନ ଭାବ ନାହିଁ । ୫ । ବିଷ—5. Poison. ୬ । ଜଳୀୟ ବସ୍ତୁ; ଦ୍ରବ ପଦାର୍ଥ—6. Liquid; fluid. ୭ । ଗୁଗ୍ଗୁଳ; ବୋଳ; ଗନ୍ଧରସ—7. Gum myrrh; bdellium. ୮ । ଅନୁରାଗ; ପ୍ରଣୟ—8. Love; affection; attachment; passion. [ଉ—ଚନ୍ଦ୍ର କୁମୁଦେ ଦୁରରେ ମୁଦେ ପଦର ମୃଦେ ମୋତେ । ଦେଇ ହରଷ କରିବା ରସ ନାହିଁ ବରଷ ଅନ୍ତେ । ଭଞ୍ଜ. ପ୍ରେମସୁଧାନିଧି] । ୯ । ଦେହସ୍ଥ ଧାତୁ ବିଶେଷ; ଖାଦ୍ୟ ଦ୍ରବ୍ୟ ରକ୍ତରେ ପରିଣତ ହେବା ପୂର୍ବରୁ ତହିଁରୁ ପାକ ଯନ୍ତ୍ର ଦ୍ୱାରା ସଂଗୃହୀତ ସାର—9. Gastric juice; the juice produced from the food before it matures into blood. [ବ୍ର—ରସ୍ ଧାତୁ=ଗମନ କରିବା, ବିଚରଣ କରିବା (ଏହା ସର୍ବଦା ଶରୀର ମଧ୍ୟରେ ବିଚରଣ କରୁଥିବାରୁ) । ଭୁକ୍ତ ଦ୍ରବ୍ୟ ଜଠରାଗ୍ନି ଦ୍ୱାରା ସମ୍ୟକ୍ ପ୍ରକାରେ ପରିପାକ ପ୍ରାପ୍ତ ହେଲେ ତାହାର ସାର ଭାଗକୁ ରସ ବୋଲାଯାଏ । ଏହା ସର୍ବାଙ୍ଗ-ସଞ୍ଚାରୀ ହେଲେହେଁ ହୃଦୟ ବା ହୃତ୍ପିଣ୍ଡ ଏହାର ପ୍ରଧାନ ଅଧିଷ୍ଠାନ ସ୍ଥାନ । ରସ ପଚ୍ୟପକ୍ୱ ଓ ପିତ୍ତ ଦ୍ୱାରା ରଞ୍ଜିତ ହୋଇ ରକ୍ତରେ ପରିଣତ ହୁଏ । ହୃଦୟରୁ ଏହା ରକ୍ତ ରୂପରେ ଧମନୀସକଳ ଦ୍ୱାରା ପ୍ରବାହିତ ହୋଇ ଅନ୍ୟ ସମସ୍ତ ଧାତୁକୁ ପୋଷଣ କରେ ଏବଂ ସର୍ବ ଶରୀରରେ ବ୍ୟାପ୍ତ ହୁଏ । ମନ୍ଦାଗ୍ନି ହେତୁ ରସ ଜୀର୍ଣ୍ଣ ନ ହେଲେ ଅର୍ଥାତ୍ ଭୁକ୍ତ ଦ୍ରବ୍ୟ ଉତ୍ତମରୂପେ ପରିପାକ ନ ପାଇଲେ ତଜ୍ଜାତ ରସ କଟୁଭାବାପନ୍ନ ହୁଏ, ତଜ୍ଜାତ ରକ୍ତ ମଧ୍ୟ ଦୋଷଯୁକ୍ତ ହୁଏ ଓ ନାନା ରୋଗ ଜନ୍ମାଏ । ଏହି ଅର୍ଥରେ ରସର ଅନ୍ୟ ସଂସ୍କୃତ ନାମ, ଯଥା—ଅଗ୍ନି ସମ୍ଭବ, ଅସୃକ୍କର, ଅସ୍ରମାତୃକା, ଆନ୍ନେୟ, ଆହାରସମ୍ଭବ, ଚର୍ମସାର, ଚର୍ମୀମ୍ନ, ଚର୍ମାମ୍ଳ ତେଜ ସମ୍ଭବ, ଧାତୁଧ୍ୱଜ, ମୂଳ ମହାପର, ରକ୍ତସାର, ରସିକା, ବପୁସ୍ରବ, ଷଡ୍‌ରସ ସାର, ସ୍ୱେଦ ମାତା ।] ୧୦ । ଭୋଗ୍ୟବସ୍ତୁ—10. Object of enjoyment. ୧୧ । ପାରଦ—11. Mercury; quick silver. [ଦ୍ର—ରସ ଶବ୍ଦର ନାନା ଅର୍ଥ ଅଛି । ଶୃଙ୍ଗାର ପ୍ରଭୃତି ରସରେ ରସ ଶବ୍ଦ ବ୍ୟବହୃତ ହୁଏ । ଅମ୍ଳ ପ୍ରଭୃତି ଷଡ୍‌ରସରେ ରସ ଶବ୍ଦ ବ୍ୟବହୃତ ହୋଇଥାଏ । ରସ ଶବ୍ଦର ଆଉ ଗୋଟିଏ ବିଶେଷ ଅର୍ଥ ଅଛି, ପାରଦ । ରସ ଶବ୍ଦରେ କେବଳ ପାରଦ ନ ବୁଝି ପାରଦ ଗନ୍ଧକାଦି ଯାବତୀୟ ରସ ଓ ଉପରସ ଏବଂ ସ୍ୱର୍ଣ୍ଣ, ରୌପ୍ୟ, ଲୌହ, ଅଭ୍ର ଓ ବଙ୍ଗାଦି ଧାତୁ ଉପଧାତୁମାନଙ୍କୁ ବୁଝିବାକୁ ହେବ । ଏହି ସମସ୍ତ ରସାଦି ଦ୍ୱାରା ଯେଉଁ ଚିକିତ୍ସା କରାଯାଏ ତାକୁ ରସଚିକିତ୍ସା କୁହାଯାଏ । ପାରଦ ଅଧିକାଂଶ ଔଷଧରେ ବ୍ୟବହାର କରାଯାଏ । ରସ ଚିକିତ୍ସାରେ ପାରଦ ପ୍ରଧାନ ଅଙ୍ଗ । ପାରଦ ବିଶୁଦ୍ଧ ହେଲେ ଅମୃତ ସମାନ ଫଳପ୍ରଦ ହୁଏ । ପାରଦ ଅବିଶୁଦ୍ଧ ଅବସ୍ଥାରେ ମାରାତ୍ମକ ବିଷ । ସୁତରାଂ ଔଷଧରେ ପାରଦକୁ ଶୋଧନ ନ କରି କେବେ ବ୍ୟବହାର କରିବ ନାହିଁ । ପାରଦର ନିମ୍ନଲିଖିତ କେତେଗୋଟି ଦୋଷ ସ୍ୱାଭାବିକ ଦୋଷ । ନାଗ, ବଙ୍ଗ, ମଳ, ବହ୍ନି, ଚାଞ୍ଚଲ୍ୟ, ବିଷ ଗିରି, ଅସହ୍ୟାଗ୍ନି । ପାରଦର ଏହି ଅଷ୍ଟ ଦୋଷ ଯଥାକ୍ରମେ ବ୍ରଣ, କୁଷ୍ଠ, ମୂର୍ଚ୍ଛା, ଦାହ, ବୀର୍ଯ୍ୟନାଶ, ମରଣ, ଜଡ଼ତା, ଓ ସ୍ଫୋଟକ ରୋଗ ଉତ୍ପାଦନ କରେ ।

ପାରଦର ସର୍ବଦୋଷହର ସଂକ୍ଷିପ୍ତ ଶୋଧନ ବିଧି :—

ଘିକୁଆଁରି, ଚିତ୍ରେଇତା, ରକ୍ତ ସୋରିଷ, ଲଠା ବେଏକୋଳି, ଓ ତ୍ରିଫଳା ଏ ପଦାର୍ଥମାନଙ୍କ କ୍ୱାଥରେ ତିନିଦିନ ମର୍ଦ୍ଦନ କଲେ ପାରଦ ସର୍ବଦୋଷ ବିମୁକ୍ତ ହୁଏ ।

ପାରଦର ୮ ପ୍ରକାର ସଂସ୍କାର ଅଛି, ଯଥା—ସ୍ୱେଦନ, ମର୍ଦ୍ଦନ, ମୂର୍ଚ୍ଛନ, ଉତ୍ଥାପନ, ଊର୍ଦ୍ଧ୍ୱପାତନ, ବୋଧନ, ନିୟାମନ ଓ ଦୀପନ । ଶୋଧନ ଉଦ୍ଦେଶ୍ୟରୁ ଏ ୮ ପ୍ରକାର ସଂସ୍କାର ଆବଶ୍ୟକ ।

ସ୍ୱେଦନ—ଖଣ୍ଡିଏ କନାକୁ ଚୌରଭାଙ୍ଗ କରି ତହିଁରେ ପାରଦକୁ ବାନ୍ଧିବ ଏବଂ ଗୋଟିଏ ହାଣ୍ଡି କାଞ୍ଜି ପୂର୍ଣ୍ଣ କରି

ତହିଁରେ ତ୍ରିକଟୁ, ତ୍ରିଫଳା, ଚିତାମୂଳ ଓ ଘିକୁଆଁରି ଆଖିର କଳ୍କ ପକାଇବ । ପରେ ହାଣ୍ଡି ଫନ୍ଦରେ ଖଣ୍ଡେ କାଠି ରଖି ସେଥିରେ ଉକ୍ତ ପାରଦକୁ ପୋଟଳୀ ବାନ୍ଧି ହାଣ୍ଡି ମଧ୍ୟରେ ଝୁଲାଇ ଏକ ଦିନ ଅଗ୍ନି ତାପରେ ପାକ କରିବ । ଏହାକୁ ଦୋଲାଯନ୍ତ୍ର ପାକ କୁହାଯାଏ । ଶୋଧନ ପରେ ଯେ ଦୋଷ ଥିବ ତାହା ଏତଦ୍ଦ୍ୱାରା ନଷ୍ଟ ହେବ ।

ମର୍ଦ୍ଦନ—ଅଲମ୍ବୁ କଳା, ଇଟା ଚୂର୍ଣ୍ଣ, କଳାଜୀରା, ମେଣ୍ଢା ଲୋମଭସ୍ମ, ଗୁଡ଼, ସୈନ୍ଧବ, କାଞ୍ଜି, ଏ ପ୍ରତ୍ୟେକକୁ ପାରଦର ଷୋଡ଼ଶାଂଶ ନେଇ ତଦ୍ଦ୍ୱାରା ପାରଦକୁ ମର୍ଦ୍ଦନ କରିବ ।

ମୂର୍ଚ୍ଛନ—ଏ ପ୍ରକ୍ରିୟାଦ୍ୱାରା ପାରଦର ବ୍ୟାଧିଘାତିନୀ ଶକ୍ତି ଉତ୍ପନ୍ନ ହୁଏ । ତ୍ରିକଟୁ, ତ୍ରିଫଳା, ଅଣ୍ଡିରି କାଙ୍କଡ଼ ମୂଳ, ଅଙ୍କରାନ୍ତି, ଇଠା ବେଁଏଁ କୋଳିର କ୍ୱାଥ, ମେଣ୍ଢାଲୋମ, ଚିତାମୂଳ, ହଳଦୀ, ଯବକ୍ଷାର, ଘିକୁଆଁରି, ଅରଖପତ୍ର, ଧାତୁରି, ଏ ସମସ୍ତ ରସରେ ୭ ଦିନ ମର୍ଦ୍ଦନ କଲେ ପାରଦର କଞ୍ଚୁକ ଦୋଷ ଦୂର ହୁଏ ।

ଉତ୍ଥାପନ—ପାରଦର ଚତୁର୍ଥାଂଶ ହଳଦୀଚୂର୍ଣ୍ଣ ଓ ଘିକୁଆଁରି ରସ, ଏ ଉଭୟଦ୍ୱାରା ପାରଦକୁ ମର୍ଦ୍ଦନ କରି ପାତନ ଯନ୍ତ୍ରରେ ରଖିବ, ଏହାକୁ ପାରଦର ଉତ୍ଥାପନ କହନ୍ତି ।

ଊର୍ଦ୍ଧ୍ୱପାତନ—ତିନିଭାଗ ପାରଦ ଓ ଏକଭାଗ ତାମ୍ରକୁ ଏକତ୍ର ଜମ୍ବୀର ଲେମ୍ବୁ ରସରେ ମର୍ଦ୍ଦନ କରି ଗୋଟିଏ ପେଣ୍ଡୁଲା କରିବ । ଏହି ପେଣ୍ଡୁଲାକୁ ଗୋଟିଏ ହାଣ୍ଡି ମଧ୍ୟରେ ରଖି ଆଉ ଗୋଟିଏ ହାଣ୍ଡି ତା ମୁହଁରେ ଉପରକୁ ମୁଖ କରି ଘୋଡ଼ାଇ ଦେବ । ଉଭୟ ହାଣ୍ଡିର ସନ୍ଧିସ୍ଥାନକୁ ମୃତ୍ତିକାଦ୍ୱାରା ଲେପି ଦେବ । ଏପରି ଲେପିବ, ଯେପରି ତା ଭିତରୁ ବାଷ୍ପ ବାହାରି ନ ପାରେ । ପରେ ତାକୁ ଚୁଲି ଉପରେ ବସାଇ ତଳ ହାଣ୍ଡିର ତଳେ ନିଆଁ ଜାଳିବ ଓ ଉପର ହାଣ୍ଡିରେ ଜଳ ଦେବ । ଜଳ ଗରମ ହେଲେ ଥରକୁଥର ପକାଇ ଦେଇ ଥଣ୍ଡା ଜଳ ଦେଉଥିବ । ଏହିପରି ସମୟ ସମୟରେ ଜଳକୁ ବଦଳାଇ ଦେବ । ଏତଦ୍ଦ୍ୱାରା ତଳ ହାଣ୍ଡିରୁ ପାରା ଉଠିଆସି ଉପର ହାଣ୍ଡିର ତଳେ ଲାଗିଯିବ ।

ଅଧଃପାତନ—ତ୍ରିଫଳା, ଶଜନାମଞ୍ଜି, ଚିତା, ସୈନ୍ଧବ ଓ ରାଇସୋରିଷ ଏସବୁ ଦ୍ରବ୍ୟ ସହିତରେ ପାରଦକୁ ମର୍ଦ୍ଦନ କରୁ କରୁ ଯେତେବେଳେ ପଙ୍କ ପରି ହେବ ସେତେବେଳେ ଏହାକୁ ଭୂଧର ଯନ୍ତ୍ରର ଉପର ହାଣ୍ଡି ଭିତରେ ଲେପ ଦେବ । ଗୋଟିଏ ହାଣ୍ଡି ମୁହଁରେ ଆଉ ଗୋଟିଏ ହାଣ୍ଡିକୁ ଓଲଟାଇ ପକାଇ ରଖି ଭୂମିରେ ଗାତ କରି ପୋତିଲେ ତାକୁ ଭୂଧର ଯନ୍ତ୍ର କୁହାଯାଏ । ତଳ ହାଣ୍ଡିରେ ଜଳ ଦେଇ ଉପର ହାଣ୍ଡି ଭିତରେ ମର୍ଦ୍ଦିତ ପାରଦକୁ ବୋଳ ଦେଇ ଭୂମିରେ ଗାତ ଖୋଳି ପୋତି ଦେବ । ଉପର ହାଣ୍ଡିର ଉପରଭାଗକୁ ଜଳନ୍ତାଅଙ୍ଗାର ନିଆଁରେ ଆଚ୍ଛାଦନ କରିବ । ଏତଦ୍ଦ୍ୱାରା ଉପର ହାଣ୍ଡିରେ ଲାଗିଥିବା ପାରଦ ତଳହାଣ୍ଡିର ପାଣିରେ ପଡ଼ିବ ।

ତିର୍ଯ୍ୟକ୍ ପାତନ—ଗୋଟିଏ ମାଟିଆରେ ଶୋଧିତ ପାରଦ ଓ ଅନ୍ୟ ମାଟିଆରେ ଜଳ ପୁରାଇ ଉଭୟ କଳସୀର ମିଳିତ ମୁହଁକୁ ମାଟିରେ ଲେପି ଦେବ । ପରେ ପାରଦ ଥିବା କଳସୀ ତଳେ ନିଆଁ ଜାଳିବ ଏତଦ୍ଦ୍ୱାରା ପାରଦ ଯାଇ ଜଳ ଥିବା କଳସୀ ଭିତରେ ପଡ଼ିବ । କଳସୀ ଦୁଇଟିକୁ ତିର୍ଯ୍ୟକ୍-ଭାବରେ ବା ଅଣେଇକରି ରଖିବ ।

ବୋଧନ—ପାରଦକୁ ଭୂର୍ଜ୍ଜ ପତ୍ରରେ ବାନ୍ଧି ସୈନ୍ଧବଲବଣ ମିଶ୍ରିତ ଜଳରେ ସିଦ୍ଧ କରିବ । ଏଥିରେ ପାରଦର ଷଣ୍ଢଭାବ ଦୂର ହୋଇ ବୀର୍ଯ୍ୟ ଅଧିକ ହୁଏ ।

ନିୟାମନ—ସାପ୍ନା, ତେନ୍ତୁଳୀଛେଲି, ପିତାକାଙ୍କଡ଼, ବ୍ରାହ୍ମଣ ଝାଟିଆ ଓ କନକଧାତୁରି, ଏସବୁ ଦ୍ରବ୍ୟର କ୍ୱାଥରେ ନିୟମ ପୂର୍ବକ ତିନିଦିନ ମର୍ଦ୍ଦନ କଲେ ପାରଦ ସ୍ଥିର ହୁଏ ।

ଦୀପନ—ଫିଟିକିରି, ପଞ୍ଚଲବଣ, ରାଇଶୋରିଷ, ଶଜନା-ମଞ୍ଜି, ଟାଙ୍ଗଣା, ଏ ସବୁ ଦ୍ରବ୍ୟକୁ ଏକତ୍ର ମର୍ଦ୍ଦନ କରିକା ଓ କାଞ୍ଜିରେ ଗୋଳାଇ ନିୟମାନୁସାରେ ତିନିଦିନ ପାରଦକୁ ଦୋଳା ଯନ୍ତ୍ରରେ ପାକ କରିବେ ।

ଅନୁବାସନ—ଦୀପନ କ୍ରିୟା ପରେ ପାରଦକୁ ଜମ୍ବୀର ଲେମ୍ବୁ ରସରେ ମିଶାଇ ମାଟି ବା ପଥର ପାତ୍ରରେ ରଖି ୧ ଦିନ ଖରାରେ ରଖିଲେ ଅନୁବାସନ କ୍ରିୟା ହୁଏ ।

ଏତେ ପ୍ରକାର ପ୍ରକ୍ରିୟାପରେ ପାରଦ ସାକ୍ଷାତ୍ ଅମୃତ ସ୍ୱରୂପ ହୁଏ ଏବଂ ଔଷଧରେ ବ୍ୟବହୃତ ହେବାର ଯୋଗ୍ୟ ହୁଏ । ଏସବୁ ପ୍ରକ୍ରିୟା ଶ୍ରମସାଧ୍ୟ ।

ହିଙ୍ଗୁଳରେ ପାରା ଥାଏ । ହିଙ୍ଗୁଳକୁ ନିମ୍ବପତ୍ର ରସରେ ବା ଜମ୍ବୀର ଲେମ୍ବୁ ରସରେ ଏକପ୍ରହର କାଳ ମର୍ଦ୍ଦନ କରିବ । ପରେ ଟିକି କରିବ, ଶୁଖିଗଲେ ଗୋଟିଏ ହାଣ୍ଡି ମଧ୍ୟରେ ରଖିବ । ସେହି ହାଣ୍ଡି ମୁହଁରେ ଗୋଟିଏ ପଲମ ଚିତ୍ କରି ଘୋଡ଼ାଇ ଦେବ । ତାହା ପରେ ସେହି ପଲମରେ ଥିବା ପାଣି ଗରମ ହେଲେ ବଦଳାଇ ଥଣ୍ଡା ଜଳ ଦେଉଥିବ । ଏପରି ୩୦ ଥର ପାଣି ବଦଳାଇବ । ଏପରି କଲେ ହିଙ୍ଗୁଳସ୍ଥ ପାରଦ ଉପରକୁ ଉଠି ପଲମ ପିଠିରେ ଲାଗିବ । ଏ ପାରଦ ନାଗାଦି ଦୋଷବର୍ଜ୍ଜିତ, ଏହାର ଶୋଧନାଦି ଆବଶ୍ୟକ ନାହିଁ । ଏହା ଔଷଧରେ ବ୍ୟବହାର କରାଯାଏ ।

ଷଡ଼୍ଗୁଣ ବଳିଜାରଣ ବିଧି ।

ବାଲୁକା ଯନ୍ତ୍ର ମଧ୍ୟରେ ଗୋଟିଏ ମାଟି ପାତ୍ରରେ ପାରଦର ସମପରିମିତ ବଳି ବା ଗନ୍ଧକ ରଖି ପାକ କରିବ । ଗନ୍ଧକ ତରଳ ତେଲ ପରି ହେଲେ ସେଥିରେ ପାରଦ ପକାଇବ । କିଛିକ୍ଷଣ ପରେ ପୁନରାୟ ଗନ୍ଧକ ଚୂର୍ଣ୍ଣ ଦେବ । ସେ ଗନ୍ଧକ ତରଳି ଗଲେ ପୁଣି ଗନ୍ଧକଚୂର୍ଣ୍ଣ ଦେବ । ଏପରି ପାରଦର ଛଅଗୁଣ ଗନ୍ଧକ ଦିଆଗଲା ପରେ ବାଲୁକା ଯନ୍ତ୍ରକୁ ଓହ୍ଲାଇ ମାଟିପାତ୍ରକୁ ବାହାର କରି ଦେବ ଏବଂ ପାତ୍ର ତଳେ ଛିଦ୍ର କରି ପାରଦ ବାହାର କରିବ । ଏ ପ୍ରକ୍ରିୟାଦ୍ୱାରା ପାରଦ ନିର୍ଦ୍ଦୋଷ ଓ ସର୍ବରୋଗହର ହୁଏ । ଏହା ପାରଦର

ବିଶେଷ ମୂର୍ଚ୍ଛନା । ଖାଇଲେ ବାଲ୍ପ ପୂର୍ଣ୍ଣ ହେବ, ତା ଉପରେ ଗୋଟିଏ ମାଟିପାତ୍ର ବା ବୋତଲ ଔଷଧପୂର୍ଣ୍ଣ ହୋଇ ଗଳା ପର୍ଯ୍ୟନ୍ତ ବୁଡ଼ି ରହିବ । ଏହାକୁ ବାଲୁକାଯନ୍ତ୍ର କୁହାଯାଏ ।

ପାରଦକୁ ଏହିପରି ପ୍ରକାର ସଂଶୋଧନ ନ କଲେ କଦାପି ଔଷଧରେ ବ୍ୟବହାର କରିବ ନାହିଁ । ଅଶୁଦ୍ଧ ପାରଦ ଔଷଧରେ ବ୍ୟବହୃତ ହେଲେ ପାପ ଦେହ ଫୁଟି ବାହାରକୁ ବାହାର ପଡ଼େ; ନାନାପ୍ରକାର ଉତ୍କଟ ରୋଗ ବାହାର ଶରୀରକୁ ଜାରଖାର ଓ ଛାରଖାର କରି ପକାଏ । ଆଜିକାଲି ଭଲ ଭସ୍ମ ମିଳୁ ନାହିଁ, କେହି କଷ୍ଟ ସହିତ ଭସ୍ମ ମାରଣ କରୁ ନାହାନ୍ତି । ଲୌହ ଭସ୍ମ, ଅଭ୍ର ଭସ୍ମ, ସୁନା ଭସ୍ମ ପ୍ରଭୃତି ତାବତୀୟ ଭସ୍ମ ଔଷଧ ପାଇଁ ଆବଶ୍ୟକ । ମାରଣ ଦୁଇ ପ୍ରକାର, ହଠ ମାରଣ ଓ ପୁଟ ମାରଣ । ହଠ ମାରଣ ସହଜ, ମାତ୍ର ପୁଟ ମାରଣ ସମୟସାପେକ୍ଷ ଓ ବିଶେଷ ଫଳପ୍ରଦ । ଶତ ପୁଟିତ, ସହସ୍ର ପୁଟିତ ଅଭ୍ର ଓ ଲୌହ ବିଶେଷ ଫଳପ୍ରଦ । ମାତ୍ର ଆଜିକାଲି ଏପରି ମାରଣ କରିବା ପାଇଁ ବୈଦ୍ୟମାନଙ୍କର ଧୈର୍ଯ୍ୟ ନାହିଁ । ବଜାରରେ ଯେଉଁ ସବୁ ଭସ୍ମ ମିଳେ, ତାହା ବିଶ୍ୱାସଯୋଗ୍ୟ ନୁହେଁ । ସୁତରାଂ ଆୟୁର୍ବେଦୋକ୍ତ ଔଷଧର ଫଳ ଘଟୁ ନାହିଁ ।

ସନ୍ଦର୍ଭ ଲେଖକ—ଶ୍ରୀ ଜଗବନ୍ଧୁ ସିଂହ । ]

୧୨ । ସୁବର୍ଣ୍ଣ—12. Gold. ୧୩ । ଶାରୀରିକ ସୁଖଭୋଗ; ବିଷୟସୁଖାସକ୍ତି—13 Wordly enjoyment; enjoyment of wordly pleasures. ୧୪ । ଇନ୍ଦ୍ରିୟଦ୍ୱାରା ସୁଖାସ୍ୱାଦନ ବା ସୁଖଭୋଗ; କାମାସକ୍ତି କାମକେଳି —14. Carnal enjoyment; sensuality; dalliance. ୧୫ । ମର୍ମ; ଗୂଢ଼ଭାବ; ଅଭିପ୍ରାୟ—15.Purport; intention. (ଉ—କଥାରସବୁଝି ନ ପାରିଲୁ—ଭାଗ । କଥା କହୁଥାଏ ବଡ଼ ରସରେ, ମନେ ଲାଗୁଥାଏ ପରିହାସରେ—ଭଗ) । ୧୬ । (ବୈଦ୍ୟଶାସ୍ତ୍ର) ପାରଦଜାତୀୟ ଖଣିଜପଦାର୍ଥଗଣ--16. Minerals akin to quicksilver. [ଦ୍ର—ଏହି ଶ୍ରେଣୀର ବସ୍ତୁମାନ, ଯଥା—

ରସାଞ୍ଜନ—Sulphurate of antimony.

ଖଳାଞ୍ଜନ—Green vitriol.

ହିଙ୍ଗୁଳ—Vermilion.

ଲୋବାନ; ଶିଳାରସ—Olibanum; benzoin.

ସିନ୍ଦୂର—Oxide of lead.

୧୭ । ଖଣିଜ ଲବଣାଦି ( ଯଥା—ସୋରା, ଗନ୍ଧକ )—17. Mineral salts. ୧୮ । କୌଣସି ପଦାର୍ଥର ସାରଭାଗ—18. Essence of a thing. (ଯଥା—ବୃକ୍ଷ ଭୂମିରୁ ରସ ଗ୍ରହଣ କରେ ।) ୧୯ । ପୂଜ—19. Pus; purulent matter. ୨୦ । ବୃକ୍ଷାଦିରୁ ଯାହା ବାହାର କରାଏ—20. The sap of trees. ୨୧ । ନବ ସଂଖ୍ୟା (ହି. ଶ. )—21. The number nine. ୨୨ । ହିଙ୍ଗୁଳ (ହି. ଶ)—22. Vermilion. ୨୩ । ପ୍ରକାର; ଢଙ୍ଗ—23. Mode; manner. (ଉ—କଥା କହୁଥାଏ କେଉଁ ରସରେ, ମୋତେ ଲାଗୁଥାଏ ପରିହାସରେ—ଭଗ ।) ୨୪ । ବୀର୍ଯ୍ୟ; ରେତଃ—24. Semen virile. ଦେ. ବି—୧ । ରଙ୍ଗ; ଥଟ୍ଟା; କୌତୁକ—1. Jesting. ୨ । ରସିକତା—2 Wit; humour; gallantry. ୩ । ରୂପ; ମାଧୁର୍ଯ୍ୟ; ସୌନ୍ଦର୍ଯ୍ୟ; ଲାବଣ୍ୟ—3. Beauty; charm. ୪ । ( ସଂ. ରଙ୍ଗ )—ରଙ୍ଗା; ଧଳା ଧାତୁ—4. Tin. ୫ । ସୀସା ଧାତୁ—5. Lead. ୬ । ମାଂସାଦିର କ୍ୱାଥ; ସୋରୁଆ—6. Soup. ୭ । ଚିନି ବା ଗୁଡ଼ ସଙ୍ଗେ ପାଣି ମିଶାଯାଇ ଅଗ୍ନି ଉତ୍ତାପରେ ଅଉଟା ହୋଇ ଘଞ୍ଚ କରାଯିବା ଦ୍ରବ୍ୟ; ଶିରା—7. Syrup; thickened liquid made by boiling sugar with water. ୮ । ଦେହସ୍ଥ ରକ୍ତ—8. Blood. (ଯଥା—ତୋ ମୁଣ୍ଡରୁ ରସ ବାହାରି ଦେବି ।) ୯ । ଖଜୁରି, ତାଳ, ନଡ଼ିଆ ଗଛର କଷାରୁ ବାହାର କରାଯିବା ତାଡ଼ି—9. Fermented juice Toddy ( from date, palm and cocoanut trees ) ୧୦ । ଗୁଡ଼, ମହୁଲ ଓ ପୁଷ୍ପ ଆଦିରୁ ଉତ୍ପନ୍ନ ମଦ; ଦ୍ରାକ୍ଷାରସ—10. Wine distilled from flowers etc. ୧୧ । ଦୁଗ୍ଧ; ଦୁଧ, ଗୋରସ—11. Milk. ୧୨ । ମାଧୁର୍ଯ୍ୟ—12. Sweetness. (ଉ—ବାପ ଖାଇଲା, ପୁଅ ଖାଇଲା, ଆଉ କି ସେଥିରେ ରସ ରହିଲା ?) ୧୩ । ଶକ୍ତି; ତେଜ—13. Vigour; energy; virility, potency. ୧୪ । ଅହଙ୍କାର; ଗର୍ବ; ଦର୍ପ—14. Pride. ୧୫ । ବାରୁଦ—15. Gun powder. (ଉ—କଥାକେ କଥାକେ ଥୋକେ ଯାଉଛନ୍ତି ରୁଷି ରସ ବାଣିଯୋଗେ ଯଥା—ଗ୍ରଧାନାଥ. ମହାଯାତ୍ରା ।) ୧୬ । ବ୍ୟସନ—16. Vices. (ଉ—ଜୁଆ ଖେଳଟା ପାପ ରଙ୍ଗ, ପଶା ନ୍ୟାୟବଳ ବେଶ୍ୟା ସଙ୍ଗ ଏ ଷଡ଼ରସରେ ମାତଇ ଯିଏ, ଭୋକେ ରହି ଥାକର ଖାଏ—ଭଗ) ୧୭ । ( ଲକ୍ଷଣାର୍ଥ ) ଧନସମ୍ପତ୍ତି—17. ( figurative ) Riches; money; wealth; means. ୧୮ । ସଙ୍ଗୀତରେ ଓ ରଚନାଦିରେ ଥିବା ଭାବ—18. The underlying idea running in a composition or song. ( ଉ—ପୃଥ୍ୱୀ ଚକ୍ରବାଳ ପରିଚ୍ଛିନ୍ନ ବାଲୁକେଶ, ପ୍ରସରିଲେ ଏ ରସ ଗୋ—କବିସୂର୍ଯ୍ୟ. ବିଶୋରଚମ୍ପୂ ଛ ଗୀତ ।) ୧୯ । କୌତୁକ—19. Amusement. ( ଉ—ସେ ରସାନ୍ତରେ, ସ୍ୱେଦ କାତରେ, ସ୍ନେହ ଚିତ୍ତରେ, ସତେ—ଉଞ୍ଜ. ପ୍ରେମସୁଧାନିଧି । )

ରঙ্গ রস; বাং রাঙ্গ; যুস রস; রস রস; রস রস; রস রস; গোরস; রস রস; বারুদ বারূদ; রস রস

୨୦ । ଘୋଡ଼ା ଓ ହାତୀଙ୍କ ଗୋଡ଼ ତଳପାରୁ ଏକପ୍ରକାର ଜଳୀୟ ପଦାର୍ଥ ନିର୍ଗତ ହେବା ରୋଗ—20. A disease of the elephants and horses resulting in the exudation of a secretion from the soles. ପ୍ରାଦେ (ମେଦିନୀପୁର) ବି (ଭୂଲ ବ. ରସ)- ୧ । ଅଙ୍ଗୁଦୋରୁଅ—1.The juice of sugarcane. ୨ । ଖଜୁରିରସ; ତାଡ଼ି—2. Toddy, juice of date palm tree.

ରସକ—ସଂ. ବି (ରସ+କ)—୧ । କ୍ୱଥିତ ମାଂସ—1. Stewed
Rasaka meat. ୨ । ଫିଟକିରି (ହି. ଶ)—2. Alum. ୩ । ଖପର (ହି. ଶ. )—3. Antimony ସଂ. ବିଣ—ରସଯୁକ୍ତ—Juicy.

ରସକର୍ପୂର—ସଂ. ବି—ପାରଦସଂସ୍କୃତ ଔଷଧବିଶେଷ—A white
Rasakarpūra sublimate or mureate of mercury;
(ରସକପୂର—ଦେଶଜରୂପ) Perchloride of mercury. [ଦ୍ର—ଶୋଧିତ ପାରଦ ଓ ସମପରିମିତ ଗେରୁ, ଇଟା, ଖଡ଼ି, ଫିଟକିରି, ସୈନ୍ଧବଲବଣ, ଭଇମାଟି, କ୍ଷାରଲବଣ, ରଞ୍ଜକମାଟି ଅର୍ଥାତ୍ ହାଣ୍ଡି ରଙ୍ଗାଇବା ପାଇଁ ବ୍ୟବହୃତ ନାଲି ମାଟି ବା ଗାଡ଼ୁ, ଏ ସମସ୍ତ ଦ୍ରବ୍ୟ ଏକତ୍ର କରି ଗୋଟିଏ ହାଣ୍ଡିରେ ପୂରାଇ ତାହା ଉପରେ ଆଉ ଗୋଟିଏ ହାଣ୍ଡି ଉବୁଡ଼ାଇ କନା ଓ ମାଟିଦ୍ୱାରା ଦୁଇ ହାଣ୍ଡିର ସନ୍ଧିକୁ ନିରୁଜ କରି ବନ୍ଦ କରି ହାଣ୍ଡିତଳେ ୪ ଦିନ ନିଆଁ ଜାଳିବ ଓ ଏକ ଅହୋରାତ୍ର ହାଣ୍ଡିକୁ ଅଙ୍ଗାର ଉପରେ ରଖିବ । ପରେ ହାଣ୍ଡି ଶୀତଳ ହେଲେ ତାକୁ ଖୋଲି ଉପର ହାଣ୍ଡିର ଭିତର ଦେହରେ କର୍ପୂରପରି ଯେଉଁ ଢେଲା ଜୋଳି ବସିଥିବ ତାହାକୁ ଚାଞ୍ଛିଲେ ତାହାହିଁ ରସକର୍ପୂର । ଏଥିରୁ ୨ ରତି ଲବଙ୍ଗ, ଜାଫ୍ରାନ, ଚନ୍ଦନ ବା ମୃଗନାଭି ସହିତ ସେବନ କଲେ ଉପଦଂଶ, କୁଷ୍ଠ, କ୍ଷତାଦି ଅସେଗ୍ୟ ହୋଇ ବଳବୀର୍ଯ୍ୟାଦି ବୃଦ୍ଧି ହୁଏ । ବଜାରରେ ମିଳୁଥିବା ରସକର୍ପୂରରେ ବ୍ୟବହୃତ ପାରଦ ଶୋଧିତ ହୋଇ ନ ଥାଏ ଓ ତାହା ବ୍ୟବହାର କଲେ ଉପଦଂଶ ଆଦି ଅଶୁପ୍ରଶମିତ ହୁଏ ସତ୍ୟ, କିନ୍ତୁ ପରିଣାମରେ ଦେହସାକ ପାରଦଜନ୍ୟ ଘାଅ ବାହାରିଯାଏ । ଅଶିକ୍ଷିତ ବୈଦ୍ୟମାନେ ବଜାରରେ ମିଳୁଥିବା ଅବିଶୁଦ୍ଧ ରସକର୍ପୂରକୁ କନାରେ ଗୁଡ଼ାଇ ବଳିତା କରି ତହିଁର ଧୂଆଁକୁ ରୋଗୀକୁ ସେବନ କରାଇ ଦାନ୍ତମୂଳକୁ ଫୁଲାଇବାଦ୍ୱାରା ମେହ ଓ ଉପଦଂଶ ରୋଗକୁ କମ ଭ କରନ୍ତି, କିନ୍ତୁ କିଛିଦିନ ପରେ ରୋଗୀର ଦେହସାକ ପାରି ଫୁଟିଯାଏ ଅର୍ଥାତ୍ ଛେକା ଛେକା କଷ୍ଟପ୍ରଦ ବ୍ରଣମାନ (mercurial eruptions) ବାହାରିଯାଏ ଓ ସମୟ ସମୟରେ ତାହା ଭୀଷଣ କୁଷ୍ଠରୋଗରେ ପରିଣତ ହେବାର ଦେଖା ଅଛି । ରସକର୍ପୂର ଦେଖିବାକୁ କର୍ପୂର ପରି ଧଳା ।]

ରସ କଣ୍ଠି—ଦେ. ବି—ସୀସା ବା ରଙ୍ଗାରେ ନିର୍ମିତ କଣ୍ଠି—Necklace
Rasa kanṭhi made of lead balls. [ଦ୍ର—ଏହାପରି
ବସକଣ୍ଠୀ रांगाका कंठा ପିନ୍ଧିଲେ ରସ ଶୁଷ୍କ ଓ ରସ ମୃଦୁ ଆଦି ହୁଏ ।]

ରସ କଦମ୍ବ—ଦେ. ବି.—ବାରୁଦ ଦ୍ୱାରା ପ୍ରସ୍ତୁତ କଦମ୍ବ ବୃକ୍ଷ ପରି ବାଣ
Rasa kadamba ବିଶେଷ—Name of a firework
ବସ କଦମ୍ବ appearing like a burning tree when
বাহাকাম্বাড lighted.

ରସ କଦମ୍ବା—ପ୍ରାଦେ. (ପୁରୀ).—୧। ମିଷ୍ଟାନ୍ନ ବିଶେଷ—1. A kind
Rasa kadambā of sweet. ୨ । (ବ୍ୟଙ୍ଗାର୍ଥ) ଗାଳି ବିଶେଷ—2 (irony) A term of abuse.

ରସ କଦଳୀ—ଦେ. ବି.—ରସ କଦମ୍ବା (୨) (ଦେଖ) Rasa kada-
Rasa kadaḷi mbā (2) (see.)

ରସକଳା—ସଂ. ବି.—୧ । ମୃଦୁ ମିଷ୍ଟ ସ୍ୱର—1. A low sweet
Rasakaḷā sound. ୨ । ପାନମତ୍ତ ବ୍ୟକ୍ତିର ଗାନ—2. The song of an intoxicated person. ୩ । ରସ ବିଷୟରେ ଶୃଙ୍ଖଳା—3. Wit;witticism;gallantry. ଦେ. ବି. ସ୍ତ୍ରୀ—୧ । ସ୍ତ୍ରୀଲୋକଙ୍କ ନାମ—1. A name given to females. ୨ । ଖୋରଧାନିବାସୀ ଓଡ଼ିଆ ପ୍ରାଚୀନ କବି ଲୋକନାଥ ବିଦ୍ୟାଧରଙ୍କ ରଚିତ ଆଦିରସାତ୍ମକ କାବ୍ୟ—2. Name of an Oriya poem by poet Lokanātha.

ରସ କଳ୍ପଲତା—ଦେ ବି.—ଉତ୍କଳର ପ୍ରାଚୀନ କବି ଗଦାଧର
Rasa kalpa latā ପଟ୍ଟନାୟକଙ୍କ ରଚିତ ନାୟକ-ନାୟିକାତ୍ମକ ଓଡ଼ିଆ କାବ୍ୟ—Name of an Oriya poem by an ancient poet Gadādhara.

ରସ କଲ୍ଲୋଳ—ଦେ ବି.--ଓଡ଼ିଆ କବି ଦୀନକୃଷ୍ଣ ଦାସଙ୍କର ରାଧାକୃଷ୍ଣ ଲୀଳା
Rasa kalloḷa ବର୍ଣ୍ଣନାତ୍ମକ ଛନ୍ଦ କାବ୍ୟ—A poetical work by Dinakrushna Das. [ଦ୍ର—ଛନ୍ଦମାନଙ୍କର ପ୍ରତ୍ୟେକ ଧାଡ଼ିର ମୂଳ ଅକ୍ଷର କ ଅଟେ ।]

ରସକାରକ—ସଂ. ବିଣ —୧ । ଦ୍ରବକାରକ—1. Liquifying.
Rasakārakā ୨ । ଭାବଉତ୍ପାଦକ—2. Producing
(ରସକାରୀ—ଅନ୍ୟରୂପ) sensation or emotion. ୩ । ସ୍ୱାଦଦାନକାରୀ—3. Giving relish or taste.

ରସ କୂପ—ସଂ.ବି.(୬ଷ୍ଠୀ ତତ୍)--ରସ ଭଣ୍ଡାର--Store of pleasures.
Rasa kūpa [ଉ—ଜାନୁରେ ଅବଶେ ବଶେ, ସୁରସ କୂପରେ ପଶେ, କୋଟିଲେ ଆନନ୍ଦପ୍ରବାସେ ଦାସେ—ଉଞ୍ଚ.ପ୍ରେମ ସୁଧାନିଧି ।]

ରସକୂଲ୍ୟା—ଦେ. ବି—ବାଣୀ ବା ବୃତ୍ତିଣୀ ବିଶେଷ—A metre in
Rasakūlyā Oriya literature. [ଦ୍ର—ରାଗ ତଳେ
(ରସକୋଇଲ୍ଲ—ଅନ୍ୟରୂପ) ଚୋଟ୍ଦେଖ]—ସଂ.ବି. ପୁରାଣ ଅନୁସାରେ କୁଶଦ୍ୱୀପର ନଦୀ ବିଶେଷ (ହି.ଶ)—Name of a mythological river.

ରସକେଦାର —ଦେ· ବି--ଗଦ ବିଶେଷ—A kind of root.
Rasa kedāra (ଉ—ଅନଙ୍ଗ-ପ୍ରେତ ରସକେଦାର ଗଦ—ଭଞ୍ଜ)
একপ্রকাবগন্দ হুঁহাগম্বু (ଦ୍ର—ଏ ଗଦ ବ୍ୟବହାର କରି ଗୁଣିଆମାନେ ଭୂତ ପ୍ରେତାଦିଙ୍କୁ ଛଡ଼ାନ୍ତି ।)

ରସ କେଳି—ଦେ. ବି. (ମ. ପ. ଗ୍ଲୋ.)—୧ । ରସଲୀଳା (ଦେଖ)—
Rasa keḷi 1. Rasalīḷā (See). ୨। ରସରେ ବା ଗିରିବରେ ସିଦ୍ଧ ହୋଇଥିବା ଏକପ୍ରକାର ପିଠା—2. A kind of

cake moistened in syrup. ସ. ବ—୧ । ବିହାର; କ୍ରୀଡ଼ା (ହି. ଶ)—1. Sport. ୨ । ମଉଜ; ମଜା କରିବା (ହି.ଶ)— 2. Merriment.

ରସ କେଶ(ସ)ର—ସ. ବି.—କର୍ପୂର -Camphor.
Rasakeśa(sa)ra

ରସକୋରା—ଦେ. ବି.—ନଡ଼ିଆ କୋରାକୁ ଚିନିରେ ପାଗକରାଯାଇ ବନା ଯାଇଥିବା ଲଡ଼ୁ—Sweetmeat balls made by the scrapings of cocoanut kernel soaked in syr (ଦ୍ର—ନଡ଼ିଆ ଛେନା ପଣ୍ଡ ଦୁଧ ରସକୋରା—କୃଷ୍ଣସିଂହ. ମହାଭାରତ. ସଭା ।)
Rasakorā
বসকোরা रसकोरा

ରସ କୌତୁକ—ସ. ବି.—ରସଯୁକ୍ତ କୌତୁକ—Dalliance, amusements in connection with love,
Rasa kautuka
(ରସକଉତୁକ—ଦେଶଜରୂପ)

ରସ କୌତୁକୀ—ସ ବଣ—ରସକ୍ରୀଡ଼ା ପ୍ରିୟ—Fond of dalliance.
Rasa kautuki
(ରସକୌତୁକମା—ସ୍ତ୍ରୀ) [ରସକଉତୁକୀ—ଦେଶଜରୂପ(ପୁଂ. ସ୍ତ୍ରୀ)]

ରସ କ୍ରୀଡ଼ା—ସ. ବ (ମ.ପ.ଲେ.)—ରସିକ ରସିକାଙ୍କର କେଳି ଓ କୌତୁକାଦି ରହସ୍ୟ—Dalliance; various acts of merriment between lovers; feats of gallantry.
Rasa krīrdā

ରସଖଇ—ଦେ. ବି—ଚିନିରେ ପ୍ରସ୍ତୁତ ଭୃଷ୍ଟ ଭୃଷ୍ଟା—Fried paddy soaked in syrup of white sugar.
Rasa khai
চিনির মুড়কী चिनिकीलाई

ରସଖର୍ପର—ସ. ବି—ଖର୍ପର ନାମକ ଉପଧାତୁ (ହି. ଶ)—Antimony.
Rasakharpara

ରସ ଗଡ଼ି(ଳି)ତଂ—ଦେ. ବାକ୍ୟ (ସ ରସଗଳନ୍ତଂ=ରସଗଳୁଅଛି)—ରସ ଗଡ଼ିବା—Oozing of juice. [ଦ୍ର—ରସ ଗଳନ୍ତଂ ଥପଂ ଥପଂ (ଟୋପା ଟୋପା ହୋଇ କୌଣସି ଦ୍ରବ୍ୟରୁ ରସ ଗଳୁଅଛି) । ଛଗ ।]
Rasagardi(li)tm
বসগলিতং रसटपकताहै

ରସ ଗଡ଼ି(ଳି)ବା—ଦେ. ବି—କୌଣସି ଦ୍ରବ୍ୟରୁ ରସ ନିର୍ଗତ ହେବା—The oozing of juice from a thing.
Rasa gardi(li)bā
বসগড়া रसटपकना
[ରସ ନଇଁଡ଼ିବା, ରସ ନିଗିଡ଼ିବା, ରସ ବୋହିବା—ଅନ୍ୟରୂପ]
(ରସ ଗଡ଼ା[ଳା]ଇବା, ରସ ନଇଁଡ଼ାଇବା, ରସ ନିଗାଡ଼ିବା, ରସ ବୁହାଇବା—ଣିଜନ୍ତରୂପ)

ରସଗତ ଜ୍ୱର—ସ. ବି—ଶରୀରରେ ରସଧାତୁର ଆଧିକ୍ୟ ଜନିତ ଜ୍ୱର—Fever due to the excess of gastric juice in the system.
Rasagata jwara

ରସ ଗନ୍ଧ—ସ. ବି—ଗନ୍ଧରସ; ଗୁଗ୍ଗୁଳ—Bdellium; gum myrrh.
Rasa gandha

ରସଗନ୍ଧକ—ସ. ବି—୧ । ରସଗନ୍ଧ (ଦେଖ)—1. Rasagandha (See). ୨ । ଗନ୍ଧକ—2. Sulphur. ୩ । ରସାଞ୍ଜନ (ହି. ଶ)—3. Antimony. ୪ । ଗନ୍ଧବୋଲ (ହି. ଶ)—4. Myrrh. ୫ । ହିଙ୍ଗୁଳ (ହି ଶ)—5. Vermilion.
Rasagandhaka

ରସ ଗର୍ଭ—ସ. ବଣ (ବହୁବ୍ରୀହି)—୧ ରସ ବା ରସିକତାପୂର୍ଣ୍ଣ—1. Witty; humorous. ୨ । କାବ୍ୟ ରସରେ ପୂର୍ଣ୍ଣ—2. Sentimental. ୩ । ଯାହାର ମଧ୍ୟସ୍ଥଳ ରସରେ ପୂର୍ଣ୍ଣ—3. Full of juice inside. ସ. ବ—୧ । ରସାଞ୍ଜନ (ଦେଖ)—1 Rasāñjana (See). ୨ । ହିଙ୍ଗୁଳ (ଦେଖ)—2. Hingula. (See).
Rasa garbha
[ରସଗର୍ଭକ—ଅନ୍ୟ ବଣରୂପ]

ରସ ଗୁ(ଗୋ)ଲ୍ଲ(ଲ୍ଲା)—ଦେ.ବ (ସ. ରସ+ଗୋଲକ)—ଦୁଧଛେନାରେ ପ୍ରସ୍ତୁତ ଓ ଚିନିରେ ପାକ କରାଯାଇଥିବା ମିଷ୍ଟାନ୍ନ—A kind of sweetmeat. [ଦ୍ର—ସକଳର ମଣ୍ଡା ହେଲା ସତ୍ୟ ରସଗୋଲା । ଚନ୍ଦ୍ରମଣି. ବନମାଳୀଦାସ । ]
Rasa gu(go)llā(llā)
বসগোল্লা रसगुल्ला

ରସଗ୍ରହ—(ରସ+ଗ୍ରହ୍. ଧାତୁ+କର୍ତ୍ତୃ. ଅ)—ଜିହ୍ୱା (ହି. ଶ)—Tongue.
Rasagraha

ରସ ଗ୍ରହଣ—ସ. ବ (ଷଷ୍ଠୀ ତତ୍)—୧ । ବକ୍ତୃତା ଓ କାବ୍ୟାଦିର ରସ ଆସ୍ୱାଦନ—1. Enjoying the sentiments or wit of a writing or speech —୨ । ସ୍ୱାଦ ଗ୍ରହଣ—2. Enjoying the taste or relish. ୩ । ସାରଗ୍ରହଣ —4. Collecting the essence from a thing.
Rasa grahaṇa
(ରସଗ୍ରାହୀ—ବଣ. ପୁଂ) (ରସଗ୍ରାହିଣୀ—ବଣ ସ୍ତ୍ରୀ)

ରସଘ୍ନ—ସ. ବ—ଟଙ୍କଣ; ଠାଙ୍ଗଣା—Borax. ସ. ବଣ—ରସନାଶକ—Destroying the juice or sap.
Rasaghna

ରସ ଚାଖିବା—ଦେ. କ୍ରି—ମାଧୁର୍ଯ୍ୟ ଆସ୍ୱାଦନ କରିବା—To taste the sweetness of a thing.
Rasa chākhibā
রসচাখা, বসআস্বাদ করা रसचखना

ରସ ଚି(ଚୁ)ପୁଡ଼ିବା ଦେ. କ୍ରି—୧ । କୌଣସି ଦ୍ରବ୍ୟକୁ ଦଳି ଚିପିଁରୁ ରସ ବାହାର କରିବା—1.To press out juice from a thing. ୨ । (ଲକ୍ଷଣାର୍ଥ ଓ ବ୍ୟଙ୍ଗ) କୌଣସି ଦ୍ରବ୍ୟର ବା ବ୍ୟକ୍ତିର ଅନ୍ତରେ ମାଧୁର୍ଯ୍ୟକୁ ବା ରସିକତାକୁ ବାହାର କରିବା ବା ଉପଭୋଗ କରିବା—2. ( figurative and ironical ) To bring out or enjoy the tender or sweet sentiments out of a person or thing. [ଦ୍ର—ଏହିପରି ଲକ୍ଷଣାର୍ଥରେ ରସ ଛାଣିବା, ରସ-ଚାଣିବା, ରସ ଶୋଷିବା, ରସ ହିଂକିବା, ରସ ନଇଁଡ଼ିବା, ରସ ନିଗାଡ଼ିବା ଆଦି ହୁଏ ।]
Rasa chi(chu)purdibā
বসনিংগড়ান रसनिचोडना, रसखींचना

ରସ ଚୁମ୍ବିବା—ଦେ.କ (ବ୍ୟଙ୍ଗ)—କୌଣସି ରସମୟ ଭାବକୁ ଆସ୍ୱାଦନ ବା ଉପଲବ୍ଧ କରିବା—To enjoy the sweetness or humour of a thing.
Rasa chumbibā
বসগ্রহণকবা रसचूमना
(ରସଗ୍ରହଣ କରିବା—ଅନ୍ୟରୂପ)

ରସଜ—ସ. ବଣ—ରସରୁ ଉତ୍ପନ୍ନ—Produced from Rasa resulting from Rasa. ସଂ. ବ—୧ । ଶୋଣିତ; ରୁଧିର; ରକ୍ତ—1. Blood. ୨ । ମଦ୍ୟକୀଟ—2. Insects born of fermentation of.
Rasaja

liquids. ୩ । ତରଳୀୟ ଦ୍ରବ୍ୟଜାତ କୀଟାଣୁ—3. Animalculae produced in liquids. ୪ । ଶୋଣିତରୁ ଉତ୍ପନ୍ନ କୀଟାଣୁ—4. Animalculae produced in blood. ୫ । ଗୁଡ଼—5. Molasses; treacle. ୬ । ସୁରାର କାଙ୍କି (ବ୍ର. ଶ)—6. The dregs of wine ୭ । ରସାଞ୍ଜନ (ବ୍ର. ଶ)—7. Antimony.

**ରସଜନ୍ୟ**—ସଂ. ବିଣ (୫ମୀ)—ରସଜାତ (ଦେଖ)
Rasajanya Rasajāta. (See)

**ରସ ଜାତ**—ସଂ.ବିଣ (୫ମୀ ତତ୍)—ରସରୁ ଉତ୍ପନ୍ନ—Produced
Rasa jāta from Rasa. ସଂ. ବି—୧ । (୬ଷ୍ଠୀ ତତ୍) ରସସମୂହ—1. Multitude or collection of Rasa ୨। (୫ମୀ ତତ୍) ରସାଞ୍ଜନ (ବ୍ର.ଶ)—2. Antimony.

**ରସଜ୍ଞ**—ସଂ. ବିଣ. ପୁଂ (ରସ+ଜ୍ଞା. ଧାତୁ+କର୍ତ୍ତୃ. ଅ)—୧ । ଭାବ
Rasajña ଗ୍ରହଣ କରିବାରେ ସମର୍ଥ—1. Able to appre-
[ରସଜ୍ଞତା—ଅନ୍ୟରୂପ] ciate wit. ୨ । ରସ ବିଷୟରେ
[ରସଜ୍ଞା—ସ୍ତ୍ରୀ] ଅଭିଜ୍ଞ—2 Understanding the wit
[ରସଜ୍ଞତା(ତ୍ୱ)—ବି] or sentiment. ୩ । ସାମାଜିକ—3. Social. ୪ । ନିପୁଣ; କୁଶଳ (ବ୍ର. ଶ)—Skilful; expert. ସଂ. ବି—୧। କବି—1. Poet. ୨ । ରସିକ—2. Witty person. ୩ । ଭାବୁକ—3. Thoughtful person. ୪ । ରସାୟନ ଶାସ୍ତ୍ରରେ ପଣ୍ଡିତ—4. Chemist; alchemist. ୫ । ରସାୟନ ବା ପାରଦ ଘଟିତ ଔଷଧ ପ୍ରସ୍ତୁତ ଓ ପ୍ରୟୋଗ କରିବାରେ ପଟୁ—5. A physician expert in mercurial treatment.

**ରସଜ୍ଞା**—ସଂ. ବି. ସ୍ତ୍ରୀ (ରସ+ଜ୍ଞା. ଧାତୁ+କର୍ତ୍ତୃ. ଅ+ଆ)—୧ । ରସନା।
Rasajña ଜିଭ—1. Tongue. ୨ । ଗଙ୍ଗାନଦୀ [ବ୍ର. ଶ]—2. The Ganges ସଂ. ବିଣ—ରସଜ୍ଞର ସ୍ତ୍ରୀଲିଙ୍ଗ—Feminine of Rasajña.

**ରସ ଜ୍ଞାନ**—ସଂ. ବି (୬ଷ୍ଠୀ ତତ୍)—୧ । ରସବୋଧ; ରସାନୁଭାବକତା—
Rasa jñāna 1. Ability to appreciate wit or sentiment ୨ । ରସ ସମ୍ବନ୍ଧେ ଜ୍ଞାନ—2. Knowledge about Rasa.

**ରସ ଜ୍ୱର**—ସଂ. ବି—୧। ଅପରିମିତ ପାନ ଓ ଖାଦ୍ୟଦୋଷରୁ ଜାତ ଜ୍ୱର-
Rasa jwara 1. Fever due to intemperance or indigestion. ୨ । ବାତ ଜ୍ୱର—2. Moon fever, filarial fever.

**ରସ ଜ୍ୟେଷ୍ଠ**—ସଂ.ବି(୬ଷ୍ଠୀ ତତ୍)—ମଧୁର ରସ - 1. The sweet
Rasajyeshṭa taste. ୨। ମଧୁରତା—2. Sweetness ୩ । ଆଦିରସ; ଶୃଙ୍ଗାରରସ—3. The sentiment of love

ରସଡ(ଡି)ବା(ବ୍ବା)—ଦେ. ବି— ଟିଣଧାତୁର ପତ୍ରରେ ନିର୍ମିତ କଉଟ ବା
Rasaḍa(ḍi)bā(bbā) ସମ୍ପୁଟ—A small circular
ଟିନେରକୌଟା टीन(रांगा)का डब्बा tin box; a tin case,

ରସଡବିଆ (ସ୍ତ୍ରୀ)
ରସଡବି ବି) }—ଅନ୍ୟରୂପ

**ରସତଡ଼କା**—ଦେ . ବି—ରସତାନକ (ଦେଖ)
Rasa taṛdakā Rasatānaka (See)

**ରସତରଙ୍ଗ**—ସଂ. ବି (ରୂପକ)—ତରଙ୍ଗରୂପରେ ଖେଳୁଥିବା ରସିକତା-
Rasataraṅga Wit compared to a wave. ଦେ. ବି—ଉପେନ୍ଦ୍ରଭଞ୍ଜଙ୍କ ରଚିତ କ୍ଷୁଦ୍ର ପଦ୍ୟକାବ୍ୟବିଶେଷ Name of a poem by the Oriya poet Upendrabhanja. [ ଦ୍ର—ଏହା ଅବନା ଅକ୍ଷରରେ ରଚିତ । ଏହାକୁ ମଧ୍ୟ ଅବନା ରସତରଙ୍ଗ କହନ୍ତି । ]

**ରସ ତାନକ**—ସଂ. ବି (ଶିଶୁର ରସ ଦୂଷିତ ହେବାରୁ ଜାତ ତାନକ
Rasa tānaka ରୋଗ ) ଶିଶୁର ମୂର୍ଚ୍ଛାରୋଗବିଶେଷ; ପୁଅ
बमतडका ରୋଗ—Infantile convulsions.

**ରସ ତେଜଃ**—ସଂ. ବି—ରୁଧିର; ରକ୍ତ—
Rasa tejaḥ Blood

ରସଦ—ବୈଦେ. ବି (ଫା. ରସଦ୍=ଅପକ୍ୱ ଭୋଜ୍ୟଦ୍ରବ୍ୟ)—୧ ।
Rasad ସୈନ୍ୟମାନଙ୍କୁ ଦିଆଯିବା ଅପକ୍ୱ ଖାଦ୍ୟସାମଗ୍ରୀ—
रसद रसद् 1. Victuals supplied to the army. ୨ । ମଫସଲ ଗସ୍ତରେ ଯିବା ହାକିମମାନଙ୍କୁ କର୍ମଚାରୀମାନଙ୍କ ଦ୍ୱାରା ଯୋଗାଯିବା ଖାଦ୍ୟାଦି—2. Victuals supplied to officiale on tour.

ରସଦ—ସଂ. ବିଣ. ପୁଂ (ରସ+ଦା ଧାତୁ+କର୍ତ୍ତୃ. ଅ)—୧ ସୁଖଦାୟକ
Rasada 1 Giving pleasure. ୨ । ସୁସ୍ୱାଦୁ (ବ୍ର ଶ.)-
(ରସଦା—ସ୍ତ୍ରୀ) 2. Sweet. ସଂ. ବି. ପୁଂ—ଚିକିତ୍ସକ(ବ୍ର.ଶ) A physician.

ରସଦା—ଦେ. ବିଣ ଓ ବି. ସ୍ତ୍ରୀ (ରସଦ+ଆ)—ରସଦର ସ୍ତ୍ରୀଲିଙ୍ଗ—
Rasadā Feminine of Rasada. [ ଉ—ରସଦା ଦରବ ଭୂବି ନାଶ ପ୍ରାଣେଶ୍ୱର । ଭଞ୍ଜ. ପ୍ରେମସୁଧାନିଧି ।]

ରସଦାତା—ସଂ. ବିଣ. ପୁଂ (ରସ ଦାତୃ ଶବ୍ଦ ୧ମା. ୧ବ)—ଯେ
Rasadātā ହୃଦୟରେ ରସମୟ ଭାବ ବା ଅନୁରାଗ ଜାତ
[ ରସଦାତ୍ରୀ—ସ୍ତ୍ରୀ ] କରାଏ—Producing sentiment of love in the heart.

ରସଦାନ—ସଂ. ବି (୬ଷ୍ଠୀ ତତ୍)— ରସମୟ ଭାବ ବା ପ୍ରେମ ହୃଦୟରେ
Rasadāna ଜାତ କରିବା—Producing sentiment or love in the heart ଦେ. ବି—ରତିଦାନ; ରତିସୁଖ ଭୋଗର ସୁବିଧାଦାନ—Allowing a person to have the pleasures of sexual enjoyment.

ରସଦାନି—ଦେ. ବିଣ. ପୁଂ ଓ ସ୍ତ୍ରୀ (ସଂ. ରସଦାତା)—୧ । ରସଦାତା
Rasadāni (ଦେଖ)—1. Rasadātā. (See) ୨ । ରସର
रसदानी रसदायी ଆଧାର—2. Full of tender sentiments.

ରସଦାୟ[ୟୀ]—ଦେ. ବିଣ (ସଂ. ରସଦାୟକ)—ରସଦାତା (ଦେଖ)—
Rasadāya[yī] Rasadātā. ( See ) [ ଉ—ପ୍ରଭାଙ୍କୁ

ରସଦାନୀ रसदायी କାମଧେନୁ ପ୍ରାୟ, ଭୂମି ହୋଇଲା ରସଦାୟୂ ।
ଜଗନ୍ନାଥ. ଭାଗବତ ।]

ରସଦାଳିକା—ସଂ. ବି (ରସ+ଦଲ୍. ଧାତୁ=ଫେଣିବା+କର୍ମ. ଇକ+
Rasadālikā ଆ)—ଏକପ୍ରକାର ଆଖୁ (ହଳଦିଆ)—A species of sugarcane (with yellow rind)

ରସ ଦୁଷ୍ଟି—ସଂ. ବି (ବୈଦ୍ୟକ, ୬ଷ୍ଠୀ ତତ୍)—ଶରୀରସ୍ଥ ରସ ଉତ୍ତମରୂପେ
Rasa dushti ପାକ ନ ହେବା ଜନିତ ଦୋଷ—The deterioration of the vital sap or chile of the body.

ରସ ଦୋଷ—ସଂ. ବି (୬ଷ୍ଠୀ ତତ୍; ବା ୭ମୀ ତତ୍)—୧ । ଶୃଙ୍ଗାରାଦି
Rasa dosha ରସର ଅପକର୍ଷତା—1. The evil effect of amorous sentiment. ୨ । ରଚନାର ଅପକର୍ଷ ବିଶେଷ—2 A kind of defect in composition. [ବି—ଯେଉଁ ସବୁ ଦୋଷ ରସର ଅପକର୍ଷ ସାଧନ କରେ ତାହା ରସଦୋଷ ନାମରେ ଅଭିହିତ ହୁଏ । ରସଦୋଷ ନାନାବିଧ । ତନ୍ମଧ୍ୟରୁ ସ୍ୱଶବ୍ଦବାଚ୍ୟ ଦୋଷ, ବିରୁଦ୍ଧରସାଙ୍ଗର ବର୍ଣ୍ଣନା, ଅକାଳରସବ୍ୟଞ୍ଜନା, ପୁନରୁଦ୍ଦୀପ୍ତତା, ପ୍ରକୃତିବିପର୍ଯ୍ୟୟ ଓ ରସାଙ୍ଗର ଅତିବିସ୍ତୃତି ପ୍ରଧାନ । ]

ରସ ଧାତୁ—ସଂ. ବି—୧ । ପାରଦ—1. Mercury. ୨ । ଶରୀରସ୍ଥ
Rasa dhātu ରସ ନାମକ ଧାତୁ—2. The chyle or gastric juice in the body.

ରସନ—ସଂ. ବି (ରସ୍ ଧାତୁ+ଭାବ. ଅନ)—୧ । ଆସ୍ୱାଦନ; ଚାଖିବା-
Rasana 1. Tasting. ୨ । ଶବ୍ଦ—2. Sound. ୩ । ଧ୍ୱନନ—3. Sounding. ୪ । (+କରଣ ଅନ) ଜିଭ (ହି. ଶ.)—4. Tongue. ୫ । କଫ (ହି ଶ)- 5. Phlegm.

ରସ ନ(ଲ)ଡ଼ୁ—ଦେ. ବି (ସଂ. ରସ+ଲଡ୍ଡୁକ)—ରସକୋରା (ଦେଖ)
Rasa na(la)rdu Rasakorā (See)

ରସ ନଦୀ—ସଂ. ବି (ରୂପକ)—ନଦୀରୂପରେ ବୋହୁଥିବା ରସ—
Rasa nadi Rasa flowing like a river.

ରସନା—ସଂ. ବି ( ରସ୍ ଧାତୁ=ଚାଖିବା+କରଣ. ଅନ+ଆ )—
Rasanā ୧ । ଜିହ୍ୱା; ଜିଭ—1. Tongue. ୨ । କାଞ୍ଚି; ମେଖଳା; ଗୋଠ; ଅଣ୍ଟାସୁତା; ଚନ୍ଦ୍ରହାର; କିଙ୍କିଣୀ—2. Woman's girdle, waist-chain. (ଉ—ରସନା ରଣିଲାର ଶ୍ରବଣ କଲା ବିବେକ ମୋଷ—କବିସୂର୍ଯ୍ୟ. ବଳଦେବ ରଥ, ଚ ଗୀତ।) ୩ । ରାସ୍ନା (ଦେଖ)—3. Rāsnā (See) ୪ । ଗନ୍ଧଭାଦ୍ରା; ପସାରୁଣୀଲତା—4. A creeper; Paederia Foetida. ୫ । ରଜ୍ଜୁ; ଦଉଡ଼ି—5. Rope. ୬ । ପାଶ—6, Noose. ୭ । ଲଗାମ (ହି. ଶ.)—7. Reins, bridle. ଦେ. ବି.—ସପ୍ତଙ୍ଗା; ବାଦ୍ୟଯନ୍ତ୍ରବିଶେଷ—A kind of musical instrument. [ଉ—ବାଦାରୁ ଯେ ମୃଦଙ୍ଗର ରସନା ସ୍ୱନ କଲେ—ଉଞ୍ଜ. ବୈଦେହୀଶବିଳାସ । ]

ରସନାଗ୍ର—ସଂ. ବି (୬ଷ୍ଠୀ ତତ୍)—ଜିହ୍ୱାର ଅଗ୍ରଭାଗ—
Rasanāgra The tip of the tongue.

ରସନା ଚାପଲ୍ୟ—ସଂ. ବି (୬ଷ୍ଠୀ ତତ୍)—ବାକ୍ ଚାପଲ୍ୟ—
Rasanā chāpalya Impertinence; hastiness regarding speech.

ରସ ନାଥ—ସଂ. ବି (୭ମୀ ତତ୍)—ପାରଦ—
Rasa nātha Quick silver; mercury.

ରସନା ପଦ—ସଂ. ବି (୬ଷ୍ଠୀ ତତ୍; ରସନା=ମେଖଳା+ପଦ=ସ୍ଥାନ)-
Rasanā pada ନିତମ୍ବ—Buttocks.

ରସନାଭ—ସଂ. ବି—ରସାଞ୍ଜନ (ଦେଖ)
Rasanābha Rasāñjana (See).

ରସ ନାୟକ—ସଂ ବି—୧ । (୬ଷ୍ଠୀ ତତ୍) ଶିବ; ମହାଦେବ—
Rasa nāyaka 1. Siba. ୨ । (୭ମୀ ତତ୍) ପାରଦ (ହି.ଶ)—2. Mercury. [ ବି—କଥିତ ଅଛି ଯେ ପାରଦ ଶିବଙ୍କ ରେତଃ ଅଟେ । ]

ରସନା ରବ—ସଂ. ବି (ବହୁବ୍ରୀହି; ଯେ ରସନାଦ୍ୱାରା ରବ କରେ; ଅର୍ଥାତ୍ ଯେ ଦନ୍ତହୀନ)—ପକ୍ଷୀ (ହି. ଶ)—
Rasanā rabā Bird.

ରସନାର ସ୍ୱନ—ଦେ. ବି—ହୁଳହୁଳି—Vocal reverberating
Rasanāra swana sound produced by females
উলুধ্বনি wagging their tongues and producing
उलकरना a ringing sound, on ceremonial occa-
[ରସନା ସ୍ୱନ—ସଂ. ରୂପ] sions. [ ଉ—ବାଦ୍ୟମାନ ବଳ ଶୁଭେ ରସନାର ସ୍ୱନ । ଉଞ୍ଜ. ବୈଦେହୀଶବିଳାସ ]

ରସନାଲିଟ୍—ସଂ. ବିଣ (ରସନା+ଲିହ୍. ଧାତୁ+କ୍ୱିପ୍=ରସନାଲିହ୍
Rasanālit ୧ମା. ୧ବ)—ଯେ ଜିଭଦ୍ୱାରା ଚାଟୁଥାଏ—Licking. ସଂ. ବି—କୁକୁର—The dog.

ରସ ନିଉ(ଗା)ଡ଼ିବା—ଦେ. କ୍ରି—ରସ ଚିପୁଡ଼ିବା (ଦେଖ)
Rasa niu(gā)rdibā Rasa chipurdibā. (See)
বস নিগড়ান रस निचोड़ना

ରସ ନିକାଳିବା—ଦେ. କ୍ରି—(ଗାଳ) ଆଘାତ କରି ଦେହରୁ ରକ୍ତ
Rasa nikālibā ବୁହାଇବା—To cause bleeding by beating.
রসবেবকবা रसनिकालना

ରସ ନିକଳିବା—ଦେ. ବି—ଆଘାତଦ୍ୱାରା ଦେହରୁ ରକ୍ତ ବୋହିବା—
Rasa nikilibā Bleeding due to hurt.
বসবেরান रसनिकलना

ରସ ନିଗିଡ଼ିବା—ଦେ. ବି ( ସଂ. ରସ ନିର୍ଗମନ )—ରସ କ୍ଷରଣରୂପେ
Rasa nigirdibā ଝରିବା—The dripping of juice.
রসনিঙ্গড়া रसनिगलना

ରସ ନିଧି—ସଂ. ବି. ପୁଂ ଓ ସ୍ତ୍ରୀ—ସୁରସିକ; ରସିକତାପୂର୍ଣ୍ଣ ବ୍ୟକ୍ତି—
Rasa nidhi A person full of gallantry or love or tenderness. ଦେ. ବି—ଉପେନ୍ଦ୍ରଭଞ୍ଜଙ୍କ ସମସାମୟିକ କବି ଘନଭଞ୍ଜଙ୍କ ରଚିତ ଓଡ଼ିଆ କାବ୍ୟ—Title of an Oriya poem by poet Ghanabhañja.

**ରସ ନିବେଦନ**—ସ. ବି—(୬ଷ୍ଠୀ ତତ୍)—ଅନ୍ୟ ବ୍ୟକ୍ତି ନିକଟରେ ରସମୟ
Rasa nibedana ବାକ୍ୟାଦିର ପ୍ରକାଶ—Speaking witty things to a person. (ଯଥା—ଅରସିକଠାରେ ରସ ନିବେଦନ, ପ୍ରଭୋ ! ଏ କପାଳେ ନ କର ଲେଖନ ।)

**ରସ ନିର୍ଗମ**—ସ. ବି. (୬ଷ୍ଠୀ ତତ୍)—କୌଣସି ଦ୍ରବ୍ୟରୁ ରସ ନିଗିଡ଼ିବା—
Rasa nirgama The oozing of Rasa from a thing.
(ରସ ନିର୍ଗମନ ଅନ୍ୟରୂପ)

**ରସନୀୟ**—ସ. ବି (ରସ ଧାତୁ+କର୍ମ. ଅନୀୟ)—୧ । ଚାଖି ହେବାର
Rasaniya ଉପଯୁକ୍ତ—1. Fit to be tasted. ୨ । ସ୍ୱାଦୁ—2. Sweet. ୩ । ରସନାର ତୃପ୍ତିକର—3. Tasteful; relishing

**ରସନେନ୍ଦ୍ରିୟ**—ସ. ବି. (ରୂପକ; ରସନା-ଇନ୍ଦ୍ରିୟ)—ଜିହ୍ୱା—Tongue;
Rasanendriya the organ of taste

**ରସ ପଞ୍ଚକ**—ସ. ବି—୫ ଗୋଟି ରସର ସମାହାର—An aggregate
Rasa panchaka or collection of 5 sentiments. ଦେ ବି—ଉପେନ୍ଦ୍ରଭଞ୍ଜଙ୍କ ରଚିତ କାବ୍ୟବିଶେଷ—Name of a poetical work by Upendra bhanja. [ଦ୍ର—ଏଥିର ଛାନ୍ଦମାନଙ୍କ ଆଦ୍ୟ ଅକ୍ଷର ଯଥାକ୍ରମେ ର,ସ,ପ,ଚ,କ ହୋଇ ରଚିତ ହୋଇଅଛି ।]

**ରସ ପତି**—ସ. ବି.(୬ଷ୍ଠୀ ତତ୍)—୧ । ଔଷଧୀଶ; ଚନ୍ଦ୍ରମା (ହ. ଶ)—
Rasa pati 1. The moon. ୨ । ରାଜା (ହ. ଶ)—2. King. ୩ । ପାରଦ (ହ. ଶ)—3. Mercury. ୪ । ଶୃଙ୍ଗାର ରସ (ହ. ଶ)—4. The erotic sentiment.

**ରସ ପାକ**—ସ. ବି. (୬ଷ୍ଠୀ ତତ୍)—୧ । ରସକୁ ଅଗ୍ନି ଦ୍ୱାରା ସିଝାଇବା
Rasa pāka —1. Boiling of a juice. ୨ । ଖାଦ୍ୟ ଜାତ ରସ ଜୀର୍ଣ୍ଣ ହୋଇ ରକ୍ତରେ ପରିଣତ ହେବା—2. The digestion of chile into blood.

**ରସ ପାକଜ**—ସଂ. ବି—୧ । ଗୁଡ଼—1. Molasses; treacle.
Rasa pākaja ୨ । ଚିନି (ହ. ଶ)—2. White sugar

**ରସପାତାଳ**—ବୈଦେ. ବି (ଇଂ.—ହସ୍ପିଟାଲ୍)—ଦାତବ୍ୟ ଚିକିତ୍ସାଳୟ
Rasapātal —Hospital. [ଉ—କୋହ୍ଲେ ହାଁସପାତାଲ **अस्पताल** ଲାଟସାହେବଙ୍କ ନାମରେ ରସପାତାଳ ବସାଅ, ମନ୍ଦିରଟା କଣ ?—ଫକୀରମୋହନ. ଛଅମାଣ ଆଠଗୁଣ ।]

**ରସ ପାନ**—ସ. ବି(୬ଷ୍ଠୀ ତତ୍)—୧। ମଦ୍ୟପାନ—1. Drinking of
Rasa pāna juice or wine. ୨। (ଭ୍ରମରର)ପୁଷ୍ପରୁ ମଧୁପାନ—2. The drinking of honey from flowers (by a bee).
ରସପାୟୀ(ପୁଂ) } ବିଣ
ରସପାୟିନୀ(ସ୍ତ୍ରୀ) }

**ରସପୁର**—ଦେ ବିଣ(ସ.ରସପୂର୍ଣ୍ଣ)—ସରସ; ଯହିଁରେ ରସ ଭରି ଥାଏ—
Rasapura Full of sentiments or wit. [ଉ—ବସଭରା **रसमे भराहुआ** କେହୁ ଗୀତ ସଦୋଷ କେହୁ ନିର୍ଦୋଷ, କେ ରସପୁର କେ ବା ହୋଏ ନିରସ—ବ୍ରଜନାଥ. ସମରତରଙ୍ଗ ।]
(ରସଭରି—ଅନ୍ୟରୂପ)

**ରସ ପୁଷ୍ପ**—ସ. ବି—ପାରଦରୁ ପ୍ରସ୍ତୁତ ଦ୍ରବ୍ୟବିଶେଷ—A prepara-
Rasa pushpa tion of mercury. [ଦ୍ର—ଗନ୍ଧକ, ପାରି ଓ ଲୁଣଦ୍ୱାରା ଏହା ପ୍ରସ୍ତୁତ ହୁଏ, ଔଷଧରେ ଲାଗେ ।]

**ରସ ପୂର୍ଣ୍ଣ**—ସ. ବିଣ (୩ୟା ତତ୍)—୧ । ଯହିଁରେ ରସ ଭରିଥାଏ—
Rasa pūrnna 1. Full of juice; juicy. ୨। ରସମୟ—2. Witty; full of sentiments.

**ରସପ୍ରଚୁର**—ସ. ବିଣ (ବହୁବ୍ରୀହି)—ସରସ; ରସମୟ—
Rasaprachūra Full of juice.
(ରସପ୍ରଚୁରା—ସ୍ତ୍ରୀ)

**ରସ ପ୍ରାଚୁର୍ଯ୍ୟ**—ସ. ବି. (୬ଷ୍ଠୀ ତତ୍)—ରସାଧିକ୍ୟ (ଦେଖ)
Rasaprāchūrjya Rasādhikya (See)

**ରସପ୍ରିୟ**—ସ ବିଣ. ପୁଂ (ବହୁବ୍ରୀହି)—୧ । ମଦ୍ୟପ୍ରିୟ—1. Fond
Rasa priya of wine ୨ । ରସିକ—2 Witty; humorous.
(ରସପ୍ରିୟା—ସ୍ତ୍ରୀ)
(ରସପ୍ରିୟତା—ବି)

**ରସ ଫଳ**—ସ. ବି (ଯାହାର ଫଳରେ ରସ ଅଛି; ରସଯୁକ୍ତ ବା ରସପୂର୍ଣ୍ଣ
Rasa phala ଫଳ; ମ. ପ. ଲୋ. )—୧ । ନାରିକେଳ—1. Cocoanut. ୨ । ଅଁଳା ( ହ. ଶ. )—2. Embelic myrobalan

**ରସ ଫେଣା**—ଦେ. ବି—ଏକପ୍ରକାର ମିଷ୍ଟାନ୍ନ; ସିରାରେ ବତୁରି ଯାଇଥିବା
Rasa phena ଫେଣା -A kind of sweetmeat soaked in syrup. [ ଉ—ଉପଳ ସାକର ରସଫେଣା, ମଧୁ ମଧୁରସ ସଫେଣା—କବିସୂର୍ଯ୍ୟ. ସଙ୍ଗୀତ ।]
বাতাসা **बतासा**

**ରସ ବଟିକା**—ଦେ. ବି (ସଂ. ରସ ଓ ବଟୀ)—ପାରଦ ବା ବିଷଘଟିତ
Rasa batikā ବଟିକା—A pill made of mercury or poison.
(ରସବଟି—ଦେ. ରୂପ)

**ରସ ବଡ଼ା(ରା)**—ଦେ. ବି—(ସଂ. ରସ+ବଟକ)—ଗୁଡ଼ର ବା ଚିନିର
Rasa bardā(rā) ସିରାରେ ବୁଡ଼ା ହୋଇଥିବା ବଡ଼ା—Cake soaked in syrup.
বসবড়া **रसबड़ा**

**ରସବତ୍**—ସ. ବି. କ୍ଳୀ (ରସ+ବତ୍)—୧। ଗୌଣ ବା ଅପ୍ରଧାନ ରସ ବା
Rasabat ଭାବବିଶିଷ୍ଟ—1. Consisting of a secondary feeling or sentiment. ୨ । ରସପୂର୍ଣ୍ଣ—2. Full of juice; juicy. ୩ । ସ୍ୱାଦୁ; ସୁମଧୁର—3 Sweet; well-flavoured. ୪ । ଭାବବିଶିଷ୍ଟ—4 Sentimental. ୫ । ସୁରୁଚିପୂର୍ଣ୍ଣ—5. Tasteful. ସ. ବି—କାବ୍ୟାଲଙ୍କାର ବିଶେଷ (ଯେଉଁ ରଚନାରେ 'ଭାବ' ପ୍ରଥମ ହୁଏ ଓ 'ରସ' ଗୁଣୀଭୂତ ବା ଅପ୍ରଧାନତାକୁ ପ୍ରାପ୍ତ ହୁଏ—Name of a figure of speech in rhetoric.
(ରସବନ୍ତ—ବି)

**ରସବତୀ**—ସ. ବିଣ. ସ୍ତ୍ରୀ (ରସ+ବତ୍+ସ୍ତ୍ରୀ. ଈ)—୧ । ରସବିଶିଷ୍ଟା;
Rasabati ରସମୟୀ—1. Full of Rasa. ୨ । ଲାବଣ୍ୟବତୀ; ସୁନ୍ଦରୀ—2. Charming. ସ. ବି. ସ୍ତ୍ରୀ—୧ । ରସିକା—1. A woman of taste and
(ରସବାନ୍—ପୁଂ)

wit. ୨ । ପାକଶାଳା—2 Cooking room, kitchen. ସଂ. ବି—୧ । କବି ଅଭିମନ୍ୟୁ ସାମନ୍ତସିଂହାର ରଚିତ ଆଦିରସାତ୍ମକ ଅପ୍ରକାଶିତ ଓଡ଼ିଆ କାବ୍ୟ—1. Name of a poetical work by poet Abhimanyu of Orissa. ୨ । (ସଂ. ରସବର୍ତ୍ତିକା) ରସବଳିତା (ଦେଖ)—2 Rasabalitā. (See)
বসবতী रसवत्ती

ରସବନ୍ତ—ସଂ. ବିଣ (ସଂ. ରସବତ୍ ଶବ୍ଦ)—ରସିକ (ଦେଖ)—Rasabanta Rasika. (See) ଦେ. ବିଣ—ରସପୂର୍ଣ୍ଣ, ସୁସ୍ୱାଦୁ; ସୁମଧୁର—Sweet; palatable [ଭି—ବହୁତ ଭକ୍ଷ୍ୟ ଭୋଜ୍ୟ ରସବନ୍ତ ହୋଇ । କୃଷ୍ଣସିଂହ. ମହାଭାରତ. ସଭା । ]
বসবন্ত रसवन्त

ରସ ବଳିତା—ଦେ. ବି (ସଂ. ରସ ଓ ବର୍ତ୍ତିକା ବା ବର୍ତ୍ତୀ)—ଦଉଡ଼ିବାଣ; ବାଣ ଅଗ୍ନରେ ଲଗା ଯିବା ପାଇଁ ଉପରେ ବାରୁଦ ଦିଆଯାଇ ବଳା ଯାଇଥିବା ଲମ୍ବ ବର୍ତ୍ତିକା—A long wick rolled with gunpowder to ignite fireworks.
Rasa balitā
বাৰুদেৰবাতী रसवत्ती

ରସ ବହୁଳ—ସଂ. ବିଣ (ବହୁବ୍ରୀହି)—ଯହିଁରେ ରସ ଅଧିକ ଥାଏ
Rasa bahula Abounding in juice.
(ରସବହୁଳା—ସ୍ତ୍ରୀ) [ରସବହୁଳତା, ରସବାହୁଲ୍ୟ—ବି]

ରସ ବାତ—ସଂ. ବି (ମ. ପ. ଲୋ; ରସାଧିକ୍ୟ ଜନିତବାତ)—ଆମବାତ; ଦେହରେ ରସାଧିକ୍ୟ ଜନିତ ବେଦନା ବାତ—Rheumatism.
Rasa bāta

ରସ ବାଦ—ସଂ. ବି (ମ ପ. ଲୋ)—ରସିକତାମୟ କଥୋପକଥନ—
Rasa bāda Witty saying or conversation.

ରସବାନ—ସଂ. ବିଣ. ପୁଂ—୧ । ରସଯୁକ୍ତ, ରସମୟ—1. Juicy.
Rasabān ୨ । ରସିକ (ଦେଖ)—2 Rasika (See)
(ରସବତୀ—ସ୍ତ୍ରୀ) ୩ । ସୁରୁଚିବିଶିଷ୍ଟ—3 Tasteful ୪।ସରସ—4 Well-flavoured.

ରସ ବିକ୍ରୟ—ସଂ. ବି (୬ଷ୍ଠୀ ତତ୍)—ତାଡ଼ି ବିକିବା—
Rasa bikraya Selling of toddy.

ରସ ବିକ୍ରୟୀ—ସଂ. ବିଣ. ପୁଂ—ଯେ ତାଡ଼ି ବିକେ—
Rasa bikrayī Selling toddy.
(ରସବିକେତା—ଅନ୍ୟରୂପ) [ରସବିକ୍ରୟିଣୀ—ସ୍ତ୍ରୀ]

ରସ ବିଚ୍ଛେଦ—ସଂ. ବି—ରସ ଭଙ୍ଗ (ଦେଖ)
Rasa bichchheda Rasa bhanga. (See)
(ରସବିରୋଧ—ଅନ୍ୟରୂପ)

ରସବିନୋଦ—ସଂ. ବି—ରସଲୀଳା (ଦେଖ)—Rasalīla. (See)
Rasabinoda ଦେ. ବି—କବି ଦୀନକୃଷ୍ଣ ଦାସଙ୍କ ରଚିତ ରାଧାକୃଷ୍ଣ ଲୀଳା ବିଷୟକ ପଦ୍ୟଗ୍ରନ୍ଥ—Name of a poetical work by poet Dīnakrushna.

ରସବିନୋଦିଆ—ଦେ. ବିଣ (ସଂ. ରସବିନୋଦୀ)—ଯେ ରସରେ ବିନୋଦ କରେ; ରସିକ—Merry; witty. ଦେ. ବି—ଶ୍ରୀକୃଷ୍ଣ—Śrīkrushna. [ଭି—ବସନଲୁଟିଆ, ରସବିନୋଦିଆ ରସରେ ନ
Rasabinodiā
বসবিনোদিয়া रसबिनोदिया

ରସବିନୋଦୀ—ପୁଂ } —ସଂ.ରୂପ ଥିଲେ ହରି । କବିସୂର୍ଯ୍ୟ. ସଙ୍ଗୀତ ।)
ରସବିନୋଦିନୀ—ସ୍ତ୍ରୀ }

ରସ ବୃଦ୍ଧି—ସଂ. ବି (୬ଷ୍ଠୀ ତତ୍)—ରସାଧିକ୍ୟ (ଦେଖ)
Rasa bruddhi Rasādhikya. (See)

ରସବେଣୀ—ଦେ. ବି—ଏକପ୍ରକାର ବାଦ୍ୟଯନ୍ତ୍ର—
Rasabenī A kind of musical instrument.

ରସ ବେଧକ—ସଂ. ବି (ରସ+ବିଧ ଧାତୁ+କର୍ତ୍ତୃ.ଅକ)—ସୁନା(ହ୍ର.ଶ)-
Rasa bedhaka Gold.

ରସବୋଧ—ସଂ. ବି (୬ଷ୍ଠୀ ତତ୍)—ରସଜ୍ଞାନ; ରସାନୁଭବ; ରସାନୁଭବକତା, କାବ୍ୟାଦିର ରସ ସମ୍ବନ୍ଧେ ଜ୍ଞାନ ବା ଅନୁଭବ—Knowledge or understanding of the sentiment of a literary piece; experience of literary taste
Rasabodha

ରସ ବୋ(ବା)ହିବା—ଦେ.ବି (ସଂ. ରସ+ବହ ଧାତୁ)—ରସର କ୍ଷରଣ—
Rasa bo(ba)hibā The oozing of sap or juice.
বসবহা रसवहना

ରସଭଗ୍ନ—ଦେ. ବି (ସଂ. ରସଭଙ୍ଗ)—ରସଭଙ୍ଗ (ଦେଖ)
Rasabhagna Rasabhanga (See)
রসভঙ্গ रसभङ्ग

ରସ ଭଙ୍ଗ—ସଂ. ବି (୬ଷ୍ଠୀ ତତ୍)—୧ । ରସ ସମ୍ବନ୍ଧେ ବ୍ୟାଘାତ ବା ପ୍ରତିବନ୍ଧ—1. Interruption in the enjoyment or continuance of a sentiment; the marring of the enjoyment of a particular sentiment. ୨ । ଏକପ୍ରକାର ରସ (କାବ୍ୟାଦିରସ) ସମ୍ବନ୍ଧେ ଆଲୋଚନା ହେଉଥିବା ସମୟରେ ତଦ୍‌ବିପରୀତ ରସର ଅବତାରଣା—2. The introduction of an opposite or jarring sentiment while one sentiment is being discussed or enjoyed. [ଯଥା—ଶୃଙ୍ଗାରରସର ଆଲୋଚନା ହେବା ସମୟରେ କରୁଣ ବା ରୌଦ୍ରରସର ଅବତାରଣା; ହାସ୍ୟରସର ଆଲୋଚନା ସମୟରେ ଭୟାନକ ରସର ଅବତାରଣା ।] ୩ । କାବ୍ୟାଦି ରଚନାର ଦୋଷବିଶେଷ—3. A defect in composition where a governing sentiment is marred by a jarring sentiment. ୪ । ସୁଶ୍ରୁତ ଅନୁସାରେ ରସନାଭୋଗ୍ୟ ଏକ ରସର ଆସ୍ୱାଦନକାଳରେ ଅନ୍ୟ ବିରୋଧୀ ରସର ଅବତାରଣା—4. The introduction of an opposite or discordant taste when one is tasting some thing. [ବି—ପିତା ଓ ମିଠା ମଧ୍ୟରେ, ଲୁଣିଆ ଓ ପିତା ମଧ୍ୟରେ ଓ ଖଟା ଓ ମିଠା ମଧ୍ୟରେ ରସବିରୋଧ ଅଛି ।]
Rasa bhanga
ରସଭଙ୍ଗକ }
ରସଭଞ୍ଜକ } —ଗ୍ରାମ୍ୟରୂପ

ରସଭଙ୍ଗ କରିବା—ଦେ. କ୍ରି—ବିରୋଧୀ ରସର ଉପସ୍ଥାପନଦ୍ୱାରା ରସାନୁଭବରେ ବ୍ୟାଘାତ ଜନ୍ମାଇବା—
Rasabhanga karibā To mar or interrupt
রসভঙ্গকরা रसभङ्गकरना

the enjoyment of a sentiment or taste by the introduction of a discondant or Jarring one.

**ରସଭବ**—ସଂ. ବଣ (ରସ+ଭୂ ଧାତୁ+କର୍ତ୍ତୃ. ଅ)—ରସରୁ ଉତ୍ପନ୍ନ; ରସଜାତ—Produced from Rasa.
Rasabhaba
ସଂ. ବ—ରକ୍ତ; ରୁଧିର—Blood.

**ରସଭରା**—ଦେ. ବଣ—ରସପୂର୍ଣ୍ଣ; ରସମୟ; ରସାଳ—
Rasabharā Juicy; full of sentiment.
বসভৰা **रसमेभराहुआ**

**ରସ ଭସ୍ମ**—ସ. ବ (୬ଷ୍ଠୀ ତତ୍)—ପାରଦଭସ୍ମ; ପାରଦଭସ୍ମ—
Rasa bhasma Calx or oxide of mercury.

**ରସ ଭୋଗ**—ସଂ. ବ (୬ଷ୍ଠୀ ତତ୍)—ରସର ଆସ୍ୱାଦନ—
Rasa bhoga Enjoyment of a Rasa.

**ରସ ଭୋଳ**—ଦେ. ବ (ସ. ରସ ଓ ବହୁଳ)—ରସାସ୍ୱାଦନ କରୁଥିବା ବ୍ୟକ୍ତିର ଭ୍ରାନ୍ତି ବା ଉନ୍ମତ୍ତତା—Madness or
Rasa bhoḷa
বসমত্ততা forgetfulness which overcomes a
**रसास्वादनमे मस्ती** person while enjoying a Rasa.
রসেমত্ত ଦେ. ବଣ—ରସାସ୍ୱାଦନରେ ଉନ୍ମତ୍ତ—Maddened
**रसभीना, रसमत्त** with the enjoyment of Rasa.

**ରସ ଭୋଳା**—ଦେ. ବଣ—ରସଭୋଳ (ଦେଖ)
Rasabhoḷā Rasabhoḷa. (See)

**ରସ ମଞ୍ଜରୀ**—ସ. ବ—ଭଲ ଭଲ ଶ୍ରେଣୀର ନାୟକନାୟିକାମାନଙ୍କ ବିଷୟ ଚର୍ଚ୍ଚା କରିଥିବା ସଂସ୍କୃତ ଗ୍ରନ୍ଥ ବିଶେଷ—
Rasamañjari
Name of a Sanskrit work classifying the different classes of heroes or heroines in literary compositions. [ଦ୍ର—ଏହାର କବି 'ଭାନୁ'କବି । ଏହାକୁ ଭରତଚନ୍ଦ୍ର ବଙ୍ଗଳାରେ ଅନୁବାଦ କରିଅଛନ୍ତି ।] ଦେ. ବ—ଉପେନ୍ଦ୍ର ଭଞ୍ଜଙ୍କ ପ୍ରଣୀତ ଛନ୍ଦର ନିୟମାବଳୀ ବିଷୟକ ପଦ୍ୟଗ୍ରନ୍ଥ (ଅଦ୍ୟାପି ଅପ୍ରକାଶିତ)—Name of an unpublished poetical work by Upendrabhañja about rules of metres and prosody.

**ରସମୟ**—ସ. ବଣ (ରସ+ପୂର୍ଣ୍ଣାର୍ଥେ. ମୟ)—୧ । ରସାଳ, ରସପୂର୍ଣ୍ଣ—
Rasamaya 1. Juicy. ୨ । ଭାବ୍ୟରସ ପୂର୍ଣ୍ଣ—2. Full of
(ରସମୟୀ—ସ୍ତ୍ରୀ) sentiments. ୩ । ପ୍ରେମମୟ—3. Full of love.

**ରସ ମର୍ଦ୍ଦନ**—ସ. ବ. (ବୈଦ୍ୟକ)—ପାରଦକୁ ଭସ୍ମୀଭୂତ କରିବା ପୂର୍ବରୁ ବୈଦ୍ୟଶାସ୍ତ୍ରୋକ୍ତ ଅନ୍ୟ ବସ୍ତୁ ସଙ୍ଗେ ମିଶାଇ ଘୋର ଚୂର୍ଣ୍ଣ କରିବା; ପାରାକୁ କଜ୍ଜ୍ୱଳୀରୂପେ ପରିଣତ କରଣ—The powdering of mercury; reduction of mercury into black powder by powdering it with another substance.
Rasa marddana
[ଦ୍ର—ଚିକିତ୍ସକ ମତରେ ସମଭାଗ ପାରା ଓ ଗନ୍ଧକ ଏକତ୍ର ଖଲରେ ଘୂନିବାରୁ ଏକପ୍ରକାର ନୂତନ ପଦାର୍ଥ (କଜ୍ଜ୍ୱଳୀ) ଉତ୍ପନ୍ନ ହୁଏ ।]

**ରସ ମଳ**—ସ.ବ. (୬ଷ୍ଠୀ ତତ୍)—ଶରୀରରୁ ବହିର୍ଗତ କୌଣସି ପ୍ରକାରର ମଳ (ଯଥା—ବିଷ୍ଠା, ମୂତ୍ର, ସ୍ୱେଦ, କଫ, ଶ୍ଳେଷ୍ମିକା)
Rasa maḷa
—Any kind of excrement.

**ରସ ମାତୃକା**—ସ. ବ (୬ଷ୍ଠୀ ତତ୍)—ଜିହ୍ୱା (ହି. ଶ)—
Rasa mātṛkā Tongue.

**ରସ ମାରଣ**—ସ. ବ. (ବୈଦ୍ୟକ) (୬ଷ୍ଠୀ ତତ୍)—୧ । ପାରଦ ମାରଣ; ପାରା ମାରିବା; ଔଷଧାର୍ଥେ ପାରଦ ବ୍ୟବହୃତ କରିବା ପୂର୍ବରୁ ତାହାର ଶୋଧନ—1. Refining of mercury; act of neutralising the evil effects of mercury by certain operations
Rasa māraṇa
୨ । ପାରଦରୁ ପ୍ରସ୍ତୁତ ଏକ ପ୍ରକାର ଔଷଧ—2. A kind of mercurial preparation.

**ରସ ମାଳା**—ସ. ବ—ଶିଳା ରସ (ହି. ଶ)—
Rasa māḷā Liquid amber.

**ରସ ମୂର୍ଚ୍ଛନ(ନା)**—ସ.ବ (ବୈଦ୍ୟକ)(୬ଷ୍ଠୀ ତତ୍)—୧ । ପାରଦ ମାରଣ
Rasa mūrchchhana(nā) —1.Act of refining mer-
(ରସ ଶୋଧନ—ଅନ୍ୟରୂପ) cury for medicinal purposes.
୨ । ପାରଦରୁ ପ୍ରସ୍ତୁତ ଔଷଧ ବିଶେଷ—2. A sort of medicinal preparation from mercury.

**ରସ ମୈତ୍ରୀ**—ସ. ବ—ଦୁଇ ରସର ଏପରି ମିଳନ, ଯଦ୍ଦ୍ୱାରା ଉକ୍ତ ରସାସ୍ୱାଦନରେ ସୁଖ ବୃଦ୍ଧି ହୁଏ; ଦୁଇ ରସର ଉପଯୁକ୍ତ ମିଳନ (ହି. ଶ)—Judicious mixture of two articles of different taste, resulting in the article being much relished.
Rasa maitrī
[ ଯଥା—ଖଟା ସଙ୍ଗେ ପିଠାର, ଖଟା ସଙ୍ଗେ ଲୁଣର ସୁମିଳନ ।]

**ରସ ରଙ୍ଗ**—ଦେ. ବ ( ସ. ରସ ଓ ରଙ୍ଗ )—୧ । ରଙ୍ଗ ରସ; ରଙ୍ଗ
Rasa raṅga ତାମସା; ଥଟ୍ଟା; ପରିହାସ—1 Jesting ୨ ।
বঙ্গ বস **रंङ्ग रस** ରସମୟ ବ୍ୟଙ୍ଗ୍ୟ —2. Wit and humour.
ରସ ରଙ୍ଗିଆ, ରସ ରଙ୍ଗୀ—ପୁଂ } ବଣ
ରସ ରଙ୍ଗିକା, ରସ ରଙ୍ଗେଇ—ସ୍ତ୍ରୀ }

**ରସ ରତ୍ନାକର**—ଦେ. ବ—୧ । ଆୟୁର୍ବେଦୋକ୍ତ ବଟିକା ବିଶେଷ—
Rasa ratnākara 1. A kind of medicinal pill.
୨ । ଅତ୍ୟଧିକ ରତିସୁଖ—2. Excessive sexual pleasure [ ଦ୍ର—ବୈଦେହୀ ପାଠକ ବିଷରହାକର ରିତଠନକୁ ଅର୍ଚ୍ଚିତ ଚଢ଼ି । ଭଞ୍ଜ, ବୈଦେହୀଶବିଳାସ । ]

**ରସରହସ**—ଦେ. ବ (ସତ୍ୱଚର; ସଂ ରସ ଓ ରହସ୍ୟ)—ରସ ଓ ରହସ୍ୟ; ରଙ୍ଗ ଓ ରହସ୍ୟ; ବିଳାସ; କୌତୁକ—
Rasarahasa
বঙ্গরহস্য Sport and jest; amusement.
**रंगरहस रङ्गरस**

**ରସ ରହସ୍ୟ**—ସ. ବ—୧ । ରସରହସ (ଦେଖ)—1 Rasarahasa
Rasa rahasya (See) ୨ । ରସ ସମ୍ବନ୍ଧୀୟ ଗୂଢ଼ଜ୍ଞାନ ବା ମର୍ମ—
2. The secrets about the Rasas.

**ରସରା**—ଦେ. ବି-ଯେଉଁ ବ୍ୟକ୍ତି ରସରେ ବା ଟିଣରେ ବା ସୀସାରେ ଖଡ଼ୁ ଆଦି ଗଢ଼େ—A person who manufactures ornaments or articles of tin or lead, tinman.
Rasarā
যে টিনের কাজ করে
टीनका कामकरनेवाला

**ରସରାଜ**—ସଂ. ବି (୭ମୀ ତତ୍; ରସ ମଧ୍ୟରେ ଶ୍ରେଷ୍ଠ)—୧ । ପାରଦ—1. Mercury. ୨ । ରସାଞ୍ଜନ—2. Antimony. ୩ । ଆଦିରସ; ଶୃଙ୍ଗାରରସ—3. The erotic sentiment in literature ୪ । ପାରଦ, ଗନ୍ଧକ ଓ ତମ୍ବାଭସ୍ମର ସମ୍ମେଳନରେ ପ୍ରସ୍ତୁତ ଔଷଧବିଶେଷ 4. A kind of medicinal preparation.
Rasarāja
ଦେ. ବି—ରସିକବର; ରସିକଚୂଡ଼ାମଣି; ଶ୍ରେଷ୍ଠ ରସିକ; ସୁରସିକ—A person eminent for wit, taste or sentiment. [ଉ—ରସରାଜ ହରି, ବଂଶୀସ୍ୱନ କରି, ମୋହିଲେ ଗୋପାଳକାମିନୀଙ୍କୁଲେ—ମଧୁସୂଦନ. କବିତାବଳି ।]

**ରସରୂପ**—ସଂ. ବିଣ—ରସିକ (ଦେଖ)
Rasarūpa Rasika (See)

**ରସଲଦାର୍**—ବୈଦେ. ବି (ଫା. ରସାଲ୍ଲା=ଅଶ୍ୱାରୋହୀ ସେନା+ଦାର୍) ଅଶ୍ୱାରୋହୀ ସେନାଙ୍କ ନାୟକ—A captain of cavalry.
Rasal-dār
বসলদাব रिसालदार

**ରସଲହ**—ସଂ. ବି—ପାରଦ (ହି ଶ.)
Rasalaha Mercury.

**ରସ ଲ(ନ)ହସ**—ଦେ. ବି (ସଂ. ରସ+ଲହରୀ)—ରସଭୋଗର ବା ରସାଳାପର ସ୍ରୋତ—Course of amusement or sport. [ ଯଥା—ମୁଁ ରସଲହସରେ ଏଣୁ ତେଣୁ କେତେ କଥା କହିଗଲି ।]
Rasa la(na)hasa
বসেবতবঙ্গ रसलहर(स)

**ରସ ଲିଙ୍ଗ**—ସଂ. ବି (ମ.ପ.ଲୋ)-ପାରଦରେ ବା ସ୍ୱର୍ଣ୍ଣରେ ପ୍ରସ୍ତୁତ ଶିବଲିଙ୍ଗ-
Rasa liṅga An image of Śiba made of gold or quicksilver.

**ରସ ଲୀଳା**—ସଂ. ବି—ରସାସ୍ୱାଦନସୁଖରେ ସମୟ କଟାଇବା—
Rasa līlā Sporting in the enjoyment of Rasa.
ଦେ. ବି—ଉନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଜୀବିତ ଥିବା ଗଞ୍ଜାମବାସୀ ଭୁବନେଶ୍ୱର କବିଚନ୍ଦ୍ରଙ୍କ ରଚିତ ଓଡ଼ିଆ ଖଣ୍ଡ-କାବ୍ୟ—Name of a small Oriya poem by poet Bhubaneśwara of Ganjam. [ଦ୍ର—ଭଞ୍ଜଙ୍କ ଲାବଣ୍ୟବତୀର ଅନୁକରଣରେ ଏ ପଦ୍ୟ ରଚିତ ।]

**ରସ ଲୁବ୍ଧ**—ସଂ.ବିଣ (୩ୟା ତତ)—୧ । ରସଦ୍ୱାରା ଆକୃଷ୍ଟ—1. Attracted by Rasa. ୨ । ରସଭୋଗ କରିବାପାଇଁ ଲୋଭୀ—2. Coveting for the enjoyment of R sa.
Rasa lubdha
(ରସଲୁବ୍ଧା—ସ୍ତ୍ରୀ)

**ରସ ଲୁବ୍ଧକ**—ସଂ. ବି—ଭ୍ରମର; ମହୁମାଛି—
Rasa lubdhaka The bee.
(ରସଲୋଭୀ—ଅନ୍ୟରୂପ)

**ରସ ଲେଖା**—ଦେ. ବି—କବି ଉପେନ୍ଦ୍ର ଭଞ୍ଜଙ୍କର ଆଦିରସାତ୍ମକ କାବ୍ୟ-
Rasa lekhā Name of a poem by Upendra Bhañja.

**ରସ ଶାଳା**—ସଂ. ବି.—୧ । ( ଆଧୁନିକ ବର୍ଗୀୟ ) ରାସାୟନିକ ପରୀକ୍ଷାଗାର—1. Chemical laboratory. ୨ । ପାକଶାଳା—2. Cook-room; kitchen.
Rasa śālā

**ରସ ଶାସ୍ତ୍ର**—ସଂ. ବି (ମ. ପ. ଲୋ)—ରସାୟନ ଶାସ୍ତ୍ର (ହି. ଶ)—
Rasa śāstra Chemistry, alchemy.

**ରସ ଶୋଧନ**—ସଂ. ବି (୬ଷ୍ଠୀ ତତ୍)—୧ । ରସ ମାରଣ ( ଦେଖ ) 1. Rasa mārana ( See ) ୨ । ଟଙ୍କଣ; ଠାଗଣା—2. Borax.
Rasa śodhana
(ରସ ଶୋଧକ—ବିଣ)

**ରସ ଶୋଷଣ**—ସଂ. ବି (୬ଷ୍ଠୀ ତତ୍)—ରସକୁ ଶୋଷିବା—Sucking the juice, essence or water. (ଯଥା—ସୂର୍ଯ୍ୟ ପୃଥିବୀରୁ ରସ ଶୋଷଣ କରନ୍ତି । ରୋଗ ବା ଅନାହାର ଦେହରୁ ରସ ଶୋଷଣ କରେ ।)
Rasa śoshaṇa
ରସ ଶୋଷକ—ପୁଂ } ବିଣ
ରସ ଶୋଷିକା—ସ୍ତ୍ରୀ }

**ରସ ସମ୍ଭବ**—ସଂ. ବି (ବହୁବ୍ରୀହି)—ରକ୍ତ (ହି. ଶ)—
Rasa sambhaba Blood.

**ରସ ସଂରକ୍ଷଣ**—ସଂ. ବି. (୬ଷ୍ଠୀ ତତ୍)—ଆୟୁର୍ବେଦୋକ୍ତ ପ୍ରକ୍ରିୟାରେ ପାରଦର ଶୋଧନ, ମୂର୍ଚ୍ଛନ, ବନ୍ଧନ ଓ ଭସ୍ମକରଣ (ହି ଶ)—The fourfold processes of purifying and refining and oxidising mercury according to the Ayurbeda.
Rasa saṁrakshaṇa

**ରସ ସାଗର**—ସଂ. ବି ( ରୂପକ )—୧ । କାବ୍ୟ ରସରୂପ ସାଗର—1. Sentiments compared to a sea. ୨ । (୬ଷ୍ଠୀ ତତ୍) ରସିକବର—2. An eminent person of wit and gallantry.
Rasa sāgara
(ରସ ସିନ୍ଧୁ—ଅନ୍ୟରୂପ)

**ରସ ସାର**—ସଂ. ବି. ( ୭ମୀ ତତ୍ )—୧ । ପାରଦ—1. Mercury. ୨ । ଶ୍ରେଷ୍ଠ ରସ—2. An eminent Rasa. ୩ । (୬ଷ୍ଠୀ ତତ୍) ରସର ମର୍ମ—3. The purport or pith of a Rasa. ୪ । ମଧୁ ( ହି. ଶ. )—4. Honey.
Rasa sāra

**ରସ ସାରଜ୍ଞ**—ସଂ. ବିଣ. ପୁଂ. ( ରସସାର+ଜ୍ଞା ଧାତୁ+କର୍ତ୍ତୃ. ଅ )—ରସଜ୍ଞ; ରସରୁ ସାର ଗ୍ରହଣ କରିବାକୁ ସମର୍ଥ—Capable of realising the taste or beauty of a Rasa.
Rasa sārajña
(ରସ ସାରଜ୍ଞା—ସ୍ତ୍ରୀ)
(ରସ ସାରଜ୍ଞତା—ବି)

**ରସ ସିଦ୍ଧ**—ସଂ. ବି. ପୁଂ ( ୭ମୀ ତତ୍ )—୧ । ଯେଉଁ ବ୍ୟକ୍ତି ନିକୃଷ୍ଟ ଧାତୁକୁ ଦ୍ରବ୍ୟଗୁଣ ସହାୟରେ ଉତ୍କୃଷ୍ଟତର ଧାତୁରେ ପରିଣତ କରି ପାରେ—1. An alchemist. ୨ । ରାସାୟନ ବିଦ୍ୟାରେ ପାରଦର୍ଶୀ—2. An expert in the science of chemistry; a chemist.
Rasa siddha
(ରସ ସିଦ୍ଧା—ସ୍ତ୍ରୀ)
ସଂ. ବିଣ. ପୁଂ—ରସ ଶାସ୍ତ୍ର ବିଷୟରେ ପାରଦର୍ଶୀ—Skilful or proficient in the science of Rasa.

ରସ ସିଦ୍ଧି—ସଂ. ବି (୭ମୀ ତତ୍)—୧ । ଦ୍ରବ୍ୟଗୁଣ ବିଷୟକ ରସାୟନିକ
Rasa siddhi ଶାସ୍ତ୍ରାଦିରେ ବିଶେଷ ପ୍ରତିପତ୍ତି ବା ଜ୍ଞାନ—1. Special or expert knowledge in alchemy or chemistry. ୨ । ଭେଷଜାଦିରୁ ରୋଗନାଶକ ରସାୟନ ପ୍ରସ୍ତୁତ କରଣରେ ପାରଦର୍ଶିତା—2. Expert knowledge in the science of preparing excellent medicines from various ingredients. ୩ । ଗୁପ୍ତ ଶାସ୍ତ୍ର ଓ ଐନ୍ଦ୍ରଜାଲିକ ଅଗ୍ନିର ବିଶେଷର ଅନୁଷ୍ଠାନ ଦ୍ୱାରା ବା ରସାୟନିକ ପ୍ରକ୍ରିୟା ବଳରେ ଲବ୍ଧ ପାରଦ ସମ୍ବନ୍ଧେ ବିଶେଷ ଜ୍ଞାନ, ଯାହା ଜ୍ଞାତ ହେଲେ ଅଧିକାରୀ ସୁଖ ସ୍ୱାସ୍ଥ୍ୟ ଧନାଦି ଓ ଦୀର୍ଘଜୀବନ ଓ ଶକ୍ତିଲାଭ କରେ—3. Attainment of mastery over the science of changing mercury into a most potent preparation by the performance of chemical and mystical operations. [ଦ୍ର—ସେହି ବିଦ୍ୟାବଳରେ 'ରସାୟନ' ପ୍ରସ୍ତୁତ କରଣରେ ଜ୍ଞାନଲାଭ ହୁଏ ସେହି ବିଦ୍ୟାକୁ ରସାୟନ ବୋଲାଯାଏ ଓ ତନ୍ତ୍ର ଶାସ୍ତ୍ରରେ ସେହି ବିଦ୍ୟାକୁ 'ରସସିଦ୍ଧି' ନାମ ଦିଆ ଯାଇଅଛି । ସେଉଁ ବ୍ୟକ୍ତି ଉକ୍ତ ବିଦ୍ୟାରେ ପାରଙ୍ଗମ ତାଙ୍କୁ 'ରସସିଦ୍ଧ' ବା 'ରସସିଦ୍ଧିପ୍ରଦାୟକ' ନାମ ଦିଆ ଯାଇଅଛି ।]

ରସ ସିନ୍ଦୂର—ସଂ. ବି. ( ରସଜାତ ସିନ୍ଦୂର; ମ. ପ. ଲୋ )—
Rasa sindūra (ବୈଦ୍ୟକ) ଗନ୍ଧକ ସହିତ ପାରଦ ଭସ୍ମ କରି ତହିଁରୁ ପ୍ରାପ୍ତ ରସାୟନ ଦ୍ରବ୍ୟ—Sulphide of mercury. [ଦ୍ର—ଶୋଧିତ ପାରଦ ଓ ଶୋଧିତ ଗନ୍ଧକକୁ ଏକତ୍ର କଜ୍ଜଳୀ କରି ତାକୁ ଗୋଟିଏ ବୋତଲରେ ବନ୍ଦ କରି ବାଲୁକାପୂର୍ଣ୍ଣ ହାଣ୍ଡିରେ ପୋତି ବହୁତ ନିଆଁରେ ସିଦ୍ଧ କଲେ ବୋତଲର ଦେହରେ ଲାଗିଥିବା ସୂକ୍ଷ୍ମ ପଦାର୍ଥକୁ ରସ ସିନ୍ଦୂର ବୋଲାଯାଏ ଓ ତାହା ଗନ୍ଧକ ସଙ୍ଗେ ସୁନାକୁ ମିଶାଇ ପ୍ରସ୍ତୁତ କଲେ ତାହା 'ମକରଧ୍ୱଜ' ହୁଏ । ମକରଧ୍ୱଜ 'ରସ ସିନ୍ଦୂର' ପରି ଦେଖାଯାଏ,କିନ୍ତୁ ଗୁଣରେ 'ରସସିନ୍ଦୂର' ଅପେକ୍ଷା ଉତ୍କୃଷ୍ଟ । ଏହା ବୈଦ୍ୟଶାସ୍ତ୍ରୋକ୍ତ ଗୋଟିଏ 'ରସାୟନ', ଅର୍ଥାତ୍ ଜରାମୃତ୍ୟୁରୋଗାଦି ବିନାଶକ ମହୌଷଧ । ରସ ସିନ୍ଦୂରର ବର୍ଣ୍ଣ ନାଲି ।]

ରସସ୍ଥ—ସଂ. ବିଣ. (ରସ+ସ୍ଥା ଧାତୁ+କର୍ତ୍ତୃ. ଅ)—୧ । ରସଯୁକ୍ତ;
Rasastha ରସାଳ; ସରସ—1. Juicy. ୨ । ରସ ମଧ୍ୟରେ ଥିବା—2. Contained in Rasa

ରସ ସ୍ଥାନ—ସଂ. ବି ( ବୈଦ୍ୟକ )—୧ । ଶରୀରମଧ୍ୟସ୍ଥ ଭିନ୍ନ ଭିନ୍ନ ରସର
Rasa sthāna ଆଧାର—1. The places of the body where different Rasas are collected. ୨ । ହିଙ୍ଗୁଳ (ହି ଶ.)—2. Vermilion.

ରସ ହାନି—ସଂ. ବି (୬ଷ୍ଠୀ ତତ୍)—୧ । ରସର ଭଙ୍ଗ—1. Loss of
Rasa hāni Rasa ୨ । ରସଭଙ୍ଗ ( ଦେଖ )— 2. Rasabhanga (See)

ରସ ହୀନ—ସଂ. ବିଣ (୩ୟା ତତ୍)—ନୀରସ—
Rasa hīna Juiceless; sapless.

ରସା—ସଂ. ବି ( ରସ୍ ଧାତୁ+କର୍ତ୍ତୃ. ଅ+ଆ; ଏଥିରେ ରସମାନେ
Rasā ଥାଆନ୍ତି)—୧ । ଧରା; ଭୂ; ପୃଥିବୀ—1. The earth. [ ଉ—ଜୁମ୍ଭି ଜୁମ୍ଭି ଲୁଠି ପୃଷ୍ଠେ ରସାର—କବିସୂର୍ଯ୍ୟ. କଳାଶାଗତ୍ର, ୧ମ ଗୀତ । ] ୨ । ରସନା; ଜିହ୍ୱା—2. Tongue. ୩ । ଦ୍ରାକ୍ଷା—3. Vine. ୪ । ଗଜଭକ୍ଷ୍ୟା; ଶଲ୍ଲକୀ; ଭୂଇଁ ରଶୁଣ ନାମକ ବୃକ୍ଷଜାତ ନିର୍ଯ୍ୟାସ; ଦେଶୀ ଲୋବାନ—4. Indian olibanum· Boswella Serrata; frankincense. ୫ । ପାଠା; ଅକାନବିନ୍ଧ ଲତା—5. A creeper; Parera root; Stephania Hernandifolia· ୬ । ଅଳଭକ୍ଷ୍ୟା ବନ୍ୟଲତାବିଶେଷ; ଭୁଇଁକୁମ୍ଭ; କୁଅମଇତାଲତା—6. A wild creeper; Tricosanthus Cucumerina. ୭ । କାକୋଲୀ—7. A medicinal plant; Cocculus Judicus. ୮ । କାଙ୍ଗୁ; କଙ୍ଗୁ ଧାନ୍ୟ; ପୃଥ୍ୱି—8 Panicum Italicum; a kind of grain. ୯ । ରାସ୍ନା ( ହି. ଶ. ) (ଦେଖ)—9. Vanda Roxburghi. ୧୦ । ମେଦା (ହି. ଶ.) (ଦେଖ)—10. A kind of rare herb. ୧୧ । ଶିଲାରସ; ଲୋବାନ୍ ( ହି. ଶ. )—11. Olibanum; liquid amber. ୧୨ । ଆମ୍ବ ( ହି. ଶ. )—12. Mango. ୧୩ । ନଦୀ (ହି. ଶ.)-13. River.

ରସାଂ; ରସନା ଦେ.ବି—୧ । ରସିବା କର୍ମ (ଦେଖ)—1. The act of Rasibā (See). ୨ । (ଅନାଦରାର୍ଥକ) ରସାନନ୍ଦର
ରସା ଡାକନାମ—2. Name for calling Rasānanda. ୩ । କୌଣସି ପରିବାର ବିଶିଷ୍ଟ ଉପାୟରେ ଝୋଳ—3. A soup specially prepared from some vegetable;

ରସାଳ ଦେ ବିଣ. —(ସ. ରସାଳ)—୧ । ରସଯୁକ୍ତ; ରସୁଆଳ—1. Juicy. ୨ । ଅଦ୍ର—2. Wet; damp. ୩ । ସରସ; ରସିକତାପୂର୍ଣ୍ଣ—3. Witty; humorous; sentimental. ପ୍ରାଦେ (ବାଲେଶ୍ୱର) ବିଣ—ପାଣି ଲାଗିବା ଦ୍ୱାରା ନଷ୍ଟ ହୋଇ ଯାଇଥିବା ବା ପଚି ଯାଇଥିବା- Become putrefied through water.

ରସା(ସେ)ଇବା—ଦେ. କ୍ରି. (ସ. ରସ୍ ଧାତୁ ଣିଚ୍ ରସି ଧାତୁ)—୧ ।
Rasā(se)ibā ରସିବା କ୍ରିୟାର ଣିଜନ୍ତରୂପ—1. Causa-
ରସାନ ରସାନା, ରସାଆନା tive of Rasibā. ୨ । ଅନ୍ୟର ମନକୁ ଭାବାଦ୍ର କରାଇବା—2. To cause a person to be overcome with sentiment. [ଉ—ରସାଇ ଅନୁରାଗ କରେ ପଣ୍ଡିତ । ଋଷିନାଥ. ମେଘଦୂତ ] ୩ । ଅନ୍ୟର ମନକୁ ଭୁଲାଇବା—3. To charm or enchant a person.

[ଉ—ଭଲ ମୋ ତପସ୍ୟା ପଣା, ଶେଷକୁ ବୋଲେ ରଷା ରଷା, ରସେ ଥାଉ ଏ ମମାଶା ଲଶା, ହେ କଳଧର ! ଉଞ୍ଜ. ପ୍ରେମସୁଧାନିଧି] ୪ । ସନ୍ତୁଷ୍ଟ କରାଇବା—4. To please [ଉ—ବାଲ୍ମଲ ବିମାନ ପଞ୍ଚବଟୀ ବନ ବସାଇ ରସାଇ— ଉଞ୍ଜ. ବୈଦେହୀଶବିଳାସ । ] ୫ । ରସଯୁକ୍ତ କରାଇବା— To cause to be witty or juicy. ୬ । ରସାଣିତ କରିବା—6. To gild. [ ଉ— ଅବା ପଦ୍ମେ ଇନ୍ଦୀବର—ରୁଚକୁ ରସାଇ । ମଧୁ- ସୂଦନ. ରସଗାଥା ।] ୭ । ପୂଯଯୁକ୍ତ ହେବା; ଘାଆ ଇତ୍ୟାଦିରୁ ପୂଯ ବୋହିବା—7. To become purulent; to discharge pus (said of sores, boils etc.)

ରଷା(ସେ)ଇବା ଖେଳା(ଳେ)ଇବା—ଦେ. କ୍ରି. (ସହଚର)— Rasā(se)ibā khelā(le)ibā ମନୁଷ୍ୟକୁ ନାନା ପ୍ରକାରରେ ହାସାନ ରସାନ **खेलाना हँसाना** ମୁଗ୍ଧ ଓ ଆନନ୍ଦିତ କରାଇବା— To please a person by various means. [ରଷା(ସେ)ଇବା ମଜା(ଜେ)ଇବା, ରଷା(ସେ)ଇବା ରଞ୍ଜା(ଞ୍ଜେ)ଇବା (ରଞ୍ଜିବା), ରଷା(ସେ)ଇବା ହସା(ସେ)ଇବା—ଅନ୍ୟରୂପ]

ରସାଖନ—ସଂ. ବି (ରସା=ପୃଥିବୀ+ଖନ୍. ଧାତୁ+କର୍ତ୍ତୃ ଅ; ଏହା Rasākhana ନଖରେ ପୃଥିବୀକୁ ଖୋଳିବାରୁ)—କୁକ୍କୁଟ — The cock.

ରସାଗମ—ରସୋଦ୍ଭବ (ଦେଖ)
Rasāgama Rasodbhaba. (See)

ରସାଗ୍ରଜ—ସଂ. ବି—ରସାଞ୍ଜନ (ଦେଖ)
Rasāgraja Rasānjana. (See)

ରସାଙ୍ଗ ଅତି ବିସ୍ତୃତ(ତି)—ସଂ.ବି—ରସଦୋଷ ବିଶେଷ—A defect in Rasānga ati bistruta(ti) composition. [ଦ୍ର—ମୁଖ୍ୟ ରସର ବର୍ଣ୍ଣନା ଅପେକ୍ଷା ଅଙ୍ଗସ୍ୱରୂପ ଅନ୍ୟ ରସର ଅଧିକତର ବର୍ଣ୍ଣନା ହେଲେ ରସାଙ୍ଗର ଅତି ବିସ୍ତୃତି ହେଲା ବୋଲି କୁହାଯାଏ । କିରାତାର୍ଜୁନୀୟ ବୀରରସାତ୍ମକ କାବ୍ୟ । ଏହାର ମୂଳରେ ସୁରା ଓ କଟକ ଲଢାର ବିଭିନ୍ନ ସ୍ଥାନର ପ୍ରାକୃତିକ ବର୍ଣ୍ଣନା ଅତି ବିସ୍ତୃତ ଭାବରେ ହୋଇଅଛି, ତେଣୁ ଏହା ଦୋଷାବହ । ଲୁଳମଣି. ଅଳଙ୍କାରତରଙ୍ଗିଣୀ ।]

ରସାଞ୍ଜନ—ସଂ. ବି (ରସଜାତ ଅଞ୍ଜନ; ମ ପ. ଲୋ)—ସୁରୁମା; ପାରଦ Rasānjana ଜାତ କଜ୍ଜଳବିଶେଷ (କୌଣସିରୋଗରେ ଔଷଧ ରୂପରେ ବ୍ୟବହୃତ)—Gray ore of antimony; stibium; Antimony, Amomum Anthorhiza; sulphuret of antimony. [ଦ୍ର—ଏହା ଶୁକ୍ଳ- ଚାକ୍ୟଶାଳୀ କୃଷ୍ଣବର୍ଣ୍ଣ ଧାତୁଦ୍ରବ୍ୟ ବିଶେଷ । ଏହା ଦୁଇପ୍ରକାରର । ୧ । ପ୍ରାକୃତିକ ରସାଞ୍ଜନ—ଲେମ୍ବୁରସରେ ବଳୁରାଇ ଏହା ଶୋଧନ କରି ଔଷଧରେ ବ୍ୟବହାର କରାଯାଏ । ୨ । ରସାଞ୍ଜନ (କୃତ୍ରିମ)—ଦାରୁହରିଦ୍ରାର କ୍ୱାଥ ସଙ୍ଗେ ସମାନ ଭାଗ ଦୁଧ ମିଶାଇ, ପାକ କରି କୃତ୍ରିମ ରସାଞ୍ଜନ ପ୍ରସ୍ତୁତ କରାଯାଏ । (Extract of Indian Berbery). ଏହା ଅସଲ ରସାଞ୍ଜନ ଅପେକ୍ଷା ନିକୃଷ୍ଟ ।]

ସଂ.—ରସଗର୍ଭ, ତାର୍କ୍ଷ୍ୟଶୈଳ, ଅଗ୍ନିସାର, କୃତକ, ରସନାଭ, ରସଗ୍ରଜ, ରସାଗ୍ର୍ୟ, ରସାଗ୍ରଜ, ରସୋଦ୍ଭବ, ରସୋଦ୍ଭୂତ, କାଳଶୈଳଜ୍ୟ, ବର୍ଣ୍ଣାଞ୍ଜନ,
**रसाञ्जन**
**स्रोत, रसवत**
ତେ. ରସାଞ୍ଜନମୁ
ଗୁ. ରସବତୀ

ରସାଢ୍ୟ—ସଂ. ବିଣ (ରସରେ ଆଢ୍ୟ)—ରସମୟ—Juicy. ସଂ. ବି— Rasādhya ଅମ୍ରାତକ; ଅମ୍ବଡ଼ା—Hog plum.
[ ରସାଢ୍ୟା—ସ୍ତ୍ରୀ ]

ରସାଣ—ଦେ. ବି (ସଂ. ରସଲେପନ ବା ରସାୟନ; ପ୍ରା. ରସାଅଣ)— Rasāṇa ୧ । ରସରେ ସିକ୍ତ କରିବା—1. Moistening with Rasa. ୨ । ଧାତୁ ଦ୍ରବ୍ୟକୁ ଲେପଦ୍ୱାରା ଉଜ୍ଜ୍ୱଳୀକରଣ; ଅଳଙ୍କାରକୁ ରଙ୍ଗ କରାଇବା—2. Process of gilding metal. ୩ । ଉଜ୍ଜ୍ୱଳୀକରଣ—3. Process of brightening or burnishing. । ୪ । ମାଜିବା; ପାଲିସ୍ କରିବା—4. Polishing. ୫ । ସ୍ୱର୍ଣ୍ଣ ଓ ରୌପ୍ୟ ଅଳଙ୍କାରକୁ ଉଜ୍ଜ୍ୱଳକରଣାର୍ଥ ବ୍ୟବହୃତ ଲେପ (ସୋରା, ଫିଟକିରି, ଗନ୍ଧକାଦି ମିଶ୍ରିତ ଦ୍ରବ)—5. A paste prepared for brightening gold and silver ornaments. [ଉ—ରସାଣିଛି ପୁଣି ଶୋକ ସେ ମୂରତ ମଧୁର ସ୍ନିଗ୍ଧ ରସାଣେ । ରାଧାନାଥ. ପାର୍ବତୀ । ] ୬ । ସୁନା ଅଳଙ୍କାରକୁ ପୋଡ଼ି ଧୋଇ ତା ଉପରେ ଦେବା ଲେପ—6. A coating or layer put on ornaments after burning and washing them. ୭ । ସୁନାକୁ ଘଷି ଉଜ୍ଜ୍ୱଳ କରିବା ପଥର—7. Agate used in polishing gold. [ଉ—ସୁଭାବେ ସୁବର୍ଣ୍ଣ, ଯୌବନ ହେଲା ଯୋଗ୍ୟ ରସାଣ. ରାଧାନାଥ. ଚନ୍ଦ୍ରଭାଗା । ] ୮ । ଲେପ—8. Plaster; layer; coating. ୯ । ଆର୍ଦ୍ରକରଣ—9. Moistening. ୧୦ । ରସାୟନ—10. Medical chemistry relating to metals; alchemy. ଦେ. ବିଣ- ୧ । ରସୁଆ; ରସମୟ—1. Juicy. ୨ । ରସାଣିତ; ଶାଣିତ—2. Sharpened. [ ଉ—ବୋଲି, ରସାଣ ହେମାଙ୍ଗୀ ପାସାଣ କରାଇ । ଉଞ୍ଜ. ବୈଦେହୀଶ- ବିଳାସ । ]
ବସାନ
**रसाइन**

ରସାଣ କରିବା—ଦେ. କ୍ରି.—୧ । ପାଲିସ୍ କରିବା— Rasāṇa karibā 1. To polish. ୨ । ସ୍ୱର୍ଣ୍ଣାଦିକୁ ଉଜ୍ଜ୍ୱଳ କରିବା—2. To burnish gold or other metal. ୩ । ଧାତୁମୟ ଅଳଙ୍କାରାଦିକୁ ଗିଲ୍ଟ କରିବା—3. To gild a metal.
ବସାଣ ଦେଓୟା
**जिला करना**

ରସାଣ(ଣି) ପଥର—ଦେ. ବି.—କଠିନ ପ୍ରସ୍ତର ବିଶେଷ (ଯେଉଁ Rasāṇa (ṇi) pathara ପଥରକୁ ସୁନା ଉପରେ ଘଷିଲେ ସୁନା ଚକଚକିଆ ହୁଏ)—Agate; stone used in polishing gold.
ସାନ ପଥର
**संगसुलैमानी, सगंयशब**

**ରସାଣି**—ଦେ. ବି.—(ସଂ. ରସାୟନ, ପ୍ରା. ରସାଅଣ)—୧ । ଗିଲ୍ଟି
Rasāṇi କରିବାର ଲେପ—1. A coating put on gilt
ବସାନ **सोनाका पानी** metal. [ଉ—ମର୍ଜିତ ରସାଣିରେ
ରସାଣିଲ୍ଲ । ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି । ] ୨ ।
(ସଂ. ରସ) କ୍ଲେଦ; ପୂଯବିଶେଷ—2. Pus.

**ରସାଣିବା**—ଦେ. କ୍ରି.—୧ । ଗିଲ୍ଟି କରିବା—
Rasāṇibā ରସାନ ଦେଓଯା 1. To gild.
**जिलाकरना; सोनाका पानी चढाना** ୨ । ଉଜ୍ଜ୍ୱଳ ବା ପାଲିସ୍
କରିବା—2. To polish; to burnish. [ଉ—
ରସାଣିଛି ପୁଣି ଶୋକ ସେ ମୂରତି ମଧୁର ସ୍ନିଗ୍ଧ ରସାଣେ ।
ରାଧାନାଥ. ପାର୍ବତୀ । ] ୩ । ପୁଟ ଚଢାଇବା—3. To
smear with a coat or layer of paint

**ରସାଣିଲା ସୁନା**—ଦେ. ବି.—ଉଜ୍ଜ୍ୱଳୀକୃତ ବା ମାର୍ଜିତ ସ୍ୱର୍ଣ୍ଣ—
Rasāṇilā sunā Burnished gold; polished gold.
উজ্জ্বল করা সোনা **जीलाकिया हुआ सोना**
**पानी चढाया हुआ सोना** [ରସାଣିଲା ହାଟକ—ଅନ୍ୟରୂପ]

**ରସା ତଳ**—ସ. ବି.—(୬ଷ୍ଠୀ ତତ୍)—୧ । ଭୂତଳ; ଭୂପୃଷ୍ଠ; ପୃଥିବୀର
Rasā taḷa ତଳ; ଧରାତଳ—1. The face of the earth;
ରସାତଳ } the earth's surface. ୨ ।
ରସାତଳ } —ଗ୍ରାମ୍ୟରୂପ ପାତାଳ—2. The nether
ରସାତଳ } world. ୩ । ହିନ୍ଦୁ ପୁରାଣ ମତରେ
ପୃଥିବୀର ନିମ୍ନସ୍ଥ ସପ୍ତପାତାଳ ମଧ୍ୟରୁ ନିମ୍ନତମ ଲୋକ ବା
ତଳ—3. The lowest of the infernal
regions said to exist below the surface
of the earth. [ ବ୍ର—ହିନ୍ଦୁ ପୁରାଣ ମତରେ
ପୃଥିବୀର ତଳେ ପ୍ରତ୍ୟେକ ୧୦ ସହସ୍ର ଯୋଜନ ବିସ୍ତୃତ
୭ ଗୋଟି ପାତାଳ ଲୋକ ଅଛି, ଯଥା—ଅତଳ, ବିତଳ,
ନିତଳ, ତଳାତଳ, ମହାତଳ, ସୁତଳ ଓ ରସାତଳ ।
ରସାତଳର ଭୂମି ପ୍ରସ୍ତରମୟ ଓ ଏଥିରେ ଦୈତ୍ୟ, ଦାନବ-
ମାନେ ଇନ୍ଦ୍ରଙ୍କ ଭୟରେ ବାସ କରନ୍ତି—(ବି. ଶ.) ।]
୪ । ଅତି ନିମ୍ନ ପ୍ରଦେଶ—4. Very low place; a
place very low down the bottom of an
abyss.

**ରସାତ୍ମକ**—ସ ବିଣ.—(ରସ+ଆତ୍ମନ୍+କ)—୧ । ରସଗର୍ଭ; ରସମୟ,
Rasātmaka ରସାଳ—1. Full of juice; juicy. ୨ ।
[ରସାତ୍ମିକା—ସ୍ତ୍ରୀ] ସରସ—2. Full of wit; witty.
୩ । ସ୍ଥାୟୀ ଭାବପୂର୍ଣ୍ଣ—3. Sentimental.

**ରସାଦାନ**—ସ. ବି.—(୬ଷ୍ଠୀ ତତ୍; ରସ+ଆଦାନ)—୧ । ରସଗ୍ରହଣ
Rasādāna (ଦେଖ)—1. Rasagrahaṇa (See)
୨ । ରସ ଶୋଷଣ (ଦେଖ)—2. Rasa śoshaṇa
(See) ୩ । ସ୍ତନ୍ୟପାନ—3. Sucking. ୪ ।
( ରସା+ଦାନ )—ଭୂମିଦାନ—4. Gift of land.

**ରସାଧାନ**—ସ. ବି.—(୭ମୀ ତତ୍; ରସ+ଆଧାନ)—ରସ ସଞ୍ଚୟ
Rasādhāna କରିବା—Conservation of the juice.

**ରସାଧାର**—ସ.ବି.—(୬ଷ୍ଠୀ ତତ୍; ରସ=ଜଳର ଆଧାର)—୧ । ସୂର୍ଯ୍ୟ—
Rasādhāra 1. The sun. ୨ । ରସ ରଖିବା ପାତ୍ର—
2. A receptacle of sap or juice.

**ରସାଧିକ**—ସ. ବି.—(ବହୁବ୍ରୀହି)—ଟଙ୍କଣ; ଟାଙ୍ଗଣ—
Rasādhika Borax.

**ରସାଧିକ୍ୟ**—ସ. ବି—୧ । ରସପ୍ରାଚୁର୍ଯ୍ୟ; ରସ ବେଶି ହେବା—
Rasādhikya Excess of Rasa ୨ । କାକୋଳ
ଦ୍ରାକ୍ଷା—2 A medicinal fruit. ୩ । କିସ୍‌ମିସ୍—
3. Raisin; currant.

**ରସାନନ୍ଦ**—ଦେ. ବି. ପୁଂ (ନାମ)—୧ । ସପ୍ତଦଶ ଶତାବ୍ଦୀର ଭକ୍ତ
Rasānanda ଓଡ଼ିଆ କବି—1. A religious Oriya
poet of the 17th century. [ ବ୍ର—କବି
ବୈଷ୍ଣବ ଥିଲେ । ସେ ରାଧାକୃଷ୍ଣପ୍ରେମବିଷୟକ କେତେକ
ରସଗର୍ଭକ ସଙ୍ଗୀତ ଲେଖିଥିଲେ—ବିନାୟକ. ଉତ୍କଳ
ସାହିତ୍ୟ ଇତିହାସ । ] ୨ । ଲୋକଙ୍କ ନାମ—2. A
name given to males.

**ରସାନି**—ଦେ. ବି (ସଂ. ରସ)—ପତଳା ପୂଯ; ଘାଆ ବାଟେ ଦେହାନ୍ତର୍ଗତ
Rasāni ରସ—Purulent matter issuing through
বসানী, বস **रस** sores. thin pus.

**ରସାପାୟୀ**—ସଂ. ବିଣ. ପୁଂ (ରସା+ପା ଧାତୁ+ଇନ୍; ୧ମା. ୧କ)—
Rasapāyi ଯେ ଜିଭରେ ପାଣି ପିଏ—Drinking
[ ରସାପାୟିନୀ—ସ୍ତ୍ରୀ ] water by licking. ସଂ. ବି.—
କୁକୁର—Dog.

**ରସାବଳୀ**—ଦେ. ବି—ଏକପ୍ରକାର ମିଠେଇ—A kind of sweet-
Rasābaḷi meat. (ଉ—ଏଠାରେ ପୁଣ୍ଡା ରସାବଳୀ—
বসাবলী **अमृती** ପ୍ରାଚୀ. ଗୁରୁଭକ୍ତି ଗୀତା ।) [ ବ୍ର—ଏହା
ଦୁଧ ଛେନା ଓ ଚିନି ଆଦିରେ ପ୍ରସ୍ତୁତ ହୁଏ । ବିଶେଷତଃ
ଏହା କେନ୍ଦ୍ରାପଡ଼ା ବଳଦେବ ମହାପ୍ରଭୁଙ୍କ ନିକଟରେ
ଭୋଗ ହୁଏ । ]

**ରସାଭାସ**—ସଂ. ବି (୬ଷ୍ଠୀ ତତ୍)—୧ । ରସ ସମ୍ବନ୍ଧେ ମନର ଭାବପ୍ରଭାବର
Rasābhāsa ଗୋପନ—1. Simulation of senti-
ment; semblance of passion or sentiment.
୨ । କୌଣସି ପ୍ରସଙ୍ଗରେ ବା ସ୍ଥାନରେ ଅନୁଚିତ ରସର
ଅବତାରଣା—2. Introducing a sentiment
which does not befit the subject matter.
[ ବ୍ର—ପଶୁ ପକ୍ଷୀ ପ୍ରଭୃତି ତିର୍ଯ୍ୟକ୍ ଯୋନି ଜୀବମାନଙ୍କ
ସମ୍ବନ୍ଧରେ ଅଦ୍ଭୁତରସର, ଗୁରୁଜନଙ୍କ ପ୍ରତି କୋପପ୍ରକାଶ କରି
ରୌଦ୍ରରସର ଅବତାରଣା କଲେ ଏହା ରସ ନ ହୋଇ
ରସାଭାସ ହୁଏ । ]
୩ । ପ୍ରକୃତ କାରଣ ଛଡ଼ା ଅନ୍ୟ କାରଣରେ ରସର ଆରୋପ—
3. Attributing evident
emotions to some cause which is differ-
ent from the real one. ୪ । ମାତ୍ର ରସ ସୁଲଭ

ବାକ୍ୟ; ଅଶିଷ୍ଟ ବଚନ—4. Unbecoming words; words befitting a lower sentiment. ୫ । ରସ ଭଙ୍ଗ (ଦେଖ)—5. Rasa bhanga (See) ୬ । ନୀଚ ରସ—6. Lower sentiment.

ରସାଭିନିବେଶ—ସଂ. ବି. ( ୬ଷ୍ଠୀ ତତ୍ )—୧ । ରସର ବର୍ଣ୍ଣନା—
Rasābhinibeśa 1. Description of emotion. ୨ । ରସୋଦ୍ଗମ—2. Accession of sentiment or passion.

ରସାମୃତ—ସଂ. ବି. ( ରୂପକ )—୧ । ଅମୃତ ପରି ମଧୁର କାବ୍ୟ ରସ—
Rasāmṛuta Sentiment or taste compared to nectar. ୨ । ପାରଦ, ଗନ୍ଧକ, ଶିଳାଜତୁ, ଚନ୍ଦନ, ଶୁଣ୍ଠି, ଧନିଆ, ଇନ୍ଦ୍ରଯବ, ଯଷ୍ଟିମଧୁ ଆଦିରେ ପ୍ରସ୍ତୁତ ଔଷଧ ବିଶେଷ (ବୈ. ଶା)—2. Name of a medicinal preparation. [ ଦ୍ର—ଏହା ରକ୍ତପିତ୍ତରେ ଜ୍ୱରରେ ଉପକାରୀ—ବୈ. ଶା]

ରସାମୃତ ସିନ୍ଧୁ—ସଂ. ବି—ଭକ୍ତି ରସାମୃତସିନ୍ଧୁ (ଦେଖ)—Bhakti
Rasāmṛuta sindhu rasāmṛutasindhu. (See)
[ଉ—ଅନୁର ମନ ଦେଇ ଶୁଣ, ରସାମୃତ ସିନ୍ଧୁ ବଚନ ।
ପ୍ରାଚୀ. ପୂର୍ଣ୍ଣତମ ଚନ୍ଦ୍ରୋଦୟ । ]

ରସାମ୍ଳ—ସଂ. ବି (ବୈଦ୍ୟକ)—୧ । ବୃକ୍ଷାମ୍ଳ; ତିନ୍ତୁଳ—1. Tama-
Rasāmḻa rind. ୨ । ଅମ୍ଳବେତସ; ଖଟାପାଳଙ୍ଗ ଶାଗ—2. A sort of potherb; Rumex Vesicarius. ୩ । ଚୁକ୍ର—3. Vinegar made by the aceteous fermentation of grain; acid seasoning.

ରସାୟନ—ସଂ. ବି (୬ଷ୍ଠୀ ତତ୍; ରସର ଅୟନ=ପଥ)—୧ । ଦୀର୍ଘଜୀବନ
Rasāyana ଲାଭ କରିବା ପାଇଁ ପ୍ରସ୍ତୁତ ଔଷଧ; ଜରା ଓ ବ୍ୟାଧି-ନାଶକ ଔଷଧ; ଜରା ମୃତ୍ୟୁନାଶକ ସୁଧା—1. A medicinal preparation for retarding old age, the elixir of life, the Elixir Vitae of the alchemists. [ ଦ୍ର—ଏହା ରୋଗୀର ରୋଗନାଶକ, ବୃଦ୍ଧର ଜରାନାଶକ ଏବଂ ସୁସ୍ଥ ବ୍ୟକ୍ତି ପକ୍ଷରେ ବଳ ଓ ଆୟୁବର୍ଦ୍ଧକ । ଏହି ଶବ୍ଦ ଅନ୍ୟ ଶବ୍ଦ ସଙ୍ଗେ ସମାସ ହୋଇ କର୍ଣ୍ଣରସାୟନାଦି ବିଶେଷଣ ପଦ ସିଦ୍ଧ ହୁଏ । ଏଥିର ଅର୍ଥ କର୍ଣ୍ଣପକ୍ଷରେ ରସାୟନସଦୃଶ ତୃପ୍ତିକର । ] ୨ । ବିଷ—2. Poison. ୩ । କଟି; ଅଣ୍ଟା—3. The waist. ୪ । ତକ୍ର; ଘୋଳ ଦହି—4. Churned milk; butter milk. ୫ । ଦୁଇ ବା ବହୁବସ୍ତୁ ସଂଯୁକ୍ତ ହେଲେ ଏକ ଭିନ୍ନ ବସ୍ତୁରେ ପରିଣତ ହୋଇ ଗୁଣାନ୍ତର ବା ରସାନ୍ତର ପ୍ରାପ୍ତ ହେବା ବିଷୟକ ଜ୍ଞାନ ଯେଉଁ ଶାସ୍ତ୍ରରୁ ଲାଭ ହୁଏ; [ ଦ୍ର—ତମ୍ବାକୁ ସୁନାରେ ପରିଣତ କରିବାର ପ୍ରଣାଳୀ ଏ ଶାସ୍ତ୍ରରୁ ଶିଖାଯାଏ ବୋଲି କଥିତ ]—5. Alchemy; chemistry. ୬ । ଔଷଧରେ ପାରଦର ପ୍ରୟୋଗକରଣ—6. The employment of mercury in medicine. ୭ । ପକ୍ଷୀ—7. Bird. ୮ । ଜରା—8. Old age. ୯ । ରୋଗ ବିଶେଷ—9. A sort of disease. ୧୦ । ଗରୁଡ଼—10. Garurḍa, the king of birds. ୧୧ । ବିଡ଼ଙ୍ଗ—11. A medicinal seed; Embelia Ribes. ୧୨ । ରସାୟନ ଶାସ୍ତ୍ରବିତ୍—12. An alchemist. ୧୩ । ରସର ସ୍ଥାନ—13. The place or subject of a sentiment. ୧୪ । ରଙ୍ଗ—14. Paint.

ରସାୟନଜ୍ଞ—ସଂ. ବିଣ ଓ ବି. ପୁଂ (ରସାୟନ+ଜ୍ଞା. ଧାତୁ+କର୍ତ୍ତୃ.ଅ)—
Rasāyanajña ରସାୟନ ବିଷୟରେ ଅଭିଜ୍ଞ—
(ରସାୟନଜ୍ଞା—ସ୍ତ୍ରୀ) Learned in Rasāyana.

ରସାୟନ ଫଳା—ସଂ. ବି—ହରିତକୀ; ହରଡ଼ା—
Rasāyana phaḻā The yellow myrobalan; Terminalia Chebula.

ରସାୟନ ବର—ସଂ. ବି (୭ମୀ ତତ୍)—୧ । ରସୁଣ (ବୈ. ଶା)—
Rasāyana bara 1. Garlic.
୨ । ପାରଦ—2. Mercury.

ରସାୟନ ବିଦ୍ୟା—ସଂ. ବି—ଯେଉଁ ବିଦ୍ୟାଦ୍ୱାରା ଦୁଇ ବା ତତୋଽଧିକ
Rasāyana bidyā ଜଡ଼ ପଦାର୍ଥର ସଂଯୋଗ ବିୟୋଗ ସମ୍ବନ୍ଧୀୟ
ରସାୟନ ବିଜ୍ଞାନ } ଅନ୍ୟରୂପ
ରସାୟନ ଶାସ୍ତ୍ର }
ବିଷୟ ଜଣାଯାଏ—
Chemistry; alchemy.
[ଦ୍ର—ରସାୟନ ବିଦ୍ୟାର ମୁଖ୍ୟ ସିଦ୍ଧାନ୍ତ ଏହିକି, ସଂସାରର ସମସ୍ତ ପଦାର୍ଥ କେତେକ ମୂଳ-ଦ୍ରବ୍ୟର ପରମାଣୁରେ ନିର୍ମିତ । ବୈଜ୍ଞାନିକମାନେ ୭୮ଟି ମୌଳିକ ଦ୍ରବ୍ୟ ସ୍ଥିର କରିଅଛନ୍ତି (ଯଥା—ସୁନା, ରୁପା ଆଦି ଧାତୁ, ଗନ୍ଧକ ଆଦି ଉପଧାତୁ, ଅକ୍ସିଜେନ୍, ହାଇଡ୍ରୋଜେନ୍ ଆଦି ବାଷ୍ପ) । ପ୍ରତ୍ୟେକ ମୂଳ ଦ୍ରବ୍ୟରେ ଏକ ପ୍ରକାର ପରମାଣୁ ଥାଏ । ଏକପ୍ରକାର ପରମାଣୁ ସଙ୍ଗେ ଅନ୍ୟ ପ୍ରକାର ପରମାଣୁ ମିଶିଲେ ଅନ୍ୟ ଏକ ଯୌଗିକ ବସ୍ତୁ ହୁଏ । ଯୌଗିକ ବସ୍ତୁ ବିଶ୍ଳେଷଣ କଲେ ତହିଁର ଉପାଦାନ ମୌଳିକବସ୍ତୁମାନ ବାହାରେ । ଏହି ସଂଶ୍ଳେଷଣ, ବିଶ୍ଳେଷଣ ସମ୍ବନ୍ଧେ ଜ୍ଞାନ ରସାୟନ ଶାସ୍ତ୍ରରୁ ମିଳେ—ବୈ. ଶା ]

ରସାୟନ ଶ୍ରେଷ୍ଠ—ସଂ. ବି (୭ମୀ ତତ୍)—ପାରଦ—
Rasāyana śreshṭha Mercury

ରସାୟନାଚାର୍ଯ୍ୟ—ଯୌ. ବି. (ଆଧୁନିକ)—ରସାୟନ ବିଦ୍ୟାର ଅଧ୍ୟାପକ—
Rasāyanāchārjya Professor of chemistry.
(ରସାୟନାଧ୍ୟାପକ—ଅନ୍ୟରୂପ)

ରସାୟନୀ—ସଂ. ବି—୧ । ଗୁଳୁଚି ଲତା—1. Menispermum
Rasāyanī Glabrum; Tinaspora Cordifolia. ୨ । କାକମାଚୀ; ନୁଣନୁଣିଆ କୋଳି ଗୁଳ୍ମ—2. Solanum Nigrum. ୩ । ମହାକରଞ୍ଜ; କରଞ୍ଜ ବୃକ୍ଷ—3. Arborea Speciosa; Pongamia Indica (tree). ୪ । ଗୋରକ୍ଷ ଦୁଗ୍ଧା ନାମକ କ୍ଷୁଦ୍ର ଗୁଳ୍ମ; ନାଗବଳା, ଗଉଗଡ଼—4. Sida Spinosa. ୫ ।

ମାଂସଛଦା; ମାଂସ ରୋହିଣୀ ଲତା—5. A medicinal plant. ୬ । ଦେହସ୍ଥ ଲସିକା ନାଡ଼ୀ—6. An absorbent vessel of the lymphatic system; a lacteal; a vessel of the body conveying nutrition. ୭ । ମଞ୍ଜିଷ୍ଠା (ହ୍ର. ଶ)—7. Indian madder. ୮ । ବାଇଡଙ୍କ (ହ୍ର. ଶ)—8 Cowhage. ୯ । ଶଂଖପୁଷ୍ପୀ (ହ୍ର. ଶ) (ଦେଖ)—9. Śaṁkha pushpī (See) ୧୦ । ଯେଉଁ ଔଷଧ ବାର୍ଦ୍ଧକ୍ୟ ନିବାରଣ କରେ (ହ୍ର. ଶ)—10. Any medicine which prevents persons becoming old.

ରସାରୁହ—ସଂ. ବି. (ରସା+ରୁହ ଧାତୁ+କର୍ତ୍ତୃ ଅ)—ବୃକ୍ଷ—
Rasāruha Tree.
(ଉ—ରକ୍ତିକା ଅଯଶ ଅଛି ରସାରେ, ରସାରୁହରୁ ଲତାକୁ ଖସାରେ । କବିସୂର୍ଯ୍ୟ. ବଳୋଗ୍ରଭାମ୍ଭ. ର ଗୀତ ।)

ରସାଳ—ସଂ. ବିଣ (ରସ+ଆ+ଲା ଧାତୁ=ଗ୍ରହଣ କରିବା+କର୍ତ୍ତୃ.ଅ)—
Rasāla ୧ । ରସଯୁକ୍ତ; ସରସ—1. Juicy. (ଉ—ଧର ଜେ (ରସାଳା—ସ୍ତ୍ରୀ) ରସାଳ ବୋଲେ ଏ ରସାଳ ରସାଳସା ଯେହ୍ନ ସେନ । ବୋଲେନ୍ଦ ଉଦ୍ଦୁରେଖା ।) ୨ । ସୁସ୍ୱାଦୁ—2. Savoury; tasteful; delicious. ୩ । ରସମୟ; ରସିକ—3. Witty; humorous. ୪ । ସୁନ୍ଦର; ମନୋହର—4. Graceful, charming. ସଂ. ବି—୧ । ଆମ୍ବ—1. Mango; Mangifera Indica. ୨ । ପଣସ—2. Jack fruit; Artocarpus Intergrifolia. ୩ । ଗୋଧୂମ; ଗହମ—3. Wheat. ୪ । କୁନ୍ଦର ତୃଣ—4. A sort of grass. ୫ । କୁନ୍ଦୁରୁଖୁଣ୍ଟ ବା ଲୋବାନ୍ ଗଛ—5. The olibanum tree; Boswella Thurifera. ୬ । ରସଦାଳକା; ପୁଣ୍ଡ୍ରକ ନାମକ ଇକ୍ଷୁ—6. A luscious variety of sugarcane. ୭ । ଲୋବାନ୍; ଶିହ୍ଲକ—7. Frankincense, olibanum. ୮ । ଗନ୍ଧରସ; ଗୁଗ୍ଗୁଲ—8. Gum myrrh. ୯ । ଅଖୁ (ହ୍ର. ଶ)—9. Sugarcane. ଦେ. ବି—ଘୃତ; ଘିଅ—Ghee. (ଉ—ରସାର ସାର ଏ ଦେଶ, ରସାଳ ଅଛି ଗୋରସ । ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।)

ରସାଳୟ—ସଂ. ବି. (୬ଷ୍ଠୀ ତତ୍) ୧ । ଅମ୍ବ ଗଛ (ହ୍ର.ଶ)—1. The Rasālaya mango tree. ୨ । ଆମୋଦପ୍ରମୋଦର ସ୍ଥାନ(ହ୍ର.ଶ) 2. A place of amusements.

ରସାଳ ଶର୍କରା—ସଂ. ବି. (ମ.ପ. ଲୋ)—ଅଖୁ ତୋରୁଅରୁ ପ୍ରସ୍ତୁତ ଗୁଡ଼
Rasāla śarkarā ବା ଚିନି (ହ୍ର.ଶ)—Molasses or sugar made from sugarcane.

ରସାଳସା—ସଂ. ବିଣ. ସ୍ତ୍ରୀ(୫ମୀ ତତ୍)—୧ । ମଦାଳସା; ରସିକତାଯୋଗୁଁ
Rasālasā ଅଳସଗମନା—1. Lustful; walking slowly owing to excess of the sentiment of love. ୨ । ରସମୁଗ୍ଧା—2. Enamoured with love or lust. ସ. ବି—୧ । ଧମନୀ; ନାଡ଼ୀ; ରକ୍ତବାହୀ ନାଡ଼ୀ—1. Vein, blood vessel; tendon; blood tube; nerve. ୨ । ଅଖୁ (ହ୍ର. ଶ)—2. Sugarcane. ୩ । ଗହମ (ହ୍ର. ଶ)—3. Wheat.

ରସାଳସୀ—ଦେ. ବିଣ. ସ୍ତ୍ରୀ. (ସଂ. ରସାଳସା)—କାମରସ ଯୋଗୁଁ
Rasālasī ଅଳସଗମନା; ମଦାଳସା—Walking with
ବସାଲସା slow pace on account of excess of
रसालसी the sentiment of lust.

ରସାଳା—ସଂ. ବିଣ. ସ୍ତ୍ରୀ (ରସାଳ+ଆ)—ରସାଳର ସ୍ତ୍ରୀଲିଙ୍ଗ—
Rasālā Feminine of Rasāla. ସଂ. ବି—୧। ରସନା; ଜିହ୍ୱା—1. Tongue. ୨ । ଦୂବ—2. The Doob grass; Panicum Dactylon; Cynodon Dactylon. ୩ । ଶାଳପର୍ଣ୍ଣୀ—3. A shrub; Hedysarum Gangeticum. ୪ । ଦ୍ରାକ୍ଷା; ଅଙ୍ଗୁର ଫଳ—4. Grape. ୫ । ଦହିରେ ପ୍ରସ୍ତୁତ ପେୟବିଶେଷ; ଶିଖରଣୀ—5. A sort of sweet drink made from curd. [ଦ୍ର—ବୈଦ୍ୟଶାସ୍ତ୍ରମତରେ ଜଳଶୂନ୍ୟ ଦହି ୮ ସେର, ଚିନି ୪ ସେର ଓ ଦୁଧ ୬ ସେର ଏକତ୍ର ମିଶାଇ ତହିଁସଙ୍ଗେ ମରିଚ, ଲବଙ୍ଗ, ଅଳାଇଚ ଓ କର୍ପୂରଗୁଣ୍ଡ ମିଶାଇଲେ ରସାଳା ହୁଏ । କମ୍ବା ଦହି ୪ ସେର, ଚିନି ୨ ସେର, ମଧୁ ଦୁଇ ଛଟାଙ୍କି, ଘିଅ ଦୁଇ ଛଟାଙ୍କି, ଶୁଣ୍ଠିଗୁଣ୍ଡ ଅଧତୋଳା, ଅଳାଇଚ ଗୁଣ୍ଡ ଅଧ ତୋଳା, ମରିଚଚୂର୍ଣ୍ଣ ଦୁଇ ତୋଳା ଓ ଲବଙ୍ଗଚୂର୍ଣ୍ଣ ଦୁଇ ତୋଳା ଏକତ୍ର ମିଶାଇ ଛାଣି ମୃଗନାଭି ଓ କର୍ପୂର ଦ୍ୱାରା ସୁବାସିତ କରି ରସାଳା କରାଯାଏ । ଏହା ଅମ୍ଳମଧୁର-ରସ, ଶୀତଳ, ସାରକ, ଅଗ୍ନିବର୍ଦ୍ଧକ, ପୁଷ୍ଟିକର, ଶୁକ୍ରବର୍ଦ୍ଧକ, ସ୍ନିଗ୍ଧ ଓ ବାତ, ପିତ୍ତ, ଦାହ, ତୃଷ୍ଣା, ରକ୍ତପିତ୍ତ, ପ୍ରତିଶ୍ୟାୟାଦିନାଶକ । ରତିଶ୍ରାନ୍ତ ଓ ପର୍ଯ୍ୟଟନକ୍ଲାନ୍ତ ବ୍ୟକ୍ତି ପକ୍ଷରେ ଏହା ବିଶେଷ ହିତକର ।] ୬ । ସୁମଧୁର ଲେହ୍ୟବିଶେଷ; ଚଟ୍ଣି—6. A sort of delicacy or pickle to be licked. ୭ । ଭୂଇଁକଖାରୁ (ହ୍ର. ଶ) 7. A kind of yam.

ରସାଳାପ—ସଂ ବି (ରସପୂର୍ଣ୍ଣ ଅଳାପ; ମ. ପ. ଲୋ.)—ରସପୂର୍ଣ୍ଣ ବା
Rasālāpa ରସିକତାଯୁକ୍ତ କଥୋପକଥନ; ସରସ ଆଳାପ—
(ରସାଳାପନ—ଅନ୍ୟରୂପ) Witty conversation.
ରସାଳାପୀ (ପୁଂ) } ବିଣ—
ରସାଳାପିନୀ (ସ୍ତ୍ରୀ)

ରସାଳ(ଳୁ)ଆ—ଦେ.ବିଣ. (ପୁଂ ଓ ସ୍ତ୍ରୀ) (ସଂ. ରସାଳ)—ରସାଳ (ଦେଖ)
Rasāli(lu)ā ରସାଲ रसभरा(री), रसीला Rasāla (See)
(ରସାଳୀ, ରସାଳେଇ, ରସାଳୋଇ—ସ୍ତ୍ରୀ)

ରସାଲହା—ସଂ. ବ — ଶାଣ୍ଡିନାସା; ପୃଶ୍ନିପର୍ଣ୍ଣୀଲତା ଗୁଳ୍ମ— Rasālhā A shrub; Uraria Lagopoides; Hemionites Cordifolia.

ରସାଳୀ—ସ.ବ—(ରସାଳ+ଈ)—ପୁଣ୍ଡ୍ରେକ୍ଷୁ; ରସଦାଳିକା; ଏକପ୍ରକାର Rasāli ରସବହୁଳ ଆଖୁ— A luscious variety of sugar cane; Saccharum Officinarum.

ରସାଶ—ସ. ବ (ରସ+ଅଶ୍ ଧାତୁ+ଭାବ ଅ)—ମଦ୍ୟପାନ; ତାଡ଼ି Rasāsa ପିଇବା (ହି. ଶ)—Drinking of toddy-

ରସାଶୀ—ସ. ବିଣ. ଓ ବ. (ପୁଂ) (ରସ+ଅଶ୍ଧାତୁ+କର୍ତ୍ତୃ. ଇନ୍ Rasāsi ୧ମା. ୧ବ)—ମଦ୍ୟପାନକାରୀ (ହି. ଶ) —Toddy-drinker
(ରସାଶିନୀ—ସ୍ତ୍ରୀ)

ରସାଶ୍ୱାସା —ସ.ବ—ପଲାଶୀ ଲତା,ଗନ୍ଧ ଶୁଣ୍ଠି ଲତା(କାଶ୍ମୀର ଦେଶୀୟ)— Rasāswāsā A sort of creeper.

ରସାସ୍ୱାଦ—ସ ବ—(ଷଷ୍ଠୀ ତତ୍, ରସ+ଆସ୍ୱାଦ)—୧ । କୌଣସି Rasāswāda ବସ୍ତୁର ବା ବିଷୟର ରସ ଗ୍ରହିବା; ରସ ଗ୍ରହଣ; (ରସାସ୍ୱାଦନ—ଅନ୍ୟରୂପ) ରସବୋଧ—1. Enjoyment or tasting of the Rasa; experiencing a sensation. ୨। (ଯୋଗ ଦର୍ଶନ) ଅଖଣ୍ଡ ବସ୍ତୁର ଅବଲମ୍ବନ ହେତୁ ଚିତ୍ତବୃତ୍ତିର ସଙ୍କଳ୍ପ ଆନନ୍ଦାସ୍ୱାଦନ— 2. (Joga philosophy) A state of delightful repose in religious meditation.

ରସାସ୍ୱାଦୀ—ସଂ. ବିଣ. ପୁଂ—(ରସ+ଆସ୍ୱାଦ+ଇନ୍, ୧ମା. ୧ବ)— Rasāswādi ୧ । ରସର ଆସ୍ୱାଦନକାରୀ, ଯେ ରସ ଗ୍ରହଣ କରେ— 1. Tasting or enjoying a Rasa. ୨। (ରସାସ୍ୱାଦିନୀ—ସ୍ତ୍ରୀ) ମଉଜିଆ—2. Fond of amusements or fun— ସଂ.ବ —ଭ୍ରମର, ମହୁମାଛି—A bee.

ରସାହ୍ୱ—ସଂ. ବ—୧ । ସରଳଦ୍ରବ; ଗନ୍ଧ ବିରଜା; ତାର୍ପିନ ତେଲ— Rasāhwa 1. Turpentine. ୨। ଝୁଣା—2. Resin.

ରସି(ସ୍ସି)—ଦେ ବ—(ସଂ. ରଶ୍ମି)—ରଶି (ଦେଖ)—Rasi (See). Rasi(ssi) ପ୍ରାଦେ (ସିଂହଭୂମ) ବ—ମଦ୍ୟସାର—The essence of wine.
বসী रसि

ରସିଆ—ଦେ. ବିଣ (ସ. ରସିକ)—୧ । (ବ୍ୟଙ୍ଗ) ରସିକ; ନାଗର Rasia —1. Gallant. ୨ । ରସପ୍ରିୟ—2. Witty.
বসিক ୩ । ରସପୂର୍ଣ୍ଣ—3. Juicy. ୪ । ସଉକୀ—
रसिया 4. Foppish [ଉ—ରସିଆଥାଏ । ରସିଆ କାନରେ ଫାସିଥାଏ । ଚଗ । ]

ରସିଆ ନାଗର—ଦେ. ବ. ପୁଂ (ସହଚର; ସ. ରସିକ+ନାଗର)— Rasiā nāgara (ବ୍ୟଙ୍ଗ) ରସିକ ବ୍ୟକ୍ତି—(ironical)
রসিক নাগর A gallant; a witty person. (ଉ—
रसिया नागर (୧) ଫୁଲ ଫୁଟିଗଲା, ଲଟା ନ ମାଉଳା, ଫଳନ୍ତି (ରସିଆ ପୁରୁଷ—ଅନ୍ୟରୂପ) ଝୁଡ଼ାଙ୍କ ଛଇଁ, କେଉଁ କଥାପାଇଁ ରସିଆ ନାଗର, ପଦରେ ରହିଲେ ଗୁହିଁ—ଚଗ । (୨) ରସିଆ ପୁରୁଷ ମୁଣ୍ଡରେ ଜଟ, ଲୁଅ ଢଗିଦେଲା ଲଟପଟ । ଚଗ । ]

ରସିକ—ସ. ବିଣ. ପୁଂ (ରସ+ଜ୍ଞାତାର୍ଥେ ଇକ)—୧ । ରସଜ୍ଞ; Rasika ରସବୋଧ ବିଶିଷ୍ଟ; ରସଗ୍ରାହୀ—1. Able to (ରସିକା—ସ୍ତ୍ରୀ) realise and enjoy the taste or sentiment or wit of a thing. ୨ । ରସମୟ; ସରସ—2. Juicy. ୩ । ଆମୋଦପ୍ରିୟ; କୌତୁକପ୍ରିୟ; ବିଳାସପ୍ରିୟ—3. Witty; humorous; jocose; merry; funny. ୪ । ଗୁଣଗ୍ରାହୀ —4. Able to appreciate excellence or wit. ୫ । ସ୍ୱାଦଯୁକ୍ତ—5. Flavoured; tasteful. ୬ । ସୁରୁଚିଯୁକ୍ତ; ସୁନ୍ଦର—6. Tasteful. ୭ । ସୁରୁଚିପ୍ରିୟ—7. Having good taste. ୮। କାବ୍ୟପ୍ରିୟ—8.Having a taste for poetry. ୯। ହୃଦୟାହ୍ଲାଦକାରୀ—9. Touching the heart; pathetic. ୧୦ । ଅନୁରକ୍ତ—10. Impassioned; enamoured. ୧୧ । କୌଣସି ବସ୍ତୁ ପ୍ରତି ବିଶେଷ ଅନୁରକ୍ତ—11. Attached to any particular thing or matter (ଯଥା କାବ୍ୟ ରସିକ, ସଙ୍ଗୀତ ରସିକ ।) ସ. ବ—୧ । ସାରସ ପକ୍ଷୀ—1. The Indian crane; Ardea Sibirica. ୨ । ଘୋଟକ; ତୁରଙ୍ଗ—2. Horse. ୩ । ହସ୍ତୀ—3. Elephant. ୪ । ରହସ୍ୟପ୍ରିୟ ବ୍ୟକ୍ତି —4. A wit. ୫ । ଲମ୍ପଟ—5. Libertine. [ଉ—ସୁଶୋଭିତା । ରସିକ ଚନ୍ଦ୍ରଙ୍କୁ ବିଦ ତନ୍ମା । ଗୋଲୋକ. ଇନ୍ଦୁରେଖା । ] ଦେ. ବ. ପୁଂ—୧ ।
বসিক ବିଳାସ ଓ ବେଶାଦି ପ୍ରିୟ ବ୍ୟକ୍ତି; ସଉକିଆ ଲୋକ—
रसिक 1. Beau; fop. ୨। ଲୋକଙ୍କ ନାମ—2. A name given to males. ଦେ. ବିଣ—୧ । ସଉକୀ;
বসিক (ଅମୁକ ବସ୍ତୁ) ଧାରଣ କରିବା ପ୍ରିୟ—1. Fond of
रसिया a particular thing. (ଯଥା—ନୋଳରସିକ, ଗାମୁଛାରସିକ, ବଟୁଆ ରସିକ ।) ୨ । ରସିକ; ନାଗର; ରମଣୀ ପ୍ରତି ଅନୁରକ୍ତ—2. Gallant; fond of flirting with women. ୩ । ଆଦିରସପ୍ରିୟ— 3. Fond of amatory sentiment; lustful.

ରସିକ ଚନ୍ଦ୍ର—ସ. ବ—୧ । ଶ୍ରେଷ୍ଠ ରସିକ—1. An eminent Rasika chandra person of taste and wit.
ରସିକଚୂଡ଼ାମଣି, ରସିକବର, ରସିକ ମଣି, ରସିକରତ୍ନ, ରସିକରାଜ, ରସିକଶିରୋମଣି, ରସିକଶେଖର, ରସିକଶ୍ରେଷ୍ଠ } ଅନ୍ୟରୂପ ୨ । ଶ୍ରୀକୃଷ୍ଣଙ୍କ ବିଶେଷଣ —2. An epithet applied to Srikrushna.

ରସିକତା(ତ୍ୱ)—ସଂ. ବ (ରସିକ+ଭାବାର୍ଥେ ତା, ତ୍ୱ)—୧ । ରସିକର Rasikatā(twa) ଭାବ—1. Wittiness; jocularity. ୨ । ଗୁଣଗ୍ରାହିତା—2. Appreciation of good qualities. ୩ । ଥଟ୍ଟା; ପରିହାସ (ହି. ଶ)— 3. Jest, joke. ୪ । ଆଦିରସ ପ୍ରିୟତା—4. Fond-

ness for the erotic sentiment. ୫ । ସ୍ତ୍ରୀମାନଙ୍କ ପ୍ରତି ଅନୁରକ୍ତି—5. Gallantry.

**ରସିକ ନାଗର**—ସ.ବି—୧। ନାଗରକରୁଚିପ୍ରିୟ ରସିକ—1. A gallant
Rasika nāgara fond of the arts of the towns-people. ୨ । ନାରୀପ୍ରିୟ ବ୍ୟକ୍ତି—2. One fond the society of women.

**ରସିକା**—ସଂ. ବିଣ. ସ୍ତ୍ରୀ ( ରସିକ+ଆ )—ରସିକର ସ୍ତ୍ରୀଲିଙ୍ଗ—
Rasikā Feminine of Rasika. ସଂ. ବି.—୧ । ରସାଳା; ଶିଖରଣୀ; ଶର୍କରା, ଦହି ଓ ମସଲାଯୁକ୍ତ ପେୟବିଶେଷ—1. A drink made of buttermilk, sugar and spices. ୨ । ଗୁଡ଼—2. Molasses. ୩ । ଇକ୍ଷୁରସ; ତୋରୁଅ—3. Cane-juice. ୪ । ରସନା; ଜିହ୍ୱା—4. Tongue. ୫ । କାଞ୍ଚୀ—5. Woman's girdle. ୬ । ବିଳାସପ୍ରିୟା ରମଣୀ—6. Coquette; belle ଦେ. ବି.ପୁଂ (ବ୍ୟଙ୍ଗ) (ସ. ରସିକ )—୧ । ରସିକ ବ୍ୟକ୍ତି—1. A witty or jocose person. ୨ । ( ଅନାଦରାର୍ଥକ ) ରସିକ ନାମକ ବ୍ୟକ୍ତିର ଡାକନାମ—2. Name for calling Rasika.

**ରସିକାକଢ଼ି**—ପ୍ରାଦେ(ସମ୍ବଲପୁର)ବି.(ସ. ଅଶୋକକଳି)-ଅଶୋକ କଳିକା-
Rasikākaṛi The buds of Asoka flower.

**ରସିକା ନାରୀ**—ସଂ.ବି-ବିଳାସପ୍ରିୟା ରମଣୀ—A coquette; a jilt.
Rasikā nārī (ଉ—ମନପ୍ରଫୁଲ୍ଲିଣୀ ଗୀତ ଗାଏ
ରସିକା ରମଣୀ } —ଅନ୍ୟରୂପ ରସିକା ନାରୀ ବାସଘର ଯାଏ
ରସିକା ନାଗରୀ } —ଛନ୍ଦ।)

**ରସିକା ବର**—ସଂ. ବି. ସ୍ତ୍ରୀ. ( ୭ମୀ ତତ୍ )—ଶ୍ରେଷ୍ଠ ରସିକା—
Rasikābara An eminently witty or coquettish woman.
ରସିକାବରା
ରସିକାମଣି } —ଅନ୍ୟରୂପ
ରସିକାଶିରୋମଣି }

**ରସିକିଣୀ**—ଦେ. ବି. ସ୍ତ୍ରୀ—ରସିକା ( ଦେଖ )
Rasikinī Rasikā ( See).
ରସିକା (ଉ—ଲଉ ଚନ୍ଦ୍ରମାନଙ୍କୀର ଅକର୍ମରୁ ହକାଉଛୁ ରସିକିଣୀଙ୍କ
रसिकिनी ଭଙ୍ଗ. ପ୍ରେମସୁଧାନିଧି ।)

**ରସିକେଶ**—ସ. ବି. ପୁଂ (୭ମୀ ତତ୍)—ଶ୍ରୀକୃଷ୍ଣ—
Rasikesa An epithet of Śrikṛushṇa.
(ରସିକେଶ୍ୱର—ଅନ୍ୟରୂପ)

**ରସିତ**—ସ. ବିଣ. ( ରସ୍ ଧାତୁ+କର୍ମ. ତ)—୧ । ରସଯୁକ୍ତ—1, Rasita Having Rasa (flavour, taste, sentiment wit etc.) ୨। ଆସ୍ୱାଦିତ—2. Tasted. ୩। ରସାଣିତ; ଗିଲ୍ଟ କରାଯାଇଥିବା-3. Gilt. ୪। ସ୍ୱର୍ଣ୍ଣରେ ମଡ଼ା ଯାଇଥିବା 4. Plated with gold. ସ.ବି—୧। ଜଳଦ ନିନାଦ; ମେଘ ଶବ୍ଦ; ଘଡ଼ଘଡ଼ି ଶବ୍ଦ—1. Roar of thunder (ଉ—ରସିତ ରସନାନାଦ ତର୍ଜିତ ଏକୁ ଶବଦ, ରସେ ଅସରର ଲଜ୍ଜା ନ କର ହେଉ । ପ୍ରାଚୀ. ରସବାରିଧି ।) ୨ । ମଦ; ମାଦକ ଦ୍ରବ୍ୟ—2. Intoxicating drug ୩ । ଶବ୍ଦ—3. Sound.

**ରସିତବାନ୍**—ସ. ବିଣ. ପୁଂ ( ରସିତ+ବତ୍; ୧ମା. ୧ବ )—
Rasitabān ୧ । ଆସ୍ୱାଦନ କରିଥିବା; ଚାଖିଥିବା; ଯେ ଚାଖିଅଛି (ରସିତବତୀ—ସ୍ତ୍ରୀ) —1. Having tasted. ୨। ଶବ୍ଦକାରୀ—2 Making a sound.

**ରସିତା**—ସ. ବିଣ. ପୁଂ ( ରସ ଧାତୁ+କର୍ତ୍ତୃ. ତୃ; ୧ମା. ୧ବ )—
Rasitā ୧ । ଆସ୍ୱାଦନକାରୀ—1 Tasting; relishing. (ରସିତ୍ରୀ—ସ୍ତ୍ରୀ) ୨ । ଶବ୍ଦକାରୀ—2. Making a sound.

**ରସିତାଶୀ**—ସ. ବିଣ. ପୁଂ (ରସିତ+ଅଶ୍ ଧାତୁ=ଖାଇବା+କର୍ତ୍ତୃ. ଣିନ୍; ୧ମା. ୧ବ)—୧ । ଯେ ଶବ୍ଦପୂର୍ବକ ଖାଏ;
Rasitāśī (ରସିତାଶିନୀ—ସ୍ତ୍ରୀ) ଖାଇଲା ବେଳେ ଯେ ଗର୍ଜନ କରେ (ଯଥା—ବିରାଡ଼ି, ବାଘ)—1. Eating with a noise; uttering a grumbling sound while eating. ୨ । ମଦ୍ୟ ପାନକାରୀ—2. Drinking wine,

**ରସି(ସେ)ଦ୍(ଦି)** [ଇତ୍ୟାଦି]—ବୈଦେ. ବି (ଇଂ) -୧ । (ଇଂ. ରସିଦ୍)
Rasi(se)d(di) [etc] ରଶିଦ୍ ଇତ୍ୟାଦି (ଦେଖ)—Rasid
ରସିଦ रसीद etc (See) ୨ । (ଫା. ରସଦ୍) ରଶଦ୍ ଇତ୍ୟାଦି
ରସଦ रसद् (ଦେଖ)—2. Rasad etc. (See)

**ରସିବା**—ଦେ କ୍ରି (ସ. ରସ)—୧ । ରସଯୁକ୍ତ ହେବା—1. To
Rasibā become juicy or luscious. ୨ । (ଫଳ ଆଦି)
ରସା ଲସିବା; ପାଚିବାରୁ ଲଚପଚ ହେବା—2. To become
रसना soft or flaccid(said of fruits when ripe). ୩ । ଜଳଯୁକ୍ତ ହେବା—3. To become watery. [ଯଥା-ବର୍ଷାଦିନେ ଲୁଣ ରସିଯାଏ ।] ୪। ଆର୍ଦ୍ର ହେବା—4. To become moistened. ୫ । ଅନୁରାଗୀ ହେବା—5. To become fond of. [ ଉ—ସ୍ନେହରତ ପ୍ରାଣୀ ଦର୍ଶିତ ରସି କ୍ଷଣୀ ଉଦ୍ଧତ । ଗୋଲୋକ—ଇନ୍ଦୁରେଖା । ] ୬ । ଆସକ୍ତ ହେବା; କୌଣସି ବିଷୟ ବା ବ୍ୟକ୍ତି ପ୍ରତି ଅନୁରକ୍ତ ହେବା—6. To be attached to or enamoured of (a person or thing). [ଉ—ଜଳଜର ପୁରନ୍ଦର ଶତ୍ରୁ ଜଳପାତ୍ରେ ରସିଲା ରସିକା ରସଲୁବ୍ଧ ଭାବେ । କବିସୂର୍ଯ୍ୟ—ସଙ୍ଗୀତ । ] ୭ । ପ୍ରେମାର୍ଦ୍ର ହେବା—7. To be affected or smitten with love. [ ଉ—ଭ୍ରମର । ରସନାରେ, ଏ ଫୁଲେ ବସନାରେ, କେତକୀ, କେତକୀରେ କେତକୀ ସଙ୍ଗୀତ ]। ୮ । ଅନୁରାଗ ବା ସ୍ନେହ ପ୍ରକାଶ କରିବା—8. To express one's love or affection; to give vent to one's affection or love. [ଉ—ତଥାପି ତ ଭଲେ ହେଲେ ତୋ ସ୍ନେହକ ରସିଲି ରେ । କବିସୂର୍ଯ୍ୟ ବଶୋଗ୍ରନ୍ଥମ୍ଭ ଗୀତ ।] ୯ । ରମିବା; ରମଣ କରିବା—9. To cohabit.

[ ଉ—ପୁରୁଷେ ପରଦାର ରସି, ଯାହାଙ୍କ ସେବନ୍ତି ଭୁଲସୀ । ଭୂପଛ୍ଙ୍ ପ୍ରେମପଞ୍ଚାମୃତ । ] ୧୦ । ଆନନ୍ଦିତ ହେବା—10. To be glad. [ ଉ—ସେ ଜଳ ଦେଖି ବଣିଛାରୁ ବ ରସିଲେ । କୃଷ୍ଣସିଂହ. ମହାଭାରତ ବନ । ] ୧୧ । ମନ ବଳାଇବା; ଲୋଭ କରବା; ପସନ୍ଦ କରବା-11. To love; to like; to prefer. [ଉ—ଚନ୍ଦ୍ରାମଣି ଥାଉଁ ଥାଉଁ କେ ରସେ ରୂପାରେ । କବିସୂର୍ଯ୍ୟ. ସଙ୍ଗୀତ । ] ୧୨ । ମଗ୍ନ ହେବା; ଲିପ୍ତ ହେବା—12. To be deeply engaged in. [ ଉ—ପୂର୍ବେ ଧର୍ମ ନିଜ କାମରେ ସ୍ୱାର୍ଥ କଲେ, ତହିଁ ବସିକରଣ ଉପରେ ରହିଲେ । କୃଷ୍ଣସିଂହ ମହାଭାରତ. ବନ । ]

ରସିୟା—ବୈଦେ. ବି (ଇଂ. ରସ୍ୟ୍ଆ)—ଅସିଆ ଓ ୟୁରୋପର ଉତ୍ତର Rasiyā ଖଣ୍ଡସ୍ଥ ରାଜ୍ୟ ବିଶେଷ—Country of Russia. ଋସିୟା [ଦ୍ର—ପୂର୍ବେ ଏହା ଯଥେଚ୍ଛାଚାରୀ ସମ୍ରାଟ୍ ବା ଜାର୍(Czar) ଙ୍କ ରୂସ ଶାସନାଧୀନ ଥିଲା । ବର୍ତ୍ତମାନ ଏହା ସାଧାରଣତନ୍ତ୍ର ହୋଇଅଛି । ] ଦେ. ବି ଓ ବିଣ—(ପୁଂ ଓ ସ୍ତ୍ରୀ; ସ. ରସିକ)—୧ । ରସିକ (ଦେଖ)—1. Rasika. (See) ୨ । ରସିକା (ଦେଖ)—2. Rasikā (See)

ରସୀ—ସ. ବିଣ. ପୁଂ (ରସ+ଯୁକ୍ତାର୍ଥେ. ଇନ୍, ୧ମା. ୧ବ)—Rasī ୧ । ରସିକ (ଦେଖ)—1. Rasika. (See) (ରସିନୀ—ସ୍ତ୍ରୀ) ୨ । ଅନୁରକ୍ତ—2. Attached to; enamoured of. ୩ । ଅସ୍ୱାଦନକାରୀ—3. Tasting; relishing. ଦେ. ବି—ରଶି ( ଦେଖ )—Rasi. ('See).

ରସୁଆ—ଦେ. ବିଣ ( ସ. ରସିକ )—୧ । ରସୁଆଳ; ରସାଳ; ରସଯୁକ୍ତ; Rasuā ରସମୟ—1. Juicy. ୨ । ରସିକ ( ଦେଖ )—[ ରସେ(ସୋ)ଇ—ସ୍ତ୍ରୀ ] 2. Rasika. (See) ୩ । ରସ ବସିକ, ବସାଳ ସମ୍ବନ୍ଧୀୟ—3. Relating to Rasa. ୪ । ଯାହା ରସୀଲା, ରସୀୟା, ରସୁଆ କ୍ରୀଡ଼ାରେ ବା କେଳିରେ ବ୍ୟବହୃତ ହୁଏ—4. Used during dalliance. [ ଉ—ରସୁଆ ଖଟକୁ ପାଳ ଦଉଡ଼ି ଛୁଣି ଗଲା ପତ୍ ପତ୍ । ପ୍ରବଚନ । ] ୫ । ରସ୍ ରସ୍ ଶବ୍ଦ କରୁଥିବା—5. Making a creaking or rustling sound.

ରସୁଆଳ(ଳ)—ଦେ. ବିଣ (ସ. ରସାଳ)—୧ । ରସାଳ (ଦେଖ)—Rasuāla(li) 1. Rasāla. (See) [ ଉ—ଆମ୍ବ ହେଲା (ରସୁଆଳଆ—ଅନ୍ୟରୂପ) ରସୁଆଳ(ଳ) । ଭଗ । ] ଦେ.ବିଣ.ପୁଂ—ରସୁଆଳ } —ସ୍ତ୍ରୀ ରସିକ (ଦେଖ)—Rasika. (See) ରସୁଆଳୀ } ରସାଲ ରସୀଲା, ରସବାଲା

ରସୁ(ସୋ)ଇ—ଦେ ବି. (ସ. ରସବତୀ=ପାକଶାଳା)—୧ । ଅନ୍ନାଦିର Rasu(so)i ପାକ ବା ରନ୍ଧନକ୍ରିୟା; ରୁସେଇ—1. Cooking. ରସ[ସୁ]ଈ ୨ । ପାକଶାଳା—2. Kitchen; cooking room. ରସୋଈ ୩ । ପାକ ବିଦ୍ୟା—3. Cookery. ୪ । ପକ୍ୱାନ୍ନ ରସୁଈଘର ବ୍ୟଞ୍ଜନାଦି—4. Cooked meal. [ ଦ୍ର—ରସୁଇ ରସୋଈଖାନା ସମ୍ବନ୍ଧୀୟ ଅନ୍ୟାନ୍ୟ ଶବ୍ଦମାନଙ୍କ ପାଇଁ 'ରୁଷା(ଷେ)ଇ' ଶବ୍ଦ ପରେ ଦେଖ ।]

ରସୁ(ସୋ)ଇଖାନା—ଦେ. ବି—ପାକଶାଳା—Rasu(so)ikhānā Cook-room. [ରସୁ(ସୋ)ଇ ଘର—ଅନ୍ୟରୂପ] ରସୁଈଘର ରସୋଈଖାନା

ରସୁ(ସୋ)ଇବାସ୍—ଦେ. ବି (ଅନର୍ଥକ ସହଚର)—ଅନେକ ପଦାର୍ଥର Rasu(so)ibās ରନ୍ଧନ କ୍ରିୟା—Act or operation of ବାନ୍ନାବାନ୍ନା ରସୋଈବସୋଈ cooking food.

ରସୁଣ—ଦେ. ବି (ସଂ. ରସୋନ)—ରଶୁଣ (ଦେଖ) Rasuṇa ଲଶୁନ ଲସୁନ Raśuṇa. (See)

ରସୁଣ ଛେଲି—ଦେ. ବି—ଏକ ପ୍ରକାର ସରୁ ଧାନ—Rasuṇa chheli A kind of fine paddy.

ରସୁଣିଆ—ଦେ. ବି—୧ । ରସୁଣ ପରି ମୂଳ ଓ ଗନ୍ଧଯୁକ୍ତ ଶାକବିଶେଷ—Rasuṇiā 1. Kandelia Rhudi (Haines). ଗୋବିଆ ଲହସୁନିଆ [ଦ୍ର—ରସୁଣ ପରି ଏହାର ଗନ୍ଧ । ଏହାକୁ (ରସୁଣିଆ ଘାସ—ଅନ୍ୟରୂପ) ଛଅଣ ଅନ୍ଧରେ ଫୁଟାଇ ଖାଆନ୍ତି ।] ୨ । ରସୁଣମାଳା ପରି ଦେଖା ଯିବା ବାହୁରେ ପିନ୍ଧାଯିବା ସ୍ତ୍ରୀମାନଙ୍କ ଏକ ପ୍ରକାର ଅଳଙ୍କାର—2. A kind of ornament looking like a string of garlics and worn on the arm. ୩ । ଏକ ପ୍ରକାର ରତ୍ନ; ବୈଦୂର୍ଯ୍ୟ—3 A kind of gem; lapis lazuli ଦେ. ବିଣ—୧ । ରସୁଣ ପରି ଗନ୍ଧ ବା ସ୍ୱାଦ ବା ଆକାର ବିଶିଷ୍ଟ—1. Having the smell or taste or size of garlic ୨ । ଅତିରିକ୍ତ ରସ ଯୁକ୍ତ—2. Excessively juicy. ( ଯଥା—ରସୁଣିଆ ଆମ୍ବ ।)

ରସୁଣିଆ କେକର—ଦେ. ବି—ଜଙ୍ଗଲି ବୃକ୍ଷ ବିଶେଷ—Rasuṇiā kekara Brugmiera Conjuguta.

ରସୁ(ସୂ)ନ—ସ. ବି ( ରସ+ଉନ, କାପାଡନ )—ରଶୁଣ ( ଦେଖ ) Rasu(sū)na Raśuṇa ( See )

ରସୁ(ସୋ)ୟା—ଦେ. ବି—ରୁଷେୟା; ପାଚକ—Cook. Rasu(so)yā ରସୁୟା ରସୋୟା

ରସୁଲ୍—ବୈଦେ. ବି ( ଆ )—ଜଗତକୁ ପ୍ରେରିତ ଈଶ୍ୱରଙ୍କ ଦୂତ, Rasul ପୈଗମ୍ବର—God's messenger sent to ରସୂଲ ରସୂଲ the earth.

ରସୁଲ ଇ(ଆ)ଲ୍ଲା—ବୈଦେ. ବି (ରସୁଲ-ଇଲ୍-ଲାହ୍=ଆଲ୍ଲାଙ୍କ ଦୂତ)—Rasul-i(ā)lla ୧ । ଈଶ୍ୱରପ୍ରେରିତ ଦୂତ—1. God's ରସୂଲ-ଈଲ-ଲାହ messenger. ୨। ହଜରତ ମହମ୍ମଦ—ରସୂଲ-ଇଲ-ଲାହ 2. The Prophet Mahommad. [(ରସୁଲାଲ୍ଲା, ରସୁଲଲ୍ଲାହ୍[ହା]—ଅନ୍ୟରୂପ)]

ରସୁଲ ଟୋ(ତୋ)ଡ଼ି—ଦେ. ବି—ମିଶ୍ର ରାଗିଣୀ ବିଶେଷ; ତୋଡ଼ିପରକ Rasuli to(to)ṛdi —Name of a mixed tune in music.

ରସେନ୍ଦ୍ର—ସଂ. ବ ( ରସ=ଖନିଜ ପଦାର୍ଥମାନଙ୍କରେ ଇନ୍ଦ୍ର=ଶ୍ରେଷ୍ଠ, ୭ମୀ ତତ୍) — ୧ । ପାରଦ; ପାରା—1. Mercury, quick silver. ୨ । ସ୍ପର୍ଶମଣି; ପରଶମଣି; ପରଶୁପଥର—2. Touchstone (a gem); the philospher's stone. ୩ । ରାଜମାଷ, ବରଗୁଡ଼ି (ବ୍ୟ. ଶ.)—3. Dolechus Sinensis (grain). ୪ । ଜାଫ୍, ଧନିଆ, ପିପ୍ପଳି, ମନ୍ଥ, ତ୍ରିକଟୁ ଓ ରସସିନ୍ଦୁରରେ ପ୍ରସ୍ତୁତ ଔଷଧ—4. Name of a medicinal preparation.
Rasendra

ରସେନ୍ଦ୍ରବେଧକ—ସଂ. ବ—ସୁନା (ବ୍ୟ. ଶ)—Gold.
Rasendrabedhaka

ରସେଶ୍ୱର—ସଂ. ବ (୭ମୀ ତତ୍)—୧ । ପାରଦ—1 Quick silver. ୨ । ଛଅ ଦର୍ଶନର ବହିର୍ଭୂତ ଦର୍ଶନ ଶାସ୍ତ୍ର ବିଶେଷ—2. Name of a particular philosophy. [ବି—ଏହି ଦର୍ଶନରେ ପାରଦ ଶିବଙ୍କର ବୀର୍ଯ୍ୟ ଓ ଗନ୍ଧକ ପାର୍ବତୀଙ୍କ ରକ୍ତ ବୋଲି ବର୍ଣ୍ଣିତ ଓ ଏମାନଙ୍କର ୧୮ ସଂସ୍କାର ଓ ଏମାନଙ୍କର ରୋଗ ନାଶକ ଓ ରସାୟନଗୁଣ ବର୍ଣ୍ଣିତ ହୋଇଅଛି— ବ୍ୟ. ଶ ] ୩ । ପାରା, ଗନ୍ଧକ, ହରିତାଳ ଓ ସୁନା ଆଦିର ଯୋଗରେ ପ୍ରସ୍ତୁତ ଔଷଧ ବିଶେଷ (ବ୍ୟ. ଶ)—3. Name of a mercurial preparation.
Raseśwara

ରସୋ(ସୌ)ତ୍—ଦେ. ବ (ସଂ. ରସୋଦ୍ଭୂତ)—ସୁରୁମା; ଦାରୁହରିଦ୍ରା ନାମକ କ୍ଷୁପର ମୂଳକୁ ଲୁଦା କରିଦେଇ ଦୁଧରେ ବତୁରାଇ ସେହି କ୍ୱାଥକୁ ଲୁଦା କରିଦେଇ ଲଥିରେ ସିଝାଇ ତାହା ଗାଢ଼ା ହେବା ପରେ ସେଥିରେ ଛାଗ ଦୁଗ୍ଧ ବା ଗୋଦୁଗ୍ଧ ମିଶାଇ ନାଥିରେ ବସାଇ କଜ୍ଜଳ କରି ଯେଉଁ କୃଷ୍ଣବର୍ଣ୍ଣ ଚୂର୍ଣ୍ଣ ବା ଲେହ୍ୟବତ୍ ପଦାର୍ଥ ପ୍ରସ୍ତୁତ ହୁଏ, ରସାଞ୍ଜନ (ଏହା ଚକ୍ଷୁରୋଗରେ ଅଞ୍ଜନରୂପେ ବ୍ୟବହୃତ ହୁଏ)—Collyrium prepared by boiling the root of Berbery root with milk till it is reduced into a powder or sticky ointment; extract of Indian Berbery. [ବି—ଏହାର ଗନ୍ଧ ଅପ୍ରିୟର ଚକ୍ଷୁ ପର । ବୈଦ୍ୟକ ମତରେ ଏହା ଶୀତଳ, ଶୁକ୍ରଜନକ, ନେତ୍ରହିତକର ଓ କଫ, ବିଷଦୋଷ, ବମନ, ରକ୍ତପିତ୍ତ, ହିକ୍କା, ଶ୍ୱାସ ବ୍ରଣ ଓ ମୂତ୍ରରୋଗର ହିତକର । ]
Raso(sau)t
ବସୋଁତ, ବସୌତ
रसो(सौ)त
ସଂ. ନାମ—ରସଗର୍ଭ, ରସଗ୍ରାଜ, ରସୋଦ୍ଭୂତ, ରସାଗ୍ରଜ, ରସନାଭ, ତାର୍କ୍ଷ୍ୟଶୈଳ, କୃତକ, ବାଲଭୈଷଜ୍ୟ, ଅଗ୍ନିସାର, ରସାଞ୍ଜନ, ତାର୍କ୍ଷ୍ୟଜ
ଗୁ. ରସବତ
ତେ. ରସାଞ୍ଜନମୁ
ଅ. ହୁଜୁଜ୍

ରସୋତ୍ତମ—ସଂ. ବ (ରସମାନଙ୍କ ମଧ୍ୟରେ ଶ୍ରେଷ୍ଠ; ୭ମୀ ତତ୍)—୧ । ରସ ଶ୍ରେଷ୍ଠ; ଶ୍ରେଷ୍ଠ ରସ—1. Chief amongst Rasas, the best of the Rasas ମୁଦ୍ଗ; ମୁଗ—2. A kind of pulse Phaseolus Mungo.
Rasottama

ରସୋତ୍ପନ୍ନ—ସଂ. ବିଣ (୫ମୀ ତତ୍)—ରସରୁ ଜାତ—Produced from Rasa.
Rasotpanna

ରସୋଦୟ—ସଂ. ବ (୬ଷ୍ଠୀ ତତ୍; ରସ+ଉଦୟ)—ରସର ଆବିର୍ଭାବ—The appearance of Rasa. (ରସୋଦ୍ଗମ—ଅନ୍ୟରୂପ)
Rasodaya

ରସୋଦ୍ଗାର—ସଂ. ବ (୬ଷ୍ଠୀ ତତ୍)—ରସ ବାନ୍ତି କରିବା—Vomiting Rasa. (ରସୋଦ୍ଗିରଣ—ଅନ୍ୟରୂପ)
Rasodgāra

ରସୋଦ୍ଭବ—ସଂ. ବିଣ (ବହୁବ୍ରୀହି)—୧ । ରସରୁ ଜାତ—1. Produced from mercury. ସଂ. ବ—୧ । (୬ଷ୍ଠୀ ତତ୍)—ରସୋଦୟ—1. The appearance of Rasa. ୨ । (ବହୁବ୍ରୀହି)—(ପାରଦରୁ ଜାତ) ହିଙ୍ଗୁଳ—2. Vermilion.
Rasodbhaba

ରସୋଦ୍ଭୂତ—ସଂ. ବିଣ (୫ମୀ ତତ୍)—ରସରୁ ଜାତ—Born of or produced from Rasa. (ରସୋଦ୍ଭୂତା—ସ୍ତ୍ରୀ)
Rasodbhūta

ରସୋନ—ସଂ. ବ (ରସ ଧାତୁ+ଓନ, କିମ୍ବା ରସ+ଊନ, ଯାହା ଗୋଟିଏ ରସ [ଅମ୍ଳରସ]ରେ ଊଣା)—ରଶୁଣ [ଦେଖ] [ରସୋନକ—ଅନ୍ୟରୂପ] Rasuna [See]
Rasona

ରସୋପଲ—ସଂ. ବ (ମ. ପ. ଲୋ. ରସ=ଜଳରୁ ଉତ୍ପନ୍ନ+ ଉପଲ=ପ୍ରସ୍ତର, ରତ୍ନ)—ମୁକ୍ତା; ମୌକ୍ତିକ—Pearl.
Rasopala

ରସ୍ତୋରାଁ—ବୈଦେ. ବ (ଫା. ଉଚ୍ଚାରଣ ରସ୍ତୋରାଁ)—ଭୋଜନାଳୟ; ହୋଟେଲ୍—Dining room; hotel, restaurant.
Rastorāñ
ରସ୍ତୋରାଁ
रस्तोरां

ରସ୍ନ—ସଂ. ବ (ରସ୍ ଧାତୁ+କର୍ମ. ନ)—ଦ୍ରବ୍ୟ; ବସ୍ତୁ—Thing; material; substance.
Rasna

ରସ୍ପାଣ୍ଡ(ଡ)ଣ୍ଟ—ବୈଦେ. ବ (ଇଂ. ରେସ୍ପଣ୍ଡେଣ୍ଟ୍) (କଚିଆ)—ଅପିଲ୍ ମକଦ୍ଦମା ଦାଏର କରିଥିବା ପକ୍ଷର ବିପକ୍ଷ ପକ୍ଷ—Respondent in an appeal. [ଅପିଲ(ଲା)ଣ୍ଟ୍—ବିପରୀତ]
Raspāda(da)nṭa
ରେସ୍ପାଣ୍ଡେଣ୍ଟ
रोस्पंडंट

ରସ୍ୟ—ସଂ. ବିଣ (ରସ୍ ଧାତୁ+ଭାବ. ଯ)—୧ । ଆସ୍ୱାଦନୀୟ—1. Capable of being tasted. ୨ । (ରସ+ଯ) ସ୍ୱାଦୁ—2. Tasteful. ୩ । ରସନାର ପ୍ରୀତିପ୍ରଦ—3. Delicious. ୪ । ରସମୟ, ସରସ—4. Juicy. ୫ । ସୁରୁଚିମୟ—5. Of good taste. ସଂ. ବ—୧ । ରୁଧିର; ରକ୍ତ—1. Blood. ୨ । ଶରୀରର ମାଂସ (ବ୍ୟ. ଶ)—2. Flesh.
Rasya
(ରସ୍ୟା—ସ୍ତ୍ରୀ)

ରସ୍ୟା—ସଂ. ବିଣ—ରସ୍ୟର ସ୍ତ୍ରୀ ଲିଙ୍ଗ—Feminine of Rasya. ସଂ. ବ—୧ । ରାସ୍ନା—1. Mimosa Octandra. ୨ । ରସା; ପାଠା; ଅବିଦ୍ଧକର୍ଣ୍ଣୀ; ଅକାନବିନ୍ଧ ଲତା—2. Stephenia Hernandifolia; Pereira root.
Rasyā

ରସ୍ସି—ଦେ. ବି—(ସଂ. ରସନା)—ରସି; ଦଉଡ଼ି—.
Rassi ବସୀ रस्सी

ରହ୍ (ଧାତୁ)—ସ—୧ । ତ୍ୟାଗ କରିବା—1. To give up. ୨ । ମୋଚନ କରିବା—2. To give up; to emit. ୩ । ଛାଡ଼ି ଦେବା—3. To let loose; to abandon. ୪ । ବେଗରେ ଗମନ କରିବା—4. To move with speed.
Rah (root)

ରହ୍—ଦେ. କ୍ରି (ରହିବା କ୍ରିୟାର ଅନାଦରାର୍ଥକ ଅନୁଜ୍ଞା ୧ । ବଚନ ଆକାର; ଅବ୍ୟୟ ରୂପେ ବ୍ୟବହୃତ)—୧ । (ତୁ) ରହିବା କିମ୍ବା କର; ରହିଛି ହୋ—1. (you) Stay! Stop! ୨ । (ତୁ) ଅପେକ୍ଷା କର୍—2. Wait! ୩ । (ତୁ) ନିବୃତ୍ତ ହୋ—3. Abstain!
Rah थाम् रह

ରହ—ସ. ବି. ( ରହ୍ ଧାତୁ+କର୍ମ. ଅ )—୧ । ମୈଥୁନ; ସୁରତ ଶୃଙ୍ଗାର—1. Coition; copulation. ୨ । ଗୋପନୀୟ ବିଷୟ—2. Secret matter. ୩ । ଗୋପନୀୟ ଧର୍ମତତ୍ତ୍ୱ—3. Mystic truth; religious secret. ୪ । ନିର୍ଜନତା—4. Solitariness. ୫ । ଗୋପନ—5. Privacy. ୬ । ବିଜନ ପ୍ରଦେଶ—6. Lonely place. ୭ । ଗୁହ୍ୟ—7. Privity. ୮ । କ୍ରୀଡ଼ା; କୌତୁକ—8. Sport, play. ୯ । ଆନନ୍ଦ; ସୁଖ—9. Happiness; pleasure. ଦେ. କ୍ରି. (ସ. ଅସ୍ ଧାତୁ, ପ୍ରା. ରହ୍ ଧାତୁ ଓଡ଼ିଆ ରହିବା କ୍ରିୟାର ଅନୁଜ୍ଞା ଆଦରାର୍ଥକ ମଧ୍ୟମ ପୁରୁଷ ୧ ବଚନ; ତୁମ୍ଭେ ଓ ବହୁବଚନ ତୁମ୍ଭେମାନେ; ଅବ୍ୟୟ ରୂପେ ମଧ୍ୟ ବ୍ୟବହୃତ)—(ତୁମ୍ଭେ) ବିରତ ହୁଅ; ଅପେକ୍ଷା କର; ଅବସ୍ଥାନ କର—(Verb Imperative) (you) Stop! Wait! Stay! ଦେ. ଅ—ରହିରହି (ଦେଖ)—Raharaha (See)
Raha

ରହିଁଟା—ପ୍ରାଦେ. (ସମ୍ବଲପୁର) ବି. (ସ. ଅରଘଟ୍ଟ, ପ୍ରା. ଅରହଟ୍ଟ, ଭୁଲ. ଏହି ଅର୍ଥରେ ହି· ରହିଁଟା)—ଅରଟ—Spining wheel.
Rahañṭā (ରହଣ୍ଟା—ଅନ୍ୟରୂପ)

ରହଃ—ସ. ବି (ରହ୍ ଧାତୁ=ତ୍ୟାଗ କରିବା+ଅସ୍ କିମ୍ବା ରମ୍ ଧାତୁ =କ୍ରୀଡ଼ା କରିବା+କର୍ମ.ଅସ୍;ରହସ୍ ଶବ୍ଦ,୧ମା.୧ବ)—ରହ (ଦେଖ)—Raha (See) ବିଣ—୧ । ଗୁପ୍ତ; ଗୋପନୀୟ—1. Secret; private. ୨ । ବିଜନ—2. Lonely. କ୍ରି. ବିଣ—୧ । ଗୋପନରେ—1. In secret. ୨ । ଏକାନ୍ତରେ; ନିର୍ଜନରେ—2. In private; away from the presence of people. ଅ—ରହରହ (ଦେଖ)—Raharaha (See)
Rah

ରହଟା—ପ୍ରାଦେ.(ଗଡ଼ଜାତ) ବି—୧ । ଜିଦ—1. Stubbornness. ୨ । ଅଳି—2. Importunity.
Rahaṭā

ରହ(ହେ)ଣ—ଦେ. ବି ( ସ. ରକ୍ଷଣ )
Raha(he)ṇa ୧ । ଅବସ୍ଥାନ; ସ୍ଥିତି, ରହଣି—1. Staying; halting. ଦେଶ୍ୟ. ବି ( ଫା. ରେହନ୍ ) ଋଣ କରିବା ବ୍ୟକ୍ତି ଋଣଦାତାଙ୍କ ନିକଟରେ ଋଣ ଶୋଧର ପ୍ରତିଭୂ ବା ଜାମିନ୍ ସ୍ୱରୂପ ରଖିବା ସମ୍ପତ୍ତି—1. A pledge or mortgage. ୨ । ବନ୍ଧକ; ସମ୍ପତ୍ତି ବନ୍ଧକ ରଖି ଋଣ ଗ୍ରହଣ କରିବା ସ୍ୱତ୍ତ—2. Loan by mortgaging or pledging; borrowing money by pledging any property. [ କୃ—'ରହଣ' ବା ରହଣ-ବନ୍ଧକ ପ୍ରଥାଦ୍ୱାରା ଋଣ ପରିଶୋଧର ଜାମିନ୍ ସ୍ୱରୂପ ଖାତକର କୌଣସି ସମ୍ପତ୍ତିକୁ ଖାତକ ନିର୍ଦ୍ଦେଶ କରେ, କିନ୍ତୁ ଉକ୍ତ ସମ୍ପତ୍ତି ଖାତକର ଦଖଲରେ ଥାଏ ଓ ମହାଜନର ଋଣ ପରିଶୋଧ ପାଇଁ ଦାୟିତ୍ୱ ଉକ୍ତ ନିର୍ଦ୍ଦିଷ୍ଟ ରହଣ-ଅବନ୍ଧ ସମ୍ପତ୍ତି ଉପରେ ନ୍ୟସ୍ତ ଥାଏ ( mortgage without possession or simple mortgage ). ଅବନ୍ଧ ଭୂମିରୁ ଉତ୍ପନ୍ନ ଫଳାଦିକୁ ମହାଜନ ଋଣର ସୁଧର ବା ମୂଳର ଉଠଣାରେ ମଜରା ପାଇବାର ବନ୍ଦୋବସ୍ତ କରାଗଲେ ତାକୁ 'ଫଳ-ବନ୍ଧକ' ( Usufructuary mortgage ) ବୋଲାଯାଏ । ]
अवस्थान रहन बहन रेहन

ରା (ଧାତୁ)—ସ—୧ । ଦାନ କରିବା—1. To give. ୨ । ଗ୍ରହଣ କରିବା—2. To take; to accept. ୩ । ପ୍ରାପ୍ତ ହେବା; ପାଇବା—3. To get; to receive; to obtain. ୪ । ଲାଭ କରିବା—4. To gain.
Rā (root)

ରା—ସ. ବି ( ରା ଧାତୁ+ଭାବ. କ୍ୱିପ୍ )—୧ । ଦାନ—1. Gift; giving. ୨ । ଗ୍ରହଣ—2. Act of receiving or taking. ୩ । ବିଭ୍ରମ; ହାବଭାବ—3. Outward signs proceeding from love, passion or other sentiment ୪ । ଭ୍ରାନ୍ତି; ଭୁଲ—4. Error; mistake. ୫ । ଧନ—5. Wealth; riches. ୬ । ସ୍ୱର୍ଗ—6. Heaven. ୭ । କାଞ୍ଚନ—7. Gold. ୮ । ରବ; ଶବ୍ଦ; ଧ୍ୱନି—8. Sound; tone; voice. ଦେ. ବି—୧ । ( ସ.ରବ ) ସଙ୍ଗୀତର ତାନ ବା ଅବଲମ୍ବ ବିଶେଷ, ସଙ୍ଗୀତ ବୋଲିବା ପୂର୍ବରୁ ବାଦ୍ୟଯନ୍ତ୍ରର ସ୍ୱରସଙ୍ଗେ ଆପଣାର କଣ୍ଠସ୍ୱର ମିଳାଇବାପାଇଁ ଗାୟକମାନେ ଯେଉଁ ସ୍ୱର ଧରନ୍ତି—1. A sound uttered by musicians while trying their tune with the tune of the musical instrument.
Rā बा हलहली

ବାୟ राय ୨ । (ଶ୍ରେଷ୍ଠତାବୋଧକ ରାଜନ୍ ଶବ୍ଦର ଅପଭ୍ରଂଶ 'ରାୟ' ବା 'ରାଵ'ର ସଂକ୍ଷେପ ) ପଦ ବା ଉପାଧି ଶେଷରେ ଲଗିବା 'ରାୟ' ଶବ୍ଦର ସଂକ୍ଷେପ ଆକାର—

2. Abbreviation in pronouncing the sound 'Rāya' affixed to titles given by Rajas. ( ଯଥା—ଉଦ୍ଧବରା, ବଳବନ୍ତରା, ସାଉନ୍ତରା, ସାମନ୍ତରା, ସାଥିଲ୍ଲରା, ସଂଗୀତରା, ପଣ୍ଡିତରା ଇତ୍ୟାଦି । )

बा रा ୩ । (ସଂ. ରାବ) ପିଲାମାନେ କାନ୍ଦିବାବେଳେ କରିବା ବହୁକାଳବ୍ୟାପୀ ସ୍ୱର୍ଗ ଶବ୍ଦ ବା ରାବ; ରାହା— 3. A prolonged sound made at one breath at the end of crying by infants. (ଯଥା—ସେ ପିଲାଟା ଅନେକବେଳୁଁ 'ରା'ଧରି କାନ୍ଦୁଛି ।)

ध्वनि आवाज ୪ । କଂସା ବା ବାସନ ଅବଦରେ ଆଘାତ କଲେ ତହିଁରୁ ଜାତ ହେବା ବହୁକାଳସ୍ଥାୟୀ ଶବ୍ଦ—4. A tune continued for a long time (e.g. when a metal utensil is struck with another metal); intonation; a prolonged tune. ୫ । ଯିଗର; ଯିଦ—5. Zid; importunity. [ଉ—ମହାଲ୍ଲାଏ ବଡ଼ ସତ୍ୟବନ୍ତ ଲୋକ ଏକରା ଧରିଛନ୍ତି । ପଞ୍ଚାରମୋହନ. ଗଳ୍ପସ୍ୱଳ୍ପ । ] ୬ । ( ଦେ. ରାବ )—

जिद जीद

ଡୁଡୁ ଖେଳରେ ଖେଳାଳ ଏକ ଶ୍ୱାସରେ ବିପକ୍ଷଦଳର ସୀମା ମଧ୍ୟକୁ ଯାଇ ଏକ ସ୍ୱରରେ କରିବା ଧ୍ୱନି—6. An utterance made at one breath by Ḍuḍu players inside the adversary's limits.

शाँस

୭ । (ଶବରୀ ଭାଷା. ରା=ସ୍ନେହ) ଯେ ସ୍ନେହଭାବ ବା ସ୍ନେହ କରେ, ଯାହାକୁ ସ୍ନେହ କରାଯାଏ—7. Loving; loved. [ଉ—କୋଇଲଲୋ ! ପୋଇଲଲୋ ! ତୋ ମାଆ ତୋତେ ରା, ହାଣ୍ଡି ଭୁଶୁରେ ମଣ୍ଡା ପୁରେଇ ଭାତ ତଲେ ତଲେ ଯାଅ । ଶିଶୁରଞ୍ଜନ. ଗୀତ ।] ୮ । (ଧ୍ୱନ୍ୟନୁକରଣ) କୁଆମାନଙ୍କ ଏକାଧିକ ଥର ବୋବାଇବାର ଶବ୍ଦ; ରାଉ ରାଉ—8. Croaking or crowing sound of crows.

बाय राय

ବୈଦେ. ( ଫା. ରାଏ )—୧ । ରାୟ; ରାଏ; ମତ; ମନ୍ତବ୍ୟ; ନିଷ୍ପତ୍ତି—1. Decision; judgment. ୨ । (ଫା. ରାହା=ପଥ) ବାଟ; ରାସ୍ତା; ପଥ—2. Way; road. ୩ । ସ୍ଥାନ; ଜାଗା—3. Place, space. ( ଯଥା—ସେଠାରେ ବସିବାକୁ ଟିକିଏ 'ରା' ନାହିଁ) ୪ । (ଲକ୍ଷଣାର୍ଥ) ସ୍ୱତନ୍ତ୍ର ବନ୍ଦୋବସ୍ତ, ରାହା—4. (figurative) Separate or individual arrangement. [ ଯଥା—ମୁଁ ଅଲଗା ଯାକେ ଭାତେ ଖୋଷିଲି । ଏଣିକି ତୋ 'ରା' ତୁ କର ] ପ୍ରାଦେ. ( ସମ୍ବଲପୁର ) ବି ଓ ବିଣ—ରାଅ ( ଦେଖ )—Rā-a ( See).

जायगा राह रास्ता राह

ରାଅ—ଦେ. ବି—୧ । (ଧ୍ୱନ୍ୟନୁକରଣ) କୁଆମାନଙ୍କ ଏକାଧିକ ଥର Rāa ବୋବାଇବାର ଶବ୍ଦ; ରାଉ ରାଉ—1. Croaking or crowing sound of crows. ୨ । (ଦେ. ରାବ) ରା (ଦେଖ)—2. Rā. (See) ବୈଦେ. ବି (ଫା)—ରା (ଦେଖ)—Rā. (See) ପ୍ରାଦେ (ସମ୍ବଲପୁର) ବି—ଖୁସି; ଆନନ୍ଦ—Pleasure. ବିଣ—ସୁଖକର—Pleasing; pleasant; charming. [ଉ—କୋଇଲି ଲୋ ପୋଇଲି ଲୋ । ତୋ ମା ମତେ ରାଅ । ଲୌକିକ ଗୀତ । ]

रां राव

ରାଅଁଟାଳି—ପ୍ରାଦେ (ଯାଜପୁର) ବି—ରାଅଁଳ; ଯେଉଁ ଗରିବମାନେ Rā-añṭāli ଧାନକଟା ସମୟରେ ବିଲରେ ପଡ଼ିଥିବା ଧାନକେଣ୍ଡାମାନ ଖୋଣ୍ଟନ୍ତି ଓ ଧାନକେଣ୍ଡା ଛିଣ୍ଡାଇ ରଖନ୍ତି—Poor people who watch the reaping of paddy and pick up the stalks of grain fallen from the reaper's sheaves.

ରାଅ ଧରିବା—ଦେ. କ୍ରି (ଦେ. ରାବ) ୧ । ଶିଶୁମାନେ କାନ୍ଦିବାବେଳେ Rāa dhariba ଏକ ନିଶ୍ୱାସରେ ବା ଏକଟାଣରେ ବହୁକାଳ ରାବ ବା କାଡା, ଦମଆଟକା କରିବା—1. To continue a sound for a long time at one stretch (said of some infants while crying at one breath). [ଦ୍ର—ଏଥିରେ ଶିଶୁମାନଙ୍କର ନିଶ୍ୱାସ ଅଟକିଯାଇ ଆଉ ନ ଫେରିବାରୁ ଶିଶୁ ମୃତ ହେବା ଘଟନା ଶୁଣାଅଛି ।] ୨ । କଂସା ବାସନ ଅବଦରେ କଠିଣବସ୍ତୁ ଅଘାତ ହେବାଯୋଗୁଁ ବହୁକାଳସ୍ଥାୟୀ ଶବ୍ଦ କରିବା—2. To make a prolonged sound (said of bell metal utensils). (ଯଥା—କଂସାରେ ଖଡ଼ୁ ବାଜି ଯିବାରୁ କଂସାଟା ରାଅ ଧରିଲା) [ ଦ୍ର—ଲୋକମାନଙ୍କର ବିଶ୍ୱାସ ଯେ ଗର୍ଭିଣୀ ସ୍ତ୍ରୀ କଂସା ବାସନ ଅବଦର ରାଅ ଶୁଣିଲେ ତା ଗର୍ଭରେ ଥିବା ଶିଶୁ 'ରାଅ ଧରେ ।' ଏଥିପାଇଁ କଂସା ବାସନ ଅବ 'ରାଅ ଧରିଲେ' ସ୍ତ୍ରୀଲୋକମାନେ ସେ କଂସାରେ ହାତ ଛୁଅାଇଁ ଦେଇ 'ରାଅ' ବନ୍ଦ କରି ଦିଅନ୍ତି । ]

रा धरना

୩ । ଗୋଟିଏ କଥା ଜିଦ୍ ଧରିବା—3. To importune on one thing. ୪ । ଗୋଟିଏ ରାସ୍ତା ଧରିବା; ବାଟ ଧରିବା—4. To take to a road.

राहा धरना
राहा धरना

ରାଅବାଡ଼ି—ପ୍ରାଦେ. ବି—ରାହାବାଡ଼ି (ଦେଖ)
Rā-a bārḍi Rāhābārḍi. (See)

ରାଅବାଲି—ଦେ. ବି ଓ ବିଣ (ସ୍ତ୍ରୀ)—କଳହପ୍ରିୟା ସ୍ତ୍ରୀ—
Rā-abāli Quarrelsome woman; a vixen; virago.
बागड़ाटे स्त्री लोमड़ी

ରାଅ ରାଅ—ଦେ. ବି (ଧ୍ୱନ୍ୟନୁକରଣ)—ରାଅ (ଦେଖ)
Rā-a rā-a Rā-a. (See)
रावा राहा

ରାଅସ—ଦେ. ବି (ଦେ. ରାସ)—ରାହାସ (ଦେଖ)
Rā-āsa Rāhāsa. (See)

ବାସ ବୈଦେ (ଫା. ରାସ୍)—ଘୋଡ଼ାର ଲଗାମ—
रास Bridle or rein of a horse.

ରାଇ(ଈ)—ଦେ. ବି (ଦେ. ରାଜିକା)—୧ । ରାଇ ସୋରିଷ—1. Rye; Rai(i) Indian mustard, white mustard, Bassica Juncea, Sinapis Ramosa. ୨ । ସୋରିଷ
बाई

राइ बଟା; ବେସର—2. Mustard paste. ୩ । ବେସର ଓ
पीसाहुआसरसों ଖଟା ଦିଆଯାଇ ପ୍ରସ୍ତୁତ ଅମ୍ଳବ୍ୟଞ୍ଜନ; ରାଇତା—
रायता 3. A sour curry made of rye paste and acid mixed with vegetables. ( ଯଥା—ଓଉ ରାଇ, କଞ୍ଚିରାଇ, କାଙ୍କୁଡ଼ରାଇ ଇତ୍ୟାଦ) ୪ । ସ୍ତ୍ରୀ(ସଂ ରାଧିକା)
बाई ରାଧିକା—4. Rādhikā, (Śrīkṛushṇa's object
राइ of purest love). ୫ । (ସଂ. ରାଜନ୍; ରାଜ ଶବ୍ଦର ସଂକ୍ଷେପ)—ରାଏ, ରାୟ; କ୍ଷତ୍ରିୟଙ୍କ ବଂଶୋପାଧି ବିଶେଷ—
5. A family-titile of Kshyatriyas. ୬ । (ସଂ
बाज ରାଜନ୍) ଉପାଧି ସଙ୍ଗେ ଯୁକ୍ତ ରାଜ ଶବ୍ଦର ଅପଭ୍ରଂଶ—
राइ 6. An incorrect version of Rājā. ( ଯଥା—ରାଇ ଗୁରୁ) ୭ । ( ସଂ, ରାଜଭଦ୍ୟ ବା ରାଜାମ୍ର )—ଓଡ଼ିଶାର
बाई ଗଡ଼ଜାତରେ ଥିବା ଏକପ୍ରକାର ଜଙ୍ଗଲି କାଠଗଛ, ରାଇଗଛ (ଦେଖ)—7. A species of wild Dilenia Speciosa; Dilenia Awva (Haines). [ଦ୍ର—ଏହା ଶାଳଗଛ ଅପେକ୍ଷା ବଡ଼ ଓ ଏହା ଓସ୍ତାଗଛ ପରି ଗଛ । ପତ୍ରଗୁଡ଼ିକର ଗଠନ ଓସ୍ତ ପତ୍ରପରି, କିନ୍ତୁ ବଡ଼ ବଡ଼ । ଏହି ପତ୍ରର ବ୍ୟାସ ୧ ଫୁଟଠାରୁ ୧୫ ଫୁଟ ପର୍ଯ୍ୟନ୍ତ ହୁଏ । ଶବର ଆଦି ଜାତିର ଲୋକେ ଏ ପତ୍ର ଉପରେ ଭାତ ଖାଆନ୍ତି । ଏଥିର ଫଳ ଅଁଳା କୋଳପରି କିନ୍ତୁ ଲମ୍ବା ଏବଂ ଗଛରେ ପେନ୍ଥା ପେନ୍ଥା ହୋଇ ଫଳେ । ଏହି ଫଳ ଅଖାଦ୍ୟ । ଏହାର ବକଳ ମୋଟା । ଗଛର କାଠ ଚିରାଯାଇ ପଟା କରାଯାଏ । ଏହାର କାଠ ମସୃଣ । ] ୮ । ସ୍କ୍ରୁରେ ବା ପେଚକଣ୍ଟାରେ
खाँज ଥିବା ଘରା ବା ଖାଞ୍ଜ; ବୋଲ୍ଟ ବା ଛିଦ୍ରବର୍ତ୍ତିର ଦେହ
खाँदि ଉପରେ ଥିବା ଘର (ଯାହା ପେଚକଣ୍ଟାର ଘରମାନଙ୍କୁ ଅଟକାଇ ଧରିବାରୁ ପେଚ ଶକ୍ତ ହୋଇ ବସେ)—8. The grooves in screws and bolts. ୯ । ରଇ (ଦେଖ)—9. Rai (See)

**ରାଇଆ**—ଦେ. ବଣ—ସାଙ୍ଗେ ସାଙ୍ଗେ ବଟା ହୋଇଥିବାରୁ ଉଗ୍ରଗନ୍ଧଯୁକ୍ତ
Rāiā (ସୋରିଷ ବଟା ବା ବେସର)—Having strong
बाईब (गन्ध) odour after it is pasted (said of re-
राईयांग(घ) cently pasted mustard. [ଦ୍ର—ସୋରିଷକୁ ବାଟି କରି କିଛି ସମୟ (ଅର୍ଥାତ୍ ୩।୪ ଘଣ୍ଟା) ରଖି ଦେବା ପରେ ତହିଁରୁ ରାଇଆ ଗନ୍ଧ ଛାଡ଼ିଗଲେ ତାହା ବେସରରୂପେ ତରକାରୀରେ ଓ ରାଇତା ଆଦିରେ ଦିଆଯାଏ । ଛଟକା ବଟା ବେସର ଦିଆ ହେଲେ ତରକାରୀ ଅତି ରାଇଆ ହୋଇଯାଏ । ]

**ରାଇକା**—ବୈଦେ. ବ. (ଫା)—ସ୍ତ୍ରୀ ଲୋକମାନେ ବ୍ୟବହାର କରୁଥିବା
Rāikā ଜାକେଟ୍; କାଞ୍ଚୁ—Woman's bodice. [ଦ୍ର—
बायका ନାୟିକାମଣି ବାଲ୍ଲ ମୂଳ ସ୍ତନ, ରାଇକା ପାଇ କାନ୍ତିରେ
बंडी, चोली ଶୋଭନ । କବିସୂର୍ଯ୍ୟ. ଚନ୍ଦ୍ରକଳା ।]

**ରାଇ ଗଛ**—ଦେ. ବ—ବୃକ୍ଷ ବିଶେଷ—Rhizophora Mucro-
Rāi gachha nata; or Rhizophora Conjugata.
बाई गाछ जगंली रहिठा

**ରାଇଗିର୍ଦ୍ଦି**—ଦେ. ବ—ଜଳପୂର୍ଣ୍ଣ ଖାଲୁଆ ଜମିରେ ଜନ୍ମିବା ଏକ ପ୍ରକାର
Rāigirdi ଧାନ—A species of paddy growing in low lands.

**ରାଇ(ଏ)ଗୁରୁ**—ଦେ. ବ. (ସଂ. ରାଜଗୁରୁ)—୧ । ରାଜାଙ୍କର ମନ୍ତ୍ରଗୁରୁ—
Rāi(e)guru 1. The spiritual preceptor of a
(ରାୟଗୁରୁ—ଅନ୍ୟରୂପ) king ୨ । ରାଜାମାନଙ୍କ ଦ୍ୱାରା ବ୍ରାହ୍ମଣଙ୍କୁ
बाजगुरु ଦତ୍ତ ଉପାଧି ବିଶେଷ—2. A title of given to
रायगुरु Brāhmaṇas by Rajas.

**ରାଇ ଗୋଜା**—ଦେ. ବ—ରାଇ ଗଛର ଖିଲା—
Rāi gojā Pegs from Rāi tree.
बाईबडाल [ଉ—ଗୋଡ଼ରେ ରାଇ ଗୋଜା ଜଳୀ ପାଣ୍ଡବଙ୍କରେ ।
रहिठाकी खुंटी କୃଷ୍ଣସିଂହ. ମହାଭାରତ. ବନ ।]

**ରାଇଜ (ଇତ୍ୟାଦି)**—ଗ୍ରା. ବ—ରାଜ୍ୟ ଇତ୍ୟାଦି ( ଦେଖ )
Rāija (etc) Rājya etc. ( See )
बाज्य राइज

**ରାଇଟ୍(ଟି)**—ବୈଦେ. ବଣ (ଇଂ)—୧ । ଯାହା ଭୁଲ ନୁହେଁ; ଠିକ୍—
Rāiṭ(ṭi) 1. Right; correct. ୨ । ଦକ୍ଷିଣ; ଡାହାଣ—
बाइट् राइट् 2. Right (side).

**ରାଇଟ୍ ଟାଇମ୍**—ବୈଦେ. ବ. (ଇଂ)—ଠିକ ସମୟ—
Rāiṭ ṭāim Right time.
राइट टाईम्, राइट् टाइम

**ରାଇଟର**—ବୈଦେ. ବ. (ଇଂ)—୧ । ଲେଖକ; କିରାଣୀ; ମୋହରିର—
Rāiṭar 1. Writer; clerk. ୨ । ନକଲନବିଶ—
बाइटब 2. Scribe. ୩ । ରାଇଟର୍ କନଷ୍ଟେବଲ୍—
राइटर 3. Writer constable

**ରାଇଟର କନ(ନି, ନେ)ଷ୍ଟ(ଷ୍ଟେ)ବଲ୍**—ବୈଦେ. ବ. ( ଇଂ ରାଇଟର୍
Rāiṭar kana(ni, ne)shṭa(shṭe)bal କନ୍‌ଷ୍ଟେବଲ୍ )—
बाइटब कनष्टेबल ପୁଲିସ୍ କନ୍‌ଷ୍ଟେବଲ୍‌ମାନଙ୍କ ମଧ୍ୟରେ ସାମାନ୍ୟ
राइटर कौनिष्टबुलस ଲେଖାପଢ଼ି ଜାଣିଥିବା ଲୋକ—Writer constable; literate constable ( of the Indian Police).
[ଦ୍ର—ପ୍ରତ୍ୟେକ ଥାନାରେ ମୁତୟନ୍ ଥିବା କନଷ୍ଟେବଲ୍‌ମାନଙ୍କ ମଧ୍ୟରେ ଜଣେ ଲେଖାଏଁ ରାଇଟର୍ ଥାଆନ୍ତି । ସେମାନେ ସାଧାରଣ କନଷ୍ଟେବଲ୍‌ମାନଙ୍କ ଅପେକ୍ଷା କିଛି ବେଶି ଦରମା ପାଆନ୍ତି । ଥାନାର ଡାଇରି ଓ ରେଜିଷ୍ଟରମାନ ସେମାନେ ପୂରଣ କରନ୍ତି ।]

**ରାଇଟରଗିରି**—ଦେ. ବ—୧ । କିରାଣୀ କାର୍ଯ୍ୟ—1. Clerkship; the
Rāiṭar giri post or work of a writer.
(ରାଇଟରୀ—ଅନ୍ୟରୂପ) ୨ । ଲେଖକତ୍ୱ—2. Writership.
राइटरी राइटरी

**ରାଇଟର୍ସ ବିଲ୍‌ଡିଙ୍ଗ୍**—ବୈଦେ. ବ. ( ଇଂ )—କଲିକତାରେ ବଙ୍ଗ
Rāiṭars bilding ଗଭର୍ଣ୍ଣମେଣ୍ଟଙ୍କ ଅଧୀନ ପ୍ରଧାନ ବିଭାଗୀୟ
बाइटर्स बिल्डिङ्ग ଅଫିସ୍ ଓ କିରାଣୀମାନେ ଯେଉଁ କୋଠାରେ କାର୍ଯ୍ୟ
राइटर्स बिल्डिंग କରନ୍ତି (ପୂର୍ବେ ଏଠାରେ ବଡ଼ ଲାଟଙ୍କ ଅଫିସ୍ ମଧ୍ୟ

ବସୁଥିଲା)—Writer's buildings (consisting of the head offices of various departments under the Bengal Government) in Calcutta.

**ରାଇ(ଏ)ଟ୍ ସିଂଘ(ହ)**—ଦେ. ବ. ( ସଂ ରାଜପୁତ୍ର+ସିଂହ )—ପୁରୀ ଜିଲ୍ଲା Rāi(e)ṭ siṁgha(ha) ଅନ୍ତର୍ଗତ କୋଠଦେଶସ୍ଥ ଅଞ୍ଚଳର ପୁରାତନ କ୍ଷତ୍ରିୟ ଜମିଦାରମାନଙ୍କ ବଂଶୋପାଧି—Family-title of the Zamindars of Koṭhadeśa in the district of Puri. [ଦ୍ର—ଏମାନଙ୍କ ଜମିଦାରୀ ବିକ୍ରି ହୋଇଯିବାରୁ ତାହା ଅନ୍ୟମାନେ କଣି ଅଛନ୍ତି । ଏମାନଙ୍କର ବଂଶଧରମାନେ ଏ ପର୍ଯ୍ୟନ୍ତ କୋଠଦେଶର ପ୍ରାଚୀନ ରାଜଧାନୀ କମାପଡ଼ାରେ ଅଛନ୍ତି ।]

**ରାଇଟିଙ୍ଗ୍(ଣ୍) ଡେକ୍ସ(ସ୍କ୍)**—ବୈଦେ. ବ ( ଇଂ ରାଇଟିଙ୍ଗ୍ ଡେସ୍କ୍ )—Rāiṭiṅg(ṇ) deks(sk) ଉପର ପାଙ୍ଗାଣିଆ ବା ଢାଲୁ ହୋଇଥିବା ବାଇଟିଙ୍ଗ ଡେଙ୍କ ଡେସ୍କ—Writing desk. [ଦ୍ର—ଏହା **राइटिंग डेकस** ଉପରେ କାଗଜ ରଖି ଲେଖାପଢ଼ି କରାଯାଏ ଓ ଏଥି ମଧ୍ୟରେ ଲେଖିବାର ଉପକରଣମାନ (ସ୍ୟାଇ,ଦୁଆତ,କାଗଜ, ଲଫାପା, କଲମ, ବ୍ଲଟିଙ୍ଗ୍ ଆଦି ) ରଖାଯାଏ ।]

**ରାଇଟିଙ୍ଗ୍ ବାକ୍ସ**—ବୈଦେ. ବ ( ଇଂ ରାଇଟିଙ୍ଗ୍ ବକ୍ସ )—ଏକପ୍ରକାର Rāiṭiṅg bāksa ସାଧାରଣ ବାକ୍ସ ଆକୃତିର ଡେସ୍କ୍—ବାଇଟିଙ୍ଗ ବାଙ୍କ A folding box which can be adjusted **राइटिंग बकस** into a writing desk. [ଦ୍ର—ଏହାର ଉତରର ଡାଲା ଏପରି ଢାଲୁ ଭାବରେ ନିର୍ମିତ ହୋଇଥାଏ ଯେ, ସେ ବାକ୍ସର ଡାଲାକୁ ଫେଲି ସଜାଇ ଦେଲେ ତାହା ଗୋଟିଏ ରାଇଟିଙ୍ଗ୍ ଡେକ୍ସ ପରି ଢାଲୁ ହୋଇଯାଏ ଓ ତହିଁ ଉପରେ ଲେଖାପଢ଼ି କରାଯାଏ ।]

**ରାଇତା**—ଦେ. ବ ( ସ. ରାଜିକାକ୍ତା )—୧ । ପରିବା ସଙ୍ଗେ ଦହି ବା Raitā ବେସର, ଦହି, ଖଟା ଓ ମିଠା ଦିଆଯାଇ କରାଯାଇଥିବା ରାযতা ଏକପ୍ରକାର ଅମ୍ଳ ବ୍ୟଞ୍ଜନ—1 A sour curry **रायता** prepared by mixing vegetables with mustard paste, curd, acid and sugar; salad. ( ଯଥା—ଭଣ୍ଟାରାଇତା, କାକୁଡ଼ିରାଇତା ଇତ୍ୟାଦି । ) ୨ । ( ବୈଦ୍ୟକ ) ରାଜିକାକ୍ତା, ଦଧି, ଲବଣ, ଲାଉର ଶୁଦ୍ର ଖଣ୍ଡ, ରାଇସୋରିଷ ଗୁଣ୍ଡା, ଶ୍ରେଷ୍ଠଅଲାଇଚ ଗୁଣ୍ଡା ମିଶାଇ ଏକତ୍ର ବନାଯିବା ବ୍ୟଞ୍ଜନ ବିଶେଷ—2. A curry made of chopped gourd mixed with mustard powder and some other spices.

**ରାଇତା ପିତା**—ଦେ.ବ—ଖଟା ସଙ୍ଗେ ଲିମ୍ବଆଦିର ପିତା ମିଶାଯାଇ ତିଆର Raitā pitā ହୋଇଥିବା ପରିବା ତରକାରୀ—A curry সুক্তানি flavoured with acid and bitter **रायतापीता** articles; a curry with sour and bitter tastes combined.

**ରାଇଁତେଲ**—ପ୍ରାଦେ ( ଉତ୍ତର ବାଲେଶ୍ୱର ) ବ—ସୋରିଷ ତେଲ—Rāi tela Mustard oil.

**ରାଇ ଦାମୋଦର**—ଦେ. ବ ( ସଂ ରାଧା ଦାମୋଦର )—୧ । Rāi dāmodara ରାଧା ଦାମୋଦର; ରାଧାକୃଷ୍ଣ; ବିଷ୍ଣୁଙ୍କର ବାধাদামোদর ଯୁଗଳରୂପ—1. Rādhā and Srikṛushṇa, **राईदामोदर** the Deities Bishṇu and Rādhā combined. [ଦ୍ର—ପଦ୍ମପୁରାଣରେ ବିଷ୍ଣୁଙ୍କର 'ରାଧା ଦାମୋଦର' ନାମକ ଯୁଗଳ ରୂପଙ୍କ ପୂଜାବିଧି କାର୍ତ୍ତିକ ମାସରେ ହେବା ବିଷୟ ବର୍ଣ୍ଣିତ ହୋଇଅଛି ।] ୨ । କାର୍ତ୍ତିକ ବ୍ରତ; କାର୍ତ୍ତିକ ମାସରେ ବିଧବାମାନଙ୍କ ଅନୁଷ୍ଠିତ ରାଧା-ଦାମୋଦର ବ୍ରତ—2. The religious observances performed ( by widows ) in the month of Kārttika. [ଦ୍ର—ଏହି କାର୍ତ୍ତିକ-ବ୍ରତକୁ 'ରାଇଦାମୋଦର' ବା 'ରାଇଦାମୋଦର ପୂଜା' ବୋଲାଯାଏ । ଏହି ରାଧାଦାମୋଦର ପୂଜା ଓ ମନ୍ତ୍ର ପଦ୍ମପୁରାଣରେ ବର୍ଣ୍ଣିତ ହୋଇଅଛି । କୁମାରପୂର୍ଣ୍ଣିମା ପରଦିନ ଠାରୁ କାର୍ତ୍ତିକପୂର୍ଣ୍ଣିମା ପର୍ଯ୍ୟନ୍ତ ଏହି କାର୍ତ୍ତିକ ବ୍ରତ ବା ଊର୍ଜ୍ଜବ୍ରତ କରାଯାଏ । ଏଥିରେ ପ୍ରାତଃସ୍ନାନ, ଦିନାନ୍ତେ ହବିଷ୍ୟାନ୍ନ ଭୋଜନ, ସନ୍ଧ୍ୟାସମୟରେ ତୁଳସୀ ଚଉରା ନିକଟରେ ଦୀପଦାନ ଓ ରାଧାଦାମୋଦର ମନ୍ତ୍ର ଜପ ପ୍ରଧାନ କର୍ତ୍ତବ୍ୟ । ବିଧବାମାନେ ତୁଳସୀଚଉରାମୂଳ ସକାଳୁ ଲିପି ସେଠାରେ ପଞ୍ଚବର୍ଣ୍ଣୀ ଚୂରୁକରେ ରାଧାକୃଷ୍ଣାଦିଙ୍କରୂପ ଅଙ୍କିତ କରି ପୂର୍ବାଦିଗକୁ ମୁହଁ କରି ନୈବେଦ୍ୟାଦି ଭୋଗ କରନ୍ତି ଓ ମାଳା ଜପ କରନ୍ତି । ବିଧବାମାନଙ୍କର ଏହି ତୁଳସୀ ଚଉରା ମୂଳର ପୂଜାଆଦିକୁ 'ରାଇଦାମୋଦର ପୂଜା' ବୋଲାଯାଏ । ଏହି ସମୟରେ କାପଡ଼ା-କାପଡ଼ି ( କପୋତ କପୋତୀ ଦ୍ୱନ୍ଦ୍ୱ )ଙ୍କୁ ମଧ୍ୟ ନୈବେଦ୍ୟ (ଭୋଗ) ଦିଆଯାଏ । ଏହି ନୈବେଦ୍ୟାଦିକୁ ବ୍ରାହ୍ମଣମାନେ ଉତ୍ସର୍ଗ ନ କରି ବିଧବା ବ୍ରତିନୀମାନେ ଉତ୍ସର୍ଗ କରନ୍ତି ।

ରାଇଦାମୋଦର ବିଷୟରେ ପ୍ରଚଳିତ ଢଗ—

> ପୁଅଙ୍କୁ ସୁନ୍ଦର ପାଟ ପୀତାମ୍ବର,
> ଝିଅଙ୍କୁ ସୁନ୍ଦର କେତ,
> ବୁଢ଼ୀଙ୍କି ସୁନ୍ଦର ରାଇଦାମୋଦର,
> ବୁଢ଼ାଙ୍କୁ ସୁନ୍ଦର ଶୀତ ।]

**ରାଇପୁର**—ଦେ. ବ ( ନାମ )—ରାୟପୁର ( ଦେଖ ) Rāipura Rāyapura ( See )

**ରାଇଫ(ଫେ)ଲ୍**—ବୈଦେ. ବ ( ଇଂ ରାଇଫ୍‌ଲ୍ )—ଏକପ୍ରକାର Rāipha(phe)l ଆଧୁନିକ ବନ୍ଧୁକ—Rifle. [ଦ୍ର—(ରାଇଫ୍ଲ—ଅନ୍ୟରୂପ) ଏହାର ନଳଭିତରେ ପେଚକଟା ଗାଡ଼ିର ବାইফেল ନାଳମାନ ଥାଏ ଓ ଏ ବନ୍ଧୁକ ଗର୍ଭରୁ ଗୁଳିମାନ ସିଧାରେ **राइफल** ନ ଯାଇ ଲକ୍ଷ୍ୟବସ୍ତୁ ଆଡ଼କୁ ଗାଡ଼ିର ଖାଇ ଖାଇ ଅଗ୍ରସର ହୁଏ । ଏହି ବନ୍ଧୁକର ଗୁଳିମାଡ଼ ଖୁବ୍ କାଟୁ କରେ ବୋଲି ପଲଟଣିଆମାନେ ଏହାକୁ ବ୍ୟବହାର କରନ୍ତି । ଯେଉଁ ରାଇଫଲ୍‌ର ମୁହଁବାଟେ ବାରୁଦ ଭର୍ତ୍ତି କରାଯାଏ ତାକୁ ମଜ୍‌ଲୋଡର ( Muzzle loader ) ଓ ଯାହାର କଡ଼ବାଟେ

ଯୋଗ୍ୟ ପୂର୍ବରୁ ତାଙ୍କୁ ବ୍ରିଚଲୋଡର ( Breach loader ) ବୋଲାଯାଏ । ଭିନ୍ନ ଭିନ୍ନ ବନ୍ଧୁକ ନିର୍ମାତାଙ୍କ ନାମ ଅନୁସାରେ ଏହାର ନାମକରଣ ହୋଇଥାଏ । ଯଥା —ମସିଅର୍ ରାଇଫଲ୍ ( Mausseur rifle ) । ଯେଉଁ ବନ୍ଧୁକ ମଧ୍ୟରେ ଫାଏର୍ ହେବା ଗୁଳିଛଡ଼ା ଅନ୍ୟ କେତୋଟି ଗୁଳି ରଖିବାର କୋଠରି ଥାଏ ତାଙ୍କୁ ମାଗାଜିନ୍ ରାଇଫଲ (Magazine rifle ) ବୋଲାଯାଏ । )

**ରାଇ ବଣିଆ**—ଦେ. ବି. —୧ । ରାଇ ଗଛର ବଣ—1. A forest or Rāi baṇiā grove of 'Rāi' trees. ବାଈ ଗାଛେର ଜଙ୍ଗଲ राईके पेड़का जंगल ୨ । ବାଲେଶ୍ୱର ଜିଲ୍ଲାର ଉତ୍ତରାଞ୍ଚଳରେ ଅବସ୍ଥିତ ପ୍ରାଚୀନ ସ୍ୱାଧୀନ ଉତ୍କଳର ଦୁର୍ଗ ବିଶେଷ । (ଏ ପର୍ଯ୍ୟନ୍ତ ଏଥିର ଧ୍ୱଂସାବଶେଷ ବିଦ୍ୟମାନ ଅଛି)— Name of a fort of ancient Orissa in the district of Balasore.

**ରାଇ ବଲ୍ଲଭ**—ଦେ. ବି.—୧ । ଚିଲିକାରେ ମିଳୁଥିବା ଏକପ୍ରକାର Rāi ballabha ଛୋଟ ଚିଙ୍ଗୁଡ଼ି ମାଛ—1. A kind of झिंगाकी गिगनी small shrimps found in the Chilka lake. ୨ । ଚିଙ୍ଗୁଡ଼ିର ଛୁଆ; ଚିଙ୍ଗୁଡ଼ିମାଛର ଯାଆଁଳ— 2. The fry of shrimps

**ରାଇବା**- ଦେ. କ୍ରି.—(ସଂ. ରୈ ଧାତୁ=ଶବ୍ଦ କରିବା)—୧ । ଶବ୍ଦ Rāibā କରିବା—1 To make a sound. ୨ । ଡାକିବା ବା କବା, ଡାକା बुलाना 2. To call. [ଉ - ପୁଣି କହିଲେ ସେକ୍ଷ ରାଇଣ ରାମଙ୍କୁ । କୃଷ୍ଣସିଂହ. ମହାଭାରତ ଉଦ୍‌ଯୋଗ।]

**ରାଇ(ୟ)ବାର**—ଦେ. ବି.—(ସଂ. ରାଜ ବାର୍ତ୍ତାବହ)—୧ । କୌଣସି Rāi(ya)bāra ରାଜାଙ୍କ ଠାରୁ ଅନ୍ୟ ରାଜାଙ୍କ ନିକଟକୁ ମୌଖିକ ବାଯବାବ संवाद ନେଇ ପ୍ରେରିତ ବ୍ୟକ୍ତି—1. A carrier of दौराहा verbal messages from a Raja to another. ୨ । ଦୂତଦ୍ୱାରା ଏକ ରାଜାଙ୍କ ନିକଟକୁ ଅନ୍ୟ ରାଜାଙ୍କଦ୍ୱାରା ପ୍ରେରିତ ମୌଖିକ ସମ୍ବାଦ—2. A verbal message sent by one Raja to another through a messenger. ୩ । ମଧ୍ୟସ୍ଥ ଲୋକଙ୍କଦ୍ୱାରା ବ୍ୟାବହାରିକ ବିଷୟର କଥାବାର୍ତ୍ତା—3. Business-negotiations made by a meditator. ୪ । ରାଜାଙ୍କ କୀର୍ତ୍ତି—4. The famous deeds of kings.

**ରାଇ ରାଇ ହେବା**—ଦେ. କ୍ରି—୧ । ଚିଡ଼ ଚିଡ଼ ହେବା—1. To Rāi rāi hebā fret or snap at a person. ୨ । ଗବ ଗବ ହওୟା (କବା) କୌଣସି ବ୍ୟକ୍ତି ଉପରେ ବିରକ୍ତିଭାବ ବା राइ राइ होना ଉଗ୍ରୀ ପ୍ରକାଶ କରିବା—2. To be vexed or cross with a person. ୩ । (ଦେହ) ଶିର ଶିର ହେବା; (ଦେହ) ଭଡ଼ ମୋଡ଼ ହେବା; ଜ୍ୱର ଜ୍ୱର ବୋଧ କରିବା—3. To feel unwell; to feel feverish.

**ରାଇଲ**—ପ୍ରାଦେ.—(ଗଞ୍ଜାମ) ବି.—ପଞ୍ଚମ ବା ଗୁଣ୍ଡାଲାଦି ଅସ୍ପୃଶ୍ୟ ଜାତିର Rāila ଲୋକେ ବର୍ଷର ନିର୍ଦ୍ଦିଷ୍ଟ ସମୟରେ ଦ୍ୱାରେ ଦ୍ୱାରେ ଯେଉଁ ଗୀତ (ରାଇଲ ଗୀତ—ଅନ୍ୟରୂପ) ବୋଲି ଭିକ୍ଷା ମାଗନ୍ତି—Songs sung by the untouchable class of people during certain periods of the year while begging from door to door.

**ରାଇଶା** ପ୍ରାଦେ.—(ଗଡ଼ଜାତ) ବି.—( ସଂ. ରାଜମାଷ ) - ବରଗୁଡ଼ି; Raiśā ମୁଦ୍ଗ ଜାତୀୟ ଶସ୍ୟ ବିଶେଷ—A kind of pulse, ବରବଟୀ the cow pea; Dolichos Suiensis; Vigna Catjang.

**ରାଇ ଶୀତ(ତୁ)ଳା**—ଗ୍ରା. ବି.—ରଇ ଶୀତଳା (ଦେଖ) Rāi śita(tu)lā Rai śitalā (See)

**ରାଇ ଶୀତ(ତୁ)ଳା(ଳେ)ଇବା**—ଗ୍ରା.କ୍ରି.— ରଇ ଶୀତଳାଇବା (ଦେଖ) Rāi śita(tu)lā(le)ibā Rai śitalāibā (See)

**ରାଇ ସୋରିଷ**—ଦେ ବି.(ସଂ ରାଜସର୍ଷପ) —ଶ୍ୱେତ ସର୍ଷପ;ଧଳା ସୋରିଷ— Rāi sorisha A sort of mustard; Sinapis Ramosa. ସଂ. ରାଜ ସର୍ଷପ, କ୍ଷବକ [ଦ୍ର —ଏହାର ତେଲ ସାଧାରଣ ସୋରିଷ ବାଈ সরিষা ତେଲ ଅପେକ୍ଷା କଟୁ । ସାଧାରଣତଃ ଧଳା राई, लषनराई ସୋରିଷକୁ ଲୋକେ ରାଇ ସୋରିଷ गोहामषवा, बारिराई କହନ୍ତି, କିନ୍ତୁ ଧଳା ସୋରିଷ (ଶ୍ୱେତିକା, बर्लाई, राइसरसों ସିଦ୍ଧାର୍ଥ) ଓ ରାଇ ସୋରିଷ (କ୍ଷବକା; ଛୋଟ ଗୁ. ରାଇ ଓ ନାଲିଆ), ଉଭୟେ ପୃଥକ୍। ଏହି ଛୋଟ ମ. ରାଇ ଓ ନାଲିଆ ପ୍ରକାରକୁ Brassica Napus) କହନ୍ତି ।] ଦେ. ବିଣ.—(ଲକ୍ଷଣାର୍ଥ)— ରାଗୀ; କ୍ରୁଦ୍ଧ—Angry. (ଯଥା —ଆମ ବର୍ଦ୍ଧିଷ ଉପରେ ସେ ତ ରାଇସୋରିଷ ।)

**ରାଉ(ଓ)**—ବୈଦେ. ବି ( ମ. ରାଓ=ସଂ. ରାଜନ )—ମରହଟ୍ଟାମାନଙ୍କର Rāu(o) ବଂଶୋପାଧିବିଶେଷ—A family title amongst রাও राव the Marhattas, ଦେ.ବି (ସଂ.ରାବ) ୧ । ଶବ୍ଦ— 1 Sound. ୨ । ଡାକ;ଇହାଡ଼—2. Halloo ଗ୍ରା. ବି.—ରାହୁ (ଦେଖ)—Rāhu (See).

**ରାଉଆ**—ଦେ. ବିଣ (ସଂ. ରାଗୀ) ୧ । କ୍ରୋଧନସ୍ୱଭାବ; ରାଗୀ (ଲୋକ)— Rāuā 1. Of angry temper; hot tempered রাগী रागी (person). ୨ । ଅତ୍ୟନ୍ତ ନୀରସ (ମାଟି); শুকনো सुखी ଯହିଁରେ (ଯେଉଁ ମାଟିରେ) ଭଲ ଶସ୍ୟ ହେବାକୁ ଭଲ ଫସଲ ଜନ୍ମେ ନାହିଁ—2. (dry soil) Which does कडा not grow good crops. ୩ । (ସଂ. ରାବ)— ଉଚ୍ଚସ୍ୱରବିଶିଷ୍ଟ—3. Loud. ( ଯଥା —ରାଉଆ ପାଟି । )

**ରାଉଟୀ**—ବୈଦେ. ବି ( ଫା. ରଓଟୀ, ମୂଳ. ସଂ. ରାଜକୁଟୀ )—ତମ୍ବୁ; Rāuṭi ପଟ୍ଟବାସ; ବସ୍ତ୍ରଗୃହ —Tent. (ଉ—ଏଣେ ମହାଜନୀ তাঁবু रावटी ଅରକୂଳରେ ସାହେବ ରାଉଟୀ ପକାଇ ବସିଥିଲେ— ଫକୀରମୋହନ. ଗଳ୍ପସ୍ୱଳ୍ପ । )

**ରାଉଣ୍ଡ ଟେବଲ୍ କନ୍‌ଫରେନ୍‌ସ**—ବୈଦେ.ବି (ଇଂ) —କୌଣସି ଗୁରୁତର Rāuṇḍ ṭebal kan-pharens ବିଷୟ ତର୍କ ଓ ଆଲୋଚନାର୍ଥ

ରାଉଣ୍ଡଟେବଲକନଫରେନ୍ସ ଭାରତର ଦଳର ପ୍ରତିନିଧିମାନଙ୍କର ଏକତ୍ର
রাউণ্ডটেবলকনফবেন্স
राउंडटेबल कानफ्रेन्स ସମ୍ମେଳନ—Round table conference.
[ ଦ୍ର—ଏବେ ଲଣ୍ଡନରେ ବିଲାତର ଓ ଭାରତର ବିଭିନ୍ନ ରାଜନୀତିକ ଦଳର ମୁଖ୍ୟବ୍ୟକ୍ତିମାନଙ୍କ ରାଉଣ୍ଡଟେବଲ୍-କନଫରେନ୍ସର ୩ ଥର ବୈଠକ ହୋଇ ଭାରତ ଶାସନ-ସଂସ୍କାର ଆଇନର ବିଧିମାନ ଆଲୋଚିତ ଓ ପ୍ରଣୀତ ହୋଇ-ଅଛି । ]

ରାଉତ—ଦେ. ବି.ପୁଂ (ସଂ.ରାଜପୁତ୍ର)—୧ । ଅଶ୍ୱାରୋହୀ—1. A rider. Rāuta (ଦ୍ର—ସ୍ତ୍ରୀଅଙ୍ଗ ଯାଉଛି ଜାନୁରେ, ରାଉତ ଯେସନେ ଘୋଡ଼ା (ରାଉତାଣୀ—ସ୍ତ୍ରୀ) ପରେ—ଭୂପତି. ପ୍ରେମପଞ୍ଚାମୃତ । ) ୨ । বাউ(ছ)ত राजपुत ଅଶ୍ୱାରୋହୀ ସେନା—2. A cavalry soldier. (ଦ୍ର—ବିଶ୍ୱରନ୍ତି ତହିଁ ରାଉତ ମାହୁନ୍ତ ରଥୀ ପଦାତିଏ ସିଦ୍ଧି—ଉଞ୍ଜ. ବୈଦେହୀଶବିଳାସ । ) ୩ । କ୍ଷତ୍ରିୟ ଜାତିର ଶାଖାବିଶେଷ—3 A sect of रावत Kshatriyas. ୪ । ଖଣ୍ଡାଏତ ଓ ଶୂଦ୍ରମାନଙ୍କର ବଂଶୋପାଧି—4. Family title of Śūdras and Khaṇḍāetas. ୫ । ସୈନ୍ୟ—5. A soldier. ପ୍ରାଦେ (ବଲ୍ଲର) ବି—ଗଉଡ଼—Cow-herd.

ରାଉତରା—ଦେ. ବି—୧ । ଖଣ୍ଡାଏତଙ୍କ ବଂଶୋପାଧିବିଶେଷ—Rāutarā 1. Family title of Khaṇḍāyetas
ରାଉତରାଏ, ରାଉତରାୟ, ରାଉତ୍ରା } ଅନ୍ୟରୂପ— ୨ । କ୍ଷତ୍ରିୟଙ୍କ ବଂଶୋପାଧିବିଶେଷ— 2. A family title of Kshatriyas. ୩ । ରାଜପୁତ୍ରମାନଙ୍କ ଶ୍ରେଣୀବିଭାଗ; ଉପାଧିବିଶେଷ; ରାଉତରା ସାହେବ—3. A title of king's sons. ୪ । ବୀରପୁରୁଷଙ୍କୁ ଦତ୍ତ ରାଜଉପାଧିବିଶେଷ—4. A title given to a valiant heroic person. ୫ । ଅଶ୍ୱାରୋହୀସୈନ୍ୟ-5. Cavalry soldier. ୬ । ଅଶ୍ୱାରୋହୀସୈନ୍ୟ-ନାୟକ—6. The captain of a cavalry.

ରାଉତରା ସାହେବ—ଦେ ବି—ରାଜାଙ୍କ ଦ୍ୱିତୀୟ ବା ତୃତୀୟ ପୁତ୍ରଙ୍କ ଡାକ Rāutarā sāheba ନାମ—Title of the 2nd or 3rd prince (son) of a king.

ରାଉତିଆ—ଦେ. ବିଣ—ରାଉତସମ୍ବନ୍ଧୀୟ—Relating to Rāuta. Rāutiā (ଯଥା—କାଠ ରାଉତିଆ । )

ରାଉନା—ପ୍ରାଦେ (ବଲ୍ଲର) ବି—ଶାଗୁଣା— Rāunā Vulture.

ରାଉରା -ଦେ. ବିଣ—ରାଉଥା ( ଦେଖ )—Rāuā (See). ବି—Rāurā ଖଣ୍ଡାଏତଙ୍କ ବଂଶୋପାଧିବିଶେଷ—A family title of Khaṇḍāetas

ରାଉ ରାଉ—ଦେ ( ଧ୍ୱନ୍ୟନୁକରଣ) ଅ—୧ । ଡାମରା କୁଆଙ୍କ ଧ୍ୱନି— Rāu rāu 1. Crowing of rooks. ( ଦ୍ର—କାଉ কাকা रावराव କୋଳେ ରାଉ ରାଉ, ସବୁ ଧନ କଥା ମନରେ ଥାଉ, କୋଉଦିନେ ନେବ ଦାଉ—ଡେଙ୍ଗାଗୀତ ।)

୨ । ବଡ଼ପାଟି କରି ପୁନଃ ପୁନଃ କହିବା—2. Repeating a thing loudly. ୩ । ବଡ଼ ପାଟି କରିବା—3 Speaking loudly.

ରାଉଳ—ଦେ. ବି ( ସଂ. ରାଜକୁଳ )—୧ । ଖଣ୍ଡାଏତ ଓ କ୍ଷତ୍ରିୟଜାତି Rāula ବିଶେଷ—1. Title of Kshatriya and বাউল Khaṇḍaeta castes. ୨ । ଶିବ ଓ ଦୁର୍ଗାଙ୍କ रावल ସେବକ ମାଳିଜାତିଙ୍କ ବଂଶୋପାଧି ବିଶେଷ—2. A family title of Śūdra servants of Śiba and Durgā. ୩ । କେଳାଙ୍କ ବଂଶୋପାଧିବିଶେଷ—3 A family title of Keḷās.

ରାଉଳା,ଳ)—ଦେ. ବି.—(ସଂ. ରୈ ଧାତୁ=ଡାକିବା)—୧ । ଗର୍ଜନ—Rāuḷā(ḷi) 1. Roaring. ୨ । କାନ୍ଦ; ଉଚ୍ଚୈଃସ୍ୱରରେ କ୍ରନ୍ଦନ—2. Loud lament.

ରାଉଳିଆ—ଦେ. ବିଣ.—୧ । ଗର୍ଜନକାରୀ—1 Roaring. ୨ । Rāuḷiā ବଡ଼ପାଟିଆ; ଉଚ୍ଚୈଃସ୍ୱରଯୁକ୍ତ—2. Making a loud voice, high-toned, vociferating. ୩ । ଗୋଳମାଳଯୁକ୍ତ—3. Noisy, full of noise. (ଦ୍ର—ରାଉଳ ବା ଠାକୁରଙ୍କ ମାଳ ସେବକମାନେ ଯାତ୍ରୀ-ମାନଙ୍କ ସଙ୍ଗେ ବିଶେଷ ଗୋଳମାଳ ଓ ପାଟି କରିବାରୁ ରାଉଳିଆ ଶବ୍ଦର ଏହି ଅର୍ଥ ହୋଇଅଛି ।) ବି.—କେଳାଙ୍କ ଜାତି ବିଶେଷ—A class of Keḷās or Indian gypsies.

ରାଉଳିଆ କରିବା—ଦେ. କ୍ରି—ଘୋ ଘା କରିବା; ଅନେକ ଲୋକ Rāuḷiā karibā ବଡ଼ ପାଟି କରି ଗୋଳମାଳ କରିବା—গোলমাল কবা To make a confused loud noise गोलमाल करना ( said of many persons vocifera-ting on any mater ).

ରାଉଳିଆ କେଳା—ଦେ. ବି—କେଳାଙ୍କ ଜାତି ବିଶେଷ— Rāuḷiā keḷā A sub-caste amongst the Keḷās ( Indian gypsies ).

ରାଉଳିବା—ଦେ. କ୍ରି—ଉଚ୍ଚପାଟି କରି ଗର୍ଜନ କରିବା; ରଡ଼ି ଛାଡ଼ିବା— Rāuḷibā To roar loudly. বডগলাকবা रावराव करना

ରାଏ(ୟ)—ବୈଦେ. ବି.—( ଫା. ରାୟ୍ )—୧ । ଅଦାଲତଙ୍କର Rāe(ya) ମକଦ୍ଦମା ମୀମାଂସାର ହୁକୁମ; ମତ— ৰায় राय 1. Judgment, opinion. [ଦ୍ର—ଏ ଜନ୍ମାଏ ଏକରାଏ ଏକ ତାର ପନ୍ଥା । ପ୍ରାଚୀ. ବ୍ରହ୍ମନିରୂପଣ ଗୀତା ।] ୨ । (ଫା. ରାହା) ରାସ୍ତା; ପନ୍ଥା—2. Road; way. ୩ । ( ଫା. ରାଏ୍ ) ସ୍ୱତନ୍ତ୍ର ବ୍ୟକ୍ତିଗତ ବ୍ୟବସ୍ଥା ବା ବନ୍ଦୋବସ୍ତ—3. Separate individual provi-son.(ଯଥା—ସେମାନେ ରାଏ ଯାହାଙ୍କୁ କରି ଦେବା ।) ଦେ. ବି—୧। (ପଦ୍ୟ)(ସଂ.ରାଜନ୍, ପ୍ରା.ରାଅ); ରାଜା—1 King. [ଦ୍ର—କୁରୁକୁଳ ପତି ସେ ଧୃତରାଷ୍ଟ୍ର ରାଏ, ପଣ୍ଡୁବଙ୍କୁ ବୋଇଲେ ଯାଅ ପୁଅ ତ୍ୱାୟେ । କୃଷ୍ଣସିଂହ. ମହାଭାରତ.

ଆଦି । ] ୨ । ସଂସ୍କୃ; ରାଜଦତ୍ତ ଉପାଧିବିଶେଷ—2. A title given by Rājās. ୩ । ସଂସ୍କୃ; କ୍ଷତ୍ରିୟମାନଙ୍କ ବଂଶଗତ ଉପାଧିବିଶେଷ—3. A family title of Kshatriyas. ୪ । ବଙ୍ଗୀୟ କାୟସ୍ଥମାନଙ୍କର ବଂଶୋପାଧିବିଶେଷ—4. Family title of Benglee Kayasthas.

ରାଏଗଡ଼—ଦେ. ବି.—(ନାମ)—ରାୟଗଡ଼ (ଦେଖ)
Rāe garda Rāyagarda (See)

ରାଏତ୍—ପ୍ରାଦେ. (ସମ୍ବଲପୁର)—ବି.—(ଭୁଲ. ନଏତ୍=ନକ୍ତ) ରାତି—
Rāet Night.

ରାଏତ କନା(ଣା)—ପ୍ରାଦେ.—(ସମ୍ବଲପୁର)—ବିଣ.—ଅନ୍ଧାରକଣା—
Rāet kanā(ṇā) Night blind.
ବି—ଅନ୍ଧାରକଣା ରୋଗ—Night blindness.

ରାଏ ଦେବା—ଦେ. କ୍ରି.—[କଚେରିଆ]—(ହାକିମ) ମକଦ୍ଦମାର ଫଏସଲ
Rāe debā ବା ଶେଷ ହୁକୁମ ଦେବା—(the judge) To
রায় দেওয়া राय देना deliver judgment; to pass judgment.

ରାଏ ନକଲ—ଦେ. ବି. (କଚେରିଆ)—ମକଦ୍ଦମାରେ ଶେଷ ହୁକୁମର
Rāe nakala ପ୍ରତିଲିପି—Copy of judgment.
রাএ নকল राय नकल

ରାଏ ନେବା—ଦେ. କ୍ରି—୧। କୌଣସି ବ୍ୟକ୍ତିର ମତ ଗ୍ରହଣ କରିବା—
Rāe nebā 1. To take a person's opinion.
রায় লওয়া राय लेना ୨ । କୌଣସି ବ୍ୟକ୍ତିଙ୍କ ମତ ପ୍ରାର୍ଥନା କରିବା —2. To solicit a person's opinion.

ରାଏ ପିତାମ୍—ପ୍ରାଦେ. (ଗଡ଼ଜାତ) ବି—କ୍ଷତ୍ରିୟମାନଙ୍କର ବଂଶୋପାଧି
Rāe pitām ବିଶେଷ—A family title of Kshatriyas.

ରାଏପୁର—ଦେ. ବି. (ନାମ)—ରାୟପୁର ( ଦେଖ )
Rāepura Rāyapura ( See )

ରାଏ ଫଇ(ଏ)ସଲ(ଲା)—ବୈଦେ. ବି. (ସହରର, ଫା) (କଚେରିଆ)—
Rāe phai(e)sala(lā) ୧ । ରାଏ ଦେବା ଦ୍ୱାରା ମକଦ୍ଦମାର
রায় ফয়সলা ଶେଷ ମୀମାଂସା—1. The disposal of a
राय फैसला case by delivering judgment.
୨ । ମକଦ୍ଦମାର ଶେଷ ମୀମାଂସା ସମ୍ବନ୍ଧୀୟ ଡେଉଡ଼ାଦ ଓ ଆଦେଶ—2. Judgment and decree of a case

ରାଏ(ୟ) ବାହାଦୁର୍—ଦେ. ବି—ବଡ଼ଲାଟଙ୍କ ଦ୍ୱାରା ସାଧାରଣ ହିନ୍ଦୁ
Rāe(ya) bāhādur ବ୍ୟକ୍ତିଙ୍କୁ ସାଧାରଣ କାର୍ଯ୍ୟରେ
রায় বাহাদুর ମମତା ଦେଖାଇବା ଯୋଗୁଁ ଦିଆଯିବା ବ୍ୟକ୍ତିଗତ
राय बहादुर ପ୍ରତିଷ୍ଠାସୂଚକ ପଦବୀ—Rai Bahadur; a personal distinction or title conferred on public spirited Hindus by the Viceroy of India.

[ଦ୍ର—ଏହା 'ରାଏ ସାହେବ' ଉପାଧିଠାରୁ ଉଚ୍ଚତର ଓ 'ରାଜା' ଉପାଧିଠାରୁ ନିମ୍ନତର । ବଙ୍ଗ, ବିହାର ଆଦି ପ୍ରଦେଶରେ ଏ ଉପାଧି ଦିଆଯାଏ । ମାନ୍ଦ୍ରାଜ ପ୍ରଦେଶରେ ଏ ଉପାଧିର ସମକକ୍ଷ ଉପାଧି 'ରାଓ ବାହାଦୁର' । ମୁସଲମାନମାନଙ୍କ ପ୍ରତି ଏଥିର ସମକକ୍ଷ ଉପାଧି 'ଖାଁ ବାହାଦୁର' ଅଟେ ।]

ରାଏ ବାହାଦୁରି—ଦେ. ବି—ରାଏ ବାହାଦୁର ପଦ—
Rāe bāhāduri The title of Rai Bahadur.
রায় বাহাদুরী राय बहादुरी

ରାଏ ବାହା(ହି, ହେ)ଲ୍—ବୈଦେ. ବି. (ଫା) (କଚେରିଆ)—ନିମ୍ନ
Rāe bāhā(hi, he)l ଅଦାଲତଙ୍କ ରାୟର ଉପର ଅଦାଲତଙ୍କ
রায় বাহেল ଦ୍ୱାରା ସମର୍ଥନ—Confirmation of the
राय बाहिल lower court's judgment by the higher court.

ରାଏ ମହାଶୟ—ଦେ. ବି—ବଙ୍ଗଦେଶରେ ମୁସଲମାନ ରାଜାଙ୍କ
Rāe mahāsaya ଅମଳରେ ବିଶିଷ୍ଟ ହିନ୍ଦୁ ରାଜକର୍ମଚାରୀମାନଙ୍କୁ
রায় মহাশয় ଦିଆଯିବା ସମ୍ମାନସୂଚକ ଉପାଧି ବିଶେଷ—
राय महाशय A title of distinction given to Hindu officers of Government under the Mahomedan rule in Bengal.

[ଦ୍ର—ଏହି ଉପାଧିକୁ ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟ ମଧ୍ୟ ସ୍ୱୀକାର କରିଅଛନ୍ତି ।

ଓଡ଼ିଶାରେ ଏହି ଉପାଧି ବଂଶଗତ ହୋଇଅଛି ଓ ବାଲେଶ୍ୱର ଜିଲ୍ଲାର ଦେଉଳଡ଼ିହା, ଲକ୍ଷ୍ମଣନାଥ, କାଞ୍ଚିପୁର ଓ କଟକର ବିଶ୍ୱନଗର ଗ୍ରାମର ବଙ୍ଗୀୟ କାୟସ୍ଥ ଜମିଦାର ବଂଶଙ୍କ ଉତ୍ତରାଧିକାରୀମାନେ ଏହି ଉପାଧି ଦ୍ୱାରା ଆଜପର୍ଯ୍ୟନ୍ତ ପରିଚିତ । ମେଦିନୀପୁରସ୍ଥ ଜକ୍‌ପୁରରେ ରାଏ ମହାଶୟଙ୍କ ବଂଶଧର ଅଛନ୍ତି । ଏମାନେ ସମସ୍ତେ ଏକ ବଂଶୋଦ୍ଭବ ।]

ରାଏ ରଦ୍(ଦ୍)—ବୈଦେ. ବି. (ଫା) (କଚେରିଆ)—ଅପିଲ୍ ଅଦାଲତଙ୍କ
Rāe rad(dd) ରାଏ ଦ୍ୱାରା ନିମ୍ନ ଅଦାଲତଙ୍କ ରାଏ ଖଣ୍ଡିତ
রায় রদ ହେବା—The setting aside of a lower
राय रद् court's judgement by a higher authority.

ରାଏ(ୟ) ରାମାନନ୍ଦ—ଦେ. ବି. ( ନାମ )—ଶ୍ରୀ ଚୈତନ୍ୟ ଦେବଙ୍କ
Rāe(ya) rāmānanda ସମସାମୟିକ ଜଣେ ପ୍ରସିଦ୍ଧ ବୈଷ୍ଣବ ଭକ୍ତ
রায় রামানন্দ କରଣ ବ୍ୟକ୍ତି—Name of a devout
राय रामानन्द Baishnaba (by caste Karana of Orissa) who was the Governor of the Godavari district under Pratāprudra Deba, the then king of Orissa.

[ଦ୍ର—ଏ ଓଡ଼ିଶାର ରାଜା ପ୍ରତାପରୁଦ୍ରଦେବଙ୍କର ଗୋଦାବରୀ ନିକଟସ୍ଥ ପ୍ରଦେଶର ଶାସନକର୍ତ୍ତା ଥିଲେ; ଏ ଜଣେ ପରମ ବୈଷ୍ଣବ ଭକ୍ତ ହେବାରୁ ଶ୍ରୀ ଚୈତନ୍ୟଦେବ ଏହାଙ୍କୁ ସ୍ୱୀକାର କରିଥିଲେ । ଚୈତନ୍ୟ ଦେବଙ୍କର ୩॥ (ସାଢ଼େ ତିନି) ଜଣ ଭକ୍ତଙ୍କ ମଧ୍ୟରୁ ଏ ଜଣେ । ଏ ଜାତିରେ ଓଡ଼ିଆ କରଣ ଥିଲେ ।]

ଏ ଯୁଦ୍ଧରେ 'କୃତିତ୍ୱ ଦେଖାଇ ପ୍ରତାପରୁଦ୍ର ରାଜାଙ୍କଠାରୁ 'ରାୟ' ଉପାଧି ପାଇଥିଲେ । ଏ 'ଜଗନ୍ନାଥବଲ୍ଲଭ' ନାମକ ଶ୍ରେଣୀର ସଂସ୍କୃତ ନାଟକ ଲେଖିଥିଲେ । ଜଗନ୍ନାଥ ପ୍ରାଚୀନ ଉତ୍କଳ । ]

ରାଏ ସାହେବ--ଦେ. ବି--ଭାରତବର୍ଷର ବଡ଼ଲାଟଙ୍କଠାରୁ ଭାରତୀୟ ବିଶିଷ୍ଟ Rāe sāheba ହିନ୍ଦୁ ବ୍ୟକ୍ତିଙ୍କୁ ମିଳିବା ସମ୍ମାନସୂଚକ রায়সাহেব ବ୍ୟକ୍ତିଗତ ଉପାଧି—An honorific title रायसाहब given to Hindu public-spirited gentlemen in Bengal and Bihar etc by the Viceroy. [ ଦ୍ର—ଏହା ସରକାର ପ୍ରଦତ୍ତ ନିମ୍ନତମ ଉପାଧି । ଏଥିରୁ ଉଚ୍ଚ ରାଏ ବାହାଦୁର । ଏଥିର ସମକକ୍ଷ ଉପାଧି ମାନ୍ଦ୍ରାଜ ଅଞ୍ଚଳରେ ରାଓସାହେବ ଓ ମୁସଲମାନମାନଙ୍କୁ ଦିଆଯିବା ଉପାଧି ଖାଁ ସାହେବ । ]

ରାଏ ସାହେବୀ—ଦେ. ବି—ରାଏସାହେବ ଉପାଧି— Rāe sāhebī Title of Rāisāheba. রায়সাহেবী रायसाहबी

ରାଏ ସିଂହ—ଦେ. ବି ( ସଂ. ରାଜନ୍ ଓ ସିଂହ )—କ୍ଷତ୍ରିୟମାନଙ୍କର Rāe simha ବଂଶୋପାଧି ବିଶେଷ—Name of a family title of Kshatriyas.

ରାଓ—ଦେ. ବି—୧ । ରାଉ ( ଦେଖ )—1. Rāu ( See ) ୨ । Rāo ( ସଂ. ରାଜ ) ମରହଟ୍ଟା ବ୍ରାହ୍ମଣଙ୍କ ବଂଶୋପାଧି—2. রাও A family title of Marhatta Brahmans. राव ୩ । ମରହଟ୍ଟା କ୍ଷତ୍ରିୟଙ୍କ ବଂଶୋପାଧି—3. A family title of Marhatta Kshattriyas. ୪ । ତେଲଙ୍ଗା ବ୍ରାହ୍ମଣଙ୍କ ବଂଶୋପାଧି—4. A family title of Telgu Brahmins. ୫ । ତେଲଙ୍ଗା ନାଇଡୁଙ୍କ ବା ଶୂଦ୍ରମାନଙ୍କ ବଂଶୋପାଧି ବିଶେଷ—5. A family title of Telgu Śūdras.

ରାଓ କବି—ଦେ. ବି ( ନାମ )—ମଧୁସୂଦନ ରାଓ ( ଦେଖ) Rāo kabi Madhusūdana rāo ( See )

ରାଓ ବାହାଦୁର—ଦେ. ବି—ଭାରତର ବଡ଼ଲାଟଙ୍କ ପ୍ରଦତ୍ତ Rāo bāhādur ମାନ୍ଦ୍ରାଜ ପ୍ରଭୃତି ପ୍ରଦେଶବାସୀ ହିନ୍ଦୁ ବିଶିଷ୍ଟ রাওবাহাদুর ବ୍ୟକ୍ତିଙ୍କର ବ୍ୟକ୍ତିଗତ ଉପାଧି—Rao Bahadur, रावबहादुर a title given to Hindus in Madras etc by the Viceroy. [ଦ୍ର—ରାଏବାହାଦୁର ତଳେ ନୋଟ୍ ଦେଖ । ]

ରାଓ ସାହେବ—ଦେ. ବି—ମାନ୍ଦ୍ରାଜ ପ୍ରଦେଶର ବିଶିଷ୍ଟ ବ୍ୟକ୍ତିଙ୍କୁ Rāo sāheb ଭାରତଗଭର୍ଣ୍ଣମେଣ୍ଟଙ୍କ ପ୍ରଦତ୍ତ ବ୍ୟକ୍ତିଗତ ଉପାଧି রাওসাহেব ବିଶେଷ—Rāo Sāheb; a title given to रावसाहब public-spirited gentlemen in Madras by the Viceroy.

ରାଣ୍ଡ—ଗ୍ରାଦେ ( ସମ୍ବଲପୁର ) ବି—ରାଣ୍ଡି— Rāṅrda Widow.

ରାଁଧା—ପ୍ରାଦେ ( ଭଙ୍ଗିଭାଷା; ସଂ. ରନ୍ଧନ) ବି—ଭୋଜି— Rāṅdhā A feast; banquet.

ରାକଶ—ପ୍ରାଦେ ( ସିଂହଭୂମି ) ବି—କୋରଳ ( ଦେଖ ) Rāk-aś Korala (See )

ରାକା—ସଂ. ବି [ ରା ଧାତୁ=( ପରମଶୋଭା ) ଦାନ କରିବା + କର୍ତ୍ତୃ. Rākā ଅକ + ଆ; ଯାହା ପୃଥିବୀକୁ ଶୋଭାଦାନ କରେ )— ୧ । ପୂର୍ଣ୍ଣିମା ତିଥି—1. The day of fullmoon; fullmoon. ୨ । ନବ ଋତୁମତୀ ସ୍ତ୍ରୀ—2. A newly menstruated girl; a girl in whom menstruation has recently commenced. ୩ । ଲୁଣ୍ଡିଆକାଛୁ; କାଛୁରୋଗ— 3 Itches; scabies ୪ । ନଦୀ ବିଶେଷ— 4. Name of a river. ୫ । ଅଙ୍ଗିରସ ମୁନିଙ୍କର କନ୍ୟା—5. Name of a daughter of sage Angirasa.

ରାକା ପତି—ସଂ. ବି (୬ଷ୍ଠୀ ତତ୍; ରାକା+ପତି)—ଚନ୍ଦ୍ର— Rākā pati The moon.

ରାକା ରଜନୀ—ସଂ. ବି—ପୂର୍ଣ୍ଣିମା ରାତ୍ରି— Rākā rajanī The night of full moon.

ରାକା ଶଶୀ—ସଂ. ଛ—ପୂର୍ଣ୍ଣିମାର ଚନ୍ଦ୍ର — Rākā śaśi The full moon.

ରାକି(କେ)ଟ୍—ବୈଦେ. ବି (ଇଂ. ରାକେଟ୍)—୧ । ପାଶ୍ଚାତ୍ୟ 'ଟେନିସ୍' Rāki(ke)ṭ ଖେଳରେ ବ୍ୟବହୃତ ବାଟ୍ ବା ଚର୍ମତନ୍ତ୍ରିସଂଯୁକ୍ତ ପଟା, বাকেট राकेट ଯଦ୍ଦ୍ୱାରା ଟେନିସ୍ ଖେଳରେ ଗେଣ୍ଡୁକୁ ଆଘାତ କରିବାକୁ ହୁଏ—1. Racket; tennis bat. ୨ । (ଇଂ. ରକେଟ୍) ହାଉଇବାଣ—2 Rocket.

ରାକିବ—ଦେ. ବି—ଚିରସ୍ଥାୟୀରୂପେ ସ୍ଥିରୀକୃତ କାର୍ଯ୍ୟ ବା ବିଧି— Rākiba A permanent rule. ବିଣ—ଚିରସ୍ଥାୟୀରୂପେ স্থায়ী बाहाली असालतन ଧାର୍ଯ୍ୟ ବା ସ୍ଥିର ହୋଇଥିବା (ବିଷୟ)— Customary; permanently fixed or settled (matter).

ରାକ୍ଷସ—ସଂ. ବି. ପୁଂ ( ରକ୍ଷ ଧାତୁ+ଅପାଦାନେ ଅସ୍; ଯେଉଁମାନଙ୍କ Rākshasa ଆକ୍ରମଣରୁ ବା କବଳରୁ ଯଜ୍ଞୀୟ ହବି ଆଦିକୁ ରକ୍ଷା [ରାକ୍ଷସୀ—ସ୍ତ୍ରୀ] କରାଯାଏ, କିମ୍ବା ରକ୍ଷସ୍ +ସ୍ୱାର୍ଥେ ଅ )—୧ । ଦେବଯୋନିବିଶେଷ; ନିଶାଚର; ଅସୁର—1. Demon; a titan; an evil spirit; monster; devil. [ଦ୍ର—ରାମାୟଣ, ମହାଭାରତ ଓ ବେଦାଦିରେ ବର୍ଣ୍ଣିତ ରାକ୍ଷସମାନେ କଷ୍ଟୁର, କ୍ରୂରକର୍ମୀ, ଯଜ୍ଞନାଶକ, ମାଂସାଶୀ, କଷ୍ଟ ମାତ୍ର ସହିଷ୍ଣୁ, ଅନାର୍ଯ୍ୟ ଓ ବିକଟରୂପବିଶିଷ୍ଟ ଥିଲେ ଏବଂ ଆର୍ଯ୍ୟମାନଙ୍କୁ ନାନାରୂପରେ ପ୍ରପୀଡ଼ିତ କରୁଥିଲେ । ଏମାନେ ରାତ୍ରିଯୋଗରେ ଆର୍ଯ୍ୟମାନଙ୍କୁ ଆକ୍ରମଣ କରି ସେମାନଙ୍କ ଧନ, ଗୋ, ସ୍ତ୍ରୀ ଆଦି ଲୁଣ୍ଠନ କରୁଥିଲେ ଓ ଯଜ୍ଞ ଭୂମିରେ ଅମେଧ୍ୟବସ୍ତୁମାନ ନିକ୍ଷେପ କରି, ଯଜ୍ଞଘୃତାଦି ଖାଇ ଯଜ୍ଞକୁ ନଷ୍ଟ କରିବା ଏମାନଙ୍କର ପ୍ରଧାନ କାର୍ଯ୍ୟ ଥିଲା ।

ଏମାନେ ଅତ୍ୟନ୍ତ ମାୟାବୀ ଥିଲେ ଓ ନାନାପ୍ରକାର ମାୟା ରୂପ ଧାରଣ କରି ପାରୁଥିଲେ । ରାତିରେ ଏମାନେ ଆକ୍ରମଣ କରୁଥିବାରୁ ଏମାନେ ନିଶାଚର, ଆର୍ଯ୍ୟାବର୍ତ୍ତର ଦକ୍ଷିଣ ପଶ୍ଚିମ ଦିଗ ବା ନୈର୍‌ଋତକୋଣରେ ଏମାନଙ୍କର ବାସସ୍ଥାନ ଥିବାରୁ ନୈର୍‌ଋତ, ମାଂସ ଖାଉଥିବାରୁ ପଳାଶୀ, ରକ୍ତପାନ କରୁଥିବାରୁ ଅସ୍ରପ, ନାନାବର୍ଣ୍ଣରେ ଦେହକୁ ରଞ୍ଜିତ କରୁଥିବାରୁ କର୍ବୁର, ସନ୍ଧ୍ୟାସମୟରେ ସକ୍ତି ଉତ୍ଥିତହୋଇ ଯୁଦ୍ଧଯାତ୍ରା କରୁଥିବାରୁ 'ସନ୍ଧ୍ୟାବଳ' ଆଦି ନାମରେ ଆଖ୍ୟାତ ହେଉଥିଲେ ।

ରାକ୍ଷସ ଶବ୍ଦର **ଅନ୍ୟ ପ୍ରତିଶବ୍ଦ** ଯଥା—ଅସୁର, ଅଶ୍ରୀର, ଅସ୍ରପ, ଆଶର, କଠପ୍ରୁ, କର୍ବୁର, କଲ୍ମାଷ, କୀଲାପା, କୀଲାଳପ, କୌଣପ, କ୍ରବ୍ୟାଦ୍, କ୍ରବ୍ୟାଦ, ଦୈତ୍ୟ, ଯପାଠ, ନକ୍ତଞ୍ଚର, ନିଶାଚର, ନରଧିଷ୍ଣ, ନିକଷାତ୍ମଜ, ନୈକଷେୟ, ନୈର୍‌ଋତ, ନୀଳାମ୍ବର, ନୃଚକ୍ଷା, ପଳାଶ, ପଳାଶୀ, ପୁଣ୍ୟଜନ, ବୈଶ୍ରବଣ, ପୌଲସ୍ତ୍ୟ, ଭୂତ, ଯାତୁ, ଯାତୁଧାନ, ରଜନୀଚର, ରକ୍ଷଃ, ରାତ୍ରିଚର, ରାତ୍ରିଞ୍ଚର, ସନ୍ଧ୍ୟାବଳ ।

ପୁରାଣମତରେ ଏମାନେ ଜଣେ ପ୍ରଜାପତି କଶ୍ୟପଙ୍କର ଏକ ପତ୍ନୀ, ଦିତିଙ୍କଠାରୁ ଜାତ ହୋଇଥିବାରୁ ଏମାନଙ୍କୁ ଦୈତ୍ୟ ବୋଲଯାଏ । ଦେବତା ଓ ଋଷିମାନଙ୍କଠାରୁ ଅନେକ ରାକ୍ଷସ ମଧ୍ୟ ଜାତ ହୋଇଥିଲେ (ଯଥା—ରାବଣ, ମୁର, ହିରଣ୍ୟ ) । ଆର୍ଯ୍ୟମାନେ ଏମାନଙ୍କ ସହିତ ବିବାହ ସମ୍ପର୍କ ମଧ୍ୟ ରଖୁଥିଲେ । ( ଭୀମ ହିଡ଼ିମ୍ବା ରାକ୍ଷସୀକୁ ବିବାହ କରିଥିଲେ ।) ଏମାନଙ୍କ ମଧ୍ୟରୁ ଅନେକ କଠୋର ତପସ୍ୟା ବଳରେ ସିଦ୍ଧିଲାଭ କରି ଦେବତାମାନଙ୍କୁ ପରାସ୍ତ କରୁଥିଲେ । ଦେବତାମାନଙ୍କ ସହିତ ଏମାନଙ୍କର ବରାବର ଯୁଦ୍ଧ ଲାଗୁଥିଲା । ଏଣୁ ବିଷ୍ଣୁ ନାନା ଅବତାର ଧାରଣ କରି ଅନେକ ଦୁର୍ଦ୍ଦାନ୍ତ ରାକ୍ଷସ ବଧ କରି ପୃଥିବୀପୃଷ୍ଠରେ ଶାନ୍ତି ସ୍ଥାପନ କରୁଥିଲେ । ଏମାନେ ମହାକାୟ ଓ ବିକଟରୂପୀ ଥିବା ବର୍ଣ୍ଣିତ ହୋଇଅଛି ।

ଆଧୁନିକ ପ୍ରତ୍ନତତ୍ତ୍ୱବିଦ୍‌ମାନେ ଏହି ରାକ୍ଷସମାନଙ୍କୁ ଆଫ୍ରିକାଦେଶୀୟ ନିଗ୍ରୋମାନଙ୍କ ପୂର୍ବପୁରୁଷ ବୋଲି କଳ୍ପନା କରିଅଛନ୍ତି । ଆର୍ଯ୍ୟମାନେ ସଂସ୍କୃତଭାଷାରେ ରଥକ୍ରାନ୍ତ ଖଣ୍ଡ, ସୂର୍ଯ୍ୟାରଷ୍ଟ୍ରଦେଶ, ରାକ୍ଷସାବାସ, ସୂର୍ଯ୍ୟାରକା ଦେଶ ନାମରେ ଯେଉଁ ଦେଶ ସବୁକୁ ନିର୍ଦ୍ଦେଶ କରିଥିଲେ ତାହା ଆଫ୍ରିକା ଦେଶ ବୋଲି ଆଧୁନିକ ପଣ୍ଡିତମାନେ ଅନୁମାନ କରୁଅଛନ୍ତି । ଗ୍ରୀକ୍‌ଭାଷାରେ ଆଫ୍ରିକା ଦେଶର ଅର୍ଥ ଓ ସୂର୍ଯ୍ୟାରକା ( ସୂର୍ଯ୍ୟକିରଣକ୍ରାନ୍ତ ) ର ଅର୍ଥ ଏକ । ଗ୍ରୀକ୍ ଇଥିଓପୀୟ ଶବ୍ଦର ଅର୍ଥ ( ସୂର୍ଯ୍ୟକିରଣରେ ) ଦଗ୍ଧମୁଖ । ଲାଟିନ୍‌ରେ ନିଗ୍ରୋ ଶବ୍ଦର ଅର୍ଥ କୃଷ୍ଣବର୍ଣ୍ଣ । ଆହୁରି ମଧ୍ୟ ଆଫ୍ରିକାଦେଶ ଭାରତବର୍ଷର ନୈର୍‌ଋତ କୋଣରେ ଅବସ୍ଥିତ । ]

୨ । ଭୂତ; ପ୍ରେତ—2. Ghost; ogre; goblin.

୩ । କ୍ରୂରକର୍ମୀ ବ୍ୟକ୍ତି—3. A cruel person.

୪ । ନରଖାଦକ ବ୍ୟକ୍ତି—4. A cannibal. ୫ । (ଯେ କୁବେରଙ୍କର ଧନ ରକ୍ଷା କରେ) କୁବେରଙ୍କ ଧନରକ୍ଷକ ଭୃତ୍ୟ ବା ଜୀବବିଶେଷ; ଯକ୍ଷ—5. A class of attendants of God Kubera, guarding his treasures. ୬ । ହିନ୍ଦୁଶାସ୍ତ୍ରୋକ୍ତ ବିବାହ ବିଶେଷ; କନ୍ୟାକୁ ବଳପୂର୍ବକ ହରଣ କରି ବିବାହ ବା ସଙ୍ଗମ କରିବା—6. One of the forms of marriage described in the Hindu Śāstras as consisting of violent siezure and rape or outrage of a girl ୭। ହିନ୍ଦୁଶାସ୍ତ୍ରୋକ୍ତ ଚିକିତ୍ସା ବିଶେଷ; ଅସ୍ତ୍ରଚିକିତ୍ସା—7. Surgery in Hindu medicalscience.

ବିଣ—୧ ( ରକ୍ଷସ୍ + ଅ ) ରକ୍ଷଃ ସମ୍ବନ୍ଧୀୟ; ଆସୁରିକ—1. Monstrous, demoniac; ghostly. ୨ । ଅତି ନିଷ୍ଠୁର—2. Very cruel.

ଦେ. ବି—ପକ୍ଷୀ—Bird. [ ଦ୍ର—ବନଦ୍ରୁମନ୍ତ ପର୍ବତ, ପ୍ରବଳ ବାତଜନିତ, ହେବାରୁ ସାଞ୍ଜୁ ଓଡ଼ିତ, ରାକ୍ଷସ ବଗେ । ଭଞ୍ଜ. ବୈଦେହୀଶବିଳାସ । ]

**ରାକ୍ଷସ(ସୀ) ଚିକିତ୍ସା**—ସଂ ବି—ଅସ୍ତ୍ର ଚିକିତ୍ସା—
Rākshasa(sī) chikitsā Surgery.

**ରାକ୍ଷସ ଦେଶ**—ସଂ. ବି—ରାକ୍ଷସମାନେ ବାସ କରୁଥିବା ଦେଶ—
Rākshasa deśa A country inhabited by demons.
(ରାକ୍ଷସରାଜ୍ୟ—ଅନ୍ୟରୂପ)
( ରାକ୍ଷସ ମୂଲକ, ରାକ୍ଷସରାଇଜ—ଦେଶଜରୂପ)

**ରାକ୍ଷସ ନାରୀ**—ସଂ. ବି. ସ୍ତ୍ରୀ—ରାକ୍ଷସୀ (ଦେଖ)
Rākshasa nārī Rākshasī. (See)
( ରାକ୍ଷସ ପତ୍ନୀ, ରାକ୍ଷସପୋଷା—ଅନ୍ୟରୂପ )

**ରାକ୍ଷସ ବିବାହ**—ସଂ. ବି—ହିନ୍ଦୁଶାସ୍ତ୍ରରେ ବର୍ଣ୍ଣିତ ୮ପ୍ରକାର ବିବାହ ମଧ୍ୟରୁ ନିକୃଷ୍ଟତମ ବିବାହ—The lowest form of the eight kinds of marriage described in the Hindu Śāstras, more properly, the forcible carrying away and rape of a girl.
Rākshasa bibāha

[ଦ୍ର—ଫଳତଃ ଏହା ବିବାହ ନୁହେଁ । ଏଥିରେ ବଳାତ୍କାରରେ କନ୍ୟାକୁ ହରଣ କରି ନିଆଯାଉଥିଲା । କନ୍ୟାପକ୍ଷୀୟ ବ୍ୟକ୍ତିମାନଙ୍କ ସହିତ ଯୁଦ୍ଧ କରି ସେମାନଙ୍କୁ ହତ୍ୟା କରି ଜବରଦସ୍ତି କନ୍ୟାକୁ ଘେନିଆସି ସଙ୍ଗମ କରିବାକୁ ରାକ୍ଷସ ବିବାହ ବୋଲଯାଉଥିଲା । କୌଣସି କନ୍ୟାକୁ ଜଣେ ବଳପୂର୍ବକ ହରଣ କରି ରମଣ କରିବା ପରେ ଉକ୍ତ କନ୍ୟାକୁ ଓ ତଦ୍‌ଗର୍ଭଜାତ ସନ୍ତାନକୁ ସମାଜରେ ଆଶ୍ରୟ ଦେବାପାଇଁ ହିନ୍ଦୁଶାସ୍ତ୍ରକାରମାନେ ଏହାକୁ 'ବିବାହର' ପ୍ରକାରଭେଦରୂପେ ନିର୍ଦ୍ଦେଶ କରି ଯାଇଅଛନ୍ତି । ଏଥିରୁ ନାରୀଜାତିପ୍ରତି ପ୍ରାଚୀନ ଆର୍ଯ୍ୟମାନଙ୍କର କିପରି ସୁବିବେଚନା ଥିଲା, ତାହା ଜଣା ପଡ଼ୁଛି ।]

**ରାକ୍ଷସ ଭୋଜନ**—ଦେ. ବି—୧ । ରାକ୍ଷସ ଯୋଗ୍ୟ ଖାଦ୍ୟ ଖାଇବା—
Rākshasa bhojana ମାଂସାଦି ଅମେଧ୍ୟ ବସ୍ତୁର ଓ ପରିମାଣରେ ଅତ୍ୟଧିକ ଖାଦ୍ୟର ଭୋଜନ—1. Eating of food befitting a demon ୨ । ରାକ୍ଷସ ଯୋଗ୍ୟ ଖାଦ୍ୟ (ଅମେଧ୍ୟ ଖାଦ୍ୟ)—2. Food befitting a demon.

**ରାକ୍ଷସ ଯୋନି**—ସଂ. ବି—ରାକ୍ଷସ ଗର୍ଭରେ ଜନ୍ମଗ୍ରହଣ—
Rākshasa joni Birth in the womb of a demoness.

**ରାକ୍ଷସ ରାଜ**—ସଂ. ବି (୬ଷ୍ଠୀ ତତ୍; ରାକ୍ଷସ+ରାଜା)—ରକ୍ଷୋରାଜ;
Rākshasa rāja ରାକ୍ଷସମାନଙ୍କର ରାଜା—A king of demons.
(ରାକ୍ଷସ ରଜା—ଦେ. ରୂପ)

**ରାକ୍ଷସ ରାଜ୍ୟ**—ସଂ. ବି (୬ଷ୍ଠୀ ତତ୍)—୧ । ରାକ୍ଷସରାଜ ଶାସିତ ଦେଶ—
Rākshasa rājya 1. A kingdom governed by a demon. ୨ । ରାକ୍ଷସ ଦେଶ (ଦେଖ)—
(ରାକ୍ଷସ ରଇଜ-ଦେ. ରୂପ) 2. Rākshasa desa. (See)

**ରାକ୍ଷସ ସୁଲଭ**—ସଂ.ବିଣ (୭ମୀ ତତ୍)—ରାକ୍ଷସମାନଙ୍କଠାରେ ସାଧାରଣତଃ
Rākshasa sulabha ଦେଖାଯିବା—Found in demons.
(ଯଥା—ରାକ୍ଷସସୁଲଭ କଷ୍ଟଭତା)

**ରାକ୍ଷସୀ**—ସଂ. ବିଣ. ସ୍ତ୍ରୀ (ରକ୍ଷଃ+ସମ୍ବନ୍ଧେ. ଅ+ସ୍ତ୍ରୀ. ଈ)—୧ । ରାକ୍ଷସ
Rākshasi ଯୋଗ୍ୟ; ରାକ୍ଷସସୁଲଭ—1. Befitting a demon ( ଯଥା—ରାକ୍ଷସୀ ମୂର୍ତ୍ତି;
(ରାକ୍ଷସିଆ—ଦେଶଜରୂପ)
ରାକ୍ଷସୀ କ୍ଷୁଧା) ୨ । ରାକ୍ଷସ ସମ୍ବନ୍ଧୀୟ—2. Demonaic;
राक्षसी devilish; monstrous. ୩ । ରାକ୍ଷସପରି ବିକଟ ଓ ବୃହଦାକାର ବିଶିଷ୍ଟ—3. Giantly. ରାକ୍ଷସ ସମ୍ବନ୍ଧୀୟା (ସ୍ତ୍ରୀ)—(Female) Relating to demons; demonaic. ବି—୧ । ରାକ୍ଷସଜାତୀୟା ସ୍ତ୍ରୀ—1. Demoness; she-devil. ୨ । ସନ୍ଧ୍ୟାକାଳ; ମୂର୍ଚ୍ଛା ସନ୍ଧ୍ୟା ବେଳ; ସାୟଂକାଳର ତିନି ମୁହୂର୍ତ୍ତକାଳ—2. Sunset; dusk; twilight. ୩ । ଦଂଷ୍ଟ୍ରା ବା ଚୋର ନାମକ ଗନ୍ଧ ଦ୍ରବ୍ୟ; ଦନ୍ତୀ—3. A sort of medicinal scent. Andropogen Acicularis.

**ରାକ୍ଷସୀ ବେଳା**—ସଂ. ବି—ସନ୍ଧ୍ୟାକାଳରେ ଅବ୍ୟବହୃତ ୩ ମୁହୂର୍ତ୍ତକାଳ—
Rākshasi belā The time of sunset; twilight.

**ରାକ୍ଷସୀ ମାୟା**—ସଂ. ବି—ରାକ୍ଷସମାନଙ୍କ ରଚିତ ମାୟା—
Rākshasi māyā Illusions created by demons.
(ରାକ୍ଷସ ମାୟା—ଦେ. ରୂପ)

**ରାକ୍ଷସେନ୍ଦ୍ର**—ସଂ. ବି.-(୬ଷ୍ଠୀ ତତ୍)—୧ । ରାକ୍ଷସ ରାଜ—1. King
Rākshasendra of demons. ୨ । ରାବଣ—2. The
[ରାକ୍ଷସେଶ୍ୱର—ଅନ୍ୟରୂପ] demon king Rābana. ୩ । କୁବେର—3. The God of riches.

**ରାକ୍ଷସୁଣୀ**—ଦେ. ବି. ଓ ବିଣ—ରାକ୍ଷସୀ (ଦେଖ)
Rākshasuni Rākshasi (See)
राक्सी राक्सनी [ଭି—ରାକ୍ଷସୁଣୀମାନେ ଯେ ହୋଇଣ ବିକଳ, କାନ୍ଦିଲେ କାନ୍ଦା କରି ଆପଣା କପାଳ । କୃଷ୍ଣସିଂହ. ମହାଭାରତ. ବନ ।]

**ରାକ୍ଷା**—ସଂ. ବି.—(ରକ୍ଷ୍ ଧାତୁ=ରକ୍ଷା କରିବା+କର୍ତ୍ତୃ. ଅ+ଆ; ଯାହା
Rākshā ଶରୀରାଦିର ବର୍ଣ୍ଣକୁ ରକ୍ଷା କରେ)—୧ । ଲାକ୍ଷା—
1. Lac. ୨ । ଅଳତା—2. Red animal-dye.

**ରାକ୍ଷାସ**—ଗ୍ରା. ବି. ଓ ବିଣ. ପୁଂ—(ସଂ. ରାକ୍ଷସ ଶବ୍ଦଯୁକ୍ତ ପଦମାନ ଗ୍ରାମ୍ୟ
Rākshāsa ଭାଷାରେ 'ରାକ୍ଷାସ' ପଦଯୁକ୍ତ ହୋଇ ବ୍ୟବହୃତ
ହୁଅନ୍ତି)—ରାକ୍ଷସ (ଦେଖ)
राक(को)स राक्षस Rākshasa (See)

**ରାକ୍ଷାସୀ**—ଦେ. ବି. ସ୍ତ୍ରୀ—୧ । ରାକ୍ଷସୀ ୧ (ଦେଖ)
Rākshasi बाकुसी राक्सनी Rākshasi 1 (See)
[ରାକ୍ଷାସୁଣୀ—ଅନ୍ୟରୂପ] [ଭି—କହଇ ଗୃଢ଼ୁ କର ରାକ୍ଷାସୁଣୀ । ପ୍ରତାପ. ଶଶିସେଣା ।] ୨ । ଅସାଧାରଣ ବିକଟ ରୂପ ଗ୍ରହଣ ପୂର୍ବକ ଜନ୍ମ ହୋଇଥିବା ଜୀବ—2. A deformed animal born from animals. [ଦ୍ର—ସମୟ ସମୟରେ ମନୁଷ୍ୟ ଓ ଗୋରୁମାନଙ୍କ ଗର୍ଭରୁ ବଡ଼-ମୁଣ୍ଡିଆ, ଏକ ଆଖିଆ, ଏପରି ଅସାଧାରଣ ଓ କଦାକାର ଶିଶୁ ଜନ୍ମ ହେବା ଦେଖାଯାଏ ।] ବିଣ.—ଅତି ନିଷ୍ଠୁର (ସ୍ତ୍ରୀ)—Very cruel; devilish (woman.)

**ରାକ୍ଷୀ (ଇତ୍ୟାଦି)**—ରାଖୀ ଇତ୍ୟାଦି (ଦେଖ)
Rākshi (etc) Rākhi etc (See)

**ରାଖସ୍**—ପ୍ରାଦେ.—(ସମ୍ବଲପୁର)—ବି.—ରାକ୍ଷସ (ଦେଖ)
Rākhas Rākshasa (See)

**ରାଖୀ**—ଦେ. ବି.—(ସଂ. ରକ୍ଷୀ; ରକ୍ଷାସୂତ୍ର)—୧ । ରକ୍ଷାସୂତ୍ର; ଆପଣାର
Rākhi राखी राखी ଶରୀରକୁ ଅଶୁଭରୁ ରକ୍ଷା କରିବା ପାଇଁ ବ୍ୟବହୃତ ଅଭିମନ୍ତ୍ରିତ ସୂତା—1. Consecrated string worn round the hand to save one's self from evil influences. [ଦ୍ର—ଏ ସୂତା ହଳଦିରେ ବୁଡ଼ା ଯାଇଥାଏ ଓ ରାଖୀ ପୂର୍ଣ୍ଣିମା ଦିନ ଭଉଣୀ ଭାଇଙ୍କ ହାତରେ କିମ୍ବା ଅନ୍ୟ ସମୟରେ ପରସ୍ପର ପ୍ରୀତି ରକ୍ଷାର୍ଥ ଦୁଇ ଜଣ ବ୍ୟକ୍ତି ପରସ୍ପରଙ୍କ ହାତରେ ବାନ୍ଧନ୍ତି । ଏହା ପଶ୍ଚିମାମାନଙ୍କ ମଧ୍ୟରେ ଓ ବଙ୍ଗଦେଶରେ ଚଳେ ।] ୨ । ରାଖୀ ବନ୍ଧନ (ଦେଖ)
2. Rākhi bandhan (See)

**ରାଖୀ ପୂର୍ଣ୍ଣମୀ**—ଦେ. ବି.—(ସଂ. ରକ୍ଷୀ ପୂର୍ଣ୍ଣିମା)—ଶ୍ରାବଣ ପୂର୍ଣ୍ଣିମା; ଗହ୍ମା-
Rākhi purnnami ପୂର୍ଣ୍ଣମୀ—The fullmoon of the lunar month of
राखी पूनिमा राखि पुर्नमासो
ରାଖୀ ପୂର୍ଣ୍ଣିମା
ରାଖୀ ପୁନ୍ଥ
ରାଖୀ ପୁନେଇ } —ଅନ୍ୟରୂପ
srābana. [ଦ୍ର—ଏ ଦିନ ବନ୍ଧୁମାନେ ପରସ୍ପରର କଟିରେ ଖଣ୍ଡିଏ ଲେଖାଏଁ ରଞ୍ଜିତ ସୂତା (ରାଖୀ) ବାନ୍ଧନ୍ତି ।]

**ରାଖୀ ବନ୍ଧନ**—ଦେ. ବି.—(ସଂ. ରକ୍ଷା ଓ ବନ୍ଧନ)—୧ । ଗହ୍ମା ପୂର୍ଣ୍ଣିମା
Rākhi bandhana ଦିନ ବନ୍ଧୁମାନେ ପରସ୍ପରର ଶୁଭ କାମନାର୍ଥ
राखी बंधन କଟିରେ ବାନ୍ଧିବା ରଞ୍ଜିତ ସୂତ୍ର—1. A coloured thread or string which friends put on

**राखी बन्धन** each others wrist on the Srābaṇa fullmoon day. ୨ । ଶ୍ରାବଣପୂର୍ଣ୍ଣିମା ଦିନ ହାତରେ ରାଖୀ ବାନ୍ଧିବା କର୍ମ—2. The tying of Rākhi thread round the wrist on the fullmoon day of Srābaṇa.

ରାଖୀ ବାନ୍ଧିବା—ଦେ.କ୍ରି.—ଶ୍ରାବଣ ପୂର୍ଣ୍ଣିମା ଦିନ ହାତରେ ରାଖୀ ବାନ୍ଧିବା-- Rākhi bāndhibā To tie Rākhi thread round **बाधी बांधा** the wrist on the fullmoon day of **राखीबांधना** Srābaṇa.

ରାଗରି କୁମୁଡ଼ା—ପ୍ରାଦେ. (ବସ୍ତର) ବି—ପାଣି କଖାରୁ— Rāg-ri kumurdā White gourd, melon.

ରାଗ—ସଂ ବି.—(ରଞ୍ଜ ଧାତୁ=ରଙ୍ଗାଇବା, ରଞ୍ଜିତ କରିବା + କର୍ତ୍ତ୍ରି. Rāga ଅ)—୧ । କୋପ; କ୍ରୋଧ (Apte); (ଏହା ମନୁଷ୍ୟର ମୁଖ ଓ ଚକ୍ଷୁକୁ ରକ୍ତାକ୍ତ କରେ ବୋଲି)—1. Anger, indignation. ୨ । ବିରାଗ; ବିରକ୍ତି—(Apte) 2. Displeasure; annoyance. ୩ । ମାତ୍ସର୍ଯ୍ୟ; ଦ୍ୱେଷ —3. Envy; malice; grudge. ୪ । ବର୍ଣ୍ଣ; ରଙ୍ଗ—4. Colour; hue; tint, dye. ୫ । ରକ୍ତିମା; ଲୋହିତବର୍ଣ୍ଣ; ନାଲି ରଙ୍ଗ—5. Red colour. ୬। ଆସକ୍ତି; ଅନୁରାଗ; ସ୍ନେହ; ମମତା; ମାୟା—6. Fondness; attachment; affection; passion. ୭। ମନର ଉଦ୍‌ବେଗ—7. Anxiety; solicitude. ୮। କ୍ଳେଶ—8. Suffering; hardship; distress. ୯ । ଲାକ୍ଷା; ଲାଖ—9. Lac; red animal dye. ୧୦ । ମାନସିକ ଭାବ—( ଯଥା—କ୍ଳେଶ, ମନୋଦୁଃଖ, ସ୍ନେହ)—10. Mental affectation. ୧୧ । ଇଚ୍ଛା—11. Desire. ୧୨ । ବିଷୟ ସ୍ପୃହା; ବିଷୟେଚ୍ଛା- 12. Fondness or attachment towards worldly matters. ୧୩ । ରଞ୍ଜକ ଦ୍ରବ୍ୟ; ବସ୍ତ୍ର ଆଦିକୁ ରଙ୍ଗ କରିବା ପଦାର୍ଥ--13. A paint, dye. ୧୪ । (+ଭାବ ଅ) ରଞ୍ଜନ; ରଙ୍ଗାଇବା—14. Painting; colouring, dying. ୧୫ । ଉତ୍ସାହ—15. Energy. ୧୬ । ( ରଞ୍ଜ ଧାତୁ+କର୍ତ୍ତ୍ରି. ଅ ) ଚନ୍ଦ୍ର— 16. The moon. ୧୭ । ସୂର୍ଯ୍ୟ—17. The sun. ୧୮ । ( ପ୍ରଜାଙ୍କୁ ସନ୍ତୁଷ୍ଟ କରିବାରୁ ) ନୃପତି, ରାଜା— 18. King; sovereign. ୧୯ । ଲାଳସା; ଅତ୍ୟାକାଙ୍କ୍ଷା—19. Greediness; cupidity; hankering. ୨୦ । ରଜୋଗୁଣ—20. The quatily of worldly passions. ୨୧ । ତୀବ୍ରତା; ତୀକ୍ଷ୍ଣତା—21. Sharpness; acuteness; keenness. ୨୨ । ପ୍ରେମ; ପ୍ରୀତି—22. Love, ୨୩ । ସନ୍ତୋଷ—23. Satisfaction; contentment. ୨୪ । ସଙ୍ଗୀତର ସ୍ୱରର ବା ଧ୍ୱନିର ପ୍ରକାରଭେଦ ( ଯେଉଁ ସ୍ୱର ବା ଧ୍ୱନି ଶ୍ରୋତାର ଚିତ୍ତକୁ ରଞ୍ଜନ କରେ )— 24. A mode or tune in music. [ ଦ୍ର—ସାଧାରଣତଃ ଏହା ୬ ଗୋଟି, ଯଥା — ଭୈରବ, ମାଳବ, ଶ୍ରୀରାଗ, ହିନ୍ଦୋଳ, ବସନ୍ତ, ଦୀପକ ବା ମେଘ ।

ନାନା ମୁନି ଏହି ୬ଟି ରାଗର ଭିନ୍ନ ଭିନ୍ନ ନାମ ଦେଇଅଛନ୍ତି। ଭିନ୍ନ ଭିନ୍ନ ଋତୁରେ ଓ ଦିବା ରାତ୍ରିର ସମୟରେ ଓ ଉପଲକ୍ଷରେ ଭିନ୍ନ ଭିନ୍ନ ରାଗ ବ୍ୟବହୃତ ହୁଏ ।

ବ୍ରହ୍ମାଙ୍କ ମତରେ ରାଗ ୬ ପ୍ରକାର, ଯଥା—

୧ । ଶ୍ରୀ ( ଶୀତଋତୁରେ ଗେୟ ), ୨ । ବସନ୍ତ (ବସନ୍ତରେ), ୩ । ପଞ୍ଚମ (ଗ୍ରୀଷ୍ମରେ), ୪ । ଭୈରବ (ଶରତ୍‌ରେ), ୫ । ମେଘ (ବର୍ଷାରେ), ୬ । ନାଟନାରାୟଣ (ହେମନ୍ତରେ ।)

ଭରତ ଓ ହନୁମାନଙ୍କ ମତରେ—

୧ । ଭୈରବ, ୨ । ମାଳବକୋଶ, ୩ । ହିନ୍ଦୋଳ, ୪ । ଦୀପକ, ୫ । ଶ୍ରୀ, ୬ । ମେଘ ।

ସୋମେଶ୍ୱରଙ୍କ ମତରେ—

୧ । ଭୈରବ, ୨ । ମାଳବ, ୩ । ଶ୍ରୀ, ୪ । ହିନ୍ଦୋଳ ୫ । ଦୀପକ, ୬ । ମେଘ ।

ମତାନ୍ତରରେ —

୧ । ବସନ୍ତ, ୨ । ବୃହନ୍ନାଟ, ୩ । ମଲ୍ଲାର, ୪ । ମାଳବ, ୫ । ପ୍ରତାପ, ୬ । କୌଶିକ ।

ମତାନ୍ତରରେ—

୧ । ଭୈରବ, ୨ । ମାଳବ, ୩ । ସାରଙ୍ଗ, ୪ । ହିନ୍ଦୋଳ, ୫ । ଦୀପକ, ୬ । ମେଘ ।

ପ୍ରତ୍ୟେକ ରାଗର ୬ଟି ଲେଖାଏଁ ରାଗିଣୀ ବା ପତ୍ନୀ କଳ୍ପିତ ହୋଇଅଛନ୍ତି । ରାଗିଣୀର ସଂଖ୍ୟା ୩୬ ଗୋଟି ।

ପୁରାଣରେ ରାଗର ଉତ୍ପତ୍ତି ସମ୍ବନ୍ଧେ କଥିତ ଅଛି ଯେ—ଏକଦା ବ୍ରହ୍ମା, ବିଷ୍ଣୁ, ମହେଶ୍ୱର କୈଳାସଶିଖରରେ ବସି ସୃଷ୍ଟି ବିଷୟରେ କଳ୍ପନା ଜଳ୍ପନା କରୁଥିବା ଅବସ୍ଥାରେ ସହସା ସେଠାରେ ଆଦ୍ୟାଶକ୍ତି ବା ପରାପ୍ରକୃତି ଆବିର୍ଭୂତା ହେଲେ । ଦେବତାଗଣ ତାଙ୍କ ରୂପଲାବଣ୍ୟରେ ଚକିତ ଓ ମୁଗ୍ଧ ହୋଇ ରହିଲେ । ଦେବଦେବ ମହାଦେବ ତାଙ୍କୁ ପ୍ରସନ୍ନ କରିବାପାଇଁ ସ୍ତବ ଆରମ୍ଭ କଲେ । ଆଦ୍ୟାଶକ୍ତି ମହାଦେବଙ୍କ ଆଗ୍ରହାତିଶଯ୍ୟ ଦେଖି କହିଲେ, ଯେବେ ତୁମ୍ଭେ ମୋତେ ପାଇବାକୁ ଇଚ୍ଛା କର ତେବେ ଏ ଦେବତାମାନଙ୍କ ସମ୍ମୁଖରେ ତାଣ୍ଡବନୃତ୍ୟ ବା ଉଦ୍ଧତଭାବରେ ନୃତ୍ୟ କର । ପରାପ୍ରକୃତିଙ୍କ ମୁଖରୁ ଏହି ଆଦେଶ ଶ୍ରବଣ କରି ମହାଦେବ ଅତି ଉଦ୍ଧତଭାବରେ ତାଣ୍ଡବନୃତ୍ୟ ଆରମ୍ଭ କଲେ ଓ ଗୀତ ଗାଇ ଏବଂ ତାଳେ ତାଳେ ପଦକ୍ଷେପ କରି ଓ ଡମରୁ ବଜାଇ ସ୍ୱର୍ଗ-ମର୍ତ୍ତ୍ୟ-ପାତାଳକୁ କମ୍ପିତ କଲେ । ଏହି ତାଣ୍ଡବ ଅଭିନୟକାଳରେ ମହାଦେବଙ୍କ କଣ୍ଠାଗ୍ରରୁ ସ୍ଖଳିତ ହୋଇ ଓ ଭଗବାନ ବିଷ୍ଣୁ ସେହି ନୃତ୍ୟଦର୍ଶନ ଓ ଗୀତବାଦ୍ୟ ଶୁଣି ଦ୍ରବୀଭୂତ ହେଲେ

ଏବଂ କୈଳାସଶିଖର ସେହି ଜଳରେ ପ୍ଲାବିତ ହେଲା । ଦେବୀଙ୍କ ଇଙ୍ଗିତରେ ବ୍ରହ୍ମା ଆପଣା କମଣ୍ଡଳୁ ମଧ୍ୟରେ ସେହି ନିର୍ମଳ ବାରିକୁ ପୂରାଇଲେ । ମହାଦେବ ନୃତ୍ୟାବସାନରେ ୧୪ ଥର ଡମରୁଧ୍ୱନି କରିଥିଲେ ଓ ଉକ୍ତ ଧ୍ୱନିରୁ 'ଅନୁସ୍ୱାର' ଓ 'ବିସର୍ଗ' ସହିତ ଚତୁର୍ଦ୍ଦଶ 'ସ୍ୱରବର୍ଣ୍ଣ'ର ଉତ୍ପତ୍ତି ହେଲା । ଉକ୍ତ ସ୍ୱରବର୍ଣ୍ଣମାନ ୩୩ଟି 'ବ୍ୟଞ୍ଜନ' ସଙ୍ଗେ ଯୁକ୍ତ ହୋଇ ଭାଷା ସୃଷ୍ଟି କଲା । 'ଅନୁସ୍ୱାର' ଓ 'ବିସର୍ଗ' ସ୍ୱରବର୍ଣ୍ଣ ନ ହେଲେହେଁ ସ୍ୱରବର୍ଣ୍ଣ ମଧ୍ୟରେ ପରିଗଣିତ ହୁଅନ୍ତି । ଏହିପରି ସଙ୍ଗୀତବିଦ୍ୟାର ସୃଷ୍ଟି ହେଲା ଓ ସରସ୍ୱତୀ ଏଥିର ଅଧିଷ୍ଠାତ୍ରୀଦେବୀ ହେଲେ । ପ୍ରଥମେ ସନକାଦି ଋଷିମାନେ ସେହି ସଙ୍ଗୀତବିଦ୍ୟାକୁ ପ୍ରାପ୍ତ ହେଲେ, ପରେ ମୁନିମାନେ ତପୋବଳରେ ଏହା ପ୍ରାପ୍ତ ହୋଇ ଜଗତରେ ପ୍ରକାଶ କଲେ । ପୁରାଣମତରେ ମହାଦେବ ସଙ୍ଗୀତବିଦ୍ୟାର ସ୍ରଷ୍ଟା ଓ ତାଙ୍କଠାରୁ ବ୍ରହ୍ମା ଉପଦେଶ ପାଇ ସଙ୍ଗୀତବିଦ୍ୟାର ଚର୍ଚ୍ଚା କଲେ । ବ୍ରହ୍ମା ପ୍ରଥମରେ ୫ ଜଣ ଶିଷ୍ୟଙ୍କୁ ଏ ବିଦ୍ୟା ଶିଖାଇଲେ । ସେମାନଙ୍କ ନାମ ଯଥା—ଭରତ, ନାରଦ, ରମ୍ଭା, ହୁହୁ ଓ ତୁମ୍ବୁରୁ । ତତ୍ପରେ ଶିଷ୍ୟାନୁଶିଷ୍ୟକ୍ରମେ ସଙ୍ଗୀତବିଦ୍ୟା ପୃଥିବୀରେ ବ୍ୟାପିଥିବା କଥିତ ଅଛି । (ନାରଦପୁରାଣ, ଗନ୍ଧର୍ବରହସ୍ୟ, ସଙ୍ଗୀତରତ୍ନାକର ଆଦି ଗ୍ରନ୍ଥରେ ଏଥିସମ୍ବନ୍ଧେ ଅନ୍ୟାନ୍ୟ ଜ୍ଞାତବ୍ୟ ବିଷୟ ସନ୍ନିବେଶିତ ହୋଇଅଛି ।)

ପୂର୍ବେ ଭାରତବର୍ଷରେ ଶୁଦ୍ଧ ସ୍ୱର ଅବଲମ୍ବନପୂର୍ବକ ସଙ୍ଗୀତ ଗାନ ହେଉଥିଲା । ନବ୍ୟ ଆଚାର୍ଯ୍ୟମାନେ ସଙ୍ଗୀତ ବିଜ୍ଞାନର କୌଣସି ନୂତନ ବୀଜ ସୃଷ୍ଟି କରି ନାହାନ୍ତି । କେବଳ ପୁରାତନ ସଙ୍ଗୀତ ବିଦ୍ୟାକୁ ନାନା ଅଳଙ୍କାରରେ ଭୂଷିତ କରିଅଛନ୍ତି । ବର୍ତ୍ତମାନ ଯେଉଁପରି ତାଳ, ଯମକ, ସ୍ୱରର କମ୍ପନ, ମୂର୍ଚ୍ଛନା (ଏକ ସ୍ୱରରୁ ସ୍ୱରାନ୍ତରକୁ ଗତି), କୋମଳ, ତୀବ୍ର ପ୍ରଭୃତି ନାନା ଅଳଙ୍କାର ବିଭୂଷିତ ହୋଇ ଗୀତ ବୋଲା ଯାଉଅଛି, ପୂର୍ବରେ ଏପରି ନ ଥିଲା । ଶୁଦ୍ଧ ସ୍ୱରକୁ ବିକୃତ କରି ନୂତନ ନୂତନ ଆକାରମାନ କରା ଯାଇଅଛି । ଇଉରୋପୀୟ ସଙ୍ଗୀତ ଓ ବୈଦିକ ସଙ୍ଗୀତ ଶୁଦ୍ଧ ସ୍ୱର ଅବଲମ୍ବନପୂର୍ବକ ଗୀତ ହେଉଥିଲା । ଇଉରୋପୀୟମାନେ ସଙ୍ଗୀତର ଉନ୍ନତିସାଧନ କରିଅଛନ୍ତି; କିନ୍ତୁ ଅସ୍ମ ଦେଶରେ ବୈଦିକ ଗାନର ଅଉ ଉନ୍ନତି ହୋଇ ନାହିଁ । କେବଳ ଲୌକିକ ଗାନ ଉନ୍ନତିଲାଭ କରିଅଛି ।

କେହି କେହି କହନ୍ତି ଯେ ବୈଦିକ ୩ ସ୍ୱରରୁ ଆଧୁନିକ ୭ ସ୍ୱର ବାହାରି ଅଛି । ଉଦାତ୍ତରୁ ନି, ଗ, ଅନୁଦାତ୍ତରୁ ଋ, ଧ; ସ୍ୱରିତରୁ ସା, ମ, ପ ଉତ୍ପନ୍ନ । କେହି କେହି ଏହା ସ୍ୱୀକାର କରନ୍ତି ନାହିଁ ।

ବେଦ ଗାନରେ ୩ଟି ମାତ୍ର ସ୍ୱର ବ୍ୟବହୃତ ହୁଏ । ଯଥା—ଉଦାତ୍ତ (ଉଚ୍ଚସ୍ୱର), ଅନୁଦାତ୍ତ (ନିମ୍ନସ୍ୱର) ଓ ସ୍ୱରିତ (ମଧ୍ୟମ ସ୍ୱର); କିନ୍ତୁ ଲୌକିକ ଗାନରେ ୭ ଗୋଟି ସ୍ୱର ଯଥା—

୧. ସା (ଷଡ୍ଜ, ମୟୂର ସ୍ୱର); ୨. ଋ (ଋଷଭ, ଷଣ୍ଢର ସ୍ୱର); ୩. ଗା (ଗାନ୍ଧାର, ଛେଳିର); ୪. ମା (ମଧ୍ୟମ, କେଞ୍ଚର); ୫. ପା (ପଞ୍ଚମ, ବୀଣାର ଓ କୋକିଳର); ୬ ଧା (ଧୈବତ, ଘୋଡ଼ାର); ୭. ନି (ନିଷାଦ, ହାତୀର) ।

ଏହି ୭ଟି ସ୍ୱରର ଆପେକ୍ଷିକ କମ୍ପନ (Vibration) ଯଥା—

ଉଦାରା 'ସା' କୁ ଯଦି '୧' ଧରାଯାଏ ତେବେ 'ସା' ୨୪ କମ୍ପନ (Vibration) ହେଲା ।

ଋ—$\frac{୯}{୮}$=୨୭; ଗା—$\frac{୫}{୪}$=୩୦,
ମା—$\frac{୪}{୩}$=୩୨, ପା—$\frac{୩}{୨}$=୩୬;
ଧା—$\frac{୫}{୩}$=୪୦; ନି—$\frac{୧୫}{୮}$=୪୫ ।

ମୁଦାରା 'ସା' କୁ ଯଦି ୨ ଧରାଯାଏ ତେବେ 'ସା' ୨ × ୨୪=୪୮ କମ୍ପନ ବା (Vibration) ହେଲା ।

ଋ—$\frac{୯}{୪}$=୫୪; ଗା—$\frac{୫}{୨}$=୬୦,
ମା—$\frac{୮}{୩}$=୬୪; ପା—୩=୭୨,
ଧା—$\frac{୧୦}{୩}$=୮୦, ନି—$\frac{୧୫}{୪}$=୯୦ ।

ତାରା 'ସା' କୁ ଯଦି ୪ ଧରାଯାଏ ତେବେ 'ସା' ୪ × ୨୪=୯୬ କମ୍ପନ (Vibration) ହେଲା ।

ଋ—$\frac{୯}{୨}$=୧୦୮; ଗା—୫=୧୨୦
ମା—$\frac{୧୬}{୩}$=୧୨୮; ପା—୬=୧୪୪
ଧା—$\frac{୨୦}{୩}$=୧୬୦; ନି—$\frac{୧୫}{୨}$=୧୮୦ ।

'ସା' ସ୍ୱରର ଆପେକ୍ଷିକ କମ୍ପନ (Vibration) ପ୍ରତି ସେକେଣ୍ଡରେ ଭିନ୍ନ ଭିନ୍ନ ଦେଶର ପଣ୍ଡିତମାନେ ଭିନ୍ନ ଭିନ୍ନ ସଂଖ୍ୟା କଳ୍ପନା କରିଅଛନ୍ତି; ଯଥା—ଇଂଲଣ୍ଡୀୟ—୨୫୬, ଜର୍ମାନ—୨୬୪ ଓ ଫ୍ରାନ୍ସ—୨୭୦ ।

ବର୍ତ୍ତମାନ ଆମ୍ଭେମାନେ ଯାହାକୁ 'ଉଦାରା'; 'ମୁଦାରା' ଓ 'ତାରା' କହୁଁ ତାହା ବୈଦିକ ଉଦାତ୍ତ, ଅନୁଦାତ୍ତ ଓ ସ୍ୱରିତ ବୋଲି ଅନୁମାନ କରାଯାଏ । ବୈଦିକ ସଙ୍ଗୀତରେ ଯେଉଁପରି ୩ ଗୋଟି ସ୍ୱର ଦେଖାଯାଏ, ଇଉରୋପୀୟ ସଙ୍ଗୀତରେ ସେହିପରି ୩ଟି ସ୍ୱର (Tone) ଦେଖାଯାଏ । ଯଥା—ଉଦାତ୍ତ—Major tone (ଉଦାରା), ଅନୁଦାତ୍ତ—Minor tone (ମୁଦାରା) ସ୍ୱରିତ—Semitone or half tone [ତାରା] ।

ଉକ୍ତ ସପ୍ତସ୍ୱରରୁ କ୍ରମେ ୧୨ ଗୋଟି ବିକୃତସ୍ୱର ସୃଷ୍ଟି ହେଲା ।

ମନୁଷ୍ୟର ସ୍ୱରକୁ Standard [ଆଦର୍ଶ] ('ସା ଯାହା ମୟୂରସ୍ୱର) କରି ଧରିଲେ ଉକ୍ତ ସପ୍ତସ୍ୱରର ଆପେକ୍ଷିକ ଧ୍ୱନି (Comparative modulation) ସ୍ଥିର କରି ଯାଇ ପାରିବ ।

ଯେଉଁପରି ସିତାରରେ ବା ବଂଶୀରେ କରାଘାତ ବା ବାୟୁ ଆଘାତ ଦ୍ୱାରା ଶବ୍ଦ ଉତ୍ପନ୍ନ ହୁଏ ଓ ସିତାରର ପର୍ଦ୍ଦା ଏବଂ

ବଂଶୀର ପାର୍ଶ୍ୱସ୍ଥ ଛିଦ୍ରମାନଙ୍କୁ ଭିନ୍ନ ଭିନ୍ନ ପ୍ରକାରେ ସଂଯତ କରି ଭିନ୍ନ ଭିନ୍ନ ସ୍ୱରମାନ ଶୁଣାଯାଏ, ଭାରତୀୟ ସଙ୍ଗୀତ ବିଜ୍ଞାନରେ ଲେଖାଅଛି ଯେ, ସେହିପରି ଅସ୍ମାର ପ୍ରଯତ୍ନ (ଉଚ୍ଚାରଣେଚ୍ଛା) ଦ୍ୱାରା ଦୈହିକ ଉଷ୍ମତା ବା ତାପ (ତଡ଼ିତ୍) ବେଗ ପ୍ରାପ୍ତ ହୋଇ ସେହି ବେଗର ଉଦର-କନ୍ଦରସ୍ଥ ବାୟୁକୁ ଆଘାତ ବା ପ୍ରେରଣା କରିବା ଦ୍ୱାରା ଉଭୟଙ୍କ ସଂଘର୍ଷରେ ନାଦ ବା ଧ୍ୱନି ଉତ୍ପନ୍ନ ହୁଏ । ସେହି ଧ୍ୱନି ହୃଦୟବାଟେ ଗଳ ଗହ୍ୱରକୁ ଆସି ପୁଷ୍ଟତା ଲାଭ କରେ ଓ ବାଗ୍‌ଯନ୍ତ୍ରମାନଙ୍କ (ଜିହ୍ୱା, ଦନ୍ତ, ତାଳୁ ଇତ୍ୟାଦି) ଦ୍ୱାରା ଭିନ୍ନ ଭିନ୍ନ ପ୍ରକାରରେ ନିୟନ୍ତ୍ରିତ ହୋଇ ସେହି ପୁଷ୍ଟନାଦ ଭିନ୍ନ ଭିନ୍ନ ସ୍ୱର (ସାରିଗାମାପାଧାନି) ରେ ପରିଣତ ହୁଏ । ହୃଦୟ, କଣ୍ଠ ଓ ମୂର୍ଦ୍ଧା ଏହି ତିନି ସ୍ଥାନରୁ ଉତ୍ପନ୍ନ ତ୍ରିବିଧ କ୍ରମୋଚ୍ଚ ସ୍ୱରର ନାମ ମନ୍ଦ୍ର=(ଉଦାରା), ମଧ୍ୟ=(ମୁଦାରା) ଓ ତାର=(ତାରା) । ମଧ୍ୟର ପରିମାଣ ବା ଓଜନ ମନ୍ଦ୍ରର ୨ ଗୁଣ ଓ ମନ୍ଦ୍ର ଅପେକ୍ଷା ତାରର ପରିମାଣ ବା ଓଜନ ୩ ଗୁଣ ଅଟେ ।

୭ଟି ଶୁଦ୍ଧ ସ୍ୱରକୁ ବିକୃତକରି ଆଉ ୧୨ଟି ବିକୃତ ସ୍ୱର, ଏପରି ମୋଟରେ ୧୯ଟି ସ୍ୱରର ସୃଷ୍ଟି ହୋଇଅଛି । ଏହି 'ସ୍ୱର'ମାନଙ୍କୁ ଛନ୍ଦଃ ଓ ଅଳଙ୍କାରାଦିଦ୍ୱାରା ଭୂଷିତ କରି ଗୋଟିଏ ଗୋଟିଏ ଆକୃତି ଦାନ କଲେ ସେହି ସେହି ପ୍ରକାରମାନ 'ରାଗ' ହୁଏ । ଏହି ରାଗମାନ କର୍ଣ୍ଣରେ ପ୍ରବେଶ କଲେ ମନ ମୋହିତ ହୋଇ ଅନୁରାଗ ଜନ୍ମେ, ତେଣୁ ଏମାନଙ୍କର ନାମ 'ରାଗ' ହୋଇଅଛି ।

ଏହି ସ୍ୱରମାନଙ୍କ ମଧ୍ୟରେ ପୁଣି ୪ଟି ପ୍ରକାର ବା ବିଭାଗ ଅଛି । ଯଥା—୧. ବାଦୀ (ଗୀତ ବୋଲିବା ସମୟରେ ଯେଉଁ ସ୍ୱରର ପ୍ରାଚୁର୍ଯ୍ୟ ହେତୁକ ରାଗର ବୋଧକ ହୁଏ), ୨. ସଂବାଦୀ (ପଞ୍ଚମ ସ୍ୱରର ସମଶ୍ରୁତି), ୩. ବିବାଦୀ (ଗାନ୍ଧାର ଓ ନିଷାଦର, ଋଷଭ ଓ ଧୈବତର କମ) ଓ ୪. ଅନୁବାଦୀ (ଋଷଭ, ଧୈବତ ଓ ଗାନ୍ଧାରର କମ) । ପ୍ରଥମୋକ୍ତ ୩ସ୍ୱରର ଲକ୍ଷଣକୁ ସ୍ପର୍ଶ ନ କଲେ ୪ର୍ଥ ଅନୁବାଦୀ ସ୍ୱର ହୁଏ । ମୂର୍ଚ୍ଛନାଦିର ଆଶ୍ରୟଭୂତ ସ୍ୱରସମୂହର ସୁବ୍ୟବସ୍ଥାର ନାମ 'ଗ୍ରାମ' । କ୍ରମାନ୍ୱୟ ଆରୋହଣ ଅବରୋହଣ କ୍ରିୟା ସମ୍ବନ୍ଧେ ସ୍ୱର ସମୂହର ନାମ ମୂର୍ଚ୍ଛନା । ସ୍ୱର, ବର୍ଣ୍ଣ ଓ ମୂର୍ଚ୍ଛନାଦି ଭୂଷିତ କରି ଯେଉଁ ଧ୍ୱନି ବିଶେଷ ଉଚ୍ଚାରିତ ହୁଏ ସେହି ବିଶେଷ ବିଶେଷ ଧ୍ୱନିର ନାମ ରାଗ ।

ରାଗମାନ ୩ଶ୍ରେଣୀରେ ବିଭକ୍ତ । ଯଥା—ଓଡ଼ବ (୫ ସ୍ୱରର ରାଗ), ଷାଡ଼ବ (୬ ସ୍ୱର ବିଶିଷ୍ଟ) ଓ ସମ୍ପୂର୍ଣ୍ଣ (୭ସ୍ୱର ବିଶିଷ୍ଟ) । ସୁତରାଂ ୫ ସ୍ୱରରୁ କମ୍‌ରେ 'ରାଗ' ହୁଏ ନାହିଁ । ( ଲେଖକ – ଶ୍ରୀ ମନୋମୋହନ ଘୋଷ )

ହିନ୍ଦୁଶାସ୍ତ୍ରକାରମାନେ 'ରାଗ'କୁ ପୁରୁଷଜାତୀୟ ବୋଲି କଳ୍ପନା କରି ପ୍ରତ୍ୟେକ ରାଗର ଅନୁଗତା ଓ କୋମଳତା-ବିଶିଷ୍ଟା ୬ଟି ଲେଖାଏଁ ଭାର୍ଯ୍ୟା ବା ରାଗିଣୀ କଳ୍ପନା କରିଅଛନ୍ତି । ରାଗ ୬ ଗୋଟି ଓ ରାଗିଣୀ ୩୬ ଗୋଟି । ଯଥା—

ବ୍ରହ୍ମାଙ୍କ ମତରେ—

୧ । ଶ୍ରୀରାଗର ଭାର୍ଯ୍ୟା—ମାଳଶ୍ରୀ, ତ୍ରିବେଣୀ ବା ତ୍ରିବଣୀ, ଗୌରୀ, କେଦାରୀ, ମଧୁମାଧବୀ ଓ ପାହାଡ଼ିକା (ମତାନ୍ତରରେ—ଗାନ୍ଧାରୀ, ଶୁଭଗା, ଗୌରୀ, କୌମାରୀ, ବେଲୋୟାରୀ, ବୈରାଗୀ)

୨ । ବସନ୍ତ ରାଗର ଭାର୍ଯ୍ୟା—ଦେଶୀ, ଦେବଗିରୀ, ବରାଟୀ, ତୋଡ଼ିକା, ଲଳିତା, ହିନ୍ଦୋଳୀ, (ମତାନ୍ତରରେ—ତୁଡ଼ୀ, ପଞ୍ଚମୀ, ଲଳିତା, ପଟମଞ୍ଜରୀ, ଗୁର୍ଜରୀ, ବିଭାଷା ।)

୩ । ଭୈରବର ଭାର୍ଯ୍ୟା—ଭୈରବୀ, ଗୁର୍ଜରୀ, ରାମକିରୀ, ଗୁଣକିରୀ, ବାଙ୍ଗାଳୀ, ସୈନ୍ଧବୀ, (ସମ୍ଭବତଃ ମାଳବ ଓ ଭୈରବ ଏକ) (ମତାନ୍ତରରେ—ଧାନସୀ, ମାଳସୀ, ରାମକିରୀ, ସିନ୍ଧୁଡ଼ା, ଆଶାବରୀ, ଭୈରବୀ)

ପଞ୍ଚମ ରାଗର ସ୍ତ୍ରୀ—ବିଭାଷୀ, ଭୂପାଳୀ, କର୍ଣ୍ଣାଟୀ, ବଡ଼, ହଂସିକା, ଭାଲଷୀ ବା ମାଲଷୀ, ପଟମଞ୍ଜରୀ (ସମ୍ଭବତଃ କର୍ଣ୍ଣାଟ ଓ ପଞ୍ଚମ ଏକ) (ମତାନ୍ତରରେ ଭୂପାଳୀ, ରାମକେଲୀ, ଗଡ଼ା, କାମୋଦୀ, ନାଟିକା, କଲ୍ୟାଣୀ)

ମେଘର ରାଗିଣୀ—ମଲ୍ଲାରୀ, ସୌରଟୀ, ସାବେରୀ, କୌଶିକୀ, ଗାନ୍ଧାରୀ, ହରଶୃଙ୍ଗାରୀ ।

୬ । ନଟନାରାୟଣର ରାଗିଣୀ—କାମୋଦୀ, କଲ୍ୟାଣୀ, ଆଭୀରୀ, ନାଟିକା, ସାରଙ୍ଗୀ, ନଟ୍ଟହମ୍ବିରା ।

ମତାନ୍ତରରେ ୬ଟି ରାଗର ନାମ ଭିନ୍ନଭିନ୍ନ ଓ ୩୬ରାଗିଣୀର ନାମ ମଧ୍ୟ ଭିନ୍ନ ଭିନ୍ନ ଥିବାର ଦେଖାଯାଏ । କିନ୍ତୁ ସମସ୍ତେ ଶ୍ରୀରାଗକୁ ପ୍ରଥମରାଗ ଆଖ୍ୟା ଦେଇଅଛନ୍ତି । ରାଗମାନେ ଯେଉଁପରି ଋତୁ ବିଶେଷରେ ଗେୟ, ରାଗିଣୀମାନେ ମଧ୍ୟ ଦିବସ ଓ ରାତ୍ରିର ଭିନ୍ନ ଭିନ୍ନ ସମୟରେ ଶୃଙ୍ଗାରାଦି ଭିନ୍ନ ରସ ସମ୍ପର୍କରେ ଗେୟ ।

ଉଲ୍ଲିଖିତ ୬ରାଗ ଓ ୩୬ ରାଗିଣୀ ଛଡ଼ା ଆଉ ଯେଉଁ ରାଗ ରାଗିଣୀମାନ ବ୍ୟବହୃତ ହୁଅନ୍ତି ସେମାନେ ଏମାନଙ୍କର ପୁତ୍ର (ଉପରାଗ) ଓ ପୁତ୍ରବଧୂ (ଉପରାଗିଣୀ) ରୂପରେ କଳ୍ପିତ । ମୁସଲମାନ ବାଦସାହାମାନଙ୍କ ଦରବାରରେ ହିନ୍ଦୁ ସଙ୍ଗୀତ ଅନୁଶୀଳନ ହୋଇଥିବାରୁ ଆହୁରି କେତେଗୁଡ଼ିଏ ରାଗରାଗିଣୀର ସୃଷ୍ଟି ହୋଇଅଛି । ଦେଶର ନାମ ଅନୁସାରେ ମଧ୍ୟ ରାଗ ରାଗିଣୀର ସୃଷ୍ଟି ହୋଇଅଛି । ଯଥା—ବଙ୍ଗାଲୀ, ଗାନ୍ଧାରୀ, ଗୁର୍ଜରୀ, ସୈନ୍ଧବୀ, ଔଡ଼ୀ, କଳଙ୍ଗୀ, କାବେରୀ, ମାଳବ, ଗୌଡ଼ୀ, କାମୋଦୀ ଇତ୍ୟାଦି ।

ସୁରଙ୍ଗୀର ରାଜା ସ୍ୱର୍ଗୀୟ ଶ୍ରୀଚନ୍ଦ୍ରଚୂଡ଼ାମଣି ହରିଚନ୍ଦନଙ୍କ ରଚିତ ସଙ୍ଗୀତ ସର୍ବସ୍ୱରେ ରାଗ ସମ୍ବନ୍ଧେ ଗୁଡ଼ିଏ ଆଲୋଚନା ଅଛି ।

ରାଗ ଓ ରାଗିଣୀମାନଙ୍କୁ ଭାଷାରେ ସାଧାରଣତଃ ରାଗ ବୋଲାଯାଏ । ଦେଶଭେଦରେ ସଙ୍ଗୀତର ରାଗାଦିର ସଂଖ୍ୟା ଏତେ ବଢ଼ି ଅଛି ଯେ, ତାହାର ସଂଖ୍ୟା ଓ ନାମୋଲ୍ଲେଖ ସହଜ ନୁହେଁ । ଉଦାହରଣସ୍ୱରୂପ ସ୍ୱର୍ଗୀୟ ଦାମୋଦର ପଟ୍ଟନାୟକଙ୍କ

ସଂଗୃହୀତ ସଙ୍ଗୀତ ସାଗର ଓ ସଙ୍ଗୀତ ସଂସାର ଆଦି ଗ୍ରନ୍ଥମାନଙ୍କରେ ଥିବା ସଙ୍ଗୀତମାନଙ୍କ ଆଦ୍ୟରେ ଦିଆ ଯାଇଥିବା ରାଗ ରାଗିଣୀମାନଙ୍କ ନାମରୁ ଏହା ଉପଲବ୍ଧ ହେବ ।—

ଅଠଣା, ଆନନ୍ଦ ଭୈରବୀ, ଆରବୀ, ଆଶାବରୀ, ଇମନ କଲ୍ୟାଣ, ଏରକାଲ କାମୋଦୀ, କାନଡ଼ା, କରୁଣାଶ୍ରୀ, କଳଶା (ବାଣୀ), କଳହଂସ କେଦାର, କଲିଙ୍ଗଡ଼ା, କଲ୍ୟାଣୀ, କାଫି, କାମୋଦୀ, କାମ୍ବୋଜୀ, କୀର (ବାଣୀ), କୁମ୍ଭକାମୋଦୀ, କେଦାର, କୌଶିକ, ଖମାଚ, ଖମାର, ଖମ୍ବାଜ, ଖରହର ପ୍ରିୟା, ଗୌରୀ ମନୋହାରୀ, ଘଣ୍ଟାରବ, ଚକ୍ରବାକ, ଚୋଖୀ, ଜଉନପୁର ତୋଡ଼ି, ଜଙ୍ଗଲା, ଜୟନ୍ତ, ଝିଂଝୋଟି, ଝିଞ୍ଜୋଟି ବା ଝିଂଝୋଟି ଖମ୍ବାଜ, ଝିଂଝୋଟି, ତୋଡ଼ି, ତୋଡ଼ି ପରଜ, ଦେଶାକ୍ଷ, ଧନାଶ୍ରୀ, ନବରୋଜ, ନାଟକୁରଙ୍ଗୀ, ପରଜ, ପାହାଡ଼ିଆ କେଦାର, ପୀଲୁ, ପୁରବୀ, ପୂର୍ଣ୍ଣିକାମୋଦୀ, ପ୍ରାନ୍ତ, ବରାଡ଼ି, ବସନ୍ତ, ବସନ୍ତ ବରାଡ଼ି, ବାରୁଆଁ, ବାହାର, ବିଲହରୀ, ବିହାଗ ବେଗଡ଼ା, ବେଲାଓର, ବେଲାବଳ, ବେହଗଡ଼ା, ବେହାଗ, ଭୈରବୀ, ଭୈରବୀ ଖମ୍ବାଜ, ମନମୋହନା, ମରୁଆ, ମଳୟ ମାରୁତ, ମାରୁଆ, ମାଳବୀ, ମାଲଶ୍ରୀ, ମୁଖାବରୀ, ମୁଖାରୀ (ବାଣୀ), ମୋହନା, ରସକୁଲ୍ୟା, ରସକୁଲ୍ୟା (ବାଣୀ), ରାଜବିଜେ, ରାମକେରୀ, ରେଗୁପ୍ତ, ଲଳିତ, ଲଳିତକାମୋଦୀ, ଶଙ୍କରାଭରଣ, ଶୋକ କାମୋଦୀ, ଶୋକ କାମ୍ବୋଜୀ, ଶୋକ ବରାଡ଼ୀ, ଶ୍ରୀ, ସରସ୍ୱତୀ ମନୋହାରୀ, ସାବେରୀ, ସିନ୍ଧୁଭୈରବୀ, ସୁରଟ, ସୁରଟମହ୍ଲାର, ସୁରାଟ, ସେହେନା, ସୌରାଷ୍ଟ୍ର, ହଂସଧ୍ୱନି, ହରିକାମୋଦୀ, ହୁସେନ ।

ପଣ୍ଡିତ ଭୁଲମଣି ଦାଶଙ୍କ ଅଳଙ୍କାର ତରଙ୍ଗିଣୀରେ ପ୍ରଦତ୍ତ କେତେକ ରାଗର ଯତିପାତ ଓ ଉଦାହରଣଃ—

୧ । ଭୃଙ୍ଗଆରୀ—ଏହାର ପ୍ରତ୍ୟେକ ପାଦ ଅଠ ଅକ୍ଷରବିଶିଷ୍ଟ ଓ ଦୁଇ ପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦର ଚତୁର୍ଥ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ଯଥା—ତ୍ରିଲୋଚନ' ପୁରହର' । ଶୂଳହସ୍ତ' ନାଗହାର' ॥ —ଚନ୍ଦ୍ରକାବ୍ୟ ।

୨ । ଷଡ଼ଶ୍ରୀ—ଏହାର ପ୍ରତ୍ୟେକ ପାଦ ନଅ ଅକ୍ଷରବିଶିଷ୍ଟ ଓ ଦୁଇପାଦରେ ଏକପଦ ହୁଏ । ବୋଲିବା ଭଙ୍ଗୀରେ କେତେବେଳେ ତୃତୀୟ ଓ ଶେଷ ଅକ୍ଷର ଉପରେ, କେତେବେଳେ ବା ପଞ୍ଚମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ଯଥା—କାଳଚକ୍ରର ଆବର୍ତ୍ତନେ, ଭୁଞ୍ଜନ୍ତି ସୁଖ ଦୁଃଖ ଜନେ ।—ସାହିତ୍ୟ ପ୍ରସଙ୍ଗ ।

୩ । ଚକ୍ରକେଳି—ଏହାର ପ୍ରତ୍ୟେକ ପାଦ ଏକାଦଶ ଅକ୍ଷରବିଶିଷ୍ଟ ଓ ଦୁଇପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦର ଷଷ୍ଠ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ଯଥା— ଆସଇ ବସନ୍ତ ଶିଶିର ଅନ୍ତେ, ହସଇ ଧରଣୀ ଋତୁ କେମନ୍ତେ ।—ମଧୁସୂଦନ. ବସନ୍ତ ।

୪ । କେଦାର ଚକ୍ରକେଳି—ଏହା ମଧ୍ୟ ଚକ୍ରକେଳି ପରି ଏକାଦଶ ଅକ୍ଷରବିଶିଷ୍ଟ । ଯେତେବେଳେ ପଞ୍ଚମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ, ସେତେବେଳେ ଏହା କେଦାରଚକ୍ରକେଳି ନାମରେ ଅଭିହିତ ହୁଏ । ଯଥା—ନବବିଧାତା' ମଦନ ହୋଇଲ', ନବଯୌବନ' ସୃଷ୍ଟି ଘଟାଇଲ' ॥—ଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।

୫ । ମାଳବ—ଚକ୍ରକେଳି ଓ କେଦାର ଚକ୍ରକେଳିକୁ ବେଳେବେଳେ ମାଳବ ନାମରେ ଅଭିହିତ କରାଯାଏ ।

୬ । ଭୂପାଳ—ଏହାର ପ୍ରତ୍ୟେକ ପାଦ ଦ୍ୱାଦଶ ଅକ୍ଷରବିଶିଷ୍ଟ ଓ ଦୁଇପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦର ଅଷ୍ଟମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ଯଥା—ଶ୍ରୀରାମ ମଧୁର ମୂର୍ତ୍ତି' ଦେଖି ରାମା', ପଚାରନ୍ତି ସଖୀଙ୍କି ଜନକ କ୍ଷେମା' । କେବଣ ଦେଶ ନୃପତି' କାହା ସୁତ', ଦେଖିଲାବେଳୁଁ କାତର' ହୁଏ ଚିତ୍ତ' ।—ବିଚିତ୍ର. ରାମାୟଣ ।

୭ । ଲଳିତ କେଦାର—ଏହା ମଧ୍ୟ ଦ୍ୱାଦଶ ଅକ୍ଷରବିଶିଷ୍ଟ ଓ ଏହାର ଦୁଇପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦର ଷଷ୍ଠ ଓ ଦ୍ୱାଦଶ ଅକ୍ଷର ଉପରେ ଯତିପାତ ହୁଏ । ଯଥା—ଭ୍ରୂଭଙ୍ଗରେ ଯାଙ୍କ' କମ୍ପିଲା ଭୁବନ', ମଣି ତାହାଙ୍କୁ' ଏବେ ନାହିଁ ବଳ' । ଦ୍ୱିସପ୍ତ ଭୁବନ' ମଣିଲେ ଯେ ଅଳ୍ପ', ଆଶ୍ରିଲେ ସେ' ସପ୍ତଗୃହଖଣ୍ଡର ତଳ' ।—ରାଧାନାଥ. ନନ୍ଦକେଶରୀ ।

୮ । କଳହଂସକେଦାର—ଏହାର ଚାରିପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦ ଦ୍ୱାଦଶ ଅକ୍ଷରବିଶିଷ୍ଟ । ଦ୍ୱିତୀୟ ଓ ଚତୁର୍ଥ ପାଦ ଶେଷରେ 'ଯେ' ବା 'ସେ' ଗୋଟିଏ ଅକ୍ଷର ଅଧିକା ଥାଏ । ପ୍ରତ୍ୟେକ ପାଦର ସପ୍ତମ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ଯଥା—ମାଳବେ ହିମକରୁ' ଲୋକନ କର', ଏକାଳେ ବିଦେଶୀତ' ଲୋକ ନ କର' ଯେ । କରିବ ନାହିଁ କୁନ୍ଦେ' ରସିକ ବର', କାନ୍ତା ମୋ ଏହା ଭାବେ' ରସିକ ବର' ଯେ ।—ଭଞ୍ଜ. ପ୍ରେମସୁଧାନିଧି ।

୯ । ଚନ୍ଦ୍ରଦେଶାକ୍ଷ—ଏହାର ଦୁଇ ପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦ ତ୍ରୟୋଦଶ ଅକ୍ଷରବିଶିଷ୍ଟ ଏବଂ ପ୍ରତିପାଦର ଅଷ୍ଟମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ଯଥା—ବିଭାକର ବଂଶୀଶୁଣି', ପୁଲକ ବନ୍ଧ', ବିଭାକର ଲଗ୍ନ ବୁଝି' ବଶିଷ୍ଠେ କହି' । ବିନ୍ୟାସ କଲେ ସେ ବାଣୀ' ସନ୍ଧ୍ୟାବସାନେ', ବସାଇବା ମଣ୍ଡପରେ' କନ୍ୟା ସୁମନେ' ।—ଭଞ୍ଜ. ବୈଦେହୀଶବିଳାସ ।

୧୦ । ଆଶାବରୀ—ପ୍ରତ୍ୟେକ ପାଦ ଚତୁର୍ଦ୍ଦଶ ଅକ୍ଷର ବିଶିଷ୍ଟ ଓ ଦୁଇପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦର ଅଷ୍ଟମ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । କେହି କେହି କହନ୍ତି ଏହାର ପ୍ରତ୍ୟେକ ପାଦର ତୃତୀୟ, ଷଷ୍ଠ, ଅଷ୍ଟମ ଓ ଶେଷାକ୍ଷର ଉପରେ, ଅଥବା ଦ୍ୱିତୀୟ, ଚତୁର୍ଥ, ଅଷ୍ଟମ ଓ ଶେଷାକ୍ଷର ଉପରେ ଯତି ପଡ଼େ । ଯଥା – (କ) କେତେ' କଥା' ସ୍ନେହମୟୀ' ଜନନୀ ତୁମର', ବାଲ୍ୟେ' ଶିଖାଇଲେ ପାଶ୍ୱେ' ତୁମର ମଙ୍ଗଳ' ।—ସାହିତ୍ୟପାଠ ।

( ଖ ) ଛନ୍ଦକ' ନିସ୍ତବ୍ଧ' ଗୃହିଁ' ଅଛୁ ଏକ ଧ୍ୟାନେ', ଦୁର୍ବଳ' ଶରୀର' କଥା' ଶୁଭୁ ନାହିଁ କାନେ' ।—ସାହିତ୍ୟ. ପାଠ ।

୧୧ । ରାମକେଶୀ—ପ୍ରତ୍ୟେକ ପାଦ ଷୋଡ଼ଶ ଅକ୍ଷର-ବିଶିଷ୍ଟ, ଦୁଇ ପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦର ନବମ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ଯଥା—କଳାକଳେବର କହ୍ନାଇ' ସଙ୍ଗେ ରୋହିଣୀ ସୁତ', କରନ୍ତି ମଥୁରା ବିଜୟେ' ଦାଣ୍ଡେ ଦେଖ ସଙ୍ଗାତ' । କଳାକଳେବର ଚଉତିଶା ।

୧୨ । ଖଣ୍ଡକାମୋଦୀ—ଏହାର ପ୍ରତ୍ୟେକ ପାଦ ସପ୍ତଦଶ ଅକ୍ଷରବିଶିଷ୍ଟ ଏବଂ ଦୁଇ ପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦର ଷଷ୍ଠ, ଦ୍ୱାଦଶ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ଯଥା—ଭେଡ଼ା ଅଶ୍ୱାଧାର୍ଯ୍ୟ' ବୃକ୍ଷହୀନ ଭୂମି' ସମୁଦ୍ର ଦାଟେ', ଦ୍ୱୀପ ପ୍ରାୟେ ଯହିଁ' କ୍ଷୁଦ୍ର ଜନପଦ' ଭାସେ ଅସାରେ' । ରାଧାନାଥ. ଉଷା ।

୧୩ । କାଳୀ—ଏହାର ପ୍ରତ୍ୟେକ ପାଦ ସପ୍ତଦଶ ଅକ୍ଷର-ବିଶିଷ୍ଟ । ଦୁଇ ପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦର ପଞ୍ଚମ, ଦଶମ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ଯଥା—ମିତ ଅନ୍ତରେ' କୃଷ୍ଣ କାତରେ' କୁଞ୍ଜ ଉତରେ ବସି', ମନୋଦୁଃଖରେ' ବୋଲନ୍ତି ଖରେ' ଉଦୟ ଖରେ ଶଶୀ' । ସାମନ୍ତ ସିଂହାର. ବିଦଗ୍ଧଚିନ୍ତାମଣି ।

୧୪ । କୁମ୍ଭକାମୋଦୀ—ଏହାର ପ୍ରତ୍ୟେକ ପାଦ ଅଷ୍ଟାଦଶ ଅକ୍ଷରବିଶିଷ୍ଟ । ଦୁଇପାଦରେ ଏକ ପଦ ହୁଏ ଓ ପ୍ରତ୍ୟେକ ପାଦର ଷଷ୍ଠ, ଦ୍ୱାଦଶ, ପଞ୍ଚଦଶ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ଯଥା—ବୋଲନ୍ତି ନନ୍ଦନେ' ଶୁଣଗୋ ଜନନୀ' ଅପୂର୍ବ' ଚରିତ', ରାମକୃଷ୍ଣ ବେନି' ଦୂତ ପେଷିଛନ୍ତି' କହିବେ' ହୃଦନ୍ତ' । ଭକ୍ତଚରଣ, ମଥୁରାମଙ୍ଗଳ ।

କେହି କେହି କହନ୍ତି ଏହି ବୃତ୍ତର ପ୍ରତ୍ୟେକ ପଦ ଚତୁର୍ପାଦବିଶିଷ୍ଟ ।

୧୫ । ସାର୍ଦ୍ଧକାମୋଦୀ—ଏହାର ପ୍ରତ୍ୟେକ ପାଦ ଅଷ୍ଟାଦଶ ଅକ୍ଷରବିଶିଷ୍ଟ । ଦୁଇ ପାଦରେ ଏକ ପଦ ହୁଏ, ପ୍ରତ୍ୟେକ ପାଦର ଅଷ୍ଟମ, ଦ୍ୱାଦଶ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ଯଥା—ପ୍ରତ୍ୟକ୍ଷ ଦେବତା ବୋଲି' ମଣିବ ହେ' ଜନନୀ ଜନକେ', କରିବ ତାହାଙ୍କ ସେବା' ପ୍ରାଣପଣେ' ବାଳକା ବାଳକେ' । ମଧୁସୂଦନ ସାହିତ୍ୟପ୍ରସଙ୍ଗ ।

୧୬ । ବଙ୍ଗାଳାଶ୍ରୀ—ଏହାର ପ୍ରତ୍ୟେକ ପାଦ ବିଂଶ ଅକ୍ଷରବିଶିଷ୍ଟ ଓ ଦୁଇ ପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦର ଷଷ୍ଠ, ଦ୍ୱାଦଶ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ଯଥା—ବନ୍ଧୁ ଗୁଣାକର' ଉତ୍କଳ ଭାସ୍କର' ପ୍ରତାପୀ ନୃପପୁଙ୍ଗବ' ଦେବ ପ୍ରତାପରୁଦ୍ର' ବଢ଼ାଇଛ ରୁଦ୍ର"-ଜାତିର ଗୁଣଗୌରବ"-ସାହିତ୍ୟପାଠ ।

୧୭ । ମଙ୍ଗଳଅଶ୍ୱୀ—ଏହାର ପ୍ରତ୍ୟେକ ପାଦ ଏକବିଂଶ ଅକ୍ଷରବିଶିଷ୍ଟ ଓ ଦୁଇ ପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦର ଷଷ୍ଠ, ଦ୍ୱାଦଶ, ଅଷ୍ଟାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ଯଥା—କେ ବୁଦ୍ଧ ଗଉଡ଼' ଗୋପମହାକୁଡ଼' ଛକ କୁଡ଼ ଛାଇ' ପିଠି ହେ', ପିନ୍ଧ କଳାକନ୍ଧେ' ଦୋସଡ଼ା ଦୋରଙ୍ଗୀ' ଦୂରୁ ଶୁହେଁ ମିଚ୍ଛି' ମିଚ୍ଛି ହେ' । ଶୁଣିଲେ ନଈଁ ନଈଁ ଖଣ୍ଡେଦୂର ଯାଇ' ଉତ୍ତାଣ ପାଳୁଅ' ପାଞ୍ଚି ହେ', କଉତୁକେ ବୋଲେ' ମୋ ସଙ୍ଗେ ଯୁଝିଲେ' ଭାଙ୍ଗିପକାଇବି' ପିଠି ହେ'—କୃଷ୍ଣଲୀଳା ।

୧୮ । ଘୋର—ଏହାର ପ୍ରତ୍ୟେକ ପାଦ ଦ୍ୱାବିଂଶ ଅକ୍ଷର-ବିଶିଷ୍ଟ ଓ ଦୁଇ ପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦର ଷଷ୍ଠ, ଦ୍ୱାଦଶ, ଅଷ୍ଟାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ଯଥା—ଶ୍ରୀକୃଷ୍ଣ ଚରିତ' ଶୁଣି ପରୀକ୍ଷିତ' ଆନନ୍ଦେ ନୟନୁ' ବହେ ଜଳ', ପୁଲକ ଶରୀର' ଯୋଡ଼ି ବେନି କର' ପଡ଼ିଲା ମୁନିଙ୍କ' ପାଦତଳ' । କୃଷ୍ଣଲୀଳା ।

୧୯ । କାମୋଦୀ—ଏହାର ପ୍ରତ୍ୟେକ ପଦରେ ଛଅଗୋଟି ପାଦ ଥାଏ । ପ୍ରଥମ ପାଦରେ ୨୩, ଦ୍ୱିତୀୟ ପାଦରେ ୨୪, ତୃତୀୟ ପାଦରେ ୪, ଚତୁର୍ଥ ଓ ପଞ୍ଚମ ପାଦରେ ୯ ଲେଖାଏଁ ଓ ଷଷ୍ଠ ପାଦରେ ୨୪ଟି ଅକ୍ଷର ଥାଏ । ଯତିପାତର କ୍ରମ ନିମ୍ନରେ ଦିଆଗଲା ।

ପ୍ରଥମ ୬+୬+୩+୭, ଦ୍ୱିତୀୟ ୬+୬+୩+୬+୧, ତୃତୀୟ ୪, ଚତୁର୍ଥ ଓ ପଞ୍ଚମ ୭+୨, ଷଷ୍ଠ ଦ୍ୱିତୀୟ ପଦର ଅନୁରୂପ । ଷଷ୍ଠ ପାଦ ଉତ୍ତାରୁ ପୁନରପି ତୃତୀୟ ପାଦର ଆବୃତ୍ତି ହୁଏ ।

ଯଥା—୧ । ସୁଧୀରେ ଧେନ ଧୀରେ' ଶ୍ରବନ କଳା ନିଧିରେ' ତୁଳସୁ' ସ୍ୱାଦୁ ସୁଧାଦାୟୀ', ୨। ସ୍ପର୍ଶେ ଅହ୍ଲାଦକର' ଜୀବ ତାପ ନାଶକର' ଆନନ୍ଦାମ୍ବୁଧି ବର୍ଦ୍ଧନ ହୋଇ'ଥି' । ୩। ଧୀରଜନେ' ୪ । ହୃଦକୁମୁଦ ମୁଦ'ହେବ', ୫ । ତମସକୁଳ କ୍ଷୟ'ଯିବ', ୬ । ରାଧାକୃଷ୍ଣ ନୂତନ' ମିଳନ ସୂଚନ', ଶ୍ରବଣେ' ସୁଗତି ଲଭିବ' ହେ' ଧୀରଜନେ । ସାମନ୍ତସିଂହାର ବିଦଗ୍ଧ-ଚିନ୍ତାମଣି ।

୨୦ । ଖଣ୍ଡକାମୋଦୀ—ଏହା ଠିକ୍ କାମୋଦୀ ବୃତ୍ତର ଅନୁରୂପ । କାମୋଦୀ ରାଗର ଦ୍ୱିତୀୟ ପାଦର ଓ ଷଷ୍ଠ ପାଦର ଶେଷ ଅକ୍ଷରଦ୍ୱୟ ଏବଂ ତୃତୀୟ ପାଦଟି ଏଥିରେ ନ ଥାଏ ଶେଷ ପାଦରେ 'ହେ' ନ ଥାଏ । ତେଣୁ ଏହା ପଞ୍ଚପାଦ ବିଶିଷ୍ଟ । ଯଥା—୧ । ଗୃହିଁ ଗୃହିଁ ସୁନୀଳ' ସମୁଦ୍ର ତୋ ସଲିଳ' ଛାଇ' ଭୁ ଦେଲୁ ମହାପୁରେ', ୨। ଅନନ୍ତ ସିନ୍ଧୁ ସଙ୍ଗେ' ମିଶି ଗଲୁକ ରଙ୍ଗେ', ସକଳ' ଭେଦ ଫିଙ୍ଗି ଦୂରେ', ୩। ଲହରୀ ଛାରକର' ହାରି' ୪। ତୋ କଷ୍ଟେ ତନ୍ତୁ ପାରି'ବାରେ', ୫ । ଲମ୍ବାଇ ମହାନନ୍ଦେ' ଗାଏ ଗାୟତ୍ରୀ

ଛନ୍ଦେ, ତୋ ସଙ୍ଗେ ସଙ୍ଗୀତ ଉଦାର । ମଧୁସୂଦନ ନଗପ୍ରନ୍ତ ।

୨୧ । ମାଳମା—ପ୍ରାଚୀନ ଓଡ଼ିଆ ଛନ୍ଦ ସୁସ୍ତକମାନଙ୍କରେ ଏଭଳି ବୃତ୍ତ ଦେଖାଯାଏ ନାହିଁ, ଏହାର ପ୍ରତ୍ୟେକ ପଦ ଚାରିପାଦବିଶିଷ୍ଟ । ପ୍ରଥମ ପାଦରେ ଦଶଗୋଟି, ଦ୍ୱିତୀୟ ପାଦରେ ଷୋଳଗୋଟି, ତୃତୀୟ ଓ ଚତୁର୍ଥ ପାଦରେ ଚଉଦ ଗୋଟି ଲେଖାଏଁ ଅକ୍ଷର ଥାଏ । ଯତିପାତର ନିୟମ ଯଥା—ପ୍ରଥମ ପାଦ—୪+୬, ଦ୍ୱିତୀୟ ପାଦ—୮+୮, ତୃତୀୟ ଓ ଚତୁର୍ଥ ପାଦ ୮+୬ ।—ଯଥା, ୧। ଅସ ନାଥ ଅଗତିର ଗତି, ୨। ତୁମ୍ଭ ବିନା ଏ ସଂସାରେ ମରଇଁ ମୁଁ ହାହାକାରେ, ୩। ତାର ମୋତେ ମହାପ୍ରଭୁ ଦେଇଣ ସୁମତି, ୪। ଅନନ୍ତ ଦୟା ତୁମ୍ଭର ଅନନ୍ତ ଶକତି ।

ମଧୁସୂଦନ. ଜୀବନଚରିତ ।

୨୨ । ରସକୁଲ୍ୟା—ଏହାର ପ୍ରତ୍ୟେକ ପଦ ଛଅ ପାଦ ବିଶିଷ୍ଟ । ପ୍ରଥମ, ଦ୍ୱିତୀୟ ଓ ତୃତୀୟ ପାଦରେ ୧୧ ଗୋଟି ଲେଖାଏଁ ଅକ୍ଷର ଥାଏ ଏବଂ ତହିଁରେ ଷଷ୍ଠ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ଚତୁର୍ଥ ପାଦ ବାର ଅକ୍ଷର ବିଶିଷ୍ଟ, ତହିଁରେ ଷଷ୍ଠ, ଏକାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ପଞ୍ଚମ ପାଦ ନଅ ଅକ୍ଷରବିଶିଷ୍ଟ, ତହିଁରେ ଷଷ୍ଠ, ଅଷ୍ଟମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ଏବଂ ଷଷ୍ଠ ପାଦ ୨୧ ଅକ୍ଷର ବିଶିଷ୍ଟ, ତହିଁରେ ଷଷ୍ଠ, ଦ୍ୱାଦଶ, ଅଷ୍ଟାଦଶ, ବିଂଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

୧ । ଆରବନ୍ତେ ରାମ ଦେବ ବିମାନ

୨ । ଇଚ୍ଛା ଜାଣି ବେଗେ ତୁଲ୍ୟ ସମାନ

୩ । ଭାଗ୍ୟପଥୁଁ ଚଳେ ଅବନୀ ତଳ

୪ । ଅନନ୍ୟର ଦେଶ ହସେ ଉଜ୍ଜ୍ୱଳ ସେ

୫ । ଅନାଇଲେ ବିସ୍ମୟରେ ସେ

୬ । ଆନନ୍ଦେ ମଗନ ଅଯୋଧ୍ୟାବାସୀ ଭରତଙ୍କ ଅନୁଚରେ ସେ ।

ମଧୁସୂଦନ. ଅଯୋଧ୍ୟା ପ୍ରତ୍ୟାଗମନ ।

୨୩ । ଅସାଭଶୁକ୍ଳ (ବାଣୀ)—ଏହାର ପ୍ରତ୍ୟେକ ପଦ ଛଅ ପାଦବିଶିଷ୍ଟ । ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ ଓ ଷଷ୍ଠ ପାଦରେ ଏଗାର ଗୋଟି ଲେଖାଏଁ ଅକ୍ଷର ଥାଏ ଓ ପ୍ରତି ପାଦର ପଞ୍ଚମ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ପଞ୍ଚମ ପାଦରେ ଛଅ ଗୋଟି ଅକ୍ଷର ଥାଏ ଏବଂ ତାହାର କେବଳ ଶେଷ ଅକ୍ଷର ଉପରେ ଯତି ପଡ଼େ ।

ଯଥା—ରସିକମାନେ ଶୁଣ ଦେଇ ମନ
ରମଣୀ ମଣି ହନୁ ହନୁ କ୍ଷୀଣ,
ରତି ପତି ଛନ୍ଦ କରନ୍ତବାରେ
ରସହାସ ଗ୍ରାସ ବେଶ ବାସରେ,
ଉଦ୍ଧତ ଆଦର
ବସାଳସା ସାରେ ହଣି ବାସର । ସାମନ୍ତସିଂହାର
ବଦଗ୍ଧ ଚନ୍ଦ୍ରାମଣି ।

୨୪ । ଶଙ୍କସ୍ୱଭରଣ—ଏହାର ପ୍ରତ୍ୟେକ ପଦ ଛଅ ପାଦବିଶିଷ୍ଟ । ପ୍ରଥମ, ଦ୍ୱିତୀୟ, ଓ ଚତୁର୍ଥ ପାଦରେ ୧୪ ଗୋଟି ଲେଖାଏଁ ଅକ୍ଷର ଥାଏ ଓ ପ୍ରତ୍ୟେକ ପାଦର ଅଷ୍ଟମ ଏକାଦଶ, ଦ୍ୱାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ତୃତୀୟ ପାଦଟି ଆଠ ଅକ୍ଷରବିଶିଷ୍ଟ ଓ ଏହାର ଦ୍ୱିତୀୟ, ଷଷ୍ଠ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ ।

ଯଥା—ଦାଣ୍ଡରେ ଶୁଭଲା ରାମ କୃଷ୍ଣ ବୋଲି ଭାଇ
ଅକ୍ରୁର ଆସିଛି ତାଙ୍କୁ ଘେନି ଯିବା ପାଇଁ
ରାଜା ପଠେଇ ସଂପ୍ରତେ
ସଜ ହୋଇଥାଅ କାଲି ଚଳିବା ପ୍ରଭାତେ ।

ଭକ୍ତଚରଣ. ମଥୁରାମଙ୍ଗଳ ।

୨୫ । ଗୈରେଣ୍ଟି—ଏହାର ପ୍ରତ୍ୟେକ ପଦ ଚାରିପାଦବିଶିଷ୍ଟ; ପ୍ରଥମ ଓ ଦ୍ୱିତୀୟ ପାଦରେ ୨୧ ଗୋଟି ଲେଖାଏଁ, ତୃତୀୟ ପାଦରେ ୯ଗୋଟି ଓ ଚତୁର୍ଥ ପାଦରେ ୧୩ ଗୋଟି ଅକ୍ଷର ଥାଏ । ଯତିପାତର କ୍ରମ ନିମ୍ନରେ ପ୍ରଦର୍ଶିତ ହେଲା । ପ୍ରଥମ ଓ ଦ୍ୱିତୀୟ ୬+୨+୬+୨+୮+୫; ତୃତୀୟ ୬+୩; ଚତୁର୍ଥ ୬+୨+୫ ।

ଯଥା—୧ । ବିଚଳିଲୁ ଅଲିଙ୍ଗନ କରି ଜାହ୍ନବୀ ଶୋଭନ
ହରେ ସୁରବର ତାପ ଶିରୁ ଧାରା ସେ
୨ । ବନ୍ଦେ ମକର କେତନ ଉଜ୍ଜ୍ୱଳ ରଥ ସମାନ
ପୁରତ ହୋଇଛି ପୁଣି ଅଶେଷ ରସେ
୩ । ହୃଦୟ ହେମବତୀ ପଦରେ
୪ । ବିଷକଣ୍ଠ ତୋଷଦାୟୀ ବେଶ ମତରେ ।

ଭଞ୍ଜ. ବୈଦେହୀଶବିଳାସ ।

୨୬ । ଘଣ୍ଟାରବ—ଏହାର ପ୍ରତ୍ୟେକ ପଦରେ ତିନି ଗୋଟି ପାଦ ଥାଏ । ପ୍ରଥମ ଓ ଦ୍ୱିତୀୟ ପାଦରେ ଆଠ ଗୋଟି ଲେଖାଏଁ ଅକ୍ଷର ଓ ତୃତୀୟ ପାଦରେ କୋଡ଼ିଏ ଗୋଟି ଅକ୍ଷର ଥାଏ । ପ୍ରଥମ ଓ ଦ୍ୱିତୀୟରେ କେବଳ ଶେଷ ଅକ୍ଷର ଉପରେ ଓ ତୃତୀୟ ପାଦରେ ଷଷ୍ଠ, ଦ୍ୱାଦଶ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ ।

ଯଥା—
୧ । ମାଣବକ ଖେଳା ପରେ
୨ । ମାତି ସେ ଶସ୍ତ୍ର ଶାସ୍ତ୍ରରେ
୩ । ମନ୍ତ୍ର ଶାସ୍ତ୍ର ଅବଧି ମାନସକୁ ବୋଧି
ମହାସେନ ଦର୍ପ ହରେ—

ଗୋପାଳ. ଇନ୍ଦୁରେଖା ।

୨୭ । ଜୟନ୍ତ—ଏହାର ପ୍ରତ୍ୟେକ ପଦ ତିନିପାଦବିଶିଷ୍ଟ । ପ୍ରଥମ ଓ ଦ୍ୱିତୀୟ ପାଦରେ ଚଉଦ ଗୋଟି ଲେଖାଏଁ ଅକ୍ଷର ଥାଏ ଏବଂ ସେ ଦୁଇ ପାଦରେ ଅଷ୍ଟମ, ଦ୍ୱାଦଶ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ତୃତୀୟ ପାଦ ଛଅଗୋଟି ଅକ୍ଷରବିଶିଷ୍ଟ, ତାହାର ଦ୍ୱିତୀୟ, ପଞ୍ଚମ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ ।

ଯଥା—୧ । ଧୀରେ ଯେବେ କାନନରେ' କୃଷ୍ଣ ବିଳ'ମ୍ବିଛ'
୨ । ବାତ୍ସଲ୍ୟ ମମତା ଯେତେ' ଭୁଲୁଛନ୍ତି' ମାତ'
୩ । କଳା' ମାଣିକରେ' ।
ସାମନ୍ତସିଂହାର. ବିଦଗ୍ଧ ଚିନ୍ତାମଣି ।

୨୮ । ଲଳିତ କାମୋଦୀ—ଏହାର ପ୍ରତ୍ୟେକ ପଦରେ ଚାରି ଗୋଟି ପାଦ ଥାଏ । ଅକ୍ଷର ସଂଖ୍ୟା ଓ ଯତିପାତର କ୍ରମ ନିମ୍ନରେ ପ୍ରଦର୍ଶିତ ହେଲା ।

ପ୍ରଥମ, ଦ୍ୱିତୀୟ ଓ ଚତୁର୍ଥ ପାଦ—୨+୨+୨+୨+୨+୨+୩=୧୫
ତୃତୀୟ ପାଦ—୩+୫+୨+୨+୩=୧୫

ଯଥା—ଧୀରେ' ସୁଧା' କରି' ଧରି' କହୁ'ଛନ୍ତି' ଦୂତିକି'
ଜୀବ'ନ ନେ'ବାକୁ' ଲଗା'ଇଛୁ' ପାପ' ପ୍ରୀତିକି'
ଦୂତିଗୋ' ପ୍ରାଣବନ୍ଧୁରେ' କହ'ଯାଇ' ଏତିକି'
ଯାଆ' କରି'ଛନ୍ତି' ପରି' ନାହିଁ'ମରି' ସୁତିକି' ।
ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

୨୯ । ପାହାଡ଼ିଆ କେଦାର—ଏହାର ପାଞ୍ଚ ପାଦରେ ଏକ ପଦ ହୁଏ । ପ୍ରଥମ, ଦ୍ୱିତୀୟ ଓ ପଞ୍ଚମ ପାଦ ୩୫ ଅକ୍ଷର-ବିଶିଷ୍ଟ । ୩ୟ ୪ର୍ଥ ପାଦରେ ବାର ଗୋଟି ଲେଖାଏଁ ଅକ୍ଷର ଥାଏ । ଏହା ପାଠ ହେଲାବେଳେ ପ୍ରତ୍ୟେକ ପାଦର ଶେଷରେ ହେ, ଗୋ ବା ଯେ ମଧ୍ୟରୁ କୌଣସି ଗୋଟିଏ ଲାଗେ । ପ୍ରଥମ, ଦ୍ୱିତୀୟ ଓ ୫ମ ପାଦର ଦଶମ, ବିଂଶ, ତ୍ରିଂଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ୩ୟ ଓ ୪ର୍ଥ ପାଦ ଶେଷରେ ଯତି ପଡ଼େ । ପ୍ରଥମ ପାଦର ଶେଷ ଅକ୍ଷର ଯାହା, ଦ୍ୱିତୀୟ ପାଦର ଶେଷ ଅକ୍ଷର ତାହା ହୁଏ ଓ ତୃତୀୟ, ଚତୁର୍ଥ ପାଦର ଶେଷ ଅକ୍ଷର ଯାହା ହୁଏ, ପଞ୍ଚମ ପାଦର ଶେଷ ଅକ୍ଷର ତାହା ହୁଏ ।

ଯଥା—୧ । ଯେବେ ବିଦୁଷ ଅପୂର୍ବରସ' ରଣ ଉଦ୍ୟୋଗେ
ଅଙ୍ଗ ନଟେଶ'
ତେଙ୍ଗୁରି ବାଜେ ଦେଶ ବିଦେଶ'
ସଇନ ସାଜେ' ଯେ,
୨ । ଆସେ କେ ମଲ୍ଲ ଧରଣ ଭଲ୍ଲ' କୃପାଣ ପାଣି
ଶୋଭି ଅତୁଲ'
ଅଙ୍ଗେ ଫଳକ ଦୋଳେ କର୍ବୁର'ଳ'
ମଦେ ଗରଜେ' ଯେ,
୩ । ଦରପେ କେ ଉନ୍ନତ ତ୍ରିଶୂଳ ଧରେ' ଯେ,
୪ । ଖରଶାଣ ତରବାରି କାହା କରେ' ଯେ
୫ । କେ ବାଣାସନ ଧରି ଶୋଭନ' ଶଙ୍ଖ ତୂଣୀରେ
ଶର ଯତନ' ସାଙ୍କୁ କର୍ଣ୍ଣରେ କେବା ଭୂଷଣ' ମାତି ମତରେ'
ଯେ ଗୋଲୋକ. ଇନ୍ଦୁରେଖା ।

୩୦ । କଉଶିକ—ଏହାର ପ୍ରତ୍ୟେକ ପଦରେ ପାଞ୍ଚଗୋଟି ପାଦ ଥାଏ । ପ୍ରଥମ, ଦ୍ୱିତୀୟ ଓ ପଞ୍ଚମ ପାଦ ୨୧ ଅକ୍ଷର ବିଶିଷ୍ଟ । ତୃତୀୟ ପାଦରେ ପାଞ୍ଚ ଓ ଚତୁର୍ଥ ପାଦରେ ୯ଟି ଅକ୍ଷର ଥାଏ । ଯତିପାତର କ୍ରମ ନିମ୍ନରେ ଦିଆଗଲା ।

ପ୍ରଥମ, ଦ୍ୱିତୀୟ ଓ ପଞ୍ଚମ ପାଦରେ—୩+୩+୩+୩+୩+୩+୩;
ତୃତୀୟରେ—୨+୩; ଚତୁର୍ଥରେ—୩+୩+୩

ଯଥା—୧ । ମନ୍ତ୍ରି ମୁଖୁଁ ଶୁଣି' କୋପେ ବଂଶପାଣି'
ପୁଷ୍ପକ' ଯାନେ ବିଜେ କଲ'
୨ । ଧନୁର୍ଦ୍ଧର ଧରି' ଆକାଶେ' ରହିଣ'
ସୁବଳ' ଗିରିକି' ଗୁହିଁଲ'
୩ । ତୋଳେ' ଦେଖିଲ'
୪ । ଦୁର୍ବାଦ'ଳ ଶ୍ୟାମ' ଶରୀର'
୫ । ସସାର' ଶୋଭିକା ଯେବେ ଅ'ବତାର'
ମଦନ' ଯାଇ ସଂହାର' ।
ବିଶ୍ୱନାଥ. ବିଚିତ୍ର, ରାମାୟଣ ।

୩୧ । ବସନ୍ତ—ଏହାର ପ୍ରତ୍ୟେକ ପଦରେ ଛଅଗୋଟି ପାଦ ଥାଏ । ପ୍ରତ୍ୟେକ ପାଦରେ ୧୪ ଗୋଟି ଲେଖାଏଁ ଅକ୍ଷର ଥାଏ । ପ୍ରଥମ ପାଦର ଶେଷ ଅକ୍ଷର ସହିତ ଦ୍ୱିତୀୟ ପାଦର ଶେଷ ଅକ୍ଷର, ତୃତୀୟ ପାଦର ଶେଷ ଅକ୍ଷର ସହିତ ଚତୁର୍ଥ ପାଦର ଶେଷ ଅକ୍ଷର, ପଞ୍ଚମ ପାଦର ଶେଷ ଅକ୍ଷର ସହିତ ଷଷ୍ଠ ପାଦର ଶେଷ ଅକ୍ଷରର ଯତିପାତ ହୁଏ । ଅକ୍ଷର ମଧ୍ୟ ପ୍ରତ୍ୟେକ ପାଦର ଅଷ୍ଟମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

ଯଥା—ହର ଧନୁ ଭଗ୍ନ ରାମ' ରାମନେତ୍ରୀ ବିଭ୍ରି'
ଲେଖିଲେ ଗୃତୁରି ଆଳୀ' ଅଳ କରି ଶୋଭି',
ଭୃଗୁରାମ ରାମବାଦ' ବର୍ଣ୍ଣୀରେ ଯେମନ୍ତ',
କୋଧେ ରଘୁବର ବର'-ବରଣୀର ଚନ୍ତି'
ମଧୁଶଯ୍ୟା ଶଯ୍ୟାଶୋଭି' ତୂଳ ଯାପ ଲୁଇଁ'
ରାମ ସୀତା ଚନ୍ଦ୍ର ଚନ୍ଦ୍ର' ବିଧାତେ ଚନ୍ଦ୍ରାଇ' ।
ଗୋଲୋକ. ଇନ୍ଦୁରେଖା ।

୩୨ । କଳଡ଼ା—ଏହାର ପ୍ରତ୍ୟେକ ପଦରେ ସାତ ପାଦ ଥାଏ । ଏହାର ପାଦମାନଙ୍କର ଯତିପାତ ଓ ପାଦମାନ ପ୍ରତ୍ୟେକ କେତେ ଅକ୍ଷର, ତାହା ନିମ୍ନରେ ପ୍ରଦତ୍ତ ହେଲା । ପ୍ରଥମ, ଦ୍ୱିତୀୟ ଓ ତୃତୀୟ ପାଦର ଶେଷ ଅକ୍ଷର ଏକ । ପଞ୍ଚମ, ଷଷ୍ଠ ଓ ସପ୍ତମ ପାଦର ଶେଷ ଅକ୍ଷର ଏକ ।

ପ୍ରଥମ—୬+୬+୯=୨୧
ତୃତୀୟ—୬+୬+୮+୧=୨୧
ଦ୍ୱିତୀୟ, ପଞ୍ଚମ ଓ ଷଷ୍ଠ—୨+୯=୧୧
ଚତୁର୍ଥ—୩ =୩
ସପ୍ତମ—୬+୬+୩+୫+୧=୨୧ ।

ଯଥା—୧ । କୁମାର ବିଳାସ' ନବଯୌବନେ ରସ'
ସୁଧୀର ଧୀର କରି ଚିତ୍ତ' ।
୨ । କରି' କରଗତ ନଶି ଆଗତ'
୩ । କଣ୍ଠେ ନାଭି ତାରି' ମଦନ ବିଶେଷି'
ମୋହିଲା ରଙ୍ଗେ ଜଗତ' ସେ' ।

୪ । କାମିନୀ' । ୫ । କଲା'କର ମଥାମଣି ମଥାରେ'
୨ । ଭଙ୍ଗେ' ଭଙ୍ଗେ ତରୁଣ ବକ୍ଷ୍ୟରେ' ।
୨ । କରନ୍ତି ବିଳମ୍ବ' କର ସଙ୍ଗ ରଙ୍ଗ'
ବିନୋଦେ' ମନମଥରେ' ଗୋ' ।
ଗୋଲୋକ. ଇନ୍ଦୁରେଖା ।

୩୭ । ଧନାଶ୍ରୀ—ଏହାର ପ୍ରତ୍ୟେକ ପଦରେ ପାଞ୍ଚ ପାଦ ଥାଏ । ପ୍ରଥମ ପାଦରେ ଷୋଡ଼ଶ ଅକ୍ଷର, ଦ୍ୱିତୀୟ ପାଦରେ ୨୦ ଅକ୍ଷର; ତୃତୀୟ ପାଦରେ ହେ, ରେ ବା ଗୋ ସହିତ ଅନ୍ତ ଦୁଇଟି ଅକ୍ଷର; ଚତୁର୍ଥ ଓ ପଞ୍ଚମ ପାଦରେ ଦଶଗୋଟି ଲେଖାଏଁ ଅକ୍ଷର ଥାଏ । ପାଦମାନଙ୍କର ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

୧ । ତରତର ହୋଇ ସଙ୍କୋଚ ଛାଡ଼ୁ ଧୀରମଣିଙ୍କ ଛାମୁର'
୨ । ତରଳ ନୟନ୍ତ ସମବେଦନାରୁ ଏଣିକ ମାତର ଡର' ।
୩ । ହେ ଧୀର'
୪ । ତରସୁ ନାହିଁ କଥା ଉତର'
୫ । ଚଇଳଛ ଜାଣୁ ଚୁହୁନ୍ତର' ।
ଗୋଲୋକ, ଇନ୍ଦୁରେଖା ।

୩୪ । ଚନ୍ଦ୍ରାକାମୋଦା—ଏହାର ଚାରି ପାଦରେ ଗୋଟିଏ ପଦ ହୁଏ । ପ୍ରଥମ ଓ ଦ୍ୱିତୀୟ ପାଦରେ ଷୋଡ଼ଶ ଗୋଟି ଲେଖାଏଁ ଅକ୍ଷର ଥାଏ । ତୃତୀୟ ପାଦରେ ସାତ-ଗୋଟି ଓ ଚତୁର୍ଥ ପାଦରେ ଦଶଗୋଟି ଅକ୍ଷର ଥାଏ । ପାଦମାନଙ୍କର ଶେଷ ଅକ୍ଷରରେ ଯତିପାତ ହୁଏ । ପ୍ରଥମ ଓ ଦ୍ୱିତୀୟ ପାଦର ଚତୁର୍ଥ ଓ ଦ୍ୱାଦଶ ଅକ୍ଷର ଉପରେ, ତୃତୀୟ ଓ ଚତୁର୍ଥ ପାଦର ଦ୍ୱିତୀୟ ଅକ୍ଷର ଉପରେ ଅଧିକା ଯତି ପଡ଼େ ।

ଯଥା—୧ । ଭଲେ ସମ' ତାଲୁ ଚୁଅନ୍ତା ସୀତାଂଶୁ'
କ ଥିଲେ ନାନା ମୃଗାଙ୍କ'
୨ । ଗବ୍ର ଚନ୍ଦ୍ରା'ମନେ କାନ୍ତ ଘୃଷ୍ଟ ବସୁ-
ଗ୍ରୀବ ଅପସର ପଙ୍କ'
୩ । ଭୂମି'ରେ ଦୃଢ଼େ ମଙ୍କ'
୪ । ଭର'ଦଶ ପନ୍ତ ନେହ ଅଙ୍କ' ।
ଗୋଲୋକ, ଇନ୍ଦୁରେଖା । ]

ଦେ. ବି—୧ ।' କଟୁସ୍ୱାଦ; ଦ୍ରବ୍ୟର ସ୍ୱାଦ ବିଶେଷ—
ঝাল
কড়ুয়া
1. Pungent or acrid taste. ( ଯଥା—ଲଙ୍କାମରିଚର ରାଗ । ) ୨ । କଟୁତା; କଡ଼ାଗୁଣ—2. Pungency, acridity; acuteness. ( ଯଥା—ସୋରିଷୋରିଷ ତେଲର ରାଗ ଅନ୍ୟ ସୋରିଷ ତେଲର ରାଗ ଅପେକ୍ଷା ବେଶି । ) ୩ । ଦୁଃସହତା—3. Unbearableness. ବିଣ—୧ । କଟୁସ୍ୱାଦ-ଯୁକ୍ତ—1. Pungent; acrid; very hot ( in taste ). ୨ । ଦୁଃସହ; ତୀବ୍ର—2. Unbearable.

ରାଗ ଅହନ୍ତା—ଦେ. ବି (ସହଚର ଶବ୍ଦ )—ରାଗ ଦ୍ୱେଷ (ଦେଖ )
Rāga ahantā Rāga dwesha ( See)
রাগবোষ रागरंज

ରାଗ ଉପୁଜା(ଜେ)ଇବା—ଦେ.କ୍ରି—କୌଣସି ବ୍ୟକ୍ତିର ମନରେ କ୍ରୋଧ
Rāga upujā(je)ibā ଜାତ କରାଇବା; ରଗାଇବା—To
রাগজন্মান रागउपजाना cause a person to be angry; to engender indingation in a person's mind.

ରାଗ ଉପୁଜିବା—ଦେ. କ୍ରି—ମନରେ କ୍ରୋଧ ଉପଜାତ ହେବା—
Rāga upujibā The arising of indignation in
রাগহওয়া रागउपजाना the mind

ରାଗ କରିବା—ଦେ. କ୍ରି—କୌଣସି ବ୍ୟକ୍ତିପ୍ରତି କ୍ରୁଦ୍ଧ ହେବା—
Rāga karibā To be angry with or indignant
রাগকরা रागकरना at a person (ଯଥା—ସେ ଏଠାରୁ ମୋ ଉପରେ ରାଗକରି ଚାଲିଗଲେ ।)

ରାଗ ଚଣା—ପ୍ରାଦେ (ଗଞ୍ଜାମ) ଓ—ବୁଟକୁ ବା ଚଣାକୁ ରାତିରେ ପାଣିରେ
Rāga chaṇā ବତୁରାଇ ସକାଳେ ସିଝାଇ ତହିଁରେ ପରେ କାଗଜି ଲେମ୍ବୁ ରସ ଓ ପିଆଜ ବାଟି ଲଙ୍କାମରିଚ ବଘାର ପ୍ରସ୍ତୁତ କରିବା ଖାଦ୍ୟ—A food prepared by boiling wet gram or Cicer Arietinum and seasoning it with lemon juice,onion and red pepper.

ରାଗ ଚୂର୍ଣ୍ଣ—ସଂ.ବି (ରାଗ=ରକ୍ତବର୍ଣ୍ଣ+ଚୂର୍ଣ୍ଣ)—୧ (କର୍ମଧା) ରକ୍ତବର୍ଣ୍ଣଚୂର୍ଣ୍ଣ;
Rāga chūrṇṇa ଫଗୁ-1. Red powder. ୨। ସିନ୍ଦୂର—2. Red lead ୩। (ବହୁବ୍ରୀହି) କନ୍ଦର୍ପ; ମଦନ—3. Cupid. ୪ । ଖଇର ଗଛ—4. Catechu tree. ୫। ଲାକ୍ଷା— 5. Lac.

ରାଗଛନ୍ନ—ସଂ. ବି ( ରାଗ=ଅନୁରାଗ+ଛନ୍ନ=ଆବୃତ, ବହୁବ୍ରୀହି )—
Rāgachchhanna କାମଦେବ; ମଦନ—Cupid.

ରାଗଜିର—ଦେ. ବି—ପରିଚ୍ଛଦ ବା ପୋଷାକବିଶେଷ—
Rāgajira A kind of dress.

ରାଗଡ଼ି—ଦେ. ବି—ରଗିଡ଼ି (ଦେଖ)
Rāgarḍi Rāgirḍi (See)

ରାଗତଃ—ସଂ. କ୍ରି. ବିଣ (ରାଗ+ତସ୍ )—ରାଗହେତୁରୁ—
Rāgataḥ On account of anger.

ରାଗ ତାନ(ଲ)—ସଂ. ବି (ସହଚର ଶବ୍ଦ; ଦ୍ୱନ୍ଦ୍ୱ)—ସଙ୍ଗୀତର ରାଗ ଓ ତାଳ
Rāga tāna(la) ବା ତାଳ—The metre of a song accompanied with proper beating to tune [ ଦ୍ର—ପ୍ରତ୍ୟେକ ସଙ୍ଗୀତର ଆଦ୍ୟରେ ସେହି ସଙ୍ଗୀତର ସ୍ୱରେ ଓ ତାଳର ଉଲ୍ଲେଖ କରାଯାଇଥାଏ ।]

ରାଗ ତାନ ମାନ—ସଂ. ବି (ଦ୍ୱନ୍ଦ୍ୱ)—ସଙ୍ଗୀତର ରାଗ, ତାଳ ଓ ଗୀତ—
Rāga tāna māna ବାଦ୍ୟର ସମତା—The harmony
[ ରାଗତାନ(ଲ)ଲୟ—ଅନ୍ୟରୂପ ] of metre, measure and song in music.

ରାଗ ଥଣ୍ଡା ହେବା—ଦେ. କ୍ରି—କ୍ରୋଧର ଉପଶମ—
Rāga thaṇḍāhebā Subsidence of one's anger.
বাগঠাণ্ডাহওয়া राग ठंढाहोना

ରାଗଡାଲି—ଦେ. ବି—ମସୁର—
Rāgaḍāli A sort of pulse; Cicer Lens.

ରାଗ ଦ୍ୱେଷ—ସଂ. ବି (ସମାହାର ଦ୍ୱନ୍ଦ୍ୱ)—କ୍ରୋଧ ଓ ଈର୍ଷା—
Raga dwesha Anger and spite.

ରାଗ ପଡ଼ିବା—ପ୍ରାଦେ (ଗଞ୍ଜାମ) କ୍ରି—ରାଗିବା—
Rāga paṛibā To be angry.

ରାଗ ପାଣି—ପ୍ରାଦେ (ପୁରୀଜିଲ୍ଲା)ବି—(ଯେଉଁ ପାନୀୟ ମରିଚଯୁକ୍ତ ହେବାରୁ
Rāga pāṇi କଟୁ ଲାଗେ)—୧। ଭାଙ୍ଗ; ଭାଙ୍ଗପାଣି—
1. A drink made of hemp leaves pestled with black pepper. ୨। ରୋଗୀମାନଙ୍କ ନିମନ୍ତେ ଅଧିକ ପରିମାଣରେ ଗୋଲମରିଚ ବଟା ଦିଆଯାଇ କରି ଯାଇଥିବା ଝୋଳ—2. Soup made by adding black pepper paste for invalids and patients.

ରାଗ ପୂରା(ରେ)ଇବା—ଦେ.କ୍ରି—ରାଗ ରଖିବା—To entertain a
Rāga purā(re)ibā feeling of indignation or
(ରାଗ ପୋଷିବା—ଅନ୍ୟରୂପ) grudge.
বাগরাখা रागरखना, रंजरखना

ରାଗପୁଷ୍ପ—ସଂ.ବି—୧। ବନ୍ଧୁକପୁଷ୍ପ—1. A flower; Pentapetalus
Rāga puspa Phœnicia. ୨। ରକ୍ତାମ୍ଳାନ ପୁଷ୍ପ—2. The red globe amaranth flower.

ରାଗପୁଷ୍ପୀ—ସଂ. ବି—ଜବା; ମନ୍ଦାର—
Rāgapushpi The China rose (red).

ରାଗ ବହିବା—ଦେ.କ୍ରି—କ୍ରୋଧଭାବକୁ ମନରେ କିଛିକାଳପାଇଁ ସ୍ଥାନ
Rāga bahibā ଦେବା—To allow the feeling
বাগবাখা रागबहना of anger to predominate in the mind for some time.

ରାଗବାନ୍—ସଂ.ବିଣ ପୁଂ(ରାଗ+ବତ୍; ୧ମା ୧ବ);—୧। ରାଗବିଶିଷ୍ଟ—
Rāgabān 1. Coloured; dyed. ୨। ଅନୁରାଗବିଶିଷ୍ଟ—2.
(ରାଗବତୀ—ସ୍ତ୍ରୀ) Passionate; impassioned. ଦେ. ବିଣ
—ଅତି ଲାଲ—Very red. [ ଉ—ବିମ୍ବଫଳକୁ ରାଗବାନ୍ ଅଧରବର୍ତ୍ତୁଳ ସ୍ତନମଣ୍ଡଳ—ପ୍ରାଚୀ. ରସବାରିଧି ।]

ରାଗ ବୃନ୍ତ—ସଂ. ବି (ବହୁବ୍ରୀହି)—କାମଦେବ—
Rāga bṛunta Cupid.

ରାଗ ବେଳ(ଳା)—ଦେ.ବି—ମନୁଷ୍ୟର କ୍ରୋଧାନ୍ୱିତ ହୋଇଥିବା ସମୟ—
Rāga beḷa(ḷā) The time when a man is very
ରାଗମୁହଁ, ରାଗକିଣ(ତ) } ଅନ୍ୟରୂପ— angry. { ଯଥା—ମୁଁ ଅଟୁକର ରାଗମୁହଁରେ ପଡ଼ିଗଲି
রাগেবসময় বাগেবমুখ रागकेबखत ଅର୍ଥାତ୍ ତାର ରାଗବେଳେ ମୁଁ ଯାଇ ହାବୁଡ଼ିଗଲି)

ରାଗଭର—ଦେ. ବିଣ—କ୍ରୋଧାନ୍ୱିତ—
Rāgabhara Angry, full of anger.
বাগভবা रागमेंभराहुआ।

ରାଗ ମାରିବା—ଦେ. କ୍ରି—ନିଜର କ୍ରୋଧଭାବକୁ ଶାନ୍ତ କରିବା—To
Rāgamāribā pacify one's feeling of indigna-
বাগচাপা रागठंडाकरना (ରାଗମରିବା—ବି.ରୂପ) tion.

ରାଗ ମାର୍ଗ—ସଂ. ବି ( ରାଗ=ଅନୁରାଗ+ମାର୍ଗ=ପଥ ) ( ବୈଷ୍ଣବ
Rāgamārga ସାହିତ୍ୟ)—ନିଃସ୍ୱାର୍ଥ ଈଶ୍ୱରପ୍ରେମ; ସାତ୍ତ୍ୱିକ ଭକ୍ତି
(ରାଗାନୁଗାଭକ୍ତି—ଅନ୍ୟରୂପ) Reverence for mere love or tender care of God without any selfish motive.

ରାଗ ମାଳା—ସଂ. ବି—କୌଣସି ବିଷୟକୁ ଏକାଧିକ ରାଗରେ ଆବଦ୍ଧ କରି
Raga māḷā ପର୍ଯ୍ୟାୟକ୍ରମେ ତାଳଯୋଗରେ ଗାନ କରିବା—
A sort of singing in which more than one tune of music is sung to different measures.

ରାଗଯୁକ୍ତ—ସଂ. ବି (ରାଗ+ଯୁଜ୍ ଧାତୁ+ କର୍ମ. କ୍ତ)—ମାଣିକ୍ୟ—
Rāgajuk Ruby.

ରାଗ ରକ୍ତ—ସଂ ବିଣ(ତୃତୀୟା ତତ୍)—କୌଣସି ରଙ୍ଗ ବୋଳା ହୋଇଥିବା—
Rāga rakta Dyed; coloured.
(ରାଗରଞ୍ଜିତ—ଅନ୍ୟରୂପ)

ରାଗ ରଖିବା—ଦେ.କ୍ରି—ମନରେ ଅସନ୍ତୋଷଭାବକୁ ପୋଷଣ କରିବା—
Rāga rakhibā To entertain a feeling of
বাগবাখা रागरखना indignation and grudge.

ରାଗ ରଙ୍ଗ—ସଂ.ବି (ମ. ପ. ଲୋ. )—ଅନୁରାଗଜନିତ ଆନନ୍ଦକର ଭଙ୍ଗୀ
Rāga ranga Poses due to love.

ରାଗ ରଜ୍ଜୁ—ସଂ. ବି(ବହୁବ୍ରୀହି)—କାମଦେବ—
Rāga rajju Cupid

ରାଗ ରାଗିଣୀ—ସଂ. ବି ( ସମାହାର ଦ୍ୱନ୍ଦ୍ୱ )—ରାଗ ଓ ରାଗିଣୀ—
Rāga rāgiṇi Primary notes or tunes and secondary notes or tunes in music)

ରାଗରାଗୁଆ—ଦେ. ବିଣ—ସାମାନ୍ୟ କଟୁ ସ୍ୱାଦଯୁକ୍ତ—
Rāgarāguā Having a slightly pungent taste.
ঝালঝাল जेराकड़ुआ

ରାଗରିପୁ—ଦେ. ବି (ସମାହାର ଦ୍ୱନ୍ଦ୍ୱ)—ରାଗଦ୍ୱେଷ (ଦେଖ)
Rāgaripu Rāgadwesha (See

ରାଗରେ ତମତମ ହେବା—ଦେ. କ୍ରି—ରାଗରେ ଜର୍ଜରିତ ହେବା—
Rāgare tamatama hebā To be overpowered
বেগেঅস্থিবহওয়া रागमेंतमतमहोना with anger.

ରାଗ ଲତା—ସଂ. ବି—ରତି; କାମପତ୍ନୀ—The wife of Cupid;
Rāga latā sexual cohabitation. [ ଉ—ବିମ୍ବାର୍ଥ ପ୍ରକାଶ ରାଗଲତା ପର—ଭଞ୍ଜ. ବୈଦେହୀଶବିଳାସ । ]

ରାଗଷାଡ଼ବ—ସଂ. ବ (ବୈଦ୍ୟକ)—୧ । ମୁଗର ଯୂଷରେ ଡାଳିମ୍ବ ଓ ଦ୍ରାକ୍ଷାର ରସ ମିଶ୍ରିତ କରି ଯେଉଁ ସୁଖକର ପାନୀୟ ପ୍ରସ୍ତୁତ ହୁଏ—1. A sort of drink.
Rāgashārdaba
୨ । ରାଗସାଡ଼ବ (ଦେଖ)—2. Rāgasārdabe (See)

ରାଗଷାଣ୍ଡବ—ସ. ବ (ବୈଦ୍ୟକ)—୧ । ରାଗ ଷାଡ଼ବ (ଦେଖ)—
Rāgashāndaba 1. Rāgasārdaba. (See) ୨ । କଞ୍ଚା-ଅମ୍ବର ମୋରବ୍ବା—2. A sort of mango preserve. [ବ୍ର—କଞ୍ଚା ଅମ୍ବର ଚୋପା ଛେଲି ତା ଶସକୁ ଟାଙ୍କୁଅରୁ ବାହାର କରି ତେଲରେ ଭାଜି, ଚିନି ରସରେ ସିଝାଇ ତହିଁରେ ମସଲାଗୁଣ୍ଡା ମିଶାଇଲେ ଏହା ପ୍ରସ୍ତୁତ ହୁଏ । ଏହା ବହୁଦିନ ଅବିକୃତ ରହେ ।]

ରାଗ ସମ୍ବରଣ କରିବା——ଦେ. କ୍ରି—ମନରେ କ୍ରୋଧ ଭାବକୁ ଥଣ୍ଡା କରିବା—To rest-
Rāga sambarana kariba
[ରାଗ ସମ୍ଭାଳିବା—ଅନ୍ୟରୂପ] rain one's feeling of rage.
বাগসম্বরণ কবা, বাগসামলা रागरोकना

ରାଗସାଡ଼ବ – ସ. ବ—ଗୁଡ଼ ଏବଂ ତେଲରେ ପାକ କରିଥିବା ଅମ୍ବର ଆଚାର; ଅମ୍ବର କାସନ୍ଦି ଆଚାର—
Rāga sārdaba
A sort of mango pickle boiled in oil and sugar.

ରାଗ ସୂତ୍ର—ସ. ବ—୧ । ରଙ୍ଗିନ୍ ସୂତା—1. Dyed thread.
Rāga sūtra ୨ । ପାଟ ସୂତା—2. Silk thread.
୩ । ତୁଳାସୂତ୍; ନିକିତିର ସୂତା—
3. The string of a balance.

ରାଗ ହେବା—ଦେ. କ୍ରି—ରାଗାନ୍ୱିତ ହେବା; ରାଗିବା; କ୍ରୋଧ କରିବା —
Rāga hebā To be angry or indignant.
রাগ করা रागहोना

ରାଗା—ଦେ. ବଣ (ସ. ରାଗ)—କଟୁସ୍ୱାଦ ଯୁକ୍ତ—
Rāgā Of pungent taste.
ঝাল कडुआ

ରାଗାଡ଼ି—ଦେ. ବ—ରାଗିଡ଼ି (ଦେଖ)—Rāgirdi. (See) [ଭ୍ର—
Rāgārdi ମଣି ରାଗାଡି ଚନ୍ଦ୍ରମା ଅର୍କମା, କେଶ ଅଗ୍ରରେ ଦେବାପରି ଜମା । କବିସୂର୍ଯ୍ୟ ଚନ୍ଦ୍ରକଳା ।]

ରାଗାତ୍ମକ—ସ. ବ (ବହୁବ୍ରୀହି; ରାଗ ହୋଇଅଛି ଆତ୍ମା ଯାହାର; ରାଗ + ଆତ୍ମନ୍ + କ)—ରାଗସମନ୍ୱିତ—Having
Rāgātmama
[ରାଗାତ୍ମିକା—ସ୍ତ୍ରୀ] 'Rāga' (of different meanings) as its essence.

ରାଗାନ୍ତ—ଦେ. ବଣ (ସ. ରାଗାନ୍ୱିତ; ରାଗାନ୍ଧ)—1. Angry.
Rāgānta ୨ । କୋପନସ୍ୱଭାବ; କ୍ରୋଧୀ—2. Of irritable temper.
( ରାଗାନ୍ତି, ରାଗାନ୍ତିଆ—ଅନ୍ୟରୂପ )
রাগান্বিত रंजिदा

ରାଗାନ୍ଧ—ସ. ବଣ. ପୁଂ (ତତ୍ପୁରୁଷ; ରାଗ+ଅନ୍ଧ)—୧ । କ୍ରୋଧାନ୍ଧ; କ୍ରୋଧଯୋଗୁଁ ହିତାହିତ ବିବେଚନା ଶୂନ୍ୟ—
Rāgāndha
(ରାଗାନ୍ଧା—ସ୍ତ୍ରୀ) 1. Blinded with rage. [ଦ୍ର—ସଂସ୍କୃତରେ
(ରାଗାନ୍ଧତା—ବ) କ୍ରୋଧାନ୍ଧ ଅର୍ଥରେ 'ରାଗାନ୍ଧ' ବ୍ୟବହାର ପ୍ରାୟଶଃ ଦେଖାଯାଏ ନାହିଁ ।] ୨ । ଅନୁରାଗଯୋଗୁଁ ବିବେଚନା-ଶୂନ୍ୟ—2. Blinded with love or passions.

ରାଗାନ୍ୱିତ—ସ. ବଣ. ପୁଂ (ତୃତୀୟା ତତ୍: ରାଗ+ଅନ୍ୱିତ)—କ୍ରୁଦ୍ଧ;
Rāgānwita କ୍ରୋଧଯୁକ୍ତ; ରୁଷ୍ଟ—Enraged; angry;
(ରାଗାନ୍ୱିତା—ସ୍ତ୍ରୀ) filled with passion.

ରାଗାରାଗି—ଦେ. ବ—ପରସ୍ପର କ୍ରୋଧପ୍ରକାଶପୂର୍ବକ କଥୋପକଥନ—
Rāgārāgi Exchange of hot words.
বাগাবাগি रागारागी

ରାଗାରୁ—ସ. ବଣ (ରାଗ+ଅରୁ)—ଯେଉଁ ବ୍ୟକ୍ତି ଆଶାଦେଇ ଦାନ-
Rāgru ବିମୁଖ ହୁଏ; ଯେଉଁ ବ୍ୟକ୍ତି ଆଶା ଦେଇ ଭଣ୍ଡାଏ—
Not keeping one's promise of a gift.

ରାଗାର୍ହ—ସ.ବଣ. ପୁଂ—ଯେ ଆଶା ଦେଇ ନିରାଶ କରେ ବା ଭଣ୍ଡାଏ—
Rāgarha Not fulfilling one's
(ରାଗାର୍ହା—ସ୍ତ୍ରୀ) promise of gifts.

ରାଗିଆ—ଦେ. ବଣ—୧ । ରାଗା; କଟୁ—1. Pungent. ୨ । ରାଗୀ;
Rāgiā କ୍ରୋଧୀ—3. Of irritable temper.
বাগী रागिया

ରାଗି(ଗେ)ଡ଼ି—ଦେ. ବ—ରମଣୀମାନଙ୍କ ତାଳୁର କେଶ ଉପରେ
Rāgi(ge)rdi ଖଞ୍ଜାଯିବା ଚେପଟା ଓ ଗୋଲ ପୂର୍ଣ୍ଣଚନ୍ଦ୍ରାକୃତି
सोनेकीसूरज ବା ସୂର୍ଯ୍ୟାକୃତି ସୁବର୍ଣ୍ଣନିର୍ମିତ ଅଳଙ୍କାର ବିଶେଷ —A circular and flat plate of gold put on the hair as ornament.

ରାଗିଡ଼ି ଚନ୍ଦ୍ର—ଦେ. ବ (ସହଚର ଶବ୍ଦ)—କେଶ ଉପରେ ଖଞ୍ଜାଯିବା
Rāgirdi chandra ସୂର୍ଯ୍ୟ ବା ପୂର୍ଣ୍ଣଚନ୍ଦ୍ରାକୃତି ଅଳଙ୍କାର
सूरजचाद (ରାଗିଡ଼ି) ଓ ତାହାର ପାର୍ଶ୍ୱରେ ଖଞ୍ଜାଯିବା ଖଣ୍ଡ-ଚନ୍ଦ୍ରାକୃତି ପାଲିଆ(ଚନ୍ଦ୍ର), ଏପରି ଦୁଇଟି ଅଳଙ୍କାର—Two ornaments worn on the hair consisting of a sun-shaped flat gold piece and a crescent-shaped one attached to one side.

ରାଗିଣୀ—ସ. ବ. ସ୍ତ୍ରୀ (ରାଗ+ସ୍ତ୍ରୀ; ଇନ୍+ଈ; ରାଗମାନଙ୍କର ଭାର୍ଯ୍ୟା)
Rāgini —ସଙ୍ଗୀତର ପ୍ରଧାନ ୬ ଗୋଟି ରାଗର ପରିବର୍ତ୍ତନ ବା ମିଶ୍ରଣାଦି ଜନିତ ମିଶ୍ରସ୍ୱର—Secondary tunes in music. [ଦ୍ର—ରାଗତଳେ କୋଷ୍ଠ ଦେଖ । ପ୍ରତ୍ୟେକ ରାଗର ୬ ଗୋଟି ରାଗିଣୀ ଅଛି । ଭିନ୍ନ ଭିନ୍ନ ଋଷିଙ୍କ ମତରେ ରାଗିଣୀମାନ ମଧ୍ୟ ଭିନ୍ନ ଭିନ୍ନ । ଏକ ମୁନି ଯେଉଁ ରାଗିଣୀକୁ ଏକ ରାଗର ଭାର୍ଯ୍ୟା ବୋଲି କହି ଯାଇ ଅଛନ୍ତି, ଅନ୍ୟ ମୁନି ତାଙ୍କୁ ଅନ୍ୟ ଏକ ରାଗର ଭାର୍ଯ୍ୟା ବୋଲି କହିଯାଇ ଅଛନ୍ତି । ଫଳତଃ ବହୁଶତ ରାଗରାଗିଣୀ ତେଣୁ ହୋଇଅଛି ଓ ସାଧାରଣ ବ୍ୟବହାରରେ ରାଗ ଓ ରାଗିଣୀର ପ୍ରଭେଦ ରଖାଯାଏ ନାହିଁ ।] ୨ । ସ୍ୱାମୀଙ୍କ ପ୍ରତି ଅନୁରକ୍ତା

ବା ବଦଗଧା ସ୍ତ୍ରୀ—2. A woman very much attached to her husband. ୩ । ମେନକା ଅପ୍ସରାଙ୍କ ଜ୍ୟେଷ୍ଠାକନ୍ୟା—3. The eldest daughter of Nymph Menakā. ବିଣ ସ୍ତ୍ରୀ--ଅନୁରାଗିଣୀ —Loving; passionate (woman).

ରାଗିବା—ଦେ. କ୍ରି (ସଂ. ରଞ୍ଜ ଧାତୁ)—୧ । ରାଗହେବା; Rāgibā କ୍ରୋଧାନ୍ୱିତ ହେବା, ରଗିବା; କ୍ରୁଦ୍ଧ ହେବା—(ରଗାଇବା—ପ୍ରଯୋଜକରୂପ) 1. To be angry. ୨ । ବାଂଗା रागहोना ବିରକ୍ତ ହେବା—2. To be displeased.

ରାଗି ମାଗି—ଦେ. କ୍ରି. ବିଣ (ଜିବର୍ଥକ ଶବ୍ଦରୁ)—ଅତ୍ୟନ୍ତ କୋଧାନ୍ୱିତ Rāgi māgi ହୋଇ—Angrily. ବେଗେମେଗେ रागीरंजी होकर

ରାଗୀ—ସ ବିଣ. ପୁଂ (ରାଗ+ଅସ୍ତ୍ୟର୍ଥରେ; ଇନ୍ ୧ମା. ୧ବ)—Rāgi ୧ । ରାଗଯୁକ୍ତ; ଅନୁରକ୍ତ—1. Attached to; (ରାଗିଣୀ—ସ୍ତ୍ରୀ) fond of. ୨ । କାମୁକ—2. Lascivious. ୩ । ରଞ୍ଜନକାରୀ—3. Colouring; dyeing. ବି (ବୈଦ୍ୟକ) ଏକପ୍ରକାର ତୃଣଧାନ୍ୟ; ମାଣ୍ଡିଆ—A sort of grain.

ରାଗୁଆ—ଦେ. ବିଣ. ପୁଂ—୧ । କୋପନ ସ୍ୱଭାବ—Rāguā 1. Of an angry temper. [ରାଗେ(ଗୋ)ଇ--ସ୍ତ୍ରୀ] ୨ । କଟୁସ୍ୱାଦଯୁକ୍ତ—2. Pungent. ବାଗୀ, ঝাল रागिआ

ରାଘବ—ସ. ବିଣ (ରଘୁ+ଅପତ୍ୟାର୍ଥେ ଅ)—ରଘୁବଂଶୀୟ—Rāghaba Of the race of the Raghu. ବି—୧ । ରଘୁବଂଶୀୟ ରାଜା—1. A king of the Raghu race. ୨ । ରାମଚନ୍ଦ୍ର—2. Rāmachandra. ୩ । ସମୁଦ୍ର—3 The sea; ocean. ୪ । ମତ୍ସ୍ୟବିଶେଷ; ସାମୁଦ୍ରିକ ବାଲଆ ଜାତୀୟ ବଡ଼ ମାଛ; ହାଙ୍ଗର—4. Shark, a kind of big seafish. [ଦ୍ର—ଏ କ୍ଷୁଦ୍ର ମତ୍ସ୍ୟମାନଙ୍କୁ ଖାଇଯାଏ ଓ ଭାରି ପେଟୁ ।] ୫ । ଅଷ୍ଟାଦଶ ଶତାବ୍ଦୀର ଖାନ୍ଦେଶର 'ଜାତକ ଗ୍ରନ୍ଥ' ରଚୟିତା ଜନୈକ ଜ୍ୟୋତିଷୀ —5. Name of an astrologer of the eighteenth century who was born in Khāndeśa and the author of Jātakagrantha.

ବାଘବବୋଯାল ଦେ. ବି—୧ । ପେଟୁଲୋକ—1. Gluttonous राघव or voracious person. ୨ । ଅର୍ଥଗୃଧ୍ନୁ ବ୍ୟକ୍ତି—2. A person who is very fond of taking money. ୩ । କୌଣସି କାର୍ଯ୍ୟ କରିବା ପାଇଁ ଧୂରନ୍ଧର ବ୍ୟକ୍ତି—3. A person who is very eager to do any thing. (ଯଥା—ସେ ଖାଇବା ବିଷୟରେ ରାଘବ) ୪ । ପୁରୁଷ ଲୋକଙ୍କ ନାମ—4. A name given to males.

ରାଘବାନନ୍ଦ—ସ. ବି—ରାମଚନ୍ଦ୍ର-Rāmachandra. ଦେ. ବି. ପୁଂ—Rāghabānanda ୧ । ଲୋକଙ୍କ ନାମ—1. Name given (ରାଘବେନ୍ଦ୍ର-ଅନ୍ୟରୂପ) to males. ୨ । ଷୋଡ଼ଶ ବାঘবানন্দ ଶତାବ୍ଦୀର ଆଦ୍ୟ ଭାଗରେ ଜନ୍ମିଥିବା ବଙ୍ଗଦେଶୀୟ राघवानन्द ଜନୈକ ଜ୍ୟୋତିଷୀ—2. An astrologer of Bengal of the sixteenth century of the Saka era. [ଦ୍ର—ଏ 'ସିଦ୍ଧାନ୍ତ ରହସ୍ୟ' ନାମକ କରଣଗ୍ରନ୍ଥ, ସାରଣୀଗ୍ରନ୍ଥର ରଚୟିତା ।]

ରାଘବାୟନ—ସ. ବି (ରାଘବ=ରାମ ଅଟନ୍ତି ଅୟନ=ଆଶ୍ରୟ Rāghabāyana ଯହିଁର; ବହୁବ୍ରୀହି)—ରାମାୟଣ ଗ୍ରନ୍ଥ—The Rāmāyaṇa.

ରାଙ୍କବ—ସ. ବିଣ (ରଙ୍କୁ+ସମ୍ବନ୍ଧାର୍ଥେ. ଅ)—୧ । ରଙ୍କୁ ସମ୍ବନ୍ଧୀୟ—Rāṅkaba 1. Relating to deer. ୨ । ଲୋମଜନିର୍ମିତ—2. Woolen. ବି—ପଶୁଲୋମନିର୍ମିତ ବସ୍ତ୍ର—A cloth made of wool; woolen cloth.

ରାଙ୍କଲ—ସ. ବି—ବୃକ୍ଷକଣ୍ଟକ—Rāṅkaḷa Thorn.

ରାଙ୍ଗ(ଙ୍ଗା)—ଦେ. ବି (ସଂ. ରଙ୍ଗ)—ଟିଣ (ଧାତୁ)—Rāṅg (ṅgā) Tin. (metal). ବাঙা रांगा

ରଙ୍ଗ୍ ତା—ଦେ. ବି—ରଙ୍ଗତା; ଟିଣର ଖୁବ୍ ସରୁ ଓ ପତଳା ପାତିଆ—Rāṅg-tā Tin foil. বাংতা पन्नी, रांगाका वरक

ରାଙ୍ଗ—ସ. ବି (ରଙ୍ଗ+ସ୍ୱାର୍ଥେ. ଅ)—ଟିଣ (ଧାତୁ)—Rāṅga Tin.

ରାଙ୍ଗନ(ଣ)—ସ. ବି—ରଙ୍ଗିଣୀ ଫୁଲ—Rāṅgana(ṇa) Quis-qulis Indica; scarlet Ixora.

ରାଚ୍(ଚୁ)ରାଚୁଆ—ଦେ. ବିଣ—୧ । ରାକୁରାକୁଆ; ରାଡ଼ୁରାଡ଼ୁଆ Rāch-(chu)rāchuā ହାତକୁ ଯାହା କର୍କଶ ଲାଗେ—ରচবচে 1. Rough to the touch. ୨ । ଖାଇବାକୁ ଯାହା खुरदुरा, खुदुरखुदुर କର୍କଶ ଲାଗେ—2. Rough to the কচকচ कचकच mouth.

ରାଜ୍ (ଧାତୁ)—ସ.—ଦୀପ୍ତି ପାଇବା; ଶୋଭା ପାଇବା—Rāj (root) To shine; to look bright and beautiful.

ରାଜ୍-ସ. ବି (ରାଜ. ଧାତୁ+କର୍ତ୍ତୃ. କ୍ୱିପ୍)—୧ । ରାଜା—Rāj 1. King. ବିଣ—୧ । ଶୋଭମାନ—1. Shining. ୨ । ସୁନ୍ଦର—2. Beautiful. ବୈଦେ. ବି (ଆ. ରାଜୀ)-ବାজী ସମ୍ମତ—Agreement; consent. ବୈଦେ. ବିଣ - राजी ସମ୍ମତ—Agreed; consenting. ପ୍ରାଦେ. (ଉତ୍ତର ଭାଗ ।)—ବି—ରାଜ୍ୟ; ଦେଶ—Country kingdome.

ରାଜଦାଆଁଡ଼—ପ୍ରାଦେ (ସମ୍ବଲପୁର) ବି—ରାଜପଥ; ରାଜଦାଣ୍ଡ—Rāj-dā-āṅrd Highway.

ରାଜ୍ ପଡ଼ିବା—ଦେ. କ୍ରି—ରାଜ ହେବା (ଦେଖ)
Rāj parḍibā বাজীহওয়া राजीहोना Rāj hebā. (See)
(ରାଜ୍ ହେବା—ଅନ୍ୟରୂପ)

ରାଜ୍ ବେରାଜ୍—ଦେ. ବି (ସହଚର ଶବ୍ଦ)—ରାଜି ବେରାଜି, ସମ୍ମତି ଓ
Rāj berāj ଅସମ୍ମତି—Consent and disagreement.
রাজী গররাজী राजीगैरराजी ଦେ. ବିଣ ସ୍ୱୀକୃତ ଓ ଅସ୍ୱୀକୃତ—Agreed and disagreed.

ରାଜ(ଜୁ) ରାଜୁଆ—ଦେ. ବିଣ—୧ । ଅମସୃଣ, କର୍କଶ—
Rāj(ju) rājuā 1. Rough. ୨ । ଖାଦ୍ୟ ଦ୍ରବ୍ୟରେ ବାଲି
বজরজে ବା ଗୁଣ୍ଡା ଅାଦି ମିଶିଥିବାରୁ ଖାଇବାକୁ କର୍କଶ ଲାଗୁଥିବା—
खुरदुरा 2. (Food) Harsh or grating to the taste (being mixed with sand or coarse particles).

ରାଜୱାଡ଼ା—ଦେ. ବି.—ରାଜୁଡ଼ା (ଦେଖ)
Rājwārḍā Rājurḍā (See)
বাজোযাড়া राजवाडा

ରାଜ—ସଂ. ବିଣ.—(ସଂ. ରାଜନ୍ ଶବ୍ଦ ସମାସରେ 'ରାଜ' ହୋଇଯାଏ;)
Rāja ଏହା ସ୍ୱତନ୍ତ୍ର ସଂସ୍କୃତ ଶବ୍ଦ ନୁହେଁ)—୧ । ( ବହୁ ମଧ୍ୟରେ ) ଶ୍ରେଷ୍ଠ; ପ୍ରଧାନ—1. Chief; eminent (amongst many). ଯଥା—ରଘୁରାଜ; ପଶୁରାଜ)—୨। (ଅନ୍ୟ ଶବ୍ଦ ପୂର୍ବରେ ଯୁକ୍ତ ହୁଏ) ରାଜକୀୟ—2. Kingly, royal. [ ଯଥା—ରାଜମହର୍ଷୀ, ରାଜବଂଶ, ରାଜପୁତ୍ର) ବି.—୧ । ରାଜ୍ୟ-ଶାସକ—1. Ruler. [ ଯଥା—ବଙ୍ଗରାଜ; ଅଙ୍ଗରାଜ ।] ୨ । (ଅନ୍ୟ ଶବ୍ଦ ପରେ ଯୁକ୍ତ ହୁଏ)—ରାଜା—2. King. [ ଯଥା—ଯୁବରାଜ । ] ଦେ. ବିଣ.—( ଅନ୍ୟ ଶବ୍ଦ ପୂର୍ବେ ବ୍ୟବହୃତ )—ଶ୍ରେଷ୍ଠ—Excellent. [ଯଥା—ରାଜ-ବଣି ।] ଦେ. ବି.—୧ । (ସଂ. ଗୃହରଞ୍ଜକ) ଛୁତାର; କୋଠାଅାଦି ତିଆରି କରିବା କାରିଗର; ମିସ୍ତ୍ରୀ—1. Architect, mason. ୨ (ସଂ. ରାଜ୍ୟ) ରାଜ୍ୟ—2. Kingdom. ୩ । (ସଂ. ରାଜତ୍ୱ); ରାଜତ୍ୱ; ରାଜଗୀ—3. Rule; regime. ୪ । ( ସଂ. ରାଜପୁର ) ରାଜଧାନୀ; ରାଜପୁର; ନଗର—4. Capital. ୫ । ରାଜଦରବାର—5. The court of a king. ପ୍ରାଦେ ( ପୁରୀ ) ବି—ପୁରୀ-ଜିଲ୍ଲାର ବ୍ରାହ୍ମଣ ଶାସନର ଦାନାଧ୍ୟକ୍ଷଙ୍କର କେତେକ ବିଶିଷ୍ଟ ଅଧିକାର—Some privileges enjoyed by the original grantee of a Brahmin village of Puri.

ରାଜ ଅଁଳା—ପ୍ରାଦେ ( ବଲୁର ) ବି—ନଉକୋଳି—
Rāj a-ānlā A sort of sour plum.

ରାଜ ଅାଜ୍ଞା—ଦେ. ବି (ସଂ ରାଜାଜ୍ଞା )—ରାଜାଜ୍ଞା, ରାଜାଙ୍କ ଅାଦେଶ—
Rāja ājnā King's command; royal command.
রাজাজ্ঞা राजआज्ञा

ରାଜକ—ସଂ. ବିଣ. ପୁଂ ( ରାଜ୍ ଧାତୁ+କର୍ତ୍ତି, ଅକ )—୧ । ଶାସକ—
Rājaka 1. Ruling; governing. ୨ । ଦୀପ୍ତିଶାଳୀ—
(ରାଜକା—ସ୍ତ୍ରୀ) 2 Brilliant, bright. ବି ( ରାଜନ୍+ସମୂହାର୍ଥେ କ )—ରାଜାମାନେ—An assemblage of kings.

ରାଜ କଇଁ—ଦେ. ବି.—ଏକପ୍ରକାର ଈଷତ୍ ନାଲି କଇଁଫୁଲ—A
Rāja kaiñ species of water lily having
कुमुदिनी reddish colour. [ ଦ୍ର—ଏହା ଧଳା ଓ ନାଲିମିଶା ଓ ସାଧାରଣ କଇଁ ଅପେକ୍ଷା ବଡ଼ । ]

ରାଜ କଦମ୍ବ—ସଂ. ବି—କଦମ୍ବ ବୃକ୍ଷ ବିଶେଷ—
Rāja kadamba A species of Kadamba.

ରାଜ କନ୍ୟକା—ସଂ. ବି. ସ୍ତ୍ରୀ—ରାଜଝିଅ—Princess.
Rāja kanyakā (ରାଜକନ୍ୟା—ଅନ୍ୟରୂପ)

ରାଜ କବି—ସଂ. ବି ( ଅାଧୁନିକ )—୧ । ରାଜସଭାସଦ୍ କବି—
Rāja kabi 1 . Court poet; poet laureate. ୨ । କବିତା ରଚକ ରାଜା—2. A king who is a poet.

ରାଜ କର—ସଂ. ବି ( ୬ଷ୍ଠୀ ତତ୍; ରାଜନ୍+କର )—ରାଜସ୍ୱ; ରାଜାଙ୍କୁ
Rāja kara ଦେୟ ଖଜଣା—Revenue payable to the king; tax levied by a king.

ରାଜ କର୍କଟୀ—ସଂ. ବି—ଏକପ୍ରକାର କାକୁଡ଼ି—
Rāja karkaṭī A species of cucumber.

ରାଜ କର୍ମ—ସଂ. ବି—୧ । ନୃପାଦେଶରେ କରଣୀୟ କାର୍ଯ୍ୟ—1.
Rāja karma Duties done under king's orders.
(ରାଜକାର୍ଯ୍ୟ—ଅନ୍ୟରୂପ) ୨ । ସରକାରୀ କାର୍ଯ୍ୟ—2. Government duties; state affairs. ୩ । ରାଜ୍ୟଶାସନ କର୍ମ—3. Duties of administration or government.

ରାଜ କର୍ମଚାରୀ—ସଂ. ବି. ( ୬ଷ୍ଠୀ ତତ୍ )—ରାଜକାର୍ଯ୍ୟ ତୁଲାଇବା ପାଇଁ
Rāja karmachārī ନିଯୁକ୍ତ କର୍ମଚାରୀ—State officers; government servant.

ରାଜ କଶେରୁ—ସଂ. ବି—ସୁଗନ୍ଧ ତୃଣ ବିଶେଷ; ଭଦ୍ରମୁସ୍ତକ -
Rāja kaśeru A fragrant grass; Cyperus.

ରାଜ କାମ—ଦେ. ବି— ଇଟା,ପଥର, ଚୂନଅାଦିଦ୍ୱାରା କୋଠାଅାଦି କରିବା
Rāja kāma କାର୍ଯ୍ୟ—Work of a mason; masonry work.
বাজেবকাজ राजकाम

ରାଜ କାଶ—ଦେ. ବି—ରାଜଯକ୍ଷ୍ମା ( ଦେଖ )
Rāja kāsa Rājajakshmā ( See )
বাজযক্ষ্মা राजकाशि

ରାଜକିଶୋର—ସଂ. ବି. ପୁଂ—୧ । ଯୁବକ ରାଜା—1. A young
Rājakiśora king. ୨ । ଶ୍ରୀକୃଷ୍ଣଙ୍କ ନାମାନ୍ତର—2. A
(ରାଜକିଶୋରୀ—ସ୍ତ୍ରୀ) name applied to Srikrushna.
বাজকিশোব ଦେ. ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—
राजकिशोर A name given to males.

ରାଜକୀ—ବୈଦେ. ବି ( ଭୁର୍କୀ)—ରାଜଗୀ ( ଦେଖ )
Rājaki Rājagi ( See )

ରାଜକୀୟ—ସଂ. ବିଣ (ରାଜନ୍+ସମ୍ବନ୍ଧେ ଈୟ୍ କ ଆଗମ)—୧। ରାଜାଙ୍କ
Rājakiya ସମ୍ବନ୍ଧୀୟ—1. Relating to king.
୨ । ରାଜ୍ୟଶାସନ ସମ୍ବନ୍ଧୀୟ—2. Relating to state affairs or administration.

ରାଜ କୁମାର—ସଂ. ବି. ପୁଂ ( ୬ଷ୍ଠୀ ତତ୍ )—ରାଜପୁତ୍ର ( ଦେଖ )
Rāja kumāra Rājaputra ( See )
(ରାଜକୁମାରୀ—ସ୍ତ୍ରୀ.)

ରାଜକୁମାର କଲେଜ୍—ଦେ. ବି ( ସଂ. ରାଜକୁମାର ଇଂ. କଲେଜ)
Rājakumāra kalej —ରାଜପୁତ୍ରମାନଙ୍କର ପଢ଼ିବା ପାଇଁ
রাজকুমার কালেজ ପ୍ରତିଷ୍ଠିତ ଉଚ୍ଚଶ୍ରେଣୀର ବିଦ୍ୟାଳୟ—
**राजकुमार कलेज** A college for the education of princes.

ରାଜକୁଳ—ସଂ. ବି ( ୬ଷ୍ଠୀ ତତ୍ )—୧ । ରାଜବଂଶ—1. Race of
Rājakula kings. ୨ । ରାଜ ପରିବାର—2, Royal family.
রাজপরিবার

ରାଜ କୁଷ୍ମାଣ୍ଡ—ସଂ. ବି—ବାଇଗଣ; ବାଇଗଣ—Egg plant; Solanum Melongena.
Rāja kushmānda

ରାଜକୋଟ—ଦେ. ବି (ନାମ)—ଭାରତର ରାଜପୁତ ରାଜ୍ୟ ବିଶେଷ—
Rājakota Name of an Indian state.
বাজকোট **राजकोट**

ରାଜ କୋଲ—ସଂ. ବି ( ବୈଦ୍ୟକ )—ରାଜବଦର ( ଦେଖ )
Rāja kola Rājabadara ( See )

ରାଜ କୋଷ—ସଂ.ବି (୬ଷ୍ଠୀ ତତ୍) —ରାଜକୀୟ ଧନାଗାର—
Rāja kosha King's treasury.

ରାଜ କୋଷା(ଶା)ତକୀ—ସଂ. ବି—ଲତାଫଳ ବିଶେଷ; କଡ଼ୁଜହ୍ନି; ପୋଟଳ-
Rājakoshā(śā)taki ତରଡ଼ା—Luffa Cylindrica;
ଅନ୍ୟ ସଂ. ନାମ—ଧାମାର୍ଗବ, Luffa Amara; bitter luffa.
ପୀତପୁଷ୍ପ, ଜାଳନୀ, କୃତବେଧନା, ରାଜମହଫଳା, ହସ୍ତିପର୍ଣ୍ଣିକା,
କୋଷଫଳା, ମହାଜାଲା, ସପୀତକ ঘোষাফল, ঝিঙ্গা **तोराइ**
ମ. କଡ଼ୁଦୋଡ଼କା [ ଦ୍ର—ବୈଦ୍ୟଶାସ୍ତ୍ର ମତରେ ଏହା ଶୀତଳ,
ତେ. ତେଡୁବର୍କାଯା ମଧୁରରସ, କଫ ବାତ କାରକ, ପିତ୍ତନାଶକ,
ଫା. ଭୁରସ୍ତେତଲଙ୍ଗ୍ ଅଗ୍ନି ଦୀପକ ଏବଂ ଶ୍ୱାସ, ଜ୍ୱର, କାଶ ଓ
କ୍ରିମିନିବାରକ—ଦ୍ରବ୍ୟଗୁଣ । ]

ରାଜ ଖଣ୍ଡା—ମୈ.ବି—ରାଜାଙ୍କ ଭୋଜନାର୍ଥ ରୋଷେଇ—Cooking
Rāja khandā for a king. [ ଦ୍ର—ରାଜଖଣ୍ଡା
বাজাব বস্থই ଅନ୍ୟମାନ ନ କର ଭୋଜନ । ପ୍ରାଚୀ. ଶ୍ରୀଗୁରୁଭକ୍ତି
**राजखाना** ଗୀତା । ]

ରାଜ ଖର୍ଜୁରୀ—ସଂ. ବି—ବଡ଼ ପିଣ୍ଡ ଖଜୁରୀ—
Rāja kharjjuri A sort of date.
(ରାଜପିଣ୍ଡା—ଅନ୍ୟରୂପ)

ରାଜଗଣ୍ଡ—ଦେ. ବି—ପେଟରେ ବାହାରିବା ମାରାତ୍ମକ ବଥ ବିଶେଷ—
Rājaganda A kind of fatal boil on the abdomen.
রাজগোঁড় **राजघाव**

ରାଜ ଗ(ଗା) ଦି(ଦ୍ଦି)—ଦେ.ବି—ରାଜସିଂହାସନ—King's throne, the masnad of a king.
Rāja ga(gā)di(ddi)
বাজারগদী **राजगद्दी**

ରାଜଗାମୀ—ସଂ. ବିଣ ( ରାଜନ+ଗମ୍ ଧାତୁ+କର୍ତ୍ତୃ. ଇନ୍; ୧ମା ୧ବ)
Rājagāmi —ଯେଉଁ ସମ୍ପତ୍ତିର କେହି ମାଲିକ ନ ଥିବାରୁ
ତାହା ରାଜାଙ୍କ ଅଧିକାରକୁ ଆସେ—(property)
Escheating to the crown (Apte).

ରାଜଗିରା(ରି)—ସଂ. ବି—ଏକପ୍ରକାର ଶାଗ—
Rājagirā(ri) A species of potherb.
[ ଦ—ଏହା ଶ୍ୱେତ ରକ୍ତ ଦୁଇ ପ୍ରକାରର ହୁଏ । ]

ରାଜଗିରି—ସଂ. ବି—୧ । ମଗଧସ୍ଥ ପର୍ବତ ବିଶେଷ—1. Name of a
Rājagiri mountain in Bihar. [ ଦ୍ର—ରାଜଗିରି
ବିରାଜିତ ଶତ ପ୍ରସ୍ରବଣେ । ରାଧାନାଥ. ମହାଯାତ୍ରା । ]
୨ । ରାଜଗିରା ( ଦେଖ )—2. Rajagira ( See )

ରାଜଗୀ—ବୈଦେ. ବି ( ଭୁର୍କୀ; ସଂ. ରାଜନ୍+ଭୁର୍କୀ ଗୀ ପ୍ରତ୍ୟୟ )—
Rājagi ୧ । ରାଜ୍ୟ—1. Kingdom. ୨ । ରାଜ୍ୟଶାସନ
বাজগী 2. Governance of a kingdom. ୩ । ରାଜପଦ
**राजगी** —3. Kingship. ଦେ. ବିଣ—ରାଜଯୋଗ୍ୟ
—Befitting a king; royal.

ରାଜଗୀ କାରଖାନା—ବୈଦେ. ବି—ରାଜସ କାରଖାନା ( ଦେଖ )
Rājagi karakhānā Rajasa karakhana (See)
বাজগী কারখানা **राजगी कारखाना**

ରାଜଗୁରୁ—ସଂ. ବି—୧ । ରାଜାଙ୍କ ମନ୍ତ୍ରଗୁରୁ—1. The king's
Rajaguru spiritual preceptor and Lord Chancellor. ୨ । ବ୍ରାହ୍ମଣମାନଙ୍କୁ ରାଜାଙ୍କଦ୍ୱାରା ପ୍ରଦତ୍ତ
ଉପାଧି ବିଶେଷ—2. A title given to Brāhmanas by Rajas.

ରାଜଗୁହ୍ୟ—ସଂ. ବିଣ—ଭଗବଦ୍ଗୀତାର ନବମ ଅଧ୍ୟାୟରେ ବର୍ଣ୍ଣିତ
Rajaguhya ଈଶ୍ୱରଙ୍କ ସର୍ବବ୍ୟାପକତା ସମ୍ବନ୍ଧେ ଉପଦେଶ—
The omnipresence of God described in the 9th chapter of the Gitā.

ରାଜଗୃହ—ସଂ. ବି—୧ । ପାଟଳିପୁତ୍ରଠାରୁ ୪୦ କ୍ରୋଶ ଦୂରରେ ଥିବା
Rajagruha ମଗଧର ନଗର ବିଶେଷ—1. Name of an
old city of Magadha. ୨ । ରାଜପ୍ରାସାଦ—
2. King's residence; royal household.

ରାଜଗ୍ରୀବ—ସଂ. ବି (ରାଜ=ଶୋଭାଯୁକ୍ତ+ଗ୍ରୀବା ଯାହାର; ବହୁବ୍ରୀହି)—
Rājagriba ଫଳ ମାଛ—A scaly freshwater flat fish; Notopterus Kapirat.

ରାଜଘ—ସଂ. ବିଣ. ପୁଂ (ରାଜନ+ହନ୍. ଧାତୁ+କର୍ତ୍ତୃ. ଅ)—
Rājagha ୧ । ରାଜହନ୍ତା—1. Regicide. ୨ । ତୀକ୍ଷ୍ଣ—
(ରାଜଘୀ—ସ୍ତ୍ରୀ) 2. Sharp. ୩ । ରାଜଶ୍ରେଷ୍ଠ—3. The foremost of kings ( Apte, M.W.)

ରାଜ ଚକ୍ରବର୍ତ୍ତୀ—ସଂ.ବି—ସମ୍ରାଟ୍; ରାଜରାଜେଶ୍ୱର—
Rāja chakrabartti An emperor; a paramount ruler.

ରାଜ ଚିକିତ୍ସକ—ସଂ. ବି—ରାଜବୈଦ୍ୟ (ଦେଖ)
Rāja chikitsak Rājabaidya. (See)

ରାଜ ଚିହ୍ନ—ସଂ. ବି—୧ । ରାଜାଙ୍କର ବିଶିଷ୍ଟତା ଜ୍ଞାପକ ଚିହ୍ନ—
Rāja chihna 1. Insignia of royalty. ୨ । ରାଜ ଲକ୍ଷଣ (ଦେଖ)—2. Rājalakshana. (See)

ରାଜ ଚିହ୍ନକ—ସଂ. ବି—ଉପସ୍ଥ; ସ୍ତ୍ରୀ ଓ ପୁଂ ଚିହ୍ନ—
Rāja chihnaka The male and female organs.

ରାଜଛ(ଚ୍ଛ)ତ୍ର—ସଂ. ବି—ରାଜାଙ୍କ ଉପରେ ଧରାଯିବା ଛତା—
Rājachha(chchha)tra An umbrella held over a king.

ରାଜଜ(ଯ)କ୍ଷ୍ମା—ସଂ. ବି. (ରାଜଯକ୍ଷ୍ମନ୍ ଶବ୍ଦ)—ରାଜକାଶ; କ୍ଷୟରୋଗ—
Rājaja(ja)kshma Pulmonary consumption.

ରାଜଜମ୍ବୁ(ମ୍ବୂ)—ସଂ. ବି—୧ । ମହାଜମ୍ବୁ, ବଡ଼ଜାମ୍ବୁ—1 A species
Rājajambu(mbū) of big blackberry; Eugenia.
ଅନ୍ୟ ସଂ. ନାମ—ଫଳେନ୍ଦ୍ରା, ନନ୍ଦା, ମହାଫଳା, ସ୍ୱରଦ୍ରପତ୍ରା, ମହାଜମ୍ବୁ
ବଡଜାମ ବଡୀଜାମୁନ; फरेद
ମ. ଥୋରଜାମ୍ଭୂଲ
ଗୁ. ରାଜଜାମ୍ବୁ, କାରଣୀ°
ତେ. ଗାରକେବଡ୍ଡୀ
୨ । ଗୋଲ୍ପଜାମ୍ବୁ—2. Rose berry. [ଗୁ—ବୈଦ୍ୟଶାସ୍ତ୍ର ମତରେ ଏହା ମଧୁର ରସ, ବିଷ୍ଟମ୍ଭୀ, ଗୁରୁ ଓ ରୁଚିକର—ଦ୍ରବ୍ୟଗୁଣ । ] ୩ । ଖର୍ଜୁର ବିଶେଷ—3. A sort of date.

ରାଜ ଜେମା——ଦେ. ବି. ସ୍ତ୍ରୀ—ରାଜକନ୍ୟା—
Rāja jema A princess
ରାଜାର ମେୟେ राजकुमारी

ରାଜଯୋଟକ—ସଂ. ବି—ଜ୍ୟୋତିଷ-ଶାସ୍ତ୍ରୋକ୍ତ ବରକନ୍ୟାଙ୍କ ଜାତକରେ
Rājajotaka ଥିବା ପରସ୍ପରର ଶୁଭସୂଚକ ଯୋଗବିଶେଷ—
(ରାଜଯୋଟ—ଦେ. ରୂପ) An auspicious mutual position of the natal signs of the bride and the bridegroom. [ଦ୍ର—ବରକନ୍ୟାଙ୍କର ରାଶିଦ୍ୱୟ ଏକ, ସମ ସପ୍ତକ, ଚତୁର୍ଥ ଦଶମ ଅଥବା ତୃତୀୟ ଏକାଦଶ ହେଲେ ଏ ବିବାହ ଶୁଭକର ହୁଏ । ଏପରି ଯୋଗ ଘଟିଲେ ଗ୍ରହବୈର, ତାରାର ଅଶୁଦ୍ଧି, ଗଣଦୋଷ, ନାଡ଼ୀଦୋଷ, ବର୍ଣ୍ଣଦୋଷ ଆଦି କୌଣସି ଦୋଷ ଧରାଯାଏ ନାହିଁ ।]

ରାଜଟୀକା—ସଂ. ବି—୧। ଅଧୀନ ରାଜାମାନେ ସମ୍ରାଟଙ୍କ ମସ୍ତକରେ ଯେଉଁ
Rājaṭikā ତିଳକ ଲଗାନ୍ତି—1. A mark of sandal paste on the forehead of an emperor put by the vassals in acknowledgement of his sovereignty. ୨ । ରାଜ୍ୟାଭିଷେକ—2. Installation on the throne.

ରାଜଡା - ଦେ. ବି—ରାଜୁଡ଼ା (ଦେଖ)—
Rājarda Rājurda. (See)

ରାଜତ—ସଂ. ବିଣ (ରଜତ+ଷ୍ଣ ପ୍ରତ୍ୟୟ ଅର୍ଥରେ. ଅ)—୧ । ରୌପ୍ୟ
Rajata ନିର୍ମିତ—1. Made of silver. ୨ । ରୌପ୍ୟପରି—
(ରାଜତୀ—ସ୍ତ୍ରୀ) 2. Silvery.

ରାଜ ତକ(ଖ)ତ—ଦେ. ବି(ସଂ. ରାଜ+ଫା ତଖ୍ତ)—ରାଜଗାଦି(ଦେଖ)
Rajataka(kha)t ৰাজাৰতক্ত राजाकातख्त Rajagadi·
(ରାଜତକ୍ତ—ଗ୍ରାମ୍ୟରୂପ) (See)

ରାଜତନ୍ତ୍ର—ସଂ. ବି-ଏକପ୍ରକାର ଶାସନତନ୍ତ୍ର ଶାଳୀ; ରାଜାଙ୍କଦ୍ୱାରା ଶାସନ—
Rajatantra Monarchy; government of a state by a king; monarchical form of government.

ରାଜତରୁ—ସଂ. ବି—୧ । କର୍ଣ୍ଣିକାର ବୃକ୍ଷ; କନକଅର ଗଛ—1. A
Rajataru tree; Pterospermum Acerifolium,
୨ । ଆରଗ୍ୱଧ; ସୁନାରିଗଛ—
2. A tree; Cassia Fistula,

ରାଜ ତରୁଣୀ—ସଂ. ବି.—ବଡ଼ ସେବତୀ ଫୁଲ ଗଛ—
Rāja taruṇī A flower plant; a big species of the musk rose; Rosa Moschata.
ସଂ.—ମହାତରୁ(ରୁ)ଣୀ, ସୁପୁଷ୍ପ, ସୁବର୍ଣ୍ଣପୁଷ୍ପ, ଅମ୍ଳାନଚଣ୍ଡ, ଅମ୍ଳା, ମହାସହା, ବର୍ଣ୍ଣପୁଷ୍ପ
বড় সেওতী बडीसेवती
ଓ. ବଡ଼ ସେବତୀ ମ. ରାଜ ତରୁଣୀ

ରାଜତା—ସଂ. ବି.—(ରଜନ୍+ଭାବ. ତା)—ରାଜତ୍ୱ (ଦେଖ)
Rājata Rajatwa (See)

ରାଜତାନ୍ୱିତ—ସଂ. ବିଣ.—(ରାଜତ=ରୌପ୍ୟ ନିର୍ମିତ ପଦାର୍ଥ+
Rājatānwita ଅନ୍ୱିତ, ୩ୟା ତତ୍)—ରୂପା କୁଅଣି ହୋଇଥିବା
Plated or inlaid with silver; silver-gilt.

ରାଜ ତାଳ(ଳୀ)—ସଂ.ବି—ଗୁବାକ ବୃକ୍ଷ; ଗୁଆ ଗଛ—
Rāja tāl(lī) The betel nut tree; Areca Betelfel.

ରାଜତି—ଗ୍ରା. ବି (ସଂ. ରାଜତ୍ୱ)—ରାଜତ୍ୱ—
Rājati Reign; rule of a king.
ৰাজত্ব राजती

ରାଜ ତନି(ମି)ଶ—ସଂ. ବି—୧ । କାକୁଡ଼ି—1. Cucumber.
Rāja tini(mi)śa ୨ । ଫୁଟି—2. Cucumis Sativus.

ରାଜ ତିଲକ—ସଂ ବି—ରାଜଟୀକା (ଦେଖ)
Rāja tilaka Rājaṭibā. (See)

ରାଜ ତେଜଃ—ସଂ. ବି—ରାଜଶ୍ରୀ ଗୌରବ—
Rāja tejah Kingly majesty; royal or princely dignity.

ରାଜତ୍ୱ—ସଂ. ବି (ରାଜନ୍+ଭାବ. ତ୍ୱ)—୧ । ରାଜପଦ—
Rājatwa 1. Sovereignty. ୨ । ରାଜ୍ୟ ଶାସନ—
2 Reign; rule. ୩ । ରାଜ୍ୟ—Kingdom.

ରାଜତ୍ୱ କରିବା—ଦେ. କ୍ରି—ରାଜ୍ୟ ଶାସନ କରିବା—
Rājatwa karibā To reign; to rule.
ৰাজত্ব কৰা राजत्वकरना

ରାଜତ୍ୱ କାଳ—ସଂ. ବି (୬ଷ୍ଠୀ ତତ୍)—କୌଣସି ରାଜା ଯେଉଁ ନିର୍ଦ୍ଦିଷ୍ଟ
Rājatwa kāla କାଳ ରାଜତ୍ୱ କରନ୍ତି—The time of a king's sovereignty.

ରାଜ ଦଣ୍ଡ—ସଂ ବ(ମ.ପ.ଲୋ)—୧ । ରାଜଚିହ୍ନସ୍ୱରୂପ ରାଜାଙ୍କ ହାତରେ
Raja danda ଧରାଯିବା ଯଷ୍ଟି—1. Sceptre of a king.
୨ । ଅପରାଧୀଙ୍କୁ ରାଜାଙ୍କ ପ୍ରଦତ୍ତ ଦଣ୍ଡ—
2. Punishment given by the king.

ରାଜ ଦଇବକ—ଦେ॰(ପ୍ରାଚୀନ ଓଡ଼ିଆ) ବ—ରାଜାଙ୍କ ଦଖଲର ଦାବୀ—
Raja daibaka Demand of possession by the king. [ଦ୍ର—ଏ ଭୂମିରେ ରାଜଦଇବକ ପଡ଼ିଲେ, ଏ ଶ୍ଳେଷ ପତ୍ର ଦେଖାଇ ଅମଳ କରିବ । ପ୍ରାଚୀନ. ସନନ୍ଦ । ]

ରାଜଦତ୍ତ—ସଂ. ବିଣ (ତୃତୀୟା ତତ୍; ରାଜନ୍+ଦତ୍ତ)—ଯାହା ରାଜା
Rājadatta ଦେଇଥାଆନ୍ତି—Given or bestowed by a king.
(ରାଜପ୍ରଦତ୍ତ—ଅନ୍ୟରୂପ)

ରାଜଦତ୍ତ ଉପାଧି—ଦେ. ବ—ରାଜାଙ୍କ ପ୍ରଦତ୍ତ ସମ୍ମାନସୂଚକ ଉପାଧି—
Rājadatta upādhi A title of honour given by a king.

ରାଜଦନ୍ତ—ସଂ.ବ(ରାଜ=ଶୋଭମାନ+ଦନ୍ତ, କମ୍ବା ଦନ୍ତମାନଙ୍କ ରାଜା)
Rajadanta ସମ୍ମୁଖଦାନ୍ତ; ଉପର ପାଟିର ଦୁଇଗୋଟି ସମ୍ମୁଖଦାନ୍ତ
The front teeth; the two foreteeth of the upper jaw.

ରାଜଦନ୍ତନୀ—ପ୍ରାଦେ. (ସମ୍ବଲପୁର ଓ ଗଡ଼ଜାତ) ବ—ମୋଟାଳଥା
Rājadantani କଣ୍ଟକଲ ଗୁଳ୍ମ ବିଶେଷ—Smilax Macrophylla (Haines). [ଦ୍ର—ଏହା ସମ୍ବଲପୁର ଓ ଉତ୍ତର ଗଡ଼ଜାତ ଅଞ୍ଚଳରେ ଜଳସିକ୍ତ ଭୂମିରେ ଜନ୍ମେ । ]

ରାଜ ଦରବାର—ଦେ. ବ (ସଂ. ରାଜନ୍+ପା. ଦର୍‌ବାର)—୧। ରାଜ
Rāja darabara ସଭା—1. A king's court. ୨। ବିଚାର
बाज दबबाब **राजदरबार** ଅଦାଲତ—2. A court of justice.

ରାଜ ଦର୍ଶନ—ସଂ. ବ(ଷଷ୍ଠୀ ତତ୍)—ରାଜାଙ୍କୁ ସାକ୍ଷାତ କରିବା, ରାଜାଙ୍କର
Raja darsna ସାକ୍ଷାତ୍‌କାର ଲାଭ—A evee; an audience granted by the king. [ ଦ୍ର—ଜ୍ୟୋତିଷ ମତରେ ଶୁଭ ନକ୍ଷତ୍ର ଓ ଶୁଭ ତିଥିରେ ରାଜଦର୍ଶନ କରିବାର ବିଧି ଅଛି । ]

ରାଜଦାଣ୍ଡ—ଦେ. ବ—ରାଜପଥ; ରାଜମାର୍ଗ—
Rājadānda King's highway.
बाजपथ **राजपथ**

ରାଜ ଦୁଲାଲ—ଦେ. ବ. ପୁଂ—ରାଜକୁମାର—
Rāja dulāla बाजदुलाल **राजदुलाल(र)** Prince.
( ରାଜ ଦୁଲାଳୀ—ସ୍ତ୍ରୀ )

ରାଜଦୂତ—ସଂ. ବ(ଷଷ୍ଠୀତତ୍)—୧ । ରାଜାଙ୍କ ପ୍ରେରିତ ବାର୍ତ୍ତାବହ—
Rajadūta 1. A messenger sent by a king.
୨। ଏକ ରାଜାଙ୍କର ଅନ୍ୟରାଜାଙ୍କ ନିକଟକୁ ପଠାଇବା ଦୂତ—
2. Ambassador.

ରାଜଦୃଷ୍ଟି—ସଂ. ବ ( ଷଷ୍ଠୀତତ୍ )—୧। ରାଜାଙ୍କର ଅନୁଗ୍ରହ ଦୃଷ୍ଟି—1.
Rajadrushti King's fovourable look (falling on a person). ୨ । କୌଣସି ପଦାର୍ଥ ଉପରେ ପଡ଼ିଥିବା ରାଜାଙ୍କ କୁଦୃଷ୍ଟି ବା ନଜର; ରାଜାଙ୍କ ଆଖି ପଡ଼ିବା—2. The eyes or the sight of a king falling on an object. [ ଦ୍ର—ସାଧାରଣ ଲୋକଙ୍କ ପାଇଁ ଅଉପଯୋଗ ବସ୍ତୁ ଉପରେ ରାଜଦୃଷ୍ଟି ପଡ଼ିଲେ ଏହା ତହିଁର ସ୍ୱାମୀର ଭୋଗ ସମ୍ବନ୍ଧେ ବାଧାଜନକ ହୁଏ ବୋଲି ଲୋକେ କହନ୍ତି । ]

ରାଜଦେଶୀୟ—ସଂ ବ (ରାଜନ୍+ଈଷଦୂନାର୍ଥେ. ଦେଶୀୟ)—
Rājadesiya ୧ । ଛୋଟ ରାଜା—1. A petty king.
(ରାଜଦେଶ୍ୟ—ଅନ୍ୟରୂପ) ୨ । ସାମନ୍ତ ରାଜା—2. A feudatory prince.

ରାଜ ଦ୍ୱାର—ସଂ. ବ (ଷଷ୍ଠୀ ତତ୍)—୧ । ରାଜାଙ୍କ ସିଂହଦ୍ୱାର
Rāja dwāra ବା ବାହୁଡ଼—1. The lion's gate of a king's palace. ୨। ରାଜାଙ୍କ ସମ୍ମୁଖ; ରାଜସାନ୍ନିଧ୍ୟ—2 Royal presence; being present before the king. ୩ । ରାଜସଭା; ରାଜ ଦରବାର—3. King's court. (ଯଥା—ଆପଣଙ୍କୁ ରାଜଦ୍ୱାରରେ ଯଶ ମିଳୁ । )

ରାଜଦ୍ରୋହ—ସଂ. ବ (ଷଷ୍ଠୀ ତତ୍)—ରାଜାଙ୍କ ବିରୁଦ୍ଧାଚରଣ—
Rājadroha Rebellion; sedition; treasn.

ରାଜଦ୍ରୋହୀ—ସଂ. ବିଣ. ପୁଂ ( ରାଜଦ୍ରୋହିନ୍; ୧ମା. ୧ବ )—
Rājadrohi ରାଜାଙ୍କର ବିରୁଦ୍ଧାଚାରୀ—Rebellious.
(ରାଜଦ୍ରୋହିଣୀ—ସ୍ତ୍ରୀ)

ରାଜଧର୍ତ୍ତୂରକ—ସଂ. ବ—ବଡ଼ ଧାତୁରା ଗଛ—
Rājadharttūraka A sort of Dāturā.

ରାଜଧର୍ମ—ସଂ. ବ ( ଷଷ୍ଠୀ ତତ୍; ରାଜନ୍+ଧର୍ମନ୍ )—୧ । ରାଜାଙ୍କ
Rājadmahra କର୍ତ୍ତବ୍ୟକର୍ମ ( ଯଥା—ପ୍ରଜାପାଳନ )—
1. A king's duty (e. g. governing his subjects). ୨ । ରାଜନୀତି ( ଦେଖ )—2. Rājaniti ( See ). ୩ । କ୍ଷତ୍ରିୟର କର୍ତ୍ତବ୍ୟ ଧର୍ମ —3. The duty of the military tribe. [ ଦ୍ର—ରାଜଧର୍ମ ସମ୍ବନ୍ଧେ ମହାଭାରତ ଆଦ୍ୟରେ ଅନେକ ଉପଦେଶ ଅଛି । ]

ରାଜଧର୍ମବିଦ—ସଂ.ବିଣ ଓ ବ (ରାଜଧର୍ମ+ବିଦ୍ ଧାତୁ+କର୍ତ୍ତୃ.କ୍ୱିପ୍)—
Rājadharmabid ରାଜନୀତି ବିଶାରଦ—Statesman; a person versed in the duties of a king.

ରାଜଧାନ(ନୀ)—ସଂ ବ ( ରାଜନ୍+ଧା ଧାତୁ=ଧାରଣ କରିବା+ ଅଧିକରଣ ଅନ );—୧ । ରାଜ୍ୟର
Rājadhāna(ni)
ରାଜଧାନକ } ଅନ୍ୟରୂପ
ରଜଧାନକା }
ପ୍ରଧାନ ନଗର; ଯେଉଁଠାରେ ରାଜା ବାସ କରନ୍ତି—1. Seat of government; capital; metropolis of a kingdom. ୨ । ରାଜନଗର; ରାଜପୁର—2. The king's residence.

**ରାଜଧାନୀଅ(ଆଁ)**—ଦେ.ଵିଣ(ସଂ. ରାଜଧାନୀୟ)—୧ । ରାଜଧାନୀ ସମ୍ବନ୍ଧୀୟ
Rājadhāniā(āṅ) —1. Relating to a capital. ୨ ।
রাজধানীর (ରାଜଧାନୀ—ଅନ୍ୟରୂପ)ରାଜଧାନୀରେ କରାଯିବାର ଉପଯୁକ୍ତ
**राजाधानीका** 2. Befitting a capital. [ ଉ—ଏ
ସବୁ ରାଜଧାନୀଅ ଆଡ଼ମ୍ବର ଆମପର ମଫସଲିଆଙ୍କୁ ପାଏ ନାହିଁ ।]

**ରାଜଧାନ୍ୟ**—ସ. ବି—ରାଜାନ୍ନ ( ଦେଖ )
Rājadhānya Rājānna ( See )

**ରାଜନ**—ସ. ବି ( ସମ୍ବୋଧନ )—ହେ ରାଜନ୍; ହେ ରାଜା—
Rājan Oh king !

**ରାଜନ**—ଗ୍ରା. ବି ( ସ. ରାଜନ୍ )—୧ । ( ସମ୍ବୋଧନ ) ହେ ରାଜା—
Rājana Oh king ! [ ଉ—ବୃଦ୍ଧାଙ୍କ ସମାନ ମୁନି ଅଛନ୍ତି
রাজন ରାଜନ, ତାହାଙ୍କ ସଙ୍ଗତେ ଯାଅ ଶ୍ରୀରାମ ଲକ୍ଷ୍ମଣ ।
**राजन** ବିଶ୍ୱନାଥ. ବିଚିତ୍ରରାମାୟଣ । ] ୨ । ରାଜା—
2. King. [ ଉ—ଜଳ ରାଜନ କିଛି ମନରେ ନ
କଲ । କୃଷ୍ଣସିଂହ. ମହାଭାରତ ବନ । ]

**ରାଜ ନଅ(ବ, ହ)ର**—ଦେ. ବି—ରାଜାଙ୍କ ଉଆସ ବା ବାସସ୍ଥାନ;
Rāja na(ba, ha)ra ରାଜପ୍ରାସାଦ—King's residence;,
রাজাবাড়ি, রাজমহল **राजमहल** king's palace.

**ରାଜ ନଗର**—ସ. ବି—ରାଜଧାନୀ ( ଦେଖ )—
Rāja nagara Rājadhānī ( See )
ଦେ. ବି—ଓଡ଼ିଶାର କନିକା ରାଜ୍ୟର ରାଜଧାନୀ—
Name of the head quarters of the
Kanika estate of Orissa

**ରାଜ ନନ୍ଦନ**—ସଂ ବି. ପୁଂ—ରାଜପୁତ୍ର; ରାଜାଙ୍କ ପୁଅ—
Rāja nandana King's son; prince.
(ରାଜନନ୍ଦିନୀ, ରାଜନନ୍ଦନା—ସ୍ତ୍ରୀ) (ରାଜନନ୍ଦନୀ—ଗ୍ରା. ସ୍ତ୍ରୀରୂପ)

**ରାଜନତି**—ଦେ. ବି ( ସଂ. ରାଜନ୍ ଓ ନିତ୍ୟ )—୧ । ରାଜାଙ୍କର
Rājaniti ନିତ୍ୟକର୍ମ; ରାଜାଙ୍କର ପ୍ରାତ୍ୟହିକ ଦୈନିକ
রাজার নিত্যকর্ম କର୍ମମାନ—1. The different daily
**राजाका नितकाम** acts or avocations of a Rājā.
[ ଦ୍ର—ସାଧାରଣଙ୍କ ଦୈନନ୍ଦିନ କୃତ୍ୟ ପରି ରାଜାଙ୍କର
କ୍ରିୟାମାନଙ୍କର ବିଶିଷ୍ଟ ନାମକରଣ ଅଛି ଓ ଅନ୍ୟମାନଙ୍କ
ନିତି ଅପେକ୍ଷା ରାଜନିତିମାନ ବେଶୀ ଆଡ଼ମ୍ବର ପୂର୍ଣ୍ଣ ।
ରାଜାନିତିଲେ ନୋହି ଦେଖ । ] ୨ । ରାଜାଙ୍କ ନିତି ପରି
ଆଡ଼ମ୍ବରଯୁକ୍ତ କାର୍ଯ୍ୟ—2. Any act accompanied with grandeour ( like that of a king).

**ରାଜନିତି ବଢ଼ିବା**—ଦେ. ବି—ରାଜାଙ୍କର କୌଣସି ବିଶିଷ୍ଟ ଦୈନନ୍ଦିନ
Rājaniti bardhibā କାର୍ଯ୍ୟର ସମ୍ପାଦନ—The per-
রাজার নিত্যকর্ম শেষহওয়া formance of any one of
**राजनितकाम शेषहो** the daily rites of a king.
( ଯଥା—ବର୍ତ୍ତମାନ ଛାମୁଙ୍କର ଶୁଳେଇବାକେ ନିତି
ବଢ଼ୁଛି । )

**ରାଜ ନିୟମ**—ସଂ. ବି—ରାଜବିଧାନ ( ଦେଖ )
Rāja niyama Rājabidhāna ( See )

**ରାଜନୀତି**—ସଂ. ବି—ରାଜ୍ୟଶାସନ ସମ୍ବନ୍ଧୀୟ ନିୟମମାନ, ଯାହାର
Rājaniti ରାଜାଙ୍କର ପାଳନ କରିବା କର୍ତ୍ତବ୍ୟ—The
code of rules for the guidance of kings;
the duties of a king ୨ । ରାଜାଙ୍କ କର୍ତ୍ତବ୍ୟ
ସମ୍ବନ୍ଧେ ଶାସ୍ତ୍ର—2. The branch of political
science dealing with the king's duties;
the science of government. [ ଦ୍ର—
ରାଜାଙ୍କର ରାଜ୍ୟଶାସନ ଶାସନ ସମ୍ବନ୍ଧୀୟ କର୍ତ୍ତବ୍ୟ ୪ଟିଗୋଟି
ଯଥା—ସାମ, ଦାନ, ଦଣ୍ଡ, ଭେଦ । ରାଜା ଏ ଚାରିଗୋଟି
ଉପାୟ ଅବଲମ୍ବନ କରି ରାଜ୍ୟ ଶାସନ କରିବେ ।
ଆବଶ୍ୟକ ସ୍ଥଳରେ ଲୋକଙ୍କୁ କୋମଳ ବ୍ୟବହାର (ସାମ)
ଦ୍ୱାରା, ଦାନଦ୍ୱାରା, ଦଣ୍ଡଦ୍ୱାରା ବଶୀଭୂତ କରିବେ ଓ ଶତ୍ରୁ
ମଧ୍ୟରେ ଭେଦ ବା ଅନ୍ତର୍ବିବାଦ ଉପସ୍ଥିତ କରାଇ ଆପଣା
ରାଜ୍ୟରେ ଶାନ୍ତିସ୍ଥାପନ କରିବେ । ]

**ରାଜନୀତିକ**—ସଂ. ବିଣ.—(ରାଜନୀତି+ଇକ)—ରାଜନୀତି ସମ୍ବନ୍ଧୀୟ—
Rāja nitika Political. [ଦ୍ର—ଅନେକ ଲେଖକ 'ରାଜ-
ନୈତିକ' ଶବ୍ଦ ବ୍ୟବହାର କରୁଅଛନ୍ତି କିନ୍ତୁ ଏହା
ବ୍ୟାକରଣବିରୁଦ୍ଧ ପ୍ରୟୋଗ ।]

**ରାଜନୀତିଜ୍ଞ**—ସଂ. ବିଣ. ପୁଂ—(ରାଜନୀତି+ଜ୍ଞା ଧାତୁ+କର୍ତ୍ତୃ. ଅ)—
Rājanitijña ରାଜନୀତି ସମ୍ବନ୍ଧରେ ବିଶେଷ ଅଭିଜ୍ଞ—
Versed in the science of government.
[ ଦ୍ର—ଏହିପରି ରାଜନୀତିଜ୍ଞାନ ,ରାଜନୀତିଜ୍ଞତା ଆଦି
ଶବ୍ଦ ହୁଏ ।]

**ରାଜ ନୀଳ**—ସ. ବି.—(ରାଜ=ଶୋଭମାନ+ନୀଳ )—ମରକତ ମଣି;
Rāja nila ଇନ୍ଦ୍ର ନୀଳମଣି—Emerald (gem).

**ରାଜନୈତିକ**—ଦେ. ବିଣ. —(ସ. ରାଜନୀତିକ)—ରାଜନୀତି ସମ୍ବନ୍ଧୀୟ—
Rājanaitika রাজনৈতিক **राजनीतिक** Political.
[ଦ୍ର—ସଂସ୍କୃତ ବ୍ୟାକରଣର ନିୟମ ଅନୁସାରେ ରାଜ-
ନୈତିକ ଶବ୍ଦ ଅଶୁଦ୍ଧ, 'ରାଜନୀତିକ' ଶବ୍ଦ ଶୁଦ୍ଧ ଅଟେ ।]

**ରାଜନୈତିକ ବହୁରୂପୀ(ଗୀ)**—ଦେ.ବି--(ଆଧୁନିକ ପ୍ରୟୋଗ)--(ଲକ୍ଷଣାର୍ଥ)
Rājanaitika bahurupā(pi) ଯେଉଁ ବ୍ୟକ୍ତି ଘନ ଘନ
[ରାଜନୈତିକ ଏଣ୍ଡୁଅ—ଅନ୍ୟରୂପ] ସମୟରେ ଭିନ୍ନ ଭିନ୍ନ ରାଜ-
ନୀତିକ ମତ ପୋଷଣ ଓ ପ୍ରଚାର କରନ୍ତି—Persons
রাজনৈতিক বহুরূপী who change their political
**राजनीतिक बहुरुपिया** opinions often ( like the
changing of colours by a chamellion.)
[ଉ—ନେତାଙ୍କ ପରି ରାଜନୈତିକ ଏଣ୍ଡୁଅଙ୍କର ଅଭାବ ନାହିଁ
ବୈ. ଅଶା । ]

**ରାଜନ୍ୟ**—ସ.ବି.—( ରାଜ୍ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ ଯ, ରାଜନ୍+
Rājanya ସ୍ୱାର୍ଥେ ବା ସାଧ୍ୱର୍ଥେ. ଯ)—୧ । ରାଜପୁତ୍ର—1.
Prince. ୨ । ରାଜବଂଶଜ ବ୍ୟକ୍ତି—2. A descendant of a royal family. ୩ । କ୍ଷତ୍ରିୟ—

୬. A person of the Hindu military caste. ୪ । ଅଗ୍ନି—4. Fire. ୫ । ରାଜାଦନ; କ୍ଷୀରକୋଳି ଗଛ—5. A tree; Mimosops Hexandra. ୬ । କ୍ଷୀରିକା ବୃକ୍ଷ (ବଟ, ଅଶ୍ୱତ୍ଥ, ଯଜ୍ଞଡୁମ୍ବର, ପାକୁଡ ଓ ପାର୍କଟି ବୃକ୍ଷ)—6. A tree of the fig species. ୭ । ରାଜା—7. King.

ରାଜନ୍ୟକ—ସଂ. ବି.—(ରାଜନ୍ୟ+ସମୂହାର୍ଥେ କ)—କ୍ଷତ୍ରିୟ ବା ରାଜନ୍ୟ-
Rājanyaka ସମୂହ—A gathering or multitude of princes or Kshatriyas.

ରାଜନ୍ୟ ବର୍ଗ—ସଂ. ବି.—ରାଜାସମୂହ; କ୍ଷତ୍ରିୟବର୍ଗ—
Rājanya barga A collection of princes or Kshatriyas.
ରାଜନ୍ୟ ମଣ୍ଡଳ(ଳୀ) } —ଅନ୍ୟରୂପ
ରାଜନ୍ୟଗଣ }

ରାଜନ୍ୱାନ୍—ସଂ. ବିଣ.—( ରାଜନ୍+ଅସ୍ତ୍ୟର୍ଥେ ବତ୍; ରାଜନ୍ୱତ୍ ଶବ୍ଦ,
Rājanwān ୧ମା. ୧ବ.)—ପ୍ରଜାରଞ୍ଜକ ରାଜାଙ୍କଦ୍ୱାରା ଶାସିତ
(ରାଜନ୍ୱତୀ—ସ୍ତ୍ରୀ) (ଦେଶ)—(Country) Blessed with good a king.

ରାଜ ପଟ—ଦେ. ବି—୧ । ନୀଳ ଶାଢୀ—
Rāja paṭa Blue śārḍhi or women's cloth.
राजपट [ଦ୍ର—କ ଅବା ରାଜପଟେ ଲୁଦନ ରେଖା, କଳା ମେଘେ ବଜୁଳ ଦେଇଛ ଦେଖା । ପାନକୃଷ୍ଣ. ରସକଲ୍ଲୋଳ । ]
୨ । ସୁନ୍ଦର ବସ୍ତ୍ର—2. A fine cloth.

ରାଜ ପଟୋଳ—ସଂ. ବି.—ଏକ ପ୍ରକାର କାକୁଡ଼—
Rāja paṭola A kind of cucumber.

ରାଜ ପଟ୍ଟ—ସଂ.ବି.—(୬ଷ୍ଠୀ ତତ୍; ରାଜନ୍+ପଟ୍ଟ)—୧ । ରାଜମୁକୁଟ-
Rāja paṭṭa 1. Crown. ୨ । କୃଷ୍ଣବର୍ଣ୍ଣ ମଣି ବିଶେଷ—
2. A black species of gem. ୩ । ରାଜ-ସିଂହାସନ—3 A royal throne. ୪ । ରାଜାଙ୍କ ପଗଡ଼ି—4. A royal fillet (Apte).

ରାଜପଣ—ଦେ. ବି.—ରାଜତ୍ୱ (ଦେଖ)
Rājapaṇa Rājatwa (See)
ରାଜତ୍ୱ राजपन

ରାଜପଣ କରିବା—ଦେ. କ୍ରି.—ରାଜା ହୋଇ ରାଜ୍ୟ ଶାସନ କରିବା—
Rājapaṇa kariba To reign; to rule over a
রাজপণ করা राजपन करना kingdom.

ରାଜ ପତ୍ନୀ—ସଂ. ବି. ସ୍ତ୍ରୀ.—ରାଣୀ; ରାଜମହିଷୀ—
Rāja patnī A queen.

ରାଜ ପଥ—ସଂ. ବି.—(ରାଜନ=ଶ୍ରେଷ୍ଠ+ପଥ; ପଥମାନଙ୍କ ମଧ୍ୟରେ
Rāja patha ରାଜା; ୭ମୀ ତତ୍, ଭୁଲ. ରାଜଦଣ୍ଡ)—ରାଜମାର୍ଗ (ଦେଖ)—Rājamārga (See)

ରାଜ ପଦ—ସଂ. ବି.—(୬ଷ୍ଠୀ ତତ୍; ରାଜନ୍+ପଦ)—୧ । ରାଜତ୍ୱ;
Rāja pada ରାଜାରୂପେ ଅଧିଷ୍ଠାନ ବା ରାଜ୍ୟ ଶାସନ—
[ରାଜପଦବୀ—ଅନ୍ୟରୂପ] 1. The state of being installed as a king. ୨ । (ମ. ପ. ଲ୍ଲେ) ରାଜଦତ୍ତ ପଦ—2. A title or post bestowed by a king.

ରାଜ ପଦ୍ଧତି—ସଂ. ବି.—ରାଜାଙ୍କ ସମ୍ବନ୍ଧୀୟ ରୀତି—Prevailing
Rāja padhati custom regarding a king.

ରାଜପଧତ(ବୀ)—ଦେ. ବି.—(ସଂ. ରାଜପଦ୍ଧତି; ରାଜ ପଦବୀ)—
Rāja padhati (bi) ୧ । ରାଜଦତ୍ତ ଉପାଧି—1. A title bestowed by a king. ୨ । ରାଜପଧିବ (ଦେଖ)
2. Rājapadhiba ( See )

ରାଜ ପଧିବ—ଦେ. ବି.—ରାଜବଂଶରେ ଚଳ ଅଧୁଥିବା ରୀତି—
Rāja padhiba Custom obtaining in a king's family.

ରାଜ ପରିଚ୍ଛଦ—ସଂ. ବି.—୧ । (୬ଷ୍ଠୀ ତତ୍) ମହାର୍ଘ ବା ରାଜାଙ୍କ ଯୋଗ୍ୟ
Rāja parichchhada ପୋଷାକ 1. Princely or rich dress
[ ରାଜ ପରିଧାନ—ଅନ୍ୟରୂପ ] ୨ । ରାଜାଙ୍କ ପୋଷାକ—
2. Royal dress; king's garment. ୩ । (ମ. ପ ଲ୍ଲେ) ରାଜଦତ୍ତ ପୋଷାକ; ଶିରପା—3. A dress bestowed by a king. ୪ । ରାଜକର୍ମଚାରୀଙ୍କ ପରିଧେୟ ପୋଷାକ—4. Official dress. ୫ । ରାଜ ଦରବାରରେ ପରିଧେୟ ପୋଷାକ—5 Court dress.

ରାଜ ପରିବାର—ସଂ. ବି. (୬ଷ୍ଠୀ ତତ୍)—ରାଜାଙ୍କ ବଂଶ; ରାଜକୁଳ—
Rāja paribāra Royal race; royal family.

ରାଜ ପଲାଣ୍ଡୁ—ସଂ. ବି.—ଏକ ପ୍ରକାର ରକ୍ତବର୍ଣ୍ଣ ଛୋଟ ପିଆଜ—
Rāja palāṇḍu A species of small red onion,
ସଂ—ଯବନେଷ୍ଟ, ନୃପାହ୍ୱୟ, ରୋଚକ, ନୃପେଷ୍ଟ, ନୃପକନ୍ଦ, ମହାକନ୍ଦ
ନୃପପ୍ରିୟ, ମହାମୂଲ, ଦୀର୍ଘପତ୍ର, ରକ୍ତକନ୍ଦ, ছোট পেঁয়াজ ମ. ରକ୍ତକାନ୍ଦା ॥ ତେ. କୋମ୍ପିନଉଲି
[ରାଜପ୍ରିୟ, ରାଜେଷ୍ଟ—ଅନ୍ୟରୂପ]

ରାଜ ପହରଣ—ଦେ. ବି—ରାଜ ପରିଚ୍ଛଦ (ଦେଖ)
Rāja paharaṇa Rāja parichchhada (See)
[ରାଜ ପୋଷାକ—ଅନ୍ୟରୂପ] বাজপোষাক राजपहनावा

ରାଜ ପାଟ—ଦେ. ବି.—(ସଂ. ରାଜପଟ୍ଟ)—ରାଜ ସିଂହାସନ—
Rājapāṭa বাজপাট राजपाट Royal throne.

ରାଜ ପିତ୍ତଳ—ସଂ. ବି.—(ବୈଦ୍ୟକ)—ବେଙ୍ଗା ପିତ୍ତଳ; ପିତ୍ତଳ; ତମ୍ବା
Rāja pittala ଓ ଦସ୍ତା ମିଶ୍ରିତ ଧାତୁ—A sort of brass.
[ରାଜପିତ୍ତ—ଅନ୍ୟରୂପ] [ରାଜ ପିତଳ—ଦେ. ରୂପ]

ରାଜପୁତ—ଦେ. ବି. ପୁଂ—(ସଂ. ରାଜପୁତ୍ର)—୧ । ମଧ୍ୟ ଭାରତର
Rājaputa ରାଜପୁତନା ଅଧିବାସୀ କ୍ଷତ୍ରିୟ ଜାତି ବିଶେଷ—
বাজপুত राजपूत 1. A generic term for the
[ରାଜପୁତାଣୀ—ସ୍ତ୍ରୀ] Kshatriyas in Central India or Rajputana. ୨ । ରଜପୁତ (ଦେଖ)—
2 Rajaput (See) [ଦ୍ର—ଏମାନେ ଅମ୍ବଷ୍ଠ କନ୍ୟାଠାରୁ କ୍ଷତ୍ରିୟ ଔରସରେ ଜାତ; ପ୍ରକୃତିବାଦ; 'ରାଜପୁତ୍ର' (ଦେଖ)]

[ଦ୍ର—ରାଜପୁତାନାର ଅଧିବାସୀ କ୍ଷତ୍ରିୟମାନଙ୍କ କେତେକ ବିଶିଷ୍ଟବଂଶ ରାଜପୁତ ନାମରେ ଗଣିତ ହେଉଅଛନ୍ତି । ରାଜପୁତ ଶବ୍ଦ ରାଜପୁତ୍ର ଶବ୍ଦର ଅପଭ୍ରଂଶ । ଭାରତରେ ମୁସଲମାନ୍ ଅଧିକାର ପରେ ଏ ଶବ୍ଦ ପ୍ରଚଳିତ ହୋଇଅଛି । ପ୍ରାଚୀନ କାଳରେ ରାଜକୁମାର ବା ରାଜବଂଶୀୟମାନଙ୍କୁ ରାଜପୁତ୍ର ବୋଲି ପାଉଥିଲେ । ଏଥିପାଇଁ କ୍ଷତ୍ରିୟମାନଙ୍କୁ ମୁସଲମାନ୍‌ମାନେ 'ରାଜପୁତ' ନାମରେ ଡାକିଲେ । ଏବେ ଏହି ଶବ୍ଦ ରାଜପୁତାନାରେ ରହୁଥିବା କ୍ଷତ୍ରିୟମାନଙ୍କର ଗୋଟିଏ ଜାତିର ସୂଚକ ହୋଇ ଯାଇଅଛି । ପ୍ରଥମେ କେତେକ ପାଶ୍ଚାତ୍ୟ ପଣ୍ଡିତ କହୁ ଥିଲେ ଯେ 'ରାଜପୁତ'ମାନେ ଶକ ଆଦି ବିଦେଶୀ ଜାତିଙ୍କ ସନ୍ତାନ ଅଟନ୍ତି ଓ ଏମାନେ କ୍ଷତ୍ରିୟ ବା ଆର୍ଯ୍ୟ ନୁହନ୍ତି । କିନ୍ତୁ ବର୍ତ୍ତମାନ ପ୍ରମାଣିତ ହୋଇଅଛି ଯେ ରାଜପୁତ୍ରମାନେ କ୍ଷତ୍ରିୟ ତଥା ଆର୍ଯ୍ୟ ଅଟନ୍ତି । ବସ୍ତୁତଃ କେତେକ ଜଙ୍ଗଲୀ ଜାତିଙ୍କ ପରି ହୂଣ ଆଦି କେତେକ ବିଦେଶୀ ଜାତି ରାଜପୁତଙ୍କ ସଙ୍ଗେ ମିଳି ଯାଇ ଅଛନ୍ତି । ଶକ ଓ ହୂଣମାନେ ମଧ୍ୟ ଭାରତର ବାହାରେ ରହୁଥିବା ଆର୍ଯ୍ୟ ଥିଲେ ଓ ଏମାନଙ୍କର ଇରାନୀ ଆର୍ଯ୍ୟମାନଙ୍କ ସଙ୍ଗେ ଖୁବ୍ ମିଳାମିଶା ଥିଲା । ଚୌହାନ, ଚୋଲଙ୍କୀ, ପ୍ରତିହାର, ପରମାର ସିସୋଦିୟା, ଏମାନେ ରାଜପୁତ ଅଟନ୍ତି । ରାଜପୁତମାନେ ପ୍ରାଚୀନ କାଳରୁ ଖୁବ୍ ବୀର, ଯୋଦ୍ଧା, ଦେଶଭକ୍ତ ଓ ସ୍ୱାମିଭକ୍ତ ଥିବା ଇତିହାସପ୍ରସିଦ୍ଧ — [ହି. ଶ.]

ରାଜପୁତ(ତା)ନା—ଦେ. ବି ( ସଂ. ରାଜପୁତ୍ର ନାମ୍ନା ରାଜପୁତ୍ର ସ୍ଥାନ )— ବିନ୍ଧ୍ୟାଚଳର ଉତ୍ତରରେ ଓ ସିନ୍ଧୁ ନଦୀର ଦକ୍ଷିଣ ଓ ପୂର୍ବ ଦିଗରେ ଅବସ୍ଥିତ କ୍ଷତ୍ରିୟ ରାଜ୍ୟମଣ୍ଡଳ—A group of Indian States in northern India.
Rājaputa(tā)nā
बाजपुताना
राजपूताना
[ଦ୍ର—ଏହି ରାଜ୍ୟମାନ ଇଂରାଜଶାସନାଧୀନ ଗୋଟିଏ ମଣ୍ଡଳରେ ଭୁକ୍ତ ହୋଇ ଜଣେ ପ୍ରତିନିଧି (Political Agent)ଙ୍କ ତତ୍ତ୍ୱାବଧାନରେ ତତ୍ତତ୍ ରାଜାମାନଙ୍କ ଦ୍ୱାରା ଶାସିତ ହେଉଅଛି । ]

ରାଜପୁତ୍ର—ସଂ. ବି.ପୁଂ ( ୬ଷ୍ଠୀ ତତ୍; ରାଜନ୍+ପୁତ୍ର)—୧ । ରାଜକୁମାର; ରଜାପୁଅ—1. A prince; king's son.
Rājaputra
(ରାଜପୁତ୍ରୀ—ସ୍ତ୍ରୀ)
୨ । ଯୁବରାଜ—2. The eldest son of a reigning king.
୩ । ରାଜପୁତ ( ଜାତି )—3. A caste claiming to be descended from the Kshatriyas.
୪ । ( ରାଜା=ଚନ୍ଦ୍ର+ପୁତ୍ର )—ବୁଧଗ୍ରହ—4. The planet Mercury.

ରାଜପୁତ୍ରକ—ସଂ. ବି. ପୁଂ ( ରାଜପୁତ୍ର+ସ୍ୱାର୍ଥେ କ )—୧ । ରାଜପୁତ୍ର (ଦେଖ )—2 Rājaputra ( See )
Rāja putraka
(ରାଜପୁତ୍ରିକା—ସ୍ତ୍ରୀ)
୨ । ରାଜାନ୍ଦ୍ର; ରାଇଗଛ—2. A kind of wild tree.

ରାଜପୁତ୍ରିକା—ସଂ. ବି. ସ୍ତ୍ରୀ (ରାଜପୁତ୍ରକ+ଆ )—ରାଜକନ୍ୟା; ଜେମା —1. Princess. ୨ । ଜାଜି; ଜାଇଫୁଲ —2. A sort of jasmine; Jasminum Grandiflorum. ୩। ପକ୍ଷୀବିଶେଷ—3. A kind of bird. ୪। ଏକଜାତୀୟ ପିତା ଲାଉ—4. A species of bitter pumpkin. ୫। ରାଜାଫଳ, ପୋଟଳ; ପଟୋଳ—5. Tricosanthes Dioica.
Rāja putrikā

ରାଜପୁତ୍ରୀ—ସଂ. ବି. ସ୍ତ୍ରୀ—୧ । ରାଜକନ୍ୟା—1. Princess. ୨ । ( ବୈଦ୍ୟକ ) ରେଣୁକା ନାମକ ଗନ୍ଧଦ୍ରବ୍ୟ—2. A medicinal scent; Piper Aurantiacum.
Rāja putrī

ରାଜପୁର—ସଂ.ବି—୧ । ରାଜଭବନ—1. King's palace. ୨ । ରାଜଧାନୀ—2 King's capital; metropolis. ୩ । ନ୍ୟାୟ ବିଶେଷ—3. A kind of analogy.
Rāja pura
[ ଦ୍ର—ରାଜପୁରକୁ ଜଟିଥିବା ରକ୍ଷିବର୍ଗଙ୍କ ସମ୍ମୁଖରେ ତନ୍ମଧ୍ୟକୁ ପ୍ରବେଶ କରିବା ବ୍ୟକ୍ତିମାନେ ଯେଉଁପରି ଆଗ ପଛ ହୋଇ ଶ୍ରେଣୀବଦ୍ଧ ଭାବରେ ଗମନ କରନ୍ତି, ସେହିପରି କାର୍ଯ୍ୟ କାରଣର ଶ୍ରେଣୀବଦ୍ଧ ଭାବଥିଲେ ଏହି ନ୍ୟାୟର ପ୍ରୟୋଗ କରାଯାଏ । ]

ରାଜପୁରୀ—ସଂ. ବି—୧ । ରାଜପ୍ରାସାଦ—1 King's palace. ୨। ରାଜଧାନୀ—2. Metropolis.
Rāja purī

ରାଜପୁରୁଷ—ସଂ.ବି—୧ । ରାଜକର୍ମଚାରୀ—1 A government officer; a king's officer. ୨ । ରାଜବଂଶୀୟ ଲୋକ—2. A person belonging to or related to a royal family.
Rāja purusha
(ରାଜପ୍ରକୃତି—ଅନ୍ୟରୂପ)

ରାଜପୁରୋଧା—ସଂ. ବି—ରାଜାଙ୍କ ଦେବାର୍ଚ୍ଚନାଦିରେ ସହାୟକ ବ୍ରାହ୍ମଣ—King's priest.
Rāja purodhā
(ରାଜପୁରୋହିତ—ଅନ୍ୟରୂପ)

ରାଜପୁଷ୍ପ—ସଂ. ବି—ନାଗେଶ୍ୱର ଫୁଲ; ନାଗ କେଶର— Mesua Ferra, a tree and its flower
Rāja pushpa

ରାଜପୂଜା—ସଂ. ବି—ରାଜାଙ୍କୁ ଲୋକେ ଯେଉଁପରି ପୂଜା କରନ୍ତି— A worship or homage due to or rendered to a king.
Rāja pūjā

ରାଜପୂଜିତ—ସଂ, ବିଣ. ପୁଂ (୩ୟା ତତ୍)-ଯାହାଙ୍କୁ ରାଜା ପୂଜା କରନ୍ତି— Worshipped by the king.
Rājā pūjita
(ରାଜପୂଜିତା—ସ୍ତ୍ରୀ)

ରାଜପୂଜ୍ୟ—ସଂ. ବିଣ. ପୁଂ (ତୃତୀୟାତତ୍; ରାଜନ୍+ପୂଜ୍ୟ)—ରାଜାଙ୍କଦ୍ୱାରା ପୂଜନୀୟ—Fit to be worshipped by the king.
Rājapūjya
(ରାଜପୂଜ୍ୟା—ସ୍ତ୍ରୀ)

ରାଜ ପ୍ରତିନିଧି—ସଂ. ବି—ରାଜାଙ୍କ ପରିବର୍ତ୍ତରେ ରାଜ୍ୟ ଶାସନ କରିବା
Rāja pratinidhi ନିମନ୍ତେ ରାଜାଙ୍କଦ୍ୱାରା ନିଯୁକ୍ତ କର୍ମଚାରୀ—
Viceroy; a representive of the king.

ରାଜ ପ୍ରସାଦ—ସଂ. ବି (ଷଷ୍ଠୀ ତତ୍; ରାଜନ୍+ପ୍ରସାଦ=ଅନୁଗ୍ରହ)—
Rāja prasāda ରାଜାଙ୍କ ଅନୁଗ୍ରହ—Royal favour; king's grace.

ରାଜ ପ୍ରାସାଦ-ସଂ. ବି (ଷଷ୍ଠୀ ତତ୍ ; ରାଜନ୍+ପ୍ରାସାଦ=ଅଟ୍ଟାଳିକା)—
Rāja prāsāda ରାଜାଙ୍କ ଘର—The palace of a king; royal apartments.

ରାଜ ଫଳ—ସଂ. ବି (ବୈଦ୍ୟକ)—୧। ପଟୋଳ—1. A sort of
Rāja phala kitchen fruit like cucumber; Tricosanthus Dioica. ୨। ରାଜାମ୍ର (ଦେଖ)—
2. Rājāmra. (See)

ରାଜ ଫଳା—ସଂ. ବି (ବୈଦ୍ୟକ)—ଜମ୍ବୁ; ଜାମୁ—
Rāja phalā Blackberry; Eugenia Jambolana.

ରାଜ ବଂଶ—ସଂ. ବି (ଷଷ୍ଠୀ ତତ୍)—ରାଜକୁଳ—
Rajabamsa Royal family; race of kings.

ରାଜ ବଂଶଜ—ସଂ. ବିଣ (ରାଜ ବଂଶ+ ଜନ୍. ଧାତୁ+କର୍ତ୍ତୃ. ଅ)—
Rāja bamsaja ରାଜକୁଳଜାତ—Descended from a
(ରାଜବଂଶଜା—ସ୍ତ୍ରୀ) line of kings.

ରାଜ ବଂଶୀ—ଦେ. ବିଣ (ସଂ. ରାଜବଂଶୀୟ)—ରାଜବଂଶରୁ ଜାତ—
Rāja bamsi Born of a royal race. ବି—କ୍ଷତ୍ରିୟଜାତି
বাজবংশী ବିଶେଷ—1. Name of a sect of Kshatri-
राजवंशी yas. ୨। ବଙ୍ଗଳା ଭାଷାର ଏକ ଭାଷା—2. A dialect of the Bengalee language

ରାଜ ବଂଶୀୟ—ସଂ. ବିଣ (ରାଜବଂଶ+ଈୟ; ଯ)—୧। ରାଜବଂଶ
Rājabamsiya ସମ୍ବନ୍ଧୀୟ—1 Relating to a royal
(ରାଜବଂଶ୍ୟ—ଅନ୍ୟରୂପ) family. ୨। ରାଜାବଂଶରୁ ଜାତ—
ରାଜବଂଶୀୟା, ରାଜବଂଶ୍ୟା }—ସ୍ତ୍ରୀ 2. Born of a royal race; descended from a royal family.

ରାଜ ବଖ(ଖୁ)ରି—ପ୍ରାଦେ. (ସମ୍ବଲପୁର) ବି—୧। ରାଜପ୍ରାସାଦ—
Rāja bakha(khu)ri 1. Palace ୨। ରାଜଧାନୀର ବାହାରେ ରାଜାଙ୍କ ବାସ ନିମନ୍ତେ ନିର୍ମିତ ସ୍ଥାୟୀଗୃହ—2. Permanent bulding intended for the lodging of a Rājā when he comes to a place

ରାଜ ବଣି—ଦେ. ବି—ଏକପ୍ରକାର ବଣିଚଢେଇ—
Rāja bani A species of myna bird, Acridotherus Tristes.
(ଡାଳବଣି—ଅପସ୍ତ)
সালিক राजमैना

ରାଜ ବଦର—ସ ବି (ବୈଦ୍ୟକ)—୧। ମିଷ୍ଟରସବିଶିଷ୍ଟ ବଡ଼ ବଡ଼
Rāja badara ବରକୋଳି—1 A sort of jejube berry,
(ରାଜ ବଲ୍ଲଭ—ଅନ୍ୟରୂପ) big in size.
ଅନ୍ୟ ସଂ—ଉତ୍ତମ କୋଳ, ନୃପଶ୍ରେଷ୍ଠ, ନୃପବଦର, ପୃଥୁକୋଲ, ତନୁବୀଜ, ମଧୁର ଫଳ,ରାଜକୋଳ, ରାଜବଲ୍ଲଭ নারকুলেকুল, পাটনাইকুল
୨। ଗୋଲ ଅଁଳା (ବ୍ରି. ଶ)—2. Red embelica.
୩। ଲବଣ (ବ୍ରି. ଶ)—3. Salt.
राजबेर ମ. ରାଜକୋର୍

ରାଜ ବଧୂ—ସଂ. ବିଣ—ରାଜବଂଶୀୟା ସ୍ତ୍ରୀ—
Rāja badhū A lady of the king's family.
(ରାଜ ବନିତା—ଅନ୍ୟରୂପ)

ରାଜ ବନ୍ଦୀ—ଦେ. ବି—ରାଜନୈତିକ ଅପରାଧରେ ଦଣ୍ଡିତ ବ୍ୟକ୍ତି—
Rāja bandi Political prisoner; state prisoner.
রাজবন্দী राजबन्दी

ରାଜବର୍ତ୍ତି—ଦେ. ବି.—(ବୈଦିକ ସଂ ରାଜାବର୍ତ୍ତ)—ମଣି ବିଶେଷ—
Rājabartta A kind of gem.
[ବି—ଏହା ଗୋଟିଏ ଉପରତ୍ନ ଅଟେ। ଶିରୀଷ ଫୁଲର ରସ ଓ ଅଦା ରସରେ ଭାବନା ଦେଲେ ଏହା ଔଷଧରୂପେ ବ୍ୟବହୃତ ହେବା ପାଇଁ ବିଶୋଧିତ ହୁଏ। ଶୋଧିତ ରାଜବର୍ତ୍ତ ମଣି ଚୂର୍ଣ୍ଣ କରି ଗନ୍ଧକ ଓ ଲେମ୍ବୁ ରସ ସହିତ ମର୍ଦ୍ଦନ ପୂର୍ବକ ସାତବାର ପୁଟପାକରେ ଦଗ୍ଧ କରିବ। ଏହି ଭସ୍ମ ସେବନ କଲେ ପ୍ରମେହ, ଅର୍ଶ, ପାଣ୍ଡୁ, କଫ ଓ ବାତରୋଗ ନଷ୍ଟ ହୁଏ। ଏହା ରସାୟନ, ଅଗ୍ନିଦୀପକ; ପାଚକ, ପିତ୍ତନାଶକ, ମଧୁର, ସ୍ନିଗ୍ଧ ଓ ବଳକାରକ। ଦ୍ରବ୍ୟଗୁଣ କଳ୍ପଦ୍ରୁମ]

ରାଜ ବର୍ତ୍ମ—ସଂ. ବି.—ରାଜମାର୍ଗ (ଦେଖ)
Rāja barttma Rājamārga (See)

ରାଜବଳା—ସ. ବି—ପ୍ରସାରଣୀ ବା ପସାରୁଣୀ ଲତା—
Rājabalā A creeper; Paederia Foetida.

ରାଜ ବଲ୍ଲଭ- ସ.ବି. ପୁଂ—୧। ରାଜାଙ୍କର ପ୍ରୀତିପାତ୍ର—1. A person
Rāja ballabha who is in the good graces of
(ରାଜବଲ୍ଲଭା—ସ୍ତ୍ରୀ) the king, a person favoured by the king. ୨। ରାଜବଦର (ଦେଖ)—
2. Rājabadara (See)

ରାଜବଲ୍ଲୀ—ସ. ବି (ବୈଦ୍ୟକ)—କଲରା (ଲତା ଓ ଫଳ)—
Rājaballi The hairy Memordica creeper and bitter fruit; Memordica Charantia.

ରାଜ ବଶୀକରଣ—ସ. ବି (ଷଷ୍ଠୀ ତତ୍)—୧। ରାଜାଙ୍କୁ ନିଜର ବଶରେ
Rāja basikarana ରଖିବା—1.The act of bringing a king under one's influence. ୨। ତନ୍ତ୍ରୋକ୍ତ ପ୍ରୟୋଗ ବିଶେଷ (ଯଦ୍ୱାରା ରାଜାମାନେ ସାଧକର ବଶୀଭୂତ ହୁଅନ୍ତି)—2. Tantric rites performed with a view to bringing kings under one's control or influence.

ରାଜ ବସ୍ତ୍ର—ସ. ବି—ରାଜ ପରିଚ୍ଛଦ (ଦେଖ)
Rāja bastra Rāja parichchhada (See)

ରାଜ ବାଟୀ—ଦେ. ବି (ଷଷ୍ଠୀ ତତ୍)—ରାଜପୁର; ରାଜାଙ୍କ ଉଆସ—
Rāja bāti King's palace.
রাজবাটী राजमहल

ରାଜବାନ୍—ସଂ. ବିଣ (ରାଜନ+ଅସ୍ତ ଅର୍ଥରେ ବତ୍, ରାଜବତ୍ ଶବ୍ଦ;)—
Rājabān ଯେଉଁ ଦେଶରେ ରାଜା ଥାଆନ୍ତି—
(ରାଜବତୀ—ସ୍ତ୍ରୀ) (country) Ruled by a king.

ରାଜବାହ—ସଂ ବି (ରାଜନ୍+ବହ୍ ଧାତୁ+କର୍ତ୍ତୃ. ଅ)—ଘୋଟକ;
Rājabāha ଅଶ୍ୱ—The horse. ବିଣ—ରାଜବାହୀ
(ଦେଖ)—Rājabāhī (See)

ରାଜବାହୀ—ସଂ. ବି (ରାଜନ୍+ବହ୍ ଧାତୁ+କର୍ତ୍ତୃ. ଇନ୍; ୧ମ. ୧ବ)—
Rājabāhī ରାଜାଙ୍କ ପାଟହାତୀ—A royal elephant;
an elephant used by a king. ବିଣ—
ରାଜାଙ୍କୁ ଯେ ବହନକରେ—Carrying the king.

ରାଜ ବାହ୍ୟ—ସଂ. ବିଣ—ରାଜାଙ୍କ ବହନକାରୀ –1. Carrying
Rāja bāhya the king. ୨। ରାଜାଙ୍କ ଦ୍ୱାରା ବହନଯୋଗ୍ୟ
—2. Fit to be carried by a king.
ବି—୧। ରାଜାଙ୍କ ପାଟହାତୀ—2. King's personal
elephant ୨। ହାତୀ—2. Elephant.

ରାଜ ବିଚାରାଳୟ—ସଂ. ବି—ରାଜାଙ୍କ କର୍ତ୍ତୃକ ପ୍ରତିଷ୍ଠିତ ଧର୍ମାଧିକରଣ—
Rāja bichārālaya King's court of justice.

ରାଜ ବିଦ୍ୟା—ସଂ. ବି—୧। ରାଜଯୋଗ (ଦେଖ)—
Rāja bidyā 1. Rājajoga (See)
୨। ଶ୍ରେଷ୍ଠ ବିଦ୍ୟା—2. The chief amongst
knowledge or the sciences. ୩। ରାଜନୀତି—
3. The science of Government. ୪।
ରାଜବିଦ୍ୟା ରାଜଗୁହ୍ୟ (ଦେଖ)—4. Rājabidyā
rājaguhya (See)

ରାଜବିଦ୍ୟା ରାଜଗୁହ୍ୟ—ସଂ. ବି—ଭଗବଦ୍‌ଗୀତାର ୯ମ ଅଧ୍ୟାୟରେ
Rājabidyā rājaguhya ବର୍ଣ୍ଣିତ ଭଗବାନଙ୍କର ସର୍ବବ୍ୟାପିତ୍ୱ
ସମ୍ବନ୍ଧେ ଉପଦେଶ—Precepts regarding the
omnipresence of God (in the 9th chapter
of the Gitā).

ରାଜ ବିଧାନ—ସଂ. ବି—୧। ରାଜବଂଶପ୍ରଚଳିତ ନିୟମ—
Rāja bidhāna 1. Royal custom.
(ରାଜବିଧି—ଅନ୍ୟରୂପ) ୨। ରାଜାଙ୍କ ପ୍ରବର୍ତ୍ତିତ ଆଇନ୍—
2. Laws promulgated by the king.

ରାଜ ବିପ୍ଳବ—ସଂ.ବି—୧। ରାଜଦ୍ରୋହ—1. Sedition; mutiny
Rāja biplaba against the king; treason.
୨। ରାଜ୍ୟ ବିପ୍ଳବ—2. Revolution.

ରାଜ ବିଦ୍ୱେଷ—ସଂ.ବି—ରାଜାଙ୍କ ବିରୁଦ୍ଧରେ ଦ୍ୱେଷ—
Rāja bidwesha Sedition; high treason.

ରାଜ ବିରାଦର—ଦେ. ବି—ରାଜାଙ୍କର କୁଟୁମ୍ବ ବା ଭାଇ—
Rāja birādara A king's kinsmen.
রাজবেরাদর राजबिरादर
(ରାଜବିରାଦରି—ଅବସ୍ଥାବାଚକ ବିଶେଷ୍ୟ)

ରାଜ ବିରାଦରାନ୍—ଦେ. ବି (ବହୁବଚନ)—ରାଜ ପରିବାର ସଙ୍ଗେ
Rāja birādarān କୁଟୁମ୍ବ ଦ୍ୱାରା ଆବଦ୍ଧ ବ୍ୟକ୍ତିଗଣ—
রাজবেরাদরেরা Persons related by kinship to
राजबिरादरान a king.

ରାଜ ବିରୋଧ—ସଂ. ବି—୧। ରାଜାଙ୍କ ସଙ୍ଗେ ଶତ୍ରୁତା—
Rāja birodha 1. Enmity with the king.
୨। ରାଜଦ୍ରୋହ—2. Sedition

ରାଜ ବୃକ୍ଷ—ସଂ ବି—୧। ରାଜତରୁ, ଆରଗ୍ବଧ; ସୁନାରୀ ଗଛ—
Rāja bruksha 1. A tree; Cassia Fistula.
୨। ପିଆଳଦ୍ରୁମ; ଚାରୋଳି ଗଛ—2. Buchanania
Latifolia. ୩। ଲଙ୍କାସିଜୁ ଗଛ 2. Euphorbia
Tirucalli.

ରାଜ ବୃତ୍ତ—ସଂ. ବି—୧। ରାଜୋଚିତ ଆଚରଣ—1. Conduct
Rāja brutta befitting a king. ୨। ନ୍ୟାୟାର୍ଜିତ
ଧନର ରକ୍ଷଣ, ବୃଦ୍ଧିକରଣ, ସତ୍‌ପାତ୍ରରେ ଦାନ ଓ ସତ୍-
କାର୍ଯ୍ୟରେ ବ୍ୟୟ—2. Preserving, investing
and properly spending money acquired
by rightful means.

ରାଜ ବେରାଜ(ଜି)—ବୈଦେ. ବି (ବିପରୀତାର୍ଥ ଯୁଗ୍ମଶବ୍ଦ; ଅ. ରାଜୀ+
Rāja berāja(ji) ଗୈର୍‌ରାଜୀ)—ରାଜି ଓ ବେରାଜି; ସମ୍ମତି
রাজিগররাজী ଓ ଅସମ୍ମତି—Agreement and dis-
राजीगैरराजी agreement; consent and refusal.
ବିଣ—ସମ୍ମତ ଓ ଅସମ୍ମତ—Consented and
disagreeing.

ରାଜ ବେଶ—ସଂ. ବି—ରାଜାଙ୍କ ପୋଷାକ—
Rāja besa Dress of a king.

ରାଜ ବୈଦ୍ୟ—ସଂ. ବି—୧। ରାଜାଙ୍କ ଚିକିତ୍ସାକାରୀ ବୈଦ୍ୟ—
Rāja baidya 1. King's physician; a physician
(ରାଜ ବଇଦ୍ୟ—ଗ୍ରା. ରୂପ) to a king's household.
୨। ରାଜାନୁଗ୍ରହପ୍ରାପ୍ତ ଚିକିତ୍ସକ—2. Physician
honoured by a king.

ରାଜ ଭକ୍ତ—ସଂ. ବିଣ. ପୁଂ (୬ଷ୍ଠୀ ତତ୍)—ରାଜାଙ୍କ ପ୍ରତି ଅନୁରକ୍ତ—
Rāja bhakta Devoted to the king; loyal.
(ରାଜଭକ୍ତା—ସ୍ତ୍ରୀ)

ରାଜ ଭକ୍ତି—ସଂ. ବି—ରାଜାଙ୍କ ପ୍ରତି ଭକ୍ତି, ସ୍ନେହ ବା ଅନୁରାଗ—
Rāja bhakti Devotion to the king; loyalty.

ରାଜ ଭଙ୍ଗ—ଦେ. ବି (ସଂ. ରାଜ୍ୟ ଭଙ୍ଗ)—୧। ରାଜ୍ୟନାଶ—
Rāja bhanga 2. Destruction of a kingdom.
রাজ্যনাশ राजभङ्ग ୨। ଅରାଜକତା—2. Anarchy.
[ ଉ—ରାଜଭଙ୍ଗ ଦୁଃଖ ଯେ ସେଶରେ ଦାରୁଣ—
ଶିବସ୍ୱରୋଦୟ। ]

ରାଜ ଭଣ୍ଡାର—ଦେ. ବି—ରାଜକୋଷ—
Rāja bhandāra King's treasury.
রাজভাণ্ডার राजभंडार

**ରାଜ ଭବନ**—ସଂ. ବି—ରାଜପ୍ରାସାଦ; ରାଜାଙ୍କର ଘର—
Rājabhabana — King's palac

**ରାଜ ଭାଗ**—ଦେ. ବି (ସଂ. ରାଜନ୍+ଭାଗ)—୧। ରାଜାଙ୍କୁ ଦେୟ ରାଜସ୍ୱ
Rāja bhāga — ଆଦି—1. Royalty ୨। ଜମି
ବାজভাগ **राजभाग** ଚାଷ କରିଥିବା ରଇତ ଫସଲର ଯେଉଁ
ଅଂଶ କ ଭୂମ୍ୟଧିକାରୀଙ୍କୁ ଦିଏ—2. Produce-rent
paid to the landlord by a cultivating
rayat. ପ୍ରାଦେ. (ପୁରୀ) ବି—ଦାନାଧ୍ୟକ୍ଷଙ୍କର ପ୍ରାପ୍ୟ
କେତେକ ବିଶିଷ୍ଟ ଅଧିକାର—Some privileges
dues to the donors.

**ରାଜଭାଷା**—ସଂ. ବି—ରାଜାଙ୍କ ମାତୃଭାଷା—The mother-tongue
Rājabhāshā — of the reigning king.

**ରାଜଭୂୟ**—ସଂ. ବି (ରାଜନ୍+ଭୂ ଧାତୁ+ଭାବ.ୟ)—୧। ରାଜତ୍ୱ—
Rājabhūya — 1. Kingship. ୨। ରାଜ୍ୟ—
2. Kingdom.

**ରାଜଭୂଷା**—ସଂ. ବି—ରାଜପରିଚ୍ଛଦାଦି—
Rājabhūshā — Kingly dress

**ରାଜଭୋଗ**—ସଂ. ବି—୧। ଅତୁଳ ଐଶ୍ୱର୍ଯ୍ୟ—1. Princely
Rājabhoga — prosperity. ୨। ରାଜାଙ୍କ ଉପଭୋଗ୍ୟ
বাজভোগ **राजभोग** ସାମଗ୍ରୀ—2. Articles enjoyed by
a king. ୩। ରାଜାଙ୍କ ପରି ଅପୂର୍ବ ବା ସୁଖ-
ସ୍ୱାଚ୍ଛନ୍ଦ୍ୟ ଉପଭୋଗ—3. Enjoyment of the
pleasures of life befitting a king. ଦେ.
ବି—୧। ମିଷ୍ଟାନ୍ନବିଶେଷ—1. Name of a sweet-
meat. ୨। ଧାନ୍ୟ ବିଶେଷ—2. A sort of
paddy.

**ରାଜଭୋଗ୍ୟ**—ସଂ. ବିଣ. (ଷଷ୍ଠୀ ତତ୍)—ରାଜାଙ୍କ ଉପଭୋଗର
Rājabhogya — ଉପଯୁକ୍ତ—Fit to be enjoyed by a
(ରାଜଭୋଗ୍ୟା—ସ୍ତ୍ରୀ) king. ବି—୧। ପିଆଳ ବୃକ୍ଷ;
ଚାରୋଳି ଗଛ—1. A tree; Buchanania
Latifolia. ୨। ଜାଇଫୋଶ; ଜାଇଫଳ—
2. Nutmeg.

**ରାଜ ମଇ**—ପ୍ରାଦେ (ଅନୁଗୁଳ) ବି.—ବନ୍ୟ କ୍ଷୁଦ୍ରବୃକ୍ଷବିଶେଷ—
Rājamai — A species of small wild tree.

**ରାଜମଜୁର(ରି)**—ଦେ. ବି. (ସଙ୍କର ଶବ୍ଦ)—ରାଜ ମିସ୍ତ୍ରୀ ଓ ତାକୁ
Rājamajur(ri) — ଇଟା ଆଦି ଯୋଗାଇବା ଲୋକ—
(ରାଜ ମୂଲିଆ—ଅନ୍ୟରୂପ) A mason and the
বাজওমজুর **राजमजूर** labourer who supplies
him with the materials.

**ରାଜ ମଣ୍ଡଳ**—ସଂ.ବି. (ରାଜା+ମଣ୍ଡଳ=ସମୂହ)—୧। ରାଜାସମୂହ—
Rāja maṇḍala — 1. An assembly of kings.
୨। ହିନ୍ଦୁ ରାଜନୀତି ବର୍ଣ୍ଣିତ ଦ୍ୱାଦଶ ପ୍ରକାରର ରାଜା—
2. Twelve classes of kings classified in
the Hindu science of politics. (ଯଥା—
୧। ଅରି (Enemy), ୨। ମିତ୍ର (Ally), ୩। ଅରିର
ମିତ୍ର (Friend of an enemy), ୪। ମିତ୍ରର ମିତ୍ର
(Friend of an ally), ୫। ଅରିମିତ୍ରର ମିତ୍ର
(Friend of enemy's ally), ୬। ପାର୍ଷ୍ଣିଗ୍ରାହ (An
ally who fights with a king's enemy
who attacks during the king's absence)
୭। ଆକ୍ରନ୍ଦ (Fighting; belligerent) ୮। ପାର୍ଷ୍ଣି-
ଗ୍ରାହାସାର (An enemy of Pārsṇnigrāha),
୯। ଆକ୍ରନ୍ଦାସାର (The enemy of the belli-
gerent), ୧୦। ବିଜିଗୀଷୁ (Bent upon
conquest; invader), ୧୧। ମଧ୍ୟମ (Mediator),
୧୨। ଉଦାସୀନ (Neutral)

**ରାଜମନ୍ତ୍ରୀ**—ସଂ. ବି—ରାଜାଙ୍କର ପ୍ରଧାନ ମନ୍ତ୍ରୀ—Prime minister,
Rājamantrī — king's counsellor.

**ରାଜମନ୍ଦିର**—ସଂ. ବି (ଷଷ୍ଠୀ ତତ୍)—ରାଜପ୍ରାସାଦ—
Rājamandira — Palace.

**ରାଜମର୍ଯ୍ୟାଦା**—ସଂ. ବି—୧। ରାଜାଙ୍କ ଉପଯୁକ୍ତ ସମ୍ମାନ—
Rājamarjyādā — 1. Honor or homage due to a
king. ୨। ରାଜବିଧି—2. Custom of kings;
kingly custom.

**ରାଜମଲ୍ଲି(ଲ୍ଲୀ)**—ସଂ. ବି—ଏକପ୍ରକାର ବଡ଼ ମଲ୍ଲିଫୁଲ—
Rajamall(llī) — A sort of Jasmine.

**ରାଜମହଲ**—ଦେ. ବି (ସଂ. ରାଜନ୍ ଓ ଫା. ମହଲ୍)—୧।
Rājamahala — ରାଜପ୍ରାସାଦ—1. Palace. ୨।
রাজমহল ରାଜାନ୍ତଃପୁର—2. The harem of a king.
**राजमहल** ୩। ବିହାର ପ୍ରଦେଶର ସାନ୍ତାଳ ପ୍ରଗନା ନିକଟସ୍ଥ
ପର୍ବତମାଳା ବିଶେଷ—3. Name of a range of
mountains in the Santhal Pergunnahs.
[ଦ୍ର—ଏ ପର୍ବତମାଳା ସମୁଦ୍ର ଅପେକ୍ଷା ଦୁଇ ହଜାର ଫୁଟ
ଉଚ୍ଚ। ଏଠାରେ ମୋଗଲ ରାଜତ୍ୱକାଳର ଅନେକ
ରାଜପ୍ରାସାଦ, ମସ୍‌ଜିଦ୍ ଆଦିର ଭଗ୍ନାବଶେଷ ଅଛି—
ବି. ଶ.]

**ରାଜ ମହିଷୀ**—ସଂ. ବି. ସ୍ତ୍ରୀ—୧। ରାଣୀ—1. Queen. ୨। ପାଟ-
Rāja mahishī — ମହାଦେଈ; ପଟ୍ଟମହିଷୀ—2. The eldest
queen of a king.

**ରାଜମାନ**—ଦେ. ବି—୧। ରାଜୋଚିତ ସମ୍ମାନ—1. Honour
Rājamāna — bifitting a king. ୨। ରାଜାଙ୍କ ଦ୍ୱାରା
রাজসমান ପ୍ରଦତ୍ତ ସମ୍ମାନ—2. Honour bestowed by
**राजसमान** a king; honorific title conferred by
a king. ବିଣ—ଐଶ୍ୱର୍ଯ୍ୟଶାଳୀ—Prosperous.

**ରାଜମାର୍ଗ**—ସଂ.ବି—୧। ରାଜପଥ, ସର୍ବସାଧାରଣଙ୍କ ଅବାଧରେ ବ୍ୟବହାର
Rājamārga — କରିବା ରାସ୍ତା—1. Public road; king's
highway. ୨। ବଡ଼ଦାଣ୍ଡ; ୪୦ ହାତ ଓସାରର ରାସ୍ତା
—1. A road 40 cubits wide.

ରାଜମାଷ—ସଂ. ବି. ( ରାଜ=ପ୍ରାଧାନ୍ୟଶାଳୀ+ମାଷ=ବ୍ରୀହି )—ମହାମାଷ;
Rājamāsha ବରଗୁଡ଼ି—A sort of kidney bean,
ଅନ୍ୟ ସଂ—ମହାମାଷ, ଚପଲ, ଚବଳ, Vigna Catjang
ବର୍ବଟ୍ଟ, ମକୁଷ୍ଟକ, ଦ୍ୱିଜସପ୍ତ Dolichos Synensis.
ନୀଳମାଷ, ନୃପମାଷ, କୃଷ୍ଣପୋତକ, ସିତମାଷ ଓ. ବରଗୁଡ଼ି
ବର୍ବଟି **लोबिया** ମ. ନୀଳଇବାବ

ରାଜମିସ୍ତ୍ରୀ—ଦେ. ବି. ( ସଂ. ରଞ୍ଜକ+ଇଂରେଜ୍‌ଦେଶୀୟ ଭାଷା—ମେଷ୍ଟର୍ )
Rājamistri ସ୍ଥପତି; ବାସ୍ତୁଶିଳ୍ପୀ; କୋଠାକାମ କରିବା
রাজমিস্ত্রী କାରିଗର—Architect; mason. [ଦ୍ର
**राजमिस्त्री** —ରାଜମିସ୍ତ୍ରୀମାନେ କାମ କରିବା ଉପଲକ୍ଷରେ ବ୍ୟବହାର କରିବା ଯନ୍ତ୍ରମାନଙ୍କ ନାମ—

କରଣୀ—( Trowel ) ଚୂନଆଦି କାନ୍ଥରେ ବୋଳିବା ଓ କାନ୍ଥଆଦି ମାଠିବାପାଇଁ ଲୁହାର ପତ୍ରାକୃତି ଯନ୍ତ୍ର; ଏଥିରେ କାଠର ବେଣ୍ଟ ଲାଗିଥାଏ ।

ନହଲା—ଛୋଟ କରଣୀ ( Small trowel )

ଓଳମ—ଶେଷ ଭାଗରେ ନଟୁ ଓହଳି ଥିବା ଯେଉଁ ସୂତାଦ୍ୱାରା କାନ୍ଥ ସିଧା ଥିବା ପରୀକ୍ଷା କରାଯାଏ (plumb line). ଏହାର ତିନି ଅଂଶ ଯଥା—ଓଳମ ସୂତା, ଖାରମା ବା ଖାଡ଼ୁମା, ନଟୁ ବା ଓଳମ ନଟୁ ।

ତଗରା—କାମ କଲାବେଳେ ଯେଉଁ ପାତ୍ରରେ ଚୂନ ଓ ମସଲା ଆଦି ମିସ୍ତ୍ରୀଙ୍କ ପାଖରେ ରଖାଯାଇ ଥାଏ ।

ଓଶା—କାଠର କଚ୍ଛପାକାର କରଣୀ (wooden trowel).

ଗଜପଟା, ପଟା ଗଜ—ଯେଉଁ ଯଷ୍ଟି ଆକୃତିର କାଠଖଣ୍ଡ ଦ୍ୱାରା ଚୂନ ବୋଳା ହୋଇଥିବା ସ୍ଥାନକୁ ସମତଳ କରାଯାଏ ।

ପିଞ୍ଛ—ଲୁଗା ଆଦିରେ ବନ୍ଧା ହୋଇଥିବା ପୁଚ୍ଛାକାର ବ୍ରୁସ୍ । ଏହାକୁ ପାଣି ହାଣ୍ଡିରେ ବୁଡ଼ାଇ ଚୂନ ବୋଳା ହୋଇଥିବା କାନ୍ଥରେ ଲଗା ଯାଏ ।

ଭଗା, ଭଙ୍ଗା ମଠାମ—ଗୋଟିଏ ତ୍ରିକୋଣାକାର କାଠର ଯନ୍ତ୍ର; ଏହାର ବାହୁଦ୍ୱୟକୁ କାନ୍ଥ ବା ଭୂମି ଉପରେ ଥୋଇ ତ୍ରିଭୂଜର ମୁଣ୍ଡଠାରୁ ଗୋଟିଏ ଓଳମସୂତା ତଳକୁ ଓହଳାଇ ଦେଇ ଭୂମିର ବା କାନ୍ଥର ସମତଳତା ସ୍ଥିର କରାଯାଏ ।

ପାରା ମଠାମ—ପାରା ଭର୍ତ୍ତି ହୋଇଥିବା ନଳ । ଏହାକୁ କୌଣସି ସ୍ଥାନରେ ଥୋଇଲେ ସେ ସ୍ଥାନ ସମତଳ ଅଛି କି ନାଁ, ଜଣା ପଡ଼େ । (Mercury level). ]

ରାଜ ମୁକୁଟ—ସଂ. ବି.—ରାଜାଙ୍କ ମୁଣ୍ଡରେ ପିନ୍ଧାଯିବା ମୁକୁଟ—
Rāja mukuṭa King's crown.
(ରାଜମକୁଟ—ଗ୍ରାମ୍ୟରୂପ)

ରାଜ ମୁଥା—ଦେ. ବି.—(ସଂ. ରାଜନ୍ ଓ ମୁସ୍ତକ)—ଭଦ୍ର ମୁସ୍ତକ; ବଡ଼
Rāja muthā ମୁଥା—A sort of fragrant root.
বড়মুথা **बड़ीमोथा** (ରାଜମସ୍ତକ—ସଂ. ରୂପ)

ରାଜ ମୁଦ୍ରା—ସଂ. ବି.—ରାଜାଙ୍କ ନାମାଙ୍କିତ ଦେଶ ପ୍ରଚଳିତ ମୁଦ୍ରା—
Rāja mudrā The current coin of the realm bearing the figure of the king.

ରାଜ ମେଳକ—ସଂ. ବି.—ରାଜ ଯୋଟକ (ଦେଖ)
Rāja meḷaka Rājajoṭaka (See)

ରାଜ ଯକ୍ଷ୍ମା—ସଂ. ବି.—(ରାଜ=ଚନ୍ଦ୍ର+ଯକ୍ଷ୍ମା; ଚନ୍ଦ୍ରଙ୍କୁ ଏହି ରୋଗ
Rāja jakshmā ଧରି ଥିବାରୁ ଏହି ନାମ)—ରାଜକାଶ; ଅତି ଶୀଘ୍ର ପ୍ରାଣନାଶକ ଶ୍ୱାସରୋଗ ବିଶେଷ—Pulmonary consumption; pthisis.

ରାଜ ଯୋଗ—ସଂ. ବି.—୧ । ଯୋଗସାଧନର ମାର୍ଗ ବିଶେଷ; ରାଜବିଦ୍ୟା;
Rāja joga କର୍ମଯୋଗର ଚରମ ଅବସ୍ଥା—1. A mode of devotional meditation. ୨ । ଜାତକରେ ଗ୍ରହମାନଙ୍କର ଶୁଭ ସୂଚକ ଅବସ୍ଥାନ ବିଶେଷ (ଏପରି ବ୍ୟକ୍ତି ରାଜା ହୁଅନ୍ତି)—An auspicious combination of natal planets bringing about the person's becoming a king.

ରାଜ ଯୋଗ୍ୟ—ସଂ. ବିଣ.—ରାଜାଙ୍କ ନିମନ୍ତେ ଉପଯୁକ୍ତ; ରାଜାଙ୍କ
Rāja jogya ଉପଯୋଗୀ (ବିଷୟ)—Befitting a king; fitting to a king; fit for a king's enjoyment.

ରାଜଯୋଟକ—ସଂ. ବି.—ରାଜଯୋଟକ (ଦେଖ)
Rāja joṭaka Raja joṭaka (See)

ରାଜ ରକ୍ତ—ସଂ. ବି. (୬ଷ୍ଠୀ ତତ୍)—ରାଜାଙ୍କର ରକ୍ତ—
Rāja rakta The blood of a king.

ରାଜ ରଙ୍ଗ—ସଂ. ବି.—ରଜତ; ରୌପ୍ୟ; ରୂପା—
Rāja ranga Silver.

ରାଜ ରତ୍ନ—ସଂ. ବି.—ମାଣିକ୍ୟ—
Rāja ratna Ruby.

ରାଜ ରାଜ—ସଂ. ବି—୧ । ଏକଛତ୍ର ରାଜା; ସମ୍ରାଟ୍—1. A
Rāja rāja king of kings, ୨ । ଚନ୍ଦ୍ର—2. The moon. ୩ । କୁବେର—3. The God of wealth.

ରାଜରାଜଭୂତିଦାୟୀ—ଦେ. ବିଣ—କୁବେର ସମ୍ପତ୍ତି ଦାୟକ—
Rājarājabhutidāyi Bestowing the treasure a Kubera. [ ଉ—ଯୁକ୍ତ ମନ ଅଙ୍ଗନମ ସୁଖୀ ରାଜରାଜଭୂତିଦାୟୀ ବେଗେ ସାଜ ସାଜ ହେ । ଉଜ୍ଜ. ପ୍ରେମସୁଧାନିଧି । ]

ରାଜ ରାଜୁ(ଜୋ)ଡ଼ା—ଦେ. ବି. ( ବହୁବଚନ )—ରଜା ରାଜୁଡ଼ା; ରାଜା
Rāja rāju(jo)rdā ଓ ରାଜନ୍ୟବର୍ଗ; ରାଜା ଓ ତତ୍ତୁଲ୍ୟ
রাজা রাজড়া ବ୍ୟକ୍ତିଗଣ; ରାଜା ଓ ସାମନ୍ତ ରାଜାଗଣ—
**राज रजवाडा** Kings and such like personages.

ରାଜ ରାଜେଶ୍ୱର—ସଂ. ବି. ପୁଂ—୧ । ରାଜାଧିରାଜ; ସମ୍ରାଟ୍—
Rāja rājeśwara 1. Emperor. ୨ । ଜାହୁ ଓ କୁଷ୍ଠ-
(ରାଜ ରାଜେଶ୍ୱରୀ—ସ୍ତ୍ରୀ) ଆଦିର ଆରୋଗ୍ୟକାରୀ ଔଷଧ ବିଶେଷ

—2. Name of a medicinal preparation for the cure of skin diseases. [ ଦ୍ର— ପାରା, ଗନ୍ଧକ, ହରତାଳ, ସଙ୍ଗେ ଜମ୍ବୀରକୁ ମିଶାଇ ଭୃଙ୍ଗ ରାଜରସରେ ଏକଦିନ ମର୍ଦ୍ଦନ କରି, ଏଥିରେ ତ୍ରିଫଳା, ଗୁଡ଼ୁଚ, ବାଲୁଚ ସମଭାଗରେ ମିଶାଇ ଦୁଇରତି ପ୍ରମାଣରେ ବଟିକା ତିଆର କରାଯାଏ ଓ ଏହା ଦୁଇ ତୋଳା ମଧୁ ବା ଘିଅ ସଙ୍ଗେ ସେବନୀୟ—ବୈ. ଶ. ]

ରାଜ ରାଜେଶ୍ୱରୀ—ସ. ବି. ସ୍ତ୍ରୀ -୧। ସାମ୍ରାଜ୍ଞୀ—1. Empress. Rāja rājeśwarī ( ଯଥା—ରାଜ ରାଜେଶ୍ୱରୀ ଭିକ୍ଟୋରିୟା । ) ୨। ତନ୍ତ୍ରୋକ୍ତ ଦଶମହାବିଦ୍ୟା ମଧ୍ୟରୁ ଏକ ଦେବୀ—2. Name of one of the 10 Goddesses worshiped by the followers of Tantra [ ଦ୍ର—ଏହାଙ୍କୁ ସାଧନା କଲେ ସାଧକ ସର୍ବସୁଖ ଓ ଆଧିପତ୍ୟ ଲାଭ କରେ । ]

ରାଜ ରାଜେଶ୍ୱରୀ ଭିକ୍ଟୋରିୟା—ଦେ. ବି. ସ୍ତ୍ରୀ—ଭାରତର ସମ୍ରାଟ ଅଷ୍ଟମ Rāja rājeśwarī bhiktoriyā ଏଡ୍‌ୱାର୍ଡ଼ଙ୍କ ପ୍ରତିଜନନୀ, বাজ রাজোশবী ভিক্টোবিয়া ପଞ୍ଚମଜର୍ଜଙ୍କ ପିତାମହୀ ଓ ସପ୍ତମ राजराजेवरी भिक्टोरिया ଏଡ୍‌ୱାର୍ଡ଼ଙ୍କ ମାତା—The late Empress Victoria of England. [ ଦ୍ର—ଭିକ୍ଟୋରିୟା ତଳେ ନୋଟ ଦେଖ । ]

ରାଜରାଣୀ—ଦେ. ବି. ସ୍ତ୍ରୀ ( କାବ୍ୟର୍ଥକ ପ୍ରଥମ ଶବ୍ଦ )—୧। ରାଜ ମହିଷୀ Rājarāṇī —1. A queen [ ଦ୍ର—ରାଜରାଣୀ বাজবাণী ହୋଇଣ ମୁଁ କଲି ବନବାସ । ଜନକଶୋଭ. राजरानी ସୀତା ବନବାସ ।] ୨। ଅତୁଲ ଐଶ୍ୱର୍ଯ୍ୟଶାଳିନୀ ସ୍ତ୍ରୀ । —2. A lady blessed with prosperity.

ରାଜରୀତି—ସଂ. ବି—ରାଜପିତ୍ତଳ ( ଦେଖ ) Rājariti Rājapittala ( See )

ରାଜର୍ଷି—ସଂ. ବି—( କର୍ମଧା; ଯେଉଁ ଲୋକ ରାଜା ହୋଇ ଋଷି ପରି Rājarshi ଜୀବନ କଟାନ୍ତି )—ଯେଉଁ ବ୍ୟକ୍ତି ରାଜ ପଦରେ (ରାଜଋଷି—ଦେ. ରୂପ) ଅଧିଷ୍ଠିତ ହୋଇ ମଧ୍ୟ ଋଷି ପରି ଜ୍ଞାନାଲୋଚନା କରନ୍ତି ଏବଂ ସାଂସାରିକ ମାୟାବନ୍ଧନରୁ ଏଡ଼ି ଥାଆନ୍ତି—A king who lives the life of a sage; a saintly king. [ ଦ୍ର—ମିଥିଳାର ରାଜା ଜନକ ଓ ବିଶ୍ୱାମିତ୍ର ରାଜର୍ଷି ଥିଲେ । ଋଷି ୭ ପ୍ରକାରର ଯଥା—ଦେବର୍ଷି, ବ୍ରହ୍ମର୍ଷି, ମହର୍ଷି, ପରମର୍ଷି, ରାଜର୍ଷି, କାଣ୍ଡର୍ଷି ଓ ଶ୍ରୁତର୍ଷି । ଶେଷୋକ୍ତ ୨ ଶ୍ରେଣୀ ବେଦର ଦ୍ରଷ୍ଟା । ରଜବଂଶୀୟ ବା କ୍ଷତ୍ରିୟ କୁଳର ଋଷିଙ୍କୁ ରାଜର୍ଷି ବୋଲାଯାଏ—ବୈ. ଶ ]

ରାଜ ଲକ୍ଷଣ—ସ. ବି ( ସାମୁଦ୍ରିକ )—୧। ମନୁଷ୍ୟଠାରେ ଦେଖାଯିବା Rāja lakshaṇa ରାଜୋଚିତ ଚିହ୍ନ ସକଳ—(Astrology) Marks conspicuous on a person which bespeak of his kingly position. ୨। ରାଜଚିହ୍ନ—2. The distinctive marks of a king.

ରାଜଲକ୍ଷ୍ମୀ—ସ. ବି.—୧। ରାଜାଙ୍କର ବିଭବ ବା ଶୋଭା— Rāja lakshmi 1. The grace of a king; kingly majesty. ୨। ରାଜାଙ୍କ ଐଶ୍ୱର୍ଯ୍ୟାଦିର ଅଧିଷ୍ଠାତ୍ରୀ ଦେବତା—2. The Goddess of fortune of a king.

ରାଜ ଲଖ(ଖି)—ଦେ. ବିଣ—ରାଜଯୋଗ୍ୟ— Rājalākh(khi) Befitting a king; becoming a বাজযোগ্য राजलायक prince. (ରାଜଲାଏକ୍—ଅନ୍ୟରୂପ)

ରାଜଶକ୍ତି—ସ. ବି.—ରାଜାଙ୍କର ସୈନ୍ୟାଦି ଜନିତ କ୍ଷମତା— Rājaśakti Authority of a king due to the possession of army etc.

ରାଜଶଣ—ସ ବି—ଝୋଟ— Rāja śaṇa Jute.

ରାଜ ଶ(ସ)ଫର—ସ. ବି.—ଇଲିଶି ମାଛ—A sort of fish; Rāja śa(sa)phara herring; Clupea Ilisha.

ରାଜଶଯ୍ୟା—ସଂ. ବି—ରାଜୋଚିତ ବିଛଣା— Rājaśajyā Kingly bed.

ରାଜଶାକ—ସଂ. ବି—ରାଜଗିରା ( ଦେଖ ) Rāja śāka Rājagirā ( See ) (ରାଜଶାକନିକା, ରାଜଶାକିନୀ—ଅନ୍ୟରୂପ)

ରାଜଶାସନ—ସଂ. ବି.—୧। ରାଜାଙ୍କ ଦ୍ୱାରା ପରିଚାଳିତ କ୍ଷମତା ବା Rāja śāsana ଶାସନ—1. Discipline or government exercised by a king. ୨। ରାଜାଦେଶ —2. King's edict.

ରାଜଶୃଙ୍ଗ—ସଂ. ବି.—ମାଗୁର ମାଛ— Rāja śrunga A kind of fresh water fish.

ରାଜଶ୍ରୀ—ସଂ. ବି.—ରାଜଲକ୍ଷ୍ମୀ ( ଦେଖ ) Rājaśri Rājalaksmi ( See )

ରାଜଶ୍ରୀ ବାଞ୍ଛିତ ଶୁଭାଶୀର୍ବାଦ—ଦେ. ବି.—ଯାହାଙ୍କ ଆଶୀର୍ବାଦ Rājaśri bāñchhita śubhāśirbāda କରାଯାଏ ତାଙ୍କର বাজশ্রী বাঞ্ছিত শুভাশীর্বাদ ରାଜଲକ୍ଷ୍ମୀ ଲାଭ ପାଇଁ ମଙ୍ଗଳ- राजश्री वान्छीत शुभाशीर्वाद କାମନା—Blessing for the attainment of kingly fortune.

ରାଜସ—ସ. ବିଣ—(ରଜସ୍+ଅ; ଇକ)—୧। ରଜୋଗୁଣମୟ— Rājasa 1. Full of or derived from worldly (ରାଜସିକ—ଅନ୍ୟରୂପ) attributes. ୨। ରଜୋଗୁଣ ସମ୍ବନ୍ଧୀୟ (ରାଜସୀ; ରାଜସିକା—ସ୍ତ୍ରୀ) 2. Relating to 'Rojoguna. ୩। ସଂସାର ସମ୍ମାନଲାଭ ବା ପୂଜା ପାଇବା ପାଇଁ ବା ସ୍ୱାର୍ଥ ଲାଭାର୍ଥ କରାଯିବା (କର୍ମ)—3. (Acts) Done by a man with a view to gain fame or honour.

ରାଜ ସଂସ୍କରଣ—ସଂ. ବି—(ଆଧୁନିକ ପ୍ରୟୋଗ)—ରାଜା ଓ ବଡ଼ଲୋକ Rāja samskarana ମାନଙ୍କ ବ୍ୟବହାର ନିମନ୍ତେ ଉତ୍କୃଷ୍ଟ (ସାଧାରଣ ସଂସ୍କରଣ—ବ୍ୟତିରିକ୍ତ) କାଗଜରେ ଛପା ହୋଇଥିବା ପୁସ୍ତକର ସଂସ୍କରଣ—Edition de luxe of any publication.

ରାଜ ସଦନ—ସଂ. ବି.—ରାଜ ଭବନ; ରାଜ ପ୍ରାସାଦ— Rāja sadana Palace.

ରାଜ ସମ୍ପତ୍—ସଂ. ବି.—୧ । ରାଜାଙ୍କ ଐଶ୍ୱର୍ଯ୍ୟ—1. The affluence of king's. Rāja sampat ୨ । ରାଜାଙ୍କ ନ୍ୟାୟ (ରାଜ ସମ୍ପଦ—ଦେ. ରୂପ) ଐଶ୍ୱର୍ଯ୍ୟ—2. Royal prosperity.

ରାଜ ସଭା—ସଂ. ବି—ଅମାତ୍ୟ ଓ ପଣ୍ଡିତାଦିପରିବେଷ୍ଟିତ ରାଜା; Rāja sabhā ରାଜାଙ୍କ ଦରବାର—King's court; a king sorrounded by his counsellors and wise men.

ରାଜସ (ସୁ,ସେ,ସୋ)ୟୀ—ଦେ. ବିଣ.—ଆଡ଼ମ୍ବରମୟ— Rājas (sū, se, so)yī Grand.

ରାଜସ(ସୁ, ସେ, ସୋ)ୟୀ କାରଖାନା—ଦେ. ବି—(ସଂ. ରାଜସୂୟ)— Rājasa(sū, se, so)yī kārakhānā ଆଡ଼ମ୍ବରପୂର୍ଣ୍ଣ କାର୍ଯ୍ୟ— राजसिक कारखाना; রাজসী কারখানা A pompous work. [ଦ୍ର—ପୂର୍ବକାଳରେ ରାଜାମାନେ ରାଜସୂୟ ଯଜ୍ଞକୁ ଯେପରି ଅଜସ୍ର ଅର୍ଥ ବ୍ୟୟରେ ମହା ଆଡ଼ମ୍ବର ସହକାରେ ସମାଧାନ କରୁଥିଲେ ସେହିପରି କୌଣସି କାର୍ଯ୍ୟକୁ ଖୁବ୍ ଆଡ଼ମ୍ବର ଭାବରେ କଲେ ତାହାକୁ ରାଜସୋୟୀ କାରଖାନା ବୋଲାଯାଏ ।]

ରାଜସରକାର—ଦେ. ବି.—୧ । ରାଜସଭା—1. King's court. Rāja sarakāra ୨ । ରାଜାଙ୍କ ସମ୍ମୁଖ ବା ସନ୍ନିଧି—2. The राजसरकार রাজসরকার king's presence. ୩ । ରାଜାସ୍ୱୟଂ—3. His Majesty, the king.

ରାଜସର୍ପ—ସଂ. ବି.—ରଣା ସାପ (ଦେଖ)—Raṇā sāpa (See) Rāja sarpa রাজসাপ राजसाँप

ରାଜସର୍ଷପ—ସଂ. ବି.—୧ । ରାଇ ସୋରିଷ (ଦେଖ)—1. Rāi Rāja sarshapa sorisha (See)—୨ । ପରିମାଣ ବିଶେଷ—2. A sort of measure.

ରାଜସାକ୍ଷିକ—ସଂ. ବି.—ବିଷ୍ଣୁ ସଂହିତାବର୍ଣ୍ଣିତ ତିନି ପ୍ରକାର ଦଲିଲ ମଧ୍ୟରୁ Rāja sākshika ଏକତମ, ବ୍ୟାବହାରିକ ଲେଖ୍ୟ ବିଶେଷ; ରାଜକୀୟ ଅଧିକରଣରେ ରାଜନିଯୁକ୍ତ ଲେଖକ ଦ୍ୱାରା ଲିଖିତ ଯେଉଁ ଦଲିଲରେ ଅଧିକରଣର ଅଧ୍ୟକ୍ଷଙ୍କର ହସ୍ତଚିହ୍ନିତ ଲେଖାଥାଏ; ଆଧୁନିକ ରେଜେଷ୍ଟ୍ରି ଦସ୍ତାବିଜ— A document written by a scribe appointed by the king and attested or countersigned by a public official; a registered deed. [ଦ୍ର—ଅନ୍ୟ ଦୁଇପ୍ରକାର ଦଲିଲ ଯଥା—ସସାକ୍ଷିକ—ଯେଉଁ ଦଲିଲରେ ସାକ୍ଷୀ ଦସ୍ତଖତ କରି ଥାଆନ୍ତି (Attested document) ଅସାକ୍ଷିକ—ଯେଉଁ ଦଲିଲରେ ସାକ୍ଷୀ ଦସ୍ତଖତ କରି ନ ଥାନ୍ତି । (Unattested document).]

ରାଜସାତ୍—ସଂ. ଅ.—ରାଜାଙ୍କ ଅଧିକାରରେ— Rājasāt In the possession of a kin (Apte).

ରାଜସାୟୁଜ୍ୟ—ସଂ. ବି—ରାଜତ୍ୱ (ଦେଖ)—Rājatwa (See) Rāja sājujya

ରାଜ ସାରସ—ସଂ. ବି.—ମୟୂର—Peacock. Rājasārasa

ରାଜ ସିଂହ—ଦେ. ବି.—(ନାମ)—ପ୍ରସିଦ୍ଧ ରାଜପୁତ ରାଜା ବିଶେଷ - Rāja simha Name of a famous Rājput king. [ଦ୍ର—କୀର୍ତ୍ତିକ ତେଜସ୍ୱୀ 'ରାଜସିଂହ'ଙ୍କର ହୋଇଥିଲା ଯାହା ରଣ ପ୍ରାଙ୍ଗଣ । ନନ୍ଦକିଶୋର. କୃଷ୍ଣକୁମାରୀ ।]

ରାଜସିକ—ସଂ. ବିଣ.—ରାଜସ (ଦେଖ) Rājasika Rājasa (See)

ରାଜ ସିଂହାସନ—ସଂ. ବି.—ରାଜ ସଭାରେ ରାଜାଙ୍କର ବସିବା ଆସନ— Rāja simhāsana King's throne.

ରାଜସୀ—ସଂ. ବିଣ. ସ୍ତ୍ରୀ—ରଜୋଗୁଣମୟୀ—Full of 'Rajoguṇa. Rājasī ବି—୧ । ରଜୋଗୁଣମୟୀ ଦୁର୍ଗା—1. Goddes'. Durgā endowed with rajoguṇa. ୨ । ରାଜକୀୟ—2. Royal; kingly. ଦେ. ବିଣ.— ରାଜସୟୀ (ଦେଖ)—'Rājasayī (See).

ରାଜସୁଖ—ସଂ. ବି—ରାଜ୍ୟଭୋଗ ଜନିତ ସୁଖ—Happiness Rāja sukha enjoyed by a king.

ରାଜସୁତ—ସଂ. ବି. ପୁଂ—ରାଜପୁତ୍ର (ଦେଖ) Rāja suta (ରାଜସୁତା—ସ୍ତ୍ରୀ) Rājaputra (See)

ରାଜସୂୟ—ସଂ.ବି—(ରାଜନ୍ + ସୂ.ଧାତୁ = ପ୍ରସବ କରିବା + କର୍ମ୍ମ ଯ)— Rājasūya ୧ । ସାମବେଦ ବିହିତ ସମ୍ରାଟଙ୍କ କର୍ତ୍ତବ୍ୟ ଯଜ୍ଞ ବିଶେଷ—1. A vedic sacrifice enjoined on emperors by the Sāmabeda. [ଦ୍ର—ଏହି ଯଜ୍ଞରେ ଅଧୀନ ଓ ସାମନ୍ତ ରାଜାମାନେ ଯୋଗ ଦେଇ ଉଚ୍ଛିଷ୍ଟାପାତ୍ର ନାନା କାର୍ଯ୍ୟ କରନ୍ତି । ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞରେ ସ୍ୱୟଂ ଶ୍ରୀକୃଷ୍ଣ ବ୍ରାହ୍ମଣମାନଙ୍କ ପଦପ୍ରକ୍ଷାଳନ ଭାର ନେଇଥିଲେ ।] ୨ । ପର୍ବତବିଶେଷ—2. Name of a mountain. ୩ । ଧାନ୍ୟ ବିଶେଷ—3. Name of a paddy. ୪ । ରାଜମାର୍ଗ—4. Highway.

ରାଜସେବକ—ସଂ.ବି.ପୁଂ—ରାଜାଙ୍କ ଚାକର—King's servant. Rāja sebaka (ରାଜସେବିକା—ସ୍ତ୍ରୀ)

ରାଜସେବା—ସଂ. ବି.—ରାଜାଙ୍କର ପରିଚର୍ଯ୍ୟା; ରାଜାଙ୍କ କାର୍ଯ୍ୟରେ Rāja sebā ଚାକିରି—Service under the king.

ରାଜସ୍କନ୍ଧ—ସଂ. ବି—ଅଶ୍ୱ; ଘୋଟକ—Horse. Rājaskandha

ରାଜସ୍ଥାନ—ଦେ. ବ.—ରାଜପୁତାନା ( ଦେଖ )—
Rājasthāna 1. Rājaputānā ( See )
राजस्थान ୨ । ରାଜପୁତାନା ଅନ୍ତର୍ଗତ ୫ ଗୋଟି ରାଜ୍ୟ
**राजस्थान** ( ମେବାର, ମାରବାଡ଼, ଯସଲମିର୍, କୋଟା ଓ ବୁନ୍ଦି )—2. Five principalities in Rājputānā. [ ଉ—ରାଜସ୍ଥାନେ ଭ୍ରମି ଗ୍ରାମ ମରୁସ୍ଥଳୀ । ରାଧାନାଥ. ଚନ୍ଦ୍ରଭାଗା ।] ୩ । ରାଜପୁତାନାର ରାଜବଂଶୀୟ ରାଜାମାନଙ୍କ ଇତିହାସ ଓ ପୁରାତତ୍ତ୍ୱ ସଙ୍ଗ୍ରହପୂର୍ବକ କର୍ଣ୍ଣେଲ୍ ଟଡ୍ ସାହେବଙ୍କ ରଚିତ ଇଂରାଜୀ ଗ୍ରନ୍ଥ—3. Todd's Rajasthana; a work embodying the history of the Kshatriya families of Rājputānā. [ ଦ୍ର—ଇଂରାଜ ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା ନିଯୁକ୍ତ ହୋଇ କର୍ଣ୍ଣେଲ୍ ଜେମ୍ସ ଟଡ୍ ପ୍ରଥମେ ରାଜପୁତାନା ଅଞ୍ଚଳକୁ ମାପ କରିଥିଲେ ଓ ପରେ ଉକ୍ତ ଅଞ୍ଚଳ ଅନ୍ତର୍ଗତ ୧୭ଟି ରାଜ୍ୟ ସମ୍ବନ୍ଧୀୟ ରାଜସ୍ଥାନର ପୋଲିଟିକାଲ୍ ଏଜେଣ୍ଟ ରୂପେ ନିଯୁକ୍ତ ହୋଇଥିଲେ । ଏହାଙ୍କର ଜନ୍ମ ଖ୍ରୀ ୧୭୮୨, ମୃତ୍ୟୁ ୧୮୩୫ । ଏ ୧୮୦୬ ରୁ ୧୮୨୩ ପର୍ଯ୍ୟନ୍ତ ଉକ୍ତପଦରେ ନିଯୁକ୍ତ ହୋଇଥିଲେ । କର୍ଣ୍ଣେଲ୍ ଟଡ୍ ତାଙ୍କ ରାଜସ୍ଥାନ ଗ୍ରନ୍ଥରେ ରାଜପୁତ ଜାତିର ବିଶେଷ ସୁଖ୍ୟାତି କରି ଅଛନ୍ତି । ]

ରାଜସ୍ୱ—ସଂ. ବ. ( ଷଷ୍ଠୀ ତତ୍; ରାଜନ୍+ସ୍ୱ=ଧନ )—ପ୍ରଜାଠାରୁ
Rājaswa ରାଜାଙ୍କ ପ୍ରାପ୍ୟ ଧନ ବା କର—Revenue payable to the king; tribute.

ରାଜସ୍ୱ ଅଦାଲତ—ଦେ. ବ. ( କଚେରୀ )—ଯେଉଁ ଅଦାଲତରେ
Rajaswa adālata ରାଜସ୍ୱ ସମ୍ବନ୍ଧୀୟ ମକଦ୍ଦମାମାନ ବିଚାର
राजस्व आदालत କରାଯାଏ—A revenue court.
**राजस्व अदालत**

ରାଜସ୍ୱଦାୟୀ—ଦେ. ବଣ. ( କଚେରୀ )—ଯହିଁରୁ ବା ଯାହାଠାରୁ
Rājaswadāyī ସରକାରଙ୍କ ରାଜସ୍ୱ ଆଦାୟ କରାଯାଏ—
(ଲାଖରାଜ୍, ନିସ୍କର—ବିପରୀତ) Revenue-paying ( land
राजस्वदायी **राजस्वदायी** or person).

ରାଜସ୍ୱ ନିଲାମ—ଦେ. ବ. ( କଚେରୀ )—ବୈସୁଲ୍ ଡାକ ନିଲାମ; ରାଜସ୍ୱ
Rājaswa nilāma ବାକି ପଡ଼ିବା ଯୋଗୁଁ ତାହା
राजस्वनिलाम ଆଦାୟ କରିବା ପାଇଁ ରାଜସ୍ୱଦାୟୀ ଭୂମିର
**राजस्वनिलाम** ଅଦାଲତଙ୍କ ଦ୍ୱାରା ବିକ୍ରୟ—Revenue sale;
(ରାଜସ୍ୱ ଡାକ ନିଲାମ—ଅନ୍ୟରୂପ) sale of a land for arrears of revenue.

ରାଜସ୍ୱ ବନ୍ଦୋବସ୍ତ—ଦେ. ବ.—ଗଭର୍ଣ୍ଣମେଣ୍ଟଙ୍କୁ ପ୍ରଜାରଦେୟ ରାଜସ୍ୱର
Rājaswa bandobasta ସ୍ଥିରୀକରଣ—A revenue
राजस्व बन्दोबस्त **राजस्व प्रबन्ध** settlement.

ରାଜସ୍ୱ ବାକି—ଦେ. ବ—ସରକାରଙ୍କୁ ଦେୟ ରାଜସ୍ୱ ନିର୍ଦ୍ଦିଷ୍ଟକାଳରେ
Rājaswabāki ରାଜକୋଷରେ ଦାଖଲ ନ ହୋଇ ବାକି
राजस्वबाकि ରହିଥିବା ଧନ—Arrears of revenue not
**राजस्वबाकी** paid on fixed dates.

ରାଜସ୍ୱ ବିଭାଗ—ଦେ. ବ—ଗଭର୍ଣ୍ଣମେଣ୍ଟର ଯେଉଁ ବିଭାଗଦ୍ୱାରା ରାଜସ୍ୱ
Rājaswa bibhāga ଆଦାୟ ବିଷୟ ବୁଝାଯାଏ—The
राजस्व विभाग Revenue Department of
**राजस्व विभाग** Government

ରାଜସ୍ୱ ସଚିବ—ଦେ ବ.—ରାଜସ୍ୱ ଆଦାୟ ହେବା ସମ୍ବନ୍ଧେ ରାଜାଙ୍କୁ
Rājaswa sachiba ପରାମର୍ଶ ଦେବା ମନ୍ତ୍ରୀ—Revenue
राजस्व सचीव minister; finance minister.
**राजस्व सचीव**

ରାଜସ୍ୱୀ—ଗ୍ରା. ବି.—ରାଜସୂୟ ( ଦେଖ )—Rājasūya ( See )
Rajaswī [ ଉ—ରାଜସ୍ୱୀ ଯଜ୍ଞ କର୍ମ ବିଧି, କରାଇ ସକଳ
राजस्वय ସମୃଦ୍ଧି । ଜଗନ୍ନାଥ. ଭାଗବତ ।] ଦେ. ବଣ—
**राजस्वय** ୧ । ରାଜସିକ ( ଦେଖ )—1. Rājasika (See)
୨ । ରାଜକୀୟ—2 Royal. ୩ । ରାଜସୟୀ (ଦେଖ) Rājasayī (See)

ରାଜହଂସ—ସ. ବ. ପୁଂ—୧ । ରକ୍ତବର୍ଣ୍ଣ ଚଞ୍ଚୁ ଓ ଚରଣଯୁକ୍ତ
Rājahāmsa ଶୁକ୍ଳହଂସ; କଳହଂସ—1 The white
(ରାଜହଂସୀ—ସ୍ତ୍ରୀ) goose (with red legs and eyes); flamingo gander. [ଦ୍ର—କବିପ୍ରସିଦ୍ଧି ଅଛି ଯେ ରାଜହଂସ ଆଗରେ ପାଣିମିଶା ଦୁଧ ରଖିଦେଲେ ସେ ଖାଣ୍ଟି ଦୁଧତକ ପିଇ ପାଣିତକ ଛାଡ଼ିଯାଏ; କିନ୍ତୁ ଏହା ପରୀକ୍ଷାଦ୍ୱାରା ପ୍ରମାଣିତ ହୋଇ ପାର ନାହିଁ । ] ୨ । ଶ୍ରେଷ୍ଠରାଜା; ଯେଉଁ ରାଜା ରାଜହଂସ ପରି ଦୋଷ ତ୍ୟାଗ କରି ଗୁଣ ଗ୍ରହଣ କରନ୍ତି—2. An excellent king. ଦେ. ବ ( ନାମ )—କଟକ ନଗରର ୭ମାଇଲ୍ ପୂର୍ବରେ ଥିବା ଏକ ବଡ଼ ମଉଜା—Name of a big village to the east of Cuttack.

ରାଜହଂସ ବନ—ଦେ. ବ.—କଟକର ପୂର୍ବବର୍ତ୍ତୀ ରାଜହଂସ ନାମକ
Rājahamsa bana ଗ୍ରାମସ୍ଥ ମହାନଦୀ କୂଳେ ଥିବା ଛୋଟ ଅରଣ୍ୟ (ପୂର୍ବକାଳରେ ଏ ଗୋଟିଏ ବୃହତ୍ ବନ ଥିଲା)—The name of a small jungly tract to the east of the Cuttack town along the bank of the Mahanadi. [ ଉ—ପ୍ରାଚୀନରେ ଏବେ ରାଜହଂସବନ ଭେଦ ଉତ୍କଳର ପ୍ରଭୁ ପ୍ରସ୍ରବଣ । ରାଧାନାଥ. ନନ୍ଦିକେଶ୍ୱରୀ ।]

ରାଜ ହସ୍ତୀ—ସ. ବ.—ଯେଉଁ ହାତୀ ଉପରେ ରାଜା ବିଜେ କରନ୍ତି
Rāja hastī ରାଜାଙ୍କର ପାଟହାତୀ—The elephant reserved for the raja's use.

ରାଜା—ସ. ବ. ପୁଂ.—(ରଞ୍ଜ୍ ଧାତୁ=[ପ୍ରଜାମାନଙ୍କୁ] ପ୍ରୀତ କରିବା+
Rājā କର୍ତ୍ତୃ.ଅନ୍; କିମ୍ବା ରାଜ୍ ଧାତୁ=ଶୋଭା ପାଇବା+କର୍ତ୍ତୃ.ଅନ୍;
[ରାଜ୍ଞୀ—ସ୍ତ୍ରୀ] ରାଜନ୍ ଶବ୍ଦ ୧ମା. ୧ବ)—୧ । ନରପତି; ରାଜା; ନୃପତି; ଭୂପତି—1. A king. [ଦ୍ର—ରାଜା ଶବ୍ଦର ପ୍ରକୃତିପ୍ରତ୍ୟୟ ଗତ ଅର୍ଥ-ଯେ ପ୍ରଜାମାନଙ୍କୁ ଶାସନ ପ୍ରଣାଳୀଦ୍ୱାରା ପ୍ରୀତ କରନ୍ତି; କିମ୍ବା ଯେ ଲୋକମାନଙ୍କ ମଧ୍ୟରେ ସ୍ୱୀୟ ଗୁଣ ଓ ବିଭବଦ୍ୱାରା ଶୋଭା ପାଆନ୍ତି । ପ୍ରଥମେ ପୃଥୁ ନାମକ ଜଣେ ବ୍ୟକ୍ତି ଏହି ରାଜା ଉପାଧି ପାଇଥିଲେ ।

ସାଧାରଣତଃ ରାଜ୍ୟର ବା ଦେଶାଂଶର ଅଧିକାରୀଙ୍କୁ ରାଜା ବୋଲାଯାଏ । ଅନେକ ରାଜାଙ୍କ ଉପରେ ପ୍ରଧାନ ରାଜାଙ୍କୁ ସମ୍ରାଟ୍ ବା ରାଜଚକ୍ରବର୍ତ୍ତୀ ବୋଲାଯାଏ । ସମ୍ରାଟଙ୍କୁ କର ଦେବା ରାଜାଙ୍କୁ 'କରଦ ରାଜା' ବୋଲାଯାଏ ଓ ସମ୍ରାଟଙ୍କ ସଙ୍ଗେ ମିତ୍ରତାସୂତ୍ରରେ ଆବଦ୍ଧ ରାଜାଙ୍କୁ 'ମିତ୍ର ରାଜା' ବୋଲାଯାଏ । ଯେଉଁ ରାଜା ଅନ୍ୟ ରାଜାଙ୍କର ଅଧୀନ ନୁହନ୍ତି ସେ ସ୍ୱାଧୀନ ରାଜା ।

ଆଜକାଲି ଭାରତ ଗଭର୍ଣ୍ଣମେଣ୍ଟ 'ରାଜା' ଉପାଧିଦ୍ୱାରା ବିଶିଷ୍ଟ ବ୍ୟକ୍ତିମାନଙ୍କୁ ସମ୍ମାନିତ କରୁଅଛନ୍ତି ଓ ନିମ୍ନଲିଖିତ କ୍ରମରେ ଉକ୍ତ ଉପାଧିସମ୍ପର୍କରେ କ୍ରମଶଃ ଉଚ୍ଚତର ଉପାଧିମାନ ଯଥା —

୧ । ରାଜା ବା ରାଜା ସାହେବ୍ ।

୨ । ରାଜା ବାହାଦର୍ ବା ରାଜା ବାହାଦୁର୍ ।

୩ । ମହାରାଜା ।

୪ । ମହାରାଜା ବାହାଦୁର୍ ।

୫ । ମହାରାଜାଧିରାଜ ।

୬ । ମହାରାଜାଧିରାଜ ବାହାଦୁର୍ ।

ବର୍ତ୍ତମାନ ଇଂରାଜ ଶାସନାଧୀନ 'ରାଜା ଉପାଧିଧାରୀ କେତେ ବ୍ୟକ୍ତି ସାଧାରଣ ଜମିଦାର ଅଟନ୍ତି । କେତେକ ପୂର୍ବତନ ରାଜାଙ୍କ ବଂଶଧର ଅଧୁନିକ ବନ୍ଦୋବସ୍ତ ଜମିଦାର ଅଟନ୍ତି ଓ କେତେକ ରାଜ୍ୟଖଣ୍ଡମାନଙ୍କ ଶାସନାଧିକାର ପ୍ରାପ୍ତ ଗଡ଼ଜାତର ରାଜା ଅଟନ୍ତି । କେଉଁ କେଉଁଠାରେ ରାଜା ଉପାଧିକୁ ଗଭର୍ଣ୍ଣମେଣ୍ଟ ବଂଶ ପରମ୍ପରାକ୍ରମେ ସ୍ୱୀକାର କରି ଅଛନ୍ତି ଓ କେଉଁ କେଉଁଠାରେ ଏହି ଉପାଧିକୁ ବ୍ୟକ୍ତିଗତ କରିଅଛନ୍ତି, ଏବଂ ଏହି ଉପାଧି ଭୂଷିତ ବ୍ୟକ୍ତିମାନଙ୍କ ମୃତ୍ୟୁ ପରେ ସେମାନଙ୍କ ବଂଶଧରମାନେ 'ପୁନର୍ମୂର୍ଷିକୋଭବ' ହେଉ ଅଛନ୍ତି । ] ୨ । କ୍ଷତ୍ରିୟ—2. A member of the warrior caste. ୩ । ଇନ୍ଦ୍ର—3. Indra ୪ । ଚନ୍ଦ୍ର—4. The moon. ୫ । ପ୍ରଭୁ —5. Master. ୬ । ଏକ ଶ୍ରେଣୀର ବହୁ ବସ୍ତୁ ବା ବ୍ୟକ୍ତିଙ୍କ ମଧ୍ୟରେ ଶ୍ରେଷ୍ଠ ବସ୍ତୁ ବା ବ୍ୟକ୍ତି—6. A chief amongst many of a class ( of things or persons ). [ଦ୍ର—ଏ ଶବ୍ଦ ଅନ୍ୟ ଶବ୍ଦର ପରେ ବା ପୂର୍ବରେ ଲାଗି ସମାସ ହେଲେ 'ରାଜ ଆକାର ଧାରଣ କରେ । ଯଥା— ନର ରାଜ, ବାରଣ ରାଜ, ରାଜକାର୍ଯ୍ୟ, ରାଜଯୋଗ, ରାଜପଦ । ] ୭ । (ଜ୍ୟୋତିଷ) ଜ୍ୟୋତିଷ ଗଣନାକ୍ରମେ ଭିନ୍ନ ଭିନ୍ନ ବର୍ଷରେ ପୃଥିବୀର ଶୁଭାଶୁଭ ଉପରେ ଅଧିପତି ରୂପେ କଳ୍ପିତ ହେବା ଗ୍ରହ—7. ( Astrology ) A planet who is said to be the lord over the destinies of the earth for a particular year. (ଯଥା—ଏ ସମ୍ବତ୍ସରରେ ରାଜା ବୁଧ ।)

ରାଜାଅମ୍ବ—ପ୍ରାଦେ. (ଗଡ଼ଜାତ) ବି—ରାମ ଫଳ (ଦେଖ)
Raja āmba Rāma phala. (See)

ରାଜା ଜୟସିଂହ—ସଂ. ବି (ନାମ)—ଜୟପୁର ନଗରର ପ୍ରତିଷ୍ଠାତା
Rājā jayasimha ରାଜା—The founder king of
राजाजयसिंह Jaipur town. [ ଦ୍ର—ଏ ଜ୍ୟୋତିଷ ଶାସ୍ତ୍ରରେ
**राजाजयसिंह** ପାରଙ୍ଗମ ଥିଲେ । ଏ ଅତି ବିଦ୍ୟାନୁରାଗୀ ଥିଲେ । ୧୬୯୯ ଖ୍ରୀଷ୍ଟାବ୍ଦରେ ଏ ସିଂହାସନରେ ବସିଲେ ଓ ୪୪ ବର୍ଷ ରାଜତ୍ୱ କରିଥିଲେ । ଏ ଗଣିତ, ଜ୍ୟୋତିଷ ଓ ରାଜନୀତି ମନ୍ତ୍ରଣାରେ ବଡ଼ ବିଚକ୍ଷଣ ଥିଲେ । ଜ୍ୟୋତିଷଶାସ୍ତ୍ର ଉତ୍ତମରୂପେ ଜାଣିବାପାଇଁ ଏ ପର୍ତ୍ତୁଗାଲ୍‌କୁ ଲୋକ ପଠାଇ ଥିଲେ । ଏହାଙ୍କ ଆଦେଶରେ ଜୟପୁର, ଦିଲ୍ଲୀ, ଉଜ୍ଜୟିନୀ, ମଥୁରା ଓ କାଶୀରେ ମାନ-ମନ୍ଦିରମାନ ନିର୍ମିତ ହୋଇଥିଲା । ଏ ଜ୍ୟୋତିଷ ବୋଧୋପଯୋଗୀ ନାନାବିଧ ଗୋଲକାଦି ଜ୍ୟୋତିଷ ଯନ୍ତ୍ର ନିର୍ମାଣ କରି ପଞ୍ଜିକା ସଂସ୍କାର କରିଥିଲେ । ]

ରାଜାଜ୍ଞା—ସଂ. ବି.—ରାଜାଙ୍କ ହୁକୁମ—
Rājājnā King's command.

ରାଜାତ୍ୟାବର୍ତ୍ତକ —ସଂ. ବି.—ରାଜାବର୍ତ୍ତ (ଦେଖ)
Rājātyābarttaka Rājābartta. (See)

ରାଜାଦନ — ସଂ. ବି (ବୈଦ୍ୟକ) — ପିଯ୍ୟାଲ ବା ଚାରୋଳି ଗଛ—
Rājādana A tree; Buchanania Latifolia.
ଅନ୍ୟ ସଂ.—ପିୟାଳ, ଖରସ୍କନ୍ଧ, ଚାର, ବହୁଲବଲ୍କଲ, ତାପସେଷ୍ଟ, ସନ୍ନକଦ୍ରୁ, ଧନୁଃପଟ । **पियाल चिरोंजी** ତେ. ସାରୁପପ୍ପୁ ପା. ବୁକ୍‌ଲେଖାଦ୍ ଆ. ହବ୍‌ସସମାନା

ରାଜାଦନୀ—ସଂ. ବି — କ୍ଷୀରକୋଳି ଗଛ—
Rājādani A tree; Mimusops Hexandra.
ଅନ୍ୟ ସଂ—ରାଜଫଳ, କପୀଷ୍ଟ, କ୍ଷୀରବୃକ୍ଷ, ନୃପଦ୍ରୁମ, ନିମ୍ବବୀଜ, ମଧୁଫଳ, ମାଧବୋଦ୍ଭବ, କ୍ଷୀରୀ, ଗୁଚ୍ଛଫଳ, ଭୂପେଷ୍ଟ, ଶ୍ରୀଫଳ, ରାଜବଲ୍ଲଭ, ଦୃଢ଼ସ୍କନ୍ଧ କ୍ଷୀରଶୁକ୍ଳ । ଓ. କ୍ଷୀରକୋଳି ଖିରନୀ **खीरी** ମ. ଖିରୁଣୀ, ରେୟନେ ତା. ପଲ୍ଲ

ରାଜାଦ୍ରି—ସଂ. ବି—ରାଜଗିରି (ଦେଖ)
Rājādri Rājagirā. (See)

ରାଜାଧିକରଣ—ସଂ. ବି—ରାଜାଙ୍କ ସ୍ଥାପିତ ଅଦାଲତ —
Rājādikarana King's court of justice.

ରାଜାଧିକରଣିକ—ସଂ. ବି. ପୁଂ—ଅଦାଲତର ବିଚାରପତି—
Rājādhikaranika A judge.

ରାଜାଧିରାଜ —ସଂ. ବି—ରାଜଚକ୍ରବର୍ତ୍ତୀ; ସମ୍ରାଟ —
Rājājādhirāja Emperor; sovereign.

ରାଜାନୁଗ(ମ)ତ —ସଂ ବିଣ—ରାଜାଙ୍କ ଅଧୀନ—
Rājānuga(ma)ta Subservient to the king.
(ରାଜାନୁଗତା—ସ୍ତ୍ରୀ)

ରାଜାନୁଗତୋ **ଧର୍ମଃ**—ସଂ. ପ୍ରବଚନ—ଦେଶର **ଧର୍ମକୁ** ରାଜା ରକ୍ଷା
Rājānugato dharmah କରନ୍ତି; ଧର୍ମ ରାଜାଙ୍କ ଅଧୀନ (ରାଜାନୁଗତେ ଧର୍ମ—ଦେ. ରୂପ) ଅଟେ—Religion or piety follows the king.

ରାଜାନୁଗୃହୀତ—ସଂ. ବଣ. (୬ଷ୍ଠୀ ତତ୍)—ରାଜାଙ୍କ ଦ୍ୱାରା ଅନୁଗୃହୀତ—
Rājānugṛuhīta Favoured by a king.

ରାଜାନୁଗ୍ରହ—ସଂ. ବ (୬ଷ୍ଠୀ ତତ୍)—ରାଜାଙ୍କର ଦୟା—
Rājānugraha King's favour.
(ରାଜାନୁଗ୍ରହ—ଦେ. ରୂପ)

ରାଜାନ୍ନ—ସଂ. ବ. (ବୈଦ୍ୟକ)—କର୍ଣ୍ଣାଟ ଦେଶ ପ୍ରସିଦ୍ଧ ହୈମନ୍ତିକ ଧାନ୍ୟ
Rājānna ବିଶେଷ; ଏକପ୍ରକାର ସରୁଧାନ—A sort of fine winter rice grown in the Deccan.
ରାଜାର୍ହ } —ଅନ୍ୟରୂପ
ରାଜୈଷ୍ଟ }
ଅନ୍ୟ ସଂ—ନୃପାନ୍ନ, ଦୀର୍ଘଶୂକ, ଧାନ୍ୟଶ୍ରେଷ୍ଠ, ଦୀର୍ଘ, କୁରକ
ଓ. ନରସିଂହଭୋଗ ଧାନ
ବାଜଭୋଗ ଧାନ
[ ଦ୍ର—ଏହା ଶୁକ୍ଳ, ରକ୍ତ ଓ କୃଷ୍ଣବର୍ଣ୍ଣ ଭେଦରେ ତିନି ପ୍ରକାର । ତନ୍ମଧ୍ୟରେ କୃଷ୍ଣବର୍ଣ୍ଣ ଅପେକ୍ଷା ରକ୍ତ ଓ ରକ୍ତ ଅପେକ୍ଷା ଶୁକ୍ଳଧାନ୍ୟ ଉତ୍କୃଷ୍ଟ । ]

ରାଜା ପ୍ରଜା—ଦେ. ବ (ସହଚର ଆପେକ୍ଷିକ ଶବ୍ଦ)—ରାଜା ଓ ପ୍ରଜା—
Rājā prajā A king and his subjects.
ବାଜାପ୍ରଜା **राजाप्रजा; राजरैयत्**

ରାଜାବର୍ତ୍ତ—ସଂ. ବ.—ହୀନଜାତୀୟ ଲାଜାବର୍ତ୍ତ ଉପରତ୍ନ—A kind of
Rājābarita inferior gem. [ ଦ୍ର—ଏହି ମଣି ନୀଳ ବା କୃଷ୍ଣବର୍ଣ୍ଣ; ଜନ୍ତୁ ମୟୂର କଣ୍ଠ ପରି ନାନାପ୍ରକାର ଆଭା ଏଥିରୁ ବାହାରେ । ଏହା ଧାରଣ କଲେ ସୌଭାଗ୍ୟ ବୃଦ୍ଧି ଓ ରୋଗ ଶାନ୍ତି ହୁଏ । ]
ଅନ୍ୟ ସଂ—ନୃପାବର୍ତ୍ତ, ରାଜାତ୍ୟାବର୍ତ୍ତକ,
ଆବର୍ତ୍ତମଣି, ଆବର୍ତ୍ତ
ବେଉଟୀ **रेवटी, लाजवर्द**

ରାଜାବଳି—ସଂ. ବ—ଏକବଂଶୀୟ ରାଜାମାନଙ୍କ ତାଲିକା ବା କୁଳିନାମ
Rājābaḷi Genealogy of kings.

ରାଜା ବାହାଦୁ(ଦ୍ଦୁ)ର୍—ଦେ ବ—ଭାରତ ଗଭର୍ଣ୍ଣମେଣ୍ଟଙ୍କ ପ୍ରଦତ୍ତ ଉପାଧି
Rājā bāhādu(dda)ar ବିଶେଷ—Raja Bahadur; a
ବାଜାବାହାତ୍ବ title bestowed by the Government
**राजाबहादुर** of India. [ ଦ୍ର—ଏହା ରାଜା ଉପାଧିଠାରୁ ଉଚ୍ଚତର । ]

ରାଜା ମାନସିଂହ—ଦେ. ବ ( ନାମ )—ମୋଗଲ ସମ୍ରାଟ୍ ଅକବରଙ୍କ
Rājā mānasiṁha ରାଜସଭାର ଏକତମ ରତ୍ନ—
ବାଜାମାନସିଂହ One of the nine gems of the court
**राजामानसिंह** of Emperor Akbar. [ ଦ୍ର—ଏ ଅକବରଙ୍କର ପ୍ରଧାନ ସେନାପତି ଥିଲେ । ଅକବରଙ୍କ ପୁଅ ସେଲିମ୍ ଏହାଙ୍କ ଭଉଣୀଙ୍କୁ ବିବାହ କରିଥିଲେ । ଏ ମିବାରର ରାଣା ପ୍ରତାପସିଂହଙ୍କ ଦ୍ୱାରା ଅପମାନିତ ହେବାରୁ ଅକବରଙ୍କୁ ହଳଦିଘାଟ ଯୁଦ୍ଧ କରିବାପାଇଁ ପ୍ରବର୍ତ୍ତାଇ ଥିଲେ । ]

ରାଜାମ୍ର—ସଂ. ବ.—୧ । ରାଇ ୭ (ଦେଖ)—1. Rāi 7 ( See )
Rājāmra ୨ । ସୁମିଷ୍ଟ ଆମ୍ବ ବିଶେଷ—2. A sort of sweet mango. [ ଦ୍ର—ଏହା ସାଧାରଣ ଆମ୍ବ ଅପେକ୍ଷା ବଡ଼, ବେଶି ମାଂସଳ ଓ ପ୍ରେଷ୍ଠ ଠାକୁଆ ଯୁକ୍ତ । ଏ ଫଳର ଗନ୍ଧ ତେରୁଆ ନୁହେଁ । ଏ ଗଛରୁ କଲମୀ ଗଛ ଉତ୍ପନ୍ନ ହୁଏ । ଲେଙ୍ଗଡ଼ା, ବାଇଗଣ ପଲ୍ଲି, ଫଜଲି, ମାଲଦହ, ବୋମ୍ବେଇ-ଆଦି ଆମ୍ବ ଏହି ଶ୍ରେଣୀର । ]
ଅନ୍ୟ ସଂ—ସୁଗନ୍ଧ, ରାଜଫଳ,
କୋକିଳୋତ୍ସବ, ମଧୁର,
କୋକିଳାନନ୍ଦ, କାମେଷ୍ଟ,
ନୃପବଲ୍ଲଭ, କାମାଙ୍ଗ, ଟଙ୍କ,
ରାଜପୁତ୍ରକ, ଅମ୍ରାତ
କଲମୀଆମ **कलमीआंब**
ମ. ରାଜାମ୍ବା
ତେ. ରାଜମାମିଡ଼ିଚେଟ୍ଟୁ

ରାଜାମ୍ବ—ପ୍ରାଦେ. ( ବାଲେଶ୍ୱର ) ବ—ରାମଫଳ ( ଦେଖ )
Rājāmba Rāmaphaḷa ( See )

ରାଜାରାଜୁଡ଼ା(ଢ଼ା)—ଦେ. ବ (ସହଚରଶବ୍ଦ)—ରଜାରାଜୁଡ଼ା (ଦେଖ)
Rājārājurḍā(rḍi) Rajārājurḍā ( See )

ରାଜାରାମ ପଣ୍ଡିତ—ଦେ. ବ. (ନାମ)—ମରହଟ୍ଟା ଅମଳରେ ଓଡ଼ିଶାର
Rājārāma paṇḍita ଶାସନରେ ନିଯୁକ୍ତ ସୁବାଦାର
ରାଜାରାମ ପଣ୍ଡିତ ବିଶେଷ—Name of a Marhatta
**राजाराम पण्डित** Governer of Orissa.
[ ଦ୍ର—ଏ ଖ୍ରୀ ୧୭୭୯ ସାଲରେ ଓଡ଼ିଶାକୁ ଆସିଥିଲେ । ଏ ରାଜଶାସନରେ ଦକ୍ଷ ଓ ନିର୍ମଳ ଚରିତ୍ର ଲୋକ ଥିଲେ । ୧୮୦୧ ସାଲରେ ବେରାରର ମରହଟ୍ଟାରାଜାଙ୍କ ସହିତ ଇଂରାଜମାନଙ୍କର ଯେଉଁ ସନ୍ଧି ହୋଇଥିଲା ସେଥିରେ ମରହଟ୍ଟାଙ୍କ ପକ୍ଷରୁ ରାଜାରାମ ଉପସ୍ଥିତ ହୋଇଥିଲେ । ଏହାଙ୍କ ଅମଳର ଅନେକ ଲାଖରାଜ ଜମିର ସନନ୍ଦ ଓଡ଼ିଶାରୁ ମିଳେ । ଏ ଓଡ଼ିଶାରେ ରାଜସ୍ୱ ବନ୍ଦୋବସ୍ତ କରାଇଥିଲେ । ]

ରାଜାର୍କ—ସଂ. ବ.—ଶ୍ୱେତ ଅର୍କ ଗଛ—The white species of
Rājārka ଶ୍ୱେତଆକନ୍ଦ Calotropis Gigantea.
ମ. ମନ୍ଦାରୁ ମ. ମନ୍ଦାରଚେଟ୍ଟୁ **श्वेत आक**

ରାଜାର୍ହ—ସଂ. ବଣ—ରାଜାଙ୍କ ଯୋଗ୍ୟ—Fit for a king;
Rājārha befitting a king. ବ—ଅଗୁରୁ ଚନ୍ଦନ—
Eaglewood; a fragrant wood.

ରାଜାର୍ହା—ସଂ. ବ.—ଜମ୍ବୁ; ଜାମୁ—
Rājārhā Eugenia Jambolana.

ରାଜାଲାବୁ—ସଂ. ବ.—ମିଠାଲାଉ—
Rājālābu The sweet gourd.
ଅନ୍ୟ ସଂ—ସ୍ୱାଦୁତୁମ୍ବୀ, ମହାତୁମ୍ବୀ, ମଧୁରାଲାବୁ, ଶାକାଲାବୁ,
ଭକ୍ଷ୍ୟାଲାବୁ, ଅଲାବୁକା, ମିଷ୍ଟତୁମ୍ବୀ

ରାଜାଶ୍ରୟ—ସଂ ବ (୬ଷ୍ଠୀ ତତ୍)—ରାଜାଙ୍କର ଆଶ୍ରୟ—
Rājāśraya Shelter of a king
( ରାଜାଶ୍ରିତ—ବଣ )

ରାଜା ସାମନ୍ତସିଂହାର—ଦେ. ବ. ( ନାମ )—ପ୍ରାଚୀନ ଓଡ଼ିଆ କବି
Rājā sāmantasiṁhāra ବିଶେଷ—Name of an ancient Oriya poet. [ ଦ୍ର—ମଧୁପଦଭଞ୍ଜନା ଓ ରାଧାବିଳାସ ଏହାଙ୍କ ଦ୍ୱାରା ରଚିତ ହୋଇଥିଲା । ବିନାୟକ. ଉତ୍କଳ ସାହିତ୍ୟ ଇତିହାସ । ]

ରାଜା ସାହେବ୍—ଦେ. ବି.— ରାଜାଙ୍କୁ ବନ୍ଧୁଭାବରେ ସମ୍ବୋଧନ—
Rājā sāheb A term of addressing Rajas.
রাজাসাহেব राजासाहेब

ରାଜାହି—ସ. ବି.—ରଣାସାପ ( ଦେଖ )
Rājāhi Raṇāsāpa ( See )

ରାଜି—ସ. ବି (ରାଜ୍ ଧାତୁ+କର୍ତ୍ତୃ.ଇ)—୧ । ସମୂହ; ପଙ୍କ୍ତି, ଶ୍ରେଣୀ।
Rāji ଧାଡ଼ି—1. Row. ୨ । ରେଖା—2 Line.
ବିଣ. ୧ । ଶୋଭିତ—1. Adorned, shining. ୨ ।
ପ୍ରଦୀପ୍ତ—4. Bright; lighted. ବୈଦେ.ବି. (ଅ.
রাজী ରାଜୀ)—୧ । ସମ୍ମତି—1. Consent; agreement.
राज़ी [ ଉ—କହୁଲେହେଁ ଅନୁସର ରାଜି ତ ନ ହସିଲେ ।
କବିସୂର୍ଯ୍ୟ, କଣୋସାଚମ୍ପୂ ତ ଗୀତ । ] ବିଣ—ସମ୍ମତ;
ସ୍ୱୀକୃତ—Agreed; consenting.

ରାଜି କରାଇବା—ଦେ. କ୍ରି.—କୌଣସି ବ୍ୟକ୍ତିଙ୍କୁ କୌଣସି ବିଷୟରେ
Rāji karaiba ସ୍ୱୀକୃତ କରାଇବା—To make a person
(ରାଜି କରିବା—ଅନ୍ୟରୂପ) agree to a thing.
বাজিকবা राजीकराना

ରାଜିକା—ସ. ବି.—୧ । ରାଇସୋରିଷ ( ଦେଖ )—
Rājikā 1. Raisorisha ( See )
୨ । କ୍ଷେତ୍ର—2. A field. ୩ । ପଙ୍କ୍ତି—3. Row.

ରାଜି ଖୁସି—ବୈଦେ. ବି. ( ସହଚର ଶବ୍ଦ; ଆ. ରାଜୀ, ଖୁସୀ )—୧ ।
Rāji khusi ସମ୍ମତି ଓ ଇଚ୍ଛା—1. Consent and
রাজি wish. ୨ । ସ୍ୱେଚ୍ଛାକୃତ ସମ୍ମତି—2. Free
राजीख़ुसी consent.

ରାଜିଡିକ୍ରୀ—ବୈଦେ. ବି ( କଚେରୀଆ. ରାଜୀ ଓ ଇଂ. ଡିକ୍ରୀ )—ବାଦୀ
Rājidikri ଓ ପ୍ରତିବାଦୀଙ୍କ ସମ୍ମତି ଅନୁସାରେ ଅଦାଲତଙ୍କର
(ରାଜିଡିକ୍ରି, ରାଜିଡିଗ୍ରୀ—ଅନ୍ୟରୂପ) ମକଦ୍ଦମା ମୀମାଂସା—
বাজিডিক্রী राजीडिगरी Consent decree.

ରାଜିତ—ସଂ. ବିଣ. (ରାଜ୍. ଧାତୁ+କର୍ତ୍ତୃ. ତ)—୧ । ଶୋଭିତ—
Rājita 1. Adorned, ୨ । ପ୍ରଦୀପ୍ତ—2. Illuminated;
(ରାଜିତା—ସ୍ତ୍ରୀ) dazzling. ୩ । ପ୍ରକାଶିତ—3. Displayed;
manifest. [ ଉ—ବହାଇ ଭାବ ଭୂଷିତ, ଭୂଜୁରେ
ଭୁଣ୍ଡ ରାଜିତ । ଭଞ୍ଜ. ବୈଦେହୀଶ ବିଳାସ । ]

ରାଜିତମାନ—ଦେ. ବିଣ.— (ସ. ରାଜିତ)—ଶୋଭମାନ—
Rājitamāna Beautiful.
[ଉ—ବକ୍ଷ ରାଜସତ ଉପମା ରାଜିତ, ରାଜିତମାନ କରୁ
ଲୋଢ଼ । ଭଞ୍ଜ. ବୈଦେହୀଶ ବିଳାସ ।]

ରାଜିନାମା—ବୈଦେ. ବି.— (ଫା.)—(କଚେରୀଆ)— ୧ । ରଫାନାମା,
Rājināmā ବାଦୀ ପ୍ରତିବାଦୀଙ୍କର ରଫାନାମା—1. Petition
বাজিনামা राजीनामा of compromise.
୨ । ସମ୍ମତି ସୂଚକ ଲିପି—2, Deed of agreement

ରାଜି ପଡ଼ିବା—ଦେ. କ୍ରି.—ସ୍ୱୀକୃତ ହେବା—To consent; to
বাজি হওয়া राज़ीहोना agree.
[ରାଜି ହେବା—ଅନ୍ୟରୂପ]

ରାଜି ଫଇ(ଏ)ସଲ(ଲା)—ବୈଦେ. ବି.—(ଫା.) (କଚେରୀଆ)—ଉଭୟ
Rāji phai(e)sala(lā) ପକ୍ଷଙ୍କ ସମ୍ମତିରେ ମକଦ୍ଦମାର ମୀମାଂସା-
বাজি ফযসল राज़ी फ़यसल Compromise decree;
a decree passed on both parties' consent.

ରାଜି ବଦର—ଦେ ବି.— (ସେଟଲ୍‌ମେଣ୍ଟ ଇଲାକାରେ ବ୍ୟବହୃତ ଶବ୍ଦ)
Rāji badara ଖାନାପୁରୀ ପରେ ଅଟେଷ୍ଟେସନ ସମୟରେ ଜଣେ
বাজি বদব राजी बदर ବ୍ୟକ୍ତି ଖାନାପୁରୀ ରେକର୍ଡ ସଂଶୋଧନ
ସମ୍ବନ୍ଧେ କରିଥିବା ଆପତ୍ତିର ପ୍ରତିବାଦୀର ସମ୍ମତି
ଅନୁସାରେ ମୀମାଂସା—The decision of a dispute by the consent of the defendant at the attestation stage of revenue settlement proceedings.

ରାଜିବା—ଦେ. (ତଦ୍ୟ) କ୍ରି.—(ସ ରାଜ ଧାତୁ)—ଶୋଭିବା, ଶୋଭା
Rājibā ପାଇବା—To shine. [ଉ—କାହୁ ରାଜଇ ଘାଟ ।
বাজা राजना ମଧୁସୂଦନ. ଛନ୍ଦମାଳା ।]

ରାଜିବେରାଜି—ବୈଦେ. ବି.— (ବିପରୀତ ସହଚର ଶବ୍ଦ; ଆ. ରାଜୀ,
Rāji berāji ବେରାଜି)—Agreement and dis
বাজি গববাজি राज़ी बेराज़ी agreement.

ରାଜିମତଫଳା— ସ. ବି.— (ବୈଦ୍ୟକ)—ଲୁଣି; ରାଜ କୋଷାତକୀ—
Rājimat phalā Luffa Amara (creeper and fruit.)

ରାଜି ମୁଦେଇ—ବୈଦେ. ବି - (ଫା. ରାଜୀ ମୁଦଇ)- (କଚେରୀଆ)—
Rāji mudei ଫେରାଦ ହୋଇଥିବା ବ୍ୟକ୍ତି ପ୍ରତିବାଦୀ ବିରୁଦ୍ଧରେ
বাজি মুদই ଆଣିଥିବା ଅଭିଯୋଗରୁ କ୍ଷାନ୍ତ ହେବା ଅବସ୍ଥା—
Withdrawal of a charge by the complainant; compromise of a case by the
राजीमुद्दई complainant.

ରାଜି ରକବା—ବୈଦେ. ବି. (ଆ)—( ସହଚର ଶବ୍ଦ)— (କଚେରୀଆ)
Rāji rakabā ମକଦ୍ଦମାରେ ଉଭୟ ପକ୍ଷଙ୍କ ମଧ୍ୟରେ ମିଳାମିଶା
ରାଜି ରଫା } — ଅନ୍ୟରୂପ ହୋଇଥିବା—Compromise
ରାଜି ରୁକବା } between the parties.

ରାଜିଲ—ସ. ବି.— (ରାଜ୍ ଧାତୁ+କର୍ତ୍ତୃ. ଇଲ)—ଢ଼ୋଣ୍ଡ ସାପ—
Rājila Water snake.

ରାଜୀ—ସ. ବି.—୧ । ରାଜି (ଦେଖ)—1. Rāji (See) ୨ ।
Rāji ରାଜିକା (ଦେଖ)—2. Rājikā (See) ବୈଦେ. ବି ଓ
ବିଣ— ରାଜି (ଦେଖ)—Rāji (See)

ରାଜୀ ଫଳ— ସ. ବି —(ବୈଦ୍ୟକ)—ପଟୋଳ (ଦେଖ)
Rāji phala Paṭola (See)

ରାଜୀବ—ସ. ବି —(ରାଜୀ=ଶ୍ରେଣୀ+ଅସ୍ତି ଅର୍ଥରେ ବ)—୧ । ପଦ୍ମ-
Rājība 1. Lotus. ୨ । ହସ୍ତୀ—2, Elephant. ୩ ।
ମତ୍ସ୍ୟ—3. Fish. ୪ । ସାରସ ପକ୍ଷୀ—4. Crane.
୫ । ହରିଣ ବିଶେଷ—5. A kind of deer. ବିଣ.—
(ରାଜନ୍+ଈବ)—୧ । ରାଜୋପଜୀବୀ—1. Dependant upon a king. ୨ । ରାଜାନୁଗ—2.
Following or attending on a king.

ଦେ. ବି ପୁଂ—ରାଜୀବ ଲୋଚନର ଡାକ ନାମ—
A name for calling Rājibalochana

**ରାଜୀବ ନୟନ**—ସଂ. ବିଣ. ପୁଂ—(ବହୁବ୍ରୀହି; ରାଜୀବ=ପଦ୍ମ ପରି ନୟନ
Rājiba nayana ଯାହାର)—ପଦ୍ମପରି ସୁନ୍ଦର ଚକ୍ଷୁର୍ବିଶିଷ୍ଟ—

ରାଜୀବ ନେତ୍ର } —ଅନ୍ୟରୂପ
ରାଜୀବ ଲୋଚନ }

Lotus-eyed; having eyes as graceful as the lotus.

ରାଜୀବ ନୟନା }
ରାଜୀବ ନେତ୍ରା } —ସ୍ତ୍ରୀ
ରାଜୀବ ଲୋଚନା }

ଦେ. ବି. ପୁଂ—ଲୋକଙ୍କ ନାମ—
A name given to males.

(ରାଜୀବନୟନା, ରାଜୀବନେତ୍ରୀ, ରାଜୀବଲୋଚନା—ଦେ. ସ୍ତ୍ରୀ. ରୂପ)

**ରାଜୀବପତ୍ରାକ୍ଷ**—ସଂ. ବିଣ. ପୁଂ—(ବହୁବ୍ରୀହି; ରାଜୀବ ପତ୍ର=ପଦ୍ମଫୁଲର
Rājiba patrāksha ପାଖୁଡ଼ା ପରି ଅକ୍ଷି=ଆଖି ଯାହାର)—
ପଦ୍ମଫୁଲର ପାଖୁଡ଼ା ପରି ସୁନ୍ଦର ଚକ୍ଷୁର୍ବିଶିଷ୍ଟ—Having eyes as graceful as lotus petals.

**ରାଜୀବରାଜ**—ସଂ. ବି.—ଉତ୍କୃଷ୍ଟ ପଦ୍ମଫୁଲ; ରକ୍ତପଦ୍ମ—
Rājiba rāja The red lotus.

**ରାଜୁ**—ଦେ. ବି.—୧ । ହିନ୍ଦୁ କ୍ଷତ୍ରିୟ ଜାତି ବିଶେଷ—
Rāju 1. A Hindu Kshatriya caste inhabiting Midnapur, Balasore and other parts of Utkal.

[ଦ୍ର—ରାଜୁ—ହିନ୍ଦୁ କ୍ଷତ୍ରିୟ ଜାତିବିଶେଷ । ବାଲେଶ୍ୱର ଜିଲ୍ଲାର ଉତ୍ତରାଞ୍ଚଳ, ମେଦିନୀପୁରର ଦକ୍ଷିଣାଞ୍ଚଳ, ଚବିଶ ପ୍ରଗଣା, ସିଂହଭୂମ୍ ଜିଲ୍ଲା ଓ ମାନ୍ଦ୍ରାଜ ପ୍ରଦେଶର ଉତ୍ତର ସୀମାରେ ଏହି ଜାତୀୟ ଲୋକମାନଙ୍କ ବସତି ଦୃଷ୍ଟିଗୋଚର ହୁଏ । ମାନ୍ଦ୍ରାଜର ରାଜୁମାନେ ଅବଧି ଆନ୍ଧ୍ର ବା ଆନ୍ଧ୍ର-କ୍ଷତ୍ରିୟ ବୋଲି ପରିଚିତ । ଏମାନେ ଚୌହାନ ଓ ଶୋଲଙ୍କି ବଂଶୀୟ ରାଜପୁତମାନଙ୍କ ବଂଶଧର । କାଳକ୍ରମେ ଏମାନେ ଯୁଦ୍ଧ ବ୍ୟବସାୟ ତ୍ୟାଗ କରି କୃଷି ବ୍ୟବସାୟ ଅବଲମ୍ବନ କରିଅଛନ୍ତି । ଏମାନଙ୍କର ସଂଜ୍ଞକ ଶ୍ରୀ, କଟାରି ଇତ୍ୟାଦି । ଏହି ଶ୍ରୀ ଏବଂ କଟାରି ଅର୍ଥାତ୍ ଖଣ୍ଡା ସଂଜ୍ଞକରୁ ବୁଝାଯାଏ ଯେ, ଏମାନେ ଏକ ସମୟରେ ଧନଶାଳୀ ଏବଂ ଯୋଦ୍ଧା ଥିଲେ । ଏମାନଙ୍କର ବଂଶାନୁଗତ ସାଂଜ୍ଞା (ବଂଶୋପାଧି) ମଧ୍ୟରୁ ଅଧିକାଂଶ କ୍ଷତ୍ରିୟ ବାଚକ ବା ସୈନିକ ବିଭାଗୀୟ ବୋଲି ଅନୁମିତ ହୁଏ । ଏମାନଙ୍କର ସାଂଜ୍ଞା—

ମହାପାତ୍ର, ପାତ୍ର, ସେନାପତି, ଗିରି, ବିଶାଳ, ଚୌହାନ, ବ୍ରହ୍ମ, ବର୍ମା, ଦତ୍ତ, ଚଣ୍ଡ, ସାହୁ, ପ୍ରଧାନ, ଭଞ୍ଜ, ଭଦ୍ର, କର, ଦେ, ଘୋଷ, ଶେଣ, ଆଇଚ, ଦଣ୍ଡପାଟ ଇତ୍ୟାଦି ।

ଏମାନଙ୍କ ରୀତିନୀତି ଓ ଆଚାର ବ୍ୟବହାର କ୍ଷତ୍ରିୟଙ୍କ ପରି, କିନ୍ତୁ କାଳକ୍ରମେ ଏମାନେ କୃଷି କାର୍ଯ୍ୟକୁ ଜୀବିକା କରିବାରୁ ଅନେକେ ଉପବୀତ ତ୍ୟାଗ କରିଅଛନ୍ତି । ବର୍ତ୍ତମାନ ସୁଦ୍ଧା କେତେକଙ୍କ ମଧ୍ୟରେ ବୈଦିକ ନିୟମରେ ଉପବୀତ ଧାରଣର ପ୍ରଥା ଅଛି । ଯେଉଁମାନେ କୃଷିକୁ ଜୀବିକା କରି ଅଛନ୍ତି ସେମାନଙ୍କ ସହିତ ଉପବୀତଧାରୀଙ୍କର ବିବାହାଦି ଚଳେ । ଏମାନେ ପିତୃପୁରୁଷମାନଙ୍କୁ ପଣା ସଂକ୍ରାନ୍ତି ଦିନ ଛତୁ ପିଣ୍ଡ ଓ ଶ୍ରାଦ୍ଧରେ ଅନ୍ନ ପିଣ୍ଡ ଦିଅନ୍ତି ଏବଂ, ଖଣ୍ଡାୟତମାନଙ୍କର ଯେଉଁ ବ୍ରାହ୍ମଣମାନେ ପୌରୋହିତ୍ୟ କରନ୍ତି, ଏମାନଙ୍କର ମଧ୍ୟ ସେହି ବ୍ରାହ୍ମଣମାନେ ପୁରୋହିତ ଅଟନ୍ତି । ଏମାନଙ୍କ ମଧ୍ୟରେ ଅନେକ ପଦସ୍ଥ, ବିଦ୍ୱାନ୍ ଓ ଧନବାନ୍ ବ୍ୟକ୍ତି ଅଛନ୍ତି ।

ଏମାନେ ଓଡ଼ିଶାର ଆଦିମବାସୀ ନୁହନ୍ତି ବୋଲି ମନେ ହୁଏ; କାରଣ, ତାହା ହୋଇଥିଲେ ଓଡ଼ିଶାରେ ସର୍ବତ୍ର ଏମାନଙ୍କର ବସତି ଥାଆନ୍ତା । ଏମାନେ ଓଡ଼ିଶାକୁ ଯେ କହୁଶତ ବର୍ଷ ପୂର୍ବରୁ ଆସିଲେଣି, ଏଥିରେ ସନ୍ଦେହ ନାହିଁ । ବର୍ତ୍ତମାନ ଏମାନେ ଓଡ଼ିଆ ବୋଲି ପରିଗଣିତ ହେଉଅଛନ୍ତି । ଏମାନେ ଓଡ଼ିଶାର ସୀମାନ୍ତ ପ୍ରଦେଶରେ ବହୁଳ ବାସ କରୁଥିବାରୁ ବୁଝାପଡ଼େ ଯେ, ଏମାନେ ଓଡ଼ିଶାର ସୀମାନ୍ତ ରକ୍ଷୀରୂପେ ତଦାନୀନ୍ତନ ରାଜାମାନଙ୍କଦ୍ୱାରା ନିଯୁକ୍ତ ହୋଇଥିଲେ ଏବଂ ଯେଉଁଠାରେ ଏମାନଙ୍କର ବସତି ଅଧିକ ସେହିଠାରେ ମଧ୍ୟ ପୁରାତନ ଦୁର୍ଗର ଭଗ୍ନାବଶେଷ ଦେଖା-ଯାଏ । ରାଇବଣିଆ, କାନ୍ତି, ଫୁଲବଣି ଦୁର୍ଗମାନ ପୂର୍ବେ ଏମାନଙ୍କର ଅଧିକାରରେ ଥିଲା ବୋଲି ପ୍ରମାଣ ମିଳେ ଓ ଉକ୍ତ ଗଡ଼ମାନଙ୍କ ଚତୁଃପାର୍ଶ୍ୱରେ ବହୁ ରାଜୁ ପରିବାରଙ୍କ ବସତି ଅଛି । ରାଜପୁତାନାର (ରାଜସ୍ଥାନର) ବଂଶ ପରମ୍ପରା ପ୍ରଥା ଅନୁସାରେ ଏମାନଙ୍କ ମଧ୍ୟରେ ଦକ୍ଷିଣ ଶାଖା ଓ ବାମ ଶାଖା ନାମରେ ୨ଟି ଶାଖା ଥିଲା । ସମ୍ଭବତଃ ରାଜପୁତାନାର ରାଜବଂଶପରମ୍ପରାଗତ ଦରବାରେ ଚନ୍ଦ୍ରାବତ କ୍ଷତ୍ରିୟ ଓ ଶୁକ୍ତାବତ କ୍ଷତ୍ରିୟମାନେ ରାଜାଙ୍କ ଦକ୍ଷିଣ ଓ ବାମରେ ବସିବାର ସମ୍ମାନ ପାଉଥିବାର ବିଗତରେ ଏ ଦୁଇ ଶାଖା ପୂର୍ବେ ଚଳିତ ହେଉଥିଲେ । ଏ ଦୁଇ ଶାଖା ମଧ୍ୟରେ ସାମାଜିକ ସମ୍ପର୍କ ଚଳେ । କ୍ରମଶଃ ଏ ଦୁଇ ଶାଖାର ପାର୍ଥକ୍ୟ ଲୋପ ପାଉଥିବା ଦେଖାଯାଏ ।

ମେଦିନୀପୁର ଜିଲ୍ଲାର ପ୍ରସିଦ୍ଧ ଲେଖକ ବାବୁ ଭାଗବତଚନ୍ଦ୍ର ଦାଶ (ଉତ୍କଳୀୟ ବ୍ରାହ୍ମଣ) ବି. ଏ. ବିଦ୍ୟାଭୂଷଣ ମହାଶୟ ତତ୍ ପ୍ରଣୀତ "বর্তমান সমাজের ইতিবৃত্ত" ନାମକ ବଙ୍ଗଳା ପୁସ୍ତକର ୧୫୪ପୃଷ୍ଠାରେ ଲେଖି ଅଛନ୍ତି—

"ଉତ୍ତରପଶ୍ଚିମ ପ୍ରଦେଶର (ରାଜପୁତନାର) ଅନେକ ରାଜପୁତ୍ ମୁସଲମାନଙ୍କ ଭୟରେ ବାସସ୍ଥାନ ତ୍ୟାଗ କରିଥିଲେ ଏବଂ ଓଡ଼ିଶାକୁ ଆସି କୃଷି ବୃତ୍ତି ଅବଲମ୍ବନ କରି ଦିନ ଯାପନ କଲେ । ସେମାନଙ୍କର ବଂଶଧରମାନେ ବର୍ତ୍ତମାନ ରାଜୁ ନାମରେ ପରିଚିତ ।"

ଉତ୍କଳର କବି ଦୀନକୃଷ୍ଣ ଦାସ ଉତ୍ତରବାଲେଶ୍ୱରର ଜଳେଶ୍ୱର ନାମକ ଗ୍ରାମରେ ଏହି ଜାତିରେ ଜନ୍ମଗ୍ରହଣ କରିଥିଲେ । କବି ତତ୍ ପ୍ରଣୀତ "ରସକଲ୍ଲୋଳ" ଗ୍ରନ୍ଥରେ ୨୪ ଅଧ୍ୟାୟରେ ଏହି ପ୍ରକାର ଆତ୍ମ ପରିଚୟ ଦେଇଅଛନ୍ତି—
"ସର୍ବ ବାସନା ଥାଇ ମୂଳେ; ଜନମ ରାଜପୁତ୍ର କୁଳେ ।
ସ୍ୱର୍ଣ୍ଣରେଖା ନଦୀ କୂଳ; କଟକ ନାମ ଜଳେଶ୍ୱର ।

ସପତ ପୁରୁଷ ମୋ ତହୁଁ; ଘଲ୍ଲ ଯେ ଏତେ କାଳ ବହି ।
ବନ୍ଧୁ କୁଟୁମ୍ବ ତହୁଁ ଯେତେ, ରହୁଣ ଅଛନ୍ତି ସମସ୍ତେ ।
ତଣିଅଁ ରାଜ୍ୟର ନିକଟେ; ଷୋଳ ଚଉଦ ଦଣ୍ଡପାଟେ ।”

ବାଲେଶ୍ୱର ଜିଲ୍ଲାର ଉତ୍ତରାଂଶ ଖୁଲୁଡାଭ ସ୍ୱର୍ଗୀୟ କବି କେଶବଚନ୍ଦ୍ର ଚଣ୍ଡ ମଧ ଏହି ଜାତୀୟ ଲୋକ ଥିଲେ । ସେ ତାଙ୍କର ପଦ୍ୟାବଳୀ (ପ୍ରାୟ ଦେଢ଼ ଶତ ବର୍ଷ ପୂର୍ବର ଲେଖା)ରେ ଏହିପରି ଆତ୍ମ ପରିଚୟ ଦେଇଅଛନ୍ତି ।

“ରାଜନ୍ୟ କୁଳରେ ଜନମ । କେଶବ ଚନ୍ଦ୍ର ଚଣ୍ଡ ନାମ” ।

ଉତ୍ତର ବାଲେଶ୍ୱରର ସୁପ୍ରସିଦ୍ଧ ପଣ୍ଡିତ ଓ ଉତ୍କଳୀୟ ଲେଖକ ସ୍ୱର୍ଗୀୟ ରୁଦ୍ରନାରାୟଣ ଷଡ଼ଙ୍ଗୀ କାବ୍ୟତୀର୍ଥ ତାଙ୍କର ଶେଷ ଲେଖା “ବିରାଟ ନଗର ଓ ସୁବର୍ଣ୍ଣରେଖା” ନାମକ ପୁସ୍ତକରେ ୧୪ ପୃଷ୍ଠାରେ ଏହି ରାଜୁ ଜାତି ସମ୍ବନ୍ଧେ ନିମ୍ନ ପ୍ରକାର ଲେଖି ଅଛନ୍ତି .—

“ଉତ୍ତର ଯନ୍ତ୍ର-ଖଣ୍ଡାୟୁତ ସଙ୍ଗେ ବାନ୍ଧ ସାଥି
ଅନ୍ୟ ଦେଶରୁ ଆଗତ ରାଜପୁତ ଜାତି ।
ପୂର୍ବେ ରାଜୁ ଥିଲେ ବୋଲି ହେଲେ ରାଜୁ ଜାତି,
ନିଶ୍ଚେ ଏମାନେ ରାଜନ୍ୟ-ରାଜ ଅନ୍ତଃପାତୀ ।
ବିଂଶ କେଶରୀ ଅସ୍ତ୍ର ଶସ୍ତ୍ର ସଂରକ୍ଷଣ
ବିଷୟେ କର ନ ଥିଲେ ସୁତୀକ୍ଷ୍ଣ ନୟନ ।
ପୂର୍ବେ ବାଲ୍ୟ ଅବସ୍ଥାରେ ଦେଖିଛି ମୋ ନେତ୍ର
କାହାର କାହାର ଗୃହ ଅସ୍ତ୍ର ଶସ୍ତ୍ର ଯେତ୍ର ।
ବଂଶ-ତ୍ୱକ୍-ଗୁଣ-ଯୁକ୍ତ କାର୍ମୁକ ପ୍ରକାଣ୍ଡ
ତା ନିକଟେ ଶୋଭୁଥିଲା ଶରଧି ତୁଣ୍ଡ ।”

ବାଲେଶ୍ୱର ଜିଲ୍ଲାର ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ଦାସ, ବି. ଏ, ବି. ଏଲ., ଓକିଲ ତାଙ୍କର “ସମାଜ ସଂସ୍କାର ବା ବର୍ଣ୍ଣଜାତି ଓ ଧର୍ମତତ୍ତ୍ୱ” ନାମକ ପୁସ୍ତକର ୨୪୫ ପୃଷ୍ଠାରେ ଏହି ଜାତି ସମ୍ବନ୍ଧରେ ନିମ୍ନୋକ୍ତ ପ୍ରକାର ମତ ପ୍ରକାଶ କରିଅଛନ୍ତି ।

“ଏହି ରାଜୁମାନେହିଁ ମଗଧର ମୌର୍ଯ୍ୟବଂଶୀୟ ରାଜାମାନଙ୍କ ରାଜତ୍ୱ କାଳୀନ ରାଜୁକ ପଦସ୍ଥ କ୍ଷତ୍ରିୟମାନଙ୍କର ବଂଶଧର । ମୌର୍ଯ୍ୟ ବଂଶୀୟ ନରପତିମାନେ ରାଜ୍ୟଶାସନ କର୍ମରେ ବୀର ରାଜୁକମାନଙ୍କୁ ସୁନିପୁଣ ଜ୍ଞାନ କରୁଥିଲେ । ମହାରାଜ ଅଶୋକଙ୍କ ଶିଳାଲିପିରୁ ଜଣାଯାଏ ଯେ, ରାଜୁକମାନେ ପ୍ରାଚୀନ ଭାରତର ସର୍ବଶ୍ରେଷ୍ଠ ଦୂରଦର୍ଶୀ ଶାସକ ଓ ଯୋଦ୍ଧା ଜାତି ଥିଲେ । ଭାଗ୍ୟ ବିପର୍ଯ୍ୟୟ ସଙ୍ଗେ ସଙ୍ଗେ ମୌର୍ଯ୍ୟ ବଂଶଧରମାନେ ହୀନପ୍ରଭ ହୋଇ ଦାକ୍ଷିଣାତ୍ୟର ଓ ଉତ୍କଳର କୌଣସି କୌଣସି ସ୍ଥାନରେ ବିକ୍ଷିପ୍ତ ହୋଇ ପଡ଼ିଲେ । କାଳକ୍ରମେ ପାଲିଭାଷାର “ରାଜୁକ” ଶବ୍ଦର ଅପଭ୍ରଂଶ ରୂପେ “ରାଜୁ” ଶବ୍ଦଟି ପ୍ରଚଳିତ ହେଲା । ଏହି ରାଜୁକମାନଙ୍କ କ୍ଷମତା ବିଷୟରେ ଅଶୋକ ନିଜେ ଶିଳାଲିପିରେ ପାଲିଭାଷାରେ ନିମ୍ନଲିଖିତ ମର୍ମରେ ଲେଖିଅଛନ୍ତି :—

“ସୁନିପୁଣ ଧାତ୍ରୀ ହସ୍ତରେ ଶିଶୁ ସନ୍ତାନର ଲାଳନ ପାଳନ ଭାର ଅର୍ପଣ କରି ପିତା ମାତା ଯେପରି ନିଶ୍ଚିନ୍ତମନରେ କାଳଯାପନ କରନ୍ତି, ସେମାନେ ଯେପରି ମନେ କରନ୍ତି ଧାତ୍ରୀର ହସ୍ତରେ ଶିଶୁମାନଙ୍କର ଅଯତ୍ନ ହେବ ନାହିଁ; ମୁଁ ମଧ୍ୟ ସେହିପରି ମୋର ସନ୍ତାନ ତୁଲ୍ୟ ପ୍ରଜାବର୍ଗଙ୍କର ସୁଶାସନ ଓ ସୁପାଳନ ଭାର ରାଜୁକମାନଙ୍କ ହସ୍ତରେ ନ୍ୟସ୍ତ କରି ନିଶ୍ଚିନ୍ତ ରହିଅଛି । ମୋର ବିଶ୍ୱାସ, ସେମାନଙ୍କର ସୁଶାସନ ଗୁଣରେ ମୋ ପ୍ରଜାବର୍ଗ ସୁଖରେ କାଳଯାପନ କରିବେ ଏବଂ ନିଶ୍ଚିନ୍ତ ମନରେ ଧର୍ମ ସାଧନରେ ନିଯୁକ୍ତ ହେବେ । ରାଜୁକମାନେ ଯେପରି ନିଶ୍ଚିନ୍ତ ମନରେ ସ୍ୱ ସ୍ୱ କର୍ତ୍ତବ୍ୟ ପାଳନରେ ସମର୍ଥ ହୁଅନ୍ତି, ସେଥିପାଇଁ ମୁଁ ସେମାନଙ୍କୁ ସ୍ୱାଧୀନ କ୍ଷମତା ପ୍ରଦାନ କରିଅଛି ।”

ରାଜୁ ଏହି ଶବ୍ଦ ରାଜପୁତ ବା ରାଜନ୍ୟ ଶବ୍ଦର ଅପଭ୍ରଂଶ ନ ହୋଇ ରାଜୁକ ଶବ୍ଦର ଅପଭ୍ରଂଶ ହେବାର ବିଶେଷ ସମ୍ଭାବନା । ରାଜୁ ଶବ୍ଦ ପ୍ରଥମେ କୌଣସି ଜାତିର ନାମ ନ ହୋଇ ଗୋଟିଏ ଉପାଧିର ନାମ ଥିଲା । କିନ୍ତୁ କାଳକ୍ରମେ ରାଜୁକ ପଦଧାରୀ କ୍ଷତ୍ରିୟମାନେ ରାଜୁ ନାମରେ ଅଭିହିତ ହୋଇ ବର୍ତ୍ତମାନ ଏହା ଗୋଟିଏ ଜାତିରେ ପରିଣତ ହୋଇଅଛି । ଅନେକାନ୍ତ ଏହି ରାଜୁକ ପଦସ୍ଥ କ୍ଷତ୍ରିୟମାନଙ୍କର ବଂଶଧରମାନେ ରାଜ ଜାତିର ଲୋକ ବୋଲି ଅଭିହିତ ହେଉଅଛନ୍ତି । ]

୨ । ରାଜକିଶୋରର ଡାକନାମ—2. Name for calling Rājakiśora.

**ରାଜୁଆଡ଼ା**—ଦେ. ବି.—(ହିନ୍ଦିରୁ ଅନୁକୃତ, ସଂ. ରାଜ୍ୟ)—ରାଜାଙ୍କଦ୍ୱାରା ଶାସିତ ରାଜ୍ୟ; ଗଡ଼ଜାତ—Country governed by a prince; state of a Chief.
Rājuārḍā
রাজোয়াড়া राजवाडा
(ରାଜୁଡ଼ା, ରାଜୁଵାଡ଼ା, ରାଜୋଡ଼ା, ରାଜ୍ୱାଡ଼ା—ଅନ୍ୟରୂପ)
ମୋଗଲବନ୍ଦୀ—ବିପରୀତ]
ଦେ. ବିଣ.—ରାଜାଙ୍କ ଶାସିତ—Ruled by Rajas. [ ଦ୍ର—ଓଡ଼ିଶା ମୂଳକ ଦୁଇ ଭାଗରେ ବିଭକ୍ତ ଯଥା—ରାଜୁଆଡ଼ା ଓ ମୋଗଲବନ୍ଦୀ । ସରକାରଙ୍କ ଶାସିତ ମୋଗଲବନ୍ଦୀରେ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ, କୋରାପୁଟ, ଏହିପରି ୬ ଗୋଟି ଜିଲ୍ଲା ଅଛି । ଦେଶୀୟ ରାଜାମାନଙ୍କ ଶାସିତ ରାଜୁଅଡ଼ାକୁ ଗଡ଼ଜାତ ବୋଲାଯାଏ ।]

**ରାଜୁଡ଼ା(ଡ଼ି)**—ଦେ. ବି.—୧ । ରାଜୁଆଡ଼ା—1. The states ruled by Indian Ruling Chiefs.
Rājurḍā(rḍi) বাজড়া राजवाडा
[ ଉ—ରାଜା ରାଜୁଡ଼ା ସବୁଠାରେ ପୁଛା । ଉଣେକଣେ ଯାଉ ଯେଣେ ତା ଇଚ୍ଛା—କହନ୍ତି ମାୟେ—ଚଉତିଶା] ୨ । ରାଜନ୍ୟ ୧ ଓ ୨ ( ଦେଖ )—2. Rājanya 1 and 2 (See). ୩ । ସାମନ୍ତରାଜା—3. Feudal Chief. ୪ । ରାଜାଙ୍କ ପରି ବ୍ୟକ୍ତି—4. Personage of the position of a rājā.
ଦେ. ବିଣ—ରାଜୁଅଡ଼ା (ଦେଖ) Rājuarḍa (See)

**ରାଜୁତ**—ଦେ. ବି—(ସଂ. ରାଜପୁତ୍ର)—୧ । ରାଜପୁତ୍ର—1. Prince. ୨ । ରାଜା—2. King. [ ଉ—ରାଜୁତ ସାଧୁତ ଘରେ ଜନ୍ମ ତାର ନାହିଁ । ପ୍ରାଚୀ. ଶ୍ରୀଗୁରୁଭକ୍ତି ଗୀତା ।] ୩ । ରାଜୁତି (ଦେଖ) 3. Rājuti (See)
Rājuta
বাজ
राज

**ରାଜୁତି**—ଦେ. ବି—(ସଂ. ରାଜତ୍ୱ)—ରାଜତ୍ୱ—Sovereignty.
Rājuti ৰাজত্ব राजती

**ରାଜୁ ରାଜୁ**-ଦେ ବିଣ—(ଧ୍ୱନ୍ୟନୁକରଣ)—ରାଜୁ ରାଜୁ; ବାଲି ବା
Rāju rāju ଲୁଣ୍ଡା ଆଦି ମିଶି ଥିବାରୁ ଚୋବାଇବାକୁ କର୍କଶ—
ৰচ ৰচ कच कच Grating to the palate or tongue or teeth. (e. g. food mixed with sand or chaff).

**ରାଜୁସି**—ଦେ.ବି—(ସଂ.ରାଜସୂୟ)—୧। ରାଜସୂୟ (ଦେଖ)—1. Rāja
Rājusi sūya (See). [ଦ୍ର—ମୋହର ଦର୍ପ ଏବେ ହେବ; ସୁରେଶ
ৰাজসূয ରାଜୁସି ଯାଗ କର। ଜଗନ୍ନାଥ, ଭାଗବତ।] ୨। (ସଂ.
राजसूय ରାଜସ୍ୱ)—ରାଜସ୍ୱ (ଦେଖ) —2. Rājaswa(See). ୩।
(ସଂ. ରାଜର୍ଷି) ରାଜର୍ଷି (ଦେଖ)—3. Rājarshi (See)
ବିଣ—୧। (ସଂ. ରାଜସିକ)—ରାଜସିକ (ଦେଖ)
1. Rājasika (See) ୨। (ସଂ. ରାଜକୀୟ)—ରାଜକୀୟ
(ଦେଖ)—2. Rājakiya (See)

**ରାଜେ**—ଦେ. ବି (ସଂ. ରାଜନ୍)—(ରାଜାଙ୍କ ନାମ ପୂର୍ବେ ବ୍ୟବହୃତ)
Rāje (ଯଥା—ରାଜେ ଶ୍ରୀ ଜଗନ୍ନାଥ ଦେବକର୍ମୀ)—ରାଜା—
ৰাজা राजा Rājā.

**ରାଜେକ୍ଷୁ**—ସଂ. ବି—କୋଇଲିଖିଆ (ହରେକୃଷ୍ଣ ଦ୍ରବ୍ୟଗୁଣ) (ଦେଖ)
Rājekshu Koilikhiā (See)

**ରାଜେନ୍ଦ୍ର**—ସଂ. ବି—(ରାଜାଙ୍କ ମଧ୍ୟରେ ଇନ୍ଦ୍ର ବା ପ୍ରଧାନ)—୧। ପ୍ରଧାନ
Rājendra ବା ଶ୍ରେଷ୍ଠ ରାଜା—1. A chief king. ୨।
ରାଜାଧିରାଜ; ସମ୍ରାଟ୍—2. Emperor.

**ରାଜେୟ**—ସଂ. ବି—(ବୈଦ୍ୟକ) ପଟୋଳ (ଦେଖ)
Rājeya Paṭola (See)

**ରାଜୋଡ଼ା(ଡ଼ି)**—ଦେ. ବି ଓ ବିଣ—ରାଜୁଆଡ଼ା (ଦେଖ)
Rājorḍā(rḍi) Rājuārḍā (See)

**ରାଜୋପାଧିକ**—ସଂ. ବିଣ. ପୁଂ—'ରାଜା' ଉପାଧି ପାଇଥିବା (ବ୍ୟକ୍ତି)—
Rājopādhika Titular (Raja); given the title of Rājā by the Paramount Power.

**ରାଜ୍ଞୀ**—ସଂ. ବି. ସ୍ତ୍ରୀ—(ରାଜନ୍+ସ୍ତ୍ରୀ. ଈ)—ରାଣୀ, ରାଜମହିଷୀ—
Rājñī Queen.

**ରାଜ୍ୟ**-ସଂ. ବି—(ରାଜନ୍+ଯ)—୧। ରାଜତ୍ୱ; ରାଜତ୍ୱ; ରାଜାଙ୍କର
Rājya ଅଧିକାର—1. Reign; sovereignty. ୨।
ରାଜ ଶାସିତ ଦେଶ—2. Kingdom; state; country governed by a king. ୩। ରାଜ୍ୟଶାସନ କାର୍ଯ୍ୟ—3. Governance of a country. ୪। ଲକ୍ଷ ଗ୍ରାମ ଉପରେ ଆଧିପତ୍ୟ—4. Sovereignty over a hundred thousand villages. ୫। ମୁଲକ; ରାଇଜ; ଦେଶ—5. Country, kingdom. [ଦ୍ର—ପୂର୍ବେ ହିନ୍ଦୁ ରାଜ୍ୟମାନ ଅଧିକାଂଶ ପ୍ରଜାତନ୍ତ୍ର ଶାସନପ୍ରଣାଳୀର ନୀତିଦ୍ୱାରା ପରିଚାଳିତ ହେଉଥିଲା। ତଥାପି ରାଜା ନ ଥାଇ ଦେଶ ନ ଥିଲା। ପ୍ରତ୍ୟେକ ଦେଶର ଅଧିପତି ଜଣେ ରାଜା ଥିଲେ। ଏହି ହେତୁ 'ରାଜ୍ୟ' କହିଲେ ସାଧାରଣ ଅର୍ଥରେ 'ଦେଶ'କୁ ବୁଝାଏ। ଲକ୍ଷେ ଗ୍ରାମର ଅଧିପତିଙ୍କୁ 'ରାଜା' ଓ ଦଶ ଲକ୍ଷ ଗ୍ରାମର ଅଧିପତିଙ୍କୁ 'ସମ୍ରାଟ୍' ବୋଲାଯାଉଥିଲା।] ୬। ସମଗ୍ର ଦେଶ—6. The whole country. ୭। ଜଗତ; ପୃଥିବୀ—7. The world. ଦେ. ବିଣ. ୧। ରାଜ୍ୟର ଅଧିବାସୀ—1. Inhabiting a kingdom. ୨। ରାଜ୍ୟଯାକର; ବହୁସଂଖ୍ୟକ—2. Much; many. (ଯଥା—ଯାତ୍ରା ଦେଖିବାକୁ ରାଜ୍ୟ ଲୋକେ ଆସି ରୁଣ୍ଡ ହେଲେଣି।)

**ରାଜ୍ୟ କୂଟ**—ସ.ବି.—ଏକାଧିକ ରାଜ୍ୟର କେନ୍ଦ୍ର—The centre of
Rājya kūṭa more than one kingdom.

**ରାଜ୍ୟକ୍ତା**—ସଂ ବି. (ବୈଦ୍ୟକ)—ରାଇତା; ଲାଉର ଛୁଦ୍ରଖଣ୍ଡମାନଙ୍କ
Rājyaktā ସଙ୍ଗେ ଦହି, ଲୁଣ, କେଶର ଓ ସର୍ଷପଗୁଣ୍ଡା ମିଶାଯାଇ କରାଯିବା ଖଟା—A sort of sour curry made of gourd, curd and spices.

**ରାଜ୍ୟ କରିବା**—ଦେ. କ୍ରି.—ରାଜତ୍ୱ କରିବା—To rule; to
Rājya karibā reign; to govern a kingdom.
ৰাজ্যকৰা राज्यकरना [ଦ୍ର—ରାବଣକୁ ମାରି ବେଗେ ରଘୁଧାମ, ଅର୍ପିଣ କରନ୍ତୁ ରାଜ୍ୟ। ବିଶ୍ୱନାଥ—ବିଚିତ୍ର ରାମାୟଣ]

**ରାଜ୍ୟ କ୍ଷୟ**—ସଂ. ବି.—ରାଜ୍ୟନାଶ; ରାଜାଙ୍କ ହାତରୁ ରାଜ୍ୟ ବାହାରିଯିବା
Rājya kshaya Loss of a kingdom.
[ରାଜ୍ୟନାଶ, ରାଜହାନି, ରାଜ୍ୟଭଙ୍ଗ, ରାଜ୍ୟଭ୍ରଂଶ—ଅନ୍ୟରୂପ]

**ରାଜ୍ୟଚ୍ୟୁତ**—ସଂ. ବିଣ.ପୁଂ (୫ମୀତତ୍; ରାଜ୍ୟ+ଚ୍ୟୁତ)—୧। ରାଜ୍ୟଭ୍ରଷ୍ଟ
Rājyachyuta 1. Deprived of the kingdom.
(ରାଜ୍ୟଚ୍ୟୁତା—ସ୍ତ୍ରୀ) ୨। ରାଜ୍ୟଶାସନରୂପ ଅଧିକାରରୁ ବଞ୍ଚିତ—
(ରାଜ୍ୟଚ୍ୟୁତ—କ୍ଳୀ) 2. Dethroned; deposed; deprived of the power of ruling over a kingdom [ଦ୍ର—ଏହିପରି ରାଜ୍ୟତାଡ଼ିତ, ରାଜ୍ୟବଞ୍ଚିତ, ରାଜ୍ୟଭ୍ରଷ୍ଟ ଆଦି ପଦ ହୁଏ।]

**ରାଜ୍ୟଛଡ଼ା**—ଦେ. ବିଣ. (ମନାର୍ଥ)—୧। ଲୋକବହିର୍ଭୂତ; ଯେଉଁ ବିଷୟ
Rājyachharḍā ସମଗ୍ର ରାଜ୍ୟରେ ଦେଖା ବା ଶୁଣା ନାହିଁ; (ରାଜାରୁ ବାହାର—ଅନ୍ୟରୂପ) ସୃଷ୍ଟି ଛଡ଼ା; ଅସାଧାରଣ—
স্ৰ্ষ্টিছাড়া 1. (a matter) Which is not to be found
राज्यसे बाहार in a country; extraordinary, unusual; uncommon. ୨। ରାଜ୍ୟରୁ ତଡ଼ାହୋଇ, ନିର୍ବାସିତ—2. Driven from a kingdom, deported, exiled.

**ରାଜ୍ୟତନ୍ତ୍ର**—ସଂ. ବି.—(୬ଷ୍ଠୀ ତତ୍; ରାଜ୍ୟ+ତନ୍ତ୍ର)—ରାଜ୍ୟଶାସନର
Rājya tantra ଧାରା ବା ପଦ୍ଧତି—The constitution or governance of a country.

**ରାଜ୍ୟ ପାଟ**—ଦେ. ବି.—(ସଂ. ରାଜ୍ୟ ଓ ପଟ୍ଟ)—୧। ରାଜ ସିଂହାସନ—
Rājya pāṭa 1. Throne. ୨। ରାଜତ୍ୱ—2. Reign.
ৰাজপাট राजपाट

**ରାଜ୍ୟ ବିପ୍ଳବ**—ସଂ. ବି.—୧। ରାଜାଙ୍କ ବିରୁଦ୍ଧରେ ପ୍ରଜାଙ୍କ ମେଳ—
Rājya biplaba Revolution. ୨। ଅରାଜକତା—
[ରାଜ୍ୟ ମେଳ—ଦେ. ରୂପ] 2. Anarchy.

**ରାଜ୍ୟ ବିସ୍ତାର**—ସଂ. ବି.—(୬ଷ୍ଠୀ ତତ୍; ରାଜ୍ୟ+ବିସ୍ତାର)—ସେନାଦ୍ୱାରା
Rājya bistāra ଶତ୍ରୁ ଜୟ ଓ ଦେଶଜୟାଦି କ୍ରମେ ଅପଣା ରାଜ୍ୟର ସୀମାବୃଦ୍ଧିକରଣ—Act of extending the limit of one's kingdom. (by defeating

other kings or annexing other kingdoms.)

**ରାଜ୍ୟ ଭାର**—ସଂ. ବ.—(୬ଷ୍ଠୀ ତତ୍, ରାଜ୍ୟ+ଭାର)—୧ । ରାଜାଙ୍କ
Rājya bhāra ଦ୍ୱାରା ଅନ୍ୟ ଉପରେ ନ୍ୟସ୍ତ ରାଜ୍ୟଶାସନ କାର୍ଯ୍ୟ ଚଳାଇବାର ଦାୟିତ୍ୱ—1. The charge of governing a country; the duty of adminstration. ୨ । ରାଜାଙ୍କ ନିଜ ରାଜ୍ୟଶାସନରୂପ ଗୁରୁଦାୟିତ୍ୱ ବା କର୍ତ୍ତବ୍ୟ—2. The onerous duties which devolve on the king of administering his kingdom.

**ରାଜ୍ୟ ରକ୍ଷା**—ସଂ. ବ—ଶତ୍ରୁ ଓ ଦୁର୍ଭିକ୍ଷ ଆଦିର ଆକ୍ରମଣରୁ ରାଜ୍ୟକୁ
Rājya rakshā ସମ୍ଭାଳିବା—The protection of a kingdom from the grip of enemies famine etc.

**ରାଜ୍ୟଲାଭ (ପ୍ରାପ୍ତି)**—ସ. ବ (୬ଷ୍ଠୀ ତତ୍)—କୌଣସି ବ୍ୟକ୍ତିକୁ ରାଜ୍ୟ
Rājya lābha(prāpti) ମିଳିବା—Acquisition of a kingdom; territorial acquisition.

**ରାଜ୍ୟ ଲୋକେ**—ଦେ.ବି.(ବହୁବଚନ)—୧ । ରାଜ୍ୟବାସୀ ବ୍ୟକ୍ତିଗଣ—
Rājya loke 1. Inhabitants of a
[ରାଜ୍ୟର ଲୋକେ—ଅନ୍ୟରୂପ] country. ୨ । ସମଗ୍ର ରାଜ୍ୟର
রাজ্যের লোক ଅଧିବାସୀ ବ୍ୟକ୍ତିଗଣ—2. All the people
**राज्यके आदमियों** of a country. ୩ । ବହୁସଂଖ୍ୟକ ବା ଅସଂଖ୍ୟ ଲୋକ—3. Innumerable persons; numerous people.

**ରାଜ୍ୟ ଲୋପ**—ସ. ବ. (୬ଷ୍ଠୀ ତତ୍; ରାଜ୍ୟ+ଲୋପ)—ଅନ୍ୟ ରାଜାଙ୍କ
Rājya lopa ଦ୍ୱାରା ଅଧିକୃତ ହେବା ଯୋଗୁଁ କୌଣସି ରାଜ୍ୟର ଅସ୍ତିତ୍ୱର ବିନାଶ—The extinction of a kingdom.

**ରାଜ୍ୟ ଲୋଭ**—ସଂ. ବ. (୬ଷ୍ଠୀ ତତ୍)—ରାଜ୍ୟପ୍ରାପ୍ତି ପାଇଁ ଲୋଭ—
Rājya lobha A desire to acquire a kingdom.
(ରାଜ୍ୟଲୋଲୁପତା, ରାଜ୍ୟଲିପ୍ସା—ଅନ୍ୟରୂପ)
(ରାଜ୍ୟଲୋଲୁପ, ରାଜ୍ୟଲୋଭୀ,ରାଜ୍ୟଲୁବ୍ଧ, ରାଜ୍ୟଲିପ୍ସୁ—ବିଣରୂପ)

**ରାଜ୍ୟ ଶାସନ (ପାଳନ)**—ସଂ. ବ—(୬ଷ୍ଠୀତତ୍)—ଦୁଷ୍ଟ ଦମନ ଓ ଶିଷ୍ଟ
Rājya śāsana (pālana) ପାଳନାଦି ରୂପ କର୍ମଦ୍ୱାରା ରାଜ୍ୟ ପରିଚାଳନ—Administration or government of a country.

**ରାଜ୍ୟ ଶିରୀ**—ଦେ. ବ.—(ପଦ୍ୟ)—ରାଜଶ୍ରୀ (ଦେଖ)
Rājya śiri Rājaśri (See)
[ଉ—ପାଇ ତୁ ଭୂମେ ହସ୍ତିନା ରାଜ୍ୟ ଶିରୀ—କୃଷ୍ଣସିଂହ ମହାଭାରତ. ବନ ।]

**ରାଜ୍ୟ ସଂସ୍ଥିତି**—ସଂ. ବ.—(୬ଷ୍ଠୀ ତତ୍)—ରାଜ୍ୟ ଶାସନର ସୁଶୃଙ୍ଖଳା-
Rājya saṁsthiti ବିଧାନ—Methodical administration of a kingdom; a good system of administration.

**ରାଜ୍ୟାଙ୍ଗ**—ସଂ. ବ.—(୬ଷ୍ଠୀ ତତ୍)—(ନୀତିଶାସ୍ତ୍ର)—ରାଜ୍ୟ ଶାସନ
Rājyāṅga ନିମନ୍ତେ ପ୍ରୟୋଜନୀୟ ଉପକରଣ ବା ପ୍ରଧାନ ଅଙ୍ଗ (Science of politics) Constituent parts of a state; the essential elements or materials or components of a kingdom.

[ଦ୍ର—ହିନ୍ଦୁ ନୀତିଶାସ୍ତ୍ର ମତରେ ରାଜ୍ୟାଙ୍ଗ ଅଠଗୋଟି (ବା ମତାନ୍ତରରେ ନଅ ଗୋଟି), ଯଥା—୧ । ସ୍ୱାମୀ ବା ଅଧିପତି, ୨ । ଅମାତ୍ୟ ବା ମନ୍ତ୍ରୀ, ୩ । ସୁହୃତ୍ ବା ମିତ୍ର, ୪ । ଧନ ବା କୋଷ, ୫ । ରାଷ୍ଟ୍ର ବା ଦେଶ, ୬ । ଦୁର୍ଗ, ୭ । ସୈନ୍ୟ ବା ବଳ, ୮ । ଦୂତ ବା ଚରା, ୯ । ତପସ୍ୱୀ ବା ପୁରୋହିତ ।]

**ରାଜ୍ୟାଭିଷେକ**—ସଂ. ବ (୭ମୀ ତତ୍) ରାଜାଙ୍କର ରାଜଗାଦିରେ ରାଜା-
Rājyābhisheka ରୂପେ ବସିବା ଅନୁଷ୍ଠାନ—The ceremony
(ରାଜ୍ୟାଭିଷିକ୍ତ—ବିଣ) of installati on of a king on the throne; coronation.

**ରାଝିଆନ୍ତି**—ଦେ. ବ (ସ. ରାବ)—ନାନା କଥା କହି ଗୋଳମାଳ
Rājhianti କରିବା; ଚିଲାଚିଲି—Noise, hubbub; uproar
গোলযোগ, গোল by vociferous and repeated
**शोरगुल, हल्लागुल्ला** talking.
(ରାଝ୍ୟାନ୍ତି – ଅନ୍ୟରୂପ)

**ରାଞ୍ଚ(ଞ୍ଚୁ)ରାଞ୍ଚୁଆ**—ଦେ. ବିଣ—ଯେଉଁ ପଦାର୍ଥର ଉପରଭାଗ ବନ୍ଧୁର
Rāñcha(ñchu)rāñchuā ଓ କ୍ଷୁଦ୍ର କ୍ଷୁଦ୍ର ଗାତ୍ରଣାଗ୍ରମୟ—
বজবজে Having a surface full of scratches; un-
**खुरदुरा, खुरदरा** even; uncouth; rough, with many sharp points.

**ରାଞ୍ଚି**—ଦେ. ବ—ବିହାର ପ୍ରଦେଶରେ ଛୋଟନାଗପୁରର ରାଜଧାନୀ—
Rāñchi Ranchi, the capital of Chotanagpur
রাঁচি in the Province of Bihar. [ଦ—ଏହା ବର୍ତ୍ତମାନ
**राँची** ବିହାର ସରକାରଙ୍କର ଗ୍ରୀଷ୍ମକାଳବାସରୂପେ ବ୍ୟବହୃତ ହେଉଅଛି)—The summer capital of the Bihar Govt.

**ରାଞ୍ଚି(ଞ୍ଛି)ବା**—ଦେ. ବ (ସ. ରମ୍ପ୍ ଧାତୁ=ବଧ କରିବା)—ନଖଦ୍ୱାରା
Rāñchi(ñchhi)bā ରାମ୍ପିବା—To scratch with the
খাঁপা,আঁচড়ান **नोचना** nails.
(ରାଞ୍ଚ[ଞ୍ଛି]ହେବା—ଅନ୍ୟରୂପ) [ରାଞ୍ଚିହେବା—କର୍ମବାଚ୍ୟରୂପ]

**ରାଞ୍ଚୁ(ଞ୍ଛୁ)ଡ଼ା**—ଦେ. ବ—୧ । ନଖଦ୍ୱାରା ସର୍ଷ ରେଖାକାରରେ କ୍ଷତ
Rāñchu(ñchhu)rdā ବିକ୍ଷତ କରିବା; ଛୋଟ କଣ୍ଟାଦ୍ୱାରା
আঁচড়া ରାମ୍ପିବା—1. Scratching with nails or
**नोचना** thorn. ୨। ରାମ୍ପୁଡ଼ା ଚିହ୍ନ—2. Marks of scratch-
আঁচড় ing ବିଣ—ନଖଦ୍ୱାରା କ୍ଷତବିକ୍ଷତ—
**नोचनेका** Scratched.

**ରାଞ୍ଚୁଡ଼ା(ଡ଼େ)ଇବା**—ଦେ. ବି-ରାଞ୍ଚୁଡ଼ିବା କ୍ରିୟାର ପ୍ରଯୋଜକ ଆକାର—
Rāñchurdā(rde)ibā To cause to scratch.
অন্যকেদিয়ে আঁচড়ান **नोचवाना**

**ରାଞ୍ଚୁ(ଞ୍ଛୁ)ଡ଼ିବା**—ଦେ. କ୍ରି—ରାଞ୍ଚିବା (ଦେଖ)
Rāñchu(ñchhu)rdibā Rāñchiba (See)

**ରାଞ୍ଜ**—ପ୍ରାଦେ—(ସମ୍ବଲପୁର ଓ ଅଠମଲ୍ଲିକ)—ରଞ୍ଜା (ଦେଖ)
Rāñj Rañjā (See)

**ରାଟ୍**—ସଂ. ବିଣ. ପୁଂ (ରାଜ୍ ଧାତୁ+କର୍ତ୍ତୃ କ୍ୱିପ୍=ରାଜ୍, ପ୍ରଥମ,
Rāt ଏକବଚନ; ଏ ଶବ୍ଦ ପ୍ରାୟଶଃ ଅନ୍ୟ ଶବ୍ଦପରେ ବ୍ୟବହୃତ ହୁଏ । ଯଥା—ସମ୍ରାଟ୍ ଦେବରାଟ୍, ବିରାଟ୍ ଇତ୍ୟାଦି ।) ୧ । ସମ୍ୟକ୍ ଶୋଭମାନ—1. Very bright. ୨ । ଶ୍ରେଷ୍ଠ—2. Eminent. ସ. ବ—ରାଜା—King.

ରାଟ—ଦେ ( ପଦ୍ୟ ) ବ. ପୁଂ (ସଂ. ରାଜ୍ ଶବ୍ଦ, ୧ମା. ୧ବ. ରାଟ୍ )—
Rāṭa ରାଜା—King. ( ଯଥା—କଂସରାଟ, ଜଳୁରାଟ । )
বাজ [ଉ—ଭକ୍ତେ ଅଷ୍ଟଦୁର୍ଗ-ଧରା-ରାଟ । କବିସୂର୍ଯ୍ୟ, ସଙ୍ଗୀତ ।]
राट ବଣ (ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହେଲେ)—ଶ୍ରେଷ୍ଠ ବସ୍ତୁ ବା ବ୍ୟକ୍ତି—Excellent; eminent thing or person. [ଉ—ମାଳା କରିବାକୁ ସଜ୍ଜ କରାଟ, ଫିଙ୍ଗିଲ ମନ୍ମଥ ଧ୍ୱାବକରାଟ । କବିସୂର୍ଯ୍ୟ. କବିତା ।]

ରାଟଲ୍—ବୈଦେ. ବ ( ଇଂ. ରାଟ୍ଲ୍=ଖଡ଼ଖଡ଼ ଶବ୍ଦ )—ଆମେରିକାର
Rāṭal ବିଷଧର ବଡ଼ ସର୍ପ ବିଶେଷ—Rattle snake.
ରାଟଲ୍ } ଅନ୍ୟରୂପ [ବ୍ର—ଏ ସାପ ଗଛ କଲାବେଳେ ଏହାର
ରାଟଲସାପ } ଲାଙ୍ଗୁଡ଼ ଅଗରେ ଥିବା ହାଡ଼ର ଖଣ୍ଡମାନ
বাটল राटज़ ରଟ ରଟ ଶବ୍ଦ କରେ । ]

ରାଟସିଂଘ(ହ)—ଦେ. ବ ( ସଂ. ରାଜ ଓ ସିଂହ )—୧ । ରାଵତ ସିଂହ,
Rāṭsimgha(ha) କ୍ଷତ୍ରିୟଙ୍କ ବଂଶୋପାଧି ବିଶେଷ—1. A
বায়সিংহ family title of the Kshatriyas.
सिंह ୨ । ପୁରୀଜିଲ୍ଲା କୋଠଦେଶର ପୁର୍ବତନ କ୍ଷତ୍ରିୟ ଜମିଦାର (ଜମାପଡ଼ାବାସୀ ) ବଂଶର ଉପାଧି—2. The family-title of the old Zamindar family of the Koṭhadeśa estate in the Puri district.

ରାଟି—ସଂ. ବ ( ରଟ୍ ଧାତୁ=ଶବ୍ଦ କରିବା+ଇ )—୧ । ଯୁଦ୍ଧ,
Rāṭi ସଂଗ୍ରାମ—1. War; fight; battle. ୨ । ଶାରଳ ପକ୍ଷୀ; ହାଡ଼ଗିଲା ପକ୍ଷୀ; ଚରଲପକ୍ଷୀ—2. A kind of crane; the adjutant bird (a wading bird ).

ରାଠ—ଦେ ବଣ. ସ୍ତ୍ରୀ ( ଭୂଳ ସଂ. ରୂଢ଼, ବ୍ୟସ୍ତକୃଷ୍ଣ )—୧ । କୃପଣ;
Rāṭha କଂଜୁସ୍—1. Miserly. ୨ । ନିଷ୍ଠୁର—
(ରାଠୁଆ—ଅନ୍ୟରୂପ) 2. Cruel. ଦେ ବ. ପୁଂ—କୃପଣ
[ରାଠୀ, ରାଠେ(ଠୋ)ଇ—ସ୍ତ୍ରୀ) ବ୍ୟକ୍ତି—A miser.
কংজুস कंजुस

ରାଠୋର—ଦେ. ବ ( ସଂ. ରାଷ୍ଟ୍ରକୂଟ )—ରାଜପୁତମାନଙ୍କର ଶାଖା-
Rāṭhora ବିଶେଷ—A branch of the Rājputs. [ଉ
বাঠোৰ —ପ୍ରତିହାର, ପ୍ରମାରକ, ରାଠୋର, ଗୈହ୍ଳୋ-ନାମ-
राठौर ଧାରୀ କୃତୀ ଶୁର ଶତ ମହାସାରେ '। ରାଧାନାଥ. ମହାଯାତ୍ରା । ] [ବ୍ର—ଏହା ଭାରତର ଏକ ପ୍ରସିଦ୍ଧ ରାଜବଂଶ । ଓଡ଼ିଶା ଗଡ଼ଜାତ ଦଶପଲ୍ଲାର ରାଜବଂଶ ରାଠୋର ବଂଶୀୟ ଥିବା କଥିତ । ]

ରାଡ(ଡ଼)ରାଡ଼ୁଆ—ଦେ ବଣ ( ଧ୍ୱନ୍ୟନୁକରଣ )—ଖେଇବା ପାଇଁ
Rārd(rdu)rardua କଠିନ ( ବସ୍ତୁବିଷୟ; ଯଥା—ଗୁଆ,
চিবাতেশক্ত ବାଲିଗରଡ଼ା )—Rough to the taste.
राडराड़ुआ [ ବ୍ର—ବାଲି, ଲୁଣ୍ଡା ଅଦ ପାଟିକୁ ରାଡ(ଡ଼)-ରାଡୁ(ଡ଼ୁ) ଆ ଲାଗେ; କଳୁ ଭିଟାରୁ ବଡ଼ ଠାଣୁଆ ଜିନିଷ (ଯଥା—ଗୋଠାଗୁଆ, ବାଲିଗରଡ଼ା) ରାଡ଼ୁରାଡ଼ୁଆ ଲାଗେ । ]

ରାଡ଼—ଦେ. ବଣ. ପୁଂ ( ସଂ. ରଡ୍ ଧାତୁ=ଶବ୍ଦ କରିବା; ସଂ. ରାଢ଼
Rārda ଦେଶ=ଏ ଦେଶରେ ସାନ୍ତାଳ ଆଦ ଅସଭ୍ୟ ଜାତି
[ରାଡ଼ୀ, ରାଡ଼ୁ(ଡ଼ୋ)ଣୀ—ସ୍ତ୍ରୀ] ଥିବାରୁ; ସଂ. ରୂଢ଼; ସଂ. ରଣ୍ଡ=
বাড, বাড়ুয়া, বেডো ଯୁକ୍ତ)—୧ । ବର୍ବର; ଅସଭ୍ୟ—
राड 1. Barbarian, uncivilized. ୨ । ଅଶିଷ୍ଟ; ଅଭଦ୍ର—2. Uncivil. ୩ । କୃପଣ—3. Miserly. ୪ । ଠାଣୁଆ; କଠିନ—4. Hard. ୫ । ନିଷ୍ଠୁର; ନିର୍ଦ୍ଦୟ—5. Cruel ୬। କଠିନ ହୃଦୟ - 6. Hard-hearted. ୭ । ମନ୍ଦ ବା ଦୁଷ୍ଟ—7. Wicked. ଦେ. ବ—୧ । ବର୍ବର ବ୍ୟକ୍ତି—1. A barbarian. ୨ । ନିଷ୍ଠୁର ବ୍ୟକ୍ତି—2. A cruel person.

ରାଡ(ଢ଼) ଗୁ(ଗୋ)ଆଁର—ଦେ ବ ଓ ବଣ-୧। ଅତି ମୂର୍ଖ ଓ ମାଡଗାଳୀୟ
Rārda(rdha) gu(go)āṅra ଲୋକ—1. A low-caste
ରାଡ଼(ଢ଼)ଗୁଆଁ(ହ୍ୱା)ଡ଼ } ଅନ୍ୟରୂପ person. ୨। ବର୍ବର ବା ଅସଭ୍ୟ
ରାଡ଼(ଢ଼)ଗୋଆ(ହ୍ୱା)ଡ଼ } ଲୋକ—2. A barbarian.
বাড় চোয়াড় (চুআড়), বাড় গোয়াঁব ୩ । ବଣୁଆ ଜଙ୍ଗଲୀ ଲୋକ—
राडगंवार 3. A person of an uncivilized or wild tribe.

ରାଡା—ଦେ ବଣ. (ଧ୍ୱନ୍ୟନୁକରଣ)—ରାଡରାଡ଼ୁଆ ( ଦେଖ )
Rārda Rārd-rārduā ( See)
(ରାଡ଼ୁଆ—ଅନ୍ୟରୂପ)

ରାଡିଅମ୍—ବୈଦେ. ବ. (ଇଂ)—ନୂତନ ଆବିଷ୍କୃତ ମୌଳିକ ଧାତୁ
Rādiam ବିଶେଷ; ରେଡିଅମ୍ ( ଦେଖ )—Radium;
বেডিঅম राडियम Rediam ( See )

ରାଡିଓ—ବୈଦେ. ବ. (ଇଂ)—ରେଡିଓ ( ଦେଖ )
Rādio Redio ( See )

ରାଡ଼(ଢ଼ି) ଧାନ—ଦେ. ବ. ( ସଂ. କବାର )—ବୁହାଡ଼; ବାଲୁଙ୍ଗା—
Rārdi(rdhi) dhāna Paddy plants growing from
উড়ী ধান, ঝড়া झड(डा)धान stray seeds.

ରାଡ଼ୁମା(ବ୍ରା)ଡ଼ୁ—ଦେ ଅ.(ଧ୍ୱନ୍ୟନୁକରଣ)—ହାଡ଼ ଆଦକୁ ଖେଇବାର
Rārdumā(rā)rdu ବା ଚେକେଟିବାର ଶବ୍ଦ—Grating sound of chewing bones.
কড়মড় (ଯଥା—କୁକୁର ହାଡ଼ ମାଉଁସକୁ ରାଡ଼ୁ ରାଡ଼ୁ
कडमड ଖେଉଅଛି ।) [ରାଡ଼ୁମା(ବ୍ରା)ଡ଼ୁଆ—ବଣରୂପ]
[ବ୍ର—ରାଡ଼ୁ ମାଡ଼ୁ ଅପେକ୍ଷା ରାଡ଼ୁ ରାଡ଼ୁ କର୍କଶତର ।]

ରାଢ଼—ସଂ. ବ. (ରଢ୍ ଧାତୁ=ତ୍ୟାଗ କରିବା+କର୍ମ. ଡ)—୧ । ଗଙ୍ଗା
Rārdha ନଦୀର ପଶ୍ଚିମରେ ଥିବା ବଙ୍ଗଦେଶର ଅଂଶ; ଗଙ୍ଗାପଶ୍ଚିମ —1. Part of Bengal to the west of the Ganges. (ଯଥା—ବର୍ଦ୍ଧମାନ, ମେଦିନୀପୁର, ହୁଗୁଳି ଆଦ ।) ୨ । ସୌନ୍ଦର୍ଯ୍ୟ—2. Beauty. ଦେ. ବଣ — ରାଡ଼ (ଇତ୍ୟାଦ) (ଦେଖ)—Rārda (etc) (See) (ଉ—ମୁଁ ଘ୍ରାଳ ମନ୍ଦ ପାପିଷ୍ଠ ରାଢ଼ ନାହିଁ ମୋର ଭାଗ୍ୟ ।

ଭକ୍ତଚରଣ. ମଥୁରାମଙ୍ଗଳ ।) ପ୍ରାଦେ. (ବାଲେଶ୍ୱର) ବ — ସାନ୍ତାଳ ପ୍ରଭୃତି ଆଦି ଜାତି—Aborigines, such as the Santhals. ପ୍ରାଦେ. (ଭଦ୍ରକ) ବ — ମାଛ ଧରିବା ପାଇଁ ବ୍ୟବହୃତ ଖୁବ୍ ବଡ଼ ଖଇଣ୍ଟ—A big-sized contrivance of wicker work to catch fish with

**ରାଢ଼ ଦେଶ** ସ. ବି — ବଙ୍ଗ ପ୍ରଦେଶର ଗଙ୍ଗା ନଦୀର ପଶ୍ଚିମ ଦେଶ, **Rārdha desa** (ଯଥା — ବର୍ଦ୍ଧମାନ, ହୁଗୁଳି, ବୀରଭୂମ, ବାଙ୍କୁଡ଼ା) Western Bengal consisting of Burdwan. Hughly, Birbhum and Bankura.

**ରାଢ଼ପଣ** — ଦେ. ବି — ୧ । ନିଷ୍ଠୁରତା—1. Cruelty. ୨ । କଠିନତା, **Rārdha pana** ଟାଣପଣ—2. Hardness. [ଉ—ନୁହଇ କଠିନତା ପାଷାଣ ମୁଷା ସମାନ, ନ ମାନେ ରାଢ଼ପଣେ ଦାଢ଼ମୂନ । **राढपन** କବିସୂର୍ଯ୍ୟ. କବିତାକଲ୍ଲୋଳନୀ ।] ୩ । କୃପଣତା — [ରାଢ଼ପଣଆ(ଅଁ) – ଅନ୍ୟରୂପ] 3. Niggardliness.

**ରାଢ଼ା (ଢ଼ୀ)**—ସ. ବ (ରାଢ଼ + ଅ. ଈ) - ୧ । ରାଢ଼ ଦେଶ (ଦେଖ) **Rārdha(rdhi)** Rārdha desa ( See ) ୨। ଶୋଭା; ସୌନ୍ଦର୍ଯ୍ୟ—2. Beauty. ୩ ପ୍ରାଚୀନ ନଗରୀ ବିଶେଷ—3. Name of an ancient city.

**ରାଢ଼ି**—ଦେ. ବ—୧ । ଅସ୍ପୃଶ୍ୟ ଶୃଗାଳ ଜାତି ବିଶେଷ—1. A low **Rārdhi** class of untouchables treated as **हुलेवागदी** falling under the same category **मल्लाह** as the sweepers.
୨ । ଏକ ଜାତୀୟ କେଉଟ (ଏମାନେ କେବଳ ଚୂଡ଼ା କୁଟନ୍ତି; ମାଛ ଧରନ୍ତି ନାହିଁ )—2. A class of makers of churda.

**ରାଢ଼ି (ଢ଼ୁ,ଢ଼େ)ଣୀ**—ଦେ. ବଣ. ସ୍ତ୍ରୀ—୧ । ଦୁଷ୍ଟା (ସ୍ତ୍ରୀ)—1. Wic- **Rārdhi(rdhu,rdhe)ni** ked (woman). [ ଉ—ତ୍ରିସ୍ [ରାଢ଼େ(ଢ଼ୋ)ଈ—ଅନ୍ୟରୂପ] କୁଳେ କଳଙ୍କ ଭୁ କୁଟିଳ ରାଢ଼େଣୀ **राढनी** ପ୍ରତାପ— ଶଶିସେଣା ।] ୨ । ମୂଢ଼ା—2. Devoid of good sense (said of a woman). ୩ । ନୀଚା; ନୀଚ୍ଚ; ଅଧମା—3. Ignoble; low; mean (woman). ୪ । କୃପଣା—4. Miserly (woman). ୫ । ନିଷ୍ଠୁରା—5. Cruel (woman). [ଉ – ଅଗ୍ନି ଜାଳନ୍ତେ ଅନ୍ଧିଲି ରାଢ଼େଣୀ, ଅନେକ ଯାଳେ ନ ତାଇଲି ପାଣି । ପ୍ରତାପ. ଶଶିସେଣା । ] ୬ । ଭାଗ୍ୟ-ହୀନା—6. Unfortunate; wretched. [ରାଡ଼ି(ଢ଼ୁ,ଢ଼େ)ଣୀ – ଅନ୍ୟରୂପ] (woman).

**ରାଢ଼ୀ**— ସ. ବଣ.—(ରାଢ଼ + ଇନ୍ ୧ମା. ୧ବ.) — ୧ । ରାଢ଼ ଦେଶବାସୀ **Rārdhi** 1. Inhabiting or belonging to wes- (ରାଢ଼ୀୟ – ଅନ୍ୟରୂପ) tern Bengal. ୨ । ରାଢ଼ ଦେଶୀୟ— 2. Pertaining to the Rārdha country. ୩ । ବଙ୍ଗୀୟ ବ୍ରାହ୍ମଣ ଓ କାୟସ୍ଥମାନଙ୍କର ଶାଖା ବିଶେଷର— 3. Belonging to respective divisions of Brāhmanas and Kāyasthas of Bengal. [ବି —ରାଢ଼ୀୟବ୍ରାହ୍ମଣ ଓ କାୟସ୍ଥମାନେ ବଲ୍ଲାଳସେନଙ୍କଦ୍ୱାରା କାନ୍ୟକୁବ୍ଜରୁ ଆନୀତ ହୋଇ ରାଢ଼ ଦେଶରେ ବସତି ସ୍ଥାପନ କରିଥିଲେ ଓ ତଦବଧି ଏମାନେ 'ରାଢ଼ୀୟ' ନାମରେ ଖ୍ୟାତ । ବ୍ରାହ୍ମଣ ଓ କାୟସ୍ଥମାନଙ୍କର ଏହି ରାଢ଼ୀୟ ଶାଖା ପୁଣି ଉତ୍ତର ରାଢ଼ୀ ଓ ଦକ୍ଷିଣ ରାଢ଼ୀ ଉପଶାଖାରେ ବିଭକ୍ତ । ] ୪ । ରୂଢ଼; କର୍କଶ—4. Coarse; hard.

**ରାଣ** — ସ. ବ.--(ରଣ୍ ଧାତୁ = ଶବ୍ଦ କରିବା + ଅ) — ୧ । ମୟୂରପୁଚ୍ଛ - **Rāna** 1. Peacock's tail. ଦେ. ବ.—(ସ. ରାଜନ; ପ୍ରା. ରାଣ)—(ପଦ୍ୟ)— ୧ । ଅନେକଙ୍କ ମଧ୍ୟରେ ଶ୍ରେଷ୍ଠ ବ୍ୟକ୍ତି—1. Chief person amongst many. [ଉ— ଭୁ ବିନା ମୋର ପ୍ରାଣ । ରମଣୀଗଣ ରାଣ—କବିସୂର୍ଯ୍ୟ ସଙ୍ଗୀତ ।] ୨। (ପଦ୍ୟ) (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ,ଯଥା —ନୃପରାଣ = ନୃପଶ୍ରେଷ୍ଠ; ରାଜନ୍ ଶବ୍ଦ ପ୍ରା.ରାଣ.) ଅଧିପତି; ରାଜା—2. King; Lord. (ଉ—ତାହାଙ୍କୁ ଆଜ୍ଞା ଦେଲେ ବ୍ୟାସ ଋଷିରାଣ । କୃଷ୍ଣସିଂହ. ମହାଭାରତ. ଆଦି । ୩ । (ପଦ୍ୟ) ରାଜା—3. King. (ଯଥା—ସୁରରାଣ, ନରଟାଣ ଉଲୁରାଣ ।) [ଉ—ଦଣ୍ଡେ କମିଶେ ଥିଲେ ପ୍ରାଣ, ନ ନେଇ ପାରେ ଜନ୍ମ ରାଣ । ଜଗନ୍ନାଥ. ଭାଗବତ ।] ୪ । (ପୂର୍ବେ ରାଜାଙ୍କ ନାମ ଉଚ୍ଚାରଣ ପୂର୍ବକ ଶପଥ କରା ଯାଉଥିବାରୁ) **दिव्वी(व्यि)** ଶପଥ; ଦିବ୍ୟ—4. An oath (by taking the **कसम, रान** name of a person or Deity). [ଉ—ଥିଲା ପରି ସ୍ନେହ ଲିଭିଲେ କି କହ ଅଛୁଟି ତୋତେ ମୋ ରାଣ । କବିସୂର୍ଯ୍ୟ. କଳୋଗଣକାନ୍ଦି. 'ଥ' ଗୀତ ।] [ବି— ଯେଉଁ ଲୋକଙ୍କ ବା ରାଜାଙ୍କ ବା ଦେବତାଙ୍କ ନାମ ଧରି ଶପଥ କରିବାକୁ ହୁଏ ସେହି ସେହି ବ୍ୟକ୍ତି ଆଦିଙ୍କ ସଙ୍ଗେ ୬ଷ୍ଠୀ ବିଭକ୍ତି ଯୋଗ କରାଯାଏ, ଯଥା—ମୋ ରାଣ, ବାପାଙ୍କ ରାଣ, ବାପଙ୍କ ରାଣ, ସରସ୍ୱତୀଙ୍କ ରାଣ ରାଜାଙ୍କ ରାଣ ।]

**ରାଣ ଖାଇବା**—ଦେ. କ୍ରି—୧ । କାହାରି ଈଶ୍ୱରଙ୍କ ନାମ ଧରି କୌଣସି **Rāna khāibā** ପୂର୍ବଘଟିତ ବିଷୟ ସତ୍ୟ ବୋଲି କହିବା; ହଲପ କରିବା—1. To say a **दिव्यि कवा(गाला)** thing on oath. ୨ । ଶପଥ ପୂର୍ବକ **शापथ(रान)खाना** ଅଙ୍ଗୀକାର କରିବା ବା ସତ୍ୟ କରିବା— 2. To promise to do a thing on oath.

**ରାଣ ଦେବା** — ଦେ. କ୍ରି—ଅନ୍ୟ ବ୍ୟକ୍ତିଙ୍କୁ ଶପଥ ପୂର୍ବକ ଅନୁରୋଧ **Rāna debā** କରିବା—To request a person in the **दिव्यि देओया** name of a Deity or beloved person. **शापथ(रान)देना** [ଉ—ମୋର କଟକରୁ ନ ଆଣ, ତୁମ୍ଭଙ୍କୁ ଦେଉ- ଅଛୁ ରାଣ । ପ୍ରାଚୀ. କାର୍ତ୍ତିକ ମାହାତ୍ମ୍ୟ ।]

**ରାଣ ଦେଇ ପରି**—ଦେ. କ୍ରି. ବଣ—ଦେବତାଙ୍କ ନାମ ଧରି କୌଣସି **Rāna delā pari** ବ୍ୟକ୍ତିଙ୍କୁ କୌଣସି ବିଷୟରୁ ନିବର୍ତ୍ତାଇଲେ **दिव्यिमेने** ସେ ଉକ୍ତ ରାଣ ମାନି କରି ନିବୃତ୍ତ ହେବା ଭଳି—

रान् देनेकी तरह As if bound by oath.
(ରାଣ ମାନଲା ପରି — ଅନ୍ୟରୂପ) (ଯଥା—ଏକାପାନେ ଔଷଧରେ ମୋ ଚେଥଠଣା ରାଣ ଦେଲା ପରି ବନ୍ଦ ହୋଇଗଲା ।)

ରାଣ ନୟମ — ଦେ. ବି (ସହରରି) — ଶପଥ —
Rāṇa niyama दिव्य रानडन Oath.

ରାଣ ନୟମ ଖାଇବା — ଦେ. କ୍ରି — ରାଣ ଖାଇବା ( ଦେଖ )
Rāṇa niyama khāibā Rāṇa khāibā (See)
दिव्यी कवा रानडन खाना

ରାଣ ପକା(କେ)ଇବା—ଦେ. କ୍ରି—୧ । କୌଣସି ବ୍ୟକ୍ତିଙ୍କ ବା Rāṇa pakā(ke)ibā ଦେବତାଙ୍କ ନାମ ଉଚ୍ଚାରଣ ପୂର୍ବକ दिव्यि देओया ଶପଥ କରିବା—1. To take an oath; to शपथ(रान)करना(खाना) swear by the name of a person or Deity. ୨ । ଶପଥ ପୂର୍ବକ କୌଣସି ବ୍ୟକ୍ତିଙ୍କୁ କିଛି କାର୍ଯ୍ୟ କରିବାକୁ ଅନୁରୋଧ କରିବା— 2. To request a person on oath. (ଉ— ଗୋଟିଏ ଗୋଟିଏ ଅଳ୍ପ କଥାକୁ କୋଟିଏ ପକାଏ ରାଣ ଗୋ । କବିସୂର୍ଯ୍ୟ. ସଙ୍ଗୀତ ।)
[ବି—ନିମ୍ନଲିଖିତ ଉପଲକ୍ଷରେ ରାଣ ପକାଇବାକୁ ହୁଏ— ୧ । ସୁକୃତ କରି ସତ୍ୟ କହିବା (ରାଣ ଖାଇବା); ୨ । କୌଣସି ବ୍ୟକ୍ତିଙ୍କୁ କୌଣସି କାର୍ଯ୍ୟ କରିବାକୁ ଅନୁରୋଧ କରିବା (ରାଣ ଦେବା, ରାଣ ପକାଇବା); ୩ । କୌଣସି ବ୍ୟକ୍ତିଙ୍କୁ କୌଣସି କାର୍ଯ୍ୟ କରିବାରୁ ବିରତ ହେବାକୁ ଅନୁରୋଧ କରିବା (ରାଣ ଦେବା, ରାଣ ପକାଇବା); ୪ । ନିଜେ ଭବିଷ୍ୟତରେ କୌଣସି କାର୍ଯ୍ୟ ନ କରିବାକୁ ସତ୍ୟ ପ୍ରତିଜ୍ଞା କରିବା (ରାଣ ଖାଇବା) ।]

ରାଣ ବେଲି—ଦେ. ବି. (ବୈଦ୍ୟକ)—ଅରଣ୍ୟ ବୃକ୍ଷବିଶେଷ —
Rāṇa beli A medicinal wild plant.
[ବି—ଏହାର ମୂଳର କ୍ୱାଥ ବା ଚୂର୍ଣ୍ଣ ବିଷଦୋଷ, କୃମି, ରକ୍ତବିକାର,ଉପଦଂଶ,ବ୍ରଣ ଓ ବାତ ରୋଗ ନିବାରଣ କରେ; ଏହା ବମନ ଓ ବିରେଚନ କରାଏ—ଦ୍ରବ୍ୟଗୁଣ.
[ରାଅ(ହା)ଣ ବେଲି—ଅନ୍ୟରୂପ] କଳ୍ପଦ୍ରୁମ ।]

ରାଣ ମାନିବା - ଦେ.କ୍ରି— ଶପଥକୁ ଲଙ୍ଘନ ନ କରିବା,ଶପଥକୁ ମାନ୍ୟକରି Rāṇa mānibā କାର୍ଯ୍ୟ କରିବା—To obey or दिव्यिमाना शपथ(रान)मानना respect on oath.

ରାଣା—ଦେ. ବି. ( ସଂ. ରାଜନ୍; ପ୍ରା. ରାଣ )—୧ । ରାଜପୁତ Rāṇā ରାଜାଙ୍କର ଉପାଧି ବିଶେଷ—1. A title prefix- বাণা ed to the name of Rajput kings. राणा [ବି—ଏହା ନାମ ପୂର୍ବରେ ଯୁକ୍ତ ହୁଏ; ଯଥା— (ରାଣୀ— ସ୍ତ୍ରୀ) ରାଣା ପ୍ରତାପ ସିଂହ, ରାଣା ସଂଗ୍ରାମ ସିଂହ ।] ୨ । ରାଜପୁତାନା ଅନ୍ତର୍ଗତ ମିବାର ରାଜ୍ୟର ରାଜାମାନଙ୍କ ରାଜୋପାଧି—2. The title of the kings of Mewar.

ରାଣାଡେ—ଦେ. ବି. (ନାମ)—(ମରହଟ୍ଟା ବ୍ରାହ୍ମଣମାନଙ୍କ ବଂଶୋପାଧି Ranade ବିଶେଷ; ଏହାଙ୍କ ପୂରା ନାମ ) ଗୋବିନ୍ଦ ମହାଦେବ বাণাডে ରାଣାଡେ—A family title amongst the रानडे Marhatta Brahmaṇas and specially mentioned to denote the late Mahadev Govind Ranade. [ବି—ଏହାଙ୍କ ଜନ୍ମ ଖ୍ରୀ.୧୮୪୨ ମୃତ୍ୟୁ ଖ୍ରୀ.୧୯୦୧ । ଏ ଜାତିରେ ମହାରାଷ୍ଟ୍ରୀୟ ବ୍ରାହ୍ମଣ । ଏ ଇଂରାଜୀ ଶିକ୍ଷା ଲାଭ କରି ଉଚ୍ଚତମ ଉପାଧି ଏମ୍. ଏ. ଓ ଅଇନ୍ ଉପାଧି ପାଇ କେତେକ ଦିନ ସରକାରୀ ଅନୁବାଦକ, ପରେ ପୁନାର କଲେଜରେ ଅଧ୍ୟାପକ ଓ ପରେ ସବ୍‌ଜଜ୍ ହୋଇ ଶେଷରେ ବମ୍ବେ ହାଇକୋର୍ଟରେ ଜଜ୍ ହୋଇଥିଲେ । ଏହାଙ୍କର ପ୍ରତିଭା ସର୍ବତୋମୁଖୀ ଥିଲା । ସମାଜ ସଂସ୍କାର, ଦେଶହିତ ସାହିତ୍ୟ, ଇତିହାସ, ବିଜ୍ଞାନ, ରାଷ୍ଟ୍ରନୀତି, ଅର୍ଥନୀତି ଆଦି ସବୁ ବିଭାଗରେ ଏ ବିଶେଷ ପାରଙ୍ଗମ ଥିଲେ ।]

ରାଣୀ—ଦେ. ବି. ସ୍ତ୍ରୀ ( ସଂ. ରାଜ୍ଞୀ; ପ୍ରା ରାଣୀ )—୧ । ରାଜ୍ଞୀ; Rāṇi ରାଜପତ୍ନୀ; ରାଜମହିଷୀ—1. Queen. ୨ । ରାଜ୍ଞୀଙ୍କ রাণী ପରି ଐଶ୍ୱର୍ଯ୍ୟଶାଳିନୀ ସ୍ତ୍ରୀ—2. A lady rolling in रानी happiness and prosperity like a queen. ୩ । ସ୍ତ୍ରୀ ଲୋକଙ୍କ ନାମ—3. A name given to women. ୪ । (ସମ୍ମାନ ବା ସ୍ନେହ ସମ୍ବୋଧନରେ ସ୍ତ୍ରୀମାନଙ୍କ ପ୍ରତି ବ୍ୟବହୃତ—4. A term of endearment used to females. ୫ । ରାଣାଙ୍କ ସ୍ତ୍ରୀ— 5. The wife of a Rāṇā.

ରାଣୀ କଙ୍କଡ଼ା—ଦେ.ବି-ଚିଲିକାରେ ମିଳୁଥିବା ଏକପ୍ରକାର ବଡ଼ କଙ୍କଡ଼ା- Rāṇi kankarda A kind of crab found in the বড কাঁকড়া Chilka lake of the Puri district in बडा कंकडा Orissa.

ରାଣୀ ଗଞ୍ଜ—ଦେ ବି—ବର୍ଦ୍ଧମାନ ଜିଲ୍ଲାର ସବ୍‌ଡିଭିଜନ୍ ଓ ନଗର— Rāṇi ganja A subdivision and a town; রাণীগঞ্জ Burdwan in Bengal. [ବି—ଏଠାରେ रानीगंज ଅନେକ କୋଇଲାଖଣି ଅଛି ।]

ରାଣୀ ଗୁମ୍ଫା(ହା)—ଦେ.ବି (ନାମ)—ଭୁବନେଶ୍ୱର ନିକଟସ୍ଥ ଉଦୟଗିରି Rāṇi gumphā(hā) ପାହାଡ଼ରେ ବହୁ ପ୍ରକୋଷ୍ଠମୟ ଦ୍ୱିତଳ- ରାଣୀହଂସପୁର } ବିଶିଷ୍ଟ ଖୋଦିତ ଗୁମ୍ଫା—Name of { ଅନ୍ୟରୂପ a cluster of caves in the ରାଣୀନହର Udayagiri hills of the Puri রাণীগুম্ফা district in Orissa, consisting of two रानीगुफा storied caves carved in the rock.

ରାଣୀ ଦାନ୍ତକାଠି—ଦେ. ବି—ସିଧା ସଳଖ ବନ୍ୟ ଗୁଳ୍ମ ବିଶେଷ Rāṇi dāntakāṭhi ( ଉଚ୍ଚତା ୧୦ ଫୁଟ । ଏହାର ଫୁଲ ଧଳା )—Flemingia Chapper ( plant ) Flemingia Paniculata.

**ରାଣୀ ମା(ମାଆ)**—ଦେ. ବି—୧ । ରାଜମାତା—1. Queen-
Rāṇi mā(māā) mother. ୨ । (ସମ୍ମାନାର୍ଥକ) ବଡ଼
ରାଣୀମା ଲୋକଙ୍କ ସ୍ତ୍ରୀଙ୍କ ପ୍ରତି ସମ୍ବୋଧନ—2. A term of
**रानीमा** endearment addressed to rich ladies.
୩ । ରାଣୀ ନାମ୍ନୀ ବାଳିକାର ମାତା—3. Mother of a girl named Rāṇi

**ରାଣୀ ସେରା**—ପ୍ରାଦେ (ଗଡ଼ଜାତ) ବି—ଓଡ଼ିଶାର ଗଡ଼ଜାତମାନଙ୍କ
Rāṇi serā ଜଙ୍ଗଲରେ ଥିବା ଗୁଳ୍ମବିଶେଷ—Canthium Glabrum (plants) (Haines).

**ରାଣୀ ହଂସପୁର**—ଦେ. ବି—ଉଆସ, ଶୁଦ୍ଧାନ୍ତପୁର; ଯେଉଁଠାରେ
Rāṇi hamsapura ରାଣୀ ବାସ କରନ୍ତି—The queen's
ଅନ୍ତଃପୁର; ରାଣୀମହଲ apartments; the Rājāh's
**रानीमहल** harem. [ଉ—ରାଣୀ ହଂସପୁରେ ପ୍ରବେଶି ବାରତା, କହିଲା ରାଣୀଙ୍କ ସବିଶେଷର । ନନ୍ଦକିଶୋର. କୃଷ୍ଣକୁମାରୀ । ]

**ରାଣ୍ଠ**—ଦେ ବିଣ ପୁଂ ଓ ସ୍ତ୍ରୀ (ସ. ବ୍ୟୟକୁଣ୍ଠ)—କୃପଣ—
Rāṇṭha Miserly; close-fisted.
[ରାଣ୍ଠି(ଣ୍ଠୁ)ଆ—ଅନ୍ୟରୂପ] (ରାଣ୍ଠୀ, ରାଣ୍ଠେ(ଣ୍ଠୋ)ଇ—ସ୍ତ୍ରୀ]
କୃପଣ **कंजूस**

**ରାଣ୍ଠିରୁଣ୍ଠି ହେବା**—ଦେ. କ୍ରି. ବିଣ (ସ. କୁଣ୍ଠିତ)—୧ । ଧନ ବ୍ୟୟ
Rāṇṭhiruṇṭhi hebā କରିବାକୁ କୁଣ୍ଠିତ ହେବା—1. To
(ରାଣ୍ଠିହେବା—ଅନ୍ୟରୂପ) shrink from spending
**कुण्ठितहओया** money. ୨ । କୌଣସି କାର୍ଯ୍ୟ କରିବାକୁ
**सकुचाना** କୁଣ୍ଠିତ ହେବା ବା ପଶ୍ଚାତ୍ପଦ ହେବା—2. To show aversion to do a thing.

**ରାଣ୍ଡ**—ଦେ. ବି ସ୍ତ୍ରୀ (ସ ରଣ୍ଡା)—୧ । ବିଧବା—1. Widow.
Rāṇḍa [ଉ—ସେ କାଳରେ ସହିଯୂ ସ୍ତ୍ରୀ ସବୁ ରାଣ୍ଡ ହେଲେ,
ବାଁଡ଼, ବାଁଡ କୃଷ୍ଣସିଂହ. ମହାଭାରତ. ଆଦି । ] ୨ । (ହିନ୍ଦି ଓ
**रांड, रण्डी, रांडि** ବଙ୍ଗଳାରୁ ଏ ଅର୍ଥରେ ଏ ବ୍ୟବହାର
ଅହିଥ } ପ୍ରଥମ ଅର୍ଥର ବିପରୀତ ଅର୍ଥବୋଧକ] ଅନୁକୂଳ) ବେଶ୍ୟା—
ଅଦ୍ୟ } 2 Prostitute.
୩ । (ହିନ୍ଦି ଓ ବଙ୍ଗଳାରୁ ଅନୁକୃତ) ରକ୍ଷିତା ସ୍ତ୍ରୀ—
3 Kept woman; concubine; a mistress.
୪ । ଅସହାୟବିହୀନା ସ୍ତ୍ରୀ—4. A helpless woman.
ବିଣ—୧ । ଯାହାଙ୍କ ସ୍ୱାମି ବିୟୋଗ ଘଟିଅଛି—
1. Widowed (woman). ୨ । ଭୂଷଣହୀନ
ଅଳଙ୍କାରବିହୀନା (ସ୍ତ୍ରୀ)—(a woman) Shorn
or destitute of ornaments. ବି. ପୁଂ—
(ବିଧବା ପରି) ସର୍ବସମ୍ପତ୍ତିବିହୀନ—Shorn of all
property (said of a destitute person
who is compored to a widowed woman).
[ଦ୍ର—ଆମ ଦେଶରେ ହିନ୍ଦୁ ସମାଜର ସ୍ତ୍ରୀମାନଙ୍କୁ ପ୍ରଧାନ
ଗାଳି 'ତୁ ରାଣ୍ଡ ହୋ' । ହିନ୍ଦୁ ସ୍ତ୍ରୀ ପକ୍ଷରେ 'ମରି ଯା'
ଗାଳି ଅପେକ୍ଷା 'ରାଣ୍ଡ ହୋ' ଗାଳି ବେଶି ହୃଦୟ-
ବିଦାରକ । ]

**ରାଣ୍ଡ ଅଣ୍ଠୁକୁଡ଼ୀ**—ଦେ. ବି.ସ୍ତ୍ରୀ. (ଗାଳି)—ଅସହାୟ; ପତି ଓ ସନ୍ତାନହୀନା
Rāṇḍa aṇṭhukurḍi ସ୍ତ୍ରୀ—A childless widow, a
ବାଁଡ଼ ବାଲତୀ, ବାଁଡ ଆଁଟିକୁଡୀ barren widow.
**रांड निपूती**

**ରାଣ୍ଡ ଉପରେ ଷଣ୍ଢ ହେବା ନ୍ୟାୟ**—ଦେ. ପ୍ରବଚନ—ଅସହାୟ ବିଧବା
Rāṇḍa upare shaṇḍha hebā nyāya ଉପରେ
ନବମେବ ସମ ଅତ୍ୟାଚାର ପୂର୍ବକ ଆପଣାର ପରାକ୍ରମ ଦେଖାଇବା
**रांडके उपर सांढ बनना** ନ୍ୟାୟ—Like a person by showing off his prowess by oppressing a helpess widow.

**ରାଣ୍ଡ କରିବା**—ଦେ. କ୍ରି—୧ । ଆପେ ମୃତ ହେବା ଦ୍ୱାରା ଆପଣା ସ୍ତ୍ରୀର
Rāṇḍa karibā ବୈଧବ୍ୟ ଘଟାଇବା—1 To cause the
ବାଁଡ କବା widowhood of one's wife by one's
**रांड करना** death. ୨ । ସ୍ୱାମୀକୁ ବଧ କରି ବା ସ୍ୱାମୀର ମୃତ୍ୟୁର
କାରଣ ହୋଇ ସ୍ତ୍ରୀକୁ ବିଧବା କରାଇବା—2. To
cause the widowhood of a women by
bringing about the death of her husband. ୩ । ସ୍ୱାମୀ ମୃତ ହେବା ପରେ ସ୍ତ୍ରୀ ହାତରୁ ଖଡ଼ୁ
ଆଦି କାଢ଼ିବା (ଏ କାର୍ଯ୍ୟ ଭଣ୍ଡାରୁଣୀ ବା ପଣ୍ଡା କରେ)—
3. To take away the bracelets off the
hands of a woman who has just lost her
husband. ୪ । ତୁ 'ରାଣ୍ଡ ହୋ' ବୋଲି କୌଣସି
ସଧବା ସ୍ତ୍ରୀକୁ ଗାଳି ଦେବା—4. To invoke the
curse of widowhood on a woman.
୫ । କୌଣସି ଲୋକର ସର୍ବସ୍ୱ ହରଣ କରିବା—5. To
deprive a person of everything he had.
୬ । କନ୍ୟା ଅଙ୍ଗରେ ଦେହରେ ଅଳଙ୍କାରାଦି ନ ଦେଇ ସେ
ବିଧବା ପରି ଦେଖାଯିବା ଭଳି କରିବା—6. To cause
a girl to look like a widow by not supplying her with ornaments to wear.
୭ । (ସ୍ୱାମୀ ପକ୍ଷରେ) ସ୍ତ୍ରୀକୁ ନିରାଶ୍ରୟା କରି ଛାଡ଼ିବା—
7. (said of a husband) To forsake one's
wife. (ଉ—ଅନେକ୍ଷିତ ରାଣୀ ରାଣ୍ଡ କରିଗଲୁ, ଏକା
ଯୋଗିଆଣୀ ପାଇଁ । ଗୋବିନ୍ଦଚନ୍ଦ୍ର ଗୀତ ।)

**ରାଣ୍ଡ ଛେଉଣ୍ଡ**—ଦେ. ବି—୧ । (ସ୍ତ୍ରୀ) ପିତାମାତୃହୀନା ବିଧବା—
Rāṇḍa chheuṇḍa 1. An orphan widow.
ବାଁଡ଼ ବାଲତୀ ୨ । (ପୁଂ ଓ ସ୍ତ୍ରୀ) ନିରାଶ୍ରୟ ପିତୃମାତୃହୀନ ବ୍ୟକ୍ତି—
**रांड टुगर** 2. A helpless orphan.
[ରାଣ୍ଡ(ଣ୍ଡୀ)ଛେଉଣ୍ଡୀ—ସ୍ତ୍ରୀ]

**ରାଣ୍ଡ ଝି(ଝୁ)ଅ**—ଦେ. ବି—୧ । ବିଧବା କନ୍ୟା—1 A widow
Rāṇḍa jhi(jhu)a daughter. ୨ । ବିଧବା ବାଳିକା—
ବିଧବାବ ମେୟେ **रांडकी बेटी** 2. A widow girl.
ବିଧବା ମେୟେ ୩ । ନିରାଶ୍ରୟା ପତିହୀନା ସ୍ତ୍ରୀ—3. A poor
**रांडकी लडकी** and helpless widow.

୪ । ନିରାଶ୍ରୟା ବିଧବାର ( ନିରାଶ୍ରୟା ) କନ୍ୟା—
4. The helpless daughter of a helpless widow.

ରାଣ୍ଡ ଧନ—ଦେ. ବି—ବିଧବା ଦ୍ୱାରା ବହୁ କଷ୍ଟରେ ସଞ୍ଚିତ ଅର୍ଥ
Rāṇḍa dhana (ଯାହା ତାହାର ନିରାଶ୍ରୟ ଅବସ୍ଥାର ସମ୍ବଳ)-
বিধবার ধন, বাঁড়ের পুঁজী A widow's savings (which
रांडका धन are her last resort).

ରାଣ୍ଡବାଜ—ଦେ. ବିଣ—ରଣ୍ଡିବାଜ ଦେଖ )
Rāṇḍabāj Randibāj ( See )
বাঁড়বাজ, বাঁড়খোর रांडबाज (ରଣ୍ଡ ବାହ୍ମଣୀ—ଗ୍ରାମ୍ୟରୂପ)

ରାଣ୍ଡ ବାଜି—ଦେ. ବି—ରଣ୍ଡିବାଜି ( ଦେଖ )
Rāṇḍa bāji Randibāji ( See )
বাঁড়বাজী रांडबाजी

ରାଣ୍ଡ ବିଭା(ହା)—ଦେ. ବି. (୬ଷ୍ଠୀ ତତ୍)—ବିଧବା ବିବାହ; ବିଧବାର
Rāṇḍa bibhā(hā) ପତ୍ୟନ୍ତର ଗ୍ରହଣ—(ironical) Widow
বিধবা বিবাহ रांड बयाह marriage.
[ରଣ୍ଡ ବା(ବୋ)ହା, ରଣ୍ଡ ଉଆ—ଗ୍ରାମ୍ୟରୂପ]

ରାଣ୍ଡ ବ୍ରାହ୍ମଣୀ—ଦେ. ବି—ରାଣ୍ଡୀ ବ୍ରାହ୍ମଣୀ; ବ୍ରାହ୍ମଣ ବିଧବା—
Rāṇḍa brāhmaṇī A Brahmana's widow.
বিধবা ব্রাহ্মণী रांड बामनी (ରଣ୍ଡବାହ୍ମୁଣୀ—ଗ୍ରାମ୍ୟରୂପ)

ରାଣ୍ଡ ଭାଣ୍ଡ—ଦେ. ବି. ଗାଳି (ସହଚର)—ନଷ୍ଟଚରିତ୍ରା ବିଧବା—
Rāṇḍa bhāṇḍa A widow of loose character.
নষ্টা বিধবা रांड भांड

ରାଣ୍ଡ ମାଇପ(ପି)—ଦେ. ବି—୧ । ବିଧବା ସ୍ତ୍ରୀ—1. A widow.
Rāṇḍa māipa(pi) ୨ । ନିରାଶ୍ରୟା ବିଧବା—2. A help-
বিধবা মেয়ে, বাঁড মানুষ रांड स्त्री less widow.
(ରଣ୍ଡମାଇପେ—ବହୁବଚନ)

ରଣ୍ଡର କିଆଁ ଆଇଁଷର(ରେ) ଚିନ୍ତା—ଦେ. ଚିଣ—(ବିଧବା ସ୍ତ୍ରୀ ପକ୍ଷରେ
Rāṇḍara kiāñ āiñshara(re) chintā ଆମିଷ ଭୋଜନ
বাঁড়ের কেন আমিষের চিন্তা ନିଷିଦ୍ଧ । ଏପରି ସ୍ଥଳରେ ବିଧବାର ଆମିଷ
रांडके काहे आमिसकि फिक्र ସମ୍ବନ୍ଧୀୟ ଚିନ୍ତା କରିବା ଆବଶ୍ୟକ
ନାହିଁ । ଯେଉଁ ବିଷୟରେ କାହାର ସ୍ୱାର୍ଥ ବା ସମ୍ପର୍କ ନ
ଥାଏ ସେ ବିଷୟ ସେ ଚର୍ଚ୍ଚା କଲେ ଏ ପ୍ରବଚନ
ବୋଲାଯାଏ)—ନିଜର ସମ୍ପର୍କ ବା ସ୍ୱାର୍ଥ ନ ଥିବା ବିଷୟରେ
ଚିନ୍ତା କରିବା—A saying applied to a person
taking interest in a matter in which he
has no concern (like a widow taking
interest in animal food which is a
prohibited food to her.)

ରଣ୍ଡ ରଖିବା—ଦେ. କ୍ରି (ବଙ୍ଗଳା ଓ ହିନ୍ଦୀରୁ ଅନୁକୃତ)—୧ । ବିବାହ
Rāṇḍa rakhibā ନ କରି କୌଣସି ସ୍ତ୍ରୀକୁ ପତ୍ନୀରୂପେ ଭୋଗ
রাঁড়রাখা କରିବା—1. To entertain a mistress or
रांड रखना concubine. ୨। ବେଶ୍ୟା ରଖିବା—2. To keep
a prostitute. ୩ । କୌଣସି ବିଧବାକୁ ସ୍ତ୍ରୀରୂପେ
ରଖିବା—3. To live with a widow as
husband and wife.

ରଣ୍ଡର ପୁଅ—ଦେ. ବି (ଗାଳି)—ନିରାଶ୍ରୟା ବିଧବାର ସନ୍ତାନ,
Rāṇḍara pua ବିଧବା ସ୍ତ୍ରୀର ଅବୈଧ ସନ୍ତାନ—
বাঁড়ের ছেলে Child of a poor widow or a child
रांडका लडका conceived during widowhood.

ରଣ୍ଡ ସଭା—ଦେ. ବି (ନିନ୍ଦାର୍ଥକ)—୧ । ଯେଉଁଠାରେ ରଣ୍ଡମାନଙ୍କ
Rāṇḍa sabhā ଆଧିପତ୍ୟ ବା କର୍ତ୍ତୃତ୍ୱ ଥାଏ—1. A place
রাঁড়ের সভা where widows have mastery. ୨ ।
रांड सभा ଯେଉଁଠାରେ ପୁରୁଷ ଅଭିଭାବକଙ୍କ ଅଭାବରୁ ସ୍ତ୍ରୀମାନଙ୍କ କର୍ତ୍ତୃତ୍ୱ
ଯୋଗୁଁ ଆଗ୍ରହର ବ୍ୟବହାରରେ ଉଦ୍ଦାମ ହେବାର
ଦେଖାଯାଏ—A place where there is no
decorum or regulation due to there
being no male master.

ରଣ୍ଡ ହାତ—ଦେ. ବି—ବଳୟ ଓ ଭୂଷଣବର୍ଜିତ (ସ୍ତ୍ରୀଲୋକର) ହସ୍ତ—
Rāṇḍa hāta (woman's) Hand devoid or
বাঁড়হাত shorn of bracelets. [ଦ୍ର—ହିନ୍ଦୁ ସମାଜରେ ସ୍ତ୍ରୀ
रांडहात ବିଧବା ହେଲେ ପ୍ରଥମେ ତାହା ହାତରୁ ଖଡ଼ୁ ବା କାଚ ବା
ଶଙ୍ଖା କଢ଼ାଯାଏ । ]

ରାଣ୍ଡ ହେବା—ଦେ. କ୍ରି—୧ । ସ୍ୱାମୀର ମୃତ୍ୟୁ ଘଟିବାରୁ ବିଧବା ହେବା—
Rāṇḍa hebā 1. To become a widow. ୨ । ବିଧବା
বিধবা হওয়া ସ୍ତ୍ରୀପରି ଦେହରୁ ସମସ୍ତ ଅଳଙ୍କାର (ବିଶେଷତଃ ହାତରୁ
रांडहोना ଖଡ଼ୁ)କାଢ଼ିବା—2. To put off ornaments
from the body and look like a widow.

ରାଣ୍ଡିଆ—ଦେ. ବିଣ. ପୁଂ—୧ । ବେଶ୍ୟା ବା ରଣ୍ଡ ସହିତ ସହବାସକାରୀ;
Rāṇḍiā ବେଶ୍ୟାସକ୍ତ—1. Habitually visiting prosti-
ৰাঁড়খোর tutes. ୨ । ଯେଉଁ ବ୍ୟକ୍ତି ବେଶ୍ୟା ବା ରଣ୍ଡ ରଖିଥାଏ—
रांडिया 2. Entertaining a prostitute as his
বাঁডা mistress. ୩ । ବାଞ୍ଝ (ଗଛ)—3. Barren. (tree)
रांड, बांझी ପ୍ରାଦେ (ଜୟପୁର)—ଯାହାର ଭାର୍ଯ୍ୟା ମରଯାଇଥିଛୁ;
ମୃତଦାର—Having one's wife dead
( ସମ୍ବଲପୁର ) ବିଣ—ପୁରୁଷତ୍ୱବର୍ଜିତ—Bereft of
manhood or potency.

ରାଣ୍ଡିକା—ପ୍ରାଦେ (ଗଞ୍ଜାମ) ବିଣ.ପୁଂ.—ବିପତ୍ନୀକ—Having one's
Rāṇḍikā wife dead; widowed. ବି. ପୁଂ—ବିପତ୍ନୀକ
ବ୍ୟକ୍ତି—A widower.

ରାଣ୍ଡୀ—ଦେ. ବି. ସ୍ତ୍ରୀ (ସଂ. ରଣ୍ଡା)—୧ । ରଣ୍ଡ, ବିଧବା—1. Widow.
Rāṇḍī [ଦ୍ର—ଭୂମ୍ବ କୁଳନାଶ ଏ ହୋଇ କର ରାଣ୍ଡୀ, ଅମ୍ଭପରି
বাঁড়ী କାନ୍ଦିବେ ହୋଇଣ ଦରଣ୍ଡି । କୃଷ୍ଣସିଂହ. ମହାଭାରତ ସ୍ତ୍ରୀ ।]
रांड ୨ । ବେଶ୍ୟା—2. Prostitute. ୩ । ରକ୍ଷିତା ସ୍ତ୍ରୀ—3. A
concubine. ୪ । ସ୍ତ୍ରୀଲୋକଙ୍କ ପ୍ରତି ଗାଳି ବିଶେଷ—
4. A term of abuse applied to women.
[ଦ୍ର—ବୋଇଲେ ମୋ ଘରେ ଥାଇଲେ ଯାଉ ରାଣ୍ଡୀ; ଖାଇଲୁ
ବ୍ରାହ୍ମଣମାନଙ୍କ ଭେଣ୍ଡା ଗଣ୍ଡି । କୃଷ୍ଣସିଂହ. ମହାଭାରତ.
ବନ] ୫ଅଶ୍ରୟହୀନା ବିଧବା—5. Helpless widow.

ରାଣ୍ଡୀ ଖଣ୍ଡୀ—ଦେ.ବି. ସ୍ତ୍ରୀ—(ସହଚର)—୧ । ନିରାଶ୍ରୟା ଓ ମାତାପିତୃ-
Rāṇḍī khaṇḍī ହୀନା ବାଳିକା—1. Helpless orphan
রাঁড়খাঁড় रांडीखंडी girl ୨ । ବିଧବା ଓ ମାତାପିତୃହୀନା

ବାଳିକା—2. Widow and orphan. ୩ । ଅସାରା ସ୍ତ୍ରୀ; ଯେଉଁ ବିଧବାର ଅପତ୍ୟାଦି ନାହାନ୍ତି—3. A childless widow.

**ରାଣ୍ଡିଘର ପଥୁରି**—ପ୍ରାଦେ. (ସାମ୍ବଲପୁର) ବି—ରାଣ୍ଡର ଏକମାତ୍ର ପୁଅ—
Rāṇḍighara pathuri The only son of a widow.

**ରାଣ୍ଡି(ଣ୍ଡୁ)ଝିଅ**—ଦେ. ବି. (ଗାଳି)—୧ । ବିଧବାର ବୈଧବ୍ୟାବସ୍ଥାରେ
Rāṇḍi jhi(jhu)a ଉତ୍ପାଦିତା କନ୍ୟା—A daughter con-
বাঁড়ের মেয়ে, জারজ মেয়ে ceived by a woman during
**रांडकी बेटी** her widowhood.
୨ । ଜନୁଣ୍ଡପ୍ଟା ବିଧବାର କନ୍ୟା—2. The daughter of a helpless widow. ୩ । ଜନୁଣ୍ଡପ୍ଟା ବିଧବା କନ୍ୟା —3 A helpless and widow daguhter.

**ରାଣ୍ଡୀ ପୁଅ**—ଦେ. ବି. ପୁଂ—୧ । ବିଧବାର ପୁତ୍ର—1. The son of
Rāṇḍi pua a widow. ୨ । (ଗାଳି) ବିଧବାର ଜାରଜ
রাঁড়ের ছেলে ସନ୍ତାନ—2. Widow's illegitimate
**'रांडका बेटा** son.

**ରାଣ୍ଡୀ ପୁଅ ଅନନ୍ତା**—ଦେ. ବି—୧ । କାହାଣୀରେ କଥିତ ବିଧବା
Rāṇḍi pua anantā ବ୍ରାହ୍ମଣୀର ଏକମାତ୍ର ଅଯୋଗ୍ୟ ସନ୍ତାନ—
বাঁড়ের পো অন্তা 1. Name of a widow's only son
**मुन्नी** who is a loafer. ୨ । ଯେଉଁ ଲୋକର ଘରେ ପୋଷ୍ୟବର୍ଗ କେହି ନ ଥିବାରୁ ସେ ନିଶ୍ଚିନ୍ତ ହୋଇ ବୁଲୁଥାଏ—A loafer having no family to maintain.

**ରାଣ୍ଡୀ ବା(ବି, ବେ)ହା**—ଦେ. ବି (ବ୍ୟଙ୍ଗ)—ବିଧବାବିବାହ (ଦେଖ )
Rāṇḍi bā(bi, be)hā ironical widow marriage.
(ବହିରିଆ—ଗ୍ରାମ୍ୟରୂପ)

**ରାଣ୍ଡୀ ବା(ବ୍ରା)ହ୍ମ(ହ୍ମୁ)ଣୀ**—ଦେ. ବି. ସ୍ତ୍ରୀ—ବ୍ରାହ୍ମଣ ବିଧବା—A
Rāṇḍi bā(brā)hma(hmu)ṇi Brāhmaṇa's widow.
বিধবা ব্রাহ্মণী [ଦ୍ର—ଅନ୍ୟ ଦେଶରେ ଏବେ ସୁଦ୍ଧା ରାଣ୍ଡୀ ବାହ୍ମଣୀ-
**रांड बामनी** ମାନେ ଅବଟ ହାଣ୍ଡି କମ୍ପା ଭାଙ୍ଗୁଡ଼ ହାଣ୍ଡି ସୂଢା କାଟିବାର ପ୍ରଥା ପ୍ରଚଳିତ ଅଛି ।]

**ରାଣ୍ଡୁଆ(ରା)**—ଦେ. ବି ଓ ବିଣ—ବିପତ୍ନୀକ ବ୍ୟକ୍ତି—
Rāṇḍuā(rā) Widower.
মৃতদার (ଦ୍ର—ମହାନ୍ତ୍ରିଏ ଷାଠିଏ ବର୍ଷ ବୟସରୁ ରାଣ୍ଡୁଆ
**रंडुआ(वा, रा),रंडोरा** ହୋଇ ବସି ଅଛନ୍ତି । ଫକୀରମୋହନ. ଗଳ୍ପସ୍ବଳ୍ପ ।)

**ରାଣ୍ଡୋଲା**—ପ୍ରାଦେ. (ବାଲେଶ୍ୱର) ବି—ନଈ ମୁହାଣରେ ଧରା ପଡୁଥିବା
Rāṇḍolā ଏକ ପ୍ରକାର ଲୁଣି ମାଛ—A kind of sea-fish caught at the mouths of rivers.

**ରାତକା ରାତ(ତି)**—ଦେ. କ୍ରି. ବିଣ—୧ । ଏକରାତି ମଧ୍ୟରେ—1. In
Rāt-kā rāt(ti) the course of one night.
୨ । ରାତିତମାମ୍—2. Through-out the night. ୩ । ରାତି ଯୋଗେ; ରାତିର ସୁବିଧା ପାଇଁ—3. Under cover of night.
ରାତାରାତ(ତି) } ରାତିଏ ରାତିଏ } ଅନ୍ୟରୂପ
রাতারাত(তি) **रातोंरात**

**ରାତ**—ସଂ ବି. (ରା ଧାତୁ=ଦେବା+କର୍ମ. ତ)—ପ୍ରଦତ୍ତ, ଅନୁଗ୍ରହ
Rāta ଦତ୍ତ—Bestowed; given.
(ଦ୍ର—ଯେ ବସ୍ତୁ-ରାତ ପଣ୍ଡିତ, ତାଙ୍କ ସଙ୍ଗରୁ ନଲେ ମୁକ୍ତି । ଜଗନ୍ନାଥ. ଭାଗବତ ।)

**ରାତି**—ଦେ. ବି (ସଂ. ରାତ୍ରି; ପ୍ରା. ରାତ୍ତି)—ରାତ୍ରି; ରଜନୀ—
Rāti Night.
রাতি(ত) **रात(ति)**

**ରାତି ଅଧ**—ଦେ. ବି. (ସଂ. ରାତ୍ର୍ୟର୍ଦ୍ଧ)—ଅର୍ଦ୍ଧରାତ୍ରି—
Rāti adha Mid-night.
অর্দ্ধরাত্রি **आधी राति**

**ରାତି ଅଧିଆ**—ଦେ. ବିଣ—ରାତି ଅଧରେ ଘଟୁଥିବା—Happening
Rāti adhiā in the mid-night.
অর্দ্ধরাত্রির **आधी रातकी**

**ରାତି ଅନିଦ୍ରା**—ଦେ. ବି ( ସଂ. ରାତ୍ରି ଓ ଅନିଦ୍ରା )—ରାତିରେ ନ
Rāti anidrā ଶୋଇବା—Watching up the whole
রাত অনিদ্রা night. ବିଣ—ରାତିରେ ଅନିଦ୍ରା; ରାତି ଜାଗା;
**रातकी अनिद्रा** ଶୋଇ ନ ଥିବା—One who had no
**रातमे नहीं सोया हुआ** sleep in the night.
(ଦ୍ର—ବାପ ପୁଅ ଦିହେଁ ରାତି ଅନିଦ୍ରା, ନିଗୁରା ଗାଣ୍ଡି ମେଲି—ଇଗ ।)

**ରାତି ଅନ୍ଧାର**—ଦେ. ବି. ( ସଂ. ରାତ୍ରି+ଅନ୍ଧକାର )—ରାତି ଜନିତ
Rāti andhāra ଅନ୍ଧକାର—Darkness of night.
রাত আঁধার **रात अंधार**

**ରାତିଆ**—ଦେ. ବିଣ—ରାତ୍ରି ସମ୍ବନ୍ଧୀୟ—
Rātiā Nocturnal.

**ରାତି ଆଖ(ଖେ)ଡ଼ା**—ଦେ. ବି. ( ଅଧୁନିକ ପ୍ରୟୋଗ—ଇଂରାଜୀରୁ
Rāti ākha(khe)rdā ଅନୁଦିତ)—ପାଶ୍ଚାତ୍ୟ ଦେଶମାନଙ୍କରେ
রাত্রের আখড়া ସହରମାନଙ୍କରେ ରାତିରେ ଯେଉଁଠାରେ ଲୋକେ
**रातका बैठक** ମିଳି ମଉଜ ମଜଲିସ କରନ୍ତି—Night clubs.

**ରାତି କଟା(ଟେ)ଇବା**—ଦେ. କ୍ରି—ରାତ୍ରିଯାପନ କରିବା—
Rāti kaṭā(ṭe)ibā To pass a night.
[ରାତି କାଟିବା, ରାତିପୁରାଇବା, ରାତିବିତା(ତେ)ଇବା—ଅନ୍ୟରୂପ]
রাৎকাটান **रातगुजराना**

**ରାତି କଟିବା**—ଦେ: ବି—ରାତ୍ରିଯାପନ—Passing of a night.
Rāti katibā (ରାତି ପୁରିବା, ରାତିବିତିବା—ଅନ୍ୟରୂପ)
রাৎকাটা **रातगुजरना**

**ରାତି କଣା**—ଦେ. ବିଣ. ପୁଂ ( ସଂ. ରାତ୍ରି+କାଣ )—ଅନ୍ଧାରକଣା,
Rāti kaṇā ଯାହାକୁ ରାତିରେ ଭଲ ଦେଖାଯାଏ ନାହିଁ—
রাৎকানা Suffering from night-blindness;
**रतौंधा** nyctalops ବି—ରାତ୍ର୍ୟନ୍ଧତା—Night-
(ରାତିକାଣୀ—ସ୍ତ୍ରୀ) blindness; Nyctalopia.

**ରାତି ଖିଆ**—ଦେ.ବି—ରାତି ଭୋଜନ;ସୂର୍ଯ୍ୟାସ୍ତଠାରୁ ସୂର୍ଯ୍ୟୋଦୟ ମଧ୍ୟବର୍ତ୍ତୀ
Rāti khiā ସମୟରେ ଖାଇବା – Taking of meals
রাত্রেখাওয়া during the night; night-meal.
**रातकाखाना**

**ରାତି ଗରଜନ**—ଦେ. ବ. ( ସଂ. ରାତ୍ରୀ+ଗର୍ଜନ )—ଗମ୍ଭୀର ରାତ୍ରି;
Rāti garajana ନିଶାଗରଜନ; ନିଶାଗରଜବା, (ଦ୍ର—ଗମ୍ଭୀର
ରାତି ଗରଜବା } ଅନ୍ୟରୂପ
ରାତି ସାଇଁ ସାଇଁ ଡାକିବା } ରାତ୍ରିର ନିସ୍ତବ୍ଧତା ମଧ୍ୟରେ ଝିଲ୍ଲୀରବଜନିତ ଗୋଟିଏ
বাৎ ঝাঁঝাঁ করা ଦୁର୍ଗମ ଶବ୍ଦ ଶୁଣାଯାଏ )—Dead of
**रातगरजना** night when a grave deep sound is more imagined than heard.

**ରାତିଗାଡ଼ି**—ଦେ. ବ. ( ରେଲପ୍ରବର୍ତ୍ତନ ହେବା ପରେ ବ୍ୟବହୃତ ଶବ୍ଦ )
Rātigārdi —୧ । ଯେଉଁ ରେଲଗାଡ଼ି କୌଣସି ସ୍ଥାନୀୟ
বাৎগাড়ি ଷ୍ଟେସନରେ ରାତିବେଳେ ପହଞ୍ଚେ ବା ଷ୍ଟେସନରୁ
**रातकीगाडी** ରାତିରେ ଛାଡ଼େ—1. Night-train. ୨ ।
(ଦିନଗାଡ଼ି—ବିପରୀତ) ରାତିରେ ଯିବା ଆସିବା କରିବା ରେଲଗାଡ଼ି
—2. Train travelling during night.

**ରାତି ଜଳକା**—ଦେ. ବଣ. ପୁଂ—ରାତି କଣା; ଅନ୍ଧାର କଣା—
Rāti jaḷakā Night-blind. ବ—ଅନ୍ଧାରକଣା ରୋଗ
(ରାତିଜଳକ୍ଷା—ସ୍ତ୍ରୀ) —The disease of night-blind-
বাৎকানা **रतौंधा, रतौंधी** ness.

**ରାତି ଜା(ଜ)ଗିବା**—ଦେ. କ୍ରି ( ବଙ୍ଗଳାରୁ ଅନୁକୃତ; ଜଗିବା ଶବ୍ଦର
Rāti jā(ja)gibā ଚେଇଁବା ଅର୍ଥରେ ଓଡ଼ିଆରେ ବ୍ୟବହାର
রাতজাগা ଅର୍ବାଚୀନ )—ରାତିରେ ଆଦୌ ନ ଶୋଇବା;
**रातजगना** To remain awake throughout the night; to keep vigil; to consume the midnight oil.

**ରାତି ଜାଙ୍ଗୁଲ୍(ଲୁ) ଜାଙ୍ଗୁଲ୍(ଲୁ)**—ଦେ. ବ—ବଡ଼ିଭୋର; ଅତି
Rāti jāṅgul(lu) jāṅgul(lu) ପ୍ରତ୍ୟୁଷ; ରାତିର
ରାତି ଝୁଟ ଝୁଟ(ଟି) } ଅନ୍ୟରୂପ
ରାତି ଝୁଟପଟ(ଟି) } ଅନ୍ଧକାର ସମ୍ପୂର୍ଣ୍ଣରୂପେ ଦୂର ନ ହେବା ପୂର୍ବ ସମୟ—Early dawn; daybreak.
বাত ষায যায় হওয়া
**रात जाती जाती होना**

**ରାତି ଥାଉଣୁ**—ଦେ. କ୍ରି. ବଣ—ଭୋର୍ ନ ହେଉଣୁ—
Rāti thāuṇu Before daybreak, when it is
(ରାତି ଥାଉଁ ଥାଉଁ, ରାତି ନ ପାହୁଣ—ଅନ୍ୟରୂପ) still dark.
বাৎথাকতে **रात रहतेरहते**

**ରାତି ଦିନ**—ଦେ. କ୍ରି. ବଣ—ଅହର୍ନିଶ, ଦିବାରାତ୍ର—
Rāti dina রাতদিন **रातदिन** Day and night

**ରାତି ଦିପହର**—ଦେ. ବ—ଅର୍ଦ୍ଧରାତ୍ର—Midnight.
Rāti dipahara (ରାତି ଦୁଇପ୍ରହର—ଅନ୍ୟରୂପ)
বাত দুপুব **रात दोपहर**

**ରାତି ପାଇ(ହି)ବା**—ଦେ. ବ. ( ସଂ. ରାତ୍ରି+ପ୍ରଭାତ )—ରାତ୍ରିର
Rāti pāi(hi)bā ଅବସାନ ବେଳା; ଭୋର, ଉଷାକାଳ;
ରାତିପାହାନ୍ତି(ନ୍ତା), ରାତିପାହାନ୍ତିଆ }
ରାତିଫସର ଫଟିବା } ଅନ୍ୟରୂପ]
ରାତିଫେରନ୍ତ ହେବା, ରାତିଭୋରୁ } ରାତ୍ରିର ଅନ୍ଧକାର ନାଶ ହୋଇ ସକାଳ ହେବା ସମୟ—
বাতপোহা, বাতভোব হওয়া Break of day; day-break
भोर, सबेरा dawn. ( ଉ—ପାହାନ୍ତା ରାତି, ଲୁଥ
ଚେଇଗଲା କଜଳପାତି—ଭଗ । ନ ପାନ୍ତୁ ରାତି, ନ
ମରୁ ପତି, ଏକା ରାତିକି ହେଉ ସାତ ରାତି—
କାହାଣୀରେ ସତୀର ପ୍ରାର୍ଥନା । )

**ରାତି ଆଶ**—ଦେ. ବ—ରତିହାଶ (ଦେଖ)
Rāti āsa Ratihāsa (See)

**ରାତିଏ(କ)**—ଦେ. ,କ୍ରି. ବଣ.—୧ । ଏକରାତ୍ରି ସମୟ—1. Period
Rātie(ka) एक रात of one night. ୨ । ଏକରାତ୍ରି
**रातके लिये, रातभरकी** ମାତ୍ର—2. One night only.
(ଉ—ରାତିଏ ଗଲେ ହାତିଏ ଆଣିବା—ଭଗ ।) (ଉ—
ସାତ୍ୟକ ସହାୟରେ କର୍ଣ୍ଣଙ୍କୁ ବଢ଼ାଇ, ଦିଅ ଯୁଦ୍ଧ କରି ଏ
ରାତିକ ଲଢ଼ାଇ । କୃଷ୍ଣସିଂହ ମହାଭାରତ ଦ୍ରୋଣ ।)

**ରାତିଏ ଗଲେ ହାତିଏ ଆଣିବା**—ଦେ. ପ୍ରବଚନ—( ଚୋରମାନଙ୍କ
Rātie gala hātie ānibā ବ୍ୟବସାୟ ପ୍ରତି ଲକ୍ଷ କରି)—एक-
রাত্রিব মধ্যে হাতী আনা ରାତି ମଧ୍ୟରେ ଚୋରକର ହାତିରେ ଲଦା
**एक रात जाना, एक हाती लाना** ହେବା ବୋଝ ପରିମିତ ଧନ(ଚୋର-
ମାନେ ଆଣିବା)—(Said of the profession of a thief) To bring stolen property sufficient to load an elephant in the course of one night.

**ରାତିଏ ରାତିଏ**—ଦେ. କ୍ରି, ବଣ—ରାତାରାତ୍ (ଦେଖ)
Rātie rātie Rātārāt (See)
রাতারাতি **रातोंरात**

**ରାତିକି ରାତି**—ଦେ. କ୍ରି. ବଣ—ଏକାଦିକ୍ରମେ ବହୁ ରାତ୍ରି—
Ratiki rāti For successive nights.
বাতকে বাত **रातके रात**

**ରାତି ପହର**—ଦେ ବ.—(ସଂ. ରାତ୍ରୀ+ପ୍ରହରୀ)—ରାତ୍ରିକାଳରେ
Rāti pahara ଧନାଦିକୁ ଜଗି ରହିବା—Night-watch.
বাত পাহাবা **रातका पहरा**

**ରାତି ପିନ୍ଧା**—ଦେ. ବ.—ରାତିରେ ପିନ୍ଧାଯିବା ଢିଲା ଲୁଗା—
Rāti pindhā Cloth for night-wear.
রাতপহবণ, আঠপউবে **रात पहनावा, रातवास**

**ରାତି ପୁହା(ହେ)ଇବା**—ଦେ. କ୍ରି.—ଭୋର୍ ପର୍ଯ୍ୟନ୍ତ ସମସ୍ତ ରାତ୍ରି
Rāti puhā(he)ibā ଯାପନ କରିବା—To pass the
রাত পোহান whole night to go on doing a
**रात खतम करना** thing till day-break.
[ରାତି ପୋହିବା, ରାତି ବିତା(ତେ)ଇବା—ଅନ୍ୟରୂପ]

**ରାତି ବକ(ଖ)ତ୍**—ଦେ.ବ.—(ସଂ. ରାତ୍ରି + ଫା. ବଖ୍ତ୍)—ରାତ୍ରିସମୟ;
Rāti baka(kha)t ରାତ୍ରିକାଳ—Night-time.
রাত্রীব বেলা **रातकी वक्त** (ରାତିବେଳ—ଅନ୍ୟରୂପ)

**ରାତି ବିକାଳି**—ଦେ. କ୍ରି. ବଣ—ରାତିରେ ଅସମୟରେ—
Rāti bikāḷi In an inconvenient hour of the
রাত্রে অসময়ে **रात बीकाल** night.

**ରାତି ବିକାଳିଆ**—ଦେ. ବିଣ.—୧ । ରାତିରେ ଘଟିବା—
Rāti bikālia 1. Happening in the night.
রাত্রে আসা(ঘটা) ୨ । ରାତିରେ ଉପସ୍ଥିତ ହେବା—
**रात विकालका** 2. Arriving during night.

**ରାତି ବିଭା(ହା)**—ଦେ. ବି.—(ସଂ. ରାତ୍ରି ଓ ବିବାହ)—କରଣ ଓ
Rāti bibhā ବିବାହ)—ଶୂଦ୍ରାଦିଙ୍କର ରାତ୍ରି ଲଗ୍ନରେ ବିବାହ—
বাত্রে বিবাহ **रातबयाहा** Ceremony of marriage (in
(ରାତିବେହା; ରାତିଉଥ—ଅନ୍ୟରୂପ) the case of ruling
classes Karaṇas and Sudras) performed during night.

**ରାତି ଭୋର୍** ଦେ. ବି—ରାତି ପାହିବା ବେଳ—Day-break.
Rāti bhor রাতভোর **भोर; सुबह**

**ରାତି ମୁହାଁ**—ଦେ. କ୍ରି. ବିଣ—୧ । ରାତ୍ରି ସମୟରେ—
Rāti muhāñ বাতমুখো **रातमुख** 1. In the night.
୨ । ସନ୍ଧ୍ୟା ପରେ—2. After night fall.

**ରାତିଯାକ ବସିବା**—ଦେ. କି.—ନ ଶୋଇ ରାତି କଟାଇବା; ଉନ୍ନିଦ୍ର
Rātijāka basibā ହେବା—To spend the night
সমস্ত রাত জগা **रात जगना** without sleep.

**ରାତି ରାତି**—ଦେ. କ୍ରି. ବିଣ—୧ । ରାତାରାତି; ରାତ୍ରିତମାମ୍—
Rāti rāti 1. Throughout the night; the whole
রাতাবাত **रातोरात** night. ୨ । ପ୍ରତି ରାତ୍ରରେ—
2. Nightly; every night.

**ରାତି ରାତି ନାହିଁ ଦିନ ଦିନ ନାହିଁ**—ଦେ. କି. ବିଣ—ଅହର୍ନିଶ; ରାତ୍ର
Rāti rāti nāhiñ dina dina nāhiñ ଦିନ; ଦିବା ନିଶି;
দিন নেই বাত নেই ସର୍ବଦା; ୨୪ ଘଣ୍ଟାଯାକ ଅବସ୍ଥାନୁରୂପେ
**रातरात दिनदिन** —Day and night; throughout the 24 hours.

**ରାତି ଶେଷ**—ଦେ. ବି (ସଂ. ଶେଷରାତ୍ର)—ଶେଷରାତ୍ର; ରାତ୍ରିର
Rāti śesha ଅବସାନ—The close of the night;
শেষবাত the early hours before the dawn.
**शेषरात(ति)**

**ରାତି ହଗା**—ଦେ. ବି—୧ । ରାତ୍ରିକାଳରେ ଝାଡ଼ା ଫେରିବା—
Rāti hagā 1. Easing one's self in night time.
রাতহাগা ୨ । ରାତିରେ ଝାଡ଼ାଫେରିବା ଅଭ୍ୟାସ—2. The
**रातहगना** habit of answering the call of nature during night. [ ଉ—ରାତିହଗା ଖଣ୍ଡି କରିବ ମୂଳ, ବାଟରୁ ଖଣ୍ଡିବ ତିନି ଅଙ୍ଗୁଳ—ଡାକ । ]

**ରାତି ହଗୁରା**—ଦେ. ବିଣ—ଯାହାର ରାତିରେ ଝାଡ଼ା ଫେରିଯିବାର
Rāti hagurā ଅଭ୍ୟାସ ହୋଇଅଛି—Habituated to
(ରାତିହଗୁଣୀ—ସ୍ତ୍ରୀ) answer the call of nature at
যেবাত্রে হাগে **रातहगुआ** night time.

**ରାତିହାସ**—ଦେ. ବିଣ (ସଂ. ରାତ୍ରିବାସ)—ରାତିରେ ଶୋଇଲା-
Rātihāsa ବେଳେ ଯେଉଁ ଲୁଗା ପିନ୍ଧା ଯାଇଥାଏ ଓ ଯେଉଁ
বাত্রে ছুঁআঁচলাগা, বাতছুঁয়া ଶଯ୍ୟା ଆଦି ବ୍ୟବହାର କରାଯାଇ
**रातका** ଥାଏ—(clothes beddings; bed sheets) Used during night when one goes to sleep. ( ଯଥା— ରାତିହାସ ଲୁଗା, ରାତିହାସଛୁଆଁ ।)

**ରାତିହାସ ଛୁଆଁ**—ଦେ. ବି—ରାତ୍ରିରେ ବ୍ୟବହୃତ ବସ୍ତ୍ର ଓ ଶଯ୍ୟାଦିର
Rātihāsa chhuāñ ଅଶୁଚିତ୍ୱ—The state of the
বাত্রের ছুঅচ, বাতছুআ কাপড night clothes and
**रातका कपडा उपडा** bedding being considered as polluted ( for having been used for sleeping on during the night ).
[ଦ୍ର— ଏବେ ମଧ୍ୟ ହିନ୍ଦୁ ସ୍ତ୍ରୀ ଲୋକମାନେ ରାତ୍ରିବାସ ଓ ରାତ୍ରି ଶଯ୍ୟାକୁ ଅଶୁଚି ବୋଲି ବାଛନ୍ତି ଓ ସକାଳୁ ସ୍ନାନାଦି କରିବା ପରେ ରାତିରେ ବ୍ୟବହାର କରିଥିବା ଶଯ୍ୟାଦିକୁ ଛୁଅନ୍ତି ନାହିଁ କିମ୍ବା ରାତିହାସ ଛୁଆଁ ଲୁଗାକୁ ଛୁଇଁଲେ ସ୍ନାନ ନ କରି କିମ୍ବା ସେ ଲୁଗାକୁ ନ ପାଲଟି ପାକ ହାଣ୍ଡିକୁ ଓ ଦେବତାଙ୍କୁ ଛୁଅନ୍ତି ନାହିଁ । ଆଧୁନିକ ଶିକ୍ଷିତ ଓ ଶିକ୍ଷିତା-ମାନଙ୍କ ମଧ୍ୟରେ ରାତିହାସ ଛୁଆଁର ବାରଣ ଦେଖାଯାଉ ନାହିଁ, ତାହା ସେମାନେ ଗୋଳାଉ ଅଛନ୍ତି ବା ଶୁଦ୍ଧ ଚଷ୍ଟାଦି ସଙ୍ଗେ ପୁରାଉ ଅଛନ୍ତି ।]

**ରାତି ହେବା**—ଦେ. କ୍ରି—୧ । ସନ୍ଧ୍ୟା ବୁଡ଼ିବା—1. It being
Rāti hebā sunset. ୨ । ରାତ୍ରିର ଅଧିକ ବେଳ
বাতহওয়া হୋଇଯିବା—2. It being late at night;
**रातहोना** the night being far advanced.

**ରାତ୍ର**—ଦେ. ବି (ସଂ. ରାତ୍ରି)—ରାତି; ରାତ୍ରି—Night. ସ. ବି—(ଅନ୍ୟ
Rātra ଶବ୍ଦ ପରେ ସମାସଦ୍ୱାରା ଯୁକ୍ତ ହେଲେ ରାତ୍ରି ଶବ୍ଦ ରାତ୍ର
বাত ଆକାର ଧାରଣ କରେ; ଯଥା—ଦିବାରାତ୍ର; କୃଷ୍ଣରାତ୍ର; ଅର୍ଦ୍ଧ-
**राति** ରାତ୍ର)—The form assumed by the word ରାତ୍ରି when added to another word to form a compound word.

**ରାତ୍ରକ**—ଦେ. ବି—ଏକ ରାତ୍ରି ମାତ୍ର ସମୟ—
Rātraka Period of one night only.
একবাত্র **एकरात**

**ରାତ୍ରଚର**—ଦେ. ବି (ସଂ. ରାତ୍ରିଚର)—ରାତ୍ରିଚର (ଦେଖ)
Rātrachara Rātrichara. (See)
রাত্রিচব **रात्रिचर**

**ରାତ୍ରଦିବା(ନ)**—ଦେ. ବି—ଦିବାନିଶି; ଅହର୍ନିଶ; ୨୪ଘଣ୍ଟା—
Rātradibā(na) Day and night; 24 hours.
দিনবাত **दिनरात**

**ରାତ୍ରଦିନ**—ସ. କି. ବିଣ (ରାତ୍ରି + ଦିବସ; ଅଲୁକ୍ ସମାସ)—ଅହର୍ନିଶ;
Rātradina ଦିନ ଓ ରାତି; ୨୪—Day and night; throughout the 24 hours of the day.

**ରାତ୍ରପାଳ**—ଦେ. ବି (ସଂ. ରାତ୍ରିପାଳ)—ଚଉକିଦାର—
Rātrapāla Chowkidar; watchman.
রাতপাহারাওয়ালা **चौकीदार**

ରାତ୍ର ପାହାନ୍ତା(ନ୍ତି)—ଦେ ବି—ପ୍ରଭାତ ସମୟ ଉପସ୍ଥିତ ହେବା
Rātra pāhāntā(nti) ସମୟ—Daybreak, dawn.
(ରାତ୍ର ପାହିବା—ଅନ୍ୟରୂପ) [ଦ୍ର—ଭାଷାରେ 'ରାତି' ଶବ୍ଦ ସଙ୍ଗେ
ভোরবেলা ସେତେ ଶବ୍ଦ ବ୍ୟବହାର ହୁଏ, ସାଧୁଭାଷା
भोरसुबह ବ୍ୟବହାରପ୍ରିୟ ବ୍ୟକ୍ତିମାନେ 'ରାତ୍ର' ଶବ୍ଦ ସଙ୍ଗେ ସେ
ଶବ୍ଦମାନ ଲଗାଇ ବ୍ୟବହାର କରିବା ଦେଖାଯାଏ, ଯଥା—
ରାତ୍ରଭୋର; ରାତ୍ରଭୋଜନ ।)

ରାତ୍ରମାନ(ନେ)—ଦେ. କ୍ରି. ବିଣ.—ରାତ୍ରକାଳରେ—
Rātramāna(ne) Night-time; in the night
রাত্রে (ଉ—ଦନ ହରନ୍ତି ବୃନ୍ଦାବନେ, ଯଉେ ମେଳନ୍ତି ରାତ୍ରମାନେ
रातमें —ଜଗନ୍ନାଥ. ଭାଗବତ ।)

ରାତ୍ରି(ତ୍ରୀ)—ସଂ. ବି. (ରା ଧାତୁ=ଦେବା+କର୍ତ୍ତୃ. ତ୍ରି. ଈ)—୧ । ରଜନୀ,
Rātri(trī) ରାତି; ଏକ ସୂର୍ଯ୍ୟାସ୍ତଠାରୁ ପରବର୍ତ୍ତୀ ସୂର୍ଯ୍ୟୋଦୟ
ମଧ୍ୟର କାଳ—1. Night. (ଅନ୍ୟ ସଂସ୍କୃତ ନାମ କ୍ଷପା,
ତମିସ୍ରା, ତ୍ରିଯାମା, କ୍ଷଣଦା, କ୍ଷପା ।) ୨ । ହରିଦ୍ରା; ହଳଦୀ
2 Turmeric.

ରାତ୍ରିକ—ସଂ. ବି. (ରାତ୍ରି+କ)—୧ । ପଞ୍ଚରାତ୍ର—1. A period of
Rātrika five nights. ୨ । ଏକ ବର୍ଷକାଳ ବେଶ୍ୟା
ଗୃହରେ ବାସ କରିବା ବ୍ୟକ୍ତି—2. A person who
lives in the house of a prostitute for a
period of full one year. ୩ । ଏକ ପ୍ରକାର ବିଛା
(ହି. ଶ)—3. A kind of scorpion.
ଦେ. ବି. ବିଣ.—ଏକରାତ୍ରି ମାତ୍ର—one night only.

ରାତ୍ରିକର—ସଂ. ବି. (ରାତ୍ରିର କର=କର୍ତ୍ତୃ, ୬ଷ୍ଠୀ ତତ୍; ଅଥବା ରାତ୍ରିରେ
Rātrikara କର=କିରଣ ଯାହାର; ବହୁବ୍ରୀହି)—ଚନ୍ଦ୍ର—
The moon.

ରାତ୍ରିକାଣ—ସଂ. ବିଣ. ପୁଂ—ରାତିକଣା, ଅନ୍ଧାରକଣା—
Rātrikāṇa Night-blind, nyctalops.
(ରାତ୍ରିକାଣା—ସ୍ତ୍ରୀ) [ରାତ୍ରିକାଣତ୍ୱ(ତା)—ବିଶେଷ୍ୟ]

ରାତ୍ରିକାର—ସ ବି.—(ରାତ୍ରି+କୃ ଧାତୁ+କର୍ତ୍ତୃ. ଅ)—୧ । ଚନ୍ଦ୍ରମା
Rātri kāra (ହି. ଶ.)—1. The moon. ୨ । କର୍ପୂର
(ହି. ଶ)—2. Camphor.

ରାତ୍ରିକାଳ—ସଂ. ବି—ରାତି ସମୟ—
Rātri kāla Night time; time of night.
[ରାତ୍ରିବେଳ(ଳା)—ଅନ୍ୟରୂପ]

ରାତ୍ରିଚ(ଞ୍ଚ)ର—ସଂ. ବିଣ. ପୁଂ (ରାତ୍ରି+ଚର ଧାତୁ+କର୍ତ୍ତୃ. ଅ; ରାତ୍ରିଂ+
Rātricha(ñcha)ra ଚର ଧାତୁ+କର୍ତ୍ତୃ. ଅ; ଅଲୁକ୍ ସମାସ)
[—ନିଶାଚର; ଯେ ରାତିରେ ଚରେ ବା ବିଚରଣ କରେ—
ରାତ୍ରିଚରୀ / ରାତ୍ରିଞ୍ଚରୀ } ସ୍ତ୍ରୀ Prowling in the night; of nocturnal habits.
ବି—୧ । ରାକ୍ଷସ—1. Demon ୨ । ଚୋର—
2. Robber; thief. ୩ । ରାତିରେ ଆହାରର ଅନ୍ୱେଷଣ
କରିବା ପାଇଁ ଯେଉଁ ଜୀବମାନେ ବସାରୁ ବାହାରନ୍ତି—
3. Animals of nocturnal habits. (ଯଥା—
ବାଘ, ଭାଲୁ, ସାପ, ପେଚା, ବାଦୁଡ଼ି ।) ୪ । ରାତିରେ ପହରା
ଦେବା ଲୋକ—4. Night watchman. ୫ । ଭୂତ;
ପ୍ରେତ; ପିଶାଚ୍ଗ୍ରଣ—5. Ghost; goblin; imp.

ରାତ୍ରି ଚର୍ଯ୍ୟା—ସଂ. ବି—ସ୍ୱାସ୍ଥ୍ୟକାମୀ ବ୍ୟକ୍ତିର ସୂର୍ଯ୍ୟାସ୍ତଠାରୁ ସୂର୍ଯ୍ୟୋଦୟ
Rātri charjyā ପର୍ଯ୍ୟନ୍ତ ଆହାର, ମୈଥୁନ ଓ ନିଦ୍ରାଦି ବିଷୟରେ
ବୈଦ୍ୟଶାସ୍ତ୍ରାନୁମୋଦିତ ବିଧି ପାଳନ—Some observances during the night time regarding food, sleep, copulation, enjoined by the medical treatises for health-seeking people.

ରାତ୍ରିଜ—ସଂ.ବିଣ. (ରାତ୍ରି+ଜନ୍ ଧାତୁ+କର୍ତ୍ତୃ.ଅ)—ଯାହା ରାତିରେ ଜାତ
Rātrija ହୁଏ—Produced in the course of the
night ବି—ନକ୍ଷତ୍ର; ତାରା—Star

ରାତ୍ରି ଜଳ—ସଂ. ବି—୧ । ଶିଶିର—1. Dew
Rātri jala ୨ । କୁହୁଡ଼ି; କୁହୁଡ଼ି—Fog.

ରାତ୍ରି ଜାଗର—ସଂ. ବି. (ରାତ୍ରି+ଜାଗୃ ଧାତୁ+କର୍ତ୍ତୃ. ଅ=ଯେ ରାତିରେ
Rātri jāgara ଜେଗେ ଥାଏ)—କୁକୁର—The dog.

ରାତ୍ରି ଜାଗରଣ—ସଂ. ବି. (ରାତ୍ରି+ଜାଗୃ ଧାତୁ+ଭାବ. ଅନ)—ରାତ୍ରିରେ
Rātri jāgaraṇa ନ ଶୋଇ ଜେଗିବା; ରାତି ଜଗିବା—
Watching up throughout the night.

ରାତ୍ରି ଦଣ୍ଡ—ସଂ. ବି. (ଜ୍ୟୋତିଷ)—ରାତ୍ରିକାଳ ମଧ୍ୟସ୍ଥ ଦଣ୍ଡ ( ଯାହା
Rātri daṇḍa ଜ୍ୟୋତିଷ ମତରେ ଶୁଭ ବା ଅଶୁଭ ବୋଲି
ବିବେଚିତ )—Points of time during the
night (considered as auspicious or
otherwise).

ରାତ୍ରି ପାଳନ—ସଂ. ବି—ନିଶା ପାଳନ; ଅମାବାସ୍ୟା, ପୂର୍ଣ୍ଣିମା, ଏକାଦଶୀ
Rātri pālana ଆଦି ତିଥିରେ ରାତିରେ ଭୋଜନ ନ କରିବା,
ଉପାସ କରିବା ଓ ସ୍ତ୍ରୀସହବାସ ନ କରିବା ଆଦି କେତେ
ଗୁଡ଼ିଏ ନିୟମ—Observance of abstinence in
the night of certain days enjoined by
the Śāstras.

ରାତ୍ରି ବାସ—ସଂ. ବି—୧ । କୌଣସି ସ୍ଥାନରେ ରାତ୍ରିରେ ଅବସ୍ଥାନ;
Rātri bāsa କୌଣସି ସ୍ଥାନରେ ରାତ୍ରି ଯାପନ କରିବା—
1. Passing the night at a place.
୨ । ରାତିବାସ ଲୁଗା; ରାତି ପିନ୍ଧା; ରାତିରେ ପିନ୍ଧି କରି
ଶୋଇବା ବସ୍ତ୍ରାଦି; ଶୋଇଲା ବେଳେ ବ୍ୟବହୃତ ବସ୍ତ୍ର ଓ
ଶଯ୍ୟାଦି—2. Night clothing worn while
sleeping; night-gown; night-dress;
night clothes; clothes, sheets, wrappers
and bedding used by a person while in
bed in the night.

ରାତ୍ରିବେଦ(ଦୀ)—ସ.ବି.(ରାତ୍ରି+ବିଦ୍ ଧାତୁ=ଜାଣିବା+କର୍ତ୍ତୃ.ଅ;+
Rātribeda(dī) ଇନ୍ ୧ମା.୧ବ)—କୁକ୍କୁଟ—The cock.

ରାତ୍ରି ଭୋଜନ—ସ. ( ୭ମୀ ତତ୍ )—ରାତ୍ରି ସମୟରେ ଖାଇବା— Rātri bhojana Night-meal; taking of meal during night
(ରାତ୍ର୍ୟଶନ—ଅନ୍ୟରୂପ)

ରାତ୍ରିମଟ—ସ. ଭଣ. ପୁଂ (ରାତ୍ରିଂ=ରାତ୍ରକୁ+ଅଟ୍ ଧାତୁ=ଗମନ କରିବା+କର୍ତ୍ତୃ. ଅ)—ରାତ୍ରିଚର ( ଦେଖ ) Rātrimaṭa Rātrichara ( See )
(ରାତ୍ରି ମଟ—ସ୍ତ୍ରୀ)
ଭ. ପୁଂ—ରାତ୍ରିଚର (ଦେଖ)—Rātrichara (See)
(ଉ—ବୋଇଲେ କିଙ୍କରଙ୍କୁ ଏତେ କପଟ ରାତ୍ରିମଟ ହେଲେ ଜାଣି ସେ । ଉଞ୍ଜ. ବୈଦେହୀଶବିଳାସ ।)

ରାତ୍ରି ମଣି—ସ. ବ. (୬ଷ୍ଠୀ ତତ୍; ରୂପକ)—ଚନ୍ଦ୍ର,— Rātri maṇi The moon.

ରାତ୍ରି ମୁଖେ—ଦେ. କି. ଵଣ—ରାତ୍ରି ଯୋଗେ; ରାତ୍ରିରେ— Rātri mukhe At night.
बात्रि मुखे (ଉ—ଛଳବ କହେ ଅଶ୍ର ମୁଖେ. ସେ ଯଦୁ ବଂଶେ
रात्रि मुखमे ରାତ୍ରି ମୁଖେ । ଜଗନ୍ନାଥ. ଭାଗବତ ।)

ରାତ୍ରି ଯାପନ—ସଂ. ବ—ରାତ୍ର ବିତାଇବା—The passing or Rātri jāpana whiling away of the night.

ରାତ୍ରି ଯୋଗ—ସଂ. ବ—୧ । ସନ୍ଧ୍ୟା ବେଳ; ବେଳ ବୁଡ— Rātri joga 1. Night-fall. ୨ । (ଜ୍ୟୋତିଷ) ରାତ୍ରିରେ ଘଟିବା ଶୁଭଯୋଗ ବା ମୁହୂର୍ତ୍ତ—2. Auspicious periods occurring in the course of the

ରାତ୍ରି ଯୋଗରେ—ଦେ. କ୍ରି. ବଣ—୧ । ସନ୍ଧ୍ୟା ପରେ—1. After Rātri jogare night-fall. ୨ । ରାତ୍ରି ମଧ୍ୟରେ—2. In
(ରାତ୍ରି ଯୋଗେ—ଅନ୍ୟରୂପ) the course of the night.
रात्रियोगे ୩ । ରାତ୍ରି କାଳରେ—3. By night. (ଯଥା—
रात्रि योगमे ବନ୍ଦୀ ରାତ୍ରି ଯୋଗରେ ପ୍ରହରୀମାନଙ୍କ ଶୋଇଥିବାର ସୁବିଧା ପାଇ କାରାଗାରରୁ ପଳାଇଗଲା ।
ଆମ୍ଭେମାନେ ରାତ୍ରି ଯୋଗେ କଟକଠାରୁ ପୁରୀକୁ ଯାତ୍ରା କଲୁଁ ।)

ରାତ୍ରି ଲଗ୍ନ—ସଂ. ବ—(ଜ୍ୟୋତିଷ) ବିବାହାଦି ଶୁଭକର୍ମ ପାଇଁ ଜ୍ୟୋତିଷ Rātri lagna ମତରେ ରାତ୍ରିକାଳରେ ପଡ଼ିବା ଲଗ୍ନ ବା ମୁହୂର୍ତ୍ତ--
(ଦିବା ଲଗ୍ନ—ବିପରୀତ) ( astrology ) Auspicious periods occurring in the course of the night for the performance of certain ceremonies, e.g. marriage.

ରାତ୍ରିବିରା—ସଂ. ବ.—ପ୍ରଭାତ (ହି. ଶ.); ଭୋର— Rātriwira Early morning.

ରାତ୍ରି ଶେଷ—ସ. ବ.—(୬ଷ୍ଠୀ ତତ୍)—ରାତିର ଶେଷଭାଗ— Rātri śesha Close of the night; the last part of night.

ରାତ୍ରିହାସ—ସ ବ (ରାତ୍ରି+ହସ୍. ଧାତୁ+ଅ; ଯେ ରାତିରେ ହସେ Rātrihāsa ବା ଫୁଟେ)—୧ । ଶ୍ୱେତପଦ୍ମ—1. White lotus. ୨ । କଇଁଫୁଲ—2 Water lily.

ରାତ୍ର୍ୟଂଶ—ସ ବ (୬ଷ୍ଠୀ ତତ୍)—ରାତ୍ରିର ଅଂଶ ବା ଭାଗ— Rātryaamśa A portion of the night

ରାତ୍ର୍ୟଟ -ସ. ବ ଓ ଭଣ. ପୁଂ—ରାତ୍ରିଚର (ଦେଖ) Rātryaṭa Ratrichara (See)
[ ରାତ୍ର୍ୟଟା—ସ୍ତ୍ରୀ ]

ରାତ୍ର୍ୟନ୍ଧ—ସ ଭଣ. ପୁଂ—ଅନ୍ଧାରକଣା; ରାତ୍ରକାଣା; ଯାହା ଲୁ Rātryandha ରାତ୍ରିରେ ଭଲ ହୋଇ ଦେଖାଯାଏ ନାହିଁ—
[ରାତ୍ର୍ୟନ୍ଧା ସ୍ତ୍ରୀ] Night-blind; nyctalops

ରାତ୍ର୍ୟନ୍ଧତା—ସଂ. ବ—ରାତିକାଣକା ରୋଗ— Rātryandhatā Night-blindness.
[ରାତ୍ର୍ୟାନ୍ଧ୍ୟ—ଅନ୍ୟରୂପ]

ରାଦ୍ଧ—ସଂ.ବଣ (ରାଧ୍. ଧାତୁ=ସମ୍ପନ୍ନ କରିବା+କର୍ମ.ତ)—୧। ସମ୍ପନ୍ନ; Rāddha ସିଦ୍ଧ—1. Accomplished. ୨ । ସମାପ୍ତ— 2. Finished; completed. ୩ । ରନ୍ଧା ହୋଇ ଥିବା (ହି. ଶ)—3. Cooked.

ରାଦ୍ଧାନ୍ତ—ସ. ବ—୧ । ସିଦ୍ଧାନ୍ତ; ମୀମାଂସା— Rāddhānta 1. Logical conclusion.

ରାଧ୍ (ଧାତୁ )—ସ. ଧାତୁ—୧ । ପୂଜା କରିବା—1. To worship. Rādh (root) ୨ । ସମ୍ପନ୍ନ କରିବା—2. To accomplish; to finish.

ରାଧ(ଧ୍)—ସ.ବ (ରାଧ୍ଧାତୁ+ଅଧିକରଣ. ଅ;+ବ୍ୟୁତ୍, ଯମ୍ଭା ରାଧା= Rādha (dh) ବିଶାଖ ନକ୍ଷତ୍ରଯୁକ୍ତା ପୂର୍ଣ୍ଣିମା+ଅ)—୧। ବୈଶାଖ ମାସ—1. Month of Baiśākha. ୨ । (+ କରଣ. ଅ) ଧନ; ସମ୍ପତ୍ତି (ହି. ଶ)—2. Riches.

ରାଧନ(ନା)—ସ. ବ (ରାଧ୍. ଧାତୁ+ଭାବ ଅନ; ଅ)—୧। ଆରାଧନା— Rādhana(nā) 1. Praying. ୨ । ପୂଜା କରିବା— 2. Worshipping. ୩ । ସାଧନ—3. Accomplishing. ୪ । ପ୍ରାପ୍ତି—4. Attainment; acquisition.

ରାଧା—ସ. ବ. ସ୍ତ୍ରୀ (ରାଧ୍. ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ)—୧ । ଶ୍ରୀକୃଷ୍ଣଙ୍କ Rādhā ପ୍ରେୟସୀ; କୃଷ୍ଣପ୍ରେମରେ ସର୍ବତ୍ୟାଗିନୀ ବୃଷଭାନୁଜେମା; ରାଧିକା—1. Name of the sweetheart of Śrikṛushṇa. [ଉ—ଶତେ ମହଣ ଘିଅ ହବ, ତେବେ ଯାଇ ରାଧା ନାଚବେ-ତଗ ।] [ଦ୍ର—ରାଧାର(୧)ଅର୍ଥ ସମ୍ବନ୍ଧରେ ନୋଟ୍—ରାଧା ମଥୁରାର ନିକଟବର୍ତ୍ତୀ ଗୋକୁଳର ଗୋପରାଜା (ଗଉଡ଼ରଜା) ବୃଷଭାନୁଙ୍କ କନ୍ୟା ଓ ଆୟାନ (ଚନ୍ଦ୍ରସେଣା) ନାମକ ଗୋପାଳର ନାମମାତ୍ର ବିବାହିତା ସ୍ତ୍ରୀ । ଏହାଙ୍କ ମାତାଙ୍କ ନାମ କୀର୍ତ୍ତିଦା । ପୁନଶ୍ଚ କୌଣସି କୌଣସି ପୁରାଣ ( ଯଥା, ବ୍ରହ୍ମବୈବର୍ତ୍ତ ପୁରାଣ ) ମତରେ ରାଧା ଅଯୋନିସମ୍ଭବା । ଥରେ ବୃଷଭାନୁଙ୍କ ପତ୍ନୀ ପୋଖରୀକୁ ସ୍ନାନ କରିବାକୁ ଯାଇ ଦେଖିଲେ ଯେ, ଗୋଟିଏ ଅତି କ୍ଷୁଦ୍ର ସୁନ୍ଦରୀ କନ୍ୟା ଗୋଟିଏ କୁମୁଦ ବା କଇଁଫୁଲରେ ରହି ଜଳରେ ଭାସୁଅଛି । ସ୍ନେହରେ କୀର୍ତ୍ତିଦା ତାଙ୍କୁ ଆଣି

ନିଜର କନ୍ୟାରୂପେ ପାଳନ କଲେ । ଏ ଶ୍ରୀକୃଷ୍ଣଙ୍କଠାରୁ ବଡ଼, କିନ୍ତୁ ଜନ୍ମକାଳରୁ ଏହାଙ୍କର ଚକ୍ଷୁ ମୁଦ୍ରିତ ଥିଲା । ଶିଶୁ ଶ୍ରୀକୃଷ୍ଣଙ୍କୁ, ଏହାଙ୍କ ଘରକୁ ମାଇପେ କାଖେଇ କରି ନେଇ ଥିଲେ ଓ ଶ୍ରୀକୃଷ୍ଣଙ୍କ ଅଙ୍ଗକୁ ରାଧା ମୁହଁ ଫେରାଇବାରୁ ତାଙ୍କ ଆଖି ଫିଟିଗଲା । କାହାରି କାହାରି ମତରେ କୃଷ୍ଣଙ୍କଠାରୁ ରାଧା ସାନ । ଜନ୍ମ ଦିନରୁ ଷଷ୍ଠିଦିନ ପର୍ଯ୍ୟନ୍ତ ତାଙ୍କର ଚକ୍ଷୁ ମୁଦ୍ରିତ ହୋଇଥିଲା । ଯଶୋଦା କୃଷ୍ଣଙ୍କୁ କାଖେଇ କରି ରାଧାଙ୍କୁ ଦେଖିବାକୁ ଯାଇଥିଲେ । ରାଧା ପ୍ରଥମେ କୃଷ୍ଣଙ୍କୁ ଦେଖିଲେ ଓ ଯଶୋଦା ପ୍ରଥମେ ତାଙ୍କୁ କୃଷ୍ଣଙ୍କ ଉଚ୍ଛିଷ୍ଟ ସ୍ତନ ପାନ କରାଇଲେ । ସମ୍ପର୍କରେ ରାଧା କୃଷ୍ଣଙ୍କ ମାଇଁ ଥିଲେ, କିନ୍ତୁ ଦେବଅଂଶ ଗ୍ରହଣ କରି ଜନ୍ମିଥିଲେ । ଶ୍ରୀକୃଷ୍ଣଙ୍କର ବାଲ୍ୟ-କାଳର ଲୀଳା ଓ ରାସରେ ରାଧାହିଁ କେନ୍ଦ୍ର ଥିଲେ । ଶ୍ରୀକୃଷ୍ଣଙ୍କ ପ୍ରେମରେ ମୁଗ୍ଧ ହୋଇ ତାଙ୍କ ପଦରେ ରାଧା ପ୍ରେମ, ସ୍ନେହ, ଭକ୍ତି, ଜୀବନ, ଯୌବନ, ସମସ୍ତ ସମର୍ପଣ କରିଥିଲେ ଓ କୃଷ୍ଣପ୍ରେମ ଲାଗି ଗୁରୁଜନ ଗଞ୍ଜଣା, ସମାଜର ଓ ପରିବାରର ନିନ୍ଦା ଆଦି ପ୍ରତି ଭ୍ରୂକ୍ଷେପ କରି ନ ଥିଲେ । ଶ୍ରୀକୃଷ୍ଣ ଷୋଳ ସହସ୍ର ଗୋପିକାମାନଙ୍କୁ ନେଇ ଗୋପପୁରରେ ଯେଉଁ ରାସକ୍ରୀଡ଼ା କରିଥିଲେ ତହିଁରେ ନାୟିକା ରାଧା। ଶ୍ରୀକୃଷ୍ଣ ମଥୁରାକୁ ଯାଇ ସେଠାରୁ ଆପଣାର ପୈତୃକ ରାଜ୍ୟ ଦ୍ୱାରକାକୁ ଯିବାରୁ ଶ୍ରୀକୃଷ୍ଣଙ୍କ ବିରହକାଳରେ ରାଧିକାଙ୍କର ପ୍ରେମର ବିକାଶ ପରିପୂର୍ଣ୍ଣତା ଲାଭ କଲା । ଶ୍ରୀକୃଷ୍ଣଙ୍କ ପ୍ରତି ରାଧାଙ୍କର ପ୍ରେମ ବୈଷ୍ଣବମାନଙ୍କ ମତରେ ଅତୁଳନୀୟ ଓ ଶ୍ରୀକୃଷ୍ଣ ଦ୍ୱାରକାରେ ରୁକ୍ମିଣୀଆଦି ପଟ୍ଟମହିଷୀମାନଙ୍କ ଦ୍ୱାରା ସେବିତ ଓ ବେଷ୍ଟିତ ହୋଇ ରାଜୈଶ୍ୱର୍ଯ୍ୟରେ ବୁଡ଼ି ରହି ସୁଦ୍ଧା ରାଧାଙ୍କ ପ୍ରେମକୁ ସବୁବେଳେ ଝୁରୁଥିଲେ । ବିଜାତୀୟ ଓ ବିଜାତୀୟ ସଭ୍ୟତାଦୃପ୍ତ ଲୋକେ ରାଧାକୃଷ୍ଣ ପ୍ରେମରେ ଯେଉଁପରି ପାଶବ ଓ ଇନ୍ଦ୍ରିୟ-ଶୃଙ୍ଖଳାରୂପକ ପରସ୍ତ୍ରୀହରଣାତ୍ମକ ପାପର କଳ୍ପନା କରନ୍ତି, ସେହି ଲୀଳାକୁ ମହାନୁଭବ ଭକ୍ତିଶୀଳ ବୈଷ୍ଣବମାନେ ଭକ୍ତି ଓ ପବିତ୍ର ରସମିଶ୍ରିତ ଅନୁରାଗରୂପେ ବର୍ଣ୍ଣନା ଓ ଉପଲବ୍ଧି କରନ୍ତି । ଶ୍ରୀକୃଷ୍ଣଙ୍କୁ ଭଜିବାର ପନ୍ଥା ଓ ଆଦର୍ଶ ରାଧିକାଙ୍କର ପ୍ରେମ ବୋଲି ବୈଷ୍ଣବ ମହାପୁରୁଷମାନେ ସିଦ୍ଧାନ୍ତ କରି-ଅଛନ୍ତି । ଉଦାହରଣସ୍ୱରୂପ ମଧ୍ୟ ଦେଖାଯାଏ ଯେ, ଶ୍ରୀ ଚୈତନ୍ୟ ଦେବ ( ଯେ ଇନ୍ଦ୍ରିୟବୃତ୍ତିକୁ ଘୃଣା କରୁଥିଲେ ଓ ଆପଣାର ସ୍ତ୍ରୀଙ୍କ ଛଡ଼ା ଅନ୍ୟ ସ୍ତ୍ରୀଙ୍କ ମୁଖ-ଦର୍ଶନ କରୁ ନ ଥିଲେ ) ରାଧାଙ୍କ ପ୍ରେମକୁ ଆଦର୍ଶ-ଭକ୍ତି ରୂପରେ କଳ୍ପନା କରି ରାଧାଙ୍କ ପରି ଅନନ୍ୟଚିତ୍ତ ହୋଇ କୃଷ୍ଣଭଜନା କରୁଥିଲେ । ରାଧାକୃଷ୍ଣଙ୍କ ପ୍ରେମର ପାଶବିକ ଅଂଶକୁ ବା ଆଦର୍ଶକୁ ଅନୁସରଣ ଓ ଅନୁକରଣ କରି ଲୋକେ ଭକ୍ତିର ଓ ପ୍ରେମର ପବିତ୍ରତାକୁ କଳୁଷିତ କରି-ଅଛନ୍ତି; କିନ୍ତୁ ପରକୀୟା ପ୍ରୀତି ପାଇଁ ରାଧାକୃଷ୍ଣ ପ୍ରେମର ଆଧ୍ୟାତ୍ମିକ ( allegorical ) ଓ ରୂପକ ତାତ୍ପର୍ଯ୍ୟହିଁ କୃଷ୍ଣଭକ୍ତିର ଆଦର୍ଶ ଅଟେ । ରାଧାକୃଷ୍ଣଙ୍କ ପ୍ରେମରେ ପାଶବିକତା ବା ଇନ୍ଦ୍ରିୟଲାଳସା ଲେଶମାତ୍ର ନ ଥିଲା ଓ ଉକ୍ତ ପ୍ରେମର ସେହି ଅଂଶରେ ଆଧ୍ୟାତ୍ମିକ ଗୂଢ଼ ମର୍ମ ପ୍ରୟୋଗ କଲେ ଦେଖାଯିବ ଯେ, ରାଧାଙ୍କ ତନ୍ମୟତା ପରି ତନ୍ମୟତା ନ ହେଲେ ଈଶ୍ୱରଭଜନା ପରାକାଷ୍ଠା ଲାଭ କରି ପାରିବ ନାହିଁ । ରାଧାକୃଷ୍ଣଙ୍କ ପ୍ରେମ ଓ ରାସଲୀଳା ଚର୍ମଚକ୍ଷୁରେ ଓ ମାନବେନ୍ଦ୍ରିୟ ଦ୍ୱାରା ଉପଭୋଗ୍ୟ ନୁହେ । ତାହା ଜ୍ଞାନଚକ୍ଷୁ ଓ ପରମଜ୍ଞାନ-ରୂପ ଇନ୍ଦ୍ରିୟଦ୍ୱାରା ସାଧନା ଓ ଅନୁଭବ କରିବାର ଯୋଗ୍ୟ ଅଟେ । ରାଧାପ୍ରେମ ଇନ୍ଦ୍ରିୟାସକ୍ତି ନୁହେ; ଏହା ପରମପବିତ୍ର ଭଗବଦ୍ ଭକ୍ତିର ପୂର୍ଣ୍ଣ ଆଦର୍ଶ । ରାଧିକାଙ୍କ ସଙ୍ଗେ ରସିକତା, ଷୋଳ ସହସ୍ର ଗୋପୀଙ୍କ ସଙ୍ଗେ ରମଣ ଆଦି କେବଳ ରୂପକ ମାତ୍ର । ବାସ୍ତବ ଅର୍ଥ କରିବାକୁ ବସିଲେ ଦେଖାଯିବ ଯେ, ଜଣେ ୧୦।୧୨ ବର୍ଷର ବାଳକ ଷୋଳ ସହସ୍ର ଗୋପୀଙ୍କ ସଙ୍ଗେ ରତିକ୍ରୀଡ଼ା କରିବା ଓ ଷୋଳ ସହସ୍ର କୃଷ୍ଣ ରୂପ ଧାରଣ କରିବା ବାସ୍ତବ ଜଗତରେ ଅସମ୍ଭବ କିନ୍ତୁ ଆଧ୍ୟାତ୍ମିକ ଜଗତରେ ଏହା ସମ୍ଭବପର ଓ ସାଧ୍ୟ । ଶ୍ରୀକୃଷ୍ଣ ପୃଥିବୀରେ ଅବତାରରୂପେ ଜନ୍ମଗ୍ରହଣ କରି ପୃଥିବୀକୁ ଦୁଷ୍ଟ ରତିବିଦ୍ୟା ଶିକ୍ଷା ଦେବାକୁ ଆସି ନ ଥିଲେ । ସେ ଅବତାର ଗ୍ରହଣଦ୍ୱାରା ପୃଥିବୀରେ ଭକ୍ତିର ମାର୍ଗ ଦେଖାଇ ଯାଇଅଛନ୍ତି ଓ ତାଙ୍କର ଗୋପଲୀଳାହିଁ ମର୍ତ୍ତ୍ୟରେ ସ୍ୱର୍ଗଲୀଳାର ଅଭିନୟ ଓ 'ରାଧା ପ୍ରେମହିଁ ଈଶ୍ୱରଲାଭର ପ୍ରକୃଷ୍ଟ ପନ୍ଥା । କୃଷ୍ଣ ପ୍ରେମ ପାଇଁ ରାଧାଙ୍କ ପରି ସର୍ବସ୍ୱତ୍ୟାଗୀ ହେଲେ ଯାଇଁ ଭକ୍ତ ଈଶ୍ୱର ସାନ୍ନିଧ୍ୟ ଲାଭ କରିବ । ଏହି ମତ ଲେଖକର କପୋଳକଳ୍ପିତ ମତ ନୁହେ । ଏହାହିଁ ରାଧାକୃଷ୍ଣ ଭକ୍ତର ଚିନ୍ତାଶୀଳ ଭକ୍ତ-ସମାଲୋଚକମାନଙ୍କ ମତର ଅସମ୍ପୂର୍ଣ୍ଣ ସାରାଂଶମାତ୍ର ଅଟେ । ରାଧାକୃଷ୍ଣ ଲୀଳାକୁ କେହି କେହି ଆଧୁନିକ କପୋଳକଳ୍ପନା ବୋଲି କହନ୍ତି; କିନ୍ତୁ ରାଧାଙ୍କ ନାମ ଓ ଶ୍ରୀକୃଷ୍ଣଙ୍କର ଗୋଲୋକରେ ରାଧାଙ୍କ ସହିତ ଲୀଳା ପୁରାତନ ବାୟୁପୁରାଣର ୧୦୪ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ପୁରାଣରେ ରାଧା ଶବ୍ଦର ବ୍ୟୁତ୍ପତ୍ତି ନିମ୍ନଲିଖିତରୂପରେ ଲେଖା ହୋଇଅଛି —ର୍ + ଆ + ଧ୍ + ଆ

ର୍ = କୋଟିଜନ୍ମାର୍ଜ୍ଜିତ ପାପ ଓ ଶୁଭାଶୁଭ କର୍ମଭୋଗ,

ଆ = ଗର୍ଭବାସ, ମୃତ୍ୟୁ ଓ ରୋଗ,

ଧ୍ = ଆୟୁଃକ୍ଷୟ

ଆ = ସଂସାରବନ୍ଧନ ॥

ଯାହାଙ୍କ ସ୍ମରଣ ଓ ନାମକୀର୍ତ୍ତନ ଓ ସେବା କଲେ ମନୁଷ୍ୟ ଉପର୍ଯ୍ୟୁକ୍ତ ପାପାଦିରୁ ମୁକ୍ତ ହୁଏ ସେ ରାଧା; ଶ୍ରୀମଦ୍-ଭାଗବତରେ ରାଧାଙ୍କର ଉଲ୍ଲେଖ ନାହିଁ; ବ୍ରହ୍ମବୈବର୍ତ୍ତ ଓ ଦେବୀ ଭାଗବତରେ ରାଧାଙ୍କ ବର୍ଣ୍ଣନ ମିଳେ । ପୁରାଣ-ମାନଙ୍କରେ ରାଧାଙ୍କ ଜନ୍ମ ସମ୍ବନ୍ଧେ ଭିନ୍ନ ଭିନ୍ନ ବିବରଣ ଦେଖାଯାଏ । କେଉଁ କେଉଁ ପୁରାଣରେ ମଧ୍ୟ ଲେଖାଅଛି ଯେ, ଏ ଶ୍ରୀକୃଷ୍ଣଙ୍କ ବାମ ଅଙ୍ଗରୁ ଉତ୍ପନ୍ନ ହୋଇଥିଲେ । ପୁଣି କାହିଁ କାହିଁ ଗୋଲୋକଧାମର ରାସମଣ୍ଡଳରେ ଏହାଙ୍କ ଜନ୍ମ ହୋଇଥିବା ଲେଖା ଅଛି । ଜନ୍ମ ହେବା ସଙ୍ଗେ ସଙ୍ଗେ

ଏ ଯୁବତୀ ହୋଇଥିବା କଥା ମଧ୍ୟ ଲେଖା ଅଛି । ଗର୍ଗସଂହିତା ଆଦି କେତେକ ଆଧୁନିକ ଗ୍ରନ୍ଥରେ ଶ୍ରୀକୃଷ୍ଣ ରାଧାଙ୍କୁ ବିବାହ କରିଥିବା କଥା ଲେଖାଅଛି— ହି. ଶ.]

୨ । କର୍ଣ୍ଣଙ୍କର ପାଳସ୍ୱିତୀ ଜନନୀ; ଧୃତରାଷ୍ଟ୍ରଙ୍କ ସାରଥି ଅଧିରଥଙ୍କ ପତ୍ନୀ—2. Name of the foster-mother of Karnna. [ ବ୍ୟୁ—ରାଧାଶବ୍ଦର (୨) ଅର୍ଥ ସମ୍ବନ୍ଧେ ନୋଟ୍— କୁନ୍ତୀ କୁମାରୀ ଥିବା ଅବସ୍ଥାରେ ସୂର୍ଯ୍ୟଙ୍କ ଔରସରେ ତାଙ୍କ କର୍ଣ୍ଣବାଟେ କୁମାର ଜାତ ହେବାରୁ କୁନ୍ତୀ ଲୋକଲଜ୍ଜାଭୟରେ ଗୋଟିଏ ପେଡ଼ିମଧ୍ୟରେ ସେ ଶିଶୁଟିକି ପଶାଇ ନଦୀରେ ଭସାଇ ଦେଲେ ଓ ଶିଶୁଟି ଭାସି ଯାଉ ଯାଉ ସୂତଧରଜାତୀୟ ସାରଥି ବା ସୂତ ଅଧିରଥ ତାକୁ ଦେଖି ତାକୁ ନେଇ ଆପଣାର ପତ୍ନୀ (ରାଧାଙ୍କୁ ଦେଲେ ଓ ରାଧା ତାକୁ ପୁତ୍ରକୁ ଲାଳନପାଳନ କରି ବଢ଼ାଇଥିଲେ । ଏଥିପାଇଁ କର୍ଣ୍ଣଙ୍କୁ ସୂତପୁତ୍ର ଓ ରାଧେୟ ବୋଲାଯାଏ । ପ୍ରକୃତରେ ରାଧା କର୍ଣ୍ଣଙ୍କର ପାଳିତା ମାଆ ।] ୩ । ବିଦ୍ୟୁତ୍—3. Atomspheric electricity. ୪ । ଆମଳକୀ—4. Embilic myrobalan. ୫ । ବିଷ୍ଣୁକ୍ରାନ୍ତା ନାମକ ଦେଶ—5. A mythological tract of country. [ ବ୍ୟୁ—ପୁରାଣରେ ପୃଥିବୀକୁ ତିନି ଭାଗରେ ବିଭକ୍ତ କରାଯାଇ ଅଛି;—ବିଷ୍ଣୁକ୍ରାନ୍ତା, ରଥକ୍ରାନ୍ତା ଓ ଅଶ୍ୱକ୍ରାନ୍ତା ।] ୬ । ଅପରାଜିତା ଫୁଲ ଓ ଲତା; ବିଷ୍ଣୁକ୍ରାନ୍ତା ଲତା ଓ ଫୁଲ—6. A kind of flower and creeper; Clitoria Ternatia. ୭ । ବାଣମୋକ୍ଷଣ କାଳୀନ ଭଙ୍ଗୀ ବା ଅବସ୍ଥାନ ବିଶେଷ (ଏଥିରେ ଦୁଇ ପାଦ ପରସ୍ପରଠାରୁ ଏକହସ୍ତ ଦୂରରେ ରହେ )—7. A posture assumed by an archer while shooting. ୮ । ବିଶାଖା ନକ୍ଷତ୍ର—8. The 16th of the 27 asterisms in Hindu astronomy. ୯ । ଗୋବର୍ଦ୍ଧନ ମଲ୍ଲଙ୍କ ସ୍ତ୍ରୀ; ଚନ୍ଦ୍ରାବଳୀ—9. Chandrābalī, wife of Gobardhanamalla. [ ଭ୍ର—ମଲ୍ଲ ଗୋବର୍ଦ୍ଧନର ଯେ ଜୀବଧନ ମାନସ ବନ୍ଧନ ପାଣି ବାଳୀ, ରାଧାନାମ ହିତ ତାହାର ବିହିତ ନାମ ପୁଣିହିଁ ତ ଚନ୍ଦ୍ରାବଳୀ । ଅଭିମନ୍ୟୁ ବିଦଗ୍ଧଚିନ୍ତାମଣି ।] ୧୦ ।(+କରଣ ଅ+ଆ)ପ୍ରୀତି; ଅନୁରାଗ; ପ୍ରେମ (ହି.ଶ)—10. Love; attachment. ୧୧ (+ଅଧିକରଣ ଅ)ବୈଶାଖ ପୂର୍ଣ୍ଣିମା (ହି.ଶ)—11. The fullmoon day of the month of Baisākha ୧୨।ଏକ ବର୍ଣ୍ଣବୃତ୍ତର ନାମ (ହି.ଶ)-12. Name of a Sanskrit metre. [ ବ୍ୟୁ—ଏଥିର ପ୍ରତ୍ୟେକ ଚରଣରେ ରଗଣ, ତଗଣ, ମଗଣ, ଯଗଣ ଓ ଏକଗୁରୁ ବର୍ଣ୍ଣ, ଏପରି ୧୩ ଅକ୍ଷର ଥାଏ—ହି. ଶ. ]

**ରାଧା**—ଦେ. ବି.—ସ୍ତ୍ରୀମାନଙ୍କୁ ଦିଆଯିବା ନାମ—
Rādhā A name given to females.
[ରାଧାମଣି, ରାଧା ପ୍ରିୟା—ଅନ୍ୟରୂପ]

**ରାଧାକାନ୍ତ**—ସ. ବି. (୬ଷ୍ଠୀ ତତ୍)—ଶ୍ରୀକୃଷ୍ଣଙ୍କ ନାମ—
Rādhākānta Name of Śrikrushna.
(ରାଧା ଧବ, ରାଧା ନାଥ, ରାଧା ପ୍ରିୟ, ରାଧାବଲ୍ଲଭ, ରାଧାମୋହନ, ରାଧା ରମଣ, ରାଧା ବିନୋଦ —ଅନ୍ୟରୂପ)

**ରାଧାକାନ୍ତ ଦେବ**—ଦେ. ବି.—(ନାମ)—ସ୍ୱର୍ଗୀୟ ରାଜା ସର୍ ରାଧାକାନ୍ତ ଦେବ (କଲିକତା) (୧୭୮୪-୧୮୬୭)—
Rādhākānta deba Sir Radhakanta Deb Bahadur, K. C. S. I. of Calcutta. [ବ୍ୟୁ—ଏ କଲିକତା ଶୋଭାବଜାରର ରାଜବଂଶୀୟ ଗୌରବାନ୍ୱିତ ଓ ଧର୍ମପ୍ରାଣ ଜମିଦାର; ୪୨ ବର୍ଷ ପରିଶ୍ରମ ଓ ଅଜସ୍ର ଅର୍ଥ ବ୍ୟୟପୂର୍ବକ ବହୁ ପଣ୍ଡିତଙ୍କ ସାହାଯ୍ୟରେ ଏ ଶବ୍ଦକଳ୍ପଦ୍ରୁମ ଓ ବଙ୍ଗଳା-ଇଂରାଜୀରେ ସଂସ୍କୃତାର୍ଥକୋଷ ଅଭିଧାନ ସଙ୍କଳନ କରିଥିଲେ । ଜୀବନର ଶେଷ ତିନି ବର୍ଷ ଏ କଲିକତା ତ୍ୟାଗ କରି ବୃନ୍ଦାବନରେ ବାସ କରିଥିଲେ । ଗଭର୍ଣ୍ଣମେଣ୍ଟ ଏହାଙ୍କୁ ରାଜା-ବାହାଦୁର୍, କେ. ସି. ଏସ୍. ଆଇ ଓ ସର ଉପାଧି ଦେଇ ଥିଲେ । ଏ ପ୍ରବଳ କଳହ ଶବଦାହ ଓ ଆନ୍ତ୍ୟେଷ୍ଟି ସମ୍ବନ୍ଧେ ପୁରୋହିତ ଓ ପାଦମିଶ୍ରାଦିଙ୍କୁ ଯଥାବିହିତ ଉପଦେଶ ଦେଇ, ମରିବା କ୍ଷଣରେ ପ୍ରସ୍ତୁତ ହୋଇ ପ୍ରାଙ୍ଗଣ ମଧ୍ୟରେ ତୁଳସୀ ମୂଳରେ ଜପ କରୁ କରୁ ଏହାଙ୍କ ପ୍ରାଣ-ବାୟୁ ନିର୍ଗତ ହେଲା । ବିଧର୍ମୀ ଶିକାରୀମାନଙ୍କଦ୍ୱାରା ବୃନ୍ଦାବନରେ ମୟୂରାଦି ବଧ ଏହାଙ୍କ ଚେଷ୍ଟାରେ ଗଭର୍ଣ୍ଣମେଣ୍ଟଙ୍କ ଆଇନ୍‌ଦ୍ୱାରା ବନ୍ଦ ହୋଇଥିଲା । ଏହାଙ୍କ ପିତା ଗୋପୀମୋହନ ଓ ପିତାମହ ରାଜା ନବକୃଷ୍ଣ ଦେବ ।]

**ରାଧାକାନ୍ତ ମଠ**—ଦେ. ବି.— (ନାମ)—ପୁରୀର ଗୌଡ଼ୀୟ ବୈଷ୍ଣବଙ୍କ ପ୍ରସିଦ୍ଧ ମଠ—A celebarated Matha of Puri.
Rādhākānta matha [ ବ୍ୟୁ—ଶ୍ରୀ ଚୈତନ୍ୟଦେବ ପୁରୀରେ ଅବସ୍ଥାନ କରିବା ବେଳେ ଏଠାରେ ବାସ କରୁଥିଲେ । ଅଦ୍ୟାପି ଚୈତନ୍ୟଦେବଙ୍କର ମାଳା କନ୍ଥା ଓ ପାଦୁକା ଚୈତନ୍ୟଦେବଙ୍କ ବାସ କରୁଥିବା ପ୍ରକୋଷ୍ଠରେ ଯତ୍ନ ସହିତ ରକ୍ଷିତ ହୋଇଅଛି । ଏହାହିଁ ଓଡ଼ିଆ ବ୍ରାହ୍ମଣ ଗୃହସ୍ଥ କାଶୀ ମିଶ୍ରଙ୍କର ଘର ଥିଲା । ଚୈତନ୍ୟଦେବ ସେଠାରେ ରହିବା ପରେ କାଶୀ ମିଶ୍ରେ ଏ ସ୍ଥାନକୁ ଶ୍ରୀ ଚୈତନ୍ୟଙ୍କୁ ଦେଲେ ଓ ଚୈତନ୍ୟଦେବ ଏହାକୁ ଗୋପାଳ ଗୁରୁ ଗୋସ୍ୱାମୀ ନାମକ ଜଣେ ବୈରାଗୀ ବୈଷ୍ଣବଙ୍କୁ ଦେଲେ । ଗୋପାଳ ଗୁରୁଙ୍କଠାରୁ ଶିଷ୍ୟପରମ୍ପରାକ୍ରମେ ଏ ମଠ ଓଡ଼ିଆ ମହନ୍ତଙ୍କ ଅଧ୍ୟକ୍ଷତାରେ ଚାଲି ଆସୁଅଛି । ଗଞ୍ଜାମ ଓ ଉତ୍କଳଭୂମି ଅନ୍ୟ ସ୍ଥାନମାନଙ୍କରେ ଏହାର ଶାଖା ମଠମାନ ଅଛି ।]

**ରାଧା କୁଣ୍ଡ**—ସ. ବି.—ବୃନ୍ଦାବନସ୍ଥ ତୀର୍ଥ ବିଶେଷ—A shrine of
Rādhā kunda Brundaban, being a reservoir of holy water associated with Rādhā Krushna's divine consort.

ରାଧାକୁଣ୍ଡ(ଷ୍ଟା—ଗ୍ରା.ବି.—( ସ. ରାଧାକୃଷ୍ଣ ଶବ୍ଦର ଅଶୁଦ୍ଧ ଉଚ୍ଚାରଣ ) —
Rādhā kushṇa(ṭāṅ) ରାଧାକୃଷ୍ଣ (ଦେଖ)—Rādhā-
ବାଧାକୌଷ୍ଟି **राधाकीसन** kṛushṇa (See)
[ରାଧେକୁଷ୍ଟ—ଅନ୍ୟରୂପ]

ରାଧାକୃଷ୍ଣ—ସ. ବି.—[ଦ୍ୱନ୍ଦ୍ୱ]—ରାଧାଙ୍କର ଓ ଶ୍ରୀକୃଷ୍ଣଙ୍କର ଏକତ୍ର
Rādhākṛushṇa ସନ୍ନିବିଷ୍ଟ ଯୁଗଳରୂପ—Rādhā and
ରାଧାଗୋବିନ୍ଦ, ରାଧାଶ୍ୟାମ(ଚନ୍ଦ୍ର) } —ଅନ୍ୟରୂପ Kṛushna
ରାଧା ମାଧବ, ରାଧାଦାମୋଦର } standing or
sitting together or embracing each
other. ଦେ. ବି. ପୁଂ.—ଲୋକଙ୍କ ନାମ—A name
given to males.

ରାଧାକୃଷ୍ଣ ଗୋବିନ୍ଦ—ସ. ବି.—ବିଷ୍ଣୁଭକ୍ତମାନଙ୍କଦ୍ୱାରା ଉଚ୍ଚାରିତ ରାଧାକୃଷ୍ଣ
Rādhākṛushṇa gobinda ନାମ—Name uttered
ରାଧାମାଧବ ଗୋବିନ୍ଦ } by devotees of
ରାଧା ଦାମୋଦର ଗୋବିନ୍ଦ } —ଅନ୍ୟରୂପ Bishṇu.
ରାଧାଶ୍ୟାମ ଗୋବିନ୍ଦ }

ରାଧା ଚକ୍ର—ସ.ବି.—(ରାଧାଙ୍କପ୍ରିୟ ଚକ୍ର; ମ.ପ.ଲୋ)—ସୁଦର୍ଶନ ଚକ୍ର—
Rādhā chakra
The disc (weapon)of Bishṇu by hurling
which He killed many demons.
[ବ୍ୟୁ—ଏହି ଚକ୍ରଦ୍ୱାରା ଶ୍ରୀକୃଷ୍ଣ ବହୁ ଦୈତ୍ୟଙ୍କୁ ବଧ କରି
ଥିବାରୁ ରାଧା ଏହି ଅସ୍ତ୍ରକୁ ବିଶେଷ ସ୍ନେହ କରୁଥିଲେ ।]

ରାଧା ଚଡ଼କ—ଦେ ବି.—(ସଂ ରାଧାଚକ୍ର)—(ଗାଳିରେ ବ୍ୟବହୃତ)
Rādhā chaṛdaka ମନୁଷ୍ୟ ଉପରେ ପଡ଼ି ମୃତ୍ୟୁ ଘଟାଇବା
(ରାଧା ଚଡ଼ଚଡ଼ି—ଅନ୍ୟରୂପ) ଚଡ଼ଚଡ଼ି ବା ବଜ୍ରଦ୍ୱାର—Thunder which strikes and kills a person.
(ବ୍ୟୁ—ଲୋକେ ଗାଳିରେ କହି ଥାଆନ୍ତି, ତୋ ଉପରେ
ବାଜ ରାଧାଚଡ଼କ ପଡ଼ୁ, ଅର୍ଥାତ୍ ତୋ ଉପରେ ବଜ୍ରପାତ ହୋଇ
**गोया बीजली, हरहडी बज्र** ତୋର ମୃତ୍ୟୁ ଘଟୁ ।)

ରାଧା ଚନ୍ଦ୍ରବାଡ଼ି—ଦେ· ବି—(ଗାଳିରେ ବ୍ୟବହୃତ) ଭୀଷଣ ଓ
Rādhā chandrabāṛdi ମାରାତ୍ମକ ବିସୂଚିକା—Cholera
**ओबा, टुनकी** of a very serious type; asiatic
cholera. [ବ୍ୟୁ—କଥିତ ଅଛି ଯେଉଁ ବର୍ଷ ଜଗନ୍ନାଥ
ମହାପ୍ରଭୁଙ୍କର ରାଧାଚନ୍ଦ୍ର (ରାଧାକୃଷ୍ଣ) ବେଶ ହୋଇଥିଲେ ସେ
ବର୍ଷ ଅଦୃଷ୍ଟପୂର୍ବ ଓ ଅଶ୍ରୁତପୂର୍ବ ବିସୂଚିକାର ଆକ୍ରମଣରେ
ଅସଂଖ୍ୟ ଲୋକ ମରିଥିଲେ ।]

ରାଧାଚରଣ—ଦେ. ବି. ପୁଂ—ଲୋକଙ୍କ ନାମ—
Rādhācharaṇa A name given to males.
[ରାଧାପ୍ରସାଦ, ରାଧାପ୍ରସନ୍ନ—ଅନ୍ୟରୂପ]

ରାଧାଚରଣ ଦାସ—ଦେ.ବି(ନାମ)—(ପରଲୋକଗତ) ସାମନ୍ତ ରାଧାଚରଣ
Rādhācharaṇa dāsa ଦାସ, ବାଲେଶ୍ୱରର ସ୍ୱର୍ଗୀୟ ବିଖ୍ୟାତ
ଜମିଦାର—The late wellknown Zamindar
of Balasore in the Balasore district of
Orissa. [ବ୍ୟୁ—ଏ ଜାତିରେ କରଣ ଓ ବାଲେଶ୍ୱରର
ସୁବର୍ଣ୍ଣଚର ପ୍ରଧାନ ଜମିଦାରବଂଶୀୟ ଥିଲେ । ଏହାଙ୍କର ବିଷ୍ଣୁ-
ଭକ୍ତି ଓ ଦେବସେବା ଓ ବ୍ରାହ୍ମଣବୈଷ୍ଣବାଦିଙ୍କ ସେବା କ୍ରମରେ
ଗଢ଼ା ହୋଇଥିବା ଦେବମନ୍ଦିର ଓ ଇମାରତମାନ ଅନେକ
ଅଛି । ଏହାଙ୍କ ଜମିଦାରୀ ସାମନ୍ତଷ୍ଟେଟ୍ ନାମରେ ଖ୍ୟାତ ।]

ରାଧା ଜନ୍ମ—ସ. ବି—ରାଧାଷ୍ଟମୀ (ଦେଖ)
Rādhājanma Rādhāshṭami. (See)

ରାଧାତାପିନୀ—ସ ବି—ଅଥର୍ବବେଦର ଉପନିଷତ୍ ଅନ୍ତର୍ଭୁକ୍ତ ବୈଷ୍ଣବ
Rādhatāpini ଧର୍ମଗ୍ରନ୍ଥ ବିଶେଷ—A treatise on the
Baishṇaba religion. [ଉ·—ଗୋପାଳ ବେଶ
ଅଥର୍ବରେ, ଅଛଇ ରାଧା ତାପିନୀରେ । ପ୍ରାଚୀ ପୁର୍ଣ୍ଣଚନ୍ଦ୍ର
ଚନ୍ଦ୍ରୋଦୟ ।]

ରାଧା ଦାମୋଦର—ସ. ବି—୧ । ରାଧା ଓ ଶ୍ରୀକୃଷ୍ଣ—1. Rādhā
Rādhā dāmodara and Śrikṛushṇa. ୨ । ରାଇ
ରାଧା ଦାମୋଦର } ଦେଶଜରୂପ ଦାମୋଦର ( ଦେଖ )—
ରାଇ ଦାମୋଦର } 2. Rāidāmodara.
(See) ୩ । ପଦ୍ମପୁରାଣୋକ୍ତ ରାଧାକୃଷ୍ଣଙ୍କର ଯୁଗଳ-
ରୂପକୁ ଜପିବାର ମନ୍ତ୍ର; କାର୍ତ୍ତିକ ମାସରେ ବିଧବାମାନଙ୍କ
ଜପିବା ମନ୍ତ୍ର ଓ ବ୍ରତ—3. The formula formulated and the vow taken for worshipping Rādhā and Kṛushṇa during the
month of Kārttika.

ରାଧା ନାଚିବେ—ଦେ. ବାକ୍ୟ—ରାଧା ନୃତ୍ୟ କରିବାରୂପ ଅଲଭ୍ୟ ବା
Rādhā nāchibe ଦୁର୍ଲଭ୍ୟ କାର୍ଯ୍ୟ—A thing, the performance of which entails much
ବାଧା ନାଚবে botheration and arrangement. [ବ୍ୟୁ—
**राधा नाचगी** କୌଣସି କୁଚ୍ଛ୍ରସାଧ୍ୟ ବା ବହୁବ୍ୟୟସାଧ୍ୟ ବା ବହୁଳ
সাতমণ তেলও পুড়বেনা রাধাও নাচবেনা ଆୟୋଜନସାଧ୍ୟ କାର୍ଯ୍ୟ
**न एकसौमन घी होगा न राधा नाचेंगी** ପ୍ରତି ଲକ୍ଷ୍ୟ କରି ଏ
ବାକ୍ୟ ବୋଲାଯାଏ;—ଶହେ ମହଣ ଘିଅ ହେବ, ନାଁ, ରାଧା
ନାଚିବେ । ଅର୍ଥାତ୍ ଶହେ ମହଣ ଗୁଆ ଘିଅ ଏକତ୍ର ସଂଗୃହୀତ
ହୋଇ ପାରିବା ଯେପରି ଅସାଧ୍ୟ, ରାଧା ନାଚିବା ମଧ୍ୟ
ସେହିପରି ଅସମ୍ଭବ । ସମ୍ଭବତଃ ଏ ଉକ୍ତିଦ୍ୱାରା ରାଧାକୃଷ୍ଣ
ଲୀଳାର କୌଣସି ଲୌକିକ ଆଖ୍ୟାନ ପ୍ରତି ଲକ୍ଷ୍ୟ କରା-
ଯାଇଅଛି । ]

ରାଧାନାଥ—ସ. ବି—ଶ୍ରୀକୃଷ୍ଣ—Śrikṛushṇa. ଦେ. ବି. ପୁଂ—
Rādhānātha ୧ । ପୁରୁଷଙ୍କ ନାମ—1. A name given
to males. ୨ । ସ୍ୱର୍ଗୀୟ କବିବର ରାୟ ରାଧାନାଥ ରାୟ
ବାହାଦୁର୍—2. The late Rai Rādhānāth Rai
Bāhādur, the greatest modern Oriya
poet. [ବ୍ୟୁ—ଏ ମହାଶୟ ଉତ୍କଳର ଆଧୁନିକ ଯୁଗର
ପ୍ରଧାନ କବି । ଏ ଉତ୍କଳର ସ୍ଥାୟୀ ଉପନିବେଶୀ ବଙ୍ଗୀୟ
କାୟସ୍ଥ କୁଳରେ ବାଲେଶ୍ୱର ଜିଲ୍ଲାର କେଦାରପୁର ଗ୍ରାମରେ
ଖ୍ରୀ. ୧୮୬୧ ସାଲ ଅଶ୍ୱିନ ୧୬ ଦିନ ଜନ୍ମଗ୍ରହଣ କରିଥିଲେ ।

ଏହାଙ୍କ ପିତାଙ୍କ ନାମ ସୁନ୍ଦରନାରାୟଣ ରାୟ ଓ ମାତାଙ୍କ ନାମ ଶ୍ରୀମତୀ ତାରଣୀଦାସୀ । ଅତି ଶୈଶବରୁ ମାତୃହୀନ ହୋଇ ସେ ପିତାଙ୍କଠାରୁ ପିତୃସ୍ନେହ ଦ୍ୱିଗୁଣ ମାତ୍ରାରେ ପ୍ରାପ୍ତ ହୋଇଥିଲେ । ସେ ଶୈଶବରୁ ଅତ୍ୟନ୍ତ ରୋଗପ୍ରବଣ ଥିଲେ, ତେଣୁ ପଞ୍ଚଦଶାରେ ତାଙ୍କର ବାମ ଚକ୍ଷୁ ସମ୍ପୂର୍ଣ୍ଣ ରୋଗରେ ନଷ୍ଟ ହୋଇଥିଲା । ସେ ବାଲେଶ୍ୱର ଜିଲ୍ଲାସ୍କୁଲରୁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ, ସେସମୟରେ କଟକରେ ଉଚ୍ଚତର ଶିକ୍ଷା ନିମନ୍ତେ କଲେଜ ବସିନଥିବାରୁ, କଲିକତାକୁ ଏଫ୍. ଏ. ପଢ଼ିବାକୁ ଗଲେ । ସେଠାରେ ସ୍ୱାସ୍ଥ୍ୟହାନି ଘଟିବାରୁ ଉଚ୍ଚଶିକ୍ଷାକୁ ଜଳାଞ୍ଜଳି ଦେଇ ତାଙ୍କୁ ଶୀଘ୍ର ସେଠାରୁ ଫେରିଆସିବାକୁ ହେଲା । କିଛି ଦିନ ପରେ ସେ ବାଲେଶ୍ୱର ଜିଲ୍ଲା ସ୍କୁଲ୍‌ରେ ମାସିକ ୩୦ ଟଙ୍କା ବେତନରେ ତୃତୀୟ ଶିକ୍ଷକ ପଦରେ ନିଯୁକ୍ତ ହେଲେ । କଲେଜ୍‌ରେ ପଢ଼ିବା ସୁବିଧା ଆଉ ନ ଘଟିବାରୁ ସେ ନିଜ ଯତ୍ନରେ ଘରେ ପାଠ ପଢ଼ି ଏଫ୍. ଏ. ପାସ୍ କଲେ ଓ ବି. ଏ. ପରୀକ୍ଷାର ସମସ୍ତ ପାଠ୍ୟ ନିଜ ଯତ୍ନ ଓ ଉଦ୍ୟମରେ ଘରେ ପଢ଼ିଲେ । ତତ୍କାଳୀନ ବିଖ୍ୟାତ ପଣ୍ଡିତ ସଦାଶିବ ନନ୍ଦଙ୍କ ପାଖରେ ରାଧାନାଥ ଉତ୍କଳର ବ୍ୟାସକବି ଫକୀରମୋହନଙ୍କ ସହିତ ସଂସ୍କୃତ କାବ୍ୟ ନାଟକାଦି ଅଧ୍ୟୟନ କରି ଅଗାଧ ପାଣ୍ଡିତ୍ୟ ଅର୍ଜ୍ଜନ କରିଥିଲେ । ବାଲେଶ୍ୱର ଜିଲ୍ଲା ସ୍କୁଲ୍‌ରେ ରାଧାନାଥ ୫ ବର୍ଷକାଳ ଚାକିରି କରିଥିଲେ ଓ ଏହି ସମୟରେ ରେମୁଣା ଗ୍ରାମର ଆଦିତ୍ୟ ବଂଶର ଚନ୍ଦ୍ରମୋହନ ଆଦିତ୍ୟଙ୍କ କନ୍ୟା ପରଶମଣିଙ୍କ ସହିତ ରାଧାନାଥଙ୍କ ଶୁଭ ପରିଣୟ ସମ୍ପନ୍ନ ହୋଇଥିଲା । ଏହାପରେ ସେ ଦ୍ୱିତୀୟ ଶିକ୍ଷକ ପଦରେ ପୁରୀଜିଲ୍ଲା ସ୍କୁଲ୍‌କୁ ବଦଳି ହେଲେ ଓ ସେଠାରେ ଭବିଷ୍ୟତ କାଳର ଭକ୍ତକବି ମଧୁସୂଦନ ରାଓଙ୍କୁ ଛାତ୍ରରୂପେ ଲାଭ କଲେ । ପୁରୀରୁ ସେ ବାଙ୍କୀକୁ ବଦଳି ହେଲେ ଓ ସେଠାରୁ ୧୮୭୭ରେ ସ୍କୁଲ୍ ବିଭାଗୀୟ ଡେପୁଟି ଇନ୍‌ସ୍ପେକ୍ଟର୍ ପଦରେ ବାଲେଶ୍ୱର ଜିଲ୍ଲାକୁ ଫେରି ଆସିଲେ । ଏହି ବର୍ଷ ତାଙ୍କର ସୁଯୋଗ୍ୟ ପୁତ୍ର ଶଶିଭୂଷଣଙ୍କର ଜନ୍ମ । ଏତେବେଳକୁ ରାଧାନାଥ ତାଙ୍କର ଅନେକ କାବ୍ୟ ଲେଖି ସାରିଥିଲେ । ତାଙ୍କ ସାହିତ୍ୟସେବାର ଓ ଉତ୍କଳରେ ଶିକ୍ଷା ବିସ୍ତାର ପ୍ରତି ଶ୍ରଦ୍ଧାର ପୁରସ୍କାରସ୍ୱରୂପ ଗଭର୍ଣ୍ଣମେଣ୍ଟ ତାଙ୍କୁ ରାୟ ବାହାଦୁର୍ ଉପାଧିରେ ଭୂଷିତ କରିଥିଲେ । ରାଧାନାଥ ଉତ୍କଳକୁ ଜନ୍ମଭୂମି ଓ ଓଡ଼ିଆଭାଷାକୁ ମାତୃଭାଷା ମଣୁଥିଲେ । ସେ ପ୍ରଥମେ ବଙ୍ଗ ଭାଷାରେ କବିତା ଲେଖିଥିଲେ । କିନ୍ତୁ ପରେ ବଙ୍ଗଭାରତୀଙ୍କ ସେବା ତ୍ୟାଗ କରି ଉତ୍କଳ ଭାରତୀଙ୍କ ବନ୍ଦନାରେ ନିଜର ଜୀବନକୁ ନିୟୋଜିତ କଲେ । ଉତ୍କଳର ଦର୍ଶନୀୟ ହ୍ରଦ, ପୁଷ୍କରିଣୀ, ପର୍ବତ, ନିର୍ଝର, ନଦୀ, ବନ, ଗ୍ରାମ, ଉଦ୍ୟାନ, ବୃକ୍ଷ, ଲତା, ଆଦି ପ୍ରାକୃତିକ ଦୃଶ୍ୟ ଓ ଐତିହାସିକ ବିଷୟକୁ ସେ ଅମର ଅକ୍ଷରରେ ଲିପିବଦ୍ଧ କରି ଯାଇଅଛନ୍ତି । ସେ ଉତ୍କଳର ଆଧୁନିକ ଜାତୀୟ ସାହିତ୍ୟର ଓ ଜାତୀୟ କବିତାର ମୂଳଦୁଆ ବାନ୍ଧିଦେଇ ଯାଇ ଅଛନ୍ତି । ଉତ୍କଳର ଆଧୁନିକ ସାହିତ୍ୟଯୁଗର ସେ ଶ୍ରେଷ୍ଠ କବି ଓ ପ୍ରବର୍ତ୍ତକ । ତାଙ୍କର ଖଣ୍ଡିଏ ଗଦ୍ୟ ଉପନ୍ୟାସ (ଇତାଲୀୟ ଯୁବା) ଓ ବିବେକୀ ନାମକ ପ୍ରବନ୍ଧ ଏବଂ କେତେଗୁଡ଼ିଏ ପାଠ୍ୟ ପୁସ୍ତକ ଛଡ଼ା ଆଉ ସବୁ ରଚନା ପଦ୍ୟ । ତାଙ୍କର ରଚିତ ଗ୍ରନ୍ଥମାନ :—

୧ । ସଂସ୍କୃତ ମେଘଦୂତର ପଦ୍ୟାନୁବାଦ
୨ । ସ୍କୁଲ୍ ପାଠ୍ୟ କବିତାବଳୀ
୩ । କେଦାରଗୌରୀ
୪ । ଚନ୍ଦ୍ରଭାଗା
୫ । ନନ୍ଦିକେଶ୍ୱରୀ
୬ । ଉଷା
୭ । ପାର୍ବତୀ (ଅସମ୍ପୂର୍ଣ୍ଣ)
୮ । ଚିଲିକା
୯ । ମହାଯାତ୍ରା (ଅସମ୍ପୂର୍ଣ୍ଣ)
୧୦ । ଯଯାତିକେଶରୀ
୧୧ । ତୁଳସୀ ସ୍ତବକ
୧୨ । ଦରବାର । ୧୩ । ଦଶରଥ ବିୟୋଗ
୧୪ । ବାଣହରଣ । ୧୫ । ମହେନ୍ଦ୍ରଗିରି;

ଉତ୍କଳର ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା ତାଙ୍କୁ ଅମର କରିଛି । ତାଙ୍କ ରଚନାର ମାଧୁର୍ଯ୍ୟ, ପଦଲାଳିତ୍ୟ, ସାରଲ୍ୟ ଓ ସୁରୁଚି ପାଠକମାନଙ୍କୁହିଁ ମୁଗ୍ଧ କରେ । ଚରିତ୍ରଚିତ୍ରଣରେ ସେ କୃତିତ୍ୱ ଲାଭ କରି ନ ଥିଲେ । ସଂସ୍କୃତ ଓ ଇଂରାଜୀ ସାହିତ୍ୟରେ ତାଙ୍କର ଅସାଧାରଣ ପାଣ୍ଡିତ୍ୟ ଥିଲା । ତାଙ୍କ ପୁତ୍ର ଶ୍ରୀ ଶଶି ଭୂଷଣ ପିତାଙ୍କ ଗ୍ରନ୍ଥାବଳୀ ପ୍ରକାଶ କରିଅଛନ୍ତି ଓ ତାଙ୍କ ମଧ୍ୟମ ଜାମାତା ଶ୍ରୀ ଦୁର୍ଗାଚରଣ ରାୟ ତାଙ୍କ ଜୀବନୀ ସଂକଳିତ କରି ଶୀଘ୍ର ତାହା ମୁଦ୍ରିତ ହେବା କଳ୍ପନା କରୁଅଛନ୍ତି ।]

**ରାଧାପଦ୍ମ**—ସଂ. ବି—୧ । ଶ୍ୱେତପଦ୍ମ—1. White lotus.
Rādhāpadma ୨ । ସୂର୍ଯ୍ୟମୁଖୀ ଫୁଲ—2. The sun flower.

**ରାଧାପ୍ରିୟା**—ସଂ. ବି. ସ୍ତ୍ରୀ (୬ଷ୍ଠୀ ତତ୍; ରାଧା+ପ୍ରିୟା)—ରାଧିକାଙ୍କ ପ୍ରିୟ-
Rādhāpriyā ସଖୀ—A dear female friend of Rādhā. ଦେ. ବି. ସ୍ତ୍ରୀ—ସ୍ତ୍ରୀମାନଙ୍କ ନାମ—A name (ରାଧାବଲ୍ଲଭୀ—ଅନ୍ୟରୂପ) given to females.

**ରାଧା ବଲ୍ଲଭ**—ସଂ.ବି. ପୁଂ (୬ଷ୍ଠୀ ତତ୍)—ଶ୍ରୀକୃଷ୍ଣ—Śrikṛushṇa.
Rādhā ballabha ଦେ. ବି. ପୁଂ—ଲୋକଙ୍କ ନାମ—A name given to males.
ରାଧାରମଣ, ରାଧାମୋହନ }—ଅନ୍ୟରୂପ

**ରାଧାବଲ୍ଲଭ(ଭୀ)ମଠ**—ଦେ.ବି—ପୁରୀ ସହରର ଗୋଟିଏ ବୈଷ୍ଣବ ମଠ—
Rādhāballabha(bhī)maṭha Name of a Math
राधावल्लभी मठ in Puri. [ଦ୍ର—ଏହି ମଠରେ ଥିବା ବୈଷ୍ଣବସମ୍ପ୍ରଦାୟ ରାଧିକାଙ୍କୁ ଶ୍ରୀକୃଷ୍ଣଙ୍କ ବିବାହିତା ସ୍ତ୍ରୀ ବୋଲି ଗ୍ରହଣ

କରୁଅଛନ୍ତି । ଏ ସମ୍ପ୍ରଦାୟ ନିମାର୍କ ସମ୍ପ୍ରଦାୟର ଗୋଟିଏ ଶାଖା । ]

**ରାଧାମଣି**—ଦେ. ବ. ସ୍ତ୍ରୀ—ସ୍ତ୍ରୀ ଲୋକଙ୍କ ନାମ—
Rādhāmaṇi A name given to females.

**ରାଧାରମଣ ଚରଣ ଦାସ**—ଦେ.ବ.--ସ୍ୱନାମଧନ୍ୟ ବୈକୁଣ୍ଠଗାମୀ ବୈଷ୍ଣବ; Rādhāramaṇa charaṇa dāsa ପୁରୀର 'ବଡ଼ ବାବାଜୀ'; বাধাবমণ চবণ দাস କଟକର "ଚରଣ ଦାସ ବାବାଜୀ"—A late चरण दास बावाजी celebrated baishṇaba of this name. (ବ୍ର—ଏ ମହାତ୍ମା ବଙ୍ଗଦେଶରେ କାୟସ୍ଥ କୁଳରେ ଜନ୍ମ ଗ୍ରହଣ କରିଥିଲେ । କେତେକ ଦିନ ଗୃହସ୍ଥାଶ୍ରମୀ ହେବା ପରେ ତାଙ୍କର ସ୍ତ୍ରୀ ବିୟୋଗ ଘଟିଲା । ତତ୍ପରେ ସେ ନବଦ୍ୱୀପକୁ ଯାଇ ସେଠାରେ ଜଣେ ମହାପୁରୁଷଙ୍କଠାରୁ ବୈଷ୍ଣବ ଧର୍ମର ଦୀକ୍ଷା ଓ ଭେକ ଗ୍ରହଣ କରି ହରିନାମ ସଂକୀର୍ତ୍ତନ ଦ୍ୱାରା ବଙ୍ଗ ଓ ଉତ୍କଳରେ ବହୁ ସହସ୍ର ଲୋକଙ୍କୁ ଶ୍ରୀଚୈତନ୍ୟ ଦେବଙ୍କ ପ୍ରବର୍ତ୍ତିତ ବୈଷ୍ଣବ ଧର୍ମରେ ଦୀକ୍ଷିତ କରିଥିଲେ । ଶ୍ରୀ ଚୈତନ୍ୟ ଦେବଙ୍କ କୃପାରୁ ଏକନିଷ୍ଠ ଭକ୍ତି ବଳରେ ସେ ଅନେକ ଆଶ୍ଚର୍ଯ୍ୟ ଘଟଣାମାନ ଦେଖାଇ ପାରିଥିଲେ । ତାଙ୍କର ନବଦ୍ୱୀପରେ, କଟକରେ ଓ ପୁରୀରେ ମଠ ଅଛି । ତାଙ୍କର ପ୍ରଧାନ ଶିଷ୍ୟ ରାମଦାସ ବାବାଜୀ ସଂକୀର୍ତ୍ତନ ଦ୍ୱାରା ସହସ୍ର ସହସ୍ର ଲୋକଙ୍କୁ ମୁଗ୍ଧ କରୁଅଛନ୍ତି । କଟକରେ ତେଲେଙ୍ଗା ବଜାର ଓ ଚାନ୍ଦିନିଚୌକ ମଝିରେ କାଠଯୋଡ଼ି କୂଳରେ ତାଙ୍କ ଅନ୍ତେ ତାଙ୍କ ଶିଷ୍ୟ ପ୍ରଶିଷ୍ୟମାନେ 'ରସବିହାରୀ ମଠ' ନାମରେ ଗୋଟିଏ ପ୍ରକାଣ୍ଡ ମଠ ସ୍ଥାପନ କରି ସେଥିରେ ତାଙ୍କର ମର୍ମରମୟ ମୂର୍ତ୍ତି ରଖି ତାଙ୍କର ଓ ଉକ୍ତ ମଠରେ ପ୍ରତିଷ୍ଠିତ ରସବିହାରୀ ଦେବଙ୍କର ପୂଜା, ଅର୍ଚ୍ଚନା ଓ ନାମ ସଂକୀର୍ତ୍ତନ କରୁଅଛନ୍ତି । ତାଙ୍କ ପ୍ରଚାରିତ ମନ୍ତ୍ର—

"ହରେକୃଷ୍ଣ ହରେ ରାମ
ଶ୍ରୀରାଧେ ଗୋବିନ୍ଦ ରାଧେ ଶ୍ୟାମ"

ବାରଂବାର ଉଚ୍ଚାରଣ ପୂର୍ବକ ତାଙ୍କ ଭକ୍ତମାନେ ଖୋଳ କରତାଳ ବଜାଇ ଅଷ୍ଟପ୍ରହରୀ, ଚବିଶପ୍ରହରୀ, ସପ୍ତାହବ୍ୟାପୀ ଓ ମାସବ୍ୟାପୀ ଅହୋରାତ୍ର ସଂକୀର୍ତ୍ତନ ଓ ନଗର କୀର୍ତ୍ତନ କରନ୍ତି । ନବଦ୍ୱୀପରେ ଥିବା ତାଙ୍କ ମଠରେ ମଧ୍ୟ ନାନା ଉତ୍ସବ ଉପଲକ୍ଷରେ ଏହିପରି କୀର୍ତ୍ତନ ଓ ମହୋତ୍ସବ ହୁଏ ।

**ରାଧାରାଣୀ**—ଦେ. ବ. ସ୍ତ୍ରୀ—୧ । ରାଧାଙ୍କୁ ସ୍ନେହ ସମ୍ବୋଧନ—1. A Rādhā rāṇi term of endearment applied to বাধাবাণী Rādhā ୨ । ସ୍ତ୍ରୀଲୋକଙ୍କ ନାମ 2. A name given राधारानी to females.

**ରାଧାଶ୍ୟାମ ନରେ(ନ୍ଦ୍ର)ନ୍ଦ୍ର**—ଦେ.ବ. (ନାମ)—କେନ୍ଦ୍ରାପଡ଼ାର ପରଲୋକ-Rādhāsyāma nare(ri)ndra ପ୍ରାପ୍ତ ପ୍ରସିଦ୍ଧ ଜମିଦାର । The late wellknown Zemindar of Kendrapara in the district of Cuttack in Orissa, celebrated for his munificence to Baishṇabas. (ବ୍ର—ଏ କେନ୍ଦ୍ରାପଡ଼ାର ପୁରାତନ ଜମିଦାର ବଂଶୀୟ ଥିଲେ । ଏହାଙ୍କ ପିତାଙ୍କ ନାମ ସଦାଶିବ ସେନା । ଏହାଙ୍କ ପରିବାର ଦାନ ଓ ବିଷ୍ଣୁଭକ୍ତି ପାଇଁ ପ୍ରସିଦ୍ଧ । ଏ କେନ୍ଦ୍ରାପଡ଼ାଠାରେ ବଳଦେବ ଜୀଉ ନାମକ ଦେବବିଗ୍ରହ ପ୍ରତିଷ୍ଠା କରି ତାଙ୍କ ତଳେ ଅନେକ ଭୂସମ୍ପତ୍ତି ଲଗା କରି ଯାଇଅଛନ୍ତି । ଏହାଙ୍କ ବଦାନ୍ୟତାକୁ ଭାରତର ଗୁରୁଗୁରୁ ବା ତୀର୍ଥକ୍ଷେତ୍ର ( ପୁରୀ, ରାମେଶ୍ୱର, ବଦ୍ରୀନାଥ ଓ କାଶୀ ) ରେ ଉଦ୍‌ଘୋଷିତ ହେଉଥିଲା । ଏହାଙ୍କ ପିତୃବ୍ୟଙ୍କ ଜବ-ଟେ ଅନନ୍ତ ସାମନ୍ତସିଂହାର ବିବାହ କରିଥିଲେ । )

**ରାଧାଷ୍ଟମୀ**—ସଂ.ବ.—(ମ. ଚ. ଲୋ)—ଭାଦ୍ର ଶୁକ୍ଳାଷ୍ଟମୀ । (ରାଧିକା ଏହିଦିନ Rādhāshṭami ଜନ୍ମଗ୍ରହଣ କରିଥିଲେ) । The eighth day of the bright fortnight of Bhādra, the birth-day of Rādhā

**ରାଧାସଖୀ**—ସଂ. ବ.—ରାଧାଙ୍କର ସାଙ୍ଗ—A female compa-Rādhā sakhi nion of Rādhā (ବ୍ର—ଷୋଳ ସହସ୍ର ଗୋପୀ ରାଧିକାଙ୍କର ସଖୀ ଥିଲେ ମଧ୍ୟ ଆଠଜଣ ତାଙ୍କର ପ୍ରିୟସଖୀ ଥିଲେ ।) (ରାଧାସହଚରୀ—ଅନ୍ୟରୂପ)

**ରାଧି**—ଦେ. ବ.—ରାଧିକାର ଡାକ ନାମ—Name for calling Rādhi Rādhikā

**ରାଧି(ଧୁ)ଆ**—ଦେ. ବ.—(ଅନାଦରାର୍ଥକ) ରାଧା ନାମରେ ଆରମ୍ଭ Rādhi(dhu)ā ହୋଇଥିବା ବ୍ୟକ୍ତିର ଡାକ ନାମ—Name for রাধুয়া राधिया calling persons named Rādhakṛushna etc.

**ରାଧିକା**—ସଂ. ବ. ସ୍ତ୍ରୀ ( ରାଧ୍ ଧାତୁ+କର୍ତ୍ତୃ ଅକ+ସ୍ତ୍ରୀ. ଆ )—Rādhikā ରାଧା ( ଦେଖ )—Rādhā ( See )

**ରାଧିକା କାନ୍ତ**—ସଂ.ବ.ପୁଂ—ଶ୍ରୀକୃଷ୍ଣ-Śrikṛushṇa.ଦେ ବ ପୁ.ଲୋକଙ୍କ Rādhikā kānta ନାମ—A name given to males. [ରାଧିକା ପ୍ରସନ୍ନ, ରାଧିକା ନାଥ, ରାଧିକା ବଲ୍ଲଭ, ରାଧିକା ରଞ୍ଜନ, ରାଧିକା ରମଣ, ରାଧିକା ମୋହନ, ରାଧିକାରସିକ—ଅନ୍ୟରୂପ]

**ରାଧିକା ଗୋପିକାଗଣ**—ସଂ. ବ (ସହଚର)—ରାଧା ଓ ଗୋପୀମାନେ—Rādhikā gopikāgaṇa Rādhā and the cowherd ladies of Brundaban.

**ରାଧିକା ଦୂତିକା**—ସଂ. ବ ( ସହଚରୀବାଚକ ଓ ସହଚର ଶବ୍ଦ )—ରାଧା ଓ Rādhikā dūtikā ତାଙ୍କ ପ୍ରିୟସଖୀ ଲଳିତା—Rādhā and (ରାଧିକା ଦୂତିକା—ଗ୍ରାମ୍ୟରୂପ) her bosom companion Lalitā. ଦେ. ବ—ସମବୟସ୍କା ଯୁବତୀ ସଖୀଦ୍ୱୟ—A word applied to two young ladies of the same age who are companions (ରାଧିକାଲଳିତା—ଅନ୍ୟରୂପ) to each other.

**ରାଧିକେ**—ସଂ. ( ରାଧିକା ଶବ୍ଦର ସମ୍ବୋଧନ )—ହେ ରାଧିକା !—Rādhike Oh Rādhikā !

**ରାଧୀ**—ସଂ. ବ.ସ୍ତ୍ରୀ (ରାଧ୍ ଧାତୁ=ସିଦ୍ଧ କରିବା+ଅଧିକରଣ.ଅ+ଈ)—Rādhi ବୈଶାଖ ପୂର୍ଣ୍ଣିମା—The fullmoon of the month of Baiśākha. ଦେ. ବ. ସ୍ତ୍ରୀ—ରାଧା-ନାମ୍ନୀ ସ୍ତ୍ରୀର ଡାକନାମ—A name for calling Rādhā.

ରାଧୁ—ଦେ. ବ—(ଆଦରାର୍ଥକ) ରାଧାକୃଷ୍ଣଆଦିଙ୍କ ଡାକ ନାମ—
Rādhu Name for calling Rādhākrushṇa.
(ରାଧୁଆ—ଅନାଦରାର୍ଥକ ରୂପ) রাধু राधिया

ରାଧେ—ସ. ( ସମ୍ବୋଧନ )—ହେ ରାଧିକା !—Oh Rādhā ! ଦେ.
Rādhe ବ—ବୈଷ୍ଣବମାନଙ୍କ ଉଚ୍ଚାରିତ ରାଧାଙ୍କ ନାମ—Name of Rādhā uttered by Baishṇabas.

ରାଧେ କୃଷ୍ଣ—ଦେ. ବ ( ସ ହେ ରାଧେ ଓ ହେ କୃଷ୍ଣ )—ବୈଷ୍ଣବ-
Rādhe krushṇa ମାନଙ୍କର ଜପିବା ରାଧାକୃଷ୍ଣ ନାମ—
(ରାଧେଗୋବିନ୍ଦ, ରାଧେଶ୍ୟାମ-ଅନ୍ୟରୂପ)Name of Radha and
রাধেকৃষ্ণ राधेकृष्ण Krushṇa uttered by Baishṇabas.

ରାଧେୟ—ସ. ବ. ପୁଂ ( ରାଧା + ଅପତ୍ୟାର୍ଥେ ଏୟ )—କର୍ଣ୍ଣରାଜା—
Rādheya King Karṇṇa. [ ଦ୍ର—ସୂତଧର ରାଜାଙ୍କ ସାରଥି ଅଧିରଥଙ୍କ ସ୍ତ୍ରୀ ରାଧାଙ୍କ ପାଳିତ କୁନ୍ତୀଙ୍କ କୁମାରୀ ଅବସ୍ଥାରେ ସୂର୍ଯ୍ୟଙ୍କ ଔରସ ପୁତ୍ର । ଏହାଙ୍କୁ ପରେ ଦୁର୍ଯ୍ୟୋଧନ ଅଙ୍ଗ ଦେଶର ରାଜତ୍ୱ ସମର୍ପଣ କରିଥିଲେ । ]

ରାନୁ—ପ୍ରାଦେ ( ସମ୍ବଲପୁର ) ବ—ହାଣ୍ଡିଆ ମଦ ତିଆର କରିବାପାଇଁ
Rānu ଭାତରେ ମିଶାଯିବା ଔଷଧ ବଟିକା—A herbarious pill mixed with boiled rice for manufacturing country liquor.

ରାନ୍ଧନି—ପ୍ରାଦେ ( ସମ୍ବଲପୁର ) ବ—ରାନ୍ଧୁଣୀ; ପାଚିକା—
Rāndh-ni Female cook.

ରାନ୍ଧନିଆ(ଆଁ)—ପ୍ରାଦେ ( ସମ୍ବଲପୁର ) ବ, ପୁଂ—ରାନ୍ଧୁଣିଆ; ପାଚକ
Rāndh-niā(āñ) —Male cook.
[ ଭୁଲ. ହି. ରାଂଧନୟା ]

ରାନ୍ଧନି ଗାଧୁଆ—ପ୍ରାଦେ ( ସମ୍ବଲପୁର ) ବ—ରାନ୍ଧୁଣି ଗାଧୁଆ (ଦେଖ)
Rāndh-ni gādhuā Randhuṇi gādhuā ( See)
(ରାନ୍ଧନି ଗାଧୁଅଣ୍ଟ—ଅନ୍ୟରୂପ)

ରାନ୍ଧଣା—ଦେ ବ ( ସ. ରନ୍ଧନ )—୧ । ରନ୍ଧା; ଖାଦ୍ୟାଦିର ରନ୍ଧନ—
Rāndhaṇā 1. Cooking of food. ୨ । ରାନ୍ଧିଥିବା
রান্না ଦ୍ରବ୍ୟର ପ୍ରକାର—2. Cookery. ୩ । ରନ୍ଧା
रांधना ହୋଇଥିବା ଦ୍ରବ୍ୟ—3. Cooked food. [ ଉ—ମୋ ରାନ୍ଧଣା ଖାଇଣ ବିରାଟ ରାଜନ, ମୋତେ ରାନ୍ଧୁଣିଆରେ କରିବ ପୂଜନ । କୃଷ୍ଣସିଂହ. ମହାଭାରତ. ବନ । ] ବଣ—ରନ୍ଧା ହୋଇଥିବା—Cooked.

ରାନ୍ଧଣା କରିବା—ଦେ.କ୍ରି—ରନ୍ଧନ କରିବା; ରାନ୍ଧିବା; ରାନ୍ଧିକରି ଖାଦ୍ୟ
Rāndhaṇā kāribā ପ୍ରସ୍ତୁତ କରିବା—To prepare
রান্না করা रांधना करना meal by cooking.

ରାନ୍ଧଣା ଘର—ଦେ. ବ—ପାକଶାଳା—
Rāndhaṇā ghara Kitchen; cook-room.
রান্না ঘর रांधना घर

ରାନ୍ଧଣା ଚଢ଼ା(ଢ଼େ)ଇବା—ଦେ କ୍ରି—ହାଣ୍ଡିରେ ପାଣି ଓ କଞ୍ଚା ପଦାର୍ଥ
Rāndhaṇā chardhā(rdhe)ibā ଯୋଗାଡ଼ଦେଇ ପାକାର୍ଥ
[ରାନ୍ଧଣାବସା(ସେ)ଇବା—ଅନ୍ୟରୂପ] ଚୁଲି ଉପରେ ସ୍ଥାପନ କରିବା—
রান্না চড়ান रांधना चढाना To place the cooking pot on the oven by putting raw materials in it for being cooked into food

ରାନ୍ଧଣା ପାଳି—ଦେ. ବ—ପରିବାରସ୍ଥ ବ୍ୟକ୍ତିମାନଙ୍କ ମଧ୍ୟରୁ ପାଳି କରି
Rāndhaṇā pāli ରନ୍ଧୁଥିବା ଅବସ୍ଥାରେ ଯାହାର ଯେଉଁ ଦିନ
রান্নাবপালা रांधनापारी ରାନ୍ଧିବାକୁ ପାଳି ବା କ୍ରମ ପଡ଼େ—Turn of cooking which comes to a particular (female) member of a joint family on a certain day. [ଉ—ଭାଳଗୋଡ଼ିଲା ମାଲୀ, ଆଜ ବଡ ବୋହୂଙ୍କର ରାନ୍ଧଣା ପାଳି—ଲୋଗ । ]

ରାନ୍ଧ ବାଢ଼—ଦେ. ବ (ସହଚର)—୧ । ରାନ୍ଧିବା ଓ ବାଢ଼ିବାର୍ଥଶ୍ୟ; ଖାଦ୍ୟ
Rāndha bārdha ରନ୍ଧନ ଓ ରନ୍ଧିତ ଖାଦ୍ୟର ପରିବେଷଣ
বান্নাবাড়া, বান্ধাবাড়া, বান্নাবন্না କାର୍ଯ୍ୟ—1. Cooking
रांधनाउंधना and serving of meals. ୨ । ରନ୍ଧନର ସମସ୍ତ ଆନୁଷଙ୍ଗିକ କର୍ମ—2. Operations connected with cooking of meals.

ରାନ୍ଧବାଢ଼କରିବା—ଦେ. କ୍ରି.—ରାନ୍ଧିବା ଓ ବାଢ଼ିବା; ରାନ୍ଧିବା ଓ
Rāndha bārdha karibā ପରିବେଷଣ କରିବା—
বান্ধাবাড়া रांधनाउंधनाकरना To cook and serve meals.

ରାନ୍ଧିବା—( ସ. ରନ୍ଧ୍ ଧାତୁ = ପାକକରିବା )—୧ । ରନ୍ଧନ କରିବା;
Rāndhibā ଖାଦ୍ୟାଦି ପାକ କରିବା—1. To cook
রান্ধা पकाना, रांधना victuals into food.
[ରନ୍ଧା(ନ୍ଧେ)ଇବା—ପ୍ରଯୋଜକରୂପ] ୨ । ଯେଉଁ ଦ୍ରବ୍ୟରୁ ତୈଳ ବାହାରେ ତାକୁ କଡ଼ାଇରେ ବସାଇ ତୈଳ ପ୍ରସ୍ତୁତ କରିବା—2. To prepare oil by boiling oil producing things. [ଦ୍ର—ଭାତ ରାନ୍ଧିବାର ଅର୍ଥ—ଚାଉଳକୁ ରାନ୍ଧି ଭାତ ପ୍ରସ୍ତୁତ କରିବା । ତେଲ ରାନ୍ଧିବାର ଅର୍ଥ—ଯେଉଁ ପଦାର୍ଥରୁ ତେଲ ବାହାରେ ସେ ପଦାର୍ଥକୁ ରାନ୍ଧି ତହିଁରୁ ତୈଳ ପ୍ରସ୍ତୁତ କରିବା । )

ରାନ୍ଧିବା ବାଢ଼ିବା—ଦେ କ୍ରି (ସହଚର)—୧ । ଖାଦ୍ୟ ରନ୍ଧନ କରିବା—
Randhibā bārdhibā 1. To cook meal.
বান্ধাবাড়া रांधनापकाना ୨ । ରାନ୍ଧିବା ଓ ପରିବେଷଣ କରିବା—2. To cook and serve meal.

ରାନ୍ଧୁଣି—ଦେ. ବ (ସ. ରନ୍ଧନ)—୧ । ରନ୍ଧନ—1. Cooking.
Rāndhuṇi (ପୁଂ ଓ ସ୍ତ୍ରୀ)—ସୁଆର; ପାଚକ—Cook.
বান্না रांधना বান্ধনী रांधनी

ରାନ୍ଧୁଣିଆ(ଆଁ)—ଦେ. ବଣ—ପାକ କରୁଥିବା; ପାକକାରୀ; ରନ୍ଧନକାରୀ-
Rāndhuṇiā(āñ) Cooking.
বান্ধুনী, পুং ও স্ত্রী ଦେ. ବ—୧ । ପାଚକ; ସୁଆର—1. Cook.
বান্নী—স্ত্রী (ଉ—ରାନ୍ଧୁଣିଆଁ ମାନେ ଲୁଗାକୁ ନ ପାଲଟି, ଅପଖା
रांधने बाला(बाली), रंधनिया ବାନ୍ଦ୍ରେ ଯାଇଁ ଜାଳଲେ ଚୁଲିଟି । କୃଷ୍ଣସିଂହ. ମହାଭାରତ । ) ୨ । ( ଦେଉଳମାନଙ୍କରେ ପକ୍ୱାନ୍ନ ଭୋଗର ପାକକାରୀ ବ୍ରାହ୍ମଣମାନେ ସାଧାରଣତଃ ନିକୃଷ୍ଟ ଶ୍ରେଣୀର

ପଣ୍ଡା ବ୍ରାହ୍ମଣ ଓ ପାଚକ ବୃତ୍ତି କରିବା ବ୍ରାହ୍ମଣମାନେ ନିମ୍ନ ଶ୍ରେଣୀର ବ୍ରାହ୍ମଣ ଥିବାରୁ) ନିକୃଷ୍ଟ ଶ୍ରେଣୀର ବ୍ରାହ୍ମଣ— 2. A Brāhmaṇa of low grade.

**ରନ୍ଧୁଣିଆ ବାହ୍ମ(ହ୍ମୁ)ଣ**—ଦେ. ବି—ପାଚକ ବ୍ରାହ୍ମଣ;ପୂଜାରୀ ବ୍ରାହ୍ମଣ— Randhuniā brāhma(hmu)ṇa A Brāhmaṇa cook.
ବାঁধুনী বামুন **रंधनिया बामन(ब्राह्मण)**
(ରାନ୍ଧୁଣିଆ ବାହ୍ମୁଣ – ଗ୍ରାମ୍ୟ ରୂପ)

**ରନ୍ଧୁଣୀ ଗାଧୁଆ**—ପ୍ରାଦେ. (ବାଲେଶ୍ୱର ଓ ସମ୍ବଲପୁର)—କଅଁଳ ଗାଧୁଆ Randhuṇi gādhuā ବେଳ—Time between 7 to 9. A. M. [ ଦ୍ର—ଏ ସମୟରେ ଘରବାରର ପାଚକ ବଟୁମାନେ ସ୍ନାନ କରନ୍ତି ।]

**ରନ୍ଧୁଣୀ ନାନୀ**—ଦେ. ବି—ରାଜା ଅନ୍ତଃପୁର ଭୁଆସରେ ପାକ କରିବା Rāndhuṇi nāni ପାଇଁ ନିଯୁକ୍ତା ବ୍ରାହ୍ମଣୀ (ସାଧାରଣତଃ ବିଧବା)—Brāhmaṇa women engaged as cooks in Raja's family.
বাঁধুনী বামুনী **राँधनी ब्राह्मणी**

**ରାପ(ଫ)ର୍**—ବୈଦେ. ବି. (ଇଂ. ରାପର —Wrapper)—ରେଫର୍; Rāpa(pha)r ଘୋଡ଼ି ହେବା ପାଇଁ ପତଳା ଶୀତ ବସ୍ତ୍ର— A wrapper; a thin sheet for protecting one's body from cold.
রেপর **रैफर**

**ରାପା**—ପ୍ରାଦେ. (ବସ୍ତର) ବି—କୋଡ଼ି—Mattock; hoe; spade Rāpā with a small handle.

**ରାବ୍(ୱ୍)**—ପ୍ରାଦେ. (ସମ୍ବଲପୁର)—କାଞ୍ଜି (ଗ୍ରାମ ସଙ୍କେ ଗରିବ ଲୋକେ Rāb(w) ଏହାକୁ ତିଅଣ ରୂପେ ବ୍ୟବହାର କରନ୍ତି)— Fermented and sour boiled-rice-water (used as curry by the poor).

**ରାବ୍(ବି)ଡ଼ି**—ଦେ. ବି. (ସ. ଦ୍ରାବକ=ମନ୍ଥନ)—ପାକ ଦ୍ୱାରା ଘନୀଭୂତ Rāb(bi)ṛdi ଦୁଗ୍ଧ—Milk boiled well and so thickened.
বাবড় **रावड़ी**

**ରାବଡ଼ି ଲଛେଦାର୍**—ଦେ. ବି. (ହିନ୍ଦୀରୁ ଅନୁକୃତ; ରାବଡ଼ୀ+ହି. Rāb-ṛdi lachchhedār ଲଛେଦାର୍=ଯହିଁ ର ଶର ଖଣ୍ଡିତ **रावड़ी लच्छेदार** ହୋଇ ନାହିଁ)—ଉତ୍କୃଷ୍ଟ ରାବଡ଼ି; ଯେଉଁ ରାବଡ଼ୀର ଶର ମୋଟାଳିଆ ଥାଏ—Excellent preparation of thickened milk with the layer of cream intact.
[ଦ୍ର—ରାବଡ଼ୀ ତିଆରି କରିବାକୁ କଟକ ସହରରେ ଜୁଲୁଥିବା ଦୁଗ୍ଧଦୋକାମାନଙ୍କର ଡାକ ।]

**ରାବ**—ସ. ବି. ( ରୁ ଧାତୁ=ଶବ୍ଦ କରିବା+ଭାବ. ଅ )—୧ । ରବ; Rāba ଶବ୍ଦ; ଧ୍ୱନି; ନାଦ—1. Sound; noise. ୨ । ଗର୍ଜ୍ଜନ—2. Roar. ୩ । ପଶୁ ପକ୍ଷୀଙ୍କ ବୋବାଳି— 3. Sound made by birds and beasts.
[ଦ୍ର—ସାଧାରଣତଃ ମନୁଷ୍ୟ ଓ ବାଦ୍ୟାଦିର ସ୍ୱରକୁ ନାଦ ଓ ଜନ୍ତୁମାନଙ୍କର ସ୍ୱରକୁ 'ରାବ' ବୋଲାଯାଏ । ଭିନ୍ନ ଭିନ୍ନ ଜୀବଙ୍କ ରାବ ସମ୍ବନ୍ଧରେ ଭିନ୍ନ ଭିନ୍ନ ଶବ୍ଦ ପ୍ରଚଳିତ ଅଛି । ଯଥା—

ଅଶ୍ୱର —ହ୍ରେଷା, ହେଁହେଁ
ଗାଈର - ହମ୍ବା, ହମ୍ବା(ମ୍ବା)ଳି
ଶୃଗାଳର —ହୁକ୍କାଳି
ବାଘର—ହ(ହୋ)ଷାଳି
ସିଂହର—ରଡ଼ି
ବିଲୁଆ, କୁକୁର —ଭୁକା
ଛେଳି; ମେଣ୍ଢା—ବୋବାଳି
ବେଙ୍ଗ—ରଡ଼ି
ହାଣ୍ଡି —ପେଁ ଏଁ କାଳି]

**ରାବ କରିବା**—ଦେ. କ୍ରି —ଧ୍ୱନି ଉଚ୍ଚାରଣ କରିବା —To howl; to Rāba karibā utter a sound.
বাব কবা **राब करना**

**ରାବ ଛାଡ଼ିବା**—ଦେ.କ୍ରି—(ଜନ୍ତୁମାନେ) —ଉଚ୍ଚ ସ୍ୱରରେ ରଡ଼ି କରିବା- Rāba chhārdibā To make a loud roar.
(ରାବ ଦେବା —ଅନ୍ୟରୂପ) বাব দেওযা, ডাকা **राब छोड़ना**

**ରାବଣ**—ସ. ବି. (ରୁ ଧାତୁ=ଶବ୍ଦ କରିବା+କର୍ତ୍ତୃ ଅନ=ଯେ ନାଦେ Rāban ରାବ କରେ, ଅଥବା ରୁ ଧାତୁ ଣିଚ, ରାବି ଧାତୁ= ଅନ୍ୟ ଙ୍କୁ ଶଦ କରାଇବା+କର୍ତ୍ତୃ. ଅନ=ଯେ ଅନ୍ୟଙ୍କୁ ଉଚ୍ଚୈଃସ୍ୱରରେ କନ୍ଦାଏ)— ରାମାୟଣ ବର୍ଣ୍ଣିତ ସୀତାହରଣକାରୀ ଲଙ୍କେଶ୍ୱର; ରାକ୍ଷସରାଜ ଦଶାନନ—The name of the king of demons who was killed by Rāma.
ନାମ—ପୌଲସ୍ତ୍ୟ, ଦଶକନ୍ଧର, ଦଶାନନ, ରାକ୍ଷସେନ୍ଦ୍ର
[ଦ୍ର—ପୁଲସ୍ତ୍ୟଙ୍କ ପୁତ୍ର ବିଶ୍ରବା ମୁନିଙ୍କ ଔରସରେ ସୁମାଲୀ ନାମକ ରାକ୍ଷସର କନ୍ୟା କୈକସୀ ରାକ୍ଷସୀର ଗର୍ଭରୁ ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣ ନାମକ ୩ ପୁତ୍ର ଓ ସୁର୍ପଣଖା ନାମ୍ନୀ କନ୍ୟା ଜନ୍ମିଥିଲେ । ରାବଣର ୧୦ ମୁଣ୍ଡ ଓ ୨୦ ହାତ ଥିଲା । ସପତ୍ନୀପୁତ୍ର କୁବେରଙ୍କର ଐଶ୍ୱର୍ଯ୍ୟ ଦେଖି ଈର୍ଷାନ୍ୱିତା କୈକସୀ ନିଜ ପୁତ୍ରଙ୍କୁ ତପସ୍ୟା ସାଧନ କରିବାକୁ ପଠାଇଲା । ରାବଣ ତପସ୍ୟା କରି ନିଜର ୧୦ ମୁଣ୍ଡକୁ କାଟି ଅଗ୍ନିରେ ପକାଇ ବ୍ରହ୍ମାଙ୍କୁ ତୁଷ୍ଟ କରାଇ ଅମର ବର ମାଗିବାରୁ ବ୍ରହ୍ମା ପ୍ରଥମେ ଅସ୍ୱୀକାର କଲେ ଓ ପରେ ରାବଣ "ନର ବାନର"ଙ୍କ ନାମ ଉଚ୍ଚାରଣ ନ କରି ଦେବଦାନବାଦି ଅନ୍ୟ ସମସ୍ତଙ୍କର ଅବଧ୍ୟ ହେବ ବୋଲି ବର ମାଗିବାରୁ, ବ୍ରହ୍ମା 'ତଥାସ୍ତୁ' ବୋଲି କହିଦେଲେ । ତପସ୍ୟା ଶେଷ କରି ରାବଣ ଲଙ୍କାକୁ ଯାଇ କୁବେରଙ୍କୁ ବିତାଡ଼ିତ କରି ସେଠାରେ ରାକ୍ଷସ ରାଜ୍ୟ ପ୍ରତିଷ୍ଠିତ କଲା । ମୟଦାନବର କନ୍ୟା ମନ୍ଦୋଦରୀକୁ ରାବଣ ବିବାହକଲା ଓ ତାହା ଗର୍ଭରୁ ମେଘନାଦ, ଅକ୍ଷୟକୁମାର ଆଦି ବହୁ ପୁତ୍ର ଜାତ ହେଲେ । ରାବଣ ଦିଗ୍‌ବିଜୟରେ ବହିର୍ଗତ ହୋଇ ଭୂତଳସ୍ଥ ସମସ୍ତ ରାଜାଙ୍କୁ ଜୟ କଲା । କେବଳ ବାନରରାଜ ବାଳି ଓ ନରରାଜ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ଓ ମାନ୍ଧାତାଙ୍କ ଦ୍ୱାରା ପରାଜିତ ହେଲା । ପରେ ଦେବତାମାନଙ୍କ ସଙ୍ଗେ ଯୁଦ୍ଧ କରି ରାବଣ ପୁତ୍ର ମେଘନାଦ କପଟ ଯୁଦ୍ଧରେ ଦେବତାଙ୍କୁ ପରାସ୍ତ

କରି ଇନ୍ଦ୍ରଙ୍କୁ ବନ୍ଦୀ କରି ଆଣିଲା । ଏଥିପାଇଁ ମେଘନାଦର ଅନ୍ୟ ନାମ ଇନ୍ଦ୍ରଜିତ୍ । ପରେ ବ୍ରହ୍ମା ଆସି ମେଘନାଦକୁ ବର ଦେଇ ଇନ୍ଦ୍ରଙ୍କୁ ମୁକ୍ତ କଲେ ।

ରାବଣ ଅତି ଅତ୍ୟାଚାରୀ ଓ ଅଧର୍ମପରାୟଣ ହୋଇ ଦେବକନ୍ୟା, ଦାନବକନ୍ୟା ଓ ଋଷିକନ୍ୟାମାନଙ୍କୁ ହରଣ କରିବାରେ ଲାଗିଲା । ସେ ତପସ୍ୱିନୀ ବେଦବତୀଙ୍କ ପ୍ରତି ବଳପ୍ରୟୋଗ କରିବାକୁ ଉଦ୍ୟତ ହେବାରୁ ବେଦବତୀ ତାକୁ ଅଭିଶାପ ଦେଇ ଅଗ୍ନିରେ ପ୍ରବେଶ କଲେ । [ସେହି ବେଦବତୀ ପରଜନ୍ମରେ ସୀତାରୂପରେ ଜନ୍ମି ରାବଣର ମୃତ୍ୟୁର କାରଣ ହେଲେ । କେତେକାଳ ପରେ ରାବଣ ସ୍ୱର୍ଗ ଅପ୍ସରା ରମ୍ଭାଙ୍କୁ ବଳପୂର୍ବକ ଧର୍ଷଣ କରିବାରୁ ରମ୍ଭାଙ୍କ ନାୟକ ନଳକୁବେର ରାବଣକୁ ଅଭିଶାପ ଦେଲେ ଯେ, ଅତଃପର ରାବଣ କୌଣସି ରମଣୀକୁ ବଳ ପ୍ରୟୋଗ କଲେ ତତ୍କ୍ଷଣାତ୍ ମୃତ ହେବ । ରାବଣ ଲଙ୍କାକୁ ସ୍ୱର୍ଣ୍ଣମୟୀପୁରୀ କରିଥିଲା ଓ ଦେବ ଗନ୍ଧର୍ବ କିନ୍ନରମାନେ ରାବଣର ସେବାରେ ନିଯୁକ୍ତ ଥିଲେ । କିଛି ଦିନ ପରେ ରାବଣ ଭ୍ରମବଶତଃ ଆପଣାର ଏକମାତ୍ର ଭଗିନୀ ସୂର୍ପଣଖାର ସ୍ୱାମୀ ବିଦ୍ୟୁଜ୍ଜିହ୍ୱକୁ ବଧ କଲା ଓ ବିଧବା ଭଗ୍ନୀକୁ ଦଣ୍ଡକାରଣ୍ୟରେ ଯଥେଚ୍ଛ ବିଚରଣ କରିବାକୁ ଆଦେଶ ଦେଲା । ସେହି ସମୟରେ ରାମ, ଲକ୍ଷ୍ମଣ ଓ ସୀତା ଦଣ୍ଡକାରଣ୍ୟରେ ବନବାସ କରୁଥିଲେ ଓ ସୂର୍ପଣଖା ରାମଚନ୍ଦ୍ରଙ୍କର ପ୍ରଣୟାକାଂକ୍ଷିଣୀ ହୋଇ ସୀତାଙ୍କୁ ଗ୍ରାସ କରିବାକୁ ଉଦ୍ୟତ ହେବାରୁ ଲକ୍ଷ୍ମଣ ତାହାର ନାକ କାନ କାଟି ଛାଡ଼ିଦେଲେ । ସୂର୍ପଣଖା ସେହି ରାଗରେ ଆସି ରାବଣକୁ ସୀତାଙ୍କ ରୂପଲାବଣ୍ୟର ବର୍ଣ୍ଣନାରେ ମୁଗ୍ଧ କରାଇ ସୀତାଙ୍କୁ ହରଣ କରିବାକୁ ରାବଣକୁ ଉତ୍ତେଜିତ କଲା ଓ ରାବଣ ଦଣ୍ଡକାରଣ୍ୟସ୍ଥ ଜନସ୍ଥାନକୁ ଆସି ଛଦ୍ମବେଶ ଧାରଣକରି ମାରୀଚ ରାକ୍ଷସକୁ ମାୟା ମୃଗ କରାଇ, ରାମ ଓ ଲକ୍ଷ୍ମଣ ସୀତାଙ୍କ ନିକଟରୁ ଅନ୍ତର ହେବା ଅବସରରେ ସୀତାଙ୍କୁ ହରଣ କରି ରଥରେ ବସାଇ ଆକାଶ ମାର୍ଗରେ ଲଙ୍କାକୁ ନେଇଗଲା ! ବାଟରେ ଗୃଧ୍ରରାଜ ଜଟାୟୁ ତାକୁ ଅଟକାଇବାକୁ ବସିଲେ, କିନ୍ତୁ ରାବଣ ତାଙ୍କୁ ଖଡ୍ଗାଘାତରେ ମୃତପ୍ରାୟ କରି ସୀତାଙ୍କୁ ନେଇ ଲଙ୍କାକୁ ଚାଲିଗଲା । କିନ୍ତୁ ନଳକୁବେରଙ୍କ ଶାପଭୟରେ ସୀତାଙ୍କ ପ୍ରତି ବଳପ୍ରୟୋଗ କରିବାକୁ ସାହସୀ ହେଲାନାହିଁ । ରାମଚନ୍ଦ୍ର ପରେ କିଷ୍କିନ୍ଧ୍ୟାର ମର୍କଟରାଜ ସୁଗ୍ରୀବଙ୍କ ସଙ୍ଗେ ସଖ୍ୟତା ସ୍ଥାପନ କରି କପିସେନା ସହିତ ଲଙ୍କା ଆକ୍ରମଣ କଲେ । ସେ ସମୟରେ ସୀତାଙ୍କୁ ରାମଚନ୍ଦ୍ରଙ୍କ ହସ୍ତରେ ପ୍ରତ୍ୟର୍ପଣ କରି ଶରଣାପନ୍ନ ହେବା ପାଇଁ ବିଭୀଷଣ ରାବଣକୁ ଅନୁରୋଧ କରନ୍ତେ ରାବଣ ବିଭୀଷଣକୁ ଲଙ୍କା ରାଜଧାନୀରୁ ତଡ଼ିଦେଲା ଓ ବିଭୀଷଣ ଯାଇଁ ରାମଚନ୍ଦ୍ରଙ୍କର ଆଶ୍ରୟ ନେଲେ । ତତ୍ପରେ ରାମ ଓ ଲକ୍ଷ୍ମଣଙ୍କ ଦ୍ୱାରା ପୁତ୍ର, ପୌତ୍ର, ଭ୍ରାତା, ସେନା ଓ ସେନାପତିମାନେ ହତ ହେବା ପରେ ରାବଣ ବ୍ରହ୍ମାଙ୍କଠାରେ ବରପ୍ରାର୍ଥନା କାଳରେ ଉପେକ୍ଷା କରି ନାମୋଲ୍ଲେଖ କରି ନ ଥିବା ନର ବାନରଙ୍କ ଦ୍ୱାରା ନିହତ ହେଲା । ରାବଣ ନିଜକୃତ ଦୋଷରୁ ଆପଣାର ବଡ଼ପଣ ବା ପ୍ରଭୁତ୍ୱ ହରାଇବାରୁ ତାଗ ଅଛି "ଆରେ ରାବଣ ! ଆପଣା ଦୋଷେ ହରାଇଲୁ ବଡ଼ପଣ ।" ପ୍ରବାଦ ଅଛି ଯେ, ସୀତାହରଣଦ୍ୱାରା ଆପଣାର ନିଧନ ଅବଶ୍ୟମ୍ଭାବୀ ଥିବାର ରାବଣ ଜାଣିଥିଲା ଓ ସୀତାହରଣ କରିବାକୁ ଘରୁ ବାହାରିବା ପୂର୍ବରୁ ଆପଣା ଘର କାନ୍ଥରେ ଲେଖିଦେଇ ଯାଇଥିଲା—

"ସୀତା ହରଣଂ ରାବଣ ମରଣଂ" ।

ସଂ. ବିଣ. ପୁଂ. (ରୁ ଧାତୁ=ଉଚ୍ଚ ଶବ୍ଦ କରିବା ବା ଉଚ୍ଚୈଃସ୍ୱରରେ କାନ୍ଦିବା, ଣିଚ୍ ରାବି ଧାତୁ=ଅନ୍ୟ ବ୍ୟକ୍ତିକୁ ଉଚ୍ଚୈଃସ୍ୱରରେ କନ୍ଦାଇବା + କର୍ତ୍ତୃ. ଅନ)—ଯେ ଅନ୍ୟ ବ୍ୟକ୍ତିକୁ ଉଚ୍ଚୈଃସ୍ୱରରେ କନ୍ଦାଏ (ହି, ଶ)—Causing others to weep loudly.

ଦେ. ବିଣ--୧ । ଯେ ବଡ଼ ପାଟି କରେ—1. Roaring loudly. (ଉ—ବଡ଼େ ଯେ ରାବକୁ ବାନ୍ଧି, ବୋଲାଇ ରାବଣ ସେହି । ଉପେ. ବୈଦେହୀଶବିଳାସ ।) ୨ । ଉଚ୍ଚଶବ୍ଦ ପୂର୍ବକ କନ୍ଦନକାରୀ—2. Vocal, weeping; vociferously weeping. (ଉ—ବଣା ମୁଁ ଯେନି ତୁ କେଉଁ ରାବଣ, ରାବଣ କରାନ୍ତି ମୁହିଁ ସେ । ଉପେ. ବୈଦେହୀଶବିଳାସ ।) ଦେ. ବି—ଅତି ଉଚ୍ଚ ସ୍ୱରରେ କ୍ରନ୍ଦନ—Loud wail. (ଉ—ବାରତା ଶ୍ରବଣ ରାବଣ ଦ୍ରବଣ କମେ ସୁଗ୍ରୀବ ସଂଯୋଗ ହେଲା ହେ । ଉପେ. ବୈଦେହୀଶବିଳାସ ।)

**ରାବଣ ଗଙ୍ଗା**—ସଂ. ବି—ପୌରାଣିକ ଲଙ୍କା ଦ୍ୱୀପସ୍ଥ ନଦୀ ବିଶେଷ—
Rābaṇa gangā (mythological) Name of a river in ancient Ceylon.

**ରାବଣ ଚିତା**—ଦେ. ବି—୧। ଚିର ଅଶାନ୍ତି—1. Perpetual perturbation. [ଦ୍ର—ଲୋକଙ୍କର ବିଶ୍ୱାସ ଅଛି
Rābaṇa chitā
রাবণের চিতা
(ରାବଣଚୁଲି[ଲି]—ଅନ୍ୟରୂପ) ଯେ, ରାମଚନ୍ଦ୍ରଙ୍କଦ୍ୱାରା ନିହତ ରାବଣର ଚିତାଗ୍ନି ଚିରଯୁଗେ ଜଳୁଥିବ, ଏହା କଦାପି ଲିଭିବ ନାହିଁ ] ୨ । ଦୁଇ କାନକୁ ଦୁଇ ଅଙ୍ଗୁଠିଦ୍ୱାରା ମୁଦିଦେଲେ ଯେଉଁ ଜଳନ୍ତାପରି ଅନୁଭୂତ ବା କଳ୍ପିତ ଗୋଟାଏ
রাবণাঙ্কী চিতা
ଗମ୍ଭୀରଧ୍ୱନି । [ଦ୍ର-ଏହାକୁ ଲୋକେ ରାବଣର ଚିତା ବୋଲି କହନ୍ତି । ଫଳତଃ ଏହା ଶରୀର ଅଭ୍ୟନ୍ତରସ୍ଥ ଯନ୍ତ୍ରମାନଙ୍କର ଚାଳନଜନିତ କଳ୍ପିତ ଅନୁଭୂତି ମାତ୍ର] A sensation felt when one shuts up the bores of one's ears with the tips of two fingers, resembling the feeling of a person standing before a big blazing fire.

**ରାବଣ ଛତା**(ତି, ତୁ)—ଦେ. ବି. (ସଂ. ରାବଣ+ଛତ୍ର)—ଏକ ପ୍ରକାର ସାମୁଦ୍ରିକ ମାଛ—A species of sea-fish; jelly-fish; medusa.
Rābaṇa chhatā(ti, tu)
রাবণের ছাতা

[ଦ୍ର—ଏହା ଛତ୍ରାକାର ଓ ମଦନଭୋଗ ପରି କୋମଳ । ପୁରୀ କୂଳ ସନ୍ନିହିତ ସମୁଦ୍ରରେ ଏହା ଭାସୁଥାଏ ଓ ଲହରୀର ଦ୍ୱାରା ବାହିତ ହୋଇ ବେଳାଭୂମିରେ ଆସି ଲାଗିଯାଏ । ପାଣିରେ ଭାସିଲା ବେଳେ ଏହା ଝାଲର ଲଗା ଛତା ପରି ଦେଖାଯାଏ ଶୁଖିଲାରେ ପଡ଼ିଲେ ମେଣ୍ଟାଏ ମଦନଭୋଗ ଭଳି ଦେଖାଯାଏ ।]

ରାବଣ ଛାୟା—ପ୍ରାଦେ ( ଗଡ଼ଜାତ ) ବି—ପୂର୍ବକାଳରେ ଏ ଦେଶରେ, Rābana chhāyā ବିଶେଷତଃ ଗଡ଼ଜାତରେ, ଲୋକଙ୍କୁ ଦେଖା ଯାଉଥିବା ଛାୟାଚିତ୍ର—A rude bioscopic performance formerly prevalent in Orissa and specially in the Oriya States. [ଦ୍ର—ବର୍ତ୍ତମାନ ପର୍ଯ୍ୟନ୍ତ ଏହା ପାଲଲହଡ଼ା ଓ ଢେଙ୍କାନାଳରେ ମଧ୍ୟ ଅଛି । ଏହି ଛାୟାଚିତ୍ର ପ୍ରଦର୍ଶକ ଦଳ ବାଦ୍ୟ ସାହାଯ୍ୟରେ ଗୀତ ବୋଲୁ ଥାଆନ୍ତି, ଦର୍ଶକଙ୍କ ସାମନାରେ ଗୋଟିଏ ଧଳା ଲୁଗା ଟାଙ୍ଗି ଲୁଗାର ଆରପାଖେ ଥିବା ଲୋକଙ୍କ ଛାୟା ସେ ଲୁଗାରେ ପକାଇ ବୋଲାଯାଉ ଥିବା ଗୀତର ଚରିତ୍ରଙ୍କୁ ଲୋକଙ୍କୁ କର ଚରଣାଦର ଭଙ୍ଗୀଦ୍ୱାରା ଦେଖାଉଥାଆନ୍ତି । ଏହା ଆଧୁନିକ ବାୟୋସ୍କୋପ୍‌ର ପ୍ରାଚୀନ ଗଡ଼ଜାତୀ ଅବତାର ।]

ରାବଣ ପରି ବଢ଼ିବା—ଦେ. କ୍ରି—( କୌଣସି ବ୍ୟକ୍ତି ) ଖୁବ୍ ସ୍ଥୂଳକାୟ Rābana pari bardhibā ହୋଇ ବୃଦ୍ଧି ପାଇବା—To ৰাবণের মতবাড়া increase in dimension like **रावणके जैसा बढना** Rābana.

ରାବଣ ପୁରୀ—ସଂ. ବି ( ୬ଷ୍ଠୀ ତତ୍ ) —ଲଙ୍କାପୁରୀ— Rābana puri The mythological city of Ceylon.

ରାବଣ ବଧ—ସଂ. ବି ( ୬ଷ୍ଠୀ ତତ୍ )—ରାମଚନ୍ଦ୍ରଙ୍କ ଦ୍ୱାରା ରାବଣର Rābana badha ମୃତ୍ୟୁଘଟନ—The killing of Rābana by Rāma.

ରାବଣ ବଂଶ—ଦେ. ବି ( ରାବଣର ଅସଂଖ୍ୟ ପୁଅ ନାତି ଅଣନାତି Rābana bamśa ଥିବାରୁ ) —୧ । ଯେଉଁ ପରିବାରରେ ପିତା, ৰাবণেৰবংশ ପୁତ୍ର, ପୌତ୍ର, ପ୍ରପୌତ୍ର ପ୍ରଭୃତି ଅନେକ ବ୍ୟକ୍ତି **रावणवंश** ଥାଆନ୍ତି—1. A big family of sons, grandsons and great grandsons. ୨ । ରାବଣର ଅସୁର ବଂଶଧରଗଣ—2. The demons, (ରାବଣ ବଢ଼ିଂଶ—ଗ୍ରାମ୍ୟରୂପ) descendants of Rābana.

ରାବଣଶ(ଶ୍ୱ)ର—ଦେ. ବି ( ସଂ. ରାବଣେଶ୍ୱରର ଅଶୁଦ୍ଧ ଉଚ୍ଚାରଣ )— Rābanaś(śwa)ra ରାବଣେଶ୍ୱର ( ଦେଖ )— ৰাবণেশ্বৰ **रावनेसर** Rābaneśwara ( See )

ରାବଣ ଶାଳି—ପ୍ରାଦେ ( ସିଂହଭୂମି ) ବି—ଏକପ୍ରକାର ଧାନ— Rābana śāli A species of paddy.

ରାବଣା—ଦେ. ବିଣ—( ରାବଣ ପରି ) ଅତି ଦୀର୍ଘକାୟ— Rābanā Gigantic. [ଦ୍ର—ଧାନ ଆଦି ଗଛ ଅତିରିକ୍ତ ৰুবৰবড় ରୂପେ ବଢ଼ିଗଲେ ଲୋକେ କହନ୍ତି ଏ ଗଛଗୁଡ଼ାକ **बहुत बढाहुआ** ରାବଣା ହୋଇ ବଢ଼ି ଯାଉଛନ୍ତି । ବୃହତ୍‌କାୟ ଓ ଢେଙ୍ଗାବ୍ୟକ୍ତିଙ୍କୁ ମଧ୍ୟ 'ରାବଣା' ବିଶେଷଣ ଦିଆଯାଏ । ]

ବି—ଏକପ୍ରକାର ମୋଟ ଶାରଦ ଧାନ—Name of a coarse kind of paddy; Spinifix Squarrosus ( Haines ). ପ୍ରାଦେ ( କୌଦ୍ର ) ବି—ଶାଗୁଣା—Vulture.

ରାବଣାରି—ସଂ. ବି ( ୬ଷ୍ଠୀ ତତ୍; ରାବଣ + ଅରି ) —ରାମଚନ୍ଦ୍ର— Rābanāri Rāmachandra.

ରାବଣାସୁର—ସଂ. ବି—ରାବଣ ( ଦେଖ ) Rābanāsura Rābana ( See )

ରାବଣା ହସ୍ତା(ତା)—ଦେ. ବି—ଏକପ୍ରକାର ନାଗଫେଣିଆ ଗଛ— Rābanā hastā(tā) A species of cactus: Euphorbia Nerifolia:

ରାବଣି(ଣୀ)—ସଂ. ବି ( ରାବଣ + ଅପତ୍ୟାର୍ଥେ ଇ )—୧ । ରାବଣ- Rābani(nī) ନନ୍ଦନ; ମେଘନାଦ; ଇନ୍ଦ୍ରଜିତ୍—1. Indrajit, the eldest son of Rābana. [ ଉ—ଦଶଶିର କଲା ଶିବ, ରାବଣି ଗାଣ୍ଡିବ ଅସିର, ଯେଉଁ ସୀତା ଧରାକାତା ପରେ । ଉଞ୍ଜ. ବୈଦେହୀଶବିଳାସ । ] ୨ । ରାବଣର ପୁତ୍ର—2 Son of Rabana.

ରାବଣେଶ୍ୱର—ସଂ ବି ( ମ. ପ. ଲୋ; କର୍ମଧା, ରାବଣପୂଜିତ ଈଶ୍ୱର) Rabaneśwara —ଦେବଘର (ବାବା ବୈଦ୍ୟନାଥ) ରେ ପ୍ରତିଷ୍ଠିତ ରାବଣପୂଜିତ ଶିବଲିଙ୍ଗ—Image of Śiba at Deoghar, said to have been worshipped by Rābana. [ ଦ୍ର—ସାନ୍ତାଲ ପ୍ରଗଣାର ଦେବଘରରେ ପ୍ରତିଷ୍ଠିତ ବାବା ବୈଦ୍ୟନାଥ ରାବଣେଶ୍ୱର ବୋଲି କଥିତ । ]

ଦେ. ବି (ମଧ୍ୟପଦ ଲୋପ; ରାବଣ ନାମକ ରାକ୍ଷସେଶ୍ୱର)— ରାବଣ—Rābana,

ରାବଣେଶ୍ୱର ଦାଢ଼ି—ଦେ. ବି—ଗୁଚ୍ଛ ଥିବା ଏକପ୍ରକାର ଘାସ— Rābaneśwara dārdhi Large-tufted grass; Spinifex Squrrosus.

ରାବତିନ୍ କିର୍ଡ଼ି—ପ୍ରାଦେ (ବସ୍ତର) ବି—ଗଉଡ଼ୁଣୀ ପୋକ— Rābatin kirdi Black milliped.

ରାବନ୍—ପ୍ରାଦେ (ସମ୍ବଲପୁର) ବି (ତୁଳ. ହି. ରବନା ଗୀଧ୍ )—ଶାଗୁଣା; Rāban ଗୃଧ୍ର—Vulture.

ରାବଲ୍—ବୈଦେ. ବି (ଇଂ. ରବ୍‌ଲ୍)—ରେବଲ୍; ରବଲ୍; ଗେଟି; Rābal ପାହାଡ଼ରୁ ଭଡ଼ାଯାଇ ସଡ଼କରେ ବନ୍ଧ ହେବା ପାଇଁ ଅଣା- (ରାବଲ୍‌ପଥର—ଅନ୍ୟରୂପ) ଯାଇଥିବା ଛିମା ପଥର ଓ ଗୋଡ଼— ৰাবল, ৰ্যবল্ পাথৰ **रोड़ी** Rubble-stone

ରାବାଢ଼—ପ୍ରାଦେ (ଗଞ୍ଜାମ) ବି—୧ । ରାହାବାଢ଼ (ଦେଖ) —1. Rābā- Rābārdi bārdi. (See) ୨ । ଭୂମିରୁ ଅଦାୟ ହେବା ଶସ୍ୟର ପରିମାଣ - 2. A measure of harvested corn from a land.

**ରାବାୟଣ**—ଗ୍ରା. ବି (ସ. ରାମାୟଣର ଅଶୁଦ୍ଧ ଉଚ୍ଚାରଣ)—ରାମାୟଣ
Rābāyaṇa ମହାକାବ୍ୟ—The Rāmāyaṇa.
**रमायन**

**ରାବିବା**—ଦେ. କ୍ରି (ସ. ରୁ ଧାତୁ)—୧ । ରାବ କରିବା; ଧ୍ୱନି କରିବା—
Rābibā 1. To make a sound with the mouth
ଡାକ [ଉ—ଗର୍ଭରୁ ବାହାର ଶିଶୁ ଅସ୍ପଷ୍ଟ ସ୍ୱରରେ ଡଲେ ସଦ୍ଧ
**रावना** ମୃଦୁସ୍ୱରରେ ରାବିଲା ସଘନେ । ଚନ୍ଦ୍ରାମଣି. ବନ୍ଦମାଦଭଂ । ]

**ରାବିଶ(ଶି)**—ବୈଦେ. ବି (ଇଂ. ରବିସ୍)—କୋଠା ଭଙ୍ଗା ହେବାରୁ
Rābis(si) ବାହାରିବା ଅକର୍ମଣ୍ୟ ଚୂନ, ଗୋଡ଼, ଭଙ୍ଗା ଇଟା
ରାବିସ୍ ଆଦି—Rubbish; debris. ବିଣ—ଅକର୍ମଣ୍ୟ;
**राबिस, खडहर** ନିକୃଷ୍ଟ (ବସ୍ତୁ)—Worthless; trashy; rubbishy.

**ରାବୁ(ବୋ)ଡ଼ି**—ରାବ୍‌ଡ଼ି (ଦେଖ)—
Rābu(be)ṛdi Rābṛdi (See)

**ରାଭସିକ**—ସ. ବିଣ. ପୁଂ (ରଭସ+ଇକ)—ଯେ ଆଗ ପଛ ବିଚାର ନ
Rābhasika କରି ହଠାତ୍ କାମ କରିପକାଏ; ଗୁଆଁର,
(ରାଭସିକା—ସ୍ତ୍ରୀ) ହଣ୍ଡାଳିଆ—Rash; imprudent.
[ରାଭସିକତା—ବି]

**ରାମ୍**—ଦେ. ଅ (ସ ରାମ)—୧ । ଅଦର୍ଶନୀୟ ବସ୍ତୁ ଦେଖିଲେ ବା
Rām ଅକଥ୍ୟ ଭାଷା ଶୁଣିଲେ ବା କହି ପକାଇଲେ, ହିନ୍ଦୁ ପାପ
ରାମ୍ କହ } ଅନ୍ୟରୂପ ଶାନ୍ତନାର୍ଥ ଉଚ୍ଚାରଣ କରୁଥିବା ରାମଙ୍କ
ରାମ୍ ରାମ୍ } ନାମ—1. Interjection used
ราम when a person sees or hears or speaks a
**राम** prohibited thing. ୨ । (ଘୃଣାର୍ଥକ) ଛି ।—
2. (Interjection) Fie ! (denoting disgust)
ଦେ. ବି (ହିନ୍ଦି)—ରାମ; ଲୋକଙ୍କ ନାମ ଶେଷରେ ଯୁକ୍ତ
ହେଉଥିବା ଶବ୍ଦ (ଏହି କ୍ରମଶଃ ଓଡ଼ିଆ ଲୋକଙ୍କ ନାମ ପରେ
ମଧ୍ୟ ଲାଗିଲାଣି) (ଯଥା—ଦାତାରାମ୍, ବାଲ୍ୟରାମ୍, ମନ୍ସାରାମ୍,
ଘଙ୍ଗାରାମ୍, ଭୋଲାରାମ୍, ଉଳଡରାମ୍, ଗଣେଶରାମ୍,
ପାଲୁରାମ୍, ଗଙ୍ଗାରାମ୍)—Words added to
another word to make up a name in
Hindusthani.

**ରାମନାମ୍ ସତ୍ୟ**—ଦେ. ବି (ହିନ୍ଦି)—ଶବବାହକମାନେ ଶ୍ମଶାନକୁ ଶବ
Rāmnām satya ବହନ କରି ନେବା ସମୟରେ ଉଚ୍ଚାରଣ
(ରାମ୍‌ନାମ୍ ସତ୍ୟ ହେ—ଅନ୍ୟରୂପ) କରିବା ବାକ୍ୟ—A phrase
ରାମନାମ ସତ୍ୟ uttered by persons while carrying a
**रामनाम सत है** dead body to the cremation ground.

**ରାମ୍ ରହିମ୍**—ଦେ. ବି (ସ. ରାମ ଓ ଆ. ରହୀମ୍=ଦୟାଳୁ ଈଶ୍ୱର)—
Rām rahim ହିନ୍ଦୁମାନଙ୍କ ପୂଜ୍ୟ ରାମଚନ୍ଦ୍ର ଓ ମୁସଲମାନ-
ରାମରହୀମ ମାନଙ୍କ ପୂଜ୍ୟ ଆଲ୍ଲା (ଯେ ଦୁଇ ବସ୍ତୁତଃ ଏକ ଈଶ୍ୱର
**रामरहीम** ଅଟନ୍ତି)—The self-same God whom the
Hindus call Rāma and the Muslims call
Rahim.

**ରାମ୍ ରାମ୍**—ଦେ. ଅ—ବିରକ୍ତି, ଘୃଣା, ବିସ୍ମୟ, ଅନୁତାପସୂଚକ
Rām Rām ରାମଙ୍କ ନାମ ଉଚ୍ଚାରଣ—(Interjection);
ରାମରାମ Repetition of the name of Rāma in
**रामराम** disgust, hatred, astonishment or
regret. ବୈଦେ. (ହିନ୍ଦୀ)—୧ । ପଶ୍ଚିମା ମାରୱାଡ଼ୀ
ହିନ୍ଦୁମାନଙ୍କ ମଧ୍ୟରେ ପରସ୍ପରଙ୍କୁ ନମସ୍କାର ବା ଅଭିବାଦନ
ପୂର୍ବକ ରାମ ନାମ ଉଚ୍ଚାରଣ—1. Uttering the
name of god Rāma while paying
respects to each other (amongst the
Marwaris) ଦେ. ଅ. ପାପକ୍ଷୟାର୍ଥ ରାମଚନ୍ଦ୍ରଙ୍କ
ନାମ ଉଚ୍ଚାରଣ—Ripitation of the name
of God Rāma by a devotee.

**ରାମ**—ସ. ବି (ରମ୍ ଧାତୁ ଣିଚ୍. ରମି ଧାତୁ=କ୍ରୀଡ଼ା କରାଇବା+କର୍ତ୍ତ୍ରି ଅ)
Rāma —୧ । ଶ୍ରୀରାମଚନ୍ଦ୍ର; ବିଷ୍ଣୁଙ୍କର ତ୍ରେତାଯୁଗରେ ଅଯୋଧ୍ୟାରେ
ଦଶରଥଙ୍କ ଜ୍ୟେଷ୍ଠ ପୁତ୍ରରୂପେ ଜନ୍ମଗ୍ରହଣ କରିଥିବା
ଅବତାର । ବିଷ୍ଣୁଙ୍କର ୧୦ ଅବତାର ମଧ୍ୟରୁ ୭ମ—1.The
7th incarnation of Bishnu; the eldest
son of Daśaratha, king of Ajodhyā—
୨ । ପରଶୁରାମ, ବିଷ୍ଣୁଙ୍କର ୬ଷ୍ଠ ଅବତାର; ଜମଦଗ୍ନି-
ନାମକ ବ୍ରାହ୍ମଣ ଋଷିଙ୍କ ପୁତ୍ର । (ଏ ୨୧ ଥର ପୃଥିବୀକୁ
ନିଃକ୍ଷତ୍ରିୟ କରିଥିଲେ ଓ ଶେଷରେ ରାମଚନ୍ଦ୍ରଙ୍କ ଦ୍ୱାରା
ପରାଜିତ ହୋଇଥିଲେ)—The 6th incarnation
of Bishṇu, the son of Jamadagni. ୩ ।
ଦ୍ୱାପର ଯୁଗରେ ବିଷ୍ଣୁଙ୍କ ଅଷ୍ଟମ ଅବତାର ଶ୍ରୀକୃଷ୍ଣଙ୍କର
ବୈମାତ୍ରିକ ବଡ଼ ଭାଇ; ବଳରାମରୂପେ ଜନ୍ମିଥିବା ବିଷ୍ଣୁଙ୍କର
୮ମ ଅବତାର—3. The 8th incarnation of
Bishṇu born as the elder step-brother
of Srikṛushṇa. ୪ । ହରିଣ ବିଶେଷ—4 A
sort of deer. (ଉ—ବାଛ ବାଛିବାରେ କାହିଁ ଲକ୍ଷଣ
ଶରଦ । ବିରଚନେ ରାମ ରାମ ହୋଇଲେ ପ୍ରବନ୍ଧ ।
ଉଞ୍ଜ. ବୈଦେହୀଶବିଳାସ) ୫ । ବରୁଣ—5. The
God of ocean. ୬ । ଘୋଟକ—6. Horse.
୭ । ଭଗବାନ୍, ବିଷ୍ଣୁ; ଈଶ୍ୱର—7. Bishṇu, God.
୭ । ତିନି ସଂଖ୍ୟା (ହି. ଶ)—7 The number
three. ୮ । ଏକ ମାତ୍ରିକ ଛନ୍ଦ (ହି ଶ)—8
Name of a syllabic metre. [ବି—ଏଥିରେ
ପ୍ରତ୍ୟେକ ଚରଣରେ ପ୍ରଥମାର୍ଦ୍ଧ ନଅ ମାତ୍ରା ଓ ଦ୍ୱିତୀୟାର୍ଦ୍ଧରେ
ଆଠ ମାତ୍ରା ଥାଏ, ଓ ପ୍ରତି ଚରଣରେ ଶେଷ ୩
ଅକ୍ଷର ଯଗଣ—ହି.ଶ)—୯ । ଅଶୋକ ବୃକ୍ଷ (ହି ଶ)—
9. The Asoka tree. ୧୦ । ରତି; ରମଣ (ହି.ଶ)—
10. Copulation. ୧୧ । ବଥୁଆଶାଗ (ହି. ଶ)—
11. Chenopodum Album; the goose foot
(potherb). ୧୨ । ତେଜ ପତ୍ର (ହି ଶ)—12.

Folia Malabathe (leaf); Cassia leaf. ଦେ.ବି—୧ । (ପୁଂ) ଲୋକଙ୍କ ନାମ—A name given to males. ୨ । ସୌନ୍ଦର୍ଯ୍ୟ-2 Beauty. [ଉ—ବାଳକସ୍ତ ଏଷ୍ଟ ସେ ରାମର ରାମର ନିକେତନ ବ ସଶସ୍ତ ପେ—ଉଞ୍ଜ. ବୈଦେହୀଶ ବିଳାସ] ସ. ବିଣ—୧ । ରମଣୀୟ, ମନୋହର —1. Graceful; charming; pleasant. [ଉ—ଶ୍ଵେତା ନାସ୍ତି ସମାନ ବଂଶେ ସେ ଲକ୍ଷ୍ମଣଙ୍କ ରାମ ରଙ୍ଗ ହୋଇବାରୁ ଭୂର—ଉଞ୍ଜ. ବୈଦେହୀଶବିଳାସ ] ୨ । ଶୁଭ୍ର—2. White. ୩ । କୃଷ୍ଣ, କଳା—3. Black. ୪ । ନୀଳବର୍ଣ୍ଣ ବିଶିଷ୍ଟ—4. Blue. (ବ୍ୟୁ—ପଣ୍ଡିତମାନେ ରାମ ଶବ୍ଦର ନାନାବିଧ ବ୍ୟୁତ୍ପତ୍ତି ନିର୍ଣ୍ଣୟ କରିଅଛନ୍ତି—୧ । ରା=ବିଶ୍ଵ+ମ=(ବିଶ୍ଵର) ଈଶ୍ଵର; ୨ । ରମ୍ ବା ରମ୍ ଧାତୁ=ରମଣ କରିବା+କର୍ତ୍ତୃ ଅ; ଯେ ରମାଙ୍କ ସହିତ ରମଣ କରନ୍ତି । ୩ । ରମା+ଅ=ରମା ବା ଲକ୍ଷ୍ମୀଙ୍କର ଏ ଅଟନ୍ତି । ୪ । ରମ୍ ଧାତୁ=ରତ ହେବା+ଅଧିକରଣ ଅ, ଏହାଙ୍କଠାରେ ସମସ୍ତେ ଅନୁରକ୍ତ ହୁଅନ୍ତି । ସାଧାରଣତଃ 'ରାମ' କହିଲେ ଅଯୋଧ୍ୟାପତି ରଘୁକୁଳତିଳକ ରାମଚନ୍ଦ୍ରଙ୍କୁ ବୁଝାଏ ।)

ରାମ କଦଳୀ—ଦେ. ବି—ଉତ୍କୃଷ୍ଟ କଦଳୀ ବିଶେଷ—A species of Rāma kadali plantain. [ବ୍ୟୁ—ଏହାର ପତ୍ରର ପୃଷ୍ଠଦଣ୍ଡ, ବାମକଲା रामकेला ବାସୁଙ୍ଗା ଓ ଫୁଲ ରଙ୍ଗର ରକ୍ତବର୍ଣ୍ଣ; ଏହାର ଫଳ ସରୁଆ ଓ ଗୁଣରେ ଲମ୍ବ । ଏହା ବମ୍ବେଇ ପ୍ରଦେଶରେ ବେଶି ମିଳେ । ]

ରାମ କର୍ପୂର—ସ. ବି. ( ବୈଦ୍ୟକ )—ସୁଗନ୍ଧ ତୃଣବିଶେଷ—Rāmakarpūra A sort of fragrant grass; ବାମକର୍ପୂର Andropogen Schoenanthus. रोहिषसेधिया, गधेजघास [ବ୍ୟୁ—ଅନ୍ୟ ସ. ନାମ କତ୍ତୃଣ, ରୌହିଷ ତେ. କାମଂଚଗଡ୍ଡି, ଭୂସ୍ତୃଣ ଦେବଜଗ୍ଧ, ସୌଗନ୍ଧିକ, ଭୂତିକ, ଧ୍ୟାମ, ଫା. ଇକାଲ୍‌ମାମୂନ୍ ପୌର, ଶ୍ୟାମକ, ଧୂମଗନ୍ଧିକ ।] ବୈଦ୍ୟକ ଆ. ଅଜ୍‌ଖର୍ ମତରେ ଏହା କଷାୟ ତିକ୍ତ ରସ ଓ ମ. ରୋହିସା କଟୁବିପାକ । ଏହା ହୃଦ୍‌ରୋଗ, କଣ୍ଠ-(ରାମକପୁରା—ଦେ. ନାମ) ରୋଗ, ପିତ୍ତ, ରକ୍ତଦୋଷ ଶୂଳ, କାସ, କଫ ଓ ଜ୍ଵର ନାଶକ—ଦ୍ରବ୍ୟଗୁଣ । )

ରାମକ(କି, କେ)ରୀ(ଳୀ)—ସ.ବି—ରାଗିଣୀବିଶେଷ;—Name of a Ramaka(ki ke)ri(li) secondary tune in Hindu music—[ବ୍ୟୁ—ଏହା ଭୈରବ ରାଗର (ମତାନ୍ତରରେ ପଞ୍ଚମ ରାଗର ଓ ମତାନ୍ତରରେ କର୍ଣ୍ଣାଟରାଗର) ଭାର୍ଯ୍ୟା; ଏହା ଗାଇବା ସମୟ ପ୍ରାତଃକାଳ ୧ ଦଣ୍ଡଠାରୁ ୫ ଦଣ୍ଡ ପର୍ଯ୍ୟନ୍ତ । ଏହା ସମ୍ପୂର୍ଣ୍ଣ ଜାତିର ରାଗିଣୀ; ଏଥିରେ ଋଷଭ, ନିଷାଦ ଓ କୋମଳସ୍ଵର ଲାଗେ—ହି. ଶ. ]

ରାମ କାନ୍ତ—ସ ବି. (ବୈଦ୍ୟକ)—ରାମ ଶର ( ଦେଖ ) Rāma kānta Rāma śara ( See ) ଦେ.ବି.ପୁଂ—ଲୋକଙ୍କ ନାମ—A name given to males.

ରାମ କାଣ୍ଡିଆ—ପ୍ରାଦେ. (ଛତିଶଗଡ଼)—ଭେଣ୍ଡି—Rāma kāriā (ଭୁଲ. ହି. ରାମତୋରାଇ) Lady's finger.

ରାମ କାର୍ଯୀ—ଦେ. ବି—ରାମ ଦୂତ ବା ରାମ ସେବକ ହନୂମାନ—Rāma kārji Hanumān, the devoted ser- ବାମଦାସ राम कारजी vant of Rāma.

ରାମ କୁମାର—ସ. ବି. ପୁଂ—ରାମଚନ୍ଦ୍ରଙ୍କ ଯମଜ ପୁତ୍ର କୁଶ ଓ ଲବ—Rāma kumāra The twin sons of Rāma. ଦେ. ବି.ପୁଂ.—ଲୋକଙ୍କ ନାମ—A name given to males.

ରାମକୁଷ୍ଟଣ(ଷ୍ଣ)—ଗ୍ରା. ବି—ରାମ କୃଷ୍ଣ ( ଦେଖ ) Rāma kushtaṅ(shṇa) Rāma krushṇa ( See ) ବାମ କେଷ୍ଟ राम कीसन

ରାମ କୃଷ୍ଣ—ସ. ବି—୧ । ଶ୍ରୀରାମ ଓ ଶ୍ରୀକୃଷ୍ଣ—1. Rama and Rāma krushna Krushṇa. ୨ । ବଳରାମ ଓ ଶ୍ରୀକୃଷ୍ଣ—2. Balarāma and Srikrushṇa. ଦେ. ବି. ପୁଂ—ଲୋକଙ୍କ ନାମ—A name given to males.

ରାମକୃଷ୍ଣ ପରମହଂସ—ଦେ. ବି. (ନାମ)—ବଙ୍ଗୀୟ ବ୍ରାହ୍ମଣ ବଂଶଜ Rāmakrushna paramahamsa ପ୍ରସିଦ୍ଧ ସ୍ଵର୍ଗତ ଧର୍ମ୍ମଗୁରୁ (ଖ୍ରୀ ୧୮୩୩—୧୮୮୬)—The late celebrated Bengali saint of this name ( Born 1833—Died 1886).

[ ବ୍ୟୁ—ଏ ପ୍ରଥମେ କଲିକତା ନିକଟସ୍ଥ ଦକ୍ଷିଣେଶ୍ଵର ଗ୍ରାମରେ ରାଣୀ ରାସମଣିଙ୍କ ପ୍ରତିଷ୍ଠିତ କାଳୀ ଠାକୁରାଣୀଙ୍କ ପୂଜାହାରୀ ରୂପେ ନିଯୁକ୍ତ ହୋଇଥିଲେ ଓ ସେଠାରେ ତାଙ୍କର ଧର୍ମ୍ମ ଭାବର ଅପୂର୍ବ ସ୍ଫୂର୍ତ୍ତି ଓ ବିକାଶ ହେଲା । ସର୍ବ-ଧର୍ମ ସମନ୍ଵୟର ଭାବ ଏହାଙ୍କଠାରେ ବିକଶିତ ହୋଇଥିଲା ଓ ଈଶ୍ଵରଙ୍କୁ ସେ ମାତୃ ରୂପରେ ଦେଖୁଥିଲେ । କାମିନୀ, କାଞ୍ଚନ ଏହି ଦୁଇ ବିଷୟ ତ୍ୟାଗ କରିବା ଏହାଙ୍କ ନିଜ ଜୀବନର ଓ ଧର୍ମ୍ମର ଏବଂ ଅଧ୍ୟାପନାର ମୂଳମନ୍ତ୍ର ଥିଲା । ଏ ବିବାହ କରିଥିଲେ; କିନ୍ତୁ ସଂସାର ଧର୍ମ ତ୍ୟାଗ କଲା ପରେ ଏହାଙ୍କ ସ୍ତ୍ରୀ ସାରଦା ଦେବୀ ଏହାଙ୍କ ଶିଷ୍ୟା ହୋଇଥିଲେ । ଅତି ସହଜ ଭାଷାରେ ଓ ଉଦାହରଣ ଛଳରେ ଏ କଠିନ ଧର୍ମ-ତତ୍ତ୍ଵମାନ ବୁଝାଇ ପାରୁଥିଲେ । ନରେନ୍ଦ୍ରନାଥ ଦତ୍ତ ନାମକ ଜଣେ ଯୁବକ ଏହାଙ୍କ ଶିଷ୍ୟ ହୋଇ ସ୍ଵାମୀ ବିବେକାନନ୍ଦ ରୂପରେ ଜଗତର ଧାର୍ମ୍ମିକ ମଣ୍ଡଳୀଙ୍କୁ ଚମତ୍କୃତ କରିଥିଲେ । ରାମକୃଷ୍ଣ ଦେବ ଅତି ମଧୁର ରୂପେ ଗୀତ ଗାଇ ପାରୁଥିଲେ ଏବଂ ଗାନ କରୁ କରୁ ଓ ଧ୍ୟାନ କରୁ କରୁ ଏହାଙ୍କର ବାହ୍ୟ-ଜ୍ଞାନଶୂନ୍ୟ ସମାଧି ଭାବ ହୋଇ ଯାଉଥିଲା । ଏହାଙ୍କ ଉପଦେଶାବଳୀ ଦ୍ଵାରା ଇଉରୋପ୍ ଓ ଆମେରିକାବାସୀମାନେ ମୁଗ୍ଧ ଓ ଚମତ୍କୃତ ହୋଇଅଛନ୍ତି । ଏହାଙ୍କ ମତରେ ବର୍ତ୍ତମାନ ସଭ୍ୟଜଗତର ବହୁ ଲକ୍ଷ ଲୋକ ସାଧିତ ହୋଇ-ଅଛନ୍ତି ଓ କେତେକ ସନ୍ନ୍ୟାସୀ ଏହାଙ୍କ ନାମରେ 'ରାମକୃଷ୍ଣ

ସମ୍ପ୍ରଦାୟ' କଲିକତା ନିକଟସ୍ଥ ବେଲୁରଠାରେ ଓ ନାନା ସ୍ଥାନରେ ସଂସ୍ଥାପନ କରି ଜାତି ଓ ଧର୍ମ ନିର୍ବିଶେଷରେ ଜନହିତ ସାଧନ, ଦୁଃଖୀର ଦୁଃଖ ନିବାରଣ ଓ ବେଦାନ୍ତ ଚର୍ଚ୍ଚା ଆଦିରେ ଲାଗି ଅଛନ୍ତି । ତାଙ୍କ ଜନ୍ମଠାରୁ ଶତବର୍ଷ ପୂର୍ଣ୍ଣ ହେବାରୁ ଭାରତରେ ତଥା ସମଗ୍ର ସଭ୍ୟ ଜଗତରେ ତାଙ୍କ ପ୍ରବର୍ତ୍ତିତ ସର୍ବଧର୍ମ ସମନ୍ୱୟସୂଚକ ଉତ୍ସବମାନ ମହାସମାରୋହରେ ଅନୁଷ୍ଠିତ ହୋଇଅଛି । ]

**ରାମ କେଦାର**—ଦେ. ବି—ଏକ ପ୍ରକାର ଗଛ (ଏହା ହଳଦି ଗଛ ପରି **Rāma kedāra** ଜନ୍ମେ ଓ ଏଥର ପତ୍ରମାନ ଭୂଇଁରେ ଲାଗିଥାଏ, ଗନ୍ଧ ବିଶେଷ ଏହାର ମୂଳ ସୁଗନ୍ଧ)--Kaemfiferia Galanga. [ଦ୍ର—ଏହାର ମୂଳ ଜଳ ବାଟି ସେବନ କଲେ ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ, ଜ୍ୱର ଓ ବିଷ ଦୋଷ ଖଣ୍ଡିତ ହୁଏ । ଏହା ବିରେଚକ ।]

**ରାମ ଖଡ଼ି**—ଦେ. ବି. (ସଂ. ଗୌର ଖଟି)—ଧଳା ଖଡ଼ି (ଏହା ଫୁଲ **Rāma khardi** ଖଡ଼ି ଅପେକ୍ଷା ଟାଣ; ଏଥିରେ ଭୂମିରେ ଲେଖା-
ବାମ ଖଡ଼ି ଯାଏ)—White pipelay; Calcium carbonate.
**गौर खरि, राम खली**
ଫା. ଗୀଲେ ସୁଫେଦ୍ [ଦ୍ର—ଏଥିର ଲେପନରେ ଦାଦ ବିଷ ଓ
ଆ. ତନେଅବୀୟଦ୍ ଶୋଥ ନଷ୍ଟ ହୁଏ—ଦ୍ରବ୍ୟଗୁଣ ।]

**ରାମ ଗଞ୍ଜା(ଞ୍ଜେ)ଇ**—ପ୍ରାଦେ. (ଗଡଜାତ) ବି—ଗଡଜାତର ପାହାଡ଼ **Rāma ganjā(njo)i** ଆଦିରେ ଜନ୍ମିବା ଏକ ପ୍ରକାର ବନ୍ୟ ଗଞ୍ଜାଇ ଗଛ—A kind of Indian hemp growing wild on hills.

**ରାମଗଡ଼**—ଦେ ବି—୧ । ରାଜପୁତାନାର ଜୟପୁର ରାଜ୍ୟର ନଗର **Rāmagarda** ବିଶେଷ—1. Name of town in Jeypur State. [ଦ୍ର—ଏହା ଜୟପୁର ରାଜ୍ୟର ଉତ୍ତର ପଶ୍ଚିମରେ ଅବସ୍ଥିତ ।] ୨ । ବିହାର ପ୍ରଦେଶର ହଜାରିବାଗ ଜିଲ୍ଲାର ଗୋଟିଏ ନଗର ଓ ବେଙ୍ଗଲ ନାଗପୁର ରେଲର ଗୋଟିଏ ଷ୍ଟେସନ୍—2. Name of a town and railway station in Hazaribag.

**ରାମ ଗିରି**—ସଂ. ବି. (ବନବାସ ସମୟରେ ରାମଚନ୍ଦ୍ର ଏହିଠାରେ ବିଶ୍ରାମ **Rāmagiri** କରିଥିବାରୁ)—୧ । ବୁନ୍ଦେଲଖଣ୍ଡ ଅନ୍ତର୍ଗତ ଚିତ୍ରକୂଟ ପାହାଡ଼—1. Name of a hill in Bundelkhand in Central India. [ ଦ୍ର—କାଳିଦାସଙ୍କ ମେଘଦୂତରେ ଯକ୍ଷ ଏହିଠାରେ ନିର୍ବାସିତ ହୋଇ ପ୍ରିୟାବିଚ୍ଛେଦଜନିତ ଦୁଃଖ ଭୋଗ କରୁଥିବା ବର୍ଣ୍ଣିତ ହୋଇଅଛି । କେହି କେହି ପଣ୍ଡିତ ଏହାକୁ ଓଡ଼ିଆ ବାମଣ୍ଡା ରାଜ୍ୟ ଅନ୍ତର୍ଗତ ପର୍ବତ ବୋଲି ସିଦ୍ଧାନ୍ତ କରି ଅଛନ୍ତି । କେହି କେହି କହନ୍ତି ଏହାର ଆଧୁନିକ ନାମ ରାମଟେକ୍ ଓ ଏହା ମଧ୍ୟପ୍ରଦେଶର ନାଗପୁର ଜିଲ୍ଲାରେ ଅବସ୍ଥିତ । କେହି କେହି ଚିତ୍ରକୂଟକୁ ରାମଗିରି କହନ୍ତି ।] ୨ । ଗଞ୍ଜାମ ଜିଲ୍ଲାର ବଣଧାରି ନଦୀ ତୀରସ୍ଥ ନଗର—2. Name of a small town in Ganjam. [ଦ୍ର—ଏହା ବେଙ୍ଗଲ୍ ନାଗପୁର ରେଲର ପାରଳା ଖେମଣ୍ଡି ଶାଖାର ଅନ୍ତିମ ଷ୍ଟେସନ୍ ଗୁଣପୁରର ଉତ୍ତରରେ ଅବସ୍ଥିତ ।]

**ରାମ ଗୀତା**—ସଂ. ବି—ଅଧ୍ୟାତ୍ମରାମାୟଣର ଉତ୍ତରାକାଣ୍ଡ ବା ଶେଷକାଣ୍ଡର **Rāma gitā** ପଞ୍ଚମ ସର୍ଗରେ ଥିବା ରାମଚନ୍ଦ୍ରଙ୍କ ସ୍ତବାତ୍ମକ ଅଂଶ ବା ଅଧ୍ୟାୟ—A chapter of hymns addressed to Rāma contained in the Adhyātma Rāmāyaṇa.

**ରାମ ଚଣ୍ଡୀ**—ଦେ. ବି. ସ୍ତ୍ରୀ. (ସଂ. ରାମ ଓ ଚଣ୍ଡୀ; ରାମଚନ୍ଦ୍ରଙ୍କ ପୂଜିତା **Rāma chandi** ଚଣ୍ଡୀ)—୧ । ଠାକୁରାଣୀ ପ୍ରତିମାଙ୍କ ନାମ—
বাম চণ্ডী 1. Name of a popular Goddess.
**राम चण्डी** ୨ । ପୁରୀର ତନ୍ତ୍ରାମିକା ଦେବୀ ପ୍ରତିମା—2. The image of Goddess Rāmachandi in Puri. [ ଦ୍ର—ଏ ଠାକୁରାଣୀଙ୍କ ମନ୍ଦିର ଯେଉଁ ସାହିରେ ଅଛି ତାହାର ନାମ ରାମଚଣ୍ଡୀ ସାହି ।] ୩ । ପୁରୀ ଜିଲ୍ଲା କୋଣାର୍କର ଦକ୍ଷିଣ ପଶ୍ଚିମକୁ ପ୍ରାୟ ତିନି ମାଇଲ ଦୂରରେ ବିସ୍ତୀର୍ଣ୍ଣ କୁଶଭଦ୍ରା ମୁହାଣରେ ଉଚ୍ଚ ବାଲିକୁଦ (ବନ୍ତ) ଉପରେ ଗୋଟିଏ ମନ୍ଦିରରେ ଅଧିଷ୍ଠିତା ଦୁର୍ଗା ବିଗ୍ରହ—3. The celebrated image of the Goddess Durgā near about the Koṇārka temple. [ ଦ୍ର—ସେହି କୁଦ ଉପରେ କେତୋଟି ବର ଗଛ ଓ ଗୋଟିଏ ମାତ୍ର ତାଳ ଗଛ ଅଛି; ଚତୁଃପଟେ ଅପରୂପ ବାଲିପାଟ । ସେହି ବାଲିପାଟରେ ବହୁତ କୃଷ୍ଣସାର ମୃଗ ବୁଲୁଥାଆନ୍ତି । ଏହି କୁଦ ଉପରେ ନିର୍ମଳ ଦିନରେ ଠିଆ ହେଲେ ଚନ୍ଦ୍ରଭାଗାର ଏକ ଦିଗରେ ଭଗ୍ନ କୋଣାର୍କମନ୍ଦିର ଓ ଅନ୍ୟ ଦିଗରେ ବହୁ କଷ୍ଟରେ ପୁରୀ ବଡ଼ ଦେଉଳର ଚୂଡ଼ା ଦେଖାଯାଏ ।

ପଣ୍ଡିତ ନୀଳକଣ୍ଠ ଦାଶ 'କୋଣାର୍କେ' କାବ୍ୟର ଗ୍ରନ୍ଥ-ପ୍ରବେଶ ମତରେ ରାମଚଣ୍ଡୀ ପୂର୍ବେ କୋଣାର୍କରେ ଥିଲେ । କିମ୍ବଦନ୍ତୀ ଅଛି ଯେ, କଳାପାହାଡ଼ ହିନ୍ଦୁଦେବଦେବୀଙ୍କ ପବିତ୍ରତା ନଷ୍ଟ କଲାବେଳେ ରାମଚଣ୍ଡୀ ନାରୀରୂପରେ ଗୋଟିଏ ମାଠିଆ ଧରି ମନ୍ଦିରରୁ କୁଶଭଦ୍ରାକୁ ପାଣିପାଇଁ ଗଲେ । କଳାପାହାଡ଼ ଖୋଜି ଆସି ଦେଖିଲାବେଳକୁ ସେ କୁଶଭଦ୍ରାରେ ମାଠିଆ ଧରି ଭାସୁଅଛନ୍ତି । ସେହିଦିନଠାରୁ ରାମଚଣ୍ଡୀ ଆଉ କୋଣାର୍କକୁ ଫେରି ନାହାନ୍ତି । ଲୋକେ ଏବେ ମଧ୍ୟ ଏହି କିମ୍ବଦନ୍ତୀକୁ ଲକ୍ଷ୍ୟ କରି ପ୍ରବଚନ କହନ୍ତି—

ଭଲ ରାମଚଣ୍ଡୀ ଭଲରେ !
କଳାପାହାଡ଼କୁ ଦୁଆରେ ବସାଇ ଭଲ ପାଣିପାଇଁ ଗଲରେ ।
ନୀଳକଣ୍ଠଦାଶ,'କୋଣାର୍କେ' ରାମଚଣ୍ଡୀ ୧୮୧ ଧାଡ଼ିର ଟୀକା ।]

**ରାମଚନ୍ଦ୍ର**—ସଂ ବି. ପୁଂ (ନାମ)—ଦଶରଥଙ୍କ ଜ୍ୟେଷ୍ଠ ତନୟ; ରଘୁବୀର **Rāmachandra** ରାମ—Rāma, the eldest son of Daśaratha. [ ଦ୍ର—ଅଯୋଧ୍ୟାର ଇକ୍ଷ୍ୱାକୁ ବଂଶରେ ଏହାଙ୍କ ଜନ୍ମ । ଏ ବିଷ୍ଣୁଙ୍କର ୭ମ ଅବତାର ଥିଲେ ।

ଏହାଙ୍କ ବିଷୟ ରାମାୟଣରେ ବର୍ଣ୍ଣିତ । କୌଶଲ୍ୟା ଏହାଙ୍କ ମାତା । ବଶିଷ୍ଠ ଋଷି ଏହାଙ୍କ ଗୁରୁ । ଏ ବାଳକ ଥିବାବେଳେ ବିଶ୍ୱାମିତ୍ର ଏହାଙ୍କୁ ଓ ଏହାଙ୍କ ବୈମାତ୍ର ଭାଇ ଲକ୍ଷ୍ମଣଙ୍କୁ ଯାଗରକ୍ଷା କରିବାକୁ ତାଙ୍କ ଆଶ୍ରମକୁ ସଙ୍ଗରେ ନେଇଥିଲେ ଓ ସେଠାରେ ଏ ଯଜ୍ଞବିଘ୍ନକାରୀ ବହୁରାକ୍ଷସଙ୍କୁ ବଧ କରିଥିଲେ । ଯଜ୍ଞର ନିର୍ବିଘ୍ନ ସମାପ୍ତି ହେବା ପରେ ବିଶ୍ୱାମିତ୍ରଙ୍କ ସଙ୍ଗେ ଏ ଲକ୍ଷ୍ମଣଙ୍କ ସହିତ ରାଜା ଜନକଙ୍କ ରାଜଧାନୀକୁ ସୀତାଙ୍କ ସ୍ୱୟମ୍ବର ସଭାକୁ ଯାଇଥିଲେ ଓ ସେଠାରେ ଶିବଧନୁକୁ ଭାଙ୍ଗି ସୀତାଙ୍କ ପାଣିଗ୍ରହଣ କଲେ । ତତ୍ପରେ ରାଜା ଦଶରଥ ଏହାଙ୍କୁ ଯୌବରାଜ୍ୟାଭିଷିକ୍ତ କରିବାକୁ ଇଚ୍ଛା କରିଥିଲେ, କିନ୍ତୁ ଏହାଙ୍କ ବିମାତା ରାଣୀ କୈକେୟୀଙ୍କ ଅନୁଜ୍ଞା ଅନୁସାରେ ପିତୃସତ୍ୟ ପାଳନ କରି ଲକ୍ଷ୍ମଣ ଓ ସୀତାଙ୍କୁ ସଙ୍ଗେ ନେଇ ଏ ୧୪ ବର୍ଷ ବନବାସ କଲେ । ବନବାସ କାଳରେ ଦଣ୍ଡକାରଣ୍ୟରେ ରାବଣ ସୀତାଙ୍କୁ ହରଣ କଲା । ଏ ବାନରରାଜ ସୁଗ୍ରୀବ ଓ ହନୁମାନ୍ ଓ ବାନର ସୈନ୍ୟଙ୍କ ସହାୟତାରେ ଲଙ୍କା ଆକ୍ରମଣ କରି ରାବଣକୁ ମାରି ସୀତାଙ୍କୁ ଉଦ୍ଧାର କଲେ ଓ ଅଗ୍ନି-ପରୀକ୍ଷା ପରେ ସୀତାଙ୍କୁ ଗ୍ରହଣ କଲେ । ଲଙ୍କାରୁ ଫେରି ୧୪ ବର୍ଷ ବନବାସର କାଳ ପୂରିବାରୁ ସୀତାଙ୍କ ସହିତ ଅଯୋଧ୍ୟାକୁ ଏ ଆସିଲେ ଓ ରାଜତ୍ୱ କଲେ । ପ୍ରଜାମାନେ ତାଙ୍କ ଶାସନରେ ଅତି ସୁଖରେ କାଳଯାପନ କରୁଥିଲେ । ଏଥିପାଇଁ ଆଜି ପର୍ଯ୍ୟନ୍ତ 'ରାମରାଜ୍ୟ' ଆଦର୍ଶ ଶାସନ ଅର୍ଥରେ ବ୍ୟବହୃତ ହେଉଅଛି । ଅଯୋଧ୍ୟାକୁ ଫେରିବା ପରେ ରାବଣହୃତା ସୀତାଙ୍କ ସତୀତ୍ୱ ବିଷୟରେ ପ୍ରଜାଙ୍କ ମନରେ ସନ୍ଦେହ ହେବା ଅବଗତ ହୋଇ ଅନ୍ତଃସତ୍ତ୍ୱା ସୀତାଙ୍କୁ ଏ ନିର୍ବାସିତା କଲେ । ନିର୍ବାସନକାଳରେ ବାଲ୍ମୀକି ଆଶ୍ରମରେ ସୀତାଙ୍କଠାରୁ ଲବ ଓ କୁଶ ନାମକ ଯମଜ କୁମାର ଜନ୍ମ ହେଲେ । ତତ୍ପରେ ପିତା ଓ ପୁତ୍ରଦ୍ୱୟଙ୍କର ମିଳନ ହେଲା । ସୀତାଙ୍କୁ ଗ୍ରହଣ କରିବା ପାଇଁ ରାମଚନ୍ଦ୍ର ପୁଣି ଅଗ୍ନି ପରୀକ୍ଷା ପ୍ରସ୍ତାବ କରିବାରୁ ସୀତା ଏଥିରେ ଅସମ୍ମତା ହୋଇ ନିଜର ମାତା ପୃଥିବୀଙ୍କ ଗର୍ଭରେ ଲୀନା ହେଲେ । ତତ୍ପରେ ଦୈବୀ ନିର୍ବନ୍ଧରେ ଏ ଲକ୍ଷ୍ମଣଙ୍କୁ ମଧ୍ୟ ତ୍ୟାଗ କଲେ । ପରେ ଏ ପୁତ୍ରଦ୍ୱୟଙ୍କ ମଧ୍ୟରୁ କୁଶଙ୍କୁ କୋଶଳ ରାଜ୍ୟର ଏବଂ ଲବଙ୍କୁ ଉତ୍ତର କୋଶଳ ରାଜ୍ୟର ଅଧିପତି ପଦରେ ପ୍ରତିଷ୍ଠାପିତ କରି ଅନୁଗତ ସ୍ୱଜନ ଓ ପୁରଜନମାନଙ୍କ ସହିତ ସରଯୂ ନଦୀରେ ପ୍ରବେଶ ପୂର୍ବକ ଯୋଗାଲମ୍ବନରେ ତନୁ ତ୍ୟାଗ କଲେ । ] ଦେ. ବି. ପୁଂ—୧ । ଲୋକଙ୍କୁ ଦିଆଯିବା ନାମ—1. A name given to males. ୨ । ରମଣୀୟ ଚନ୍ଦ୍ର—2. The beautiful moon. ( ଉ—ବିରଚେ ରାମଚନ୍ଦ୍ର ଉଦେ, ବିରାଜିତ ହର ବିନୋଦେ । ଉଞ୍ଜ. ବୈଦେହୀଶବିଳାସ ।)

**ରାମଚନ୍ଦ୍ର ଦାଶ**—ଦେ. ବି. ନାମ—୧ । ୧୮ଶ ଶତାବ୍ଦୀର ମଧ୍ୟଭାଗର Rāmachandra dāśa ଓଡ଼ିଆ କବି—1. An Oriya poet who flourished in the middle of the 18th century. ( ଯଥା—ବଳଭଦ୍ରାବଳୀ ଓ ଗୌପୀଘୋଷମାଳା ଏହାଙ୍କର ଗ୍ରନ୍ଥ—ତାରିଣୀଚରଣ, ଉତ୍କଳ ସାହିତ୍ୟର ଇତିହାସ । ) ୨ । ପୁରୀଜିଲ୍ଲା ଉଙ୍ଗାରପୁରର ବ୍ରାହ୍ମଣ ( ଏ ପୁରୀରେ ମୁକ୍ତାର କରୁଥିଲେ ଓ ୰ପଣ୍ଡିତ ଗୋପବନ୍ଧୁ ଦାଶ ଏହାଙ୍କୁ ଗୁରୁରୂପେ ମାନ୍ୟ କରୁଥିଲେ । ଏ ଉତ୍କଳର ଜଣେ ନୀରବ ଦେଶସେବକ ଓ କର୍ମବୀର ଥିଲେ )—2. The late Rāmachandra Dāsa, Muktar of Puri who was a silent worker for the cause of the uplift of the Oriya nation and from whom the late Pundit Gopabandhu Das had derived inspiration.

**ରାମଚନ୍ଦ୍ର ଦେବ**—ଦେ. ବି. ନାମ—୧ । ପୁରୀର ପ୍ରାଚୀନ ରାଜା— Rāmachandra deba An ancient Oriya king. [ ଦ୍ର—ଏ ପୁରୀ ରାଜାଙ୍କ ପ୍ରଶଂସାରେ ଶ୍ରୀ ରାମଚନ୍ଦ୍ରପୁର, ବୀର ରାମଚନ୍ଦ୍ରପୁର, ପ୍ରତାପ ରାମଚନ୍ଦ୍ରପୁର ଆଦି ଅନେକ-ଗୁଡ଼ିଏ ବ୍ରାହ୍ମଣଶାସନ ପ୍ରତିଷ୍ଠିତ କରିଥିଲେ । ] ୨ । ପୁରୀର ବର୍ତ୍ତମାନ ରାଜା—2. The present Rājā of Puri.

**ରାମଚନ୍ଦ୍ର ପଟ୍ଟନାୟକ**—ଦେ. ବି. ନାମ—ହାରାବତୀ ନାମକ କାବ୍ୟର Rāmachandra pattanāyaka ରଚୟିତା ଓଡ଼ିଆ ପ୍ରାଚୀନ କବି—An ancient poet of Orissa, the anthor of Hārābatī.

**ରାମଚନ୍ଦ୍ର ମହାପ୍ରଭୁ**—ଦେ. ବି—ବିଷ୍ଣୁଙ୍କ ଅବତାରରୂପେ ଅବତୀର୍ଣ୍ଣ Rāmachardra mahāprabhu ଅଯୋଧ୍ୟାର ରାମଚନ୍ଦ୍ର— Rāmachandra, the incarnation of Bishnu boru in Ajodhyā.

**ରାମଚନ୍ଦ୍ର ରଥ**—ଦେ. ବି. ନାମ—୧ । ଉତ୍କଳୀୟ ଅଳଙ୍କାର ଶାସ୍ତ୍ର Rāmachandra ratha ପ୍ରଣେତା—1. A famous rhetorician, Oriya by birth. ୨ । ପୁରୀଜିଲ୍ଲା ସତ୍ୟବାଦୀ ନିକଟସ୍ଥ ବିଶ୍ୱନାଥପୁର ନିବାସୀ ବାଜପେୟୀ ସାମନ୍ତବଂଶୀୟ ପଣ୍ଡିତ ( ଜନ୍ମ ୧୮୮୯—ମୃତ୍ୟୁ ୧୯୫୬ ) 2. Rāmachandra Ratha, the devoted worker of the Pūrnnachandra Ordiā Bhāshā kosha staff, born in the village Biswanāthapur śasana in the Puri district. [ ଦ୍ର—ଏ ସତ୍ୟବାଦୀ ସ୍କୁଲର ଅନ୍ୟତମ ପ୍ରଥମ ଉଦ୍ୟୋକ୍ତା ଓ ସ୍ୱର୍ଗୀୟ ଗୋପବନ୍ଧୁ ଦାଶଙ୍କର ବିଶିଷ୍ଟ ସହକର୍ମୀ ଥିଲେ । ସତ୍ୟବାଦୀ ଜାତୀୟ ବିଦ୍ୟାଳୟର ପତନପରେ ରାମଚନ୍ଦ୍ର, ତାଙ୍କ ମୃତ୍ୟୁର ୪ ବର୍ଷ ପୂର୍ବରୁ ଏହି ଭାଷାକୋଷର ପାଣ୍ଡୁଲିପି ସମ୍ମାର୍ଜ୍ଜନ ଓ ସାଫି ଲେଖା କର୍ମରେ ସଙ୍ଗ୍ରାହକଙ୍କର ଜଣେ ନିଷ୍ଠାପର, ନିରଳସ, ଅଧ୍ୟବସାୟୀ ସହକର୍ମୀରୂପେ କାର୍ଯ୍ୟ କରୁଥିଲେ । ସେ ଜଣେ ନିରାଡ଼ମ୍ବର, ନୀରବ ଦେଶସେବକ ଥିଲେ । ତାଙ୍କର ପ୍ରକୃତି ଅତି ମଧୁର,

ହୃଦୟ ଉଦାର, ନୈଜ ସାଧୁଜନୋଚିତ ଥିଲା । ତାଙ୍କ ସାଧୁଚରିତ୍ରବଳରେ ସେ ଶତ ଶତ ଛାତ୍ର, ଶିକ୍ଷକ ଓ ବନ୍ଧୁମାନଙ୍କର ଭକ୍ତି ଓ ସ୍ନେହ ଆକର୍ଷଣ କରିପାରିଥିଲେ ।]

ରାମଚନ୍ଦ୍ର ରାଜଗୁରୁ—ଦେ. ବି. ନାମ—ଜଣେ ଉତ୍କଳୀୟ ସ୍ମୃତିଶାସ୍ତ୍ର Rāmachandra rājaguru ପ୍ରଣେତା—An Oriya compiler of social rules in Sanskrit language.

ରାମ ଜନ୍ମ—ସ. ବି—ରାମନବମୀ ( ଦେଖ ) Rāma janma Rāmanabamī ( See )

ରାମ ଟୁଙ୍ଗି—ଦେ. ବି—ଗ୍ରାମର ପ୍ରାନ୍ତଭାଗରେ ଅବସ୍ଥିତ କ୍ଷୁଦ୍ର ଭଜନାଳୟ Rāma ṭungi —A club for prayer in a villge. [ ଉ—ଯାଅ ଚାଲି ଯା ରାମଟୁଙ୍ଗିକି, ପଇସା ନ ଥାଏ ଗୁଆଗୁଣ୍ଡିକି —ଢଗ । ]

ରାମଠ—ସ. ବି ( ବୈଦ୍ୟକ )—୧ । ହେଙ୍ଗୁ; ହିଙ୍ଗୁ— Ramaṭha 1. Assafoetida; Ferula Eralleacea. (ରମଠ—ଅନ୍ୟରୂପ) ୨ । ବୃହତ୍‌ସଂହିତା ମତରେ ଭାରତର ପଶ୍ଚିମସ୍ଥ ଦେଶବିଶେଷ ( ବି. ଶ )—2. Name of an ancient country.
୩ । ଉକ୍ତ ଦେଶବାସୀ ବ୍ୟକ୍ତି (ବି. ଶ)—3. An inhabitant of the above country, ୪ । ଆଖରୋଟ ଗଛ (ବି. ଶ)—4. Walnut tree. ୫ । ମଦନ ଫଳ (ବି. ଶ) (ବୃକ୍ଷ ଓ ଫଳ)—5. Randia Dumetorum (tree and fruit); bushy Gardenia. ୬ । ଛଚିନ୍ଦା (ବି. ଶ) (ଲତା ଓ ଫଳ)—6. Snake-gourd; Trichosanthes Anguina (creeper and fruit).

ରାମଠୀ—ସ. ବି. (ବୈଦ୍ୟକ)—ନାଡ଼ୀ ହିଙ୍ଗୁ; ଏକ ପ୍ରକାର ହେଙ୍ଗୁ— Rāmaṭhī A sort of asafoetida; Dika Mallegum).

ରାମଣୀୟକ—ସ. ବି. (ରମଣୀୟ + କ) —ଶୋଭା; ରମଣୀୟତା— Rāmaṇīyaka Charm; beauty.

ରାମ ତାରକ—ସ. ବି—ରାମଚନ୍ଦ୍ରଙ୍କ ଭକ୍ତମାନଙ୍କ ଜପିବା ରାମ ନାମ ଯୁକ୍ତ Rāma tāraka ମନ୍ତ୍ର—Name of the formula uttered by the devotees (ରାମ ତାରକ ମନ୍ତ୍ର—ଅନ୍ୟରୂପ) of Rāmachandra.
[ଦ୍ର—'ରାଂ ରାମାୟ ନମଃ' ଏହା ମନ୍ତ୍ରକୁ ରାମ ତାରକ ମନ୍ତ୍ର ବୋଲଯାଏ । ଭଞ୍ଜ କବି ଏ ମନ୍ତ୍ରର ସାଧକ ଥିଲେ ।]

ରାମ ତାଳି—ଦେ. ବି—ହାତରେ ଧରି ଠକ ଠକ ବଜାଇ ଗୀତର Rāma tāḷi ତାଳ ପକାଇବା ପାଇଁ ବ୍ୟବହୃତ କାଠ ଦୁଇ ଖଣ୍ଡ- (ରାମ ତାଳକା—ଅନ୍ୟରୂପ) Castanets.
রাম তালী, করতাল [ଦ୍ର—ଏହି କାଠ ଦୁଇ ଖଣ୍ଡକୁ ଏକ ହାତରେ
करताल(र) ମୁଠାଇ ମୁଠାକୁ କ୍ରମଶଃ ମେଲା କରି ଓ ବନ୍ଦ କରି ବଜାଇବାକୁ ହୁଏ; ଏହାର ଗୋଟିଏ ଫାଳ ବୁଢ଼ା ଅଙ୍ଗୁଠି ସଙ୍ଗେ ଓ ଅନ୍ୟ ଫାଳ ଅନ୍ୟ ଚାରୋଟି ଅଙ୍ଗୁଠି ସଙ୍ଗେ ସଂଲଗ୍ନ କରାଯାଇ ଥାଏ ଓ ମୁଠା ମେଲା କରି ବନ୍ଦ କଲା ବେଳକୁ ଏ ଦୁଇ ଫାଳ ପରସ୍ପରକୁ ଆଘାତ କରିବାରୁ ତାଳ ପରି ଶବ୍ଦ ବାହାରେ ।] (ଉ—ବାଜୁଅଛୁ ରାମ ତାଳ । ବେଗେ ସୁବେଳରେ ମିଳ ହେ । ଭଞ୍ଜ. ବୈଦେହୀଶବିଳାସ ।) ୨ । ରାମ ଶବ୍ଦୋଚ୍ଚାରଣ ପୂର୍ବକ ହାତରେ ଦେବା ତାଳି— 2. Clapping with Rāma's name on one's lips

ରାମ ତିଳ—ସ. ବି—ଏକ ପ୍ରକାର ଖସା ବା ତିଳ—A species of Rāma tiḷa Sesamum; Verbinia Sativa; Guizotia Abyssinecia (Kirtikar).

ରାମ ତିଳା—ଦେ. ବି—ରାମ ତିଳ ( ଦେଖ ) Rāma tiḷā Rāma tiḷa ( See )
কাল তিল, বাম তিল, কালা তিল (ଉ—ନସା ଗାର ସ୍ୱର୍ଣ୍ଣ ରାମତିଳା।
राम तिल, काला तिल ରାଧାନାଥ. ଋତୁସଂହାରୀ ।)

ରାମ ତିଳକ(ଖ)—ଦେ. ବି—୧ । ତିଳକ ରୂପରେ କପାଳାଦିରେ Rāma tiḷaka(kha) ଧାରଣ କରାଯିବା ଏକ ପ୍ରକାର ହଳଦିଆ বাম তিলক ମାଟି; ରାମରଜ—1. A kind of yellow earth रामरज, राम तिलक used as sacred paint on the fore head. ୨ । ରାମାନନ୍ଦୀ ଚିତା—2.The sectarian earth-paint put on the forehead of the Rāmānandi sect.

ରାମ ତୀର୍ଥ—ସ. ବି—ରାମଗିରି ୧ ( ଦେଖ ) Rāma tirtha Rāmagiri 1 ( See )

ରାମ ତୁଳସୀ—ସ. ବି—ଏକ ଜାତୀୟ ତୁଳସୀ ଗଛ (ଏହାର ପତ୍ର ଧଳା Rāma tuḷasī ଓ ବଡ଼); ଧଳା ତୁଳସୀ—A species of সাদা তুলসী the Holy Basil plant; Ocymum राम तुलसी Gratessimum; the white Basil.

ରାମ ଦାସ—ସ. ବି ( ୬ଷ୍ଠୀ ତତ୍ )—୧ । ରାମଭକ୍ତ—1. A devotee Rāmadāsa of Rāma. ୨ । ହନୁମାନ୍— 2 Hanumān, the monkey servant of Rāmachandra. ଦେ. ବି. ନାମ—୧ । କବି [ଗଞ୍ଜାମ ଜିଲ୍ଲା ମଞ୍ଜୁଷା ରାଜ୍ୟର ତୁରୀ ଗ୍ରାମବାସୀ ବ୍ରାହ୍ମଣ । ଦାର୍ଢ୍ୟତାଭକ୍ତି ରସାମୃତ ଓ ରାମରସାମୃତ ଏହାଙ୍କ ଭକ୍ତିଗ୍ରନ୍ଥ ( ତାରଣୀଚରଣ ଉ. ସା. ଇତିହାସ )] 1. A celebrated Oriya poet of Dārḍhyatā-bhakti Rasāmṛuta in Oriyā. ୨ । ଦକ୍ଷିଣ ଭାରତର ପ୍ରସିଦ୍ଧ ମହାତ୍ମା ଓ ଶିବଜୀଙ୍କ ଗୁରୁ—2. Name of the preceptor of Sibaji. ( ଦ୍ର—ଏହାଙ୍କୁ ଲୋକେ ସ୍ୱାମୀ ରାମଦାସ କହୁଥିଲେ । ଏ ଜାତିରେ ବ୍ରାହ୍ମଣ ଥିଲେ; ଜନ୍ମସ୍ଥାନ ଗୋଦାବରୀତଟସ୍ଥ ଜମ୍ବୁ ନାମକ ଗ୍ରାମ । ଜନ୍ମ ୧୫୩୦ ଶକାବ୍ଦ; ରାମନବମୀଦିନ ଏହାଙ୍କର ଜନ୍ମ । ଏ ଶୁଦ୍ଧ ରାମଭକ୍ତ ଥିଲେ ଓ ମାତା ପିତାଙ୍କ ବ୍ୟବସ୍ଥା ଅନୁସାରେ ବିବାହ ନ କରି ବୈରାଗ୍ୟ ଅବଲମ୍ବନ କଲେ ଓ ନାସିକ ପାଖରେ ତପସ୍ୟା କଲେ । ମୃତ୍ୟୁ ଶକାବ୍ଦ ୧୬୦୩ ମାଘ । ]

ଏହାଙ୍କ ଉପଦେଶ ଓ ଭଜନ ଦକ୍ଷିଣ ଭାରତରେ ବହୁଳ ପ୍ରଚଳିତ—ହ୍ରୁ.ଶ.) ୩ । ଲୋକଙ୍କ ନାମ—3. A name given to males.

ରାମଦୂତ—ସ. ବ—ହନୁମାନ୍—Hanumān (who was the Rāmadūta messenger from Rāma to Sita in exile).

ରାମଦୂତିକା—ସ. ବ (ବୈଦ୍ୟକ)—ନାଗପୁଷ୍ପୀ (ଦେଖ) (ଏକପ୍ରକାର Rāmadūtikā ପୁଷ୍ପବୃକ୍ଷ, ବଟେରଙ୍କ ଔଷଧ)—A medicinal plant. ନାଗିନୀ रामदूती

ରାମଧନୁ—ଦେ. ବ (ସ. ରାମଧନୁଷ)—ଇନ୍ଦ୍ରଧନୁ—Rainbow. Rāmadhanu ବାମଧନୁ इन्द्रधनुस (ରାମଧନୁସ—ସଂ. ରୂପ)

ରାମନଦ—ଦେ. ବ—ଦକ୍ଷିଣଭାରତର ଗୋଟିଏ ଜମିଦାରୀ ଓ ସେତୁବନ୍ଧ Rāmanada ରାମେଶ୍ୱରର ପଶ୍ଚିମରେ ଥିବା ଏକ ନଗର—ବାମନଦ रामनद Name of an estate and town in S. India.

ରାମନଗର—ଦେ. ବ (ନାମ)—୧ । ମଧ୍ୟଭାରତର ବଘେଲଖଣ୍ଡ Rāmanagara ଅଞ୍ଚଳର ରେୱା ରାଜ୍ୟର ଏକ ନଗର—ରାମନଗବ रामनगर 1. Name of a town in Central India. ୨ । ମଧ୍ୟପ୍ରଦେଶର ମଣ୍ଡଲା ରାଜ୍ୟର ଏକ ନଗର—2 Name of a town in the Central Provinces. ୩ । ଚେନାବ (ଚନ୍ଦ୍ରଭାଗା) ନଦୀ ତୀରସ୍ଥ ପଞ୍ଜାବର ଏକ ନଗର—3. Name of a town in the Punjab. ୪ । କାଶ୍ମୀର ରାଜ୍ୟର ଏକ ପାର୍ବତ୍ୟ ନଗର—4. Name of a hilly town in Kashmere. ୫ । କାଶୀର ଅପର ପାର୍ଶ୍ୱରେ ଗଙ୍ଗା-କୂଳରେ ଥିବା କାଶୀର ମହାରାଜାଙ୍କ ରାଜଧାନୀ—5. Name of the town where the Maharaja of Benares has his palace.

ରାମନବମୀ—ସ. ବ—୧ । ରାମଚନ୍ଦ୍ରଙ୍କ ଜନ୍ମତିଥି ଚୈତ୍ର ଶୁକ୍ଳନବମୀ—Rāmanabami 1. The anniversary of the birth of Rāmachandra, the ninth day of the bright fortninght of Chaitra. ୨ । ରାମନବମୀଠାରୁ ଆରମ୍ଭ କରି ରାମାୟଣର ଅଭିନୟରୂପ ଯାତ୍ରା—2. Acting of the episodes of Rāma's life. [ ବ୍ର—ସ୍ଥାନେ ସ୍ଥାନେ ଓଡ଼ିଶାର ମଫସଲରେ ଓ ଭାରତର ଉତ୍ତରପଶ୍ଚିମାଞ୍ଚଳରେ ଏ ଅଭିନୟ ବିଶେଷ ସମାରୋହ ସହିତ କରାଯାଏ ଓ ଏ ଯାତ୍ରା ବହୁ ରାତ୍ରିରେ ଶେଷ ହୁଏ । ରାମନବମୀ ମାରୱାଡ଼ୀ ଓ ରାମ-ଭକ୍ତମାନଙ୍କର ଗୋଟିଏ ପ୍ରଧାନ ପର୍ବ । ଏହି ଦିନଠାରୁ ମାରୱାଡ଼ୀମାନଙ୍କର ବ୍ୟାବସାୟିକ ବର୍ଷ ଆରମ୍ଭ ହୁଏ ।]

ରାମନାଥ—ସ. ବ—ସେତୁବନ୍ଧ ରାମେଶ୍ୱର ନିକଟରେ ପ୍ରତିଷ୍ଠିତ Rāmanātha ରାମଚନ୍ଦ୍ରଙ୍କ ପୂଜିତ ଶିବଲିଙ୍ଗ । (ଏହା ଭାରତରେ ଚାରି ଖୁଣ୍ଟି ବା ତୀର୍ଥମଧ୍ୟରୁ ଏକତମ)—Name of the image of Śiba at Rāmeśwara (south end of India). ଦେ. ବ. ପୁଂ—ଲୋକଙ୍କ ନାମ—A name given to males.

ରାମନେତ୍ରୀ—ଦେ. ବଣ. ସ୍ତ୍ରୀ (ସଂ. ରାମନେତ୍ରା)—ମୃଗନୟନା (ସ୍ତ୍ରୀ)—Rāmanetrī Gazelle-eyed (lady). (ସଂ. ରାମନେତ୍ରା, ରାମନୟନା—ରୂପ) ( ଉ—ଦୁଲେ ରାମ ରାମ ରାମନେତ୍ରୀ ଘେନ ବନେ- ଉଞ୍ଜ. ବୈଦେହୀଶବିଳାସ । )

ରାମପୁର—ଦେ. ବ. ନାମ—୧ କାଶ୍ମୀର ଦେଶର ଗୋଟିଏ ନଗର । (ଏ Rāmapura ସ୍ଥାନରେ ଉତ୍କୃଷ୍ଟ ଓ ପତଳା ପଶମ ଚଦର ଓ ଶାଲ ବାମପୁବ ପ୍ରସ୍ତୁତ ହୁଏ)—1. Name of a town in रामपुर Kashmere noted for its fine woollen shawls. ୨ । ଢେଙ୍କାନାଳ ରାଜ୍ୟର ଏକ ନଗର—2. Name of a small town in Rerdhākhol State. ୩ । ଯୁକ୍ତପ୍ରଦେଶର ଗୋଟିଏ ଜିଲ୍ଲା ଓ ନଗର ଓ ରେଲଷ୍ଟେସନ୍—3. Name of a town in the United Prcvinces.

ରାମପୁରୀ ଚ(ଚ୍ଛା)ଦର—ଦେ ବ—ରାମପୁରରେ ବୁଣା ହୋଇଥିବା Rāmapurī ch(chā)dara ଉତ୍କୃଷ୍ଟ ପଶମୀ ଚଦର—wrappers—Woollen made in Rāmpur. ବାମପୁବୀ ଚଦ୍ଦବ रामपुरीचादर

ରାମପ୍ରସାଦ ସେନ—ବଙ୍ଗର ସ୍ୱର୍ଗୀୟ ପ୍ରସିଦ୍ଧ ସାଧକ, ଗୀତରଚକ Rāmaprasāda sena ଓ ଗାୟକ—The late Ram Prasad Sen; a composer and singer of hymns addressed to Goddess Śyāmā. [ବ୍ର—ଖ୍ରୀ. ୧୭୨୩—୧୭୭୫ । ଏ ସଂସ୍କୃତ, ବଙ୍ଗଳା, ଫାରସୀ ଓ ଇଂରାଜୀବିଦ୍ୟା ଶିକ୍ଷା କରିଥିଲେ । କଲିକତାର ଜଣେ ଧନୀ ଏହାଙ୍କ ଆନ୍ତରିକ ଭକ୍ତିରେ ସନ୍ତୁଷ୍ଟହୋଇ ଏହାଙ୍କୁ ୩୦୦ଙ୍କା ବୃତ୍ତି ଦେଉଥିଲେ । ଏ ଶ୍ୟାମା ବିଷୟକ ଅସଂଖ୍ୟ ବଙ୍ଗଳା ସଙ୍ଗୀତ ରଚନା କରି ସ୍ୱୟଂ ଗାନ କରୁ-ଥିଲେ । ଏ ତାନ୍ତ୍ରିକ ଉପାସନା କରୁଥିଲେ ।]

ରାମଫଳ—ପ୍ରା ଦେ (ସ୍ଥାନ ସର) ବ—ମସୃଣ ଶୋଭାବିଶିଷ୍ଟ ଆତଫଳ, Rāmaphala ନେଉଆ—Apple; Bullock's heart

ରାମ ବନବାସ—ସ. ବ (୬ଷ୍ଠୀ ତତ୍)—ପିତୃସତ୍ୟ ପାଳନାର୍ଥ ରାମଙ୍କର Rāma banabāsa ଅରଣ୍ୟରେ ବାସ—The exile of Rāma in the forest to fulfil his father's troth.

ରାମବଲ୍ଲଭ—ସ. ବ—ଭୂର୍ଜ୍ଜପତ୍ର—Rāmaballabha The bark of Birch tree.

ରାମବାଣ—ସ. ବ (୬ଷ୍ଠୀ ତତ୍; ରାମ+ବାଣ)—ରାମଚନ୍ଦ୍ରଙ୍କ ଶର—Rāmabāṇa The arrows of Rāmachandra.

ରାମଭଦ୍ର—ସ. ବ—ରାମଚନ୍ଦ୍ର (ଦେଖ) Rāmabhadra Rāmachandra. (See)

ରାମମୂର୍ତ୍ତି ନାଇଡୁ—ଦେ. ବ (ନାମ)—ମାନ୍ଦ୍ରାଜ ପ୍ରଦେଶବାସୀ ପୃଥିବୀ-Rāmamūrtti nāidu ବିଖ୍ୟାତ ସ୍ୱର୍ଗୀୟ ବ୍ୟାୟାମବିଶାରଦ—

Rama Murti—the famous athlete of Madras. [ ଦ୍ର—ଜନ୍ମ ୧୮୭୫; ଅଳ୍ପଦିନ ପୂର୍ବେ ମୃତ । ଏ ଜାତିରେ ବ୍ରାହ୍ମଣ ଥିଲେ । ଏ ବିଦେଶୀୟ ପ୍ରସିଦ୍ଧ ବ୍ୟାୟାମସାଧକ ସାଣ୍ଡୋ ( Sandow )ଙ୍କ ବ୍ୟାୟାମ ପ୍ରଣାଳୀରେ ସନ୍ତୁଷ୍ଟ ନ ହୋଇ ଦେଶୀୟ ପ୍ରଣାଳୀ ଅବଲମ୍ବନ ପୂର୍ବକ ଅଦ୍ଭୁତ ଶାରୀରିକ ଶକ୍ତିର ପରିଚୟ ଦେଇ ସମଗ୍ର ଜଗତକୁ ସ୍ତମ୍ଭିତ କରିଥିଲେ । ଇଚ୍ଛାଶକ୍ତି ପ୍ରୟୋଗ ଓ ସାଧନାଦ୍ୱାରା ଶାରୀରିକ ଶକ୍ତି ବୃଦ୍ଧି କରାଯାଇ ପାରେ, ଏହାହିଁ ଏ ଭାରତରେ ସର୍ବତ୍ର ପ୍ରଚାର କରିଥିଲେ । ବାର ଘୋଡ଼ାର ଶକ୍ତିବିଶିଷ୍ଟ ମଟରଗାଡ଼ି ଓ ୮୦ ମହଣ ଓଜନର ହାତୀ ଛାତିର ଉପରେ ଚଲାଇ ପାରୁଥିଲେ । ]

ରାମ ମୋହନ—ଦେ. ବି. ପୁଂ—ଲୋକଙ୍କ ନାମ—
Rāmamohana A name given to males.

ରାମମୋହନ ରାୟ—ଦେ. ବି. ନାମ—ରାଜା ରାମମୋହନ ରାୟ,
Rāmamohana rāya ବ୍ରାହ୍ମଧର୍ମର ପ୍ରତିଷ୍ଠାତା ଓ
বামমোহন রায় ପ୍ରଚାରକ ( ୧୭୭୪—୧୮୩୩ )— Raja
राममोहन राय Rammohan Ray; the founder of the Brahmo religion. [ ଦ୍ର—ଏ ଜଣେ ମହାପଣ୍ଡିତ । ବଙ୍ଗଳାଭାଷା ଛଡ଼ା ଆରବୀ, ପାରସୀ, ସଂସ୍କୃତ, ଇଂରାଜୀ, ଉର୍ଦ୍ଦୁ, ହିବ୍ରୁ, ଫରାସୀ, ଗ୍ରୀକ୍ ଓ ଲାଟିନ୍‌ଭାଷାରେ ଏ ଅଭିଜ୍ଞତା ଲାଭ କରିଥିଲେ । ଏ ଆଧୁନିକ ବଙ୍ଗଳା ଗଦ୍ୟ ଲେଖାର ପ୍ରବର୍ତ୍ତକ । ଏ ପୌତ୍ତଳିକତାର ବିରୋଧୀ ଥାଇ ବେଦାନ୍ତ ସମ୍ମତ ଏକେଶ୍ୱରବାଦ ପ୍ରଚାର କରିଥିଲେ । ଏ ଉପବୀତ ତ୍ୟାଗ କରି ନ ଥିଲେ ଓ ସନାତନ ହିନ୍ଦୁଧର୍ମର ପୁନରୁତ୍ଥାନ ପାଇଁ ଯତ୍ନ କରିଥିଲେ । ଏ ସତୀଦାହ ପ୍ରଥା ରହିତ ହେବା ବିଷୟରେ ଗଭର୍ଣ୍ଣର୍ ଜେନେରାଲ୍ ଲର୍ଡ଼ ବେଣ୍ଟିକଙ୍କୁ ବିଶେଷ ସାହାଯ୍ୟ କରିଥିଲେ । ଏ ଦିଲ୍ଲୀ-ସମ୍ରାଟଙ୍କର ବିଶିଷ୍ଟ କାର୍ଯ୍ୟୋପଲକ୍ଷରେ ବିଲାତ ଯାଇଥିଲେ । ଏ ବଙ୍ଗାଳୀଙ୍କ ମଧ୍ୟରେ ବିଲାତ୍ ଯିବା ବିଷୟରେ ଅଗ୍ରଣୀ । ଏ ମଧ୍ୟ ଫ୍ରାନ୍ସକୁ ଯାଇଥିଲେ । ଦିଲ୍ଲୀର ସମ୍ରାଟ୍ ଏହାଙ୍କୁ ରାଜା ଉପାଧି ଦେଇଥିଲେ । ଇଂଲଣ୍ଡର ଅନ୍ତଃପାତୀ ବ୍ରିଷ୍ଟଲ ନଗରରେ ଏହାଙ୍କ ମୃତ୍ୟୁ ହୋଇଥିଲା । ସେଠାରେ ଏହାଙ୍କ ସମାଧି ଅଛି । ]

ରାମ ରଜ—ଦେ ବି—ବାବାଜୀମାନେ, ଜାଗାପିଲାମାନେ ଓ ପୁଅର ସାଇ-
Rāma raja ଯାତରେ ନାଗାମାନେ ଦେହରେ ବୋଳ ହେବା
বাম বজ ଏକ ପ୍ରକାର ହଳଦିଆ ମାଟି—A kind of yellow
राम रज earth used as paint by Bābājis, wrestlers and actors of heroic parts in operas in Orissa.

ରାମ ରାଜ୍ୟ—ସଂ.ବି.(ଷଷ୍ଠୀ ତତ୍;ରାମ+ରାଜ୍ୟ)-୧ । ରାମଚନ୍ଦ୍ରଙ୍କଦ୍ୱାରା ଶାସିତ
Rāma rājya ଅଯୋଧ୍ୟା ରାଜ୍ୟ—1.The ancient kingdom of Oudh ruled over by Rāmachandra. ୨। (ଲକ୍ଷଣାର୍ଥ)—ସୁଖ ଓ ଶାନ୍ତି ସମନ୍ୱିତ ରାଜ୍ୟ; ଧର୍ମପାଳିତ ରାଜ୍ୟ—2. A kingdom governed with righteousness and where people live in happiness and peace.

ରାମ ରାମ—ଦେ. ଅ—ରାମ୍ ରାମ୍ ( ଦେଖ )
Rāma rāma Rām rām ( See )

ରାମ ଲକ୍ଷଣ—ସଂ. ବି—୧ । (ଦ୍ୱନ୍ଦ୍ୱ) ରାମଚନ୍ଦ୍ର ଓ ତାଙ୍କ ଅନୁଜ ଲକ୍ଷ୍ମଣ—1.
Rama lakshana Rāma and his younger brother Lakshmaṇa. ୨। (ରାମ=ମୃଗ + ଲକ୍ଷଣ ଯାହାଙ୍କର, ବହୁବ୍ରୀହି)—ଶଶାଙ୍କ; ଚନ୍ଦ୍ର 2. The moon. (ଉ—ବିନାଶ ତାମସୀମତେ,ରାମ ଲକ୍ଷଣଙ୍କ ଅସ୍ତେ; କରପଦ୍ମ ହୋଇଲେ ବଦନ ଯେ । ଭଞ୍ଜ ବୈଦେହୀଶବିଳାସ ।)

ରାମ ଲୀଳା—ସଂ. ବି. (ଷଷ୍ଠୀ ତତ୍; ରାମ + ଲୀଳା)—ରାମଚନ୍ଦ୍ର ଅବତାର
Rāma lilā ଗ୍ରହଣ କରି ଦଶରଥଙ୍କ ପୁତ୍ରରୂପେ ଅଯୋଧ୍ୟାରେ
রাম লীলা ଜନ୍ମ ହୋଇ ସଂସାରରେ ଯେଉଁ ଲୀଳା ବା କର୍ମମାନ
राम लीला କରିଥିଲେ—The acts performed by Bishṇu when He assumed the incarnation of Rāma, as son of Daśaratha.
ଦେ. ବି—୧ । ରାମଚନ୍ଦ୍ରଙ୍କର ଜନ୍ମାବଧି ସ୍ୱର୍ଗାରୋହଣ ପର୍ଯ୍ୟନ୍ତ ଘଟଣାବଳୀର ଅଭିନୟ; ରାମଚରିତର ଅଭିନୟ— 1. The acting or dramatic performance of the events of the life of Rāmachandra. ୨ । ରାମାୟଣର ଘଟଣାବିଶେଷ ସମ୍ବନ୍ଧୀୟ ଯାତ୍ରା ଓ ନାଟ— 2. Rude dancing and theatrical performance of particular episodes or incidents described in the Rāmāyaṇa. ୩ । ଗଞ୍ଜାମର ଚିକିଟିର ଜନୈକ ସ୍ୱର୍ଗତ ରାଜା (୧୮ଶ ଶତାବ୍ଦୀର ପ୍ରାରମ୍ଭ କାଳ) ପୀତାମ୍ବର ରାଜେନ୍ଦ୍ରଙ୍କ ରଚିତ ରାମଲୀଳାବର୍ଣ୍ଣନାତ୍ମକ ପଦ୍ୟ ଗ୍ରନ୍ଥ । (ଉକ୍ତ ଲୀଳା ଗ୍ରନ୍ଥ ଗଞ୍ଜାମର ନାନା ସ୍ଥାନରେ ଯାତ୍ରା ଓ ପର୍ବମାନଙ୍କରେ ମହା ଆଡ଼ମ୍ବର ସହକାରେ ଅଭିନୀତ ହୁଏ । ଏହି ଗ୍ରନ୍ଥ ଉତ୍କଳରେ ନାଟକାଭିନୟ ପ୍ରଥମ ଅଗ୍ରଦୂତ) 3. Name of a dramatic poem by a late king of Chikati (1791—1819)

ରାମ ଶଙ୍କର—ସଂ.ବି ପୁଂ.—ରାମ ଓ ମହାଦେବ; ହରିହର—Bishṇu
Rāma śankara and Śiba. ଦେ. ବି ପୁଂ—୧ । ଲୋକଙ୍କ ନାମ—1. A name given to males. ୨ । ସ୍ୱର୍ଗୀୟ ରାମଶଙ୍କର ରାୟ—2. The late Rai Bahadur Ramsaṅkar Roy. [ଦ୍ର—ଏ ମହାଶୟ ଉତ୍କଳ ଉପନିବେଶୀ ବଙ୍ଗୀୟ କାୟସ୍ଥବଂଶୀୟ ଓକିଲ ଓ ଗ୍ରନ୍ଥକାର ଓ ୬ ଗୌରୀଶଙ୍କରଙ୍କ ରାୟଙ୍କର ଅନୁଜ । ଏ ଉତ୍କଳ ଭାଷାରେ ଉପନ୍ୟାସ ଓ ଅନେକଗୁଡ଼ିଏ ନାଟକ ରଚନା କରି ଯାଇ ଅଛନ୍ତି । ଉତ୍କଳ ସାହିତ୍ୟରେ ଅମିତ୍ରାକ୍ଷର ଛନ୍ଦର ଏ ଆଦ୍ୟ ପ୍ରବର୍ତ୍ତକ । ନାନା ଦେଶହିତକର କାର୍ଯ୍ୟ ଏବଂ ବେଦ ଓ ସଂହିତାଦିର ଅଧ୍ୟୟନ ଏହାଙ୍କ ଜୀବନର ବ୍ରତ ଥିଲା । ଏ ବହୁକାଳ କଟକ ମିଉନିସିପାଲିଟିର ଭାଇସ୍‌ଚେଆରମ୍ୟାନ ଓ

. ତେଓ୍ଥମ୍ମାନ୍ କର୍ମ ଦକ୍ଷତା ସହକାରେ ଚଳାଇଥିଲେ । ଏ ସରକାରଙ୍କଠାରୁ ରାଏ ବାହାଦୁର୍ ଉପାଧି ପ୍ରାପ୍ତ ହୋଇଥିଲେ । ଏ ଉତ୍କଳକୁ ନିଜର ମାତୃଭୂମି ଓ ଓଡ଼ିଆ ଭାଷାକୁ ଆପଣାର ମାତୃଭାଷାରୂପେ ଭକ୍ତି ଓ ସ୍ନେହ କରୁଥିଲେ ।]

ରାମ ଶରଣ—ସଂ ବି—ରାମଙ୍କର ଆଶ୍ରୟ—Shelter under the mighty Rāma
Rama Saraṇ
ସଂ. ବିଣ—ରାମଙ୍କ ଆଶ୍ରିତ—One whose refuge is Rāma. ଦେ. ବି ପୁଂ.—ଲୋକଙ୍କ ନାମ—A name given to males.

ରାମ ଶାଳି—ପ୍ରାଦେ. (ସଂହତଭୂମି) ବି—ଏକ ପ୍ରକାର ଧାନ—A species of paddy.
Rāma śāḷi

ରାମ ଶିଆଳ(ଳି)—ଦେ. ବି—ଏକ ପ୍ରକାର ବଡ଼ ବିଲୁଆ—A kind of large-sized jackal.
Rāma śiāla(ḷi)
बाम शेयाल
गडा सियार
[ଦ୍ର—ଏମାନେ କାମୁଡ଼ିଲେ ଦଷ୍ଟ ବ୍ୟକ୍ତି ସଙ୍ଗେ ସଙ୍ଗେ ଜଳାତଙ୍କ ରୋଗଗ୍ରସ୍ତ ହୋଇ ଶୀଘ୍ର ମରଯାଏ ]

ରାମ ଶିଂଗା(ଘା)—ଦେ. ବି. (ସଂ. ରାମ ଓ ଶୃଙ୍ଗ)—ବାବାଜୀ ବୈଷ୍ଣବମାନେ ହରି ସଂକୀର୍ତ୍ତନ ସମୟରେ ମୁଖ ଦ୍ୱାରା ଧ୍ୱନି ପୂର୍ବକ ବଜାଇବା ମହିଷ ଶୃଙ୍ଗାକାର ବଡ଼ ତୂରୀ—A bugle or trumpet (shaped like a buffalo horn) blown by Baishṇabas in the course of Saṁkirttana.
Rāma śiṅgā(ghā)
बाम शिंगा
राम सिंगा

ରାମ ଶିଳା—ଦେ. ବି. (ପଦ୍ୟ)—୧। ସୁନ୍ଦର ପଥର—1. A beautiful slab of stone. (ଉ—ବେଦୀବର ମଣ୍ଡି ଥାଇ ରାମଶିଳା । ଉଞ୍ଜ. ବୈଦେହୀଶବିଳାସ ।) ୨। ଗୟାର ଏକ ପାହାଡ଼—2. Name of a hillock in Gaya. [ଦ୍ର—ଏହାକୁ ହିନ୍ଦୁମାନେ ତୀର୍ଥରୂପେ ଗଣନା କରନ୍ତି ଓ ଏଠାରେ ପିତୃ ଲୋକଙ୍କୁ ପିଣ୍ଡ ଦିଅନ୍ତି ।]
Rāma śiḷā

ରାମ ଶ୍ରୀ—ସଂ. ବି—ହିନ୍ଦୋଳ ରାଗର ପୁତ୍ର, ରାଗିଣୀ ବିଶେଷ—Name of a secondary musical tune.
Rāma śri

ରାମ ସଖ—ସଂ. ବି. ( ବହୁବ୍ରୀହି; ରାମ ଅଟନ୍ତି ସଖା ଯାହାର )—କିଷ୍କିନ୍ଧ୍ୟାପତି ବାନରରାଜ ସୁଗ୍ରୀବ—Sugrība, the monkey king of Kiskindhyā who was an ally of Rāma.
Rāma sakha

ରାମ ସଖା—ସଂ. ବି. ( ୬ଷ୍ଠୀ ତତ୍; ରାମଙ୍କର ସଖା )—ବାନରରାଜ ସୁଗ୍ରୀବ—Sugrība, the monkey-king.
Rāma sakhā

ରାମ ସାରସ—ଦେ. ବି. (ସଂ. ରାମ ଓ ସାରସ)—କୃଷ୍ଣରଙ୍ଗର ଗ୍ରୀବାଯୁକ୍ତ ଦୀର୍ଘଚଞ୍ଚୁ ପକ୍ଷୀ; ବଡ଼ିଆକାଙ୍କ ବା ସାରସ ଜାତୀୟ ପକ୍ଷୀ—The black-necked stork; Xenorhynchus Asiaticus; the East Indian Jabiru.
Rāma sārasa
बाम साबस
रामसारस
[ଦ୍ର—ଏମାନଙ୍କ ଗୋଡ଼ଠାରୁ ଥଣ୍ଟ ପର୍ଯ୍ୟନ୍ତ ପ୍ରାୟ ଛଅ ହାତ ଲମ୍ବ । ଏମାନଙ୍କର ପେଟ ଓ ଗୋଡ଼ ଧଳା; ଗୋଡ଼ର ଉଚ୍ଚତା ପ୍ରାୟ ଦୁଇ ହାତ; ଥଣ୍ଟ ଏକ ଗୃଣଶୃ; କେବଳ ପ୍ରାୟ ୧ହାତ ଲମ୍ବ ଓ ସରୁ । ]

ରାମ ସେନକ—ସଂ. ବି (ବୈଦ୍ୟକ)—କଲ୍ପନାଥ; ଚିରେଇତା—A medicinal bitter plant; Agathotes Chirayata.
Rāmasenaka

ରାମା—ସଂ. ବି. ସ୍ତ୍ରୀ ( ରମ୍. ଧାତୁ=କ୍ରୀଡ଼ା+କର୍ତ୍ତି. ଅ+ଆ )—୧। ନାରୀ—1. Woman. [ଦ୍ର—ଏ ଶବ୍ଦ ଗୀତ ଓ ପଦ୍ୟରେ ବିଶେଷରୂପେ ନାରୀ ଶବ୍ଦ ପରିବର୍ତ୍ତେ ବ୍ୟବହୃତ ହୋଇଥାଏ । ] ୨। ସୁନ୍ଦରୀ ସ୍ତ୍ରୀ (ହି. ଶ)—2. A fair lady. ୩। ଗାନକଳାରେ ପ୍ରବୀଣା ସ୍ତ୍ରୀ (ହି. ଶ)—3. A songstress. ୪। କାର୍ତ୍ତିକ କୃଷ୍ଣା ଏକାଦଶୀ (ହି. ଶ)—4. The eleventh day of the dark fortnight of Kārttika. ୫। ହେଙ୍ଗୁ (ହି. ଶ)—5. Assafoetida. ୬। ହେଙ୍ଗୁଳ (ହି. ଶ)—6. Vermilion. ୭। ନଦୀ (ହି. ଶ)—7. River. ୮। ଶୁକ୍ଳଝିଣ୍ଟି (ହି. ଶ)—8. White-flowered variety of Barleria. ୯। ଘିକୁଆଁରୀ (ହି. ଶ)—9. Indian Aloes. ୧୦। ଶୀତଳା; ବସନ୍ତ ରୋଗ (ହି ଶ)—10. Small pox. ୧୧। ଅଶୋକ (ହି ଶ)—11. Aśoka tree. ୧୨। ଗୋରୋଚନା (ହି ଶ)—12. An yellow pigment got from cows. ୧୩। ସୁଗନ୍ଧବାଲା; ଭୁରୁବେଲ (ହି. ଶ)—13. Pavonia Odorata (tree). ୧୪। ଗେରୁ ମାଟି (ହି. ଶ)—14. Red ochre. ୧୫। ଜୟମାଣ୍ଡି ଲତା (ହି ଶ)—15. Thalictrum Faliolosum (creeper). ୧୬। ତମାଳ ପତ୍ର (ହି. ଶ)—16. The leaf of Tamāla. ୧୭। ଲକ୍ଷ୍ମୀ (ହି. ଶ)—17. The Goddess of riches. ୧୮। ସୀତା (ହି. ଶ)—18. A name of Sitā. ୧୯। ରୁକ୍ମିଣୀ (ହି. ଶ)—19. A name of Rukmiṇi. ୨୦। ରାଧା (ହି. ଶ)—20. A name of Rādhā. ୨୧। ପ୍ରଥମ ଦୁଇ ଚରଣ ଇନ୍ଦ୍ରବଜ୍ରା ଓ ଶେଷ ଦୁଇ ଚରଣ ଉପେନ୍ଦ୍ରବଜ୍ରା ବୃତ୍ତରେ ରଚିତ ଉପଜାତି ବୃତ୍ତ ବିଶେଷ (ହି. ଶ)—21. Name of a Sanscrit metre. ୨୨। ଆଠ ଅକ୍ଷରର ବୃତ୍ତ ବିଶେଷ (ହି. ଶ)—22. Name of another Sanscrit metre. [ଦ୍ର—ଏଥିର ପ୍ରତ୍ୟେକ ଚରଣରେ ତଗଣ, ଯଗଣ ଓ ଦୁଇଟି ଲଘୁବର୍ଣ୍ଣ ଥାଏ—(ହି. ଶ) ] ଦେ. ବି (ସଂ. ରାମ) ଅନାଦରାର୍ଥକ—ରାମଚନ୍ଦ୍ର ନାମକ ବ୍ୟକ୍ତିର ଡାକନାମ—Name for calling a person whose name begins with the word Rāma.
Rāmā

ରାମାଉତ୍(ତ,ତି)—ଦେ. ଦେ. ବି (ହିନ୍ଦୀ ରାମାୱତରୁ ଅନୁକୃତ)—୧। ରାମାନୁଜ ସମ୍ପ୍ରଦାୟର ରାମଭକ୍ତ ବୈଷ୍ଣବ—1. A sect of ascetics who worship Rāma. ୨। ରାମୋପାସକ ବୈଷ୍ଣବ—2. A
Rāmāut(ta,ti)
रामात्
रामावत

devotee of Bishnu in the incarnation of Rāma. ୩ । ରାମାନନ୍ଦପ୍ରବର୍ତ୍ତିତ ସମ୍ପ୍ରଦାୟର ବୈଷ୍ଣବ—3. A Baishnaba following the tenets of the Baishnaba reformer Rāmānuja.

**ରମାଙ୍କ**—ସଂ. ବି (ପଦ୍ୟ)—ଚନ୍ଦ୍ର—The moon. [ ପ୍ର—ବୋଲୁ ରମାମଣି ରମାଙ୍କ କେ ଭଣି ବଧୂଲୁ ବଧୂକ । ଉଞ୍ଜ. ବୈଦେହୀଶବିଳାସ । ]
Ramanka

**ରମାଢ଼ିମା**—ଦେ. ବିଣ—୧ । ବଙ୍କାଟଙ୍କା—1. Tortous'. ୨ । ଅଶୃଙ୍ଖଳା ସହିତ କରାଯିବା (କାର୍ଯ୍ୟ)—2. (work) Slovenly or carelessly performed. କ୍ରି. ବିଣ—ଅଶୃଙ୍ଖଳିତ-ରୂପେ—Slovenly. ( ପ୍ର—ମିସ୍ତ୍ରୀମାନେ ଏ କୋଠା ଖଣ୍ଡିକ ରାମାଢ଼ିମା କରି ତିଆରି କରି ଦେଇଅଛନ୍ତି ।)
Rāmādhimā
बाँकाटेढ़ा, बाँकाचूवा
**बाँकाटेढ़ा**

**ରାମାନନ୍ଦ**—ଦେ.ବି' ପୁଂ—ଖ୍ରୀଷ୍ଟୀୟ ୧୪ଶ ଶତାବ୍ଦୀରେ ଭାରତର ଉତ୍ତର-ପଶ୍ଚିମ ପ୍ରଦେଶରେ ଅବତୀର୍ଣ୍ଣ ବୈଷ୍ଣବ ଧର୍ମ-ସଂସ୍କାରକ ଓ ପ୍ରଚାରକ—A renowned reformer of the Hindu religion flourishing in the 14th century A. D. who advocated the worship of God Rāmchandra. [ ପ୍ର—ଏ ଧର୍ମପ୍ରଚାରାର୍ଥ ଭାରତର ନାନାସ୍ଥାନ ପରିଭ୍ରମଣ କରି ସରଳ ହିନ୍ଦୀଭାଷାରେ ସର୍ବତ୍ର ଧର୍ମପ୍ରଚାର କରୁଥିଲେ ଓ ରାମଙ୍କର ଉପାସନା ଏହାଙ୍କ ପ୍ରବର୍ତ୍ତିତ ଧର୍ମର ମୂଳତତ୍ତ୍ୱ ଥିଲା । ବିଭିନ୍ନ ମତାବଲମ୍ବୀ ହିନ୍ଦୁମାନଙ୍କୁ ରାମୋପାସନାରୂପ ଈଶ୍ୱରାରାଧନାରେ ପ୍ରବର୍ତ୍ତାଇ ସମସ୍ତ ହିନ୍ଦୁଙ୍କୁ ଏକ ଧର୍ମ-ସୂତ୍ରଦ୍ୱାରା ଏକ ଜାତି ଓ ଏକ ସମ୍ପ୍ରଦାୟଭୁକ୍ତ କରିବା ଏହାଙ୍କ ଲକ୍ଷ୍ୟ ଥିଲା । ହିନ୍ଦୀଭାଷାରେ ଏ ଅନେକଗୁଡ଼ିଏ ଧର୍ମଗ୍ରନ୍ଥ ମଧ୍ୟ ରଚନା କରିଥିଲେ । ଏହାଙ୍କ ପ୍ରବର୍ତ୍ତିତ ସମ୍ପ୍ରଦାୟ ରାମାୱତ୍ ବା ରାମାୱତ ସମ୍ପ୍ରଦାୟ ନାମରେ ଖ୍ୟାତ । ଖ୍ରୀ ୧୨ଶ ଶତାବ୍ଦୀରେ ଦାକ୍ଷିଣାତ୍ୟରେ ଅବତୀର୍ଣ୍ଣ ରାମାନୁଜଙ୍କ ଧର୍ମମତକୁ ଏ ଆର୍ଯ୍ୟାବର୍ତ୍ତରେ ବିଶେଷରୂପେ ପ୍ରଚାର କରିଥିଲେ । ] ୨ । ରାମାନନ୍ଦ ପ୍ରବର୍ତ୍ତିତ ରାମୋପାସକ ବୈଷ୍ଣବ ସମ୍ପ୍ରଦାୟ—2.The sect of Baishnabas who worship Rāma and follow the tenets of Rāmānanda. ୩ । ଲୋକଙ୍କୁ ଦିଆଯିବା ନାମ—3. A name given to males. ୪ । ରାଏ ରାମାନନ୍ଦ (ଦେଖ) 4. Rāe Rāmānanda ( See )
Rāmānanda
रामानन्द
**रामानन्द्**

**ରମାନନ୍ଦ ସ୍ୱାମୀ**—ଦେ. ବି. (ନାମ)—ବଙ୍ଗୀୟ ଧର୍ମପ୍ରଚାରକ (ଖ୍ରୀ. ୧୮୫୭—୧୯୦୧ )—A Bengali religious preacher of the name ( Born 1857—Died 1901). [ପ୍ର—ଏ ପ୍ରଥମେ ସଂସ୍କୃତ ପଢ଼ି ବିବାହ କରିଥିଲେ । ପରେ କଲିକତାରେ ସ୍କୁଲରେ ସଂସ୍କୃତ ପଣ୍ଡିତରୂପେ କାର୍ଯ୍ୟ କଲେ । ହିନ୍ଦୁଧର୍ମର ପ୍ରତିମାପୂଜାକୁ ଏ ସୁଖ ପାଉ ନ ଥିଲେ; ତେଣୁ ଏ ପଇତା ଛିଣ୍ଡାଇ ମହର୍ଷି ଦେବେନ୍ଦ୍ରନାଥଙ୍କ ସାହଚର୍ଯ୍ୟରେ ବ୍ରାହ୍ମ ହେଲେ । କେତେକ କାଳ ବ୍ରାହ୍ମସମାଜର ପ୍ରଚାରକ କାର୍ଯ୍ୟ କରି ସାଉଲପରେ ଏ ପୁନର୍ବାର ହିନ୍ଦୁ ମତାନୁସାରେ ସନ୍ନ୍ୟାସୀ ହେଲେ ଓ ଯୋଗ ତନ୍ତ୍ରାଦି ସାଧନା କଲେ । ଏ ଆସାମ, ତିବ୍ବତ, ପଞ୍ଜାବ, ହରଦ୍ୱାର, ବଦ୍ରୀନାଥ ଆଦି ଅନେକ ତୀର୍ଥ ଓ ପ୍ରଦେଶ ଭ୍ରମଣ କରିଥିଲେ । ତାଙ୍କ ପ୍ରବନ୍ଧଗୁଡ଼ିକ ସମସାମୟିକ 'ସାହିତ୍ୟ' ଆଦି ବଙ୍ଗୀୟ ପତ୍ରିକାରେ ପ୍ରକାଶିତ ହୋଇଥିଲା । ତିବ୍ବତ, କୈଲାସ, ମାନସରୋବର ଆଦିର ଅନେକ ବିବରଣ ଲେଖି ଏ ପତ୍ରିକାରେ ପ୍ରକାଶିତ କରିଥିଲେ । ଏହାଙ୍କ ବଙ୍ଗଳା ଜୀବନୀ "ପରିବ୍ରାଜକାଚାର୍ଯ୍ୟ ସ୍ୱାମୀ ରାମାନନ୍ଦ" ଦୁର୍ଗାନାଥ ଘୋଷ ତତ୍ତ୍ୱଭୂଷଣଙ୍କ ଦ୍ୱାରା ପ୍ରକାଶିତ । ]
Rāmānanda swāmi

**ରାମାନନ୍ଦୀ**—ଦେ. ବିଣ— ୧ । ରାମାନନ୍ଦ ସମ୍ବନ୍ଧୀୟ—1. Relating to Rāmānanda. ୨ । ରାମାନନ୍ଦ ସମ୍ପ୍ରଦାୟ ଅନୁଯାୟୀ—2. Following or according to the Rāmānanda sect. ଦେ.ବି—୧ । ରାମାନନ୍ଦମତାବଲମ୍ବୀ ବୈଷ୍ଣବ ସମ୍ପ୍ରଦାୟ—1. The sect of Baishnabas following the teachings of Rāmānanda. ୨ । ରାମାନନ୍ଦୀ ଚିତା ( ଦେଖ )—2. Rāmānandi chitā ( See )
Rāmānandi
रामानन्दी
**रामानन्दी**

**ରାମାନନ୍ଦୀ କାଟିବା**—ଦେ. କ୍ରି—୧ । ଆପଣା ମୁଣ୍ଡରେ ରାମାନନ୍ଦୀ ତିଲକ ଅଙ୍କିତ କରିବା—1, To paint 'Rāmānandi chitā on one's forehead.
Rāmānandi kātibā

ରାମାନନ୍ଦୀ ତିଲକ କାଟିବା
ରାମାନନ୍ଦୀ ଚିତା କାଟିବା
ରାମାନନ୍ଦୀ ଚିତା କରିବା(ଦେବା, ମାରିବା, ପିନ୍ଧିବା, ଘେନିବା, ନାଇବା, ଲଗାଇବା) } ୧ମ ଅର୍ଥ ଅନ୍ୟରୂପ

रामानन्दी तिलक काटा
**रामानन्दी तिलक करना**

(ପ୍ର—ପ୍ରାଚୀ କରିଛି କି ରାମାନନ୍ଦୀ ଚିତା ' ରାଧାନାଥ. ଚନ୍ଦ୍ରଭାଗା । ) ୨ ।

ରାମାନନ୍ଦୀ ଚିତା କାଟିବା, ରାମାନନ୍ଦୀ କାଟିଦେବା
ରମାନନ୍ଦୀ ଦେବା, ରମାନନ୍ଦୀ ମାରିବା
ରମାନନ୍ଦୀ ଚିତାଦେବା, ରମାନନ୍ଦୀ ପଠାଏ ଦେବା
ରମାନନ୍ଦୀ ପଠାଏ କାଟିବା, ରମାନନ୍ଦୀ ପଠାଏ ମାରିବା } ୨ୟ ଅର୍ଥ ଅନ୍ୟରୂପ

ठकाना
**रामानन्दी बनकर ठगना**

( ଲକ୍ଷଣାର୍ଥ ) କୌଣସି ବ୍ୟକ୍ତିକୁ ଧପାଇବା ବା ପ୍ରତାରଣା କରିବା— 2. To defraud, to cheat a person. ୩ । ପ୍ରତାରଣାପୂର୍ବକ ଧନାଦି ଅପହରଣ କରି ସ୍ଥଳତ୍ୟାଗ କରିବା—3. To leave a place after defrauding a person of his money etc. [ ପ୍ର— ଧର୍ମଧ୍ୱଜୀ ପାପୀ ଦୁଷ୍ଟଲୋକମାନେ ବୈଷ୍ଣବ ଭେକ ଧାରଣ କରି ମାଳାତିଳକ ଧାରଣ କରି(ରମାନନ୍ଦୀ ଚିତା ଘେନି)ପରମଧାର୍ମିକ ବୈରାଗୀରୂପେ ଆପଣାକୁ ପରିଚୟ ଦେଇ ସରଳ ଗୃହସ୍ଥ-

ମାନଙ୍କ ନିକଟରେ ଆଶ୍ରୟ ଲାଭ କରି ସେମାନଙ୍କଠାରୁ ଭକ୍ତି ଓ ସେବା ଗ୍ରହଣ କରି ଉକ୍ତ ବ୍ୟବହାରର ଅପବ୍ୟବହାରପୂର୍ବକ ଲୋକଙ୍କୁ ଠକାଉଥିଲେ ଓ କପଟାଚରଣପୂର୍ବକ ଲୋକଙ୍କର ଧନାଦି ହରଣ କରି ( ଏପରି କି, ପରିବାରସ୍ଥ କୁଳବଧୂମାନଙ୍କୁ ଫୁସୁଲାଇ ଘରୁ କାଢ଼ି ) ନେଇ ପଳାଇ ଯାଉଥିବାର ଅନୁଭବରୁ ଏ ବାକ୍ୟର ଉପରୋକ୍ତ ପ୍ରଚଳିତ "ଠକାଇବା" ଅର୍ଥ ଚଳିଅଛି । ଏ ଅନୁଭବ ପୂର୍ବ ଅପେକ୍ଷା କମିଅଛି, କିନ୍ତୁ ଏହା ଅବଧି ମଧ୍ୟ ଘଟୁଅଛି । ରାମାନନ୍ଦୀ ଚିତା କାଟିବା ଭଣ୍ଡମାନଙ୍କ ପରେ କୃଷ୍ଣଭକ୍ତ ବୈଷ୍ଣବମାନେ—ଅର୍ଥାତ୍ ଯେଉଁମାନେ ହରିମନ୍ଦିର ଚିତା କାଟୁଥିଲେ—ମଧ୍ୟ ଏ ଅନ୍ୟାୟ କରିବା ଦେଖାଯିବାରୁ 'ହରିମନ୍ଦିର କାଟିବା' ବାକ୍ୟର ମଧ୍ୟ ଏହି ଅର୍ଥରେ ବ୍ୟବହାର ଚଳିଅଛି । ସାଧାରଣତଃ ଧର୍ମଧ୍ୱଜୀମାନେ ବାହାରରେ "ଚିତାକାଟି" ସେହି ଚିତାର ଆଶ୍ରୟକରି ଲୋକଙ୍କୁ ଠକାଉଥିବା ଅନୁଭବରୁ 'ଚିତାକାଟିବା' 'ଚିତା ଦେବା' ଆଦି ବାକ୍ୟ ମଧ୍ୟ ଧପାଇବା ଅର୍ଥରେ ବ୍ୟବହୃତ ହୋଇଅଛି । ଯଥା—ସେ ମତେ ରାମାନନ୍ଦୀ ଦେଇ ଖସିଗଲା, ଅମୁକ ଲୋକ ମୋଠାରୁ ପାଞ୍ଚୋଟି ଟଙ୍କା ଚିତା କାଟି ଚମ୍ପଟ ଦେଲା ।]

**ରାମାନନ୍ଦୀ ଚିତା**—ଦେ. ବି—ରାମାନନ୍ଦସମ୍ପ୍ରଦାୟର ବୈଷ୍ଣବମାନଙ୍କ କପାଳରେ ଧାରଣ କରିବା ତିଳକ ବା ଚନ୍ଦନାଦିର ତ୍ରିପୁଣ୍ଡ୍ରକ ଚିତା—Trident- or three-forked sandal-paste mark drawn on the forehead by Rāmānanda Baishnabas. [ଦ୍ର—ଏହା ତ୍ରିଶୂଳ ପରି; ପ୍ରଥମେ ନାସାର୍ଦ୍ଧରୁ ବା ନାସାଗ୍ରରୁ ଗୋଟିଏ ରେଖା ଯାଇ ଭ୍ରୂଲତା ମଧ୍ୟରେ ପଶି ସେଠାରୁ ଦୁଇ ଶାଖାରେ କପାଳସ୍ଥ କେଶମୂଳ ପର୍ଯ୍ୟନ୍ତ ଟଣାଯାଏ ଓ ଏହି ଦୁଇ ଶାଖାର ମଝିରେ ଗୋଟିଏ ରେଖା ସଂଯୁକ୍ତ ହୁଏ । ନାସାର୍ଦ୍ଧାତ୍ କେଶ ପର୍ଯ୍ୟନ୍ତଂ ତିଳକଂ ହରିମନ୍ଦିରଂ ବାକ୍ୟ ଅନୁସାରେ ହରିମନ୍ଦିର ଚିତା ମଧ୍ୟ ରାମାନନ୍ଦୀ ଚିତାପରି ତ୍ରିଶିଖ । 'ହରିମନ୍ଦିର' ଚିତାର ମଧ୍ୟସ୍ଥ ଶୂଳ ଧଳା ଓ ଦୁଇପାଖର ଶୂଳ ଧଳା । ରାମାନନ୍ଦୀ ଚିତାର ମଧ୍ୟ ଦୁଇପାଖର ଶୂଳ ଧଳା ଓ ମଧ୍ୟସ୍ଥ ଶୂଳ ଧଳା । ରାମାନନ୍ଦସମ୍ପ୍ରଦାୟଙ୍କ ଚିତା ରାମାନନ୍ଦୀ ପରି, କିନ୍ତୁ ମଝି ଶିଖାଟି ଧଳା ନ ହୋଇ ନାଲି ବା ହଳଦିଆ ଥାଏ ।] (ଉ—କୁଆଁ ତାରି ତହିଁ ମଧ୍ୟେ ହରିଜିତା, ପ୍ରାଚୀ କରୁଛି କି ରାମାନନ୍ଦୀ ଚିତା-ରାଧାନାଥ. ନନ୍ଦିକେଶ୍ୱରୀ ।)

Rāmānandi chitā

बामानन्दीतिलक **रामानन्दीटीका(तिलक)**

(ରାମାନନ୍ଦୀ ତିଳକ—ଅନ୍ୟରୂପ)

**ରାମାନନ୍ଦୀ ଚିତା କାଟିବା**—ଦେ. କ୍ରି—୧ । ଅନ୍ୟ ବ୍ୟକ୍ତିର ମୁଣ୍ଡରେ ରାମାନନ୍ଦୀ ତିଳକ ଚିହ୍ନ ଅଙ୍କିତ କରିବା—1. To paint the Ramandi sandal paste paint on another's forehead. ୨ । (ଲକ୍ଷଣାର୍ଥ)—ଭଣ୍ଡାଇକରି ଧନ ଆଦି ନେବା—2. To defraud a person of cash etc by undue influence. [ଦ୍ର—ବୈଷ୍ଣବ ଗୁରୁ କୌଣସି ଶିଷ୍ୟଙ୍କୁ ମନ୍ତ୍ର ଦେଇ ଦୀକ୍ଷିତ କଲାବେଳେ ଉକ୍ତ ଶିଷ୍ୟଙ୍କୁ ଡୋରି, କଉପୁନି, ମାଳା ଓ ତିଳକ ଦିଅନ୍ତି, ଅର୍ଥାତ୍, ଶିଷ୍ୟ ଉକ୍ତ ଡୋରିକୁ ଅଣ୍ଟାରେ ପିନ୍ଧି ତା ଉପରେ କୌପୀନ ପରିଧାନ କରେ । ଗୁରୁ ଶିଷ୍ୟର ବେକରେ ତୁଳସୀ ମାଳାଟି ପିନ୍ଧାଇ ଦିଅନ୍ତି ଓ ଆପଣାର ସମ୍ପ୍ରଦାୟର ବିଶିଷ୍ଟ ତିଳକ ଚିହ୍ନ ତା କପାଳରେ କାଟିଦିଅନ୍ତି, ଅର୍ଥାତ୍ ନିଜେ ଶିଷ୍ୟ ମୁଣ୍ଡରେ ଅଙ୍କିତ କରିଦିଅନ୍ତି । ରାମାନନ୍ଦୀ ସମ୍ପ୍ରଦାୟର ଗୁରୁ ନବଦୀକ୍ଷିତ ଶିଷ୍ୟର ମୁଣ୍ଡରେ ତିଳକ କାଟିଦେଇ ଶିଷ୍ୟ ଉପରେ ଅଯଥା ଅଧିକାର ବିସ୍ତାରପୂର୍ବକ ଶିଷ୍ୟଠାରୁ ଧନ ଆଦି ଠକାଇ ନେବାର ଓ ଶିଷ୍ୟଙ୍କ ପରିବାରରେ ମଧ୍ୟ ସମୟସମୟରେ ଜଘନ୍ୟ କାଣ୍ଡମାନ ଘଟାଇବାର ଉଦାହରଣ ବିରଳ ନୁହେ । ଏଥିପାଇଁ କୌଣସି ବ୍ୟକ୍ତିକୁ ରାମାନନ୍ଦୀ ଚିତା ଦେବା ବା ରାମାନନ୍ଦୀ କାଟିବା ବାକ୍ୟର ଲକ୍ଷଣାର୍ଥ—'ଭଣ୍ଡାଇକରି ଧନ ଆଦି ନେବା' ହୋଇଅଛି । ]

Rāmānandi chitā kāṭibā

( ରାମାନନ୍ଦୀଚିତା କାଟିଦେବା—ଅନ୍ୟରୂପ )

बामानन्दीतिलककाटा **रामानन्दीटीकालगाना**

**ରାମାନୁଗ୍ରହ**—ସଂ. ବି (୬ଷ୍ଠୀ ତତ୍; ରାମ+ଅନୁଗ୍ରହ)—୧ । ରାମଚନ୍ଦ୍ରଙ୍କ ଅନୁଗ୍ରହ )—1. The favour of Rāmachandra. ୨ । ଈଶ୍ୱରାନୁଗ୍ରହ—2 The favour of God.

Rāmānugraha

**ରାମାନୁଜ**—ସଂ. ବି (୬ଷ୍ଠୀ ତତ୍; ରାମ+ଅନୁଜ)—୧ । ରାମଚନ୍ଦ୍ରଙ୍କ ସାନ ବୈମାତ୍ରେୟ ଭାଇ ଲକ୍ଷ୍ମଣ—1. Lakshmana, the younger brother of Rāmachandra. ଦେ. ବି. ନାମ—୧ । ଦାକ୍ଷିଣାତ୍ୟପ୍ରଦେଶରେ ଖ୍ରୀ: ଦ୍ୱାଦଶ ଶତାବ୍ଦୀରେ ଆବିର୍ଭୂତ ସୁପ୍ରସିଦ୍ଧ ବିଷ୍ଣୁଭକ୍ତ ଓ ଧର୍ମ ପ୍ରବର୍ତ୍ତକ—1. Name of a Hindu religious reformer of South India in the 12th century. [ଦ୍ର—ଏହାଙ୍କ ଜନ୍ମ ସମ୍ଭବତଃ ଖ୍ରୀ: ୧୦୭୩ ଓ ମୃତ୍ୟୁ ୧୧୯୪ ରେ ୧୨୧ ବର୍ଷ ବୟସରେ ହୋଇଥିଲା (ହି. ଶ.) । ଏ ଶୈବମତ ଓ ଜୈନମତ ବିରୁଦ୍ଧରେ ବିଷ୍ଣୁମତ ପ୍ରତିଷ୍ଠିତ କରିବାପାଇଁ ବହୁ ଚେଷ୍ଟା କରିଥିଲେ । ସେଥିପାଇଁ ଏହାଙ୍କୁ ତାତ୍କାଳିକ ରାଜା ଓ ପ୍ରଜାଙ୍କଠାରୁ ନାନା ନିଗ୍ରହ ଭୋଗ କରିବାକୁ ପଡ଼ିଥିଲା । ଏ ପ୍ରଥମେ ଦାକ୍ଷିଣାତ୍ୟର ଚୋଳ ରାଜ୍ୟରେ, ପରେ ସେଠାରୁ ପଳାଇ ଯାଇ ମହୀଶୂର ରାଜ୍ୟରେ ଆଶ୍ରୟଗ୍ରହଣ କରିଥିଲେ ଓ ମହୀଶୂର ରାଜାଙ୍କୁ ନିଜ ମତରେ ଦୀକ୍ଷିତ କରିଥିଲେ । ରାମାନନ୍ଦ ଓ କବୀର ମଧ୍ୟ ଏହାଙ୍କ ମତାବଲମ୍ବୀ । ରାମାନୁଜ ରାମଭକ୍ତ ବୈଷ୍ଣବ ଓ ଚୈତନ୍ୟ କୃଷ୍ଣଭକ୍ତ ବୈଷ୍ଣବ ଥିଲେ ମଧ୍ୟ ଚୈତନ୍ୟଦେବ ରାମାନୁଜଙ୍କ ମତର ସାର ମର୍ମ ବିଷ୍ଣୁ ଭକ୍ତିକୁ ଗ୍ରହଣ କରିଥିଲେ । ଶଙ୍କରାଚାର୍ଯ୍ୟ ଯେଉଁପରି ବୌଦ୍ଧଧର୍ମର ବିରୋଧୀ ଥିଲେ ରାମାନୁଜ ସେହିପରି ଜୈନଧର୍ମର ବିରୋଧୀ ଥିଲେ । ଏହାଙ୍କ

Rāmānuja

বামানুজ **रामानुज**

**रामानुज**

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ୍ଞ | ଶ,ଷ | ଙ୍କ | ଇୟୁ | ଉଅ | ହ୍ମ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଘ | ସ | ଗଁ୍ୟ | ଇଅ | ହ୍ବ | ନ୍ମ |

ଦାର୍ଶନିକ ସିଦ୍ଧାନ୍ତର ଆଧାର ଉପନିଷଦ୍ ଅଟେ । ବେଦାନ୍ତରେ ଏହାଙ୍କ ସିଦ୍ଧାନ୍ତ 'ବିଶିଷ୍ଟାଦ୍ୱୈତ' ନାମରେ ପ୍ରସିଦ୍ଧ ଅଟେ । ରାମାନୁଜ ବାଲ୍ମୀକି ରାମାୟଣର ଖଣ୍ଡିଏ ଟୀକା, ବେଦାନ୍ତସାର ଓ ବେଦାନ୍ତ ଦୀପ ନାମକ ବେଦାନ୍ତସୂତ୍ରର ବ୍ୟାଖ୍ୟା ଓ ବେଦାର୍ଥସଂଗ୍ରହ ଗ୍ରନ୍ଥମାନ ସଂସ୍କୃତରେ ରଚନା କରିଥିଲେ ଓ ବ୍ରହ୍ମସୂତ୍ର ଓ ଭଗବଦ୍‌ଗୀତାର ଭାଷ୍ୟ ରଚନା କରିଥିଲେ ।

ରାମାନୁଜପ୍ରବର୍ତ୍ତିତ ଧର୍ମ ଦାକ୍ଷିଣାତ୍ୟରେ ପ୍ରତିଷ୍ଠାଲାଭ କରିଥିଲା ଓ ଏହାଙ୍କ ପରବର୍ତ୍ତୀ ରାମାନନ୍ଦ ଏହି ଧର୍ମମତ ଭାରତର ଆର୍ଯ୍ୟାବର୍ତ୍ତରେ ପ୍ରଚାରିତ କରିଥିଲେ ।

ରାମାନୁଜ ଓ ରାମାନନ୍ଦ ଉଭୟଙ୍କ ଧର୍ମମତ ରାମୋପାସନାମୂଳକ । ତେବେ, କେତେକ ସାମାନ୍ୟ ବିଷୟରେ, ଯଥା ତିଳକରେ, ଏ ଦୁହିଁଙ୍କର ପ୍ରଭେଦ ଅଛି ।

ରାମାନୁଜୀମାନେ ଗୃହୀ ଓ ନିହଙ୍ଗୀ ହୋଇପାରନ୍ତି, କିନ୍ତୁ ରାମାନନ୍ଦୀମାନେ ନିହଙ୍ଗୀ ।

ପୁରୀର ପ୍ରସିଦ୍ଧ ଇମାର ମଠ, ଦକ୍ଷିଣପାର୍ଶ୍ୱ, ଉତ୍ତରପାର୍ଶ୍ୱ ଆଦି ମଠର ମହନ୍ତମାନେ ରାମାନୁଜସଂପ୍ରଦାୟର 'ନିହଙ୍ଗୀ' ବୈଷ୍ଣବ ଓ କଟକ ଜଗନ୍ନାଥବଲ୍ଲଭ ଆଦି ମଠର ମହନ୍ତମାନେ ରାମାନୁଜସଂପ୍ରଦାୟର 'ଗୃହୀ' ବୈଷ୍ଣବ ଅଟନ୍ତି ।

ମଞ୍ଜୁଷା ରାଜବଂଶ ରାମାନୁଜ ତିଳକ ଧାରଣ କରନ୍ତି ଓ ସେଠାରେ କାର୍ଯ୍ୟ କରୁଥିବା ପ୍ରତ୍ୟେକ କର୍ମଚାରୀ ଏହି ତିଳକ ଲଗାନ୍ତି । ]

୨ । ରାମାନୁଜଙ୍କ ପ୍ରବର୍ତ୍ତିତ ବୈଷ୍ଣବଧର୍ମସଂପ୍ରଦାୟ—2. The Baishṇaba sect started by Rāmānuja. ୩ । ରାମାନୁଜସଂପ୍ରଦାୟଭୁକ୍ତ ବୈଷ୍ଣବ—3. A Baishṇaba following Rāmānuja's doctrines.

ରାମାନୁଜ ଦାସ—ଦେ. ବି—୧ । ରାମାନୁଜସଂପ୍ରଦାୟର ବୈଷ୍ଣବମାନଙ୍କର Rāmānuja dāsa ନାମ ପରେ ଯୁକ୍ତ ହେବା ବଂଶଗତ ବା ବାମାନୁଜଦାସ **रामानुजदास** ସାମ୍ପ୍ରଦାୟିକ ଉପାଧି—1. The title of Baishṇabas of the Rāmānuja sect added to the individual names. (ଯଥା—ଇମାର ମଠର—ମହନ୍ତ ଗଦାଧର ରାମାନୁଜ ଦାସ, କଟକ ଜଗନ୍ନାଥବଲ୍ଲଭ ମଠର—ଶ୍ରୀ ଲକ୍ଷ୍ମଣ ରାମାନୁଜ ଦାସ ।)

ରାମାନୁଜୀ—ଦେ. ବିଣ—୧ । ରାମାନୁଜସଂପ୍ରଦାୟଭୁକ୍ତ—1. Belonging to the Rāmānuja sect of Rāmānuji ବାମାନୁଜୀ **रामानुजी** Baishaṇbas. ୨ । ରାମାନୁଜସଂପ୍ରଦାୟଙ୍କଦ୍ୱାରା ବ୍ୟବହୃତ—2. Used by the Rāmānuja sect. ୩ । ରାମାନୁଜ ସମ୍ବନ୍ଧୀୟ—Relating to Rāmānuja ୪ । ରାମାନୁଜଧର୍ମମତାବଲମ୍ବୀ—4. Following the tenets of Baishṇabism propagated by Rāmānuja.

ରାମାନୁଜୀ ତିଳକ(ଚିତା)—ଦେ. ବି—ରାମାନୁଜସଂପ୍ରଦାୟର ବୈଷ୍ଣବମାନେ Rāmānuji tilaka(chitā) କପାଳରେ କାଟିବା ତ୍ରିଶିଖା ଚିହ୍ନ ବାମାନୁଜୀତିଲକ **रामानुजीतिलक** (ଏହାର ଦୁଇପାଖର ଶିଖା ଧଳା ଓ ମଝିର ଶିଖା ନାଲି ବା ହଳଦିଆ; ଏ ମଝି ଗାରକୁ ଶ୍ରୀ ବୋଲାଯାଏ ଓ ନାଲି ଚୂନାକୁ ଶିଆ ବୋଲାଯାଏ ।) Trident-shaped marks put on the forehead by the followers of the Rāmānuja tenets.

ରାମାନୁଜୀୟ—ସଂ ବିଣ—ରାମାନୁଜସମ୍ବନ୍ଧୀୟ—Rāmānujiya Relating to Rāmānuja.

ରାମାବତାର—ସଂ. ବି—୧ । ବିଷ୍ଣୁଙ୍କର ତ୍ରେତାଯୁଗରେ ଅଯୋଧ୍ୟାରାଜ Rāmābatāra ଦଶରଥଙ୍କ ଜ୍ୟେଷ୍ଠପୁତ୍ରରୂପେ ଜାତ ହୋଇ ରାବଣାଦି ରାକ୍ଷସମାନଙ୍କୁ ନିଧନ କରିଥିବା ଅବତାର । (ଏହା ବିଷ୍ଣୁଙ୍କର ୧୦ ଅବତାର ମଧ୍ୟରୁ ୭ମ ଅବତାର)—1. The seventh incarnation of Bishṇu on the earth as Rāmachandra. ୨ । ତ୍ରେତା ଯୁଗରେ ବିଷ୍ଣୁଙ୍କର ଜମଦଗ୍ନି ଋଷିଙ୍କ ପୁତ୍ରରୂପେ ପରଶୁରାମ ଅବତାର (୬ଷ୍ଠ ଅବତାର)—2. Bishṇu's sixth incarnation as Paraśurāma. ୩ । ଦ୍ୱାପର ଯୁଗରେ ବିଷ୍ଣୁଙ୍କର ବଳରାମ ବା ରାମକୃଷ୍ଣରୂପରେ ବସୁଦେବଙ୍କ ପୁତ୍ରରୂପେ ଅଷ୍ଟମ ଅବତାର—3. Bishṇu's eighth incarnation as Balarāma.

ରାମାଭିଷେକ—ସଂ. ବି (୬ଷ୍ଠୀ ତତ୍)—ଲଙ୍କାରୁ ସୀତାଙ୍କୁ ଉଦ୍ଧାର କରି Rāmābhisheka ଫେରି ଆସି ଅଯୋଧ୍ୟା ରାଜସିଂହାସନରେ ରାମଙ୍କର ରାଜପଦରେ ପ୍ରତିଷ୍ଠାରୂପ ଉତ୍ସବ—The installation of Rāmachandra on the throne of Ajodhyā after his return from Lankā.

ରାମାଭିଷେକ(କୀ) ମଉର୍ଦ୍ଦ—ଦେ. ବି (ସଂ. ରାମାଭିଷେକ ଓ ମୁଦ୍ରା)—Rāmābhisheka(kī) maurda ରାମଚନ୍ଦ୍ରଙ୍କ ଅଭିଷେକକାଳୀନ ବାମାଭିଷେକ ମୋହର ଚିତ୍ର ଅଙ୍କିତ ସୁନାର ମୁଦ୍ରା—Gold coin **रामाभिषेक मोहर** having the scenes of Rama's [ରାମାଭିଷେକ(କୀ) ମୋହ(ହୋ)ର—ଅନ୍ୟରୂପ] installation stamped on it.

[ଦ୍ର—ଏହି ମୁଦ୍ରାମାନ ପୂର୍ବେ ଭାରତର ହିନ୍ଦୁ ରାଜାମାନଙ୍କ ଅମଳରେ ବ୍ୟବହୃତ ହେଉଥିଲା ଓ ତାହା ବର୍ତ୍ତମାନ ମୁଦ୍ରା ରୂପେ ପ୍ରଚଳିତ ନ ଥିଲେହେଁ ପୁରାତନ ମୁଦ୍ରାମାନଙ୍କ ସ୍ୱର୍ଣ୍ଣ ବିଶୁଦ୍ଧତର ଥିବାରୁ ଲୋକେ ଏହାକୁ ଅତି ଆଗ୍ରହ

ଦିହବାଦର ସାଧାରଣ ସ୍ୱର୍ଣ୍ଣ ମୁଦ୍ରାର ଓଜନ ଅନୁସାରେ ହେବା ମୂଲ୍ୟ ଅପେକ୍ଷା ବେଶୀ ମୂଲ୍ୟରେ କିଣନ୍ତି ଏବଂ ଏଥିରେ ରାମଚନ୍ଦ୍ରଙ୍କ ରୂପ ମୁଦ୍ରିତ ଥିବାରୁ ଏହାକୁ ଭକ୍ତି ସହକାରେ ଘରେ ରଖନ୍ତି ଓ କଣ୍ଠରେ ଧାରଣ କରନ୍ତି । ଏଥିରେ ସିଂହାସନ ଉପରେ ବସିଥିବା ରାମଚନ୍ଦ୍ର ଓ ସୀତାଙ୍କ ଉପରେ ରାଜଛତ୍ର ଧରା ହୋଇଥାଏ ଓ ପାଖରେ ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ଦଣ୍ଡାୟମାନ ହୋଇଥିବାର ଚିତ୍ର ଥାଏ । ମୂର୍ଖ ଲୋକେ ବିଶ୍ୱାସ କରନ୍ତି ଯେ ତ୍ରେତାଯୁଗରେ ରାମଚନ୍ଦ୍ର ରାଜ୍ୟାଭିଷିକ୍ତ ହେବା ସମୟରେ ଏ ମୁଦ୍ରାମାନ ମୁଦ୍ରିତ ହୋଇଥିଲା । ପ୍ରକୃତରେ ତାହା ନୁହେ । ହିନ୍ଦୁ ରାଜାମାନେ (ଯଥା—ଜୟପୁରର ମହାରାଜା) ରାମାଭିଷେକ ଚିହ୍ନାଙ୍କିତ ମୁଦ୍ରାମାନ ନୂତନ ମୁଦ୍ରିତ କରି ଆପଣା ରାଜ୍ୟରେ ଚଳାଉଥିଲେ ଏବଂ ବର୍ତ୍ତମାନ ମଧ୍ୟ କାରିଗରମାନେ ରାମାଭିଷେକର ଛାପା ଦ୍ୱାରା ମୁଦ୍ରିତ କରି ନୂଆ ମୁଦ୍ରାମାନ ରାମାଭିଷେକୀ ମୋହର ରୂପେ ବିକି କରୁଅଛନ୍ତି । ]

**ରାମାୟଣ**—ସଂ. ବି ( ବହୁବ୍ରୀହି; ରାମ + ଅୟନ = ଚରିତ, ଆଶ୍ରୟ )—Rāmāyaṇa ୧ । ରାମଙ୍କୁ ଆଶ୍ରୟ କରି ଲିଖିତ ଗ୍ରନ୍ଥ ବା ରାମଙ୍କ ଚରିତ ବର୍ଣ୍ଣିତ ହୋଇଥିବା ଗ୍ରନ୍ଥ—1. The Rāmāyaṇa or work narrating the events connected with the life of Rāmachandra. ୨ । ବାଲ୍ମୀକି ଋଷି ପ୍ରଣୀତ ରାମଚରିତ ବର୍ଣ୍ଣନାତ୍ମକ ସଂସ୍କୃତ ମହାକାବ୍ୟ—2. The great Sanskrit epic-poem by sage Bālmiki narrating the events of Rāmachandra's life. [ଦ୍ର—ରାମଚନ୍ଦ୍ରଙ୍କ ସମକାଳୀନ ବାଲ୍ମୀକିକୃତ ରାମାୟଣ ଗ୍ରନ୍ଥ ସାତକାଣ୍ଡରେ ବା ଭାଗରେ ବିଭକ୍ତ, ଯଥା—୧ । ଆଦିକାଣ୍ଡ ବା ବାଳକାଣ୍ଡ—ଅଯୋଧ୍ୟାର ଓ ଦଶରଥଙ୍କ ବିବରଣ, ଦଶରଥଙ୍କ ପୁତ୍ରେଷ୍ଟି ଯାଗ, ରାମଜନ୍ମ, ରାମଙ୍କ ଦ୍ୱାରା ହରଧନୁ ଭଙ୍ଗ, ସୀତାଙ୍କ ସହିତ ବିବାହ ଓ ପରଶୁରାମଙ୍କ ପରାଜୟ ।

୨ । ଅଯୋଧ୍ୟାକାଣ୍ଡ—ରାମଙ୍କ ବିବାହ ଓ ଅଯୋଧ୍ୟାରେ ସୀତାଙ୍କ ସହିତ ବାସ ଓ ପିତୃସତ୍ୟ ପାଳନାର୍ଥ ବନଗମନ ।

୩ । ଅରଣ୍ୟକାଣ୍ଡ—ଦଶରଥଙ୍କ ମୃତ୍ୟୁ, ରାମ ଲକ୍ଷ୍ମଣ ସୀତାଙ୍କର ଦଣ୍ଡକାରଣ୍ୟରେ ସ୍ଥିତି, ବିରାଧ ବଧ, ଖରଦୂଷଣ ବଧ, ରାବଣଦ୍ୱାରା ସୀତା ହରଣ ।

୪ । କିଷ୍କିନ୍ଧ୍ୟା କାଣ୍ଡ—ବାନରରାଜ ସୁଗ୍ରୀବଙ୍କ ସଙ୍ଗେ ବନ୍ଧୁତାସ୍ଥାପନ ଓ ବାଳୀବଧ ।

୫ । ସୁନ୍ଦରା କାଣ୍ଡ—ହନୁମାନର ଲଙ୍କା ଗମନ, ସୀତାଠାବ, ଲଙ୍କା ଦହନ ଓ ରାମଚନ୍ଦ୍ରଙ୍କ ନିକଟ ସୀତାଙ୍କ ସମ୍ବାଦ ଆନୟନ ।

୬ । ଯୁଦ୍ଧ ବା ଲଙ୍କା କାଣ୍ଡ—ରାମଙ୍କର ରାବଣ ସହିତ ଯୁଦ୍ଧ ଓ ରାବଣ ବଧ ଏବଂ ଅଯୋଧ୍ୟା ପ୍ରତ୍ୟାଗମନ ।

୭ । ଉତ୍ତରା କାଣ୍ଡ—ଅଯୋଧ୍ୟାରେ ରାଜତ୍ୱ, ସୀତାବନବାସ, ରାମଚନ୍ଦ୍ରଙ୍କ ଅଶ୍ୱମେଧ ଯଜ୍ଞ, ଲବକୁଶଙ୍କ ରାମାୟଣ ଗାନ, ସୀତାଙ୍କର ଓ ରାମଙ୍କର ଦେହତ୍ୟାଗ ।

ରାମଚନ୍ଦ୍ରଙ୍କ ଦ୍ୱାରା ନିର୍ବାସିତା ସୀତାଙ୍କ ଗର୍ଭରୁ ଯମଜ-କୁମାର କୁଶ ଓ ଲବ ବାଲ୍ମୀକିଙ୍କ ତପୋବନରେ ଜାତ ହୋଇ ସେହିଠାରେ ଶିକ୍ଷାଲାଭ କରିବା ସମୟରେ ବାଲ୍ମୀକି ମୁନି ଏହି ବିରାଟକାବ୍ୟ ରଚନା କରି ତାହା ଏହି କୁମାର-ଦ୍ୱୟଙ୍କୁ ମୁଖସ୍ଥ କରାଇଥିଲେ ଓ ରାମଚନ୍ଦ୍ରଙ୍କ ଅଶ୍ୱମେଧ ଯଜ୍ଞସ୍ଥଳକୁ ନିମନ୍ତ୍ରିତ ହୋଇଥିବା ବାଲ୍ମୀକି ମୁନିଙ୍କ ସଙ୍ଗେ ଯାଇଥିବା କୁମାରଦ୍ୱୟ ଅଯୋଧ୍ୟାରେ ଉପସ୍ଥିତ ହୋଇ ଉକ୍ତ ରାମାୟଣ କାବ୍ୟକୁ ଆବୃତ୍ତି କରିଥିଲେ । ମହାଭାରତ ଗ୍ରନ୍ଥର ୧୮ଟି ଖଣ୍ଡକୁ ପର୍ବ ବୋଲାଯାଏ ଓ ରାମାୟଣ ଗ୍ରନ୍ଥର ୭ଟି ଖଣ୍ଡକୁ କାଣ୍ଡ ବୋଲାଯାଏ । ସମଗ୍ର ପୃଥିବୀର ସାହିତ୍ୟରେ ରାମାୟଣ ଓ ମହାଭାରତ ଶ୍ରେଷ୍ଠ ସ୍ଥାନ ଅଧିକାର କରିଅଛି ।

ଏହି ମୂଳରାମାୟଣକୁ ଅନୁବାଦ ଓ ଅବଲମ୍ବନ କରି ହିନ୍ଦୀ, ବଙ୍ଗଳା, ଓଡ଼ିଆ, ତେଲଙ୍ଗୀ, ତାମିଲ ଗୁଜରାଟୀ, ମରହଟ୍ଟୀ ଆଦି ଭାଷାର ଲେଖକମାନେ ରାମାୟଣ ରଚନା କରିଅଛନ୍ତି ।

ସାଧାରଣତଃ ଭାରତରେ ୩ ପ୍ରକାର ବାଲ୍ମୀକି ରାମାୟଣ ଦେଖାଯାଏ ଯଥା—ଔଦୀଚ୍ୟ, ଦାକ୍ଷିଣାତ୍ୟ ଓ ଗୌଡ଼ୀୟ । ଏହି ୩ ରାମାୟଣରେ ସର୍ଗ ସଂଖ୍ୟାରେ ଓ ପାଠରେ ବହୁତ ପ୍ରଭେଦ ଦେଖାଯାଏ । ( ହି, ଶ. )

ଉତ୍କଳୀୟ କବି ବିଶ୍ୱନାଥ ଖୁଣ୍ଟିଆ ସମଗ୍ର ବାଲ୍ମୀକି ରାମାୟଣର ବିଷୟ ଅବଲମ୍ବନ କରି ବିବିଧ ସୁଲଳିତ ଛନ୍ଦରେ ବିଚିତ୍ରରାମାୟଣ ନାମକ ସରଳ ଓଡ଼ିଆ ପଦ୍ୟଗ୍ରନ୍ଥ ରଚନା କରିଅଛନ୍ତି । ଏହାକୁ ସାଧାରଣତଃ 'ବିଶିରାମାୟଣ' ବୋଲାଯାଏ ଓ ଏହାକୁ ବାଲ୍ମୀକିରାମାୟଣାନୁଯାୟୀ କବି ଧାରାବାହିକରୂପେ ୭ କାଣ୍ଡରେ ବିଭକ୍ତ କରିଅଛନ୍ତି । ଏହି ବିଶି ରାମାୟଣକୁ ଅବଲମ୍ବନ କରି ଓଡ଼ିଶାରେ ରାମନବମୀ ଅଭିନୟ କରାଯାଏ ।

ହରିହର ନାମକ ଜଣେ ଓଡ଼ିଆ କବି ସୁଚିତ୍ର ରାମାୟଣ ନାମକ ଓଡ଼ିଆ ପଦ୍ୟଗ୍ରନ୍ଥ ରଚନା କରିଅଛନ୍ତି ।

ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରେ ପ୍ରାଚୀନ କବି ଜଗନ୍ନାଥ ଦାସଙ୍କ ଶିଷ୍ୟ ପୁରୀବାସୀ ବଳରାମ ଦାସ ମଧ୍ୟ ୭ କାଣ୍ଡ ଓଡ଼ିଆ ରାମାୟଣ ଗ୍ରନ୍ଥ ଲେଖି ଯାଇଅଛନ୍ତି । ଏ ରାମାୟଣକୁ ଲୋକେ ଜଗନ୍ମୋହନ ବା ଜଗମୋହନ ରାମାୟଣ ବୋଲି କହନ୍ତି ।

ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଗଞ୍ଜାମର କବି କୃଷ୍ଣ ଚରଣ ପଟ୍ଟନାୟକ ମୂଳ ରାମାୟଣକୁ ପଦ୍ୟରେ ଅନୁବାଦ

କରି ଓଡ଼ିଆ ରାମାୟଣ ଲେଖିଥିଲେ । ଏହାକୁ ଲୋକେ 'କୃଷ୍ଣ ରାମାୟଣ' ବୋଲି ଡାକନ୍ତି ।

କେଶବ ପଟ୍ଟନାୟକ ନାମକ ଆଉ ଜଣେ କବି କେଶବ ରାମାୟଣ ବୋଲି ଖଣ୍ଡେ ଗ୍ରନ୍ଥ ଲେଖି ଅଛନ୍ତି ।

ଆଧୁନିକ ଯୁଗରେ ସ୍ୱର୍ଗୀୟ ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ ଓ ଫକୀରମୋହନ ସେନାପତି ଏବଂ କଟକ ଅରୁଣୋଦୟ ପ୍ରେସର ସ୍ୱର୍ଗୀୟ ଭାଗବତ ପ୍ରସାଦ ଦାନ ମୂଳ ରାମାୟଣକୁ ପଦ୍ୟରେ ଅନୁବାଦ କରିଥିଲେ ।

ଏହାଛଡ଼ା ଉତ୍କଳର ପ୍ରାଚୀନ ଓ ନବୀନ ଯୁଗର କବିମାନେ ରାମାୟଣକୁ ଅବଲମ୍ବନ କରି ତହିଁର ସାର ଗ୍ରହଣ ପୂର୍ବକ ଛନ୍ଦରେ ରାମ ଚରିତ ଓ ନାଟକମାନ ରଚନା କରି ଅଛନ୍ତି । ତହିଁ ମଧ୍ୟରୁ ପ୍ରାଚୀନ କବି ଚନ୍ଦ୍ରାମଣିଙ୍କ 'ରାମଚନ୍ଦ୍ର ବିହାର', ମାଗୁଣି ପଟ୍ଟନାୟକଙ୍କ 'ରାମଚନ୍ଦ୍ର ବିହାର'ର ରାଜା ଧନଞ୍ଜୟ ଭଞ୍ଜଙ୍କ 'ରଘୁନାଥ ବିଳାସ', ଉପେନ୍ଦ୍ର ଭଞ୍ଜଙ୍କ, 'ବ' ଅକ୍ଷର ଯୁକ୍ତ ଆଦ୍ୟ ପଦ ସମନ୍ୱିତ 'ବୈଦେହୀଶବିଳାସ' ପୀତାମ୍ବର ଦାସଙ୍କ ନୃସିଂହ ପୁରାଣରେ ୭କାଣ୍ଡ ରାମାୟଣର ସଂକ୍ଷିପ୍ତ ସାର ସଂଗ୍ରହ, ଗଞ୍ଜାମର କବି କାହ୍ନୁ ଦାସଙ୍କ କୃତ ରାମରସାମୃତ ସିନ୍ଧୁ, ଗଞ୍ଜାମର କବି ରାମଦାସଙ୍କର ରାମ-ରସାମୃତ ଓ ଢେଙ୍କାନାଳର ସ୍ୱର୍ଗତ ରାଜା ପୀତାମ୍ବର ରାଜେନ୍ଦ୍ରଙ୍କ ରାମଲୀଳା ଓ ଆଧୁନିକ ଯୁଗରେ ରାଓ କବିଙ୍କ ବାଲ ରାମାୟଣ, ରତ୍ନାକର ଗର୍ଗବଟୁଙ୍କ ରାମାୟଣ, ଅରୁଣୋଦୟ ପ୍ରେସ୍‌ର ରାମା-ୟଣ, ସାରସ୍ୱତ ପ୍ରେସ୍‌ର ରାମାୟଣ, ସ୍ୱର୍ଗୀୟ ବଳରାମ ଦାସଙ୍କ ବାଲ ରାମାୟଣ, ଚନ୍ଦ୍ରଶେଖର ନନ୍ଦଙ୍କ ରାମାୟଣ କଥା ଓ ନୀଳକଣ୍ଠ ଦାସଙ୍କ ପିଲାଙ୍କ ରାମାୟଣ ଉଲ୍ଲେଖଯୋଗ୍ୟ । ନାଟକ ମଧ୍ୟରେ ପ୍ରାଚୀନ କବି ବିକାଶ ପଟ୍ଟନାୟକଙ୍କ ଲଙ୍କା ଦହନ ନାଟକ, ରାମଶଙ୍କର ରାୟଙ୍କର ରାମ ବନବାସ, ପଦ୍ମନାଭ ନାରାୟଣ ଦେବଙ୍କ ଅହଲ୍ୟାଶାପମୋଚନ, କାମପାଳ ମିଶ୍ରଙ୍କର ସୀତା ବିବାହ, ହରିହର ରଥଙ୍କର ରାବଣ ବଧ, ରାମାଭିଷେକ, ରାମ ଜନ୍ମ, ରାମ ନିର୍ବାସନ ଓ ନନ୍ଦକିଶୋର ବଳଙ୍କ ପଦ୍ୟ ସୀତା ବନବାସ ଉଲ୍ଲେଖଯୋଗ୍ୟ । ପରମାର୍ଥିକ ତତ୍ତ୍ୱ ଉପଦେଶାତ୍ମକ ଅଧ୍ୟାତ୍ମ ରାମାୟଣ ନାମରେ ମହର୍ଷି ବେଦବ୍ୟାସ ବିରଚିତ ଗୋଟିଏ ସଂସ୍କୃତ ଗ୍ରନ୍ଥ ଅଛି; ଏହି ମୂଳ ଗ୍ରନ୍ଥକୁ ନିମ୍ନଲିଖିତ ଓଡ଼ିଆ କବିମାନେ ଅନୁବାଦ କରି ଅଛନ୍ତି, ଯଥା—ପୁରୀର ପ୍ରାଚୀନ କବି ହଳଧର ଦାସ, ତେଲିଙ୍ଗୀୟ ଗୋପାଳ କବି, ଗଞ୍ଜାମ ସୂର୍ଯ୍ୟମଣି ଚ୍ୟାଉ ପଟ୍ଟନାୟକ । ଯୋଗ ଶାସ୍ତ୍ର ସମ୍ବନ୍ଧେ ଉପଦେଶାତ୍ମକ ଆଉ ଖଣ୍ଡିଏ ବିରାଟ ସଂସ୍କୃତ ଗ୍ରନ୍ଥର ନାମ ଯୋଗବାଶିଷ୍ଠ ରାମାୟଣ ଅଟେ ।

ଏହା ଛଡ଼ା ଓଡ଼ିଶାର ପ୍ରାଚୀନ କବି ସାରଳାଦାସ ବିଲଙ୍କା ରାମାୟଣ ବୋଲି ଗୋଟିଏ କାଳ୍ପନିକ ପଦ୍ୟଗ୍ରନ୍ଥ ରଚନା କରି ସେଥିରେ ପାତାଳସ୍ଥ କାଳ୍ପନିକ ବିଲଙ୍କା ନଗରୀର ରାଜା ସହସ୍ରମୁଖ ରାବଣକୁ ରାମ ଆକ୍ରମଣ କରି ସୀତାଙ୍କ ସାହାଯ୍ୟରେ ବିଲଙ୍କାସୁରକୁ ମାରି ତାହା ନଗରୀକୁ 'ବିଲଙ୍କି' ଥିବା ବର୍ଣ୍ଣନା କରିଅଛନ୍ତି ।

ମୂଳସଂସ୍କୃତ ଗ୍ରନ୍ଥକୁ ତୁଳସୀଦାସ ହିନ୍ଦୀରେ 'ରାମଚରିତ ମାନସ' ନାମରେ ପଦ୍ୟାନୁବାଦ କରିଅଛନ୍ତି ଓ ଉକ୍ତ ତୁଳସୀଦାସ ରାମାୟଣ ଭାରତବିଖ୍ୟାତ ଅଟେ । ତୁଳସୀଙ୍କ ରାମାୟଣରେ ଅନେକ କଳ୍ପିତ ବିଷୟ ଅଛି ।

ବାଲ୍ମୀକିକୃତ ରାମାୟଣ ଛଡ଼ା ସଂସ୍କୃତରେ 'ରାମାୟଣ' ନାମ ଗ୍ରହଣ କରି ରଚିତ ଅଧ୍ୟାତ୍ମରାମାୟଣ, ଅଗ୍ନିବେଶ ରାମାୟଣ, ଯୋଗବାଶିଷ୍ଠ ରାମାୟଣ ଆଦି କେତେକ ରାମାୟଣ ସାମ୍ପ୍ରଦାୟିକ ଅଟେ ।]

**ରାମାୟଣୀୟ**—ସଂ. ବିଣ (ରାମାୟଣ + ଈୟ)—ରାମାୟଣ ସମ୍ବନ୍ଧୀୟ—
Rāmāyaṇiya Relating to the Rāmāyaṇa.

**ରାମାୟୁଧ**—ସଂ. ବି (୬ଷ୍ଠୀ ତତ୍)—ଧନୁସ୍ (ହି. ଶ)—
Rāmāyudhs Bow.

ରାମାୟେଣୀ—ଦେ. ବି (ସ୍ତ୍ରୀ)—ରାମାୟଣ ସମ୍ବନ୍ଧୀୟା, ସୀତା—
Rāmāyeṇi Sitā of the Rāmāyaṇa.
[ଉ—ରାମାରତନ ରାମାୟେଣୀ, ରେବତୀ ଯୋଗମାୟା ପୁଣି । ଯଶୋବନ୍ତ. ପ୍ରେମଭକ୍ତି. ବ୍ରହ୍ମଗୀତା ।]

ରାମାଶା(ଶି,ଦା)ମ—ଦେ. ବି (ବହୁବଚନ)—ନଗଣ୍ୟ ବ୍ୟକ୍ତିଗଣ—
Rāmāśā(dhi, dā)mā A number of men of রামাসামা straw; men of no consequence.
**রামাশীমা** [ବ୍ୟ—ଆମ ଦେଶରେ ଅଧିକାଂଶ ଲୋକଙ୍କୁ ରାମ ଓ ଶାମ ନାମ ଦିଆଯାଏ; ଏଥିପାଇଁ ରାମାଶାମା କହିଲେ ସାଧାରଣନଗଣ୍ୟ ବ୍ୟକ୍ତିଙ୍କୁ ବୁଝାଏ ।]

ରାମାଶ୍ରୟ—ସଂ. ବି. ନାମ—ଅମରକୋଷର ଟୀକାକାର ପଣ୍ଡିତଙ୍କ ନାମ—
Rāmāśraya Name of a commentator of the Amarakosha.

**ରାମିଳ**—ସଂ. ବି. ପୁଂ (ରମ୍. ଧାତୁ + ଭାବ. ଇଲ)—୧ । ରମଣ
Rāmiḷa (ହି.ଶ)—1. Cohabitation. ୨ । (+ କର୍ତ୍ତୃ. ଇଳ) କାମଦେବ (ହି. ଶ)—2. Cupid. ୩ । ପତି; ସ୍ୱାମୀ (ହି. ଶ)—3, Husband. ୪ । ପ୍ରେମପାତ୍ର; ପ୍ରେମିକ (ହି. ଶ)—4. Lover.

ରାମେକ୍ଷୁ—ସଂ. ବି—ଏକପ୍ରକାର ଶର ବା କାଣ୍ଡ ତୃଣ; ମୁଞ୍ଜ—
Rāmekhu Saccharum Munja; a kind of reed.

ରାମେଶ୍ୱର—ସଂ. ବି (ମ. ପ ଲୋ; କର୍ମଧା; ରାମଙ୍କଦ୍ୱାରା ପୂଜିତ ଈଶ୍ୱର)—
Rāmeśwara ୧ । ରାମନାଥ; ଭାରତର ଦକ୍ଷିଣ ପ୍ରାନ୍ତରେ ଅବସ୍ଥିତ ରାମନାଥ ନାମ ଶିବଲିଙ୍ଗ—1. Name of an idol of Śiba in the south of India.
[ଦ୍ର—ଏ ଶିବଲିଙ୍ଗ ମଦୁରା ଜିଲ୍ଲା ରାମନାଦ ତାଲୁକା ମଧ୍ୟରେ ଏକଦ୍ୱୀପରେ ପ୍ରତିଷ୍ଠିତ । ଶ୍ରୀରାମଚନ୍ଦ୍ର ଲଙ୍କାବିଜୟ ଯାତ୍ରା ସମୟରେ ଏଠାରେ ରାମେଶ୍ୱର ଦେବଙ୍କୁ ସ୍ଥାପନ କରିଥିଲେ । ମଦନମୋହନ. ତୀର୍ଥଦର୍ଶନ ୧ମ ଭାଗ ।]
୨ । ସେତୁବନ୍ଧ ରାମେଶ୍ୱର; ଭାରତର ଦକ୍ଷିଣ ପୂର୍ବ କୋଣ

ଓ ଲଙ୍କା ଦ୍ୱୀପ ମଧ୍ୟରେ ରାମଚନ୍ଦ୍ରଙ୍କ ଆଦେଶରେ ବନ୍ଧା ଯାଇ ଥିବା ସେତୁବନ୍ଧ—2. Adam's bridge (between India and Ceylon). ୩ । ଭାରତର ଦକ୍ଷିଣ ପୂର୍ବ କୋଣ ଓ ଲଙ୍କା ଦ୍ୱୀପ ମଧ୍ୟରେ ଥିବା ପ୍ରଣାଳୀ (ଉତ୍ତରରେ ପକ୍ ପ୍ରଣାଳୀ ଓ ଦକ୍ଷିଣରେ ମାନାର୍ ଉପସାଗର ମଧ୍ୟରେ) ଥିବା ସେତୁବନ୍ଧ ରାମେଶ୍ୱର ନାମକ ସମୁଦ୍ରଗର୍ଭସ୍ଥ ବନ୍ଧର ଉତ୍ତର ପଶ୍ଚିମକୁ ଲାଗିଥିବା ଲମ୍ବଦ୍ୱୀପ (ଏହାକୁ ସ୍ଥାନୀୟ ଲୋକେ ରାମେଶ୍ୱର କହନ୍ତି । ଏହା ହିନ୍ଦୁମାନଙ୍କର ଗୋଟିଏ ତୀର୍ଥ)—3. Name of a small island to the north west of Adam's bridge (a range of high land between Ceylon and India). ଦେ. ବି. ପୁଂ—ଲୋକଙ୍କର ନାମ—A name given to males.

**ରାମୋପନିଷଦ୍**—ସଂ. ବି—ଅଥର୍ବ ବେଦାନ୍ତର୍ଗତ ଏକ ଉପନିଷଦ୍—
Rāmopanishad Nameof an Upanishad in the Atharba Beda.

**ରାମ୍ପି**—ଦେ. ବି—୧ । କାନ୍ଥରେ ପ୍ରଥମେ ବାଲିଚୂନ ଚୋଟ କରି
Rāmpi ବୋଳି ସାରି ତାହାକୁ ସମତଳ କରିବା ପାଇଁ ଯେଉଁ
**रांपी** କାଷ୍ଠ ଯନ୍ତ୍ର ଦ୍ୱାରା ତା ଉପରୁ ଅତିରିକ୍ତ ଲେଖାଏଁ
ବାମ୍ପି ରାମ୍ପି ଦେବାକୁ ହୁଏ—1. Mason's planer; a wooden trowel used to scrape redundant layer from the surface of a wall which is being plastered. ୨ । ଚମଡ଼ାକୁ ସଫା ଓ ପତଳା କରିବା ପାଇଁ ବ୍ୟବହୃତ ମୋଚିମାନଙ୍କର ଏକ ପ୍ରକାର ଖୁରୁପି—2. A scraper used by cobblers to scrape leather.

**ରାମ୍ପି କାମ୍ପି ହେବା**—ଦେ. କ୍ରି—୧ । ରାଗରେ ଅସ୍ଥିର ହେବା; ରାମ୍ପୁଡ଼ି
Rāmpi kāmpi hebā କାମୁଡ଼ି ହେବା; ପ୍ରତିଶୋଧ ନେବାକୁ
ରାମ୍ପି କାମୁଡ଼ି ହେବା } ଅନ୍ୟରୂପ ଅକ୍ଷମ ହୋଇ କ୍ରୋଧରେ
ରାମ୍ପି ବିଦାରି ହେବା } ଭୂମିକୁ ଓ ଆପଣା ଦେହକୁ ନଖ
बेगे मेगे अस्थिर हओया ଦ୍ୱାରା ରାମ୍ପୁଡ଼ିବା ଓ ଓଠ ଆଦିକୁ
**गुस्सा उस्सा होना** କାମୁଡ଼ିବା; ବିରକ୍ତି ପ୍ରକାଶ କରିବା—
To bite one's lips and scratch the ground with one's nails in impotent anger; to fret and fume with rage.

**ରାମ୍ପିବା**—ଦେ. କ୍ରି (ସଂ. ରନ୍ଫ୍ ବା ରମ୍ଫ ଧାତୁ)—୧ । (ସାରୁ,
Rāmpibā କୁଣ୍ଡିଆ ଆଦିକୁ) ନଖ ଦ୍ୱାରା ରାମ୍ପୁଡ଼ିବା—1, To
[ରିମ୍ପା(ମ୍ପେ)ଇବା—ଅନ୍ୟରୂପ] scratch(itching ringworm
ଆଁଚଡ଼ା etc) with finger—nails or claws).
**खोदना, खुजलाना, खरोचना, नोंचना** ୨ । ପାଟିଆ ଆଦି ଦ୍ୱାରା
**तराशना** କୌଣସି ବସ୍ତୁ ଉପରୁ ପତଳା ସ୍ତର ଚାଞ୍ଛିବା—2. To scrape off a thin layer from the surface of a thing. [ଦ୍ର—ଯେଉଁ ଯନ୍ତ୍ର ଦ୍ୱାରା ରାମ୍ପିବା କ୍ରିୟା କରାଯାଏ ତାକୁ ରମ୍ପାଲୁ ବୋଲାଯାଏ ।] ୩ । ପାନିଆ
**खोडना** ଦ୍ୱାରା ମୁଣ୍ଡ କୁଣ୍ଡାଇବା—3. To Comb the hair.

**ରାମ୍ପି ରୁମ୍ପି**—ଦେ. କି. ବିଣ (ସହଚର)—ଉତ୍ତମ ରୂପେ ଚାଞ୍ଛି କରି—
Rāmpi rumpi By scraping well.
निकियें पुंछियो (ଯଥା—ସାରୁକୁ ଛୁରିରେ ରାମ୍ପି ରୁମ୍ପି ମଲମ
**खोडखाड कर** ଲଗାଇଲେ ତାହା ଶୀଘ୍ର ଭଲ କରେ ।)

**ରାମ୍ପି ହେବା**—ଦେ. କ୍ରି—ନିଜର ଦେହକୁ ନଖ ଆଦି ଦ୍ୱାରା କୁଣ୍ଡାଇବା-
Rāmpi hebā To scratch one's own body.
चूलकान ପ୍ରାଦେ. (ସମ୍ବଲପୁର) କ୍ରି—ନିଜର କେଶକୁ ପାନିଆ
**खोड रहना, खुजलाना** ଦ୍ୱାରା କୁଣ୍ଡାଇବା—To comb the hair of one's own head.

**ରାମ୍ପୁଡ଼ା**—ଦେ. ବି. (ସଂ. ରମ୍ଫ୍ ଧାତୁ=ବଧ କରିବା)—୧ । ରାମ୍ପୁଡ଼ିବା
Rāmpurdā କ୍ରିୟା—1. Act of scratching with
ଅଁାଚଡ଼ା nails or claws. ୨ । ରାମ୍ପୁଡ଼ିବା ଯୋଗୁଁ ଘଟ
**नोंचना** କ୍ଷତ ଚିହ୍ନ—2. Scratches. ଦେ. ବିଣ. ପୁଂ—
(ରାମ୍ପୁଡ଼ୀ—ସ୍ତ୍ରୀ) ୧ । ଯେ ରାମ୍ପୁଡ଼େ (ଯଥା—ବିରାଡ଼ି)—
**नोचिला** 1. Scratching. ୨ । ରାମ୍ପୁଡ଼ିବା ଦ୍ୱାରା ଉତ୍ପନ୍ନ
ଅଁାଚଡା (ଦାଗ)—2. (marks) Produced by scratching.

**ରାମ୍ପୁଡ଼ା କାମୁ(ମ୍ପୁ)ଡ଼ା**—ଦେ. ବି. (ସହଚର)—ନଖ ଦ୍ୱାରା ରାମ୍ପୁଡ଼ିବା
Rāmpurdā kāmu(mpu)rdā ଓ ଦାନ୍ତ ଦ୍ୱାରା କାମୁଡ଼ିବା-
अँाचडान कामडान Scratching with the nails or
**नोंचना काटना** claws and biting with the teeth.

**ରାମ୍ପୁଡ଼ା ରାମ୍ପୁଡ଼ି**—ଦେ ବି—ଅନ୍ୟୋନ୍ୟରେ ନଖ ଦ୍ୱାରା ରାମ୍ପୁଡ଼ିବା-
Rāmpurdā rāmpurdi Fighting by scratching
ଅଁାଚଡ଼ା ଅଁାଚଡ଼ି each other with nails or claws.
**नोंचनांच**

**ରାମ୍ପୁଡ଼ି କାମୁଡ଼ି ହେବା**—ଦେ. କ୍ରି—ରାମ୍ପି କାମ୍ପି ହେବା (ଦେଖ)
Rāmpurdi kāmurdi hebā Rāmpi kāmpi hebā
[ରାମ୍ପୁଡ଼ି କାମ୍ପୁ(ମ୍ପୁ)ଡ଼ି (ବିଦାରି) ହେବା—ଅନ୍ୟରୂପ] (See)
अँाचडान कामड़ान **दिमाक दिखाना**

**ରାମ୍ପୁଡ଼ିବା**—ଦେ. କ୍ରି. (ସଂ. ରମ୍ଫ୍ ଧାତୁ=ବଧ କରିବା)—ନଖ ଦ୍ୱାରା
Rāmpurdibā ବିଦାରିବା; ତୀକ୍ଷ୍ଣ ନଖମୂନ ଦ୍ୱାରା କ୍ଷତ
ଅଁାଚଡାନ କ୍ଷତ କରିବା—To scratch with sharp
**नोंचना** nails or claw.

**ରାମ୍ପୁଡ଼ିବା କାମୁ(ମ୍ପୁ)ଡ଼ିବା**—ଦେ. କ୍ରି. (ସହଚର)—ନଖାଘାତ ଓ
Rāmpurdibā kāmu(mpu)rdibā ଦନ୍ତାଘାତ କରିବା;
अँाचड़ान कामडान ନଖ ଓ ଦନ୍ତ ଦ୍ୱାରା ବିଦାରିବା—To sertach
**नोंचना काटना** with nails and bite with teeth.
[ଦ୍ର—ଏହା କହି ନଖରେ ଅଙ୍ଗରେ ରାବଣକୁ ରାମ୍ପୁଡ଼ି କାମୁଡ଼ି ଅସୁବ୍ୟସ୍ତ କରି ପକାଇଲା । ମାଳକଣ୍ଠ ଦାସ. ପିଲାଙ୍କ ରାମାୟଣ ।]

**ରାମ୍ପୁଡ଼ିବା ବିଦାରି(ଡ଼ି)ବା**—ଦେ. କ୍ରି. (ଏକାର୍ଥକ ସହଚର)—ବଳପୂର୍ବକ
Rāmpurdibā bidāri(rdi)bā ବା ଜୋରପୂର୍ବକ ନଖ ଦ୍ୱାରା
चिबा ও ଅଁାଚଡ଼ା ରାମ୍ପିବା—To scratch with nails
**नोंचना बिदारना** several times; to scratch and pierce with the nails.

ରାମ୍ପୁଡ଼ି ରୁମ୍ପୁଡ଼ି—ଦେ. କ୍ରି. ବି—ଜିଦ୍ଦମରୂପେ ବା ବାରଂବାର
Rāmpurdi rumpurdi ରାମ୍ପୁଡ଼ି କରି—By scratching
ଆଁଚଡେ କାମଡ଼େ **নোচনাচ কর** vigorously or repeatedly.

ରାମ୍ପୁଡ଼ି ହେବା—ଦେ. କ୍ରି—୧ । କଣ୍ଡୁ୍ୟନ ତୃପ୍ତି ନିମିତ୍ତ ଘଷିବା
Rāmpurdi heba ପାଇଁ ରାମ୍ପୁଡ଼ିବା—1. To scratch
ଆଁଚଡାନ with a view to satisfy itching.
**খোডনা** ୨ । (ଲକ୍ଷଣାର୍ଥ) ଭାରି ବିରକ୍ତ ଓ ଚଡ଼ଚଡ଼ିଆ ବୋଧ
କରିବା—2. To feel much irritated.

ରାମ୍ଭ—ସଂ. ବି.(ରମ୍=ବେଣୁ+ସ୍ୱାର୍ଥେ.ଅ)—ବ୍ରତାର୍ଥ ଧୃତ ବଂଶ ଯଷ୍ଟି—
Rāmbha A bamboo staff held by a person
in the performance of a certain vow.

ରାଯ୍—ଦେ. ବି—ରାଜ୍ (ଦେଖ)
Rāj Rāj. (See)

ରାୟ—ଦେ. ବି (ସଂ. ରାଜନ୍)—୧ । ରାଜା—1. King. (ଉ—ଭୂମି
Rāya ପାଶରେ ଥାଇ ବଢ଼ିଲା ଗିରିରାୟେ । କୃଷ୍ଣସିଂହ. ମହାଭାରତ
ବାୟୁ ବନ । ) ୨ । କେତେକ ଓଡ଼ିଆ କରଣଙ୍କ ବଂଶୋପାଧି—
**राय** 2. A family title of some Karanas. ୩ । ବଙ୍ଗୀୟ
କାୟସ୍ଥଙ୍କ ବଂଶଗତ ଉପାଧି—3. A family title of
some Kāyasthas. ୪ । କ୍ଷତ୍ରିୟଙ୍କ ବଂଶଗତ ଉପାଧି—
4. A family title of Kshatriyas. ୫ । ରାଜ-
ଦତ୍ତ ଅନ୍ୟ ଉପାଧି ଶେଷରେ ଯୁକ୍ତ ହେବା, ଶ୍ରେଷ୍ଠତାବୋଧକ
ଶବ୍ଦ; (ଯଥା—ସାମନ୍ତରାୟ, ଉଦଣ୍ଡରାୟ, ସଙ୍ଗୀତରାୟ, ବଳବନ୍ତ
ରାୟ, ଏହାର ସଂକ୍ଷେପ 'ରା' ବା 'ରାଏ')—5. A
word added to another word to form
a title bestowed by Rājās. ବୈଦେ. ବି.
(ଫା)—୧ । ମତ—1. Opinion. ୨ । ରାଏ
ବିଚାରକଙ୍କର ଶେଷ ମୀମାଂସା—2. Judgment;
decision of a judge. [ଉ—ଚରମ ଅଛି
ତାକର ରାୟ । ରାଧାନାଥ. ଦରବାର ।]
[ଦ୍ର—ରାଏ ଶବ୍ଦ ସଙ୍ଗେ ଲାଗିଥିବା ସମସ୍ତ ଶବ୍ଦମାନ ରାୟ
ଶବ୍ଦ ଯୁକ୍ତ ହୋଇ ମଧ୍ୟ ବ୍ୟବହୃତ ହୁଏ । ଅତଏବ ରାୟ
ଶବ୍ଦବିଶିଷ୍ଟ ଅନ୍ୟ ଶବ୍ଦମାନଙ୍କ ପାଇଁ 'ରାଏ' ତଳେ ଦେଖ । ]

ରାୟଗଡ଼—ଦେ. ବି—ଓଡ଼ିଶାର ପଶ୍ଚିମରେ ମଧ୍ୟପ୍ରଦେଶର ଛତିଶଗଡ଼
Rāyagarda ବିଭାଗର ଗୋଟିଏ ନଗର (ରାଇପୁରର ପଶ୍ଚିମ)—
ରାୟଗଡ଼ Name of a town in the Central
**रायगड** Province.

ରାୟଗୁରୁ—ଦେ ବି—ରାଜଗୁରୁ (ଦେଖ)
Rāyaguru Rājaguru (See)

ରାୟ ଚଉଧୁରୀ—କଟକ ସହରର କାଜିବଜାରର ଓଡ଼ିଶାର ସ୍ଥାୟୀ ଅଧିବାସୀ
Rāya chaudhuri ବଙ୍ଗୀୟ ବ୍ରାହ୍ମଣ ଜମିଦାର ବଂଶର
ৱায়চৌধুৱী ବଂଶୋପାଧି—Family title of a domiciled
**रायचौधुरी** family of Zamindars of Cuttack.

[ଦ୍ର—ବ୍ରିଟିଶମାନଙ୍କର ଉତ୍କଳାଧିକାର ଅବ୍ୟବହିତ ପରେ
୧୮୦୪ ଖ୍ରୀଷ୍ଟାବ୍ଦରେ ତତ୍କାଳୀନ କମିଶନର୍ ମିଷ୍ଟର୍
କେୟାର୍ (Mr. Care) ରାୟ ଦୁର୍ଗାଚରଣ ରାୟ
ଚୌଧୁରୀଙ୍କୁ ନୂତନ ଅଧିକୃତ ଓଡ଼ିଶାର ଶାସନ କାର୍ଯ୍ୟରେ
ସାହାଯ୍ୟ କରିବା ନିମିତ୍ତ ବଙ୍ଗ ଦେଶରୁ ଅଣାଇଥିଲେ ।
ଏହାଙ୍କ ଆଦିମ ନିବାସ ବଙ୍ଗର ଚବିଶପ୍ରଗନ୍ନା ଜିଲ୍ଲାରେ
ବେଲଘରିଆ ଗ୍ରାମରେ ଥିଲା । ସେ ମହାଶୟ ଆସି କଟକ
ଖଜଣାଖାନାର ଭାର ଗ୍ରହଣ କରିଥିଲେ । ସେ ସମୟରେ
କଟକ, ପୁରୀ, ବାଲେଶ୍ୱର ଲାଗି ଏକମାତ୍ର ଖଜଣାଖାନା
କଟକରେ ଥିଲା ଏବଂ ରାୟଚୌଧୁରୀ ମହାଶୟ ତାହା ଅତ୍ୟନ୍ତ
ଦକ୍ଷତା ସହିତ ପରିଚାଳନା କରିଥିଲେ । ତତ୍ପରେ ୧୮୩୫
ଖ୍ରୀଷ୍ଟାବ୍ଦରେ ମେଦିନୀପୁର ଖଜଣାଖାନାରେ ଯେତେବେଳେ
ନାନା ବିଶୃଙ୍ଖଳା ଜାତ ହୋଇଥିଲା ଉକ୍ତ ମହାଶୟ ସେ
ସ୍ଥଳକୁ ପ୍ରେରିତ ହୋଇଥିଲେ । ତତ୍ପରେ ତାଙ୍କ ପୁତ୍ର
ରାଜନାରାୟଣ ଚୌଧୁରୀ ପିତାଙ୍କଠାରୁ ଉକ୍ତ କର୍ମର ଭାର
ପ୍ରାପ୍ତ ହେଲେ । ଦୁର୍ଗାଚରଣ ୪୫ ବର୍ଷ ଦକ୍ଷତା ସହ ଉକ୍ତ
କାର୍ଯ୍ୟ ପରିଚାଳନା କରି ଅବସରପ୍ରାପ୍ତ ହେଲେ ଏବଂ
ଗଭର୍ଣ୍ଣମେଣ୍ଟ ତାଙ୍କ କାର୍ଯ୍ୟଦକ୍ଷତାରେ ପ୍ରୀତ ହୋଇ ତାଙ୍କୁ
ରାୟ (ଅଧୁନାତନ ରାୟବାହାଦୁର୍ ସଙ୍ଗେ ସମାନ) ଉପାଧି
ପ୍ରଦାନ କରିଥିଲେ । ଉପାଧି ସହିତ ସେ ମଧ୍ୟ ସରକାରଙ୍କ
ଠାରୁ ଗୋଟିଏ ଖିଲାତ୍ ଓ ଗୋଟିଏ ପାଲିଙ୍କି ଉପହାର
ପାଇଥିଲେ । ତାଙ୍କ ପରେ ତାଙ୍କ କନିଷ୍ଠ ଭ୍ରାତା ସ୍ୱର୍ଗୀୟ
ଲକ୍ଷ୍ମୀନାରାୟଣ ରାୟଚୌଧୁରୀ ମେଦିନୀପୁର ଟ୍ରେଜରୀର ଭାର
ପ୍ରାପ୍ତ ହେଲେ । ସେ ମଧ୍ୟ ଦକ୍ଷତା ସହ ଉକ୍ତ କାର୍ଯ୍ୟ ପରି-
ଚାଳନା କରିଥିଲେ । ମାତ୍ର ଅଗ୍ରଜଙ୍କର ପରଲୋକ ଗମନ
ହେତୁ ସେ ନିଜର ବିଷୟ ସମ୍ପତ୍ତିର ପରିଚାଳନା ଲାଗି କାର୍ଯ୍ୟ
ତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ । ଲକ୍ଷ୍ମୀନାରାୟଣ କଟକ
ବେଞ୍ଚର ଅନରାରୀ ମାଜିଷ୍ଟ୍ରେଟ୍ ରୂପେ କେବଳ ଯେ କାର୍ଯ୍ୟ
କରିଥିଲେ, ତାହା ନୁହେଁ । କଟକ ସହରର ଟାଉନ ଷ୍ଟାୟୀ
ସଭା ସମିତିର ମେମ୍ବର୍ ଭାବରେ ସେ ଲୋକସମାଜରେ ଓ
ଭୂମ୍ୟଧିକାରୀମାନଙ୍କ ମଧ୍ୟରେ ଅତ୍ୟନ୍ତ ସମ୍ମାନାସ୍ପଦ ହୋଇ-
ଥିଲେ । ସେ ଦେଶସେବା ଓ ରାଜଭକ୍ତିର ଆଦର୍ଶସ୍ୱରୂପ
ଶ୍ରୀମତୀ ମହାରାଣୀଙ୍କର ଅଭିଷେକ ସମୟରେ ଏକ ସମ୍ମାନ-
ସୂଚକ ସାର୍ଟିଫିକେଟ (Certificate of Honour)
ପ୍ରାପ୍ତ ହୋଇଥିଲେ ।

ତାଙ୍କର ପ୍ରଥମ ପୁତ୍ର ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ମୃତ୍ୟୁ ପର୍ଯ୍ୟନ୍ତ
କଟକ ଖଜଣାଖାନାର ଟ୍ରେଜରର୍ କାର୍ଯ୍ୟରେ ନିଯୁକ୍ତ ଥିଲେ ।
ତାଙ୍କର ଦ୍ୱିତୀୟ ପୁତ୍ର କାର୍ତ୍ତିକଚନ୍ଦ୍ର ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା
ଟ୍ରେଜରର୍ କାର୍ଯ୍ୟରେ ନିଯୁକ୍ତ ହୋଇ ପ୍ରଥମ ଶ୍ରେଣୀ
ସବ୍‌ଡେପୁଟି ପଦକୁ ଉନ୍ନୀତ ହୋଇ ଶେଷରେ ବି.ଏନ୍.ଆର୍
କମ୍ପାନୀଙ୍କ ପାଇଁ ସରକାର ପକ୍ଷରୁ ଜମି କିଣା
(acquire) ହେବାରେ ଯଥେଷ୍ଟ ସାହାଯ୍ୟ କରି-
ଥିଲେ । ତାଙ୍କର ଚତୁର୍ଥ ପୁତ୍ର ସ୍ୱର୍ଗୀୟ ଜଗନ୍ନାଥ ଚନ୍ଦ୍ର

ରାୟଚୌଧୁରୀ ମଧ୍ୟ କଟକ ବେଞ୍ଚର ଅନରାରୀ ମାଜିଷ୍ଟ୍ରେଟ୍‌ରୂପେ ଓ ସ୍ଥାନୀୟ ବିଭିନ୍ନ ସାଧାରଣ ସଭା ସମିତିର ସଭ୍ୟରୂପେ ଦେଶବାସିଙ୍କର ତଥା ସରକାରଙ୍କର ପ୍ରୀତିଭାଜନ ହୋଇଥିଲେ । ସେ କଟକ ମ୍ୟୁନିସିପାଲିଟିରେ ଭିନଥର ଭାଇସ୍‌ଚେଅର୍‌ମାନ୍ କାର୍ଯ୍ୟ କରି ସରକାରଙ୍କଠାରୁ ବିଶେଷ ସମ୍ମାନପ୍ରାପ୍ତ ହୋଇଥିଲେ । ସେ ମଧ୍ୟ କଟକ ସଦର ଲୋକାଲ୍‌ବୋର୍ଡ଼ର ଓ କଟକ ମ୍ୟୁନିସିପାଲିଟିର ଚେୟାର୍‌ମ୍ୟାନ୍ କାର୍ଯ୍ୟ କରି ଶ୍ରୀମାନ୍ ସମ୍ରାଟ ସପ୍ତମ ଏଡ୍‌ୱାର୍ଡ଼ ଓ ପଞ୍ଚମଜର୍ଜଙ୍କ ଅଭିଷେକ ସମୟରେ ସମ୍ମାନସୂଚକ ସାର୍ଟିଫିକେଟ୍ ଓ ଅଭିଷେକ ପଦକ ପ୍ରାପ୍ତ ହୋଇଥିଲେ । ତାଙ୍କ କନିଷ୍ଠ ଜ୍ୟୋତିଷଚନ୍ଦ୍ର କଟକ ଜିଲ୍ଲାର ସବରେଜିଷ୍ଟ୍ରାର କାର୍ଯ୍ୟ କରୁଥିଲେ ଓ ବର୍ତ୍ତମାନ ନିଜର ବିଷୟ ସମ୍ପତ୍ତି ବୁଝାସୁଝା ଓ ଧର୍ମଚର୍ଚ୍ଚା କରନ୍ତି । ଜ୍ୟୋତିଷଚନ୍ଦ୍ରଙ୍କ ପୁତ୍ର ନିଶିଥଚନ୍ଦ୍ର କଟକ ଜଜକୋର୍ଟର ଓକିଲ ଅଟନ୍ତି ।

ମୂର୍ତ୍ତିଚନ୍ଦ୍ରଙ୍କର ଜ୍ୟେଷ୍ଠ ପୁତ୍ର ଶ୍ରୀଯୁକ୍ତ ଶରୁଚନ୍ଦ୍ର ରାୟଚୌଧୁରୀ ବିହାର ଓଡ଼ିଶାର ପ୍ରାଦେଶିକ ଲାଟସଭାରେ ଓଡ଼ିଶାର ଭୂମ୍ୟଧିକାରୀମାନଙ୍କ ପ୍ରତିନିଧି ସଦସ୍ୟରୂପେ ଖ୍ୟାତି ଅର୍ଜନ କରିଥିଲେ । ତାଙ୍କ କନିଷ୍ଠ ଭ୍ରାତା ସ୍ୱର୍ଗୀୟ ସୁଶୀଲଚନ୍ଦ୍ର ମେଡିକାଲ୍ ବୋର୍ଡ଼ର ମେମ୍ବର୍‌ରୂପେ କଟକ ବେଞ୍ଚର ଅନରାରୀ ମାଜିଷ୍ଟ୍ରେଟ୍ ଓ କଟକ ମ୍ୟୁନିସିପାଲିଟିର ଭାଇସ୍‌ଚେଅରମାନ୍‌ରୂପେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ କିନ୍ତୁ ସେ ଅଳ୍ପଦିନ ପୂର୍ବେ ଯୁବା ବୟସରେ ପରଲୋକଗମନ କଲେ ।

ବାବୁ ବିମଳାଚରଣ ରାୟଚୌଧୁରୀ କାର୍ତ୍ତିକଚନ୍ଦ୍ରଙ୍କର ଜ୍ୟେଷ୍ଠପୁତ୍ର । ସେ ବର୍ତ୍ତମାନ କଟକ ବେଞ୍ଚର ଅନରାରୀ ମାଜିଷ୍ଟ୍ରେଟ୍ କାର୍ଯ୍ୟରେ ନିଯୁକ୍ତ ଥାଇ ଦକ୍ଷତା ସହିତ ଉକ୍ତ କାର୍ଯ୍ୟ ନିର୍ବାହ କରୁଅଛନ୍ତି । ସେ ନାନା ସ୍ଥାନୀୟ ସଭା ସମିତିର ମେମ୍ବର ଏବଂ ମ୍ୟୁନିସିପାଲ ବୋର୍ଡ଼ରେ ମେମ୍ବର ଥାଇ ଦକ୍ଷତା ସହିତ କାର୍ଯ୍ୟ କରୁଅଛନ୍ତି । ସେ ମହାରାଜା ଦ୍ୱିତୀୟମଜର୍ଜଙ୍କ ଜୀବନୀ ଓଡ଼ିଆଭାଷାରେ ଲେଖିଅଛନ୍ତି ଏବଂ ଅନେକଗୁଡ଼ିଏ ଓଡ଼ିଆ ପୁସ୍ତକ ମଧ୍ୟ ପ୍ରକାଶ କରିଅଛନ୍ତି । କଟକରେ ଲକ୍ଷ୍ମୀନାରାୟଣ ପ୍ରେସ ସ୍ଥାପନ କରି ସେ କିଛିଦିନ 'ଇସରକ' ଓଡ଼ିଆ ମାସିକ ପତ୍ରିକାର ପରିଚାଳନ କରିଥିଲେ । ଏ ପରିବାର ରାଜଭକ୍ତ, ପରମଧାର୍ମିକ ଓ ସାହିତ୍ୟାନୁରାଗୀ ରୂପେ ପରିଚିତ । କଟକ ଜିଲ୍ଲାରେ ଏ ପରିବାରର ବିସ୍ତର ଜମିଦାରି ଅଛି । ] (ରାୟଚୌଧୁରୀ—ଅନ୍ୟରୂପ)

**ରାୟଣ**—ସଂ. ବି ( ରୈ ଧାତୁ ଶବ୍ଦ କରିବା + ଭାବ. ଅନ )—୧ । ଶବ୍ଦକରଣ—1. Making a sound. ୨ । ପୀଡ଼ା; କ୍ଳେଶ—2. Hardship.
Rāyaṇa

**ରାୟପିତାମ୍**—ପ୍ରାଦେ (ଗଡ଼ଜାତ)—ରାଏପିତାମ୍ (ଦେଖ)
Rāyapitām Rāepitām (See)

**ରାୟପୁର**—ଦେ. ବି—ଓଡ଼ିଶାର ପଶ୍ଚିମରେ ମଧ୍ୟପ୍ରଦେଶର ଛତିଶ ଗଡ଼ ବିଭାଗର ରାଜଧାନୀ (ସୋନପୁର ସୋଧ୍ ପଶ୍ଚିମ)—The capital of Chhattisgarh Division of Central Province, where there is a college for the training of princes of Rajas. [ଦ୍ର—ଏଠାରେ ରାଜକୁମାରମାନଙ୍କୁ ଶିକ୍ଷା ଦେବା ପାଇଁ ଗଭର୍ଣ୍ଣମେଣ୍ଟ ଗୋଟିଏ କଲେଜ୍ ସ୍ଥାପନ କରିଅଛନ୍ତି ଓ ଓଡ଼ିଆ ରାଜକୁମାରମାନେ ସେହି କଲେଜକୁ ଶିକ୍ଷା ପାଇବା ପାଇଁ ପ୍ରେରିତ ହୁଅନ୍ତି । ଆଜକାଲି ଦକ୍ଷିଣ ବିଶାଖାପାଟଣା ଜିଲ୍ଲାର ବିଜୟନଗରଠାରୁ ଏହି ରାୟପୁରପାଏ ଗୋଟିଏ ରେଲ ରାସ୍ତା ବି. ଏନ୍. ଅର କମ୍ପାନୀ ଖୋଲିଅଛନ୍ତି । ଏହି ରାସ୍ତା ଦେଇ ମଧ୍ୟପ୍ରଦେଶର ଲୋକମାନେ ସୁବିଧାରେ ୱାଲ୍‌ଟାୟାର୍ ଓ ମାନ୍ଦ୍ରାଜ ଆଡ଼କୁ ଯା ଆସ କରନ୍ତି । ପୂର୍ବେ ରାୟପୁର ଯିବାପାଇଁ ଖଡ଼ଗପୁର ଓ କଲିକତା ଦେଇ ଯିବାକୁ ପଡ଼ୁଥିଲା । )
Rāyapura

**ରାୟ ବାହାଦୁର**—ରାଏବାହାଦୁର (ଦେଖ)
Rāyabāhādur Rāebāhādur (See)

**ରାୟସିଂହ**—ଦେ. ବି. (ନାମ)—କ୍ଷତ୍ରିୟମାନଙ୍କର ଉପାଧିବିଶେଷ—A family title of the Oriya Kshatriyas.
Rāyasiṅha

**ରାଳ**—ସଂ. ବି—୧ । ସର୍ଜ୍ଜରସ; ଝୁଣା—1. Yellow resin. ୨ । ଝୁଣା ବାହାରିବା ଏକପ୍ରକାର ଗଛ—2. A wild tree; Mimosa Rubicanlis [ଦ୍ର—ଦକ୍ଷିଣଭାରତର ଓ ଓଡ଼ିଶାର ଜଙ୍ଗଲର ଏକପ୍ରକାର ଗଛ-Mimosa Rubicaulis ରୁ ଝୁଣା ବାହାରେ । ଏ ଗଛର କାଠ କିଛି କାମରେ ଲାଗେ ନାହିଁ । ଏଥିର ନିର୍ଯ୍ୟାସ ୨ ପ୍ରକାର, ଧଳା ଓ କଳା । ଏ ଗଛ ୨ ବର୍ଷର ହେଲେ ଲୋକେ ଏହାର ଗଣ୍ଡିରେ ସ୍ଥାନେ ସ୍ଥାନେ ଛେଦ କରନ୍ତି ଓ ଉକ୍ତ ଛେଦରୁ ଚୈତ୍ରଠାରୁ ମାର୍ଗଶିର ପର୍ଯ୍ୟନ୍ତ ରସ ବାହେ । ଦଶ ବର୍ଷ ପର୍ଯ୍ୟନ୍ତ ଗୋଟିଏ ଗଛରୁ ଏପରି ନିର୍ଯ୍ୟାସ ବହେ । ଏ ନିର୍ଯ୍ୟାସ ବାର୍ଣ୍ଣିସ୍ କରିବାରେ ଓ ଔଷଧରେ ଲାଗେ । ଏହି ଗଛର ଅଠା ଶୁଖିଗଲେ ଝୁଣା ହୁଏ (ହି. ଶ.) ବୈଦ୍ୟଶାସ୍ତ୍ର ମତରେ ଝୁଣା ଶୀତବୀର୍ଯ୍ୟ, ଗୁରୁ, ତିକ୍ତକଷାୟ ଓ ଧାରକ । ଏହା ବାତାଦି ଦୋଷକ୍ଷୟ, ରକ୍ତଦୁଷ୍ଟି, ସ୍ୱେଦ, ବିସର୍ପ, ଜ୍ୱର, ବ୍ରଣ, ବିପାଦିକା, ଗ୍ରହଦୋଷ, ଭଗ୍ନରୋଗ, ଅଗ୍ନିଦଗ୍ଧ କ୍ଷତ, ଅଲକ୍ଷ୍ମୀ, ଶୂଳ ଓ ଅତିସାରନାଶକ—ଦ୍ରବ୍ୟଗୁଣ । ]
Rāḷa
ସଂ. ନାମ—ରାଳ, ଶାଲ ନିର୍ଯ୍ୟାସ, ଦେବଧୂପ, ଯକ୍ଷଧୂପ
ଧୁନା
ধুনা
ତେ. ସର୍ଜ୍ଜରସମ୍
ଫା. ରାଲ୍‌ମଗବେଣୀ
ଅ. କଫହର

**ରାଳୀ**—ଦେ. ବି—ମହୁରାଳ ମାଛ—A kind of small fresh water fish; Aspidoparia Marar.
Rāḷī
মৌরলামাছ (ଯଥା—କବିରାଜ ହରେକୃଷ୍ଣ ମିଶ୍ରଙ୍କ ପ୍ରଣୀତ ଦ୍ରବ୍ୟଗୁଣ)

**ରାଳତୈଳ**—ସଂ. ବି (ବୈଦ୍ୟକ)—ସର୍ଜ୍ଜରସୋଦ୍ଭୂତ ତୈଳ—Oil prepared from resin.
Rāḷataila

**ରାଳୁଅ**—ଦେ. ବିଣ—ରାଳ ବୋଳା ହୋଇଥିବା—Smeared with tar; tarred.
Rāḷuā
আলকাতরা মাখা अलकतरा पोताहुआ

ରାଶ୍—ବୈଦେ. ବ (ଆ. ରାଶ୍; ତୁଲ. ସ. ରଶ୍ମି) ବାହାଗ; ଅଶ୍ୱବଲ୍ଗୁ; Rāś ଲଗାମ; ଅଶ୍ୱବଲ୍ଗା—Rein; bridle of a horse. ରାଶ ରାସ

ରାଶ୍ କଡ଼ା କରିବା—ଦେ. କ୍ରି—୧ । ଘୋଡ଼ାର ଲଗାମକୁ ଟାଣି ଧରିବା; Rāś kaṛā kariba ଦ୍ୱାରା ଘୋଡ଼ାକୁ ସଯତ କରିବା—1. ବାশকড়াকরা To draw the reins tight. ୨ । ରାସକଡ଼ୀ କରନା (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ ବଶୀଭୂତ (ରାଶ୍ ଛାଡ଼ିବା—ବିପରୀତ) କରିବା—2. (figurative) To bring one under one's control.

ରାଶ୍ ଛାଡ଼ିବା—ଦେ. କ୍ରି—୧ । ଘୋଡ଼ାର ଲଗାମକୁ ଶ୍ଳଥ କରିବାଦ୍ୱାରା Rāś chhāṛibā ଘୋଡ଼ାକୁ ଚାଲିବାକୁ ସ୍ୱାଧୀନତା ଦେବା—1. To loosen the reins of a horse. ୨ । ରାଶ ଢିଲା(ଲେ)ଇବା, ରାଶ ଢିଲା ଦେବା, ରାଶ୍ ହାଲୁକା କରିବା, ରାଶ୍ ଫୁଗୁଲା(ଲେ)ଇବା, ରାଶ୍ ଫୁଗୁଲା କରିବା—ଅନ୍ୟରୂପ (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ ନିୟନ୍ତ୍ରିତ ନ କରିବା—2. (figurative) To give long reins to a person; not to keep a person under one's control. বাশ ছাড়া; রাশ ঢিলা দেওয়া রাস ঢিলাকরনা

ରାଶ୍ ତୁଫାରି—ବୈଦେ. ବ. ନାମ (ଅମ୍ହାରିକ୍ ଭାଷା—ରାଶ୍=ରାଜପୁତ୍ର Rāś tuphāri +ତୁଫାରି)—ଅବିସିନିଆର ସମ୍ରାଟ୍ ହେଲି ସେଲସୀ (ଦେଖ)—Heli Selisi (See); the Emperor of Abyssinia who was forcibly driven out of the kingdom by Italy in 1936.

ରାଶ୍ ଭାରି—ଦେ ବଣ—୧ । ସଂଯମୀ ଲୋକ—1. A person of Rāś bhāri self-control. ୨ । ଗମ୍ଭୀର; ଗମ୍ଭୀର—ରାଶ ଭାବୀ ପ୍ରକୃତିକ—2. Of gravity of temper; গংগির grave.

ରାଶ୍ ହାଲ(ଲୁ)କା—ବୈଦେ. ବଣ. (ଅ)—୧ । ଚପଳ; ତରତରିଆ—Rāś hāl(lu)kā 1. Hasty. ୨ । ଲଘୁଚିତ୍ତ—2. Light ରାଶହାଲକା ହଲ୍କ hearted.

ରାଶ୍କେ(କା, କ)ଲ—ବୈଦେ. ବ (ଗାଳ) (ଇଂ)—ପାଜି; ଶଠ ଓ ଧୂର୍ତ୍ତ Rāske(kā,ka)l ଲୋକ—A rascal; a rascally ରାସ୍କେଲ ରୈସ୍କେଲ person.

ରାଶ—ଦେ. ବ.—ରାଶ୍ (ଦେଖ) Rāsa Rāś (See)

ରାଶନା—ଦେ. ବ—ରାସ୍ନା (ଦେଖ) Rāśanā Rāsnā (See)

ରାଶି—ସ. ବ (ଅଶ୍ ଧାତୁ=ବ୍ୟାପିବା+କର୍ତ୍ତୃ. ଇ; ନିପାତନ)—୧ । Rāśi ଗଦା; ପୁଞ୍ଜ; ସ୍ତୂପ—1. Heap. ୨ । (ଗଣିତ) ସଂଖ୍ୟା—2. (Arithmetic) Number. ୩ । ଭଗ୍ନାଂଶ—3. Fraction. ୪ । (ଜ୍ୟୋତିଷ) ମେଷାଦି ଦ୍ୱାଦଶ ରାଶି—4. (Astrology) Signs of the Zodiac 12 in number. [ନକ୍ଷତ୍ର ତଳେ ନୋଟ୍ ଦେଖ]

[ଦ୍ର—ଗ୍ରହଚକ୍ର ୧୨ ଗୋଟି ରାଶିରେ ବିଭକ୍ତ, ଅର୍ଥାତ୍ ସୂର୍ଯ୍ୟ ବର୍ଷକ ମଧ୍ୟରେ ୧୨ ଗୋଟି ରାଶିକୁ ସଙ୍କ୍ରମଣ କରି ତାଙ୍କର ବାର୍ଷିକ ଗତିଚକ୍ରକୁ ପୂରେ ବୁଲନ୍ତି । ସୂର୍ଯ୍ୟଙ୍କର ବାର୍ଷିକ ଗତିଦ୍ୱାରା ପୃଥିବୀର ଚାରିଆଡ଼େ ଆକାଶରେ ଯେଉଁ ବୃତ୍ତ କଳ୍ପନାଦ୍ୱାରା ଅଙ୍କିତ ହୁଏ ତାହାକୁ ରାଶିଚକ୍ର ବୋଲାଯାଏ । ଏହି ସୂର୍ଯ୍ୟଙ୍କ ଗତିଦ୍ୱାରା କଳ୍ପିତରେଖା ଅଣ୍ଡାକାର (Elliptical), କିନ୍ତୁ ହିନ୍ଦୁ ଜ୍ୟୋତିଷୀମାନେ ଏହିକୁ ପରିଧିକୁ ବୃତ୍ତରୂପେ କଳ୍ପନା କରି ସେହି ପରିଧିକୁ ରାଶିଚକ୍ର କରିଅଛନ୍ତି । ଆକାଶସ୍ଥ ସେହି କଳ୍ପିତ ବୃତ୍ତକୁ ୧୨ ସମାନଭାଗରେ ବିଭକ୍ତ କରି ଯାଇଅଛି ଓ ପ୍ରତ୍ୟେକ ଅଂଶର ସୀମା ମଧ୍ୟରେ ଥିବା କେତେଗୁଡ଼ିଏ ଉଜ୍ଜ୍ୱଳ ନକ୍ଷତ୍ରର ସମଷ୍ଟିକୁ ରାଶି ବୋଲାଯାଏ । ଚନ୍ଦ୍ର ମଧ୍ୟ ଏକ ମାସ ମଧ୍ୟରେ ପୃଥିବୀର ଚାରିଆଡ଼େ ବୁଲି ଯେଉଁ ପରିଧି ଅଙ୍କନ କରନ୍ତି ତାହାକୁ (ଅର୍ଥାତ୍ ଆକାଶଚକ୍ରକୁ) ୨୭ ଭାଗରେ ବିଭକ୍ତ କରି ଯାଇଅଛି ଓ ଏହି ଭାଗମାନଙ୍କୁ ନକ୍ଷତ୍ର ବୋଲାଯାଏ । ଗୋଟିଏ ରାଶି ଏହି ବୃତ୍ତର $\frac{1}{12}$ ଓ ଗୋଟିଏ ନକ୍ଷତ୍ର ଏହି ବୃତ୍ତର $\frac{1}{27}$; ଅତଏବ ପ୍ରତ୍ୟେକ ରାଶି ଆକାଶଚକ୍ରର ଯେଉଁ ସ୍ଥାନ ଅଧିକାର କରେ ସେହି ସ୍ଥାନକୁ $2\frac{1}{4}$ ବା $\frac{9}{4}$ ନକ୍ଷତ୍ର ଅଧିକାର କରନ୍ତି । ୧୨ ରାଶିର ସୀମା = ୨୭ ନକ୍ଷତ୍ରର ସୀମା । ସୂର୍ଯ୍ୟ ଯେଉଁ ରାଶିର ସୀମା ମଧ୍ୟରେ ଯେଉଁ ମାସରେ ଥାଆନ୍ତି ସେହି ମାସର ସେହି ରାଶି ଅନୁସାରେ ନାମକରଣ ହୁଏ ।

ସୂର୍ଯ୍ୟ ଗୋଟିଏ ରାଶିର ସୀମା ମଧ୍ୟରେ ପ୍ରାୟ ୧ ମାସ କାଳ ଅବସ୍ଥାନ କରନ୍ତି । ସୂର୍ଯ୍ୟ ଯେଉଁ ରାଶିର ସୀମା ମଧ୍ୟରେ ଯେଉଁ ମାସରେ ଥାଆନ୍ତି ସେହି ମାସକୁ ସୌର ବା ସୌରମାନ ମାସ ।

ରାଶିମାନ ସଂଖ୍ୟାରେ ୧୨ । ଯଥା—ମେଷ, ବୃଷ, ମିଥୁନ, କର୍କଟ, ସିଂହ, କନ୍ୟା, ତୁଳା, ବିଛା, ଧନୁ, ମକର, କୁମ୍ଭ ଓ ମୀନ ।

ରାଶିଗୁଡ଼ିଏ ଉଜ୍ଜ୍ୱଳ ତାରକାର ସମଷ୍ଟି ମାତ୍ର । ସେହି ତାରକାଗୁଡ଼ିକ କାଳ୍ପନିକ ରେଖାମାନଙ୍କଦ୍ୱାରା ଯୋଗ କରିଗଲେ ତାହା ଯେଉଁ ଯେଉଁ କାଳ୍ପନିକ ଜୀବ ବା ବସ୍ତୁ ପରି ଦେଖାଯାଏ, ସେହି ରାଶିକୁ ସେହି ଜୀବର ବା ବସ୍ତୁର ନାମ ଦିଆଯାଇଅଛି ।

ମେଷ ରାଶିର ଉଜ୍ଜ୍ୱଳ ନକ୍ଷତ୍ରମାନଙ୍କୁ ରେଖା ଦ୍ୱାରା ଯୋଗ କଲେ ତାହା ମେଣ୍ଢା ପରି ଶୃଙ୍ଗ ଗୋଡ଼ ଓ ମୁଣ୍ଡ-ଯୁକ୍ତ ଜୀବରୂପେ ଦେଖାଯିବ । ଧନୁ ରାଶିର ନକ୍ଷତ୍ରଗୁଡ଼ିକ ଯୋଗକଲେ ଗୋଟିଏ ଧନୁ ଆକାର ଦେଖାଯିବ । ଏହା କେବଳ କାଳ୍ପନିକ ରୂପ ଅଟେ । ବୃହସ୍ପତିଙ୍କୁ ଗୋଟିଏ ରାଶିର ରୂପରେ ଆଖିକୁ ଦିଶୁଥିବା ନକ୍ଷତ୍ରମାନ ଶୂନ୍ୟ ଅଞ୍ଚଳରେ ପରସ୍ପରଠାରୁ ବହୁତ ଦୂରରେ ଅବସ୍ଥିତ ।

ହିନ୍ଦୁମାନଙ୍କ ରାଶିମାନଙ୍କ ସଙ୍ଗେ ପାଶ୍ଚାତ୍ୟ ରାଶିମାନଙ୍କ ନାମ ସାଦୃଶ୍ୟ ଥିଲେହେଁ ସଂସ୍କୃତ ରାଶିମାନଙ୍କ ସଙ୍ଗେ ପାଶ୍ଚାତ୍ୟ ରାଶିମାନଙ୍କର କେତେକ ଅମେଳ ମଧ୍ୟ ଅଛି—

୧ । ମେଷରାଶି—ପାଶ୍ଚାତ୍ୟ ମୀନାଂଶ ଓ ପାଶ୍ଚାତ୍ୟ ମେଷାଂଶ—Part of (Aries) Pisces and Part of Aries.
ଏହି ରାଶିରେ ଅଶ୍ବିନୀ ନକ୍ଷତ୍ର ଓ ଦ୍ବିଜା ନକ୍ଷତ୍ର ଅବସ୍ଥିତ ।

୨ । ବୃଷ ରାଶି—ପାଶ୍ଚାତ୍ୟ ମେଷାଂଶ ଓ ପାଶ୍ଚାତ୍ୟ ବୃଷାଂଶ—Part of (Taurus) Aries and part of Taurus.
ଏହି ରାଶିରେ କୃତ୍ତିକା ଓ ରୋହିଣୀନକ୍ଷତ୍ର ଅବସ୍ଥିତ ।

୩ । ମିଥୁନ ରାଶି—ପାଶ୍ଚାତ୍ୟ ବୃଷାଂଶ + ପାଶ୍ଚାତ୍ୟ ମିଥୁନାଂଶ + ପାଶ୍ଚାତ୍ୟ (Gemini) କାଲପୁରୁଷାଂଶ—Part of Taurus, part of Gemini and part of Orion.
ଏହି ରାଶିରେ ମୃଗଶିରା ଓ ଆର୍ଦ୍ରା ନକ୍ଷତ୍ର ଅବସ୍ଥିତ ।

୪ । କର୍କଟ ରାଶି—ପାଶ୍ଚାତ୍ୟ ମିଥୁନାଂଶ + ଶୁନୀମଣ୍ଡଳ + ପାଶ୍ଚାତ୍ୟ କର୍କଟ (Cancer) ରାଶି ଓ ହ୍ରଦସର୍ପମଣ୍ଡଳାଂଶ—Part of Gemini, Canis Minor, Cancer and Hydra.
ଏହି ରାଶିରେ ପୁନର୍ବସୁ, ପୁଷ୍ୟା ଓ ଅଶ୍ଳେଷା ନକ୍ଷତ୍ରମାନ ଅବସ୍ଥିତ ।

୫ । ସିଂହ ରାଶି—ପାଶ୍ଚାତ୍ୟ ସିଂହାଂଶ——Part of Leo.
(Leo) ଏହି ରାଶିରେ ମଘା ଓ ପୂର୍ବଫାଲ୍‌ଗୁନୀ ନକ୍ଷତ୍ର ଅବସ୍ଥିତ ।

୬ । କନ୍ୟାରାଶି—ପାଶ୍ଚାତ୍ୟ ସିଂହାଂଶ + ହସ୍ତା ନକ୍ଷତ୍ର + କନ୍ୟାଂଶ—(Virgo) Part of Leo, the Corvus and part Virgo. ଏହି ରାଶିରେ ଉତ୍ତରଫାଲ୍‌ଗୁନୀ, ହସ୍ତା ଓ ଚିତ୍ରା ନକ୍ଷତ୍ରମାନ ଅବସ୍ଥିତ ।

୭ । ତୁଳାରାଶି—ପାଶ୍ଚାତ୍ୟ କନ୍ୟାଂଶ + ପାଶ୍ଚାତ୍ୟ ତୁଳାଂଶ + ଶାର୍ଦ୍ଦୂଳ-(Libra) ମଣ୍ଡଳାଂଶ + ସର୍ପମଣ୍ଡଳାଂଶ—Part of Virgo, part of Libra, part of Lupus and part of Serpens.
ଏହି ରାଶିରେ ସ୍ୱାତୀ ଓ ବିଶାଖା ନକ୍ଷତ୍ର ଅବସ୍ଥିତ ।

୮ । ବୃଶ୍ଚିକରାଶି—ପାଶ୍ଚାତ୍ୟତୁଳାଂଶ + ପାଶ୍ଚାତ୍ୟ ବୃଶ୍ଚିକାଂଶ—Part of (Scorpio) Libra and part of Scorpio.
ଏହି ରାଶିରେ ଅନୁରାଧା ଓ ଜ୍ୟେଷ୍ଠା ନକ୍ଷତ୍ର ଅବସ୍ଥିତ ।

୯ । ଧନୁରାଶି—ପାଶ୍ଚାତ୍ୟ ବୃଶ୍ଚିକାଂଶ + ପାଶ୍ଚାତ୍ୟ ଧନୁରାଶ୍ୟଂଶ—Part (Sagittarius) of Scorpio, part of Sagittarius.
ଏହି ରାଶିରେ ମୂଳା, ପୂର୍ବାଷାଢ଼ା ଓ ଉତ୍ତରାଷାଢ଼ା ନକ୍ଷତ୍ର ଅବସ୍ଥିତ ।

୧୦ । ମକରରାଶି—ପାଶ୍ଚାତ୍ୟ ଧନୁରଂଶ + ପାଶ୍ଚାତ୍ୟ ମକରାଂଶ + ପାଶ୍ଚାତ୍ୟ (Capricorn) କୁମ୍ଭାଂଶ—Part of Sagittarius, part of Capricorn, part of Aquarius. ଏହି ରାଶିରେ ଶ୍ରବଣା ଓ ଧନିଷ୍ଠା ନକ୍ଷତ୍ର ଅବସ୍ଥିତ ।

୧୧ । କୁମ୍ଭ ରାଶି—ପାଶ୍ଚାତ୍ୟ ମକରାଂଶ + ପାଶ୍ଚାତ୍ୟ କୁମ୍ଭାଂଶ + ପକ୍ଷୀରାଜ (Aquarius) ମଣ୍ଡଳାଂଶ + ପାଶ୍ଚାତ୍ୟ ମୀନାଂଶ—Part of Capricorn, part of Aquarius, part of Pegasus, part of Pisces.
ଏଥିରେ ଶତଭିଷା ଓ ପୂର୍ବ ଭାଦ୍ରପଦ ନକ୍ଷତ୍ର ଅଛି ।

୧୨ । ମୀନ ରାଶି—ପାଶ୍ଚାତ୍ୟ କୁମ୍ଭାଂଶ + ପକ୍ଷୀରାଜ ମଣ୍ଡଳାଂଶ + ପାଶ୍ଚାତ୍ୟ (Pisces) ମୀନାଂଶ + ଧ୍ରୁବମାତା ମଣ୍ଡଳାଂଶ—Part of Aquarius, part of Pegasus, part of Pisces, part of Andromeda.

ଏଥିରେ ଉତ୍ତର ଭାଦ୍ରପଦ ଓ ରେବତୀ ନକ୍ଷତ୍ର ଅବସ୍ଥିତ ।

ରାଶିମାନଙ୍କର ନାମ :—

| ନକ୍ଷତ୍ର | ସଂସ୍କୃତ | ଲାଟିନ୍ | ଇଂରାଜୀ |
|---|---|---|---|
| (ଅଶ୍ବିନୀ, ଦ୍ବିଜା + ¼ କୃତ୍ତିକା) | ମେଷ | Aries | The Ram. |
| (ଏଥିରେ ଯୋଗ ତାରା ଅଶ୍ବିନୀର Hamal, Aries Alpha) | | | |
| (¾ କୃ + ରୋ + ମୃ ½) | ବୃଷ | Taurus | The Bull. |
| (ଏଥିରେ ବଡ଼ ତାରା ରୋହିଣୀର—Aldeberan). | | | |
| (ମୃ ½ + ଆ + ପୁ ¾) | ମିଥୁନ | Gemini | The Twins |
| (ପୁ ¼ + ପୁ + ଅ) | କଙ୍କଡ଼ା | Cancer | The Crab. |
| (ମ + ପୂ ଫା + ଉ ଫା ¼) | ସିଂହ | Leo | The Lion. |
| (ଉ ଫା ¾ + ହ + ଚ ½) | କନ୍ୟା | Virgo | The Virgin. |
| (ଚ ½ + ସ୍ୱା + ବି ¾) | ତୁଳ | Libra | The Scales. |
| (ବି ¼ + ଅ + ଜ୍ୟେ) | ବିଛା | Scorpio | The Scorpion. |
| (ମୂ + ପୂ + ଉ ¼) | ଧନୁ | Sagittarius | The Archer. |
| (ଉ ¾ + ଶ୍ର + ଧ ½) | ମକର | Capricorn | The Sea-goat. |
| (ଧ ½ + ଶ + ପୂ ଭା ¾) | କୁମ୍ଭ | Aquarius | The Water-bearer. |
| (ପୂ ଭା ¼ + ଉ ଭା + ରେ) | ମୀନ | Pisces | The fishes. |

ନକ୍ଷତ୍ରମାନ ମଧ୍ୟ ଗୋଟିଏ ଗୋଟିଏ ଉଜ୍ଜ୍ବଳ ତାରା ବା ତାରକାସମଷ୍ଟି ଅଟେ । ଯଥା—ମୃଗଶିରା ନକ୍ଷତ୍ରରେ ଥିବା ତାରାମାନଙ୍କୁ କଳ୍ପିତ ରେଖା ଦ୍ୱାରା ଯୋଗ କଲେ ତାହା ମୃଗର ଶୃଙ୍ଗ ବିଶିଷ୍ଟ ମୁଣ୍ଡ ପରି ଦେଖାଯାଏ । ପୂର୍ବେ କୁହାଯାଇ ଅଛି ଯେ, ୧୨ଟି ରାଶି = ୨୭ଟି ନକ୍ଷତ୍ର । ପ୍ରତ୍ୟେକ ରାଶି ୨¼ ନକ୍ଷତ୍ର ଭୋଗ କରେ । ଯଥା—ମେଷ ରାଶି = ଅଶ୍ବିନୀ + ଦ୍ବିଜା + କୃତ୍ତିକାରୁ ¼; ବୃଷ = କୃତ୍ତିକାରୁ ଅବଶିଷ୍ଟ ¾ + ରୋହିଣୀ + ମୃଗଶିରାରୁ ½; ମିଥୁନ = ମୃଗଶିରାରୁ ଅବଶିଷ୍ଟ ½ + ଆର୍ଦ୍ରା + ପୁନର୍ବସୁର ¾; ଏହିପରି ଅବଶିଷ୍ଟ ରାଶିମାନଙ୍କ ଗଣନା କରାଯାଏ—(ରାଶିଚକ୍ର ଦେଖ); ରାଶି ଓ ନକ୍ଷତ୍ରମାନ ବାମାବର୍ତ୍ତ, ଅର୍ଥାତ୍ ଆକାଶ ଉପର ନିର୍ଦ୍ଦିଷ୍ଟ ସ୍ଥାନରୁ ଆରମ୍ଭ କରି ବାମ ଆଡ଼କୁ ଯଥାକ୍ରମେ ଗତି କରୁଥିବା କଳ୍ପିତ ହୋଇଅଛନ୍ତି ।

ମନୁଷ୍ୟର ଜନ୍ମ ସମୟରେ ଚନ୍ଦ୍ରଗ୍ରହ ଯେଉଁ ରାଶିରେ ଥାଆନ୍ତି ତାକୁ ଉକ୍ତ ବ୍ୟକ୍ତିର ଜନ୍ମରାଶି କହନ୍ତି ଓ ମନୁଷ୍ୟର ଜନ୍ମ ସମୟରେ ରାଶି ଚକ୍ରର ଯେଉଁ ଅଂଶ ବା ଯେଉଁ ରାଶିଟି କ୍ଷିତିଜ ବା କ୍ଷମଣ୍ଡଳରେ ଲଗ୍ନ ଥାଏ ବା ଲାଗିଥାଏ ତାକୁ ମନୁଷ୍ୟର ଜନ୍ମଲଗ୍ନ ବୋଲାଯାଏ । ନିଜର ଅବସ୍ଥିତ ସ୍ଥାନକୁ କେନ୍ଦ୍ର କରି ୯୦ ଡିଗ୍ରୀରେ ବୃତ୍ତ ବୁଲାଇଲେ ଯେଉଁ କଳ୍ପିତ ମଣ୍ଡଳଟି ବା ପରିଧି ହୁଏ ତାକୁ କ୍ଷମଣ୍ଡଳ ବୋଲାଯାଏ ।

ମନୁଷ୍ୟର ଜନ୍ମ ହେବା ସମୟ ଅନୁସାରେ ଭିନ୍ନ ଭିନ୍ନ ରାଶି ଗଣନା କରାଯାଏ ଓ ଯେଉଁ ବ୍ୟକ୍ତିର ଯେଉଁ ରାଶିରେ ଜନ୍ମ ସେହି ବ୍ୟକ୍ତିର ସେହି ରାଶି ଥିବାର ବୋଲାଯାଏ । ଭିନ୍ନ ଭିନ୍ନ ରାଶିଧାରୀ ବ୍ୟକ୍ତିଙ୍କ ଗ୍ରହମାନଙ୍କରେ ଦଶାକ୍ରମେ ଭିନ୍ନ ଭିନ୍ନ ଫଳାଦି ଜ୍ୟୋତିଷ ମତରେ ଉକ୍ତ ହୋଇଅଛି ।)

ନିମ୍ନଲିଖିତ ସନ୍ଦର୍ଭଲେଖକ ଜ୍ୟୋତିଷାଚାର୍ଯ୍ୟ

ଶ୍ରୀ ବାଇକୋଳ ମହାପାତ୍ର

ରାଶି—(Sign cf the zodiac).

ରାଶି=ଜ୍ୟୋତିଶ୍ଚକ୍ରର ଦ୍ୱାଦଶାଂଶ । ସପ୍ତବିଂଶତି ନକ୍ଷତ୍ର-ଯୁକ୍ତ ସ୍ଥିର ରାଶିଚକ୍ର ପ୍ରବହ ନାମକ ବାୟୁର ଊର୍ଦ୍ଧ୍ୱଦେଶରେ ଅବସ୍ଥିତ । ସମଗ୍ର ରାଶିଚକ୍ର ୩୬୦ ଅଂଶ, ଅର୍ଥାତ୍ ଗୋଟିଏ ବୃତ୍ତ । ଏହାର ଦ୍ୱାଦଶଭାଗରୁ ଏକଭାଗକୁ ରାଶି ବୋଲାଯାଏ । ଦୁଇଟି ନକ୍ଷତ୍ର ଓ ଅପର ଏକ ନକ୍ଷତ୍ରର ଏକ ଚତୁର୍ଥାଂଶ ଘେନି ଏକ ରାଶି ଗଠିତ ହୁଏ । ଏକ ନକ୍ଷତ୍ରର ସ୍ଥାନ ୧୩⅓ ଅଂଶ । ସୁତରାଂ ସପାଦ ଦୁଇ ନକ୍ଷତ୍ର ୧୩⅓ × ୨¼=୩୦ ଡିଗ୍ରୀ ଏକ ରାଶିର ସ୍ଥାନ ଅଟେ । କାଳପୁରୁଷ ଭଗବାନ୍ ଦ୍ୱାଦଶଧା ବିଭକ୍ତ ହୋଇ ଶୂନ୍ୟ ମଣ୍ଡଳରେ ରାଶିଚକ୍ର ସ୍ୱରୂପରେ ବିରାଜମାନ ।

ରାଶି ବାରଗୋଟି—୧. ମେଷ, ୨. ବୃଷ, ୩. ମିଥୁନ, ୪. କର୍କଟ, ୫. ସିଂହ, ୬. କନ୍ୟା, ୭. ତୁଳା, ୮. ବୃଶ୍ଚିକ, ୯. ଧନୁ, ୧୦. ମକର, ୧୧. କୁମ୍ଭ, ୧୨. ମୀନ । ବିଭିନ୍ନ ଜ୍ୟୋତିଷ ଗ୍ରନ୍ଥରେ ବ୍ୟବହାର ନିମିତ୍ତ ରାଶିମାନଙ୍କର ନିମ୍ନୋକ୍ତ ପରିଚୟ ସବୁ ଦୃଷ୍ଟ ହୁଏ ।

୧ । ମେଷ (Aries)—ପ୍ରଥମ ରାଶି, ସମାନ ଦେହ, କାଳପୁରୁଷର ମସ୍ତକ, ଗୁହା ପର୍ବତାଦି ନିବାସ, ଅଗ୍ନି ରାଶି, ଧାତୁର ଓ ରତ୍ନର ସ୍ଥାନ, ଚର, ଚତୁଷ୍ପଦ, ପିତ୍ତପ୍ରକୃତି, କ୍ଷତ୍ରିୟବର୍ଣ୍ଣ, ପୂର୍ବଦିଗ ଓ କୃଷ୍ଣବର୍ଣ୍ଣ ।

ଆକାର—ମେଷାକାର; ଯେପରିକି ମେଷ ଉତ୍ତରମୁଖ ହୋଇ ଊର୍ଦ୍ଧ୍ୱଦିଗକୁ ଚାହିଁଛି । Hamal ବା Arietis ନାମକ ଦ୍ୱିତୀୟ ପ୍ରଭାଯୁକ୍ତ ତାରା ଏହାର ବାମ ଚକ୍ଷୁ । ଏହି ମଣ୍ଡଳ ମଧ୍ୟରେ ଏକମାତ୍ର Hamal ନାମକ ତାରାହିଁ ଉଜ୍ଜ୍ୱଳ । ୬୬ ତାରା ଘେନି ଏହି ରାଶି ମଣ୍ଡଳ ଗଠିତ ।

୨ । ବୃଷ (Taurus)—ସ୍ଥିର, ସ୍ତ୍ରୀ, ପୃଥ୍ୱୀ, ଶୀତଳ ସ୍ୱଭାବ, ଦକ୍ଷିଣ ଦିଗ, ବାୟୁପ୍ରକୃତି, ବୈଶ୍ୟବର୍ଣ୍ଣ, କାଳ-ପୁରୁଷର ବକ୍ଷ ଓ କଣ୍ଠ, ବନ ପର୍ବତ ସାନୁଦେଶ ନିବାସ ଓ ଶ୍ୱେତବର୍ଣ୍ଣ ।

ଆକାର—ବୃଷାକାର; ବୃଷ ଉତ୍ତରମୁଖା ହୋଇ ଦଣ୍ଡାୟମାନ, ମୁଖ ପଛକୁ ବୁଲାଇଅଛି । ତ୍ରିଭୁଜାକାର Hyades group ହିଁ ଏହାର ମୁଖ । ୧୪୧ ତାରା ଘେନି ଏହି ମଣ୍ଡଳ ଗଠିତ । ରୋହିଣୀର ଗୋଟିଏ ତାରା Aldebaran ଏଥିରେ ଉଜ୍ଜ୍ୱଳତମ ତାରା ।

୩ । ମିଥୁନ (Gemini)—ଦ୍ୱିପଦ, ପୁରୁଷ, ଦ୍ୱାତ୍ମିକ, ପଶ୍ଚିମ, ବାୟୁ ପ୍ରକୃତି, ବନସ୍ଥ, ଶୂଦ୍ରବର୍ଣ୍ଣ, କାଳପୁରୁଷର ସ୍କନ୍ଧ, ଭୁଜ ଓ ଅଂଶ, କ୍ରୀଡାସ୍ଥାନ ।

ଆକାର—ଦୁଇଟି ନରାକାର ଦେହ, ଏକର କ୍ରୋଡ଼ରେ ଯେପରି ଅନ୍ୟ ଅର୍ଦ୍ଧୋପବିଷ୍ଟ ଓ ଉତ୍ତରମୁଖ । ମଣ୍ଡଳଟି ଅସ୍ପଷ୍ଟ ଓ ଏଥିରେ ୮୫ ତାରା ଅଛନ୍ତି । ପୁନର୍ବସୁ ମଣ୍ଡଳଗତ Castor ନାମକ ତାରାହିଁ ବିଶେଷ ଉଜ୍ଜ୍ୱଳ ।

୪ । କର୍କଟ (Cancer)—ଚର, ସ୍ତ୍ରୀ, ଶ୍ୱେତରକ୍ତ ବର୍ଣ୍ଣ, ଉତ୍ତରଦିଗ, ବହୁପଦ, କାଳପୁରୁଷର ବକ୍ଷସ୍ଥଳ, ସରୋବରାଦି ମୂର୍ତ୍ତି ।

ଆକାର—କର୍କଟ ନ୍ୟାୟ, ବକ୍ର, ୮୩ ନକ୍ଷତ୍ରଦ୍ୱାରା ଏହା ଗଠିତ । ପୁନର୍ବସୁର ଅନ୍ୟ ଏକ ନକ୍ଷତ୍ର ଏଥିରେ Sirius, ଉଜ୍ଜ୍ୱଳତମ ।

୫ । ସିଂହ ( Leo )—ଏହା ସ୍ଥିର, ପୁରୁଷ, ଅଗ୍ନି, ପୀତବର୍ଣ୍ଣ, ପିତ୍ତପ୍ରକୃତି, ପୂର୍ବଦିଗ, ଚତୁଷ୍ପଦ, ପର୍ବତନିବାସୀ, କ୍ଷତ୍ରିୟବର୍ଣ୍ଣ ଓ କାଳପୁରୁଷର ହୃଦୟା-କାର ଦକ୍ଷିଣଦିଗ ପ୍ରତି ଊର୍ଦ୍ଧ୍ୱମୁଖରେ ଦଣ୍ଡାୟମାନ ସିଂହ । ୯୫ ତାରା ଘେନି ଏହି ମଣ୍ଡଳ ଗଠିତ । ଏଥିରେ ପୂର୍ବାଫାଲ୍‌ଗୁନୀସ୍ଥ Regulus ନାମକ ତାରା ବିଶେଷ ଉଜ୍ଜ୍ୱଳ ।

୬ । କନ୍ୟା (Virgo)—ଦ୍ୱାତ୍ମ୍ୟକ, ସ୍ତ୍ରୀ, ଦ୍ୱିପଦ, ପିଙ୍ଗଳ ବର୍ଣ୍ଣ, ଦକ୍ଷିଣଦିଗ, ବାୟୁ ପ୍ରକୃତି, ଶୀତଳ, ବୈଶ୍ୟବର୍ଣ୍ଣ ଓ କାଳପୁରୁଷର ଜଠର ଓ ବିହାର ଭୂମି ।

ଆକାର—ଗୋଟିଏ ନୌକା ଉପରେ ଏକ ନାରୀ ଉପବିଷ୍ଟା, ଗାତ୍ର ଓ ମସ୍ତକ ଅନାଚ୍ଛାଦିତ ବୋଲି ଏହାକୁ କନ୍ୟା (Virgin) ବୋଲାଯାଏ । ଏଥିରେ କୌଣସି ଉଜ୍ଜ୍ୱଳ ତାରା ନାହିଁ । ୧୧୦ ଟି ତାରା ଘେନି ଏହି ମଣ୍ଡଳ ଗଠିତ ।

୭ । ତୁଳା (Libra)—ଚର, ପୁରୁଷ, ବିଚିତ୍ର ବର୍ଣ୍ଣ, ପଶ୍ଚିମ, ବାୟୁ ପ୍ରକୃତି, ଶୂଦ୍ରବର୍ଣ୍ଣ, ଦ୍ୱିପଦ, ବିକ୍ରୟ ସ୍ଥାନ, କାଳ ପୁରୁଷର ନାଭି ଓ କଟିଦେଶ ।

ଆକାର—ତୁଳାଦଣ୍ଡ ଆକାର, ଜଣେ ଅସ୍ପଷ୍ଟ ମନୁଷ୍ୟ ଯେପରି ତୁଳାଦଣ୍ଡକୁ ଝୁଲାଇ ରଖିଛି । ଏଥିରେ ୫୧ଟି ତାରା ବିଦ୍ୟମାନ । ଏଥିର ଉଜ୍ଜ୍ୱଳ ତାରା ଚିତ୍ରା ମଧ୍ୟସ୍ଥ Spica.

୮ । ବୃଶ୍ଚିକ (Scorpion)—ସ୍ଥିର, ସ୍ତ୍ରୀ, ଶ୍ୱେତବର୍ଣ୍ଣ, ଉତ୍ତର ଦିଗ, କଫ ପ୍ରକୃତି, ଜଳସ୍ଥାନ, ବିପ୍ରବର୍ଣ୍ଣ; କାଳ ପୁରୁଷର ଲିଙ୍ଗ ଓ ଗୁହ୍ୟଦେଶ ।

ଆକାର—ବୃଶ୍ଚିକାକାର ସୁସ୍ପଷ୍ଟରାଶି, ୪୪ ତାରା ଘେନି ଏହି ମଣ୍ଡଳ ଗଠିତ, ଦକ୍ଷିଣ ଦିଗରେ ଆକାର ସୁସ୍ପଷ୍ଟ ଦେଖାଯାଏ । ଅନୁରାଧା ନକ୍ଷତ୍ରସ୍ଥ Antares ତାରା ବିଶେଷ ଉଜ୍ଜ୍ୱଳ ।

୯ । ଧନୁ (Sagittarius)—ଦ୍ୱାତ୍ମିକ, ପୁରୁଷ, ପର୍ବତ ନିବାସୀ, ପୀତବର୍ଣ୍ଣ, କ୍ଷତ୍ରିୟ, ପିତ୍ତପ୍ରକୃତି, ଅଗ୍ନିରାଶି, ଦ୍ୱିପଦ ଓ କାଳପୁରୁଷର ଊରୁଦେଶ ।

ଆକାର—ଜଣେ ମନୁଷ୍ୟର ଦୁଇହାତରେ ଗୋଟିଏ ଶରଯୁକ୍ତ ଧନୁ । ୬୯ ତାରା ଘେନି ଏହି ମଣ୍ଡଳ ଗଠିତ,

ଏହା ଖୁବ୍ ସ୍ପଷ୍ଟ, ମୂଳା ନକ୍ଷତ୍ରସ୍ଥ ଉଜ୍ଜ୍ୱଳତମ ତାରା ବିଶେଷ ଉଜ୍ଜ୍ୱଳ ।

୧୦ । ମକର (Capricorn)—ଚର, ସ୍ତ୍ରୀ, ଦକ୍ଷିଣ, ପିଙ୍ଗଳବର୍ଣ୍ଣ, ଶୀତଳ ସ୍ୱଭାବ, ବାତପ୍ରକୃତି, ବୈଶ୍ୟବର୍ଣ୍ଣ ଓ କାଳପୁରୁଷର ଜାନୁଦେଶ; ସରୋବର ଗର୍ତ୍ତ ବିହାରୀ ।

ଆକାର—ମକରାକୃତି ୫୧ ଟି ତାରା ଯୋଗ ଏହି ମଣ୍ଡଳ ଗଢ଼ା; ଏଥିରେ ଶ୍ରବଣା ନକ୍ଷତ୍ରସ୍ଥ Altair ତାରାହିଁ ଉଜ୍ଜ୍ୱଳ ।

୧୧ । କୁମ୍ଭ (Aquarius)—ସ୍ଥିର, ଅପଦ, ପୁରୁଷ, ବାୟୁ ପ୍ରକୃତି, ଶୂଦ୍ର ବର୍ଣ୍ଣ ଓ ପଶ୍ଚିମ ଦିଗ । କାଳ ପୁରୁଷର ସ୍କନ୍ଧ ।

ଆକାର—କଳଶ ବା ଘଟାକାର; ମୁଖ ପଶ୍ଚିମଦକ୍ଷିଣଦିଗରେ ଓ ନିମ୍ନ ସ୍ଥାନ ଉତ୍ତର-ପୂର୍ବ ଦିଗରେ ଅବସ୍ଥିତ । କୁମ୍ଭ ଓ କୁମ୍ଭବାହକ ୧୦୮ ତାରା ଯୋଗ ଗଠିତ । ପୂର୍ବ ଭାଦ୍ରପଦରେ Enif (E. Pegasi) ତାରାହିଁ ଉଜ୍ଜ୍ୱଳ ଦେଖାଯାଏ ।

୧୨ । ମୀନ (Pisces)—ଦ୍ୱାସ୍ୱଭାବ, ସ୍ତ୍ରୀ, ପିଙ୍ଗଳବର୍ଣ୍ଣ, ଜଳ ସ୍ଥାନ, ବିପ୍ର ବର୍ଣ୍ଣ, କାଳପୁରୁଷର ପାଦ ଦେଶ ଓ କଫ ପ୍ରକୃତି ।

ଆକାର—ପରସ୍ପର ସଂଲଗ୍ନ ଦୁଇଟି ମତ୍ସ୍ୟ । ୧୧୩ ତାରା ଯୋଗ ଏହା ଗଢ଼ା । ରେବତୀ ନକ୍ଷତ୍ରଗତ Mirach ନାମକ ତାରା ଏଥିରେ ଉଜ୍ଜ୍ୱଳ ।

ସୂର୍ଯ୍ୟ ଯେତେବେଳେ ଯେଉଁ ରାଶି ବାଟଦେଇ ଗତିକଲା ପ୍ରାୟ ବୋଧ ହୁଏ, ସେତେବେଳେ ରାଶିର ନାମାନୁସାରେ ସୌର ମାସ କଳ୍ପିତ ହୁଏ । (ସୌରମାନ ଶବ୍ଦରେ ଏହାର ବିଶେଷବିବରଣ ଦ୍ରଷ୍ଟବ୍ୟ) ।

ରାଶିମାନଙ୍କର ନାମକରଣ ସମ୍ବନ୍ଧେ ପାଶ୍ଚାତ୍ୟ ବୈଜ୍ଞାନିକ ଜଗତର ମହାମତ ପ୍ରସିଦ୍ଧ ଜ୍ୟୋତିର୍ବିଦ୍ Newcombଙ୍କ Popular Astronomy ନାମକ ଗ୍ରନ୍ଥର "Motion of the sun among the stars" ଅଧ୍ୟାୟରୁ ନିମ୍ନରେ ଉଦ୍ଧୃତ କରାଗଲା ।

"We have no historic record of this division of the zodiac into signs, and the ideas of the authors can only be inferred from collateral circumstances. It has been fancied that the names were suggested by the seasons, the agricultural operations and so on. Thus, the spring signs (Aries--the Ram, Taurus—the Bull, and Gemini—the Twins) are supposed to mark the bringing forth of young by the flocks and herds. Cancer—the Crab, marks the time when the sun having attained its greatest declination, begins to go back towards the equator; and the crab having been supposed to move backwards, his name was given to this sign. Leo—the Lion, symbolizes the fierce heat of summer; and Virgo—the Virgin gleaning corn, symbolizes the harvest. In Libra—the Balance, the day and night balance each other, being of equal length. Scorpio—the Scorpion, is supposed to have marked the presence of venomous reptiles in October, while Sagittarius—the Archer, symbolizes the season of hunting. The explanation of Capricornus, the Goat, is more fanciful, if possible, than that of Cancer. It was supposed that this animal, ascending the hill as he feeds, in order to reach the grass more easily, on reaching the top, turns back again, so that, his name was used to mark the sign in which the Sun, from going south, begins to return to the north. Aquarius—the water-bearer, symbolizes the winter rains; and Pisces—the Fishes, the season of fishes.

All this is, however, mere conjecture, the only coincidences at all striking being Virgo and Libra. The names of the constellations were probably given to them several centuries, perhaps even thousands of years, before the Christian era; and in that case the Zodiacal constellations would not have corresponded to the season we have indicated. An attempt has even been made to show that the names of the zodiacal constellations were intended to commemorate the Twelve Labours of Hercules; but this theory rests on no better foundation than the other.

Zodiacal constellations occupy quite unequal spaces in the heavens, as may be seen by the inspection of the maps. In the beginning they were simply twelve houses for the sun, which that luminary occupied in the course of the year. Hipparchus found this system entirely insufficient for

exact astronomy and therefore divided the ecliptic and Zodiac into twelve equal parts, of 30° each, called signs of the Zodiac."

× × ×

ଏଥିରୁ ଜଣାଯିବ ଯେ ନାମକରଣ ସମ୍ବନ୍ଧେ ଏ ସମସ୍ତ ଅନୁମାନ ଯଥାର୍ଥରେ ଅବାସ୍ତବ । ପ୍ରକୃତରେ ଏହି ନାମଗୁଡ଼ିକ ସେହି ସେହି ରାଶିମାନଙ୍କର କଳ୍ପିତ ଆକୃତିକୁ ଦେଖି ପ୍ରାଚ୍ୟ ମନୀଷିବୃନ୍ଦ ଆବିଷ୍କାର କରିଅଛନ୍ତି । ପାଶ୍ଚାତ୍ୟମାନେ ସେଗୁଡ଼ିକୁ ତଦନୁରୂପ ନାମ ଦେଲେ ସୁଦ୍ଧା ଏ ତଥ୍ୟ ବିସ୍ମୃତ ହୋଇ ନାନା ସନ୍ଦେହରେ ପଡ଼ିଅଛନ୍ତି । ନାମଗୁଡ଼ିକ ଆକାରହେତୁକ; ସେଥିର ଅନ୍ୟ କୌଣସି ବ୍ୟାଖ୍ୟା ସମ୍ପୂର୍ଣ୍ଣ ଅନାବଶ୍ୟକ ।

ନିମ୍ନଲିଖିତ ସନ୍ଦର୍ଭଲେଖକ ବାବୁ ଜଗବନ୍ଧୁ ସିଂହ

ରାଶି—ରାଶି କହିଲେ ସାଧାରଣ ଲୋକେ ବୁଝନ୍ତି ଡାଲି । ଆମ୍ଭ ଦେଶରେ ରାଶି ୩ ପ୍ରକାର ହୁଏ ଯଥା :—ମାଘି, ଭୋଦେଇ, ନାଲିଜ । ମାଘିରାଶି ମାଘ ମାସରେ ଅମଳ ହୁଏ, ଭୋଦେଇ ରାଶି ଭାଦ୍ରବରେ ଅମଳ ହୁଏ, ନାଲିଜ ରାଶି ଚଇତ୍ର ମାସରେ ଅମଳ ହୁଏ । ରାଶି ପେଡ଼ି ତେଲ ବାହାର କରାଯାଏ । ରାଶିତେଲ ବଡ଼ ସ୍ନିଗ୍ଧ ଓ ଶୀତଳ, ମସ୍ତିଷ୍କକୁ ଥଣ୍ଡା ରଖେ । ଆୟୁର୍ବେଦୋକ୍ତ ଅନେକ ତୈଳରେ ରାଶିତେଲ ବ୍ୟବହାର କରାଯାଏ । ରାଶିକୁ ଗୁଡ଼ରେ ପାଗ କରି ରାଶି-ଲଡ଼ୁ ତିଆରି କରାଯାଏ । ରାଶିକୁ ବ୍ରୀହି ଚାଉଳ ସଙ୍ଗେ ମିଶାଇ ରାଶିବଡ଼ି କରାଯାଏ । ରାଶି ତର୍ପଣରେ ଆବଶ୍ୟକ ହୁଏ । ତିଳ ତର୍ପଣରେ ପିତୃପିତାମହମାନେ ପରିତୃପ୍ତ ହୁଅନ୍ତି । ଏହା ରାଶିର ସାଧାରଣ ଅର୍ଥ । ଏ ରାଶି ପୃଥିବୀ ଉପରେ ଜନ୍ମେ । ଆକାଶମାର୍ଗରେ ରାଶି ଅଛି । କେତେଗୁଡ଼ିଏ ନକ୍ଷତ୍ର ମିଶି ଗୋଟିଏ ରାଶି ହୁଏ । ନଅପାଦ ନକ୍ଷତ୍ରରେ ଏକ ରାଶି । ପ୍ରତ୍ୟେକ ନକ୍ଷତ୍ର ଚାରି ପାଦ ବିଶିଷ୍ଟ । ନକ୍ଷତ୍ର ୨୭ ଗୋଟି । ଅଶ୍ୱିନୀ, ଭରଣୀ ଓ କୃତ୍ତିକାର ଏକପାଦ ମିଶି ମେଷରାଶି । ପ୍ରତ୍ୟେକ ରାଶି ଓ ପ୍ରତ୍ୟେକ ନକ୍ଷତ୍ରର ନାମ ଅଛି । ରାଶି ନକ୍ଷତ୍ର ଛଡ଼ା ୯ଗୋଟି ଗ୍ରହ ଅଛନ୍ତି । ଏମାନଙ୍କର ଭିନ୍ନ ଭିନ୍ନ ନାମ ଅଛି । ରାଶି ୧୨ଟି । ଏହି ରାଶିନାମାନୁସାରେ ବାର ମାସର ନାମ । ୭ଗ୍ରହନାମାନୁସାରେ ୭ବାରର ନାମ ।

ଏହି ରାଶି, ନକ୍ଷତ୍ର ଓ ଗ୍ରହଗଣ ଯେପରି ଜ୍ୟୋତିଃଶାସ୍ତ୍ରର ସୃଷ୍ଟି । ଜ୍ୟୋତିଷଶାସ୍ତ୍ର ଦୁଇଭାଗରେ ବିଭକ୍ତ—ଗଣିତ ଜ୍ୟୋତିଷ ଓ ଫଳିତଜ୍ୟୋତିଷ । ଆକାଶରାଜ୍ୟକୁ ଦୃଷ୍ଟି ଦେଲେ ମାନବର ବୁଦ୍ଧି ସ୍ତମ୍ଭିତ ହୋଇଯାଏ । ଅସୀମ ଅନନ୍ତ ଆକାଶ ଅସଂଖ୍ୟ ନକ୍ଷତ୍ରମାଳାରେ ବିଭୂଷିତ । ସେ ଅନନ୍ତ ରାଜ୍ୟରେ କୋଟି କୋଟି ନକ୍ଷତ୍ର ନିପରି, କି କୌଶଳରେ କିଏ ସଜାଇ ରଖିଛି, ତାହା ଆଲୋଚନା କଲେ ମାନବ ଅବାକ୍ ହୁଏ । ମାନବବୁଦ୍ଧି ସସୀମ । ମାନବ ସେହି ସସୀମ ବୁଦ୍ଧିରେ ଏ ଅସୀମରାଜ୍ୟର କଳନା କରିବାକୁ ପ୍ରୟାସୀ । ଗ୍ରହ, ନକ୍ଷତ୍ର ଓ ରାଶିମାନଙ୍କ ଗତି-ନିରୂପଣ କରିବା, ଗଣିତଜ୍ୟୋତିଷର କାର୍ଯ୍ୟ । କେଉଁ ଗ୍ରହ, ନକ୍ଷତ୍ର ଦିନକେ କେତେ ଗତି କରୁଛି, କାହା ଗତିପଥରେ କିଏ ଆସି ଗ୍ରହଯୁଦ୍ଧ ସଂଘଟନ କରୁଛି, କେଉଁ ଗ୍ରହଙ୍କଠାରେ କି କି ଉପାଦାନ ଅଛି, ଗ୍ରହଣ କେବେ ସଂଘଟିତ ହେଉଛି, କେଉଁ ଗ୍ରହ କେବେ ଉଦିତ ହେଉଛି, କେବେ ଅସ୍ତ ହେଉଛି, ଇତ୍ୟାଦି ଗଣିତ ବିଷୟମାନ ଗଣିତ ଜ୍ୟୋତିଷର କର୍ମକ୍ଷେତ୍ର । ଏହି ଗ୍ରହ ଜଗତରେ ଗ୍ରହମାନଙ୍କ ଗତିବିଧି ନିରୂପଣ କରିବା-ପାଇଁ ପାଶ୍ଚାତ୍ୟ ଦେଶରେ ଦୂରବୀକ୍ଷଣ ପ୍ରଭୃତି ଅନେକ ଯନ୍ତ୍ର ଆବିଷ୍କୃତ ହୋଇଅଛି । ବୁଦ୍ଧିମାନ୍ ମାନବ ତାହାର ପ୍ରଖର ବୁଦ୍ଧିବଳରେ ଏ ସବୁ କାର୍ଯ୍ୟ କରୁଅଛି । ପ୍ରାଚୀନ ଭାରତର ଭାସ୍କରାଚାର୍ଯ୍ୟ ପ୍ରଭୃତି ଧୁରନ୍ଧର ଜ୍ୟୋତିର୍ବିଦ୍‌ମାନେ ଅନ୍ୟାନ୍ୟ ବିଦ୍ୟାପରି ଜ୍ୟୋତିର୍ବିଦ୍ୟାର ଚୂଡ଼ାନ୍ତରେ ପ୍ରବେଶ କରି ପାରିଥିଲେ । ସେ ତ୍ରିକାଳଦର୍ଶୀ ମହର୍ଷିମାନେ ବିନା ଯନ୍ତ୍ର ସାହାଯ୍ୟରେ ଗଣିତ ଜ୍ୟୋତିଷରେ ପ୍ରଭୂତ ଉନ୍ନତି ସାଧନ କରିଥିଲେ । ସେମାନଙ୍କ ବୁଦ୍ଧିର ପ୍ରାଖର୍ଯ୍ୟ ଓ କଳ୍ପନାର ପ୍ରସର ଦେଖିଲେ ଲୋକ ସ୍ତବ୍ଧ ନ ହୋଇ ରହି ପାରିବ ନାହିଁ । କି ଅଦ୍ଭୁତ ଶକ୍ତି ! ଜଡ଼ବିଜ୍ଞାନ ସାହାଯ୍ୟରେ ଆଜି ପାଶ୍ଚାତ୍ୟ ପଣ୍ଡିତମାନେ ଯେଉଁ ସବୁ ଗଣନା କରି ପାରୁଅଛନ୍ତି, ପ୍ରାଚୀନ ଋଷିମାନେ କେବଳ ଆପଣା କଳ୍ପନା ଶକ୍ତି ଓ ଦୃଷ୍ଟି ଶକ୍ତି ବଳରେ ତାହା ବହୁ ଯୁଗ ପୂର୍ବେ କରି ଯାଇଅଛନ୍ତି । ପ୍ରାଚୀନ ଯୁଗ କଥା ଥାଉ, ସେଦିନ ଖଣ୍ଡପଡ଼ା ଜଙ୍ଗଲ ଭିତରେ ବସି ମହାମହୋପାଧ୍ୟାୟ ୰ ଚନ୍ଦ୍ରଶେଖର ସିଂହ ସାମନ୍ତ (ପଠାଣି ସାଆନ୍ତ) ଯାହା ଦେଖାଇ ଦେଇ ଯାଇ-ଅଛନ୍ତି ତାହା ଉତ୍କଳ ପକ୍ଷରେ ଗର୍ବର ବିଷୟ । ସେ ସ୍କୁଲ କଲେଜ୍ ମାଡ଼ି ନ ଥିଲେ, ବିଶ୍ୱବିଦ୍ୟାଳୟରୁ ଉପାଧି ପାଇ ନଥିଲେ, ବାଉଁଶ କାଠି ଦୁଇ ଚାରି ଖଣ୍ଡ ଧରି ଗ୍ରହ ନକ୍ଷତ୍ର ରାଜ୍ୟକୁ ମାପି ପକାଇଲେ, ଅନେକ ନୂତନ ତଥ୍ୟ ଆବିଷ୍କାର କରି ଉତ୍କଳର ଆଧୁନିକ ଭାସ୍କରାଚାର୍ଯ୍ୟ ହୋଇ ଅମରକୀର୍ତ୍ତି ରଖି-ଗଲେ । ସିଦ୍ଧାନ୍ତ ଦର୍ପଣ ତାଙ୍କ ଅକ୍ଲାନ୍ତ ଗବେଷଣାର ଫଳ । ସିଦ୍ଧାନ୍ତ ଦର୍ପଣକୁ ବୁଝି ପାରିବା ଭଳି ଲୋକ ବିରଳ ତାରୁ ଏ ପର୍ଯ୍ୟନ୍ତ ତହିଁର ଟୀକା ହୋଇ ନାହିଁ । ସେ ତାଙ୍କ ଗଣନା-ନୁସାରେ ପାଞ୍ଜି କରି ଗଲେ । ଉତ୍କଳର ଘରେ ଘରେ ତାଙ୍କ ପାଞ୍ଜି ପ୍ରଚଳିତ । ସେ ବାଉଁଶ କାଠ ଓ ନଳ ସାହାଯ୍ୟରେ ଯେଉଁ ଗଣନା କରି ଯାଇଛନ୍ତି ତାହା ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ଗଣନା ସଙ୍ଗେ ପ୍ରାୟ ସମାନ ବୋଲି ପାଶ୍ଚାତ୍ୟମାନେ ଦେଖିଅଛନ୍ତି ।

ଜ୍ୟୋତିଷ ଶାସ୍ତ୍ରର ଫଳିତାଂଶ ଆମ ଦେଶରେ ବହୁଳ ପ୍ରଚଳିତ । ପାଞ୍ଜିରେ ଯେଉଁ ସବୁ ଫଳ ଲେଖାଥାଏ ତାହା ଗଣିତ ଓ ଫଳିତ ଉଭୟର ଗଣନା ଫଳ । ଫଳିତ ଜ୍ୟୋତିଷ ଶାସ୍ତ୍ର ମଧ୍ୟ ଗଣିତ ଜ୍ୟୋତିଷ ସାପେକ୍ଷ । ଗଣିତ ଜ୍ୟୋତିଷ ନ ଜାଣିଲେ ଫଳିତ ଜ୍ୟୋତିଷରେ ପ୍ରବେଶ ଲାଭ କରି ପାରିବ ନାହିଁ । ଗଣନା ଠିକଣା ହେଲେ ସିନା ଫଳ କହିହେବ ।

ଗଣିତଗ୍ରନ୍ଥର ଗଣ୍ଡଗୋଳ ସକଳ କାଳ୍ପନିକ ହେଲେ ଫଳିତ ବିଶେଷ ଫଳ କହି ଦେବ । ଆମ ଦେଶରେ ଜନ୍ମପତ୍ରିକାର ପ୍ରଚଳନ ଅଛି; ଜନ୍ମ ଯେଉଁ ସମୟରେ ହୁଏ ସେହି ସମୟରେ ସୂର୍ଯ୍ୟଙ୍କ ଅବସ୍ଥିତିରୁ ଲଗ୍ନ ଧରାଯାଏ । ଲଗ୍ନର ଅର୍ଥ ସୂର୍ଯ୍ୟ କେଉଁ ରାଶିରେ ଲାଗି ରହିଥାନ୍ତି । ଏହି ଲଗ୍ନଧରି ରାଶି ନକ୍ଷତ୍ର ଚକ୍ର ସ୍ଥିର କରାଯାଏ । ଏହି ରାଶିଚକ୍ରରୁ ଗଣନା କରି ସକଳ ଫଳ ବିଚାର କରାଯାଏ । ଜନ୍ମପତ୍ରିକା ପୂର୍ବ ଜନ୍ମାର୍ଜିତ କର୍ମଫଳର ସୂଚନା । ପୂର୍ବ ଜନ୍ମାର୍ଜିତ କି କି କର୍ମଫଳ ଇହ ଜନ୍ମରେ ଭୋଗ କରିବାକୁ ପଡ଼ିବ, ତାହା କୋଷ୍ଠୀ ବା ଜନ୍ମ ପତ୍ରିକାରୁ ଜଣାଯାଏ । ଫଳିତ ଜ୍ୟୋତିଷ ଗଣନା ବେଳେ ଗ୍ରହବଳ ବିଚାର ବିଶେଷ ଆବଶ୍ୟକ । ପ୍ରଥମେ ଦେଖିବାକୁ ହେବ, ଜାତକର ଲଗ୍ନ ଠିକ୍ ଅଛି କି ନା ? ଲଗ୍ନ ଠିକ୍ ନ ଥିଲେ ଫଳ ଆଦୌ ମିଳିବ ନାହିଁ । ଲଗ୍ନ ପରୀକ୍ଷା ପରେ ଗ୍ରହ-ବଳ ବିଚାର ଓ ଯୋଗବିଚାର କର୍ତ୍ତବ୍ୟ । ଗ୍ରହ ଯୋଗରେ ଅନେକ ଅନେକ ଫଳ ଉଦ୍ଭୂତ ହୁଏ । କେଉଁ ରାଶିରେ କେଉଁ ଗ୍ରହ ସଙ୍ଗରେ କେଉଁ ଗ୍ରହର ଯୋଗ ହେଲେ କି ଫଳ ଘଟେ ତାହା ମଧ୍ୟ ଜଣାଯାଏ । ଭିନ୍ନ ଭିନ୍ନ ଯୋଗରେ ଭିନ୍ନ ଭିନ୍ନ ଫଳ ହୁଏ । ଦଶା ଫଳ ମଧ୍ୟ ଦେଖାଯାଏ । କେଉଁ ଦଶା, ଅନ୍ତର୍ଦ୍ଦଶା, ପ୍ରତ୍ୟନ୍ତର ଦଶାରେ କି କି ଫଳ ଘଟେ, ସେ କଥା ଫଳିତ ଜ୍ୟୋତିଷ କହି ଦେବ । ନାନାପ୍ରକାର ଦଶା କଳ୍ପନା କରି ଯାଇଅଛି । ସୂକ୍ଷ୍ମ ଦଶା, ପ୍ରାଣ ଦଶା, ନାକ୍ଷତ୍ରିକ ଦଶା, କେବଳ ଦଶା ଇତ୍ୟାଦି; ଏବେ ଜନ୍ମ ଲଗ୍ନ ଅନୁସାରେ କେଉଁ ଦଶାର ଅଧିକାର ତା ମଧ୍ୟ ନିର୍ଦ୍ଦିଷ୍ଟ କରି ପାଇଛୁ । ଦଶା ସାଧନ ପୂର୍ବରୁ ବାଳ-ରିଷ୍ଟ ବିଚାର ବିଧି ଅଛି । ବାଳକର ଯଦି ଆୟୁର୍ବଳ ନ ଥାଏ ତେବେ ଅନ୍ୟାନ୍ୟ ଯୋଗାଦି ଲକ୍ଷଣରେ କି ପ୍ରୟୋଜନ ? ବାଳରିଷ୍ଟ ନାନାପ୍ରକାର ଅଛି; କିଏ ଜନ୍ମ ହେବା ସଙ୍ଗେ ସଙ୍ଗେ ନଷ୍ଟ ହୋଇଯାଏ, କିଏ ବର୍ଷକରେ, କିଏ ପାଞ୍ଚବର୍ଷରେ ଇତ୍ୟାଦି । ଆୟୁଃ ସାଧନ ବିଷୟରେ ନାନାପ୍ରକାର ରୀତି ଅଛି; ଯଥା—ଅଷ୍ଟବର୍ଗ ସାଧନ, ପତାକାରିଷ୍ଟ, ଗୁରୁକୁଣ୍ଡଳୀ, କେତୁକୁଣ୍ଡଳୀ, ଗ୍ରହରିଷ୍ଟ, ଯୋଗଜରିଷ୍ଟ ଇତ୍ୟାଦି । ତ୍ରିପାପ ସପ୍ତଶୂନ୍ୟ ଇତ୍ୟାଦି ମଧ୍ୟ ବିଚାର କରାଯାଏ । ବିବାହରେ ମଧ୍ୟ ଦଶ ମେଳକ ବୁଝାଯାଏ । ମାନବର ପ୍ରତ୍ୟେକ ଦୈନନ୍ଦିନ କାର୍ଯ୍ୟକୁ ଆର୍ଯ୍ୟ ମହର୍ଷି-ମାନେ ଜ୍ୟୋତିଃଶାସ୍ତ୍ର ସଙ୍ଗେ ଯୋଡ଼ିଅଛନ୍ତି । ଯାତ୍ରା କରିବାକୁ କେଉଁ ବେଳରେ ଯାତ୍ରା ଶୁଭ, କେଉଁବେଳେ ଅଶୁଭ, ପ୍ରତିଦିନ କି ଖାଦ୍ୟ ଖାଇବ, କି ଖାଦ୍ୟ ନ ଖାଇବ ଇତ୍ୟାଦି ସକଳପ୍ରକାର କାର୍ଯ୍ୟର ଗ୍ରହ ନକ୍ଷତ୍ରଙ୍କ ଗତି ସଙ୍ଗେ ସମ୍ବନ୍ଧ ରହିଛି । ପ୍ରଶ୍ନ ବିଭାଗ ଜ୍ୟୋତିଷ ଶାସ୍ତ୍ର ମଧ୍ୟରେ ପୁଣି ସାମୁଦ୍ରିକ ଅଛି । କରକପାଳ କୋଷ୍ଠି ସବୁଥିରୁ ମାନବ-ଜୀବନର ଘଟଣାବଳୀ ଜଣାଯାଇ ପାରେ । ଜ୍ୟୋତିଷ ଶାସ୍ତ୍ର ଏକ ପ୍ରକାଣ୍ଡ ଶାସ୍ତ୍ର ! ତ୍ରିକାଳଦର୍ଶୀ ଋଷିମାନେ ଗଭୀର-ଗବେଷଣା କରି ଜ୍ୟୋତିଷ ଶାସ୍ତ୍ର ଲେଖି ଯାଇଛନ୍ତି, ଏହା କେହି କେହି କହନ୍ତି ବିଜ୍ଞାନମୂଳକ ନୁହେ । ମାତ୍ର ସାଧାରଣତଃ ଦେଖାଯାଏ ଯେ, ଗ୍ରହ ଜଗତର ପୃଥିବୀ ଉପରେ କର୍ତ୍ତୃତ୍ୱ ଅଛି । ସୂର୍ଯ୍ୟ ଚନ୍ଦ୍ରର ଯେ ପୃଥିବୀ ଉପରେ କର୍ତ୍ତୃତ୍ୱ ଅଛି, ଏ କଥା କେହି ଅସ୍ୱୀକାର କରି ପାରିବେ ନାହିଁ । ଜ୍ୟୋତିଷୀ ଗଣନା କରି ଯେଉଁ ଦିନ ଯେଉଁବେଳେ ଗ୍ରହଣ ହେବାର ପାଞ୍ଜିରେ ଲେଖନ୍ତି, ଠିକ୍ ସେହି ନିର୍ଦ୍ଦିଷ୍ଟ ସମୟରେ ଗ୍ରହଣ ହେଉଥିବା ଦେଖାଯାଉଅଛି । ସୁତରାଂ, ଗ୍ରହ ନକ୍ଷତ୍ରମାନଙ୍କର ଯେ ମାନବ ଉପରେ କିଛି କର୍ତ୍ତୃତ୍ୱ ନାହିଁ, ଜ୍ୟୋତିଷ ଶାସ୍ତ୍ରଟା କେବଳ ଗାଳଗଳ୍ପ, ଏ କଥା କିପରି କହି ପାରିବା ? ଏତେ ବଡ଼ ପ୍ରକାଣ୍ଡ ଶାସ୍ତ୍ର ଯେଉଁମାନେ ଲେଖିଲେ ସେମାନେ କେବଳ ମିଥ୍ୟା କଳ୍ପନା ଉପରେ ଗୁଡ଼ାଏ ଲେଖିଗଲେ, ଏ କଥା କହିବା ସମୀଚୀନ ନୁହେଁ ।

କେହି କେହି କହନ୍ତି ଜ୍ୟୋତିଷଶାସ୍ତ୍ର ଜାଣି କି ଲାଭ ଅଛି ? ଅନ୍ୟ କିଛି ଲାଭ ଥାଉ ବା ନ ଥାଉ, ବିଦ୍ୟାର ମାହାତ୍ମ୍ୟ, ଓ ଶକ୍ତି କେତେ ତା ଜଣାପଡ଼ିବ; ଗ୍ରହ, ରାଶି, ନକ୍ଷତ୍ର ସଙ୍ଗେ ମାନବଜୀବନର କି ସମ୍ପର୍କ ଅଛି ସେ କଥା ଜଣାପଡ଼ିବ । ଜାତକରେ ଗ୍ରହସ୍ଥିତିରୁ ଜାତକର ଜୀବନବ୍ୟାପୀ ଘଟଣାବଳୀ କହିଦେବା ଉଣା ଆଶ୍ଚର୍ଯ୍ୟର କଥା ନୁହେ । ପାଶ୍ଚାତ୍ୟ ଦେଶରେ ଜ୍ୟୋତିଷବିଦ୍ୟା ଅଛି; ସେ ଦେଶ-ମାନଙ୍କରେ ମଧ୍ୟ ଏ ବିଦ୍ୟାର ଚର୍ଚ୍ଚା ହେଉଅଛି ।

ଆମ ଦେଶରେ ଜାତକ ବୁଝିଲେ ବିବାହ ହୁଏ, ବର କୋଷ୍ଠି କନ୍ୟା କୋଷ୍ଠି ମିଳାଇ ପ୍ରଥମେ ଦଶ ମେଳକ ବୁଝାଯାଏ । ଦଶମେଳକ ମଧ୍ୟରେ ନାଡ଼ୀନାଡ଼ି, ଷଡ଼ାଷ୍ଟକ, ନରରାକ୍ଷସ ପ୍ରଧାନ । ରାଜଯୋଟକ ହେଲେ ଅନ୍ୟ ମେଳକ ବୁଝାଯାଏ ନାହିଁ । ରାଜଯୋଟକର ଅର୍ଥ;—ବର କନ୍ୟାର ଏକ ରାଶି ହେଲେ, କିମ୍ବା ଦଶମ ତୃତୀୟ, ୪ର୍ଥ ୮ମ, ସମସପ୍ତକ ହେଲେ ରାଜଯୋଟକ ହୁଏ । ଏପରି ମେଳକ ଘଟିଲେ ବିବାହ ଅତି ଶୁଭଦାୟକ ହୁଏ । ଷଡ଼ାଷ୍ଟକ ହେଲେ, ବା ନରରାକ୍ଷସ ହେଲେ ବିବାହ ଅକର୍ତ୍ତବ୍ୟ । ନରରାକ୍ଷସ ଯୋଗ ନକ୍ଷତ୍ରରୁ ଜଣାଯାଏ । ୨୭ ନକ୍ଷତ୍ର ୩ ଭାଗରେ ବିଭକ୍ତ । ୯ ଦେବତା, ୯ ନର, ୯ ରାକ୍ଷସ । ବରର ନକ୍ଷତ୍ର ନର, କନ୍ୟାର ନକ୍ଷତ୍ର ରାକ୍ଷସ ହେଲେ ନର ରାକ୍ଷସ ହୁଏ । ଏପରି ହେଲେ ବର କନ୍ୟାଙ୍କ ମଧ୍ୟରେ କଳହ ହୁଏ । ଏ ବିଷୟ ପ୍ରତ୍ୟକ୍ଷରେ ଦେଖାଯାଇଅଛି । କେଉଁଠି ସ୍ତ୍ରୀ ପୁରୁଷ ଆଜୀବନ ମନମିଳାଇ ଶାନ୍ତିପ୍ରଦ ସହବାସରେ କାଳ କଟାଉଅଛନ୍ତି; କେଉଁଠି ଆଜୀବନ ଅଶାନ୍ତିପ୍ରଦ କଳହ କନ୍ଦଳରେ ଦିନ ଯାଉଛି । ଜ୍ୟୋତିଷଶାସ୍ତ୍ର ମାନ ବା ନ ମାନ, କୋଷ୍ଠି ମିଳାଅ ବା ନ ମିଳାଅ, ଜ୍ୟୋତିର୍ବିଦ୍ୟାକଥିତ ଗ୍ରହ ନକ୍ଷତ୍ରମାନେ ତାଙ୍କ କାର୍ଯ୍ୟ କରିଯାଉଛନ୍ତି । ସେମାନଙ୍କ କାର୍ଯ୍ୟାନୁସାରେ ଆମ୍ଭେମାନେ ସୁଫଳ କୁଫଳ ଭୋଗ କରୁଥାଉଁ । ସେପରି କୌଣସି ଶକ୍ତି କାର୍ଯ୍ୟ କରୁ ନ ଥିଲେ ଜଗତରେ ଏତେ ବିଷମ ଅବସ୍ଥା ଦେଖାଯାଆନ୍ତା ନାହିଁ । ଭଲ ମନ୍ଦ ଦୁଇଟି ପାଖାପାଖି ହୋଇ ଚାଲିଛି । ଗ୍ରହ ନକ୍ଷତ୍ରମାନେ ସେମାନଙ୍କ ଗତିପଥରେ

ଶାଳିଛନ୍ତି । ସେମାନେ ତାଙ୍କ କାର୍ଯ୍ୟ କରିଯାଉଛନ୍ତି । ମାନବ ସେ ସବୁର ହିସାବ ରଖୁ ବା ନ ରଖୁ, ମାନବ ସେମାନଙ୍କ ଶକ୍ତିକୁ ମାନୁ ବା ନ ମାନୁ, ମାନବ ତାକୁ ମାନି ଚଳୁ ବା ନ ଚଳୁ, ସେମାନଙ୍କ କାର୍ଯ୍ୟ ଅପ୍ରତିହତଭାବେ ଚଳୁଛି ଏବଂ ମାନବ ସେ ସବୁର ଫଳାଫଳ ଅଜ୍ଞାତଭାବେ ହେଉ ବା ଜ୍ଞାତଭାବେ ହେଉ, ଭୋଗକରି ଯାଉଛି । ଗ୍ରହ ନକ୍ଷତ୍ର ଜନିତ ମନ୍ଦଫଳର ପ୍ରତିକାରବିଧାନଶାସ୍ତ୍ରରେ ଅଛି; ଦେବାରାଧନା, ଗ୍ରହ ପୂଜା, ହୋମ, ଦାନ, ମଣିଧାରଣପ୍ରଭୃତିର ବ୍ୟବସ୍ଥା ଅଛି । ଯେଉଁମାନେ ଗ୍ରହନକ୍ଷତ୍ରଗଣର ଶକ୍ତିକୁ ବିଶ୍ୱାସ କରୁଅଛନ୍ତି ସେମାନେ ସେ ସବୁ କର୍ମ କରୁଛନ୍ତି ଏବଂ ତଦ୍ୱାରା ମନରେ ଶାନ୍ତିଲାଭ କରୁଛନ୍ତି । ଯେଉଁମାନେ ବିଶ୍ୱାସ ନ କରୁଅଛନ୍ତି ସେମାନେ ଗ୍ରହଶକ୍ତି ଜନିତ ଫଳ ଭୋଗ କରୁଅଛନ୍ତି ।

ବିବାହ, ବ୍ରତ, କର୍ଣ୍ଣବେଧ, ସୀମନ୍ତୋନ୍ନୟନ, ଚୂଡ଼ାକର୍ମ, ନବବଧୂ ଯାତ୍ରା, ଗର୍ଭାଧାନ, ଗର୍ଭ ସଂସ୍କାର, ବିଦ୍ୟାରମ୍ଭ, ଗୃହାରମ୍ଭ, ଗୃହ ପ୍ରବେଶ, ଜଳାଶୟ ଖନନ, ଦେବତା ପ୍ରତିଷ୍ଠା ପ୍ରଭୃତି ହିନ୍ଦୁର ଯାବତୀୟ କର୍ମ ରାଶି ନକ୍ଷତ୍ରର ଶୁଭାଶୁଭ ବିବେଚନା କରି କରାଯାଏ । ହିନ୍ଦୁମାନେ ସମୟକୁ ମଧ୍ୟ ବିଭାଗ କରି ଯାଇଛନ୍ତି । ଅମୃତ ବେଳା, ମାହେନ୍ଦ୍ର ବେଳା, ବର ବେଳା, ଶୂନ୍ୟ ବେଳା ଇତ୍ୟାଦି । ଅମୃତ ବେଳା ଓ ମାହେନ୍ଦ୍ର ବେଳାରେ ଯେଉଁ କର୍ମ କରିବ ସେ କାର୍ଯ୍ୟରେ ଜୟ ସୁନିଶ୍ଚିତ, ଅନ୍ୟ ବେଳାରେ ଯାହା କରିବ ସେଥିରେ ବାଧା ବିଘ୍ନ ଘଟିବ । ପବନ ବିଜୟ ସ୍ୱରୋଦୟରେ ନିଶ୍ୱାସ ବାର ଯାତ୍ରା କରିବା ବିଧି ଅଛି । କେଉଁ କାର୍ଯ୍ୟ କେଉଁ ବେଳାରେ କଲେ ଜୟ ହେବ ସେଥି ପ୍ରତି ହିନ୍ଦୁମାନଙ୍କର ବିଶେଷ ଦୃଷ୍ଟି ଥିଲା । ପ୍ରାଚୀନ ହିନ୍ଦୁମାନେ ଏହି ଦୃଷ୍ଟିରେ ସକଳ କାର୍ଯ୍ୟ କରୁଥିଲେ ।

ସନ୍ଦର୍ଭ ଲେଖକ—ଶ୍ରୀ ଜଗବନ୍ଧୁ ସିଂହ ।

ତିଳ ଦେ. ବି—ଖସା; ତିଳ—Sesamum; gingeli oil
**तिल** ( ତିଳ ଦେଖ ) plant and seed.

ରାଶିଆ—ଦେ. ବିଣ—(ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ, ଯଥା, ମୀନ ରାଶିଆ)—
Rāśiā ଅମୁକ ରାଶିରେ ଜନ୍ମ ହୋଇଥିବା (ବ୍ୟକ୍ତି)—(Persons
बाशिया Born in a particular zodiacal sign).
**राशिया**

ରାଶିକ—ସଂ. ବି ( ରାଶି + କ )—୧ । ରାଶି ସମ୍ବନ୍ଧୀୟ—1. Rela-
Rāśika ting to numbers. ୨ । ରାଶି ଯୁକ୍ତ—
2. Connected with a particular zodiacal sign.

ରାଶି ଗୁଣ୍ଡି—ଦେ. ବି—ଏକପ୍ରକାର ସରୁଧାନ—A species of
Rāśi gundi fine paddy.

ରାଶି ଗୃହ—ସଂ. ବି—( ଜ୍ୟୋତିଷ )—ରାଶି ଚକ୍ରରେ ଚିହ୍ନିତ ପ୍ରତ୍ୟେକ
Rāśi gṛuha ରାଶିର ସ୍ୱତନ୍ତ୍ର ଗୃହ ବା ସ୍ଥାନ—Space marked for each of the twelve signs in the zodiacal circle.

ରାଶି ଚକ୍ର—ସଂ. ବି—( ଜ୍ୟୋତିଷ ) ଜ୍ୟୋତିଷିକ ଚକ୍ର ବା ବୃତ୍ତ—
Rāśi chakra [ଦ୍ର—ଏହାର ପରିଧି ୧୨ଟି ଅଂଶରେ ବିଭକ୍ତ ହୋଇ ପ୍ରତ୍ୟେକ ଗୃହକୁ ଗୋଟିଏ ରାଶି ଅଧିକାର କରେ; ଏହା ସୂର୍ଯ୍ୟଙ୍କର ଓ ସମସ୍ତ ଗ୍ରହମାନଙ୍କର ଭ୍ରମଣମାର୍ଗ]; ଭଚକ୍ର The zodiac; the circle representing the respective positions of the zodiacal signs.

[ଦ୍ର—ରାଶିଚକ୍ର—ମେଷାଦି ଦ୍ୱାଦଶ ରାଶିଯୁକ୍ତ ବୃତ୍ତ । ଏହା ୩୬୦ ଅଂଶରେ ବିଭକ୍ତ ଓ ୩୦ ଅଂଶ ନେଇ ଏକ ରାଶି ଗଠିତ ଓ ପ୍ରବହ-ବାୟୁଦ୍ୱାରା ଚାଳିତ ।

ଭଚକ୍ରଂ ଧ୍ରୁବୟୋର୍ବଦ୍ଧମାକ୍ଷିପ୍ତଂ ପ୍ରବହାନିଳୈଃ ।
ପର୍ଯ୍ୟେତ୍ୟଜସ୍ରଂ ତନ୍ନଦ୍ଧା ଗ୍ରହକକ୍ଷା ଯଥାକ୍ରମଂ ॥

ସୂର୍ଯ୍ୟ ସିଦ୍ଧାନ୍ତ ।

× × ×

ପୁନଶ୍ଚ—ସପ୍ତବିଂଶତି ର୍ଭୈର୍ଜ୍ୟୋତିଶ୍ଚକ୍ରଂ ସ୍ତିମିତ ବାୟୁଗଂ,
ତଦର୍କାଂଶୋ ଭବେଦ୍ରାଶି ନବର୍କ୍ଷଚରଣାଙ୍କିତଃ । ଦୀପିକା ।

ଅର୍ଥାତ୍ ରାଶିଚକ୍ରର ୩୬୦ ଅଂଶରେ ୨୭ଟି ନକ୍ଷତ୍ର ଅବସ୍ଥିତ । ପ୍ରତ୍ୟେକ ନକ୍ଷତ୍ରର ପରିମାଣ ୧୩ ଅଂଶ ୨୦ କଳା, ପ୍ରତ୍ୟେକ ରାଶି ଦୁଇ ନକ୍ଷତ୍ର ଓ ଅପର ଏକ ନକ୍ଷତ୍ରର ଏକଚରଣ ନେଇ ଗଢ଼ା ।

ଯଥା—ଅଶ୍ୱିନୀ, ଭରଣୀ ଓ କୃତ୍ତିକାର ଏକ ପାଦ ନେଇ ମେଷରାଶି ଗଠିତ; କୃତ୍ତିକାର ୩ ପାଦ ୨ ରୋହିଣୀ ଓ ମୃଗଶିରାର ଦୁଇ ପାଦ ନେଇ ବୃଷରାଶି ଗଠିତ; ମୃଗଶିରାର ୨ ପାଦ, ଆର୍ଦ୍ରା, ପୁନର୍ବସୁର ୩ ପାଦ ନେଇ ମିଥୁନ ରାଶି ଗଠିତ; ପୁନର୍ବସୁ ୧ ପାଦ, ପୁଷ୍ୟା ଓ ଅଶ୍ଳେଷା ନେଇ କର୍କଟରାଶି ଗଠିତ; ମଘା, ପୂର୍ବାଫାଲ୍‌ଗୁନୀ ଓ ଉତ୍ତରା-ଫାଲ୍‌ଗୁନୀର ଏକପାଦ ନେଇ ସିଂହରାଶି ଗଠିତ; ଉତ୍ତରା-ଫାଲ୍‌ଗୁନୀର ୩ ପାଦ, ହସ୍ତା, ଚିତ୍ରାର ୨ ପାଦ ନେଇ କନ୍ୟାରାଶି ଗଠିତ; ଚିତ୍ରାର ୨ ପାଦ, ସ୍ୱାତୀ, ବିଶାଖାର ୩ ପାଦ ନେଇ ତୁଳାରାଶି ଗଠିତ; ବିଶାଖାର ୧ ପାଦ, ଅନୁରାଧା, ଜ୍ୟେଷ୍ଠା ନକ୍ଷତ୍ର ନେଇ ବୃଶ୍ଚିକରାଶି ଗଠିତ; ମୂଳା, ପୂର୍ବାଷାଢ଼ା ଓ ଉତ୍ତରାଷାଢ଼ା ନକ୍ଷତ୍ରର ୧ ପାଦ ନେଇ ଧନୁରାଶି ଗଠିତ; ଉତ୍ତରାଷାଢ଼ାର ୩ ପାଦ, ଶ୍ରବଣା ଓ ଧନିଷ୍ଠାର ୨ ପାଦ ନେଇ ମକର ଗଠିତ; ଧନିଷ୍ଠାର ୨ ପାଦ ଶତଭିଷା ଓ ପୂର୍ବଭାଦ୍ରବର ୩ ପାଦ ନେଇ କୁମ୍ଭ ଗଠିତ; ପୂର୍ବଭାଦ୍ରବର ୧ ପାଦ, ଉତ୍ତରଭାଦ୍ରବ ଓ ରେବତୀ ନକ୍ଷତ୍ର ନେଇ ମୀନରାଶି ଗଠିତ ।

ଭଗବାନ୍ ସୂର୍ଯ୍ୟଚନ୍ଦ୍ରାଦି ସୃଷ୍ଟି କଲାପରେ ଆପଣାକୁ ଦ୍ୱାଦଶ ଭାଗରେ ବିଭକ୍ତ କରି ଗ୍ରହନକ୍ଷତ୍ରାଦି ଚରାଚରକୁ ଧାରଣ କଲେ, ପ୍ରମାଣ—

ଅଥସୃଷ୍ଟ୍ୟାଂ ମନଶ୍ଚକ୍ରେ ବ୍ରହ୍ମାହଙ୍କାର ମୂର୍ତ୍ତିଭୃତ୍
ମନସଶ୍ଚନ୍ଦ୍ରମାଜଜ୍ଞେ ସୂର୍ଯ୍ୟଶ୍ଚକ୍ଷୁଷୋସ୍ତେଜସାଂ ନିଧିଃ ।

ମନସଃ ଶଂ ଉତୋବାୟୁ ରଗ୍ନିରାପୋଧରା କ୍ରମାତ୍,
ଗୁର୍ଣୈକବୃଦ୍ଧ୍ୟା ପଞ୍ଚୈବ ମହାଭୂତାନି ଚକ୍ରିରେ ।
ଅଗ୍ନୀଷୋମୌ ଗ୍ରହସ୍ତରେନ୍ଦୁ ଭଉସ୍ତ୍ୱୋରକାଦୟଃ,
ତେଜୋଭୂଖାମ୍ବୁବାତେଭ୍ୟଃ କ୍ରମଶଃ ପଞ୍ଚ ଜଜ୍ଞିରେ ।
ପୁନ ର୍ଦ୍ୱାଦଶଧାସ୍ଥାନଂ ବିଭକ୍ତେଦ୍ରାଶି ସଜ୍ଞକଂ,
ନକ୍ଷତ୍ର ରୂପିଣଂଭୂୟଃ ସପ୍ତବିଂଶାତ୍ମକଂ ବଶୀ ।

ସୂର୍ଯ୍ୟସିଦ୍ଧାନ୍ତ ।

× × ×

ରାଶିଚକ୍ରର ବିଭାଗ ବିଷୟରେ ପ୍ରାଚ୍ୟ ପାଶ୍ଚାତ୍ୟ କୌଣସି ଜ୍ୟୋତିଃଶାସ୍ତ୍ର ଭିନ୍ନ ମତ ପ୍ରକାର କରେ ନାହିଁ । ରାଶିମାନଙ୍କ ଅବସ୍ଥାନ, ଆକୃତି ଇତ୍ୟାଦି ସମ୍ବନ୍ଧେ ଉଭୟେ ପ୍ରାୟ ଏକମତ । ପାଶ୍ଚାତ୍ୟ ନକ୍ଷତ୍ରଗଣ (Constellations) ର ବିବରଣ ଗ୍ରନ୍ଥବଦ୍ଧ, କିନ୍ତୁ ପ୍ରାଚ୍ୟ ନକ୍ଷତ୍ରଚୟର ସ୍ୱସ୍ଥାନ ବିଷୟରେ ସାମାନ୍ୟ ଗଣ୍ଡଗୋଳ ଘଟିଥାଏ ।

( ରାଶିମାନଙ୍କ ସମ୍ବନ୍ଧେ ଅନ୍ୟାନ୍ୟ ବିବରଣ ରାଶି ଶବ୍ଦରେ ଦ୍ରଷ୍ଟବ୍ୟ ।)

ସନ୍ଦର୍ଭ ଲେଖକ ଜ୍ୟୋତିଷାଗ୍ରଣି
ଶ୍ରୀ ବାଇକୋଳି ମହାପାତ୍ର ।

**ରାଶିତେଲ**—ଦେ ବି.—ତିଳ ତେଲ—Sesamum oil.
Rāśi tela ତିলের তেল तिलकातेल

**ରାଶି ନକ୍ଷତ୍ର**—ସଂ. ବି—୧ । ( ଜ୍ୟୋତିଷ ) ମେଷଆଦି ରାଶି ଓ ଅଶ୍ୱିନୀ
Rāśi nakshatra ଆଦି ନକ୍ଷତ୍ର—1. ( Astrology ) The astrological signs and asterisms. ୨ । ମନୁଷ୍ୟର ଜନ୍ମ ହେବା ସମୟରେ ଚନ୍ଦ୍ର ଯେଉଁ ନକ୍ଷତ୍ରରେ ଥାଆନ୍ତି—2. The ascension of the moon at the birth of a person.

**ରାଶି ନ(ଳ)ଡୁ**—ଦେ. ବି.—ଖଷାରେ ବା ଗୁଡରେ ମିଠା ପାଗ
Rāśi na(la)du କରାଯାଇ ବନାଯାଇଥିବା ଲଡ଼ୁ—
তিলের-নাড়ু Sweetmeat-balls of fried sesamum
तिलकी लड्डू seeds seasoned with sugar.

**ରାଶି ନାମ**—ସଂ. ବି—ଯେଉଁ ରାଶିରେ ସେ ଜନ୍ମ ହୋଇଥାଏ ସେହି
Rāśi nāma ରାଶିର ଜ୍ୟୋତିଷୋକ୍ତ ନିୟମ ଅନୁସାରେ ସେ ବ୍ୟକ୍ତିର ଯେଉଁ ନାମ ହେବା ଉଚିତ—Name of a person which is proper to be given to him according to the zodiacal sign of his birth. ( ଦ୍ର—ଲୋକଙ୍କୁ ଯେଉଁ ନାମରେ ଡକାଯାଏ ତାଙ୍କୁ ମାତା ପିତାଦି ଶ୍ରଦ୍ଧାରେ ଦିଅନ୍ତି ବୋଲି ତାହାଙ୍କୁ ଶ୍ରଦ୍ଧା ନାମ ବା ଡାକନାମ ବୋଲାଯାଏ ।)

**ରାଶି ପଠାଇବା**—ପ୍ରାଦେ ( ସମ୍ବଲପୁର ) କ୍ରି—ଅନାର୍ଯ୍ୟ ଗଣ୍ଡ ଓ
Rāśi pataibā ଭୂୟାଁ ଜାତିର ବରକନ୍ୟାମେଳକ ବୁଝିବାର ପ୍ରଥା ବିଶେଷ—A peculiar method of ascertaining the agreement or otherwise of stars of a bride and a proposed groom, prevalent among the Gonds and Bhuyāñs.

[ଦ୍ର—ବରକନ୍ୟା ପ୍ରସଙ୍ଗ ଉତ୍ଥାପିତ ହେଲେ ଗୋଟିଏ ବଡ଼ କଂସାରେ ନିର୍ମଳ ପାଣି ଭରି କନ୍ୟା ପକ୍ଷର ବ୍ୟକ୍ତି ଉକ୍ତ ପାଣିରେ ବାରମ୍ବାର ଏକାଦିକ୍ରମେ ୭ଥର ଗୋଟିଏ ଲେଖାଏଁ ରାଶି ଓ ବର ପକ୍ଷୀୟ ବ୍ୟକ୍ତି ଗୋଟିଏ ଲେଖାଏଁ ଗୁରୁଳ ପକାଉ ଥାଆନ୍ତି । ଏଥି ପରେ ଯଦି ଦେଖାଯାଏ ଯେ କଂସାର ନିମ୍ନ ଦେଶରେ ପାଣି ତଳେ ୭ଟିକ୍ୟା ଉହିଁରୁ ଅଧିକ ରାଶି ସଙ୍ଗେ ସେତିକ ଗୁରୁଳ ଲଗାଲଗି ହୋଇ ରହିଅଛି ତେବେ ଦମ୍ପତିର ଶୁଭ ହେବ ବୋଲି ସ୍ଥିର କରାଯାଏ; ନଚେତ୍ ଏ ବିବାହ ପ୍ରସ୍ତାବ ରହିତ କରାଯାଏ ।]

**ରାଶି ପାନ**—ଦେ, ବି. ( ପାନବରଜୀ ଭାଷା )—ମଞ୍ଜୁଳା ପାନରୁ ଯେଉଁ
Rāśi pāna ପାନ ଅତି ଛୋଟ—The smallest of the
ছোট পান छोटा पान betel leaves.

**ରାଶିଫଳ**—ସଂ. ବି—(ଫଳିତ ଜ୍ୟୋତିଷ)—ଜନ୍ମକାଳରେ ଚନ୍ଦ୍ରର
Rāśiphala କୌଣସି ରାଶିରେ ଅବସ୍ଥିତି ଯୋଗୁଁ ଜାତ ବ୍ୟକ୍ତିର ସ୍ୱଭାବାଦି—(Astrology) The affect of the natal sign of the Zodiac on a man's life.

[ଦ୍ରଃ—ରାଶିଫଳ—

ମନୁଷ୍ୟର ଜନ୍ମକାଳରେ ଚନ୍ଦ୍ର ଯେଉଁ ରାଶିରେ ଥାଏ, ତାହା ସେହି ମନୁଷ୍ୟର ରାଶି । ଚନ୍ଦ୍ରର ଏହି ଅବସ୍ଥିତି ଯୋଗୁ ମନୁଷ୍ୟର ସ୍ୱଭାବାଦି ଉପରେ ହୁଏ, ଜ୍ୟୋତିଃଶାସ୍ତ୍ର ମତରେ ତାହା ନିମ୍ନରେ ଦିଆଗଲା ।

ଭବତି ବିରଳକେଶସ୍ତ୍ୱଞ୍ଚଳ ସ୍ତ୍ୟାଗଶୀଲୋ
ରୁଚିରଶୁଚିକଳାସୀ ବାବଦୂକୋ ଦୁରନ୍ତଃ ।
ନ ଭବତି ଗୃହମେଧୀ କ୍ରୂରନେତ୍ରୋଽଲ୍ପମେଧା ।
ଧନପତି ରୁଦାତା ମେଷରାଶିର୍ମନୁଷ୍ୟଃ । ୧ ॥

ମେଷ ରାଶିରେ ଜାତ ବ୍ୟକ୍ତି ଅଳ୍ପ କେଶବିଶିଷ୍ଟ, ଚଞ୍ଚଳ, ତ୍ୟାଗଶୀଳ, ଲାବଣ୍ୟଯୁକ୍ତଶରୀର, ପବିତ୍ର, ବିଳାସୀ, ବହୁଭାଷୀ, ଦୁରନ୍ତ, ଗୃହ ବାସରେ ଅନିଚ୍ଛୁକ, କ୍ରୂରନେତ୍ର (ଟେରା), ଅଳ୍ପମେଧାସୀ, ଧନପତି ଓ ଦାତା ହୁଏ ।

ପୃଥୁ ଜଘନ-କପୋଲଃ ସ୍ଥୂଳନେତ୍ରୋଽଲ୍ପଭାଷୀ ।
ଶୁଚି ରତିଶୟ ଦକ୍ଷୋ ରମ୍ୟଦେହଃ ସୁଶୀଳ ॥
ଦ୍ୱିଜଗୁରୁସୁରଭକ୍ତଃ ଶ୍ଳେଷ୍ମବାତସ୍ୱଭାବଃ ।
ସିତ କୁଟିଳକଚାଗ୍ରୋ ପ୍ରେମଯୁକ୍ତୋବୃଷାଖ୍ୟଃ । ୨ ॥

ବୃଷ ରାଶିରେ ଜାତ ବ୍ୟକ୍ତି ସ୍ଥୂଳଜଘନ ଓ ସ୍ଥୂଳଗଣ୍ଡ, ସ୍ଥୂଳ ନେତ୍ର, ଅଳ୍ପଭାଷୀ, ଶୁଚି, ଅତି ଦକ୍ଷ, ରମଣୀୟଦେହ-ବିଶିଷ୍ଟ, ସୁଶୀ, ଦେବଗୁରୁ ବ୍ରାହ୍ମଣରେ ଭକ୍ତିମାନ୍, ବାତଶ୍ଳେଷ୍ମ ପ୍ରକୃତି ଓ ପ୍ରେମଯୁକ୍ତ; ପୁଣି ତାହାର କେଶାଗ୍ର ଶୁକ୍ଳ ଓ ବକ୍ର ହୁଏ ।

ମୃଦୁରୁପଚିତ ଗାତ୍ରଃ ପଠିଷ୍ଟବାକ୍ୟଃ
ପରଜନ ହିତକାରୀ ପଣ୍ଡିତଃ କୁଞ୍ଚିତାକ୍ଷଃ ।
ପ୍ରକୃତିମଳିନବେଶଃ ଶ୍ଳେଷ୍ମବାତପ୍ରକୋପ—
ଭବତି ମିଥୁନରାଶି ର୍ଗୀତବାଦ୍ୟାନୁରକ୍ତଃ । ୩ ।

ମିଥୁନ ରାଶି ଜାତବ୍ୟକ୍ତି ମୃଦୁପ୍ରକୃତ, ପୁଷ୍ଟଶରୀର, ପାଠକାଳରେ ଅସ୍ପଷ୍ଟ ଉଚ୍ଚାରଣକାରୀ, ପରୋପକାରୀ, ପଣ୍ଡିତ, କ୍ରୂରଚକ୍ଷୁ, ସ୍ୱଭାବତଃ ମଳିନବେଶଧାରୀ, ବାତଶ୍ଳେଷ୍ମପ୍ରକୃତ ଏବଂ ଗୀତରେ ଓ ବାଦ୍ୟରେ ଅନୁରକ୍ତ ହୁଏ ।

ପ୍ରବଳ କଫଶରୀରୋ ଦେବନମ୍ରଃ ପ୍ରକାଶ୍ୟଃ
ସ୍ୱଯୃମୂପଚିତବପୁର୍ଦେବତାବିପ୍ରଭକ୍ତଃ ।
କୁଳପତିଶରବଧନ୍ୟୋ ମଣ୍ଡଳାକାରମୂର୍ତ୍ତି—
ର୍ଭବତି ବିପୁଳବକ୍ଷାଃ କର୍କଟୋ ଯସ୍ୟ ରାଶିଃ । ୪ ।

କର୍କଟ ରାଶି ଜାତ ବ୍ୟକ୍ତି ବିଶେଷ କଫଯୁକ୍ତ, ଦେବକାର୍ଯ୍ୟରେ ଉତ୍ସାହୀ, ତେଜସ୍ୱୀ, ସ୍ୱୀୟ ସମତାରେ ଉପାର୍ଜନକାରୀ, ଦେବବ୍ରାହ୍ମଣ ଭକ୍ତ, କୁଳପତିତୁଲ୍ୟ ମାନ୍ୟ, ବର୍ତ୍ତୁଳମୁଖ ଓ ବିଶାଳବକ୍ଷୋଯୁକ୍ତ ହୁଏ ।

ଉଦରଭରଣତୁଷ୍ଟଃ କ୍ରୋଧନୋ ମାଂସଲୁବ୍ଧୋ
ଗହନଗିରିଗୁହାନାଂ ସେବକୋ ବନ୍ଧୁହୀନଃ ।
କପିଳନୟନଯୁକ୍ତସ୍ତୁଙ୍ଗବକ୍ଷାଃ କ୍ଷୁଧାର୍ତ୍ତୋ—
ଭବତି ଯୁବତୀସେବୀ ପଣ୍ଡିତଃ ସିଂହରାଶିଃ । ୫ ।

ସିଂହରାଶି ଜାତ ବ୍ୟକ୍ତି ସ୍ୱୀୟ ଉଦରପୂରଣରେ ସନ୍ତୁଷ୍ଟ, କ୍ରୋଧୀ, ମାଂସଲୋଭୀ, ଅରଣ୍ୟ, ପର୍ବତ ଓ ଗୁହାପ୍ରିୟ, ବନ୍ଧୁହୀନ, କପିଳବର୍ଣ୍ଣ ଚକ୍ଷୁର୍ଯୁକ୍ତ, ଉଚ୍ଚବକ୍ଷାଃ, କ୍ଷୁଧାତୁର, ଯୁବତୀସେବୀ ଓ ପଣ୍ଡିତ ହୁଏ ।

ବିମଳମତି ସୁଶୀଳୋ ଲେଖ୍ୟବୃତ୍ତିଃ କବିର୍ବା
କୃଶତନୁ ଧନଯୁକ୍ତଃ କାନ୍ତଧୀରଃ ସୁଖୀଚ ।
ଭବତି ନୟନରୋଗୀ ଧର୍ମକର୍ମାନୁରକ୍ତୋ—
ଗୁରୁଜନ ହିତକାରୀ କନ୍ୟକା ଯସ୍ୟ ରାଶିଃ । ୬ ।

କନ୍ୟାରାଶି ଜାତବ୍ୟକ୍ତି ନିର୍ମଳବୁଦ୍ଧି, ସୁଶୀଳ, ଲେଖକ ବା କବି, କୃଶଶରୀର, ଧନୀ, କମନୀୟଦେହ, ଧୀର, ସୁଖୀ, ଚକ୍ଷୁରୋଗୀ, ଧର୍ମକର୍ମାନୁରାଗୀ ଓ ଗୁରୁଜନଙ୍କ ହିତକାରୀ ହୁଏ ।

ଭବତି ଶିଥିଳଗାତ୍ରୋ ନାତିଦୀର୍ଘପ୍ରମାଣୋ
ଜନୟତି ପରିତୋଷଂ ବାନ୍ଧବାନାଂ ପ୍ରଦାନୈଃ ।
ଅତିଶୟ ବହୁଭାଷୀ ଜ୍ୟୋତିଷାଂଜ୍ଞାନଯୁକ୍ତୋ
ଭବତିହି ତୁଲରାଶିର୍ଦ୍ଦେବବର୍ଗାନୁରକ୍ତଃ ।

ତୁଳରାଶି ଜାତବ୍ୟକ୍ତି ନାତିଦୀର୍ଘ ଓ ଶିଥିଳଗାତ୍ରଯୁକ୍ତ, ଦାନଦ୍ୱାରା ବାନ୍ଧବମାନଙ୍କର ସନ୍ତୋଷୋତ୍ପାଦନକାରୀ, ବହୁଭାଷୀ, ଜ୍ୟୋତିଃଶାସ୍ତ୍ରପାରଙ୍ଗମ ଓ ଦେବତାମାନଙ୍କଠାରେ ଅନୁରକ୍ତ ହୁଏ ।

ବନ୍ଧୁ-ଜନ-ଧନଭୋଗୀ ସ୍ୱୀୟ ସୌଭାଗ୍ୟଯୁକ୍ତଃ
ପିଶୁନମତି ମନୁଷ୍ୟୋ ରାଜସେବାନୁରକ୍ତଃ ।
ଅଭିଲଷତି ପରାର୍ଥଂ ନିତ୍ୟମୁଦ୍ୟୋଗଯୁକ୍ତୋ—
ଦୃଢ଼ମତିରତିଶୂରୋ ବୃଶ୍ଚିକୋ ଯସ୍ୟରାଶିଃ ।

ବୃଶ୍ଚିକ ରାଶିଜାତବ୍ୟକ୍ତି ବନ୍ଧୁ ଧନଜନରେ ଯୁକ୍ତ, ଭୋଗୀ, ଉତ୍ତମ ଶ୍ରୀଯୁକ୍ତ, କ୍ରୂରମତି, ରାଜସେବାନୁରକ୍ତ, ପରଦ୍ରବ୍ୟାଭିଳାଷୀ, ଉଦ୍ୟୋଗଯୁକ୍ତ, ଦୃଢ଼ମତି ଓ ଅତିଶୟ ଶୂର ହୁଏ ।

ଧନୁରବଗୁଣଯୁକ୍ତଃ କୀର୍ତ୍ତିମାନ୍ ପୂଜନୀୟଃ
କୁଳପତି ରସିକଶ୍ଚ ବାନ୍ଧବର୍ଗୈକପାଳଃ ।
ବହୁଧନଜନଯୁକ୍ତୋ ଦେବବିପ୍ରାଗ୍ନିସେବୀ
ମୃଦୁଗତିରସହିଷ୍ଣୁଃ କାର୍ମୁକୋ ଯସ୍ୟରାଶିଃ ।

ଧନୁରାଶି ଜାତବ୍ୟକ୍ତି ବହୁଗୁଣଯୁକ୍ତ, କୀର୍ତ୍ତିମାନ୍, ପୂଜନୀୟ, କୁଳପତି, ରସିକ, ବନ୍ଧୁଗଣପାଳ୍ୟ, ବହୁ ଧନଜନଯୁକ୍ତ, ମୃଦୁଗତି ଓ ଅସହିଷ୍ଣୁ ହୁଏ ।

ଅଭିଲଷତି ପରସ୍ତ୍ରୀଂ ଲବ୍ଧସମ୍ପତ୍ତିଭୋଗୋ-
ନରପତିରିବ ରମ୍ୟୋ ମନ୍ଦବାଦେ ପ୍ରସକ୍ତଃ ।
କୃଶତନୁ ରତିବୁଦ୍ଧିର୍ବନ୍ଧୁବର୍ଗସ୍ୟ ଭର୍ତ୍ତା
ଭବତି ମକରରାଶିର୍ମାନବେ । ଶୀରଭାବଃ ॥

ମକରରାଶି ଜାତ ବ୍ୟକ୍ତି ପରସ୍ତ୍ରୀଲୋଲୁପ, ପ୍ରାପ୍ତସମ୍ପତ୍ତିଭୋଗୀ, ରାଜତୁଲ୍ୟ ପ୍ରତାପବାନ୍, ମନ୍ଦବାଦଯୁକ୍ତ, କୃଶଶରୀର, ବୁଦ୍ଧିମାନ୍, ବନ୍ଧୁଗଣଙ୍କର ଭରଣପୋଷଣକାରୀ ଓ ଶୀତସ୍ୱଭାବ ହୁଏ ।

ତୁରଗ ଇବ ସୁଦୃଷ୍ଟିଃ ସୁନ୍ଦରଃ ସ୍ୱଚ୍ଛଚିତ୍ତଃ
ସ୍ଥିରଧନମଭିଳାଷୀ ମାନନୀବଲ୍ଲଭଶ୍ଚ ।
ବହୁଧନ ପରିବାରୋ ଜ୍ଞାତିବନ୍ଧୁପ୍ରମୋଦୀ
ପରଜନ ହିତକାରୀ ଯସ୍ୟ ରାଶିର୍ଘଟାଖ୍ୟଃ ।

କୁମ୍ଭରାଶି ଜାତବ୍ୟକ୍ତି ଅଶ୍ୱନ୍ୟାୟ ସୁନ୍ଦର ଦୃଷ୍ଟିଯୁକ୍ତ, ସୁନ୍ଦର, ସରଳମନା, ସ୍ଥିରଧନେଚ୍ଛୁ, ମାନବତୀ ନିଜ ଭାର୍ଯ୍ୟାଠାରେ ବିମୁଗ୍ଧ, ବହୁଧନ, କୁଟୁମ୍ବଯୁକ୍ତ, ଜ୍ଞାତିବନ୍ଧୁପ୍ରମୋଦୀ ଓ ପରୋପକାରୀ ହୁଏ ।

ଜନଧନସୁଖଭୋକ୍ତା ମୈଥୁନାଦି ପ୍ରସକ୍ତଃ
ସମରୁଚିରଶରୀରୋ ବସ୍ତ୍ରଲାଭୋଽଲ୍ପମଧ୍ୟଃ ।
ଅଭିଭବତି ସପତ୍ନାନ୍ ସ୍ତ୍ରୀଜିତୋ ବ୍ୟକ୍ତ କାନ୍ତି—
ରତିଶୟ ଧନଲୋଭୀ ପଣ୍ଡିତୋ ମୀନରାଶିଃ ।

ମୀନରାଶି ଜାତବ୍ୟକ୍ତି ଧନଜନ ଓ ସୁଖଭୋଗୀ, ରତିକ୍ରିୟାସକ୍ତ, ରୁଚିରଶିଷ୍ଟ ଶରୀର, ବସ୍ତ୍ରଲାଭକାରୀ, ମଧ୍ୟଦେଶରେ କୃଶ, ଶତ୍ରୁଜୟୀ, ସ୍ତ୍ରୀଜିତ, କାନ୍ତିମାନ୍, ଲୋଭାସକ୍ତ ଓ ପଣ୍ଡିତ ହୁଏ । (ସନ୍ଦର୍ଭଲେଖକ—ଶ୍ରୀ ବାଇକୋଳି ମହାପାତ୍ର) ।

**ରାଶିବଡ଼ି**—(ମ. ପ. ଲୋ)—ଖସା ବା ଡାଲ ମିଶ୍ରିତ ବଡ଼ି—
Rāśibarḍi Dried balls of Biri paste mixed
তিলের বড়ি তিলৌরি(ড়ী) with sesamum seeds.

**ରାଶିଭାଗ**—ସ. ବି (ଗଣିତ)—ଭଗ୍ନାଂଶ—
Rāśibhāga Fraction.

**ରାଶିଭୋଗ**—ସଂ. ବି (ଜ୍ୟୋତିଷ)—ସୂର୍ଯ୍ୟାଦି ଗ୍ରହଙ୍କର ଗ୍ରହଚକ୍ରରେ
Rāśibhoga ଭ୍ରମଣକାଳରେ ନିର୍ଦ୍ଦିଷ୍ଟ ରାଶି ଚିହ୍ନିତ ଗୃହରେ ଅବସ୍ଥିତି—The passing of the planets through a particular sign of the Zodiac.

ରାଶି ମଣ୍ଡଳ—ସଂ. ବି (ଜ୍ୟୋତିଷ)—ରାଶିଚକ୍ର (ଦେଖ)
Rāsi mandala Rāsichakra. (See)

ରାଶି ରାଶି—ଦେ. ବିଣ ଓ କ୍ରି—୧ । ବହୁ ସ୍ତୂପାକାରରେ ସ୍ତୂପୀକୃତ—
Rāsi rāsi 1. Heaped in heaps, ୨ । ଅସଂଖ୍ୟ—
बाशिबाशि **राशिराशि** 2. In heaps; multitudinous.

ରାଶୀକରଣ—ସଂ. ବି (ରାଶି+ଅଭୂତ ତଦ୍ ଭାବେ ଚ୍ଵି+ କରଣ)—ଗଦା
Rāsikarana କରିବା—Gathering of anything into a heap.

ରାଶୀକୃତ—ସଂ. ବିଣ (ରାଶି +ଅଭୂତ ତଦ୍ଭାବେ. ଚ୍ଵି+କୃତ)—
Rāsikruta ପୁଞ୍ଜୀକୃତ, ସ୍ତୂପୀକୃତ—Heaped up; gathered into a heap.

ରାଶୀୟ—ସଂ. ବିଣ (ରାଶି + ଈୟ)—ରାଶି ସମ୍ବନ୍ଧୀୟ—
Rāsiya Relating to a Rāsi.

ରାଷ୍ଟ—ଗ୍ରା. ବି (ସଂ. ରାଷ୍ଟ୍ର)—କୌଣସି ବିଷୟର ପ୍ରଚାର—
Rāshta Publication of a matter.
बाष्ट **प्रगट** ବିଣ—ପ୍ରଚାରିତ—Published.

ରାଷ୍ଟ୍ର—ସଂ.ବି (ରାଜ୍.ଧାତୁ=ଶୋଭା ପାଇବା+କର୍ତ୍ତୃ.ଷ୍ଟ୍ର)—୧ । ରାଜ୍ୟ—
Rāshtra 1. Kigdom; realm. ୨ । ସାମ୍ରାଜ୍ୟ—2. Empire. ୩ । ଜନପଦ; ଦେଶ—3. Country. ୪ । ପ୍ରକାଶ; ପ୍ରଚାର—4. Publication; promulgation. ୫ । ମଡ଼କ, ରାଜ୍ୟରେ ଘଟିତା ଦୁର୍ଭିକ୍ଷ ସଂକ୍ରାମକ ରୋଗ ଆଦିରୂପ ଉପଦ୍ରବ—5. Public calamities or visitations; calamities overtaking a country, such as, famine, pestlence, contagious disease. ବିଣ—୧ । ପ୍ରଚାରିତ—1. Published. ୨ । ଖ୍ୟାତ; ପ୍ରସିଦ୍ଧ—2. Renowned.

ରାଷ୍ଟ୍ର କରିବା—ଦେ. କ୍ରି—(କୌଣସି ବିଷୟ) ଦେଶସାରା ପ୍ରଚାରିତ
Rāshtra karibā କରିବା—To publish a matter;
बाष्ट्रिकया **प्रगट करना** to broadcast; to proclaim.

ରାଷ୍ଟ୍ରକୂଟ—ସଂ. ବି—୧ । ଦକ୍ଷିଣଭାରତର ରାଜ୍ୟବିଶେଷ—
Rāshtrakūta 1. A kingdom in the Deccan.
୨ । କେତେକ ରାଜ୍ୟର ସମାହାର—2. A confederacy of states; federated states.

ରାଷ୍ଟ୍ରନୀତି—ସଂ. ବି (୬ଷ୍ଠୀ ତତ୍)—ରାଜନୀତି—
Rāshtraniti Politics.

ରାଷ୍ଟ୍ରପତି—ସଂ. ବି (୬ଷ୍ଠୀତତ୍)—ରାଜା; ସମ୍ରାଟ୍—
Rāshtrapati King; emperor.

ରାଷ୍ଟ୍ରଭଙ୍ଗ—ସଂ. ବି—ରାଜ୍ୟରେ ପ୍ରଚଳିତ ଶାସନନୀତିର ଆମୂଳ
Rāshtrabhanga ପରିବର୍ତ୍ତନ; ରାଜ୍ୟବିଦ୍ରୋହ—Radical
(ରାଷ୍ଟ୍ରବିପ୍ଳବ—ଅନ୍ୟରୂପ) change of the government; revolution; a complete change or breakup of the government of a country.

ରାଷ୍ଟ୍ର ହେବା—ଦେ. କ୍ରି—(କୌଣସି ବିଷୟ) ଦେଶମୟ ପ୍ରଚାରିତ
Rāshtra hebā ହେବା—To be talked about; to
बाष्ट्रिहओया **प्रगट होना** be published broadcast.

ରାଷ୍ଟ୍ରିକ—ସଂ. ବିଣ (ରାଷ୍ଟ୍ର+ଇକ)—୧ । ରାଜ୍ୟ ସମ୍ବନ୍ଧୀୟ—
Rāshtrika 1. Pertaining to a state.
୨ । ରାଷ୍ଟ୍ର ବା ଦେଶବାସୀ—2. Resident of a realm.

ରାଷ୍ଟ୍ରିକା—ସଂ. ବି. (ବୈଦ୍ୟକ)—ବୃହତୀ; ଭେଜ୍ଜା ବାଇଗଣ; ବହାଳକୁଡ଼ୀ—
Rāshtrikā Solanum Indicum (plant).
ଓ. ବହାଳକୁଡ଼ା ବ୍ୟାକୁଡ୍ **बहेड्डा** ତେ. ଜ୍ଵକମାତ

ରାଷ୍ଟ୍ରି(ଷ୍ଟ୍ରୀ)ୟ—ସଂ. ବି (ରାଷ୍ଟ୍ର+ଇୟ, ଇୟ)—ରାଜ୍ୟ ସମ୍ବନ୍ଧୀୟ—
Rāshtri(shtri)ya Relating to a realm.
ସଂ. ବି (ନାଟ୍ୟୋକ୍ତି)—ରାଜ ଶ୍ୟାଳକ; ରାଜାଙ୍କ ସମ୍ବନ୍ଧୀ ବା ଶ୍ୟାଳକ—The brother of a king's queen.

ରାଷ୍ଟ୍ରୀ—ସଂ. ବି—୧ । ମହାରୁଣ୍ଠା (ଦେଖ) (ହରେକୃଷ୍ଣ ଦ୍ରବ୍ୟଗୁଣ ।)
Rāshtri 1 Mahāruntha (See)
୨ । ରାଜ୍ୟାଧୀଶ୍ୱରୀ—2. A female ruler (Apte).

ରାସ୍—ଦେ. ବି—ରାଶ୍ (ଦେଖ) Rās (See)
Rās (ଧାତୁ)—ସଂ—ଶବ୍ଦ କରିବା—To make a sound.
ପ୍ରାଦେ. (ବାଲେଶ୍ୱର) କଟକରେ ବି—ଗୋଟି (ଗାଈ) (ଯଥା—ସାତ ରାସ୍ ଗାଈ=ସାତ ଖର ଗାଈ)—(Head of cattle).

ରାସ୍ କାଟ୍—ଦେ. ବିଣ—ହଠାତ୍ ଉଚ୍ଚ; ଅତଡ଼ଥିବା—
Rās kāt खाडा **टीला** Steep; precipitous.

ରାସ—ସଂ. ବି. ( ରସ୍ ଧାତୁ=ଶବ୍ଦ କରିବା +ଭାବ.ଅ)—୧ । ଶବ୍ଦ—
Rāsa 1. Sound. ୨ । କୋଳାହଳ; କଳରବ—2. Noise; hubbub. ୩ । ଗୋପନାରୀ ମଣ୍ଡଳ ପରିବେଷ୍ଟିତ ରାଧାକୃଷ୍ଣଙ୍କର ଯୁଗଳ ନୃତ୍ୟ ଲୀଳା; ଗୋପୀଗଣ ମଧ୍ୟରେ ଶ୍ରୀକୃଷ୍ଣଙ୍କର ରାଧିକାଙ୍କ ସହିତ ନୃତ୍ୟ ବିଳାସ—3. A sport or pastime consisting of the Gopis dancing in a circle round the pair Rādhā Krushna. ୪ । ପ୍ରେମୋଦ୍ଦୀପକ ନୃତ୍ୟ ବିଶେଷ—4. An amorous dance. [ଦ୍ର—ଶ୍ରୀକୃଷ୍ଣଙ୍କର ରାଧାଙ୍କ ସଙ୍ଗେ ବର୍ଣ୍ଣିତ କ୍ରୀଡ଼ାକୁ ଯେଉଁମାନେ ଆଧ୍ୟାତ୍ମିକ ଓ ସାଙ୍କେତିକ ଅର୍ଥରେ ଗ୍ରହଣ କରନ୍ତି ସେମାନେ ରାସ କ୍ରୀଡ଼ାର ବର୍ଣ୍ଣନାରୁ ବୁଝନ୍ତି ଯେ, ଶ୍ରୀକୃଷ୍ଣ ଭଗବାନ୍ (ପୁରୁଷ) ଓ ରାଧିକା ପ୍ରକୃତି ଓ ୧୬ ସହସ୍ର ଗୋପାଙ୍ଗନା ପୃଥିବୀର ଅସଂଖ୍ୟ ଭକ୍ତ ନରନାରୀଙ୍କ ପ୍ରାଣ । ରାସକ୍ରୀଡ଼ା ସମୟରେ ରାଧାକୃଷ୍ଣ ମଣ୍ଡପରେ ନୃତ୍ୟ କରନ୍ତି ଓ ତାଙ୍କ ଚାରି ପାଖରେ ମଣ୍ଡଳାକାରହୋଇ ୧୬ସହସ୍ର ଗୋପୀ ନୃତ୍ୟ କରନ୍ତି ଓ ପ୍ରତ୍ୟେକ ଗୋପୀଙ୍କ ସଙ୍ଗେ ଗୋଟିଏ ଶ୍ରୀକୃଷ୍ଣ ବିରାଜିତ ହୋଇ ନୃତ୍ୟ କରୁ ଥାଆନ୍ତି । ସେହି ରାସ ପ୍ରତିଦିନ ବୈକୁଣ୍ଠରେ ଘଟୁଅଛି । ପୁରାଣରେ ଅଛି ଯେ, ଶ୍ରୀମୂର୍ତ୍ତି ଧାରଣ ନ କଲେ ରାସ ଦେଖିବାର ଶକ୍ତି କାହାର ନାହିଁ । ଶ୍ରୀକୃଷ୍ଣ ଗୋପୀମାନଙ୍କ ସହିତ ବୃନ୍ଦାବନରେ ଯେଉଁ "ରାସ

କ୍ରୀଡ଼ା କାର୍ତ୍ତିକ ପୂର୍ଣ୍ଣିମୀ ସମୟରେ କରିଥିଲେ ତାକୁ ଶରଦ୍ରାସ ଓ ବସନ୍ତ ସମୟରେ କରିଥିବା କ୍ରୀଡ଼ାକୁ ବସନ୍ତ ରାସ ବୋଲାଯାଏ ।]

**ରାସ କେଳି**—ସଂ. ବି—ରାସଲୀଳା—Krushna's amorous dance with Rādhā and Gopis.
Rāsa keli
(ରାସକ୍ରୀଡ଼ା, ରାସ ବିଳାସ—ଅନ୍ୟରୂପ)

**ରାସଣା**—ଦେ. ବି. (ସଂ. ରାସ୍ନା)—ରାସ୍ନା ( ଦେଖ )
Rāsanā Rāsnā ( See )
বাসনা रासना

**ରାସନ**—ସଂ. ବି. (ରସନ+ଅ)—୧ । ରସନାସମ୍ବନ୍ଧୀୟ—1. Relating to the tongue or taste.
Rāsana
୨। ସୁସ୍ୱାଦୁ—2. Sweet; tasteful. ବି—ରସନେନ୍ଦ୍ରିୟ ଜନ୍ୟ ସ୍ୱାଦ ଜ୍ଞାନ—The taste appreciable by the tongue.

**ରାସନ ପ୍ରତ୍ୟକ୍ଷ**—ସଂ. ବି—ରସନେନ୍ଦ୍ରିୟ ଦ୍ୱାରା ସ୍ୱାଦ ବୋଧ—The appreciation of the taste of a thing.
Rāsana pratyakshya

**ରାସନା**—ସଂ.ବିଣ.ସ୍ତ୍ରୀ(ରସନା+ଅ+ଆ)—ରସନା ସମ୍ବନ୍ଧୀୟା—Relating to the tongue or taste.
Rāsanā
ବି—ରସନେନ୍ଦ୍ରିୟ ଜନ୍ୟ ସ୍ୱାଦଜ୍ଞାନ—The appreciation of taste by the tongue. ଦେ. ବି—ରାସ୍ନା (ଦେଖ)—Rāsnā (See)

**ରାସନୀ**—ସଂ. ବିଣ. ସ୍ତ୍ରୀ—ରାସନର ଲିଙ୍ଗ—
Rāsani The feminine of Rāsana.

**ରାସନୀ ନୀତି**—ସଂ. ବି—୧ । ଜିହ୍ୱାର ଧର୍ମ—1. The duty or nature of the tongue.
Rāsani niti
୨। ସର୍ବଦା ଉପକାର କରିବା ଅଭ୍ୟାସ—2. The habit of doing good to others always. (ଉ—ପ୍ରବଳେ ରାସନୀ ନୀତି ଆଚରଣ ଦାଶନୀ ନୀତି ଦୁର୍ବଳେ । ରାଧାନାଥ. ପ.ବଂଶ ।) [ବ୍ୟୁ—ଦାନ୍ତର ମୂଳରେ କିଛି ଲାଗିଗଲେ ତାକୁ ବାରଂବାର ଛୁଇଁବାର ଦାନ୍ତର ମଙ୍ଗଳ କରିବା କର୍ମରେ ରସନା ଲାଗିଥାଏ; ଏଥିପାଇଁ ପରର ସର୍ବଦା ଉପକାର କରିବା ଧର୍ମକୁ ରାସନୀ ନୀତି ବୋଲାଯାଏ । ଦାନ୍ତ ସୁବିଧା ପାଇଲେ ଜିଭକୁ ଦାବି ଦିଏ, ଏଥିପାଇଁ ଉପକାରୀର ଅପକାର କରିବ (ରାସନ ଧର୍ମ—ଅନ୍ୟରୂପ) ନୀତିକୁ ଦାଶନୀ ନୀତି ବୋଲାଯାଏ ।]

**ରାସ ପର୍ବ**—ସଂ. ବି—କାର୍ତ୍ତିକ ପୂର୍ଣ୍ଣିମା—The full-moon of the month of Kārttika.
Rāsa parba
(ରାସ ପୂର୍ଣ୍ଣିମା—ଅନ୍ୟରୂପ) [ବ୍ୟୁ—ଏ ସମୟରେ ଶ୍ରୀକୃଷ୍ଣ ବୃନ୍ଦାବନରେ ଗୋପୀମାନଙ୍କ ସହିତ ରାସକ୍ରୀଡ଼ା କରିଥିଲେ ବୋଲି ହିନ୍ଦୁମାନେ ସେହି ଉତ୍ସବ ପାଳନ କରନ୍ତି ।]

**ରାସ ବିହାରୀ**—ସ.ବି. ପୁଂ—ଶ୍ରୀକୃଷ୍ଣ—Srikrushna. ଦେ.ବି.ପୁଂ.—ଲୋକଙ୍କ ନାମ—A name given to males.
Rāsa bihāri
রাস বিহারী रास बिहारी
[ରାସ ବେହାରୀ, ରାହାସ ବ (ବେ)ହାରୀ—ଗ୍ରାମ୍ୟରୂପ]

**ରାସ ବିହାରୀ ଘୋଷ**—ଦେ. ବି. ନାମ—ଡାକ୍ତର ରାସବିହାରୀ ଘୋଷ, ବଙ୍ଗର ସୁପ୍ରସିଦ୍ଧ ଓକିଲ (୧୮୪୫—୧୯୨୩)—The late Dr. Rasbihari Ghosh M.A., B. L., C. S. I. of Bengal.
Rāsa bihāri ghosha
রাস বিহারী ঘোষ रास बिहारी घोष
[ବ୍ୟୁ—ଏ ବିଶ୍ୱବିଦ୍ୟାଳୟର ଉଚ୍ଚତମ ଉପାଧି ଲାଭ କରି ଶେଷରେ ଆଇନ୍ ବିଦ୍ୟାର ଉଚ୍ଚତମ ଉପାଧି ପାଇଥିଲେ । ଏ ଅନେକ ଗବେଷଣା ପୂର୍ଣ୍ଣ ଇଂରାଜୀ ଆଇନ୍ ପୁସ୍ତକର ପ୍ରଣେତା । ଗଭର୍ଣ୍ଣମେଣ୍ଟ ଏହାଙ୍କୁ C. S. I. ଉପାଧି ପ୍ରଦାନ କରିଥିଲେ ଓ ଏ ବଙ୍ଗ ଦେଶରେ ବ୍ୟାବହାରିକ ଶିକ୍ଷାର ପ୍ରଚାର ପାଇଁ ଅଜସ୍ର ଅର୍ଥ ଦାନ କରିଥିଲେ ।]

**ରାସ ବେଦୀ**—ସଂ. ବି—ରାସ ମଣ୍ଡପ ( ଦେଖ )
Rāsa bedi Rāsa mandapa ( See )
(ରାସ ବେଦିକା—ଅନ୍ୟରୂପ)

**ରାସଭ**—ସଂ. ବି: ପୁଂ (ରା ଧାତୁ=ଶବ୍ଦ କରିବା+କର୍ତ୍ତୃ. ଅଭ)—୧ ଗର୍ଦ୍ଦଭ; ଗଧ—1. The ass. ୨ । ଅଶ୍ୱତର (ହି. ଶ.)—2. Mule. ୩ । ବୃନ୍ଦାବନର ତାଳବନରେ ବଳଦେବଙ୍କଦ୍ୱାରା ନିହତ ଗର୍ଦ୍ଦଭରୂପଧାରୀ ଦୈତ୍ୟ (ହି. ଶ.)—3. A demon in the shape of an ass killed by Baladeba.
Rāsabha
(ରାସଭୀ—ସ୍ତ୍ରୀ)

**ରାସ ମଣ୍ଡପ**—ସଂ. ବି.—୧ । ଶ୍ରୀକୃଷ୍ଣଙ୍କର ରାସଲୀଳାର ମଣ୍ଡପ—1. A platform on which Rāsalilā was performed by Krushna. ୨। ଯେଉଁ ବେଦୀରେ ରାସଯାତ୍ରା ହୁଏ—2. A platform for the performance of Rāsa festival.
Rāsa mandapa

**ରାସ ମଣ୍ଡଳ (ଳୀ)**—ସଂ. ବି.—୧ । ରାଧାକୃଷ୍ଣଙ୍କ ଯୁଗଳ ମୂର୍ତ୍ତିକୁ ଚାରିପାଖେ ବେଢ଼ି ନାଚୁଥିବା ୧୬ସହସ୍ର କୃଷ୍ଣଗୋପୀଙ୍କ ମଣ୍ଡଳ ।
Rāsa mandala (li)
(ରାସଭୂମି-ଅନ୍ୟରୂପ) 1. A cricle formed, havin Rādhā Krushna in the middle, surrounded by a circle of 16000 Gopis with one Krushna each. ୨। ବୈକୁଣ୍ଠରେ ବା ଗୋଲୋକଧାମରେ ଭଗବାନ୍ କରୁଥିବା ରାସକ୍ରୀଡ଼ାର ପରିଧି ବା ସୀମା—2. The limit of the circle occupied by the Rāsa pastime in Paradise.

**ରାସମଣି**—ଦେ.ବି. (ନାମ)—୧। କଲିକତାର ସ୍ୱର୍ଗୀୟା ରାଣୀ ରାସମଣି—1. Late Rāni Rāsamani of Bengal (Calcutta).
Rāsamani ଗ୍ରାମର
রাসমণি रासमनी
[ ବ୍ୟୁ—ଏ ଅତି ଦରିଦ୍ର କୈବର୍ତ୍ତ ବଂଶରେ ଜାତ ହୋଇଥିଲେ । ଏ ପରମ ରୂପବତୀ ଥିଲେ ଓ କଲିକତାର ଜଣେ ଧନିକ ପୁତ୍ର ଏହାଙ୍କୁ ବିବାହ କରିଥିଲେ । ଏହାଙ୍କ ସ୍ୱାମୀଙ୍କ ନାମ ରାଜଚନ୍ଦ୍ର ମାଢ଼େ । ଖ୍ରୀ.୧୮୩୬ ରେ ସ୍ୱାମୀଙ୍କର ମୃତ୍ୟୁ ହେବାରୁ ରାସମଣି ଅତି ଦକ୍ଷତା ସହିତ ଅତୁଳ ଐଶ୍ୱର୍ଯ୍ୟ ଭୋଗ ଓ ପରିଚାଳନା କଲେ । ଏ ଅତ୍ୟନ୍ତ

ତେଜସ୍ୱିନୀ,ଧର୍ମପରାୟଣା ଓ ସାଧାରଣଙ୍କ ଉପକାର ବ୍ରତରେ ଦୀକ୍ଷିତା ଥିଲେ । ଏହାଙ୍କ ଚେଷ୍ଟାରେ ଗଙ୍ଗା ନଦୀରୁ ମାଛ ଧରିବା ପାଇଁ ଗଭର୍ଣ୍ଣମେଣ୍ଟଙ୍କ ବସାଇଥିବା ଜଳକର ଉଠିଯାଇଥିଲା । ନାନା ପ୍ରକାରେ ଦରିଦ୍ର ଓ ଅନ୍ୟକଷ୍ଟ ପ୍ରପୀଡ଼ିତ ବ୍ୟକ୍ତିମାନଙ୍କୁ ସାହାଯ୍ୟ କରିବା ଏହାଙ୍କ ଜୀବନର ବ୍ରତ ଥିଲା । ଜନସାଧାରଣ ଏହାଙ୍କ ଦୟାଦାକ୍ଷିଣ୍ୟାଦି ଗୁଣ ପାଇଁ ଏହାଙ୍କୁ 'ରାଣୀ'ଉପାଧି ଦେଇଥିଲେ । ଏହାଙ୍କ ବିଷୟବୁଦ୍ଧି, ସ୍ୱାଧୀନ ଚିନ୍ତା ଓ ସାହସ ପ୍ରଖର ଥିଲା । ଦକ୍ଷିଣେଶ୍ୱରଠାରେ ଏହାଙ୍କ ପ୍ରତିଷ୍ଠିତ କାଳୀବାଡ଼ୀରେ ରାମକୃଷ୍ଣ ପରମହଂସ ପୂଜକ ଥିଲେ । ) ୨ । ସ୍ତ୍ରୀ ଲୋକଙ୍କ ନାମ—2. A name given to females.

**ରାସ ଯାତ୍ରା**—ସ.ବି.—୧ । କାର୍ତ୍ତିକ ପୂର୍ଣ୍ଣିମାରେ ରାସଲୀଳାର ଅଭିନୟ—
Rāsa jātrā 1. The representation of Rāsa on the Kārttika fullmoon day. ୨ । କାର୍ତ୍ତିକ ପୂର୍ଣ୍ଣିମାର ମହୋତ୍ସବ—2. The festival of Rāsa observed as a holiday on the Kārttika fullmoon day.

**ରସ ରଙ୍ଗ**—ସ. ବି.—ରାସକ୍ରୀଡ଼ା; ରାସଲୀଳା— The Rāsa dance.
Rāsa ranga

**ରସରଙ୍ଗିଣୀ**—ସ. ବି. ସ୍ତ୍ରୀ—୧ । ରାଧା; ରାଧିକା—
Rāsa rangini 1. Rādhā.
(ରସ ରଙ୍ଗିଣୀ—ଦେଶଜରୂପ) ୨ । ରାସକ୍ରୀଡ଼ାରେ ସଙ୍ଗିନୀ—
(ରସ ରସିକା—ଅନ୍ୟରୂପ) 2. A companion-girl in the Rāsa sport.

**ରାସ ରସିକା**—ସ. ବି. ପୁଂ—
Rāsa rasika ଶ୍ରୀକୃଷ୍ଣ— Srikrushna.

**ରାସ ଲୀଳା**—ସ. ବି.(ରୂପକ କର୍ମଧା, ରାସରୂପକ ଲୀଳା)—ରାସ (ଦେଖ)
Rāsa lilā Rāsa (see)

**ରାସାଙ୍ଗତ**—ଗ୍ରା. ବି ଣ. ( ସଂ. ରସାତଳ ଗତ )—୧ । ସଂପୂର୍ଣ୍ଣରୂପେ
Rāsāngata ନିର୍ମୂଳ—1. Utterly ruined; exterminated. ୨ । ରସାତଳ ଗତ—2. Sunk to the bottom of an abyss.
ରସାତଳଗତ
रसातलगत

**ରାସାନ୍ତ(ତ)ଳ**—ଗ୍ରା. ବି.(ସଂ. ରସାତଳ)—ରସାତଳ; ପାତାଳ—The
Rāsānta(ta)la nether regions; regions below the earth; an abyss. ବିଣ—
ରସାତଳ रसातल
ଅଧୋଗତ—Sunk to the bottom.

**ରାସାୟନ**—ସଂ.ବିଣ (ରାସାୟନ+ସମ୍ବନ୍ଧାର୍ଥ.ଅ)—ରସାୟନ ସମ୍ବନ୍ଧୀୟ—
Rāsāyana Relating to Rasāyana.

**ରାସାୟନିକ**—ସ. ବିଣ ( ରସାୟନ+ଇକ )—୧ । ରସାୟନ ସମ୍ବନ୍ଧୀୟ
Rāsāyanika —Relating to chemistry.
୨ । ଦୁଇ ଦ୍ରବ୍ୟର ପରମାଣୁର ଘନିଷ୍ଠ ମିଳନ ସମ୍ବନ୍ଧୀୟ—
2. Chemical.

**ରାସାୟନିକ ଆକର୍ଷଣ**—ସ. ବି ( ଆଧୁନିକ ବିଜ୍ଞାନ ପରିଭାଷା )—ଯେଉଁ
Rāsāyanika ākarshana ଗୁଣଦ୍ୱାରା ଦୁଇ ପଦାର୍ଥର ଭିନ୍ନ ଭିନ୍ନ ପ୍ରକାରର ପରମାଣୁମାନ ମିଳିତ ହୋଇ ଗୋଟିଏ ସ୍ୱତନ୍ତ୍ର ଗୁଣବିଶିଷ୍ଟ ପଦାର୍ଥରେ ପରିଣତ ହୁଏ—Chemical attraction.

**ରାସାୟନିକ କ୍ରିୟା**—ସ. ବି ( ଆଧୁନିକ ବିଜ୍ଞାନ ପରିଭାଷା )—୧ । ଦୁଇ
Rāsāyanika kriyā ପଦାର୍ଥର ପରସ୍ପର ମିଳିତ ହେବାଦ୍ୱାରା
(ରାସାୟନିକ ପ୍ରକ୍ରିୟା—ଅନ୍ୟରୂପ) ରାସାୟନିକ ଆକର୍ଷଣ ବଳରେ ସମ୍ପାଦିତ ହେବା କାର୍ଯ୍ୟ—1. Chemical action.
୨ । ରାସାୟନିକ ପରିବର୍ତ୍ତନ କରିବାର ବିଧି—2. Chemical process.

**ରାସାୟନିକ କ୍ରିୟାଜନିତ ସ୍ଥିତିଗତି**—ସ. ବି ( ଆଧୁନିକ ବିଜ୍ଞାନ ପରି-
Rāsāyanika kriyājanita sthitigati ଭାଷା )—
ରାସାୟନିକ କ୍ରିୟାଫଳରେ ଉଦ୍ଭିଦମାନଙ୍କର ଅବସ୍ଥାନ, ଗତି ବା କ୍ରିୟା—Chemotropism.

**ରାସାୟନିକ ଗବେଷଣା**—ସ. ବି ( ଆଧୁନିକ )—ରସାୟନ ବିଦ୍ୟା
Rāsāyanika gabeshanā ସମ୍ବନ୍ଧେ ତତ୍ତ୍ୱ ଅନୁସନ୍ଧାନ—
Chemical investigation.

**ରାସାୟନିକ ଗବେଷଣା ଗୃହ (ମନ୍ଦିର)**—ସ. ବି ( ଆଧୁନିକ ବିଜ୍ଞାନ
Rāsāyanika gabeshanā gruha (mandira)
ପରିଭାଷା )—ଯେଉଁ ଗୃହରେ ରାସାୟନିକ ଗବେଷଣା ସମ୍ପାଦିତ ହୁଏ—Chemical laboratory.

**ରାସାୟନିକ ପରିବର୍ତ୍ତନ**—ସ. ବି ( ଆଧୁନିକ ବିଜ୍ଞାନ ପରିଭାଷା )—
Rāsāyanika paribarttana ଦୁଇ ପଦାର୍ଥର ମିଳନଦ୍ୱାରା ପରମାଣୁମାନଙ୍କର ପ୍ରକୃତିର ପରିବର୍ତ୍ତନ—Chemical change.

**ରାସାୟନିକ ପରୀକ୍ଷା**—ସ. ବି ( ଆଧୁନିକ ବିଜ୍ଞାନ ପରିଭାଷା )—ରସାୟନ
Rāsāyanika parikshā ଶାସ୍ତ୍ର ସମ୍ବନ୍ଧୀୟ ତତ୍ତ୍ୱମାନଙ୍କ ନିର୍ଣ୍ଣୟାର୍ଥ କରାଯିବା ପରୀକ୍ଷା—Chemical examination or investigation.

**ରାସାୟନିକ ବିକାର**—ସ. ବି ( ଆଧୁନିକ ବିଜ୍ଞାନ ପରିଭାଷା )—
Rāsāyanika bikāra ରାସାୟନିକ ପରିବର୍ତ୍ତନ ( ଦେଖ )
Rāsāyanika paribarttana ( See )

**ରାସାୟନିକ ବିଶ୍ଳେଷଣ**—ସ. ବି ( ଆଧୁନିକ ବିଜ୍ଞାନ ପରିଭାଷା )—
Rāsāyanika bisleshana ରାସାୟନିକ ଆକର୍ଷଣଦ୍ୱାରା ମିଳିତ ଉପାଦାନମାନଙ୍କର ପୃଥକ୍‌କରଣ—Chemical analysis.
(ବିପରୀତ—ରାସାୟନିକ ସଂଶ୍ଳେଷଣ)

**ରାସାୟନିକ ମିଳନ**—ସ. ବି ( ଆଧୁନିକ ବିଜ୍ଞାନ ପରିଭାଷା )—
Rāsāyanika milana ରାସାୟନିକ ସମ୍ମିଳନ ( ଦେଖ )
(ରାସାୟନିକ ମିଶ୍ରଣ—ଅନ୍ୟରୂପ) Rāsāyanika sammilana ( See )

**ରାସାୟନିକ ସମ୍ବନ୍ଧ**—ସ. ବି ( ଆଧୁନିକ ବିଜ୍ଞାନ ପରିଭାଷା )—ଦୁଇ
Rāsāyanika sambandha ପଦାର୍ଥର ରାସାୟନିକ ମିଳନ ପାଇଁ ଅନୁକୂଳ ସମ୍ପର୍କ—
(ରାସାୟନିକ ସମ୍ପର୍କ—ଅନ୍ୟରୂପ) Chemical affinity.

ରାସାୟନିକ ସମ୍ମି(ମ୍ମେ)ଳନ—ସ. ବ ( ଅଧୁନିକ ବିଜ୍ଞାନ ପରିଭାଷା )—
Rāsāyanika sammi(mme)lana ଦୁଇଟି ବସ୍ତୁର ପରମାଣୁ
(ରାସାୟନିକ ସଂଶ୍ଳେଷଣ—ଅନ୍ୟରୂପ) ମିଳିତ ହେବାଦ୍ୱାରା ଉତ୍ପନ୍ନ
ପରମାଣୁମାନଙ୍କର ପ୍ରକୃତିପରିବର୍ତ୍ତନଜନିତ ମିଶ୍ରଣ—Chemical combination or synthesis.

ରାସୁ—ଦେ. ବ ( ଅଦରାର୍ଥକ )—ରାସବିହାରୀର ଡାକ ନାମ—
Rāsu Name for calling Rāsabihārī in fondness.
রাসু रासु

ରାସେଶ୍ୱର—ସ.ବି.ପୁଂ (୬ଷ୍ଠୀ ତତ୍)—ଶ୍ରୀକୃଷ୍ଣ—Srikrushna, the
Rāseswara central male figure in Rāsa.

ରାସେଶ୍ୱରୀ—ସ. ବି.ସ୍ତ୍ରୀ (୬ଷ୍ଠୀ ତତ୍)—ଶ୍ରୀରାଧା;ରାଧିକା—Rādhikā,
Rāseswarī the central female figure in Rāsa.
ଦେ.ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—A name given to females.

ରାସୋତ୍ସବ—ସ. ବ—୧ । ରାସରୂପ ଲୀଳା; ରାସ ( ଦେଖ )—
Rāsotsaba 1. Rāsa ( See ) ୨। କାର୍ତ୍ତିକ ପୂର୍ଣ୍ଣିମାରେ
ଅଭିନୀତ ରାସଲୀଳା—2. The representation of
Rāsa sport performed on the Kārttika full moon day.

ରାସ୍ତା—ବୈଦେ. ବ ( ଫା; ତୁଳନାକର ସ. ରଥ୍ୟା=ଶଗଡ଼ବାଟ;
Rāstā ଗଥିକ୍ ଓ ଜର୍ମନ୍. ରୋସ୍ତା=ଦୂରତ୍ୱ ଜଣାଇବା ପଥର
রাস্তা ଖୁଣ୍ଟି )—୧ । ମାର୍ଗ; ପଥ; ବାଟ—1. Road;
रास्ता way ୨ । ସଡ଼କ; ରାଜଦାଣ୍ଡ—2. Highway.
୩ । ଦୂରତ୍ୱ—3. Distance. ୪ । ( ଲକ୍ଷଣାର୍ଥ )
କାର୍ଯ୍ୟସାଧନର ଉପାୟ—4. Means or expedient
for doing a thing. ( ଯଥା—ଅମୁକ କାମ
କରିବାକୁ ମତେ ରାସ୍ତା ମିଳୁନାହିଁ । )

ରାସ୍ତା ଅଟକ—ବୈଦେ. ବ ( ଫା )—ଲୋକଙ୍କ ଯିବା ଆସିବା ବାଟକୁ
Rāstāataka ବନ୍ଦ କରିବାଦ୍ୱାରା ଗମନାଗମନରେ ଉପୁଜିବା
(ରାସ୍ତାଅବରୋଧ, ରାସ୍ତାବନ୍ଦ—ଅନ୍ୟରୂପ) ବାଧା—Obstruction
রাস্তা অটক, রাস্তাঅবরোধ, রাস্তাবন্দ of a road
रास्ता अटक or thorough fare.

ରାସ୍ତା କରିବା—ଦେ. କ୍ରି—୧ । କୌଣସି ସ୍ଥାନକୁ ଯିବାପାଇଁ ବାଟ
Rāstā kariba ପ୍ରସ୍ତୁତ କରିବା—1. To construct a
রাস্তাকরা road; to make a road. ୨ । ( ଲକ୍ଷଣାର୍ଥ )
रास्ता करना କୌଣସି କାର୍ଯ୍ୟକୁ ସୁଗମ କରିବାର ଉପାୟ କରିବା
—2. To devise or lay out means for
the accomplishment of an object.
୩ । ରାସ୍ତା ଛାଡ଼ିବା ( ଦେଖ )—
Rāstā chhārdiba ( See )

ରାସ୍ତା କାଟିବା—ଦେ. କ୍ରି—୧ । କୌଣସି ବ୍ୟକ୍ତିଙ୍କୁ ଦୂରରୁ ଆଗରେ
Rāstā kātiba ଦେଖି ତାଙ୍କୁ ଏଡ଼ିବା ପାଇଁ ବାଟଭାଙ୍ଗି ଅନ୍ୟବାଟେ
রাস্তা কাটান ଯିବା—1. To take another route on
रास्ता काटना seeing a person at some distance
(ରାସ୍ତା ଭାଙ୍ଗିଯିବା—ପ୍ରଥମାର୍ଥର ଅନ୍ୟରୂପ) ahead, so as to
evade him. ୨ । କୌଣସି ବ୍ୟକ୍ତିର ଗନ୍ତବ୍ୟ ମାର୍ଗ
ଆଗରୁ ସ୍ଥିର କରିଦେବା—2. To indicate the
way one has to take.

ରାସ୍ତା ଖୋଲିବା—ଦେ. କ୍ରି—୧ । ରାସ୍ତା ନ ଥିବା ସ୍ଥାନରେ ନୂଆ
Rāstā kholibā ରାସ୍ତା କରିବା—1 To open or start
[ ରାସ୍ତାଫିଟା(ଟେ)ଇବା—ଅନ୍ୟରୂପ ] a new road. ୨ ।
রাস্তাখোলা रास्ताखोलना ଅବରୁଦ୍ଧ ରାସ୍ତାକୁ ସର୍ବସାଧାରଣଙ୍କ
ଗମନାଗମନ ପାଇଁ ଉନ୍ମୁକ୍ତ କରିବା—2. To remove
obstruction from a road to make it open
for traffic. ୩ । କୌଣସି କାର୍ଯ୍ୟରେ ବା ବିଷୟରେ
ନୂତନ ପନ୍ଥାରେ ଯିବାଦ୍ୱାରା ଲୋକେ ସେହି ବାଟରେ ଯିବା
ପାଇଁ ଉପାୟ କରିବା—3. To initiate or start
a new thing, so that people would follow you

ରାସ୍ତା ଘାଟ—ଦେ.ବ(ଦ୍ୱନ୍ଦ୍ୱ)—୧ । ଲୋକଙ୍କ ଗମନାଗମନ କରିବାର
Rāstā ghāta ରାସ୍ତା ଓ ନଦୀ ମଧ୍ୟରେ ଥିବା ନଦୀପାର ଘାଟ—
রাস্তাঘাট रास्ताघाट 1. Roads and ferries.
୨ । ଏକ ସ୍ଥାନରେ ଥିବା ଛୋଟ ଓ ବଡ଼ ରାସ୍ତାମାନ—
2. All local raods, big and small. ୩ ।
ରାସ୍ତା ଓ ଗାଧୁଆ ତୁଠ—3. Roads and bathing
places. ୪ । ରାସ୍ତାଘାଟି—4. Roads and mountain passes.

ରାସ୍ତାଘାଟି—ଦେ. ବ—ରାସ୍ତା ଓ ଗିରିସଙ୍କଟମାନ—
Rāstaghāti Roads and mountain passes.
রাস্তাঘাটি रास्ताघाटी

ରାସ୍ତା ଛାଡ଼ିବା—ଦେ.କ୍ରି—୧ । ଅନ୍ୟର ଗମନାଗମନପାଇଁ ଯଥେଷ୍ଟ ବାଟ
Rāstā chhārdibā ବା ସ୍ଥାନ ଛାଡ଼ିଦେବା—1. To leave
রাস্তা(পথ)ছাড়া रास्ताछोडना sufficient space for
(ରାସ୍ତାଛାଡ଼ିଦେବା—ଅନ୍ୟରୂପ) the passing of peoples
to leave a road. ୨ । ବାଟ ଛାଡ଼ିବା; ଅବରୁଦ୍ଧ
ପଥକୁ ଉନ୍ମୁକ୍ତକରିବା—2. To remove obstruction from a road; to allow a person to
pass through a road. [ଦ୍ର—ଏହିପରି କ୍ରିୟାମାନ
ବିଭିନ୍ନ ଅର୍ଥରେ ରାସ୍ତା ସଙ୍ଗେ ବ୍ୟବହୃତ ହୁଏ, ଯଥା—
ରାସ୍ତା ପକାଇବା, ରାସ୍ତା ପିଟାଇବା, ରାସ୍ତା ରଖିବା, ରାସ୍ତା
ମାରିବା, ରାସ୍ତା ବନ୍ଦକରିବା, ରାସ୍ତା ଅବରୋଧ କରିବା,
ରାସ୍ତା ଦେଖାଇବା, ରାସ୍ତା ଖୋଲିବା ଇତ୍ୟାଦି । ]

ରାସ୍ତାଦାଣ୍ଡ—ଦେ.ବ (ଏକାର୍ଥକ ସହଚର)—ସାଧାରଣ ରାସ୍ତା; ରାଜପଥ;
Rāstādānda ରାସ୍ତା—Public road.
রাজপথ रास्तापथ

ରାସ୍ତା ଦ(ଦୁ)ଶିବା—ଦେ. କ୍ରି—୧ । ଗନ୍ତବ୍ୟମାର୍ଗ ଦୃଷ୍ଟିଗୋଚର ହେବା—
Rāstā di(du)sibā 1. Seeing one's way.
(ରାସ୍ତା ଦେଖାଯିବା—ଅନ୍ୟରୂପ) ୨ । (ଲକ୍ଷଣାର୍ଥ) କୌଣସି ବିଷୟରେ
রাস্তাদেখাযাওয়া रास्तादिखना ଉପାୟ ପୂର୍ବରୁ ଦେଖାଯିବା—
2. (figurative) The means for a certain matter being seen by a person before hand; one's way being seen

ରାସ୍ତା ଦେଖା(ଖେ)ଇବା—ଦେ. କ୍ରି—୧ । କୌଣସି ବ୍ୟକ୍ତିଙ୍କୁ ତାହାର
Rāstā dekhā(khe)ibā ଗନ୍ତବ୍ୟ ସ୍ଥାନକୁ ଯିବା ପାଇଁ ବାଟ
রাস্তাদেখান रास्तादिखाना ଦେଖାଇବା—1. To show or point out to a person the road he has to take. ୨ । (ଲକ୍ଷଣାର୍ଥ) କୌଣସି କାର୍ଯ୍ୟ ସାଧନର ଉପାୟ ବତାଇବା—2. To show the way or suggest the means for the accomplishment of an object.

ରାସ୍ତା ଦେଖିବା—ଦେ. କ୍ରି—(ଲକ୍ଷଣାର୍ଥ) ପର ଉପରେ ନିର୍ଭର ନ କରି
Rāstā dekhibā ଆପଣାର ଉପାୟ ଆପେ କରିବା—
রাস্তাদেখা रास्तादेखना To pursue one's course without depending on another; to shift for one's self. (ଯଥା—ମୁଁ ଏଣିକି ବୁଢ଼ା ହେଲେ ସମସ୍ତଙ୍କୁ ପୋଷି ପାରିବି ନାହିଁ । ଏଥିପାଇଁ ପୁଅଙ୍କୁ କହିଲି 'ତୁମେ ରାସ୍ତା ତୁମେ ଦେଖ'। ଅଳ୍ପଦିନକୁ ମିହନତ କରୁଥିଲି ବୋଲି ସାଆନ୍ତେ ମତେ ପୋଷୁଥିଲେ । ଏବେ ବୁଢ଼ା ହୋଇ କାମକୁ ନ ପାରିଲାରୁ ମୋ ରାସ୍ତା ମୁଁ ଦେଖିବା ପାଇଁ ସାଆନ୍ତେ ହୁକୁମ ଦେଲେ ।)

ରାସ୍ତା ଦେବା—ଦେ.କ୍ରି.—ବାଟରେ ଯାଉଥିବା ଅନ୍ୟ ବ୍ୟକ୍ତିଙ୍କୁ ଯିବାପାଇଁ
Rāstā debā ଯଥେଷ୍ଟ ପଥ ଛାଡ଼ି ଦେବା—To let a per-
রাস্তা দেওয়া रास्ता देना son pass by leaving sufficient space for him on the road; to leave a passage for another person.

ରାସ୍ତା ଧରିବା—ଦେ. କ୍ରି.—୧ । ନିର୍ଦ୍ଦିଷ୍ଟ ପଥରେ ଯିବା—1. To
Rāstā dharibā take a road; to travel on a
রাস্তা ধরা रास्ता पकड़ना (धरना) particular road; to
(ରାସ୍ତା ପଗଢ଼ିବା—ବ୍ୟଙ୍ଗରୂପ) wend one's way.
୨ । (ଲକ୍ଷଣାର୍ଥ) କୌଣସି କାର୍ଯ୍ୟ ସାଧନାର୍ଥ ପନ୍ଥା ବା ମାର୍ଗ ଅବଲମ୍ବନ କରିବା—2. To follow a means to an end.

ରାସ୍ତା ଧୂଳି—ଦେ. ବି.—ରାସ୍ତା ଉପରର ଧୂଳି—The dust on
Rāstā dhuli রাস্তার ধুলো रास्ताकी धूली the road.

ରାସ୍ତା ପକା(କେ)ଇବା—ଦେ. କ୍ରି.—୧ । ନୂଆ ରାସ୍ତା ପ୍ରସ୍ତୁତ କରିବା—
Rāstā pakā(ke)ibā 1. To make a new road.
(ରାସ୍ତା ପକାଇଦେବା—ଅନ୍ୟରୂପ) ୨ । ରାସ୍ତାକୁ ବନ୍ଦ କରି ଦେବା;
রাস্তা তয়েরিকরা କୌଣସି ରାସ୍ତା ବାଟେ ଲୋକଙ୍କ ଯିବା ସ୍ଥଗିତ
रास्ता बनाना କରିବା—2. To close up a road

ରାସ୍ତା ପଡ଼ିବା—ଦେ. ବି.—୧ । ନୂତନ ରାସ୍ତା ନିର୍ମିତ ହେବା—
Rāstā parḍibā 1. (A road) Being built or
বাস্তা পড়া constructed. (ଯଥା—ବର୍ତ୍ତମାନ ଉତ୍ତର କଟକୋଡ଼ି
रास्ताजाना ଭଉଁଫରୁ କଟକଠାରୁ କଡ଼ାନାସି ପର୍ଯ୍ୟନ୍ତ ଗୋଟିଏ (ରାସ୍ତା ପଡ଼ିଯିବା; ଲାଗିଯିବା—ଅନ୍ୟରୂପ) ରାସ୍ତା ପଡ଼ୁଛି ।) ୨ । ବହୁ କାଳରୁ ରାସ୍ତା ବିଦ୍ୟମାନ ଥିବା—2. (A road) Being in existence. (ଯଥା—କଟକଠାରୁ ପୁରୀ ପର୍ଯ୍ୟନ୍ତ ସିଧା ରାସ୍ତା ପଡ଼ିଛି, ଯେ ଯିବାର ସେ ଅଣି ବୁଲି ଗୁଲି ଯାଅ ।) ୩ । ରାସ୍ତାର ବା ପଥର ଆରମ୍ଭ—3. Beginning of a road. [ଯଥା—କଟକ ଠାରୁ ପୁବକୁ ୨୫ ମାଇଲ୍ ପକ୍କାରାସ୍ତା; ସେଠାରୁ କଚ୍ଚା ରାସ୍ତା ପଡ଼ିବ; କନ୍ଦରପୁରଠାରୁ ମାଛଗାଁ ରାସ୍ତା ପଡ଼ିଲା; ମହାନଦୀ ପାର ହେଲେ ଜଙ୍ଗଲ ରାସ୍ତା ପଡ଼େ ] ୪ । ରାସ୍ତାରେ ଲୋକଙ୍କ ଗମନାଗମନ ବନ୍ଦ ହେବା—4. (A road) Being closed. (ଯଥା—ଢେଙ୍କାନାଳରେ ପଠାଣମାନଙ୍କ ମହାବଳ ମାଡ଼ିବାରୁ ସେ ରାସ୍ତା ଗୁରମାସ ହୋଇ ପଡ଼ିଲାଣି ।)

ରାସ୍ତା ଫିଟା(ଟେ)ଇବା—ଦେ. କ୍ରି—ରାସ୍ତା ଖୋଲିବା (ଦେଖ)
Rāstā phiṭā(ṭe)ibā Rāstā kholibā (See)
রাস্তা খোলা रास्ता खोलना

ରାସ୍ତା ବାଟ—ଦେ. ବି. (ଏକାର୍ଥ ସହଚର) (ବହୁବଚନ ସୂଚକ)—୧ ।
Rāstā bāṭa ପଥ; ରାସ୍ତା; ବାଟ—1. Road. ୨ । ବଡ଼ ଓ
পথ ঘাট, রাস্তা ঘাট ସାନ ରାସ୍ତା—2. Roads big and
रास्ता बाट small.

ରାସ୍ତା ମଡ଼ା(ଡ଼େ)ଇବା—ଦେ. କ୍ରି (ଲକ୍ଷଣାର୍ଥ)—ଗୋଟିଏ ପନ୍ଥା
Rāstā marḍā(rḍe)ibā ଅବଲମ୍ବନ କରିବାକୁ କୌଣସି
বাস্তা দেখান ବ୍ୟକ୍ତିଙ୍କୁ ପ୍ରବର୍ତ୍ତାଇବା—To induce a
रास्ता दिखाना person to pursue a course of action.

ରାସ୍ତା ମାଡ଼ିବା—ଦେ. କ୍ରି. (ଲକ୍ଷଣାର୍ଥ)—କୌଣସି ପନ୍ଥା ଅବଲମ୍ବନ
Rāstā mārḍibā କରିବା—To pursue a course.
পথ ধরা (ଯଥା—ମୁଁ ଯେତେ କୌଶଳ କଲି, ସେ ମୋ ରାସ୍ତା
रास्ता धरना ମାଡ଼ିଲା ନାହିଁ ।)

ରାସ୍ତା ମାରିବା—ଦେ. କ୍ରି—ରାସ୍ତାକୁ ଅବରୋଧ କରି ଲୋକଙ୍କ ଗମନା-
Rāstā māribā ଗମନ ବନ୍ଦ କରିବା—To close up or
বাস্তা মারা रास्ता रोकना shut up a road.

ରାସ୍ତା ମୁଣ୍ଡ—ଦେ. ବି—ରାସ୍ତାର ଶେଷ—The end of a road.
Rāstā munḍa
(ରାସ୍ତା ମୁହଁ—ଅନ୍ୟରୂପ) রাস্তার শেষ(মুখ) रास्ताका आखीर

ରାସ୍ତା ରଖିବା—ଦେ. କ୍ରି—୧ । ରାସ୍ତା ଛାଡ଼ିବା(ଦେଖ)—1. Rāstā
Rāstā rakhibā chhārḍibā (See) ୨ । (ଲକ୍ଷଣାର୍ଥ)
বাস্তা রাখা ଭବିଷ୍ୟତରେ କୌଣସି କାର୍ଯ୍ୟ ସାଧନ ହେବାପାଇଁ
रास्ता रखना ଉପାୟ ରଖିବା—2. To leave an opening or arrange for the future accomplishment of an object.

ରାସ୍ନା—ସଂ. ବି. (ବୈଦ୍ୟକ)—ଏକ ପ୍ରକାର ମଞ୍ଜିଙ୍ଗ ବା ପରବୃକ୍ଷଜୀବୀ
Rāsnā ଶାକବିଶେଷ—Vanda Roxburghii;—a species of Acacia.
ଅନ୍ୟ ସଂ. ନାମ—ନାକୁଳୀ, ଶ୍ରେୟସୀ, ସୁରସା, ସର୍ପଗନ୍ଧା, ପଲଙ୍କଷା, ଯୁକ୍ତରସା, ରସ୍ୟା, ସୁବହା, ରସନା, ରସା, ଏଲାପର୍ଣ୍ଣୀ, ସୁଗନ୍ଧା, ସୁରସା, ସୁଗନ୍ଧ ମୂଳା
ବାসনা, নাই
रसन, रहसनी, नास्ना
ତେଲି. ରସନାପୁଡ଼ିକା, କରସିରକ, ଅନ୍ତୁରଦାମରି
ଫା. ରାସୁନ୍ ଗୁ. ରାସନା
ଆ. ଜଂଜବିଲ୍ଶାମୀ
ମ, ନାକୁଲିଚାମୂଲ୍ୟା

[ଦ୍ର—ଏହା ଆସାମରେ ଓ ଖାସିଆ ପାହାଡ଼ରେ ଜନ୍ମେ । ପ୍ରାୟ ଆମ୍ବ ଗଛ ଉପରେ ଏ ଲତା ମାଡ଼େ; ଫୁଲ ବିଚିତ୍ର ବିଚିତ୍ର, ସୁଗନ୍ଧ ଓ ବହୁଦିନସ୍ଥାୟୀ । ବୈଦ୍ୟ ଶାସ୍ତ୍ର ମତରେ ଏହା ଆମ ପାଚକ, ତିକ୍ତ, ଗୁରୁ ଓ ଉଷ୍ଣବୀର୍ଯ୍ୟ, ଏହା, କଫ, ବାୟୁ, ଶୋଥ, ଶ୍ୱାସ, ବାତରକ୍ତ, ବାତ, ଶୂଳ, ଉଦର ରୋଗ, କାସ, ଜ୍ୱର, ବିଷ ଓ ଅଶୀତି ପ୍ରକାର ବାତ ରୋଗ ଓ ସିଧ୍ମ ବିନାଶକ ।]

ରାହା—ବୈଦେ ବି. (ଫା. ରାହ୍; ତୁଲ.ସଂ. ରଥ୍ୟା)—୧। ରାସ୍ତା, ପଥ—
Rāhā 1. Road. (ଉ—ଅଜାଣିା ବୋଲି ବନ ରାହାକୁ ଗୋ । କବିସୂର୍ଯ୍ୟ. ସଙ୍ଗୀତ ।) ୨। (ଲକ୍ଷଣାର୍ଥ) ଉପାୟ—
বাহা 2. Means (ଉ—ନ ବତାଇଲେ ତୁ ସୁଖ ରାହା ।
राह କବିସୂର୍ଯ୍ୟ. ଯଶୋଦାଗଞ୍ଜ ଗୀତ ।) ୩। ରହିବା ପାଇଁ ସ୍ଥାନ; ଯାଗା; ଥାନ—3. Space; room. (ଯଥା—ସେ ସ୍ଥାନରେ ବସିବାକୁ ରାହା ନାହିଁ ।) ୪। ଆଶ୍ରୟ ନେବାର ସ୍ଥାନ; ଆଶ୍ରୟ—4. Shelter, place of shelter. ୫। ବଙ୍ଗଦେଶର ବଂଶୋପାଧିବିଶେଷ—5. A family-title in Bengal.

ରାହାଏନ୍—ପ୍ରାଦେ. (ସମ୍ବଲପୁର) ବି—ରାସ୍ତା; ପଥ—
Rāhāen Way, road.

ରାହା ଖରଚ(ଚା)—ବୈଦେ. ବି. ( ଫା. ରାହ୍ଖର୍ଚ୍ଚ )—ବାଟଖରଚ; ଯାତାୟାତ—Incidental ex-
Rāhā kharacha(chā) penses in the course of a journey;
বাহা খরচ travelling expenses.
राह खर्च(र्चा)
[ରାହା ଖର୍ଚ୍ଚ(ର୍ଚ୍ଚା)—ଅନ୍ୟରୂପ]

ରାହା ଗିର(ରି)—ବୈଦେ. ବି. ( ଫା. ରାହ୍ଗୀର୍ )—୧। ପଥିକ;
Rāhāgir(ri) ବାଟୋଇ—1. Way farer; traveller.
বাহাদাব ୨। ପର୍ଯ୍ୟଟନ; ଭ୍ରମଣ—2. Travelling.
राहगीर

ରାହାଙ୍ଗ—ଦେ. ବି. ନାମ—ପୁରୀଜିଲ୍ଲା ସଦରଥାନା ଅନ୍ତର୍ଗତ ଗୋଟିଏ
Rāhānga ପ୍ରଗଣାର ନାମ—Name of a Pergunna
বাহাঙ্গ राहांग in the jurisdiction of Sudder Thana of Puri District in Orissa.
[ଉ—ରାହାଙ୍ଗ, ରତନ୍ତି ଯହିଁ କେଳକଳା, ଇଛିଲ ଜନ୍ତୁଙ୍କେ କହିଲ କୁନ୍ତଳା । ରାଧାନାଥ. ଚନ୍ଦ୍ରଭାଗା ।] [ଦ୍ର—ଏହି ପ୍ରଗଣାରେ ଉତ୍କଳର ସ୍ୱାଧୀନ ରାଜାମାନେ ଦେଶାନ୍ତରରୁ ନୈଷ୍ଠିକ ଓ ବିଦ୍ୱାନ୍ ବ୍ରାହ୍ମଣମାନଙ୍କୁ ଆଣାଇ ବ୍ରହ୍ମୋତ୍ତର ଚାଙ୍କୀ ବୃତ୍ତିମାନ 'ସର୍ବାଙ୍କାନ୍ତ ଚକଡ଼ା' ଦାନ କରି ଅନେକ ଗୁଡ଼ିଏ ବ୍ରାହ୍ମଣଶାସନ ବସାଇଥିଲେ । ସେ ଗ୍ରାମଗୁଡ଼ିକ ପ୍ରତିଷ୍ଠାତା ରାଜାମାନଙ୍କ ନାମରେ ଆଖ୍ୟାତ ( ଯଥା— ବୀରରାମଚନ୍ଦ୍ରପୁର, ବିଜେରାମଚନ୍ଦ୍ରପୁର, ବିଶ୍ୱନାଥପୁର, ହରେକୃଷ୍ଣପୁର, ବୀରନରସିଂହପୁର, ବଳଭଦ୍ରପୁର, ରାମ-ଚନ୍ଦ୍ରଧରପୁର, ସୋମେଶ୍ୱରପୁର, ବୀରପୁରୁଷୋତ୍ତମପୁର, ପ୍ରତାପପୁରୁଷୋତ୍ତମପୁର, ଶ୍ରୀପୁରୁଷୋତ୍ତମପୁର, ପ୍ରତାପରୁଦ୍ରପୁର) । ଉକ୍ତ ବ୍ରାହ୍ମଣ ଗ୍ରାମଗୁଡ଼ିକ ରାହାଙ୍ଗ ଶାସନ ନାମରେ ଖ୍ୟାତ । କଥିତ ଅଛି ଯେ ପୁରୀରେ ୧୬ ଶାସନ ଓ ୩୨ କରବାଡ଼ ( କ୍ଷୁଦ୍ରଗ୍ରାମ ) ଅଛି । ଏହା ଛଡ଼ା ଲେମ୍ବେଇ ପ୍ରଗଣାରେ ୭ ଗୋଟି ବ୍ରାହ୍ମଣଶାସନ ବସିଥିଲା । ଏହି ବ୍ରାହ୍ମଣ ପଣ୍ଡିତମାନେ ଜଗନ୍ନାଥଙ୍କ ବେଢ଼ା ମଧ୍ୟସ୍ଥ ମୁକ୍ତିମଣ୍ଡପରେ ବସି ବେଦପାଠ ଓ ଶାସ୍ତ୍ରବ୍ୟବସ୍ଥାଦି ଦେଉ-ଥିଲେ । ଏମାନଙ୍କ ମଧ୍ୟରୁ ଅନେକ ଅସାଧାରଣ ପଣ୍ଡିତ ଓ ନୈଷ୍ଠିକ ଶାକ୍ତ ଥାଇ ଭାରତବିଖ୍ୟାତ ହୋଇଥିଲେ । ବ୍ରାହ୍ମଣଶାସନମାନଙ୍କର ସୁଶୃଙ୍ଖଳା ଓ ଦେବାଳୟ ସ୍ଥାପନ, ଗ୍ରାମସେବାର୍ଥ ଭୃତ୍ୟମାନଙ୍କର ଜାଗିରଆଦି ବନ୍ଦୋବସ୍ତ ଅଦ୍ୟାବଧି କେତେକ ସ୍ଥାନରୁ ଲୁପ୍ତ ହୋଇ ନାହିଁ । ପ୍ରତ୍ୟେକ ବ୍ରାହ୍ମଣ ଶାସନରେ ଉପନିବେଶ କରିଥିବା ବ୍ରାହ୍ମଣମାନଙ୍କ ପକ୍ଷରୁ ରାଜାଙ୍କଠାରୁ ଯେଉଁ ପ୍ରତିନିଧି ଉକ୍ତ ଗ୍ରାମର 'ସର୍ବାଙ୍କାନ୍ତ ଚକଡ଼ା' ଦାନ ଗ୍ରହଣ କରିଥିଲେ ତାଙ୍କୁ ପାଣିଗ୍ରାହୀ ବା ଦାନାଧ୍ୟକ୍ଷ ବୋଲାଯାଉଥିଲା । ପ୍ରତ୍ୟେକ ରାହାଙ୍ଗ ବ୍ରାହ୍ମଣ ଶାସନ ଗୋଟିଏ ଗୋଟିଏ ସୁପରିଚାଳିତ କ୍ଷୁଦ୍ର ଗ୍ରାମ ଗୋଷ୍ଠୀ ( Village Community ) ପରି ଥିଲା । ଏଣିକି ଉକ୍ତ ବ୍ରାହ୍ମଣଙ୍କ ବଂଶଧରମାନେ ପୂର୍ବପୁରୁଷମାନଙ୍କ ପରି ବିଖ୍ୟାତ, ବିଦ୍ୱାନ୍ ବା ନୈଷ୍ଠିକ ନ ହେଲେ ମଧ୍ୟ ଉକ୍ତ ଶାସନମାନଙ୍କରେ ପ୍ରାଚୀନ ରୀତି ଓ ପଦ୍ଧତିମାନଙ୍କୁ ପୂର୍ଣ୍ଣରୂପେ ଲୁପ୍ତ କରି ନାହାନ୍ତି । ଏ ଶାସନମାନଙ୍କରେ ଥିବା ବ୍ରାହ୍ମଣମାନଙ୍କ ମଧ୍ୟରେ ଶ୍ରେଷ୍ଠ ଶ୍ରେଣୀର ସାମନ୍ତ ବ୍ରାହ୍ମଣ ଅଛନ୍ତି । ସେମାନେ ସାଧାରଣ ଶାସନୀ ବ୍ରାହ୍ମଣଙ୍କ ଅପେକ୍ଷା ସାମାଜିକ ମର୍ଯ୍ୟାଦାରେ ଉଚ୍ଚ ସ୍ଥାନ ଅଧିକାର କରିଅଛନ୍ତି । ଏ ବ୍ରାହ୍ମଣମାନେ ଶାକ୍ତ ଓ ଦୁର୍ଗାପୂଜକ । ପ୍ରାୟ ପ୍ରତ୍ୟେକ ଗ୍ରାମରେ ଶାରଦୀୟ ଦୁର୍ଗୋତ୍ସବ ସମାହିତ ହୁଏ । ଗ୍ରାମଦେବତାଙ୍କ ପାଇଁ ରଖାଥିବା ଜମି ଓ ଗ୍ରାମର ଅନାବାଦି ପୋଖରୀଆଦି ଗ୍ରାମବାସୀ "ମହାଜନ"-ଙ୍କର ସାଧାରଣ ସମ୍ପତ୍ତି ବା "କୋଠ" । ଏହି "କୋଠ-କାଠ"ରୁ ଗ୍ରାମରେ ପ୍ରଥମେ ଉପନିବେଶ ସ୍ଥାପନ କରିଥିବା ବ୍ରାହ୍ମଣଙ୍କ ବଂଶଧରମାନେ ତାଙ୍କ ନିର୍ଦ୍ଦିଷ୍ଟ "ଭାଗ" ପାଆନ୍ତି । ସେହି ଭାଗର ସଂଖ୍ୟା ଗ୍ରାମର ପ୍ରତିଷ୍ଠାକାଳର ଭାଗ ସଂଖ୍ୟା ଅଟେ ଓ, ତଦବଧି ଖରିଦ ବିକ୍ରି ଏବଂ ବଂଶଧରମାନଙ୍କ ସଂଖ୍ୟାବୃଦ୍ଧି ଅନୁସାରେ

ଭାଗମାନ ବଣ୍ଟା ହୋଇ ଅଂଶିତ ହୋଇଅଛି । ଦେବତାଙ୍କ ନିକଟରେ କୋଠ ଜମାରୁ ଯାହା ପଦାର୍ଥ ଭୋଗ ଲାଗେ (ଯଥା—ଦୁର୍ଗାପୂଜା ସମୟରେ ଠାକୁରାଣୀଙ୍କ ଆଗେ ବଳି-ପଡ଼ିବା ଛେଳିର ମାଂସ, ଠାକୁରଙ୍କ ଗମ୍ଭାପୂର୍ଣ୍ଣିମୀ ଆଦିରେ ଲାଗିବା ଭୋଗ) ତାହା ଗ୍ରାମର ମୌଳିକଭାଗ ସଂଖ୍ୟା ଅନୁସାରେ ବାଣ୍ଟି ହୁଏ ଓ ପ୍ରତ୍ୟେକ 'ଭାଗ'ର ଅଧିକାରୀଙ୍କ ନାମ ଡାକରା ହୋଇ ଯଥାକ୍ରମେ ଗୋଟିଏ 'ହାକରା' ପ୍ରତ୍ୟେକ ଭାଗର ଅଧିକାରୀଙ୍କୁ ଦିଆଯାଏ । ଗ୍ରାମର ମହାଜନମାନଙ୍କ ପ୍ରତିନିଧି-ରୂପେ ୨।୩ଜଣ ମହାଜନ ଗ୍ରାମବାସୀଙ୍କଠାରୁ ଟଙ୍କୀ ଖଜଣା ଆଦାୟ କରି ଜମିଦାରଙ୍କ ନିକଟ ସମସ୍ତ ଗ୍ରାମବାସୀଙ୍କ ପକ୍ଷରୁ ଗ୍ରାମର ଦେୟ ଟଙ୍କୀ ଦାଖଲ କରନ୍ତି । ଗ୍ରାମର ହିସାବକାଗଜ-ପତ୍ର ଗ୍ରାମର ଜଣେ କୋଠ କର୍ମଚାରୀ ବା ଭୋଇ ନିକଟରେ ରହେ । ଗ୍ରାମଗତ ସାମାଜିକ ସମସ୍ୟାମାନ ଗ୍ରାମବାସୀମାନେ ଗ୍ରାମସଭାରେ ମୀମାଂସା କରନ୍ତି । ଗ୍ରାମର ପ୍ରତିଷ୍ଠାନ ସମୟରେ ଯେଉଁମାନଙ୍କର ଭାଗ ଥିଲା ସେହିମାନଙ୍କ ବଂଶଧରମାନେ ଓ ସେମାନେ ସାଧାରଣ ମହାଜନଙ୍କ ରାଜୀରେ ଗ୍ରାମରେ ଆଣି ଅନ୍ୟ ଯେଉଁ କୁଳୀନ ବ୍ରାହ୍ମଣଙ୍କୁ ଘର କରାଇ ରଖାଇଅଛନ୍ତି ସେମାନେ କେବଳ (ମହାଜନ) ଆଖ୍ୟା ପାଆନ୍ତି । ପଣ୍ଡାଜାତୀୟ ବ୍ୟକ୍ତି ଓ ଶୂଦ୍ର, ଓ ଅନ୍ୟ ଗ୍ରାମର ବ୍ରାହ୍ମଣ କୌଣସି ଶାସନର ଟଙ୍କୀ ଜମି କିଣିଲେ ମଧ୍ୟ ସେ 'ମହାଜନ' ଉପାଧି ପାଇ ପାରନ୍ତି ନାହିଁ, କିମ୍ବା ଗ୍ରାମର କୋଠକାଠରେ ଅଧିକାରୀ ହୋଇ ପାରନ୍ତି ନାହିଁ । ରାଜା ଯେଉଁମାନଙ୍କୁ ପ୍ରଥମେ ଏ ଶାସନମାନ ଦାନ କରିଥିଲେ ସେମାନେ ଏ ବୃତ୍ତିମାନଙ୍କୁ ଖଇରାତ୍‌ସ୍ୱରୂପ ନେବାକୁ ଆପତ୍ତି କରିବାରୁ ଦାନ ସମୟରେ ଉକ୍ତ ବୃତ୍ତି ଉପରେ ନାମମାତ୍ର ଗୋଟିଏ କର (Quit rent) ଧାର୍ଯ୍ୟ ହେଲା । ସେହି କର ଚିରକାଳ ସକାଶେ ଧାର୍ଯ୍ୟ ହେଲା । ତାହାକୁ 'ଟଙ୍କୀ' ବୋଲାଯାଏ । ପୂର୍ବେ ଏହି ଟଙ୍କୀ ରାଜସ୍ୱ 'କଉଡ଼ି'ରେ ଦିଆ ଯାଉଥିଲା । ବର୍ତ୍ତମାନ ସେ କଉଡ଼ିର ପରିମାଣକୁ ଟଙ୍କାରେ କଷୋଟି କରି ଟଙ୍କା ଦିଆଯାଏ । ଇଂରାଜ ରାଜତ୍ୱରେ ଓଡ଼ିଶାର ରାଜସ୍ୱ ବନ୍ଦୋବସ୍ତ ହେବା ସମୟରେ ଇଂରାଜ ଗଭର୍ଣ୍ଣମେଣ୍ଟ ଟଙ୍କୀଦାରମାନଙ୍କୁ ସନନ୍ଦର ପ୍ରମାଣ ଦର୍ଶାଇବାପାଇଁ ତଲବ କଲେ । ଯେଉଁମାନଙ୍କ ସନନ୍ଦକୁ ଇଂରାଜ ରାଜକର୍ମଚାରୀ ବିଶ୍ୱାସଯୋଗ୍ୟ ଓ ସନ୍ତୋଷଜନକ ବୋଲି ବିବେଚନା କଲେ, ସେହି ଗ୍ରାମମାନ ଟଙ୍କୀ ବାହେଲ ରହିଲା ଏବଂ ଯେଉଁମାନଙ୍କ ସନନ୍ଦ ସନ୍ତୋଷଜନକ ନ ହେଲା ସେମାନଙ୍କ ଜମି ଉପରେ ଟଙ୍କୀ ଜମା ବୃଦ୍ଧି କରାଯାଇ ସେମାନଙ୍କ ଜମିମାନ ଟଙ୍କୀ ବାଜ୍ୟାପ୍ତି କରାଗଲା । ପୁରୀର ବ୍ରାହ୍ମଣ ଶାସନମାନଙ୍କର ଶାସନପଦ୍ଧତିକୁ ପର୍ଯ୍ୟାଲୋଚନା କଲେ ଦେଖାଯିବ ଯେ, ସେହି ପଦ୍ଧତି ପ୍ରାଚୀନ ଭାରତରେ ହିନ୍ଦୁ ରାଜ୍ୟରେ ପ୍ରଚଳିତ ଗ୍ରାମ-ଶାସନ-ମଣ୍ଡଳ (Village community)ର ଛାୟା ଅଟେ । ପ୍ରତ୍ୟେକ ଗ୍ରାମଗତ ଯାବତୀୟ ବିଷୟକୁ ଉକ୍ତ ଗ୍ରାମର ମହାଜନମାନେ ଚଳାଉ-ଥିଲେ; ଏବେ ମଧ୍ୟ ଏହି ଶାସନପ୍ରଣାଳୀର ଛାୟା କେତେକ ଶାସନରୁ ଲୁପ୍ତ ହୋଇ ନାହିଁ । ଗ୍ରାମ ଦେବତାଙ୍କ ସେବା, ଗ୍ରାମର ମହାଜନ ପରିବାରମାନଙ୍କ ଲୁଗାକଚା, କ୍ଷୌର, ହାଣ୍ଡି ଯୋଗାଇବା ଆଦି କାର୍ଯ୍ୟ ପୁରୁଷାନୁକ୍ରମେ ଜାଗିରଖିଆ ସେବକ, ଧୋବା, ଭଣ୍ଡାରି, କୁମ୍ଭାରଆଦିଙ୍କ ଦ୍ୱାରା କଳ ଚଳିଲା ପରି ଚଳି ଆସୁଅଛି । ଅନ୍ୟ-ସ୍ଥାନବାସୀ ବ୍ୟକ୍ତିମାନେ ବ୍ରହ୍ମାଙ୍ଗ ଶାସନର ଅନେକ ଟଙ୍କୀବୃତ୍ତି ଖରିଦ କରି ନେଲେଣି, କିନ୍ତୁ ସେମାନେ ଅବଧି ଗ୍ରାମର 'ମହାଜନ'ରୂପେ ସ୍ୱୀକୃତ ହୋଇ ନାହାନ୍ତି କିମ୍ବା ଗ୍ରାମର କୋଠ-କାଠ, ପାଳି-ହାକରା, ଦିଅଁ ଦେଉଳ ଆଦିରେ ବହୁ ଚେଷ୍ଟାସତ୍ତ୍ୱେ ସୁଦ୍ଧା ଅଧିକାର ଜମାଇପାରି ନାହାନ୍ତି । ବର୍ତ୍ତମାନ ଶାସନୀବ୍ରାହ୍ମଣଙ୍କ ବଂଶଧରମାନେ ଗରିବ ହୋଇଗଲେଣି ଓ ପୂର୍ବର ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ ଆଦି କାର୍ଯ୍ୟମାନ ଛାଡ଼ି, ଚାକରି, ପୁରୀର ପଣ୍ଡାଙ୍କ ଯାତ୍ରୀ ଗୁମାସ୍ତାଗିରି (ବ୍ରହ୍ମାଙ୍ଗୀ ଭାଷାରେ ବାଟକୁ ଯିବା) କରି ପେଟ ପୋଷୁଅଛନ୍ତି । ଶାସନ ବ୍ରାହ୍ମଣଙ୍କ ବଂଶଧରମାନେ ମଧ୍ୟ ପ୍ରାଚୀନ ଉତ୍କଳର ଗଜପତିଙ୍କ ଅଧିନାୟକତ୍ୱର ସୀମାସ୍ଥ ଗଡ଼ଜାତରେ ଓ କଟକ, ପୁରୀ, ବାଲେଶ୍ୱର, ମେଦିନୀପୁର, ଗଞ୍ଜାମ ଆଦି ନାନାସ୍ଥାନରେ ଯାଇ ପୁରୁଷାନୁକ୍ରମେ ବାସ କରିଅଛନ୍ତି । ଯାଜପୁରର ବ୍ରାହ୍ମଣଶାସନମାନ କେଶରୀବଂଶୀୟ ରାଜାମାନଙ୍କର କୀର୍ତ୍ତି, କିନ୍ତୁ ପୁରୀର ଅଧିକାଂଶ ବ୍ରାହ୍ମଣ ଶାସନମାନ ଉତ୍କଳର ଗଙ୍ଗାବଂଶୀୟ ରାଜାମାନଙ୍କଦ୍ୱାରା (୧୨ଶରୁ ୧୬ଶ ଶତାବ୍ଦୀ) କିମ୍ବା ସେମାନଙ୍କ ମନ୍ତ୍ରୀମାନଙ୍କଦ୍ୱାରା ସ୍ଥାପିତ । ଏହି ବ୍ରାହ୍ମଣମାନେ ଶାକ୍ତ ଓ ସେମାନେ ବିଷ୍ଣୁଙ୍କୁ ମଧ୍ୟ ଅବଶ୍ୟ ପୂଜା କରନ୍ତି, କିନ୍ତୁ ଚୈତନ୍ୟ ଦେବ ପ୍ରବର୍ତ୍ତିତ ବୈଷ୍ଣବଧର୍ମ ଓ ନାମସଙ୍କୀର୍ତ୍ତନ ପୁରୀର ବ୍ରହ୍ମାଙ୍ଗର ବ୍ରାହ୍ମଣଶାସନବାସୀ ଶାସନୀ ବ୍ରାହ୍ମଣଙ୍କ ମଧ୍ୟରେ ପ୍ରବେଶ କରିପାରି ନାହିଁ । ଉତ୍କଳର ଚୈତନ୍ୟଙ୍କ ବୈଷ୍ଣବଧର୍ମରେ ପ୍ରଥମେ ଦୀକ୍ଷିତ ହେବା ବ୍ୟକ୍ତିମାନେ ଶୂଦ୍ର, ନିମ୍ନ ବ୍ରାହ୍ମଣ ଜାତୀୟ ଅଟନ୍ତି । ଏ ଶାସନମାନ ଶ୍ରୀଚୈତନ୍ୟଦେବଙ୍କ ଖ୍ରୀ: ୧୬ଶ ଶତାବ୍ଦୀରେ ଉତ୍କଳରୁ ଆସିବା ପୂର୍ବରୁ ସ୍ଥାପିତ ହୋଇଥିଲା । ଗ୍ରାମ ମଧ୍ୟରେ ବ୍ରାହ୍ମଣେତର ଜାତି ବାସ କରୁଥିଲେ । ସେମାନେ ଗ୍ରାମର ଉପକଣ୍ଠରେ ପଲ୍ଲୀମାନଙ୍କରେ ରହୁଥିଲେ । ଏବେ ମଧ୍ୟ ଏ ନିୟମର ବ୍ୟତିକ୍ରମ ଘଟି ନାହିଁ । ଗ୍ରାମମାନଙ୍କରେ ଅନେକ ତଥ୍ୟ ବର୍ତ୍ତମାନ ମେଳ ପଡ଼ିଅଛି ଓ ହସ୍ତାନ୍ତର ହୋଇଅଛି । ପୂର୍ବେ ବ୍ରହ୍ମାଙ୍ଗ ଶାସନର ବ୍ରାହ୍ମଣମାନେ ମୁକ୍ତିମଣ୍ଡପ ଦ୍ୱାରା ସମଗ୍ର ଭାରତର ହିନ୍ଦୁମାନଙ୍କୁ ଧର୍ମ-ବ୍ୟବସ୍ଥାମାନ ଦେଇ ପାଣ୍ଡିତ୍ୟ ପାଇଁ ଖୁବ୍ ପୂଜ୍ୟ ହୋଇଥିଲେ ଓ ବ୍ରହ୍ମାଙ୍ଗ ଶାସନର ଶୁଦ୍ଧାଚାରମାନ ଉତ୍କଳୀୟ ଅନ୍ୟ ବ୍ରାହ୍ମଣଙ୍କର ଆଦର୍ଶ ଥିଲା ।]

**ରହାଙ୍ଗ ବାଡ଼**—ଦେ. ବ (ସହରର)—ରହାଙ୍ଗ ବ୍ରାହ୍ମଣଶାସନମାନ—
Rāhānga bārda The Sāsana villages of the Puri district.

**ରହାଙ୍ଗ ଶାସନ**—ଦେ. ବ—ପୁରୀଜିଲ୍ଲା ରହାଙ୍ଗ ପ୍ରଗଣାରେ ବହୁ
Rāhānga sāsana କାଳରୁ ସ୍ଥାପିତ ବ୍ରାହ୍ମଣ ଗ୍ରାମମାନ—
বাহাঙ্গেব ব্রাহ্মণশাসন Brāhmaṇa villages of the
राहाङ्का ब्राह्मणशासन Rāhānga Pergunna of the district of Puri in Orissa.

**ରହାଙ୍ଗି**—ଦେ. ବଣ—ପୁରୀର ରହାଙ୍ଗ ଶାସନ ସମ୍ବନ୍ଧୀୟ—Relating
Rāhāngi to the Sāsana villages of Rāhānga
(ରହାଙ୍ଗିଆ—ଅନ୍ୟରୂପ) of the Puri district

**ରହାଡ଼ି**—ଦେ. ବ—ବାଳୁଙ୍ଗା ଧାନର ଗଛ; ମାବାର ଗୁଳ୍ମ—
Rāhārdi The paddy plants which grow from
উড়িধানেব গাছ stray seeds. [ବ୍ରି—ଏ ବର୍ଷ ଗଛରୁ ଝଡ଼ି
अनेहया ପଡ଼ୁଥିବା ପାଚିଲା ଧାନ ଆଗାମୀ ବର୍ଷକୁ ମନକୁ ଗଛ ହୁଏ ।
ଏ ଧାନ ରୁଣାଧାନ ଅପେକ୍ଷା ଚଞ୍ଚଳ ପାଚଯାଏ ଓ କେଣ୍ଡାରେ
ସବୁଧାନ ପାଚ ଏକାଥରକେ ନ ଝଡ଼ି ଗୋଟି ଗୋଟି ହୋଇ
ଝଡ଼ି ପୁଣି अगामी वर्ष बथस्कु ବାଳୁଙ୍ଗାମୟ କରଦିଏ ।
ବାଳୁଙ୍ଗାରେ ଶିଙ୍ଗ ଅଛି । ରହାଡ଼ି ଧାନରେ ଶିଙ୍ଗ ନାହିଁ ।
ପ୍ରଥମ ବର୍ଷ ପଡ଼ିବା ଧାନ ରହାଡ଼ି । ରହାଡ଼ି ପଡ଼ି ପର ବର୍ଷକୁ
ବାଳୁଙ୍ଗା ବୋଲାଏ ) ପ୍ରାଦେ (ସମ୍ବଲପୁର ଓ ସିଂହଭୂମି)
ବ—ହରଡ଼—A kind of pulse; Cajanus Indicus.

**ରହାଣବେଲ**—ପ୍ରାଦେ (ବାଣପୁର) ବ—ନାହାଲବେଲ (ଦେଖ)—
Rāhāṇabeli Nāhālabeli. (See) [ବ୍ରି—ଏଥିର କାଠ
ଖୁବ୍ ଟାଣ । ଏଥିରୁ ବାଡ଼ି ହୁଏ । ଫଳ ହଳଦିଆ । କୋଳ
ପାଚିଲେ କାଳି ଓ କଳା ହୁଏ । ଏଥିର କୋଳ ପକ୍ଷୀମାନେ
ଖାଆନ୍ତି । ]

**ରାହାଦାର**—ବୈଦେ. ବ (ଫା)—ରାଜଦାଣ୍ଡରେ ପଥିକମାନଙ୍କଠାରୁ
Rāhādāra ରାଜଶୁଳ୍କ ଆଦାୟ କରିବା ରାଜକର୍ମଚାରୀ—
রাহাদাব राहादार A public toll-collector.

**ରାହାଦାରି**—ବୈଦେ. ବ (ଫା)—୧ । ରାଜଦାଣ୍ଡରେ ଯିବାର ଛାଡ଼ପତ୍ର
Rāhādāri ବା ରାଜାଙ୍କ ଅନୁମତି ପତ୍ର—1. Passport ୨ ।
(ରାହାଦାରୀ—ଅନ୍ୟରୂପ) ରାଜମାର୍ଗକୁ ବ୍ୟବହାର କରିବା ପଥିକ-
রাহাদাবী राहादारी ମାନଙ୍କଠାରୁ ଆଦାୟ କରାଯିବା ଶୁଳ୍କ—
2. Tax or toll collected from travellers for using the king's high way. ବଣ—
ରହାଦାର ସମ୍ବନ୍ଧୀୟ—3. Relating to toll or passport.

**ରାହା ଦେବା**—ଦେ କ୍ରି—୧ । ବାଟ ଛାଡ଼ି ଦେବା—1. To make
Rāhā debā way for one. ୨ । କୌଣସି ବ୍ୟକ୍ତିକୁ ସ୍ଥାନ
রাস্তাদেওয়া राहदेना ବା ଆଶ୍ରୟ ଦେବା—2. To give
shelter to a person or let a personn occupy a space. ( ଉ—ଏ ଗାଆଁ ବାଲ୍ୟ ହେଲେ କେହି
ମତେ ଟିକିଏ ରାହା ଦେଲେ ନାହିଁ ।)

**ରହା ଧରିବା**—ଦେ. କ୍ରି—୧ । ରା ଧରିବା (ଦେଖ)—1. Rā
Rāhā dharibā dharibā. (See) ୨ । ରାସ୍ତା ଧରିବା.
বাধবা, কোকান राहधरना (ଦେଖ)—2. Rāsta dharibā (See)

**ରାହା ପାଗ**—ଦେ. ବ—ଦେଉଳର ଅଂଶ ବିଶେଷ—(ଦେଉଳ ଭିତରେ
Rāhā pāga ଟୀକା ଓ ଦେଉଳର ଚିତ୍ର ଦେଖ)—
A particular portion of a temple.

**ରାହାବାଡ଼ି**—ପ୍ରାଦେ (ଗଞ୍ଜାମ) ବ—ଭୂମିକୁ ଭୋଗ କରୁଥିବା ପ୍ରଜାଠାରୁ
Rāhābārdi ଭୂସ୍ୱାମୀଙ୍କ ପ୍ରାପ୍ୟ ରାଜସ୍ୱ ବା ଖଜଣା; ଅଦାୟ
ଜମା—Land revenue, rent payble to the landlord for the use of land.

**ରହାବାଲି**—ଦେ. ବ. ଓ ବଣ ସ୍ତ୍ରୀ—କଳହକାରିଣୀ ସ୍ତ୍ରୀ—
Rāhābāli A shrew; a termagant woman.
দজাল झगडालु, जोमडी

**ରହା ରବୟ୍ୟା**—(ବ୍ରି, ବେ) ଦେ. ବ ବି (ଫା)—ସ୍ଥିତି; ଅସ୍ତିତ୍ୱ—
Rāhā raba(bi, be)yā Existence. (ଯଥା—ମୁଁ ତାହାର
অস্তিত্ব ऩहाबाट ରହା ରବୟ୍ୟା ରଖି ଦେବି ନାହିଁ ।)

**ରହାସ**—ଗ୍ରା. ବ (ସଂ. ରାସ)—୧ । ରାସ (ଦେଖ)—1. Rāsa.
Rāhāsa (See) ୨ । ରାସଲୀଳାର ଅଭିନୟ—2. The act-
বাস रास ing or stage-performance of Rāsa.
୩ । (ପୁଂ.) ରାସବିହାରୀ ଲୋକର ଡାକ ନାମ—
3 Name for calling Rāsabihāri. ୪ । ଯୁବକ
ଯୁବତୀ ବା ରସିକ ରସିକାଙ୍କ ମଧ୍ୟରେ ପ୍ରେମଲୀଳା—
4. Love scenes. ବୈଦେ. ବ—ରାସ୍—
Rās. (See)

**ରହାସ ଜା(ଜେ)ରା**—ଗ୍ରା. ବ (ସଂ. ରାସଯାତ୍ରା)-ରାସଲୀଳାର ଅଭିନୟ—
Rāhāsa jāta(te)rā The stagic performance of
বাসযাত্রা रासयात्रा Rāsalilā.
[ରାହାସ ଯାତ୍ରା(ତ)—ଅନ୍ୟରୂପ]

**ରହାସ ନି(ଲୀ)ଲା**—ଗ୍ରା. ବ (ସଂ. ରାସଲୀଳା)—୧ । ରାସଲୀଳା—
Rāhāsa ni (lī) lā 1. Stage-performance of
রাসলীলা रासलीला Rāsa. ୨ । (ଲକ୍ଷ୍ୟାର୍ଥ) ରସିକ ରସିକାଙ୍କ
ଯୁବକ ଯୁବତୀଙ୍କ ପ୍ରଣୟକ୍ରୀଡ଼ା—2. Love-scenes between young couple.

**ରାହାସ ବ(ବେ)ହାରି**—ଗ୍ରା. ବ. ପୁଂ (ସଂ. ରାସବିହାରୀ)—ରାସବିହାରୀ
Rāhāsa bi(be)hāri ନାମର ଅଶୁଦ୍ଧ ଉଚ୍ଚାରଣ—In-
রাসবিহাবী रासबिहारी correct spelling of the name Rāsabihāri.

**ରାହାସ ମଣ୍ଡୁଆ**—ପ୍ରାଦେ. (ସମ୍ବଲପୁର) ବ—ପର୍ବାଦିରେ ସଂକୀର୍ତ୍ତନ
Rāhāsa manduā କରାଯିବା ପାଇଁ ଗ୍ରାମର ମଧ୍ୟସ୍ଥଳରେ ପ୍ରସ୍ତୁତ
ବଡ଼ ଛାମୁଣ୍ଡିଆ—A place under on awning prepared in the middle of the village for chanting "Sankīrttana" during festivals.
[ରହାସ ମୁଣ୍ଡେଇ (ମଣ୍ଡପ)—ଦେ. ରୂପ]

**ରାହାସିଆ**—ଦେ.ବି. ପୁଂ (ଅନାଦରାର୍ଥକ)—ରାସବିହାରୀର ଡାକ ନାମ—
Rāhāsia Name for calling Rāsabihari.
ব স্থ **रासीया**

**ରାହାସୀ**—ଦେ. ବି. ସ୍ତ୍ରୀ (ସଂ. ରାସମଣି)—ରାସମଣିର ଡାକ ନାମ—
Rāhāsi Name for calling Rāsamaṇi.
বাসমণি **राशमनी**

**ରାହି**—ଦେ. ବି—ରାହୀ (ଦେଖ)
Rāhi Rāhī (See)

**ରାହିତ୍ୟ**—ସଂ. ବି (ରହିତ+ଭାବ. ଯ)—୧ । ନିବୃତ୍ତି—1. Cessation; stoppage.—୨ । ଅଭାବ; ଅନୁପସ୍ଥିତି
Rāhitya 2. Absence; want.

**ରାହିନ୍**—ବୈଦେ. ବି (କଚରିଆ) (ଆ)—ରହଣବନ୍ଧକ ଦାତା ଖାତକ; ଯେଉଁ ବ୍ୟକ୍ତି ସମ୍ପତ୍ତି ରହଣ ବା ବନ୍ଧକ ରଖି ମହାଜନଠାରୁ ଟଙ୍କା କରଜ କରେ—A mortgagor.
Rāhin
বহন **राहिन**

**ରାହୀ**—ବୈଦେ. ବି (ଫା)—ପଥିକ—Traveller; wayfarer.
Rāhī ଦେ. ବି—ରାଧା—Rādhā. (ଉ—ଗଗନକୁ ଗ୍ରୀହି ବୋଲଇ ସେ ରାହୀ ଶୁଣ ହେ। କୃଷ୍ଣ ଦିନାଥ । ପ୍ରାଚୀ. ରସବାରିଧି ।)
বাহাদাব **राही**
বাঈ **राई**

**ରାହୁ**—ସଂ. ବି (ରହ୍. ଧାତୁ=ତ୍ୟାଗ କରିବା+କର୍ତ୍ତୃ. ଉ)—
Rāhu ୧ । (ଜ୍ୟୋତିଷ) ତମଗ୍ରହ; ସିଂହିକାର ପୁତ୍ର; କେତୁର ମସ୍ତକଭାଗ—1. (astrology) The Dragon's head. ୨ । ଚନ୍ଦ୍ରଗ୍ରହଣ ସମୟରେ ଚନ୍ଦ୍ରଙ୍କ ଆଚ୍ଛାଦନ କରିବା ପୃଥିବୀର ଛାୟା—2. The shadow of the earth covering the moon during the eclipse, the ascending node. [ ଦ୍ର—ଏହା ହିନ୍ଦୁ ଜ୍ୟୋତିଷ ମତରେ ଗୋଟିଏ ଗ୍ରହ; କିନ୍ତୁ ପ୍ରକୃତରେ ଏହା ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ମଧ୍ୟରେ ପୃଥିବୀ ଅବସ୍ଥାନ କରିବାବେଳେ ଚନ୍ଦ୍ରଙ୍କ ଉପରେ ପଡ଼ିବା ପୃଥିବୀର ଛାଇ । କଥିତ ଅଛି ଯେ ଦେବାସୁରମାନେ ମନ୍ଦରଗିରିକୁ ମନ୍ଥନ ଦଣ୍ଡ ଓ ବାସୁକିଙ୍କୁ ମନ୍ଥନରଜ୍ଜୁ କରି କ୍ଷୀର ସମୁଦ୍ରକୁ ମନ୍ଥନ କରିବା ସମୟରେ ତହିଁରୁ ଜାତ ହେବା ଅମୃତର କିୟଦଂଶ ଗୋଟିଏ ଅସୁର ଲୁଚି କରି ଖାଇଦେଲା ଓ ସେହି ଯୋଗୁଁ ଅମରତ୍ୱ ଲାଭ କଲା । ପରେ ବିଷ୍ଣୁ ଏହା ଜାଣିପାରି ସୁଦର୍ଶନଚକ୍ରଦ୍ୱାରା ଉକ୍ତ ଅସୁରର ମୁଣ୍ଡ କାଟିଦେଲେ । ସେ ଅମୃତ ଖାଇଥିବାରୁ ମଲା ନାହିଁ ଓ ତା ମୁଣ୍ଡଟି ରାହୁ ହେଲା ଓ ଗଣ୍ଡିଟି କେତୁ ହେଲା । ତଦବଧି ରାହୁ ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ଆକ୍ରମଣ କରେ । ହିନ୍ଦୁମାନେ ଏହାକୁ 'ଚଣ୍ଡାଳ' ବୋଲି ଘୃଣା କରନ୍ତି ଏବଂ ଚନ୍ଦ୍ରଙ୍କୁ ଏ ଛୁଇଁ ଦେଲେ ( ଅର୍ଥାତ୍ ଚନ୍ଦ୍ରଗ୍ରହଣ ହେଲେ ) ଚନ୍ଦ୍ର ଚଣ୍ଡାଳଛୁଆଁ ହୁଅନ୍ତି ଓ ପୃଥିବୀର ଲୋକେ ମଧ୍ୟ ଚଣ୍ଡାଳଛୁଆଁ ହୋଇ ସ୍ନାନ କରିବାଦ୍ୱାରା ସେ ଛୁଆଁ ଦୋଷରୁ ମୁକ୍ତ ହୁଅନ୍ତି ।

ଜ୍ୟୋତିଷ ଶାସ୍ତ୍ରରେ ଏହା ଗୋଟିଏ ଦୁଷ୍ଟଗ୍ରହ ଓ ମନୁଷ୍ୟ ଜୀବନରେ ଏହାର ଦଶାଭୋଗ କାଳ ୧୮ ବର୍ଷ ଓ ଏହାର ଦଶା ମଙ୍ଗଳଦଶା ପରେ ଓ ବୃହସ୍ପତି ଦଶା ପୂର୍ବରେ ପଡ଼େ ।]

୩ । ( ଲକ୍ଷଣାର୍ଥ ) ଅତ୍ୟାଚାରୀ ବା ପରପୀଡ଼କ ବ୍ୟକ୍ତି—3. An oppressor.

**ରାହୁ ଅନ୍ତର**—ସଂ. ବି. (ଜ୍ୟୋତିଷ)—ମନୁଷ୍ୟର ପରମାୟୁ କାଳରେ ଅନ୍ୟ ଗ୍ରହମାନଙ୍କର ଦଶାକାଳ ମଧ୍ୟରେ ରାହୁ ଗ୍ରହର ଅନ୍ତରଦଶା—(astrology) The portion of the astrological period of a man's life when any other planet is in conjunction with Rāhu.
Rāhu antara
(ରାହୁ ଅନ୍ତର ଦଶା—ଅନ୍ୟରୂପ)

**ରାହୁଆ**—ଦେ. ବିଣ—ରାଉଆ ( ଦେଖ )
Rāhuā Rāuā ( See )

**ରାହୁଆ ପାଟି**—ଦେ. ବି—ଅତି ଉଚ୍ଚ ସ୍ୱରବିଶିଷ୍ଟ ପାଟି; ରାସଭ ସ୍ୱରବିଶିଷ୍ଟ ଗଳା—A stentorian tone.
Rāhuā pāṭi
উঁচু গলা **गदहा स्वर**

**ରାହୁଆ ମାଟି**—ଦେ. ବି—ଖୁବ୍ ଭଲ ସରସା ମାଟି; ଖୁବ୍ ମଟାଳ ମାଟି—A kind of very fertile soil.
Rāhuā māṭi
এঁটেল মাটী [ଦ୍ର—ଏହା ଖରା ହେଲା ମାତ୍ରେ ଫାଟିଯାଏ ଓ ବର୍ଷାରେ କାଦୁଆ ହୁଏ ।]
**मटियारी मिट्टी**

**ରାହୁ ଗ୍ରସ୍ତ**—ସଂ.ବି. (ତୃତୀୟା ତତ୍)—ରାହୁ କର୍ତ୍ତୃକ ଆକ୍ରାନ୍ତ (ଗ୍ରହଣକାଳୀନ ଚନ୍ଦ୍ର ଓ ଉପରାଗକାଳୀନ ସୂର୍ଯ୍ୟ)—Pervaded by Rāhu (the sun and and moon during the eclipse).
Rāhu grasta

**ରାହୁ ଗ୍ରହ**—ସଂ ବି—ଗ୍ରହ ରୂପେ କଳ୍ପିତ ହିନ୍ଦୁ ଜ୍ୟୋତିଷର ନବଗ୍ରହ ମଧ୍ୟରୁ ଅଷ୍ଟମ ଗ୍ରହ—The eighth of the nine planets of Hindu astrology. [ଦ୍ର—ପ୍ରକୃତରେ ଏହା ଗ୍ରହ ନ ଥାଇ ପୃଥିବୀର ଛାୟା ଅଟେ ।]
Rāhu graha
(ରାହୁ ମହାଗ୍ରହ—ଅନ୍ୟରୂପ)

**ରାହୁ ଗ୍ରହଣ**—ସଂ. ବି. (ତୃତୀୟା ତତ୍)—ରାହୁଙ୍କ ଦ୍ୱାରା ଚନ୍ଦ୍ର ବା ସୂର୍ଯ୍ୟଙ୍କର ଗ୍ରହଣ—The solar or lunar eclipse brought about by Rāhu.
Rāhu grahaṇa
(ରାହୁଗ୍ରାହ—ଅନ୍ୟରୂପ)

**ରାହୁ ଗ୍ରାସ**—ସଂ. ବି. (ଜ୍ୟୋତିଷ)—(ରାହୁର ସୂର୍ଯ୍ୟ ବା ଚନ୍ଦ୍ରଙ୍କୁ ଗ୍ରାସ ବା ଭୋଜନ କରିବା)—ରାହୁ ଦ୍ୱାରା ସୂର୍ଯ୍ୟ ବା ଚନ୍ଦ୍ରଙ୍କର ଆକ୍ରମଣ; ଚନ୍ଦ୍ର ଗ୍ରହଣ ବା ସୂର୍ଯ୍ୟପରାଗ—Eclipse.
Rāhu grāsa

**ରାହୁତ**—ଦେ. ବି. ( ସଂ. ରାଜପୁତ୍ର )—୧ । ରାଉତ; ଅଶ୍ୱାରୋହୀ—1. Horse man. ୨ । ଅଶ୍ୱାରୋହୀ ବୀର—2. A cavalry soldier.
Rāhuta
রাউত **रावत**

**ରାହୁତିଆ**—ଦେ.ବିଣ—ରାହୁତ ସମ୍ବନ୍ଧୀୟ—Relating to a horseman.
Rāhutiā

**ରାହୁ ଦଶା**—ସଂ. ବି. (ଜ୍ୟୋତିଷ)—କେରଳ ଗଣନା କ୍ରମେ ମନୁଷ୍ୟର ପରମାୟୁ କାଳ ମଧ୍ୟରେ ପଡ଼ିବା ରାହୁ ଗ୍ରହର ଦଶା; (ଏଥିର ଭୋଗକାଳ ୧୮ ବର୍ଷ; ଏ ଦଶା ମଙ୍ଗଳ ଦଶା ପରେ ଓ ବୃହସ୍ପତି ଦଶା ପୂର୍ବରୁ ପଡ଼େ)—The period of a
Rāhu daśā

man's life in which the planet Rahu is supreme.

ରାହୁ ଦର୍ଶନ—ସ. ବି—୧ । ଚନ୍ଦ୍ର ସୂର୍ଯ୍ୟଙ୍କ ଗ୍ରହଣ—1. Eclipse.
Rāhu darśana ୨ । ଗ୍ରହଣ ସମୟରେ ଚନ୍ଦ୍ର ସୂର୍ଯ୍ୟଙ୍କୁ ଦେଖିବା—2. Seeing the sun or the moon during an eclipse.

ରାହୁପ—ଦେ. ବି. ନାମ—ରାଜପୁତ ବୀର ବିଶେଷ—
Rāhupa A Rajput hero of the name.

ରାହୁ ପ୍ରତ୍ୟନ୍ତର—ସ. ବି. (ଜ୍ୟୋତିଷ)—ଗ୍ରହମାନଙ୍କ ଦଶାକାଳ
Rāhu pratyantara ମଧ୍ୟରେ ଗ୍ରହମାନଙ୍କ ଅନ୍ତରଦଶା
(ରାହୁ ପ୍ରତ୍ୟନ୍ତର ଦଶା—ଅନ୍ୟରୂପ) ମଧ୍ୟରେ ରାହୁ ଗ୍ରହର ପ୍ରତ୍ୟନ୍ତର ଅବସ୍ଥା—(astrology) The period of man's life when Rāhu is the tertiary presiding planet during the primary and the secondary periods of other planets.

ରାହୁ ଭୂତି—ସ.ବି. (୬ଷ୍ଠୀ ତତ୍; ରାହୁ+ଭୂତି=ଐଶ୍ୱର୍ଯ୍ୟ; ବ୍ୟଙ୍ଗ୍ୟ)—
Rāhu bhūti ଶିରଚ୍ଛେଦ—Beheading.

ରାହୁ ଭେଦୀ—ସ. ବି. ପୁଂ (ରାହୁ ଭେଦନ୍ ୧ମା. ୧୦; ଯେ ରାହୁକୁ
Rāhu bhedī ସୁଦର୍ଶନ ଚକ୍ର ଦ୍ୱାରା ଭେଦ କରିଥିଲେ)—ବିଷ୍ଣୁ—Bishṇu.

ରାହୁ ମଣି—ସ. ବି (ମ.ପ. ଲୋ)—ରାହୁଙ୍କ ପ୍ରିୟ ରତ୍ନ, ଗୋମେଦ ମଣି;
Rāhu maṇi ପିଙ୍ଗଳ ବା ପୀତ ବର୍ଣ୍ଣ ମଣିବିଶେଷ—A sort of gem; topaz.
(ରାହୁ ରତ୍ନ—ଅନ୍ୟରୂପ)

ରାହୁ ମୁକ୍ତ—ସ. ବିଣ. (୫ମୀ ତତ୍)—ରାହୁ ଗ୍ରାସରୁ ବା ରାହୁ ଗ୍ରହଣରୁ
Rāhu mukta ମୁକ୍ତି ପ୍ରାପ୍ତ (ଚନ୍ଦ୍ର ବା ସୂର୍ଯ୍ୟ); ଗ୍ରହଣରୁ ମୋକ୍ଷପ୍ରାପ୍ତ—Freed from eclipse (sun or moon).

ରାହୁ ମୁକ୍ତି—ସ. ବି—ଚନ୍ଦ୍ର ବା ସୂର୍ଯ୍ୟଙ୍କଠାରୁ ଗ୍ରହଣ ଛାଡ଼ିଯିବା—
Rāhu mukti Release of the sun or moon from the eclipse.
ରାହୁ ମୋକ୍ଷ
ରାହୁ ମୋକ୍ଷଣ } ଅନ୍ୟରୂପ
ରାହୁ ମୋଚନ

ରାହୁ ରାହୁ—ଦେ. ଅ—ରାଉ ରାଉ ( ଦେଖ )
Rāhu rāhu Rāu rāu ( See )

ରାହୁ ରେଖା—ଦେ. ବି—କପାଳରେ ମଝିଭାଗରେ ସୁନ୍ଦା ମଧ୍ୟରେ ପିନ୍ଧା
Rāhu rekhā ଯିବା ସୁନାର ଅଳଙ୍କାର—An ornament for the head of women.
ସିତି मांग टीका
(ଉ—କପାଳେ ସୁବର୍ଣ୍ଣ ରାହୁରେଖା ଝଳକ । ଯାଦୁମଣି. ରସକଲ୍ଲୋଳ ।)

ରାହୁଲ—ଦେ ବି—୧ । ରାଉଳ ( ଦେଖ )
Rāhuḷa 1. Rāuḷa ( See )
୨ । ଗୌତମ ବୁଦ୍ଧଙ୍କ ପୁତ୍ରର ନାମ—2. Name of the son of the Buddha.

ରାହୁଲିଆ—ଦେ. ବିଣ—ରାଉଳିଆ ( ଦେଖ )
Rāhuḷiā Rāuḷiā ( See )

ରାହୁ ସଂସ୍ପର୍ଶ—ସ. ବି. (୬ଷ୍ଠୀ ତତ୍)—ସୂର୍ଯ୍ୟ ଓ ଚନ୍ଦ୍ର ଗ୍ରହଣ—
Rāhu saṁsparśa Eclipse.

ରାହୁ ସଂସ୍ପୃଷ୍ଟ—ସ. ବିଣ. (୩ୟା ତତ୍)—ରାହୁ ଦ୍ୱାରା ଆକ୍ରାନ୍ତ (ସୂର୍ଯ୍ୟ ବା
Rāhu saṁspṛushṭa ଚନ୍ଦ୍ର)—Eclipsed; under eclipse (sun or moon).

ରାହୁହା—ସ. ବି (ରାହୁ+ହନ୍ ଧାତୁ+କର୍ତ୍ତୃ. କ୍ୱିପ୍)—ବିଷ୍ଣୁ—
Rāhuhā Bishṇu.
(ରାହୁ ଭେଦୀ, ରାହୁ ଦୂର୍ଦ୍ଦିଉଦ୍—ଅନ୍ୟରୂପ)

ରାହୂତ୍ସୃଷ୍ଟ—ସ. ବି ( ୩ୟା ତତ୍; ରାହୁ+ଉତ୍ସୃଷ୍ଟ )—ଲଶୁନ;
Rāhūtsṛushṭa ରସୁଣ—Garlic.

ରି—ସ. ବି—( ହିନ୍ଦୁ ସଙ୍ଗୀତଶାସ୍ତ୍ର)—୧ । ଋଷଭ ସ୍ୱର; ସଙ୍ଗୀତର
Ri ଦ୍ୱିତୀୟ ସ୍ୱର—1. The second note of Hindu music. (ଉ—ଏହା ରୁଷଭର ସ୍ୱର ପର । ଗ୍ରାମ ତଳେ ଜୋଡ଼ି ଦେଖ ।) ୨ । ଅନୁକାର ଶବ୍ଦ—2. An onomatopoeic sound. ଦେ. ଅ.—୬ଷ୍ଠୀ ବିଭକ୍ତିର ଚିହ୍ନ 'ର' ଉପରେ ଜୋର୍ ଦେବା ପାଇଁ 'ର'ର ଆକାରାନ୍ତର, (ଯଥା—ଭ୍ରମର୍, ଆମର୍, ତାଙ୍କର ଇତ୍ୟାଦି) (ଉ—ଦେଖୁଥିଲେ ପର ହେ ବଂଶବତଦ୍ୱାହି । କାହିଁ ବି ସେ କଥା କାହାର ମନେ—ଚନ୍ଦ୍ରାମଣି )

ରିଅ(ଆ)—ପ୍ରାଦେ.—[ ଜାଜପୁର ]; ପ୍ରତ୍ୟୟ—ରେ—In, on.
Ria(ā) [ଯଥା—ଅଙ୍ଗୁଳିରିଆ=ଅଙ୍ଗୁଳିରେ] ପ୍ରାଦେ. (ଯାଜପୁର) ବି.—ବର୍ଷାଦିନେ ଯେଉଁ ସାମାନ୍ୟ ଗଭୀର ପାଣି ମାଡ଼ାରେ ବା ପଡ଼ିଆରେ ଖୋଳ ଲୋକେ ମାଛ ଧରନ୍ତି; ଗଇ—A shallow and narrow channel dug for catching fish in the rainy season.

ରିଆଇ—ଦେ. ବି.—ରିହାଇ (ଦେଖ)
Riāi Rihāi (See)

ରିଆତ୍(ତି)—ଦେ. ବି ( ଆ. ରିଆୟତ୍ )—୧ । ଦାୟିତ୍ୱରୁ ମୁକ୍ତି;
Riāt (ti) ନିଷ୍କୃତି—1. Remission; exemption from a responsibility; release. ୨ ।
ବେହାଈ रिहा, रियायत ଦେୟ ପଦାର୍ଥାଦି ଦେବାର ଦାୟିତ୍ୱରୁ ମୁକ୍ତି—2. Exemption from payment. ୩ । ଅନୁଗ୍ରହ; ଦୟାପୂର୍ଣ୍ଣ ବ୍ୟବହାର—2. Favour; kind treatment.

ରିଆତ୍(ତି) କରିବା—ଦେ. କ୍ରି—କୌଣସି ଦାୟିତ୍ୱରୁ ମୁକ୍ତିଦାନ
Riāt (ti) kariba କରିବା—To exempt a person from any responsibility.
[ରିଅତ(ତି) ଦେବା—ଅନ୍ୟରୂପ]
ବେହାଈ ଦେଓୟା रिहा देना

ରିଆତ୍(ତି) ପାଇବା—ଦେ. କ୍ରି—କୌଣସି କାର୍ଯ୍ୟରୁ ବା ଦାୟିତ୍ୱରୁ
Riāt (ti) pāibā ବା ଦେୟରୁ ନିଷ୍କୃତି ଲାଭ କରିବା—To be released or exempted from a responsibility or payment.
ବେହାଈ ପାଓୟା रिहा पाना
[ରିଅତ୍ (ତି) ମିଳିବା—ବିଶେଷ୍ୟରୂପ]

ରିଂ—ଦେ ବି—(ରିଙ୍ଗ୍‌ର ଅଶୁଦ୍ଧ ଉଚ୍ଚାରଣ) ରିଙ୍ଗ୍ ( ଦେଖ )—
Riṁ ରିং रिंग Riṅg ( See )

ରିଂ ସାଇଜ୍—ବୈଦେ· ବି ( ବଣିଅ ଶବ୍ଦ, ଇଂ )—ମୁଦ୍ର ତିଆରି କରିବା
Rim saij ପାଇଁ ଅଙ୍ଗୁଠିରୁ ମାପନେବାର ଉକ ଉଲ୍ଲ ମାପବିଶିଷ୍ଟ
ବିଂସାଇଜ କେତେକ କଡ଼ିର ସମଷ୍ଟି ବା ଥେଣ୍ଟା—Ring
**रिंगसाइज** size.

ରିକ୍‌ସା(ଷା)—ବୈଦେ ( ଇଂ. ଜାପାନୀଭାଷାରୁ ଗୃହୀତ ) ବି—ମନୁଷ୍ୟଙ୍କ
Rik-sa(sā) ଟାଣିବା ଦୁଇଚକିଆ ଗାଡ଼ି—Rickshaw.
ବିକସା **रिकसा**

ରିକର୍ଡ୍—ବୈଦେ ( ଇଂ. ) ବି—ରେକର୍ଡ ( ଦେଖ )
Rikard Rekarda ( See )

ରିକା—ଦେ. ବିଣ ( ସଂ, ରିକ୍ତ )—ରିକ୍ତ ( ଦେଖ )
Rikā Rikta ( See )

ରିକାଇବା—ଦେ. କ୍ରି ( ସଂ. ରିଚ୍ ଧାତୁ )—୧ । ରିକ୍ତ କରିବା; ଶୂନ୍ୟ
Rikaibā କରିବା—1. To empty. ୨ । ପାତ୍ରରୁ
ବିକ୍ତକବା ପଦାର୍ଥ ଢାଳି ଦେବା—2. To pour out
**रिक्त करना** anything from a pot.

ରିକାର୍ଡ଼୍(ଡ୍)—ଗ୍ରାଦେ ( ଗଞ୍ଜାମ ) ବି. ବୈଦେ ( ଇଂ. ରେକର୍ଡ଼୍ )—
Rikārd(rd) ମକଦ୍ଦମାର ନଥି—Record of a case.
୨ । ଅଫିସ୍‌ରେ ଥିବା କାଗଜ ପତ୍ର—
2. Record of an office.

ରିକାବ୍—ବୈଦେ. ବି—ରେକାବ୍ ( ଦେଖ )
Rikāb Rekāb ( See )

ରିକାବି—ଦେ. ବି—ରେକାବ୍ (ବି) ( ଦେଖ )
Rikābi Rekāb (bi) ( See )

ରିକି—ଦେ. ବିଣ ( ତଦ୍‌ଭବ )—ଉତ୍ତରାଧିକାରୀ—
Riki ଓ୍ୟାରିସ **वारिस** Heir.

ରିକ୍ତ—ସଂ. ବିଣ ( ରିଚ୍ ଧାତୁ=ଶୂନ୍ୟ କରିବା + କର୍ମ. ତ )—୧
Rikta ଖାଲି; ଶୂନ୍ୟ—1. Empty. ୨ । ଫମ୍ପା; ପୋଲ
—2. Having nothing within. ୩ । ଦରିଦ୍ର
—3. Poor. ୪ । ନିଷ୍ଫଳ—4. Fruitless. ସଂ.
ବି—୧ । ଅବକାଶ; ଶୂନ୍ୟସ୍ଥାନ; ଶୂନ୍ୟ; ଯେଉଁ ସ୍ଥାନରେ
କିଛି ବସ୍ତୁ ନ ଥାଏ—1. Vacuity; space; empty
space. ୨ । ବନ; ଜଙ୍ଗଲ—2. Wood, forest.

ରିକ୍ତ ଗୃହ—ସଂ ବି—ଯେଉଁ ଘରେ କେହି ନ ଥାଏ—
Rikta gruha Empty house.
(ରିକ୍ତ ଭବନ—ଅନ୍ୟରୂପ)

ରିକ୍ତ ପାତ୍ର—ସଂ. ବି—ଖାଲିପାତ୍ର; ଯେଉଁ ପାତ୍ରରେ କିଛି ପଦାର୍ଥ ନ ଥାଏ
Rikta pātra —An empty pot.

ରିକ୍ତ ହସ୍ତ—ସଂ. ବି ( ରିକ୍ତ+ହସ୍ତ; କର୍ମଧାରୟ )—୧ । ଶୂନ୍ୟହସ୍ତ—
Rikta hasta 1. Empty hand. ୨ । ଯେଉଁ ହାତ
ମଧ୍ୟରେ କିଛି ଧନ ନ ଥାଏ; ଅର୍ଥଶୂନ୍ୟ ହାତ—
2. A hand which contains no money. ବିଣ.
(ରିକ୍ତହସ୍ତା—ସ୍ତ୍ରୀ) ପୁଂ ( ବହୁବ୍ରୀହି )—୧ । ଯାହାର ହାତରେ କିଛି
ଧନ ନ ଥାଏ—1. Empty-handed. ୨ । ନିର୍ଦ୍ଧନ
(ରିକ୍ତହସ୍ତତା—ବି) —2. Poor; destitute.

ରିକ୍ତା—ସଂ. ବି ( ଫଳିତ ଜ୍ୟୋତିଷ )—ଚତୁର୍ଥୀ, ନବମୀ ଓ ଚତୁର୍ଦ୍ଦଶୀ
Riktā ତିଥିମାନ—( astrology ) The 4th, 9th,
and 14th days of the lunar fortnight.
[ ଦ୍ର—ଜ୍ୟୋତିଷମତରେ ଏହି ତିଥିମାନ ଅଶୁଭ; ତେଣୁ
ଏହି ତିଥିମାନଙ୍କରେ କୌଣସି କାର୍ଯ୍ୟ କଲେ ତାହା ନିଷ୍ଫଳ
ହୁଏ । ଜ୍ୟୋତିଷ ଶାସ୍ତ୍ରର ନିର୍ଦ୍ଦେଶ ଅନୁସାରେ ୧୫ ଟି
ତିଥିକୁ ୫ ଭାଗରେ ବିଭକ୍ତ କରାଯାଇ ଅଛି । ଯଥା—୧ମ,
ନନ୍ଦା ( ପ୍ରତିପଦ, ଷଷ୍ଠୀ, ଏକାଦଶୀ ); ୨ୟ, ଭଦ୍ରା
( ଦ୍ୱିତୀୟା, ସପ୍ତମୀ ଓ ଦ୍ୱାଦଶୀ ); ୩ୟ, ଜୟା ( ତୃତୀୟା,
ଅଷ୍ଟମୀ, ତ୍ରୟୋଦଶୀ) ୪ର୍ଥ ରିକ୍ତା ଓ ୫ମ ପୂର୍ଣ୍ଣା (ପଞ୍ଚମୀ,
ଦଶମୀ, ଅମାବାସ୍ୟା ଓ ପୂର୍ଣ୍ଣିମା ।)

ରିକ୍ଥ—ସଂ. ବି.—( ରିଚ୍ ଧାତୁ=ଦେବା+କର୍ମ. ଥ )—୧
Riktha ଧନ—1. Wealth. ୨ । ସଂପତ୍ତି—2. Property. ୩ । ସ୍ଥାବର ଓ ଅସ୍ଥାବର ସଂପତ୍ତି—
3. Property immoveable and moveable.

ରିକ୍ଥଗ୍ରାହୀ—ସଂ. ବିଣ. ପୁଂ—(ରିକ୍ଥ+ଗ୍ରହ୍ ଧାତୁ=ଗ୍ରହଣ କରିବା+
Riktha grāhi କର୍ତ୍ତୃ. ଇନ୍, ୧ମା. ୧ବ)—୧ । ଯେ ଧନ
[ରିକ୍ଥଗ୍ରାହିଣୀ—ସ୍ତ୍ରୀ] ଗ୍ରହଣ କରେ; ଧନଗ୍ରାହୀ—1. Taking
riches or property. ୨ । ଅର୍ଥଗ୍ରାହୀ—2.
Accepting riches. ବି.—ସଂପତ୍ତିର ଉତ୍ତରାଧିକାରୀ;
ଦାୟାଦ—Heir; successor; inheritor.

ରିକ୍ଥହାରୀ—ସଂ. ବିଣ. ପୁଂ—(ରିକ୍ଥ+ହୃ ଧାତୁ=ହରଣ କରିବା+କର୍ତ୍ତୃ.
Rikthahāri ଇନ୍; ୧ମା. ୧ବ.)—ଧନାପହାରୀ—Carrying away property. ବି.—
[ରିକ୍ଥହାରିଣୀ—ସ୍ତ୍ରୀ]
୧ । ଦାୟାଦ, ଉତ୍ତରାଧିକାରୀ—1. Heir; successor.
୨ । ମାଉଳ; ମାମୁଁ—2 Maternal uncle.

ରିକ୍ଥୀ—ସଂ. ବିଣ. ପୁଂ-(ରିକ୍ଥ+ଇନ୍; ୧ମା. ୧ବ)—୧ । ଉତ୍ତରାଧିକାରୀ
Rikthi 1. Heir. ୨ । ଧନୀ—2 Rich man.

ରିକ୍ଷା—ସଂ. ବି.—(ଲିଷ ଧାତୁ=ଛୋଟ କରିବା+ଅ)—୧ । ଲିଖ;
Riksha ଛୋଟ ଉକୁଣି—nit; egg of louse. ୨ । ସୂର୍ଯ୍ୟକିରଣଗତ ଅଣୁ—Specks floating in sun's
rays; minute particles of dust floating
in the rays of the sun.

ରିକ୍ସ (କ୍ସା)—ବୈଦେ. ବି·—ରିକ୍‌ସ (ଦେଖ)
Riksa(ksā) Rik-sa (See)

ରିଗ୍‌ବିଗେଇ ଯିବା—ଗ୍ରାଦେ. ( ସମ୍ବଲପୁର ) କ୍ରି—ଗରମ ଯୋଗୁ
Rig-bigei jibā ଦେହରେ କଣ୍ଟା ବା ଛୁଞ୍ଚି ମାଇଲା ପରି
ଲାଗିବା—Pin-pricking sensation on
account of excessive heat.

ରିଗେଇ କହିବା—ଗ୍ରାଦେ. (ବାଲେଶ୍ବର) କ୍ରି—ଜଣକ ଉପରେ ଥିବା
Righei kahibā କ୍ରୋଧକୁ ପ୍ରକାଶ ନ କରି ଅନ୍ୟକୁ ଦେଖେଇ
ଶିଖେଇ ଗାଳି ଦେବା—To throw side hint
on a person by abusing another person.

**ରିଙ୍ଗ୍ (ଧାତୁ)**—ସଂ.—ଗମନ କରିବା—To go.
Ring (root)

**ରିଙ୍ଗ**—ବୈଦେ. ବି (ଇଂ. )—କଳ ବନସିରେ ଲଗାହୋଇଥିବା ପିତଳ ତାରର ଛୋଟ ଛୋଟ ମୁଦ୍ଧି—Ring like contrivance attached to an augling rod. [ଦ୍ର—ଏହା ଉପରଦେଇ କଳ ଦେହରୁ ଡୋର ବାହାରିଯାଏ । ] ୨ । ମୁଦ୍ଧି—2 Ring.
Ring

**ରିଙ୍ଗ(ଙ୍ଖ)ଣ**—ସଂ. ବି ( ରିଙ୍ଗ୍ ଧାତୁ=ଗମନକରିବା+ଭାବ. ଅନ)—୧ । ଗୁରୁଣ୍ଡିବା; ଅଣ୍ଟ ଓ ହାତଦ୍ୱାରା ଗତିକରିବା—1. To crawl; to creep. ୨ । ସ୍ଖଳନ—2. Slipping. ୩ । ସମ୍ମାନରୁ ପତନ—3 Falling down from honour. ୪ । ବିଚଳିତ ହେବା—4. Displacement.
Ringa(ṅkha)ṇa
(ରିଙ୍ଗିତ—ବିଣ)

**ରିଙ୍ଗ୍(ଙ୍)ବନ୍ଧ**—ବୈଦେ. ବି. ( ଇଂ. ରିଙ୍ଗ୍+ସଂ. ବନ୍ଧ )—୧ । ଗୋଲାକାର ବନ୍ଧ—1. Circular embankment.
Ring(rim)bandha
বিঙ্গবান্ধ रिङ्गबांध

**ରିଚ୍(ଧାତୁ)**—ସଂ.—୧ । ପୃଥକ୍ କର—1 To separ te. ୨ । ଶୂନ୍ୟକରିବା—2. To empty. ୩ । ଦେବା—3. To give; to deliver.
Rich(root)

**ରିଜ୍(ଧାତୁ)**—ସଂ—୧ । ଆନନ୍ଦିତହେବା—1. To rejoice, to be glad. ୨ । ଭାଜିବା—2. To fry.
Rij(root)

**ରିଜର୍ଭ୍**—ବୈଦେ. ( ଇଂ. ରିଜର୍ଭ୍ ) ବି—ରେଲଗାଡ଼ି ଇତ୍ୟାଦିର କାମରାକୁ ପୂର୍ବରୁ ବ୍ୟବହାରପାଇଁ ଅଟକାଇବାର ବନ୍ଦୋବସ୍ତ—Reserving of a seat or compartment in a Railway train or other vehicle, theatre or circus. [ ଦ୍ର—ଇଂରାଜି Z (ଜେଡ୍) ଅକ୍ଷରର ଉଚ୍ଚାରଣବିଶିଷ୍ଟ ଅକ୍ଷର ସଂସ୍କୃତ ତଥା ଓଡ଼ିଆ ବର୍ଣ୍ଣମାଳାରେ ନାହିଁ । ଏହି ଇଂରାଜି 'Z' ଅକ୍ଷରର ଉଚ୍ଚାରଣ ଇଂରାଜି 'Z' ଅକ୍ଷରବିଶିଷ୍ଟ ଶବ୍ଦରେ ଓ ଅନ୍ୟ କେତେକ 'S' ( ଏସ୍ ) ଅକ୍ଷରବିଶିଷ୍ଟଶବ୍ଦ ( ଯଥା—Reserve, Is, His, Resolution, Resign)ରେ ଦେଖାଯାଏ । ଓଡ଼ିଆରେ ଏହି ଅପୂର୍ଣ୍ଣ ତାଲବ୍ୟ 'ଜ'ଉଚ୍ଚାରଣ କଲାବେଳେ ପୂର୍ଣ୍ଣ ତାଲବ୍ୟ ବର୍ଗୀୟ ଜ ଭଳି ଜିଭ ତାଳୁକୁ ଛୁଏଁ ନାହିଁ । ଏହି ଅସ୍ପଷ୍ଟ ଜ ଉଚ୍ଚାରଣଯୁକ୍ତ ଅକ୍ଷରକୁ ଓଡ଼ିଆରେ 'ଜ' ଲେଖିବା ଛଡ଼ା ଆମର ଅନ୍ୟ ବାଟ ନାହିଁ । ଏଥିପାଇଁ Zebra କୁ ଜେବ୍ରା, Reserveକୁ ରିଜର୍ଭ, Resolution କୁ ରିଜଲିଉସନ୍ ଲେଖୁଥାଉଁ, କିନ୍ତୁ ଉଚ୍ଚାରଣକଲାବେଳେ କରୁଥାଉଁ ଇଂରାଜି Z ଭଳି । ]
Rijarbh
রিজর্ভ रिजर्भ

**ରିଜର୍ଭ୍ କରିବା**—ଦେ.କ୍ରି—ପୂର୍ବରୁ ରେଳଅଫିସର କର୍ତ୍ତୃପକ୍ଷମାନଙ୍କୁ ଜଣାଇ ରେଳ ଗାଡ଼ିରେ ସ୍ଥାନ ରଖାଇବା—To reseerv a seat in a railway train etc.
Rijarbh karibā
রিজর্ভকবা रिजर्भकरना

**ରିଜର୍ଭ ଗାଡ଼ି**—ଦେ.ବି (ଇଂ.ରିଜର୍ଭ୍+ଓଡ଼ିଆ ଗାଡ଼ି)—ପୂର୍ବରୁ ବ୍ୟବହାର କରିଯିବା ପାଇଁ ଅଟକା ଯାଇଥିବା ରେଲ ଗାଡ଼ି—Reserved Railway carriage.
Rijarbh gāṛdi
বিজর্ভগাড়ি रिजर्भगाडी

**ରିଜର୍ଭ୍ ଜଙ୍ଗଲ**—ଦେ. ବି—ଅଟକ ଜଙ୍ଗଲ—Reserve forest.
Rijarbh jaṅgala
বিজর্ভ জঙ্গল रिजर्भजङ्गल
(ରିଜର୍ଭ୍ ଫରେଷ୍ଟ—ବୈଦେ. ରୂପ)

**ରିଜର୍ଭ ପୁ(ପୋ)ଲିସ୍**—ବୈଦେ. ବି ( ଇଂ. ରିଜର୍ଭ୍ ପୁଲିସ୍ )—ବିଶିଷ୍ଟ ଘଟନାପାଇଁ ସୁସଜ୍ଜିତ ହୋଇ ରଖା-ଯାଇଥିବା ପୁଲିସ ଫଉଜ—Reserve Police.
Rijarbh pu(po)lis
বিজর্ভপুলিস रिजर्भपुलिस

**ରିଜର୍ଭ ସିଟ**—ବୈଦେ. ବି (ଇଂ. ରିଜର୍ଭ୍ ସୀଟ୍)—ରେଲ ଗାଡ଼ିରେ କିମ୍ବା ରଙ୍ଗମଞ୍ଚର ପ୍ରେକ୍ଷା ଗୃହରେ ପୂର୍ବରୁ ବିଶିଷ୍ଟ ବ୍ୟକ୍ତିଙ୍କପାଇଁ ଅଟକା ହୋଇ ରଖା ଯାଇଥିବା ଆସନ—Reserved seat in a railway carriage or theatre.
Rijarbh sit
বিজর্ভসিট रिजर्भसीट

**ରିଜଲିଉସନ୍**—ବୈଦେ. (ଇଂ. ରିଜଲ୍ୟୁସନ) ବି—ସଭାସମିତିର ନିର୍ଦ୍ଧାରଣ Resolution passed by a meeting or society.
Rijalinsan
বিজলিউসন रिल्युलसन
[ରିଜଲୁ(ଲ୍ୟୁ)ସନ—ଅନ୍ୟରୂପ]

**ରିଜାଇନ୍(ନ)**—ବୈଦେ. ( ଇଂ. ରିଜାଇନ୍ ) ବି—କର୍ମରୁ ନିଯୁକ୍ତ ବ୍ୟକ୍ତିର ଇଚ୍ଛାରେ କର୍ମରୁ ଅନ୍ତର ହେବା—Resignation from service.
Rijāin(ni)
বিজাইন रिजाइन

**ରିଜାଇନ୍(ନ) କରିବା**—ଦେ. କ୍ରି (ଇଂ. କ୍ରିୟା. ଟୁ ରିଜାଇନ୍)—(ନିଯୁକ୍ତ ବ୍ୟକ୍ତି ବା କର୍ମଚାରୀ) ନିଜର ଇଚ୍ଛାରେ କର୍ମରୁ ଅନ୍ତର ହେବା—To resign from a service.
Rijāin(ni) karibā
রিজাইন্ কবা रिजाइन करना
( ରିଜାଇନ୍[ନ] ଦେବା—ଅନ୍ୟରୂପ )

**ରିଝ**—ଦେ.ବି (ସଂ. ରଞ୍ଜନ)—୧ । ମନୋରଞ୍ଜନ—1. Delighting diverting. ୨ । ବିନୋଦନ—2. Act of pleasing. ୩ । ମନର ଆନନ୍ଦ—3. Delight. ୪ । (ସଂ. ହୃଦୟ) ମନ—4. Mind; mental attitude. ବିଣ—ମନୋମତ—Chosen.
Rijha
রঞ্জনকবা रीझ

**ରିଝିବା**—ପ୍ରାଦେ (ସମ୍ବଲପୁର) କ୍ରି—୧ । (ତୁଳ. ହି. ରିଝନା) ଆକୃଷ୍ଟ ହେବା; ରସିବା—1. To dote upon; to be attached to. ୨ । ସନ୍ତୁଷ୍ଟ ହେବା—2. To be pleased with (a person).
Rijhbā

**ରିଝା**—ଦେ. ବି (ସଂ. ରଞ୍ଜନ)—ମନୋରଞ୍ଜନ—Act of pleasing. ବିଣ—ମନୋମତ—Chosen.
Rijhā মনোরংজন, মজান रिझ
মনোনীত चूनाहुआ

**ରିଝା(ଝେ)ଇବା**—ଦେ. କ୍ରି (ସଂ. ରଞ୍ଜ୍. ଧାତୁ)—୧ । (ମନକୁ) ରଞ୍ଜାଇବା; ତୋଷିବା; ତୁଷ୍ଟ କରିବା—1. To please; to statisfy. [ ଦ୍ର—
Rijhā(jhe)iba
রংঝানকবা, মজান रिझान

ସେବାଫଳେ ରିଝାଇ ବୁଝିବ ଭାଙ୍କଠାବ । ପ୍ରାଚୀ. ଶିବ ସ୍ୱରୋଦୟ ।] ୨ । ଅବୁଝା ବ୍ୟକ୍ତିର ମନକୁ ବୁଝାଇ ଶାନ୍ତ କରିବା—2. To calm a nagging person. [ଉ—ନ ପାରୁଛି ତୁମ୍ଭର ମାନସ ରିଝାଇ । କୃଷ୍ଣସିଂହ. ମହାଭାରତ. ସଭା ।] ୩ । ବୁଝାଇବା—3. To make one understand. [ ଉ—ମୁଁ ଯେବେ ଅର୍ଜୁନଙ୍କୁ କହିବି ରିଝାଇ, ସେ ଛାଡ଼ିଦେବେ ଯୁଦ୍ଧ ଜାଣେ ନିରସାଇ । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ । ] ୪ । ମନାଇବା— 4. To pursuade; to make one agree.

**ରିଝା ରିଝି**—ଦେ. ବି (ସଂ. ରଞ୍ଜନ)—ପରସ୍ପରକୁ ସନ୍ତୁଷ୍ଟ କରିବା—
Rijha rijhi Pleasing one another.
পরস্পরকে সন্তুষ্ট করা । रिझारिझी

**ରିଝିବା**—ଦେ. କ୍ରି (ସଂ. ରଞ୍ଜ ଧାତୁ)—୧ । ତୁଷ୍ଟ ହେବା —1. To be
Rijhiba pleased. ୨ । (ମନ) ବୁଝିବା ବା ମାନିବା —2. To
তুষ্টহওয়া, মজা रिझना be satisfied. ୩ । ମନୋମତ କରିବା — 3. To select; to choose.

**ରିଝୁଆଲ**—ପ୍ରାଦେ (ସମ୍ବଲପୁର) ବିଣ. (ତୁଳ. ହି. ରିଝୱାଲ୍)—
Rijhual ୧ । ରସିକ, ସଉକି—1. Luxurious. ୨ । କୌଣସି ବ୍ୟକ୍ତିଠାରେ ପ୍ରସନ୍ନ ହୋଇଥିବା (ବ୍ୟକ୍ତି)— 2. Pleased with another.

**ରିଟର୍ଣ୍ଣ (ନ୍)**—ବୈଦେ. ବି (ଇଂ. ରିଟର୍ନ୍)—ନିର୍ଦ୍ଧାରିତ ଫାରମରେ ପୂରଣ
Ritarnn(n) କରିଯାଇ ଉପରସ୍ଥ ରାଜକର୍ମଚାରୀଙ୍କ ନିକଟକୁ
বিটর্ণ रिटर्न ପଠାଯିବା ରିପୋର୍ଟ୍ ବା ଷ୍ଟେଟ୍‌ମେଣ୍ଟ—A return or statement entered in a form and submitted to an authority.

**ରିଟର୍ଣ୍ଣ୍ ଟିକେ(କ)ଟ୍**—ବୈଦେ. ବି (ଇଂ. ରିଟର୍ଣ୍ଣ୍ ଟିକେଟ୍)—ଯେଉଁ
Ritarn tike(ka)t ଟିକେଟ୍ ଯିବା ଆସିବା ଦୁଇ ପିଠି ପାଇଁ
রিটর্ণ টিকে(ক)ট रिटर्नटिकट କରାଯାଏ—Return ticket.

**ରିଠା(ଠା)**—ଦେ. ବି (ସଂ. ରିଷ୍ଟ; ଅରିଷ୍ଟକ; ପ୍ରା. ରିଠଅ)—ଏକ
Ritā(thā) ପ୍ରକାର ଜଙ୍ଗଲୀ ଗଛ—The soap nut tree,
বিটা[টে,ঠা,ঠে] Sapindus Muckorissi
रीठा (Haine). [ ଦ୍ର—ଏହା ଏକ
ମ. ରିଠା ପ୍ରକାର ବନ୍ୟ ତରୁ । ଏହାର କୋଳି
ଗୁ. ଅରିଠା ଠାଣୁଆ । ସେ କୋଳିକୁ ଶୁଖାଇ
ତେ. କୁକୁଡ଼ି ପାଣିରେ ବତୁରାଇ ଦୁଇ କରତଳରେ
ଫା. ଫିନକ୍ ହିନ୍ଦୀ ଧରି ଘଷିଲେ ତହିଁରୁ ଏକପ୍ରକାର
ଆଂ ବୁନ୍ଦକ୍ ଫେଣ ବାହାରେ । ସେହି ଫେଣ-
(ରିଠା କରଞ୍ଜ—ଅନ୍ୟରୂପ) ପାଣିରେ ପାଟ ଓ ପଶମ ଲୁଗା ବୁଡ଼ାଇ କାଚିଲେ ସଫା ହୁଏ । ରିଠା ଗଛ ଦୁଇ ଜାତିର ଦେଖାଯାଏ । ଯଥା—ଶ୍ୱେତ ରିଠାଗଛ ଓ ବଡ଼ ରିଠାଗଛ । ଶ୍ୱେତ ରିଠାଗଛ ଉତ୍ତରଭାରତରେ ଜନ୍ମେ । ଏହାର ପତ୍ର ମସୃଣ, ଫଳ ଲମ୍ବିଡ଼ା । ଗୋଟାଏ କମା ଯୋଡ଼ାଏ ଲେଖାଏଁ ଫଳ ଗୋଟିଏ ଗୋଟିଏ ଭେଣ୍ଟରେ ଫଳେ । ଏହା ଚୀନ୍ ଓ ଜାପାନରୁ ଆଣିତ ବୃକ୍ଷ । ଏପ୍ରେଲ୍ ମାସରେ ଏ ଗଛରେ ନୂଆପତ୍ର ଧରେ; ମେ, ଜୁନ୍ ମାସରେ ଏଥିରେ ଫୁଲ ଫୁଟେ ଏବଂ ସେପ୍ଟେମ୍ବର୍, ଡିସେମ୍ବର୍ ଯାଏ ଫଳ ହୁଏ । ଏହି ଗଛର ଲାଟିନ୍ ନାମ—Sapindus Mucorissi,

ବଡ଼ ରିଠା ଗଛ ମଧ୍ୟ ଓ ଦକ୍ଷିଣ ଭାରତରେ ଜନ୍ମେ । ପତ୍ରର ପିଠି ଲୋମଶ, ଫଳ ବଡ଼ ବଡ଼ ଓ ବରକୋଳି ପରି; ଗୋଟିଏ ଭେଣ୍ଟରେ ତିନି ଗୁଚ୍ଛା ଲେଖାଏଁ ଫଳେ; ଏହାର ଲାଟିନ୍ ନାମ — Sapindus Trifoliatus.

ଏହାର ସଂସ୍କୃତ ନାମ – ମାଙ୍ଗଲ୍ୟ, କୃଷ୍ଣବର୍ଣ୍ଣ, ଅର୍ଥସାଧନ, ରକ୍ତବୀଜ, ପୀତଫେନ, ଫେନିଲ, ଗର୍ଭପାତନ, ରିଷ୍ଟ, ଅରିଷ୍ଟ, ଅରିଷ୍ଟକ, କଟୁକ, ରିଠାକରଞ୍ଜ, ଗୁଚ୍ଛକ, ଗୁଚ୍ଛ-ପୁଷ୍ପକ, ଗୁଚ୍ଛଫଳ, ମଙ୍ଗଲ୍ୟ, କୁମ୍ଭବୀଜ, ପ୍ରକୀର୍ଯ୍ୟ, ସୋମବଲ୍କ ।

ବୈଦ୍ୟଶାସ୍ତ୍ର ମତରେ ଏହା ଲଘୁ, ସ୍ନିଗ୍ଧ, ଗର୍ଭପାତକ ଏବଂ ତ୍ରିଦୋଷ, ଗ୍ରହପୀଡ଼ା, ଦାହ ଓ ଶୂଳନାଶକ)

**ରିଠା(ଠା)ଫଳ**—ରିଠା ଗଛର ଠାଣୁଆ କୋଳି —
Ritha(ta)phala Soap berry; soap nut.
বিটা(টে)ফল रिठा फल

**ରିଡ୍**—ବୈଦେ. (ଇଂ.ରିଡ୍) ବି—ହାରମୋନିଅମ୍ ଯନ୍ତ୍ରରେ ଥିବା ସରୁ ଓ
Rid ଲମ୍ବ ଛୋଟ୍ ଛୋଟ୍ କାଷ୍ଠ ଖଣ୍ଡ, ଯହିଁରେ ଆଙ୍ଗୁଠି ଚିପିଲେ
বীড় ଯନ୍ତ୍ରରୁ ସ୍ୱର ବାହାରେ—Reed of a harmonium.
रीड

**ରିଡର୍**—ବୈଦେ. (ଇଂ. ରିଡର୍) ବି—୧ । ପ୍ରାଥମିକ ବିଦ୍ୟାଳୟରେ
Ridar ଇଂରାଜୀ ସାହିତ୍ୟପାଠ—A reader ( text
বিডাব book on literature in primary schools).
रिडर [ଦ୍ର—ଅନ୍ୟ ଇଂରାଜୀ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ଏ ଶବ୍ଦଟି ବ୍ୟବହୃତ ହୁଏ । ଯଥା—ରୟାଲ୍ ରିଡର୍—Royal Reader, ମଡେଲ୍ ରିଡର୍—Model Reader, ମିଡ୍‌ଲ୍ ରିଡର୍—Middle Reader, ଜୁଭେନାଇଲ୍ ରିଡ଼ର୍— Juvenile Reader., ପ୍ରାଇମେରୀ ରିଡର୍—Primary Reader. ] ୨ । ଯେଉଁ କର୍ମଚାରୀ ଉଚ୍ଚ କର୍ମଚାରୀଙ୍କ ନିକଟରେ ରିପୋର୍ଟ୍ ଆଦି ପାଠ କରନ୍ତି—2. A reader (whose duty is to read reports to a high official, e. g. Police Superintendent). ୩ । କଲେଜ୍‌ରେ ପ୍ରୋଫେସର୍‌ଙ୍କୁ ସାହାଯ୍ୟ କରିବା ପାଇଁ ନିଯୁକ୍ତ ବଡ଼ଗୁରୁ— 3. Reader to a professor in a college.

**ରିଡିଙ୍ଗ୍ ରୁମ୍**—ବୈଦେ. (ଇଂ. ରିଡିଙ୍ଗ୍ ରୁମ୍)—ପାଠାଗାର —
Riding rum Reading room.
বিডিঙ্গ রুম্ रिडिंग रूम

ଋଢ଼ା—ପ୍ରାଦେ ( ବାଲେଶ୍ୱର ) ବ—ଦାନ୍ତମାଂସ—
Rirdha Gum of teeth.
ଦେ ବଣ—ଋଢ଼ୁଅ (ଦେଖ)—Rirdhua (See)

ଋଢ଼ି(ଢି, ଢୁ, ଢ଼ୁ) ଆ—ଦେ. ବଣ. ( ସ. ଋଷ୍ଟି; ପ୍ରା. ଲୋଠ )—
Rirdhi(dhi, dhu, rdhu)a ରେଢ଼ା; କ୍ଷୁଦ୍ର ଓ ବନ୍ଧୁର ଖୁଣୀ ଖୁଣୀ (ପଦାର୍ଥ)—Small and unsmooth (thing)
ଝୋଡ଼ିୟା (ଋଢ଼ାଋଢ଼ା, ଋଢ଼ୁଆ ଋଢ଼ୁଆ—ବହୁବଚନରୂପ)

ଋଣ—ସଂ. ବ. (ସ. ଋଣ; ପ୍ରା. ରିଣ; ବ ଓ ହି. ଉଚ୍ଚାରଣ)—ଋଣ—
Rina ରିଣ रीन Debt; loan.

ଋଣ କରିବା—ଦେ. କ୍ରି. (ବଙ୍ଗଳା ଓ ହିନ୍ଦି ଉଚ୍ଚାରଣରୁ ଅନୁକୃତ)—
Rina kariba ଋଣ କରିବା—To borrow
ঋণ করা (ଦ୍ର—ଏଇଟି ବୋଇଲା କଣ କରିବା ?
रीन करना ଏଇଟି ବୋଇଲା କାହିଁ ଅଣିବା ?
ଏଇଟି ବୋଇଲା କାହିଁ ସୁଝିବା ?
ଏଇଟି ବୋଇଲା ଋଣ କରିବ !?
ବୁଢ଼ା ମିଅଁ ଥାଇଁ ବୋଇଲା, ଖାଇବା, ପିଇବା, ପଳେଇବା- ଅଙ୍ଗଟିମାନଙ୍କ ସମ୍ବନ୍ଧେ ଶିଶୁ ଗୀତ ।)

ଋତୁ—ପ୍ରା. ବ. (ବଙ୍ଗଳା ଓ ହିନ୍ଦି ଉଚ୍ଚାରଣରୁ ଅନୁକୃତ) (ସ. ଋତୁ; ପ୍ରା ରିତୁ)—୧ । ଋତୁ—1. Season of the year.
Ritu ୨। ସ୍ତ୍ରୀଙ୍କ ଋତୁସ୍ରାବ—Menstruation. ୩ । ସ୍ତ୍ରୀଙ୍କ
ঋতু ଋତୁକାଳ—3. Period of the menses.
ऋतु

ଋଧୋ—ପ୍ରାଦେ. (ସମ୍ବଲପୁର) ବ—ରସିକତା—
Ridho Gallantry.

ରିପଟ୍—ଦେ. ବ—ରିପୋର୍ଟ୍ ( ଦେଖ )
Ripat Ripot ( See )

ରିପନ୍—ବୈଦେ. ବ. (ନାମ) (ଇଂ. Lord Ripon, Marquis
Ripan Ripon)—ଭାରତର ସୁପ୍ରସିଦ୍ଧ ଗଭର୍ଣ୍ଣର୍ ଜେନେରାଲ୍
বিপন (ଖ୍ରୀ୧୮୮୦—୧୮୮୦; ଜନ୍ମ ୧୮୨୭, ମୃତ୍ୟୁ ୧୯୦୯)-
रिपन
[ ଦ୍ର—ଏ କିଛିକାଳ ଭାରତର ଷ୍ଟେଟ୍ ସେକ୍ରେଟେରୀ ହୋଇଥିଲେ; ଆଫଗାନ୍ ଯୁଦ୍ଧରେ ଜୟଲାଭ କରିଥିଲେ; ଆଇନ ଦ୍ୱାରା ଭାରତର ଦେଶୀୟ ସମ୍ବାଦପତ୍ରମାନଙ୍କୁ ସ୍ୱାଧୀନତା ଦାନ ଓ ଭାରତୀୟମାନଙ୍କୁ ସ୍ୱାୟତ୍ତ ଶାସନ କ୍ଷମତା ଦେଇଥିଲେ ଏବଂ ଭାରତରେ ଶିକ୍ଷା ବିସ୍ତାର ସମ୍ବନ୍ଧରେ ବିଶେଷ ଚେଷ୍ଟା କରିଥିଲେ ।]

ରିପିଟ୍(ଟି)—ବୈଦେ. ବ. (ଇଂ. ରିଭେଟ୍)—ଛିଦ୍ରରେ ପୂରାଯାଇଥିବା
Ripit(ti) କଣ୍ଟାକୁ ଉପର ଆଡ଼ୁ ବାଡ଼େଇ ତାହାର ଅଗକୁ
ରିପିଟ रिपट ଚଉଡ଼ା କରିବା—Rivetting.

ରିପିଟ(ଟି) କରିବା—ଦେ. କ୍ରି—ଛିଦ୍ରରେ ପୂରାଯାଇଥିବା କଣ୍ଟାକୁ
Ripit(ti) kariba ଉପର ପାଖରୁ ବାଡ଼େଇ ତାହାର ଅଗକୁ
ବିପିଟ କବা रिपिट करना ଚଉଡ଼ାଇବା—To rivet.

ରିପିଟ(ଟା)ର୍—ବୈଦେ. ବ. (ଇଂ. ରିପିଟର)—ଏକ ପ୍ରକାର ପକେଟ
Ripit(ta)r ଘଣ୍ଟା ବା ଘଡ଼ି—A repeater; a repeat-
বিপিটাব रिपिटर ing watch.

[ରିପିଟ(ଟା)ର୍ ଘଡ଼ି—ଅନ୍ୟରୂପ] [ ଦ୍ର—ଏ ଘଡ଼ିରେ ଘଣ୍ଟା ବାଜିବାର କଳ ଥାଏ । ଏ ଘଡ଼ିର ବିଶେଷତ୍ୱ ଏହି କି ଯେତେବେଳେ ଇଚ୍ଛା ସେତେବେଳେ ଏଥିର ସ୍ପ୍ରିଙ୍ଗ୍‌କୁ ଚିପି ଦେଲେ ସେତେବେଳେ କେତେଟା ବାଜିଛି, ତାହା ପୁଣି ଘଣ୍ଟିରେ ବାଜି ଯାଏ ।]

ରିପୁ—ସ. ବ. (ରପ୍ ଧାତୁ କହିବା + କର୍ତ୍ତୃ ଉ. ଲପାତନ; ଯେ ଅଗୋଚରରେ
Ripu କହି ବୁଲେ)—୧ । ଶତ୍ରୁ, ବିପକ୍ଷ—1. Enemy. ୨ । ଆପଣା ଶରୀରସ୍ଥ ଛଅ ଗୋଟି ଦୁର୍ଗୁଣ (ଯଥା କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ)—2. The low passions in man e.g lust, anger, avarice, delusion, pride and malice.
ବୈଦେ ବ—ରିଫୁ ଇତ୍ୟାଦି (ଦେଖ)—Riphu (See)

ରିପୁ କ୍ଷୟ—ସ. ବ. (୬ଷ୍ଠୀ ତତ୍)—ଶତ୍ରୁର ବିନାଶ—
Ripu kshaya The distruction of one's enemy.
(ରିପୁ ଧ୍ୱଂସ, ରିପୁନାଶ—ଅନ୍ୟରୂପ)

ରିପୁଘ୍ନ—ସ. ବଣ. (ରିପୁ+ହନ ଧାତୁ+କର୍ତ୍ତୃ.ଅ)—ଶତ୍ରୁ ବିନାଶକ -
Ripughna (ରିପୁଘ୍ନୀ—ସ୍ତ୍ରୀ) Destructive of one's foes.

ରିପୁଜୟ—ସ. ବ. (୬ଷ୍ଠୀ ତତ୍)—୧ । ଶତ୍ରୁକୁ ପରାଜୟ କରିବା—
Ripujaya 1. The defeating of one's enemy.
(ରିପୁଦମନ—ଅନ୍ୟରୂପ) ୨ । କାମକ୍ରୋଧାଦିଙ୍କୁ ବଶ କରିବା—
2. The controlling of one's passions.

ରିପୁ ପରତନ୍ତ୍ର—ସଂ. ବଣ. ପୁଂ—୧ । ଶତ୍ରୁର ଅଧୀନ—
Ripu paratantra 1. Subjected to the enemy.
ରିପୁବଶ, ରିପୁବଶବର୍ତ୍ତୀ, ରିପୁବଶୀଭୂତ, ରିପୁପରବଶ } ଅନ୍ୟରୂପ ୨ । କାମକ୍ରୋଧାଦିର ବଶୀଭୂତ—
ରିପୁପରତନ୍ତ୍ରତା, ରିପୁବଶତା, ରିପୁବଶବର୍ତ୍ତିତା } ବ. 2. Subjected to the passions; impassionate. ୩। ଅଜିତେନ୍ଦ୍ରିୟ—3. Not having the passions under control.

ରିପୁ ପୀଡ଼ା—ସ. ବ. ( ମ. ପ. ଲୋ )—୧ ଶତ୍ରୁକୃତ ଅତ୍ୟାଚାର—
Ripu pirda 1.The oppression by the enemy
୨ । ଶରୀରସ୍ଥ ରିପୁଙ୍କ ପ୍ରଭାବ—2. The impulse of passions.

ରିପୁ ବଳ—ସଂ. ବ. ( ୬ଷ୍ଠୀ ତତ୍ )—୧ । ଶତ୍ରୁର ପରାକ୍ରମ ବା କ୍ଷମତା
Ripu bala —1, The strength of one's adversary. ୨ । ଶତ୍ରୁ ପକ୍ଷର ସେନା—2. The army of the enemy; the enemy's forces.

ରିପୁ ଶକ୍ତି—ସଂ. ବ. ( ୬ଷ୍ଠୀ ତତ୍ )—୧ । ଶତ୍ରୁର ବଳ—1. The
Ripu sakti strength of the enemy, ୨ । ଶତ୍ରୁ ରାଜା—2. The enemy king or power.

ରିପୋର୍ଟ(ର୍ଟ୍)—ବୈଦେ. ବ. (କଚେରୀ) ( ଇଂ. ରିପୋର୍ଟ୍ )—୧ ।
Repot(rt) କୌଣସି ଘଟଣାର ଲିଖିତ ବିବରଣୀ ବା ବୃତ୍ତାନ୍ତ
বিপোর্ট —1. A written report. ( ଯଥା—
रिपोर्ट ବାର୍ଷିକ ରିପୋର୍ଟ୍, ସମ୍ବାଦ ରିପୋର୍ଟ୍ । ) ୨ । ଉର୍ଦ୍ଧ୍ୱତନ

କର୍ମଚାରୀ ବା କର୍ତ୍ତୃପକ୍ଷଙ୍କ ନିକଟକୁ ପ୍ରେରିତ କୌଣସି ଘଟଣାର ବିବରଣ—2. A report submitted to a higher authority. (ଯଥା—ପୁଲିସ୍ ରିପୋର୍ଟ୍, ଜନ୍ମ ମୃତ୍ୟୁ ରିପୋର୍ଟ୍ ।) ୩ । ଜମିଦାରୀ ଇତ୍ୟାଦି ପାଇଁ ଦେୟ ରାଜସ୍ୱ ବା ସଦର ଜମା—3. The revenue payable to Government for a Zamindary or tenure. ୪ । କର୍ତ୍ତୃପକ୍ଷଙ୍କ ନିକଟକୁ ଅଧସ୍ତନ କର୍ମଚାରୀଙ୍କ ପ୍ରେରିତ ବା ସାଧାରଣଙ୍କ ଅବଗତି ନିମନ୍ତେ କର୍ତ୍ତୃପକ୍ଷଙ୍କ ଦ୍ୱାରା ପ୍ରକାଶିତ କୌଣସି ବିଷୟର ଲିଖିତ ସଠିକ ବିବରଣ—4. Report of a subordinate to the authorities or a report published by the authorities for general information [ଦ୍ର—ଇଂ. ରିପୋର୍ଟ (Report)ର ମୌଳିକ ଅର୍ଥ ଯାହା ଶୁଣାଯାଏ ବା କଥିତ ବିବରଣ । କିନ୍ତୁ କଥିତ ବିବରଣ ସାଧାରଣତଃ ଲିଖିତ ଆକାର ଧାରଣ କରିବାରୁ ଏ ଶବ୍ଦ ଲିଖିତ ବିବରଣକୁ ଓ କର୍ତ୍ତୃପକ୍ଷଙ୍କ ନିକଟକୁ ଅଧସ୍ତନ ବ୍ୟକ୍ତିଙ୍କ ପ୍ରେରିତ ଲିଖିତ ବିବୃତିକୁ ବୁଝାଇ ଅଛି । ]

ରିପୋଟ୍(ର୍ଟ୍) କରିବା—ଦେ. କ୍ରି—କର୍ତ୍ତୃପକ୍ଷଙ୍କ ନିକଟକୁ ଲିଖିତ ବିବରଣ ପଠାଇବା—To report to a higher authority.
Repot(rt) kariba
[ରିପୋଟ(ର୍ଟ) ଦେବା—ଅନ୍ୟରୂପ]
বিপোট কবা **रिपोर्ट करना**

ରିପୋଟ(ର୍ଟ) ଦାର—ବୈଦେ. ପ୍ରାଦେ (ପୁରୀ) ବି—(ଓଡ଼ିଶାର ସାବେକ ବନ୍ଦୋବସ୍ତ ସମୟରୁ ପ୍ରଚଳିତ ଶବ୍ଦ; ଇଂ. ରିପୋର୍ଟ୍+ଫା. ପ୍ରତ୍ୟୟ ଦାର୍)—ପୁରୀଜିଲ୍ଲା ସହାଙ୍ଗ ଶାସନର ଟଙ୍କି ଖଜଣାମାନ ସମସ୍ତ ଟିକିଦାରଙ୍କଠାରୁ ଆଦାୟ କରି ଗ୍ରାମର ଯେଉଁ ମୁଖ୍ୟବ୍ୟକ୍ତି ଜମିଦାରଙ୍କ ନିକଟରେ ସମସ୍ତ ଟିକିଦାରଙ୍କ ପକ୍ଷରୁ ଦାଖଲ କରୁଥିଲେ—Representatives of the village community who used to deposit the quitrent of Sasan villages of the Puri district to the superior landlord. [ଦ୍ର—ପୂର୍ବେ ଗୋଟିଏ ଟଙ୍କି ବାନ୍ଧେଲ ମହଜାର ସମସ୍ତ ଜମିର ଟଙ୍କି ଖଜଣା ପାଇଁ ଶାସନର ସମସ୍ତ ଟିକିଦାରଙ୍କଠାରୁ ନ ନେଇ କେବଳ ଦାଖଲଧାରଙ୍କ ବଂଶଧରଙ୍କଠାରୁ ଇଂରାଜ ଗଭର୍ଣ୍ଣମେଣ୍ଟ କବୁଲିୟତ୍ ଲେଖାଇ ନେଉଥିଲେ ।]
Repot(rt) dār

ରିପୋଟ୍ ପଠା(ଠେ)ଇବା—ଦେ. କ୍ରି—କର୍ତ୍ତୃପକ୍ଷଙ୍କ ନିକଟକୁ ରିପୋର୍ଟ ପ୍ରେରଣ କରିବା—To send a report to an authority
Ripot patha(the)iba
বিপোট পাঠান **रिपोर्ट भेजना**
(ରିପୋଟ୍ ଭେଜିବା—କଥିତ ରୂପ)

ରିପୋଟ(ର୍ଟ)ର୍—ବୈଦେ. ବି (ଇଂ. ରିପୋର୍ଟର୍)—କୌଣସି ଘଟଣା-ସ୍ଥଳରେ ପହଞ୍ଚି ଘଟଣାର ବିବରଣ କର୍ତ୍ତୃପକ୍ଷଙ୍କଠାରୁ ଲେଖି ପଠାଇବା ନିମନ୍ତେ ନିଯୁକ୍ତ ବ୍ୟକ୍ତି—A reporter.
Repota(rta)r
রিপোটাব **रिपोर्टर**

ରିପ୍ର—ସଂ ବିଣ. ପୁଂ [ ରୀ ଧାତୁ+କର୍ତ୍ତୃ. ର; ପ ଆଗମ ]—ନୀଚ; ଅଧମ—Base; inferior. ସଂ. ବି [+କରଣ. ପ୍ର ]—ପାତକ; ପାପ [ ଦ୍ର. ଶ ]—Sin.
Ripra

ରିପ୍ରବାହ—ସଂ. ବିଣ. ପୁଂ [ ରିପ୍ର+ବହ ଧାତୁ+କର୍ତ୍ତୃ. ଅ ]—ପାପ ନାଶକାରୀ [ ଦ୍ର. ଶ ]—Destroying sin.
Ripra bāha

ରିପ୍ଲା[ପ୍ଲେ]ଇ କାର୍ଡ[ର୍ଡ]—ବୈଦେ. ବି [ ଇଂ. ରିପ୍ଲାଇକାର୍ଡ ]—ପୋଷ୍ଟକାର୍ଡ ସଙ୍ଗେ ପ୍ରେରକର ଉତ୍ତର ଦେବା ପାଇଁ ଲାଗିଥିବା ଆଉ ଖଣ୍ଡିଏ କାର୍ଡ—Reply card.
Ripla[ple]i kard (rd)
বিপ্লাই কাড **रिप्लाई कार्ड; जवाबी कार्ड**

ରିପ୍ଲାଇ ପେଡ୍ ଟେଲିଗ୍ରାମ୍—ବୈଦେ. ବି—(ଇଂ. ରିପ୍ଲାଇ ପେଡ୍ ଟେଲିଗ୍ରାମ)—ଟେଲିଗ୍ରାମ୍ ବା ତାର୍ ଖବର ପଠାଇବା ବ୍ୟକ୍ତି ଯେଉଁ ଟେଲିଗ୍ରାମ ସଙ୍ଗେ ଫେରନ୍ତା ଉତ୍ତର ପାଇଁ ଆଗରୁ ଖରଚ ଡାକଅଫିସ୍‌ରେ ଜମା ଦେଇ ଥାଆନ୍ତି—Replypaid telegram.
Riplāi ped teligrām
বিপ্লাই পেড তার **रिप्लाइ तार, जवाबी तार**
ରିପ୍ଲାଇ ପେଡ୍ ତାର, ରିପ୍ଲାଇ ତାର, ରିପ୍ଲାଇ ଟେଲିଗ୍ରାମ୍—ଅନ୍ୟରୂପ]

ରିଫ୍ [ଧାତୁ]—ସଂ.—ନିନ୍ଦା କରିବା—To blame; to vilify.
Riph (root)

ରିଫଣ୍ଡ—ବୈଦେ. ବି (ଇଂ) (କଥିତ)—ଗୃହୀତ ଧନର ପ୍ରତ୍ୟର୍ପଣ—Refund.
Riphand
বিফণ্ড **रिफण्ड**

ରିଫର୍ମ—ବୈଦେ. ବି.—[ଇଂ. ରିଫର୍ମ୍]—ଶାସନପଦ୍ଧତିର, ଧର୍ମର ବା ସମାଜର ସଂସ୍କାର—Reform (of administration, religions or society.
Ripharm
বিফর্ম **रिफर्म**

ରିଫାଇନ୍—ବୈଦେ. ବିଣ.—[ଇଂ. ରିଫାଇନ୍ଡ୍]—ଶୋଧିତ—Refined.
Rephāin বিফাইন **रिफाईन**

ରିଫାଇନ୍ କରିବା—ଦେ. କ୍ରି.—[ଇଂ. ରିଫାଇନ୍]—କୌଣସି ଦ୍ରବ୍ୟକୁ ବିଶେଷ ପ୍ରକ୍ରିୟାଦ୍ୱାରା ଶୋଧିତ କରିବା—To refine an article by special process.
Rephain kariba
বিফাইন কবা **रिफाईन करना**

ରିଫୁ [ଇତ୍ୟାଦି]—ବୈଦେ. ବି.—[ଅ. ରଫୁ]—ରଫୁ ଇତ୍ୟାଦି (ଦେଖ) Raphu etc (See).
Riphu (etc)

ରିବ(ବି) ରିବ(ବି)—ଦେ. ଅ—ବିରିବିରି; କ୍ଷୁଦ୍ର କ୍ଷୁଦ୍ର ଫିମିର ଦେହରେ ବାହାରିବା ପ୍ରକାରେ—Coming out in numerous small pimples.
Rib(bi)rib(bi)
গুঁডিগুঁডি **दानादाना**

ରିଭଲଭ(ଭା)ର୍—ବୈଦେ. ବି (ଇଂ. ରିଭଲ୍‌ଭର୍)—ଏକପ୍ରକାର ଘୂର୍ଣ୍ଣାୟମାନ ବନ୍ଧୁ କଳଯୁକ୍ତ ଛୋଟ ବନ୍ଧୁକ; (ଏହାକୁ ପକେଟରେ ରଖା ଯାଇ ପାରେ)—A revolver (gun).
Ribhalbha(bhār)
বিভলভাব **रिमलभर**

ରିଭଲିଉସନ୍—ବୈଦେ. ବି. (ଇଂ)—୧ । ଦେଶବ୍ୟାପୀ ରାଜବିଦ୍ରୋହ; ମେଳ—Revolution; revolt. ୨ । ହଠାତ୍ ଗୁରୁତର ପରିବର୍ତ୍ତନ—2 Sudden change. ୩ । ଘୂର୍ଣ୍ଣନ—3. Revolution; revolving. ୪ । ଘୂରିବାର ଥର—4. Revolution; one revolv-
Ribhaliusan
(ରିଭଲ୍ୟୁସନ୍—ଅନ୍ୟରୂପ)
বিভলিউসন **रिभल्युसन**

**ରିଭାଇଜ୍ କରିବା** - ବୈଦେ, କ୍ରି (ଇଂ. ରିଭାଇଜ୍)—କୌଣସି ପଠିତ ବା
Ribhāij karibā ଲିଖିତ ବିଷୟକୁ ପୁନର୍ବିଚାର ବା ପୁନର୍
रिभाइजकरबा **रिभाइजकरना** ଲୋଚନା ବା ସଂଶୋଧନ
କରିବା—To revise

**ରିଭାଇଜ୍(ଜ୍‌ଡ)ଲିଷ୍ଟ**—ବୈଦେ. ବି (ଇଂ)—ସଂଶୋଧିତ ତାଲିକା—
Ribhāij(jd) lisht Revised list
रिभाइजलिष्ट **रिभाइजलिस्ट**

**ରିଭାଲୁଏସନ୍**—ବୈଦେ. ବି [ଇଂ. ରିଭାଲୁଏସନ୍=ମୂଲ୍ୟର ପୁନର୍ନିର୍ଧାରଣ]
Ribhāluesan ସରକାରଙ୍କ ସ୍ଥିରୀକୃତ ସେଜ୍‌ସେସ୍‌କୁ
रिभालुएसन **रिभालपेसन** ନିର୍ଦ୍ଧାରିତ ମିଆଦ ପରେ
ପୁଣି ସଂଶୋଧନ କରିବା ଉଦ୍ଦେଶ୍ୟରେ ରୋଡ୍‌ସେସ୍
ବିଷୟାଯାଉଥିବା ଜମିର ବାର୍ଷିକ ଉତ୍ପାଦନର ସ୍ଥିରୀକରଣ—
Revaluation; roadcess revaluation.

**ରିଭିଜନ୍**—ବୈଦେ. ବି [ଇଂ. ରିଭିଜନ୍]—୧ । କୌଣସି ଲିଖିତ ବା
Rivijan ପଠିତ ବିଷୟର ସଂଶୋଧନାର୍ଥ ପୁନର୍ବାର
विभिजन **रिभिजन** ଆଲୋଚନା ବା ଅବୃତ୍ତି—1. Revision
୨ । କୌଣସି ଚଠା ବା ପାଣ୍ଡୁଲିପିକୁ ତନ୍ନ ତନ୍ନ କରି
ପରୀକ୍ଷାକରି ସେଥିରେ ଛଡ଼ା ହୋଇଥିବା ବିଷୟର ପୂରଣ
ବା ଅନାବଶ୍ୟକ ବିଷୟକୁ ବାଦ୍ ଦେବାରୂପ କର୍ମ—
2. Rivision of a draft or manuscript.

**ରିଭିଜନ୍‌ସେଟ୍‌ଲମେଣ୍ଟ**—ବୈଦେ. ବି [ଇଂ. ରିଭିଜନ୍]—ଏକ ଭୂସମ୍ପତ୍ତିର
Ribhijan setlment ବନ୍ଦୋବସ୍ତର ମିଆଦ ମଧ୍ୟରେ ଜମି-
विभिजनसेटलमेंट **रिभिजनप्रबंध** ଜମା ଆଦିର ସଂଶୋଧନ
( ରିଭିଜନ ବନ୍ଦୋବସ୍ତ—ଅନ୍ୟରୂପ ) କର୍ମ—Revision
Settlement.

**ରିମ୍**—ବୈଦେ. ବି. (ଇଂ. ରିମ୍)—୨୦ ଦସ୍ତା ବା ୪୮୦ ଫର୍ଦ୍ଦ
Rim କାଗଜ—Ream (of paper). [ଦ୍ରୁ—୧ ରିମ୍
रिम **रीम** =୨୦ ଦସ୍ତା; ୧ ଦସ୍ତା=୨୪ ଫର୍ଦ୍ଦ ।]

**ରିମ୍ ରିମ୍**—ଦେ. ଅ. ( ଧ୍ୱନ୍ୟନୁକରଣ )—ଟିପିଟିପି ( ବର୍ଷା )—
Rim rim Raining in small drops; drizzling.
टिपटिप **रीमझीम** (ଗଡ଼ଜାତବାସିମାନ—୫।୭।୩୦)

**ରିମା(ମ୍ମା)**—ଦେ. ବି. (ନାମ, ସ. ରେବା)—୧ । ମଧ୍ୟଭାରତର ଗୋଟିଏ
Rimā(mmā) କରଦ ରାଜ୍ୟ, ରେୱା—1. Name of a
विमा, बेओया tributary State in the Central
**रेवा** India; Rewa. [ ଦ୍ରୁ—ଏହା ମଧ୍ୟ ଭାରତର
ବଘେଲଖଣ୍ଡର ଗୋଟିଏ ରାଜ୍ୟ । ଏ ରାଜ୍ୟରେ ରେବା ନଦୀ
ବହୁଅଛି । ରିମା ରାଜା ପୁରୁଷୋତ୍ତମଙ୍କୁ ତୀର୍ଥଯାତ୍ରା କରି ଆସି
ବାଟରେ ଓ ପୁରୀରେ ବହୁ ଧନ ଓ ହାତୀ ଘୋଡ଼ା ବିତରଣ
କରିଥିବାରୁ ତାଙ୍କ ନାମରେ ଗୀତ ଅଦ୍ୟାବଧି ଭିକ୍ଷୁକମାନଙ୍କ
ମୁହଁରୁ ଶୁଣାଯାଏ । ଯଥା—
ରିମା ରାଜା ଆସିଥିଲେ ପୁରୁଷୋତ୍ତମକୁ
କେତେ ହାତୀ ଘୋଡ଼ା ଦେଇଗଲେ ବାଟଘାଟକୁ—ଇତ୍ୟାଦ
ଏ ରାଜ୍ୟର କ୍ଷେତ୍ରଫଳ ୧୩ ହଜାର ବର୍ଗମାଇଲ୍ ଓ ବାର୍ଷିକ
ରାଜସ୍ୱ ଅନୁଯୁ ୬୦ ଲକ୍ଷ ଟଙ୍କା । ଲୋକସଂଖ୍ୟା ପ୍ରାୟ ୧୭ ଲକ୍ଷ] ।

୨ । କ୍ରୋଧ; ରୋଷାବେଶ—2. Rage; anger.

**ରିମି**—ପ୍ରାଦେ. [ଗଡ଼ଜାତ] ବି—ବ୍ୟାଘ୍ରାଦି ବନ୍ୟ ଜନ୍ତୁଦ୍ୱାରା ହତ
Rimi ମୃତାହ୍ ପଶୁ—An animal killed by a wild
beast; a kill.

**ରିମି ରିମି**—ଦେ. ବିଣ ଓ କ୍ରି. ବିଣ—ଟିପି ଟିପି (ବର୍ଷା)—
Rimi rimi Drizzling (rain)

**ରିମ୍ଫ**—ସଂ. ବି—(ଜ୍ୟୋତିଷ)—ରାଶିଚକ୍ର—
Rimpha The zodiac.

**ରିୟାତ(ତି)**—ବୈଦେ. ବି.—ରିଆତ୍ [ଦେଖ]
Riyāt(ti) Riāt (See)

**ରିୟାହି**—ବୈଦେ. ବି—ରିହାଇ (ଦେଖ)
Riyāhi Rihāi (See)

**ରିରଂସା**—ସଂ. ବି.—[ରମ୍ ଧାତୁ+ଇଚ୍ଛା ଅର୍ଥେ ସନ୍. ଭାବ ଅ+
Riraṁsā ଆ ]—୧ । ରମଣେଚ୍ଛା; କାମପ୍ରବୃତ୍ତି ଚରିତାର୍ଥ
[ରିରଂସୁ—ବିଣ] କରିବାର ଇଚ୍ଛା—1. Amorous desire,
lust. ୨ । କ୍ରୀଡ଼ା କରିବାର ଇଚ୍ଛା—2. Desire
for sport.

**ରିରି**—ଦେ. ଅ—[ଧ୍ୱନ୍ୟନୁକରଣ]—ବେହେଲା ବଜାଇବାର ଶବ୍ଦ—
Riri रीरी The sound of violin

**ରିରୀ**—ସଂ. ବି.—(ରି ଧାତୁ=ଗମନ କରିବା+କର୍ତ୍ତୃ. ଈ) ପିତ୍ତଳ—
Rirī Brass.

**ରିଲ୍**—ବୈଦେ. ବି.—[ଇଂ. ରିଲ୍]—ସୂତା ଗୁଡ଼ାଇବାର କାଠର
Ril रिल **रिल** ଚକଡି ବା ଲଟାଇ—Reel for wind-
ing thread.

**ରିଲ ସୂତା**—ଦେ. ବି.—ଚକଡିରେ କଳଦ୍ୱାରା ଗୁଡ଼ା ହୋଇଥିବା ସୂତା—
Ril sūtā Thread wound round a reel with the
रील सूता **रील सूता** help of machine.

**ରିଶ୍(ଶ୍ୱି)ପ(ବ)ତ୍**—ବୈଦେ. ବି.—[ଆ. ରିସ୍‌ବତ୍]—ଲାଞ୍ଚ; ଉତ୍କୋଚ,
Riś-(śi)pa(ba)t ଦୁଷ୍ଟ; ଅନ୍ତାଗୁଣ୍ଡା—Illegal gratifica
विसवत **रिशवत** tion; bribe. [ ଦ୍ରୁ—ପିଲାରୁ ଲାଞ୍ଚ
କଣାରୁହା ଛଡ଼ା କାହାର ଠାରୁ କିଛି ଲାଞ୍ଚ ରିଶପତ୍ ଛୁଏଁ
ନାହିଁ । ଫକୀରମୋହନ ଛମାଣ. ଆଠଗୁଣ୍ଠ ।]

**ରିଶ୍(ଶ୍ୱି)ପ(ବ)ତ୍ ଖାଇବା**—ଦେ. କ୍ରି.—(ଆ. ରିସ୍‌ବତ୍)—ଲାଞ୍ଚନେବା;
Riś-(śi)pa(ba)t khāibā ଉତ୍କୋଚ ଗ୍ରହଣ କରିବା—
विसवत खाओया To take illegal gratification; to
**रिशवतखाना** take bribe.

**ରିଶ୍(ଶ୍ୱି)ପ(ବ)ତ୍‌ଖୋର୍**—ବୈଦେ. ବିଣ (ଫା. ରିସ୍‌ବତ୍‌ଖୋର୍)—
Riś-(śi)pa(ba)tkhor ଉତ୍କୋଚଗ୍ରାହୀ; ଲାଞ୍ଚୁଆ; ଯେଉଁ ବ୍ୟକ୍ତି
[ ରିଶ୍(ଶ୍ୱି)ପ(ବ)ତ୍‌ଖୋରିଆ(ୟା)—ଦେ. ରୂପ] ଉତ୍କୋଚ ଗ୍ରହଣ
विसवतखोर କରେ—One habituated to taking
**रिशवतखोर** bribe.

**ରିଶ୍(ଶ୍ୱି)ପ(ବ)ତ୍ ଖୋରି**—ବୈଦେ. ବି ( ଫା )—ଲାଞ୍ଚଅପଣ,
Riś-(śi)pa(ba)t khorī ଉତ୍କୋଚ ଗ୍ରହଣ କରିବାର
विसवतखोरी ଅଭ୍ୟାସ—Habitual bribe-taking;
**रिशवत खोरी** bribery.

ରିଶ୍(ଶି)ପ(ବ)ତ୍ ଜାଚିବା—ଦେ. କ୍ରି—ଲାଞ୍ଚ ଯାଚିବା, କୌଣସି ବ୍ୟକ୍ତିକୁ
Riś(śi)pa(ba)t jāchibā ଲାଞ୍ଚ ଦେବା ପାଇଁ ଲୋଭ
বিসবতদিতে চাওয়া ଦେଖାଇବା—To offer bribe.
रिसवत् बारना

ରିଶ୍(ଶି)ପ(ବ)ତ୍ ଦେବା—ଦେ. କ୍ରି—ଲାଞ୍ଚ ଦେବା; କୌଣସି ବ୍ୟକ୍ତିକୁ
Riś(śi)pa(ba)t debā ଲାଞ୍ଚକୋଚ ଦେବା—To bribe a
বিসবতদেওয়া रिशवत देना person

ରିଷ୍ (ଧାତୁ)—ସ—ବଧ କରିବା—
Rish (root) To kill.

ରିଷ(ଷା)—ଦେ. ବି (ସ. ଈର୍ଷା, ପ୍ରା. ଈସା; ସ. ରୋଷ)—୧ । କ୍ରୋଧ,
Risha(shā) ରାଗ; ରୋଷ—1. Rage; anger; wrath.
বিশ ୨ । ହିଂସା; ଦ୍ୱେଷ; ଈର୍ଷା—2. Envy; malice. [ଉ—
रिस ତୁମ୍ଭ ହୃଦୟରେ ତ ରିଷା କରି ବାସ, ଦେଇଛୁ ଧର୍ମବୁଦ୍ଧିଯାକ
କରି ନାଶ । କୃଷ୍ଣସିଂହ. ମହାଭାରତ ]

ରିଷଭ—ଦେ. ବି (ସ. ବୃଷଭ)—ସୌର ଜ୍ୟୈଷ୍ଠମାସ—The solar
Rishabha month of Jyaishṭha. [ଉ—ରିଷଭ ସଂକ୍ରାନ୍ତି
ସନ୍ଧି ଆଷାଢ଼ର ଅନ୍ତେ । ଶ୍ରାବଣ ପ୍ରବେଶ ଯେ। ଜଳଦ
ବୃଷ୍ଟି ହୋଇନ୍ତେ । ପ୍ରାଚୀ. ରହସ୍ୟମଞ୍ଜରୀ ।]

ରିଷା(ଷେ)ଇବା—ଦେ. କ୍ରି (ସ. ରୋଷ ରୁଷ୍ ଧାତୁ)—ରଗାଇବା;
Rishā(she)ibā ଚଡ଼ାଇବା—To irritate; to enrage.
বাগান ପ୍ରାଦେ (ସମ୍ବଲପୁର) କ୍ରି—ରାଗିବା—To be angry; to
रिसाना, रिसवाना be enraged.

ରିଷା କରିବା—ଦେ. କ୍ରି—୧ । ଅକ୍ରୋଶ କରିବା—1. To envy.
Rishā karibā ୨ । କ୍ରୋଧ କରିବା—2. To be angry.
বিশকবা [ଉ—ଏ ରୂପେ ଯେଉଁ ସ୍ତ୍ରୀଷୁ ତାଙ୍କୁ ରିଷା କରି, ବ ରୂପେ
रिसकरना ଦେଖାଇବ କାଳ ଦଣ୍ଡଧାରୀ । କୃଷ୍ଣସିଂହ. ମହାଭାରତ
ସ୍ତ୍ରୀଷୁ । ]

ରିଷା ରିଷି—ଦେ ବି—୧ । ରଗାରଗି; ରୋଷାରୋଷି; ଅନ୍ୟୋନ୍ୟରେ
Rishārishi କ୍ରୁଦ୍ଧଭାବ—1. Angry attitude towards
বেসাবেসী each other; mutul anger. ୨ । ଉଭୟ
रिसारिसी ପକ୍ଷରେ ରାଗିଯାଇ କଥାବାର୍ତ୍ତା କରିବା—2. Exchange of ho twords. ଦେ. ବିଣ—ପରସ୍ପର ପ୍ରତି
କ୍ରୋଧାନ୍ୱିତ—Mutually angry.

ରିସାଲ୍‌ଦାର୍—ବୈଦେ. ବି (ଫା)—ଭାରତୀୟ ଘୋଡ଼ସବାର ସୈନ୍ୟ-
Rishāl-dār ଗୁଳ୍ମର ଅଧିପ—Risaldār; a captain of
বিসালদার a contingent of Indian cavalry troop.
रिसालदार [ଦ୍ର—ଏମାନଙ୍କ ପଦବୀ ଅନୁସାରେ ରିସାଲ୍‌ଦାର୍
କାପ୍ତାନ୍ (Risāldār Captain) ଓ ରିସାଲ୍‌ଦାର୍
ମେଜର୍ (Risāldār Major) ଆଦି ବୋଲଯାଏ ।]

ରିସାଲି—ବୈଦେ. ବି (କଚେରିଅ; ଆ. ଇର୍‌ସାଲ୍=ମଫସଲରୁ ରାଜଧାନୀକୁ
Rishāli ପ୍ରେରିତ ରାଜସ୍ୱ)—୧ । ଧନକୁ ସ୍ଥାନାନ୍ତର ପ୍ରେରଣ—
ইর্সাল 1. Remittance of money. ୨ । ମଫସଲରୁ ଆଦାୟ
इरसाल ହେବା ରାଜସ୍ୱକୁ ସଦରକୁ ପ୍ରେରଣ—2. Remittance
of revenue realised from mofussal to the
head quarters

ରିସାଲି କରିବା—ଦେ କ୍ରି (କଚେରିଅ)—୧ । ଧନାଦି ସ୍ଥାନାନ୍ତରକୁ
Rishāli karibā ପ୍ରେରଣ କରିବା—1. To send or
ইসাল কবা remit money etc to another place.
इरसाल करना ୨ । ମଫସଲରୁ ଆଦାୟ ହେବା ଟଙ୍କା ସଦରକୁ
ପଠାଇବା—2. To remit rent realised from
mofassal to the head quarters.

ରୁଷା ହେବା—ଦେ. କ୍ରି—ରାଗିବା—
Rishā hebā To be angry; to be enraged.
বাগকবা रिसियाना

ରିଷି—ସ. ବି (ଋଷ୍ ଧାତୁ=ଗମନ କରିବା+କର୍ତ୍ତୃ. ଇ)—ଋଷି; ମୁନି
Rishi (ପ୍ରକୃତିବାଦ)—A sage.

ରିଷୁଆ—ଦେ. ବିଣ. ପୁଂ ଓ ସ୍ତ୍ରୀ—(ସ. ରୋଷବାନ୍)—କ୍ରୋଧୀ;
Rishuā ক্রোধী रिसहा କ୍ରୋଧନ—Of fiery temper.
(ରିଷେ[ଷୋ]ଇ—ସ୍ତ୍ରୀ)

ରିଷେଇ ଦେଖିବା—ଦେ.କ୍ରି (ସ.ରୋଷ)—ତର୍ଜ୍ଜନ ଗର୍ଜ୍ଜିବା; ଭ୍ରୂକୁଟି କରି
Rishei dekhibā ଗର୍ଜ୍ଜିବା; ରୋଷଦୃଷ୍ଟି କରିବା—To look
বেগেতাকান upon with frown; to scowl
रिससे देखना

ରିଷ୍ଟ୍ ଲେଟ୍—ବୈଦେ. ବି.—(ଇଂ.)—ରିସ୍ଲେଟ୍ (ଦେଖ)
Rishṭ leṭ Risleṭ (See)

ରିଷ୍ଟ୍ ଵାଚ୍—ବୈଦେ.—(ଇଂ. ରିଷ୍ଟ୍ ଵାଚ)—ହାତଗଣ୍ଠିରେ ବନ୍ଧାଯିବା
Rishṭ wāch ଫିତା ବା ଚେନ୍ ଲଗା ଏକ ପ୍ରକାର ଛୋଟ ଘଣ୍ଟା—
(ରିଷ୍ଟ୍ ଇଆଚ୍—ଅନ୍ୟରୂପ) Wrist watch.

ରିଷ୍ଟ—ସ. ବି.—[ସ. ରିଷ୍ ଧାତୁ=ବଧ କରିବା+କର୍ତ୍ତୃ. ତ]—
Rishṭa ୧ । ପାପ; କଳୁଷ—1. Sin. ୨ । ଅଶୁଭ; ବ୍ୟାଘାତ;
ବିଘ୍ନ; ଅମଙ୍ଗଳ—2. Impediment; woe; misfortune. ୩ । (+ଭାବ. ତ) ନାଶ; ଧ୍ୱଂସ—3.
Destruction, ruin. ୪ । (+କରଣ. ତ)—
ଖଡ୍ଗ; ଖଣ୍ଡା—4. Sword. ୫ । ଦୈତ୍ୟ ବିଶେଷ—
5. Name of a demon. ୬ । ରିଠା (ଫଳ ଓ
ବୃକ୍ଷ)—6. Soap berry; soap nut. ୭ ।
କଲ୍ୟାଣ; ଶୁଭ; ମଙ୍ଗଳ—7. Good fortune,
bliss. ୮ । ଅଭାବ—8. Want. ୯ । ପାରଦ;
ପାରା—9. Mercury. ୧୦ । ଅଶୁଭ ଶକୁନ—
10. Inauspicious sign; evil omen.
[ ଉ—ଦ୍ୱାରକା ପୁରେ ରିଷ୍ଟ ଜାତ, ଦେଖି ଚକିତ
ଯଦୁନାଥ ଭାଗବତ । ] ୧୧ । (ଫଳିତ ଜ୍ୟୋତିଷ)—ଗ୍ରହ
ଓ ନକ୍ଷତ୍ରାଦିଙ୍କ ବର୍ଣ୍ଣିଷ୍ଟ ଅବସ୍ଥାନ ଯୋଗୁଁ ବ୍ୟକ୍ତି ବିଶେଷର
ଜୀବନରେ ଆଶଙ୍କିତ ଅମଙ୍ଗଳ—( Astrology )
Apprehended misfortune of a person on
account of the interposition of planets
and stars in his horoscope.

ବିଣ.—୧ । (+କର୍ତ୍ତୃ. ତ) ପାପଜନକ—1. Sinful. ୨ । ଅଶୁଭସୂଚକ; ଅମଙ୍ଗଳକର—2. Ominous; woeful. ୩ । ନଷ୍ଟ (ବୃ. ଶ)—3. Damaged. [ଦ୍ର—ଫଳିତ ଜ୍ୟୋତିଷ ମତରେ ରିଷ୍ଟର ନାନା ପ୍ରକାର ଭେଦ ଦେଖାଯାଏ । ଯଥା—ଗଣ୍ଡରିଷ୍ଟ, ମାତୃରିଷ୍ଟ, ପିତୃରିଷ୍ଟ, ସନ୍ତାନରିଷ୍ଟ, ଶିଶୁରିଷ୍ଟ, ଭ୍ରାତୃରିଷ୍ଟ । ଶିଶୁର ଜାତକରେ ଅବସ୍ଥିତ ଗ୍ରହମାନଙ୍କର ଅବସ୍ଥିତି ଯୋଗୁ ଶିଶୁର ମାତା ପ୍ରତି ଅମଙ୍ଗଳ ଘଟନାରେ ମାତୃରିଷ୍ଟ ହୁଏ । ଅଶ୍ୱିନୀ, ମଘା, ଓ ମୂଳା—ଏ ତିନି ନକ୍ଷତ୍ରର ପ୍ରଥମ ପାଦକୁ, ରେବତୀ, ଅଶ୍ଳେଷା ଓ ଜ୍ୟେଷ୍ଠା—ଏ ତିନି ନକ୍ଷତ୍ରର ଶେଷ ପାଦକୁ ଗଣ୍ଡ ବୋଲାଯାଏ । ଦିବସରେ ଜ୍ୟେଷ୍ଠାର ଓ ମୂଳାର ଗଣ୍ଡ ପାଦ ବେଳେ ଶିଶୁର ଜନ୍ମ ହେଲେ ଏହା ପିତୃରିଷ୍ଟ । ରାତ୍ରିରେ ମଘାର ଗଣ୍ଡପାଦ ପଡ଼ିବା ସମୟରେ ଶିଶୁର ଜନ୍ମ ହେଲେ ମାତୃ ରିଷ୍ଟ ଓ ସନ୍ଧ୍ୟାବେଳେ ରେବତୀର ଓ ଅଶ୍ୱିନୀର ଗଣ୍ଡପାଦ ପଡ଼ିବା ସମୟରେ ଶିଶୁ ଜନ୍ମ ହେଲେ ଶିଶୁ ରିଷ୍ଟ ହୁଏ, ଅର୍ଥାତ୍ ଉକ୍ତ 'ରିଷ୍ଟ' ଯୋଗମାନ ଘଟିଲେ ଯଥାକ୍ରମେ ପିତା, ମାତା ଓ ଶିଶୁ ଅଶୁମୃତ୍ୟୁ ଲାଭ କରନ୍ତି । ଏହି 'ରିଷ୍ଟ ଶାନ୍ତି' କରିବା ପାଇଁ ସ୍ନାନ ଦାନାଦିର ମଧ୍ୟ ବ୍ୟବସ୍ଥା ଅଛି ।]

**ରିଷ୍ଟ କ୍ଷୟ**—ସଂ. ବି.—(୬ଷ୍ଠୀ ତତ୍)—ପାପକ୍ଷୟ; ଅଶୁଭର ବିନାଶ - Rishṭa kshaya Destruction or disappearance of sin or evil.

**ରିଷ୍ଟ ଖଣ୍ଡନ**—ସଂ. ବି.—(୬ଷ୍ଠୀ ତତ୍)—୧ । ଧର୍ମୀୟକର୍ମରୁ ପାପ ବା Rishṭa khandana ଅଶୁଭ କଟିଯିବା—1. Freedom or absolution from sins; the destruction of evil (by the preponderance of good). ୨ । ଶାସ୍ତ୍ରୋକ୍ତ ଦାନାଦିଦ୍ୱାରା ଜ୍ୟୋତିଷୋକ୍ତ ରିଷ୍ଟର ବାରଣ—2. The remedying of the evil effects of unpropitious planets by following the means enjoined in the Śāstras.

**ରିଷ୍ଟ ଗ୍ରହ**—ସଂ.ବି (ଜ୍ୟୋତିଷ)—୧ । ଗ୍ରହମାନଙ୍କର ଅମଙ୍ଗଳ ଅବସ୍ଥିତି— Rishṭa graha 1. Unpropitions positions of planets. ୨ । ପାପ ଗ୍ରହ; ମନ୍ଦ ଗ୍ରହ—2. Evil planets. (ଯଥା—ରାହୁ, ଶନି; କେତୁ ।)

**ରିଷ୍ଟ ଭଦ୍ର**—ସଂ. ବି ଓ ବିଣ (ରିଷ୍ଟ+ଭଦ୍ର)—ଭଲ ଓ ମନ୍ଦ— Rishṭa bhadra Good and bad.

**ରିଷ୍ଟ ଯୋଗ**—ସଂ. ବି (ଜ୍ୟୋତିଷ)—ଗ୍ରହମାନଙ୍କର ଅଶୁଭକର ଅବସ୍ଥିତି- Rishṭa joga Evil position of planets. (ଯଥା—ଏଥିର ଘଟିଲେ ମନୁଷ୍ୟର ଅମଙ୍ଗଳ ଓ ବିଘ୍ନାଦି ଘଟେ ।)

**ରିଷ୍ଟି**—ସଂ. ବି (ରିଷ୍ ଧାତୁ+କରଣ. ତି)—୧ । ଦୁର୍ଭାଗ୍ୟ; ରିଷ୍ଟ, ଅଶୁଭ; Rishṭi ଅମଙ୍ଗଳ—1. Evil; misfortune. (ଉ— ଅବିରତ ଯୁଦ୍ଧେ ପୁଷ୍ଟ ତୁଷ୍ଟି, ଯେଶେ ଖଣ୍ଡିବ ଜନ୍ମ ରିଷ୍ଟି । ଜଗନ୍ନାଥ, ଭାଗବତ ।) ୨ । ଖଡ୍ଗ—2. Sword. ୩ । ଶୁଭ—3. Bliss; fortune; good luck.

**ରିସବଗୁ(ଗୋ)ଲ(ଲି)**—ବୈଦେ. ବି—ଇସବ ଗୁଲ (ଦେଖ) Risabagu(go)la(li) Isabagul (See)

**ରିସ ହେବା**—ପ୍ରାଦେ. ( ବସ୍ତର ) କ୍ରି—ରୁଷିବା—To become Risa hebā sullen with displeasure. [ରିସାଇବା—ଅନ୍ୟ ପ୍ରାଦେ. ରୂପ]

**ରିସିମ୍**—ପ୍ରାଦେ. (ଗଡ଼ଜାତ) ବି—ତେଜପଣ — Risim Spirit.

**ରିସିମ ଦାର୍**—ପ୍ରାଦେ. (ଗଡ଼ଜାତ) ବିଣ—ତେଜସ୍ୱୀ— Risim-dār Spirited.

**ରିସ୍ଲେଟ**—ବୈଦେ.ବି. (ଇଂ. ରିଷ୍ଟଲେଟ୍)—ଏକପ୍ରକାର ସରୁ ବଳୟ— Rislet Wristlet.
ବିସଲେଟ रस्लेट

**ରିହ୍ (ଧାତୁ)**—ସଂ—୧ । ଋଣ କରିବା—1. To borrow. ୨ । ଘୃଣା Rih (root) କରିବା—2. To hate. ୩ । ବଧ କରିବା— 3. To kill.

**ରିହ**—ଦେ. ବି ( ସଂ. ଈର୍ଷ୍ୟା )—୧ । ଅଦେଖିଆ; ଈର୍ଷ୍ୟା; ହିଂସା— Riha 1. Grudge; malice; feeling of vengeance. বিষ, বাগ ୨ । (ସଂ. ଦ୍ୱେଷ) ଦ୍ୱେଷ; କ୍ରୋଧ; ରାଗ—2. Rage; **डाह, लाग** anger; feeling of anger; indignation.

**ରିହ କରିବା**—ଦେ. କ୍ରି—୧ । ରାଗ କରିବା—1. To be angry; Riha karibā to be indignant. ୨ । ଈର୍ଷ୍ୟା বিষ(বাগ)কবা କରିବା—2 To have a grudge. **डाह रखना**

**ରିହ ପାଇବା**—ପ୍ରାଦେ. (ସମ୍ବଲପୁର) କ୍ରି—କୌଣସି ବ୍ୟକ୍ତିର ଦୋଷ Riha pāibā ବା ଦୁର୍ବଳତା ଦେଖି ପାରିବା—To find out the weak point of a person.

**ରିହ ପୋଷିବା**—ଦେ. କ୍ରି—ମନରେ ପ୍ରତିହିଂସା ପ୍ରବୃତ୍ତି ପୋଷଣ Riha poshibā କରିବା—To entertain grudge বীষ(বাগ)রাখা **डाह करना** against a person. [ରିହ ରଖିବା—ଅନ୍ୟରୂପ]

**ରିହାଇ(ତ୍,ତି)**—ବୈଦେ.ବି (ଫା. ରିହାଇ;ଉଆସୂଚ)—୧ । ମୁକ୍ତି;ମୁକ୍ତି- Rihāi(t,ti) 1. Release. (ଉ—ଥୋକେ ଖାତକ ଦଶ ବାର ରହ.ଇତ(ତି)—ଅନ୍ୟରୂପ] ବରଷର ପୁରୁଣା କରଜର ମୂଳ କଲମ୍ବର କରି ତମସୁକରେ ରେଜେଷ୍ଟ୍ରି କରାଇ বিহাই, বেহাই, বিয়াত্, রেয়াত্ ଦେଇ ରିହାଇ ପାଇଲେ । **रिहाइ** ଫକୀରମୋହନ. ଗଳ୍ପସ୍ୱଳ୍ପ ।) ୨ । ଦୋଷର ମାଫ— 2. Pardon; forgiveness of a fault. ୩ । ଦଣ୍ଡାଦିରୁ ନିଷ୍କୃତି ବା ଅବ୍ୟାହତି—3. Exemption from or remission of punishment.

**ରିହାଇତ(ତି) କରିବା**—ଦେ. କ୍ରି—୧ । ଦୋଷାଦି କ୍ଷମା କରିବା— Rihāit(ti) karibā 1. To forgive a fault. ୨ । ବାଚିଦ୍ଧ

(ରିହାଇ ଦେବା—ଅନ୍ୟରୂପ) ବା ଦଣ୍ଡ ଭୋଗରୁ ମୁକ୍ତ ଦେବା—
বিহাই করা, বিহাই দেওয়া 2. To remit a punish-
रिहाइ देना ment; to exempt from punishment.

ରିହାଇତ୍(ତି) ପାଇବା—ଦେ. କି—ଦୋଷରୁ ବା ଦଣ୍ଡରୁ ନିଷ୍କୃତି ଲାଭ
Rihāit(ti) pāibā କରିବା—To be exempted from
বিহাই পাওয়া रिहाइ पाना punishment.
[ରିହାଇ ମିଳିବା, ରିହାଇତ୍(ତି) ମିଳିବା—ବିଶେଷ୍ୟ ରୂପ]
(ରିହାଇ ପାଇବା—ଅନ୍ୟରୂପ)

ରିହାଇବା—ଦେ. କି—ରିସାଇବା; ରଗାଇବା—
Rihāibā রাগান रिसाना To enrage.

ରିହାଏତ୍(ତି) (ଇତ୍ୟାଦି)—ବୈଦେ. ବି—ରିହାଇ ଇତ୍ୟାଦି (ଦେଖ)
Rihāet(ti) (etc) Rihāi etc ( See )

ରି (ଧାତୁ)—ସଂ—୧। ଗମନ କରିବା; ଗତି କରିବା—1. To go;
Ri (root) to move. ୨। ଝରିବା; ଖରିତ ହେବା—
2. To ooze.

ରୀ—ସଂ. ବି ( ରୀ ଧାତୁ=ଗମନ କରିବା+ଭାବ. କ୍ୱିପ୍ )—୧। ଗତି—
Rī 1. Motion. ୨। ରୋଦନ—2. Crying.

ରିଜ୍ୟା—ସଂ. ବି ( ହ୍ରୀ ଧାତୁ=ଲଜ୍ଜିତ ହେବା+ଭାବ. ଅ+ଅ;
Rijyā ନିପାତନ )—୧। ଲଜ୍ଜା—1. Shame; modesty.
୨। ଘୃଣା—2. Hate; hatred. ୩। ତର୍ଜନ;
ଭର୍ତ୍ସନା—3. Abusing; reprimand. ୪।
ଲୁଆ; ନିନ୍ଦା—4. Blaming.

ରିଠା—ସଂ. ବି ( ରୀ ଧାତୁ+କର୍ତ୍ତୃ. ଠ+ଆ )—ରିଠା ( ଦେଖ )
Riṭhā Riṭhā ( See )

ରିଠା କରଞ୍ଜ—ସଂ. ବି—ରିଠା ( ଦେଖ )
Riṭhā karañja Riṭhā ( See )

ରିଢ଼—ଦେ. ବି ( ସଂ. ରିଢ଼ା ) —୧। ଅନାଦର—1. Disregard,
Rirḍha slight. ୨। ଘୃଣା—2. Contempt.

ରିଢ଼କ - ସଂ. ବି ( ରିହ୍ ଧାତୁ+କର୍ତ୍ତୃ. ତ+କ )—ପୃଷ୍ଠଦଣ୍ଡ; ମେରୁ-
Rirḍhaka ଦଣ୍ଡ; ବେଁଣିର ହାଡ଼—Backbone.

ରିଢ଼ା—ସଂ. ବି ( ରିହ୍ ଧାତୁ+ଭାବ. ତ+ଆ )—୧। ଘୃଣା—
Rirḍhā 1. Hatred. ୨। ଅବଜ୍ଞା—2. Disregard.

ରିଣ—ସଂ. ବିଣ ( ରୀ ଧାତୁ+କର୍ତ୍ତୃ. ତ )—୧। କ୍ଷରିତ—1.
Riṇa Distilled. ୨। ଟୋପା ଟୋପା ହୋଇ
ଝରୁଥିବା—2. Oozing; dropping.

ରୀତି—ସଂ. ବି ( ରୀ ଧାତୁ+ଭାବ. ତି )—୧। ପଦ୍ଧତି; ପ୍ରଣାଳୀ; ଢଙ୍ଗ
Riti —1. Mode; manner. ୨। ବିଧି; ଧାରା;
ନିୟମ—2. Rule; regulation. ୩। ପ୍ରଥା—
3. Custom; usage. ୪। କ୍ରମ—4. Method.
୫। ଚାଲିଚଳଣ; ଆଚରଣ—5. Conduct; beha-
viour; deportment. ୬। ଅଞ୍ଚଳର ବ୍ୟବହାର
—6. Customary usage; local custom.
୭। ସ୍ୱଭାବ; ପ୍ରକୃତି; ପ୍ରବୃତ୍ତି—7. Nature; natu-
ral propensity; natural disposition;
inclination. ୮। ଗୁଣ; ଧର୍ମ—8. Quality;
attribute. ୯। ଗମନ; ଗତି—9. Motion,
movement. ୧୦। ତାମ୍ର ଓ ଦସ୍ତାମିଶ୍ରିତ ଧାତୁ;
ପିତ୍ତଳ—10. Brass ( zinc and copper ),
[ ଦ୍ର—ଯେଉଁ ଧାତୁରେ ଦୁଇ ଭାଗ ତାମ୍ବ ଓ ଗୋଟିଏ ଭାଗ ଦସ୍ତା ଥାଏ, ତାହାକୁ ରୀତି କହନ୍ତି । କବିସୂର୍ଯ୍ୟ. ସଙ୍ଗୀତ । ] ୧୧। ଧାତୁ-
ଦ୍ରବ୍ୟ ଉପରେ ପଡ଼ୁଥିବା କଳଙ୍କି; ମରିଚା; ଧାତୁମଳ—11.
Oxide formed on metals; rust. ୧୨।
( ଅଳଙ୍କାର ଶାସ୍ତ୍ର ) କାବ୍ୟର ପଦ ସଙ୍ଘଟନ ପ୍ରଣାଳୀ;
କାବ୍ୟାଦିର ରଚନା ପ୍ରଣାଳୀ; ସାହିତ୍ୟରେ କୌଣସି
ବିଷୟର ବର୍ଣ୍ଣନ କରିବା ଉଦ୍ଦେଶ୍ୟରେ ବର୍ଣ୍ଣମାନଙ୍କର
ସେଉଁ ଯୋଜନାରୁ ଓଜଃ, ପ୍ରସାଦ ବା ମାଧୁର୍ଯ୍ୟ ଗୁଣ
ଉତ୍ପନ୍ନ ହୁଏ—12. The mode or peculiarity
of construction of a literary work; style
of composition. [ ଦ୍ର—ସାହିତ୍ୟ ଦର୍ପଣରେ
ରୀତିକୁ ୪ ପ୍ରକାରରେ ବିଭକ୍ତ କରାଯାଇ ଅଛି, ଯଥା—
ବୈଦର୍ଭୀ, ଗୌଡ଼ୀ, ପାଞ୍ଚାଳୀ, ଲାଟିକା । ମାଧୁର୍ଯ୍ୟ ବ୍ୟଞ୍ଜକ
ବର୍ଣ୍ଣ ବିନ୍ୟାସଯୁକ୍ତ ରଚନା ବୈଦର୍ଭୀ, ଓଜଃପ୍ରକାଶକ ବର୍ଣ୍ଣ
ଓ ଆଡ଼ମ୍ବରଯୁକ୍ତ ଓ ସମାସବହୁଳ ରଚନା ଗୌଡ଼ୀ,
ବୈଦର୍ଭୀ ଓ ଗୌଡ଼ୀ ବ୍ୟଞ୍ଜକ ବର୍ଣ୍ଣ ବ୍ୟତିରିକ୍ତ ବର୍ଣ୍ଣ
ଯୁକ୍ତ ରଚନା ପାଞ୍ଚାଳୀ, ବୈଦର୍ଭୀ ମିଶ୍ରିତ ପାଞ୍ଚାଳୀ ଲାଟୀ
ଅଟେ । ଓଡ଼ିଆ ଭାଷାରେ ପ୍ରଚଳିତ ରୀତିକୁ ସାଧାରଣତଃ
ତିନିଭାଗରେ ବିଭକ୍ତ କରାଯାଇ ପାରେ । ଯଥା—ସୁଖବୋଧ
ରୀତି, ସାଡ଼ମ୍ବର ରୀତି ଓ ସାଳଙ୍କାର ରୀତି । ଗଦ୍ୟ ପଦ୍ୟାଦି
ସର୍ବବିଧ ରଚନାରେ ଏହା ପରିଦୃଷ୍ଟ ହୁଏ । ] ଦେ. ବି
—୧। କୌଣସି କଥିତ ଭାଷାରେ ବ୍ୟବହୃତ ବାକ୍ୟାଦିର
ବିଶେଷତ୍ୱ; ପ୍ରାକୃତିକ ରୀତି—1. Peculiarity of
expression in any language. ୨। ଭାଷାରେ
ବ୍ୟବହୃତ ବିଶିଷ୍ଟ ବାକ୍ୟ, ଯାହା ସେହି ଭାଷାର ବିଶେଷତ୍ୱ
ଅଟେ; ମହାବିର—2. Idioms; idiomatic
expressions peculiar to a language.
[ ଦ୍ର—ଇଂରାଜୀଭାଷାରେ ବ୍ୟବହୃତ Idiom ( ଇଡିଅମ୍ )
ଶବ୍ଦର ଅନ୍ୟ ପ୍ରତିଶବ୍ଦ ନ ଥିବାରୁ ତହିଁପାଇଁ ମହାବିର
ଶବ୍ଦର ବ୍ୟବହାର କରାଯାଇ ଅଛି । ହନ୍ଦୀରେ ଏହାକୁ
ମହାବା(ବି)ରା କହନ୍ତି । ]
[ ଦ୍ର—ପ୍ରତ୍ୟେକ ଭାଷାରେ କେତେଗୁଡ଼ିଏ 'ରୀତିଗତ'
ବାକ୍ୟ ଅଛି । ଉକ୍ତ ବାକ୍ୟମାନ ପ୍ରତ୍ୟେକ ଭାଷାର
ବିଶେଷତ୍ୱ । ସେହି ବାକ୍ୟର ଅନ୍ୟ ଭାଷାରେ ଅକ୍ଷରିକ ବା
ଶାବ୍ଦିକ ଅନୁବାଦ କଲେ ଅନୁବାଦରେ ମୂଳ ଅର୍ଥ ରହେ
ନାହିଁ । ଯଥା—'ଜରକରିବା', ଗୋଟାଏ କାମ 'କରି
ବସିବା', 'ଦୋଷ ଧରିବା', 'ଘର କଥା ନେଇ ଦାଣ୍ଡରେ
ବାଢ଼ିବା', 'ଭୋଜନ ମାରିବା' ଇତ୍ୟାଦିକୁ ଇଂରାଜୀରେ
ଶାବ୍ଦିକ ଅନୁବାଦ କଲେ ତାହା ଇଂରାଜୀ ଭାଷାର ରୀତିସମ୍ମତ
ହେବ ନାହିଁ । ]

ଅଳଂକାରଶାସ୍ତ୍ରରେ ରୀତିର ଅର୍ଥ ରଚନାପ୍ରଣାଳୀ (Style in composition) ବା ପଦସଂଗ୍ରନ୍ଥନ ପ୍ରଣାଳୀ। ରଚକବିଶେଷଙ୍କର ଓ ରଚନାବିଶେଷର 'ରୀତି' ଭିନ୍ନ ଭିନ୍ନ ଅଟେ। କଥିତ ଭାଷାମାନଙ୍କରେ ପ୍ରତ୍ୟେକ ଭାଷାର କେତେଗୁଡ଼ିଏ ରୀତି ଅଛି; ଏହା କଥୋପକଥନର ଭାଷାରେ ବ୍ୟବହୃତ ହୁଏ। ଏହାକୁ ପ୍ରାକୃତରୀତି ବୋଲାଯାଏ। ଯେଉଁ ରୀତିର ବିରୁଦ୍ଧ ଭାଷା କର୍କଶ ଲାଗେ। ବହୁକାଳରୁ ଭାଷା ସେହି 'ରୀତି'ରେ ବ୍ୟବହୃତ ହୋଇ ଆସୁଅଛି। କୌଣସି ଭାଷାର 'ରୀତି' ନ ଜାଣି ସେହି ଭାଷାରେ କଥା କହିବା ବା ଲେଖିବା ବ୍ୟକ୍ତି ଗୁଡ଼ିଏ 'ରୀତିବିରୁଦ୍ଧ' ବ୍ୟବହାର ଓ ପ୍ରୟୋଗଦ୍ୱାରା ହାସ୍ୟାସ୍ପଦ ହୁଅନ୍ତି। 'ରୀତିଗତ ଭାଷା' ବ୍ୟବହାର କରି ରଚନା କରିବା ଆୟାସସାଧ୍ୟ। ଆଧୁନିକ ସଭ୍ୟଯୁଗରେ ଆମ୍ଭେମାନେ ଅନ୍ୟାନ୍ୟ ଭାଷାର ସଂସ୍ପର୍ଶରେ ଆସି ଆମ ଭାଷାର 'ରୀତି'ମାନ ଭୁଲିଯାଇ ଅନ୍ୟ ଭାଷାର 'ରୀତି'ରେ କଥାବାର୍ତ୍ତା କରିବା ଓ ଲେଖାଲେଖି କରିବା ଦ୍ୱାରା ଆମ ଭାଷାର ରୀତିଗୁଡ଼ିକ କ୍ରମଶଃ ଲୁପ୍ତ ହେବା ଆରମ୍ଭ ହେଲଣି।

କଥିତ ଭାଷାରେ 'ପ୍ରାକୃତରୀତି' ଛଡ଼ା ଉପସ୍ଥିତରେ ସାହିତ୍ୟଗତ ବା ଲିଖିତ ଭାଷାର 'ରୀତି'କୁ 'ସାଧୁରୀତି' ବୋଲାଯାଏ। ଏହି 'ସାଧୁରୀତି' ବା ସାଧୁଭାଷାର ରୀତି ଚାରିପ୍ରକାର। ଯଥା—

୧। ଦମ୍ଭୋଳୀ (ସଂ. ଗୌଡ଼ୀ)—ଆଡ଼ମ୍ବରବହୁଳ ଓଜୋବ୍ୟଞ୍ଜକ ରଚନା।

୨। ବୈଦର୍ଭୀ (ସଂ. ବୈଦର୍ଭୀ)—ସମାସହୀନ ବା ଅଳ୍ପ ସମାସଯୁକ୍ତ ଲଳିତ ରଚନାପଦ୍ଧତି।

୩। ବୈଦର୍ଭୀ (ସଂ. ପାଞ୍ଚାଳୀ)—୧ମ ଓ ୨ୟ ରୀତି ମିଶ୍ରଣଜାତ ପଦ୍ଧତି।

୪। ମାଦକା (ସଂ. ଲାଟୀ)—ଶୁଦ୍ଧମାତ୍ର ଅର୍ଥବୋଧକ, ସମାସହୀନ, ମୃଦୁ ଓ ସୁଲଳିତ ରଚନାପଦ୍ଧତି।]

**ରୀତି ଆଚରିବା**—ନଦ. (ପଦ୍ୟ) କ୍ରି.—କୌଣସି ରୀତିକୁ କାର୍ଯ୍ୟରେ Riti ācharibā ପରିଣତ କରିବା—To follow a particular line of conduct. ରିତି ଆଚରণ କরা **রীতি আচরণ করা** [ ଯଥା—ସେ ମୋ ସଙ୍ଗେ ଠକ ରୀତି ଆଚରୁଛି। ]

**ରୀତିକ**—ସଂ. ବି.—(ରୀତି+ସ୍ୱାର୍ଥେ କ)—ପିତ୍ତଳ ଧାତୁ—Ritika Brass.

**ରୀତିକା**—ସଂ. ବି.—(ରୀତିକ+ଆ)—୧। ପୁଷ୍ପାଞ୍ଜନ—Ritikā 1. A sort of ointment. ୨। ଦସ୍ତାର ଭସ୍ମ [ ହି. ଶ ]—2. Oxide of zinc.

**ରୀତିଗତ**—ସଂ. ବିଣ—୧। ପ୍ରଥା ଅନୁସାରେ ଯାହା ଚଳି ଆସୁଅଛି—Ritigata 1. Customary. ୨। ପ୍ରକୃତି ଗତ; ଅଭ୍ୟାସଗତ—2. Habitual, natural.

**ରୀତିଗ୍ରାହୀ**—ସଂ. ବିଣ, ପୁଂ—ପ୍ରଥା ବା ନିୟମକୁ ସ୍ୱୀକାର କରି Ritigrāhi ତଦନୁସାରେ କାର୍ଯ୍ୟ କରୁଥିବା—Observing a [ରୀତି ଗ୍ରାହିଣୀ—ସ୍ତ୍ରୀ] custom, following a custom. [ରୀତି ଗ୍ରାହିତା—ବି]

**ରୀତିଜ୍ଞ**—ସଂ. ବିଣ. ପୁଂ—ଯେ ନିୟମ ବା ପ୍ରଥା ଜାଣେ—Ritijña Conversant with the rules or custom. (ରୀତିଜ୍ଞା—ସ୍ତ୍ରୀ) (ରୀତିଜ୍ଞତା—ବିଶେଷ୍ୟ)

**ରୀତି ଧରିବା**—ଦେ. କ୍ରି—କୌଣସି ଆଚାର ବା ବ୍ୟବହାରକୁ କାର୍ଯ୍ୟରେ Ritidharibā ପରିଣତ କରିବା—To stick to a ରୀତିধরা **रिति धरना** particular line of conduct.

**ରୀତିନୀତି**—ଦେ. ବି (ସହଚର)—୧। ମନୁଷ୍ୟର ଚାଲିଚଳନ—Ritiniti 1. Conduct or behaviour of a person. রীতিনীতি, চালিচলন **रितिनिति** ୨। ଦେଶପ୍ରଚଳିତ ଆଚାର ବ୍ୟବହାର—2. Customs and usages of a country; manners and custom. ୩। ଦେଶପ୍ରଚଳିତ ବିଧି ଏବଂ ନୀତି ବାଦମାନ—Customs and theories

**ରୀତିମତ**—ସଂ. ବିଣ—ରୀତିସଙ୍ଗତ (ଦେଖ)—Ritisangata (See) Ritimata ଦେ କ୍ରି. ବିଣ—ଦସ୍ତୁର୍ ମାଫିକେ; ନିୟମ-(ରୀତିମତେ—ଅନ୍ୟ କ୍ରି ବିଣ. ରୂପ) ଅନୁସାରେ—রীতিমত **रीतिमोताबिक** According to custom or rule.

**ରୀତିବହିର୍ଭୂତ**—ସଂ. ବିଣ—୧। ପ୍ରଥାବିରୁଦ୍ଧ—1. Contrary to Ritibabirbhūta custom. ୨। ଭାଷାଗତ ରୀତିର ବିରୁଦ୍ଧ; ପ୍ରାକୃତରୀତିର ବହିର୍ଭୂତ—2 Unidiomatic; contrary to idiomatic usage. ରୀତିବିରୁଦ୍ଧ, ରୀତିବିଗର୍ହିତ } ଅନ୍ୟରୂପ

**ରୀତିସଙ୍ଗତ**—ସଂ. ବିଣ—୧। ଆଚାର ସଙ୍ଗତ; ରୀତି ଅନୁସାରେ Ritisangata କରାଯାଉଥିବା—1. Conformatory of the custom; customary. ୨। ଯାହା ଭାଷାର ପ୍ରାକୃତ ରୀତି ଅନୁସାରେ କଥିତ ବା ଲିଖିତ—2. Idiomatic. ରୀତି ସମ୍ମତ, ରୀତ୍ୟାନୁମତ, ରୀତ୍ୟନୁମୋଦିତ } —ଅନ୍ୟରୂପ

**ରୀତିସିଦ୍ଧ**—ସଂ. ବିଣ—ରୀତିସଙ୍ଗତ; ରୀତି ବା ବହୁକାଳ ବ୍ୟବହାରଦ୍ୱାରା Ritisiddha ଯାହା ଚଳିଲଣି ବା ପ୍ରତିଷ୍ଠିତ ହେଲଣି—Formed by long usage; hallowed by usage; customary; idiomatic.

**ରୀରି**—ସଂ. ବି—ପିତ୍ତଳ (ହି. ଶ)—Riri Brass.

**ରୀଷ**—ପ୍ରାଦେ (ଉତ୍ତରଭାଷା) ବି. (ସଂ. ଦ୍ୱେଷ)—ରାଗ; କ୍ରୋଧ—Risa Anger; rage.

**ରୁ (ଧାତୁ)**—ସଂ—୧। ଶବ୍ଦ କରିବା; ରବ କରିବା—1 To make Ru (root) a sound. ୨। କାନ୍ଦିବା—2 To cry. ୩। (ଗଛ ଆଦି) ଭୂମିରେ କ୍ଷେପଣ କରିବା ବା ପୋତିବା—3. To plant (a tree).

**ରୁ**—ଦେ. ଅ—୧ । ଅପାଦାନ ବା ପଞ୍ଚମୀ ବିଭକ୍ତିର ପ୍ରତ୍ୟୟ—1. The
Ru inflection of the 5th or ablative case.
ଥେକେ, চেযে ୨ । ବ୍ୟତିରେକେ—2. Except. [ ଉ—ଆହେ
से ଶିବ ଭୂମିରୁ ବଡ଼ ହୋଇ କେହି, ଦେବଙ୍କର ମଧ୍ୟରେ ଯୋଗେ
ବଶୁ ନାହିଁ । କୃଷ୍ଣସିଂହ. ମହାଭାରତ. ବନ । ]
୩ । [କୌଣସି ସ୍ଥାନ] ରୁ ଆରମ୍ଭ କରି; [ କୌଣସି
ସମୟ ] ରୁ ଆରମ୍ଭ କରି—3 Beginning from.
୪ । [କୌଣସି ବ୍ୟକ୍ତିର] ନିକଟରୁ—4 From (any
person). [ଯଥା—ଫାଲ୍ଗୁନ ମନମଥ ଗୁମାନରୁ ମୋର
ଏଣିକି ଆଉକି ଭଲରେ । କବିସୂର୍ଯ୍ୟ. ସଙ୍ଗୀତ ।] [ ଦ୍ର—
ସଂସ୍କୃତରେ 'ବ୍ୟାଘ୍ରଠାରୁ ଭୟ କଲା' ବ୍ୟବହୃତ ହୁଏ; କିନ୍ତୁ
ଓଡ଼ିଆରେ 'ବାଘକୁ ଭୟ କଲା' ବୋଲାଯାଏ । କବିସୂର୍ଯ୍ୟ
ସଂସ୍କୃତ ବ୍ୟାକରଣର ବ୍ୟବହାର ଏଠାରେ କରିଅଛନ୍ତି ।]
୫ । ଅପେକ୍ଷା—5. Than. [ଉ—ଗୋଲା ଗରଳରୁ
କଟୁ ପୀୟୂଷରୁ ସ୍ୱାଦୁଗୁଣ ଗଲା ବଳି । କବିସୂର୍ଯ୍ୟ. କଣୋଣ
ଚମ୍ପୂ. ଗ. ଗୀତ ।] ୬ । ଅନୁସାରେ—6. According
to; in accordance with. [ ଉ—ଘୋଳାରେ
ପଡ଼େ ମରୁଁ ଅଳ୍ପ ତୋ କୁଙ୍କୁମରୁ, କାଲୁଞ୍ଜି ଦଗଡ଼ିନ ହେଲୁ
ଲେ । କବିସୂର୍ଯ୍ୟ. କଣୋଣ ଚମ୍ପୂ 'ଘ' ଗୀତ । ]
୭ । (କୌଣସି ବିଷୟ, ବସ୍ତୁ ବା କ୍ରିୟା) ଯୋଗୁଁ,କାରଣରୁ,
ହେତୁରୁ—7. Owing to; because of. [ ଉ—
ଗିରି ମାରୁତରୁ ତରୁତଳ ଶୀତଳ ହେତୁରୁ । କବିସୂର୍ଯ୍ୟ—
କଣୋଣଚମ୍ପୂ 'ଢ' ଗୀତ ।] ୮ । ଫଳରେ—8. As a
result of. [ଉ—କ୍ଷତ୍ରିଙ୍କ ଖେଳରୁ ମହାଭାରତ ଯୁଦ୍ଧ
ଉପୁଜିବା ନ୍ୟାୟ । ଉକ୍ତ । ] ୯ । କୌଣସି ବସ୍ତୁର
ଦେହରୁ ବା ମଧ୍ୟରୁ ବା ଅଭ୍ୟନ୍ତରରୁ—9. From the
body of or from the inside of (any
thing). [ଉ—କୁଞ୍ଜ କୁହିରୁ କାହ୍ନ ଆସି ଚମ୍ପିଦେଲ
ମୋ ଶ୍ରୁତିରେ । କବିସୂର୍ଯ୍ୟ. କଣୋଣଚମ୍ପୂ 'କ' ଗୀତ ।]
୧୦ । ଦ୍ୱାରା—10. By. [ଉ—ଝାଣ ଖଣ୍ଡା ଗୁରୁଜନ
ଗଞ୍ଜଣାରୁ ମୋ ପ୍ରାଣସଖୀ ସହିବ । କବିସୂର୍ଯ୍ୟ. କଣୋଣ
ଚମ୍ପୂ 'ଝ' ଗୀତ । ଉ—ସୁନାମ୍ନଦୀଆ ହାତରୁ ଝାଳବାଏ
ଖାଇଲେ ଗଙ୍ଗାସ୍ନାନର ଫଳ । ଉକ୍ତ ।]

**ରୁଂଶ୍** (ଧାତୁ)—ସ—୧ । ଦୀପ୍ତି ପାଇବା—1. To shine.
Ruṁś (root) ୨ । ରଞ୍ଜିତ କରିବା—2. To paint; to
[ରୁଜନ୍ଶ୍ (ଧାତୁ)—ଅନ୍ୟରୂପ] dye.

**ରୁଂଶିତ**—ସ. ବିଣ—(ରୁଜନ୍ଶ ଧାତୁ+କର୍ମ. ତ)—୧ । ରଞ୍ଜିତ—1.
Ruṁśita Painted; coloured. ୨ ଲିପ୍ତ;
ବୋଲା ହୋଇଥିବା—2. Smeared.

**ରୁଁଅ**—ଗ୍ରା. ବି (ସ. ରୋମ)—ରୋମ; ଲୋମ—
Ruñaṅ Fur; down on the body.
ରୋঁ রোঁয়া(আঁ)

**ରୁଁଆଁ**—ଗ୍ରା. ବିଣ (ସ. ରୋମମୟ)—ଲୋମଶ—Furry.
Ruñāñ

**ରୁଁଦ୍** (ଇତ୍ୟାଦି)—ବୈଦେ. ବି. ରୁନ୍ଦ୍ ଇତ୍ୟାଦି (ଦେଖ)
Ruñd (etc) Rund etc. (See)

**ରୁଅ**—ଦେ. ବି (ସ. ରୁହ ଧାତୁ. ଶିର୍=ଶ୍ରେଣି. ଧାତୁ)—୧ । ଘରଚାଳର
Rua ମଥାନଠାରୁ ଚାଳର ଓଳ ପର୍ଯ୍ୟନ୍ତ ଶେଣୀମାନଙ୍କ ଉପରେ
রুয়া[আ], বোআ[ যা ] ଅଡ଼ ବାଗରେ ଲମ୍ବିତ କାଠ ବା
কোৰৱ ବାଉଁଶ—1. Rafters of a thatched house.
[ଉ—ଘୋଡ଼ାଶାଳ, ଉଭା ଚାଳ, ରୁଅ ହେଲ୍ଲାନ, ଘରଣୀ
ଡେଡ଼ଚାଳ, ଲେବେ ସେ ଘରଯାଏ ଅଟାଳ କାଳ । ପ୍ରବଚନ]
[ଦ୍ର—ଚାଳ ଘରର କାନ୍ଥମାନଙ୍କ ଉପରେ ବା ପାନ୍ଥଆ ଖୁଣ୍ଟ
ଉପରେ ପ୍ରଥମେ ଶେଣୀମାନ ଦିଆଯାଏ । ଚାଳଘରର
ମଥାନରେ ଥିବା ଶେଣୀ ଓ ପାରଆ ଖୁଣ୍ଟ ଉପରେ ପଡ଼ିଥିବା
ଶେଣୀ ଉପରେ ଅଡ଼ ବାଗରେ ଗଡ଼ାଣିଆ କରି ରୁଅମାନ
ପକାଯାଏ । ସେ ରୁଅମାନଙ୍କ ଉପରେ ବତା ବାନ୍ଧି
ବତାମାନଙ୍କ ସଙ୍ଗେ ରୁଅମାନଙ୍କୁ କାମୁଡ଼ା ଦେଇ
ଦଉଡ଼ିରେ ବା ଲଇରେ ଗଣ୍ଠି ଉତ୍ତା ଉପରେ ଛଣରେ
ଛପରବନ୍ଧ କରାଯାଏ ।] ୨ । ଚଣ୍ଡୀ ଆଦି ଦୀର୍ଘ ସ୍ତୋତ୍ରକୁ
বাব ମୂଳଠାରୁ ଶେଷ ପର୍ଯ୍ୟନ୍ତ ଥରେ ଆବୃତ୍ତି—
বাৰ 2. Recitation of a long prayer from
the beginning to the end. (ଯଥା—ସେ
ପ୍ରତିଦିନ ୩ରୁଅ ଚଣ୍ଡୀ ପଢ଼ନ୍ତି । ସେ ନିତ୍ୟ ୩ରୁଅ ସହସ୍ର
ନାମ ଗୁଣନ୍ତି । )

**ରୁଆ**—ଦେ. ବି ( ସ. ରୋହ ଶବ୍ଦରୁ ରୋପଣ )—୧ । ଧାନ୍ୟାଦିର ଚଳ
Ruā ରୋଇବା କର୍ମ—1. The act or operation of
রোয়া, রুয়া transplanting paddy and other seed-
ৰোপাৱ lings; transplantation. [ଦ୍ର—ଧାନ ଦୁଇ ପ୍ରକାର
କୃଷି କରାଯାଏ । ୧ ବୁଣା—ଧାନ ବିହନକୁ ବୁଣିଲେ ସେଥିରୁ
ଉଠିବା ଗଛ ବିଲରେ ବଢ଼ି ସେଥିରେ ଧାନ ଫଳେ ।
୨—ରୁଆ—ପ୍ରଥମେ ଧାନ ବିହନକୁ ଗୋଟିଏ ବିଲରେ
ବୁଣି ତହିଁରେ ଚଳ ଉଠିଲେ ସେ ଚଳକୁ ନେଇ
ଅନ୍ୟ ବିଲରେ ରୋପଣ କରିବାକୁ ହୁଏ; ବାଇଗଣ,
ଲଙ୍କାମରିଚ ଆଦିର ମଞ୍ଜିକୁ ପ୍ରଥମେ ଗୋଟିଏ ସ୍ଥାନରେ ବୁଣି
ସେ ଗଛମାନ ବଢ଼ିଗଲେ ସେ ଚଳମାନଙ୍କୁ ଅଣି କ୍ଷେତ୍ରରେ
ରୋଇବାକୁ ହୁଏ ।] ୨ । (ସ. ରେଣୁ ବା ରୋମ)—ପରାଗ;
বোআঁ, দানা ରେଣୁ—2. Powder; pollen. ୩ । ରେଣୁର
দানা ବା ଚୂନାର କ୍ଷୁଦ୍ର କ୍ଷୁଦ୍ର ଗୋଲକ; ଦାନା—3. Globular
particles of any powdered thing.
୪ । ଆରୋଗ୍ୟୋନ୍ମୁଖ କ୍ଷତାଦିରେ ଉଠୁଥିବା ମାଂସର
କ୍ଷୁଦ୍ର କ୍ଷୁଦ୍ର ଗୁଟିକା—4. Tiny particles of flesh
beginning to form on a healing wound.
বাব ୫ । ଗୋଟିଏ ମାଳାକୁ ଏକଥର ମେରୁଠାରୁ ଆରମ୍ଭ କରି
মালা ପୁଣି ମେରୁ ପର୍ଯ୍ୟନ୍ତ ଜପିବା—5. Telling of beads

from the head-bead upto the last bead of a string of beads; one round of telling beads. (ଉ—ରୁଆ ଗ୍ରନ୍ଥ ଲଗେ ଜାଣି ଯେ ଜର ଜପଇ। ପ୍ରାଚୀ ଗୁରୁଜଙ୍କ ଗୀତା।) ୬। ଘେଞ୍ଚାଇବା ଦାନ୍ତକାଠିର କ୍ଷୁଦ୍ର କ୍ଷୁଦ୍ର ଅଂଶୁ; ଲୋମ ପରି ଅଂଶୁ—6. Fur-like fibres; fibres (e. g, of tooth brush), filaments. (ଯଥା—ଏ ଦାନ୍ତକାଠିକୁ ଅଚ୍ଛା କରି ଘେଞ୍ଚାଇଲେ ରୁଆ ଉଠିବ।) ୭। ଅଳଙ୍କାରରେ ଖଚିତ ହେବା ସୁନାର ବା ରୁପାର କ୍ଷୁଦ୍ର ଗୋଲାକାର ଗୁଳାମାନ—7. Small round particles of gold or silver set on an ornament. (ଉ—କମଣ୍ଡଳୁ ରୁଆ ରୁଆ, ଅଛି କମଣ୍ଡଳୁ ଦେବ ଲୋ ମାଗୁଣି ! ବାଲୁକଣି ଚଉଁରିଆ—ଛଗ।) ୮। ପ୍ରାଚୀନ କଳିଙ୍ଗରେ ପ୍ରଚଳିତ ଏକ ରୌପ୍ୟମୁଦ୍ରା—8. A silver coin current in ancient Kalinga. ପ୍ରାଦେ. (ସମ୍ବଲପୁର, ସିଂହଭୂମି) ବି. (ଭୁଲ. ହି ରୂଇ)—ତୁଳା—Cotton. ବିଣ—୧। ରୋପିତ ହୋଇଥିବା (ଧାନ ଗଛ ପ୍ରଭୃତି)—1. Transplanted (paddy and other seedlings). ୨। ଯେଉଁ କ୍ଷେତ୍ରରେ ଧାନଚାରା ଆଦି ରୁଆ ହୋଇଥାଏ—2. A field which is transplanted with paddy or other seedlings.

বোআঁ
ক্রুস্সী, रेसा
দানা
दाना
রোআ
रोपाहुआ

**ରୁଆଁ**—ଦେ. ବି (ସଂ. ରୋମ)—୧। ରୋମ—1. Fur. ୨। ସୂକ୍ଷ୍ମ ଲୋମ—2. Down (of birds etc)
Ruāṅ
বোঁ, বোয়াঁ रोआँ

**ରୁଆଇ**—ପ୍ରାଦେ. (ଗଡ଼ଜାତ) ବି—୧। ବାଡ଼ବୁଜାରେ ବ୍ୟବହୃତ ଏକ ପ୍ରକାର ଗଛ—1. A species of tree (used in fencing). ୨। ମେଢା (ଦେଖ) 2 Merdha (See)
Ruāi

**ରୁଆଇବା**—ଦେ. କି (ସଂ. ରୁ ଧାତୁ ଣିଜନ୍ତ ରୋପି ଧାତୁ)—୧। ଅନ୍ୟ ଦ୍ୱାରା ରୋପଣ କରାଇବା—1. To cause to plant. ୨। ରୋପଣ କରିବା—2. To plant.
Ruāibā
বোআন, বোআ
रोपवाना, रोपना

**ରୁଆ ଉଠିବା**—ଦେ. ବି ଓ. କି—୧। କଅଁଳ ଥିବା ଘାଆ ଆଦିରେ ଦୂଳଆ ଦୂଳଆ ହୋଇ ନୂତନ ମାଂସ ଗୁଟିକାମାନ ବାହାରିବା—1 Formation of tiny and globular grains of growing tissues of flesh on a healing sore or wound; to granulate. ୨। ଅଂଶୁଯୁକ୍ତ ହେବା—2. To become fibrous (like a brush).
Ruā uṭhibā
দানা বাঁধা
दाना बाँधना, रेशादेना

**ରୁଆଖ**—ଦେ. (ପ୍ରାଚୀନ) ବି. (ସଂ ରୂପ୍ୟ)—ପ୍ରାଚୀନ ଉତ୍କଳରେ ପ୍ରଚଳିତ ଏକ ପ୍ରକାର ରୌପ୍ୟ ମୁଦ୍ରା—A silver coin current in ancient Utkal.
Ruākha

**ରୁଆ ଦେବା**—ଦେ. କି—ରୁଆ ଉଠିବା (ଦେଖ)
Ruā debā Ruā uṭhibā (See)
(ରୁଆ ଧରିବା—ଅନ୍ୟରୂପ)
দানা বাঁধা दाना देना, रेशादार होना

**ରୁଆ ବସା(ସେ)ଇବା**—ଦେ. କି—ଅଳଙ୍କାରରେ ସ୍ୱର୍ଣ୍ଣ ରୌପ୍ୟର ବର୍ତ୍ତୁଳମାନ ଖଚିତ କରିବା—To set tiny particles or granules on ornaments.
Ruā basā(se)ibā
দানা বসান
दाना बैठाना(जड़ाना) (ରୁଆ ବସିବା—କ. ରୂପ)

**ରୁଆ ବସା ଗୁଣା**—ଦେ. ବି—ଯେଉଁ ଗୁଣା ବା ନାକଫୁଲ୍ଲରେ ଖଞ୍ଜାଯିବା ଅଳଙ୍କାରରେ ସୁନାର ଟିକିଟିକି ବର୍ତ୍ତୁଳମାନ ଖଚିତ ହୋଇଥାଏ—A kind of nose flower set with small granules of gold.
Ruā basā guṇā
দানা বসান নাকছাবী
दानेदार बेसर

**ରୁଆ ବି(ବେ)ଉଡ଼ା**—ଦେ. ବି. (ସହଚର)—ଧାନ ଫସଲ ଆବାଦ କରିବାର ଦୁଇଟି ପ୍ରକ୍ରିୟା, ରୋଇବା ଓ ବେଉଡ଼ିବା—Transplanting and puddling.
Ruā bi(be)urdā
(ରୁଆ ବେଉଷଣ—ଅନ୍ୟରୂପ)
বোআ কাডান रोपना संवारना
[କ୍ରି—ରୁଆ ଧାନକୁ ବେଉଡ଼ା ଯାଏ, ଅର୍ଥାତ ରୁଆ ଧାନଗଛ ଉଠିଥିବା କିଆରୀକୁ ହଳ ଦ୍ୱାରା ବେଉଡ଼ିବାକୁ ହୁଏ; କିନ୍ତୁ ରୁଆ ଧାନକୁ ବେଉଡ଼ିବାକୁ ହୁଏ ନାହିଁ। ଧାନ ଗଛ ଉଠି ନ ଥିବା କିଆରୀରେ ପାଣି ଭର୍ତ୍ତି କରି ହଳ ବୁଲାଇ ମଇ ଆଦି ଦେଇ ସମତୁଲ କରି ସେ କିଆରୀରେ ଧାନଚାରାକୁ ରୋଇବାକୁ ବା ପୋତିବାକୁ ହୁଏ।]

**ରୁଆ ରୁଆ**—ଦେ. କି. ବିଣ—କ୍ଷୁଦ୍ର କ୍ଷୁଦ୍ର ରୁଆମାନ ଉଠିବା ପ୍ରକାରେ—Forming into small growing tissues or particles or fibres. [ଉ—ତା ବହପାକ କାଛୁ ରୁଆ ରୁଆ ଫଳ ଗଲାଣି।] ଦେ. ବିଣ—କ୍ଷୁଦ୍ର କ୍ଷୁଦ୍ର ଅଂଶୁଯୁକ୍ତ—Fibrous; granulated.
Ruā ruā
দানা দানা
दाना दाना
দানাদার
दानादार, रेशादार

**ରୁଆ ରୁଆ ଫଳିଯିବା**—ଦେ. ବି—ଦେହରେ ଅସଂଖ୍ୟ କ୍ଷୁଦ୍ର କଣମାନ ଉଠିବା—The coming out of tiny globular eruptions on the body.
Ruā ruā phalijibā
দানা দানা (টিপটিপ) ফুলা
दानादाना होना

**ରୁଆ ରୋଇ**—ଦେ. ବି (ସହଚର)—ଧାନ ରୋଇବା ଆଦି କୃଷି କାର୍ଯ୍ୟ—The various operations connected with the transplanting of paddy seedlings.
Ruā roi
বোআ বোই
रोपारोपी

**ରୁଆଳ(ଳୀ)**—ଦେ.ବିଣ—୧। ରୁଆଯୁକ୍ତ—1.Set with or consisting of tiny globules or granules, granular. (ଯଥା—ରୁଆଳ ଗୁଣା।) ୨। କ୍ଷୁଦ୍ର ଓ ଗୋଲାକାର—2 Tiny and globular; granular. ୩। ଅଂଶୁମୟ—3 Fibrous. ବି. ପୁଂ ଓ ସ୍ତ୍ରୀ—୧। ଯେଉଁ ଲୋକମାନେ
Ruāli(li)
দানাদাব
दानादार

ରୋପାଳୀ ବିଲରେ ଧାନ ରୁଅନ୍ତି—1. Those workmen or
रोपनीया, लावक labourers who transplant paddy or other seedlings. ୨ । (ବଣିଆଙ୍କ ଶବ୍ଦ)—କିଟିକିଟାରେ ବାଡ଼ଉଥ ଦେବାଦ୍ୱାରା ରୁଅ ରୁଅ ହୋଇଥିବା ତାର—2. A wire dented into a line of globules or granules with the help of a Kiṭikiṭā (a grooved metal mould).

ରୁଅଳି କିଟିକିଟା—ଦେ. ବି ( ବଣିଆ ଶବ୍ଦ )—ସୁନାରୁପାର ରୁଅଳି ତାର କରିବା ଲାଗି ଏକପ୍ରକାର ଠଣା ବା ଛାଞ୍ଚ—A grooved metal mould used in preparing metal wires containing a row of globules or granules.
Ruāḷi kiṭikiṭā

ରୁଇ—ଦେ. ବି—ରୋଇ ( ଦେଖ )—Roi ( See ). ପ୍ରାଦେ ( ଲଘଅ ) ବି.—୧ । ତୁଳା ( ତୁଲ. ହି. ରୁଇ )—1. Cotton. ୨ । ଉଇ—2. White ants. ୩ । ( ସିଂହଭୂମି )—ରୋହିମାଛ—Cyprinus Rohita fish
Rui

ରୁଇତନ—ଦେ. ବି—ରୁହିତନ୍ ( ଦେଖ )
Ruitana Ruhitan ( See )

ରୁଇ(ଏ)ଦାଦ୍(ଦ୍)—ବୈଦେ. ବି ( କଚେରୀ ) ( ଫା. ରୁଏଦାଦ୍= ସମାଚାର, ବୃତ୍ତାନ୍ତ, ଅବସ୍ଥା, ବିବରଣ, କୈଫିୟତ୍, ବ୍ୟବସ୍ଥା, ଅଦାଲତଙ୍କ କାର୍ଯ୍ୟକ୍ରମ )—କୌଣସି ବିଷୟ ବା ମକଦ୍ଦମା ସମ୍ବନ୍ଧରେ ବିବରଣଯୁକ୍ତ ଅଦାଲତଙ୍କ ଲିପି; ଯୁକ୍ତି ସମ୍ବଳିତ ମକଦ୍ଦମାର ରାୟ—Written proceeding of a court containing the particulars or statements about a case. [ ଦ୍ର—ଏ ଶବ୍ଦ ମୁସଲମାନ୍ ରାଜତ୍ୱ ସମୟରେ ଓ ନୂଆ ଇଂରେଜୀ ଅମଳରେ ଓଡ଼ିଶାରେ କଚେରିରେ ବ୍ୟବହୃତ ହେଉଥିଲା । ]
Rui(e)dāt (d)
रोएदाद
रूयदाद्

ରୁଇବା—ଦେ. କ୍ରି [ ସଂ. ରୁହଧାତୁ ଣିଚ ରୋପି ଧାତୁ ]—ରୋଇବା ( ଦେଖ )—Roibā ( See )
Ruibā
रोआ रोपना

ରୁଏ—ଦେ. ବି—[ ମାଳା ଜପିବାର ] ଏକ ରୁଅ ବା ଥର—Once; one round of (telling of beads).
Rue
एकबार
एकदफा
[ ଉ—କେ ଅବା ରୁଏ ଜପିବ ବିଷୟୀ ଜଡ଼ତ—ଶ୍ରୀ ଗୁରୁଭକ୍ତି ଗୀତା । ]

ରୁକ୍—ସଂ. ବି [ ରୁଚ୍ ଧାତୁ+ଭାବ କ୍ୱିପ୍=ରୁଚ୍ ଶବ୍ଦ ୧ମା. ୧ବ ]—୧ । ଶୋଭା—1. Splendour; grace; beauty. ୨ । ଦୀପ୍ତି—2. Brilliance; lustre. ୩ । ଇଚ୍ଛା—3. Desire. ୪ । [ ରୁଜ୍ ଧାତୁ=ପୀଡ଼ିତ ହେବା +ଭାବ. କ୍ୱିପ୍; ରୁଜ୍ ଶବ୍ଦ ୧ମା. ୧ବ ]—ପୀଡ଼ା, ରୋଗ—4 Disease; illness. ୫ । ରୁଜା ( ଦେଖ ) 5. Rujā See ୬ । [ ରୁଚ୍ ଧାତୁ=ପ୍ରାପ୍ତି ପାଇବା +କର୍ତ୍ତୃ, କ୍ୱିପ୍; ରୁଚ୍ ଶବ୍ଦ ୧ମା. ୧ବ ]—ବିଦ୍ୟୁତ୍—6. Lightning. ଗ୍ରା. ବି—ଋଗ୍‌ବେଦ; ପ୍ରଥମବେଦ—The Ṛug Beda;
Ruk

ରୁକ୍କର—ସ. ବିଣ—(ରୁକ୍+କୃ ଧାତୁ+କର୍ତ୍ତୃ. ଅ)—ପୀଡ଼ାଦାୟକ—Giving pain, sickening (Apte). ସ. ବି.—(+ଭାବ.ଅ)—ରୋଗ—Disease (Apte.)
Rukkara

ରୁକ୍‌ପ୍ରତିକ୍ରିୟା—ସ.ବି.—[୬ଷ୍ଠୀ ତତ୍] –ରୋଗର ଚିକିତ୍ସା ବା ପ୍ରତିକାର—Counteraction or treatment of a disease (M. W.) curing; the practice of medicine.
Ruk-pratikriyā

ରୁକ୍‌ବା—ପ୍ରାଦେ.—[ସମ୍ବଲପୁର] କ୍ରି.—ରୋକିବା [ଦେଖ]
Ruk-bā Rokibā (See)

ରୁକ୍‌ସଦ୍ମ—ସଂ. ବି,—[୬ଷ୍ଠୀ ତତ୍, ରୁକ+ସଦ୍ମନ; ୧ମା. ୧ବ]—ବିଷ୍ଠା—Ordure, excrement (M. W.)
Ruk-sadmā

ରୁକ—ଗ୍ରା. ବି—[ସଂ. ଋକ୍ ]—ଋଗ୍‌ବେଦ—The Ṛug Beda.
Ruka
[ରୁକା—ସ୍ତ୍ରୀ] ସଂ ବିଣ. ପୁଂ—ଦାନଶୀଳ—Liberal; bountiful (Apte)

ରୁକରି—ଗ୍ରା. ଅ—[କ୍ରିୟା ପରେ ବ୍ୟବହୃତ]—୧ । ଯୋଗୁଁ; ହେତୁ—1. Owing to; as a result of. [ଉ—ସେ ପଢ଼ୁଥିବା ସମୟରେ ବସ୍ତ୍ର ପ୍ରାଇଲ୍ ସ୍ନ ହୋଇଗଲା... ] ୨ । ଉତ୍ତାରୁ; ପରେ—2. After. [ ଯଥା—ସେ ଖାଇଲାରୁକରି ମୁଁ ସେଠାରୁ ଆସିଲି ।]
Ru kari

ରୁକା—ପ୍ରାଦେ. (ଉତ୍ତର ବାଲେଶ୍ୱର)—ବି.—ରୋକା (ଦେଖ)
Rukā Rokā (See)

ରୁକିବା—ପ୍ରାଦେ.—(ବାଲେଶ୍ୱର) କ୍ରି.—୧ । ରୋକିବା (ଦେଖ)
Rukibā 1. Rokibā (See)
୨ । [ଗଡ଼ଜାତ] ଢାଳି ଦେବା; ଅଜାଡ଼ିବା; ଉଡ଼ିବା—2. To pour out; to spill. [ ଉ—ମାଠିଆରୁ ଗଡ଼ୁରେ ପାଣିକୁ ରୁକ ।]

ରୁକୁ—ବୈଦେ. ବି. [ଫା.]—କୋରାନର କୌଣସି ମନ୍ତ୍ରର ବା ସୂତ୍ରର ଗୋଟିଏ ଅଂଶ—A part of a hymn in the Koran.
Ruku
रुकू रुक्

ରୁକୁଣା[ଣୀ]—ଗ୍ରା. ବି.—[ସଂ. ରୁକ୍ମିଣୀ]—ରୁକ୍ମିଣୀ ନାମ୍ନୀ ସ୍ତ୍ରୀର ଡାକ ନାମ—Name for calling Rukmiṇī.
Rukuṇā(ṇī)

ରୁକୁଣା(ଣୀ) ରଥ—ଦେ. ବି.—ଅଶୋକାଷ୍ଟମୀ ସମୟରେ ଭୁବନେଶ୍ୱରର ଲିଙ୍ଗରାଜ ମହାପ୍ରଭୁଙ୍କ ଚଳନ୍ତି ପ୍ରତିମାଙ୍କୁ ଯେଉଁ ରଥରେ ବସାଇ ରାମେଶ୍ୱର ମନ୍ଦିରକୁ ନିଆଯାଏ—Name of the car moved on the Asokāshṭamī day from the main temple to the Rāmeśwar a temple at Bhubaneswar [ ଦ୍ର—ପୁରୀର ରଥମାନ ଉତ୍ତରମୁଖୀ ହୋଇ ଗୁଣ୍ଡିଚା ମନ୍ଦିରରେ ପହଞ୍ଚ ହେଲେ ବାହୁଡ଼ା ସମୟରେ ସେ ରଥ
Rukuṇā(ṇī) ratha

ମାନଙ୍କୁ ଟଣାଇ ରଥର ମୁହଁକୁ ଦକ୍ଷିଣଦିଗକୁ ବୁଲାଯାଏ । କିନ୍ତୁ ଭୁବନେଶ୍ୱରର ରୁକୁଣା ରଥ ରାମେଶ୍ୱର ମନ୍ଦିର ନିକଟରେ ପହଞ୍ଚିବା ପରେ ସେ ରଥର ମୁହଁ ଫେରି ନ ଯାଇ ବାହୁଡ଼ିଲା ବେଳେ ରଥ ଉପରେ ଥିବା ସାଜସଜ୍ଜା ଆଦିକୁ ଓ ସିଂହାସନକୁ ବଡ଼ୁଇମାନେ ସେହି ରଥର ପଛ ଦିଗକୁ ବୁଲାଇ ସଜ୍ଜିତ କରି ଦିଅନ୍ତି ଏବଂ ବାହୁଡ଼ା ବେଳେ ରଥର ପଛ ଅଡ଼ାକୁ ଆଗ ଅଡ଼ା ରୂପେ ପରିବର୍ତ୍ତିତ କରାଯାଏ ଓ ଆଗ ଅଡ଼ାକୁ ପଛଅଡ଼ା କରାଯାଏ । ଏଥିପାଇଁ ଢଗ ଅଛି—ରୁକୁଣା, ରଥ ଆଉ ନ ଫେରେ ।]

**ରୁକୁଣା(ଣୀ)ହାତ ପ(ପୋ)ଚ୍ଛ(ଚ୍ଛା)**— ଦେ. ବି.—[ସଂ. ପାଷାଣଭେଦୀ]—
Rukuṇā(ṇi) hāta pa (po)chā(chhā) ତୁଳସୀଜାତି ବର୍ଗର ଶାକ ବିଶେଷ—Plectranths Aromaticus, Coleus Scuellarioides; Coleus Aromaticus or Ambonicus (Haines); Irissp. [ ଦ୍ର—ଏହାର ପତ୍ର ସୁଗନ୍ଧ, ପୃଷ୍ଟ ଲୋମଶ, ମୋଟା ଓ ମାଂସଳ । ପତ୍ରକୁ ଭାଙ୍ଗି ଦେଲେ ମଚ ମଚ ହୋଇ ଭାଙ୍ଗିଯାଏ; ଅଜୀର୍ଣ୍ଣ ରୋଗରେ ଏ ପତ୍ରକୁ ବାଟି ଖାଆନ୍ତି । ଏହାର ଫୁଲ ଛୋଟ ଛୋଟ ଓ ଈଷତ୍ ନୀଳ । ଗୋଡ଼ିଆ ଯାଗାରେ ସାଧାରଣତଃ ଏ ଗଛ ଜନ୍ମେ । ବୈଦ୍ୟଶାସ୍ତ୍ର ମତରେ ଏହା ଶୀତବୀର୍ଯ୍ୟ, ବସ୍ତିଶୋଧକ ଓ ଭେଦକ; ଏହା ତ୍ରିଦୋଷ, ଅର୍ଶଃ, ଗୁଳ୍ମ, ମୂତ୍ରକୃଚ୍ଛ୍ର, ଅଶ୍ମରୀ, ହୃଦ୍ରୋଗ, ଯୋନି ରୋଗ, ପ୍ରମେହ, ପ୍ଳୀହା, ଶୂଳ ଓ ବ୍ରଣରୋଗ-ନାଶକ ।]

[ସଂ—ପାଷାଣଭେଦ, ପାଷାଣ ଭେଦକ, ପାଷାଣଭେଦୀ, ଅଶ୍ମଘ୍ନ ଗିରିଭିତ୍, ଉପଲଭେଦିନୀ ଅଶ୍ମଭେଦ, ଅଶ୍ମଭିତ୍, ଶ୍ୱେତା, ଶିଳାଭେଦକ, ଉପଲଭିତ୍, ଶିଲା, ଗର୍ଭଜ, ନଗଭିତ୍
ଫା. ଗୋସଦ୍
ଅ. ଜନ୍ତୁଆନା
ତେ. ତେନନ୍ନରୁ ପିଣ୍ଡି; ପିଣ୍ଡି ଚେଟ୍ଟୁ
ଗୁ. ପାଖାନ ଭେଦ, ପାଥରଚୁର]
ମ. ପାଷାଣଭେଦ
ପାଥବଚୁବ ପାଷାନମେଦ୍

**ରୁକ୍ମ**—ସଂ. ବି.— [ରୁଚ୍ ଧାତୁ + କର୍ତ୍ତୃ. ମ]—୧ । ସ୍ୱର୍ଣ୍ଣ—1. Gold.
Rukma ୨ । ଲୌହ—2. Iron. ୩ । ନାଗକେଶର—3. A flower; Mesua Ferra. ୪ । ଧୁସ୍ତୁର—4. The thorn apple plant. ୫ । ପୁଂ. (ନାମ) ରୁକ୍ମିଣୀଙ୍କର ଏକ ଭାଇ (ହ୍ରି. ଶ.)—5 Name of a brother of Rukmiṇi.

**ରୁକ୍ମକାରକ**—ସଂ. ବି. ପୁଂ—(ରୁକ୍ମ=ସ୍ୱର୍ଣ୍ଣ + କୃ ଧାତୁ + କର୍ତ୍ତୃ ଅକ)—
Rukma kāraka ସ୍ୱର୍ଣ୍ଣକାର—Goldsmith.
[ରୁକ୍ମକାର—ଅନ୍ୟରୂପ]

**ରୁକ୍ମଣୀ**—ଗ୍ରା. ବି. ସ୍ତ୍ରୀ—ରୁକ୍ମିଣୀ (ଦେଖ)
Rukmaṇi Rukmiṇi (See)

**ରୁକ୍ମପାଶ**—ସଂ. ବି.—୧ । ଯେଉଁ ସୂତାରେ ସୁନା ଅଳଙ୍କାର ଗୁନ୍ଥାଯାଇ
Rukma paśa ପିନ୍ଧାଯାଏ—1. A string on which golden ornaments are worn. (M. W) ୨ । ସୂତାରେ ତିଆରି ଫାଶ, ଯହିଁର ସାହାଯ୍ୟରେ ଅଳଙ୍କାରାଦି ପିନ୍ଧାଯାଏ (ହ୍ରି. ଶ)—2. A noose made of thread with the help of which ornaments are worn.

**ରୁକ୍ମପୁର**—ସଂ. ବି—(ନାମ)—ଗରୁଡ଼ ବାସ କରୁଥିବା ପୌରାଣିକ
Rukmapura ନଗର (ହ୍ରି. ଶ)—Name of a town where Garurda is said to live.

**ରୁକ୍ମବାହନ**—ସଂ. ବି—ଦ୍ରୋଣାଚାର୍ଯ୍ୟ (ହ୍ରି ଶ)—
Rukmabāhana A name of Droṇāchārjya.

**ରୁକ୍ମାଙ୍ଗଦ**—ସଂ. ବି—(ରୁକ୍ମ=ସ୍ୱର୍ଣ୍ଣ + ଅଙ୍ଗଦ=ବାହୁଭୂଷଣ, ଯାହାର,
Rukmāṅgada ବହୁବ୍ରୀହି)—(ପୌରାଣିକ) ଦକ୍ଷିଣ ଦେଶର ଜଣେ ନୃପତି—Name of a mythological King of south India. ସଂ. ବିଣ. ମୁ [ରୁକ୍ମାଙ୍ଗଦା—ସ୍ତ୍ରୀ] ସୁନାର ବାହୁ ପିନ୍ଧିଥିବା (ବ୍ୟକ୍ତି)—Wearing a gold armlet.

**ରୁକ୍ମାବତୀ**—ସଂ. ବି. ସ୍ତ୍ରୀ—ବିଦର୍ଭ ରାଜତନୟ ରୁକ୍ମୀଙ୍କର କନ୍ୟା, ଯେ
Rukmābatī ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନଙ୍କୁ ବିବାହିତା ହୋଇଥିଲେ—The daughter of Rukmī and a daughter-in-law of Śrikṛushṇa.

**ରୁକ୍ମାଭ**—ସଂ. ବିଣ. ପୁଂ (ବହୁବ୍ରୀହି; ରୁକ୍ମ + ଆଭା)—ସ୍ୱର୍ଣ୍ଣାଭ; ସ୍ୱର୍ଣ୍ଣପରି
Rukmābha ଉଜ୍ଜ୍ୱଳ—Shining or bright like gold. (M. W)

**ରୁକ୍ମିଣୀ**—ସଂ. ବିଣ. ସ୍ତ୍ରୀ ( ରୁକ୍ମ + ଇନ + ସ୍ତ୍ରୀ. ଈ )—ସ୍ୱର୍ଣ୍ଣଯୁକ୍ତା—
Rukmiṇi Having gold ornaments on the person. ବି—୧ । ସ୍ୱର୍ଣ୍ଣକ୍ଷୀରୀ ବୃକ୍ଷ—1. Name of a tree ( M. W. ). ୨ । ( ସ୍ତ୍ରୀ )—ଦ୍ୱାରକାଧିପତି ଶ୍ରୀକୃଷ୍ଣଙ୍କର ଜଣେ ମହିଷୀ—2. One of the married queens of Srikṛushṇa while he was the King of Dwārakā. [ ଦ୍ର—ରୁକ୍ମିଣୀ ବିଦର୍ଭରାଜ ଭୀଷ୍ମକଙ୍କର ଦୁହିତା ଥିଲେ । ଶ୍ରୀକୃଷ୍ଣଙ୍କ ରୂପଗୁଣର ବର୍ଣ୍ଣନା ଶୁଣି ରୁକ୍ମିଣୀ ତାଙ୍କୁ ନ ଦେଖି ମଧ୍ୟ ତାଙ୍କ ପ୍ରତି ଆକୃଷ୍ଟା ହେଲେ ଏବଂ ମନେ ମନେ ତାହାଙ୍କୁହିଁ ପତିରୂପେ ବରଣ କଲେ । ରୁକ୍ମିଣୀଙ୍କ ପିତା ଓ ରୁକ୍ମୀ ପ୍ରଭୃତି ରୁକ୍ମିଣୀଙ୍କ ପଞ୍ଚଭ୍ରାତା କୃଷ୍ଣଙ୍କ ଶତ୍ରୁ ଜରାସନ୍ଧର ଅଧୀନ ରାଜା ଥିବାରୁ ସେମାନେ ଶ୍ରୀକୃଷ୍ଣଦ୍ୱେଷୀ ଥିଲେ । ଜରାସନ୍ଧଙ୍କ ଅନୁରୋଧରେ ସେମାନେ ଚେଦିରାଜ ଦମଘୋଷଙ୍କ ପୁତ୍ର ଶିଶୁପାଳଙ୍କ ସଙ୍ଗେ ରୁକ୍ମିଣୀଙ୍କ ବିବାହ ସମ୍ବନ୍ଧ ସ୍ଥିର କଲେ । ରୁକ୍ମିଣୀ ଏହା ଜାଣି ପାରି ଦ୍ୱାରକାଧିପତି ଶ୍ରୀକୃଷ୍ଣଙ୍କ ନିକଟକୁ ଗୋପନରେ ଦୂତ ପ୍ରେରଣ କଲେ । ବିବାହୋତ୍ସବର ଯଥାକାଳରେ ଶିଶୁପାଳ ରୁକ୍ମିଣୀଙ୍କୁ ବିବାହ କରିବା ପାଇଁ ବିଦର୍ଭ ନଗରରେ ବରବେଶରେ ଉପସ୍ଥିତ ହେଲେ । କିନ୍ତୁ ଶ୍ରୀକୃଷ୍ଣ ବଳରାମଙ୍କ ସହିତ ବିଦର୍ଭରେ ଉପସ୍ଥିତ ହୋଇ ରୁକ୍ମିଣୀଙ୍କୁ ବଳପୂର୍ବକ ହରଣ କଲେ ଓ ଶିଶୁପାଳ ଲଜ୍ଜିତ ହୋଇ ପ୍ରତ୍ୟାବର୍ତ୍ତନ

କଲେ । ଏଥିପାଇଁ କୌଣସି ଲୋକ ଅଭୀପ୍ସିତ ହୋଇ ବିଫଳ ମନୋରଥ ହେଲେ ତାଙ୍କୁ କୁହାଯାଇ ଥାଏ ଯେ, 'ସେ ଶିଶୁପାଳଥା ବା ଶିଶୁପାଳ ହୋଇଗଲା ।'

ବିଦର୍ଭରେ ବିବାହ ଉପଲକ୍ଷରେ ସମାଗତ ଜରାସନ୍ଧ ଆଦି ରାଜାଗଣ ଶ୍ରୀକୃଷ୍ଣଙ୍କୁ ବାଧା ପ୍ରଦାନ କରିବାକୁ ଚେଷ୍ଟା କଲେ । କିନ୍ତୁ ଶ୍ରୀକୃଷ୍ଣ ଓ ବଳରାମ ସମସ୍ତଙ୍କୁ ପରାସ୍ତ କରି ରୁକ୍ମଣୀଙ୍କୁ ଘେନି ଦ୍ୱାରକାରେ ପହଞ୍ଚିଲେ ଓ ରୁକ୍ମଣୀଙ୍କ ସଙ୍ଗେ ସେଠାରେ ଶ୍ରୀକୃଷ୍ଣଙ୍କର ବିବାହକ୍ରିୟା ସମ୍ପାଦିତ ହେଲା । ରୁକ୍ମଣୀ ମହାଲକ୍ଷ୍ମୀଙ୍କ ଅଂଶ ଗ୍ରହଣ କରି ପୃଥିବୀରେ ଜନ୍ମ ଲଭିଥିବାର ପ୍ରସିଦ୍ଧି ଅଛି । ଶ୍ରୀକୃଷ୍ଣଙ୍କ ଔରସରେ ରୁକ୍ମିଣୀଙ୍କ ଗର୍ଭରୁ ପ୍ରଦ୍ୟୁମ୍ନ (କାମଦେବଙ୍କ ପର-ଜନ୍ମରେ ଧୃତରୂପ) ଆଦି ଦଶପୁତ୍ର ଓ ଚାରୁମତୀନାମ୍ନୀ କନ୍ୟା ଜନ୍ମଗ୍ରହଣ କରିଥିଲେ । ଯଦୁବଂଶ ନାଶ ପରେ ଶ୍ରୀକୃଷ୍ଣ ମାନବ-ଲୀଳା ସମ୍ବରଣ କରିବାରୁ ଅର୍ଜ୍ଜୁନ, ଯଦୁବଂଶୀୟା ରାଜମହିଳା-ମାନଙ୍କ ସହିତ ରୁକ୍ମିଣୀଙ୍କୁ ଇନ୍ଦ୍ରପ୍ରସ୍ଥକୁ ନେଇ ଗଲେ; କିନ୍ତୁ ରୁକ୍ମିଣୀ ପତିବିରହ ସହି ନ ପାରି ପ୍ରଦୀପ୍ତ ହୁତାଶନରେ ଝାସ ଦେଇ ଜୀବନ ବିସର୍ଜ୍ଜନ କଲେ । ]

**ରୁକ୍ମଣୀକାନ୍ତ**—ସଂ. ବି (୬ଷ୍ଠୀ ତତ୍) —ରୁକ୍ମଣୀଙ୍କ ସ୍ୱାମୀ ଦ୍ୱାରକାଧିପତି ଶ୍ରୀକୃଷ୍ଣ—Srikrushna (the husband of Rukmini).
Rukminikānta
(ରୁକ୍ମଣୀନାଥ—ଅନ୍ୟରୂପ)

**ରୁକ୍ମିଣୀଦ୍ୱାଦଶୀ**—ସଂ. ବି—ବୈଶାଖ ଶୁକ୍ଳ ଦ୍ୱାଦଶୀ—The 12th day of the bright fortnight of Baisākha. (ଏ ଦିନ ବିଷ୍ଣୁପୂଜା ଓ ବ୍ରତ ପାଳିତ ହୁଏ । )
Rukmini dwādasi

**ରୁକ୍ମିଦର୍ପ**—ସଂ. ବି (ବହୁବ୍ରୀହି; ଏ ରୁକ୍ମଣୀଙ୍କ ଭାଇ ରୁକ୍ମୀଙ୍କୁ ହତ୍ୟା କରି-ଥିବାରୁ )—ଶ୍ରୀକୃଷ୍ଣଙ୍କ ଅଗ୍ରଜ ବଳରାମ—Balarāma, the elder brother of Srikrushna.
Rukmidarpa

ରୁକ୍ମଦାରଣ
ରୁକ୍ମିଦାରୀ
ରୁକ୍ମଦର୍ପହା
ରୁକ୍ମଭିଦ୍
}—ଅନ୍ୟରୂପ

**ରୁକ୍ମୀ**—ସଂ. ବିଣ. ପୁଂ (ରୁକ୍ମ+ଇନ, ୧ମା. ୧ବ)-ସ୍ୱର୍ଣ୍ଣମୟ—Golden.
Rukmi ବି. ପୁଂ—ଭୀଷ୍ମକ ରାଜାଙ୍କ ଜ୍ୟେଷ୍ଠ ପୁତ୍ର ଓ ରୁକ୍ମଣୀଙ୍କ ଜ୍ୟେଷ୍ଠ ଭ୍ରାତା—The eldest brother of Rukmini.

[ଦ୍ର—ଏ ଶ୍ରୀକୃଷ୍ଣଦ୍ୱେଷୀ ଥିଲେ । ଶ୍ରୀକୃଷ୍ଣ ରୁକ୍ମଣୀଙ୍କୁ ହରଣ କରି ନେବାରୁ ଏ ତାଙ୍କ ଗତିରୋଧ କରିବାକୁ ନର୍ମଦାତୀରରେ ଉପସ୍ଥିତ ହେଲେ । କିନ୍ତୁ ବଳରାମଙ୍କ ଦ୍ୱାରା ପରାଜିତ ହୋଇ ଲଜ୍ଜାରେ ଆଉ ବିଦର୍ଭକୁ ଫେରି ନ ଆସି ଭୋଜକଟକ ନାମକ ନଗର ସ୍ଥାପନ କରିବାରେ ପ୍ରବୃତ୍ତ ହେଲେ । ଏ ଶ୍ରୀକୃଷ୍ଣଙ୍କ ବିଦ୍ୱେଷୀ ଥିଲେ ମଧ୍ୟ ରୁକ୍ମଣୀଙ୍କ ପ୍ରତି ଏହାଙ୍କ ସ୍ନେହ କମି ନ ଥିଲା । ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନଙ୍କ ସହିତ ଏ ଏହାଙ୍କର କନ୍ୟା ରୁକ୍ମାବତୀଙ୍କୁ ବିବାହ କରାଇ ଥିଲେ । ମହାଭାରତ ଯୁଦ୍ଧର ପ୍ରାକ୍‌କାଳରେ ଏ ଆପଣାର ବୀରତ୍ୱ ଖ୍ୟାପନପୂର୍ବକ ପ୍ରଥମେ ପାଣ୍ଡବଙ୍କ ପକ୍ଷରେ ଓ ପରେ କୌରବଙ୍କ ପକ୍ଷରେ ଯୋଗ ଦେବାପାଇଁ ନିଜେ ପ୍ରସ୍ତାବ କଲେ । କିନ୍ତୁ ଏହାଙ୍କ ଅହମିକା ଯୋଗୁ ଉଭୟ ପକ୍ଷ ଏହାଙ୍କ ପ୍ରସ୍ତାବକୁ ଗ୍ରହଣ କଲେ ନାହିଁ । ଏ ପ୍ରଦ୍ୟୁମ୍ନ ତନୟ ଅନିରୁଦ୍ଧଙ୍କ ସହିତ ଆପଣାର ଏକ ପୌତ୍ରୀଙ୍କୁ ବିବାହ ଦେଇଥିଲେ । ସେହି ଉତ୍ସବ ଉପଲକ୍ଷରେ ଯାଦବମାନେ ଏହାଙ୍କ ପ୍ରତିଷ୍ଠିତ 'ଭୋଜକଟକ' ରାଜଧାନୀକୁ ନିମନ୍ତ୍ରିତ ହୋଇ ଆସିଥିଲେ । ସେହି ସମୟରେ ଏ ବଳରାମଙ୍କ ସହିତ ଅକ୍ଷକ୍ରୀଡ଼ାରେ ପ୍ରବୃତ୍ତ ହୋଇ କ୍ରୀଡ଼ାରେ ପ୍ରତାରଣା କରିବାରୁ ବଳରାମ ଏହାଙ୍କୁ ଅକ୍ଷାଘାତ (ପଶାକାଠିରେ ଆଘାତ) କଲେ ଏବଂ ସେହି ଆଘାତରେ ରୁକ୍ମୀ ପଞ୍ଚତ୍ୱପ୍ରାପ୍ତ ହେଲେ । ଏହାଙ୍କର ଅନ୍ୟ ସାନ ଭାଇମାନଙ୍କ ନାମ ରୁକ୍ମସେନ, ରୁକ୍ମ-କେଶ, ରୁକ୍ମବାହୁ, ରୁକ୍ମରଥ, ରୁକ୍ମମାଳୀ (ହ. ଷ.) ।]

**ରୁକ୍ଷ୍ (ଧାତୁ)**—ସଂ—କର୍କଶହେବା—
Ruksh (root) To be rough.

**ରୁକ୍ଷ**—ସଂ. ବି (ରୁହ ଧାତୁ=ଉତ୍ପନ୍ନହେବା+କର୍ତ୍ତୃ ସ; କିମ୍ବା ରୁକ୍ଷ୍ ଧାତୁ =କର୍କଶ ହେବା+କର୍ତ୍ତୃ ଅ )—ବୃକ୍ଷ—Tree.
Ruksha
ସଂ. ବିଣ—୧ । ଅଚିକ୍କଣ; ଅମସୃଣ; କର୍କଶ—1. Unsmooth; rough; scabrous. ୨ । କଠୋର—2. Hard. ୩ । ଶୁଷ୍କ; ନୀରସ—3. Dry. ୪ । କଠୋରବ୍ରତଧାରୀ—4. Observing very hard penance. ୫ । ତୀବ୍ର; ଉଗ୍ର—5. Harsh; stern. ୬ । ବିରସପ୍ରକୃତିକ—6. Morose; scowling. ୭ । ଅସ୍ନିଗ୍ଧ; ଳୁଖୁରା—7. Not oily. ୮ । କଠୋରପ୍ରକୃତିକ; ଝଙ୍ଗିଶୁଳା; ଚିଡ଼ଚିଡ଼ା; ଖାଉଁଖାଉଁଆ—8. Rude; uncouth; sulky; harsh-tempered; of irritable temper. ୯ । ଶତ୍ରୁତାପନ୍ନ—9. Inimical; unfriendly. ୧୦ । ଅନନୁକୂଳ—10. Repulsive; unfavourable. ୧୧ । ନିର୍ଦ୍ଦୟ; ନିଷ୍ଠୁର—11. Cruel; hard-hearted. ୧୨ । ବେଗବାନ୍—12. Speedy; swift. (ଏହାର ଅପଭ୍ରଂଶ ଳୁଖୁରା; ଲୁଖୁରା) ୧୩ ; (ବୈଦିକ) ଉଜ୍ଜ୍ୱଳ—13 Shining; brilliant (Apte)
(ରୁକ୍ଷା—ସ୍ତ୍ରୀ)

**ରୁକ୍ଷ କେଶ**—ସଂ.ବିଣ. ପୁଂ (ବହୁବ୍ରୀହି)—ଯାହାର କେଶରେ ମାଲିସ ଲଗା ହୋଇ ନ ଥାଏ, ଲୁଖୁରାମୁଣ୍ଡା—Not having the hair smeared with oil. ସଂ. ବି (କର୍ମଧା)—ଲୁଖୁରାବାଳ—Unoiled hair.
Ruksha keśa
[ରୁକ୍ଷକେଶା—ସ୍ତ୍ରୀ]

**ରୁକ୍ଷତା(ତ୍ୱ)**—ସଂ. ବି (ରୁକ୍ଷ+ଭାବ ତା, ତ୍ୱ)—୧ । କର୍କଶତା—1. Rudeness; uncouthness. ୨ । କଠୋରତା—2. Harshness.
Rukshatā (twa)

**ରୁକ୍ଷ ପତ୍ର**—ସଂ. ବି (ରୁକ୍ଷ ଅଟେ ପତ୍ର ଯାହାର; ବହୁବ୍ରୀହି)—ଶାଖୋଟ; Ruksha patra ଶାହାଡ଼ା ଗଛ—A tree; Streblus Asper.

**ରୁକ୍ଷ ପ୍ରକୃତି**—ସଂ. ବି. (କର୍ମଧାରୟ)—କଠୋର ପ୍ରକୃତି—Ruksha prakruti Rude or harsh nature.
ସଂ. ବିଣ. ପୁଂ ଓ ସ୍ତ୍ରୀ. (ବହୁବ୍ରୀହି)—ରୁକ୍ଷପ୍ରକୃତିବିଶିଷ୍ଟ—Irritable; surly.

**ରୁକ୍ଷ ପ୍ରକୃତିକ**—ସଂ. ବିଣ. ପୁଂ (ବହୁବ୍ରୀହି; ରୁକ୍ଷ+ପ୍ରକୃତି+କ)—Ruksha prakrutika କର୍କଶ ସ୍ୱଭାବଯୁକ୍ତ—Of rude or uncouth temper. (ରୁକ୍ଷ ପ୍ରକୃତିକା—ସ୍ତ୍ରୀ)

**ରୁକ୍ଷ ଭାଷୀ**—ସଂ. ବିଣ. ପୁଂ (ରୁକ୍ଷ+ଭାଷ୍ ଧାତୁ+କର୍ତ୍ତୃ. ଇନ୍; ୧ମା· Ruksha bhāshi ୧ବ)—ଯେ କଠୋର ବାକ୍ୟ କହେ—(ରୁକ୍ଷଭାଷିଣୀ—ସ୍ତ୍ରୀ) Speaking roughly or rudely. (ରୁକ୍ଷଭାଷଣ, ରୁକ୍ଷଭାଷିତା—ବିଶେଷ୍ୟ)

**ରୁକ୍ଷ ସ୍ୱାଦୁ ଫଳ**—ସଂ. ବି. (ବୈଦ୍ୟକ)—ଧନ୍ୱଙ୍ଗ ବୃକ୍ଷ; ଧାମଣ ଗଛ—Ruksha swādu phala A wild timber tree; Cordia Macleodei; Grewia Treliaefolia.

**ରୁକ୍ଷୀ**—ସଂ. ବି—ଦନ୍ତୀ ବୃକ୍ଷ—Rukshi Croton Polyandrum (tree).

**ରୁଖ୍ (ଧାତୁ)**—ସ—ସ୍ୱଗାନ୍ୱିତ ହେବା—Rukh (root) To be angry.

**ରୁଖ**—ସଂ. ବି. (ରୁଖ୍ ଧାତୁ+କର୍ତ୍ତୃ. ଅ)—୧। ଶୂନ୍ୟ; ଖାଲି; ଭୁଚ୍ଛା—Rukha 1. Empty. ୨। କ୍ଷୀଣ; ରୋଗା; ଦୁର୍ବଳ—2. Lean; weak; delicate.
ଗୁଁଡୀ
ଗୁଁଡି, ବୁରାଦା, चूर
ଦେ. ବି. (ସଂ. ରୁକ୍ଷ=କର୍କଶ)—୧। ଝିହାରେ ବା କରତରେ କଟା ହୋଇଥିବା ଲୁହା ଆଦି ଧାତୁର ଅତି ଛୋଟ ଗୁଣ୍ଡ—1. Powder of metals; metal filings. [ଦ୍ର—ବାରୁଦରେ ରୁଖ ମିଶାଇ ସେଥିରେ ନିଆଁ ଲଗାଇଲେ ସେ ରୁଖମାନ ଜଳନ୍ତା ଚମ୍ପା ଫୁଲ ପରି ଝଡ଼ି ପଡ଼େ।] ୨। ଲୁହା ଆଦି ଗୁଣ୍ଡ ମିଶ୍ରିତ ବାରୁଦରୁ ଝଡ଼ିବା ଜଳନ୍ତା ଚମ୍ପା ଫୁଲ ପରି ଦେଖାଯିବା ଅଗ୍ନି ସ୍ଫୁଲିଙ୍ଗ—2. Burning sparks coming out of burning gun powder or fire work which is prepared by mixing metal filings with it.
ଫୁଲ
ଫୁଲ

**ରୁଖ ଲୁହା**—ଦେ. ବି—ଏକ ପ୍ରକାର ଟାଣୁଆ ଲୁହା—Rukha luhā A sort of hard iron.
ଗୁଁଡିଯା ଲୁହା
गुरिदया लोहा
[ଦ୍ର—ଅନ୍ୟ ଲୁହା ଅପେକ୍ଷା ଏ ଲୁହାରୁ ଝିହା ବା କରତି ଦ୍ୱାରା ବେଶି ରୁଖ ବାହାରେ।]

**ରୁଖା**—ଦେ. ବି. (ସଂ. ପ୍ରଦୀପରକ୍ଷା ଶବ୍ଦରୁ; ଯାହା ଉପରେ ପ୍ରଦୀପ ସ୍ଥାପିତ Rukshā ହୁଏ)—ଦୀପାଧାର; ପିଲସଜ—Lamp-stand.
दीप राखा, देरखो
चिरागदान, दीवट
ଦେ. ବିଣ. (ସଂ. ରୁକ୍ଷ)—୧। ନିରୁଖ; ଅସ୍ନିଗ୍ଧ; ତୈଳହୀନ—1. Unoily. ୨। ଶୁଷ୍କ; ନୀରସ—2. Dry. ୩। କର୍କଶ; ଅମସୃଣ—3. Unsmooth; coarse. ୪। କଡ଼ା (କଥା)—4. Uncouth (words). ୫। (ଖାଦ୍ୟ) ଯାହା ତେଲ ବା ଘୃତ ଚର୍ଚ୍ଚିତ ହୋଇ ନ ଥାଏ—5. Not smeared or seasoned or saturated with oil or ghee.
ରାଖା(ଖୁ)
रुखा

**ରୁଖା(ଖେ)ଇବା**—ଦେ. କ୍ରି. (ସଂ. ରୁକ୍ଷ ଧାତୁ ଣିଜନ୍ତ)—ରଗାଇବା; Rukhā(khe)ibā ଚଢ଼ାଇବା; ରୁଷାଇବା—To tease, to irritate.
বাগান रोखान

**ରୁଖା ଭାତ**—ଦେ. ବି. (ସଂ ରୁକ୍ଷ+ଭକ୍ତ)—୧। ନିରୁଖ ଭାତ; ଯେଉଁ ଭାତରେ ଘିଅ ଗୋଳା ହୋଇ ନ ଥାଏ—1. Rice not anointed with ghee. [ଦ୍ର—ସ୍ମୃତିରେ 'ଘୃତହୀନଂ ରୁକ୍ଷଭୋଜନଂ' ପ୍ରବଚନ ଅଛି।] ୨। ମୋଟା ଭାତ; ବଗଡ଼ା ଅନ୍ନ—2. Coarse rice; boiled coarse-rice. ୩। ଭୁଚ୍ଛା ଭାତ; ବ୍ୟଞ୍ଜନବିହୀନ ଅନ୍ନ—3. Cooked rice not served up with curry. ୪। ଶୁଖିଲା ଭାତ; ଶୁଷ୍କ ଅନ୍ନ—4. Dried rice; boiled rice which has become dry. [ଦ୍ର—ଭାତ ସଙ୍ଗେ ଘିଅ ଗୋଳା ନ ହେଲେ ତାହା ଗିଳିବାକୁ କଷ୍ଟ ହୁଏ, ଏଥିପାଇଁ ଘୃତହୀନ ଭୋଜନକୁ ହିନ୍ଦୁମାନେ ରୁକ୍ଷଭୋଜନ କହନ୍ତି। ସେହିପରି ଭାତ ସଙ୍ଗେ ଡାଲି ବା ତିଅଣ ନ ଥିଲେ ସେ ଭାତ ଗଳାଧଃକରଣ କରିବାକୁ କର୍କଶ ଲାଗେ।]
শুকনো ভাত
रुखा भात

**ରୁଖା ଶୁଖା**—ଦେ. ବିଣ. (ସହଚର; ସଂ. ରୁକ୍ଷ ଓ ଶୁଷ୍କ)—୧। ଘୃତ ଓ Rukhā sukhā ବ୍ୟଞ୍ଜନ ବିହୀନ (ରୁକ୍ଷ) ଏବଂ ଶୁଖିଲା (ଅନ୍ନ)—1. (food) Not accompanied with ghee or curry and which has also become dry. ୨। ବଗଡ଼ା (ଭାତ)—2. Coarse (food). (ଯଥା—ମୁଁ ତ ଧନୀ ନୁହେଁ ଯେ, ମୋ ଘରେ ନିତି ଘିଅଭାତ ବା ପଚପଚିଆ ମାଲ ଖାଇବାକୁ ମିଳିବ। ମୋତେ ଯେ ଆଶ୍ରା କରିବ ତାକୁ ହଜାରେ ରୁଖାଶୁଖା ଶାଗଭାତ ମୁଠାଏ ମିଳିବ।) ୩। ତୈଳାଦି ଚର୍ଚ୍ଚିତ ନ ହେବାରୁ ଶୁଷ୍କ ବା ଦୁର୍ବଳ (ଦେହ)—3. (body) Which has become unoiled and coarse (ଦ୍ର—ରୁଖାଶୁଖା (୧) ଖାଏ ଯେ, ରୁଖାଶୁଖା (୩) ହୁଏ ସେ—ଢଗ।) ଦେ. ବି—୧। ଘୃତ ଓ ବ୍ୟଞ୍ଜନହୀନ ଖାଦ୍ୟ; ଘୃତହୀନ ଖାକାନ୍ନ—1. Coarse and simple food; scanty fare. ୨। ତୈଳାଭ୍ୟଙ୍ଗହୀନ ଓ କ୍ଷୀଣ ବ୍ୟକ୍ତି—2. An unoiled and slender person
রুখা শুখা
रुखा सुखा

**ରୁଖିଆ**—ଦେ. ବି—ଏକ ପ୍ରକାର କ୍ଷୁଦ୍ର କୀଟ—Rukhiā A kind of small insect. [ଦ୍ର—ଛତା ଓ କନା ଆଦିରେ ଏହି ପୋକ ଲାଗି ଛତାରେ ଓ କନାରେ ଛୋଟ ଛୋଟ ଛିଦ୍ର ଫୁଟାଇ ଦିଅନ୍ତି।]
পোকা
कीड़ा, घुन

ପ୍ରାଦେ. (ଗଡ଼ଜାତ) ବ—ଯେ ରାତିରେ ଜଙ୍ଗଲ ସୀମାକୁ ଜଗି ସକାଳେ ଶିକାରୀମାନଙ୍କୁ ବାଘ ଆଦି ଜନ୍ତୁଙ୍କର ଖବର ଦିଅନ୍ତି—Persons who watch the movements of game-animals in the night previous to a beat in a jungle.

ରୁଖିଆ ବସା(ସେ)ଇବା—ପ୍ରାଦେ. (ଗଡ଼ଜାତ) କ୍ରି—ଜଙ୍ଗଲର ଯେଉଁ
Rukhiā basā(se)ibā ସୀମା ମଧ୍ୟରେ ଥିବା ବନ୍ୟ ଜନ୍ତୁମାନଙ୍କୁ କାଲୁଣିଆମାନଙ୍କ ଦ୍ୱାରା ଶିକାରୀ ପାଖକୁ ଘଉଡ଼ାଇ ଆଣିବାର ସ୍ଥିର କରାଯାଏ, ଶିକାର କରିବାର ପୂର୍ବଦିନ ରାତିରେ ସେହି ସୀମାକୁ ଅଳ୍ପ ସଂଖ୍ୟକ ଲୋକଙ୍କ ଦ୍ୱାରା ଜଗାଇବା—To have an area of a jungle watched by a few persons on the night previous to a beat. [ଦ୍ର—ଏହି ରୁଖିଆମାନେ ରାତି ମଧ୍ୟରେ ଏ ସୀମାରେ ବାଘ ଆଦି ଥିବା ନ ଥିବା ବାର ପାଇ ପରଦିନ କାଲୁଣିଆମାନେ ସେ ସୀମାକୁ ଘେରିବା ପୂର୍ବରୁ ଶିକାରୀଙ୍କୁ ସେ ସୀମା ମଧ୍ୟରେ ଥିବା ଜନ୍ତୁମାନଙ୍କ ସମ୍ବାଦ ଦିଅନ୍ତି ।]

ରୁଖିବା—ଦେ. କ୍ରି (ସଂ. ରୁଷ୍ ଧାତୁ)—ରାଗିବା; ଚିଡ଼ିବା; ରୁଷିବା;
Rukhibā ରୋଷ କରିବା; ବିରକ୍ତ ହେବା—To be
বাখা, বাগা হস্বনা displeased; to sulk.

ରୁଖିଲା—ଦେ. ବିଣ (ସଂ. ରୁକ୍ଷ)—ରୁଖା (ଦେଖ)
Rukhilā শূকনো হস্তা Rukhā (See)

ରୁଖିଲା ଶୁଖିଲା—ଦେ. ବିଣ—ରୁଖା ଶୁଖା (ଦେଖ)
Rukhilā śukhilā Rukhā śukhā (See)

ରୁଗ୍—ପ୍ରାଦେ (ସମ୍ବଲପୁର) ବି—ରୋଗ—
Rug Disease.

ରୁଗ୍(ଗୁ) ରୁଗ୍(ଗୁ)—ଦେ. ଅ—ସାମାନ୍ୟ ଜଳାପୋଡ଼ା; ମରିଚ ଖାଇଲେ
Rug(gu) rug(gu) ଜିଭ ଦେହରେ ଉଷଡ଼ ବିଷାକ୍ତ ଲେପ
অল্পঅল্পজলা হস্কহস্ক ଆଦି ଲଗାଇଲେ ଜିଭ ବା ଦେହ ସାମାନ୍ୟରେ ପୋଡ଼ାଜଳା କରିବା ପ୍ରକାରେ—Slightly burning sensation felt in the tongue or body by the application of slightly pungent things (e. g. black pepper) or irritants. [ଦ୍ର—'ରଗ୍ ରଗ୍' 'ରୁଗ୍‌ରୁଗ୍'ଠାରୁ ବେଶି ଜଳାପୋଡ଼ା ସୂଚନା କରେ; ଅତ୍ୟନ୍ତ ଜଳା ପୋଡ଼ାକୁ 'ହାଉହାଉ' ପୋଡ଼ିବା କୁହାଯାଏ ।]

ରୁଗ୍(ଗୁ)ଡ଼ିଆ—ପ୍ରାଦେ (ସମ୍ବଲପୁର) ବି (ତୁଳ. ହି. ରୋଡ଼ା)
Rug-(gu)ṟdiā କଙ୍କରମୟ ସ୍ଥାନ; ପଥୁରିଆ ଜାଗା—A rocky or gravelly place.
ଦେ. ବିଣ—ବାଙ୍ଗର ଓ ଶୀର୍ଣ୍ଣକାୟ—Of stunted
বোঁগাপটকা রোড়িয়া growth and emaciated.

ରୁଗ୍‌ବିନିଶ୍ଚୟ—ସଂ. ବି (୬ଷ୍ଠୀ ତତ୍; ରୁଗ୍+ବିନିଶ୍ଚୟ)—୧ । ରୋଗର
Rug-biniśchaya ନିଦାନ, ଲକ୍ଷଣାଦିର ପରୀକ୍ଷାଦ୍ୱାରା ରୋଗକୁ
(ରୁଗ୍‌ନିର୍ଣ୍ଣୟ—ଅନ୍ୟରୂପ) ଚିହ୍ନିବା—1. Diagnosis (Apte) ୨ । ମାଧବକରନିଦାନ ଗ୍ରନ୍ଥ—2 The name of a Sanscrit treatise on Diagnosis (Apte).

ରୁଗ୍‌ଭୟ—ସଂ. ବି (୬ଷ୍ଠୀ ତତ୍; ରୁଜ+ଭୟ)—ରୋଗର ଆଶଙ୍କା—
Rug-bhaya Fear or risk of disease (M. W.)

ରୁଗ—ପ୍ରାଦେ (ଉତ୍ତର ବାଲେଶ୍ୱର; ଓ ସ୍ଥାନରେ ଉ ଉଚ୍ଚାରଣ) ବି—
Ruga ରୋଗ—Disease.

ରୁଗଣ(ଣା)—ଦେ. ବିଣ.—(ପୁଂ ଓ ସ୍ତ୍ରୀ)—(ସଂ. ରୁଗ୍‌ଣ)—ରୋଗଣା
Rugaṇa(ṇā) [ଦେଖ]—Rogaṇā (See)
[ରୁଗଣିଆ (ଆଁ)—ଅନ୍ୟରୂପ] [ରୁଗଣୀ, ରୁଗଣେଇ—ସ୍ତ୍ରୀ ରୂପ]

ରୁଗନ୍—ଦେ. ବି.—ରୋଗନ୍ [ଦେଖ]
Rugan Rogan (See)

ରୁଗା—ପ୍ରାଦେ—(ସମ୍ବଲପୁର ଓ ଉତ୍ତର ବାଲେଶ୍ୱର; ଓ ସ୍ଥାନରେ
Rugā ଉ ଉଚ୍ଚାରଣ)—ବିଣ.—୧। ରୁଗଣ—1. Ailing; invalidated. ୨ । ପୀଡ଼ିତ—2. Sick.

ରୁଗୀ—ପ୍ରାଦେ. [ବାଲେଶ୍ୱର] ବିଣ. ପୁଂ—(ତୁଳ. ବ. ଉଚ୍ଚାରଣ
Rugi ରୂଗୀ)—ରୋଗୀ (ଦେଖ)—Rogī (See)
[ରୁଗ(ଗି)ଣୀ—ସ୍ତ୍ରୀ]

ରୁଗୁଡ଼ି—ପ୍ରାଦେ. (ଗଡ଼ଜାତ; ସମ୍ବଲପୁର) ବି.—(ସଂ. ରୁଟ୍‌ଣ, ତୁଳ
Ruguṟdi ହି. ରୋଡ଼ୀ)—୧ । କଙ୍କର—1. Gravel. ୨ । ଛୋଟ ପାହାଡ଼—2. Small hillock. ୩ । (ବାମଣ୍ଡା) ଗୋଡ଼ି—3. Pebble.

ରୁଗୁଡ଼ିଆ—ଦେ. ବିଣ. ପୁଂ—(ସଂ. ରୁଗ୍‌ଣ)—୧ । ରୁଗ୍‌ଣ—
Ruguṟdiā 1. Delicate; sickly. ୨ । ଖର୍ବକାୟ;
[ରୁଗୁଡ଼ୀ, ରୁଗୁଡ଼େଇ—ସ୍ତ୍ରୀ] ବାମନ—2. Dwarfish; stunted. ୩ । କଙ୍କରମୟ—3. Gravelly. (ଯଥା—କଙ୍କରମୟ ଭୂମିରେ ଉଠିବା ଗଛମାନ ରୁଗୁଡ଼ିଆ ହୋଇଯାଏ; ମାଲେରିଆ ଜ୍ୱରରେ ପିଲାମାନେ ରୁଗୁଡ଼ିଆ ହୋଇ ଯାଆନ୍ତି ।)

ରୁଗୁ(ଗି)ଣ(ଣା)—ଦେ. ବିଣ. ପୁଂ—(ସଂ. ରୁଗ୍‌ଣ)—୧ । ରୋଗୀ;
Rugu(gi)ṇa(ṇā) ରୁଗ୍‌ଣ—1. Sick; ill; ailing.
[ରୁଗୁ(ଗି)ଣିଆ(ଆଁ)—ଅନ୍ୟରୂପ] ୨ । ଯେ ସର୍ବଦା ରୋଗାକ୍ରାନ୍ତ
(ରୁଗୁଣୀ, ରୁଗୁଣେଇ—ସ୍ତ୍ରୀ) ହୋଇଥାଏ; ରୋଗିଣା—2. One
বোগা, রোগাটে রোগী who is always sick; invalid; of delicate constitution.

ରୁଗୁ ରୁଗୁ—ଦେ. ଅ—ରୁଗ୍ ରୁଗ୍ (ଦେଖ)
Rugu rugu Rug rug (See)

ରୁଗ୍ଣ—ପ୍ରାଦେ. (ଗଞ୍ଜାମ)—ବି.—ରୋଗ
Rugga Disease.

ରୁଗ୍‌ଣ(ଗ୍ନ)—ସଂ. ବିଣ. ପୁଂ.—(ରୁଜ୍ ଧାତୁ=ପୀଡିତ ହେବା+କର୍ତ୍ତୃ. ତ)
Rugṇa(gna) ୧ । ପୀଡ଼ିତ—1. Ill. ୨ । ଭଗ୍ନସ୍ୱାସ୍ଥ୍ୟ—
(ରୁଗ୍‌ଣା, ରୁଗ୍ନା—ସ୍ତ୍ରୀ) 2. Delicate; sickly; of
[ରୁଗଣତା(ତ୍ୱ)—ବି.] delicate health. ୩ । ଚିରରୋଗୀ 3. Invalid; infirm. ୪ । ବାଧାପ୍ରାପ୍ତ—4. Checked (M. W.) ୫ । ଭଗ୍ନ—5. Broken,

shattered (M. W.) [ମନିଅର୍ ଭିଲିଅମ୍‌ସ୍ ଙ୍କ ସଂସ୍କୃତ କୋଷରେ 'ରୁଗ୍ନ' ଶବ୍ଦକୁ ରୁଗ୍‌ଣ ଶବ୍ଦର ଅଶୁଦ୍ଧ ରୂପ ବୋଲି ଲେଖି ଅଛନ୍ତି ।]

**ରୁଗ୍‌ଣରଯ୍ୟ**—ସଂ. ବିଣ, ପୁଂ (ବହୁବ୍ରୀହି, ରୁଗ୍‌ଣ+ରଯ୍ୟ)—
Rugnaraya
(ରୁଗ୍‌ଣରଯ୍ୟା—ସ୍ତ୍ରୀ) ଆକ୍ରମଣରେ ବାଧାପ୍ରାପ୍ତ—Checked in an onset; foiled in an attack (M. W.)

**ରୁଗ୍‌ଣ ଲିପି**—ସଂ. ବି. (ଅଧୁନିକ ପ୍ରୟୋଗ)—ଚିକିତ୍ସା ବିଜ୍ଞାନର
Rugna lipi
ରୋଗୀଚର୍ଯ୍ୟା ଶାଖା—Clinic.
(ରୁଗ୍‌ଣଚର୍ଯ୍ୟା, ରୁଗ୍‌ଣସେବା—ଅନ୍ୟରୂପ)

**ରୁଗ୍‌ଣୀ**—ଦେ. ବିଣ. ସ୍ତ୍ରୀ (ସଂ. ରୁଗ୍‌ଣ+ଓଡ଼ିଆ ସ୍ତ୍ରୀ ଲିଙ୍ଗାନ୍ତ ପ୍ରତ୍ୟୟ
Rugni
ଈ)—ରୁଗ୍‌ଣର ସ୍ତ୍ରୀଲିଙ୍ଗ—Feminine of Rugna.

**ରୁଗ୍‌ବେଦ**—ଗ୍ରା. ବି (ସଂ. ଋଗ୍ବେଦ)—ଋକ୍ ନାମକ ପ୍ରଥମ ବେଦ—
Rug-beda
The 1st of the 4 Bedas.

**ରୁଘା**—ପ୍ରାଦେ (ସମ୍ବଲପୁର) ବିଣ—ରୋଗା; ରୁଗ୍‌ଣ—
Rugha
Sickly, diseased.

**ରୁଙ୍ଗୁଡ଼ା ଆସନ**—ଦେ. ବି—ଯୋଗାସନ ବିଶେଷ—
Rungurda āsána
A kind of Jogāsana.
[ଭ—ବରୁଣ କାଷ୍ଠମାଳା ଧରି କରେ, ରୁଙ୍ଗୁଡ଼ା ଆସନ ଧରି ଜର୍ଭରେ । ସ୍ବାମୀ. ପରଦେଶୀଗୀତା ।]

**ରୁଚ୍ (ଧାତୁ)**—ସଂ—୧ । ଦୀପ୍ତି ପାଇବା—1. To shine. ୨ ।
Ruch (root)
ରୁଚିବା; ରୁଚିକର ହେବା; ସୁଖ ଲାଗିବା—2. To be tasteful; to be delicious. ୩ । ସୁଆଦ ଲାଗିବା—3. To agree to one's taste, to taste sweet. ୪ । ମନକୁ ପାଇବା; ମନଲାଖି ହେବା—4. To seem agreeable. ୫ । ସୁନ୍ଦର ଦେଖାଯିବା; ଶୋଭମାନ ହେବା—5. To look splendid or resplendent (Apte).

**ରୁଚ**—ସଂ. ବି (ରୁଚ୍ ଧାତୁ+ଭାବ.କ୍ୱିପ୍=ରୁଚ୍ ଶବ୍ଦର ୧ମା.୧ବ; ରୁକ୍;
Ruch
ବିକଳ୍ପେ ରୁଚ୍)—୧ । ଶୋଭା; ଦୀପ୍ତି; କାନ୍ତି—1. Lustre, splendour, brilliance ୨ । ସୌନ୍ଦର୍ଯ୍ୟ—2. Beauty; grace; loveliness. ୩ । ଇଚ୍ଛା—3. Desire; wish. ୪ । ଇଚ୍ଛା; ରୁଚି—4. Liking; desire (Apte) ୫ । (+କର୍ତ୍ତୃ କ୍ୱିପ୍) ବିଦ୍ୟୁତ୍—5. Lightning(Apte) ୬ । ଶୁଆ ଶାରୀଙ୍କ ଧ୍ୱନି—6. The note of the parrot or Myna-(Apte) ୭ । (ସମାସରେ ପଦ ଶେଷରେ ଲାଗେ) ବର୍ଣ୍ଣ. ଚେହେରା—7. (at the end of compounds; Colour; appearance (Apte).)

**ରୁଚ୍(ଚ)ମୁ'ରୁ'ଚ୍(ଚୁ)**—ଦେ. ଅ (ଧ୍ୱନ୍ୟନୁକରଣ)—ଚୋବାଇବା ଅପେକ୍ଷା
Ruch(chu)mu(ru)ch(chu)
ଚୂର୍ଣ୍ଣିତର ଅନୁଭୂତି; ବାଲି ବା
ଧୂଳିଯୁକ୍ତ ଅଳ୍ପ ବସ୍ତୁ ଚୋବାଇବା ପ୍ରକାର—(Onomatopoeic) The sensation of chewing a little quantity of powdered things.
ବଚବଚ
କୁଚକୁଚ

**ରୁଚ**—ଦେ. ବିଣ.—(ସଂ. ରୋଚକ)—୧ । ମୁଖରୋଚକ—1. Agreeable to the taste; tasteful. ୨ । ରୁଚିକର—2. Agreeable.
Rucha
ଦେ. ବି.—ଟାଭାଫଳ—Citron.
ସଂ. ବିଣ.—(ରୁଚ୍ ଧାତୁ+କର୍ତ୍ତୃ. ଅ)—୧ । ଉଜ୍ଜ୍ୱଳ—1. Bright; brilliant (M. W.)

**ରୁଚକ**—ସଂ. ବି.—(ରୁଚ ଧାତୁ+କର୍ତ୍ତୃ. ଅକ)—୧ । ଅଶ୍ୱାଭରଣ;
Ruchaka
ଘୋଡ଼ାର ଗୁର ଯାମା—1. A cover put over the saddle of a horse for show. ୨ । ଚିକ; କଣ୍ଠାଭରଣ ବିଶେଷ—2 A sort of necklace; a buckler for the neck, ୩ । ଦନ୍ତ—3. Tooth. ୪ । ମାଲ୍ୟ—4. Garland. ୫ । କପୋତ; ପାରା—5. Dove; pigeon (Apte). ୬ । ଲବଣ—6. Salt. ୭ । ଗନ୍ଧଦ୍ରବ୍ୟ 7. A scent. ୮ । ସ୍ୱର୍ଣ୍ଣପାତ୍ର ବିଶେଷ—8. A sort of golden plate. ୯ । ଔଷଧ ବିଶେଷ—9 A sort of medicine. ୧୦ । ମାଙ୍ଗଲ୍ୟ ଦ୍ରବ୍ୟ—10. Auspicious article; any substance supposed to bring good luck. ୧୧ । (ବାସ୍ତୁବିଦ୍ୟା) ଯେଉଁ ଘରର ଉତ୍ତର ପାଖ ବନ୍ଦ ଓ ଅନ୍ୟ ୩ ପାଖେ ପିଣ୍ଡା ଥାଏ—11. A building having terraces on three sides and closed on the north only (Apte). ୧୨ । ଯେଉଁ ଘରର ପୂର୍ବ ଓ ପଶ୍ଚିମର ବାରଣ୍ଡା ସର୍ବଥା ନଷ୍ଟ ହୋଇଅଛି, ଏବଂ ଉତ୍ତରର ଓ ଦକ୍ଷିଣର ପିଣ୍ଡା ପୂର୍ବ ପରି ଅକ୍ଷୁଣ୍ଣ ରହିଅଛି (ହି. ଶ.)—12. A building of which the eastern and western verandas have been destroyed and the northen or southern ones intact. ୧୩ । ଘରର ଚତୁଃକୋଣିଆ ସ୍ତମ୍ଭ (ହି. ଶ)—13. Quadrangular pillar or column. ୧୪ । ସର୍ଜ୍ଜିକ୍ଷାର (ହି. ଶ.)—14. Natron; alkali (Apte). ୧୫ । ସଚଳ ଲୁଣ; କଳା ଲୁଣ [ହି. ଶ.]—15. Black salt, sochal salt (M. W.) ୧୬ । ଗୋରୋଚନା [ହି. ଶ]—16. A yellow pigment derived from dead kine. ୧୭ । ବାଇବିଡ଼ଙ୍ଗ [ହି. ଶ.] 17. Embelia Ribes. ୧୮ । ବୀଜପୂରକ; ଟାଭା [ହି. ଶ.]—18. Citron (Apte). [ଉ—ରୁଚକ ରୁଚିର ରୁଚକଳସକୁ ଶୁଦ୍ଧି ହଜାଇବେ ଯତ୍ତ ମନ୍ଦିର । କବିସୂର୍ଯ୍ୟ. ସଙ୍ଗୀତ ।] ୧୯ । ପ୍ରାଚୀନ କାଳର ନିଷ୍କ ନାମକ ସ୍ୱର୍ଣ୍ଣମୁଦ୍ରା [ହି. ଶ.]—19. Name of an ancient gold coin. ୨୦ । ସୁମେରୁ ନିକଟସ୍ଥ ପୌରାଣିକ ପର୍ବତ [ହି. ଶ.]—20. Name of a mythological mountain. ୨୧ । ଦକ୍ଷିଣ

ଦଗ [ହି. ଶ.]—21. The South. ୨୨ । ମୁଦ୍ରିକା 22. A ring (M. W.) ୨୩ । ମଧୁର ରସ—23. Sweet juice (M. W.) ୨୪ । ବୃକ୍ଷବିଶେଷ-24. Ricinus Communis tree (M. W.)
ସ. ବିଣ.—୧ । ତୃପ୍ତିଜନକ—1. Tasteful; delicious. ୨ । ମଧୁର; ସୁସ୍ୱାଦୁ—2. Sweet. ୩ । ସନ୍ତୋଷ ଉତ୍ପାଦକ—3. Pleasing; agreeable ( M. W. ) ୪ । ଉଦରର ହିତକର—4. Stomachic ( Apte ); tonic ( Apte ). ୫ । କଡୁଆ—5. Acrid; sharp (Apte). ୬ । ଅତି ବଡ଼—6 Very large (M. W.)

ରୁଚ୍ୱ—ସ. ବି (ରୁଚ୍ ଧାତୁ+ଭାବ. କ୍ୱିପ୍=ରୁଚ୍ ଶବ୍ଦ+ସ୍ତ୍ରୀ. ଆ)—୧ । Ruchā ଶୋଭା; ଦୀପ୍ତି—1. Lustre ୨ । କାନ୍ତି, ସୌନ୍ଦର୍ଯ୍ୟ-2, Beauty. ୩ । ଇଚ୍ଛା—3, Desire. ୪ । ରୁଚ ଶବ୍ଦର ଅନ୍ୟ ଅର୍ଥମାନ ( ଦେଖ )—4. The other meanings of Ruch (See) ୫ । ଶୁଆର କଣ୍ଠସ୍ୱର—5. The note of the parrot (M.W)

ରୁଚ୍ୱ(ଚେ)ଇବା—ଦେ. କ୍ରି—୧ । ରୁଚିକର ବୋଧହେବା—1. To Ruchā(che)ibā seem savoury or tasteful. ଗୋଚା ଋଚାନା, ଋଚବାନା ୨ । ସନ୍ତୁଷ୍ଟ କରିବା; ଖୁସୀ କରିବା—2. To please. [ଉ—ନଟମୁଣ୍ଡିଙ୍କୁ କୋଳେ ନଗ୍ନଇ ସେ ରସେବଙ୍କେ ରୁଚ୍ଚଇଲେ – କବିସୂର୍ଯ୍ୟ ସଙ୍ଗୀତ ।]

ରୁଚି(ଚୀ)—ସ. ବି (ସ୍ତ୍ରୀ)—( ରୁଚ୍ ଧାତୁ+କର୍ତ୍ତୃ. ଇ, ଈ )—Ruchi(chī) ୧ । ଆଲୋକରେଖା; କିରଣ—1. Ray of light, gleam of light. ୨ । ପ୍ରଭା; ଦୀପ୍ତି; ଜ୍ୟୋତି—2. Brilliance; lustre; splendour. ୩ । ଶୋଭା; ଲାବଣ୍ୟ; ସୌନ୍ଦର୍ଯ୍ୟ—3. Beauty; grace. ୪ । ଲାଳିତ୍ୟ; ମାଧୁର୍ଯ୍ୟ- 4. Sweetness; elegance. ୫ । ଗୋରୋଚନା—5. A sort of yellow pigment obtained from the carcase of kine. ୬ । କ୍ଷୁଧା; ଖାଦ୍ୟାହାର ପାଇଁ ଇଚ୍ଛା; ବୁଭୁକ୍ଷା—6. Appetite; hunger; zest. ୭ । ଭୋଜନସ୍ପୃହା; ଖାଦ୍ୟ ପ୍ରତି ଆଗ୍ରହ—7. Relish for food; zest for food. ୮ । ଅଭିଳାଷ; ସ୍ପୃହା—8. Desire. ୯ । ସାହିତ୍ୟପ୍ରତି ଆଗ୍ରହ—9. Taste for literature. ୧୦ । ଅନୁରାଗ; ପ୍ରୀତି; ପ୍ରେମ—10, Love; attachment; liking. ୧୧ । ପ୍ରବୃତ୍ତି (ହି. ଶ.)—11. Inclination. ୧୨ । ସ୍ୱାଦ (ହି.ଶ)· 12. Taste (Apte). ୧୩ । କାମଶାସ୍ତ୍ର ଅନୁସାରେ ଆଲିଙ୍ଗନବିଶେଷ, ଯହିଁରେ ନାୟିକା ନାୟକଙ୍କ ସମ୍ମୁଖରେ ନାୟକର ଅଣ୍ଟୁ ଉପରେ ବସି ନାୟକଙ୍କୁ ଆଲିଙ୍ଗନ କରନ୍ତି ( ହି. ଶ. )—13. A kind of amatory embrace or coitus M. W.) ୧୪ । ଅପ୍ସରୋବିଶେଷ (ହି. ଶ)—14. Name of a heavenly nymph. ପୁ°—୧୫ । ପ୍ରଜାପତିବିଶେଷ (ରୁଚ ଶବ୍ଦ) 15. Name of a Progenitor of mankind. [ଦ୍ର—ଆକୁତିଙ୍କ ସହିତ ଏହାଙ୍କର ବିବାହ ହୋଇଥିଲା ଓ ଏହାଙ୍କ ଔରସରେ ଆକୁତିଙ୍କ ଗର୍ଭରେ ଯଜ୍ଞ ଓ ଦକ୍ଷିଣା ନାମକ ଯମଜ ପୁତ୍ରକନ୍ୟା ଜାତ ହୋଇଥିଲେ । ଏ ମଧ୍ୟ ରୌଚ୍ୟମନୁଙ୍କ ପିତା ଥିଲେ [ହି. ଶ] ୧୬ । ବିଶ୍ୱାମିତ୍ରଙ୍କ ଏକ ପୁତ୍ର—16. Name of a son of Biswāmitra (M. W) ସ. ବିଣ—୧ । ରୁଚିକର—1. Tasteful; agreeable to taste; savoury. ୨ । ରୁଚିକର; ମନୋହର; ସୁନ୍ଦର—2. Pleasant; agreeable (M.W.)

ରୁଚିକ—ଦେ. ବିଣ (ସ. ରୋଚକ, ରୁଚିକର)—ରୁଚିକର (ଦେଖ)—Ruchika Ruchikara (See) ସ. ବି—ଅଳଙ୍କାରବିଶେଷ—A kind of ornament (M. W.)

ରୁଚିକର—ସ. ବିଣ (ରୁଚି+କୃ ଧାତୁ+କର୍ତ୍ତୃ. ଅ)—୧ । ପ୍ରୀତିକର; Ruchikara ମନୋହର—1. Charming; pleasant. (ରୁଚିକୃତ୍, ରୁଚିକାରକ, ରୁଚିକାରୀ—ଅନ୍ୟରୂପ) ୨ । ଅନୁରାଗଜନକ 2. Generating affection or attachment; (ରୁଚିକରୀ, ରୁଚିକାରିଣୀ, ରୁଚିକାରିକା—ସ୍ତ୍ରୀ) ୩ । ସୁସ୍ୱାଦୁଯୁକ୍ତ—3. Tasteful; cordial; relishing to the taste; savoury; palatable ୪ । କ୍ଷୁଧାବର୍ଦ୍ଧକ—4. Appetising; increasing appetite; stomachic (Apte); tonic. ୫ । ସ୍ପୃହାବର୍ଦ୍ଧକ—5. Relishing; whetting one's relish.

ରୁଚିଜନକ—ସ. ବିଣ—କ୍ଷୁଧାବର୍ଦ୍ଧକ—Ruchijanaka Savoury; appetising. (ରୁଚିପ୍ରଦ—ଅନ୍ୟରୂପ) ରୁଚିଜନିକା; ରୁଚିପ୍ରଦା—ସ୍ତ୍ରୀ

ରୁଚିତ—ସ. ବିଣ. ( ରୁଚ୍ ଧାତୁ+କର୍ତ୍ତୃ. ତ )—୧ । ସୁସ୍ୱାଦୁ—Ruchita 1. Tasteful; savoury. ୨ । ମିଷ୍ଟ—2. Sweet; dainty. ୩ । ଉଜ୍ଜ୍ୱଳ—3. Bright; shining. ୪ । ପରିପକ୍ୱ—4. Ripened. ୫ । (କର୍ମ. ତ) ସନ୍ତୁଷ୍ଟ—5. Pleased; delighted (Apte). ୬ । ଅଭିଳଷିତ (ହି. ଶ)—6. Desired; wished for.

ରୁଚିତା(ତ୍ୱ)—ସ. ବି ( ରୁଚି+ତା )—୧ । ରୋଚକତା (ହି. ଶ)—Ruchitā(twa) 1. Tastefulness; savouriness. ୨ । ଅନୁରାଗ (ହି. ଶ)—2, Attachment; fondness; the having a taste or liking or desire (M. W.). ୩ । ସୁନ୍ଦରତା (ହି. ଶ)—3. Grace. ୪ । ଅତିଜଗତୀ ଛନ୍ଦର ପ୍ରକାର (ହି ଶ)—4. Name of a vedic metre.

ରୁଚି ଧାମା—ସଂ. ବି ( ୬ଷ୍ଠୀ ତତ୍; ରୁଚି+ଧାମନ୍; ୧ମା. ୧ବ )—
Ruchi dhāmā ସୂର୍ଯ୍ୟ (ହି. ଶ)—The sun (Apte).
(ରୁଚିଭର୍ତ୍ତ୍ରୁ—ଅନ୍ୟରୂପ)

ରୁଚି ପତ୍ର—ଦେ. ବି—(ବହୁବ୍ରୀହି)କେତକୀ ଫୁଲ—The yellow—
Ruchi patra flowered species of screw-pine, Pandanus Odoratissimus.

ରୁଚି ପ୍ରିୟ—ସଂ. ବିଣ—୧ । ପ୍ରୀତିକର—1. Pleasant; cordial;
Ruchi priya charming. ୨ । ସୁସ୍ୱାଦକ—2. Sweet
(ରୁଚିପ୍ରିୟା—ସ୍ତ୍ରୀ) or agreeable to the taste.
(ରୁଚିପ୍ରିୟତା - ବି)

ରୁଚି ଫଳ—ସଂ. ବି—ନାସପାତି ଫଳ (ହି. ଶ)—
Ruchi phala Pair; Pyrus Communis fruits.

ରୁଚିବା—ଦେ. କ୍ରି ( ସଂ ରୁଚ୍ ଧାତୁ )—୧ । (କୌଣସି ଖାଦ୍ୟ
Ruchibā ଜିହ୍ୱାକୁ ତୃପ୍ତିକର ବୋଧ ହେବା—1. To taste sweet to the tongue; (a food) to be relished by the tongue. [ଉ - ଔଷଧ ଯେସନେ
[ରୁଚିଥିବା—ଅନ୍ୟରୂପ] ନ ରୁଚଇ, ବ୍ୟାଧି ସଂଯୋଗେ ବଳେ
रुचना ଖାଇ । ଭୂପତି. ପ୍ରେମପଞ୍ଚାମୃତ ।] ୨ । (କୌଣସି କଥା)
रोचना ପ୍ରୀତିକର ହେବା; ମନକୁ ପାଇବା; ମନକୁ ତୃପ୍ତିକର ବୋଧ ହେବା—2. ( any thing ) To suit a person's taste or approval; to seem pleasant or agreeable.
[ଉ—ଯେବେ ଥିବ ଋଚି, ରୁଚଇ ବ ସ୍ୱଜନଂସ ଗଚ୍ଛ-ନ୍ତି ଲୀଳା ଯାନ । କବିସୂର୍ଯ୍ୟ. ସଙ୍ଗୀତ ।)

ରୁଚି ବିରୁଦ୍ଧ—ସଂ. ବିଣ— ୧ । ଅପ୍ରୀତିକର—1. Unpleasant.
Ruchi biruddha ୨ । ଅରୁଚିକର—2. Jarring to
[ରୁଚି ବହିର୍ଭୂତ—ଅନ୍ୟରୂପ] the taste; distasteful.
୩ । ସୁରୁଚିର ବିରୁଦ୍ଧ—3. Against good or refined taste.

ରୁଚି ବିରୋଧ—ସଂ. ବି—(୭ମୀ ତତ୍)ସ୍ୱାଦ ସମ୍ବନ୍ଧେ ଅପ୍ରିୟତା—Con-
Ruchi birodha trariety or unpleasantness in the matter of taste. (ଯଥା—ଖଟାପ୍ରିୟ ଲୋକଙ୍କୁ ମିଠା ପଦାର୍ଥ ଦେଲେ, ଶାନ୍ତରସପ୍ରିୟ ଲୋକଙ୍କୁ ବୀରରସ ଶୁଣାଇଲେ ରୁଚିବିରୋଧ ଘଟେ ।]

ରୁଚି ଭେଦ—ସଂ.ବି.(୬ଷ୍ଠୀ ତତ୍)--ଭିନ୍ନଭିନ୍ନ ବ୍ୟକ୍ତିର ରୁଚିର ବିଭିନ୍ନତା ବା
Ruchi bheda ପାର୍ଥକ୍ୟ--Difference or dissimilarity
ରୁଚି ପାର୍ଥକ୍ୟ } ଅନ୍ୟରୂପ of tastes of different per-
ରୁଚି ବିଭିନ୍ନତା } sons. [ଉ—କେଉଁ ବ୍ୟକ୍ତିର ମିଠା ପଦାର୍ଥ ପାଇଁ, କାହାର ଖଟା ପାଇଁ,କାହାର ରାଗ ପାଇଁ ରୁଚି ହୁଏ । ଏହିପରି ମଧ୍ୟ କାହାର ଅଦ୍ଭୁତରସ, କାହାର ବୀରରସ ପାଇଁ, କାହାର ଶାନ୍ତରସ ପାଇଁ ରୁଚି ଥିବା ଦେଖାଯାଏ ।]

ରୁଚି ବର୍ଦ୍ଧକ—ସଂ.ବିଣ. ପୁଂ(୬ଷ୍ଠୀ ତତ୍)—ଯାହା କ୍ଷୁଧାବୃତ୍ତିକୁ ବଢ଼ାଏ—
Ruchi barddhaka That which promotes or
(ରୁଚିପ୍ରଦ—ଅନ୍ୟରୂପ) whets the appetite; appetising.
[ରୁଚିବର୍ଦ୍ଧିକା, ରୁଚିପ୍ରଦା—ସ୍ତ୍ରୀ]

ରୁଚିମତୀ—ସଂ. ବି. ସ୍ତ୍ରୀ (ନାମ)—ଉଗ୍ରସେନଙ୍କ ରାଣୀ; ଦେବକୀଙ୍କ ମାତା
Ruchimatī ଓ ଶ୍ରୀକୃଷ୍ଣଙ୍କ ମାତାମହୀ (ହି. ଶବ୍ଦସାଗର)—
Name of the maternal grand-mother of Srikrushna.

ରୁଚିମାନ୍ଦ୍ୟ—ସଂ. ବି—(୬ଷ୍ଠି ତତ୍) କ୍ଷୁଧାମାନ୍ଦ୍ୟ —
Rhchimāndya Dyspepsia.

ରୁଚିର—ସଂ. ବିଣ (ରୁଚ୍ ଧାତୁ+କର୍ତ୍ତୃ. ଇର; ରୁଚି + ରା ଧାତୁ=
Ruchira ଦେବା+କର୍ତ୍ତୃ. ଅ)—୧ । ମନୋହର; ମନୋଜ୍ଞ—
[ରୁଚିରା—ସ୍ତ୍ରୀ] 1. Pleasant. ୨ । ସୁନ୍ଦର—2. Dainty;
(ରୁଚିରତା—ବି) beautiful. ୩ । ମଧୁର; ସୁମିଷ୍ଟ, ରୁଚିକର—
3. Tasteful; savoury; sweet; cordial; stomachic. ୪ । ଉଜ୍ଜ୍ୱଳ; ପ୍ରଜ୍ୱଳିତ—4. Bright; brilliant (M. W) ୫ । କ୍ଷୁଧାର ଉଦ୍ରେକକ—
5. Stomachic. ବି—୧ । ଲବଙ୍ଗ ପୁଷ୍ପ—1. The bud of cloves. ୨ । କୁଙ୍କୁମ—2. Saffron. ୩ । ଶୋଭା—3. Beauty. [ ଉ—ସେହି ରୁଚିରରେ ମଣ୍ଡି-ଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।] ୪ । ମୂଳା (ହି. ଶ)—
4. Radish. ୫ । ସେନଜିତଙ୍କ ପୁତ୍ରର ନାମ (ହି. ଶ)—
5. Name of a son of king Senajita.

ରୁଚିରବତୀ—ସଂ. ବିଣ. ସ୍ତ୍ରୀ ( ରୁଚିରବତ୍+ସ୍ତ୍ରୀ. ଈ )—ପରମସୁନ୍ଦରୀ—
Ruchirabatī Very beautiful (woman). [ଉ—
(ରୁଚିରବାନ୍—ପୁଂ) ବୃଦ୍ଧ ପଥରେ ଚପଲେ ଚରଣେ ପକାଇ କୁଳେ ରୁଚିରବତୀ ଯୁବତୀବର ସେ । ଭଞ୍ଜ. ବୈଦେହୀଶବିଳାସ ।]

ରୁଚିର ବଦନ—ସଂ. ବି (କର୍ମଧା)—ସୁନ୍ଦରମୁହଁ—Beautiful or
Ruchira badana fine face. ସଂ. ବିଣ. ପୁଂ (ବହୁବ୍ରୀହି)—
(ରୁଚିରାନନ—ଅନ୍ୟରୂପ) ସୁନ୍ଦର ମୁଖବିଶିଷ୍ଟ—Sweet-faced.
[ରୁଚିରବଦନା, ରୁଚିରାନନା—ସ୍ତ୍ରୀ ଓ ବିଣ]

ରୁଚିର ବୃତ୍ତି—ସଂ. ବି—ଅସ୍ତ୍ରର ଏକପ୍ରକାର ସଂହାର (ହି. ଶ)—
Ruchira brutti A kind of withdrawal of the effects of a weapon.

ରୁଚିର ଭାଷଣ—ସଂ. ବି (କର୍ମଧା)—ମନୋହର ବାକ୍ୟାଳାପ—
Ruchira bhāshaṇa Sweet or fine speech.
[ରୁଚିରବଚନ—ଅନ୍ୟରୂପ] ସଂ. ବିଣ. ପୁଂ (ବହୁବ୍ରୀହି)—
(ରୁଚିରଭାଷୀ—ଅନ୍ୟ ବିଣ. ପୁଂ) ୧ । ମଧୁରଭାଷୀ—1. Of sweet speech. (M.W.)
ରୁଚିର ଭାଷଣା } —ବିଣ. ସ୍ତ୍ରୀ
ରୁଚିରଭାଷିଣୀ }
୨ । ବାଗ୍ମୀ—2. Eloquent. (M. W.)

ରୁଚିରମୁଦ୍—ସଂ. ବିଣ (ରୁଚିର+ମୁଦ୍. ଧାତୁ. କ୍ୱିପ୍)—ଅତି ସୁନ୍ଦର ବା
Ruchiramud ମନୋହର—Exquisite; affording great pleasure. ( Wilson, M. W.)

ରୁଚିର ମୂର୍ତ୍ତି—ସଂ. ବି ( କର୍ମଧା )—ସୁନ୍ଦର ରୂପ—Fine form or-
Ruchira mūrtti shape; fine appearance.
ସଂ. ବିଣ. ପୁଂ ଓ ସ୍ତ୍ରୀ—ସୁନ୍ଦରରୂପବିଶିଷ୍ଟ—
Of pleasant form or appearance (M.W)

ରୁଚିରା—ସଂ. ବିଣ. ସ୍ତ୍ରୀ ( ରୁଚିର+ସ୍ତ୍ରୀ. ଆ )—ମନୋହାରିଣୀ;
Ruchirā ମନୋଜ୍ଞା—Pleasing; dainty. ବି—୧ ।
ତ୍ରୟୋଦଶାକ୍ଷର ଯୁକ୍ତ ଛନ୍ଦୋବିଶେଷ—1. Name of a
Sanskrit metre of 13 syllables: [ ବି—
ଏଥିର ପ୍ରଥମ ଓ ତୃତୀୟ ପଦରେ ୧୬ ଓ ୨ୟ ଏବଂ ୪ର୍ଥ
ପଦରେ ୧୪ ମାତ୍ରା ଲେଖାଏଁ ଥାଏ ଓ ଶେଷରେ ୨ଗୁରୁ
ବର୍ଣ୍ଣ ଥାଏ—(ହି. ଶ) । ] ୨ । ଗୋରୋଚନା—
2. A yellow pigment obtained from
kine. ୩ । (ପ୍ରମାଣ୍ୟଣ) ପ୍ରାଚୀନ ନଦୀ ବିଶେଷ (ହି.ଶ)—
3. Name of an ancient river. ୪ । ଜାଫ୍ରାନ
(ହି. ଶ)—4. Saffron. (Apte). ୫ । ଲବଙ୍ଗ
(ହି. ଶ)-5. Cloves. (Apte) ୬ । ମୂଳା (ହି.ଶ)—
6. Radish. (Apte).

ରୁଚିରାଙ୍ଗ—ସଂ. ବିଣ. ପୁଂ (ବହୁବ୍ରୀହି; ରୁଚିର ଅଙ୍ଗ ଯାହାର—
Ruchirāṅga ଶୋଭନ ଅଙ୍ଗଯୁକ୍ତ—Having graceful
(ରୁଚିରାଙ୍ଗୀ—ସ୍ତ୍ରୀ) limbs. ସଂ. ବି (କର୍ମଧା) ରୁଚିର+
ଅଙ୍ଗ )—ଶୋଭାଯୁକ୍ତ ଶରୀରାଙ୍ଗ—
Graceful or symmetrical limb.

ରୁଚିରାଞ୍ଜନ—ସଂ. ବି—ଶୋଭାଞ୍ଜନ; ସଜନା—A kind of tree;
Ruchirānjana Hyperthera Moringa.

ରୁଚିରାଧିକା—ଦେ. ବିଣ.ସ୍ତ୍ରୀ (ରୁଚିର+ ଅଧିକ +ଆ)—ଅତ୍ୟନ୍ତ ସୁନ୍ଦରୀ—
Ruchirādhikā Very beautiful (female).
[ଉ—ଶୁଣରେ ରୁଚିରାଧିକା ଚନ୍ଦ୍ରାବଳୀ ବିସ୍ମିତ
ଅନୁପମରେ । ଉଷ. କୋଟିବ୍ରହ୍ମାଣ୍ଡ
ସୁନ୍ଦରୀ । ]

ରୁଚିରାଶ୍ୱ—ସଂ. ବି—ଜଣେ ପୌରାଣିକ ରାଜା—
Ruchirāswa Name of a mythological king of
India. [ ବି—ଏ ସେନଜିତ୍ ରାଜାଙ୍କର ଏକ ପୁତ୍ର
ଥିଲେ. M. W. ]

ରୁଚି ଲାଗିବା—ଦେ. କି.—ଖାଇବାକୁ ରୁଚିକର ବୋଧ ହେବା—
Ruchi lāgibā To seem savoury; to be relished,
ରুচিকর বোধ হওয়া रुचि लगना

ରୁଚିଷ୍ୟ—ସଂ. ବିଣ.— (ରୁଚ୍ ଧାତୁ + କର୍ତ୍ତୃ.ଇଷ୍ୟ) —୧ । ରୁଚିର (ଦେଖ)
Ruchishya 1. Ruchira (See). ୨ । ମଧୁର—2.
[ରୁଚିଷ୍ୟା—ସ୍ତ୍ରୀ] Sweet. ସଂ ବି.—ଧଳା ଲୁଣ—White
salt (M. W.)

ରୁଚି ହେବା—ଦେ. କି.—ରୁଚିବା [ଦେଖ]—Ruchibā (See)
Ruchi hebā রুচি হওয়া रुचिहोना
ଦେ. ବି.—ଖାଇବା ପାଇଁ ପ୍ରବୃତ୍ତି ଜନ୍ମିବା—The
state of having a relish for food.

ରୁଚୀ—ସଂ. ବି.—ରୁଚି [ଦେଖ]
Ruchi Ruchi (See)

ରୁଚୀକ—ଦେ. ବି.—[ସଂ. ଋଚୀକ]—ଭୃଗୁମୁନିଙ୍କ ପୁତ୍ର—Son of
Ruchīka sage Bhrugu. [ ଉ—ଗାଧିଙ୍କର ସେ ଝିଅ
ବୃଅନ୍ତେ ତରୁଣୀ, ରୁଚିକ ମନ୍ତ୍ର ତା ମାଗିଲେ ଅସି ଜାଣି ।
କୃଷ୍ଣସିଂହ. ମହାଭାରତ. ଚନ ।]

ରୁଚୁ—ସଂ. ବି.—(ରୁଚ୍ ଧାତୁ + କର୍ତ୍ତୃ. ଉ)—କଳା ଶିଂଘ ବିଶିଷ୍ଟ ଧଳା
Ruchu ବା ହଳଦିଆ ହରଣ—A white or yellow deer
with black horns. (M.W.)

ରୁଚ୍ୟ—ସଂ. ବିଣ.—(ରୁଚ୍ ଧାତୁ+କର୍ତ୍ତୃ. ଯ)—୧ । ସୁନ୍ଦର; ମନୋଜ୍ଞ-
Ruchya 1. Pleasing; pleasant; agreeable. ୨ ।
[ରୁଚ୍ୟା—ସ୍ତ୍ରୀ] ରୁଚିକର; ସୁସ୍ୱାଦୁ—2. Tasteful; savoury.
୩ । ଇପ୍ସିତ—3. Intended; wished for. ବି
ପୁଂ.—୧ । ପତି; ସ୍ୱାମୀ—1. Husband. ୨ । କାନ୍ତ;
ପ୍ରେମିକ—2. A lover; sweetheart (male).
୩ । ଚନ୍ଦ୍ର—3. Moon. ୪ । ଶାଳି ଧାନ୍ୟ; ଶାରଦ
ଧାନ—4. Winter paddy. ୫ । କତକ ବୃକ୍ଷ;
ନିର୍ମଳୀ ଗଛ—5. The clearing nut; Strych-
nuss Potatorum. ୬ । ସଚଳ ଲବଣ;
ସୌବର୍ଚ୍ଚଳ; ସୋରା—6 Nitre; sochal salt
(M. W). ୭ । ସୈନ୍ଧବ ଲୁଣ—( ହି. ଶ. )—
7. Chloride of sodium. ୮ । କ୍ଷୁଧାବର୍ଦ୍ଧକ
ଦ୍ରବ୍ୟ—8. A tonic (Apte). ୯ । ବେଲ—
9. Aegle Marmelos (M.W). ୧୦ । ଚାଉଳ—
10. Rice (M. W). ୧୧ । କଳାଜୀରା—11.
Black cumin (M. W). ୧୨ । ଏକ ପ୍ରକାର କାକୁଡ଼ି
—12. A kind of cucumber (M. W).

ରୁଚ୍ୟ କନ୍ଦ—ସଂ. ବି—( ବୈଦ୍ୟକ )—ସୁରଣ; ଓଲୁଅ—Wild
Ruchya kanda arum; Arum Campanulatum.

ରୁଜ୍ (ଧାତୁ)—ସଂ.—୧ । ପୀଡ଼ିତ ହେବା—1. To ail; to be
Ruj (root) ill. ୨ । ପୀଡ଼ିତ କରିବା—2. To make ill;
to afflict with disease. ୩ । ନଷ୍ଟ କରିବା;
ଖଣ୍ଡ ଖଣ୍ଡ କରି ଭାଙ୍ଗିବା—3. To break to pieces;
to destroy (Apte). ୪ । ଆଘାତ କରିବା;
ହିଂସା କରିବା—4. To hurt; to kill (Apte).
୫ । ନୁଆଁଇବା—5. To bend (Apte).

ରୁଜ୍—ବୈଦେ. ବି—(ଇଂ.)—ମୁହଁକୁ ରଙ୍ଗାଇବା ପାଇଁ ବ୍ୟବହୃତ
Ruj ଚୂର୍ଣ୍ଣ; ଅଙ୍ଗରାଗ—Rouge. ସଂ. ବି. (ରୁଜ୍ ଧାତୁ+
କର୍ତ୍ତୃ କ୍ୱିପ୍ )—ରୁଜା (ଦେଖ)—Rujā (See).
ବୈଦେ. ବି ଓ ବିଣ ( ଆ. ରୁଜୁ ) ରୁଜୁ—(ଦେଖ)—
Ruju (See).

ରୁଜ୍ ପାଉଡର୍—ବୈଦେ. ବି—(ଇଂ ରୁଜ୍ ) ୧ । ଅଙ୍ଗରାଗ ଚୂର୍ଣ୍ଣ—
Ruj Pāudar 1. Rouge powder. ୨ । ଏକପ୍ରକାର
রুজ পাউডার रूजपाउडर ନାଲି ଚୂର୍ଣ୍ଣ, ଯାହା ହାରି ଧାତୁ

ଅଳଙ୍କାର ପାଲିସ୍ କରାଯାଏ—୨. Ferric oxide; a kind of red powder used in polishing gold ornaments.

ରୁଜ୍(ଜୁ)ରୁଜ୍(ଜୁ)--ଦେ.ଅ (ଧ୍ୱନ୍ୟନୁକରଣ)--ରାଜୁରାଜୁଠାରୁ ଅଳ୍ପ କର୍କଶ
Ruj(ju)ruj(ju) —A little harsher than Rāju rāju.
ଚରଚର କୁଚକୁଚ

ରୁଜ—ସଂ. ବି ( ରୁଜ୍ ଧାତୁ+କର୍ତ୍ତୃ. ଅ )—୧ । ରୋଗ; ପୀଡ଼ା—
Ruja 1. Sickness; disease. ୨ । କ୍ଷତ;ଘାଆ (ହି ଶ) 2. Wound; sore. ୩ । ଭାଙ୍ଗ ( ହି. ଶ. )—3. An intoxicating drink made from Indian hemp leaf. ୩ । ଭାଙ୍ଗିଦେବା; ଭଞ୍ଜନ—3.Breaking;crushing; shattering (M.W.) ୪ । ଭାଙ୍ଗି ଯିବା; ଭଙ୍ଗ—4. Fracture (M. W.) ୫। କୁଡ଼—5.Costus Speciosus plant (M.W) ୬ । ଦୁଃଖ;କ୍ଲେଶ—6 Pain; trouble (M.W)

ରୁଜସ୍କର—ସଂ. ବିଣ—(ରୁଜ୍+କୃ ଧାତୁ+କର୍ତ୍ତୃ ଅ; ସ ଆଗମ )—
Rujaskara ପୀଡ଼ା ଦାୟକ – Causing or producing pain (M.W) or sickness.

ରୁଜା—ସଂ.ବି (ରୁଜ୍ ଧାତୁ+କର୍ତ୍ତୃ. କ୍ୱିପ୍+ଆ)—୧ । ରୋଗ; ପୀଡ଼ା—
Rujā 1. Disease; illness. ୨ । ହାନି – 2; Loss. ୩ । ଭଙ୍ଗ—3. Deterioration; breaking. ୪ । ମୁହଁରେ କଳା ଦାଗ ପଡ଼ିବା ରୋଗ – 4. A sort of disease resulting in discolouration of the face. ୫ । କୁଷ୍ଠରୋଗ; ବଡ଼ରୋଗ—5, Leprosy. ୬ । ମେଣ୍ଢୀ [ହି. ଶ]—6. Ewe. ୭। କ୍ଲେଶ—7. Pain; anguish (Apte.) ୮। ଅସ୍ଥି-ଭଙ୍ଗ—8. Fracture (Apte.) ୯ । କ୍ଲାନ୍ତି—9. Fatigue; toil (Apte.) ୧୦। ଭାଙ୍ଗ [ହି. ଶ]—10. An intoxicating drink made from the leaves of Indian hemp. ୧୧ । କୁଡ଼—11. Costus Speciosus plant. (M. W.)

ରୁଜା(ଜେ)ଇବା—ଦେ. କ୍ରି (ଅ. ରୁଡ଼)—ମୁଆଜା କରାଇବା; ରୁଜି କରାଇବା; ମୁକାବିଲା କରାଇବା—To cause
Rujā(je)ibā to be confronted.
মোকাবিলা করান
मोकाबिला कराना; मुखोमुखकराना

ରୁଜାକର - ସଂ. ବିଣ (ରୁଜା+କୃ ଧାତୁ+କର୍ତ୍ତୃ. ଅ)—୧ । ପୀଡ଼ାକର;
Rujākara ପୀଡ଼ାଜନକ—1. Producing sickness; sickening. ୨ । କ୍ଲେଶଦାୟକ—2. Giving pain. ସଂ. ବି—୧ । କର୍ମରଙ୍ଗା ଫଳ; କରମଙ୍ଗା ଫଳ—1. Averrorhea Carambola fruit. ୨ । ବ୍ୟାଧି; ପୀଡ଼ା—2. Disease.

ରୁଜା ପ୍ରତିକ୍ରିୟା—ସ. ବି. (୬ଷ୍ଠୀ ତତ୍)—ରୋଗର ଚିକିତ୍ସା—
Rujā pratikriyā Treatment of disease.
(ରୁଜା ପ୍ରତିକାର—ଅନ୍ୟରୂପ)

ରୁଜାଗ୍ରସ୍ତ—ସଂ. ବିଣ. ପୁଂ (ସଂ. ରୁଜା=ରୁଜ୍ ଶବ୍ଦର ୩ୟା ବିଭକ୍ତି ୧
Rujāgrasta ବଚନ; ବ୍ୟା ରୁଜା ଦ୍ୱାରା+ଗ୍ରସ୍ତ)--Attacked with disease; sick.
(ରୁଜାଗ୍ରସ୍ତା—ସ୍ତ୍ରୀ)

ରୁଜାପହ—ସ. ବିଣ. ( ରୁଜା+ଅପ+ହା ଧାତୁ+କର୍ତ୍ତୃ. ଅ )—
Rujāpaha ୧ । ଦୁଃଖ ବା କ୍ଲେଶ ନିବାରକ—1. Keeping of pain (M. W)· ୨। ରୋଗହର-- 2. Removing sickness (M. W).
(ରୁଜାପହା—ସ୍ତ୍ରୀ)

ରୁଜାବତ୍—ସ. ବିଣ—କ୍ଲେଶମୟ—
Rujābat Painful (M. W).
(ରୁଜାବାନ୍—ଅନ୍ୟରୂପ)

ରୁଜାଳୀ—ସ. ବି (୬ଷ୍ଠୀ ତତ୍; ରୁଜା+ଆଳୀ=ସମୂହ)—
Rujāli ରୋଗ ସମୂହ (ହି. ଶବ୍ଦସାଗର)—A number of diseases,

ରୁଜାସଦ୍ମ—ସ. ବି. (୬ଷ୍ଠୀ ତତ୍; ରୁଜା+ସଦ୍ମନ୍)—ବିଷ୍ଠା—
Rujāsadma Feces, excrement (Apte).

ରୁଜାସହ—ସ. ବି—ଧନ୍ୱନ ବୃକ୍ଷ; ଧାମଣ ଗଛ—A kind of
Rujāsaha timber tree, Cordia, Macleodii, Grewia Elasticia.

ରୁଜି—ବୈଦେ. ବି ( ଫା. ରୁଜ୍ଞ )—୧ । ଦୁଇ ଜଣଙ୍କର ମୁକାବିଲା;
Ruji ମୁଆଜା—1. Confronting two persons about a particular matter in issue.
ରୁଜିବା } ଅନ୍ୟରୂପ
ରୁଜିରୁଜା }
বাজী, মোকাবিলা ୨। ସାକ୍ଷ୍ୟ ଲକ୍ଷ୍ୟ ପ୍ରତ୍ୟକ୍ଷ ପ୍ରମାଣ—2. Direct
मोकाबिला evidence. ୩ । ଦୁଇ ପକ୍ଷଙ୍କ ମଧ୍ୟରେ ରାଜି ହେବା—3. Agreement. ବିଣ—ଯାହା ସହିତ କୌଣସି ବିଷୟରେ ଅନ୍ୟର ମୁକାବିଲା କରାଯାଇ ଥାଏ—Confronted with another person regarding a matter.

ରୁଜି କରାଇବା—ଦେ କ୍ରି—ଦୁଇ ଜଣଙ୍କୁ ଭେଟ କରାଇ କୌଣସି
Ruji karāibā ବିଷୟରେ ମୁକାବିଲା ବା ମୁଆଜା କରାଇବା—
মুকাবিলা করা To confront two persons about
मुकाबिला करना a certain point in dispute.
(ରୁଜି କରିବା—ଅନ୍ୟରୂପ)

ରୁଜି ଦେବା—ଦେ. କ୍ରି—ଦେ. କ୍ରି—କୌଣସି ବିଷୟର ସାକ୍ଷ୍ୟ ଲକ୍ଷ୍ୟ
Ruji debā ପ୍ରତ୍ୟକ୍ଷ ପ୍ରମାଣ ଉପସ୍ଥିତ କରିବା—To give
মুকাবিলা করান direct or visual proof of a matter.
मुकाबिला देना

ରୁଜି ନେବା—ଦେ. କ୍ରି—କୌଣସି ବିଷୟର ମୁକାବିଲା ବା ପ୍ରମାଣ
Ruji nebā ଗ୍ରହଣ କରିବା—To take direct evidence of a matter.
প্রমাণ লওয়া
मुकाबिला लेना

ରୁଜି ମୁଆଜା—ଦେ. ବି (ଏକାର୍ଥକ ସହଚର)—ମୁଆଜା—
Ruji muājā Confronting.
(ରୁଜି ମୁକାବିଲା—ଅନ୍ୟରୂପ) মোআজা মোকাবিলা
मोआजा मुकाबिला

ରୁଜୁ ହେବା—ଦେ. କ୍ରି—ନିଜେ ଅନ୍ୟ ବ୍ୟକ୍ତି ନିକଟରେ ମୁକାବିଲା କରି ନିଜ ଉପରୁ କୌଣସି ବିଷୟ ପ୍ରମାଣ ଭାରର ଦାୟିତ୍ୱ ଛଡ଼ାଇବା—To discharge the onus of proof which lies on a person by going to another person who is to be confronted.
Ruju hebā
মোকাবিলা, করা
**मुकाबिला होना**

ରୁଜୁ—ବୈଦେ. ବି. (ଆ. ରୁଜୁ; ରୁଜୂଅ=ପ୍ରବୃତ୍ତି) (କଚେରୀ ଭାଷା)—୧ । ସୂତ୍ରପାତ; ଆରମ୍ଭ କରିବା—1. Commencing; commencement. ୨ । ଉପସ୍ଥିତି; ହାଜର ହେବା—2. Attendance; presence. ବିଣ—୧ । ଆରବ୍ଧ—1. Commenced. ୨ । ସୂତ୍ରପାତ କରା ଯାଇଥିବା—2. Initiated. ୩ । ଉପସ୍ଥାପିତ—3. Presented; introduced. ୪ । ଦଣ୍ଡାୟମାନ—4. Standing. ୫ । ଉପସ୍ଥିତ—5. Present. ୬ । କୌଣସି ବସ୍ତୁ ସହିତ ଏକ ରେଖାରେ ଥିବା—6. In a line with.
Ruju
রুজু
**सुरु, रुजु**

ରୁଜୁ କରିବା—ଦେ. କ୍ରି (କଚେରୀ)—୧ । ସୂତ୍ରପାତ କରିବା—1. To initiate. (ଯଥା—ମକଦ୍ଦମା ରୁଜୁ କରିବା ।) ୨ । ଉପସ୍ଥାପିତ କରିବା—2. To present; to place. (ଯଥା—ଅସାମୀଙ୍କୁ ଆଣି ହାକିମଙ୍କ ନିକଟରେ ରୁଜୁ କରିବା ।) ୩ । ମିଳାଇବା; ସାମଞ୍ଜସ୍ୟ କରାଇବା—3. To square up; to clear up. (ଯଥା—ହିସାବ ରୁଜୁ କରିବା ।) ୪ । ମୁକାବିଲା କରିବା—4. To cause to be confronted.
Ruju karibā
রুজুকরা
**सुरु करना**

ରୁଜୁ ଦେବା—ପ୍ରାଦେ. (ଗଞ୍ଜାମ) କ୍ରି—୧ । ମୁକାବିଲା କରିବା—1. To verify. ୨ । ପ୍ରମାଣିତ କରିବା—2. To prove; to adduce proof. (ଯଥା—ମୁଁ ସେହି କଥା କହିଥିଲି ବୋଲି ତୁମେ ରୁଜୁ ଦେବ କି ?)
Ruju debā
মুকাবিলা করা
**मुकाबिला देना**

ରୁଜୁ ମୁଆଜା—ବୈଦେ. ବି (କଚେରୀ)—୧ । କୌଣସି ବ୍ୟକ୍ତି ନିକଟରେ ଉପସ୍ଥିତ ହୋଇ ପ୍ରମାଣ କରାଇବା—1. Proving a matter by confronting. ୨ । ସାମନା ସାମନି ପ୍ରମାଣ; ଚାକ୍ଷୁଷ ଦ୍ୱାରା ପ୍ରମାଣ—2. Direct evidence; evience by identification.
Ruju muājā
(ରୁଜୁ ମୁକାବିଲା—ଅନ୍ୟରୂପ
মোআজা মোকাবিলা
**मुआजा मुकाबिला**

ରୁଜୁ ହାଜ(ଜି)ର୍—ସଂ. ବିଣ. (ସଦର; କଚେରୀ ଭାଷା)—୧ । ନିଜେ ଯାଇ ସାମନାରେ ଉପସ୍ଥିତ—1. Present in person. ୨ । ବିପକ୍ଷ ନିକଟରେ ଉପସ୍ଥିତ ହୋଇ ମିଳାମିଶି ଯିବା ବା ରଫା କରିବା—2. Compromising a dispute by going to the opponent. (ଯଥା—ମୁଁ କୃଷ୍ଣଚନ୍ଦ୍ର ସାହୁ ମହାଜନଙ୍କ ନିକଟରେ ରୁଜୁ ହାଜର ହୋଇ ମୋର ଶହେ ଟଙ୍କା ଦେଣାକୁ ଶତକଡ଼ା ଅଶୀ ଟଙ୍କାରେ ରଫା କଲି ।)
Ruju hāja(ji)r
রুজু হাজির
**हाजिर, मुकाबिल**

ରୁଝାଲ—ଦେ. ବି—ଦୁଇ ପର୍ବତ ମଧ୍ୟସ୍ଥ ଗଭୀର ନିମ୍ନ ସ୍ଥାନ—A deep low place or chasm between two hills; ravine. ବିଣ.—ଅତି ଗଭୀର—Very deep; abysmal.
Rujhāla
গিরিবর্ত্ম, সুঁড়ীপথ
সুঁড়ী
**दरार, गड्ढा**
**गड्ढा**

ରୁଝାଲିବା—ଦେ. କ୍ରି—୧ । ଗଭୀର କରି ଖୋଳିବା—1. To dig deep. ୨ । କୂଅ ଓ ପୁଷ୍କରିଣୀ ଆଦିର ତଳରୁ ପଙ୍କ ଆଦି ଖୋଳି ଗଭୀର କରିବା—2. To deepen a well or tank by digging out the mud or earth from the bottom.
Rujhālibā
খোঁড়া
**गहराखोदना, उडाहना**

ରୁଞ୍ଜା—ଦେ ବିଣ (ସଂ. ରୁଚ୍ୟ)—ମନୋହର; ସୁନ୍ଦର—Graceful. ପ୍ରାଦେ (ବାଲେଶ୍ୱର) ବି—୧ । ତୁଳସୀ ଗଛର ଗୁଳାପଟେ କାର୍ତ୍ତିକମାସରେ ଦିଆଯିବା ମୁରୁଜ—1. Coloured powder sprinkled by way of decoration around the Basil plant in the month of Kārttika. ୨ । [ମେଦିନୀପୁର, ବାଲେଶ୍ୱର]—[ସଂ. ଗୁଞ୍ଜ] କାଇଞ୍ଚ (ଦେଖ)—2. Kāiñcha. (See)
Ruñja

ରୁଞ୍ଜା ଗୁଞ୍ଜାମାଳ—ଦେ. ବି (ସଂ. ରୁଚ୍ୟ ଗୁଞ୍ଜମାଳା)—ସୁନ୍ଦର କାଇଞ୍ଚ ମାଳା—A beautiful garland of Kāiñcha seeds.
Ruñ guñjamāla
ররগুঞ্জমালা
**करजनीकीमाला**

ରୁଟ୍(ଠ୍) (ଧାତୁ)—ସଂ—୧ । ଅଘାତ କରିବା; ମାରିବା—1. To strike against (Apte). ୨ । ଦୀପ୍ତି ପାଇବା—2. To shine (Apte). ୩ । ଦୁଃଖ ବା କ୍ଲେଶ ପାଇବା—3 To suffer pain (Apte). ୪ । ବାଧା ଦେବା—4. To obstruct; to resist (Apte). ୫ । କହିବା—5 To speak (Apte).
Rut(th) (root)

ରୁଟ୍—ପ୍ରାଦେ (ଗଡ଼ଜାତ; ସମ୍ବଲପୁର) ବି—ଘୋଡ଼ାମୁହଁ ଓ ଟାପୁବିଶିଷ୍ଟ ମୃଗ ବିଶେଷ; ଘୋଡ଼ଗଙ୍ଗ—A deer having the face and hoofs like those of a horse.
Ruṭ
[ରୁଟିକା—ଅନ୍ୟରୂପ]

ରୁଟ୍[ଟୁ] କନା[ନି,ରି]—ଦେ. କ୍ରି. ବିଣ—ଜନ୍ତା ଆଦି ହଠାତ୍ ଗାମୁଡ଼ିବା ପ୍ରକାରରେ—Like the biting of an ant. [ହି—ମୁଁ ଭୁଇଁରେ ଓଳେ ଥାଏଁ; କଅଁଳ ମାଂସ ହେବ ପାଇଲେ ରୁଟୁକନି ଖାଏଁ । କାହାଣୀର ଭଣିତା ଗୀତ ।]
Ruṭ[ṭu] kinā[ni,ri]
ରୁଟ(ଟୁ)କିର } ଅନ୍ୟରୂପ
ରୁଟି(ଟି) ଦ(ଧି)ସ୍
কুট্‌ করে
**चुट् से**

ରୁଟ୍(ଟୁ) ମୁଟ୍(ଟୁ)—ଦେ. ଅ (ଧ୍ୱନ୍ୟନୁକରଣ)—ମୁଗ ବିରି ଆଦି ଟାଣୁଆ ଦ୍ରବ୍ୟକୁ ଚୋବାଇବାର ଶବ୍ଦ—The sound of chewing hard small grains.
Ruṭ(ṭu)muṭ(ṭu)
কটমট
**कुटरकुटर**

ରୁଟ୍[ଟୁ] ରା[ରୁ]ଟ୍[ଟୁ]—ଦେ. ଅ [ବିଳୟ କ୍ରିୟାସୂଚକ]—୧ । ଧୂଳିଅ ଜନ୍ତା ଓ ପିମ୍ପୁଡ଼ି ଟାଣ କରି ଏକାଧିକ ଥର କାମୁଡ଼ିବା ପ୍ରକାରରେ—1. Repeated biting of ants. ୨ । ଛୋଟବାଳିକ ଉପର୍ଯ୍ୟୁପରି କନ୍ଦୁଣୀ ମାରିବା
Ruṭ(ṭu)rā(ru)ṭ(ṭu)
কুটকুট
**चुट चाट्**

ପ୍ରକାରେ—2.Dealing small blows repeatedly with the elbow. [ ଯଥା—ମୋ ପିଲାଟି ବଡ଼ ଦୁଷ୍ଟ ! କହୁଣୀ ମାରେ ରୁଟ୍‌ରୁଟ୍, ଦୂର୍ ପଲା, ଦୂର୍ ପଲା । କାହାଣୀ ଗୀତ ।] ୩ । ଛୋଟ ମୂଷା ଦାନ୍ତଦ୍ୱାରା କାଟିବା ପ୍ରକାରେ—3. Nibbling by small rats. [ ଉ—ଦୁଷ୍ଟ ମୂଷା ! ରୁଟ୍‌ରୁଟ୍ କରି କାଟଇ ଖୋସା । ଛଗ ] [ଦ୍ର—ରଟ୍‌ରଟ୍‌ଠାରୁ ରୁଟ୍‌ରୁଟ୍ ଅଳ୍ପତା ବ୍ୟଞ୍ଜକ ।]

**ରୁଟ**—ଦେ. ବ [ସ. ରୁଟ. ଧାତୁ]—କ୍ରୋଧ, ରାଗ—Anger; dis-
Ruṭa pleasure. [ଉ—ଏ ଘରରୁ କେ ନ ବାହୁଡ଼ ରୁଟ !
ବାଗ ରୁଟ ଜଗନ୍ନାଥ ଚରିତ୍ର ]

**ରୁଟି**—ଦେ. ବ [ସ. ରୋଟୀ, ରୋଟିକା; ଫା. ରୋଟ୍. ହି. ରୋଟୀ]—
Ruṭi ଗହମ ଅଟାକୁ ବା ମଇଦାକୁ ଚକଟି ବେଲଣାରେ ବେଲି
রুটি ନିଆଁରେ ସେକି ତିଆରି କରିବା ପିଠା; କ୍ଷେତ୍ର—Bread;
रोटी wheaten bread. ଉ—ଗହମ ଗୋଟି ଗଣିତା, ରୁଟି ଗୋଟିଏ ଦେବ ? ଛଗ । ] [ଦ୍ର—ସାଧାରଣତଃ ରୁଟି ତିଆରି କରିବାକୁ ହେଲେ ଅଟାକୁ ପ୍ରଥମେ ପାଣିରେ ଚକଟି ତାକୁ ଛୋଟ ଛୋଟ ପିଣ୍ଡୁଳା କରି କାଠର ପଟା [ବେଲଣା-ପେଡ଼ୀ] ଉପରେ ଗୋଟିଏ କାଠର ଶିଳୁପା (ବେଲଣାକାଠି) ଦ୍ୱାରା ବେଲି ତାକୁ ପତଳା ପତଳା କରି ନିଆଁ ଉପରେ ତାଉଆ ରଖି ସେ ତାଉଆ ଉପରେ ସେକିବାକୁ ହୁଏ । ଏ ପ୍ରକ୍ରିୟାମାନଙ୍କୁ ଯଥାକ୍ରମେ ରୁଟି (ଅଟା) ଦଳିବା, ରୁଟି ବେଲିବା ଓ ରୁଟି ସେକିବା ବୋଲାଯାଏ । ମାରୱାଡ଼ିମାନେ ଉକ୍ତ ପିଣ୍ଡୁଳାମାନଙ୍କୁ ନ ବେଲି ସେହି ପିଣ୍ଡମାନଙ୍କୁ ଦହକ ପାଉଁଶରେ ପୋତି ଉତ୍ତପ୍ତାନ୍ତେ ଓ ପରେ ପାଉଁଶରୁ କାଢ଼ି ଘିଅରେ ବୁଡ଼ାଇ ଆଣି ଖାଆନ୍ତି । ଏହାକୁ 'ବାଟି' ବୋଲାଯାଏ । ରୁଟି ପ୍ରଧାନତଃ ଦୁଇପ୍ରକାରେ ତିଆରି ହୁଏ, ଏକପ୍ରକାର, ଅଟାରେ ପାଣି ମିଶାଇ ଚକଟି ହାତରେ ଦଳି ବେଲଣାରେ ବେଲାଯିବା ପତଳା ରୁଟି ବା Bread roll; ଅନ୍ୟ ପ୍ରକାର—ମଇଦାକୁ ଚକଟି ତା-ମଧ୍ୟରେ ଫେଣ ଉଠିବା ଅମ୍ବିଲା ଜିନିଷ ଦେଇ ଭାଟିଲା ଚୁଲି ମଧ୍ୟରେ ରଖି ତିଆରି କରିବା ଫୁଲୁକା ରୁଟି ବା ପାଉଁରୁଟି Loaf. ]

**ରୁଟି ଡାଲି**—ଦେ. ବ ( ସ. ରୋଟୀ+ଦାଳ )—ଖାଦ୍ୟାର୍ଥ ବ୍ୟବହୃତ
Ruṭi ḍāli ଡାଲି ଓ ରୁଟି; ଡାଲି ସାହାଯ୍ୟରେ ଖିଆଯିବା ରୁଟି—
ডালরুটী रोटीदाल Bread eaten with Dāl.

**ରୁଟି ତରକାରି**—ଦେ. ବ ( ସ. ରୋଟୀ+ଫା. ତର୍‌କାରି )—ଏକତ୍ର
Ruṭi tarakāri ଖାଦ୍ୟରୂପେ ବ୍ୟବହୃତ ରୁଟି ଓ ବ୍ୟଞ୍ଜନ;
রুটি তর্কারি ତରକାରି ସାହାଯ୍ୟରେ ଖିଆଯିବା ରୁଟି—
रोटि तरकारी, शाग रोटी Bread eaten with curry.

**ରୁଟିନ୍(ନି)**—ବୈଦେ ( ଇଂ. ରୁଟୀନ୍ ) ବ—୧ । ସମୟ ବିଭାଗମୂଳକ
Ruṭin(ni) କାର୍ଯ୍ୟର ନିଘଣ୍ଟ; ସମୟ ବିଭାଗ ଅନୁସାରେ
রুটীন ନିର୍ଦ୍ଧାରିତ କାର୍ଯ୍ୟକ୍ରମ—1. Routine. ୨ । ସ୍କୁଲ୍
रूटीन ଆଦିରେ ସମୟ କ୍ରମେ କରାଯିବା ଦୈନିକ କାର୍ଯ୍ୟକ୍ରମର ତାଲିକା—2. Daily routine of work in a school.

**ରୁଟି ବାଟି**—ଦେ. ବ—ପତଳା ପିଷ୍ଟକାକାରରେ ତିଆରି ଓ ନିଆଁରେ
Ruṭi bāṭi ସେକା ରୁଟି ଓ ଗୋଲକାକାରରେ ଭସ୍ମପକ୍ୱ ବାଟି
রুটী লেচকী —Rolls and balls of bread. [ ଦ୍ର,
रोटीबाटी —ମାରୱାଡ଼ିମାନେ 'ପତଳା ପତଳା ରୁଟି' ନ କରି ପିଣ୍ଡାକାର 'ବାଟି' ତିଆରି କରି ଘିଅରେ ବୁଡ଼ାଇ ଖାଆନ୍ତି । ]

**ରୁଟିବାଲା**—ଦେ. ବ—ରୁଟିବ୍ୟବସାୟୀ; ଯେ ରୁଟି ବିକ୍ରି କରେ—
Ruṭibālā A person who deals in bread,
রুটিওয়ালা bread-seller; a professional baker.
रोटिवाला

**ରୁଟି ବିସ୍କୁ(ସ୍କୋ)ଟ୍**—ବୈଦେ. ବ (ଫା. ରୋଟୀ ଓ ଇଂ.ବିସ୍କୁଟ୍)—ରୁଟି
Ruṭi bisku(sko)ṭ ଓ ବିସ୍କୁଟ୍—Bread or loaf
রুটি বিস্কুট रोटि बिस्कुट and biscuit.

**ରୁଟି ବେଲା**—ଦେ. ବ—ଅଟାର ପିଣ୍ଡମାନଙ୍କୁ ବେଲଣାରେ ବେଲି
Ruṭi belā ପତଳା ପିଠା ଆକାରରେ ପରିଣତ କରିବା କ୍ରିୟା
রুটিবেলা —The process of rolling starch-
रोटी बेलना balls into bread.
(ରୁଟି ବେଲିବା—କ୍ରିୟାରୂପ)

**ରୁଟି ବେଲିବା**—ଦେ. କ୍ରି—ଗହମ ଚୂନାରେ ପାଣି ମିଶାଇ ତାକୁ
Ruṭi belibā ଚକଟି ଓ ଦଳି ଗୋଟିଏ ଲେଖାଏଁ ଗୋଲକ
রুটি বেলা କରି ସେ ଗୋଲକମାନଙ୍କୁ ପଟା ଉପରେ ପକାଇ
रोटी बेलना ପତଳା ପତଳା ପିଠାମାନ ତିଆରି କରିବା—
To roll strach into bread. [ଦ୍ର—ଯେଉଁ ପଟା ଉପରେ ଗୋଲକମାନଙ୍କୁ ରଖାଯାଇ ବେଲିବାକୁ ହୁଏ, ତାକୁ 'ବେଲଣାପେଡ଼ି' ଓ ଯେଉଁ କାଠର ସିଳୁପୁଆକୁ ସେହି ଗୋଲକମାନଙ୍କ ଉପରେ ଚାଳିତ କରି ଉକ୍ତ ଖଣ୍ଡମାନଙ୍କୁ ପତଳା ପିଠା ଆକାରରେ ପରିଣତ କରାଯାଏ, ତାକୁ ବେଲଣା କାଠି କହନ୍ତି । ]

**ରୁଟିରାଟି**—ଦେ. କ୍ରି. ବଣ—ହାଡ଼ଆଦି କଠିନ ଦ୍ରବ୍ୟକୁ ଉତ୍ତମରୂପେ
Ruṭi rāṭi ଚେକଟି କରି ( ଖାଇବା )—To eat up
চেঁছে পুছে a hard thing by nibbling every
नोडताड कर eatable part (e. g. a piece of bone ); to eat up every eatable portion of a hard thing by nibbling every soft bit out of it.
( ପ୍ରୟୋଗ—ରୁଟିରାଟି ଖାଇବା, ରୁଟିରାଟି କରି ଖାଇବା । )

**ରୁଟୁ ମୁ(ରୁ)ଟ୍(ଟୁ)**—ଦେ. ଅ—ରୁଟ୍ ମୁଟ୍ ( ଦେଖ )
Ruṭu mu(ru)ṭ(ṭu) Ruṭ muṭ ( See )

**ରୁଟୁରାଟ୍**—ଦେ. ଅ—ରୁଟ୍ ରାଟ୍ ( ଦେଖ )
Ruṭu rāṭ Ruṭ rāṭ ( See )

**ରୁଠ୍ (ଧାତୁ)**—ସ—୧ । ଅଘାତ କରିବା—1.To strike (Apte.)
Ruṭh (root) ୨ । କ୍ଲେଶ ଭୋଗ କରିବା ବା ସହିବା—
2. To suffer pain (Apte). ୩ । ବାଧାଦେବା—
3. To resist; to oppose (Apte). ୪ । ପୀଡ଼ା

ଦେବା; କ୍ଳେଶ ଦେବା—4. To torment; to pain (Apte).

ରୁଠା—ଦେ. ବଣ—(ସଂ. ରୁକ୍ଷ)—୧ । ନୀରସ; ରସହୀନ—
Ruṭhā କଠା रूठा 1. Sapless.
୨ । ନିର୍ଜଳ; ଶୁଷ୍କ—2. Dry; waterless. ୩ । ଅନୁର୍ବର—3. Barren.

ରୁଡ୍—ବୈଦେ. ବ.—(ଇଂ)—ଇଂରାଜ ଭୂମି ପରିମାଣ ବିଶେଷ; ଏକ
Ruḍ ଏକର୍‌ର ଏକ ଚତୁର୍ଥାଂଶ; ଚାରି ପଣ୍ଟି ଆ ମାଣ—An
ରুড रूड English land measure equal to ¼ of an acre. [ଦ୍ର—୧ ଏକର=୪ ରୁଡ୍, ୧ ରୁଡ୍=୪୦ ପୋଲ୍, ୧ ପୋଲ୍=୬୪ ବର୍ଗ ଗଜ ।]

ରୁଡ୍‌କୀ—ବୈଦେ. ବ.—[ଇଂ]—ପଞ୍ଜାବ ପ୍ରଦେଶସ୍ଥ ନଗରବିଶେଷ,
Ruḍ-kī [ଏଠାରେ ଇଂରେଜୀ ଗଭର୍ଣ୍ଣମେଣ୍ଟଙ୍କ ସ୍ଥାପିତ ଉଚ୍ଚ
রুড়কী रूड़की ଇଞ୍ଜିନିୟରିଙ୍ଗ୍ କଲେଜ ଅଛି]—Roorkee (where there is an Engineering College).

ରୁଡ୍(ଡ୍ରୁ) ମୁଡ୍(ଡ୍ରୁ)—ଦେ.ଅ.—[ଧ୍ୱନ୍ୟନୁକରଣ]—ବିସ୍କୁଟ,ମୁଢ଼ି,ଚୁଡ଼ାମୁ
Rurḍ(rḍu) murḍ (rḍu) ଓ ଛୋଟ ଛୋଟ ମସ୍‌କା ବସ୍ତୁ ଚୋବା-
কুড়মুড় मुडमुड ଇବା ଶବ୍ଦ—The sound of chewing fragile biscuits or other small things.
[ଦ୍ର—ଯେଉଁ ବସ୍ତୁମାନ ଚୋବାଇଲେ ରୁଡ୍ରୁ ମୁଡ୍ରୁ ଶବ୍ଦ ହୁଏ, ସେ ବସ୍ତୁମାନଙ୍କ ଅପେକ୍ଷା 'ରୁଟୁମୁଟୁ' ଶବ୍ଦ ହେବା ବସ୍ତୁମାନ ଟାଣୁଆ ।]

ରୁଡ୍ ରାଡ୍—ଦେ.ଅ.—[ଧ୍ୱନ୍ୟନୁକରଣ]—ରୁଡ୍ରୁ ମୁଡ୍ରୁ ଠାରୁ ଉଚ୍ଚତର
Rurḍ rāṛḍ ଚର୍ବଣ ଶବ୍ଦ—Higher sound than Rurḍ-
কড়মড় मुड माड murḍ.
(ରୁଡ଼ ରୁଡ୍, ରୁଡ୍‌ରଡ୍, ରୁଡ୍ରୁ ରୁଡ୍ରୁ—ଅନ୍ୟରୂପ)

ରୁଡ଼ିଆ—ଦେ. ବଣ.- (ସ. ଲୋଷ୍ଟ୍ର, ପ୍ରା. ଲୋଟ୍ଟୁ)—୧ । ଖର୍ବକାୟ—
Rurḍiā বেঁটে रोडिया 1. Dwarfish; stunted.
(ଯଥା—ଗୋଡ଼ିଆ ମାଟିରେ ଗଛଗୁଡ଼ିକ ରୁଡ଼ିଆ ହୋଇଛନ୍ତି) । ୨ । କଙ୍କରମୟ—2. Gravelly. ୩ । କ୍ଷୌର ନ ହେବାରୁ ଯାହା ମୁଣ୍ଡରେ ରୁଢ଼ ବଢ଼ିଥାଏ—3. Unshaven; growing long stumps of hair on the head for want of shaving. ଦେ. ବ.- (ଭୂଲ. ଇଂ. ଓର୍)—ଖଣିରୁ ବାହାରିବା ଅପରିଷ୍କୃତ ମିଶ୍ର ଧାତୁ—Ore.

ରୁଢ଼—ଦେ. ବ.—(ସ. ରୁହ୍ ଧାତୁ=ଉତ୍ପନ୍ନ ହେବା)—କ୍ଷୌର ହେବା
Rurḍha ପରେ ମୁଣ୍ଡରେ ବଢ଼ିଥିବା କେଶ ମୂଳ—Stump of
চুল बाल hair growing on the head some days after shaving, (ଉ—× × ଅଜଯାଏ ରୁଢ଼ ବଢ଼ି ରହିଥାନ୍ତା × × ଫକୀରମୋହନ. ଛମାଣ ଅଠଗୁଣ୍ଠ ।) [ଦ୍ର—ଯେଉଁମାନେ ମୁଣ୍ଡର କୌଣସି ଅଂଶ କ୍ଷୌର କରୁଅନ୍ତି କେତେଦିନ ପରେ ସେମାନଙ୍କର କେଶ-ମୂଳଗୁଡ଼ିକ ପୁଣି କଅଁଳେ । ସେହି କଅଁଳିବା କେଶମୂଳକୁ ରୁଢ଼ ବୋଲଯାଏ ।]

ରୁଢ଼ ଛାଡ଼ିବା—ଦେ. କ୍ରି.—କ୍ଷୌର ନ ହୋଇ ରୁଢ଼ ବଢ଼ାଇବା—
Rurḍha chhārḍibā To let the stumps of hair
চুল বাড়ান बाल छोडना grow long for want of a
[ରୁଢ଼ ବଢ଼ା(ଢ଼େ)ଇବା—ଅନ୍ୟରୂପ] shave. (ଦ୍ର—ଯେଉଁମାନେ କ୍ଷୌର ହୁଅନ୍ତି, ସେମାନେ କିଛିଦିନ କ୍ଷୌର ନ ହେଲେ କେଶମୂଳଗୁଡ଼ିକ କଅଁଳ ମୁଣ୍ଡ ଉପରେ କଦମ୍ବ କେଶର ପରି ଠିଅ ହୋଇଥାଏ । କ୍ଷୌର ହେଉଥିବା ଲୋକମାନଙ୍କର ମୃତକାଶୌଚ ଘଟିଲେ ସେମାନେ ଅଶୌଚକାଳର ଶେଷ ପର୍ଯ୍ୟନ୍ତ କ୍ଷୌର ହୁଅନ୍ତି ନାହିଁ, ଅର୍ଥାତ୍ ରୁଢ଼ ଛାଡ଼ନ୍ତି । କେହି କେହି ମଧ୍ୟ ଦେବତା ଆଦିଙ୍କ ଉଦ୍ଦେଶ୍ୟରେ ମାନସିକ କରି ରୁଢ଼ ବଢ଼ାନ୍ତି ଓ ମାନସିକ କାଳ ଶେଷରେ ରୁଢ଼ ପକାନ୍ତି । ମୃତକାଶୌଚରେ ମୃତାହର ୧୦ମ ଦିନ ମୃତ ବ୍ୟକ୍ତିର କୁଟୁମ୍ବ ଓ ବନ୍ଧୁମାନେ ଦଶାହରେ କ୍ଷୌର ହୁଅନ୍ତି, ଅର୍ଥାତ୍ ରୁଢ଼ ପକାନ୍ତି ।)

ରୁଢ଼ ପକା(କେ)ଇବା—ଦେ. କ୍ରି—କ୍ଷୌର ହେବା ଦ୍ୱାରା ବଢ଼ିଥିବା
Rurḍha pakā(ke)ibā ରୁଢ଼କୁ ବିସର୍ଜନ କରିବା—
চুলফেলা बाल बनवाना (कटाना) To have the growing stumps of hair on the head shaven.

ରୁଢ଼ ପଡ଼ିବା—ଦେ. ବ—ବଢ଼ିଥିବା ରୁଢ଼ମାନ କ୍ଷୌର ହେବା—
Rurḍhā parḍibā The shaving of the grow-
চুলদেওয়া बालछुटना ing stumps of hair.

ରୁଢ଼ ବଢ଼ିବା—ଦେ. ବ—କ୍ଷୌର ନ ହେବାଦ୍ୱାରା କେଶମୂଳଯାକ
Rurḍha barḍhibā କଅଁଳ ବୃଦ୍ଧିପାଇବା—Growth of
চুলবাড়া बालबढना the stumps of hair on the head due to want of shaving.

ରୁଢ଼ିଆ(ୟା)—ଦେ. ବଣ ଓ ବ—ରୁଡ଼ିଆ (ଦେଖ)
Rurḍhiā(yā) Rurḍiā (See)
যাবচুলবেড়েছে बालवाला

ରୁଣ୍‌ଝୁଣ—ଦେ. ଅ (ଧ୍ୱନ୍ୟନୁକରଣ)—ରୁଣୁଝୁଣ, (ଦେଖ)
Ruṇ-jhuṇ Ruṇujhuṇ (See)
রুনঝুন रुनझुन

ରୁଣ (ଇତ୍ୟାଦି)—ଗ୍ରା. ବ—ଋଣ ଇତ୍ୟାଦି (ଦେଖ)
Ruṇa (etc) Ṛuṇa etc(See)

ରୁଣୁଝୁଣ—ଦେ. ଅ—ରୁଣୁଝୁଣ (ଦେଖ)—Ruṇujhuṇ (See)
রুনঝুন रुनझुन [ଉ—ମେଖଳା ଘଣ୍ଟି ରୁଣଝୁଣ ଯେତେ ନାରଦ ଗରଜନ—ପ୍ରାଚୀ. ପୂର୍ଣ୍ଣିମଚନ୍ଦ୍ରୋଦୟ ।]

ରୁଣଝୁଣିତ—ଦେ (ପଦ୍ୟ) ବଣ—ଝଙ୍କାରଶବ୍ଦ ଯୁକ୍ତ—Jingling.
Ruṇajhuṇita [ଉ—ସକଳ ନୂପୁରନାଦ କଙ୍କଣ, ମୃଦଙ୍ଗ
রুনুঝুনু रूनझुनित ବାଦ୍ୟ, ରୁଣଝୁଣିତ ଶବଦ ଘୋର ଚହଳ—ପ୍ରାଚୀ. ରହସ୍ୟମଞ୍ଜରୀ । ]

ରୁଣସ୍କରା—ସଂ. ବ. ସ୍ତ୍ରୀ—ସହଜଦୁହ୍ୟା ଗାଈ; ସୁଧାର ଗାଈ—
Ruṇaskarā A cow easily milked [M.W.]

ରୁଣୁଝୁ(ରୁ)ଣ୍(ଣୁ)—ଦେ.ଅ (ଧ୍ୱନ୍ୟନୁକରଣ; ସ.ରଣ ଓ ଧ୍ୱନ୍ ଧାତୁ=ଶବ୍ଦ
Runujhu(ru)n(nu) କରିବାରୁ )—୧ । କଣି କଣି ଶବ୍ଦ;
ଝୁମୁନ ଝୁନ(ଝୁନ୍ନ)ଝୁ(ଝୁନୁକଝୁନୁକ ଘଣ୍ଟିଯୁକ୍ତ ଅଳଙ୍କାରର
ମଧୁର କ୍ୱଣନ—1. Sweet tingling of small bells in ornaments.
[ଉ—ଯଥା—ହାତର ମୁଦ୍ରି ଗୋଡ଼ର ପାଉଁଜି ଗୁଞ୍ଜଗଲେ ରୁଣଝୁଣ, ଭ୍ରମରା ପରଶା ସୁଆଦ ଲାଗେ, ଭ୍ରମରା ତ ଅବଗୁଣ —ଡଗ । ଗୁଲଲେ ରୁଣୁଝୁଣୁ ବାଜେ, କୁସୁମ ମାଳା ଗଳେ ସାଜେ—ଭାଗବତ । ] ୨ । ବୀଣାଦିର ମଧୁର ଝଙ୍କାର ଶବ୍ଦ—2. The sweet sound of the harp. [ ଉ—ରୁଣୁଝୁଣୁଠାରୁ ରଣଝଣ ଶବ୍ଦ ଉତ୍ପନ୍ନ ।]

ରୁଣ୍ଟ୍ (ଧାତୁ)—ସ—୧ । ଗମନକରିବା; ଯିବା—1. To go (Apte.)
Runt (root) ୨ । ଚୋରି କରିବା—2.To steal ( Apte.) ୩ । ଛୋଟା ହେବା—3.To be lame (Apte.) ୪ । ବାଧା ଦେବା —4.To oppose ( Apte.) ୫ । କିଛି କାମ ନ କରିବା—5.To be idle (M.W.)

ରୁଣ୍ଠ(ଧାତୁ)—ସ.— ଲୁଣ୍ଠନ କରିବା; ବଳପୂର୍ବକ ଧନାଦି ଅପହରଣ କରିବା
Runth (root) — To loot; to plunder

ରୁଣ୍ଠା—ଦେ. ବିଣ. ପୁଂ. ସ୍ତ୍ରୀ—(ସ. ରୁଣ୍ଠ ଧାତୁ)—୧ । ଅତି କୃପଣ—
Runtha କଞ୍ଜୁସ କଂଜୁସ 1. Very miserly.
[ରୁଣ୍ଠିଆ—ଅନ୍ୟରୂପ] [ରୁଣ୍ଠୀ, ରୁଣ୍ଠେଇ—ସ୍ତ୍ରୀ] ୨ । ଶୁଷ୍କ;ନୀରସ; ରୁଖା ରୁଖା ଶୁଖିଲା—2. Dry; sapless; withered. ୩ । ରୋଗା ପଟକା ଦୁବଲା କ୍ଷୀଣ—3. Feeble; emaciated. ବେଁଟେ ନାଟା, ନାଟା ୪ । ଖର୍ବକାୟ—4. Dwarfish. ପ୍ରାଦେ. ( ଗଡ଼ଜାତ ) ବିଣ.—ଖାଣ୍ଟି; ଖାଣ୍ଟି; ନ୍ୟାଯ୍ୟବନ୍ତ— Pure, upright. [ଉ—ଗାନ୍ଧି ଜଣେ ରୁଣ୍ଠା ଲୋକ-- ରାଧାନାଥ ରଥ. ଗାନ୍ଧିଙ୍କ ଆତ୍ମକଥା ।]

ରୁଣ୍ଠାରୁଣ୍ଠି କରିବା—ଦେ. କ୍ରି.—(ସ. ରୁଣ୍ଠ ଧାତୁ)—୧ । ନାନା ସ୍ଥାନରେ
Runtha runthi kariba ସଞ୍ଚିତ ଧନକୁ ଖୋଜିଖୋଜି ନିଃଶେଷ (ରୁଣ୍ଠିବା—ଅନ୍ୟରୂପ) କରି ବା ଲୁଣ୍ଠେଇ ପୁଣ୍ଠେଇ କରି ନେବା—
1.To take away all cash or riches stored
ଚେଁଛେ ପୁଁଛେ ଲଓୟା ଢୁଁଢଢାଁଢ କରନା at any place.
(ଯଥା—ମହାଜନ ଶୁଝିବା ପାଇଁ ଘରେ ସିନ୍ଦୁକ ବାକ୍ସ ପେଡ଼ି ପେଟରା, ଯେଉଁଠାରେ ଯାହା ଥିଲା, ସବୁ ରୁଣ୍ଠା-ରୁଣ୍ଠି କରି ଆଣିଲି; ତେବେ ସୁଦ୍ଧା ମହାଜନଙ୍କ ଦେଣା ମୂଳପୋଛ ନ ହେଲା ।) ୨ । ଧନାଦି ନିଃଶେଷରୂପ ଲୁଣ୍ଠନ କରିବା—2.To loot away; to ransack. ୩ । ଚେଞ୍ଚୁରିବା (ଯଥା ହାଡ଼ରୁ ମାଂସ ରୁଣ୍ଠିବା)— 3. To nibble the soft parts adhering to a hard thing.

ରୁଣ୍ଠାଶୁଣ୍ଠା—ଦେ. ବିଣ. (ସହଚର)—ରୁଖା ଶୁଖା (ଦେଖ)
Runtha suntha Rukha sukha (See)

ରୁଣ୍ଠିଆ—ଦେ. ବିଣ.—ରୁଣ୍ଠା (ଦେଖ)
Runthia Runtha (See)

ରୁଣ୍ଠିଆ ଶୁଣ୍ଠିଆ—ଦେ. ବିଣ.—ଶୁଖିଲା ଓ କ୍ଷୀଣ (ଶିଶୁଆଦି)—
Runthia sunthia Weakling; withered;
ରୋଗା ପଟକା ଦୁବଲାସୁଖା emaciated.

ରୁଣ୍ଠିବା—ଦେ. କ୍ରି.—(ସ. ରୁଣ୍ଠ ଧାତୁ)—ରୁଣ୍ଠାରୁଣ୍ଠି କରିବା(ଦେଖ)—
Runthiba Runtha runthi kariba ( See.)

ରୁଣ୍ଠି ରାଣ୍ଠି—ଦେ କ୍ରି. ବିଣ—ରୁଟିରାଟି [ଦେଖ]
Runthi ranthi Rutirati [See]

ରୁଣ୍ଡ— ସଂ. ବି.—(ରୁଣ୍ଡ ଧାତୁ+କର୍ତ୍ତୃ. ଅ;)—(ଯାହା ଭୂମିରେ ଲୁଣ୍ଠିତ
Runda ହୁଏ) କବନ୍ଧ; ମସ୍ତକହୀନ ଦେହ—Headless trunk or body. ସ. ବିଣ.—ବିକଳାଙ୍ଗୀକୃତ— Maimed; mutilated [Apte] ଦେ. ବିଣ.— ୧ । ଏକତ୍ରୀଭୂତ—1. Gathered together, [ଉ—ଦ୍ରୋଣ ଭୂମରେ ଶାନ୍ତି ଦେଇ, ଜ୍ଞାତି ବାନ୍ଧବ ରୁଣ୍ଡ ହୋଇ । ଜଗନ୍ନାଥ. ଭାଗବତ ।] ୨ । ଏକ ସ୍ଥାନରେ ସ୍ତୂପୀକୃତ—2. Heaped up. ୩ । ସମୂହ— 3, Collection of. (ଯଥା—ବ୍ୟାଘ୍ରରକ୍ତ ଏ ଦୁଷ୍ଟି ତ ନହେଁ, ଶଶି ଉପମା ରୁଣ୍ଡ— ଭଞ୍ଜ ବୈଦେହୀଶବିଳାସ ।)

ରୁଣ୍ଡ କରିବା—ଦେ. କ୍ରି (ସ. ରୁଣ୍ଡ ଧାତୁ)—ଏକସ୍ଥାନରେ ଜମା କରିବା,
Rundakariba ସ୍ତୂପୀକୃତ କରିବା— To gather things
ଜଡକରା ଇକଟ୍ଠାକରନା or men at one place; to heap up. (ଯଥା—କୁସୁମ କୋଦଣ୍ଡ କାଣ୍ଡ, କେତେ କରିଥିଲ ରୁଣ୍ଡ—କବିସୂର୍ଯ୍ୟ କିଶୋରଚନ୍ଦ୍ରାନନ୍ଦ ଚମ୍ପୂ କ ଗୀତ ।)

ରୁଣ୍ଡ ହେବା—ଦେ. କ୍ରି —(ବହୁ ଲୋକ) ଏକ ସ୍ଥାନରେ ଜମା ହେବା—
Runda heba (Many persons) To be gathered
ଜଡହଓୟା ଇକଟ୍ଠାହୋନା or collected at one place.
[ଉ—ଅବା ଜଗତର ସର୍ବସୁଖରାଶି, ଗୁପତରେ ତହିଁ ରୁଣ୍ଡ ହେଲା ଆସି—ରାଧାନାଥ. ନନ୍ଦିକେଶ୍ୱରୀ)

ରୁଣ୍ଡା(ଣ୍ଡେ)ଇବା—ଦେ. କ୍ରି — (ସ ରୁଣ୍ଡ ଧାତୁ=ରୁଣ୍ଡ ହେବା କ୍ରିୟାର
Runda(nde)iba ଣିଜନ୍ତରୂପ)—୧ । ଏକ ସ୍ଥାନରେ ବହୁ
ଜଡକରା ଇକଟ୍ଠା କରନା ପଦାର୍ଥ ବା ବ୍ୟକ୍ତିଙ୍କୁ ଏକତ୍ରକରିବା; ଗୋଟାଇବା; ଜମା କରିବା—1. To gather or collect many things or persons at one place. ( ଉ—ଗ୍ରାମ ସେହୁଷଣି କାଠକୁ ରୁଣ୍ଡିଅଇ, ସଜାଡ଼ିଲେ ରହି ତାହାକୁ କୁଣ୍ଡିଅଇ—କୃଷ୍ଣସିଂହ ମହାଭାରତ ବନ ।] ୨ । ଗଦା କରିବା—2. To heap up. (ଉ—ପଞ୍ଚ୍ୟ ଲୋକରେ ସୁଧର୍ମା ନାଙ୍କୁ ମରାଇଅଛ ଅଧରମ ରୁଣ୍ଡାଇବା ପାଇଁ—କୃଷ୍ଣସିଂହ ମହାଭାରତ ଶଲ୍ୟ ।] (ରୁଣ୍ଡି ଥାଇବା—ଅନ୍ୟରୂପ)

ରୁଣ୍ଡା(ଣ୍ଡେ)ଇ ପୁଣ୍ଡା(ଣ୍ଡେ)ଇ ନେବା—ଦେ. କ୍ରି (ସହଚର; ସଂ ରୁଣ୍ଡ
Runda(nde)i punda(nde)i neba ଧାତୁ)—ଲୁଣ୍ଠେଇପୁଣ୍ଠେଇ (ରୁଣ୍ଡାରୁଣ୍ଡି କରିନେବା—ଅନ୍ୟରୂପ) ନେବା, ଅନେକ ସ୍ଥାନରୁ ବହୁ ବସ୍ତୁ
ଲୁଟେପୁଟେଲଓୟା ବଟୋରବଟୋରକର ଲେନା ସଂଗ୍ରହ କରି ବୋହିନେବା— To collect or put together various things from various places and carry them away.

ରୁଣ୍ଡି—ଦେ. ବ (ସଂ. ରୁଣ୍ଡିକା)—୧ । ଇରୁଣ୍ଡି; ଏରୁଣ୍ଡି; ଦ୍ୱାରପିଣ୍ଡ—
Rundi 1. Door step; door sill. ୨ । ଗୃହର ଦ୍ୱାରବନ୍ଧ; ଚୌକାଠ ଚଉକାଠ—2. Door-frame. ୩ । ଇରୁଣ୍ଡ ବନ୍ଧ—
देहली, द्वार 3. Threshold. ୪ । (ସଂ.ଏରଣ୍ଡ)—ଇଣ୍ଡି; ଏଣ୍ଡି; ଅସାମଜାତ ପଟ—A kind of Assam silk, eri silk.

ରୁଣ୍ଡିଆ—ଦେ ବଣ (ଗାଳ) - ୧ । ରୁଣ୍ଡିଆ, ଅତି କୃପଣ—1. Very
Rundiā miserly. ୨ । ଧନାପହାରକ—2. Given to
କଂଜୁସ, ଚୋର कंजूस, चोर plundering.

ରୁଣ୍ଡିଆଇବା—ଦେ. କି—ରୁଣ୍ଡାଇବା ( ଦେଖ )
Rundiaibā Rundāibā ( See )
(ଡ—ଆମ୍ଭେ ତ ରୁଣ୍ଡିଆଇ ଅର୍ଥ, ବୃଥେ ବାନ୍ଧିଲୁ ଏଛୁପର୍ଣି ।
ଜଗନ୍ନାଥ. ଭାଗବତ ।)

ରୁଣ୍ଡିକା—ସଂ ବ ( ରୁଣ୍ଡ+କ+ସ୍ତ୍ରୀ. ଆ )—୧ । ଘରର ଦ୍ୱାରମୁହଁ;
Rundikā ଦ୍ୱାରପିଣ୍ଡ; ଘରର ଦ୍ୱାରର ଚଉକାଠ—1. Door frame; door step. ୨ । ଇରୁଣ୍ଡି ବନ୍ଧ—2. Threshold; door sill. (ଏଥିର ଅପଭ୍ରଂଶ ଇରୁଣ୍ଡି, ଏରୁଣ୍ଡି) ୩ । ରଣସ୍ଥଳ—3. Battle field. ୪ । କୁଟ୍ଟିନୀ; କାମଦୂତୀ—4. A panderess; a female go-between. ୫ । ବିଭୂତି; ହୋମାଗ୍ନିର ପାଉଁଶ—5. Ashes of sacrificial fire. ୬ । ଦୈବଶକ୍ତି; ଅମାନୁଷୀ କ୍ଷମତା—6. Divine or supernatural power.

ରୁଣ୍ଡିବନ୍ଧ—ଦେ. ବ. ( ସଂ. ରୁଣ୍ଡିକା ଓ ବନ୍ଧ )—ଦୁଆର ଟୁଙ୍କର
Rundi bandha ଚଉକାଠର ନିମ୍ନ ଅଂଶ—Threshold;
ଗୋବରାଟ देहली door sill.

ରୁଣ୍ଡୀଭୂତ—ଦେ. ବଣ (ଓଡ଼ିଆ ଲେଖକଙ୍କ ଦ୍ୱାରା ଓଡ଼ିଆ ରୁଣ୍ଡ ଶବ୍ଦ
Rundi bhūta ସଙ୍ଗେ ଅଭୂତତଦ୍ଭାବେ ଚ୍ୱି ପ୍ରତ୍ୟୟପୂର୍ବକ ଗଢ଼ା ହେବା ଶବ୍ଦ)—ଏକତ୍ରୀଭୂତ—Gathered together.
(ରୁଣ୍ଡୀକୃତ—ଅନ୍ୟରୂପ)

ରୁଣ୍ଡେଇ ପୁଣ୍ଡେଇବା—ଦେ. କି—ରୁଣ୍ଡାରୁଣ୍ଡି କରିବା ( ଦେଖ )
Rundei pundeibā Rundarundi kariba ( See )

ରୁଣ୍ଡେଇବା—ଦେ. କି—ରୁଣ୍ଡାଇବା ( ଦେଖ )
Rundeibā Rundāibā ( See )

ରୁତ୍—ସଂ. ବ. (ରୁ ଧାତୁ=ରବ କରିବା+ଭାବ କ୍ୱିପ୍)—ରୁତ; ଧ୍ୱନି;
Rut ରବ—Sound; noise; cry.

ରୁତ—ସଂ. ବଣ (ରୁ ଧାତୁ=ରବ କରିବା; ଧ୍ୱନି କରିବା+କର୍ତ୍ତୃ. ତ)—
Ruta ୧ । ଧ୍ୱନିତ—1. Sounded. ୨ । ରୁଦିତ; ରୋଦନ କରୁଥିବା—2. Lamenting. ସଂ. ବ—(+ଭାବ ତ) ୧ । ଶବ୍ଦ; ଧ୍ୱନି; ନାଦ—1. Sound; tune. ୨ । କୂଜନ; ଜୀବମାନଙ୍କର ଡାକ (ବିଶେଷତଃ ପକ୍ଷୀମାନଙ୍କର ଡାକ ବା କାକଳି)—2. The sound or cry made by animals (especially the cooing of birds). ୩ । କାନ୍ଦଣା; ରୋଦନ—3. Crying; lamentation. ୪ । କାନ୍ଦଣା ସ୍ୱର—4. The sound of wailing.

ରୁତ୍ପନ୍ନ—ଗ୍ରା. ବ (ପ୍ରାଚୀନ ପଦ୍ୟ)—ଋତୁପର୍ଣ୍ଣ ( ଦେଖ )
Rutpanna Rutuparnna ( See )
(ଡ—ରୁତ୍ପନ୍ନ ଯେବେ ବୋଲିବେ ଭୂମିଙ୍କୁ । ପ୍ରାଚୀ. ନଳ ଚରିତ ।)

ରୁଦ୍ (ଧାତୁ)—ସ—୧ । ରୋଦନ କରିବା; କାନ୍ଦିବା—1. To cry,
Rud (root) to weep, to wail, to lament.
୨ । ଗର୍ଜନ କରିବା—୨. To howl; to roar, (Apte).

ରୁଦନ—ପ୍ରାଦେ. (କାଶପୁର) ବ—ରୋଦନ—
Rudana Crying.

ରୁଦ(ଦି, ଦୁ)ନା—ଦେ. ବ—ପୋଦିନା ପରି ଏକ ପ୍ରକାର ସୁବାସ ପତ୍ର-
Ruda(di, du)na ଯୁକ୍ତ ଗୁଳ୍ମ—A species of Mentha
ପୋ(ପୁ)ଦିନା Veridis plant. [ଦ୍ର—ଏହାର ପତ୍ର ପୋଦିନା
पोदिना ପତ୍ର ଅପେକ୍ଷା ସରୁ ।]

ରୁଦନ୍ତିକା—ସ.ବ (ବୈଦ୍ୟକ; ରୁଦ୍ ଧାତୁ+କର୍ତ୍ତୃ.ଅତ୍+ସ୍ତ୍ରୀ ଇ+କ+
Rudantikā ଆ)—ଏକପ୍ରକାର ଗୁଳ୍ମ—[ ଦ୍ର—ଏହି ଗୁଳ୍ମ
(ରୁଦନ୍ତୀ—ଅନ୍ୟରୂପ) ଚଣକଗଛ ପରି ହାତେ ଉଚ୍ଚ ଏବଂ ଏହାର ପତ୍ର କଣ୍ଟା ଚଣା ପତ୍ରପରି । ଶରତ୍ ଓ ଶୀତକାଳରେ ଏ ଗଛମାନ
रुद्रवन्ती ଜଳବିନ୍ଦୁ ନିର୍ଗତ ହୁଏ ବୋଲି ଏହି ନାମ (ଏହା ଔଷଧରେ
[ ମରହଟ୍ଟୀ—ଅଲ୍ପଗୁଣୀ ] ବ୍ୟବହୃତ ହୁଏ]—A sort of
(ତେ—ରୁଦନ୍ତି) medicinal plant; Cressa
Cretica. [ଦ୍ର—ଏହାର ଅନ୍ୟ ସଂସ୍କୃତନାମ-ସ୍ରବତ୍ତୋୟା, ସଞ୍ଜୀବନୀ, ଅମୃତସ୍ରବା, ସୁଧାସ୍ରବା, ରୋମାଞ୍ଚିକା, ମହାମାଂସୀ, ଚଣକପର୍ଣୀ, ମଧୁସ୍ରବା, ଏହା କଟୁତିକ୍ତ କଷାୟରସ, ଉଷ୍ଣ-ବୀର୍ଯ୍ୟ, ଅଗ୍ନିବର୍ଦ୍ଧକ, ଶୁକ୍ରଜନକ, ପିତ୍ତନାଶକ, ଜ୍ୱର ଓ ବ୍ୟାଧିନାଶକ, ଏହା ରକ୍ତପିତ୍ତ, ମେହ, କ୍ଷୟ, କୁଷ୍ଠ, ଶ୍ୱାସ ଓ କୃମିରୋଗରେ ଉପକାରକ । ଏହା ଉଷ୍ଣଦେଶର ବାଲିଆ ଜମିରେ ଜଳାଶୟ ନିକଟରେ ଓ ସମୁଦ୍ରତଟରେ ଜନ୍ମେ । କଳା, ହଳଦିଆ, ନାଲି ଓ ଧଳା ଫୁଲଭେଦରେ ଏ ଗଛ ୪ପ୍ରକାର । ବୈଦ୍ୟକମତରେ ଏହା କଡ଼ୁଆ, ଗରମ ରସାଯୁକ, ଅଗ୍ନିଜନକ, ବୀର୍ଯ୍ୟବର୍ଦ୍ଧକ ଅଟେ ଓ ଶ୍ୱାସ, କୃମି ରକ୍ତପିତ୍ତ, କଫ ପ୍ରକୋପ ଦୂର କରେ—ହି. ଶ ।]

ରୁଦିତ—ସଂ. ବଣ ପୁଂ (ରୁଦ୍ ଧାତୁ+କର୍ତ୍ତୃ. ତ)—୧ । କାନ୍ଦୁଥିବା—
Rudita 1. Crying; weeping. ବ. (+ଭାବ. ତ)—
ରୋଦନ; କାନ୍ଦିବା—Crying; weeping;
(ରୁଦିତା—ବଣ. ସ୍ତ୍ରୀ) lamentation

ରୁଦ୍ଧ—ସ.ବ (ରୁଧ. ଧାତୁ+କର୍ମ. ତ)—୧ । ବନ୍ଦ; ବନ୍ଦ କରାଯାଇଥିବା,
Ruddha କୃତାବରୋଧ—1 Closed; shut up. ୨ । ଅବରୁଦ୍ଧ; ବନ୍ଦୀକରି ରଖାଯାଇଥିବା—2. Confined; imprisoned. ୩ । ସ୍ତମ୍ଭିତ; ଯାହାର ଗତିକୁ ବନ୍ଦ କରାଯାଏ—3. Stopped;retarded. ୪ । ପ୍ରତିହତ; ବାଧାପ୍ରାପ୍ତ—4. Obstructed. ୫ । ନିବାରିତ—5. Prevented.

୬ । ଅଟକା ଯାଇଥିବା—6. Restrained; blocked up. ୭ । ଆବୃତ—7. Covered. ୮ । ବେଷ୍ଟିତ—8. Surrounded, blockaded.

ରୁଦ୍ଧଗତି—ସଂ ବିଣ. ପୁଂ. ଓ ସ୍ତ୍ରୀ (ବହୁବ୍ରୀହି)—ଯାହାର ଗତିକୁ ଅଟକ Ruddhagati କରାଯାଇ ଥାଏ—Having the movement stopped or retarded.

ରୁଦ୍ଧଦ୍ୱାର—ସଂ. ବି (କର୍ମଧା)—ବନ୍ଦ ହୋଇଥିବା କବାଟ—Closed Ruddhadwāra door. ବିଣ (ବହୁବ୍ରୀହି)—ଯେଉଁ ଘରର କବାଟ ବନ୍ଦ କରାଯାଇଅଛି—(house) With its doors closed.

ରୁଦ୍ଧବାକ୍—ସଂ. ବିଣ. ପୁଂ ଓ ସ୍ତ୍ରୀ—ଯାହାର କଥା କହିବାର ଶକ୍ତି ବନ୍ଦ Ruddhabāk ହୋଇଅଛି—One with the power of speech restrained or choked up.
ରୁଦ୍ଧବଚନ, ରୁଦ୍ଧବାକ୍ୟ—ପୁଂ } ଅନ୍ୟରୂପ
ରୁଦ୍ଧବଚନା, ରୁଦ୍ଧବାକ୍ୟା—ସ୍ତ୍ରୀ }

ରୁଦ୍ଧଶ୍ୱାସ—ସଂ ବିଣ. ପୁଂ(ବହୁବ୍ରୀହି)--ଯାହାର ନିଶ୍ୱାସ ଅଟକି ଯାଇଥାଏ—Ruddaśwāsa With one's breath stopped. (ରୁଦ୍ଧଶ୍ୱାସା—ସ୍ତ୍ରୀ)

ରୁଦ୍ଧସ୍ୱର—ସଂ ବିଣ.ପୁଂ(ବହୁବ୍ରୀହି)· ଯାହାର ସ୍ୱର ବନ୍ଦ ହୋଇ ଯାଇଅଛି--Ruddhaswara With the voice choked up. (ରୁଦ୍ଧସ୍ୱରା—ସ୍ତ୍ରୀ)

ରୁଦ୍ର—ସଂ.ବି ( ରୁଦ୍ ଧାତୁ+ ସଂଜ୍ଞାର୍ଥେ ଅଗାଦାକେ ର; ଯାହା ଯୋଗୁଁ Rudra ଲୋକେ କାନ୍ଦନ୍ତି )—୧ । ଭୀଷଣ; ଭୟଙ୍କର; ଚଣ୍ଡ—1. Terrible; terrific; fierce. ୨ । ଉଗ୍ର—2. Violent; strong. ବି—(ରୁଦ୍ ଧାତୁ. ଣିଜନ୍ତ; ରୁଦ୍. ଧାତୁ+କର୍ତ୍ତୃ ର; ଯେ ପ୍ରଳୟରେ ସମସ୍ତଙ୍କୁ କନ୍ଦାନ୍ତି)—୧ । ମହାଦେବ, ଶିବ—1. Śiba. ୨ । ସଂହାରମୂର୍ତ୍ତି; ମହାଦେବଙ୍କ ଅଷ୍ଟମୂର୍ତ୍ତି ମଧ୍ୟରୁ ଅଗ୍ନିମୟ ମୂର୍ତ୍ତି—2. The fiery incarnation or form of Śiba. [ଦ୍ର—ଏହି ରୂପରେ ଶିବ କାମଦେବଙ୍କୁ ଭସ୍ମ କରିଥିଲେ, ଦକ୍ଷଯଜ୍ଞ ନାଶ କରିଥିଲେ ଓ ଜମ୍ମାଙ୍କୁ ଓ ଜମ୍ଭଙ୍କୁ ବିଦାହ କରିଥିଲେ—ହି. ଶ] ୩ । ସୂର୍ଯ୍ୟ—3. The sun. ୪ । ବ୍ରହ୍ମାଙ୍କ କପାଳରୁ ଉତ୍ପନ୍ନ ୧୧ ଗୋଟି ଗଣଦେବତା—4 A class of eleven Deities produced from the brow of Brahmā.

[ ହି—ରୋଦନ କଲୁ ଆଗେ ଯେଣୁ, ତୋ ନାମ ରୁଦ୍ର ହେଉ ତେଣୁ । ଜଗନ୍ନାଥ. ଭାଗବତ । ] [ଦ୍ର—କୂର୍ମପୁରାଣରେ ଅଛି ଯେ, ବ୍ରହ୍ମା କଳ୍ପାରମ୍ଭକାଳରେ ବହୁତ ତପସ୍ୟା କରି ସୁଦ୍ଧା ସୃଷ୍ଟି ଉତ୍ପନ୍ନ କରି ନ ପାରି ଅତି କ୍ରୁଦ୍ଧ ହୋଇ କାନ୍ଦିଲେ । ତାଙ୍କ ଲୋତକରୁ ଭୂତ ପ୍ରେତଙ୍କ ସୃଷ୍ଟି ହେଲା ଓ ତାଙ୍କ ମୁଖରୁ ୧୧ ରୁଦ୍ର ଉତ୍ପନ୍ନ ହେଲେ । ଏମାନେ ଉତ୍ପନ୍ନ ହୋଇ ଉଚ୍ଚୈଃସ୍ୱରରେ କାନ୍ଦିଲେ । ଏଥିପାଇଁ ଏମାନଙ୍କ ନାମ ରୁଦ୍ର ହେଲା । ମତାନ୍ତରରେ ବ୍ରହ୍ମା ସୃଷ୍ଟିଚିନ୍ତାରେ ନିମଗ୍ନ ଥିବା ଅବସ୍ଥାରେ ତାଙ୍କ ଲଲାଟରୁ ଗୋଟିଏ ବାଳକମୂର୍ତ୍ତି ଜାତ ହୋଇ ରୋଦନ କରି ଇତସ୍ତତଃ ଦୌଡ଼ାଦୌଡ଼ି କଲେ । ବ୍ରହ୍ମା ତାହାଙ୍କୁ ରୁଦ୍ର ନାମରେ ଅଭିହିତ କଲେ ଓ ରୋଦନରୁ ନିବୃତ୍ତ ହେବାକୁ ଅନୁରୋଧ କଲେ । ବ୍ରହ୍ମା ଏହାଙ୍କୁ ଆଠ ଗୋଟି ନାମ ଦେଲେ । ୧ । ଭବ, ୨ । ଶର୍ବ, ୩ । ଈଶାନ, ୪ । ପଶୁପତି, ୫ । ଭୀମ, ୬ । ଉଗ୍ର, ୭ । ମହାଦେବ, ୮ । ଶଙ୍କର । ଏ ପୁଣି ୧୧ଟି ମୂର୍ତ୍ତି ଧାରଣ କରି ଏକାଦଶ ରୁଦ୍ର ନାମରେ ବିଖ୍ୟାତ ହେଲେ । ଯଥା—୧ । ଅଜୈକପାଦ, ୨ । ଅହିବ୍ରଧ୍ନ, ୩ । ବିରୂପାକ୍ଷ, ୪ । ସୁରେଶ୍ୱର, ୫ । ଜୟନ୍ତ, ୬ । ବହୁରୂପ, ୭ । ତ୍ର୍ୟମ୍ବକ, ୮ । ଅପରାଜିତ, ୯ । ବୈବସ୍ୱତ, ୧୦ । ସାବିତ୍ର, ୧୧ । ହର ।

ମତାନ୍ତରରେ ୧ । ଅଜ, ୨ । ଏକପାଦ, ୩ । ଅହିବ୍ରଧ୍ନ, ୪ । ପିନାକୀ, ୫ । ଅପରାଜିତ, ୬ । ତ୍ର୍ୟମ୍ବକ, ୭ । ମହେଶ୍ୱର ୮ । ବୃଷାକପି, ୯ । ଶମ୍ଭୁ, ୧୦ । ହର, ୧୧ । ଈଶ୍ୱର ।

ପୁନଶ୍ଚ ଭାଗବତ ମତେ—୧ । ମନ୍ୟୁ, ୨ । ମନୁ, ୩ । ମହାନସ, ୪ । ମହାନ୍, ୫ । ଶିବ, ୬ । ଋତୁଧ୍ୱଜ, ୭ । ଉଗ୍ରରେତସ, ୮ । ଭବ, ୯ । କାଳଭୀବ, ୧୦ । ବାମଦେବ ୧୧ । ଧୃତବ୍ରତ ।

ଗରୁଡ଼ ପୁରାଣରେ ଏମାନଙ୍କ ନାମ—୧ । ଅଜୈକପାଦ, ୨ । ଅହିବ୍ରଧ୍ନ, ୩ । ତ୍ୱଷ୍ଟା, ୪ । ବିଶ୍ୱରୂପହର, ୫ । ବହୁରୂପ, ୬ । ତ୍ର୍ୟମ୍ବକ, ୭ । ଅପରାଜିତ, ୮ । ବୃଷାକପି, ୯ । ଶମ୍ଭୁ, ୧୦ । କପର୍ଦ୍ଦୀ; ୧୧ । ରୈବତ ।

ଏମାନେ କ୍ରୋଧରୂପ ବୋଲି କଳିତ; ଭୂତ ପ୍ରେତ ପିଶାଚଆଦି ଏମାନଙ୍କଠାରୁ ଉତ୍ପନ୍ନ ହୋଇଥିବା କଥିତ ।

ବେଦରେ ଅଗ୍ନିଙ୍କୁ ରୁଦ୍ର ବୋଲି ଯାଇଅଛି; ଓ କଥିତ ଅଛି ଯେ, ଯଜ୍ଞର ଅନୁଷ୍ଠାନ କରିବା ନିମନ୍ତେ ରୁଦ୍ରହିଁ ଯଜ୍ଞରେ ପ୍ରବେଶ କରନ୍ତି । ବେଦରେ ରୁଦ୍ରଙ୍କୁ ଅଗ୍ନିରୂପୀ, ବୃଷ୍ଟିକର ଓ ଗର୍ଜନକାରୀ ଦେବ ବୋଲି ଯାଇଅଛି ଓ ଏ ଦେବ ବହୁ ଥିବା ଅନୁମିତ ହୁଏ । ପୁଣି କେଉଁ କେଉଁଠାରେ ରୁଦ୍ର ଶବ୍ଦରୁ ଇନ୍ଦ୍ର, ମିତ୍ର, ବରୁଣ, ପୂଷଣ ଓ ସୋମ ଆଦି ଅନେକ ଦେବତାଙ୍କର ବୋଧ ହୁଏ । ଏକ ସ୍ଥାନରେ ରୁଦ୍ରଙ୍କୁ ରୁଦ୍ରଗଣଙ୍କ ପିତା ଓ ଅନ୍ୟ ସ୍ଥାନରେ ଅମ୍ବିକାଙ୍କୁ ଭାଇ ବୋଲି ଯାଇଅଛି । ଏହାଙ୍କର ୩ ନେତ୍ର ଓ ଏହାଙ୍କୁ ସର୍ବଜନସୁଦୃଢ଼ଣକାରୀ ଓ ସର୍ପମାନଙ୍କ ଧ୍ୱଂସକାରୀ ବୋଲି ଯାଇଅଛି [ହି. ଶ.] ୫ । ଏକ କଉଡ଼ା କଉଡ଼ିର ୧/୧୧ ଅଂଶ—5. One eleventh of a cowrie. ୬ । (ଜ୍ୟୋତିଷ) ଆର୍ଦ୍ରା ନକ୍ଷତ୍ର--6.The sixth asterism or lunar mansion. ୭ । (ବୈଦ୍ୟକ) ଅଣସୋରିଷିଆ ଗୁଳ୍ମ—7. Cleome Viscosa (plant). ୮ । ଏଗାର ସଂଖ୍ୟା ( ହି. ଶ )—8. The number eleven. ୯ । ବିଶ୍ୱକର୍ମାଙ୍କ ଏକପୁତ୍ରଙ୍କ ନାମ (ହି. ଶ)

9. Name of a son of Biswakarmā. ୧୦। ପ୍ରାଚୀନ କାଳର ଏକ ପ୍ରକାର ବାଜା [ହ୍ରି. ଶ.]—10. A kind of ancient musical instrument. ୧୧। ଅର୍କ ଗଛ (ହ୍ରି .ଶ.)—11. The Calotropis Gigantea plant. ୧୨। ରୌଦ୍ର ରସ [ ହ୍ରି. ଶ, ]—12. The sentiment of terror in literature. ୧୩। ରୁଦ୍ରଗଣ [ ଦେଖ 13. Rudragaṇa (See). ଦେ. ବି.—୧। ସଂ ଉର୍ଦ୍ଧର, ଉଦର]— ଶଗଡ଼ ଉପରେ ଧାନ ଆଦି ବୋହିବା ପାଇଁ ବାଉଁଶ ପାଞ୍ଚଅରେ ବୁଣା ହୋଇଥିବା ଲମ୍ବ ଆଧାର; ଉଦର; ଓଡ଼୍ର—1 A big and long basket of wicker work designed to carry paddy etc on a cart. ୨। ପୁରୁଷ ଲୋକଙ୍କ ନାମ—2. A name given to males.

ରୁଦ୍ରକ—ସଂ. ବି ( ରୁଦ୍ର+କ )—ରୁଦ୍ରାକ୍ଷ ( ଦେଖ )
Rudraka — Rudrāksha ( See )

ରୁଦ୍ରକଳସ—ସଂ. ବି—ଏକପ୍ରକାର କଳସ; ଗ୍ରହଆଦିଙ୍କ ଶାନ୍ତି ସମୟରେ ଏହାର ଉପଯୋଗ ହୁଏ ( ହ୍ରି. ଶ. )—
Rudrakaḷasa — A kind of pitcher used during the propitiatory rites of planets.

ରୁଦ୍ରକାଳାନଳ—ସଂ. ବି—ରୁଦ୍ର ସ୍ତୋତ୍ର ଗ୍ରନ୍ଥ ବିଶେଷ —Name of a
Rudra kālānala — book of hymns to Śiba.

ରୁଦ୍ରକାଳୀ—ସଂ. ବି. ସ୍ତ୍ରୀ—ଦୁର୍ଗାଙ୍କର ଏକମୂର୍ତ୍ତି ( ହ୍ରି. ଶ )—
Rudrakāli — A form of Durgā.

ରୁଦ୍ରକୁଣ୍ଡ—ସଂ. ବି—ବୃନ୍ଦାବନ ସ୍ଥିତ ଗୋଟିଏ ତୀର୍ଥର ନାମ ( ହ୍ରି. ଶ )
Rudra kuṇḍa — Name of a holy tank in Bṛundābana.

ରୁଦ୍ରକୋଟିତୀର୍ଥ—ସଂ. ବି—ହିନ୍ଦୁମାନଙ୍କର ତୀର୍ଥବିଶେଷ —
Rudra koṭitirtha — A shrine of the Hindus.
(ରୁଦ୍ରକୋଟି—ଅନ୍ୟରୂପ) [ ଉ—ରୁଦ୍ରକୋଟି ତୀର୍ଥରେ ପୂର୍ବେ ଋଷିକୁଳ, ରୁଦ୍ରଙ୍କୁ ଦେଖିବାକୁ ହେଲେ ଆସି ଠୁଳ । କୃଷ୍ଣସିଂହ. ମହାଭାରତ. ବନ । ]

ରୁଦ୍ରଗଣ—ସଂ. ବି—୧। ରୁଦ୍ରଶ୍ରେଣୀଭୁକ୍ତ ଏଗାରଗୋଟି ଦେବତା—
Rudragaṇa — 1. The eleven Deities called the group of Rudra Gods. ୨। ଶିବଙ୍କ ପାରିଷଦଗଣ—2. The retinue of Śiba. [ ଦ୍ର—ଏମାନଙ୍କ ସଂଖ୍ୟା ୧ କୋଟି ଓ କାହା କାହା ମତରେ ୩୨ କୋଟି ଅଟେ । ଏମାନେ ଜଟାଧାରୀ, ଏମାନଙ୍କ ମସ୍ତକରେ ଅର୍ଦ୍ଧଚନ୍ଦ୍ର ଥାଏ; ଏମାନେ ଖୁବ୍ ବଳବାନ୍ ଓ ଯୋଗୀମାନଙ୍କ ଯୋଗସାଧନର ବିଘ୍ନ ଦୂର କରନ୍ତି ହ୍ରି. ଶ ]

ରୁଦ୍ରଗର୍ଭ—ସଂ. ବି—ଅଗ୍ନି ( ହ୍ରି. ଶ. )—
Rudragarbha — Fire.

ରୁଦ୍ରଗାଡ଼ି—ଦେ. ବି—ରୁଦ୍ର ଶଗଡ଼ ( ଦେଖ )
Rudra gāṛdi — Rudra śagaṛda ( See )

ରୁଦ୍ର ଚଣ୍ଡୀ—ସଂ. ବି—ଦେବୀ ଚଣ୍ଡୀଙ୍କର ମୂର୍ତ୍ତି ବିଶେଷ—
Rudra chaṇḍi — Goddess Chaṇṭi.
(ରୁଦ୍ରଭୈରବୀ—ଅନ୍ୟରୂପ) ଦେ. ବି. ସ୍ତ୍ରୀ—ଅତି କୋପନ ସ୍ୱଭାବା ସ୍ତ୍ରୀ—A termagant woman.

ରୁଦ୍ରଚରଣ —ଦେ. ବି. ପୁଂ—ଲୋକଙ୍କ ନାମ—
Rudra charaṇa — A name given to wales.

ରୁଦ୍ରଜ—ସଂ. ବି ( ରୁଦ୍ର+ଜନ୍ ଧାତୁ+କର୍ତ୍ତୃ. ଅ )—୧ ।
Rudraja — କାର୍ତ୍ତିକେୟ; ଗଣେଶ—1. Sons of Śiba. ୨। ପାରଦ ( ଏହା ଶିବଙ୍କ ବୀର୍ଯ୍ୟରୁ ଉତ୍ପନ୍ନ ବୋଲି ପୁରାଣ ପ୍ରସିଦ୍ଧ )—2. Mercury; quick slver.

ରୁଦ୍ରଜଟା—ସଂ. ବି ( ବୈଦ୍ୟକ ) ( ବହୁବ୍ରୀହି ରୁଦ୍ର=ମହାଦେବଙ୍କ ଜଟା ପରି ଜଟା ଯାହାର )—୧ । ଲତାର
Rudrajaṭā — ଏହାର ଅନ୍ୟ ସଂ. ନାମ—ରୌଦ୍ରୀ, ଜଟା କାମକ ପିଙ୍ଗଳ ବର୍ତ୍ତି ଜଟା, ସୌମ୍ୟା, ସୁଗନ୍ଧା, ସୁବହା, ଭୂଇଁ ବଗିଷ୍ଠ ଲତା—1. ଘନା, ଇଶ୍ୱରୀ, ସୁଦବା, ସୁଗନ୍ଧପତ୍ରା, Uraria; Pica Aristobchia Indica ସୁରଭି, ଶିବାହ୍ୱା, ପତ୍ରବଲ୍ଲୀ, (Kirtikar ). ନେତ୍ରପୁଷ୍କର, ମହାଜଟା, ଜଟା ରୁଦ୍ରା, [ ଦ୍ର ଅର୍କମୂଳ, ସୁନନ୍ଦା, ରୁଦ୍ରା, ରୁଦ୍ରାଣୀ, —ଏହା ଶିମ୍ବାଦି ବର୍ଗର ଜଟାବଲ୍ଲୀ, ରୁଦ୍ରଲତା ୩।୪ ହାତ ଡେଙ୍ଗା ଛୋଟ ଈସବମୂଳ ଇସରମୂଲ, ଇସରୌଲ ସିଧା ପାର୍ବ୍ୟାଯୁଃ କ୍ଷୁପବିଶେଷ; ପତ୍ର ୫ ଠାରୁ ୯ ପର୍ଯ୍ୟନ୍ତ ଯୁକ୍ତ । ପତ୍ର ସରୁ ସରୁ ଓ ମୟୂର ଶିଖାର ପକ୍ଷପରି; ଫୁଲ ଛୋଟ ଛୋଟ ଓ ନାଲି; ବର୍ଷାକାଳ ଓ ଶୀତକାଳରେ ଫୁଟେ । ଫଳ ନାଲିଆ ଓ ଜଟାପରି; ଛୁଇଁରେ ୩ ଠାରୁ ୬ଟା ପର୍ଯ୍ୟନ୍ତ ଗଣ୍ଠି ଥାଏ । ଫୁଲର ଢେଙ୍କି ବଙ୍କେଇ ହୋଇ ଏହି ଗଣ୍ଠିମାନଙ୍କୁ ଘୋଡ଼ି ରଖିଥାଏ ପ୍ରାୟ ପାଣିକୂଳରେ ଓଦାଳିଆରେ ଏ ଗଛ ଜନ୍ମେ । ଗରଗଡ଼ ଗଛ ମଧ୍ୟ ଏହି ଶ୍ରେଣୀର । ଏହାର ମଞ୍ଜି ଖଡ଼ା ମଞ୍ଜି ପରି । ବୈଦ୍ୟକମତରେ ରୁଦ୍ରଜଟା କଟୁ ଓ ଏହା ଶ୍ୱାସ, କାଶ, ହୃଦ୍‌ରୋଗ, ଭୂତ ପ୍ରେତ ବାଧା ଦୂର କରେ । ] ୨। ଶତପୁ; ଶତପୁଷ୍ପା ( ହ୍ରି. ଶ )—2. Dill seed.

ରୁଦ୍ରତାଳ—ସଂ. ବି—୧। ଶିବଙ୍କ ତାଣ୍ଡବ ନୃତ୍ୟର ତାଳ—1. The
Rudratāla — musical measure accompanying the dance of Śiba. ୨। ୧୬ ମାତ୍ରାଯୁକ୍ତ ମୃଦଙ୍ଗର ତାଳ ବିଶେଷ—2. Name of a time or cadence of the Mṛudaṅga drum.

ରୁଦ୍ରତେଜଃ—ସଂ.ବି (ରୁଦ୍ରତେଜସ୍; ୬ଷ୍ଠୀ ତତ୍)—କାର୍ତ୍ତିକେୟ (ହ୍ରି. ଶ)
Rudratejaḥ — A name of Kārttikeya.

ରୁଦ୍ରନାରାୟଣ—ସଂ. ବି—ଶିବ ଓ ହରି—Śiba and Bishṇu.
Rudranārāyaṇa — ଦେ. ବି. ପୁଂ—ଲୋକଙ୍କ ନାମ—A name given to males.

ରୁଦ୍ରପତି—ସଂ. ବି (୬ଷ୍ଠୀ ତତ୍)—ଶିବ (ହ୍ରି. ଶ)—
Rudrapati — Śiba.

**ରୁଦ୍ରପତ୍ନୀ**—ସଂ. ବି. ସ୍ତ୍ରୀ—୧ । ପାର୍ବତୀ; ରୁଦ୍ରାଣୀ—1. Goddess
Rudrapatni Pārbati ୨ । ଅତସୀ; ତିସି (ହି. ଶ.)
(ରୁଦ୍ରସୁନ୍ଦରୀ—ଅନ୍ୟରୂପ) 2 Linseed.

**ରୁଦ୍ରପ୍ରମୋକ୍ଷ**—ସ. ବି—ତ୍ରିପୁରାସୁର ଉପରକୁ ଯେଉଁ ସ୍ଥାନରୁ ଶିବ ବାଣ
Rudrapramoksha ଛାଡ଼ିଥିବା ପୁରାଣରେ କଥିତ (ହି. ଶ)
Name of the place from which Siba threw his darts on Tripurāsura.

**ରୁଦ୍ରପ୍ରୟାଗ**—ସ. ବି (ନାମ)—ହିମାଳୟସ୍ଥ ତୀର୍ଥସ୍ଥାନବିଶେଷ—
Rudra prayāga A place of Hindu pilgrimage in the Himalayas [ବି—ଏହା ଶ୍ରୀ କେଦାରନାଥ ନିକଟ ଦେଇ ପ୍ରବାହିତା ମନ୍ଦାକିନୀ ଓ ଅଳକାନନ୍ଦାର ସଙ୍ଗମସ୍ଥଳ, ହରିଦ୍ୱାରଠୁ ୯୬ ମାଇଲ୍ ଦୂରରେ ଅବସ୍ଥିତ—ମନମୋହନ ତୀର୍ଥଦର୍ଶନ । ଏହା ଗଡ଼ୱାଲ୍ ଜିଲ୍ଲାରେ ଅବସ୍ଥିତ—ହି. ଶ]

**ରୁଦ୍ରପ୍ରିୟା**—ସ. ବି. ସ୍ତ୍ରୀ—୧ । ପାର୍ବତୀ—1. Goddess Pārbati
Rudrapriyā ୨ । ହରିତକୀ; ହରିଡ଼ା—2 Myrobalan.

**ରୁଦ୍ରବଟ**—ସଂ ବି—ମହାଭାରତୋକ୍ତ ପ୍ରାଚୀନ ତୀର୍ଥବିଶେଷ—
Rudrabaṭa Name of an ancient holy place.

**ରୁଦ୍ରବାନ୍**—ସ. ବିଣ. ପୁଂ [ରୁଦ୍ର+ବତ୍; ୧ମା. ୧ବ]—ରୁଦ୍ରଗଣଯୁକ୍ତ—
Rudrabān Attended by the Rudras
ସଂ. ବି ପୁଂ—୧ । ସୋମ—1. Moon. ୨ । ଅଗ୍ନି—2. Fire. ୩ । ଇନ୍ଦ୍ର—3. Indra.

**ରୁଦ୍ରବୀଣା**—ସଂ. ବି—ପ୍ରାଚୀନକାଳର ଏକପ୍ରକାର ବୀଣା—
Rudrabiṇā A kind of ancient harp.

**ରୁଦ୍ରଭଟ୍ଟ**—ଦେ. ବି—ସଂସ୍କୃତ କାବ୍ୟାଳଙ୍କାର ଗ୍ରନ୍ଥ ରଚୟିତା ପ୍ରସିଦ୍ଧ
Rudrabhatta ସାହିତ୍ୟାଚାର୍ଯ୍ୟ (ହି, ଶ)—Name of a very learned author on figure of speech in Sanskrit.

**ରୁଦ୍ରଭାବ**—ସ. ବି—୧ । ଶିବଙ୍କର ରୁଦ୍ରମୂର୍ତ୍ତିର ପ୍ରଚଣ୍ଡ ଭାବ—
Rudrabhāba 1. The terrific state of Siba in his destroying form ୨ । ଉଗ୍ରତା—2. Terrible condition.

**ରୁଦ୍ରଭୂ**—ସଂ. ବି—ଶ୍ମଶାନ (ହି. ଶ)—
Rudrabhū Cremation ground.
(ରୁଦ୍ରଭୂମି—ଅନ୍ୟରୂପ)

**ରୁଦ୍ରମୂର୍ତ୍ତି**—ସଂ. ବି (କର୍ମଧା)—୧ । ଭୟଙ୍କର ରୂପ—1. Terrible
Rūdramūrtti form ୨ । ମହାଦେବଙ୍କର ଅଗ୍ନିମୂର୍ତ୍ତି—2. One of the eight forms of Siba. ବିଣ—(ବହୁବ୍ରୀହି)—୧ । ଭୟଙ୍କର ଆକୃତିବିଶିଷ୍ଟ—1. Having a terrific form. ୨ । କ୍ରୋଧଦ୍ୱାରା ଉଗ୍ରମୂର୍ତ୍ତି—2. Assuming a terrible appearance through rage.

**ରୁଦ୍ର ରସ**—ସଂ. ବି—ସାହିତ୍ୟରେ ଭୟାନକ ରସ—
Rudra rasa The sentiment of terror in literature.

**ରୁଦ୍ରଯାମଳ**—ସଂ. ବି—ଭୈରବ ଓ ଭୈରବୀଙ୍କ ସମ୍ବାଦ ବିଶିଷ୍ଟ ତାନ୍ତ୍ରିକ
Rudrajāmala ଗ୍ରନ୍ଥ ବିଶେଷ—Name of a Tantric Areatise. [ବି—ଏହି ଗ୍ରନ୍ଥରେ ବଗଳାମୁଖୀ ସ୍ତୋତ୍ର ଅଛି ।]

**ରୁଦ୍ରରୋଦନ**—ସଂ. ବି—ସ୍ୱର୍ଣ୍ଣ; ସୁନା (ହି. ଶ)
Rudrarodana Gold.

**ରୁଦ୍ରରୋମା**—ସଂ. ବି—କାର୍ତ୍ତିକେୟଙ୍କର ଏକ ମାତୃକା (ହି. ଶ)—
Rudraromā Name of one of the 6 foster-mothers of Kārttikeya.

**ରୁଦ୍ରଲତା**—ସଂ. ବି—ରୁଦ୍ରଜଟା (ଦେଖ)
Rudralatā Rudrajaṭā (See)

**ରୁଦ୍ରଲୋକ**—ସଂ. ବି—ରୁଦ୍ରମାନଙ୍କ ସହିତ ଶିବଙ୍କ ଅଧ୍ୟୁଷିତ ଲୋକ
Rudraloka (ହି. ଶ)—The sphere in which Siba [ରୁଦ୍ରସ୍ୱର୍ଗ—ଅନ୍ୟରୂପ] lives with his retinue.

**ରୁଦ୍ରଶଗଡ଼**—ଦେ. ବି—ଯେଉଁ ଶଗଡ଼ ଉପରେ ଧାନ ଆଦି ବୋହିବା
Rudraśagarḍa ପାଇଁ ରୁଦ୍ର ରଖାଯାଇଥାଏ—A cart ମାଲବହା ଗରୁବଗାଡ଼ି containing a receptacle for माल ढोनेवाली गाडि carrying small things.

**ରୁଦ୍ରସାବର୍ଣ୍ଣି**—ସ. ବି—ଦ୍ୱାଦଶ ମନୁ—The twelfth Manu.
Rudrasābarṇṇi [ଭି—ରୁଦ୍ରସାବର୍ଣ୍ଣି ଯେ ଦ୍ୱାଦଶ, ଜନ୍ମିବେ [ରୁଦ୍ରପୁତ୍ର—ଅନ୍ୟରୂପ] ନାରାୟଣ ଅଂଶେ । ଜଗନ୍ନାଥ ଭାଗବତ । ]

**ରୁଦ୍ରସୂ**—ସ. ବି. ସ୍ତ୍ରୀ (ରୁଦ୍ର+ସୂ ଧାତୁ+କର୍ତ୍ତୃ. କ୍ୱିପ୍)—ଯେଉଁ ସ୍ତ୍ରୀ ୧୧ଟି
Rudrasū ସନ୍ତାନ ଜନ୍ମ କରିଅଛନ୍ତି—A mother of eleven [ରୁଦ୍ରପ୍ରସୂ—ଅନ୍ୟରୂପ] children

**ରୁଦ୍ରା**—ସଂ. ବି (ଦ୍ୱିବିଧ୍ୟକ)—୧ । ରୁଦ୍ରଜଟା (ଦେଖ)—1. Rudra
Rudrā jaṭā. (See) ୨ । ଚୁଲ୍କିଚଲି; ମୁକ୍ତାବର୍ଷୀ । ନାମକ ବନଶାକ ବିଶେଷ—2. Acalytha Indica. ୩ । ନଳିକା ନାମକ ଗନ୍ଧଦ୍ରବ୍ୟ (ହି ଶ)—3. A kind of medicinal scent.

**ରୁଦ୍ରାକ୍ରୀଡ଼(ଡ଼ା)**—ସ. ବି (୭ମୀ ତତ୍; ରୁଦ୍ର+ଆକ୍ରୀଡ଼)—ଶ୍ମଶାନ—
Rudrākrirḍa(rḍā) Cremation ground.

**ରୁଦ୍ରାକ୍ଷ**—ସ. ବି (ରୁଦ୍ର=ମହାଦେବ+ଅକ୍ଷି=ରୁଦ୍ରାକ୍ଷ, ୭ମୀ ତତ୍)—
Rudrāksha ବୃହତ୍ ତରୁ ବିଶେଷ, ଯାହାର ଅର୍ବୁଦମୟ ଶୁଷ୍କବୀଜ ଦ୍ୱାରା ଜପମାଳା ପ୍ରସ୍ତୁତ ହୁଏ—A big wild tree the dry seeds of which are made into beads; Elaeocarpus Ganitrus. [ବି—ଏହାର ଅନ୍ୟ ସ. ନାମ ତୃଣମେଧ, ଅମର, ରୁଦ୍ରାଣୀ, ପୁଷ୍ପଚାମର, ଶିବାକ୍ଷ, ସର୍ବାକ୍ଷ, ଭୂତନାଶନ, ପାବନ, ନୀଳକଣ୍ଠାକ୍ଷ୍ୟ ହରାକ୍ଷ, ଶିବପ୍ରିୟ । ଏ ବୃକ୍ଷ ନେପାଳ, ବଙ୍ଗ, ଆସାମ ଓ ଦକ୍ଷିଣଭାରତରେ ଜନ୍ମେ । ଏଥିର ପତ୍ର ୬।୮ ଅଙ୍ଗୁଳ ଲମ୍ବ, ୨।୩ ଅଙ୍ଗୁଳ ଚୌଡ଼ା ଓ ପତ୍ରର ଧାର ଦନ୍ତୁର । କୋମଳ ନବପତ୍ର ଉପରେ ଏକପ୍ରକାର କୋମଳ ଲୋମ ହୁଏ ।

ଶୀତଦେଶରେ ଏଥିର ଫୁଲ ଫୁଟେ ଓ ବସନ୍ତ ଋତୁରେ ଫଳ ଫଳେ । ଏଥିର ଫଳ ମଧ୍ୟରେ ପାଞ୍ଚୋଟ ଚରୁତା ଥାଏ । ପ୍ରତି ଚରୁତାରେ ଗୋଟିଏ ମଞ୍ଜି ଥାଏ । ମଞ୍ଜି ମଟରଠାରୁ ଅଁଳାକୋଳି ଆକାର ପର୍ଯ୍ୟନ୍ତ ଭିନ୍ନ ଭିନ୍ନ ଆକାରର ହୁଏ । ଏହି ମଞ୍ଜିର ମାଳାଦ୍ୱାରା ଶିବଙ୍କ ଓ ଦୁର୍ଗାଙ୍କ ମନ୍ତ୍ର ଜପ କରାଯାଏ । ଏହି ମଞ୍ଜି ଆକାରରେ ଗୋଲ ଓ ଏଥିର ବ୍ୟାସ ୧ ଇଞ୍ଚ୍‌ଠାରୁ ½ ଇଞ୍ଚ୍ ହୁଏ । ଏହି ମଞ୍ଜିର ଦେହ କେତେ କୋଳର ଗାତ୍ରପରି ଅମସୃଣ । ଯେଉଁ ବଡ଼ ରୁଦ୍ରାକ୍ଷ ମଞ୍ଜିର ଗୋଟିଏ ମୁଖ ଥାଏ ତାହାକୁ ଏକମୁଖୀ ରୁଦ୍ରାକ୍ଷ ବୋଲଯାଏ ଓ ଏହି ଶ୍ରେଣୀର ଆଉ ଏକପ୍ରକାର ଫଳକୁ ଭଦ୍ରାକ୍ଷ ବୋଲଯାଏ । ଏରୁଦ୍ରାକ୍ଷକୁ ଦେବପୂଜକମାନେ ପସନ୍ଦ କରନ୍ତି ନାହିଁ । ପୁରାଣରେ କଥିତ ଅଛି ଯେ, ତ୍ରିପୁରାସୁରକୁ ବଧ କରିବା ପରେ ଶିବଙ୍କ ଆଖିରୁ ପଡିତ ଅଶ୍ରୁବିନ୍ଦୁରୁ ଏହି ବୃକ୍ଷର ଓ ଫଳର ଉତ୍ପତ୍ତି ହୋଇଥିଲା । ଏହି ମଞ୍ଜିକୁ ଗୋଲ-ମରିଚ ସଙ୍ଗେ ବାଟି ପିଇଲେ ବସନ୍ତ ରୋଗର ଆକ୍ରମଣର ଭୟ ରହେ ନାହିଁ । ବୈଦ୍ୟକ ମତରେ ଏହା ଶୀତଳ, ବଳକର, ଓଜଃପ୍ରଦ, କୃମିନାଶକ ଓ କାଶର ଉପଶମକାରୀ ଓ ପ୍ରସୁପ୍ତିର ସ୍ଥିତକର ।]

**ରୁଦ୍ରାକ୍ଷ ମାଳା**—ସଂ. ବି—ରୁଦ୍ରାକ୍ଷ ମଞ୍ଜି ଗୁମ୍ଫିତ ଜପମାଳା—String of Rudrāksha mālā beads made of Rudrāksha seeds. (ରୁଦ୍ରାକ୍ଷମାଳ—ଦେ. ରୂପ)

**ରୁଦ୍ରାଣୀ**—ସଂ. ବିଣ. ସ୍ତ୍ରୀ (ରୁଦ୍ର+ସ୍ତ୍ରୀ. ଆନୀ)—୧। ଶିବପତ୍ନୀ; ଦୁର୍ଗା—Rudrāṇi 1. Durgā. [ଦ୍ର—ଏକାଦଶ ରୁଦ୍ରାଣୀଙ୍କର ନାମ ୧ ଧୀ, ୨ ଧୃତି, ୩ ଉଶନା, ୪ ଉମା, ୫-୬ ନିୟୁ-ସ୍ପର୍ଶି, ୭ ଇଳା, ୮ ଅମ୍ବିକା, ୯ ଇରାବତୀ, ୧୦ ସ୍ୱଧା, ୧୧, ଦୀକ୍ଷା ।] ୨ । ରୁଦ୍ରଜଟା (ଦେଖ)—2. Rudra jaṭā (See) ୩ । ମେଘ ରାଗର ପୁତ୍ରବଧୂ, ସଙ୍କର ରାଗିଣୀ ବିଶେଷ—3. Name of a secondary tune. ୪ । ଏକାଦଶବର୍ଷୀୟା କନ୍ୟା—4. A girl 11 years old (Apte).

**ରୁଦ୍ରାବତାର**—ସଂ. ବି—ରୁଦ୍ରଙ୍କ ଅଂଶରେ ଜାତ ମହାବୀର ହନୁମାନ୍—Rudrābatāra The mythological monkey-hero said to be born with the qualities of Rudra.

**ରୁଦ୍ରାବାସ**—ସଂ. ବି. (ଷଷ୍ଠୀ ତତ୍)—୧ । କୈଳାସଗିରି—1. The Rudrābāsa Kailāsa mountain north of the Himalayas. (ଏହା ପୁରାଣମତେ ମହାଦେବଙ୍କ ବାସ-ସ୍ଥାନ ।) ୨ । ଶ୍ମଶାନ—2. Cremation ground. ୩ । ଶିବ କ୍ଷେତ୍ର—3. A holy place where Śiba is said to reside. ୪ । କାଶୀ କ୍ଷେତ୍ର—4. The holy city of Benares.

**ରୁଦ୍ରାୟଣୀ**—ଗ୍ରା. ବି—ରୁଦ୍ରାଣୀ (ଦେଖ) Rudrāyaṇi Rudrāṇi (See)

ରୁଦ୍ରାଣୀ **ରୁଦ୍ରାଣୀ** [ଦ୍ର—ଆମ୍ଭେ ରୁଦ୍ର ଅବତାର ତୁମ୍ଭେ ରୁଦ୍ରାୟଣୀ ପ୍ରାଣୀ. ରହସ୍ୟମଞ୍ଜରୀ ।]

**ରୁଦ୍ରାରି**—ସଂ. ବି (ଷଷ୍ଠୀ ତତ୍)—କାମଦେବ; କନ୍ଦର୍ପ—Rudrāri God Cupid. [ଦ୍ର—ଏହାଙ୍କୁ ଶିବ ଦହନ କରିଥିଲେ ।]

**ରୁଦ୍ରିୟ**—ସଂ. ବିଣ (ରୁଦ୍ର+ଇୟ; ନିପାତନ)—୧ । ରୁଦ୍ର ସମ୍ବନ୍ଧୀୟ Rudriya (ହି ଶ)—1. Relating or belonging to; Rudra (Apte). ୨ । ଭୟଙ୍କର—2. Terrible dreadful (Apte). ୩ । (ବୈଦିକ) ଆନନ୍ଦଦାୟକ (ହି. ଶ)—3 Pleasant; giving pleasure. (Apte). ସଂ. ବି (ବୈଦିକ)—ଆନନ୍ଦ—Pleasure; delight (Apte).

**ରୁଦ୍ରୀ**—ସଂ. ବି (ରୁଦ୍ର+ଈ)—୧ । ରୁଦ୍ରବୀଣା (ହି. ଶବ୍ଦସାଗର)—Rudri 1. A kind of ancient harp. ୨ । ବେଦର ଅଘମର୍ଷଣ ସୂକ୍ତର ୧୧ ଥର ଆବୃତ୍ତି (ହି. ଶବ୍ଦସାଗର)—2. Recitation of a certain formula of the Beda 11 times.

**ରୁଧ୍ (ଧାତୁ)**—ସ—୧ । ରୋଧ କରିବା; ଅଟକାଇବା—1. To rest-Rudh (root) rain; to check. ୨ । ବାଧା ଦେବା—2. To obstruct; to hinder. ୩ । ବନ୍ଦୀକରିବା—3. To imprison; to shut up; to confine. ୪ । ଆଚ୍ଛାଦନ କରିବା; ଆବରଣ କରିବା; ଘୋଡ଼ାଇବା—4. To cover; to overcloud. ୫ । ଟେକି ଧରିବା; ପତନରୁ ରକ୍ଷା କରିବା—5. To hold up; to sustain from falling (Apte). ୬ । ଘେରିବା—6. To sorround, to hem in. ୭ । ପୀଡ଼ା ଦେବା—7. To turment, to afflict (Apte). [ମକ୍ସମୂଲର୍ ଲିଖନ୍ତି କହନ୍ତି ଯେ ସମ୍ଭବତଃ ପ୍ରାଚୀନ କାଳରେ ଏ ଧାତୁର ଅର୍ଥ ଥିଲା ରକ୍ତବର୍ଣ୍ଣ ହେବା—To be red. ]

**ରୁଧିର**—ସଂ. ବି (ରୁଧ୍ ଧାତୁ+କର୍ତ୍ତୃ. ଇର)—୧ । ରକ୍ତ; ଶୋଣିତ—Rudhira 1. Blood. ୨ । କୁଙ୍କୁମ—2. Saffron. ୩ । ମଙ୍ଗଳ ଗ୍ରହ—3. The planet Mars. ୪ । ମଣି ବିଶେଷ; ପ୍ରବାଳ—4. Coral. ୫ । ରୁଧିରାଖ୍ୟ (ଦେଖ) 5 Rudhirākhya (See) ୬ । ରକ୍ତବର୍ଣ୍ଣ—6. Red colour. ବିଣ—ରକ୍ତ ବର୍ଣ୍ଣ ବିଶିଷ୍ଟ; ନାଲିଆ—Red.

**ରୁଧିର ଗୁଳ୍ମ**—ସଂ. ବି—ସ୍ତ୍ରୀରୋଗ ବିଶେଷ—Rudhira gulma Name of a female disease. [ଦ୍ର—ଏଥିରେ ପେଟରେ ଶୂଳ ଓ ଦାହ ହୁଏ ଏବଂ ପେଟ ମଧ୍ୟରେ ଗୋଟିଏ ଗୋଲା ବୁଲିଲା ପରି ଜଣା ପଡ଼େ । ହି. ଶ]

**ରୁଧିରଧାରା**—ସଂ. ବି (ଷଷ୍ଠୀ ତତ୍; ରୁଧିର+ଧାରା)—ଧାରାକାରରେ Rudhiradhārā ପଡୁଥିବା ରକ୍ତ—Flow of blood; copious discharge of blood.

**ରୁଧିର ନଦୀ**—ସଂ. ବି—ନଦୀ ରୂପେ ବହୁଥିବା ରୁଧିର—
Rudhira nadi A river of blood.

**ରୁଧିରପାୟୀ**—ସଂ. ବିଣ. ପୁଂ (ରୁଧିର+ପା ଧାତୁ+କର୍ତ୍ତୃ. ଇନ୍; ୧ମା.
Rudhirapāyi ୧ବ)—ଯେ ରକ୍ତ ପିଏ— Blood-drink-
(ରୁଧିରପାୟିନୀ—ସ୍ତ୍ରୀ) ing. ସଂ. ବି. ପୁଂ—ରାକ୍ଷସ—Demon.

**ରୁଧିର ପିତ୍ତ**—ସଂ. ବି—ରକ୍ତ ପିତ୍ତ ରୋଗ ( ଦେଖ )
Rudhira pitta Rakta pitta roga ( See )
(ରୁଧିରାମୟ—ଅନ୍ୟରୂପ)

**ରୁଧିର ପ୍ଲାବିତ**—ସଂ. ବିଣ (୩ୟା ତତ୍)—ଅତିଶୟ ରକ୍ତାକ୍ତ—
Rudhira plābita Smeared with blood; steeped in blood.

**ରୁଧିର ମଣି**—ସଂ. ବି—ପ୍ରବାଳ; ପୋହଳା—
Rudhira maṇi Coral.

**ରୁଧିର ସ୍ରୋତଃ**—ସଂ. ବି—ସ୍ରୋତ ଆକାରରେ ପ୍ରବାହିତ ରକ୍ତ—
Rudhira srotaḥ Blood flowing in currents.

**ରୁଧିରାକ୍ତ**—ସଂ. ବିଣ. (୩ୟା ତତ୍)—ରକ୍ତ ଜର୍ଜରିତ, ରକ୍ତାକ୍ତ; ରକ୍ତ
Rudhirākta ବୋଳା—Smeared with blood; blood-soiled; blood-stained.

**ରୁଧିରାକ୍ତ କଳେବର**—ସଂ. ବି. ( କର୍ମଧା )—ରକ୍ତାକ୍ତ ଶରୀର—
Rudhirākta kaḷebara Body smeared with blood. ସଂ. ବିଣ. ପୁଂ (ବହୁବ୍ରୀହି)—
ରୁଧିରାକ୍ତ ଦେହ } ଅନ୍ୟରୂପ ଯାହାର ଶରୀରରେ ରକ୍ତ ବୋଳା
ରୁଧିରାକ୍ତ ଶରୀର }
(ରୁଧିରାକ୍ତ କଳେବରା—ସ୍ତ୍ରୀ. ବିଣ) ହୋଇଥାଏ—Having the body smeared with blood.

**ରୁଧିରାଖ୍ୟ**—ସଂ. ବି—ରକ୍ତବର୍ଣ୍ଣ ମଣି ବିଶେଷ—A blood-colour-
Rudhirākhya ed gem. [ଦ୍ର—ଏହାର ବର୍ଣ୍ଣ ମଧ୍ୟସ୍ଥଳରେ ଚିକାକ୍ ଧଳା ଓ ବାହାରେ କାଳା ପରି, ଏହା ଧାରଣକାରୀ ସୁଖୀ ହୁଏ (ବୃ. ଶ.) ।]

**ରୁଧିରାଶନ**—ସଂ. ବିଣ. ପୁଂ (ବହୁବ୍ରୀହି; ରୁଧିର+ଅଶନ)—ଯେ ରକ୍ତ
Rudhirāśana ଖାଏ; ରକ୍ତ ପାନକାରୀ—Blood-eating;
ରୁଧିରାଶନା } ସ୍ତ୍ରୀ subsisting on blood. ସଂ. ବି—୧ ।
ରୁଧିରାଶିନୀ } ରାକ୍ଷସ—1. Demon. ୨ । (ନାମ) ରାମଚନ୍ଦ୍ରଙ୍କ
(ରୁଧିରାଶୀ—ଅନ୍ୟ ବିଣ ରୂପ) ଦ୍ୱାରା ହତ ଖର ରାକ୍ଷସର ସେନାପତି—
2. Name of a demon killed by Rāma-chandra.

**ରୁନ୍ଦ୍**—ବୈଦେ ବି (ଇଂ. ରାଉଣ୍ଡ୍)—ପ୍ରହରୀମାନଙ୍କ ପାଳି ଅନୁସାରେ
Rund ଗୃହଅଡ଼େ ବୁଲି ପହରା ଦେବା—A round of
রোঁদ্ watchmen.
रौंद गश्त
[ ରୁନ୍ଦ୍‌ଗସ୍ତ—ଅନ୍ୟରୂପ ]

**ରୁନ୍ଦ୍ କରିବା**—ଦେ. କ୍ରି—ଗୃହଅଡ଼େ ବୁଲି ଗସ୍ତ କରିବା—
Rund karibā To take a round (said of
রোঁদ দেওয়া watchmen.)
रौंद देना, चक्कर मारना
(ରୁନ୍ଦ୍ ଦେବା; ରୁନ୍ଦ୍ ମାରିବା—ଅନ୍ୟରୂପ)

**ରୁନ୍ଧା**—ଦେ. ବି (ସଂ. ରୁଧ୍ ଧାତୁ)—ପ୍ରତିରୋଧ—
Rundhā Obstruction.
বোধ
रुंधना

**ରୁନ୍ଧା[ନ୍ଧେ]ଇବା**—ଦେ କ୍ରି (ସଂ. ରୁଧ ଧାତୁ)—ରୁନ୍ଧିବା କ୍ରିୟାର ଣିଜନ୍ତ
Rundhā(ndhe)ibā ରୂପ—Causative form of
বোধকবান Rundhibā.
रुंधवाना

**ରୁନ୍ଧାରୁନ୍ଧି**—ଦେ. ବି—ବହୁଲୋକ ଏକ ସ୍ଥଳରେ ଖୁନ୍ଦି ହୋଇ ପଶିବା—
Rundhārundhi Pressure of many people being
ঠেলাঠেলি, জাকাজাকি huddled up together within a small space
ठसाठस

**ରୁନ୍ଧିବା**—ଦେ. କ୍ରି (ସଂ. ରୁଧ ଧାତୁ)—୧ । ନଜରବନ୍ଦୀ; ଅବରୋଧ
Rundhibā କରିବା; ରୁଦ୍ଧ କରିବା—1. To confine; to
বোধকবা hold up. [ଦ୍ର—ତପ କରି ବସିଲେ ନାଶାସଙ୍କୁ ରୁନ୍ଧି
रुंधना କୃଷ୍ଣସିଂହ. ମହାଭାରତ ବନ । ] ୨ । ଅଟକାଇବା—
(ରୁନ୍ଧା ଯି[ହେ]ବା—କର୍ମବାଚ୍ୟରୂପ) 2. To restrain. [ଦ୍ର—
ଦିବ୍ୟ କାଣ୍ଡ ବନ୍ଧ ତା ରୁନ୍ଧିଲେ ଅରଜୁନ । କୃଷ୍ଣସିଂହ ମହାଭାରତ ଆଦି । ] ୩ । ରୁଦ୍ଧ ହେବା—3. To be confined. [ଦ୍ର—କଫ ବାତ କଣ୍ଠଗତେ ଯେବେ ରୁନ୍ଧିବ; ଶ୍ୟାମ ଭୁଜସୀମଞ୍ଜରୀ,ବଦନେ ଦେବ ମୋହର,ଶ୍ୟାମ ନାମ ଯହୁ କହ, କର୍ଣ୍ଣିରେ ଶୁଣାଉଥିବ । ପ୍ରାଚୀନ. ସଙ୍ଗୀତ । ]

**ରୁଦ୍ଧ ହେବା**—ଦେ. କ୍ରି (ସଂ. ରୁଧ୍ ଧାତୁ)—୧ । ଅବରୁଦ୍ଧ ହେବା—
Rundhi hebā 1. To be confined. ୨ । ଅଟକିବା—
বন্দহওয়া बन्दहोना 2. To be restrained or stopped.
୩ । ଆକ୍ରାନ୍ତ ହେବା—3. To be overpowered or overcome with. (ଯଥା—ଶରଦ ଯୋଗୁଁ ମୋ ନାକପୁଡ଼ା ରୁଦ୍ଧ ହୋଇଯାଇଛି; କଫରେ ମୋ ଗଳା ରୁଦ୍ଧ ହୋଇଯାଇଅଛି । ଆମ ନୂଆ ବୋହୂ ସବୁବେଳେ ହାଣ୍ଡିଶାଳରେ ରୁଦ୍ଧ ହୋଇଥାଆନ୍ତି ।)

**ରୁପ(ଧାତୁ)**—ସଂ—୧ । ରୂପଯୁକ୍ତ କରିବା—1. To give a
Rup (root) form. ୨ । ଗୋଳମାଳ କରିଦେବା; ଘାବରେଇ ଦେବା—2. To confound; to confuse; to disturb (Apte)

**ରୁପ**—ଗ୍ରା. ବି (ସଂ. ରୂପ)—୧ । ରୂପ (ଦେଖ)—1. Rūpa (See)
Rupa ୨ । ଚେହେରା—2. Countenance. ୩ ।
রূপ रूप ଚିତ୍ର; ଛବି—3. Drawing; picture. ୪ ।
ପ୍ରକାର—4. Manner. ପ୍ରାଦେ (ସମ୍ବଲପୁର)—୧। ଶୁଆ —1. Parrot. [ ଦ୍ର—ରୁପ ବା ଶୁଆ ତିନପ୍ରକାରର ୧ । ଡହିଁଲୁଅଣାଇ ରୁପ—କୃଷ୍ଣଚଞ୍ଚୁଯୁକ୍ତ ୨। ମହ୍ଲ ରୁପ—ଈଷତ ହଳଦିଆ ଚଞ୍ଚୁଯୁକ୍ତ ୩ । ଟେଁକା ରୁପ—ଲାଲଚଞ୍ଚୁଯୁକ୍ତ । ] ପ୍ରାଦେ [ଭିତରକନିକା] ବି—ରୁପା—Silver.

ରୂପ ଅଙ୍କିବା—ଗ୍ରା. କ୍ରି [ସଂ.ରୂପ+ଅଙ୍କନ]—ଚିତ୍ର ଅଙ୍କିତ କରିବା—
Rupa ānkibā To draw a figure.
[ରୂପ କରିବା, ରୂପ ଗଢ଼ିବା —ଅନ୍ୟରୂପ]
রূপআঁকা रूपलिखना

ରୂପ କଥା - ଗ୍ରା. ବି [ସଂ. ରୂପ କଥା]—୧ । ଉପକଥା; କାହାଣୀ- Rupa kathā 1. Folk tale. ୨ । ଗଳ୍ପ—
রূপকথা कहानी 2. Tale, fable. ୩ । ନୈତିକଗଳ୍ପ—
3. A moral tale,

ରୂପ କରିବା—ଗ୍ରା. କ୍ରି—୧ । ରୂପ ଅଙ୍କିବା (ଦେଖ)—
Rupa karibā 1. Rupa ānkibā (See). ୨ । ରୂପ କାଢ଼ିବା (ଦେଖ)—Rupa kārdhibā (See).

ରୂପ କାଢ଼ିବା—ଗ୍ରା. କ୍ରି.—ଛବି ବାହାର କରିବା, ଭଙ୍ଗୀ ଦେଖାଇବା-
Rupa kārdhibā To cut a figure.
চেহেরা দেখান, রূপ দেখান रूप निकालना
[ରୂପ ଦେଖା(ଖେ)ଇବା; ରୂପ ବାହାର କରିବା —ଅନ୍ୟରୂପ]

ରୂପ ଦେଖା(ଖେ)ଇବା—ଗ୍ରା. କ୍ରି.—୧ । ଗୀତର ଭାବ ଅଭିନୟ କରିବା; ଅବଲମ୍ବ Rupa dekhā(khe)ibā କରିବା—To illustrate the
অবলম্ব করা रूप दिखाना meaning of a song by gestures while dancing.
୨ । ରୂପ କାଢ଼ିବା (ଦେଖ)—2. Rupa kārdhibā (see)

ରୂପବନ୍ତ—ଗ୍ରା. ବି. ପୁଂ—(ସଂ. ରୂପବତ୍)—୧ । ରୂପବାନ୍; ସୁନ୍ଦର—
Rupabanta রূপবন্ত रूपवन्त 1. Beautiful.
[ରୂପବନ୍ତୀ – ସ୍ତ୍ରୀ] [ରୂପବାନ୍; ରୂପ ବିଶିଷ୍ଟ — ମ ପୁଂ]
[ରୂପବତୀ, ରୂପ ବିଶିଷ୍ଟା—ସ ସ୍ତ୍ରୀ]

ରୂପୟା – ପ୍ରାଦେ. (ଭଞ୍ଜ ଭୂମି) ବି.— ଟଙ୍କା
Rupayā Rupee.

ରୂପ ରେଖ—ଗ୍ରା. ବି.—ରୂପରେଖ (ଦେଖ)—Rūpa rekha
Ruparekha নামগন্ধ रूपरेखा (See)

ରୂପା—ଦେ. ବି.—[ସଂ. ରୂପ୍ୟ]—୧ । ରଜତ; ରୌପ୍ୟ ଧାତୁ—
Rupā রূপো रूपा 1. Silver. ବିଣ.—ରୌପ୍ୟମୟ,
রুপোর रुपाका ରୌପ୍ୟ ନିର୍ମିତ—Made of silver.

ରୂପାଇ—ଦେ. ବି—ରୁପେଇ (ଦେଖ)
Rupāi Rupei (See)

ରୁପା(ପେ)ଇବା—ଦେ. କ୍ରି.—(ସଂ. ରୁହ ଧାତୁ ଣିଜନ୍ତ ରୋପି ଧାତୁ)—
Rupā(pe)ibā ଅନ୍ୟଦ୍ୱାରା ରୋପଣ କରାଇବା—To cause
রুয়ো,পান रोपवाना to be planted.

ରୁପା ଖଡୁ—ଦେ. ବି.—ରୌପ୍ୟ ନିର୍ମିତ ବଳୟ—Silver bangle.
Rupā khardu [ଦ୍ର—ରୌପ୍ୟ ନିର୍ମିତ ଅଳଙ୍କାର ବା
রুপোর খাড়ু ପଦାର୍ଥମାନଙ୍କ ନାମ ପୂର୍ବରେ ରୁପା ଶବ୍ଦ ଲଗା ହେଲେ
रुपाका कंगन ସେମାନ ରୌପ୍ୟ ନିର୍ମିତ ଥିବାର ସୂଚନା କରାଯାଏ ।
ଯଥା ରୁପାକାଠ, ରୁପା ଚୁଡ଼ି, ରୁପା ବାସନ, ରୁପା ପାନବଟା ଇତ୍ୟାଦି ।]

ରୁପା ଗହଣା—ଦେ. ବି.—ରୌପ୍ୟାଳଙ୍କାର—
Rupā gahanā Silver-ornament,
রূপোর গয়না रूपाका गहना

ରୁପା ଗିଲ୍(ଲି)ଟି—ଦେ. ବି.—(ସଂ. ରୂପ୍ୟ+ଇଂ. Gilt)—
Rupā gil(li)ti ବୈଜ୍ଞାନିକ ଉପାୟରେ ରୌପ୍ୟ ମିଶ୍ରିତ ଦ୍ରବକୁ
(ରୁପା ଗିଲ୍ଟି—ଅନ୍ୟରୂପ) – ଅନ୍ୟ ପଦାର୍ଥ ଉପରେ ଢାଳି ତାକୁ
রুপো গিল্টি ରଜତବର୍ଣ୍ଣ କରିବା ପ୍ରକ୍ରିୟା—Process of
रूपेकी गिलटि gilding a thing with silver.
[ରୁପା ଗିଲ୍ଟି -ଅନ୍ୟରୂପ] ବିଣ.—ଉପରେ ରୌପ୍ୟ ମିଶ୍ରିତ ଦ୍ରବ ଢାଳି ଯାଇ ରଜତାଭ କରା ଯାଇଥିବା(ବସ୍ତୁ)—
Silver-gilt (article).

ରୁପା(ପ୍ରୁ) ଛୁଆଣି—ଦେ. ବି ଓ ବିଣ-(ସଂ.ରୌପ୍ୟ+ଛାଦନ)—ଅନ୍ୟ ବସ୍ତୁ
Rupā chhā(chhu)āni ଉପରେ ରୁପାର ପତ୍ର ମଡ଼ାଇବା—
রূপো ছাওয়া रूपासे छावना (ढकना) Overlaying or plated with silver.

ରୁପା ପତର—ଦେ. ବି.—[ସଂ. ରୌପ୍ୟ+ପତ୍ର]—ରୌପ୍ୟର ପତଳା
Rupā patara ପତ୍ର—Leaf or thin plaing of silver;
রূপো পাত रूपाका पत्तर foil of silver. [ଦ୍ର—
[ରୁପା ପତ୍ର - ଅନ୍ୟରୂପ] ରୁପା ପତର ଅପେକ୍ଷା ରୁପା ପାତିଆ ଅଧିକ ପତଳା ।]

ରୁପା ପାତିଆ—ପ୍ରାଦେ. (ବାଲେଶ୍ୱର) ବି.—ଏକ ପ୍ରକାର ଲୁଣି ମାଛ—
Rupā pātiā A species of sea fish. ଦେ. ବି.—
୧ । ଜହ୍ଲା ମାଛ (ଦେଖ)—1. Jahlā (See)
୨ । ରୁପାର ଖୁବ୍ ପତଳା ପତର—2. A foil or very thin plate of silver.

ରୁପା ସ(ସା)ଜ—ଦେ. ବି.—ଏକ ସାର ରୁପାର ବାସନ ବା ଅଳଙ୍କାର
Rupā sa(sā)ja A set of silver utensils or
রুপোসাজ रूपाकीसाज ornaments.

ରୁପି—ଦେ ବି.—(ସଂ. ରୂକ୍ଷ) — ମୁଣ୍ଡରେ କେଶମୂଳରେ ଜମିବା ମଳ
Rupi ରୋଗ—Dandruf; scurf; seborrhoea; acne;
খুস্কী, মরামাস रुस्सी sabacea.

ରୁପିଆ – ବୈ—ଦେ. ବି. —[ସଂ.ରୂପ୍ୟ, ଫା.ରୁପ(ପେ)ୟା]-୧ । ରୌପ୍ୟ-
Rupiā ମୁଦ୍ରା; ଟଙ୍କା—1. Rupee; silver coin
টাকা, রূপেয়া रूपया ୨ । ନଗଦ ଧନ—2. Cash; money.

ରୁପିବା—ଦେ. କ୍ରି.—(ସଂ. ରୁହ ଧାତୁ ଣିଜନ୍ତ ରୋପି ଧାତୁ) — ୧। ବୃକ୍ଷ ବୃକ୍ଷ
Rupibā ଭୂମିରେ ରୋପଣ କରିବା—1. To plant trees.
রোপা रोपना ୨ । ବୁଣିବା—2. To Saw. [ଦ୍ର—ପ୍ରେମ ଗାଳକୁ ରୁପିଲି ଭଈଁର । ଭଞ୍ଜ. ପ୍ରେମସୁଧାନିଧି ।]

ରୁପିମୁଣ୍ଡ—ଦେ. ବି.—ଯେଉଁ ମସ୍ତକ ମଳ ରୋଗରେ ପୂର୍ଣ୍ଣ—Head
Rupi munda full of dendruf, scurey head.
খুস্কীওয়ালা মাথা रुस्सीवाला सीर
ରୁପିମୁଣ୍ଡା, ରୁପି ମୁଣ୍ଡିଆ—ପୁଂ
ରୁପିମୁଣ୍ଡେଇ, ରୁପିମୁଣ୍ଡୀ —ସ୍ତ୍ରୀ } ବିଣ

ରୁପୁ—ପ୍ରାଦେ. (ବସ୍ତର) ବି—ଶୁଆ—
Rupu Parrot.

ରୁପୁଡ଼ା—ଦେ. ବି.—ଯୋଗାସନ ବିଶେଷ—
Rupurdā A jogic posture. (ଭି—ରୁପୁଡ଼ା ଆସନ (ରୁପୁଡ଼ା ଆସନ—ଅନ୍ୟରୂପ) କେହି କରନ୍ତି । ପ୍ରାଚୀ· ପରଗେ· ଗୀତା ।)

ରୁପୁ(ପେ)ଲି—ଦେ. ବିଣ.—( ସଂ ରୂପ୍ୟ )—୧ । ରୌପ୍ୟ ନିର୍ମିତ—
Rupu(pe)li रूपु(पा)ली रुपहली 1. Made of silver. ୨ । ରଜତାଭ—2. Silver-white; silvery. ୩ । ରୌପ୍ୟ ସମ୍ବନ୍ଧୀୟ—3. Relating to silver. ୪ । ରୁପାରେ ଗିଲ୍ଟ ହୋଇଥିବା—4. Silver-gilt. ୫ । ରୁପାରେ କୁଅଣି ହୋଇଥିବା—5. Silver-plated; overlaid with a thin layer of silver. ବି.—୧ । ଜର୍ମାନ୍ ସିଲ୍‌ଭର୍; ଟିଉ—1. Pewter; german silver. ୨ । କୃତ୍ରିମ ରୁପା—2. Artificial silver. ୩ । ଅଲୁମିନିଅମ୍ ନାମକ ଧାତୁ—3. Aluminium.

ରୁପୁଲି ଅଳଙ୍କାର—ଦେ. ବି.—୧ । ରୌପ୍ୟ ନିର୍ମିତ ଅଳଙ୍କାର—
Rupuli alankāra 1. Silver ornament ୨ । रुपोर अलङ्कार ରୁପା ପରି ଦେଖା ଯାଉଥିବା କୃତ୍ରିମ ଅଳଙ୍କାର—2. Ornament looking white like silver. ୩ । ଜର୍ମାନ୍ ସିଲ୍‌ଭର୍ ଅଳଙ୍କାର—3. Ornaments of german silver. ୪ । ଅଲୁମିନିୟମ ଅଳଙ୍କାର—4 Ornaments made of aluminium. [ପ୍ର—ଏହିପରି ରୁପୁଲି ବାଢ଼ି, ରୁପୁଲି କଟଣି, ରୁପୁଲି ବେତ, ରୁପୁଲି ଥାଳ, ରୁପୁଲି ଲୁଲେଇ ।]

ରୁପୁଲି କାଳି—ଦେ. ବି—ରୌପ୍ୟ ପରି ଚକ୍ ଚକ୍ କରୁଥିବା
Rupuli kāli ଲେଖିବାର ମସୀ—Silvery ink. [ରୁପୁଲିସ୍ୟାଇ(ହି), ରୁପୁଲିସିଆ(ହା)ଇ, ରୁପୁଲିସେଇ—ଅନ୍ୟରୂପ] रुपुलि कालि रुपहलीरोसनाई

ରୁପୁଲିପାଣି—ଦେ. ବି—ସ୍ୱାସ୍ଥ୍ୟକରପ୍ରକ୍ରିୟାରେ ପ୍ରସ୍ତୁତ ଧାତୁମିଶ୍ରିତ ଶୁଭ୍ର
Rupuli pāni ଦ୍ରବ, ଯାହା ଅନ୍ୟ ବସ୍ତୁ ଉପରେ ରଞ୍ଜିତ ହେଲେ रुपोरजल रुपहलीपानी ତାହା ରଜତାଭ ଦେଖାଯାଏ—A chemical liquid which imparts a silvery hue to things on which it is laid

ରୁପେଇ—ଦେ. ବି. ସ୍ତ୍ରୀ—୧ । ଦେବତାଙ୍କ ନାମ—1. Name of a
Rupei popular Goddess. ୨ । ସ୍ତ୍ରୀଲୋକଙ୍କୁ ଦିଆଯିବା रुपोर रुपका ନାମ—2. A name given to women. ବିଣ—ରୌପ୍ୟନିର୍ମିତ—Made of silver.

ରୁପେଇ ସୁନେଇ—ଦେ.ବି.-କାହାଣୀରେ ବର୍ଣ୍ଣିତ ଦୁଇ ଭଉଣୀ (ସୁନେଇ
Rupei sunei ସୁନା ଲୁଲେଇଁ ଧରି ଖେଳେ ଓ ରୁପେଇ ରୁପା ଲୁଲେଇ ଧରି ଖେଳେ ।)—Names of two sisters in folk tales. (ଭି— ସୁନେଇ ବେଉଳ, ମାଙ୍କଡ଼, ରୁପେଇ କାରେ କାପଡ଼—ବୁଢ଼ା ମାକଡ଼ କାହାଣୀ ।)

ରୁପେ(ପୈ)ୟା—ବୈଦେ. ବି (ଫା ରୁପୈୟା)—୧ । ରୌପ୍ୟମୁଦ୍ରା—
Rupe(pai)yā 1. Silver coin. ୨ । ୧୬ ଅଣା रूपेया रुपेया ମୂଲ୍ୟର ବା ଏକ ତୋଳା ଓଜନର ରଜତ ମୁଦ୍ରା—A rupee weighing one tola, and of the value of sixteen annas.

ରୁବ୍‌କାରି—ବୈଦେ.ବି (ଜେତାଇଆ; ଫା, ରୋବ୍‌କାରୀ)—୧ । ରୋବକାରି;
Rub-kāri ଅଦାଲତଙ୍କର କୌଣସି ମକଦମା ବିଷୟସମ୍ବନ୍ଧୀୟ रोबकारी रोबकारी କର୍ମ ବା କାର୍ଯ୍ୟାବଳୀ—1. Proceedings of a court regarding a case. ୨ । ଅଦାଲତଙ୍କଦ୍ୱାରା ସ୍ୱାକ୍ଷରିତ ଲିପିବଦ୍ଧ ଆଦେଶ—2 A written judgment of a case stating the facts or grounds of decision and authenticated by signature and seal of the court; a written decision of a court. [ ଦ୍ର—ରୁବ୍‌କାରିରେ ମକଦମାସଂକ୍ରାନ୍ତ ସମସ୍ତ ଜ୍ଞାତବ୍ୟ ବିଷୟର ବିବରଣ ଓ ଅଦାଲତଙ୍କ ମୀମାଂସାର ହେତୁବାଦ ଓ ଗୃହୀତ ପ୍ରମାଣର ସାରାଂଶ ଲିପିବଦ୍ଧ ହୋଇ ତାହା ହାକିମଙ୍କ ଦସ୍ତଖତ୍ ଓ ମୋହରଯୁକ୍ତ ହୋଇଥାଏ ।]

ରୁବ୍(ବୁ)ରୁବା—ପ୍ରାଦେ. (ସମ୍ବଲପୁର) ବି—ଅନ୍ତର୍ଦାହ; ମନୋଦୁଃଖ—
Rub-(bu)rubā Heart-burning. ବିଣ—ଅନ୍ତର୍ଦାହଯୁକ୍ତ-Mentally pained; grieved.

ରୁବ୍(ବୁ)ରୁବାହେବା—ପ୍ରାଦେ (ସମ୍ବଲପୁର) କି—(ମନ) ବ୍ୟସ୍ତ ହେବା-
Rub(bu)rubā hebā (the mind) to be disturbed or agitated.

ରୁବଣ—ପ୍ରାଦେ (ଗଞ୍ଜାମ) ବି - ରୋବଣ (ଦେଖ)
Rubana Robana (See)

ରୁବଣା—ପ୍ରାଦେ (ଗଞ୍ଜାମ) ବି (ତେ. ରୋବଣା)—ପଥରର ପେଷଣ
Rubanā ଯନ୍ତ୍ର [ଦ୍ର—ଗୋଟିଏ ପଥର ଶିଳ ମଧ୍ୟରେ ଗୋଟିଏ ଗଭୀର ଗର୍ତ୍ତ ଖୋଳା ହୋଇଥାଏ; ସେ ଗର୍ତ୍ତ ମଧ୍ୟରେ ଜିନିଷ ରଖି ସେ ଗର୍ତ୍ତକୁ ଗୁହାଁ ଗୋଟିଏ ଶିଳପୁଆ ବା ମୁଷଳରେ ତାହା ପେଶାଯାଏ—A mortar or stone slab or pestling piece consisting of a slab of stone with a receiving hole in the middle.

ରୁବ(ବୁ)ଣାଗୁଡ଼ା—ପ୍ରାଦେ (ଗଞ୍ଜାମ) ବି—ଯେଉଁ ମୁଷଳ ପ୍ରସ୍ତରଦ୍ୱାରା
Ruba(bu)nā gurdā ରୁବୁଣାର ଛିଦ୍ର ମଧ୍ୟରେ ରଖାଯିବା ଦ୍ରବ୍ୟକୁ ପେଷଣ କରାଯାଏ—The pestle of a Rubanā slab.

ରୁବ(ବୁ)ଲ୍—ବୈଦେ.ବି—(ଇଂ ରୁବ୍ଲ, rouble)—ରୁଷିଆରେ ପ୍ରଚଳିତ
Rubbul ରୌପ୍ୟ ମୁଦ୍ରାବିଶେଷ [ ଇଂରାଜୀ ଦଶ ଶିଲିଙ୍ଗ୍ ଓ रुबल रुबल ଆଠ ପେନ୍‌ସ ୮ ୧୧]—A silver coin of Russia.

**ରୁବ(ବୁ)ଲ୍**—ବୈଦେ. ବି [ଇଂ. ରବ୍ଲ]—ପାହାଡ଼ରୁ ଖୋଳାହୋଇ
Ruba(bu)l ଆସିଥିବା ଗେଟ୍ଟପଥର; ରବଲ; ରେବଲ ପଥର—
( ରୁବଲପଥର, ରୁବ୍ଲ—ଅନ୍ୟରୂପ ) Brash; small &
ଵବଲ ਰੋੜੀ irregular bits of stone as they come from the quarry; rubble.

**ରୁବା**—ପ୍ରାଦେ (ଗଞ୍ଜାମ) ବି—ପେଷା; ପେଷଣ; ରୁବ୍‌ବାକର୍ମ; ମୁଗ ବିରି
Rubā ଆଦି ରଗଡ଼ିବା।—Grinding corne tc in a mill. ବୈଦେ. ବି—ରୁବାଇ ( ଦେଖ )—Rubāi (See)

**ରୁବାଇ**—ପ୍ରାଦେ. ବି (ଫା)—ବିବାହ ଉତ୍ସବରେ ଗେୟ ନାୟକ-
Rubāi ନାୟିକା ଓ ବିବାହିତ ଦମ୍ପତିଙ୍କ ପ୍ରେମବିଷୟକ ଗୀତ—
ৰুবাই ਰੁਬਾਈ Amatory songs sung on the occasion of marriage festivities.

**ରୁବାବ୍**—ବୈଦେ. ବି ( ଆ. ରୋଅବ୍ )—୧ । ଅଭ୍ୟାସ—
Rubāb 1. Habit. ୨ । ମନ୍ଦ ଅଭ୍ୟାସ—
ৰোৱাব ਰੋਆਬ 2. Bad habit.

**ରୁବି**—ବୈଦେ ବି ( ଇଂ ରୁବି )—୧ । ମାଣିକ; ଛୋଟ ଛୋଟ ନାଲିଆ
Rubi ରତ୍ନ—1. Ruby. ୨ । ଛାପାଖାନାରେ ଛପା ହେବା
ৰুবী ਰੂਬੀ ପାଇଁ ବ୍ୟବହୃତ ଅତି ଛୋଟ ଛୋଟ ଅକ୍ଷର ବା ଟାଇପ୍—2. Very small-sized printing type; ruby-type.

**ରୁବିବା**—ପ୍ରାଦେ (ଗଞ୍ଜାମ) କ୍ରି—ପେଷଣ କରିବା; ମୁଗ ବିରିଆଦିକୁ
Rubibā ଚକିରେ ରଗଡ଼ିବା—To grind corn etc in a hand mill. [ ଦ୍ର—ରୁବିବା ବା ରଗଡ଼ିବା ଦ୍ୱାରା ମୁଗ ଆଦି ଖଣ୍ଡ ଖଣ୍ଡ ହୁଏ; ଚୂରିବା ଦ୍ୱାରା ଏହା ଚୂର୍ଣ୍ଣ ହୁଏ । ]

**ରୁବୁ(ବୂ)**—ସଂ. ବି. ( ବୈଦ୍ୟକ ) ( ରୁ ଧାତୁ=ଶବ୍ଦ କରିବା+
Rubu(bū) କର୍ତ୍ତୃ. ବୁ, ଉ (—ଶ୍ୱେତୈରଣ୍ଡ; ଧଳା
[ ରୁବୁ(ବୂ)କ—ଅନ୍ୟରୂପ ] ଗବ ଗଛ—The white variety of castor oil-seed plant.

**ରୁବୁଣା**—ପ୍ରାଦେ (ଗଞ୍ଜାମ) ବି—ରୁବଣା (ଦେଖ )
Rubunā Rubanā (See)

**ରୁଭବ**—ଦେ. [ସଂ. ରୁଭୁ(=ଦେବତା) ଶବ୍ଦର ବହୁବଚନ ଋଭବଃ]—
Rubhaba ଦେବତା—Gods (ଉ—ରୁଭବ ସେ କି ମନୁଷ୍ୟ, କେଉଁ ଦେଶୀ, ଜନମ କେଉଁ ସ୍ୱଜାତିଲେ । ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।)

**ରୁମ୍**—ବୈଦେ. ବି (ଫା. ରୁମ୍; ସଂ. ରୋମକ)—୧ । ଗ୍ରୀସ୍, ଇଟାଲି ଓ
Rum ତୁରସ୍କ ଆଦିର ଫାରସୀ ନାମ—1. Persian name
ৰুম of Greece, Italy and Turkey and ad-
ਰੂਮ joining countries. [ଦ୍ର—ଖ୍ରୀଷ୍ଟପୂର୍ବ ୫ମ ଶତାବ୍ଦୀରୁ ରୋମକ ଜାତିର ଶକ୍ତି ବଢ଼ିଲା । ୟୁନାନ୍ (ଗ୍ରୀସ୍)ର ପତନ ପରେ ରୋମକ ଏକ ପ୍ରଭାବଶାଳୀ ଜାତି ହେଲା । ଏମାନଙ୍କ ରାଜଧାନୀ ଇଟାଲିର ରୋମ ନଗର ଥିଲା । ସ୍ପେନ୍‌ଠାରୁ ଆରବ ଓ ମିଶର ପର୍ଯ୍ୟନ୍ତ ଏ ଜାତି ରାଜ୍ୟ ବିସ୍ତାର କରିଥିଲେ । ଖ୍ରୀ: ୩ୟ ଶତାବ୍ଦୀର ଶେଷରେ ଏ ସାମ୍ରାଜ୍ୟ ୨ ଶାସନ ଭାଗରେ ବିଭକ୍ତ ହେଲା ଖ୍ରୀ. ୩୩୦ରେ କୈସର୍ କନଷ୍ଟାଣ୍ଟାଇନ୍ (Constantine) କୁସ୍ତୁନ୍ତୁନିଆ (Constantinople) ନଗରରେ ନିଜର ରାଜଧାନୀ ସ୍ଥାପନ କଲେ । ଖ୍ରୀ. ୪୭୫ ରେ ପୂର୍ବୀୟ ଓ ପାଶ୍ଚାତ୍ୟ ରୋମ ରାଜ୍ୟ ଧୀରେ ଧୀରେ ଦୁର୍ବଳ ହେଲା; ଗଥ୍ ଓ ଫ୍ରେଞ୍ଚ ଆଦି ଜାତିମାନେ ଏ ରାଜ୍ୟକୁ ଧ୍ୱଂସ କଲେ । ପୂର୍ବୀୟ ରାଜ୍ୟ ଖ୍ରୀ. ୪୭୬ ଠାରୁ ରୋମ୍ ରାଜ୍ୟ ନାମରେ ଖ୍ୟାତ ହେଲା । ଇଉରୋପର ଦକ୍ଷିଣ ପୂର୍ବ ଭାଗ, ଏସିଆର ପଶ୍ଚିମ ଭାଗ ଓ ଉତ୍ତର ଅଫ୍ରିକା ଓ ଅନେକ ଦ୍ୱୀପ ଏ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ସେହି ସମୟରୁ ତୁର୍କୀ (ତୁରସ୍କ, ଯହିଁର ରାଜଧାନୀ କୁସ୍ତୁନ୍ତୁନିଆ) 'ରୁମ୍' ନାମରେ ଖ୍ୟାତ ହୋଇଅଛି—ହି. ଶ ଅଦ୍ୟ ପର୍ଯ୍ୟନ୍ତ ଭାରତୀୟ ମୁସଲମାନ୍‌ମାନେ ଶୁକ୍ରବାର ଦିନ ମସଜିଦ୍‌ରେ ପ୍ରାର୍ଥନା କଲା ବେଳେ ରୁମ୍ ବାଦଶାହା ବା ରୁମ୍ ସୁଲତାନଙ୍କ ନାମରେ ଜୟଜୟକାର କରନ୍ତି ।]
ৰুম ୨ । (ଇଂ. ରୁମ୍) କକ୍ଷ; ପ୍ରକୋଷ୍ଠ; କୋଠରି; କାମରା—
ਰੂਮ 2. Room.

**ରୁମ୍‌ଝୁମ୍(ମୁ)**—ଦେ. ଅ—ରୁମୁଝୁମୁ (ଦେଖ)
Rumjhum(mu) Rumujhumu. (See)

**ରୁମ୍(ମୁ)ରୁମିଆଁ(ଆ)**—ଦେ. ବିଣ ପୁଂ ଓ ସ୍ତ୍ରୀ (ସଂ. ଲୋମମୟ)—
Rum-(mu)rumiāñ(ā) ଯେଉଁ ଜୀବର ବା ବସ୍ତୁର ଦେହଯାକ
[ରମ୍(ମୁ)ରୁମା—ଅନ୍ୟରୂପ] ଘନ ଲୋମରେ ପୂର୍ଣ୍ଣ—Hairy;
( ରୁମ୍[ମୁ]ରୁମୀ, ରୁମ୍[ମୁ]ରୁମେଇ—ସ୍ତ୍ରୀ ) furry; wooly;
বোমশ, বোঁয়াওয়ালা ਲਵਾਰਾ, ਜਬਾਰਾ, रोंआँवाला shaggy.

**ରୁମ୍‌ମେଟ୍**—ବୈଦେ. ବି (ଇଂ. ରୁମ୍‌ମେଟ୍)—ଛାତ୍ରାବାସରେ ବା
Rum-met ହୋଟେଲ୍‌ରେ ରହୁଥିବା ଯେଉଁ ବ୍ୟକ୍ତିମାନେ ଗୋଟିଏ
ৰুমমেট ਰੂਮਮੇਟ କୋଠରୀରେ ଥାଆନ୍ତି—Room-mate.

**ରୁମ୍‌ହା**—ପ୍ରାଦେ (ସିଂହଭୂମି) ବି. (ସ.ରାଜମାଷ)—୧ । ବରଗଡ଼ା ଶସ୍ୟ;
Rum-hā ବରବଟୀ—1. Dolichos Sinensis; the cow-
(ରୁମ୍ହା[ହ୍ମା]—ଅନ୍ୟରୂପ) pea. ୨ । ବରଗଡ଼ା ଛୁଇଁ—2. A kind of been; Vigna Catjung.

**ରୁମ**—ତଦ୍. ବି (ସଂ. ରୋମନ୍)—୧ । ପଶୁ ପକ୍ଷୀ ଆଦିଙ୍କ ରୋମ;
Ruma ଲୋମ—1. Fur, down ( on the body of
ৰোঁ, কণ্ঠাঁ, বোআঁ beasts and birds). ୨ । ମଣିଷର,
ਰੋਆਂ ମନୁଷ୍ୟର ଦେହ ତମାମ ଉଠିଥିବା ଛୋଟ ଓ କୋମଳ କେଶ —2. The down growing on the whole body of men. ୩ । ଅତି ସାମାନ୍ୟ ପରିମାଣ—3. Minute quantity. ୪ । ଗୋଟିଏ ଲୋମର ଓସାର ପରିମାଣ—4. Hairbreadth; the breadth of one hair. [ ଦ୍ର—ଦେହର ବିଶିଷ୍ଟ ଅଂଶର, ଯଥା ମନୁଷ୍ୟମୁଣ୍ଡର, ମୁଛର, ଦାଢ଼ିର ଓ ଉପସ୍ଥର ଲମ୍ବ କେଶକୁ ଏବଂ ପଶୁଙ୍କ ଲାଞ୍ଜର, ଘୋଡ଼ାଙ୍କ ସିଂହାଙ୍କର ବେକର ଲମ୍ବ କେଶକୁ କେଶର ବୋଲାଯାଏ ଓ ଜୀବମାନଙ୍କ ଅଙ୍ଗର ଅନ୍ୟ ସ୍ଥାନର ଛୋଟ କେଶକୁ ରୁମ ବୋଲାଯାଏ ।]

ରୁମ ଉଖା(ପା)ଡ଼ିବା—ଦେ. କ୍ରି—୧ । ଦେହର ଲୋମ ଉତ୍ପାଟନ କରିବା
Ruma ukhā(pā)rdibā —1. To uproot the fur
(ରୁମ ଉଠା[ଠେ]ଇବା—ଅନ୍ୟରୂପ) from the body;
ରେଁଆତୋଳା to fleece. ୨ । (ଲକ୍ଷଣାର୍ଥ)—କୌଣସି ବ୍ୟକ୍ତିର
ରୋଆଁ ଉଖାଡ଼ନା ସାମାନ୍ୟ ଅନିଷ୍ଟ କରିବା—2 To slightly
injure a person. ୩ । (ଅଶ୍ଳୀଳାର୍ଥ) ଅନ୍ୟ ବ୍ୟକ୍ତିର
ଉପସ୍ଥାଦିର ଲୋମ ଉତ୍ପାଟନରୂପ ହେୟ ବା ଘୃଣ୍ୟକାର୍ଯ୍ୟ
କରିବା—3. To uproot the hair of another
person's privities (considered to be one
of the meanest duties).

ରୁମ ଉଖୁ(ପୁ)ଡ଼ିବା—ଦେ. କ୍ରି—ଦେହର ଲୋମ ଉତ୍ପାଟିତ ହେବା—
Ruma ukhu(pu)rdibā The uprooting or falling
(ରୁମ ଉଠିଯିବା—ଅନ୍ୟରୂପ) off of the down from
ରୋଆଁ ଉଠେଯାଓୟା ରୋଆଁ ଉଖଡ଼ନା the body.

ରୁମ ଉଠିବା—ଦେ. କ୍ରି—୧ । ଦେହର ଲୋମ ଉପୁଡ଼ିଯିବା—1. The
Ruma uṭhibā coming out or falling off of the
ରୋଆଁ ଉଠା furs from the body. ୨ । ଦେହର ସ୍ଥାନ-
ରୋଆଁ ଉଖଡ଼ନା ବିଶେଷରେ ଲୋମ କଅଁଳିବା; ରୋମୋଦ୍ଗମ—
ରୋଆଁ ଉଗନା 2. The coming out or growing of
down on the body. ୩ । ଭୟ, ବିସ୍ମୟାଦିଜନିତ
ଲୋମ ଠାକୁର ଉଠିବା; ରୋମାଞ୍ଚ—3. Standing of
the hairs of the body on their ends;
horripilation; thrilling.

ରୁମ ଛୁଇଁବା—ଦେ. କ୍ରି—କୌଣସି ବ୍ୟକ୍ତିର ସାମାନ୍ୟ ମାତ୍ର ଅନିଷ୍ଟ
Ruma chhuiṅbā କରିବା—To injure a person
(ରୁମ ବଙ୍କା କରିବା; ରୁମ ବଙ୍କା[ଙ୍କେ]ଇବା—ଅନ୍ୟରୂପ) very
ରେଆଁ ବାଁକାନ (ଛୋଆଁ) slightly [ଦ୍ର—ସମସ୍ତ ପ୍ରଜା ଯେତେ
ରୋଆଁ ଛୂନା ଗନ୍ଧର୍ବେ ହେବେ ଗୋଟି, ନ ପାରିବେ ବଙ୍କା କରି
ମୋହୋର ରୁମଟି । କୃଷ୍ଣସିଂହ. ମହାଭାରତ ବିରାଟ ।] [ଦ୍ର—
ଲୋକେ କଥାରେ ଅନ୍ୟ ବ୍ୟକ୍ତିଙ୍କୁ କହୁଥାଆନ୍ତି—ତୁ ଭଲ
ମୋ ରୁମ ଛୁଇଁବୁନି ? ତୁ ଭଲ ମୋ ରୁମ ବଙ୍କା କରିପାରିବୁ
ନାହିଁ? କୌଣସି ବ୍ୟକ୍ତିର ଦେହର ସ୍ଥୂଳ ଲୋମ ଉପାଡ଼ିଲେ
ଯେଉଁପରି କଷ୍ଟବୋଧ ହୁଏ,ଗୋଟିଏ ଲୋମ ଉପାଡ଼ିଲେ ତା-
ଠାରୁ ଅଳ୍ପ କଷ୍ଟ ହୁଏ । ମନୁଷ୍ୟ ଦେହରେ ହାତ ଲଗାଇଲେ
ବା ମନୁଷ୍ୟକୁ ସ୍ପର୍ଶ କଲେ ହାତ ଦେବା ସ୍ଥାନର ଲୋମମାନ
ବଙ୍କ ହୁଏ । ଏଥିପାଇଁ ରୁମ ଉପାଡ଼ିବା, ରୁମ ବଙ୍କାଇବା; ରୁମ
ଛୁଇଁବା ଶବ୍ଦମାନ ଲକ୍ଷଣାର୍ଥରେ କଷ୍ଟଦେବା, ସାମାନ୍ୟ କଷ୍ଟ
ଦେବା ଓ କିଛିମାତ୍ର କଷ୍ଟ ଦେବା ଅର୍ଥରେ ବ୍ୟବହୃତ
ହୁଏ ।]

ରୁମ ଟଙ୍କା(ଙ୍କୁ)ରିବା—ଦେ କ୍ରି.—(ଶୀତ, ଭୟ, ବିସ୍ମୟ ଓ ପ୍ରେମର
Ruma ṭaṅkā(ṅku)ribā ଆଧିକ୍ୟ ହେତୁ) ରୋମାଞ୍ଚ ଜାତ
ରୋମାଞ୍ଚ ହଓୟା; ଶିହରଣ ହେବା; ଲୋମହର୍ଷଣ—The stand-
ରୋଆଁ ଖଡ଼ାହୋନା, ରୋଁଗଟେ ଖଡ଼ାହୋନା ing of the hairs on
ରୁମ ଠାଙ୍କିବା; ରୁମ ଠାଙ୍କି ଉଠିବା } —ଅନ୍ୟରୂପ the ends;
ରୁମ ଠାକୁରିବା; ରୁମ ଠିଆହେବା } horripila-
ରୋମବାଞ୍ଚାହଓୟା, ଶିହରଣ ରୋଁଗଟେଖଡ଼ାହୋନା tion; bristling
of the hairs; thrilling.

ରୁମ ନୁ(ଲୁ)ଚିବା—ଦେ. କ୍ରି.—ଅନ୍ଧକାର ଯୋଗୁଁ ଦେହସ୍ଥ ଲୋମ
Ruma nu(lu)chibā ଆଖିକୁ ଦେଖା ନ ଯିବା—The
ରୋମ ଦେଖা না যাওয়া down on the body not being
ରୋଆଁ ନ ଦିଖନା visible to the eyes owing to
(ରୁମ ଲୁଚ—ଅନ୍ୟରୂପ) darkness.

ରୁମ ନୁ(ଲୁ)ଚିବା(ଲା) ବେଳ—ଦେ. ବି.—ମଧୁ ସନ୍ଧ୍ୟା; ମଧୁଁସଞ୍ଜ;
Ruma nu(lu)chibā(lā) bela ସୂର୍ଯ୍ୟାସ୍ତର ଅବ୍ୟବହିତପର-
ରୁମ ନୁ(ଲୁ)ଚ୍ ବେଳ } —ଅନ୍ୟରୂପ ବର୍ତ୍ତୀ ଓ ଗୃହଅଡ଼େ ଅନ୍ଧାର
ରୁମ ନୁ(ଲୁ)ଚ୍ ଅନ୍ଧାର } ଘୋଟି ଯିବାର ପୂର୍ବବର୍ତ୍ତୀ
ସନ୍ଧ୍ୟାର ଅଳ୍ପ ଅନ୍ଧକାର ସମୟ (ଯେଉଁ ସମୟରେ ଅଗରେ ଠିଆ
ଧୁଁଧଲା କାଲ ହେବା ମନୁଷ୍ୟର ଆକୃତିକୁ ବାରି ହୁଏ, କିନ୍ତୁ ଉକ୍ତ
ମନୁଷ୍ୟର ଦେହର ଲୋମମାନ ଆଖିକୁ ଦେଖା ପଡ଼େ ନାହିଁ)
Dusk; sun down (just when the down
of the body is not visible to the eye.)

ରୁମ ବଙ୍କା କରିବା—ଦେ. କ୍ରି.—(ଲକ୍ଷଣାର୍ଥ) କୌଣସି ବ୍ୟକ୍ତିର ସାମାନ୍ୟ
Ruma baṅkā karibā ମାତ୍ର ଅନିଷ୍ଟ କରିବା—
ରୋମ বাকান (figurative) To injure a person even
slightly.
(ରୁମ ବଙ୍କା ହେବା; ରୁମ ବାଙ୍କିବା—ବିଶେଷ୍ୟରୂପ)
[ରୁମ ବଙ୍କା(ଙ୍କେ)ଇବା—ଅନ୍ୟରୂପ] ରୋଆଁ ବାଁକା କରନା

ରୁମ ମୂଳ—ଦେ. ବି.—(ସଂ. ଲୋମ: ମୂଳ)—୧ । ଲୋମମୂଳ—
Ruma mūla ରୋଆଁକୀଜଡ଼ 1. The root of the
down of the body. ୨ । ଲୋମକୂପ—2. The
ରୋମେରগোড়া pores of the skin.

ରୁମରୁମିଆ(ଆଁ)—ଦେ. ବିଣ (ପୁଂ ଓ ସ୍ତ୍ରୀ) (ସଂ. ଲୋମଶ)—ଲୋମଶ—
Rumarumia(āṅ) Furry; hairy; wooly.
ଲୋମଶ (ରୁମରୁମା—ଅନ୍ୟରୂପ) (ରୁମରୁମୀ, ରୁମରୁମେଇ—
ଝାବରା ସ୍ତ୍ରୀଲିଙ୍ଗ ରୂପ)

ରୁମା—ସଂ. ବି. ସ୍ତ୍ରୀ (ରୁ ଧାତୁ=ରବ କରିବା+କର୍ତ୍ତୃ. ମ+ସ୍ତ୍ରୀ. ଆ)--
Rumā ୧ । ରାମାୟଣବର୍ଣ୍ଣିତା ସୁଗ୍ରୀବଙ୍କ ପତ୍ନୀ—1. The
wife of Sugriba described in the
Rāmāyaṇa. [ଦ୍ର—ବିଗତ ଦୁଃଖ ସୁଗ୍ରୀବ ସୁଖରେ,
ବଳସିତ ଯେ ତାର ରୁମା ସଙ୍ଗେ । ଭଞ୍ଜ. ବୈଦେହୀଶ-
ବିଳାସ ।] [ଦ୍ର—ଏ ବୃହସ୍ପତିଙ୍କ କନ୍ୟା ଓ ସୁଗ୍ରୀବଙ୍କ ସ୍ତ୍ରୀ ।
ଜ୍ୟେଷ୍ଠଭ୍ରାତା ବାଳୀ ସୁଗ୍ରୀବଙ୍କୁ କିଷ୍କିନ୍ଧ୍ୟା ରାଜ୍ୟରୁ ତଡ଼ି
ଦେବା ସମୟରେ ରୁମା ବାଳୀଙ୍କ ଆଶ୍ରୟରେ ରହିଥିଲେ ।
ପରେ ଶ୍ରୀରାମଙ୍କଦ୍ୱାରା ବାଳୀ ନିହତ ହେବାରୁ ରୁମା ସ୍ୱୀୟ
ସ୍ୱାମୀଙ୍କ ସଙ୍ଗେ ପୁନର୍ମିଳିତା ହେଲେ । ] ୨ । ରାଜପୁତାନା
ଅଞ୍ଚଳର ସାମ୍ଭର ପ୍ରଦେଶର ଲୁଣର ଖଣି—2. Mines
of rock salt in Rājputānā (N. W. India)
୩ । ଶୁକ (ଦେଖ)—3. Śuka. (See) (କବିରାଜ
ହରେକୃଷ୍ଣ ମିଶ୍ରଙ୍କ ଦ୍ରବ୍ୟଗୁଣ) । ଦେ. ବି—୧ । ଲୋମମୟ
ପশমী কাপড় ବସ୍ତ୍ର—1. Dress of fur. ୨ । ପଶମୀ ଲୁଗା—

ଊନୀକପଡା 2. Woolen cloth. ଦେ. ବଣ--୧ । ଲୋମମୟ—
ବୋଅଁ।ଓ୍ୱାଲା 1. Full of fur; downy; shaggy.
ରୋଆଁଦାର ୨ । ପଶମୀ—2. Woolen. ପ୍ରାଦେ (ସିଂହଭୂମି)—
ପଶମୀ ଊନୀ ବ—ରୁମ୍ହା (ଦେଖ)—Rum-hā. (See)

ରୁମାବତୀ—ସଂ. ବ —ରାଜପୁତାନା ଅନ୍ତର୍ଗତ ପ୍ରାଚୀନକାଳର ନଦୀ ବିଶେଷ
Rumābatī (ଏଥିର ଗର୍ଭରୁ ଶାମ୍ଭର ଲବଣ ଉତ୍ପନ୍ନ ହେଉଥିବା କଥିତ)—The name of an ancient river in Rājputānā from the bed of which rock salt was extracted.

ରୁମାଲ୍—ବୈଦେ. ବ (ଫା. ରୁମାଲ୍; ପାର୍ଶି. ରୁ = ମୁହଁ + ମାଲ୍ =
Rumāl ପୋଛିବା; ଯହିଁରେ ମୁହଁ ପୋଛାଯାଏ; ତୁଳ. ସ.—ରୂପ-
ରूमाल ମାର୍ଜ୍ଜକ)—୧ । ଉରୁମାଲ; ମୁହଁ ପୋଛିବାପାଇଁ ବ୍ୟବହୃତ
रूमाल କ୍ଷୁଦ୍ର ଚତୁଷ୍କୋଣିଆ କନା—1. Handkerchief. ୨ । ଗାତ୍ରମାର୍ଜ୍ଜନୀ; ଛୋଟ ଗାମୁଛା—2. Small napkin ୩ । ଏକପ୍ରକାର ଛୋଟ ସମଚତୁର୍ଭୁଜ ଶାଲ—3. A kind of small square shawl. [ଦ୍ର—ଗାମୁଛା (Napkin) ପିନ୍ଧା ଲୁଗାଠାରୁ ଛୋଟ, ତଉଲିଆ (Towel) ଗାମୁଛାଠାରୁ ଛୋଟ; ରୁମାଲ (Handkerchief) ତଉଲିଆଠାରୁ ଛୋଟ; ମୋଟା ରୁମାଲକୁ ଝାଡ଼ଣ (Duster) ବୋଲାଯାଏ । ଯେଉଁ ରୁମାଲ ଶାଲରୂପେ ବ୍ୟବହୃତ ହୁଏ, ତାହା ସାଧାରଣ ରୁମାଲ ଅପେକ୍ଷା ବଡ଼; ଏଥିର ଲମ୍ବ ଓ ଓସାର ୨ହାତ ଠାରୁ ୩ହାତ । ଏହାକୁ କୋଣଭାଙ୍ଗି କରି ବଡ଼ଲୋକମାନେ ପିଠିରେ ପକାନ୍ତି ଓ ଗୁଡ଼ାଇ କରି ପଗଡ଼ି ଭଳି ମୁଣ୍ଡରେ ବାନ୍ଧନ୍ତି । ]

ରୁମାଲ—ଦେ. ବଣ. ପୁଂ—ଲୋମମୟ —
Rumāla Full of fur; furred, hairy.
(ରୁମାଲଆ—ପୁଂ, ଓ ସ୍ତ୍ରୀରୂପ; ରୁମାଲୀ, ରୁମାଲେଇ—ସ୍ତ୍ରୀ)
ବୋଅଁ।ଦାର ଝବରା, ରୋଆଁଦାର

ରୁମାଲି—ଦେ. ବ—୧ । ଭାରତରେ ପୂର୍ବେ ଅତ୍ୟାଚାର କରୁଥିବା ଦଳ-
Rumāli ବଦ୍ଧ ଏକ ଶ୍ରେଣୀର ନରହନ୍ତା ଦସ୍ୟୁ; ଠଗ—Gangs
रुमाली of highway robbers who used to strangle
रुमाली wayfarers to death by tightening handkerchiefs round their necks [ଦ୍ର— ଏମାନେ ରୁମାଲକୁ ଦଉଡ଼ିଭଳି ଗୁଡ଼ାଇ ତାକୁ ପଥିକମାନଙ୍କ ଗଳାରେ ଭିଡ଼ି ପଥିକମାନଙ୍କୁ ହତ୍ୟାକରି ଧନଲୁଣ୍ଠନ କରୁଥିଲେ । ଏମାନଙ୍କୁ ଠଗ ବୋଲାଯାଉଥିଲା । ଲର୍ଡ଼ ବେଣ୍ଟିଙ୍କ୍ ଭାରତର ବଡ଼ଲାଟ ଥିବା ସମୟରେ (ଖ୍ରୀ୧୮୨୮–୧୮୩୫) ଏ ଦସ୍ୟୁଦଳଙ୍କୁ ଦମନ ଓ ନିର୍ମୂଳ କଲେ । ଏ 'ଠଗବିଭାଗ' ନାମରେ ଗୋଟିଏ ସରକାରୀ ବିଭାଗ ସ୍ଥାପନ କରି କର୍ଣ୍ଣେଲ୍ ସ୍ଲିମାନ୍ ନାମକ ଜଣେ ପଲଟଣିଆସାହେବଙ୍କୁ ଏ ଠଗମାନଙ୍କ ଦମନକାର୍ଯ୍ୟରେ ନିଯୁକ୍ତ କଲେ । ସ୍ଲିମାନ୍ ସାହେବଙ୍କ ଅକ୍ଳାନ୍ତ ଉଦ୍ୟମରେ ଖ୍ରୀ ୧୮୩୦ ଠାରୁ ୧୮୩୫ ପର୍ଯ୍ୟନ୍ତ ପ୍ରାୟ ଦୁଇ ହଜାର ଠଗଙ୍କୁ ଧରାଯାଇ ଫାଶୀ ଦିଆଗଲା ଏବଂ ଏଥିର ଫଳରେ ଦେଶରୁ ରୁମାଲି ଠଗମାନଙ୍କ ଅତ୍ୟାଚାର ଦୂରୀଭୂତ ହେଲା ।] ୨ । ଏକ ଶ୍ରେଣୀର ବାଳକ ନର୍ତ୍ତକ—2. A class of dancing boys used as objects for satisfaction of unnatural lust. [ଦ୍ର—ଏମାନେ କାମୁକମାନଙ୍କର ଇଚ୍ଛାପୂରଣଲାଗି ଅସ୍ୱାଭାବିକ ଉପାୟରେ ତୃପ୍ତ କରିବା ସାମଗ୍ରୀରୂପେ ବ୍ୟବହୃତ ହେଉଥିଲେ । ସଭ୍ୟତାର ପ୍ରଚାର ଓ ଅସ୍ୱାଭାବିକ ପୁଂମୈଥୁନ ନିବାରକ ଆଇନ୍ ପ୍ରଚଳନ ହେତୁ ଅଧୁନା ଏମାନଙ୍କ ସଂଖ୍ୟା ଓ ବ୍ୟବସାୟ କ୍ରମଶଃ ମାନ୍ଦ୍ୟ ଲାଭ କରୁଅଛି; ଏମାନେ ରୁମାଲଦ୍ୱାରା ଗୁହ୍ୟମାର୍ଗକୁ କାମୁକମାନଙ୍କ ପୁଂମୈଥୁନୋପଯୋଗୀ କରିବା କର୍ମ କରୁଥିବାରୁ ଏମାନଙ୍କର ଏହି ନାମ ହୋଇଥିଲା ।]

ରୁମାଲି ଠଗ(କ)—ଦେ. ବ—ରୁମାଲି ୧ (ଦେଖ)
Rumāli ṭhaga(ka) Rumāli 1 (See)
रुमालीठग रुमालीठग

ରୁମି—ଦେ. ବଣ. ପୁଂ ଓ ସ୍ତ୍ରୀ (ସ. ଲୋମଶ)—୧ । ଲୋମମୟ;
Rumi ଲୋମଶ—1. Furry. ୨ । ଯେଉଁ ବ୍ୟକ୍ତିର ଦେହସାକ
[ରୁମିଆ(ଆଁ)—ଅନ୍ୟରୂପ] ବଡ଼ ବଡ଼ ଲୋମରେ ପୂର୍ଣ୍ଣ—2. (per-
[ରୁମୀ,ରୁମେଇ—ସ୍ତ୍ରୀ] son) Having large furs grow-
ଲୋମଶ, ବୋଅଁ।ଦାର ing all over his body. ବୈଦେ. ବଣ—
ଝାବରା, ରୋଆଁଦାର (ଫା)—ରୁମ୍ ଦେଶ ସମ୍ବନ୍ଧୀୟ—Relating
रूमी रुमी to the country of Rum.

ରୁମିବା—ପ୍ରାଦେ (ସମ୍ବଲପୁର) କ୍ରି—ପକ୍ଷୀର ଦେହରୁ ଲୋମସାକ
Rumibā ଉପାଡ଼ିବା—To uproot the fur or down from the whole body of a bird (before cooking it).

ରୁମିମସ୍ତକି(ଗି)—ଦେ. ବ [ଆ—ମସ୍ତଗୀ, ରୁମୀ=ରୁମ୍ ବା ରୋମ
Rumi mastaki(gi) ଦେଶୀୟ]—ମସ୍ତକି; ବିଦେଶାଗତ ଏକ
ସ. ନାମ—ଧୂଳସ୍ତକ, ଶୀତରସ, ପ୍ରକାର ଝୁଣା ବା ବୃକ୍ଷ ନିର୍ଯ୍ୟାସ ।
ଭଙ୍ଗୁର, ଗନ୍ଧନୀ । [ ଦ୍ର—ଏହା ଔଷଧରେ ଓ
रूमीमस्तकी ବାର୍ଣ୍ଣିସ୍‌ରେ ବ୍ୟବହୃତ ହୁଏ ।
मुस्तगी ଲୋବାନ୍ ପରି ମୁଖବାସପାଇଁ କେହି
ଫା. ରୁନ୍ଦରରୁମୀ କେହି ଏହାକୁ ଚୋବାନ୍ତି—
ଆ. ଆଲକରୁମୀ, ମସ୍ତଗୀ A sort of resin or gum; Pistacia Lentiscus,

[ଦ୍ର—ଏହା ଆମ୍ରାତ ବର୍ଗର କ୍ଷୁପ; ଭୂମଧ୍ୟସାଗର ନିକଟବର୍ତ୍ତୀ ସ୍ଥାନରେ ଜନ୍ମେ ଓ ଏ ବୃକ୍ଷର ଶୁଷ୍କ ନିର୍ଯ୍ୟାସ ଏ ଦେଶକୁ ଆମଦାନୀ ହୁଏ । ରୁମ୍ ବା ରୋମ୍ ଦେଶରୁ ଆସିବା ଯୋଗୁଁ ଏହି ନାମ । ଅନ୍ୟ ଏକ ପ୍ରକାରର ବେଲୁଚ ସ୍ଥାନରେ ଜାତ ପଦାର୍ଥକୁ କାବୁଲି ମସ୍ତକି ବା Pistacia Mutica ବୋଲାଯାଏ । ବୈଦ୍ୟକ ମତରେ ଏହା ମୂତ୍ରକାରକ, ଧାରକ, କଫଘ୍ନ, ବଳକାରକ, ଏବଂ ଦନ୍ତରୋଗ, ମେହ ଓ ପ୍ରଦରନାଶକ ।]

**ରୁମୁଝୁମ(ମୁ)**—ଦେ. ଅ (ଧ୍ୱନ୍ୟନୁକରଣ; ସ. ରୁଣ୍ ଧାତୁ ଓ ଧ୍ୱନ୍ ଧାତୁ ) Rumujhum(mu) ୧ । ରୁଣୁଝୁଣୁ; ଅଳଙ୍କାର ଆଦିର ମଧୁର କ୍ୱଣନ—1. Sweet tinkling of ornaments. ୨ । ବୀଣା ଆଦିର ସୁମଧୁର ଝଙ୍କାର—2. The sweet vibratory sound of a harp. [ଦ୍ର—ରୁଣୁଝୁଣୁ ଅପେକ୍ଷା ରୁମୁଝୁମୁ(ମୁ) ଗମ୍ଭୀରତର ।]

ରୁନଝୁନ୍, ରୁମଝୁମ୍
**ରුନଝୁନ**

**ରୁମେ**—ଦେ. କି. ବିଣ—ଏ ଗୋଟିଏ ଲୋମ ସୁଦ୍ଧା—1. Even Rume one hair; by a hair. (ଯଥା—ଭୁ ମୋର ରୁମେ (ରୁମେ ବି, ରୁମେ ମାତ୍ର—ଅନ୍ୟରୂପ) ଅନିଷ୍ଟ କରି ପାରିବୁ ନାହିଁ ।) ୨ । ତିଳେ ମାତ୍ର; ସରଳ ରେଖା ଅପେକ୍ଷା ତିଳେ ମାତ୍ର ବଙ୍କା ନ ହୋଇ—2. By a hair's breadth; without deviating from the straight line by even the breadth of a hair. (ଯଥା—ମୁଁ ଯେଉଁ ସିଧା ଗାରଟି ଖାଲି ହାତରେ ଟାଣିଛି ସେ ରୁମେ ସୁଦ୍ଧା ବଙ୍କା ହୋଇ ନାହିଁ ।) ୩ । (ଲକ୍ଷଣାର୍ଥ) ସାମାନ୍ୟ ମାତ୍ର ସୀମା ଅତିକ୍ରମ ନ କରି; ତିଳେ ମାତ୍ର—3. Without the slightest deviation. (ଯଥା—ଭୁ ମୋ ହୁକୁମରୁ ରୁମେ ମାତ୍ର ଏଣେ ତେଣେ କରିବା ଦେଖିଲେ ମୁଁ ତୋତେ ଗୁରୁତର ଶାସ୍ତି ଦେବି ।)

ଏକ ଚୁଲଓ
**ଏକ ବାଲମୀ, ଏକ ରୋଆଁମୀ**

**ରୁମେ ବଙ୍କା**—ଦେ. ବିଣ—ଗୋଟିଏ ଲୋମ ପରିମିତ ପ୍ରଭେଦ ଦ୍ୱାରା Rume bankā ସରଳ ରେଖାଠାରୁ ବକ୍ର—Deviating from the straight line even by the breadth of one hair.

বোম বাঁকা
**বাল বাঁকা**

**ରୁମ୍ର**—ସ. ବି. ( ରମ୍ ଧାତୁ=କ୍ରୀଡ଼ା କରିବା+କର୍ତ୍ତୃ. ର )—ଅରୁଣ; Rumra ସୂର୍ଯ୍ୟସାରଥି—The charioteer of the Sun-god; dawn personified. (ରୁମ୍ରା—ସ୍ତ୍ରୀ)

ସ. ବିଣ ପୁଂ—୧ । ପାଣ୍ଡୁର; ରକ୍ତ ପିଙ୍ଗଳ—1. Tawny (Apte). ୨ । ଉଜ୍ଜ୍ୱଳ—2. Bright (Apte).

**ରୁରୁ**—ସ. ବି. ( ରୁ ଧାତୁ=ରବ କରିବା+କର୍ତ୍ତୃ. ରୁ )—୧ । କୃଷ୍ଣସାର Ruru ମୃଗ ବିଶେଷ—1. A species of deer; Corvulus Montjac. [ଦ୍ର—ଏମାନେ ରକ୍ତ ପିଙ୍ଗଳ ବର୍ଣ୍ଣ; ଏମାନେ ଲୋକବସତିର ବହୁ ଦୂରରେ ନିବିଡ଼ ଜଙ୍ଗଲରେ ବିଚରଣ କରନ୍ତି ଏବଂ କୁକୁରର ଭୁକିବା ଭଳି ଥରେ ମାତ୍ର 'ଭୋ' ରବ କରନ୍ତି । ପୁରୁଷ ଜାତୀୟ ରୁରୁଙ୍କର ଶିଙ୍ଗ ଥାଏ ଓ ତହିଁରୁ ମଝିରେ ମଝିରେ ଖୋଳ ଖସି ପଡ଼ି ନୂଆ ଖୋଳ ଗଜୁରେ । ସ୍ତ୍ରୀ ଜାତୀୟ ରୁରୁଙ୍କର ଶିଙ୍ଗ ନାହିଁ । ଏମାନଙ୍କ ଚର୍ମକୁ ଋଷିମାନେ ବ୍ୟବହାର କରୁଥିଲେ ଓ ଏମାନଙ୍କ ଚର୍ମର ମେଖଳାକୁ ବ୍ରହ୍ମଚାରୀମାନେ ପିନ୍ଧୁଥିଲେ ।] ୨ । କସ୍ତୁରୀ ମୃଗ (ହି. ଶ)—2. Musk deer. ୩ (ପୁରାଣ) ଦୈତ୍ୟ ବିଶେଷ—3. (Hindu mythology) Name of a Titan. [ଦ୍ର—ଏ ଦୁର୍ଗାଙ୍କ ଦ୍ୱାରା ନିହତ ହୋଇଥିଲା—ହି. ଶ; ଚ୍ୟବନ ମୁନିଙ୍କ ପୁତ୍ର ପ୍ରମତିଙ୍କ ଔରସରେ ଘୃତାଚୀ ନାମ୍ନୀ ଅପ୍ସରାର ଗର୍ଭରୁ ଜାତ ଦୈତ୍ୟ, ଏହାଙ୍କ ସହିତ ମେନକା ଅପ୍ସରାର କନ୍ୟା ପ୍ରମଦ୍ୱରାର ବିବାହସମ୍ବନ୍ଧ ସ୍ଥିର ହୋଇଥିଲା । କିନ୍ତୁ ବିବାହ ପୂର୍ବରୁ ପ୍ରମଦ୍ୱରା ସର୍ପାଘାତରେ ମୃତା ହେବାରୁ ଦେବଦୂତଙ୍କ ଉପଦେଶ ଅନୁସାରେ ରୁରୁ ନିଜର ପରମାୟୁରୁ ଅର୍ଦ୍ଧେ ପ୍ରମଦ୍ୱରାକୁ ପ୍ରଦାନ କରିବାରୁ ପ୍ରମଦ୍ୱରା ଜୀଇଁ ଉଠିଲା ଓ ଦୁହିଁଙ୍କର ବିବାହ ସମ୍ପନ୍ନ ହେଲା । ଏହାଙ୍କଠାରୁ ଶୁନକ ନାମକ ଏକ ପୁତ୍ର ଜନ୍ମିଥିଲା । ରୁରୁକୁ ମହାଦେବ ବଧ କଲେ ।] ୪ । ଋଷି ବିଶେଷ (ହି. ଶ)—4. Name of a sage. ୫ । ପୁରାଣାନୁସାରେ ଜନ୍ତୁ ବିଶେଷ—5. Name of a fabulous animal. [ଦ୍ର—ଏହାର ଅନ୍ୟ ନାମ ଭୂରୁଭୁଙ୍ଗା । ହିଂସିତ ପ୍ରାଣୀ ରୁରୁ ରୂପ ଧାରଣ କରି ରୌରବ ନରକରେ ଇହଲୋକରେ ହିଂସାକାରୀ ବ୍ୟକ୍ତିଙ୍କୁ କାମୁଡ଼ନ୍ତି ।] ୬ । ବିଶେଦେବାଙ୍କ ଅନ୍ତର୍ଗତ ଗଣଦେବତା ବିଶେଷ (ହି. ଶ)—6. Name of a class of Deities. ୭ । ସାବର୍ଣ୍ଣି ମନୁଙ୍କ ଅମଳର ସପ୍ତର୍ଷି ମଧ୍ୟରୁ ଏକ ଋଷିଙ୍କ ମାମୁ (ହି. ଶ)—7. Name of the maternal uncle of one of the seven sages who lived during the age of Sābarṇṇi Manu. ୮ । ଏକ ଭୈରବଙ୍କର ମାମୁ (ହି. ଶ)—8. Name of the maternal uncle of a Bhairaba. ୯ । ଫଳବାନ୍ ବୃକ୍ଷ ବିଶେଷ (ହି. ଶ)—9. Name of a fruit tree.

**ରୁରୁକ୍ଷୁ**—ସ. ବିଣ—ରୁକ୍ଷ; ଅଚିକ୍କଣ (ହି. ଶ)— Rurukshu Unsmooth; rough.

**ରୁରୁଦିକ୍ଷା**—ସ. ବି. ( ରୁଦ୍ ଧାତୁ+ଇଚ୍ଛାର୍ଥେ ସନ୍+ଅ )—ରୋଦନ Rurudikshyā କରିବା ଇଚ୍ଛା—Inclination to weep.

**ରୁରୁଦିଷୁ**—ସ. ବିଣ. ପୁଂ ଓ ସ୍ତ୍ରୀ (ରୁଦ୍ ଧାତୁ=କାନ୍ଦିବା+ଇଚ୍ଛାର୍ଥେ Rurudishu ସନ୍+କର୍ତ୍ତୃ. ଉ)—ରୋଦନ କରିବାକୁ ଇଚ୍ଛୁକ—Inclined to weep; feeling inclined to weep.

**ରୁଲ୍**—ବୈଦେ. ବି. (ଇଂ. ରୋଲର୍, ରୁଲର୍)—୧ । ରୋଲ; କାଗଜ Rul ଆଦିରେ ସିଧା ଗାର ପକାଇବା ବେଳେ ଲେଖଣୀକୁ ସରଳ ରେଖାରେ ନିୟନ୍ତ୍ରିତ କରିବାପାଇଁ ବ୍ୟବହୃତ କାଠର ବା ଧାତୁର ଗୋଲାକାର ଲମ୍ବ ଦଣ୍ଡ; ଋଜୁରେଖାଙ୍କନ ଦଣ୍ଡ—1. A ruler. ୨ । ରୁଲ୍ ସାହାଯ୍ୟରେ କାଗଜରେ ଟାଣିଥିବା ସିଧାଗାର—2. Straightline drawn with the help of a ruler. ୩ । କନେଷ୍ଟବଲ୍‌ମାନଙ୍କ ଦ୍ୱାରା ବ୍ୟବହୃତ ଠେଙ୍ଗା—3. Baton used by constables. ୪ । (ଇଂ. ରୁଲ୍) କର୍ତ୍ତୃପକ୍ଷଙ୍କ ପ୍ରବର୍ତ୍ତିତ ନିୟମ—4. A rule or regulation promulgated by an authority. ୫ । (କଟକଥା)

রুল
টোল
রুল
রুল

ଉଚ୍ଚତର ଅଦାଲତ (ଯଥା—ହାଇକୋର୍ଟ୍)ରୁ ନିମ୍ନ ଅଦାଲତଙ୍କ ପ୍ରତି ପ୍ରଚାରିତ ଆଦେଶ—5. A rule issued by a higher court on a lower court
୬ । (କଚେରିଆ) ରୁଲିଙ୍ଗ୍ (ଦେଖ)—6. Ruling(See)
୭ । ନିର୍ଦ୍ଧାରିତ ନିୟମ; ଧାରା; ପଦ୍ଧତି—7. A fixed rule or system

ରୁଲ୍ (ଇତ୍ୟାଦି)—ବୈଦେ. ବି (ଇଂ.ରୁଲର୍)—ରୁଲ୍ ଇତ୍ୟାଦି ୧ (ଦେଖ)
Rul (etc) Rul etc. 1 ( See )

ରୁଲ୍(ଲ୍) କରିବା—ଦେ. କ୍ରି—କାଗଜ ଆଦି ଉପରେ ରୁଲ୍ ସାହାଯ୍ୟରେ
Rul(l) kariba ସରଳ ରେଖା ଅଙ୍କିତ କରିବା—To draw
রুল কবা, রুল টানা, রুল কাটা straight lines on
रोल करना paper etc. with the help of a ruler.
[ରୁଲ୍ (ଲ୍) କାଟିବା, ରୁଲ୍ (ଲ୍) ଟାଣିବା—ଅନ୍ୟରୂପ]

ରୁଲ୍ କାଏମ—ଦେ. ବି. ( କଚେରିଆ ) ଅପିଲ୍ ବା ମୋସନ୍‌ର
Rul kaem ଶୁଣାଣିର ଫଳରେ ହାଇକୋର୍ଟ୍‌ଙ୍କଦ୍ୱାରା ପ୍ରଥମେ
রুল কাএম ପ୍ରଚାରିତ ଆଦେଶର ଦୃଢ଼ୀକରଣ—A rule being
रूल कायम made absolute after the hearing of a case by the Highcourt.

ରୁଲ୍ (ଲ୍) କୁ(ଖୁ)ନ୍ଦା—ଦେ. ବି.—ରୁଲ୍ ବାଡ଼ିର ମୁଣ୍ଡରେ ଭୁଷିବା ଦ୍ୱାରା
Rul (l) ku(khu)nda ଅଘାତ—Poking with the
[ରୁଲ୍ (ଲ୍) ଉଞ୍ଚ—ଅନ୍ୟରୂପ] butt end of a baton or
রুলের গোঁতা ruler; ramming with
रोलसे ठेलना a baton

ରୁଲ୍ ଗାର—ଦେ. ବି.—(ଇଂ. ରୁଲ୍‌ଡ୍ ଲାଇନ୍)—ରୁଲ୍ ସାହାଯ୍ୟରେ
Rul gara କାଗଜ ଉପରେ ଟଣାଯିବା ରେଖା—Line
(ରୁଲ୍ ଲାଇନ୍—ବୈଦେଶିକରୂପ) drawn on paper with
রুল লাইন रोलका लाइन the help of a ruler; ruled line.

ରୁଲ୍ ଜାରି—ଦେ. ବି.—୧ । କର୍ତ୍ତୃପକ୍ଷଙ୍କ ଦ୍ୱାରା କୌଣସି ନିୟମର ବା
Rul jari ସ୍ଥାୟୀ ଆଦେଶର ପ୍ରବର୍ତ୍ତନ—1. Promulgation
রুলজারী of a rule or regulation by a higher
रूलजारी authority ୨ । (କଚେରିଆ) ଉଚ୍ଚତର ଅଦାଲତଙ୍କ ଦ୍ୱାରା ନିମ୍ନ ଅଦାଲତଙ୍କ ଉପରେ ମକଦ୍ଦମା ସମ୍ବନ୍ଧେ ଆଦେଶ ପ୍ରଚାର—2. The making or issuing of a rule by a higher court on a lower court regarding a case.

ରୁଲ୍ (ଲ୍) ଠେଙ୍ଗ(ଙ୍ଗି, ଙ୍ଗେ, ଙ୍ଗୁ)ଣି—ଦେ. ବି—ରୁଲ୍ ଠେଙ୍ଗା
Rul(l) thenga(ngi, nge, ngu)ni ୨ (ଦେଖ)
Rul thenga 2 ( See ).

ରୁଲ୍ (ଲ୍) ଠେଙ୍ଗା—ଦେ. ବି.—୧ । ରୁଲ୍‌ପରି ଗୋଲ ଲମ୍ବା ଯଷ୍ଟି—
Rul(l) thenga 1. A round cudgel or stick like a ruler.
[ରୁଲ୍ (ଲ୍) ବାଡ଼ି—ଅନ୍ୟରୂପ] ୨ । ପୁଲିସ କନଷ୍ଟେବଲ୍‌ମାନେ ଯେଉଁ
রুলেরমত লাঠি (ঠেঙ্গা) ଗୋଲ ଠେଙ୍ଗାଣି ବ୍ୟବହାର କରନ୍ତି—
रोल डेङ्गा 2. Baton used by police constables.
୩ । ରେଗୁଲେସନ୍ ଲାଠି (ଦେଖ)—3. Regulasan lathi (See)

ରୁଲ୍ ପକା(କେ)ଇବା—ରୁଲ୍ କରିବା (ଦେଖ)
Rul paka(ke)iba Rul kariba (See)

ରୁଲ୍ ପଡ଼ିବା—ଦେ. ବି.—କାଗଜ ଆଦି ଉପରେ ରୁଲ୍ ସାହାଯ୍ୟରେ
Rul pardiba ଗାର ଟଣା ଯିବା—Drawing of lines on
রুল পড়া रूल पड़ना paper with the help of ruler

ରୁଲ୍ (ଲ୍) ମାଡ଼—ଦେ. ବି.—ରୁଲ୍ ଠେଙ୍ଗା ବା ରୁଲ୍ ଠେଙ୍ଗଣିଦ୍ୱାରା
Rul (l) marda ପ୍ରହାର—Strokes or blows given
রুলের মার by a baton or regulation lathi.
रोलसे मार

ରୁଲ୍ ରଦ୍(ଦ୍)—ବୈଦେ.ବି.—(କଚେରିଆ; ଇଂ.ରୁଲ୍ + ଫା.ରଦ୍)—
Rul rad(dd) କୌଣସି ମକଦ୍ଦମାର ଶୁଣାଣି ପରେ ଉଚ୍ଚ ଅଦାଲତଙ୍କ
রুল বদ্দ रूल रद्द ଦ୍ୱାରା ପ୍ରଥମେ ପ୍ରଚାରିତ ହୋଇଥିବା ଆଦେଶ ରଦ୍ଦ କରିଯିବା—The discharge of a rule by the issuing court after hearing.

ରୁଲା—ଦେ ବି.—ରେଖା; ଡୋଲା; ଲମ୍ବ ସରଳରେଖା; ଲମ୍ବ ଲମ୍ବ
Rula ଦାଗ—Stripes; long straight marks; long
বোলা দাগ धारी, लकीर streaks.

ରୁଲା ରୁଲା—ଦେ. ଅ.—( ବହୁବଚନସୂଚକ )—୧ । ଲମ୍ବା ଲମ୍ବା
Rula rula ଡୋଲା ବା ଦାଗ କ୍ରମେ—1. In long
বোলা বোলা बहुत दाग, धारीधारी streaks.
୨ । ( ଧ୍ୱନ୍ୟନୁକରଣ ) ପ୍ରସ୍ରାବ କରିବାର ଶବ୍ଦ—
2. Sound of pissing.

ରୁଲି(ଲି)—ପ୍ରାଦେ· (ମେଦିନୀପୁର) ବି.—( ସଂ. ରେଖ—ଧାତୁ; ଭୁଲ. ବି
Ruli (li) ରୁଲ୍)—ସଧବା ସ୍ତ୍ରୀଲୋକମାନେ ହାତରେ ଯେଉଁ ସରୁ ଲମ୍ବା ବଳୟ ପିନ୍ଧନ୍ତି - Very slender iron bangles worn on the wrist by wives.

ରୁଲିଂ—ବୈଦେ. ବି—(ରୁଲିଙ୍ଗ୍‌ର ଅଶୁଦ୍ଧ ଲିଖନ)—ରୁଲିଙ୍ଗ୍ (ଦେଖ)
Rulim Ruling (See)

ରୁଲି କାଚ—ଦେ. ବି.—ଖୁବ୍ ସରୁ କାଚର ଖଡ଼ୁ; ଚୁଡ଼ି—
Ruli kacha Very slender bangles of glass.
কাঁচের রুলী रेशमी चूड़ि

ରୁଲିଙ୍ଗ୍—ବୈଦେ. ବି. (ଇଂ)—(କଚେରିଆ)—ନଜୀର୍; ଉଚ୍ଚ ଅଦାଲତଙ୍କ
Ruling ମୀମାଂସା, ଯଦ୍ଦ୍ୱାରା ନିମ୍ନ ଅଦାଲତମାନେ ନିୟନ୍ତ୍ରିତ ହୁଅନ୍ତି-
রুলিঙ্গ रुलिङ्ग Ruling; decision of higher courts regulating those of lower courts.

ରୁଲିଙ୍ଗ୍ ଚୀଫ୍—ବୈଦେ. ବି. (ଇଂ)—ସ୍ୱରାଜ୍ୟଶାସନାର୍ଥ ସର୍ବଶକ୍ତିପ୍ରାପ୍ତ
Ruling chiph ଦେଶୀୟ ରାଜା—Ruling Chief. [ଦ୍ର—
রুলিঙ্গ চিফ ଓଡ଼ିଶା ଗଡ଼ଜାତର ରାଜାମାନେ ପ୍ରଥମେ ଟ୍ରିବ୍ୟୁଟେରୀ ଚୀଫ୍ (Tributary Chief), ପରେ ଫିଉଡେଟରୀ ଚୀଫ୍ (Feudatory Chief) ଥିଲେ ଓ ଏବେ ରୁଲିଙ୍ଗ୍ ଚୀଫ୍ (Ruling Chief) ନାମରେ ଅଭିହିତ ହେଉଅଛନ୍ତି।]

ରୁଷ୍ (ଧ.ତୁ)- ସ.—କ୍ରୋଧ କରିବା; ରାଗିବା—
Rush (root) To be angry.

ରୁଷ୍(ଷା)—ସ. ବ.—(ରୁଷ୍ ଧାତୁ + ଭାବ.କ୍ୱିପ୍;+ଆ)—ରୋଷ; କୋଧ.
Rush (rushā) ଗୁସ—Anger, passion

ରୁଷଣି—ଦେ. ଓ ବୈଦେ. ବ.—ରୁଷାଣି (ଦେଖ)
Rushaṇi Rushāṇi (See)

ରୁଷଭକ—ଦେ. ବ.—(ସ ବୃଷଭକ)—ହିମାଳୟ ଜାତ ବୃକ୍ଷର କନ୍ଦ
Rushabhaka ବା ମୂଳ (ଏହା ଦେଖିବାକୁ ରସୁଣ ପରି ଏବଂ ଔଷଧରେ ବ୍ୟବହୃତ)—The bulbous root of a Himalayan plant; Crapopogen Pruriens.

ରୁଷା—ଦେ. ବ.—(ସ. ରୁଷ୍ ଧାତୁ)—୧ । ଅଭିମାନ, ବାକ୍ୟଗ୍ଲାନ
Rushā କ୍ରୋଧ—1. Sullen anger; sulks, silent
बाग, अभिमान रूठना anger. [ଉ—ଝକକ ଦୋଷଙ୍କୁ ଅଭିମାନି रूठनेवाला ଦ୍ଵଷ୍ଟା କେତେ ରୁଷା ରୁଷିଛରେ । [ରୁଷ୍ଣୀ, ରୁଷିଅଣୀ—ସ୍ତ୍ରୀ] କବିସୂର୍ଯ୍ୟ. ସଙ୍ଗୀତ । ] ଣ. ପୁଂ—ଅଭିମାନୀ—Sulky; super-sensitive.

ରୁଷାଇ—ଦେ. ବ ( ସ. ରସ=ସ୍ୱାଦ; ସ. ରସବତୀ=ପାକଶାଳା )—
Rushāi ଖାଦ୍ୟାଦିର ପାକ; ରନ୍ଧନ—Cooking.
বসো(স্থ)ই रसोई

ରୁଷାଇ କରିବା—ଦେ. କ୍ରି. ଖାଦ୍ୟାଦି ରନ୍ଧିବା—
Rushāi karibā To cook food.
বস্থই করা रसोई करना

ରୁଷାଇ ଚଢ଼ା(ଢ଼େ)ଇବା—ଦେ. କ୍ରି—ଅଗ୍ନି ଉପରେ ପାକାର୍ଥ ହାଣ୍ଡିରେ
Rushāi chaṛhā(ṛhe)ibā ଦ୍ରବ୍ୟାଦି ବସାଇବା—
[ରୁଷାଇ ବସା(ସେ)ଇବା—ଅନ୍ୟରୂପ] To put pots on
বস্থই চঢান रसोई चढाना the fire for preparing meal.

ରୁଷାଇବା—ଦେ. କ୍ରି ( ରୁଷିବାର ଣିଜନ୍ତ ଆକାର )—୧ । ଅଭିମାନ
Rushāibā ଜାତ କରାଇବା—1. To make sulky.
রাগান ୨ । କ୍ରୁଦ୍ଧ କରାଇବା—2 To anger; to irritate.
रुठा(सा)ना; [ ଉ—ଚନ୍ଦ୍ରମା । ତାକୁ କେବେ ନ ରୁଷାଇବ;
रंज कराना ଉଙ୍କ. ପ୍ରେମସୁଧାନିଧି । ]

ରୁଷାଇ ବାସ—ଦେ. ବ (ନିରର୍ଥକ ସହଚର; ସ. ରସିତ+ବାସିତ)—
Rushāi bāsa ଅନ୍ନାଦିର ପାକ କରଣ—Cooking of meals.
বস্থইবাস [ ବ୍ୟ—ଖାଦ୍ୟାଦିକୁ ରନ୍ଧିବା ଓ ମସଲାଆଦି ପକାଇ
रसोईवास ସୁବାସିତ କରିବା; ଏ ଦୁଇ କର୍ମର ସମ୍ମେଳନରେ ପାକକାର୍ଯ୍ୟ ସମାହିତ ହୁଏ । ]

ରୁଷା(ଷୁ)ଣି—ଦେ. ବ ( ସ. ରୁଷ୍ ଧାତୁ )—୧ । ରୁଷିବା; କ୍ରୋଧ
Rushā(shu)ṇi କରିବା—1. Becoming angry.
অভিমান ୨ । ଅଭିମାନ—2. Sullenness; scowling;
रुठना sulks ବୈଦେ. ବ ( ଫା. ରୋସ୍‌ନାଇ )—୧ ।
বোসনাই ରୋଶନି; ରୋସ୍‌ନାଇ; ରାତିରେ ଆଲୋକଯୁକ୍ତ
रोसनाई ଶୋଭାଯାତ୍ରା—1. Grand display and
বোসনাই procession with lights and fireworks.

ब्रह्मचारीका देवदर्शन ୨ । ବ୍ରତ ହେବା ଦିନ ଉପନୟନ ପରେ ବ୍ରହ୍ମଚାରୀ ବେଶରେ ବ୍ରତବେଦୀରୁ ଉଠି ଗ୍ରାମମଣ୍ଡପରେ ଦେବାଦିଙ୍କୁ ଶୋଭାଯାତ୍ରା କରିଯିବା ଓ ତେଣୁ ଫେରି ଆସିବା—2. A procession accompanying the boy who is newly invested with the sacred thread when he walks to an Idol at the end of the village and comes back again. [ ବ୍ୟ—ବ୍ରତ ହୋଇ ସାରି ବାଳକ ବ୍ରହ୍ମଚାରୀବେଶରେ ବେଦୀରୁ ଉଠି କାନ୍ଧରେ ସାଧଁଳିଟିଏ ପକାଇ, ମଙ୍ଗଳହସ୍ତି ଜୋତା ମାଡ଼ି, ଡାଳ ପତ୍ର ଛତା ଖଣ୍ଡେ ହାତରେ ଧରି ଗ୍ରାମ ମଣ୍ଡପକୁ ଶୋଭାଯାତ୍ରା କରି ଯାଏ । ଗ୍ରାମ ମଣ୍ଡପଠାରେ ପରିବାରର ବ୍ୟକ୍ତିମାନେ ତାକୁ ଅଟକାଇ ଓ ପଚାରନ୍ତି "ତୁମେ କୁଆଡ଼େ ଯାଉଛ ?" ବାଳକ ଉତ୍ତର କରେ "ଆମ୍ଭଙ୍କୁ ବାପା ବ୍ରତ କରାଇଲେ କିନ୍ତୁ ବିବାହ ନ କରାଇ ଚାହିଁ ଆମେ ଘରୁ ରୁଷିକରି ଯାଉଅଛୁଁ ।" ଏହା ଶୁଣି ବାଟ ଓଗାଳିବା ବ୍ୟକ୍ତି କହେ "ଆଚ୍ଛା ! ଆମେ ବାପାଙ୍କୁ କହି ବିବାହ କରାଇ ଦେବା; ତୁମେ ରୁଷିଯାଅ ନାହିଁ; ଫେରିଆସ ।" ଏହା ଶୁଣି ବାଳକ ସେଠାରୁ ଘରକୁ ଫେରି ଆସେ । ସମ୍ଭବତଃ ଉପନୟନ ପରେ ବ୍ରାହ୍ମଣ ବାଳକ ବ୍ରହ୍ମଚାରୀ ବେଶରେ ଗୁରୁଙ୍କ ଗୃହକୁ ଯାତ୍ରା କରୁଥିବା କଥାର ଏହା ଚିହ୍ନ ଅଟେ । ] ୫ । ବିବାହ ଦିନ ବିବାହ ପରେ
रोसनाई ଏକାକୀ ହୋଇ ବର ପାଲିକିରେ ବସି ଶୋଭାଯାତ୍ରା କରିବା—5. A procession made by the bridegroom in the evening of the marriage without the bride accompanying him. [ ବ୍ୟ—ଏଥିରେ ମଧ୍ୟ କେତେକ ଲୋକ ରୁଷି-ଯାଉଥିବା ବରକୁ ଶଶୁରଘରୁ ଫେରାଇ ଆଣନ୍ତି । ]

ରୁଷା(ଷୁ)ଣି କରିବା—ଦେ. କ୍ରି—ଶୋଭାଯାତ୍ରା କରିବା—
Rusnā(shu)ṇi karibā To have a grand pro-
বোসনাই কবা रोसनाई करना cession.

ରୁଷା ବେଉସା—ଦେ. ବ ( ସହଚର )—ରୁଷାରୁଷି, ରୁଷିବାକର୍ମ—
Rushā beusā The state of being in sulks.
বাগ।বাগী रुठा(सा) रुठी(सी)

ରୁଷାରୁଷି—ଦେ. ବ ( ସହଚର )—ରୁଷାବେଉସା ( ଦେଖ )
Rushārushi Rushābeusā ( See )

ରୁଷି—ଗ୍ରା. ବ. ପୁଂ ( ସ. ଋଷି. )—ଋଷି; ମୁନି—
Rushi (ରୁଷିଅଣୀ—ସ୍ତ୍ରୀ) Sage.

ରୁଷିଅଣୀ—ଗ୍ରା. ବ. ସ୍ତ୍ରୀ—୧ । ଋଷିପତ୍ନୀ—1. The wife of a
Rushiāṇi ঋষিপত্নী रषियानी sage.
୨ । ରୋସ୍‌ନାଇ ( ଦେଖ )—2. Rosanāi (See)
୩ । ରୁଷାଣି (୪) ଓ (୫) (ଦେଖ)—3. Rushāṇi (4) and (5) (See) ଦେ. ଣ. ସ୍ତ୍ରୀ—ରୁଷାର ସ୍ତ୍ରୀଲିଙ୍ଗ—Feminine of Rushā.

ରୁଷିଆଣି ଘର—ଦେ. ବ.—ବିବାହାର୍ଥ ଆଗତ ବରର ସଙ୍ଗେ ଆସିଥିବା ବରଯାତ୍ରୀମାନେ ଯେଉଁ ଘରେ ବିଶ୍ରାମ କରନ୍ତି
Rushiāṇi ghara —The room set apart for the bridegroom's party's taking rest.

ରୁଷିକା—ସଂ. ବ.—କୁଆମଇତା (ଦେଖ) (ବୈଦ୍ୟକଶାସ୍ତ୍ର ଦ୍ରବ୍ୟଗୁଣ)
Rushikā Kuāmaitā (See)

ରୁଷିତ—ସଂ. ବଣ.—(ରୁଷ୍ ଧାତୁ + କର୍ତ୍ତୃ. ତ)—କୁପିତ, କ୍ରୁଦ୍ଧ; ରୁଷ୍ଟ—
Rushita Enraged; irritated; vexed.

ରୁଷିବା—ଦେ. କ୍ରି.—(ସଂ. ରୁଷ ଧାତୁ)—୧ । ରାଗ କରିବା; କ୍ରୁଦ୍ଧ ହେବା—1. To be angry. ୨ । ଅଭିମାନ କରିବା—2. To sulk. [ଉ—ହକାକ ଦୋଷକୁ ସ୍ୱାମୀ କେତେ ରୁଷା ରୁଷିଲଦେ । କବିସୂର୍ଯ୍ୟ. ବଳଦେବ ରଥ ଚଉପଦୀ ।] ୩ । କୌଣସି ବ୍ୟକ୍ତି ପ୍ରତି ଅସନ୍ତୁଷ୍ଟ ହେବା—3. To be displeased with. [ ଉ—କାଳୀକୁ ରୁଷି କାଳୀ ଗୋଡ଼ ତଳେ ପହରେ ବସୁ—ଡଗ । ]
Rushibā

ରୁଷି ଯିବା—ଦେ କ୍ରି—୧ । କ୍ରୁଦ୍ଧ ହୋଇ କୌଣସି ସ୍ଥାନରୁ ଚାଲିଯିବା—
Rushi Jibā 1 To get angry and go away.
ବୋଗେଚଲେଯାଓଯା **रूठजाना** (ଉ—ରୁଦ୍ଧ ହୋଇ କୃଷ୍ଣ ତ ଅସି ରୁଷିଗଲେ—କୃଷ୍ଣସିଂହ ମହାଭାରତ ଉଦ୍‌ଯୋଗ ।) ୨ । ବ୍ରତ ହୋଇ ବ୍ରହ୍ମଚାରୀ ବେଶରେ (ବ୍ରାହ୍ମଣ ପିଲା) ଘରୁ ରୁଷିଆଣି କରିଯିବା—2. To go in procession after the investiture with the sacred thread is over, to the end of the village.

ରୁଷୁଣୀ—ବୈଦେ. ବ—ରୋଷଣୀ (ଦେଖ)—Rosanī (See) ଦେ.
Rushuṇī ବଣ. ସ୍ତ୍ରୀ—ରୁଷାର ସ୍ତ୍ରୀଲିଙ୍ଗ—Feminine of Rushā.

ରୁଷେଇ (ଇତ୍ୟାଦି)—ଦେ. ବ—ରୁଷାଇ ଇତ୍ୟାଦି (ଦେଖ)
Rushei (etc) Rushāi etc (See)
ରସୁ(ସୋ)ଈ **रसोइ**

ରୁଷେଇଆ—ଦେ. ବଣ.ପୁଂ—ପାକକାର୍ଯ୍ୟ—Cooking. ଦେ. ବ. ପୁଂ
Rusheiā ବସୁୟା **रसोइया** ପାଚକ—A cook
(ରୁଷେୟା—ଅନ୍ୟରୂପ) [ଦ୍ର—ଏ ଶବ୍ଦର ସ୍ତ୍ରୀଲିଙ୍ଗରେ ରୁଷେଇଆଣୀ ଶବ୍ଦର ବ୍ୟବହାର ନାହିଁ । ଏଥିର ସ୍ତ୍ରୀଲିଙ୍ଗ ସୁଆରୁଣୀ ।]

ରୁଷ୍ଟ—ସଂ. ବଣ. ପୁଂ (ରୁଷ୍ ଧାତୁ + କର୍ତ୍ତୃ. ତ)—୧ । କୁପିତ; କ୍ରୁଦ୍ଧ—
Rushṭa 1. Angry; enraged. ୨ । ବିରକ୍ତ—
(ରୁଷ୍ଟା—ସ୍ତ୍ରୀ) 2. Displeased. ଦେ. ବ—କ୍ରୋଧ—
(ରୁଷ୍ଟ—ଅପଭ୍ରଂଶ) Anger. ( ଉ—ଗୁରୁଦେବ ହେ ନିଜ ମନରୁ ରୁଷ୍ଟକୁ—କୃଷ୍ଣସିଂହ ମହାଭାରତ. ବନ । )
ରୋଷ **रोष**

ରୁଷ୍ଟି—ସଂ. ବ ( ରୁଷ୍ ଧାତୁ + ଭାବ ତି )—୧ । ରୋଷ; କ୍ରୋଧ—
Rushṭi 1. Anger. ୨ । ବିରକ୍ତି—2. Displeasure; vexation.

ରୁଷ୍ୟପ୍ରୋକ୍ତା—ସଂ. ବ (ବୈଦ୍ୟକ)—ଅତିବଳା; ପେଡ଼ିପେଡ଼ିକା ଗଛ—
Rushyaproktā Indian mallow.

ରୁସ—ବୈଦେ. ବ ( ନାମ; ଇଂ ରୁସ୍ )—ରୁସିଆଦେଶବାସୀ ବ୍ୟକ୍ତି—
Rus ৰুস **रूस** A Russ; a Russian.
ବୈଦେ. ବଣ—ରୁସିଆ ଦେଶସମ୍ବନ୍ଧୀୟ—Russian.
ପ୍ରାଦେ ( ସମ୍ବଲପୁର ) ବ ( ସଂ. ରୋଷ ) କ୍ରୋଧ; ରୋଷ—Anger.

ରୁସଣି(ନି)—ବୈଦେ. ବ (ଫା. ରୋସନାଇ); ରୁସନାଇ (ଦେଖ)
Rusaṇi(ni) Rusanāi (See)

ରୁସନା(ନେ)ଇ—ବୈଦେ. ବ ( ଫା. ରୋସ୍‌ନାଇ; ଭୁଲ ସଂ. ରଶ୍ମି )—
Rusanā(ne)i ୧ । ଆଲୋକ—1. Light ୨ । ଆଲୋକସୃଙ୍ଖଳା; ଆଲୋକପୁଞ୍ଜ—2. A line or group of lights. ୩ । ଉଜ୍ଜ୍ୱଳ ଆଲୋକମୟ ଶୋଭାଯାତ୍ରା—3. Grand procession with lights and fireworks.
রোসনাই **रोशनाइ**

ରୁସମ୍ (ଇତ୍ୟାଦି) ବୈଦେ. ବ—ରୋସମ ଇତ୍ୟାଦି (ଦେଖ)
Rusam (etc) Rosama etc (See)

ରୁସା(ସୁ)ଣି(ନି)—ବୈଦେ. ବ.—ରୁଷାଣି ବୈଦେ (ଦେଖ)
Rusā(su)ṇi(ni) Rushāṇi (See)

ରୁସିଆ—ବୈଦେ. ବ (ନାମ)—ଇଉରୋପର ଓ ଆସିଆର ଉତ୍ତରସ୍ଥ ଦେଶ—
Rusiā ৰুসিয়া **रूस** Russia [ ଦ୍ର—ରୁସିଆ ଦେଶ ଇଉରୋପ ମହାଦେଶରେ ଓ ଆସିଆ ମହାଦେଶରେ ଅବସ୍ଥିତ, ଯଥା—ଇଉରୋପୀୟ ରୁସିଆ ଓ ଅସିଆଁକ ରୁସିଆ । ପୂର୍ବେ ଏହା ଜାର୍ (czar) ଉପାଧିଧାରୀ ସମ୍ରାଟଙ୍କ ସ୍ୱେଚ୍ଛାଚାର ଶାସନାଧୀନ ଥିଲା । କିନ୍ତୁ ଗତ ଇଉରୋପୀୟ ଯୁଦ୍ଧାରମ୍ଭ ପରେ ଖ୍ରୀ୧୯୧୭ ରେ ପ୍ରଜାମାନେ ମେଳ ହୋଇ ଜାର୍‌ଙ୍କୁ ହତ୍ୟାକରି ପ୍ରଜାତନ୍ତ୍ର ବଲସେବିକ(Bolshevic) ଶାସନର ପ୍ରତିଷ୍ଠା କରିଅଛନ୍ତି ।] ଦେ. ବ. ପୁଂ—ରୁଷେୟା; ପାଚକ—Cook.

ରୁସିୟା(ଆ)ନ୍—ବୈଦେ. ବଣ ଓ ବ—ରୁସ୍ (ଦେଖ)
Rusiyā(ā)n Rus (See)

ରୁହ୍ (ଧାତୁ)—ସଂ—୧ । ଉତ୍ପନ୍ନ ହେବା—1. To grow.
Ruh (root) ୨ । ଗଜୁରିବା—2. To germinate.
୩ । ଆରୋହଣ କରିବା—3. To ascend; to rise up. ୪ । ପହଞ୍ଚିବା—4. To reach; to attain. (Apte)

ରୁହ—ସଂ. ବ (ରୁହ୍ ଧାତୁ + କର୍ତ୍ତୃ. ଅ)—ଦୁବ୍ବା; ଦୂବ—A sort of
Ruha creeping grass; Cynoden. ସଂ.ବଣ-ଜାତ;ଉତ୍ପନ୍ନ-Produced; born. ବଣ (ଅନ୍ୟ ଶବ୍ଦ ସଙ୍ଗେ ସମାସରେ ଯୁକ୍ତ ହେଲେ ତଦୁତ୍ପନ୍ନ; ଯଥା—ଶିରୋରୁହ, ସରୋରୁହ ଇତ୍ୟାଦି)ରେ ଜାତ—Growing in. ଦେ କ୍ରି. (ରହିବା କ୍ରିୟାର ଅନୁଜ୍ଞା ବିକଳ୍ପରେ ରୂପ)—୧ । (ତୁମ୍ଭେ) ଅବସ୍ଥାନ କର—1. (Imperative) (you) Stay. ୨ । ଅପେକ୍ଷା କର—2. (Imperative) Wait. [ଦ୍ର—'ରହିବା' କ୍ରିୟାର ଅନୁଜ୍ଞାରେ ରହ ଓ ରୁହ, କହିବା କ୍ରିୟାର ଅନୁଜ୍ଞାରେ କହ ଓ କୁହ ହୁଏ ।]
ବୋଷ **रहो**

**ରୁହକ**—ସ. ବ (ରୁହ୍ ଧାତୁ + କର୍ତ୍ତୃ. ଅକ)—୧ । ଛିଦ୍ର; ଗର୍ତ୍ତ—
Ruhaka 1. Hole. ୨ । ଗୁହା—2. Cave.

**ରୁହା**—ସ. ବ. ସ୍ତ୍ରୀ (ରୁହ୍ ଧାତୁ + କର୍ତ୍ତୃ ଅ + ସ୍ତ୍ରୀ. ଆ) – ୧ । ଦୁବା; Ruhā ଦୁବ ଘାସ—1. Creeping grass; Cynoden. ୨। ପାଳଆ (ହି. ଶ)—2. Comb. ୩ । ମାଂସରୋହିଣୀନାମକ ବୃକ୍ଷ—3 The Red wood ture. ୪ । ଲଜ୍ଜାଳୁ ଲତା—4. Mimosa creeper. ଦେ. ବ—ଉହା ଉଷୋ(ଖୋ) रेती (ଦେଖ)—Ubā. (See)

**ରୁହାଇବା**—ଦେ. କି (ସ. ରୁହ ଧାତୁ)—୧ । ସ୍ଥାପିତ କରିବା—
Ruhāibā 1. To place. ୨ । ରଖାଇବା—2. To cause to stay; to stop. [ ଉ—ଶୁଣି ତାନଙ୍କ କେମା କଣାଇଲେ ରେ ଦେବ ଏଠାରେ ଯାନ ରୁହାଇବା । बाधा, बाधान ବିଶ୍ୱନାଥ. ବିଚିତ୍ର ରାମାୟଣ ।] ୩ । ସ୍ଥିର କରିବା— रखाना, रखवाना 3. To settle. ୪ । ସ୍ଥିର କରି ରଖିବା—4. To set. ୫ । ନିବର୍ତ୍ତାଇବା—5. To dissuade. बोआ ୬ । (ସ ରୁହ ଧାତୁ ଣିଚ୍; ରୋପି ଧାତୁ) ରୁଆଇବା; ରୋପଣ रोपना କରିବା—6. To plant. ୭ । ଅଟକାଇବା—7. To आटकान obstruct; to restrain. [ ଉ—ଏତେକେ ଭରିବା रोकना ଗଙ୍କ ବନ୍ଧ, ରାଜା ମଣ୍ଡିଥିଲ ରୁହାଅ । ଜଗନ୍ନାଥ ଭାଗବତ ।]

**ରୁହି**—ଦେ. ବ—ରୋହି (ଦେଖ)
Ruhi Rohi. (See)

**ରୁହିତନ**—ଦେ. ବ—ରୁଇତନ; ତାସ୍ ଖେଳରେ ନାଲି ଚଉକୋଣିଆ Ruhitana ରଙ୍ଗ; ରକ୍ତବର୍ଣ୍ଣ ଚିହ୍ନଯୁକ୍ତ ତାସ୍—The diamond of the playing cards. रूईतन खुटिया

**ରୁହୁ**—ବୈଦେ. ବ (ଆ)—ଆତ୍ମା—
Ruhu Soul; spirit. रूह रूहु

**ରୁହ୍ୱା**—ସ ବ (ରୁହ୍ ଧାତୁ + କର୍ତ୍ତୃ. ଅନ୍; ରୁହ୍ୱନ୍ ୧ମା. ୧ବ)—ବୃକ୍ଷ—
Rūhwā A tree; plant. (Apte)

**ରୂକ୍ଷ**—ସ. ବିଣ (ରୂକ୍ଷ ଧାତୁ—କର୍କଶ ହେବା + କର୍ତ୍ତୃ. ଅ)—
Rūksha ୧ । କର୍କଶ—1. Rough; harsh. (Apte). (ରୂକ୍ଷତା—ବିଶେଷ୍ୟ) ୨ । କଠିନ—2. Hard. ୩ । ନିର୍ଦ୍ଦୟ—3. Cruel. ୪ । କଠୋରବ୍ରତଧାରୀ—4. Observing strict penance. ୫ । ଅନନୁକୂଳ—5 Unfavourable. ୬ । ସ୍ନେହଶୂନ୍ୟ—6 Devoid of affection. ୭ । ଅଚିକ୍କଣ—7. Not smooth. ୮ । ଶୁଷ୍କ—8. Dry· parched up (Apte). ୯ । ତୈଳହୀନ—9. Not oily. ସ. ବ—ବୃକ୍ଷ—Tree. [ ଦ୍ର—ବୃକ୍ଷ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ବ୍ୟବହୃତ ଶବ୍ଦମାନ 'ରୂକ୍ଷ' ଶବ୍ଦଯୁକ୍ତ ହୋଇ ମଧ୍ୟ ବ୍ୟବହୃତ ହୁଏ । ବୃକ୍ଷ ଶବ୍ଦ ପରେ ଦେଖ ।]

**ରୂକ୍ଷପତ୍ର**—ସ. ବ (ବହୁବ୍ରୀହି)—ଶାଖାଡ଼ା ଗଛ—
Rūkshapatra Trophis Aspera (M. W)

**ରୂଢ଼**—ସ. ବିଣ.—(ରୁହ୍ ଧାତୁ + କର୍ତ୍ତୃ. ତ)—୧ । ଜାତ; ଉତ୍ପନ୍ନ—
Rūrdha 1. Born; produced. ୨ । ଆରୂଢ଼; ଚଢ଼ିଥିବା [ରୂଢା—ସ୍ତ୍ରୀ] (ହି ଶ.)—Ascended. ୩ । ପ୍ରସିଦ୍ଧ; ପ୍ରଚୁର, ଖ୍ୟାତ—3. Famous; renowned; notorious. ୪ । କର୍କଶ; କଠୋର—4. Rough; harsh. ୫ । କଠିନ—5 Hard. ୬ । ଅବିଭାଜ୍ୟ—6. Indivisible. ୭ । ରୁଷ୍ଟ; ବିରକ୍ତିକର; ଅପ୍ରିୟ—7. Teasing. ୮ । ଅଭଦ୍ର; ଅଶିଷ୍ଟ—8. Discourteous ୯ । ସାଧାରଣତଃ ଜ୍ଞାତ—9. Commonly known; become current (Apte). ୧୦ । (ବ୍ୟାକରଣ) ବ୍ୟୁତ୍ପତ୍ତିଲଭ୍ୟ ଅର୍ଥ ପ୍ରକାଶ ନ କରି ବ୍ୟବହାର କ୍ରମେ ଅନ୍ୟାର୍ଥରେ ପ୍ରକାଶକ (ଶବ୍ଦ)—10. (words) (in grammar) Used in a sense which does not express the derivative or literal meaning. [ ଦ୍ର—ଯଥା ବୃକ୍ଷ=ବୃକ୍ଷ୍ ଧାତୁ=ବେଷ୍ଟନ କରିବା+ଅ, ବ୍ୟୁତ୍ପତ୍ତିଗତ ଅର୍ଥ ବେଷ୍ଟନକାରୀ, କିନ୍ତୁ ଏହା ପରମ୍ପରା ବ୍ୟବହାର କ୍ରମେ ଉଦ୍ଭିଦକୁ ବୁଝାଉ ଅଛି । ଅତଏବ ବୃକ୍ଷର ରୂଢ଼ ଅର୍ଥ ଗଛ । 'ଗୋ'ର (ଗମ୍ ଧାତୁ + ଓ) ବ୍ୟୁତ୍ପତ୍ତିଗତ ଅର୍ଥ,—ଯେ ଗଛ କରେ; କିନ୍ତୁ ବ୍ୟବହାରକ୍ରମେ ଗୋରୁନାମକ ପଶୁକୁ ବୁଝାଉ ଅଛି । ଅତଏବ ଗୋ ଶବ୍ଦର ରୂଢ଼ ଅର୍ଥ ଗୋରୁ । ଅର୍ଥ କ୍ରମେ ଶବ୍ଦମାନ ତିନି ଶ୍ରେଣୀରେ ବିଭକ୍ତ—ଯୌଗିକ, ରୂଢ଼, ଯୋଗରୂଢ଼; ଯେଉଁ ଶବ୍ଦର ଅଙ୍ଗମାନ ସାର୍ଥକ ଅଟେ ତାକୁ ଯୌଗିକ ଶବ୍ଦ କହନ୍ତି, ଯଥା ଗଜରାଜ । ଯେଉଁ ଶବ୍ଦ ତାହାର ପ୍ରକୃତିଗତ ଅର୍ଥମାନଙ୍କ ମଧ୍ୟରୁ ଗୋଟିଏ ଅର୍ଥଗତ ବସ୍ତୁକୁ ବୁଝାଏ ତାକୁ ଯୋଗରୂଢ଼ କହନ୍ତି । ଯଥା ପଙ୍କଜ, ଲମ୍ବୋଦର, ହନୁମାନ୍ ।] ୧୧ । ସୁନିଶ୍ଚିତ; ନିଶ୍ଚିତ—11. Ascertained; certain (Apte). ୧୨ । ବୃହତ୍; ବଡ଼—12. Large; great (Apte). ୧୩ । ମୌଳିକ—13. Elementary. [ ଯଥା—ରୂଢ଼ ପଦାର୍ଥ ।] ଦେ. ବ—କ୍ଷୌର ନ ହେବା ଯୋଗୁଁ ଉଠିବା କେଶର ଖୁଣ୍ଟା—Stumps of hair growing on the face in the interval of two shavings.

**ରୂଢ଼ କଣ୍ଟିଆ**—ପ୍ରାଦେ. (ବାଲେଶ୍ୱର) ବ—କାଉଁରିଆ କାଉଁରିଆ Rūrdha kantiā ସାମୁଦ୍ରିକ ମତ୍ସ୍ୟ ବିଶେଷ—A species of middle sized scaleless seafish.

**ରୂଢ଼ ପଦାର୍ଥ**—ସ. ବ. ( ଜଡ଼ ବିଜ୍ଞାନର ଅଧୁନିକ ପ୍ରୟୋଗ ) – ଅବିମିଶ୍ର Rūrdha padārtha ପଦାର୍ଥ; ଯେଉଁ ସକଳ ବସ୍ତୁ ସ୍ୱଜାତୀୟ ପରମାଣୁ ଛଡ଼ା ଅନ୍ୟ ପଦାର୍ଥର ପରମାଣୁ ଯୋଗରେ ଉତ୍ପନ୍ନ ହୁଏ ନାହିଁ, ଯଥା – ସ୍ୱର୍ଣ୍ଣ; ପାରଦ; ରୌପ୍ୟ; ଅଙ୍ଗାର—(physical science) Elements. e.g. gold, silver.

**ରୂଢ଼ ବଚନ**—ସଂ. ବି. (କର୍ମଧା)—୧ । କର୍କଶ ବାକ୍ୟ—1. Harsh
Rūrdha bachana language. ୨ । ଅଶିଷ୍ଟ ବଚନ—
ରୂଢ଼ ବାକ୍ୟ } ଅନ୍ୟରୂପ 2. Uncivil or discourteous
ରୂଢ଼ ଭାଷା } language.
(ରୂଢ଼ ବଚନା—ସ୍ତ୍ରୀ) ସଂ ବିଣ. ପୁଂ—ରୂଢ଼ ଭାଷୀ ( ଦେଖ )
Rurdha bhāshī ( See )

**ରୂଢ଼ ଭାଷୀ**—ସଂ. ବିଣ. ପୁଂ (ରୂଢ଼ ଭାଷିନ୍ ଶବ୍ଦ; ୧ମା. ୧ବ)—
Rūrdha bhāshī ଯେ କର୍କଶ କଥା କହେ—Speaking
(ରୂଢ଼ ଭାଷିଣୀ—ସ୍ତ୍ରୀ) (ରୂଢ଼ବାକ୍—ଅନ୍ୟରୂପ) roughly.

**ରୂଢ଼ ମୂଳ**—ସଂ. ବିଣ (ବହୁବ୍ରୀହି, ରୂଢ଼ ହୋଇଅଛି ମୂଳ ଯାହାର)—
Rūrdha mūla (ରୂଢ଼ମୂଳା—ସ୍ତ୍ରୀ) ବଦ୍ଧମୂଳ—Well-rooted.

**ରୂଢ଼ ଯୌବନ**—ସଂ ବିଣ. ପୁଂ (ବହୁବ୍ରୀହି)—ଅରୂଢ଼ଯୌବନ; ଯେଉଁ
Rūrdha jaubana ବ୍ୟକ୍ତି ଯୌବନ ପ୍ରାପ୍ତ ହୋଇଅଛି—
(ରୂଢ଼ ଯୌବନା—ସ୍ତ୍ରୀ) Having attained youth.

**ରୂଢ଼ ସୌହୃଦ**—ସଂ. ବିଣ. ପୁଂ (ବହୁବ୍ରୀହି)—ଯାହାର ବନ୍ଧୁତା ଦୃଢ଼
Rūrdha sauhṛuda ଓ ଗଭୀର ଅଟେ—Firm in friend-
(ରୂଢ଼ ସୌହୃଦା—ସ୍ତ୍ରୀ) ship; of deeprooted friend-
ship (Apte).

**ରୂଢ଼ା**—ସଂ. ବିଣ. ସ୍ତ୍ରୀ—ରୂଢ଼ର ସ୍ତ୍ରୀ ଲିଙ୍ଗ—
Rūrdhā Feminine of Rūrdha.

**ରୂଢ଼ି**—ସଂ. ବି. ( ରୁହ୍ ଧାତୁ+ଭାବ. କ୍ତି )—୧ । ଉତ୍ପତ୍ତି; ଜନ୍ମ—
Rūrdhi 1 Origin; growth; birth; production.
୨ । ପ୍ରସିଦ୍ଧି; ଖ୍ୟାତି—2. Celebrity, fame; notoriety. ୩ । ବୃଦ୍ଧି—3. Increase; development (Apte). ୪ । ଉତ୍ଥାନ—4. Rise; ascent (Apte). ୫ । ପ୍ରାଦୁର୍ଭାବ (ବ୍ୟ. ଗ)—5. Predominance; prevalence; outbreak. ୬ । ପ୍ରଥା; ଶାସ୍ତ୍ର (ବ୍ୟ. ଗ)—6, Custom; usage; tradition ୭ । ନିଶ୍ଚୟ—7. Certainty. ୮ । (ବ୍ୟାକରଣ) ଶବ୍ଦର ଅର୍ଥବୋଧକ ଶକ୍ତି ବିଶେଷ; ପ୍ରକୃତିପ୍ରତ୍ୟୟଗତ ଅର୍ଥ ଛଡ଼ା ଅନ୍ୟ ଅର୍ଥ ବୁଝାଇବାର ଶକ୍ତି—8. (grammar) The power of a word to express a meaning or signification different from what is apparent from its derivation. ୯ । ଶବ୍ଦର ସାଧାରଣତଃ ଗୃହୀତ ଅର୍ଥ—9. Popular meaning; conventional; meaning of a word (Apte).

**ରୂପ୍ (ଧାତୁ)**—ସ—୧ । ଗଢ଼ିବା; ରୂପ ଯୁକ୍ତ କରିବା—1. To form
Rūp (root) to fashion (Apte) ୨ । ଅଭିନୟ କରିବା—2. To represent on the stage; to act; to gesticulate (Apte). ୩ । ପର୍ଯ୍ୟବେକ୍ଷଣ କରିବା—3. To mark; to behold; to observe care; fully (Apte). ୪ । ଖୋଜିବା—4. To find out to seek (Apte). ୫ । ବିଚାର କରିବା; ଚିନ୍ତା କରିବା-5 To consider; to ponder over (Apte). ୬ । ସ୍ଥିର କରିବା—6. To settle; to fix upon (Apte). ୭ । ଅନୁସନ୍ଧାନ ବା ପରୀକ୍ଷା କରିବା—7. To investigate, to examine (Apte). ୮ । ନିଯୁକ୍ତ କରିବା—8. To appoint (Apte).

**ରୂପ**—ସ ବି [ରୂପ୍ ଧାତୁ=ରୂପଯୁକ୍ତ କରିବା + କର୍ମ ଅ]—୧ । ଆକାର;
Rūpa ଆକୃତି—1. Shape; form [ ଦ୍ର—ବାସ୍ତବ ପଦାର୍ଥମାନଙ୍କର ପାଞ୍ଚଇନ୍ଦ୍ରିୟଦ୍ୱାରା ଗ୍ରାହ୍ୟ ପାଞ୍ଚଗୋଟି ମୌଳିକ ବା ଇନ୍ଦ୍ରିୟ ଗ୍ରାହ୍ୟ ଗୁଣ ଅଛି । ଯଥା—୧ । ଦର୍ଶନେନ୍ଦ୍ରିୟ ବା ଚକ୍ଷୁଦ୍ୱାରା ଅନୁଭୂତ—ରୂପ ବା ବର୍ଣ୍ଣ ୨ । ରସନେନ୍ଦ୍ରିୟ ବା ଜିହ୍ୱାଦ୍ୱାରା ରସ ବା ସ୍ୱାଦ, ୩ । ଘ୍ରାଣେନ୍ଦ୍ରିୟ ବା ନାସିକାଦ୍ୱାରା ଗନ୍ଧ ବା ବାସନା, ଶ୍ରବଣେନ୍ଦ୍ରିୟ ବା କର୍ଣ୍ଣ ଦ୍ୱାରା ଶବ୍ଦ ବା ଧ୍ୱନି, ସ୍ପର୍ଶନେନ୍ଦ୍ରିୟ ବା ଚର୍ମଦ୍ୱାରା—ସ୍ପର୍ଶ । ]
୨ । ମୂର୍ତ୍ତି—2. Image. ୩ । ପ୍ରକୃତି; ସ୍ୱଭାବ—3.Nature;natural disposition; propensity. ୪ । ସୌନ୍ଦର୍ଯ୍ୟ—4. Beauty. ୫ । ବିଭକ୍ତିଯୁକ୍ତ ଶବ୍ଦ ବା କୃଦନ୍ତଧାତୁ—5.Inflected word;inflection of a noun or verb. ୬ । ଏକ ସଂଖ୍ୟା - 6. A unit. ୭ । ପ୍ରକାର—7. Kind. ୮ । ପଦାର୍ଥର ଦୃଶ୍ୟମାନ ଆକାର; ଚେହେରା-8. Appearance. ୯ ଦୃଶ୍ୟକାବ୍ୟ—9. A drama which is enjoyed by sight only. ୧୦ । ଅବତାର—10. Incarnation. ୧୧ । ବର୍ଣ୍ଣ—11. Colour. ୧୨ । ଶରୀର; ଦେହ (ବ୍ୟ. ଗ)—12. Body. ୧୩ । ଦଶା; ଅବସ୍ଥା; ଦେଶକାଳଭେଦବସ୍ଥ(ବ୍ୟ. ଗ)—13. Condition. ୧୪ । ଭେଦ; ବିକାର (ବ୍ୟ. ଗ)—14. Change of form. ୧୫ । ଚିହ୍ନ; ଲକ୍ଷଣ (ବ୍ୟ.ଗ)—15. Sign; indication. ୧୬ । ରୂପକ (ଦେଖ) ( ବ୍ୟ. ଗ. )—16 Rūpaka (See) ୧୭ । ରୁପା; ଶୁଦ୍ଧ ( ବ୍ୟ. ଗ. )—17. Silver. ୧୮ । ପଶୁ—18, Beast. ୧୯ । ନାମ—19. Name ୨୦ । ଗ୍ରନ୍ଥାଦିର ଆବୃତ୍ତି-20. Recitation or reading of a book. ୨୧ । ଶ୍ଲୋକ—21. Couplet or quadret.
ଦେ. ବି—୧ । ଚିତ୍ର; ଛବି—1. Picture; a drawing. ୨ । ଥଟ୍ଟା; ପରିହାସ—2. Jesting. ୩ । ବେଶ—3. Garb; dress. ବିଣ (ଅନ୍ୟ ଶବ୍ଦର
ରୂପ ରୂପ ପରେ ଯୁକ୍ତ ହେଲେ) ସଦୃଶ; ତୁଲ୍ୟ; ପରି—Similar to; like. (ଯଥା—ସେରୂପ ସୁନ୍ଦର ବାଳକ ମୁଁ ଦେଖିନାହିଁ; ତୁମ୍ଭେ କାହିଁ ଏରୂପ କଥା କହୁଅଛ ? )
ପ୍ରାଦେ(ସମ୍ବଲପୁର) ବି—ଶୁଆ—Parrot.

**ରୂପକ**—ସଂ. ବି (ରୂପ+କ; ରୂପଧାତୁ+ଣିଚ+କର୍ମ. ଅକ)—୧ ।
Rūpaka କାବ୍ୟର ଅଲଙ୍କାରବିଶେଷ; ଉପମେୟ ଓ ଉପମାନର

ଅଭେଦ ରୂପକ ଅଳଙ୍କାର—1. Simile; a figure of speech in which no difference is observed between the things compared; the identification of the objects of comparision. [ଦ୍ର—ଉପମାନ ଓ ଉପମେୟର ଭିନ୍ନତ୍ୱ, ନିର୍ଦ୍ଦେଶ ସ୍ଥଳରେ ରୂପକ ଅଳଙ୍କାର ହୁଏ । ଏହା ପାଞ୍ଚ ପ୍ରକାର ।

୧ । ଅଧିକାରୂଢ ବୈଶିଷ୍ଟ୍ୟ ରୂପକ :—ଯେଉଁଠାରେ ଉପମେୟର ଗୁଣାଦି ଉପମାନ ଅପେକ୍ଷା ଅତିଶୟରୂପେ ବିଶେଷଣ ଦ୍ୱାରା ବିଶେଷିତ ହୁଏ । ଯଥା—

ଜଙ୍ଗମ ହେମ ଲତା ପରେ ଚନ୍ଦ୍ର ଦେବତା
ଫଳ ଫଳନ୍ତି ନେତ୍ରୁଁ ଅଛି ମହୀରେ—ସଙ୍ଗୀତ ।

'ତାହାଙ୍କ ମୁଖ ନିଷ୍କଳଙ୍କ ଚନ୍ଦ୍ର ଅଟେ ।'

୨ । ନିରଙ୍ଗ ରୂପକ :—ଯେଉଁଠାରେ ଅଙ୍ଗର ଆରୋପ ନ କରି ଅଙ୍ଗୀର ମାତ୍ର ଆରୋପ କରାଯାଏ । ଯଥା—

'ମୁଁ ଆପଣଙ୍କ ବଚନ ସୁଧା ପାନ କରି ତୃପ୍ତ ହେଲି ।'

ଯୀଉଛି ପଥ ଶେଷରେ ନ ଜାଣି ତହିଁ ବି
ପାଦ ବଢ଼ାଇଲେ ପଦ ପଦକେ କଣ୍ଟା ।'
ବନମାଳୀ ସଙ୍ଗୀତ ।

୩ । ମାଳା ରୂପକ :—ଏଥିରେ ଆରୋପର ଗୋଟିଏ ମାତ୍ର ବିଷୟକୁ ଉଦ୍ଦେଶ୍ୟ କରି ଦୁଇ ବା ତତୋଧିକ ଭିନ୍ନ ଭିନ୍ନ ଉପମାନର ଆରୋପ କରାଯାଏ । ଯଥା—'ପ୍ରଭୋ ! ଆପଣ ମୋ ହୃଦୟକମଳର ଚନ୍ଦ୍ରମା, ମନଶ୍ଚାତକର ଘନ, ଭକ୍ତିବୃକ୍ଷର କୁସୁମ ଏବଂ ଦୀନହୃଦୟର ରତ୍ନ ଅଟନ୍ତି ।' 'ଧନ ! ତୁ ମୋ ଅନ୍ଧର ଲଉଡ଼ି, ରଙ୍କ ରତନ, ଅନ୍ଧାର ମାଣିକ ଅଟୁ' ।

୪ । ପରମ୍ପରିତ ରୂପକ :—ଏକ ବସ୍ତୁର ଆରୋପ ହେତୁ ଅନ୍ୟ ବସ୍ତୁର ଆରୋପ ।

ଯଥା—ଖେଳାଇ ଅମ୍ଭେ ଯେତେ କହିଲୁ ବେ ।
ଖେଳନ୍ତୁ ନାହିଁ ବାଳା ପଦ୍ମିଲୁରେ
ଘୃତ ଘଟକୁ ଶିଖି - ଶିଖା ଉପରେ ରଖି
ଶିଖିଷଦେହା ଏହା ସହିଲୁରେ ।
କବିସୂର୍ଯ୍ୟ. ବଳଦେବ ରଥ ଗୀତ ।

୫ । ସାଙ୍ଗ ରୂପକ :—ଅଙ୍ଗୀଠାରେ କୌଣସି ପଦାର୍ଥର ଆରୋପ ହେତୁ ତଦଙ୍ଗୀଭୂତ ବସ୍ତୁରେ ଅନ୍ୟ ପଦାର୍ଥର ଆରୋପ । ଯଥା—

ଚୋକାଇ ଦେଲେ ତୃଷିତ, ଚକୋର ଚଞ୍ଚୁରେ ଶୀତ-
ଭାନୁ ଚନ୍ଦ୍ରିକାକୁ ବାନ୍ତି ଯାଏ କି ସତ୍ୱରରେ ।
କବିସୂର୍ଯ୍ୟ. ବଳଦେବ ରଥ ଗୀତ ।

ସଞ୍ଚରଣଶୀଳ ନବ ତମାଳ ଭୂରୁହ
ସଙ୍ଗେ ଖେଳି ଅଛିଟି କି ସଖାସଖୀ ବ୍ୟୂହ
ଶାରି ଶୁକ ପରଭୃତ
ଶାଖାମାନଙ୍କରେ କରୁଅଛନ୍ତି ସଙ୍ଗୀତ ।
କବିସୂର୍ଯ୍ୟ. ବଳଦେବ ରଥ ଗୀତ ।

ଉପମା ଅଳଙ୍କାର ସଙ୍ଗେ ରୂପକ ଅଳଙ୍କାରର ପ୍ରଭେଦ ଏହି ଯେ, ଉପମା ଅଳଙ୍କାରରେ ଉପମେୟ ସଙ୍ଗେ ଉପମାନର ତୁଳନା ହୁଏ । କିନ୍ତୁ ରୂପକରେ ଉଭୟର ଅଭେଦ କଳ୍ପନା କରାଯାଏ ।] ୨ । ଆକୃତି; ଗଠନ—2. Shape; form. ୩ । ରୌପ୍ୟ—3. Silver. ୪ । ଦୃଶ୍ୟକାବ୍ୟ ବା ନାଟକ—4. Drama. [ଦ୍ର—ନାଟକ ପ୍ରଭୃତିକୁ ରୂପକ କହାଯାନ୍ତି । ନାଟ୍ୟକଳା ଶାସ୍ତ୍ରର ପ୍ରଥମାଚାର୍ଯ୍ୟ ଭରତମୁନି । ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ "ଦଶ ରୂପକ ।" ତହିଁରେ ଦଶବିଧ ରୂପକ ପ୍ରଦର୍ଶନ ବର୍ଣ୍ଣିତ । ସେ ପୁସ୍ତକର ପ୍ରଥମ ଭାଗକୁ ବିଷ୍ଣୁପୁତ୍ର-ଧନଞ୍ଜୟ ଏବଂ ୨ୟ ଭାଗକୁ ବିଷ୍ଣୁପୁତ୍ର-ଧନିକ ରଚି ଅଛନ୍ତି । ବୋଧ ହୁଏ ସେ କେବଳ ଭ୍ରାତୃଦ୍ୱୟ ମଧ୍ୟ ଭୋଜରାଜ ବିରଚିତ ସରସ୍ୱତୀ କଣ୍ଠାଭରଣରେ, ମମ୍ମଟଭଟ୍ଟ ବିରଚିତ କାବ୍ୟ ପ୍ରକାଶରେ, ଚନ୍ଦ୍ରଶେଖର ପୁତ୍ର ବିଶ୍ୱନାଥ କବିରାଜ ବିରଚିତ ସାହିତ୍ୟ ଦର୍ପଣରେ, ଶାର୍ଙ୍ଗଦେବ ବିରଚିତ ସଙ୍ଗୀତ ରତ୍ନାକରରେ, ଦଣ୍ଡି ବିରଚିତ କାବ୍ୟାଦର୍ଶରେ, ଅପ୍ପୟ ଦୀକ୍ଷିତ ବିରଚିତ କୁବଳୟାନନ୍ଦରେ, ଜଗନ୍ନାଥ ପଣ୍ଡିତ ବିରଚିତ ରସଗଙ୍ଗାଧରରେ, ବିଦ୍ୟାନାଥ ବିରଚିତ ପ୍ରତାପରୁଦ୍ରୀୟରେ, କବି କର୍ଣ୍ଣପୂରକ ବିରଚିତ ଅଳଙ୍କାର କୌସ୍ତୁଭରେ, ରୁଦ୍ରଭଟ୍ଟ ବିରଚିତ ଶୃଙ୍ଗାର ତିଳକରେ, ଭାନୁଦତ୍ତ ବିରଚିତ ରସ ମଞ୍ଜରୀରେ ଏବଂ ରସ ତରଙ୍ଗିଣୀରେ ରୂପକ ଲକ୍ଷଣାଦି ଦ୍ରଷ୍ଟବ୍ୟ । ରୂପକର ଆଦର୍ଶ ସ୍ୱାଭାବିକ ପାତ୍ର ପୋଷଣ ଏବଂ ଭାବକୁ ଅଭିନୟ ଦ୍ୱାରା ପ୍ରକଟନ । ରୂପକ ଦଶବିଧ, ଉପରୂପକ ଅଷ୍ଟାଦଶବିଧ, ତନ୍ମଧ୍ୟରେ ରୂପକ ଉତ୍ତମ ।

ରୂପକରେ ୧ । ନାଟକ :—ନାଟକରେ ୫ଠାରୁ ୧୦ ଯାଏ ଅଙ୍କବିଭାଗ । ତାର ଇତିବୃତ୍ତ ପୌରାଣିକ, ଐତିହାସିକ କିମ୍ବା କଳ୍ପିତ, କିମ୍ବା ତତ୍ତ୍ରୟ ସମ୍ପର୍କ ହୋଇଥାଏ । ତାର ପ୍ରଧାନ ରସ ଶୃଙ୍ଗାର କିମ୍ବା ବୀର । ତହିଁ ପୁରୁଷପାତ୍ର ସଂଖ୍ୟା ବେଶି । ନାଟକ ଦ୍ୱିବିଧ :—ମଙ୍ଗଳାନ୍ତ ଏବଂ ବିଷାଦାନ୍ତ । ଭାରତୀୟ ନାଟକଗୁଡ଼ିକ ମଙ୍ଗଳାନ୍ତ ମାତ୍ର । ଉଦାହରଣ ଅଭିଜ୍ଞାନ ଶାକୁନ୍ତଳ, ବେଣୀସଂହାର ପ୍ରଭୃତି ।

୨ । ପ୍ରକରଣ :—ପ୍ରାୟଶଃ ନାଟକ ସଦୃଶ । ଏଥି ମଧ୍ୟମ ଶ୍ରେଣୀ ପାତ୍ରମାନେ ଥାଆନ୍ତି । ଇତିବୃତ୍ତ ମାନବ ମାନବ ଚରିତ । କଥାନାୟକ ବ୍ରାହ୍ମଣ, ମନ୍ତ୍ରୀ କିମ୍ବା ବଣିକ୍ । କଥା-ନାୟିକା କୁଳବତୀ କିମ୍ବା ନାଟ୍ୟକଳାପଣ୍ଡିତା ଏବଂ ସୁଗୁଣ-ଯୁତା ବେଶ୍ୟା । ଉଦାହରଣ :—ମୃଚ୍ଛକଟିକ ଏବଂ ମାଳତୀ ମାଧବ ।

୩ । ଭାଣ :—ଏହା ଏକାଙ୍କ ଏବଂ ଏକ ପାତ୍ରଯୁକ୍ତ । ବର୍ଣ୍ଣିତ ବିଷୟ ଶୃଙ୍ଗାର, ଯୁଦ୍ଧ, ପ୍ରତାରଣା, ନିନ୍ଦା ଏବଂ ରହସ୍ୟ । ଉଦାହରଣ—ଶାରଦ ତିଳକ ।

୪ । ବ୍ୟାୟୋଗ :—ଏହା ଯୁଦ୍ଧସମ୍ବନ୍ଧ ନାଟ୍ୟ ପ୍ରଦର୍ଶନ । ଏଥି ସ୍ତ୍ରୀପାତ୍ର ଶୂନ୍ୟ, ଏକାଙ୍କ, ଏକାଭିନୟ

ଏବଂ ଏକ ବଜର ପ୍ରଦର୍ଶନ । ନାୟକ ଅବତାରପୁରୁଷ କିମ୍ବା ପୃଥ୍ୱୀର । ଉଦାହରଣ :—ଧନଞ୍ଜୟ ବିଜୟ ।

୫ । ସମବାୟକାର :—ଏହାର ଇତିବୃତ୍ତ ପୌରାଣିକ । ଏଥି ଅଙ୍କ ତ୍ରିତୟ । ପ୍ରଥମାଙ୍କ ପ୍ରାୟଶଃ ୯ ଘୋଷରେ, ଦ୍ୱିତୀୟାଙ୍କ ୩½ ଘୋଷରେ ଏବଂ ତୃତୀୟାଙ୍କ ୧½ ଘୋଷରେ ପ୍ରଦର୍ଶିତ । କଥାରେ ପ୍ରାୟଶଃ ଦେବଦାନବେ ବର୍ଣ୍ଣିତ । ବହୁ ନାୟକ; ନାୟକ ସଂଖ୍ୟା ୧୨ ମଧ୍ୟ ହୋଇ ପାରେ । ବୀର ରସପ୍ରଧାନ । ଉଦାହରଣ—ଅମୃତ ମନ୍ଥନ ।

୬ । ଡିମ—ଏହା ସମବାୟକାର ସଦୃଶ । କିନ୍ତୁ ଏହାର ଘଟନାଚୟ ଅତି ଭୟଙ୍କର । ଏଥି ଅଙ୍କ ଚତୁଷ୍ଟୟ । ନାୟକ ଦେବ, ତତ୍ସମାନ କିମ୍ବା ରାକ୍ଷସ । ଅଶୁଭ, ଭୟଙ୍କର ବିଷୟ । ଉଚ୍ଚାଟନ, ଶାପ, ନାଶନ, ମାରଣାଦି ଏଥି କଥିତ । ଉଦାହରଣ —ତ୍ରିପୁର ଦହନ ।

୭ । ଈହାମୃଗ :—ଏଥି ଅଙ୍କ ଚତୁଷ୍ଟୟ; ନାୟକ ଦେବ କିମ୍ବା ଅବତାର ପୁରୁଷ; ନାୟିକା ଦେବତା । ପ୍ରଧାନ ରସ ଶୃଙ୍ଗାର ଏବଂ ହାସ୍ୟ । ଏଥି ମରଣ କଥିତ ହୁଏ ନାହିଁ । ଉଦାହରଣ :—କୁସୁମ ଶେଖର ବିଜୟ ।

୮ । ଅଙ୍କ :—ଏହା ଏକାଙ୍କ ଯୁକ୍ତ । ଏହାର ଭାଷା ସରଳ ଏବଂ ଇତିବୃତ୍ତ ସୁପରିଚିତ ହୋଇଥିବା ଆବଶ୍ୟକ । ନାୟକ ମାନବ ମାତ୍ର । ଉଦାହରଣ—ଶର୍ମିଷ୍ଠା, ଯଯାତି ।

୯ । ବୀଥି :—ଏହା ଭାଣ ସଦୃଶ, ଏକାଙ୍କ ଯୁକ୍ତ । ପାତ୍ର ସଂଖ୍ୟା ଏକ କିମ୍ବା ଦୁଇ; ରସ ହାସ୍ୟମିଶ୍ରିତ ଶୃଙ୍ଗାର । ଉଦାହରଣ ମୃଗ୍ୟ ।

୧୦ । ପ୍ରହସନ :—ଏହା ହାସ୍ୟରସଯୁକ୍ତ ପଦ୍ୟବ୍ରାତ । ଏହାର ଇତିବୃତ୍ତ କଳ୍ପିତ । ନାୟକ ମୁନି, ବ୍ରାହ୍ମଣ, ନୃପ କିମ୍ବା ଚୋର । ପାତ୍ରଗଣ ବ୍ୟଭିଚାରୀ, ହୀନକୁଳଜ, ପାଚକ ପଭୃତି । ଏହା ନୀଚପାତ୍ର ବିଶିଷ୍ଟ ହୋଇଥିବାରୁ ଗ୍ରାମ୍ୟଭାଷା ଯୁକ୍ତ । ଉଦାହରଣ :—କୌତୁକ ସର୍ବସ୍ୱ ଏବଂ ହାସ୍ୟାର୍ଣ୍ଣବ ।

ଉପରୂପକର ଅଷ୍ଟାଦଶ ଭେଦ କଥିତ ହୋଇଅଛି । ତାହା ନିମ୍ନରେ ବର୍ଣ୍ଣିତ ହେଲା ।

୨ । ଉପରୂପକରେ ୧ । ନାଟିକା ଏବଂ ପ୍ରକରଣିକା:—ଏ ଦୁଇଟିର ଭେଦ କଥାବସ୍ତୁରେ ମାତ୍ର । ପ୍ରତ୍ୟେକରେ ଅଙ୍କ ଚତୁଷ୍ଟୟ ଏବଂ ସ୍ତ୍ରୀପାତ୍ର ସଂଖ୍ୟା ବେଶୀ । ନାଟିକାର ଉଦାହରଣ—ରତ୍ନାବଳୀ ।

୨ । ତୋଟକ :—ଏହା ପାଞ୍ଚ, ସାତ, ଆଠ କିମ୍ବା ନଅ ଅଙ୍କ ବିଶିଷ୍ଟ । ଏହାର ଇତିବୃତ୍ତ ଅର୍ଦ୍ଧେ ମାନବ ଏବଂ ଅର୍ଦ୍ଧେ ଦୈବ । ଉ :—ବିକ୍ରମୋର୍ବଶୀୟ । ୩ । ଗୋଷ୍ଠୀ :—ଏହା ଏକାଙ୍କଯୁକ୍ତ । ଏଥି ପୁରୁଷପାତ୍ର ସଂଖ୍ୟା ନଅ କିମ୍ବା ଦଶ, ସ୍ତ୍ରୀପାତ୍ର ସଂଖ୍ୟା ପାଞ୍ଚ କିମ୍ବା ଛଅ । ରସ ଶୃଙ୍ଗାର । ଉଦାହରଣ :—ରୈବତ ମଦନିକା । ୪ । ଷଡକ :—ଏଥି ଅଙ୍କ ନୟମଶୂନ୍ୟ । ଇତିବୃତ୍ତ ବିଚିତ୍ର । ଭାଷା ବ୍ୟାବହାରିକ । ଉଦାହରଣ :—କର୍ପୂରମଞ୍ଜରୀ । ୫ । ନାଟ୍ୟରାସକ :—ଏହା ଏକାଙ୍କଯୁକ୍ତ ଏବଂ ନର୍ତ୍ତକ ସଙ୍ଗୀତବିଶିଷ୍ଟ । ରସ ହାସ୍ୟଶୃଙ୍ଗାର ମିଳିତ । ଉଦାହରଣ :- ନର୍ମବତୀ ଏବଂ ବିଳାସବତୀ । ୬ । ପ୍ରସ୍ଥାନ :—ଏହା ଅଙ୍କଯୁଗଯୁକ୍ତ । ଏହାର ଇତିବୃତ୍ତ ନାଟ୍ୟ ରାସକସଦୃଶ, କିନ୍ତୁ ପାତ୍ରଗଣ ଅଧମକୁଳଜ । ନାୟିକା ପରିଚାରିକା ଏବଂ ନାୟକ ପରିଚାରକ । ତାଙ୍କ ମିତ୍ରଗଣ ଅନ୍ତ୍ୟକୁଳଜ । ଏଥି ସଙ୍ଗୀତ-ବାଦ୍ୟ ଏବଂ ନର୍ତ୍ତନ ପ୍ରାଧାନ୍ୟ । ଉଦାହରଣ :—ଶୃଙ୍ଗାର-ତିଳକ । ୭ । ଉଲ୍ଲାପ୍ୟ :—ଏହା ଏକାଙ୍କଯୁକ୍ତ ଏବଂ କଥୋପକଥନ ରୂପକ ସଙ୍ଗୀତ କଳିତ । ଏହାର ଇତିବୃତ୍ତ ପୌରାଣିକ । ଉଦାହରଣ :—ଦେବୀମହାଦେବ । ୮ । କାବ୍ୟ :—ଏହା ଶୃଙ୍ଗାରଗାଥାବିଶିଷ୍ଟ ହୋଇ ଏକାଙ୍କଯୁକ୍ତ । ଉଦାହରଣ :—ଯାଦବୋଦୟ । ୯ । ପ୍ରେଙ୍ଖଣ :—ଏହା ଯୁଦ୍ଧଚିତ୍ରବିଶିଷ୍ଟ ହୋଇ ଏକାଙ୍କଯୁକ୍ତ । ଉଦାହରଣ :—ବାଲିବଧ । ୧୦ । ରାସକ :—ଏହା ହାସ୍ୟକଥା କଳିତ । ପାତ୍ରପଞ୍ଚକଯୁକ୍ତ ଏବଂ ଏକାଙ୍କଯୁକ୍ତ । ଏଥି ନାୟିକ ମହତ୍ ଏବଂ ନାୟିକା ଚତୁରା, ନାୟକ ଅଚତୁର । ଉଦାହରଣଃ—ଅନେକ ମୂର୍ଦ୍ଧା । ୧୧ । ସଂଲ୍ଲାପକ—ଏଥି ତିନୋଟି କିମ୍ବା ଚାରୋଟି ଅଙ୍କ । ନାୟକ ମତାଭିମାନୀ ଏବଂ ଶାସ୍ତ୍ରୀୟମାର୍ଗଗ । ଏହାର ଇତିବୃତ୍ତ ପ୍ରତାରଣାବିଦ୍ରୋହଯୁଦ୍ଧାଦି କଳିତ । ଉଦାହରଣ —ମାୟା କାପାଳିକା । ପ୍ରବୋଧ-ଚନ୍ଦ୍ରୋଦୟକୁ ସଂଲ୍ଲାପକ ବୋଲି ଯାଇ ପାରେ । ୧୨ । ଶ୍ରୀଗଦିତ—ଏହା ଏକାଙ୍କଯୁକ୍ତ । ଏହାର ଇତିବୃତ୍ତ ମହାଲକ୍ଷ୍ମୀଙ୍କର କିମ୍ବା ମହାଲକ୍ଷ୍ମୀ ପରି ପ୍ରବର୍ତ୍ତିକା ବ୍ୟକ୍ତିର ଚରିତ୍ର । ଏଥି ଗଦ୍ୟ ଏବଂ ସଙ୍ଗୀତ ସମଭାଗ । ଉଦାହରଣ—କ୍ରୀଡାରସାତଳ । ୧୩ । ଶିଳ୍ପକ—ଏହା ଅଙ୍କଚତୁଷ୍ଟୟଯୁକ୍ତ । ଏହାର ନାୟକ ବ୍ରାହ୍ମଣ, ପ୍ରତିନାୟକ ଅନ୍ତ୍ୟଜ । ଦୃଶ୍ୟ ଶ୍ମଶାନବାଟିକାଦି । ରସ ଅଦ୍ଭୁତାଶ୍ଚର୍ଯ୍ୟ । ମାୟାମନ୍ତ୍ରାଦି ଏଥି ଦର୍ଶିତ । ଉଦାହରଣ—କନକାବତୀମାଧବ । ୧୪ । ବିଲାସିକା କିମ୍ବା ଲାସିକା—ଏହା ଏକାଙ୍କଯୁକ୍ତ । ଏଥି ରସ ହାସ୍ୟମିଶ୍ରିତ ଶୃଙ୍ଗାର । ଉଦାହରଣ—ମୃଗ୍ୟ । ୧୫ । ଦୁର୍ମଲ୍ଲିକା—ଏହା ଅଙ୍କ ଚତୁଷ୍ଟୟଯୁକ୍ତ । ଏହାର ଇତିବୃତ୍ତ କଳ୍ପିତ ଏବଂ ହାସ୍ୟରସପୂରିତ । ଉଦାହରଣ—ବିନ୍ଦୁମତୀ । ୧୬ । ପ୍ରକରଣିକା—ଏହା ନାଟିକାର ପ୍ରଭେଦ ମାତ୍ର । ଉଦାହରଣ—ମୃଗ୍ୟ । ୧୭ । ହଲ୍ଲିସ—ଏହା ଗୀତନର୍ତ୍ତନ କଳିତ ଏବଂ ଏକାଙ୍କଯୁକ୍ତ । ଏଥି ଗୋଟିଏ ମାତ୍ର ପୁରୁଷପାତ୍ର, ଆଠୋଟି କିମ୍ବା ଦଶୋଟି ସ୍ତ୍ରୀପାତ୍ର । ଉଦାହରଣ—କେଳୀରୈବତକ । ୧୮ । ଭାଣିକ—ଏହା ଏକାଙ୍କଯୁକ୍ତ । ଏହାର ପ୍ରଧାନ ରସ ହାସ୍ୟ । ଉଦାହରଣ—ମୃଗ୍ୟ ।

ଶ୍ରୀ ବିକ୍ରମଦେବ ବର୍ମା

(ମହାରାଜ ଶ୍ରୀ ବିକ୍ରମଦେବ ବର୍ମା, ଡି. ଲିଟ୍, ଉ: ସା: ରେ ପ୍ରକାଶିତ ପ୍ରବନ୍ଧ)

ରୂପକର ନାୟିକାନାୟକାଦି ବିବରଣ :—

୧ । ନାୟିକା ତ୍ରିବିଧ । ଯଥା—ସ୍ୱକୀୟା—ଯେ ସ୍ୱପତ୍ନୀ । ପରକୀୟା—ଯେ ପରର ପତ୍ନୀ କିମ୍ବା ପୁତ୍ରୀ । ସାମାନ୍ୟା—ଯେଉଁ ସ୍ତ୍ରୀ ନିଜେ ସ୍ୱତନ୍ତ୍ର ଜୀବନ ଯାପନ କରେ । ଏମାନେ ମୁଗ୍‌ଧା (ବାଳା); ପ୍ରୌଢ଼ା (ଯୁବତୀ); ପ୍ରଗଲ୍‌ଭା (ଯୌବନାନ୍ତିକା) ବୋଲି ତ୍ରିବିଧରେ ବିଭକ୍ତା । ଏମାନେ ଅବସ୍ଥାଭେଦରେ ପୁଣି ଅଷ୍ଟବିଧ । ଯଥା—ସ୍ୱାଧୀନପତିକା—ଯେ ପତିମାନ୍ଧ ସର୍ବସ୍ୱ ବୋଲି ଭାବେ । ବାସକସଜ୍ଜିକା—ଯେ ଅଳଂକୃତା ହୋଇ ପତି ପାଇଁ ନିରେଖି ଥାଏ । ବିରହୋତ୍କଣ୍ଠିତା—ଯେ ପତି ସନ୍ଦର୍ଶନ ବିହୀନତାରେ ଦୁଃଖିନୀ । ଖଣ୍ଡିତା—ଯେ ପତି ବିଶ୍ୱାସବିହୀନ ହେବା ଜାଣି ଦୁଃଖ ଲଭେ । କଳହାନ୍ତରିତା—ପରିହାସରେ କିମ୍ବା ସତ୍ୟରେ ପତି ଅବଜ୍ଞା କରନ୍ତେ ଯେ ଦୁଃଖିନୀ କିଂବା କୋପିନୀ । ବିପ୍ରଲବ୍‌ଧା—ପତି କଥିତ ଏବଂ କଥିତ ସମୟରେ ନ ଆସିଲେ, ଯେ ହତାଶା ହୁଏ । ପ୍ରୋଷିତଭର୍ତ୍ତୃକା—ଯାହାର ପତି ପରଦେଶରେ ଥାଏ । ଅଭିସାରିକା—ଯେ ପତିଙ୍କ ଡକାଏ କିମ୍ବା ପତି ସମାଗମ ନିମନ୍ତେ ଯାଏ ।

୨ । ନାୟିକାର ସାହାଯ୍ୟକାରିଣୀ ବ୍ୟକ୍ତି ଦୁଇ ଜଣ । ଯଥା—ସଖୀ—ଯେ ବାଲ୍ୟରୁ ନାୟିକା ସହିତ ପୋଷିତା ହୋଇ ନାୟିକାର ମର୍ମଜ୍ଞା । ଚେଟୀ—ଦାସୀ ।

୩ । ନାୟକ ଚତୁର୍ବିଧ । ଯଥା—ଧୀରୋଦାତ୍ତ—ଯେ ଉନ୍ନତଭାବ, କାର୍ଯ୍ୟକୁଶଳୀ ଏବଂ ମନୋବଳଯୁକ୍ତ ହୁଏ; ଉଦାହରଣ—ଶ୍ରୀରାମ । ଧୀରଲଳିତ—ଯେ ସନ୍ତୋଷୀ, ହାସ୍ୟପ୍ରିୟ ଏବଂ ମୈତ୍ରୀଯୁକ୍ତ; ଉଦାହରଣ—ଶ୍ରୀକୃଷ୍ଣ । ଧୀରଶାନ୍ତ—ଯେ ଶାନ୍ତ, ଦାନ୍ତ ଏବଂ ସୁଶୀଳ; ଉଦାହରଣ—ଜନକ । ଧୀରୋଦ୍ଧତ—ଯେ ଆବେଗପର ଏବଂ ଅଶାନ୍ତ ଗୁଣାନ୍ୱିତ; ଉଦାହରଣ—ରାବଣ ।

୪ । ନାୟକର ସାହାଯ୍ୟକାରୀ ବ୍ୟକ୍ତି ଚାରିଜଣ । ଯଥା—ପୀଠମର୍ଦ୍ଦ—ଯେ ନାୟକର ପ୍ରାଣମିତ୍ର ହୋଇ ତାହାର ରହସ୍ୟ ଗୋପନ କରେ । ସେ କୌଣସି ଉପାୟରେ ଉପନାୟକ ହୋଇଥାଏ; ଉଦାହରଣ—ମାଳତୀମାଧବ ନାଟକର ମକରନ୍ଦ । ବିଦୂଷକ—ଯେ ନାୟକର ସ୍ନେହୀ, ହାସ୍ୟପ୍ରିୟ, ନାୟକ ଚିତ୍ତରଞ୍ଜକ ଏବଂ ଅମାୟିକ । ବିଟ—ଯେ ଲଳିତ ଭାବଯୁକ୍ତ ହୋଇ ବେଶ୍ୟାଙ୍କର କିମ୍ବା ପୁରୁଷଙ୍କର ସାହାଯ୍ୟ କରେ । ଚେଟ—ଦାସ । କେତେକ କଥାରେ ପ୍ରତିନାୟକ କଥିତ । ସେ ଦୁଷ୍ଟ ସ୍ୱଭାବଯୁକ୍ତ । ଉଦାହରଣ—ଶ୍ରୀରାମଙ୍କ ପ୍ରତିନାୟକ ରାବଣ ଏବଂ ଯୁଧିଷ୍ଠିରଙ୍କ ପ୍ରତିନାୟକ ଦୁର୍ଯ୍ୟୋଧନ ।

୫ । ନାୟିକାଙ୍କ ଚେଷ୍ଟାବଳୀ; ଯଥା—ହାବ—ଭ୍ରୂନେତ୍ରାଦି ବିକାରରୁ ଅଳ୍ପରେ ପ୍ରକଟିତ ହେବା ମନୋବିକାର । ହେଳା—ଭ୍ରୂନେତ୍ରାଦି ବିକାରରୁ ସ୍ପଷ୍ଟରେ ପ୍ରକଟିତ ହେବା ମନୋବିକାର । ଲୀଳା—ପ୍ରେମାଧିକ୍ୟରୁ ବେଶଭୂଷଣାଦିରେ ପ୍ରିୟର କିମ୍ବା ସଖୀର ଅନୁକରଣ କରଣ । ବିଳାସ—ବଚନରେ, ଅବଲୋକନରେ ଏବଂ ଚେଷ୍ଟାରେ ନିଜେଚ୍ଛା ପ୍ରକଟନ । ବିଚ୍ଛିତ୍ତି—ବସ୍ତ୍ରଭୂଷଣାଦ୍ୟଳଙ୍କାର ଊଣା ହୋଇଥିବାରୁ ମନୋଗ୍ଲାନି ଜାତ ହୋଇଥିଲେହେଁ, ସୌନ୍ଦର୍ଯ୍ୟକୁ ପ୍ରକଟିବା । ବିଭ୍ରମ—ବଚନ ଭୂଷଣ ବିପର୍ଯ୍ୟାସକ ରୂପକ ଚେଷ୍ଟା [ସତ୍ୱର ହୋଇ ଗୋଟିଏ କହିବାର ବଦଳରେ ଆଉ ଗୋଟିଏ କହିବା; ଏକ ଥାନର ଅଳଂକାରକୁ ଆନ ଥାନରେ ଧାରଣ କରିବା ।]

କିଳକିଞ୍ଚିତ—ରୋଷାଶ୍ରୁ ହର୍ଷଭୀତ୍ୟାଦି ମିଶ୍ରିତ ଚେଷ୍ଟା । ମୋଟ୍ଟାୟିତ—ପ୍ରିୟର କଥାଦିରେ ନିଜ ମାନସ ସଂଲଗ୍ନ ହୋଇଥିବା ବିଷୟ ଜଣାଇବା କର୍ଣ୍ଣକଣ୍ଡୂୟନାଦି ଚେଷ୍ଟା । କୁଟ୍ଟମିତ—ହୃଦୟରେ ଆନନ୍ଦ ପୂରିଥିଲେହେଁ, ବାହ୍ୟରେ ଓଷ୍ଠପୀଡ଼ନାଦିରେ କୋପାଭିନୟ କରଣ । ବିହୃତ—ଲଜ୍ଜାବଶୁଁ ମନୋଭାବ ଗୋପନକରଣ । ଲଳିତ—ସୁକୁମାରତ୍ୱରୁ ଘଟିବା ଅଙ୍ଗବିନ୍ୟାସରୂପକ ଚେଷ୍ଟା ।

(ସନ୍ଦର୍ଭ ଲେଖକ - ମହାରାଜ ଶ୍ରୀ ବିକ୍ରମଦେବ ବର୍ମା—ଉ. ସାହିତ୍ୟ ପତ୍ରିକାରେ ପ୍ରକାଶିତ ପ୍ରବନ୍ଧ) ।

ରୂପକର ଭାବାଦି :—

କାବ୍ୟପର ରୂପକ ଆତ୍ମବୋଧକ । ତାହା ବିବିଧ ରସ ଏବଂ ବିନୋଦ ଦର୍ଶାଇ ଦର୍ଶକଙ୍କ ଚିତ୍ତାକର୍ଷଣ କରି ନୀତିକ ଶିଖାଏ । ରସ ଭାବପ୍ରକଟନଫଳିତ । ଅତଏବ ରୂପକରେ ଭାବପ୍ରକଟନ ମାତ୍ର ପ୍ରଧାନ ଅଟେ । ସ୍ଥାୟିଭାବ ଏବଂ ବ୍ୟଭିଚାରିଭାବ ବୋଲି ଭାବ ଦ୍ୱିବିଧ । ସ୍ଥାୟିଭାବ ସଂଖ୍ୟା ନଅ; ବ୍ୟଭିଚାରିଭାବ ସଂଖ୍ୟା ତେତିଶ । ବ୍ୟଭିଚାରିଭାବଙ୍କ ଉପଭାବ ସଂଖ୍ୟା ଅନେକ ।

ସ୍ଥାୟିଭାବରେ :—୧ । ରତି—ଗୋଟିଏ ପଦାର୍ଥକୁ ଦେଖନ୍ତେ, ଶୁଣନ୍ତେ, ସ୍ମରନ୍ତେ କିଂବା ଭାବନ୍ତେ ଜନ୍ମିବା ଇଚ୍ଛା । ୨ । ହାସ—କୌଣସି ବ୍ୟକ୍ତିର ନିନ୍ଦିବା କିଂବା ଥଟ୍ଟା କରିବା ପାଇଁ ଉଦ୍ଦିଷ୍ଟ ନୋହି, ଆନନ୍ଦରେ ହସିବା କିଂବା ହାସ୍ୟରସ ଅନୁଭବିବା । ୩ । ଶୋକ—ପ୍ରିୟ କିଂବା ପ୍ରିୟାବିଯୋଗବଶୁଁ କାନ୍ଦିବା । ୪ । କ୍ରୋଧ—କୌଣସି ବ୍ୟକ୍ତିକି ବାଧିବାପାଇଁ ଭାବିବା କିଂବା ନିଶ୍ଚୟ କରିବା । ୫ । ଉତ୍ସାହ—ଉଦ୍‌ଯୋଗ କିଂବା ଦୃଢପ୍ରଯତ୍ନ । ୬ । ଭୟ—ଭୀତି । ୭ । ଜୁଗୁପ୍ସା—ଘୃଣା । ୮ । ବିସ୍ମୟ—ଆଶ୍ଚର୍ଯ୍ୟକର ବିଷୟକୁ ଦେଖିବା, ଶୁଣିବା କିଂବା ସ୍ପର୍ଶିବାଦ୍ୱାରା ଜନ୍ମିବା ମନୋବିକାର । ୯ । ଶାନ୍ତ—ଶମଦମ ଗୁଣ ବିଶିଷ୍ଟ ।,

ବ୍ୟଭିଚାରିଭାବରେ :—୧ । ନିର୍ବେଦ—ନିଜକୁ ନ୍ୟୂନ ବୋଲି ଭାବିବା । ୨ । ଗ୍ଲାନି—ଅଶକ୍ତତା । ୩ । ଶଙ୍କା—ସନ୍ଦେହ । ୪ । ଅସୂୟା—ମତ୍ସର କିଂବା ଦ୍ୱେଷ । ୫ । ମଦ—ମତ୍ତତା । ୬ । ଶ୍ରମ—ଆୟାସ । ୭ । ଆଳସ୍ୟ—ମାନ୍ଦ୍ୟ (ଅଳସୁଆପଣ) । ୮ । ଦୈନ୍ୟ—ଦାରିଦ୍ର୍ୟରୁ କିଂବା ବାଧାରୁ ଜନ୍ମିବା ନୀରସଭାବ । ୯ । ଚିନ୍ତା—ବିଷାଦଜନିତ ଭାବନା । ୧୦ । ମୋହ—ଜ୍ଞାନଶୂନ୍ୟତା । ୧୧ । ସ୍ମୃତି—

ସ୍ମରଣ । ୧୨ । ଧୃତି—ଧୈର୍ଯ୍ୟ । ୧୩ । ବ୍ରୀଡ଼ା—ଲଜ୍ଜା । ୧୪ । ଚପଳତା—ଶୃଙ୍ଖଳ୍ୟ ଶୂନ୍ୟତା । ୧୫ । ହର୍ଷ—ସନ୍ତୋଷ । ୧୬ । ଆବେଗ—ବ୍ୟଗ୍ରତା । ୧୭ । ଜଡ଼ତା—ମାନ୍ଦ୍ୟ କିମ୍ବା ମୌଢ୍ୟ । ୧୮ । ଗର୍ବ—ଦର୍ପ । ୧୯ । ବିଷାଦ—ଖେଦ । ୨୦ । ଔତ୍ସୁକ୍ୟ—ଉତ୍କଣ୍ଠା । ୨୧ । ନିଦ୍ରା—ମନୋଶକ୍ତିର ହ୍ରାସ । ୨୨ । ଅପସ୍ମାର—ସ୍ମୃତିକ୍ଷୟ । ୨୩ । ସୁପ୍ତି—ନିଦ । ୨୪ । ବିବୋଧ—ଚେତା । ୨୫ । ଅମର୍ଷ—ଅକ୍ଷମା । ୨୬ । ଅବହିତ୍ଥ କିମ୍ବା ଅବହିତ୍ଥା—ଭାବଗୋପନ । ୨୭ । ଉଗ୍ରତା—କ୍ରୂରତା । ୨୮ । ମତି—ପ୍ରବୃତ୍ତି । ୨୯ । ବ୍ୟାଧି—ରୋଗ । ୩୦ । ଉନ୍ମାଦ—ଚିତ୍ତବିଭ୍ରମ । ୩୧ । ମରଣ—ମୃତି । ୩୨ । ତ୍ରାସ—କାଳସ୍ଥାନ ଭୟ । ୩୩ । ବିତର୍କ—ବାଦାନୁବାଦ—ସନ୍ଦେହ ।

ସ୍ଥାୟୀଭାବ ବ୍ୟଭିଚାରୀଭାବଦ୍ୱୟ ବିଭାବ, ଅନୁଭାବ ଏବଂ ସାତ୍ତ୍ୱିକଭାବ ବୋଲି ତିନି ବିଧରେ ବିଭକ୍ତ । ଇତି ।

ସନ୍ଦର୍ଭ ଲେଖକ ମହାରାଜ ଶ୍ରୀ ବିକ୍ରମଦେବ ବର୍ମା; ଉ. ଲିଟ୍; ଉ: ସା: ପତ୍ରିକାରେ ପ୍ରକାଶିତ ପ୍ରବନ୍ଧ ।

୫ । ବର୍ଣ୍ଣ—5. Colour. ୬ । ପରିମାଣ ବିଶେଷ [ହି. ଶ.]—6. Name of a measure. ୭ । ରୌପ୍ୟ ମୁଦ୍ରା [ହି ଶ.]—7. Silver coin; rupee. ବିଣ.—ଅଳଙ୍କାରଯୁକ୍ତ (ବାକ୍ୟ)—Figurative. ବିଣ. ପୁଂ.—[ଅନ୍ୟ ଶବ୍ଦ ସଙ୍ଗେ ସମାସରେ ଯୁକ୍ତ ହୋଇ; ଯଥା—ବିଶ୍ୱରୂପକ]—ମୂର୍ତ୍ତି; ରୂପବିଶିଷ୍ଟ—Having form.

ଦେ. ବି—ରୁପ (ଦେଖ)—Rupa (See)

ରୁପ କଥା—ଦେ. ବି—ରୂପ କଥା ( ଦେଖ )
Rūpa kathā Rupa kathā ( See )

ରୂପକ ବାକ୍ୟ—ସଂ. ବି,—ରୂପକ ଅଳଂକାରଯୁକ୍ତ ବାକ୍ୟ—A figu-
Rūpaka bākya rative or metaphorical sentence. [ଯଥା—ରଙ୍ଗ ପସରୁ ସିନା ଭବସାଗର ରଙ୍ଗ, ଘଟରେ ଅଛୁ କି ଜାଣିଛ । ମନବୋଧ ଚଉତିଶା ]

ରୂପ କରିବା—ଦେ. କ୍ରି—୧ । ବିଶେଷ୍ୟର ଓ କ୍ରିୟାର ଭିନ୍ନ ଭିନ୍ନ ବିଭକ୍ତି,
Rūpa karibā ବଚନ ଅନୁସାରେ ହେବା ପଦମାନ ସଂଗଠନ କରିବା—1. To decline or conjugate (a noun or verb). ୨ । ରୁପ କରିବା (ଦେଖ)
2. Rupa karibā (See).

ରୂପ କର୍ତ୍ତା—ସଂ. ବି.—(୬ଷ୍ଠୀ ତତ୍)—ବିଶ୍ୱକର୍ମା [ହି. ଶବ୍ଦସାଗର]—
Rūpa karttā The heavenly architect.
[ରୂପକୃତ୍—ଅନ୍ୟରୂପ]

ରୂପକ ଶବ୍ଦ—ଦେ. ବି.—ରୂପକ ଅଳଙ୍କାର ଯୁକ୍ତ ଶବ୍ଦ—
Rūpaka śabda A figurative word.

ରୂପକ ଶ୍ଳେଷ—ସଂ. ବି.—କାବ୍ୟର ଅଳଂକାର ବିଶେଷ—A figure
Rūpaka ślesha of speech. [ଦ୍ର—ଏହା ୫ ପ୍ରକାର ଯଥା; ବିରୁଦ୍ଧ, ସମସ୍ତ, ବ୍ୟସ୍ତରୂପକ, ଶ୍ଳିଷ୍ଟ ଓ ରୂପକ ।]
[ଯଥା—ବାତଜ ପ୍ରଖର ଅତ୍ୟନ୍ତ ସ୍ୱଜେନ୍ଦ୍ର କୋଦଣ୍ଡ ଉଦିତ ଯହିଁ, ବିଶ୍ରୀପଣ ତାକ ଚଞ୍ଚଳାଗଣରେ ସୁମନା ପ୍ରଫୁଲ୍ଲ ତହିଁ ସେ, ବିବେକ କର ବିଦୁଷ । ବିଜନ୍ୟ ରୂପକ ଶ୍ଳେଷ ଉପ. ବୈଦେହୀଶ ବିଳାସ ।]

ରୂପକ ସମାସ—ସଂ. ବି.—ଯେଉଁ ସମସ୍ତପଦ ରୂପକ ଅଳଂକାରଯୁକ୍ତ
Rūpaka samāsa ହୋଇଥାଏ—A compound word consisting of a metaphor. [ଯଥା—ମୁଖଚନ୍ଦ୍ର, ବଦନ ସରୋଜ, ପାଦପଦ୍ମ, କରକମଳ, ହୃଦ-ପଦ୍ମ, ବିଷୟାବିଷ ।]

ରୁପ କାଢ଼ିବା—ଦେ. କ୍ରି—ରୂପ କାଢ଼ିବା ( ଦେଖ )
Rūpa kārdhibā Rupa kārdhibā ( See )
(ରୂପ ଦେଖାଇବା, ରୂପ ବାହାର କରିବା—ଅନ୍ୟରୂପ)
রূপ দেখান रूप दिखाना

ରୂପକାତିଶୟୋକ୍ତି—ସଂ. ବି—ଏକପ୍ରକାର ଅତିଶୟୋକ୍ତି ଅଳଙ୍କାର—
Rūpakātiśayokti A kind of hyperbole.
[ଦ୍ର—ଏ ଅଳଙ୍କାରରେ କେବଳ ଉପମାନର ଉଲ୍ଲେଖରୁ ଉପମେୟମାନଙ୍କର ଅର୍ଥ ବୁଝାଯାଏ । ଯଥା—କନକ-ହେମଲତା ପରେ ଚନ୍ଦ୍ରଦେବତା ଫଳ ଫଳିଛି ଲୋଟିଅଛି ମଣ୍ଡିରେ-ସଙ୍ଗୀତ । ]

ରୂପକାନ୍ତା—ସଂ. ବି—୧୭ ଅକ୍ଷରବିଶିଷ୍ଟ ଏକ ବର୍ଣ୍ଣବୃତ୍ତ—
Rūpakrāntā Name of a metre of 17 syllables.
[ଦ୍ର—ଏଥିର ପ୍ରତ୍ୟେକ ଚରଣରେ ଜଗଣ, ଭଗଣ, ଜଗଣ, ରଗଣ, ଜଗ ଓ ୧ ଗୁରୁ ଓ ୧ ଲଘୁମାତ୍ରା ଥାଏ ହି. ଶ. ]

ରୁପ ଗନ୍ଧ—ସଂ. ବି ( ଦ୍ୱନ୍ଦ୍ୱ )—ବସ୍ତୁର ଆକାର ଓ ବାସନା—
Rūpa gandha Form and smell of a thing.

ରୁପ ଗରିମା—ସଂ. ବି ( ୬ଷ୍ଠୀ ତତ୍; ରୂପ ଗରିମନ୍ )—
Rūpa garimā ରୂପର ଆଧିକ୍ୟ; ଅତି ସୁନ୍ଦର ରୂପ—
(ରୂପ ଗାରିମା—ଗ୍ରାମ୍ୟରୂପ) Very graceful form.
[ ଉ—ଉପମା-ସୃଷ୍ଟିକୁ ବୁଡ଼ାଇ ଦେଲା ତା ରୂପଗରିମା । ରାଧାନାଥ. ଊଷା । ]

ରୁପ ଗର୍ବ—ସଂ. ବି—ଆପଣାର ରୂପ ବା ସୁନ୍ଦରପଣ ଯୋଗୁଁ ମନରେ
Rūpa garba ଜାତ ହେବା ଗର୍ବ—The pride of
(ରୂପଗର୍ବିତ[ତା]—ବିଣରୂପ) beauty.

ରୂପଗର୍ବିତା—ସଂ. ବିଣ. ସ୍ତ୍ରୀ—ରୂପ ଗର୍ବିତର ସ୍ତ୍ରୀଲିଙ୍ଗ—
Rūpagarbitā Feminine of Rūpa garbita.
ସଂ. ବି. ସ୍ତ୍ରୀ—ଗର୍ବିତା ନାୟିକାର ଏକଭେଦ—
A class of proud heroines in fiction.
[ ଦ୍ର—ଏ ନାୟିକା ନିଜର ସୁନ୍ଦରତା ବା ରୂପଯୋଗୁଁ ଗର୍ବ ପ୍ରକାଶ କରେ । ହି. ଶ. ]

ରୂପଗୁଣ—ସଂ. ବି ( ଦ୍ୱନ୍ଦ୍ୱ )—୧ । ଆକୃତି ଓ ଗୁଣ—1. Form
Rūpa guṇa and quality. ୨ । ସୌନ୍ଦର୍ଯ୍ୟ ଓ ଉତ୍ତମ ଗୁଣ—2. Beauty and good quality.

ରୂପ ଗୋସାଇଁ—ଦେ. ବି—ରୂପ ଗୋସ୍ୱାମୀ ( ଦେଖ )
Rūpa gosāiṅ  Rūpagoswāmī ( See )
ରূপগোস্বামী  [ ଦ୍ର—ରୂପଗୋସାଇ କହୁଛନ୍ତି, ଭକଜ୍ଜ ଉସାମୃତ
रूप गोसाईं  , ଉକ୍ତି । ପ୍ରାଗୀ· ପୂର୍ଣ୍ଣଚନ୍ଦ୍ର ଚନ୍ଦ୍ରୋଦୟ । ]

ରୂପ ଗୋସ୍ୱାମୀ—ଦେ. ବି. (ନାମ)—( ଖ୍ରୀ. ୧୪୮୯—୧୫୬୩ ) ଶ୍ରୀ
Rūpa goswāmi  ଚୈତନ୍ୟଙ୍କ ସମସାମୟିକ ପ୍ରସିଦ୍ଧ ବୈଷ୍ଣବ ଭକ୍ତ
ରূপগোস্বামী  ମାଧକ—Name of a famous contem-
रूपगोस्वामी  porary of Śrichaitanya. [ ଦ୍ର—
ଏହାଙ୍କ ବାଲ୍ୟକାଳର ନାମ ସନ୍ତୋଷ ଓ ଏହାଙ୍କ ଭାଇଙ୍କ ନାମ ସନାତନ । ଏ ଦୁଇ ଭାଇ ପ୍ରଥମେ ବଙ୍ଗଦେଶର ନବାବ୍ ହୁସେନ୍ ଖାଁଙ୍କ ଉଚ୍ଚପଦସ୍ଥ କର୍ମଚାରୀ (ଦବୀରଖାସ୍) ଥାଇ ଅତ୍ୟନ୍ତ ଅଭ୍ୟାଗତ ଥିଲେ । ଶ୍ରୀ ଚୈତନ୍ୟ-ଦେବଙ୍କର ପଶ୍ଚାତ ବୈଷ୍ଣବଧର୍ମରେ ଏ ଦୁହେଁ ଦୀକ୍ଷିତ ହୋଇ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କରି ସଂସାରବିରାଗୀ ହୋଇ ବୃନ୍ଦାବନରେ ବାସ କଲେ । ଏ ଉଭୟ ମହାପଣ୍ଡିତ ଥିଲେ ଓ ବୃନ୍ଦାବନରେ ବୈଷ୍ଣବଧର୍ମ ପ୍ରଚାର ପୂର୍ବକ ଅନେକ ବୈଷ୍ଣବଧର୍ମ ଗ୍ରନ୍ଥ ରଚନା କରିଥିଲେ । ଏହାଙ୍କ ଶିଷ୍ୟ ଜୀବ ଗୋସ୍ୱାମୀ । ରୂପ ଗୋସ୍ୱାମୀ ମହାପଣ୍ଡିତ ଥିଲେ ସୁଦ୍ଧା ତାଙ୍କଠାରେ ପାଣ୍ଡିତ୍ୟଗର୍ବ ଲେଶମାତ୍ର ନ ଥିଲା । ଏକଦା ବୃନ୍ଦାବନଠାରେ ଜଣେ ଦିଗ୍‌ବିଜୟୀ ପଣ୍ଡିତ ଆସି ଏହାଙ୍କ ସଙ୍ଗେ ଶାସ୍ତ୍ରବିଚାର କରିବାକୁ ପ୍ରସ୍ତାବ କରନ୍ତେ ଏ ସ୍ୱହସ୍ତରେ ଉକ୍ତ ପଣ୍ଡିତଙ୍କୁ ବିନାବିଚାରରେ ଜୟପତ୍ର ଲେଖିଦେଲେ । ପରେ ଉକ୍ତ ପଣ୍ଡିତଙ୍କୁ ରୂପଙ୍କ ଶିଷ୍ୟ ଜୀବଗୋସ୍ୱାମୀ ବିଚାରରେ ପରାସ୍ତ କଲେ । ]

ରୂପଚାନ୍ଦ ଦାସ ମହାପାତ୍ର—ଦେ.ବି. (ନାମ)—କଲିକତାର ଗାୟକଦଳର
Rūpachānda dāsa mahāpātra  କର୍ତ୍ତା ଓ ପ୍ରସିଦ୍ଧ
(ରୂପଚାନ୍ଦ ପକ୍ଷୀ—ଅନ୍ୟରୂପ) ବଙ୍ଗଳା ଗୀତ ରଚୟିତା ଓ ଗାୟକ—
রূপচান্দ পক্ষী A famous poet and singer of Bengalee songs who was an Oriya by birth and proprietor of a popular opera-party in Bengal. [ ଦ୍ର—ଏ ଜଣେ ପ୍ରସିଦ୍ଧ ବଙ୍ଗଳା ସଙ୍ଗୀତର ରଚୟିତା ଓ ସଙ୍ଗୀତ ଦଳର କର୍ତ୍ତା ଥିଲେ । ଏହାଙ୍କ ପୂର୍ବପୁରୁଷଗଣ ଉତ୍କଳ ଦେଶବାସୀ । ଏହାଙ୍କ ପିତା ଗୌର-ହରିଦାସ ମହାପାତ୍ର ଗୌଡ଼େଶ୍ୱର ଷ(ରୂ)ଢ଼ଙ୍କ ଦେବଙ୍କବଂଶ ସମ୍ଭୂତ। ଚନ୍ଦ୍ରାହଦ୍ କୁଳରେ ଏହାଙ୍କ ଆଦିମ ବାସ ଥିଲା । ଗୌରହରି କର୍ମୋପଲକ୍ଷରେ କଲିକତାକୁ ଆସି ବାସ କଲେ, ସନ ୧୨୨୫ସାଲ ମାଘମାସରେ ରୂପଚାନ୍ଦଙ୍କ ଜନ୍ମ ହୋଇଥିଲା । ବାଲ୍ୟକାଳରୁ ଏ ସଙ୍ଗୀତ ବିଦ୍ୟାରେ ଅନୁରାଗୀ ଥିଲେ । ଏ ଅନେକ ଶାନ୍ତରସାତ୍ମକ ଓ ହାସ୍ୟ ପ୍ରାସ୍ମକ ସଙ୍ଗୀତ ରଚନା କରିଥିଲେ ଓ ଅନେକ ସ୍ଥାନରେ ସ୍ୱୟଂ ସଙ୍ଗୀତ ଗାନ କରି ସମସ୍ତଙ୍କୁ ତୁଷ୍ଟ କରୁଥିଲେ । ଏହାଙ୍କ ସଙ୍ଗୀତ ଏବେ ମଧ୍ୟ ଅନେକ ସ୍ଥାନରେ ଗୀତ ହୁଏ—ସୁବଳଚନ୍ଦ୍ର । ଏହାଙ୍କ ଗୀତମାନ ପକ୍ଷୀ ବା ଗରୁଡ଼ଙ୍କ ନାମରେ ଭଣିତା ହୋଇଥିଲା । ଏ ଯେଉଁ ଗାଡ଼ିରେ ଯିବା ଆସିବା କରୁଥିଲେ ତାହା ପକ୍ଷୀଙ୍କ ପକ୍ଷର ଆକୃତିର ଥିଲା । ସେ ମଧ୍ୟ ବେଳେବେଳେ ପକ୍ଷୀପରି ରବ କରୁଥିଲେ—ଜ୍ଞାନେନ୍ଦ୍ର । ]

ରୂପ ଚତୁର୍ଦ୍ଦଶୀ—ସ. ବି—କାର୍ତ୍ତିକ କୃଷ୍ଣଚତୁର୍ଦ୍ଦଶୀ; ନରକ ଚତୁର୍ଦ୍ଦଶୀ
Rupa chaturddaśi ( ହି. ଶ. )—The 14th day of the dark fortnight of Kārttika.
[ ଦ୍ର—ଏ ଦିନ ଲୋକେ ଦେହରେ ହଳଦୀ ଲଗାନ୍ତି । ]

ରୂପ ଚିତ୍ରଣ—ସ. ବି (ସ୍ତ୍ରୀ ଉତ୍)—ଗୋଟିଏ ଆକାର ଅଙ୍କିବା—
Rūpa chitraṇa  Drawing of a figure or image.

ରୂପଞ୍ଚ—ଗ୍ରା. ବି—ରୂପ ( ଦେଖ )—
Rūpañcha  Rūpa ( See )
[ ଦ୍ର—ମାଳ ଜ୍ୟୋତି ମଧ୍ୟେ ବାଳନୁଭୂକ ରୂପଞ୍ଚ ପ୍ରାଗୀ. ସୁବୁଦ୍ଧିଗୀତା । ]

ରୂପଜ—ସଂ· ବିଣ ( ରୂପ+ଜନ୍ ଧାତୁ+କର୍ତ୍ତୃ. ଅ )—୧ । ରୂପରୁ
Rūpaja  ଉତ୍ପନ୍ନ—1. Born of shape. ୨ । ସୌନ୍ଦର୍ଯ୍ୟରୁ
(ରୂପଜନିତ—ଅନ୍ୟରୂପ) ଜାତ —2 Born of beauty due to grace.

ରୂପ ଜୀବ—ଦେ.ବି. (ନାମଦ୍ୱୟ—ରୂପ ଗୋସ୍ୱାମୀ ଓ ତାହାଙ୍କ ଶିଷ୍ୟ ଜୀବ
Rūpa jiba  ଗୋସ୍ୱାମୀ—Rūpa Goswāmi and his disciple Jiba Goswāmi.

ରୂପଜୀବନୀ—ସ.ବି.ସ୍ତ୍ରୀ.—[ ରୂପ+ଜୀବ ଧାତୁ+କର୍ତ୍ତୃ.ଇ ନ୍+ଈ]—
Rūpa jibini  ରୂପାଜୀବା; ବେଶ୍ୟା [ହି. ଶ —Prostitute

ରୂପନ—ସଂ. ବି—[ରୂପ ଧାତୁ, ଣିଜନ୍ତ=ରୂପି ଧାତୁ+ଭାବ. ଅନ]—
Rūpana  ୧ । ଆରୋପଣ (ହି. ଶ.)—1. Attributing.
୨ । ପ୍ରମାଣ [ହି. ଶ.]—2. Proof. ୩ । ପରୀକ୍ଷା (ହି. ଶ.)—3 Examination.

ରୂପତା—ସଂ. ବି.—(ରୂପ+ଭାବାର୍ଥେ, ତା)—୧ । ରୂପର ଭାବ ବା
Rūpatā  ଧର୍ମ—1. The quality or state of Rūpa.
୨ । ସୌନ୍ଦର୍ଯ୍ୟ (ହି. ଶ)—2. Beauty; grace.

ରୂପ ତୃଷ୍ଣା—ସ. ବି.—୧ । ସୌନ୍ଦର୍ଯ୍ୟ ଉପଭୋଗ କରିବାପାଇଁ ଲୋଭ—.
Rūpa trushṇā  1. Aesthetic faculty; desire to to enjoy the pleasure of looking at beautiful things. ୨ । ସୁନ୍ଦର ବସ୍ତୁକୁ ଭୋଗ କରିବାର ଇଚ୍ଛା—2 · A desire to enjoy beautiful things.

ରୂପଧାରୀ—ସ. ବିଣ.ପୁଂ (ରୂପ+ଧୃ ଧାତୁ+କର୍ତ୍ତୃ.ଇନ୍, ୧ମା. ୧ବ)—
Rūpadhāri  ୧ । ସାକାର;ଯେ ମୂର୍ତ୍ତି ବା ଆକାର ଧାରଣ କରିଥାଏ
(ରୂପଧର—ଅନ୍ୟରୂପ)  1. Assuming a concrete shape or material form. ୨ । ବେଶ ବା ପରିଚ୍ଛଦଧାରୀ—2. Assuming a garb or dress.
(ରୂପଧାରିଣୀ, ରୂପଧରା—ସ୍ତ୍ରୀ) ୩ । ସୌନ୍ଦର୍ଯ୍ୟଶାଳୀ—3. Beautiful.

ରୂପଧେୟ - ସ. ବି ( ରୂପ + ସ୍ୱାର୍ଥେ ଧେୟ )—ସୌନ୍ଦର୍ଯ୍ୟ—
Rūpadheya Beauty. (ତୁଳନା କର, ନାମଧେୟ=ନାମ)

ରୂପ ଧ୍ୟାନ—ସ.ବି (୬ଷ୍ଠୀ ତତ୍)—କୌଣସି ଦେବତାଙ୍କର ବା ମନୁଷ୍ୟଙ୍କ
Rūpa dhyāna ରୂପକୁ ମନେ ମନେ ଚିନ୍ତା କରିବା—
Recalling of or meditation on the shape of a Deity or person to one's mind.

ରୂପନାଶକ—ସ. ବିଣ—ଯାହା ସୌନ୍ଦର୍ଯ୍ୟକୁ ନଷ୍ଟ କରେ—
Rūpanāśaka Spoiling beauty. ସ. ବି—ପେଚକ
(ରୂପନାଶୀ—ଅନ୍ୟରୂପ) (ବ୍ରି. ଷ.)—Owl.

ରୂପ ନାଶନ—ସ. ବିଣ—ସୌନ୍ଦର୍ଯ୍ୟ ବିନାଶକ—Marring or
Rūpa nāśana ruining beauty. ବି—ପେଚକ—Owl.

ରୂପ ପସରା—ଦେ. ବି—ପଣ୍ୟଦ୍ରବ୍ୟ ସମୂହ ସଙ୍ଗେ ତୁଳନା କରାଯିବା
Rūpa pasarā ସୌନ୍ଦର୍ଯ୍ୟ—Beauty compared to
রূপেরপসরা रूपकाडाला articles spread for show.

ରୂପ ପ୍ରତିମା—ଦେ.ବି - ୧ । ସୁନ୍ଦର ମୂର୍ତ୍ତି—1. Beautiful figure.
Rūpa pratimā ୨। ସୁନ୍ଦର ବ୍ୟକ୍ତି—2. Beautiful person.
রূপেরপ্রতিমা [ଦ୍ର—ରୂପପ୍ରତିମାକୁ ଭୁ ପରତେ ନ ଯା । ଭକ୍ତଚରଣ.
रूपप्रतिमा ମନବୋଧ ଚଉତିଶା ।]

ରୂପବତୀ—ସ. ବିଣ. ସ୍ତ୍ରୀ (ରୂପ + ବତ୍ + ସ୍ତ୍ରୀ. ଈ)—ସୁରୂପା; ସୁନ୍ଦରୀ—
Rūpabatī Beautiful; graceful in form (female).
(ରୂପବାନ୍—ପୁଂ) ସଂ. ବି—ସଂସ୍କୃତ ଛନ୍ଦ ବିଶେଷ (ବ୍ରି. ଷ)—
Name of a Sanscrit metre

ରୂପବର୍ଣ୍ଣ—ସଂ. ବି (ଦ୍ୱନ୍ଦ୍ୱ)—ରୂପ ଓ ବର୍ଣ୍ଣ; ଆକାର ଓ ରଙ୍ଗ—
Rūpabarṇṇa Shape and colour.

ରୂପବନ—ଦେ. ବି—ରୂପବର୍ଣ୍ଣ (ଦେଖ)
Rūpabana Rūpabarṇṇa (See)
রূপবর্ণ रूपबरन

ରୂପବନ୍ତ(ନ୍ତା)—ଦେ. ବିଣ. ପୁଂ ଓ ସ୍ତ୍ରୀ (ସ ରୂପବତ୍)—ସୁମୂର୍ତ୍ତି; ସୁରୂପ;
Rūpabanta(ntā) ସୁନ୍ଦର—Beautiful.
রূপবন্ত रूपवन्त, रूपमान (ରୂପବନ୍ତୀ—ସ୍ତ୍ରୀ)

ରୂପବାନ—ସ. ବିଣ. ପୁଂ (ରୂପ + ଅସ୍ତି ଅର୍ଥରେ ବତ୍, ୧ମା. ୧ବ)—
Rūpabān ୧ । ରୂପଧାରୀ; ଯାହାର ରୂପ ଅଛି—
(ରୂପଶାଳୀ—ଅନ୍ୟରୂପ) 1 Having a form; corporeal.
ରୂପବତୀ, ରୂପଶାଳିନୀ } ସ୍ତ୍ରୀ ୨ । ସୁରୂପ; ସୁନ୍ଦର—2. Beautiful.

ରୂପ ବିଶିଷ୍ଟ—ସ. ବିଣ ( ରୂପ + ବିଶିଷ୍ଟ=ଯୁକ୍ତ, ୩ୟା ତତ୍ )—୧ ।
Rūpa biśishṭa ଆକାରବିଶିଷ୍ଟ; ଯାହାର ଆକାର ଥାଏ—
( ରୂପବିଶିଷ୍ଟା—ସ୍ତ୍ରୀ ) 1. Having a concrete form.
୨ । ସୌନ୍ଦର୍ଯ୍ୟବିଶିଷ୍ଟ—2. Beautiful; graceful,
(ରୂପବିଶିଷ୍ଟତା—ବି) elegant.

ରୂପ ବିହୀନ—ସ.ବିଣ ପୁଂ (୩ୟା ତତ୍; ରୂପଦ୍ୱାରାବିହୀନ)—ନିରାକାର—
Rūpabihīna Having no form; shapeless.
(ରୂପହୀନ—ଅନ୍ୟରୂପ) (ରୂପବିହୀନା, ରୂପହୀନା—ସ୍ତ୍ରୀ)

ରୂପ ବେଶ—ସ. ବି(ଦ୍ୱନ୍ଦ୍ୱ)—ଆକାର ଓ ପୋଷାକ—
Rūpa beśa Form and dress.

ରୂପବୈଶିଷ୍ଟ୍ୟ—ସ. ବି ( ୬ଷ୍ଠୀ ତତ୍ )—୧ । ଆକାରର ବିଶିଷ୍ଟତା—
Rūpabaiśishṭya 1. Peculiarity of shape or form. ୨ । ଅତ୍ୟନ୍ତ ସୁନ୍ଦରତା—2. Great loveliness.

ରୂପଭାଗ—ଦେ. ବି (ଗାଣିତିକ ପରିଭାଷା)—୧ । ଯେଉଁ ଉପାୟଦ୍ୱାରେ
Rūpabhāga ନିମ୍ନଶ୍ରେଣୀର ରାଶିକୁ ଉଚ୍ଚଶ୍ରେଣୀର ରାଶିରେ ଓ
রূপভাগ ଉଚ୍ଚଶ୍ରେଣୀର ରାଶିକୁ ନିମ୍ନଶ୍ରେଣୀର ରାଶିରେ ପରିଣତ
କରାଯାଏ; ରାଶି ଆଦିର ଲଘୂକରଣ ପ୍ରକ୍ରିୟା—
1. (Mathematics) Reduction. ( ଯଥା—
୩୬୫ ଛଟାକିକୁ ମହଣରେ ପରିବର୍ତ୍ତନ କରିବା; ୫
ମହଣକୁ ଛଟାକିରେ ପରିଣତ କରିବା । ) ୨ । ପୂର୍ଣ୍ଣ ରାଶିର
ଭଗ୍ନାଂଶ—2 Fraction of a unit.

ରୂପଭେକ(ଷ)—ଦେ. ବି—୧ । ରୂପ ଓ ବେଶ—1. Form and
Rūpabheka(śa) garb. ୨ । ଚେହେରା ଓ ପୋଷାକ-
রূপ ও বেশ रूपओभेक(स) 2. Appearance and dress.

ରୂପଭେଦ—ସ. ବି ( ୬ଷ୍ଠୀ ତତ୍ )—୧ । ଭିନ୍ନ ଭିନ୍ନ ରୂପ—
Rūpabheda 1. Different forms. ୨ । ରୂପାନ୍ତର
(ଦେଖ)—2. Rūpāntara (See) ୩ । ରୂପର ବିଭିନ୍ନତା-
3. Difference of form.

ରୂପ ଭୋଗ—ସ. ବି ( ୬ଷ୍ଠୀ ତତ୍ )—କୌଣସି ବସ୍ତୁର ବା ବ୍ୟକ୍ତିର
Rūpabhoga ସୌନ୍ଦର୍ଯ୍ୟକୁ ଅନୁଭବ କରି ସୁଖଭୋଗ କରିବା-.
Enjoyment of the beauty of an object; aesthetic enjoyment.

ରୂପ ଭୋଗ ବାସନା—ସ. ବି—ସୌନ୍ଦର୍ଯ୍ୟ ଉପଭୋଗ କରିବାର ଇଚ୍ଛା—
Rūpabhogabāsanā A desire for aesthetic enjoyment.

ରୂପ ମଧୁର—ସ. ବିଣ. ପୁଂ—(ବହୁବ୍ରୀହି) ମୋହକରରୂପବିଶିଷ୍ଟ—
Rūpamadhura Of charming shape or figure.
(ରୂପମଧୁରା—ସ୍ତ୍ରୀ)

ରୂପମୟ—ସ. ବିଣ ପୁଂ (ରୂପ + ଅତିଶୟାର୍ଥେ ମୟ)—୧ । ଅତିସୁନ୍ଦର
Rūpamaya (ବ୍ରି. ଷ) 1. Very beautiful.
(ରୂପମୟୀ—ସ୍ତ୍ରୀ) ୨ । ଆକାର ବିଶିଷ୍ଟ—2. Having shape or form.

ରୂପ ମାଧୁରୀ(ର୍ଯ୍ୟ)—ସ. ବି (୬ଷ୍ଠୀ ତତ୍)—ଆକାରର ବା ସୌନ୍ଦର୍ଯ୍ୟର
Rūpa mādhurī(rjya) ମଧୁରତା—Sweetness or
(ରୂପମଧୁରତା—ଅନ୍ୟରୂପ) charm of beauty or shape.

ରୂପମୋହ—ସ. ବି—ସୌନ୍ଦର୍ଯ୍ୟଦ୍ୱାରା ମୁଗ୍ଧ ହେବା ଅବସ୍ଥା—
Rūpamoha The charm of beauty; illusion or infatuation which overtakes a person on seeing a beautiful object.

ରୂପଯୁକ୍ତ—ସ. ବିଣ. ପୁଂ—ରୂପ ବିଶିଷ୍ଟ (ଦେଖ)
Rūpajukta (ରୂପଯୁକ୍ତା—ସ୍ତ୍ରୀ) Rūpabiśishṭa (See)

**ରୂପ ଯୌବନ**—ସ. ବ—(ଦ୍ୱନ୍ଦ୍ୱ)—ସୌନ୍ଦର୍ଯ୍ୟ ଓ ଯୁବାବସ୍ଥା—
Rūpa jaübana Beauty and youth.

**ରୂପଯୌବନ ସମ୍ପନ୍ନ**—ସଂ. ବ. ପୁଂ (ଦ୍ୱନ୍ଦ୍ୱ ଓ ଅସ୍ମା ତତ୍)—ଯାହାର
Rūpajoübana sampanna ସୌନ୍ଦର୍ଯ୍ୟ ଓ ଯୁବାବସ୍ଥା ଉଭୟ
(ରୂପଯୌବନସମ୍ପନ୍ନା—ସ୍ତ୍ରୀ) ଅଛି—Beautiful and young.

**ରୂପ ରଙ୍ଗ**—ଦେ. ବ (ଦ୍ୱନ୍ଦ୍ୱ)—ରୂପ ଓ ବର୍ଣ୍ଣ—
Rūpa ranga Shape and colour.
রূপ ও রং रूपऔररंग

**ରୂପ ରସ**—ସ. ବ (ଦ୍ୱନ୍ଦ୍ୱ)—ବସ୍ତୁର ଆକାର ଓ ସ୍ୱାଦ—
Rūpa rasa The form and taste of a thing.

**ରୂପ ରାଶି**—ସ. ବ (୬ଷ୍ଠୀ ତତ୍)—୧ । ଏକତ୍ର ଅବସ୍ଥିତ ରୂପସମୂହ—
Rūpa rāsi 1. A collection of graces.
୨ । ରୂପର ଆଧିକ୍ୟ—2. Excess of beauty; a mass of various items of beauty. ୩ । (ଗଣିତ) ଯେଉଁ ରାଶିର ମୂଳ ପୂର୍ଣ୍ଣସଂଖ୍ୟାରେ ବାହାର କରାଯାଇ ପାରେ—3. (Methematics) A number whose exact root can be calculated in integer.

**ରୂପରେଖ**—ଦେ. ବ (ସହତର)—୧ । ଆକାର ଓ ଆକାରର ସୀମାରେଖା
Rūparekha 1. Form and outline. ୨ । ଆକାର—
রূপ ও আকার रूपरेखा 2. Shape. ୩ । ରୂପର ଅସ୍ତିତ୍ୱ—
3. Existence of a shape. (ଉ—ଧର୍ମପୁରୁଷର ରୂପ ରେଖ ନାହିଁ କାହାକୁ ଜଣିବ ମୁହିଁ—ପ୍ରାଚୀ. ସୁଭ-ଚନ୍ଦ୍ରାମଣି ।) ବଣ—୧ । ରୂପ ଓ ଗୁଣରେ ସୁନ୍ଦର; ସର୍ବାଙ୍ଗ ସୁନ୍ଦର—1. Beautiful in all respects. ୨ । ସରୂପାଙ୍ଗୀଯୁକ୍ତ—2. Elegant in shape.

**ରୂପ ରେଖା**—ସ. ବ (୬ଷ୍ଠୀ ତତ୍)—ରୂପର ଅସ୍ତିତ୍ୱ—Existence
Rūpa rekhā of shape. ଦେ. ବ. ହସ୍ତ ବା ପଦରେ ଥିବା ଜ୍ୟୋତିଷୋକ୍ତ ଚିହ୍ନବିଶେଷ—A sign in the palm or feet. (ଉ—ରୂପରେଖା ଉର୍ଦ୍ଧ୍ୱରେଖା କମ୍ବୁ କମ୍ବୁ ଫଳ, ସ୍ୱସ୍ତିକ ରଥାଙ୍ଗବଜ୍ର ମୋହେ ପଦତଳ—ପ୍ରାଚୀ. ରସବାରିଧି ।)

**ରୂପ ରେ(ଲେ)ଖିବା**—ଦେ. କ୍ରି.—୧ । ସୀମା-ରେଖା ଅଙ୍କନ କରି
Rūpa re(le)khibā ଗୋଟିଏ ମୂର୍ତ୍ତି ଲେଖିବା—To draw
রূপ আঁকা रूपलीखना the outlines of an image.
୨ । କୌଣସି ବସ୍ତୁର ଚିତ୍ର ଅଙ୍କନ କରିବା—2. To outline or deliniate an object.

**ରୂପ ଲାବଣ୍ୟ**—ସ. ବ.—(୬ଷ୍ଠୀ ତତ୍)—ସୁନ୍ଦର ବା ମୋହନ ରୂପ—
Rūpa lābanya Grace of form; charming shape; graceful shape.

**ରୂପ ଲାବଣ୍ୟବନ୍ତ**—ଦେ. ବଣ.—ଲାବଣ୍ୟମୟ ରୂପବିଶିଷ୍ଟ—Of
Rūpa lābanyabanta charming beauty; very
রূপ লাবণ্যবন্ত रूपलावण्य बन्त graceful.

**ରୂପ ଲାବଣ୍ୟବାନ୍**—ଦେ. ବଣ. ପୁଂ.—ଲାବଣ୍ୟମୟ ରୂପବିଶିଷ୍ଟ—
Rūpa lābanyabān Of charming beauty.
[ରୂପ ଲାବଣ୍ୟବତୀ—ସ୍ତ୍ରୀ]

**ରୂପ ଶୂନ୍ୟ**—ସ. ବଣ.—(ଅସ୍ମା ତତ—୧ । ନିରାକାର—
Rūpaśūnya 1. Formless. ୨ । କଦାକାର—
2. Ugly.

**ରୂପସ**—ବୈଦେ. ବଣ. ପୁଂ—[ବଙ୍ଗଳା ଭାଷାରୁ ଅନୁକୃତ]—ରୂପବାନ୍;
Rūpasa ସୁନ୍ଦର; ସୁଶ୍ରୀ—Elegant; graceful.
রূপস रूपशाली [ରୂପସୀ—ସ୍ତ୍ରୀ]

**ରୂପ ସମ୍ପଦ(ତ୍ତି)**—ସ. ବ.—(ରୂପକ ସମାସ)—ସୌନ୍ଦର୍ଯ୍ୟରୂପ ଧନ
Rūpa sampad(tti) (ସ୍ତ୍ରୀ.ଶ.)—Beauty considered as riches or valuable possession.

**ରୂପ ସାଗର**—ସ.ବ.(ରୂପକ)—ସାଗର ସଙ୍ଗେ ତୁଳନା କରାଯିବା ରୂପ—
Rūpa sāgara Beauty compared in its exuberance to the waters of the sea.

**ରୂପ ସନାତନ**—ଦେ. ବ. (ନାମଦ୍ୱୟ)—ଚୈତନ୍ୟ ଦେବଙ୍କ ଭକ୍ତ ଓ
Rūpa sanātana ପଣ୍ଡିତ ଦୁଇ ଭାଇ ରୂପ ଗୋସ୍ୱାମୀ ଓ ସନାତନ
রূপ সনাতন গোস্বামী—Name of two Baishnaba
रूपऔर सनातन devotee brothers. [ଦ୍ର—ଏ ଦୁଇଜଣ ଶ୍ରୀଚୈତନ୍ୟପ୍ରବର୍ତ୍ତିତ ବୈଷ୍ଣବ ସମ୍ପ୍ରଦାୟର ପ୍ରତିଷ୍ଠା ପାଇଁ ବୃନ୍ଦାବନରେ ବାସ କରି ବୈଷ୍ଣବ ଗ୍ରନ୍ଥମାନ ରଚନା ଓ ବୈଷ୍ଣବ ତତ୍ତ୍ୱମାନ ପ୍ରଚାର କରିଥିଲେ ।]

**ରୂପସୀ**—ବୈଦେ. ବଣ. ସ୍ତ୍ରୀ—(ବଙ୍ଗଳା ଭାଷାରୁ ଗୃହୀତ)—ରୂପବତୀ;
Rūpasī ସୁନ୍ଦରୀ (ସ୍ତ୍ରୀ)—Beautiful (woman). ବି—
ସୁନ୍ଦରୀ ସ୍ତ୍ରୀ—A comely woman; a beauty.
(ଉ—ରଜକରୂପସୀଙ୍କ କମ୍ପିତ କମ୍ବୁସ୍ୱେ ପଲକ ଗଣ୍ଡ ସଦୋଚ ରାଧାନାଥ. ଯଯାତି ।)

**ରୂପ ସୁନ୍ଦର**—ସ ବଣ.(ଅସ୍ମା ତତ୍)-ସୁନ୍ଦର ରୂପବିଶିଷ୍ଟ—Having a
Rūpa sundara beautiful shape; having a
সুন্দর রূপ रूप सुन्दर loving shape.
(ଗୁଣ ସୁନ୍ଦର—ବିପରୀତ ଭାବାତ୍ମକ ଶବ୍ଦ)

**ରୂପହୀନ**—ସଂ. ବଣ. ପୁଂ—(ଅସ୍ମା ତତ୍)—୧ । ନିରାକାର—
Rūpa hīna 1. Having no shape. ୨ । କୁରୂପ—
(ରୂପହୀନା—ସ୍ତ୍ରୀ) 2. Ill-shapen; ugly.

**ରୂପା**—ଦେ. ବ.—(ସଂ ରୂପ୍ୟ)—୧ । ଶୁକ୍ଳବର୍ଣ୍ଣ ଧାତୁ ବିଶେଷ;
Rūpā ରୌପ୍ୟ, ଶୁଭ୍ର—1. Silver; Argentum.
কপো(পা) चान्दी, रूपा [ଉ—ଚନ୍ଦ୍ରାମଣି ଥାଉଁ ଥାଉଁ କେ
ଫ. ନକ୍ରେ ରସେ ରୂପାରେ । କବିସୂର୍ଯ୍ୟ. ସଙ୍ଗୀତ
ଅ. ଫିଦ୍ଦା [ଦ୍ର—ଏହାର ସଂସ୍କୃତ ନାମ—
ତେ. ଏଣ୍ଡି ସାନ୍ଦ୍ରଭଙ୍ଗ, ଶ୍ୱେତ, ରଙ୍ଗ ସାର, ଲୋହ-ରାଜକ, କଳଧୌ(ଧୂ)ତ, ରୌପ୍ୟ, ମହାଶୁଭ୍ର, ରଜତ, ତାର, ଚନ୍ଦ୍ରକାନ୍ତ, ସିତପ୍ରଭ, ଶୁଭ୍ର, ରସଶ୍ରେଷ୍ଠ, ରୁଷ୍ୱର, ଚନ୍ଦ୍ର(ଇନ୍ଦୁ)—ଲୋହକ, ରୂପ, ରୂପ୍ୟ, ଶ୍ୱେତକ, ତପ୍ତରୂପକ, ଚନ୍ଦ୍ରଭୂତି;

ସିତ, ରୂପ୍ୟକ, ରୌପ୍ୟ, ଧୌତ, ସୌଧ, ଚନ୍ଦ୍ରହାସ, ଅକୁପ୍ୟ, ଭୃଙ୍ଗକ, ଖର୍ଜୁର ।] ୨ । ମିଶା ରୂପା—2. Mixed silver. ବିଣ.—ରୂପବିଶିଷ୍ଟ, ରୂପଧାରୀ—Assuming a shape.

ରୂପା(ପେ)ଇ --ଦେ. ବ ସ୍ତ୍ରୀ— ରୂପାଇ (ଦେଖ)
Rūpā(pe)i Rupāi (See)

ରୂପାଜୀବା —ସଂ. ବ. ସ୍ତ୍ରୀ--(ବହୁବ୍ରୀହି; ରୂପ=ସୌନ୍ଦର୍ଯ୍ୟ ଅଟେ ଆଜୀବ= Rūpājibā ଜୀବିକା ଯାହାର; ରୂପ+ଆଜୀବ+ଆ.—୧ । ବେଶ୍ୟା; ବାରାଙ୍ଗନା, ଦାସୀ—1. Harlot; a whore; prostitute; a woman of the town; public woman. ୨ । ନର୍ତ୍ତକୀ; ନାଚୁଣୀ—2 A dancing girl.

ରୂପାଧିବୋଧ —ସଂ. ବ —( ୬ଷ୍ଠୀ ତତ୍; ରୂପ+ଅଧିବୋଧ )—ଦୃଶ୍ୟ Rūpādhibodha ବସ୍ତୁର ଜ୍ଞାନ ଇନ୍ଦ୍ରିୟଦ୍ୱାରା ଉପଲବ୍ଧି (ହି. ଶ.)- Knowledge or perception of a visible thing by the senses.

ରୂପାନ୍ତର —ସଂ. ବ.—(ଅନ୍ୟ+ରୂପ)—୧ । ଭିନ୍ନ ଆକାର—1. A Rūpāntara different shape or form. ୨ । ଏକ ବସ୍ତୁର ବିଭିନ୍ନ ଆକାର—2. Different shapes of one and the same thing. ୩ । ନୂତନ ଅବସ୍ଥା ବା ଭାବ ବା ରୂପ—3. A new state or condition or shape. ୪ । ଭିନ୍ନ ବେଶ—4. A different garb or dress

ରୂପାନ୍ତରିତ—ସଂ. ବିଣ (ରୂପାନ୍ତର+ଇତ)—୧ । ନୂତନ ରୂପ ପ୍ରାପ୍ତ— Rūpāntarita 1. Assuming or turned into a different shape. ୨ । ନବ ବେଶ ଧାରଣ କରିବାରୁ ଯାହାର ରୂପର ପରିବର୍ତ୍ତନ ଘଟ ଥାଏ—2. One whose form or appearance is changed by the assumption of a new garb. ୩ । ଗୋଟିଏ ରୂପରୁ ଅନ୍ୟ ରୂପରେ ପରିବର୍ତ୍ତିତ ଏକ ମାତ୍ର ପଦାର୍ଥ— 3. (the same thing) Changed into a different form.

ରୂପା ପତର(ପତ୍ର, ପାତିଆ)—ସଂ. ବିଣ — ରୂପା ପତର ( ଦେଖ )
Rūpā patara(patra, pātiā) Rupā patara (See)
রুপোর পাত रूपेका पत्तर

ରୂପା ପାତି(ଟି)ଆ—ପ୍ରାଦେ ( ବାଲେଶ୍ୱର ) ବ—ନଦୀ ମୁହାଣରେ Rūpā pāti(ṭi)ā ଧରାଯିବା ଏକପ୍ରକାର ସାମୁଦ୍ରିକ ମାଛ—A kind of sea fish caught in the mouths of rivers. ଦେ. ବ—୧ । ରୂପାରେ ନିର୍ମିତ ପାତଳା ପତ୍ର—1. Foils of silver. ୨ । ଜହ୍ଲାମାଛ (ଦେଖ)—2. Jahlā fish (See).

ରୂପା ଭସ୍ମ—ସଂ. ବ—ଆୟୁର୍ବେଦ ବା ରସାୟନଶାସ୍ତ୍ରୋକ୍ତ ପ୍ରକ୍ରିୟାରେ Rūpā bhasma ରୌପ୍ୟରୁ ପୋଡ଼ି ପ୍ରସ୍ତୁତ କରିବା ପାଉଁଶ— Oxide of silver.

ରୂପା ମକେଇ—ଦେ.ବ (ସଂ. ରୌପ୍ୟ ଓ ମାକ୍ଷିକ)—(ବୈଦ୍ୟକ) ରୂପା, Rūpā makei ଲୌହ ଓ ଗନ୍ଧକମିଶ୍ରିତ ପଦାର୍ଥବିଶେଷ; ତାର- (ରୂପାମାକ୍ଷିକ—ଅନ୍ୟରୂପ) ମାକ୍ଷିକ ନାମକ ଉପଧାତୁ ବିଶେଷ— রূপামাখী, রৌপ্যমাক্ষিক Iron pyrites; Ferri Sulphuretum.
रूपामाखी, तारा(मा,मु)खी
ଫା. ଉର୍କୁକସ ଅ. ଶବ୍ସୁଲ୍ପିଜା ତେ. ରୁଷାମାଙ୍ଗୀ

ରୂପାମାକ୍ଷୀ —ଦେ. ବ—ତାରମାକ୍ଷିକ—
Rūpāmākshi Iron pyrites.
রূপামখী रूपामाखी

ରୂପା ମାରଣ —ଦେ. ବ (ସଂ. ରୌପ୍ୟମାରଣ) —ଆୟୁର୍ବେଦୋକ୍ତ ବିଧିଦ୍ୱାରା Rūpā mārana ରୌପ୍ୟର ଭସ୍ମୀକରଣ—Process of oxidising silver.
রৌপ্যমারণ रूपेकामारणा

ରୂପା ମାରିବା—ଦେ. ବ—ରୌପ୍ୟଭସ୍ମ ପ୍ରସ୍ତୁତ କରିବା—
Rūpā māribā To perform the process of oxidising silver.
রৌপ্যমারা रूपामारना

ରୂପାଳାପ—ସଂ. ବ —ବାଦ୍ୟଯନ୍ତ୍ର ଆଦିକୁ ଅଭିପ୍ରେତ ତାଳମାନ ସହିତ Rūpālāpa ବଜାଇବା ପୂର୍ବରୁ ସୁର୍ ବାନ୍ଧିବା; ସ୍ୱର୍ ଚଢ଼ାଇବା The striking of the keynote before playing a tune.

ରୂପାଳିଆ—ଦେ. ବିଣ—୧ । ରୌପ୍ୟମିଶ୍ରିତ—1. Mixed with Rūpālia silver. ୨ । ରୂପୁଲି; ରଜତାଭ; ରୂପାପରି ଦେଖା— রূপা(পু)লি যিবা; শুক্ল—2. Silvery; white like silver; silvery white.
रूपेकेजेषा

ରୂପାସ୍ତ୍ର—ସଂ. ବ. ପୁଂ (ରୂପ=ସୌନ୍ଦର୍ଯ୍ୟ ଅଟେ ଅସ୍ତ୍ର ଯାହାର Rūpāstra ବହୁବ୍ରୀହି) —କାମଦେବ— Cupid (personified).

ରୂପିକା—ସଂ. ବ (ବୈଦ୍ୟକ)— ଶ୍ୱେତ ଅକନ୍ଦ; ଧଳା ଅରଖ ଗଛ— Rūpikā A plant; white swallowwort.

ରୂପିଣୀ—ସଂ. ବିଣ. ସ୍ତ୍ରୀ (ରୂପ+ଇନ୍+ସ୍ତ୍ରୀ. ଈ)—୧ । ରୂପବିଶିଷ୍ଟା Rūpiṇi (ସ୍ତ୍ରୀ)—1 (Female) Having a shape. (ରୂପୀ—ପୁଂ) ୨ । ରୂପଧାରିଣୀ - 2. Assuming a shape. ୩ । ସୁନ୍ଦରୀ—3. Graceful; beautiful (female). ୪ । (ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୋଇ ସମାସଯୁକ୍ତ ହେଲେ) ଅନ୍ୟର ରୂପଧାରିଣୀ—4. Assuming the shape of another. (ଯଥା—ନରରୂପିଣୀ ରାକ୍ଷସୀ, ନରରୂପିଣୀ ଦେବତା, କାଳରୂପିଣୀ ଚଣ୍ଡୀ ।) ଦେ. ବିଣ. ପୁଂ—ରୂପଧାରୀ—Assuming some shape or form. (ଯଥା—କେଶିଙ୍କା ଚକ୍ଷୁ ବୃକନ ରୂପିଣୀ ତବ ସୁତ । କୃଷ୍ଣସିଂହ. ମହାଭାରତ. ଆଦି ).

ରୂପିତ – ସଂ. ବିଣ. ପୁଂ (ରୂପ+ଇତ)—୧ । ରୂପଯୁକ୍ତ --1. Formed; shaped. ୨ । ଚିତ୍ରିତ—2. Painted. ୩ । Rūpita ବର୍ଣ୍ଣିତ—3. Described. ସଂ. ବ—ଏକ ପ୍ରକାର ଉପନ୍ୟାସ, ଯହିଁରେ ଜ୍ଞାନ ବୈଶିଷ୍ଟ୍ୟାଦ ପାତ୍ରରୂପେ କଳ୍ପିତ

ରୂପକ (ହି. ଶ)—A kind of novel in which abstract qualities are personified.

ରୂପିବା—ଦେ. କି—ଦେଖାଇବା; ଆଗରେ ଦେଖାଇବା—
Rūpibā To show; to present.
ପାତା (ଯଥା—ଅପେ ଜଣେ ଆପେ ଦ୍ୱାରେ ରୂପିଅଛି ଛଞ୍ଚ ।
ଦିଖାନା (ରୂପିଥାଇବା—ଅନ୍ୟରୂପ) ବ୍ରହ୍ମକଲ୍ପରୂପଶଗୀତା ।)

ରୂପୀ—ସଂ. ବିଣ. ପୁଂ (ରୂପ+ଇନ୍; ୧ମା. ୧ବ)—୧ । ସାକାର; ରୂପ-
Rūpi ବିଶିଷ୍ଟ—1. Having a form. ୨ । (ସମାସଯୁକ୍ତ ହେଲେ) ଅନ୍ୟର ରୂପଧାରୀ—2. Assuming the
(ରୂପିଣୀ—ସ୍ତ୍ରୀ) form of.

ରୂପେ - ଦେ. ଅ—ପରି—
Rūpe Like.
ଙ୍ଗପେ (ଯଥା—ସେହିରୂପେ ତୁ ଭୂମିର ଅଗରେ କହୁଚି । କୃଷ୍ଣ ସିଂହ·
ରୂପମେ ମହାଭାରତ. ଅଦି ।)

ରୂପେନ୍ଦ୍ରିୟ—ସ. ବ (ମ. ପ. ଲୋ)—ଚକ୍ଷୁ; ଆକ୍ଷି—
Rūpendriya Eye.

ରୂପୋପଜୀବିନୀ—ସ. ବ. ସ୍ତ୍ରୀ (ରୂପ+ଉପଜୀବିନୀ)—ବେଶ୍ୟା (ହି.ଶ)—
Rūpopajībini Prostitute.

ରୂପୋପଜୀବୀ—ସଂ. ବ· ପୁଂ (ରୂପ+ଉପଜୀବିନ୍; ୧ମା. ୧ବ)—ବହୁ
Rūpopajibi ରୂପ—A person who appears in various garbs or masks; masker.

ରୂପ୍ୟ—ସଂ. ବିଣ ପୁଂ (ରୂପ+ଯ)—୧ । ରୂପବାନ୍; ସୁନ୍ଦର—
Rūpya 1. Beautiful; of graceful form.
(ରୂପ୍ୟା—ସ୍ତ୍ରୀ) ୨ । ଉପମେୟ (ହି. ଶ)—2. Comparable.
ସଂ. ବ—୧ । ସ୍ୱର୍ଣ୍ଣ—1 Gold. ୨ । ରୌପ୍ୟ, ରୁପା—2. Silver. (ଯଥା—ତବସେ ରୂପ୍ୟ ଦେଇ ହାତରୂପ ନେଇ ଯୋଡ଼ୁ ସ୍ୱରୂପ କାମ-ଅଳାର ଗୋ । ବୈଦେହୀଶବିଳାସ । ୩ । ଅଳଙ୍କାରାଦି କରିବାର୍ଥେ ସଂଗୃହୀତ ସ୍ୱର୍ଣ୍ଣ ବା ରୌପ୍ୟ—3. Gold or silver set apart or collected for being made into ornaments.

ରୂପ୍ୟକ—ସଂ. ବ (ରୂପ୍ୟ+କ)—ଟଙ୍କା (ହି. ଶ)
Rūpyaka Rupee.

ରୂପ୍ୟମୟ—ସଂ. ବିଣ—ରୁପାରେ ତିଆରି—
Rūpyamaya (ରୂପ୍ୟମୟୀ—ସ୍ତ୍ରୀ) Made of silver.

ରୂପ୍ୟମୁଦ୍ରା—ସଂ. ବ—ରଜତ ମୁଦ୍ରା; ରୁପାଟଙ୍କା—
Rūpyamudrā Silver coin; rupee

ରୂପ୍ୟାଧ୍ୟକ୍ଷ—ସଂ. ବ—ଟଙ୍କଶାଳାର ଅଧ୍ୟକ୍ଷ—
Rūpyādhyaksha Mint master; the superintendent of a mint.

ରୂବୁକ—ସଂ. ବ—ଏରଣ୍ଡ ବା ଜଡ଼ ଗଛ—
Rūbuka The castor seed plant.

ରୂର—ସଂ. ବିଣ—୧ । ଉତ୍ତପ୍ତ (ହି. ଶ)—1. Heated.
Rūra ୨ । ଦଗ୍ଧ (ହି· ଶ)—2. Burnt·

ରୂଷ୍ (ଧାତୁ)—୧ । ଭୂଷିତ କରିବା—1. To adorn.
Rūsh (root) ୨ । ଚୂର୍ଣ୍ଣ କରିବା—2. To powder.

ରୂଷକ—ସଂ. ବ—ବାସଙ୍ଗ (ହି. ଶ) (ଦେଖ)
Rūshaka Bāsanga. (See)

ରୂଷଣ—ସ. ବ.—(ରୂଷ୍ ଧାତୁ+ଭାବ. ଅନ)—୧ । ଅଳଙ୍କରଣ—
Rūshana 1. Adorning. ୨ । ଲେପନ; ଲିପିବା—2. Anointing; painting. ୩ । ମ୍ରକ୍ଷଣ; ବୋଳିବା—3. Smearing.

ରୂଷିତ—ସ. ବିଣ.—(ରୂଷ୍ ଧାତୁ+କର୍ମ· ତ)—୧। ଅଳଙ୍କୃତ;ଭୂଷିତ—
Rūshita 1. Adorned. ୨ । ଚୂର୍ଣ୍ଣିତ—2. Powdered; reduced to dust. ୩ । ମ୍ରକ୍ଷିତ—3. Painted; smeared. ୪ । ଲେପିତ—4. Anointed.
୫ । ଖଣ୍ଡିତ; ଭଗ୍ନ (ହି. ଶ.)—5. Broken.

ରେ—ସ.ଅ.—(ରୁ ଧାତୁ=ଶବ୍ଦ କରିବା+ଭାବ.ଏ)—ଅରେ ! (ନୀଚାର୍ଥକ
Re ବେ ହି ସମ୍ବୋଧନ)—ହେଇରେ ! ହଇରେ ! ହୋଇରେ !
(Interjection used towards a person lower than the speaker)-Hallo । [ଦ୍ର—ନୀଚ ପଦସ୍ଥ ବ୍ୟକ୍ତିଙ୍କୁ ସମ୍ବୋଧନ—ହେ ! ଅହେ ! ହଇହେ ! ଅତି ଆଦରାର୍ଥରେ ମଧ୍ୟ ସମ୍ବୋଧନସୂଚକ ପଦରୂପେ 'ରେ' ର ବ୍ୟବହାର ହୁଏ । ଯଥା—'ଆସି ରେ କହ ତଥାପିରେ ପ୍ରିୟ ସଖି' (କବିସୂର୍ଯ୍ୟ-ବଳଦେବରଥ,ଅ ଗୀତ) । ଉଚ୍ଚପଦସ୍ଥ ବ୍ୟକ୍ତିଙ୍କର ନିମ୍ନତର ଲୋକଙ୍କୁ ହୋ ! ଅହୋ ! ତହିଁରୁ ନିମ୍ନତର ଲୋକଙ୍କୁ ରେ ! ଅରେ ! ହଇରେ ! ହୋଇରେ ! ହାଁରେ ! ଇରେ ! ଏବଂ ତହିଁରୁ ନିମ୍ନତରଲୋକଙ୍କୁ ବେ ! ଅବେ ! ଇବେ ! ହାଁବେ ! ହଇବେ ! ଆଦି ପ୍ରୟୋଗ କରାଯାଏ । ଅତି ଆଦରାର୍ଥରେ ଓ ଦେବତାଙ୍କୁ ମଧ୍ୟ ସମ୍ବୋଧନସୂଚକ ପଦରୂପେ 'ରେ'ର ବ୍ୟବହାର ଦେଖାଯାଏ । ଯଥା—'ଅହାରେ ଦଇବ ! ସତେ କି ସାଧିବୁ ଦାଉ ଭୁଞ୍ଜ ଏତେ ହେଲେ' ରାଧାନାଥ ମହାଯାତ୍ରା । ସ୍ଥଳବିଶେଷରେ ମଧ୍ୟ ସ୍ତ୍ରୀ ଓ ସହଚରୀମାନଙ୍କ ପ୍ରତି ସ୍ନେହସୂଚକ ସମ୍ବୋଧନରେ 'ରେ' ବ୍ୟବହୃତ ହୁଏ । ଯଥା—'କି ହେଲାରେ ! କହ ତ ନୃପତି ସ୍ମରଣରେ' । ସାଧାରଣତଃ 'ରେ' ପୁରୁଷ ବ୍ୟକ୍ତିମାନଙ୍କ ଉଦ୍ଦେଶ୍ୟରେ ବ୍ୟବହୃତ ହୁଏ ଓ ସ୍ତ୍ରୀମାନଙ୍କ ଉଦ୍ଦେଶ୍ୟରେ 'ରେ' ସ୍ଥଳରେ ଲୋ ! ଅଲୋ ! ଇଲୋ ! ହଇଲୋ ! ଆଦି ବ୍ୟବହୃତ ହୁଏ । 'ରେ' ଶବ୍ଦର ଅନ୍ୟାନ୍ୟରୂପ ଅରେ, ଇରେ, ହଇରେ, ହେଇରେ; ହୋଇରେ । କଥାରେ ଜୋର୍ ଦେବା ପାଇଁ ମଧ୍ୟ ଅରେ । ଅରେରେ ! ଇରେରେ ! ରେରେ ! ବ୍ୟବହୃତ ହୁଏ । ସ୍ଥଳତଃ ଯେଉଁ ବ୍ୟକ୍ତି ପ୍ରତି 'ତୁ' ବ୍ୟବହୃତ ହେବ, ସେ ବ୍ୟକ୍ତିପ୍ରତି 'ରେ' ସମ୍ବୋଧନ କରା ଯାଇ ପାରିବ ।

ରେ—ଦେ ଅ. (ବିଭକ୍ତି)—(ସ. ଏ)—[ବିଶେଷ୍ୟ ଓ ସର୍ବନାମ
Re ପଦର ସପ୍ତମୀ ବିଭକ୍ତି ବା ଅଧିକରଣ କାରକର ଚିହ୍ନ—
The inflection of the 7th. case of nouns and pronouns—In; at;. ଦ୍ର—

ସପ୍ତମୀ ବିଭକ୍ତିରେ ପଦ ସଙ୍ଗେ 'ରେ' ବା 'ଏ' ଯୋଗ ହୁଏ । ଯଥା—ଘରେ ବା ଘରରେ ।] ୧ । ଭିତରେ; ମଧ୍ୟରେ—1. In. ୨ । ଠାରେ—2 At. ୩ । ନିକଟରେ—3. Near. ୪ । ଅନେକଙ୍କ ମଧ୍ୟରେ—4. Amongst (many). [ଉ—ଏକାଠି ଇନ୍ଦ୍ର ସବୁ ଯାଉଙ୍କରେ ଯାଉ । କୃଷ୍ଣସିଂହ. ମହାଭାରତ ବନ ।] ୫ । (ପ୍ରାଚୀନ ପ୍ରୟୋଗ)—ଦ୍ୱିତୀୟା ବିଭକ୍ତିର 'କୁ'—5. To. [ଉ—କୁହା କରେଁ ମୁଁ ଧାତାକୁ, କାହିଁକି ସରଜି ତାକୁ, ଚମ୍ପୂ ରହିଲି ଜଗତରେ । କବିସୂର୍ଯ୍ୟ. ବଳଦେବ. ଚମ୍ପୂ କ ଗୀତ ।] ୬ । ( ବିଶେଷ୍ୟ ପରେ ଯୁକ୍ତ ) ( ଅମୁକ ବିଷୟ ) ଘଟିଲେ; ହେଲେ—6. In case; in the case or event of.

ତେ ୭ । (ବିଶେଷ୍ୟ ପରେ ଯୁକ୍ତ) ଦ୍ୱାରା—7. By. [ଉ—

में ବ ହେଲାରେ ! କହଉ ନୁହଇ ଭାରତରେ । କବିସୂର୍ଯ୍ୟ. ବଳଦେବ ଚମ୍ପୂ କ ଗୀତ ।] ୮ । ନିକଟରୁ;

ହଇତେ ଠାରୁ—8. From. [ଉ—ଶିବଙ୍କୁ ଲଂଘି ସତୀ ଯାଇ.

से ପିତାରେ ଅପମାନ ପାଇ । ଜଗନ୍ନାଥ ଭାଗବତ ।] ପ୍ରାଦେ (ଉତ୍ତର, ବାଲେଶ୍ୱର)ଅ(ଶ୍ରୀବ୍ୟକ୍ତିଙ୍କ ପ୍ରତି ପ୍ରଯୁକ୍ତ)—ଲୋ ! —Oh ! [ଯଥା—ଅମ୍ବିକାରେ !=ଅମ୍ବିକା ଲୋ !]

ରେଆ(ୟା)ତ୍(ତି)—ବୈଦେ. ବି (ଫା. ରିୟାୟତ୍)—୧ । ରିଆଇତ୍; Reā(yā)t(ti) ରିଆତି; ରିୟାତ୍; ଅନୁଗ୍ରହ - 1. Favour. ରେହାଇ ୨ । ରିଅତ୍ (ଦେଖ)—2 Riāt (See) ୩ । ଛାଡ଼; रिआयत ନିଷ୍କୃତି—3. Exemption; liberation. ୪ । ଦଣ୍ଡାଦିରୁ ଅବ୍ୟାହତି ବା ମାଫ୍; ମାଫୀ—4. Remission of a punishment.

ରେଆ(ବା, ୱା)ଜ୍—ବୈଦେ. ବି. (ଫା. ରିବାଜ୍ )—୧ । ପ୍ରଚଳନ; Reā(bā, wā)j ଧାରା, ରୀତି—1. Custom; usage. ୨ । ରେଉଆଜ୍, ରେବାଜ୍, ରେଓ୍ୱାଜ୍, रिवाज ଅଭ୍ୟାସ—2. Habit.

ରେଇଞ୍ଜା—ପ୍ରାଦେ.(ସମ୍ବଲପୁର) ବି—ଏକ ଜାତୀୟ ଗନ୍ଧଗୁହ୍ରାରଥ ଗଛ—Reiñjā A kind of acacia (Haines).

ରେଉ(ଓ)ଚନି—ବୈଦେ. ବି. ( ଫା. ରେବନ୍ )—( ବୈଦ୍ୟକ ) Reu(o)chini ଦୁଷ୍ଟ ବ୍ରଣ ଆଦି ପାଇଁ ଔଷଧରେ ବ୍ୟବହୃତ ଏକ ସ. ନାମ. ପୀତମୂଳା, ଗନ୍ଧିନୀ ପ୍ରକାର ବୃକ୍ଷର ମୂଳ—A sort of ରେଉ ଚିନି, ରେବନ ଚିନି medicinal root; Indian रेव चिनि, रेवन चिनि Rhubarb; Rheum Emodi. ଫା. ରେବନ୍ [ଦ୍ର—ଏହି ବୃକ୍ଷ ହିମାଳୟ ପ୍ରଦେଶରେ ଜାତ ଗ୍ରୀ. ରେଉମ୍ ହୁଏ; ଏଥିର ମୂଳ ବଳକାରକ ଓ ମୃଦୁବିରେଚକ; ଏବଂ ଅଜୀର୍ଣ୍ଣ, ଅତିସାର, ଅଗ୍ନିମାନ୍ଦ୍ୟ, ଅରୁଚି, ମଳବନ୍ଧତା ଓ ଶୀତପିତ୍ତ ରୋଗରେ ଉପକାରୀ । ଏହାର ଚୂର୍ଣ୍ଣ ଦୁଷ୍ଟ କ୍ଷତ ଉପରେ ପକାଇଲେ ଉପକାର ହୁଏ—ଦ୍ରବ୍ୟଗୁଣ ।]

ରେଉ(ଓ)ଟି—ଦେ· ବି. (ସ. ରାଜାବର୍ତ୍ତ)—୧ । ଏକ ପ୍ରକାର ସ୍ଫଟିକ Reu(o)ṭi ପଥର—1. A sort of marble. ୨ । ପଟା ରେଓଟୀ ପଥର; ପଥର ଟାଇଲ୍—2. Thin slab of stone; नरिया stone tile.

ରେଁକା—ପ୍ରାଦେ. (ସମ୍ବଲପୁର) ବି—ନାଲି ଚଞ୍ଚୁଯୁକ୍ତ ଦେଶୀ ଶୁଆ—Reñkā Red-beaked parrot. (ରେଁକାରୂପ—ଅନ୍ୟରୂପ)

ରେକ୍ (ଧାତୁ)—ସଂ—୧ । ଶଙ୍କା କରିବା—1. To fear; to ap- Rek (root) prehend. ୨ । ସନ୍ଦେହ କରିବା—2. To doubt; to suspect.

ରେକ—ସ. ବି (ରେକ୍ ଧାତୁ+ଭାବ. ଅ)—୧ । ସଂଶୟ; ସନ୍ଦେହ—Reka 1. Doubt; suspicion. ୨ । (+କର୍ତ୍ତୃ ଅ) ଭେକ; ବେଙ୍ଗ—2. Frog. ୩ । ନୀଚତା—3. Meanness. ୪ । ( ରିଚ୍ ଧାତୁ=ନିଃସରଣକରିବା+ଭାବ. ଅ )—ବିରେଚନ; ପତଳା ଝାଡ଼ା—4. Looseness of सेर मोनी bowels; passing liquid stools. ଦେ. ବି—୧ । (ସଂ. ରେଖା)—ବେତନିର୍ମିତ ପରିମାଣପାତ୍ର-ବିଶେଷ ( ଏହା କଟକୀ ଏକ ସେର ସଙ୍ଗେ ସମାନ )—A measuring pot made of cane ( of a capacity of $1\frac{1}{4}$ standard seer). ୨ । ( ସ. वेख मुटी ରେଖା )—ରେକା; ବୁଢ଼ା ଅଙ୍ଗୁଠି ଓ ମଝି ଅଙ୍ଗୁଠିର ପରିଧିଦ୍ୱାରା ବେଷ୍ଟିତ ବିଡ଼ା ବା ଗୁଚ୍ଛ—A sheaf or bunch of things which can be held by encircling it with the thumb and the middle finger.

ରେକ କଟି—ଦେ ବି—ରେକ ପରିମିତ କଟି; କ୍ଷୀଣ କଟି—Reka kaṭi A thin waist. ଦେ. ବିଣ. ସ୍ତ୍ରୀ—କୃଶକଟି पतलीडांगा କୃଶ କଟି; ଯେଉଁ ସ୍ତ୍ରୀର ଅଣ୍ଟା ଖୁବ୍ ସରୁ ଥା—(a female) Having a thin waist. [ଉ—ରେକକଟି କଣ୍ଠୀ ହେବା ଦେଖି ଫାଟି ଯାଉଛୁ ଚନ୍ଦ୍ରାରେ ମୋ ଛାତି—ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।]

ରେକଟା (ଇତ୍ୟାଦି)—ଦେ. ବି. ଓ ବିଣ—ରକଟା ଇତ୍ୟାଦି (ଦେଖ) Rekaṭā (etc) Rakaṭā etc (See)

ରେକ(କି,କେ)ଟିବା—ଦେ. କ୍ରି—ହାଡ଼ରେ ଲାଗିଥିବା ମାଂସର ଅଂଶକୁ Reka(ki, ke)ṭibā ପୃଥକ କରିବା ପାଇଁ ଉକ୍ତ ହାଡ଼କୁ ବଗଡାନ; ଚିବାନ कटकट चबाना ଦାନ୍ତଦ୍ୱାରା ପୁନଃ ପୁନଃ ଚର୍ବଣ କରିବା—To nibble at a thing with the teeth to separate the softer parts adhering to it (such as a piece of bone). [ଦ୍ର—ଟିକ ଟିକ କରଣ କଳରେ ରେକଟି, ଗିଳ ପାଣି ପିଇଲେ ଅଉଁସି ପେଟକୁ—କୃଷ୍ଣସିଂହ ମହାଭାରତ. ସଭା ।]

ରେକ(କା)ର୍ଡ଼(ର୍ଡ)—ବୈଦେ, ବି (କଚେରୀ) (ଇଂ. ରେକର୍ଡ୍)—Reka(kā)ḍ(rḍ) ୧ । ମକଦ୍ଦମା ଆଦିର ନଥି; ମକଦ୍ଦମାସଂକ୍ରାନ୍ତ (ରିକାର୍ଡ଼[ଗ୍ରାମ୍ୟ ଉଚ୍ଚାରଣ]—ଅନ୍ୟରୂପ) କାଗଜର ବିଡ଼ା—रेकाड़ 1 Record of a case. ୨ । ଗ୍ରାମୋଫୋନ୍ ବାଜାରେ रेकड ଲଗାଯିବା ଗୋଲ ଚକ ପଟା, ଯହିଁରେ ଗୀତମାନଙ୍କର ଦାଗ ଅଙ୍କିତ ଥାଏ ଓ ଗ୍ରାମୋଫୋନ୍‌ର ଛୁଞ୍ଚି ଘଷି ହେଲାରୁ ଗୀତର ସ୍ୱର ବାହାରେ—2. Gramophone record.

**ରେକର୍ଡ କିପର୍**—ବୈଦେ. ବ.—(କଟକଅ)—(ଇଂ. ରେକର୍ଡ଼୍ କିପର୍) Rekard kipar ମାହାଫିକ୍; ଯେଉଁ କର୍ମଚାରୀଙ୍କ ଜିମା ସରକାରୀ ରେକାଡ କୀପାব କାଗଜ ପତ୍ର ଥାଏ—Record-keepe . रेकड किपर

**ରେକର୍ଡ଼ ରୁମ୍**—ବୈଦେ. ବ. (କଟକଅ)—(ଇଂ. ରେକର୍ଡ଼୍ ରୁମ୍) Rekard rūm ସରକାରୀ କାଗଜପତ୍ର ସଞ୍ଚିତ ହେବାର କୋଠରୀ; বেকডরুম रेकडरूम ମହାଫିଜ୍‌ଖାନା—Record room·

**ରେକଡ଼(ର୍ଡ)ର୍**—ବୈଦେ. ବ—(ଇଂ. ରେକର୍ଡ଼ର୍)—ରେଙ୍ଗୁନ Rekarda(rda)r ଅଞ୍ଚଳରେ ଇଂରାଜ ଶାସନାଧୀନ ଉଚ୍ଚପଦସ୍ଥ বেকডার ଜଜ୍—The Recorder of Rangoon (a Judge रेकडार under the British rule.

**ରେ କରି**—ଦେ. ଅ—(ଭକ୍ତିସୂଚକ)—୧। ଦ୍ୱାରା—1. By; with. Re kari [ଉ—ଅସ୍ତ୍ରବଦ୍ୟାର ତଳେ କରି, ଶୁକ ଯା କହନ୍ତେ ବସ୍ତାର। ଜଗନ୍ନାଥ ଭାଗବତ।] ୨। ସାହାଯ୍ୟରେ—(ଏକର- 2. With the help of ୩। ଯୋଗୁଁ, ହେତୁ—ଅନ୍ୟରୂପ) 3. On account of; owing to; as a result of. [ଉ—ସ୍ନେହରେକରି, ବ୍ରଜବାସୀ, କର ଦେବେ ମୋ ଜନ। ଭକ୍ତଚରଣ. ମଥୁରାମଙ୍ଗଳ।]

**ରେକା**—ଦେ. ବ.—(ସଂ. ରେଖା)—ରେକ ୨ (ଦେଖ) Rekā Reka 2 (See) ଗ୍ରାଦେ. (ମାନ୍ଦ୍ରାଜ) ବ—ତାଳ ବାହୁଙ୍ଗାର ତନ୍ତୁରେ ନିର୍ମିତ ଦଉଡ଼ି—A kind of rope made of the fibres of the branches of palm. [ଉ—ମାନ୍ଦ୍ରାଜ ଅଞ୍ଚଳରେ ତାଳବାହୁଙ୍ଗାକୁ ଏପରି ନଇ ଆକାରରେ ମୋଡ଼ି ବନାଯାଏ ଯେ, ତାହିଁରେ କୂଅରୁ ସୁବଧାରେ ପାଣି କାଢ଼ି ହୁଏ। ଏହି ବନାଗଲା ତାଳବାହୁଙ୍ଗାକୁ "ରେକା" କହନ୍ତି। ଏହାର ଦାମ ଏକ ପଇସା ମାତ୍ର। ରାଧାଚରଣ ପଣ୍ଡା. ହିନ୍ଦୁଳ କୁଟୀର ଶିଳ୍ପ।]

**ରେକା(କେ)ଇବା**—ଦେ. କ୍ରି.—ହାତର ରେକାରେ ଚପି ଶକ୍ତ କରି Rekā(ke)ibā ଧରିବା—To hold tightly within মুঠান the thumb and the middle finger मुट्ठीसे थामना, मुठियाना encircled.

**ରେକାଏ**—ଦେ. ବ.—ଏକ ରେକା ପରିମାଣ ମାତ୍ର—As much as Rekāe can be held by the encircling of the fingers. একমুঠ पेकमुठ(ट्ठी) ଦେ. ବଣ.—ବୁଢ଼ା ଅଙ୍ଗୁଠି ଓ ମଝି ଅଙ୍ଗୁଠି ଦ୍ୱାରା ବେଷ୍ଟିତ ହୋଇ ଧରିଯିବା ଗୁଚ୍ଛ ପରିମିତ—Measuring a bunch encircled by the thumb and the middle finger.

**ରେକା କରିବା**—ଦେ. କ୍ରି.—ବୁଢ଼ା ଅଙ୍ଗୁଠି ଓ ମଝି ଅଙ୍ଗୁଠି ଦ୍ୱାରା Rekā kariba ବେଷ୍ଟିତ କରି କୌଣସି ବସ୍ତୁକୁ ଧରିବା—মুঠোব মধ্যে ধরা To hold a thing by encircling मुट्ठीमें धरना the thumb and the middle finger together.

**ରେକାବ**—ବୈଦେ. ବ.—(ଆ. ରକାବ)—୧। ଘୋଡ଼ାର ଜିନ୍ Rekāb ଉପରେ ବସିବା ବ୍ୟକ୍ତିର ଗୋଡ଼ ରଖିବା ପାଇଁ ଘୋଡ଼ା বেকাব ପିଠିର ଦୁଇ ପାଖରେ ଲମ୍ବିଥିବା ଦଉଡ଼ିର ଶେଷରେ र(रि)काव ବନ୍ଧା ହୋଇଥିବା ଲୌହ ବଳୟ—1. Stirrups. ୨। ରେକାବି (ଦେଖ)—Rekābi (See)

**ରେକାବାସ୍ଥି**—ଦେ. ବ (ଅଧୁନିକ ଶଲ୍ୟବିଜ୍ଞାନର ପରିଭାଷା) (ଏହା Rekābāsthi ରେକାବର ଆକୃତିବିଶିଷ୍ଟ ଥିବାରୁ) କର୍ଣ୍ଣସ୍ଥ বেকাবস্থি ଅସ୍ଥିବିଶେଷ—Name of one of the ear-रेकावास्थि bones stapes.

**ରେକାବି**—ବୈଦେ. ବ (ଆ. ରକାବୀ)—ଥାଳିଆ; ଛୋଟ ଥାଳି; ପତଳା Rekābi ଥାଳିଆ—Saucer; a small plate; a thin বেকাবী र(रि)कावी metal platter. [ଉ—ଯୋଡ଼ିଠାରୁ କୋଣ୍ଟା ଥାଳିକ ରେକାବି ସବୁ କଲେ ଅପସନ୍ନ—ଉପେନ୍ଦ୍ରଭଞ୍ଜ. ଯାଆନ୍ତୁଆ ବାହା।]

**ରେକାବି ପିଆଲା(ଲି)**—ଦେ. ବ (ସହଚର) ଥାଳିଆ ଓ ଗିନିଆ—Rekābipiālā(li) A saucer and cup. বেকাবিপেয়ালা(লী) रिकाबिपयाला(ली)

**ରେକିଟା (ଇତ୍ୟାଦି)**—ଦେ. ବ ଓ ବଣ—ରକଟା (ଇତ୍ୟାଦି) (ଦେଖ) Rekiṭā(etc) Rakaṭā (etc) (See)

**ରେକେ**—ଦେ. ବ. ଓ ବଣ—ରେକାଏ (ଦେଖ)—Rekāe (See) Reke [ଉ—ଗଢ଼ିବାକାଳେ ଧାଡ଼ା ଦୃଢ଼େ ଧରନ୍ତେ, ସେ ଉଡ଼େ ମଧ୍ୟ କ ରେକେ—ଉଞ୍ଚ. କୋଟିବ୍ରହ୍ମାଣ୍ଡସୁନ୍ଦରୀ।]

**ରେକେଟା**—ଦେ.ବ ଓ ବଣ- ରକଟା (ଦେଖ)-Rakaṭā (See) ଗ୍ରାଦେ Reketā (ଗଡ଼ଜାତ) ବ—ପଙ୍କ ବା କାଦୁଅ ମାଟି ଶୁଖିଯିବା ପରେ ତାହା ଟାଣ ହୋଇଯିବା ଅବସ୍ଥା; ଚିକଟା ମାଟିର ଶୁଖିଲା ଅବସ୍ଥା—The state of clay or mud becoming hardened when dry. ଗ୍ରାଦେ (ଗଡ଼ଜାତ) ବଣ—ଶୁଖିଯାଇ ଅତି ଟାଣ ହୋଇଥିବା (ଚିକଟା କାଦୁଅ ବା ପଙ୍କ)—Hardened and dried (adhesive soil or clay).

**ରେଖ୍ତା**—ଦେ. ବ—ଉର୍ଦ୍ଦୁ କବିତାରେ ସ୍ତ୍ରୀଲୋକମାନେ ବ୍ୟବହାର Rekhtā କରିବା ଶବ୍ଦମାନଙ୍କ ରୂପ—From taken in रेख़ता the Urdu language and in poems বেখটা specially in woman's dialect.

**ରେଖ**—ଦେ. ବ (ସଂ. ରେଖା)—୧। ରେଖା—1 A line. [ଉ—Rekha ଅଳକତଳ ଅଙ୍କିତ ସେଚନା ରେଖ। କବିସୂର୍ଯ୍ୟ. বেখা କଶୋରଚନ୍ଦ୍ର ଭ ଗୀତ।] ୨। ଚିହ୍ନ—रेखा 2. Mark; sign. ୩। ଦେହରେ ସିନ୍ଦୁର, କଜ୍ଜଳ, ଚନ୍ଦନରେ ଅଙ୍କିତ ସରଳରେଖା; କଳା—3. A perpendicular line drawn on the body (i. e. brow) with red or black dye. ୪। ଚର୍ମକୁଞ୍ଚନ—4. Wrinkle. [ଉ—ଭୂମି ଅଛି ଭାଲପଟ ରେଖ, ଭୂର୍ଣ୍ଣି କେଶ କ ସୁନ୍ଦର ଦେଖ। କବିସୂର୍ଯ୍ୟ. ରହାକର ଚମ୍ପୂ ୮ ଗୀତ।]

ତେଡୀ ୫ । କପାଳ ଉପରର କେଶକୁ ଦୁଇ ପାଖକୁ କୁଣ୍ଡାଇବାଦ୍ୱାରା
सींथ ରଚିତ ଲମ୍ବରେଖା; ସିନ୍ଥିରେଇ; ଝେର—5. A line seen on the head from which the hairs are parted towards both the sides of it. [ଦ୍ର—ବଙ୍କା ରେଖକୁ ଝେର ବା ଭେଡ଼ ବା ସିଥେଇ କହନ୍ତି । ]

ରେଖ କରିବା—ଦେ. କ୍ରି—ମୁଣ୍ଡର କେଶକୁ ପାନିଅଦ୍ୱାରା ସିଧା କରି
Rekha karibā ତହିଁ ମଝିରୁ ଦୁଇ ଫାଳ କରିବା—To
तेडीकाटा divide the hair of the head with the
सींथफाडना comb by leaving a straightline in
(ରେଖ କାଟିବା—ଅନ୍ୟରୂପ) the middle.

ରେଖ ଦେଉଳ—ଦେ. ବି—ଉତ୍କଳର ପ୍ରାଚୀନ ମନ୍ଦିରମାନଙ୍କରୁ ଏକ
Rekha deula ପ୍ରକାର—One of the forms of ancient temples of Utkal. [ଦ୍ର—ଏଥିରେ କଛି ଶିଳ୍ପଭୂଷା ବା କାରୁକାର୍ଯ୍ୟ ନ ଥାଏ ।]

ରେଖନ—ସ. ବି (ଲିଖ୍ ଧାତୁ + ଭାବ. ଅନ)—୧ । ଲେଖିବା—
Rekhana 1. Writing. ୨ । ରେଖା ଟାଣିବା—
2. Drawing of a line.

ରେଖା—ସ. ବି. ସ୍ତ୍ରୀ (ଲିଖ୍ ଧାତୁ + କର୍ମ ଅ + ସ୍ତ୍ରୀ. ଆ)—୧ । ଗାର;
Rekhā ଦଣ୍ଡାକୃତି ଚିହ୍ନ—1. A line; streak. ୨ । (କ୍ଷେତ୍ର ତତ୍ତ୍ୱ) ବିସ୍ତାରହୀନ ଦୈର୍ଘ୍ୟ; ଦୁଇ ବିନ୍ଦୁକୁ ସିଧାଭାବରେ ଯୋଗ କରୁଥିବା ଦୈର୍ଘ୍ୟ—2 (Geometry) A length without breadth; line. ୩ । ଅକ୍ଷରରେ ଦିଆଯିବା ଲମ୍ବ ଗାର ବା 'ବାଡ଼ି' ଚିହ୍ନ; ଆକାର ଚିହ୍ନ—3. A stripe or perpendicular line drawn with a letter to denote the addition of the vowel 'A'. [ଦ୍ର—ପୁରୁଣାକାଳର ଅବଧାନମାନେ ପିଲାମାନଙ୍କୁ ଆକାର ବତାନ ଶିଖାଇଲାବେଳେ କହନ୍ତି—'କ'ରେ ବାଡ଼ି (ରେଖା) ଦେଲେ 'କା' । ] ୪ । ଚିହ୍ନ—4. Sign; mark. [ ଦ୍ର—ମ୍ଳାନ ମୁଖଚ୍ଛବି ବିଷାଦ ରେଖାରେ । ରାଧାନାଥ. ଚିଲିକା । ] ୫ । (ସାମୁଦ୍ରିକ) ଦେହରେ ଥିବା ଶୁଭାଶୁଭ ସୂଚକ ଚିହ୍ନ (ଯଥା—କର ରେଖା)—5. (Palmistry) Lines appearing on different parts of the body from birth indicating good or evil. ୬ । ଶ୍ରେଣୀ ଧାଡ଼ି—6. Row. ୭ । (ଭୂଗୋଳ) ପୃଥିବୀ ପୃଷ୍ଠରେ ଭୌଗୋଳିକ ଗଣନାର୍ଥ ଟାଣାଯିବା କାଳ୍ପନିକ ଗାର (ଯଥା—ଅକ୍ଷାଂଶ, ଦ୍ରାଘିମା, ଅୟନାଂଶ, ବିଷୁବରେଖା)—7. (Geography) Imaginary lines drawn on the surface of the globe for geographical calculation e. g. meridian. ୮ । ଅଳ୍ପ ମାତ୍ର—8. A little. ୯ । ଅଭେଗ; ପରିପୂର୍ଣ୍ଣତା—9. Fullness. ୧୦ । ଶଠୁଆ; ଛଳ; କପଟ—10. Deceit; cunning; artifice. ୧୧ । ଉଲ୍ଲେଖ—11. Mention. ୧୨ । ସୂକ୍ଷ୍ମ ଗାର—12. A slender line. ୧୩ । ଦେହରେ ଘେନାଯିବା ସିନ୍ଦୂର ଚନ୍ଦନାଦିର ସରୁ ଦାଗ—13. A narrow line or mark of sandal paste etc. put on the body. ୧୪ । ଗଣନା; ସୁମାର (ହି. ଶ)—14. Reckoning. ୧୫ । ଆକୃତି; ଆକାର ( ହି. ଶ )—15. Shape. ୧୬ । ଧାତୁ ଅବା ରତ୍ନରେ ଦେଖାଯିବା ଗାର (ଯାହା ରତ୍ନର ଦୋଷରୂପେ ପରିଗଣିତ) (ହି. ଶ)—16. Lines appearing on gems and considered as a defect. ୧୭ । ଚିତ୍ରାଦିର ସୀମା ରେଖା—17. Outline. ଦେ. ବି (ସ. ରକ୍ଷା)—ସୂତା—A thread worn
बाखी
राखी on the wrist as a charm.

ରେଖା(ଖେ)ଇବା—ଦେ. କ୍ରି—୧ । ରେଖିବାର ଣିଜନ୍ତ ରୂପ—
Rekhā(khe)ibā 1. The causative from of
रेखाकाटाना 'Rekhibā'. [ଦ୍ର—ଭ୍ରୂଦ୍ୱୟର ଚୁମ୍ବନେ ଲମ୍ବିତ ଭାବ
उकीर्णोवना ବନ୍ଧି, ଉଜ୍ଜ୍ୱଳ କର ନୟନେ ସୁଚିକ୍କଣ ରେଖାଇ । ପ୍ରାଚୀ. ରସବାରିଧି । ] ୨ । ରେଖା କାଟିବା—2. Rekhā kāṭibā. ୩ । ଅଙ୍କିତ କରିବା—3. To draw. ୪ । ଚିହ୍ନ ଦେବା—4. To mark.

ରେଖା କାଟିବା—ଦେ. କ୍ରି—ରେଖା ଅଙ୍କନ କରିବା—
Rekhā kāṭibā रेखाकाटा उकीर्णोवना To draw a
[ରେଖା ଟାଣିବା—ଅନ୍ୟରୂପ] line.

ରେଖାକ୍ଷର ବର୍ଣ୍ଣମାଳା—ସ. ବି (ଆଧୁନିକ ପ୍ରୟୋଗ)—ସର୍ଟହାଣ୍ଡ—
Rekhākshara barṇṇamāḷā Shorthand writing.

ରେଖା ଗଣିତ—ସ. ବି (ମ. ପ. ଲୋ; କର୍ମଧା; ରେଖା ବିଷୟକ
Rekhā gaṇita ଗଣିତ )—୧ । ଜ୍ୟାମିତି; କ୍ଷେତ୍ରତତ୍ତ୍ୱ—
1. Geometry. ୨ । କ୍ଷେତ୍ର ପରିମିତି ଶାସ୍ତ୍ର; କ୍ଷେତ୍ରମିତି—
2 Mensuration. [ଦ୍ର—ପ୍ରଥମେ ପଣ୍ଡିତରାଜ ଜଗନ୍ନାଥ ଏ ଶବ୍ଦର ପ୍ରୟୋଗ କରିଥିଲେ । ମହାରାଜ ଜୟସିଂହଙ୍କ ଆଜ୍ଞାରେ ଏ ମହାଶୟ ପାଶ୍ଚାତ୍ୟ ଇଉକ୍ଲିଡ୍‌ର ( କ୍ଷେତ୍ରତତ୍ତ୍ୱର) ଆରବୀ ଅନୁବାଦର ସଂସ୍କୃତ ଅନୁବାଦ କରିଥିଲେ । ପରନ୍ତୁ ବୈଦିକ ଋଷିମାନେ ଏ ଶାସ୍ତ୍ର ଆରମ୍ଭ କରିଥିଲେ । ଏଥିର ପ୍ରମାଣ 'ଶୁଲ୍ବସୂତ୍ର' ଅଟେ । ଏଥିରେ ଯଜ୍ଞବେଦୀର ଜମୀନ ପାଇଁ ନାନା ଆକାର ବର୍ଣ୍ଣିତ ହୋଇଅଛି । ପରେ ଭାସ୍କରାଚାର୍ଯ୍ୟଙ୍କ ଲୀଳାବତୀ କ୍ଷେତ୍ରମିତି (Mensuration) ଉପରେ ପ୍ରତିଷ୍ଠିତ । କେତେକ ପଣ୍ଡିତ କହନ୍ତି ଯେ ପ୍ରାଚୀନ ଆର୍ଯ୍ୟଗଣ କ୍ଷେତ୍ରମିତି (Mensuration) ଜାଣିଥିଲେ, କିନ୍ତୁ ରେଖାଗଣିତ (Geometry) ଜାଣି ନ ଥିଲେ; କିନ୍ତୁ ଏହା ଠିକ୍ ନୁହେଁ । କାରଣ ମିଶରଦେଶ (Egypt) ଓ ୟୁନାନ୍ (Persia) ରେ ଭୂମିର ମାପ କରିବା ପାଇଁ ରେଖାଗଣିତର ବ୍ୟବହାର ସର୍ବପ୍ରଥମେ ହୋଇଥିଲା—(ହି. ଶ) । ]

**ରେଖାଙ୍କନ**—ସ. ବି (ଷଷ୍ଠୀ ତତ୍) —ରେଖା କାଟିବା—
Rekhāṅkana Drawing of a line.

**ରେଖାଙ୍କିତ**—ସ. ବିଣ (ତୃତୀୟା ତତ୍)—୧ । ଯାହା ରେଖାଦ୍ୱାରା ଚିହ୍ନିତ
Rekhāṅkita କରାଯାଇଅଛି—1. Marked with a line. ୨ । ଯେଉଁ ବିଷୟ ବା ବାକ୍ୟ ତଳେ ଗାର କଟା ଯାଇଅଛି—2. Underlined.

**ରେଖା ଚିତ୍ର**—ସ. ବି (ଆଧୁନିକ ପ୍ରୟୋଗ)—କେବଳ କେତେଗୁଡ଼ିଏ
Rekhā chitra ରେଖା ଟାଣିବାଦ୍ୱାରା ଯେଉଁ ଚିତ୍ର ଅଙ୍କିତ ହୁଏ—A picture drawn by outlines.

**ରେଖା ଚିହ୍ନ**—ସ. ବି (ରୂପକ)—ରେଖାରୂପ ଗୋଟିଏ ଚିହ୍ନ—
Rekhā chihna A mark consisting of a line.

**ରେଖା ଚିହ୍ନିତ**—ସଂ. ବିଣ (ତୃତୀୟା ତତ୍)—ରେଖାଙ୍କିତ (ଦେଖ)
Rekhā chihnita Rekhāṅkita, (See)

**ରେଖାନ୍ତର**—ସଂ. ବି—ଭୂମଣ୍ଡଳରେ କୌଣସି ସ୍ଥାନର ଅବସ୍ଥିତି
Rekhāntara ଜାଣିବାପାଇଁ ଅକ୍ଷାଂଶ ଓ ଦ୍ରାଘିମାକ୍ରମେ ଦୂରତ୍ୱ—The distance of a place by latitude and longitude. [ଦ୍ର—ହିନ୍ଦୁ ଜ୍ୟୋତିଷ ଗଣନାରେ ମେରୁଠାରୁ ଲଙ୍କା ବାଟେ ଦେଇ ଯାଇଥିବା ରେଖା ୧ମ ଦ୍ରାଘିମା ଓ ୟୁରୋପୀୟ ଗଣନାରେ ମେରୁଠାରୁ ଗ୍ରୀନ୍‌ଉଇଚ୍ ବାଟେ ଯାଇଥିବା ରେଖା ପ୍ରଥମ ଦ୍ରାଘିମା ଅଟେ ।]

**ରେଖା ପଞ୍ଚମୀ**—ଦେ. ବି (ସ. ରକ୍ଷା ପଞ୍ଚମୀ)—ରକ୍ଷା ପଞ୍ଚମୀ; ଭାଦ୍ରବ
Rekhā pañchamī କୃଷ୍ଣପଞ୍ଚମୀ—The 5th day of
ବାଖୀ পঞ্চমী the dark fortnight of Bhād month
रखा पञ्चमी [ଦ୍ର—ଏ ଦିନ ଜଗନ୍ନାଥଙ୍କର ରେଖା ଲାଗି ହୁଏ, ଓ ଗୃହମାନଙ୍କ କବାଟରେ ମହାଦେବ ଗଣେଶ ଓ ଭୈରବଙ୍କ ଚିତ୍ର ଲେଖା ହୋଇ, ସେହି ଦେବତାମାନଙ୍କୁ ପ୍ରତିଦ୍ୱାରରେ ପିଠା ପୂଜା ହୁଏ ଏବଂ ଦାଣ୍ଡ ଓ ବାଡ଼ି ଦ୍ୱାରର ଖୁଣ୍ଟରେ ଖାତପୁଡ଼ା (କୁଶ ଘାସର ପୁଡ଼ା) ଲଟକା ହୁଏ ।]

**ରେଖା ପାତ**—ସ. ବି. (ଷଷ୍ଠୀ ତତ୍)—୧। ରେଖାଙ୍କନ; ରେଖା ଟାଣିବା-
Rekhā pāta 1. Drawing of a line. ୨ । ରେଖା ଚିହ୍ନ—2. A sign or mark consisting of a line.

**ରେଖା ଭୂମି**—ସ. ବି—ପ୍ରାଚୀନ ଜ୍ୟୋତିଷିଗଣ ଅକ୍ଷାଂଶ ସ୍ଥିର କରିବା
Rekhā bhūmi ପାଇଁ ସୁମେରୁ ଓ ଲଙ୍କାର ମଧ୍ୟରେ ଯେଉଁ ରେଖା କଳ୍ପିତ କରୁଥିଲେ ସେ ରେଖାରେ ପଡ଼ିବା ଦେଶମାନ—Countries lying on the longitudinal line imagined by the ancient astronomers running through the north pole & Lanka.

**ରେଖା ମାଳି**—ଦେ. ବି—ହାତର ଅଙ୍ଗୁଠିରେ ଥିବା ରେଖା ଦ୍ୱାରା
Rekhā māli ଜପ୍‌ତକରଣ 1. Telling beads with the
আঙ্গুলের বেখা গণা lines appearing in the finger.
हाथकी रेखापर जपना (ଉ—ମାଳା ଗର୍ବେ ରେଖା ମାଳ ଜପ
(ରେଖାଜପ—ସ) କରେ ତହିଁ । ପ୍ରାଚୀ. ଶ୍ରୀଗୁରୁଭକ୍ତି ଗୀତା ।]

**ରେଖା ଲାଗି**—ଦେ.ବି—ରକ୍ଷା ପଞ୍ଚମୀ ଦିନ ଜଗନ୍ନାଥଙ୍କଠାରେ ରକ୍ଷୀ—
Rekhā lāgi ବନ୍ଧନ ରୂପ ଉତ୍ସବ—The ceremony of
রাখী বন্ধন putting on a string round the arm
राखी बन्धन of the Idol Jagannath at Puri on Rakshā Pañchamī day.

**ରେଖିବା**—ଦେ. କ୍ରି. (ସ. ରେଖନ; ଲେଖନ)—୧। ରେଖା କାଟିବା-
Rekhibā 1. To draw lines. ୨। କୌଣସି ଚିତ୍ର ଆଙ୍କିବା
বেখা কাটা ପୂର୍ବରୁ ପ୍ରଥମେ ତହିଁର ରେଖାମାନ ଲେଖିବା—
रेखना 2. To draw the outlines or skeleton of a drawing before it is permanently done. ୩ । କୌଣସି ପଦାର୍ଥ (ଯଥା—ଅଳକା ବା ଚୂର୍ଣ୍ଣ କୁନ୍ତଳାଦି) ରେଖାକୃତି କରିବା-3. To reduce a thing into the shape of a line. [ଉ—ଅଳକା ରେଖୁଥିଲା ବସି, ଝଲକାଜନ୍ମ ଯେ କର୍ତ୍ତରୀ ଦେଇ । ଭଞ୍ଜ. ଲାବଣ୍ୟବତୀ ।] ୪ । ଅଙ୍କିତ କରିବା—4. To draw. ୫ । ରେଖା ଦ୍ୱାରା ଚିହ୍ନିତ କରିବା—5. To mark with a line or lines.

**ରେଖୁ(କୁ)**—ପ୍ରାଦେ (ଗଞ୍ଜାମ) ବୈଦେ. ବି. (ତେଲି. ରେକୁ)—ଟିଣର
Rekhu(ku) ବା ଲୁହାର ପତ୍ର—Tin or iron sheets.

**ରେଖେ**—ଦେ. ଅ—ଅତି ଅଳ୍ପେ ମାତ୍ର; ସାମାନ୍ୟ ମାତ୍ର—At all; in
Rekhe the slightest degree [ଉ—ଅଧର୍ମ କର୍ମମାନ
এক বেখাও ନ ଜାଣ ତୁମ୍ଭେ ରେଖେ । କୃଷ୍ଣସିଂହ. ମହାଭାରତ.
एक रेखाभी ଆଦି ।]

**ରେଖେ ରେଖେ**—ଦେ.କ୍ରି. ବିଣ (ସ. ରେଖା)—ପ୍ରତ୍ୟେକ ଅଂଶରେ—
Rekhe rekhe In every part.
বেখায় বেখায় [ଉ—ଅମୃ ନୟନ ରେଖେ ରେଖେ, କାଳ
रेखे रेखे ପୂରଇ ତୁମ୍ଭ ମୁଖେ । ଭୂପତି. ପ୍ରେମପଞ୍ଚାମୃତ ।]

**ରେଗଡ଼ା**—ଦେ.ବିଣ (ସ. ରୂଢ଼)-୧ । ରଗଡ଼ା,କର୍କଶ; ମୋଟା; ଖଦଡ଼ା_
Regaṛā 1. Coarse-fibred; coarse. ୨ । ବନ୍ଧୁର;
বগড়া, এবড়ো খেবড়ো ଅସମତଳ—2. Uneven. ୩। କଙ୍କରମୟ
खुरदुरा, रोडिया —3. Shingly; gravelly.
[ରେଗଡ଼ିଆ(ଆ)—ଅନ୍ୟରୂପ]

**ରେଗଡ଼ା ଘାସ**—ଦେ. ବି—ବାଲିରେ ଉଠିବା ଏକପ୍ରକାର ଘାସ—
Regaṛā ghāsa A kind of grass growing on sand (with succulent long roots). [ଦ୍ର—ଏହାର ପତ୍ରମାନ ସରୁ; ବନ୍ଦୁ ବାଲି ମଧ୍ୟରେ ଥିବା ଏହାର ଚେରମାନ ଲମ୍ବା, ସ୍ଥୂଳ ଓ ଶୁକ୍ଳବର୍ଣ୍ଣ । ଏହି ଚେର ଗୁଡ଼ିର ରସ ଥିବାରୁ ଏଗୁଡ଼ିକୁ ଖୋଳି ଗୋରୁଙ୍କୁ ଖାଇବାକୁ ଦିଆଯାଏ ।]

**ରେଗଡ଼ା ଚକି**—ଦେ. ବି—ଯେଉଁ ଚକିର ପଥର ଖଦଡ଼ିଆ; ଉଚ୍ଚାବଚ
Regaṛā chaki ପଥରର ଚକି—Mill stones having
এবড়ো খেবড়ো চাকী their surfaces uneven.
खुरदुरी चक्की

ରେଗଡ଼ା ବାଲି—ଦେ. ବି—ଖଦଡ଼ୁଆ ବା ବଡ଼ ବଡ଼ ଦାନା ବିଶିଷ୍ଟ
Regarḍā bāli ବାଲି—Coarse sand.
(ସରୁ ବାଲି—ବିପରୀତ) মোটা বালী मोटा बालौ

ରେଗଡ଼ା ଶିଳ—ଦେ. ବି—ବନ୍ଧୁର ପଥରରେ ତିଆରି ଶିଳ; ଯେଉଁ
Regarḍā śila ଶିଳର ଉପରଭାଗ ଖଦଡ଼ୁଆ—Pounding
এবড়ো খেবড়ো শীল slab having a coarse surface.
खुरदुरा सिलौट

ରେଗିସ(ସି)ନ୍(ନି)—ବୈଦେ.ବି.(ଇଂ. ଇରିଗେସନ୍)—ଗଭର୍ଣ୍ଣମେଣ୍ଟଙ୍କର
Regisa(si)n(ni) କୃତ୍ରିମ ନାଳ ଦ୍ୱାରା କ୍ଷେତ୍ରକୁ ଜଳ
ইরিগেসন যୋଗାଇବା ବିଭାଗ—The Irrigation Sec-
इरिगेसन tion of the Public Works Department of the Government.

ରେଗିସ୍ତା(ସ୍ଥା)ନ୍—ବୈଦେ. ବି. (ଫା. ରେଗ୍=ବାଲି; ରେଗିସ୍ତାନ=
Registā(sthā)n ବାଲୁକାମୟ ପ୍ରଦେଶ)—୧ । ମରୁ ଦେଶ—
বেগিস্তান 1. Desert. ୨ । ମାରବାଡ଼ ଦେଶ—2. The country of Marwar.

ରେଗୁଲେଶନ୍—ବୈଦେ. ବି (ଇଂ. ରେଗୁଲେସନ୍)—୧। ବିଶିଷ୍ଟ ବିଧି—
Regulesan 1. Special rule. ୨। କାନୁନ୍; ସ୍ଥାନୀୟ ବା
রেগুলেসন ଭାରତୀୟ ଗଭର୍ଣ୍ଣମେଣ୍ଟଙ୍କ ପ୍ରବର୍ତ୍ତିତ ବିଶିଷ୍ଟ ବିଧି ବା
रेगिस्तान ପଦ୍ଧତି ସମ୍ବଳିତ ଆଇନ୍—2. Regulation promulgated by any local or the India Government.

ରେଗୁଲେଶନ୍ ଲାଠି—ଦେ. ବି—(ଇଂ. ରେଗୁଲେଶନ୍+ସଂ. ଯଷ୍ଟି)—
Regulesan lāṭhi ପୋଲିସ୍ କନଷ୍ଟବଲ୍‌ମାନଙ୍କ ବ୍ୟବହୃତ
রেগুলেসন লাঠি ଲମ୍ବ ଯଷ୍ଟି—Regulation lathis used
रेगुलेसन लाठी by constables of Indian Police.
[ଦ୍ର—ବନ୍ଧୁକର ବିନା ସାହାଯ୍ୟରେ ଅବୈଧ ଜନତାକୁ ଓ ମେଳକୁ ଭାଙ୍ଗି ଲୋକଙ୍କୁ ଘଉଡ଼ାଇ ଦେବା ଓ ଶାନ୍ତି ରକ୍ଷା କରିବା ପାଇଁ କନଷ୍ଟବଲ୍‌ମାନେ ଏପରି ଲାଠି ବ୍ୟବହାର କରିବା ପାଇଁ ବଡ଼ଲାଟ ସାହେବ ତାଙ୍କ କାନୁନ୍ (ରେଗୁଲେସନ୍) ଦ୍ୱାରା ନିୟମ ଜାରି କରି ଅଛନ୍ତି; ଏ ଯଷ୍ଟିର ଉଚ୍ଚତା ୬ ଫୁଟ ଓ ବ୍ୟାସ ୧୧ ଇଞ୍ଚ ।]

ରେଙ୍ଗାମ୍—ବୈଦେ. ବି.—(ନାମ) (ଇଂ. ରେଙ୍ଗୁନ୍)—ରଙ୍ଗୁନ୍;
Reṅgām ବ୍ରହ୍ମଦେଶର ରାଜଧାନୀ ଓ ବନ୍ଦର—
Rangoon; the chief town and sea port of Burma. [ଦ୍ର—ଏହି ବନ୍ଦର ଇରାବତୀ ନଦୀର ମୁହାଣରେ ଅବସ୍ଥିତ ।]

ରେଙ୍ଗାମ ଧାନ—ପ୍ରାଦେ. (ଗଡ଼ଜାତ) ବି.—ବ୍ରହ୍ମଦେଶରୁ ଅଣାଯାଇ
Reṅgāma dhāna ଏଦେଶରେ କୃଷି ହେଉଥିବା ଧାନ—
The paddy grown in this country out of the seeds brought from Burma.
[ଦ୍ର—ଏହି ଧାନ ମୋଟ ଓ କଳା । ଏହାର ଅଗର ନଥାଏ କାଲିଆ । ଏହା ବେଶି ପାଣି ଥିବା ଜାଗାରେ ହୁଏ ।]

ରେଙ୍ଗାଲ୍—ପ୍ରାଦେ. (ସମ୍ବଲପୁର) ବି.—ଶାଳୁଆ କାଠ (ଦେଖ)
Reṅgāl Sāluā kāṭha (See)

ରେଙ୍ଗାଳ—ପ୍ରାଦେ. (ବାମଣ୍ଡା) ବି.—କାଠର ମଞ୍ଜ—The hardest
Reṅgāḷa middle portion or core of any timber.

ରେଙ୍ଗାଳ କାଠ—ପ୍ରାଦେ. (ବଣେଇ) ବି.—ଶୁଖା ବା ଶୁଖିଲା ଶାଳ
Reṅgāḷa kāṭha କାଠ—Dried or seasoned Sal timber.

ରେଙ୍ଗୁଣି ଖୁଦ—ପ୍ରାଦେ. (ବାଲେଶ୍ୱର)—ବି.—ରେଙ୍ଗୁନ୍‌ରୁ ଆମଦାନି
Reṅguṇi khuda ହୋଇ ଆସୁଥିବା ଖୁଦ—Broken rice imported from Rangoon. [ଦ୍ର—ଅନ୍ନାଭାବ ସମୟରେ ଓଡ଼ିଶାକୁ ରେଙ୍ଗୁଣି ଖୁଦର ବହୁତ ଆମଦାନି ହୋଇଥାଏ ।]

ରେଙ୍ଗୁନ୍(ନୁ,ଣୁ,ଣ୍)—ବୈଦେ. ବି. (ନାମ)—ରେଙ୍ଗାମ୍ (ଦେଖ)
Reṅgun(nu,ṇuṇ) Reṅgām (See)

ରେଚକ—ସଂ. ବିଣ.—(ରେଚ ଧାତୁ=ନିଃସାରଣ କରିବା+କର୍ତ୍ତୃ.ଅକ)
Rechaka ମଳଭେଦକ; ଯାହା ଝାଡ଼ା କରାଏ—Purgative; cathartic; apperient. ସଂ. ବି.—୧ । ଜୁଲାପ; ମଳଭେଦକାରକ ଔଷଧ—1. A purgative; a purge. (ବୈଦ୍ୟଶାସ୍ତ୍ର ମତରେ ୬ ପ୍ରକାରର ରେଚକ ଦ୍ରବ୍ୟ ବର୍ଣ୍ଣିତ ହୋଇଅଛି; ଫଳ, ମୂଳ, ଛାଲ, ତେଲ, ରସ ଓ ଗଛର ଦୁଧ ବା ନିର୍ଯ୍ୟାସ (ହି. ଶ.) ।) ୨। ଜୟପାଳ ଗଛ; କନିକା ଗଛ—2. A tree; Volium Crotonio. [ଦ୍ର—ଏହାର ମଞ୍ଜି ଖାଇଲେ ଖୁବ୍ ଝାଡ଼ା ହୁଏ ।] ୩ । ଯବକ୍ଷାର—3. Nitre. ୪ । ପିଚକାରୀ [ହି. ଶ] 4. Syringe. ୫ । (ଯୋଗଶାସ୍ତ୍ର)—ପ୍ରାଣାୟାମ ଅଭ୍ୟାସ କାଳରେ ପେଟ ମଧ୍ୟରେ ପୂରକଦ୍ୱାରା ସଂଗୃହୀତ ବାୟୁକୁ ନାକର ଡାହାଣ ପୁଡ଼ା ବାଟେ ଅସ୍ତେ ଅସ୍ତେ ତ୍ୟାଗ କରିବା—5. The act of exhausting or emptying the air out of the body through the right nostril during the exercise of Prāṇāyāma. [ଦ୍ର—ପବନ ଛାଡ଼ିବାକୁ ଯେ ରେଚକ ବୋଲି କହି । ପ୍ରାଚୀ. ଶିବସ୍ୱରୋଦୟ ।]] [ଦ୍ର—ପ୍ରାଣବାୟୁକୁ ବା ନିଶ୍ୱାସକୁ ନାକପୁଡ଼ା ଦ୍ୱାରା ପେଟ ଭିତରକୁ ପୂରାଇବାର ନାମ "ପୂରକ" ଏବଂ ଶରୀର ମଧ୍ୟରେ ପ୍ରବେଶ କରିଥିବା ବାୟୁକୁ ନିଶ୍ଚଳ କରି ରଖିବାର ନାମ "କୁମ୍ଭକ" ଓ ସଂଗୃହୀତ ବାୟୁକୁ ନାକ ବାଟେ ବାହାର କରିଦେବାର ନାମ ରେଚକ ।]

ରେଚନ—ସଂ. ବି.—(ରିଚ୍ ଧାତୁ ଣିଚ୍ ବା ରେଚ ଧାତୁ=ନିଃସାରଣ
Rechana କରାଇବା+ଭାବ. ଅନ)—୧ । ଭେଦ; ପତଳା ଝାଡ଼ା
1. Passing loose stools; a purging. ୨ । (+କର୍ତ୍ତୃ. ଅନ)—ରେଚକ ଔଷଧ; ଜୁଲାବ—2. Purgative. ୩ । (ରିଚ୍ ଧାତୁ ଣିଜନ୍ତ ରେଚ ଧାତୁ+ଭାବ. ଅନ)—ଝାଡ଼ା କରାଇବା—3. Purging

**ରେଚନକ**—ସଂ. ବି—(ରେଚନ+କ)—କମଲାଗୁଣ୍ଡ (ବୃ. ଶ.)—
Rechanaka Camilla powder.

**ରେଚନୀ**—ସଂ. ବି.—(ବୈଦ୍ୟକ)—୧ । ସୁନାମକେଇ—1. Senna
Rechani (leaves); Cassia Augustifolia.
[ସଂ. ନାମ—ସ୍ୱର୍ଣ୍ଣପତ୍ରିକା, ୨ । ଶେତ ତିବୃତ୍; ଧଳା ଭରୁଡ଼—
ହେମପତ୍ରୀ, କଲ୍ୟାଣୀ] 2. A white species of
Tihurdi. ୩ । କମଲାଗୁଣ୍ଡି [ବୃ.ଶ.]—3. Camilla powder. ୪ । ଦନ୍ତୀ (ବୃ. ଶ.)—4. Croton
Polyandrum (tree) ୫ । ବଟ ପତ୍ରୀ (ବୃ. ଶ.)
ଏକ ପ୍ରକାଣ୍ଡ ପାଷାଣଭେଦୀ ଗୁଳ୍ମ—
5. Lycopodium (plant)

**ରେଚ** (ଧାତୁ)—ସ —(ରିଚ୍ ଧାତୁ+ଣିଚ୍)—୧ । ନିଃସରଣ କରାଇବା;
Rechi (root) ଝଳାଇବା—1. To pour out. ୨ ।
ଝାଡ଼ା କରାଇବା—2. To cause liquid motion
to purge.

**ରେଚିତ**—ସଂ. ବିଣ.—(ରେଚ ଧାତୁ+କର୍ମ କ୍ତ)—୧ । ତ୍ୟକ୍ତ;
Rechita ଅପସାରିତ—1. Abandoned; driven out.
୨ । ନିଃସାରିତ—2. Discharged. ୩ । ଝାଡ଼ା
ଦ୍ୱାରା ବାହାର କରାଯିବା—3. Purged off. ସଂ. ବି-
୧ । ଘୋଡ଼ାଙ୍କର ଏକ ପ୍ରକାର ଗତି (ବୃ. ଶବ୍ଦସାଗର)—
1. A kind of movement of the horse.
୨ । ନୃତ୍ୟରେ ହାତ ହଲାଇବାର ଏକ ଶୈଳି (ବୃ. ଶ.)—
2. A kind of movement of the hands
in dancing.

**ରେଜ୍(ଜି)କି**—ବୈଦେ. ବି (ଫା. ରେଜ଼୍ଗୀ)—ଟଙ୍କା ଅପେକ୍ଷା କ୍ଷୁଦ୍ର
Rej(ji)ki ରୌପ୍ୟମୁଦ୍ରାଗଣ—Smaller coins of
ବେଜକି रेजकी(गी), रेजा silver (smaller than a
rupee) [ଦ୍ର—ଅଧୁଲି, ସୁକି, ଦୋଅଣି, ଅଣି
ପ୍ରଭୃତିକୁ ରେଜ୍‌କି କୁହାଯାଏ] ବିଣ—୧ । ଖୁଚୁରା; ଅଳ୍ପ
ମୂଲ୍ୟର (ମୁଦ୍ରା)—1. Small (coins). ୨। ବଳକା;
ଯାହା ବଳି ପଡ଼ିଥାଏ—2. Redundant

**ରେଜ୍(ଜି)କି ଭଙ୍ଗା(ଙ୍ଗେ)ଇବା**—ଦେ. କି—ଟଙ୍କାକୁ କ୍ଷୁଦ୍ରତର
Rej(ji)ki bhangā(ṅge)ibā ରୌପ୍ୟ ମୁଦ୍ରାରେ
ଟାକାଭାଙ୍ଗା रेजगीभंजाना ବଦଳାଇବା—To change
whole rupees into small silver
coins.

**ରେଜଲିଉଶନ୍**—ବୈଦେ. ବି (ଇଂ. ରିଜଲ୍ୟୁଶନ୍)—ସଭା ସମିତିର
Rejaliušan ନିର୍ଦ୍ଧାରଣ—Resolution of a
ରିଜଲ୍ୟୁସନ रिजलूसन meeting.
(ରେଜଲ୍ୟୁଶନ୍—ଅନ୍ୟରୂପ)

**ରେଜା**—ବୈଦେ. ବିଣ (ଫା. ରେଜା)—୧। ଖୁଚୁରା; ଅଳ୍ପ ମୂଲ୍ୟର(ମୁଦ୍ରା)-
Rejā 1. Small (coins) ୨। ବ୍ୟବହାରରୁ ବଳିପଡ଼ିଥିବା
ବେজা খুচরে रेजा କ୍ଷୁଦ୍ର କ୍ଷୁଦ୍ର (ଖଣ୍ଡ)—2 Small
redundant (bits.) (ଯଥା—ରେଜା ସୁନା, ରେଜା
ରୁପା, ରେଜା ମାହାଲ, ରେଜା ଲୁଗା।) ୩ । ବାଜେ—
3. Miscellaneous. ବି—୧ । ଖୁଚୁରା ମୁଦ୍ରା—
1. Small coins ୨ । କ୍ଷୁଦ୍ର କ୍ଷୁଦ୍ର ଅନାବଶ୍ୟକ
ଖଣ୍ଡମାନ—2. Small redundant bits. ୩ । ରଦ୍ଦି
ଜିନିଷ; ବାଜେ ବସ୍ତୁ—3. Miscellaneous
articles; lumber. ୪। ରାଜମିସ୍ତ୍ରୀଙ୍କୁ ଇଟା ଚୂନ ଆଦି
ଯୋଗାଇବା ଟୋକା—4. A boy who helps
a mason by bringing to him brick,
mortar etc. ୫ । ଗଳିତ ସୁନାକୁ ଓ ରୁପାକୁ ଢାଳି
କାଠି କରାଯିବା ପାଇଁ ବଣିଆଙ୍କ ବ୍ୟବହୃତ ଛାଞ୍ଚ—
5. Goldsmith's mould for moulding
molten silver and gold into bars. ପ୍ରାଦେ.
(ସମ୍ବଲପୁର) ବି—ଟୋକୀ ମୂଲଆଣୀ—Young girls
employed as day-labourers. [ଦ୍ର—
ସମ୍ବଲପୁର ଅଞ୍ଚଳରେ ବଡ଼ ମୂଲଆଣୀଙ୍କୁ 'କୁଲି'
ବୋଲାଯାଏ; କୁଲିନାକର ତୁଳନାରେ ପ୍ରଚଳିତ ରେଜା
ଶବ୍ଦର ୪ର୍ଥ ଅର୍ଥ)

**ରେଜା ମାହାଲ**—ବୈଦେ. ବି (ଫା. ରେଜା+ମହାଲ୍)—ଅଳ୍ପ ଜମାର
Rejā mahala ଜମିଦାରୀ; ବାଜେ ମାହାଲ—Petty estates.
বেজা মাহাল रेजा महाल

**ରେଜା ରୁପା**—ଦେ. ବି—ଅଳଙ୍କାର ଆଦିରୁ ବଳିପଡ଼ିଥିବା କ୍ଷୁଦ୍ର ରୌପ୍ୟ
Rejā Rupā ଖଣ୍ଡ—Small redundant bits of
বেজা রূপো रेजा रुपा silver. [ଦ୍ର—ଏହିପରି
ରେଜା ସୁନା, ରେଜା ଲୁହା ଆଦି ହୁଏ।]

**ରେଜା ଲୁଗା**—ଦେ. ବି—ବ୍ୟବହାରରୁ ବା କାଟିବା ଆଦିରୁ ବଳିପଡ଼ିଥିବା
Rejā lugā ଲୁଗା—Bits of cloth remaining
বেজা কাপড় रेजा कपडा after use.

**ରେଜିଆ(ୟା)**—ବୈଦେ.ବି(ନାମ) (ଫା.ରେଜିୟା)—ଭାରତରେ ଖ୍ରୀ: ୧୩ଶ
Rejiā(yā) ଶତାବ୍ଦୀର ୧ମ ଭାଗରେ ରାଜତ୍ୱ କରୁଥିବା ଦାସ-
বেজিআ रेजिया ବଂଶୀୟ ମୁସଲମାନ ରାଜବଂଶର ଜଣେ ରାଣୀ—
Rezia, a queen of India of the Slave
Line (Mahomedan) of the 13th century.
[ଦ୍ର—ଏହାଙ୍କ ରାଜଧାନୀ ଦିଲ୍ଲୀରେ ଥିଲା । ଏ ପୁରୁଷଙ୍କ
ପରି ପୁଂଲିଙ୍ଗବାଚକ 'ସୁଲ୍‌ତାନ୍' ଉପାଧି ଗ୍ରହଣ କରିଥିଲେ ।
ରେଜିଆ ଅତ୍ୟନ୍ତ ଦୟାବତୀ ଓ ନ୍ୟାୟପରାୟଣା
ଥିଲେ; ଏହାଙ୍କୁ ରାଜସଭାର ସାମନ୍ତମାନେ ହତ୍ୟା
କରିଥିଲେ ।]

**ରେଜିମେଣ୍ଟ୍**—ବୈଦେ. ବି (ଇଂ) ସେନାର ଏକଭାଗ—
Rejiment Regiment
বেজিমেন্ট रेजिमेंट, रिजमिंट

**ରେଜି(ଜ, ଜେ)ଷ୍ଟ(ଷ୍ଟ୍ରା)ର୍**—ବୈଦେ. ବି (ଇଂ ରେଜିଷ୍ଟ୍ରାର)—୧ ।
Reji(ja,je)shta(shta shtrā)r ଦଲିଲ ଆଦିକୁ ରେଜିଷ୍ଟ୍ରି
বেজিষ্ট্রার रजिस्टर କରିବା ପାଇଁ ନିଯୁକ୍ତ ରାଜକର୍ମଚାରୀ—

1. An officer for registration of deeds. ୨ । ହାଇକୋର୍ଟର ପ୍ରଧାନ ଅଧସ୍ତନ କର୍ମଚାରୀ— 2. Registrar of a High Court. ୩ । ବିଶ୍ୱବିଦ୍ୟାଳୟର ପ୍ରଧାନ ଅଧସ୍ତନ କର୍ମଚାରୀ— 3. Registrar of a university.

ରେଜି,(ଜ,ଜେ)ଷ୍ଟ(ଷ୍ଟା,ଷ୍ଟି,ସ୍ତି)ର୍(ରୀ) - ବୈଦେ ବି (ଇଂ. ରେଜିଷ୍ଟ୍ରାର୍, Reji(ja, je)shṭa(shṭā, shṭi, sti)r(rī) ରେଜିଷ୍ଟ୍ରୀ) - ୧ । [ରେଜି(ଜ,ଜେ)ଷ୍ଟ୍ରୀ(ଷ୍ଟ୍ରି)—ଅନ୍ୟରୂପ] ନିର୍ଦ୍ଧାରିତ ନିୟମ ଅନୁସାରେ ବେজিষ্টারী रजिस्टरी ନିର୍ଦ୍ଧାରିତ ସମ୍ବାଦ ଲିପିବଦ୍ଧ ହେବା ନିମନ୍ତେ ବ୍ୟବହୃତ ବହି—1. Register. ୨ । (ଇଂ. ରେଜିଷ୍ଟ୍ରୀ, ରେଜିଷ୍ଟ୍ରେସନ୍) ନିର୍ଦ୍ଧାରିତ ନିୟମାନୁସାରେ ନିର୍ଦ୍ଧାରିତ ବିଷୟମାନ ଲିପିବଦ୍ଧ କରିବା କାର୍ଯ୍ୟ— 2. Registration. ୩ । ନିର୍ଦ୍ଧାରିତ ନିୟମାନୁସାରେ ପକ୍ଷମାନଙ୍କ ସ୍ୱାକ୍ଷରିତ ବା ସମ୍ପାଦିତ ଦଲିଲମାନଙ୍କୁ ଉଦ୍ଧୃତ କରିବା ପ୍ରକ୍ରିୟା—3. Registration of private documents.

ରେଜି(ଜ,ଜେ)ଷ୍ଟ(ଷ୍ଟା,ଷ୍ଟି,ସ୍ତା,ସ୍ତି,ସ୍ତେ)ର୍(ରୀ) ଆଇନ୍—ବୈଦେ. ବି— Reji(ja,je)shṭa(shṭā,shṭi,sta,sti,ste)r(rī) āin ଦଲିଲମାନ ରେଜିଷ୍ଟରୀ କରିବା ସଂକ୍ରାନ୍ତୀୟ ରାଜକୀୟ ବିଧି— বেজিষ্টাৰী আইন रजिस्टरी आईन The law of registration.

ରେଜି(ଜ,ଜେ)ଷ୍ଟ(ଷ୍ଟି,ଷ୍ଟେ,ସ୍ତ,ସ୍ତି,ସ୍ତେ)ରୀ ଅ(ଆ)ପି(ଫି)ସ୍(ସି)— Reji(ja,je)shṭa shṭi,shṭe,sta,sti,ste)rī a(ā)pi(phi)s(si) ବୈଦେ. ବି—(ଇ. ରେଜିଷ୍ଟ୍ରେସନ୍ ଅଫିସ୍)—ଯେଉଁ କଚେରୀରେ ହାକିମ ଦଲିଲ-ମାନଙ୍କୁ ରେଜିଷ୍ଟରୀ କରନ୍ତି— রেজিষ্টাৰী আফিস रजिस्टरी अफिस Registration Office.

ରେଜିଷ୍ଟ୍ରେ(ଷ୍ଟ୍ରେ)ସନ ଅଫିସ୍ (କଚେରୀ)
ରେଜି(ଜ,ଜେ)ଷ୍ଟ(ଷ୍ଟି,ଷ୍ଟେ,ସ୍ତ,ସ୍ତି,ସ୍ତେ)ରୀ କଚ(ଚେ)ରୀ } — ଅନ୍ୟରୂପ

ରେଜି(ଜ,ଜେ)ଷ୍ଟ(ଷ୍ଟା,ଷ୍ଟି,ଷ୍ଟେ,ସ୍ତ,ସ୍ତି,ସ୍ତେ)ରୀ କରିବା—ଦେ. କ୍ରି. -(ଇଂ. Reji(ja,je)shṭa,(shṭi,shṭe,sta,sti,ste)rī karibā ରେଜିଷ୍ଟର୍)—୧ । ସାଧାରଣ ପକ୍ଷମାନଙ୍କ ସମ୍ପାଦିତ দলিলକୁ ରେଜିଷ୍ଟାର ଉଦ୍ଧୃତ କରିବା— বেজিষ্টাৰি কৰা रजिस्टरी करना 1. To register a document (said of a Registration Officer.) ୨ । ଅପେ ଲେଖିଥିବା ଓ ସମ୍ପାଦନ କରିଥିବା ଦଲିଲରେ ଆପଣାର ସ୍ୱାକ୍ଷରକୁ ରେଜିଷ୍ଟ୍ରାର୍‌ଙ୍କ ସମ୍ମୁଖରେ ସ୍ୱୀକାର କରିବାଦ୍ୱାରା ହାକିମଙ୍କ ଦ୍ୱାରା ତାହା ରେଜିଷ୍ଟରୀ କରାଇବା—2. To admit the execution of a document and so to enable the Registrar to register it.

ରେଜି(ଜ,ଜେ)ଷ୍ଟର୍(ରୀ) ପୁସ୍ତକ(ବହି)—ଦେ. ବି.—ଯେଉଁ ପୁସ୍ତକରେ Reji(ja,je)shṭar(rī) pustaka (bahi) ରାଜ କର୍ମଚାରୀ-ମାନେ ନିର୍ଦ୍ଧାରିତ ବିଷୟମାନ ପୂରଣ କରନ୍ତି— রেজিষ্টাৰী বই रजिस्टरी बही A register (book).

ରେଜି ଜ,ଜେ)ଷ୍ଟ(ଷ୍ଟା,ଷ୍ଟି,ଷ୍ଟେ,ସ୍ତ,ସ୍ତି,ସ୍ତେ)ରୀ ଫିସ୍—ବୈଦେ.ବି.—(ଇଂ) Reji(ja,je)shṭa(shṭā,shṭi,shṭe,sta,sti,ste)rī phis. ବେজিষ্টাৰী ফিস रजिस्टरी फिस କୌଣସି ଦଲିଲ ବା ଚିଠାପତ୍ରକୁ ହାକିମଙ୍କଦ୍ୱାରା ରେଜିଷ୍ଟରୀ କରାଇବା ପାଇଁ ପକ୍ଷଙ୍କର ଦାଖଲ କରିବା ଶୁଳ୍କ— Registration fees

ରେଜି(ଜ,ଜେ)ଷ୍ଟ[ଷ୍ଟା,ଷ୍ଟି,ଷ୍ଟେ]ରୀ ବିବାହ— ଦେ. ବି --ବୈଦିକ କର୍ମାନୁ- Regi(ja,je)shṭa,(shṭā,shṭi,shṭe)rī bibāha ଷ୍ଠାନମାନ; রেজিষ্টাৰী বিবাহ रजिस्टरी विवाह କରି ନ ଯାଇ, ବର କନ୍ୟା ବିବାହିତ ହେଲେ ବୋଲି ସରକାରୀ ରେଜିଷ୍ଟରରେ ଲିପିବଦ୍ଧ କରାଯିବା ବିବାହ—Marriage under the Civil Marriage Registration Act.

ରେଜି(ଜ,ଜେ)ଷ୍ଟ(ଷ୍ଟା,ଷ୍ଟି,ଷ୍ଟେ)ର୍(ରୀ) ଭୁକ୍ତ—ଦେ. ବିଣ—(କୌଣସି Reji(ja,je)shṭa(shṭā,shṭi,shṭe)r(r)ī ବିଷୟ) bhukta ରେଜିଷ୍ଟରୀ ବହିରେ ଲେଖା ଯାଇଥିବା; ରେଜିଷ୍ଟରୀ বেজিষ্টাৰী ভুক্ত বহিৰে উঠিথকা—(Any matter) Entered रजिस्टरमें लिखाहुआ in or included in a public register.

ରେଜି(ଜ,ଜେ)ଷ୍ଟର(ରୀ)ରେ ଚଢ଼ା(ଢ଼େ)ଇବା—ଦେ. କ୍ରି—କୌଣସି Reji(ja,je)shṭara(rī)re chaṛdhā(ṛdhe)ibā ବିଷୟକୁ ରେଜିଷ୍ଟ୍ରାରୀ ବହିରେ ଲେଖିବା— বেজিষ্টাৰিতে চড়ান रजिस्टरमें चढाना To enter a matter in a register.

ରେଜି ଜ,ଜେ,ଷ୍ଟା;(ଷ୍ଟ,ଷ୍ଟି,ଷ୍ଟେ)ର(ରୀ) ହାକିମ ବୈଦେ. ବି-ଯେଉଁ ରାଜ-Reji(ja,je)shṭa(shṭā,shṭi,shṭe)ra(rī) hākima କର୍ମଚାରୀ ଦଲିଲମାନ ରେଜିଷ୍ଟରୀ କରନ୍ତି—Registering বেজিষ্টাৰী হাকিম रजिस्टरी हाकिम Officer; a Registrar. (ରେଜି[ଜ,ଜେ]ଷ୍ଟ୍ରି [ଷ୍ଟ୍ରୀ] ହାକିମ, ରେଜି(ଜ,ଜେ)ଷ୍ଟ୍ର(ଷ୍ଟ୍ରେ)ରୀ ଅଫିସର୍ ଅନ୍ୟରୂପ

ରେଜିଷ୍ଟାର୍ଡ୍—ବୈଦେ. ବିଣ (ଇଂ. ରେଜିଷ୍ଟାର୍ଡ୍)—ରେଜିଷ୍ଟରୀ କରା Registārd ଯାଇଥିବା—Registered. বেজিষ্টার্ড रजिस्टर्ड (ରେଜିଷ୍ଟରୀକୃତ—ଅନ୍ୟରୂପ)

ରେଜିଷ୍ଟେ(ଷ୍ଟ୍ରେ)ଶନ୍—ବୈଦେ. ବି (ଇଂ. ରେଜିଷ୍ଟ୍ରେସନ୍)— Rejishṭe(shṭre)śan ରେଜିଷ୍ଟରୀଯୁକ୍ତ କରିବାର ପ୍ରକ୍ରିୟା— বেজিষ্ট্রেসন रेजिस्ट्रेशन Registration.

ରେଜେ(ଜା)ଇ—ବୈଦେ, ବି (ଅ. ରଜାଇ)—ତୋଷକ; ଉପରେ Reje(jā)i ତୁଳା ଦିଅ ଯାଇ ସିଲାଇ ହୋଇଥିବା ପତଳା ଖୋଳ; বেজাই রজাई ଶୀତଦିନେ ଘୋଡ଼େଇ ହେବା ତୁଳାର ଶୀତବସ୍ତ୍ର— Quilt.

ରେଝେଇ—ପ୍ରାଦେ (ବସ୍ତ୍ର)—ରେଜେଇ (ଦେଖ) Rejhei : Rejei. (See)

ରେଞ୍ଚ (ଞ୍ଚି)—ବୈଦେ. ବି (ଇଂ. ରେଞ୍ଚ)—ବଢ଼େଇ, କମାର ପ୍ରଭୃତି Rencha(nchi) କାମରେ କୌଣସି ପଦାର୍ଥକୁ କସି କରି ধরিবা ପାଇଁ ବ୍ୟବହୃତ ଯନ୍ତ୍ର ବିଶେଷ— রেঞ্চ (ঞ্চি) रेञ्च(ञ्चो) A wrench (instrument).

**ରେଞ୍ଜ୍**—ବୈଦେ. ବି.—(ଇଂ. ରେଞ୍ଜ୍)—ସରକାରୀ ବନ ବିଭାଗ ଓ
Renj ଅନ୍ୟାନ୍ୟ ବିଭାଗର ଶାସନ ସୌକର୍ଯ୍ୟାର୍ଥ ବିଭକ୍ତ ହୋଇଥିବା
ରেঞ্জ রেঁজ ଜିଲ୍ଲାର ବା ଅଞ୍ଚଳର ଉପବିଭାଗ ଖଣ୍ଡ—A range or subdivision.

**ରେଞ୍ଜର**—ବୈଦେ. ବି. ( ଇଂ. ରେଞ୍ଜର୍ )—ରକ୍ଷିତ ଜଙ୍ଗଲମାନଙ୍କର
Renjar ତତ୍ତ୍ୱ ନେବା ନିମନ୍ତେ ନିଯୁକ୍ତ ରାଜକର୍ମଚାରୀ—
(ଫରେଷ୍ଟ ରେଞ୍ଜର—ଅନ୍ୟରୂପ) A Forest Ranger; a
রেঞ্জার রেঞ্জর Ranger.

**ରେଞ୍ଜି**—ଗ୍ରାଦେ. (କଳାହାଣ୍ଡି) ବି—ଦଉଡ଼ି—
Renji Rope.

**ରେଟ୍**—ବୈଦେ. ବି. ( ଇଂ. ରେଟ୍ )—୧ । ଦ୍ରବ୍ୟର ଭାଉ; ଦର—
Ret 1. Rate. ୨ । ମୂଲ୍ୟର ନିର୍ଦ୍ଦିଷ୍ଟତା—2. Fixed
রেট rate or price. ୩ । ବଜାର ଦର—3. Market
रेट् rate. ୪ । ହାରାହାରି ଦର—4. Average rate.
୫ । ନିୟମ—5. Rule. ୬ । ଅପରିବର୍ତ୍ତନୀୟ ନିୟମ—
6. Fixed rule. ୭ । ଦ୍ରବ୍ୟର ସ୍ଥିରୀକୃତ ଦର—
7. Fixed rate of an article. ୮ । ହାରଦର;
ହାର; ଅନୁପାତ—8. Average; ratio. ୯ ।
ମିଉନିସିପାଲିଟିକୁ ପ୍ରଜାଙ୍କ ଦେବା ଟିକସ—9 Municipal
rate; rate or tax payable to the Municipality.

**ରେଟ୍ କରିବା**—ଦେ ବି—ଗୋଟିଏ ନିର୍ଦ୍ଦିଷ୍ଟ ନିୟମ ଅନୁସାରେ କାର୍ଯ୍ୟ
Ret kariba କରିବା—To observe a fixed rule.
বেট করা रेट करना

**ରେଟ୍ ଧରିବା**—ଦେ. ବି—୧ । ଗୋଟିଏ ନିୟମରେ କାର୍ଯ୍ୟ ହେବା ପାଇଁ
Ret dhariba ଜିଗର କରିବା; ରେଖି ଧରିବା—1. To insist
বেট ধরা on a rule being strictly followed.
रेट धरना ୨ । କୌଣସି ଦ୍ରବ୍ୟ ନିର୍ଦ୍ଦିଷ୍ଟ ମୂଲ୍ୟରେ ବିକି କରିବା
ପାଇଁ ଜିଗର କରିବା—2. To insist on selling a thing at a fixed rate.

**ରେଟ୍ ପେଅ(ୟ)ର୍**—ବୈଦେ. ବି. ( ଇଂ. ରେଟ୍ ପେଅର୍ )—
Ret pea(ya)r ମିଉନିସିପାଲିଟିକୁ ଟିକସ ଦେବାବାଲା ବ୍ୟକ୍ତି—
বেট পেয়াব Rate-payer of a Municipality.
रेट देनेवाला

**ରେଡ଼ା**—ଦେ. ବିଣ—ରେଡ଼ିଆ ( ଦେଖ )
Rerda Rerdia ( See )

**ରେଡ଼ାଖୋଲ**—ଦେ. ବି (ନାମ)—ରେଢ଼ାଖୋଲ (ଦେଖ)
Rerdakhola Rerdhakhola (See

**ରେଡ଼ାରେଡ଼ା**—ଦେ. ବି(ବହୁବଚନସୂଚକ)—ଅନେକଗୁଡ଼ିଏ ରେଡ଼ିଆ ବା
Rerdarerda କ୍ଷୁଦ୍ର ବନ୍ଧୁର ବସ୍ତୁ—A collection
रोडारोडा of small uneven things ( e.g. shingles).

**ରେଡ଼ା(ଢ଼ା)ରେଡ଼ି(ଢ଼ି)**—ଦେ. ବି ଓ ବିଣ—ଅନ୍ୟୋନ୍ୟରେ ଠେଲା-
Rerda(rdha)rerdi(rdhi) ଠେଲି—Mutual push-
ঠেলাঠেলি रेडारेडी ing; jostling.

**ରେଡି**—ବୈଦେ. ବିଣ (ଇଂ. ରେଡି)—କୌଣସି କାର୍ଯ୍ୟପାଇଁ ପ୍ରସ୍ତୁତ—
Redi Ready. ବୈଦେ. ଅ—କୌଣସି କାର୍ଯ୍ୟ
রেডী रेडी ( ଯଥା—ଡ୍ରିଲ୍, ବ୍ୟାୟାମ, ଦୌଡ଼ାଦୌଡ଼ି
ଆଦି ) ପାଇଁ ପ୍ରସ୍ତୁତ ରହିବା ସୂଚକ ଶବ୍ଦ—
Ready (a word used to denote readiness
of persons about to begin something (e. g. a race).

**ରେଡ଼ି**—ଦେ. ବି ( ସଂ. ଏରଣ୍ଡ )—୧ । ଏରଣ୍ଡ; ଗବ—
Rerdi 1. Castor seed. ୨ । ରେଢ଼ି (ଦେଖ)—
রেড়ি रेंडि अरेंडि 2. Rerdhi [See] ବୈଦେ.
এড়ি एँडी ବି—(ଫା. ଏଁଡ୍ରୀ)—ଗୋଡ଼ର ଗୋଇଠି—
[ଉ—ଦୁଇ ହାତରେ ଅଳଂକଳକୁ ଠେକାଇ, ପକାଇ ଅରେ
ତଳେ ରେଡ଼ିରେ ପେଷିଲ । କୃଷ୍ଣସିଂହ. ମହାଭାରତ.
ଦ୍ରୋଣ ।] ୧। ଗୋଡ଼ର ଗୋଇଠିରେ ଆଘାତ—1. Stroke
with the heel. ୨ । ଘୋଡ଼ସବାରମାନେ ଘୋଡ଼ାଙ୍କ
କାଖକୁ ଭୁଷିବା ପାଇଁ ଯୋତାର ଗୋଇଠିରେ ଯେଉଁ
ଲୁହାକଣ୍ଟା ପିନ୍ଧନ୍ତି—2. A spur used by a rider.
[ ଉ—ସଜ କରି ତତ୍ପରେ ଘୋଡ଼ାଙ୍କୁ ଚଢ଼ିଲେ, ରେଡ଼ିକ
ମାରି ଧାଡ଼ି ଧାଡ଼ି ବାହାରିଲେ । କୃଷ୍ଣସିଂହ. ମହାଭାରତ
ଆଦି । ] ବୈଦେ. ଅ (ଇଂ. ରେଡି)—ଖେଳ ଆଦି ଆରମ୍ଭ
রেডি କରିବା ନିମନ୍ତେ ପ୍ରସ୍ତୁତ ହୋଇ ରହିବା ପାଇଁ ଖେଳାଳିମାନଙ୍କ
रेडि ବ୍ୟବହୃତ ସଙ୍କେତ—(Interj) Ready ! a term used
to denote that the players of a game should be are ready to begin.

**ରେଡିଅ(ୟ)ମ୍**—ବୈଦେ. ବି ( ଇଂ. ରେଡିଅମ୍ )—ଖ୍ରୀଃ ୧୮୯୮ରେ
Redia(ya)m ଆବିଷ୍କୃତ ଅଦ୍ଭୁତ ଶକ୍ତିବିଶିଷ୍ଟ ମୌଳିକ ଧାତୁ-
রেডিয়াম ବିଶେଷ—Radium. [ ଦ୍ର—ଏ ଧାତୁ ଅସାଧାରଣ
रेडियम ଅଟେ । ଏହାକୁ ଶକ୍ତିର ସଞ୍ଚିତରୂପ ବୋଲି ବିବେଚନା
କରାଯାଏ । ଏହା ଉଜ୍ଜ୍ୱଳ । ଏ ଧାତୁର ଆବିଷ୍କାରଦ୍ୱାରା
ପରମାଣୁ ସମ୍ବନ୍ଧୀୟ ବୈଜ୍ଞାନିକ ସିଦ୍ଧାନ୍ତରେ ବହୁତ
ପରିବର୍ତ୍ତନ ଘଟିଅଛି । ]

**ରେଡିଅମ୍ ଚିକିତ୍ସା**—ଦେ. ବି—ରେଡିୟମ୍ ସାହାଯ୍ୟରେ ରୋଗ ଉପଶମ
Rediam chikitsa କରିବାର ଉପାୟ—Radium
রেডিয়াম চিকিৎসা treatment; X'ray treatment.
रेडियम चिकित्सा

**ରେଡ଼ି(ଢ଼ି)ଆ(ୟା)**—ଦେ. ବିଣ. (ସଂ. ରୂଢ଼)—୧ । ଟାଣୁଆ—
Redi(rdhi)a(ya) 1. Hard. ୨ । ଅବାଧ୍ୟ—2. Insub-
( ରେଢ଼ା—ଅନ୍ୟରୂପ ) ordinate. ୩ । କଙ୍କରମୟ—
শক্ত,অবাধ্য 3. Shingly. ୪ । ଉତ୍ତରଦାୟକ; ଜବାବଦେବା
रोडिया (ଉତ୍ତର୍ଯ୍ୟ)—4. Perverse; recalcitrant.
୫ । ବନ୍ଧୁର; କର୍କଶ—5. Coarse; uneven.

**ରେ(ଡ଼ା)ଡ଼ିଓ**—ବୈଦେ. ବି (ଇଂ. ରେଡିଓ)—ବହୁ ଦୂରରେ ଉଚ୍ଚାରିତ
Re(ra)dio ଶବ୍ଦ ଓ ଗୀତ ଆଦି ଶୁଣିବା ପାଇଁ ବ୍ୟବହୃତ ବୈତାର
বেডিও ବୈଦ୍ୟୁତିକ ଯନ୍ତ୍ର—Radio. [ ଦ୍ର—ଉଚ୍ଚାରିତ ଶବ୍ଦମାନ

ରେଡିଓ ଶୂନ୍ୟରେ ବିସ୍ତାରିତ ବୈଦ୍ୟୁତିକ ଲହରୀଦ୍ୱାରା ଚାଳିତ ହୋଇ ଏ ବିଶ୍ୱରେ ସର୍ବତ୍ର ପରିଭ୍ରମଣ କରୁଅଛି । ଏହି ରେଡିଓ ଯନ୍ତ୍ରଦ୍ୱାରା ଉକ୍ତ ସ୍ୱରମାନଙ୍କୁ ଯେ କୌଣସି ସ୍ଥାନରେ ଧରାଯାଇ ପାରେ । ]

**ରେଡ଼ି ତେଲ**—ଦେ ବି—ଜଡ଼ା ତେଲ—
Redi tela — Castor oil.
বেড়ীতেল — रेंडितेल

**ରେଡ୍ଡି**—ପ୍ରାଦେ. ( ଗଞ୍ଜାମ ) ବି—( ନାମ )—ମାନ୍ଦ୍ରାଜପ୍ରଦେଶର ଧନୀ ଅବ୍ରାହ୍ମଣ ଜାତି ବିଶେଷ—Reddi; a non-Brahmin sect of Madras who are generally rich.
Reḍdi

**ରେଡ଼ି(ଢ଼ି)ବା**—ଦେ. କ୍ରି—୧ । ଅସମ୍ମାନ କରିବା—1. To disrespect. ୨ । ସ୍ୱାମୀଙ୍କ ଆଦେଶକୁ ଅବଜ୍ଞା କରିବା—2. To disregard the master's orders. ୩ । (ଆଦେଶ ଆଦି) ଏଡ଼ିବା; ଲଙ୍ଘନ କରିବା—3. To infringe or transgress (dorer etc ). ୪ । ଠେଲିବା—4. To push. ୫ । କବାଟ ଆଦି ଚଉକାଠ ଦେହରେ ଠିକ୍‌ମତେ ନ ଲାଗି ଠେସିବା—5. Not to fit (said of a door not fitting well to a frame). ୬ । ଜିଦ୍ଧି ଧରିବା; ଏକ ଜିଦ ଧରିବା—6. To insist on a particular thing.
Redi(rdhi)bā
অমান্য করা — अमानत करना
ঠেকা — रेंडना
জীদকরনা — हठना

**ରେଡ଼ି ମାରିବା**—ଦେ. କ୍ରି—ରେଡ଼ିଦ୍ୱାରା ଆଘାତ କରିବା—
Redi māribā — To strike with the heel.
গোড়ালি মারা — एँडीमारना

**ରେଢ଼ାଖୋଲ**—ଦେ. ବି—(ନାମ)—ସମ୍ବଲପୁର ପାର୍ଶ୍ୱବର୍ତ୍ତୀ ଏକ ଓଡ଼ିଆ ଗଡ଼ଜାତ ରାଜ୍ୟ—One of the Oriya states adjoining Sambalpur. [ ଦ୍ର—ଏହି ରାଜବଂଶର ରାଜାମାନଙ୍କ ସନ୍ତକ 'ଶଙ୍ଖପଦ୍ମ' । ଜଗବନ୍ଧୁ. ପ୍ରାଚୀନ ଉତ୍କଳ ।] ମଗର ଲେଜ୍‌ଟ ତଳେ ନୋଟ୍ ଦେଖ ।]
Rerdhā khola

**ରେଢ଼ି (ଇତ୍ୟାଦି)**—ରେଡ଼ି ଇତ୍ୟାଦି (ଦେଖ)
Kerdhi (etc) — Redi etc. (See)

**ରେଣୁ**—ସଂ. ବି.—(ରି ଧାତୁ=ବଧ କରିବା+କର୍ତ୍ତୃ. ନୁ)—୧ । ଧୂଳି—1. Dust. ୨ । ଚୂର୍ଣ୍ଣ—2. Powder. ୩ । ପରାଗ—3. Pollen of flowers. ୪ । ଅଣୁ; ପରମାଣୁ—4. Atom. ୫। ଏକ କଡ଼ା କଉଡ଼ିର ୩୬୦ ଭାଗରୁ ଏକ ଭାଗ—5. Three hundred thirty sixti part of a cowrie ( shell-money ). ୬ । ଅତି ସୂକ୍ଷ୍ମାଂଶ; କଣିକା—6. Very small particle. ୭ । ଅତି ସୂକ୍ଷ୍ମ ପରିମାଣ—7. Very little quantity. ୮ । ରେଣୁକା (ଦେଖ)—8. Renukā (See). ୯ । ବାଲି—( ହି. ଶ. )—9. Sand. ୧୦ । ବିଡ଼ଙ୍ଗ [ହି. ଶ.]—10. Embellica Ribes. ପ୍ରାଦେ. (ଗଡ଼ଜାତ)—ବି—ଏକପ୍ରକାର ବନ୍ୟ ଗଛ—A kind of wild tree. [ ଦ୍ର—ଏହାର କାଠ ଟାଣଆ ଓ ବହୁତ କାମରେ ଲାଗେ ।]
Renu

**ରେଣୁକ**—ଦେ. ବି.—( ସଂ. ରେଣୁକା )—ଔଷଧରେ ବ୍ୟବହୃତ ମରିଚ୍ୟାକୃତି ସୁଗନ୍ଧ ଫଳବିଶେଷ—Name of a medicinal scented berry; Piper Aurantiacum. [ଦ୍ର—ଏହା କଟୁବିପାକ, ତିକ୍ତ, କଟୁରସ, ଅନୁଷ୍ଣ, ଲଘୁ, ପିତ୍ତବର୍ଦ୍ଧକ, ଅଗ୍ନିପ୍ରଦୀପକ, ମେଧାଜନକ, ପାଚକ ଓ ଗର୍ଭପାତକାରକ । ଏହା କଫ ଓ ବାୟୁର ପ୍ରକୋପ ନିବାରକ, ତୃଷ୍ଣା, କଣ୍ଡୂ, ବିଷ ଓ ଦାହନାଶକ—ଦ୍ରବ୍ୟଗୁଣ ।]
Renuka
ସଂ. ନାମ—ହରେଣୁ, ଦ୍ୱିଜା, କୌନ୍ତୀ, କପିଲା, ଭସ୍ମଗନ୍ଧା, ଅଗ୍ନିଷ୍ଟା, କୁନ୍ତାନ୍ତା, ବରା, ଖରନାଦିନୀ, କାନ୍ତା, ନନ୍ଦିନୀ, ମହିଳା, ରାଜପୁତ୍ରୀ, ହିମା, ରେଣୁ, ରେଣୁକା, ପାଣ୍ଡୁପତ୍ରୀ, ହରେଣୁକା, ସୁପର୍ଣ୍ଣିକା, ଶିଶିର, ଶାନ୍ତା ବୃତ୍ତ(ନ୍ତା) ହେମଗନ୍ଧିନୀ, ଧର୍ମିଣୀ, କପିଲୋମା, ହୈମବତୀ, ବରାଂକସା, ବରମୁଣ୍ଡା ।
ତେ. କୌନ୍ତୀ ମ. ରେଣୁକ ତା. ପେଟ୍ଟୀ ଗୁ. ହରେଣୁ
বেণুক — सम्भालुके बीज

**ରେଣୁକା**—ସଂ. ବି.—( ରେଣୁ+ସ୍ୱାର୍ଥେ କ+ସ୍ତ୍ରୀ. ଆ )—୧ । ବାଲି [ହି. ଶ.]—1. Sand. ୨ । ଧୂଳି (ହି. ଶ.)—2. Dust. ୩ । ରେଣୁକ (ଦେଖ)—3. Renuka (See) ୪ । ରେଣୁକା ତୀର୍ଥ (ଦେଖ)—Renukā Tirtha (See) ୫ । ପରଶୁରାମଙ୍କ ମାତା—5. Name of Paraśurāma's mother. [ ଦ୍ର—ଏହାଙ୍କର ଅନ୍ୟ ନାମ କୋଙ୍କଣା । ଏ ବିଦର୍ଭରାଜ ପ୍ରସେନଜିତ୍ ରାଜାଙ୍କ କନ୍ୟା । ଜମଦଗ୍ନି ଋଷିଙ୍କ ସହିତ ଏହାଙ୍କର ବିବାହ ହେବାରୁ ତାଙ୍କ ଔରସରେ ଏହାଙ୍କର ପାଞ୍ଚଗୋଟି ପୁତ୍ର ଜନ୍ମିଥିଲେ । ପରଶୁରାମ ସେମାନଙ୍କ ମଧ୍ୟରେ ସର୍ବ କନିଷ୍ଠ । ଦିନେ ରେଣୁକା ସ୍ନାନାର୍ଥ ନଦୀକୁ ଯାଇଥିଲେ; ସେଠାରେ ଗନ୍ଧର୍ବରାଜ ଚିତ୍ରରଥଙ୍କର ଅପ୍ସରାମାନଙ୍କ ସହ ଜଳକେଳି ଦର୍ଶନ କରି ଏହାଙ୍କର ଚିତ୍ତଚାଞ୍ଚଲ୍ୟ ଉପସ୍ଥିତ ହେଲା । ଏ ସ୍ନାନରୁ ଫେରି ଆସିଲା ପରେ ଜମଦଗ୍ନି ଯୋଗବଳରେ ଏହାଙ୍କ ଚିତ୍ତଚାଞ୍ଚଲ୍ୟ ବିଷୟ ଅବଗତ ହେଲେ ଏବଂ ଏହାଙ୍କୁ ବଧ କରିବା ନିମନ୍ତେ ନିଜର ପୁତ୍ରମାନଙ୍କୁ ଆଦେଶ ଦେଲେ । ଅଗ୍ରଜ ଚାରି ପୁତ୍ର ଏ ଆଦେଶ ପାଳନ କରିବାକୁ ଅସ୍ୱୀକାର କଲେ; କିନ୍ତୁ କନିଷ୍ଠ ପରଶୁରାମ ପିତ୍ରାଦେଶ ଅନୁସାରେ ମାତାଙ୍କୁ ବଧ କଲେ । ତହୁଁ ଜମଦଗ୍ନି ପରଶୁରାମଙ୍କ ପ୍ରତି ସନ୍ତୁଷ୍ଟ ହୋଇ ବର ଦେବାକୁ କହିବାରୁ ସେ ମାତାଙ୍କର ପୁନର୍ଜୀବନ ଇଚ୍ଛା କଲେ । ତଦନୁସାରେ ରେଣୁକା ଶେଷରେ ପୁନର୍ଜୀବନ ଲାଭ କଲେ । ପରେ ପରଶୁରାମ ତପସ୍ୟାର୍ଥ ଘରୁ ବାହାରିଯିବାରୁ ଜମଦଗ୍ନି କାର୍ତ୍ତବୀର୍ଯ୍ୟଙ୍କଦ୍ୱାରା ଯୁଦ୍ଧରେ ହତ ହେଲେ । ପରଶୁରାମ ତପସ୍ୟାରୁ ଫେରି ଆସି ମାତାଙ୍କଠାରୁ ଏହି ଦୁଃସମ୍ବାଦ ଶ୍ରବଣ କରିବା ମାତ୍ରେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଉଠିଲେ ଏବଂ ଏକବିଂଶ ବାର କ୍ଷତ୍ରିୟ ବଧ କରି ପୃଥିବୀକୁ ନିଃକ୍ଷତ୍ରିୟ କରିବେ ବୋଲି ପ୍ରତିଜ୍ଞା କଲେ । ରେଣୁକା ଏହା ଶୁଣି ପ୍ରସନ୍ନଚିତ୍ତରେ ପତିଙ୍କ ଚିତାନଳରେ ପ୍ରବେଶ କରି ତନୁତ୍ୟାଗ କଲେ ।]
Renukā

**ରେଣୁକା ତୀର୍ଥ**—ସଂ. ବି—ହିନ୍ଦୁମାନଙ୍କର ତୀର୍ଥ ବିଶେଷ—The name
Renukā tirtha of a Hindu sacred place.
[ଦ୍ର—ରେଣୁକା ତୀର୍ଥେ ଯେ କରଇ ଅବଗାହ, ପାତକ ଛାଡ଼ିଯାଏ ତାର ତାର ଦେହ । କୃଷ୍ଣସିଂହ. ମହାଭାରତ.ବନ]
[ଦ୍ର—ଏହା ସହ୍ୟାଦ୍ରି ପର୍ବତରେ ଅବସ୍ଥିତ— ହି. ଶ]

**ରେଣୁକା ସୁତ**—ସଂ. ବି—ପରଶୁରାମ—
Renukā suta Paraśurāma.

**ରେଣୁ ବାସ**—ସଂ. ବି. (ବହୁବ୍ରୀହି; ରେଣୁ=ପୁଷ୍ପ ରେଣୁରେ ବାସ ଯାହାର)—ଅଳି; ଭ୍ରମର—Back bee.
Renu bāsa

**ରେଣୁ ରୂଷିତ**—ସଂ. ବିଣ. (ତସ୍ପୁରୁଷ; ରେଣୁ=ଧୂଳି ଦ୍ୱାରା ରୂଷିତ= ରଞ୍ଜିତ)—ଧୂଳି ଧୂସର—Besmeared with dust; smeared over with dust.
Renu rūshita
ସଂ. ବି—ଗର୍ଦ୍ଦଭ; ଗଧ—The ass.

**ରେଣୁ ସାର**—ସଂ. ବି. (ବହୁବ୍ରୀହି; ରେଣୁ ଅଟେ ସାର ଯାହାର)—କର୍ପୂର—Camphor.
Renu sāra

**ରେଣ୍ଟ**—ବୈଦେ. ବି. (ଇଂ. ରେଣ୍ଟ)—ଜମିର ଖଜଣା; ରାଜସ୍ୱ—
Rent ରେଣ୍ଟ रेंट Rent.

**ରେଣ୍ଟ କୋର୍ଟ(ର୍ଟ)**—ବୈଦେ.ବି.(ଇଂ. ରେଣ୍ଟ କୋର୍ଟ)—ଖଜଣା ଦାଲିସ ମକଦ୍ଦମା ବୁଝିବା ଅଦାଲତ—Rent Court.
Rent kot(rt) ରେଣ୍ଟ କୋଟ रेण्ट कोर्ट

**ରେଣ୍ଟ ସୁଟ୍**—ବୈଦେ. ବି. ( ଇଂ. ରେଣ୍ଟ ସୁଟ୍ )—ଜମିଦାର ଜମିର ବାକି ଖଜଣା ପାଇଁ ପ୍ରଜା ନାମରେ କରିବା ମକଦ୍ଦମା—Rent suit.
Rent sut ରେଣ୍ଟ ସୁଟ रेण्ट सूट्

**ରେଣ୍ଟ**—ଦେ. ବି—୧ । ପୋଖରୀ ବନ୍ଧର ପୋଖରୀ ଅଡ଼କୁ ଥିବା ଢାଲୁ ଅଂଶ—1. The slope of the embankment leading to the edge of the water of a pond or tank. ୨ । ରେଣ୍ଟା ( ଦେଖ ) 2. Rentā (See) ପ୍ରାଦେ. (ଗଞ୍ଜାମ) ବି—ବୁଢ଼ା ଅଙ୍ଗୁଠି ଅଗରୁ ତର୍ଜନୀର ଅଗଭାଗ ପର୍ଯ୍ୟନ୍ତ ବିସ୍ତୃତ ସ୍ଥାନର ପରିମାଣ—The distance between the tips of the great finger and of the under finger.
Rent ଢାଲୁ ढलवाँ

**ରେଣ୍ଟା**—ସଂ. ବିଣ. ପୁଂ (ଇଂ. ରେଣ୍ଟ)—ଏକଜିଦିଆ; ଏକବାଗିଆ; ଜିଦବାନ୍—Obstinate; perverse; persistent.
Rentā ଏକ ଗୁଏଁ हठी, जिद्दी
(ରେଣ୍ଟୀ—ସ୍ତ୍ରୀ) ଦେ. ବି—୧ । ଗୋଡ଼ଗଡ଼ା ଭୂମି—1. Gravelly land. ୨ । ଜମି ଅଧିର ସୀମା—2. Boundary.

**ରେଣ୍ଟା ରେଣ୍ଟି**—ଦେ. ବି—ଜିଦାଜିଦି; ଦୁଇ ଜଣଙ୍କ ମଧ୍ୟରେ ଜିଦ ପରସ୍ପର—Mutual wagering.
Rentā renti ବାଜି ମାରାମାରି जिदाजिद्दी

**ରେଣ୍ଟି**—ଦେ ବି—୧ । ଏକଜିଦ—1. Obstinacy: anything on which a person is persistent. ୨ । ଜିଦ ମାରିବା—2. Wagering; betting. ୨ । ରୁକ୍ଷ କଥା—2. Harsh word
Renti ଗୋଁ हठ, जिद
(ରେଣ୍ଟିରୁଖା—ଅନ୍ୟରୂପ)

**ରେଣ୍ଟିଆ**—ଦେ. ବିଣ. ପୁଂ—ରେଣ୍ଟା ( ଦେଖ )
Rentiā Rentā ( See )
(ରେଣ୍ଟେଇ—ସ୍ତ୍ରୀ)

**ରେଣ୍ଟି କ(ଧ)ରିବା**—ଦେ.କ୍ରି—କୌଣସି ବିଷୟରେ ଏକାଜିଦ ଧରିବା—
Renti ka(dha)ribā To obstinately insist on a matter.
ଗୋଁ କବା हठ करना

**ରେଣ୍ଟି ଛଡ଼ା(ଡ଼େ)ଇବା**—ଦେ. କ୍ରି—କୌଣସି ବ୍ୟକ୍ତିର ଜିଦ ଅନୁସାରେ କାର୍ଯ୍ୟ ନ କରି ତାଙ୍କୁ ତାହାର ଜିଦରୁ କବୁଲ କରାଇବା—To baffle a person's obstinacy by not acceding to his insistent demand.
Renti chhardā(rde)ibā
ରେଣ୍ଟି ଭାଙ୍ଗିବା } ଅନ୍ୟରୂପ
ରେଣ୍ଟି ମାରିବା }
ଗୋଁ ଛାଡାନ जीद् छुडाना

**ରେଣ୍ଟି ପକା(କେ)ଇବା**—ଦେ. କ୍ରି—ଜିଦ ମାରିବା; ଜିଦ ପକାଇବା—
Renti pakā(ke)ibā To bet for a thing.
(ରେଣ୍ଟି ମାରିବା—ଅନ୍ୟରୂପ) ବାଜୀ ମାବା
जीद् करना, बाजी मारना

**ରେଣ୍ଟୁଆ**—ଦେ. ବିଣ. ପୁଂ—ରେଣ୍ଟା ( ଦେଖ )
Rentuā Rentā ( See )
(ରେଣ୍ଟେଇ — ସ୍ତ୍ରୀ)

**ରେଣ୍ଡି**—ଦେ. ବି—ଏଣ୍ଡି; ଏରଣ୍ଡି; ଏରେଣ୍ଡି; ଅସାମ ଦେଶଜାତ ପଟ୍ଟସୂତ୍ର—Endi; Assam silk.
Rendi ଏଣ୍ଡୀ अण्डी, रण्डी, एरण्डी

**ରେତ**—ସଂ. ବି (ରି ଧାତୁ+କର୍ତ୍ତୃ. ଅ, ନିପାତନ)—ରେତଃ (ଦେଖ)
Reta Retah ( See ) (Apte).
[ଦ୍ର—ତାହା ଭାବନାରୁ ସ୍ଖଳନ ହେଲା ରେତ । କୃଷ୍ଣସିଂହ ମହାଭାରତ. ଆଦି ।]
ଦେ. ବି. (ସଂ. ରେତଃ)—(ବଣିଆ ଶବ୍ଦ) ସୁନା ବା ରୂପାର ଗହଣା ଗଢ଼ିବା ବେଳେ ଉହାରେ ଘଷିବା ଦ୍ୱାରା ଉଠିଥିବା ଗୁଣ୍ଡ—Metal-filings.
ଚୂର୍ଣ୍ଣ बुरादा

**ରେତଃ**—ସଂ. ବି. (ସ୍ରୁ ଧାତୁ=କ୍ଷରିତ ହେବା+କର୍ତ୍ତୃ. ଅସ୍; ନିପାତନ; ରେତସ୍ ଶବ୍ଦ ୧ମା, ୧ବ)—୧ । ଶୁକ୍ର; ବୀର୍ଯ୍ୟ—1. Semen; sperm; semen virile. ୨ । ଶିବ ବୀର୍ଯ୍ୟ; ପାରଦ; ପାରା—2. Mercury; quicksilver. [ଦ୍ର—ପାରଦ ଶିବଙ୍କ ବୀର୍ଯ୍ୟ ଓ ଗନ୍ଧକ ପାର୍ବତୀଙ୍କ ରଜଃ ବୋଲି ପୁରାଣ ପ୍ରସିଦ୍ଧ ଅଟେ ।] ୩ । ଧୂଳି—3. Dust. ୪ । ସନ୍ତାନ—4. Progeny; offspring (Apte). ୫ । (ବୈଦିକ) ପାପ—5. Sin (Apte). ୬ । (ବୈଦିକ) ସ୍ରୋତଃ—6. Flow; current (Apte). ୭ । (ବୈଦିକ) ଜଳ (ହି. ଶ)—7. Water.
Retah

**ରେତଃ କ୍ଷରଣ**—ସଂ. ବି. (୬ଷ୍ଠୀ ତତ୍)—ପୁରୁଷର ଲିଙ୍ଗମୁଖ ବାଟେ ଶୁକ୍ରର ପତନ—Discharge or emission of semen through the penis.
Retah ksharana
ରେତଃ ପତନ }
ରେତଃ ପାତ }
ରେତଃ ସ୍ଖଳନ } —ଅନ୍ୟରୂପ
ରେତଃ ସ୍ରାବ }

**ରେତଜ**—ସଂ. ବି. ପୁଂ (ରେତ+ଜନ୍ ଧାତୁ+କର୍ତ୍ତୃ. ଅ)—ସନ୍ତାନ—
Retaja (ରେତଜା—ସ୍ତ୍ରୀ) Offspring, child (Apte).

**ରେତଜା**—ସଂ. ବି (ସ୍ତ୍ରୀ) [ ରେତଜ+ଆ ]—୧ । କନ୍ୟା—
Retajā 1. Female child. ୨ । ବାଲୁକା—
2. Sand (Apte). ୩ । ମରୁଭୂମି [ହି. ଶ]—
3. Desert.

**ରେତନ**—ସଂ. ବି (ରୀ ଧାତୁ=କ୍ଷରିତ ହେବା+କର୍ତ୍ତୃ ଅନ)—ବୀର୍ଯ୍ୟ, ଶୁକ୍ର
Retana Sperm; semen.

**ରେତ ପ୍ରଣାଳୀ**—ସଂ. ବି—( ଅଧୁନାତନ ଶରୀରବିଜ୍ଞାନ )—ବୀର୍ଯ୍ୟନଳୀ;
Reta praṇāli ପୁରୁଷର ଲିଙ୍ଗ—The seminal tube or duct; Tubuli Seminifera.

**ରେତ(ତୋ)ମାର୍ଗ**—ସ.ବି (୬ଷ୍ଠୀ ତତ୍)—ବୀର୍ଯ୍ୟନଳୀ; ପୁରୁଷର ଲିଙ୍ଗ—
Reta(to)mārga The seminal duct or canal (Apte).

**ରେତସ**—ଦେ. ବି (ସ. ରେତସ୍)—ରେତଃ (ଦେଖ)—Retaḥ
Retasa (See) (ଦ୍ର—ମୂଳ ରେତସ ଅନୁସାରେ, ମୈଥୁନ ସ୍ମରଣ ଆନନ୍ଦେ—ଜଗନ୍ନାଥ ଭାଗବତ । )

**ରେତ(ତଃ)ସେକ**—ସ.ବି. (ମୈଥୁନଦ୍ୱାରା ସ୍ତ୍ରୀର) ଗର୍ଭରେ ବୀର୍ଯ୍ୟସ୍ଥାପନ—
Reta(taḥ)seka The depositing of semen inside the womb of a woman by copulation.

**ରେତି**—ଦେ. ବି (ସ. ରେତ=ଧୂଳି)—ଉଖା—
Reti उँखा, बेती रेती File; filing instrument.

**ରେତି କରିବା**—ଦେ. କି—କୌଣସି ଦ୍ରବ୍ୟକୁ ଉଖାରେ ଘଷିବା—
Reti karibā उँखाघषा रेतना To file; to rasp.

**ରେତ୍ୟ**—ସଂ. ବି (ରୀ ଧାତୁ=ଗମନ କରିବା+କର୍ତ୍ତୃ ଯ)—ପିତ୍ତଳ—
Retya Brass.

**ରେତ୍ର**—ସ. ବି (ରୀ ଧାତୁ=ଗମନ କରିବା, କ୍ଷରିବା+କର୍ତ୍ତୃ ତ୍ର)—୧ ।
Retra ଶୁକ୍ର—1. Semen. ୨ । ପଟ୍ଟବସ୍ତ୍ର—2. Silk cloth. ୩ । ପାରଦ—3. Mercury. ୪ ।
ଅମୃତ—4. Nectar (Apte) ୫ । ସୁବାସିତ ଚୂର୍ଣ୍ଣ—
5. Perfumed powder (Apte)

**ରେନ୍ଦା**—ପ୍ରାଦେ (ସମ୍ବଲପୁର) ବି—ରନ୍ଦା; କାଠ ଆଦିକୁ ଚାଞ୍ଛି ସମତୁଲ
Rendā ଓ ଚିକ୍କଣ କରିବା ପାଇଁ ବ୍ୟବହୃତ ବଢ଼େଇଙ୍କ ଶସ୍ତ୍ର ବିଶେଷ—Carpenter's plane.

**ରେପ**—ସ.ବି(ରପ୍ ଧାତୁ=ବଧ କରିବା, ଆଘାତ କରିବା. ନିନ୍ଦାକରିବା+
Repa କର୍ତ୍ତୃ ବା କର୍ମ ଅ; କିମ୍ବା ରପ୍ ଧାତୁ=ଶବ୍ଦ କରିବା+କର୍ତ୍ତୃ
ଅ)—୧। ନୀଚ—1. Low; mean, base. ୨ । ନିର୍ଦ୍ଦୟ
2. Cruel. ୩ । କୃପଣ—3. Miserly.

**ରେପଣା**—ପ୍ରାଦେ (ଯାଜପୁର ଓ ବାଲେଶ୍ୱର) ବି—କ୍ଷେତ ଜମିର ଏକ
Repaṇā ସ୍ଥାନରେ ଗଦା ହୋଇଥିବା ବାଲିକୁ ଗୁରୁଅଡ଼େ ଖେଳାଇ ଜମିକୁ ସମତଳ କରିବାରେ ବ୍ୟବହୃତ ଗୋଟିଏ କାଠର ପଟା (ଯାହାର ଦୁଇ ମୁଣ୍ଡରେ ଦଉଡ଼ି ବା ବାଉଁଶ ଲାଗିଥାଏ ଓ ଯାହାକୁ ଭୂମି ଉପରେ ମଇ ପରି ମନୁଷ୍ୟ ବା ବଳଦଙ୍କଦ୍ୱାରା ଟଣାଇବାକୁ ହୁଏ)—A long wooden plate for levelling a field by drawing it over loose uneven earth or sand

**ରେ(ରା)ପ(ଫ)ର**—ବୈଦେ. ବି (ଇ. ରାପର)—ପତଳା ଶୀତବସ୍ତ୍ର—
Re(rā)pa(pha)ra Thin warm sheet; wrapper.
वेप(फा)र रेपर

**ରେଫ**—ସ. ବି (ର+ଇଫ)—୧ । ହଳନ୍ତ 'ର୍' ଅକ୍ଷର କୌଣସି ବର୍ଣ୍ଣ
Repha ପଚ୍ଚରେ ରହିଲେ ତାହାର ଚିହ୍ନରୂପେ ସେହି ବର୍ଣ୍ଣର ମୁଣ୍ଡ ଉପରେ ଡାହାଣପାଖରେ ଦିଆଯିବା ' ' ' ଚିହ୍ନ—
1. The sign ' ', given on the right side top of a letter to which the letter 'r' is prefixed. [ ଦ୍ର—୧ । ଶବ୍ଦ ମଧ୍ୟରେ କୌଣସି ବ୍ୟଞ୍ଜନବର୍ଣ୍ଣ ପୂର୍ବରେ ହସନ୍ତ 'ର୍' ରହିଲେ ତାହା ରେଫ ( ' ) ଆକୃତି ଧାରଣ କରି ଉକ୍ତ ବ୍ୟଞ୍ଜନବର୍ଣ୍ଣର ମସ୍ତକକୁ ଯାଏ ଓ 'ର' ପୂର୍ବେ କୌଣସି ହସନ୍ତ ବ୍ୟଞ୍ଜନବର୍ଣ୍ଣ ରହିଲେ 'ର' ସେହି ବ୍ୟଞ୍ଜନବର୍ଣ୍ଣ ତଳେ ' ୍ର ' ('ର'ଫଳା) ହୋଇ ଯୁକ୍ତ ହୁଏ । (ଯଥା—ମାର୍+ଗ=ମାର୍ଗ; ନମ୍+ର=ନମ୍ର । ୨ । ରେଫ୍ ତଳେ ଚ, ଛ, ଜ, ଣ, ତ, ଦ, ଧ, ନ, ବ, ମ ଓ ଯ, ଏହି ଅକ୍ଷରଗୁଡ଼ିକର ବିକଳ୍ପରେ ଦ୍ୱିତ୍ୱ ହୁଏ । ଯଥା—ଅର୍ଚ୍ଚନା ବା ଅର୍ଚନା, ଧର୍ମ୍ମ ବା ଧର୍ମ, କାର୍ଯ୍ୟ ବା କାର୍ଯ, ଉର୍ଦ୍ଧ ବା ଉର୍ଧ । ] ୨ । ର ବର୍ଣ୍ଣ—2. The letter 'ra' ୩ । ମହୁମାଛିର ଓ ଭ୍ରମରର ମସ୍ତକରେ ଥିବା ' ' ' (ରେଫ) ଆକୃତିବିଶିଷ୍ଟ ଦୁଇଟି କଣ—3. The two antennæ or feelers on the head of the bee or wasp. ୪ । ( ରିଫ୍ ଧାତୁ+ଭାବ ଅ ) ରାଗ; କ୍ରୋଧ—
4. Anger; rage. ୫ । ସ୍ନେହ—5. Affection.
୬ । ଶବ୍ଦ (ହି. ଶ)—6. Sound. ସ. ବିଣ (ରିଫ୍ ଧାତୁ =ନିନ୍ଦା କରିବା+କର୍ମ ଅ )—୧ । ପରିତ୍ୟକ୍ତ—
1. Deserted; abandoned ୨ । ନୀଚ; ଅଧମ—
2. Low, mean ୩ । କୃପଣ—3. Miserly. ୪ ।
କ୍ରୂର—4 Cruel. ପ୍ରାଦେ(ଯାଜପୁର) ବି—କପର୍ଦ୍ଦକ ମାତ୍ର—
One cowrie even. [ ଦ୍ର—ସେ ମୋତେ ଗୋଟାଏ ରେଫବି ଛାଡ଼ିଲା ନାହିଁ । ]

**ରେଫଣ**—ସ. ବି [ରେଭ ଧାତୁ=ଶବ୍ଦ କରିବା+ଭାବ ଅନ]—ହମ୍ବାର
Rephaṇa ଗୋରୁର ରବ ( ସୁବଳ ଚନ୍ଦ୍ର)—The lowing of the cow.

**ରେଫରି**—ବୈଦେ. ବି (ଇଂ. ରେଫରି)—(ଫୁଟ୍‌ବଲ୍ ଆଦି) ଖେଳରେ
Rephari ଖେଳାଳୀମାନଙ୍କୁ ନିୟନ୍ତ୍ରିତ କରିବା ଓ ବିବାଦ ମୀମାଂସା
रेफरि ପାଇଁ ନିଯୁକ୍ତ ନିରପେକ୍ଷ ମଧ୍ୟସ୍ଥ ବ୍ୟକ୍ତି—A referee in
रेफरी a game of football.

**ରେଫରେନ୍ସ**—ବୈଦେ. ବି (ଇ. ରେଫରେନ୍ସ)—୧ । ଜ୍ଞାତବ୍ୟ ବିଷୟର
Repharens ଅନ୍ୱେଷଣ ବା ଅନୁସନ୍ଧାନ; ଅବଗାହନ—
1. Reference. ୨ । (ଚରିତ୍ର) କୌଣସି ଆଇନ୍-

ଗତ ବିଷୟରେ ବା ମକଦ୍ଦମାରେ ନିମ୍ନ ଅଦାଲତଙ୍କ ନିଷ୍ପତ୍ତିକୁ ରଦ୍ କରିବା ପାଇଁ ମଧ୍ୟବର୍ତ୍ତୀ କୋର୍ଟ ଦ୍ୱାରା ଉଚ୍ଚତର କୋର୍ଟକୁ ପ୍ରେରଣ—2. Reference by a Judge to the High Court on a point of law decided by a lower Court.

**ରେଫରେନ୍ସ କ୍ଲ(କ୍ଲା)ର୍କ**—ବୈଦେ. ବି.—(ଇଂ. ରେଫରେନ୍ସ୍ କ୍ଲର୍କ୍) Repharens kla(klā)rk ଅଫିସରେ ଯାହାଙ୍କର କୌଣସି ରେଫରେନ୍ସ କ୍ଲର୍କ रेफरेन्स क्लर्क ବିଷୟରେ ସନ୍ଦେହ ହେଲେ ଯେଉଁ କର୍ମଚାରୀଙ୍କୁ ପଚାରି ଯାଏ—Reference-clerk in an office.

**ରେଫରେନ୍ସ ବୁକ୍**—ବୈଦେ ବି.—(ଇଂ.)—ଅଭିଧାନ ପୁସ୍ତକ; Repharens buk ଯେଉଁ ପୁସ୍ତକରେ ଖୋଜା ଥିବା ବିଷୟ ମିଳେ- ରେଫରେନ୍ସ ବୁକ रेफरेन्स बुक Reference book.

**ରେଫରେନ୍ସ ଲାଇବ୍ରେରୀ**—ବୈଦେ ବି (ଇଂ)—କୌଣସି Repharens lāibreri ଜ୍ଞାତବ୍ୟ ବିଷୟର ଅବଗତି ପାଇଁ ରେଫରେନ୍ସ ଲାଇବ୍ରେରୀ रेफरेन्स लाइब्रेरि ଖୋଜାଯିବା ପୁସ୍ତକ-ମାନଙ୍କ ଅଗାର—Reference Library.

**ରେଫାଃ(ପାଃ)**—ସଂ. ବିଣ.—[ରିଫ୍ ଧାତୁ=ନିନ୍ଦା କରିବା+କର୍ତ୍ତୃ. ଅସ୍; Rephāh(pāh) ରେଫସ୍ ଓ ରେପସ୍ ଶବ୍ଦ ୧ମା. ୧ବ)—୧। ନୀଚ; ମ୍ଳାନ; ଅଧମ—1. Low; mean. ୨। ଦୁଷ୍ଟ—2. Wicked. ୩। କ୍ରୂର—3. Cruel. ୪। କୃପଣ—4. Miserly.

**ରେବ୍** [ଧାତୁ]—ସଂ.—ଗମନ କରିବା; ଗତିକରିବା—Reb (root) To move; to go.

**ରେବଚିନି**—ବୈଦେ. ବି.—ରେଉଚିନି [ଦେଖ] Reb-chini Reu chini (See)

**ରେବା**—ଦେ. ବି. (ସ୍ତ୍ରୀ ପୁଂ) (ନାମ)—୧। ସ୍ତ୍ରୀ—ରେବତୀ ବା ରେବା Reba ନାମ୍ନୀ ସ୍ତ୍ରୀର ଡାକ ନାମ—1. Name for calling 'Rebati' or 'Rebā'. ୨। ପୁଂ—ରେବତୀକାନ୍ତ ନାମକ ପୁରୁଷର ଡାକନାମ—2. A name for calling Rebatikānta.

**ରେବଟ**—ସଂ. ବି.—(ରେବ୍ ଧାତୁ=ଗମନ କରିବା+କର୍ତ୍ତୃ. ଅଟ)—Rebata ୧। ଶୂକର—1. A hog ୨। ବାତୁଳ ବ୍ୟକ୍ତି—2. Mad man; a lunatic. ୩। ବିଷ ବୈଦ୍ୟ; ବିଷଜନିତ ରୋଗର ଚିକିତ୍ସାରେ ଅଭିଜ୍ଞ ବୈଦ୍ୟ—3. A physician who cures poisoning. ୪। କଦଳୀ ବୃକ୍ଷ—4. Plantain tree. ୫। ବାତ୍ୟା; ଘୂର୍ଣ୍ଣିବାୟୁ 5. Storm; whirlwind. ୬। ଧୂଳି—6 Dust. ୭। ଇନ୍ଦ୍ରଜାଲ; ଐନ୍ଦ୍ରଜାଲିକ ବିଦ୍ୟା; ଯାଦୁ ବିଦ୍ୟା; ହାତ-ସଫେଇ ଖେଳ—7. Magic; legerdemain. ୮। ଦକ୍ଷିଣାବର୍ତ୍ତ ଶଙ୍ଖ—8. A conch with the spiral winding rightwards. ୯। ସର୍ପ-କ୍ରୀଡ଼କ; ନାଗଖେଳକ; ସାପୁଆ—9. A snake-charmer. ୧୦। ବେଣୁ ବାଉଁଶ (ହି. ଷ.)—10. A kind of slender bamboo.

**ରେବଣ ଚିନି**—ଦେ. ବି.—ରେଉ ଚିନି [ଦେଖ] Rebana chini Reu chini (See)

**ରେବତ**—ସଂ. ବି.—(ରେବ୍ ଧାତୁ=ଗମନ କରିବା+କର୍ତ୍ତୃ. ଅତ)—Rebata ୧। ଆରଗବଧ ବୃକ୍ଷ; ସୁନାରି ଗଛ—1. A tree; Cassia Fistula. ୨। ବଳରାମଙ୍କ ସ୍ତ୍ରୀ ରେବତୀଙ୍କ ପିତା—2. The name of the father of Balarāma's wife. [ଦ୍ର—ରେବତ 'ଆନର୍ତ୍ତ'ଙ୍କ ପୁତ୍ର ଓ ଶର୍ଯ୍ୟାତିଙ୍କ ପୌତ୍ର। କୁଶସ୍ଥଳୀ ଏହାଙ୍କ ରାଜଧାନୀ ଏହାଙ୍କର ରେବତୀ ନାମରେ ଏକ ଅନୁପମରୂପଲାବଣ୍ୟବତୀ କନ୍ୟା ଜନ୍ମିଥିଲେ। ରେବତୀଙ୍କ ବିବାହକାଳ ଉପସ୍ଥିତ ହେବାରୁ ରେବତ କନ୍ୟାପାଇଁ ବର ଅନ୍ୱେଷଣ କରିବାକୁ ବ୍ରହ୍ମାଙ୍କ ପାଖକୁ ଗଲେ ଏବଂ ସେଠାରେ ସାମଗାନ ଶ୍ରବଣରେ ମୁଗ୍ଧ ହୋଇ ବହୁ ଯୁଗ କାଳ ମୁହୂର୍ତ୍ତବତ୍ ଯାପନ କଲେ। ଶେଷରେ ସେଠାରୁ ଫେରି ବ୍ରହ୍ମାଙ୍କ ଉପଦେଶ ଅନୁସାରେ ନିଜ ଦୁହିତା ରେବତୀଙ୍କୁ ବଳରାମଙ୍କ ହସ୍ତରେ ସମର୍ପଣ କରି ତପସ୍ୟାର୍ଥ ସୁମେରୁ-ଶିଖରରେ ଆରୋହଣ କଲେ ଓ ସେଠାରୁ ସଦେହ ସ୍ୱର୍ଗଲାଭ କଲେ।] ୩। ପେରୁବଡ; ପିଜୁଳି; ପିଜୁଳ (ଗଛ ଓ ଫଳ)—3. Guava (tree and fruit). ୪। ଜମ୍ବୀର ଲେମ୍ବୁ—4. A kind of very sour orange.

**ରେବତକ**—ସଂ. ବି (ରେବତ+ସ୍ୱାର୍ଥେ. କ)—୧। ପାରାବତ—Rebataka 1. Pigeon. ୨। ରେବତ ୩ (ଦେଖ)—2. Rebata 3, (See)

**ରେବତି**—ସଂ. ବି. ସ୍ତ୍ରୀ (ନାମ)—କାମ-ପତ୍ନୀ; ରତି (ପ୍ରକୃତିବାଦ)—Rebati The name of the wife of God Cupid. ଦେ. ବି. ସ୍ତ୍ରୀ (ନାମ)—ରେବତୀନାମ୍ନୀ ସ୍ତ୍ରୀର ଡାକନାମ—Name for calling Rebati.

**ରେବତୀ**—ସଂ. ବି. ସ୍ତ୍ରୀ (ରେବତ+ଅପତ୍ୟାର୍ଥେ. ଅ+ସ୍ତ୍ରୀ. ଈ)—Rebati ୧। ରେବତ ରାଜାଙ୍କ କନ୍ୟା ଓ ବଳରାମଙ୍କ ସ୍ତ୍ରୀ—1. The daughter of king Rebata and the wife of Balarāma. [ଦ୍ର—ରେବତ ତଳେ ଟୀକା ଦେଖ। ବଳରାମଙ୍କ ଔରସରେ ଏହାଙ୍କ ଗର୍ଭରୁ ନିଶଠ ଓ ଉଲ୍ମୁକ ନାମକ ଦୁଇ ପୁତ୍ର ଜନ୍ମିଥିଲେ। ଯଦୁବଂଶର ଧ୍ୱଂସ ପରେ ବଳଦେବ ମାନବଲୀଳା ସମ୍ବରଣ କରିବାରୁ ରେବତୀ ସ୍ୱାମୀଙ୍କ ଅନୁମୃତା ହେଲେ—ସ୍ୱବଳ-ଚନ୍ଦ୍ର।] ୨। (ଜ୍ୟୋତିଷ) ସତେଇଶ ନକ୍ଷତ୍ର ମଧ୍ୟରୁ ଶେଷ ନକ୍ଷତ୍ର ('ନକ୍ଷତ୍ର' ଶବ୍ଦ ତଳେ ଟୀକା ଦେଖ)—[ଦ୍ର—ଏ ଚନ୍ଦ୍ରପତ୍ନୀରୂପେ ଖ୍ୟାତିଲାଭ କରିଅଛନ୍ତି।] 2. (Astrology) The last of the 27 asterisms. ୩। ଗାଈ; ଗାଇ—3. A cow ୪। ନଦୀ ବିଶେଷ—4. Name of a river. ୫। ଦୁର୍ଗା—5. The Goddess Durgā. ୬। ମାତୃକା ବିଶେଷ; ସପ୍ତମାତୃକା ମଧ୍ୟରୁ ଏକତମା—6. Name of one of the seven Mātrukā Goddesses. ୭। ଶିଶୁମାନଙ୍କ

ଆକ୍ରମଣ କରିବା ବାଳଗ୍ରହ ବିଶେଷ (ହି. ଶ)—7. An infantile disease defied. ଦେ. ବି— (ସ୍ତ୍ରୀ) ସ୍ତ୍ରୀଲୋକଙ୍କ ନାମବିଶେଷ—A name given to females. (ପୁଂ)—ରେବତୀକାନ୍ତ ଆଦି ବ୍ୟକ୍ତିଙ୍କ ଡାକ ନାମ—Name for calling males named Rebatikānta etc.

**ରେବତୀ ଜାନି**—ସଂ.ବି (ବହୁବ୍ରୀହି)—(ରେବତୀ ଅଟନ୍ତି ଜାୟା ଯାହାଙ୍କର Rebati jāni ଜାୟା ସ୍ଥାନରେ=ଜାନି ଆଗମ; ତୁଳ. ଯୁବଜାନି)— [ ରେବତୀଶ—ଅନ୍ୟରୂପ ) ରେବତୀରମଣ ( ଦେଖ )— Rebatiramaṇa. (See)

**ରେବତୀ ରମଣ**—ସଂ. ବି (ଷଷ୍ଠୀ ତତ୍)—୧ । ବଳରାମ— Rebati ramaṇa 1. Balarāma. ୨। ଚନ୍ଦ୍ର—2. The moon. ୩ । ବିଷ୍ଣୁ (ହି. ଶ)—3. Bishṇu.

**ରେବତୀଭବ**—ସଂ ବି—(ରେବତୀ + ଭୂ. ଧାତୁ + କର୍ତ୍ତୃ. ଅ)—ଶନିଗ୍ରହ Rebatibhaba (ହି. ଶ)—Planet Saturn.

**ରେବନ୍(ଲ୍) ଚିନି**—ଦେ. ବି--ରେଉଚିନି (ଦେଖ) Reban(l)-chini Reuchini. (See)

**ରେବା**—ସଂ. ବି (ରେବ୍ ଧାତୁ + କର୍ତ୍ତୃ. ଅ + ସ୍ତ୍ରୀ. ଆ)—୧ । ନର୍ମଦା Rebā ନଦୀ—1. The river Nurbudda. [ ଉ—ପଶ୍ଚିମେ ବହଇ ରେବା, ପୂର୍ବେ ମହାନଦୀ । ରାଧାନାଥ. ମହାଯାତ୍ରା] ୨ । ଦୁର୍ଗା—2. The Goddess Durgā. ୩ । କାମ ଦେବ ପତ୍ନୀ; ରତି—3. The wife of God Cupid. ୪ । ନୀଳଗୁଳ୍ମ (ହି. ଶ)—4. Indigo plant.

**ରେ(ରି,ରୀ)ବାଜ୍(ଦ୍)**—ବୈଦେ. ବି ( ଆ. ରେବାଜ୍ )—୧ । ପ୍ରଥା— Re(ra,ri)bāj(d) 1. Custom. ୨ । ଅଭ୍ୟାସ— ৰেওয়াজ रे(रि)वाज 2. Habit

**ରେବୀ**—ଦେ. ବି. ସ୍ତ୍ରୀ (ନାମ)—ରେବା ବା ରେବତୀ ନାମ୍ନୀ ସ୍ତ୍ରୀର ଡାକ Rebi ନାମ—Name for calling Rebā or Rebati

**ରେଭ୍ (ଧାତୁ)**—ସ—ଧ୍ୱନି କରିବା— Rebh (root) To utter a sound.

**ରେଭଣ**—ସଂ. ବି. ( ରେଭ୍ ଧାତୁ + ଭାବ. ଅନ )—ଗୋରୁର ଡାକ; Rebhaṇa ହମ୍ବାରବ—The lowing of kine.

**ରେଭରେଣ୍ଡ୍**—ବୈଦେ. ବି. ( ଇଂ. ରେଭରେଣ୍ଡ୍ )—ପାଦ୍ରୀମାନଙ୍କ ନାମ Rebharend ପୂର୍ବରେ ବ୍ୟବହୃତ ଉପାଧି ମାନ୍ୟ; ପୂଜନୀୟ; ৰেভৰেণ্ড মাননীয়—Reverend. रेवरेण्ड

**ରେଭିନିଉ(ନ୍ୟୁ)**—ବୈଦେ. ବି. (ଇଂ. ରେଭେନ୍ୟୁ)— Rebhiniu(nū) ৰেভিন্যু रेभिन्यु Revenue.

**ରେଭିନିଉ ଅଫିସର୍**—ବୈଦେ. ବି. ( ଇଂ. ରେଭେନ୍ୟୁ ଅଫିସର୍ )— Rebhiniuñ aphisar ରାଜସ୍ୱ ସଂକ୍ରାନ୍ତ ବିଷୟର ଭାରପ୍ରାପ୍ତ କର୍ମଚାରୀ ৰেভিন্যু অফিসার रेभिन्यु अफिसर Revenue Officer.

**ରେଭିନିଉ ଇନ୍ସ୍‌ପେକ୍ଟର**—ବୈଦେ.ବି(ଇଂ. ରେଭେନ୍ୟୁ. ଇନ୍ସପେକ୍ଟର୍) Rebhiniu inispektar —ସରକାରଙ୍କ ରାଜସ୍ୱ ବିଭାଗର ৰেভিন্যু ইনসপেক্টাৰ ତଦାରଖକାରୀ କର୍ମଚାରୀ ବିଶେଷ— रेभिन्यु इन्सपेक्टर Revenue Inspector. (ରେଭନ୍ୟୁ ଇନ୍ସ୍‌ପେକ୍ଟର୍—ଅନ୍ୟରୂପ)

**ରେଭିନିଉ ଏଜେଣ୍ଟ**—ବୈଦେ. ବି. ( ଇଂ. ରେଭନ୍ୟୁ ଏଜେଣ୍ଟ )— Rebhiniu ejent କେବଳ ରାଜସ୍ୱ ସଂକ୍ରାନ୍ତ ଆଇନ ପରୀକ୍ଷାରେ (ରେଭନ୍ୟୁ ଏଜେଣ୍ଟ—ଅନ୍ୟରୂପ) ପାସ କରିଥିବା ମୁକ୍ତାର— ৰেভিন্যু এজেন্ট Revenue Agent; a mukhtar who रेभिन्यु एजेण्ट has passed the examination in the Revenue laws.

**ରେଭିନିଉ କମିସନର**—ବୈଦେ. ବି (ଇଂ ରେଭେନ୍ୟୁ କମିସନର୍)— Rebhiniuñ kamisanar ନବଗଠିତ ଓଡ଼ିଶାପ୍ରଦେଶର ৰেভিন্যু কমিসনাৰ रेभिन्यु कमिसन ରାଜସ୍ୱସଂକ୍ରାନ୍ତ ସମସ୍ତ ବିଷୟର ଭାରପ୍ରାପ୍ତ ଉଚ୍ଚତମ ରାଜକର୍ମଚାରୀ—The Revenue Commissioner of the newly formed Orissa Province. [ ଦ୍ର—ଅନ୍ୟାନ୍ୟ ପ୍ରଦେଶର ରେଭନ୍ୟୁ ବୋର୍ଡ୍ ଓ ରେଭନ୍ୟୁ ମେମ୍ବରଙ୍କ କର୍ମ ଓ ଅଧିକାର ଓଡ଼ିଶା ପ୍ରଦେଶରେ ଏହାଙ୍କଦ୍ୱାରା ପରିଚାଳିତ ]

**ରେଭିନିଉ ବୋର୍ଡ(ଡ୍)**—ବୈଦେ ବି ( ଇଂ. ରେଭନ୍ୟୁ ବୋର୍ଡ )— Rebhiniu bord(rd) ପ୍ରଦେଶର ରାଜସ୍ୱସଂପୃକ୍ତ ଉଚ୍ଚତମ ( ରେଭନ୍ୟୁ ବୋର୍ଡ୍ ବା କମିଟି—ଅନ୍ୟରୂପ ) ବିଚାର ସଂଘ)— ৰেভিন্যু বোর্ড रेभिन्युबोर्ड Board of Revenue.

**ରେଭିନିଉ ମେମ୍ବର୍**—ବୈଦେ ବି (ଇଂ ରେଭନ୍ୟୁ ମେମ୍ବର)—ପ୍ରଦେଶର Rebhiniu membar ରାଜସ୍ୱସଂକ୍ରାନ୍ତ ବିଷୟରେ ରେଭନ୍ୟୁ (ରେଭନ୍ୟୁ ମେମ୍ବର—ଅନ୍ୟରୂପ) ବୋର୍ଡର ସଭ୍ୟପଦ ମେମ୍ବର— ৰেভিন্যু মেম্বৰ रेभिन्युमेम्बर Revenue Membe

**ରେଭିନିଉ ସେଲ୍**—ବୈଦେ.ବି (ଇଂ. ରେଭନ୍ୟୁ ସେଲ୍ )—ବାକି ରାଜସ୍ୱ Rebhiniu sel ପାଇଁ କରାଯିବା ସମ୍ପତ୍ତିର ନିଲାମ— [ରେଭନ୍ୟୁସେଲ—ଅନ୍ୟରୂପ] Revenue sale; sale of ৰেভিন্যু সেল रेभिन्युसेल a property for arrears revenue.

**ରେମୁଣା**—ଦେ. ବି (ନାମ)—ବାଲେଶ୍ୱର ସହରର ପଶ୍ଚିମରେ ୬ ମାଇଲ୍ Remunā ଦୂରରେ ଅବସ୍ଥିତ ଗ୍ରାମବିଶେଷ—A village 6 miles to the west of Balasore where there is a Deity named Gopinātha. [ଦ୍ର—ଏଠାରେ 'କ୍ଷୀରଚୋରା ଗୋପୀନାଥ' ଠାକୁର ଅଛନ୍ତି । ଉତ୍କୃଷ୍ଟ କଂସା ବାସନପାଇଁ ଏ ଗ୍ରାମ ବିଖ୍ୟାତ । ଏହି ଠାକୁରଙ୍କ ନିକଟରେ ହେଉଥିବା ଭୁଗ୍ ଧର କ୍ଷୀର(ପାୟସ) ଭୋଗକୁ ଅନେକ ଲୋକ ପସନ୍ଦ କରନ୍ତି ।]

**ରେୟାତ୍(ତି)**—ବୈଦେ. ବି—ରଇତ ( ଦେଖ ) Reyāt(ti) Riāt ( See )

**ରେ ସ**—ଦେ. ବ—ଭୁଚ୍ଛ ଭାବରେ ଲୋକଙ୍କୁ ଡାକିବା; ଭୁଭୁକାର; Re ra ଭୁ ତା ରେ ସ—Contemptuous words spo- ତୂତା **तुता, रेरा** (ରେଏବ୍, ରେଏବ୍ଆ—ଅନ୍ୟରୂପ) ken to a person.

**ରେ ରେ**—ଦେ. ଅ.—[ଧ୍ୱନ୍ୟର୍ଥକ]—୧ । ଶତ୍ରୁ ପ୍ରତି ଆକ୍ରମଣକାଳୀନ Re re ବୀରର ଗର୍ଜନ , ଧ୍ୱନି—(Interjection)—Roaring रे रे **रे रे** sound of a warrior while attacking an enemy, ୨ । ସମ୍ବୋଧନ ସୂଚକ ଶବ୍ଦ (ଅନାଦର୍-ର୍ଥକ)—2. The double use of the word Re in addressing a person woth dis- regard.

**ରେରେକାର**—ଦେ. ବ—ଶତ୍ରୁ ଆକ୍ରମଣକାଳୀନ ଆସ୍ଫାଳନ ଶବ୍ଦ— Rerekāra The roaring or challenge of a **रेरेकार** warrior while attacking an enemy.
[ଦ୍ର—ବଙ୍ଗଳାରେ ରେରେକାର ଶୁଣୁଅଛୁ, ବଙ୍କିମୋଗ ପ୍ରାୟେ रेरेकार କହୁ ଛନ୍ତି । ଉଛ. ବୈଦେହୀଶବିଳାସ । ]

**ରେଲ୍**—ବୈଦେ ବ ( ଇଂ. ରାଲ୍ )—ରିଲ୍ (ଦେଖ) Rel Ril. (See) रील **रील**
୨ । ରେଲ୍ (ଦେଖ)—2. Rel (See).

**ରେଲ୍(ଳ)**—ବୈଦେ. ବ—୧ । (ଇଂ. ରେଲ୍) ଲୌହବର୍ତ୍ମ Rail Rel(la) ଲୌହବର୍ତ୍ମରେ ବାଷ୍ପଚାଳିତ ଗାଡ଼ି; ରେଲଗାଡ଼ି— रेल 1. Railway train. ୨ । (ଇଂ. ରେଲିଙ୍ଗ୍) ରେଲିଙ୍ଗ୍ रेल (ଦେଖ)—2. Reling. (See) [ ଦ୍ର—ଇଂରେଜମାନେ ଏ रेलिंग ଦେଶରେ ରେଲ୍ ଖୋଲିବା ସଙ୍ଗେ ସଙ୍ଗେ ଭାରତୀୟ ସବୁ रेलिङ्ग ଭାଷାରେ ରେଲ୍ ସମ୍ବନ୍ଧୀୟ ଶତ ଶତ ଇଂରେଜି ଶବ୍ଦ ପ୍ରବେଶ କରି ଭାଷା ବିକୃତ ଓ ଅବିକୃତ ଆକାରରେ ପ୍ରଚଳିତ ହେଉଅଛି । ସେ ସବୁଗୁଡ଼ିକର ଉଲ୍ଲେଖ ଏଠାରେ ସହଜସାଧ୍ୟ ନୁହେଁ । ତଥାପି କେତେଗୁଡ଼ିଏ ଶବ୍ଦ ଉଦାହରଣସ୍ୱରୂପ ନିମ୍ନରେ ଦିଆଗଲା; ଯଥା—

ବୁକିଙ୍ଗ୍ (Booking), ବୁକିଙ୍ଗ୍ ଅଫିସ୍ (Booking office); ବୁକିଙ୍ଗ୍ କ୍ଲର୍କ୍ (Booking clerk), ଏଜେଣ୍ଟ୍ (Agent), ଟ୍ରଲି (Trolly), ଗାର୍ଡ୍ (Guard), ଡ୍ରାଇଭର୍ (Driver), ସ୍ଲିପର୍ (Sleeper), କମ୍ପାର୍ଟ୍‌ମେଣ୍ଟ୍ (Compartment), ବ୍ରେକ୍ ଜର୍ଣ୍ଣି (Break journey), ରେଷ୍ଟ ହାଉସ୍ (Rest house), ବର୍ଥ୍ (Berth); ଟାରିଫ୍ (Tariff),ଲଗେଜ୍ (Luggage), ଫାଷ୍ଟ କ୍ଲାସ୍(First class), ସେକେଣ୍ଡ୍ କ୍ଲାସ୍ (Second class), ଇଣ୍ଟର କ୍ଲାସ୍ (Inter class), ଥାର୍ଡ୍ କ୍ଲାସ୍ (Third class), ପାସେଞ୍ଜର୍ ଟ୍ରେନ୍ (Passenger train), ମେଲ୍ ଟ୍ରେନ୍ (Mail train), ଗୁଡ୍‌ସ୍ ଟ୍ରେନ୍ (Goods train), ଏକ୍‌ସ୍‌ପ୍ରେସ୍ (Express), ପାର୍ସେଲ୍ (Parcel), ବ୍ରେକ୍‌ସ୍‌ମ୍ୟାନ୍ (Brakesman), ଟିକେ(କ)ଟ୍ କଲେକ୍ଟର୍ (Ticket collecter), ଡି. ଟି. ଏସ୍ (D. T. S.) ଡିଷ୍ଟ୍ରିକ୍ଟ ଟ୍ରାଫିକ୍ ସୁପରିଣ୍ଟେଣ୍ଡେଣ୍ଟ District Traffic Superintedent), ଟିକେଟ୍ ଏକ୍ଜାମିନର୍ (Ticket examiner), ଟିକେ(କ)ଟ୍ ଚେକର୍ (Ticket checker), ଟ୍ରାଫିକ୍ ମ୍ୟାନେଜର (Traffic Manager), ଗୁଡ୍ ସେଡ୍ (Goods shed), ରିଜର୍ଭ୍ (Reserve), ଫେଲ୍ (Fail), ଲେଟ୍ (Late), ଫାଷ୍ଟ (Fast), କନ୍‌ସେସନ୍ (Concession), ରିଫ୍ରେସ୍‌ମେଣ୍ଟ୍ ରୁମ୍ (Refreshment room), ରେଲ୍‌ୱେ ବୁକ୍‌ଷ୍ଟଲ୍ (Railway book-stall) ସିଗ୍‌ନାଲ୍ (Signal), ବାଲାଷ୍ଟ୍ (Ballast), ଟାଇମ୍ (Time), ଟାଇମ୍ ଟେବୁଲ୍ (Time table), ଆଉଟ୍ (Out), ଲାଇନ୍ (Line), ଲାଇନ୍‌କ୍ଲିଅର୍ (Line clear), ଫୁଲ୍ ଷ୍ଟିମ୍ (Full steam), ଫୋର୍ସ୍ (Force), ହାଫ୍ ଟିକେ(କ)ଟ୍ (Half ticket), ଫୁଲ୍ ଟିକେଟ୍ (Full ticket), ରିଟର୍ଣ୍ଣ ଟିକେ(କ)ଟ୍ (Return ticket),ସିଜନ୍ ଟିକେଟ୍ (Season ticket), ଇନ୍‌ସାଇଟ୍ (In sight), ପ୍ଲାଟ୍ ଫର୍ମ୍ (Plat form), ପ୍ଲାଟ୍‌ଫର୍ମ୍ ଟିକେ(କ)ଟ୍ (Plat-form ticket), କଣ୍ଡକ୍ଟର୍ (Conductor), ଗେଟ୍ (Gate), ଇସୁ (Issue), ଟ୍ରେନ୍ ଏକ୍ଜାମିନର୍ (Train examiner), ବ୍ରେକ୍ ଭ୍ୟାନ୍ (Brake van),ପଏଣ୍ଟ୍‌ସ୍‌ମ୍ୟାନ୍ (Pointsman), ଗାଙ୍ଗ୍ (Gang), ଡ୍ୟୁଟି (Duty), ପାସ୍ (Pass), ଟ୍ରେନ୍ ଇନ୍‌ସ୍ପେକ୍ଟର୍ (Train Inspector), ଷ୍ଟେସନ୍ ମାଷ୍ଟର (Station Master), ଆସିଷ୍ଟାଣ୍ଟ୍ ଷ୍ଟେସନ ମାଷ୍ଟର୍ (Assistant Station Master), ସିଗ୍‌ନାଲର୍ (Signaller), କୁପେ (Coupe), ଲେଭେଲ୍ କ୍ରସିଙ୍ଗ୍ (Level cros-sing), ଆଲାର୍ମ୍ ସିଗ୍‌ନାଲ (Alarm signal), ଡିଟେନ୍ (Detain), ବି. ଏନ୍. ଆର୍. (B. N. R), ଇ. ଆଇ. ଆର୍. (E. I. R), ଇ. ବି. ଏସ୍. ଆର୍. (E. B. S. R), ଜି. ଆଇ. ପି. ଆର୍. (G. I. P. R), ରେଲ୍‌ୱେ ଟାଇମ୍ (Railway time), ଡାଇନିଙ୍ଗ୍ କାର୍ (Dining car), ଫ୍ଲାଗ୍ ଷ୍ଟେସନ୍ (Flag Sta-tion), ୱେଟିଙ୍ଗ୍ ରୁମ୍ (Wating room), ଫିମେଲ୍ କମ୍ପାର୍ଟ୍‌ମେଣ୍ଟ୍ (Female compartment), ଟେଣ୍ଡର୍ (Tender), ଲୋକୋ (Loco), ଇ[ଏ]ଞ୍ଜିନ୍ (Engine), ଡେଲିଭରି [Delivery], ଟିକେଟ୍ ସେଲ୍ (Ticket sale), ଟିକେ[କ]ଟ ଚେକ୍ (Ticket check), ରେଲ୍‌ୱେ ବ୍ରିଜ୍ [Railway bridge] ପାସେଞ୍ଜର୍ [Passenger], ୱାଗନ୍ [Waggon] ଅପ୍ ଟ୍ରେନ୍ [Up train], ଡାଉନ୍ ଟ୍ରେନ୍ [Down Train].

ଇଂରେଜି ନ ଜାଣିବା ଲୋକେ ଏହି ଶବ୍ଦମାନଙ୍କୁ ବିକୃତ କରି ମଧ୍ୟ ଉଚ୍ଚାରିଣ କରନ୍ତି; ଯଥା—

ଷ୍ଟେସନ୍ (Station) ସ୍ଥଳରେ ଟେସନ, ଇଷ୍ଟି[ଷ୍ଟେ]ସନ
ୱାଗନ୍ (Waggon) ବାଗିନ
ସ୍ଲିପର୍ (Sleeper) ସିଲପଟ
ସିଗନାଲ୍ (Signal) ସିଙ୍ଗଲ
ଟାଇମ୍ (Time) ଟାଇନ[ନ]
ଟିକେଟ୍ (Ticket) ଟିକଟ, ଟିକଟ, ପିକଟ
ଲାଇନ୍ (Line) ଲାଇନ[ନ]
ଲାଇନ କ୍ଲିଅର୍ (Line clear) ଲାଇନି କ୍ଲଟ
ଏଞ୍ଜିନ୍ (Engine) ଅଞ୍ଜନ, ଅଞ୍ଜନ, ଇଞ୍ଜିନ'
ସ୍ପେଶ୍ୟାଲ୍ ଟ୍ରେନ୍ (Special train) ଇସପିସଲ୍ ଗାଡ଼ି
ବ୍ରେକ୍‌ଭାନ୍ (Brake van) ବରକଭାନ, ବରକ
ବ୍ରେକ୍‌ସ ମାନ୍ (Brakesman) ବରକମେନ
ରେଲୱେ ରସିଦ୍ (Railway receipt)—ବିଲ୍ଟି

Bill of lading ର ଅଶୁଦ୍ଧ ପ୍ରୟୋଗ
ସେକେଣ୍ଡ କ୍ଲାସ (Second class) ସିକନ୍[ନ] କଲାସ
ଇଣ୍ଟର୍ ମିଡିଏଟ୍ କ୍ଲାସ୍ (Intermediate class]

ଇଣ୍ଟର କଲାସ

ଏଥିରୁ ଅଳ୍ପ କେତୋଟି ଇଂରେଜ ଶବ୍ଦର ଦେଶୀୟରୂପ ପ୍ରଚଳିତ ଅଛି, ଯଥା—
ୱାଗନ୍ Waggon ଡବା
ଇଣ୍ଟର୍ କ୍ଲାସ୍ Inter class ଦେଢ଼ା ଗାଡ଼ି
ଗୁଡ଼୍ସ୍ ସେଡ୍ Goods shed ମାଲଗୋଦାମ
ଗୁଡ଼୍ସ୍ କ୍ଲର୍କ୍ Goods clerk ମାଲ ବାବୁ
ବୁକିଙ୍ଗ୍ କ୍ଲର୍କ୍ Booking clerk ଟିକଟ ବାବୁ
ଗୁଡ଼୍ସ୍ ଟ୍ରେନ୍ Goods train ମାଲ ଗାଡ଼ି
ମେଲ୍ ଟ୍ରେନ୍ Mail train ଡାକଗାଡ଼ି
ପାସେଞ୍ଜର୍ ଟ୍ରେନ୍ Passenger train ଯାତ୍ରୀଗାଡ଼ି
ଫିମେଲ୍ କମ୍ପାର୍ଟମେଣ୍ଟ୍ Female compartment

ଜନାନା ଗାଡ଼ି

ରେଳ କମ୍ପାନୀ କେବଳ ୨୮୪ଟି ଶବ୍ଦ ଭାରତୀୟ ଭାଷାରୁ ଗ୍ରହଣ କରିଅଛନ୍ତି । ଯଥା—ଜମାଦାର, ମକଦ୍ଦମ, ଚେଠୀ, ପାଣିପାଣ୍ଡେ । ]

**ରେଲ(ଲା)**—ଦେ. ବ—ଲୋକସମୂହ—
Rel(lā) ଜନତା रेला Collection of men; crowd.

**ରେଲ୍(ଲ) ଅ(ଆ)ଫି(ଫି)ସ(ସି)**—ବୈଦେ. ବ. ( ଇଂ ରେଲ୍‌ୱେ
Rel(la) a(ā)pi(phi)s(si) ଅଫିସ୍.)—ରେଲୱେ କମ୍ପାନୀର
[ରେଲ୍(ଲ) ଅପୁ(ଫୁ)ସି—ଗ୍ରା. ରୂପ] କାର୍ଯ୍ୟାଳୟ—Railway
রেল অফিস रेल आफिस office.

**ରେଲ(ଲ) ଇ(ଏ)ଞ୍ଜିନ(ନି)**—ବୈଦେ. ବ. ( ଇଂ. ରେଲ୍‌ୱେ
Rel(la)i(e)njin(ni) ଏଞ୍ଜିନ)—ଯେଉଁ କଳ ଦ୍ୱାରା ରେଲଗାଡ଼ି
[ରେଲ(ଲ) ଅ(ଇ)ଞ୍ଜିନ—ଅନ୍ୟରୂପ] ଚାଳିତ ହୁଏ—Railway
রেল এঞ্জীন रेल इञ्जिन engine.

**ରେଲ୍(ଲ) ଇଷ୍ଟି(ଷ୍ଟେ ସନ୍**—ବୈଦେ. ବ (ଇଂ. ରେଲୱେ ଷ୍ଟେସନ୍)
Rel(la) ishti(shte)san ଯାତ୍ରୀ ପ୍ରଭୃତିଙ୍କ ପାଇଁ ରେଲ' ଗାଡ଼ି
[ରେଲ୍(ଲ) ଟେ(ଷ୍ଟି)ସନ୍—ଗ୍ରାମ୍ୟ ରୂପ] ଠିଆ ହେବାର ସ୍ଥାନ—
ষ্টেসন इष्टिसन Railway station.

**ରେଲ(ଲ)ଭ(ଓ)ଏ(ୟେ)**—ବୈଦେ. ବ. ( ଇଂ. ରେଲ୍‌ୱେ )—
Rel(la)u(o)e(ye) ରେଲବାଇ (ଦେଖ)—Relabāi (See)
[ରେଲୱେ—ଅନ୍ୟରୂପ] বেলওয়ে रेलवे

**ରେଲ୍(ଲ) କନ୍‌ସେସନ୍**—ବୈଦେ ବ. ( ଇଂ. କନ୍‌ସେସନ୍ )—
Rel(la) kansesan ଵିଶିଷ୍ଟ ଘଟନା ବା ପର୍ବ ଉପଲକ୍ଷରେ
রেল কনসেসন নିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ରେଲରେ ଭ୍ରମଣ କରିବା ପାଇଁ
रेल कनसेसन ଦେୟ ମାସୁଲ ସମ୍ବନ୍ଧେ ଅଳ୍ପତର ମାସୁଲର ବ୍ୟବସ୍ଥା
Railway concession.

**ରେଲ୍(ଲ) କ(କୁ, କୋ)ମ୍ପାନୀ**—ବୈଦେ. ବ. (ଇ. ରେଲ +
Rel(la) ka(ku, ko)mpāni କମ୍ପାନୀ)—ରେଲୱେ ଲାଇନ
রেল কম্পানী କର ତହିଁରେ ଗାଡ଼ି ଚଳାଉଥିବା ଯୌଥ କାରବାରୀ
रेल कोम्पानी ବ୍ୟବସାୟୀଙ୍କ ଦଳ—Railway company
(ରେଲ୍‌ୱେ କମ୍ପାନୀ—ଅନ୍ୟରୂପ)

**ରେଲ(ଲ) କର୍ମଚାରୀ**—ଦେ. ବ—ରେଲ୍ କମ୍ପାନୀ ଅଧୀନ କର୍ମ
Rel (la) karmachāri କରୁଥିବା କର୍ମଚାରୀ—Railway
রেল কর্মচারী officer; railway servant.
रेल कर्मचारी

**ରେଲ୍(ଲ) ଗାଡ଼ି**—ଦେ. ବ—ବାଷ୍ପୀୟଯାନ; ବାଷ୍ପ ଚାଳିତ ଶକଟ—
Rel(la) gārdi Railway train.
রেল গাড়ি [ଦ୍ର—ରେଲ ଗାଡ଼ି ଅନେକ ପ୍ରକାର । ଯଥା :—
रेल गाडि ଛୋଟ ଗାଡ଼ି—Bogie, ବଡ଼ ଗାଡ଼ି—Carriage, ମେଲ୍ ବା ଡାକ ଗାଡ଼ି—Mail train, ଏକ୍ସପ୍ରେସ୍—Express, ପାସେଞ୍ଜର୍ ବା ଯାତ୍ରୀ ଗାଡ଼ି—Passenger train, ଗୁଡ଼ସ୍ ବା ମାଲ ଗାଡ଼ି—Goods train, ରେଲଗାଡ଼ିର ଆଗର କଳ ଗାଡ଼ି ବା ଏଞ୍ଜିନ୍—Railway engine or tender, ପଛରେ ଗାଡ଼ି ରହିବା ଗାଡ଼ି—Break van, ରେଲ ବିଭାଗର ବଡ଼ କର୍ମଚାରୀ, ରାଜା, ମହାରାଜା, ଲାଟ, ବଡ଼ଲାଟ, ପ୍ରଭୃତିଙ୍କର ଗସ୍ତ କରିବା ପାଇଁ ନିର୍ମିତ ସୁସଜ୍ଜିତ ରେଲ ଡବା—Saloon.]

**ରେଲ୍(ଲ)ଘଣ୍ଟା(ଣ୍ଟି)**—ଦେ.ବ—ରେଲଗାଡ଼ି ଷ୍ଟେସନକୁ ଆସିବାର ଓ
Rel(la) ghantā(nti) ଷ୍ଟେସନ ଛାଡ଼ିବାର ଭିନ୍ନ ସମୟରେ
রেল ঘণ্টা ବଜାଯିବା ଘଣ୍ଟି—Bells sounded at dif-
रेल घण्टा ferent times before and during the time the train comes to the station.
[ଦ୍ର—ଏହି ଘଣ୍ଟାର ଭିନ୍ନ ଭିନ୍ନ ନାମ ଅଛି । ପ୍ରଥମେ ଲାଇନ କ୍ଲିଅର୍ ଘଣ୍ଟା, ତତ୍ପରେ ଆଉଟ୍ ଘଣ୍ଟା ଓ ଶେଷରେ ଇନସାଇଡ୍ ଘଣ୍ଟା । ତତ୍ପରେ ଗାଡ଼ି ଛାଡ଼ିବା ପୂର୍ବର ଘଣ୍ଟା—ଫାଷ୍ଟ ବେଲ୍ ଓ ଛାଡ଼ିବା ସମୟର ଘଣ୍ଟା—ଷ୍ଟାର୍ଟିଙ୍ଗ୍‌ବେଲ୍ ।]

**ରେଲ୍(ଲ) ଚଳା(ଲେ, ଲ୍, ଲେ)ଇବା**—ଦେ. କ—୧ । କୌଣସି
Rel(la) chala(le, la, le)iba ଅଞ୍ଚଳରେ ନୂତନ ରେଲ ପଥ
ବেল চালান ପକାଇ ସେହି ଅଞ୍ଚଳରେ ରେଲଗାଡ଼ି ଚଳିବାର
रेल चलाना ସୂତ୍ରପାତ କରିବା—1. To open up a place for railway traffic. ୨ । ରେଲ ଗାଡ଼ିର ଏଞ୍ଜିନ୍‌କୁ ନିୟନ୍ତ୍ରିତ କରି ରେଲ ଗାଡ଼ିକୁ ଗତି ବିଶିଷ୍ଟ କରିବା—2. To drive a railway engine or train (by guiding the engine).

**ରେଲ୍(ଲ) ଛାଡ଼ିବା(ଛାଡ଼ି ଦେବା)**—ଦେ. କ—ରେଲଗାଡ଼ି କୌଣସି
Rel(la) chhardiba(chhardi deba) ଷ୍ଟେସନ୍ ଛାଡ଼ି ଅନ୍ୟତ୍ର
বেল ছাড়া ଚାଲିଯିବା—A railway leaving or
रेल छोड़ना starting from a station.

**ରେଲ୍(ଲ)ଟାଇମ(ମ୍, ମି)**—ବୈଦେ.କ. (ଇଂ ରେଲ୍ ଟାଇମ୍)—
Rel(la) tain(ni, m, mi) ୧ । ରେଲ ଆସି ଷ୍ଟେସନରେ
বেলের টাইম ପହଞ୍ଚିବା ପରେ ଯାତ୍ରୀ ଆଦି ବସିବାର ଓ ରେଲ
रेल टाइम ଷ୍ଟେସନ ଛାଡ଼ି ଅନ୍ୟତ୍ର ଚାଲିଯିବାର ନିର୍ଦ୍ଦିଷ୍ଟ ବେଳା (ଯେଉଁ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଷ୍ଟେସନରେ ନ ପହଞ୍ଚିଲେ ଯାତ୍ରୀ ରେଲଗାଡ଼ିରେ ବସି ପାରନ୍ତି ନାହିଁ)—1. The scheduled time by which a person may catch the train. ୨ । ରେଲଗାଡ଼ିର ଯାତାୟାତ ପାଇଁ ଗଣାଯିବା ନିର୍ଦ୍ଦିଷ୍ଟ ସମୟ—2. Railway time, as opposed to local time. [ଦ୍ର—ଭିନ୍ନ ଭିନ୍ନ ସ୍ଥାନର ସମୟ ଭିନ୍ନ ଭିନ୍ନ ଥିବାରୁ ରେଲ ଚଳାଇବାରେ ଅସୁବିଧା ହେବ ବୋଲି ରେଲ କମ୍ପାନୀମାନେ ସବୁ ଷ୍ଟେସନରେ ଗୋଟିଏ ସ୍ଥାନର ସମୟ ନିର୍ଦ୍ଦିଷ୍ଟ କରି ଥାଆନ୍ତି । ବେଙ୍ଗଲ ନାଗପୁର ରେଲ କମ୍ପାନୀ ତାଙ୍କ ଅଧୀନ ଷ୍ଟେସନମାନଙ୍କରେ ମାନ୍ଦ୍ରାଜର (standard) ଟାଇମ୍ ନିର୍ଦ୍ଦିଷ୍ଟ କରି ଅଛନ୍ତି । ଅଧରାତ୍ର ୧୨ଟା ପରେ ବାଜିବା ୧ ଘଣ୍ଟାଠାରୁ ଦିନ ୧୨ଟା ପର୍ଯ୍ୟନ୍ତ ୧୨ ଘଣ୍ଟା ଓ ଅପରାହ୍ଣ ୧ଠାରୁ ରାତ୍ରି ୧୨ଟା ପର୍ଯ୍ୟନ୍ତ ସମୟକୁ ରେଲର ଗଣନା ଅନୁସାରେ ୧୩ଠାରୁ ୨୪ ଘଣ୍ଟା ଗଣାଯାଏ ।]

**ରେଲ୍(ଲ) ଟିକ(କି, କେ)ଟ୍**—ବୈଦେ.କ. (ଇଂ.ରେଲ୍ ଟିକେଟ୍)—
Rel(la) tika(ki, ke)t ଯାତ୍ରୀମାନେ ରେଲ ଭଡ଼ା ଦେଇ ରେଲ
রেল টিকেট କର୍ମଚାରୀଙ୍କଠାରୁ ଯେଉଁ ଛପା କାଗଜ ଟିକିଏ ପାଆନ୍ତି
रेल टिकट —Railway ticket.

**ରେଲ୍(ଲ) ଡବା(ବ୍ବା)**—ଦେ କ—ରେଲ ଗାଡ଼ି ମଧ୍ୟରୁ ଗୋଟିଏ ଗାଡ଼ି—
Rel(la) daba(bba) Railway waggon.
বেল গাড়ি रेल डब्बा

**ରେଲ୍(ଲ) ଧରିବା(ପାଇବା)**—ଦେ. କ୍ରି—ନିର୍ଦ୍ଦିଷ୍ଟ ବେଳାରେ
Rel(la) dhariba(paiba) ଷ୍ଟେସନରେ ପହଞ୍ଚି ରେଲ ଗାଡ଼ିରେ
বেল ধরা, বেল পাওয়া ଚଢ଼ିବାକୁ ସକ୍ଷମ ହେବା—
रेल धरना(पकड़ना) To catch a train.

**ରେଲ୍(ଲ)ଧାର**—ଦେ. କ—ରେଲ୍ ଲାଇନ୍ ୧ (ଦେଖ)
Rel(la)dhara Rel lain 1 (See)

**ରେଲ୍(ଲ)ପଥ**—ଦେ. କ—ରେଲ୍‌ଲାଇନ୍ (ଦେଖ)
Rel(la)patha Rel-lain (See).
বেল পথ रेलपथ

**ରେଲ୍(ଲ) ପାଇ(ହି)ଆ**—ଦେ. କ (ଇଂ. ରେଲ୍+ସ. ପାଦ)—
Rel(la) pai(hi)a ରେଲ ପୋଲ ଆଦିର ତଳର ଖୁଣ୍ଟ;
বেলের পীলপে ଯେଉଁ ଖୁଣ୍ଟ ଉପରେ ରେଲର ଲୁହା
रेलका पीलपाया ଛଡ଼ମାନ ପଡ଼ିଥାଏ—Pillars of
[ରେଲ(ଲ) ପାହ୍ୟା(ୟା)—ଅନ୍ୟରୂପ] railway bridges.

**ରେଲ୍(ଲ) ପାସ୍**—ବୈଦେ. କ (ଇଂ. ରେଲୱେ ପାସ୍)—ରେଲ-
Rel(la) pas ଗାଡ଼ିରେ ଭଡ଼ା ନ ଦେଇ କିମ୍ବା ଅଳ୍ପ ଭଡ଼ା
বেলওয়েপাস ଦେଇ ଚଢ଼ି ବୁଲିବା ପାଇଁ ରେଲ କମ୍ପାନୀ
रेलवेपास ତାଙ୍କ କର୍ମଚାରୀଆଦିଙ୍କୁ ଯେଉଁ ଛାଡ଼ ଚିଠି ଦେଇ ଥାଆନ୍ତି—Railway pass. [ଦ୍ର—ଏହା ୩ ପ୍ରକାର । ଯଥା—

୧ । ଫ୍ରି ପାସ୍ (Free Pass)—ବିନା ଭଡ଼ାରେ ରେଲ ଚଢ଼ିବା ପାଇଁ ଛାଡ଼ ।

୨ । ସିଜନ୍ ପାସ୍ (Season Pass)—ନିର୍ଦ୍ଦିଷ୍ଟ କାଳ ଲାଗି ଅଳ୍ପ ଭଡ଼ାରେ ରେଲ ଚଢ଼ି ବୁଲିବା ପାଇଁ ଛାଡ଼ ।

୩ । କନ୍‌ସେସନ୍ ପାସ (Concession Pass)—ବିଶିଷ୍ଟ ଘଟଣା ବା ପର୍ବାଦି ଉପଲକ୍ଷରେ ଯାତ୍ରୀଆଦିଙ୍କୁ କମ ଭଡ଼ାରେ ବା ଏକ ଶ୍ରେଣୀର ଭଡ଼ା ଦେଇ ତା ଉପର ଶ୍ରେଣୀ ରେଲରେ ଯାତାୟାତ କରିବା ପାଇଁ ଦିଆଯିବା ଛାଡ଼ ।]

**ରେଲ୍(ଲ) ପା(ପେ, ପ୍ୟା)ସେ(ସ, ସି)ଞ୍ଜର୍**—ବୈଦେ. କ (ଇଂ.
Rel(la) pa(pe, pya)se(sa, si)njar ରେଲ୍+ପାସେଞ୍ଜର୍)
বেলপাসেঞ্জর, বেলযাত্রী —ରେଲଗାଡ଼ିରେ ଚଢ଼ି ଏକସ୍ଥାନରୁ
रेलपैसेंजर ଅନ୍ୟ ସ୍ଥାନକୁ ଯିବା ବ୍ୟକ୍ତି—Railway
[ରେଲଯାତ୍ରୀ—ଦେଶଜରୂପ] passenger.

**ରେଲ୍(ଲ) ପୋଇ**—ପ୍ରାଦେ (ଗଞ୍ଜାମ) କ (ଇଂ. ରେଲ+ସ. ପଥ)
Rel(la) poi —ଯେଉଁ ଲୁହାର ଲମ୍ବ ଛଡ଼ ଉପରେ ରେଲର ଚକ ଚଳେ—Railway line, the iron railings on which the wheels of the railway carriage move.

**ରେଲ୍(ଲ) ଫେଲ୍ ହେବା**—ଦେ. କ୍ରି (ଇଂ. ରେଲ୍+ଫେଲ୍)—
Rel(la) phel heba ନିର୍ଦ୍ଦିଷ୍ଟ ସମୟରେ ଷ୍ଟେସନରେ
রেল ফেল হওয়া ଉପସ୍ଥିତ ହୋଇ ନ ପାରିବା ଯୋଗୁ
रेल फेल होना ଅଭିପ୍ରେତ ରେଲଗାଡ଼ିରେ ଯାତ୍ରୀ ହୋଇ ନ ପାରିବା—To miss a train

**ରେଲ୍(ଲ) ଫେଅ(ୟା)ର୍**—ବୈଦେ. କ (ଇଂ. ରେଲ୍+ଫେଅର୍)
Rel(la) phea(ya)r —ମନୁଷ୍ୟ ବା ପଦାର୍ଥ ରେଲଗାଡ଼ିରେ

ରେଲ(ଲ) ମାସୁଲ୍ (ଲ୍) } ଅନ୍ୟରୂପ] ସ୍ଥାନାନ୍ତରକୁ ଯିବାପାଇଁ
ରେଲ୍ (ଲ) ମାହ୍ବା(ଓ)ସୁଲ(ଲ୍) ଦୂରତ୍ୱ ଓ ସଂଖ୍ୟା ବା
ରେଲ୍ (ଲ)ଭଡ଼ା ଓଜନ ଅନୁସାରେ
বেল মাস্থল (ভাড়া) ଲାଗିବା ଭଡ଼ା—Railway fare;
रेल मासुल फेयार railway freight·

**ରେଲ୍ (ଲ) ବାଇ**—ବୈଦେ. ବ ( ଇଂ ରେଲୱେ )—୧
Rel(la) bāi ରେଲପଥ; ରେଲରାସ୍ତା—1. Railway.
[ରେଲ(ଲ)ୱେ—ଅନ୍ୟରୂପ] ୨ । ରେଲବାଇ କମ୍ପାନୀ ( ଦେଖ )
বেলওয়ে रेलवे 2 Relabāi kampāni (See)
[ଦ୍ର—ଏହି ଶବ୍ଦ ସଙ୍ଗେ
ଅଫିସ୍—Office.
ଷ୍ଟେସନ୍—Station
ଲାଇନ୍—Line.
କମ୍ପାନୀ—Company.
ଟାଇମ୍—Time.
ଟାଇମ୍ ଟେବଲ୍—Timetable.
ବୁକ୍‌ଷ୍ଟଲ୍—Bookstall.
ରିଫ୍ରେସ୍‌ମେଣ୍ଟ୍ ରୁମ୍—Refreshment room
ୱେଟିଙ୍ଗ୍ ରୁମ୍—Waiting room
ସ୍ୱିଟ୍‌ମିଟ୍ ଷ୍ଟଲ୍—Sweetmeat stall.
ପ୍ରଭୃତି ଅନେକ ଶବ୍ଦ ମିଶି ଦେଶୀୟ ଭାଷାରେ ବୈଦେଶିକ
ଯୁକ୍ତ ଶବ୍ଦମାନ ବ୍ୟବହୃତ ହୋଇଥାଏ । ]

**ରେଲ୍ (ଲ)ବାଇ କମ୍ପାନୀ**—ବୈଦେ. ବ.—(ଇଂ. ରେଲ୍‌ୱେ କମ୍ପାନୀ)
Rel(la)bāi kampāni ରେଲ କମ୍ପାନୀ; ରେଲ ଚଳାଉଥିବା
বেলওয়ে কম্পানী କମ୍ପାନୀ—Railway company.
रेलवे कम्पानी

**ରେଲ୍ (ଲ)ବାଇ ଟାଇମ୍ ଟେବଲ୍**—ବୈଦେ. ବ. [ଇଂ. ରେଲୱେ
Rel(la)bāi taim tebal ଟାଇମ୍ ଟେବ୍‌ଲ୍ )—ଯେଉଁ
রেলওয়ে টাইম টেবল ପୁସ୍ତକରେ ରେଲ କମ୍ପାନୀ ତାଙ୍କ ଅଧୀନ
रलवे टाइम टेवल ରେଲ ଲାଇନ୍‌ମାନଙ୍କରେ କେଉଁ ଷ୍ଟେସନ୍‌ରେ
କେତେବେଳେ କେଉଁ ଗାଡ଼ି ପହଞ୍ଚିବ, କେତେବେଳ
ଅପେକ୍ଷା କରିବ, କେତେବେଳେ ଛାଡ଼ିବ, କେତେ ଭଡ଼ା,
କେତେ ଦୂରତ୍ୱ, ନିୟମ ଇତ୍ୟାଦି ରେଲ ଯାତ୍ରୀମାନଙ୍କ
ଜ୍ଞାତବ୍ୟ ବିଷୟମାନ ପୁସ୍ତକାକାରରେ ପ୍ରକାଶ କରି
ସାଧାରଣଙ୍କ ଅବଗତି ନିମିତ୍ତ ଅଳ୍ପମୂଲ୍ୟରେ ବିକି କରନ୍ତି—
Railway time table.

**ରେଲ [ଲ]ବାଗିନ [ନ]**—ବୈଦେ.ବ.—[ଇଂ. ରେଲୱେ ୱାଗନ]—
Rel(la)bāgin(ni) ରେଲ ଗାଡ଼ିର ଖଣ୍ଡିଏ ସ୍ୱତନ୍ତ୍ର ଗାଡ଼ି ବା
রেলওয়াগন रेलडवा ଡବା—Rail waggon.
[ରେଲ୍(ଲ) ୱାଗ(ଗି)ନ୍(ନ)—ଅନ୍ୟରୂପ] [ଦ୍ର—ଏହା ସାଧାରଣ
ଏହା ଖଣ୍ଡିଏ ମାଲ ଡବା ବା Goods waggon କୁ
ବୁଝାଇ ଥାଏ ।]

**ରେଲ [ଲ] ଯୋଗେ**—ଦେ. କ୍ରି. ବିଣ—ରେଲ ଗାଡ଼ି ସାହାଯ୍ୟରେ
Rel(la) jōge [ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା)—
বেলযোগে रलमे[से] By rail.

**ରେଲ [ଲ] ଲାଇନ [ନ]**—ବୈଦେ· ବ [ ଇଂ. ରେଲ୍ + ଲାଇନ୍ ]—
Rel[la] lāin(ni) ୧ । ରେଲ ବର୍ତ୍ମରେ ଦୁଇ ଧାଡ଼ି ହୋଇ
বেললাইন ପଡ଼ିଥିବା ଲୁହା କଡ଼ି; ଯେଉଁ ଲମ୍ବ ଲୁହା କଡ଼ି ଉପରେ
रेललाइन ରେଲ ଚକ ଗଡ଼ି ଗାଡ଼ି ଚଳେ—1. The long
strips of iron on which the wheels of a
railway train move. ୨ । ରେଲପଥ; ରେଲ
ଗାଡ଼ି ଯେଉଁ ଲୌହବର୍ତ୍ମ ଉପର ଦେଇ ଗତି କରେ—
2. Railway line; railway; rail road.

**ରେଲା**—ଦେ. ବ·—[ସ. ଲୀଳା]—୧ । ଆମୋଦ ପ୍ରମୋଦ—
Relā উৎসব उत्सव 1. Sports; amusement.
୨ । ମହୋତ୍ସବ—2. Festivity. ୩ । ଉପଦ୍ରବ
3. Trouble; turmoil. ୪ । ଗୋଳମାଳ—
4. Ado. ୫ । ରେଲ (ଦେଖ)—5. Rel (See)

**ରେଲି**—ପ୍ରାଦେ [ଗଞ୍ଜାମ] ବ·—ଗଞ୍ଜାମ ଅଞ୍ଚଳରେ ବାସ କରୁଥିବା
Reli ଅସ୍ପୃଶ୍ୟ ଜାତି ବିଶେଷ—A caste of untouchables
inhabiting Ganjām.

**ରେଲିଆଣୀ**—ପ୍ରାଦେ. (ଗଞ୍ଜାମ) ବ. ସ୍ତ୍ରୀ—ରେଲି ଜାତୀୟ ସ୍ତ୍ରୀ—
Reliāni A woman of the 'reli' caste of
[ରେଲ୍ୟାଣୀ—ଅନ୍ୟରୂପ] Ganjam.

**ରେଲି[ଲି]ଙ୍ଗ୍[ଙ୍ଗି]**—ବୈଦେ. ବ.—[ଇଂ. ରେଲିଙ୍ଗ୍]—ଲୁହାର ଲମ୍ବା
Reli[li]ng(ngi) ଛଡ଼, ଯାହା କ ବାଡ଼ ଆକାରରେ ବନ୍ଧ ହୁଏ—
বেলিঙ্গ रेलिंग (ରେଲିଂ—ଅଶୁଦ୍ଧରୂପ) Iron railing.
[ଦ୍ର—କାଠ ରେଲିଙ୍ଗ୍ ଘେରା ନଜର ଖାନା ଗାରଦ ଘରର
ଗୋଟାଏ କୋଣରେ ବାଡ଼କୁ ଅଉଜି ଆଖି ବୁଜି ଗୋଟିଏ
ଆସାମୀ ବସିଅଛି । ଫକୀରମୋହନ. ଛମାଣ. ଆଠଗୁଣ୍ଠ ।]

**ରେଲି ବ୍ର(ବ୍ରା)ଦର(ର୍ସ)**—ବିଦେ. ବ·—(ଇଂ. ରାଲି ବ୍ରଦର୍ସ)—
Reli bra[brā]dar(rs) ବିଲାତର ମାଞ୍ଚେଷ୍ଟରରେ ପ୍ରତିଷ୍ଠିତ
[ରେଲି ବିରାଦସ—ଗ୍ରାମ୍ୟରୂପ] ଭାରତବାସୀଙ୍କ ପାଇଁ ଅଭ୍ରପ୍ରେତ
କଳ-ବସ୍ତ୍ର ବ୍ୟବସାୟୀ କମ୍ପାନୀ—Ralli Brothers;
a company of manufacturers and traders of English mill-made cloths for
India. [ଦ୍ର—ଏ କମ୍ପାନୀ ଭାରତବର୍ଷ ଆଦି ଦେଶରୁ କପା
ଓ ତୁଳା କିଣି ନେଇ ବିଲାତର କଳ କାରଖାନାରେ ଲୁଗା
ଆଦି ବୁଣାଇ ପୁଣି ସେହି ଲୁଗାମାନ ବିକ୍ରୀ କରିବା ପାଇଁ
ଭାରତକୁ ପଠାଉ ଅଛନ୍ତି ଏବଂ ଏମାନଙ୍କ ସ୍ୱାର୍ଥ ପ୍ରଣୋଦିତ
ଅନୁଗ୍ରହରୁ ଭାରତରେ ଘରେ ଘରେ ନାନା ପ୍ରକାରରେ
ବିଲାତି ଲୁଗା ଭରତି ହୋଇ ଯାଉଅଛି ।]

**ରେଲ୍ଲି**—ପ୍ରାଦେ, (ମାନ୍ଦ୍ରାଜ) ବ.—୧ । (ପୁଂ) ମାନ୍ଦ୍ରାଜ ପ୍ରଦେଶସ୍ଥ
Relli ରେଲି ଜାତୀୟ ଲୋକ ବିଶେଷ—1. The name of a
[ରେଲ୍ଲିଆଣୀ—ସ୍ତ୍ରୀ] caste in Madras. ୨ । ରେଲ୍ଲିଜାତୀୟ

ଲୋକଙ୍କ କଥିତ ଓଡ଼ିଆ ଭାଷା—2. The Oriya spoken by the caste of Relli in Madras.

**ରେଶ୍**—ବୈଦେ. ବ (ଇଂ. ରେଶ୍)—ବାଜିରଖି ମନୁଷ୍ୟ ଓ ଘୋଡ଼ା ଆଦିଙ୍କର ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ନିର୍ଦ୍ଦିଷ୍ଟ ଦୂରତ୍ୱ ଅତିକ୍ରମ କରି ଦଉଡ଼ିବା କ୍ରୀଡ଼ା—Race; racing for sport. [ଦ୍ର—ଏହି ଶବ୍ଦ ପୂର୍ବେ ହର୍ସ୍ (Horse), ବାଇସିକଲ୍ (Bicycle), ହର୍ଡଲ୍ (Hurdle), ଫ୍ଲାଟ୍ (Flat) ଆଦି ଇଂରାଜୀ ଶବ୍ଦ ମିଶିଲେ ନାନାପ୍ରକାରର ଦଉଡ଼କ୍ରୀଡ଼ା ବୁଝାଏ ।] ଦେ. ବ (ସଂ. ଲେଶ)—୧ । ଲେଶ; ସାମାନ୍ୟମାତ୍ର; ଟିକିଏ—1. Very little. ୨ । ଆଭାସ—2. Indication.
Reś   ବେଁସ   **रेस**

**ରେଶ୍ପ(ବ)ତ୍** (ଇତ୍ୟାଦି)—ବୈଦେ. ବ (ଫା. ରିଶ୍‌ବତ୍)—ରିଶ୍‌ପତ୍ ଇତ୍ୟାଦି (ଦେଖ)—Riś-pat etc (See)
Reś-pa(ba)t (etc)

**ରେଶ୍‌ମାତ୍ର**—ଦେ. କ୍ରି. ବିଣ ଓ ବିଣ—ଲେଶମାତ୍ର, ଟିକିଏ ସୁଦ୍ଧା—Very slightly
Reś-mātra   লেশমাত্র   **लेशमात्र**

**ରେଶ୍ ଜୁଡିକେଟା**—ବୈଦେ.ବ (କଚେରୀ) (ଲାଟିନ ରେସ୍‌ଯୁଡ଼ିକାଟା)—ଥରେ ବିଚାର ଓ ଫଇସଲ ହୋଇଥିବା କୌଣସି ବିଷୟ ପୁନର୍ବାର ମକଦ୍ଦମାରେ ଉତ୍ଥାପିତ ହେଲେ ପୂର୍ବ ନଷ୍ଟିର ଅନୁସାରେ ତାହା ଆଉ ଥରେ ଉତ୍ଥାପିତ ହୋଇ ପାରିବ ନାହିଁ ବୋଲି ସେଉଁ ନିୟମଦ୍ୱାରା ସ୍ଥିର କରାଯାଏ—Res Judicata.
Reś judiketā   বেসজুডিকেটা   **रेसजुडिकाटा**

**ରେଶମ**—ବୈଦେ. ବ (ଫା)—ପଟ୍ଟ; ପାଟ; ଏକପ୍ରକାର ପୋକର ଗୋଟିରୁ ବାହାରିବା ମସୃଣ ସୂତା—Silk.
Resama   রেসম   **रेशम**

**ରେଶମ ପୋକ**—ଦେ. ବ—ପାଟପୋକ; ଯେଉଁ ପୋକର ଗୋଟିରୁ ରେଶମ ସୂତା ବାହାରେ—Silk worm
Reśama poka   বেসম পোকা   **रेशमका कीडा**

**ରେଶମ ଗୋଟି**—ଦେ. ବ—ରେଶମ ପୋକର କୋଷ ବା ବସା—Silk cocoon.
Reśama goṭi
(ରେଶମଖୋଷା, ରେଶମକୋଷା—ଅନ୍ୟରୂପ)
বেসমগুটি   **रेशमकाकोया**

**ରେଶମ ଲୁଗା**—ଦେ. ବ—ରେଶମ ସୂତାରେ ତିଆରି ଲୁଗା—Silk cloth. [ଦ୍ର—ଏହିପରି ରେଶମ ଶାଢ଼ୀ, ରେଶମ ଧୋତି, ରେଶମ ଗୃହର ପ୍ରଭୃତି ମଧ୍ୟ ହୁଏ ।]
Reśama lugā   বেসমকাপড   **रेशमकाकपडा**
(ରେଶମ ବସ୍ତ୍ର—ଅନ୍ୟରୂପ)

**ରେଶମ ସୂତା**—ଦେ. ବ—ରେଶମ ପୋକର ଗୋଟିରୁ ବାହାରିବା ସୂତା—Silk thread or yarn.
Reśama sūtā   বেসমসূতা   **रेशमसूता**

**ରେଶମୀ**—ବୈଦେ.ବିଣ(ଫା)—୧। ରେଶମସୂତ୍ରନିର୍ମିତ; ରେଶମସମ୍ବନ୍ଧୀୟ—1. Silken. ୨ । ରେଶମ ପରି କୋମଳ ଓ ଚିକ୍କଣ—2. Silky; soft and smooth.
Reśami   বেসমী   **रेशमी**

**ରେଶାଲ୍(ଲ)** (ଇତ୍ୟାଦି)—ବୈଦେ ବ—ରିଶାଲ୍ ଇତ୍ୟାଦି [ଦେଖ]
Reśāl[li] [etc]   Riśal etc [See]

**ରେଶି**—ପ୍ରାଦେ [ବାଲେଶ୍ୱର] ବ—ରାଢ଼ିଆ [ଦେଖ]
Reśi   Rarḍhiā [See]

**ରେଷଣ**—ସ. ବ [ରିଷ୍ ଧାତୁ=(ଅଶ୍ୱାଦି) ଗର୍ଜନକରିବା+ଭାବ. ଅନ]-୧ । ହ୍ରେଷାରବ—1 Neighing of horses ୨ । ସିଂହରବ; ସିଂହଗର୍ଜନ—2. Roar of lion.
Reshaṇa

**ରେଷା**—ଦେ. ବ [ ସ. ରୁଷ୍ ଧାତୁ ବା ସ. ଈର୍ଷା ]—୧ । କ୍ରୋଧ; ରାଗ—1. Anger; rage; enragement. ୨ । [ସ. ରେଷ=ହିଂସା ] ହିଂସା; ଈର୍ଷା—2. Envy; malice; grudge. ୩ । [ତୁଳ. ସ. ରେଷ=ହାନି, କ୍ଷତି] ଲାଞ୍ଚ; ଲାଞ୍ଚ—3. Bribe. ୪ । ଦସ୍ତୁରି; ଦୋକାନୀଠାରୁ ଖରିଦଦାରଙ୍କ ଚାକର ଆଦି ନେବା କମିସନ୍—4. Commission paid to the servants of a rich client by a tradesman to keep them satisfied.
Reshā   বিষ   **रिसा**   দস্তুরী   **दस्तुरी**

**ରେଷା(ଷେ)ଇବା**—ଦେ. କ୍ରି —କ୍ରୁଦ୍ଧ କରାଇବା; ଚଡ଼ାଇବା—To enrage.
Reshā(she)ibā   রাগান   **रिसाना**

**ରେଷା କାଟିବା**—ଦେ. କ୍ରି.—ବିକ୍ରେତାଠାରୁ ପଣ୍ୟ ଦ୍ରବ୍ୟ ପାଇଁ ଦିଆଯିବା ଧନରୁ (କ୍ରେତାଙ୍କ ଚାକର ଆଦି) କିଛି ଦସ୍ତୁରି ବା ଉତ୍କୋଚ ନେବା—(a servant) To take a commission or tip from a tradesman.
Reshā kāṭibā   দস্তুরী লওয়া   **दस्तुरि लेना**
(ରେଷା ମାରିବା—ଅନ୍ୟରୂପ)

**ରେଷା ଖାଇବା**—ଦେ. କ୍ରି.—ଲାଞ୍ଚ ନେବା; ଉତ୍କୋଚ ଗ୍ରହଣ କରିବା—To take bribe.
Reshā khāibā   ঘুষ খাওয়া   **घूषखाना** (ରେଷାଖିଆ—ଅନ୍ୟରୂପ ବିଣ)

**ରେଷାରେଷି**—ଦେ. ବ.—୧ । ପରସ୍ପର ରଗାରଗି—1. Mutual enragement. ୨ । ପରସ୍ପର ଶତ୍ରୁଭାବ—2. Mutual feeling of enragement; mutual estrangement.
Reshā reshi   বেষা বেষি   **रेषारिषि**

**ରେଷୋଣି**—ଦେ. ବ.—ରୋଷଣି [ଦେଖ]
Reshoṇi   Roshaṇi (See)

**ରେସବତ୍** (ଇତ୍ୟାଦି)—ବୈଦେ. ବ—ରିଶ୍‌ପତ ଇତ୍ୟାଦି (ଦେଖ)
Resabat (etc)   Riś-pat etc ( See )
(ରେସୋତ୍—ଅନ୍ୟରୂପ)

**ରେସାଲା(ଲି)**—ବୈଦେ. ବ—୧ । (ଫା. ଇର୍ସାଲ)—ରିସାଲି (ଦେଖ) ୨ । (ଫା.) ତୁର୍କି ସବାର—2. Turkish rider.
Resālā(li) 1. Risāli (See)

**ରେସାଲ୍[ଲି]ଦାର୍**—ବୈଦେ. ବ—ରିସାଲଦାର (ଦେଖ)
Resāl[lā]dār   Risāldār. (See)

**ରେସିଟେସନ୍**— ବୈଦେ. ବ.— (ଇଂ. ରେସିଟେସନ୍); ଆବୃତ୍ତି—Recitation.
Resiṭesan   বেসিটেসন   **रेसिटेसन**

**ରେସିଡ(ଡେ,ଦା)ଣ୍ଟ୍**—ବୈଦେ. ବ.—( ଇଂ. ରେସିଡେଣ୍ଟ )—ମିତ୍ର ରାଜାଙ୍କ ସଭାରେ ସମ୍ରାଟଙ୍କ ପକ୍ଷରୁ
Resi ḍa(ḍe,da)nṭa

ବେସିଡ଼େଂଟ ପ୍ରତିନିଧି ରୂପେ ନିଯୁକ୍ତ ରାଜ କର୍ମଚାରୀ —A Resident
रेसिडंट in the court of a Feudatory Chief, representing the paramount power. [ ଉ—ରେସିଡେଣ୍ଟାଃ ପ୍ରେସିଡେଣ୍ଟ ସ୍ମୃତିଡେଣ୍ଟ୍ ସ୍ଥିତୈବତ, ଏଗ୍ଯୋଡେଣ୍ଟାଃ ସମାଯୁକ୍ତାଃ ରାଜ୍ୟନାଶସ୍ୟ ହେତବଃ । କୌତୁକ ଶ୍ଳୋକଃ ।] [ଦ୍ର—ସ୍ୱାଧୀନ ଓ ମିତ୍ର ରାଜ୍ୟ (ଯଥା—କାଶ୍ମୀର, କାବୁଲ)ମାନଙ୍କ ରାଜ ଦରବାରରେ ନିଯୁକ୍ତ ଇଂରାଜ କର୍ମଚାରୀଙ୍କ ନାମ ରେସିଡେଣ୍ଟ୍ Resident ଓ କରଦ ମିତ୍ର ରାଜସଭାରେ ନିଯୁକ୍ତ ଇଂରେଜ କର୍ମଚାରୀଙ୍କ ନାମ ପୋଲିଟିକାଲ୍ ଏଜେଣ୍ଟ Political Agent.

[ଉ—ଉତ୍କଳ ରାଜାମାନଙ୍କ ସଙ୍ଗେ ସରକାରଙ୍କର ଏହି ରେସିଡେଣ୍ଟମାନଙ୍କ ଜରିଆରେ ପତ୍ରାଦିର ଆଦାନ ପ୍ରଦାନ ହୁଏ ।

**ରେସିଡେନ୍ସ**—ବୈଦେ. ବି. ( ଇଂ. ରେସିଡେନ୍ସ )—ରେସିଡେଣ୍ଟଙ୍କ Residensi ଆବାସସ୍ଥାନ ବା କାର୍ଯ୍ୟାଳୟ—Residency.
ବେସିଡେନସି रेसिडेन्सी

**ରେସ୍ପ(ସ୍ପା)ଣ୍ଡେ(ଡ, ଡେ, ଦ, ଦେ)ଣ୍ଟ**—ବୈଦେ. ବି. ( କଟକୀଆ ) Respa(spā)ṇḍe(da, ḍe, da, de)ṇt (ଇଂ ରେସ୍ପଣ୍ଡେଣ୍ଟ୍)—[ଅପିଲ(ଲ୍ଲା)ଣ୍ଟ, ଅପି(ପେ)ଲ(ଲ୍ଲା)ଣ୍ଟ—ବିପରୀତ] ରସ୍ପାଦଣ୍ଟ (ଦେଖ) Raspādanṭa (See)

**ରେହ(ହା)**—ଦେ. ବି. ( ସଂ. ରେଖା )—୧ । ରେଖା; ଗାର—
Reha(hā) 1. Line. ୨ । ରେଖା ଚିହ୍ନ; ଲମ୍ବା ଚିହ୍ନ—
ବେখা रेखा 2. Long mark, lineal mark.

**ରେହଣ(ନ) (ଇତ୍ୟାଦି)**—ବୈଦେ. ବି (କଟକୀଆ) (ଫା. ରେହନ୍)—
Rehaṇa(na) (etc) ରହଣ ଇତ୍ୟାଦି ( ଦେଖ )
ବহণ रेहन Rahaṇa etc. ( See )

**ରେହାଇ (ଇତ୍ୟାଦି)**—ବୈଦେ. ବି—ରିହାଇ ଇତ୍ୟାଦି ( ଦେଖ )
Rehāi (etc) Rihāi etc. ( See )
[ରେହାଇବ(ବି), ରେହାଇ(ହି)—ଅନ୍ୟରୂପ]

**ରେହେଣ୍ଟି**—ପ୍ରାଦେ. (ସମ୍ବଲପୁର) ବି. (ଭୁଲ. ହି. ରହଁଟା)—ଅରଟ—
Rehenṭi Spinning wheel.
(ରେହେଣ୍ଡି—ଅନ୍ୟରୂପ)

**ରୈ**—ସଂ. ବି (ରା ଧାତୁ=ଦାନ କରିବା+କର୍ମ. ଐ)—୧। ରବ; ଶବ୍ଦ—
Rai 1. Sound; noise. ୨ । ଧନ—2. Wealth; riches; property. ୩ । ସ୍ୱର୍ଣ୍ଣ—3. Gold. ଦେ. ବି (ସଂ. ରେଖା)—ରଇ ( ଦେଖ )—Rai ( See )

**ରୈଖିକ**—ସଂ. ବିଣ (ରେଖା+ସମ୍ବନ୍ଧାର୍ଥେ. ଇକ)—ରେଖା ସମ୍ବନ୍ଧୀୟ—
Raikhika Relating to line; linear; lineal.

**ରୈତ (ଇତ୍ୟାଦି)**—ବୈଦେ. ବି. (ଫା. ରୈୟତ)—ରଇତ ଇତ୍ୟାଦି
Raita (etc) (ଦେଖ)—Raita etc. ( See )

**ରୈତ୍ୟ**—ସଂ. ବିଣ. ( ରୀତି=ପିତ୍ତଳ+ଯ )—୧ । ପିତ୍ତଳ ନିର୍ମିତ—
Raitya 1. Made of brass. ୨ । ରୀତିରୁ ବା ପ୍ରଥାରୁ (ରୈତ୍ୟା—ସ୍ତ୍ରୀ) ଉତ୍ପନ୍ନ—2. Customary; arising from long established usage.

**ରୈବତ**—ସଂ. ବି (ରେବତୀ+ଅ)—୧ । ବିନ୍ଧ୍ୟ ପର୍ବତର ପଶ୍ଚିମ ଦିଗରେ
Raibata ଥିବା ପର୍ବତବିଶେଷ—1. Name of a mountain to the west of the Bindhya range of hills. ୨ । ଦୈତ୍ୟ ବିଶେଷ—2. Name of a mythological demon. ୩ । ଶିବ; ମହାଦେବ—3. God Siba. ୪ । ଚତୁର୍ଦ୍ଦଶ ମନୁଙ୍କ ମଧ୍ୟରୁ ପଞ୍ଚମ ମନୁ—4. The fifth of the 14 progenitors of the creation. [ଉ – ପଞ୍ଚମେ ତାମସ ସୋଦର, ରୈବତ ନାମେ ମନୁବର । ଜଗନ୍ନାଥ. ଭାଗବତ । ] ୫ । ରୈବତକ୨ (ଦେଖ)—5. Raibatake 2. (See).

**ରୈବତକ**—ସଂ. ବି—୧ । ରୈବତ ୧ (ଦେଖ)—1. Raibata 1
Raibataka (See) ୨ । (ବୈଦ୍ୟକ) ପାରେବତ; ପିଜୁଳି
पिआबा, পেয়াবা (ଗଛ ଓ ଫଳ)-2. Guava; Ficus Carica
पिडुल, पेयारा (tree and fruit]. [ଦ୍ର-ଏଥିର ଫଳ ରୁଚିକର ଏବଂ ଅନ୍ୟ ସଂ. ନାମ—ପାରେବତ, ଏଥିର କଷାୟରସ ଯୁକ୍ତ ପତ୍ରରେ ପାରେବତକ, ଦୈବତ, ଦାନ୍ତ ଘଷିଲେ ରୋଗୀର ମୁହଁରୁ ଆରେବତ, ଆରେବତକ, ଦୁର୍ଗନ୍ଧ ଛାଡ଼ିଯାଏ । ଏହାର ଛାଲ ମଧୁଫଳ, ଅମୃତ ଫଳ । ଆଦରେ କ୍ୱାଥ ହୋଇ ଔଷଧରେ ଲାଗେ । ଏହାର ପତ୍ରକୁ ପୋଡ଼ି ଅଫିମ ସଙ୍ଗେ ବନ୍ଧ ଗୁଳି ବା ମଦକ ତିଆରି କରନ୍ତି ।

ଅସାମ ଦେଶରେ ମହାକାଳ ଫଳ ପରି ଗୋଲାକାର ବଡ଼ ବଡ଼ ପିଜୁଳିକୁ 'ବୈରାତି' କହନ୍ତି । ଏହାହିଁ ପାରେବତ ଫଳ । ଏହି ଫଳ ଦୁଇ ପ୍ରକାର । ଯଥା—(୧) ମହାପାରେବତ=ମିଠା ଓ ସ୍ୱର୍ଣ୍ଣପାରେବତ=ସାମାନ୍ୟ ଖଟାମିଶା ମିଠା । ]

**ରୈବତିକ**—ସଂ. ବି ପୁଂ (ରେବତୀ+ଅପତ୍ୟାର୍ଥେ. ଇକ)-ରେବତୀପୁତ୍ର—
Raibatika The son of Rebati.

**ରୈରୈ**—ଦେ. ବି (ଧ୍ୱନ୍ୟର୍ଥକ)—ରେରେକାର (ଦେଖ)
Rairai Rerekāra. (See)
বৈবৈ रैरै

**ରୈଲ**—ପ୍ରାଦେ (ଗଞ୍ଜାମ) ବୈଦେ. ବି. (ଇଂ. ରେଲ୍)—ରେଲ୍ (ଦେଖ)
Raila Rel. (See)

**ରୋ**—ଗ୍ରା. ଅ - ଲୋ (ଦେଖ)—Lo. (See) [ ଉ—ମତେ କଥା ଟିକିଏ ଦେଇ ନାଆଁ ରୋ ! ]
Ro
লো ओ

**ରୋଇ**—ଦେ. ବି—୧ । ରୋହି (ଦେଖ)—1. Rohi. (See)
Roi ୨ । ରଇ (ଦେଖ)—2. Rai. (See)

**ରୋଇ(ଏ)ଦାତ୍[ଦ୍]**—ବୈଦେ. ବି (ଫା. ରୁଇଦାଦ୍]—ରୁଇଦାତ୍
Roi(e)dāt[d] [ଦେଖ]—Ruidāt. (See)
রোএদাদ रूदाद

ରୋଇ ପିତ(ତ୍ତ)—ଦେ. ବ (ସ. ରୋହିତ+ପିତ୍ତ)—ରୋହି ପିତ [ଦେଖ]
Roi pita(tta) Rohi pita. (See)

ରୋଇବା—ଦେ. କ୍ରି [ସ. ରୁହ୍‌ ଧାତୁ, ଣିଜନ୍ତ. ରୋପି. ଧାତୁ]—
Roiba ୧ । ଛୋଟଛୋଟ ଚଲା ଗଛକୁ ଭୂମିରେ ରୋପଣ କରିବା—
বোআ 1. To plant seedlings. [ ଉ—ତୋଠା ମଧ୍ୟରୁ
रोपना ପୁଆଳ ଅଣି ଚଟକ ରୋଇଛନ୍ତି । ଫକୀରମୋହନ. ଛମାଣ
[ରୁଅଇବା—ଣିଜନ୍ତ ରୂପ] ଆଠଗୁଣ । ] ୨ । ଶାରଦ ଧାନଗଛର
ଚଲକୁ କ୍ଷେତରେ ପୋତିବା—2. To transplant
paddy-seedlings in a field for the winter-
বোআন paddy. ୩ । ରୁଅଇବା; ଅନ୍ୟଦ୍ୱାରା ରୋପଣ କ୍ରିୟା
रोपवाना କରାଇବା—3. To cause to be transplanted by another.

ରୋଁଦ୍‌(ଦ)—ଦେ. ବ—ରୋନ୍ଦ୍ [ଦେଖ]
Rond[da] Rond. [See]

ରୋକ୍—ଦେ. ବ.—(ସ. ରୋଧ)—୧ । ନିଷେଧ କରିବା—
Rok বোক रोक 1. Forbidding; prohibiting.
୨ । ରୋଧ; ଅଟକ; ବାଧା ଦେବା—2. Restraint;
obstruction; stoppage. ୩ । ଗମନରେ ବାଧା
ଦେବା—3. Restraining a person or
animal from moving. ୪ । ଜାତିରୁ ଅଟକ;
ସମାଜଚ୍ୟୁତ—4. Excommunication from
society or caste; ostracism. ୫ । କୌଣସି
କାର୍ଯ୍ୟକୁ କିଛିକାଳ ପାଇଁ ବନ୍ଦ କରିବା—5. Temporary stoppage of any work. ୬ । (ସ.
ରୋକ = ନଗଦ ଟଙ୍କା ବା କଉଡ଼ି) ନଗଦ ଦାମରେ ବିକ୍ରି ଖରିଦ
ଆଦି କାରବାର—6. Cash transaction.

ରୋକ୍ କରିବା—ଦେ. କ୍ରି—୧ । ଅଟକ କରିବା; ବାଧା ଦେବା—
Rok kariba 1. To restrain. ୨ । ନିଷେଧ କରିବା—
রোক করা 2. To prohibit or forbid. ୩ ।
रोकना ରୋକିବା (ଦେଖ)—3. Rokiba (See)
୪ । ସମାଜରୁ ଅଟକ କରିବା—4. To ostracise a person.

ରୋକ୍ ଠୋ(ଥୋ)କ୍—ଦେ. କ୍ରି. ବିଣ (ସ. ରୋକ=ନଗଦ ଟଙ୍କା
Rok tho(tho)k ଦେଇ ବସ୍ତୁକ୍ରୟ+ଧ୍ୱନ୍ୟନୁକାରୀ ସହଚର-
থোক, নগদ, রোক ଠୋକ୍)—୧ । ନଗଦାନଗଦି; ଠଣାଠଣ;
थोक ନଗଦ ଦାମ୍ ଆଦାନପ୍ରଦାନପୂର୍ବକ; ଦସ୍ତବଦସ୍ତ;
ହାତେହାତେ (ଟଙ୍କା ଦେବା)—1. In cash; in
ready money. ୨ । କୌଣସି କାର୍ଯ୍ୟ ସଙ୍ଗେସଙ୍ଗେ
তৎক্ষণাৎ ବା ତତ୍‌କ୍ଷଣାତ୍ ମୀମାଂସା କରିବା ପ୍ରକାରେ; ଠୋଠୋ;
साथेसाथ, फौरन ଠକ୍‌ଠାକ୍; ଠକାଠକ୍; ଝଟାପଟ—
2. Readily; promptly (doing a thing);
immediately. [ ଯଥା—ଖରିଦ ଦ୍ରବ୍ୟର ଦାମ
ରୋକ୍‌ଠୋକ୍ ଦେଇଦେବା । ] ବିଣ—୧ । ନଗଦ

नगद ଦିଆଯିବା (ଧନ)—1. (amount) Paid in
नकद cash. [ ଉ—ପାଦେ ଚିତ୍ରବ ଚେକରେ କହିଲେ—
नगद ମୋର ଦୁଇ କନ୍ୟା ସକାଶେ ରୋକ୍‌ଠୋକ୍ ଦୁଇ ହଜାର
तुरन्त ପାଇଛି—ଫକୀରମୋହନ ଗଳ୍ପସ୍ୱଳ୍ପ । ] ୨ । ସଙ୍ଗେ
ସଙ୍ଗେ ମୀମାଂସିତ ବା କୃତ (କର୍ମ)—2 (act)
Decided or done immediately; promptly
or readily done. [ ଯଥା—ମୋ କଥାର
ରୋକ୍‌ଠୋକ୍ ଜବାବ ଦିଅ । ]

ରୋକ୍‌ଠୋକ୍ ଛିଡ଼ା(ଡ଼େ, ଣ୍ଡା, ଣ୍ଡେ)ଇ ଦେବା—ଦେ. କ୍ରି—୧ ।
Rokthok chhirda(rde, nda, nde)i deba କୌଣସି
সঙ্গে সঙ্গে নিস্পত্তি করা ବିଷୟକୁ ସଙ୍ଗେ ସଙ୍ଗେ ମୀମାଂସା
साथेसाथ फैसला करना କରିବା—1. To settle a
matter promptly or on the spot. ୨ ।
କୌଣସି ପ୍ରାପ୍ୟକୁ ନଗଦ ଦେଇଦେବା—2. To pay
up any due promptly or in cash.

ରୋକ୍‌ଠୋକ୍ ଜବାବ ଦେବା—ଦେ. କ୍ରି—୧ । କୌଣସି ପ୍ରଶ୍ନର ଉତ୍ତର
Rok-thok jababa deba ସଙ୍ଗେ ସଙ୍ଗେ ଦେବା—1.
[ରୋକ୍‌ଠୋକ୍ ବଲା(ଲେ)ଇବା—ଅନ୍ୟରୂପ] To give a
মুখেমুখে জবাব দেওয়া prompt or ready reply.
साथेसाथ(मुहँतोड)जबाब देना ୨ । ଅପ୍ରିୟ ସତ୍ୟ ହେଲେହେଁ
କୌଣସି କଥାକୁ ଲୋକମୁହଁରେ ମୁହେଁ ମୁହେଁ କହିଦେବା—
2. To tell an unpleasant truth to one's face.

ରୋକ୍ ଶ(ଶୁ, ଶୋ)କ(ତ୍ତ, ଦ୍, ଧ୍)—ବୈଦେ. ବ (ଫା. ରୁଖ୍‌ସତ୍; ଭୁଲ.
Rok śa(śu, śo)k(t, d, dh) ସ.ରୋକ=ନଗଦ+ଶୋଧ)—
বোকশোধ, বোক সৎ(দ) ୧ । କୌଣସି ବିଷୟର ଶେଷ ମୀମାଂସା
खसत 1. Final decision of a matter.
୨ । ଦେଣାର ବା ଋଣର ଚିକାଳ ପରିଶୋଧ—2.
Complete discharge or liquidation of a
a due or debt. ୩ । ହିସାବର ଶେଷ ବୁଝାସୁଝା
—3. Final settlement of account. ୪ ।
ନଗଦ ଦେଣନେଣଦ୍ୱାରା ବ୍ୟବସାୟ—4. Cash
transaction. ୫ । ବିବାଦର ଶେଷ ମୀମାଂସା—
5. Final settlement of a dispute. ୬ ।
ବିବାଦର ବା ମକଦ୍ଦମାର ଆପୋଷିରେ ମୀମାଂସା—6. A
compromise or amicable settlement of a
কিস্তী case or dispute. ୭ । (ଫ.ରୋକ୍.ସ.ରୋକ=ନୌକା)—
रोक ନ୍ୟାୟବଳ ବା ସତରଞ୍ଜ ଖେଳରେ 'ନୌକା' ଚିହ୍ନିତ
ଫା. ରୋକ୍ ଗୋଟି—7. The castle or 'rook' bits in
ଇଂ. ରୁକ୍ the game at chess. ବୈଦେ. ବ (ଫା.
রোকসৎ ରୁଖସତ୍]—୧ । ଶେଷ ବିଦାୟଗ୍ରହଣ—1.
रुखसत Final parting between two persons;
final taking of leave. ୨ । କର୍ମଚ୍ୟୁତି; କର୍ମ-

ସ୍ୱତ୍ୱତ୍ୟାଗ—2. Discharge from a post; dismissal; dispensing with one's services ୩ । ଅବସର; ଛୁଟି—3. Leave from service. ୪ । ଦାୟିତ୍ୱରୁ ନିଷ୍କୃତି—4. Exemption or release from a responsibility. ୫ । ବିଦାୟ ହେବାପାଇଁ ଅନୁମତି—5. Permission to take leave.

**ରୋକ୍‌ଶ(ଶୁ,ଶୋ)କ୍(ତ୍,ଦ୍,ଧ୍) କରିବା**—ଦେ. କ୍ରି.—୧ । ମୀମାଂସା Rok śa(śu,śo)k(t,d,dh) kariba କରିବା—1. To finally settle a matter. ବୋକশত কবা **रूखसत देना** ୨ । ନିଷ୍କୃତି ଦେବା—2. To grant release. ୩ । ଯିବାକୁ ଅନୁମତି ଦେବା—3. To permit a person to depart. ୪ । କୌଣସି ଦାୟିତ୍ୱରୁ ଛାଡ଼ି ଦେବା—4. To exempt a person from any responsibility. ୫ । (ଋଣ ବା ଦେଣା ବା ପ୍ରାପ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ, ଯଥା, ମୁଁ ଅଟୁକର ଦେଣାକୁ ରୋକ୍‌ଶତ୍ କରି ଦେଲିଣି)—ଦେଣାକୁ ବାକ୍ ପରିଶୋଧ କରିବା—5. To clear off or liquidate a debt or liability. [ଦ୍ର—ଏହିପରି ପାଇବା, ହେବା,ଦେବା, ନେବା, ମିଳିବା ଆଦି କ୍ରିୟା ସଙ୍ଗେ 'ରୋକ୍‌ଶତ୍' ଶବ୍ଦ ଯୁକ୍ତ ହୋଇ ବିଭିନ୍ନାର୍ଥ ପ୍ରକାଶ କରିଥାଏ ।]

**ରୋକ୍‌ଶ(ଶୁ,ଶୋ)ତି(ଦି)**—ବୈଦେ ବି.—(ଫା. ରୁଖ୍‌ସତ୍; ଭୁଲ ସ. ରୋକ)—୧ । ଶେଷ ମୀମାଂସା ବା ନିଷ୍ପତ୍ତି Rok śa(śu,śo)ti(di) —1. Final settlement or disposal ବোকসোত **रूखसत** ୨ । ନିଷ୍କୃତି—2. Exemption. ୩ । ବିଦାୟ—3. Farewell.

**ରୋକ**—ସ. ବି.—(ରୁଚ ଧାତୁ=ଦୀପ୍ତି ପାଇବା+ଭାବ. ଅ)—୧ । Roka ଦୀପ୍ତି; ପ୍ରଭା—1. Lustre. ୨ । (+ଅଧି. କ)ବିବର; ଗର୍ତ୍ତ—2. Cave; hole. ୩ । ଛିଦ୍ର—3. Aperture. ୪ । ପାପ—4. Sin. ୫ । ନଗଦ ଟଙ୍କା ଦେଇ ଦ୍ରବ୍ୟ କ୍ରୟ; ନଗଦ ଖରିଦ—5. Cash purchase; cash transaction; purchase of a thing on cash payment. ୬ । (ରୁ ଧାତୁ =ଗମନ କରିବା+କର୍ତ୍ତୃ. କ; ଭୁଲ ଫା. ରୋକ୍) ନୌକା ବোক **रोकना** —6. A boat. ଦେ. ବି.—(ସ. ରୋଧ)—ରୋକ୍ [ଦେଖ]—Rok (See)

**ରୋକଟ**—ଦେ. ବି—ମୃଦଙ୍ଗ ଆଦି ବାଦ୍ୟର ତାଳମାନଜ୍ଞାପକ ବାକ୍ୟପୁଞ୍ଜ— Rokaṭa The key or set formula to the musiବোল **बोल** cal tunes of Mṛudaṅga drum uttered by the mouth [ ଯଥା—'ତାଧିନ ତାଧିନ୍ ତାଧିନ୍ ଧିନା; ତାଧିମ୍ ତାଧିମ୍ ଦ୍ରିମ୍ ଦ୍ରିମ୍ ତା ।]

**ରୋକଟ ଡାକିବା**—ଦେ. କ୍ରି.—ମୃଦଙ୍ଗର ତାଳମାନଜ୍ଞାପକ ବାକ୍ୟମାନ Rokaṭa ḍākiba ମୁଖରେ ଉଚ୍ଚାରଣ କରିବା—To repeat ବোলবলা the set formula to the musical tune of **बोल बोलना** the Mṛudaṅga.

**ରୋକଟ ପକା(କେ)ଇବା**—ଦେ. କ୍ରି.—ରୋକଟ ଅନୁଯାୟୀ ମୃଦଙ୍ଗ Rokaṭa pakā(ke)iba ବଜାଇବା—To play on the বোল বাজান Mṛudaṅga drum according to the **बोलबजाना** set formula.

**ରୋକଡ଼**—ଦେ. ବି—(ସ. ରୋକ=ନଗଦ ବିକ୍ରି)—୧ । ବ୍ୟବସାୟରେ Rokarda ଖଟା ଯାଇଥିବା ନଗଦ ଟଙ୍କା—1. Cash money invested in a business. ୨ । ଜମା ଥିବା ଧନ; ସଞ୍ଚିତଧନ—2. Hoard; treasure. ୩ । ନଗଦ ଧନ —3. Cash. ୪ । ଆୟରୁ ବ୍ୟୟ ବାଦ୍ ଯାଇ ହାତରେ ଥିବା ଉଦ୍‌ବୃତ୍ତ ଧନ—4. The cash in hand; the cash balance. ୫ । ବ୍ୟବସାୟରେ ଦୈନିକ ସମସ୍ତ ଆୟବ୍ୟୟ ଲେଖା ହେବା ବହି; ଜମାଖରଚ ବହି; ରୋକଡ଼ ବହି— 5. Account book of all daily receipts and expenses of a business. ୬ । କାଶ୍ ବହି; ନଗଦ ବିକ୍ରି, ନଗଦ ଖରିଦ ଓ ନଗଦ ମିଳିବା ଟଙ୍କାର ହିସାବ ଯେଉଁ ବହିରେ ଲେଖାଯାଏ—6. Account book of cash transactions of a business; cash book; ledger.

**ରୋକଡ଼ କାଟିବା**—ଦେ. କ୍ରି—ପ୍ରତିଦିନର ଜମାରୁ ଖରଚ କାଟି Rokarda kātiba ଉଦ୍‌ବୃତ୍ତ ତହବିଲକୁ 'ଫୈଫେୟିତ୍' [ରୋକଡ଼ ଗଡ଼ା(ଡ଼େ)ଇବା—ଅନ୍ୟରୂପ] ସ୍ତମ୍ଭରେ ଜମାଖରଚର বোকড়কাটা **रोकड़काटना** ଶେଷରେ ଲେଖିବା— To strike out the daily cash balance [ ଦ୍ର—ଏକ ଦିନର ରୋକଡ଼ରେ ଗଡ଼ା ହୋଇଥିବା ରୋକଡ଼ବାକିକୁ ପର ଦିନର ଜମାରେ ପ୍ରଥମେ ଲେଖିବାକୁ ହୁଏ । ]

**ରୋକଡ଼ କ୍ଲୋଜ୍ କରିବା**—ଦେ. କ୍ରି ( ରୋକଡ଼+ଇଂ. କ୍ଲୋଜ୍ )— Rokarda kloj kariba ରୋକଡ଼ ବହିରେ ଦୈନିକ ସମସ୍ତ ( ରୋକଡ଼ ବନ୍ଦକରିବା—ଅନ୍ୟରୂପ ) ଆୟବ୍ୟୟର ହିସାବ বোকডবন্দকবা **रोकड़बन्द्‌करना** ଲେଖି ସାରି ତାହାକୁ ମୋଟ କରି ସମସ୍ତ ଆୟରୁ ସମସ୍ତ ବ୍ୟୟ ବାଦ୍ ଦେଇ ତହବିଲବାକି ଲେଖିବା ଦ୍ୱାରା ରୋକଡ଼ର ଏକ ଦିନର ଯାବତୀୟ କାର୍ଯ୍ୟ ଶେଷ କରିବା—To close the ledger for a day i. e. to finish the day's work regarding the entries in a cash book. [ଦ୍ର—ଏକ ଦିନର ରୋକଡ଼ର ଜମା ଖରଚ ଓ ରୋକଡ଼ କାଟିବା କାମ ଶେଷ ନ ହେଲେ ତହିଁର ଦିନକୁ ତହବିଲ ବାକି ଉଠାଇ ହୋଇପାରି ପାରେ ନାହିଁ ଏବଂ ଏକ ଦିନର ରୋକଡ଼ କ୍ଲୋଜ୍ (close)ହୋଇ ସାରିବା ପରେ,ସେ ଦିନ ରୋକଡ଼ରେ ଅନ୍ୟ କୌଣସି ଆୟ ବ୍ୟୟ ଚଢ଼ା ଯାଇ ପାରେ ନାହିଁ । ଏଥିପାଇଁ ରୋକଡ଼ କ୍ଲୋଜ୍ ହେବା ପରେ ଅଫିସ୍‌ର ହିସାବ ଓ ଆୟବ୍ୟୟ କାମ ସେଦିନପାଇଁ ଶେଷ ହେଲା ବୋଲି ବୁଝିବାକୁ ହେବ । ]

**ରୋକଡ଼ ଚଢ଼ା(ଢ଼େ)ଇବା**—ଦେ. କ୍ରି—ରୋକଡ଼ ବହିରେ ଜମା ଖରଚ ଲେଖିବା—
Rokarda chardhā(rdhe)ibā
বেকডলেখা, বোকডপুৰণকবা रोकड़चढ़ाना To enter accounts in the cash book.
(ରୋକଡ଼ ପୂରଣ କରିବା—ଅନ୍ୟରୂପ)

**ରୋକଡ଼ ଜମାଖରଚ**—ଦେ. ବି—୧ । ଯେଉଁ ବହିରେ ପ୍ରତିଦିନର ସମୁଦାୟ ନଗଦ ଆୟ ଓ ନଗଦ ବ୍ୟୟ ମୋଟ କରାଯାଇ ଆୟରୁ ବ୍ୟୟ ବାଦ୍ ଦିଆଯାଇ ଉଦ୍ବୃତ୍ତ ଧନର ପରିମାଣ ବା ତହବିଲବାକି ଉଲ୍ଲେଖ ହୁଏ—
Rokarda jamākharacha
রোকডজমাখবচ रोकड़जमाखर्च
1. An account book in which daily receipts and daily expenses are totalled up and the cash balance is struck; ledger.
୨ । ରୋକଡ଼ରେ ଲେଖାଥିବା ଜମା ଖରଚ ହିସାବ—
2. Entries in a ledger.
[ଦ୍ର—ରୋକଡ଼ ବହିରେ ଜମା ଖରଚ ଲେଖିବାର ଗୋଟିଏ ସ୍ଥୂଳ ଉଦାହରଣ । ଯଥା—

୨୧।୮।୩୭

| ଜମା | | ଖରଚ | |
|---|---|---|---|
| ଗତ ଦିନର ତହବିଲ ବାକି | ଟ ୫୯ | ବଣିଆକୁ ମୁଦି ତିଆରି କରିବା ପାଇଁ ଦିଆଯିବା | ଟ ୪୯ |
| ରାମ ସାହୁଠାରୁ ଖଜଣା ଅସୁଲ | ଟ ୩୯ | ରୁପା ଖରିଦ ୨ ଭରି | ଟ ୧୮/ |
| ଫଳ ବିକିରୁ ମିଳିବା | ଟ ୪୯ | ଜଳଖିଆ ଖରଚ | ଟ୦ ।୶/ |
| ଲୁଗା ବିକିରୁ ମିଳିବା | ଟ ୨୯ | ପିଲାଙ୍କ ପଢ଼ା ବହି | |
| ପୁତ୍ରରୁ ମନିଅର୍ଡ଼ର ଆସିବା | ଟ ୬୯ | ଖରିଦ | ଟ ୪୯ |
| ଢ଼୦ ୧ ଦିନକୁ ଜମା | ଟ ୧୫୯ | ଢ଼୦ ୧ ଦିନକୁ ଖରଚ | ଟ ୧୦୯ |
| ଗତ ଦିନର ତହବିଲ ବାକି | ଟ ୫୯ | | |
| ଢ଼୦ ମୋଟ ଜମା | ଟ ୨୦୯ | | |

କୈଫିୟତ—
ଜମା ଟ ୨୦୯ ରୁ
ଖରଚ ଟ ୧୦୯ ଯାଇ
ବାକି ତହବିଲ ଟ ୧୦୯
[ଦ—ଏ ଦଶ ଟଙ୍କା ଉକ୍ତ ତାରିଖର ରୋକଡ଼ବାକି ଅଟେ ।]

**ରୋକଡ଼ ବହି(ଇ)**—ଦେ. ବି—ରୋକଡ଼ ଜମା ଖରଚ ଆଦି ଯେଉଁ ବହିରେ ଲେଖାଯାଏ—Daily cash book.
Rokarda bahi(i)
বোকডবই रोकड़बही

**ରୋକଡ଼ ବାକି**—ଦେ. ବି—ରୋକଡ଼ରେ ଲେଖା ଥିବା ଦୈନିକ ଜମାଖରଚ ମୋଟ କରାଯାଇ ଶେଷରେ 'କୈଫିୟତ୍' ଲେଖାଯାଇ ଉଦ୍ବୃତ୍ତସ୍ୱରୂପ ଗଢ଼ା ଯାଇ ଥିବା ତହବିଲ—Daily cash balance struck at the foot of a cash book.
Rokarda bāki
বোকডবাকি रोकड़बाकी

**ରୋକସ(ସୋ)ତ୍**—ବୈଦେ. ବି (ଅ. ରୁଖ୍ସତ୍)—ବିଦାୟ; ମେଲାଣି—Bidding good bye; farewell
Rokasa(so)t
বোকসোধ रुखसत
[ଉ—ଥାଉ ଆଉ ମାନଙ୍କୁ ରୋକସୋତ ଦେଲେ । ଫକୀରମୋହନ. ଛମାଣ ଅଠଗୁଣ୍ଠ ।] ବୈଦେ. ବିଣ—ବିଦାୟ ପ୍ରାପ୍ତ—Departed, permitted to go.

**ରୋକସ(ସୋ)ତି**—ବୈଦେ. (ବି ଅ. ରୁଖ୍ସତୀ)—୧ । ବିଦାକି—1. Tips presents made at the time of bidding good bye. [ଉ—ବାଇଜିଙ୍କ ରୋକସତି ଶହେ ଟଙ୍କା ଓ ବଇତିଙ୍କ ସାଙ୍ଗ ଲୋକ ଓ ଦୋସ୍ତମାନଙ୍କ ଖାନାପିନାଓ ସକାଶେ ଏକଶ ଟଙ୍କା ବନ୍ଦୁତ ହେବ । ଫକୀରମୋହନ. ଛମାଣ ଅଠଗୁଣ୍ଠ ।] ୨। ରୋକ୍ସତି (ଦେଖ)-2. Racsati (see)
Rokasa(so)ti
বোকশোধ रुखसत

**ରୋକା**—ବୈଦେ. ବି (ଫା. ରୋକ୍କା; ତୁଳ. ସଂ. ରୋକ=ନଗଦ ଟଙ୍କାରେ ବସ୍ତୁ କ୍ରୟ)—୧ । ନଗଦ ଟଙ୍କା ଋଣ କରିବା ଖାତକ ମହାଜନଙ୍କୁ ଲେଖିଦେବା ଦଲିଲ; ହେଣ୍ଡ୍ନୋଟ୍; ଗୋଜା—1. Handnote; promissory note; hundi. ୨ । ପତ୍ରବାହକଙ୍କୁ ଟଙ୍କା ଦେବା ପାଇଁ କରାଦ ଚିଠି; ହୁଣ୍ଡୀ—2. A letter directing payment of cash to the bearer. ୩ । ଟଙ୍କା ପାଇବା ବ୍ୟକ୍ତି ଟଙ୍କା ଦେବା ବ୍ୟକ୍ତିଙ୍କୁ ଯେଉଁ ରସିଦ ଦିଏ—3. Receipt; written acknowledgement of receipt of money. ଦେ. ବି—୧ । (ସଂ. ରୋଧ) ରୋକିବା; ଅଟକାଇବା, ବାଧା ଦେବା—1. Obstructing; restraining. ଦେ. ବିଣ (ସଂ. ରୋଧ)—ଅଟକା ଯାଇଥିବା; ରୋକା ହୋଇଥିବା—Restrained: obstructed.
Rokā
বোকা हुण्डी
বোকা[খা] रोकना
বোখা[কা] रोकाहुआ

**ରୋକା[କେ]ଇବା**—ଦେ. କ୍ରି—ରୋକିବା କ୍ରିୟାର ଣିଜନ୍ତ ରୂପ—To cause to obstruct
Rokā[ke]ibā
রোকা(খা)ন रुकवाना

**ରୋକା ରୋକି**—ଦେ. ବି—ରୋକିବା କ୍ରିୟାମାନ—Acts of restraining.
Rokā roki
বোকাবোকি रोकटोक

**ରୋକିବା**—ଦେ. କ୍ରି (ଫା. ରୋକ୍; ସଂ. ରୋଧ, ରୁଧ ଧାତୁ)—୧ । ଗତି ରୋଧ କରିବା; ଗତି ବନ୍ଦ କରିବା—1. To restrain one's motion; to check. [ଉ—ଗାଡ଼ିକି ରୋକିବା, ଘୋଡ଼ାକୁ ରୋକିବା ।] ୨ । ବାଧା ଦେବା; ଅଟକାଇବା—2. To obstruct. ୩ । ନିୟନ୍ତ୍ରିତ କରିବା—3. To control, to keep in check. ୪ । ସ୍ଥଗିତ କରିବା—4. To stop. ୫ । ଜାତିରୁ ଅଟକ କରିବା—5. To excommunicate; to boycott. ୬ । ମନା କରିବା; ନିଷେଧ କରିବା—6. To prohibit; dissuade. ୭ । (ଲକ୍ଷଣାର୍ଥ) ଅନ୍ୟ ବ୍ୟକ୍ତିର ସ୍ୱାଧୀନ ଗତିଚଳଣିକୁ ନିୟନ୍ତ୍ରିତ ବା ସଂଯତ କରିବା—7. To control one's free dealings. [ଯଥା—ସେ ତାଙ୍କୁ ଘରଦ୍ୱାର ସବୁ ରୋକି ଦେଲେ ।] ପ୍ରାଦେ. (ଖଡ଼ିଆଳ) କ୍ରି—ଢାଳି ଦେବା—To pour out.
Rokibā
বোকা रोकना

ରୋଖା—ଦେ. ବିଣ. (ସଂ. ରୁକ୍ଷ)—ରୁଖା (ଦେଖ)।
Rokhā Rukhā. (See)

ରୋଖା ଶୋଖା—ଦେ. ବିଣ (ସହଚର) (ସଂ. ରୁକ୍ଷ+ଶୁଷ୍କ)—ରୁଖାଶୁଖା
Rokhā śokhā (ଦେଖ)—Rukhā śukhā. (See)

ରୋଗ—ସଂ. ବି (ରୁଜ. ଧାତୁ=ପୀଡ଼ିତ ହେବା+ଭାବ. ଅ]—
Roga ୧ । ଆମୟ; ବ୍ୟାଧି; ପୀଡ଼ା—1. Sickness.
୨ । ବେମାରି; ସ୍ୱାସ୍ଥ୍ୟହାନି—2. Illness; loss of health; disease. [ଦ୍ର—ଏହା ଜୀବ ତଥା ବୃକ୍ଷାଦିଙ୍କୁ ଆକ୍ରମଣ କରେ।

[ରୋଗ—ରୋଗର ଅର୍ଥ ବ୍ୟାଧି। କଥା ଅଛି, ଶରୀରଂ ବ୍ୟାଧି-ମନ୍ଦିରଂ ଅର୍ଥାତ୍ ଶରୀର ମଧ୍ୟରେ ନାନା ରୋଗର ବାସ। କେତେବେଳେ କେଉଁ ରୋଗ ବାହାରି ଶରୀରକୁ ଆକ୍ରମଣ କରେ ତାହା କେହି ଜାଣି ପାରେ ନାହିଁ। ରୋଗବିହୀନ ଅବସ୍ଥାକୁ ଆରୋଗ୍ୟ କହନ୍ତି। ଆରୋଗ୍ୟ ଅବସ୍ଥାକୁ ସୁସ୍ଥାବସ୍ଥା କହନ୍ତି ଏବଂ ଲୋକର ସୁସ୍ଥ ଅବସ୍ଥାକୁ ସ୍ୱାସ୍ଥ୍ୟ ବୋଲିଯାଏ। ଆଜୀବନ ସୁସ୍ଥ ରହିବା ମାନବର ମହାପୁଣ୍ୟର ଫଳ। ଆଜୀବନ ସୁସ୍ଥ ରହିବା ମନୁଷ୍ୟ ବିରଳ। ରୋଗର ନିରାକରଣ ପାଇଁ ଆୟୁର୍ବେଦ ଶାସ୍ତ୍ରର ସୃଷ୍ଟି। ପ୍ରାଚୀନ ଯୋଗୀ ଋଷିମାନେ ସେମାନଙ୍କ ତ୍ରିକାଳଦର୍ଶିତା, ଜ୍ଞାନ ଓ ବିଜ୍ଞାନ ବଳରେ ଆୟୁର୍ବେଦ ଶାସ୍ତ୍ର ପ୍ରଣୟନ କରିଥିଲେ; ରୋଗର ନିଦାନ, ରୋଗର ଉପଶମ, ରୋଗର ନିରାକରଣ ପାଇଁ ବହୁତ ଶାସ୍ତ୍ର ପ୍ରଣୟନ କରିଥିଲେ। ଆୟୁର୍ବେଦ ବେଦର ଉପବେଦ। ରୋଗ ହେବାର କାରଣ କଅଣ? ଏ ଶରୀର ରସ, ରକ୍ତ, ମାଂସ, ମେଦ, ଅସ୍ଥି, ମଜ୍ଜା ଓ ଶୁକ୍ରରେ ପୂର୍ଣ୍ଣ। ଖାଦ୍ୟପେୟ ଦ୍ୱାରା ଏ ଶରୀର ପରିବର୍ଦ୍ଧିତ ଓ ପରିପୁଷ୍ଟ ହୁଏ। ଜଳ ପବନ ଦ୍ୱାରା ଶରୀର ରକ୍ଷିତ ହୁଏ। ଭାଗବତରେ ଅଛି, ଜଳ ପବନ ଲାଗି ଦେହ, ଆଉ ଅଧିକ ଥିଲେ କହ। ବାୟୁ, ପିତ୍ତ, କଫ ଏ ଶରୀରର ପ୍ରଧାନ ଧାତୁ। ଏମାନେ ସାମ୍ୟ ଅବସ୍ଥାରେ ଥିବା ପର୍ଯ୍ୟନ୍ତ ମାନବ ସୁସ୍ଥ ଥାଏ। ଏମାନଙ୍କର ବିକୃତ ହେଲେ ମାନବ ଅସୁସ୍ଥ ହୁଏ। ଏହା ସାଧାରଣ କଥା। ରୋଗ ବଡ଼ ଯନ୍ତ୍ରଣାଦାୟକ। ରୋଗଯନ୍ତ୍ରଣାରେ ଲୋକ ସମୟ ସମୟରେ ଆତ୍ମହତ୍ୟା କରି ପକାଏ। ରାଜା ହେଉ ପ୍ରଜା ହେଉ, ଧନୀ ହେଉ ଦରିଦ୍ର ହେଉ, ରୋଗ ଯନ୍ତ୍ରଣା ସମସ୍ତଙ୍କୁ ସମାନ ଭାବରେ କଲବଲ, ଛଟପଟ କରି ପକାଏ। ସ୍ୱାସ୍ଥ୍ୟ ମାନବର ଅମୂଲ୍ୟ ଧନ। ଯାହାର ସ୍ୱାସ୍ଥ୍ୟ ଅଛି ସେ ଦେବଦୁର୍ଲ୍ଲଭ ସୁଖ ଭୋଗ କରେ। ମାତ୍ର ରୋଗୀ ପକ୍ଷରେ ସବୁ ତୁଚ୍ଛ। ତ୍ରିତଳ ପ୍ରାସାଦ ଉପରେ ତୂଳତଳ୍ପ ଉପରେ ଶୋଇ ରୋଗୀ କିଛି ସୁଖ ଭୋଗ କରେ ନାହିଁ। ଅଜସ୍ର ଧନ ଅଛି, ଖାଦ୍ୟ ସାମଗ୍ରୀ ଅଛି, ମାତ୍ର ଉଦରାମୟ ରୋଗ ହେତୁ ଯେ ଖାଇ ନ ପାରେ, ତାର ଧନରେ କିଛି ସୁଖ ନାହିଁ। ଯେ ଆଜନ୍ମ ରୋଗ ଯନ୍ତ୍ରଣା ଭୋଗି ନାହିଁ, ସେ ମର୍ତ୍ତ୍ୟରେ ସ୍ୱର୍ଗସୁଖ ଲାଭ କରେ। ରୋଗ ଅନ୍ୟ କିଛି ନୁହେଁ—ଏହା ନିଜକୃତ କର୍ମର ଫଳ। କୌଣସି କୌଣସି ରୋଗ ଇହଜନ୍ମକୃତ କର୍ମର ଫଳ, କୌଣସି କୌଣସି ରୋଗ ପୂର୍ବଜନ୍ମକୃତ କର୍ମର ଫଳ। ଏ ଶରୀରଯନ୍ତ୍ର କେତେଗୁଡ଼ିଏ ନିୟମ ଦ୍ୱାରା ପରିଚାଳିତ। ସେହି ନିୟମର ବ୍ୟତିକ୍ରମ କଲେ ପାପ ହୁଏ। ନିୟମାନୁମୋଦିତ କର୍ମ କଲେ ପୁଣ୍ୟ ହୁଏ। ରୋଗ ପାପ କାର୍ଯ୍ୟର ଫଳ। ପାପ ମଧ୍ୟରେ ପୁଣି ତାରତମ୍ୟ ଅଛି—କ୍ଷୁଦ୍ର ପାପ, ଉତ୍କଟ ପାପ, ଅତ୍ୟୁତ୍କଟ ପାପ। ପାପର ପରିମାଣ ଅନୁସାରେ ରୋଗର ତାରତମ୍ୟ ହୁଏ। ସାମାନ୍ୟ ପାପରୁ ସାମାନ୍ୟ ରୋଗ ହୁଏ, ଉତ୍କଟ ପାପରୁ ଉତ୍କଟ ରୋଗ ଜନ୍ମେ ଏବଂ ଅତ୍ୟୁତ୍କଟ ପାପରୁ ଅତ୍ୟୁତ୍କଟ ରୋଗ ଜନ୍ମେ। ଖାଦ୍ୟ, ପେୟ ଓ ବାୟୁ ଦୋଷରୁ ଯେଉଁ ରୋଗ ଜନ୍ମେ, ତାକୁ ସାମାନ୍ୟ କୁହାଯାଇ ପାରେ ଏବଂ ସେ ରୋଗମାନ ଔଷଧ ପ୍ରୟୋଗରେ ଭଲ ହୋଇ ପାରେ। ମାତ୍ର ଯେଉଁ ରୋଗମାନ ଗ୍ରହଜ ବା କର୍ମଜ, ସେଗୁଡ଼ିକ ଭୋଗ ଶେଷରେ ଭଲ ହୁଏ। ନିଦାନ ରୋଗ ଦୁଃସାଧ୍ୟ। ସେଗୁଡ଼ିକ ଔଷଧ ମାନନ୍ତି ନାହିଁ। ସେଗୁଡ଼ିକ ନିୟତିର ମୂର୍ତ୍ତିମନ୍ତ ପ୍ରତିନିଧି। ସେ ରୋଗ ରୋଗୀକି ଇହଲୋକରୁ ନେଇ କରି ଯାଏ। ଆମ ଦେଶରେ କର୍ମବିପାକ ଶାସ୍ତ୍ର ଅଛି। କେଉଁ କର୍ମ କଲେ କି ରୋଗ ହୁଏ ଏବଂ କି ଉପାୟରେ ସେ ରୋଗର ଶାନ୍ତି ହୁଏ ସେ ବିଷୟମାନ ସେଥିରେ ଲିଖିତ ଅଛି।

ରୋଗର ଉପଶମ ପାଇଁ ନାନା ପ୍ରକାର ଉପାୟ ଋଷିମାନେ ଉଦ୍ଭାବନ କରି ଯାଇଛନ୍ତି। ଶଲ୍ୟ ଚିକିତ୍ସା ବା ଅସ୍ତ୍ର ଚିକିତ୍ସା ଏବଂ ଔଷଧ ପ୍ରୟୋଗ। ଔଷଧ ପ୍ରୟୋଗ ମଧ୍ୟରେ ମଣି, ମନ୍ତ୍ର, ମହୌଷଧି। ମନ୍ତ୍ର ଚିକିତ୍ସା ଉଡ୍ଡୀଶ, ଡାମର ପ୍ରଭୃତି ତନ୍ତ୍ର ଶାସ୍ତ୍ରରେ ଅଛି। ସକଳ ପ୍ରକାର ରୋଗ ପାଇଁ ମନ୍ତ୍ର ଚିକିତ୍ସା ଅଛି। କେବଳ ମନ୍ତ୍ର ପାଠ କରି ଝାଡ଼ି ଦେଲେ ବା ଫୁଙ୍କି ଦେଲେ ରୋଗ ଯିବ; ମଣି ଧାରଣ ଦ୍ୱାରା ମଧ୍ୟ ରୋଗର ଉପଶମ ହୁଏ। ଚିକିତ୍ସା ମଧ୍ୟରେ ପୁଣି ରସାୟନ ଚିକିତ୍ସା ଓ ବିଷାୟନ ଚିକିତ୍ସା। ବିଷ ଚିକିତ୍ସା ବିଶେଷ ଫଳପ୍ରଦ, ମାତ୍ର ବିଶାରଦ ବୈଦ୍ୟ ନ ହେଲେ ସେ ଚିକିତ୍ସା କରି ପାରନ୍ତି ନାହିଁ। ଶୋଧିତ ବିଷ ଅମୃତ ସମାନ ଫଳ ଦିଏ, ମାତ୍ର ଶୋଧନରେ ତ୍ରୁଟି ହେଲେ ବିଷମୟ ଫଳ ଫଳେ। ସର୍ପ ବିଷ ମଧ୍ୟ ଶୋଧିତ ହୋଇ ଔଷଧରେ ପ୍ରୟୋଗ କରାଯାଏ। ଶଲ୍ୟ ଚିକିତ୍ସା ସୁଶ୍ରୁତରେ ଅଛି, ମାତ୍ର ତାହା ଆଜିକାଲି ପ୍ରାୟ ଲୋପ ପାଇଛି। ସେହି ଅସ୍ତ୍ର ଚିକିତ୍ସା ଆଜି ପାଶ୍ଚାତ୍ୟ ଦେଶରେ କ୍ରମୋନ୍ନତି ପଥରେ ଅଗ୍ରସର ହୋଇ ଜଗତକୁ ଚମତ୍କୃତ କରୁଅଛି। ହିନ୍ଦୁ ସକଳ ଶାସ୍ତ୍ରରେ ଚୂଡ଼ାନ୍ତ ଉନ୍ନତି ଲାଭ କରିଥିଲା। ଜଡ଼ବିଜ୍ଞାନ ଓ ଅଧ୍ୟାତ୍ମ ବିଜ୍ଞାନ ଉଭୟ ବିଦ୍ୟାରେ ଭାରତ ଉନ୍ନତିର ଶେଷ କୋଟିରେ ଉପନୀତ ହୋଇଥିଲା। ଜ୍ୟୋତିଷ, ଭୂଗୋଳ, ଯୋଗ ପ୍ରଭୃତି ସକଳ ବିଦ୍ୟାରେ ଭାରତ ଜଗତର ଗୁରୁ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ। ଆମ୍ଭ ଭାଗ୍ୟ ବିପର୍ଯ୍ୟୟରୁ ଭାରତ ଆଜି ଅବନତିର ନିମ୍ନତମ ପ୍ରଦେଶରେ ଅବସ୍ଥିତ। ଆଜି ଭାରତ ସବୁଠାରେ ଲାଞ୍ଛିତ, ପଦଦଳିତ! ଭାରତୀୟ ତ୍ରିକାଳଦର୍ଶୀ ଯୋଗୀ ଋଷିମାନେ ଔଷଧ ବଳରେ ଶତ ଶତ, ସହସ୍ର ସହସ୍ର, ବର୍ଷ ବଞ୍ଚିବାର ଉପାୟ,

ସ୍ଥିର କରିଥିଲେ । ଏହିସବୁ ଔଷଧର ନାମ ନାହିଁ । ଚରକ ମହର୍ଷି ପ୍ରଣୀତ ଚରକ ସଂହିତା ପାଠ କଲେ ପାଠକମାନେ ଏ ସବୁ କଥା ଜାଣି ପାରିବେ । ଚ୍ୟବନ ମହର୍ଷି ଚ୍ୟବନପ୍ରାସ ଔଷଧ ଦ୍ୱାରା ବୃଦ୍ଧଙ୍କୁ ଯୌବନ ଦାନ କରିଥିଲେ । ଚରକ ମହର୍ଷି ତାଙ୍କ ପୁସ୍ତକରେ କେବଳ ବନୌଷଧି ଦ୍ୱାରା ରୋଗ ଆରୋଗ୍ୟ କରିବାର ବ୍ୟବସ୍ଥା କରିଛନ୍ତି । ତାଙ୍କ ପୁସ୍ତକରେ ଔଷଧ ଅପେକ୍ଷା ଲୋକ କି ଉପାୟ ଅବଲମ୍ବନ କରି ଜୀବନ-ଯାତ୍ରା ନିର୍ବାହ କଲେ ଏବଂ କି କି ନିୟମ ପାଳନ କରି ଚଳିଲେ ଆଜୀବନ ନିରୋଗରେ କାଳ ଯାପନ କରି ପାରିବ, ସେହି ବ୍ୟବସ୍ଥା ପ୍ରତି ସବିଶେଷ ମନୋଯୋଗ ପ୍ରଦତ୍ତ ହୋଇ-ଅଛି । ଚରକ ବୈଦ୍ୟମାନଙ୍କ ବିଷୟ କହିବାକୁ ଯାଇ କହିଅଛନ୍ତି ଯେ, ଯେଉଁ ବୈଦ୍ୟ ଅର୍ଥ ନେଇ ଔଷଧ ଦିଏ ତାଠାରୁ ପ୍ରାଣାନ୍ତେ ସୁଦ୍ଧା ଔଷଧ ଖାଇବ ନାହିଁ । ସେ ଏପରି କାହିଁକି କହିଥିଲେ ? ମାନବ ଜୀବନ ବଡ଼ ଅମୂଲ୍ୟ ବସ୍ତୁ । ଧର୍ମଭାବରେ ମାନବ ଜୀବନ ସଙ୍ଗେ ବ୍ୟବହାର କରିବା କର୍ତ୍ତବ୍ୟ । ଯେଉଁଠି ଜୀବର ମରଣ ସମ୍ପର୍କ ଅଛି ସେଠି ଧର୍ମଭାବ ଏକମାତ୍ର ରକ୍ଷକ । ଅର୍ଥଲାଳସାରେ ଚିକିତ୍ସା କଲେ ଚିକିତ୍ସକଙ୍କ ମନରେ ଲୋଭ ଓ ନାନା କୁପ୍ରବୃତ୍ତି ଆସି ବାସ କରେ; ଧନ-ଲାଭ ଏକମାତ୍ର ଲକ୍ଷ୍ୟ ହୁଏ । ରୋଗୀର ଜୀବନ ଯାଉ କି ରହୁ, ଧନ ଲାଭ ହେଲେ ହେଲା । ନୀରୋଗ ହେବା ପାଇଁ ଚରକ ମହର୍ଷିଙ୍କ ନିୟମାବଳୀ ବଡ଼ ଅମୂଲ୍ୟ ନିୟମ । ପ୍ରତ୍ୟେକ ଲୋକ ତାକୁ ମାନି ଚଳିଲେ ଆଉ ରୋଗ ହେବାର ସେତେ ଆଶଙ୍କା ରହିବ ନାହିଁ । ସେ ସବୁ ନିୟମ ପ୍ରତ୍ୟେକ ଲୋକଙ୍କ ଜାଣିବା ଆବଶ୍ୟକ । ଦୃଷ୍ଟାନ୍ତସ୍ୱରୂପ କେତେ ଗୋଟି ନିମ୍ନରେ ପ୍ରଦତ୍ତ ହେଲା । ପାଠକମାନେ ଚରକ ସଂହିତା ପାଠ କଲେ ବିଶଦ ଭାବରେ ଏହା ଜାଣି ପାରିବେ ।

୧ । ମଳ, ମୂତ୍ର, ଶୁକ୍ର, ଅଧୋବାୟୁ, ବାନ୍ତି, ହାଙ୍କୁଟି, ଛିଙ୍କ, ହାଇ, କ୍ଷୁଧା, ପିପାସା, ଅଶ୍ରୁ, ନିଦ୍ରା ଓ ନିଶ୍ୱାସର ବେଗ ଧାରଣ କରିବ ନାହିଁ । ଯେତେବେଳେ ଏ ସବୁ କାର୍ଯ୍ୟର ଉପକ୍ରମ ହେବ ସେତେବେଳେ ଅନ୍ୟ କାର୍ଯ୍ୟ ଛାଡ଼ି ଏ ସବୁ କାର୍ଯ୍ୟ ଆଗେ କରିବ । ଆଦୌ କାଳ ବିଳମ୍ବ କରିବ ନାହିଁ । ଅନ୍ୟଥା କଲେ ନାନା ପ୍ରକାର ରୋଗ ଆକ୍ରମଣ କରିବ ।

୨ । ପାପାଚାରୀ, ପାପାଲାପୀ, ପାପମନା, ମିଥ୍ୟାବାଦୀ, କଳହପ୍ରିୟ, ଲୋଭୀ, ନିନ୍ଦୁକ, ଉପହାସୀ, ପରଶ୍ରୀକାତର, ଶଠ, ପରନିନ୍ଦାକାରୀ, ପରଦାରଗାମୀ, ନିର୍ଦ୍ଦୟ, ଅଧାର୍ମିକ, ଲୋକମାନଙ୍କ ସଙ୍ଗ ତ୍ୟାଗ କରିବ ।

୩ । ବୁଦ୍ଧିମାନ୍, ବିଦ୍ୱାନ୍, ବୟୋଜ୍ୟେଷ୍ଠ, ସୁଶୀଳ, ଧୀର, ଶାନ୍ତ, ଭକ୍ତ, ଲୋକରଞ୍ଜକ, ସ୍ୱଚ୍ଛମନା, ମଧୁରଭାଷୀ, ସଦାଚାରୀ, ସନ୍ମାର୍ଗ ପ୍ରଦର୍ଶକ, ପୁଣ୍ୟାତ୍ମା ଲୋକମାନଙ୍କ ସଙ୍ଗ ବାଞ୍ଛନୀୟ ।

୪ । ରାତ୍ରରେ ଦଧି ଭୋଜନ କରିବ ନାହିଁ । ଘିଅ ଗୁଡ଼ ନ ମିଶାଇ କିମ୍ବା ମୁଗ ଯୂଷ ବା ଅଁଳା ଯୂଷ କିମ୍ବା ମହୁ ନ ମିଶାଇ ଦଧି ଭୋଜନ କରିବ ନାହିଁ ।

୫ । ଯେଉଁ କାରଣରୁ କାହାର ଉନ୍ନତି ହୋଇଅଛି, ସେ କାରଣ ପ୍ରତି ଈର୍ଷା କରିବ, କିନ୍ତୁ ସେ କାରଣର ଫଳ ପ୍ରତି ଈର୍ଷା କରିବ ନାହିଁ । ସ୍ୱାତ୍ମୋନ୍ନତି ଲାଗି ଯତ୍ନ, ପରିଶ୍ରମ ଓ ଉଦ୍‌ଯୋଗ କରିବ ।

୬ । ସମୟ ବୁଝି ହିତକର ଅଥଚ ମଧୁର ଓ ପରିମିତ ବାକ୍ୟ କହିବ ।

୭ । ମୂର୍ଦ୍ଧା, କର୍ଣ୍ଣ, ନାସା ଓ ପାଦରେ ପ୍ରତିଦିନ ତୈଳ ମାଲିସ କରିବ ।

୮ । ଅତିଥିଙ୍କୁ ପୂଜା କରିବ । ପିତୃମାନଙ୍କୁ ପିଣ୍ଡ ଦାନ କରିବ ।

୯ । ଅନ୍ନ ଓ ଖାଦ୍ୟ ସାମଗ୍ରୀ ବଢ଼ା ହେଲେ ତାକୁ ମନ୍ଦ ବୋଲି ଭାବିବ ନାହିଁ ।

୧୦ । ଦଧି, ମଧୁ, ଲବଣ, ଶକ୍ତୁ ଓ ଘୃତ ଭିନ୍ନ ଅନ୍ୟ ବସ୍ତୁର କିଞ୍ଚିତ୍ ଅବଶେଷ ରଖି ଭୋଜନ କରିବ ।

୧୧ । ରାତ୍ରରେ ଲିଆ ଖାଇବ ନାହିଁ । ଜଳ ନ ମିଶାଇ ଛତୁ ଖାଇବ ନାହିଁ ।

୧୨ । ଦାନ୍ତରେ ନ ଘେନାଇ ଭୋଜନ କରିବ ନାହିଁ । ଶରୀରକୁ ବକ୍ର ଭାବରେ ରଖି ଛିଙ୍କିବ ନାହିଁ, ଭୋଜନ କରିବ ନାହିଁ, କି ଶୟନ କରିବ ନାହିଁ ।

୧୩ । ସ୍ତ୍ରୀମାନଙ୍କୁ ଅବଜ୍ଞା କରିବ ନାହିଁ, ଅତି ବିଶ୍ୱାସ କରିବ ନାହିଁ, ଗୋପନୀୟ ପରାମର୍ଶ ଶୁଣାଇବ ନାହିଁ, ଅଧିକାରିଣୀ କରାଇବ ନାହିଁ ।

୧୪ । ସର୍ବଦା ପ୍ରକୃତିର ଅନୁସରଣ କରିବ । କାରଣର ନିଶ୍ଚୟ କାର୍ଯ୍ୟକାରିତା ଅଛି ବୋଲି ଜାଣିବ । ଉନ୍ନତିର କାରଣ ଆପଣା ମନକୁ ଆସେ ନାହିଁ । ଆପଣା ଉନ୍ନତି ପାଇଁ ଆପେ ଉଦ୍‌ଯୋଗ କରିବ ଓ କାରଣ ଘଟାଇବ । ଯାହା କରିବାର ଥିଲା ତାହା କରି ଯାଇଅଛି ଆଉ କିଛି କରିବାକୁ ନାହିଁ, ଏପରି ଭାବିବ ନାହିଁ, କି ସେପରି ଭାବି ନିଶ୍ଚିନ୍ତ ରହିବ ନାହିଁ ।

୧୫ । ମୁଖ ମଧ୍ୟରେ ତୈଳ ଗଣ୍ଡୂଷ ଧାରଣ କରିବ । ଏପରି କଲେ ହନୁବଳ, ସ୍ୱରବଳ, ବଦନର ପୁଷ୍ଟି, ଉତ୍ତମ ରସଜ୍ଞାନ ଓ ଅନ୍ନରେ ସୁରୁଚି ହୁଏ, ମୁଖରେ ଓ କଣ୍ଠରେ ଶୋଷ ହୁଏ ନାହିଁ, ଓଠ ଫାଟେ ନାହିଁ, ଦନ୍ତମାନ ଦୃଢ଼ ହୁଏ ।

ଏହିପରି ଶତାଧିକ ନିୟମ ଚରକ ମହର୍ଷି ନିର୍ଦ୍ଦିଷ୍ଟ କରିଅଛନ୍ତି; ସେ ସମସ୍ତ ଲେଖିଲେ ସନ୍ଦର୍ଭ ବଡ଼ ଦୀର୍ଘ ହେବ । ମୋର ବିଶ୍ୱାସ, ଚରକନିର୍ଦ୍ଦିଷ୍ଟ ସକଳ ନିୟମ ପ୍ରତିପାଳନ କଲେ ଶରୀର ମଧ୍ୟକୁ ରୋଗ ପ୍ରବେଶ କରିବ ନାହିଁ ।

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ୍ | ଉଅ | ଲ୍ଲ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଳୁ | ଯେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଗ୍ୟ | ସ | ଗଁ୍ୟ | ଇଅ | ଙ୍ଗ | ନ୍ଲ |

ଦେଖାଯାଏ, ଭାରତରେ ରୋଗୀ ସଂଖ୍ୟା ବଢ଼ୁଛି, ରୋଗ ସଂଖ୍ୟା ମଧ୍ୟ ବଢ଼ୁଛି । ସୁସ୍ଥ, ସବଳ, ହୃଷ୍ଟପୁଷ୍ଟ, ଦୀର୍ଘକାୟ, ଦୀର୍ଘଜୀବୀ ଲୋକଙ୍କର ସଂଖ୍ୟା କ୍ରମେ କମିଯାଉଛି । ବର୍ତ୍ତମାନ ଯୁଗର ଲୋକସାଧାରଣ ଜୀର୍ଣ୍ଣଶୀର୍ଣ୍ଣ, କ୍ଷୀଣବଳ, କୃଶକାୟ, ହୀନାୟୁ, ସନ୍ତତ ରୋଗକ୍ଲିଷ୍ଟ । ଅନେକ ଅଚିହ୍ନାରୋଗ ଦେଖାଦେଉଛି, ଓ ରୋଗ ଚିହ୍ନିବା ବିଶାରଦ ବୈଦ୍ୟ ନାହାନ୍ତି । ରୋଗୀ ସଂଖ୍ୟା ଯେତେ ବୃଦ୍ଧି ହେଉ ନାହିଁ, ବୈଦ୍ୟ ସଂଖ୍ୟା ତେତେ ବୃଦ୍ଧି ହେଉଛି ଆୟୁର୍ବେଦୀୟ ଚିକିତ୍ସା ପ୍ରତି ସରକାରଙ୍କର ସହାନୁଭୂତି ସେତେ ବେଶି ନାହିଁ, କି ଲୋକସାଧାରଣଙ୍କର ଆୟୁର୍ବେଦପ୍ରତି ବିଶ୍ୱାସ ନାହିଁ । ଡାକ୍ତରି ଚିକିତ୍ସା, ଏଲୋପାଥିକ୍ ଔଷଧ ଏ ଯୁଗର ପ୍ରଧାନ ଚିକିତ୍ସା । ଏଣେ ହୋମିଓପାଥିକ୍ ଡାକ୍ତର ସଂଖ୍ୟା କ୍ରମେ ବୃଦ୍ଧିପାଉଛି । ପୁଣି ଜଳଚିକିତ୍ସା, ଆଲୋକ ଚିକିତ୍ସା, ବାଇଓକେମିକ୍ ଚିକିତ୍ସା, ହାକିମି ଚିକିତ୍ସା, ବୈଦ୍ୟୁତିକ ଚିକିତ୍ସା, ଏପରି କେତେ ଅଭିନବ ଚିକିତ୍ସାପ୍ରଣାଳୀ ଆସି ଉପସ୍ଥିତ । ଡାକ୍ତର ନାନାରକମର ଦେଖାଦେଲେଣି । ଆୟୁର୍ବେଦ ଚିକିତ୍ସକଙ୍କର ସଂଖ୍ୟା ମଧ୍ୟ ବଢ଼ୁଛି । ପ୍ରତ୍ୟେକଙ୍କର ଅଭିମାନ ଯେ, ତାଙ୍କ ଚିକିତ୍ସାପ୍ରଣାଳୀ ସର୍ବଶ୍ରେଷ୍ଠ ।

ଭାରତୀୟ ଆୟୁର୍ବେଦୋକ୍ତ ଔଷଧମାନ ବନୌଷଧି ପ୍ରସ୍ତୁତ ଏବଂ ଉଦ୍ଭିଜ୍ଜନିର୍ମିତ । ଆଜିକାଲିର କବିରାଜ ମହାଶୟମାନେ ବନୌଷଧି ଚିହ୍ନନ୍ତି ନାହିଁ । ବଣିଆ ଦୋକାନହିଁ ଏମାନଙ୍କର ଏକମାତ୍ର ଆଶ୍ରୟସ୍ଥଳ । ବଣିଆ କେତେ କାଳର ପୁରୁଣା ଚେରମୂଳ ଦୋକାନରେ ପକାଇ ରଖିଥାଏ । ବୈଦ୍ୟମାନେ ତାବ ପଠାଇ ଦେଲେ ସେ ଅସର୍ପା ଲଣ୍ଡି ମିଶ୍ରିତ ମସଲା ଯୋଗାଇଦିଏ । କବିରାଜମାନେ ସେଥିରେ ମୋଦକ ବଟିକା ତୈଳ ଘୃତ ପ୍ରଭୃତି ପ୍ରସ୍ତୁତ କରିଦିଅନ୍ତି । କେହି ପରିଶ୍ରମ କରି ଭସ୍ମ ମାରନ୍ତି ନାହିଁ । ଭସ୍ମମାନ ସେହି ବଣିଆ ଦୋକାନରୁ ଆସେ । ଏଥିରେ ଭାରତୀୟ ଔଷଧର ଯେବେ ଗୁଣ ନ ହେଲା, ତେବେ ଆଶ୍ଚର୍ଯ୍ୟର କଥା କିଛି ନାହିଁ । ଯେଉଁ ଜ୍ଞାନପିପାସା ବଳରେ ଲୋକେ ଆଜି ଆକାଶରେ ଉଡ଼ୁଛନ୍ତି ସେପରି ଜ୍ଞାନପିପାସା ଥିଲେ ଆଜି ଚେର ମୂଳ ଚିହ୍ନିବାପାଇଁ ବା ସଂଗ୍ରହକରିବାପାଇଁ ଆମ୍ଭମାନଙ୍କୁ ବଣିଆ ଦୋକାନ ଆଶ୍ରୟ କରିବାକୁ ପଡ଼ନ୍ତା ନାହିଁ । ଅନେକ ବୈଦ୍ୟ ସମ୍ମେଳନୀ ହେଉଛି, ବକ୍ତୃତା ଦିଆଯାଉଛି, ମାତ୍ର କାର୍ଯ୍ୟରେ କିଛି ହେଉ ନାହିଁ । ଔଷଧର ମୂଳ ସାମଗ୍ରୀ ବନସ୍ପତି ! ବନସ୍ପତିର ଅନୁସନ୍ଧାନ ଓ ଆବିଷ୍କ୍ରିୟା କାର୍ଯ୍ୟ ବୈଦ୍ୟଙ୍କ ପ୍ରଧାନ କାର୍ଯ୍ୟ । ମାତ୍ର କେହି ସେ କାର୍ଯ୍ୟ ଆଦୌ ଦେଖୁ ନାହିଁ । ଶାସ୍ତ୍ରଲିଖିତ ଅନେକ ବନୌଷଧି ଏପର୍ଯ୍ୟନ୍ତ ଅଧିକାଂଶ ବୈଦ୍ୟଙ୍କୁ ଜଣା ନାହିଁ । ବନସ୍ପତିର ଉଦ୍ୟାନ ନାହିଁ, ଓ ବନ ଜଙ୍ଗଲକୁ ଯାଇ କେହି ତାହାର ଅନୁସନ୍ଧାନ କରୁନାହିଁ । ଜୀବନୀୟବର୍ଗର ଔଷଧିମାନ ଏପର୍ଯ୍ୟନ୍ତ ଅପ୍ରାପ୍ୟ, ଏ ଔଷଧିମାନ ଜୀବନୀଶକ୍ତି ବୃଦ୍ଧି କରେ; ତା ଅଭାବରେ ଅନ୍ୟାନ୍ୟ ଚେରମୂଳ ପକାଇ ବୈଦ୍ୟମାନେ କାମ ଚଳାଇ ଦେଉଛନ୍ତି । ଏପରି ପରିସ୍ଥିତିରେ ଦେଶୀୟ ଔଷଧ ଫଳପ୍ରଦ ହେଉ ନାହିଁ । ଲୋକଙ୍କର ତାହିଁରୁ କ୍ରମେ ବିଶ୍ୱାସ ତୁଟିଯାଉଛି । ଆଜିକାଲି ଯୁଗରେ ଡାକ୍ତରିବିଦ୍ୟାର ଅସ୍ତ୍ରଚିକିତ୍ସା ପ୍ରଭୂତ ଧ୍ୟାତି ଲାଭକଲାଣି । ଆୟୁର୍ବେଦଚିକିତ୍ସକମାନେ ଅସ୍ତ୍ରଚିକିତ୍ସା ଜାଣନ୍ତି ନାହିଁ । ଆୟୁର୍ବେଦ ଶିକ୍ଷା ସଙ୍ଗେ ଅସ୍ତ୍ରଚିକିତ୍ସା ଯୁକ୍ତ ହେଲେ ମଣିକାଞ୍ଚନର ସଂଯୋଗ ହୁଅନ୍ତା । ଆୟୁର୍ବେଦରେ ରୋଗର ନିଦାନ ଯେପରି ବିସ୍ତୃତ ଓ ବିଶଦ ଭାବରେ ଅଛି, ସେପରି ନିଦାନ ଅନ୍ୟତ୍ର ନାହିଁ । ବିଶାରଦ ଆୟୁର୍ବେଦ ଚିକିତ୍ସକ ନାଡ଼ୀ ଦେଖି ରୋଗର ସମସ୍ତ ନିଦାନ କହିଦିଅନ୍ତି । ଅନ୍ୟାନ୍ୟ ଚିକିତ୍ସକମାନେ ସେପରି କହି ପାରିବେ ନାହିଁ । ସେମାନଙ୍କର ଷ୍ଟେଥେସ୍କୋପ୍ ଓ ଥର୍ମୋମିଟର୍ ନାମକ ଯନ୍ତ୍ର ପ୍ରଧାନ ସହାୟ । ସେହି ଯନ୍ତ୍ର ସାହାଯ୍ୟରେ ସେମାନେ ଶରୀରର ତାପ, ହୃତ୍ପିଣ୍ଡର ବଳାବଳ ସ୍ଥିର କରନ୍ତି । ହୋମିଓପାଥିକ୍ ଚିକିତ୍ସକମାନେ ମଧ୍ୟ ଏ ଯନ୍ତ୍ରର ସାହାଯ୍ୟ ନେଉଛନ୍ତି । ହୋମିଓପାଥିକ୍ ଚିକିତ୍ସାରେ ପ୍ରତ୍ୟେକ ଔଷଧ କି କି ଲକ୍ଷଣ ଥିଲେ ପ୍ରୟୋଗ କରାଯିବ ତାହାର ବିବରଣ ଲେଖା ଅଛି । ସବୁ ଲକ୍ଷଣକୁ ମିଳାଇ ଔଷଧ ନିର୍ଣ୍ଣୟ କରିବା ଚିକିତ୍ସକଙ୍କ ତୀକ୍ଷ୍ଣ ବୁଦ୍ଧି ଓ ଅଭିଜ୍ଞତା ଉପରେ ନିର୍ଭର କରେ । ମାତ୍ର ଆଜିକାଲି ଯେ ଖଣ୍ଡେ ସାର୍ଟିଫିକେଟ୍ ହାସଲ କରିପାରିଲା ସେ ଜଣେ ଡାକ୍ତର । ଆଜିକାଲି ଟମାଟି ଉପରେ, ଅଳ୍ପ ଜାଣି ବହୁତ ବଖାଣି ବିଶେଷ ଲାଭବାନ୍ ହେବା ଚେଷ୍ଟା ସବୁଠାରେ ଦେଖାଯାଏ । ଏ ପ୍ରବୃତ୍ତି ସକଳ ଅନର୍ଥର ମୂଳ । ଅର୍ଥଚିନ୍ତା ଲୋକଙ୍କୁ ବଡ଼ ବ୍ୟାକୁଳ କରିପକାଉଛି । ଅଳ୍ପ ଆୟାସରେ, ଅଳ୍ପ ପରିଶ୍ରମରେ, ଅଳ୍ପ ବୁଦ୍ଧି ଖର୍ଚ୍ଚ କରି କିପରି ବିଶେଷ ଲାଭବାନ୍ ହେବ, ଏହାହିଁ ଲୋକଙ୍କ ମସ୍ତିଷ୍କରେ ସର୍ବଦା ଖେଳା କରୁଛି । ରୋଗୀର ଦୁଃଖରେ ଦୁଃଖୀ ହୋଇ ଚିକିତ୍ସା କରିବା ଚିକିତ୍ସକ ଅତି ବିରଳ ! ପ୍ରାଚୀନ ଚିକିତ୍ସକମାନଙ୍କର ଯେ ଭାବ ଥିଲା ମାତ୍ର ଆଧୁନିକ ଚିକିତ୍ସକମାନଙ୍କର ସେ ଭାବ କ୍ରମେ ଲୋପ ପାଇଆସୁଛି । ବର୍ତ୍ତମାନ ଯାହାର ଅର୍ଥ ନାହିଁ, ଯେ ଦୀନଦୁଃଖୀ ଦରିଦ୍ର, ସେ ସୁଚିକିତ୍ସାରୁ ଏକାବେଳକେ ବଞ୍ଚିତ, ଚିକିତ୍ସାରାଜ୍ୟରେ ତାର ଅଧିକାର ନାହିଁ । ପୁରୀର ପ୍ରାତଃସ୍ମରଣୀୟ ସ୍ୱର୍ଗୀୟ ମାଗୁଣି ବ୍ରହ୍ମା ବୈଦ୍ୟରତ୍ନ ଜଣେ ଆଦର୍ଶ ଚିକିତ୍ସକ ଓ ବିଶାରଦ ବୈଦ୍ୟ ଥିଲେ । ଏଣେ ବଜାରରେ ଆଜିକାଲି ନାନା-

ପ୍ରକାର ଖାଦ୍ୟ ବିକ୍ରି ହେଉଛି । କିଏ ସେ ଖାଦ୍ୟ ପ୍ରସ୍ତୁତ କରୁଛି, ତାହା କେହି ବୁଝୁନାହିଁ । ଖରାପ ତେଲ ଓ ଖରାପ ଘିଅରେ ବଜାର ପୂର୍ଣ୍ଣ । ହୋଟେଲ୍ ସଂଖ୍ୟା ପ୍ରତିଦିନ ବଢ଼ୁଛି; ସମସ୍ତେ ଖାଦ୍ୟଦ୍ରବ୍ୟ ବିକ୍ରୟ କରିବା ବ୍ୟବସାୟ କଲେଣି । କାହାର ପରିଷ୍କାର ଓ ପରିଚ୍ଛନ୍ନତା ପ୍ରତି ଦୃଷ୍ଟି ନାହିଁ । ଅଳ୍ପ ବ୍ୟୟରେ ବେଶି ଲାଭ ଏମାନଙ୍କ ଲକ୍ଷ୍ୟ । ବଜାରରେ ଯେଉଁସବୁ ଖାଦ୍ୟ ବିକ୍ରି ହୁଏ ତହିଁରୁ ବାରପଣ ଧୂଳିପୂର୍ଣ୍ଣ । ବାସି ଜିନିଷ ମଧ୍ୟ ସେଥି ମଧ୍ୟରେ ବିକ୍ରି କରି ଯାଉଛି । ଏ ସବୁ ଖାଦ୍ୟ ମଧ୍ୟ ରୋଗର କାରଣ । ଏହାପରେ ନାନା ପ୍ରକାର ଅସ୍ୱାଭାବିକ ପାରିପାର୍ଶ୍ୱିକ ଅବସ୍ଥା ଲୋକଙ୍କ ଉପରେ ରାଜତ୍ୱ କରୁଛି । ଅର୍ଥ ପାଇଁ ଲୋକେ ନାନା ରୋଗ କିଣିଆଣୁଛନ୍ତି । କଳ କାରଖାନାମାନଙ୍କରେ କାର୍ଯ୍ୟ କରିବା, ରେଲ ମଟର୍ ପ୍ରଭୃତିରେ ଯାତାୟାତ କରିବା ଦ୍ୱାରା ଲୋକେ ନାନା ପ୍ରକାର ଅସୁବିଧା ଭୋଗ କରି ରୋଗକୁ ମଧ୍ୟ ଆବାହନ କରି ଆଣୁଛନ୍ତି । ପଲ୍ଲୀର ଅବସ୍ଥା ମଧ୍ୟ ଅତି ଶୋଚନୀୟ । ପଲ୍ଲୀରେ ବିଶୁଦ୍ଧ ପାନୀୟ ଜଳ ନାହିଁ, ବିଶୁଦ୍ଧ ପବନ ମଧ୍ୟ ନାହିଁ, ଦଳ ପାଣିରେ ଗାଧୋଇବା, ଦଳ ପାଣି ପିଇବା, ଗ୍ରାମ ଦାଣ୍ଡରେ ଖତଗଦା, ଗ୍ରାମ ଦୁଇ ମୁଣ୍ଡରେ ଗୁହ ପଡ଼ିଆ, ଏ ସବୁ ମଧ୍ୟ ରୋଗର ପ୍ରଧାନ କାରଣ । ଅଧିକାଂଶ ପଲ୍ଲୀବାସୀ ରୋଗାକ୍ରାନ୍ତ । ଏଣେ ଅଧିକାଂଶ ପଲ୍ଲୀବାସୀ ଦୁଇ ଓଳି ଦୁଇ ମୁଠା ଖାଇବାକୁ ପାଉନାହାନ୍ତି; ତେଣେ ନାନା ପ୍ରକାର ଅସ୍ୱାସ୍ଥ୍ୟକର ଆବର୍ଜନାରେ ପଲ୍ଲୀ ପରିପୂର୍ଣ୍ଣ । ପଲ୍ଲୀ ଏକ ପ୍ରକାର ରୋଗର ଖଣି ହୋଇଅଛି । ଅବସ୍ଥା ନିଦାରୁଣ । ବର୍ତ୍ତମାନ ଦେଖାଯାଏ ଯେ, ପ୍ରତ୍ୟେକ ପଲ୍ଲୀବାସୀ ଯେ କୌଣସି ଗୋଟିଏ ରୋଗ ଦ୍ୱାରା ଆକ୍ରାନ୍ତ । କହନ୍ତି, ରୋଗ ଯନ୍ତ୍ରଣା ଯମ ଯନ୍ତ୍ରଣାଠାରୁ ବଳେ । ରାଜା, ପ୍ରଜା, ଧନୀ, ଦରିଦ୍ର, ଯେ କୁହନ୍ତୁ, ରୋଗ ଆଗରେ ସମସ୍ତେ ନତମସ୍ତକ; ରୋଗ ପାଖରେ ସମସ୍ତେ ସମାନ । ରୋଗ ମଧ୍ୟରେ କେହି ସାନ ବଡ଼ ନାହିଁ । ସବୁ ରୋଗର ଯନ୍ତ୍ରଣାଦାୟିକା ଶକ୍ତି ସମାନ । ସାମାନ୍ୟ କାଛୁ କୁଣ୍ଡିଆର ଯେପରି ପ୍ରତାପ, କୁଷ୍ଠ ପ୍ରଭୃତି ବଡ଼ ବଡ଼ ରୋଗର ସେହି ପରି ପ୍ରତାପ । ଯେତେବେଳେ ଯେଉଁ ରୋଗ ଆସେ, ସେ ତା କ୍ଷମତା ପ୍ରତାପ ବିସ୍ତାର କରେ । ବାହ୍ୟ ଜଗତରେ ଦୋଷ ପାଇଁ ଦଣ୍ଡ ଆଜ୍ଞା ହୋଇ ରହିଛି । ଦଣ୍ଡବିଧି ଆଇନ୍‌ରେ ପ୍ରତ୍ୟେକ ଅପରାଧ ପାଇଁ ଦଣ୍ଡ ନିର୍ଦ୍ଦିଷ୍ଟ ଅଛି । ଅପରାଧ କଲେ ପୁଲିସ୍ ଧରି ନେବ, ମାଜିଷ୍ଟ୍ରେଟ୍ ସାହେବ ଦଣ୍ଡ ଦେବେ । ଶରୀର ଭିତର ସେହିପରି ଗୋଟିଏ ରାଜ୍ୟ । ପିଣ୍ଡ ବ୍ରହ୍ମାଣ୍ଡ ଏକା ବୋଲି କହନ୍ତି । ଶରୀର ଯନ୍ତ୍ର ଅନେକ ଗୁଡ଼ିଏ ନିୟମ ଦ୍ୱାରା ପରିଚାଳିତ । ସେହି ସବୁ ନିୟମ ଭଙ୍ଗ କଲେ ଅପରାଧ ହୁଏ । ସେହି ଅପରାଧ ଲାଗି ଦଣ୍ଡଭୋଗ କରିବାକୁ ହୁଏ । ରୋଗମାନେ ସେହି ଦଣ୍ଡର ପ୍ରତିମୂର୍ତ୍ତି । ଔଷଧ ହେଉଛି ରୋଗରୂପ ଦଣ୍ଡ ବିରୁଦ୍ଧରେ ଅପିଲ୍ । କେଉଁଠି ଅପିଲ୍ କରି ଲୋକ ଦଣ୍ଡରୁ ମୁକ୍ତିଲାଭ କରେ, କେଉଁଠି ମଧ୍ୟ ତାହା ନାମଞ୍ଜୁର ହୋଇ ମୃତ୍ୟୁରେ ପରିଣତ ହୁଏ । କାଳ ପାଖେ ସମସ୍ତେ ପରାଜିତ । ଔଷଧ ମଧ୍ୟ ସେଠାରେ ପରାଜିତ । ଯେଉଁ ରୋଗ କାଳୃତ୍ୟୁସ୍ୱରୂପ ଆସେ, ତାର ଚିକିତ୍ସା ନାହିଁ, ତ ଔଷଧ ନାହିଁ; ବଡ଼ ବଡ଼ ବିଶାରଦ ବୈଦ୍ୟ ଡାକ୍ତରମାନେ ସେଠାରେ ପରାଜିତ; ସକଳ ଚିକିତ୍ସା ସେଠାରେ ନିରର୍ଥକ । ରାଜଚକ୍ରବର୍ତ୍ତୀ ହୁଅନ୍ତୁ ବା ପର୍ଣ୍ଣ କୁଟୀରବାସୀ ହେଉ, କାହାର ନିସ୍ତାର ନାହିଁ । କି କି ଲକ୍ଷଣ ଦେଖା ଗଲେ ରୋଗର ଆଉ ଉପଶମ ହେବ ନାହିଁ, ଏ କଥା ମଧ୍ୟ ଶାସ୍ତ୍ରରେ ନିର୍ଦ୍ଦିଷ୍ଟ ଅଛି । ଏ ସବୁ ଲକ୍ଷଣକୁ ଅରିଷ୍ଟ ଲକ୍ଷଣ କହନ୍ତି । ଅରିଷ୍ଟ ଲକ୍ଷଣର ଅର୍ଥ ମୃତ୍ୟୁ ଲକ୍ଷଣ । ଆୟୁର୍ବେଦ ଶାସ୍ତ୍ରରେ ରୋଗର ନିଦାନ, ଔଷଧର ବ୍ୟବସ୍ଥା, ପଥ୍ୟା ପଥ୍ୟର ବ୍ୟବସ୍ଥା, ଅରିଷ୍ଟ ଲକ୍ଷଣ ନିର୍ଣ୍ଣୀତ ଅଛି । କଥା ଅଛି, ଦଶ ବୈଦ୍ୟ ସମୋ ପଥ୍ୟଃ, ପଥ୍ୟରେ ରହିଲେ ଅନେକ ରୋଗ ଉପଶମ ହେବ । ପଥ୍ୟ କଣ ? ରୋଗୀର ବଳାବଳ ଓ କାଳ ଆଦି ବଳ ଦୃଷ୍ଟିରେ ଯେଉଁ ଖାଦ୍ୟ ଖାଇଲେ ସହଜରେ ପାକ ହୋଇ ଯିବ, ସେପରି ଖାଦ୍ୟ ଖାଇବା ଉଚିତ । ଏହାକୁ ପଥ୍ୟ କହନ୍ତି । ଶରୀର ମଧ୍ୟରେ ଜଠରାଗ୍ନି ଅଛି; ସେହି ଅଗ୍ନି ସକଳ ଖାଦ୍ୟ ପଦାର୍ଥକୁ ଜୀର୍ଣ୍ଣ କରେ । ଅପରିମିତ ଆହାର କଲେ ସେ ଅଗ୍ନି ବିକୃତ ହୁଏ । ତେଣିକି ନାନା ରୋଗ ଜନ୍ମେ । ସବୁ ଲୋକ ସବୁ ଜିନିଷ ଖାଇ ହଜମ କରି ପାରିବେ ନାହିଁ । ଜିହ୍ୱା ଲାଳସାର ବଶବର୍ତ୍ତୀ ହୋଇ ଲୋକ ଯାହାତାହା ଖାଇ ଦିଏ; ଫଳରେ ଅଜୀର୍ଣ୍ଣ ହୁଏ । ଅଜୀର୍ଣ୍ଣ ଏକ ପ୍ରକାର ରୋଗ । ସାମାନ୍ୟ ସାମାନ୍ୟ ରୋଗ ମୁଷ୍ଟିଯୋଗଦ୍ୱାରା ଆରୋଗ୍ୟ ହୋଇ ଯାଏ । ମୁଷ୍ଟିଯୋଗନିର୍ଦ୍ଦିଷ୍ଟ ଔଷଧମାନ ସହଜପ୍ରାପ୍ୟ, କେବଳ ତେଲ ମୂଳଦ୍ୱାରା ପ୍ରସ୍ତୁତ । ଏଗୁଡ଼ିକ ସହଜଲଭ୍ୟ ଏବଂ ବିଶେଷ ଉପକାରୀ । ଆୟୁର୍ବେଦ ମତରେ ରୋଗ ହେବା ମାତ୍ର କୌଣସି ଔଷଧ ଦେବାର ବ୍ୟବସ୍ଥା ନାହିଁ । ରୋଗ ମଧ୍ୟରେ ଜ୍ୱର ପ୍ରଧାନ । ଜ୍ୱର ରୋଗମାନଙ୍କ ମଧ୍ୟରେ ରାଜା । ଜ୍ୱର ହେବା ମାତ୍ରକେ ଔଷଧ ଦେବାର ବ୍ୟବସ୍ଥା ନାହିଁ । ଜ୍ୱର ହେବା ମାତ୍ରକେ ଲଙ୍ଘନ, ମଧ୍ୟରେ ପାଚନ ଓ ଶେଷରେ ବଟିକା । ଆଜି କାଲି ରୋଗୀର ତେତେ ଧୈର୍ଯ୍ୟ ନାହିଁ, ସେ ଚାହେଁ ଆଶୁ ପ୍ରତିକାର । ବୈଦ୍ୟଶାସ୍ତ୍ର ମତରେ ପ୍ରକୃତିର ଅନୁକୂଳ ଚିକିତ୍ସା କର୍ତ୍ତବ୍ୟ । ପ୍ରକୃତିବିରୁଦ୍ଧ ଚିକିତ୍ସା କଲେ ଏକ

ରୋଗରୁ ନାନା ପ୍ରକାର ଉପସର୍ଗ ଜନ୍ମି ଭିନ୍ନ ଭିନ୍ନ ରୋଗର ଉତ୍ପତ୍ତି କରାଏ । ସୁତରାଂ ଚିକିତ୍ସା ଚିକିତ୍ସା କାଳୋଚିତ ହେଲେ ଭଲ । ରସର ପରିପାକ ନ ହେଲେ ରୋଗର ଉପଶମ ହୁଏ ନାହିଁ । ଶରୀରରେ ରସକ୍ଷୟ ରୋଗର ମୂଳ-କାରଣ; ରସାଂଶ କ୍ଷୟ ହେଲେ ରୋଗର ଉପଶମ ହୁଏ । ଦେହରୁ ରସାଂଶ ଉଣା କରାଇବା ଉଦ୍ଦେଶ୍ୟରେ ଏକାଦଶୀ ପ୍ରଭୃତି ଉପବାସର ବ୍ୟବସ୍ଥା ଅଛି । ମାସକେ ଥରେ ଦିଥର ଉପବାସ କଲେ ଦେହର ରସାଂଶ କମି ଯାଏ । ରସ କଅଣ ? ବାତ, ପିତ୍ତ ଓ କଫର ବୈଷମ୍ୟ ହେଲେ ରସବୃଦ୍ଧି ହୋଇଛି ବୋଲି କୁହାଯାଏ । ଦୋଷବୈଷମ୍ୟରୁ ରୋଗ ହୁଏ ଓ ଦୋଷ ସାମ୍ୟରେ ଶରୀର ସୁସ୍ଥ ଥାଏ । ନାନା କାରଣରୁ ବୈଷମ୍ୟ ହୋଇଥାଏ । ସେ ସବୁ କାରଣ ବୈଦ୍ୟଶାସ୍ତ୍ର ପାଠ କଲେ ଜଣାଯାଏ । ସେ ସବୁ କାରଣ ଅନେକ । ବାୟୁର ପ୍ରଧାନ ଆଶ୍ରୟସ୍ଥଳ ପକ୍ୱାଶୟ ଓ ଗୁହ୍ୟନାଡ଼ୀ । ପିତ୍ତର ପ୍ରଧାନ ଆଶ୍ରୟସ୍ଥଳ ଯକୃତ ଓ ପ୍ଲୀହା ଏବଂ କଫର ପ୍ରଧାନ ଆଶ୍ରୟସ୍ଥଳ ଆମାଶୟ ଓ ହୃଦୟ । ଆହାର ବିହାର ବିଷୟରେ ସାବଧାନ ଥିଲେ ରୋଗ ଉତ୍ପନ୍ନ ହେବାର ବିଶେଷ ଆଶଙ୍କା ନ ଥାଏ । ଠିକ୍ ନିଦାନ ସ୍ଥିର କରି ଔଷଧ ବ୍ୟବସ୍ଥା ନ କଲେ ରୋଗସଙ୍କର ହୁଏ । ରୋଗସଙ୍କରର ଅର୍ଥ ଏକ ରୋଗରୁ ଅନ୍ୟାନ୍ୟ ରୋଗର ଉତ୍ପତ୍ତି । ବୁଦ୍ଧିମାନ୍ ବିଶାରଦ ବୈଦ୍ୟ ରୋଗୋତ୍ପତ୍ତିର ହେତୁ ବୁଝି, ଲକ୍ଷଣମାନ ସ୍ଥିର କରି, ନାଡ଼ି ଦେଖି, ମଳ, ମୂତ୍ର, ଜିହ୍ୱାପ୍ରଭୃତି ପରୀକ୍ଷା କରି ଔଷଧ ବ୍ୟବସ୍ଥା କରନ୍ତି । ଚିକିତ୍ସକ ହେବା ସହଜ କଥା ନୁହେଁ, ଆଜିକାଲି 'ପେଟବିକଳରେ ମାଥିଆ ଯୋଗୀ' ପରି ଚିକିତ୍ସକ ସଂଖ୍ୟା ଦେଶରେ ଛତୁ ପରି ଫୁଟିଉଠୁଛି । ସହରବଜାରରେ ଔଷଧାଳୟର ସଂଖ୍ୟା ବଢ଼ୁଛି । ଦେଖାଯାଏ, ଚିକିତ୍ସକ ସଂଖ୍ୟା ଯେତେ ବୃଦ୍ଧି ପାଉଛି, ଦାୟିତ୍ୱଜ୍ଞାନ ସେତେ କମି ଯାଉଛି । ରୋଗୀର ଚିକିତ୍ସା ଯେ ଗୋଟିଏ ପ୍ରଧାନ ଧର୍ମ କାର୍ଯ୍ୟ, ଏ କଥା ଚିକିତ୍ସକମାନେ ବୁଝୁନାହାନ୍ତି ।

ରୋଗ ମାନଙ୍କର ପରମଶତ୍ରୁ; ରୋଗ ହେବାମାତ୍ରେ ତାକୁ ହେଳା କରିବ ନାହିଁ । ରୋଗ ଆକ୍ରମଣ କରିବା ସଙ୍ଗେ ସଙ୍ଗେ ଚିକିତ୍ସକଙ୍କ ପରାମର୍ଶ ନେବ ।

ସନ୍ଦର୍ଭଲେଖକ ଶ୍ରୀ ଜଗବନ୍ଧୁ ସିଂହ ।]

୩ । (ଲକ୍ଷଣାର୍ଥ) ମନ୍ଦ ଅଭ୍ୟାସ—3. A bad habit.

**ରୋଗ ଆକର୍ଷିବା**—ଦେ. କ୍ରି—ରୋଗାକ୍ରମଣର ଆରମ୍ଭ—
Roga ākarshibā The attack of a disease.
ରୋଗଆସା रोगआकर्षणाकरना [ରୋଗ ଆସିବା—ଅନ୍ୟରୂପ

**ରୋଗକାରକ**—ସଂ. ବିଣ—ପୀଡ଼ା ଉତ୍ପାଦକ—
Rogakāraka Causing illness; deleterious.
[ରୋଗକୃତ୍—ଅନ୍ୟରୂପ]

**ରୋଗକ୍ଲିଷ୍ଟ**—ସଂ. ବିଣ (ତୃତୀୟା ତତ୍)—ରୋଗଦ୍ୱାରା ଅଭିଭୂତ; ପୀଡ଼ିତ—
Rogaklishṭa Afflicted with disease; diseased.
(ରୋଗଗ୍ରସ୍ତ—ଅନ୍ୟରୂପ)

**ରୋଗକ୍ଷୟ**—ସଂ. ବି (ଷଷ୍ଠୀ ତତ୍)—ରୋଗରୁ ସମ୍ପୂର୍ଣ୍ଣରୂପେ ଆରୋଗ୍ୟ
Rogakshaya ଲାଭ—Complete cure of a disease.
(ରୋଗ ଶେଷ, ରୋଗ ନାଶ—ଅନ୍ୟରୂପ) [ଉ—ଋଣ ଶେଷ, ରୋଗ ଶେଷ, ଯାଙ୍କର କେବେ ନ ରଖିବ ଲେଶ । ଛଗ]

**ରୋଗ ଖାଇବା**—ଦେ. କ୍ରି—କୌଣସି ବ୍ୟକ୍ତିଙ୍କୁ ରୋଗ ପ୍ରବଳଭାବରେ
Roga khāibā ଆକ୍ରମଣ କରିବା—A disease over-
ରୋଗ ଖାଓଯା taking a person or overpowering a
रोगखाना person.
(ରୋଗ ଗ୍ରାସିବା, ରୋଗ ଘୋଟିବା, ରୋଗ ମାଡ଼ି ବସିବା—ଅନ୍ୟରୂପ)

**ରୋଗଘ୍ନ**—ସଂ. ବିଣ (ରୋଗ+ହନ୍ ଧାତୁ+କର୍ତ୍ତୃ• ଅ)—ଯାହା ରୋଗ
Rogaghna ନାଶ କରେ; ରୋଗ ନାଶକ—Efficacious in curing illness. ସଂ. ବି—୧ । ଔଷଧ—1. Medicine. ୨ । ବୈଦ୍ୟ—2. Physician.

**ରୋଗଚର୍ଯ୍ୟା**—ସଂ. ବି (ଷଷ୍ଠୀ ତତ୍)—ରୋଗକୁ ଆରୋଗ୍ୟ କରିବାପାଇଁ
Rogacharjyā ଅବଲମ୍ବିତ ନାନା ଉପାୟ (ଯଥା—ଔଷଧ-
(ରୋଗ ଚିକିତ୍ସା—ଅନ୍ୟରୂପ) ପ୍ରୟୋଗ, ପଥ୍ୟ ଭୋଜିବା ଆଦି)—
Treatment of disease.

**ରୋଗ ଚିହ୍ନିବା**—ଦେ. କ୍ରି—ଲକ୍ଷଣମାନ ଦେଖି ପ୍ରକୃତ ରୋଗକୁ ସ୍ଥିର
Roga chihnibā କରିବା—To correctly diagonise
ରୋଗଚେନା रोगचीह्नना a disease.
(ରୋଗ ବାରିବା—ଅନ୍ୟରୂପ)

**ରୋଗ ଛାଡ଼ିବା**—ଦେ. କ୍ରି—ରୋଗର ଆକ୍ରମଣରୁ ରକ୍ଷା ପାଇବା,
Roga chhārdibā ଆରୋଗ୍ୟ ହେବା—A disease leaving
ରୋଗଛାଡ଼ା a person; being cured of a disease;
रोगछोड़ना recovering from illness.
(ରୋଗ ଭଲ ହେବା, ରୋଗ ଛାଡ଼ିଯିବା—ଅନ୍ୟରୂପ)

**ରୋଗଜନକ**—ସଂ.ବି (ରୋଗ+ଜନ୍ ଧାତୁ+କର୍ତ୍ତୃ.ଅକ)—ଯାହା ରୋଗ
Rogajanaka ଜାତ କରେ—Producing disease; causing illness.

**ରୋଗ ଡେଇଁବା**—ଦେ. କ୍ରି—ଏକ ବ୍ୟକ୍ତିଠାରୁ ଅନ୍ୟ ବ୍ୟକ୍ତିଙ୍କୁ ରୋଗର
Roga deiṅbā ସଂକ୍ରମଣ—Infection by a contagious
ରୋଗେର ଛୋଯାଁଚଲାଗା disease; a contagious disease
रोगकीछूतलगना infecting a person.

**ରୋଗନ୍**—ବୈଦେ. ବି—ରୋଗନ୍ (ଦେଖ)
Rogan Rogan. (See)

**ରୋଗଣ ଚିତ୍ର**—ଦେ.ବି (ଫା. ରୋଗନ+ସଂ. ଚିତ୍ର)—ଯେଉଁ ଚିତ୍ର ଉପରେ
Rogaṇa chitra ରୋଗନ୍ ବା ବାର୍ଣ୍ଣିସ୍ ଲିପା ହୋଇଥିବାରୁ
ରୋଗଣଚିତ୍ର ତାହା ଚକ୍ ଚକ୍ କରୁଥାଏ—A varnished
रोगनदिआहुआ चित्र picture. [ଉ—ରୋଗଣ ଚିତ୍ର ଅତୁଲ, ପିତୁଳା, କେ କଲ୍ପ କରି କେହି ସ୍ଥିର ହେଲା । ଭଞ୍ଜ. ଲାବଣ୍ୟବତୀ । ]

**ରୋଗଣା**—ଦେ ବିଣ. ପୁଂ (ସଂ. ରୁଗ୍ଣ)—ରୁଗ୍ଣ—Sickly.
Rogaṇā ରୋଗା रोगी (ରୋଗଣିଆ—ଅନ୍ୟରୂପ)
[ରୋଗଣୀ, ରୋଗଣେଇ—ସ୍ତ୍ରୀ]

ରୋଗ ଧରିବା—ଦେ. କ୍ରି—ପୀଡ଼ିତ ହେବା—
Roga dharibā Suffering from a disease; attack
ৰোগধৰা रोगपकड़ना of a disease; falling ill.

ରୋଗନ୍—ବୈଦେ. ବି (ଫା. ରୋଗନ୍)—୧। ବାର୍ଣ୍ଣିସ୍—1. Varnish;
Rogan french polish ୨। ଚମ୍ ଆଦିର ଚମତ୍କାରୀ ଚକ୍ଚକ୍
ৰোগন চক୍ କରିବା ନିମନ୍ତେ ବ୍ୟବହୃତ ସ୍ନେହ ପଦାର୍ଥ—
रोगन 2. Leather polish.

ରୋଗନାଶ—ସଂ. ବି (୬ଷ୍ଠୀ ତତ୍)—ରୋଗ କ୍ଷୟ (ଦେଖ)
Roganāsa Rogakshaya. (See)

ରୋଗନାଶକ—ସଂ. ବିଣ—ରୋଗଘ୍ନ (ଦେଖ)
Roganāsaka Rogaghna. (See)

ରୋଗ ନିବୃତ୍ତି—ସଂ. ବି (୬ଷ୍ଠୀ ତତ୍)—ରୋଗଶାନ୍ତି (ଦେଖ)
Roga nibrutti Roga sānti (See)

ରୋଗ ନିର୍ଣ୍ଣୟ—ସଂ. ବି (୬ଷ୍ଠୀ ତତ୍)—ଲକ୍ଷଣାଦି ପରୀକ୍ଷାପୂର୍ବକ ପ୍ରକୃତ
Roga nirnaya ରୋଗର ସ୍ଥିରୀକରଣ—Ascertaining
the true disease by correct diagnosis.

ରୋଗ ପରୀକ୍ଷା—ସଂ. ବି (୬ଷ୍ଠୀ ତତ୍)—ରୋଗ ନିର୍ଣ୍ଣୟ କରିବାପାଇଁ
Roga pariksha ରୋଗୀକୁ ପରୀକ୍ଷା କରିବା—Diagnosis
of a disease.

ରୋଗ ପୀଡ଼ା—ସଂ. ବି (ମ.ପ. ଲୋ)—ରୋଗର ଯନ୍ତ୍ରଣା ବା କଷ୍ଟ,ରୋଗ
Roga pirdā ଜନିତ କଷ୍ଟ—The pain resulting from
(ରୋଗ ପ୍ରକୋପ, ରୋଗ ଯନ୍ତ୍ରଣା—ଅନ୍ୟରୂପ) a disease.

ରୋଗ ଫୋଗ—ଗ୍ରା. ବି (ନିରର୍ଥକ ଦ୍ୱିତୀୟ ସହଚର)—ରୋଗ ଆଦି—
Roga phoga Disease etc.
ৰোগটোগ रोगवग

ରୋଗ ବଇରାଗ(ଗ୍ୟ)—ଦେ. ବି (ନିରର୍ଥକ ଦ୍ୱିତୀୟ ସହଚର)—
Roga bairāga(gya) ରୋଗାଦି ଅସୁସ୍ଥତା—Illness etc.
ৰোগবইৰাগ্য रोगबईराग

ରୋଗବାସ—ଦେ. ବି—ଦୃଢ଼ଭାବେ ରୋଗର ଆକ୍ରମଣ—Firm
Rogabāsa hold of a disease on a person.
[ଉ—ସର୍ବେ ରାଜ୍ୟ ବନଖଣ୍ଡ ସମ୍ପେ ରୋଗବାସ ।
ପ୍ରାଚୀ. ଶିବସ୍ୱରୋଦୟ ।]

(ରୋଗ ଦେହରେ ବସା କରିବା—ଅନ୍ୟରୂପ)

ରୋଗବିଶିଷ୍ଟ—ସଂ. ବିଣ. ପୁଂ (ନ୍ୟସ୍ତ ତତ୍)—ବ୍ୟାଧିଯୁକ୍ତ—
Rogabisishta Diseased; sick.
(ରୋଗବିଶିଷ୍ଟା—ସ୍ତ୍ରୀ)

ରୋଗବିହୀନ—ସଂ. ବିଣ ପୁଂ (ନ୍ୟସ୍ତ ତତ୍)—ନିରୋଗ; ସୁସ୍ଥ—
Rogabihina Free from disease, healthy.
(ରୋଗହୀନ, ରୋଗରହିତ, ରୋଗଶୂନ୍ୟ—ଅନ୍ୟରୂପ)
[ରୋଗବିହୀନା, ରୋଗହୀନା, ରୋଗରହିତା, ରୋଗଶୂନ୍ୟା—ସ୍ତ୍ରୀ]

ରୋଗବୃଦ୍ଧି—ସଂ. ବି (୬ଷ୍ଠୀତତ୍)—ପୀଡ଼ାର ବୃଦ୍ଧି—
Rogabrudhi Increase of illness.

ରୋଗ ଭୂ—ସଂ. ବି (୬ଷ୍ଠୀ ତତ୍; ରୋଗର ଭୂ=ଭୂମି ବା ଉତ୍ପତ୍ତି ସ୍ଥାନ)-
Roga bhū ଦେହ; ଶରୀର—Body.

ରୋଗ ଭୋଗ—ସଂ ବି—୧। ରୋଗର ଯନ୍ତ୍ରଣା ଭୋଗ—1. Suffer-
Roga bhoga ing from illness, ୨। ରୋଗର ବ୍ୟାପ୍ତି—
2. Extent of a disease.

ରୋଗ ମୁକ୍ତ—ସଂ. ବିଣ. ପୁଂ (୫ମୀ ତତ୍)—ଆରୋଗ୍ୟ ପ୍ରାପ୍ତ—
Roga mukta Cured; recovered from illness.
(ରୋଗ ମୁକ୍ତା—ଅନ୍ୟରୂପ)

ରୋଗ ମୁକ୍ତି—ସଂ ବି (୫ମୀତତ୍)—ଆରୋଗ୍ୟ ଲାଭ—Being curep
Roga mukti of a disease; alleviation of a
disease; recovery.

ରୋଗ ଯନ୍ତ୍ରଣା—ସଂ. ବି. (ମ. ପ. ଲୋ)—ରୋଗଜନିତ କ୍ଲେଶ—
Roga jantranā Pain or pangs due to some
disease.

ରୋଗର ଘର(ରା)—ଦେ. ବି—ରୋଗ ଜନ୍ମିବାର ଅସଲ କାରଣ—
Rogara ghara(rā) The root or primary cause
ৰোগৰে ঘৰ रोगका घर of a disease.
(ରୋଗର ଜଡ଼, ରୋଗର ମୂଳ—ଅନ୍ୟରୂପ)

ରୋଗ ରାଉଳି—ଦେ. ବି. (ସହଚର)—ରୋଗ ଓ ମନ୍ତ୍ରସନ୍ତ୍ରାଦିର
Roga rāuli ପ୍ରୟୋଗଜନିତ ବିପଦ—Dangers due to
ৰোগ বিপদ either disease or incantation or
रोग टोन charm.

ରୋଗ ରାଜ—ସଂ. ବି. (୭ମୀ ତତ୍; ରୋଗ+ରାଜନ୍; ରୋଗମାନଙ୍କ
Roga rāja ମଧ୍ୟରେ ରାଜା ବା ପ୍ରଧାନ)—ରାଜଯକ୍ଷ୍ମା; କ୍ଷୟ
ରୋଗ—Consumption; pthysis.

ରୋଗ ଲକ୍ଷଣ—ସଂ. ବି (୬ଷ୍ଠୀ ତତ୍)—ପୀଡ଼ାର ବାହ୍ୟ ଚିହ୍ନ—Indi-
Roga lakshana cation or symptoms of a
disease.

ରୋଗ ଶାନ୍ତି—ସଂ. ବି. (୬ଷ୍ଠୀ ତତ୍)—ରୋଗ ଭଲ ହେବା; ଆରୋଗ୍ୟ-
Roga sānti ଲାଭ—Alleviation or cure of a
disease.

ରୋଗ ଶିଳା—ସଂ. ବି—ମନଃଶିଳା—
Roga silā Red arsenic.

ରୋଗ ଶୀର୍ଣ୍ଣ—ସଂ ବିଣ. ପୁଂ. (୩ୟା ତତ୍)—ରୋଗ ହେତୁ ଦୁର୍ବଳ—
Roga sirnna Emaciated through illness.
(ରୋଗ ଶୀର୍ଣ୍ଣା—ସ୍ତ୍ରୀ) (ରୋଗ ଶୀର୍ଣ୍ଣତା—ବି)

ରୋଗ ଶୋକ—ସଂ. ବି. (ସହଚର)—ଶାରୀରିକ ବ୍ୟାଧି ଓ ମାନସିକ
Roga soka ଦୁଃଖ—Disease and sorrow.

ରୋଗସ୍ତ—ଗ୍ରା. ବିଣ. (ସଂ. ରୋଗଗ୍ରସ୍ତ)—ରୋଗଗ୍ରସ୍ତ—Attacked
Rogasta or afflicted with any disease.
ৰোগগ্ৰস্ত रोगग्रस्त

ରୋଗହ(ହା)—ସଂ. ବିଣ (ରୋଗ+ହନ୍ ଧାତୁ+କର୍ତ୍ତୃ. ଅ; ଲୃପ୍)—
Rogaha(hā) ରୋଗଘ୍ନ; ରୋଗନାଶକ—Curing disease.
ସଂ. ବି—ବୈଦ୍ୟ—Phycisian.

ରୋଗ ହାନି—ସଂ. ବି. (୬ଷ୍ଠୀ ତତ୍)—ରୋଗ କ୍ଷୟ ( ଦେଖ )
Roga hāni Roga kshaya ( See )

ରୋଗ ହାରି—ସଂ. ବ (ଉପପଦ ସମାସ; ରୋଗ + ହୃ ଧାତୁ + କର୍ତ୍ତୃ ଇନ୍; Roga hārī ୧ମା. ୧ବ)—ରୋଗଘ୍ନ (ଦେଖ)—Rogaghna (ରୋଗ ହାରିଣୀ—ସ୍ତ୍ରୀ) (See) ସ. ବ ପୁଂ—ଚିକିତ୍ସକ—Physician.

ରୋଗ ହ୍ରାସ—ସ. ବ. (୬ଷ୍ଠୀ ତତ୍)—ପୀଡ଼ାର ଉପଶମ—Roga hrāsa Convalescence.

ରୋଗା—ଦେ. ବଣ. ପୁଂ (ସ. ରୋଗାକ୍ରାନ୍ତ)—୧ । ପୀଡ଼ିତ; ରୁଗ୍ଣ—Roga 1. Sick. ୨ । ଭଗ୍ନସ୍ୱାସ୍ଥ୍ୟ—2 Sickly; invalid. ବୋଗା ୩ । ରୋଗ ଯୋଗୁ କୃଶ ବା ଦୁର୍ବଳ—3. Weak or रोगी emaciated through illness. (ରୋଗୀ, ରୋଗଣୀ, ରୋଗେଇ—ସ୍ତ୍ରୀ)

ରୋଗା(ଗେ)ଇବା—ଦେ. କ୍ରି. ( ରୋଗ ଶବ୍ଦରୁ ଓଡ଼ିଆ ନାମ ଧାତୁ )—Rogā(ge)ibā ରୋଗରେ ଆକ୍ରାନ୍ତ ହେବା—To be attacked with a disease. বোগা হওয়া रोगी होना

ରୋଗାକ୍ରମଣ—ସ. ବ. (୬ଷ୍ଠୀ ତତ୍)—(ମନୁଷ୍ୟାଦିଙ୍କୁ) ରୋଗ ଧରିବା—Rogākramaṇa The attack of a disease; being overtaken by a disease.

ରୋଗାକ୍ରାନ୍ତ—ସ. ବଣ. ପୁଂ (୩ୟା ତତ୍)—ରୋଗଗ୍ରସ୍ତ ( ଦେଖ ) Rogākrānta Rogagrasta ( See ) (ରୋଗାକ୍ରାନ୍ତା—ସ୍ତ୍ରୀ)

ରୋଗାତୁର—ସ. ବଣ. ପୁଂ (୩ୟା ତତ୍)—ରୋଗ ଦ୍ୱାରା ବ୍ୟସ୍ତ ବା ଅଥୟ Rogātura —Overpowered with sickness, (ରୋଗାତୁରା—ସ୍ତ୍ରୀ) sorely afflicted with illness.

ରୋଗାପନୟନ—ସ. ବ. (୬ଷ୍ଠୀ ତତ୍)—ରୋଗର ଦୂରୀକରଣ—Rogāpanayana Curing of a disease. (ରୋଗାପନୋଦନ—ଅନ୍ୟରୂପ)

ରୋଗାବସାନ—ସ. ବ. (୬ଷ୍ଠୀ ତତ୍)—ରୋଗର ଶାନ୍ତି ବା ଉପଶମ—Rogābasāna Convalescence.

ରୋଗାର୍ତ୍ତ—ସ. ବଣ. ପୁଂ (୩ୟା ତତ୍)—ରୋଗାକ୍ରାନ୍ତ; ରୋଗଗ୍ରସ୍ତ—Rogārtta Stricken with a disease. (ରୋଗାର୍ତ୍ତା—ସ୍ତ୍ରୀ)

ରୋଗା ଶିଆଳ—ପ୍ରାଦେ. ସମ୍ବଲପୁର) ବ—ବାଇଆ ବିଲୁଆ—Rogā śiāla Mad jackal.

ରୋଗିଆ(ଣା)—ଦେ. ବଣ. ପୁଂ (ସ. ରୋଗୀ; ରୁଗ୍ଣ)—୧। ବ୍ୟାଧିଗ୍ରସ୍ତ; Rogiā(ṇā) ରୁଗ୍ଣ—1. Sick. ୨ । ଭଗ୍ନସ୍ୱାସ୍ଥ୍ୟ—রুগি, বোগাটিয়া, রোগনা, বোগাটে रोगिया 2. Sickly. (ରୋଗେଇ, ରୋଗିଆଣୀ, ରୋଗିଣୀ—ସ୍ତ୍ରୀ)

ରୋଗି ଚର୍ଯ୍ୟା—ସଂ. ବ. (୬ଷ୍ଠୀ ତତ୍)—ରୋଗୀର ରୋଗକୁ ଆରୋଗ୍ୟ Rogi charjyā କରିବା ପାଇଁ ଅବଲମ୍ବିତ ନାନା ପ୍ରକ୍ରିୟା—(ରୋଗି ଶୁଶ୍ରୂଷା, ରୋଗି ସେବା—ଅନ୍ୟରୂପ) Tending of the sick.

ରୋଗିଣୀ—ସଂ. ବଣ. ସ୍ତ୍ରୀ. (ରୋଗିନ୍ + ସ୍ତ୍ରୀ. ଈ)—୧ । ବ୍ୟାଧିଗ୍ରସ୍ତା—Rogiṇī 1. Sick. ୨ । ଚିରରୁଗ୍ଣା—2. Sickly; invalid (woman). (ରୋଗୀ—ପୁଂ)

ରୋଗୀ—ସଂ. ବଣ. ପୁଂ (ରୋଗ + ଅସ୍ତି ଅର୍ଥରେ. ଇନ୍; ୧ମା. ୧ବ)—Rogī ରୁଗ୍ଣ; ବ୍ୟାଧିଗ୍ରସ୍ତ—Sick. ସଂ. ବ—୧ । ରୋଗଗ୍ରସ୍ତ (ରୋଗିଣୀ—ସ୍ତ୍ରୀ) ବ୍ୟକ୍ତି—1. A sick person. ୨ । ଚିକିତ୍ସାଧୀନ ବ୍ୟକ୍ତି; ମକ୍କ—2. A patient. [ଦ୍ର—ବୃଦ୍ଧ ଗ୍ରନ୍ଥ ଅନୁସାରେ ଚିକିତ୍ସାଧୀନ ବ୍ୟକ୍ତି ବା ରୋଗୀ ଦୁଇ ପ୍ରକାର । ଯଥା—

୧ । ଚିକିତ୍ସ୍ୟ—ଯେଉଁ ରୋଗୀର ଚକ୍ଷୁଃ ପ୍ରଭୃତି ଇନ୍ଦ୍ରିୟମାନ ବିକୃତ ନ ହୋଇ ସ୍ୱାଭାବିକ ଅବସ୍ଥାରେ ଥାଏ ଓ ସୁଖଦୁଃଖଜନକ କ୍ରିୟାଶୂନ୍ୟ ହୋଇ ନ ଥାଏ; ସେ ଚିକିତ୍ସକଙ୍କର ବାଧ୍ୟ ଓ ଇନ୍ଦ୍ରିୟସମରେ ସମର୍ଥ ।

୨ । ଅଚିକିତ୍ସ୍ୟ—ଯାହାର ଚକ୍ଷୁଃ ପ୍ରଭୃତି ଇନ୍ଦ୍ରିୟ କ୍ରିୟା ଶକ୍ତିଶୂନ୍ୟ ହୋଇଥାଏ; ଯେଉଁ ରୋଗୀ ଅତ୍ୟଧିକ କୋପନସ୍ୱଭାବ, ଅଜିତେନ୍ଦ୍ରିୟ, ଭୀରୁ, ଚିକିତ୍ସକଙ୍କର ଆଦେଶ ଲଙ୍ଘନକାରୀ, ବ୍ୟାକୁଳଚିତ୍ତ, ଶୋକଗ୍ରସ୍ତ, ମୁମୂର୍ଷୁ, ଚିକିତ୍ସକଙ୍କପ୍ରତି ଶଠତାଯୁକ୍ତ, ଶ୍ରଦ୍ଧାହୀନ, ଅବିଶ୍ୱାସୀ, ଚିକିତ୍ସକଙ୍କର ଅବାଧ୍ୟ ଓ ଇନ୍ଦ୍ରିୟସମରେ ଅସମର୍ଥ ।]

ରୋଗୀ ଦେଖିବା—ଦେ. କ୍ରି—( ଚିକିତ୍ସକ ) ଆପଣାର ଚିକିତ୍ସାଧୀନ Rogī dekhibā ରୋଗୀକୁ ପରୀକ୍ଷା କରିବାପାଇଁ ରୋଗୀର ଗୃହକୁ ଯିବା—To examine or pay a visit to a patient. বোগী দেখা रोगी देखना

ରୋଗୋପଶମ—ସ. ବ ( ୬ଷ୍ଠୀ ତତ୍; ରୋଗ + ଉପଶମ )—ରୋଗ Rogopaśama ନିବୃତ୍ତି ( ଦେଖ )—Roga nibṛutti (ରୋଗୋପଶାନ୍ତି—ଅନ୍ୟରୂପ) ( See )

ରୋଗୋପଶମନ—ସ. ବ ( ୬ଷ୍ଠୀ ତତ୍ )—ଆରୋଗ୍ୟ କରଣ—Rogopaśamana Curing a disease.

ରୋଗ୍ୟ—ସ. ବଣ ( ରୋଗ + ଯ )—୧ । ରୋଗ ସମ୍ବନ୍ଧୀୟ—Rogya 1. Relating to disease. ୨ । ରୋଗଜନକ—2. Causing illness. ୩ । ଅପଥ୍ୟ—3. Not fit to be taken by a sick person, not beneficial to a sick person.

ରୋଚକ—ସ. ବ (ରୁଚ୍ ଧାତୁ ଣିଜନ୍ତ ରୋଚିଧାତୁ + କର୍ତ୍ତୃ. ଅକ )—୧ । Rochaka ରୁଚିକର—1 Tasteful. ୨। ମୁଖରୁଚିକର—(ରୋଚକା—ସ୍ତ୍ରୀ) 2. Pleasant to the taste;relishing; delicious. ୩ । ପ୍ରୀତିଜନକ—3. Pleasing. ୪ । କ୍ଷୁଧାର ଉଦ୍ଦୀପକ—4. Savoury; appetising. ସ. ବ—୧ । କ୍ଷୁଧା—1. Hunger. ୨ । ଚଟୁଣୀ—2. Sauce. ୩ । ( ବୈଦ୍ୟକ )—କଦଳୀ—3. Plantain. ୪ । କେପାଳ ଦେଶୀୟ ଗ୍ରନ୍ଥିପର୍ଣ୍ଣ ବିଶେଷ; ଗଣ୍ଠିଅଣା ଗୁଳ୍ମ—4. A medicinal plant. ୫ । ପଲାଣ୍ଡୁ; ପିଆଜ—5. Onion.

ରୋଚନ—ସ.ବଣ (ରୋଚିଧାତୁ + କର୍ତ୍ତୃ. ଅନ)—୧। ରୋଚକ (ଦେଖ) Rochana 1. Rochaka ( See ) ୨ । ପ୍ରୀତିକର—2. Pleasant. [ ଉ—ବିଶ୍ୱଲୋଚନ ରୋଚନ ରୋକ

ଭମସ ନୋହେ କଦା—ଭକ୍ତ. ବୈଦେହୀଶବିଳାସ । ]
ସ. ବି—୧ । ( ବୈଦ୍ୟକ ) କୁଟ ଶାଲ୍ମଳୀ—
1. A species of wild plant. ୨ । ଡାଳିମ୍ବ—
2. Pomegranate. ୩ । କାମ୍ପିଲ୍ୟ; କମଳାଗୁଣ୍ଡି
—3. Kamilla; Mellotus phillipinensis; a red vegetable Powder for dying silk. ୪ । କଟୁକରଞ୍ଜ; ବଦ୍ରଘୋଲ ଫଳ—4. A medicinal plant, Caesalpina Bonducella (fruit). ୫ । କରମର୍ଦ୍ଦକ, କରଜା କୋଳ—
5. A sort of berry; Carissa Carandus.
୬ । କାର୍ପାସ ବୃକ୍ଷ ବିଶେଷ—6. A sort of cotton plant. ୭ । ବାୟୁରେଚକ ଔଷଧ—7. A medicine which drives off the wind from the system.

ରୋଚନକ—ସ. ବି ( ରେଚନ+କ )—ଟାଭ ଲେମ୍ବୁ ଗଛ—
Rochanaka The citron tree (Apte)

ରୋଚନା—ସ. ବି. ସ୍ତ୍ରୀ ( ରୁଚ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ଅନ+ଆ )—୧ । ( ବୈଦ୍ୟକ ) ଗୋରୋଚନା; ଗୋଚନା—1. Bijoor; a sort of yellow pigment got from the carcass of cattle.
Rochanā
[ ଉ—ଅଳକ ଭଳ ଅଖଣ୍ଡିତ ରୋଚନା ରେଖ । କବିସୂର୍ଯ୍ୟ. କଶୋରଚନ୍ଦ୍ରାନନ୍ଦଚମ୍ପୂ ଭ. ଗୀତ । ] ୨ । ନିର୍ମଳ ଆକାଶ—2. The bright sky, firmament (Apte). ୩ । କୁଟ ଶାଲ୍ମଳୀ—3. The black śālmali tree (Apte). ୪ । ରକ୍ତ କମଳ—4. The red lotus. ୫ । ଉତ୍ତମା ସ୍ତ୍ରୀ—5. A graceful woman.

ରୋଚନିକା—ସ. ବି ( ରୋଚନା+କ+ଆ )—ବଂଶଲୋଚନା—
Rochanikā The manna of bamboo

ରୋଚଣୀ—ସ. ବି. ସ୍ତ୍ରୀ—(ରେଚନ+ସ୍ତ୍ରୀ. ଈ)—୧ । (ବୈଦ୍ୟକ)
Rochaṇi ଚୁକା ଖଟାପାଳଙ୍ଗ—1. A port herb; Bladder dock; Rumex Visicarius.
୨ । ପୋଦିନା ଶାଗ—2. A sort of potherb; mentha. ୩ । ଆମଳକୀ; ଅଁଳା କୋଳ—
3. Embellic myrobalan. ୪ । ଗୋରୋଚନା-
4 Gall bladdar of kine; Bijoor.

ରୋଚମାନ—ସ. ବି. ପୁଂ—(ରୁଚ ଧାତୁ+କର୍ତ୍ତୃ. ଆନ)—ଦୀପ୍ୟମାନ;
Rochamāna ଉଜ୍ଜ୍ୱଳ—Shining; bright. ସ. ବି—
[ରୋଚମାନା—ସ୍ତ୍ରୀ] ଅଶ୍ୱକଣ୍ଠସ୍ଥ ରୋମାବର୍ତ୍ତ ବିଶେଷ—A sort of whorl on the neck of a horse.
[ ବ୍ର—ଏପରି ରୋମାବର୍ତ୍ତ ଶୁଭଜନକ ବୋଲି ଲୋକ-ବାଦ । ]

ରୋଚିଃ—ସ. ବି.—(ରୁଚ୍ ଧାତୁ+ଭାବ. ଇସ୍; ୧ମା. ୧ବ)—୧
Rochiḥ ଆଭା; ଦୀପ୍ତି; କାନ୍ତି—1, Lustre. ୨ । ସୌନ୍ଦର୍ଯ୍ୟ;
[ରୋଚିସ୍—ଅନ୍ୟରୂପ] ଲାବଣ୍ୟ—2. Beauty, grace.

ରୋଚିବା—ଦେ. କ୍ରି.—(ସ. ରୁଚ୍ ଧାତୁ)—୧ । ରୁଚିବା (ଦେଖ)
Rochibā ରୁଚା ରୁ(ଚୋ)ଚନା 1. Ruchiba (See)
[ଉ—ଛୋଟେ ରୋଚୁ ଅବା ନ ରୋଚୁ ସେ କ୍ୟାସୁ । ରାଧାନାଥ. ଦରବାର ।] ୨ । ଖାଇବାକୁ ଯୋଗାଇବା-
2 To be savoury.

ରୋଚିଷ୍ଣୁ—ସ. ବଣ.—(ରୁଚ୍ ଧାତୁ+କର୍ତ୍ତୃ. ଇଷ୍ଣୁ)—୧ । କାନ୍ତିବିଶିଷ୍ଟ
Rochishṇu 1. Lustrous. ୨ । ଉଜ୍ଜ୍ୱଳ—2. Shining; dazzling; brilliant. ୩ । ଅଳଙ୍କାରଦ୍ୱାରା ଦୀପ୍ତିଶାଳୀ—3. Brilliantly decorated.

ରୋଚୀ—ସ. ବଣ.—(ରୁଚ୍ ଧାତୁ+କର୍ତ୍ତୃ. ଇନ୍)—ରୋଚିଷ୍ଣୁ (ଦେଖ)
Rochī Rochishṇu (See)
ସ. ବି.—ହିଲ ମୋଚକା (ପ୍ରକୃତିବାଦ)—
A kind of medicinal pot-herb.

ରୋଚ୍ୟ—ସ. ବଣ. ପୁଂ—(ରୁଚ ଧାତୁ+କର୍ମ ଯ)—୧ । ରୁଚିକର
Rochya 1. Ruchikara (See) (ଦେଖ) ୨ । ରୋଚକ
[ରୋଚ୍ୟା—ସ୍ତ୍ରୀ] (ଦେଖ) 2. Rochaka (See)

ରୋଜ୍—ବୈଦେ. ବି.—(ଆ.)—୧ ଦିବସ—1. A day.
Roj রোজ रोज ୨ । ତାରିଖ—2. A date. ୩ । (ଇଂ. ରୋଜ୍) ଗୋଲାପ ଫୁଲ—3. Rose (flower). ଦେ. କ୍ରି. ବଣ.—୧ । ପ୍ରତିଦିନ—1. Daily; every day.
୨ । ଏକଦିନ ପାଇଁ—2. For a day; per day.
ଦେ. ବଣ.— ଦୈନିକ—Daily.

ରୋଜ୍ ଉଆଟର—ବୈଦେ. ବି.—(ଇଂ. ରୋଜ୍ ୱାଟର୍)—ଗୋଲାପ
Roj wātar ପାଣି; ଗୋଲାପ ଫୁଲ ପାଖୁଡ଼ାରୁ ବୈଜ୍ଞାନିକ রোজ উআটর ପ୍ରକ୍ରିୟାରେ ବାହାର କରା ଯାଇଥିବା ସୁବାସିତ रोज वाटर (ରୋଜ୍‌ୱାଟର୍—ଅନ୍ୟରୂପ) ଜଳ—Rose water.

ରୋଜ୍‌କା ରୋଜ—ବୈଦେ. କ୍ରି. ବଣ—(ଆ.)—ପ୍ରତ୍ୟହ; ପ୍ରତିଦିନ—
Roj-kā roj ନିତି—Every day, daily; from day
রোজ রোজ रोजका रोज to day.

ରୋଜ୍‌ଗାର—ବୈଦେ. ବି—(ଆ. ରୋଜ୍‌ଗାର୍)—୧ । ଆୟ;—
Roj-gāra 1. Income; earning. ୨ । ଅର୍ଥ ଉପାର୍ଜନ—
2. Earning money.

ରୋଜ୍‌ଗାର କରିବା—ଦେ. କ୍ରି—୧ । ଆୟ କରିବା—1. To make
Roj-gāra karibā an income. ୨ । ଅର୍ଜନ କରିବା—
রোজগার করা रोजगार करना 2. To earn.

ରୋଜ୍‌ଗାର ଧନ୍ଦା—ଦେ.ବି (ସହଚର)—୧ । ଆୟ ଓ ଆୟଜନକ କର୍ମ;
Roj-gāradhandā ଆୟ ଓ ଜୀବିକା—1. Income and রোজগারধান্দা रोजगारधान्दा employment. ୨ । ଆୟଜନକ କର୍ମ—2. Profitable employment. ୩ । ଚାକିରି-
3. Service.

ରୋଜ୍‌ଗାର ବନ୍ଦ—ଦେ.ବି—ଆୟରାହିତ୍ୟ—Want of employ-
Roj-gāra banda ment; stoppage of income.
রোজগার বন্দ रोजगार बन्द

**ରୋଜ୍‌ଗାରବୃତ୍ତି** —ଦେ. ବ—ଶ୍ରମର ବା ବ୍ୟବସାୟ କରି ଅର୍ଜନ କରିବା Rojgārabrutti ଜୀବିକା—A profession by which বোজগাৰ বৃত্তি रोजगार वृत्ति a person earns his living

**ରୋଜ୍‌ଗାରି**—ପ୍ରାଦେ. ବ (ବସ୍ତ୍ର, ଭଙ୍ଗି ଗ୍ରାମ)—ଦୋକାନଦାର— Roj-gāri Shopkeeper.

**ରୋଜଗାରି**—ଦେ. ବଣ (ପୁଂ ଓ ସ୍ତ୍ରୀ)—ଅର୍ଜନକାରୀ; ଅର୍ଜନକାରିଣୀ Roj-gāri —Earning. [ ଉ—ମୋର ରୋଜ୍‌ଗାରିଅ (ରୋଜ୍‌ଗାରିଅ—ଅନ୍ୟରୂପ) ପୁଅ ଥାଉଁ ଥାଉଁ ମୁଁ ଦୁଃଖ ପାଇବ বোজগাৰী रोजगारी କାହିଁ । ]

**ରୋଜାନା**—ପ୍ରାଦେ. (ସାମଣ୍ଡ) ବ. ସ୍ତ୍ରୀ—ନୀଳ ଗାଈ ଜାତୀୟ Rojanā ପଶୁ—A female Nilghou (a wild beast).

**ରୋଜ୍(ଜି)ନା**—ବୈଦେ. କି. ବଣ—(ଆ. ରୋଜିନା)—୧। ପ୍ରତିଦିନ Roj-(ji)nā 1. Daily. ୨। ଦିନ ହିସାବରେ: ଦିନକୁ— 2. Per day. [ ଉ—ସେ ରୋଜିନା ତିନି ଟଙ୍କା ପାଏ । ]

**ରୋଜ୍[ଜି]ନାମା[ମ]ଚ୍ଚ**—ବୈଦେ. ବ.—[ଫା. ରୋଜ୍‌ନାମ୍‌ଚ୍ଚ]— Roj(ji)nām(m)chā ୧। ଦୈନିକ ଜମା ଖରଚ ହିସାବ বোজনামচা रोजनामचा ବହି—1. A day book; a [ରୋଜ୍(ଜି)ନାମା—ଅନ୍ୟରୂପ] daily account book, a tradesman's journal. ୨। ଡାଏରି; କୌଣସି ବ୍ୟକ୍ତିଙ୍କର ଦୈନିକ କାର୍ଯ୍ୟାବଳୀ ଲିପିବଦ୍ଧ ହେବାର ପୁସ୍ତକ—2. A diary; journal.

**ରୋଜ୍‌ବର୍‌ରୋଜ୍**—ବୈଦେ. କି. ବଣ (ଆ. ରୋଜ୍‌ବରୋଜ୍)— Roj-bar-roj ଦିନକୁ ଦିନ; ପ୍ରତ୍ୟହ; ନିତିକା ନିତ— (ରୋଜ୍ ବରୋଜ୍, ରୋଜ୍ ରୋଜ୍—ଅନ୍ୟରୂପ) From রোজবোজ रोजबरोज day to day; every day; daily.

**ରୋଜା**—ବୈଦେ. ବ (ଫା. ରୋଜା)—୧। ମୁସଲମାନଙ୍କର ରମଜାନ୍ Rojā ମାସରେ ଉଦୟ ପର୍ବ ପୂର୍ବରୁ ୩୦ ଦିନ ପାଇଁ ଦିନତମାମ রোজা रोजा ପାଳନ ହେବା କଠୋର ଉପବାସରୂପ ବ୍ରତ— 1. A very rigorous fast observed by Mohammedans during the month of Ramjan. [ ଉ—ଏ ଉପବାସରେ ଦିନଯାକ ଜଳ ଗ୍ରହଣ, ଏପରି କି, ଛେପ ଢୋକିବା ମଧ୍ୟ ନିଷିଦ୍ଧ । କେବଳ ରାତିରେ ଏପରି ଭୋଜନ କରାଯାଇଥିବ, ଯେପରି କି, ସକାଳବେଳକୁ ପେଟରେ କିଛି ଖାଦ୍ୟ ନ ଥିବ ଏବଂ ହାକୁଟି କମ୍ବା ଅଧୋବାୟୁ ମଧ୍ୟ ନ ଯିବ । ] ଦେ. ବ (ସ. ଉପାଧ୍ୟାୟ)—ଓଝା; ଭୂତ ଓ ସାପ ବିଷ ଆଦି ଛଡ଼ାଇବା ବ୍ୟକ୍ତି; ଗୁଣିଆ—A person who exercises evil spirits and who cures snake-bites by means of mystic applications.

**ରୋଜା କ(ଧା)ରିବା**—ଦେ. କି (ମୁସଲମାନମାନେ) ରୋଜା ଉପବାସ Rojā ka(dha)ribā ଅବଲମ୍ବନ କରିବା—To observe বোজাকবা, বোজাধৰা, বোজাৰাখা रोजारखना(करना) the ରୋଜା ପାଳିବା } ରୋଜା ରଖିବା } —ଅନ୍ୟରୂପ Rojā fast. [ଉ—ଧର୍ମଶାସ୍ତ୍ର ଅନୁସାରେ କେତେକ ଶିଶୁ, ଅତି ବୃଦ୍ଧ ଓ ଅତ୍ୟନ୍ତ ଅକ୍ଷମ ବ୍ୟକ୍ତିଙ୍କ ଛଡ଼ା ଅନ୍ୟ ସମସ୍ତ ମୁସଲମାନମାନେ ପ୍ରାଣପଣରେ ରୋଜା ପାଳିବାକୁ ଧର୍ମତଃ ବାଧ୍ୟ ଅଟନ୍ତି । ]

**ରୋଜା ଖୋଲିବା**—ଦେ. କି—ଦିନମାନ ରୋଜା ବା ଉପବାସ ବ୍ରତ Rojā kholibā ପାଳନ କରିସାରି ସନ୍ଧ୍ୟା ପରେ ରୋଜାର ପାରଣା বোজা খোলা रोजा खोलना କରିବା—To break the [ ରୋଜାଫିଟେ (ଟେ)ଇବା—ଅନ୍ୟରୂପ ] Rojā fast after nightfall [ଉ—ସନ୍ଧ୍ୟା ବୁଡ଼ିଲେ ନମାଜ ପଢ଼ିସାରି ରୋଜା ଖୋଲିବାକୁ ହୁଏ । ରୋଜା ଖୋଲିବାବେଳେ ଆଗେ କିଛି ସରବତ୍ ପିଇବାକୁ ହୁଏ; ତତ୍ପରେ ଅନ୍ୟ ଖାଦ୍ୟ ଖିଆଯାଏ । ]

**ରୋଜା ଛାଡ଼ିବା**—ଦେ. କି—ମୁସଲମାନଶାସ୍ତ୍ରନିର୍ଦ୍ଦିଷ୍ଟ ରୋଜା ବ୍ରତ ନ Rojā chhārdibā ପାଳିବା—Not to observe the বোজাছাড়া रोजाछोड Rojā fast.

**ରୋଜନା**—ବୈଦେ. ବଣ ଓ କି. ବଣ—ରୋଜିନା (ଦେଖ)— Rojānā Rojinā (See) [ ଉ—ମନ୍ତ୍ରୀ ତହଶିଲ ଦାଖ ବନ୍ଦୀ ଡାକ୍ତରଖାନାରେ କଣ୍ଡି ରୋଜାନା ଡାଇଷ୍ଟ କଲ୍ୟାଣ ବନ୍ଦ କରୁଥିବା ହାଲତ—ଫକୀରମୋହନ ଛମାଣ ଆଠଗୁଣ୍ଠ । ]

**ରୋଜି**—ବୈଦେ, କି. ବଣ—ପ୍ରତ୍ୟହ; ପ୍ରତିଦିନ—Everyday; Roji daily. ବୈଦେ ବ—୧। (ଫା. ରୁଜି)— রোজ ରୁଜି (ଦେଖ)—1. Ruji (See) ୨। (ଫା. रोज ରୋଜା)—ରମଜାନ୍ ମାସରେ ପାଳିତ ମୁସଲମାନ ବ୍ରତ মোকাবিলা ବା ଉପବାସ—2. The Rojā fast observed मुकाबिला by the Mussalmans in the month রোজা of Ramjan. [ ଉ—ଏ ଉପବାସ ଦିନଯାକ रोजा ପାଳି ସୂର୍ଯ୍ୟାସ୍ତ ସମୟକୁ ପ୍ରଥମ ଭୋଜନ କରି ରାତିରେ ପୁଣି ଖାଇବାକୁ ହୁଏ, ଯେପରି କି, ଭୁକ୍ତ ଖାଦ୍ୟଦ୍ରବ୍ୟ ତହୁଁ ଆର ଦିନ ସକାଳକୁ ଜୀର୍ଣ୍ଣ ହୋଇ ଯାଇଥିବ ।]

**ରୋଜି କରିବା**—ଦେ. କି—ରୁଜି କରିବା (ଦେଖ)— Roji karibā Ruji karibā (See) মোকাবিলা কৰা मुकाबिला करना

**ରୋଜିନା**—ବୈଦେ. କି. ବଣ (ଆ)—ପ୍ରତ୍ୟହ—Daily; Rojinā everyday. [ ଉ—ଆପଣଙ୍କ ରୋଜିନା କେତେ বোজ କାରବାର ଦେଖୁଛନ୍ତି । ଫକୀରମୋହନ. ଗଳ୍ପସ୍ବଳ୍ପ । ] रोजिना ବୈଦେ. ବଣ—ପ୍ରତ୍ୟହ କର୍ତ୍ତବ୍ୟ; ଦୈନନ୍ଦିନ; ଦୈନିକ —Performable daily. ବୈଦେ. ବ—ଦୈନିକ ଭତ୍ତା—Daily allowance of dole.

ରୋଜନାମଚ୍—ବୈଦେ ବ—ରୋଜ୍ ନାମ୍‌ଚ୍ ( ଦେଖ )—
Rojināmachā Roj-nām-chā ( See )
(ରୋଜନାମା—ଅନ୍ୟରୂପ)

ରୋଟ୍—ବୈଦେ. ପ୍ରାଦେ ( ଗଞ୍ଜାମ ) ( ଇଂ. ରୋଡ୍ ) ବ—ରାସ୍ତା—
Rot Road.

ରୋଟ(ଟା)—ଦେ. ବଣ. ପୁଂ—୧ । ମୋଟ; ମୋଟା—1. Thick.
Roṭa(ṭā) ୨ । ସ୍ଥୂଳ—2. Corpulent; stout; fat.
ମୋଟା [ ଉ—ଖଣ୍ଟି କୋଟ, ସର୍ବ ରୋଟ ମଲ୍ଲମାନେ କର୍ମିଳା-
मोटा (ରୋଟ—ସ୍ତ୍ରୀ) ଜର୍ଜର-ମାଂସମୃତ-ପାନେ । ରଘୁନାଥ.
ନନ୍ଦକେଶରୀ । ]
(ରୋଟଅ—ଅନ୍ୟରୂପ) ୩ । ବଗଡ଼ା; କଠୋର; କର୍କଶ—
(ରୋଟୀ, ରୋଟେଇ—ସ୍ତ୍ରୀ) 3. Coarse; harsh; grating.
(ପତଳା, ସରୁ—ବିପରୀତ) [ ଉ—ରୋଟ ଭାତ । ] ୪ । ଉଚ୍ଚସ୍ୱର—
ଯୁକ୍ତ—4. Loud. [ ଉ—ରୋଟ ଧ୍ୱନି । ] ୬ ।
ସ୍ଫୀତ—6 Puffed up. [ ଉ—କେତେ ଭୃକୁଟି
ଶିର ମୁକୁଟ, କଖାଇ ଦେଇ ଭୂରତେ କଣ୍ଠ, କରଣ
ରୋଟ, ଧ୍ୱନି ପ୍ରକଟ, କରନ୍ତି ଚହିଁ ହେ । ଭକ୍ତ. ସୁଭଦ୍ରା
ପରିଣୟ । ]

ରୋଟ କରିବା—ଦେ. କ୍ରି—୧ । ଫୁଲାଇବା—1. To puff up.
Roṭa kariba ୨ । ମୋଟ କରିବା—2. To make more
ମୋଟାକରା thick. ୩ । ସ୍ଥୂଳ କରାଇବା—3. To fatten,
मोटा करना [ରୋଟା(ଟେ)ଇବା—ଅନ୍ୟରୂପ]

ରୋଟ ଖଦି—ଦେ.ବ—ବଗଡ଼ା ଲୁଗା; ଅଳ୍ପ ଓସାରିଆ ଖଦଡ଼ ଲୁଗା—
Roṭa khadi Coarse cloth; thick cloth.
ମୋଟା କାପଡ मोटा कपडा (ରୋଟଲୁଗା—ଅନ୍ୟରୂପ)

ରୋଟ(ଟା) ଖାଇବା ମୋଟ(ଟା) ପିନ୍ଧିବା—ଦେ. କ୍ରି—୧ । ବଗଡ଼ା
Roṭa(ṭā) khāibā moṭa(tā) pindhibā ଖାଦ୍ୟ ଖାଇବା
ମୋଟା ଖাওয়া ମୋଟା ପରା ଓ ମୋଟ ଲୁଗା ପିନ୍ଧିବା—1. To
मोटा खाना मोटा पहनना eat coarse food and
[ରୋଟ(ଟା) ପିନ୍ଧିବା ମୋଟ(ଟା) ଖାଇବା—ଅନ୍ୟରୂପ] wear
coarse cloth. ୨ । ବାବୁଗିରି ନ କରି ବା ବିଳାସ-
ପ୍ରିୟ ନ ହୋଇ ମୂଠାଏ ବଗଡ଼ା ଖାଦ୍ୟ ଖାଇ ଖଣ୍ଡେ
ମୋଟଲୁଗା ପିନ୍ଧି ଗୁଜରାଣ ମେଣ୍ଟାଇବା—2. To live
anyhow by eating coarse food and
wearing coarse cloth, i. e. without
enjoying a luxrious life; to subsist
on coarse fare and dress. [ ଉ—ମୋର
ଯାହା ପୈତୃକ ସମ୍ପତ୍ତି ଅଛି, ସେଥିରୁ ରୋଟ ଖାଇ
ମୋଟ ପିନ୍ଧି ଚଳିଲେ ମୋ ପୁଅ ନାତି ଦୁଃଖ ପାଇବେ
ନାହିଁ । ]

ରୋଟ ଗଳା—ଦେ. ବ—କର୍କଶ ସ୍ୱର—
Roṭa galā Harsh or grating tone.
ମୋଟା ସ୍ବর मोटा गला (ରୋଟ ସ୍ୱର—ଅନ୍ୟରୂପ)

ରୋଟ ଚାଉଳ—ଦେ. ବ—ମୋଟ ଚାଉଳ; ବଗଡ଼ା ଚାଉଳ—
Roṭa chāula Coarse rice.
ମୋଟା চাল [ଦ୍ରୁ—ଏହିପରି ରୋଟ ଧାନ, ରୋଟ ଘିଅ, ରୋଟ
मोटा चावल ଲୁଗା, ରୋଟ ସୂତା ଆଦି ହୁଏ ।]

ରୋଟ ମା(ମୋ, ରା, ସୋ)ଟ—ଦେ. ବଣ ( ଅର୍ଥହୀନ, ଧ୍ୱନ୍ୟନୁକାରୀ
Roṭa mā(mo, rā, so) ṭa ସହଚର )—ଖୁବ୍ ପୃଥୁଳ—
ମୋଟା সোটা Very fat. [ଦ୍ରୁ—ରଜା ଘରେ ଓପରି ଭୋଜନ
मोटा(ट) सोटा(ट) ମାରି ସେ ରୋଟମାଟ ହୋଇଗଲାଣି ।]
[ରୋଟା ମୋ (ସୋ) ଟା, ରୋଟା ରୋଟ୍, ରୋଟଅ ମୋ(ସୋ)ଟଅ—
ଅନ୍ୟରୂପ]

ରୋଟ ସରୁ—ଦେ. ବଣ ( ବିପରୀତ ସହଚର )—ମୋଟା ଓ ପତଳା
Roṭa saru (ବସ୍ତୁମାନ)—Thick and thin; coarse and
ମୋଟା সরু fine (things). [ଦ୍ରୁ—ସାଅନ୍ତାଙ୍କ ଉଆସରେ
मोटा पतला ଗୁଡ଼ିଏ କରି ରୋଟ ସରୁ ବାଉଲେ ଦଣ୍ଡେ କାହିଁ
ହୋଇ ପାରିବ ନାହିଁ ।]

ରୋଟି—ସ. ବ. ( ରୁଟ୍ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ଇ )—ରୁଟି;
Roṭi ଗୋଧୂମ ଚୂର୍ଣ୍ଣରେ ପାଣି ମିଶାଯାଇ ଦଳାଯାଇ ତହିଁରୁ ପ୍ରସ୍ତୁତ
(ରୋଟିକା—ଅନ୍ୟରୂପ) କରାଯିବା ପିଠା—Thin bread.

ରୋଟିଆ—ଦେ. ବଣ (ପୁଂ ଓ ସ୍ତ୍ରୀ)—ରୋଟ; ମୋଟା, ପୃଥୁଳ—
Roṭiā ମୋଟା मोटा Fat; corpulent.
(ରୋଟେଇ—ସ୍ତ୍ରୀ)

ରୋଟିନ୍(ନି)—ବୈଦେ. ବ. (ଇଂ. ରୁଟିନ)—ରୁଟିନ୍ ( ଦେଖ )
Roṭin(ni) Rutin ( See )

ରୋଟୀ—ଦେ. ବ—ରୋଟ ( ଦେଖ ) Roṭa ( See ).
Roṭi ବଣ—ସ୍ତ୍ରୀ—ରୋଟର ସ୍ତ୍ରୀଲିଙ୍ଗ—Feminine of Roṭa

ରୋଠି—ପ୍ରାଦେ. (ଗଡ଼ଜାତ) ବ—ଏକପ୍ରକାର ଶସ୍ୟ—Common
Roṭhi Vetch; Vacia Sativa (Haines).

ରୋଡ୍ (ଧାତୁ)—ସ—୧ । କ୍ଷୋଭ କରିବା—1. To lament, ୨ ।
Roḍ (root) ଘୃଣା କରିବା—2. To despise (Apte).

ରୋଡ୍—ବୈଦେ. ବ. (ଇଂ. ରୋଡ୍)—ସଡ଼କ, ମାଟି ବା ପଥର ଆଦି
Roḍ ଦ୍ୱାରା ପ୍ରସ୍ତୁତ ପଥ; ରାସ୍ତା—Road. [ଦ୍ରୁ—ଏହି
ରোড रोड ରୋଡ ଶବ୍ଦର ପୂର୍ବେ ରାସ୍ତାମାନଙ୍କର ନାମ ଓ
ଉପାଦାନ ଏବଂ ପ୍ରସିଦ୍ଧ ବ୍ୟକ୍ତି ଓ କର୍ମୀଙ୍କ ଆଦିଙ୍କ ଦେଶୀୟ
ଓ ବିଦେଶୀୟ ନାମ ଯୁକ୍ତ ହୁଏ । (ରାସ୍ତା ଦେଖ) ଯଥା—
କଚ୍ଚା ରୋଡ୍, ପିଲ୍‌ଗ୍ରିମ୍ ରୋଡ୍, ପକ୍କା ରୋଡ୍, କଟକ-
ସୋନପୁର ରୋଡ୍, ମିଶନ୍ ରୋଡ୍, କଚେରି ରୋଡ୍,
ଚଉରଙ୍ଗୀ ରୋଡ୍, ରୟନ୍ ରୋଡ୍, କଲେଜ୍ ରୋଡ୍,
ବାଲୁବଜାର ରୋଡ୍, ମାଛଗାଁ ରୋଡ୍, ଛାଲଦଣ୍ଡା ରୋଡ୍,
ଆଲବର୍ଟ୍ ରୋଡ୍, ଷ୍ଟେସନ୍ ରୋଡ୍, ଉଡ୍‌ଷ୍ଟକ୍ ରୋଡ୍, ରୋଡ୍
ଟ୍ରଙ୍କ୍ ରୋଡ୍, ଗ୍ରାଣ୍ଡ୍ ଟ୍ରଙ୍କ୍ ରୋଡ୍, ଅଗ୍ରା ରୋଡ୍ ।]

ରୋଡ଼ଙ୍ଗ—ଦେ. ବ—ପୁରୀ ଜିଲ୍ଲାର ଗୋଟିଏ ଜମିଦାରୀ, (ଏଥିର ଅଧିପତି
Rorḍaṅga 'ବକସି' ଉପାଧିଧାରୀ ଯେଉଁମାନଙ୍କ ପୂର୍ବପୁରୁଷମାନେ

ଉତ୍କଳର ସ୍ୱାଧୀନ ରାଜାଙ୍କ 'ମନ୍ତ୍ରୀ' ବା ବକ୍‌ସି ଥିଲେ—Name of a small estate in the Puri district, the seat of the descendants of the minister of the independant kings of ancient Orissa.

ରୋଡ୍‌ପିଅ(ଉ)ନ୍—ବୈଦେ ବ. (ଇଂ. ରୋଡ୍‌ ପିଅନ୍)—ସାଧାରଣ Rod pia(u)n ରାସ୍ତାମାନଙ୍କର ତତ୍ତ୍ୱ ନେବା ପାଇଁ ନିଯୁକ୍ତ ପିଅଦା ৰোড পিঅন रोड पिउन —Road peon.

ରୋଡ୍‌ସେସ୍—ବୈଦେ. ବ—ଇଂ. ରୋଡ୍‌ ସେସ୍)—ପଥକର; ରାଜ୍ୟରେ Rod ses ସର୍ବସାଧାରଣଙ୍କ ସୁବିଧା ପାଇଁ ରାସ୍ତା ଆଦି ପ୍ରସ୍ତୁତ ৰোড সেস କରିବା ଉଦ୍ଦେଶ୍ୟରେ ଇଂରେଜ ଗଭର୍ଣ୍ଣମେଣ୍ଟ ରାଜା ଓ रोडसेस ପ୍ରଜାଙ୍କଠାରୁ ନେବା ରାଜସ୍ୱର ଅତିରିକ୍ତ ଟିକସ ବା ଖଜଣା—Roadcess. [ଦ୍ର—ଜମିର ଉତ୍ପାଦନ ବା ଆୟକୁ ପରୀକ୍ଷା କରି ତହିଁ ଉପରେ ନିର୍ଦ୍ଧାରିତ ରେଟ୍ (ଅନୁପାତ) ଅନୁସାରେ ଏହି କର ଧାର୍ଯ୍ୟ ହୁଏ । ରୋଡ୍‌ସେସ୍ ରୂପେ ଗଭର୍ଣ୍ଣମେଣ୍ଟ ଯେଉଁ ଟଙ୍କା ଆଦାୟ କରନ୍ତି, ତାହା ସଡ଼କ ଆଦି ସାଧାରଣ କାର୍ଯ୍ୟରେ ବ୍ୟୟ କରିବା ପାଇଁ ଡିଷ୍ଟ୍ରିକ୍ଟ ବୋର୍ଡ୍‌କୁ ଦିଅନ୍ତି ଏବଂ ନିର୍ଦ୍ଦିଷ୍ଟକାଳ (ମିଆଦ)ଅତୀତ ହେଲେ ଗଭର୍ଣ୍ଣମେଣ୍ଟ ଥରେ ଲେଖାଏଁ ନୂଆ କରି ରୋଡ୍‌ସେସ୍ ଧାର୍ଯ୍ୟ କରନ୍ତି ।]

ରୋଡ୍‌ସେସ୍ ଡିପାର୍ଟ୍(ର୍ଟ୍)ମେଣ୍ଟ—ବୈଦେ. ବ (ଇଂ. ରୋଡ୍‌ସେସ୍ ଡିପାର୍ଟ୍‌ମେଣ୍ଟ)—ରୋଡ୍‌ସେସ୍ Rodses dipat(rt)ment (ରୋଡ୍‌ସେସ୍ ବିଭାଗ—ଅନ୍ୟରୂପ) ସମ୍ବନ୍ଧୀୟ ବିଷୟମାନ ତଦନ୍ତ ৰোডসেস ডিপার্টমেন্ট रोडसेस डिपार्टमेण्ट କରିବା ପାଇଁ ଭାରପ୍ରାପ୍ତ ଗଭର୍ଣ୍ଣମେଣ୍ଟଙ୍କର ଶାସନ ବିଭାଗ—Roadcess Department of Government.

ରୋଡ୍‌ସେସ୍ ଡେପୁଟି—ବୈଦେ. ବ (ଇଂ. ରୋଡ୍‌ସେସ୍ ଡେପୁଟି Rod-ses d puti କଲେକ୍ଟର)—ଯେଉଁ ଡେପୁଟି କଲେକ୍ଟର୍ କୌଣସି ଜିଲ୍ଲାର ପଥକର ବିଭାଗର ଭାର ବା ଗର୍ଭରେ ଥାଆନ୍ତି—Roadcess Deputy Collector.

ରୋଡ୍‌ସେସ୍ ଡେପୁଟି କଲେକ୍ଟର }
ରୋଡ୍‌ସେସ୍ ଡିପୋଟି } —ଅନ୍ୟରୂପ]
ରୋଡ୍‌ସେସ ଡିପୋଟି କଲଟର }

ৰোডসেস ডেপুটী रोडसेस डेपुटी

ରୋଡ୍‌ସେସ୍ ଭା(ଭେ)ଲୁ(ଲ୍ୟୁ)ଏସନ୍—ବୈଦେ. ବ (ଇଂ. ରୋଡ୍‌ସେସ Rod-ses bhā(bhe)lū(lyu)esan ଭାଲ୍ୟୁଏସନ୍)—ଗଭର୍ଣ୍ଣମେଣ୍ଟ [ରୋଡ୍‌ସେସ୍ ବନ୍ଦୋବସ୍ତ—ଅନ୍ୟରୂପ] ଜମିମାନଙ୍କର ତତ୍କାଳୀନ ৰোড়সেন ভেল্যুএসন मूल्य ଓ ଆୟ ଦୃଷ୍ଟିରେ ଜମିଉପରେ ପଥକର रोडसेस भालुएसन ଧାର୍ଯ୍ୟ କରିବା ପ୍ରକ୍ରିୟା—Roadcess valuation; the operation of Settlement of roadcess in a district.

ରୋଡ୍‌ସେସ୍ ରିଟର୍ଣ୍ଣ(ନ)—ବୈଦେ. ବ (ଇଂ. ରୋଡ୍‌ସେସ୍ ରିଟର୍ଣ୍ଣ)—Rod-ses ritarṇṇ(n) ଗଭର୍ଣ୍ଣମେଣ୍ଟଙ୍କଦ୍ୱାରା ରୋଡ୍‌ସେସ୍ କର ৰোডসেস বিটর্ণ ଧାର୍ଯ୍ୟ ହେବା ଉଦ୍ଦେଶ୍ୟରେ ଭୂମ୍ୟଧିକାରୀମାନେ रोडसेसरिटर्न ଗଭର୍ଣ୍ଣମେଣ୍ଟ କର୍ମଚାରୀଙ୍କ ନିକଟ ଦାଖଲ କରିବା ନିଜ ନିଜର ଜମିର ମୂଲ୍ୟ ଓ ଆୟର ବିବରଣସମ୍ବଳିତ ଷ୍ଟେଟ୍‌ମେଣ୍ଟ—Roadcess Return. [ଦ୍ର—ଏହିପରି ଅନେକଗୁଡ଼ିଏ ଇଂରେଜି ଶବ୍ଦ ରୋଡ୍‌ସେସ୍ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ଭାଷାରେ ଚଳୁଅଛି ।]

ରୋଡ୍‌ସେସ୍ ରିଭା(ଭେ)ଲୁ(ଲ୍ୟୁ)ଏସନ୍—ବୈଦେ. ବ (ଇଂ. ରୋଡ୍‌ Rod-ses ribhā(bhe)lu(lyu)esan ସେସ୍ ରିଭାଲ୍ୟୁଏସନ୍)—ৰোডসেস বিভেলুএসন ଥରେ ରୋଡ୍‌ସେସ୍ ନିର୍ଦ୍ଧାରିତ ହେବାର ନିର୍ଦ୍ଦିଷ୍ଟ रोडसेस रिभेलुएसन ମିଆଦ ଅତୀତ ହେବା ପରେ ଆଉ ଥରେ ଜମିର ମୂଲ୍ୟ ଓ ଆୟର ପରିମାଣ ତଦନ୍ତ କରି ପୂର୍ବ ନିର୍ଦ୍ଧାରିତ ପଥକରର ପରିମାଣକୁ ସଂଶୋଧନ କରିବାର କ୍ରିୟା; ରୋଡ୍‌ସେସ୍‌ର ସାଲ ବନ୍ଦୋବସ୍ତ—Roadcess Revaluation.

ରୋଡ୍‌ସେସ୍ ରେଟ୍—ବୈଦେ. ବ (ଇଂ. ରୋଡ୍‌ସେସ୍ ରେଟ୍)—Rod-ses reṭ ପ୍ରତ୍ୟେକ ଜମିର ମୂଲ୍ୟ ବା ଆୟ ଉପରେ ନିର୍ଦ୍ଧାରିତ ৰোডসেস ৰেট କରାଯିବା ପଥକରର ନିର୍ଦ୍ଧାରିତ ଅନୁପାତ रोडसेसरेट ବା ହାର—The rate of roadcess fixed on holdings. [ଦ୍ର—ଆଇନ୍ ଅନୁସାରେ ଜମିର ଆୟ ଉପରେ ଟଙ୍କାକେ ଦୁଇ ପଇସାଠାରୁ ଏକଅଣା ପର୍ଯ୍ୟନ୍ତ ପଥକର ନିର୍ଦ୍ଧାରିତ ହୁଏ । ଯଥା—ରଇତ ଜମିର ଆୟ ଟଙ୍କା ଉପରେ ରଇତ ଦୁଇ ପଇସା ଓ ଜମିଦାର ଅଧିକା ଦୁଇ ପଇସା ରେଟ୍‌ରେ ପଥକର ଦିଅନ୍ତି । ]

ରୋଢ—ସଂ ବଣ—ସନ୍ତୁଷ୍ଟ—Satisfied (Apte). ସଂ. ବ—Roḍa ଚୂରିବା; ଘରଷିବା—Crushing; grinding. (ରୋଢା—ବଣ ସ୍ତ୍ରୀ) (Apte)

ରୋଦ—ସଂ. ବ (ରୁଦ୍ ଧାତୁ+ଭାବ. ଅ)—୧ । କ୍ରନ୍ଦନ; କାନ୍ଦିବା—Roda 1. Crying; lamentation. ୨ । (+କରଣ. ଅ) ଅଶ୍ରୁ—2. Tear.

ରୋଦଃ—ସଂ. ବ (ରୁଦ୍ ଧାତୁ+ଅଧିକରଣ. ଅସ୍)—୧ । ପୃଥିବୀ—Rodah 1. The earth. ୨ । ସ୍ୱର୍ଗ—2. Heaven. ୩ । [ରୋଦସ୍—ଅନ୍ୟରୂପ] ଆକାଶ—3. Heavens; the sky. [ଦ—ସଂସ୍କୃତ ଭାଷାରେ ଏହି 'ରୋଦସ୍' ଶବ୍ଦର ଦ୍ୱିବଚନରେ 'ରୋଦସୀ' ହୁଏ । ଏଥିର ଅର୍ଥ ପୃଥିବୀ ଓ ଆକାଶ ଉଭୟ ।]

ରୋଦନ—ସଂ ବ (ରୁଦ୍ ଧାତୁ+ଭାବ. ଅନ)—୧ । କ୍ରନ୍ଦନ; Rodana କାନ୍ଦିବା—1. Weeping; crying. ୨ । (+କରଣ ଅନ) ଲୋତକ—2. Tear (Apte).

ରୋଦନ କରିବା—ଦେ. କ୍ରି—କାନ୍ଦିବା—Rodana karibā To cry to weep. ৰোদন কৰা रोदनकरना

ରୋଦନକାରୀ—ସ. ବଣ, ପୁଂ (ରୋଦନ+କୃ ଧାତୁ+କର୍ତ୍ତୃ. ଇନ୍)—Rodanakārī କ୍ରନ୍ଦନକାରୀ; ଯେ କାନ୍ଦୁଥାଏ—Crying; (ରୋଦନକାରିଣୀ—ସ୍ତ୍ରୀ) weeping; lamenting.

ରୋଦନପରାୟଣ—ସ. ବଣ. ପୁଂ (ବହୁବ୍ରୀହି; ରୋଦନ+ପର= Rodanaparāyaṇa ଶ୍ରେଷ୍ଠ+ଅୟନ=ଆଶ୍ରୟ ଯାହାର)—

( ରୋଦନଶୀଳ—ଅନ୍ୟରୂପ ) ଯେ ସର୍ବଦା କାନ୍ଦେ—Given
( ରୋଦନପରାୟଣା, ରୋଦନଶୀଳା—ସ୍ତ୍ରୀ ) to weeping.
(ରୋଦନପରାୟଣତା, ରୋଦନଶୀଳତା—ବି)

**ରୋଦନ ସମ୍ବଳ**—ସଂ. ବିଣ. ପୁଂ ( ବହୁବ୍ରୀହି; ରୋଦନ ଅଟେ ସମ୍ବଳ
Rodana sambala ଯାହାର)—କାନ୍ଦିବାହିଁ ଯାହାର ପ୍ରଧାନ
(ରୋଦନସମ୍ବଳା—ସ୍ତ୍ରୀ) ସହାୟ—One who has the only alternative of crying to attain his or her wish.

**ରୋଦ(ଦି)ନା**—ଦେ. ବି (ସଂ. ରୋଚନୀ)—ଏକପ୍ରକାର ପୋଦିନାଶାଗ—
Roda(di)nā A species of Podinā pot herb.
पोदिना पुदिना

**ରୋଦନୀ**—ସଂ. ବି— (ବୈଦ୍ୟକ) ଦୁରାଲଭା (ଦେଖ)
Rodanī Durālabhā (See)

**ରୋଦନୀୟ**—ସଂ. ବିଣ. ପୁଂ ( ରୁଦ୍ ଧାତୁ ଣିଜନ୍ତ ରୋଦି ଧାତୁ+
Rodanīya କର୍ମ. ଅନୀୟ)—ଯାହା ନିମନ୍ତେ ଲୋକଙ୍କର କାନ୍ଦିବା
(ରୋଦନୀୟା—ସ୍ତ୍ରୀ) ଉଚିତ—Fit to be wept over; one for whom people ought to weep.

**ରୋଦନୋଦ୍ୟତ**—ସଂ. ବିଣ. ପୁଂ (୭ମୀ ତତ୍) -କାନ୍ଦିବାକୁ ଉଦ୍ୟତ--
Rodanodyata Ready to cry; feeling inclined
(ରୋଦନୋନ୍ମୁଖ—ଅନ୍ୟରୂପ) to weep.
(ରୋଦନୋଦ୍ୟମ, ରୋଦନୋନ୍ମୁଖତା—ବି)
[ରୋଦନୋଦ୍ୟତା, ରୋଦନୋନ୍ମୁଖା, ରୋଦନୋନ୍ମୁଖୀ—ସ୍ତ୍ରୀ]

**ରୋଦନ୍ତି**—ଦେ. କି (ପ୍ରାଚୀନ ପଦ୍ୟ) (ସଂ. ରୁଦ୍ ଧାତୁର ବର୍ତ୍ତମାନ କାଳ
Rodanti ଅନ୍ୟ ପୁରୁଷ ବହୁବଚନରୂପ)—(ସେମାନେ) ରୋଦନ କରନ୍ତି—(They) Weep; do weep; are weeping. [ଉ—ପରଜନମାନେ ବେଢ଼ି, ରୋଦନ୍ତି ଭୂମିରେ ପଡ଼ି । ପ୍ରଭାପ. ଶଶିସେଣା ।]

**ରୋଦର**—ଦେ. ବି—ରୁଦ୍ର (ଦେଖ)—Rudra. (See) ସଂ. ବି—
Rodara (ର+ଉଦର; ବହୁବ୍ରୀହି; ଯେଉଁ ଶବ୍ଦର ଉଦରରେ 'ର' ଅକ୍ଷର ଅଛି)—ଚକ୍ରବାକ ପକ୍ଷୀ—A name of the ruddy goose. (M. W)

**ରୋଦସ୍**—ସଂ. ବି—ରୋଦଃ (ଦେଖ)
Rodas Rodaḥ. (See)

**ରୋଦସ୍କନ୍ଦରକୁହର**—ସଂ. ବି. (ରୋଦସ=ଆକାଶ ଓ ପୃଥିବୀ+
Rodaskandarakuhara କନ୍ଦର+କୁହର)—ଆକାଶ ଓ
ରୋଦୋକୁହର, ରୋଦୋରନ୍ଧ୍ର, ରୋଦସ୍କୁହର } ଅନ୍ୟରୂପ ପୃଥିବୀ ମଧ୍ୟରେ ଥିବା ଶୂନ୍ୟସ୍ଥାନ—The void or hollow between heaven and earth (M. W)

**ରୋଦସି**—ଦେ. କି (ପ୍ରାଚୀନ ପଦ୍ୟ) (ସଂ. ରୁଦ୍ ଧାତୁ ବର୍ତ୍ତମାନକାଳ
Rodasi ମଧ୍ୟମପୁରୁଷ ଏକବଚନର କ୍ରିୟା)—(ତୁମ୍ଭେ) ରୋଦନ କରୁଛ—[you] Are crying. [ଉ—କପାଇଁ ବିଷାଦ ହୋଇ ରୋଦସି ବକଳେ । ପ୍ରାଚୀ. ରଘୁବଂଶ ।]

**ରୋଦସୀ**—ସଂ. ବି. ସ୍ତ୍ରୀ (ରୋଦସ୍+ଈ)—୧ । ପୃଥିବୀ—1. The
Rodasī earth. ୨ । ଆକାଶ—2. The sky. ୩ । ପୃଥିବୀ ଓ ଆକାଶ ଉଭୟ—3. Both the earth and the sky.

**ରୋଦି (ଧାତୁ)**—ସଂ. (ରୁଦ୍. ଧାତୁ, ଣିଚ)—କନ୍ଦାଇବା —
Rodi (root) To cause to weep.

**ରୋଦି ଉଠିବା**—ଦେ. କି—ହଠାତ୍ ବଡ଼ ପାଟି କରି କାନ୍ଦିବା—
Rodi uṭhibā To cry loudly all on a sudden.
জোরে কেঁদেউঠা [ଉ—ଶୋକଭରେ ଉଚ୍ଚସ୍ୱରେ ରୋଦି ଉଠିଲା ।
रोउठना ପ୍ରାଚୀ. ନଳଚରିତ ।]

**ରୋଦିବା**—ଦେ (ପଦ୍ୟ) କି ( ସଂ. ରୁଦ ଧାତୁ)-କାନ୍ଦିବା— To weep.
Rodibā [ଉ—ସେ ଯେ ରୋଦଇ ଯେସନେ କମଳିଣୀ, ଚେ ଦଇବ !
রোদন করা रोना ପ୍ରଭାପ. ଶଶିସେଣା ।]

**ରୋଦ୍ଧବ୍ୟ**—ସଂ. ବିଣ (ରୁଧ ଧାତୁ+କର୍ମ. ତବ୍ୟ)—ରୋଧନୀୟ (ଦେଖ)
Roddhabya Rodhanīya. (See)

**ରୋଦ୍ଧା**—ସଂ. ବିଣ. ପୁଂ [ରୁଧ୍ ଧାତୁ+କର୍ତ୍ତୃ. ତୃ; ୧ମା. ୧ବ]—
Roddhā ରୋଧକର୍ତ୍ତା ; ପ୍ରତିରୋଧକ—Obstructing;
[ରୋଦ୍ଧ୍ରୀ—ସ୍ତ୍ରୀ] preventing.

**ରୋଦ୍ର**—ଦେ ବି [ସଂ. ଉଦର]—ଉଦର; ରୁଦ୍ର, ଖେଟବସ୍ତୁ (ଯଥା—
Rodra ଧାନ, ବାଲି, ଦାଲି) ବୁହାଯିବା ପାଇଁ ଶଗଡ଼ ଉପରେ ବସାଯିବା ଲମ୍ବା ଓ ଗୋଲ୍ଲ ବାଉଁଶପାତିଆରେ ବା ବେତ ଅବରେ ବୁଣା ଆଧାର ବା ଟୋକେଇ—A long basket for carrying small articles (e. g paddy, sand, grains) on a bullock-cart. [ଉ—ଉଠିଲା ଦଳ ଦ' ଶୁଣ ରୋଦ୍ର, ଭାତ, ଦଶ ପାଞ୍ଚଗଣ୍ଡ ଦାଉଣ ମରିଷି... ଶୋକଜନଙ୍କ କର ଦେଇ ପୁଣି ଶୋଇ ପଡ଼େ । ମାଳକଣ୍ଠ. ବିଲଙ୍କା ରାମାୟଣ ।]

**ରୋଧ**—ସଂ. ବି (ରୁଧ ଧାତୁ+ଭାବ. ଅ)—୧ । ଅବରୋଧନ—
Rodha 1. Obstructing. ୨ । ପ୍ରତିବନ୍ଧକ; ବାଧା—2. Obstruction; impediment. ୩ । (+କର୍ତ୍ତୃ. ଅ, ଯାହା ଜଳକୁ ରୋଧ କରେ) ନଦୀ ଆଦିର ତୀର; ତଟ; କୂଳ—3. The bank of a stream. ୪ । (+ଭାବ. ଅନ) ବେଷ୍ଟନ—4. Surrounding; blockading (M. W) ୫ । କୋଷ୍ଠବଦ୍ଧତା—5. Costivenes (M. W) ୬ । (+କର୍ତ୍ତୃ. ଅ) (କୌଣସି ବ୍ୟକ୍ତିକୁ ବା ସ୍ଥାନକୁ) ଆକ୍ରମଣକାରୀ—6. Attacking; making war upon (M. W) ୭ । (+କରଣ. ଅ; ଯାହାଦ୍ୱାରା ସ୍ରୋତକୁ ଅଟକାଯାଏ) ସେତୁ ; ବନ୍ଧ—7. Dam. ୮ । ଶର, ବାଣ—8. Arrow. (M. W)

**ରୋଧଃ**—ସଂ. ବି (ରୁଧ ଧାତୁ=ବାଧା ଦେବା+କର୍ତ୍ତୃ. ଅସ୍)—୧ ।ନଦୀ
Rodhaḥ ଆଦିର ତୀର; କୂଳ—Shore of river etc. ୨ । ପର୍ବତର ଢାଲୁ—2. Mountain slope (M. W) ୩ । କୂପ ତଡ଼ାଗାଦିର ଦାଢ଼—3. The brink (of a

well or tank) ୪ । ଅଡଡ୍ଡା; ଅଡଡ୍ଡ—4. Steep wall or bank (M. W) ୫ । କଉ; ପାର୍ଶ୍ୱ—5. Flank; side (M. W) ୬। ସ୍ତ୍ରୀ କଟୀଦେଶ—6. A woman's hips (M. W)

**ରୋଧଃ ପତନ କଳୁଷ**—ସଂ. ବିଣ. (ଷଷ୍ଠୀ ତତ୍; ତୃତୀୟା ତତ୍)—ତଟର Rodhaḥ patana kalusha ଅଡଡ୍ଡା ଖସି ପଡ଼ିବାରୁ ଯାହାଁର (ରୋଧଃ ପତନ କଳୁଷା—ସ୍ତ୍ରୀ) ପାଣି ଗୋଳିଆ ବା କାଦୁଆ ହୋଇ ଅଛି—Rendered muddy by the falling in of a tank (M. W).

**ରୋଧକ**—ସଂ. ବିଣ. ପୁଂ (ରୁଧ୍ ଧାତୁ+କର୍ତ୍ତୃ. ଅକ)—୧ । ନିବାରଣକାରୀ Rodhaka —1. Preventing. ୨ । ବାଧା ଦାନକାରୀ; (ରୋଧିକା—ସ୍ତ୍ରୀ) ଯେ ଅଟକାଏ—2. Obstructing. ୩ । ଘୋଡ଼ାଇ ଥିବା; ଘୋଡ଼ାଇ ରଖିଥିବା—3. Covering; shrouding. (ଉ—ପୟୋଧର ରୋଧକ କାଢ଼ିବ ମାଳ କଷ୍ଟ ଯେ । ପ୍ରାଚୀ. ରସବାରିଧି ।)

**ରୋଧ କରିବା**—ଦେ. କ୍ରି. (ସଂ. ରୁଧ ଧାତୁ)—୧ । ବାଧା ଦେବା—Rodha kariba 1. To hinder; to obstruct. ୨ । রোধ করা ନିବାରଣ କରିବା—2. To prevent. ୩ । रोध करना ନଗରକୁ ସୈନ୍ୟ ଦ୍ୱାରା ଘେରିବା; ଅବରୋଧ କରିବା —3. To blockade or besiege a city. ୪ । (ଗତିକୁ) ଅଟକାଇବା—4. To restrain. ୫ । ଆବରଣ କରିବା—5. To cover.

**ରୋଧନ**—ସଂ. ବି. (ରୁଧ ଧାତୁ+ଭାବ. ଅନ)—୧ । କୌଣସି ସ୍ଥାନର Rodhana ଚାରିଆଡ଼େ ଘେରାଉ କରିବା—1. Besieging or blockading a place. ୨ । ବାଧା ଦେବା; ଅଟକାଇବା—2. Obstructing; hindering; being an obstacle or hindrance. ୩ । (+କର୍ତ୍ତୃ. ଅନ) ବୁଧ ଗ୍ରହ—3. The planet Mercury (M. W).

**ରୋଧନୀୟ**—ସଂ. ବିଣ (ରୁଧ୍ ଧାତୁ+କର୍ମ. ଅନୀୟ)—୧ । ଅବରୋଧ Rodhanīya କରିଯିବାର ଯୋଗ୍ୟ—1. Fit to be blockaded; capable of being besieged. ୨ । ଯାହା ରୁନ୍ଧାଯିବ—2. To be shut or closed M. W).

**ରୋଧବତୀ**—ସଂ. ବି. (ରୋଧ=କୂଳ+ଅସ୍ତ୍ୟର୍ଥେ. ବତ୍+ସ୍ତ୍ରୀ. ଈ)—Rodhabatī ତଟିନୀ; ନଦୀ—River.

**ରୋଧ ବେଦୀ**—ସଂ. ବି (ରୋଧ+ବିଦ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଈ)—Rodha bedī ନଦୀ—River (M. W).

**ରୋଧସ୍**—ସଂ. ବି—ରୋଧଃ ଦେଖ ) Rodhas Rodhaḥ ( See )

**ରୋଧସ୍ଥ**—ସଂ. ବିଣ. ( ରୋଧ+ସ୍ଥା ଧାତୁ+କର୍ତ୍ତୃ. ଅ )—(ନଦ୍ୟାଦିର) Rodhastha ତୀରରେ ଦଣ୍ଡାୟମାନ ବା ଅବସ୍ଥିତ—Standing or situated on the bank (M. W). (ରୋଧସ୍ଥା—ସ୍ତ୍ରୀ)

**ରୋଧା(ଧେ)ଇବା**—ସଂ. କ୍ରି—ରୋଧିବା କ୍ରିୟାର ଣିଜନ୍ତ ରୂପ—Rodhā(dhe)ibā The causative of Rodhibā. রোধ করানা रोकवाना

**ରୋଧାର୍ହ**—ସଂ. ବିଣ. ( ରୋଧ+ଅର୍ହ=ଯୋଗ୍ୟ )—୧ । ଅଟକ Rodhārha କରିବାର ଉପଯୁକ୍ତ—1. Fit to be restrained or obstructed. ୨ । ଅବରୋଧନୀୟ—2. Fit to be besieged or blockaded. ୩ । ବାଧା ଦିଆ ଯିବାର ଉପଯୁକ୍ତ—3. Preventible; fit to be prevented. (ରୋଧାର୍ହା—ସ୍ତ୍ରୀ)

**ରୋଧି (ଧାତୁ)**—ସଂ. ( ରୁଧ୍ ଧାତୁ+ଣିଚ୍ )—ରୁଦ୍ଧ କରାଇବା, Rodhi (root) ରୋଧାଇବା—To cause to be restrained.

**ରୋଧିତ**—ସଂ. ବିଣ. (ରୁଧ୍ ଧାତୁ ଣିଜନ୍ତ+କର୍ମ. ତ)—୧। ଅବଦ୍ଧ—Rodhita 1. Confined; ୨ । ଯାହାକୁ ବାଧା ଦିଆଯାଇ ଥାଏ—2. Restrained; obstructed. ୩। ଅବରୋଧିତ; ଘେରାଉ କରା ଯାଇଥିବା—3. Besieged; blockaded ୪ । ଆବୃତ—4. Covered; shrouded.

**ରୋଧିବା**—ଦେ. କ୍ରି (ପଦ୍ୟ) (ସଂ. ରୁଧ୍ ଧାତୁ)—୧ । ଅଟକ କରିବା—Rodhibā 1. To restrain. ୨ । ବାଧା ଦେବା—বোধা, রোধ করা 2. To obstruct. (ଉ—ଏକାଳେ ତାଙ୍କ रोध(क)ना ମାର୍ଗ ରୋଧିବୁ ନାହିଁ । ରାଧାନାଥ. ମେଘଦୂତ ।) ୩ । ଆବୃତ କରିବା—3. To cover. (ଉ—ଧୂଳିରାଶି ଅଶ୍ୱ ଖୁରେ ଉଠି, ପ୍ରସର ବିମ୍ବ ରୋଧିଲା ଆକାଶେ । ରାଧାନାଥ, ମହାଯାତ୍ରା)

**ରୋଧିର**—ଗ୍ରା. ବି. (ସଂ. ରୁଧିର)—ରକ୍ତ; ରୁଧିର; ଲହୁ—Rodhira রুধির रुधिर Blood.

**ରୋଧୀ**—ସଂ. ବିଣ. ପୁଂ ( ରୁଧ୍ ଧାତୁ+କର୍ତ୍ତୃ. ଇନ୍; ୧ମା ୧ବ )—Rodhi ୧ । ରୋଧକାରୀ—1. Obstructing; besieging. (ରୋଧିନୀ—ସ୍ତ୍ରୀ) ୨ । ଯେ ଅଟକ କରେ—2. Restraining. ୩ । ଯେ ଗତିକୁ ଅଟକାଏ—3. Barring another's motion. ୪ । (ଯେଉଁ ଉଚ୍ଚ ସ୍ୱର) ଅନ୍ୟ ନିମ୍ନ ସ୍ୱରକୁ ବୁଡ଼ାଇ ଦିଏ—4. (a sound) Drowning a lower sound (M. W).

**ରୋଧୋବତୀ(ବ୍ରା)**—ସଂ. ବି. ସ୍ତ୍ରୀ. ( ରୋଧସ୍+ବତ୍+ଈ; ବହୁବ୍ରୀହି, Rodhobatī (krā) ରୋଧସ୍+ବକ୍ର+ଆ)—ନଦୀ—A river (M.W).

**ରୋଧୋବପ୍ର(ପ୍ରା)**—ସଂ. ବି—୧ । ସ୍ରୋତସ୍ୱତୀ ନଦୀ—1. A rapid Rodhobapra(prā) river (M. W). ୨ । ଯେଉଁ ନଦୀର ଗର୍ଭରେ ବହୁ ବିଷମମାନ ଥାଏ—2. A river full of rapids.

**ରୋଧ୍ୟ**—ସଂ. ବିଣ. (ରୁଧ ଧାତୁ+କର୍ମ. ଯ)—ରୋଧନୀୟ ( ଦେଖ ) Rodhya Rodhanīya ( See )

ରୋଧ୍ର—ସଂ. ବି. (ରୁଧ୍ ଧାତୁ ଣିଜନ୍ତ, ରୋଧି ଧାତୁ+କର୍ତ୍ତୃ. ର; ଯାହା Rodhra ସ୍ୱର୍ଗଦ୍ୱାରକୁ ରୋଧ କରେ)—୧। ଅପରାଧ—1. Guilt. ୨। ପାପ—2. Sin. ୩। (ରୁଧ୍ ଧାତୁ+କରଣ. ର) ଲୋଧ୍ର (ଗଛ)—3. Symplocus Racemosa (tree), (M.W).

ରୋଧ୍ର ପୁଷ୍ପ—ସଂ. ବି. (ବୈଦ୍ୟକ)—୧। ମହୁଆ ଗଛ—1. Bassia Rodhra pushpa Latifolia (M. W). ୨। ସର୍ପ ବିଶେଷ—2. A kind of snake (M. W).

ରୋଧ୍ର ପୁଷ୍ପିଣୀ—ସଂ. ବି. ( ବୈଦ୍ୟକ )—ଧାତକୀ ବୃକ୍ଷ ( ଦେଖ ) Rodhra pushpini Woodfordia Floribunda (tree); Grislea Tomentosa (M. W).

ରୋନ୍ଦ୍ (ଇତ୍ୟାଦି)—ବୈଦେ. ବ ( ଇଂ. ରାଉଣ୍ଡ୍ )—ରୁନ୍ଦ୍ ଇତ୍ୟାଦି Rond (etc) ( ଦେଖ )—Rund etc ( See )

ରୋପ—ସଂ. ବି ( ରୁହ୍ ଧାତୁ ଣିଜନ୍ତ+ଭାବ. ଅ )—୧ । ରୋପଣ—Ropa 1. Planting. ୨। ଛିଦ୍ର; ଗର୍ତ୍ତ—2. Hole; fissure. ୩ । ( ରୁପ୍ ଧାତୁ=ମୂର୍ଚ୍ଛିତ ହେବା+କରଣ ଅ )—ବାଣ; ଶର– 3. Arrow. [ ଉ—ଧପଧାପେ ଘୋଡ଼ାମାନଙ୍କୁ ଧୁଅାଁଇଲେ, କୋପ କରନ୍ତି ରୋପ ଅମାପ ବାହାଲେ । କୃଷ୍ଣସିଂହ. ମହାଭାରତ. ଦ୍ରୋଣ । ] ସ. ବିଣ ( ରୁପ ଧାତୁ+କର୍ତ୍ତୃ. ଅ )—ଯାହା ଗୋଳାଇ ଦିଏ; ଯାହା ଧନ୍ଦାଳ ଦିଏ—Confusing; disturbing ( M. W. & W )

ରୋପକ—ସଂ. ବିଣ. ପୁଂ ( ରୁହ୍ ଧାତୁ ଣିଚ୍, ରୋପି ଧାତୁ+କର୍ତ୍ତୃ. Ropaka ଅକ )—ରୋପଣକାରୀ—Planting. ସ. ବି (ରୋପିକା—ସ୍ତ୍ରୀ) —୧ । କୃଷକ—1. Planter. ୨ । ଧାତୁର ବଟକରୀ ବା ମୁଦ୍ରା—2. A weight of metal or coin (M.W.). [ ଦ୍ର—ଏହା ଏକ ସୁବର୍ଣ୍ଣ ଓଜନର ୭୦ ଭାଗରୁ ଏକ ଭାଗ । ] ୩ । ଗଛ ରୋଇବା ବ୍ୟକ୍ତି—3.Transplanter of plants or seedlings. ୪ । ମଞ୍ଜି ବୁଣାଳ ବ୍ୟକ୍ତି—4. A sower of seeds.

ରୋପଣ୍ଡ—ପ୍ରାଦେ ( ଗଡ଼ଜାତ ) ବି—ମୃଗୟା ସମୟରେ ଶୃଙ୍ଗଆଡ଼େ Roparda ମନୁଷ୍ୟମାନେ ଘେର ଜନ୍ତୁଙ୍କୁ ଶିକାରୀପାଖକୁ ଘଉଡ଼ାଇ ଆଣିବା—Beating of the jungle for driving the beasts to the hunter.

ରୋପଣ—ସ. ବି ( ରୁହ୍ ଧାତୁ ଣିଚ, ରୋପି ଧାତୁ+ଭାବ. ଅନ )—Ropana ୧ । ଗଛ ପୋତିବା—1. Planting of trees. ୨ । ଭୂମିରେ ବାଡ଼ଆଦି ପୋତି ଠିଆ କରାଇବା—2. Fixing of a stake on the ground; erecting; raising ( M. W. ) ୩ । ଚଳ ରୋଇବା—3. Planting of seedlings, transplanting. ୪ । ବୀଜ ବପନ; ମଞ୍ଜିବୁଣା—4. Sowing of seeds. ୫ । ସ୍ଥାପନ—5. Placing; setting up. ୬ ।ମୁଗ୍ଧ କରିବା—6. Fascinating; charming. ୭। ( +କର୍ମ. ଅନ )—ଆଖିରେ ଘେନିବା ଅଞ୍ଜନ ବିଶେଷ—7. Collyrium. ୮। ( +ଭାବ. ଅନ )—କ୍ଷତଆଦିକୁ ଶୁଖାଇବା-8. The act of healing wounds or sores. ୯। (+କରଣ.ଅ)—କ୍ଷତରେ ମାଂସ ପୂରି ଆସିବା ପ୍ରୟୋଗ—9. Healing application. ୧୦ । ( +କର୍ମ. ଅନ )—ଶର; ବାଣ—10. Arrow ( M. W. ).

ରୋପଣ କରିବା—ଦେ. କ୍ରି ( ସ. ରୁହ ଧାତୁ ଣିଚ, ରୋପି ଧାତୁ ) Ropana kariba —୧ । ଗଛଆଦି ପୋତିବା—1 To বোপণ কবা plant. ୨। ରୋଇବା—2. To transplant. रोपण करना, रोपना

ରୋପଣକାରୀ—ସ. ବିଣ. ପୁଂ—ଯେ ରୋପଣ କରେ—Ropanakari (ରୋପଣକାରିଣୀ—ସ୍ତ୍ରୀ) Planting.

ରୋପଣୀୟ—ସ. ବିଣ ( ରୁହ୍ ଧାତୁ ଣିଜନ୍ତ+କର୍ମ, ଅନୀୟ )—Ropaniya ୧ । ଭୂମିରେ ପୋତାଯିବାର ଯୋଗ୍ୟ—1. Fit to be planted or erected. ୨ । ଯାହା ବୁଣାଯିବାର ଯୋଗ୍ୟ—2. Fit to be sown. ୩ । ଘାଆଆଦିରେ ମାଂସ କଅଁଳିବା ପାଇ ଲୋଡ଼ା ( ଦ୍ରବ୍ୟ —) 3 Useful for healing or cicatrising ( M W ).

ରୋପୟିତା—ସ.ବିଣ.ପୁଂ(ରୋପିଧାତୁ+କର୍ତ୍ତୃ.ତୃ)—ଯେ ରୋପଣ କରେ; Ropayita ରୋହଣକାରୀ (ରୋପଣର ଭିନ୍ନ ଭିନ୍ନ ଅର୍ଥ ଦେଖ)—(ରୋପୟିତ୍ରୀ—ସ୍ତ୍ରୀ) Transplanting; sowing; erecting; healing. ସ. ବି. ପୁଂ—ରୁଆଇବା ବ୍ୟକ୍ତି—A planter ( M W )

ରୋପାଇବା—ଦେ.କ୍ରି(ସ.ରୋପି ଧାତୁ)—୧। ରୋପିବା କ୍ରିୟାର ଣିଜନ୍ତ Ropaiba ରୂପ—1. To cause to be planted. [ଉ রোপীন —ଚନ୍ଦ୍ରମା, ପ୍ରେମ-ପାଦପ ରୋପାଇବ । ଭଞ୍ଜ. रोपवाना ପ୍ରେମସୁଧାନିଧି । ] ୨ । ରୁଆଇବା—2 To cause to be transplanted.

ରୋପିତ—ସ. ବିଣ ( ରୁହ୍ ଧାତୁ ଣିଜନ୍ତ+କର୍ମ, ତ )—୧ । କୃତ-Ropita ରୋପଣ, ପୋତା ହୋଇଥିବା—1. Planted. ୨। ଆରୋପିତ—2. Set, fixed. ୩ । ଅର୍ପିତ—3. Entrusted. ୪। ଯାହା ବଢ଼ିବାର ଉପାୟ କରା ଯାଇଥାଏ; ଅବାଦ କରା ଯାଇଥିବା—4. Caused to grow; raised (as a crop) (M.W) ୫। ଯେଉଁ ଶରକୁ ଲକ୍ଷ୍ୟ ଆଡ଼କୁ ପ୍ରଯୁକ୍ତ କରା ଯାଇଥାଏ—5. Directed; aimed (as an arrow)(M.W) ୬। ଅଳଙ୍କାର ଆଦିରେ ବସା ଯାଇଥିବା; ଖଚିତ—6. Set (as a jewel) (M.W).

ରୋପିବା—ଦେ. କ୍ରି—(ସ. ରୁହ ଧାତୁ ଣିଚ; ରୋପି ଧାତୁ)—Ropiba ରୋପଣ କରିବା [ଦେଖ] Ropana kariba বোপা रोपना (See) [ ଉ—ଉତ୍ତର ଦାଢ଼ି ପୁଣେ ରୋପ, ପୂଷାର ଦନ୍ତ ପାଡ଼ି ଆପ । ଜଗନ୍ନାଥ. ଭାଗବତ ।]

ରୋପୀ—ସଂ. ବି. ଓ ବିଣ. [ପୁ]—[ରୁହ ଧାତୁ ଣିଚ=ରୋପି ଧାତୁ+ କର୍ତ୍ତୃ. ଇନ୍; ୧ମା ୧ବ]—ରୋପୟିତା [ଦେଖ]—
Ropi [ରୋପିଣୀ—ସ୍ତ୍ରୀ] Ropayitā (See)

ରୋପ୍ୟ—ସଂ. ବିଣ.—(ରୁହ ଧାତୁ ଣିଚ; ରୋପି ଧାତୁ+କର୍ମ. ଯ)—
Ropya ରୋପଣୀୟ—Fit to be transplanted, raised, erected or healed etc.

ରୋପ୍ୟାତିରୋ(ରୌ)ପ୍ୟ—ସଂ. ବି.—ଏକ କାଳ ଶାଳ ଧାନ୍ୟ; ରୁଆ
Ropyāti ro(rau)pya ହୋଇ ଉତ୍ପନ୍ନ କରାଯାଇ ଥିବା ଶାରଦ ଧାନ; ରୁଆ ଶାରଦ ଧାନ—Winter paddy grown by transplanting seedlings. [ଦ୍ର—ବୈଦ୍ୟକଶାସ୍ତ୍ରଙ୍କ ମତରେ ଏହା ଲଘୁ, ଶୀଘ୍ରପାକ, ଗୁଣୋତ୍ତର, ଅଦାହୀ, ଦୋଷହର, ବଳକାରକ ଓ ମୂତ୍ର ବର୍ଦ୍ଧନ ଅଟେ। ଶବ୍ଦ କଳ୍ପଦ୍ରୁମ।]

ରୋବ୍[ବୁ]କାରୀ—ବୈଦେ. ବି.—(ଫା. ରୋବ୍‌କାରୀ)—ରୁବକାରୀ
Rob(bu)kāri [ଦେଖ] Rubakāri (See) [ଉ—ହାକିମଙ୍କ ହୁକୁମ ଅନୁସାରେ ସେରସ୍ତାଦାର ରୋବକାରୀ ଲେଖି ପ୍ରକାଶ କଲେ। ଫକୀରମୋହନ. ଛମାଣ ଆଠଗୁଣ।]

ରୋବଣ—ବୈଦେ. ବି.—[ଫା. ରୌଗନ୍]—୧। ରୋଗନ୍ (ଦେଖ)
Robaṇa रोगन रोगन 1. Rogan [See]
୨। ଝୁଣାରେ ତେଲ ମିଶାଯାଇ କରା ଯିବା ଏକ ପ୍ରକାର ଦ୍ରବ ପଦାର୍ଥ—2. Copal varnish; country varnish. [ଦ୍ର—ଚିତ୍ର ଉପରେ ଝଲ ଦାହାରିବା ପାଇଁ ଏହାକୁ ବୋଳନ୍ତି।]

ରୋବ(ବୁ)ଣା—ପ୍ରାଦେ. [ଗଞ୍ଜାମ] ବି.—ରୁବଣା (ଦେଖ)
Roba(bu)ṇā Rubaṇā (See)

ରୋବ(ବୁ)ଣା ଗୁଡ଼ା—ପ୍ରାଦେ.—(ଗଞ୍ଜାମ) ବି.—ରୁବୁଣାଗୁଡ଼ା (ଦେଖ)
Roba (bu)ṇā guṛā Rubāṇāguṛā (See)

ରୋବା—ପ୍ରାଦେ. (ବସ୍ତର) କ୍ରି.—(ଭୁଲ. ହି. ରୋନା)—କାନ୍ଦିବା—
Robā To cry; to weep.

ରୋମ୍—ଦେ. ବି.—(ସଂ. ରୋମ, ରୋମକ; ଇଂ. ରୋମ୍)—୧।
Rom रोम रोम ଇଟାଲିର ପ୍ରଧାନ ନଗର—1. The city of Rome in Italy. [ଦ୍ର—ଏହା ଖ୍ରୀଷ୍ଟିୟାନ୍ ରୋମାନ୍ କାଥଲିକ୍ ସମ୍ପ୍ରଦାୟର ପ୍ରଧାନ ଧର୍ମଯାଜକ ପୋପ୍‌ଙ୍କର ମଧ୍ୟ ରାଜଧାନୀ।] ୨। ପ୍ରାଚୀନ ରୋମ୍ ସାମ୍ରାଜ୍ୟ—2. The ancient Roman empire.

ରୋମ—ସଂ. ବି.—(ରୁ ଧାତୁ=ଶବ୍ଦ କରିବା+କର୍ତ୍ତୃ. ମନ୍=ରୋମନ୍,
Roma ୧ମା. ୧ବ.)—୧। ଲୋମ; ଜୀବଦେହର କ୍ଷୁଦ୍ର କେଶ-[ଭୁମ—ଦେଶଜରୂପ] 1. Fur. ୨। ପଶମ; ପଶୁ ଲୋମ—2. Wool. ୩। ଜଳ—3. Water. ୪। (ବ୍ୟୁତ୍ପତ୍ତି ଅନିର୍ଦ୍ଦିଷ୍ଟ)—ଗର୍ତ୍ତ—4. Hole; cavity. (M. W.) ୫। ଜଳ—5. Water (M. W) ୬। (ନାମ) ରୋମ ନଗର—6. The city of Rome. ଦେ. ବି.—ରୋମ ପରିମିତ ଓସାର—Hair breadth.

ରୋମ ଉଖା(ପା)ଡ଼ିବା—ଦେ. କ୍ରି.—(ସଂ. ରୋମନ୍+ଉତ୍ପାଟନ)—
Roma ukhā(pā)ṛdibā ୧। ଶରୀରରୁ ଲୋମ ଉତ୍ପାଟନ
লোম উখড়ান করিবা—1. To uproot the hairs of रोआँ उखाड़ना the body. ୨। (ଲକ୍ଷଣାର୍ଥ) (ଦେହରୁ ଲୋମ ଉତ୍ପାଟନ କଲେ କଷ୍ଟ ହୁଏ ବୋଲି)—କଷ୍ଟ ଦେବା—2. (figurative) To torment. ୩। ଲକ୍ଷଣାର୍ଥ କୌଣସି ବ୍ୟକ୍ତିର ଅନିଷ୍ଟ କରିବା—3. (figurative) To injure a person.

ରୋମ ଉଖୁ(ପୁ)ଡ଼ିବା—ଦେ. ବି.—(ସଂ. ରୋମନ୍+ଉତ୍ପାଟନ)—
Roma ukhu(pu)ṛdibā ଦେହରୁ ଲୋମ ଉଦ୍‌ଗତ ହେବା;
লোম উপড়াযাওয়া ରୋମୋଦ୍ଗମ—The coming out of रोआँ उखड़ना the hairs of the skin.

ରୋମ ଉଠିବା—ଦେ. ବି.—ଦେହରେ ଲୋମ କଅଁଳିବା—
Roma uṭhibā The growing of the hairs on
লোম উঠা रोआँ उगना the skin.

ରୋମ ଉଠିଯିବା—ଦେ. ବି—ଦେହରୁ ଲୋମ ଉପୁଡ଼ିଯିବା; ରୋମ
Roma uṭhijibā ଉଖୁଡ଼ିବା (ଦେଖ)—Roma
লোমউঠেযাওয়া रोआँउठजाना ukhurdibā (See).

ରୋମକ—ସଂ. ବି (ରୋମ+କ)—୧। ପ୍ରାଚୀନ ରୋମ ନଗର—
Romaka 1. The ancient city of Rome. ୨। ପ୍ରାଚୀନ ଗ୍ରୀସ୍ ସାମ୍ରାଜ୍ୟ—2. Ancient Greece. [ଦ୍ର—ପ୍ରାଚୀନ ରୋମ, ଗ୍ରୀସ୍, ଭୂରସ୍ଥ ଆଦି ଦେଶକୁ ଆର୍ଯ୍ୟମାନେ ରୋମକ ନାମରେ ଡାକୁଥିଲେ।] ୩। ରୋମ ନଗର ଅଧିବାସୀ—3. A Roman. ୪। (ରୁମାବତୀ ନଦୀରୁ ଉତ୍ପନ୍ନ ହେଉଥିବାରୁ) ସଲ ଲବଣ; ପାଂଶୁ ଲବଣ; ଶାମ୍ବର ଲବଣ—4. A kind of lake-salt from the Sambhar lake of Rajputana. ୫। ଅୟସ୍କାନ୍ତମଣି—5. A kind of gem. ୬। ଜ୍ୟୋତିଷର ସିଦ୍ଧାନ୍ତ ଗ୍ରନ୍ଥବିଶେଷ—6. Name of an ancient Aryan astronomical treatise. ୭। (ନାମ) ରୋମକସିଦ୍ଧାନ୍ତର ସଙ୍କଳୟିତା—7. Name of an ancient astronomer (M. W).

ରୋମ କର୍ଣ୍ଣକ—ସଂ. ବି. (ବହୁବ୍ରୀହି; ରୋମ+କର୍ଣ୍ଣ+କ)—
Roma karṇnaka ଠେକୁଆ—Hare (M. W.)

ରୋମକ ଲବଣ—ସଂ. ବି—ଶାମ୍ବର ଲବଣ—Lake-salt from
Romaka labaṇa the salt lakes of Ajmere.

ରୋମ କୂପ—ସଂ. ବି (୬ଷ୍ଠୀ ତତ୍) ଲୋମକୂପ; ଦେହର ଚର୍ମ ଉପରେ
Roma kūpa ଲୋମ ଉଠିବା ସ୍ଥାନର ଗର୍ତ୍ତ—Pores of (ରୋମଗର୍ତ୍ତ, ରୋମବିବର, ରୋମରନ୍ଧ୍ର—ଅନ୍ୟରୂପ) the skin.

ରୋମକେ—ଦେ. କି. ବଣ—ପ୍ରତି ରୋମରେ—To every fur
Romake of body. [ ଉ—ରୋମକେ କାଣ୍ଡେ କାଣ୍ଡେ
ପ୍ରତିଲୋମେ **हरेकरोंआँमें** ବନ୍ଧନ୍ତ ଶର—ଭଞ୍ଜ । ]

ରୋମଗୁଚ୍ଛ(ତ୍ସ)—ସ. ବ ( ୬ଷ୍ଠୀ ତତ୍ )—୧ । ଚମର—
Romaguchchha(tsa) 1 The tail of the Yak
(ରୋମକେଶର—ଅନ୍ୟରୂପ) used as a fan. ୨ । କେଶଗୁଚ୍ଛ-
2. Tuft of hair.

ରୋମଜ—ସ. ବଣ (ରୋମ+ଜନ୍ ଧାତୁ+କର୍ତ୍ତୃ. ଅ)—ପଶୁ ଲୋମରୁ
Romaja ଜାତ; ଲୋମଦ୍ୱାରା ପ୍ରସ୍ତୁତ; ପଶମୀ; ଲୋମନିର୍ମିତ—
Woolen. ସ. ବ—ଏକପ୍ରକାର ଲୁଗା—A kind of
cloth (M. W)

ରୋମ ଟ(ଟା)ଙ୍କୁରିବା—ଦେ. ବ. (ସ ରୋମ+ଟଙ୍କୁର)—ଦେହ ପୁଲକ
Roma ṭa(ṭa)ṅkuribā ଉଠିବା; ରୋମାଞ୍ଚ ରୋମହର୍ଷ—
गायें काँटादियेउठा **रोंङ्गटेखड़ाहोंना** The standing of
ରୋମ ଟଙ୍କୁରିତ ହେବା
ରୋମ ଟାଙ୍କୁରେଇବା
ରୋମଟାଙ୍କ(ଙ୍ଗୁ)ରିବା
ରୋମଟାଙ୍କୁ(ଙ୍ଗୁ)ରିଉଠିବା } ଅନ୍ୟରୂପ— the hairs on ends (through extreme fear, wonder, paroxyam of devotion; horripilation; the
bristling of the hair of the body.

ରୋମ ଟାଙ୍କୁ(ଙ୍ଗୁ)ରା—ଦେ. ବ—ରୋମାଞ୍ଚ; ରୋମହର୍ଷ—Horripila-
Roma ṭāṅku(ṅgu)rā tion. ଦେ. ବଣ—ରୋମାଞ୍ଚିତ
रोमांच **रोंङ्गटाखड़ाहोना** ରୋମହର୍ଷିତ—Horripilated.
ଦେ· ବଣ—ରୋମାଞ୍ଚ ଉତ୍ପାଦକ—Thrilling; causing the hair to bristle.

ରୋମ ନୁ(ଲୁ)ଚିବା ବେଳ—ଦେ· ବ—ମୁହଁସନ୍ଧ୍ୟା; ଯେଉଁ ସମୟରେ
Roma nu(lu)chibā beḷa ଅନ୍ଧାର ଯୋଗୁଁ ମନୁଷ୍ୟ ଶରୀରର
. लोमदेखानाजाओया **रोआँनदीखाना** ଲୋମ ଦେଖା ପଡେ ନାହିଁ—
Dusk (literally, the time when the hair
of the body is not visible).

ରୋମନ୍ଥ—ସ. ବ (ରୋମ+ମଥ୍ ଧାତୁ—ବଧ କରିବା+ଭାବ ଅ)—
Romantha ଜପାଉଳ; ଏହା କରିବାଦ୍ୱାରା ପଶୁମାନଙ୍କର ଖାଣ୍ଡ
जाओबकाटा, पाइजकाब **पागुर, जुगाली** ଶକ୍ତି ବୃଦ୍ଧିହେବାରୁ
( ରୋମନ୍ଥନ—ଅନ୍ୟରୂପ ) ରୋଗମାନ ନଷ୍ଟ ହୁଏ )—୧ ।
ଉଦ୍‌ଗୀର୍ଣ୍ଣ ଚର୍ବଣ; ପାକୁଳ କରିବା; ଗୋରୁ ଆଦି ପ୍ରାଣୀଙ୍କର
ଗିଳିଥିବା ଖାଦ୍ୟକୁ ପୁଣି ପାଟିକୁ କାଢ଼ି ଆଣି ଚୋବାଇବା
କ୍ରିୟା—1. Ruminating; chewing the cud.
୨ । ପାନ ଆଦି ଗିଳି ନ ଦେଇ ଉପର୍ଯ୍ୟୁପରି ଚୋବାଇବା-
2. Chewing ( of betel ) (M. W.) ୩ ।
-ଦୋହୋରାଇବା; ଏକ କଥାର ବାରମ୍ବାର କଥନ—
3, Frequent repetition (M. W.)

ରୋମନ୍ଥ(ନ୍ଥି)କ—ସ. ବଣ. ଓ ବ. ପୁଂ.—(ରୋମନ୍ଥ+କର୍ତ୍ତୃ. କ) – ଯେଉଁ
Romantha(nthi)ka ଜନ୍ତୁମାନେ ପାକୁଳ କରନ୍ତି —
(ରୋମନ୍ଥକାରୀ—ଅନ୍ୟରୂପ) Ruminant; a ruminating
animal.

ରୋମନ୍ଥ କରିବା—ଦେ. କି.—ପାକୁଳ କରିବା—
Romantha kariba To ruminate; to chew the cud
पाइज काटा **रोमन्थ (जुगाली)करना, पागुरकरना**
[ରୋମନ୍ଥନ କରିବା—ଅନ୍ୟରୂପ]

ରୋମନ୍ୱାନ୍—ସ. ବଣ. ପୁଂ—(ରୋମନ୍+ବତ୍, ରୋମନ୍ୱତ୍; ୧ମା. ୧ବ.)
Romanwān ରୋମଶ—Hairy (M. W,)

ରୋମ ପୁଲକ—ସ. ବ.—(୬ଷ୍ଠୀ ତତ୍)—ରୋମହର୍ଷ (ଦେଖ)—
Roma pulaka Roma harsha (See)

ରୋମ ବଙ୍କା କରିବା—ଦେ. କି. – (ସ· ରୋମନ୍ ବକ୍ର)—(ଲକ୍ଷଣାର୍ଥ)
Roma baṅkā karibā କୌଣସି ବ୍ୟକ୍ତିର ସାମାନ୍ୟ ମାତ୍ର
लोम बाका करना **रोआँ बाङ्का करना** ଆଘାତ କରିବା ବା ଅନିଷ୍ଟ
[ରୋମ ବଙ୍କା(ଙ୍କୋ)ଇବା—ଅନ୍ୟରୂପ] ଘଟାଇବା—To do the
[ରୋମବଙ୍କା ହେବା—କର୍ମବାଚ୍ୟ] slightest injury to a
person; to slightly touch a person's
body.

ରୋମ ବଦ୍ଧ—ସ. ବଣ.—(୩ୟା ତତ୍)—ଲୋମ ବା ପଶମରେ ବୁଣା –
Roma baddha Woven with hair or wool
(M. W.)

ରୋମ ବନ୍ଧ—ସ. ବ—ଲୋମ ବା ପଶମରେ ବୁଣା ହେବା ଲୁଗାର ଦେହ-
Roma bandha Hair texture; woolen texture.
(M. W.)

ରୋମବାନ୍—ସ· ବଣ. ପୁଂ—( ରୋମ+ବତ୍; ୧ମା. ୧ବ. )—
Romabān ରୋମଶ—Furry; hairy.
[ ରୋମବତୀ—ସ୍ତ୍ରୀ ]

ରୋମ ବିକାର—ସ. ବ·—(୬ଷ୍ଠୀ ତତ୍)—ରୋମାଞ୍ଚ (ଦେଖ)
Roma bikāra Romāñcha (See)
[ରୋମ ବିକ୍ରିୟା, ରୋମବିଭେଦ, ରୋମ ଉଦ୍ଭେଦନ—ଅନ୍ୟରୂପ]

ରୋମ ବିଧ୍ୱଂସ—ସ. ବ —(ରୋମ+ବି+ଧ୍ୱଂସ୍ ଧାତୁ+କର୍ତ୍ତୃ. ଅ)—
Roma bidhwansa ଉକୁଣି—Louse (M. W.)

ରୋମ ଭୂମି—ସ. ବ·—[୬ଷ୍ଠୀ ତତ୍]—ଚର୍ମ; ଚମ; ଚମଡ଼ା—
Roma bhūmi [ରୋମ ଭୂ—ଅନ୍ୟରୂପ] Skin.

ରୋମମୂର୍ଦ୍ଧା—ସ. ବଣ.—(ବହୁବ୍ରୀହି; ରୋମ+ମୂର୍ଦ୍ଧନ୍; ୧ମା. ୧ବ)—
Romamūrddhā ଯାହାର ମୁଣ୍ଡ ଯାକ ଲୋମରେ ଆବୃତ—
Covered with hair or down on the
head (M. W.)

ରୋମ ରତ(ସ)ସାର—ସ. ବ —ପେଟ—The belly (M. W.)
Roma rata(sa)sāra [ରୋମରତ ଧାର—ଅନ୍ୟରୂପ]

ରୋମ ରାଜି(ଜୀ)—ସ· ବ.—( ୬ଷ୍ଠୀ ତତ୍ )—୧ । ଲୋମସମୂହ;
Roma rāji(jī) ଲୋମର ଧାଡ଼ି—1. A line or row of
ରୋମଲତା
ରୋମଲତିକା
ରୋମ ଶ୍ରେଣୀ } —ଅନ୍ୟରୂପ furs. [ ଯଥା—ନାଭି ଉପରୁ
ହୃଦୟ ପର୍ଯ୍ୟନ୍ତ ଉଠିଥିବା ରୋମରେଖା,
ଅର୍ଥାତ୍ ଭୃଲତା)—୨ । ସ୍ତ୍ରୀମାନଙ୍କ
ଯୌବନାବସ୍ଥାରେ ନାଭି ଉପରୁ ହୃଦୟ ପର୍ଯ୍ୟନ୍ତ ଲମ୍ବିଥିବା
ଲୋମ ରେଖା—2. A streak of hair on the

abdomen of women just above the navel (indicating puberty) (M. W).

ରୋମରାଜି(ଜୀ) ପଥ—ସଂ. ବି.—[୬ଷ୍ଠୀ ତତ୍] —କଟି; ଅଣ୍ଟା—
Roma rāji (jī) patha The waist (M.W)

ରୋମଶ—ସଂ. ବିଣ. ପୁଂ—(ରୋମନ୍+ଅସ୍ତି ଅର୍ଥରେ ଶ)—୧ । Romaśa ବହୁଲୋମଯୁକ୍ତ; ରୋମ ବହିଷ୍ଠ; ଲୁମା—[ରୋମଶା—ସ୍ତ୍ରୀ] 1 Furry; hairy; wooly. ୨ । ଲୋମବହୁଳ—2. Shaggy. ସଂ. ବି —୧ । ମେଷ; ମେଣ୍ଢା—1. Sheep. ୨ । ଶୂକର; ଘୁଷୁରି—2. Hog. । ଦଗ୍ଧା ବୃକ୍ଷ; କଦଗ୍ଧିକା—3. Name of a medicinal plant.

ରୋମଶ କନ୍ଦ—ସଂ. ବି.—(ବୈଦ୍ୟକ) ପିଣ୍ଡାଳୁ; ପିଣ୍ଡ ଆଳୁ—
Romaśa kanda A kind of yam.

ରୋମଶ ଫଳ—ସଂ. ବି.—(ବୈଦ୍ୟକ) ଭଣ୍ଡିଶ; ଭେଣ୍ଡି—
Romaśa phala Lady's finger (fruit and plant).

ରୋମଶା—ସଂ. ବି.—(ବୈଦ୍ୟକ) ଦଗ୍ଧା ବା କଦଗ୍ଧିକା ନାମକ ଔଷଧ Romaśā ଗୁଳ୍ମ; କଣ୍ଟକାରୀ ?; ଅଙ୍ଗସ୍ତ୍ର ?—Name of a medicinal plant; Solanum Xantho carpum ?. ସଂ. ବିଣ ସ୍ତ୍ରୀ—(ରୋମଶ+ସ୍ତ୍ରୀ. ଆ)—ରୋମଶର ସ୍ତ୍ରୀଲିଙ୍ଗ; ଅତିଶୟ ରୋମଯୁକ୍ତା—Very wooly or hairy (female).

ରୋମ ଶାତନ—ସଂ. ବି—ଲୋମନାଶକ ଦ୍ରବ୍ୟ; ଯେଉଁ ବସ୍ତୁ ଦେହରୁ Roma śātana ଲୋମମାନ ଉଠାଇ ଦିଏ—A depilatory for removing the hair ସଂ. ବିଣ —ଲୋମନାଶକ—Depilatory.

ରୋମଶୁକ—ସ. ବି ( ବୈଦ୍ୟକ )—ଗ୍ରନ୍ଥିପର୍ଣ୍ଣ; ଏକପ୍ରକାର ଗନ୍ଧିଥିବା Romaśuka ଗୁଳ୍ମ—Name of a fragrant medicinal plant.

ରୋମସୂଚୀ—ସ. ବି—୧ । ଝିଙ୍କ କାଠି—1. The quills of the Romasūchī porcupine ( M. W. ). ୨ । ମୁଣ୍ଡର ଗୋଜକାଠି—2. Hair-pin ( M.W. ).

ରୋମ ହରଷ—ଗ୍ରା. ବି ( ପଦ୍ୟ )—ରୋମ ହର୍ଷ ( ଦେଖ )—
Roma harasha Roma harsha ( See )
[ ଉ—ରୋମ ହରଷେ ତନୁ ପୂର୍ଣ୍ଣ, ପ୍ରେମ ଅଶ୍ରୁ ଗଳେ ଲୋଚନ । ଜଗନ୍ନାଥ. ଭାଗବତ । ]

ରୋମ ହରଷଣ—ଗ୍ରା. ବି ( ପଦ୍ୟ ) ( ସ. ରୋମ ହର୍ଷଣ )—
Roma harashaṇa ରୋମ ହର୍ଷଣ ୨ ( ଦେଖ )—
রোমহরষণ Roma harshaṇa 2 ( See ) [ ଉ—ରୋମ
रोमहरषन ହରଷଣର ସୁତ, ବ୍ୟାସମୁନିଙ୍କ ଶିଷ୍ୟ ସୁତ । ପ୍ରାଚୀ. ଜଗୁର୍ଣମାହାତ୍ମ୍ୟ । ]

ରୋମ ହର୍ଷ—ସଂ. ବି ( ରୋମ+ହୃଷ୍ ଧାତୁ+ଭାବ. ଅ )—ରୋମାଞ୍ଚ; Roma harsha ରୋମ ଟାଙ୍କୁରିବା—The bristling of (ରୋମ ହର୍ଷଣ—ଅନ୍ୟରୂପ) the hairs through excessive fear or joy or wonder; the standing of the hairs of the body on end; horripilation; thrill.

ରୋମ ହର୍ଷକ—ସଂ. ବିଣ ( ରୋମ+ହୃଷ୍ ଧାତୁ+କର୍ତ୍ତୃ. ଅକ )—
Roma harshaka ୧ । ଯାହା ରୋମାଞ୍ଚ ଜାତ କରାଏ—
ରୋମହର୍ଷଣକ } ଅନ୍ୟରୂପ 1. Making the hairs of
ରୋମହର୍ଷଣକାରୀ } the body bristle or stand on end; thrilling. ୨ । ଅତି ଭୀତି-ଜନକ—2. Horrible; terrific. ୩ । ଅତି-ଅଦ୍ଭୁତ—3. Astonishing. ୪ । ଅତି ଭକ୍ତିଜନକ —4. Producing paroxysm of devotion

ରୋମ ହର୍ଷଣ—ସଂ. ବି—୧ । ( ରୋମ+ହୃଷ୍ ଧାତୁ+ଭାବ. ଅନ )
Roma harshaṇa ୧ । ରୋମହର୍ଷ ( ଦେଖ )—1. Roma harsha ( See ) ୨ । ଲୋମ ହର୍ଷଣ ୨ ( ଦେଖ ) —2. Loma harshaṇa 2 ( See ) ୩ । ସୂତ୍ରଧାର—3. Stage manager. ୪ । ବଢେଇ—4. Carpenter. ୫ । ବାହାଡ଼ାଗଛ—5. Terminallia Bellerica ( M. W. ) ସଂ. ବିଣ ( +କର୍ତ୍ତୃ. ଅନ )—ରୋମ ହର୍ଷକ ( ଦେଖ )—
Roma harshaka ( See )

ରୋମ ହର୍ଷଣ(କ) ବ୍ୟାପାର—ସ.ବି—ଲୋମ ହର୍ଷଣ ବ୍ୟାପାର (ଦେଖ)
Roma harshaṇa(ka) byāpāra Loma harshaṇa byāpāra ( See )
ରୋମ ହର୍ଷଣ କାଣ୍ଡ,
ରୋମ ହର୍ଷଣ ଘଟଣା } ଅନ୍ୟରୂପ

ରୋମ ହର୍ଷିତ—ସଂ. ବିଣ. ପୁଂ ( ରୋମହର୍ଷ+ସଂଜ୍ଞାର୍ଥେ ଇତ )
Roma harshita —ହୃଷ୍ଟରୋମା;ଯାହାର ରୋମାଞ୍ଚ ହୋଇ-
(ରୋମହର୍ଷୀ—ଅନ୍ୟରୂପ) ଅଛି—Thrilled with joy or terror.

ରୋମା—ଦେ. ବିଣ. ପୁଂ ( ସଂ. ରୋମଶ )—ରୋମଶ ( ଦେଖ )—
Romā मराठी লোমশ Romaśa ( See )
( ରୋମୀ ରୋମେଇ—ସ୍ତ୍ରୀ )
(ରୋମିଆ —ଅନ୍ୟରୂପ)

ରୋମାଙ୍କୁର—ସଂ. ବି ( ୬ଷ୍ଠୀ ତତ୍ )—ଭୟରେ ବା ହର୍ଷରେ ଠିଆ Romāṅkura ହୋଇଥିବା ରୋମ—Bristling hair of the body ( M. W. ).

ରୋମାଞ୍ଚ—ସ. ବି ( ରୋମ+ଅନଚ ଧାତୁ=ଗମନ କରିବା+ଭାବ. ଅ )
Romāñcha —୧ । ରୋମ ଟାଙ୍କୁର ଉଠିବା; ପୁଲକ; ହର୍ଷ, ବିସ୍ମୟ, ଭକ୍ତି ବା ଭୟାଦି ହେତୁ ଶରୀରରେ ରୋମର ଉଦ୍‌ଗମ—1. The bristling of the hairs of the body paroxyson of horror, wonder or devotion; a thrill of the hair. ୨ । ଉତ୍କଣ୍ଠିତ ପ୍ରେମିକ ପ୍ରେମିକାଙ୍କଠାରେ ଲକ୍ଷିତ ଅଷ୍ଟଦଶା ମଧ୍ୟରୁ ଏକତମ ଅବସ୍ଥା—2. One of the eight stages of unsatiated lovers. [ ଦ୍ରି—ଭଞ୍ଜ 'କୋଟବ୍ରହ୍ମାଣ୍ଡ ସୁନ୍ଦରୀ' ଅଷ୍ଟାଦଶ ଛାନ୍ଦର ୨୨୫ ପଦ

ଠାରୁ ୨୯ଶ ପଦରେ ପ୍ରେମିକା ନାୟିକାର ଅଷ୍ଟାଦଶ ବା ସାତ୍ତ୍ୱିକ ବିକାରର ଉଲ୍ଲେଖ କରଅଛନ୍ତି । ଅଷ୍ଟ ସାତ୍ତ୍ୱିକ ବିକାର । ଯଥା—୧ । ସ୍ତମ୍ଭ, ୨ । ବୈବର୍ଣ୍ଣ୍ୟ, ୩ । ରୋମାଞ୍ଚ ୪ । କମ୍ପ, ୫ । ସ୍ୱେଦ, ୬ । ଅଶ୍ରୁ; ୭ । ସ୍ୱରଭଙ୍ଗ, ୮ । ପ୍ରଳୟ । ସାତ୍ତ୍ୱିକ ବିକାର ଭଲେ ଟୀକା ଦେଖ । ]

ରୋମାଞ୍ଚିକା—ସଂ. ବି (ବୈଦ୍ୟକ)—ରୁଦନ୍ତୀ ବୃକ୍ଷ ( ଦେଖ )—
Romānchikā Rudantī bruksha ( See )

ରୋମାଞ୍ଚିତ—ସଂ. ବିଣ ପୁଂ ( ରୋମାଞ୍ଚ+ସଂ. ଜାତ ଅର୍ଥରେ ଇତ )
Romānchita —ପୁଲକିତ; ରୋମାଞ୍ଚଯୁକ୍ତ—With the hairs standing on the ends; with hairs bristling; having the hairs of the body erect or thrilling with joy or wonder.
(ରୋମାଞ୍ଚୀ—ଅନ୍ୟରୂପ)
(ରୋମାଞ୍ଚିତା, ରୋମାଞ୍ଚିଣୀ—ସ୍ତ୍ରୀ)

ରୋମାଞ୍ଚିତ ତନୁ—ସ. ବିଣ. ପୁଂ (ବହୁବ୍ରୀହି)—ଯାହାର ଦେହ ପୁଲକିତ
Romānchita tanu ହୋଇଥାଏ—Having the body bristling; with hairs thrilled; thrilled through fear etc ସ .ବି (କର୍ମଧା)—ରୋମାଞ୍ଚଯୁକ୍ତ ଦେହ—Thrilled body.

ରୋମାଞ୍ଚିବା—ଦେ. ବି—ରୋମ ଠାକୁରିବା—The standing the
Romānchibā hairs on ends; thrilling.
ରোমাঞ্চ হওয়া (ଉ—ମିଳଣି । ଶୁଣି ରୋମାଞ୍ଚିଲ, ମୋ ମନି
रोमांच होना ଜାଣି ତଭୁର—ଶିରୋମଣି କ୍ରପନ୍ତେ, ଶିଥିଳ କରଇ ବସନ । ପ୍ରାଚୀ. ରସବାରିଧି ।)
ଦେ.କ୍ରି ( ଦେହ ) ରୋମାଞ୍ଚିତ ହେବ—(the body) To be thrilled.

ରୋମାନ୍—ବୈଦେ. ବିଣ (ଇଂ. ରୋମାନ୍)—ରୋମ ଦେଶୀୟ—
Romān রোম্যান रोमैन Roman.

ରୋମାନ୍ କାଥଲିକ୍—ବୈଦେ. ବି ( ଇଂ. ରୋମାନ୍ କାଥଲିକ୍ )—
Romān kāthalik ଖ୍ରୀଷ୍ଟିୟାନ୍ ମାନଙ୍କର ସମ୍ପ୍ରଦାୟ ବିଶେଷ—
রোম্যান কাথলিক The Roman Catholic sect of the
रोमैन कैथलिक Christians; the Romish church.
[ ଦ୍ର—ଏମାନେ ରୋମ ନଗରରେ ବାସ କରୁଥିବା ଧର୍ମଯାଜକ ପୋପ୍ (Pope) ଙ୍କ ପ୍ରାଧାନ୍ୟ ଓ ଶ୍ରେଷ୍ଠତ୍ୱ ସ୍ୱୀକାର କରନ୍ତି ଏବଂ ଯୀଶୁ ଓ କୁମାରୀ ମେରୀଙ୍କ ମୂର୍ତ୍ତିକୁ ପୂଜା କରନ୍ତି ।]

ରୋମାବଳି—ସ. ବି (୬ଷ୍ଠୀ ତତ୍)—ରୋମରାଜି ( ଦେଖ )
Romābali Romarāji ( See )
[ରୋମାବଳୀ(ଳୀ)—ଅନ୍ୟରୂପ]

ରୋମାଳ—ଦେ. ବିଣ. ପୁଂ (ସ. ରୋମଶ)—ଲୁମା; ରୋମଶ—
Romāla লোমশ झबरा Furry; hairy.
(ରୋମାଳିଆ—ଅନ୍ୟ ବିଣରୂପ) ବୈଦେ ବି—ରୋମାଲ୍ (ଦେଖ)—
(ରୋମାଳୀ, ରୋମାଳେଇ—ସ୍ତ୍ରୀ—ବିଣ) Romāla (See)

ରୋମାଲ—ବୈଦେ. ବି—ରୁମାଲ ( ଦେଖ )
Romāla রুমাল रूमाल Rumāla ( See )

(ଉ—ଥରେ ଥରେ ହରି ସାହେବ ଠାଣିରେ । ପୋଛଇ ବଦନ ରୋମାଲ ତାହାରେ । ରାଧାନାଥ. ଦରବାର ।)

ରୋମାଳୁ—ସ. ବି (ବୈଦ୍ୟକ) (ରୋମଯୁକ୍ତ ଆଳୁ; ମଧ୍ୟପଦଲୋପୀ କର୍ମ-
Romālu ଧାରୟ )—ପିଣ୍ଡାଳୁ—Yam; Dioscorea Globosa.

ରୋମୀୟ—ଦେ. ବିଣ—୧ । ରୋମ ସମ୍ବନ୍ଧୀୟ—1 Relating to
Romīya Rome; Roman. ୨ । ରୋମ ଦେଶୀୟ—
রোমীয় रोमीय 2. Belonging to the country of Rome.

ରୋମୀୟ ସମ୍ପ୍ରଦାୟ—ଦେ ବି—ରୋମାନ୍ କାଥଲିକ୍ ( ଦେଖ )
Romīya sampradāya Romān kāthalik (See )
রোমীয় সংপ্রদায় रोमीय सम्प्रदाय

ରୋମେ—ଦେ. ଅ—ରୁମେ ( ଦେଖ )
Rome এক লোমও एक रोआँभी Rume ( See )

ରୋମୋଦ୍ଗତ—ସ. ବିଣ—ରୋମାଞ୍ଚିତ ( ଦେଖ )
Romodgata Romānchita ( See )
(ରୋମୋଦ୍ଭିନ୍ନ—ଅନ୍ୟରୂପ)

ରୋମୋଦ୍ଗମ—ସ. ବି—ରୋମାଞ୍ଚ ( ଦେଖ )
Romodgama Romāncha ( See )
(ରୋମୋଦ୍ଭେଦ, ରୋମୋତ୍ପାତ—ଅନ୍ୟରୂପ)

ରୋରବଣ—ସ. ବି (ରୁ ଧାତୁ ଯଙ୍ ଲୁଗନ୍ତ=ରୋରୁ ଧାତୁ+ଭାବ. ଅନ)—ଉଚ୍ଚ ଗର୍ଜନ—Loud roaring;
Rorabaṇa bellowing (M. W).

ରୋରୁଦା—ସ. ବି (ରୁଦ ଧାତୁ ଯଙ୍ ଲୁଗନ୍ତ=ରୋରୁଦ୍ ଧାତୁ+ଭାବ. ଅ+ଆ)—ଅତ୍ୟନ୍ତ କାନ୍ଦଣା; କାନ୍ଦୁରା—Violent
Rorudā or excessive weeping (Apte).

ରୋରୁଦାବାନ—ସ. ବିଣ. ସ୍ତ୍ରୀ ( ରୋରୁଦା+ବତ୍; ୧ମା. ୧ବ )—
Rorudābān ବାହୁଳ କରି କାନ୍ଦୁଥିବା—Weeping violently (M. W. Apte).
(ରୋରୁଦାବତୀ—ସ୍ତ୍ରୀ)

ରୋରୁଦ୍ୟମାନ—ସଂ. ବିଣ. ପୁଂ (ରୁଦ୍ ଧାତୁ ଯଙ୍ ଲୁଗନ୍ତ [ବାରଂବାର]
Rorudyamāna ରୋରୁଦ୍ ଧାତୁ+କର୍ତ୍ତି. ଅନ)—୧ । ଅତି
(ରୋରୁଦ୍ୟମାନା—ସ୍ତ୍ରୀ) ଉଚ୍ଚସ୍ୱରରେ କାନ୍ଦୁଥିବା—1. Weeping loudly. ୨। ବାହୁଳ କରି କାନ୍ଦୁଥିବା—2. Lamenting bitterly; bewailing.

ରୋଲ୍(ଲ)—ବୈଦେ. ବି ( ଇଂ. ରୋଲର୍; ରୁଲର୍ )—୧ । ଗୋଲ
Rol(l) ଠେଙ୍ଗଣୀ—1. A baton. ୨ । କାଗଜ ଉପରେ
রুল ଗାର ପକାଇବାର ଲମ୍ବାମକ ଗୋଲ ଠେଙ୍ଗଣି—
रोल, रूल 2. A ruler.

ରୋଲ୍—ବୈଦେ. ବି (ଇଂ ରୋଲ୍)—୧ । ସ୍କୁଲରେ ଛାତ୍ରମାନଙ୍କର
Rol ଉପସ୍ଥାନ ପୁସ୍ତକ ବା ହାଜିରା ବହି—1. Attendance
রোল रोल roll of students in a school; attendance register. ୨ । ସ୍କୁଲ ଅବରେ ଛାତ୍ରମାନଙ୍କର ଉପସ୍ଥାନ ବା ହାଜିରା—2. Attendance of students in a school.

ରୋଲ୍ (ଇତ୍ୟାଦ)—ବୈଦେ.ବ (ଇଂ ରୋଲ୍‌ର୍)—ରୁଲ୍ ଇତ୍ୟାଦ(ଦେଖ)
Rol (etc) Rul etc (See)

ରୋଲ୍‌କଲ୍—ବୈଦେ. ବ ( ଇଂ. ରୋଲ୍‌କଲ୍ )—ଶ୍ରେଣୀର ବା ଦଳର
Rol-kal କେଉଁ ଛାତ୍ର ବା କେଉଁ ବ୍ୟକ୍ତିମାନେ ଉପସ୍ଥିତ ଅଛନ୍ତି
বোলকল रोलकल ଓ କେବ ଅନୁପସ୍ଥିତ ଅଛନ୍ତି ଏହା
ଜାଣିବାପାଇଁ ଉପସ୍ଥାନପୁସ୍ତକରେ ଲିଖିତ କ୍ରମ ଅନୁସାରେ
ଛାତ୍ର ବା ବ୍ୟକ୍ତିମାନଙ୍କ ନାମ ଏକ ଏକ କରି ଡାକିବା—
Roll call.

ରୋଲ୍ ନମ୍ବର—ବୈଦେ. ବ (ଇଂ. ରୋଲ୍ ନମ୍ବର୍)—୧ । ସ୍କୁଲରେ
Rol Number ବା ଶ୍ରେଣିରେ ଥିବା ସମୁଦାୟ ଛାତ୍ରଙ୍କ ସଂଖ୍ୟା-
বোলনম্বর 1. Roll number or the total number of
रोलनम्बर students in a school or class. ୨ । ହାଜିରା
ବହିର କ୍ରମ ଅନୁସାରେ ପ୍ରତ୍ୟେକ ଛାତ୍ରର ଯଥାକ୍ରମ ସଂଖ୍ୟା-
2. Respective number of every student
in the attendance register or roll.

ରୋଳ—ସଂ. ବ—୧ । ଅବ୍ୟକ୍ତ ଶବ୍ଦ—1. An indistinct
Rola sound. ୨ । ଶବ୍ଦ; ଧ୍ୱନି—2. Sound.
( ଉ—······ବାରବାଦ୍ୟରୋଳେ ତହବାଳେ ପ୍ରଣ୍ଡଧ୍ୱନି
ଜାଣିଲେ ତମକ—ରାଧାନାଥ ମହାଯାତ୍ରା ।] ୩ । ଅଦ୍ରକ;
ଅଦା—3. Ginger. ୪ । ମନୁଷ୍ୟମାନଙ୍କ ଗହଳରୁ
ଜନତାରୁ ଉଠୁଥିବା ବହୁ ଲୋକଙ୍କ ସ୍ୱର ମିଶ୍ରଣରେ
ଉତ୍ପନ୍ନ ଶବ୍ଦ—4. Continuous and indistinct
sound arising from a crowd. ୫ ।
ଭଇଞ୍ଚ ଗୁଳ୍ମ—5. Flacourtia Cataphracta
(M. W) ଦେ. ବ ( ସଂ ରଣ, ରଣ )—୧ ।
বোল रोल ଯୁଦ୍ଧ—1. War. ( ଉ—ଏ
ଅନନ୍ତରେ ଭୁକ୍ତ ମହାରଥିକୁଳ, ଅର୍ଜୁନ ସଙ୍ଗତରେ
ଆରମ୍ଭିଲେ ରୋଳ—କୃଷ୍ଣସିଂହ ମହାଭାରତ ବିରାଟ ।]
୨ । ଉଦୁଖଳ—2. Mortar and pestle. (ଉ—
ବେଗେ ଭୁ କୁଟ ରୋଳେ ଭର, ତା ଶୁଣି ବ୍ରାହ୍ମଣ
ଭୁମାଣ୍ଡ—ଜଗନ୍ନାଥ ଭାଗବତ । ] ୩ । ଜନତା—
3. Crowd; a concourse of people.
୪ । ଅନେକ ଲୋକଙ୍କର ଏକ ଉଚ୍ଚସ୍ୱରରେ କ୍ରନ୍ଦନ-
ଜନିତ ସ୍ୱର—4. Sound of many people
wailing. ୫ । ଚହଳ; ହୋଳ; ଗୋଳମାଳ;
ଗଣ୍ଡଗୋଳ—5. Noise; hubbub; outcry.
( ଉ—ଗଜାରୋହୀ ରଥାରୋହୀଙ୍କ ମହା ରୋଳ,
ସେହିକାଳେ ହେଲା ହେ ବସ୍ତିନା ଭୂପାଳ—କୃଷ୍ଣସିଂହ
ମହାଭାରତ, କର୍ଣ୍ଣ । ] ୬ । ଗର୍ଜନ—6. Roar.
୭ । କଳି—7. Quarrel. ୮ । ନିଶୁଣି—
8. Ladder. [ଉ—ରୋଳ ଅଣିଲା ଧାଇଁକାରେ,
ଉଠିଲା ତଥିର ଉପରେ—ଜଗନ୍ନାଥ. ଭାଗବତ. । ]
୯ । ସ୍ତମ୍ଭ—9. Pillar; post. [ଉ—କଲେ ଯେ,
ବନେ କରୁଥିଲେ ରୋଳ, କୋପେ ଯଶୋଦା ଉଠାଇଲେ
ରୋଳ—ଯାନକୃଷ୍ଣ. ରସକଲ୍ଲୋଳ । ]
বোলার, কল বୈଦେ. ବ (ଇଂ. ରୋଲର୍)—୧ । ଯେଉଁ
रोलार ଗୋଲାକାର ଲୁହାକୁ ସଡ଼କ ଉପରେ ଗଡ଼ାଇ ସଡ଼କରେ
[ରୋଲର୍, ରୋଲା—ଅନ୍ୟରୂପ] ପଡ଼ିଥିବା ନୂଆ ଗୋଡ଼ିକୁ ସମତୁଲ
କରାଯାଏ—1. A road roller. ୨ । ଲୁହାର କଳ-
ଚକି—2. A roller mill. ୩ । ରୁଲ୍ ଇତ୍ୟାଦି
(ଦେଖ)—2. Rul etc. (See)

ରୋଳ କରିବା—ଦେ. କି—ଗୋଳମାଳ କରିବା—
Rola kariba To raise a hubbub or noise or
গোলমাল করা शोर करना outcry.

ରୋଳ କୁ(ଖୁ)ଣ୍ଡା—ଦେ.ବ--ବେଙ୍ଗବାଡ଼ିର ମୁଣ୍ଡିରେ ମନୁଷ୍ୟଙ୍କୁ ଖୋଚିବା
Rola ku(khu)nda ଦ୍ୱାରା ଆଘାତ—Pounding strokes
রুলেরগোঁতা with the butt end of a cudgel or baton.
रोलमेंडुसा

ରୋଳ ଚହଳ—ଦେ. ବ (ସଙ୍କରିତ)—୧ । ଗୋଳମାଳ; ବହୁ
Rola chahala ଲୋକଙ୍କର ମିଶ୍ରିତ ଘୋର ଧ୍ୱନି—1. A
গোলমাল loud confused noise of a crowd.
सीर(गो)ल ୨ । ହୋଓବା—2. Hue and cry; outcry.

ରୋଳ ଠେଙ୍ଗା—ଦେ. ବ—କାଠର ଗୋଲ ଓ ମୋଟ ଯଷ୍ଟି—
Rola thenga A thick round cudgel or stick of
কলাঠী रोललठी wood.
[ରୋଳ ବାଡ଼ି, ରୋଳ ଠେଙ୍ଗ(ଙ୍ଗ, ଙ୍ଗୀ)ଣୀ—କ୍ଷୁଦ୍ରରୂପ]

ରୋଳ ପଡ଼ିବା—ଗୋଳମାଳ ବା ଘୋଷା ଶବ୍ଦ ହେବା—
Rola pardiba The raising of an outcry.
(ରୋଳ ପଡ଼ିଯିବା—ଅନ୍ୟରୂପ) রোলপড়া शोरगुलहोना

ରୋଳ(ଲ)ମ୍ବ—ସଂ. ବ (ରୁ=ଶବ୍ଦ+ଲବ୍ ଧାତୁ=ଗମନ କରିବା+
Rola(la)mba କର୍ତ୍ତୃ. ଅ)—୧ । ଭ୍ରମର—1. A black
bee. ୨ । ଶୁଷ୍କ ଭୂମି—2. A dry or dried soil
(M. W) ସଂ. ବଣ—ଅବିଶ୍ୱାସୀ—Faithless;
treacherous.

ରୋଳମ୍ବ କଦମ୍ବ—ସଂ. ବ ( ୬ଷ୍ଠୀ ତତ୍ )—ମଧୁମାଛିଙ୍କ ଦଳ—
Rolamba kadamba A swarm of bees (M.W)
[ରୋଳମ୍ବ ରାଜି(ଜୀ), ରୋଳମ୍ବାଳି]—ଅନ୍ୟରୂପ)

ରୋଲ(ଲ)ର୍—ବୈଦେ. ବ (ଇଂ. ରୋଲର୍)—ରୋଳ (ଦେଖ)
Rola(la)r Rola (See)

ରୋଲର୍ ମିଲ(ଚକ୍କି)—ବୈଦେ. ବ (ଇଂ. ରୋଲର ମିଲ୍)—ଗହମ
Rolar-mil(chaki) ଚୂରିବା ଲୁହାର କଳଚକି—
বোলা, রোলাকল An iron mill for pounding wheat;
रोलरमील roller mill.

ରୋଳା—ଦେ. ବ—କୋଳା; ଦେହରେ ଅଙ୍କିତ ବେତମାଡ଼ର ଲମ୍ବ ଲମ୍ବ
Rola ଚିହ୍ନ,--Long marks or streaks or stripes
বোলা,ডোরা left on the body after caning. ପ୍ରାଦେ—
दाग, धारी, लकीर (ସିଂହଭୂମି) ବ. ଖଡ଼ଘରର ରୁଅ—
The rafter of a thatched house.

**ରୋଲ୍ଲ**—ବୈଦେ. ବ (ଇଂ. ରୋଲର୍)—ରୋଲ୍ଲରମିଲ୍ (ଦେଖ)
Rolā Rolār-mil. (See)

**ରୋଲାରୋଲା**—ଦେ. ଅ—୧ । ନୋଲା ନୋଲା; ବେତ ଅବ
Rolārolā ଦ୍ୱାରା ଏକାଧିକ ଥର ପ୍ରହାର କଲେ ଦେହରେ
बोलारोला ଅନେକ ନୋଲା ବସିବା ପ୍ରକାରେ—1. Long
**दागादाग, धारीधारी** streaks or marks (left on the body after caning); stripes. ୨ । (ଧ୍ୱନ୍ୟନୁକରଣ) ମୂତ୍ରେନ୍ଦ୍ରିୟର ମୁଖରୁ ଜୋର୍‌ରେ ପ୍ରସ୍ରାବ ନିର୍ଗମନର ଧ୍ୱନି—2. The sound of pissing.

**ରୋଲ୍‌ଡ୍ ଗୋଲ୍‌ଡ**—ବୈଦେ. ବ (ଇଂ. ରୋଲ୍‌ଡ୍ ଗୋଲ୍‌ଡ୍)—
Rol-ḍ gol-ḍ ସୁନାର ଖୁବ୍ ସରୁ ପାତିଆ, ଯାହା ନିକୃଷ୍ଟ ଧାତୁର
बोला(ल्)डगोल्ड ଅଳଂକାର ଉପରେ ଲଗାଯାଇ ଭୂଷିତ କରାଯାଏ—
**रोल्‌ड् गोल्ड** Rolled gold.

**ରୋଷ**—ସଂ.ବ.—[ରୁଷ୍ ଧାତୁ=ରାଗ କରିବା+ଭାବ.ଅ]—କ୍ରୋଧ; ରାଗ—
Rosha Anger; rage; wrath; passion.
ଦେ. ବ.—( ସଂ. ରସବତୀ=ପାକଶାଳା )—୧ । ପାକଶାଳା—1. Cook room; kitchen. [ଉ—ଅବରେ ପ୍ରେବନ୍ତି ଲକ୍ଷ୍ମୀ ବେଶଘରେ । ଗ୍ରଧାନାଥ. ଚଳିକା । ] ୨ । ଦେବତାଙ୍କ ଅନ୍ନବ୍ୟଞ୍ଜନ ମିଷ୍ଟାନ୍ନାଦି ଭୋଗ ମନ୍ଦିରସଂଲଗ୍ନ ଯେଉଁ ଘରେ ପାକ କରାଯାଏ—2. Kitchen attached to a temple.
[ ରୋଷ ଘର, ରୋଷଶାଳ—ଅନ୍ୟରୂପ ]

**ରୋଷ ଉପୁଜା(ଜେ)ଇବା**—ଦେ. କ୍ରି.—(ସଂ. ରୋଷ+ଉପଜାତ)—
Rosha upujā(je)ibā କୌଣସି ବ୍ୟକ୍ତିର ମନରେ ରାଗ
राग जनमान ଜନ୍ମାଇବା—To excite or enrage
**रोष उपजाना** a person.

**ରୋଷ ଉପୁଜିବା**—ଦେ. ବ.—(ସଂ. ରୋଷ+ଉପଜାତ)—ମନରେ
Rosha upujibā କ୍ରୋଧ ଜାତ ହେବା—Becoming
रागजनमा **रोष उपजना** enraged or irritated.

**ରୋଷକ**—ସଂ. ବଣ.—କ୍ରୁଦ୍ଧ—
Roshaka Angry; furious (M.W.)

**ରୋଷ କରିବା**—ଦେ. କ୍ରି—୧ । ରାଗ କରିବା; କୌଣସି ବ୍ୟକ୍ତି ପ୍ରତି
Rosha karibā କ୍ରୁଦ୍ଧ ହେବା—1. To be angry with.
रागकरा **रोष करना** ୨ । ରୋଷାଇ କରିବା (ଦେଖ)
2. Roshāi karibā (See)

**ରୋଷ କର୍କଶ**—ସ, ଣଣ.—(ବସ୍ତ୍ରୀ ତତ୍)—କ୍ରୋଧ ଯୋଗୁ କଠୋର
Rosha karkaśa (ସ୍ୱର)—(Tone) Which has become hoarse through rage.

**ରୋଷ କଷାୟ**—ସ. ବଣ.—(ବସ୍ତ୍ରୀ ତତ୍)—କ୍ରୋଧ ଜନ୍ମିବାରୁ ଅରକ୍ତ
Rosha kashāya ବର୍ଣ୍ଣ ଧାରଣ କରିଥିବା (ଆଖି)—
(Eyes) Reddened with rage.

**ରୋଷ କଷାୟ ଲୋଚନ(ନେତ୍ର)**—ସଂ. ବ ( କର୍ମଧା )—ରାଗଯୋଗୁ
Rosha kashāya lochana(netra) ଅରକ୍ତ ହୋଇଥିବା ଚକ୍ଷୁ—Eyes reddened with anger or rage.

ରୋଷ କଷାୟିତ ଲୋଚନ
ରୋଷ କଷାୟିତ ନେତ୍ର } ଅନ୍ୟରୂପ
ରୋଷ ତାମ୍ରାକ୍ଷ
ସଂ. ବଣ. ପୁଂ ( ବହୁବ୍ରୀହି )

ରୋଷ କଷାୟ ଲୋଚନା(ନେତ୍ରା)
ରୋଷ କଷାୟିତ ଲୋଚନା(ନେତ୍ରା) } ସ୍ତ୍ରୀ, —ରାଗଯୋଗୁ ଯାହାର ଆଖି ନାଲି ହୋଇଅଛି—With eyes reddened with rage
ରୋଷ ତାମ୍ରାକ୍ଷୀ

**ରୋଷ କାରୀ**—ସଂ. ବଣ. ପୁଂ ( ରୋଷ+କୃ ଧାତୁ+କର୍ତ୍ତୃ, ଇନ୍;
Rosha kāri ୧ମା, ୧ବ )—ରାଗାନ୍ୱିତ—Angry;
(ରୋଷକାରିଣୀ—ସ୍ତ୍ରୀ) wrathful.

**ରୋଷ ଜନକ**—ସଂ, ବଣ—ଯାହା ମନରେ ରାଗ ଜନ୍ମାଏ ବା ଉଦ୍ଦୀପିତ
Rosha janaka କରାଏ—Exciting wrath; producing anger; causing rage; enraging.

**ରୋଷ ଜନିତ**—ସଂ. ବଣ—ରାଗରୁ ଜନ୍ମିଥିବା—Caused by
Rosha janita anger. ( ରୋଷଜନ୍ୟ;ରୋଷଜାତ—ଅନ୍ୟରୂପ )

**ରୋଷ ଜୟ**—ସଂ.ବ—ମନକୁ ବୁଝାଇ ଆପଣା ମନରେ କ୍ରୋଧକୁ ଥଣ୍ଡା
Rosha jaya କରିବା—Controlling one's rage.
(ରୋଷଜିତ୍—ବଣରୂପ)

**ରୋଷଜର୍ଜର**—ସ. ବଣ. ପୁଂ (ବସ୍ତ୍ରୀ ତତ୍)—କ୍ରୋଧଦ୍ୱାରା ଜର୍ଜ୍ଜରିତ—
Roshajarjara Overwhelmed with anger or rage.
(ରୋଷ ଜର୍ଜ୍ଜରିତ—ଅନ୍ୟରୂପ)
(ରୋଷଜର୍ଜ୍ଜରା, ରୋଷଜର୍ଜ୍ଜରିତା—ସ୍ତ୍ରୀ)

**ରୋଷଣ**—ସ. ବଣ. ପୁଂ (ରୁଷ୍ ଧାତୁ=ରାଗିବା+କର୍ତ୍ତୃ. ଅନ)—
Roshaṇa କ୍ରୋଧଶୀଳ; କ୍ରୋଧୀ; ରାଗୀ; କୋପନସ୍ୱଭାବ—
(ରୋଷଣୀ—ସ୍ତ୍ରୀ) Irritable; passionate; irascible.
ସ. ବ—୧ । ପାରଦ; ପାରା—1. Quicksilver; mercury. ୨ । କଷଟି ପଥର—2. Touchstone.
୩ । ଊଷର ଭୂମି—3. A desert soil containing salt. (Apte)

**ରୋଷ(ଷା)ଣୀ(ନି)**—ବେଦେ. ବ (ଫା. ରୋଶନ୍; ହିନ୍ଦୁ; ରୋଶନାଇ—
Rosha(shā)ṇi(ni) ଆଲୋକ)—୧ । ବହୁ ଆଲୋକ ସହିତ
(ରୋଷିଆଣୀ, ରୁଷୁଣୀ—ଅନ୍ୟରୂପ) ଓ ଆଡ଼ମ୍ବରଯୁକ୍ତ ଶୋଭାଯାତ୍ରା
रोषनाई ( ଏହା ସନ୍ଧିରେ ବାହାରେ )—1. A grand
**रोषनाई** procession for the purpose of display accompanied with brilliant lights, fireworks etc; pageant. [ ଉ—କଲିକତାରୁ ବରଯାତ୍ରୀ କଦ ଯିବେ, କ କ ରୋଷଣି କେତେ ଉଠ୍ସାର ହେବ, ପଗୁଉଥିଲ । ଫକୀରମୋହନ. ଗଳ୍ପସ୍ୱଳ୍ପ । ]
୨ । ରୁଷାଣି ୪ (ଦେଖ)—2. Rushāṇi. 4. (See)
୩ । ରୁଷାଣି ୫ (ଦେଖ)—3. Rushāṇi 5. (See)

**ରୋଷଣୀ କରିବା**—ଦେ. କ୍ରି—୧ । ଆଲୋକାଦି ବହୁ ଆଡ଼ମ୍ବର ସହିତ
Roshaṇi karibā ଶୋଭାଯାତ୍ରା କରି ଯିବା—1. To pro-
रोशनाई करना gress in a brilliantly lighted proce-
**रोषनाई करना** ssion. ୨ । ବୃତ ହୋଇଥିବା ବାଳକ ବା ବରାହ

ହୋଇଥିବା ବର ଶୋଭାଯାତ୍ରା କରିବା; ରୁଷାଣି କରିବା—
2. To have a grand procession (said of a Brahman boy newly invested with thread and of a bridegroom at the time of his marriage.

ରୋଷଣି ବାହାରିବା—ଦେ.କ୍ରି—୧ । ଶୋଭାଯାତ୍ରାର ଆରମ୍ଭ—1.The
Roshaṇi bāhāribā starting of a brilliantly lit
রোষনাই বেরুন procession. ୨ । ଶୋଭାଯାତ୍ରାର ଗତି କରୁଥିବା
रोषनाई निकलना ଅବସ୍ଥା—2. A procession in the course of moving.

ରୋଷଦାହ—ସଂ. ବି (ମ. ଘ. ଲେ କର୍ମଧା; ରୋଷଜନିତ ଦାହ)—କ୍ରୋଧ
Rosha dāha ଯୋଗୁଁ ମନରେ ଜାତ ହେବା ସନ୍ତାପ—
The heat of rage; irritation caused by anger.

ରୋଷଦୃଷ୍ଟି—ସଂ. ବି (ମ. ଘ. ଲେ)—ରୋଷପୂର୍ଣ୍ଣ ଦୃଷ୍ଟି—
Roshadṛushṭi An angry look. (M. W)

ରୋଷନ୍—ବୈଦେ. ବି (ନାମ) (ଫା. ରୌଶନ୍=ଆଲୋକ)—
Roshan ମୁସଲମାନ୍‌ମାନଙ୍କ ନାମ—A Mahomedan name.

ରୋଷନ୍ ଚଉକି—ବୈଦେ. ବି (ଫା. ରୌଶନ୍ ଚୌକୀ=ଆଲୋକମୟ
Roshan chaukī ସ୍ଥାନ)—୧ । ଢୋଲକ ବା ପଖୋଉଜ, ମହୁରି
(ରୋଷନ୍‌ଚୌକୀ—ଅନ୍ୟରୂପ) ବା କୁରୁଜ ଝାଞ୍ଜ ଓ ବଂଶୀ ଏହି ଆଦିଗୋଟି
রোশুণ চৌকী ଯନ୍ତ୍ରକୁ ଏକତାନରେ ବଜାଇବା ବାଦକ ସମ୍ପ୍ରଦାୟ—
रोसनचौकी 1. A symphony of musical instruments; orchestra consisting of a drum, cymbals and flute set to music simultaneously. [ଦ୍ର—ରୋଷନ୍ ଚୌକିର ସ୍ୱର ବଡ଼ ମୃଦୁ ଓ ମଧୁର । ଏଥିପାଇଁ ବାଦଶାହାମାନେ ଶୋଇବାକୁ ଗଲେ ଓ ସିଂହଦ୍ୱାର ପାଖେ ପ୍ରତି ପ୍ରହରରେ ରୋଷନ୍ ଚୌକୀ ବାଜା ବଜା ଯାଉଥିଲା ଏବଂ ତହିଁର ମୃଦୁ ମଧୁର ଧ୍ୱନି ଶୁଣୁ ଶୁଣୁ ବାଦଶାହା କବରେ ଶୋଇ ପଡ଼ୁଥିଲେ । ଏବେ ମାନ୍ଦ୍ରାଜର ଦେବସ୍ଥାନରେ ପ୍ରତି ପ୍ରହରରେ ଏହା ବଜାଯାଏ । ସାଧାରଣତଃ ଉତ୍ସବ ଆଦି ଉପଲକ୍ଷରେ ଗୃହ ନିକଟରେ ଗୋଟିଏ ଉଚ୍ଚ ଉଚ୍ଚ ବା ଶଯ୍ୟା ପ୍ରସ୍ତୁତ କରାଯାଇ ତହିଁ ମଧ୍ୟରେ ରୋଷନ୍ ଚୌକୀ ବଜା ଯାଇଥାଏ । ଏଥିରେ ୩ଜଣ ମିଶି ବଜାନ୍ତି । ଜଣେ କେବଳ ସ୍ୱର ଧରେ । ୨ଜଣ ରାଗରାଗିଣୀ ଅନୁସାରେ ମହୁରି ବଜାନ୍ତି । ଜଣେ ଢୋଲକ ବଜାଏ ଓ ଜଣେ ଝାଞ୍ଜ ବଜାଏ । ଏହା ଆମ ଦେଶର ତେଲଙ୍ଗୀ ବାଜା ପରି—(ବି. ଷ) । ] ୨ । ଫୁଙ୍କି କରି ବଜାଇବାର ଏକ ବାଜା; ମହୁରି (ବି. ଷ)—2. A kind of clarionet.

ରୋଷନା(ନେ)ଇ—ବୈଦେ. ବି (ଫା. ରୋଶନାଇ)—୧ । ପ୍ରଦୀପ;
Roshanā(ne)i ଆଲୋକ—1. Light; lamp. ୨।ଆଲୋକ
(ରୋଷନି—ଅନ୍ୟରୂପ) ଉତ୍ସବ; ଉତ୍ସବାର୍ଥ ସଜ୍ଜିତ ଆଲୋକମାଳା—
রোষনাই, রোষনী 2. Rows of light arranged on
रोषनाई festive occasions. ୩ । ରୋଷଣି; ଆଲୋକମାଳା-ସମନ୍ୱିତ ଶୋଭାଯାତ୍ରା—3. A ceremonial procession accompanied with rows of light;a display of lights in a procession; a brilliantly lit pageant. [ଦ୍ର—ନାଚ ତାମସା ଓ ରୋଷନାଇ ଆଦି ଯାହା କିଛି କରିବାକୁ ହେବ, ସେହା ଆପଣ ସଜାଇ କରି ନେବେ । ଉକାଷ୍ଠରଣ ରତ୍ନମାଳୀ ]

ରୋଷନାଇ କରିବା—ଦେ. କ୍ରି—ରୋଷଣି କରିବା (ଦେଖ)
Roshanāi karibā Roshaṇi karibā (See)
বোসনাই করা रोषनाइकरना

ରୋଷନାଇ ତେଲ(ମାଲପା)—ଦେ ବି—ଆଲୋକ ଜଳାଇବା ପାଇଁ
Roshanāi tela(mālapā) ଆବଶ୍ୟକ ତେଲ—
বোষনাই তেল Oil required for lamps; lamp oil.
रोषनाईतेल [ରୋଷନ ତେଲ(ମାଲପା)—ଅନ୍ୟରୂପ]
[ଖାଇବା ତେଲ, ଲଗାଇବା ତେଲ—ବିପରୀତ]

ରୋଷ ପରାୟଣ—ସଂ. ବିଣ. ପୁଂ—କ୍ରୋଧପରାୟଣ; କ୍ରୋଧୀ; ରାଗୀ—
Rosha parāyaṇa Passionate; of an angry
(ରୋଷପରାୟଣା—ସ୍ତ୍ରୀ) (ରୋଷପରାୟଣତା—ବି) temper.

ରୋଷ ପ୍ରଦୀପନ—ସଂ.ବି (୬ଷ୍ଠୀ ତତ୍)-ମନୁଷ୍ୟ ମନରେ ଜନ୍ମିଥିବା କ୍ରୋଧର
Rosha pradīpana ଉଦ୍ଦୀପନ କରିବା--Aggravation of a
(ରୋଷଦୀପନ, ରୋଷବର୍ଦ୍ଧନ—ଅନ୍ୟରୂପ) person's anger.

ରୋଷ ପ୍ରଦୀପ୍ତ—ସଂ.ବିଣ (୩ୟା ତତ୍)—(ଲକ୍ଷଣାର୍ଥ) କ୍ରୋଧ ଯୋଗୁ
Rosha pradīpta ଜଳନ୍ତାପରି ହେଉଥିବା—(Metaphori-
( ରୋଷଦୀପ୍ତ—ଅନ୍ୟରୂପ ) cal) Burning with rage; fired with passion.

ରୋଷ ବହ୍ନି—ସଂ.ବି (ରୂପକ)—ରୋଷାଗ୍ନି (ଦେଖ)
Rosha bahni Roshāgni. (See)

ରୋଷ ବିସ୍ଫାରିତ—ସଂ. ବିଣ (୩ୟା ତତ୍)—କ୍ରୋଧଯୋଗୁଁ ବିସ୍ଫାରିତ
Rosha bisphārita ହୋଇଥିବା (ଚକ୍ଷୁ)—(Eyes) Expanded with rage.

ରୋଷଭର—ଦେ. ବିଣ—ରୋଷାନ୍ୱିତ; କ୍ରୁଦ୍ଧ—Angry, enraged.
Roshabhara ক্রোধভর रोषभर

ରୋଷଭରେ—ଦେ. କ୍ରି. ବିଣ—କ୍ରୋଧ ହେତୁ ଉତ୍ତେଜିତ ହୋଇ;
Roshabhare କ୍ରୋଧର ଉତ୍ତେଜନାରେ ଅନ୍ଧ ହୋଇ—
রোষভবে, রোষভরে Angrily; in a fury of passion;
रोषभरमे (ରୋଷଭରରେ—ଅନ୍ୟରୂପ) passionately.

ରୋଷ ଭାଷଣ—ସଂ. ବି. (ମ. ଘ. ଲୋ)—କ୍ରୋଧପୂର୍ଣ୍ଣ ବାକ୍ୟ—An
Rosha bhāshaṇa angry speech (Apte).
(ରୋଷ ଭାଷିତ, ରୋଷୋକ୍ତି—ଅନ୍ୟରୂପ)

ରୋଷମ୍—ବୈଦେ. ବି (ଫା. ରୁସୁମ୍)—୧ । ରୁସୁମ୍; ଜମିଦାରଙ୍କ
Rosham ବା ରାଜାଙ୍କୁ ବିଶେଷ ଉପଲକ୍ଷ (ବିବାହ, ଦାଖଲ
রুসুম ଖାରଜ ଆଦି)ରେ ଦିଆଯିବା ଶୁଳ୍କ ବା ଫିସ୍; ଚୋଦନା;
रुसम ସଲାମି—1. Fees paid to the king on certain occasions. [ଦ୍ର—ରାଜସ୍ୱ ଖଜଣା ବା କର

ପ୍ରଜାର ସବୁ କାଳରେ ଦେୟ୍, କନ୍ତୁ ରୋଷମ, ସଲାମୀ, ଫିସ୍, ଶୁଳ୍କ ବା ଭେଟାଦେନା ବିଶେଷ ବିଶେଷ ଉପଲକ୍ଷରେ ପ୍ରଜାଠାରୁ ଆଦାୟ କରାଯାଏ ।] ୨ । ଦରମା, କର ବା ନିୟମିତ ପ୍ରାପ୍ୟ ଛଡ଼ା ମିଳୁଥିବା ଅଧିକା ଧନ; ବକ୍‌ସିସ୍; ପୁରସ୍କାର—2. Perquisite. (ଉ—ଉପର ବରଠାରୁ ଚୌକିଆ ରୋଷମ ଟଙ୍କାଟଏ ଆଉ ମଲ୍ଲ ମରଡ଼ରେ ଭିଡ଼ଥିବା କାବଦଙ୍କୁ କଛି ଖର୍ଚ୍ଚ······· ।
ଫକୀରମୋହନ. ଛ ମାଣ ଆଠଗୁଣ୍ଠ ।)

**ରୋଷମ୍ ରୁ(ରୋ)ଷମାତ୍**—ବୈଦେ. ବ (ଫା. ସହଚର)—୧ । ରାଜସ୍ୱ Rosham ru(ro)shamāt ଛଡ଼ା ପ୍ରଜାଠାରୁ ବିଶିଷ୍ଟ ଉପଲକ୍ଷ- (ରୋଷମାତ୍—ଅନ୍ୟରୂପ) ମାନଙ୍କରେ ଅଦାୟ କରାଯିବା ନାନାବିଧ रूसूमरूसमात ରୋଷମ—1. Various sorts of fees paid **रूसम रूसुमात** to the landlord by the subject on various occasions ୨ । ରାଜସ୍ୱ ଆଦାୟକାରୀଙ୍କୁ ତାହାଙ୍କ କାର୍ଯ୍ୟ ନିମନ୍ତେ ଦିଆଯିବା କମିସନ୍—2. Commission paid to the collecting agent on the collection made by him

**ରୋଷ ସଞ୍ଚାର**—ସଂ. ବ. (୬ଷ୍ଠୀ ତତ୍)—କ୍ରୋଧ ଜାତ ହେବା; ରାଗ Rosha sañchāra ଉପୁଜିବା—Rising of anger in the mind; the state of being taken up with rage.

**ରୋଷ ସେବକ**—ଦେ. ବ—ଦେବତା ବା ରାଜାଙ୍କ ସୂପକାର; ସୁଆର—Rosha sebaka A cook employed for pre- ବସୁଆ ସେବକ paring a king's meals or a Deity's **रसोया सेवक** bhog.

**ରୋଷା**—ଦେ. ବ. (ସ. ରୋଷ)—କ୍ରୋଧ; ରାଗ—Roshā ରାଗ **गुस्सा** Anger, rage.

**ରୋଷା(ଷେ)ଇ**—ଦେ. ବ. ( ସ. ରସ )—ଖାଦ୍ୟ ଦ୍ରବ୍ୟାଦିର ପାକ Roshā(she)i କ୍ରିୟା—Cooking of meals or other ରସୁଇ victuals. (ଉ—ତାଙ୍କୁ ଯେ ଭଟି କରବ ରୋଷେଇ **रसोइ** ବିଧାନ । ପ୍ରାଚୀ. ଶ୍ରୀଗୁରୁଭକ୍ତି. ଗୀତ ।)

**ରୋଷା(ଷେ)ଇଆ**—ଦେ. ବ ଓ ବିଣ. ପୁଂ—ରୋଷେୟା ( ଦେଖ ) Rosha(she)iā Rosheyā ( See ) [ରୋଷା(ଷେ)ଇଆଣୀ—ସ୍ତ୍ରୀ]

**ରୋଷା(ଷେ)ଇ କରିବା**—ଦେ. କ୍ରି—ଖାଦ୍ୟ ପାକ କରିବା; ରାନ୍ଧିବା—Roshā(she)i karibā To cook meal. ରସୁଇ କବା **रसोइ करना**

**ରୋଷା(ଷେ)ଇ ଘର**—ଦେ. ବ. (ସ. ରସବତୀ—ପାକଶାଳା)—Roshā(she)i ghara ରନ୍ଧନଶାଳା—Kitchen. [ରୋଷା(ଷେ)ଇ ଶାଳ—ଅନ୍ୟରୂପ] ବସୁଇ ଘର **भनसा घर, रसोइ घर**

**ରୋଷାଇ(ଇଁ)ବା**—ଦେ. କ୍ରି ( ସ ରୋଷି ଧାତୁ )—୧ । ରଗାଇବା; Roshāi(iñ)bā କୌଣସି ବ୍ୟକ୍ତିଙ୍କୁ ରାଗାନ୍ୱିତ କରାଇବା—ରାଗାନ 1. To enrage a person. ୨ । (ସ. ରୁଷ୍ ଧାତୁ) **रोसाना** ରାଗ କରିବା; କ୍ରୋଧ କରିବା; ରାଗାନ୍ୱିତ ହେବା; ରାଗା ରାଗିବା—2. To be angry, to be enraged. **रूठना** (ଉ—ଉତ୍ତରରେ ଦୁଇଷ୍ଟ କରନ୍ତୁ ରୋଷାଇଁ, ବନ୍ଧିଲେ ପୁଣି ଶର ଶରାସନେ ଥୋଇ । କୃଷ୍ଣସିଂହ ମହାଭାରତ. ବିରାଟ ।)

**ରୋଷା(ଷେ)ଇ ବାସ**—ଦେ. ବ. (ସହଚର) (ସ. ରସିତ—ପାକକୃତ Roshā(she)i bāsa +ବସ୍ ଧାତୁ=ପରିବେଷଣ; କମ୍ବା ରସ ବସୁଇ ବାସ +ବାସ—ସୁବାସିତ କରିବା)—ରନ୍ଧାବଢ଼ା—**रसोइबास** Cooking operation. (ଯଥା—ରାନ୍ଧିବା, ମସଲା ପାଣି ଦେଇ କମ୍ବା ବଘାର ବ୍ୟଞ୍ଜନ ଆଦିକୁ ସୁବାସିତ କରିବା, ରନ୍ଧା ହୋଇଥିବା ଖାଦ୍ୟ ଖାଦକମାନଙ୍କୁ ପରିବେଷଣ କରିବା ଇତ୍ୟାଦି ।) (ଉ—କୁବେର ଗାଁ ପାଖ ନଦୀର ଅର କୂଳରେ ଜାଆ ଖଟାଇ ରୋଷେଇବାସ କରେ । ଫକୀର ମୋହନ. ଗଳ୍ପସ୍ୱଳ୍ପ ।)

**ରୋଷାକୁଳିତ**—ସଂ. ବିଣ. ପୁଂ (୩ୟା ତତ୍)—କ୍ରୋଧ ଦ୍ୱାରା ଉତ୍ତେଜିତ Roshākulita Troubled or perplexed with (ରୋଷାକୁଳିତା—ସ୍ତ୍ରୀ) anger.

**ରୋଷାକ୍ଷେପ**—ସଂ. ବ. (ମ. ପ. ଲୋ)—୧ । (ଅଳଙ୍କାର ଶାସ୍ତ୍ର) କ୍ରୋଧ Roshākshepa ପୂର୍ଣ୍ଣ ଅସମ୍ମତିସୂଚକ ବଚନ—1 (rhetoric- An angry expression of dissent (Apte). ୨ । କ୍ରୋଧମୟ ବ୍ୟଙ୍ଗୋକ୍ତି—2. An angry rep- roach; ironical taunt (Apte).

**ରୋଷାଗ୍ନି**—ସଂ. ବ. (ରୂପକ କର୍ମଧା)—କ୍ରୋଧାଗ୍ନି; ଅଗ୍ନି ସଙ୍ଗେ ତୁଳନା Roshāgni କରାଯିବା ରୋଷ; ଅଗ୍ନି ପରି ଭୀଷଣ କ୍ରୋଧ—(ରୋଷାନଳ—ଅନ୍ୟରୂପ) Fiery rage; burning rage; wrath compared to fire.

**ରୋଷାଣ**—ସଂ. ବିଣ. ପୁଂ. ( ରୋଷ+ଅନ )—କ୍ରୁଦ୍ଧ—Furious; Roshāṇa angry (M W). ସ. ବ—୧ । କଷଟି ପଥର—1. Touch stone (M. W) ୨ । ପାରଦ—2. Quick silver (M. W).

**ରୋଷାନ୍ଧ**—ସଂ. ବିଣ. ପୁଂ ( ୩ୟା ତତ୍ )—କ୍ରୋଧାନ୍ଧ; କ୍ରୋଧ ହେତୁ Roshāndha ହତାହିତ ଜ୍ଞାନଶୂନ୍ୟ—Devoid of calm (ରୋଷାନ୍ଧା—ସ୍ତ୍ରୀ) consideration through fury of (ରୋଷାନ୍ଧତା—ବିଶେଷ୍ୟ) rage; maddened or blinded with rage.

**ରୋଷାନ୍ୱିତ**—ସଂ. ବିଣ. ପୁଂ ( ୩ୟା ତତ୍ )—ରୋଷ ପୂର୍ଣ୍ଣ—Roshānwita Full of rage; passionate. ( ରୋଷାନ୍ୱିତା—ସ୍ତ୍ରୀ )

**ରୋଷା ରୋଷି**—ଦେ. ବ ( ସ. ରୋଷ )—ରାଗାରାଗି; ପରସ୍ପରଙ୍କ Roshā roshi ମଧ୍ୟରେ କଳିକଜିଆ—Mutual ill- ରେଷାରେଷି **रोसारोसी** feeling or recrimination.

**ରୋଷାଳ**—ଦେ. ବିଣ ପୁଂ—ରୋଷପରାୟଣ—Of an angry Roshāla ରୋଷାଳ temper; irritable. (ରୋଷାଳଆ—ଅନ୍ୟରୂପ) (ରୋଷାଳୀ, ରୋଷାଳେଇ—ସ୍ତ୍ରୀ)

ରୋଷାଲାପ—ସ. ବ ( ମ. ପ. ଲୋ )—କ୍ରୋଧପୂର୍ଣ୍ଣ କଥୋପକଥନ—
Roshālāpa Hot or angry exchange of words, hot words.

ରୋଷି (ଧାତୁ)—ସ ( ରୁଷ୍ ଧାତୁର ଣିଜନ୍ତରୂପ )—ରଗାଇବା; କ୍ରୁଦ୍ଧ
Roshi (root) କରାଇବା—To enrage.

ରୋଷିଆ—ଦେ. ବିଣ. ପୁଂ ( ସ. ରୋଷୀ )—ରୋଷୀ ( ଦେଖ )—
Roshia (ରୋଷେଇ—ସ୍ତ୍ରୀ) Roshī ( See )

ରୋଷିତ—ସ. ବିଣ. ପୁଂ ( ରୁଷ୍ ଧାତୁ ଣିଚ ରୋଷି ଧାତୁ=ରଗାଇବା
Roshita + କର୍ମ. ତ )—୧ । ରୁଷ୍ଟ; କୁପିତ—
(ରୋଷିତା—ସ୍ତ୍ରୀ) 1. Angry; enraged. [ ଉ—ଈଷିତ ରୋଷିତ ବଦନ, ଦେଖି ଜଳଧି କମ୍ପମାନ । ଜଗନ୍ନାଥ ଭାଗବତ । ] ୨ । ଯାହାକୁ କୁପିତ କରାଯାଇଥାଏ—
2. Irritated; provoked; enraged

ରୋଷିବା—ଦେ କି—ରୋଷ କରିବା; କ୍ରୁଦ୍ଧ ହେବା—
Roshiba ବାଗା ରୁଠନା To be angry.
[ ଉ—ମାର୍ଗ ରୋଧିଲେ କଷ୍ଟେ ରୋଷିବେ ହର । ରାଧାନାଥ. ମେଘଦୂତ । ]

ରୋଷୀ—ସ. ବିଣ. ପୁଂ ( ରୋଷ+କର୍ତ୍ତୃ. ଇନ୍ )—କ୍ରୋଧସ୍ୱଭାବ;
Roshī କୋପନ ପ୍ରକୃତି; ରାଗୀ; କ୍ରୁଦ୍ଧ—Of an irritable
(ରୋଷିଣୀ—ସ୍ତ୍ରୀ) temper; irascible; fretful. [ ଉ—ଶାଲ୍ୱ ଭୂପତିଙ୍କୁ ବଳାଇ ହୋଇ ରୋଷୀ । କୃଷ୍ଣସିଂହ. ମହାଭାରତ. ବନ । ]

ରୋଷୁଆ ଘର—ଦେ. ବ ( ସ. ରସବତୀ )—ରୋଷଘର; ପାକଶାଳା
Roshua ghara Kitchen. [ ଉ—ଅଙ୍ଗେ ରୋଷୁଆ
ବସୁଈ ଘର ଘର ଥିଲ, ଯେଉଁଠାରେ ଲକ୍ଷ୍ମୀ ଅଧିଷ୍ଠାନ ।
रसोई घर ଯଶୋବନ୍ତ. ପ୍ରେମଭକ୍ତିଗୀତା । ]

ରୋଷେୟା—ଦେ. ବ. ପୁଂ—ସୁପକାର; ସୁଆର; ପାଚକ—Cook.
Rosheyā ଦେ. ବିଣ. ପୁଂ—ରାନ୍ଧୁଣିଆ, ଯେ ରାନ୍ଧେ—
ବସୁୟା Cooking. [ ଦ୍ର—'ରୋଷେୟା' ଶବ୍ଦ ସାଧାରଣତଃ
रसोइया ପୁରୁଷ ପାଚକ ଅର୍ଥରେ ବ୍ୟବହୃତ ହୋଇଥାଏ ଏବଂ
(ରୋଷେୟାଣୀ—ସ୍ତ୍ରୀ) ଏହାର ସ୍ତ୍ରୀଲିଙ୍ଗ 'ରୋଷେୟାଣୀ'ର ବ୍ୟବହାର କ୍ୱଚିତ୍ ସ୍ଥଳରେ ଦେଖାଯାଏ । 'ପାଚିକା' ଅର୍ଥରେ 'ରାନ୍ଧୁଣୀ' ଶବ୍ଦ ପ୍ରାୟଶଃ ସର୍ବାଞ୍ଚଳରେ ବ୍ୟବହୃତ ହୋଇଥାଏ । ]

ରୋଷେୟା ବ୍ରାହ୍ମଣ—ଦେ. ବ—୧ । ରାନ୍ଧୁଣିଆ ବ୍ରାହ୍ମଣ, ପାଚକ
Rosheyā brahmaṇa ବ୍ରାହ୍ମଣ—1. Brahman cook.
ବସୁୟା ବାମୁନ ୨ । ପୂଜାରୀ ବ୍ରାହ୍ମଣ; ପଣ୍ଡା ବା ଦେଉଳିଆ ବ୍ରାହ୍ମଣ;
रसोईया बामन ଶାସନୀ ବ୍ରାହ୍ମଣଙ୍କ ଅପେକ୍ଷା ନୀଚ ଶ୍ରେଣୀୟ ବ୍ରାହ୍ମଣ
(ରୋଷେୟା ବାହୁଣ—ଗ୍ରାମ୍ୟରୂପ) 2. A Brahman of the lower order; the class of Brahmans who are profetional cooks. [ଦ୍ର—ସାଧାରଣତଃ ଠାକୁରସେବକ ବ୍ରାହ୍ମଣମାନେ ଶାସନୀ ବ୍ରାହ୍ମଣଙ୍କ ଅପେକ୍ଷା ନିମ୍ନତର ଶ୍ରେଣୀର 'ପଣ୍ଡା','ଦେଉଳିଆ' ବା 'ମଚ୍ଛିଆ' ଅଟନ୍ତି । ଏହି ପଣ୍ଡା ବା ଦେଉଳିଆ ବ୍ରାହ୍ମଣମାନେ ଓଡ଼ିଶାର ଆଦିମ ଅଧିବାସୀ ବ୍ରାହ୍ମଣଙ୍କ ବଂଶଧର । କେଶରୀବଂଶୀୟ ରାଜାମାନେ କାନ୍ୟକୁବ୍ଜରୁ ଯେଉଁ ଶ୍ରୋତ୍ରୀୟ ବା କନିଷ୍ଠ ବ୍ରାହ୍ମଣମାନଙ୍କୁ ଅଣାଇ ଯାଜପୁର ଓ ପୁରୀ ଅଞ୍ଚଳରେ ଭୂମିଖଣ୍ଡ ଜମିର ବ୍ରହ୍ମଦାନ କରି ବ୍ରାହ୍ମଣଶାସନମାନଙ୍କରେ ରଖାଇଥିଲେ, ଓଡ଼ିଶାର ଶାସନୀ ବ୍ରାହ୍ମଣମାନେ ସେହିମାନଙ୍କ ବଂଶଧର । ପଣ୍ଡା ବ୍ରାହ୍ମଣମାନେ ଦେବମନ୍ଦିରରେ ( ଯଥା—ପୁରୀ, ଭୁବନେଶ୍ୱର ) ଭୋଗ ପାଇଁ ଅନ୍ନାଦି ରାନ୍ଧନ୍ତି ଓ ସେହି ଶ୍ରେଣୀର ଲୋକେ ପ୍ରଥମେ ଶୂଦ୍ରମାନଙ୍କ ପରିବାର-ସଲଗ୍ନ ଠାକୁର ଘରେ ପାଚକରୂପେ ରହିଲେ, କ୍ରମଶଃ ଶୂଦ୍ର ଗୃହସ୍ଥମାନଙ୍କ ପରିବାରର ପାକକ୍ରିୟା କଲେ, ପରେ ଶୂଦ୍ର ଓ ବିଦେଶାଗତ ବାବୁ ଭାୟାଙ୍କ ଘରେ ରୋଷେୟା ଚାକିରି କଲେ । ]

ରୋଷୋତ୍ପତ୍ତି—ସ. ବ ( ୬ଷ୍ଠୀ ତତ୍ )—ରୋଷସଞ୍ଚାର; କ୍ରୋଧ ଉପୁଜିବା
Roshotpatti —Becoming enraged.

ରୋଷୋତ୍ପାଦନ—ସ. ବ—( ୬ଷ୍ଠୀ ତତ୍ )—ମନୁଷ୍ୟ ମନରେ କ୍ରୋଧ
Roshotpādana ଉପୁଜାଇବା—Causing anger; irritating or provoking a person to anger; provocation.

ରୋଷୋତ୍ପାଦକ—ସ. ବିଣ. ପୁଂ—(ବହୁବ୍ରୀହି) ଯାହା ରୋଷ ବଢ଼ାଏ—
Roshotpādaka Promoting anger.
(ରୋଷୋତ୍ପାଦିକା—ସ୍ତ୍ରୀ)

ରୋଷ୍ଟ—ବୈଦେ. ବ—(ଇଂ. ରୋଷ୍ଟ)—ନିଆଁରେ ସେକା ଯାଇ
Rosht ସିଦ୍ଧ ଯାଇଥିବା ଜୀବମାଂସ—Roast; roasted
रोष्ट रोष्ट meat.

ରୋଷ୍ଟ—ଗ୍ରା. ବିଣ. —(ସ. ରୁଷ୍ଟ)—ରୁଷ୍ଟ; କ୍ରୁଦ୍ଧ—
Roshṭa Angry; irritated; much displeased.
रुष्ट रुष्ट [ଦ୍ର—ଧୀର ସମୀର ହୋଇରୁ ନ କରରୁ ରୋଷ୍ଟ । ପ୍ରାଚୀ. ବ୍ରହ୍ମନିରୂପଣ ଗୀତା ।]

ରୋସୁଣ—ଗ୍ରା. ବ—ରସୁଣ (ଦେଖ)
Rosuṇa Rasuṇa (See)

ରୋହ—ସ. ବ.—(ରୁହ୍ ଧାତୁ=ଚଢ଼ିବା; ଗଜୁରିବା, ଉତ୍ପନ୍ନ ହେବା,
Roha ଜନ୍ମିବା+ଭାବ. ଅ)—୧ । ଆରୋହଣ—1. Riding; ascending. ୨ । (+କର୍ତ୍ତୃ ଅ ) ଅଙ୍କୁର; ଗଜା—
2. Germ; sprout. ୩ । (+ଭାବ.ଅ)ଗଜୁରିବା—
3. Germinating; sprouting. (M. W.)
୪ । (+କର୍ତ୍ତୃ. ଅ) କଢ଼ି—4. Bud; blossom
(M. W.) ସ. ବିଣ. ପୁଂ—ଆରୋହଣକାରୀ—
(ରୋହା—ସ୍ତ୍ରୀ) Riding; ascending.

ରୋହକ—ସ. ବିଣ. ପୁଂ—(ରୁହ୍ ଧାତୁ+କର୍ତ୍ତୃ. ଅକ)—୧ । ଆରୋହଣ
Rohaka କାରୀ—1. Mounting; ascending. ୨ । ଯାହା ବଢ଼ି ଥାଏ—2. Growing (M.w.) ସ.ବ.—
୧ । ଆରୋହୀ ବ୍ୟକ୍ତି—1 A rider (M. W.)
ମନୁଷ୍ୟଙ୍କୁ ଲାଗିବା ଭୂତ; ପ୍ରେତ ବିଶେଷ—2. Ghost which possesses a person.

**ରୋହଣ**—ସ. ବି.—(ରୁହ୍ ଧାତୁ+ଭାବ. ଅନ)—୧ । ଉଦ୍ଭବ, Rohana ଉତ୍ପତ୍ତି; ଜନ୍ମ—1. Birth; origin. ୨ । (+କର୍ତ୍ତୃ.ଅ) ଶୁକ୍ର; ରେତଃ—2. Semen; virile. ୩ । (+କର୍ମ ଅନ) ବହୁବିସ୍ତୃତ ନାମକ ବନ—3. Name of a big forest. ୪ । ଶୈଳ; ପର୍ବତ—4. Hill. ୫ । (+ଭାବ ଅନ) ଆରୋହଣ—5. Mounting; riding; ascending. ୬ । ଲଙ୍କାର ପର୍ବତ ବିଶେଷ—6. Adam's peak in Ceylon. ( M. W. ) ୭ । କ୍ଷତ ଆଦର ପୂରି ଆସିବା—7. Healing of a wound (M. W.)

**ରୋହନ୍**—ସ. ବି. ପୁଂ—(ରୁହ ଧାତୁ+ଅନ୍; ରୋହତ୍ ୧ମା. ୧ବ.) Rohan ୧ । ବୃକ୍ଷ—1. Tree. ୨ । ଲତା—2. Creeper. ସ. ବିଣ.ପୁଂ.—ଆରୋହଣ କରୁଥିବା— (ରୋହନ୍ତୀ—ସ୍ତ୍ରୀ) Rising; mounting, ascending (M.W)

**ରୋହଦ୍ର**—ଗ୍ରା. ବିଣ.—(ସ. ରୌଦ୍ର, ରୁଦ୍ର)—ଅତ୍ଯ ଅସହ୍ୟ; ଉତ୍ତପ୍ତ- Rohadra ଅସହ୍ୟ ତେଜ Unbearable; very hot. [ଉ— ରୋହଦ୍ର ଖରାରେ ଯେ ବସଇ ମୁହିଁ, ଅ ଖରାକ ବୋଲି ବୋଲନ୍ତି ନାହିଁ । ଭଗ ।]

**ରୋହି**—ସ. ବି ( ରୁହ୍ ଧାତୁ+କର୍ତ୍ତୃ ଇ )—୧ । ବୃକ୍ଷ – 1. Tree. Rohi ୨ । ବୀଜ—2. Seed. ୩ । ଧାର୍ମିକ ବ୍ୟକ୍ତି—3. Pious person. ୪ । ମୃଗବିଶେଷ—4. A kind of deer. ଦେ. ବି ( ସ. ରୋହିତ )—୧ । ରୋହିତ ମତ୍ସ୍ୟ; ନଦୀ ପୁଷ୍କରଣୀ ଆଦିରେ ରହିବା ଶକଳୀ ଜାଇ ବୋଡ୍ଡ ମତ୍ସ୍ୟ—1. Cyprinus Rohita; Cyprinus Denticulatus; Labeo Rohita. (ଉ—ବଡ଼ ବଡ଼ ରୋହି ଭାକୁଡ଼ାମାନଙ୍କୁ, ଖାଇ ଆଗ ତୋଷ କରବ ଉଦରକୁ— କୃଷ୍ଣସିଂହ ମହାଭାରତ. ବନ ।] [ବ୍ର—ରୋହି ମାଛର ପେଟ ଗୋଲ; କାନ୍ଧରେ ନାଲି ଚକ୍ଷ ଥିବାରୁ ଏହାର ନାମ 'ରୋହିତ' ବା 'ଲୋହିତ' ହୋଇଅଛି । ପୁଣି ଏହାର ଲଞ୍ଜ କୃଷ୍ଣବର୍ଣ୍ଣ ହେତୁ ଅନ୍ୟ ସଂସ୍କୃତ ନାମ 'କୃଷ୍ଣପୁଚ୍ଛ' ଅଟେ । ବୈଦ୍ୟଶାସ୍ତ୍ର ଅନୁସାରେ ସବୁ ମାଛ ଅପେକ୍ଷା ଏହା ଶ୍ରେଷ୍ଠ ଖାଦ୍ୟ, ଶୁକ୍ରବର୍ଦ୍ଧକ ଓ ବାତଘ୍ନ, ଅନଳଦୀପ୍ତିକର ଓ ଅର୍ଦ୍ଦିତ ରୋଗନାଶକ; ରୋହିତ ମୁଣ୍ଡ ଊର୍ଦ୍ଧ୍ୱଜତ୍ରୁଗତ ରୋଗନିବାରକ । ଏହି ଜାତୀୟ ଏକପ୍ରକାର ବଡ଼ ମାଛକୁ 'ସୋହି' ବୋଲଯାଏ ଓ ରୋହି ମାଛର ପିତ୍ତ ଅପେକ୍ଷା ସୋହି ମାଛର ପିତ୍ତ ଔଷଧାର୍ଥେ ବେଶି ଗୁଣକର ବୋଲି ବିବେଚିତ—ଦ୍ରବ୍ୟଗୁଣ ।] ୨ । ( ସ. ଋଜୁ ସୋଜା ଇନ୍ଦ୍ରଧନୁ ସୀଧାଇନ୍ଦ୍ରଧନୁଷ ଇନ୍ଦ୍ରଧନୁ) ରୋଇ; ରୋହିତ; ଋଜୁ ଇନ୍ଦ୍ରଧନୁ—2. A straight rainbow. ( ଉ— ପୂର୍ବେ ଅନ୍ଧାବଳୀ, ପଶ୍ଚିମେ ରୋଇ; ନାଥ ବୋଲେ ସୁତ୍ର୍ବେ । କଷ୍ଟେ ଯିବ ଧୋଇ—ଡାକ ବୃଷ୍ଟିବଚନ । ) ୩ । ରଇ (ଦେଖ)—3. Rai (See) (ଉ—କାଲି ବାପାକର ରୋହିଣୀତଳା ହେବ ।)

**ରୋହି କଣ୍ଡା**—ପ୍ରାଦେ (ଯାଜପୁର) ବି—ସାନ ରୋହି ମାଛ— Rohi kardā Young Rohi fish.

**ରୋହିଣ**—ସ. ବି (ରୁହ୍ ଧାତୁ+କର୍ତ୍ତୃ ଇନ)—୧ । ରୌହିଣ; ବଟବୃକ୍ଷ- Rohiṇa 1. Banian tree. ୨ । ଗନ୍ଧତୃଣ; ଧନ୍ୟାକ ଗନ୍ଧ—2. Fragrant grass; Andropogen Schoenanthes. ୩ । ଦିବସର ନବମ ମୁହୂର୍ତ୍ତ; ଦିବା ରାତ୍ରିର ୩୦ ଭାଗ ମଧ୍ୟରୁ ୯ମ ଭାଗ; ପ୍ରାୟ ଦିନ ୧ଟା ବେଳ—3. The ninth moment of a day (divided into 15 parts); (about 1 P. M.) ୪ । ରୋହିତକ (ଦେଖ)—4. Rohitaka (See) ସ. ବିଣ. ପୁଂ ( ରୋହିଣୀ+ଅ ) ରୋହିଣୀ ନକ୍ଷତ୍ରରେ ଜାତ—Born under the asterism Rohiṇi (M. W)

**ରୋହିଣୀ**—ସ. ବିଣ. ସ୍ତ୍ରୀ (ରୁହ୍ ଧାତୁ+କର୍ତ୍ତୃ ଇନ+ସ୍ତ୍ରୀ ଈ)—ରୋହିଣ Rohiṇi ସ୍ତ୍ରୀଲିଙ୍ଗ—Feminine of 'Rohi' ସ. ବି ସ୍ତ୍ରୀ— (ରୋହୀ—ପୁଂ) ୧ । ଚତୁର୍ଥ ନକ୍ଷତ୍ର—1. The 4th asterism. [ବ୍ର—ଏ ଚନ୍ଦ୍ରଙ୍କ ପତ୍ନୀ, ଦକ୍ଷ ରାଜାଙ୍କ କନ୍ୟା ଓ ତାରାଙ୍କ ମଧ୍ୟରେ ପ୍ରଧାନ ଅଟନ୍ତି । ଏହି ନକ୍ଷତ୍ର ୫ଟି ତାରାବିଶିଷ୍ଟ ଓ ଶକଟାକୃତି । ଏଥିପାଇଁ ଏହାର ଅନ୍ୟ ନାମ ଶକଟାହ୍ୱ । ନକ୍ଷତ୍ର ଭଲେ ଜୋନ୍ ଦେଖ ।] ୨ । ସ୍ୱର୍ଗ ଗାୟିକାବିଶେଷ 2. A class of female songsters (demi-gods) or heavenly nymphs. ୩ । ହରିତାଳ- 3. Yellow orpiment; sulphate of arsenic. ୪ । ନବବର୍ଷବୟସ୍କା କନ୍ୟା ( ୯ ବର୍ଷ ପଶିବାଠାରୁ ୧୦ ବର୍ଷ ପଶିବା ପର୍ଯ୍ୟନ୍ତ )—4. A girl in her 10th year. ୫ । ଅଜାତରଜସ୍କା କନ୍ୟା—5. Unmatured girl. ୬ । ଗାଈ—6. Cow. ୭ । ଶ୍ରୀକୃଷ୍ଣଙ୍କ ପିତା ବସୁଦେବଙ୍କ ଏକ ପତ୍ନୀ; ଦେବକୀଙ୍କ ସପତ୍ନୀ; ବଳରାମଙ୍କ ମାତା—7. Name of a wife of Basudeba and mother of Balarāma. [ ବ୍ର—ବସୁଦେବ କଂସ ରାଜାର ଭୟରେ ସପୁତ୍ରା ରୋହିଣୀଙ୍କୁ ମଥୁରାରୁ ନେଇ ବ୍ରଜପୁରରେ ସ୍ୱୀୟ ସଖା ନନ୍ଦଘୋଷଙ୍କ ଘରେ ରଖି ଆସିଥିଲେ । କଂସର ମୃତ୍ୟୁ ପର୍ଯ୍ୟନ୍ତ ଏ ନନ୍ଦ ଘରେ ଥିଲେ । ତତ୍ପରେ ବସୁଦେବଙ୍କ ସହିତ ମଥୁରାକୁ ଫେରି ଆସି ବାସ କଲେ । ଯଦୁବଂଶ ଧ୍ୱଂସ ପରେ ବସୁଦେବଙ୍କ ମୃତ୍ୟୁ ହେବାରୁ ରୋହିଣୀ ସ୍ୱାମୀଙ୍କ ଅନୁଗମନ କଲେ । ] ୮ । (ବୈଦ୍ୟକ) ହରିତକୀ— 8. Myrobalan. ୯ । କଟୁକୀ; କଟୁରୋହିଣୀ— 9. Black Hellebore plant. ୧୦ । (ବୈଦ୍ୟକ) ମଞ୍ଜିଷ୍ଠା—10. Indian madder plant. ୧୧ ବିଦ୍ୟୁତ୍—11. Lightning. ୧୨ । ଗଳରୋଗ-ବିଶେଷ; ଗଳାଫୁଲା ରୋଗ—12. A sort of throat disease; inflammation of the throat

throat. ୧୩ । ପତ୍ରାଙ୍ଗ ( ଦେଖ )—13. Patrāṅga (See) ୧୪ । ନାଲି ଗାଈ—14. Red cow (Apte). ୧୫ । ଅଳ୍ପଦିନ ହେଲା ଋତୁମତୀ ବାଳିକା 15. A girl in whom menstruation has just commenced (M. W). ୧୬ । ହିରଣ୍ୟକଶିପୁର ଏକ କନ୍ୟାର ନାମ—16. Name of a daughter of Hiraṇyakaśipu ( M, W ) ୧୭ । ହରିବଂଶୋକ୍ତ ଶ୍ରୀକୃଷ୍ଣଙ୍କର ଏକ ସ୍ତ୍ରୀ—17. Name of a wife of Śrīkṛushṇa (M. W) ଦେ. ବି—ସ୍ତ୍ରୀଲୋକଙ୍କ ନାମ—A name given to females. ସଂ. ବିଣ. ସ୍ତ୍ରୀ—ରୋହିତର ସ୍ତ୍ରୀଲିଙ୍ଗ—Feminine of Rohita. (Apte)

**ରୋହିଣୀ କୁଣ୍ଡ**—ସଂ.ବି—ଶ୍ରୀକ୍ଷେତ୍ର ପୁରୀର ବଡ଼ ଦେଉଳ ବେଢ଼ା ମଧ୍ୟରେ
Rohiṇī kuṇḍa ଦେଉଳର ଦକ୍ଷିଣରେ ଥିବା ଗୋଟିଏ କ୍ଷୁଦ୍ର ଜଳ କୁଣ୍ଡ—Name of a small reservoir of water inside the compound of the Jagannātha temple at Puri. ( ଭୂ—ତଳେ ତା ରୋହିଣୀର କୁଣ୍ଡ, କାରୁଣ୍ୟ ଜଳ ଏଥି ରୁନ୍ଧ—ଯଶୋବନ୍ତ ପ୍ରେମଭକ୍ତି ବ୍ରହ୍ମଗୀତା । ] [ଦ୍ର—ପୁରାଣରେ କଥିତ ଅଛି ଯେ, ଗୋଟିଏ କାକ ଏଥିରେ ସ୍ନାନ କରି ଚତୁର୍ଭୁଜ ହୋଇଥିଲା । ସେ କୁଣ୍ଡଟିର ଦୀର୍ଘ ପ୍ରାୟ ୨।୦ ହାତ, ପ୍ରସ୍ଥ ୨ ହାତ ଓ ଗଭୀରତା ୨ ହାତ । ଏଥି ମଧ୍ୟରେ ଗୋଟିଏ ଚତୁର୍ଭୁଜ କାକର ପ୍ରସ୍ତର ମୂର୍ତ୍ତି ରକ୍ଷିତ ହୋଇଅଛି । ଏହା କଳ୍ପବଟ ନାମକ ବଟ ବୃକ୍ଷର ଉତ୍ତର-ପଶ୍ଚିମରେ ଓ ବିମଳାଙ୍କ ମନ୍ଦିରର ସମ୍ମୁଖରେ ଥିବା ହିଁ ହିର ପଟରେ ଅବସ୍ଥିତ । ]

**ରୋହିଣୀ ତନୟ**—ସଂ. ବି.—ଶ୍ରୀକୃଷ୍ଣଙ୍କ ବୈମାତ୍ରେୟ ଜ୍ୟେଷ୍ଠଭ୍ରାତା
Rohiṇī tanaya ବଳରାମ—Name of Balarāma, (ରୋହିଣୀସୁତ, ରୋହିଣୀଭବ—ଅନ୍ୟରୂପ) the son of Rohiṇī who was the step-mother of Śrīkṛushṇa.

**ରୋହିଣୀ ପତି**—ସଂ. ବି. ପୁଂ—୧ । ବଳରାମଙ୍କ ଓ ଶ୍ରୀକୃଷ୍ଣଙ୍କ ପିତା
Rohiṇī pati ବସୁଦେବ—1. Basudeba, father of (ରୋହିଣୀବଲ୍ଲଭ, ରୋହିଣୀରମଣ—ଅନ୍ୟରୂପ) Śrīkṛushṇa. ୨ । ଚନ୍ଦ୍ର—2. The moon.

**ରୋହିଣୀ ଶକଟ**—ସଂ. ବି—ଶକଟାକୃତି ରୋହିଣୀ ନକ୍ଷତ୍ର (ନକ୍ଷତ୍ର ତଳେ
Rohiṇī śakaṭa ଟୀକା ଦେଖ)—The 4th asterism (having the shape of a cart) (M. W.)

**ରୋହିଣ୍ୟଷ୍ଟମୀ**—ସଂ. ବି.—ଭାଦ୍ରପଦ ମାସର କୃଷ୍ଣାଷ୍ଟମୀ (ଏ ଦିନ ଚନ୍ଦ୍ର
Rohiṇyashṭamī ରୋହିଣୀ ନକ୍ଷତ୍ରରେ ଥାଆନ୍ତି)—The 8th day of the dark lunar fortnight of the month of Bhādrapada.

**ରୋହିତ୍**—ସଂ.ବି—(ରୁହ୍ ଧାତୁ+ଇତ୍)—୧ । (ପୁ) ରୋହିତ ମତ୍ସ୍ୟ—
Rohit (ଦେଖ)—1. Rohita matsya (See) ୨ । ସୂର୍ଯ୍ୟ—2. The sun. ୩ । (ବୈଦିକ)(ସ୍ତ୍ରୀ)ନାଲି ଘୋଡ଼ୀ—3. Red mare (Apte). ୪ । (ବୈଦିକ)(ସ୍ତ୍ରୀ)ନାଲି ମୃଗୀ—4. A red doe (M. W.) ୫ । ଋତୁମତୀ ସ୍ତ୍ରୀ—5. A woman in her menses (M. W ) ୬ । ଅଙ୍ଗୁଠି—6. The fingers (M. W.) ସଂ. ବିଣ—ନାଲି—Red (M. W).

**ରୋହିତ**—ସଂ. ବିଣ.ପୁଂ.—(ରୁହ୍ ଧାତୁ=ରକ୍ତବର୍ଣ୍ଣ ହେବା + କର୍ତ୍ତୃ. ତ)
Rohita —ଲୋହିତ; ରକ୍ତବର୍ଣ୍ଣବିଶିଷ୍ଟ—Red ସଂ. ବି—୧ । ରୋହିତ ମତ୍ସ୍ୟ ( ଦେଖ )—1. Rohita matsya (See) ୨ । ଲୋହିତ ବର୍ଣ୍ଣ—2. Red colour; red dye. ୩ । ସୁଆମ ଗଛ—3. A wild tree. ୪ । ନାଲିଆ ହରିଣ ବିଶେଷ—4. The red deer. ୫ । ପଦ୍ମରାଗ ମଣିବିଶେଷ—5. Ruby; a red gem. ୬ । କୁଙ୍କୁମ—6. Saffron. ୭ । ଋଜୁ ଇନ୍ଦ୍ରଧନୁ—7. A straight rain-bow. ୮ । ଶୋଣିତ; ରକ୍ତ (ରୋହିତା; ରୋହିଣୀ—ବିଣ. ସ୍ତ୍ରୀ) 8. Blood.

**ରୋହି(ହୀ)ତକ**—ସଂ. ବି—(ରୁହ୍ ଧାତୁ+କର୍ତ୍ତୃ. ତ+ସ୍ୱାର୍ଥେ. କ)—
Rohi(hī)taka ଅରଣ୍ୟ ବୃକ୍ଷ ବିଶେଷ; ସୁଆମ ଗଛ—A wild timber tree, the Indian red wood tree; Andersonia Rohitaca, Tecoma Andulata; Amura Rohitaka; Soymida Febrifuga.

ସଂ. ନାମ—ପ୍ଲୀହଶତ୍ରୁ, ଦାଡ଼ିମ୍ବ ପୁଷ୍ପ, ଦାଡ଼ିମ୍ବପୁଷ୍ପକ, ରକ୍ତଘ୍ନ, ମାଂସ ଦଳ, ଯକୃଦ୍ ବୈରୀ, ଚଳଚ୍ଛଦ, ରକ୍ତପୁଷ୍ପ, କୁଶାଲ୍ମଳ, ସଦାପ୍ରସୂନ, ବିରୋଚନ, ଶାଲ୍ମଳିକ, କୂଟଶାଲ୍ମଳି, ରକ୍ତ ରୋହିତ୍। ହି. ରୋହିଡ଼ା, ରୋହନ ମାରାଠୀ—ରକ୍ତ ରୋହିଡ଼ା, ତେ. ରୋହିତକ; ଇଂ—ମୁଲୁଚ୍ମୋବୁ ଗଟେଟ୍ଟୁ, ତିକ୍ତବାଜ, ପିତବାଜ, ରୋଡା(ଢ଼ା) ରୋହିଷ, ବନ୍ଧନା, କଡ଼ାର, ବୋହାଣ ହରିନହାରା, ରୀହଡ଼ା, ରୀହନ [ରୋହିଣ, ରୋହୁଣ, ରୋହିତେୟ, ରୋହୀ—ଅନ୍ୟରୂପ]

[ଦ୍ର—ଏ କାଠରେ ଘରର କଡ଼ି, ପଟା, ଅଲମାରି ଓ ଶୁଣ୍ଠି ହୁଏ । ଏହାର କାଠ ନାଲି । ଏହା ଶ୍ୱେତ ଓ ରକ୍ତବର୍ଣ୍ଣ ଭେଦରେ ଦୁଇ ପ୍ରକାର । ଯଥା—ଶ୍ୱେତ—Tecoma Andulata ଓ ରକ୍ତ—Soymida Febrifuga. ଏହା ନିମ୍ବାଦି ବର୍ଗର ବୃହତ୍ ତରୁ; କାଣ୍ଡ ସଳଖ; ବକଳ ନାଲିଆ; ମଞ୍ଜି କାଠ ନାଲି, ଦୃଢ଼ ଓ ସ୍ଥାୟୀ; ପତ୍ର ୩ ଠାରୁ ୬ ଯୋଡ଼ା ପର୍ଣ୍ଣଯୁକ୍ତ; ପର୍ଣ୍ଣ ୨।୪ ଇଞ୍ଚ ଲମ୍ବା; ଫଳ ୧।୨ ଇଞ୍ଚ ଲମ୍ବ; ଫଳ ପକ୍ୱ ହେଲେ ପାଞ୍ଚ ଚିରୁଡ଼ା ହୋଇ ଫାଟି ଯାଏ । ବୀଜ ଅନେକ, ଚେପଟା ଓ ପକ୍ଷଯୁକ୍ତ; ମଧ୍ୟ ଭାରତ ଓ ପଶ୍ଚିମ ଭାରତରେ ଏ ଗଛ ଜନ୍ମେ । ବୈଦ୍ୟକ ମତରେ ଏହା ପ୍ଲୀହନାଶକ, ରୁଚକାରକ ଓ ରକ୍ତପ୍ରସାଦକ । ଶୀତକାଳରେ ଏ ଗଛ ପତ୍ରଝଡ଼ା ହୁଏ ।]

**ରୋହିତ ମତ୍ସ୍ୟ**—ସଂ. ବି.—ରୋହି ୧ (ଦେଖ)
Rohita matsya Rohi 1. (See)

ସଂ. ନାମ—ରୋହିତ, ଲକ୍ଷ୍ମୋଦର, ରକ୍ତମୁଖ, ରକ୍ତାକ୍ଷ, ରକ୍ତପକ୍ଷତି, ହି. ରୁଇ, ଇଂ—ରୋହୁ [ଦ୍ର—ରୋହି ମାଛ ଓ ରୋହିତ ବର୍ଣ୍ଣ ଅର୍ଥରେ—ବୃହତ ଯେତ୍ନ

କୃଷ୍ଣପୁଚ୍ଛ, ନୃପ ଶ୍ରେଷ୍ଠ । ରୋହିତ ମୂର୍ତ୍ତି, ଶୁଦ୍ଧବଞ୍ଜନକାରକ ଅଛି, ବଂଶ ହୋଇଣ ଯାହା ପ୍ରଶସ୍ତି, ଅଟ୍ଟ ପ୍ରବର୍ତ୍ତି ଯେ । ଉଞ୍ଜ. ବୈଦେହୀଶ ବଳାସ ।]

ରୋହିତାକ୍ଷ—ସଂ. ବଣ. ପୁଂ—(ବହୁବ୍ରୀହି)—ରକ୍ତବର୍ଣ୍ଣ ଚକ୍ଷୁର୍ବିଶିଷ୍ଟ—Rohitāksha (ରୋହିତାକ୍ଷୀ—ସ୍ତ୍ରୀ) Red-eyed.

ରୋହିତାଶ୍ୱ—ସ. ବ.—(ବହୁବ୍ରୀହି; ରୋହିତ = ରୋହିତ ଅଛେ ଅଶ୍ୱ Rohitāswa ଯାହାର)—୧ । ଅଗ୍ନି—1. Fire ୨ । [ରୋହିଦଶ୍ୱ—ଅନ୍ୟରୂପ] ରାଜା ହରିଶ୍ଚନ୍ଦ୍ରଙ୍କ ପୁତ୍ର—2. Name of the son of Rājā Harischandra. ସଂ. ବଣ. ପୁଂ—ଯାହାର ନାଲଥି ଘୋଡ଼ା ଥାଏ—Having a red horse.

ରୋହିତେୟ—ସ. ବ—ରୋହିତକ (ଦେଖ) Rohiteya Rohitaka (See)

ରୋହି ପିତ(ତ୍ତ)—ଦେ. ବ—ରୋହି ମାଛର ପିତ୍ତ—The bile of Rohi.pita(tta) Rohi fish. [ ଦ୍ର—ରୋହି ମାଛର ପିତ୍ତକୁ କୁଇମାଛେର ପିତ୍ତି ଲୋକେ ଖାଇଲ କର ଥିଲନ୍ତି । ଏହା ସନ୍ନିପାତ ରୋହୁକାପିତ୍ତ ରୋଗରେ ବଶେଷ ଉପକାରୀ, ରୋହି ଜାତୀୟ ଏକ ପ୍ରକାର ମାଛକୁ ସୋହ ବୋଲାଯାଏ । ରୋହିପିତ୍ତ ଅପେକ୍ଷା ସୋହ ପିତ୍ତ ଅଧିକ ଗୁଣକର ।]

ରୋହି(ହେ)ଲ(ଲା)—ଦେ. ବ—ଭାରତର ଉତ୍ତର-ପଶ୍ଚିମ ପ୍ରଦେଶବାସୀ Rohi(he)l(lā) ମୁସଲମାନ ଜାତିବଶେଷ—Name of a रोहिल tribe of Mahomedans in N. W. India, the रूहेला Rohillas. [ଦ୍ର—ଏ ତ ରାଜପୁତ ରୋହିଲା ମୁଗଲ ବଘେଲ ଚୁହାଣ ପଠାଣ ଗଡ଼କୁ ବୋଲି ପଶି ଝାସିଯିବେ ଯେ ଜଳ ଲଂଘିବେ କେହି ପୁଣ । ବ୍ରଜନାଥ. ସମରତରଙ୍ଗ । ] [ଦ୍ର—ଏମାନେ ପୂର୍ବେ ଦସ୍ୟୁବୃତ୍ତି ବା ଠଗବୃତ୍ତି କରୁଥିଲେ । ଏମାନଙ୍କ ସଙ୍ଗେ ଇଂରେଜମାନଙ୍କର ଅଷ୍ଟାଦଶ ଶତାବ୍ଦୀରେ ଯୁଦ୍ଧ ହୋଇଥିଲା ଓ ଏମାନେ ତହିଁରେ ପରାସ୍ତ ହୋଇଥିଲେ । ]

ରୋହି(ହେ)ଲ(ଲା)ଖଣ୍ଡ—ଦେ. ବ—ଭାରତର ଅଯୋଧ୍ୟାର ଉତ୍ତର-Rohi(he)l-(lā)khanda ପଶ୍ଚିମସ୍ଥ ଅଞ୍ଚଳ ବଶେଷ—Name रोहिल खंड of a tract of country in N.W. India; रूहेल खण्ड Rohilkhand. [ଦ୍ର—ଏହି ଅଞ୍ଚଳରେ ରୋହିଲାମାନେ ବାସ କରନ୍ତି ।]

ରୋହି ଶୀତଳା—ଦେ. ବ—ଚିତା ଶୀତଳା (ଦେଖ)—The quenRohi sitalā ching of the funeral fire on the [ ରୋହି ଶୀତଳା(ଳେ)ଇବା—କ୍ରିୟାରୂପ] 4th day of the cremation.

ରୋହିଷ—ସଂ. ବ—୧ । ତୃଣବଶେଷ; ଧନଶ୍ରୀ ଗୁଲ୍ମ; କତ୍ତୃଣ Rohisha (ଦେଖ)—1. A fragrant grass; lemon grass; Andropogen Schoenanthus; Kattruna (See). ୨ । ଏକ ପ୍ରକାର ମାଛ; ରୋହି ମାଛ—2. A kind of fish (M. W) ୩ । ଏକ ପ୍ରକାର ମୃଗ—3 A kind of deer; (M. W.)

ରୋହୀ—ସଂ. ବଣ. ପୁଂ (ରୁହ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)—Rohī ୧ । ଅରୋହଣକାରୀ—1. Riding; rising; [ ରୋହିଣୀ—ସ୍ତ୍ରୀ ] mounting. ୨ । ଡେଙ୍ଗା; ଲମ୍ବା—2. Long; tall (M. W) ୩ । ସଂଖ୍ୟାରେ ବଢୁଥିବା 3. Growing in number; increasing. (Apte) ସଂ. ବ—୧ । ବଟବୃକ୍ଷ—1. Banian tree. ୨ । ଅଶ୍ୱତ୍ଥ ବୃକ୍ଷ—2 The religious fig tree; Ficus Indica. ୩ । ରୋହିତକ (ଦେଖ)—3 Rohitaka. (See) ୪ । (ସ୍ତ୍ରୀ) ମୃଗୀ—4. A doe (M. W.)

ରୌକ୍ମ—ସଂ. ବଣ (ରୁକ୍ମ+ସମ୍ବନ୍ଧାର୍ଥେ ଅ)—ସ୍ୱର୍ଣ୍ଣମୟ—Raukma [ ରୌକ୍ମୀ—ସ୍ତ୍ରୀ ] Golden.

ରୌକ୍ମିଣେୟ—ସଂ ବ. ପୁଂ (ରୁକ୍ମିଣୀ+ଏୟ)—୧ । ରୁକ୍ମିଣୀସନ୍ତାନ—Raukmineya 1. Descendant or offspring of [ରୌକ୍ମିଣେୟୀ—ସ୍ତ୍ରୀ] Rukmini. ୨ । ପ୍ରଦ୍ୟୁମ୍ନ—2. A name of Pradyumna.

ରୌକ୍ଷ୍ୟ—ସଂ. ବ (ରୁକ୍ଷ+ଭାବ. ଯ)—୧ । ରୁକ୍ଷତା; କାଠିନ୍ୟ; Raukshya କାର୍କଶ୍ୟ—1. Hardness; roughness. ୨ । ଶୁଷ୍କତା; ନିର୍ଜଳତା—2. Dryness; ardity (Apte). ୩ । କଷ୍ଟୁରତା—3. Cruelty (Apte)

ରୌଚନିକ—ସଂ. ବ (ରୋଚନ+ଇକ)—୧ । ରଙ୍ଗା ଯାଇଥିବା—Rauchanika 1. Coloured; dyed. ୨ । ଗୋରୋଚନାରଞ୍ଜିତ—2. Coloured with Gorochanā,(M. W). ସଂ. ବ—ଦାନ୍ତ ଉପରେ ବେଳେ ବେଳେ ପଡ଼ୁଥିବା ଝାଣୁଅ ଅସ୍ତର—The tartor of the teeth.

ରୌଚ୍ୟ—ସଂ.ବ—୧ । (ରୁଚ+ଯ)—ମନୁ ବଶେଷ; ତ୍ରୟୋଦଶ ମନୁ—Rauchya 1. One of the progenitors of mankind. ୨ । (ରୁଚ୍ୟ+ଅ) ବେଲକାଠର ଯଷ୍ଟି—2. A staff of Bilwa wood (M. W.)

ରୌଦ୍ର—ସଂ. ବଣ [ରୁଦ୍ର+ଅ]—୧ । ରୁଦ୍ର ସମ୍ବନ୍ଧୀୟ—Raudra 1. Relating to Rudra. (ରୌଦ୍ରୀ—ସ୍ତ୍ରୀ) ୨ । ଉଗ୍ର—2. Formidable; violent. [ରୌଦ୍ରତା(ତ୍ୱ)—ବ] ୩ । ପ୍ରଚଣ୍ଡ—3. Furious; impetuous. ୪ । ଭୀଷଣ; ଭୟଙ୍କର—4. Terrible; terrific. ୫ । ଅତି କ୍ରୁଦ୍ଧ—5. Wrathful. ୬ । ଅଶୁଭସୂଚକ—6. Bringing or betokening misfortune ( M. W. ). ସ. ବ—୧ । ସୂର୍ଯ୍ୟକିରଣ; ଖରା; ସୌର ଉତ୍ତାପ—1. Sun's rays; solar heat; sunshine. ୨ । କ୍ରୋଧ—2. Anger; rage. ୩ । ଯମ—3. The God of death. ୪ । କାବ୍ୟର ରସବଶେଷ; କ୍ରୋଧଜନକ ରସ

('ରସ' ଦେଖ)—4. The sentiment of wrath or fury in literature. ୫ । ରୁଦ୍ର ଦେବତାଙ୍କ ପୂଜକ—5. A worshipper of Rudra (M. W.). ୬ । ଶୀତ ଋତୁ—6. The cold season; winter (M. W.). ୭ । ଉତ୍ତାପ—7. Heat; warmth (M.W.) ୮ । ଭୀଷଣତା; ପ୍ରଚଣ୍ଡତା—8. Fierceness; formidableness (M.W.).

ରୌଦ୍ର କର୍ମା—ସ. ବଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି, ରୌଦ୍ର+କର୍ମନ୍ ୧ମା. ୧ବ)—ଭୟଙ୍କର କର୍ମକାରୀ—
Raudra karmā
Doing terrible acts. ସ. ବ—କୌଣସି ଭୀଷଣ ଉଦ୍ଦେଶ୍ୟରେ ଅନୁଷ୍ଠିତ ତାନ୍ତ୍ରିକ ଐନ୍ଦ୍ରଜାଲିକ ଉପଚାର—A terrible magical rite or one performed for some dreadful purpose (M. W.)

ରୌଦ୍ର ତପ୍ତ—ସ. ବଣ (ତତ୍ପୁ ତତ୍)—ସୂର୍ଯ୍ୟର ତାପରେ ଉତ୍ତପ୍ତ—
Raudra tapta Heated or scorched by sun's rays.
(ରୌଦ୍ର ତାପିତ, ରୌଦ୍ରଦଗ୍ଧ—ଅନ୍ୟରୂପ)

ରୌଦ୍ର ଦଂଷ୍ଟ୍ର—ସ. ବଣ. ପୁଂ (ବହୁବ୍ରୀହି)—ଭୟଙ୍କର ଦନ୍ତ ବିଶିଷ୍ଟ—
Raudra damshtra Having terrible tusks, fangs or teeth (M. W.).
(ରୌଦ୍ରଦଂଷ୍ଟ୍ରା—ସ୍ତ୍ରୀ)

ରୌଦ୍ର ଦର୍ଶନ—ସଂ. ବଣ. ପୁଂ (ବହୁବ୍ରୀହି)—ଯେ ଦେଖିବାକୁ ଭୟଙ୍କର—Of dreadful appearance; terrific (M. W.).
Raudra darsana
(ରୌଦ୍ର ଦର୍ଶନା—ସ୍ତ୍ରୀ)

ରୌଦ୍ର ନେତ୍ର—ସଂ. ବଣ. ପୁଂ (ବହୁବ୍ରୀହି)—୧ । ଭୟଙ୍କର ଚକ୍ଷୁଯୁକ୍ତ—1. Having terrible eyes. ୨ । କ୍ରୋଧାରକ୍ତ ନୟନଯୁକ୍ତ—2. Having the eyes reddened with wrath.
Raudra netra
(ରୌଦ୍ରନୟନ—ଅନ୍ୟରୂପ)
(ରୌଦ୍ରନେତ୍ରା, ରୌଦ୍ରନୟନା—ସ୍ତ୍ରୀ)

ରୌଦ୍ର ପଦ—ସଂ ବ—ହିନ୍ଦୁମାନଙ୍କର ତୀର୍ଥ ବିଶେଷ—Name of a place of pilgrimage of the Hindus. [ଉ—ରୌଦ୍ରପଦ ସ୍ଥାନେ ରୁଦ୍ରଙ୍କୁ ଯେ ଦେଖଇ, ଅଶ୍ୱମେଧ ଯାଗ ସୁକୃତ ସେ ଲଭଇ । କୃଷ୍ଣସିଂହ. ମହାଭାରତ. ବନ ।]
Raudra pada

ରୌଦ୍ର ପାଦ—ସଂ. ବ (ବହୁବ୍ରୀହି)—ଆର୍ଦ୍ରା ନକ୍ଷତ୍ର—
Raudra pāda A name of the 6th asterism (M. W.).
(ରୌଦ୍ରର୍କ୍ଷ—ଅନ୍ୟରୂପ)

ରୌଦ୍ର ମନାଃ—ସଂ. ବଣ (ସ୍ତ୍ରୀ ଓ ପୁଂ) (ବହୁବ୍ରୀହି, ରୌଦ୍ର+ମନସ୍, ୧ମା, ୧ବ)—ଭୀଷଣ ମନୋବୃତ୍ତିବିଶିଷ୍ଟ—Savage-minded; fierce (M. W.).
Raudra manāḥ

ରୌଦ୍ର ମୂର୍ତ୍ତି—ସଂ, ବ (କର୍ମଧା)—୧ । ଭୟଙ୍କର ରୂପ—1. Terrible form. ୨ । କ୍ରୋଧମୟ ମୂର୍ତ୍ତି—2 Angry or wrathful appearance
Raudra mūrtti
ସଂ. ବଣ. ପୁଂ (ବହୁବ୍ରୀହି)—୧ । ଭୀଷଣ ରୂପବିଶିଷ୍ଟ—1. Terrible-looking, ୨ । କ୍ରୋଧମୟମୂର୍ତ୍ତି—2. Rageful, angry-looking.

ରୌଦ୍ର ରସ—ସଂ. ବ—କାବ୍ୟର ରସ ବିଶେଷ; କ୍ରୋଧୋତ୍ପାଦକ ରସ; ଯେଉଁ ରସ ପାଠ କଲେ ବା ଶୁଣିଲେ ମନରେ କ୍ରୋଧର ଉଦ୍ରେକ ହୁଏ ('ରସ' ଦେଖ)—The sentiment of wrath in literature.
Raudra rasa

ରୌଦ୍ରାକ୍ଷ—ସଂ. ବଣ (ରୁଦ୍ରାକ୍ଷ+ସମ୍ବନ୍ଧାର୍ଥେ ଅ)—ରୁଦ୍ରାକ୍ଷ ସମ୍ବନ୍ଧୀୟ ବା ରୁଦ୍ରାକ୍ଷରେ ପ୍ରସ୍ତୁତ—Made of or relating to Elaeocarpus Ganitrus (tree or seed) (M. W.)
Raudrāksha

ରୌଦ୍ରୀ—ସ. ବ. ସ୍ତ୍ରୀ (ରୁଦ୍ର+ଅ+ଈ)—ଚଣ୍ଡୀ; ଦୁର୍ଗାଙ୍କର ଅସୁରମର୍ଦ୍ଦିନୀ ମୂର୍ତ୍ତି—Terrible and wrathful form assumed by Goddess Durgā while killing demons.
Raudri
ସ. ବଣ. ସ୍ତ୍ରୀ—ରୌଦ୍ରର ସ୍ତ୍ରୀଲିଙ୍ଗ—Feminine of Raudra.

ରୌଦ୍ରୀ କରଣ—ସଂ ବ (ରୌଦ୍ର+ଅଭୂତ ତଦ୍ଭାବେ ଚ୍ୱି+କରଣ)—ଭୀଷଣ କର୍ମ ସାଧନ—The doing or performance of dreadful or horrible acts (M. W).
Raudri karaṇa

ରୌଦ୍ରୀ ଭାବ—ସ. ବ (ରୌଦ୍ର+ଅଭୂତ ତଦ୍ଭାବେ ଚ୍ୱି+ଭାବ)—୧ । ରୌଦ୍ରତା; ପ୍ରଚଣ୍ଡତା; ଭୀଷଣତା—1 Terribleness (M. W). ୨ । ରୁଦ୍ର ବା ଶିବଙ୍କ ଭାବ—2. The character of Rudra or Śiba (M. W).
Raudri bhāba

ରୌଦ୍ରୀ ଭୂତ—ସ. ବଣ (ରୌଦ୍ର+ଅଭୂତ ତଦ୍ଭାବେ ଚ୍ୱି+ଭୂତ)—ଯାହା ପ୍ରଚଣ୍ଡ ନ ଥିଲା, ବର୍ତ୍ତମାନ ପ୍ରଚଣ୍ଡ ହୋଇଅଛି—Become fierce.
Raudri bhūta

ରୌଦ୍ରୋଜ୍ଜ୍ୱଳ—ସ. ବଣ (ତତ୍ପୁ ତତ୍)—୧ । ସୂର୍ଯ୍ୟ କିରଣ ଦ୍ୱାରା ଦୀପ୍ତିମାନ୍—1. Shining with sun's rays; looking dazzling owing to sun's rays. ୨ । ଭୀଷଣ ଏବଂ ଦୀପ୍ତିଶାଳୀ—2. Terrible and dazzling.
Raudrojjwala
ରୌଦ୍ରୋଦ୍ଦୀପ୍ତ, ରୌଦ୍ରୋଦ୍ଦୀପିତ, ରୌଦ୍ରୋଦ୍ଭାସିତ } ଅନ୍ୟରୂପ

ରୌଧିର—ସଂ. ବଣ (ରୁଧିର+ସମ୍ବନ୍ଧାର୍ଥେ ଅ)—୧ । ରକ୍ତାକ୍ତ; ରକ୍ତମୟ—1. Bloody (M. W). ୨ । ରକ୍ତଜନିତ—2. Caused by blood (M. W). ୩ । ରକ୍ତ ବିଶିଷ୍ଟ—3. Consisting of blood (M. W). ୪ । ରକ୍ତ ସମ୍ବନ୍ଧୀୟ—4. Relating to blood
Raudhira

ରୌପ୍ୟ—ସଂ. ବ. (ରୂପ୍ୟ+ଅ)—୧ । ରଜତ; ରୂପା—1. Silver. [କି—ପୁରାଣରେ ଅଛି ଯେ, ତ୍ରିପୁରାସୁର ବଧ କାଳରେ ମହାଦେବଙ୍କ ରୋଷପୂର୍ଣ୍ଣ ଦକ୍ଷିଣ ନେତ୍ରରୁ ଉଦ୍ଭୂତ ଅଗ୍ନି ସ୍ଫୁଲିଙ୍ଗରୁ 'ରୁଦ୍ର'ଙ୍କର ଉତ୍ପତ୍ତି ହେଲା ଓ
Raupya

ଉତ୍‌କାଳରେ ବାମ ନେତ୍ରରୁ ଉଦ୍ଭୂତ ଅଶ୍ରୁବିନ୍ଦୁ ପୃଥିବୀରେ ପଡ଼ି ରୌପ୍ୟ ଜାତ ହୋଇଲା ।] ୨ । ଶାକମ୍ଭ ଲବଣ; ଶାମ୍ଭର ଲବଣ—2. Salt got from the lakes of Ajmeer or frommines. ସଂ.ବଣ. (ରୂପ୍ୟ + ଅ) - ୧। ରୂପାରେ ତିଆର—1. Made of silver. ୨। ରୂପା ପରି ଦେଖା ଯାଉଥିବା—2. Resembling silver; silvery (M. W)

ରୌପ୍ୟକ—ସଂ. ବି. ( ରୌପ୍ୟ + ନିର୍ମିତାର୍ଥେ. କ )—୧ । ରୂପାରେ Raupyaka ତିଆରି—1. Made of silver (M. W.) ୨ । ରୂପା ପରି—2. Silvery (M. W)

ରୌପ୍ୟ ଜୁବିଲି—ବୈ. ବି (ସଂ. ରୌପ୍ୟ+ଇଂ. ଜୁବିଲି ) କୌଣସି Raupya jubili ରାଜାଙ୍କ ୨୫ ବର୍ଷ ରାଜତ୍ୱ ପୂର୍ଣ୍ଣ ହେଲେ ଯେଉଁ ରାଜକୀୟ ଉତ୍ସବ କରାଯାଏ — Silver jubilee.

ରୌପ୍ୟ ନିର୍ମିତ—ସଂ. ବଣ. (ତୃତୀୟା ତତ୍) —ରୂପାରେ ତିଆରି— Raupya nirmita Made or silver.

ରୌପ୍ୟମୟ—ସଂ. ବଣ—୧ । ରୌପ୍ୟରେ ନିର୍ମିତ—1 Made of Raupyamaya silver. ୨ । ରଜତାଭ—2. Silvery.

ରୌପ୍ୟମାଷକ—ସଂ. ବି. (ଷଷ୍ଠୀ ତତ୍)—ଏକ ମଷା ପରିମିତ ରୂପା— Raupya māshaka A Māshaka weight of silver (M. W).

ରୌପ୍ୟ ମୁଦ୍ରା—ସଂ. ବି. (କର୍ମଧା)—୧ । ରୂପାର ଟଙ୍କା —1. Rupee. Raupya mudrā ୨ । ରୂପାର ମୁଦ୍ରା: ଅଧୁଲି, ସୁକି ଆଦି— 2. Silver coins.

ରୌପ୍ୟ ମୁଦ୍ରିକା—ସଂ. ବି (କର୍ମଧା)—ରୂପାର ତିଆରି ମୁଦି— Raupya mudrikā Silver ring.

ରୌପ୍ୟ ରୁକ୍ମମୟ—ସଂ.ବି—ରୂପାର ଓ ସୁନାର ତିଆରି—Made of Raupya rukmamaya silver and gold (M. W).

ରୌମକ—ସଂ. ବଣ. (ରୋମକ + ଅ)— ରୋମ ସାମ୍ରାଜ୍ୟବାସୀଙ୍କ ଦ୍ୱାରା Raumaka କଥିତ—1.Spoken by the inhabitants of the Roman Empire (M. W), ୨ । ରୋମ ସମ୍ବନ୍ଧୀୟ—2. Roman (M. W). ୩ । ଜ୍ୟୋତିର୍ବିଦ୍ ରୋମକଙ୍କ ସମ୍ବନ୍ଧୀୟ—3. Relating to the as- tronomer Romaka (M.W ).

ରୌମ ହର୍ଷଣି—ସଂ. ବି. ପୁଂ (ରୋମ ହର୍ଷଣ + ଅପତ୍ୟାର୍ଥେ. ଇ)— Rauma harshaṇi ସୂତ ମୁନି—A name of Sūta.

ରୌରବ—ସଂ ବଣ.—( ରୁରୁ + ଅ )—୧ । ରୁରୁ ମୃଗ ସମ୍ବନ୍ଧୀୟ— Raurаba 1. Relating to Ruru deer. ୨ । ରୁରୁ ମୃଗ ଚର୍ମ ନିର୍ମିତ—2, Made of the hide of Ruru deer. ୩ । ଭୟଙ୍କର—3. Terrible; frightful. ୪ । ଧୂର୍ତ୍ତ—4 Wicked ୫ ଚପଳ; ଚଞ୍ଚଳ—5. Restless; unsteady. ସଂ ବି—( ରୁଦ୍ ଧାତୁ = ରୋଦନକରିବା + ଅଧିକରଣ ଅଚ୍; ଯେଉଁଠାରେ ପଡ଼ିଥିବା ପାପୀମାନେ ସର୍ବଦା କାନ୍ଦୁଥାଆନ୍ତି; ଅଥବା ରୁ ଧାତୁ = ବଧ କରିବା + ଯଙ୍ ଲୁଗନ୍ତ, ରୋରୁୟ ଧାତୁ + ଅଧିକରଣ ଣ୍ଵ ପ୍ର)—ନରକାଂଶବିଶେଷ—Name of a terrible part of the hell of the Hindus, [ ଦ୍ର—ଏହି ନରକରେ ଗୋପ୍ତ, ଭ୍ରୁଣହା, ବ୍ରହ୍ମହା, ସ୍ତ୍ରୀଘାତୀ ଓ ଗାଈରେ ଦାବାଗ୍ନିଦାତା ପାପୀମାନେ ପଡ଼ି ଦଣ୍ଡ ପାଆନ୍ତି ।]

ରୌଶନ—ବୈଦେ. ବି ( ଫା. ରୌଶନ୍ )—୧ । ଆଲୋକ— Raushan 1. Light. ୨ । ରୋଷନାଇ (ଦେଖ) বোষন रोशन Roshanāi (See)

ରୌଶନ୍ ଚୌକୀ—ବୈଦେ. ବି (ଫା ରୌଶନ୍ = ଆଲୋକ)—ରୋଷନ୍ Raushan chauki ଚୌକି ( ଦେଖ )—Roshan chauki (See)

ରୌହିଣ—ସଂ ବି ( ରୋହିଣ + ଅ )—୧ । ବଟବୃକ୍ଷ—1. The Rauhiṇa banian tree. ୨। ଧଳା ଗୁଲ୍ମ; ଗନ୍ଧତୃଣ; କତ୍ତୃଣ ( ଦେଖ )—2. A fragrant grass; Andro- pogen Schoenanthus. ୩ । ଚନ୍ଦନ ତରୁ— 3. The sandal wood tree. ୪ । ଦିବସର ନବମ ମୁହୂର୍ତ୍ତ—4. The ninth muhūrta of the day (M. W) ୫ । ଅଗ୍ନିଙ୍କ ନାମ—5. A name of Agni. ୬ । (ନାମ) ଇନ୍ଦ୍ରଙ୍କଦ୍ୱାରା ନିହତ ରାକ୍ଷସବିଶେଷ- 6. Name of a demon slain by Indra. ୭ । ପ୍ରବର୍ଗ୍ୟ ନାମକ ଯଜ୍ଞକର୍ମରେ ବ୍ୟବହୃତ ପୁରୋଡାଶ- ବିଶେଷ—7. Name of a puraḍāsa ( offer. ing) used in the Probargya ceremony ( M. W ) ସଂ, ବଣ ( ରୋହିଣୀ + ଅ )— ରୋହିଣୀ ନକ୍ଷତ୍ରରେ ଜାତ—Born under the 4th asterism (M. W).

ରୌହିଣିକ—ସ. ବି—ମଣି; ରତ୍ନ— Rauhiṇika Jewel. (M. W)

ରୌହିଣେୟ—ସ. ବି. ପୁଂ (ରୋହିଣୀ + ଅପତ୍ୟାର୍ଥେ. ଏୟ)— Rauhiṇeya ୧ । ବଳଦେବ; ବଳରାମ—1. The elder step-brother of Srīkṛushṇa. ୨ । ମରକତ ମଣି—2. Emerald (gem). ୩ । ବୁଧ ଗ୍ରହ— 3. The planet Mercury. ୪ । ଗୋବତ୍ସ— 4. Calf.

ରୌହିତ—ସ. ବଣ (ରୋହିତ + ଅ)—୧ । ରୋହିତ ସମ୍ବନ୍ଧୀୟ— Rauhita 1. Relating to Rohita. (See) ୨ । (ହରିବଂଶ) କୃଷ୍ଣଙ୍କ ଏକ ପୁତ୍ରର ନାମ—2. Name of a son of Kṛushṇa. (M. W)

ରୌହିଷ—ସଂ ବି (ରୁହ୍ ଧାତୁ + କର୍ତ୍ତୃ. ଇଷ)—୧ । ରୋହି ମାଛ— Rauhisha 1. A kind of fish. ୨ । ମୃଗ ବିଶେଷ— [ରୌହିଷୀ—ସ୍ତ୍ରୀ] 2. A kind of deer. ୩ । କତ୍ତୃଣ; ଧଳାଶୀ-- ଗୁଲ୍ମ—3. A fragrant grass; Andropegen. Schoenanthus. ୪ । ଦୁବ ଘାସ—4. The Doob grass; Cynoden Dactylon.

ରୌହୀ—ସ. ବି. ସ୍ତ୍ରୀ (ରୌହି + ସ୍ତ୍ରୀ. ଈ)—ରୌହି ହରିଣୀ— Rauhī The female of Rauhita deer. (M. W)

# ଲ ଓ ଳ

ଳ—ସ—ବ୍ୟଞ୍ଜନବର୍ଣ୍ଣମାଳାର ଅଷ୍ଟାବିଂଶ ବର୍ଣ୍ଣ—The 28th
la consonant corresponding to the blurred
sound of the English letter 'l'; a variation of the letter 'ଲ'—[ଦ୍ର—ଏହା ଅବର୍ଗ୍ୟ ବା
ଳ
ଳ
ଅନ୍ତଃସ୍ଥ ତୃତୀୟବର୍ଣ୍ଣ। ଉପର ପାଟିର ଦନ୍ତପଂକ୍ତିର ପଶ୍ଚାଦ୍‌ଭାଗକୁ ଜିହ୍ୱାଗ୍ର ଦ୍ୱାରା ସ୍ପର୍ଶ କରି ଏହା ଉଚ୍ଚାରଣ କରାଯାଏ। 'ଳ' ଓ 'ଲ' ଏକ ବର୍ଣ୍ଣ। କିନ୍ତୁ 'ଳ' ଉଚ୍ଚାରଣ କରିବା 'ଲ' ଅପେକ୍ଷା ଆୟାସସାଧ୍ୟ। ଏଥିପାଇଁ ଉତ୍ତରଖଣ୍ଡୀୟ ଜାତିମାନେ 'ଳ' ଉଚ୍ଚାରଣ କରି ପାରନ୍ତି ନାହିଁ। ଇଂରାଜୀରେ 'ଳ' ଉଚ୍ଚାରଣ ନାହିଁ। ବଙ୍ଗଳାରେ ଓ ହିନ୍ଦୀରେ 'ଳ' ଉଚ୍ଚାରଣ ନାହିଁ। ଓଡ଼ିଆରେ 'ଲ' ଅକ୍ଷରର 'ଲ' ଓ 'ଳ' ଭେଦରେ ଦୁଇଟି ସ୍ୱତନ୍ତ୍ର ଉଚ୍ଚାରଣ ଅଛି। ଶିଶୁମାନେ ଓ ବଙ୍ଗାଳୀମାନେ 'ଳ' ସ୍ଥାନରେ 'ଲ' ଉଚ୍ଚାରଣ କରନ୍ତି। ବାଲିର କଣ୍ଡରା ଆଦି 'ଳ' ସ୍ଥାନରେ 'ର' ଉଚ୍ଚାରଣ କରନ୍ତି (ଯଥା—ଶୃଙ୍ଖଳ=ଶୃଙ୍ଖର, ନେଉଳ=ନେଉର)। ଓଡ଼ିଆରେ ସାଧାରଣତଃ ଶବ୍ଦର ଆଦ୍ୟବର୍ଣ୍ଣ 'ଳ' ନ ହୋଇ 'ଲ' ହୁଏ। 'ଳ' ଆଦ୍ୟରେ ଥିବା ଶବ୍ଦ ଓଡ଼ିଆରେ ନାହିଁ।

ଓଡ଼ିଆରେ 'ଳ' ଓ 'ଲ'ର ପ୍ରଭେଦ 'ମୂଳ' ଓ 'ମୂଲ', 'କଳ' ଓ 'କଲ', 'କାଳ' ଓ 'କାଲ', 'ଗଳ' ଓ 'ଗଲ', 'ଖଳ' ଓ 'ଖଲ', 'କଳ' ଓ 'କଲ'; 'ମଳ' ଓ 'ମଲ' ଆଦିରେ ଲକ୍ଷିତ ହୁଏ।

ଳ ଓ ଲ ଏ ଦୁଇ ଅକ୍ଷରର ଉଚ୍ଚାରଣ ଓଡ଼ିଆରେ ପୃଥକ୍ ହେଲେହେଁ, ଏ ଦୁଇ ଅକ୍ଷରର ବାର୍ଣ୍ଣିକ ମୂଲ୍ୟ (Alphabetical value) ସମାନ। ଏଥିଯୋଗୁଁ ଳ ଓ ଲ ବିଶିଷ୍ଟ ଶବ୍ଦମାନ ଏ ଭାଷାକୋଷରେ ଏକ ସ୍ଥାନରେ ଦିଆ ହୋଇଅଛି।

ସମ୍ବଲପୁର ଅଞ୍ଚଳରେ ଓଡ଼ିଆରେ ଉଚ୍ଚାରିତ 'ଳ' ଅକ୍ଷର 'ଲ' ଭାବରେ ପ୍ରାୟଶଃ ଉଚ୍ଚାରିତ ହୁଏ।]

ଲ୍—ପ୍ରାଦେ (ଲରିଆ)—କ୍ରିୟାର ବିଭକ୍ତିସୂଚକ ପ୍ରତ୍ୟୟ—A suffix
l used to denote the inflexion of verb. [ଯଥା—ଭୁଟାଏଲ୍=ଭୁଟାଇବାକୁ, ଭାଙ୍ଗିବାକୁ। ଏ ବଡ଼ିଲ ଭୁଟାଏଲ୍ ଶକ୍‌ବେ ?=ତୁ ଏ ଯଷ୍ଟିକୁ ଭାଙ୍ଗି ପାରିବୁ ?]

ଲ—'ଳ' ଅକ୍ଷରର ଉଚ୍ଚାରଣ ଭେଦ; ଏହାର ଉଚ୍ଚାରଣ ସ୍ଥାନ ଦନ୍ତ—
La A varied sound of la corresponding to the l in toil. ସ. ବି—(ଲା ଧାତୁ=ଦାନ କରିବା + କର୍ତ୍ତୃ. ଅ) —୧। ଇନ୍ଦ୍ର; ଦେବରାଜ—1. Indra. ୨। ଶତ୍ରୁ—2. Enemy. ୩। ଗ୍ରହଣ—3. Acceptance; receiving. ୪। ଦାନ—4. Gift. ୫। (ତନ୍ତ୍ର) ପୃଥିବୀର ବୀଜ ମନ୍ତ୍ର—5 (Tantra) The root letter for worshipping of the Earth-goddess.

ଲେ
ଯା
ଦେ—କ୍ରିୟାର ଅତୀତକାଳ ମଧ୍ୟମପୁରୁଷ ଏକବଚନ ଓ ବହୁବଚନ (ତୁମ୍ଭେ, ତୁମ୍ଭେମାନେ) ସଙ୍ଗେ ଯୁକ୍ତ ହେବା ଅକ୍ଷର—The letter added to the verbs in 2nd person singular and plural. [ଦ୍ର—ମଧ୍ୟମ ପୁରୁଷ ବର୍ତ୍ତମାନସାମୀପ୍ୟଭୂତ କାଳବାଚକ କ୍ରିୟାରେ ବ୍ୟବହୃତ—ଯଥା—ତୁମ୍ଭେ, ତୁମ୍ଭେମାନେ-ଗଲ, ଥିଲ ଖାଇଲ, ତୁ—ଗଲୁ, ଥିଲୁ, ଖାଇଲୁ। ସେ—ଗଲା, ଥିଲା ଖାଇଲା; ସମ୍ମାନାର୍ଥକ ସେ, ସେମାନେ—ଗଲେ, ଥିଲେ, ଖାଇଲେ, ମୁଁ—ଗଲି, ଥିଲି, ଖାଇଲି।
ଆମ୍ଭେ; ଆମ୍ଭେମାନେ—ଗଲୁଁ, ଥିଲୁଁ, ଖାଇଲୁଁ।
ଆପଣ; ଆପଣମାନେ—ଗଲେ; ଥିଲେ; ଖାଇଲେ।]

(ଲଅ—ଅନ୍ୟରୂପ) ବୈଦେ. ବି (ଇଂ. ଲ)—ଆଇନ୍; ରାଜବିଧି—
ଲ Law. ୧। (ସଂ. ଲତା) (ପାନବରଜ ଭାଷା) ପାନର ପ୍ରତ୍ୟେକ
ଲ,ଲୌ ଲତା—1. Each betel creeper ୨। (ସଂ. ଲତା;
ଲତା ଏହା ଲତା ଆକୃତିବିଶିଷ୍ଟ ଥିବାରୁ, ଶୁଭବାଚକ) ସାପ; ସର୍ପ—
ଲାଠୀ 2. (euphemism) Serpent. [ଦ୍ର—'ସାପ' ଶବ୍ଦ ଅମଙ୍ଗଳବାଚକ ଥିବାରୁ ଲୋକେ ମୁହଁରେ 'ସାପ' ନ କହି 'ଲଥ', 'କାଠି' 'ଲମ୍ବ ଜନ୍ତୁ' ଆଦି ଶବ୍ଦ ବ୍ୟବହାର କରନ୍ତି। ବଙ୍ଗଳାରେ ମଧ୍ୟ ରାତିକାଳରେ 'ସାପ' ଶବ୍ଦ ନ କହି କେହି କେହି 'ଲତା' ଶବ୍ଦ ବ୍ୟବହାର କରନ୍ତି ଓ ହିନ୍ଦୀରେ ଲାଠୀ ଶବ୍ଦ ବ୍ୟବହୃତ ହୁଏ।]

ପ୍ରାଦେ. (ପୁରୀ) ଅ—'ଲୋ'ର ଅକାରାନ୍ତର—Interjection a variation of 'ଲୋ'। ପ୍ରାଦେ. (କଟକ ସହର) ବି. (ସ. ନବ)—ନଅ; ନବ ସଂଖ୍ୟା—Nine. [ଦ୍ର—କଟକ ସହରଆ ଇତର ଲୋକେ 'ନ' ସ୍ଥାନରେ 'ଲ' ଉଚ୍ଚାରଣ କରନ୍ତି। ଯଥା—ନଇ ସ୍ଥାନରେ ଲଇ, ନାଆ ସ୍ଥାନରେ ଲାହା, ନଡ଼ିଆ ସ୍ଥାନରେ ଲଡ଼ିଆ ଇତ୍ୟାଦି। କଟକିଆ ବ୍ୟବହାରର ଅନୁକରଣ କରି ଗୋଟିଏ ବାକ୍ୟ ପ୍ରଚଳିତ ଅଛି—
'ଆରେ ଲବନା! ମହାଲଦୀ କୂଳେ ଲାହା ଲାଗିଛି, ଲ ପଇସାକୁ ଲଅଟା ଲଡ଼ିଆଁ, ଲବୁ ଯେବେ ଲେ।] ପ୍ରାଦେ. (ଉତ୍ତର ବାଲେଶ୍ୱର) ବି—ଲଇ—Creeper used for binding. ଦେ. ବିଣ—ଲତାଯୁକ୍ତ; ଲତା ଶ୍ରେଣୀୟ; ଲତା ପରି—Having creepers; belonging
ଲତା to the class of creepers; creeper-like.
ଲତୀ (ଯଥା—ଲତ୍ବ ବର।)

ଲଅ ଏକ୍‌ଜାମିନ୍‌— ବୈଦେ. ବି. ( ଇଂ. ଲ + ଏକ୍‌ଜାମିନେସନ୍‌ )—
La-a ek-jāmin ଆଇନ୍‌ ପଢି ପାସ୍ କରିବାର ନିର୍ଦ୍ଦିଷ୍ଟ ପରୀକ୍ଷା—
ଲ ଏକଜାମିନ **लॉ एकजामिन** Law-examination.
(ଲଅ ଏକ୍‌ଜାମିନେଶନ୍‌, ଲ ଏକ୍‌ଜାମିନେଶନ୍‌, ଲା(ଲଅ) ପରୀକ୍ଷା ଅନ୍ୟରୂପ)

ଲଅକ ଲକ—ଗ୍ରା. ଅ—ଲକ୍‌ ଲକ୍‌; ଲଅ ଲଅ; ଲହ ଲହ (ପତଳା
La-a ka laka ଓ ସରୁ ପଦାର୍ଥର ଇତସ୍ତତଃ ଚଳିତ ହେବା)—
ଲକ ଲକ Waving (said of a thin narrow thing).
**लक लक** (ଉ—ବାପ ରେ ବାପ ! ଚୁଲି ମୁଣ୍ଡରେ ଯୋଡ଼ାଏ ସାପ, ଆଉର ଗୋଟାଏ ଲଅକ ଲକ ଛଗ ।)

ଲଅ କଲେଜ୍— ଦେ. ବି (ଇଂ)—ଆଇନ୍‌ ବିଦ୍ୟା ଶିକ୍ଷା ଦିଆ ଯାଉଥିବା
La-a kalej ଉଚ୍ଚ ଶ୍ରେଣୀ ବିଦ୍ୟାଳୟ—Law College.
[ଲ କଲେଜ୍‌, ଲ(ଲଅ)କାଲେଜ୍‌—ଅନ୍ୟରୂପ]
ଲ କଲେଜ **लॉ कालेज**

ଲଅକା—ଗ୍ରା. ବିଣ—ଲହକା ( ଦେଖ )
La-akā Lahakā ( See )

ଲଅକିବା—ଗ୍ରା. କ୍ରି—ଲହକିବା ( ଦେଖ )
La-akibā Lahakā ( See )

ଲଅ ଛୁ(ଛୋ)ଇଁବା—ଦେ. ବି—ସର୍ପ ଦଂଶନ କରିବା; ସର୍ପ ଦ୍ୱାରା
La a chhu(chho)ĩnbā ଦଷ୍ଟ ହେବା—Being bitten
ସାପ କାଟା **ला(का)ठी छूना** by a snake.

ଲଅ ପାଶ୍—ବୈଦେ.ବି. (ଇଂ. ଲ ଓ ପାସ୍)—ଆଇନ୍‌ ବିଦ୍ୟାର ନିର୍ଦ୍ଦିଷ୍ଟ
La-a pās ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା—Passing in law
ଲ ପାସ **लॉ पास** examination.

ଲଅ ପ୍ର(ପ୍ରୋ)ଫେସର୍—ବୈଦେ.ବି. ( ଇଂ. ଲ ପ୍ରୋଫେସର୍ )—ଲଅ
La-a pra(pro)phesar କଲେଜ୍‌ରେ ବିଦ୍ୟାର୍ଥୀମାନଙ୍କୁ
ଲ ପ୍ରୋଫେସର ବକ୍ତୃତା ଦେବା ଦ୍ୱାରା ଯେଉଁ ଶିକ୍ଷକ ଶିକ୍ଷା ଦିଅନ୍ତି
**लॉ प्रोफेसर** Law professor.
[ଲ ପ୍ର(ପ୍ରୋ)ଫେସର୍‌, ଲ ଲେକ୍‌ଚରର୍‌—ଅନ୍ୟରୂପ]
[ଲଅ ପ୍ର(ପ୍ରୋ)ଫେସରୀ—କର୍ମ ବା ବୃତ୍ତିବାଚକ ବିଶେଷ୍ୟ]

ଲଅ ବିରି—ଦେ. ବି. ( ସ. ଲତା ଓ ବ୍ରୀହି )—ବିରି ବିଶେଷ—
La-a biri A species of Birhi pulse.
ଲତା କଲାଇ [ଦ୍ର—ଏହାର ଗଛ ସାଧାରଣ ବିରି ଗଛ ଅପେକ୍ଷା ବେଶୀ
**लती उड़द** ଲମ୍ବାଳିଆ, ଏହାକୁ ଲଅ ବିରି ମଧ୍ୟ କହନ୍ତି ।]

ଲଅ ମେମ୍ବର୍- ବୈଦେ.ବି - (ଇଂ. ଗଭର୍ଣ୍ଣମେଣ୍ଟ)--ଗଭର୍ଣ୍ଣମେଣ୍ଟଙ୍କ ଆଇନ୍‌
La-a membar ସଦସ୍ୟ—A Law member of the
ଲ ମେମ୍ବର **लॉ मेम्बर** Governmemenr.

ଲଅମ୍ବର—ଗ୍ରା. ବୈଦେ. ବି. (ଇଂ—ନମ୍ବର)—୧ । ଲମ୍ବର; ନମ୍ବର—
La-ambara 1. Number; mark. ୨ । କ୍ରମ ନିର୍ଦ୍ଦେଶକ
ନମ୍ବର **नम्बर, लम्बर** ସଂଖ୍ୟା—2. Serial number

ଲଅର—ଗ୍ରା. ବି—ଲହର ( ଦେଖ )
La-ara Lahara ( See )

ଲଅର ପଅ(ହ)ର—ଦେ. ବିଣ—ଲହର ପହର ( ଦେଖ )
La-ara pa-a(ha)ra Lahara pahara ( See )

ଲଅରା—ଗ୍ରା. ବିଣ—ଲହରା ( ଦେଖ )
La-arā Laharā ( See )

ଲଅରି(ଡ଼ି)—ଗ୍ରା. ବି—ଲହରି ( ଦେଖ )
La-ari (rdi) Lahari ( See )

ଲଅରି'ଲ, ଡ଼ି)ବା—ଦେ. କ୍ରି. ( ସ. ଲହରୀ )—୧ । ଲହରୀ ପରି
La-ari(li, rdi)bā ଅବିଶ୍ରାନ୍ତ ଭାବରେ ଗୁଡ଼ାଏ କଥା କହି
କଥାର ତରଙ୍ଗ ତୁ(ତୋ)ଳା ଯିବା—1. To speak glibly
**लहरीका पसा बोलना** (like a wave). ୨ । ଲହରୀମୟ
[ଲଅରେ(ଲେ)ଇବା—ଅନ୍ୟରୂପ] ହେବା—2. To move in
ଢେଉ ଉଠାନ **लहर उठाना** waves; to be billowy.

ଲଅ ଲଅ—ଦେ. ଅ—ଲହ ଲହ ( ଦେଖ )
La-a la-a Laha laha ( See )

ଲଅ ଲୁଆଣି—ଦେ. ବି. (ସହଚର) (ଲୁଭ ବାଚକ; ସଂ. ଲତା ଓ ଦ୍ୱିତୀୟ
La-a luāni କରର୍ଥକ ସହଚର) - ସର୍ପାଦି ଜନ୍ତୁ; ସରୀସୃପ—
ଲତାଟିଁତା Reptiles; snakes. ଗ୍ରା. ବିଣ. (ସଂ ନତ)—ଅତି
**लाठीठोक** ଅବନତ— Very low.

ଲଅଶ—ଗ୍ରା. ବି—ଲହଶ ( ଦେଖ )
La-aśa Lahaśa ( See )

ଲଆଜିମା—ବୈଦେ. ବି. (ଫା. ଲଭାଜିମାତ୍)—ଲଉଆଜିମାତ୍ ( ଦେଖ )
La-ājimā Lauājimāt (See)
(ଲଅଜିମାତ—ଅନ୍ୟରୂପ)

ଲଇ—ଦେ. ବି.(ସଂ. ଲତା; ଗ୍ରା ଲଇ)—୧ । ଲତା—1. Creeper.
Lai ୨ । ଗଛର ଛାଲରୁ ଓ ଦେହରୁ ବାହାର କରାଯିବା
କାଛି ପତଳା ତନ୍ତୁ, ଯାହା ରଜ୍ଜୁ ରୂପେ ବ୍ୟବହୃତ ହୁଏ—
ପଟୁଆ 2. Fibres taken from barks of plants or creepers and used as strings ॰ ।
କେତେ ଗଛର ଛାଲ ଓ ଓହଳ ଓ ଜଟା ପଟ ପ୍ରଭୃତିକୁ ଛେଚି ତନ୍ତୁର ରଜ୍ଜୁ ରୂପେ ବ୍ୟବହାର ବା ଆକାର—
3. The bark and aerial roots of some trees used as strings after they are beaten into fibres. [ଦ୍ର—ଯାଗରେ ଦ୍ୱିଜେ କ ପାଇଲେ ସୋମ ଲଇ । କୃଷ୍ଣସିଂହ· ମହାଭାରତ. ବନ ।]
[ଦ୍ର—ଏହା ଦ୍ୱାରା ଛଣ ଓ ବତା ଅଦ ବନ୍ଧା ହୁଏ ।] ୪ ।
ମାଲପୋଆର ପିଠୁଳି (ସଂ. ଲେହ) ମାଲପୁଆଅଦ ତିଆର ହେବାପାଇ
**लेई** ପ୍ରସ୍ତୁତ ପିଠୋଉ—4. A paste made for preparing Mālapuā etc.

ଲଇଁ—ବୈଦେ. ଅ. କ୍ରି ( ସ. ନମ୍ ଧାତୁରୁ ଲଇଁବା କ୍ରିୟାର
Laiñ ଅସମାପିକାରୂପ)—ନତ ହୋଇ; ନଇଁ—Bending;
ଲଇଁଆ } ଅନ୍ୟ ବିଣରୂପ stooping. [ଦ୍ର—
ଲଇଁ ଲଇଁଆ(କା) } କରଯୋଡ଼ି ଲଇଁ ଜଣାଇଲା
କୁଂଜୋ ବେଳେ, ଲୁଣ୍ଠିଲ କମ୍ପୁଥିଲ ତା ଗଣ୍ଡ ମଣ୍ଡଳେ ।
**नमाहुआ** କୃଷ୍ଣସିଂହ. ମହାଭାରତ. ଆଦି ।] ଦେ, ବିଣ—
ନତଶରୀର; ନତପୃଷ୍ଠ; କୁଜା—With a stooping body; hunch-backed; having the upper part of the body bent.

**ଲଇଁ ଚାଲିବା**—ଦେ. କ୍ରି ( ସଂ. ନମ୍ ଧାତୁ )—ଚାଲିବା ବେଳେ
Laiñ chālibā ଓଲିବା—To walk with a stoop.
झुकेँ चला नम(जब)कर चलना

**ଲଇଁ ପଡ଼ିବା**—ଦେ. କ୍ରି ( ସଂ. ନମ୍ ଧାତୁ )—ଅବନତ ହେବା—
Laiñ pardibā To bend down.
झुकेँ पड़ा नत(नम)जाना

**ଲଇଁବା**—ଦେ. କ୍ରି ( ସଂ. ନମ୍ ଧାତୁ )—୧ । ଅବନତ ହେବା; ନମ୍ରକୁ
Laiñbā ବଙ୍କ ହେବା—1. To bend down; to
झुकाँ; झुकैँ stoop down. [ ଉ—ଯେଉଁ ଲୋକଙ୍କ
नमना, लचना କୋଧ ଉପଛ ନ ପାଇ, ଲଇଁ ଡାଳୁ ଲୁଆଁଇବା
କାର୍ଯ୍ୟ ନାହିଁ । କୃଷ୍ଣସିଂହ. ମହାଭାରତ ଉଦ୍ଯୋଗ । ]
୨ । ( ଲକ୍ଷଣାର୍ଥ ) କୌଣସି ବ୍ୟକ୍ତିର ବଶ୍ୟତା ସ୍ୱୀକାର
କରିବା—2. (figurative ) To acknowledge
submission to any one. ୩ । ବଙ୍କ ହେବା—
3. To be bent. ୪ । ନମ୍ରତା ପ୍ରକାଶ କରିବା;
ବିନୀତ ହେବା—4. To exhibit humility. ୫ ।
( ପଦ୍ୟ ) ଗ୍ରହଣ କରିବା; ସେବା କରିବା—5. To
accept, to mind. [ ଉ—ତାହାର ଭାବ
ହୃଦେ ଲଇଁ, କରୁଣା ସିନ୍ଧୁ ଭାବଗ୍ରାହୀ । ଜଗନ୍ନାଥ.
ଭାଗବତ । ]

**ଲଇ କାନ**—ପ୍ରାଦେ ( ସମ୍ବଲପୁର, ଲଗଥା ) ବି—ନୋଲକାନ—
Lai kāna The ears which have worn rings.

**ଲଇ ଖଡ଼ୁ**—ଦେ. ବି—ଶିଶୁମାନଙ୍କ ହାତରେ ପିନ୍ଧାଯିବା ଏକପ୍ରକାର
Lai khardu ସରୁ ଲତାଦ୍ୱାରା ବୁଣା ହୋଇଥିବା ହାଲୁକା
लतार बाला ଖଡ଼ୁ—A bangle of twisted slender
पटुआका बालिया creeper made for infants.

**ଲଇଖ(ଷ, ଖ୍ୟ, ଛ)ଣ**—ଗ୍ରା. ବି—୧ । ( ସଂ. ଲକ୍ଷ୍ମଣ ) ଲକ୍ଷଣ (ଦେଖ)
Laikha(ksha, khya, chha)ṇa 1. Lakshmana
लकखन ( See ) [ ଉ— ଅମ୍ଭ ଆଜ୍ଞା ଭୁ କହଣ; ଅଯୋଧ୍ୟାକୁ
लखन,लछन ଏହିକ୍ଷଣ, ଶୀଘ୍ର ଯାଅ—ଆହେ ଲଇଖଣ । ବିଶ୍ୱନାଥ.
ଲଇଷ(ଖ)ଣିଆ } ବିଚିତ୍ରରାମାୟଣ । ] ୨ । ( ସଂ.
ଲଇଖିଣିଆ } ଅନାଦରାର୍ଥକରୂପ ଲକ୍ଷଣ ( ଦେଖ )—2
ଲଖି(ଛି)ଆ } Lakshan ( See ) ୩ ।
ଲଖିଣିଆ } ଲକ୍ଷ୍ମଣ ନାମକ ବ୍ୟକ୍ତିର ଡାକ
ନାମ—3 A name for calling Lakshmaṇa

**ଲଇ ଗଣ୍ଠି**—ଦେ. ବି (ସଂ. ଲତା ଗ୍ରନ୍ଥି )—୧ । ଲଇଦ୍ୱାରା ବତା ବା
Lai ganṭhi ଛଣ ଆଦିକୁ ଉଡ଼ ପକାଯାଇ ଥିବା ଗଣ୍ଠି—1.
लतावगाँठ The knot tying the straw and
पटुआका गाँठ split bamboo in with strings got
from plants ୨ । ଚାଳରେ ଛୁଆଣି କରଯାଇ ଥିବା
ଛଣକୁ ଯେଉଁ ବତା ଠାରେ ଧରିଥାଏ ତାକୁ ଘରର ଚାଳ
ସଙ୍ଗେ ଦୃଢ଼ କରି ବାନ୍ଧିଥିବା ଗଣ୍ଠି—2. The knot
with which the split bamboo put
over the straw of the thatch is
fastened to the bamboo farmework
below it.

**ଲଇ ପଲା(ଳା)ଶ**—ପ୍ରାଦେ. ( ଗଡ଼ଜାତ ) ବି ( ସଂ. ଲତା ପଳାଶ )—
Lai palā(lā)śa ଖୁବ୍ ସାନ ସାନ ପତ୍ର ଓ ସାନ ସାନ ଫୁଲ
ବିଶିଷ୍ଟ ଏକପ୍ରକାର ଲଠାଳଆ ପଳାଶ ଗଛ—A species
of Palāśa tree having smaller leaves
and smaller flowers.

**ଲଇବା**—ଦେ. କ୍ରି ( ପ୍ରାଚୀନ ପଦ୍ୟ ) ( ସଂ. ଲା ଧାତୁ )—୧ ।
Laibā ଧାରଣ କରିବା—1. To hold. [ ଉ—
लअना ଯେସନେ ସର୍ବଶକ୍ତି ଲଇ, ହରସ ଅଙ୍ଗେ ପ୍ରାଣୀ ଖୋଇ ।
लेना ଜଗନ୍ନାଥ. ଭାଗବତ । ] ୨ । ନେଇବା; ନେବା—
2. To take. [ ଉ—ମୋହର କର୍ମଫଳ ଲଇ,
ଜନ୍ମ ଲଭିବ ଯହିଁ ତହିଁ । ଜଗନ୍ନାଥ. ଭାଗବତ । ] ୩ ।
ଗ୍ରହଣ କରିବା; ଅବଲମ୍ବନ କରିବା—3.To observe;
to follow. [ ଉ—ପ୍ରାଣଙ୍କୁ ବଚନ ନ କହୁ, ମଉନ
ବ୍ରତକୁ ସେ ଲଇ । ଜଗନ୍ନାଥ. ଭାଗବତ । ]

**ଲଇ ବାହାଡ଼ା**—ପ୍ରାଦେ ( ଗଡ଼ଜାତ ) ବି ( ସଂ ଲତାବିସ୍ତାରକ )—
Lai bāhardā ଲତା ବିଶେଷ—A kind of creeper.
[ ଦ୍ର—ଏହାର ଡେର ମାଟି ଉପରେ ବହୁଦୂର ଶାଖା
ମେଲାଇ ମାଡ଼େ । ଏ ଲତା ପଡ଼ିଥା ଭୂମିରେ ହୁଏ । ଏହି
ଲତାକୁ ହାଣିଦେଲେ ଡେରରୁ ( ଭୂଇଁଉପରୁ ) ଲୁଆଁ
ହୁଏ । ]

**ଲଉ**—ଗ୍ରା. ବି—ଲହୁ ( ଦେଖ )—Lahu ( See ). ପ୍ରାଦେ
Lau ( କଟକ ସହର ଇତର ବ୍ୟବହୃତ; ଲ ସ୍ଥାନରେ ଲ
ଉଚ୍ଚାରଣ )—ସଂଖ୍ୟା ବାଚକ ବି ଓ ବିଣ--ନବେ; ନବେ
—Ninety.

**ଲଉଆ**—ଦେ. ବି—ପକ୍ଷିବିଶେଷ—A kind of bird. [ ଉ—
Laua ବଣୀ ବଗନ୍ତ ଗୃଧ୍ରୁ ଚ ଲଉଆ । ପ୍ରାଚୀ. ପଦ୍ମାପ୍ର-
ଶଶୀସେଣା । ]

**ଲଉଆଜମା**—ବୈଦେ. ବି ( ଅ. ଲଭାଜିମ୍; ଫା. ଲଭାଜିମାତ୍—
Lauājimā ଉପକରଣ; ଅବଶ୍ୟକ ସାମଗ୍ରୀ )—୧ ।
लआजिम କୌଣସି କାର୍ଯ୍ୟ ଉପଲକ୍ଷରେ ପ୍ରୟୋଜନୀୟ ଜିନିଷପତ୍ର
लवाजिम ବା ଉପକରଣ—1. Necessary articles.
(ଲଉଆଜମାତ୍—ଅନ୍ୟରୂପ) ୨ । ନାକମତ; କୌଣସି କାର୍ଯ୍ୟ
लआजिमा ( ଯଥା—ବିବାହ, ଯାତ୍ରାଆଦି । ) ଉପଲକ୍ଷରେ
जमाहत ଲୋଡ଼ା ହେବା ଅନୁଚର ବ୍ୟକ୍ତିଗଣ, ଯଥା - ମଶାଲ
बकसीस ଧରିବା ଲୋକ, ସବାରି କାନ୍ଧେଇବା ଲୋକ; ବାଜା
बखसीस ବଜାଇବା ଲୋକ—2. Attendants, such
as,torch-beares, palki-bearers,drummers
requried on occasions of marriage
or other festival. ୩। ଅନୁଚର-
ମାନଙ୍କୁ ଦିଆଯିବା ବକ୍‌ସିସ୍—3. Tips paid to
attendants.
୪ । (କଟକିଆ) (ହାଇ:କୋର୍ଟ୍‌ରେ ପ୍ରଚଳିତ ଶବ୍ଦ)—

ମକଦମାରେ ବିଚାରାର୍ଥ ବିଷୟ ଜଜ୍‌ମାନଙ୍କଦ୍ୱାରା ଶୁଣାଣି ହେବା ପୂର୍ବରୁ ମକଦମାରେ ପକ୍ଷମାନଙ୍କ କର୍ତ୍ତବ୍ୟ ଆନୁପୂର୍ବିକ ବ୍ୟବସ୍ଥାମାନ ବା ତଦ୍‌ବୀର—(ଯଥା—ଅପର ପକ୍ଷ ଉପରେ ସମନ୍ ବା ନୋଟିସ୍ ଜାରି କରାଇବା ପାଇଁ ମିଆଦ ଦାଖଲ, ଖର୍ଚ୍ଚା ଖରଚ ଦାଖଲ, କୋର୍ଟଫିସ୍ ଦାଖଲ); ମକଦମାରେ ଦାବୀର ବିଚାର ହେବା ପୂର୍ବରୁ ପକ୍ଷମାନଙ୍କ କରଣୀୟ ବାଜେ ବା ଆନୁଷଙ୍ଗିକ କାର୍ଯ୍ୟମାନ—4. The preliminary steps to be taken by parties to enable the court to try the claim in any suit; lawazima.

**ଲଉକର**—ବୈଦେ. ବି.—(ଫା. ନୌକର; ତୁଳ. ସ. ଲୋକ)—Laukara ନୌକର; ଚାକର; ଭୃତ୍ୟ; ଅନୁଚର—চাকর, নকর नौकर Servant; attendant.

**ଲଉକର ଚାକର**—ବୈଦେ. ବି—(ଏକାର୍ଥକ ସହଚର)—(ଫା. Laukara chākara ନୌକର୍+ଚାକର୍)—ଚାକର ବାକର—চাকর বাকর नौकर चाकर Attendants.

**ଲଉକ(କି)ରି**—ବୈଦେ. ବି.—(ଫା. ନୌକରୀ)—ନୌକରି; ଚାକିରି—Lauka(ki)ri Service; serving for pay. চাকরী,নকরী नौकरी

**ଲଉକା**—ଗ୍ରା. ବି.—(ସ. ନୌକା)—ନୌକା—Laukā না नाव Boat.

**ଲଉକିକ**—ଗ୍ରା. ବିଣ. (ପଦ୍ୟ)—[ସ. ଲୌକିକ]—ଲୌକିକ—Laukika লউকিক लउकिक Popular. [ଉ—ଅନ୍ୟାନ୍ୟ ଲଉକିକ ପଦାର୍ଥ ସହିତରେ । କୃଷ୍ଣସିଂହ. ମହାଭାରତ ଆଦି ।]

**ଲଉଟ** [ଇତ୍ୟାଦି]—ଦେ. ବି. ଓ ବିଣ—ଲେଉଟ ଇତ୍ୟାଦି [ଦେଖ] Lauta (etc) Leuta etc (See)

**ଲଉଡ଼ା**—ଦେ. ବି.(ଅଶ୍ଳୀଳ)—ଲହୁଡ଼ା (ଦେଖ) Laurdā Lahurdā (See)

**ଲଉଡ଼ି**—ଦେ. ବି.—[ସ. ଲଗୁଡ଼, ଲକୁଟ]—୧ । ନଉଡ଼ି [ଦେଖ] Laurdi লড়ী लाठी 1. Naurdi (See) [ଉ—ରଘୁମନ୍ତ୍ର ପରଭେଜୁ, ଲଉଡ଼ି ଯେନ ହେବ ଗାଳ । ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।] ୨ । [ପ୍ରାଚୀନ ପ୍ରୟୋଗ] ଗୋରୁମାନଙ୍କ ସଂଖ୍ୟାବିଶେଷ; ଦଶ କୋଟି ଗୋରୁଙ୍କ ପଲ ବା ସମଷ୍ଟି—2. A herd of a hundred million of cows.

[ଦ୍ର—୧୦୦୦ ଗାଈ=୧ ଗୋଷ୍ଠ
୧୦୦୦ ଗୋଷ୍ଠ=୧ ପଲ
୧୦୦ ପଲ=୧ ଲଉଡ଼ି
୧୦୦ ଲଉଡ଼ି=୧ ମହାଖୁଡ଼ି—ସାରଳା ମହାଭାରତ]

**ଲଉଡ଼ି ଖେଳ**—ଦେ. ବି—ନଉଡ଼ି ଖେଳ [ଦେଖ] Laurdi khela Naurdi khela (See) লাঠি খেলা लाठीखेल

**ଲଉଣା ବିଭା**—ପ୍ରାଦେ. [ଗଞ୍ଜାମ. 'ବିଭା' ଶବ୍ଦ ସଙ୍ଗେ ସହଚର ରୂପେ Launā bibhā ବ୍ୟବହୃତ]—ବିବାହାଦି ଉତ୍ସବ—Festival.

**ଲଉଣା ଗଜପତି**—ଦେ. ବି—ନଉଣା ଗଜପତି ଉତ୍କଳର ପ୍ରାଚୀନ Launā gajapati ନନ୍ଦପୁର [ଆଧୁନିକ ଜୟପୁର] ରାଜ୍ୟର କେତେ ନରପତିଙ୍କ ଉପାଧି—Title of some of the Rajas of ancient Nandapur (now Jeypore) of Utkal. [ଦ୍ର—ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ଶେଷ ପାଦରେ ପ୍ରାଚୀନ ନନ୍ଦପୁର ରାଜ୍ୟର ରାଜା ବିଶ୍ୱନାଥ ଗଜପତିଙ୍କ ବଂଶଧରମାନେ 'ନଉଣା ଗଜପତି' ନାମରେ ଅଭିହିତ ହେଲେ ଓ ଭକ୍ତ ଉପାଧି ସହିତ ଗୋଲକୁଣ୍ଡା ନିଜାମ୍ ଉଲ୍ ମୁଲକ୍ ପ୍ରଦତ୍ତ ଝାଡ଼ଖଣ୍ଡଙ୍କ ବାଦସା ଉପାଧି ମଧ୍ୟ ଧାରଣ କଲେ । ଅଦ୍ୟାବଧି ତାଙ୍କ ବଂଶଧର (ଜୟପୁର ମହାରାଜ)ମାନେ ଏହି ଉପାଧି ନିଜ ନିଜର ତାମ୍ରପଟ୍ଟମାନଙ୍କରେ ବ୍ୟବହାର କରୁଅଛନ୍ତି :—

"ଶ୍ରୀମନ୍ ମହାମଣ୍ଡଳେଶ୍ୱର ମହୋଗ୍ରପ୍ରତାପ ବିଷମ ସମର ଶ୍ରୀ ବିଜୟ ବିରାଧିରାଜ ଶ୍ରୀ ନଉଣା ଗଜପତି ଝାଡ଼ଖଣ୍ଡ ବାଦସା ଲକ୍ଷେ ରାଜା ମୁକୁଟମଣି ଶ୍ରୀ ରାଜାଧିରାଜ ମହାରାଜ ଶ୍ରୀ ସାଗର ସାରବର ।"

ଜୟପୁରରେ ବର୍ତ୍ତମାନ ମିଳୁଥିବା ପ୍ରାଚୀନ ତାଳପତ୍ର ପୁସ୍ତକମାନଙ୍କରୁ ପୂର୍ବରେ ଜୟପୁର ରାଜାମାନେ ପାଉଥିବା ସମ୍ମାନ ମଧ୍ୟରେ ପୁଣ୍ୟ ବିଜେ । ଜୟପୁର ରାଜାମାନଙ୍କର 'ନଉଣା ଗଜପତି' ପଦ ସ୍ୱୀକାର କରିଥିବାର ପ୍ରମାଣ ମିଳୁ ଅଛି—କୁମାର ଶ୍ରୀ ବିଦ୍ୟାଧର ସିଂହଦେଓ—ଉତ୍କଳ ସାହିତ୍ୟ—୧୩୪୩ ଆଷାଢ଼ ।]

**ଲଉଣି**—ଦେ. ବି—[ସ. ନବନୀତ]—ଲବଣି; ନବନୀତ; ଦହି ମନ୍ଥି Launi ননী नेनुन ଯାଇ ସେଥିରୁ ଯେଉଁ ଘୃତୋତ୍ପାଦକ ଚିକ୍କଣ ଲେହ୍ୟବସ୍ତୁ ସାର ବାହାରେ—Butter.

**ଲଉଣିଆ**—ଦେ. ବିଣ—ନବନୀତ ପରି କୋମଳ—Launiā As soft as butter. ননীর মত नेनुनका जैसा

**ଲଉତନ**—ଗ୍ରା. ବିଣ (ସ. ନବତନ, ନୂତନ)—ନୂତନ, ନୂଆ—Lautana নূতন नया New.

**ଲଉରୁଣୀ**—ଦେ. ବି—ନଉରୁଣୀ (ଦେଖ) Lauruni নরুন नहरनी Nauruni (See)

**ଲଉଲି**—ଦେ. ବିଣ. ସ୍ତ୍ରୀ (ସ. ନବ ବା ଲୌଲ୍ୟ)—୧ । ନୂଆ (ସ୍ତ୍ରୀ) Lauli 1. New. ୨ । କୋମଳା (ସ୍ତ୍ରୀ)—2. Soft, সুকুমারী कोमल tender. ୩ । ପତଳା (ସ୍ତ୍ରୀ)—3. Thin. ୪ । ଯୁବତୀ—4. Youthful; young (woman) ୫ । ପତଳାଶରୀରବିଶିଷ୍ଟା—5. Slender-bodied. ୬ । କୋମଳଶରୀରବିଶିଷ୍ଟା; ସୁକୁମାରୀ—6. Soft-bodied.

ଲଉଲି ବୟସ—ଦେ.ବ (ସ୍ତ୍ରୀମାନଙ୍କ ପକ୍ଷରେ;)—ଯୁବାବୟସ; ଯୁବାକାଳ;
Laulibayasa ସ.'ଲୈଲିଁ ନବ ଯୌବନ—Youth; young
नवयौवन **जवानी** age (of females)

ଲଉଲି ବୟସୀ—ଦେ. ବିଣ. ସ୍ତ୍ରୀ—ଯୁବତୀ; ଯୁବା ବୟସୀ—
Lauli bayasi Youthful ( woman ).
नवयौवना **नवजवान(नी)**

ଲଉ(ହୁ)ଲୁଆ(ହା)ଣ(ଣି)—ଦେ·ବିଣ (ସ. ଲୋହିତ); ରକ୍ତଜର୍ଜରିତ—
Lau(hu)luā(hā)ṇa(ṇi) ରକ୍ତାକ୍ତ—Stained with
रक्ताक्त **लोहुलुहुआन** blood. ( ଯଥା—ସେ ମାଡ଼
[ଲଉ(ହୁ)ଲୁଆ(ହା)ଣିଆ(ଆଁ)—ଅନ୍ୟରୂପ] ଖାଇ ଲଉଲୁଆଣ
ହୋଇଗଲା । ) ଦେ. ଦ—ଲଅଲୁଆଣି ( ଦେଖ )—
La-a luāṇi (See)

ଲଉଲ୍ୟ—ଦେ. ବ—ଲୌଲ୍ୟ ( ଦେଖ )—Laulyā ( See )
Laulyā (ଉ—ଲଉଲ୍ୟାରେ ଶାଖ ହାର ବନେ ଗନ୍ଧ
कोमलता **कोमलपन** ମଦରେ ଥିବ ମୁକ ହେଲା—ପ୍ରାଚୀନ
କବିତା । )

ଲଏ—ଗ୍ରା. ବ ( ସ. ଲୟ )—ଲୟ ( ଦେଖ )—Laya (See)
Lae ( ଉ—ଥୋକାଏ ଧାନ ଯୋଗଲଏ; ରହିଲେ ଘୋଡା
लय **लय** ଭ୍ରମ ପ୍ରାୟେ—ପ୍ରାଚୀ. କାର୍ତ୍ତ୍ତିକମାହାତ୍ମ୍ୟ । )

ଲଏ କରିବା—ଗ୍ରା. କି—ଲୟ କରିବା (ଦେଖ)
Lae karibā Laya karibā (See)
[ଲଏ ରଖିବା, ଲଏ ଲଗା(ଗେ)ଇବା—ଅନ୍ୟରୂପ]
लयकरना **लयकरना ( रखना, गाना )**

ଲଏନ୍—ବୈଦେ. ବ (ଇଂ. ଲାଇନ୍)—ଲାଇନ୍ (ଦେଖ)
Laen लाईन **लैन** Lāin (See)

ଲଏନ୍ କିଲାଟ—ବୈଦେ. ବ (ଇଂ. ଲଙ୍ଗ୍ କ୍ଲଥ୍)—ଲଙ୍ଗ୍‌କିଲାଟ୍ (ଦେଖ)
Laen kilāṭ Laṅg-kilāṭ (See)
(ଲଏନ୍‌କ୍ଲାଟ୍—ଅନ୍ୟରୂପ) लंक्लथ **ननगिलाट**

ଲଏସ୍—ଦେ. ବ ( ସଂ. ଲୟ )—୧ । ଲହଶ୍ ( ଦେଖ )—
Laes 1. Lahaś (See) ୨ । ଲୟସ୍ ( ଦେଖ )—
2. Layas (See)

ଲଂ—ସଂ. ବ (ତନ୍ତ୍ର) ପୃଥିବୀ ଦେବୀଙ୍କ ବୀଜମନ୍ତ୍ର—(Tantra) The
Lam key sound in the esoteric formula
for invoking the Earth-goddess.
ବୈଦେ. ବିଣ (ଇଂ. ଲଙ୍ଗ୍‌ର ଅଶୁଦ୍ଧ ଉଚ୍ଚାରଣ)—ଲଙ୍ଗ୍
लंग **लंग** ଇତ୍ୟାଦି (ଦେଖ)—Laṅg etc (See)

ଲଂକିଲାଟ—ବୈଦେ ବ (ଇଂ. ଲଙ୍ଗ୍ କ୍ଲଥ୍)—ଲଙ୍ଗ୍‌କିଲାଟ୍ (ଦେଖ)
Lamkilāṭ Laṅg kilāṭ (See)

ଲଂଠା—ପ୍ରାଦେ (ସମ୍ବଲପୁର) ବ—ଗଧିଆ—
Lamṭhā Hyena.

ଲଂଲଂ ହେବା—ଦେ. କି—ଲଙ୍ଗ ଲଙ୍ଗ ହେବା (ଦେଖ)
Lamlam hebā Laṅga laṅga hebā (See)

ଲଁଡୁଆ—ପ୍ରାଦେ·—(ସମ୍ବଲପୁର) ବ. ଓ ବିଣ.—(ଭୁଲ. ହୁ. ଏହି
Lañḍuā ଶବ୍ଦ ଏହି ଅର୍ଥରେ)—ଭ୍ରମଣୀ ଲୋକ—
A vagabond; a loafer.

ଲକ୍(ଧାତୁ)—ସ.—୧ । ଆସ୍ୱାଦନ କରିବା—1. To taste. ୨ ।
Lak (root) ପାଇବା—2. To get. ୩ । ଆଚ୍ଛାଦନ
କରିବା—3. To cover.

ଲକ୍—ବୈଦେ. ବ.—(ଇଂ. ଲକ୍)—୧ । ତାଲା; କୋଲପ —
Lak लक **लक** Padlock.
୨ । କେନାଲରେ ଉଚ୍ଚତର ଅଂଶରୁ ନିମ୍ନତର
ଅଂଶକୁ ବୋଟ୍ ଆଦି ଯିବା ଆସିବା କରିବାପାଇଁ
ସୁକୌଶଳରେ ନିର୍ମିତ ପ୍ରକୋଷ୍ଠ ବିଶେଷ—2. Lock
of a canal with a sluiced gate at the
point of change of level. [ ଦ୍ର—କେନାଲ୍
ମଧ୍ୟରେ ଗୋଟିଏ କୋଠରି ନିର୍ମିତ ହୋଇ ତାହାର ଦୁଇ
ପାଖରେ ବଡ଼ ବଡ଼ କବାଟ ଲାଗିଥାଏ । ଉକ୍ତ କୋଠରିର
ଉପର ପାଖରେ କେନାଲ୍ ଜଳର ପତ୍ତନ ତଳ ପାଖର
ପତ୍ତନ ଅପେକ୍ଷା ଉଚ୍ଚତର ଥାଏ । ପ୍ରଥମେ ଉଚ୍ଚତର କେନାଲର
ଜଳର ସମାନ ପତ୍ତନ କରି, ସେ କୋଠରିରେ ପାଣି ଭର୍ତ୍ତି
କରି ଯାଏ । ତା ପରେ ସେ କୋଠରି ମଧ୍ୟକୁ ଉପର ଆଡ଼ରୁ
ବୋଟ୍ ପୂରି ଯାଏ । କୋଠରିରେ ବୋଟ୍ ଭର୍ତ୍ତି ହେଲାରୁ
ଉପର ପାଖର କବାଟକୁ କିଳି କରି ବନ୍ଦ କରି ଦିଆଯାଏ ।
ଏଣେ ତଳ ପାଖର 'ସ୍ଲୁଇସ୍ କବାଟ ବାଟେ ସେ କୋଠରିରୁ
ପାଣିକୁ ଧୀରେ ଧୀରେ ଖଲାସ କରି ନିମ୍ନ କେନାଲର ପାଣିର
ପତ୍ତନ ସଙ୍ଗେ ସମାନ କରାଯାଏ । ନିମ୍ନ ପତ୍ତନ ସଙ୍ଗେ
କୋଠରିର ପାଣିର ପତ୍ତନ ସମାନ ହୋଇଗଲେ, ତଳ
ପାଖର କବାଟକୁ ଖୋଲି ଦେଇ ବୋଟକୁ ତଳ ଆଡ଼କୁ
ବାହାର କରି ଦିଆଯାଏ । ପୁଣି ତଳଆଡ଼ୁ ବୋଟ୍ ଆସିଲେ
ଏଥିର ବିପରୀତ-କୌଶଳ ଅବଲମ୍ବିତ ହୋଇ, ଅର୍ଥାତ୍
ବୋଟକୁ ସେ କୋଠରିରେ ଭର୍ତ୍ତି କରି ଯାଇ ତଳ କବାଟ
ବନ୍ଦ କରି କୋଠରିର ପାଣିକୁ ଉପର କେନାଲର ପାଣିର
ପତ୍ତନ ସଙ୍ଗେ ସମାନକରାଯାଇ ବୋଟକୁ ଉପର ଆଡ଼କୁ
ଛାଡ଼ି ଦିଆ ଯାଏ । ଏହି କୌଶଳମୟ ଜଳ ପ୍ରକୋଷ୍ଠକୁ
'ଲକ୍' ବୋଲାଯାଏ । ଇଂରାଜୀରେ 'ଲକ୍' (Lock')
ଶବ୍ଦର ଅର୍ଥ କୋଲପ । ଏ କୋଠରିରେ ଦୁଇଆଡ଼ୁ
କୋଲପ ପରି ପାଣିକୁ ଅବରୋଧ କରାଯିବାରୁ ଏହାକୁ
'ଲକ୍' ବୋଲାଯାଏ ।
ଭୂମଧ୍ୟସାଗର ଓ ଆରବ ସାଗର ମଧ୍ୟସ୍ଥ 'ସୁଏଜ୍'
କେନାଲ୍‌ରେ ଏବଂ ଆଟ୍‌ଲାଣ୍ଟିକ୍ ଓ ପ୍ରଶାନ୍ତ ମହାସାଗର
ମଧ୍ୟସ୍ଥ 'ପାନାମା' କେନାଲ୍‌ରେ ଜାହାଜ ଯିବାଆସିବା ପାଇଁ
ଲକ୍‌ମାନ ନିର୍ମିତ ହୋଇଅଛି ।] [ଲକ୍‌ପେଲ—ଅନ୍ୟରୂପ]

ଲକ୍ ଅପ୍—ବୈଦେ. ବ.—(ଇଂ. ଲକ୍ ଅପ୍)—ହାଜତ; ଯେଉଁଠାରେ
Lak-ap ବିଚାର ହେବା ପୂର୍ବରୁ ଅଭିଯୁକ୍ତ ବ୍ୟକ୍ତିମାନଙ୍କୁ ବନ୍ଦ କରି
लक अप **लक अप** ରଖା ଯାଇଥାଏ—Police lock-up.

ଲକ୍ କପ(ପା)ର୍—ବୈଦେ. ବ.—( ଇଂ. ଲକ୍‌କୀପର୍ )—କେନାଲ୍
Lak kipa(pā)r ଲକ୍‌ରେ ନୌକାମାନଙ୍କୁ ପାର ଉତ୍ତାର କରାଇ
लककीपर **लककीपर** ନୌକାଧକ୍ଷ ମାନଙ୍କଠାରୁ ମାସୁଲ ଆଦାୟ କରିବା
ପ୍ରଭୃତି କାର୍ଯ୍ୟରେ ନିଯୁକ୍ତ କର୍ମଚାରୀ—Lock keeper.

ଲକ୍ ଖଲାସି—ବୈଦେ. ବି.—(ଇଂ. ଲକ୍+ଆ, ଖଲାସ)—ଲକ୍
Lak khalāsi ପୋଲର କବାଟମାନଙ୍କୁ ବନ୍ଦ କରି ଓ ଫିଟାଇ
लक खालासी **लक खलासी** ଦେହି ମଧ୍ୟରେ ନୌକା ଆଦିକୁ
. ପୁରୁଷ ବାହାର କରି ଦେବା ପାଇଁ ନିଯୁକ୍ତ ଭୃତ୍ୟ—
Menial servants engaged in a lock.

ଲକଠକ ଦେ. ବି. ବିଣ—ରୋକ୍ ଠୋକ୍ (ଦେଖ)
Lak-thak Rok thok (See)
ବିଶେଷ ବିଣ.—ସମ୍ପୂର୍ଣ୍ଣରୂପେ; ଅତ୍ୟନ୍ତ—
Fully; very.

ଲକ୍‌ଠକ ବାହାପିଆ—ଦେ. ବି. ବିଣ ଓ ବିଣ. ପୁଂ—ଅତ୍ୟନ୍ତ ଜୁଆଚୋର
Lak thak bāhāpia ବା ମିଛୁଆ—Downright liar.
डाहा मिथ्यावादी [ଦ୍ର—ଯେଉଁ ବ୍ୟକ୍ତି ମିଛ କଥାକୁ ଏପରି ବଢ଼େଇ
**बड़ाझूठा** ଚୁନେଇ କହେ ଯେ, ଶ୍ରୋତାମାନେ ତାକୁ ସତ ବୋଲି
[ଲକ୍‌ଠକ୍ ବାହାପେଇ—ସ୍ତ୍ରୀ] ବିଶ୍ୱାସ କରନ୍ତି, ତାକୁ ଲକ୍‌ଠକ୍
ବାହାପିଆ କହନ୍ତି । ]

ଲକ୍ ତଣ୍ଡେ(ଣ୍ଡା)ଲ—ଦେ. ବି [ଇଂ. ଲକ୍+ହି. ଟଂଡ(ଡା)ଲ;
Lak tande(nda)l ଇଂ.ଟିଣ୍ଡଲ୍]—ଲକ୍ ଖଲାସିମାନଙ୍କ ମଧ୍ୟରେ
लक तंडेल ପ୍ରଧାନ ଖଲାସି—The head menial servant
**लककाट डैल** or tindal of lock of a canal.
(ଲକ୍‌ଜମାଦାର—କ୍ଷୁଦ୍ରରୂପ)

ଲକ୍ ବାବୁ—ବୈଦେ. ବି (ଇଂ. ଲକ୍+ଫା. ବାବୁ)—ଭାରତୀୟ ବା
Lak bābu ହିନ୍ଦୁ ଲକ୍ କିପର୍—An Indian or Hindu
लक बाबु **लक बाबु** lock-keeper.

ଲକ୍ ମାସୁଲ୍(ଲୁ)—ବୈଦେ. ବି. (ଇଂ. ଲକ୍ ଓ ଫା. ମହ୍‌ସୁଲ୍)—
Lak-māsul(lu) କେନାଲରେ ନିର୍ମିତ 'ଲକ୍' (ପୋଲ)କୁ ନୌକା
[ଲକ୍‌ମାଅ(ହା)ସୁଲ(ଲୁ)—ଅନ୍ୟରୂପ] ପାରହେବା ପାଇଁ କେନାଲର
लकमासूल ମାଲିକଙ୍କୁ ନୌକାଧିପଙ୍କ ଦେବା ଶୁଳ୍କ ବା କର—
**लक महसूल (मासूल)** Tollage realised at the lock
of canals from boat-owners

ଲକ୍‌ଡ଼ା—ପ୍ର ଦେ (ବାମଣ୍ଡା) ବି—ଚେନ୍ଦୁଆ; ହେଣ୍ଟାବାଘ—
Lak-rā Hyena; wolf.

ଲକ୍ ଲକ୍—ଦେ ବି (ଧ୍ୱନ୍ୟନୁକରଣ)—୧ । ପତଳା ଓ ସରୁ ଜିନିଷ
Lak lak (ଯଥା—ସରୁଆ ପତଳା ଖଣ୍ଡା)କୁ ହଲାଇଲେ, ତାହାର
लक लक, लिक्‌लिक् ଏ ପାଖରୁ ସେ ପାଖକୁ ନଇଁଯିବା ଅବସ୍ଥା—
**लकलक, लपलप** 1. Brandishing or flourishing of
लगबग a thin blade. ୨ । ଭାତ ବା ଡାଲି ସିଝିଯିବା ପରେ
**गलजाना** ଅଧିକ ସମୟ ନିଆଁ ଉପରେ ବସି ପାଣି କମିଗଲେ ତହିଁରୁ
ଯେଉଁ ଫୁଟିବା ଶବ୍ଦ ବାହାରେ—2. The sound
made by rice etc. while boiling in the
pot after the water becomes lessened.
[ଦ୍ର—ଭାତ ଉପଯୁକ୍ତ ପାଣିରେ ସିଝିଯିବା ପରେ ପାଣି କମି
ହୋଇଗଲେ, ସେ ଭାତକୁ ନ ଗାଳିଲେ ଭାତ ଲକ୍‌ଲକ୍
ହୁଏ, ଅର୍ଥାତ ବେଶି ସିଝି କର୍କଶିଆ ହୋଇଯାଏ । ଡାଲି
ମଧ୍ୟ ଏହିପରି ଲକ୍‌ଲକ୍ ହୋଇ ଅଧରକୁ ଉପରେ
ସର୍ଙ୍ଘାଏ । ଏହାକୁ ଭାତ ଲଟକେଇ ହେଲା ବା ଡାଲି
ଲଟକେଇ ହେଲା ବୋଲି କହନ୍ତି ।
ନଡ଼ିଆ ରସକୁ କିମ୍ବା ଲହୁଣୀକୁ ଚୁଲିରେ ବସାଇ, ସେଥିରୁ
ଜଳୀୟାଂଶ ମରିଗଲେ, ତାହା ଲକ୍‌ଲକ୍ ଶବ୍ଦ କରେ; ସେହି
ଲକ୍ ଲକ୍ ଶବ୍ଦରୁ ଜଣାପଡ଼େ ଯେ,ଉକ୍ତ ରସ ବା ଲହୁଣୀରୁ
ପାଣି ମରିଗଲା ବା ଘିଅ ନିର୍ଜଳ ହେଲା । ଏହାକୁ ଘିଅ
ଲକ୍‌ଲକେଇବା କହନ୍ତି ।] ୩ । ପତଳା ଜିନିଷ (ଯଥା—
लिकलिक ପତଳା ଟିଣର ଡବା, ପତଳା ସବାର ବାଉଁଶ) ଉପରେ
**लकलक** ବେଶି ଭାର ଦେଲେ, ତାହା ଚପି ହୋଇ ଯିବା ଓ ଭାର,
କମାଇ ଦେଲେ ପୁଣି ସ୍ଥିତିସ୍ଥାପକ ହେବା ଅବସ୍ଥା—
3. The state of a thin thing receding
under pressure and regaining its original position when pressure is removed.
[ଦ୍ର—ପତଳା ଟିଣଡବାକୁ ଚପିଲେ ତାହା ଲକ୍‌ଲକ୍ ହୁଏ ।]

ଲକ୍‌ଲକା(କେ)ଇବା—ଦେ· କ୍ରି—ଜଳ ମରିଯିବାରୁ ନିଆଁ ଉପରେ ଭାତ
Lak-lakā(ke)ibā ଡାଲି, ଲହୁଣୀ ବା ନଡ଼ିଆ ରସ ଲକ୍ ଲକ୍
लगबग करना ଶବ୍ଦ କରିବା—To make a sound of being
**सनसनाना** overboiled (when water evaporates
through heat; said of rice or curry or
ghee.) [ଦ୍ର—ଗଉଡୁଣୀ ଘର ଘି ପଲମ ଲକ୍‌ଲକେଇଲା,
ପନର ହାଇ ଚଉଁରି ଶାଢ଼ୀ ମୋ କାକର ନ ପାଇଲା । ଛଗ ]

ଲକ—ବୈଦେ ବି (ଫା. କଖ)—ଗୁଡ଼ି ଉଡ଼ାଇବାର ସୂତା—
Laka Thread for flying paper kites.
लक **गुडीकासूत**

ଲକଟ୍—ବୈଦେ· ବି (ଇଂ. ଲକ୍ୱାଟ୍; ଚୀନଦେଶୀୟ ଭାଷାରୁ ଗୃହୀତ; ଭୂଲ
Lakat ସ.ଲକୁଚ=ଜେଉଟ ଫଳ)—ଗୋଲାପ ଜାମୁ ବର୍ଗର ଗଛ
लक के/ट ଫଳ ଗଛ ବିଶେଷ; ଲୋକଟ—Loquat; a fruit
**लोकाट** tree, Eriobotria Japonica. [ଦ୍ର—ଏହା ଚୀନ ଓ
ଜାପାନରୁ ଏ ଦେଶକୁ ଆସିଛି; ବସନ୍ତ କାଳରେ ଫଳ
ପାଚେ । ଫଳ ଈଷତ୍ ହଳଦିଆ ଓ ଭକ୍ଷ୍ୟ । (ଲୋକାଟ୍
ଦେଖ )

ଲକଟ - ଦେ. ବିଣ. ଓ ବି—ନକଟ (ଦେଖ)—
Lakata କର୍ଚି,ଏକବର୍ତ୍ତି **नन्हा,जरासा** Nakata'(See).
(ଲକଟକ, ଲକଟେ—ଅନ୍ୟରୂପ)

ଲକ(କ୍କ)ଡ଼(ଡ଼ି)—ଦେ ବି. (ସଂ. ଲଗୁଡ଼)—କାଠ— Wood.
Laka(kka)rda(rdi, ଦେ ବିଣ—କାଠ ପରି ଶୁଷ୍କ—
लकडी **लक्कड** Dry like wood
(ଯଥା—ସେ ନ ଖାଇ ନ ପିଇ ଲକଡ଼ ହୋଇଗଲାଣି ।)

ଲକଡ଼ ଝା(ଝେ)ଙ୍ଗ(ମ)—ପ୍ର। ଦେ. (କଟକ ସହର) ଅ—କଟକ ସହରରେ
Lakardi jhā(jhe)nga(ma) ମାଘ ପୂର୍ଣ୍ଣିମା ଦିନ ସନ୍ଧ୍ୟା
ବେଳେ ଅଗ୍ନ୍ୟୁତ୍ସବ ପାଇଁ ବଜାଇବାସୀ ଟୋକାମାନେ
ବଜାରର ଗୃହସ୍ଥମାନଙ୍କ ନିକଟରୁ ଗୁହା ମାଗିବା ବେଳେ
ଦୁଇ ଖଣ୍ଡ କାଠିକୁ ଦୁଇ ହାତରେ ଧରି ଠକ ଠକ କରି

ବଜାଇ ବୋଲିବା ପଦ—A sound repeated by young men of the town of Cuttack while striking 2 sticks together and begging pice from door to door to ignite the bonfire on the evening of Māgha fullmoon.

ଲକ(କା)ମ(ମା)ରିଚ—ଗ୍ରା. ବି—ଲଙ୍କା ମରଚ ( ଦେଖ )
Laka(kā)ma(mā)richa Laṅkā maricha (See)
लंका **लङ्का मिरचा(ची)**

ଲକର ଲକର—ଦେ. ଅ—ଲକ୍ ଲକ୍ ( ଦେଖ )
Lakara lakara Lak lak ( See )

ଲକଲ (ଇତ୍ୟାଦି)—ପ୍ରାଦେ. (କଟକ ସହର) ବି- ନକଲ ଇତ୍ୟାଦି (ଦେଖ)
Lakal (etc) Nakal etc. ( See )

ଲକ ଲକ—ଦେ. ଅ—୧ । ଲକ୍ ଲକ୍ ( ଦେଖ )
Laka laka 1. Laklak ( See )
୨। ଲଅକ ଲକ (ଦେଖ)—2. La-aka laka (See)

ଲକ ଲକିଆ—ଦେ. ବିଣ - ଖୁବ୍ ପତଳା ଓ ସରୁ —
Laka lakiā Very thin and slender.
लकलके, लिकलिके **लकलकिया**

ଲକସ—ପ୍ରାଦେ. ( କଟକ ସହର ) ବି.—ବୈଦେ. ବି ଓ ବିଣ—ନକସ
Lakasa (ଦେଖ)—Nakasa ( See )

ଲକସା—ପ୍ରାଦେ ( କଟକ ସହର ) ବି. ବୈଦେ. ବି ଓ ବିଣ—ନକସା
Lakasā ( ଦେଖ )—Nakasā (See)

ଲକସି—ପ୍ରାଦେ. ( କଟକ ସହର ) ବି. ବୈଦେ. ବି ଓ ବିଣ—ନକସି
Lakasi (ଦେଖ)—Nakasī (See)

ଲକସ୍ତକ—ଦେ. ବିଣ—୧ । ସାନଭାବାପନ୍ନ; ବିନୟଯୁକ୍ତ; ବିନୀତ —
Laka staka 1. Humble; submissive.
न्यून,निम्न **दीनदुखिया** [ଦ୍ରି—ଏହିସବାଗରୁଛ ଅପକାଶ୍ୟ ଶ୍ଳୋକ, ମାନଙ୍କୁ ଅନୁସରି ହୁଏଁ ଲକସ୍ତକ—କୃଷ୍ଣବିହ ମହାଭାରତ. ବନ ।]
୨ । ଲାଳାୟିତ—2. Hankering. ୩ । ବିନୀତରୂପେ ପ୍ରାର୍ଥନାକାରୀ—3. Praying most humbly. (ଦ୍ରି—ରଜା ହିଅ ତା ଗୋଡ଼ହାତ ଧରି କେତେ ଲକସ୍ତକ ହେଲ—ଅପର୍ଣ୍ଣା ଦଶକୁମାର ଚରିତ । ) ୪ । ନିଜକୁ ଅପମାନିତ ମନେ କରୁଥିବା—4. Deeming one's
काकुति मिनति **मिनति** self humiliated. ଦେ. ବି—ସାନଭାବାପନ୍ନ ପ୍ରାର୍ଥନା; ନେହୁରା—Humble submission or prayer.

ଲକା(କ୍କା)—ବୈଦେ. ବି (ଅ. ଲକ୍କା)—ଲକା ପାରା (ଦେଖ)
Lakā(kkā) Lakāpārā (See)

ଲକା ଅମ୍ବ—ଦେ. ବି—ଲଙ୍କା ଆମ୍ବ (ଦେଖ)
Lakā āmba Laṅkā āmba (See)

ଲକା(କେ)ଇ—ଦେ. ବିଣ—ନକେଇ (ଦେଖ)
Lakā(ke)i Nakei (See)
( ଗ୍ରାମ୍ୟକଥା - ଉପଯୋଗ ) लेकट, काई काई **लई**

ଲକା( କେ)ଇବା—ଦେ. କ୍ରି—ନକେଇବା (ଦେଖ)
Lakā(ke)ibā Nakeibā (See)
काई काई हवना **लई होना**

ଲକା(କ୍କା)ପାରା—ଦେ. ବି (ଅ.ଲକ୍କା+ସ. ପାରାବତ)— ବିସ୍ତୃତ ପୁଚ୍ଛବିଶିଷ୍ଟ
Laka(kkā)pārā ପାରାବତ—A sort of pigeon
लकापायरा **लक्काकबुतर** with spreading tail.
[ଦ୍ରି—ଏମାନେ ଛଡ଼ିକୁ ଓ ବେକକୁ ଖୁବ୍ ଫୁଲାଇକରି ଚାଲନ୍ତି । ]

ଲକାର—ସ. ତ—'ଲ' ଅକ୍ଷର—
Lakāra The letter 'ଲ' (la)

ଲକି—ପ୍ରାଦେ (ସମ୍ବଲପୁର) ବି—୧ । ପିତଳର ବଡ଼ ପାକ ବା ବେଲା—
Laki 1. A large brass dish. ୨ । ଧାତୁପାତ୍ର-ବିଶେଷ; ତସଲା—2. A metal pot.

ଲକିଆ—ଦେ. ବି— ଉତ୍ତମରୂପେ ସିଦ୍ଧ ହୋଇ ଚକଟା ହୋଇଥିବା
Lakiā ପରିବା ତିଅଣ—A well boiled and mixed
गलातरकारी **सालना** up vegetable curry.

ଲକି(କେ)ଟ୍(ଟି)—ବୈଦେ. ବି [ଇଂ. ଲକେଟ]—ସୁନାର ଛୋଟ ଡାବିଆ
Laki(ke)ṭ(ṭi) ପରି ଚେପ୍ଟା ଫରୁଅ ବା ପଦକ—
लकेट **लॉकेट** Locket. [ ଦ୍ରି—ଏହା ଗଳାର ହେକଟ୍ରେ ଝୁଲୁଥାଏ ।]

ଲକୁଚ—ସ. ବି (ଲକ୍ ଧାତୁ—ଆସ୍ୱାଦନ କରିବା+କର୍ମ. ଉଚ )—
Lakucha ଜେଉଟ (ଦେଖ)—Jeuṭa (See)
ଡେଁ(ଡେଁ)फल **बड़हड़**

ଲକୁଚକୁଚା—ସ. ବିଣ. ସ୍ତ୍ରୀ (ବହୁବ୍ରୀହି; ଲକୁଚ+କୁଚ+ସ୍ତ୍ରୀ. ଆ )—
Lakuchakuchā ଜେଉଟ ପରି ବର୍ତ୍ତୁଳ ସ୍ତନବିଶିଷ୍ଟା (ସ୍ତ୍ରୀ-(a lady) Having graceful breasts.
[ଦ୍ରି—ଆମ୍ଭେମାନେ ଖୋଜିଥିଲୁଁ ପରସ୍ତ୍ରୀ ଜନ ଯୁବ ବିଗରେ ଚୋରିର ଲକୁଚକୁଚ ହେ ।—କବିସୂର୍ଯ୍ୟ ସଙ୍ଗୀତ । ]

ଲକ୍କାୟା—ପ୍ରାଦେ (ଗଞ୍ଜାମ)—ବି—ଗୁଡ଼ ମିଶିଥିବା ପରିବା ତିଅଣ—
Lakkāyā A curry sweetened with sugar.

ଲକ୍ତକ—ସଂ. ବି (ଲକ୍ ଧାତୁ—ଆଚ୍ଛାଦନ କରିବା+କର୍ମ. ତ=ଲକ୍ତ
Laktaka +ସ୍ୱାର୍ଥେ. କ—୧ । ଛିଣ୍ଡା କନା; ଝାଳିବସ୍ତ୍ର; ନେକେଡ଼ା; ଲଞ୍ଛାକନା—1. Rags. ୨। (+କରଣ ତ+କ) ଅଲକ୍ତକ; ଅଳତା —2. Lac dye.

ଲକ୍ତିକା—ସଂ. ବି - ଝିଟିପିଟି, ଗୃହଗୋଧିକା—
Laktikā A lizard (Apte).

ଲକ୍ଷ୍(ଧାତୁ)—ସଂ.—୧। ଦେଖିବା—1. To see; to observe. ୨ ।
Laksh (root) ଚିହ୍ନିତ କରିବା— 2. To mark. ୩ । ସୂଚନା କରିବା—3. To indicate; to hint.

ଲକ୍ଷ—ସ. ବି ( ଲକ୍ଷ୍ ଧାତୁ+କର୍ମ. ଅ )—୧ । ଶତ ସହସ୍ର ସଂଖ୍ୟା—
Laksha 1. A hundred thousand. ୨ । ଶରବ୍ୟ; ଲକ୍ଷ୍ୟ—2. Terget; mark. ୩ । ପ୍ରବଞ୍ଚନା, ପ୍ରତାରଣା—3. Fraud. ୪ । ଛଳନା—4. Excuse.

୫ । ବ୍ୟାଖ୍ୟା—5. Explanation. ୬ । ଦୃଷ୍ଟି—6. Vision; sight. ୭ । ଗୋଡ଼ ( ହ୍ବି. ଶ. )—7. Leg. ୮ । ଚିହ୍ନ (ହ୍ବି. ଶ.)—8. Mark ୯ । ଅସ୍ତ୍ରର ଏକ ପ୍ରକାର ସଂହାର [ହ୍ବି. ଶ.]—9. A kind of formal withdrawal of a weapon. ୧୦ । ଯେଉଁ ବସ୍ତୁ ଘାଇ କୌଣସି ଅଶେଷ କରାଯାଏ [ହ୍ବି. ଶ.]—10 A thing or matter to which allusion is made. ୧୧ । ଉଦ୍ଦେଶ୍ୟ [ହ୍ବି. ଶ.] 11. Aim; object. ୧୨ । ଅନୁମେୟ ବସ୍ତୁ ବା ବିଷୟ ( ହ୍ବି. ଶ. )—12. Anything inferred. ୧୩ । ଲକ୍ଷଣାର୍ଥ (ହ୍ବି.ଶ.)· 13 Figurative meaning. ଦେ. ବି—[ ସଂ. ଲକ୍ଷ୍ୟ)—୧ । ତୁଳନା; ଉପମା—1. Comparison. [ଉ—ବରଚଲେ ଲକ୍ଷ, ଗିର ସଙ୍ଗେ ଋଷ୍ୟଶୃଙ୍ଗ—ଉଞ୍ଜ. ବୈଦେହୀଶବିଳାସ । ] ୨ । [ଗୋଟିଏ ମାଳାକୁ ଶହ ଥର ଫେରାଇ ଜପିବା ଏକ ଗ୍ରନ୍ଥ; ଷୋଳ ଗ୍ରନ୍ଥରେ ଏକ ଲକ୍ଷ ହୁଏ)—ମାଳାକୁ ୬୪ ଥର ଫେରାଇ ଜପିବା—2. Telling of a rosary 64 times. [ଉ—ଶହବାର ଫେରାଇଲେ ଗ୍ରନ୍ଥେ ପୂର୍ଣ ହୋଇ, ଷୋଳ ଗ୍ରନ୍ଥ ଫେରାଇଲେ ଲକ୍ଷେ ଯେ ବୋଲାଇ । ପ୍ରାଚୀ· ଶ୍ରୀ ଗୁରୁଭକ୍ତି ଗୀତା ।] ୩ । (ସଂ.ନଖ)ନଖ—3. Nail. [ଉ—ଲକ୍ଷ କୋଣ ନାହିଁ ତାଙ୍କ ଲକ୍ଷ କୋଣ ପନ୍ତ । ପ୍ରାଚୀ. ବ୍ରହ୍ମନିରୂପଣ ଗୀତା ।] ସଂ. ବିଣ.—୧ । ଲକ୍ଷ ସଂଖ୍ୟକ-1. Numbering one hundred thousand. ୨। ବହୁ ସଂଖ୍ୟକ—2. Many. [ଉ—ଲକ୍ଷ ଦୁଃଖେ ରଖି ଅଛ ମୁଁ ବାଛୁ—କବିସୂର୍ଯ୍ୟ । କଶୋଗ୍ର ଚମ୍ପୂ. ଲ ଗୀତ।) ଦେ· ବିଣ.—୧। ତୁଳନୀୟ—1. Comparable. ୨। ସମକକ୍ଷ, ସମାନ—2. Similar. ଦେ. ଅ.—ସମାନ—Equal; resembling. [ ଉ—ବଦନ ଲକ୍ଷ ନିଶାସରେ । ଉଞ୍ଜ. ବୈଦେହୀଶବିଳାସ । ]

**ଲକ୍ଷକ**—ସଂ. ବିଣ (ଲକ୍ଷ୍ ଧାତୁ [ଣିଚ] ଲକ୍ଷି ଧାତୁ=ଦେଖାଇବା+ Lakshaka କର୍ତ୍ତୃ. ଅକ)—୧ । ଲକ୍ଷଣା ଦ୍ୱାରା ଅର୍ଥ ପ୍ରକାଶକ—1. Denoting the intended sense by a simile. ୨ । ଚିହ୍ନିତ କରିବା ବ୍ୟକ୍ତି—2. Marking; observing (person).

**ଲକ୍ଷ କରିବା**—ଦେ. କ୍ରି—୧ । ଦୃଷ୍ଟି କରିବା—1. To see. Laksha karibā ୨ । ତଦାରଖ କରିବା; ଅଭିନିବେଶପୂର୍ବକ ଲକ୍ଷ କରା ଦେଖିବା—2. To observe; to mark. ୩ । ଲକ୍ଷ୍ୟ ପ୍ରତି ଶର ଆଦି ଛାଡ଼ିବା—3. To aim at, (a mark). ୪ । ତୁଳନା କରିବା—4. To compare with.

ଲକ୍ଷକରୋ

**ଲକ୍ଷଚ୍ୟୁତ**—ସଂ. ବିଣ (ଷଷ୍ଠୀ ତତ୍)—ଲକ୍ଷ୍ୟଚ୍ୟୁତ (ଦେଖ) Lakshachyuta Lakshyachyuta (See)

**ଲକ୍ଷଣ**—ସଂ. ବି (ଲକ୍ଷ୍ ଧାତୁ=ଦର୍ଶନ କରିବା, ଚିହ୍ନ କରିବା+କର୍ମ Lakshaṇa ଅନ)—୧ । ବିଶିଷ୍ଟ ଚିହ୍ନ; ଅନ୍ୟ ବସ୍ତୁମାନଙ୍କଠାରୁ ଗୋଟିଏ ବସ୍ତୁକୁ ଚିହ୍ନି ପାରିବାର ଚିହ୍ନ—1. A special sign; a discriminating mark or sign; a differentiating mark. [ ଉ—ସମସ୍ତ ଲକ୍ଷଣରେ ହୋଇଲେ ପ୍ରକାଶ । କୃଷ୍ଣସିଂହ. ମହାଭାରତ ଅଦି । ] ୨ । ସ୍ୱରୂପ—2 Natural form. ୩ । (+ଭାବ ଅନ) ନାମ—3. Name. ୪ । ପରିଚୟ—4. Introduction. ୫ । ବ୍ୟାକରଣ ସୂତ୍ର—5. Grammatical formula or rule. ୬ । ପ୍ରକୃତି—6. Nature. [ ଉ—କହିଲେ ଆମ୍ଭେ ତୁମ୍ଭେ ଜନ୍ମ ଲକ୍ଷଣକୁ, ଛାଡ଼ି ପାରିବ କିଏ ପାଉଛି ମନକୁ । କୃଷ୍ଣସିଂହ. ମହାଭାରତ· ବନ । ] ୭ । (+ଭାବ. ଅନ) ସଜାତୀୟ ବ୍ୟବଚ୍ଛେଦ ବା ଜାତିଜ୍ଞାପକ ଚିହ୍ନ—7. A natural badge or characteristic. ୮ । ମଙ୍ଗଳାଚାର—8. Propitions ceremonies. ୯ । (+କର୍ତ୍ତୃ. ଅନ) ଶ୍ରୀରାମଚନ୍ଦ୍ରଙ୍କ ଭ୍ରାତା ଲକ୍ଷଣ—9. The younger brother of Rāmachandra. ୧୦ । ସାରସ ପକ୍ଷୀ—10. A kind of crane. ୧୧। ପରିଚ୍ଛେଦ-କରଣ—11. Marking or dividing by chapter . ୧୨ । ରୋଗ ନିର୍ଣ୍ଣୟ କରିବାର ଚିହ୍ନ—12. Symptoms of a disease. ୧୩ । ସଙ୍କେତ; (ହ୍ବି. ଶ); ବିଶିଷ୍ଟାର୍ଥବୋଧକ ସଙ୍କେତ—13. Sign in dicating a special meaning. ୧୪ । ଦର୍ଶନ—14. Seeing. ୧୫ । ବିଶିଷ୍ଟରୂପେ ଦର୍ଶନ—15. Observation. ୧୬ । ଶରୀରରେ ଭିନ୍ନ ଭିନ୍ନ ଅଙ୍ଗରେ ପ୍ରକାଶିତ ଶୁଭାଶୁଭସୂଚକ ଭିନ୍ନ ଚିହ୍ନ—16. Signs appearing in different limbs of the body indicating good or evil. ସଂ. ବିଣ—(+କର୍ମ. ଅନ) ଶ୍ରୀମାନ୍; ସୁନ୍ଦର—Handsome; beautiful. ଦେ. ବି. ପୁଂ—ଲୋକଙ୍କ ନାମ—A name given to males. ୧୭ । ଶରୀରରେ ପ୍ରକାଶିତ ଏକ ପ୍ରକାର କଳା ଦାଗ, ଯାହା ଶିଶୁ ଗର୍ଭରେ ଥିବା ସମୟରେ ମାତା ସୂର୍ଯ୍ୟ ବା ଚନ୍ଦ୍ରଗ୍ରହଣ ଦର୍ଶନ କରିବାରୁ ଶିଶୁ ଦେହରେ ହୁଏ (ହ୍ବି. ଶ)—17. A kind of black mark appearing on the body of persons whose mothers saw the eclipse when they were in the womb. ୧୮ । ଶୁଭଚଳନ—18. Conduct.

**ଲକ୍ଷଣକାର**—ସଂ. ବିଣ (ଲକ୍ଷଣ+କୃ ଧାତୁ+କର୍ତ୍ତୃ. ଅ)—ଯେ ସୂତ୍ରାଦି Lakshaṇakāra ରଚନା କରନ୍ତି—The maker of a phorisms ଦେ ବିଣ—ସୁଲକ୍ଷଣଯୁକ୍ତ; ସୁନ୍ଦର—Beautiful; having auspicious signs.

ମୂଳଜ୍ଞାଣ

ସୁଲକ୍ଷଣା

**ଲକ୍ଷଣବ(ମ)ନ୍ତ(ନ୍ତା)**— ଦେ. ବିଣ. ପୁଂ (ସଂ. ଲକ୍ଷଣ ବତ୍)—ସୁଲକ୍ଷଣ; ସୁନ୍ଦର—Graceful; Lakshaṇaba(ma)nta(ntā) possessing good marks. [ ଉ—ଇନ୍ଦ୍ରପୁତ୍ର ଔରସରେ କବ୍ରୁ ବନାନ୍ତରେ, ହେଲା ଉପପତ୍ନୀ ଗର୍ଭୁଁ ପୁତ୍ର ଏକ ଜାତ, ସୁନ୍ଦର ଲକ୍ଷଣବନ୍ତ । ଚିନ୍ତାମଣି ବିବ୍ରମାବଚ୍ଛ ।]
ଲକ୍ଷଣମଂତ
(ଲକ୍ଷଣବନ୍ତୀ—ସ୍ତ୍ରୀ)

**ଲକ୍ଷଣବାନ୍**—ସଂ. ବିଣ. ପୁଂ (ଲକ୍ଷଣ+ବତ୍, ୧ମା. ୧ବ)—ଲକ୍ଷଣବିଶିଷ୍ଟ Lakshaṇabān ( ଦେଖ )—Lakshaṇabisishṭa. (See)
(ଲକ୍ଷଣବତୀ—ସ୍ତ୍ରୀ)

**ଲକ୍ଷଣ ବିଶିଷ୍ଟ**—ସଂ.ବିଣ (ଅନ୍ୟ ଲିଙ୍ଗ)--୧ । ଯାହାଠାରେ ଲକ୍ଷଣ ଥାଏ— Lakshaṇa bisishṭa 1. Having signs. ( ଲକ୍ଷଣଯୁକ୍ତ—ଅନ୍ୟରୂପ ) ୨ । ସୁଲକ୍ଷଣ—2. Possessing [ଲକ୍ଷଣବିଶିଷ୍ଟା—ସ୍ତ୍ରୀ] virtues or good signs,

**ଲକ୍ଷଣ ଭ୍ରଷ୍ଟ**—ସଂ. ବିଣ. ପୁଂ —ଦୁର୍ଭାଗ୍ୟ; ହୀନଭାଗ୍ୟ— Lakshaṇa bhrashṭa Ill fated; unlucky. (Apte). ( ଲକ୍ଷଣଭ୍ରଷ୍ଟା—ସ୍ତ୍ରୀ )

**ଲକ୍ଷଣା**—ସଂ. ବି (ଲକ୍ଷ୍ ଧାତୁ+ଭାବ. ଅନ+ଆ)—୧ । ତୁଳନା— Lakshaṇā 1. Comparison. [ଉ - କାହିଁଛି ଲକ୍ଷେ ଲକ୍ଷଣା ସେ । ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ] ୨ । ସାରସୀ— 2. A female crane ୩ । (ବ୍ୟାକରଣ) ଶବ୍ଦର ବୃତ୍ତି ବା ଶକ୍ତି ବିଶେଷ; ଯେଉଁ ଶକ୍ତି ଦ୍ୱାରା ଶବ୍ଦର ତାତ୍ପର୍ଯ୍ୟାର୍ଥ ଛଡ଼ା ପ୍ରୟୋଜନ, ପ୍ରୟୋଗ ବା ଉଦ୍ଦେଶ୍ୟ ଅନୁସାରେ ଭାବାର୍ଥର ବୋଧ ହୁଏ—3. ( Grammar ) Figurative or metaphorical sense of a word. [ଉ—ଯଥା ସେ ଗଙ୍ଗାବାସୀ ହେଲେ, ଏଥିର ଲକ୍ଷଣାର୍ଥ,—ଗଙ୍ଗା ତୀରରେ ସେ ବାସ କଲେ । ] ୪। ଉପମା ଦ୍ୱାରା ଅର୍ଥର ବା ଭାବର ପ୍ରକାଶ—4. Metaphor. ( ଯଥା—ସେ ତାଙ୍କ ସ୍ୱରରେ ସୌନ୍ଦର୍ଯ୍ୟର ଗ୍ରହଣ କଲେ ।) ୫ । ରଚନାରେ ବା ଲେଖାରେ ଊହ୍ୟ ଶବ୍ଦ ବା ବାକ୍ୟ—5. Ellipsis in a composition. ୬ । କାବ୍ୟାଲଙ୍କାର ବିଶେଷ; ଯହିଁରେ ଶବ୍ଦର ଗୌଣ ଅର୍ଥ ପ୍ରକାଶିତ ହୁଏ—6. A figure of speech; an indirect application of secondary significance of a word(Apte). [ଉଦାହରଣ- ଅନୁଗତେ ଅସ୍ମା ଭସ୍ମ ବହନ୍ତି ଶଙ୍କର, ତୁମେ ବର ଗଙ୍ଗା ପତ୍ନୀ ଶାମ୍ଭ ଚନ୍ଦ୍ରଙ୍କର, ମିହକାନ୍ତେ ଅଛୁ ଉଙ୍ଗେ ପଦ୍ମାର ଗ୍ରୀବ, ଅନୁଗତ ଅଙ୍ଗୀକୃତ ଧୀରେ ତ ପାଳନ୍ତି । ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।] ୭ । ହଂସୀ (ହ. ଶ)—7. Goose.
ଦେ. ବି. (ସଂ. ଲକ୍ଷ୍ମଣା)—୧ । ଲକ୍ଷଣା ମୂଳ ( ଦେଖ ) 1. Lakshaṇāmūla (See) ୨ । ଉପମା—
ଉପମା 2. Simile. [(ଉ—ସ୍ତ୍ରୀପୁଂସଲକ୍ଷଣା ଭାବେ ଲକ୍ଷଣ ଗଣ, ମାର୍ଗଣ ହେଲେ ତା ତନୁ ତନୁକେ ଜାଣ । ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । )

**ଲକ୍ଷଣାକ**—ଦେ. ବି—ସ୍ତ୍ରୀ—Woman. (ଉ—ଆମ୍ଭେ ଲକ୍ଷଣାକ Lakshṇāka ଜନ ସିନା ବେଳ ଲକ୍ଷଣା ଦେଖି ସୁମନାରେ । ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।)

**ଲକ୍ଷଣାକ୍ରାନ୍ତ**—ସଂ. ବି. (ଅନ୍ୟ ଲିଙ୍ଗ)—୧ । ଲକ୍ଷଣଯୁକ୍ତ—1 Possessing a sign. ୨ । ସୁଲକ୍ଷଣ— Lakshaṇākrānta 2. Possessing good signs. ୩। ଲକ୍ଷଣାର୍ଥଯୁକ୍ତ— 3. Having a secondary or metaphorical meaning.

**ଲକ୍ଷଣା ତର୍କ**—ସଂ. ବି—କାବ୍ୟାଲଙ୍କାର ବିଶେଷ— Lakshaṇā tarka A figure of speech. (ଉଦାହରଣ—ସମୀର ମଧ୍ୟ ଇଙ୍କାର ହର ଇଚ୍ଛା କର, ଅନଳ ମଧ୍ୟରେ ଦେଇ ପେଷିଛନ୍ତ ଗୋସ୍ୱା, ଅବଧିତ କଲୁ କାହିଁ ପାଇଁ, ଅମୃତ ଆଦ୍ୟରେ ସବୁ ବନ୍ଧୁ ଅଛୁ ଦେଇ । ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।)

**ଲକ୍ଷଣାନ୍ୱିତ**—ସଂ. ବିଣ. (ଅନ୍ୟ ଲିଙ୍ଗ)—ଲକ୍ଷଣୋପେତ ( ଦେଖ ) Lakshaṇānwita Lakshaṇopeta ( See ) (ଲକ୍ଷଣାନ୍ୱିତା—ସ୍ତ୍ରୀ)

**ଲକ୍ଷଣା ବୃତ୍ତି**—ସଂ. ବି—ଲକ୍ଷଣା ୩ (ଦେଖ ) Lakshaṇā brutti Lakshaṇā 3 (See )

**ଲକ୍ଷଣା ମୂଳ**—ଦେ. ବି. ( ବୈଦ୍ୟକ ) ( ସଂ. ଲକ୍ଷ୍ମଣା )—ଔଷଧରେ Lakshaṇā mūla ବ୍ୟବହୃତ କନ୍ଦ ବା ମୂଳ ବିଶେଷ—
ସଂ. ନାମ—ଲକ୍ଷ୍ମଣା, ପୁତ୍ରକନ୍ଦା, ପୁତ୍ରଦା, ନାଗିନୀ, ନାଗାହ୍ୱା, ନାଗପତ୍ରୀ, ତୁଳନୀ, ସର୍ପିକା, ଅସୁବନ୍ଦଚ୍ଛଦା, ପୁଚ୍ଛଦା, ଜନନୀ
ଲକ୍ଷ୍ମଣା ମୂଳ
ମ. ଲକ୍ଷଣା କନ୍ଦ
**ଲକ୍ଷ୍ମନା**
ଫା. ସଗମୂଲ ସକନ୍ ମହରରମ୍ଭା
ଆ. ଇବରୁକୁଲକ୍ରୁମ୍,
ଉଅସେଲ୍ଲୁ ଲହଫା
A sort of medicinal root used for curing barrenness in women. [ଉ—ଏହି କନ୍ଦ ବୋମ୍ବାଇ ପ୍ରଦେଶର ପର୍ବତରେ ମିଳେ । ଏହି କନ୍ଦର ଆକାର ସ୍ତ୍ରୀପୁରୁଷ-ଯୁଗ୍ମାକୃତି ବିଶିଷ୍ଟ ପୁତ୍ତଳ ପରି । ଏହା ଉପରେ କେତେଗୁଡ଼ିଏ ଲାଲ୍ ବର୍ଣ୍ଣର ବିନ୍ଦୁ ଥାଏ । ଏହାର ଗନ୍ଧ ଛାଗ ଦୁଗ୍ଧ ପରି । ଏହା ମଧୁର ରସ, ରସାୟନ ଓ ବଳକାରକ ଓ ବନ୍ଧ୍ୟାଦୋଷ-ନାଶକ । ଏହାକୁ ସନ୍ତାନୋତ୍ପାଦକ ଔଷଧ ରୂପେ ସ୍ତ୍ରୀମାନେ ସେବନ କରନ୍ତି । ଏହି ମୂଳ ଏ ଦେଶରେ ଦୁର୍ଲଭ । ବୈଦ୍ୟଶାସ୍ତ୍ର ମତରେ ଏହା ଶୀତବୀର୍ଯ୍ୟ, ମଧୁରରସ, ରସାୟନ ଓ ବୃଷ୍ୟ ଏବଂ ତ୍ରିଦୋଷ, ବ୍ରଣ ଓ ବାତରୋଗନାଶକ । ଏଥିର ପତ୍ର ଚଉଡ଼ା ଓ ପତ୍ର ଉପରେ ରକ୍ତ ଚନ୍ଦନ ପରି ବିନ୍ଦୁମାନ ଥାଏ । ଏହାର ମୂଳ ଧଳା ।]

**ଲକ୍ଷଣାମୂଳା ବ୍ୟଞ୍ଜନା**—ସଂ. ବି. ( ଅଳଙ୍କାର ଶାସ୍ତ୍ର )—ଶବ୍ଦର ଯେଉଁ Lakshaṇāmūlā byañjanā ବ୍ୟଙ୍ଗାର୍ଥ ଲକ୍ଷଣା ଦ୍ୱାରା ପ୍ରତୀତ ହୁଏ—That suggested meaning of a word which is derived from its figurative significance[ଦ୍ର--ଲକ୍ଷଣା ମୂଳା ବ୍ୟଞ୍ଜନା ୨ଶ୍ରେଣୀରେ ବିଭକ୍ତ—ଲକ୍ଷଣାମୂଳା ଶାବ୍ଦୀ ବ୍ୟଞ୍ଜନା, ଲକ୍ଷଣାମୂଳା ଆର୍ଥୀ ବ୍ୟଞ୍ଜନା ।

ଗଙ୍ଗାରେ ଆଭୀର ପଲ୍ଲୀ ଅଛି—ଏଥିର ଅର୍ଥ,—ଗଙ୍ଗା କୂଳରେ ଗଉଡ଼ଙ୍କ ବସତି ଅଛି । ଏହା ଲକ୍ଷଣାମୂଳା ଶାବ୍ଦୀ ବ୍ୟଞ୍ଜନା ।

ବର୍ତ୍ତମାନ ବସନ୍ତକାଳ, କାମଦେବ ଅତ୍ୟନ୍ତ କୁପିତ ରତିଖେଦ ହରଣକାରୀ ମନ୍ଦ ବାୟୁ ବହୁଅଛି, ଏ କୁଞ୍ଜ, ଲତାବେଷ୍ଟିତ କେଳିବନ ଅତି ରମଣୀୟ ହୋଇଅଛି-ମୋ ପତି ପ୍ରବାସୀ ଅଛନ୍ତି, ଅତଏବ ମୁଁ ଅଛି କଅଣ କରିବି ? ମୋତେ କହ । ଜଣେ ପ୍ରୋଷିତଭର୍ତ୍ତୃକା ସ୍ତ୍ରୀର ନିଜ ସଖିଙ୍କ ପ୍ରତି ଏ ଉକ୍ତିରୁ ଲକ୍ଷଣାମୂଳା ଆର୍ଥୀ ବ୍ୟଞ୍ଜନା ଦ୍ୱାରା ଏହା ସୂଚିତ ହେଉଅଛି ଯେ, ମୋ ପାଇଁ କୌଣସି ପ୍ରଚ୍ଛନ୍ନ କାମୁକ ପୁରୁଷଙ୍କୁ ଏଠାକୁ ଆଣିବାକୁ ଖୋଜ ସାହିତ୍ୟଦର୍ପଣ ।]

**ଲକ୍ଷଣାର୍ଥ**—ସଂ. ବି—୧ । କୌଣସି ଶବ୍ଦର ଅକ୍ଷରିକ ଅର୍ଥ ପରିବର୍ତ୍ତରେ ବୁଝାଯିବା ଅପେକ୍ଷିତ ଅର୍ଥ—1. Figurative sense. ୨ । ଲେଖକଙ୍କର ଉଦ୍ଦିଷ୍ଟ ଅର୍ଥ—2. The intended or implied meaning of an expression.
Lakshanārtha
(ଲକ୍ଷାର୍ଥ—ଅନ୍ୟରୂପ)

**ଲକ୍ଷଣା ଶକ୍ତି**—ସଂ. ବି—ବାକ୍ୟର ଶକ୍ତି ବିଶେଷ, ଯଦ୍ଦ୍ୱାରା ତାତ୍ପର୍ଯ୍ୟ-ବୋଧ ଅର୍ଥ ଅସଙ୍ଗତ ହେବାରୁ ପ୍ରୟୋଜନ ବଶତଃ ଅନ୍ୟ ଲକ୍ଷ୍ୟାର୍ଥ ପ୍ରକାଶିତ ହୁଏ—The power of any sentence to convey a figurative meaning apart from its derivative one. [ ଦ୍ର—ବାଚ୍ୟାର୍ଥବୋଧ୍ୟ ପ୍ରକୃତ ଅର୍ଥ ଅସଙ୍ଗତ ହେଲେ ବାକ୍ୟର ପ୍ରୟୋଜନବଶତଃ ଯଦ୍ଦ୍ୱାରା ଅନ୍ୟ ଗୋଟିଏ ଅର୍ଥର ପ୍ରତୀତି ହୁଏ, ତାହାର ନାମ ଲକ୍ଷଣା ଶକ୍ତି । ଯଥା—'କୁଆଙ୍କ ଦାଉରୁ ଦହିକୁ ରକ୍ଷା କର' । ଏହି ବାକ୍ୟରେ ଦହିକୁ ରକ୍ଷା କରିବା ବିଷୟ ପ୍ରତି ଲକ୍ଷ ରହିଅଛି; ଏପରି ସ୍ଥଳରେ 'କୁଆଙ୍କ ଦାଉରୁ' ଏହି ବାକ୍ୟାଂଶର ଅର୍ଥ 'କୁଆ ଆଦି ସମସ୍ତ ଦଧି ଖାଦକ ଜନ୍ତୁଙ୍କ ଆକ୍ରମଣରୁ ।' ସାହିତ୍ୟଦର୍ପଣ । ]
Lakshanā śakti

**ଲକ୍ଷଣା ଶ୍ଳେଷ**—ସଂ. ବି—ବାକ୍ୟାଲଙ୍କାର ବିଶେଷ—
Lakshanā ślesha — A figure of speech.
(ଉଦାହରଣ—ମନ୍ଦାର ଅଧର ତଳବାର ତ ଦେଖିଛି, ପୟୋଧର ଅମ୍ବର ଅନ୍ତରେ ବିରାଜିଛି, ଘନରସ ବୃଷ୍ଟି କାହିଁପାଇଁ ହେଉ ନାହିଁ, ବିଦେହ ତାପ ବିଲୟ ହେବା ବନ୍ଦ ହେଉ । ଅଭିମନ୍ୟୁ. ବିଦଗ୍ଧ ଚନ୍ଦ୍ରାମଣି ।)

**ଲକ୍ଷଣୀୟ**—ସଂ. ବିଣ. (ଲକ୍ଷ୍ ଧାତୁ=ଦର୍ଶନ କରିବା ଇତ୍ୟାଦି+କର୍ମ. ଅନୀୟ)—୧ । ଅନୁଭବନୀୟ—1. Conceivable. ୨ । ଦର୍ଶନୀୟ—2. Visible.
Lakshaṇiya

**ଲକ୍ଷଣୋପେତ**—ସଂ. ବିଣ. (ନ୍ୟା ତତ୍; ଲକ୍ଷଣ+ଉପେତ)—ସୁଲକ୍ଷଣ-ଯୁକ୍ତ; ଶୁଭ ଚିହ୍ନଯୁକ୍ତ—Having auspicious marks.
Lakshanopeta
(ଲକ୍ଷଣୋପେତା—ସ୍ତ୍ରୀ)

**ଲକ୍ଷ ଦେବା**—ଦେ. ବି—ତୁଳନା କରିବା; ଉପମା କରିବା—
Laksha debā — To compare with.
ଲକ୍ଷ ଦେଓଯ଼ା
लक्ष देना
(ଉ—ଲକ୍ଷ ଦେଖି ସେବା କର,ଲକ୍ଷ ଦେବ ତୋତେ' ବିଶ୍ୱର କରିବ ନ ପାଇଲେ ଭିନ୍ନ ପୁଷ୍ପ । କବିସୂର୍ଯ୍ୟ. ଭବିତା ।)

**ଲକ୍ଷ ପତି**—ସଂ. ବି (୬ଷ୍ଠୀ ତତ) —ବହୁ ଧନବିଶିଷ୍ଟ ବ୍ୟକ୍ତି—
Laksha pati — A very rich man.

**ଲକ୍ଷ ପୋଷା(ଷୀ)**—ଦେ. ବିଣ. ପୁଂ ଓ ସ୍ତ୍ରୀ ( ସ. ଲକ୍ଷ+ପୋଷକ )—ଯେ ଅସଂଖ୍ୟ ବ୍ୟକ୍ତିଙ୍କ ଅନ୍ନସଂସ୍ଥାନ କରେ—Providing many people with means of livelihood.
Laksha poshā(shī)
লক্ষ পোষা
लक्षपोषा

**ଲକ୍ଷାବଧି**—ସଂ. ବିଣ (ବହୁବ୍ରୀହି)—୧ । ଏକଲକ୍ଷ ପର୍ଯ୍ୟନ୍ତ—1. Upto one hundred thousand. ୨ । ପ୍ରାୟ ଏକଲକ୍ଷ ପରିମିତ—2. About 1 lakh. [ ଉ—ମାତାଳଆଠାରେ ଲକ୍ଷାବଧି ଟଙ୍କାର ମାଲିକ ହୋଇ ବସିଛି । ଫକୀରମୋହନ. ଗଳ୍ପସ୍ୱଳ୍ପ । ]
Lakshābadhi
লক্ষাবধি
लक्षावधि

**ଲକ୍ଷ ଭ୍ରଷ୍ଟ**—ସଂ. ବି. ( ୫ମୀ ତତ୍ )—ଲକ୍ଷ୍ୟଚ୍ୟୁତ ( ଦେଖ )—
Laksha bhrashta — Lakshyachyuta ( See )

**ଲକ୍ଷ ଲକ୍ଷ**—ଦେ' ବିଣ ଓ ବି—ବହୁସଂଖ୍ୟକ; ଅସଂଖ୍ୟ—
Laksha laksha — Multitudinous; countless millions and millions.
লক্ষ লক্ষ
लाख लाख

**ଲକ୍ଷି**—ଗ୍ରା. ବି ( ସ. ଲକ୍ଷ୍ମୀ; ପ୍ରା. ଲକ୍ଖୀ )—୧ । (ସ୍ତ୍ରୀ) ଲକ୍ଷ୍ମୀଦେବୀ—1. Goddess Lakshmī. ୨ । (ପୁଂ) ଲକ୍ଷ୍ମୀଧରର ଡାକ ନାମ—2. Name for calling Lakshmīdhara. ୩ । (ସ୍ତ୍ରୀ) ଲକ୍ଷ୍ମୀନାମ୍ନୀ ସ୍ତ୍ରୀର ଡାକ ନାମ—3. Name for calling a woman whose name is Lakshmī.
Lakshi
লক্ষী(কখী)
लछमी
ଲକ୍ଷିଁ, ଲକ୍ଷିମୀ } ଅନ୍ୟରୂପ

**ଲକ୍ଷି(ଖି,ଖୁ,ଛି,ଛୁ)ଆ**—ଗ୍ରା.ବି.ପୁଂ(ଅନାଦରାର୍ଥକ)—ଲକ୍ଷ୍ମୀଧର ଓ ଲକ୍ଷଣର ଡାକ ନାମ—Name for calling Lakshmīdhara.
Lakshi(khi,khu,chhi,chhu)ā
লখা
लछमिनिया, लछमिनिया

**ଲକ୍ଷିଛଡ଼ା**—ଗ୍ରା. ବି ( ଗାଳି )—ଲକ୍ଷ୍ମୀଛଡ଼ା ( ଦେଖ )
Lakshichhardā — Lakshmīchhardā ( See )
(ଲକ୍ଷିଁଛଡ଼ା, ଲକ୍ଷିମିଛଡ଼ା—ଅନ୍ୟରୂପ) লক্ষিছড়া भीखमंगा

**ଲକ୍ଷିତ**—ସଂ ବିଣ ( ଲକ୍ଷ୍ ଧାତୁ=ଦର୍ଶନ କରିବା ଇତ୍ୟାଦି+କର୍ମ. ତ )—୧ । କୃତଲକ୍ଷ୍ୟ; ଉଦ୍ଦିଷ୍ଟ—1. Aimed at. ୨ । ଦୃଷ୍ଟ—2. Seen; observed. ୩ । ଅନୁମିତ—3. Conjectured. ୪ । ଅନୁଭୂତ—4. Experienced. ୫ । ଲକ୍ଷଣାବୃତ୍ତିଦ୍ୱାରା ବିଶେଷିତ—5. Differentiated by a metaphorical meaning. ୬ । ସୂଚିତ—6. Indicated (Apte); indirectly expressed. ୭ । ଚିହ୍ନିତ; ବିଶିଷ୍ଟ ଲକ୍ଷଣଦ୍ୱାରା ବାରି ହେଉଥିବା—7. Characterised; distinguished ( Apte ). ୮ । ପରୀକ୍ଷିତ—8. Examined ( Apte ). ୯ । ବିବେଚିତ—9. Considered; regarded ( Apt
Lakshita
(ଲକ୍ଷିତା—ସ୍ତ୍ରୀ)

**ଲକ୍ଷିତ ଲକ୍ଷଣା**—ସ. ବି—୧ । ଶବ୍ଦର ଲକ୍ଷଣାଶକ୍ତିବିଶେଷ, ଯେଉଁ
Lakshita lakshanā ଶକ୍ତିଦ୍ୱାରା ବ୍ୟୁତ୍ପତ୍ତିଗତ ଅର୍ଥରୁ ଲକ୍ଷଣାର୍ଥଦ୍ୱାରା ଗୋଟିଏ ବିଶେଷ ପଦାର୍ଥର ଜ୍ଞାନ ହୁଏ । ( ଯଥା—ଦ୍ୱିରେଫ=ଭ୍ରମର )—1. The power of a word to convey one of the derivative meanings. [ ଉ—ବାଞ୍ଛା ନଚାଳନ୍ତ ସରଣୀ ଧୀବର, ବେଗେ ହେବାକୁ ପାର୍ଶ୍ୱ କରି ମଧୁର ଯେ, ବସି ମଧ୍ୟେ ଗ୍ରୀଷ୍ମ ରଚନା ବଳେ, ବରଦ ଗାହପାଚ ସ୍ୱନାମେ କଲେ ଯେ । ଉପେ. ବୈଦେହୀଶବିଳାସ । ] ୨ । ଛନ୍ଦୋବିଶେଷ—2 A kind of metre.

**ଲକ୍ଷିତା**—ସ. ବି. ସ୍ତ୍ରୀ—ପରକୀୟା ନାୟିକାଭେଦ; ଯେଉଁ ନାୟିକାର
Lakshitā ଅଙ୍ଗ ଓ ବେଶଆଦିରେ ନାୟକ ସହିତ ଗୁପ୍ତ ସମ୍ଭୋଗର ଚିହ୍ନମାନ ସଖୀମାନଙ୍କ ଦ୍ୱାରା ଲକ୍ଷିତ ହୁଏ—A clase of heroines in fiction whose secretly carried amour is detected by her friends on observing some signs of debauch in her limbs and garment

**ଲକ୍ଷିତୋପଲକ୍ଷଣା**—ସଂ. ବି—ଅର୍ଥାଳଙ୍କାର ବିଶେଷ—A figure
Lakshitopalakshanā of speech in which the whole is hinted by the mention of a part. [ ଦ୍ର—ଏଥିରେ ବସ୍ତୁର ଅଂଶର ବର୍ଣ୍ଣନାଦ୍ୱାରା ସମୁଦାୟ ବସ୍ତୁର ସୂଚନା କରାଯାଏ । ]

**ଲକ୍ଷି ପାରିବା**—ଦେ. କ୍ରି ( ସଂ. ଲକ୍ଷଧାତୁ )—ଠଉରାଇବା; ଲକ୍ଷ
Lakshi pāribā କରିବାକୁ ସମର୍ଥ ହେବା—To ascer-
লক্ষকরিতেপারা tain; to recognise; to be able to
लक्ष्य करने सकना observe; to mark. [ ଉ—ବ୍ରାହ୍ମଣଙ୍କୁ ସେବା ବହୁତ ଯତ୍ନ କଲେ, ରାଜ୍ୟର ଷଡ଼ଯନ୍ତ୍ର କଥା ଲକ୍ଷି ନ ପାରିଲେ । କୃଷ୍ଣସିଂହ. ମହାଭାରତ. ଶଲ୍ୟ ।]

**ଲକ୍ଷିବା**—ଦେ·(ପଦ୍ୟ)କ୍ରି.—(ସ.ଲକ୍ଷ୍ ଧାତୁ)—୧। ଲକ୍ଷ କରିବା [ଦେଖ]
Lakshibā লক্ষকরা 1. Laksha karibā (See)
लक्ष करना [ ଉ—ଜେମା ମୁଖଭଙ୍ଗି ଗୃହିଣୀ ଭାଷାରୁ ଅନୁରାଗ ଲକ୍ଷି ତାର । ରାଧାନାଥ. ଯଯାତି ।] ୨ । ତୁଳନା କରିବା—2. To compare. ୩ । ସ୍ଥିର କରିବା; ଠଉରାଇବା—3. To ascertain. ୪। ନିରଖି କରି ଦେଖିବା—4. To observe; to mark. [ଉ—ଭୁଲଇ ନାନା ମାର୍ଗେ ଲୁଚି, କେହି ନ ପାରେ ତାଙ୍କୁ ଲକ୍ଷି ଜଗନ୍ନାଥ. ଭାଗବତ ।] ୫। ଚିହ୍ନିବା—5. To recognise; to distinguish.

**ଲକ୍ଷି(ଖି)ମୀ**—ଗ୍ରା. ବି.—୧। [ସ୍ତ୍ରୀ]—[ସ. ଲକ୍ଷ୍ମୀ]—ଲକ୍ଷ୍ମୀ (ଦେଖ)
Lakshi(khi)mi লক্ষী लछमी Lakshmī (See)
[ଲକ୍ଷୀ, ଲକ୍ଷି, ଲଖୀ—ଅନ୍ୟରୂପ] ୨। (ପୁଂ)(ଆଦରାର୍ଥକ)ଲକ୍ଷ୍ମୀଧରର ଡାକ ନାମ—2. A name for calling Lakshmīdhara.

**ଲକ୍ଷିମୀ ପୂଜା**—ଗ୍ରା. ବି.—(ସ. ଲକ୍ଷ୍ମୀ ପୂଜା)—ଲକ୍ଷ୍ମୀପୂଜା (ଦେଖ)
Lakshimi pūjā Lakshmī pūja (See)
[ଲକ୍ଷୀ(ଖୀ)ପୂଜା—ଅନ୍ୟରୂପ]

**ଲକ୍ଷେ**—ଦେ. ବି—[ସ.ଲକ୍ଷ] ଏକ ଲକ୍ଷ—One lakh; a hundred
Lakshe এক লক্ষ एक लक्ष thousand. ଦେ. ବିଣ· ୧। ଏକ ଲକ୍ଷ ସଂଖ୍ୟକ—1. Numbering a hundred thousand. ୨ । ଅସଂଖ୍ୟ—2. Countless. ୩। (ସ. ନଶ) ନଶେ; ଟିକିଏ ମାତ୍ର—3. A little.

**ଲକ୍ଷେଶ**—ସ. ବି. ପୁଂ—(୬ଷ୍ଠୀ ତତ୍, ଲକ୍ଷ+ଈଶ)—ଲକ୍ଷପତି; ଲକ୍ଷ
Lakshesa ଲକ୍ଷ ପରିମିତ ଧନର ବା ମୁଦ୍ରାର ଅଧିକାରୀ; ବିଶେଷ (ଲକ୍ଷେଶ୍ୱର—ଅନ୍ୟରୂପ) ଧନୀ—A very rich man.
ଦେ· ବି. ପୁଂ—ପୁରୁଷଙ୍କ ନାମ—
A name given to males.

**ଲକ୍ଷେଶ୍ୱରୀ**—ଦେ. ବି. ଓ ବିଣ. ପୁଂ ଓ ସ୍ତ୍ରୀ—ଧନାଢ୍ୟ ବ୍ୟକ୍ତି—
Laksheswarī A very rich person; a millionaire.

**ଲକ୍ଷ୍ମ**—ସ. ବି.—(ଲକ୍ଷ୍ ଧାତୁ+କର୍ମ. ମନ୍; ଲକ୍ଷ୍ମନ୍; ୧ମା. ୧ବ.)—
Lakshma ଲକ୍ଷଣ; ଚିହ୍ନ—Sign; mark.

**ଲକ୍ଷ୍ମଣ**—ସ. ବି. ପୁଂ—(ଲକ୍ଷ୍ମନ୍+ଅସ୍ତି ଅର୍ଥରେ ଅ)—୧। ଚିହ୍ନ; ଦାଗ-
Lakshmana 1. Mark; sign; token; speck; spot (Apte) ୨ । ଭାବଗତି—2. Deportment; conduct. ୩ । ସ୍ୱରୂପ—3. Actual form. ୪। ନାମ—4 Name, ୫ । ସୌଭାଗ୍ୟ—5. Prosperity. ୬ । ଶ୍ରୀ; ଶୋଭା—6. Beauty; grace. ( ଉ—ବିଧବା ନାରୀ ସମାନ ଦିଶେ ସେ ଲକ୍ଷ୍ମଣହୀନ ରାମ ରଙ୍ଗ ହୋଇବାରୁ ଦୂର—ଉପେ. ବୈଦେହୀଶବିଳାସ ।) ୭। ସଂଜ୍ଞା—7. Definition (Apte). ୮। ବିଶିଷ୍ଟତା; ବିଶିଷ୍ଟ ଚିହ୍ନ—8. Characteristic (Apte). ୯ । ପ୍ରଧାନ ବ୍ୟକ୍ତି—9. The chief or principal person, ୧୦ । (ପୁଂ) ସାରସ—10. A kind of crane. ୧୧ । (ପୁଂ) ସୁମିତ୍ରା ଗର୍ଭଜାତ ଦଶରଥ ପୁତ୍ର; ରାମଚନ୍ଦ୍ରଙ୍କର ବୈମାତ୍ରେୟ କନିଷ୍ଠ ଭ୍ରାତା ଓ ବନବାସର ସହଚର—11. A son of King Daśaratha by Sumitrā, who accompanied Rāmachandra and Sitā to the forest.

[ଦ୍ର—ପୁତ୍ରେଷ୍ଟି ଯଜ୍ଞର ଚରୁକୁ ଦୁଇ ଭାଗ କରି ଦଶରଥ କୌଶଲ୍ୟା ଓ କୈକେୟୀଙ୍କୁ ଦେଲେ; ସେ ଦୁଇ ରାଣୀ ଆପଣାର ଭାଗରୁ ଗୋଟିଏ ଲେଖାଏଁ ଅଂଶ ଛଡ଼ାଇ ରାଣୀ ସୁମିତ୍ରାଙ୍କୁ ଦେଲେ । ତହିଁ ଫଳରେ ସୁମିତ୍ରାଙ୍କ ଗର୍ଭରୁ ଲକ୍ଷ୍ମଣ ଓ ଶତ୍ରୁଘ୍ନ ନାମରେ ଦୁଇଟି ଯମଜ ପୁତ୍ର ଜନ୍ମିଲେ । ବାଲ୍ୟକାଳରୁ ଲକ୍ଷ୍ମଣ ରାମଚନ୍ଦ୍ରଙ୍କର ଆଜ୍ଞାବହ ଓ ଧନୁ-

ବିଦ୍ୟାରେ ବିଶେଷ ପାରଦର୍ଶୀ ଥିଲେ । ପରେ ଏ ମହାବୀର ଓ ରଣକୁଶଳ ରୂପେ ଖ୍ୟାତିଲାଭ କଲେ । ୧୪ ବର୍ଷ ବୟସରେ ଏ ରାମଙ୍କ ସଙ୍ଗେ ବିଶ୍ୱାମିତ୍ର ଋଷିଙ୍କ ଆଶ୍ରମକୁ ଯାଇଥିଲେ । ବିଶ୍ୱାମିତ୍ର ରାମଚନ୍ଦ୍ରଙ୍କୁ ବଳା ଓ ଏହାଙ୍କୁ ଅତିବଳା ନାମକ ଅସ୍ତ୍ରବିଦ୍ୟାରେ ଦୀକ୍ଷିତ କଲେ । ବିଶ୍ୱାମିତ୍ରଙ୍କ ତପୋବନରେ ରାମ ଓ ଲକ୍ଷ୍ମଣ ତାଡ଼କାପ୍ରମୁଖ ଅନେକ ରାକ୍ଷସଙ୍କୁ ବଧ କରି, ସେଠାରୁ ମିଥିଲାର ଜନକ ରାଜାଙ୍କ ପାଳିତାକନ୍ୟା ସୀତାଙ୍କ ସ୍ୱୟମ୍ବରସଭାକୁ ଗଲେ । ସେଠାରେ ରାମଚନ୍ଦ୍ର ଶିବଧନୁ ଭାଙ୍ଗି ସୀତାଙ୍କୁ ବିବାହ କଲେ ଓ ଲକ୍ଷ୍ମଣ ଊର୍ମିଳାନାମ୍ନୀ ଜନକକନ୍ୟାଙ୍କୁ ବିବାହ କଲେ । ତତ୍ପରେ ଅଯୋଧ୍ୟାକୁ ଫେରି ଆସି ୧୨ ବର୍ଷ କାଳ ସୁଖରେ ରହିବା ପରେ ବିମାତାଙ୍କ ଚକ୍ରାନ୍ତରେ ରାମଚନ୍ଦ୍ର ୧୪ ବର୍ଷ ବନବାସ କରିବାକୁ ବାହାରିବା ସମୟରେ ତାଙ୍କ ସଙ୍ଗେ ସୀତା ଓ ଲକ୍ଷ୍ମଣ ବନଗାମୀ ହେଲେ । ଏହି ବନବାସ କାଳରେ ଲକ୍ଷ୍ମଣ ବ୍ରହ୍ମଚର୍ଯ୍ୟବ୍ରତ ଧାରଣ କରି ଦିନରାତି ଜାଗ୍ରତ ରହି ରାମଚନ୍ଦ୍ର ଓ ସୀତାଙ୍କ ସେବା କରୁଥାଆନ୍ତି ଓ ସେମାନଙ୍କୁ ଜଗିଥାଆନ୍ତି । ପଞ୍ଚବଟୀରେ ଥିବା ଅବସ୍ଥାରେ ରାବଣର ଭଉଣୀ ସୂର୍ପଣଖା ରାମଙ୍କ ପ୍ରଣୟାଭିଳାଷିଣୀ ହୋଇ ସୀତାଙ୍କୁ ଗିଳିଦେବାକୁ ଉଦ୍ୟତା ହେବାରୁ ଲକ୍ଷ୍ମଣ ତାହାର ନାକକାନ କାଟି ପକାଇଲେ ଓ ତାହାର ପ୍ରରୋଚନାରେ ରାବଣ ଆସି ମାରୀଚ ନାମକ ରାକ୍ଷସକୁ ମାୟାରେ ସ୍ୱର୍ଣ୍ଣମୃଗ କରାଇ ସୀତାଙ୍କ ପ୍ରଲୋଭିତା କଲା । ସୀତାଙ୍କ ଅନୁରୋଧକ୍ରମେ ରାମଚନ୍ଦ୍ର ଉକ୍ତ ମାୟାମୃଗକୁ ମାରିବାକୁ ଗଲେ ଓ ଲକ୍ଷ୍ମଣଙ୍କୁ ସୀତାଙ୍କ ନିକଟରେ ଜଗାଇ ଦେଇ ଗଲେ । ଏହି ସମୟରେ ଉକ୍ତ ମାୟାମୃଗ ରାମଚନ୍ଦ୍ରଙ୍କ ଗଳାର ସ୍ୱରକୁ ଅନୁକରଣ କରି ହା ଲକ୍ଷ୍ମଣ ( ହେ ଲକ୍ଷ୍ମଣ ! ମୋତେ ରକ୍ଷାକର ) ବୋଲି ଡାକିବାରୁ, ସେହି ଡାକକୁ ସୀତା ରାମଚନ୍ଦ୍ରଙ୍କର ଆର୍ତ୍ତସ୍ୱର ବୋଲି ବିଚାରି, ଲକ୍ଷ୍ମଣଙ୍କୁ ତାଙ୍କ ଅନିଚ୍ଛା ଓ ନିଷେଧସତ୍ତ୍ୱେ ରାମଚନ୍ଦ୍ରଙ୍କ ଅନ୍ୱେଷଣ କରିବାକୁ ଅରଣ୍ୟକୁ ପଠାଇଲେ । ଏହି ଅବସରରେ ସୀତାଙ୍କ ରକ୍ଷକହୀନା ଦେଖି ରାବଣ ଆସି ଛଳ ଓ ବଳପୂର୍ବକ ସୀତାଙ୍କୁ ହରିନେଲା ।

ରାମ ଲକ୍ଷ୍ମଣ ଉକ୍ତ ମୃଗକୁ ମାରି ଫେରି ଆସି ସୀତାଙ୍କ ନ ପାଇ ଅନେକ ଖୋଜ ଖୋଜି ପରେ ଜଟାୟୁ ନାମକ ଗୃଧ୍ରଠାରୁ ସୀତାଙ୍କୁ ରାବଣ ନେଇ ଯାଇଥିବା ସମ୍ବାଦ ପାଇଲେ । ପରେ ରାମଚନ୍ଦ୍ର ବାନରରାଜ ସୁଗ୍ରୀବଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ କଲେ । ରାମ ଓ ଲକ୍ଷ୍ମଣ କପି ଓ ଭଲ୍ଲୁକମାନଙ୍କଦ୍ୱାରା ସମୁଦ୍ରକୁ ରାମେଶ୍ୱରଠାରେ ବନ୍ଧାଇ କପିସୈନ୍ୟସହ ଲଙ୍କାକୁ ଆକ୍ରମଣ କଲେ । ଏହି ଯୁଦ୍ଧରେ ରାବଣପୁତ୍ର ଇନ୍ଦ୍ରଜିତ୍ ପ୍ରଥମେ ଲକ୍ଷ୍ମଣଙ୍କ ନାଗପାଶରେ ବଦ୍ଧ କଲା । ଶେଷରେ ଲକ୍ଷ୍ମଣ ଇନ୍ଦ୍ରଜିତ୍‌କୁ ବଧ କରିବାରୁ, ରାବଣ ଶକ୍ତିଭେଦ କରି ଲକ୍ଷ୍ମଣଙ୍କୁ ସଂଜ୍ଞାହୀନ କଲା । ରାମଚନ୍ଦ୍ର ରାବଣକୁ ବଧ କରି ସୀତାଙ୍କୁ ଉଦ୍ଧାର କଲେ ଓ ସୀତା ଅଗ୍ନିପରୀକ୍ଷାଦ୍ୱାରା ନିଜର ସତୀତ୍ୱର ପ୍ରମାଣ ଦେଲେ ଓ ରାମ ଲକ୍ଷ୍ମଣ ସଙ୍ଗେ ଅଯୋଧ୍ୟାକୁ ଫେରିଲେ । କେତେକାଳ ପରେ ସୀତାଙ୍କ ଲଙ୍କାବାସ ଯୋଗୁଁ ତାଙ୍କ ସତୀତ୍ୱ ସମ୍ବନ୍ଧେ ପ୍ରଜାମାନେ ସନ୍ଦେହ କରୁଥିବା ଜନରବ ଶୁଣି ପ୍ରଜାରଞ୍ଜନାର୍ଥ ସୀତାଙ୍କୁ ଅରଣ୍ୟରେ ଛାଡ଼ିଦେଇ ଆସିବାକୁ ରାମ ଲକ୍ଷ୍ମଣଙ୍କୁ ଆଦେଶ ଦେଲେ । ବାଲ୍ମୀକି ମୁନିଙ୍କ ତପୋବନରେ ସୀତାଙ୍କ ଗର୍ଭରୁ ଲବ କୁଶ ନାମକ ଦୁଇଟି ଯମଜ ପୁତ୍ର ଜାତ ହେଲେ । କେତେକାଳ ପରେ ରାମଚନ୍ଦ୍ର ଅଶ୍ୱମେଧ ଯଜ୍ଞର ଆୟୋଜନ କରି ମୁକ୍ତ ଯଜ୍ଞାଶ୍ୱକୁ ଜଗିବା ଭାର ଲକ୍ଷ୍ମଣଙ୍କଠାରେ ଅର୍ପଣ କଲେ । ସେହି ଅଶ୍ୱକୁ ଲବ କୁଶ ଧରି ରଖିବାରୁ ଲକ୍ଷ୍ମଣଙ୍କ ସଙ୍ଗେ ଲବ କୁଶଙ୍କର ବିବାଦ ହେଲା । ପରେ ବାଲ୍ମୀକି ଆସି ଏ ବାଳକଦ୍ୱୟଙ୍କୁ ବୋଧସୋଧ କରାଇ ଯଜ୍ଞାଶ୍ୱକୁ ମୁକ୍ତ କଲେ । ତତ୍ପରେ ସୀତାଙ୍କୁ ଆଉଥରେ ନିଜର ସତୀତ୍ୱର ପରୀକ୍ଷାପାଇଁ ଅଗ୍ନିପରୀକ୍ଷା ଦେବା ନିମନ୍ତେ ରାମଚନ୍ଦ୍ର କହିବାରୁ ସୀତା ଏଥିରେ ଅସମ୍ମତା ହେଲେ ଓ ସୀତାଙ୍କ ପ୍ରାର୍ଥନାକ୍ରମେ ପୃଥିବୀ ଦୁଇଫାଳ ହୋଇ ଫାଟିଗଲା ଓ ସୀତା ଭୂଗର୍ଭରେ ଲୀନା ହେଲେ । ଏହା ପରେ ରାମଚନ୍ଦ୍ରଙ୍କ ଆଦେଶରେ ଲକ୍ଷ୍ମଣଙ୍କର ଦୁଇପୁତ୍ର [ଅଙ୍ଗଦ ଓ ଚନ୍ଦ୍ରକେତୁ] ଦୁଇଟି ସ୍ୱାଧୀନ ରାଜ୍ୟର ରାଜା ହେଲେ । ଇତି ମଧ୍ୟରେ ଦିନେ ରାମଚନ୍ଦ୍ର 'କାଳପୁରୁଷ' ସଙ୍ଗେ ନିର୍ଜନରେ କଥାବାର୍ତ୍ତା କରିବା ସମୟରେ ଲକ୍ଷ୍ମଣଙ୍କୁ ଦ୍ୱାରରକ୍ଷକ ରୂପେ ନିଯୁକ୍ତ କରିଥିଲେ । କାଳପୁରୁଷ ସଙ୍ଗେ କଥାବାର୍ତ୍ତା ହେଉଥିବା ସମୟରେ ଯେଉଁ ଲୋକ ସେଠାରେ ଯାଇ ପହଞ୍ଚିବ ତାକୁ ରାମଚନ୍ଦ୍ର ତ୍ୟାଗ କରିବେ ବୋଲି କାଳପୁରୁଷ ରାମଙ୍କୁ ସତ୍ୟ କରାଇଥିଲା । ଏହି ସମୟରେ ଦୁର୍ବାସା ଉପସ୍ଥିତ ହୋଇ ରାମଚନ୍ଦ୍ରଙ୍କ ସଙ୍ଗେ ଦେଖା କରିବାକୁ ବାହାରିବାରୁ ଲକ୍ଷ୍ମଣ ତାଙ୍କୁ ପ୍ରଥମେ ମନା କଲେ । ପରେ ଋଷି ଅଭିଶାପ ଦେବାକୁ ଉଦ୍ୟତ ହେବାରୁ ଅଗତ୍ୟା ଲକ୍ଷ୍ମଣ ଯାଇ ରାମଚନ୍ଦ୍ରଙ୍କୁ ଦୁର୍ବାସାଙ୍କ ଆଗମନ ବିଷୟ ଜଣାଇଲେ । ରାମଚନ୍ଦ୍ର ସତ୍ୟ ପାଳନ କରି ଲକ୍ଷ୍ମଣଙ୍କୁ ତ୍ୟାଗ କଲେ । ଲକ୍ଷ୍ମଣ ଅଯୋଧ୍ୟା ପରିତ୍ୟାଗ କରି ସରଯୂ କୂଳରେ ଯୋଗାବଲମ୍ବନପୂର୍ବକ ତନୁତ୍ୟାଗ କଲେ । ରାମାୟଣରେ ବର୍ଣ୍ଣିତ ଲକ୍ଷ୍ମଣଙ୍କର ଭ୍ରାତୃଭକ୍ତି ଅତୁଳନୀୟ ଓ ଅଦ୍ୟପର୍ଯ୍ୟନ୍ତ ଭ୍ରାତୃଭକ୍ତିର ଆଦର୍ଶରୂପେ ଭାରତରେ କଳ୍ପିତ । ] ୧୨ । (ନାମ) (ପୁଂ) ଦୁର୍ଯ୍ୟୋଧନଙ୍କ ଏକ ପୁତ୍ର—12. Name of a son of Durjyodhan. [ଦ୍ର—ମହାଭାରତ ଯୁଦ୍ଧର ତ୍ରୟୋଦଶ ଦିବସରେ ଏ ଅର୍ଜୁନତନୟ ଅଭିମନ୍ୟୁଙ୍କ ଦ୍ୱାରା ହତ ହୋଇଥିଲେ ।] ସଂ ବିଣ—୧ । ଶୋଭାଯୁକ୍ତ (ହ ଶ)—1. Beautiful. ୨ । ଚିହ୍ନଯୁକ୍ତ—2 Having marks (Apte) ୩ । ଶ୍ରୀ ବା ସମ୍ପତ୍ତି ଯୁକ୍ତ—3. Prosperous; thriving ( Apte ).

୪ । ଶୁଭସୂଚକ—4. Auspicious ( Apte ) ୫ । ଭାଗ୍ୟବାନ୍—5. Fortunate (Apte). ୬ । ପ୍ରଧାନ; ଶ୍ରେଷ୍ଠ ( ବ୍ୟକ୍ତି )—6. Chief; principal per son). (Apte) ଦେ. ବି—ଲୋକଙ୍କ ନାମ—A name given to a males.

ଲକ୍ଷ୍ମଣଫଳ—ସଂ. ବି (ବୈଦ୍ୟକ)—ବୃକ୍ଷବିଶେଷ—A kind of tree
Lakshmaṇaphaḷa [ ଦ୍ର—ଏହି ଗଛର ପତ୍ର, ଫୁଲ ଓ ଫଳ ଆକାରରେ ଆତ ସଦୃଶ । ପଣସ ଫଳ ଉପରେ ଯେଉଁପରି କଣ୍ଟାମାନ ଥାଏ ସେହିପରି ଟିକ ଟିକ କଣ୍ଟା ଏ ଫଳର ଚୋପାରେ ଥାଏ—ଦ୍ରବ୍ୟଗୁଣ କଳ୍ପଦ୍ରୁମ ।]

ଲକ୍ଷ୍ମଣ ମିଶ୍ର—ଦେ. ବି (ନାମ)—ଜନୈକ ପ୍ରାଚୀନ ଓଡ଼ିଆ କବି—
Lakshmaṇa miśra Name of an ancient poet.
[ଦ୍ର—ଏ କବି ପୁରୀ ଜିଲ୍ଲାର ଶାସନୀ ବ୍ରାହ୍ମଣ ଓ ସଂସ୍କୃତଜ୍ଞ ପଣ୍ଡିତ ଥିଲେ । ଓଡ଼ିଶାର ରାଜା ଗୌରକିଶୋର ଦେବଙ୍କ ସମୟରେ ସେ ଜୀବିତ ଥିଲେ ଓ 'ଶ୍ରୀକୃଷ୍ଣଲୀଳାମୃତ' ନାମକ ଗ୍ରନ୍ଥ ପ୍ରଣୟନ କରିଥିଲେ—ତାରିଣୀ ଚରଣ ସାହିତ୍ୟ ଇତିହାସ ।]

ଲକ୍ଷ୍ମଣ ସେନ—ଦେ. ବି—ବଙ୍ଗଦେଶର ଜନୈକ ରାଜା—
Lakshmaṇa sena Name of a king of Bengal.
लक्ष्मणसेन लक्ष्मणसेन [ଦ୍ର—ଏହି ନାମରେ ବଙ୍ଗ ଦେଶରେ ଦୁଇଜଣ ରାଜା ଥିଲେ। ପ୍ରଥମ ଲକ୍ଷ୍ମଣ ସେନ, ବଲ୍ଲାଳ ସେନଙ୍କ ପୁତ୍ର । ଏ ପରାକ୍ରମୀ ରାଜା ଥିଲେ । ଏହାଙ୍କ ନାମ ଅନୁସାରେ ଅଦ୍ୟାପି ମିଥିଳାରେ'ଲକ୍ଷ୍ମଣ ସମ୍ବତ୍' ବା 'ଲ°ସ' ନାମରେ ଗୋଟିଏ ଅବ୍ଦ ପ୍ରଚଳିତ ଅଛି । ୧୧୧୯ ଖ୍ରୀଷ୍ଟାବ୍ଦ (ଲକ୍ଷ୍ମଣ ସେନଙ୍କ ରାଜ୍ୟକାଳ)ରୁ ଏ ଅବ୍ଦର ଗଣନା ଆରମ୍ଭ ହୋଇଅଛି । ଏ ବିଦ୍ୱାନ୍ ଓ ବିଦ୍ୟୋତ୍ସାହୀ ଥିଲେ । ପ୍ରାଚୀନ ଗୌଡ଼ ନଗରର କିଛି ଦୂରରେ ଗଙ୍ଗାକୂଳରେ 'ଲକ୍ଷଣାବତୀ' ନାମରେ ଗୋଟିଏ ରାଜଧାନୀ ଏ ନିର୍ମାଣକରାଇଥିଲେ । ଏହି ଲକ୍ଷ୍ମଣ ସେନ ଖ୍ରୀ ୧୧୭୦ଠାରୁ ୧୨୦୧ପର୍ଯ୍ୟନ୍ତ ବଙ୍ଗଦେଶରେ ରାଜତ୍ୱ କରିଥିବା ଓ ପୁରୀଠାରେ ଜୟସ୍ତମ୍ଭ ସ୍ଥାପନ କରିଥିବା କୌଣସି କୌଣସି ବଙ୍ଗୀୟ ଅନୁଶାସନ ପତ୍ରରେ ଲେଖାଅଛି । ସେତେବେଳେ ଓଡ଼ିଶାରେ କେଶରୀବଂଶୀୟ ରାଜାମାନଙ୍କ ରାଜତ୍ୱର ଅସ୍ତକାଳ ଉପସ୍ଥିତ ହୋଇଥିଲା । ଦ୍ୱିତୀୟ ଲକ୍ଷ୍ମଣ ସେନ ଏହି ସେନ ବଂଶର ଶେଷ ରାଜା । ଏହାଙ୍କ ରାଜଧାନୀ ନବଦ୍ୱୀପ ଥିଲା । ଏହାଙ୍କ ଅମଳରେ ମୁସଲମାନ୍ ବକ୍ତିଆର ଖିଲିଜୀ ବଙ୍ଗଦେଶକୁ ଆକ୍ରମଣ କରି ବିନାଯୁଦ୍ଧରେ ଗୌଡ଼ (ବଙ୍ଗ)ଦେଶ ଅଧିକାର କଲେ । ଲକ୍ଷ୍ମଣ ସେନ ରାଜ୍ୟରୁ ପଳାଇଯାଇ ପୁରୀରେ ଶେଷ ଜୀବନ ଅତିବାହିତ କଲେ । ମୁସଲମାନ୍ ଐତିହାସିକମାନେ ଲେଖିଅଛନ୍ତି ଯେ, ଏ ଖ୍ରୀ ୧୨୦୩ ସାଲରେ ଓଡ଼ିଶାକୁ ପଳାଇ ଆସିଥିଲେ ।

ଲକ୍ଷ୍ମଣା—ସଂ ବି. ସ୍ତ୍ରୀ—(ଲକ୍ଷ୍ମଣ+ସ୍ତ୍ରୀ. ଆ)—୧ । ସାରସୀ; ହଂସୀ—
Lakshmaṇā 1. A duck ୨ । ଦୁର୍ଯ୍ୟୋଧନଙ୍କ ଏକ କନ୍ୟା—2. Name of a daughter of Durjyodhana. [ ଦ୍ର—ଏହାଙ୍କ ସ୍ୱୟମ୍ବର କାଳରେ କୃଷ୍ଣତନୟ ଶାମ୍ବ ଏହାଙ୍କୁ ହରଣ କରିଥିଲେ । କିନ୍ତୁ କୌରବମାନଙ୍କଦ୍ୱାରା ଶାମ୍ବ ପରାଜିତ ଓ ବନ୍ଦୀ ହେଲେ । ପରେ ବଳରାମ ତାଙ୍କୁ ମୁକ୍ତ କରାଇ ଲକ୍ଷ୍ମଣାଙ୍କ ସହିତ ଶାମ୍ବଙ୍କର ବିବାହ କରାଇଲେ । ] ୩। ମଦ୍ର ରାଜାଙ୍କ କନ୍ୟା ଓ ଶ୍ରୀକୃଷ୍ଣଙ୍କ ଅଷ୍ଟ ପଟ୍ଟମହିଷୀଙ୍କ ମଧ୍ୟରୁ ଏକତମା—3. One f the queens of Srikrushṇa. ୪। (ବୈଦ୍ୟକ)—ଲକ୍ଷଣାମୂଳ (ଦେଖ )—4. Lakshaṇāmūḷa (See). ୫ । ଶ୍ୱେତ କଣ୍ଟକାରୀ; ଅଙ୍କରାନ୍ତି—5. Solanum Xanthocarpum (plant). ସ. ବିଣ. ସ୍ତ୍ରୀ.—ସୁଲକ୍ଷଣଯୁକ୍ତା—(a female) Possessed of auspicious marks.

ଲକ୍ଷ୍ମଣା ମୂଳ—ସଂ. ବି.—(ବୈଦ୍ୟକ)—ଲକ୍ଷଣାମୂଳ (ଦେଖ)
Lakshmaṇā mūḷa Lakshaṇāmuḷa (See)

ଲକ୍ଷ୍ମା—ଗ୍ରା. ବି. ସ୍ତ୍ରୀ.—(ସଂ. ଲକ୍ଷ୍ମୀ)—ଲକ୍ଷ୍ମୀ (ଦେଖ)
Lakshmā ଲକ୍ଷମା(ମୀ)—ଅନ୍ୟରୂପ] Lakshmī (See)

ଲକ୍ଷ୍ମୀ——ସଂ. ବି. ସ୍ତ୍ରୀ—(ଲକ୍ଷ୍ ଧାତୁ=ଦର୍ଶନ କରିବା ଇତ୍ୟାଦି+
Lakshmī କର୍ମ, ଈ; ଜ୍ଞାପାତନ; ମ. ଆଗମ)—୧ । ମହାଲକ୍ଷ୍ମୀ; ସଂ· ନାମ—କମଳା, ପଦ୍ମାଳୟା, ବିଷ୍ଣୁଙ୍କର ଦୁଇ ପତ୍ନୀଙ୍କ ମଧ୍ୟରୁ ପଦ୍ମା, ଶ୍ରୀ, ହରିପ୍ରିୟା, ଇନ୍ଦିରା, ଜଣେ—1. Name of one ଲୋକମାତା, ମା, କ୍ଷୀରାବ୍ଧି- of the two wives of ତନୟା, ରମା, ଭାର୍ଗବୀ, God Bishṇu. [ଦ୍ର—ଲୋକଜନନୀ,କ୍ଷୀରସାଗର କନ୍ୟକା] ନାରାୟଣଙ୍କର ଦୁଇ ପତ୍ନୀ, ଲକ୍ଷ୍ମୀ ଓ କ୍ଷୀରୋଦତନୟା, ଜଳଧିଜା, ସରସ୍ୱତୀ । ଲକ୍ଷ୍ମୀ ପୃଥିବୀରେ ହରିବଲ୍ଲଭା । ସୌନ୍ଦର୍ଯ୍ୟ, ଶୋଭା, ଧନ, ଐଶ୍ୱର୍ଯ୍ୟ ଓ ସୌଭାଗ୍ୟର ଅଧିଷ୍ଠାତ୍ରୀ ଦେବୀ ବୋଲି ପ୍ରସିଦ୍ଧା । ଏହାଙ୍କ ବର୍ଣ୍ଣ, ଶ୍ୱେତଚମ୍ପକ ବା କାଞ୍ଚନ ଫୁଲ ବା ହସ୍ତିଦନ୍ତ ପରି, କଟି ଅତି ସୂକ୍ଷ୍ମ, ନିତମ୍ବ ବିଶାଳ ଓ ହାତ ୪ଟି ବୋଲି କଳ୍ପିତ । ଏ ଅତ୍ୟନ୍ତ ସୁନ୍ଦରୀ ଓ ସଦାଯୁବତୀ । ମହର୍ଷି ଭୃଗୁଙ୍କ ଔରସରେ ଖ୍ୟାତିଙ୍କ ଗର୍ଭରେ ଏ ଜନ୍ମଗ୍ରହଣ କରିଥିଲେ । ଦେବରାଜ ଇନ୍ଦ୍ରଙ୍କୁ ଦୁର୍ବାସା ଅଭିଶାପ ଦେବାରୁ ତ୍ରିଲୋକ ଶ୍ରୀହୀନ ହେଲା ଓ ଲକ୍ଷ୍ମୀ ସମୁଦ୍ର ତଳରେ ନିମଜ୍ଜିତା ହେଲେ । ପରେ ଦେବାସୁରମାନେ କ୍ଷୀର ସମୁଦ୍ରକୁ ମନ୍ଥନ କରିବାବେଳେ ଲକ୍ଷ୍ମୀ ସମୁଦ୍ର ମଧ୍ୟରୁ ବାହାରିଲେ । ନାରାୟଣଙ୍କ ଭିନ୍ନ ଭିନ୍ନ ଅବତାରରେ ଏ ଭିନ୍ନ ଭିନ୍ନ ରୂପରେ ଜନ୍ମଗ୍ରହଣ କରି ତାଙ୍କ ସ୍ତ୍ରୀ ହୋଇଅଛନ୍ତି । ଏ ସୀତା ରୂପରେ ପୃଥିବୀ ଗର୍ଭରୁ ବାହାରି ଜନକଙ୍କଦ୍ୱାରା ପାଳିତା ହୋଇ ରାମଚନ୍ଦ୍ରଙ୍କୁ ବିବାହ କରିଥିଲେ ଓ ପରେ ରୁକ୍ମିଣୀରୂପେ ଶ୍ରୀକୃଷ୍ଣଙ୍କୁ ବିବାହ କଲେ ।] ୨ । ରାମଚନ୍ଦ୍ରଙ୍କ ପତ୍ନୀ; ସୀତା—2. Sītā, the wife of Rama. ୩। ଶ୍ରୀ; ଶୋଭା; ସୌନ୍ଦର୍ଯ୍ୟ—3. Beauty; grace; splendour. ୪ । ଶ୍ରୀ; ଐଶ୍ୱର୍ଯ୍ୟ; ସମ୍ପତ୍ତି; ଧନ—4. Prosperity; riches; wealth. ୫ । ଶ୍ରୀ; ଭାଗ୍ୟ: ସୌଭାଗ୍ୟ—

5. Fortune; luck. ୬ । ଦୁର୍ଗା—6. Goddess Durgā. ୭ । ରାଜଶ୍ରୀ—7. The Deity said to preside over a king's prosperity; splendour attached to a king; kingly grandeour personified. ୮ । ଫଳଦା ବୃକ୍ଷ—8. A fruit-bearing tree. ୯ । ଶମୀ; ଶାଇଁ ଗଛ—9. The Spung tree; Prosopis Spicigera (tree). ୧୦। ସ୍ଥଳପଦ୍ମ—10. Jonidinam suffruticosum. ୧୧ । ବୀର ପତ୍ନୀ—11 The wife of a hero. ୧୨ । ହରିଦ୍ରା; ହଳଦୀ—12. Turmeric. ୧୩ । ଋଦ୍ଧି ନାମକ ମହୌଷଧ—13. A sort of rare medicinal root ୧୪ । ପ୍ରିୟଙ୍ଗୁ ବୃକ୍ଷ—14 Agalia Roxburghiana (tree). ୧୫ । ମୁକ୍ତା—15. Pearl. ୧୬ । ମୋକ୍ଷପ୍ରାପ୍ତି—16. Beatitude; salvation. ୧୭ । ଏକ ବର୍ଣ୍ଣବୃତ୍ତ ( ଏଥିର ପ୍ରତ୍ୟେକ ଚରଣରେ ୨ ରଗଣ, ୧ ଗୁରୁ, ଓ ୧ ଲଘୁ ଅକ୍ଷର ଥାଏ—ହି. ଶବ୍ଦସାଗର)—17. Name of a metre. ୧୮ । ଆର୍ଯ୍ୟାଛନ୍ଦର ୨୬ ପ୍ରକାରରୁ ଏକତମ (ହି. ଶ.)—18. Name of a variation of the Ārjyā metre. [ ଦ୍ର—ଏଥିର ପ୍ରତ୍ୟେକ ଚରଣରେ ୨୭ ଗୁରୁ ଓ ୩ ଲଘୁ ବର୍ଣ୍ଣ ଥାଏ—ହି. ଶ. ।] ୧୯ । ବୃଦ୍ଧି ନାମକ ମହୌଷଧ—(ହି. ଶ.)—19. Name of a rare herb. ୨୦ । ବୀର ସ୍ତ୍ରୀ (ହି. ଶ.)—20. A heroic or valiant woman. ୨୧ । ଗୃହ ସ୍ୱାମିନୀ (ହି. ଶ.)—21. The mistress of the house. ୨୨ । ପଦ୍ମ (ହି. ଶ.)—22. Lotus. ୨୩ । ଧଳା ତୁଳସୀ (ହି. ଶ.)—23. The white-leaved variety of the Holy Basil plant. ୨୪ । ମେଣ୍ଢାଶିଂଘୀ (ହି. ଶ.)—24. The screw tree; Gymnema Sylvestre. ଦେ. ବି—୧ । ସ୍ତ୍ରୀମାନଙ୍କ ନାମ—1. A name given to females. ୨ । (ପୁଂ.) ଲକ୍ଷ୍ମୀକାନ୍ତ, ଲକ୍ଷ୍ମୀଧର ଆଦି ପୁରୁଷଙ୍କ ଡାକ ନାମ—2. Name for calling Lakshmīkānta, Lakshmīdhara etc. ୩ । ସୁଲକ୍ଷଣଯୁକ୍ତା ଓ ସୌଭାଗ୍ୟବତୀ ସ୍ତ୍ରୀ—3. A lucky and graceful woman ୪ । ସତ୍ୟବାଦୀ ନିବାସୀ ଜଣୈକ ପଣ୍ଡାର କନ୍ୟା (ସତ୍ୟବାଦୀ ଗୋପୀନାଥ—ଦେଖ)—4. The name of the daughter of a Paṇḍā sebaka of the temple at Satyabādī (Sakhigopal) in the Puri district. [ଦ୍ର—ଦ୍ୱିଜ କନ୍ୟା ଲକ୍ଷ୍ମୀ ସ୍ନାନେ ପୁଣ୍ୟଶୀଳ, ସୌନ୍ଦର୍ଯ୍ୟ ଦେଖି ଗୁରୁ ରହିଲେ । ରାଧାନାଥ. ଚନ୍ଦ୍ରଭାଗା ।]

ଲକ୍ଷ୍ମୀ ଦେ. ବିଣ. (ସ୍ତ୍ରୀ)—ଲକ୍ଷ୍ମୀଙ୍କ ପରି ସୁନ୍ଦରୀ ଓ ସୁଲକ୍ଷଣା—
लक्ष्मी Fair and auspicious (girl).

ଲକ୍ଷ୍ମୀ ଅଂଶ—ଦେ. ବି. ( ସଂ ଲକ୍ଷ୍ମୀ+ଅଂଶ; ସଂ. ଲକ୍ଷ୍ମ୍ୟଂଶ )—ଲକ୍ଷ୍ମୀଙ୍କର Lakshmī amśa ଗୁଣ ବା ଚିହ୍ନ, ଲକ୍ଷ୍ମୀଙ୍କ ଦେବତ୍ୱ—The (ଲକ୍ଷ୍ମୀକଳା—ଅନ୍ୟରୂପ) marks of divinity of the লক্ষ্মীর অংশ Goddesss Lakshmī. (ଯଥା—ରୁକ୍ମିଣୀ ଓ लक्ष्मी अंश ସୀତା ଲକ୍ଷ୍ମୀ ଅଂଶରେ ଜନ୍ମିଥିଲେ ।)

ଲକ୍ଷ୍ମୀ ଅଂଶୀ—ଦେ. ବିଣ. ସ୍ତ୍ରୀ ଓ ପୁଂ—୧ । ଲକ୍ଷ୍ମୀଙ୍କ ଅଂଶ ବା କଳା Lakshmi amśī ଧାରଣ କରି ଜନ୍ମ ଗ୍ରହଣ କରିଥିବା ( ସ୍ତ୍ରୀ-ଲক্ষ্মী বন্ত ପୁରୁଷ);ଲକ୍ଷ୍ମୀଙ୍କ ଅସାଧାରଣ ଦେବତ୍ୱ ବିଶିଷ୍ଟା (ସ୍ତ୍ରୀ)—लछमी अंशी 1. (a person) Born under the auspices of Goddess Lakshmī or having the uncommon qualities of Lakshmī. ୨ । ସୌଭାଗ୍ୟବାନ୍—2. Fortunate; lucky (person).

ଲକ୍ଷ୍ମୀ ଉଦୟ ହେବା—ଦେ. ବି—କୌଣସି ବ୍ୟକ୍ତିର ସୌଭାଗ୍ୟୋଦୟ—Lakshmī udaya hebā Dawning or advent ভাগ্যোদয় लछमी उदय होना of good fortune.

ଲକ୍ଷ୍ମୀକ—ସଂ. ବିଣ ପୁଂ (ଲକ୍ଷ୍ମୀ+କ)—୧ । ଧନବାନ୍ (ହି. ଶ)—Lakshmīka 1. Rich. ୨ । ଭାଗ୍ୟବାନ୍ (ହି. ଶ)—(ଲକ୍ଷ୍ମୀକା—ସ୍ତ୍ରୀ) 2. Lucky.

ଲକ୍ଷ୍ମୀକର—ଦେ.ବିଣ (ସଂ. ଲକ୍ଷ୍ମୀକ)—ସୌଭାଗ୍ୟଯୁକ୍ତ—Fortunate; Lakshmī kara lucky. [ଦ୍ର—ଅଟନ୍ତି ଏ ସ୍ୱରହେଁ ଗୁରୁ ତାଙ୍କଙ୍କର ବଶିଷ୍ଠ ମହର୍ଷି ହୁଏ ଲକ୍ଷ୍ମୀକର । କୃଷ୍ଣସିଂହ ମହାଭାରତ, ଶାନ୍ତି ।]

ଲକ୍ଷ୍ମୀ କାନ୍ତ—ସ.ବି.ପୁଂ—(ଲକ୍ଷ୍ମୀ+କାନ୍ତ;୬ଷ୍ଠୀ ତତ୍)—୧ । ନାରାୟଣ; Lakshmī kānta ବିଷ୍ଣୁ—1. God Bishṇu. ୨ । ରାଜା—লক্ষ্মীকান্ত; लक्ष्मीकान्त 2. King. ଦେ.ବି. ପୁଂ—ଲୋକଙ୍କ ନାମ (ଲକ୍ଷ୍ମୀନାଥ—ଅନ୍ୟରୂପ) —A name given to males.

ଲକ୍ଷ୍ମୀ କାନ୍ଧରୁ ଖସିବା—ଦେ,ବି—ସୌଭାଗ୍ୟହୀନ ହେବା—Lakshmī kāndharu khasibā Becoming un-লক্ষ্মী ছেড়েযাওয়া lucky or poor; being reduced to लछमी कंधासे उतरना poverty. ( ପ୍ରୟୋଗ—ଅମୁକର କାନ୍ଧରୁ ଲକ୍ଷ୍ମୀ ଖସିଲେଣି) ।

ଲକ୍ଷ୍ମୀ କାନ୍ଧରେ ବସିବା—ଦେ. ବି—ସୌଭାଗ୍ୟ ଦ୍ୱାରା ବେଷ୍ଟିତ ହେବା—Lakshmī kāndhare basibā Dawning of লক্ষ্মীপ্রসন্ন হওয়া good fortune or prosperity. लछमी कन्धामे वैठना(रहना) ( ପ୍ରୟୋଗ—ଅମୁକର କାନ୍ଧରେ ଲକ୍ଷ୍ମୀ ବସିଲେଣି)
ଲକ୍ଷ୍ମୀକାନ୍ଧରେ ରହିବା } ଅନ୍ୟରୂପ
ଲକ୍ଷ୍ମୀକାନ୍ଧରେ ବାସ କରିବା }
[ଦ୍ର—ଲକ୍ଷ୍ମୀ କାନ୍ଧରେ ରହିବା ଯୋଗୁଁ କାଳିକେୟୁ । ଚନ୍ଦ୍ରଙ୍କ ଘର ଶୋଭା କଲେ ତାଙ୍କ କାୟୁ । କୃଷ୍ଣସିଂହ. ମହାଭାରତ. ବନ ।]

ଲକ୍ଷ୍ମୀଙ୍କ ବରପୁତ୍ର—ଦେ. ବି. ପୁଂ—ଲକ୍ଷ୍ମୀଙ୍କ ଦ୍ୱାରା ବିଶେଷ ଅନୁଗୃହୀତ Lakshmīṅka baraputra ବ୍ୟକ୍ତି; ଅତି ଧନୀ ବ୍ୟକ୍ତି—

লক্ষ্মীর বরপুত্র A favourite of Goddess Lakshmī; लक्ष्मीका वरपुत्र a very rich man.

**ଲକ୍ଷ୍ମୀ ଗୃହ**—ସଂ. ବି—(ଲକ୍ଷ୍ମୀ+ଗୃହ, ୬ଷ୍ଠୀ ତତ୍)—୧ । ରକ୍ତୋତ୍ପଳ—Lakshmī gṛuha 1. The red water lily. ୨ । ଯେଉଁ (ଲକ୍ଷ୍ମୀବସତି—ଅନ୍ୟରୂପ) ସ୍ଥାନ ଧନ ବା ସୌଭାଗ୍ୟରେ ପୂର୍ଣ୍ଣ ହୋଇଅଛି—2. A place which is the abode of wealth or prosperity.

**ଲକ୍ଷ୍ମୀ ଗୋଡ଼ ଦେବା**—ଦେ ବି—ଲକ୍ଷ୍ମୀ ପାଦ ଦେବା (ଦେଖ)—Lakshmī gorḍa debā Lakshmī pāda debā (See) লক্ষ্মী পাদেওয়া; लक्ष्मीपाओंदेना, लक्ष्मीपगदेना

**ଲକ୍ଷ୍ମୀଚ୍ୟୁତ**—ସଂ. ବିଣ—(୫ମୀ ତତ୍; ଲକ୍ଷ୍ମୀ+ଚ୍ୟୁତ)—ଶ୍ରୀଭ୍ରଷ୍ଟ; Lakshmīchyuta ଲକ୍ଷ୍ମୀଛଡ଼ା—Shorn of splendour (ଲକ୍ଷ୍ମୀଚ୍ୟୁତା—ସ୍ତ୍ରୀ) (ଲକ୍ଷ୍ମୀଚ୍ୟୁତ—ବି) or good fortune.

**ଲକ୍ଷ୍ମୀଛଡ଼ା**—ଦେ. ବିଣ—(ସଂ ଲକ୍ଷ୍ମୀ+ଭ୍ରଷ୍ଟ ବା ଚ୍ୟୁତ)—୧ । ଦୁର୍ଭାଗ୍ୟ; Lakshmīchharḍā ହତଭାଗ୍ୟ—1. Unfortunate. লক্ষ্মীছাড়া; विलटुआ; विलटाऊ ୨ । ହତଶ୍ରୀ, ଶ୍ରୀଚ୍ୟୁତ—2. (ଲକ୍ଷ୍ମୀ ଛଡ଼ୀ—ସ୍ତ୍ରୀ) Shorn of prosperity. ୩ । ଅତି ଦରିଦ୍ର—3. Very poor or destitute. ୪ । ଯେଉଁ ବ୍ୟକ୍ତିକୁ ସୌଭାଗ୍ୟ ତ୍ୟାଗ କରିଅଛି—4. A person abandoned by good fortune.

**ଲକ୍ଷ୍ମୀ ଛାଡ଼ିବା**—ଦେ. ବି—ଦୁର୍ଭାଗ୍ୟ ଓ ଦାରିଦ୍ର୍ୟ ଘୋଟିବା—Being Lakshmī chhārḍibā overtaken by misfortune লক্ষ্মীছাড়া लक्ष्मीछोड़ना or poverty. [ଦ୍ର—ଲକ୍ଷ୍ମୀ ଛାଡ଼ିଲେ ଲୋକର ଧନ, ପରିବାର, ସୌନ୍ଦର୍ଯ୍ୟ ଓ ଗୁଣ ଆଦି ସମସ୍ତ ନଷ୍ଟ ହୋଇଯାଏ; ତାକୁ ଦାରିଦ୍ର୍ୟ ଓ ବିପତ୍ତି ଘୋଟିଯାଏ । ପୁରାଣମତରେ କେତେଗୁଡ଼ିଏ ମନ୍ଦ କାର୍ଯ୍ୟ କଲେ ଲକ୍ଷ୍ମୀ ବିରକ୍ତ ହୋଇ ସେହି ବ୍ୟକ୍ତିକୁ ଛାଡ଼ି ଯାଆନ୍ତି । ଯଥା—ଗୁରୁବାର ଦିନ ଆମିଷ ଖାଇବା, ଭୂଇଁରେ ବୃଥା ଗାର କାଟିବା, ଦ୍ୱିସନ୍ଧ୍ୟାବେଳେ ଶୋଇବା; ଅଶୁଚ ରହିବା; ଅଇଁଠା ନ ଧୋଇବା; ଘରକୁ ନ ଓଳାଇବା । ଲକ୍ଷ୍ମୀ ଛାଡ଼ିବା କାର୍ଯ୍ୟମାନଙ୍କ ଉଲ୍ଲେଖ ନିମ୍ନଲିଖିତ ଉଦ୍ଭଟ ଶ୍ଳୋକରେ ମିଳେ—

"ଜାଡ୍ୟଂ ଚ୍ଛେଦସୁଣାନାଂ, ନଖଭୂମିଲିଖନଂ, ପାଦୟୋରଲ୍ପ ପୂଜା, ଦନ୍ତାନାମଲ୍ପ ଶୌଚଂ, ବସନମଳିନତା, ରୂକ୍ଷତା ମୂର୍ଦ୍ଧଜାନାଂ, ଦ୍ୱେସନ୍ଧ୍ୟେଶ୍ୱପିନିଦ୍ରା, ବିବସ ରତିରସଃ, ଗ୍ରାସହାସାତିରେକଃ । ସ୍ୱାଙ୍ଗେ ପୀଠେ ଚ ବାଦ୍ୟଂ ହରତି ଧନପତେଃ କେଶବସ୍ୟାପି ଲକ୍ଷ୍ମୀଂ ।"

**ଲକ୍ଷ୍ମୀ ଜନାର୍ଦ୍ଦନ**—ସଂ. ବି (ଲକ୍ଷ୍ମୀ+ଜନାର୍ଦ୍ଦନ)—୧ । ଲକ୍ଷ୍ମୀ ଓ ବିଷ୍ଣୁଙ୍କର Lakshmī janārdana ଯୁଗଳ ଅବତାର—1. The twin form of Lakshmī and Bishṇu. ୨ । ବିଶିଷ୍ଟ ଲକ୍ଷଣଯୁକ୍ତ ଶାଳଗ୍ରାମ ଶିଳା ବିଶେଷ—2. Name of a kind of Śālagrāma pebble containing certain peculiar marks. [ଦ୍ର—ଏହା ମେଘପରି ଶ୍ୟାମଳ । ଏ ଶିଳାରେ ଗୋଟିଏ ଦ୍ୱାର ବା ଛିଦ୍ର ଥାଏ । ଏହା ଦେହରେ ଏକ ପାଖରେ ଗୁରିଗୋଟି ଚକ୍ର ଓ ବନମାଳା ଚିହ୍ନ ଥାଏ । ]

**ଲକ୍ଷ୍ମୀ ଠାକୁରାଣୀ**—ଦେ. ବି. ସ୍ତ୍ରୀ—ମହାଲକ୍ଷ୍ମୀ; ଲକ୍ଷ୍ମୀଦେବୀ—Lakshmī ṭhākurāṇī The Goddess Lakshmī. লক্ষ্মী ঠাকুরাণী लक्ष्मीठाकुरानी

**ଲକ୍ଷ୍ମୀ ତନୟ**—ସଂ. ବି (ଲକ୍ଷ୍ମୀ+ତନୟ)—୧ । କାମଦେବ; ମଦନ—Lakshmī tanaya 1. The God Cupid. ୨ । ଅଶ୍ୱ—[ଲକ୍ଷ୍ମୀପୁତ୍ର, ଲକ୍ଷ୍ମୀନନ୍ଦନ—ଅନ୍ୟରୂପ] 2. Horse. ୩ । ଶ୍ରୀରାମଚନ୍ଦ୍ରଙ୍କର ଯମଜ ପୁତ୍ର ଦ୍ୱୟ ଲବ କୁଶ—3. Laba and Kuśa; the twin sons of Rāmachandra. ୪ । ଧନୀ ବ୍ୟକ୍ତି—4. A rich man. ୫ । ଗନ୍ଧର୍ବ ବିଶେଷ—5. Name of a Gandharba.

**ଲକ୍ଷ୍ମୀ ତାତ**—ସଂ. ବି. ପୁଂ (୬ଷ୍ଠୀ ତତ୍)—୧ । ସମୁଦ୍ର; (ସମୁଦ୍ର ମନ୍ଥନରୁ Lakshmī tāta ଲକ୍ଷ୍ମୀ ବାହାରିଥିବାରୁ)—1. Ocean. ୨ । ଭୃଗୁ ଋଷି—2. Sage Bhṛugu.

**ଲକ୍ଷ୍ମୀ ତାଳ**—ସଂ. ବି—୧ । ସଙ୍ଗୀତରେ ୧୯ ମାତ୍ରାର ଏକ ତାଳ—Lakshmī tāḷa 1. Name of a musical measure. [ଦ୍ର—ଏଥିରେ ୧୬ ଆଘାତ ଓ ୩ ଶୂନ୍ୟ ଥାଏ (ସ୍ତ୍ରୁ.ଶ)। ] ୨ । ଏକପ୍ରକାର ତାଳ ବୃକ୍ଷ—2. A kind of palm tree.

**ଲକ୍ଷ୍ମୀ ତ୍ୟାଗ**—ସଂ. ବି (୬ଷ୍ଠୀ ତତ୍; ଲକ୍ଷ୍ମୀ+ତ୍ୟାଗ)—ସୌଭାଗ୍ୟର Lakshmī tyāga ବିନାଶ—Loss of fortune or prosperity.

**ଲକ୍ଷ୍ମୀ ଦାସ**—ସଂ.ବି (ନାମ)—ସୂର୍ଯ୍ୟସିଦ୍ଧାନ୍ତର ଟୀକା ଓ ଚନ୍ଦ୍ରମାନ ନାମକ Laksmīdāsa ଜ୍ୟୋତିଷ ଗ୍ରନ୍ଥର ପ୍ରଣେତା (ଶକାବ୍ଦ ୧୬ଶ ଶତାବ୍ଦୀ)—Name of the author of a commentary on Sūrjyasiddhānta and of an astronomical treatise, Chāndramāna.

**ଲକ୍ଷ୍ମୀ ଦେବୀ**—ସଂ. ବି—ଲକ୍ଷ୍ମୀ (ଦେଖ)—Lakshmī debi Lakshmī. (See) [ଦ୍ର—ଏ ଚତୁର୍ଭୁଜା, ପଦ୍ମାସନା ଓ ଶୁକ୍ଳହସ୍ତି ଦ୍ୱୟ ବେଷ୍ଟିତା; ପଦ୍ମଶଙ୍ଖଧୃତକରା ରୂପରେ ପୂଜିତା । ]

**ଲକ୍ଷ୍ମୀଧର**—ସଂ. ବି (ଲକ୍ଷ୍ମୀ+ଧୃ ଧାତୁ=ଧରିବା+କର୍ତ୍ତୃ. ଅ)—୧।ବିଷ୍ଣୁ—Lakshmīdhara 1. Bishṇu. ୨ । ସ୍ରଗ୍ୱିଣୀ ଛନ୍ଦର ଅନ୍ୟ লক্ষ্মীধর ନାମ—2. Another name of the Sanscrit लक्ष्मीधर metre Sragbiṇi. ଦେ.ବି. ପୁଂ—ପୁରୁଷଙ୍କ ନାମ—A name given to males.

**ଲକ୍ଷ୍ମୀଧର ଦାସ**—ଦେ. ବି (ନାମ)—ଜଣେକ ପ୍ରାଚୀନ ଉତ୍କଳୀୟ କବି—Laksmīdhara dāsa Name of a classical Oriya author. [ଦ୍ର—ଏ କବି, 'ଅଙ୍ଗଦପଡ଼ି' ନାମକ ଗ୍ରନ୍ଥ ଲେଖିଥିଲେ ।]

**ଲକ୍ଷ୍ମୀଧର ମିଶ୍ର**—ଦେ. ବି (ନାମ)—ଜଣେକ ପ୍ରାଚୀନ ଓଡ଼ିଆ କବି—Lakshmīdhara misra Name of a classical Oriya

poet. [ଦ୍ର—ଏ ୨୦୦ବର୍ଷ ପୂର୍ବର କବି, 'ଶୈବକଲ୍ପଦ୍ରୁମ' ଏହାଙ୍କ ରଚିତ ଗ୍ରନ୍ଥ । ଜଗବନ୍ଧୁ ପ୍ରାଚୀନ ଉତ୍କଳ । ]

**ଲକ୍ଷ୍ମୀ ନବମୀ**—ସଂ. ବି—ସୀତାନବମୀ; ବୈଶାଖ ଶୁକ୍ଳ ନବମୀ—Lakshmī nabamī The ninth day of the bright lunar fortnight of the month of Baiśākha on which day Sita was found out from the furrow. [ଦ୍ର—ସୀତା ବୈଶାଖ ଶୁକ୍ଳନବମୀ ଗୁରୁବାର ଦିନ ପୃଥିବୀରେ ଅବତୀର୍ଣ୍ଣା ହୋଇଥିଲେ, ଅର୍ଥାତ୍ ଲଙ୍ଗଳ ଶିଆରୁ ସଂଗୃହୀତ ହୋଇଥିଲେ ।]

**ଲକ୍ଷ୍ମୀ ନରସିଂହ**—ସଂ. ବି (ଦ୍ୱନ୍ଦ୍ୱ) (ଲକ୍ଷ୍ମୀ+ନରସିଂହ)—୧ । ଲକ୍ଷ୍ମୀ ଓ Lakshmī narasiṁha ବିଷ୍ଣୁଙ୍କ ଯୁଗଳ ସମାବେଶ —1. The (ଲକ୍ଷ୍ମୀନୃସିଂହ—ଅନ୍ୟ ନାମ) twin form of Lakshmī and Bishṇu, ୩ । ବିଶେଷ ଲକ୍ଷଣଯୁକ୍ତ ଶାଳଗ୍ରାମ ଶିଳା—2, Name of a sort of Śālagrāma. [ଦ୍ର—ଏଥିରେ ଦୁଇଟି ଚକ୍ର ଓ ଏକ ବନମାଳା ଚିହ୍ନ ଥାଏ; ଆକୃତି ବର୍ତ୍ତୁଳ; ଏ ଶାଳଗ୍ରାମ 'ଗୃହସ୍ଥଙ୍କ ପକ୍ଷରେ ଅତ୍ୟନ୍ତ ଶୁଭକର । ]

**ଲକ୍ଷ୍ମୀ ନାରାୟଣ**—ସଂ.ବି (ଦ୍ୱନ୍ଦ୍ୱ) (ଲକ୍ଷ୍ମୀ+ନାରାୟଣ)—୧ । ଲକ୍ଷ୍ମୀ ଓ Lakshmī nārāyaṇa ନାରାୟଣଙ୍କ ଯୁଗଳମୂର୍ତ୍ତି—1. The twin form of Lakshmī and Nārāyaṇa ୨ । ଶାଳଗ୍ରାମ ବିଶେଷ—2. A species of Śālagrāma. [ଦ୍ର—ଏହାର ବର୍ଣ୍ଣ ମେଘର ବର୍ଣ୍ଣପରି; ଗୋଷ୍ପଦ ଦ୍ୱାର ବା ଛିଦ୍ର; ଏକ ପାଖରେ ଗୁପ୍ତେଷ୍ଟ ଚକ୍ର, ବନମାଳା ଓ ଗୋଷ୍ପଦ ଚିହ୍ନ ଥାଏ ।] ଦେ. ବି. ପୁଂ—ପୁରୁଷଙ୍କ ନାମ—A name given to males.

**ଲକ୍ଷ୍ମୀନାରାୟଣ ପୂଜା**—ସଂ. ବି—ଶୁକ୍ଳ ଏକାଦଶୀ ଦିନ ଗୁରୁବାର ପଡ଼ିଲେ Lakshminārāyaṇa (Pūjā) ସେହିଦିନ କରାଯିବା ଲକ୍ଷ୍ମୀଙ୍କର ଓ (ଲକ୍ଷ୍ମୀନାରାୟଣ ବ୍ରତ) ନାରାୟଣଙ୍କ ପୂଜା—Worship of Lakshmī and Nārāyaṇa if a Thursday falls on the 11th day of a bright lunar fortnight.

**ଲକ୍ଷ୍ମୀନିଧି**—ସଂ.ବିଣ (ନାମ)—ରାଜା ଜନକଙ୍କ ପୁତ୍ର (ହି. ଶ)—Name Lakshmīnidhi of the son of King Janaka.

**ଲକ୍ଷ୍ମୀପତି**—ସଂ. ବି—(୬ଷ୍ଠୀ ତତ୍) ୧ । ବିଷ୍ଣୁ—1. Bishṇu. ୨ । Lakshmīpati ଲବଙ୍ଗ ବୃକ୍ଷ—2. The clove tree. [ଲକ୍ଷ୍ମୀବଲ୍ଲଭ, ଲକ୍ଷ୍ମୀରମଣ—ଅନ୍ୟରୂପ] ୩ । ଗୁବାକ ବୃକ୍ଷ—3. The areca nut tree. ୪ । ରାଜା (ହି.ଶ)—4. King (Apte).

**ଲକ୍ଷ୍ମୀ ପାକ**—ସଂ. ବି—(୬ଷ୍ଠୀ ତତ୍, ଲକ୍ଷ୍ମୀ+ପାକ)—ଲକ୍ଷ୍ମୀ ଠାକୁରାଣୀ Lakhshmī pāka ବିଷ୍ଣୁଙ୍କ ପାଇଁ ରନ୍ଧନଥିବା ପାକ ସାମଗ୍ରୀ ପରି ବହୁ ଉପାଦେୟ ସୁଖାଦ୍ୟମାନ—Very excellent cooking or delicious food, as if it were cooked by Lakshmī). [ଦ୍ର—ପ୍ରବାଦ ଅଛି ଯେ—ଲକ୍ଷ୍ମୀଙ୍କ ପାକରେ ଷଡ଼ରସଯୁକ୍ତ ସମସ୍ତ ଖାଦ୍ୟ ପ୍ରସ୍ତୁତ ହୁଏ ଓ ତାହା ଅତି ଉପାଦେୟ । ପୁରାଣରେ ଅଛି ଯେ—ଲକ୍ଷ୍ମୀ ପାକ କରିଥିବା ହାଣ୍ଡିରୁ ଅନ୍ନବ୍ୟଞ୍ଜନାଦି ଲକ୍ଷ ଲକ୍ଷ ଲୋକଙ୍କୁ ବିତରଣ କରାଗଲେ ମଧ୍ୟ, ସେ ହାଣ୍ଡି ଅସରନ୍ତି ହୋଇ ରହିଥାଏ । ଏଥିପାଇଁ ଷଡ଼ରସ ଯୁକ୍ତ ଉପାଦେୟ ବହୁ ପରିମିତ ପକ୍ୱାନ୍ନକୁ ଲୋକେ ଲକ୍ଷ୍ମୀପାକ କହନ୍ତି ।]

लक्ष्मीपाक लक्ष्मीपाक ଦେ. ବିଣ (ସଂ. ଲକ୍ଷ୍ମୀପକ୍ୱ)—୧ । ଲକ୍ଷ୍ମୀଙ୍କ ଦ୍ୱାରା ରନ୍ଧା ହୋଇଥିବା—1. Cooked by Goddess Lakshmī. ୨ । ଖୁବ୍ ସରସ ଓ ସୁଖାଦ୍ୟ (ଅନ୍ନାଦି)—2. Very delicious and juicy (cooked food)

**ଲକ୍ଷ୍ମୀପାଟ**—ଦେ. ବି—(ସଂ ଲକ୍ଷ୍ମୀ+ପଟ୍ଟ)—ଦେଉଳର ଦୁଆର ବନ୍ଧ Lakshmī pāta ଉପରେ ପ୍ରଥିତ ପଡ଼ିବା ଲମ୍ବା ପଥର—लक्ष्मीपाट पत्थरकाचौकठ A slab of stone laid above the door frame of a temple.

**ଲକ୍ଷ୍ମୀପାଦ**—ଦେ. ବି—୧ । ସ୍ତ୍ରୀଲୋକମାନେ ଘରର ତଳେ ଚିତା ବା Lakshmipāda ପିଠଉ ପାଣି ଦ୍ୱାରା ଅଙ୍କିତ କରିବା ଲକ୍ଷ୍ମୀଙ୍କର କଳ୍ପିତ ପାଦ ଚିହ୍ନଦ୍ୱୟ—1, The picture of foot marks drawn on the ground or floor representing the foot prints of Goddess Lakshmī. ୨ । ସୁଲକ୍ଷଣଯୁକ୍ତ ଓ ସୁନ୍ଦର ପାଦ—2. Graceful foot. ୩ । ଯେଉଁ ବ୍ୟକ୍ତିର ଆଗମନ ଯୋଗୁଁ କୌଣସି ସ୍ଥାନରେ ସୌଭାଗ୍ୟର ଉଦୟ ହୁଏ, ସେହିପରି ଭାଗ୍ୟବାନ୍ ପୁରୁଷ ବା ଭାଗ୍ୟବତୀ ସ୍ତ୍ରୀର ଗୋଡ଼—3. The feet of a person whose advent at a place is accompanied with the dawning of prosperity. [ ଦ୍ର—ଲୋକବିଶ୍ୱାସ ଯେ—ଲକ୍ଷ୍ମୀବନ୍ତ ପୁରୁଷ ବା ଲକ୍ଷ୍ମୀବତୀ ସ୍ତ୍ରୀଙ୍କର ପାଦ ଯେଉଁ ସ୍ଥାନରେ ପଡ଼େ, ସେ ସ୍ଥାନର ସୌଭାଗ୍ୟ ବୃଦ୍ଧି ହୁଏ; ଓ ଲକ୍ଷ୍ମୀଛଡ଼ା ଲୋକଙ୍କ ପାଦ ପଡ଼ିଲେ ସେ ସ୍ଥାନରୁ ସୌଭାଗ୍ୟ ନାଶ ହୁଏ । ଏଥିପାଇଁ ଢଗ ଅଛି—"ପାଦକେ ଶିରୀ, ପାଦକେ ହତଶିରୀ" । କୌଣସି ପରିବାରରେ ଗୋଟିଏ ସନ୍ତାନ ଜନ୍ମିଲେ ବା ନବବଧୂ ଆସିଲେ, ସେ ପରିବାରର ସୌଭାଗ୍ୟ ବୃଦ୍ଧି ହେବାର ଦେଖି ଲୋକେ କହନ୍ତି ଯେ, ତା ଘରେ ଲକ୍ଷ୍ମୀ ପାଦ ପଡ଼ିଲା, ଅର୍ଥାତ୍ ଉକ୍ତ ବ୍ୟକ୍ତିର ଘରେ ଲକ୍ଷ୍ମୀ ପାଦ ପଡ଼ିବାରୁ ତାହାର ଶ୍ରୀବୃଦ୍ଧି ହେଲା ।]

**ଲକ୍ଷ୍ମୀ ପାଦ ଦେବା**—ଦେ. ବି—କୌଣସି ବ୍ୟକ୍ତିର ଆଗମନ ସଙ୍ଗେ Lakshmī pāda debā ସଙ୍ଗେ କୌଣସି ସ୍ଥାନର ସୌଭାଗ୍ୟ ଉଦୟ ହେବା—The drawing of prosperity at a place on the advent of a particular person.
ଲକ୍ଷ୍ମୀ ପାଦ ପକା(କେ)ଇବା } —ଅନ୍ୟରୂପ
ଲକ୍ଷ୍ମୀଙ୍କ ପାଦ ପଡ଼ିବା }
लक्ष्मी पाद देओया
लक्ष्मी पाद(पग,पैर) देना

**ଲକ୍ଷ୍ମୀ ପାଦୁକା**—ପ୍ରାଦେ. (ଗଡ଼ଜାତ) ବି—ବନ୍ୟ ଝାମ୍ପୁଡ଼ା ବୃକ୍ଷବିଶେଷ; Lakshmī pādukā ଗୋଲ୍ଡବାଣ ଗଛ?—A wild bushy tree. [ ଦ୍ର—ଏହାର ଅଗସ୍ତି ଡାଳପରି ଡାଳ, ପତ୍ର କଇଁ ପତ୍ରପରି, ଏହାର ଫୁଲ ନାଲି ଓ ଧଳା ମିଶା । ଏଥିର କେଶର କାଣ୍ଡ ଲମ୍ବା ହୋଇ ପାଖୁଡ଼ା ମଧ୍ୟରୁ ବାହାରି ଥାଏ । ]

**ଲକ୍ଷ୍ମୀପୁରୁଷ**—ଦେ. ବି (ସଂ. ଲକ୍ଷ୍ମୀବାନ୍+ପୁରୁଷ)—୧ । ଲକ୍ଷ୍ମୀବନ୍ତ Lakshmīpurusha ବ୍ୟକ୍ତି; ସୌଭାଗ୍ୟଶାଳୀ ବ୍ୟକ୍ତି—1. A লক্ষ্মীপুরুষ lucky or fortunate man. ୨ । ସୁଲକ୍ଷଣଯୁକ୍ତ लछमीपुरुष ବ୍ୟକ୍ତି—2. A person possessing auspicious marks.

**ଲକ୍ଷ୍ମୀପୁଷ୍ପ**—ସଂ. ବି—୧ । ପଦ୍ମରାଗ ମଣି—1. Ruby. Lakshmīpushpa ୨ । ପଦ୍ମ (ହି. ଶ)—2. Lotus.

**ଲକ୍ଷ୍ମୀ ପୂଜା**—ସଂ. ବି (୬ଷ୍ଠୀ ତତ୍; ଲକ୍ଷ୍ମୀ+ପୂଜା)—୧ । କୁମାରପୂର୍ଣ୍ଣିମା Lakshmī pūjā ବା ଆଶ୍ୱିନପୂର୍ଣ୍ଣିମା ରାତିରେ ନାରିକେଳ (ଲକ୍ଷ୍ମୀବ୍ରତ—ଅନ୍ୟରୂପ) ଚିପିଟିକାଦି ନୈବେଦ୍ୟଦ୍ୱାରା ଲକ୍ଷ୍ମୀ ଦେବୀଙ୍କର ପୂଜା- 1. The worship of Goddess Lakshmī on the night of the fullmoon of Āświna. ୨ । ଧନ ଓ ସୌଭାଗ୍ୟବୃଦ୍ଧି ପାଇଁ ପ୍ରତି ଗୁରୁବାର ଦିନ ଓ ବିଶେଷତଃ ମାର୍ଗଶିର ମାସ ଗୁରୁବାର ଦିନ ଗୋଟିଏ ପୀଢ଼ା ଉପରେ ଶୁକ୍ଳ ଧାନ୍ୟକୁ ମାଣରେ ବା ଚୌଣିରେ ପୂର୍ଣ୍ଣ କରି ରଖି ବସ୍ତ୍ରାଳଙ୍କାର ଭୂଷିତ କରି ତାକୁ ଲକ୍ଷ୍ମୀରୂପେ କଳ୍ପନା କରି ତାଙ୍କ ପୂଜା ଓ ଯାହାଙ୍କ ଘରେ ଲକ୍ଷ୍ମୀପ୍ରତିମା ଥାଆନ୍ତି ତାଙ୍କୁ ସେ ଦିନ କରାଯିବା ବିଶିଷ୍ଟ ପୂଜା—2. Worship of Goddess Lakshmī on Thursdays and specially on the Thursdays of Mārgaśira. ୩ । କୌଣସି ମାସର ଶୁକ୍ଳଦଶମୀ ଦିନ ଗୁରୁବାର ପଡ଼ିଲେ ସେ ଦିନ କରାଯିବା ଲକ୍ଷ୍ମୀଙ୍କର ପୂଜା; ସୁଦଶା ବ୍ରତ—3. Worship of Lakshmī on the tenth day of a bright lunar fortnight of any month if it falls on a Thursday. ୪ । ଶୁକ୍ଳ ପଞ୍ଚମୀ ଦିନ ଗୁରୁବାର ପଡ଼ିଲେ ସେ ଦିନ କରାଯିବା ଲକ୍ଷ୍ମୀପୂଜା; ଗୁରୁପଞ୍ଚମୀ ବ୍ରତ—4. Worship of Lakshmī on the fifth day of the bright lunar fortnight of a month if it falls on a Thursday. ୫ । କାର୍ତ୍ତିକ ଅମାବାସ୍ୟା ରାତିରେ କରାଯିବା ଲକ୍ଷ୍ମୀଙ୍କ ପୂଜା—5. Worship of Goddess Lakshmī on the new moon night of Kārttika.

**ଲକ୍ଷ୍ମୀ ପ୍ରସନ୍ନ(ନ୍ନା) ହେବା**—ଦେ. କ୍ରି (ଅଶୀକରଣ) (ସଂ. ଲକ୍ଷ୍ମୀ, ପ୍ରସନ୍ନ)— Lakshmī prasanna(nnā) hebā লক্ষ্মী প্রসন্নহওয়া ଲକ୍ଷ୍ମୀ ବୃଦ୍ଧି ହେବା—Increase of prosperity. लछमी प्रसन्नहोना [ଲକ୍ଷ୍ମୀ ବରଦା ହେବା, ଲକ୍ଷ୍ମୀ ବରଦାଏ (ଇ,ଯୀ) ହେବା, ଲକ୍ଷ୍ମୀବରଦାତ (ଏ,ଯୀ)କ ହେବା, ଲକ୍ଷ୍ମୀ ବରଦାୟୀ(ଯି,ୟୀ)ନୀ ହେବା—ଅନ୍ୟରୂପ]

**ଲକ୍ଷ୍ମୀ ଫଳ**—ସଂ. ବି—ବିଲ୍ୱ ବୃକ୍ଷ ଓ ଫଳ; ଶ୍ରୀଫଳ— Lakshmī phaḷa The Bilwa tree and fruit; Aegle Marmelos.

**ଲକ୍ଷ୍ମୀ ବଢ଼ିବା**—ଦେ. କ୍ରି—ଲକ୍ଷ୍ମୀ ବୃଦ୍ଧି— Lakshmī baṛhibā Increase of prosperity. লক্ষ্মীবাড়া लछमी बढना

**ଲକ୍ଷ୍ମୀବନ୍ତ(ନ୍ତା)**—ଦେ. ବିଣ. ପୁଂ ଓ ସ୍ତ୍ରୀ (ସଂ. ଲକ୍ଷ୍ମୀବତ୍)-ଭାଗ୍ୟବାନ୍— Lakshmībanta(ntā) Fortunate; lucky. (ଲକ୍ଷ୍ମୀବନ୍ତୀ—ସ୍ତ୍ରୀ) লক্ষ্মীমন্ত लछमीवंत, लक्ष्मीवंत

**ଲକ୍ଷ୍ମୀ ବର**—ସଂ. ବି (୬ଷ୍ଠୀ ତତ୍)—୧। ବିଷ୍ଣୁ—1. Bishṇu. ୨ । Lakshmībara ଲକ୍ଷ୍ମୀଙ୍କ ପ୍ରଦତ୍ତ ବର—2. Boon granted by Lakshmī.

**ଲକ୍ଷ୍ମୀ ବସା(ସେ)ଇବା**—ଦେ. କ୍ରି—ଲକ୍ଷ୍ମୀ ପୂଜା ନିମନ୍ତେ ଲକ୍ଷ୍ମୀଦେବୀଙ୍କ Lakshmī basā(se)ibā ପ୍ରତିମା ବା ଶୁକ୍ଳଧାନ୍ୟପୂର୍ଣ୍ଣ ମାଣକୁ লক্ষ্মী বসান, লক্ষ্মীপাতা ବସ୍ତ୍ରାଳଙ୍କୃତ କରି ପୀଠ ଉପରେ ସ୍ଥାପନ लछमी बसाना କରିବା—To set up the image of Lakshmī on a plat-form or wooden seat for worship.

**ଲକ୍ଷ୍ମୀବାନ୍**—ସଂ. ବିଣ ପୁଂ. (ଲକ୍ଷ୍ମୀ+ଅସ୍ତି ଅର୍ଥରେ ମତ୍, ୧ମା. ୧ବ)— Lakshmībān ୧ । ଭାଗ୍ୟବାନ୍—1. Fortunate; (ଲକ୍ଷ୍ମୀବତୀ—ସ୍ତ୍ରୀ) lucky. ୨ । ସୌଭାଗ୍ୟଯୁକ୍ତ; ଶ୍ରୀମନ୍ତ—2. Prosperous. ୩ । ସୁଲକ୍ଷଣଯୁକ୍ତ; ଶୁଭ ଲକ୍ଷଣଯୁକ୍ତ- . Auspicious. ୪ । ଐଶ୍ୱର୍ଯ୍ୟଶାଳୀ; ଧନୀ—4. Very rich; wealthy; affluent. ସଂ. ବି. ପୁଂ—୧ । ପନସ ବୃକ୍ଷ—1. Jack fruit tree. ୨ । ରୋହିତ ବୃକ୍ଷ—2. Andersonia Rohitaka (tree). ୩ । ଅଶ୍ୱତ୍ଥ ବୃକ୍ଷ—3. The religious fig tree. ୪ । ବିଷ୍ଣୁ—4. Bishṇu.

**ଲକ୍ଷ୍ମୀ ବାସର**—ସଂ. ବି. (ଲକ୍ଷ୍ମୀ+ବାସର)—ଗୁରୁବାର—Thursday. Lakshmī bāsara [ଦ୍ର—ଏ ଦିନ ଲକ୍ଷ୍ମୀ ଦେବୀଙ୍କର ପୂଜା (ଲକ୍ଷ୍ମୀବାର—ଅନ୍ୟରୂପ) ହୁଏ ।]

**ଲକ୍ଷ୍ମୀ ବାହନ**—ସଂ. ବି. (ଲକ୍ଷ୍ମୀ+ବାହନ; ୬ଷ୍ଠୀ ତତ୍)—ପେଚକ— Lakshmī bāhana The owl.

**ଲକ୍ଷ୍ମୀ ବିଜେ କରିବା**—ଦେ. କ୍ରି—କୌଣସି ବ୍ୟକ୍ତିର ସୌଭାଗ୍ୟ ଉଦୟ Lakshmī bije karibā ହେବା—The dawning of ভাগ্য উদয় হওয়া prosperity in the case of a लछमी पधारना person.

**ଲକ୍ଷ୍ମୀ ବିଳାସ**—ସଂ. ବି. (ଲକ୍ଷ୍ମୀ+ବିଳାସ)—୧ । (ବୈଦ୍ୟକ) କବିରାଜ Lakshmī biḷāsa ତୈଳ ବିଶେଷ—1. Name of medicated oil. ୨ । ଜ୍ୱରଘ୍ନ ବଟିକା ବିଶେଷ—2. Name of a febrifuge pill. ପ୍ରାଦେ. (ପୁରୀ) ବି—ଗୋଲ୍ଡବାଣ (ଫୁଲ ଓ ଗଛ)—A kind of flower and tree.

ଲକ୍ଷ୍ମୀ ବହୀନ—ସଂ. ବଣ. (୩ୟା ତତ୍; ଲକ୍ଷ୍ମୀ+ବହୀନ)—୧ । ଶ୍ରୀହୀନ; Laksmi bihina ଶୋଭାହୀନ—1. Shorn of grace or (ଲକ୍ଷ୍ମୀହୀନ—ଅନ୍ୟରୂପ) beauty. ୨ । ହତଭାଗ୍ୟ—2. Unfortunate. ୩ । ନିର୍ଧନ— (ଲକ୍ଷ୍ମୀବହୀନା, ଲକ୍ଷ୍ମୀହୀନା—ସ୍ତ୍ରୀ) (ଲକ୍ଷ୍ମୀବହୀନତା, ଲକ୍ଷ୍ମୀହୀନତା—ବ) 3. Poor.

ଲକ୍ଷ୍ମୀ ବୃଦ୍ଧି—ସଂ. ବ. (୬ଷ୍ଠୀ ତତ୍; ଲକ୍ଷ୍ମୀ+ବୃଦ୍ଧି)—ଶ୍ରୀବୃଦ୍ଧି, ସୌଭାଗ୍ୟ-Lakshmi bruddhi ବୃଦ୍ଧି—Increase of prosperity or riches

ଲକ୍ଷ୍ମୀ ବେଷ୍ଟ—ସଂ. ବ—ଟାର୍ପିନ୍ (ଦ୍ର. ଶ)—
Lakshmi beshta Turpentine (Apte).

ଲକ୍ଷ୍ମୀ ବ୍ରତ—ସଂ. ବ. (ଲକ୍ଷ୍ମୀ+ବ୍ରତ) - ଲକ୍ଷ୍ମୀ ପୂଜା (ଦେଖ)—
Lakshmi brata Worship of Lakshmi.

ଲକ୍ଷ୍ମୀ ଭଣ୍ଡାର—ଦେ. ବ. (୬ଷ୍ଠୀ ତତ୍. ଲକ୍ଷ୍ମୀ+ଭଣ୍ଡାର)—୧ । ଲକ୍ଷ୍ମୀ Lakshmi bhandara ଦେବୀଙ୍କ ଧନାଗାର ବା ଖାଦ୍ୟ ଭଣ୍ଡାର
লক্ষ্মী ভাণ্ডার 1. The treasury or store room of
लक्ष्मी भण्डार the Goddess of wealth.
[ଦ୍ର—ଏହି ଭଣ୍ଡାରରୁ ପୃଥିବୀରେ ବାସ କରୁଥିବା କଳ୍ପିତ ଛପନ କୋଟି ଜୀବଙ୍କ ପାଇଁ ଖାଦ୍ୟ ଲକ୍ଷ୍ମୀଙ୍କ ବାଣ୍ଟିବା କଥା ଲୋକେ ବିଶ୍ୱାସ କରନ୍ତି । ଏହି ଭଣ୍ଡାରରୁ ଯେତେ ବ୍ୟୟ ହେଉଥିଲେ ସୁଦ୍ଧା ଏହା ଅସରନ୍ତି ଥାଏ ।] ୨ । ଲକ୍ଷ୍ମୀଙ୍କ ଭଣ୍ଡାର ଭଳି ଅତୁଳ ଧନ ରତ୍ନାଦି ଥିବା କୋଷାଗାର—2. Treasury containing gems and immense wealth like that of the Goddess Lakshmi. ୩ । ଅସରନ୍ତି ଭଣ୍ଡାର—3. Inexhaustible store.

ଲକ୍ଷ୍ମୀମନ୍ତ—ଦେ. ବଣ. (ସଂ. ଲକ୍ଷ୍ମୀବନ୍ତ; ପ୍ରାଚୀନ ପ୍ରୟୋଗ; ବ୍ୟୁତ୍ପତ୍ତି-Lakshmi manta ଅନୁସାରେ 'ଲକ୍ଷ୍ମୀବନ୍ତ' ହେବା ଉଚିତ)—
লক্ষ্মীমন্ত ଲକ୍ଷ୍ମୀବନ୍ତ (ଦେଖ)—Lakshmibanta (See)
लक्ष्मीवन्त ଦେ. ବ—ଲକ୍ଷ୍ମୀବନ୍ତ ବା ଐଶ୍ୱର୍ଯ୍ୟଶାଳୀ ବ୍ୟକ୍ତି—A prosperous person.
(ଉ—ସେ ଲେଖା ହୋଇ ଲକ୍ଷ୍ମୀମନ୍ତମାନଙ୍କରେ । କୃଷ୍ଣସିଂହ ମହାଭାରତ. ବନ ।)

ଲକ୍ଷ୍ମୀ ମାଡ଼ି ଯିବା—ଦେ. ବ—ଲକ୍ଷ୍ମୀ ବୃଦ୍ଧି ( ଦେଖ )
Lakshmi mardi jiba Lakshmi bruddhi (See)
ভাগ্যবৃদ্ধি लक्ष्मीवृद्धि

ଲକ୍ଷ୍ମୀଶ—ସଂ. ବ. ( ୬ଷ୍ଠୀ ତତ୍; ଲକ୍ଷ୍ମୀ+ଈଶ=ପତି, ସ୍ୱାମୀ )—Lakshmisa ୧ । ବିଷ୍ଣୁ; ଲକ୍ଷ୍ମୀକାନ୍ତ—1. Bishnu. ୨ । (ବହୁବ୍ରୀହି) ଆମ୍ର ବୃକ୍ଷ—2. Mango tree. ୩ । ସୌଭାଗ୍ୟଶାଳୀ ବ୍ୟକ୍ତି—3. Prosperous or lucky person. ୪ । ଧନପତି; ଧନୀ ବ୍ୟକ୍ତି—4. A rich man. ସ. ବଣ—ଧନବାନ୍—Rich.

ଲକ୍ଷ୍ମୀଶୀଳ—ସଂ. ବଣ. ପୁଂ (ଲକ୍ଷ୍ମୀ+ଶୀଳ)—ଲକ୍ଷ୍ମୀବନ୍ତ ( ଦେଖ )
Lakshmisila Lakshmibanta ( See )
(ଲକ୍ଷ୍ମୀଶାଳୀ—ଅନ୍ୟରୂପ) (ଲକ୍ଷ୍ମୀଶୀଳା, ଲକ୍ଷ୍ମୀଶାଳିନୀ—ସ୍ତ୍ରୀ)

ଲକ୍ଷ୍ମୀ ସଖ—ସଂ. ବ. ପୁଂ. (ବହୁବ୍ରୀହି; ଲକ୍ଷ୍ମୀ+ସଖା )—ଲକ୍ଷ୍ମୀଙ୍କ ବର-Lakshmi sakha ପୁତ୍ର—A favourite of fortune.

ଲକ୍ଷ୍ମୀ ସମାହ୍ୱୟା—ସଂ. ବ. ସ୍ତ୍ରୀ—ସୀତା; ରାମଚନ୍ଦ୍ରଙ୍କ ପତ୍ନୀ—
Lakshmi samahwaya Sita, the wife of Rama chandra.

ଲକ୍ଷ୍ମୀ ସରସ୍ୱତୀ—ସଂ. ବ. (ଦ୍ୱନ୍ଦ୍ୱ; ଲକ୍ଷ୍ମୀ+ସରସ୍ୱତୀ)—ବିଷ୍ଣୁଙ୍କର ଦୁଇ Lakshmi saraswati ପତ୍ନୀ; ସୌଭାଗ୍ୟର ଅଧିଷ୍ଠାତ୍ରୀ ଲକ୍ଷ୍ମୀ ଓ ବିଦ୍ୟାର ଅଧିଷ୍ଠାତ୍ରୀ ସରସ୍ୱତୀ—The two co-wives of Bishnu, namely the Goddess of wealth and the Goddess of learning.
[ଦ୍ର—ଏ ଦୁହେଁ ସପତ୍ନୀ ଥିବାରୁ ଏମାନଙ୍କ ମଧ୍ୟରେ ଅବହମାନ କାଳରୁ ସପତ୍ନୀସୁଲଭ ଈର୍ଷା ଓ ବିବାଦ ଚଳି ଆସୁଥିବା ପଣ୍ଡିତମାନେ କଳ୍ପନା କରି ଆସି ଅଛନ୍ତି । ଫଳତଃ ଦେଖାଯାଏ ଯେ, ସାଧାରଣତଃ ଲକ୍ଷ୍ମୀପୁତ୍ର (ଧନୀ)ମାନେ ସରସ୍ୱତୀଙ୍କ ଅନୁଗ୍ରହ ଲାଭ କରନ୍ତି ନାହିଁ ଓ ସରସ୍ୱତୀ-ପୁତ୍ର (ପଣ୍ଡିତ)ମାନେ ଲକ୍ଷ୍ମୀଙ୍କ ଅନୁଗ୍ରହ ପାଆନ୍ତି ନାହିଁ । କ୍ୱଚିତ୍ ଏହା ଦେଖା ଗଲେ ପଣ୍ଡିତମାନେ କହନ୍ତି ଯେ ତାଙ୍କଠାରେ ଲକ୍ଷ୍ମୀ ସରସ୍ୱତୀଙ୍କର ବିବାଦ ଭଞ୍ଜି ଯାଇଅଛି ।]

ଲକ୍ଷ୍ମୀ ସହଜ—ସଂ ବ (ଲକ୍ଷ୍ମୀ+ସହ=ଧହିତ+ଜନ୍ ଧାତୁ=ଜନ୍ମିବା Lakshmi sahaja +କର୍ତ୍ତୃ. ଅ; ସମୁଦ୍ର ମନ୍ଥନ କାଳରେ (ଲକ୍ଷ୍ମୀ ସହୋଦର—ଅନ୍ୟରୂପ) ଲକ୍ଷ୍ମୀଙ୍କ ସଙ୍ଗେ ଉତ୍ପନ୍ନ )—୧ । ଚନ୍ଦ୍ର—1. The moon. ୨ । ଉଚ୍ଚୈଃଶ୍ରବା ଅଶ୍ୱ—2 Indra's horse. ୩ । କର୍ପୂର—3. Camphor.

ଲକ୍ଷ୍ମୀ ସାଆନ୍ତ—ଦେ. ବ. ପୁଂ (ଆଦରାର୍ଥକ)—୧ । ଲକ୍ଷ୍ମୀବାନ୍ ସ୍ୱାମୀ Lakshmi saanta ବା ପ୍ରଭୁ—1. A lucky master.
লক্ষ্মীমন্ত মালিক लक्ष्मीवन्त मालिक ୨ । ଦୟାଳୁ ଓ ଦାତା ପ୍ରଭୁ—A kind and generous master.

ଲକ୍ଷ୍ମୀ ସାଆନ୍ତାଣୀ—ଦେ. ବ. ସ୍ତ୍ରୀ—୧ । ଲକ୍ଷ୍ମୀଠାକୁରାଣୀ—1.Goddess Lakshmi sa-antani Lakshmi. ୨ । ( ଆଦରାର୍ଥ )
লক্ষ্মী ঠাকুরাণী लक्ष्मी ठाकुरानी ଲକ୍ଷ୍ମୀଙ୍କ ପରି ଦାତ୍ରୀ ଓ ସୁନ୍ଦରୀ ସ୍ତ୍ରୀ—2. A munificent and beautiful lady; a personification of Goddess Lakshmi ୩ । (ବ୍ୟଙ୍ଗ୍ୟ)—ପତ୍ନୀ—3. Wife. ୪ । ( ବ୍ୟଙ୍ଗ୍ୟ )—ଗୃହିଣୀ; ଗୃହର କର୍ତ୍ତ୍ରୀ—4. The mistress of a house; housewife.

ଲକ୍ଷ୍ମୀ ସ୍ୱଭାବା—ସଂ. ବଣ. ସ୍ତ୍ରୀ—(ବହୁବ୍ରୀହି; ଲକ୍ଷ୍ମୀ+ସ୍ୱଭାବ)—Laksmi swabhaba ଲକ୍ଷ୍ମୀଙ୍କ ପରି ପ୍ରକୃତିବିଶିଷ୍ଟା ବା ଦାନଶୀଳା—(woman) Magnanimous or munificent like Lakshmi.

ଲକ୍ଷ୍ମୀ ସ୍ୱରୂପା—ସଂ. ବଣ. ସ୍ତ୍ରୀ—(ବହୁବ୍ରୀହି; ଲକ୍ଷ୍ମୀ+ସ୍ୱରୂପା)—ଲକ୍ଷ୍ମୀଙ୍କ Lakshmi swarupa ପରି ଗୁଣ ଓ ସ୍ୱଭାବବିଶିଷ୍ଟା (ସ୍ତ୍ରୀ)—[ଲକ୍ଷ୍ମୀ ସ୍ୱରୂପିଣୀ—ଅନ୍ୟରୂପ] ( a woman) Having the

graces and qualities of the Goddess Lakshmī; being a personification of Goddess Lakshmī.

**ଲକ୍ଷ୍ୟ**—ସଂ ବଣ.—(ଲକ୍ଷ୍ ଧାତୁ=ଦର୍ଶନ କରିବା ଇତ୍ୟାଦି + କର୍ମ.ଯ)-
Lakshya ୧ । ଦର୍ଶନ ଯୋଗ୍ୟ—1. Visible; observable. ୨ । ଅନୁଭବଯୋଗ୍ୟ—2. Perceptible. ୩ । ତୁଳନୀୟ—3. Comparable. ୪ । କଳନୀୟ; ବୋଧ୍ୟ—4. Knowable; inferable. ୫ । ଲକ୍ଷଣା ଦ୍ୱାରା ଜ୍ଞେୟ (ଅର୍ଥ)—5. (meaning) Knowable by metaphor. ୬ । ଅନୁସନ୍ଧେୟ—6. Traceable (Apte). ୭ । ଉଦ୍ଦେଶ୍ୟ—7. To be aimed at (Apte). ୮ । ଅବଧେୟ—8. To be defined (Apte). ୯ । ଜ୍ଞେୟ—9. To be known or found out (Apte). ୧୦ । ଅଭିଲଷଣୀୟ; ବାଞ୍ଛନୀୟ—10. Desirable. ସ. ବି—୧ । ଶରବ୍ୟ; ବାଣ ଆଦି ଯେଉଁ ବସ୍ତୁକୁ ଲକ୍ଷ କରି ଭେଦ କରାଯାଏ ।—1. Butt; aim; target. ୨ । ଛଳ; ଛଦ୍ମ—2. Fraud, deceit; pretence; sham (Apte). ୩ । ଚିହ୍ନ; ଲକ୍ଷଣ—3. Discriminating mark; distinctive mark. ୪ । ଆଦର୍ଶ—4. Model. ୫ । ଉଦ୍ଦେଶ୍ୟ—5. Aim; object ୬ । କୌଣସି କାର୍ଯ୍ୟ କରିବା ନିମନ୍ତେ ଅନୁଧାବିତ ଶେଷ ସୀମା—6. Goal. ୭ । ଲକ୍ଷ ବା ଶତ ସହସ୍ର ସଂଖ୍ୟା—7. A hundred thousand. ୮ । ଲକ୍ଷଣାର୍ଥ—8. Figurative meaning. (Apte) [ଦ୍ର—ଶବ୍ଦର ଅର୍ଥ ତ୍ରିଶ୍ରେଣୀର ଅଟନ୍ତି, ୧। ବାଚ୍ୟ, ୨। ଲକ୍ଷ୍ୟ, ଓ ୩। ବ୍ୟଙ୍ଗ୍ୟ ।] ଦେ. ବଣ.—ସମାନ—Equal; equivalent. [ ଉ—ତାର ମଧ୍ୟେ ପୁର ସୁର ଶିଳ୍ପୀ ଯେ—ବାଇଶତ ଲକ୍ଷ କରି ଛନ୍ତି ଯେ—ଭଞ୍ଜ. ବୈଦେହୀଶବିଳାସ । ] ଦେ. ବି—ଅନୁମାନ—Inference; deduction. [ ଉ—ଏମନ୍ତ ଏ ଲକ୍ଷ୍ୟ, କରିଗଲା ଶାଶ ସ୍ୱଚ୍ଛ ପ୍ରତ୍ୟୟ—ଭଞ୍ଜ. ବୈଦେହୀଶବିଳାସ ।]

**ଲକ୍ଷ୍ୟ କରିବା**—ଦେ. କ୍ରି.—ଲକ୍ଷ କରିବା (ଦେଖ)
Lakshya karibā Laksha karibā (See)
लक्ष करा लक्ष करना

**ଲକ୍ଷ୍ୟଚ୍ୟୁତ**—ସ. ବଣ.—(କର୍ମ ତତ୍; ଲକ୍ଷ+ଚ୍ୟୁତ)—ଲକ୍ଷ୍ୟ ସ୍ଥଳରେ
Lakshya chyuta ପହଞ୍ଚି ପାରି ନଥିବା—Deviating (ଲକ୍ଷଭ୍ରଷ୍ଟ—ଅନ୍ୟରୂପ) from the aim or target.

**ଲକ୍ଷ୍ୟ ବୀଥୀ**—ସଂ ବି.—୧ । ଜୀବନର ଉଦ୍ଦେଶ୍ୟ ଯେଉଁ ଉପାୟରେ
Lakshyabithi ବା କର୍ମରେ ସିଦ୍ଧ ହୁଏ (ହି. ଶ.)—1. Act or means which enables one to fulfil his aim in life. ୨ । ଦେବଯାନ ପଥ, ବ୍ରହ୍ମଲୋକକୁ ଯିବା ମାର୍ଗ (ହି. ଶ.)—2. The way to the Brahmaloka.

**ଲକ୍ଷ୍ୟ ବିନ୍ଧିବା**—ଦେ. କ୍ରି.—(ଲକ୍ଷ୍ୟ + ବିନ୍ଧିବା)—ଉଦ୍ଦିଷ୍ଟ ଲକ୍ଷ୍ୟକୁ ଭେଦ
Lakshya bindhibā କରିବାକୁ ସମର୍ଥ ହେବା; ଲକ୍ଷବିନ୍ଧିବା-
लक्षभेदकरा लक्षभेदना To succeed in striking at the target.
ଲକ୍ଷ୍ୟବିଦ୍ଧ କରିବା, ଲକ୍ଷ୍ୟ ବେଧ କରିବା }
ଲକ୍ଷ୍ୟ ଭେଦ କରିବା, ଲକ୍ଷ୍ୟ ଭେଦିବା } —ଅନ୍ୟରୂପ

**ଲକ୍ଷ୍ୟ ବେଧନ**—ସ. ବି.—( ଲକ୍ଷ + ବେଧନ )—ଲକ୍ଷବିନ୍ଧା; ଶର
Lakshya bedhana ଆଦି ଦ୍ୱାରା ଲକ୍ଷର ଆଘାତ କରଣ—
The striking at a target.
ଲକ୍ଷ୍ୟ ବେଧ
ଲକ୍ଷ୍ୟ ଭେଦ } —ଅନ୍ୟରୂପ
ଲକ୍ଷ୍ୟ ଭେଦନ

**ଲକ୍ଷ୍ୟ ବେଧୀ**—ସ. ବଣ. ପୁଂ—( ଲକ୍ଷ୍ୟ+ବ୍ୟଧ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ.)—ଯେ ଲକ୍ଷ୍ୟ ଭେଦ କରେ;
Lakshya bedhī [ଲକ୍ଷ୍ୟଭେଦୀ—ଅନ୍ୟରୂପ] ଉଡୁଥିବା ବା ଚାଲୁଥିବା ବସ୍ତୁ ବା ଜୀବକୁ ଲକ୍ଷ୍ୟ କରି ଯେ ଶର ଆଦି ମାରି ପାରେ—Able to shoot at a target with success; capable hitting at a moving thing.

**ଲକ୍ଷ୍ୟ ରଖିବା**—ଦେ. କ୍ରି.—(ଲକ୍ଷ୍ୟ+ରକ୍ଷଣ)—୧ । କୌଣସି
Lakshya rakhibā ଉଦ୍ଦେଶ୍ୟ ପ୍ରତି ଦୃଷ୍ଟି ରଖିବା—1. To aim at a goal. ୨ । କୌଣସି ନିର୍ଦ୍ଦିଷ୍ଟ ଶରବ୍ୟ ପ୍ରତି ଦୃଷ୍ଟି ରଖିବା—2. To aim at hitting a target.

**ଲକ୍ଷ୍ୟସ୍ଥଳ**—ସ. ବି ( କର୍ମଧା; ଲକ୍ଷ୍ୟ+ସ୍ଥଳ )—୧ । ଉଦ୍ଦିଷ୍ଟ ସ୍ଥାନ
Lakshya sthala ସଙ୍କଳ୍ପିତ ସ୍ଥାନ ବା ବସ୍ତୁ—1. The goal; the place aimed at; the thing aimed at. ୨ । ଶରବ୍ୟ—2. Target.

**ଲକ୍ଷ୍ୟହୀନ**—ସ. ବଣ. ପୁଂ (ତୃତୀୟା ତତ୍; ଲକ୍ଷ୍ୟ+ହୀନ)—ଉଦ୍ଦେଶ୍ୟ-
Lakshyahīna ହୀନ; ଯାହାର ବା ଯେଉଁ ବିଷୟରେ (ଲକ୍ଷ୍ୟବିହୀନ—ଅନ୍ୟରୂପ) କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନ ଥାଏ—
( ଲକ୍ଷ୍ୟ ହୀନତା, ଲକ୍ଷ୍ୟବିହୀନତା—ବି ) Aimless.
( ଲକ୍ଷ୍ୟହୀନା, ଲକ୍ଷ୍ୟବିହୀନା—ସ୍ତ୍ରୀ )

**ଲକ୍ଷ୍ୟାର୍ଥ**—ସଂ. ବି (କର୍ମଧା)—ଶବ୍ଦର ବା ବାକ୍ୟର ଲକ୍ଷଣାର୍ଥ; ଲେଖକର
Lakshyārtha ବା କଥକର ଉଦ୍ଦିଷ୍ଟ ଅର୍ଥ—The figurative or intended meaning of a word or sentence.

**ଲକ୍ଷ୍ୟାସନ**—ସ. ବି ( ତନ୍ତ୍ର )—ରୁଦ୍ରଯାମଳୋକ୍ତ ଆସନବିଶେଷ—
Lakshyāsana A posture or pose in sitting as described in Rudra jāmāla for the performance of certain mystic rites.

**ଲକ୍ଷ୍ୟାଲକ୍ଷି୍ୟ(କ୍ଷି)**—ଦେ. କ୍ରିଣ ଓ ବି—ପରସ୍ପରକୁ ଲକ୍ଷ କରିବା—
Lakshyālakshyi(kshi) Aiming mutually at
परस्परकेलक्ष्यकरा परस्परलक्षकरके each other.
( ଉ—ଘଟୋତ୍କଚ ଅଲମ୍ବୁଷ ଦୁହିଁଟ ସାଟେର, ଲକ୍ଷ୍ୟାଲକ୍ଷି୍ୟ ହୋଇଣ ଯୁଝିଲେ ବେଗରେ—କୃଷ୍ଣସିଂହ ମହାଭାରତ, ଦ୍ରୋଣ । ]

ଲଖ୍ନଉ—ଦେ. ବି—୧ । ଅଯୋଧ୍ୟାପ୍ରଦେଶସ୍ଥ ନଗର ବିଶେଷ—
Lakh-nau ଲକ୍ଷ୍ନୌ—1. Lucknow in Oudh. ୨ । କ୍ଷୁଦ୍ର
ଲଖନୌ लखनऊ ପକ୍ଷିବିଶେଷ—2. A kind of small
ଲକ୍ଷ୍ନୌ(କ୍ଷ୍ନୌ) } —ଅନ୍ୟରୂପ bird. [ ଦ୍ର—ଏ ଚଢ଼େଇ
ଲଖ୍ନୌ ଦେଖିବାକୁ ବାସ୍ୟା ଚଢ଼େଇ ପରି,
ଲକ୍ଷ୍ନଉ ଦେହ ନାଲି ଓ ଡହିରେ ଧଳା ବିନ୍ଦୁ-
ଲଖ୍ନୌ ମାନ ଥାଏ, ଲୋକେ ସଉକରେ
ମୁନିୟା मुनिया ଏହାକୁ ପାଳନ୍ତି ।]
(ଲାଖ୍‌ଲଉ, ଲଖ୍‌ନୋ[ନୁ]ର୍‌, ଲଖ୍‌ଲୋର୍—ଅନ୍ୟରୂପ )

ଲଖ୍‌ଲଖା—ବୈଦେ॰ ବି (ଫା)—ଗୋଲପ ପାଣି ବା ଅନ୍ୟ ସୁବାସଦ୍ରବ୍ୟର
Lakh-lakha ସୁବାସିତ ନଶାଦଳ ମିଶ୍ରିତ ସୁଗନ୍ଧ—A kind of
লখলখা लखलखा scented smelling salt.
[ ଦ୍ର—ଏହାକୁ ଶୁଙ୍ଘାଇକରି ବେହୋସ୍ ହୋଇଥିବା
ଲୋକର ହୋସ୍ ଅଣାଯାଏ ।]

ଲଖ—ଗ୍ରା. ବି—୧ । (ସଂ ନଖ) ନଖ—1. Nail. ୨ । ( ସଂ
Lakha ଲକ୍ଷ )—୨ । ଲକ୍ଷ; ଶତ ସହସ୍ର ସଂଖ୍ୟା—
2. One hundred thousand.

ଲଖଇ—ପ୍ରାଦେ (ଗଞ୍ଜାମ) ଗ୍ରା. ବି (ଅଶିକ୍ଷିତ ଭାଷା) ଲକ୍ଷ୍ମୀ—
Lakhai The Goddess of wealth

ଲଖ(ଖ୍ୟ)ଣ—ଗ୍ରା. ବି—୧ । (ସଂ ଲକ୍ଷଣ) ୧ । ଲକ୍ଷଣ ( ଦେଖ )
Lakha(khya)ṇa 1. Lakshaṇa (See) ୨ । ପୁଂ
লক্‌খন लखन ( ସଂ ଲକ୍ଷ୍ମଣ )—୨ । ଲକ୍ଷ୍ମଣ ( ଦେଖ )
ଲଖଣା } ଏ ନାମର ଅନାଦରାର୍ଥକରୂପ } 2. Lakshaṇa (See) ୩ ।
ଲଖଣିଆ ପୁଂ ଲକ୍ଷ୍ମଣନାମଧାରୀ ବ୍ୟକ୍ତିର
ଲଖିଆ ଡାକ ନାମ—3. Name for
ଲଖିଣିଆ calling Lakhmaṇa.
ଲଖୁଆ
( ଲଖି, ଲଖୁ—ଆଦରାର୍ଥକରୂପ )

ଲଖା—ଦେ. ବି.—ଲଖାଇବା କର୍ମ—Causing to stick or
Lakhā लगाना লাগান adhere.

ଲଖା(ଖେ)ଇବା—ଦେ. କ୍ରି—୧ । ଲକ୍ଷ୍ୟ କରିବା—
Lakhā(khe)ibā লক্ষ করা लक्ष्य करना To aim at.
[ଉ—ବିନ୍ଧିଲେ କାଣ୍ଡ ପର ସେନାକୁ ଲଖାଇ—କୃଷ୍ଣସିଂହ.
ମହାଭାରତ. ବନ ।] ୨ । (ଲଗିବା କ୍ରିୟାର ଣିଜନ୍ତ ରୂପ,
চাপান सटाना, लगाना କୌଣସି ବସ୍ତୁକୁ କୌଣସି ପଦାର୍ଥରେ ବା
ସ୍ଥାନରେ ସଲଗ୍ନ କରାଇବା—2. To cause to stick.

ଲଖା ଲଖି—ଦେ. ବି. ଓ ବଣ.—(ସଂ ଲକ୍ଷ୍ୟ)—ପରସ୍ପରରେ ଲକ୍ଷ୍ୟବଦ୍ଧ
Lakhā lakhi ହେବା—Aiming at each other.
পরস্পরকে লক্ষকরা लखा लखी [ଉ—ଶ୍ରୀକୃଷ୍ଣ ଅର୍ଜୁନ ଶର ଯେ
ଲଖା ଲଖି ହୁଅନ୍ତେ ରହାଏ ଗର୍ଜିଲେ ହୋଇ ସୁଖୀ—
କୃଷ୍ଣସିଂହ ମହାଭାରତ. ଭୀଷ୍ମ ।]

ଲକ୍ଷ୍ମି(କ୍ଷ୍ମି)—ଦେ. ବି.—(ସଂ. ଲକ୍ଷ୍ମୀ)—୧ । ସ୍ତ୍ରୀ ଲକ୍ଷ୍ମୀ (ଦେଖ)
Lakhi (kkhi) লক্‌খী 1. Lakshmī (See)
[ଲକ୍ଷ୍ମି, ଲକ୍ଷ୍ମୁ, ଲକ୍ଷ୍ମିମି—ଅନ୍ୟ ଆଦରାର୍ଥକ ରୂପ] [ଦ୍ର—ଲକ୍ଷ୍ମୀ ଶବ୍ଦ
[ଲକ୍ଷ୍ମିଆ, ଲକ୍ଷ୍ମୁଆ—ଅନାଦରାର୍ଥକ ରୂପ] ସଙ୍ଗେ ଯୁକ୍ତ ହୋଇଥିବା
ଶବ୍ଦମାନ ଉଚ୍ଚାରଣରେ ଲକ୍ଷ୍ମି, ସଙ୍ଗେ ଯୁକ୍ତ ହୁଏ ।]
୨ । ପୁଂ.—ଲକ୍ଷ୍ମୀଧର ବା ଲକ୍ଷ୍ମଣ ନାମକ ବ୍ୟକ୍ତିର ଡାକ
ନାମ (ଆଦରାର୍ଥକ)—2 A name for calling
Lakshmīdhara, Lakshmaṇa in endearment. ସ.(ନଖ)—ଘୋଡ଼ାର ଖୁରରେ ବଢ଼ିବା ନଖର
ସ୍ତର—3. The layers of nail in the hoof
of a horse.

ଲଖିବା—ଦେ. କ୍ରି (ସ ଲକ୍ଷ୍ ଧାତୁ)—୧ । ଲକ୍ଷ କରିବା—
Lakhibā 1. To aim at. ୨ । ଦୃଷ୍ଟି କରିବା—
লক্ষকরা 2. To see; to observe. ୩ । ତୁଳନା କରିବା—
लखना 3. To compare.

ଲଖିମୀ (ଇତ୍ୟାଦି)—ଗ୍ରା. ବି ( ସ. ଲକ୍ଷ୍ମୀ)—ଲକ୍ଷ୍ମୀ ଇତ୍ୟାଦି (ଦେଖ)
Lakhimī (etc) Lakhmī etc. (See)
লক্‌খী लखिमी

ଲଖିନ୍ଦ(ନ୍ଧ)ର—ଗ୍ରା. ବି (ସଂ. ଲକ୍ଷ୍ମୀଧର)—ଲକ୍ଷ୍ମୀଧରର ଡାକ ନାମ—
Lakhinda(ndha)ra Name for calling
লক্ষ্মীধর लक्ष्मीधर Lakshmīdhara.
(ଲକ୍ଷ୍ମିଧର—ଅନ୍ୟରୂପ)

ଲଖୁ—ଗ୍ରା. ବି—(ଆଦରାର୍ଥକ)—ଲକ୍ଷ୍ମଣର ଡାକ ନାମ—
Lakhu Name for calling Lakshmaṇa.
লক্‌খু लकखु (ଲଖୁଆ—ଅନାଦରାର୍ଥକ ରୂପ)

ଲଖେଶ୍ୱର(ରୀ)—ଗ୍ରା. ବି (ଲକ୍ଷେଶ୍ୱର)—ଲକ୍ଷେଶ୍ୱରୀ (ଦେଖ)
Lakheśwara(ri) Lakheśwarī. (See)

ଲଖେ—ଗ୍ରା. ବଣ ଓ ବି—୧ । (ସ. ନଖ, ନଖ ଉପରେ ଯେତିକି
Lakhe ରହିବ ସେତିକି) ଅତି ଅଳ୍ପ ମାତ୍ର; ତୁଚ୍ଛ—1. Very
সামান্য small; tiny. ୨। (ସ.ଲକ୍ଷ)ଏକ ଲକ୍ଷ ସଂଖ୍ୟକ—
जरासा 2. Numbering one lakh. ୩ । ଅସଂଖ୍ୟ—
একলাখ लाखों 3. Countless.

ଲଖ୍ୟ—ଗ୍ରା. ବି—୧ । (ସ. ଲକ୍ଷର ଅଶୁଦ୍ଧ ଓଡ଼ିଆ ଉଚ୍ଚାରଣ) ଲକ୍ଷ
Lakhya (ଦେଖ)—1. Lakshya. (See) ୨ । (ସ. ଲକ୍ଷ)
ଲକ୍ଷ୍ୟ (ଦେଖ)—2. Lakshya. (See)

ଲଖ୍ୟଣ—ଗ୍ରା. ବି—୧ । (ସ. ଲକ୍ଷଣ)—ଲକ୍ଷଣ (ଦେଖ)—
Lakhyaṇa 1. Lakshaṇa. (See) ୨ । (ସ. ଲକ୍ଷ୍ମଣ)—
লকখন लछमन (ଦେଖ)—2. Lakshmaṇa. (See)

ଲଗ (ଧାତୁ)—ସ.—୧ । ସଲଗ୍ନ ହେବା—1. To stick to; to
Lag (root) adhere; to cling; to be attached to.
୨ । ମିଳିତ ହେବା—2. To meet; to become
united with. ୩ । ପ୍ରାପ୍ତ ହେବା—3. To get.
୪ । ସ୍ପର୍ଶ କରିବା—4. To touch; to come in
contact with. (Apte) ୫ । (ବାକ୍ୟାର୍ଥ) କୌଣସି
ବ୍ୟକ୍ତି ଠାରେ ଫଳବତ୍ତ ହେବା—5. To affect; to
have an effect on. (Apte) ୬ । ଅବ୍ୟବହିତ
ପରେ ଯିବା—6. To follow closely; to

ensue; to happen immediately. (Apte) ୭ । କୌଣସି ବ୍ୟକ୍ତିକୁ ନିଯୋଜିତ ରଖିବା—7. To engage; to detain; to occupy. (Apte)

**ଲଗ୍‌ବୁକ୍**—ବୈଦେ॰ ବି (ଇଂ. ଲଗ୍‌ବୁକ୍)—
Lag-buk ୧ । ଯେଉଁ ବହିରେ ଜାହାଜର ଦୈନିକ ଗତିର (ଲଗ୍ ବହି—ଦେଖନ୍ତୁ) ବିବରଣ ଓ ପରିମାଣ ଲିପିବଦ୍ଧ ହୁଏ—
लगबुक 1. Log book of a ship. ୨ । ଯେଉଁ ବହିରେ
लागबुक ବିଦ୍ୟାଳୟରେ ସମୟକ୍ରମେ ଘଟିବା ପ୍ରଧାନ ଘଟଣାମାନ ଶିକ୍ଷକ ଲେଖି ରଖନ୍ତି—2. Log book of a school, which contains the chief events of the school, kept recorded by the teachers from time to time.

**ଲଗ୍‌ଭ(ବ)ଗ୍**—ଦେ (ହିନ୍ଦୀରୁ ଅନୁକୃତ) ଅ—ପ୍ରାୟ; ପ୍ରାୟଶଃ—
Lag-bha(ba)g About; nearly,
लगबग लगभ(भ)ग

**ଲଗଉ**—ଦେ. ବିଣ ଓ କ୍ରି. ବିଣ—ନିରନ୍ତର; ଅବିଚ୍ଛିନ୍ନ—
Lagau Continuous. ପୁନଃପୁନଃ—Repeatedly. (ଲଗଉତ[ତି]—ଅନ୍ୟରୂପ) লাগাঅ, লাগাও लगातार

**ଲଗ(ଗା)ଉତି**—ଦେ. ବି—୧ । ଦିନମୂଲିଆ—1. A day
Laga(gā)uti labourer. ୨ । କୌଣସି କାର୍ଯ୍ୟରେ ମୁଲିଆଙ୍କୁ ରୋଜମଜୁର ଦିଆଯିବା ମୂଲର ପରିମାଣ—2. Amount of
लग गत, लागत wages paid to day labourers in
मजूरी connection with a work. ( ଯଥା—ଏ ଘର

ଲଗାଉତି } ଅନ୍ୟରୂପ ଛାଅର କରିବାକୁ କାଠ ବାଉଁଶ ଆଦି
ଲଗୁତି ଟଙ୍କା ଓ ଲଗଉତି ଟଙ୍କା ଲାଗିଲା ।)
ଲଗୈତି ୩ । ବ୍ୟୟ; ଖରଚ—
3. Expense; cost.

**ଲଗଡ଼**—ଦେ. ବିଣ (ସଂ. ଲଗ୍ନ)—୧ । ଲଗ୍ନ—1. Attached.
Lagarda ୨ । ସଜ୍ଜିତ; ଖଚିତ—2. Set; adorned.
ସୁନ୍ଦର ସଂ. ବିଣ. ପୁଂ—ମନୋହର; ସୁନ୍ଦର—Graceful;
खुबसुरत elegant; charming; lovely. (Apte)
(ବିପରୀତ—ଅଲଗଡ଼ = ଅସୁନ୍ଦର)

**ଲଗଣ**—ଗ୍ରା. (ପଦ୍ୟ) ବି (ସଂ.ଲଗ୍ନ)—ଲଗ୍ନ (ଦେଖ)—
Lagana লগন लगन Lagna. (See)
[ଲଗ୍ନ—ଅନ୍ୟରୂପ]

**ଲଗଣି(ନି)କ**—ଗ୍ରା. ବିଣ. ଓ ବି (ସଂ. ଲଗ୍ନକ)—୧ । ନିକଟ
Lagani(ni)kā ସମ୍ପର୍କୀୟ—1. Near relation;
निकट closely related. ୨ । କୁଟୁମ୍ବ—2. Kinsman;
लगनिक kindred.

**ଲଗନ**—ଦେ. (ପଦ୍ୟ) ବିଣ—ଲଗ୍ନ (ଦେଖ)—Lagna (See).
Lagana (ଉ—ଦ୍ରୁମ ଦ୍ରୁମେ ଲଗନ ହେବେ ବହନ—
লগন लगन ରାଧାନାଥ. ମେଘଦୂତ)

**ଲଗା**—ଦେ. ବି—(ସ. ଲଗ୍ ଧାତୁ)—୧ । ବୃକ୍ଷାଦି ଲଗାଇବା—
Lagā 1. Planting of trees. ୨ । ସମ୍ପର୍କ; ସମ୍ବନ୍ଧ—
লাগান लगाना सम्पर्क लगाव 2. Connection.
গলায়দড়ীদিয়ে মরা फासीमे मृत्यु ୩ । ଗଳାରେ ଦଉଡ଼ି ଦେବା ପ୍ରଭୃତି ଦ୍ୱାରା ମୃତ୍ୟୁ (ନିନ୍ଦେ)—3. Unnatural death, such as, by hanging. [ଉ—ଲଗା ଏମନ୍ତ ବୋଲି କହି, ଶୁଣ ହୋ ନୃପତି ତନୟ ।—କୃଷ୍ଣପୁରାଣ] ୪ ।
দায়িত্ব लगा ଦାୟିତ୍ୱ—4. Responsibility. ୫ । (ସ.
জামীন जमानतदार ଲଗ୍ନକ) ଜାମିନ୍‌ଦାର; ପ୍ରତିଭୂ—5. Security; surety. [ଉ—ସେ କଥାରେ ମୁଁ ଲଗା ହେଲି—ଫକୀରମୋହନ; ଛମାଣ ଆଠଗୁଣ୍ଠ] । ୬। ସଂଲଗ୍ନ ହେବା—
লাগা लगना 6. State of being attached. ୭ । ସ୍ପର୍ଶ କରିବା—7. Act of touching. ୮ । ସଂଲଗ୍ନ
লাগান लगाना କରଣ—8. Act of attaching. ୯ ।
জামিন जमानत ପରପାଇଁ ଜାମିନ୍; ପ୍ରତିଭୂତ୍ୱ—9. Suretyship
দরকার जरूरी ୧୦ । ଆବଶ୍ୟକତା—10. Necessity
মধ্যস্থ ୧୧ । ମଧ୍ୟସ୍ଥ—11. Intermediary; middleman.
[ଉ—ମଝିରେ ଆଉ କାହାରିକୁ ଲଗା ନ ରଖି ଗୃହସ୍ଥମାନଙ୍କଠାରୁ ସଉଦା କଲେ । ଫକୀରମୋହନ. ଗଳ୍ପସ୍ୱଳ୍ପ ।] ଦେ. ବିଣ—୧ । ଲଗ୍ନ—1. Attached.
লাগা लगाहुआ [ ଯଥା—ଅଙ୍ଗଲଗା ଗହଣା । ] ୨ । ପରସ୍ପର
লাগালাগি একনা(লা)গাড়ে ସଂଲଗ୍ନ—2. Touching each
लगातार other. ୩ । ଧାରାବାହିକ; ଅବିଚ୍ଛିନ୍ନ—3. Continuous. [ ଦ୍ର—ବିପରୀତ-ଅଲଗା = ଛଡ଼ାଛଡ଼ା]
দায়ী जवावदेह ୪ । ଦାୟୀ—4. Responsible. ୫ । ଅନ୍ୟ
জামিনদার जमानतदार ପାଇଁ ଜାମିନ୍ ହୋଇଥିବା—5. Standing as surety for another.
লাগান लगाहुआ ୬ । ଖଚିତ; ଜଡ଼ିତ —6. Adorned.
[ଉ—ହୀରା ଲଗା ଶାଢ଼ୀପେଡ଼ି ଶାଳ ପାଟରେ ବନ୍ଧା—କୃଷ୍ଣସିଂହ. ମହାଭାରତ. ବନ । ୭ । ମଧ୍ୟସ୍ଥ—
7. Intermediate.

**ଲଗାଇ**—ଦେ. ଅ—୧ । ଲଗାଏତ—(ଦେଖ)—1. Lagāet (See)
Lagai ୨ । ମିଶାଇ—2. By joining together; includ-
লাগাৎ लगाकर ing [ଉ—ତାଙ୍କୁ ଲଗାଇ ତିନି ପ୍ରାଣୀ—ଫକୀରମୋହନ. ଛମାଣ ଆଠଗୁଣ୍ଠ ।]

**ଲଗା(ଗେ)ଇବା**—ଦେ. କ୍ରି—(ସ. ଲଗ୍ ଧାତୁ ଣିଜନ୍ତ; ଲାଗିବା କ୍ରିୟାର
Lagā(ge)ibā ଣିଜନ୍ତରୂପ—Causative of Lāgibā.)
লাগান लगाना ୧ । ଏକ ବସ୍ତୁ ସଙ୍ଗେ ଅନ୍ୟ ବସ୍ତୁକୁ ସଂଲଗ୍ନ କରିବା; ଯୁକ୍ତ କରିବା; ଯୋଡ଼ିବା—1. To attach; to join a thing to another. [ ଯଥା—ଲୁଗାରେ ଜରି ଲଗାଇବା, କନ୍ଥରେ ବେଣ୍ଟ ଲଗାଇବା, ଚୂଲରେ ନିଆଁ ଲଗାଇବା, କାଗଜରେ ଅଠା ଲଗାଇବା ]
[ଉ—ଲଗାଇଛି ପ୍ରାଣ ସେହିକୁ ସମସ୍ତଙ୍କ ଗଳେ । ରାଧାନାଥ. ମହାଯାତ୍ରା ।) ୨ । ଦେହରେ ଅଳଙ୍କାରାଦି ପିନ୍ଧିବା, ଭିଡ଼ିବା; ଖେଳିବା; ନାଇବା—2 To put on(dress

etc on the body); to wear. (ଯଥା—ଅଳଙ୍କାର, ମାଳ, ହାର, ପ୍ରଭୃତି ଲଗାଇବା, କୁର୍ତ୍ତା, କୋଟ୍ ଲଗାଇବା । [ଉ—ଗନ୍ଧର୍ବ ଅପସରୀ ସେ ଫୁଲ ତୋଷରେ, ମାଗି କରି ଆଗ ଲଗାନ୍ତି ଶିର ପରେ । କୃଷ୍ଣସିଂହ. ମହାଭାରତ. ବନ । ଦୁଇ ଅଙ୍ଗୁଠିରେ କଷଣୀ ଲଗାଇଲେ—କୃଷ୍ଣସିଂହ. ମହାଭାରତ. ବନ ।] ୩ । (ନିଜର ଦେହରେ ତେଲାଦି) ବୋଳି ହେବା—3 To anoint; to besmear oil etc on one's own body.(ଯଥା-ମାଲଯା ବା ତେଲ ଲଗାଇବା, ସିନ୍ଦୂର କଜ୍ଜଳ ଲଗାଇବା ।) ୪ । ଲୋକ ଅନ୍ଧଙ୍କୁ କୌଣସି କାର୍ଯ୍ୟରେ ନିଯୁକ୍ତ କରିବା; ନିଯୋଜିତ କରିବା—4. To engage or employ persons in a work. (ଯଥା-ମୂଲିଆ ଲଗାଇବା ) । ୫ । (ଅମୁକରେ) ଅଗ୍ନି ସଂଯୋଗ କରିବା; ଜାଳିବା—5. To set fire to. [ଯଥା—ଦୀପ ଲଗାଇବା, ବାଣ ଲଗାଇବା, ବତି ଲଗାଇବା, ଚୁଲି ଲଗାଇବା । (ଦ୍ର—ଅଗ୍ନି ସଂଯୋଗ କରିବା ଅର୍ଥରେ ଚୁଲିରେ ନିଆ ଲଗାଇବା ଓ ଚୁଲି ଲଗାଇବା; ଦୀପ ଲଗାଇବା ଓ ଦୀପରେ ଅଳିଅ ଲଗାଇବା; ବାଣ ଲଗାଇବା ଓ ବାଣରେ ନିଆଁ ଲଗାଇବା, ଏପରି ୨ଟି ରୂପର ବ୍ୟବହାର ହୁଏ ।] ୬ । ଆଘାତ କରିବା; ପ୍ରହାର କରିବା—6 To strike. (ଯଥା—ପାହାର ଲଗାଇବା; ବେତ ଲଗାଇବା, ଗୁଳି ଲଗାଇବା ।) [ଦ୍ର—ପ୍ରହାର କରିବା ଅର୍ଥରେ ବେତ ଲଗାଇବା ଓ ବେତରେ ପାହାର ଲଗାଇବା ବ୍ୟବହୃତ ହୁଏ ।) ୭ । (ଗଛ ଆଦି ) ରୋପଣ କରିବା; ରୋଇବା—7 To plant (trees) [ଯଥା—ଗଛ ଲଗାଇବା, ତଳି ଲଗାଇବା ।] [ଉ—ଭଲ ତ ମୋ କପାଳ,ଲଗାଇଲି ରସାଳ,ଜାମୁ ତ ଫଳିଲରେ କବିସୂର୍ଯ୍ୟ. ସଙ୍ଗୀତ ।] ୮ । କିଛି ସମୟ ବ୍ୟାପୀ କୌଣସି କାର୍ଯ୍ୟ କରିବା; ଅମୁକ କର୍ମରେ କେତେକ ସମୟ ନିଯୁକ୍ତ ହେବା—8 To go on doing a work for some time; to be engaged in doing a work. [ଯଥା—କଳି ଲଗାଇବା, ମାଡ଼ ଗୋଳ ଲଗାଇବା, ନାଟ ଲଗାଇବା ଇତ୍ୟାଦି ।] ୯ । (ଦେବତାଙ୍କୁ ନୈବେଦ୍ୟ) ଅର୍ପଣ କରିବା—9. To offer offering to a Deity. [ଯଥା—ଭୋଗ ଲଗାଇବା, ନୈବେଦ୍ୟ ଲଗାଇବା ।] ୧୦ । କୌଣସି ବ୍ୟକ୍ତିଠାରେ (ଦୋଷ ଆଦି) ଆରୋପ କରିବା—10. To ascribe a fault to a person. [ଯଥା—କଳଙ୍କ ଲଗାଇବା, ବାଟିଆ ଲଗାଇବା, ସୁନାମରେ କାଳି ଲଗାଇବା]—୧୧ । ଖାଇ ସାରି ଖାଇବା ସ୍ଥାନକୁ ମାର୍ଜିତ ବା ପରିଷ୍କୃତ କରିବା—11. To cleanse a place where food was taken. [ଯଥା—ଅଇଣ୍ଠା ଲଗାଇବା ।] ୧୨ । କୌଣସି ବ୍ୟକ୍ତି ପ୍ରତି ଗାର, ବାଣ୍ଟୁଳ ଆଦି ପ୍ରୟୋଗ କରିବା ବା ପେଷିବା—12. To set an evil spirit to possess a person. [ଯଥା—ଗାର ଲଗାଇବା, ଭୂତ ଲଗାଇବା] ୧୩ । ଲେପନ କରିବା—13. To smear. [ଯଥା—ଗାଲରେ ଚନ୍ଦନ ଲଗାଇବା । ] [ଉ—ସୁଗନ୍ଧ କୁଚରେ ଲଗାଇଲେ, କାମ ଅନଳ ଲିଭାଇଲେ ଜଗନ୍ନାଥ. ଭାଗବତ ।] ୧୪ । —ଅକର୍ମକ (ବର୍ଷା ଆଦି) ବହୁ ଦିନ ବ୍ୟାପିବା—14. To continue for a long time. [ଯଥା—୩ ଦିନ ହେଲା ଝଡ଼ ଲଗାଇଛି; ବର୍ଷା ଲଗିଛି ।] ୧୫ । (ଖାଦ୍ୟାଦି) ପରିବେଷଣ କରିବା 15. To serve (food). [ଯଥା—ପତ୍ରରେ ଭାତ, ତିଅଣ, ଡାଲି, ଖିରି, ମହୁର, ପିଠା ଆଦି ଲଗାଇବା ।] ୧୬ । (ହାତରେ) ସ୍ପର୍ଶ କରିବା—16. To touch with (the hand). [ଯଥା—ମୋ ଦେହରେ ହାତ ଲଗାଇବ ନାହିଁ ।] ୧୭ । ଖଟ କହିବା; ନିନ୍ଦା କରିବା; ଚୁଗୁଲି କରିବା—17. To backbite; to speak evil of a person behind his back. [ଉ—କେ କିସ ଲଗାଇ କହିଛି ଆରେ ସଖି, ଏଥିକି ରୋଷ ବହି, ଆନନ ଡାଙ୍କୁ ଚଳେ—ସଙ୍ଗୀତ । ] ୧୮ । ଦୁଇ ବ୍ୟକ୍ତିଙ୍କ ମଧ୍ୟରେ ବନ୍ଧୁତା, ଶତ୍ରୁତା, ବିବାଦ ଆଦି କୌଣସି ଭାବର ବା ସମ୍ପର୍କର ସୂତ୍ରପାତ କରାଇବା—18. To cause the growth of good or bad feeling between two persons. [ଯଥା—ପ୍ରୀତି ଲଗାଇବା, ଭାବ ଲଗାଇବା, ବିବାଦ ଲଗାଇବା । ] ୧୯ । ନୌକା ଓ ବୋଟ ପ୍ରଭୃତିକୁ ଆଣି କୂଳରେ ପହଞ୍ଚାଇବା—19. To bring a boat to the shore. [ଉ—ଭାସିଲିଟି ଡାକିକଟି ହରି ଅକୂପାରେ, ତରୁଣି ତରଣୀ ହୋଇ ଲଗାଅ ତୁ ପାରେ । କବିସୂର୍ଯ୍ୟ. ସଙ୍ଗୀତ ।] ୨୦ । କୌଣସି ପ୍ରକାର ପ୍ରାକୃତିକ ଅସ୍ୱାସ୍ଥ୍ୟକର ଜଳବାୟୁର ସମ୍ପର୍କରେ ଆସିବା—20 To expose one's body to (cold etc.) [ଯଥା ଦେହରେ ଥଣ୍ଡା ଲଗାଇବା । ] ୨୧ । କୌଣସି ବ୍ୟକ୍ତିଙ୍କୁ କୌଣସି କାର୍ଯ୍ୟ ପାଇଁ ଉପର୍ଯ୍ୟୁପରି ଅନୁରୋଧ, ପ୍ରାର୍ଥନା ବା ଜିଗର୍ କରିବା—21. To implore; to entreat ernestly; to importune. [ଯଥା—ଯାହା ଦେଖି ଯିବାକୁ ନିତିଠା ମୋ ସଙ୍ଗେ ୩ ଦିନ ହେଲା ଲଗାଇଛି । ] ୨୨ । ସୁଧ ବା ଲାଭ ପାଇବା ଆଶାରେ ଟଙ୍କାକୁ ଖଟାଇବା ବା ନିୟୋଜିତ କରିବା—22 To invest money for profit or on business. (ଯଥା—ଟଙ୍କା କରଜ ଲଗାଇବା, ଟଙ୍କା ବେପାରରେ ଲଗାଇବା, ଟଙ୍କା କାଢ଼ିଆରେ ଲଗାଇବା । ) ୨୩ । କୌଣସି ବିଶିଷ୍ଟ କାର୍ଯ୍ୟ ପାଇଁ ଧନ ବା ବସ୍ତୁକୁ ବ୍ୟୟ କରିବା 23. To spend money etc or employ any thing on a particular matter.

(ଯଥା—ମୁଁ ୩୦୦ ଟଙ୍କା ଲଗାଇ ପୁଅର ବିଭାଘର କଲି; ଏ ଲୁଗାରେ ୩ ଗଜ କନା ଲଗାଇଲି ।) (ଭୂ—ଲଗାଇ ନିଜ ଧନ ପ୍ରାଣ, ଲୋକର କର ହେ କଲ୍ୟାଣ । ମଧୁସୂଦନ. ଛନ୍ଦମାଳା ।) ୨୪ । କୌଣସି ବ୍ୟକ୍ତି ସଙ୍ଗେ କଳି ବା ଅନର୍ଥ ଉଠାଇବା ବା ବିବାଦ କରିବା—24. To start a quarrel or dispute with a person. (ଯଥା—କାହା ସହିତ ଲଗାଇବ ନାହିଁ ।) ୨୫ । ଯୋଚିବା—25. To yoke. (ଯଥା—ଗାଡ଼ିରେ ଘୋଡ଼ା ଲଗାଇବା ।) ୨୬। ସ୍ତ୍ରୀ ପଶୁ ସଙ୍ଗେ ପୁରୁଷ ପଶୁର ସଙ୍ଗମ ହେବାର ବ୍ୟବସ୍ଥା କରିବା, ଜୋଡ଼ ଛୁଆଇବା—26. To cause a male animal to copulate with a female one. ୨୭ । ଶିକାର ଅବଦ ପଛରେ କୁକୁର ଆଦିଙ୍କୁ ପ୍ରେରଣ କରିବା—27. To set (a dog) on a prey.

ଲଗାଇ ହେବା—ଦେ କ୍ରି—ଆପଣାର ଦେହରେ ତେଲ ବା ହଳଦୀ Lagāi hebā ଆଦି ନିଜେ ବୋଳି ହେବା—To anoint माथा लगाना oil, turmeric etc on one's own person. (ଯଥା—କେହି ଦାସୀ ଅଙ୍ଗ ନ ଥିବାରୁ ସାଆନ୍ତାଣୀ ହାତରେ ମାଲପା ଲଗାଇ ହେଉଛନ୍ତି ।)

ଲଗାଉ—ଦେ. ବି. (ସ. ଲଗ୍ନ)—୧ । ଲଗାଲଗି ଅବସ୍ଥା—1. Continuity. Lagāu ୨ । ସମ୍ପର୍କ—2. Connection. ବିଣ ଲାଗାଓ —୧ । ସଂଲଗ୍ନ—1. Attached. ୨ । ସମ୍ପୃକ୍ତ— लगाव, लगावट 2. Connected. ୩ । ଅବିଶ୍ରାନ୍ତ—3. Con लगाहुआ tinuous.

ଲଗାଏ(ୟ)ତ—ଦେ. କ୍ରି. ବିଣ—୧ । କୌଣସି ସ୍ଥାନ ବା ସମୟ ବା Lagāe(ya)t ବ୍ୟକ୍ତିଠାରୁ ଆରମ୍ଭ କରି ଅନ୍ୟ କୌଣସି ସ୍ଥାନ ଲା(ନା)ଗାଦ(ତ୍), लगाइत, लगाइद, नागाइद ସମୟ ବା ବ୍ୟକ୍ତି लगायत, लगातार ପର୍ଯ୍ୟନ୍ତ ଅବିଚ୍ଛିନ୍ନ ଭାବରେ—1. Continuously; without intermission. ୨ । ଅବଧି; ପର୍ଯ୍ୟନ୍ତ—2. Upto. ୩ । ଅମୁକଠାରୁ ଆରମ୍ଭ କରି—3. Beginning from. [ଦ୍ର—ଏହାର ସାଙ୍କେତିକ ଚିହ୍ନ । ଲ ।; ଯଥା—କଟକ । ଲ । ପୁରୀ=କଟକଠାରୁ ପୁରୀ ପର୍ଯ୍ୟନ୍ତ ।]

ଲଗା ଜୋଡ଼ା—ଦେ. ବି—ଗୋପନରେ ଦୋଷାରୋପ; ଖଚ; କୌଣସି Lagā jordā ବ୍ୟକ୍ତି ନାମରେ ଫେରାଦ ବା ଅଭିଯୋଗ ବା ଲାଗାନି ଦୋଷାରୋପ କରିବା; ଚୁଗୁଲି—Backbiting; चुगली complaining against a person behind him

ଲଗାଣ—ଦେ. ବି. ( ସ. ଲଗ୍ ଧାତୁ )—୧ । ବହୁଦିନ ବ୍ୟାପୀ Lagāṇa ଝଡ଼ ଓ ବୃଷ୍ଟି—1. Rain or storm conଲାଗାଡ জল, লাগানিয়া বর্ষা tinuing for days together. लगातार बरसात (ଭୂ—ତାହାକ କହୁଛୁ ଭୁସି ଲଗାଣ ହେବ । ଫକୀରମୋହନ. ଛମାଣ ଅଠଗୁଣ ।) ୨ । ସଙ୍ଗୀତର ଆରମ୍ଭରେ ରାଗର ଆଳାପ—2. The preliminary utterance of the formula of a musical tune. ଦେ. ବିଣ—୧ । ପରସ୍ପର লাগাড, লাগানিয়া ସଂଲଗ୍ନ—1. Attached to each other. लगातार ୨ । ଅବିଚ୍ଛିନ୍ନ—2. Continuous. (ଯଥା—ଲଗାଣ କରସା ।)

ଲଗାଣି—ଦେ. ବି—ଖଚ; ଗୋପନରେ ଦୋଷାରୋପ—Lagāṇi লাগানি चुगली, लुतरापन Backbiting. লাগানিয়া ଦେ. ବିଣ. ପୁଂ ଓ ସ୍ତ୍ରୀ—ଖଚୁଆ; ଲୁଚିଛପିକାରୀ—लुतरा Back-biting. (ଲଗାଣେଇ—ଅନ୍ୟ ସ୍ତ୍ରୀଲିଙ୍ଗ ରୂପ)

ଲଗାଣିଆ(ଆଁ)—ଦେ. ବିଣ-୧ । ଲଗାଣଯୁକ୍ତ (ପାଗ)—1. Stormy Lagāṇia(āṅ) (weather) ୨ । ଅବିଚ୍ଛିନ୍ନ—2. Contiলাগাড nuous. ୩ । ଲଗାଣି (ଦେଖ)—3. Lagāṇi लगातार ( See ) ଦେ. ବି—ପିଆଦା; କୌଣସି ବ୍ୟକ୍ତିଙ୍କୁ ଡାକିବା ପାଇଁ ପ୍ରେରିତ ପିଆଦା—A peon deputed to summon or bring a person.

ଲଗା ପଗା(ଘା)—ଦେ. ବି. (ସହଚର) [ଲଗା=ନିକଟ ସମ୍ପର୍କ ଓ Lagā pagā(ghā) ପଘା (ପ୍ରଗ୍ରହ)=ରଜ୍ଜୁ ବା ଦଉଡ଼ି, ଉକ୍ତ ଦୁଇ ଟାନ लगापघा ବାନ୍ଧିବା ଯୋଗ୍ୟ ସମ୍ପର୍କ]—୧ । କୌଣସି କାର୍ଯ୍ୟ लगाव ସମ୍ବନ୍ଧରେ ଦାୟିତ୍ୱ ବା ପ୍ରଭାବିତ୍ୱ—1. Direct or indirect responsibility in a matter ୨ । ଦୂର ବା ନିକଟ ସମ୍ପର୍କ—2. Close or distant connection. ୩ । ସଂସାରର ବନ୍ଧନ—3. Worldly entanglements or attachment.

ଲଗାମ୍—ବୈଦେ. ବି ( ଫା. ଲଗାମ୍ )—୧ । ଅଶ୍ୱବଲ୍‌ଗା; ପ୍ରଗ୍ରହ—Lagām 1. Reins of a horse ୨ । ସୃକ୍କଣୀରେ লাগাম लगाम ହେବା ଘାଆ—Sores in the corners of the lips.

ଲଗାଯୋ(ଜୋ)ଡ଼ା କରିବା—ଦେ. କ୍ରି—୧ । ମିଛ ସତ ଯୋଖିବା—Lagā-jo (jo)rdā karibā 1. To weave truth and লাগান चुगलीकरना falsehood together. ୨ । ଚୁଗୁଲି କରିବା—2. to backbite. [ଭୂ—ଅମୃଠାରୁ ଏବେ ସେ ଗଲେ ତ ଅଛିବେ, ଲଗାଯୋଡ଼ା କରି ତାହାଙ୍କୁ କହିବେ—କୃଷ୍ଣସିଂହ ମହାଭାରତ ଉଦ୍‌ଯୋଗ ।]

ଲଗାରି—ଦେ. ବି—ପାପ ଓ ଦୋଷର ଦଣ୍ଡଦାତା—Lagāri Punisher of sins and guilt. দণ্ডেবকর্তা दण्डदेनेवाला

ଲଗାଲଗି—ଦେ. ବିଣ ଓ ବି—୧ । ପରସ୍ପର ସଂଲଗ୍ନ—1. Coming Lagālagi in contact with; contiguous to লাগালাগি लगाव each other ( ଭୂ—ସେ ସମୟରେ ହିମାଳୟ ମେରୁ ଗିରି, ଶୃଙ୍ଗ ଲଗାଲଗି ହୋଇଲେ ଦଣ୍ଡଧାରି—କୃଷ୍ଣସିଂହ ମହାଭାରତ ଶାନ୍ତି ।) ୨ । ନିକଟ

ସ୍ଥାନରେ ସଂଲଗ୍ନ—2. Conjested together; densely set. ( ଉ—ବନରେ ବୃକ୍ଷମାନେ ଲଗା ଲଗି ହୋଇ, ଥିଲେ ସେ ପବନ ନ ସ୍ପର୍ଶି ତା ପାରଇ—କୃଷ୍ଣସିଂହ ମହାଭାରତ ଅଦ । ) ୩ । ପ୍ରାୟ—ପ୍ରାୟ **लगभग** 3. Nearly, about, ( ଉ—ପୋଇଲ ପଇବାସ କୋଡ଼ିଏ ବ ବାଉଣି । ଏହିପରି ହରଣ ଲଗାଲଗି—ଫକୀରମୋହନ ଛମାଣ ଆଠଗୁଣ । ) ୪ । ଲଗାଇବା ଅଦ କ୍ରିୟା—4. The operation of planting etc.

লাগালাগি **लगालगी**

ଲଗାହାରି—ଦେ. ବି—୧ । ମରଣାର୍ଥ ଗଳାରେ ଦଉଡ଼ି ଲଗାଇବା, ଉଦ୍ଧ୍ଵ ଦ୍ୱାରା ଅପମୃତ୍ୟୁ—1. Winding or putting a rope round the neck to cause death by hanging or strangling. ୨ । ତଣ୍ଟିଚିପି ମାରିବା —2. Strangling to death, ୩ । ଅପମୃତ୍ୟୁ 3. Accidental death; unnatural death. ୪ । ପର ଦ୍ରବ୍ୟରେ ଅଧିକାର ଦେଖାଇବା—4. Showing mastery over the property of others. ୫ । ଯେ ପର ଦ୍ରବ୍ୟ ଉପରେ ଆପଣାର ପ୍ରଭୁତ୍ୱ ବା ଅଧିକାର ଦେଖାଏ—5 A person who assumes mastery over the property of others. ପ୍ରାଦେ (ଯାଜପୁର) ବି—କାଳ ଦେବତା; ମୃତ୍ୟୁ ସଂଘଟନକାରୀ—That which causes death, death personified;

Lagāhāri

গলায়দড়ি **फाँसीलगाना**

অপমৃত্যু **अपमृत्यु**

মৃত্যু **मीठलगु**

ଲଗା ହେବା—ଦେ. କି—୧ । କୌଣସି କାର୍ଯ୍ୟପାଇଁ ଦାୟୀ ହେବା—1 To de responsible for anything ୨ । କୌଣସି ବିଷୟରେ ସମ୍ପର୍କାନ୍ୱିତ ହେବା—2. To be connected with a matter. ୩ । ଅନ୍ୟ ପାଇଁ ଜାମିନ୍ ହେବା—3. To stand surety for another.

Lagā hebā

দায়ী হওয়া **दायी होना**

লাগা হওয়া **लगा होना**

জামীন হওয়া **जमानत होना**

ଲଗି(ଗ୍ଗି)—ଦେ. ବି. ( ସ. ଲଗୁଡ଼ )—୧ । ଉଚ୍ଚ ଗଛରୁ ଫଳ ଆଦ ତୋଳିବା ପାଇଁ ଅଙ୍କୁଶ ଯୁକ୍ତାଗ୍ର ବାଉଁଶ ଦଣ୍ଡ, ଅଙ୍କୁଡ଼ି—1. A pole attached with a hook at its end and used in plucking fruits etc from high trees; a long hook for plucking fruits. ୨ । ଅଙ୍କୁଶାଗ୍ର ନୌକା-ଚାଳନ ଦଣ୍ଡ; ଅଙ୍କୁଶାବାନ୍ଧ କାଠ—A boat hook.

Lagi(ggi)

লগা, লগি, হলকা **लग्गा(ग्गी), लकसी**

ଲଗିତ—ସ. ବିଣ. (ଲଗ୍ ଧାତୁ=ଲାଗିବା+କର୍ତ୍ତି. ତ)—୧ । ସଲଗ୍ନ—1. Attached, adhered to (Apte) ୨ । ସଂଯୁକ୍ତ—2. Joined to; connected with (Apte). ୩ । ପ୍ରାପ୍ତ—3. Got; obtained (Apte).

Lagita

ଲଗୁଆର—ପ୍ରାଦେ. (ସମ୍ବଲପୁର) ବିଣ—ଋଣଗ୍ରସ୍ତ—Indebted.

Laguāra

ପ୍ରାଦେ (ସମ୍ବଲପୁର) ବି—ଅଧମର୍ଣ୍ଣ; ଖାତକ—A debtor.

ଲଗୁଡ଼(ର, ଳ)—ସ.ବି. (ଲଗ୍ ଧାତୁ=ଲାଗିବା+କର୍ତ୍ତି. ଉ;ଳ=ଡ଼)- ୧ । ପ୍ରାଚୀନ ଭାରତର ଯୁଦ୍ଧାସ୍ତ୍ର ବିଶେଷ—1. Iron staff or lethal cudgel used as a weapon of offence in ancient India. [ଦ୍ର—ଏହାର ସର୍ବାଙ୍ଗ ଲୌହମୟ, ପାଦଦେଶ ସରୁ, ମସ୍ତକ ବା ଅଗ୍ରଭାଗ ଲୌହ ବଳୟ ଦ୍ୱାରା ଆବଦ୍ଧ ହୋଇ ଥିଲା; ସ୍ୱଳ୍ପ ସ୍ଥୂଳ, ଲମ୍ବରେ ଦୁଇ ହାତ; ଏହା ଅତ୍ୟନ୍ତ ଦୃଢ଼ । ପଦାତି ସୈନ୍ୟମାନେ ଏହା ଧରି ଯୁଦ୍ଧ କରୁଥିଲେ । ଆଜି କାଲିର କନଷ୍ଟବଲମାନଙ୍କ ବ୍ୟବହୃତ ରେଗୁଲେସନ୍ ଲାଠି ସଙ୍ଗେ ଏହା ତୁଳନୀୟ ।] ୨ । ସ୍ଥୂଳ ନାତିଦୀର୍ଘ ଯଷ୍ଟି; ଠେଙ୍ଗଣୀ; ବାଉଁଶ ଠେଙ୍ଗା—2. A cudgel; club; stick. [ଦ୍ର—ଏହାର ଅପଭ୍ରଂଶ ଲଉଡ଼ି ।] ୩।(ବୈଦ୍ୟକ) ରକ୍ତ କରବୀର; ନାଲି କରବୀ—3 The red species of the sweet—scented oleander.

Lagurda(ra, la)

ଲଗୁଡ଼ଧାରୀ—ସ. ବିଣ. ପୁଂ. (ଲଗୁଡ଼+ଧୃ ଧାତୁ=ଧାରଣ କରିବା+କର୍ତ୍ତିଂ ଇନ୍; ୧ମା. ୧ବ)—ଯେ ଲଗୁଡ଼ ରୂପ ପ୍ରହରଣାସ୍ତ୍ର ଧରିଥାଏ—Bearing a cudgel; armed with a cudgel.

Lagurdadhāri (ଲଗୁଡଧାରିଣୀ—ସ୍ତ୍ରୀ)

ଲଗୁଡ଼ବାହୀ—ସ. ବିଣ. ପୁଂ. ( ଲଗୁଡ଼+ବହ୍ ଧାତୁ=ବହନ କରିବା +କର୍ତ୍ତି. ଇନ୍; ୧ମା ୧ବ)—ଲଗୁଡ଼ଧାରୀ (ଦେଖ)--Lagurda dhāri(See)

Lagurdbāhi (ଲଗୁଡ଼ବାହିନୀ—ସ୍ତ୍ରୀ)—ସ୍ତ୍ରୀ)

ଲଗୁଡ଼ାଘାତ—ସ. ବି. ( ୩ୟା ତତ୍, ଲଗୁଡ଼+ଆଘାତ )—ଠେଙ୍ଗଣୀ ଦ୍ୱାରା ପ୍ରହାର—Blow or stroke with a cudgel.

Lagurdāghāta

ଲଗେ—ପ୍ରାଦେ. ( ଉତ୍ତର ଭାଷା )—ପାଖକୁ; ନିକଟକୁ—Near; to. ପ୍ରାଦେ. (ଗଡ଼ଜାତ ଓ ସମ୍ବଲପୁର) ଅ—ଠାରେ—In. [ଦ୍ର—ଯଥା—କେନ୍ ଲଗେ=କେଉଁଠାରେ ।] ଦେ. ଅ—ମାକଡ଼ଙ୍କୁ ଗୋଡ଼ାଇବା ପାଇଁ କୁକୁରଙ୍କ ପ୍ରତି ଡାକ—A hallooing used to incite dogs to chase monkeys.

Lage

লাগে **लगे**

ଲଗେଇ ଜୁ(ଜୋ)ଡେଇ କହିବା—ଦେ. କି—୧ । ଅନ୍ୟ କଥାକୁ ଅତି-ରଞ୍ଜିତ କରି କହିବା—1. To report (another's) fault after magnifying it. (ଯଥା—ସେଗୁଡ଼ାକ ଲଗେଇ ଜୁଡେଇ ଚେର କଥା କରେ । ଲୁଲୁଭାଇ ମାସୀ, ନଥ ଭୂଣୀ ।) ୨ । ଚୁଗୁଲି କରିବା—2. To back bite. ୩ । ଅପରୋକ୍ଷଭାବରେ କୌଣସି ବ୍ୟକ୍ତିର ନାମ ଉଲ୍ଲେଖ କରିବା—3. To in directly allude to a person.

Lagei ju(jo)ṭei kahibā

লাগিয়ে বলা **लगा बनाकर बोलना**

ଲଗେଇ ହେବା—ଦେ. କି—ଲଗାଇ ହେବା ( ଦେଖ )

Lagei hebā Lagāi hebā ( See )

মাখা **लगाना** ପ୍ରାଦେ. (ସମ୍ବଲପୁର) କି—ପର ପାଇଁ ଜାମିନ୍ ହେବା—To stand surety for another.

**ଲଗେଜ୍**—ଦେ. ବି. ( ଇଂ. ଲଗ୍ଗେଜ୍ )—୧ । ପର୍ଯ୍ୟଟକଙ୍କ ସଙ୍ଗେ ଥିବା
Lagej ଜିନିଷ ପତ୍ରର ଗଣ୍ଡିର—1 Luggage; bag and
लगेज **लगेज** baggage. ୨ । ରେଲ ବା ଜାହାଜ ଯାତ୍ରୀଙ୍କ ସଙ୍ଗରେ ଥିବା ଜିନିଷ ପତ୍ର ଏକତ୍ର ବାନ୍ଧି ଓଜନ କରି, ତାହା ବହନ କରିବା ପାଇଁ ଗାର୍ଡଙ୍କ ଜିମା ଦିଆଯିବା ଗଣ୍ଡିର—2. Passenger's luggage entrusted to the ship or railway guard for being carried to the traveller's destination.

**ଲଗେଜ୍ କରିବା**—ଦେ. କ୍ରି—ରେଲଗାଡ଼ିରେ ବା ଜାହାଜରେ ପର୍ଯ୍ୟଟକଙ୍କ
Lagej kariba ସଙ୍ଗେ ସ୍ଥାନାନ୍ତରକୁ ବାହିତ ହେବା ମାଲଗୁଡ଼ିକ
लगेज करना (ଯାହା ଯାତ୍ରୀଙ୍କ ସଙ୍ଗେ ନିଜ କୋଠରୀରେ ରଖିବାକୁ
**लगेज करना** ସ୍ଥାନ ନ ଥାଏ) ଗଣ୍ଠିରି ବାନ୍ଧି ଓଜନ କରି, ତହିଁର ମାସୁଲ୍ ରେଲ ବା ଜାହାଜ କୋମ୍ପାନୀଙ୍କ କର୍ମଚାରୀଙ୍କୁ ଦେଇ ତାଙ୍କଠାରୁ ଟିକଟ୍ ଆଣି, ସେ ଗଣ୍ଡିର ରେଲ ବା ଜାହାଜ କର୍ମଚାରୀଙ୍କ ମାଇଫତ୍ ଅର୍ପଣ କରିବା—To book articles as railway luggage or ship luggage to be carried along with the passenger.

**ଲଗେଜ୍ ଗୋଦାମ**—ବୈଦେ. ବି (ଇଂ. ଲଗ୍ଗେଜ୍ ଗୋଡାଉନ୍)—ରେଲ
Lagej godāma ଷ୍ଟେସନ୍‌ର ବା ବନ୍ଦର୍‌ର ବା ଜାହାଜର ଯେଉଁ (ଲଗେଜ୍ ଘର, ଲଗେଜ୍ ରୁମ୍—ଅନ୍ୟରୂପ) କୋଠରୀରେ ଲଗେଜ୍
लगेज गुदाम କରାଯାଇଥିବା ମାଲମାନ ଅଧିକାରୀଙ୍କୁ ଦିଆଯିବା ପାଇଁ
**लगेज गोदाम** ଜମା ହୋଇ ରହେ—Luggage room of a ship or railway station.

**ଲଗେଜ୍ ଟିକ(କେ)ଟ୍**—ବୈଦେ. ବି (ଇଂ. ଲଗ୍ଗେଜ୍ + ଟିକେଟ୍)—
Lagej ṭika(ke)ṭ ଲଗେଜ୍ ଓଜନ କରି ତହିଁ କ୍ରମରେ ଦେୟ
लगेज टिकेट ଭଡ଼ା ରେଲ କର୍ମଚାରୀଙ୍କୁ ଦେଇ ତାଙ୍କ ଜିମା ଲଗେଜ୍
**लगेज टिकट** ଦେଇ ତାଙ୍କଠାରୁ ପ୍ରେରକ ଯେଉଁ ରସିଦ ଆଣେ—Luggage ticket.

**ଲଗେଜ୍ ଭଡ଼ା**—ବୈଦେ. ବି (ଇଂ. ଲଗେଜ୍ + ସ. ଭାଟକ)—ରେଲ
Lagej bhaṛdā ବା ଜାହାଜରେ ଲଗେଜ୍ ପଠାଇବା ପାଇଁ (ଲଗେଜ୍ ମାସୁଲ, ଲଗେଜ୍ ମାହାସୁଲ—ଅନ୍ୟରୂପ) ପ୍ରେରକର ଦେୟ
लगेजभाडा [मासुल] ଅର୍ଥ—Luggage-fare; extra fare
**लगेजभाडा (महसुल)** paid by a passenger for carrying with him in the luggage van, luggage in excess of the free allowance allowed for the ticket purchased by the passenger.

**ଲଗେଜ୍ ଭାନ୍**—ବୈଦେ. ବି (ଇଂ)—ଯେଉଁ ରେଲ ଡବାରେ ଯାତ୍ରୀ-
Lagej bhān ମାନଙ୍କର ଲଗେଜ୍‌ଗୁଡ଼ିକ ଏକତ୍ର ହୋଇ ଗାର୍ଡ଼
लगेज व्या(वे)न ଜିମା ରହେ—Luggage van of a
**लगेजमैन** railway train.

**ଲଗ୍ନ**—ସ. ବିଣ (ଲଗ୍ ଧାତୁ=ସଂଯୁକ୍ତ ହେବା + କର୍ତ୍ତୃ. ତ)—୧ । ସ୍ପର୍ଶ
Lagna କରିଥିବା—1. Touching: coming in contact with. ୨ । ସଂଯୁକ୍ତ, ମିଳିତ; ଲାଗିଥିବା—2. Joined to; adhering to; connected with. ୩ । ନିଯୁକ୍ତ—3. Engaged in; busy with; closely occupied with. ୪ । (ଲସ ଧାତୁ+କର୍ତ୍ତୃ. ତ) ଲଜ୍ଜିତ—4. Ashamed. ୫ । ଲାଗି ଥିବା—5. Clung to; adhered to; stuck. ୬ । ଅବ୍ୟବହିତ ପରେ ଘଟିବା—6. Following closely; impending. (Apte) ୭ । ଶୁଭସୂଚକ—7. Auspicious. (Apte). ସ.ବି—୧। ସ୍ତୁତିପାଠକ; ବନ୍ଦୀ—1. Pancigyrist; bard; minstrel. ୨ । ମଦମତ୍ତ ହସ୍ତୀ—2. An elephat in rut. (Apte). ୩ । ଗ୍ରହମାନଙ୍କ କକ୍ଷ ଯେଉଁ ବିନ୍ଦୁରେ ଦିଗ୍‌ବଳୟ ସଙ୍ଗେ ମିଳିତ ହୁଏ—3. The point of intersection where the horizon and the path of a planet meet. (Apte) ୪ । ସୂର୍ଯ୍ୟର ବା ଅନ୍ୟ ଗ୍ରହର ଉଦୟ—4. The rising of the sun or of the planets. (Apte) ୫। (+ଅଧି. ତ) ସୂର୍ଯ୍ୟଙ୍କର ଏକ ରାଶିରୁ ରାଶ୍ୟାନ୍ତରକୁ ସଞ୍ଚାର ବା ସଂକ୍ରମଣ କାଳ—5. Time of the sun passing from one zodiacal sign to another. ୬ । ମେଷାଦି ରାଶିର ଉଦୟ କାଳ—6. The time of rising of any of the zodiacal signs. [ଦ୍ର—ପୃଥିବୀ ଦିନରାତି ୨୪ ଘଣ୍ଟାରେ ଥରେ ଆପଣା ଅକ୍ଷ ଚାରିପାଖେ ବୁଲି ଆସେ । ଏହି ୨୪ ଘଣ୍ଟାରେ ଏହା ମେଷ ଆଦି ୧୨ଟି ରାଶିକୁ ପାର ହୁଏ । ଯେତିକି ସମୟ ପୃଥିବୀ ଏକ ରାଶିରେ ରହେ ତାକୁ ଉକ୍ତ ରାଶିର ଲଗ୍ନ ବୋଲାଯାଏ । କୌଣସି ରାଶିକୁ ଡେଇଁ ଯିବାକୁ ପୃଥିବୀକୁ ଅଳ୍ପ ସମୟ ଓ କେଉଁ ରାଶିକୁ ଡେଇଁବାକୁ ବେଶି ସମୟ ଲାଗେ । ଯଥା—ମୀନ ରାଶିର ଲଗ୍ନକାଳ ପ୍ରାୟ ୩ ଦଣ୍ଡ, କନ୍ୟାର ପ୍ରାୟ ୫ ଦଣ୍ଡ, ବୃଷ୍ଚିକର ପ୍ରାୟ ୫ ଦଣ୍ଡ (ଦ୍ର. ବ) । ରାଶିଚକ୍ରର ଯେଉଁ ଅଂଶ ପୂର୍ବକ୍ଷିତିଜ (ଦିଗ୍‌ବଳୟ)ରେ ସଲଗ୍ନ ହେବା ପରି ଦେଖା ଯାଉଥାଏ, ତାହାକୁ ଲଗ୍ନ କହନ୍ତି । ଠିକ୍ ସେହି ସମୟରେ ଯେଉଁ ଅଂଶ ପଶ୍ଚିମ ଦିଗରେ ସଲଗ୍ନ, ତାହାର ନାମ 'ଅସ୍ତଲଗ୍ନ' । ମସ୍ତକର ଊର୍ଦ୍ଧ୍ୱ ଦେଶରେ ଯେଉଁ ରାଶିର ଯେତିକି ଅଂଶ ଥିବ, ତାହାର ନାମ "ଦଶମଲଗ୍ନ" ବା ଦଶମୋଦୟ । ରାଶିଚକ୍ର ସମସ୍ତ ଆକାଶ ବ୍ୟାପି ଅବସ୍ଥାନ କରୁଅଛି । ଆକାଶରେ ଏକ ଅଂଶ (degree) ର ଉଦୟକାଳ ପରିମାଣ, ଅର୍ଥାତ୍ ଏହାର ଭୂ-ଖ ଯୋଗବୃତ୍ତ (horizon)ରେ ସଲଗ୍ନ ଭାବେ ଅବସ୍ଥିତି

କାଳ $\frac{\text{ଘ } ୨୪ \times ୬୦ \text{ ମିନିଟ}}{୩୬୦ \text{ ଅଂଶ}}$ = ୪ ମିନିଟ । ଏହିପରି

ପ୍ରତ୍ୟେକ ଲଗ୍ନର ମୋଟ ଅବସ୍ଥାନର ପରିମାଣ ୪ × ୩୦ = ୧୨୦ ମିନିଟ ବା ୨ଘଣ୍ଟା ଅର୍ଥାତ୍ ୫ଦଣ୍ଡ ।

ଉକ୍ତ ଉଦାହରଣ ସମସ୍ତ ଲଗ୍ନର ସୂକ୍ଷ୍ମକାଳ ହୋଇଥିଲେହେଁ ସମସ୍ତ ଦେଶର କ୍ରାନ୍ତିବୃତ୍ତ, ରବିକକ୍ଷା ଅଥବା ଅପଚକ୍ର (ecliptic) ସହିତ ଭୂଚକ୍ରର ବକ୍ରତା (obliquity) ଥିବା ହେତୁ ଏକ ସ୍ଥାନରେ କୌଣସି ସମୟରେ କ୍ରାନ୍ତିବୃତ୍ତ 'ସିଧା' ଭାବେ ଓ ଅନ୍ୟ ସମୟରେ ତେରଛା ଭାବେ ଉଦିତ ହୁଏ । କ୍ରାନ୍ତିବୃତ୍ତର ଗୋଟିଏ ଅଂଶ ଦକ୍ଷିଣରେ ତେରଛା ଭାବେ ଉଦିତ ହେବା ପାଇଁ ଯେତେ ସମୟ ଲାଗେ, ଉତ୍ତରରେ ସେହି ଅଂଶ ଉଦିତ ହେବାକୁ ତଦପେକ୍ଷା ଅଧିକ ସମୟ ଆବଶ୍ୟକ ହୁଏ । ତେଣୁ ବିଭିନ୍ନ ସ୍ଥାନର ଲଗ୍ନମାନ ନ୍ୟୂନାଧିକ ହୁଏ । ଅକ୍ଷାଂଶ ଓ ଅୟନାଂଶ ଲଗ୍ନମାନର ବୃଦ୍ଧିହ୍ରାସର ପ୍ରଧାନ କାରଣ ।

ପ୍ରାଚୀନକାଳରେ ଅୟନାଂଶର ପରିମାଣ ଯେତେବେଳେ 'ଶୂନ୍ୟ' ଥିଲା, ସେତେବେଳେ ଲଗ୍ନମାନର ପରିମାଣ (ବିଷୁବରେଖୀୟ ବା ଲଙ୍କୋଦୟ) ନିମ୍ନରୂପେ ଥିଲା ।

| | |
|---|---|
| ମେଷ—ମୀନ ଦ୩।୫୪ | କର୍କଟ—ଧନୁ ଦ୫।୩୮ |
| ବୃଷ—କୁମ୍ଭ ଦ୪।୨୩ | ସିଂହ—ବିଛା ଦ୫।୩୫ |
| ମିଥୁନ—ମକର ଦ୫।୮ | କନ୍ୟା—ତୁଳା ଦ୫।୨୨ |

ବର୍ତ୍ତମାନ ଲଙ୍କୋଦୟର ପରିମାଣ (ସାୟନ)

ମେଷ—ଦ୪।୩୮—ତୁଳା—ଦ୪।୩୮
ବୃଷ—ଦ୪।୪୯—ବିଛା—ଦ୪।୫୯
ମିଥୁନ—ଦ୫।୨୩—ଧନୁ—ଦ୫।୨୩
କର୍କଟ—ଦ୫।୨୩—ମକର—ଦ୫।୨୩
ସିଂହ—ଦ୪।୫୯—କୁମ୍ଭ—ଦ୪।୫୯
କନ୍ୟା—ଦ୪।୩୮—ମୀନ—ଦ୪।୩୮

ବର୍ତ୍ତମାନ "ଦ୍ୱାବିଂଶତି" ଅୟନାଂଶକୁ ଧରି ଶ୍ରୀପୁରୁଷୋତ୍ତମ କ୍ଷେତ୍ରର (୧୯°।୪୮) ଯେଉଁ ଲଗ୍ନମାନ ସ୍ଥିର କରାଯାଇଛି ତାହାର ପରିମାଣ (ସାୟନ)

ମେଷ—ଦ୪।୧୭—ତୁଳା—ଦ୫।୩୦
ବୃଷ—ଦ୪।୫୭—ବିଛା—ଦ୫।୩୮
ମିଥୁନ—ଦ୫।୧୫—ଧନୁ—ଦ୫।୧୭
କର୍କଟ—ଦ୫।୩୫—ମକର—ଦ୪।୩୦
ସିଂହ—ଦ୫।୨୪—କୁମ୍ଭ—ଦ୪।୧
କନ୍ୟା—ଦ୫।୨୧—ମୀନ—ଦ୩।୫୩

ଲଗ୍ନକୁ ଧରି ସମସ୍ତ କାର୍ଯ୍ୟ କରାଯାଏ । ଲଗ୍ନ ଜାତକର ଦ୍ୱାଦଶଭାବରୁ ପ୍ରଥମ ଭାବ । ଏହାର ପର୍ଯ୍ୟାୟ ତନୁ, ଉଦୟ, ମୂର୍ତ୍ତି, ଅଙ୍ଗ ଇତ୍ୟାଦି ଶରୀରର ସଞ୍ଜ୍ଞା ।

ଲଗ୍ନକୁ ସୂକ୍ଷ୍ମଭାବେ ଗଣନା କରିବା ଲାଗି ହୋରା (ଲଗ୍ନାର୍ଦ୍ଧ), ଦ୍ରେକ୍କାଣ (ଦଶମାଂଶ ଅର୍ଥାତ୍, ରାଶିର ଏକ ଦଶମାଂଶ) ନବାଂଶ (ରାଶିର ନଅଭାଗରୁ ଭାଗେ ବା ଅଂ ୩।୨୦), ଦ୍ୱାଦଶାଂଶ (ରାଶିର ବାରଭାଗରୁ ଭାଗେ ବା ଅଂ ୨।୩୦) ଓ ତ୍ରିଂଶାଂଶ (ରାଶିର ତିରିଶି ଭାଗରୁ ଭାଗେ ବା ୧ ଅଂଶ)ର ଗଣନା କରାଯାଏ । ଲଗ୍ନର କାଳ-ବିଶେଷ ହେତୁ ତାହାର କ୍ଷୁଦ୍ର କ୍ଷୁଦ୍ର ମାନ ଅର୍ଥାତ୍ 'ଷଡ୍ବର୍ଗ'; ଗୁଡ଼ିଏ ଧରିବାକୁ ହୁଏ । ଠିକ୍ କେତେ ଅଂଶରେ ଲଗ୍ନ ହେଲା ତାହା ସୁସ୍ପଷ୍ଟ ଧରି ପାରିଲେ ଗଣନା ଠିକ୍ ରହେ ।

ବିବାହ,, ବ୍ରତ, ଜନ୍ମ-ଜାତକ, ଯାତ୍ରା: ଏ ସମସ୍ତ ଲଗ୍ନର ବଳାବଳ ଉପରେ ନିର୍ଭର କରେ ।

ପଞ୍ଜିକାରେ ପ୍ରତ୍ୟେକ ଦିନର ଉଦୟାସ୍ତ କାଳୀନ ସାୟନ ଲଗ୍ନ ଭୁକ୍ତି ଦିଆ ଯାଇଥାଏ । ସୂର୍ଯ୍ୟୋଦୟ ବା ସୂର୍ଯ୍ୟାସ୍ତଠାରୁ ଆବଶ୍ୟକ କାଳ କେତେ ଗତ ହୋଇଅଛି, ତାହାକୁ ଧରି, ତହିଁରେ ସ୍ଥାନୀୟ ଲଗ୍ନ ପରିମାଣ ପରପର କ୍ରମେ ମିଶାଇ ଆଣିଲେ, ଲଗ୍ନ ଠିକ୍ କେତେ ଭୋଗ ହୋଇଅଛି, ତାହା ଜଣାଯାଏ ।

ଉଦାହରଣ—ସନ ୧୩୪୨ ସାଲ ଶ୍ରାବଣ ୩ ଦିନ (ଖ୍ରୀ ୧୯୩୫ ଜୁଲାଇ ୧୮ ତାରିଖ) ଦିବା ଦ ୧୫।୧୦ ସମୟର ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ଲଗ୍ନଭୋଗ ଜାଣିବା ଆବଶ୍ୟକ ପଡ଼ିଲା । ପଞ୍ଜିକାରୁ ଦେଖାଗଲା, ସେଦିନର ଉଦୟ ଲଗ୍ନ ଭୁକ୍ତ କର୍କଟ ଦ ୦।୧୫; କର୍କଟ ଲଗ୍ନମାନ ଭୁକ୍ତି— ଦ ୦।୧୫; କର୍କଟ ଲଗ୍ନମାନ ଦ ୫।୩୫ ଏଥିରୁ ଭୋଗ ହୋଇଥିବା ଦ ୦।୧୫ ବାଦ୍ ଦେଲେ ଅବଶିଷ୍ଟ ଦ ୫।୨୦, ପରଲଗ୍ନ ସିଂହ ଦ ୫।୨୪; ଉଭୟର ମିଶ୍ରଣ ଦ ୧୦।୪୪, ପରଲଗ୍ନ କନ୍ୟା ଦ ୫।୨୧ ମଧ୍ୟରେହିଁ ଦ ୧୫।୧୦ ଅନ୍ତର୍ଭୁକ୍ତ ହେବା ହେତୁ ଦ ୧୫।୧୦— ୧୦।୪୪=କନ୍ୟା ଭୋଗ ଦ ୪।୨୬ ଲିତା । ଲଗ୍ନଟି ୩୦ ଅଂଶ, ଭୋଗ କାଳ ଦ ୫।୨୧, ତେବେ ଭୋଗ ଦ ୪।୨୬ କୁ ଲଗ୍ନଭୋଗ ଅଂଶ କେତେ ? ଏହି ତ୍ରୈରାଶିକ ଅନୁପାତ ଏହିପରି—

$$\text{ଭୋଗ—}\frac{\text{ଦ ୪।୨୬ ଲି ବା ୨୬୬}\times\text{୩୦}}{\text{ଲଗ୍ନମାନ ଦ ୫।୨୧ ବା ୩୨୧}}=\text{୨୪ଅଂ।୫୨କଳା}$$

ଜାତକରେ ଲଗ୍ନ ପ୍ରଧାନ ଉପକରଣ ଅଟେ । ଲଗ୍ନଠାରୁ ଅନ୍ୟାନ୍ୟ ସମସ୍ତ ଭାବ ଗଣନା କରାଯାଏ । କେଉଁ ଲଗ୍ନରେ ଜନ୍ମ ହେଲେ ଫଳ କଅଣ ହେବ, ତାହା ଜ୍ୟୋତିର୍ବିଦ୍‌ମାନେ ସ୍ଥିର କରିଅଛନ୍ତି । ମେଷ ଲଗ୍ନରେ ଜନ୍ମ ହେଲେ ।

> ପ୍ରଚଣ୍ଡକୋପଃ କୃପଣୋଽତିଲୁବ୍ଧୋ,
> ବିଦେଶଯାୟୀ ନିତଲୋକପୂଜ୍ୟଃ ।
> ଭୃତ୍ୟୋ ନୃଶଂସଃ ଖଳଚପ୍ରଭଞ୍ଜଃ,
> ବିଭାନ୍ୱିତୋ ମେଷ ବିଲଗ୍ନ ଜାତଃ ।

ମେଷଲଗ୍ନରେ ଜାତ ବ୍ୟକ୍ତି—କ୍ରୋଧୀ, କୃପଣ, ଲୋଭୀ, ବିଦେଶଗାମୀ, ଲୋକପୂଜ୍ୟ, ପରସେବକ, ନିଷ୍ଠୁର, ଚଞ୍ଚଳ ମତି ଓ ଧନଶାଳୀ ହୁଏ ।

> ଶୂରଃ ସୁଖୀ କ୍ଲେଶସହୋତିହନ୍ତା
> କୃତୀ ଗୁଣୀ ସଦ୍‌ୟବିତ୍ତଯୁକ୍ତଃ ।
> ସୁଦୀର୍ଘଜୀବୀ ସ୍ଥିରମିତ୍ର ସଙ୍ଗତ୍
> ସୁପୁଷ୍ଟମୂର୍ତ୍ତିର୍ବୃଷଲଗ୍ନଜାତଃ ।

ବୃଷ ଲଗ୍ନରେ ଜାତ ବ୍ୟକ୍ତି ଶୌର୍ଯ୍ୟଶାଳୀ, ସୁଖୀ, କ୍ଳେଶସହିଷ୍ଣୁ, ଶତ୍ରୁଘାତୀ, କୃତୀ, ଗୃହୀ, ସଞ୍ଚିତଧନଯୁକ୍ତ, ସାର୍ଦ୍ଧାୟୁଃ, ସ୍ଥିରମିତ୍ର, ସ୍ଥିରସମ୍ପଦ୍ ଓ ରମଣୀୟ ମୂର୍ତ୍ତି ଯୁକ୍ତ ହୁଏ ।

ମୃଦୁର୍ବିନୀତୋ ସ୍ଥିରସଙ୍ଗଭାଷୀ
କ୍ଷମାନ୍ୱିତୋ ଗୀତମନା ବଦାନ୍ୟଃ ।
ସମସ୍ତପୂଜ୍ୟୋ ନରଦେବମନ୍ତ୍ରୀ
ସୁଖାନ୍ୱିତୋ ଯୁଗ୍ମକରଃ ପ୍ରଜାତଃ ।

ମିଥୁନ ଲଗ୍ନରେ ଜାତ ବ୍ୟକ୍ତି ମୃଦୁ, ବିନୟୀ, ପ୍ରୀତି-ଜନକ ଓ ମନୋହରଭୂଷଣକାରୀ, ମାନ୍ୟବାନ, ଗୀତପ୍ରିୟ, ବଦାନ୍ୟ, ଲୋକପୂଜ୍ୟ, ରାଜମନ୍ତ୍ରୀ ଓ ସୁଖୀ ହୁଏ ।

ମେଧାନ୍ୱିତଃ କ୍ଷିପ୍ରଗତିଃ ସୁକର୍ମୀ
ସୁଗୁପ୍ତ-ବିଦ୍ୟା-ଧନ-ଭୋଗ ସମ୍ପତ୍
ବିପକ୍ଷହନ୍ତା ଭୂରିଗପ୍ରଭାକଃ
ସ୍ତ୍ରୈଣେୟୁକଃ କର୍କି ବିଲଗ୍ନ ଜାତଃ ।

କର୍କଟ ଲଗ୍ନରେ ଜାତ ବ୍ୟକ୍ତି ମେଧାବୀ, କ୍ଷିପ୍ରଗାମୀ, ସୁକର୍ମୀ, ଗୁପ୍ତବିଦ୍ୟା ଓ ଗୁପ୍ତଧନଯୁକ୍ତ, ଶତ୍ରୁଘାତୀ ଓ ଅଳ୍ପପର ସ୍ତ୍ରୀଲୋଲୁପ ହୁଏ ।

ବିଦ୍ୟାସୁତାର୍ଥୋର୍ଜ୍ଜିତ ପାମରାର୍ଥ
ନିବେଶମାନୀ ପ୍ରଶସମ୍ଭବସ୍ତୁ
ଧର୍ମଚ୍ୟୁତୋ ମାଂସରୁଚିଃ କଦର୍ଯ୍ୟଃ
ସ୍ୱଳ୍ପେକ୍ଷଣଃ ସିଂହ ଗୃହେ ପ୍ରସୂତଃ ।

ସିଂହ ଲଗ୍ନ ଜାତ ବ୍ୟକ୍ତି ଭାର୍ଯ୍ୟା, ପୁତ୍ର ଓ ଧନହୀନ, ଦୁଷ୍ଟହେତୁକପୀଡ଼ିତ, ରାଜମାନ୍ୟ, ପ୍ରଶଂସନୀୟ, ଧର୍ମହୀନ, ମାଂସଲୋଲୁପ, କଦାକାର ଓ ଅଳ୍ପଦୃଷ୍ଟି ହୁଏ ।

ଗନ୍ଧର୍ବବିଦ୍ୟାନିପୁଣୋଽତିଦକ୍ଷୋ
ଯଥାର୍ଥଭାଷୀ କବିତ୍ୱକାବ୍ୟବେତ୍ତା
ଭୋକ୍ତା ଚ ଦାତା ସୁଖବିତ୍ତଯୁକ୍ତୋ
ଧୀରଃ ସୁଶୀଲୋ ଯୁବତୀପ୍ରଜାତଃ ।

କନ୍ୟା ଲଗ୍ନ ଜାତ ବ୍ୟକ୍ତି ସଙ୍ଗୀତ ନିପୁଣ, କର୍ମପଟୁ, ଯଥାର୍ଥବାଦୀ, କବିତ୍ୱକାବ୍ୟଜ୍ଞ, ଭୋକ୍ତା, ଅତିଦାତା, ସୁଖ-ବିତ୍ତାଦିଯୁକ୍ତ, ଧୀର ଓ ସଚ୍ଚରିତ୍ର ହୁଏ ।

ସୁତାର୍ଥଦେହାନ୍ୱିତଃ କଦର୍ଯ୍ୟୋ
ବିଲୋଲୁପଃ ଶୀଲବିବର୍ଜିତଶ୍ଚ,
ନ୍ୟୂରୋଽସମାଙ୍ଗଃ ସୁତବିତ୍ତହୀନୋ
ମେଧାନ୍ୱିତ ସ୍ତୌଳି ବିଲଗ୍ନ ଜାତଃ ।

ତୁଳା ଲଗ୍ନ ଜାତ ବ୍ୟକ୍ତି ପୁତ୍ର, ଅର୍ଥ ଓ ସୁଗଠିତ ଦେହଯୁକ୍ତ, କୃପଣ, ଦୁଃଶୀଳ, ଖଳ, ଅସମାଙ୍ଗ, ପୁତ୍ରୋ-ପାର୍ଜ୍ଜିତ ଧନହୀନ ଓ ମେଧାବୀ ହୁଏ ।

ସାନୋଽତିଜୀର୍ଣ୍ଣଃ ପୃଥୁନମ୍ରଗାତ୍ରଃ
ପରାନ୍ନଭୋଜୀ ସୁବିବର୍ଜିତଶ୍ଚ
କ୍ଳେଶସହିଷ୍ଣୁ ସୁତବିତ୍ତ ପୂର୍ଣ୍ଣଃ
କୁଚେଲଧାରୀ ଶୁଫକୀଟଜନ୍ମା ।

ବୃଶ୍ଚିକ ଲଗ୍ନଜାତ ବ୍ୟକ୍ତି ସାନସ୍ୱଭାବ, ଅବଳ ଓ ସ୍ଥୂଳ ଶରୀରଧାରୀ, କୁବୁଜ, ପରାନ୍ନଭୋଜୀ, ସ୍ୱଳ୍ପହୀନ, ଶୂର, ଅସହିଷ୍ଣୁ ଓ ଧନାଢ୍ୟଯୁକ୍ତ ଓ କୁତ୍ସିତ ବସ୍ତ୍ର ପରିଧାନ କରେ ।

ଗୃହେପୋଭବଃ ସର୍ବଗୁଣାକରଃ ସ୍ୟାତ୍
ସମସ୍ତ ବିଦ୍ୟାନିପୁଣୋଽତିଦାତା,
ନରେଶପୂଜ୍ୟଃ ସକଳାର୍ଥଯୁକ୍ତଃ
ପରୋପକାରୀ ସୁତନୁଃ ସୁଶୀଳଃ ।

ଧନୁଲଗ୍ନଜାତ ବ୍ୟକ୍ତି ସକଳଗୁଣଶାଳୀ, ସର୍ବବିଦ୍ୟାକୁଶଳ, ଅତିଦାତା, ରାଜପୂଜ୍ୟ, ଧନଶାଳୀ, ପରୋପକାରୀ, ସୁତନୁ ଓ ସୁଶୀଳ ହୁଏ ।

ଦକ୍ଷୋଽତିଧୈର୍ଯ୍ୟଃ ପ୍ରଣତୋପକାରୀ
ସ୍ୱେଚ୍ଛାବିହାରୀ ମଖରୋଽତିଗର୍ବୀ
ସୁସ୍ପଷ୍ଟଦନ୍ତୋଷ୍ଠମୁଖଃ ପ୍ରସିଦ୍ଧଃ
ବିଶୁଦ୍ଧଚେତା ମକରୋଦ୍ଭବଃ ସ୍ୟାତ୍ ।

ମକରଲଗ୍ନଜାତ ବ୍ୟକ୍ତି ଦକ୍ଷ, ଅତିଧୀର, ପ୍ରଣତ ବ୍ୟକ୍ତିର ଉପକାରୀ, ସ୍ୱେଚ୍ଛାଗୃହୀ, ମୁଖର, ଉଦାରସ୍ୱଭାବ, ସୁସ୍ପଷ୍ଟ ଦନ୍ତ ଓ ଓଷ୍ଠ ମୁଖ ବିଶିଷ୍ଟ, ଅତିଗର୍ବିତ ଓ ବିଶୁଦ୍ଧାନ୍ତଃକରଣବିଶିଷ୍ଟ ହୁଏ ।

କୁମ୍ଭୋଦ୍ଭବୋ ମୂର୍ଖତରଃ କୁକର୍ମୀ
କୁଳାଧମଃ କ୍ରୂରତମୋଽଲସାସ୍ୟ
ସୂତ୍ୟଗ୍ରଘୋଣୋ ମଳନୋଽବିବେକୀ
ନୀଚାନ୍ୱିତୋ ନୀଚଗତିଃ କଦର୍ଯ୍ୟଃ ।

କୁମ୍ଭ ଲଗ୍ନ ଜାତ ବ୍ୟକ୍ତି ମୂର୍ଖ, କୁକର୍ମୀ, କୁଳାଧମ, ଦୁଷ୍ଟ, ଅଳସ, ତୀକ୍ଷ୍ଣନାସିକାଯୁକ୍ତ, ମଳିନ, ଅବିବେକୀ, ନୀଚ-କର୍ମାସକ୍ତ, ଅଳ୍ପ ଗତି ଓ କୃପଣ ହୁଏ ।

ଶାସ୍ତ୍ରାନ୍ତରେ—

କୁମ୍ଭଲଗ୍ନେ ସମୁଦ୍ଭୂତଶ୍ଚଳଚିତ୍ତୋଽତିସୌହୃଦଃ
ପରଦାରରତୋ ନିତ୍ୟଂ ସତ୍ତ୍ୱକାୟୋ ମହାସୁଖୀ ।

ଶାସ୍ତ୍ରାନ୍ତରରେ ଦେଖାଯାଏ —କୁମ୍ଭ ଲଗ୍ନ ଜାତ ବ୍ୟକ୍ତି ଚଞ୍ଚଳମନା, ବନ୍ଧୁଯୁକ୍ତ, ପରଦାରାସକ୍ତ, ସତ୍ତ୍ୱଯୁକ୍ତଶରୀର ଓ ମହାସୁଖୀ ହୁଏ ।

ବିଜ୍ଞାନବୁଦ୍ଧିଃ ସ୍ଫୁଟ ନାସିକାକ୍ଷୋ
ଧନ୍ୟଃ ସ୍ୱକାନ୍ତୋଦ୍ଭବ ବୃତ୍ତି ଯୁକ୍ତଃ
କନ୍ଦର୍ପ ବିଦ୍ୟା ନିପୁଣୋଽତିଧୀରେ
ଭୋଗାନ୍ୱିତୋ ମୀନ ବିଲଗ୍ନ ଜାତଃ ।

ମୀନଲଗ୍ନଜାତ ବ୍ୟକ୍ତି ବିଜ୍ଞାନବୁଦ୍ଧିଯୁକ୍ତ, ତୀକ୍ଷ୍ଣ ନାସିକା ଯୁକ୍ତ, ଧନ୍ୟ, ଆବିଷ୍କୃତ ଉତ୍ତମ ଜୀବିକା ଦ୍ୱାରି ପ୍ରାପ୍ତ ଧନ ଭୋଗୀ, ରତଶାସ୍ତ୍ରାଭିଜ୍ଞ, ଅତି ଧୀର ଓ ଭୋଗଶାଳୀ ହୁଏ —ଜ୍ୟୋତିର୍ବିଦ୍ ଶ୍ରୀ ବାଇକୋଳ ମହାପାତ୍ରଙ୍କ ସଙ୍କଳିତ ।]

୭ । ବିବାହ ଲଗ୍ନ; ବିବାହ କାମନେ ନିରୂପିତ ମୁହୂର୍ତ୍ତ—7. The moment fixed for the ceremony of marriage. ୮ । ଜନ୍ମ ଲଗ୍ନ; ଜନ୍ମ ସମୟରେ ଉଦିତ

ହୋଇ ଥିବା ରାଶ—8. The zodiacal sign which is in the ascendant at the birth of a child. ୯ । ଉପଯୁକ୍ତ ସମୟ ବା ମୁହୂର୍ତ୍ତ—9. Opportune moment. ୧୦। ଶୁଭ ମୁହୂର୍ତ୍ତ—10. An auspicious or lucky moment (Apte). [ବି—ସନ୍ତାନ ଭୂମିଷ୍ଠ ହେବା ସମୟରେ ଦ୍ୱାଦଶ ରାଶି ମଧ୍ୟରୁ ଯେଉଁ ରାଶିର ଉଦୟ ହେଉଥାଏ, ସନ୍ତାନର ସେହି ଲଗ୍ନ ଜନ୍ମଲଗ୍ନ, ଧ୍ରୁବ । ଅହୋରାତ୍ର ମଧ୍ୟରେ ୧୨ଟି ରାଶି ଯଥାକ୍ରମେ ପୂର୍ବ ଦିଗରେ ଉଦିତ ହୁଏ । ପ୍ରତ୍ୟେକ ରାଶିର ଉଦୟ କାଳକୁ ଲଗ୍ନ ବୋଲି-ଯାଏ । ବିବାହ, ବ୍ରତ, ଚୂଡ଼ାକର୍ମ ଆଦି ସମସ୍ତ କାର୍ଯ୍ୟ ପାଇଁ ଶୁଭ ଓ ଅଶୁଭ ଲଗ୍ନ ଅଛି । ] ୧୧ । ବିବାହ—11 Marriage.

ଲଗ୍ନକ—ସଂ ବି—(ଲଗ୍ନ+କ)—ଜାମିନ୍; ପ୍ରତିଭୂ—
Lagnaka Surety; bailor; a person who stands security for another.

ଲଗ୍ନକ ଗ୍ରହଣ—ସ. ବି.—( ଲଗ୍ନକ+ଗ୍ରହଣ )—କୌଣସି ବ୍ୟକ୍ତିକୁ
Lagnaka grahaṇa ଅନ୍ୟ ବ୍ୟକ୍ତି ପାଇଁ ଜାମିନ୍‌ରୂପେ ସ୍ୱୀକାର କରିବା—Admitting a person as security for another.

ଲଗ୍ନ କଙ୍କଣ—ସ.ବି—ବିବାହ ପୂର୍ବରୁ ବର ଓ କନ୍ୟାଙ୍କ ହାତର ଗଣ୍ଠିରେ
Lagna kaṅkaṇa ବନ୍ଧା ଯିବା ମଙ୍ଗଳ ସୂତ୍ର ବା କଙ୍କଣ [ହି. ଶ]—An auspicious bangle or tie put on the wrist of the bride and bridgroom before marriage.

ଲଗ୍ନ କଥା - ସ. ବି—(ଲଗ୍ନ+କଥା)—ସମୟୋପଯୋଗୀ ବାକ୍ୟ—
Lagna kathā Opportune words.

ଲଗ୍ନ କାଳ—ସଂ. ବି —(କର୍ମଧା)—କୌଣସି ଶୁଭ କାର୍ଯ୍ୟ କରିବାପାଇଁ
Lagna kāla ଜ୍ୟୋତିଷ ଗଣନା କ୍ରମେ ନିର୍ଦ୍ଧାରିତ ଶୁଭ ସମୟ-
[ଲଗ୍ନ ମୁହୂର୍ତ୍ତ, ଲଗ୍ନ ବେଳା, ଲଗ୍ନ ସମୟ—ଅନ୍ୟରୂପ] Auspicious time fixed upon by astrologers for the performance of any work (Apte).

ଲଗ୍ନ କୁଣ୍ଡଳୀ—ସଂ. ବି—ଫଳିତ ଜ୍ୟୋତିଷର ଯେଉଁ ଚକ୍ରରୁ କୌଣସି
Lagna kuṇḍalī ବ୍ୟକ୍ତିର ଜନ୍ମ ସମୟରେ ଗ୍ରହମାନଙ୍କର ଭିନ୍ନ ଭିନ୍ନ ରାଶିରେ ଅବସ୍ଥାନ କଥା ଜଣା ପଡ଼େ (ହି. ଶ)-A circle drawn according to astrology from which the positions of the Zodiacal signs at the birth of a person are known.

ଲଗ୍ନ ଗ୍ରହ—ସଂ. ବିଣ. ପୁଂ—(ଲଗ୍ନ+ଗ୍ରହ ଧାତୁ+କର୍ତ୍ତୃ. ଅ)—
Lagna graha ଜିଗରଦାର୍; ଜିଦ୍‌ବାଜ୍—Tenacious:
[ଲଗ୍ନଗ୍ରହା—ସ୍ତ୍ରୀ] insisting firmly on any thing (Apte)

ଲଗ୍ନଜିତା—ସଂ. ବି—ଶ୍ରୀକୃଷ୍ଣଙ୍କର ଏକତମା ଅଷ୍ଟ ମହିଷୀ—One of the
Lagnajitā principal queens of Śrikṛushṇa.

ଲଗ୍ନଜ୍ୟା—ସଂ. ବି—(ଜ୍ୟାମିତି ପାରିଭାଷିକ ଶବ୍ଦ)—ସ୍ପର୍ଶିଣୀ; ଯେଉଁ
Lagnajyā ସରଳରେଖା ବୃତ୍ତ୍ତ ଭେଦ ନ କରି ପରିଧିକୁ ସ୍ପର୍ଶ ମାତ୍ର କରିଥାଏ—A tangent

ଲଗ୍ନ ଦିନ—ସଂ. ବି.—(କର୍ମଧା)—କୌଣସି ଶୁଭ କର୍ମାନୁଷ୍ଠାନ ପାଇଁ
Lagna dina ଜ୍ୟୋତିଷ ଗଣନାକ୍ରମେ ନିର୍ଦ୍ଧାରିତ ଶୁଭଦିନ—
[ଲଗ୍ନଦିବସ, ଲଗ୍ନ ବାସର, ଲଗ୍ନାହଃ—ଅନ୍ୟରୂପ] An auspicious or lucky day chosen for the performance of any work.

ଲଗ୍ନ ଧରିବା—ଦେ. କ୍ରି.—ବିବାହାଦି ପାଇଁ ଗଣନାଦ୍ୱାରା ଶୁଭ ଲଗ୍ନ
Lagna dharibā ସ୍ଥିର କରିବା—To calculate and ascertain a propitious moment for the performance of a ceremony.

ଲଗ୍ନ ନିରୂପଣ—ସଂ. ବି—(୬ଷ୍ଠୀ ତତ୍; ଲଗ୍ନ+ନିରୂପଣ)—କୌଣସି
Lagna nirūpaṇa ନିର୍ଦ୍ଦିଷ୍ଟ ବେଳାରେ ନିର୍ଦ୍ଦିଷ୍ଟ ଦେଶରେ କେଉଁ ଲଗ୍ନ ହୋଇଅଛି, ତାହାର ସ୍ଥିରୀକରଣ—Ascertaining the Lagna at a particular place and time.

ଲଗ୍ନ ପତ୍ର—ସଂ. ବି—(ମ.ପ. ଲୋ; ଲଗ୍ନ ନିରୂପକ ପତ୍ର)—ବିବାହପୂର୍ବରୁ
Lagna patra ବର ଓ କନ୍ୟା ପକ୍ଷୀୟ ବ୍ୟକ୍ତିମାନଙ୍କ ଉପସ୍ଥିତିରେ ଜ୍ୟୋତିଷ ଗଣନାମତେ ନିର୍ଦ୍ଧାରିତ ବିବାହର ଶୁଭମୁହୂର୍ତ୍ତ ବା ଲଗ୍ନ ଜ୍ଞାପକପତ୍ର—A paper setting forth the moment fixed for the performance of the marriage rite.

ଲଗ୍ନ ପ(ପା)ଦ—ସ. ବିଣ. ପୁଂ (ବହୁବ୍ରୀହି)—ଲିପ୍ତପାଦ; ଯେଉଁ ଜୀବଙ୍କର
Lagna pa(pā)da ପାଦର ଅଙ୍ଗୁଠିମାନ ଏକାଠେଇଁ ଲାଗିଥାଏ;
[ ଲଗ୍ନପ(ପା)ଦା—ସ୍ତ୍ରୀ ] ଜାଲପାଦ—Webfooted.
( ଲଗ୍ନପଦୀ—ଅନ୍ୟରୂପ )

ଲଗ୍ନ ଭ୍ରଂଶ—ସ. ବି ( ୬ଷ୍ଠୀ ତତ୍; ଲଗ୍ନ+ଭ୍ରଂଶ )—ବିବାହାଦି ପାଇଁ
Lagna bhraṁśa ନିର୍ଦ୍ଧାରିତ ଲଗ୍ନର ବେଳା ଅତିକ୍ରାନ୍ତ ହୋଇଯିବା—The passing away of the moment fixed for a marriage.

ଲଗ୍ନମଣ୍ଡଳ—ସ. ବି (୬ଷ୍ଠୀ ତତ୍ ଲଗ୍ନ+ମଣ୍ଡଳ)—ରାଶିଚକ୍ର—
Lagna maṇḍala The zodiac

ଲଗ୍ନ ମାନ—ସ. ବି (ଜ୍ୟୋତିଷ) (୬ଷ୍ଠୀ ତତ୍)—ପ୍ରତ୍ୟେକ ନାକ୍ଷତ୍ରିକ
Lagna māna ଅହୋରାତ୍ର ମଧ୍ୟରେ ମେଷ ବୃଷାଦି ପ୍ରତ୍ୟେକ ରାଶିର ଉଦୟର ପରିମାଣକାଳ—The time of the rising of each of the twelve zodiacal signs above the horizon in the course of the twenty four hours of day & night. [ ବି—ଦେଶମାନଙ୍କର ଭୂପୃଷ୍ଠର ଭିନ୍ନ ଭିନ୍ନ ସ୍ଥାନରେ ଅବସ୍ଥିତି ଯୋଗୁଁ ରାଶିମାନଙ୍କର ଉଦୟ ସବୁ ଦେଶରେ ଏକ

ସମୟରେ ବା ଏକ ଭାଗରେ ଦୃଷ୍ଟ ହୁଏ ନାହିଁ। ଅତଏବ ସବୁ ଦେଶରେ ଲଗ୍ନମାନ ସମାନ ହୁଏ ନାହିଁ । ଉଦାହରଣ ସ୍ୱରୂପ, ଏକ ନିର୍ଦ୍ଦିଷ୍ଟ ଦିନ ଯେବେ ପୁରୁଷୋତ୍ତମକ୍ଷେତ୍ରକୁ ମୀନ ରାଶିର ଉଦୟ ବା ଲଗ୍ନମାନ ୩।୩୭ ଅଂଶ ହେବ, ତେବେ କଟକ ନଗରକୁ ଉକ୍ତ ରାଶିର ଲଗ୍ନମାନ ୩।୬।୩, ବରଜାମଣ୍ଡଳ ବା ଯାଜପୁରକୁ ୩।୫୨ ଓ ଲଙ୍କାକୁ ୪।୩୦ ହେବ । ଯେଉଁ ରାଶିର ଯେତେ ଅଂଶରେ ସୂର୍ଯ୍ୟ ଅବସ୍ଥାନ କରନ୍ତି ଲଗ୍ନର ତେତିକ ଅଂଶ ପ୍ରାତଃକାଳରେ ଗତ ହୁଏ । ପରେ ଶେଷାଂଶରେ ତହିଁର ପରବର୍ତ୍ତୀ ଲଗ୍ନମାନ ଯୋଗ କରି ଦିବାଭାଗରେ ଇଷ୍ଟସମୟରେ ଲଗ୍ନ ନିରୂପଣ କରାଯାଏ । ଏହିରୂପେ ଯେଉଁ ରାଶିର ଯେତେ ଅଂଶରେ ସୂର୍ଯ୍ୟ ଅବସ୍ଥାନ କରନ୍ତି, ତହିଁର ସପ୍ତମ ରାଶିର ସେତିକ ଅଂଶ ସୂର୍ଯ୍ୟାସ୍ତ କାଳରେ ଗତ ହୁଏ । ସୂର୍ଯ୍ୟାସ୍ତକାଳରେ ଉକ୍ତ ରାଶିର ଶେଷାଂଶ ଓ ପରବର୍ତ୍ତୀ ଲଗ୍ନମାନ ଯୋଗ କରି ରାତ୍ରି କାଳରେ ଇଷ୍ଟ ସମୟର ଲଗ୍ନ ନିରୂପଣ କରାଯାଏ— ଅରୁଣୋଦୟ ପ୍ରେସ୍ ରଞ୍ଜିକା ପଞ୍ଜିକା ।]

**ଲଗ୍ନ ଶୁଦ୍ଧି**—ସଂ.ବି ( ୬ଷ୍ଠୀ ତତ୍ ) —କୌଣସି ଶୁଭକର୍ମାନୁଷ୍ଠାନ ପାଇଁ
Lagna śuddhi ରାଶିମାନଙ୍କ ଶୁଭାଧିଷ୍ଠାନ —Auspicious positions of the zodiacal signs for the performance of any work (Apte)

**ଲଗ୍ନ ସୁଜ(ଝି)ବା**—ଦେ.କ୍ରି (ସଂ. ଲଗ୍ନ ଶୁଦ୍ଧି) —ମାଙ୍ଗଳିକ ଅନୁଷ୍ଠାନ ପାଇଁ
Lagna sūji(jhi)bā ଶୁଭ ଲଗ୍ନ ଦେଖିବା —The finding
लग्न मिला लग्नठिक होना out of an auspicious moment for the performance of some ceremony.

**ଲଗ୍ନ ସ୍ଫୁଟ**—ସଂ.ବି ( ଜ୍ୟୋତିଷ )—ଭିନ୍ନ ଭିନ୍ନ ସ୍ଥାନର 'ଲଗ୍ନମାନ'କୁ
Lagna sphuṭa ଅବଲମ୍ବନ କରି ରାଶିର ଭୋଗ୍ୟକାଳର ସୂକ୍ଷ୍ମ ଗଣନା—Minute calculation of the Lagnamāna of the zodiacal signs in respect of a particular place.
[ ଦ୍ର—ଦ୍ୱାଦଶ ରାଶିର ଉଦୟ ସବୁ ଦେଶରେ ଏକ ସମୟରେ ସମଭାବରେ ଦେଖାଯାଏ ନାହିଁ । ସୁତରାଂ ଯେଉଁ ଦେଶରେ ଉଦୟ କାଳରେ ସୂର୍ଯ୍ୟ ଯେତେ ଅଂଶରେ ଅବସ୍ଥାନ କରୁଥାଆନ୍ତି, ପ୍ରାତଃକାଳରେ ସେହି ଲଗ୍ନର ତେତିକ ଅଂଶ ଗତ ହୋଇଥାଏ । ଏହି ଲଗ୍ନମାନଙ୍କ ଅବଲମ୍ବନ କରି ଜ୍ୟୋତିଷ ଗଣନା ସାହାଯ୍ୟରେ ପ୍ରତ୍ୟେକ ଦେଶରେ ରାଶିମାନଙ୍କର ଭୋଗ୍ୟକାଳର ସୂକ୍ଷ୍ମ ଗଣନାକୁ ଲଗ୍ନସ୍ଫୁଟ ବୋଲାଯାଏ । ]—

**ଲଗ୍ନିକ**—ଦେ.ବିଣ ଓ ବି (ସଂ.ଲଗ୍ନିକ)—୧। ନିକଟସମ୍ପର୍କୀୟ ବନ୍ଧୁ—
Lagnika 1. Near relative. ୨ । କୁଟୁମ୍ବ—
लग्निक लग्निक 2. Kindred. ( ଉ—ଭୁବା ତ ଜାତିପୁଅ ଲଗ୍ନିକ କେହି ନୁହେ—ଫକୀରମୋହନ. ଗଳ୍ପସ୍ୱଳ୍ପ । ] ସଂ. ବି—ଜାମିନ୍‌ଦାର; ପ୍ରତିଭୂ— A surety; bail (Apte)

**ଲଗ୍ନିକା**—ସଂ. ବି. ସ୍ତ୍ରୀ ( ଲଗ୍ନ+କ+ସ୍ତ୍ରୀ. ଆ )—୧ । ଅଜାତରଜସ୍କା
Lagnikā ବାଳିକା—1. A girl who has not yet attained puberty. ୨। ଦଶମ ବର୍ଷଦେଶୀୟା ବାଳିକା; ଯେଉଁ ବାଳିକାର ବୟସ ୧୦ମ ବର୍ଷ ଡେଇଁ ନ ଥାଏ—2. A girl less than ten years old. [ ଦ୍ର—ଅନେକେ ଏ ଶବ୍ଦକୁ ନଗ୍ନିକାର ଅଶୁଦ୍ଧ ଆକାର ବୋଲି ଲେଖିଅଛନ୍ତି । ]

**ଲଘଟ** – ସଂ. ବି (ଲଘ୍ ଧାତୁ=ଗମନକରିବା+ କର୍ତ୍ତୃ. ଅଟ )—ବାୟୁ;
Laghaṭa ଅନିଳ; ପବନ—The air.

**ଲଘାପଘା**—ଦେ. ବି—ଲଗାପଗା (ଦେଖ)
Laghāpaghā Lagāpagā (See)

**ଲଘିମା**—ସଂ. ବି (ଲଘୁ +ଭାବାର୍ଥେ ଇମନ୍, ଲଘିମନ୍ ଶବ୍ଦ ୧ମା. ୧ବ)-
Laghimā ୧ । ଲଘୁତ୍ୱ—1. Lightness. ୨ । ଅଳ୍ପତ୍ୱ; କ୍ଷୁଦ୍ରତ୍ୱ—2. Smallness; littleness. ୩ । ଯୋଗସାଧନଦ୍ୱାରା ଶରୀରକୁ ଲଘୁ ବା ହାଲୁକା କରିବାର ଶକ୍ତି; ଅଷ୍ଟ ସିଦ୍ଧି ମଧ୍ୟରୁ ଏକତମ—3. The supernatural power of lightening one's body by Joga or esoteric exercises. ୪ । ଅଷ୍ଟୈଶ୍ୱର୍ଯ୍ୟ ମଧ୍ୟରୁ ଏକତମ—4. One of the 8 peculiarities of divinity. ୫ । କମିଯିବା—5. Diminution. ୬ । ଗୁରୁତ୍ୱର ହାନି; ମାନସମ୍ଭ୍ରମର ନାଶ—6. Loss of power or prestige. ୭ । ଚିନ୍ତାଶୂନ୍ୟତା; ଅବିବେଚନା—7. Thoughtlessness; frivolity (Apte ). ୮ । ( ଭୌଗୋଳିକ ପରିଭାଷା ) ଅକ୍ଷାଂଶ—( ଲଘିମା ରେଖା—ସପ୍ତମ ଅର୍ଥର ଅନ୍ୟରୂପ ) 8, Latitude.

**ଲଘିଷ୍ଠ**—ସଂ. ବିଣ (ଲଘୁ+ ଅତିଶୟାର୍ଥେ ଇଷ୍ଠ) —୧ । ଅତିଶୟ ଲଘୁ;
Laghishṭha ଖୁବ୍ ହାଲୁକା—1. Very light. lightest. ୨ । ନିମ୍ନତମ—2. Lowest. ୩ । କ୍ଷୁଦ୍ରତମ—3. Least.

**ଲଘିଷ୍ଠ ସଂଖ୍ୟା**—ସଂ. ବି. (କର୍ମଧା; ଲଘିଷ୍ଠ+ସଂଖ୍ୟା)—( ଗଣିତ )—
Laghishṭha saṁkhyā ସର୍ବନିମ୍ନ ସଂଖ୍ୟା—The lowest number.

**ଲଘିଷ୍ଠ ସାଧାରଣ ଗୁଣିତକ**—ସଂ. ବି—( ଗଣିତ) ଯେଉଁ ଲଘୁତମ
Laghishṭha sādhāraṇa guṇitaka ସଂଖ୍ୟା ନିର୍ଦ୍ଦିଷ୍ଟ ଦୁଇ ବା ତତୋଽଧିକ ସଂଖ୍ୟାଦ୍ୱାରା ବିଭାଜ୍ୟ—( Arithmetic ) The least common multiple; the L. C. M. in arithmetic. [ ଉ— ୫, ୭, ୯, ୧୦ ଓ ୬, ଏହି ପାଞ୍ଚଗୋଟି ରାଶିର ଲଘିଷ୍ଠ ସାଧାରଣ ଗୁଣିତକ ବାହାର କରିବାକୁ ହେବ । ତହିଁର ପ୍ରକ୍ରିୟା—

୨ | ୫, ୭, ୯, ୧୦, ୭
୩ | ୫, ୭, ୯, ୫, ୩
୫ | ୫, ୭, ୩, ୫, ୧
୧, ୭, ୩, ୧, ୧

୨×୩×୫×୧×୭×୩×୧×୧=୬୩୦ । ଅତଏବ ଏ ୫ ଗୋଟି ରାଶିର ଲଘିଷ୍ଠ ସାଧାରଣ ଗୁଣିତକ ୬୩୦ ଅଟେ । ଅର୍ଥାତ୍ ୬୩୦ କୁ ଏ ପାଞ୍ଚୋଟି ରାଶି ମଧ୍ୟରୁ ଯେ କୌଣସି ରାଶିଦ୍ୱାରା ହରଣଲେ ଭାଗଶେଷ କିଛି ରହିବ ନାହିଁ । ୬୩୦ ରୁ ଅଳ୍ପତର ଅନ୍ୟ କୌଣସି ରାଶି ନାହିଁ, ଯାହାକୁ ଉକ୍ତ ପାଞ୍ଚୋଟି ରାଶି ମଧ୍ୟରୁ ଯେ କୌଣସି ରାଶିଦ୍ୱାରା ହରଣଲେ ଭାଗଶେଷ ରହିବ ନାହିଁ । ]

**ଲଘୀକରଣ** — ଦେ. ବି (ସଂ. ଲଘୁକରଣ)—୧ । ଲଘୁକରଣ; ଗୁରୁବସ୍ତୁକୁ Laghikarana ଲଘୁ କରିବା—1. Reduction. ୨ । ଭାରି ପଦାର୍ଥକୁ ହାଲୁକା କରିବା—2. Lightening of a heavy thing. ୩ । ବଡ଼ ବସ୍ତୁକୁ ଛୋଟ କରିବା—3. Making a big thing smaller. ୪ । (ଗଣିତ) ବଡ଼ ସଂଖ୍ୟାକୁ ଛୋଟ କରିବା—4. (Arithmetic) Reduction of a big number into a smaller one. (ଯଥା—୧୬୦୩ ଛଟାଙ୍କିକୁ ଲଘୀକରଣ ଦ୍ୱାରା (୧୬୦୩/୧୬=)୧୦୦ ସେର ବା (୧୦୦/୪୦)=୨ ମହଣ ୨୦ ସେର କରିଯାଏ) ୫ । ଗୌରବର ହ୍ରାସକରଣ—5. Diminution of fame or glory.

**ଲଘୀୟାନ୍**—ସଂ. ବିଣ. ପୁଂ (ଲଘୁ+ଅତିଶଯ୍ୟାର୍ଥେ. ଈୟସ୍; ଲଘୀୟସ୍ ଶବ୍ଦ Laghiyān ୧ମା. ୧ବ)—୧ । ଅତ୍ୟନ୍ତ ଲଘୁ; ଲଘୁତର, ଅପେକ୍ଷାକୃତ ଲଘୁ—1 Very light; lighter. ୨ । କ୍ଷୁଦ୍ରତର—2. Very small; smaller.
( ଲଘୀୟସୀ—ସ୍ତ୍ରୀ )

**ଲଘୁ**—ସଂ. ବିଣ. ପୁଂ ଓ ସ୍ତ୍ରୀ (ଲଙ୍ଘ୍ ଧାତୁ=ଡିଆଁଇବା+କର୍ମ. ଉ)—Laghu ୧ । ଭାରଶୂନ୍ୟ; ହାଲୁକା—1. Light; not heavy. (ବିପରୀତ—ଗୁରୁ) ୨ । ସାମାନ୍ୟ—2 Slight. ୩ । [ଲଘ୍ୱୀ—ସ୍ତ୍ରୀ] ତୁଚ୍ଛ—3. Trivial; worthless; trifling. ୪ । ସଦ୍ଭୂଗହୀନ; ଅସାର; ଅଲ୍ପଃସାରଶୂନ୍ୟ; କାଖାରୁ—4 Unsubstantial. ୫ । ସାନ; ଛୋଟ; କ୍ଷୁଦ୍ର—5. Small, little. ୬ । ପତଳା—6. Thin. ୭ । ହ୍ରସ୍ୱ; ଖର୍ବ—7. Dwarfish, short. ୮ । ସୂକ୍ଷ୍ମ—8. Minute; delicate. ୯ । କୃଶ—9. Lean. ୧୦ । ଗୌରବହୀନ; ସମ୍ମାନହୀନ—10. Having no honour; dishonourable. ୧୧ । ଅନାଦୃତ—11. Disregarded; slighted. ୧୨ । ମୃଦୁ—12. Mild. ୧୩ । କ୍ଷିପ୍ର; ଶୀଘ୍ର; ଦ୍ରୁତ—13. Swift; quick; rapid. ୧୪ । ସୁନ୍ଦର; ଆନନ୍ଦଜନକ—14. Beautiful; pleasing. ୧୫ । ଶୁଷ୍କ—15. Dry. ୧୬ । ଅଳ୍ପାୟାସସାଧ୍ୟ—16. Which can be done with slight labour. ୧୭ । ନଗଣ୍ୟ—17. Trifling (Apte). ୧୮ । ନୀଚ (ହି. ଶ)—18. Low; mean (Apte). ୧୯ । ଦୁର୍ବଳ (ହି. ଶ)—19. Weak. ୨୦ । (ଛନ୍ଦଃ ଶାସ୍ତ୍ର) ଏକମାତ୍ରାଯୁକ୍ତ (ସ୍ୱର, ତାଳ) (ହି. ଶ)—20. (Prosody, music) Having only one measure. ୨୧ । ଯେଉଁ ବର୍ଣ୍ଣର ଉଚ୍ଚାରଣ କାଳ ଅଳ୍ପ—21. Short (vowel or letter). [ଦ୍ର—ଲଘୁ ଶବ୍ଦ ସ୍ତ୍ରୀଲିଙ୍ଗ ଓ ପୁଂଲିଙ୍ଗ । ] ସଂ. ବି—୧ । କୃଷ୍ଣାଗୁରୁ (ହି. ଶ)—1. The black variety of eaglewood. ୨ । ଉଶୀର; ବେଣାଚେର (ହି. ଶ)—2. The fragrant root fibres of Juncus Odoratus grass. ୩ । ଲଘୁଗଣର ନକ୍ଷତ୍ରତ୍ରୟ; ହସ୍ତା, ଅଶ୍ୱିନୀ ଓ ପୁଷ୍ୟା ନକ୍ଷତ୍ର (ହି. ଶ)—3. The 13th, 8th and 1st asterisms. ୪ । ପନ୍ଦର କ୍ଷଣ ପରିମିତ ସମୟ (ହି. ଶ)—4. A unit of time equal to 15 moments. ୫ । ତିନିପ୍ରକାର ପ୍ରାଣାୟାମ ମଧ୍ୟରୁ ୧୨ ମାତ୍ରାବିଶିଷ୍ଟ ପ୍ରାଣାୟାମ (ହି. ଶ)—5. The breathing exercise extending over 12 Mātr [ଦ୍ର—ଉତ୍ତମ ପ୍ରାଣାୟାମ—୨୪ ମାତ୍ରାବିଶିଷ୍ଟ—'ତତ୍ସବିତୁର୍ବରେଣୀୟଂ ଭର୍ଗୋଦେବସ୍ୟ ଧୀମହି ଧିୟୋ ଯୋନଃ ପ୍ରଚୋଦୟାତ୍ ।' ଏଥିର ନାମ ଗାୟତ୍ରୀ ।

ମଧ୍ୟମ ପ୍ରାଣାୟାମ—୧୯ ମାତ୍ରାବିଶିଷ୍ଟ—'ଓଁ ଭୂଃ ଓଁ ଭୁବଃ ଓଁ ସ୍ୱଃ ଓଁ ମହଃ ଓଁ ଜନଃ ଓଁ ତପଃ ଓଁ ସତ୍ୟଂ' । ଏଥିର ନାମ ସାବିତ୍ରୀ ।

ଲଘୁ ପ୍ରାଣାୟାମ—୧୨ ମାତ୍ରାବିଶିଷ୍ଟ—'ଆପୋ ଜ୍ୟୋତି ରସୋଽମୃତଂ ବ୍ରହ୍ମଭୂର୍ଭୁବସ୍ୱଃ' । ଏଥିର ନାମ ସରସ୍ୱତୀ । ଅନ୍ୟ ଦୁଇ ପ୍ରାଣାୟାମକୁ ମଧ୍ୟମ ଓ ଉତ୍ତମ ବୋଲାଯାଏ ।] ୬ । (ବ୍ୟାକରଣ) ଏକମାତ୍ରାଯୁକ୍ତ ସ୍ୱର; ଅଳ୍ପ ପ୍ରାଣ ସ୍ୱରବର୍ଣ୍ଣ—6. (Grammar) Short vowel. ୭ । ବଂଶୀର ଦୈର୍ଘ୍ୟ ଛୋଟ ହେବା ରୂପ ଦୋଷ (ହି. ଶ)—7. The defect of a flute being smaller than the standard size. ୮ । ରୂପ୍ୟ (ହି. ଶ)—8. Silver. ୯ । ମୃତ୍କ୍ଷା; ପିଡ଼ଙ୍ଗ ଶାଗ (ହି.ଶ)—9. A potherb; Trigonella Corniculata. ୧୦ । ଲାମଜ୍ଜକ; ଗନ୍ଧବେଣା (ଦ୍ରବ୍ୟଗୁଣ)—10. Juncus Odoratus. ୧୧ । କାର୍ପାସ; କପାଗଛ—11. Cotton plant. ୧୨ । ଲଘୁସ୍ୱରଯୁକ୍ତ ଅକ୍ଷର—12. Short letter. ଦେ. ବି—ଲଘୁଧାନ; ଯେଉଁ ଶାରଦଧାନ ଶୀଘ୍ର ପାଚଯାଏ—A species of winter paddy which ripens earlier than the other species.

**ଲଜ୍ଜ୍ୟ** ଦେ. ବିଣ—୧ । ଲଜ୍ଜିତ—1. Ashamed. ୨ । ଅପମାନିତ; ଅସମ୍ମାନିତ—2. Humiliated; insulted; disregarded.

ଲଘୁ ଆହାର—ଦେ. ବି—(ସଂ.ଲଘ୍ୱାହାର)—ଲଘୁପାକ ଦ୍ରବ୍ୟର ଅଳ୍ପ
Laghu āhāra ପରିମାଣରେ ଭୋଜନ—A light meal;
[ଲଘ୍ୱାହାର—ସଂ. ରୂପ] eating of easily digestible food.

ଲଘୁ କରିବା—ଦେ. କ୍ରି—୧। ଛୋଟ କରିବା; କ୍ଷୁଦ୍ର କରିବା; ହାଲୁକା
Laghu kariba କରିବା—1. To lighten; to reduce.
୨। କମାଇ ଦେବା—2. To diminish; to reduce.
୩। ମାନହାନି କରିବା—3. To diminish one's honour or respect. ୪। ଅପମାନିତ କରିବା—4. To insult. [ଉ-ଲଘୁ କରିଦେବ ଦେଖିବା କ୍ଷଣେ। କବିସୂର୍ଯ୍ୟ. ଲଲିତାସ୍ୱରମ୍ଭ ଲ. ଗୀତ।] ୫। ଲଜ୍ଜିତ କରିବା—5. To put to shame. ୬। (ଗଣିତ) କୌଣସି ନିମ୍ନ ଶ୍ରେଣୀର ରାଶିକୁ ଉଚ୍ଚ ଶ୍ରେଣୀର ରାଶିରେ ଓ ଉଚ୍ଚ ଶ୍ରେଣୀର ରାଶିକୁ ନିମ୍ନ ଶ୍ରେଣୀର ରାଶିରେ ପରିଣତ କରିବା—6. (arithmetic) To reduce a given number into one of a lower or higher denomination.

ଲଘୁ କଣା—ସଂ. ବି.—(ବହୁବ୍ରୀହି, ଲଘୁ+କଣା)—ଧଳା ଜୀରା—
Laghu kaṇa White cumin seed.

ଲଘୁ କଣ୍ଟକୀ—ସଂ. ବି.—ଲଜ୍ଜାଳୁ (ଭୂ. ଶ.)—
Laghu kaṇṭaki Mimosa Pudica.

ଲଘୁକର୍ଣ୍ଣୀ—ସଂ. ବି—(ବୈଦ୍ୟକ)—୧। ଔଷଧରେ ବ୍ୟବହୃତ ଗୁଳ୍ମ
Laghu karṇṇi ବିଶେଷ—1. Clematis Ariloba (Kirtikar); a medicinal plant [ଦ୍ର—ଏହି ଗୁଳ୍ମ ଦାକ୍ଷିଣାତ୍ୟରେ ଜନ୍ମେ; ଖୁବ୍ ଝାମ୍ପୁଡ଼ା ଓ ବିସ୍ତୃତ। ଏହା ଜ୍ୱର, ଚେଙ୍ଗ ରୋଗ, ରକ୍ତ ଦୋଷ ଓ କୁଷ୍ଠ ରୋଗର ଔଷଧ ଓ ବିରେଚକ।] ୨। ମୂର୍ଚ୍ଛା (ଭୂ. ଶ.)—
2. Sansvieria Zeylanica (plant).

ଲଘୁ କାମୋଦୀ—ଦେ ବି.—ରାଗବିଶେଷ(ରାଗ ତଳେ ନୋଟ୍ ଦେଖ)—
Laghu kāmodi A kind of musical tune.

ଲଘୁ କର୍କନ୍ଧୁ—ସଂ. ବି—ଭୁଇଁ ବରକୋଳି—The small-fruited
Laghu karkandhu variety of Jujube.

ଲଘୁ କାୟ—ସଂ. ବି. (କର୍ମଧା; ଲଘୁ+କାୟ)—୧। କ୍ଷୁଦ୍ର ଦେହ; ଖର୍ବ
Laghu kāya ଶରୀର—1. Short body. ୨। (ବହୁବ୍ରୀହି ଲଘୁ+କାୟ) ଛେଳି; ଛାଗଳ—2. The goat.
ସଂ. ବିଣ. ପୁଂ—୧। ଖର୍ବ ଶରୀର ବିଶିଷ୍ଟ—1. Dwarfish; of small body or stature. ୨। ପତଳା (ଲଘୁକାୟା—ସ୍ତ୍ରୀ) ଦେହ ବିଶିଷ୍ଟ—2. Thin-bodied; lean.

ଲଘୁ କାଶ୍ମର୍ଯ୍ୟ(ର୍ଯ୍ୟ)—ସଂ. ବି. ( ବୈଦ୍ୟକ )—୧। କଟ୍‌ଫଳ; କାଫଳ
Laghu kāśmarjya(rja) (ବୃକ୍ଷ)—1. A tree; Myrica Sapida. ୨। ପଣସ ଗଛ (ଭୂ. ଶ)—2. Jack-fruit tree.

ଲଘୁ କିନ୍ନରୀ—ସଂ. ବି—ତନ୍ତ୍ରଯୁକ୍ତ ଏକ ପ୍ରକାର ପ୍ରାଚୀନ କାଳର ବାଦ୍ୟ
Laghu kinnari (ଭୂ. ଶ)—A kind of stringed musical instrument used in ancient India.

ଲଘୁ କୌମୁଦୀ—ସଂ. ବି—ଲଘୁ ସିଦ୍ଧାନ୍ତ କୌମୁଦୀ; ସଂସ୍କୃତ ବ୍ୟାକରଣ
Laghu kaumudi ଗ୍ରନ୍ଥର ନାମ—Name of a grammatical work in Sanscrit.
[ଦ୍ର—ଏହା ବରଦରାଜ ଭଟ୍ଟାଚାର୍ଯ୍ୟ ସଙ୍କଳିତ; ଏହା ଭଟ୍ଟୋଜୀ ଦୀକ୍ଷିତଙ୍କ ସଙ୍କଳିତ ସିଦ୍ଧାନ୍ତ କୌମୁଦୀର ସଂକ୍ଷିପ୍ତ ସଂସ୍କରଣ। ସିଦ୍ଧାନ୍ତ କୌମୁଦୀ ପାଣିନିଙ୍କ ବ୍ୟାକରଣ ସୂତ୍ରର ବ୍ୟାଖ୍ୟା ଅଟେ।]

ଲଘୁ କ୍ରମ—ସ. ବି. (କର୍ମଧା)—ଦ୍ରୁତଗତି; ଜଲ୍‌ଦି ଜଲ୍‌ଦି ଚାଲିବା କ୍ରିୟା
Laghu krama ( ଭୂ. ଶ )—Swift steps, swift motion. ସଂ. ବିଣ. ପୁଂ—(ବହୁବ୍ରୀହି)—ଦ୍ରୁତଗତି ବିଶିଷ୍ଟ—Swift. (ଲଘୁକ୍ରମା—ସ୍ତ୍ରୀ, ଲଘୁକ୍ରମତା—ବି)

ଲଘୁକ୍ରିୟ—ସ ବିଣ. ପୁଂ. ( ବହୁବ୍ରୀହି; ଲଘୁ+କ୍ରିୟା )—ଯେଉଁ ବ୍ୟକ୍ତି
Laghukriya ଅଳ୍ପ କାର୍ଯ୍ୟ କରେ—Doing little work.
(ଲଘୁକ୍ରିୟା—ସ୍ତ୍ରୀ) [ଲଘୁକ୍ରିୟତା(ତ୍ୱ)—ବି]

ଲଘୁ କ୍ରିୟା—ସ. ବି—୧। ପ୍ରସ୍ରାବ କରିବା—1. Making
Laghu kriyā water; pissing. ୨। ସାମାନ୍ୟ ଫଳଯୁକ୍ତ କାର୍ଯ୍ୟ—2. Insignificant act; act of no consequence. [ଉ—ବହ୍ୱାରମ୍ଭ ଲଘୁ କ୍ରିୟା।]
୩। ସାମାନ୍ୟ ଆୟାସସାଧ୍ୟ କର୍ମ—3. Light work.

ଲଘୁ ଗଣ—ସଂ. ବି—(ଜ୍ୟୋତିଷ)—ଅଶ୍ୱିନୀ, ପୁଷ୍ୟା ଓ ହସ୍ତା ନକ୍ଷତ୍ର—
Laghu gaṇa The three asterisms or lunar mansions, viz, the 1st, 8th and 13th.

ଲଘୁ ଗମନ—ସ. ବି—(କର୍ମଧା, ଲଘୁ+ଗମନ)—ଦ୍ରୁତଗତି; ବେଗଯୁକ୍ତ
Laghu gamana ଗତି—Swift motion. ସ. ବିଣ.-(ଲଘୁଗତି—ଅନ୍ୟରୂପ) ଶୀଘ୍ରଗାମୀ; (ବହୁବ୍ରୀହି; ଲଘୁ+ଗମନ)—(ଲଘୁଗମନା, ଲଘୁଗତି—ସ୍ତ୍ରୀ) ଦ୍ରୁତଗତି ବିଶିଷ୍ଟ—Swift-footed; swift.

ଲଘୁଗାମୀ—ସ.ବିଣ. ପୁଂ--(ଲଘୁଗାମିନ୍ ଶବ୍ଦ; ଲଘୁ+ଗମ୍ ଧାତୁ+କର୍ତ୍ତୃ.
Laghugāmi ଇନ୍ ୧ମା.୧ବ.)—ଦ୍ରୁତଗତି ବିଶିଷ୍ଟ—Swift (ଲଘୁଗାମିନୀ—ସ୍ତ୍ରୀ)(ଲଘୁଗାମିତା—ବି) footed; light footed.

ଲଘୁ ଗୁରୁ—ସଂ. ବି—କାବ୍ୟାଳଙ୍କାର ବିଶେଷ— A kind of
Laghu guru rhetorical figure.
ସଂ. ବିଣ.—ଲଘୁ ଓ ଗୁରୁ—Short and long.

ଲଘୁ ଗୋଧୂମ—ସଂ. ବି--( ଲଘୁ+ଗୋଧୂମ)—(ବୈଦ୍ୟକ) ଛୋଟ
Laghu godhūma ଛୋଟ ଏକ ପ୍ରକାର ଗହମ—
A species of small wheat.

ଲଘୁ ଚତୁଷ୍ପଦୀ—ଦେ. ବି—ଶ୍ଳୋକବିଶେଷ; ୨୯ ଅକ୍ଷରଯୁକ୍ତ ଛନ୍ଦୋବିଶେଷ-
Laghu chatushpadi A kind of metre, having 29 letters. [ ଦ୍ର—ଏହାର ପ୍ରତ୍ୟେକ ଶ୍ଳୋକରେ ଚାରିଗୋଟି ଚରଣ ବା ପାଦ ଥାଏ। ପ୍ରଥମ ଦ୍ୱିତୀୟ ଓ ତୃତୀୟ ଚରଣରେ ଆଠଟି ଲେଖାଏଁ ବର୍ଣ୍ଣ ଓ ଶେଷ ଚରଣରେ ପାଞ୍ଚଟି ବର୍ଣ୍ଣ ଥାଏ।]

**ଲଘୁ ଚନ୍ଦନ**—ସଂ. ବି.—ଅଗୁରୁ କାଷ୍ଠ—(ହି. ଶ)
Laghu chandana — Eagle wood
[ ଲଘୁନାମା—ଅନ୍ୟରୂପ ]

**ଲଘୁ ଚିତ୍ତ**—ସଂ. ବିଣ. ପୁଂ—(ବହୁବ୍ରୀହି; ଲଘୁ+ଚିତ୍ତ)—ଲଘୁଚେତାଃ
Laghu chitta (ଦେଖ)—Laghuchetāḥ (See)
(ଲଘୁଚିତ୍ତା—ସ୍ତ୍ରୀ) [ଲଘୁ ଚିତ୍ତତା—ବି]

**ଲଘୁ ଚେତାଃ**—ସଂ. ବିଣ.—(ବହୁବ୍ରୀହି; ଲଘୁ ଚେତସ୍ ଶବ୍ଦ; ଲଘୁ+ଚେତସ୍)—୧। ସଂକୀର୍ଣ୍ଣମନାଃ—1.
Laghu chetāḥ
Narrow-minded. ୨। ଯାହାର ଅନ୍ତଃକରଣ ନୀଚ ଭାବାପନ୍ନ; ନୀଚମନା—2. Mean minded; frivolous ୩। ଗାମ୍ଭୀର୍ଯ୍ୟଶୂନ୍ୟ—3. Having no gravity; light hearted. ୪। ଅସ୍ଥିର ଚିତ୍ତ—4. Fickle unsteady (Apte.)
( ଲଘୁଚେତା—ଦେ ରୂପ )

**ଲଘୁଚ୍ଛଦା**—ସ ବି—ମହାଶତାବରୀ (ହି. ଶ)
Laghuchchhadā A big variety of Asparagus.

**ଲଘୁଚ୍ଛନ୍ଦ**—ସ. ବି (ଲଘୁ+ଛନ୍ଦ; ସନ୍ଧି ଯୋଗୁଁ ଛର ଦ୍ୱିତ୍ୱ)—ସରଳ ବା ସହଜରେ ଉଚ୍ଚାର୍ଯ୍ୟ ଛନ୍ଦ—
Laghuchchhanda
An easy cadence; a short measure or metre.

**ଲଘୁ ଜ(ଜା)ଙ୍ଗଳ**—ସ. ବି—ଲାବକ ପକ୍ଷୀ—
Laghu ja(jā)ṅgala A kind of quail.

**ଲଘୁ ଜ୍ଞାନ**—ସଂ. ବି ( ଲଘୁ+ଜ୍ଞାନ )—୧। ଘୃଣାବୋଧ; ଘୃଣା—
Laghu jñāna 1. Contempt. ୨। ତୁଚ୍ଛବୋଧ; ହେୟଜ୍ଞାନ—2. Feeling of disregard; making light of a matter.

**ଲଘୁତମ**—ସ. ବିଣ (ଲଘୁ+ତମ)—ଅତ୍ୟନ୍ତ ଲଘୁ, ସମସ୍ତଙ୍କଠାରୁ
Laghutama ଲଘୁ ( ଦେଖ )—Very laghu; least
(ଲଘୁତମା—ସ୍ତ୍ରୀ) laghu. (See)

**ଲଘୁତର**—ସ. ବିଣ (ଲଘୁ+ତର)—ଅପେକ୍ଷାକୃତ ଲଘୁ—
Laghutara Very laghu; comparatively laghu.
(ଲଘୁତରା—ସ୍ତ୍ରୀ) (See)

**ଲଘୁତମାପବର୍ତ୍ତ୍ୟ**—ସ. ବି (ଗଣିତ)—ଲଘିଷ୍ଠ ସାଧାରଣ ଗୁଣିତକ—
Laghutamāpabarttya (arithmetic) The least common multiple of two or more numbers.

**ଲଘୁତା(ତ୍ୱ)**—ସ. ବି [ଲଘୁ+ଭାବାର୍ଥେ ତା (ତ୍ୱ)]—୧। ଭାର
Laghutā(twa) ଶୂନ୍ୟତା—1. Lightness. ୨। ଲଘୁ ଭାବ—2. The state of being laghu. ୩। ତୁଚ୍ଛତା—3. Insignificance.

**ଲଘୁତି**—ଗ୍ରା. ବି—ଲଗଉଡ଼ି (ଦେଖ)
Laghuti Lagauti (See)

**ଲଘୁତିକ୍ତ**—ସ. ବି—ମୁଦ୍ରାଶଙ୍ଖ (ହି. ଶ)
Laghutikta Litharge.

**ଲଘୁତୁପକ**—ସ. ବି—ପିସ୍ତଲ୍ (ହି. ଶ)
Laghutupaka Pistol.

**ଲଘୁତେଜାଃ**—ସ. ବିଣ (ବହୁବ୍ରୀହି; ଲଘୁ+ତେଜସ୍; ୧ମା. ୧ବ)—
Laghutejāḥ କ୍ଷୀଣପ୍ରଭ; ସ୍ୱଳ୍ପତେଜୋବିଶିଷ୍ଟ—Having little energy or glory.

**ଲଘୁତ୍ରିପଦୀ**—ଦେ. ବି—ଛନ୍ଦୋବିଶେଷ—A triplet; consisting
Laghutripadi of 20 letters distributed in 3 lines. [ବ୍ର—ଏହାର ପ୍ରତ୍ୟେକ ଶ୍ଳୋକରେ ତିନି ଗୋଟି ଚରଣ ଥାଏ। ପ୍ରଥମ ଦୁଇ ଚରଣରେ ଛଅଟି ଲେଖାଏଁ ଅକ୍ଷର ଓ ଶେଷ ଚରଣରେ ଆଠୋଟି ଅକ୍ଷର ଥାଏ।]

**ଲଘୁ ତ୍ରୈରାଶିକ**—ସ. ବି (ଗଣିତ)—ତିନୋଟି ଲଘୁରାଶିଯୁକ୍ତ ସମସ୍ୟା—
Laghu trairāsika (mathematics) Simple
(ଲଘୁତ୍ରୟ[ତ୍ରୈ]ରାଶିକ—ଦେ. ରୂପ) rule of three.

**ଲଘୁ ଦଣ୍ଡ**—ସ. ବି (କର୍ମଧା; ଲଘୁ+ଦଣ୍ଡ)—୧। ସାମାନ୍ୟ ଦଣ୍ଡ, ଅଳ୍ପ
Laghu daṇḍa ଶାସ୍ତି—1. Light punishment.
(ବିପରୀତ—ଗୁରୁଦଣ୍ଡ) ୨। ଛୋଟ ଯଷ୍ଟି—2 Small stick.

**ଲଘୁ ଦନ୍ତୀ** - ସ.ବି (ବୈଦ୍ୟକ)-ଏକ ପ୍ରକାର ଛୋଟ ଦନ୍ତୀ ନାମକ ବୃକ୍ଷ—
Laghu danti A sort of small medicinal plant,
ସ. ନାମ—କ୍ଷୁଦ୍ରଦନ୍ତୀ, ଲଘ୍ୱୀଦନ୍ତୀ, ବିଶଲ୍ୟା, Croton Polyandrum.
ଉଦୁମ୍ବରପର୍ଣ୍ଣୀ, ଏରଣ୍ଡଫଳା, ଶୀଘ୍ରା,
ଶ୍ୟେନଘଣ୍ଟା, ଘୁଣପ୍ରିୟା, ବାରାହାଙ୍ଗୀ, (ବ୍ର—ଦନ୍ତୀ ତଳେ ନୋଟ୍
ନିକୁମ୍ଭ, ମକୂଳକ, ବାଘ୍ରଦନ୍ତୀ। ଦେଖ)

**ଲଘୁ ଦୁନ୍ଦୁଭି**—ସ. ବି (କର୍ମଧା)—ତୂରୀ—
Laghu dundubhi A kind of small drum.

**ଲଘୁ ଦୋଷ**—ସଂ. ବି (କର୍ମଧା: ଲଘୁ+ଦୋଷ)—୧। ସାମାନ୍ୟ ଦୋଷ—
Laghu dosha 1. Trivial fault. ୨। ସାମାନ୍ୟ ପାପ; ସାମାନ୍ୟ ଅପରାଧ—2. Venial sin; slight offence.

**ଲଘୁ ଦ୍ରବ୍ୟ**—ସଂ. ବି (କର୍ମଧା।; ଲଘୁ+ଦ୍ରବ୍ୟ)—୧। ହାଲୁକା ପଦାର୍ଥ—
Laghu drabya 1. Light thing. ୨। ଲଘୁପାକ ଦ୍ରବ୍ୟ—2 Easily digestible article.

**ଲଘୁ ଦ୍ରାକ୍ଷା**—ସଂ. ବି (ବୈଦ୍ୟକ)—କାଳମା ଦ୍ରାକ୍ଷା; ଛୋଟ ଦ୍ରାକ୍ଷା;
Laghu drākshā କିସ୍‌ମିସ୍—Resin; small species of grapes. [ବ୍ର—ଏଥିରେ ମଞ୍ଜି ନ ଥାଏ।]

**ଲଘୁଧାନ**—ଦେ. ବି (ଲଘୁ+ଧାନ୍ୟ)—ଶାରଦଧାନ୍ୟ ବିଶେଷ—
Laghu dhāna A species of winter paddy
ଲଘୁଧାନ which ripens early. [ ବ୍ର—ଏହା ଟିପ ଜମିରେ
ଲଘୁଶାରଦ ହୁଏ ଓ ଅନ୍ୟ ଧାନ (ବଡ଼ ଧାନ) ଅପେକ୍ଷା ଚଞ୍ଚଳ ପାଚେ (ବିପରୀତ—ବଡ଼ଧାନ ) ଓ ପୌଷ ମାସ ପୂର୍ବରୁ କଟାଯାଏ। ଯଥା—ମୋଟରି, ସହରି, କଣାଚୁଆ, ସରୁଚନାମାଳ, ବରପଙ୍କ। ବଡ଼ଧାନ; ଯଥା - ମକରା, କୋଇତାଳପକ୍ଷିଆ, ଗୁଆପେଣ୍ଡି, ବରବୋଡ଼, ଶଗଡ଼ଗୁଣ୍ଡି, କଳାଜିରା, କାଳିଟିକୁ ଣ, ମଧୁମାଛି, ମାଇକଣ୍ଠା ଇତ୍ୟାଦି। ପାଣିଧାନ ଯଥା,—ଜମ୍ବୁଦ୍ୱୀପ, ରମେଲାଇ, ଗୋଡ଼ା।]

**ଲଘୁ ପଞ୍ଚମୂଳ**—ସଂ. ବି (ବୈଦ୍ୟକ)—ସ୍ୱଳ୍ପ ପଞ୍ଚମୂଳ; ବୃହତୀ (ଭେଜି Laghu pañchamūḷa ବାଇଗଣ), ଶାଲପର୍ଣ୍ଣୀ, କୃଷ୍ଣପର୍ଣ୍ଣୀ, (ଲଘୁ ପଞ୍ଚକ—ଅନ୍ୟରୂପ) କଣ୍ଟକାରୀ (ଅଙ୍କରାନ୍ତି), ଗୋକ୍ଷୁର (ଗୋଖରୁ), ଏହି ପାଞ୍ଚଗୋଟି ମୂଳଦ୍ୱାରା ପ୍ରସ୍ତୁତ ପାଚନ—A decoction of 5 herbal roots. (ପଞ୍ଚମୂଳ ତଳେ ଦୋହ୍ନ ଦେଖ)

**ଲଘୁପତ୍ର**—ସଂ. ବି (ବହୁବ୍ରୀହି)—କମଳାଗୁଣ୍ଡି ଗଛ (ଦ୍ରୁ. ଶ) Laghupatra Mallotus Philipinensis (tree).

**ଲଘୁପତ୍ରା**—ସଂ. ସ୍ତ୍ରୀ—ହିମାଳୟ ପର୍ବତମାଳା ମଧ୍ୟରେ ଜାତ ବୃକ୍ଷ ବିଶେଷ—Laghupatrā Podophyllum Emodi. (tree) पापडा, पापड, निर्विषि, पिजिजाज ଗୁ. ଭେନକବେଲ୍

**ଲଘୁପର୍ଣ୍ଣୀ**—ସଂ. ବି (ବହୁବ୍ରୀହି)—ଅଶ୍ୱତ୍ଥ ବୃକ୍ଷ (ଦ୍ରୁ. ଶ) Laghupatri Ficus Reeigiosa. (tree)

**ଲଘୁପର୍ଣ୍ଣୀ**—ସଂ. ବି—୧ । ମୂର୍ବା (ଦ୍ରୁ. ଶ)—1. Sansevieria Laghuparṇṇī Zeylanica. (plant) ୨ । ଶତମୂଳୀ (ଦ୍ରୁ. ଶ)—2. Asparagus. (creeper)

**ଲଘୁପାକ**—ସଂ. ବି (ଲଘୁ+ପାକ)—(କର୍ମଧା) ଅଳ୍ପ ତାଳ ଦେଇ Laghupāka ସିଝାଇବା—Cooking over a light fire. ସଂ. ବିଣ (ବହୁବ୍ରୀହି)—ଯେଉଁ ଖାଦ୍ୟ ଶୀଘ୍ର ଜୀର୍ଣ୍ଣ ହୁଏ; ସହଜପାଚ୍ୟ—Easily digestible (food); easy of digestion.

**ଲଘୁପାକୀ**—ସଂ. ବି (ଲଘୁପାକିନ ଶବ୍ଦ; ୧ମା. ୧ବ)—ଚିନା ଶସ୍ୟ Laghupākī (ଦ୍ରୁ. ଶ)—Millet. ସଂ. ବିଣ. ଲଘୁପାକ (ଦେଖ) Laghupāka. (See) [Apte]

**ଲଘୁପାତୀ**—ସଂ. ବି. ପୁଂ (ଲଘୁପାତିନ୍, ୧ମା. ୧ବ)—କୁଆ; କାକ Laghupāti (ଲଘୁପାତିନୀ—ସ୍ତ୍ରୀ) (ଦ୍ରୁ. ଶ)—Crow.

**ଲଘୁପାପ**—ସଂ. ବି [ଲଘୁ+ପାପ]—ସାମାନ୍ୟ ପାପ—Venial sin. Laghu pāpa (ଯଥା—ଲଘୁପାପରୁ ଗୁରୁଦଣ୍ଡ) ସଂ. ବିଣ. ପୁଂ.—(ଲଘୁପାପା—ସ୍ତ୍ରୀ) (ବହୁବ୍ରୀହି) ସାମାନ୍ୟ ପାପଯୁକ୍ତ—Venial; slightly sinful.

**ଲଘୁପୁଷ୍ପ**—ସଂ. ବି (ବହୁବ୍ରୀହି)—ଭୂଇଁକଦମ୍ବ [ଦ୍ରୁ. ଶ] Laghupushpa A kind of Kadamba.

**ଲଘୁପୁଷ୍ପା**—ସଂ. ବି [ବୈଦ୍ୟକ]—ସୁବର୍ଣ୍ଣକେତକୀ; କେତକୀଫୁଲ ଗଛ—Laghupushpā The yellow flowered Pandanus केतकी पीलाकेवडा Odoratissimus. ଅନ୍ୟ ସଂ. ନାମ—ସୁବର୍ଣ୍ଣକେତକୀ, ସୁଗନ୍ଧିନୀ ।

**ଲଘୁ ପ୍ରକୃତି**—ସଂ. ବି. ( କର୍ମଧା; ଲଘୁ+ପ୍ରକୃତି )—ମୃଦୁ ବା କୋମଳ Laghu prakṛuti ପ୍ରକୃତି—Mild nature. ସଂ. ବିଣ
ଲଘୁ ପ୍ରକୃତିକ—ପୁଂ } ଅନ୍ୟରୂପ—ବିଣ ପୁଂ ଓ ସ୍ତ୍ରୀ. (ବହୁବ୍ରୀହି)
ଲଘୁ ପ୍ରକୃତିକା—ସ୍ତ୍ରୀ } ମୃଦୁସ୍ୱଭାବବିଶିଷ୍ଟ—Of mild nature.

**ଲଘୁ ପ୍ରଯତ୍ନ**—ସଂ. ବିଣ. ପୁଂ. (ବହୁବ୍ରୀହି)—୧ । ଅଳସ୍ୟଯୁକ୍ତ ବ୍ୟକ୍ତି; Laghu prajatna ଅଳସୁଆ (ଦ୍ରୁ. ଶ)—1. Idle. ୨। ଯେଉଁ (ଲଘୁ ପ୍ରଯତ୍ନା—ସ୍ତ୍ରୀ) ବର୍ଣ୍ଣ ଅଳ୍ପ ପ୍ରୟାସରେ ଉଚ୍ଚାରିତ ହୁଏ—2. (letter) Pronounced with slight articulation (Apte). ସଂ. ବି. (କର୍ମଧା)—ସାମାନ୍ୟ ଚେଷ୍ଟା ବା ପରିଶ୍ରମ—Slight exertion.

**ଲଘୁ ଫଳ**—ସଂ. ବି. (ବହୁବ୍ରୀହି)—ଡିମ୍ବିରି (ଦ୍ରୁ. ଶ)—Laghu phaḷa Fig.

**ଲଘୁ ବଦର(ରୀ)**—ସଂ. ବି—ଶ୍ରେଷ୍ଠ ବରକୋଳି; ଭୂଇଁବରକୋଳି; Laghu badara(ri) କର୍କନ୍ଧୁ—A sort of small jujube.

**ଲଘୁ ବର୍ଣ୍ଣ**—ସଂ. ବି ( କର୍ମଧା; ଲଘୁ+ବର୍ଣ୍ଣ )—ଯେଉଁ ବର୍ଣ୍ଣର ଉଚ୍ଚାରଣ Laghu barṇṇa କାଳ ଅଳ୍ପ—Short letter. (ଗୁରୁବର୍ଣ୍ଣ—ବ୍ୟତୀତ)

**ଲଘୁ ବଲ୍କଳା**—ସଂ. ବି. (ବୈଦ୍ୟକ) (ବହୁବ୍ରୀହି)—ତେଜୋବତୀ ନାମକ Laghu baḷkaḷā ବୃକ୍ଷ—A sort of medicinal plant; the toothache tree. ତେଜୋବତୀ ୧ (ଦେଖ)—Tejobatī 1 ( See )

**ଲଘୁ ବୃତ୍ତି**—ସଂ ବି ( କର୍ମଧା; ଲଘୁ+ବୃତ୍ତି )—ନୀଚ କର୍ମ—Mean Laghu bṛutti work. ୨ । ନୀଚ ବ୍ୟବସାୟ -2. Low profession. ସଂ. ବିଣ. ପୁଂ. ଓ ସ୍ତ୍ରୀ. (ବହୁବ୍ରୀହି)—୧ । ଯାହାର ବ୍ୟବସାୟ ନୀଚ ଅଟେ—1. Of low profession. ୨ । ଯାହାର ବ୍ୟବହାର ନୀଚ ଅଟେ—2. Ill-behaved; low; vile (Apte). ୩ । ଅବିବେଚକ (ବ୍ୟକ୍ତି)—3. Frivolous (Apte). ୪ । ମନ୍ଦ ରୂପେ ପରିଚାଳିତ (କର୍ମ)—4. Mismanaged (Apte).

**ଲଘୁ ବେଧୀ**—ସଂ. ବିଣ. ପୁଂ (ଲଘୁ+ବିଧ୍ ଧାତୁ+କର୍ତ୍ତ୍ରି. ଇନ୍; ୧ମା. Laghu bedhī ୧ବ)—ଯେ ଠିକ୍ ମତେ ବା ଅନାୟାସରେ (ଲଘୁ ଭେଦୀ—ଅନ୍ୟରୂପ) ଲକ୍ଷ୍ୟଭେଦ କରି ପାରେ—Making (ଲଘୁ ବେଧିନୀ; ଲଘୁ ଭେଦିନୀ—ସ୍ତ୍ରୀ) a clever and easy hit at a target. (Apte).

**ଲଘୁ ବ୍ୟୟ**—ସଂ. ବି. ( କର୍ମଧା, ଲଘୁ+ବ୍ୟୟ )—୧ । ଅଳ୍ପ ଖରଚ—Laghu byaya 1. Small expense. ୨ । ପରିମିତ (ଲଘୁ ବ୍ୟୟୀ—ଅନ୍ୟ ବିଣ. ପୁଂ. ରୂପ) ବ୍ୟୟ—2. Economy. (ଲଘୁ ବ୍ୟୟା—ସ୍ତ୍ରୀ) ସଂ. ବିଣ. ପୁଂ—ପରିମିତ ବ୍ୟୟୀ—Frugal.

**ଲଘୁ ବ୍ରାହ୍ମୀ**—ସଂ. ବି. (ବୈଦ୍ୟକ)—ଏକପ୍ରକାର ଶ୍ରେଷ୍ଠ ବ୍ରାହ୍ମୀ ଶାଗ—Laghu brāhmī A sort of potherb.

**ଲଘୁ ଭାବ**—ସଂ. ବି. (ଲଘୁ+ଭାବ)—୧ । ଲଘୁତା—1. State of Laghu bhāba being Laghu. ୨ । ନୀଚତା—2. Meanness. ୩ । କ୍ଷୁଦ୍ରତା—3. Smallness. ୪ । ନମ୍ରତା; ନ୍ୟୂନତା—4. Humility.

**ଲଘୁ ଭାର**—ସଂ. ବି. ( କର୍ମଧା; ଲଘୁ+ଭାର )—୧ । ଅଳ୍ପ ଓଜନ—Laghu bhāra 1. Light weight. ୨ । ହାଲୁକା ବୋଝ—2. Light load. ୩ । ସାମାନ୍ୟ ଦାୟିତ୍ୱ—3. Slight responsibility. ସଂ. ବିଣ—ଯାହାର ଓଜନ ଅଳ୍ପ; ହାଲୁକା—Light in weight.

**ଲଘୁ ଭୋଜନ**—ସଂ. ବି. (ଲଘୁ+ଭୋଜନ; କର୍ମଧା)—୧। ଅଳ୍ପ ଭୋଜନ
Laghu bhojana —1. Food taken in small quantity. ୨। ପରିମିତାହାର—2 Temperance; moderation in meal. ୩। ଲଘୁ ପାକ ଦ୍ରବ୍ୟର ଭୋଜନ—3. Partaking of light food. ୪। ଜଳଖିଆ—4. Light meal; tiffen. ସଂ. ବିଣ. ପୁଂ (ବହୁବ୍ରୀହି)—ଲଘୁ ଭୋଜୀ ( ଦେଖ ) —Laghu bhoji ( See )
(ଲଘୁଭୋଜନା—ବିଣ. ସ୍ତ୍ରୀ)

**ଲଘୁ ଭୋଜୀ**—ସଂ. ବିଣ. ପୁଂ (ଲଘୁ+ଭୋଜନ)—୧। ପରିମିତାହାରୀ—
Laghu bhoji 1. Sparing in diet; temperate in diet.
(ଲଘୁ ଭୋଜନୀ—ସ୍ତ୍ରୀ) ୨। ଯେ ଅଳ୍ପ ମାତ୍ର ଖାଦ୍ୟ ଖାଏ—2 Eating very little quantity of food. ୩। ଯେ ଲଘୁପାକ ଦ୍ରବ୍ୟ ଖାଏ—3. Taking easily digestible or light food.

**ଲଘୁ ମନ୍ଥ**—ସଂ. ବି—ଛୋଟ ଅଗବଥୁ ଗଛ (ବୃ. ଶ)—The small
Laghu mantha variety of Premna Integrifolia (tree).

**ଲଘୁ ମତି**—ସଂ. ବିଣ. ପୁଂ ଓ ସ୍ତ୍ରୀ. (ବହୁବ୍ରୀହି)—୧। ଅବୋଧ—
Laghu mati (ଲଘୁମତିଃ—ଅନ୍ୟରୂପ) 1. Foolish.
୨। ଲଘୁଚିତ୍ତ (ଦେଖ)—2. Laghuchitta (See)

**ଲଘୁ ମାଂସ**—ସଂ. ବି. (ବହୁବ୍ରୀହି)—ତିତ୍ତିର ପକ୍ଷୀ (ବୃ. ଶ)—
Laghu mamsa The partridge bird.

**ଲଘୁ ମାଂସୀ**—ସଂ. ବି—ଛୋଟ ଜଟାମାଂସୀ (ବୃ. ଶ)—The small
Laghu mamsi variety of Indian spikenard.

**ଲଘୁ ମାନ**— ସଂ ବି (କର୍ମଧା)—ନାୟିକଙ୍କୁ ଅନ୍ୟ ସ୍ତ୍ରୀ ସଙ୍ଗେ କଥୋପକଥନ
Laghu māna କରିବା ଦେଖି ନାୟିକାର ମନରେ ଉତ୍ପନ୍ନ ସାମାନ୍ୟ କ୍ରୋଧ ବା ଅଭିମାନ—Slight displeasure of a lady on seeing her lover taking with another woman.

**ଲଘୁ ମାଣ୍ଡିଆ**—ଦେ. ବି—ମାଣ୍ଡିଆର ପ୍ରକାର ଭେଦ—
Laghu mandia A variety of Mandia
लघु माड़ुआ लघुमाड़ुआ

**ଲଘୁ ମୂଳ**—ସଂ. ବି. ( ବୀଜ ଗଣିତ )—ବୀଜ ଗଣିତରେ ସମୀକରଣରେ
Laghu mūla ସହାପେକ୍ଷା କ୍ଷୁଦ୍ର ତମ ସଂଖ୍ୟା—(Algebra) The least algebraic root, the lesser root of an equation (Apte)

**ଲଘୁ ମୂଲ୍ୟ**—ସଂ. ବି. (ଲଘୁ+ମୂଲ୍ୟ)—୧। (କର୍ମଧା) ସ୍ୱଳ୍ପ ମୂଲ୍ୟ; ଅଳ୍ପ
Laghu mulya ଦାମ—1. Small price; low price
୨। ସସ୍ତା ଦର—2. Cheap rate. ସଂ. ବିଣ. (ବହୁବ୍ରୀହି)—ଯହିଁର ମୂଲ୍ୟ କମ୍; ସସ୍ତା—Cheap.

**ଲଘୁ ରାଶି**—ସଂ. ବି. (କର୍ମଧା; ଲଘୁ+ରାଶି)—(ଗଣିତ) ଅଳ୍ପ ସଂଖ୍ୟାଯୁକ୍ତ
Laghu rāsi ରାଶି—'arithmetic) A small number.

**ଲଘୁ ଲଘୁ**—ଦେ. କ୍ରି. ବିଣ—ମୃଦୁ ଭାବରେ—
Laghu laghu लघु भावे लघुतासे Lightly.

**ଲଘୁଲତା**—ସଂ. ବି—୧। କଲମ୍ବଲତା—1. Memordica creeper.
Laghulatā ୨। ଅନନ୍ତମୂଳ, ଶାରିବା—2. Hemidesmus Indicus; Indian sarsaparilla.

**ଲଘୁ ଲୟ**—ସଂ.ବି (ବୈଦ୍ୟକ)—୧। ବେଣାଚେର—The root of
Laghu laya Benā grass, Andropogon Muricatus.
୨। ବେଣା ତୃଣ (ବୃ. ଶ)—2. Juncus Odoratus (grass).

**ଲଘୁ ଲଳିତ**—ସଂ. ବିଣ ( ଦ୍ୱନ୍ଦ୍ୱ, ଲଘୁ+ଲଳିତ )—୧। କ୍ଷୁଦ୍ର ଅଥଚ
Laghu lalita ସୁନ୍ଦର—1. Small yet beautiful.
୨। କ୍ଷୁଦ୍ର ଓ ସୁଶ୍ରାବ୍ୟ (ସ୍ୱର)—2. Small yet sweet (sound).

**ଲଘୁ ଲଳିତ ଚତୁଷ୍ପଦୀ**—ସଂ. ବି—( ଅଧୁନିକ ବ୍ୟବହାର )—ଯେଉଁ
Laghu lalita chatushpadi ଚତୁଷ୍ପଦୀର ପ୍ରଥମ ତିନୋଟି ପାଦରେ ଆଠ ଅକ୍ଷର ଲେଖାଏଁ ଓ ଶେଷ ପାଦରେ ସାତ ଅକ୍ଷର ଥାଏ—A qradret of 31 letters.

**ଲଘୁ ଲୁଘା**—ଗ୍ରା. ବି—(ସହଚର)—ଲଘୁ ଧାନ ଆଦି—
Laghu lughā Various kinds of Laghu paddy.

**ଲଘୁ ଲୋଣିକା**—ସଂ. ବି—ଭାରତରେ ସକଳ ଗ୍ରୀଷ୍ମପ୍ରଧାନ ଅଞ୍ଚଳରେ
Laghu lonikā ଜନ୍ମିବା ବାର୍ଷିକ କୋମଳ ଶାକ ଜାତୀୟ ବିଶେଷ; ଲୁଣି ଲୁଣିଆ ଶାଗ; ଲୁଣି ଶାଗ—Portulacia Quadrifida (Kirtikar); the small variety of Indian purslane. [ ଦ୍ର—ଏଥିରେ ଫୁଲ ଗୋଟିଗୋଟି ଫୁଟେ, ଫୁଲର ପାଖୁଡ଼ା ହଳଦିଆ; ଏହାର ପତ୍ର ଓ ମଞ୍ଜି ଔଷଧରେ ବ୍ୟବହୃତ ହୁଏ । ବୈଦ୍ୟକ ମତରେ ଏହା ରୁକ୍ଷ, ଗୁରୁ, ଅଗ୍ନି-ଦୀପକ, ଅମ୍ଳ ରସ, ଲବଣସ୍ୱାଦ; ଏହା ଅର୍ଶଃ, ବାୟୁ,ଶ୍ଳେଷ୍ମା, ଅଗ୍ନିମାନ୍ଦ୍ୟ, ଓ ବିଷଦୋଷ ନାଶକ—ଦ୍ରବ୍ୟଗୁଣ ।]
ସଂ.—ଲୋଣା, ଲୋଣୀ
ବଂ.—ନୋନିଆ, ଛୋଟନୋନିଆ;ଛୋଟଲୁନେ
ହି.—नुनिया, छोटालुनिया, लोनी
ଗୁ. ଲୁନି, ଲୁଣୀଖୀଣୀ
ତା. ସବନ୍ ପାପୁର କିରେ, ପଶା, କୋଇଲକିରେ
ତେ. ସାଲୀ ପାପୁ, ସାଲାପେଉଲି, ଗୋଲ୍ଲୁପେରେଲ, ଅଇଲକୁର
ମ. ଘୋଲ, ଲହାନଘୋଳ
ଫା. ଖୁରଫା
ଆ. ବକ୍ଲତୁଲ୍ ହୁମକ୍କା

**ଲଘୁ ଶଙ୍କା**—ସଂ. ବି—(ପଣ୍ଡିତଆ ପ୍ରୟୋଗ)—୧। ମୂତ୍ରୋତ୍ସର୍ଗ (ହି ଶ)
Laghu sankā 1. Urination; passing water.
୨। ପ୍ରସ୍ରାବବେଗ ବୋଧ ହେବା; ମୂତ ମାଡ଼ିବା—2. Inclination or tendency to pass urine

**ଲଘୁ ଶଙ୍ଖ**—ସଂ. ବି—(କର୍ମଧା)—ଗେଣ୍ଡା (ବୃ. ଶ.)
Laghu sankha Snail.

**ଲଘୁ ଶୀତ**—ସଂ. ବି—ଗର୍ଭଣୀ ଗଛ (ବୃ. ଶ.)—
Laghu sita Cordia Myxa (tree).

**ଲଘୁ ସମର**—ସଂ. ବି—(ଲଘୁ+ସମର)—ସାମାନ୍ୟ ଯୁଦ୍ଧ—
Laghu samara Skirmish; guerilla.

ଲଘୁ ସିଦ୍ଧାନ୍ତ କୌମୁଦୀ—ସଂ. ବି.—ସଂସ୍କୃତ ବ୍ୟାକରଣ ଗ୍ରନ୍ଥ ବିଶେଷ; Laghu siddhānta kaumudī ଲଘୁ କୌମୁଦୀ—Name of a grammatical work in Sanskrit. [ଦ୍ର—ଏହା ଭଟ୍ଟୋଜୀ ଦୀକ୍ଷିତଙ୍କ ସିଦ୍ଧାନ୍ତ କୌମୁଦୀ ନାମକ ପ୍ରକାଣ୍ଡ ସଂସ୍କୃତ ବ୍ୟାକରଣର ବରଦରାଜ ଭଟ୍ଟାଚାର୍ଯ୍ୟଙ୍କ ସଙ୍କଳିତ ସଂକ୍ଷିପ୍ତ ସଂସ୍କରଣ ।]

ଲଘୁ ସୁ(ସୋ)ଲୁରି—ଦେ. ବି—ଲଘୁଧାନ (ଦେଖ) Laghu su(so)luri Laghu dhāna (See)

ଲଘୁ ସ୍ୱଭାବ—ସଂ. ବିଣ. ପୁଂ—(ଲଘୁ+ସ୍ୱଭାବ)—ଲଘୁଚିତ୍ତ (ଦେଖ) Laghu swabhāba Laghuchitta (See) [ଲଘୁସ୍ୱଭାବା—ସ୍ତ୍ରୀ ]

ଲଘୁ ସ୍ୱର—ସଂ. ବି—(କର୍ମଧା; ଲଘୁ+ସ୍ୱର)—୧ । ହ୍ରସ୍ୱ ସ୍ୱର; ଯେଉଁ Laghu swara ସ୍ୱରର ଉଚ୍ଚାରଣ କାଳ ଅଳ୍ପ—1. Short vowel. [ଦ୍ର—ଯଥା—ଅ, ଇ, ଉ, ଋ ।] ୨ । ମୃଦୁ ସ୍ୱର—2. Low or mild tone. ୩ । କ୍ଷୀଣ ଗଳାର ଶବ୍ଦ—3 Weak voice. ସଂ. ବିଣ. ପୁଂ—ସଂ. ବିଣ. ପୁଂ. [ବହୁବ୍ରୀହି]- ମୃଦୁ ସ୍ୱର ବିଶିଷ୍ଟ— [ଲଘୁ ସ୍ୱରା—ସ୍ତ୍ରୀ] Of mild or soft tone.

ଲଘୁହସ୍ତ—ସଂ. ବିଣ. ପୁଂ ( ବହୁବ୍ରୀହି; ଲଘୁ+ହସ୍ତ )—୧ । କ୍ଷିପ୍ରହସ୍ତ, Laghuhasta ଯେ ସ୍ଫୂର୍ତ୍ତି ସହିତ ବା ଚଞ୍ଚଳ କୌଣସି କାମ (ଲଘୁହସ୍ତା – ସ୍ତ୍ରୀ) କରେ; ଶୀଘ୍ରକାରୀ; ଅତିରହସ୍ତ—1. (ଲଘୁହସ୍ତତା—ବି) Prompt; sharp; active. ୨ । ପଟୁ; ଦକ୍ଷ—2. Expert; skilful; dexterous. ୩ । ଯେଉଁ ବ୍ୟକ୍ତି ଚଞ୍ଚଳ ବାରଂବାର ବାଣ ବା ଶର ଚଳାଇ ପାରେ—3. Skilful in archery or shooting. ସଂ. ବି. ପୁଂ—କ୍ଷିପ୍ରହସ୍ତ ଧନୁର୍ଦ୍ଧର— An expert archer (Apte).

ଲଘୁକରଣ—ସଂ. ବି ( ଲଘୁ+ଅଭୂତତଦ୍ଭାବେ ଚ୍ୱି+କରଣ )— Laghū karaṇa ୧ । ହ୍ରସ୍ୱୀକରଣ; ହ୍ରାସକରଣ—1. Lessening; diminishing. ୨ । ହାଲୁକା କରିବା—2. Lightening. ୩ । ( ଗଣିତ ) ନିମ୍ନ-ଶ୍ରେଣୀସ୍ଥ ରାଶିକୁ ଉଚ୍ଚଶ୍ରେଣୀର ରାଶିରେ ଓ ଉଚ୍ଚ ଶ୍ରେଣୀସ୍ଥ ରାଶିକୁ ନିମ୍ନଶ୍ରେଣୀର ରାଶିରେ ପରିଣତ କରିବା—3. (Arithmetic) The process of reduction of a given number of higher denomination to a lower one and vice versa. [ ଯଥା— ପାହୁଲାକୁ ଟଙ୍କା ଅଣା ପ୍ରଭୃତିରେ ପରିଣତ କରିବା ଓ ଟଙ୍କାକୁ ଅଣା ପାହୁଲା ପ୍ରଭୃତିରେ ପରିଣତ କରିବା, ଗଣିତରେ ଏହି ଉଭୟ ପ୍ରକ୍ରିୟାକୁ ଲଘୂକରଣ ବୋଲାଯାଏ ।]

ଲଘୂକୃତ—ସଂ. ବିଣ ( ଲଘୁ+ଅଭୂତ ତଦ୍ଭାବେ ଚ୍ୱି+କୃତ)—ଲଘୁ Laghūkṛuta ବା ହ୍ରସ୍ୱ କରାଯାଇ ଥିବା ( ଅଳସୁ ପଦାର୍ଥ )— Reduced; lessened; diminished; shortened

ଲଘ୍ୱାଶନ—ସଂ. ବି ( କର୍ମଧା; ଲଘୁ+ଅଶନ )—ଲଘୁଭୋଜନ (ଦେଖ) Laghwaśana Laghubhojana (See) (ଲଘ୍ୱାହାର—ଅନ୍ୟରୂପ) ସଂ. ବିଣ. ପୁଂ—ଲଘୁଭୋଜନ (ଦେଖ) (ଲଘ୍ୱାଶନା, ଲଘ୍ୱାହାରୀ, ଲଘ୍ୱାହାରିଣୀ—ସ୍ତ୍ରୀ) Laghubhojana (ଲଘ୍ୱାହାରୀ—ଅନ୍ୟ ବିଣ. ରୂପ) ( See )

ଲଘ୍ୱାଶୀ—ସଂ. ବିଣ. ପୁଂ ( ଲଘୁ+ଅଶ ଧାତୁ+କର୍ତ୍ତୃ. ଇନ୍, ୧ମା) Laghwāśī ୧ବ )—୧ । ପରିମିତାହାରୀ—1. Frugal; (ଲଘ୍ୱାଶିନୀ—ସ୍ତ୍ରୀ) sparing in meal. ୨ । ଯେ ଲଘୁପାକ ଦ୍ରବ୍ୟ ଖାଏ—2. To king light food.

ଲଘ୍ୱୀ—ସଂ. ବିଣ. ସ୍ତ୍ରୀ ( ଲଘୁ+ସ୍ତ୍ରୀ ଈ )—ଲଘୁର ସ୍ତ୍ରୀଲିଙ୍ଗ— Laghwī Feminine of Laghu. [ ଦ୍ର—ଲଘୁ ଶବ୍ଦର ସ୍ତ୍ରୀଲିଙ୍ଗରେ ଲଘ୍ୱୀ ଓ ଲଘୁ ହୁଏ । ] ସଂ. ବି— ୧ । ସୂକ୍ଷ୍ମୀ ବା ସୁକୁମାରୀ ସ୍ତ୍ରୀ—1. A delicate woman. ୨ । ବଦରୀ ଫଳ ( ହି. ଶ. )· 2. Jujube berry. ୩ । ପିଡ଼ିଙ୍ଗ ଶାଗ ( ହି. ଶ. )— 3. Trigonella Corniculata. ୪ । ହାଲୁକା ଛୋଟ ଶଗଡ଼—4. A light cart (Apte). ୫ । ସ୍ତ୍ରୀବାହକ ଯାନ ବିଶେଷ; ଖଟୁଆ, ଡୋଲି—5. A light sedan chair for carrying females.

ଲଘ୍ୱୀ ଶଙ୍କା—ସଂ. ବି ( ପଣ୍ଡିତିଆ ପ୍ରୟୋଗ )—ଲଘୁଶଙ୍କା— Laghwī śaṅkā Inclination to pass urine.

ଲଙ୍କ ଜଡ଼ା—ଗ୍ରାଦେ ( ଯାଜପୁର ) ବି—ବାଇଗବା ( ଦେଖ ) Laṅka jarḍā Bāigabā ( See )

ଲଙ୍କ ଦେବତୀ(ତା)—ଦେ. ବି. ସ୍ତ୍ରୀ—ଲଙ୍କେଶ୍ୱରୀ ( ଦେଖ ) Laṅka debatī(tā) Laṅkeśwarī ( See ) (ଲଙ୍କଦେଈ—ଅନ୍ୟରୂପ) ଙ୍କେଶ୍ୱରୀ लंकिनी

ଲଙ୍କ ନାଥ—ଦେ. ବି ( ସଂ. ଲଙ୍କା ନାଥ )—ଲଙ୍କାର ରାଜା; ରାବଣ — Laṅka nātha Rābaṇa, the king of Laṅkā. লংকাপতি [ ଉ—ବଡ଼ କହିଲୁଛ ବୋଲେ ଲଙ୍କନାଥ ନୋକୁ ଭୁ लंकनाथ ବଛି । ଉଞ୍ଜ. ବୈଦେହୀଶବିଳାସ । ] (ଲଙ୍କ ନାୟକ—ଅନ୍ୟରୂପ)

ଲଙ୍କ ପତି—ଦେ. ବି ( ସଂ. ଲଙ୍କାପତି )—ଲଙ୍କାପତି, ରାବଣ— Laṅka pati Rābaṇa, the king of Laṅkā. লঙ্কাপতি [ ଉ—ବାହାରିଲା ଲଙ୍କାକୁ ଶୁଣେ ଲଙ୍କପତି । लंकपति କୃଷ୍ଣସିଂହ. ମହାଭାରତ ବନ । ]

ଲଙ୍କପାଳ—ଦେ. ବି ( ସଂ. ଲଙ୍କାପାଳ )—ଲଙ୍କାର ରାଜା, ରାବଣ— Laṅka pāḷa Rābaṇa, the king of Laṅkā. লঙ্কপাল [ ଉ—ବାରି ପାଇ ଲଙ୍କପାଳ କାଳନେମିର लंकपाल ଚଳାଇ ମଣାଇଣ ସକଳ ପ୍ରେଷଣ । ଉଞ୍ଜ. ବୈଦେହୀଶ ବିଳାସ ।]

ଲଙ୍କ ମାରଚ—ଗ୍ରା. ବି ( ସଂ. ଲଙ୍କାମରିଚ )—ଲଙ୍କା ମରିଚ ( ଦେଖ ) Laṅka māricha Laṅkāmaricha ( See ) ংকা लंकामिरिचा

**ଲଙ୍କମୁହାଁ(ଗାଁ)**—ଦେ. ବି—ଗୃହର ବାହାରେ ଦ୍ୱାର ନିକଟରେ ଠିଆ Lanka muhiñ(iñ) ହେବା ଲୋକ ହଠାତ୍ ଘରଭିତର ଆଡ଼ାଳ ଯେପରି ଦେଖି ନ ପାରେ, ଏଥିପାଇଁ ଦ୍ୱାରର **ପରଦାକୀଦିବାଲ(ହି)** ସାମନାରେ ଘର ମଧ୍ୟରେ ଛିଆର କରାଯାଇ ଥିବା ଅଧାକାନ୍ଥ ( ଏହା ବାସମୁହାଁ ପର )—A low wall erected against a door inside the house to prevent an outsider from having a direct view of the inside.

**ଲଙ୍କା**—ସଂ. ବି ( ଲକ୍ ଧାତୁ=ସୁଖ ପାଇବା+ଅଧି ଅ, ସ୍ତ୍ରୀ· ଆ, Lankā ନିପାତନ; ଯହିଁରେ ସୁଖଭୋଗ ମିଳେ )—୧। ଭାରତର ଦକ୍ଷିଣସ୍ଥ ସିଂହଳଦ୍ୱୀପ—1. Ceylon; an island to the south of India. ୨। ରାମାୟଣ ବର୍ଣ୍ଣିତ ରାବଣର ରାଜଧାନୀ—2. The city of Lanka, the mythological capital of the demon king Rābaṇa. [ ଦ୍ର—ବାଲ୍ମୀକି ରାମାୟଣରେ ବର୍ଣ୍ଣିତ ଲଙ୍କା, ଲବଣ ସମୁଦ୍ରବେଷ୍ଟିତ ତ୍ରିକୂଟ ପର୍ବତର ଉପରିସ୍ଥିତ ବିଶ୍ୱକର୍ମା ନିର୍ମିତ ନଗର । ଏହା ଦୀର୍ଘରେ ୨୦ ଯୋଜନ ( ୮୦ କୋଶ ) ଓ ପ୍ରସ୍ଥରେ ୧୦ ଯୋଜନ ( ୪୦ କୋଶ ) ଓ ସ୍ୱର୍ଣ୍ଣପ୍ରାଚୀର ବେଷ୍ଟିତ, ଏହି ପାଚେରିର ଚାରିପାଖରେ ଭୀମାବର୍ତ୍ତ ପରିଖା; ନଗରର ଚାରିପାଖରେ ଚାରିଗୋଟି ସ୍ୱର୍ଣ୍ଣଦ୍ୱାର; ପ୍ରତି ଦ୍ୱାରରେ ପ୍ରଶସ୍ତ ଯନ୍ତ୍ରସେତୁ ( Drawbridge ) ଥିଲା । କବିମାନେ 'ପୁରେଷୁ ଲଙ୍କା, ନଗରେଷୁ ଲଙ୍କା, ନାରୀଷୁ ରମ୍ଭା, ପୁରୁଷେଷୁ କୃଷ୍ଣଃ' ବୋଲି କହି ଅଛନ୍ତି । ଏ ନଗର ଅତୁଳ ଐଶ୍ୱର୍ଯ୍ୟମୟ ଓ ସ୍ୱର୍ଣ୍ଣମୟ ମନ୍ଦିରମାନଙ୍କରେ ପୂର୍ଣ୍ଣ ଥିଲା । ଏଥିରେ ସୁରମ୍ୟ ହର୍ମ୍ୟ ଶ୍ରେଣୀ ଓ ସୁସଜ୍ଜିତ ରାଜପଥମାନ ଶୋଭା ପାଉଥିଲା ଏବଂ ଅଭ୍ରଭେଦୀ ପ୍ରାସାଦମାନ ( Sky scarpers ) ମଧ୍ୟ ଥିଲା । ବିବିଧ ଉଦ୍ୟାନ, କୁଞ୍ଜ, ଲତାଗୃହ, ପାନାଗାର, ନୃତ୍ୟଶାଳା, ଚିତ୍ରାଗାର, ବୃକ୍ଷବାଟିକା, ରଙ୍ଗଭୂମି, ଭୂଗର୍ଭସ୍ଥ ଗୃହ, ଚୈତ୍ୟ ଓ ବିମାନଅବତରଣ ସ୍ଥାନରେ ସେହି ସୁରମ୍ୟ ନଗର ଶୋଭା ପାଉଥିଲା ଓ ରାତିରେ ନଗରର ସର୍ବାଂଶ ଦୀପମାଳା ଦ୍ୱାରା ଉଜ୍ଜ୍ୱଳ୍ୟମାନ ହେଉଥିଲା । ଏ ନଗର ପ୍ରଥମେ ବରୁଣଙ୍କ ଅଧିକୃତ ଥିଲା । ରାବଣ ତପସ୍ୟା ପରେ ବରଲାଭ କରି ଏଠାରୁ ବରୁଣଙ୍କୁ ତଡ଼ି ନିଜର ରାଜଧାନୀ ସ୍ଥାପନ କଲା । ଏଠାରେ ଚିରବସନ୍ତ ବିରାଜିତ ଥିଲା । ଏଥିର ଅଶୋକ ବନସ୍ଥ ଗୋଟିଏ କୁଞ୍ଜରେ ରାବଣ ସୀତାଙ୍କୁ ଅସୁରୀମାନଙ୍କ ଦ୍ୱାରା ଅବରୁଦ୍ଧା କରି ରଖିଥିଲା । ଏହି ଲଙ୍କା ମଧ୍ୟରେ ତ୍ରିବି ଗଣ୍ଡୁଶୀ ନାମକ ଗୋଟିଏ ନଦୀ ଥିଲା ଓ ଏ ଲଙ୍କାପୁରୀର ବାହାରେ ସୁବେଳ ବା ସୁବଲଯ୍ୟା ନାମକ ପର୍ବତରେ କପିସେନାଙ୍କ ସହିତ ରାମଚନ୍ଦ୍ର ଅବସ୍ଥାନ କରିଥିଲେ । ସୀତାଙ୍କୁ ଠାବ କରିବାକୁ ଆସିବା ଉପଲକ୍ଷରେ ହନୁମାନର ଲାଙ୍ଗୁଳରେ ଗୁଡ଼ିଅ ହୋଇଥିବା ଚିରିଲାକୁ କନାରେ ଲଗାଯାଇଥିବା ନିଆଁରେ ଲଙ୍କାପୁରୀ ପୋଡ଼ି ଭସ୍ମ ହୋଇଗଲା । ତହୁଁ ରାବଣ ବିଶ୍ୱକର୍ମାଙ୍କୁ ଆଜ୍ଞା ଦେଇ ସେତିକି ମଧ୍ୟରେ ପୁଣି ସ୍ୱର୍ଣ୍ଣମୟପୁର ତିଆର କରାଇଦେଲା । ବର୍ତ୍ତମାନକାଳର ଭାରତର ଦକ୍ଷିଣସ୍ଥ ସିଂହଳ ( Ceylon ) ଦ୍ୱୀପକୁ ପଣ୍ଡିତମାନେ ପୌରାଣିକ 'ଲଙ୍କା' ଥିବା ଅନୁମାନ କରନ୍ତି । କଲମ୍ବୋର 'ଜ୍ଞାନଦର୍ଶ' ପତ୍ରିକାର ସଂପାଦକ ଖ୍ରୀଷ୍ଟ ସିଂହଳୀ ପାଣ୍ଡୁଲିପିରେ ଲଙ୍କାର ପୌରାଣିକ ଇତିହାସ ଲେଖାଥିବାର ପ୍ରମାଣ ପାଇଅଛନ୍ତି । ] ୩ । କୁଳଟା ସ୍ତ୍ରୀ—3. An adulteress. ୪ । ଶାଖା—4. A bough, branch of a tree. ୫ । ଶାକିନୀ; ସ୍ତ୍ରୀଭୂତ; ଦୁର୍ଗାଙ୍କ ଅନୁଚରୀ; ପିଶାଚୀବିଶେଷ—5. A she-ghost; name of a demi-goddess, an attendant of Durgā. ୬ । ଡାକିନୀ—6. Witch. ୭ । ( ବୈଦ୍ୟକ )—କେସାରୀଜାତୀୟ ଶିମ୍ବୀଧାନ୍ୟବିଶେଷ—7. A sort of pulse. [ଦ୍ର—ପ. ନାମ—ବର୍ତ୍ତୁଳପୁଷ୍ଟା, କାଣ୍ଡିକା, ରୁକ୍ଷଶାମ୍ବିକା । ] ୮ । ଲଙ୍କୋଦ୍ଭବ ମରିଚ (ହରେକୃଷ୍ଣ ଦ୍ରବ୍ୟଗୁଣ)—8. Pepper grown in Ceylon. ୯ । ମୁତ୍ତି; ମେଥିଙ୍କଶାଗ ( ହ. ଶ. )—9. Trigonella Corniculata (potherb) ୧୦ । କୃଷ୍ଣଚଣକ (ହ. ଶ)—10. A kind of black chickpea. ଦେ. ବି—**ଲଙ୍କାମିରଚା, ଲାଲମିରଚା** ଲଙ୍କା ମରିଚ; ଲଙ୍କାମରିଚ—Red pepper. ପ୍ରା.ଦେ. (ଗଞ୍ଜାମ) ବି—ଦକ୍ଷିଣାତ୍ୟ ଶୂଦ୍ରଜାତିର ବଂଶୋପାଧିବିଶେଷ (ଲୁଳ ଓଡ଼ିଶାର ଲେଙ୍କା)-Family title of a sect of Sūdrās of Ganjam. ପ୍ରାଦେ ( ଗଞ୍ଜାମ ) ବିଣ—ଯଥେଷ୍ଟ—Enough; sufficient.

**ଲଙ୍କାଅମ୍ବ(ମ୍ର)**—ଦେ. ବି—କାଜୁଅମ୍ବ; ବାଇଆମ୍ବ।—Cashewnut Lankā āmba(mra) (tree and fruit); Anacardium ହିଜିଳୀବାଦାମ **କାଜୁ** Occidentale. ( ଦ୍ର—ହେମଫଳେ ନମ୍ର ଯହିଁ ଲଙ୍କାଅମ୍ବ-ପାଦପସନ୍ତ—ରାଧାନାଥ, ଉଷା ।] [ ଦ୍ର—ଏହା ଆମ୍ରାଦିବର୍ଗର ବୃକ୍ଷବିଶେଷ । ଦକ୍ଷିଣ ଆମେରିକାର ସମୁଦ୍ରନିକଟବର୍ତ୍ତୀ ଓ ବାଲୁକାମୟ ସ୍ଥାନ ଏହି ବୃକ୍ଷର ଆଦିନିବାସ । ଏହା ମାନ୍ଦ୍ରାଜପ୍ରଦେଶ, ଦକ୍ଷିଣ ଓଡ଼ିଶା, ଚଟ୍ଟଗ୍ରାମ ଓ ଟେନାସେରିମ୍ ଅଞ୍ଚଳର ସମୁଦ୍ରକୂଳ ଓ ବାଲୁକାମୟ ସ୍ଥାନରେ ହୁଏ । ଏହାର ଫଳ ପାଚିଲେ ନାଲି ଓ ହଳଦିଆ; ପ୍ରଚୁର ଶସ୍ୟାଟରେ ଜାତ ହୁଏ । ଏ ଫଳରୁ କଷା ଓ ମିଠା ଏକପ୍ରକାର ରସ ବାହାରେ । ଏହି ଫଳର ଅଗରେ ମଞ୍ଜି ଥାଏ । ମଞ୍ଜି ମଧ୍ୟରେ ଥିବା ଶଶକୁ ଲୋକେ ପୋଡ଼ିକରି ଖାଆନ୍ତି । ମଞ୍ଜିର କଠିନ ଆବରଣରୁ ଏକପ୍ରକାର ତୈଳ ବାହାରେ । ପ୍ରକୃତରେ ଯାହାକୁ ଆମ୍ଭେମାନେ ମଞ୍ଜି ବୋଲି କହୁଁ, ତାହାହିଁ ଏ ଗଛର ଫଳ ଓ ଯାହାକୁ ଫଳ ବୋଲି କହୁଁ ତାହା ଫଳର ସ୍ଥୂଳ ରସମୟ ବୃନ୍ତ । (ବିଦେଶରୁ ଏ

ଗଛ ଆସିଥିବାରୁ ଏହାର ଏପରି ନାମକରଣ ହୋଇଅଛି । ଭୁଳନାକର—ଲଙ୍କା ସିଝୁ, ଲଙ୍କା ମରିଚ) ବୈଦ୍ୟକାଦି ଶାସ୍ତ୍ରରେ ଏହାର ନାମ ନାହିଁ । ଏହି ମଞ୍ଜିର ଓ ବାଦାମ ମଞ୍ଜିର ଆକୃତି (ସଂ. ବାଦାମ,ବାତାଦ) ସଦୃଶ ହୋଇଥିବାରୁ ଏହାକୁ ଲୋକେ ବାଦାମ (ବାଳାଆମ୍ବ) ନାମ ଦେଇଅଛନ୍ତି । ଏ ମଞ୍ଜିମାନ ଦେଖିବାକୁ ଚେପ୍ଟା ଅମ୍ବ କଷି ପରି । ] ପ୍ରାଦେ ( ଗଞ୍ଜାମ ) ବି—ବାଇଗବା ( ଦେଖ )—Bāigabā (See)

**ଲଙ୍କା କାଣ୍ଡ**—ସଂ. ବି (ଲଙ୍କା+କାଣ୍ଡ) —୧ । ବାଲ୍ମୀକି ରାମାୟଣ ଗ୍ରନ୍ଥର ସାତ ଖଣ୍ଡ ମଧ୍ୟରୁ ଷଷ୍ଠକାଣ୍ଡ ବା ଯୁଦ୍ଧକାଣ୍ଡ-
**Lankā kānda**
(ଲଙ୍କାପର୍ବ—ଅନ୍ୟରୂପ) 1. The 6th volume of the great epic Rāmāyana. [ଦ୍ର—ରାମଚନ୍ଦ୍ର ଲଙ୍କାରେ ପ୍ରବେଶ କରି ଅସୁରଙ୍କ ସଙ୍ଗେ ଯୁଦ୍ଧ କରି ରାବଣାଦିଙ୍କୁ ବଧ କରିଥିବା କଥା ଏହି କାଣ୍ଡରେ ବର୍ଣ୍ଣିତ ହୋଇଅଛି । ] ୨ । ସୀତାଙ୍କୁ ଠାବ କରିବାକୁ ଯାଇଥିବା ଉପଲକ୍ଷରେ ହନୁମାନଦ୍ୱାରା ଲଙ୍କାଦହନରୂପ ଭୟାବହ ଘଟନା—2. Havoc caused by the fire ignited by Hanuman when he went to Lankā in search of Sitā. ୩ । (ଲକ୍ଷଣାର୍ଥ) ଭୁମୁଳବ୍ୟାପାର-3. A furious or frightful event. ( ଉ—ଅରେ ଲଙ୍କ ରଘୁ ଚେଲା ! ହୁଅ ସାବଧାନ, ନୋହିଲେ ହୋଇବ ଲଙ୍କାକାଣ୍ଡର ବିଧାନ—ମଧୁସୂଦନ ବ୍ୟଙ୍ଗ୍ୟ କବିତା ।) [ଯଥା—ଝଗଡ଼ା, ମାଇକାଠ, ହାଣକାଠ, ଘର ପୋଡ଼ି, ଭୂମିକମ୍ପ, ଯୁଦ୍ଧ ଇତ୍ୟାଦି ।] ୪ । (ଲକ୍ଷଣାର୍ଥ) ଭୟଙ୍କର ଅଗ୍ନ୍ୟୁତ୍ପାତ—4. A furious conflagration.

**ଲଙ୍କା କାଲ**—ପ୍ରାଦେ (ଗଞ୍ଜାମ) ବି—ବାଇଗବା (ଦେଖ)
**Lankā kāla** Bāigabā (See)

**ଲଙ୍କା ଗଡ଼**—ଦେ.ବି (ସଂ. ଲଙ୍କା+ଫା.ଗଡ଼୍)—ରାମାୟଣବର୍ଣ୍ଣିତ ଅସୁରାଧିପତି ରାବଣର ରାଜଧାନୀ—The capital of the demon king Rābana.
**Lankā garda**
লঙ্কা গড লঙ্কা গঢ

**ଲଙ୍କା ଗବ**—ପ୍ରାଦେ. (ଗଡ଼ଜାତ) ବି—ବାଇଗବା (ଦେଖ)
**Lankā gaba** Bāigabā (See)

**ଲଙ୍କା ଦଲୁଆ**—ପ୍ରାଦେ (ଗଞ୍ଜାମ) ବି—ଦଲୁଆ ନାମକ ଶୂଦ୍ରଜାତିର ଶାଖା-ବିଶେଷ—One of the branches of the Daluā caste of Sūdras in Ganjam.
**Lankā daluā**

**ଲଙ୍କା ଦହନ**—ସଂ. ବି ( ୬ଷ୍ଠୀ ତତ୍ )—ହନୁମାନଦ୍ୱାରା ଲଙ୍କା ନଗରୀର ଧ୍ୱଂସ—The burning of the city of Lankā by Hanumāna.
**Lankā dahana**
( ଲଙ୍କା ଦାହ—ଅନ୍ୟରୂପ ) [ ଦ୍ର—ସୀତାଙ୍କ ଠାବ କରିସାରି ହନୁମାନ ରାବଣର ଉଦ୍ୟାନ ଭଙ୍ଗ କରିବାରୁ ତାଙ୍କୁ ରାବଣ ଧରାଇ ନେଲା । ସେ ରାବଣକୁ ପଚାରିଲେ ଯେ, ମୋ ଲାଙ୍ଗୁଡ଼ରେ ଗୁଡ଼ାଏ କନା ବାନ୍ଧି ତହିଁରେ ତେଲ ଢାଳି ସେଥିରେ ନିଆଁ ଲଗାଇଦେଲେ ମୁଁ ପୋଡ଼ିହୋଇ ମରିଯିବି । ରାବଣ ଏହା ବିଶ୍ୱାସ କରି ହନୁମାନର ଲାଙ୍ଗୁଡ଼ରେ କନା ଗୁଡ଼ାଇ ତହିଁରେ ତୈଳାଦି ଢାଳି ନିଆଁ ଲଗାଇ ଦେବାରୁ ହନୁମାନ୍ ସେହି ଜଳନ୍ତା ଲାଙ୍ଗୁଡ଼କୁ ହଲାଇ ଲଙ୍କା ନଗରୀର ଘରମାନଙ୍କ ଉପରେ ଡେଇଁଲେ ଓ ଲଙ୍କାନଗରୀ ପୋଡ଼ି ଭସ୍ମସାତ୍ ହୋଇଗଲା । କଥିତଅଛି ଯେ, ଲଙ୍କା ପୋଡ଼ିଯିବା ପରେ ହନୁମାନ୍ ଅପଣା ଲାଙ୍ଗୁଡ଼ରେ ଜଳୁଥିବା ଅଗ୍ନିକୁ ଲିଭାଇ ଦେଇ ହାତରେ ସେ ପାଉଁଶକୁ ମଳି, ମୁହଁରେ ମାରିହୋଇ ଲଙ୍କାରୁ ଫେରି ଆସିଲେ । ହନୁମାନଙ୍କ ମୁହଁ ଓ ଲେଞ୍ଜ (କରତଳ) ଓ ପାଦତଳ କଳା ଥିବା ଦେଖି ଲୋକେ କହନ୍ତି ଯେ, ଲଙ୍କାପୋଡ଼ି କାଳର ପାଉଁଶବୋଳାର ଏହି ଚିହ୍ନ ହନୁମାନର ବଂଶଧର-ମାନଙ୍କଠାରେ ରହି ଯାଇଅଛି ।]

**ଲଙ୍କାଦାହୀ**—ସଂ. ବି. ପୁଂ ( ଲଙ୍କା+ଦହ୍ ଧାତୁ+କର୍ତ୍ତୃ ଇନ୍, ୧ମା ୧ବ)—ହନୁମାନ—The monkey hero Hanumān. ସଂ. ବିଣ. ପୁଂ—ଲଙ୍କାଦହନକାରୀ—Who set fire to Lankā.
**Lankādāhi**

**ଲଙ୍କାଧିପ**—ସଂ ବି ( ୬ଷ୍ଠୀ ତତ୍; ଲଙ୍କା+ଅଧିପ )—ରାବଣ—The demon king Rābana.
**Lankādhipa**
( ଲଙ୍କାଧିପତି, ଲଙ୍କାପତି, ଲଙ୍କାଧୀଶ, ଲଙ୍କାଧୀଶ୍ୱର, ଲଙ୍କାନାଥ, ଲଙ୍କାନାୟକ—ଅନ୍ୟରୂପ)

**ଲଙ୍କା ପନ(ଣ)ସ**—ଦେ. ବି—ସପୁରି—Pine-apple. [ ଦ୍ର—ଏହା ପୂର୍ବେ ବିଦେଶରୁ ଆସିଥିବାରୁ ଏହି ନାମ]
**Lankā pana(na)sa**
আনারস अनन्नास, विलायती कटहल

**ଲଙ୍କା ପାଣ୍ଡୁ**—ପ୍ରାଦେ. [ଗଞ୍ଜାମ] ବି.—ଲଙ୍କା ଆମ୍ବ [ଦେଖ]
**Lankā pāndu** Lankā āmba (See)

**ଲଙ୍କା(ଙ୍କୋ) ପିକା**—ସଂ. ବି—(ବୈଦ୍ୟକ)—ସୃକ୍କା; ପିଡ଼ଙ୍ଗ ଶାଗ—A pot herb, Trigonella Corniculata. (ସଂ. ନାମ—ସୃକ୍କା, ଅସୃକ୍, ଦେବୀ, ମଧୁସ୍ରବା, ଲତା, ଲଘୁ, ସମୁଦ୍ରାନ୍ତ, ବଧୂ, କୋଷ୍ଟ, ବର୍ଷା, ପୃକ୍କା, ପିଶୁନା, କୋଷ୍ଟ ବର୍ଷା, ଲତା ମରୁତ୍, ଲଙ୍କୋଦକ, ଲୁଟଲା, ଦେବ-ପୁତ୍ରିକା, ମାଲାଳକା, ମାଳାମା, ଲଘ୍ୱୀ, ପଞ୍ଚଗୁପ୍ତରସା, ଲଙ୍କୋଦକ, କୋଷ୍ଠୀ, ସମୁଦ୍ରକାନ୍ତା, ଭସ୍ମର, ଚୋରକ, ଚଣ୍ଡ, ଲତାମରୁତ୍, ଦେବପୁତ୍ରୀ, ବ୍ରାହ୍ମଣୀ ।)
**Lankā (nko)pikā**

**ଲଙ୍କା ପୁର(ରୀ)**—ସଂ. ବି—ରାମାୟଣ ବର୍ଣ୍ଣିତ ରାବଣର ରାଜଧାନୀ ସ୍ୱର୍ଣ୍ଣମୟୀ ଲଙ୍କା—The capital of Rābana.
**Lankā pura(ri)**

**ଲଙ୍କା ପୋଡ଼ା**—ଦେ. ବିଣ—ଲଙ୍କା ଦହନକାରୀ (ବୀର ହନୁମାନ୍)—Who set fire to Lankā.
**Lankā pordā**
লঙ্কাপোডা लङ्का जलानेवाला ଦେ. ବି.—୧। ବୀର ହନୁମାନ୍—1. The monkey hero Hanumān. ୨। ହନୁମାନ୍‌ଦ୍ୱାରା ଲଙ୍କାଦାହ—2. The setting fire to Lankā by Hanumān.

**ଲଙ୍କାପୋଡ଼ା ବାନ(ନ୍ଦ)ର**—ଦେ· ବି. ପୁଂ—୧ । ହନୁ ମାକଡ଼—
Lankā pordā bāna(nda)ra 1. The black faced
मुखपोड़ा बानर **लंगुर** monkey; Entellus, Hongoor.
[ଲଙ୍କାପୋଡ଼ୀ ବାନ(ନ୍ଦ, ନ୍ଦୋ)ଣୀ—ସ୍ତ୍ରୀ] ୨ । ଯେଉଁ ବ୍ୟକ୍ତିର ମୁହଁ ହନୁମାଙ୍କଡ଼ର ମୁହଁପରି ଅସୁନ୍ଦର ବା କଦାକାର—2. An ugly-faced man (like the black-faced monkey). ୩ । (ଲକ୍ଷଣାର୍ଥ) ଯେଉଁ ଲୋକ (ହନୁମାନ୍ ଲଙ୍କାପୁରୀକୁ ଛାରଖାର କଲା ପରି) କୌଣସି ଠାରେ ବିବାଦ ଆଦିର ସୃଷ୍ଟିପାତ କରି ସେ ସ୍ଥାନକୁ ବା ବଂଶକୁ ଛାରଖାର ବା ଶ୍ରୀଭ୍ରଷ୍ଟ କରେ—3. A person who causes ruin of a place or family.

**ଲଙ୍କା ପୋଡ଼ି**—ଦେ. ବି.—ଲଙ୍କା ଦାହ (ଦେଖ)
Lankā pordi Lankā dāha (See)
लंका दाह **लङ्काकादहन**

**ଲଙ୍କା ପୋଥି(ଥା)**—ଦେ. ବି.—(ସଂ. ଲଙ୍କା+ପୁସ୍ତିକା)—୧ । ରାମାୟଣ
Lankā pothi(thā) ଗ୍ରନ୍ଥ—1. The great book Rāmāyaṇa. ୨ । ଖୁବ୍ ବଡ଼ ଗ୍ରନ୍ଥ—2. A big volume.
पुंथी [ଉ—କେତେ ଏହି ମତେ କେ ତା କହିବ, କହିଲେକ
**पोथा** ଲଙ୍କା ପୋଥି ହୋଇବ । ବ୍ରଜନାଥ. ସମରତରଙ୍ଗ ।]

**ଲଙ୍କା ଭାଲିଆ**—ପ୍ରାଦେ. (ଗଞ୍ଜାମ) ବି.—୧ । ଲଙ୍କାପାଣ୍ଡୁ (ଦେଖ)
Lankā bhāliā 1. Lankā pāṇdu (See)
୨ । ଲଙ୍କାଅମ୍ବ ଗଛର ମଞ୍ଜି—2. The seed of cashew nut. ଦେ. ବି.—ଭଲ୍ଲାତକ—The marking nut; Semicarpus Anacardium

**ଲଙ୍କା ମ(ମା)ରିଚ**—ଦେ. ବି.—[ସଂ. ଲଙ୍କା (ଦ୍ୱୀପ ନାମ)+(କଟୁ ସ୍ୱାଦ-
Lankā ma(mā)richa ଯୁକ୍ତ) ମରିଚ ]—କଟୁ ସ୍ୱାଦଯୁକ୍ତ
ସଂ. ନାମ—କଟୁଶାଗ, ତୀକ୍ଷ୍ଣା, ଫଳ ବିଶେଷ; ବଙ୍ଗନାଦି ବର୍ଗର
ଭୀବ୍ରଶକ୍ତି, ଜ୍ୱାଳା ମରିଚ, କୃଷିଜାତ ଶାକବିଶେଷର ଫଳ—
କୁମରିଚ । Chilli; Cayenne pepper;
लंकामरिच, लालमरिच, गाछमरिच red pepper; Capsicum
**लालमिरिचा, लालमरिच** Frutescens ( Kirtikar ).
**गाछमरिच** [ ଦ୍ର—ଏହି ନାମ
ତେ. ମିରପକାଇଲୁ, ଛକ୍କୀ, ଆଧୁନିକ । ସଂ ତେ ତା'ର ଅର୍ଥ
ମିରପକାୟଲୁ ଗୋଲମରିଚ । ଏହି ଶବ୍ଦର ନାମ
ମ. ମର୍ସିଙ୍ଗା ୩୦୦ ବର୍ଷ ପୂର୍ବର ପ୍ରାଚୀନ ବୈଦ୍ୟକ
ଗ୍ରନ୍ଥମାନଙ୍କ (ଯଥା, ଭାବପ୍ରକାଶ)ରେ ନାହିଁ । ଆଧୁନିକ କେତେକ ବୈଦ୍ୟକ ଗ୍ରନ୍ଥରେ (ଯଥା—ବୈଦ୍ୟକ ଶବ୍ଦ ସିନ୍ଧୁକୋଷ) କୁମରିଚ ଓ ଜ୍ୱାଳାମରିଚ ଶବ୍ଦର ପ୍ରୟୋଗ ଦେଖାଯାଏ । ଏ ଗୁଳ୍ମର ଆଦି ନିବାସ ଆମେରିକା; ସେଠାରୁ ପର୍ତ୍ତୁଗୀଜମାନେ ପ୍ରଥମେ ଏହାକୁ ଦକ୍ଷିଣ ଭାରତର ଗୋଆ, କାଲିକଟ ଆଦି ସ୍ଥାନକୁ ଆଣିଲେ । ସେହିଠାରୁ ଏହାର ଚାଷ ଭାରତରେ ବିସ୍ତୃତ ହେଲା । ବର୍ତ୍ତମାନ ମଧ୍ୟଭାରତର ଦକ୍ଷିଣ ଅଞ୍ଚଳରେ, ମାନ୍ଦ୍ରାଜରେ ଓ ଚଟ୍ଟଗ୍ରାମରେ ଏହାର ବହୁଳ କୃଷି ହେଉଅଛି । ଏହା ଦକ୍ଷିଣ ଦିଗରୁ ବଙ୍ଗୋପସାଗରରୁ ଏ ଦେଶକୁ ପ୍ରଥମେ ଆସିଥିବାରୁ ଓଡ଼ିଆ, ବଙ୍ଗାଳି ଓ ହିନ୍ଦୀ-ମାନେ ଏହା ଲଙ୍କାରୁ ଆସିଥିବା ଅନୁମାନ କରି ଏହାକୁ ଲଙ୍କାମରିଚ ନାମ ଦେଇ ଅଛନ୍ତି । ଏହିପରି ପୂର୍ବେ ବିଦେଶରୁ ଆସିଥିବା ଲଙ୍କା ଅମ୍ବ, ଲଙ୍କା ସିଜୁ, ଲଙ୍କା ପଣସ, ଲଙ୍କା ଗବ ଶବ୍ଦମାନ ଭାଷାରେ ଚଳିଅଛି । ଏ ଗୁଳ୍ମର ଫଳ ଶାଗୁଆ, ନାଲିଆ, ବାଇଗଣି ଓ କଳାରଙ୍ଗର ଦେଖାଯାଏ । କେତେକ ଲଙ୍କାମରିଚ ଫଳ ଆକାରରେ ମୂଳା ଓ ବାଇଗଣ ପରି ବଡ଼ ବଡ଼, କିନ୍ତୁ ତହିଁର ରାଗ ଖୁବ୍ କମ୍ । ଆଉ ଅନ୍ୟ କେତେକ ଲଙ୍କାମରିଚରେ ଆଦୌ ରାଗ ନାହିଁ । ସାଧାରଣତଃ ଲଙ୍କାମରିଚ ଦୁଇପ୍ରକାର—ଲମ୍ବା ଓ ଛୋଟ । କେତେକ ଲଙ୍କାମରିଚର ଫଳ ଡେମ୍ଫରୁ ତଳକୁ ଝୁଲିଥାଏ ଓ କେତେକ ଫଳ ଡେମ୍ଫ ସହିତ ଆକାଶଅଡ଼କୁ ଛିଡ଼ିଥାଏ । ଏହା ତୀକ୍ଷ୍ଣ, କଟୁରସ, ଉଷ୍ଣବୀର୍ଯ୍ୟ, ଅଗ୍ନିବର୍ଦ୍ଧକ ଓ ରୁଚକର । ପ୍ରାୟ ସମସ୍ତ ବ୍ୟଞ୍ଜନରେ ଏହା ଅପରିହାର୍ଯ୍ୟ; ଅତି ଛୋଟ (ପ୍ରାୟ ଅଧ ଇଞ୍ଚ ଲମ୍ବ) ଓ ଖୁବ୍ ରାଗୁଆ ଲଙ୍କାମରିଚକୁ ଧାନୁଆ (ଧାନ ପରି ସାନ) ଲଙ୍କାମରିଚ ବୋଲାଯାଏ । ]

**ଲଙ୍କା ମରିଚ ଗୁଣ୍ଡ(ଣ୍ଡା)**—ଦେ.ବି—ତରକାରି ଆଦିରେ ପକାଇବା ପାଇଁ
Lankā maricha gunda(ṇdā) ଅଗରୁ ଭଜା ହୋଇ ଗୁଣ୍ଡା
लंकाव गुँडो କରାଯାଇ ରଖା ଯାଇଥିବା ଲଙ୍କା ମରିଚ—
**लाल मिरचाका चूरा** Powdered chilly.

**ଲଙ୍କା ମରିଚ ବଟା**—ଦେ. ବି—ପିଷ୍ଟ ଲଙ୍କା ମରିଚ; ତରକାରି ଆଦିରେ
Lankā maricha baṭā ପକାଇବା ପାଇଁ ବଟା ଯାଇଥିବା ଲଙ୍କା
लंका बाटा ମରିଚ—Pounded and pasted chilly
**पिसाहुआ लाल मिरचा** used for mixing with curry.

**ଲଙ୍କା ଯୁଦ୍ଧ**—ସଂ. ବି. (ଲଙ୍କା+ଯୁଦ୍ଧ)—ରାମାୟଣ ବର୍ଣ୍ଣିତ ଲଙ୍କାରେ
Lankā juddha ଘଟିଥିବା ରାମରାବଣ ଯୁଦ୍ଧ—The war
(ଲଙ୍କା ସମର—ଅନ୍ୟରୂପ) between Rāma and Rābaṇa described in the Rāmāyaṇa.

**ଲଙ୍କାୟି(ରି)କା**—ସଂ. ବି. (ବୈଦ୍ୟକ)—ଲଙ୍କାପିକା ( ଦେଖ )
Lankāyi(ri)kā Lankāpikā ( See )

**ଲଙ୍କାରି**—ସଂ. ବି (୬ଷ୍ଠୀ ତତ୍; ଲଙ୍କା+ଅରି)—ରାମଚନ୍ଦ୍ର—
Lankāri Rāmachandra.

**ଲଙ୍କା ସିଜୁ(ଝୁ)**—ଦେ. ବି—ସ୍ନୁହୀ ଆଦି ବର୍ଗର କ୍ଷୀରୀ ବୃକ୍ଷ ବିଶେଷ; ଖଡ଼ୁ
Lankā siju(jhu) ସିଜୁ—Euphorbia Tirucalli.
लंका सिज, घोडा सिज, लाटदाओना, लंकाशिरि [ ଦ୍ର—ଏହା
**सेहुण्ड, थूहर, नरसोजा** ୧୦।୧୨ ହାତ ଉଚ୍ଚ ହୁଏ । ଗଛରେ କଣ୍ଟା ନ ଥାଏ, ପତ୍ରମାନ ଅତି କ୍ଷୁଦ୍ର ଓ ପରିମାଣରେ ଅଳ୍ପ । ଡାଳଗୁଡ଼ିକ ଡାଟି ଓ ଅଙ୍ଗୁଳି ପରି ସରୁ । ଲଙ୍କା ସିଜୁ ଏ ଦେଶର ଗଛ ନୁହେଁ; କାରଣ, ବୈଦ୍ୟକ ଆଦି ଶାସ୍ତ୍ରରେ ଯେଉଁ 'ସେହୁଣ୍ଡ, ନିହି ଭୁଣ୍ଡ, ବଜ୍ରୀ, ବଜ୍ରଦ୍ରୁମ, ସୁଧା, ସମନ୍ତଦୁଗ୍ଧା, ସ୍ନୁକ, ସ୍ନୁହୀ, କ୍ଷୀରାଗ୍ର ଓ ଗୁଡ଼ା' ଦେଖାଯାଏ, ତାହା ଢକଣ୍ଟା ବା ପତ୍ର ସିଜୁ ପ୍ରତି ପ୍ରଯୋଜ୍ୟ ।]

ଲଙ୍କିଣୀ—ଦେ. ବ. ସ୍ତ୍ରୀ (ସଂ. ଲଙ୍କିନୀ)—ଲଙ୍କାରେ ରାମାୟଣ ବର୍ଣ୍ଣିତ ଘଟନା
Laṅkiṇī ସମୟରେ ପୂଜିତା ଗ୍ରାମଦେବତା—Name of a Goddess who was worshipped in Laṅkā at the time of the events of the Rāmāyaṇa.
लङ्केश्वरी
लाङ्किनी

ଲଙ୍କିନୀ—ସ. ବ. ସ୍ତ୍ରୀ. (ଲଙ୍କା+ଇନ୍+ସ୍ତ୍ରୀ. ଈ)—ଲଙ୍କେଶ୍ୱରୀ (ଦେଖ)
Laṅkinī Laṅkeśwarī ( See )

ଲଙ୍କି(ଙ୍କ)ଲାଟ୍—ବୈଦେ. ବ. (ଇଂ. ଲଙ୍‌କ୍ଲଥ୍=ଦୀର୍ଘ ବସ୍ତ୍ର)—ଶୁକ୍ଳୀକୃତ
Laṅki(ṅka)lāṭ ବା ଧଳାଇ ହୋଇଥିବା କଳକୁଣ୍ଢା ମାର୍କିନ୍ ଥାନ
(ଲଙ୍କ୍ଲାଟ୍, ଲଂ କଲାଟ୍, ଲଂ କ୍ଲଥ୍, ଲଂ କ୍ଲାଥ୍—ଅନ୍ୟରୂପ) ଲୁଗା; ନୟନ-
लंग कथ, लंग क्लाट ସୁଖ—Longcloth; mill-made
लंकलाट long pieces of bleached cotton fabric.

ଲଙ୍କେଶ—ସ. ବ. ପୁଂ (୬ଷ୍ଠୀ ତତ୍; ଲଙ୍କା+ଈଶ)—୧ । ଲଙ୍କାପତି
Laṅkeśa ରାବଣ—1. The demon king Rābaṇa.
(ଲଙ୍କେଶ୍ୱର—ଅନ୍ୟରୂପ) ୨ । ବିଭୀଷଣ—2. Bibhīshaṇa.

ଲଙ୍କେଶ୍ୱରୀ—ସ.ବ ସ୍ତ୍ରୀ (ଲଙ୍କା+ଈଶ୍ୱରୀ)—ରାବଣାଧିଷ୍ଠିତ ଲଙ୍କା ନଗରର
Laṅkeśwarī ଅଧିଷ୍ଠାତ୍ରୀ ଦେବୀ—The Deity presiding over the mythological city of Laṅkā.
[ପ୍ର—ହନୁମାନ୍ ସୀତାଙ୍କୁ ଠାବ କରିବା ପାଇଁ ପ୍ରଚ୍ଛନ୍ନ ରୂପ ଧରି ସନ୍ଧ୍ୟା ବେଳେ ଲଙ୍କାରେ ପ୍ରବେଶ କରିବା ସମୟରେ ତାଙ୍କୁ ଏ ଠାକୁରାଣୀ ବାଟ ଉଗାଳିଲେ । ତହୁଁ ହନୁମାନ୍ ତାଙ୍କୁ ଗୋଇଠାଏ ମାରିବାରୁ ସେ ମୂର୍ଚ୍ଛିତା ହେଲେ; ଉତ୍ତାରୁ ସଂଜ୍ଞା ପ୍ରାପ୍ତ ହୋଇ ହନୁମାନଙ୍କୁ ବର ଦେଲେ ଯେ, ତୋ କାର୍ଯ୍ୟ ସିଦ୍ଧ ହେଉ । କେତେକ ପଣ୍ଡିତଙ୍କ ମତରେ ଏ ରାବଣ ଦ୍ୱାରା ଲଙ୍କାପୁରକୁ ଚିରୋରେ ନିଯୁକ୍ତା ଜଣେ ରାକ୍ଷସୀ ଥିଲେ । ହ୍ର. ଗ]

ଲଙ୍ଗ୍ (ଧାତୁ)—ସଂ—ଲାଗିଯିବା; ସଂଲଗ୍ନ ହେବା—
Laṅg (root) To be attached to; to stick to.
(ଲଗ୍ ଧାତୁ—ଅନ୍ୟରୂପ)

ଲଙ୍ଗ୍—ବୈଦେ. ବଣ. (ଇଂ)—ଲମ୍ବା—Long [ପ୍ର—ଏହା ଅନ୍ୟ
Laṅg ଶବ୍ଦମାନଙ୍କ ସହିତ ଯୁକ୍ତ ହୁଏ । ଯଥା—ଲଙ୍ଗ୍ କୋଟ୍,
लंग लङ्ग ଲଙ୍ଗ୍ ବୋଟ୍ ଇତ୍ୟାଦି ।]

ଲଙ୍ଗ୍‌କଲାଟ—ବୈଦେ. ବ. (ଇଂ. ଲଙ୍ଗ୍ କ୍ଲଥ୍)—ନୟନ ସୁଖ ଲୁଗା;
Laṅg kilāṭ ଶୁକ୍ଳୀକୃତ କଳକୁଣ୍ଢା ମାର୍କିନ୍‌ପଡ଼ଲା ଥାନ ଲୁଗା—
लंग कथ, लंग क्लाट Longcloth; lengths of bleached
लङ्कक(कि)लाट mill-made cotton cloth.

ଲଙ୍ଗ୍‌କୋଟ୍—ବୈଦେ. ବ (ଇଂ)—ଅଣ୍ଟୁ ପର୍ଯ୍ୟନ୍ତ ଲମ୍ବିଥିବା ଖଣ୍ଡ ପଟଖେ
Laṅg koṭ लंग कोट लङ्गकोट ବୋତାମ ଲଗା କୁର୍ତ୍ତା—
[ଲଂ କୋଟ୍, ଲଙ୍କୋଟ୍—ଅନ୍ୟରୂପ] Longcoat.

ଲଙ୍ଗ୍ ପଙ୍ଗ୍ ହେବା—ଦେ. କ୍ରି (ସ. ଲଙ୍ଗ୍. ଧାତୁ)—କୌଣସି ସ୍ଥାନରେ
Laṅg-paṅg hebā ବିନା ଗୁଢ଼ ଉଦ୍ଦେଶ୍ୟରେ ଇତସ୍ତତଃ
नेंग नेंग करना ବୁଲିବା; ଫେର୍‌ଫାର୍ ହେବା—To loiter
लदफद होना about a place. [ଯଥା—ସୁବିଧା ଦେଖି କୌଣସି ଜିନିଷ ଚୋରିକରି ନେବାକୁ ଚୋର ଲଙ୍ଗ୍ ପଙ୍ଗ୍ ହେଉଥାଏ ।]

ଲଙ୍ଗ୍ ବୋଟ୍—ବୈଦେ. ବ (ଇଂ)—ଜାହାଜରେ ଟଙ୍ଗା ହୋଇଥିବା ବଡ଼
Laṅg boṭ ବୋଟ୍, ଯାହାକୁ ବିପଦ ବା ଆବଶ୍ୟକ ପଡ଼ିଲେ
लंबोट ଖୋଲିଯାଇ ବ୍ୟବହାର କରାଯାଏ—The longboat of
लगबोट (ଲଂବୋଟ୍—ଅନ୍ୟରୂପ) a ship

ଲଙ୍ଗ୍‌ଲଙ୍ଗ୍ ହେବା—ଦେ. କ୍ରି—ଲଙ୍ଗ ଲଙ୍ଗ ହେବା (ଦେଖ)
Laṅg-laṅg hebā Laṅgalaṅga hebā. (See)

ଲଙ୍ଗ—ସ. ବ (ଲଙ୍ଗ୍ ଧାତୁ=ଲାଗିଯିବା+ଭାବ. ଅ)—୧ । ସଙ୍ଗ;
Laṅga ସଙ୍ଗମ; ମିଳନ; ଭେଟ—1. Union; meeting.
[ଲଙ୍ଗକ—ଅନ୍ୟରୂପ] ୨ । (+କର୍ତ୍ତୃ. ଅ) ଜାର; ଉପପତି—
2. A paramour. ୩ । (+ଭାବ. ଅ) ଖଞ୍ଜତା—
3. Lameness.

ଲଙ୍ଗଟି—ଦେ. ବ—ଲାଗଟ (ଦେଖ)
Laṅgaṭi लांगट लंगोटी Laṅgaṭ. (See)

ଲଙ୍ଗର୍—ବୈଦେ. ବ (ଫା; ତୁଲ, ସ ଲାଙ୍ଗଲ; ଏହା ଲାଙ୍ଗଲାକୃତିବିଶିଷ୍ଟ
Laṅgar ଅଟେ)—୧ । ଜାହାଜକୁ ଦରିଆ ମଝିରେ ବା ବନ୍ଦରରେ
लंग(नं)गर ଅଟକାଇବା ପାଇଁ ବ୍ୟବହୃତ ଶୃଙ୍ଖଳଯୁକ୍ତ ଲୌହମୟ ଈଷ
लं(नं)गर ଯୁକ୍ତ ଲଙ୍ଗଳାକୃତ ଅଙ୍କୁଶ—1. Anchor. [ପ୍ର—ଏହି ଅଙ୍କୁଶ ଲମ୍ବ ଶିକୁଳିଦ୍ୱାରା ଜାହାଜରେ ସଲଗ୍ନ ଥାଏ । ଏହାକୁ ପାଣିକୁ ଫୋପାଡ଼ି ଦେଲେ ଲଙ୍ଗରର ଅଙ୍କୁଶଗୁଡ଼ିକ ଜଳତଳର ମାଟିକୁ କାମୁଡ଼ି ଧରେ । ଏଥିଯୋଗୁଁ ଜାହାଜ ଡଳଚଳ ନ ହୋଇ ଏକ ସ୍ଥାନରେ ଆବଦ୍ଧ ହୋଇ ରହେ । ପୁଣି ଲଙ୍ଗରକୁ ଜାହାଜ ଉପରକୁ ଉଠାଇ ଆଣିବା ପରେ ଜାହାଜକୁ ଚଳାଇବାକୁ ହୁଏ । ] ୨ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିର ସହାୟକ ବା ଆଶ୍ରୟଦାତା ବ୍ୟକ୍ତି ବା ସ୍ଥାନ—2. (figurative) One's refuge or shelter; ୩ । (ଦରଜିଙ୍କ ଭାଷା) ଛାଗା ସିଲେଇ; ଟାଙ୍କା—3. (Tailor's) Rough stich in sewing. ୪ । ଲଙ୍ଗର୍‌ଖାନା (ଦେଖ)—4. Laṅgar-khānā. (See)

ଲଙ୍ଗର୍ ଉଠା(ଠେ)ଇବା—ଦେ କ୍ରି—୧ । ଲଙ୍ଗର୍ କରାଯାଇ ସ୍ଥିର
Laṅgar uṭhā(ṭhe)ibā ଭାବରେ ରହିଥିବା ଜାହାଜକୁ
ଲଙ୍ଗର ଖୋଲିବା } ଅନ୍ୟରୂପ ] ଚଳାଇବା ପୂର୍ବରୁ ଜଳର ତଳ
ଲଙ୍ଗର ଟେକିବା } ଦେଶରେ ସଲଗ୍ନ ଲଙ୍ଗରକୁ ପାଣି
लंगर तोना ମଧ୍ୟରୁ ଜାହାଜ ଉପରକୁ ଉଠାଇ ଆଣିବା—1. To
लंगर उठाना weigh anchor. [ଯଥା—XX ଦିନ ଦୁଇ ପହର ସରିକ ଚଳାପାଠଶାଳା ହାଡ଼ିବାହାରୁ ଲଙ୍ଗର ଉଠେଇ ଦେଲୁଁ । ଫକୀରମୋହନ. ଜୀବନଚରିତ । ] ୨ । (ଲକ୍ଷଣାର୍ଥ) କୌଣସି ସ୍ଥାନ ତ୍ୟାଗ କରିବାର ଆନୁପୂର୍ବିକ ବ୍ୟବସ୍ଥା କରିବା—2. (figurative) To make preliminary arrangements for removal from a place. ୩ । (ଲକ୍ଷଣାର୍ଥ) ବନ୍ଦର ରୁଦ୍ଧ ହୋଇଥିବା ଗୁରୁକୁ ପୁଣି ଆରମ୍ଭ କରିବା—3. (figurative) To begin

to move away form a place of stoppage.

**ଲଙ୍ଗର୍ କରିବା**—ଦେ. କ୍ରି—୧ । ଚଳୁଥିବା ଜାହାଜର ଗତିକୁ ରୁଦ୍ଧ **Langar kariba** କରିବା ପାଇଁ ଓ ଗୁରୁଭାରବିଶିଷ୍ଟ ଜାହାଜକୁ ନংগর করা ଏକ ସ୍ଥାନରେ ସ୍ଥିର ଭାବରେ ରଖିବା ପାଇଁ ଜାହାଜରେ **लंगर करना(डालना)** ରଖା ଯାଇଥିବା ଲଙ୍ଗରକୁ ପାଣିକୁ ଫିଙ୍ଗିବା, (ଯେଉଁରିକ, ଲଙ୍ଗରର ଅଙ୍କୁଶ ଜଳର ତଳ ଦେଶରେ ଥିବା ଦୃଢ଼ ମାଟିକୁ ଜାବୁଡ଼ି ଧରିବ)
[ଲଙ୍ଗର୍ ଖସା(ଟେ)ଇବା, ଲଙ୍ଗର୍ ପକା(କେ)ଇବା, ଲଙ୍ଗର୍ ଉଢ଼ିବା—ଅନ୍ୟରୂପ]
—1. To anchor a ship or boat; to cast or let down the anchor. [ପ୍ର—ଲଙ୍ଗର କରିବା କ୍ରିୟାର ବ୍ୟବହାର—ଜାହାଜ ଅମୁକ ସ୍ଥାନରେ ଲଙ୍ଗର କଲା] ୨ । (ଲକ୍ଷଣାର୍ଥ) କୌଣସି ସ୍ଥାନରେ କିଛି-କାଳ ରହିବାର ବ୍ୟବସ୍ଥା କରିବା—2. (figurative) To make arrangements for staying at a place for some time. ୩ । (ଲକ୍ଷଣାର୍ଥ) ନିଜର ଗତିକୁ ରୁଦ୍ଧ କରିବା—3. (figurative) To stop one's own motion.

**ଲଙ୍ଗରଖାନା**—ବୈଦେ ବି (ଫା)—୧ । ପାନ୍ଥନିବାସ; ଧର୍ମଶାଳା—**Langar-khana** 1 A rest house for travellers. লঙ্গরখানা **लंगरखाना** ୨ । ଦରିଦ୍ରଶାଳା—An assylum for the poor. ୩ । ଯେଉଁ ସ୍ଥାନରେ ଦରିଦ୍ରମାନଙ୍କୁ ମାଗଣା ପକ୍ୱାନ୍ନ ବଣ୍ଟାଯାଏ—3. A place where cooked food is distributed gratis to the poor.

**ଲଙ୍ଗରଗା**—ବୈଦେ. ବି (ଫା ଲଙ୍ଗର୍‌ଗାହ୍)—୧ । ନଦୀର ବା ସମୁଦ୍ରର **Langarga** କୂଳସ୍ଥ ଯେଉଁ ସ୍ଥାନରେ ଜାହାଜମାନଙ୍କୁ ଲଙ୍ଗର ଲঙ্গরগা **लङ्गरगाह** କରାଯାଏ—1. Anchorage; a [ଲଙ୍ଗର୍‌ଗାହ୍(ହା), ଲଙ୍ଗର୍‌ଗାଃ—ଅନ୍ୟରୂପ] place where a ship can anchor ୨ । ବନ୍ଦର୍—2. A port.

**ଲଙ୍ଗର୍ ପଙ୍ଗର ହେବା**—ଦେ. କ୍ରି—ଲଙ୍ଗ୍‌ପଙ୍ଗ୍ ହେବା (ଦେଖ)—**Langar pangar heba** Langpang heba. (See) [ପ୍ର—ଲୁଙ୍ଗ୍‌ପୁଙ୍ଗ୍, ଲୁଙ୍ଗ୍‌ପୁଙ୍ଗ୍, ଲୁଙ୍ଗର୍‌ପୁଙ୍ଗର୍, ଲୁଙ୍ଗୁରୁ ଲୁଙ୍ଗୁରୁ ଶବ୍ଦମାନ ଏହି ଅର୍ଥବାଚକ । କିନ୍ତୁ ଲଙ୍ଗପଙ୍ଗ ଅପେକ୍ଷା ସ୍ନିଗ୍ଧତର ଭାବବ୍ୟଞ୍ଜକ ।]

**ଲଙ୍ଗର୍ ହେବା**—ଦେ. କ୍ରି—ଲଙ୍ଗର କରିଯିବା ଯୋଗୁଁ (ଜାହାଜ) ଏକ **Langar heba** ସ୍ଥାନରେ ଆବଦ୍ଧ ହେବା—To be লঙ্গর হওয়া[করা] anchored or moved; to be at **लङ्गर होना** anchor.

**ଲଙ୍ଗରି**—ଦେ. ବିଣ (ଜାହାଜର ଭାଷା)—ଲଙ୍ଗର ହୋଇଥିବା **Langari** (ଜାହାଜ)—Anchored (ship) [ଉ—লঙ্গর ধ(ক)রা ସମ୍ଭାଳି—ସମ୍ଭାଳି—ଲଙ୍ଗରି ଜାହାଜମାନଙ୍କରେ ମଣିଷ **लङ्गर हुआ** ପହରି ରହିଗଲେ । ଫକୀରମୋହନ. ଗଳ୍ପସ୍ୱଳ୍ପ । ]

**ଲଙ୍ଗଳ**—ଦେ. ବି (ସଂ. ଲାଙ୍ଗଲ)—ଲାଙ୍ଗଳ; ହଳ କରିବାର ଯନ୍ତ୍ର; ଭୂମି **Langala** ଚଷିବାର ଲୌହମୁଖ ଯନ୍ତ୍ର—Plough. [ପ୍ର—ଏହି লাঙ্গল, লাঙল ଶୁଷପଦାର୍ଥ ତିନି ଅଂଶରେ ବିଭକ୍ତ, ଯଥା—୧ । **हल** ଲଙ୍ଗଳ=ଦୁଇ ଅଙ୍ଗଯୁକ୍ତ କାଷ୍ଠ, ୨ । ଈଷ=ଲଙ୍ଗଳଦଣ୍ଡ ଓ ୩ । ଜୁଆଳି, ବା ଯୁଗ । ଏ ସମସ୍ତଙ୍କୁ ଏକତ୍ରରେ 'ହଳ' ବା ଲଙ୍ଗଳ ସଜ ବୋଲାଯାଏ । ପ୍ରଥମୋକ୍ତ ଲଙ୍ଗଳ ମଧ୍ୟ ଦୁଇ ଭାଗରେ ବିଭକ୍ତ । (କ) ବକ୍ରମୁଖାକୃତି ଉପର ଖଣ୍ଡି କଣ୍ଟି, (ଖ) ତଳଖଣ୍ଡ ମୁଣ୍ଡା; ଏହି ମୁଣ୍ଡାରେ ଲଙ୍ଗଳଲୁହା ପଶେ । ଲୋକେ ଏହି ସମସ୍ତ ଅଙ୍ଗବିଶିଷ୍ଟ ଯନ୍ତ୍ରକୁ ଲଙ୍ଗଳ ସଜ ବା ଲଙ୍ଗଳ କହିଥାଆନ୍ତି । ଲଙ୍ଗଳର ଭିନ୍ନ ଭିନ୍ନ ଅଂଶର ନାମ ଯଥା—ଯୁଆଳି, ମୁଣ୍ଡା, କାନି, ଶଇଳ, ଈଷ, ମୂଠା, ଫାଳ, ଅନ୍ଧି, ଯୋତ, ଖାଡ଼ଯୋତ, ଅନ୍ଧିକଣ୍ଟିଖିଲା, ପିଠିଖିଲା, କୋଳ, ଲୁହା ।]

**ଲଙ୍ଗଳ ଅନ୍ଧି**—ଦେ. ବି (ସଂ. ଆବନ୍ଧ; ଅନ୍ଧୁଭ)—୧ । ଜୁଆଳିର ମଧ୍ୟ-**Langala andhi** ଭାଗସ୍ଥ ଅନ୍ଧିଖିଲାରେ ସଂଲଗ୍ନ ଛୋଟ ଦଉଡ଼ି—আঁদ্, আঙ্কুড়া আঁধি 1. A small string tied **हलकी छोटीरस्सी** round the middle of the yoke. ୨ । ଜୁଆଳିର ମଧ୍ୟଭାଗରେ ମରାଯାଇଥିବା ଦୁଇଟି ଖିଲ, ଯାହା ମଧ୍ୟରେ ଲଙ୍ଗଳର ଈଷକୁ ପୁରାଇ ଲଙ୍ଗଳଦଉଡ଼ିଦ୍ୱାରା ବନ୍ଧାଯାଏ—2. Two pins in the middle of the yoke used in securing the plough beam with the yoke.

**ଲଙ୍ଗଳ ଈଷ**—ଦେ.ବି (ସଂ.ଲାଙ୍ଗଲୀଷା)—ଲଙ୍ଗଳ ଦଣ୍ଡ—The beam **Langala isha** of a plough. [ପ୍ର—ଯେଉଁ ଦଣ୍ଡ ଲଙ୍ଗଳ ঈষ ମୁଣ୍ଡାରେ ସଂଲଗ୍ନ ହୋଇଥାଏ ଓ ଯାହା ଅନ୍ଧି ଦଉଡ଼ି ଦ୍ୱାରା **इष; हरिस** ଯୁଆଳିର ମଧ୍ୟ ଭାଗରେ ଥିବା ଅନ୍ଧିଖିଲା ସଙ୍ଗେ ବନ୍ଧା-ଯାଇ ଲଙ୍ଗଳକୁ ଭୂମିକର୍ଷଣର ଉପଯୋଗୀ କରେ ।]

**ଲଙ୍ଗଳ କଣ୍ଟି**—ଦେ. ବି (ସଂ. କୁଣ୍ଠକ)—ବକ୍ରଗ୍ରୀବାପରି ଲଙ୍ଗଳର ଯେଉଁ **Langala kanti** ଲମ୍ବ କାଷ୍ଠ ଖଣ୍ଡର ଊର୍ଦ୍ଧ୍ୱଭାଗସ୍ଥବେଣ୍ଟକୁ ହଳୁଆ লাঙ্গলের খেঁটা ହାତରେ ହାତରେ ମୂଠାଏ—The upper **लागन** piece of a plough; the plough tail.

**ଲଙ୍ଗଳ କଣ୍ଟିଆ**—ଦେ. ବିଣ—ଲଙ୍ଗଳର କଣ୍ଟି ପରି ଆକୃତିବିଶିଷ୍ଟ **Langala kantia** (ଚଉଡ଼ା ଓ ଚେପଟା)—Shaped like the handle piece of a plough; broad and flat.

**ଲଙ୍ଗଳକଣ୍ଟିଆ ଅମ୍ବ**—ଦେ. ବି—ଏକ ଜାତୀୟ ବଡ଼ ଓ ଚେପଟା ଅମ୍ବ—**Langalakantia amba** A kind of big mango চেপ্টা কলমী আম fruit which is flat and broad. **चिपटा कलमी आम**

**ଲଙ୍ଗଳ କରିବା**—ଦେ. କ୍ରି—ଜମିକୁ ଲଙ୍ଗଳ ଦ୍ୱାରା କର୍ଷଣ କରିବା—**Langala kariba** To plough up a field. [ ଲଙ୍ଗଳ ଦେବା, ଲଙ୍ଗଳ ବୁଲା(ଲେ)ଇବା—ଅନ୍ୟରୂପ ] লাঙ্গল করা, লাঙ্গল দেওয়া **हल करना**

**ଲଙ୍ଗଳ କିଳା**—ଦେ. ବ (ସଂ. ଯୁଗକୀଲକ)—ଲଙ୍ଗଳର ଦୁଇ ଅଗରୁ ବାହାରି
Lāngala kilā ଦୁଇ ଛଡ଼ ତଳଆଡ଼କୁ ମରାଯାଇଥିବା ଦୁଇ ଖଣ୍ଡ
জোয়ালেবশলী; শলী କାଠ—The pins attached to
জैला the ends of the yoke to fasten the bullocks [ଦ୍ର—ଏଥିର ଅଗର ଛିଦ୍ରରେ ଖାଡ଼ୁଯୋତ ବନ୍ଧାଯାଇ କୁଆଳର ମୁଣ୍ଡରେ କାନ୍ଧ ଦେଇଥିବା ବଳଦଙ୍କ କାନ୍ଧକୁ ଯୁଆଳ ସଙ୍ଗେ ସଂଲଗ୍ନ କରାଯାଏ । ]

**ଲଙ୍ଗଳକୁ ଯିବା**—ଦେ. କ୍ରି (ଲଙ୍ଗଳ କରିବାକୁ ବା ହଳ କରିବାକୁ
Lāngalaku jibā ଯିବା)—କୃଷି କରିବା ପାଇଁ ହଳ ଓ ବଳଦ
হালকরিতে যাওয়া ନେଇ କ୍ଷେତକୁ ଯିବା—To go to the
**हलजोतने जाना** field with the plough and bullocks to plough. [ଦ୍ର—ସକାଳୁ ଉଠି ଲଙ୍ଗଳେ ଯାନ୍ତି; ଚୋରାଣି ହେମକାକର । ପଣ୍ଡିତଆ ଢଗ ।]

**ଲଙ୍ଗଳ ଗାର**—ଦେ. ବ—୧ । ଲଙ୍ଗଳ ପଦ୍ଧତି (ଦେଖ)—
Lāngala gāra 1. Lāngala paddhati. (See)
লাঙ্গলের দাগ ୨ । ଭୂମିରେ ସାମାନ୍ୟ ଭାବରେ ବା ଉପରଠାଉରିଆ
**सिराडर** କରି ହଳ ବୁଲାଇ ଥିବା ଯୋଗେ ଭୂମି ଉପରେ ପଡ଼ିଥିବା ଲଙ୍ଗଳର ରେଖା ମାତ୍ର—2. Superficial lines made on the soil owing to light ploughing.

**ଲଙ୍ଗଲଙ୍ଗଲିଆ**—ପ୍ରାଦେ (ଗଞ୍ଜାମ) ବ—ଲହ ଲଙ୍ଗଳିଆ (ଦେଖ)
Lāngalāngaliā Lahalāngliā. (See)

**ଲଙ୍ଗଲଙ୍ଗ ହେବା**—ଦେ. କ୍ରି (ଚଞ୍ଚଳତାବ୍ୟଞ୍ଜକ) –୧ । ଚଞ୍ଚଳ ହୋଇ
Lāngalānga hebā ଇତସ୍ତତଃ ବୁଲିବା—1. To move
চং বং করা up and down quickly. ୨ । ଚଞ୍ଚଳତାସହିତ
**चकुआना** ଇତସ୍ତତଃ ଦୃଷ୍ଟି କ୍ଷେପ କରିବା—2. To look round restlessly; to cast restless glances round.

**ଲଙ୍ଗଳ ତଡ଼ା**—୧ । ପ୍ରଥମ ଓଡ଼ ହଳ କରାଯାଇଥିବା ପଡ଼ିଆ ଭୂମି,
Langala tardā ଯହିଁରେ ଲଙ୍ଗଳ ଫାଳ ଦ୍ୱାରା ଭୂମିରୁ ବାହାରିଥିବା
একবার লাঙ্গলদেওয়া জমি ହୋଇଥିବା ବଡ଼ ବଡ଼ ମାଟିଖଣ୍ଡମାନ
**ढेप ढेप, ढेला ढेला** ଭାଙ୍ଗି ନ ଥାଏ - 1. A fallow land which has been ploughed only once ant in which the big clods of earth have nod been reduced into dust by second or third ploughing.

୨ । ପ୍ରଥମ ଓଡ଼ ଲଙ୍ଗଳ ଦ୍ୱାରା କର୍ଷିତ ହୋଇ ଭୂମିରୁ ଅଲଗା ହୋଇଥିବା ବଡ଼ ବଡ଼ ମୃତ୍ତିକାଖଣ୍ଡମାନ—2. Big clods of earth separated from the soil by the first ploughing, ଦେ.ବିଣ—ଥରେ ହଳ ଦ୍ୱାରା ଖୋଷ ହୋଇଥିବା ବଡ଼ ବଡ଼ ଢେଲାଯୁକ୍ତ(ଭୂମି)-(land) Having big clods turned up by the first ploughing.

**ଲଙ୍ଗଳ ତୁଳ(ଳା) ହେବା**—ଦେ. କ୍ରି—ଲଙ୍ଗଳରେ ଈଷକୁ ପୁରାଇ ପଛ
Langala tula(lā) hebā ଆଡ଼ୁ ପିଚକିଳା ମାରିବାର ଏକ
**हल तडक होना** ବର୍ଣ୍ଣିଷ୍ଠତା ଯୋଗୁଁ ଲଙ୍ଗଳଫାଳର ତେରଛା ପଣ (ଲଙ୍ଗଳ ସଗା ହେବା—ଅପଭ୍ରଷ୍ଟ) ଯୋଗୁଁ ଭୂମିକୁ ଗଭୀର କରି ତାଡ଼ିବାର ଅବସ୍ଥା—The state of a plough-blade digging deep into the earth owing
লাঙ্গল বাঁকা হওয়া to its incline.

**ଲଙ୍ଗଳ ଧରିବା**—ଦେ. କ୍ରି—କୃଷି କରାଯିବା ପାଇଁ ସଜ୍ଜିତ ହୋଇଥିବା
Langala dharibā ବଳଦଙ୍କ ଯୋଚ ଲଙ୍ଗଳର ମୁଠାକୁ ଧରି
ଲଙ୍ଗଳରେ ମୁଠା ପକା(କେ)ଇବା } ଅନ୍ୟରୂପ ଭୂମି ଖୋଷ କରିବା-
ଲଙ୍ଗଳ ମୁଠାରେ ହାତ ପକା(କେ)ଇବା } To put
লাঙ্গল ধবা **हल पकडना** one's hand to the plough. [ଦ୍ର—ବଳଦ ଟାଣୁଥିବା ଲଙ୍ଗଳର ମୁଠାକୁ ହାତରେ ଧରି ମାଡ଼ି ବସିଲେ ଜମି ଗଭୀର ହୋଇ ଖୋଷ ହୁଏ । ଲଙ୍ଗଳ ମୁଠା ଉପରେ ବେଶି ଓଜନ ନ ଦେଲେ ଖୋଷ ଗଭୀର ହୁଏ ନାହିଁ । ଏଥିପାଇଁ ବଳୁଆ ଲୋକ ଲଙ୍ଗଳ ଧରିବା ନିମନ୍ତେ ଲୋଡ଼ା ହୁଅନ୍ତି ।]

**ଲଙ୍ଗଳ ପକ୍ଷି(ଖି)**—ଦେ. ବ. (ସଂ. ଲଙ୍ଗଳ+ପକ୍ଷ)—ଲଙ୍ଗଳ ମୁଣ୍ଡର
Langala pakshi(khi) ଦୁଇ ଚଟକା ପାର୍ଶ୍ୱ—The two
[ଲଙ୍ଗଳ ପକ୍ଷି(ଖି)ସ୍ତ—ଅନ୍ୟରୂପ] flanks or blades of the
লাঙ্গলের ফলা plough; ploughshare; share beam
**ठ'ठाका बगल** of a plough.

**ଲଙ୍ଗଳ ପଣା**—ଦେ. ବ—୧ । ଲଙ୍ଗଳ ଲୁହା—1. Plough-iron.
Langala panā ୨ । ଲଙ୍ଗଳ ଲୁହା ଦ୍ୱାରା ପ୍ରହାର—
লাঙ্গলের লোহা 2. Stroke with a plough iron.
**फार(ल), फारसे मार** [ଦ୍ର—ଏଣେ ଗୃହିଣୀକ ଚେତଣ ଚଷା, କାଣ୍ଡିକ ମାଇଲେ ଲଙ୍ଗଳ ପଣା । କାଞ୍ଚି ଗୀତ ।]

**ଲଙ୍ଗଳ ପାହ(ହା)ଲ**—ଦେ. ବ. (ସଂ. ଲଙ୍ଗଳ+ଫଳ)—୧ । ଲଙ୍ଗଳ
Langala pāha(hā)la ମୁଣ୍ଡର ମଝିରେ ଘର ହୋଇ ଭର୍ତ୍ତି
লাঙ্গলের ফাল କରି ଯାଇଥିବା ଲୁହାର ତୀକ୍ଷ୍ଣାଗ୍ର ଫଳା—
**अगवासी, फार(ल)** 1. Plough iron, coulter. [ଦ୍ର—ଏହା ମାଟିକୁ ଖୋଳେ ।] ୨ । ଲଙ୍ଗଳ ପକ୍ଷି (ଦେଖ) 2. The blade of the plough.

**ଲଙ୍ଗଳ ପିଚକିଳା**—ଦେ. ବ (ସ ଲଙ୍ଗଳ+କୀଲକ)—ଲଙ୍ଗଳ ମୁଣ୍ଡର
Langala pichikilā ଛିଦ୍ରରେ ଈଷର ମୂଳକୁ ଭର୍ତ୍ତି କରି ତାକୁ
ଲଙ୍ଗଳ ଚୋଳ } ଅବଦ୍ଧ କରି ରଖିବା ପାଇଁ ଓ
ଲଙ୍ଗଳ ଚପା } ଅନ୍ୟରୂପ ଈଷକୁ ଲମ୍ବ ବା ଛୋଟ
ଲଙ୍ଗଳ ଫାଳ କିଳା } କରିବା ପାଇଁ ବ୍ୟବହୃତ କୀଳକ-
আড়চান্দ The wooden pin which tightens the
**हलका कील** beam to the plough piece. [ଦ୍ର—ଲଙ୍ଗଳରେ ଈଷ ଭରିଛି କରି ଈଷର ଉପରୀତ ଦିଗରୁ ପିଚକିଳା ମରାଯାଏ ଓ ପିଚକିଳା ମାରିବା କୌଶଳରେ ଲଙ୍ଗଳ ସଗା (ଚଟକା) ହୁଏ ବମ୍ପା ତୁଳା (ତେରଛା) ହୁଏ ।]

**ଲଙ୍ଗଳ ଫାଳ**—ଦେ ବ (ସ. ଲଙ୍ଗଳ+ଫଳକ)—୧ । ଲଙ୍ଗଳ ପକ୍ଷୀ
Langala phāla ( ଦେଖ )—1. Langala pakshi
ଲାଙ୍ଗଲେର ଫାଲ (See) ୨ । ଲଙ୍ଗଳ ଲୁହା—2. Plough-
हलका फार iron.

**ଲଙ୍ଗଳ ପିଟା(ଟେ)ଇବା**—ଦେ କ୍ରି—୧ । ଯୁଆଳରୁ ଈଷକୁ କାଢ଼ି କୃଷି-
Langala phitā(te)ibā କାର୍ଯ୍ୟ ବନ୍ଦ କରି ଭୂମି ସଲଗ୍ନ ଲଙ୍ଗଳ-
ଲାଙ୍ଗଲ ଖୁଲେ ଦେଓୟା ମୁଣ୍ଡାକୁ ଟେକି ଯୁଆଳ ଉପରେ ରଖିବା—
हल खोलना 1. To stop ploughing and take up the plough piece from the ground and put it on the yoke. ୨ । ଲଙ୍ଗଳରେ ଯୋଗ୍ ହୋଇଥିବା ବଳଦଙ୍କୁ ଯୁଆଳରୁ ମୁକ୍ତ କରିବା—2. To unyoke the oxen from the plough.

**ଲଙ୍ଗଳ ବଳଦ**—ଦେ. ବ (ସହଚର)—କୃଷିର ଦୁଇ ଗୋଟି ଉପକରଣ;
Langala balada ହଳ ଓ ବଳଦ—Plough and pair;
ଲାଙ୍ଗଲ ବଲଦ the plough and a pair of oxen
हल बल necessary for ploughing.

**ଲଙ୍ଗଳ ବେଣ୍ଟ(ମୁଠା)**-ଦେ.ବ. (ସ· ଲଙ୍ଗଳ+ସ. ବୃନ୍ତ, ମୁଷ୍ଟି)--କଣ୍ଟିର
Langala benta(muthā) ଯେଉଁ ଅଂଶକୁ ହାତରେ ମୁଠାଇ
ଲାଙ୍ଗଲ ମୁଠ ହଳ ବୁଲାଇବାକୁ ହୁଏ—The handle of a
हलका मुठा plough.

**ଲଙ୍ଗଳ ମର**—ଦେ. ବ—୧ । ଉପରେଠାଉରିଆ କରି, ଅର୍ଥାତ୍, ଅଗଭୀର
Langala marā ଭାବରେ ଜମିକୁ ଚଷ କରିବା—
ଲାଙ୍ଗଲ ମାରା 1. Superficial ploughing. ୨ । କେଉ଼ଷଣ-
हल मारना 2. The operation of puddling.
हल मारी हुइ(जमीन) ଦେ. ବଣ—ଅଗଭୀର ଭାବରେ ଚଷ କରା ଯାଇଥିବା—Superficially ploughed.

**ଲଙ୍ଗଳ ମାଡ଼ି ବସିବା**—ଦେ. କ୍ରି—ବଳଦ ହଳକୁ ଟାଣୁଥିବା ବେଳେ
Langala mārdi basibā (ଗଭୀର ଚଷ କରିବା ପାଇଁ
ଲାଙ୍ଗଲ ଚେପେ ଧରା ଲଙ୍ଗଳର ମୁଠା ଉପରେ ବିଶେଷ ଶକ୍ତି ପ୍ରୟୋଗ
हलको जोरसे दबाना କରିବା—To press the handle of the plough heavily; to exert one's whole pressure on the plough for deep cultivation.

**ଲଙ୍ଗଳ ମାରିବା**—ଦେ. କ୍ରି—୧ । ଲଙ୍ଗଳ ମୁଠାରେ ବେଶି ଶକ୍ତି
Langala māribā ପ୍ରୟୋଗ ନ କରିବା ଯୋଗୁଁ ଉପର-
ଲାଙ୍ଗଲ ମାରା ଠାଉରିଆ କରି, ଅର୍ଥାତ୍ ଅଗଭୀର ଭାବରେ ଭୂମିକୁ
हल मारना, खुरखुराना ଚଷ କରିବା—1. To plough a field superficially (by not giving sufficient pressure on the handle. ୨ । କେଉ଼ଷଣ କରିବା—2. To puddle the paddy field.

**ଲଙ୍ଗଳ ମୁଣ୍ଡା**—ଦେ. ବ ( ସଂ. ଲଙ୍ଗଳ+ମୁଣ୍ଡ; ସଂ. ନାମ, କୁଟଳ,
Langala mundā ଲଙ୍ଗଳ )—୧ । ଯେଉଁ କାଷ୍ଠରେ
ଲାଙ୍ଗଲ ମୁଡା ଲଙ୍ଗଳ ଲୁହା ସଂଲଗ୍ନ କରାଯାଏ—1. The
ठेंठा blade-piece of a plough. ୨ । ବଢ଼େଇଦ୍ୱାରା ହଣାହଣି ଓ ଚଞ୍ଚାଚଞ୍ଚି କରି ଲଙ୍ଗଳର ମୁଣ୍ଡ ତିଆରି କରିବା ପାଇଁ ଯେଉଁ ତ୍ରିକୋଣାକାର କାଠ ରଖା ଯାଏ—2. An unhewn triangular and rough block of wood kept for being finished into a plough-piece.

[ ଦ୍ର—କୃଷିର ଭିନ୍ନ ଭିନ୍ନ କର୍ମପାଇଁ ଲଙ୍ଗଳମୁଣ୍ଡାକୁ ସରୁ ବା ଚଉଡ଼ା କରାଯାଏ । ପଡ଼ିଆ ଭାଙ୍ଗିବା, ପ୍ରଥମ ଓଡ଼ ଚଷ କରିବା, ଦ୍ୱିତୀୟ ଓଡ଼ ଚଷ କରିବା ଓ ବେଉ଼ଡ଼ିବା ପାଇଁ ଭିନ୍ନ ଭିନ୍ନ ଆକାରର ଲଙ୍ଗଳମୁଣ୍ଡା ବ୍ୟବହୃତ ହୁଏ । ତାହାର ମଧ୍ୟ ଭିନ୍ନ ଭିନ୍ନ ନାମ ଅଛି । ଯଥା—

୧ । କଢ଼ାଣମୁଣ୍ଡା—ଯେଉଁ ଲଙ୍ଗଳଦ୍ୱାରା ପ୍ରଥମେ ପଡ଼ିଆ ଜମିକୁ ଚଷ କରାଯାଏ; ଏହାର ଫଳକ ସରୁ ।

୨ । ଦୁହୁ(ହା)ଡ଼ମୁଣ୍ଡା, ଦେଉ(ଓ)ଡ଼ମୁଣ୍ଡା, ଦୋଅ(ଓ)ଡ଼ମୁଣ୍ଡା—ଯେଉଁ ଲଙ୍ଗଳ ଦ୍ୱାରା ଥରେ ଚଷ ହୋଇଥିବା ଜମିକୁ ଦ୍ୱିତୀୟଥର ଚଷ କରାଯାଏ । ଏହା କଢ଼ାଣମୁଣ୍ଡା ଅପେକ୍ଷା ବେଶି ଚଉଡ଼ା ହୁଏ ।

୩ । କୁଣାମୁଣ୍ଡା—ଯେଉଁ ଲଙ୍ଗଳମୁଣ୍ଡାଦ୍ୱାରା ପୂର୍ବରୁ ଦୁଇ ତିନିଥର ଚଷ ହୋଇଥିବା କ୍ଷେତ୍ରରେ ସିଆର କାଟି ଯାଇ ଧାନ କୁଣାଯାଏ ।

୪ । ଗୋଡ଼ଙ୍ଗିମୁଣ୍ଡା—କଙ୍କରମୟ ଜମିକୁ ଚଷ କରିବାପାଇଁ ବ୍ୟବହୃତ ଅତି ସରୁ ଲଙ୍ଗଳମୁଣ୍ଡା ।

୫ । ବଥଡ଼ା ବା ବେଉ଼ଡ଼ା ମୁଣ୍ଡା—ଯେଉଁ ସରୁ ଲଙ୍ଗଳମୁଣ୍ଡା ଦ୍ୱାରା ବଲକୁ କାଦୁଅ କରି ବେଉ଼ଡ଼ିବାକୁ ବା କେଉ଼ଷଣ କରିବାକୁ ହୁଏ ।]

**ଲଙ୍ଗଳ ଯୁଆଳି**—ଦେ. ବ ( ସ ଲଙ୍ଗଳ+ଯୁଗକାଷ୍ଠ )—୧ । ଯେଉଁ
Langala juāli କାଠର ଦୁଇ ମୁଣ୍ଡରେ ବଳଦ ଯୋଚା
ଲାଙ୍ଗଲ ଜୋୟାଲ ଯାଆନ୍ତି—1. The yoke of a plough.
हलजुआ ୨ । ଲଙ୍ଗଳ ଓ ଯୁଆଳି—2. The plough and the yoke.

**ଲଙ୍ଗଳ ଯୋଚ(ଛି)ବା**—ଦେ. କ୍ରି ( ସ. ଲଙ୍ଗଳ+ଯୁଜ ଧାତୁ )—୧ ।
Langala jochi(ti)bā ବଲକୁ ଚଷ କରିବାକୁ ଯିବା ପାଇଁ
ଲାଙ୍ଗଲ ଯୁ୍ତୋ,ତା ଘରେ ରଖାପାଇ ଥିବା ଲଙ୍ଗଳ ମୁଣ୍ଡା
हलजोतना ସହିତ ଯୁଆଳରେ ବଳଦଙ୍କୁ ଲଗାଇବା—1.
[ଲଙ୍ଗଳ ଯୋଚ(ବା)—କ୍ରିୟାବାଚକ ବିଶେଷ୍ୟ] To tie the oxen to the yoke to carry the plough to the field. ୨ । କୃଷି କ ହେବା ସମୟରେ ଯୁଆଳ ଉପରେ ବନ୍ଧାହୋଇ ଥିବା ଲଙ୍ଗଳ ମୁଣ୍ଡାକୁ ପିଠାଇ ହଳ କରିବା ପାଇଁ ଲଙ୍ଗଳର ଈଷକୁ ଯୁଆଳରେ ବାନ୍ଧିବା —2. To tie the plough beam to the yoke for the purpose of ploughing.

**ଲଙ୍ଗଳ ଯୋଳି**—ଦେ. ବ—ଲଙ୍ଗଳ ମୁଣ୍ଡାର ତଳ ଅଂଶରେ ଖୋଳା
Langala joli ହୋଇଥିବା ଘର ଉପରେ ମରାଯାଇ ଥିବା
ଫାଳେର କାଁଟା ଦୁଇଅଡ଼େ ଅଙ୍କୁଶଯୁକ୍ତ ( ⌐¬ ) ଲୁହାକଣ୍ଟା ।
फालकी कांटी ( ଏହି କଣ୍ଟାର ତଳେ ଥିବା ଫାକ ବାଟେ ଲଙ୍ଗଳ ମଣ୍ଡାରେ ଫାଳକୁ ଭୁଞ୍ଜିବାକୁ ହୁଏ)—The iron

hooks put over the groove in the plough blade through which the plough
(ଲଙ୍ଗଳ କୁଳୁକ—ଅନ୍ୟରୂପ) iron is thrust.

**ଲଙ୍ଗଲ ଲୁହା**—ଦେ. ବି—ଲଙ୍ଗଲ ପାହଲ ୧ ( ଦେଖ )
Langala luhā Langala pāhala 1 ( See )
লাঙ্গল লোহা ফাল(ব)

**ଲଙ୍ଗଲ ଶଇଲ**—ଦେ. ବି (ସଂ. ଲାଙ୍ଗଲ+ଶଲ୍ୟ )—ଲଙ୍ଗଳଖିଲା
Langala śaila (ଦେଖ )—Langala kilā (See)

**ଲଙ୍ଗଲ ଶୋଭା**—ପ୍ରାଦେ ( ସମ୍ବଲପୁର ) ବି—ଯୁଆଳି—
Langala śobhā Yoke.

**ଲଙ୍ଗଲ ସିଆ(ହା)ର**—ଦେ. ବି ( ସଂ. ଲଙ୍ଗଳ+ସୀତା )—
Langala siā(hā)ra ଲଙ୍ଗଲଗାର ( ଦେଖ )—
Langalagāra ( See )

**ଲଙ୍ଗଲ ସଗ(ଗା)ହେବା**—ଦେ. ବି—ଲଙ୍ଗଳର ଦେହରେ ଈଷକୁ
Langala saga(gā)hebā ପୂରାଇ ବସାଇବା ଉପରୁ ପିଟଖିଲା
हल सेब होना ମାରିବା କୌଶଳରେ ଲଙ୍ଗଳର ସହିତ ଭୂମିରେ
(ଲଙ୍ଗଲ ଭୁକ (ଲା)ହେବା—ଅପଭ୍ରଂଶ) ଗଭୀର ହୋଇ ପୂରିବା
ଅବସ୍ଥା—The state of the beam being so thrust into the plough blade and regulated with the back pin that the blade will not plough deep. [ଦୃ—ଲଙ୍ଗଳ ସଗ(ଗା) ହେଲେ ଉଦ୍ଧାର ବେଶିମାଟି ଖାଇ ହୁଏ ନାହିଁ, କିନ୍ତୁ ଭୁକା ହେଲେ ବେଶିମାଟି ଖାଇ ହୁଏ ।]

**ଲଙ୍ଗଲ ସଜ**—ଦେ. ବି (ସଂ. ଲଙ୍ଗଲ ଓ ସଜ୍ଜା )—ସମସ୍ତ ଅଙ୍ଗ ସମ୍ବଳିତ
Langala saja ଲଙ୍ଗଲ; ଲଙ୍ଗଲର ଆବଶ୍ୟକ ସମୁଦାୟ
লাঙ্গল সাজ ଅବୟବ ବା ଉପକରଣ । ( ଅର୍ଥାତ ହଳ
हलका सांगह କରିବା ବେଳେ ଯେପରି ଆଉ କିଛି ଲୋଡ଼ା ନ ହେବ )—A complete set of ploughing implements. [ ଦୃ—ଯୁଆଳି, ମୁଣ୍ଡା, ଫାଳ, କଣ୍ଟି, ଈଷ, ଶଇଲ, ଯୋତ, ଖାଭୁଯୋତ ଇତ୍ୟାଦି; ପ୍ରଧାନତଃ ଲଙ୍ଗଲ ସଜ ତିନୋଟି ଅଂଶରେ ବିଭକ୍ତ ଯଥା—୧ । ତଳରେ ମୁଣ୍ଡା ଓ ଉପରେ କଣ୍ଟିଯୁକ୍ତ ଲଙ୍ଗଲ; ୨ । ଈଷ; ୩ । ଯୁଆଳି । ଲଙ୍ଗଲମୁଣ୍ଡାରେ ଗାତ୍ର ଖୋଳାଯାଇ ତହିଁରେ ଲଙ୍ଗଲଲୁହା ପୂରାଯାଏ । ଲଙ୍ଗଲ ପରିଚାଳନାର୍ଥ ଦୁଇଟି ପଶୁ ଓ ଜଣେ ମନୁଷ୍ୟ ଦରକାର । ଏଥିପାଇଁ ପ୍ରହେଳିକା ଅଛି—"ଠକ ଠକ ଠକ ଘା, ତିନି ମୁଣ୍ଡ ଦଶ ଗୋଡ଼, ଦେଖି ଅଇଲି ମହୁସା"— ହଳ ବୁଲାଉ ଥିବା ମନୁଷ୍ୟ ଓ ବଳଦ । ]

**ଲଙ୍ଗଲ ସିର**—(ସ. ସୀତା; ସ. ସୀର=ହଳ)—ଲଙ୍ଗଲଦ୍ୱାରା ଭୂମିରେ
Langala sirā ପଡ଼ିଥିବା ଗାର—Furrow.
লাঙ্গল সীরান हलाइ, सिरावड

**ଲଙ୍ଗଳା**—ଦେ. ବିଣ. ପୁଂ ଓ ସ୍ତ୍ରୀ—(ସ. ନଗ୍ନ)—୧ । ଯେ ଲୁଗା ପିନ୍ଧି
Langalā ନ ଥାଏ; ବିବସ୍ତ୍ର; ନଗ୍ନ; ଯାହାର ଶରୀର ବସ୍ତ୍ରଦ୍ୱାରା
[ଲଙ୍ଗୁଳ, ଲଙ୍ଗଡ଼—ଅନ୍ୟରୂପ] ଆବୃତ ନ ଥାଏ—1. Naked;
নাঙ্গটা, ন্যাংটা, নাংটা; স্থাটা লেঙ্গটা unclothed.
नागट, नंगटा, उघाड, नंगा [ଦୃ—ଲୁଗା ପିନ୍ଧି ଅଥବା ହେଉ ମ. ନାଗଠା, ନାଗଡ଼ା ସେ ଲଙ୍ଗଳା, ତାଠାରେ ଏହା ବର୍ଷା କରିବା ସଙ୍ଗଳା । କୃଷ୍ଣସିଂହ. ମହାଭାରତ. ବନ । ] ୨ । ଅଳଙ୍କାରହିତ ବସ୍ତ୍ରହୀନ—2. Having no ornament (ଯଥା—ଲଙ୍ଗଳା ହାତ ।) ୩ । ଆବରଣଶୂନ୍ୟ—3. Uncovered. [ଯଥା—ଲଙ୍ଗଳା ଖଣ୍ଡା ।] ୪ । (ଲକ୍ଷଣାର୍ଥ) ନିର୍ଲଜ୍ଜ; ବେଶରମା—4. (figurative) Shameless, indecent. ୫ । (ଲକ୍ଷଣାର୍ଥ) ଯାହାର ସ୍ତ୍ରୀ ପୁତ୍ରାଦି ପୋଷ୍ୟବର୍ଗ କେହି ନ ଥାଏ—(figurative) One who has got no family or dependent. ୬ । (ଲକ୍ଷଣାର୍ଥ) ଯାହାର ଏ ସଂସାରରେ କିଛି ମାୟାବନ୍ଧନ ନାହିଁ—6. (figurative) One who has no worldly attachment. [ ଦୃ— ଲଙ୍ଗଳାକୁ ଢଳପୁରରେ ଭୟ ନାହିଁ । ଢଗ ।]

**ଲଙ୍ଗଳା କଟୁରି**—ଦେ. ବି—ଯେଉଁ କଟୁରିର ବେଣ୍ଟ ନ ଥାଏ—
Langalā katuri A bill-hook having no handle.
যে কাটারির বাঁট নাই लंगी कटारी

**ଲଙ୍ଗଳା କ(କୁ)ଣ୍ଢା(ଣ୍ଢେ)ଇ**—ଦେ. ବି—୧ । ନଗ୍ନ ପୁତ୍ତଳିକା—
Langalā ka(ku)ṇḍhā(ṇḍhe)i 1. A naked doll.
ন্যাংটা পুতুল नंगा पुतला ୨ । ଗୁବସ୍ତ୍ର ଓ ଅଳଙ୍କାର ବସ୍ତ୍ରହୀନ ହୋଇ ଯେଉଁ ବ୍ୟକ୍ତି (ବିଶେଷତଃ ସ୍ତ୍ରୀ) ନଗ୍ନ ପୁତ୍ତଳିକା ପରି ବସି ଥାଏ—2. A person having no ornaments or sufficient dress on the body.

**ଲଙ୍ଗଳା କରିବା**—ଦେ. କ୍ରି—୧ । କୌଣସି ବ୍ୟକ୍ତିର ଦେହରୁ ବସ୍ତ୍ର
Langalā karibā ବସ୍ତ୍ର ଓ ଅଳଙ୍କାରମାନ କାଢ଼ି ପକାଇବା—
ন্যাংটা করা नंगा करना 1. To take off all the clothes and ornaments from the body of a person. ୨ । ବିବସ୍ତ୍ର କରିବା—2. To denude or divest a person of his clothes. ୩ । (ଲକ୍ଷଣାର୍ଥ) ସର୍ବସ୍ୱାନ୍ତ କରିବା; ନିଃସ୍ୱ କରିବା— 3. To reduce a person to penury.

**ଲଙ୍ଗଳା କୌତ୍ସ(ଚ୍ଛ)ସ**—ଦେ. ବି.—(ଓ. ଲଙ୍ଗଳା+ସଂ. କୌତ୍ସ)—
Langalā kautsa(chchha)sa କୌତ୍ସ ଗୋତ୍ର ସମ୍ଭୂତ ବୈଦିକ ବ୍ରାହ୍ମଣଙ୍କ ଶ୍ରେଣୀ ବିଶେଷ—A sect of high class Brāhmaṇas of Orissa [ଦୃ— ପୂର୍ବ କାଳରେ ଏହି ବଂଶରେ ଜଣେ ପଣ୍ଡିତ ଥିଲେ । ଓଡ଼ିଶା ରାଜଦ୍ୱାରରେ ତାଙ୍କର ଖ୍ୟାତି ଓ ପ୍ରତିପତ୍ତି ଥିଲା । ଦିନେ ରାଜା ଦିନେ ହେଲାବେଳେ ପଣ୍ଡିତେ ଦେହରୁ ମୁଣ୍ଡରୁ ଲୁଗା କାଢ଼ି ଯାଦୁ ଭୁଣ୍ଡାଉଥିଲେ । ସେହି ଦିନଠାରୁ ରାଜା ତାଙ୍କର ନାମ "ଲଙ୍ଗଳା କୌତ୍ସ" ରଖିଲେ ବୋଲି କିଂବଦନ୍ତୀ ଅଛି । ବର୍ତ୍ତମାନ ଏହା ବଂଶର ବ୍ରାହ୍ମଣ ଓଡ଼ିଶାର ଭିନ୍ନ ଭିନ୍ନ ସ୍ଥାନରେ ବାସ କରୁଛନ୍ତି ।]

**ଲଙ୍ଗଳା ଖଣ୍ଡା**—ଦେ. ବି.—[ସଂ. ନଗ୍ନଖଡ୍ଗ]—କୋଷଦ୍ୱାରା ଅନାବୃତ
**Langaḷā khaṇḍā** ଖଡ୍ଗ—Naked sword; un-
ଖୋଲା ତଲୱାର **नंगी तलवार** sheathed sword.

**ଲଙ୍ଗଳା ଗାଣ୍ଡି**—ଦେ. ବି.—(ଅଶ୍ଲୀଳ ଓ ବ୍ୟଙ୍ଗାର୍ଥ)—ବସ୍ତ୍ରହୀନ ଶରୀର
**Langaḷā gāṇḍi** (ବିଶେଷତଃ ଦେହର ଅଧୋଭାଗ)—
ଖোলাপোদ **नंगा गांड** Naked body.
ଦେ. ବିଣ. ପୁଂ ଓ ସ୍ତ୍ରୀ—(ବ୍ୟଙ୍ଗ୍ୟାର୍ଥ; ଅଶ୍ଲୀଳ)—
୧ । ଯାହାର ଶରୀରର ନିମ୍ନଭାଗ ବସ୍ତ୍ରାବୃତ ନୁହେଁ—
1. Wearing no cloth on the lower body.
୨ । ଲଗ୍ନ ଶରୀର—2. Having the body naked; naked bodied.
[ଲଙ୍ଗଳା ଗାଣ୍ଡିଆ (ପୁଂ)—ଅନ୍ୟ ବିଣ ରୂପ] (ଲଙ୍ଗଳାଗାଣ୍ଡୋଈ—ସ୍ତ୍ରୀ)

**ଲଙ୍ଗଳା ପଣ**—ଦେ. ବି.—୧ । ନିର୍ଲଜ୍ଜ ପଣିଆ—1. Shameless-
**Langaḷā paṅa** ness. ୨ । ନଗ୍ନତା—2. Nakedness.
ন্যাংটাপন **नंगापन** (ଲଙ୍ଗଳାପଣିଆ—ଅନ୍ୟରୂପ)

**ଲଙ୍ଗଳା ମୁକୁଳା**—ଦେ. ବିଣ—(ସଂ ନଗ୍ନ ଓ ମୁକ୍ତ) -୧ । ଯେଉଁ
**Langaḷā mukuḷā** ବ୍ୟକ୍ତିର ଦେହରୁ ଲୁଗା ଖସି ପଡ଼ିଥାଏ ଓ
ମୁଣ୍ଡରେ କେଶ ଫିଟି ଯାଇ ଥାଏ—1. With dishevelled hair and the body shorn of clothes. ୨ । (ଲକ୍ଷଣାର୍ଥ) ଅସ୍ତବ୍ୟସ୍ତ, ବ୍ୟସ୍ତ ସମସ୍ତ; ଯାହାର 'କେଶ ବସନ ଅସମ୍ଭାଳ' ହୋଇଥାଏ—2. (figurative) Too much perturbed and consequently unable to arrange one's loosened or disordered dress and dishevelled hair. [ଦ୍ର—ଅତ୍ୟନ୍ତ ବ୍ୟଗ୍ର ବା ବ୍ୟସ୍ତବ୍ୟସ୍ତ ହେଲେ ମନୁଷ୍ୟ ଆପଣାର ବେଶଭୂଷା ପ୍ରତି ଦୃଷ୍ଟି ରଖି ନ ପାରି ଦଉଡ଼ିବା ବେଳେ, ପିନ୍ଧିଥିବା ଲୁଗା ଖସି ପଡ଼ୁଥାଏ ଓ ବାଳ ମୁକୁଳା ହୋଇଯାଏ । ସେ ଏପରି ବିବ୍ରତ ହୋଇ ପଡ଼େ ଯେ, ଥୟ ହୋଇ ଲୁଗାକୁ ସଜାଡ଼ି କରି ପିନ୍ଧିବା ଓ ମୁଣ୍ଡର ବାଳକୁ ସଂଯତ କରି ଗଣ୍ଠି ପକାଇବାକୁ ତାକୁ ବେଳ ନ ଥାଏ । ଏପରି ଅବସ୍ଥାକୁ ଲଙ୍ଗଳା ମୁକୁଳା ବୋଲାଯାଏ । ଯଥା—ରାତିରେ ମନୁଷ୍ୟ ଘରେ ଶୋଇ ଥିବା ଅବସ୍ଥାରେ ଯେବେ ଡାକ ଶୁଣେ ଯେ, ଘର ପୋଡ଼ିଗଲା, ସେ ଲଙ୍ଗଳା ମୁକୁଳା ହୋଇ ବିଛଣାରୁ ଉଠି ଦଉଡ଼େ । କୌଣସି ଘାତୁକ ଶତ୍ରୁ ମନୁଷ୍ୟକୁ ଆକ୍ରମଣ କରି ଗୋଡ଼ାଇଲେ, ମନୁଷ୍ୟ ପ୍ରାଣଭୟରେ ଶତ୍ରୁମୁଖରୁ ପଳାଇବା ବେଳେ, ତା ଦେହରୁ ଖସି ପଡ଼ୁଥିବା ଲୁଗାକୁ ଓ ମୁକୁଳା ହୋଇ ଥିବା ବାଳକୁ ବାନ୍ଧିବାକୁ ତାକୁ ତର ନ ଥାଏ; ସେହି ଅବସ୍ଥାକୁ ଲଙ୍ଗଳା ମୁକୁଳା ଅବସ୍ଥା ବୋଲାଯାଏ ।]

**ଲଙ୍ଗା**—ଦେ. ବି ଓ ବିଣ—ଲଙ୍ଘା (ଦେଖ)
**Langā** Langhā (See)

**ଲଙ୍ଗିଚୁଡ଼୍**—ବୈଦେ. ବି. (ଇଂ)—(ଭୂଗୋଳ ଓ ବିଜ୍ଞାନ ପରିଭାଷା)—
**Langichuḍ** ଦ୍ରାଘିମା; ପୃଥିବୀଗୋଳକରେ କୌଣସି
লংগিচুড় **लंगिच्यूड** ଦେଶର ଅବସ୍ଥିତିନିର୍ଣ୍ଣୟାର୍ଥ କଳ୍ପିତ କେନ୍ଦ୍ରୀୟ ସ୍ଥାନ—ଲଙ୍ଗିଚୁଡ଼୍) (ଯଥା—ଗ୍ରୀନ୍‌ଉଇଚ୍, ଲଙ୍କା, ଉଜ୍ଜୟିନୀ) ଠାରୁ ପୂର୍ବ ବା ପଶ୍ଚିମଦିଗର ଦୂରତ୍ୱଜ୍ଞାପକ ରେଖା—
Longitude. [ଦ୍ର—ଏହା ଡିଗ୍ରୀ, ମିନିଟ୍ ଓ ସେକେଣ୍ଡଦ୍ୱାରା ଲେଖାଯାଏ । ଯଥା—ନିଉୟର୍କ ସହରର ଲଙ୍ଗଚୁଡ଼୍ ୭୪ ଡିଗ୍ରୀ ପଶ୍ଚିମ । ନିଉୟର୍କ ସହର ଦେଇ ଯାଇଥିବା ଦ୍ରାଘିମା ରେଖା ଓ ଗ୍ରୀନଉଇଚ୍ କେନ୍ଦ୍ର ଭେଦକରି ଯାଇଥିବା ଦ୍ରାଘିମା ରେଖା ମଧ୍ୟରେ ୭୪ ଡିଗ୍ରୀ ବ୍ୟବଧାନ ଅଛି ଓ ନିଉୟର୍କ ଗ୍ରୀନଉଇଚ୍‌ର ପଶ୍ଚିମରେ ଅବସ୍ଥିତ ।]

**ଲଙ୍ଗୁଟି**—ଦେ. ବି—ଲଙ୍ଗୋଟା (ଦେଖ)
**Languṭi** Langoṭā (See)

**ଲଙ୍ଗୁଟିଆ**—ଦେ. ବିଣ—ଲଙ୍ଗୋଟିଆ (ଦେଖ)
**Languṭiā** Longoṭiā (See)

**ଲଙ୍ଗୁଳ**—ସଂ. ବି (ଲନ୍ଗ୍ ଧାତୁ=ଗମନକରିବା+କର୍ତ୍ତୃ. ଳ) - ଲାଙ୍ଗୁଳ
**Languḷa** ଲାଞ୍ଜ; ପୁଚ୍ଛ; ଲାଞ୍ଜ—Tail.

**ଲଙ୍ଗୁଳି**—ଦେ. ବିଣ—ଲଙ୍ଗଳା (ଦେଖ)
**Languḷi** Langaḷa (See)

**ଲଙ୍ଗୁଳିଆ**—ଦେ. ବିଣ—ଲଙ୍ଗଳା (ଦେଖ)
**Languḷiā** Langaḷā (See)

**ଲଙ୍ଗୁଳି ବଇଷମ**—ଦେ. ବି—୧ । ନଗ୍ନ ବୈରାଗୀ; ଯେଉଁ ବୈରାଗୀ
**Languḷi baishama** ବସ୍ତ୍ର ପିନ୍ଧନ୍ତି ନାହିଁ; ନାଗା
(ଲଙ୍ଗୁଳି ବାବାଜି—ଅନ୍ୟରୂପ) (ବୈଷ୍ଣବସମ୍ପ୍ରଦାୟବିଶେଷ)—
ন্যাংটাবাবাজী **नंगाबाबाजी** 1. A naked ascetic; a class of ascetics who go about stark naked. [ଦ୍ର—ଏ ସମ୍ପ୍ରଦାୟର ବୈରାଗୀମାନେ ଦେହରେ କଦାପି ବସ୍ତ୍ର ବ୍ୟବହାର କରନ୍ତି ନାହିଁ । ]
୨ । ନଗ୍ନ କ୍ଷପଣକ; ଲଙ୍ଗଳା ବୌଦ୍ଧ ଯତି—2. A stark naked Buddhist monk.

**ଲଙ୍ଗୁଳୀ**—ଦେ. ବିଣ. ସ୍ତ୍ରୀ—୧ । ଲଙ୍ଗଳାର ସ୍ତ୍ରୀଲିଙ୍ଗ—1. Feminine
**Languḷi** of Langaḷā. ପୁଂ ଓ ସ୍ତ୍ରୀ—୨ । ନଗ୍ନ—
ন্যাংটী **नं(लं)गी** 2. Naked. (ଯଥା—ଲଙ୍ଗୁଳି
**नं(लं)गा** ବଇଷମ ।) ଦେ. ବି. ପୁଂ. ଓ ସ୍ତ୍ରୀ—ନଗ୍ନବ୍ୟକ୍ତି—
ন্যাংটা A stark naked person.

**ଲଙ୍ଗୋଟା(ଟି)**—ବୈଦେ. ବି (ହିନ୍ଦିରୁ ଅନୁକୃତ) (ସଂ. ଲିଙ୍ଗ+
**Langoṭā(ṭi)** ଓଷ୍ଠ)—ଲେଙ୍ଗୁଟି; କୌପୀନ—A strip of
নেংটি কপনী লেংটি, লেঙ্গটি rag tucked down the
**लंगोटा(टी), लंगोट** privities by means of a waist-chain or cord passed round the waist.
[ଦ୍ର—ଏହା ମଲ୍ଲ ଓ ବାବାଜୀମାନେ ବ୍ୟବହାର କରନ୍ତି । ସାଧାରଣତଃ ଲଙ୍ଗୋଟା ଓ କୌପୀନ ଏକ ଅର୍ଥରେ ବ୍ୟବହୃତ ହୁଏ । କିନ୍ତୁ ଲଙ୍ଗୋଟା ଓ କୌପୀନ ମଧ୍ୟରେ କିଞ୍ଚିତ୍ ପ୍ରଭେଦ ଅଛି । କୌପୀନ ୧୨ ହାତ ବା ୨ ହାତ ଲମ୍ବ ଓ ୬ ଅଙ୍ଗୁଳ ବା ୮ ଅଙ୍ଗୁଳ ଓସାରର ଖଣ୍ଡେ କନା । ପ୍ରଥମେ ଅଣ୍ଟାରେ ଖଣ୍ଡେ ଡୋର ଗୁଡ଼ାଇକରି

କରାଯାଏ । ସେହି ଡୋରରେ କୌପୁନର ଗୋଟିଏ ମୁଣ୍ଡକୁ ନାଭିପାଖରେ ଖୋସି ଗୁହ୍ୟଦ୍ୱାରବାଟେ ବୁଲାଇଆଣି, ପିଠିପାଖେ ଉକ୍ତ ଡୋରରେ କୌପୁନର ଅନ୍ୟ ମୁଣ୍ଡକୁ ଖୋସିବାକୁ ହୁଏ । ଏହାକୁ କୌପୁନ ବୋଲାଯାଏ ।

କନ୍ତୁ ଲେଙ୍ଗୁଟି ତ୍ରିଭୁଜାକାର ଖଣ୍ଡିଏ କନା ଓ ଏହାର କୌପୁନ ଆକାରରେ ଖଣ୍ଡିଏ ଲାଞ୍ଜ ଥାଏ । ଉକ୍ତ ତ୍ରିଭୁଜାକାର କନାକୁ ଅଣ୍ଟାରେ ଗୁଡ଼ାଇ ବାନ୍ଧିବାକୁ ହୁଏ । ଏହା ଦେଖିଲେ ଲାଞ୍ଜଟି ଗୁହ୍ୟଦ୍ୱାର ପଛରେ ଓହୋଳିଥାଏ । ତାପରେ ସେହି ଲାଞ୍ଜଟିକୁ ପଛଆଡ଼ୁ ଗୁହ୍ୟଦ୍ୱାରବାଟେ ବୁଲାଇଆଣି, ନାଭିପାଖେ ଖୋସିବାକୁ ହୁଏ, ଏହାକୁ ଲଙ୍ଗୋଥା ବା ଲେଙ୍ଗୁଟି ବୋଲାଯାଏ ।

କୌପୁନକୁ ନାଭିପାଖରୁ ପଛଆଡ଼କୁ ଆଣି ପଛଆଡେ ଖୋସିବାକୁ ହୁଏ । ଲଙ୍ଗୋଥାକୁ ପଛଆଡ଼ୁ ଆଣି ଆଗଆଡେ ନାଭି ପାଖେ ଖୋସିବାକୁ ହୁଏ । ବାବାଜୀମାନେ କୌପୁନ ମାରନ୍ତି ଓ ମଲ୍ଲମାନେ ଲଙ୍ଗୋଥା ବା ଲେଙ୍ଗୁଟି ମାରନ୍ତି । ]

**ଲଙ୍ଗୋଥା(ଟି) ଚଢ଼ା(ଢେ଼)ଇବା**—ଦେ. କ୍ରି—କୌପୁନ ପିନ୍ଧିବା—
Langoṭā(ṭi) chaṛhā(ṛhe)ibā To wear a strip of rag tucked down along the privities.
( ଲଙ୍ଗୋଥା(ଟି)ମାରିବା—ଅନ୍ୟରୂପ )
କପନীমারা, নেংটীমারা लंगोट(टा, टि)चढाना

**ଲଙ୍ଗୋଟିଆ**—ଦେ. ବିଣ. ପୁଂ—୧ । ଯେଉଁ ବ୍ୟକ୍ତି ଲେଙ୍ଗୁଟି ମାରିଥାଏ-
Langoṭiā 1. Wearing a strip of rag along the privities. ୨ । ଗୃହଶୂନ୍ୟ ଓ ବୈରାଗ୍ୟାବଲମ୍ବୀ ( ବ୍ୟକ୍ତି )—2. (a person) Who is homeless and has renounced the world.
নেংটিমারা लंगोटिया

**ଲଙ୍ଘ ( ଧାତୁ )**—ସଂ—୧ । ଉପବାସ କରିବା—1. To fast.
Langh (root) ୨ । ଲମ୍ଫ ଦେବା; ଡେଇଁବା—2. To spring up; to jump. ୩ । (ସମୟ) ଅତିବାହିତ କରିବା—3. To pass (time). ୪ । (ସ୍ଥାନ) ଅତିକ୍ରମ କରିବା—4. To pass over (place). ୫ । ସୀମା ଡେଇଁବା 5. To go beyond the bounds of; to transgress.
( ଲଂଘ, ଲଙ୍ଘ୍ ଧାତୁ—ଅନ୍ୟରୂପ )

**ଲଙ୍ଘକ**—ସଂ. ବିଣ. ପୁଂ (ଲଙ୍ଘ ଧାତୁ+କର୍ତ୍ତୃ. ଅକ)—ଯେ ଲଙ୍ଘନ କରେ (ଲଙ୍ଘନର ଭିନ୍ନ ଭିନ୍ନ ଅର୍ଥ ଦେଖ)—
Langhaka One who does Laghana ( See )
(ଲଙ୍ଘିକା—ସ୍ତ୍ରୀ)

**ଲଙ୍ଘନ**—ସଂ. ବି. (ଲଙ୍ଘ୍ ଧାତୁ—ଉପବାସ କରିବା ଇତ୍ୟାଦି+ଭାବ. ଅନ)
Langhana —୧ । ଉପବାସ; ଭୋଜନରୁ ବିରତି; ଓପାସ—1. Fasting; abstention from food. [ଉ—ଲଙ୍ଘନ ଏକାଦଶୀ ଦିନେ । ଉପେନ୍ଦ୍ର. ପ୍ରେମସୁଧାମୃତ ।] ୨ । ଅତିବାହନ—2. Passing over. ୩ । ସମୟ ଅତିକ୍ରମଣ—3. Exceeding the time limit. ୪ । ଲମ୍ଫନ; ଡେଇଁପଡ଼ିବା—4. Bounding or jumping over; overleaping. ୫ । ସୀମା ଅତିକ୍ରମଣ—5. Overstepping the bounds. ୬ । ଆକ୍ରମଣ—6. Attack. ୭ । ଦଂଶନ—7. Biting. ୮ । ଅଶ୍ୱର ଅତି ଦ୍ରୁତ ଗତି ବିଶେଷ—8. A sort of motion of a horse. ୯ । ଘୋଡ଼ାର ଲୁଦା ଗତି—9. The gallop of a horse ୧୦ । (+କରଣ. ଅନ) ଯେଉଁ ଉପାୟରେ କୌଣସି କାର୍ଯ୍ୟର ଲାଘବ ବା ସୁବିଧା ହୁଏ (ହି. ଶବ୍ଦସାଗର)—10. Means for making a work easier or more convenient. ୧୧ । (ନଦୀଆଦି) ପାରି ହେବା 11. Crossing.
(ଲଂଘନ—ଅନ୍ୟରୂପ)

**ଲଙ୍ଘନକ**—ସଂ. ବିଣ. (ଲଙ୍ଘନ+କ)—ଯାହା ଦ୍ୱାରା ଲଙ୍ଘନ କରାଯାଏ;
Langhanaka (ହି. ଶ)—Used as a means for going across or crossing. ସଂ. ବି—ସେତୁ ପୋଲ (ହି. ଶ)—Bridge.

**ଲଙ୍ଘନ କରିବା**—ଦେ. କ୍ରି—(ସଂ. ଲଙ୍ଘନ)—୧ । ଉପବାସ କରିବ କିଛି ନ ଖାଇବା—1. To observe fast; to abstain from food ୨ । ଅତିକ୍ରମ କରିବା—2. To pass over
Laṅghana karibā
লঙ্ঘন করা लङ्घन करना

**ଲଙ୍ଘନ ଦେବା**—ଦେ. କ୍ରି—ଜ୍ୱର ଆଦି ରୋଗର ଆରମ୍ଭରେ କିଛିଦିନ କାଳ ଉପବାସ କରିବା—To abstain from food (during an illness )
Laṅghana debā
লঙ্ঘন দেওয়া लङ्घन करना(देना)

**ଲଙ୍ଘନୀୟ**—ସଂ. ବିଣ (ଲଙ୍ଘ୍ ଧାତୁ+କର୍ମ ଅନୀୟ)—ଅତିକ୍ରମଣୀୟ
Laṅghaniya — Capable of being transgressed or exceede.

**ଲଙ୍ଘନେଚ୍ଛା**—ସଂ. ବି ( ୬ଷ୍ଠୀ ତତ୍)—ଲଙ୍ଘନ କରିବାର ଇଚ୍ଛା—
Laṅghanechchhā Intention to transgress.
(ଲଙ୍ଘନେଚ୍ଛୁ—ବିଣ)

**ଲଙ୍ଘା**—ଦେ. ବିଣ (ସଂ. ନଗ୍ନ)—୧ । କୋଷରୁ ମୁକ୍ତ ( ଖଣ୍ଡାଦି ); ଉନ୍ମୁକ୍ତ—1. Naked; unsheathed (sword etc ); drawn; open. [ଉ—ହାତରେ ବଙ୍କା ବଙ୍କା ଲଙ୍ଘା ତରବାରି । ଫକୀରମୋହନ ଗଳ୍ପସ୍ୱଳ୍ପ ।] ୨ । ( ସଂ ଲମ୍ବ ) —ଦଣ୍ଡବତ୍ ଲମ୍ବୀକୃତ—2. Straightened. ( ଯଥା—ତଡେ ମାଡ଼ମାରି ଭୂଇଁରେ ଲଙ୍ଘା କରି ଶୁଆଇ ଦେବି । ) ୩ । ( ସଂ ଲଙ୍ଘନ ) ବହୁକାଳ ଉପବାସ ଯୋଗୁଁ ଶୀର୍ଣ୍ଣ; ହାଲିଆ—3. Reduced or weakened through long fasting. ( ଯଥା—ମୁଁ ଉପବାସରେ ଲଙ୍ଘା ହୋଇ ଗଲିଣି । ) ୪ । ଉପବାସୀ—4. Fasting. ଦେ. ବି—୧ । କଙ୍ଗା ( ଦେଖ )—
Langhā
খোলা नंगा
লম্বা लंबा
দুর্বল दुबला
থাড়া উপবাস उपासी

ଫ୍ରକ 1. Nangha ( See ) ୨ । ସ୍ତ୍ରୀମାନଙ୍କର ବେକଠାରୁ ଗୋଡ଼ ପର୍ଯ୍ୟନ୍ତ ଲମ୍ବିଥିବା କୁରୁତା; ଫ୍ରକ୍—
ফরাক 2. Frock; woman's gown.

ଲଙ୍ଘା(ଙ୍ଘେ)ଇବା—ଦେ. କି (ସ. ଲଙ୍ଘ୍ ଧାତୁ)—୧ । ଲଙ୍ଘିବା
Langhā(nghe)ibā ( ଦେଖ )—1. Langhibā (See)
লংঘান ୨ । ଲଙ୍ଘିବା କ୍ରିୟାର ଣିଜନ୍ତରୂପ; ଅନ୍ୟ ଦ୍ୱାରା
লঁঘবানা ଲଙ୍ଘନ କ୍ରିୟା କରାଇବା—2. To cause another to jump, transgress, pass over etc.
( ଉ—ଲଙ୍ଘାଏ ଦୁର୍ଗ ନୋହେ ଜଙ୍ଘାବଳ । କବିସୂର୍ଯ୍ୟ. ସଙ୍ଗୀତ । )

ଲଙ୍ଘା ଉପବାସ—ଦେ. ବି—ସଂପୂର୍ଣ୍ଣ ଉପବାସ; କର୍କଲ ଉପବାସ—
Langhā upabāsa A rigorous fast)
(ଲଙ୍ଘା ଉପାସ—ଅନ୍ୟରୂପ) খাড উপবস নংঘা उपवास

ଲଙ୍ଘା ଉ(ଓ)ରା—ଦେ. ବି—ପାଞ୍ଚ ଖେଣିଆ ଘର ଘରର ସବୁ ତଳ୍ପ ଉରା-
Langhā u(o)rā The lowest long cross beam
घरन of a thatched house having five roof-plates.

ଲଙ୍ଘା ଖଣ୍ଡା—ଦେ. ବି—ଉଲ୍ଲଙ୍ଗ ଅସି; ଖୋଳରୁ ବାହାର କରାଯାଇ
Langhā khandā ଥିବା ଖଡ୍ଗ; ଅନାବୃତ ଖଡ୍ଗ—
খোলা তব(বো)য়াব Unsheathed or naked sword;
नङ्गी तलवार a drawn sword.
[ଲଙ୍ଘା ତରୁ(ଲୁ)ଆର(ରି), ଲଙ୍ଘା ତରବାର—ଅନ୍ୟରୂପ]

ଲଙ୍ଘାଘୋଡ଼ା ପାଇଛା—ଦେ. ବି—୧ । ଉଲ୍ଲଙ୍ଗ ଅସିଧାରୀ ଅଶ୍ୱାରୋହୀ ସ୍ୱାର
Langhāghordā paichhā ପୁରୁଷ—1. A rider
ঘোড়ায় চড়ে আসা holding a drawn sword. ୨ ।
घोडेपर चढेहुए आदमी (ଲକ୍ଷଣାର୍ଥ) ଯେଉଁ ବ୍ୟକ୍ତିର କେହି ଗଳଗ୍ରହ ନାହିଁ ଓ ସେ ସର୍ବଦା ଯେ କୌଣସି କର୍ମ କରିବାକୁ ସ୍ୱାଧୀନ ଓ ପ୍ରସ୍ତୁତ—2. (figurative) A person who is not burdened with encumbrances and who is always ready for action. ୩ । (ଲକ୍ଷଣାର୍ଥ) ଏକାକୀ ଓ ନିଜ ଇଚ୍ଛା ଅନୁସାରେ କାର୍ଯ୍ୟ କରିବାକୁ ସ୍ୱାଧୀନ ବ୍ୟକ୍ତି—3. (figurative) A person who is his own master. ୪ । (ଲକ୍ଷଣାର୍ଥ) ଯେଉଁ ପଥିକ ବା ବ୍ୟକ୍ତିଙ୍କ ସଙ୍ଗେ ଚାକର, ଅନୁଚର ବା ସ୍ତ୍ରୀ, ପରିବାର ବା ସଙ୍ଗୀ ବା ଜିନିଷପତ୍ର ଆଦି କିଛି ନ ଥିବାରୁ ସେ ନିଜ ଇଚ୍ଛାମତେ ବିଚରଣ କରିବାକୁ ସମର୍ଥ—4. (figurative) A traveller or person who is free to travel, having no encumbrances or retinue or dependant or companion or luggage.

ଲଙ୍ଘା ପାଇକ—ଦେ. ବି—ଉଲ୍ଲଙ୍ଗ ଅସିଧାରୀ ପଦାତିକ ଯୋଦ୍ଧା—
Langhā pāika A foot soldier with a drawn
তবোয়ারিধরা পাইক नङ्गीतलवारवाला सैनिक sword.

ଲଙ୍ଘା ମାରିବା—ଦେ. କି—ସମକୋଣରେ ମିଳିତ ଦୁଇ ଘରର ଲଂଘାରୁ
Langhā māribā ବା ସନ୍ଧିକୁ ଛଣ ଆଦି ଦ୍ୱାରା ଉତ୍ତମରୂପେ ଛୁଆଣି
मथौट मारना କରିବା (ଯେପରିକି, ଘରର ସେହି ସନ୍ଧି ଜାଗାରେ ବର୍ଷାପାଣି ଜମି ରହିବ ନାହିଁ କିମ୍ବା ତଳକୁ ଗଳିବ ନାହିଁ)—
To stuff with straw the langhā or concave angle of a right angled thatch (so that it will not leak).

ଲଙ୍ଘା ହତିଆର—ଦେ. ବି—କୋଷରୁ ଉନ୍ମୁକ୍ତ ଅସ୍ତ୍ର—
Langhā hatiāra An unsheathed or naked
খোলা হাতিআর नंगाहथियार weapon.

ଲଙ୍ଘିତ—ସ. ବିଣ—(ଲଙ୍ଘ ଧାତୁ=ଅତିକ୍ରମ କରିବା ଇତ୍ୟାଦି +
Langhita କର୍ମ. ତ)—ଅତିକ୍ରାନ୍ତ—Transgressed; crossed.

ଲଙ୍ଘିବା—ଦେ. (ପଦ୍ୟ) କି (ସ. ଲଙ୍ଘ୍ ଧାତୁ)—୧ । ଲଂଘନ କରିବା,
Langhibā ଅତିକ୍ରମ କରିବା—1. To pass over. [ଉ—
লংঘা ବିଧାତା ଯେଉଁ ମାର୍ଗ ବିଧାନ କରୁଛି, ତାହା ଲଙ୍ଘିବାକୁ ଶକତି
नांघना କାର ଅଛି । କୃଷ୍ଣସିଂହ. ମହାଭାରତ. ଆଦି ।] ୨ । ଉପର ବାଟେ ଡେଇଁଯିବା—2. To leap over; to jump over. ୩ । (ସମସ୍ତର ସୀମା) ଅତିବାହିତ କରିବା—3. To exceed the [illegible] limit. ୪ । ସୀମା ଟପିବା—4. To exceed or transgress limits. ୫ । (ଆଦେଶ ବା ନିୟମ) ପାଳନ ନ କରିବା ବା ଭଙ୍ଗ କରିବା—5. To infringe any rule or order. ୬ । ପାର ହେବା—6. To cross. ୭ । ଆଦେଶ ବା ଆଜ୍ଞା ଲଙ୍ଘନ କରିବା—7. To disobey an order. [ଉ—ଦୋଷ ମୁଁ କରିଅଛି ଲଂଘିଲି ଯେବେ କିଛି, ତୋତେ ପଣ୍ଡିତା ଅଗ୍ରଗାରକୁ ରେ । କବିସୂର୍ଯ୍ୟ. ସଙ୍ଗୀତ ।] ୮ । ଉପବାସ କରିବା—8. To fast. ୯ । ହେଳାଦର କରିବା; ଅବଜ୍ଞା କରିବା—9. To disregard. [ଉ—ଲଂଘୁଥାନ୍ତି ତାହାଙ୍କୁ ସମ୍ଭବ ଦେଇ । କୃଷ୍ଣ ସିଂହ. ମହାଭାରତ. ବନ ।] ୧୦ । ଦଂଶନ କରିବା—10. To bite. ୧୧ । କଥା ନ ମାନିବା 11. Not to act according to one's express desire. (ଉ—ଦୁର୍ଯ୍ୟୋଧନ ବଶରେ ଲଙ୍ଘିଲ ଯା ତୁମ୍ଭଙ୍କ ତହିଁର ଫଳ କିଛି ଖଣ୍ଡିଲା ଅମ୍ଭଙ୍କୁ । କୃଷ୍ଣସିଂହ. ମହାଭାରତ. ବନ ।] ୧୨ । ଆକ୍ରମଣ କରିବା—12. To attack. ୧୩ । ହଇରାଣ କରିବା—13. To put one to trouble. (ଉ—ଲଙ୍ଘେ ଅଙ୍ଗେ ଥିବା କୃପାସିନ୍ଧୁ, ଲକ୍ଷ୍ମୀ ଅଛ କେତେ ହେଲେହେଁ ବନ୍ଧୁ । କବିସୂର୍ଯ୍ୟ. କଳୋଗ୍ର-ଚମ୍ପୂ ଲ ଗୀତ । ]

ଲଚ୍‌କା(କେ)ଇବା—ଦେ, କି—ନଚକାଇବା—
Lach-kā(ke)ibā Nachakāibā, (See)
নাচান लचकाना

ଲଚକିବା—ଦେ. କି—ନଚକିବା ( ଦେଖ )
Lachkibā Nachakibā ( See )
নাচা लचकना

ଲଚ୍‌ଲଚ୍—ଦେ. ଅ—ନଚନଚ ( ଦେଖ )
Lach-lach Nachanacha (See)
लचलच **लचलच**

ଲଛ୍ (ଧାତୁ)—ସଂ—ଲକ୍ଷ୍ୟ କରିବା; ଦେଖିବା—
Lachh ( root ) To mark; to see )

ଲଛ୍ମନ୍—ଦେ. ବି. ପୁଂ ( ଲକ୍ଷ୍ମଣ; ଲକ୍ଷ୍ମଣ ଶବ୍ଦର ହିନ୍ଦୀ ଉଚ୍ଚାରଣ )—
Lachh-man ୧ । ଲକ୍ଷ୍ମଣ; ରାମଚନ୍ଦ୍ରଙ୍କ କନିଷ୍ଠ ଭ୍ରାତା—
लछमन 1. Lakshmaṇa, a younger brother of
**लछमन** Rāmachandra. ୨ । ଲୋକଙ୍କୁ ଦିଆଯିବା ନାମ—
2. A name given to males. [ଦ୍ର—ଏ ନାମ ପଶ୍ଚିମା, ମାରବାଡ଼ୀ ଓ ରାଜପୁତ ଆଦିଙ୍କ ମଧ୍ୟରେ ବେଶି ଚଳେ ।]

ଲଛ୍ମନ୍ ଝୁ(ଝୋ)ଲା—ଦେ ବି—ହରିଦ୍ୱାରଠାରୁ ବଦରିକାଶ୍ରମକୁ ଯିବା
Lachh-man jhu(jho)lā ପଥରେ ଗଙ୍ଗା ନଦୀ ଉପରେ ଥିବା
लछमन झोला ଶିକୁଳିର ଦୋଳାୟମାନ ପୋଲ—The
**लछमन झूला** chain bridge on the Ganges between Haridwar and Badrinath.
[ଦ୍ର—ଲକ୍ଷ୍ମଣଙ୍କ ନାମାନୁସାରେ ଝୋଲାର ନାମ ଲଛମନ ଝୋଲା ହୋଇଅଛି । (ମଦନମୋହନ ତୀର୍ଥ ଦର୍ଶନ)
ଏଠାରେ ଗଙ୍ଗା ନଦୀର ଶଯ୍ୟା ଅତି ଗଭୀର ଓ ଏଠାରେ ଗଙ୍ଗାକୁ ପାର ହେବା ପାଇଁ ପୂର୍ବେ ଲୌହ ଶୃଙ୍ଖଳର ଯେଉଁ ପୋଲ ଥିଲା, ତହିଁରେ ଯାତ୍ରୀମାନେ ଗୋଟିଏ ଶିକୁଳିକୁ ଧରି ଧରି ଆଉ ଗୋଟିଏ ଶିକୁଳି ଉପରେ ପାଦ ଦେଇ ଅତି ସାବଧାନ ହୋଇ ଗଙ୍ଗାକୁ ପାର ହେଉଥିଲେ । ପାଦ ତଳେ ବହୁ ଶତ ହସ୍ତ ଗଭୀର ନଦୀ ଶଯ୍ୟା, ମୁଣ୍ଡ ଉପରେ ବହୁ ଶତ ହସ୍ତ ଉଚ୍ଚ ପର୍ବତମାଳା; ସେହି ଶିକୁଳି ଉପରେ ଝୁଲି ଗଙ୍ଗାକୁ ପାର ହେବା ସମୟରେ ଗୋଡ଼ତଳକୁ ଚାହିଁଲେ ଗଭୀର ନଦୀଶଯ୍ୟା । ତାହାକୁ ଦେଖିଲାକ୍ଷଣି ମଥା ଭୁମିବ ଓ ସେହି ଭ୍ରମରେ ଯାତ୍ରୀର ଗୋଡ଼ ଖସିଯିବ, ଏହି ଆଶଙ୍କାରେ ଯାତ୍ରୀମାନେ ତଳ ଆଡ଼କୁ ନ ଚାହିଁ, ଭଗବାନଙ୍କ ନାମ ସ୍ମରଣ କରି ସେ ପୋଲକୁ ପାର ହେଉଥିଲେ । ବର୍ତ୍ତମାନ ଇଂରାଜ ଗଭର୍ଣ୍ଣମେଣ୍ଟ ସେଠାରେ ଗୋଟିଏ ସୁଗମ୍ୟ ଝୁଲା ପୋଲ ପ୍ରସ୍ତୁତ କରି ଦେଇ ଅଛନ୍ତି ।]

ଲଛ୍ମନ୍ ଭୋଜି—ପ୍ରାଦେ· (ଗଞ୍ଜାମ) ବି—ଗ୍ରାମର ଭୋଜି ବିଶେଷ--
Lachh-man bhoji Name of a picnic of villagers.

ଲଛମନିଆ—ଦେ. ବି—୧ । ଲଛ୍ମନ୍ ନାମକ ବ୍ୟକ୍ତିର ଡାକ ନାମ—
Lachhamaniā 1. Name for calling Lachh-man.
ଲଛ, ଲଛି, ଲଛିଆ } ଅନ୍ୟରୂପ
ଲଛୁ, ଲଛୁଆ }
୨ । (ସଂ. ଲକ୍ଷ୍ମଣାୟ) ବିଡ଼ାଲାକ୍ଷି ରତ୍ନ; ରତ୍ନ ବିଶେଷ—2. The cat's eye (gem).
लछमनिया **लछमनिया**

ଲଛମା(ମୀ)—ଦେ. ବି. ( ସଂ. ଲକ୍ଷ୍ମୀର ହିନ୍ଦୁସ୍ଥାନୀ ଉଚ୍ଚାରଣ )—
Lachhamā(mī) ୧। ସ୍ୱର୍ଗୀୟ ଫକୀରମୋହନଙ୍କ କୃତ ଉପନ୍ୟାସ
[ଲଛମା(ମୀ)—ଅନ୍ୟରୂପ] ବିଶେଷ—1. The title of a
लछमी novel by Phakiramohana and name of
**लछमी** its heroine. ୨ । ସ୍ତ୍ରୀମାନଙ୍କୁ ଦିଆଯିବା ନାମ—
2. A name given to females.

ଲଛମୀ ନାରାୟଣ--ଦେ. ବି ପୁଂ (ସଂ. ଲକ୍ଷ୍ମୀ ନାରାୟଣର ହିନ୍ଦୁସ୍ଥାନୀ
Lachhamī nārāyaṇa ଉଚ୍ଚାରଣ)—ପଶ୍ଚିମାଙ୍କ ନାମ—
लक्ष्मी नारायण Name given to upcountry males.
**लछमी नारायण**

ଲଛା—ଦେ. ବି. ( ସଂ. ଲକ୍ଷ )—୧ । ତୁଳନା; ଉପମା—1. Com-
Lachhā parison. ୨। ସାଦୃଶ୍ୟ—2. Similarity. ୩ ।
तुलना ନମୁନା; ମଚ୍ଛ—3· Sample. ୪ । ଲଛିବା; ବଳଦ
लच्छ ଆଦିଙ୍କ ଦେହରେ ତପ୍ତ ଲୌହ ଶଳାକା ଦ୍ୱାରା ଦାଗ
नमुना **मिसाल, बानगी** ଦେବା—4. Searing the bodies
दागा **लक्षा** of cattle with hot iron. ୫ । ବନ୍ଧୁକ
बंधुक मारा ମାରିବା—5. Shooting. ୬ । ବନ୍ଧୁକ ଦ୍ୱାରା ଲକ୍ଷ
**दागना** କରିବା—6. Aiming with a gun at a
लक्ष करा target. ୭ । (ପାନକରଙ୍ଗା ଭାଷା) ପାନକୁ ବିକ୍ରୟ ପାଇଁ
गोछा **लच्छा** ସଜାଇ ରଖିବା କିମ୍ବା—7. Sorting of betel leaves for sale. ୮। (ସଂ. ଗୁଚ୍ଛ) ସୂତା ଆଦିର ବିଡ଼ା—
8. Bundle (of thread). ୮ । ଦୁଧ ଉପରେ ପଡ଼ିବା ସର—9 Cream. ପ୍ରାଦେ· (ଗଞ୍ଜାମ) ବି—ମେଷ (ବୈଶାଖ) ସଂକ୍ରାନ୍ତି ଦିନ ଶିଶୁମାନଙ୍କ ପେଟରେ ତତୁ ଦେବା—Cauterising the belly of children on the 1st day of Baiśākha. [ଦ୍ର—ତତ୍ତୁ କାଠିକୁ ନିଆଁରେ ପୋଡ଼ି ଶିଶୁମାନଙ୍କ ପେଟରେ ଲଛା ଦେଲେ ( ତତୁ ଦେଲେ ) ପେଟରେ ଶିରା ଦୋଷ ଓ ନାଡ଼ୀ ଦୋଷ ଦେଖାଯାଏ ନାହିଁ । ଦୈନିକ ଆଶା—
मतन ୧୬।୪।୩୪ ] ଦେ. ବିଣ—ସଦୃଶ—Similar.
**बराबर** (ଯଥା—ଏ ଆମ୍ବ ଲଛା ଆମ୍ବ ବଜାରରେ ମିଳିବ ନାହିଁ ।)
ପ୍ରାଦେ. (ଗଞ୍ଜାମ) ବିଣ —ମେଷ ସଂକ୍ରାନ୍ତି ଦିନ ପେଟରେ ତତୁ ଦିଆ ଯାଇଥିବା (ଶିଶୁ)—Cauterized (child) on the first day of the month of Mesha;
(ତୁ—ଲଛା ପିଲା ବଡ଼ ତଗ)

ଲଛା(ଛେ)ଇବା—ଦେ. କ୍ରି—୧ । (ଲଛିବା କ୍ରିୟାର ଣିଜନ୍ତ ରୂପ) ଅନ୍ୟ
Lachhā(chhe)ibā ଦ୍ୱାରା ଲଛିବା କର୍ମ କରାଇବା—1. To
तुलना कवान cause to be compared. ୨ । ଲଛିବା-
**लच्छ करान** କ୍ରିୟାର ଣିଜନ୍ତ ରୂପ; ଲଛିବା ( ଦେଖ )
दागान **दगवाना** 2 Causative of Lāchhibā (See)

ଲଛା ଲଛି—ଦେ. ବି. ( ବହୁବଚନ ବା ବହୁ କ୍ରିୟା ସୂଚକ )—
Lachhā lachhi ୧ । ଲଛିବା କ୍ରିୟା ( ଦେଖ )—
तुलना **लच्छालच्छी** 1. The act of Lachhibā (See)
दागादागि ୨। ଲଛିବା କ୍ରିୟା ( ଦେଖ )—2 The act of
**दागादागी** Lāchhibā (See)

ଲଛି(ଛି)ବା—ଦେ. କ୍ରି. (ସଂ. ଲକ୍ଷ୍ ଧାତୁ; ପ୍ରା. ଲଚ୍ଛ ଧାତୁ, ପରବର୍ତ୍ତୀ
Lachi(chchhi)bā ସଂ. ଲକ୍ଷ୍ ଧାତୁ)—୧ । ତୁଳନା କରିବା—
तुलना करा 1. To compare. ୨ । ଉପଲକ୍ଷ ଦେବା—

ଜଲ୍‌ନା 2 To allude to; to cite. ୩। ଅନୁମାନ କରିବା- লক্ষ্য করে বলা हवाला देना 3. To guess; to infer. অনুমান করা अटकल करना

**ଲଛି(ଛି, ଛୁ, ଛୁ)**—ଦେ. ବି. ପୁଂ (ଆଦରାର୍ଥକ)--ଲଛମନ ଓ ଲଛମୀ Lachhi(chchhi, chchhu, chhu) ନାରାୟଣ ନାମକ লচ্ছু ବ୍ୟକ୍ତିଙ୍କ ଡାକ ନାମ—Names for calling लच्छी(च्छू) Lachhamana and Lachhami Nārāyaṇa [ଲଛି(ଛି)ଆ, ଲଛୁ(ଛୁ)ଆ—ଅନାଦରାର୍ଥକ ରୂପ]

**ଲଛିମାକୁ ଗଛିବା(ମା)**—ଦେ. କି—(ଉଗ)—୧। କୌଣସି ବିଷୟକୁ Lachhi māku gachhibā(mā) ଅନ୍ୟ ଅସଦୃଶ ବିଷୟ যেখানে যা সেখানে তা ସଙ୍ଗେ ତୁଳନା କରିବା—1. To जहाँ जो वहाँ सो compare two things which do not tally with each other. ୨। ମିଛକଥାକୁ ସତ୍ୟ ରୂପେ ପ୍ରତୀୟମାନ କରାଇଲା ପରି କହିବା· 2. To describe a false thing so as it appears to be true. ୩। ଦୁଇଟି ବସ୍ତୁର ତୁଳନାବାର ସାଦୃଶ୍ୟ ଦେଖାଇବା—3. To succeed in making two things seem equal or similar to each other ୪। ଦୁଇଟି ବସ୍ତୁକୁ ପରସ୍ପର ସହିତ ମେଳ କରାଇ ଦେବା—4. To cause two things to coincide with one another ୫। କୌଣସି ସ୍ଥାନରେ ଉଚିତ ଉପଯୁକ୍ତ ବସ୍ତୁକୁ ଖଞ୍ଜିଦେବା—5. To put a suitable thing at a suitable place.

[ଦ୍ର—ଏକ ବ୍ୟକ୍ତିର ଅଳଙ୍କାରମାନ ଆଉ ଜଣକୁ ପକାଇ, ତାକୁ ଉତ୍ତମରୂପେ ସଜ୍ଜିତ କରି ଦେଲେ, ଯେବେ ସେ ବେଶଭୂଷା ଠିକ୍‌ରୂପେ ମେଳ ଖାଇଯାଏ; ତେବେ ଲୋକେ କହନ୍ତି—"ଲଛିମାକୁ ଗଛିମା" ହୋଇଛି।]

**ଲଛୀ(ଛୀ)**—ଦେ. ବି. ସ୍ତ୍ରୀ—(ସଂ. ଲକ୍ଷ୍ମୀ)—ଲଛମୀ ନାମ୍ନୀ ସ୍ତ୍ରୀର ଡାକ Lachhī(chchhī) ନାମ—Name for calling লক্‌খী लछी Lachhamī.

**ଲଛେ(ଛେ)ଦାର**—ଦେ. ବିଣ—(ହିନ୍ଦୁ ଅନୁକୃତ)—ସର ପଡ଼ିଥିବା Lachhe(chchhe)dār (ଖାଦ୍ୟ)—(Food) which is লচ্ছেদার लछेदार covered with a layer of cream. [ଦ୍ର—କଟକରେ ରାବିଡ଼ି ବିକି କରିବାକୁ ଅଣିବା ଗଉଡ଼ମାନେ ବଜାରରେ ବୁଲି ଡାକ ଦିଅନ୍ତି—"ଲେ ରବଡ଼ୀ ଲଚ୍ଛେଦାର୍।]

**ଲଜ୍ (ଧାତୁ)**—ସ.—୧। ଲଜ୍ଜ୍ ଧାତୁ (ଦେଖ) Laj (root) Lajj (root) (See) ୨। ନିନ୍ଦା କରିବା—2. To blame.

**ଲଜ(ବ)ଞ୍ଚୁ(ଞ୍ଚୋ, ଞ୍ଜୁ, ଞ୍ଜୋ) ସ୍**—ବୈଦେ.ବି.—(ଇଂ) ଲୋଜେଞ୍ଜେସ୍; Laja(ba)ñchu, ñcho,ñju,(ñjo)s ଭୁଲ,ଅ. ଲୌଜ୍— ବହୁବର୍ଣ୍ଣ ରଞ୍ଜିତ ଶିଶୁମନୋହର ଚକୋଲେଟ୍ ବା ବରଫି ଆକାରର ଚତୁଷ୍କୋଣ ମିଠାଇ—ଶିଶୁମନୋହର ଚକ ମିଠେଇ—Lozenges.

**ଲଜ(ଜ୍ଜ)ତ୍**—ବୈଦେ. ବିଣ.—(ହିନ୍ଦୁ ଅନୁକୃତ)—(ଅ. ଲଜ୍ଜତ— Laj(jja)at ରସ लज्जत ସ୍ୱାଦ, ମଜା; ଭୁଲ· ସଂ ରୁଚ୍ ଧାତୁ— ୧। ସୁସ୍ୱାଦୁ—1. Tasteful. ୨। ମୁଖରୋଚକ— 2. Delicious. ୩। ରସଯୁକ୍ତ, ସରସ—3 Juicy. ୪। ଅଠାଳିଆ—4. Gummy; sticky. ୫। ଆର୍ଦ୍ର 5. Moist. ଦେ. ବି.—୧। ସୁସ୍ୱାଦ, ମୁଖରୋଚକତା 1. Good taste; deliciousness. ୨। ଅଠା 2 Gum. ୩। ଆର୍ଦ୍ରତା—3. Moisture ୪। ରସ- 4. Juice; sap.

**ଲଜଦକ୍(ଗ୍)**—ବୈଦେ· ବି—ନଜଦକ୍ (ଦେଖ) Lajadik(g) Najadik (See)

**ଲଜର (ଇତ୍ୟାଦ)**—ପ୍ରାଦେ. (କଟକ ସହର) ବି—ନଜର (ଦେଖ) Lajara (etc) Najara (etc) (See)

**ଲଜିକ୍**—ବୈଦେ. ବି.—(ଇଂ)—ନ୍ୟାୟଶାସ୍ତ୍ର—Science of logic. Lajik ପ୍ରାଦେ. (କଟକ ସହର) ବୈଦେ. ଅ· ନଜିକ୍ (ଦେଖ) Najik. (See)

**ଲଜିଙ୍ଗ୍**—ବୈଦେ. ବି.—(ଇ')—ବସା ଘର— Lajing Lodgings.

**ଲଜିଙ୍ଗ୍ ହାଉସ୍**—ବୈଦେ ବି—(ଇଂ.)—ତୀର୍ଥମାନଙ୍କରେ ଯାତ୍ରୀ- Lajing hāus ମାନଙ୍କର ଭଡ଼ାଦେଇ ରହିବାପାଇଁ ଗଭର୍ଣ୍ଣମେଣ୍ଟଙ୍କ ଉତ୍ତ୍ୱାବଧାନରେ ପରିଚାଳିତ ଭଡ଼ାଘର— Lodging houses (licensed by the Government for accomodating pilgrims in religious centres.

[ଦ୍ର— ପୁରୀରେ ଲଜିଙ୍ଗ୍‌ହାଉସ୍‌ମାନଙ୍କରୁ ସରକାର ଯେଉଁ ଶୁଲ୍କଆଦାୟ କରନ୍ତି, ତଦ୍ଦ୍ୱାରା ଗୋଟିଏ ସ୍ୱତନ୍ତ୍ର ପାଣ୍ଠି (ଲଜିଙ୍ଗ୍ ହାଉସ୍ ଫଣ୍ଡ୍,) ପ୍ରତିଷ୍ଠା କରି, ସେହି ପାଣ୍ଠିରୁ ପୁରୀ ସହରରେ ଯାତ୍ରୀମାନଙ୍କ ସ୍ୱାସ୍ଥ୍ୟରକ୍ଷା ସମ୍ପର୍କୀୟ ନାନା କାର୍ଯ୍ୟ କରନ୍ତି। ଏହି ଲଜିଙ୍ଗ୍‌ହାଉସ୍‌ମାନଙ୍କ ପରିଚାଳନାର୍ଥ ସରକାର ଗୋଟିଏ ଆଇନ୍ (ପୁରୀ ଲଜିଙ୍ଗ୍ ହାଉସ୍ ଆକ୍ଟ—୧୮୭୧ ସାଲର ବଙ୍ଗୀୟ ୪ ଆଇନ୍) ପ୍ରଣୟନ କରିଛନ୍ତି। ସେହି ଆଇନ ଅନୁସାରେ ଲଜିଙ୍ଗ୍ ହାଉସ୍‌ର ମାଲିକମାନେ ସରକାରଙ୍କଠାରୁ, ସେମାନଙ୍କ ଲଜିଙ୍ଗ୍ ହାଉସ୍‌କୁ ଲାଇସନ୍ (ଇଂ· ଲାଇସେନ୍ସ୍ ବା ପାଶ୍) କରାଇ ସେଥିନିମନ୍ତେ ଲାଇସନ୍ ଫିଶ୍ (ଇଂ. ଲାଇସେନ୍ସ୍ ଫିସ୍) ଦିଅନ୍ତି। ସରକାରଙ୍କ ପ୍ରଚଳିତ ନିୟମମାନ ଭଙ୍ଗକଲେ ଲଜିଙ୍ଗ୍ ହାଉସ୍‌ର ଅଧକ୍ଷ ଓ ଜମାଦାର୍ ବ୍ୟକ୍ତିମାନେ ଅର୍ଥଦଣ୍ଡରେ ଦଣ୍ଡିତ ହୁଅନ୍ତି। ଏହି "ଲଜିଙ୍ଗ୍‌ହାଉସ୍" ସମ୍ପର୍କରେ କେତେଗୁଡ଼ିଏ ଇଂରାଜୀ ଶବ୍ଦ ଓଡ଼ିଆ ଭାଷାରେ ପ୍ରଚଳିତ କରାଇଅଛି। ଯଥା—ଲାଇସେନସ, ଫିସ, ପାସ୍, ଫଣ୍ଡ।]

**ଲଜର୍(ର)**—ବୈଦେ. ବି॰ ପ୍ରାଦେ. (କଟକ ସହର)—ନଜର୍ (ଦେଖ)
Lajir(ri) Najir ( See )

**ଲଜ୍ଜ( ସ୍ ଜ୍ ) (ଧାତୁ)**—ସ. ୧ । ଲଜ୍ଜିତ ହେବା—
Lajja(s-j) (root) 1 To be ashamed.
୨ । ସଙ୍କୋଚବୋଧ କରିବା—2. To blush (Apte).

**ଲଜ୍ଜମାନ**—ସ. ବିଣ. ପୁଂ—(ଲଜ୍ଜ ଧାତୁ=ଲଜ୍ଜିତ ହେବା+କର୍ତ୍ତୃ. ଆନ)
Lajjamāna ୧ । ଲଜ୍ଜାଯୁକ୍ତ; ଲଜ୍ଜିତ—1, Ashamed.
[ଲଜ୍ଜମାନା—ସ୍ତ୍ରୀ] ୨ । ଲଜ୍ଜାଶୀଳ—2, Bashful; modest'

**ଲଜ୍ଜା**—ସ. ବି. ସ୍ତ୍ରୀ—(ଲସ୍ଜ୍ ଧାତୁ=ଲଜ୍ଜିତ ହେବା+ଭାବ ଅ+ସ୍ତ୍ରୀ.
Lajjā ଆ)—୧ । ହୃଦୟର କୋମଳ ବୃତ୍ତିବିଶେଷ; ଯେଉଁ ବୃତ୍ତି
[ଲଜ୍ଜା ଶବ୍ଦର ଅନ୍ୟ ସ ନାମ— ଯୋଗୁଁ ଅନ୍ୟ ବ୍ୟକ୍ତିର ସମକ୍ଷରେ
ଘୃଣା, ହ୍ରୀ, ବ୍ରୀଡ଼ା, ମନ୍ଦାସ୍ୟ(ସ) ।] ବା ଜ୍ଞାତସାରରେ କେତେକ କାର୍ଯ୍ୟ
କରିବାକୁ ମନୁଷ୍ୟର ମନରେ ସଙ୍କୋଚ ଉପସ୍ଥିତ ହୁଏ; ଅନୁଚିତ କାର୍ଯ୍ୟକଳାପର ପର ପରିଜ୍ଞାନ ଭୟ—1, Shame.
୨ । ବ୍ରୀଡ଼ା; କୁଣ୍ଠା; ସଙ୍କୋଚ—2. Modesty; coyness, bashfulness. ୩ । ( ବୈଦ୍ୟକ ) ଲଜ୍ଜାଳୁ ଲତା ( ଦେଖ )—3. Lajjālu latā ( See )
୪ । କୌଣସି ଅନୁଚିତ କର୍ମଚାରୀ ପ୍ରତି ଲୋକଙ୍କର ଅବମାନନାଯୁକ୍ତ ବ୍ୟବହାର—4. Humiliation.
[ଦ୍ର—ଏଥିର ଅପଭ୍ରଂଶ—ଲାଜ, ଲଜ୍ୟା, ନାଜ, ନଜ୍ୟା, ନାଜ୍ୟା, ଲାଜ୍ୟା । ଲଜ୍ଜା, କୁଣ୍ଠା, ବ୍ରୀଡ଼ା, ସଙ୍କୋଚ ଏକାର୍ଥବାଚକ । କିନ୍ତୁ ବ୍ୟବହାରରେ ଏହା ବିଶେଷ ବିଶେଷ ଭାବବ୍ୟଞ୍ଜିତ ହୁଏ ।

ଅନୁଚିତ କାର୍ଯ୍ୟ କଲେ ଲୋକେ ଏହା ଜାଣିଲେ ମୋତେ ନିନ୍ଦା କରିବେ ବୋଲି ମନରେ ଯେଉଁ ଭୟ ହୁଏ, ତାହାକୁ 'ଲଜ୍ଜା' ବୋଲାଯାଏ । ଅନୁଚିତ କାର୍ଯ୍ୟ କରିବାକୁ ମନରେ ଯେଉଁ ଅନିଚ୍ଛା ଜାତ ହୁଏ, ତାକୁ 'କୁଣ୍ଠା' ବୋଲାଯାଏ । ଗୁରୁଜନମାନଙ୍କ ନିକଟରେ ପ୍ରକାଶ୍ୟରେ ମୁହଁ ଦେଖାଇବା ବା କଥା କହିବା ପାଇଁ ବିନୟ ଭାବ ମିଶ୍ରିତ ସଙ୍କୋଚକୁ ବ୍ରୀଡ଼ା ବୋଲାଯାଏ । କାଳେ ଲୋକେ ଜାଣିଲେ ଏହା ଅନୁମୋଦନ କରିବେ ନାହିଁ ଏଥିଯୋଗୁଁ କୌଣସି ଅନୁଚିତ କାର୍ଯ୍ୟ କରିବାକୁ ମନରେ ଯେଉଁ ଇତସ୍ତତଃ ଭାବ ଉପସ୍ଥିତ ହୁଏ, ତାକୁ ସଙ୍କୋଚ ବୋଲାଯାଏ—କ୍ଷୀରେନ୍ଦ୍ର ।]

**ଲଜ୍ଜାକର**—ସଂ. ବିଣ—ଲଜ୍ଜାଜନକ ( ଦେଖ )
Lajjākara Lajjājanaka ( See )
[ଲଜ୍ଜାକରୀ(ରୀ)—ସ୍ତ୍ରୀ]

**ଲଜ୍ଜା କରିବା**—ଦେ॰ କ୍ରି—ଲଜ୍ଜା ବୋଧ କରିବା—To have a
Lajjā karibā feeling of shame; to feel shy.
ଲଜ୍ଜା କରା ଲଜ୍ଜା କରନା

**ଲଜ୍ଜାକୁଳ**—ସ. ବିଣ. ପୁଂ ( ୩ୟା ତତ୍; ଲଜ୍ଜା+ଆକୁଳ )—
Lajjākula ୧ । ଲଜ୍ଜିତ—1. Ashamed. ୨ । ଲଜ୍ଜାଳୁ;
(ଲଜ୍ଜାକୁଳିତ—ଅନ୍ୟରୂପ) ଲାଜକୁଳା—2, Bashful; modest;
(ଲଜ୍ଜାକୁଳା, ଲଜ୍ଜାକୁଳିତା—ସ୍ତ୍ରୀ) shy.

**ଲଜ୍ଜାକୁଳୀ**—ଦେ. ବି—ଲାଜକୁଳୀ ଲତା ଓ ଫୁଲ—Mimosa
Lajjākuli Pudica; a sensitive plant.
ଲାଜୁକ (ଦ୍ର—ଚମ୍ପା ନାଗେଶ୍ୱର ମଦନା ମାଧବୀ
ଲଜାଲୁ ସୁଖଭଦ୍ରା ଲଜ୍ଜାକୁଳୀ ଗୋ
ପ୍ରାଚୀ. ରହସ୍ୟମଞ୍ଜରୀ ।)

**ଲଜ୍ଜା ଜନକ**—ସ. ବିଣ. ( ଉପପଦ ତତ୍ ପୁରୁଷ; ଲଜ୍ଜା+ଜନକ )—
Lajjā janaka ଯାହା ଲଜ୍ଜା ଜନ୍ମାଏ; ଯେଉଁ କାର୍ଯ୍ୟ ଯୋଗୁଁ
ମନୁଷ୍ୟ ଲଜ୍ଜିତ ହୁଏ—Shameful (act).

**ଲଜ୍ଜା ଜନିତ**—ସ.ବିଣ. (୩ୟା ତତ୍; ଲଜ୍ଜା+ଜନିତ)—ଲଜ୍ଜାରୁ ଜାତ ବା
Lajjā janita ଉଦ୍ଭୂତ—Born of shame or modesty;
due to shyness.

**ଲଜ୍ଜା ତ୍ୟାଗ**—ସ. ବି. (୬ଷ୍ଠୀ ତତ୍; ଲଜ୍ଜା+ତ୍ୟାଗ)—ନିର୍ଲଜ୍ଜ ହେବା;
Lajjā tyāga ମନରୁ ଲଜ୍ଜାଭାବକୁ ଛାଡ଼ିବା—Casting
(ଲଜ୍ଜ୍ୟା ପରିତ୍ୟାଗ—ଅନ୍ୟରୂପ) off of the feeling of
shame or modesty.

**ଲଜ୍ଜା ତ୍ୟାଗୀ**—ସ. ବିଣ. ପୁଂ (ଲଜ୍ଜା+ତ୍ୟଜ୍ ଧାତୁ+କର୍ତ୍ତୃ. ଇନ୍;
Lajjā tyāgi ୧ମା. ୧ବ)—ନିର୍ଲଜ୍ଜ; ତ୍ୟକ୍ତଲଜ୍ଜ—Shameless; immodest.
(ଲଜ୍ଜାତ୍ୟାଗିନୀ—ସ୍ତ୍ରୀ)

**ଲଜ୍ଜା ଦାତା**—ସଂ ବିଣ. ପୁଂ (ଲଜ୍ଜା+ଦାତା)—ଯେଉଁ ବ୍ୟକ୍ତି ଅନ୍ୟ
Lajjā dātā ବ୍ୟକ୍ତିକୁ ଲଜ୍ଜିତ କରାଏ—Putting another
(ଲଜ୍ଜାଦାତ୍ରୀ—ସ୍ତ୍ରୀ) to shame or humiliation.

**ଲଜ୍ଜା ଦୂର କରିବା**—ଦେ. କ୍ରି—୧ । (ନିଜେ) ଲଜ୍ଜା ତ୍ୟାଗ କରିବା—
Lajjā dūra karibā 1. To cast off shyness
লজ্জা দূর করা ୨ । (ଅନ୍ୟର) ଲଜ୍ଜା ନିବାରଣ କରିବା ( ଦେଖ )
लज्जा दूर करना 2. Lajjā nibārana karibā (See)

**ଲଜ୍ଜା ଦେବା**—ଦେ॰ କ୍ରି—ଅନ୍ୟ ବ୍ୟକ୍ତିକୁ ଲୋକସମାଜରେ ଲଜ୍ଜିତ
Lajjā debā କରାଇବା—To put another to shame
লজ্জা দেওয়া लज्जा देना in the eyes of the public;
to humiliate.

**ଲଜ୍ଜା ଧରମ**—ଦେ. ବି. (ସ. ଲଜ୍ଜା ଧର୍ମ)—ଲଜ୍ଜା ଧର୍ମ ( ଦେଖ )
Lajjā dharama Lajjā dharma ( See )
লজ্জা ধরম लज्जा धरम

**ଲଜ୍ଜା ଧର୍ମ**—ସ.ବି (ରୂପକ; ଲଜ୍ଜା+ଧର୍ମ)—ଲଜ୍ଜାଶୀଳତା; ସାଧାରଣତଃ
Lajjā dharma ଲଜ୍ଜାଯୁକ୍ତସ୍ୱଭାବ—Modesty.

**ଲଜ୍ଜା ଧ୍ୱଂସ**—ସ.ବି (୬ଷ୍ଠୀ ତତ୍ ଲଜ୍ଜା+ଧ୍ୱଂସ)—ମନରୁ ଲଜ୍ଜାରୂପ ଭାବର
Lajjā dhwamsa ସମ୍ପୂର୍ଣ୍ଣ ବିନାଶ—The disappear-
(ଲଜ୍ଜା ନାଶ—ଅନ୍ୟରୂପ) ance of the feeling of shame
or modesty

**ଲଜ୍ଜାନତ(ମ୍ର)**—ସ॰ ବିଣ ( ୩ୟା ତତ୍, ଲଜ୍ଜା+ଆନତ; ଅନମ୍ର )—
Lajjānata(mra) ୧ । ଲଜ୍ଜା ଯୋଗୁଁ ତଳକୁ ପୋତି
(ଲଜ୍ଜାବନତ, ଲଜ୍ଜାବନମ୍ର—ଅନ୍ୟରୂପ) ହୋଇ ଯାଇଥିବା (ମୁଣ୍ଡ
[ଲଜ୍ଜାନତା(ମ୍ରା), ଲଜ୍ଜାବନତା(ମ୍ରା)—ସ୍ତ୍ରୀ] ବା ମୁଖ)—
1. (Head) Downcast or hanging down through shame.

୨ । ଲଜ୍ଜା ଯୋଗୁଁ ଯାହାର ମୁହଁ ତଳକୁ ନତ ହୋଇଥାଏ—2. (a person) With the face downcast through modesty or shame.

ଲଜ୍ଜା ନିବାରକ—ସଂ. ବିଣ. ପୁଂ ( ଉପପଦ ତତ୍; ଲଜ୍ଜା+ନିବାରକ)—Lajjā nibāraka ଯେ ବା ଯାହା ମନୁଷ୍ୟଙ୍କୁ ଲଜ୍ଜାରୁ ରକ୍ଷା କରେ—Saving a person from being put to shame or becoming bashful.
( ଲଜ୍ଜାନିବାରିକା—ସ୍ତ୍ରୀ )

ଲଜ୍ଜା ନିବାରଣ—ସଂ. ବି ( ୬ଷ୍ଠୀ ତତ୍, ଲଜ୍ଜା+ନିବାରଣ )—ଲଜ୍ଜାରୁ Lajjā nibāraṇa ମନୁଷ୍ୟଙ୍କୁ ରକ୍ଷା କରିବା—The preventing of a person from being ashamed. ସ. ବିଣ (ଲଜ୍ଜା+ନି+ବୃ ଧାତୁ ଣିଜନ୍ତ+କର୍ତ୍ତୃ ଅନ)--ଲଜ୍ଜାନିବାରକ (ଦେଖ)-Lajjānibāraka (See) ଦେ. ବି. (କାରଣ,ଏ ଲୁଗା ବୁଣି ଲୋକଙ୍କ ନଗ୍ନତା-ଜନିତ ଲଜ୍ଜାକୁ ନିବାରଣ କରନ୍ତି )—ତନ୍ତୁବାୟ ଜାତିର ଉପାଧିବିଶେଷ—A family title of some weavers.

ଲଜ୍ଜାନିବାରଣ ବାନା—ଦେ.ବିଣ (ଲଜ୍ଜାନିବାରଣ ଅଟେ ବାନା ଯାହାଙ୍କର) Lajjānibāraṇa bānā —ଲଜ୍ଜାନିବାରକ ବୋଲି ପ୍ରସିଦ୍ଧ(ବ୍ୟକ୍ତି) लज्जा निवारक Famous for preventing a person लज्जा निवारण करनेवाला from being put to shame or humiliation. [ଉ—ଲଜ୍ଜା ନିବାରଣ-ବାନା-ପ୍ରଭୁ ଭଗବାନ । ରାଧାନାଥ ବେଣୀସଂହାର ।]

ଲଜ୍ଜାନ୍ୱିତ—ସ. ବିଣ (୩ୟା ତତ୍; ଲଜ୍ଜା+ଅନ୍ୱିତ)—୧ । ଲଜ୍ଜିତ—Lajjānwita 1. Ashamed ୨ । ଲଜ୍ଜାଳୁ—2. Bashful.
(ଲଜ୍ଜାନ୍ୱିତା—ସ୍ତ୍ରୀ)

ଲଜ୍ଜା ପାଇବା—ଦେ. କ୍ରି—୧ । ଲଜ୍ଜିତ ହେବା—1. To be Lajjā pāibā ashamed. ୨ । ଲୋକ ସମକ୍ଷରେ ଅପମାନିତ ହେବା—2. To be publicly dis-honoured or humiliated or put to shame.
लज्जा पाओयाँ
लज्जा पाना

ଲଜ୍ଜାପ୍ରଦ—ସ. ବିଣ. ପୁଂ (ଲଜ୍ଜା+ପ୍ର+ଦା ଧାତୁ+କର୍ତ୍ତୃ. ଅ)—Lajjāprada ଲଜ୍ଜାଜନକ (ଦେଖ)—Lajjājanaka.(See)
(ଲଜ୍ଜାପ୍ରଦା—ସ୍ତ୍ରୀ)

ଲଜ୍ଜାବତୀ—ସ. ବି. ସ୍ତ୍ରୀ—ଲଜ୍ଜାଳୁ (ଦେଖ)—Lajjālu. (See) Lajjābati ସ. ବିଣ. ସ୍ତ୍ରୀ—ଲଜ୍ଜାବାନ୍ ଶବ୍ଦର ସ୍ତ୍ରୀଲିଙ୍ଗ—Feminine of Lajjābān.

ଲଜ୍ଜାବନତ ମୁଖ—ସଂ, ବିଣ. ପୁଂ (ବହୁବ୍ରୀହି; ଲଜ୍ଜାବନତ+ମୁଖ)—Lajjābanata mukha ଲଜ୍ଜାଯୋଗୁଁ ଅଧୋମୁଖ—Drooping down the head through shame or modesty.
[ଲଜ୍ଜାବନମ୍ରମୁଖ—ଅନ୍ୟରୂପ]
(ଲଜ୍ଜାବନତ[ମ୍ର]ମୁଖୀ—ସ୍ତ୍ରୀ)

ଲଜ୍ଜାବନ୍ତ—ଦେ. ବିଣ—ଲଜ୍ଜାଶୀଳ—Bashful. [ଉ—ଲଜ୍ଜାବନ୍ତ ହୋଇଣ ନିର୍ଲଜ୍ଜ କଥାକୁ । କୃଷ୍ଣସିଂହ. ମହାଭାରତ ଉଦ୍‌ଯୋଗ ।] Lajjābanta
लज्जामन्त लज्जावंत

ଲଜ୍ଜାବହ—ସଂ. ବିଣ (ଲଜ୍ଜା+ଆବହ)—ଲଜ୍ଜାକର (ଦେଖ) Lajjābaha Lajjākara. (See) (Apte)

ଲଜ୍ଜାବାନ୍—ସଂ. ବିଣ ପୁଂ (ଲଜ୍ଜାବତ୍ ଶବ୍ଦ, ଲଜ୍ଜା+ଅସ୍ତି ଅର୍ଥରେ Lajjābān ବତ୍; ୧ମା· ୧ବ)—ଲଜ୍ଜାଶୀଳ; ଲାଜୁଆ; (ଲଜ୍ଜାବତୀ—ସ୍ତ୍ରୀ) ଲାଜକୁଳା—Modest, coy; bashful.

ଲଜ୍ଜା ଭରମ—ଦେ. ବି (ସଂ. ଲଜ୍ଜା+ଭ୍ରମ)—ଲଜ୍ଜା ଭ୍ରମ (ଦେଖ) Lajjābharama Lajjā bhrama. (See)
लज्जा शरम लज्जा भरम

ଲଜ୍ଜାଭ୍ରମ—ସଂ. ବି (ଦ୍ୱନ୍ଦ୍ୱ)—ଲଜ୍ଜା ଓ ସମ୍ମାନ; ଲଜ୍ଜା ସମ୍ଭ୍ରମ—Lajjābhrama Modesty and respectfulness.

ଲଜ୍ଜା ରହିତ—ସଂ.ବିଣ(୩ୟା ତତ୍;ଲଜ୍ଜା+ରହିତ)—ଲଜ୍ଜାଶୂନ୍ୟ (ଦେଖ) Lajjā rahita Lajjāśūnya. (See)
[ ଲଜ୍ଜାରହିତା—ସ୍ତ୍ରୀ ]

ଲଜ୍ଜାଳୁ—ସଂ. ବିଣ (ଲଜ୍ଜା+ଶୀଳାର୍ଥେ ଆଳୁ)—ଲଜ୍ଜାଶୀଳ (ଦେଖ)—Lajjālu Lajjāśīla, (See) ସଂ.ବି—ଲାଜକୁଳୀ ଲତା; ଲାଜକୋଳି ଲତା—A sensitive plant; Mimosa Pudica,

ଲଜ୍ଜାଳୁଲତା, ଲଜ୍ଜିକା, ଲଜ୍ଜାଦ୍ରବ — ଅନ୍ୟରୂପ

[ଦ୍ର—ଏହା କଣ୍ଟକମୟ ଲତାମୟ ୧।୧ ହାତ ଲମ୍ବ କ୍ଷୁପ ବିଶେଷ; ପତ୍ରଗୁଡ଼ିକ ଛୋଟ ଛୋଟ ଓ ଅଧିକ ସଂଖ୍ୟାରେ ପତ୍ରଦଣ୍ଡର ଦୁଇ ପାର୍ଶ୍ୱରେ ଥାଏ । ଏହାର ପତ୍ରକୁ ଛୁଇଁଲେ ପତ୍ର ଗୁଡ଼ିକ ମୁଦି ହୋଇଯାଏ ଓ ପତ୍ରର ଡେମ୍ଫ ଗୁଡ଼ିକ ଶୋଇପଡ଼େ । ଏହାର ଛୁଇଁ ଲୋମଶ; ଫୁଲ ନାଲିଆ, ଗୋଲ ଓ କେଶରମୟ; ସାନ ଚେପଟା; ଏହାର ଛାଲ ଓ ଡେମ୍ଫ ନାଲିଆ । ଆଉ ଏକ ପ୍ରକାର ଲଜ୍ଜାଳୁ ଲତା ଅଛି, ତାହାର ଗଛ ଛୋଟ ଓ ପତ୍ର ବଡ଼ ବଡ଼ । ଏହାକୁ ଲଜ୍ଜାଳୁ ବୈପରୀତ୍ୟ କହନ୍ତି ।

ଅନ୍ୟ ସଂ. ନାମ—ରକ୍ତପାଦୀ, ଶମୀପତ୍ରା, ସ୍ପୃକ୍କା, ଖଦିରପତ୍ରିକା, ସଙ୍କୋଚନୀ, ଶତପଦୀ, ସମଙ୍ଗା(ଙ୍ଗୀ), ନମସ୍କାରୀ, ପ୍ରସାରଣୀ, ସପ୍ତପର୍ଣ୍ଣୀ, ଗଣ୍ଡମାଳିକା, ଲଜ୍ଜା, ଲଜ୍ଜିକା, ସ୍ପର୍ଶଲଜ୍ଜା, ଅସ୍ରଗ୍ରୋଧନୀ, ରକ୍ତମୂଳା, ଲଜ୍ଜାବତୀ, ଲଜ୍ଜାସ୍ପର୍ଶ, ତାମ୍ରମୂଳା, ସୁଗୁପ୍ତା, ଅଞ୍ଜଲିକାରିକା, ମହାଭୀତା, ଖଣ୍ଡକାଲୀ, ବଶିନୀ, ମହୌଷଧ, ବାସ୍ପହାନ୍ତା ।

ଅନ୍ୟ ଏକ ପ୍ରକାର ଲଜ୍ଜାଳୁଲତା ପାଣିକୂଳରେ ଜନ୍ମେ । ଉହିଁରେ କଣ୍ଟା ନ ଥାଏ । ତାହାର ପତ୍ର ଓ ଡେମ୍ଫ ଅତି ହରିଦ୍ୱର୍ଣ୍ଣ । ହାତ ଲଗାଇଲେ ତାହାର ପତ୍ର ବୁଜି ହୋଇଯାଏ । ତାକୁ "ପାଣି ଲାଜକୁଳୀ" (ସଂ ଅଲମ୍ବୁଷା) ବୋଲାଯାଏ ।

जावतीलता, लाजुकलता
लजालु(ह),छुईमुई
ମ· ଲାଜାଳୁ, ଲାଜସ୍ୱ, ସଂକୋଚଣୀ
ଗୁ. ରିସାମଣୀ

ଅନ୍ୟ ଏକଜାତୀୟ ଲାଜକୋଳି ଲତା ଥିଲା, ତାକୁ "ଛୋଟଲାଜକୁଳୀ" କହନ୍ତି । ବୈଦ୍ୟଶାସ୍ତ୍ର ମତରେ ଏହା ଶୀତବୀର୍ଯ୍ୟ ଓ ତିକ୍ତ କଷାୟ ରସ; ଏହା କଫ, ପିତ୍ତ, ରକ୍ତପିତ୍ତ, ଅତିସାର ଓ ଯୋନିରୋଗ, ଦାହ, ଶ୍ରମ, ଶ୍ୱାସ, ବ୍ରଣ, କୁଷ୍ଠନାଶକ । ଏଥିର ଚେର ଓ ତାଙ୍କର ପାଚନ ଓ ଏଥିର ପତ୍ରର ଚୂର୍ଣ୍ଣ ପଥ୍ୟ ଓ ଭଗନ୍ଦର ରୋଗ ପାଇଁ ସେବନ କରାଯାଏ । ରସାୟନିକ ପରୀକ୍ଷାଦ୍ୱାରା ଦେଖା ଯାଇଅଛି ଯେ

ଏ ଗଛରେ ଶତକଡ଼ା ୧୦ ଭାଗ କଷାୟ ଧାତୁ (Tannin) ଅଛି । ଏଥିର ଡାଳର ଚୂର୍ଣ୍ଣିକୁ ହରିଦ୍ରାସ ସଙ୍ଗେ ମିଶାଇଲେ ଭଲ କାଳି ହୁଏ—ହ. ଶ]

ଲଜ୍ଜା ଶରମ—ପ୍ରାଦେ. (ସଂ. ଲଜ୍ଜା ଓ ଫା. ଶରମ୍; ଏକାର୍ଥକ ସହଚର)- Lajjā śarama ଲଜ୍ଜା—Shame.
ଲଜ୍ଜା শরম লজ্জা शरम,

ଲଜ୍ଜାଶୀଳ—ସଂ. ବିଣ. ପୁଂ ( ବହୁବ୍ରୀହି; ଲଜ୍ଜା+ଶୀଳ )—ଲଜ୍ଜାଯୁକ୍ତ; Lajjāśīla ଲଜ୍ଜାଳୁ; ଯେ ସର୍ବଦା ଲଜ୍ଜା କରେ—Modest; shy; coy; bashful.
(ଲଜ୍ଜାଶାଳୀ—ଅନ୍ୟରୂପ)
(ଲଜ୍ଜାଶୀଳା, ଲଜ୍ଜା ଶାଳିନୀ—ସ୍ତ୍ରୀ) (ଲଜ୍ଜାଶୀଳତା—ବିଶେଷ୍ୟ)

ଲଜ୍ଜା ଶୂନ୍ୟ—ସଂ. ବିଣ. ପୁଂ ( ଷଷ୍ଠୀ ତତ୍; ଲଜ୍ଜା+ଶୂନ୍ୟ )—ନିର୍ଲଜ୍ଜ; Lajjā śūnya ଅଲାଜୁକ—Shameless; immodest.
(ଲଜ୍ଜାରହିତ, ଲଜ୍ଜାହୀନ—ଅନ୍ୟରୂପ)
(ଲଜ୍ଜା ଶୂନ୍ୟା, ଲଜ୍ଜା ରହିତା, ଲଜ୍ଜାହୀନା—ସ୍ତ୍ରୀ)
(ଲଜ୍ଜା ଶୂନ୍ୟତା, ଲଜ୍ଜା ରହିତତ୍ୱ, ଲଜ୍ଜାହୀନତା—ବି)

ଲଜ୍ଜା ସମ୍ଭ୍ରମ—ସଂ. ବି. ( ଲଜ୍ଜା+ସମ୍ଭ୍ରମ )—ଲଜ୍ଜା ଓ ସମ୍ମାନ— Lajjā sambhrama Modesty and regard; modesty and respectfulness.

ଲଜ୍ଜା ସ୍ପର୍ଶ—ସଂ. ବି. (ବୈଦ୍ୟକ) (ବହୁବ୍ରୀହି)—ଲଜ୍ଜାଳୁ ( ଦେଖ ) Lajjā sparśa Lajjālu ( See )

ଲଜ୍ଜିତ—ସଂ. ବିଣ ( ଲଜ୍ଜା+ଯୁକ୍ତାର୍ଥେ. ଇତ )—୧ । ଲଜ୍ଜାଯୁକ୍ତ— Lajjita 1. Ashamed. ୨ । ଲଜ୍ଜାଶୀଳ—2. Modest; shy. ଗ୍ରା. ବିଣ—ଲଜ୍ଜାଜନକ—Shameful. ଗ୍ରା. ବି—ଲଜ୍ଜା—Shame.
লজ্জাব लज्जित
লাজ लजित
[ଉ—ଶୁଣି ତା ଲଜ୍ଜିତେ ଜଗେନ୍ଦ୍ର ମୋଷ୍ମି ମନ୍ତ୍ରେ ମନେ ଗୃହିଁ ଜାତ ରସ କେତେ ହେ । ଭଞ୍ଜ. ପ୍ରେମସୁଧାନିଧି ।]

ଲଜ୍ଜିରି—ସଂ. ବି. (ବୈଦ୍ୟକ)—ଲଜ୍ଜାଳୁ ( ଦେଖ ) Lajjirī Lajjālu ( See )

ଲଜ୍ଜ୍ୟା—ସଂ. ବି. (ଲଜ୍ଜ୍ ଧାତୁ+ଭାବ. ଯ+ସ୍ତ୍ରୀ ଆ)—ଲଜ୍ଜା (ଦେଖ) Lajjyā Lajjā ( See )

ଲଞ୍ଚ୍—ବୈଦେ. ବି. (ଇଂ)—ଶ୍ରେଷ୍ଠ ବୋଟ; ନୌକା— Lañch Launch.
লঞ্চ लञ्च
[ଉ—ଜାହାଜ ଓ ବୋଟ ଅପେକ୍ଷା ଲଞ୍ଚ୍ ଶ୍ରେଷ୍ଠ; ଯେଉଁ ଲଞ୍ଚ୍ ବାଷ୍ପ ଦ୍ୱାରା ଚାଳିତ ତାକୁ ଷ୍ଟିମ୍ ଲଞ୍ଚ୍ ଓ ମଟର୍ ଯନ୍ତ୍ର ଚାଳିତ ଲଞ୍ଚକୁ ମଟର୍ ଲଞ୍ଚ୍ ବୋଲାଯାଏ ।]

ଲଞ୍ଚା—ସଂ. ବି—୧ । ଉପହାର—1. A present (Apte). Lañchā ୨ । ଉତ୍କୋଚ; ଲାଞ୍ଚ—2. Bribe (Apte).
[ଦ୍ର—ଓଡ଼ିଆ 'ଲାଞ୍ଚ' ଶବ୍ଦ ଏହି 'ଲଞ୍ଚା' ଶବ୍ଦର ଅପଭ୍ରଂଶ ରୂପ ।]

ଲଞ୍ଜ୍ (ଧାତୁ)—ସ—୧ । ବଳିଷ୍ଠ ହେବା—1. To be strong. Lañj (root) ୨ । ଭର୍ତ୍ସନା କରିବା—2. To rebuke or chide. ୩ । ନିନ୍ଦା କରିବା—3. To blame. ୪ । ଭାଜିବା—4. To roast; to fry (Apte). ୫ । ବେଷ୍ଟନ କରିବା—5. To surround.
[ଲଜ୍ଜ୍ (ଧାତୁ)—ଅନ୍ୟରୂପ]

ଲଞ୍ଜ—ସଂ. ବି. ( ଲଞ୍ଜ୍ ଧାତୁ=ବଳିଷ୍ଠ ହେବା, ବେଷ୍ଟନ କରିବା Lañja ଇତ୍ୟାଦି+କର୍ତ୍ତୃ. ଅ )—୧ । ପାଦ; ଚରଣ—1. Leg; foot. ୨ । (+କରଣ. ଅ) କଚ୍ଛ; କଚ୍ଛ; କଛା—2. Tucked end of a loin cloth; the end of the loin cloth tucked down to the back side of the waist. ୩ । ଲାଞ୍ଜ, ଲାଙ୍ଗୁଡ଼; ପୁଚ୍ଛ—3. Tail. ୪ । ଅନିଦ୍ରା—4. Sleeplessness. ୫ । (+ଭାବ. ଅ) ଲାମ୍ପଟ୍ୟ—5. Lechery; adultery. ୬ । ସ୍ରୋତଃ—6. Current. ୭ । (ସ୍ତ୍ରୀ) ଲକ୍ଷ୍ମୀ ( ହ. ଶ. ବିଶ୍ୱକୋଷ )—7. The Goddess Lakshmi; prosperity affluence.

ଲଞ୍ଜା—ସଂ. ବି. ସ୍ତ୍ରୀ (ଲଞ୍ଜ+ସ୍ତ୍ରୀ. ଆ)—୧ । ସ୍ରୋତଃ—1. Current. Lañjā ୨ । ଲକ୍ଷ୍ମୀ—2. The Goddess of fortune. ୩ । ନିଦ୍ରା—3. Sleep (Apte). ୪ । କୁଳଟା ସ୍ତ୍ରୀ—4. An adulteress (Apte). ଦେ. ବି (ସଂ. ଲଞ୍ଜ) ୧ । ଲଞ୍ଜ; ଲାଙ୍ଗୁଡ଼; ପୁଚ୍ଛ—1. Tail. ୨ । ଲଞ୍ଜା ତାରା; ଧୂମକେତୁ—2. Comet. ୩ । ଗୁଡ଼ିର ଲମ୍ବ ଭାଗରେ ଯୋଡ଼ି ଦିଆ ଯାଇଥିବା ଲମ୍ବ କାଗଜ ଖଣ୍ଡ— 3. A long piece of paper stuck to the lower end of a paper kite. [ଦ୍ର—ଦୁଇଖଣ୍ଡ କାଗଜ ଏକତ୍ର ଯୋଡ଼ି ଦିଆ ଯାଇଥିଲେ, ସେପରି ଗୁଡ଼ିକୁ "ଦୋ-ଲଞ୍ଜା" ଗୁଡ଼ି କହନ୍ତି ।] ୪ । ଲଞ୍ଜା—4. Framework of twigs for trailing creepers.
নেজ लांगूर(ल), पूंछ
নেজাল তাৰা पुच्छल तारा
পালা झांखी
(ଉ—ସିଞ୍ଚୁ ଅଙ୍କୁ ବାଡ଼େଇ,ଲଞ୍ଜା ପିନ୍ଧା ଡାଳେ,ଫୁଟେ ତୋରି କଳି ଫୁଲ । ନନ୍ଦକିଶୋର. ଶର୍ମିଷ୍ଠା ।)

ଲଞ୍ଜା କୁକୁଡ଼ା—ଦେ. ବି ( ସଂ. ଲଞ୍ଜା +କୁକ୍କୁଟ )—ଆମେରିକାଦେଶୀୟ Lañjā kukurḍā ବିସ୍ତୃତ ପୁଚ୍ଛଯୁକ୍ତ ଏକପ୍ରକାର କୁକୁଡ଼ା— The cock turkey; Meleagris Ocellata.
নেজওয়ালা মুর্গী पेह
(ଲଞ୍ଜାମୁରଗି—ଅନ୍ୟରୂପ)

ଲଞ୍ଜା ଗୁଡ଼ି—ପ୍ରାଦେ (ବାଲେଶ୍ୱର) ବି—ଲଞ୍ଜାଥିବା ଗୁଡ଼ି—The kite Lañjā gurḍi having a tail attached to it.
নেজাল ଦେ. ବିଣ—୧ । ପୁଚ୍ଛଯୁକ୍ତ—1. Having tail. ୨ । ବିସ୍ତୃତ ପୁଚ୍ଛଯୁକ୍ତ—1. Having a spreading tail.
पुंछल

ଲଞ୍ଜା ତ(ତା)ରା—ଦେ. ବି—(ସଂ. ଲଞ୍ଜ+ତାରା)—(ଏଥିରେ ଲାଞ୍ଜ ପରି Lañjā ta tā)rā ଗୋଟିଏ ଆଲୋକ ରେଖା ଥିବାରୁ) ଧୂମକେତୁ- Comet.
নেজাল তারা पुच्छल तारा
[ଉ—ଯହିଁ ମହାଶୂଳ ଲଞ୍ଜାତାରା କି ସେ ନାଶିବାକୁ ବୈରି କୁଳ । ରାଧାନାଥ. ଯଯାତି ।]

**ଲଞ୍ଜା ପାର୍‌**—ଦେ. ବ.—(ସ. ଲଞ୍ଜ+ପାରାବତ)—ଲକ୍କା ପାର୍‌; ଲକ୍କା
Lanjā pārā ପାର୍‌ (ଦେଖ)—Lakkā pārā (See)
लक्का पायवा लक्का कबुतर

**ଲଞ୍ଜା ମୟୂ[ୟୁ]ର**—ଦେ. ବ. ପୁଂ—ବିସ୍ତୃତ ପୁଚ୍ଛଯୁକ୍ତ ଅଣ୍ଡିରା ମୟୂର—
Lanjā mayū(ya)ra A peacock (having a
नेजाल मयूर पुंछवाला मयूर spreading tail)
[ଲଞ୍ଜି ମୟୂ(ୟୁ)ର[ରା]—ସ୍ତ୍ରୀ]

**ଲଞ୍ଜିକା**—ସ. ବ. ସ୍ତ୍ରୀ—[ଲଜ୍‌ ଧାତୁ=ଭର୍ତ୍ସନା କରିବା+କର୍ତ୍ତୃ. ଅକ
Lanjikā ସ୍ତ୍ରୀ. ଆ]—ଗଣିକା; ବେଶ୍ୟା—A prostitute.

**ଲଟ୍‌ [ଧାତୁ]**—ସ.—୧ । ଚପଳତା ପ୍ରକାଶ କରିବା; ବାଲଭାବ ପ୍ରକାଶ
Lat (root) କରିବା—1.To act childishly; to act like a child. ୨ । ପିଲାଙ୍କ ପରି କଥା କହିବା; ଦନ୍ତୋଷ୍ଠ କଥା କହିବା—2. To prattle; to talk like a child (Apte); to lisp. ୩। ବିଳାସ କରିବା—3 To sport. ୪ । କାନ୍ଦିବା—4. To cry (Apte). ୫ । କହିବା—5. To speak; to talk. ଦେ.

**ଲଟ୍‌**—ଦେ. ବ.—ଲାଟ୍‌ (ଦେଖ)—Lāt (See) ପ୍ରାଦେ.—
Lat (ଯାଜପୁର) ବ.—ଥର—Time. [ ଯଥା—ମୁଁ କେତେ ଲଟ୍‌ ଏଠାକୁ ଆସିଲିଣି ।]

**ଲଟ୍‌ କିନା(ନି)ରି**—ଦେ. କ୍ରି. ବିଣ—(ସଂ. ଲତା)—୧ । ଲମ୍ବଭାବରେ
Lat kinā(ni)ri नतकवे फटसे 1. Lengthwise. ୨ । ହଠାତ୍‌ ଭୂଇଁରେ ଶୋଇ ପଡ଼ିବା ବା କଚିଯିବା
[ଲଟ୍‌କଉ(ଦସ୍‌)—ଅନ୍ୟରୂପ] ପ୍ରକାରରେ—2. All at once.

**ଲଟ୍‌କିବା**—ପ୍ରାଦେ. ( ସମ୍ବଲପୁର ) କ୍ରି—୧ । କୌଣସି ସ୍ଥାନରେ ଅଟକି
Lat-kibā ଯିବା—1. To be detained at a place.
(ଲଟ୍‌କି ଯିବା—ଅନ୍ୟରୂପ) ୨ । ଲାଗି ଯିବା—2. To become attached; to stick to a place.

**ଲଟ୍‌ ପଟ୍‌**—ପ୍ରାଦେ. (ସମ୍ବଲପୁର)—ଅ. (ତୁଳ. ହି. ଲଟ୍‌ ପଟ୍‌=
Lat-pat ଗୋଳମାଳ)—୧ । ଅତି କଷ୍ଟରେ—1. With much difficulty. ୨ । ଗୋଳମାଳ—2. Confusion.

**ଲଟ ପଟି**—ପ୍ରାଦେ. (ସମ୍ବଲପୁର) ବ.—ଗାମୁଛା—
Lat-pati Napkin.

**ଲଟ ଲ(ଲା)ଟ୍‌**—ଦେ. କ୍ରି. ବିଣ—( ବହୁ ବ୍ୟକ୍ତିଙ୍କ କ୍ରିୟାସୂଚକ )—
Lat-la(lā)t (ବହୁତ ଲୋକ ହଠାତ୍‌) ଭୂମିରେ ଲମ୍ବ ହୋଇ ଶୋଇ
नतनत फटफट ପଡ଼ିବା ପ୍ରକାରରେ—(many people at a time to lie down) Prostrate

**ଲଟ**—ସଂ. ବ.—(ଲଟ ଧାତୁ=ଚପଳତାଦି ବାଲଭାବ ପ୍ରକାଶ କରିବା+
Lata ଭାବ. ଅ)—୧ । ପ୍ରମାଦ ବଚନ; ଅବିବେଚିତ ହୋଇ କଥା କହିବା—1. Foolish and careless talk. ୨ । (+କର୍ତ୍ତୃ. ଅ) ପାଗଳ ବ୍ୟକ୍ତି—2. A mad man. ୩ । ନିର୍ବୋଧ ବ୍ୟକ୍ତି—3. A fool; a blockhead (Apte). ୪ । ଚୋର—4. A thief; robber. ୫ । (+କରଣ. ଅ) ଦୋଷ; ଅପରାଧ—5. Fault; defect (Apte) ୬ । ଅନର୍ଥ; ଅକଷ୍ଟ; ଅତ୍ୟାଚାର—6. Oppression; injury. ସଂ. ବିଣ. ପୁଂ—ଲମ୍ପଟ—Adulterous. ଦେ. ବ.—(ସଂ. ଲଟ୍ଟ)—୧ । ଦୁର୍ଜନ ବ୍ୟକ୍ତି—1. A wicked person. ୨ । ଲମ୍ପଟ ବ୍ୟକ୍ତି—2. A lecher. ୩ । ଅଡୁଆ—3. Difficulty; trouble. (ଉ—ତାହାଁର କଲକତ୍ତାର ଲଟ ଲାଗି ରହିଛି । ଫକୀରମୋହନ. ଗଳ୍ପସ୍ବଳ୍ପ ।) ୪ । (ହ ନଟ) କୌତୁକ—4. Fun. [ଉ—ଲାଗିଲା ରେ ଲାବଣ୍ୟକାନ୍ତିକ ଶ୍ୟାମ ଲଟ—କବିସୂର୍ଯ୍ୟ ସଙ୍ଗୀତ । ]
ଲଟପ(ଫ)ଟ लटपट(टी) ୫ । (ହ ନୃତ୍ୟ ) ସଂସାରଲୀଳା—5. Worldly concerns; worldly existence. [ଉ—ଯେବେ କୋଧେ ଯୁଦ୍ଧିବେ ଭୀମ ବାତସୁତ, ଜାଣ ସାରିଦେବେ ସେ ଦୁର୍ଯ୍ୟୋଧନ ଲଟ—କୃଷ୍ଣସିଂହ ମହାଭାରତ
ଲଟପଟ लटपट ବନ ।] ୬ । ଗୋଳମାଳ; ଧନ୍ଦା; ଜଞ୍ଜାଳ—6 State of confusion. [ ଉ—କୋହିଲେ କୃଷ୍ଣଙ୍କୁ ଭେଟାଉ, 'ଅଧିକେ ଲଟ ନାହିଁ ଅଛୁ—ଭୂପତି ପ୍ରେମପଞ୍ଚାମୃତ । ] ୭ । ଗୁରୁ ଦାୟିତ୍ୱ—7. Grave responsibility.

**ଲଟକ**—ସଂ. ବ. ପୁଂ (ଲଟ୍‌ ଧାତୁ=ଚପଳତ୍ୱାଦି ବାଲଭାବ ପ୍ରକାଶ କରିବା
Lataka +କର୍ତ୍ତୃ. ଅକ)—ଖଳ; ଦୁର୍ଜନବ୍ୟକ୍ତି; ଅସାଧୁ ବ୍ୟକ୍ତି-
( ଲଟକା—ସ୍ତ୍ରୀ ) A wicked man; a rogue; a rascal (Apte).

**ଲଟକଣ**—ଦେ. ବିଣ ( ସ. ଲଡ୍‌ ଧାତୁ=କମ୍ପନ )—ଲମ୍ବମାନ;
Latakana ଝୁଲୁଥିବା—Hanging down. ଦେ. ବ—
लटकन, लटकान लटकन, वेल ୧ । ଚମାନ ଆଦିରେ ଝୁଲା ଯାଇଥିବା କାରୁକାର୍ଯ୍ୟଯୁକ୍ତ କ୍ଷୁଦ୍ର କାଷ୍ଠଖଣ୍ଡ (ବସୁଣୀ ପର)-1. Small bits of wood hung to the edges of furniture. ୨ । ଯାହା ଝୁଲୁଥାଏ; ଝୁଲ—2. Hangings. ୩ । ହାରର ମଝିରେ
तक्तो, लकेट लकेट; लटकन ଓ କାନର ଦଣ୍ଡିରେ ଓ କାନର ଫାସିଆରେ ଝୁଲୁଥିବା ଲୁଡ଼ୁକା; ଯେଉଁ ଅଳଙ୍କାରମାନ ଝୁଲୁଥାଏ; ଲକେଟ୍‌—3. Pendents (in ornament); hanging locket. ୪। ପାଗ ବା ଟୋପିରେ ଲମ୍ବିଥିବା ଗୁଚ୍ଛ ବା ଝୁଣ୍ଡିମାନ—4. Tassels hanging from turbans or caps. ୫ ।
लटकन लटकान ବିଦେଶୀୟ କ୍ଷୁଦ୍ର ପୁଷ୍ପ-ତରୁବିଶେଷ—5. A flower tree; Bixa Orellæa. [ ଦ୍ର—ଏହା ଆମେରିକାରୁ ଏ ଦେଶକୁ ପ୍ରାୟ ୩୦୦ ବର୍ଷ ହେଲା ଆନୀତ ହୋଇଅଛି । ଦକ୍ଷିଣ ଭାରତରେ ଏହା ବହୁତ ଦେଖାଯାଏ । ପତ୍ର ବଡ଼; ଫୁଲ ଧଳା ଓ ନାଲିରେଦରେ ଦୁଇପ୍ରକାର । ବର୍ଷା ଶେଷରେ ଗଛରେ ଫୁଲ ଧରେ । ଫୁଲରେ ୮।୧୦ଟା ପାଖୁଡ଼ା । ଫଳ କାଙ୍କଡ଼ ପରି । ଫଳ ପାଚିଲେ ଫାଟିଯାଏ ।

ଗାଛ ଅନେକ । ମଞ୍ଜି ଦେହରେ ସିନ୍ଦୂର ପରି ଏକପ୍ରକାର ନାଲି ଅସ୍ଥାୟୀ ରଙ୍ଗ (arnatto, annalto) ଥାଏ । ଏହି ମଞ୍ଜିକୁ ପାଣିରେ ଗୋଳି ଲୋକେ ଲୁଗା ଆଦି ରଙ୍ଗ କରନ୍ତି । ଏହି ଗଛକୁ ଆମ ଦେଶରେ କଇଁଆକୁମ୍ଭ ବା ଭୁଇଁକୁମ୍ଭ ଗଛ ବୋଲି କହନ୍ତି । ] ବୈଦେ (ଇଂ ଲଣ୍ଠନ ଶବ୍ଦର ଅଶୁଦ୍ଧ ଉଚ୍ଚାରଣ) ବି—ଲଣ୍ଠଣ (ଦେଖ)
लाथेन, लठन लालटेन Lantana (See)

ଲଟକଣା—ଦେ. ବି—ଲଟକଣ ୫ (ଦେଖ);
Latakana Latakana 5 (See)

ଲଟକଣା ଫଳ—ଦେ. ବି—ତନ୍ତୀମାନେ ସୂତା ରଙ୍ଗ କରିବାପାଇଁ ଯେଉଁ ଫଳବିଶେଷ ବ୍ୟବହାର କରନ୍ତି—
Latakana phala A fruit with which weavers dye the yarn. ଲଟକଣ ୫ (ଦେଖ)—Latakana 5 (See)

ଲଟକଣୀ—ଦେ. ବି—ଲଟକଣ ୧ (ଦେଖ)—Latakana 1 (See)
Latakani [ ଉ—ଲଟକଣୀ ପୁଣି ଯେ ହୋଇଅଛି ବନ୍ଧା, ଦେଖିଲେ ତାହା ଲୋକ ମନେ ଲାଗେ ଧନ୍ଦା—କୃଷ୍ଣସିଂହ ମହାଭାରତ ଆଦି । ]

ଲଟକନ୍ ଭାଜି—ପ୍ରାଦେ (ସମ୍ବଲପୁର) ବି—କୋଇଲିଆ ଶାଗ—
Latakan bhaji A pot-herb; Amaranthus Polygamus.

ଲଟକନ—ଦେ. ବି—ବୁଦ୍ଧାଶ୍ରେଣୀ ବର୍ଗର ୬।୭ ଅଙ୍ଗୁଳ ଦୀର୍ଘ ପକ୍ଷିବିଶେଷ—
Latakana A kind of bird; Loriquet, Loriculis
लटकान लालमन Vernatis [ ଦ୍ର—ଏମାନେ ଶୁଆଜାତୀୟ, କିନ୍ତୁ ଶୁଆଠାରୁ ଛୋଟ । ଏମାନେ ହୀଆ ପରି, କିନ୍ତୁ ହୀଆ ଅପେକ୍ଷା ଏମାନଙ୍କ ଥଣ୍ଟ ଛୋଟ ଓ ଚେପଟା, ଲାଞ୍ଜ ଛୋଟ ଓ ପ୍ରାୟ ଗୋଲ; ମୁଣ୍ଡ ସାଗୁଆ; ପକ୍ଷ ରକ୍ତବର୍ଣ୍ଣ; ଏହାର ଅନ୍ୟ ନାମ "ଲାଲ୍‌ମନ୍ ତୋତା" । ]

ଲଟକା—ଦେ. ବି ( ସଂ ଲଡ୍ ଧାତୁ=କମ୍ପନ; କିମ୍ବା ସଂ ଲତା)—
Lataka ଝୁଲିବା; ଲଟକିବା କର୍ମ ବା ଭାବ—
लटका लटकना State of hanging or being suspended, suspension,

ଲଟକା(କେ)ଇବା—ଦେ. କ୍ରି (ସଂ ଲତା; ଲତା ପରି ଲମ୍ବିତ କରିବା;
Lataka(ke)iba ଲଟକିବାର ଣିଜନ୍ତ) ( ସକର୍ମକ ) ଟାଙ୍ଗିଦେବା;
लटकान लटकाना ଟଙ୍ଗାଇବା; କୌଣସି ପଦାର୍ଥକୁ ଉଚ୍ଚ ଆଧାରରୁ ତଳକୁ ଝୁଲାଇବା; ଲତା ପରି ଲମ୍ବାଇବା; ଓହୋଳାଇବା; ଝୁଲିରହିବା—To hang down a thing; to keep a thing suspended.

ଲଟକା ଲଟକି—ଦେ.ବି. (ସହଚର)—ଅନେକଗୁଡ଼ିଏ ବସ୍ତୁକୁ ଝୁଲାଇବା-
Lataka lataki Various acts of hanging or
लटकालटकी लटकालटकी suspending.

ଲଟକାଳି—ଦେ. କ୍ରି. ବିଣ—ଲଟଗାଳି ( ଦେଖ )
Latakali Latagali ( See )

ଲଟକିନି(ନା, ରି)—ଦେ. କ୍ରି. ବିଣ—ଲଟଗାଳି ( ଦେଖ )
Latakini(na, ri) Latagali ( See)

ଲଟକିବା—ଦେ. କ୍ରି. ( ସଂ ଲତା କିମ୍ବା ଲଡ୍ ଧାତୁ=କମ୍ପନ )—
Latakiba ୧ । (ଅକର୍ମକ) (ନାଚି) ଲତା ପରି ତଳକୁ ଲମ୍ବିବା;
लटका ଓହୋଳିବା—1. To hang down like a
लटकना creeper. ୨ । ଝୁଲିବା—2. To be suspended.

ଲଟକୁ(ଖ, ଘ)ଟ—ଦେ. ବି (ସଂ ଲଟ=ଦୋଷ ଓ କୂଟ=କପଟ)—
Lataku(kha, gha)ta ନଟକୂଟ ( ଦେଖ )—Natakuta
ल(न)टखट, (लन)टखटी हटखट(टी) (See)

ଲଟକୁ(ଖ, ଘ)ଟିଆ—ଦେ. ବିଣ. ପୁଂ—୧ । ଯେ ଅଡୁଆ ଲଗାଏ; ଯେ
Lataku(kha, gha)tia ଅନର୍ଥ ଘଟାଏ—1. Meddle-
[ଲଟକୁଟେଇ ଲଟଖ(ଘ)ଟେଇ—ସ୍ତ୍ରୀ] some. ୨ । ଗୋଳମାଳିଆ—
ल(न)टखटे 2. Intricate. ୩ । ଚପଳ; ଅସ୍ଥିର—3. Hasty;
लटखटिया restless.

ଲଟଖ(ଘ)ଟ—ଦେ. ବି. (ସଂ ଲଟ ଧାତୁ ଓ ଘଟ୍ଟ ଧାତୁ )—୧ । କଳି-
Latakha(gha)ta କଜିଆ; ଅନର୍ଥ—1. Quarrel. ୨ ।
लटघट, नटघटि, नेटा ଗୋଳମାଳ—2. Complication. ୩ ।
लटखट (ସଂ ଲଟ=ଲମ୍ପଟ) ପାପ ଦୋସ୍ତି; ପାପ ପ୍ରଣୟ—
लटपट 3. Illict love; illict intercourse. ୪ । ବ୍ୟଭିଚାର—4. Adultery.
लटपट

ଲଟଖ(ଘ)ଟିଆ—ଦେ. ବିଣ. ପୁଂ—୧ । ବ୍ୟଭିଚାରାସକ୍ତ—1. Adul-
Latakha(gha)tia terous; lecherous. ୨ । ଅବୈଧ
[ଲଟଖ(ଘ)ଟେଇ—ସ୍ତ୍ରୀ] ପ୍ରଣୟେ ଲିପ୍ତ—2. Lewd;
लटघटे लम्पटिया licentious.

ଲଟଗା(କା)ଳି—ଦେ. କ୍ରି. ବିଣ (ସଂ ଲତା)—୧ । (ଲତା ପରି) ଲମ୍ବ
Latagа(ka)li ଭାବରେ—1. Lengthwise (like a
लम्बा हये creeper). ୨ । ହଠାତ୍ (ଲମ୍ବ ହୋଇ ଭୂମିରେ
फटकर, फटसे ଶୋଇବା ପ୍ରକାରେ)—2. All at once (falling prostrate on the ground).
(ଯଥା—ସେ ଭୂଇଁରେ ଲଟଗାଳି ଶୋଇ ପଡ଼ିଲା ।)

ଲଟଘଟ ହେବା—ଦେ. କ୍ରି—(ସ୍ତ୍ରୀ ବା ପୁରୁଷ) ଅନ୍ୟ ବ୍ୟକ୍ତି ସଙ୍ଗେ ପାପ
Lataghata heba ପ୍ରଣୟରେ ଲିପ୍ତ ହେବା—(a male or
लटपट हओया female) To commit adultery.
लटपट होना

ଲଟ ଛିଣ୍ଡା(ଣ୍ଡେ)ଇବା—ଦେ. କ୍ରି—୧ । ଅଳିଆ ସଫା କରିବା—
Lata chinda(nde)iba 1. To clear off any intri-
[ଲଟ ଭୁଟା(ଟେ)ଇବା—ଅନ୍ୟରୂପ] cacy. ୨ । ସମ୍ପର୍କ ଛୁଟାଇବା
ने(न्या)टा(ठा)चुकान —2. To cut off connection.
लटपट तोडना ୩ । ଗୁରୁ ଦାୟିତ୍ୱରୁ ନିସ୍ତାର ଦେବା—
3. To release a person from a grave responsibility.

ଲଟ ଛିଣ୍ଡିବା—ଦେ. ବି—୧ । ଅଡୁଆ ଛୁଟିଯିବା—1. Clearance
Lata chhindiba of complications. ୨ । ସମ୍ପର୍କ
ଲଟ ଛିଣ୍ଡିଯିବା, ଲଟ ଛୁଟିବା, ଲଟ ଯିବା }—ଅନ୍ୟରୂପ ଛୁଟିଯିବା—2. Severance of connection or relationship ୩ । ଗୁରୁ ଦାୟିତ୍ୱରୁ ନିସ୍ତାର

ন্যাটা চুকা,ল্যেটা চুকা, ল্যেঠা চুকে যাওযা 3 Release from
लटपट छूटना a grave responsibility.

**ଲଟପଟ**—ଦେ. ବିଣ (ସ. ଲୁଣ୍ଠ ଧାତୁ ବା ଲଟ୍ ଧାତୁ )—୧ । ଧୂଳି
Latapata ବା କାଦୁଅ ବୋଳି ହୋଇଥିବା; ସର୍ବାଙ୍ଗ—
লু(লু)টপুট लटपट, लदब(फ)द 1. Smeared (with dust or mud) all over the body [ଉ—ଭୁଷଣ୍ଡି ପୋଖରୀ ପଙ୍କରେ ପଡ଼ି ଲଟପଟ ହେଉଅଛି—ଫକୀରମୋହନ, ଛମାଣ ଆଠଗୁଣ୍ଠ । ] ୨ । କାଦୁଅରେ ବା ଅଠାରେ ବା ଲାଳରେ ବିଶେଷଭାବରେ ଗୋଳାଇ ହୋଇଥିବା—2. Bedaubed with mud or gum or slime. ୩ । ( ଜଞ୍ଜାଳରେ ) ଜଡ଼ିତ—3. Entangled, [ ଉ—ହେବାରୁ ଭୂମି ସେ ନେହେ ଲଟପଟ, ଉତ୍ତମ ପଣ ଛାଡ଼ିବାର ପାଠ—ବିଶ୍ୱସୁନ୍ଦର ସଙ୍ଗୀତ । ] ୪ । କାଦୁଅ ଓ ପଙ୍କରେ ଲୁଣ୍ଠିତ—4. Wallowing in mud or dust. ଦେ. ବି—୧ । ଅଡ଼ୁଆ; ଜଞ୍ଜାଳ; ଗୋଳମାଳ— 1. Complication. ୨ । ଆସକ୍ତି; ଦୁଇଜଣଙ୍କ ମଧ୍ୟରେ ପ୍ରଣୟଜନିତ ସମ୍ବନ୍ଧ—2. Attachment due to love.

**ଲଟପଟିଆ**—ଦେ. ବିଣ—୧ । କାଦୁଅ; ଅଠା, ପଙ୍କ ବା ଧୂଳି ବୋଳି
Latapatia ହୋଇଥିବା—1. Smeared or bespattered
লু ল ্টপুট लदफदिया with mud, slime etc.
লটপটে लटपटिया ୨ । ଗୋଳମାଳିଆ—2. Intricate;
চিটচিট(টে) चिटपिट complicated. ୩ । ଅଠାଳିଆ—3. Gummy ୪ । ଚାଲୁଆ;ଲାଳାମୟ—4. Slimy.

**ଲଟଫରମ୍**—ବୈଦେ. ବି—(ଇଂରେଜି ଶବ୍ଦର ଅଶୁଦ୍ଧ ଉଚ୍ଚାରଣ)—
Lata pharam ରେଳ ଷ୍ଟେସନର ପ୍ଲାଟ୍‌ଫର୍ମ୍—The
প্ল্যাটফর্ম প্লেटफारम platform of a Railway station.
[ଲଟ ଫ(ଫା)ର୍ମ—ଅନ୍ୟରୂପ]

**ଲଟଭ**—ସ. ବିଣ. ପୁଂ—ସୁନ୍ଦରବର୍ଣ୍ଣ; ସୁନ୍ଦର—Graceful; beauti-
Latabha (ଲଟଭା—ସ୍ତ୍ରୀ) ful; lovely (Apte).

**ଲଟର ପଟର**—ଦେ. ବିଣ. (ସ. ଲଟ୍ ଧାତୁ)—୧ । ଲଟପଟ; ଭୂଇଁରେ
Latara patara ଗଡ଼େଇ ଗଡ଼େଇ ହୋଇଥିବା—
লটবপটব लोटपोट 1. Wallowing on the ground.
। ଲଟପଟିଆ (ଦେଖ)—2. Latapatia (See).

**ଲଟରା**—ଦେ ବିଣ—( ସ.ଲତା ବା ଜଟିଳ )—ଜଟିଳ; ଗୋଳମାଳିଆ;
Latarā ଅଡ଼ୁଆ—Intricate; complicated. ଦେ.ବି—
গোলমেলে लटपटिया ଲଟ ଇତ୍ୟାଦି ( ଦେଖ )—Lata
লেটা, ন্যাটা, নাটা लटखट etc (See).

**ଲଟରି**—ବୈଦେ. ବି (ଇଂ. ଲଟେରୀ)—ସୁଟି; ଅଦୃଷ୍ଟ ଉପରେ ନିର୍ଭର
Latari লটরী लाटरी କରି, ପଣ ରଖି ଖେଳିବା—Lottery.

**ଲଟରେ ପଡ଼ିବା**—ଦେ. କ୍ରି—ଅଡ଼ୁଆରେ ପଶିବା; ଗୋଳମାଳରେ
Latare pardiba ପଡ଼ିବା—To be involved in
ল্যেঠায় পড়া लटपटमें फंसना trouble. (ଲଟରିରେ ପଡ଼ିବା—
ଅନ୍ୟରୂପ) [ଲଟରେ ପକା(କେ)ଇବା—ସକର୍ମକରୂପ]

**ଲଟ ଲଗା(ଗେ)ଇବା**—ଦେ. କ୍ରି—୧ । ଅଡ଼ୁଆ ଲଗାଇବା; କୌଣସି
Lata lagā(ge)ibā ଗୋଳମାଳ ଆରମ୍ଭ କରିବା—1. To
নাটানাগান लटपटलगाना start complications; to
[ବିପରୀତ—ଲଟ ଛୁଣ୍ଡା(ଣ୍ଡେ)ଇବା] create confusion; to make matters intricate. ୨ । ସମ୍ପର୍କ ଆରମ୍ଭ କରିବା—2. To start a connection.

**ଲଟଲ(ଲା)ଟ**—ଦେ. ଅ—୧। ହଠାତ୍ ଭୂମିରେ ଲମ୍ବ ଭାବରେ ପଡ଼ିବା ବା
Lata la(lā)ta ଶୋଇବା ପ୍ରକାରରେ—1. Suddenly (lying
নতনত; পটপাট लटपट prostrate on the ground), [ଉ—ବହୁଲୋକ ଭୂମିରେ ଲମ୍ବ ହୋଇ ଶୋଇ ପଡ଼ିଲେ କିମ୍ବା ଜଣେ ଲୋକ ବହୁ ଥର ଭୂମିରେ ଲମ୍ବ ହୋଇ ପଡ଼ୁଥିଲେ, "ସେମାନେ ଭୂଇଁରେ ଲଟ ଲଟ ଶୋଇ ପଡ଼ିଲେ" "ସେ ଲଟ ଲଟ ଶୋଇ ପଡ଼ୁଛି"; ବୋଲାଯାଏ ।] ୨ । ଲଟପଟ (ଦେଖ)—2. Lata pata (See).

**ଲଟଲି ପଡ଼ିବା**—ପ୍ରାଦେ (ବାଲେଶ୍ୱର) କ୍ରି—ପେଞ୍ଚ ଖେଳୁଥିବା ଅବସ୍ଥାରେ
Latali pardibā କୌଣସି ଗୋଟିଏ ଗୁଡ଼ିର ସୂତା ଛିଣ୍ଡିଯିବାରୁ ଗୁଡ଼ିଟି ତଳ ଆଡ଼କୁ ଝୁଲିପଡ଼ିବା—(said of a paper kite when its string snaps) To hang down; to come down.

**ଲଟା**—ସ.ବି—(ଲଟ୍ ଧାତୁ=ଶୈଶବୋଚିତ ଭାବ ପ୍ରକାଶ କରିବା + କର୍ତ୍ତୃ. ଅ
Latā + ସ୍ତ୍ରୀ.ଆ)—୧। ଚୂର୍ଣ୍ଣ କୁନ୍ତଳ—1. Ringlet of hair on the forehead. ୨ । କୁସୁମ ଫୁଲ—2. Safflower. ୩ । ଲଟା କରଞ୍ଜ (ଦେଖ)—3 Latā Karañja (See), ୪ । କାମୁକୀ ସ୍ତ୍ରୀ—4 A lewd woman. ୫ । ଗ୍ରାମ୍ୟ ଚଟକ, ଘରଚଟିଆପକ୍ଷୀ—5 The sparrow. ଦେ. ବି—(ସ ଲତା)—
লতা लता,बेल ୧ । ଲତା—1 Creeper. ୨ । ନିବିଡ଼
জংগল; घनाजंगल ଜଙ୍ଗଲ—2 Dense forest. [ଉ—ଦେଖୁଅଛନ୍ତି ଆମ୍ଭେ ବୁଲି ବୁଲି ଲଟା କି ବଣ ଦେଉଅଛୁ ଦେବାଟିକି କୁଠା । କୃଷ୍ଣସିଂହ. ମହାଭାରତ. ବିରାଟ]
নে(ন্যা)টা(ঠা) लटपटी ୩ । (ସ. ଅନିଷ୍ଟ) ଅନର୍ଥ; ଅନିଷ୍ଟ; ଅତ୍ୟାଚାର—3. Oppression; injury. ୪ । ସଂଯୋଗ କରଣ—4 Connecting. ପ୍ରାଦେ (ସମ୍ବଲପୁର) ବି—ଘାସ—Grass. ଦେ.ବିଣ—ସଂଯୁକ୍ତ—Connected.

**ଲଟା ଆମ୍ବ**—ଦେ. ବି. (ସ. ଲତା + ଆମ୍ର) ଆମ୍ରବୃକ୍ଷ ବିଶେଷ—1. A
Latā āmba species of mango tree. whose branches spread on the ground.
লতিআম, লতানেআম लतियाआम [ଦ୍ର—ଏହାର ଡାଳ ଖୁବ୍ ମାଡ଼େ; ଏହା ଲତା ନୁହେଁ, କିନ୍ତୁ ଏହାର ଶାଖାମାନଙ୍କର ଲତା ପରି ବିସ୍ତୃତ ଗୁଣ ଥିବାରୁ ଏହି ନାମ ।] ୨ । ଆମ୍ବ

**ଲଦିବା**— ଦେ. କ୍ରି (ସଂ. ଲବ୍‌ଧ; ପ୍ରା. ଲଦ୍ଧ; ଭୁଲ ଇଂ. Load ଲୋଡ୍)—
Ladibā ୧ । କୌଣସି ପଦାର୍ଥ ଉପରେ ବୋଝ ବା ଭାର
(ଲଦି ଦେବା—ଅନ୍ୟରୂପ) ରଖିବା; ବୋଝାଇ କରିବା—1. To
বোঝাই করা, বোঝাচাপা, লাদা, নাদা load. [ଉ—ଲଦିଲେ
**लादना** କଣ୍ଠା ଲ୍ୟା ତାହାର ଉପରେ । କୃଷ୍ଣସିଂହ. ମହାଭାରତ
(ଲଦା ହେବା—କର୍ମବାଚ୍ୟ) ବନ ।] ୨ । ଇଚ୍ଛା ବିରୁଦ୍ଧରେ
କୌଣସି ବ୍ୟକ୍ତି ଉପରେ କୌଣସି ଭାର ଗୁଡ଼ିବା—2. To
put a load or weight on a person
against his wish. [ଉ—ଆପଣ ଗୁରୁ ହୋଇ
ବସିଥିବା ଠାରେ, ଏତେ ଭାର କଷ୍ଟ ଲଦୁଛ ମୋତ
ଠାରେ । କୃଷ୍ଣସିଂହ. ମହାଭାରତ. ଶାନ୍ତି ।] ୩ । ଉପର୍ଯ୍ୟୁପରି
लागान ପ୍ରହାର କରିବା—3. To give repeated blows.
**लगाना** ୪ । ଉପର୍ଯ୍ୟୁପରି ବୃଷ୍ଟି କରିବା—4. To rain profusely. (ଯଥା—ଦେହରେ ଗୁଡ଼ାଏ ବିଧା ଲଦିବା, ବର୍ଷା
ଅସରନ୍ତି ଅସରା ଲଦିବା ।) ୫ । କୌଣସି ବସ୍ତୁ ଉପରେ
ଅନ୍ୟ ବସ୍ତୁକୁ ରଖିବା ବା ସ୍ଥାପିତ କରିବା—5. To
place a thing on another. [ ଉ—ଶରବଣରୁ
ଯେବେ ହେବାକାଳେ ଶକଟ ହେଲଟି ଯାହା ସେ ବଳେଇ
ମୃଦୁ, ନ ଥିଲ ବଡ଼ ଜଣା, ଏବେ ଯାଉଛି ଶୁଣା ଭୁ ପୁଣି
ଚୂମ୍ବି ତହିଁ ସ୍ତନ ଲଦୁ । କବିସୂର୍ଯ୍ୟ ସଂଗୀତ ]

**ଲଦି ହେବା**—ଦେ. କ୍ରି—୧ । ଆପଣା ଉପରେ ଗୁରୁତର ବୋଝ ଗ୍ରହଣ
Ladi hebā କରିବା—1. To be laden with a heavy
মাথায় লওয়া load. [ଉ—ତଉଦ ହାର ମାଲାମ୍ବର; ଲଦି
**लदे होना** ହୋଇଛି ଅଳଙ୍କାର । ଭୂପତି. ପ୍ରେମପଞ୍ଚାମୃତ ।] ୨ ।
গায়ে পড়া ଅନ୍ୟ ବ୍ୟକ୍ତିର ଉପରେ ଆପଣାର ଶରୀରର ବୋଝକୁ
**लदा होना** ଚପାଇବା—2. To press one's own
weight on another's person. ( ଯଥା—ଏ
ପିଲାଟା ସବୁବେଳେ ମୋ କାଖରେ ଲଦି ହେଲା, ବଡ଼େ
ତଳେ ବସିଲା ନାହିଁ । )

**ଲଙ୍ଗ୍ (ଧାତୁ)**—ସ—୧ । ଲଗ୍ନ ହେବା—1. To be attached
Lan-g (root) to; to stick to. ୨ । ଗମନ କରିବା—
2. To go; to move.

**ଲନ୍ଦଫନ୍ଦ**—ପ୍ରାଦେ (ସମ୍ବଲପୁର) ବିଣ. (ଭୁଲ. ହି. ଏହି ଅର୍ଥରେ ଏହି
Land-phand ଶବ୍ଦ)—ଅପ୍ରତିଭ; ଅପ୍ରସ୍ତୁତ—Nonplussed.

**ଲନ୍ଦଫନ୍ଦ କରିବା**—ପ୍ରାଦେ (ସମ୍ବଲପୁର) କ୍ରି—କୌଣସି ବ୍ୟକ୍ତିକୁ
Land-phand karibā ଅପ୍ରତିଭ କରିବା—To nonpluss
(ଲନ୍ଦଫନ୍ଦ କରି ଛଡ଼ାଇ ଦେବା—ଅନ୍ୟରୂପ) a person.

**ଲନ୍ଦଫନ୍ଦିଆ**—ପ୍ରାଦେ. (ସମ୍ବଲପୁର) ବିଣ—ଜଟିଳ; ଗୋଳମାଳିଆ—
Land-phandiā Intricate.

**ଲନ୍ଦରା**—ଦେ. ବି—ଲେଞ୍ଜରା; ଲେନ୍ଦରା (ଦେଖ)
Landarā Lenjarā; lendarā. (See)

**ଲପ୍ (ଧାତୁ)**—ସ. କ୍ରି—କହିବା—
Lap (root) To speak.

**ଲପ୍‌ଟିବା**—ପ୍ରାଦେ (ସମ୍ବଲପୁର) କ୍ରି. (ସଂ. ଲିପ୍ତ)—୧ । ଛପି କରି
Lap-ṭibā ରହିବା; ଲୁଚକରି ରହିବା; ଲୁଚକରି ଜଗିବା—1. To
लपटा lie in ambush. ୨ । ଲପଟିବା (ଦେଖ)—2. Lapa-
**चिपटाना** ṭibā. ( See ) ଦେ. କ୍ରି—କୁଣ୍ଢାଇବା—
To embrace.

**ଲପ୍‌ଟେଇବା**—ପ୍ରାଦେ (ବାଲେଶ୍ୱର) କ୍ରି—କଟି ଯାଇଥିବା ଗୁଡ଼ିର ଦେହରେ
Lap-ṭeibā ଲାଗିଥିବା ସୂତା ସହିତ, କଟି ନପାଇଥିବା ଗୁଡ଼ିର ସୂତାକୁ
ଛନ୍ଦି ଛନ୍ଦି କରି, ଦୁଇଟି ଗୁଡ଼ିକୁ ଟାଣି ହାର ପାଖକୁ ନେଇ
ଆସିବା—To draw the opponent's kite
towards the victor with the help of the
latter's kite-string.

**ଲପଲପ୍**—ଦେ. ଅ (ଧ୍ୱନ୍ୟନୁକରଣ)—ଆହାର ସମୟରେ ଚର୍ବଣ ଓ
Lap-lap ଲେହନ କରିବାର ଜିହ୍ୱାବ୍ୟାପାର ଜନିତ ଶବ୍ଦ—
লকলক Smacking sound made by the tongu
**लपलप** while eating or licking.

**ଲପ(ଫ)ଙ୍ଗା**—ଦେ. ବି ଓ ବିଣ ପୁଂ (ଫା. ଲଫଙ୍ଗ୍; ଭୁଲ ଇଂ.
Lapa(pha)ṅgā ଲେଫିଙ୍ଗ୍)—୧। (ମନ୍ଦ ଅର୍ଥ) ଅର୍ଥହୀନ ଓ ଆଶ୍ରୟ
(ଲଫଙ୍ଗୀ—ସ୍ତ୍ରୀ) ଶୂନ୍ୟ ହୋଇ ଯେ ବୁଲୁଥାଏ—1. A loafer.
লোচ্চা ୨ । ବ୍ୟଭିଚାରୀ ବା ଦୁଶ୍ଚରିତ୍ର ବ୍ୟକ୍ତି—2. Lecher.
**लफङ्गा** adulterer. ୩ । ଲୁଙ୍ଗ୍‌ଚୁ; ଯେ ଛୋଟ ଛୋଟ ଜିନିଷ
ଚୋରି କରେ—3. A pilferer.

**ଲପଟା**—ଦେ. ବିଣ—(ସଂ. ଲମ୍ବ ଓ ପଟ୍ଟରୁ କିମ୍ବା ଲିପ୍ତରୁ)—ପୁଚ୍ଛବିଶିଷ୍ଟ
Lapaṭā ଓ ଲମ୍ବା (ପଗଡ଼ି)—(turban) Having a long
लपेटा **लपटा** tail. [ ଉ—ଲପଟା ପାଗମାନ ଲୋଟୁଛି
ପିଠିରେ । କୃଷ୍ଣସିଂହ, ମହାଭାରତ ଆଦି ।] ଦେ. ବି.—
ବଡ଼ ଲମ୍ବା ପଗଡ଼ି—Long turban.

**ଲପଟା(ଟେ)ଇବା**—ଦେ. କ୍ରି. (ସଂ. ଲିପ୍ତ)—୧ । ( ପାଗ ବା ବସ୍ତ୍ରକୁ )
Lapaṭā(ṭe)ibā ମୁଣ୍ଡରେ ଜଡ଼ିତ କରି ଗୁଡ଼ାଇବା—1 To
[ଲପ୍ଟା(ଟେ)ଇବା—ଅନ୍ୟରୂପ] wind tightly round the
लपटाना head (said of a long turban or cloth)
**लपटाना** ୨ । ବସ୍ତ୍ରାଦିକୁ ଚଉତି କରି ଭାଙ୍ଗିବା—2. To fold
a cloth. ୩ । କୁଣ୍ଢାଇବା—3. To embrace.

**ଲପଟିବା**—ଦେ. କ୍ରି (ସଂ. ଲିପ୍ତ)—୧ । ଲିପ୍ତ ହେବା; ଜଡ଼ିତ ହେବା—
Lapaṭibā 1. To be tightly attached to; to
(ଲପ୍ଟିବା—ଅନ୍ୟରୂପ) fit in tightly. ୨ । ଆଲିଙ୍ଗନ କରିବା
लपटा, लप्टा 2. To embrace. ୩ । (ମନ୍ଦାର୍ଥ) କୌଣସି
**लपटना** ବ୍ୟକ୍ତି ସଙ୍ଗେ ଅତ୍ୟନ୍ତ ପ୍ରଣୟାସକ୍ତ ହେବା—3. (bad
(ଲେପଟିବା—ଅନ୍ୟରୂପ) sense) To be much addicted to a person. ୪ । ଲୁଚି କରି ବସିବା—
4. To lie concealed; to lie in ambush.
ପ୍ରାଦେ. ( ଗଡ଼ଜାତ ) କ୍ରି—ଲଇଁ ଲଇଁ ଚାଲିବା ବା
ଗୁରୁଣ୍ଡିବା; ଅଣ୍ଠେଇବା—To creep; to walk on
the knees; to crawl.

ଲପନ—ସଂ ବି· (ଲପ୍ ଧାତୁ=କହିବା+ଭାବ. ଅନ)—ଭାଷଣ; କଥନ
Lapana —1. Speaking; talking. ୨ । (କରଣ+ଅନ)—ମୁଖ; ମୁହଁ—Face.

ଲପିତ—ସଂ. ବିଣ· ( ଲପ୍ ଧାତୁ=କହିବା+କର୍ମ. ତ )—କଥିତ—
Lapita Spoken; told· ସଂ ବି. (ଲପ୍ ଧାତୁ=କହିବା+ଭାବ. ତ)—୧ । କଥନ—1. Speaking. ୨ । ବଚନ—2. Speech. ୩। କଣ୍ଠ ସ୍ୱର—3. Voice (Apte).

ଲପିତା—ସଂ. ବି—ଶାର୍ଙ୍ଗିକା ନାମକ ଏକ ଜାତି ପକ୍ଷୀ (ହି. ଶ)—
Lapitā A kind of bird.

ଲପିବା—ଦେ. (ପଦ୍ୟ) କ୍ରି. (ସଂ ଲପ୍ ଧାତୁ)—କହିବା—To speak.
Lapibā (ଉ—ପୁଲକୁ ଥାଏ ପରି, ମୁଁ ଲପୁ ଥିଲେ ଧୀରି । କବିସୂର୍ଯ୍ୟ. ସଙ୍ଗୀତ ।]

ଲପ୍ସିକା—ସଂ. ବି—ମୋହନଭୋଗ; ହାଲୁଆ—Jelly prepared
Lapsikā by frying corn flour in ghee and
মোহনভোগ then adding milk and sugar and
सेरा, लुपसी boiling it. [ଦ୍ର—ସୁଜିକୁ ଉତ୍ତମ ରୂପେ
ଫା· ହଲୁଆ ଘିଅରେ ଭାଜି, ତହିଁରେ ଦୁଧ ଓ ଚିନି ପଣା ମିଶାଇ ତାହା ନିଆଁ ଉପରେ ଫୁଟି କାଠିଆ ହେଲେ ତହିଁରେ ମସଲା ଗୁଣ୍ଡା ଆଦି ଦିଆଯାଇ ଏହା ତିଆରି କରାଯାଏ । ବୈଦ୍ୟଶାସ୍ତ୍ର ମତରେ ଏହା ପୁଷ୍ଟିକର, ଶୁକ୍ରଜନକ, ବଳକର, ବାତ ପିତ୍ତ ବିନାଶକ, ସ୍ନିଗ୍ଧ, ଶ୍ଳେଷ୍ମକର, ରୁଚିଜନକ ଓ ତୃପ୍ତିକର ।]

ଲଫା—ବୈଦେ. ବି. (ଫା. ନଫା; ମୂଳ—ସଂ. ଲାଭ, ଲଭ୍ୟ)—
Laphā ବ୍ୟବସାୟରୁ ପ୍ରାପ୍ତ ଲାଭ—Profit.
লাভ नफा (ଉ—ରଫା ଠାରୁଁ ଲଫା ନାହିଁ—ଢଗ ।]

ଲଫାଫା(ପା)—ବୈଦେ· ବି ( ଆ. ଲଫାଫାହ୍ )—
Laphāphā(pā) ଚିଠିକୁ ବନ୍ଦ କରିବାର ପୁଳିନ୍ଦା ବା ଖୋଳ—
লেফাফা लिफाफा Envelope; cover for letters.

ଲଫାଫା ଦୁ(ଦୋ)ରସ୍ତ—ବୈଦେ. ବି. ( ଫା. ଲଫାଫା ଦୁରୁସ୍ତ )—
Laphāphā du(do)rasta ବହିଃପାରିପାଟ୍ୟ; ବାହାର
লেফাপা দুরস্ত ଅଙ୍ଗୁଳିକୁ ପରିପାଟି କରି ରଖିବା ( କିନ୍ତୁ ଫଳତଃ
लिफाफा दुरुस्त ଭିତରେ ସେପରି ହୋଇ ନ ଥିବା)— Shipshape condition; keeping things outwardly clean· ବିଣ—ବାହ୍ୟ ପରିପାଟି ଯୁକ୍ତ—Ship shape; all right to outward appearances.

ଲଫେଇବା—ପ୍ରାଦେ. (ବାଲେଶ୍ୱର) କ୍ରି—ଶୋଳ ପ୍ରଭୃତି ମାଛ ଧରିବା
Lapheibā ଅଣ୍ଟାରେ ଜୀଅନ୍ତା ମାଛ, କଙ୍କଡ଼ା ଇତ୍ୟାଦି ବନଶୀ କଣ୍ଟାରେ ଗୁନ୍ଥି ତାକୁ ଜଳର ଉପରିଭାଗରେ ଧୀରେ ଧୀରେ ନଚାଇବା—To dangle animal bait by means of the angling rod to allure fish for being caught.

ଲବ—ସଂ. ବି. (ଲୂ ଧାତୁ=ଛେଦନ କରିବା+ଭାବ. ଅ)—୧। ଛେଦନ—
Laba 1. Cutting· ୨। ଉଚ୍ଛେଦ; ବିନାଶ—2. Ruin; destruction. ୩। ଶସ୍ୟକ୍ଷେତ୍ରର ଛେଦନ— 3. Harvesting. ୪ । (+କର୍ମ. ଅ) ଚମରୀଗୋପୁଚ୍ଛର ଲୋମ—4. The hair of the yak's tail. ୫ । କଣା; କଣିକା; ଅଣୁ—5. Minute quantity; particle; atom

[ ଉ—ବିବେଧୋକ୍ତି ଛନ୍ଦକର ନ ଦେଖିଲେ ଲବ ଭଞ୍ଜ. ବୈଦେହୀଶବିଳାସ । ] ୬ । ପୁଷ୍ପରେଣୁ—6. The pollen of flowers. ୭ । ସୂକ୍ଷ୍ମକାଳ; ସୂକ୍ଷ୍ମସମୟ ବିଶେଷ ( ୨ କାଷ୍ଠା ବା ୩୬ ନିମିଷ )—7. A moment. ୮ । ଚକ୍ଷୁର ନିମେଷର ଷାଠିଏ ଭାଗରୁ ଏକଭାଗ ବା ଷଷ୍ଟିତମାଂଶ—8. A minute portion of time; part of the time occupied by one winking of the eye. [ ଦ୍ର—ଚକ୍ଷୁର ନିମେଷର ଷଷ୍ଟିତମାଂଶ ସମୟକୁ 'ଲବ' ବୋଲାଯାଏ ।

୬୦ ଲବ=୧ ନିମେଷ
୧୮ ନିମେଷ=୧ କାଷ୍ଠା
୩୦ କାଷ୍ଠା=୧ କଳା
୩୦ କଳା=୧ କ୍ଷଣ
୨ କଳା=୧ ଲେଶ ।
୧୦ ଗୋଟି ଗୁରୁବର୍ଣ୍ଣର ଉଚ୍ଚାରଣ କାଳ=୧ ପଳ
୧ ପଳ=୬୦ ବିପଳ
୬୦ ପଳ=୧ ଦଣ୍ଡ=୨୪ ମିନିଟ୍
୧ ଘଣ୍ଟା=୨½ ଦଣ୍ଡ
୨ ଦଣ୍ଡ=୧ ଘଡ଼ି=୪୮ ମିନିଟ ପ୍ରାୟ,
୩¾ ଘଡ଼ି=୧ ପ୍ରହର=୩ ଘଣ୍ଟା

ସାଧାରଣତଃ ଲୋକେ ୪ ଘଡ଼ିରେ ପହରେ ବୋଲି ଗଣନ କରନ୍ତି ।

୩୦ ଦଣ୍ଡ=୧୫ ଘଡ଼ି=୪ ପ୍ରହର=୧ ଦିନ=୧୨ ଘଣ୍ଟା ପ୍ରାୟ ।
୮ ପ୍ରହର=୧ ଅହୋରାତ୍ର=୨୪ ଘଣ୍ଟା । ]

୯ । ରାମଚନ୍ଦ୍ରଙ୍କର ଯମଜ ପୁତ୍ରଙ୍କ ମଧ୍ୟରୁ ଅନ୍ୟତର—9. Name of the younger of the twin sons of Rāmachandra. [ ଦ୍ର—ଲଙ୍କାରୁ ଫେରିବା ପରେ ଲୋକନିନ୍ଦାକୁ ଡରି ରାମଚନ୍ଦ୍ର ଅନ୍ତଃସତ୍ତ୍ୱା ସୀତାଙ୍କୁ ନିର୍ବାସିତ କରିବାପରେ ସୀତା ବାଲ୍ମୀକିମୁନିଙ୍କ ଆଶ୍ରମରେ ବାସ କଲେ । ସେହିଠାରେ ତାଙ୍କ ଗର୍ଭରୁ ଯେଉଁ ଦୁଇଟି ଯମଜପୁତ୍ର ଜାତ ହେଲେ, ସେମାନଙ୍କ ମଧ୍ୟରୁ ଲବ କନିଷ୍ଠ ଓ କୁଶ ଜ୍ୟେଷ୍ଠ । ବାଲ୍ମୀକିମୁନି ଏ ଦୁହିଁଙ୍କୁ ରାଜକୁମାରୋଚିତ ସମସ୍ତ ବିଦ୍ୟା ଶିକ୍ଷା ଦେଲେ । ଋଷି ନିଜେ ରାମାୟଣ ରଚନା କରି ରାଜକୁମାରଦ୍ୱୟଙ୍କୁ ତାହା କଣ୍ଠସ୍ଥ କରାଇଲେ । ରାମଚନ୍ଦ୍ର ଅଶ୍ୱମେଧାର୍ଥ ମୋଚନ କରିଥିବା ଯଜ୍ଞାଶ୍ୱକୁ ଏ ଦୁହେଁ ଅଟକାଇ ରଖିବାରୁ ଲକ୍ଷ୍ମଣଙ୍କ ସହିତ ଏମାନଙ୍କର ବିବାଦ ଉପସ୍ଥିତ ହୁଅନ୍ତେ ବାଲ୍ମୀକି ଏ କୁମାର-

ଦ୍ୱୟଙ୍କୁ ଯୁଦ୍ଧରେ ଲକ୍ଷ୍ମଣଙ୍କୁ ପଞ୍ଚାଶ୍ ପ୍ରତ୍ୟର୍ପଣ କଲେ । ଅଶ୍ୱମେଧକୁ ନିମନ୍ତ୍ରିତ ଋଷିଙ୍କ ସଙ୍ଗେ ରାଜକୁମାରଦ୍ୱୟ ଅଯୋଧ୍ୟାକୁ ଯାଇ, ସେଠାରେ ରାମାୟଣ ପାଠ କରିବାରୁ ରାମଚନ୍ଦ୍ର ସେମାନଙ୍କୁ ଆପଣାର ପୁତ୍ର ବୋଲି ଅନୁମାନ କରି ବାଲ୍ମୀକିଙ୍କଠାରୁ ସେମାନଙ୍କ ପରିଚୟ ପାଇ, ପରେ ବାଲ୍ମୀକିଙ୍କ ପରାମର୍ଶରେ ସୀତାଙ୍କୁ ଗ୍ରହଣ କରିବା ନିମନ୍ତେ ଅଣାଇ ପୁଣି ଥରେ ଅଗ୍ନି ପରୀକ୍ଷା କରିବାକୁ ପ୍ରସ୍ତାବ କରନ୍ତେ, ସୀତା ଏହା ଅସ୍ୱୀକାର କରି ପୃଥିବୀ ଗର୍ଭରେ ଲୀନ ହେଲେ । ରାମଚନ୍ଦ୍ର ପୁତ୍ରଦ୍ୱୟଙ୍କୁ ଗ୍ରହଣ କରି କୁଶଙ୍କୁ କୋଶଳ ରାଜ୍ୟରେ ଓ ଲବଙ୍କୁ ଉତ୍ତର କୋଶଳର ରାଜ-ପଦରେ ଅଭିଷିକ୍ତ କଲେ । ଲବ ନିଜ ନାମାନୁସାରେ ଲବକୋଟ ( ଆଧୁନିକ ଲାହୋର ) ନିର୍ମାଣ କରି ସେଠାରେ ରାଜଧାନୀ ସ୍ଥାପନ କଲେ (ହି. ଶ) । ] ୧୦ । (ଗଣିତ) ଭଗ୍ନାଂଶର ବିଭାଜ୍ୟ ରାଶି (ବିପରୀତ-ହର, denominator) 10. ( Arithmetic ) The numerator of a fraction. ୧୧ । ଜାଇଫଳ—11. Nutmeg. ୧୨ । ଲବଙ୍ଗ—12. Cloves. ୧୩ । ଲବଣ; ଲୁଣ —13. Salt. ୧୪ । ଲାବ ନାମକ ପକ୍ଷୀ; ବତର ଚଢ଼େଇ—14. A species of quail. ୧୫ । ଲାମଜ୍ଜକ ( ହି. ଶ. ) ଗନ୍ଧବେଣା—15. Juncus Odoratus. ୧୬ । ( +କର୍ମ. ଅ ) ଲୋମ; ପଶମ— 16. Wool. ଦେ. ଅ –ଅତି ସାମାନ୍ୟରେ; ଟିକିଏ ଟିକିଏ; ଟିକିଏ ମାତ୍ର –Very slightly. [ ପ୍ର— ତାରତମ୍ୟ ବିବେଚନା ଲବ ହୋଇ ନାହିଁ । କବିସୂର୍ଯ୍ୟ. ବିଶୋରଚନ୍ଦ୍ରୀ ଡ. ଗୀତ । ] ଗ୍ରାଦେ. ( କଟକ ସହର ) ବି—ନବକୁମାର ନାମକ ବ୍ୟକ୍ତିର ଡାକ ନାମ—Name for callig Nabakumāra.

**ଲବଙ୍ଗ** —ସଂ. ବି ( ଲୂ ଧାତୁ=ଛେଦନ କରିବା+କର୍ମ ଅଙ୍ଗ )—୧ । Labanga ଜାର; ଉପପତି—1. Paramour; a gallant of a woman. ୨ । ଦେବ କୁସୁମ—2. A sort of heavenly flower. ୩ । ଲବଙ୍ଗ ଗଛର ଶୁଷ୍କ ପୁଷ୍ପ ମୁକୁଳ —3. Cloves. ୪ । ଜମ୍ବୁକାଦି ବର୍ଗର ତରୁ ବିଶେଷ—4. Caryophyllus Aromaticus, Eugenia Crayop; Yilata [ ପ୍ର—ଏହା ମାଲକ୍କା ଦ୍ୱୀପପୁଞ୍ଜ ଓ ମାଲୟ ଦେଶଜାତ ବୃକ୍ଷ । ଏହାର କଢ଼ିକୁ ଶୁଖାଇ ଲବଙ୍ଗରୂପରେ ଏ ଦେଶକୁ ପଠାଯାଏ । ମସଲା ଓ ଔଷଧରୂପେ ଏହା ବ୍ୟବହୃତ ହୁଏ । ମାଲୟଭାଷାରେ ଫୁଲର ନାମ ବୁଙ୍ଗା । ଲବଙ୍ଗ ଫୁଲର ନାମ ବୁଙ୍ଗାଚାଙ୍ଗକେ । ବୈଦ୍ୟ ଶାସ୍ତ୍ରମତରେ ଏହା କଟୁତିକ୍ତରସ, ଲଘୁ, ଚକ୍ଷୁରହିତକର, ଶୀତବୀର୍ଯ୍ୟ, ଅଗ୍ନି ଦୀପକ, ପାଚକ ଓ ରୁଚକର । ଏହା କଫ, ପିତ୍ତ, ରକ୍ତଦୋଷ, ବମନ, ଉଦରାଧ୍ମାନ, ଶୂଳ, କାସ, ଶ୍ୱାସ, କ୍ଷୟ, ହିକ୍କା ରୋଗର ବିନାଶକ ଏହାକୁ ବାଟିକରି ବଟିକା କରି ଖାଇଲେ ଗ୍ରହଣୀ ଓ ଉଦରାମୟ ଆରୋଗ୍ୟ ହୁଏ । ଭାଙ୍ଗଆଦି ଖାଇ ଖୁବ୍ ନିଶା ହେଲେ ଲବଙ୍ଗ ବାଟି ପିଇଲେ ନିଶାର ପ୍ରକୋପ କମିଯାଏ ।] ଦେ. ବି—ତଳ କାନରେ ପିନ୍ଧାଯିବା ଲବଙ୍ଗ ଆକୃତିର ଅଳଙ୍କାର ବିଶେଷ—A sort of ornament shaped like the cloves for being worn on the bores in the lower part of the ears.

ଅନ୍ୟ ସଂ. ନାମ—ଦେବକୁସୁମ, ବିଶଞ୍ଜ, ଶ୍ରୀପ୍ରସୂନକ, ଶ୍ରୀପୁଷ୍ପ, ଶ୍ରୀସଞ୍ଜ୍ଞଲବଙ୍ଗ, ଲବଙ୍ଗ କଳିକା, ଗ୍ରହଣୀହର, ତୋୟଧିପ୍ରିୟ, ବାରିପୁଷ୍ପ, ଭୃଙ୍ଗାର, ଗୀର୍ବାଣକୁସୁମ ଚନ୍ଦନପୁଷ୍ପ, ଦିବ୍ୟଗନ୍ଧ, ଶ୍ରୀପ୍ରସୂନ
ବଙ୍ଗ, ଲବଙ୍ଗ ଲୌଙ୍ଗ
ମ. ଲବଙ୍ଗ କଳିକା
ଗୁ: ଲବିଂଗ
ଆ କରନ୍ ଫୁଲ୍
ଫା. ଲୌଙ୍ଗ, ମେଖକ୍
ତେ. ଲବଙ୍ଗଲୁ
ତା. କିରମ୍ବୁବେର

**ଲବଙ୍ଗକ**—ସଂ. ବି—(ଲବଙ୍ଗ+ସ୍ୱାର୍ଥେ. କ)—ଲବଙ୍ଗ (ଦେଖ) Labangaka Labanga (See)

**ଲବଙ୍ଗ କଳିକା**—ସଂ. ବି—ଲବଙ୍ଗ ଗଛର ଶୁଷ୍କ ପୁଷ୍ପ ମୁକୁଳ— Labanga kalikā Cloves.

**ଲବଙ୍ଗ ତୈଳ**—ସଂ. ବି—ଲବଙ୍ଗରୁ ବୈଜ୍ଞାନିକ ପ୍ରକ୍ରିୟାରେ ନିଷ୍କାସିତ Labanga taila ତୈଳ—The oil of cloves. [ଲବଙ୍ଗ ତେଲ –ଦେଶଜରୂପ]

**ଲବଙ୍ଗ ଲତା**—ସଂ. ବି—ନାରଙ୍ଗାଦି ବର୍ଗର ଲତାଳିଆ ଏକ ପ୍ରକାର ଗଛ Labanga latā ଗଛ-A tree found in Chaṭṭagrāma [ଲବଙ୍ଗଲଉକା—ଅନ୍ୟରୂପ] and Śrihaṭṭa in (East Bengal); Luvunga Scandens; Limonia Scandens; Lavango Scandens (Kirtikar). [ପ୍ର— ଏଥିର ପତ୍ର ତ୍ରିପର୍ଣ୍ଣୀ; ଫୁଲ ଧଳା, ସୁଗନ୍ଧ; ଗ୍ରୀଷ୍ମ କାଳରେ ଫୁଟେ । ଫଳ ବଡ଼ ବଡ଼ ଓ ଲେମ୍ବୁ ପରି । ଏହା ଶ୍ରୀହଟ୍ଟ ଓ ଚଟ୍ଟଗ୍ରାମରେ ଜାତ ହୁଏ । ] ୨ । (ଗୀତଗୋବିନ୍ଦରେ ବ୍ୟବହୃତ ଲବଙ୍ଗଲତା) ମଧୁମାଳତୀ ଲତା । (ଏହାର ଫୁଲ ଧଳା ଓ ନାଲି) [ସଂ. ବାସନ୍ତୀ]—2. A flowering hardy creeper; the Rangoon creeper. ୩ । ରାଧିକାଙ୍କ ଏକ ସଖୀଙ୍କ ନାମ (ହି. ଶ.)— 3. A name of one of Rādhā's companions.

ଲବଙ୍ଗଲତା **ଲବଙ୍ଗପୁରିଆ** ଦେ. ବି—ମିଷ୍ଟାନ୍ନ ବିଶେଷ—A kind of sweetmeat packet pierced with clove [ପ୍ର—ଏହା ଘିଅରେ ଭଜା ହୋଇ ଚିନି ରସରେ ବିବୁରି ହୋଇଥିବା ପୂର ଦିଆ ଲୁଚି । ଏହା ଭଜା ପାନ ପରି ପୁଡ଼ା ଭଜା ଯାଇ ସେଥି ଉପରେ ଗୋଟିଏ ଲବଙ୍ଗ ମରା ହୋଇଥାଏ ।]

**ଲବଙ୍ଗାଦି ଚୂର୍ଣ୍ଣ**—ସଂ. ବି.—ବୈଦ୍ୟଶାସ୍ତ୍ରୋକ୍ତ ଚୂର୍ଣ୍ଣ ବିଶେଷ (ଗ୍ରହଣୀ ଓ Labangādi chūrṇṇa ଅତିସାର ପାଇଁ ବ୍ୟବହୃତ)— A medicinal preparation (powder) for dysentery. [ ପ୍ର—ଲବଙ୍ଗ, ମୁଥା, ମୋଚ-ରସ, ଖାରି, ଧାଇ ଫୁଲ, ଲୋଧ, ଇନ୍ଦ୍ରଜବ, କୁରୁବେଲ,

ଯବକ୍ଷାର, ସୈନ୍ଧବ ଲୁଣ, ରସାଞ୍ଜନକୁ ସମାନଭାଗରେ ଚୂର୍ଣ୍ଣ କରି ଏହା ପ୍ରସ୍ତୁତ ହୁଏ । ହି. ଶ.)

**ଲବଜ୍**—ବୈଦେ. ବି. (କଟକୀ) (ଫା. ଲଫ୍‌ଜ୍)—୧ । ଅକ୍ଷର— Labaj ବାକ୍ୟ, लवज लफ्ज 1. Letter; alphabet. (ଲବ୍‌ଜ—ଅନ୍ୟରୂପ) ୨ । ବୋଲ; କଥା; ଭାଷା—2. Speech; language. ୩ । ବାକ୍ୟ; ଶବ୍ଦ—3. Word. ୪ । (ଫାରସୀଠାରୁ ଭିନ୍ନ ଅର୍ଥ ଅଛି); କୌତୁକ—4. Jest; sport.

**ଲବଜ୍ ସୁମାର(ରି)**—ବୈଦେ. ବି—(କଟକୀ) (ଫା. ଲଫ୍‌ଜ୍ + ସୁମାର୍) Labaja sumāra(ri) କୌଣସି ଦଲିଲରେ ବା ଲେଖାରେ ଥିବା लवज सुमार(रि) ଶବ୍ଦ ବା ଅକ୍ଷରମାନଙ୍କର ସଂଖ୍ୟା ଗଣନା— लफजसुमारि The counting of the number of [ଲବଜ୍‌ସୁମାର(ରି)—ଅନ୍ୟରୂପ] letters or words in a document. [ଦ୍ର—କୌଣସି ସରକାରୀ ଦଲିଲର ନକଲ କରି ଗଲେ ତହିଁର 'ଲବଜ ସୁମାରି' ଅନୁସାରେ ନକଲ ପ୍ରାର୍ଥୀ ବ୍ୟକ୍ତିଙ୍କୁ ଦଲିଲନକଲ କରିବା ବ୍ୟକ୍ତିଙ୍କୁ ପାରିଶ୍ରମିକ ଦେବାକୁ ପଡ଼େ । ]

**ଲବଣ**—ସଂ. ବି—( ଲୂ ଧାତୁ=ଛେଦନ କରିବା + କର୍ତ୍ତୃ. ଅନ); ଏହା Labaṇa ମଇଳାକୁ ଛେଦନ ବା ବିଶ୍ଳେଷଣ କରେ)—କ୍ଷାର ରସ-ଯୁକ୍ତ ଦ୍ରବ୍ୟ ବିଶେଷ; ଲୁଣ—1. Salt [ଦ୍ର—ବୈଦ୍ୟକ ମତରେ ଏହା ପାଞ୍ଚ ପ୍ରକାର ଯଥା— ସୌବର୍ଚ୍ଚଳ, ସୈନ୍ଧବ, ବିଟ, ଔଦ୍ଭିଦ ଓ ସାମୁଦ୍ର । ଏହି ସମସ୍ତଙ୍କୁ ପଞ୍ଚଲବଣ ବୋଲାଯାଏ ।

(୧) ସୌବର୍ଚ୍ଚଳ ଲବଣ—ଏହାକୁ ଦେଶଜ ଭାଷାରେ ସଚଳ ଲବଣ କୁହାଯାଏ । ଏହା 'ସୋଗ୍ର' (soda; unaqua sodium chloride) ଅଟେ ।

(୨) ସୈନ୍ଧବ ଲବଣ — ଏହା ଭାରତର ଉତ୍ତର ପଶ୍ଚିମ ଅଞ୍ଚଳର ସିନ୍ଧୁ ପ୍ରଦେଶର ଖଣିରୁ ଉତ୍ପନ୍ନ ହୁଏ ।

(୩) ବିଟ ଲବଣ—ଏହା କୃଷ୍ଣବର୍ଣ୍ଣ ଓ ଦୁର୍ଗନ୍ଧଯୁକ୍ତ ଏହା ଖଣିରୁ ବାହାରେ ଏବଂ ଖାଦ୍ୟ-ପାଚକ ରୂପେ ଔଷଧରେ ବ୍ୟବହୃତ ହୁଏ ।

(୪) ଔଦ୍ଭିଦ ଲବଣ—ଏହାର ଅନ୍ୟ ନାମ ପାଂଶୁଲବଣ । ଉଦ୍ଭିଦର ପାଉଁଶକୁ ପାଣିରେ ଗୋଳାଇଲେ ପାଣି ତଳେ ଏହି ଲୁଣ ବସିଯାଏ ।

(୫) ସାମୁଦ୍ର ଲବଣ—ଏହାର ଅନ୍ୟ ନାମ କରକଚ ଲୁଣ ବା ପଙ୍ଗା ଲୁଣ । ସମୁଦ୍ର ପାଣିକୁ ଖରାରେ ଶୁଖାଇ ବା କାଆଁରେ ଫୁଟାଇ ଏହି ଲୁଣ ବାହାର କରାଯାଏ ।

ଏହି ପଞ୍ଚବିଧ ଲବଣ ଛଡ଼ା ଆହୁରି କେତେ ପ୍ରକାର ଲବଣ ମଧ୍ୟ ଅଛି । ଯଥା

(୧) କାଚଲବଣ-ଏହି ଲବଣ ଖଣିରୁ ଜାତ ଓ କୃଷ୍ଣବର୍ଣ୍ଣ ।

(୨) ଊଷର ଲବଣ—ଏହାର ଅନ୍ୟ ସଂସ୍କୃତ ନାମ ଦ୍ରୋଣି ଲବଣ ଏବଂ ଦେଶଜ ନାମ ଖାରିଲୁଣ । ଲୁଣକୁ ମାଟିରୁ ପୃଥକ୍ କରିସାରି ଏହି କ୍ଷାରସ୍ୱାଦ ଲବଣ ବାହାର କରାଯାଏ ।

(୩) ରୌମକ ଲବଣ ବା ଶାକମ୍ଭରୀ ଲବଣ— ଏହାର ଅନ୍ୟ ନାମ ଶାମ୍ଭରୀ ଲବଣ । ରାଜପୁତାନାର ଶମ୍ଭର ହ୍ରଦର ଲୁଣି ଜଳକୁ ଶୁଖାଇ ତହିଁରୁ ଏହି ଲବଣ ପ୍ରସ୍ତୁତ କରାଯାଏ । ଖଣିରୁ, ସମୁଦ୍ର ପାଣିରୁ, ପର୍ବତରୁ, ପାଉଁଶରୁ ଓ ଖାରି ମାଟିରୁ ଲବଣ ବାହାରେ । ରାସାୟନିକ ପ୍ରକ୍ରିୟାରେ ମଧ୍ୟ ଲବଣ ବାହାର କରାଯାଏ ।] ୨ । ଲବଣ ସମୁଦ୍ର— 2. The salt sea [ ଦ୍ର—ହିନ୍ଦୁ ପୁରାଣୋକ୍ତ ସପ୍ତ ସମୁଦ୍ର ମଧ୍ୟରୁ ଏହା ଏକତମ । ଏହାର ନାମ କ୍ଷାରସମୁଦ୍ର ବା ଲବଣ ସମୁଦ୍ର । ଏହା ଭାରତର ଦକ୍ଷିଣ ଦିଗରେ ଅବସ୍ଥିତ । ଏହି ସମୁଦ୍ରର ଶତ ଯୋଜନ ଦୂରରେ ପୌରାଣିକ ଲଙ୍କା ଅବସ୍ଥିତ ଥିଲା । ହନୁମାନ୍ ଲମ୍ଫ ଦେଇ ଏହି ସମୁଦ୍ରକୁ ଡେଇଁ ସୀତାଙ୍କୁ ଠାବ କରିଥିଲେ । ରାମଚନ୍ଦ୍ର ଏହି ସମୁଦ୍ରରେ ସେତୁ ବନ୍ଧନ କରିଥିଲେ । ଏହି ସମୁଦ୍ର ମଧ୍ୟରେ ମୈନାକ ପର୍ବତ ଅବସ୍ଥିତ ଥିବା ପୁରାଣ କହିଛି । ୩ । ରାକ୍ଷସ ବିଶେଷ; ଲବଣାସୁର— 3. Name of a demon.

[ଦ୍ର—ଲବଣାସୁର ମଧୁରାକ୍ଷସର ଔରସରେ କୁମ୍ଭୀନସୀ ରାକ୍ଷସୀର ଗର୍ଭରୁ ଜାତ ହୋଇଥିଲା । ଏ ଆପଣା ପିତା ନିକଟରୁ ଶିବଦତ୍ତ ତ୍ରିଶୂଳ ପ୍ରାପ୍ତ ହୋଇ ତହିଁ ବଳରେ ଅତ୍ୟନ୍ତ ଅତ୍ୟାଚାରୀ ହୋଇ ଉଠିଲା ଏବଂ ଉକ୍ତ ଅସ୍ତ୍ର ସହାୟତାରେ ମହାବୀର ମାନ୍ଧାତାଙ୍କୁ ସସୈନ୍ୟ ନଷ୍ଟ କଲା । ଏହାର ଦୌରାତ୍ମ୍ୟ କ୍ରମଶଃ ଅସହ୍ୟ ହେବାରୁ ଯମୁନାକୂଳବାସୀ ଚ୍ୟବନାଦି ମୁନିମାନେ ରାମଚନ୍ଦ୍ରଙ୍କର ଶରଣାପନ୍ନ ହେଲେ । ମଧୁ-କୈଟଭ ରାକ୍ଷସଙ୍କୁ ବଧ କରିବା ସମୟରେ ବିଷ୍ଣୁଙ୍କ ବ୍ୟବହୃତ ଶରମାନ ରାମଚନ୍ଦ୍ର ଶତ୍ରୁଘ୍ନଙ୍କୁ ଦେଇ ଏହାକୁ ବଧ କରିବା ପାଇଁ ପଠାଇଲେ । ଶତ୍ରୁଘ୍ନ ଏ ରାକ୍ଷସକୁ ମଧୁବନରେ ନିହତ କରି ସେହିଠାରେ ରାଜ୍ୟ ସ୍ଥାପନ କଲେ । ଏହି ଲବଣରାକ୍ଷସ ମଧୁପୁରୀ ସ୍ଥାପନ କରିଥିଲା । ପରେ ତାହା ମଥୁରା ନାମରେ ପ୍ରସିଦ୍ଧ ହେଲା— (ହି. ଶ) । ] ୪ । ଷଡ଼ରସ ମଧ୍ୟରୁ ଲୁଣିଆରସ— 4. The saline taste. ସଂ. ବିଣ—୧। କ୍ଷାର ରସଯୁକ୍ତ; ଲୁଣିଆ—1. Saline; salted. ୨ । ଲାବଣ୍ୟଯୁକ୍ତ— 2. Graceful; lovely; charming. ଦେ. ବି— ଲୁଣୀ ନଦୀ—A river in Cuttack district of Orissa. (ଦ୍ର—ଲବଣ ତଟକୁ ବେଢ଼ି ବରଗ୍ରାମ ନାମ । ପ୍ରାଚୀ. ଶାସ୍ତ୍ରବିଭକ୍ତି ଗୀତା । )

**ଲବଣ କିଂଶୁକା**—ସଂ. ବି (ବୈଦ୍ୟକ)—ମହା ଜ୍ୟୋତିଷ୍ମତୀ ଲତା; ଏକ Labaṇa kiṁśukā ପ୍ରକାର ବଡ଼ ଫୁଟଫୁଟିକା—Name of ଅନ୍ୟ ସଂସ୍କୃତ ନାମ—ତେଜୋବତୀ, ଅଗ୍ନିଶିଖା, a phosph- ଅଗ୍ନିଫଳା, ସୁବର୍ଣ୍ଣକଲି, କଙ୍ଗୁନୀ, କନକପ୍ରଭା orescent বড় লতা ফটকী बड़ी माल कंगुनी creeper.

**ଲବଣ ଚ୍ଚମରୀ**—ଦେ. ବି— ଲୁଣ ଚଉଁରୀ ( ଦେଖ ) Labaṇa chāmari Luṇa chauṅri ( See )

ସ୍ତ୍ରୀ ଆଚାର ବିଶେଷ (ଉ—ଲବଣ ଗୃମସ ଦୂଳେ ଲାବଣ୍ୟ କୋମଳା ।
**ଲାବା ପରଭନ** ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।)
(ଲବଣ ଚଉଁସୀ —ଅନ୍ୟରୂପ)

**ଲବଣ ତୃଣ**—ସ. ବ. ( ବୈଦ୍ୟକ )—୧ । ଲୁଣି ଶାଗ; ଏକ ପ୍ରକାର ଲୁଣା ତୃଣ; ଲୋଣୀ—1. A sort of saline grass; Indian Purslane; Ionidicum Suffruticosum.
Labana truna
ନୋନା ঘাস, হুন নোড়া
**লোনী, লোনিয়া**
ଅନ୍ୟ ସଂସ୍କୃତ ନାମ—ଲୋଣ ତୃଣ, [ ଦ୍ର—ଏହା ଅଣ୍ଡମାନଙ୍କର ତୃଣାମ୍ଳ, ପଟୁତୃଣ, ଅମ୍ଳକାଣ୍ଡ ପୁଷ୍ଟିକର । ଏ ଶାଗ ୨ ପ୍ରକାର—ଲୋଣୀ ଓ ବୃହଲ୍ଲୋଣୀ ।]

**ଲବଣ ତ୍ରୟ**—ସ. ବ. ( ୬ଷ୍ଠୀ ତତ୍ )-- (ବୈଦ୍ୟକ) ସୈନ୍ଧବ, ବିଟ ଓ ରୁଚକ ଲବଣ—Three kinds of salt mentioned in Hindu medical tieatrses.
Labana traya

**ଲବଣ ଧେନୁ**—ସ. ବ. (ମଧ୍ୟପଦଲୋପୀ କର୍ମଧା)—ଦାନାର୍ଥ କଳ୍ପିତ ଲବଣ ନିର୍ମିତ ଧେନୁ—The image of a cow made of salt and given to Brāhmanas.
Labana dhenu
[ଦ୍ର—ଗୋମୟ ଲିପ୍ତ ସ୍ଥାନରେ କୁଶାସନ ଉପରେ ୧୬ ଦୋଣୀ ଲୁଣ ଗଦା କରି ଏହାକୁ ଗାଈ ରୂପେ କଳ୍ପନା କରାଯାଏ । ଏହା ପାଖରେ ୪ ଦୋଣୀ ଲୁଣ ଅଲଗା ଗଦା କରି ତାକୁ ବାଛୁରୀ କଳ୍ପନା କରାଯାଏ । ୪ ଖଣ୍ଡି ଆଖୁ ରଖି ଗାଈର ଚାରି ଗୋଡ଼, ସୁନା ରଖି ମୁହଁ ଓ ଶିଂଘ, ରୂପା ରଖି ଖୁରା, ଫଳ ରଖି ଦାନ୍ତ, ଚନ୍ଦନ ରଖି ନାକ, ଗନ୍ଧ ଦ୍ରବ୍ୟକୁ ନାକ, ଲହୁଣୀକୁ ସ୍ତନ, ସୂତାକୁ ପୁଚ୍ଛ, ତମ୍ବା ପତ୍ରକୁ ଗୋରୁ ଚର୍ମ, କୁଶକୁ ଲୋମ ଓ କଂସାକୁ ଦୁଧ ଦୁହାଁ ଠେକ କଳ୍ପନା କରି ଏହାକୁ ପୂଜା କରି ବ୍ରାହ୍ମଣକୁ ଦାନ କରାଯାଏ । ଏ ଦାନର ମାହାତ୍ମ୍ୟ ବରାହ ପୁରାଣରେ ବର୍ଣ୍ଣିତ ହୋଇଅଛି—ହି. ଶ]

**ଲବଣ ବର୍ଷ**—ସ. ବ—ପୁରାଣ ମତରେ କୁଶ ଦ୍ୱୀପର ଅନ୍ତର୍ଗତ ବର୍ଷ ବା ଦେଶ—Name of a mythological country.
Labana barsha

**ଲବଣ ଭାସ୍କର**—ସ. ବ—ଅଜୀର୍ଣ୍ଣର ଔଷଧ; ବୈଦ୍ୟଶାସ୍ତ୍ରୋକ୍ତ ଲବଣତ୍ରୟ ଦ୍ୱାରା ପ୍ରସ୍ତୁତ ଚୂର୍ଣ୍ଣ, ଭାସ୍କର ଲବଣ—A medicinal powder for indigestion.
Labana bhāskara

**ଲବଣ ମେଦ**—ସ. ବ—ସାଧାରଣ ଲୁଣ (ହି. ଶ) Common salt.
Labana meda

**ଲବଣ ମେହ**—ସ. ବ—ସୁଶ୍ରୁତୋକ୍ତ ମେହ ରୋଗ ବିଶେଷ—A kind of gonorrohea.
Labana meha

**ଲବଣ ଯନ୍ତ୍ର**—ସ. ବ—ଦୁଇ ମୁହିଁ ଥିବା ପାତ୍ର ଦୁଇଟିର ମୁହଁ ଯୋଡ଼ି କରି ତିଆର କରାଯିବା ଯନ୍ତ୍ର, ଯହିଁରେ କେତେକ ଔଷଧର ପାକ ହୁଏ ଓ ଯହିଁରୁ ଗୋଟିଏ ପାତ୍ରକୁ ଲୁଣରେ ପୂର୍ଣ୍ଣ କରାଯାଏ (ହି ଶ)—A kind of contrivance for preparing some medicine with the help of 2 double-mouthed pots one of which is filled with salt.
Labana jantra

**ଲବଣ ସମୁଦ୍ର**—ସ. ବ—ଲବଣ ୨ (ଦେଖ) Labana 2. (See)
Labana samudra
( ଲବଣ ସାଗର—ଅନ୍ୟରୂପ )

**ଲବଣା**—ସ. ବ (ଲବଣ+ଆ—୧ । ଲାବଣ୍ୟ—1. Charm; grace. ୨ । ଦୀପ୍ତି; ଔଜ୍ଜ୍ୱଲ୍ୟ—2 Lustre; brilliance. ୩ । ନଦୀ ବିଶେଷ—3. Name of a river. ୪ । ଯେ ଶତ୍ରୁ କର୍ତ୍ତୃକ ନିହତ ହୋଇଅଛି; ନିହତ ଶତ୍ରୁକ ବ୍ୟକ୍ତି—4. One who has been killed by the enemy. ୫ । ମହାଜ୍ୟୋତିଷ୍ମତୀ ଲତା—5. Cardiospermum Helicacabum. ୬ । ଅମ୍ଳ ଆଦି ଖଟା ଫଳର ରସରେ ଲୁଣ ଦେଇ ପ୍ରସ୍ତୁତ କରାଯିବା ପାଚକ ପଦାର୍ଥ (ହି. ଶ)—6. A preparation for indigestion. ୭ । ଗୁଙ୍ଗୁଡ଼ (ହି. ଶ)—7. Tray. ୮ । ଅମ୍ଳଲୋଣୀ ଶାକ (ହି. ଶ)—8. Purslane.
Labanā

**ଲବଣାକର**—ସ. ବ (୬ଷ୍ଠୀ ତତ୍; ଲବଣ+ଆକର)—ଲୁଣର ଖଣି—Salt mine.
Labanākara

**ଲବଣାକ୍ତ**—ସ. ବଣ (୩ୟା ତତ୍)—୧ । ଲୁଣ ଗୋଳା—1. Smeared with salt; salted. ୨ । ଲୁଣିଆ—2. Saline.
Labanākta

**ଲବଣାଚଳ**—ସ. ବ—ମତ୍ସ୍ୟପୁରାଣୋକ୍ତ ଲୁଣଗଦାର ଦାନ (ହି. ଶ)—A kind of gift to Brahmans of a heap of salt.
Labanāchala

**ଲବଣାତ୍ମକ**—ସ. ବଣ (ବହୁବ୍ରୀହି; ଲବଣ+ଆତ୍ମା+କ)—ଲବଣମୟ; ଲୁଣିଆ—Saline.
Labanātmaka

**ଲବଣାମ୍ବୁ(ମ୍ଭ)**—ସ. ବ (ଲବଣ+ଅମ୍ବୁ, ଅମ୍ଭ)—ଲୁଣିପାଣି—Saline water.
Labanāmbu(mbhah)

**ଲବଣାମ୍ବୁଧି**—ସ ବ (ଲବଣ+ଅମ୍ବୁଧି)—ଲବଣ ୨ (ଦେଖ) Labana 2. (See)
Labanāmbudhi

**ଲବଣାଳୟ**—ସଂ. ବ—ଲବଣ ରାକ୍ଷସଦ୍ୱାରା ସ୍ଥାପିତ ମଧୁପୁରୀ (ଯାହା ପରେ ମଥୁରା ନାମରେ ପ୍ରସିଦ୍ଧ ହେଲା)—Name of Madhupura which was afterwards known as Mathurā.
Labanālaya

**ଲବଣାଶ୍ୱ**—ଦେ. ବ—ଜନୈକ ଋଷି— The name of a sage.
Labanāswa [ଉ—ସହସ୍ର ପାଦ ସ୍ଥୂଳକର୍ଣ୍ଣ ଲବଣାଶ୍ୱ । କୃଷ୍ଣସିଂହ, ମହାଭାରତ ବନ ।]

**ଲବଣାସୁର**—ସଂ. ବ (ମ ସଂ ଲୋ)—ଲବଣ ୩ (ଦେଖ) Labana 3. (See)
Labanāsura

**ଲବଣିଆ**—ଦେ. ବଣ—ଲୁଣିଆ; ଲବଣଯୁକ୍ତ—Salted, saline.
Labaniā [ଉ—ନାହିଁ ଲବଣିଆ ନ ଭାଜୁ । ଭଞ୍ଜ. ବୈଦେହୀଶ-
**নোনিয়া** ବିଳାସ ।]

**ଲବଣିକା**—ସଂ. ବ—ଲୁଣ ଲୁଣିଆ (ଦେଖ) Lunaluniā. (See)
Labanikā

**ଲବଣୀ**—ସଂ. ବ—ଏକ ପ୍ରକାର ଆତ, ନେଳିଆ ଆତ—A sort of apple; bullock's heart; Anona Reticulata-
Labani

ନୋନାଆତା ଦେ. ବି—୧ । ( ସଂ. ନବନୀତ ) ନବନୀତ;
**ନନୀ** ଲହୁଣୀ—1. Butter. (ଉ—ଦଧି ଦାଣ୍ଡି ମଧ୍ୟେ ଲବଣୀ ଥିଲା
**नेहल** ପର ଅର୍ଥ ଧର୍ମ ବୁଇରେ କାମଦଣ୍ଡଧାଣ୍ଡୀ । କୃଷ୍ଣସିଂହ. ମହାଭାରତ ଶାନ୍ତି ।) ୨ । (ସ୍ତ୍ରୀ) ଲାବଣ୍ୟବତୀ ନାମ୍ନୀ ସ୍ତ୍ରୀର ଡାକ ନାମ—
2. (Feminine) Name for calling 'Lābanyabati.'

**ଲବଣୀ ପିତୁଳା**—ଦେ. ବି. (ସ. ନବନୀତ, ପୁତ୍ତଳିକା)—୧ । ନବନୀତ
Labanī pitulā ନିର୍ମିତ ପ୍ରତିମା—1. An image made
ନନୀ ପୁତୁଲ of butter. ୨। (ଲକ୍ଷଣାର୍ଥ) ଅତି କୋମଳ ଶରୀର-
**नेहलका पुतला** ବିଶିଷ୍ଟ ବ୍ୟକ୍ତି—2. (figurative) A very delicate or soft bodied person.

**ଲବଣୋତ୍ତମ**—ସ. ବି (୭ମୀ ତତ୍)—ସୈନ୍ଧବ ଲବଣ—
Labanottama Rock salt.

**ଲବଣୋତ୍ଥା**—ସ. ବି—କ୍ଷୀରକଙ୍କୋଳୀ ଲତା (ଉ. ଶ)—Cardio-
Labanotthā spermum Helicacabum

**ଲବଣୋଦ**—ସ. ବି. (ଲବଣ+ଉଦ)—୧ । ଲୁଣି ପାଣି—1 Salt
Labanoda water. ୨ । ଲବଣ ୨ ( ଦେଖ )
(ଲବଣୋଦକ—ଅନ୍ୟରୂପ) 2. Labana 2 ( See )

**ଲବଣୋଦଧି**—ସ. ବି—ଲବଣ ୨ ( ଦେଖ )
Labanodadhi Labana 2 ( See )

**ଲବଧ**—ଗ୍ରା. ବି ଓ ବିଣ. (ପଦ୍ୟ) (ସଂ. ଲବ୍ଧ)—ଲବ୍ଧ ( ଦେଖ )
Labadha लबध **लबध** Labdha ( See )

**ଲବନ**—ସଂ. ବି. (ଲୂ ଧାତୁ+ଭା. ଅନ)—୧ । ଛେଦନ—
Labana 1. Cutting. ୨ । (+କରଣ. ଅନ) ଖଡ୍ଗାଦି
ଲବନୀୟ } ବିଣ ଛେଦନାସ୍ତ୍ର—2. Cutting weapon. ୩ ।
ଲବ୍ୟ } (+ଭାବ. ଅନ) କ୍ଷେତ୍ରର ଶସ୍ୟ ଗଛ କାଟିବା
(ଉ. ଶ)—3. Reaping; mowing or cutting of ripe corn plants. ୪ । (+ସଂଜ୍ଞାର୍ଥ. ଅନ)
ଶସ୍ୟ କାଟିବା ମୂଲିଆଙ୍କୁ ଦିଆଯିବା ଧାନ୍ୟାଦି (ଉ. ଶ)—
4. Wages in kind paid to reapers.

**ଲବଣୀ**—ସଂ. ବି—ଆତ ଫଳ ଓ ଗଛ (ଉ. ଶ)—
Labanī Custard apple (tree and fruit).

**ଲବନ୍ଦି(ନ୍ଧି)ଆ**—ପ୍ରାଦେ. (ସମ୍ବଲପୁର) ବି. ( ସଂ. ଅବଲମ୍ବନ )—
Labandi(ndhi)ā ଶିକୁଳିର ଓହୋଳା ହୋଇଥିବା ଦୀପ ପଣ୍ଡ
ଅଲୋକ ଦେବାର ଏକ ପ୍ରକାର ଡିବିରା ପାତ୍ର—An oil lamp suspended with a chain.
[ଦ୍ର—ଏହାକୁ ଘରର ବା ଦେବାଳୟର ଛାତରୁ ଓହଳାଇ, ଏଥିରେ ତେଲ ଓ ବଳତା ଦେଇ ଦୀପ ରୂପେ ବ୍ୟବହାର କରନ୍ତି, ଅଥବା ଜଳନ୍ତା ଦୀପଟିଏ ଏହା ଉପରେ ଥୋଇ ଦିଅନ୍ତି ।]

**ଲବ ମାତ୍ର(ରେ)**—ଦେ. କ୍ରି . ବିଣ. (ସଂ. ଲବ ମାତ୍ର)—୧ । ଅଣୁମାତ୍ର;
Laba mātra(re) ଲେଶ ମାତ୍ର—1. Very slightly; a
लव मात्रे bit, a little. ୨ । କ୍ଷଣ ମାତ୍ର—2. For a
**लव मात्र** moment. ବିଣ ଓ ବି—କିଞ୍ଚିନ୍ମାତ୍ର—A little, (ଲବ ମାତ୍ରକ—ଅନ୍ୟରୂପ) a whit. (ଉ—ମୋର ଏଥିରେ ଲବ ମାତ୍ର ଦୋଷ ନାହିଁ ।)

**ଲବରଙ୍ଗ**—ପ୍ରାଦେ. (କଟକ ସହର) ବି—ନବ ରଙ୍ଗ ( ଦେଖ )
Labaranga Naba ranga (See)

**ଲବରା**—ପ୍ରାଦେ.(ସମ୍ବଲପୁର ଓ ଗଡ଼ଜାତ) ବିଣ—ଖେଉଡ଼ା—A term
Labarā of abuse meaning base-born.

**ଲବଲୀ**—ସ. ବି—ନଅର କୋଳି—Phyllanthus Distichus;
Labalī Otaheite gooseberry; Cicca Disticha.
ନୋଢ, ନୋୟାଡ଼ି [ଦ୍ର—ଏହା ସ୍ଵୁସ୍ଥି ଅଦି ବର୍ଗର ଫଳବୃକ୍ଷ ।
**हरफरी** ଏହାର ଫଳ ଅଁଳା କୋଳି ଭଳି । ବର୍ଷକୁ ବର୍ଷ ଫଳ
(ଲବଳୀ ପାଣ୍ଡୁ—ଅନ୍ୟରୂପ) ଝଡ଼େ; ଫଳ ଅମ୍ଳ ଓ ଈଷତ୍ କଷା ।]
(ଅନ୍ୟ ସଂସ୍କୃତ ନାମ—ସୁଗନ୍ଧମୂଳା, କୋମଳବଲ୍କଳା, ପାଣ୍ଡୁ)

**ଲବ ଲେଶ(ଶେ)**—ସଂ. ଅ. ( ଏକାର୍ଥକ ସହଚର )—୧ । କିଞ୍ଚିନ୍ମାତ୍ର;
Laba lesa(se) ସାମାନ୍ୟ ମାତ୍ର, କ୍ଷଣ ମାତ୍ର—1. A little: a bit, a whit. (ଉ—ନାନା ପ୍ରକାରେ କୃଷ୍ଣ ରସେ ଦଣ୍ଡେ ଘଡ଼ିଏ ଲବ ଲେଶ । ଭୂପତି. ପ୍ରେମପଞ୍ଚାମୃତ ।)
୨ । ଅତ୍ୟଳ୍ପ ସଂସର୍ଗ—2. Slightest concern.

**ଲବା**—ପ୍ରାଦେ ( କଟକ ସହର ) କ୍ରି—ନେବା—To take. ବି—
Labā ନବକିଶୋର ନାମକ ବ୍ୟକ୍ତିର ଡାକ ନାମ—A name for calling Nabakisora.

**ଲବାକି**—ବୈଦେ. ବି ( ଫା )—ବାକ୍ୟବୁଲି—Bragging;
Labāki boasting. ଦେ. ବିଣ ( ପୁଂ ଓ ସ୍ତ୍ରୀ ) ( ସଂ.
लबाबी ଲପ ଧାତୁ )—୧ । ବକବାଦୀ; ଗପୁଡ଼ି—1.
**डींग, लबाकी** Boastful; bragging. ୨ । ଲମ୍ପଟ—
**लबासी(र)** 2. Lecherous, ୩ । ମିଥ୍ୟାବାଦୀ—3. Lying.

**ଲବାଣକ**—ସଂ. ବି ( ଲୂ ଧାତୁ=ଛେଦନ କରିବା+କରଣ ଆଣକ )—
Labānaka ୧ । ଖଡ୍ଗାଦି ଛେଦନାସ୍ତ୍ର—1. A cutting weapon. ୨ । ଦାଆ; ଦାଆ—2. Sickle. ୩ ।
କଟୁରୀ—3. Billhook.

**ଲବା(ବେ)ଦା**—ବୈଦେ. ବି.—[ଫା; ବସ୍ତୁ ଏହା ପର୍ତ୍ତୁଗୀଜ୍ ଲୋବା(=
Labā(be)dā ଚିଲା ପୋଷାକ) ଓ ଅବାଦା(=ଯେଉଁ ପୋଷାକର
लबदा **लबादा** ପ୍ରାନ୍ତ ଲେଉଟା ହୋଇଥାଏ) ରୁ ଆସିଛି]—୧ ।
ଜୋବା; ପୋଷାକ ଉପରେ ପିନ୍ଧା ଯିବା ଲମ୍ବ ଓ ଢିଲା ଜାମା;
ମୁସଲମାନମାନଙ୍କ ବ୍ୟବହୃତ ଲମ୍ବା ମୋଟା କୁର୍ତ୍ତା—
1. A long and loose overcoat worn by Mahomedans; a cloak; toga. ୨ । ବର୍ଷା-
ପାଣିରୁ ଦେହକୁ ରକ୍ଷା କରିବା ପାଇଁ ବେକ ଠାରୁ ଗୋଡ଼
ପର୍ଯ୍ୟନ୍ତ ଲମ୍ବିଥିବା ବଡ଼ କୋଟ; ବର୍ଷାତି—
2. A waterproof coat.

**ଲବାନ**—ବୈଦେ. ବି—(ଫା. ଲୁବାନ୍)—ଲୋବାନ୍ (ଦେଖ)
Labān Lobān (See)

**ଲବାବ୍**—ପ୍ରାଦେ. (କଟକ ସହର) ବି—ନବାବ (ଦେଖ)
Labāb Nabāba (See)

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇୟ | ଉଅ | ଣ୍ଟ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଲୃ | ମେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଙ୍କ | ନ୍ମ |

ଲବାବି—ପ୍ରାଦେ. (କଟକ ସହର) ବି —ନବାବି (ଦେଖ)
Labābi Nabābi (See)

ଲବା ଲବ୍—ବୈଦେ. ଅ. (ଫା.)—ମୁହଁ ପର୍ଯ୍ୟନ୍ତ ଭର୍ତ୍ତି ହୋଇଥିବା—
Labā lab Full to the brim.
କানায় কানায় लबालब

ଲବି—ସ.ବିଣ—(ଲୂ ଧାତୁ=ଛେଦନ କରିବା+କର୍ମ ଇ)—ଛିନ୍ନ; ଛିନ୍ନ;
Labi ଜୀର୍ଣ୍ଣ; ଛିଦ୍ରୀକୃତ—Torn; worn out; perforated.

ଲବିକା—ସ. ବି—(ଲବ+କ+ଆ)—୧ । ଛେପ; ପାଟିର ଲାଳ—
Labikā 1. Saliva. ୨ । ଶରୀରର ବର୍ଣ୍ଣହୀନ ରସ; ଲସା—2. Lymph.

ଲବିତ୍ର—ସଂ ବି—(ଲୂ ଧାତୁ=ଛେଦନ କରିବା+କରଣ. ଇତ୍ର)—
Labitra କତୁରୀ, ଦାଆ ଆଦି ଛେଦନାସ୍ତ୍ର—Cutting instrument, such as sickle, billhook. ବିଣ—(+କର୍ତ୍ତୃ. ଅତ୍ର)—ଛେଦନକାରକ—Cutting.

ଲବିନ—ପ୍ରାଦେ. (କଟକ ସହର) ବି. ଓ ବିଣ.—ନବୀନ (ଦେଖ)
Labina Nabina (See)

ଲବିନା—ପ୍ରାଦେ. (କଟକ ସହର) ବି—ନବୀନା (ଦେଖ)
Labinā Nabinā (See)

ଲବେ(ବ୍ବେ)—ଦେ.କ୍ରି. ବିଣ—(ସ. ଲବ) - ଲବ ମାତ୍ର; କିଛି ମାତ୍ର; ଅଣୁ
Labe(bbe) ମାତ୍ର; କଣେ ମାତ୍ର—A little; at all.
[ଭୂ—ଏଥିରେ ସନ୍ଦେହକୁ ନ କର ବାବୁ ଲବେ । କୃଷ୍ଣସିଂହ. ମହାଭାରତ. ଆଦି ।] ପ୍ରାଦେ. (କଟକ ସହର) ବି. ଓ ବିଣ—ନବେ (ଦେଖ)—Nabe (See)

ଲବେକୁର୍ଡ଼ି(ଲି)—ପ୍ରାଦେ (ଗଞ୍ଜାମ) ବି—ଲଟା ବେଁଣ୍କୋଳି (ଦେଖ)
Labeṅkurḍi(li) Laṭā beṅkoḷi (See)
[ଲି ବେଙ୍କୋଳି(ଡ଼ି)—ଅନ୍ୟରୂପ]

ଲବେଜାନ୍—ବୈଦେ.ବିଣ—(ଫା. ଲବ୍=ଓଷ୍ଠ+ଇ=ରେ+ଜାନ୍=
Labejān ପ୍ରାଣ)—୧ । ହଇରାଣ; ଓଷ୍ଠାଗତପ୍ରାଣ; ପ୍ରାଣାନ୍ତକ କଷ୍ଟ ପାଉଥିବା—1. Put to extremest trouble; suffering utmost trouble. ୨ । ବ୍ୟାକୁଳ; 2. Troubled; harassed.
লবেজান लबेजान

ଲବେଜାନ କରିବା—ଦେ. କ୍ରି—୧ । ହଇରାଣ କରିବା; କୌଣସି
Labejan karibā ବ୍ୟକ୍ତିଙ୍କୁ ପ୍ରାଣାନ୍ତକ କଷ୍ଟ ଦେବା—1. To put a person to extremest trouble. ୨ । କୌଣସି ବ୍ୟକ୍ତିଙ୍କୁ ବ୍ୟାକୁଳ କରିବା, ଅତ୍ୟାଚାର କରିବା—2. To oppress or persecute a person.
লবেজান করা लबेजान करना

ଲବେଦାର୍—ବୈଦେ. ବିଣ—(ଫା. ଯେ ଲବାଦା ପିନ୍ଧିଅଛି)—ଫିଟ୍‌ଫାଟ୍;
Labedār ଲମ୍ବ ଗାଉଣପିନ୍ଧା; ପୋଷାକପରିଚ୍ଛଦଦ୍ୱାରା ଭୂଷିତ—Gaily dressed; foppish.
লবেদার छैला

ଲବେମାତ୍ର—ଦେ. ଅ—ଲବ ମାତ୍ର (ଦେଖ)
Labe mātra Laba mātra (See)
লবমাত্র लव मात्र
[ଭୂ—ଜାଣିଲେ ବେଳ ସେନା ବେଳଙ୍କ ସ୍ମୃତିରେ ଲବେ ମାତ୍ର । ସୁଧାକାଥ. ମହାଯାତ୍ରା ।]

ଲବ୍ଧ—ସଂ. ବିଣ—(ଲଭ ଧାତୁ=ପ୍ରାପ୍ତ ହେବା+କର୍ମ. ତ)—୧ ।
Labdha ପ୍ରାପ୍ତ—1. Got; received, obtained; attained. ୨ । ଅର୍ଜ୍ଜିତ; ଉପାର୍ଜ୍ଜିତ—2. Acquired; earned; gained. ୩ । ଫଳରୂପେ ପ୍ରାପ୍ତ—3. Received or got as a result ୪ । ଲାଭରୂପେ ପ୍ରାପ୍ତ—4. Earned as profit. ସ. ବି (ଗଣିତ) ୧ ଭାଗଫଳ—1. (arithmetic) Quotient. ୨ । (ହିନ୍ଦୁ ସ୍ମୃତି) ପନ୍ଦର ପ୍ରକାର ଦାସଙ୍କ ମଧ୍ୟରୁ ଏକ ଶ୍ରେଣୀ—2. One of the 16 classes of slaves or servants mentioned in the Hindu codes.
[ଦାସ ତଳେ ଟୀକା ଦେଖ]
ଦେ. ବି—( ସଂ. ଲବ୍ଧ )—୧ । ଲବ୍ଧି; ଲାଭ—1. Profit. ୨ । ଆୟ—2. Income. ୩ । ଶେଷ ଫଳ—3. Final result.

ଲବ୍ଧ କାମ—ସଂ. ବିଣ. ପୁଂ—(ବହୁବ୍ରୀହି; ଲବ୍ଧ ହୋଇଅଛି କାମ=
Labdha kāma କାମନା ଯାହାଦ୍ୱାରା)—ଯାହାର ବାସନା ବା ଇଚ୍ଛା ପୂର୍ଣ୍ଣ ହୋଇଅଛି—One who has got what he desired; having one's desires fulfilled.
[ଲବ୍ଧକାମା—ସ୍ତ୍ରୀ]
[ଲବ୍ଧକାମୀ—ଦେ. ରୂପ]
(ଲବ୍ଧ କାମତା—ବି)

ଲବ୍ଧ କୀର୍ତ୍ତି—ସଂ. ବିଣ. ପୁଂ ଓ ସ୍ତ୍ରୀ—(ବହୁବ୍ରୀହି)—ବିଖ୍ୟାତ—
Labdha kirtti Celebrated.
(ଲବ୍ଧକାମା, ଲବ୍ଧ ଶବ୍ଦ, ଲବ୍ଧ ଯଶାଃ —ଅନ୍ୟରୂପ)

ଲବ୍ଧ ଚେତାଃ—ସଂ. ବିଣ—(ବହୁବ୍ରୀହି; ଲବ୍ଧ+ଚେତସ୍; ୧ମା.
Labdha chetāh ୧ବ.)—ଯେ ସଂଜ୍ଞା ବା ଚେତା ଲାଭ କରିଅଛି—Restored to consciousness; come to one's senses.
(ଲବ୍ଧସଂଜ୍ଞ—ଅନ୍ୟରୂପ)

ଲବ୍ଧ ଜନ୍ମା—ସଂ. ବିଣ—(ବହୁବ୍ରୀହି, ଲବ୍ଧ+ଜନ୍ମନ୍, ୧ମା. ୧ବ.)
Labdha janmā ଯେ ଜନ୍ମ ଲାଭ କରିଅଛି; ଜାତ—Born; produced.

ଲବ୍ଧ ନାଶ—ସଂ. ବି—(୬ଷ୍ଠୀ ତତ୍)—ମିଳିଥିବା ବସ୍ତୁର ନାଶ—
Labdha nāsa Loss of a thing acquired (Apte).

ଲବ୍ଧ ପୁତ୍ର—ସ. ବିଣ. ପୁଂ (ବହୁବ୍ରୀହି; ଲବ୍ଧ+ପୁତ୍ର)—ଏକ ପୁତ୍ର
Labdha putra ବିଶିଷ୍ଟ—Having one son; blessed with a son.
(ଲବ୍ଧପୁତ୍ରୀ—ସ୍ତ୍ରୀ)

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନିତ ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଇ' ନ ମିଳିଲେ 'ଗାଈ'ଖୋଜିବେ; 'ମୁଚି' ନ ମିଳିଲେ 'ମୂଚି' ଖୋଜିବେ, 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଆର୍ଗୋ' ନ ପାଇଲେ 'ଆଗ୍ନୋ' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲ୍ବଡ଼'ଦେଖିବେ;

**ଲବ୍ଧ ପ୍ରତିଷ୍ଠ**—ସଂ. ବିଣ. ପୁଂ ( ବହୁବ୍ରୀହି; ଲବ୍ଧ ହୋଇଅଛି ପ୍ରତିଷ୍ଠା ଯାହାଙ୍କର )—୧। ଯାହାର ଖ୍ୟାତି ଲାଭ ହୋଇଅଛି; ବିଖ୍ୟାତ—1. One who has acquired celebrity or fame; known to fame; famous; celebrated. ୨। ସମ୍ମାନିତ—2 Honoured.
Labdha pratishṭha
(ଲବ୍ଧ ପ୍ରତିଷ୍ଠା—ସ୍ତ୍ରୀ)

**ଲବ୍ଧ ପ୍ରବେଶ**—ସଂ. ବିଣ. ପୁଂ—୧। ଯେଉଁ ବ୍ୟକ୍ତି ଭିତରକୁ ପ୍ରବେଶ କରିବାକୁ ସମର୍ଥ ହୋଇ ଅଛନ୍ତି—1. Having got admittance into a place. ୨। ଯେଉଁ ବ୍ୟକ୍ତି କୌଣସି ବିଦ୍ୟାକୁ ଉତ୍ତମରୂପେ ବୁଝି ପାରି ଅଛନ୍ତି ବା ଆୟତ୍ତ କରି ଅଛନ୍ତି—2. Proficient; having been able to comprehend a matter.
Labdha prabeśa
(ଲବ୍ଧ ପ୍ରବେଶା—ସ୍ତ୍ରୀ)

**ଲବ୍ଧ ପ୍ରଶମନ**—ସଂ. ବି ( ୬ଷ୍ଠୀ ତତ୍ )—୧। ଲବ୍ଧ ପଦାର୍ଥକୁ ନିରାପଦ ରଖିବା—1. Securing or keeping safe of what has been acquired ( Apte ). ୨। ଲବ୍ଧ ପଦାର୍ଥର ସତ୍ପାତ୍ରରେ ଦାନ ( ହି. ଶ. )—2. Bestowing of an acquired thing on a worthy recipient.
Labdha praśamana

**ଲବ୍ଧ ବର୍ଣ୍ଣ**—ସଂ. ବିଣ. ପୁଂ ( ବହୁବ୍ରୀହି; ଲବ୍ଧ ହୋଇଅଛି ବର୍ଣ୍ଣ=ବିଦ୍ୟା ବା ଯଶଃ ଯାହାଙ୍କ ଦ୍ୱାରା )—୧। ବିଖ୍ୟାତ; ଲବ୍ଧ ପ୍ରତିଷ୍ଠ—1. Celebrated. ୨। ପଣ୍ଡିତ; ବିଦ୍ୱାନ୍—2. Learned; one who has acquired learning. ୩। ବିଦ୍ୟାପ୍ରାପ୍ତ; ଶିକ୍ଷିତ—3. Literate; educated.
Labdha barṇṇa
(ଲବ୍ଧବର୍ଣ୍ଣା—ସ୍ତ୍ରୀ)

**ଲବ୍ଧବିଦ୍ୟ**—ସଂ. ବିଣ. ପୁଂ ( ବହୁବ୍ରୀହି; ଲବ୍ଧ ହୋଇଅଛି ବିଦ୍ୟା ଯାହାଙ୍କ ଦ୍ୱାରା )—୧। କୌଣସି ବିଦ୍ୟା ବା ବିଜ୍ଞାନକୁ ଯେ ଆୟତ୍ତ କରିଅଛନ୍ତି—1. One who has acquired mastery over a science or learning. ୨। ବିଦ୍ୱାନ୍-2. Learned. ୩। ଯେଉଁ ବ୍ୟକ୍ତି କୌଣସି ଉଦ୍ଦିଷ୍ଟ ବିଦ୍ୟାପାଠକୁ ଶେଷ କରିଅଛନ୍ତି—3. One who has completed a course of training in any science or branch of knowledge. ୪। ଶିକ୍ଷିତ—4. Educated (Apte).
Labdhabidya
( ଲବ୍ଧବିଦ୍ୟା—ସ୍ତ୍ରୀ )

**ଲବ୍ଧ ଲକ୍ଷ(କ୍ଷ୍ୟ)**—ସଂ. ବିଣ. ପୁଂ ( ବହୁବ୍ରୀହି )—୧। ଯେ ନିଶାଣ ବା ଲକ୍ଷ୍ୟ ବିଦ୍ଧ କରିଅଛି—1. One who has hit the mark or target. ୨। ଯାହାକୁ ଅଭିପ୍ରେତ ବସ୍ତୁ ମିଳିଅଛି ( ହି. ଶ. )—2. One who has attained what he wanted. ୩। ଶିକ୍ଷିତ ବା ଶରଅସ୍ତ୍ର ମାରିବା ବିଷୟରେ କୁଶଳ—3 Skilled in the use of missiles ( Apte ).
Labdha laksha(lakshya)
(ଲବ୍ଧ ଲକ୍ଷା[(କ୍ଷ୍ୟା)]—ସ୍ତ୍ରୀ)

**ଲବ୍ଧ ସିଦ୍ଧି**—ସଂ. ବିଣ. ପୁଂ ଓ ସ୍ତ୍ରୀ ( ବହୁବ୍ରୀହି )—୧। ସଫଳକାମ—1. One who has attained his desired object. ୨। ଯେ ସିଦ୍ଧିଲାଭ କରିଅଛି—2. One who has attained perfection ( Apte ).
Labdha siddhi

**ଲବ୍ଧ ସୁଖ**—ସଂ. ବିଣ. ପୁଂ ( ବହୁବ୍ରୀହି; ଲବ୍ଧ ହୋଇଅଛି ସୁଖ ଯାହାର )—ଯେ ସୁଖ ପାଇଅଛି; ସୁଖୀ; ସୁଖଭୋଗକାରୀ—Happy; one who has got happiness
Labdha sukha
(ଲବ୍ଧସୁଖା—ସ୍ତ୍ରୀ)

**ଲବ୍ଧା**—ସଂ. ବିଣ. ସ୍ତ୍ରୀ—ଲବ୍ଧର ସ୍ତ୍ରୀଲିଙ୍ଗ—Feminine of Labdha. ବି. ( ସ୍ତ୍ରୀ )—୧। କାବ୍ୟୋକ୍ତ-ବର୍ଣ୍ଣିତା ନାୟିକାବିଶେଷ; ବିପ୍ରଲବ୍ଧା ନାୟିକା—1. Name of a class of heroines; a woman whose husband or lover is faithless (Apte). ୨। ଦୁର୍ଗା—2. Goddess Durgā.
Labdhā

**ଲବ୍ଧାଂଶ**—ସଂ. ବି—( ଗଣିତ ) ଭାଗ ଫଳ—(arithmetic) Quotient
Labdhāṁśa

**ଲବ୍ଧାଙ୍କ**—ସଂ. ବି ( ଗଣିତ )—ଗଣନା ଫଳରେ ପ୍ରାପ୍ତସଂଖ୍ୟା (ହି. ଶ.) (arithmetic) A number got as a result of any calculation.
Labdhāṅka

**ଲବ୍ଧାର୍ଥ**—ସଂ. ବି ( କର୍ମଧା; ଲବ୍ଧ+ଅର୍ଥ )—ମିଳିଥିବା ଧନ—Acquired wealth. ବିଣ.ପୁଂ (ବହୁବ୍ରୀହି)—୧। ଯେ ଧନ ଲାଭ କରିଅଛି—1. One who has acquired or earned riches. ୨। ଯେ କୌଣସି ବାକ୍ୟାଦିର ଅର୍ଥ ବୁଝି ପାରିଅଛି—2. One who has understood or comprehended the meaning. ୩। ଲବ୍ଧକାମ ( ଦେଖ )—3. Labdha kāma ( See )
Labdhārthā
(ଲବ୍ଧାର୍ଥା—ସ୍ତ୍ରୀ)
(ଲବ୍ଧାର୍ଥତା—ବି)

**ଲବ୍ଧି**—ସଂ. ବି ( ଲଭ୍ ଧାତୁ+କର୍ମ. ତି )—୧। ଲାଭ—1. Profit; gain. ୨। ଆୟ—2. Earning, income. ୩। (+ଭାବ. ତି) ଗ୍ରହଣ, ପ୍ରାପ୍ତି—3. Getting; acquisition. ୪। (ଗଣିତ) ଭାଗଫଳ—4. The quotient of a division. ୫। ଲବ୍ଧାଙ୍କ (ଦେଖ)—Labdhaṅka ( See )
Labdhi

**ଲବ୍ଧୋଦୟ**—ସଂ. ବିଣ. ପୁଂ (ବହୁବ୍ରୀହି)—୧। ଉତ୍ପନ୍ନ; ଜାତ; ସମୁତ୍ପନ୍ନ—1. Born; produced. ୨। ଉଦ୍ଗତ; ଉଦିତ ହୋଇଥିବା—2. Risen.
Labdhodaya

**ଲବ୍ଧ୍ରିମ**—ସଂ. ବିଣ (ଲଭ୍ ଧାତୁ+କର୍ମ. କ୍ରିମ)—ପ୍ରାପ୍ତ; ଲବ୍ଧ—Obtained, acquired. (Apte).
Labdhrima

ଲଭ୍ (ଧାତୁ)—ସଂ—୧ । ପାଇବା—1. To get. ୨ । ଅର୍ଜ୍ଜନ କରିବା—2 To earn, to acquire.
Labh (root)

ଲଭନ—ସଂ. ବି (ଲଭ୍ ଧାତୁ+ଭାବ ଅନ)—ପ୍ରାପ୍ତି; ପାଇବା (ହି.ଶ)—
Labhana Acquisition; getting; receipt.
(ଲବ୍ଧ; ଲଭ୍ୟ; ଲଭମାନ; ଲବ୍ଧବ୍ୟ—ବିଣ)

ଲଭସ—ସଂ. ବି (ଲଭ୍ ଧାତୁ+ କର୍ତ୍ତୃ. ଅସ)—୧ । ଯାଚକ; ଭିକ୍ଷୁକ—
Labhasa 1. A suitor; a beggar. ୨ । (+କର୍ମ. ଅସ) ଧନ—2. Wealth. ୩ । (+କରଣ. ଅସ) ଅଶ୍ୱର ପାଦ-ବନ୍ଧନ ରଜ୍ଜୁ—3. A rope to fasten or tie the feet of a horse.

ଲଭା(ଭୋ)ଇବା—ଦେ. କ୍ରି—୧ । ଲଭିବା କ୍ରିୟାର ଣିଜନ୍ତ ରୂପ—
Labhā(bhe)ibā 1. The causative form of
ପାଓୟାନ, ଲଭାନ Labhibā. ୨ । ଲଭିବା (ଦେଖ)—
ଲଭାନା 2. Labhibā. (See)

ଲଭିତ—ଗ୍ରା. କ୍ରି (ଅତୀତକାଳ)—ଲାଭ କରିଥିବା; ଧାରଣ କରିଥିବା—
Labhita Having assumed or obtained.
[ଉ—ଯେ ବରିତହ୍ନ ସେ ବାରିତହ୍ନ ଲଭିଲ ଉତ । ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ]

ଲଭିବା—ଦେ. କ୍ରି (ସଂ. ଲଭ୍ ଧାତୁ)—୧ । ଲାଭ କରିବା; ପ୍ରାପ୍ତ
Labhibā ହେବା; ପାଇବା—1. To get; to acquire.
ଲଭା ୨ । ଅର୍ଜ୍ଜନ କରିବା—2. To earn. ୩ । ଅନୁଭବ
ଲଭନା କରିବା—3. To experience.

ଲଭ୍ୟ—ସଂ. ବିଣ (ଲଭ୍ ଧାତୁ+କର୍ମ. ଯ)—୧ । ପ୍ରାପ୍ୟ—1. Ob-
Labhya tainable. ୨ । ଯାହା ମିଳିବା ଉଚିତ; ଯାହା ଲାଭ
(ଲଭ୍ୟା—ସ୍ତ୍ରୀ) ହେବ ବା ହେବାର ଉପଯୁକ୍ତ—2. To be got; fit to be got; due. ୩ । ଉଚିତ—3. Fit;
ଲଭ୍ୟ proper, suitable. (Apte) ଦେ. ବି—୧ । ଲାଭ,
ଲଭ୍ୟ ମୁନାଫା; ଲଫା—1. Gain; profit. ୨ । ପ୍ରାପ୍ତି—2. Acquisition. ୩ । ସୁଧ; ବୃଦ୍ଧି—3. Interest (on money lent). ୪ । (ଗଣିତ) ଭାଗଫଳ—4. (mathematics) Quotient. ୫ । ପାଉଣା; ପ୍ରାପ୍ୟ ଧନାଦି—5. Dues. ୬ । ଆୟ—6. Earning; income.

ଲଭ୍ୟକ—ଦେ. ବିଣ—ପ୍ରାପ୍ତ—Obtained. [ ଉ—ବାସଗନ୍ଧ ନର
Labhyaka ଦୁର୍ଲ୍ଲଭ ସମାନ ଲଭ୍ୟକ ସେ ରଣସ୍ଥଳ । ଭଞ୍ଜ. ବୈଦେହୀଶବିଳାସ । ]

ଲଭ୍ୟାଂଶ—ସଂ. ବି (କର୍ମଧା)—୧ । କୌଣସି ବ୍ୟକ୍ତିର ପ୍ରାପ୍ୟ ଧନାଦିର
Labhyāmśa ଅଂଶ—1. Due share. ୨ । (ଗଣିତ) ଭାଗ-ଫଳ—2. Quotient.

ଲଭ୍ୟାର୍ଥ—ସଂ. ବି (କର୍ମଧା)—ପ୍ରାପ୍ୟ ଧନ—Due amount. ବିଣ.
Labhyārtha ପୁଂ (ବହୁବ୍ରୀହି, ଲଭ୍ୟ ହୋଇଅଛି ଅର୍ଥ ଯାହାର)—
(ଲଭ୍ୟାର୍ଥା—ସ୍ତ୍ରୀ) ପାଉଣାଦାର; ଯେଉଁ ବ୍ୟକ୍ତି ଅନ୍ୟ ବ୍ୟକ୍ତିଠାରୁ ଧନ ପାଇବାର ଉପଯୁକ୍ତ—A person to whom money is due.

ଲମ୍ତ(ଲ)ମ୍—ଦେ. ଅ (ସଂ. ଲମ୍ବ)—ଲମ୍ବ ହୋଇ—Prostrate.
Lam-ta(la)m [ ଉ— × × ଖପ୍ କର ହାତୀରୁ ଡେଇଁ ପଡ଼ ଲମ୍ବାହୟେ, ନମତମ ଲମ୍ ତମ୍ ଗୋଡ଼ତଳେ ପଡ଼ଗଲା । ଫକୀର-
ଲମ୍ବା होकर ମୋହନ. ଗଳ୍ପସ୍ୱଳ୍ପ । ]

ଲମକ—ସଂ. ବି. ପୁଂ (ରମ୍ ଧାତୁ=ରମଣ କରିବା+କର୍ତ୍ତୃ. ଅକ)—
Lamaka ୧ । ଜାର; ଉପପତି—1. A paramour; an illicit lover. ୨ । ଲମ୍ପଟ ବ୍ୟକ୍ତି (ହି. ଶ)—2. Adulterer.

ଲମଞ୍ଚୁ(ଞ୍ଜୁ,ଞ୍ଚୋ,ଞ୍ଜୋ)ସ୍—ବୈଦେ. ବି (ଇଂ. ଲୋଜେଞ୍ଜେସ୍)—ଚିନି
Lamanchu(ñju,ñcho,ñjo)s ଦ୍ୱାରା ନାନା ମନୋହର (ଲମନ୍‌ଚୁ[ଞ୍ଚେ,ଞ୍ଜୁ,ଞ୍ଜୋ]ସ୍—ଅନ୍ୟରୂପ) ଆକୃତିରେ ପ୍ରସ୍ତୁତ ଶିଶୁ-
ଲମନ୍‌ଚୁସ ମାନଙ୍କର ଲୋଭନୀୟ ମିଠାଇ—Sweet lozenges
लमंचूस (for children).

ଲମ(ମୂ)ତା—ପ୍ରାଦେ. (ଜୟପୁର) ବି—ରାଜାଙ୍କ ଶ୍ରୀଅଙ୍ଗରେ ତେଲ
Lama(mū)tā ମର୍ଦ୍ଦନକାରୀ ଶୂଦ୍ର ଜାତି—A Śūdra ser-
( ଲମ୍ତା—ଅନ୍ୟରୂପ ) vant who anoints oil on the person of the Rājā.

ଲମିବା—ପ୍ରାଦେ. (ସମ୍ବଲପୁର) କ୍ରି—ଯାତ୍ରା କରିବ'; ଯିବା—
Lamibā To walk; to start. [ଉ—ମୁଁ ଲମିବାବେଳେ ପଛ ଅଡ଼୍ ଡାକୁଛେ କାହିଁକି ? ]

ଲମ୍ପ(ମ୍ଫ)—ବୈଦେ. ବି (ଇଂ. ଲାମ୍ପ୍)—୧ । କିରାସିନ ତେଲ ଜଳିବା
Lampa(mpha) ଡିବିରି—1. A kerosene light.
লম্প(ম্ফ) लांप(फ) ୨ । କାଚର ପ୍ରଦୀପ—2. Glass lamp.

ଲମ୍ପଝମ୍ପ—ଦେ. ବି (ସଂ. ଲମ୍ଫ+ଝମ୍ପ)—ଲମ୍ଫଝମ୍ପ (ଦେଖ)
Lampa jhampa Lampha jhampa. (See)

ଲମ୍ପଟ—ସଂ. ବିଣ. ପୁଂ (ରମ୍ ଧାତୁ+କର୍ତ୍ତୃ. ଅଟ, ନିପାତନ)—
Lampaṭa ୧ । କାମାସକ୍ତ; କାମୁକ—1. Lecherous;
[ଲମ୍ପଟା—ସ୍ତ୍ରୀ] lascivious; lustful; lewd. ୨ । ପର-ସ୍ତ୍ରୀଲୋଲୁପ—2. Adulterous. [ଉ—ବିଗୁଟେ ଲମ୍ପଟ, ଏ କପ୍ଟେ କପଟ, ବହେ ଅମୂଲ୍ୟ ପଟ୍ଟମୁକୁଟ ଏ । ଭଞ୍ଜ. ବୈଦେହୀଶବିଳାସ । ] ୩ । ସ୍ନେହୀ; ଅନୁରାଗୀ—3. Loving. [ଉ—ଗୋକୁଳବଦ୍ୟା ବଦ୍ୟକ ତୁମ୍ଭଙ୍କ ଜଉତୁକ କପଟ ଲମ୍ପଟ କରୁଛୁ । ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ] ୪ । ଲୋଲୁପ; ଲୋଭୀ; ଲୁବ୍ଧ—4. Covetuous. ୫ । କୌଣସି ବିଷୟ ପାଇଁ ଅତ୍ୟୁତ୍ସୁକ—5 Hankering after anything. ବି. ପୁଂ—୧ । କାମୁକ ବ୍ୟକ୍ତି—1. A lecher. ୨ । ପରସ୍ତ୍ରୀ ଲୋଲୁପ ବ୍ୟକ୍ତି—2. Adulterer. ୩ । ଜାର; ଉପପତି (ହି. ଶ)—3. Paramour. ଦେ. ବି—ଲୋଭ—Avarice. [ଉ—ବଣିକ ଭାବ ଲମ୍ପଟ, ପ୍ରକଟ କର ମର୍କଟ, କନକ କଟକ ଭଗ୍ନ ଜାଣିଲେ । ଭଞ୍ଜ. ବୈଦେହୀଶବିଳାସ । ] ଦେ. ବିଣ (ପୁଂ ଓ ସ୍ତ୍ରୀ)—୧ । ଲୁବ୍ଧ; ଲୋଭୀ—1. Avaricious, covetous. [ଉ—କେତେ ନାରୀ ହୋଇଣ କାମରେ ଲମ୍ପଟ, ପାଶେ ଥାଇ ପକାଉଅଛନ୍ତି

ଅଲଟ । କୃଷ୍ଣସିଂହ. ମହାଭାରତ. ବନ ] ୨ । ଲାଳାୟିତ—2. Hankering after. [ଉ—ମୁଁ ଥାଉଁ କାହିଁପାଇଁ ବିଶ୍ଵବାଙ୍କ ଗୃହ, ହେଉଅଛ ସୀତାଙ୍କ ବଳରେ ଲମ୍ପଟ । କୃଷ୍ଣସିଂହ. ମହାଭାରତ. ବନ । ] ୩ । ଇଚ୍ଛୁକ—3. Desirous. [ଉ—ଅଞ୍ଜନ କପଟ, ଶ୍ରବଣରେ ଗମନ ଲମ୍ପଟ । ଅଉମନ୍ଦ୍ୟ. ବିଦଗ୍ଧଚିନ୍ତାମଣି ।]

**ଲମ୍ପଟତା(ତ୍ଵ)**—ସଂ.ବି (ଲମ୍ପଟ + ଭାବେ. ତା, ତ୍ଵ)—ଲମ୍ପଟ୍ୟ; କାମୁକତା; Lampaṭatā(twa) ପରସ୍ତ୍ରୀ ପ୍ରତି ଅନୁରକ୍ତି; ଚମଜେରି—Libertinism; lewdness; adultery; lasciviousness.

**ଲମ୍ପଟା**—ସଂ.ବିଣ. ସ୍ତ୍ରୀ—ଲାଳସୀ; ଲାଳାୟିତା—(feminine) Hankering after. Lampaṭā [ ଉ—ଭୁଷ୍ଟକୁ ତ ଶ୍ୟାମ ପ୍ରୀତି ଲମ୍ପଟା ବୋଲି ମୋ ଖ୍ୟାତି । କବିସୂର୍ଯ୍ୟ ସଙ୍ଗୀତ । ]

**ଲମ୍ପଟାଚାର**—ସଂ. ବି (ଷଷ୍ଠୀ ତତ୍)—ଲମ୍ପଟତା—Lampaṭāchāra Lewdness.

**ଲମ୍ପଟାଚାରୀ**—ସଂ. ବିଣ. ପୁଂ (ଲମ୍ପଟ + ଆ + ଚରଧାତୁ + କର୍ତ୍ତୃ.ଇନ୍)—Lampaṭāchāri ପରସ୍ତ୍ରୀ ପ୍ରତି ଅନୁରକ୍ତ—Adulterous.

**ଲମ୍ପଟୀ**—ଦେ. ବିଣ. ( ସଂ ଲମ୍ପଟ )—୧ । ( ପୁଂ ) ଲମ୍ପଟ; ଲମ୍ପଟା-Lampaṭi ଶୃଙ୍ଗ; ଲଭ୍ରବନ୍ତୁଆ—1. Adulterous; lewd; ଲମ୍ପଟୁଆ—ଅନ୍ୟରୂପ) lecherous. [ ଉ—କପଟୀ ଲମ୍ପଟୀ ଲମ୍ପଟୀ ସେ ଲୋକ, ଯାକଟ ପରେ ସେ ଦଂଶେଦ । ଲଂପଟୀ ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା । ] ୨ । (ପୁଂ) ପ୍ରତ୍ୟାଶୀ—2. Anxious to have. [ ଉ—ବସିଲେ ଭୁଲା ଭୁଲା, ଉନ୍ନତଣା ବାଉଲା, ସେ କପଟୀ ବୋଧ ଲମ୍ପଟୀ ସେ । ଉଞ୍ଜ. ବୈଦେହୀଶବିଳାସ । ] ୩ । ( ସ୍ତ୍ରୀ ) ବ୍ୟଭିଚାରିଣୀ; ଅସତୀ—3. Adulterous ( woman ). ଦେ. ବି—୧ । ( ପୁଂ ) ଲମ୍ପଟ ବ୍ୟକ୍ତି—1. Adulterer. ୨ । ( ସ୍ତ୍ରୀ ) ଚରିଣୀ ସ୍ତ୍ରୀ; ଦେଧୋଇ—2. Adulteress.

**ଲମ୍ପାକ**—ସ ବି ( ରମ୍ ଧାତୁ + କର୍ତ୍ତୃ. ଅକ; ନିପାତନ )—୧ । ( ପୁଂ ) Lampāka ଲମ୍ପଟ ବ୍ୟକ୍ତି—1. Adulterer; lewd person. ୨ । କାବୁଲ୍ ବା ଅଫଗାନିସ୍ତାନର ଅନ୍ତର୍ଗତ ପୌରାଣିକ ପ୍ରାଚୀନ ଦେଶ ବିଶେଷ—2. Name of an ancient tract of country in Afganistan. [ ଜ୍ଞ—ଏ ଦେଶର ଅନ୍ୟ ନାମ ମୁରଣ୍ଡ; ଏ ଦେଶ ଭାରତର ଉତ୍ତର ପଶ୍ଚିମରେ ଥିଲା । ଏହା କାବୁଲର ଅଧୁନିକ ଲମଘାନ ଜିଲ୍ଲା ବୋଲି କେହି କେହି କହନ୍ତି । M. W. ]

**ଲମ୍ପାଟହ**—ସ. ବି ( ଲମ୍ବ + ପଟହ; ନିପାତନ )—ବଡ଼ ଢୋଲ; ବଡ଼ Lampāṭaha ଢାଡ଼—A big and long drum. ( M. W. )

**ଲମ୍ଫ** ( ଧାତୁ )—ସ (ଭୁଳ. ଲଷ୍ଟନ୍. ରମ୍ପା = ବିବରାଅଟିଙ୍କ ଲାଗଯୁକ୍ତ ଜଡ- Lamph ( root ) ଚଳ, ଇଂ. ଲ୍ୟାପ୍, ହିନ୍ଦୀ, ଲପକ୍ )—[ ଲମ୍ପ(ଧାତୁ)-ଅନ୍ୟରୂପ ] ଡେଇଁବା,ଲୁଦିବା—To jump; to leap

**ଲମ୍ଫ**—ସଂ. ବି ( ଲମ୍ଫ ଧାତୁ + ଭାବ ଅ )—୧ । ଉଲ୍ଲମ୍ଫନ; ଲୁଦିବା—Lampha 1. Leaping; jumping. ୨ । ଡିଆଁ—2. Leap; high jump. ବୈଦେ. ବି ( ଇଂ )—ଲମ୍ପ ( ଦେଖ )—Lampa ( See )

**ଲମ୍ଫଝମ୍ପ**—ଦେ. ବି ( ସହଚର ଶବ୍ଦ; ଲମ୍ଫ = ଡେଇଁବା ଓ ଝମ୍ପ = Lamphajhampa ଝାମ୍ପିବା )—୧ । ଡିଆଁ ଡେଇଁ; ହାତ-ଗୋଡ଼ ପ୍ରସାରଣ ପୂର୍ବକ ବିକ୍ରମ ପ୍ରକାଶି ଲୁଦିବା; ଲୁଦାଲୁଦ—1. Jumping and leaping. ୨ । ଏଣେ-ତେଣେ ଡେଇଁ ବୁଲିବା—2. Frisking about. ୩ । ମାଙ୍କଡ଼ଚାଳି—3. Capering; somersault.

**ଲମ୍ଫ ଦାନ**—ସଂ. ବି—ଡିଆଁ ମାରିବା; ଡେଇଁ ପଡ଼ିବା—Lampha dāna Jumping down; capering. (ଲମ୍ଫପ୍ରଦାନ—ଅନ୍ୟରୂପ)

**ଲମ୍ଫ ଦେବା**—ଦେ. କ୍ରି ( ସଂ. ଲମ୍ଫ ଧାତୁ )—୧ । ଡେଇଁ ପଡ଼ିବା—Lampha debā 1. To jump down. ୨ । ଲୁଦିବା (ଲମ୍ଫମାରିବା—ଅନ୍ୟରୂପ) —2. To leap. ୩ । ମାଙ୍କଡ଼-लम्फदेओया, लम्फमारा, लाफदेओया ଚାଳି ମାରିବା—3. To cut लम्फदेना capers.

**ଲମ୍ଫନ**—ସଂ. ବି ( ଲମ୍ଫ ଧାତୁ + ଭାବ ଅନ )—ଲୁଦିବା; ଡେଇଁବା—'Lamphana Leaping; jumping ( Apte ).

**ଲମ୍ବ** (ଧାତୁ)—ସଂ—୧ । ଲମ୍ବିତ ହେବା; ତଳକୁ ଓହଳିବା—1. To Lamb (root) hang down. ୨ । ଝୁଲିବା—2. To be [ଲମ୍ବ୍(ଧାତୁ)—ଅନ୍ୟରୂପ] suspended; to dangle. ୩ । ତଳକୁ ଖସିବା—3. To go down ( Apte ). ୪ । ଲଗ୍ନହେବା—4. To rest on; to be attached to (Apte). ୫ । ବିଳମ୍ବ କରିବା—5. To delay; to tarry ( Apte ). ୬ । ପଛରେ ପଡ଼ିବା—6. To lag behind ( Apte ).

**ଲମବରା ବୁଲା**—ହାଦେ. ( ଗଡ଼ଜାତ ) ବି. (ଶିକାରୀ) ବନ୍ଧୁକ ଧରି ଦୁଇ Lambarā bulā ଜଣ ଲୋକଙ୍କ ସଙ୍ଗେ ଜହ୍ନ ପକ୍ଷ ରାତିରେ ଲୁଚି ଲୁଚି ବାଘ ପ୍ରଭୃତି ଶିକାର ଖୋଜିବା—A hunter seeking game in moonlight accompanied by two persons.

**ଲମ୍ବ**—ସଂ ବିଣ ( ଲମ୍ବ ଧାତୁ + କର୍ତ୍ତୃ ଅ )—୧ । ଲମ୍ବିତ; ତଳକୁ Lamba ଓହଳିଥିବା—1 Hanging down. ୨ ଲମ୍ବା; ଦୀର୍ଘ—2 Long. ୩ । ସିଧା; ସରଳ—3 Straight. ୪ । ଡେଙ୍ଗା—4. Tall. ୫ । ଦୋଳାୟମାନ—5. Pendulous; pendent. ୬ । ଭୂଇଁଥାଏ ଦୁଇଟି ସମକୋଣ ସୃଷ୍ଟି କରି ଅନ୍ୟରେଖା ସଙ୍ଗେ ମିଳିତ (ରେଖା)—6. Perpendicular. ୭ । ବିସ୍ତୃତ; ପ୍ରସାରିତ—7. Extended; spacious. ୮ । ଲମ୍ବଭାବରେ ନ୍ୟସ୍ତ; ସ୍ରସ୍ତ—8. Hung down; suspended. ୯ । ବୃହତ୍; ବଡ଼—9. Great; large

( Apte ). ସଂ. ବ—୧ । ଦୈର୍ଘ୍ୟ—1. Length. ୨ । ବିସ୍ତାର—2. Extent. ୩ । ଉଚ୍ଚ; ଉଚ୍ଚତା—3. Height. ୪ । ( +ନର୍ତ୍ତି. ଅ )—ନଟ, ନର୍ତ୍ତକ—4. Dancer; actor. ୫ । କାନ୍ତ; ସ୍ୱାମୀ—5. Husband. ୬ । (+କର୍ମ ଅ) ଉତ୍କୋଚ; ଘୁଷ—6. Bribe. ୭ । ଅକ୍ଷ, ପଶାକାଠି—7. Dice. ୮ । (+ଭୂବ ଅ) ଅବଲମ୍ବନ; ଆଶ୍ରୟ—8, Shelter dependence. ୯ । (+କର୍ତ୍ତ୍ରି ଅ, ଜ୍ୟାମିତି ) ଏକ ରେଖା ଉପରେ ଋଜୁଭାବରେ ଦଣ୍ଡାୟମାନ ରେଖା ( ଯାହା ଦୁଇପାଶରେ ଦୁଇଟି ସମକୋଣ ସୃଷ୍ଟି କରେ )—9. ( Geometry) A perpendicular. ୧୦ । [ଜ୍ୟାମିତି] ତ୍ରିଭୁଜର ଲମ୍ବିତ ବାହୁଦ୍ୱୟ; ଭୂମି ଉପରେ ଠିଆହୋଇଥିବା ଅବସ୍ଥିତ ତ୍ରିଭୁଜର ରେଖାଦ୍ୱୟ—10. (Geometry) The two sides of a triangle. ୧୧ । (ଗଣିତ ଜ୍ୟୋତିଷ) ବିଷୁବରେଖାର ସମାନାନ୍ତର ରେଖା ବିଶେଷ (ହି. ଶ)—11. (Astronomy) A co-latitude. ୧୨। ବଳଦେବଙ୍କଦ୍ୱାରା ନିହତ ପ୍ରଲମ୍ବାସୁର (ହି. ଶ)—12. A name of Pralambāsura killed by Balarāma. ୧୩ । ଗୁରୁ ଗୁଣବିଶେଷ ( ହି. ଶ )—14. Name of a metre. ୧୪ । ଅଙ୍ଗ (ହି. ଶ)—13. Limb. ୧୫ । ମୁନି ବିଶେଷ (ହି. ଶ)—15. Name of a sage. ୧୬। (ଗଣିତ ଜ୍ୟୋତିଷ; ସୂର୍ଯ୍ୟ ସିଦ୍ଧାନ୍ତ) କୌଣସି ସ୍ଥାନର ଶିରୋବିନ୍ଦୁଠାରୁ ମେରୁ ପର୍ଯ୍ୟନ୍ତ କଳ୍ପିତ ବୃତ୍ତଖଣ୍ଡ 16. (astrology) The arc between the the zenith of any place and the pole (Apte, M. W.) ୧୭ । ଗ୍ରହମାନଙ୍କର ଏକ ପ୍ରକାର ଗତି (ହି. ଶ.)—17. A kind of motion of the planets.

ଲମ୍ବ(ମ୍ବୁ)କ—ସ. ବ—(ଲମ୍ବ+କ) ୧ । ଲମ୍ବ ୯ (ଦେଖ)
Lamba(mbu)ka 1. Perpendicular (Apte)
୨ । ଲମ୍ବ ୧୧ (ଦେଖ)—2. Colatitude (Apte). ୩ । କୌଣସି ପୁସ୍ତକର ଏକ ଅଧ୍ୟାୟ (ହି. ଶବ୍ଦସାଗର)—3. One chapter of a book. ୪ । ମୁଖରୋଗ-ବିଶେଷ (ହି. ଶ)—4. A kind of face disease. ୫ । ଜ୍ୟୋତିଷୋକ୍ତ ପଞ୍ଚଦଶ ଯୋଗ (ହି. ଶ.)—5. The 15th astrological conjunction.

ଲମ୍ବ କରିବା—ଦେ. କ୍ରି—ଲମ୍ବା କରିବା (ଦେଖ)
Lamba karibā Lambā karibā (See)

ଲମ୍ବ କର୍ଣ୍ଣ—ସ. ବ—(କର୍ମଧା; ଲମ୍ବ+କର୍ଣ୍ଣ)—୧ । ଦୀର୍ଘ କାନ—
Lamba karnna 1. Long ear. ୨ । ଓହଳା କାନ, ଝୁଲୁଥିବା କାନ—2. Hanging ear. ୩ । (ବହୁବ୍ରୀହି) ଛାଗଳ; ଛେଳି—3. Goat. ୪ । ହସ୍ତୀ; ହାତୀ—4. Elephant. ୫ । ଶଶକ; ଠେକୁଆ—5. Hare. ୬ । ଗର୍ଦ୍ଦଭ; ଗଧ—6. Ass. ୭ । ଗଣେଶ—7. God Ganeṡa. ୮ । ରାକ୍ଷସ—8 A demon: ୯ । ଶ୍ୟେନ ପକ୍ଷୀ; ଛଞ୍ଚାଣ—9. Hawk; falcon. ୧୦ । ଅଙ୍କୋଟ ବୃକ୍ଷ (ହି.ଶ.)—10. Alangium Hexapetallum ( tree ) ବିଣ. ପୁଂ—୧ । (ବହୁବ୍ରୀହି, ଲମ୍ବ ବା ଦୀର୍ଘ କର୍ଣ୍ଣଯୁକ୍ତ—1. Long-eared. ୨ । ଓହଳା କାନଯୁକ୍ତ—2. Having hanging ears.

ଲମ୍ବକାନ—ଦେ. ବ.— ଲମ୍ବକର୍ଣ୍ଣ; ଦୀର୍ଘ କର୍ଣ୍ଣ—
Lamba kāna Long ear.
लम्बा कानवाला ବିଣ—ଲମ୍ବ କାନା (ଦେଖ)
लंबाकान वाला Lambā kānā (See)

ଲମ୍ବକାନା—ଦେ ବିଣ. ପୁ.—ଲମ୍ବ କର୍ଣ୍ଣ ବିଶିଷ୍ଟ—
Lamba kānā लम्बाकान वाला Long eared.
लंबाकान वाला

ଲମ୍ବ କାନି—ଦେ. ବ.— ୧ । ଲମ୍ବ ପଣତ; ବସ୍ତ୍ରର ଦୀର୍ଘ ପ୍ରାନ୍ତ;
Lamba kāni ପିନ୍ଧାଲୁଗାକୁ ଅଣ୍ଟାରେ ଗୁଞ୍ଜାଇ ପିନ୍ଧିବା ପରେ [ଶ୍ଳେଷ କାନ—ବସ୍ତ୍ରପ୍ରାନ୍ତ] ବଳି ପଡ଼ିବା ଲମ୍ବ ଅଂଶ—
लंबा कोंचा लंबाछोर 1. Long end of a cloth left
लम्बाकापड after the cloth is tucked round the
लंबा छोरवाला कपडा waist of the wearer. ୨ । ଲୁଗା
ଲମ୍ବ ଲୁଗା ( ଯାହାର ପିନ୍ଧିବା ଅଂଶ ଅଣ୍ଟାରେ ଗୁଞ୍ଜାହେବା ପରେ ଉଦ୍ବୃତ୍ତ ଦୀର୍ଘପ୍ରାନ୍ତ ବଳି ପଡ଼େ)—2. A long cloth of which a good length is left after one end of it is wound round the waist of the wearer

ଲମ୍ବକାନିଆ(ଆଁ)—ଦେ. ବିଣ.—ଲମ୍ବପ୍ରାନ୍ତ ବିଶିଷ୍ଟ (ବସ୍ତ୍ର); ଲମ୍ବ (ଲୁଗା)
Lamba kāniā(aṅ) Long (cloth for wearing);
लम्बा so long that a large length of it is left
लंबाछोरवाला after it is worn round the waist.
[ଯଥା—ଶୀତ ଦିନରେ ଲମ୍ବକାନିଆ ଲୁଗାର ଲମ୍ବ କାନିକୁ ମନୁଷ୍ୟ ଦେହରେ ଘୋଡ଼ି ହୋଇପାରେ )—ବିଣ.—ଲମ୍ବକାନା (ଦେଖ)—Lambakānā (See)

ଲମ୍ବ କେଶ—ସଂ. ବ—୧ । (କର୍ମଧା) ଲମ୍ବା ବା ଦୀର୍ଘକେଶ—
Lamba keṡa 1 Long hair. ୨ । (ବହୁବ୍ରୀହି) ଦୀର୍ଘ (ଲମ୍ବ କେଶା—ସ୍ତ୍ରୀ) ଅଗ୍ର ବିଶିଷ୍ଟ କୁଶନିର୍ମିତ ଆସନ—
2. A mat made of long Kuṡa grass.
ବିଣ. ପୁଂ—(ବହୁବ୍ରୀହି)—ଦୀର୍ଘକେଶ ବିଶିଷ୍ଟ—
Long-haired.

ଲମ୍ବ କେଶୀ—ସଂ. ବିଣ. ପୁଂ—(ଲମ୍ବକେଶିନ୍ ଶବ୍ଦ)—ଦୀର୍ଘକେଶ ବିଶିଷ୍ଟ
Lamba keṡī Long haired.
ଦେ. ବିଣ. ସ୍ତ୍ରୀ—( ସଂ ଲମ୍ବକେଶା ) ଲମ୍ବକେଶବିଶିଷ୍ଟା—, (A woman) Having long hairs

ଲମ୍ବ ଗ୍ରୀବ—ସଂ. ବଣ. ପୁଂ (ବହୁବ୍ରୀହି, ଲମ୍ବ+ଗ୍ରୀବା)—ଯାହାର ବେକ
Lamba gribā ବଡ଼; ଦୀର୍ଘଗ୍ରୀବ—Long necked
(ଲମ୍ବଗ୍ରୀବା—ସ୍ତ୍ରୀ) ସଂ. ବ—ଉଷ୍ଟ୍ର (ହି. ଶ.)—Camel.

ଲମ୍ବ ଜନ୍ତୁ—ଦେ. ବ—(ସର୍ପର ନାମ ଉଚ୍ଚାରଣ ନ କରି ସର୍ପର ଗୋଟିଏ
Lamba jantu ବିଶିଷ୍ଟତା ଦ୍ୱାରା ଭାବବୋଧକ ଶୁଭବାଚକ ଶବ୍ଦ)-
ଲମ୍ବା ଜନ୍ତୁ ଲଂବଜନ୍ତୁ ସର୍ପ—(Euphemism) Serpent; snake.

ଲମ୍ବ ଜାଂଘୀ—ସଂ. ବଣ—(ଲମ୍ବ ଜାଙ୍ଘିନ୍ ଶବ୍ଦ)—ଲମ୍ବପାଦ ବିଶିଷ୍ଟ—
Lamba jāmghi Long legged.

ଲମ୍ବଜାଲ୍ ହେବା—ଦେ.କ୍ରି.—(ସଂ ଲମ୍ବାୟମାନ)—ଭୂମିରେ ଲମ୍ବ ହୋଇ
Lambajāl hebā ବା ଗୋଡ଼ ହାତ ଲମ୍ବାଇ ଶୋଇବା—
ଲମতম হওয়া लमजाल होना To lie down at length
[ଲମ୍ବଜାଲ ହୋଇ ପଡ଼ିବା—ଅନ୍ୟରୂପ) on the ground.

ଲମ୍ବ ଜିହ୍ୱ—ସଂ. ବଣ. ପୁଂ—(ବହୁବ୍ରୀହି)—୧। ଯାହାର ଜିଭ ଲମ୍ବା ବା
Lamba jihwa ଓହୋଳ ଥାଏ—1 Having a long
[ଲମ୍ବଜିହ୍ୱା—ସ୍ତ୍ରୀ) or lolling tongue. ୨। ଯେ ଜିଭକୁ
ବାହାରକୁ କାଢ଼ିଛି—2. Letting the tongue
hang out (Apte).

ଲମ୍ବଡ଼ା—ଦେ. ବଣ—୧। ଲମ୍ବ; ଲମ୍ବା—1. Long. ୨। ପ୍ରାୟ
Lambardā ଲମ୍ବ; ଯେଉଁ ବସ୍ତୁର ଦୈର୍ଘ୍ୟ ପ୍ରସ୍ଥଠାରୁ ବେଶୀ—
ଲম্বাটে 2. Nearly long. ୩। ଖୁବ୍ ଲମ୍ବା—3. Very
लंबासा, लंबतगडं long. ୪। ଲମ୍ବିତ—4. Elongated.

ଲମ୍ବଡ଼ା ମୁହଁ—ଦେ. ବ—ଲମ୍ବ ମୁଖ—Long face.
Lambardā muhañ ଲম্বাটে মুখ लम्बमुहा

ଲମ୍ବଡ଼ା ମୁହା—ଦେ. ବଣ—ଲମ୍ବ ମୁଖଯୁକ୍ତ—
Lambardā muhā Having a long face.
[ ଲମ୍ବଡ଼ା(ଡ଼ୀ)ମୁହାଁ—ସ୍ତ୍ରୀ ] ଲম্বাটে মুখো लंम्बमुहाँ

ଲମ୍ବତା(ତ୍ୱ)—ସ. ବ (ଲମ୍ବ+ଭାବ. ତା, ତ୍ୱ)—ଦୀର୍ଘତା; ଦୈର୍ଘ୍ୟ—
Lambatā(twa) Length. ପ୍ରାଦେ (ଜୟପୁର) ବ—
ରାଜାଙ୍କର ଧାଣ ଲୋକ—Orderly of a Raja.

ଲମ୍ବ ଦନ୍ତ—ସଂ ବଣ. ପୁଂ (ବହୁବ୍ରୀହି, ଲମ୍ବ+ଦନ୍ତ)—ଦୀର୍ଘଦନ୍ତ-
Lamb danta ବିଶିଷ୍ଟ—Long toothed; having long
(ଲମ୍ବଦନ୍ତା—ସ୍ତ୍ରୀ) (ଲମ୍ବଦନ୍ତା, ଲମ୍ବଦାନ୍ତିଆ—ଦେ. ରୂପ) tusks.

ଲମ୍ବଦନ୍ତା—ସ. ବ (ବୈଦ୍ୟକ)—ସିଂହଳୀ ପିପ୍ପଳୀ—
ଦେ. ବଣ—ଲମ୍ବଦନ୍ତ ବିଶିଷ୍ଟ—Long-toothed.
Lambadantā Long pepper of Ceylon,

ଲମ୍ବ ଦାଢ଼ି—ଦେ. ବ—ଦୀର୍ଘ ଶ୍ମଶ୍ରୁ—
Lamba dārdhi ଲম্বাদাড়ী लंबीदाढ़ी Long beard.

ଲମ୍ବଦାଢ଼ିଆ—ଦେ. ବଣ. ପୁଂ—୧। ଦୀର୍ଘ ଶ୍ମଶ୍ରୁବିଶିଷ୍ଟ—
Lambadārdhia 1 Long bearded,
লংবাদাড়িওয়ালা लंबदाढ़िया
୨। (ମୁସଲମାନ୍ ମାନେ ଶ୍ମଶ୍ରୁ ରଖୁ ନ ଥିବାରୁ) ମୁସଲମାନ୍
ଧର୍ମାବଲମ୍ବୀ—2. Mahomedan.

ଲମ୍ବଦାନ୍ତି(ନ୍ତୁ)ଆ—ଦେ.ବଣ.ପୁଂ—(ସ.ଲମ୍ବଦନ୍ତ)—ଦୀର୍ଘଦନ୍ତ ବିଶିଷ୍ଟ -
Lambadānti(ntu)ā Having long teeth.
দেঁতো लंबदंता [ଲମ୍ବଦାନ୍ତି, ଲମ୍ବଦାନ୍ତେଇ—ସ୍ତ୍ରୀ]

ଲମ୍ବନ—ସ. ବ—(ଲମ୍ବ ଧାତୁ+ଭାବ. ଅନ)—୧। ଲମ୍ବମାନ ହେବା;
Lambana ଝୁଲିବା—1. Act of hanging or being
suspended. ୨। (ଲମ୍ବ ଧାତୁ, ଣିଚ+ଭାବ. ଅନ)
ଝୁଲାଇବା—2. Act of suspending. ୩। ଅବ-
ଲମ୍ବନ; ଆଶ୍ରୟଗ୍ରହଣ—3. Taking shelter or,
dependingon. ୪। ନାଭି ପର୍ଯ୍ୟନ୍ତ ଲମ୍ବିବା ହାର—
4. A long necklace reaching the navel,
୫। (+କର୍ମ ଅନ) ଆଶ୍ରୟ; ଅବଲମ୍ବ; ସହାୟ (ହି.ଶ.)—
5. Shelter; refuge. ୬। ଶିବ—6. Śiba
(Apte) ୭। ଧଡ଼ି—7. Fringe (Apte). ୮।
(+କର୍ତ୍ତୃ ଅନ) କଫ (ହି. ଶ)—8. Phlegm. ୯।
ଶିବ—9. Siba. ୧୦। ଏକ ପ୍ରକାର ଯୁଦ୍ଧ—10.
A kind of fighting (Apte).

ଲମ୍ବ ପହଣ୍ଡ—ଦେ. ବ—ଦୀର୍ଘ ପଦକ୍ଷେପ—
Lamba pahanda ଲম্বাপা लंबाडग Long stept.

ଲମ୍ବ ପୟୋଧରା—ସ. ବଣ. ସ୍ତ୍ରୀ—(ବହୁବ୍ରୀହି)—ଯେଉଁ ସ୍ତ୍ରୀର ସ୍ତନ
Lamba payodharā ଝୁଲୁ ଥାଏ—(a woman) With
hanging or pendent breasts (Apte).
ସ—ବ. ସ୍ତ୍ରୀ—କାର୍ତ୍ତିକେୟଙ୍କର ଏକ ମାତୃକା [ହି. ଶ]—
Name of a foster mother of Kārttikeya.

ଲମ୍ବ ଫେର—ଦେ ବ.—ପୁରୁଷଙ୍କ ପିନ୍ଧା ଲୁଗାର ତଳକୁ ଓହୋଳିଥିବା
Lamba phera ଲମ୍ବ କାନି—Long corner of the
ল্বাকোঁচা ल'बाकोंचा cloth hanging down
from the navel of the wearer.

ଲମ୍ବ(ମ୍ବା)ବାଗରେ—ଦେ.କ୍ରି—ଦୀର୍ଘ ଭାବରେ; ଲମ୍ବ ଅନୁସାରେ—
Lamba (mbā)bāgare Lengthwise; according to
ଲମ୍ବ ବାଗେ } —ଅନ୍ୟରୂପ length.
ଲମ୍ବ ଭାବରେ }
ଲম্বাদিগে ल'बामे

ଲମ୍ବ ବାଳ—ସ. ବ—ଦୀର୍ଘ କେଶ—
Lamba bāla ଲম্বাচুল ल'बा बाल Long hair.
[ଉ—ଚଙ୍ଗୁଡ଼ଲୋ ! ଚଙ୍ଗୁଡ଼ଲୋ ! କଷ୍ଟବାଳ କେ, ଲମ୍ବ
ବାଳ ଦେ । ଶିଶୁଗୀତ ]

ଲମ୍ବ ବାଳୁଆ—ଦେ. ବଣ. ପୁଂ—ଦୀର୍ଘକେଶ ବିଶିଷ୍ଟ—
Lamba bāluā Long haired.
ଲম্বা চুলো ल'बाबाल वाला
[ଲମ୍ବବାଳେ(ଳୋ)ଇ—ସ୍ତ୍ରୀ]

ଲମ୍ବମାନ—ସ. ବଣ—(ଲମ୍ବ. ଧାତୁ+କର୍ତ୍ତୃ. ଆନ)—୧। ଦୋଳାୟ-
Lambamāna ମାନ; ଝୁଲୁଥିବା—1. Hanging down,
(ଲମ୍ବମାନା—ସ୍ତ୍ରୀ) ୨। ଲମ୍ବଭାବରେ ସ୍ଥାପିତ—
2. Placed perpendicularly.

ଲମ୍ବ ମୁଖ—ସଂ. ବ—(କର୍ମଧା) ଲମ୍ବ ବା ଦୀର୍ଘମୁଖ—Long face· [ଲମ୍ବମୁଖା—ସ୍ତ୍ରୀ] ବଣ. ପୁଂ—(ବହୁବ୍ରୀହି)—ଦୀର୍ଘ ମୁଖଯୁକ୍ତ—Long faced.

ଲମ୍ବ ମୁଖା[ହାଁ]—ଦେ.ବଣ–ଲମ୍ବ ବା ଦୀର୍ଘ ମୁଖଯୁକ୍ତ—
Lamba mukhā(hañ) Long faced.
लम्बा मुखो लंब मुंहा (ଲମ୍ବ ମୁଖୀ—ସ୍ତ୍ରୀ) .

ଲମ୍ବ ଯୋଡ଼—ଦେ. ବ—ଦୀର୍ଘ ଲୁଗା ଓ ଚଦର—A pair consis-
Lamba jorda ting of a long wearing cloth and a piece of sheet.

ନମ୍ବର୍—ବୈଦେ. (କଟକଅ)—[ଇଂ. ନମ୍ବର୍] ନମ୍ବର (ଦେଖ)
Lambar Nambara (See)

ଲମ୍ବର୍ଦାର୍—ପ୍ରାଦେ. (କଟକ ସହର) ବ—୧ । ନମ୍ବରଦାର (ଦେଖ)
Lambar-dār Namaradāra (See)
୨ । (ସମ୍ବଲପୁର ମାହାଲର ସ୍ୱତ୍ୱାଧିକାରୀ ସମସ୍ତ ବ୍ୟକ୍ତିଙ୍କ ପ୍ରତିନିଧି ରୂପେ ରାଜକୀୟ ବିଷୟରେ ସମ୍ପର୍କ ଚଳାଇବା ପାଇଁ ଗଉନ୍ତିଆ ବା ମାଫିଦାର ମାନଙ୍କ ମନୋନୀତ ଓ ଗଵର୍ଣ୍ଣମେଣ୍ଟଙ୍କ ଦ୍ୱାରା ଅନୁମୋଦିତ ସେମାନଙ୍କ ମଧ୍ୟରୁ ଜଣେ ବ୍ୟକ୍ତି । (ସେଣ୍ଟ୍ରାଲ୍ ପ୍ରୋଭିନ୍ସେସ୍ ଲାଣ୍ଡ ରେଭିନ୍ୟୁ ଆକ୍ଟ୍ ୧୮୮୧ ସାଲର ୮ ଆକ୍ଟ )—2. Lambardar; (Central Provinces Land Revenue Act).

ଲମ୍ବର୍ଦାର୍ ଗଉନ୍ତିଆ—ପ୍ରାଦେ. (ସମ୍ବଲପୁର) ବ—ଏକ ବଂଶର
Lrmbar-dār gauntiā ଅନେକଗୁଡ଼ିଏ ଗଉନ୍ତିଆଙ୍କ ମଧ୍ୟରୁ ନିର୍ବାଚିତ ଲମ୍ବରଦାର—The elected head among the Gauntiās descended from one common ancestor.

ଲମ୍ବର—ସଂ. ବ (ଲମ୍ବ+ର ଧାତୁ+କର୍ତ୍ତୃ. ଅ)—ଏକପ୍ରକାର ବାଦ୍ୟ
Lambara (ବୃହଦ୍ ଆରଣ୍ୟକ ଉପନିଷଦ୍)—A kind of drum (M. W.).

ଲମ୍ବରି—ବୈଦେ. ବଣ (କଟକଅ)—(ଫା) ନମ୍ବରୀ (ଦେଖ)
Lambari Nambari (See)
नम्बरी ବ—ଲମ୍ବରି ମକଦମା (ଦେଖ)
लंबरी Lambari makadamā (See)

ଲମ୍ବରି ମକଦ(ଦ୍ଦ)ମା—ବୈଦେ. (କଟକଅ) ବ—ସ୍ୱତ୍ୱସ୍ୱତ୍ତ୍ୱ ବିଷୟକ
Lambari makada(dda)mā ଦେବାନୀ ଅଭିଯୋଗ—Title-
नम्बरी मोकदमा suit [ଦ୍ର—ଟଙ୍କା ଆଦାୟ ପାଇଁ ଯେଉଁ ମକଦମା
लम्बरीमुकदमा ହୁଏ ତାହା ଏ ମୋକଦ୍ଦମାଠାରୁ ପୃଥକ୍ । ଲମ୍ବରି ମୋକଦ୍ଦମାର ଅର୍ଜି, ଜବାବ୍, ରାୟ ଓ ଫଇସଲ୍ଲ ଚିରଦିନ ରହେ, କିନ୍ତୁ ଟଙ୍କା ସମ୍ବନ୍ଧୀୟ ମକଦମାର ସମସ୍ତ ନଥି କେତେ ନିର୍ଦ୍ଦିଷ୍ଟ କାଳ ରଖାଯାଇ ଉତ୍ତାରେ ନଷ୍ଟ କରାଯାଏ ।]

ଲମ୍ବ ରେଖା—ସଂ. ବ—୧ । (ଜ୍ୟାମିତି)—ଯେଉଁ ସରଳରେଖା ଅପର
Lamba rekhā ସରଳରେଖା ଉପରେ ଏପରିଭାବରେ ଦଣ୍ଡାୟମାନ ହୋଇଥାଏ ଯେ, ତାହାର ସନ୍ନିହିତ ପ୍ରତ୍ୟେକ କୋଣ ସମକୋଣ ହୁଏ—1. (Geometry) Perpendicular; a straight line which stands on another making each of the two adjacent angles a right angle. ୨ । ପାର୍ଶ୍ୱ ରେଖା—2. A long lime.

ଲମ୍ବ ଲ(ଲା)ମ୍ବ—ଦେ. ବଣ (ବହୁବଚନାର୍ଥକ)—ଅନେକଗୁଡ଼ିଏ ଲମ୍ବ
Lamba la(lā)mba (ବସ୍ତୁ)—Numerous or many
लम्बा लम्बा long (things); ଦେ. କ୍ରି. ବଣ—ଅନେକ-
लंबा लंबा ଗୁଡ଼ିଏ ବସ୍ତୁ ଲମ୍ବଭାବରେ ପଡ଼ିବା ପ୍ରକାରେ—(Said of many things) Lying straightly; lengthwise.

ଲମ୍ବ ଲାଞ୍ଜିଆ—ଦେ. ବଣ (ସଂ. ଲମ୍ବ+ଲାଙ୍ଗୁଳ)—ଯେଉଁ ଜନ୍ତୁର
Lamba lañjiā ଲାଞ୍ଜ ଲମ୍ବ ଅଟେ—(animal) Having
বড় নেজওয়ালা a long tail. ୨ । ଲମ୍ବ ଲାଞ୍ଜିଯୁକ୍ତ ହୋଇ
लंबालांजवाला ଅଙ୍କିତ (କଜ୍ଜଳରେଖା)—2 (a line of collyrium) Drawn with a long tail.

ଲମ୍ବ ସ୍ତନ(ନୀ)—ଦେ. ବଣ ସ୍ତ୍ରୀ (ସଂ. ଲମ୍ବିତସ୍ତନା)—ଯେଉଁ ସ୍ତ୍ରୀର
Lamba stanā(nī) ସ୍ତନ ଲମ୍ବମାନ—(Female) With
लम्बस्तना the breasts hanging down.

ଲମ୍ବ ହତା—ଦେ. ବ—ପ୍ରାଚୀର ବେଷ୍ଟିତ ବା ଘେରବନ୍ଦ ହୋଇଥିବା
Lamba hatā ବିସ୍ତୃତ ସ୍ଥାନ—Long compound. ପ୍ରାଦେ
लम्बाहाता (ଗଡ଼ଜାତ) ବ—୧ । ରାଜକର୍ମଚାରୀ ବିଶେଷ—
लंबाहत्ता 1. One of the officials of a Rājā. ୨ । ବଡ଼ ଲୋକଙ୍କ ଭୃତ୍ୟରୂପେ ଯେ ଗର୍ବ ସହକାରେ ଦୀର୍ଘ ପଦ-ବିକ୍ଷେପରେ ଚାଲେ—2 A personal servant who follows his master with long steps in pride. ଦେ. ବଣ (ପୁଂ ଓ ସ୍ତ୍ରୀ)—୧ ।
[ଲମ୍ବହାତିଆ—ଅନ୍ୟରୂପ] ୧ । (ଲକ୍ଷଣାର୍ଥ) ମୁକ୍ତ ହସ୍ତ—1.
लंबाहातवाला Open handed. ୨ । ଯାହାର ହାତ ଲମ୍ବା, ଦୀର୍ଘବାହୁ—2: Long armed.

ଲମ୍ବ(ମ୍ବା) ହେବା—ଦେ. କ୍ରି—୧ । ଗୋଡ଼ ହାତ ଲମ୍ବାଇ କରି
Lamba(mbā) hebā ଶୋଇବା—1. To sleep by
लम्बाहओया outstretching the hands and legs. ୨ ।
लंबाहोन ପ୍ରହାରାଦିଦ୍ୱାରା ଧରାଶାୟୀ ହେବା—2 To be so severely beaten as to lie flat on the ground. ୩ । ବଢ଼ିବା; ବୃଦ୍ଧି ପ୍ରାପ୍ତ ହେବା; ଲମ୍ବିବା—3· To grow. ୪ । ଡେଙ୍ଗା ହେବା—4 To become tall.

ଲମ୍ବା—ସଂ. ବ. ସ୍ତ୍ରୀ (ଲମ୍ବ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ ଆ)—୧ । ଲକ୍ଷ୍ମୀ—
Lambā 1. The Goddess of wealth. ୨ । ପାର୍ବତୀ, ଗୌରୀ—2. Pārbati. ୩ । ତିକ୍ତ ଅଲାବୁ; ପିତାଲାଉ—3. Bitter gourd. ୪ । ଉତ୍କୋଚ; ଲାଞ୍ଚ—4. Bribe (M. W.). ୫ । ଉପହାର—5.
লংবা Present (M. W.). ଦେ. ବଣ—(ସଂ. ଲମ୍ବ)
लंबा —୧ । ଲମ୍ବ, ଦୀର୍ଘ—1. Long; lengthy. ୨ ।
(ଉଚ୍ଚାରଣ—ଲମ୍ବା) ସରଳ; ସିଧା—2. Straight. ୩ । ଡେଙ୍ଗା—3. Tall. ୪ । ଭୂମିରେ ଦଣ୍ଡବତ୍ ଶାୟିତ

ଲମ୍ବାଇ —4. Lying prostrate. ଦେ.ବି—୧ । ଦୈର୍ଘ୍ୟ
लंबाई —1. Length. ୨ । ( ଘୃ୦ ) ଢେଙ୍ଗା ବ୍ୟକ୍ତି—
लंबा 2. Tall man. ୩ । ( ବ୍ୟଙ୍ଗ ) ବଡ଼ ଠେଙ୍ଗା—
[ଲମ୍ବୀ—ସ୍ତ୍ରୀ] 3. A big cudgel.

ଲମ୍ବା(ମ୍ବେ)ଇ—ଦେ. ବି ( ସଂ. ଲମ୍ବ )—ଦୈର୍ଘ୍ୟ—Length.
Lambā(mbe)i ଦେ° କ୍ରି ( ଅସମାପିକା ) ( ସଂ. ଲମ୍ବ୍ ଧାତୁ )
লংবাই लंबाइ —ଲମ୍ବ କରି—Stretching extending.
লংবাকবে लंबाकर

ଲମ୍ବା(ମ୍ବେ)ଇବା—ଦେ. କ୍ରି ( ସଂ. ଲମ୍ବ୍ ଧାତୁ)—୧ । (ଲମ୍ବିବା କ୍ରିୟାର
Lambā(mbe)ibā ଣିଜନ୍ତ ରୂପ) କୌଣସି ବସ୍ତୁକୁ ଲମ୍ବିତ
লংবান କରାଇବା—1. To cause to increase in
लंबाकरना length. ୨ । କ୍ଷୁଦ୍ର ବସ୍ତୁକୁ ଦୀର୍ଘ କରିବା—
2. To make a small thing longer; to lengthen. [ଯଥା—କମାର ଲୁହାକୁ ପିଟି କରି ଲମ୍ବା କରେ]—୩ । ସଙ୍କୁଚିତ ବସ୍ତୁକୁ ଖୋଲି ଦେବା; ମେଲାଇବା —3. To extend; to stretch. [ ଉ—ବସିଥିଲେ ପାଦକୁ ଲମ୍ବାଇ ଦେଇ ଧୀରେ । କୃଷ୍ଣସିଂହ. ମହାଭାରତ ଆଦି । ] ୪ । ବିସ୍ତୃତ କରିବା—4. To spread. [ଯଥା—ବହୁଣା ଲମ୍ବାଇବା, ଖଟ ଲମ୍ବାଇବା, ଦେହ ଲମ୍ବାଇବା ଇତ୍ୟାଦି । ] ୫ । ଲମ୍ବ ବସ୍ତୁକୁ ଝୁଲାଇବା; ଓହଳାଇବା; ଲମ୍ବବସ୍ତୁକୁ ତଳକୁ ଛାଡ଼ି ଦେବା —2. To let loose; to let down a long thing. [ଯଥା—ବାଳ ଲମ୍ବାଇବା, ଓଦା ଲୁଗାକୁ ଶୁଖାଇବା ପାଇଁ ଲମ୍ବାଇବା । ] ୬ । ଅପେକ୍ଷାକୃତ ବଡ଼ କରିବା—9. To make bigger; to enlarge. [ଉ—ସ୍ୱର ଲମ୍ବାଇବା; ଗଳା ଲମ୍ବାଇବା; ପାଟି ଲମ୍ବାଇବା ଇତ୍ୟାଦି । ] ୭ । ଲମ୍ବା ଭାବରେ ସ୍ଥାପନ କରିବା—7. To place lengthwise.

ଲମ୍ବା କଥା—ଦେ. ବି—୧ । ଦୀର୍ଘ ବାକ୍ୟମାନ—1. Long speech.
Lambā kathā ୨ । ଆଡ଼ମ୍ବରଯୁକ୍ତ ବାକ୍ୟ; ବାଗାଡ଼ମ୍ବର—
লম্বা কথা 2. Bombast. ୩ । ଗର୍ବଶୀଳ ବାକ୍ୟ—
लंबीबात् 3. Arrogant speech.
( ଲମ୍ବା ଚଉଡ଼ା କଥା—ଅନ୍ୟରୂପ )

ଲମ୍ବା କରିବା—ଦେ. କ୍ରି—୧ । ପ୍ରହାରଦ୍ୱାରା କୌଣସି ବ୍ୟକ୍ତିକୁ ଦଣ୍ଡବତ୍
Lambā karibā ଧରାଶାୟୀ କରିବା—1. To cause a
লম্বা করা person to fall flat on the ground by
लम्बा करना severely beating him. ୨ । କୌଣସି ବସ୍ତୁକୁ ଦୀର୍ଘ କରିବା—2. To lengthen; to elongate.

ଲମ୍ବା କରି ଶୋଇ (ଶୁଆଇ) ଦେବା—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ
Lambā kari śoi (śuāi) debā ଭୀଷଣ ଭାବରେ ପ୍ରହାର
[ ଲମ୍ବା କରି ଖାଇ ଦେବା—ଅନ୍ୟରୂପ ]. କରି ଭୂତଳଶାୟୀ
লম্বা করে শুইয়ে দেওয়া କରିବା—1 To beat
लंबाकर सुलादेना one so severely as to make him unable to sit erect but lie prostrate on the ground. ୨ । ଲମ୍ବ ବା ଦିଘା ଭାବରେ କୌଣସି ବ୍ୟକ୍ତିକୁ (ଯଥା, ରୋଗୀକୁ ବା ଶିଶୁକୁ ) ଶୁଆଇ ଦେବା —2. To lay one lie prostrate.

ଲମ୍ବା ଘାଟ—ଦେ. ବି—ନଦୀ ପାରି ହେବା ନିମନ୍ତେ ନଦୀକୁ ଅଡ଼ା
Lambā ghāṭa ଭାବରେ ପାରି ନ ହୋଇ ଲମ୍ବେ ଲମ୍ବେ
লম্বাঘাটী ତଟରେ କିଛି ଦୂର ଯେଉଁ ଘାଟରେ ଲୋକେ ଯାଇ ନଦୀ
लम्बाघाट ପାରି ହୁଅନ୍ତି—A ferry where people instead of crossing the river straightly have to pass along the length of the river for some distance and then land on the opposite bank.

ଲମ୍ବା ଚଉଡ଼ା—ଦେ. ବିଣ (ସଂ. ଲମ୍ବ+ଉର୍ଦ୍ଧ)—୧ । ଦୈର୍ଘ୍ୟ ଓ
Lambā chaurḍā ପ୍ରସ୍ଥରେ ବର୍ଦ୍ଧିତ ବା ବର୍ଦ୍ଧିତ—1, Ex-
লম্বা চওড়া panded in length and breadth; made
लम्बा चौडा to extend in length and breadth; lengthened and flattened. [ଉ—ବଣିଆ ସୁନା ଖଣ୍ଡକ ପିଟି ଲମ୍ବା ଚଉଡ଼ା କରି ଦେଲା । ] ୨ । ଦୀର୍ଘ ଓ ପ୍ରଶସ୍ତ; ବିସ୍ତୃତ—2, Extensive; long and
লম্বাই চওড়াই broad. ଦେ. ବି—ଦୈର୍ଘ୍ୟ ଓ ପ୍ରସ୍ଥ; ଦୀର୍ଘ ଓ
लंबाई चौडाई ପ୍ରସ୍ଥ—Length and breadth.

ଲମ୍ବା ଚଳି(ଲେ)ଇବା—ଦେ. କ୍ରି—୧ । ଲମ୍ବେ ଲମ୍ବେ ଗଲା କରିବା—
Lambā chalā(le)ibā 1, To proceed straight-
লম্বাচলা forward. ୨ । ଲମ୍ବା ଠେଙ୍ଗା ଆଦି ଗୁଳାଗ କରିବା ବା
लंबाचलना ଲମ୍ବା ଠେଙ୍ଗାଦ୍ୱାରା ପ୍ରହାର କରିବା—2, To beat
লম্বাচালান लम्बाचलाना with long sticks,

ଲମ୍ବାଟିଆ—ଦେ. ବିଣ—ଲମ୍ବଡ଼ା (ଦେଖ)
Lambāṭiā Lambarḍā, (See)

ଲମ୍ବା ଦଉଡ଼—ଦେ. ବି—୧ । ଦୀର୍ଘ ପଥରେ ଏକଦମ୍ ଦଉଡ଼ିବା—
Lamdā daurḍa 1. Running straightforward.
( ଲମ୍ବା ଦୌଡ଼—ଅନ୍ୟରୂପ ) ୨ । ଏକଦମ୍ ସ୍ଥାନତ୍ୟାଗପୂର୍ବକ
লম্বাদৌড় लंबादौड ପଳାୟନ; ଚମ୍ପଟ—2, Fleeing away; taking to one's heels.

ଲମ୍ବାଦଉଡ଼ ଦେବା—ଦେ. କ୍ରି—୧ । ଦୀର୍ଘ ପଥରେ ଏକମୁହାଁ ହୋଇ
Lambādaurḍa debā ପଳାଇବା—1, To run away
(ଲମ୍ବାଦଉଡ଼ ମାରିବା—ଅନ୍ୟରୂପ) in a straight course.
লম্বাদৌড়দেওয়া ୨ । ଧୁ ମାରିବା; ଚମ୍ପଟ ମାରିବା; ପଳାଇବା—
लम्बादौड देना(मारना) 2. To show one's heels; to flee away,

ଲମ୍ବା ଲମ୍ବା—ଦେ. ବିଣ—ଲମ ଲମ (ଦେଖ)—Lamba lamba,
Lambā lambā (See) [ ଉ—ଲମ୍ବା ଲମ୍ବା ହାତୁଟି ମାର ଆଶୀର୍ବାଦ କରି ଯନ୍ତ ଛଡ଼ନ୍ତି । ଫକୀରମୋହନ. ଛମାଣ ଆଠଗୁଣ । ]

ଲମ୍ବାଲମ୍ବା କଥା—ଦେ. ବି (ବହୁବଚନାର୍ଥକ)—୧ । ଆଡମ୍ବରପୂର୍ଣ୍ଣ କଥାମାନ—1, Bombastic speeches. ୨ । ବଢ଼େଇ କରି କହିବା—2. Tall talk.
Lambā lambā kathā
লম্বা লম্বা কথা
लम्बी लम्बी बातें

ଲମ୍ବା ଲମ୍ବି—ଦେ. ବି—ଲମ୍ବାଇବା ଆଦି କ୍ରିୟା—Acts of lengthening or stretching etc,
Lambā lambi
লংবা লংবী
लंबा लंबी
ବିଣ—ବହୁତ ଲମ୍ବା—Very long; of great length. [ ଉ—ଗ୍ରାମଟି ଲମ୍ବାଲମ୍ବି, କନ୍ତୁ ସିଧା ସଳଖ ନୁହେଁ, ଆଠ ଅଙ୍କିଆ । ଫକୀରମୋହନ. ଛମାଣ ଆଠଗୁଣ୍ଠ । ] କ୍ରି. ବିଣ—ଲମ୍ବେ ଲମ୍ବେ; ଲମ୍ବାଭାଗରେ—Straightway; straightly; along; lengthwies.

ଲମ୍ବି—ଦେ. କ୍ରି ବିଣ—ଲମ୍ବେ ଲମ୍ବେ ( ଦେଖ )
Lambi — Lamba lamba ( See )

ଲମ୍ବିକା—ସଂ. ବି. ସ୍ତ୍ରୀ ( ଲମ୍ବ+କ+ସ୍ତ୍ରୀ. ଆ )—ଅଳଜିହ୍ୱା, ଘଣ୍ଟିକା—The uvula the soft palate.
Lambikā

ଲମ୍ବି ଚଲ(ଲେ)ଇବା—ଦେ. କ୍ରି—ଲମ୍ବେ ଲମ୍ବେ ଗତି କରିବା—To proceed lengthwise,
Lambi chalā(le)ibā
লংবাদিকে যাওয়া
लंबा चलना

ଲମ୍ବିତ—ସଂ. ବିଣ ( ଲମ୍ବ୍ ଧାତୁ+କର୍ତ୍ତ୍ରି ତ )—୧ । ଦୋଳିତ—1. Suspended hung. ୨ । ଦୋଳାୟମାନ; ଲମ୍ବ ହୋଇ ଝୁଲୁଥିବା ଓହଳିଥିବା—2. Hanging. ୩ । ଆଶ୍ରିତ; ଅବଲମ୍ବିତ—3. Depending on hanging from
Lambita

ଲମ୍ବି ପଡ଼ିବା—ଦେ. କ୍ରି—ଓହଳି ପଡ଼ିବା; ଝୁଲି ପଡ଼ିବା—To hang down to descend to be suspended. [ ଉ—ଏହା କହିଣ ଯୁଧିଷ୍ଠିର ତା ଗଳାକୁ, ଭିଡ଼ି ଲମ୍ବି ପଡ଼ିଲେ ଦେଖାଇ ବଳକୁ । କୃଷ୍ଣସିଂହ. ମହାଭାରତ. ବନ । ]
Lambi pardibā
ঝুলে পড়া
लमड जाना

ଲମ୍ବିବା—ଦେ. କ୍ରି ( ସଂ. ଲମ୍ବ ଧାତୁ )—୧ । ଲମ୍ବିତ ହେବା; ଝୁଲୁଥିବା—1. To be hanging. ୨ । ଓହଳିବା—2. To remain suspended. ୩ । ବିଛଣାରେ ବା ଭୂମିରେ ଲମ୍ବ ହୋଇ ଶୋଇବା—3. To stsetch one's self on the bad or goound. ୪ । ଲମ୍ବ ବା ଦୀର୍ଘରେ ବୃଦ୍ଧି ପାଇବା—4. To increase in length. ୫ । ଲମ୍ବ ଦିଗରେ ଗତି କରିବା—5. To froed along. ପ୍ରାଦେ ( ସମ୍ବଲପୁର ) କ୍ରି—ଦୁଇ ଚାରି ଜଣ ଏକତ୍ର ବସିଥିବା ସ୍ଥାନରୁ ଜଣେ ବ୍ୟକ୍ତି ହଠାତ୍ ଉଠି କରି ଚାଲିଯିବା—To leave a company of men and go away.
Lambibā
লম্বিত হওয়া, ঝুলা
लमडना
লংবা হওয়া
लंबा होना

ଲମ୍ବିଯିବା—ଦେ. କ୍ରି—ଲମ୍ବି ଚାଲିବା ( ଦେଖ )
Lambijibā — Lambi chālibā ( See )
ପ୍ରାଦେ ( ସମ୍ବଲପୁର ) କ୍ରି—ଲମ୍ବିବା ( ଦେଖ )
Lambibā ( See )

ଲମ୍ବୀ—ଦେ. ବିଣ ଓ ବି. ସ୍ତ୍ରୀ—ଡେଙ୍ଗେଇ ସ୍ତ୍ରୀ—A tall woman.
Lanbi ডেঙ্গী लंबी (ଲମ୍ବା—ପୁଂ)

ଲମ୍ବେ ଲମ୍ବେ—ଦେ. କ୍ରି. ବିଣ—୧ । ସଳଖେ ସଳଖେ: ସିଧାଏ ସିଧାଏ—1. Straightforward. [ ଉ—ଏହା କହି ବଭୀଷଣ ଆଉ ଚାରି ଜଣ ରାକ୍ଷସ ଯେବେ ସେହି ସଭାରୁ ଲମ୍ବେ ଲମ୍ବେ ସମୁଦ୍ର ପାର ହୋଇ ରାମଙ୍କ ପାଖେ ଆସି ପହଁଚିଲେ । ନୀଳକଣ୍ଠ. ପିଲାଙ୍କ ରାମାୟଣ । ] ୨ । ଲମ୍ବଭାଗରେ—2. Lengthwise.
Lambe lambe
লংবা
लंबे लंबे, सीधे

ଲମ୍ବୋଦର—ସଂ. ବିଣ. ପୁଂ ( ବହୁବ୍ରୀହି; ଲମ୍ବ ଅଟେ ଉଦର ଯାହାର ) ୧ । ସ୍ଥୂଳୋଦର; ଅନ୍ତୁଲପେଟିଆ—1. Big-bellied ୨ । ଦୀର୍ଘୋଦରବିଶିଷ୍ଟ—2. Long-bellied. ୩ । ଔଦରିକ; ପେଟୁ—3. Greedy; gluttonous; voracious. ସଂ. ବି—ଗଣେଶ; ଗଣନାଥ—The Deitv Gaṇeśa ( son of Mahādeba ). [ ଦ୍ର—ଏହାଙ୍କ ପେଟ ବଡ଼ ଥିବାରୁ ଏପରି ନାମ ହୋଇଅଛି । ] ଦେ. ବି. ପୁଂ—ଲୋକଙ୍କ ନାମ—A name given to males.
Lambodara
(ଲମ୍ବୋଦରୀ—ସ୍ତ୍ରୀ)

ଲମ୍ବୋ(ମ୍ବୌ)ଷ୍ଠ—ସଂ. ବିଣ. ପୁଂ—(ବହୁବ୍ରୀହି; ଲମ୍ବ+ଓଷ୍ଠ=ଲମ୍ବୋଷ୍ଠ, ଲମ୍ବୌଷ୍ଠ)—ଯାହାର ଓଠ ବଡ଼—(a man) Having long lips. ସଂ. ବି—୧ । (ଏହାର ଓଠ ବଡ଼ ଥିବାରୁ) ଉଷ୍ଟ୍ର; ଓଟ—1. Camel. ୨ । କ୍ଷେତ୍ରପାଳ ଦେବତା ବିଶେଷ—2. One of the Kshetrapāla Deities.
Lambo(mbau)sṭha
(ଲମ୍ବୌଷ୍ଠୀ—ସ୍ତ୍ରୀ)

ଲମ୍ଭ (ଧାତୁ)—ସଂ.—୧ । ପ୍ରାପ୍ତ ହେବା;ପାଇବା—1.To get. ୨ । ପ୍ରାପ୍ତ କରାଇବା—2. To cause to get; to cause to be received. ୩ । ଶବ୍ଦ କରିବା; ଧ୍ୱନି କରିବା; ରବ କରିବା—3. To utter a sound ୪ । ଗତି କରିବା—4. To move.
Lambh (root)
[ଲଭ୍ ଧାତୁ—ଅନ୍ୟରୂପ]

ଲମ୍ଭନ—ସଂ. ବି—( ଲମ୍ଭ୍ ଧାତୁ+ଭାବ. ଅନ )—୧ । ପ୍ରାପ୍ତି—1. Getting. ୨ । ପ୍ରାପଣ—2. Causing to be received. ୩ । ଧ୍ୱନି; ଶବ୍ଦ—3. Sound. ୪ । ଲାଞ୍ଛନା; ଅବମାନନା—4 Humiliation; insult. ୫ । ଗାଳିମନ୍ଦ—5. Abuse-
Lambhana

ଲମ୍ଭିତ—ସଂ.ବିଣ—(ଲମ୍ଭ୍ ଧାତୁ+କର୍ମ ତ)—୧ । ଶବ୍ଦିତ—1. Sounded. ୨ । ପ୍ରାପିତ—2. Caused to be received. ୩ । ବର୍ଦ୍ଧିତ; ପୋଷିତ—3. Reared; brought up. ୪ । ନିଯୋଜିତ—4 Engaged; commissioned. ୫ । ଲାଞ୍ଛିତ; ଅପମାନିତ—5. Humiliated; insulted. ୬ । ଗାଳି ଦିଆ ହୋଇଥିବା (ବ୍ୟକ୍ତି); ତିରସ୍କୃତ—6. Abused. ୭ । ବିସ୍ତାରିତ—7. Expanded

ଲୟ୍‌ଦକ୍(ଗ୍)—ପ୍ରାଦେ. ( କଟକ ସହର )—ବୈଦେ. ବି.—(ଫା.
Laj-dik(g) ନଜ୍‌ଦିକ୍)—ନଜ୍‌ଦିକ୍ (ଦେଖ)
Najadik (See)

ଲୟ—ସଂ. ବି—(ଲୀ ଧାତୁ=ଲୀନ ହେବା; 'ଅଶ୍ଲିଷ୍ଟ ହେବା+ଭାବ.
Laya ଅ)—୧ । ଜଳ ଆଦିରେ କୌଣସି ପଦାର୍ଥ ମିଳାଇ ଯିବା—1, Solution. ୨ । କୌଣସି ବସ୍ତୁରେ ଲୀନ ହେବା ବା ମିଶି ଯିବା— 2. Being merged in a thing; being dissolved; absorption. ୩ । ସୃଷ୍ଟିର ପ୍ରଳୟ; ବିନାଶ, ଧ୍ୱଂସ—3. Extinction; utter ruin; dissolution of the universe; destruction. ୪ । ସଂଶ୍ଳେଷ—4. Clinging. ୫ । ନୃତ୍ୟ-ଗୀତବାଦ୍ୟାଦିର ତାଳ ବା ସମାନ ସମୟ; ଗୀତ ସଙ୍ଗେ ବାଦ୍ୟାଦିର ମେଳ—5. Measured time in music or dance; equality of measure on music; union of vocal and instrumental music. ୬ । ବିଳାସ; କ୍ରୀଡ଼ା—6. Sport; play; enjoyment. ୭ । (+ଅଧି. ଅ) ଆବାସ—7. Home; habitation; residence. ୮ । ସୁଖ-ଭୋଗ—8. Felicity; enjoyment of pleasure. ୯ । କାଳର ଅବଚ୍ଛେଦ ଗତି—9 Continuous passing of time; the speeding away of time. ୧୦ । ଈଶ୍ୱର (ଯାହାଙ୍କ ଠାରେ ପ୍ରଳୟକାଳରେ ସୃଷ୍ଟି ଲୀନ ହୁଏ)—10, God (in whom the creation merges at the time of dissolution.) ୧୧ । ଅଭିନିବେଶ; ସ୍ନେହର ଅନୁରାଗ—11. Attention; deep attachment. ୧୨ । କୌଣସି ବିଷୟ ପ୍ରତି ଏକାନ୍ତ ଧ୍ୟାନ ବା ମନୋଯୋଗ, ଏକାଗ୍ର ଚିତ୍ତରେ ଧ୍ୟାନ—12. Concentrated attention to a particular matter; contemplation. [ ଉ—ହିରଦ ମନ୍ଥର ମନ୍ଥନ କରି କି ଦେଉଛନ୍ତି ସାରଭୂତ, ନର୍ତ୍ତକୀ, 'ଲୟ' ଜୁର ମୂନକର । ଉପେ. କୋଟି ବ୍ରହ୍ମାଣ୍ଡସୁନ୍ଦରୀ । ) ୧୩ । କାର୍ଯ୍ୟର କାରଣରେ ପ୍ରବିଷ୍ଟ ହେବା ଓ ପୁଣି କାରଣରୂପେ ପରିଣତ (ହ୍ନ. ଶ)—13 Merger of a matter in its cause and being turned into the cause itself. ୧୪ । ସ୍ଥିରତା; ବିଶ୍ରାମ (ହ୍ନ.ଶ.)—14. Stillness; rest. ୧୫ । ମୂର୍ଚ୍ଛା (ହ୍ନ. ଶ.)—15. Loss of consciousness; fainting ୧୬ । ( ସଙ୍ଗୀତ ) କୌଣସି ସ୍ୱରକୁ ବାହାର କରିବାକୁ ଯେତେ ସମୟ ଲାଗେ ( ହ୍ନ. ଶ. )—16. The time required to bring out a tune. [ ଦ୍ରୁ—ଏହା ୩ ପ୍ରକାର, ଦ୍ରୁତ, ମଧ୍ୟ ଓ ବିଳମ୍ବିତ—ହ୍ନ. ଶ.]—୧୭ । ବୈଦିକଯୁଗରେ ଚଷ ଜମିକୁ ସମତଳ କରିବା ପାଇଁ ବ୍ୟବହୃତ ଏକପ୍ରକାର ମଇ ( ଶୁକ୍ଳ ଯଜୁର୍ବେଦ କାଣ୍ୱସଂହିତା )—17. A kind of ladderlike contrivance used in ancient times for levelling up ploughed up fields. ଦେ. ବି —୧ । ଗାଇବାର ସ୍ୱର—1. Tune of a song. ୨ । ଗୀତ ଗାଇବାର ଢଙ୍ଗ—2. Mode of singing. ୩ । ଅବଲୟ; ନର୍ତ୍ତକର ହସ୍ତାଦିର ଭଙ୍ଗୀ—3. Gestures made by dencers during a song; gesticulations.

ଲୟ କରିବା—ଦେ. କ୍ରି—୧ । କୌଣସି ବିଷୟ ପ୍ରତି ଧ୍ୟାନ ବା
Laya karibā ମନୋଯୋଗ ଦେବା—1. To concentrate
লয়কৰা one's attention to a particular thing.
लयकरना ୨ । ଧ୍ୟାନ କରିବା—2 To contemplate. ୩ । ବିନାଶ କରିବା—3. To destroy.

ଲୟ କ୍ରିୟା—ସଂ. ବି—ପ୍ରଳୟ କାଳରେ ( ଶିବ ରୂପରେ ବିଷ୍ଣୁଙ୍କ ଦ୍ୱାରା )
Laya kriyā ସୃଷ୍ଟିର ସଂହାର କ୍ରିୟା—The act of destruction of the creation by God ( in the shape of Siba.)

ଲୟ ଗତ—ସଂ. ବି—୧ । ମିଶ୍ରିତ—1. Absorbed. ୨ । ମିଳାଇ-
Laya gata ଯାଇଥିବା—2. Dissolved. ୩ । ଧ୍ୱଂସ ପ୍ରାପ୍ତ—3. Annihilated; ruined.

ଲୟ ଦେବା—ଦେ. କ୍ରି—କୌଣସି ବିଷୟ ପ୍ରତି ମନୋଯୋଗ ଦେବା—
Laya debā To concentrate one's attention
লয়কৰা on a particular; motter to turn one's
लयदेना attention to a matter.

ଲୟନ୍ (ଇତ୍ୟାଦି)—ବୈଦେ. ବି—ନୟନ୍ ଇତ୍ୟାଦି ( ଦେଖ )
Layan (etc) Nayan etc ( See )

ଲୟନ—ସଂ. ବି—୧ । ( ଲୀ ଧାତୁ+ଅଧିକରଣ ଅନ )—ଭବନ; ଗୃହ
Layana —1. Residence; house. ୨ । ବିଶ୍ରାମ ସ୍ଥାନ; ଆଶ୍ରୟ ସ୍ଥାନ—2 Place of shelter or rest. ୩ । ( +ଭାବ ଅ ) ବିଶ୍ରାମ—3. Rest. ୪ । ଆଶ୍ରୟ ଗ୍ରହଣ—4. Taking shelter.

ଲୟପୁତ୍ରୀ—ସଂ. ବି. ସ୍ତ୍ରୀ—ନଟୀ; ନର୍ତ୍ତକୀ—
Layaputrī A dancing woman.

ଲୟ ରହିବା—ଦେ. ବି—କୌଣସି ବିଷୟ ପ୍ରତି ମନୋଯୋଗ ସ୍ଥିର
Laya rahibā ହୋଇ ରହିବା—Concentration or
[ଲୟ ଦେବା—ଅନ୍ୟରୂପ] turning of one's attention
লয় আনা to a particular matter. ( ଯଥା—ମୋର
लय रहना ଅମୁକ ବିଷୟ ପ୍ରତି ଲୟ ରହିପାରୁ ନାହିଁ ।)

ଲୟରେ—ଦେ. କ୍ରି. ବିଣ—ଖୁବ୍ ମନୋଯୋଗ ସହିତ—
Layare Very attentively.
লয়ে लयमें

ଲୟସ—ଦେ. ବି (ସଂ. ଲୟ)—୧ । ଲିପ୍ସା; ଧ୍ୟାନ—1, Attent-
Layas tion. (ଯଥା—ମୋର ଭଲ ବିଷୟ ପ୍ରତି ଲୟସ୍ ରହି
লয় ପାରୁନାହିଁ) ୨ । (ସଂ. ଲୟ; ଭୁଲ. ଫା. ଅସୂସ)—ଅସୂସ୍;

ଲସ୍ୟ ବଳାସ; ସୁଖଭୋଗ—2. Luxury; enjoyment
ଆକ୍ସସ (ଯଥା—ସାଥନ୍ତେ ତାଙ୍କ ଜାଠୁଅଠୋକାଙ୍କୁ ଖୁବ ଲସ୍ୟରେ
ଲସ ରଖିଅଛନ୍ତି ।)

ଲର କୋଳି—ଦେ॰ ବ (ସଂ. ଲବଲୀ) — ନର କୋଳି (ଦେଖ)
Lara koḷi नोयाड़ि हरफरे Narakoḷi. (See)
(ଲଅ[ହ]ର କୋଳ — ଅନ୍ୟରୂପ)

ଲରି—ବୈଦେ. ବ (ଇଂ)—ବହୁ ଲୋକ ବସିବା ପାଇଁ ବ୍ୟବହୃତ ଯାନ
Lari ଗୃହଳ ଚକ ଗାଡ଼ି—Lorry. ପ୍ରାଦେ (ସମ୍ବଲପୁର) ବଣ—
लरि १ । ଛୋଟ (ଡାଳ ବା ଗଛ)—1. Small, (tree or
लरी,लौरी branch). ୨ । କୋମଳ (ଡାଳବା ଗଛ)—2. Soft;
tender (tree or branch). ବ —ଗୁଳ୍ମ—Plant.

ଲରି—ଦେ. ବ—ନରି (ଦେଖ)
Lari (ଲରିଆ—ଅନ୍ୟରୂପ) Nari. (See)

ଲରିଆ(ହା)—ଦେ. ବ—୧ । ଏକ ପ୍ରକାର ବକୃତ ହନ୍ଦୁସ୍ଥାନୀ ଓ ଓଡ଼ିଆ
Lariā(hā) ମିଶା କଥ୍ୟ ଭାଷା—1. A spoken dialect
लरिया of a mixed language of Hindusthani and
लरिआ Oriya; Lariā. [ଦ୍ର—ଏହା ଛତିଶଗଡ଼, ସମ୍ବଲପୁର ଓ
ବଲାସପୁର ଆଦ ସ୍ଥାନମାନଙ୍କରେ ପ୍ରଚଳିତ । ଏହାକୁ
ଗ୍ରୀଅର୍ସନ୍ ହନ୍ଦୁସ୍ଥାନୀର ଗୋଟିଏ ଭାଷା ବୋଲି କହିଅଛନ୍ତି;
କିନ୍ତୁ ଏହା ଓଡ଼ିଆ ଭାଷା ପ୍ରଭାବରେ ବିଶେଷ ଭାବରେ
ପ୍ରଭାବିତ ।ଲରିଆ ଭାଷାର ଗୋଟିଏ ଦୃଷ୍ଟାନ୍ତ :—"ଏକ୍ଠନ୍
ମନ୍ଖେକେ ଦୁଠନ୍ବେଟା ରହିନ୍ । ଓକର ମାନ୍ଲେ
ଛୋଟେ ବେଟା ବାପ୍ଲା କହିସ୍, ଦଦାଗା ! ସମ୍ପତ୍ତିମ ମୋର୍
ଯତ୍କେ ବାଁଟା ପଡ଼ୁହି, ତତ୍କେ ମୋଲ୍ଲା ଦାଁଟା ଦେ ।
ବାପ୍ ଏଲ୍ଲା ଶୁନ୍କେ ଓକର୍ ସମ୍ପତ୍ଲା ଅପନ୍ ଦୁନେ
ବେଟାକେ ବରମ୍ ବାଁଟ୍ ଦିହିସ୍ । କେତେକ୍ ଦିନ୍କେ ପିଛୁ
ଛୋଟେ ବେଟା ଓକର୍ କାଁଠ ମ ଯତ୍କା ସମ୍ପତ୍ ପଡ଼େ
ରହିସ୍, ସବ୍ଲା ଏକଠୌରିମ ସଙ୍କେକେ ବଦେଶ୍ ଗଇସ୍ ଓ
ମେର୍ ପୌନ୍ ଚୌନ୍ ଖର୍ଚ୍ଚ କରକେ ଲୁଚ୍ ଦିନମ ସବ୍
ସମ୍ପତ୍ଲା ଉଡ଼ାଏ ଦିହିସ୍ । ଏସ୍ନେ ବଖତମ ଓ ଦେଶମ
ଦୁର୍ଭିକ୍ଷ ପଇସ୍ ଓ ଲୌକା ଖାଏବର୍ ନୈପାଏକେ ଓପାସମ
ଦୁଃଖ ପାଇସ୍ ।" (Grierson's Linguistic
Survey of India)

ଏଥିର ଓଡ଼ିଆ ଅନୁବାଦ :—ଜଣେ ଲୋକର
ଦୁଇଟି ପୁଅ ଥିଲେ । ତାଙ୍କ ମଧ୍ୟରୁ ସାନପୁଅ ବାପାଙ୍କୁ କହିଲା,
ବାପା । ସମ୍ପତ୍ତିରେ ମୋର ଯେତେ ବାଣ୍ଟ ପଡ଼ିବ ସେତକ
ମୋତେ ବାଣ୍ଟି ଦିଅ । ବାପ ଏହା ଶୁଣି ତାର ସମ୍ପତ୍ତିକୁ
ଦୁଇ ପୁଅଙ୍କ ମଧ୍ୟରେ ବାଣ୍ଟି ଦେଲା । କେତେ ଦିନ ପରେ
ସାନ ପୁଅ ତା ବାଣ୍ଟରେ ଯେତେ ସମ୍ପତ୍ତି ପଡ଼ିଲା, ସବୁକୁ
ଏକଜ ରଖି ବଦେଶ ଗଲା ଓ ସେ ଯା ଇଚ୍ଛା ତା ଖରଚ
କରି କଛି ଦିନେ ସବୁ ସମ୍ପତ୍ତି ଉଡ଼ାଇ ଦେଲା । ଏହି
ସମୟରେ ସେ ଦେଶରେ ଦୁର୍ଭିକ୍ଷ ପଡ଼ିଲା ଓ ଲୋକେ
ଖାଇବାକୁ ନ ପାଇ ଉପାସରେ ଦୁଃଖ ପାଇଲେ ।" ।]
୨ । ଶବର, ଅଘରିଆ ପ୍ରଭୃତି ଜାତିଙ୍କର ଗୋଟିଏ ଶ୍ରେଣୀ
(ଅନ୍ୟ ଶ୍ରେଣୀ ଓଡ଼ିଆ)—2. A sect of the
'Śabara' caste and of the Aghariā caste.
[ଦ୍ର—ଏ ଶ୍ରେଣୀର ଲୋକେ ଲରିଆ ଭାଷା ବ୍ୟବହାର
କରନ୍ତି ଓ ଓଡ଼ିଆ ଶ୍ରେଣୀର ଲୋକେ ଓଡ଼ିଆ ଭାଷା ବ୍ୟବହାର
କରନ୍ତି । ]

ଲଲ (ଧାତୁ)—ସ—୧ । କଟାକ୍ଷାଦ ଭଙ୍ଗୀ ବା ବଳାସ ପ୍ରଦର୍ଶନ କରିବା—
Laḷ (root) 1. To glance sportively. ୨ । କ୍ରୀଡ଼ା
କରିବା—2. To sport; to play. ୩ । ଇଚ୍ଛା
କରିବା—3. To wish or desire. ୪ । ପ୍ରାପ୍ତି ପାଇଁ
ବାଞ୍ଛା କରିବା—4. To hanker after, to long
for. ୫ । (ଜିଭ)ହଲାଇବା—5. To loll or wag
( the tongue ).

ଲଲ—ସ. ବ (ଲଲ୍ ଧାତୁ + ଭାବ.ଅ)—୧ । ପ୍ରାପ୍ତିଚ୍ଛା—
Laḷa 1. Hankering after a thing. ୨ । ହଲାଇବା—
2 Lolling; wagging. (M. W) ୩ । (+
କର୍ତ୍ତୃ. ଅ ) ଗଛ—3. Shoot; sprout. (M. W).
୪ । (+ ଅଧି ଅ) ବଗିଚ୍ଛ—4. Garden. (M. W).
ସ ବଣ — ୧ । କ୍ରୀଡ଼ାପ୍ରିୟ—1. Sportive; playful,
(M. W) ୨ । ଇଚ୍ଛୁକ—2. Desirous; wishing
(M. W)

ଲଲଜ୍ଜିହ୍ୱ—ସ. ବଣ. ପୁଂ (ବହୁବ୍ରୀହି; ଲଲତ୍=ଦୋଳାୟମାନ +
Laḷajjihwā ଜିହ୍ୱା)—୧ । ଯାହାର ଜିଭ ଲଡ଼ଲଡ଼ ବା
(ଲଲଜ୍ଜିହ୍ୱା — ସ୍ତ୍ରୀ) ଲହଲହ ହେଉଥାଏ; ଯାହାର ଜିଭ ନଡ଼ିକା—
1. Having a lolling or wagging tongue;
with the tongue hanging out or lopping. ୨ । ରକ୍ତଲୋଲୁପ; ହିଂସ୍ର (ଜନ୍ତୁ); ଭୟଙ୍କର—
2. Ferocious; blood thirsty; ravenous
(animals). ବ—୧ । କୁକୁର—1. The dog.
୨ । ଉଷ୍ଟ୍ର; ଓଟ—2. The camel.

ଲଲତ୍କର୍ଣ୍ଣ—ସ. ବଣ. ପୁଂ (ବହୁବ୍ରୀହି; ଲଲତ୍=ଝୁଲୁଥିବା + କର୍ଣ୍ଣ
Laḷat-karṇṇa ଯାହାର) — ଯାହାର କାନ ଲଡ଼ିକ ପଡ଼ିଥାଏ;
(ଲଲତ୍କର୍ଣ୍ଣୀ—ସ୍ତ୍ରୀ) କାନଲଡ଼କା; ଲଡ଼କା କାନଥିବା—Having
hanging or drooping ears; lope-ared.

ଲଲାଟଗିରି—ଦେ. ବ—ନଳାଟଗିରି (ଦେଖ)
Laḷaṭigiri Naḷaṭigiri. (See)

ଲଲନ—ସ. ବଣ. ପୁଂ (ଲଲତ୍ ଶବ୍ଦ; ଲଡ଼୍ ଧାତୁ—ଉଚ୍ଛ୍ରିତ
Laḷan ହେବା + କର୍ତ୍ତୃ. ଅନ)—୧ । କମ୍ପମାନ—1. Trembling; quaking. ୨ । ଦୋଳାୟମାନ; ଝୁଲୁଥିବା—
2. Hanging; lopping; oscillating; hanging down. ୩ । ଲେଲିହାନ; ଚାଟୁଥିବା—3. Lick-

ing. ୪ । ଲୋଲୁପ; ଲାଳସାଯୁକ୍ତ—4. Hankering. ୫ । ବିଳାସଯୁକ୍ତ—5. Sporting; amatory.

**ଲଳନ**—ସଂ. ବି (ଲଲ୍ ଧାତୁ+ଭାବ. ଅନ)—୧ । ବିଳାସ—
Lalana 1. Sport. ୨ । କେଳି—2. Amorous play; dalliance. ୩ । ଅସ୍ଥିରତା—3, Restlessness. ୪ । ଦୋଳନ; କମ୍ପନ; ଲଡ଼ାଲଡ଼ି ହେବା—4, Oscillating; shaking; lopping. ୫ । ଝୁଲିବା—5, Hanging. ୬ । (+କର୍ମ. ଅନ) ବାଳ;ବାଳକ—6, Boy. ୭ । ଗେହ୍ଲା ବାଳକ (ହି. ଶ)—7, A much fondled boy. ୮ । (ସ୍ନେହସୂଚକ) ପ୍ରିୟ ପତି ବା ନାୟକ—8, Beloved husband or gallant. ୯ । ଅସନ ଗଛ—9, Buchanonia Latifolia (tree) (M, W). ୧୦ । ଶାଳ ଗଛ (ହି. ଶ)—10, Shorea Roubsta (tree); Vatica Robusta (M, W),

**ଲଳନା**—ସଂ.ବିଂ. ସ୍ତ୍ରୀ (ଲଲ୍ ଧାତୁ=କଟାକ୍ଷ ଭଙ୍ଗୀ ବା ବିଳାସ ପ୍ରଦର୍ଶନ
Lalanā କରିବା+କର୍ତ୍ତୃ. ଅନ+ସ୍ତ୍ରୀ. ଆ)—୧ । ନାରୀ, ସ୍ତ୍ରୀ—1. Woman. ୨ । ପତ୍ନୀ; ସ୍ତ୍ରୀ—2. Wife. ୩ । କାନ୍ତା—3, Mistress. ୪ । ସୁକୁମାରାଙ୍ଗୀ ନାରୀ—4, A tender or slender-bodied lady. ୫ । ଜିହ୍ୱା; ଜିଭ—5. Tongue. ୬ । ଚପଳା ସ୍ତ୍ରୀ—6. A wanton woman (M. W). ୭ । ଏକ ବର୍ଣ୍ଣବୃତ୍ତ (ଏଥିର ପ୍ରତ୍ୟେକ ଚରଣରେ ଭଗଣ, ମଗଣ ଓ ୨ସଗଣ ଥାଏ) (ହି. ଶ)—7. Name of a metre.

**ଲଳନା ପ୍ରିୟ**—ସଂ. ବିଣ. ପୁଂ—୧ । ନାରୀପ୍ରିୟ—1. Loving
Lalanā priya women; fond of women. ୨ । ପତ୍ନୀଭକ୍ତ—2. Devoted to one's own wife; uxorious. ସଂ. ସ—୧ । କଦମ୍ବ—1. A tree; Neucles Kadamba. ୨ । ହ୍ରୀବେର; ଭୁରୁବେଲ—2. A plant; Pavonia Odorata. ୩ । ବଳା, ଗନ୍ଧଦ୍ରବ୍ୟ ବିଶେଷ;ବାଡ଼ିଅଁଲା ଗୁଳ୍ମ ('ବଳା' ଦେଖ)—3, Sida Cordifolia. ୪ । ପ୍ରସାରଣୀ ଲତା (ଦେଖ)- 4. Prasāriṇi latā. (See)

**ଲଳନିକା**—ସଂ. ବି (ଲଳନା+କ+ଆ)—ଲଲନା, ସ୍ତ୍ରୀ—
Lalanikā Woman.

**ଲଳନ୍ତିକା**—ସଂ. ବିଂ. ସ୍ତ୍ରୀ (ଲଳତ୍=ଝୁଲୁଥିବା+କ+ସ୍ତ୍ରୀ. ଆ,
Lalantikā ନିପାତନ)—୧ । ନାଭି ଦେଶ ପର୍ଯ୍ୟନ୍ତ ଲମ୍ବିଥିବା ହାର—1, A neklace reaching the navel. ୨ । ଏଣ୍ଡୁଅ—2. Chameleon; lizard. (M. W) ୩ । ଗୋଧି (ହି. ଶ)—3, Iguana.

**ଲଲଲ୍ଲ**—ସଂ. ବି (ଧ୍ୱନ୍ୟନୁକରଣ)—ଅସ୍ପଷ୍ଟ ବା ଦର୍ବୋଧ ଉଚ୍ଚାରଣ—
Lalalla Indistinct or lisping utterance (M. W).

**ଲଲା**—ପ୍ରାଦେ. (ସମ୍ବଲପୁର) ବିଣ. (ସଂ. ଲାଲସା)—୧ । ଅତ୍ୟନ୍ତ
Lalā ଉତ୍ତ୍ୟକ୍ତ—1, Very much dissatisfied. ୨। ଅତ୍ୟନ୍ତ ଲାଳାୟିତ—8. Hankering.

**ଲଲାକ**—ସଂ. ବି (ଲଲ୍ ଧାତୁ+ଭାବ. ଅକ)—୧ । ମୋହନ; ମୁଗ୍ଧ
Lalāka କରିବା—1. Charming; fascinating. ୨। (+କର୍ତ୍ତୃ. ଆକ) ଶିଶ୍ନ; ଲିଙ୍ଗ—2, Penis. ସଂ. ବିଣ. ପୁଂ—
[ଲଲାକା—ସ୍ତ୍ରୀ] ମୋହକାରୀ—Fascinating.

**ଲଲାଟ**—ସଂ. ବି (ଲଲ୍ ଧାତୁ+ଅ=ଲଲ+ଅଟ୍ ଧାତୁ=ଗମନ
Lalāṭa କରିବା+ଅ)—୧ । କପୋଳ; ମସ୍ତକର ଉପରସ୍ଥ ସମ୍ମୁଖ ଭାଗ, ଭାଲ—1. Brow; forehead. ୨ । ଅଦୃଷ୍ଟ; ଭାଗ୍ୟ; କର୍ମ—8, Fate, luck, destiny. [ଦ୍ର—'ଅଦୃଷ୍ଟ' ମନୁଷ୍ୟର କପାଳରେ ବିଧାତାଙ୍କଦ୍ୱାରା ଲେଖା ଥିବା ହିନ୍ଦୁମାନେ ବିଶ୍ୱାସ କରନ୍ତି । ]

**ଲଲାଟକ**—ସଂ. ବି (ଲଲାଟ+କ)—୧ । କପାଳ—1. Forehead.
Lalāṭka ୨ । ପ୍ରଶସ୍ତ କପାଳ—2. A broad or graceful forehead; broad brow (M. W).

**ଲଲାଟ ତଟ**—ସଂ. ବି (୬ଷ୍ଠୀ ତତ୍)—ଲଲାଟର ଗଡ଼ାଣିଆ ଅଂଶ—
Lalāṭa taṭa The slope of the forehead. (M.W)

**ଲଲାଟ ଦେଶ**—ସଂ. ବି (ରୂପକ)—ଲଲାଟ; କପାଳ—
Lalāṭa deśa Brow; forehead.
[ ଲଲାଟ ପଟଳ—ଅନ୍ୟରୂପ ]

**ଲଲାଟନ୍ତପ**—ସଂ. ବିଣ (ଲଲାଟମ୍=ଲଲାଟକୁ+ତପ୍ ଧାତୁ=ତାପ
Lalāṭantapa ଦେବା+କର୍ତ୍ତୃ. ଅ)—ଯାହା କପାଳକୁ ତତାଏ—Scorching the brow or forehead.
ସଂ. ବି—ସୂର୍ଯ୍ୟ—The sun.

**ଲଲାଟ ପଟ**—ଦେ. ବି (ସଂ. ଲଲାଟ ପଟ୍ଟ)—ଲଲାଟପଟ୍ଟ (ଦେଖ)
Lalāṭa paṭa Lalāṭapaṭṭa. (See)
ললাটপট ललाटपट

**ଲଲାଟପଟ୍ଟ**—ସଂ, ବି (ରୂପକ କର୍ମଧାରୟ)—ଭାଲପଟ୍ଟ—Forehead
Lalāṭa paṭṭa compared to a tablet; the flat
[ ଲଲାଟପଟ୍ଟକ, ଲଲାଟଫଳକ—ଅନ୍ୟରୂପ ] surface of the forehead (M. W). [ଦ୍ର—ଏହା ଉପରେ ବିଧାତା ଶିଶୁର ଜନ୍ମର ୬ଷ୍ଠଦିନ ଭବିଷ୍ୟତ୍ ଜୀବନର ଘଟଣାବଳୀ ଲେଖିଥାଆନ୍ତି ବୋଲି ହିନ୍ଦୁମାନଙ୍କର ବିଶ୍ୱାସ ।]

**ଲଲାଟ ରେ(ଲେ)ଖା**—ସଂ.ବି (୬ଷ୍ଠୀ ତତ୍)—ଲଲାଟ ଲିଖନ (ଦେଖ)
Lalāṭa re(le)khā Lalāṭalikhana. (See)

**ଲଲାଟ ଲି(ଲେ)ଖନ**—ସଂ. ବି—୧ । କପାଳଲିଖନ; ଅଦୃଷ୍ଟଲିପି; ଯେଉଁ
Lalāṭali(le)khana ବିଷୟ ମନୁଷ୍ୟର କପାଳରେ ଲେଖାଥାଏ
[ଲଲାଟଲିପି—ଅନ୍ୟରୂପ] ଓ ଯାହା ଅବଶ୍ୟ ଘଟିବ—1. The ordinance of destiny; the writings of Brahmā on one's forehead. ୨ । ଅବଶ୍ୟମ୍ଭାବୀ ଘଟଣା—2, An inevitable incident.

ଲଲାଟ ଲିଖିତ—ସଂ. ବିଣ (୭ମୀ ତତ୍)—ମନୁଷ୍ୟର କପାଳରେ ବ୍ରହ୍ମାଙ୍କ
Lalāṭa likhita ଦ୍ୱାରା ଲିଖିତ (ମନୁଷ୍ୟର ଭାଗ୍ୟ ଜୀବନର ଶୁଭାଶୁଭ)—(one's fate) Written by Brahmā on the forehead; preordained.

ଲଲାଟାକ୍ଷ—ସଂ. ବିଣ. ପୁଂ (ବହୁବ୍ରୀହି)—ଯାହାର ଲଲାଟରେ ଆଖି ଥାଏ—
Lalāṭākha Having an eye on the forehead, [ଲଲାଟାକ୍ଷୀ—ସ୍ତ୍ରୀ] ସ ବି. ପୁଂ—ଶିବ—Siba.

ଲଲାଟାସ୍ଥି—ସଂ. ବି (ଶରୀର ବିଜ୍ଞାନ)—କପାଳର ସମ୍ମୁଖସ୍ଥ ହାଡ଼—
Lalāṭāsthi (Anatomy) The frontal bone,

ଲଲାଟିକା—ସଂ. ବି (ଲଲାଟକ+ଆ)—୧ । ଲଲାଟର ଅଳଙ୍କାର-
Lalāṭikā ବିଶେଷ; ମାଙ୍ଗଟୀକା—1. An ornament for the forehead. ୨ । ତିଳକ; ଚିହ୍ନ—2. A mark or painting done on the forehead. ୩ । ସ୍ତ୍ରୀମାନଙ୍କ କପାଳରେ ପିନ୍ଧାଯିବା ପଟି; ଅଳକା—3. Tiara, fillet (M. W)

ଲଲାଟୁଲ—ସଂ. ବିଣ. ପୁଂ (ଲଲାଟ+ଉଲ)—ପ୍ରଶସ୍ତ ବା ଉଚ୍ଚକପାଳଯୁକ୍ତ-
Lalāṭula Having a high or protruding fore-[ଲଲାଟୁଲା—ସ୍ତ୍ରୀ] head (M, W).

ଲଲାଟ୍ୟ—ସଂ. ବିଣ (ଲଲାଟ+ଯ)—୧ । ଲଲାଟ ସମ୍ବନ୍ଧୀୟ—
Lalāṭya 1, Belonging to the forehead; frontal (M, W). ୨ । ଲଲାଟରେ ପିନ୍ଧାଯିବାର ବା ଲେପାଯିବା ପାଇଁ ଉପଯୁକ୍ତ—2, Suitable for the forehead (M, W).

ଲଲାମ—ସଂ. ବି (ଲଲାମନ୍ ଶବ୍ଦ; ଲଲ୍ ଧାତୁ=କ୍ରୀଡ଼ା କରିବା+ଅମ;
Lalāma ଲଲାମ+ଅନ୍; ୧ମା. ୧ବ, ସଂସ୍କୃତରେ ଲଲାମ ଓ ଲଲାମନ୍ ଦୁଇଟ ଶବ୍ଦ ଅଛି)—୧ । ଲଲାଟର ଭୂଷଣ; ଲଲାଟିକା—1, An ornament for the forehead. ୨ । ଲଲାଟସ୍ଥିତ ତିଳକ ଚିହ୍ନ; ପୁଣ୍ଡ୍ର—A, A painted mark on the forehed; a sectarian mark painted on the forehead. ୩ । ଅଶ୍ୱ ବା ବୃଷର ଲଲାଟସ୍ଥିତ ରଞ୍ଜିତ ଚିହ୍ନ—1. A coloured mark on the forehead of an ox or horse. ୪ । ଚିହ୍ନ—4, Mark. ୫ । ଶୃଙ୍ଗ—5, Horn. ୬ । ପୁଚ୍ଛ—6, Tail (M, W). ୭ । ଧ୍ୱଜ; ପତାକା—7, Flag, ୮ । ପ୍ରଭାବ—8, Power, ୯ । ନାମ—9, Name. ୧୦ । ଶ୍ରେଣୀ—10, Row; range. ୧୧ । ହାତୀର ଶୁଣ୍ଢ—11, Trunk of an elephant. ୧୨ । ପ୍ରଧାନ ବ୍ୟକ୍ତି—12, A chief; headman. ୧୩ । ରତ୍ନ (ହି. ଶ)—13, Gem, ୧୪ । ଘୋଡ଼ା (ହି. ଶ.)—14. Horse. ୧୫ । ଘୋଡ଼ାର ଗହଣା ବା ସାଜ ( ହି. ଶ. )—15. The trappings of a horse. ୧୬ । ଘୋଡ଼ାର ଓ ସିଂହର ବେକ ଉପରର କେଶ; କେଶର—16. The mane of the horse and the lion.
ବିଣ.—୧ । ଶ୍ରେଷ୍ଠ—1. Chief; prominent; ୨ । ମନୋଜ୍ଞ; ସୁନ୍ଦର; ରମ୍ୟ, ରମଣୀୟ—2. Beautiful; charming; pleasing. ୩ । ନାଲିଆ—3. Red. ୪ । ଲଲାଟରେ ଚିହ୍ନଯୁକ୍ତ—4. Having a sign or mark on the forehead (M-W).

ଲଲାମକ—ସ. ବି—(ଲଲାମ+କ)—୧ । ଲଲାଟଶୋଭି ମାଲ୍ୟ—
Lalāmaka 1. A wreath worn round the brow; a chaplet. ୨ । ଲଲାମ (ଦେଖ)
2. Lalāma (See)

ଲଲାମଗୁ—ସଂ ବି—ଶିଶ୍ନ—
Lalāmagu Penis (M. W)

ଲଲାମଭୂତ—ସ.ବିଣ—ଯେ ଲଲାମ (ଶ୍ରେଷ୍ଠ ବା ମନୋଜ୍ଞ) ହୋଇଅଛି—
Lalāmabhūta One who has become prominent (ଲଲାମଭୂତା—ସ୍ତ୍ରୀ) or graceful; occupying a position of prominence or grace. (ଯଥା—ସୀତା ଲଳନାମାନଙ୍କ ଲଲାମଭୂତା ଥିଲେ ।)

ଲଲାମୀ—ସ. ବି—(ଲଲ୍ ଧାତୁ+କର୍ତ୍ତୃ. ଅମ+ଈ)—୧ । ଦୋଳା-
Lalāmi ମାନ କର୍ଣ୍ଣଭୂଷଣ ବିଶେଷ; ଝୁମ୍ପ୍କା—1. A pendant ear ring. ୨ । କୁଣ୍ଡଳ—2. A pendant for the upper ear. ୩ । ସୌନ୍ଦର୍ଯ୍ୟ (ହି. ଶ)—3. Beauty; grace. ୪ । ନାଲି ରଙ୍ଗ (ହି. ଶ)—4. Red colour. ସ. ବିଣ. ସ୍ତ୍ରୀ—(ଲଲାମ+ଈ)—ଲଲାମର ସ୍ତ୍ରୀଲିଙ୍ଗ—Feminine of Lalāma (See)

ଲଳିତ—ସ. ବିଣ—(ଲଲ୍ ଧାତୁ=ବିଳାସ କରିବା+କର୍ତ୍ତୃ ତ)—
Lalita ୧ । ମନୋହର; ସୁନ୍ଦର—1. Graceful; lovely; (ଲଳିତା—ସ୍ତ୍ରୀ) charming. ୨ । କୋମଳ; ସୁକୁମାର—2. Soft; gentle. ୩ । ପ୍ରିୟ—3. Dear. ୪ । ବାଞ୍ଛିତ; ଇପ୍ସିତ—4. Wished for; desired. ୫ । ଦୋଳାୟମାନ—5. Waving; hanging. ୬ । ଚଞ୍ଚଳ—5. Restless; fickle; wavering. ୭ । କମ୍ପମାନ—7. Quivering; tremulous (M. W). ୮ । କର୍ଦ୍ଦୋଷ—8. Innocene
ବି.—୧ । ବିଳାସ—1. Sport, dalliance ୨ । କ୍ରୀଡ଼ା—2. Play; pastime. ୩ । ଲାସ୍ୟ ସ୍ତ୍ରୀ ନୃତ୍ୟ—3. Dancing of females. ୪ । ଗତି; ଚଳନ—4. Movement, walking. ୫ । ହାର ବିଶେଷ—5. A sort of necklace. ୬ । ସ୍ତ୍ରୀ ଗୃହ; ଅନ୍ତର ମହଲ—6, Female apartment. ୭ । ଷାଡ଼ବ ଜାତୀୟ ରାଗିଣୀ ବିଶେଷ—7. One of the secondary musical tunes. [ ବୃ—

ଏହା ଭୈରବ ରାଗର ପୁତ୍ର, ଏଥିରେ ନିଷାଦ ସ୍ୱର ଲାଗେନାହିଁ, ଓ ଧୈବତ ଏବଂ ଗାନ୍ଧାର ଛଡ଼ା ଅନ୍ୟ ସବୁ କୋମଳ ସ୍ୱର ଲାଗେ । ଏଥିର ଗାଇବା ସମୟ ପ୍ରାତଃକାଳ (ହି. ଶ.) ୮ । ସ୍ତ୍ରୀମାନଙ୍କର ଶୃଙ୍ଗାର ଭାବ ବିଶେଷ; ସ୍ତ୍ରୀ ପୁରୁଷକୁ ଦେଖି ପ୍ରକାଶ କରିବା କାମ ଚେଷ୍ଟାସୂଚକ ମୁଖ, ବକ୍ଷ, ନେତ୍ର ଆଦିର ଭଙ୍ଗୀ ବିଶେଷ; ସ୍ତ୍ରୀ ଲୋକର ଶୃଙ୍ଗାରଭାବଜ କ୍ରିୟା ବିଶେଷ—8. Amourous or languid signs or gestures made by a woman towards a lover; a woman's expression of amorous inclination by signs. ୯ । ଏକ ବର୍ଣ୍ଣ ବୃତ୍ତ—8, Name of an irregular metre [ବ୍ର—ଏଥିରେ ପ୍ରଥମ ଚରଣରେ ୧୦, ୨ୟ ଚରଣରେ ୧୦, ୩ୟ ଚରଣରେ ୧୨ ଓ ଚତୁର୍ଥରେ ୧୨ ବର୍ଣ୍ଣ ଥାଏ (ହି. ଶ. ) ୯ । ସୌନ୍ଦର୍ଯ୍ୟ; ମନୋହାରିତା—2. Beauty; grace (Apte). ୧୦ । ଅକୃତ୍ରିମ କର୍ମ—10. Any natural or artless act (Apte). ୧୧ । ସରଳତା—11, Simplicity (Apte). ୧୨ । ନିର୍ଦ୍ଦୋଷତା—12. Innocence (Apte).

**ଲଳିତ କଳା**—ସଂ. ବି ( ଆଧୁନିକ ପ୍ରୟୋଗ )—ସୂକ୍ଷ୍ମକଳା ( ଦେଖ )—
Lalita kalā Sūkshmakalā ( See )

**ଲଳିତକାନ୍ତା**—ସଂ. ବି. ସ୍ତ୍ରୀ—ମଙ୍ଗଳଚଣ୍ଡୀ; ଦୁର୍ଗାଙ୍କ ଅବତାର ବିଶେଷ
Lalita kāntā One of the incarnations or forms of Goddess Durgā.

**ଲଳିତ କାମୋଦୀ**—ଦେ. ବି—ସଙ୍ଗୀତ ରାଗ ବିଶେଷ—
Lalita kāmodi Name of a musical tune.
[ ଦ୍ର—ରାଗ ତଳେ କୋଠ ଦେଖ । ]

**ଲଳିତ(ଗି) ଗିରି**—ଦେ. ବି—ନଳାଟିଗିରି (ଦେଖ)
Lalita(ti)giri Nalatigiri (See)
— [ ଦ୍ର—ଯୋଗାଏ ନଳନ-ପେଢ଼ି ନାଲିଗିରି, ଲଳିତଗିରି ନଳନ । ରାଧାନାଥ. ପାର୍ବତୀ ।]

**ଲଳିତ ପଦ**—ସଂ. ବି—୧ । (କର୍ମଧା)—ମନୋହର ପଦ ବା ବାକ୍ୟ
Lalita pada 1, Graceful words. ୨ । (ବହୁବ୍ରୀହି) ଏକ ମାତ୍ରିକ ଛନ୍ଦ—2. A Sanscrit syllabic metre. [ଦ୍ର—ଏଥିର ପ୍ରତ୍ୟେକ ଚରଣରେ ୧୬+ ୧୨=୨୮ ମାତ୍ରା ଥାଏ, ଅନ୍ତରେ ଦୁଇଟି ଗୁରୁ ବର୍ଣ୍ଣ ଥାଏ । (ହି. ଶ.)]. ସଂ. ବିଣ.—(ବହୁବ୍ରୀହି)—ଯହିଁରେ ସୁନ୍ଦର ପଦ ବା ଶବ୍ଦ ଥାଏ—Containing graceful words, elegantly composed (M.W.)

**ଲଳିତ ବନିତା**—ସଂ. ବି. ସ୍ତ୍ରୀ ( କର୍ମ ଧା )—ସୁନ୍ଦରୀ ସ୍ତ୍ରୀ—
Lalita banita A lovely woman (M.W).

**ଲଳିତ ବିସ୍ତର**—ସଂ. ବି—ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ରଚିତ ବୌଦ୍ଧମାନଙ୍କ
Lalita bistara ଧର୍ମଶାସ୍ତ୍ର ବିଶେଷ—A religious book (ଲଳିତ ପୁରାଣ—ଅନ୍ୟନାମ) on Buddhism. [ ଦ୍ର—ଏ ଗ୍ରନ୍ଥରେ ବୁଦ୍ଧଦେବଙ୍କ ଜୀବନଚରିତ ଓ ଭାରତର ବୌଦ୍ଧ ରାଜାମାନଙ୍କର କେତେକ ବିବରଣ ମଧ୍ୟ ଲେଖା ଅଛି ଏବଂ ଏଥିରେ ଭାରତବର୍ଷରେ ୬୪ ପ୍ରକାର ଲିପି ଓ ଭାଷା ଥିବାର କଥିତ ଅଛି । ]

**ଲଳିତରେ**—ଦେ. (ପଦ୍ୟ) କ୍ରି. ବିଣ—ମଧୁର ଭାବରେ—
Lalitare ললিতে ললিত Sweetly; melodiously.
(ଉ—ସେହିନ ରାତ୍ରି ଶେଷେ କହି ଦୁର୍ଯ୍ୟୋଧନ, ଆଗରେ ଲଳିତରେ କହିଲେ ବଚନ । କୃଷ୍ଣସିଂହ. ମହାଭାରତବନ ।)

**ଲଳିତ ଲୋଚନ**—ସଂ. ବିଣ. ପୁଂ—(ବହୁବ୍ରୀହି) ସୁନ୍ଦର ନେତ୍ର ବିଶିଷ୍ଟ—
Lalita lochana Having lovely eyes (M.W).

**ଲଳିତା**—ସଂ. ବିଣ. ସ୍ତ୍ରୀ ( ଲଳିତର ସ୍ତ୍ରୀଲିଙ୍ଗ )—ଲଳିତ ( ଦେଖ )—
Lalitā Lalita ( See ) ବି. ସ୍ତ୍ରୀ—୧ । ଦୁର୍ଗା—1. Goddess Durgā. ୨ । ରାଧାଙ୍କ ଅଷ୍ଟ ସହଚରୀ ମଧ୍ୟରେ ପ୍ରଧାନା ସଖୀ—2. One of the female companions of Radhikā. [ ଦ୍ର—ଶ୍ରୀକୃଷ୍ଣଙ୍କ ପ୍ରିୟସଖୀ ରାଧିକାଙ୍କ ର ଅଠଜଣ ସହଚରୀ ମଧ୍ୟରୁ ଏ ଜଣେ ଥିଲେ । ] ୩ । ମୃଗନାଭି; କସ୍ତୁରୀ—3. Musk. ୪ । ପଦ୍ମପୁରାଣୋକ୍ତ ନଦୀ ବିଶେଷ—4. Name of a river. [ ଦ୍ର—କାଳିକାପୁରାଣରେ ଲେଖା ଅଛି ଯେ, ଋଷିରାଜାଙ୍କ ଶାପରୁ ବଶିଷ୍ଠ ଦେହହୀନ ହେବା ସମୟରେ ସେ କାମରୂପ ଦେଶର ସନ୍ଧ୍ୟାଚଳ ପର୍ବତରେ ଘୋର ତପସ୍ୟା କଲେ । ଏଥିର ବିଷ୍ଣୁ ପ୍ରସନ୍ନ ହୋଇ ବର ଦେଲେ । ବର-ପ୍ରଭାବରୁ ବଶିଷ୍ଠ ଗୋଟିଏ ଅମୃତକୁଣ୍ଡ ନିର୍ମାଣ କଲେ । ଏହି କୁଣ୍ଡର ପୂର୍ବରେ ଲଳିତା ନାମରେ ଏକ ନଦୀ ଅଛି । ଏହି ନଦୀକୁ ଶିବ ମର୍ତ୍ତ୍ୟକୁ ଆଣିଥିଲେ । ବୈଶାଖ ଶୁକ୍ଳା ତୃତୀୟା ଦିନ ଏଥିରେ ସ୍ନାନ କରିବା ମହାପୁଣ୍ୟମୟ ଅଟେ ( ହି. ଶ. )]—୫ । ଲଳନା; ନାରୀ—5. Woman; a female. ୬ । ରାଗିଣୀ ବିଶେଷ ( ବସନ୍ତ ରାଗର ଓ ମତାନ୍ତରରେ ମେଘରାଗର ଭାର୍ଯ୍ୟା )—6. Name of a secondary musical tune in Hindu music ୬ । ଏକ ବର୍ଣ୍ଣ ବୃତ୍ତ ( ହି. ଶ. )—6. Name of a metre. [ ଦ୍ର—ଏଥିର ପ୍ରତ୍ୟେକ ଚରଣରେ ତଗଣ, ଭଗଣ, ଜଗଣ ଓ ରଗଣ ଥାଏ । ] ଦେ. ବି. ସ୍ତ୍ରୀ—୧ । ସ୍ତ୍ରୀ ଲୋକଙ୍କୁ ଦିଆଯିବା ନାମ—1. A name given to females. ୨ । ( ସଂ. ନଳିତା) ନଳିତା; ଛୋଟ ଗଛ—2. The jute plant.

**ଲଳିତାଙ୍ଗ**—ସଂ. ବିଣ. ପୁଂ (ବହୁବ୍ରୀହି) —ସୁନ୍ଦର ଅଙ୍ଗବିଶିଷ୍ଟ—
Lalitānga Having graceful limbs or body (ଲଳିତାଙ୍ଗୀ—ସ୍ତ୍ରୀ) ( M. W. ).

**ଲଳିତା ପଞ୍ଚମୀ**—ସଂ. ବି—ଆଶ୍ୱିନ ଶୁକ୍ଳା ପଞ୍ଚମୀ [ଦ୍ର—ଏଥିରେ ଦୁର୍ଗାଙ୍କର
Lalitā panchami ପୂଜା ହୁଏ ( ହି. ଶ. ) ]—The 5th day of the bright lunar fortnight of Āswina.

**ଲଳିତାଭିନୟ**—ସଂ. ବି (କର୍ମଧା)—ପ୍ରେମ ସମ୍ବନ୍ଧୀୟ ଅଭିନୟ—
Lalitābhinaya Erotic performance; representation of love scenes (M. W.)

**ଲଳିତାଷଷ୍ଠୀ**—ସଂ. ବି—ଭାଦ୍ର କୃଷ୍ଣ ଷଷ୍ଠୀ—The 6th day of the
Lalitā shashṭhi dark lunar fortnight of Bhādra. [ଦ୍ର—ଏ ତିଥିରେ ସ୍ତ୍ରୀମାନେ ପୁତ୍ର କାମନାରେ ଓ ପୁତ୍ରର ମଙ୍ଗଳାର୍ଥ ଦୁର୍ଗାଙ୍କର ପୂଜା କରନ୍ତି ଓ ଉପବାସ ଓ ବ୍ରତ କରନ୍ତି ।]

**ଲଳିତାର୍ଥ**—ସଂ. ବିଣ (ବହୁବ୍ରୀହି)—ପ୍ରେମମୟ ଅର୍ଥ ବିଶିଷ୍ଟ—
Lalitārtha Having amorous meaning (M. W.)

**ଲଳିତା ସପ୍ତମୀ**—ସଂ. ବି—ଭାଦ୍ର ଶୁକ୍ଳା ସପ୍ତମୀ ତିଥି ଓ ସେ ଦିନ
Lalitā saptami ଅନୁଷ୍ଠେୟ ବ୍ରତ; କୁକ୍କୁଟୀବ୍ରତ; କୁକ୍କୁଟୀସପ୍ତମୀ; କୋଳଟବ୍ରତ—The 7th day of the bright lunar fortnight of Bhādra. [ଦ୍ର—ଏ ଦିନ ସ୍ତ୍ରୀମାନଙ୍କର ଓଷା । ବ୍ରତଧାରିଣୀମାନେ ବାହୁରେ ଗୋଟିଏ ଡେଉଁରିଆ ସହିତ ଡୋର ବାନ୍ଧନ୍ତି । ଏହି ଦିନଠାରୁ ସୋମନାଥବ୍ରତ ଆରମ୍ଭ କରାଯାଏ ।]

**ଲଳିତାସ୍ୟ**—ସଂ. ବିଣ. ପୁଂ (ବହୁବ୍ରୀହି, ଲଳିତ ଅଟେ ଆସ୍ୟ=ମୁଖ
Lalitāsya ଯାହାର)—ସୁନ୍ଦର ମୁଖ ଯୁକ୍ତ—Fair-faced.
(ଲଳିତାସ୍ୟା—ସ୍ତ୍ରୀ)

**ଲଳିତୋପମା**—ସଂ. ବି—ଉପମାଳଙ୍କାର ବିଶେଷ—A figure of
Lalitopamā speech; a kind of simile.
[ଦ୍ର—ଏଥିରେ ଉପମେୟ ଓ ଉପମାନର ସମତା ଦେଖାଇବା ପାଇଁ ସମ, ସମାନ, ପରି, ତୁଲ୍ୟ ଆଦି ଶବ୍ଦମାନ ନ ରଖି ଏପରି ଶବ୍ଦ ପ୍ରୟୋଗ କରାଯାଏ, ଯହିଁରୁ ସମାନତା, ମିତ୍ରତା, ନିରାଦର, ଈର୍ଷ୍ୟାଆଦି ଭାବ ପ୍ରକଟିତ ହୁଏ—ହି. ଶ]

**ଲଲେଇ**—ପ୍ରାଦେ (ସମ୍ବଲପୁର, ଲଉଆ) ବିଣ—ଅତ୍ୟନ୍ତ ଲାଳାୟିତ—
Lalei Longing; hankering.

**ଲଲେଇ ହେବା**—ପ୍ରାଦେ (ସମ୍ବଲପୁର) କ୍ରି—ଗ୍ରାସାଚ୍ଛାଦନ ଅଭିବରେ
Lalei hebā ଅନ୍ୟର ଦ୍ୱାରସ୍ଥ ହୋଇ ଲାଳାୟିତ ହେବା—To go to another's door and linger there for a morsel of food or a piece of cloth.

**ଲଲ୍ଲ**—ସଂ. ବି—ପ୍ରାଚୀନଭାରତର ଜଣେ ପ୍ରସିଦ୍ଧ ହିନ୍ଦୁ ଜ୍ୟୋତିଷୀ—
Lalla Name of a famous Hindu astronomer of ancient India. [ଦ୍ର—ଲଲ୍ଲସିଦ୍ଧାନ୍ତ ଏହାଙ୍କ ସଙ୍କଳିତ ଗ୍ରନ୍ଥ ଅଟେ ।]

**ଲଲ୍ଲର**—ସଂ. ବିଣ. ପୁଂ (ଧ୍ୱନ୍ୟନୁକରଣ)—ଖନା—
Lallara (ଲଲ୍ଲରା—ସ୍ତ୍ରୀ) Stammering (M. W).

**ଲଲ୍ଲ ସିଦ୍ଧାନ୍ତ**—ସଂ. ବି—ପ୍ରସିଦ୍ଧ ହିନ୍ଦୁ ଜ୍ୟୋତିଷୀ ଲଲ୍ଲଙ୍କ ରଚିତ
Lalla siddhānta ଜ୍ୟୋତିଷଗ୍ରନ୍ଥ ବିଶେଷ—Name of an astrological work by 'Lalla', the great Hindu astronomer.

**ଲୱାଜିମା**—ବୈଦେ. ବି (ଆ)—ଲଉଆଜିମା (ଦେଖ)
Lawājimā Lauājima (See)

**ଲଶ୍ ପଶ୍**—ଦେ. ବି (ସଂ. ଲଷ୍ ଧାତୁ=ଅଭିଳାଷ କରିବା; ବା ସଂ.
Laś paś ଲିପ୍ସା)—୧ । ହାଇଁପାଇଁ; କୌଣସି ବସ୍ତୁକୁ
लपपश, लिसपिस ଧରିବାର ବା ପାଇବାର ଅଭିଳାଷ—1. A
লসপস hankering or longing after a thing.
୨ । ଲୁଚ୍ପୁଚ୍ (ଦେଖ)—2. Luch-puch (See)

**ଲଶଡା**—ଦେ. ବି (ସଂ. ଶ୍ଳେଷ୍ମାନ୍ତକ)—ଏକପ୍ରକାର ବନ୍ୟ କୋଳି ଓ
Laśarḍā ଗଛ; ଗର୍ଭିଣୀ ଗଛ—A kind of edible
बहुवार wild berry and its tree; Cordia Myxa
लिसोड़ा (tree and berry). [ଦ୍ର—ପାଚିଲେ ଏହାକୁ ଲୋକେ ଖାଆନ୍ତି ।]

**ଲଶମ**—ଦେ. ବି (ସଂ. ଶ୍ଳେଷ୍ମା; ତୁଳ. ଇଂ. ଫ୍ଲେମ୍)—୧ ।
Laśama ଶ୍ଳେଷ୍ମା ରୋଗ; ଶର୍ଦ୍ଦି; କଫ ରୋଗ; ଦେହରେ ଥଣ୍ଡା
सबद; शर्दी ବାଜିବା ହେତୁ ନାକରୁ ପାଣି ବୋହିବା ଓ କଫ
সর্দ্দী, সর্দ্দী ଧରିବା ରୋଗ—1. Catching cold; catarrh;
(ଲଶ୍—ଅନ୍ୟରୂପ) phlegm. ୨ । ଆର୍ଦ୍ରତା—2. Wetness; moisture. [ଉ—ଜମିରୁ ଲଶମ ଛାଡ଼ି ନାହିଁ ।]

**ଲଶମ କ[ଧ]ରିବା [ଡାକୁ]**—ଦେ. ବି—କଫରୋଗ ଆକ୍ରମଣ କରିବା—
Laśama ka(dha)ribā (tāku) Catching cold;
सर्दी हओया সর্দ্দীধরনা attack of cold.

**ଲଶମା**—ଦେ. ବି. ପୁଂ—(ସଂ. ଶ୍ଳେଷ୍ମା)—୧ । ଶ୍ଳେଷ୍ମଯୁକ୍ତ; ଶର୍ଦ୍ଦିଆ;
Laśamā ଶ୍ଳେଷ୍ମାରୋଗାକ୍ରାନ୍ତ—1. Suffering from cold.
शर्दिरधात মন্দা, কফী ୨ । ଯାହାର ଧାତୁ ଶ୍ଳେଷ୍ମଯୁକ୍ତ; ଶ୍ଳେଷ୍ମ-
(ଲଶମୀ—ସ୍ତ୍ରୀ) ପ୍ରକୃତିକ (ଅର୍ଥାତ୍ ଯାହାକୁ ସାମାନ୍ୟ କାରଣରୁ ଶରଦ ଧରେ)—2. Having a phlegmatic constitution. ୩ । ମାନ୍ଦା; ନେଶ୍ମା; ଲେଶ୍ମା; ଯେଉଁ ଲୋକର ଚଞ୍ଚଳତା ବା ଫୁର୍ତ୍ତି ନ ଥାଏ; ନିସ୍ତେଜ; ଜଡ଼-ଭାବାପନ୍ନ (ବ୍ୟକ୍ତି)—3. Phlegmatic, sluggish; dull. [ଦ୍ର—ଶରଦ ଧରିଲେ ରୋଗୀର ଚଞ୍ଚଳତା ଓ କାର୍ଯ୍ୟ-ତତ୍ପରତା ଶକ୍ତି କମିଯାଏ ।] ପ୍ରାଦେ (ଯାଜପୁର) ବିଣ—ମେଘୁଆ (ପାଗ)—Cloudy (weather).

**ଲଶିବ**—ବୈଦେ. ବି—ନଶିବ (ଦେଖ)—Naśiba (See).
Laśiba

**ଲଶୁ(ଶୂ)ନ**—ସଂ ବି. (ଅଶ୍ ଧାତୁ=ଭୋଜନ କରିବା + କର୍ମ ଉନ, ଊନ;
Laśu(śū)na ନିପାତନ)—ରଶୁଣ (ଦେଖ)—Raśuṇa (See).

**ଲଶୁନା**—ସଂ. ବି. (ଲଶୁନ + ଆ)—ରତ୍ନ ବିଶେଷ, ବୈଦୂର୍ଯ୍ୟ—(ର
Laśunā ତଳେ ଟୀକା ଦେଖ)—A precious gem; the
লসুনিয়া; লহসুনিয়া cat's eye. [ଦ୍ର—ଏହା ନବରତ୍ନ
(ଲଶୁନାୟ—ଅନ୍ୟରୂପ) ମଧ୍ୟରୁ ଏକ, ଏହାର ଧୂଆଁ ଭଳି ବର୍ଣ୍ଣ । ଏହା ନାଲି, ହଳଦିଆ ଓ ସାଗୁଆ ବର୍ଣ୍ଣର ହୁଏ । ଯେଉଁ ରତ୍ନ

ଉପରେ ୬୫ ଅର୍ଦ୍ଧରେଖା ଥାଏ ତାହା ଲଭ୍ୟ ବଟେଷ୍ଟର ହୁଏ ।

**ଲଶୋଡ଼ା**—ଦେ. ବି. (ସଂ ଶେଲୁ ବା ଶ୍ଳେଷ୍ମାନ୍ତକ)—ଗଛବିଶେଷ ଓ Lasordā ଉହାର ଫଳ—(ଗର୍ଭଣା ଦେଖ)—Cordia ସଂସ୍କୃତ ନାମ—ବହୁବାର, ଶୀତ, Myxa; narrow leaved ଉଦ୍ଦାଳ, ବହୁବାରକ, ଶେଲୁ, Septistum. [ଦ୍ର—କେହି ଶ୍ଳେଷ୍ମାତକ, ପିଚ୍ଛିଲ, ଭୂତବୃକ୍ଷକ କେହି 'ବହୁବାର'କୁ ଓଉ ବହୁଆବ, ଭୋୟାବିଆ ବୋଲି କହନ୍ତି ।]

ଲସୋଡା. ଲମେଡା ତେ—ନାକେରୁ, କକକେରୁ ଫା—ଶୁଗୁପିସ୍ତନ, ସପିସ୍ତାଁ । ଭା—ବହୁ । ମ—ଭୋକର ।

**ଲଷ(ଧାତୁ)**—ସ.—୧ । କୌଣସି ପଦାର୍ଥ ପାଇବା ନିମନ୍ତେ ଇଚ୍ଛା ବା Lash(root) ଅଭିଳାଷ କରିବା—1. To long for or hanker after a thing. ୨ । ନୃତ୍ୟାଦିରେ ପଟୁତା ଦେଖାଇବା—2. To excel in dancing.

**ଲଷିତ**—ସ. ବିଣ. (ଲଷ୍ ଧାତୁ+କର୍ମ ତ)—ବାଞ୍ଛିତ; ଅଭିଲଷିତ— Lashita Wished for.

**ଲଷ୍ଟି**—ଗ୍ରାଦେ. (କଟକ ସହର) ବି.—୧ । ନଷ୍ଟି; ଲୋକ୍‌ଶାନ୍; କ୍ଷତି— Lashti 1. Loss. ୨ । ବାଣିଜ୍ୟାଦିରେ କ୍ଷତି— 2. Loss in trade.

**ଲଷ୍ୱ**—ସ. ବି.ପୁଂ (ଲଷ୍ ଧାତୁ+କର୍ତ୍ତୃ ୱ)—ନର୍ତ୍ତକ,ନଟ —Dancer; Lashwa (ଲଷ୍ୱୀ—ସ୍ତ୍ରୀ) actor.

**ଲସ୍(ଧାତୁ)**—ସ.—୧ । କ୍ରୀଡ଼ା କରିବା; ବିଳାସ କରିବା—1. To Las(root) sport. ୨ । ଦୀପ୍ତି ପାଇବା—2. To shine. ୩ । ଆଲିଙ୍ଗନ କରିବା—3. To embrace.

**ଲସ୍କର**—ବୈଦେ. ବି—(ଫା)— ଲସ୍କର (ଦେଖ) —Laskara Laskara (See).

**ଲସ୍ଜ(ଧାତୁ)**—ସ. ଲଜ୍(ଧାତୁ) (ଦେଖ)—Lajj (root) (See) Las-j(root)

**ଲସ**—ସ. ବି—(ଲସ୍‌ଧାତୁ+ଭାବ ଅ)—୧ । ଅନ୍ୟ ବସ୍ତୁରେ ଲାଗି- Lasa ଯିବା ଗୁଣ, ଅଠାଳିଆପଣ (ହି. ଣ)—Stickiness; gumminess. ୨ । (+କର୍ତ୍ତୃ ଅ) ଅଠା (ହି. ଣ)— 2. Gum. ୩ । ଚିତ୍ତ ଆକର୍ଷଣ (ହି. ଣ)—3. Attraction of the mind.

**ଲସକ**—ସ. ବି. ପୁଂ—(ଲସ୍ ଧାତୁ+କର୍ତ୍ତୃ ଅକ)—ନର୍ତ୍ତକ—Dancer. Lasaka (ଲସିକା—ସ୍ତ୍ରୀ)

**ଲସଡ଼ିବା**—ଦେ. କ୍ରି—୧ । ଲୋସଡ଼ିବା; କାଦୁଅ ପଦାର୍ଥ, ଯଥା Lasardiba କାନ୍ଥରେ ଛା ହୋଇଥିବା କାଦୁଅ ମାଟି) ପଣ୍ଡୀକୃତ ଖସେପଡା ଲସଡନା, ଲହଳନା ହୋଇ ଲାଗି ନ ରହି ଖସି ପଡ଼ିବା— 1. To give way instead of sticking ଗଲେ ଯାଓୟା ପଲପଲାନା (spoken of mud). ୨ । ଅତି ଲଚପଚ ହେବା (ଯଥା ଅତି ପାଚିଲା ଅମ୍ବ)— 2. To become flabby or flaccid. [ଦ୍ର— ହବ ନାହିଁ, ହେଲା କାର୍ଯ୍ୟରେ ହବ ନାହିଁ; ପାଚିଲା ଅମ୍ବ ଲସଡ଼ି ଯାଇଛି, ଅଉ ମହାଜନ ନବ ନାହିଁ । ଇତ]

**ଲସଣି**—ଦେ. ବି—(ସ. ରସ)—ଲସା (ଦେଖ)—Lasā (See). Lasani

**ଲସନ୍**—ସ. ବିଣ—(ଲସତ୍ ଶବ୍ଦ; ଲସ୍ ଧାତୁ+କର୍ତ୍ତୃ ଅତ୍)—୧ । Lasan ବିଳାସକାରୀ—1. Sporting. ୨ । ଶୋଭମାନ— (ଲସନ୍ତୀ—ସ୍ତ୍ରୀ) 2. Beautified ୩ । ଉଲ୍ଲସିତ—3. Cheerful. ୪ । ଉଜ୍ଜ୍ୱଳ; ଜାଜ୍ୱଲ୍ୟମାନ — 4. Glittering; shining; bright. ୫ । ଚେଷ୍ଟମାନ—5. Acting; endeavouring.

**ଲସର ପ(ଫ)ସର**—ଦେ. ବିଣ—(ଧ୍ୱନ୍ୟନୁକରଣ; ବଡ଼ ଲୁଗା ପିନ୍ଧିଥିବା Lasara pa(pha)sara ଲୋକ ଚଞ୍ଚଳ ଗୁଲିଗଲେ ବେଳେ ଲଡବଡ, ଲସବପସବ ଫଦ୍‌ଡଫଦ୍‌ଡ ଲୁଗାପଟାର ଅଂଶର ପରସ୍ପର ଘର୍ଷଣରେ ଜାତ ଖସ୍ ଖସ୍ ଶବ୍ଦରୁ; ଇଂ. Rustling sound of new dress). ଲଣ୍ଡଭଣ୍ଡ; ଚଞ୍ଚଳ ଚଞ୍ଚଳ ଗୁଲିବା ପ୍ରକାରେ—Moving or walking rapidly (and producing a rustling sound by the clothes worn) କ୍ରି. ବିଣ—ଲଣ୍ଡଭଣ୍ଡ ବା ଅସ୍ଥିର ଭାବରେ—Restlessly. [ଦ୍ର—ଭୁଜ ଧାଇ ଥାଏ ଲସର ପସର, ମାଆ ଦୁଧ ଖାଇବାକୁ । ଶିଶୁଗୀତ ।]

**ଲସରପସର ହେବା**—ଦେ. କ୍ରି—୧ । ଇତସ୍ତତଃ ଚଞ୍ଚଳ ଯିବା ଆସିବା Lasarapasara hebā କରିବା; ଲଡ଼ର ପଡ଼ର ହେବା— ଲସବପସରକବା ଫଦ୍‌ଡଫଦ୍‌ଡହୋନା 1. To move briskly to and fro. ୨ । ବଡ଼ ଲୁଗା ପିନ୍ଧି ଲୁଗାର ଫେରକୁ ଇତସ୍ତତଃ ଗୁଲନ କରିବା—2. To move to and fro by producing rustling sound of the big cloth a person is wearing. ୩ । ଶୀଘ୍ର ଗତିରେ ଦଉଡ଼ିବା ବା ଗୁଲିବା—3. To walk briskly.

**ଲସଲସିଆ**—ଦେ. ବିଣ—(ସ. ରସାଳ; ଲସିକା)—୧ । ଅଠାଳିଆ— Lasa lasiā 1 Gummy. ୨ । ସଲ୍‌ସଲିଆ—2 Moist. ଆଠାଆଠା ଲସଦାର,ଲସୀଲା

**ଲସା**—ସ. ବି (ଲସ୍ ଧାତୁ+କର୍ମ. ଅ)—ହରିଦ୍ରା; ହଳଦି— Lasā Turmeric. ଦେ. ବି (ସଂ. ରସ; ଲସ; ଲସିକା)— ନସା, ବସ ୧ । କ୍ଷତାଦିରୁ ବହିର୍ଗତ ରସ; ଘାଆ ଇତ୍ୟାଦିରୁ ପଂଛା ସ୍ରବିବା ଜଳୀୟ ପଦାର୍ଥ—1. Lymph; watery sub- ଆଠା stance oozing from wounds or sores. ୨ । ଲାସା ଅଠା—2. Gum. ୩ । ଅମ୍ବ ଆଦି ଫଳକୁ ବେଣ୍ଟରୁ ନ(ଲ)ସି ଭାଙ୍ଗି ଦେଲେ ସେଥିରୁ ବୋହିବା ରସ—3. Watery ରସ substance oozing from a fruit (e. g mango) when it is broken or plucked from its stem. ଗ୍ରାଦେ (ସମ୍ବଲପୁର) ବି—ଗଛରୁ ବୋହିବା ଘନରସ ବା ଅଠା—Slimy or thick juice from a tree.

**ଲସା[ସେ]ଇବା**—ଦେ. କ୍ରି (ସ. ଲସିକା)—୧ । (ଲସିବା କ୍ରିୟାର Lasā(se)ibā ଣିଜନ୍ତରୂପ) ତଳକୁ ଦବାଇବା—1. To ଚାପ୍ନା press downwards; to suppress. ୨ । (ସ. ରସ

ଲସାନା ନିର୍ଗମନ) ଘାଆ ବା ବ୍ରଣ ଆଦିରୁ ଲସା ବୋହିବା— বস দেওয়া 2. To water; to discharge watery ফস্তাদেনা substance or lymph (said of sores etc). ভয় দেখান ୩ । ଭୟରେ ଶଙ୍କିତ କରାଇବା—3. To frighten a person terribly. ୪ । ଦୂର କରିବା— ଲସାନା দূর করা 4. To remove. [ ଭୂ—ଘାସୋରାଇ ମନ୍ଦ କାଳା ହ୍ଟানা କଦଳ ଲସାଇ, ପୀଭୂ ଅଶ୍ରୁ ବରଷାଇ ଗୋ । କବିସୂର୍ଯ୍ୟ. କଂଶୋଦ୍ଧ ଚମ୍ପୂ ପ. ଗୀତ ।]

ଲସା[ସି] ଦେବା—ଦେ. କ୍ରି—(ସଂ ଅଦ୍ଧ) ରସଯୁକ୍ତ ହେବା— Lasā(si) debā To become lymphatic; to exude বসদেওয়া ফস্তাদেনা lymph.

ଲସି—ଦେ. ବି (ସଂ ରସ; ଲସିକା)—୧ । ଆମ୍ବ ଆଦି ଫଳର ଭୃଣ୍ଟରୁ Lasi ବହିବା ରସ—1. Sap or juice which is exuded ন(ল)সি from fruits freshly plucked from the লসা stem. ୨ । (ସ. ନାଶା) ନାସି; ଆମ୍ବ ଆଦି ଫଳରେ বোঁটা ଲାଗିଥିବା ଡେଙ୍ଗ—2. The stem attached to a ডংঠল fruit; peduncle; petiole; pedicent. ୩ । বোঁটা ସ୍ତନାଗ୍ର; ଚୁଚୁକ—3. Nipple. ପ୍ରାଦେ (ପୁରୀ) ବି— চূচ ନଡ଼ିଆକୁ ସିନ୍ଦୋଳିବା ପାଇଁ ପ୍ରତ୍ୟେକ ନଡ଼ିଆର କତାରୁ ସରୁ କରି ବାହାର କରିବା ଅଂଶ—The thin strip of the rind of cocoanut for stringing two cocoanuts together.

ଲସିଆ—ଦେ. ବିଣ (ସ. ରସ, ଲସିକା)—୧ । ଯେଉଁ ଫଳରୁ ବେଶି Lasiā ଲସା ବହେ (ଯଥା—ଆମ୍ବ)—1. Exuding much লসিয়া juice (said of mango). ୨ । ଯେଉଁ ଫଳ ଉତ୍ତମରୂପେ ନ ପାଚି ସେମିତା ହୋଇ ଯାଇଥାଏ, ଲେସିଆ—2. (a লসিয়া(লা) fruit) Which become dwindled and चोकड withered without fully ripening. ୩ । ଲସ (লসিয়ালা) ଲସିଆ; ଅଠାଳିଆ—3. Gummy.

ଲସିକା—ସଂ. ବି (ଲସ୍ ଧାତୁ+କର୍ତ୍ତୃ. ଇକ+ଆ)—୧ । ଶରୀରସ୍ଥ Lasikā ପୀତାଭ ସ୍ୱଚ୍ଛ ତରଳ ରସ—1. Lymph. ୨ । ଘାଆ ଆଦିରୁ ବହିବା ଜଳୀୟ ପଦାର୍ଥ—2. Watery substance exuded from sores. ୩ । ଜଳ—3. Water. ୪ । ପାଚକ ଜଳ—4. Salvia.

ଲସିତ—ସଂ. ବିଣ (ଲସ୍ ଧାତୁ=ଶୋଭା ପାଇବା+କର୍ତ୍ତୃ. ତ)— Lasita ୧ । ବିଳାସିତ—1. Sporting. ୨ । ଶୋଭମାନ; ଶୋଭିତ—2. Shining. ୩ । ଦୀପ୍ତିମାନ୍—3. Brilliant. ୪ । ଉଲ୍ଲସିତ; ହୃଷ୍ଟ—4. Delighted, cheerful. ବି—୧ । ବିଳାସ; ସୁଖଭୋଗ—1. Sport; dalliance; enjoyment. ୨ । ଲାସ୍ୟ, ସ୍ତ୍ରୀଲୋକର ନୃତ୍ୟ—2. Dancing of females. ୩ । ଉଲ୍ଲାସ—3, Delight; cheerfulness. ଦେ. ବିଣ—ଦବି ধঁসীহুহ ଯିବା—Suink; pressed down. [ ଭୂ—ବାସୁକୀ ଅଶକତ, ଅଶୁ ପୃଥ୍ୱୀ ଲସିତ, ଡମାଗୁରୁ ଗୁରୁ କର୍ମ ତ । ଉଞ୍ଜ. ବୈଦେହୀଶବିଳାସ ।]

ଲସି ଫିଟା(ଟି)ଇବା—ଦେ. କ୍ରି—୧ । ନବ ପ୍ରସୂତର ସ୍ତନାଗ୍ର ଚୁଚୁକରେ Lasi phiṭā(ṭe)ibā ଥିବା ମାଂସଳ ଖିଲକୁ ଚିପି କରି ବାହାର କରି ଦେବାଦ୍ୱାରା ଚୁଚୁକରୁ ସ୍ତନ୍ୟର ସ୍ରୋତ ବହିବାର ଉପାୟ କରିବା—1. To cause the flow of milk from the nipple of a newly confined woman by pinching out of it the fleshly pins. ୨ । (ଲକ୍ଷଣାର୍ଥ) କୌଣସି କାର୍ଯ୍ୟର ପ୍ରଥମ ଆରମ୍ଭ କରିବା—2. (figurative) To begin or initiate a work. ୩ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ କୌଣସି ଅନୁଭବରେ ନୂତନ ଦୀକ୍ଷା ଦେବା—3. (figurative) To initiate a person in any matter which is new to him.

ଲସି ଫିଟିବା—ଦେ. ବି—(ସଂ. ରସ)—୧ । ନବ-ପ୍ରସୂତର ସ୍ତନର Lasi phiṭibā ଚୁଚୁକର ଅଗ୍ରସ୍ଥ ରନ୍ଧ୍ରର ମୁଖରେ ଥିବା କଠିନ ଖିଲ ବାହାର ଯିବାଦ୍ୱାରା ଶିଶୁ ପାନ କରିବା ପାଇଁ ସ୍ତନରୁ ରସ ବା ଦୁଧ ବାହାରିବା; ସ୍ତନର ମୁହଁ ଫିଟିବା—1. The coming out of juice or the flowing of milk through the pores of the nipple of a mother's breast after the fleshy pin is pressed out of the pores. ।[ ଦ୍ର—ପ୍ରଥମେ ସନ୍ତାନ ଜନ୍ମ କରିଥିବା ପ୍ରସୂତର ସ୍ତନର ଚୁଚୁକର ଅଗ୍ରଭାଗସ୍ଥ ସୂକ୍ଷ୍ମ ଛିଦ୍ରମାନଙ୍କ ମୁଖ କାଠକରୁଣରେ ଥିବା ଖିଲ ପରି ଖିଲମାନଙ୍କଦ୍ୱାରା ଅବରୁଦ୍ଧ ଥାଏ । ସ୍ତନାଗ୍ର ଚୁଚୁକକୁ ଉଭୟ ପାର୍ଶ୍ୱଦେଶରୁ ଅଙ୍ଗୁଠିଦ୍ୱାରା ଚିପିଦେଲେ ସେ ଖିଲଗୁଡ଼ିକ ବାହାରି ପଡ଼େ ଓ ସେହି ବାଟେ ଦୁଗ୍ଧ ସ୍ରାବ ହୁଏ । ସେ ଖିଲ ବାହାର ନ କଲେ ନବଜାତ ଶିଶୁ ସ୍ତନକୁ ଶୋଷିଲେ ଦୁଧ ବାହାରେ ନାହିଁ । ପ୍ରଥମ ଥର ପ୍ରସବ କରିବା ସ୍ତ୍ରୀର ଲସି ଫିଟାଇବା ଆବଶ୍ୟକ ହୁଏ । ତତ୍‌ପରେ ଆଉ ଲସି ଫିଟାଇବା ଆବଶ୍ୟକ ହୁଏ ନାହିଁ ।] ୨ । (ଲକ୍ଷଣାର୍ଥ) କୌଣସି କାର୍ଯ୍ୟର ସ୍ରୋତ ବା ଗତି ଆରମ୍ଭ ହେବା—2. (figurative) The beginning of the course of a business or work. ୩। (ଲକ୍ଷଣାର୍ଥ) କୌଣସି ବିଷୟରେ ପ୍ରବୀଣତା ବା ଅଭିଜ୍ଞତା ଲାଭ ହେବା—3. (figurative) The acquisition of experience in any matter.

ଲସିବ—ଦେ. ବି—ନସିବ (ଦେଖ)
Lasiba Nasiba, (See)

ଲସିବା—ବୈ ଦେ. କ୍ରି—୧ । (ସଂ.ରସ)—ଲସା ଦେବା; ରସାଧିକ୍ୟ ହେବୁ Lasibā ଦ୍ରାବଯୁକ୍ତ ହେବା—1. To exude lymph. [ଭୂ— রসা ଏ ଘାଅଟା ଲସିଲାଣି ।] ୨ । (ସ. ନମ୍ର ଧାତୁ) ଫଳ ଆଦି

पंछादेना ପାଚ ଯିବା ହେତୁ ଲଉପଉ ହେବା—2. To ripen
नसा, गला to softness; to become flabby being
पवपचाना, पलपलाना over ripe. ୩ । ସେମଠା ହୋଇଯିବା;
कुचुटजाना, शिकुडला ଫଳ ଅଧ ନ ପାଚ ସେମିଛ ଯିବା—
दबेयाओया 3. To wither without being ripe (said
दबना of fruits). ୪ । ଦବିଯିବା; ବସିଯିବା—4. To
become pressed; to settle down; to be
suppressed. [ଉ—ଅତି ଭାର ପାଇ ଲସିଲା
ବସୁମତୀ । କୃଷ୍ଣସିଂହ. ମହାଭାରତ. ଆଦି । ] ୫ । ନ୍ୟୂନ
हेंटमुख हओया ହେବା; ଅବନତ ହେବା; ନତମୁଖ ହେବା; ଲଜ୍ଜିତ
शिकुडजाना ହେବା—5. To be humbled or
ashamed. [ଉ—ଲସିବ ଯେବେ ପାଇ ଜାନା ବାଉ,
ଲାଗିଲ ଆପଣଙ୍କୁ ଦେଖି ଆଉ । କବିସୂର୍ଯ୍ୟ. କଶୋର
ଚନ୍ଦ୍ରାନନ୍ଦ ଚମ୍ପୂ ଲ ଗୀତ ।। ] ୬ । (ଲକ୍ଷଣାର୍ଥ) ଭୟ
ଯୋଗୁଁ ଶଙ୍କିଯିବା; ଶଙ୍କିତ ହେବା— To be crest
दमे याओया fallen through fear. ୭ । ଭୟରେ ତରଳ
दबजाना ଯିବା—7. To melt or dwindle with fear.
୮ । ଲୀନ ହେବା—8. To disappear. ୯ । ମୃତ
मरा ହେବା; ବିନଷ୍ଟ ହେବା—9. To die; to be
मरना, चलबस destroyed.

ଲସୀକା—ସ. ବି. ସ୍ତ୍ରୀ (ଲସ୍ ଧାତୁ+କର୍ତ୍ତୃ. ଇକ+ଆ)—୧ । ଇକ୍ଷୁରସ;
Lasika ହୋରୁଅ—1. Sugarcane juice. ୨ । ଶରୀରସ୍ଥ
ରସ; ଜଳବତ୍ ତରଳ ପଦାର୍ଥ, ରକ୍ତର ଶିରା ପଥରେ ପ୍ରବିଷ୍ଟ
ହେବା ପୂର୍ବର ଅବସ୍ଥା—2. Lymph.

ଲସେଇ ପଡ଼ିବା—ଦେ. କ୍ରି (ସଂ ଉଲ୍ଲସିତ)—ଉଲ୍ଲସି ଉଠିବା—
Lasei pardiba To be horripilated with joy.
উল্লসিত হওয়া [ଉ—ମୋ ଦେହ ଲସେଇ ପଡ଼ିବ । କୁନ୍ତଳା-
रोमांच होना କୁମାରୀ. ନଅଭୁଣ୍ଡୀ । ]

ଲସ୍କର୍—ବୈଦେ. ବି (ଫା. ଲଶ୍କର୍)—୧ । ପଦାତି ସୈନ୍ୟ—
Laskar 1. Infantry; foot soldier. ୨ । ପିଅଦା—
लश्कर 2. A peon. ୩ । ଗୃହର ମାର୍ଜନାଦି ନୀଚକର୍ମ କରିବା
लशकर ଚାକର; ଦାସ; ଭୃତ୍ୟ—3. A slave; a menial
servant; a servant. ୪ । ସେନା; ପଲଟନ;
ଯୋଦ୍ଧୃଦଳ—4. Army; a company of
soldiers. [ଉ—କାହିଁପାଇଁ ପୃଥ୍ୱୀ ଜାଣିବେ ମୋର,
ପଇସା ନେଇ ଫେରିଅ ଲସ୍କର । ବ୍ରଜନାଥ ବଡ଼ଜେନା.
ସମରତରଙ୍ଗ । ] ୫ । ଜାହାଜର ଖଲାସି ଦଳ—
5. Sailors: a ship's crew, menial servants of a ship. ୬ । ୟୁରୋପୀର ଜାହାଜରେ
ନିଯୁକ୍ତ ଭାରତୀୟ ବା ଅସିଆବାସୀ ଖଲାସି—6. A
native sailor; an Indian or Asiatic sailor
in a European ship; lascar. ୭ । ସେନାଙ୍କ
ସଙ୍ଗେ ଭୃତ୍ୟ କର୍ମ କରିବା ଲୋକଙ୍କ ଦଳ—7. A body
of camp followers. [ଦ୍ର—ଏ ଫାରସୀ ଶବ୍ଦ ଇଂରାଜୀ
ଭାଷାରେ ଚଳନ୍ତି । ]

ଲସ୍କରି—ବୈଦେ. ବି (ଫା. ଲଶ୍ କର୍)—୧ । ଲସ୍କର ବୃତ୍ତି—1. The
Laskari profession of a lascar. ୨ । ନୀଚଭୃତ୍ୟ ବୃତ୍ତି;
लश्करी ଦାସତ୍ୱ—2. The profession of a menial
लशकरी servant. ୩ । ଜାହାଜିଆ ଭାଷା ବା ଶବ୍ଦ—
3. Nautical language or word. ବିଣ—
ଲସ୍କର ସମ୍ବନ୍ଧୀୟ—Relating to lascar.

ଲସ୍ତ—ସ. ବିଣ (ଲସ୍. ଧାତୁ+କର୍ମ. ତ)—୧ । ଆଲିଙ୍ଗିତ—
Lasta 1. Embraced. ୨ । (+କର୍ତ୍ତୃ. ତ) କ୍ରୀଡ଼ିତ;
ବିଳାସୀ—2. Frolicsome; sportive. ୩ । ଶିଳ୍ପ
ନୈପୁଣ୍ୟ ପ୍ରଦର୍ଶନକାରୀ (ବ୍ୟକ୍ତି)—3. Showing or
exhibiting skill in fine arts. ୪ । ଶୋଭା-
ଯୁକ୍ତ—4. Shining.

ଲସ୍ତକ—ସ. ବି (ଲସ୍. ଧାତୁ+କର୍ମଣି. ତ+କ]—ଧନୁକର
Lastaka ମଧ୍ୟଭାଗ; ଧନୁର ମଠ—The middle part of the
bow where it is held.

ଲସ୍ତକୀ—ସ. ବି. ସ୍ତ୍ରୀ (ଲସ୍ତକ+ଇନ୍; ୧ମା. ୧ବ)—ଧନୁକ; ଧନୁ—
Lastaki A bow.

ଲସ୍ତର୍ (ଇତ୍ୟାଦି)—ଗ୍ରା. ବି—ଅସ୍ତ୍ର ଇତ୍ୟାଦି (ଦେଖ)
Lastar (etc) Astra etc. (See)

ଲହ—ଦେ. ବି (ସଂ. ଲତା)—ସାପ—Serpent. ବିଣ-ଲତାମୟ—
Laha Consisting of creepers. (ଯଥା—ଲହବଣ)—
लता लाठी ପ୍ରାଦେ (ସମ୍ବଲପୁର) ବି—ଲତା
लता लतिया Creeper.

ଲହଁକିବା—ପ୍ରାଦେ (ସମ୍ବଲପୁର) କ୍ରି. (ତୁଳ. ହି. ଲାଂଘନା)—
Lahankiba (ନଦୀକୁ) ପାର ହେବା—To cross (a
river).

ଲହଁପିବା—ପ୍ରାଦେ. (ସମ୍ବଲପୁର) କ୍ରି (ତୁଳ. ହି. ଲପକ କର୍ ଲେନା)—
Lahanpiba କୌଣସି ପଦାର୍ଥକୁ ହାତ ବଢ଼ାଇ ଆଣିବା—To
(ଲହମ୍ପିବା—ଅନ୍ୟରୂପ) bring a thing by extending
or lifting up one's arm.

ଲହକ—ଦେ. ବି—ଲହସ (ଦେଖ)
Lahaka Lahasa. (See)

ଲହକ ଲକ—ଦେ. ଅ—ଲକ୍ ଲକ୍ (ଦେଖ)
Lahaka laka Lak lak. (See)

ଲହକା—ଦେ. ବିଣ (ସଂ. ନମ୍. ଧାତୁ)—ନହକା (ଦେଖ)
Lahaka Nahaka. (See)

ଲହକା(କେ)ଇବା—ଦେ. କ୍ରି (ସଂ. ଲଘୂକ; ପ୍ରା. ଲହୁକ)—
Lahaka(ke)iba ୧ । [ନହକା ବା ପତଳା ଓ ଲମ୍ବ ବସ୍ତୁ
लकलक कबा (ଯଥା—ଖଣ୍ଡା; ସରୁବାଡ଼ି, ବାଉଁଶଧାଡ଼ିଆ)କୁ] ଲକ୍
लहलहाना, लफलफाना ଲକ୍ କରିବା; ଲହଲହ କରିବା—
लहकाना 1. To brandish or wave a thin long

thing (e.g. a thin blade, a thin bough).
୨। ଗଛର ସରୁ ଡାଳ ଅହଲ୍ଲ ନୁଆଁଇବା—
2. To cause a slender bough to bend.

ଲହକାନି—ପ୍ରାଦେ (ଗଡ଼ଜାତ) ବି—ଲୋକେ ଯେଉଁ ପାଣିରେ ପଶି
Lahakāni ପାର ହୋଇ ପାରନ୍ତି—Fordable water.

ଲହକିବା—ଦେ. କ୍ରି—୧। ନହକିବା; ଲକ୍ ଲକ୍ ହେବା—1. To
Lahakibā wave to and fro (said of a long ten-
লিকলিক কবা লপলপ়াহোনা, লপলপানা der strip)—
୨। ଅବନତ ହେବା; ବାରମ୍ବାର ଲଇଁବା—2. To
নুঁয়া নমনা bend [ଦ୍ର—ସରୁ ବାହୁଙ୍ଗିର ଦୁଇ ପାଶରେ
ଭାର ଝୁଲାଇ ତାକୁ କାନ୍ଧରେ ବୋହି କରି ଚାଲିବାବେଳେ
ସେ ବାହୁଙ୍ଗି ଲହକୁଥାଏ ।] ୩। (ଜାଅଁ) ଜଳି
জ্বলেউঠা লহকনা ଉଠିବା—3. To blaze up.

ଲହଙ୍କିବା—ପ୍ରାଦେ(ସମ୍ବଲପୁର) କ୍ରି। (ସଂ.ଲଙ୍ଘନ)—୧। ଅତିକ୍ରମ କରିବା
Lahankibā 1, To pass over. ୨। (ପାଣି ବା ନଦୀ) ପାର
ହେବା—2.To cross (a water or river). ୩।
ପାଣିରେ ପଶି ପାର ହେବା—3. To wade through
water.

ଲହଙ୍ଗା—ଦେ. ବି—(ସଂ. ଲତାକରଞ୍ଜି)—୧। ନହଙ୍ଗା, ଏକପ୍ରକାର
Lahangā ଜଙ୍ଗଲ କୋଳି—1. A sort of edible wild
নাটাকরঞ্জা কণ্টকরেঁজ berry. [ଦ୍ର—ଏହାର ଗଛ ୨।୩ ହାତ
ଉଚ୍ଚ ହୁଏ। ଏହା ପାଚିଲେ ନାଲି ଓ ଭିତରୁ ଅମ୍ଳ ଲାଗେ।
ଲୋକେ ଏହାକୁ ଖାଆନ୍ତି ଓ ଆଗ୍ରହ କରନ୍ତି।] ୨।
ଏକପ୍ରକାର ତୃଣ—2 A kind of grass or tare.
[ଦ୍ର—ଏ ଗଛ କୋଳଥ ବିଲରେ ମନଙ୍କୁ ଉଠେ।
ଏହାର ବାଜ ଢାଲ ପଦ; ଗଛ ଏକହାତ ଉଚ୍ଚ ହୁଏ; ଫୁଲ
ଲୋମଶ ଓ ଧଳା।] ୩। ସ୍ତ୍ରୀମାନଙ୍କର ଏକପ୍ରକାର
ঘাঘরা লহঁগা ପିନ୍ଧିବା ବସ୍ତ୍ର; ଘାଗରା—3. A sort of cloth
for female wearing; gown for the lower
person of the body. (ଦ୍ର—ଅଣ୍ଟାଠାରୁ ପାଦ
ପର୍ଯ୍ୟନ୍ତ ସମସ୍ତ ଅଂଶ ଢାଙ୍କିବା ପାଇଁ ଏହା ଅଣ୍ଟାର ଚାରିପାଖେ
ଡୋର ଦ୍ୱାରା ଗୁଡ଼ିଆ ଯାଏ। ଏଥିରେ ବହୁତ ଚୁନଟ
(କୁଞ୍ଚ) କାମ ହୋଇଥାଏ।) (ଉ—ଅଙ୍ଗୁ ଜଙ୍ଘତଳେ ପଡ଼ି
ଦେଇ କଟି ଡୋରରେ, ପନ୍ଧିଛି ସେ ଅତଲସ ଲହଙ୍ଗା
ଉପରେ ଯେ—ଭଞ୍ଜ. ଲାବଣ୍ୟବତୀ।) ବିଣ—(ସଂ. ନଗ୍ନ)—
নেংগটা নংগা ଉଲଙ୍ଗ; ଲଗଳା—Naked. [ଉ—ଦେଖା
ଲହଙ୍ଗା ବଧିବାର ରୁଚିକ। ଅଭିମନ୍ୟୁ. ବଧଚନ୍ଦ୍ରଚନ୍ଦ୍ରାଣି]।

ଲହଙ୍ଗୀ—ଦେ. ବିଣ—ଲହଙ୍ଗା (ଦେଖ) Lahangā (See)
Lahangi

ଲହଙ୍ଗୀ ବଇଷମ—ଦେ. ବି—(ସଂ. ନଗ୍ନ ଓ ବୈଷ୍ଣବ)—୧। ନାଗା;
Lahangi baishama ଲଙ୍ଗୁଳୀ ବାବାଜୀ—1. A class of
নাগা নাগা ascetics who go about naked. ୨।
ଲହଙ୍ଗୀ ବାବା } ଅନ୍ୟରୂପ ଲହଙ୍ଗୀ ବୈଷ୍ଣବ; ଯେଉଁ ବୈଷ୍ଣବ-
ଲହଙ୍ଗୀ ବାବାଜୀ } ମାନେ ଆଜୀବନ ବ୍ରହ୍ମଚର୍ଯ୍ୟ ବ୍ରତ
(ଗୃହୀ ବଇଷମ—ବିପରୀତ) ଅବଲମ୍ବନ କରନ୍ତି—2. A sect of
নেঙ্গটাবাবাজী যাগীবাবাজী ascetics who observe
the vow of celibacy.

ଲହ ଛୁ(ଛୋ)ଇଁବା—ଦେ କ୍ରି. (ଶୁଭବାଚକ)—ସର୍ପ ଦଂଶନ କରିବା—
Laha chhu(chho)inbā (Euphemism) snake
লতাছোয়াঁ কাটীছুনা bite; the biting of a person by
a snake.

ଲହଡ଼ା—ଦେ. ବି. (ସଂ. ଲହରୀ)—୧। ଢେଉ; ଲହରୀ; ତରଙ୍ଗ—
Lahardā 1. Wave (ଉ—କେନ୍ତୁ ବୋଇଲା ରଥ
লহর লহর ମାନଙ୍କ ପତାକା। ପବନରେ ଉଡ଼େ ଯା ଲହଡ଼ା ଏକା।
କୃଷ୍ଣସିଂହ. ମହାଭାରତ. ବନ) ୨। ଲହଡ଼ି (ଦେଖ)—
2. Lahardi (See). ୩। (ନାମ) ପାଲଲହଡ଼ା;
ଓଡ଼ିଆ ଗଡ଼ଜାତ ବିଶେଷ—3 Name of
an Oriya State. (ଉ—ମହୁରୀଙ୍କ ଶୋଭ
ସକାଶେ ପଲଙ୍କ ଯୋଗାଏ ଉପେନ୍ଦ୍ର ଲହଡ଼ା।—
ରାଧାନାଥ. ପାର୍ବତୀ)

ଲହଡ଼ା(ଡ଼େ)ଇବା—ଦେ. କ୍ରି—(ସଂ. ଲହରୀ)—୧। ଜଳକୁ ହସ୍ତ ବା
Lahardā(rde)ibā ଦେହ ଦ୍ୱାରା ଆଘାତ ଦେଇ ଲହରୀମୟ
ঢেউতোলা লহরউঠানা କରିବା—1. To produce waves
by pushing the water. ୨। ଲହରାଇବା
(ଦେଖ)—2. Laharāibā (See)

ଲହଡ଼ା(ଡ଼ି) ଉଠ(ଠେ)ଇବା—ଦେ କ୍ରି—(ସନ୍ଦିଗ୍ଧ) ଲହରୀମୟ ହେବା—
Lahardā(rdi) uthā(the)ibā To wave (said of
লহরউঠান লহরউঠানা the sea); to become billowy.

(ଲହଡ଼ା(ଡ଼ି) ଉଠିବା—ବିଶେଷ୍ୟରୂପ) ବି—ସମୁଦ୍ର ତରଙ୍ଗମାଳାର ଉତ୍ଥାନ
লহরউঠা লহরউঠনা —The rising of waves.

ଲହଡ଼ିବା ଦେ. କ୍ରି ୧। ଲହଡ଼ି ମାରିବା (ଦେଖ)
Lahardibā 1, Lahardi māribā (See)

ଲହଡ଼ି ଭଙ୍ଗା—ଦେ.ବି—ସମୁଦ୍ରରୁ ଉଠୁଥିବା ଲହରମାଳାକୁ ଛାତି ପତାଇ
Lahardi bhangā ସମ୍ଭାଳିବା କ୍ରିୟା—The act of
ঢেউভাঙ্গা লহরলেনা breasting the waves

ଲହଡ଼ି ଭାଙ୍ଗିବା—ଦେ.କ୍ରି—୧। ସମୁଦ୍ରରୁ ଅଗ୍ରସର ହେଉଥିବା ଢେଉକୁ
Lahardi bhāngibā ଛାତି ପତାଇ ସମ୍ଭାଳିବା—1. To
breast the waves ୨। ସମୁଦ୍ରରୁ କୂଳ ଆଡ଼କୁ
ଅଗ୍ରସର ହେଉଥିବା ଢେଉ ଆସି ମନୁଷ୍ୟ ନିକଟରେ
ঢেউভাঁগা লহরলেনা ପହଞ୍ଚିବାବେଳେ ତାହା ମୁଣ୍ଡ ଉପର ଦେଇ
ଚାଲି ଯିବାପାଇଁ ମୁଣ୍ଡ ପତାଇବା—2. To head
the waves; to stoop down till the
crest of an advancing wave passes a
person over his head. [ଦ୍ର—ଏପରି କଲେ
ମନୁଷ୍ୟର ମୁଣ୍ଡ ଉପର ଦେଇ ଲହରୀ ଚାଲିଯାଏ ଓ
ମନୁଷ୍ୟକୁ ଉକ୍ତ ଲହରୀ ଅଘାତ କରିପାରେ ନାହିଁ।]

ଲହଡ଼ି ମାରିବା—ଦେ. କ୍ରି—୧ । (ସମୁଦ୍ର ବା ନଦୀର ଜଳ) ପବନାଦି Lahardi māribā ଦ୍ୱାରା ଅନ୍ଦୋଳିତ ହୋଇ ଲହରୀମୟ ହେବା- ଢେଉତୋଳା **लहरमारना** To rise in billows or waves; to become billowy.

ଲହଡ଼ି ମୁଦ (ବା)—ଦେ. ବି(ସ. ଲହରୀ+ମୁଦ୍)—ଏକ ସ୍ତର ପଥରରେ Lahardi muda(dā) ଆଗକୁ ବଳାଇ ସ୍ତରକୁ ସ୍ତର ପଥର ମୁଣ୍ଡିଠାରୁ କ୍ରମେ ଉପର୍ଯ୍ୟୁପରି ଗଢ଼ିବା ଦ୍ୱାରା ଖିଲାଣ ଛାତର କରିବାର କୌଶଳ ବା ପ୍ରଣାଳୀ—The mode of architecture by means of which an open space is spanned by setting layers of gradually projecting stone blocks, one over the other

[ବି—ପୂର୍ବେ ଓଡ଼ିଆ କାରିଗରମାନେ ଆଧୁନିକ ଖିଲାଣ ପ୍ରଣାଳୀରେ ଗୋଲ ଖିଲାଣ ରଚନା ନ କରି ଆଗକୁ ମଡ଼ାଇ କରି ବିପରୀତ ଦିଗରୁ ପଥରମାନଙ୍କ ସ୍ତରକୁ ବସାଇ ଖିଲାଣ ଜାଗାକୁ ପୂରଣ କରୁଥିଲେ ଓ ସର୍ବୋପରି ଖଣ୍ଡିଏ ପଥର ମଡ଼ାଇ ଦେଇ ସେ ଖିଲାଣକୁ ମୁଦ ଦେଉଥିଲେ ।

ଉତ୍କଳୀୟ ଶିଳ୍ପୀମାନେ 'ଖିଲାଣ' ଗଢ଼ିବା ପ୍ରଣାଳୀ ଜାଣୁ ନ ଥିଲେ; କିନ୍ତୁ ଏହି ଅଜ୍ଞତାକୁ ଏକ ଚମତ୍କାର ବୁଦ୍ଧି-କୌଶଳଦ୍ୱାରା ପୂରଣ କରିଥିଲେ ଓ ଏହି କୌଶଳଦ୍ୱାରା ସେମାନେ ବଡ଼ ବଡ଼ ଦେଉଳମାନ ଛାଏଁର କରି ଭିତ୍ତିର ଛାତକୁ କ୍ରମଶଃ 'ଲହଡ଼ି'ଦ୍ୱାରା କମାଇ କମାଇ ଶେଷରେ ରହିଯିବା ଫାଙ୍କ ଉପରେ ଖଣ୍ଡିଏ ପଥର ଶୁଆଇ ଦେଇ ସେହି ଛିଦ୍ରକୁ ବନ୍ଦ କରି ଦେଉଥିଲେ । ଲମ୍ବଶିଖ ଭୂମି ସହିତ ଉଭର ଆଡ଼କୁ ସୂକ୍ଷ୍ମ କୋଣ ସୃଷ୍ଟି କରି ରହେ ଓ, ଏ ଲହଡ଼ି ମୁଦରେ ବନ୍ଧା ଯିବା ପଥରରେ ସ୍ତରମାନ ଓଲଟା ଲମ୍ବଶିଖର ଉଭର ଆଡ଼କୁ ସ୍ଥୂଳ କୋଣ ସୃଷ୍ଟି କରି ସଜ୍ଜିତ କରି ଯାଉଥିଲା । ପ୍ରଥମେ ପଡ଼ିଥିବା ପଥରର ଅଗ ଟିକିଏ ପଦାକୁ ବାହାରି ଥାଏ, ଦ୍ୱିତୀୟ ପ୍ରସ୍ତର ପଥର ପ୍ରଥମ ସ୍ତରର ପ୍ରସ୍ତର ପଥର ଅପେକ୍ଷା ଅଧିକ ଟିକିଏ ପଦାକୁ ବାହାରି ଥାଏ । (ଏହି ପଥରମାନଙ୍କୁ ଉଭର 'କାଣ୍ଟେଣୀ' କହନ୍ତି ।) ଏହିପରି ଦୁଇ ଆଡ଼ର କାନ୍ଥ ଉପରେ ପଥରମାନ କ୍ରମଶଃ ଆଗକୁ ଆଗକୁ ବଢ଼ାଇ ବଢ଼ାଇ ଯେତେବେଳେ ବିପରୀତ ଦିଗରୁ ଗଣ୍ଠା ହେବା ପଥରର ମୁଣ୍ଡମାନ ଏକ୍ ସନ୍ଧି କଟବର୍ତ୍ତୀ ହୋଇଯାଏ ଓ ଉକ୍ତ ଦୁଇ ପଥରର ମୁଣ୍ଡ ମଧ୍ୟରେ ଅଳ୍ପ ମାତ୍ର ସ୍ଥାନ ଫାଙ୍କ ରହେ, ସେହି ଫାଙ୍କ ଉପରେ ଦୁଇ ଅଡ଼ର ପଥରର ମୁଣ୍ଡ ଉପରେ ଗୋଟିଏ ମାତ୍ର ଲମ୍ବ ପଥର ଶୁଆଇ ଦେଇ ସେ ଫାଙ୍କକୁ ଦୃଢ଼ ବନ୍ଧାଯାଏ । ସର୍ବୋପରେ ସ୍ଥାପିତ ଉକ୍ତ ପଥରକୁ 'ଅଟ୍ଟେଣୀ' ବୋଲାଯାଏ ଓ ଏହି ପ୍ରଣାଳୀକୁ 'ଲହଡ଼ି ମୁଦ' ବୋଲାଯାଏ । ଓଡ଼ିଶାର ଦେଉଳମାନ ଓ ପ୍ରାଚୀନ ପୋଲ (ଯଥା—ପୁରୀର ଅଠର ନଳା ପୋଲ) ମାନ ଏହି 'ଲହଡ଼ି ମୁଦ' ପ୍ରଣାଳୀରେ ନିର୍ମିତ ହୋଇ-ଅଛି । ହିନ୍ଦୁ କାରିଗରମାନେ ଆଧୁନିକ 'ଖିଲାଣ' ପ୍ରଣାଳୀ ଜାଣୁ ନ ଥିବାରୁ ଦେଉଳମାନଙ୍କର ଗର୍ଭ ବା ଗର୍ଭୀରକୁ ବୃହତ୍ କରି ପାରୁ ନ ଥିଲେ; କିନ୍ତୁ ମୁସଲମାନ୍ କାରିଗରମାନେ 'ଖିଲାଣ' ପ୍ରଣାଳୀ ଜାଣୁଥିବାରୁ ମସଜିଦ-ମାନଙ୍କ ଗର୍ଭମାନ ଓ ଗମ୍ବୁଜମାନ ବଡ଼ ଆୟତନବିଶିଷ୍ଟ କରି ପାରୁଥିଲେ । ଆଧୁନିକ ଖିଲାଣଯୁକ୍ତ ସେତୁମାନଙ୍କ ଅପେକ୍ଷା ଲହଡ଼ୀ ମୁଦ ସେତୁମାନ କୌଣସି କୌଣସି ଅଂଶରେ ଦୃଢ଼ତର ଥିବାର ସୁବିଜ୍ଞ ୟୁରୋପୀୟ ଇଞ୍ଜିନିଅର୍-ସ୍ୱୀକାର କରିଅଛନ୍ତି ।]

ଲହଡ଼ୀ—ଦେ. ବି—(ସ. ଲହରୀ)—୧ । ଲହରୀ, ସମୁଦ୍ର ଆଦିର Lahardi ଢେଉ—1. Waves.

[ଉ—ସ୍ୱପ୍ନେରୁ ଶୁଣାଯାଏ ବଢ଼ି, ବହୁଛି ସମୁଦ୍ର ଲହଡ଼ୀ । ଭୂପତି. ପ୍ରେମପଞ୍ଚାମୃତ । ] ୨ । ଖିଲାଣ ପଦ୍ଧତିରେ ଆଗକୁ ଆଗକୁ ମଡ଼ାଇ ସ୍ତର ସ୍ତର ଖଞ୍ଜାଯିବା ପଥରମାନ—2. Ascending layers of stone in old fashioned arches.

ଲହଣ—ଦେ. ବି.—୧ । ଲମ୍ବା ପଡ଼ିଆ; ଭୂମିରେ ଖୋଳାଯିବା ଲମ୍ବ ଖାତ Lahana ଜୁଳିଖାନା **खाई' नहर** 1. Trench.

୨ । ବଢ଼ିଥିବା ନଦୀର ଢୋଉ ଦ୍ୱାରା ଭୂମିରେ ଖୋଳ ହୋଇଯିବା ଲମ୍ବା ଛେଦମାନ—2. Long holes made in the ground by flood water

ଲହଣୀ—ଦେ. ବି—ଲହୁଣୀ (ଦେଖ)
Lahaṇi ନନି **नेवन** Lahuṇi (See)

ଲହଣିଆ ମସୁ—ପ୍ରାଦେ. (ଗଡ଼ଜାତ) ବି—ବନ୍ୟ ଗୁଳ୍ମ ବିଶେଷ—Lahaniā masu Pienos Suberosa (Haines). ବବଚାଳି

ଲହଣ୍ଡା—ଦେ. ବି—ପଞ୍ଜାବ ପ୍ରଦେଶର କଥିତ ଭାରତର ଭାଷା ବିଶେଷ-Lahandā A dialect spoken in the Punjab.

ଲହପ—ପ୍ରାଦେ. (ଗଡ଼ଜାତ) ବି.—ହାଲପା; ବର୍ଷା ଓ ଝଡ଼ ମିଶ୍ରିତ Lahapa ପାଗ—Windy and rainy weather.

ଲହବିର—ଦେ. ବି(ସ. ଲତା ବ୍ରୀହି)—ଲଅ ବିର (ଦେଖ)
Lahabiri La-a biri (See)

ଲହମା—ବୈଦେ. ବି.—(ଅ. ଲହମହ୍)—ନିମିଷ; କ୍ଷଣକାଳ; ମୁହୂର୍ତ୍ତ Lahamā **लहमा** **लहमा** A moment.

[ଦୃ—ମାତ୍ର ଲହମାକ ପରେ ବେଭୁଷି ତାହାକୁ, ଭୁଞ୍ଜାଏ ସ୍ୱଖାଦ୍ୟ ଅର୍ଥି, ଏହା ପ୍ରାକୃତିକ । ଚନ୍ତାମଣି ବିଜ୍ଞମାଦିତ୍ୟ]

କ୍ରି ବିଣ.—ଲହମାଏ (ଦେଖ)—
Lahamāe (See)

ଲହମାଏ(କେ)—ଦେ. କ୍ରି. ବିଣ—୧ । କ୍ଷଣକ ମଧ୍ୟରେ; ମୁହୂର୍ତ୍ତକେ- Lahamāe(ke) **एक लहमाय** 1. In a moment.
**ऐक लहमाके** ୨ । ଅତି ଶୀଘ୍ର—2. Very soon.

ଲହର୍-ଫଅ(ହ)ର—ପ୍ରାଦେ. (ସମ୍ବଲପୁର) ବିଣ—ଲହର ପହର, Lahar pha-a(ha)r ଇତସ୍ତତଃ ଗମନ କରୁଥିବା—Walking to and fro. [ଉ—ପରଧନେ ଲହର ପହର; ଛଡ଼ାଇ ନେଲେ ଲାଜେ ମର । ଛଗ]

**ଲହର**—ଦେ· ବି·—(ସଂ· ଲହରୀ)—୧ । ପ୍ରବାହ; ସ୍ରୋତ—
Lahara ଲହର, ঢেউ लहर 1. Current.
[ଯଥା—ବାୟୁ-ଲହର] ୨ । ଢେଉ—2. Wave.
୩ । କଥାର ଢେଉ; କଥା ଲହରୀ; ଲହରୀପରି ବାକ୍ୟ-
ସ୍ରୋତଃ—3. A wave of speech, continued
speech. ୪ । ଅଭିନିବେଶ; ମନୋଯୋଗ—4.
Attention. ୫ । (ସଂ· ଯଷ୍ଟି; ପ୍ରା. ଲଟ୍ଠି) ହାରର
ସରୁ; ନର୍—5. One of the strings of a
necklace. ୬ । ବାରଂବାର ଶ୍ୱାସରୋଧ
ପୂର୍ବକ ଅନୁଚ୍ଚ କ୍ରନ୍ଦନ—6. Sobbings; subdued
lamentation with sobbings.

**ଲହର କୋଳି**—ଦେ ବି (ସଂ. ଲବଲ)—ନରକୋଳି ( ଦେଖ )—
Laharakoli Narakoli ( See )

**ଲହର ପଥା(ହ)ର ହେବା**—ଦେ· କ୍ରି—୧ । ଲଡ଼ବଡ଼ ହେବା; ଫେର-
Lahara pa(ha)ra heba ଘାର ହେବା; ଲଙ୍ଗଳଙ୍ଗ ହେବା,
(ଲ·ର ଫସର—ଅନ୍ୟରୂପ) ବାରଂବାର ଏକସ୍ଥାନରେ ଯିବା ଆସିବା
लहरपहर करना ଭରିବା—1. To loaf about. [ ଉ
लसफस करना —ଘାଟେ ବରବଧୂ କରିବା ପାଇଁ ବାଣ୍ଡୁ-
ଭୂଅରେ ଲହର ପହର ହେଉଅଛନ୍ତି । ଫଞ୍ଚାରମୋହନ.
ଗଳ୍ପସ୍ୱଳ୍ପ । ] ୨ । ଲସର ପସର ହେବା—2. To walk
फदड फदड होना rapidly.

**ଲହରା**—ଦେ. ବିଣ ( ସଂ. ଲହରୀ )—୧ । ପିନ୍ଧିବା ବ୍ୟକ୍ତିର ମାପରୁ
Lahara ବଳାଉ ଥିବା ( ଲୁଗା ବା ପୋଷାକ )—1.
(ଲହରାଅ—ଅନ୍ୟରୂପ) ( A cloth ) Which is in
ବଡ଼ excess of the wearer's proportions.
ঝোলঙ্গা ୨ । ଲହରୀ ପରି ସ୍ତର ବା ଭାଙ୍ଗ ବିଶିଷ୍ଟ—2· ( cloth )
କୁଞ୍ଚିତ लहरबाला Having folds or layers like wave.

**ଲହରା(ରେ)ଇବା**—ଦେ. କ୍ରି—ଲହରୀ ପରି ଧାରାବାହିକରୂପେ କଥା
Lahara(re)iba କହିବା ବା କାନ୍ଦିବା—To walk or
(ଲହରିବା—ଅନ୍ୟରୂପ) weep in a continuous strain
ঢেউতোলা लहराना (like a wave).

**ଲହରି(ରୀ)**—ସଂ. ବି ( ଲ=ଇନ୍ଦ୍ରିୟ+ହୃ ଧାତୁ=ହରଣ କରିବା+
Lahari(ri) କର୍ତ୍ତୃ. ଇ; ଈ)—୧ । ଜଳାଦିର ତରଙ୍ଗ; ଢେଉ—
1. Wave; billow. ୨ । ( ଲକ୍ଷଣାର୍ଥ ) ତରଙ୍ଗ
ପରି ଉଠିବା କୌଣସି ବିଷୟର ଧାରା—2. ( Figurative) Wave; strain (ଯଥା—ଗଳ୍ପଲହରୀ; ହାସ୍ୟ-
ଲହରୀ । )

**ଲହରି(ରୀ)ଲୀଳା**—ସଂ. ବି ( ୬ଷ୍ଠୀ ତତ୍, ଲହରି(ରୀ)+ଲୀଳା )—
Lahari(ri) lila ତରଙ୍ଗର କ୍ରୀଡ଼ା—The playing of
the waves.

**ଲହ ଲହ**—ଦେ. ଅ ( ଲକ୍ ଧାତୁ )—ଜିହ୍ୱା ବା ସର୍ପାଦି ସରୁ ଲମ୍ବ ବସ୍ତୁ
Laha laha ଇତସ୍ତତଃ ସଞ୍ଚାଳିତ ହେବା—Waving to
লক্লক্ and fro(said of thin and long things).
लहलह ( ଯଥା—ସାପ ଜିଭକୁ ଲହ ଲହ କରୁଅଛି । )

**ଲହ ଲହକା**—ଦେ· ବିଣ—( ସରୁବସ୍ତୁ ) ଇତସ୍ତତଃ ସଞ୍ଚାଳିତ—
Laha lahaka ( Thin and slender thing )—
লকলকিয়া, লকলকে लहलहा Waving to and fro.

**ଲହଲ**—ପ୍ରାଦେ ( କଟକ ସହର ) ବି—ନହଲ ( ଦେଖ )
Lahala Nahala ( See )

**ଲହଲଙ୍ଗ(ଙ୍ଗୁ)ଲିଆ**—ଦେ· ବି ( ସଂ· ଲାଙ୍ଗଲୀ )—ଅଗ୍ନିଶିଖା;
Lahalanga(ngu)lia ବିଷଲାଙ୍ଗୁଳିଆ; ଏକପ୍ରକାର କ୍ଷୁଦ୍ର-
ସଂ. କଳିକାରୀ; କଳିହାରୀ, ବୃକ୍ଷର ମୂଳ — Gloriosa
ହଳିନୀ, ଲାଙ୍ଗଲକୀ; ଶକ୍ରପୁଷ୍ପୀ, Superba; Methonica
ବିଶଲ୍ୟା; ଅଗ୍ନିଶିଖା, ଲାଙ୍ଗଲୀ, Superba ( M. W. );
ବ୍ରଣହୃତ୍, ଅନନ୍ତା, ବହ୍ନିବକ୍ତ୍ରା, wolfsbane; Aconitum
ପୁଷ୍ପସୌରଭା, ବହ୍ନିଜ୍ୱାଳା, Napellus; Hydroba
ଗର୍ଭପାତନୀ, ସାପ୍ତା, ସ୍ୱର୍ଣ୍ଣପୁଷ୍ପା, Zeylancia.
ଇନ୍ଦ୍ରପୁଷ୍ପିକା, ଅଗ୍ନିମୁଖୀ, ହଲୀ, [ ଦ୍ର—ଏହା ଗୋଟିଏ ଉପବିଷ;
ନକ୍ତା, ଗର୍ଭଘାତିନୀ, ଗର୍ଭନୁତ୍ ରକ୍ତମାଗଧାଦିବର୍ଗର ଅନ୍ତର୍ଗତ
ईशलाङ्गली, विषलाङ्गला, ଉଦ୍ଭିଦ । ବର୍ଷାଦିନେ ଡେଙ୍ଗରୁ
विषलाङ्गलिया ଜନ୍ମେ, କିନ୍ତୁ ଶରତ୍କାଳରେ ଫଳ
करीहारी, कलिहारी; कलियारी ପାଚିଲେ ଗଛ ମରିଯାଏ ଓ ଗଛର
ତେ. ପେଣ୍ଡାଦୁମ୍ପା. ଚିହ୍ନମାତ୍ର ନ ଥାଏ । ଏହାର ପତ୍ର
ମ. ଖଡ୍ୟାନାଗ ଏକୋତ୍ତର, ମତ୍ସ୍ୟାକାର ଓ
ଗୁ: ଦୁଧିୟୋ, ବଚ୍ଛନାଗ ଅଙ୍କୁଶଯୁକ୍ତ; ଫୁଲ ବଡ଼ ବଡ଼ ଓ
ଅଗ୍ନିବର୍ଣ୍ଣ । ଫୁଲରେ ୬ ଗୋଟି ପୁଂକେଶର ଥାଏ;
ଗର୍ଭକେଶର ବଙ୍କେଇ ଯାଇ ପୁଂକେଶର ଉପରେ ପଡ଼େ
ଓ ଦେଖିବାକୁ ଲଙ୍ଗଳର ଈଷ ପରି ଅଟେ । ଫୁଲର ଡେଙ୍ଗ
ଓ ଫୁଲ ଅଧୋମୁଖ; ଫଳ ପାଚିଲେ ଫାଟିଯାଏ । ବୈଦିକ-
କାଳରୁ ଏହା ଗର୍ଭପାତର ଔଷଧରୂପେ ଖ୍ୟାତ । ଏହାକୁ
ଔଷଧାର୍ଥ ବ୍ୟବହାର କରିବାକୁ ହେଲେ ଏକ ଦିବସ-
କାଳ ଗୋମୂତ୍ରରେ ଭାବନା ଦେଇ ଶୋଧନ କରିବାକୁ
ହୁଏ ।

ଏହା ଦକ୍ଷିଣ ଭାରତରେ ବିଶେଷ ଦେଖାଯାଏ । ଏହା
କଟୁତିକ୍ତକଷାୟ, ଉଷ୍ଣବୀର୍ଯ୍ୟ, ତୀକ୍ଷ୍ଣ, କ୍ଷାରଗୁଣଯୁକ୍ତ,
ସାରକ, ପିତ୍ତବର୍ଦ୍ଧକ, ଗର୍ଭପାତକ, କଫ, ଶୋଥ ଓ ବ୍ରଣ-
ନାଶକ ଅଟେ । ଏହା କୁଷ୍ଠ, ଶୋଥ, ଅର୍ଶ, ବ୍ରଣ, ଶୂଳ,
କଫ ଓ କ୍ରିମି ନାଶକ—ଦ୍ରବ୍ୟଗୁଣ । ]

**ଲହଲିବା**—ଦେ. କ୍ରି ( ସଂ. ଲହରୀ )—ଲହରୀପରି ଅବିଚ୍ଛିନ୍ନ କଥା
Lahaliba କହିବା ବା ଗୀତ ବୋଲିବା; ପ୍ରାଞ୍ଜଳରୂପେ
বকবক করা କହିବା ବା ଆବୃତ୍ତି କରିବା—To talk
लहरना glibly or without halt or interruption;
to recite without interruption.

**ଲହ ଲୁଆଣି**—ଦେ. ବି—ଲଅଲୁଅଣି ( ଦେଖ )
Lahaluani La-aluani ( See )

**ଲହ ଶାଗ୍**—ପ୍ରାଦେ. (ସମ୍ବଲପୁର) ବି. (ସଂ.ଲତା+ଶାକ)—ପୋଈଶାଗ
Laha sag —A potherb; Basella Alba.

ଲହସ—ଦେ. ବ—(ସଂ. ଲସ୍ୟ)—୧ । ଲସ୍ୟସ; ଲସ୍ୟ; ମନଯୋଗ; ଖିଆଲ
Lahasa খেআল লয় 1. Attention.
୨ । (ସଂ.ଲହରୀ) କଥାର ସ୍ରୋତଃ—2. Course of talk
୩ । କଥାବାର୍ତ୍ତାରେ ବା କାର୍ଯ୍ୟରେ ସମ୍ପୂର୍ଣ୍ଣ ମଗ୍ନତା ଯୋଗୁ ଅମନୋଯୋଗ—3 Want of attention on a matter, being wholly absorbed in the course of conversation or in another matter. ୪ । କାର୍ଯ୍ୟର ସ୍ରୋତଃ—4. A strain of any work; a stretch. (ଯଥା—ସେ ଏକା (ବ) ସ୍ରୋତ (ବ) ଲହର ଲହସକେ ଗୁଲିଗଲା ।)

ଲହସା—ଦେ. ବ—କଦଳୀଗଛର ରୋଗ ବିଶେଷ—
Lahasā A disease of plantain tree
ଲପେଟା ହୁଆ ବିଣ. ଲହକା; ଲୋଳିତ; ଶ୍ଳଥ—Slack. [ଉ—ଡିଲା ଖାଲଟେମଣୀ ଶାଢ଼ୀ ଗଣ୍ଡି ପର ଉଚ୍ଚ ଖସାଇ ଲହସା ଖୋସା । କବିସୂର୍ଯ୍ୟ. ସଙ୍ଗୀତ ।]

ଲହସା ଖୋସା—ଦେ. ବ—ବେଣୀହୀନ କବା ବେକ ମୂଳେ ଛୁଇଁଥିବା
Lahasā khoshā ଏକ ପ୍ରକାର ଖୋସା—A kind of
ঢিলা খোঁপা chignon made by plaiting the hair.
लपेटा हुआ जूड़ा into a braid and loosely winding it into a slack circlet touching the shoulder line. [ଉ-ଅଂସ ଅବତଂସ ଲହସା ଖୋସାକୁ ବ ବେଣୀ ଲୋଟଣୀ ଯୁଡ଼ା । କବିସୂର୍ଯ୍ୟ ସଙ୍ଗୀତ ।]

ଲହସି ପଡ଼ିବା—ଦେ. କ୍ରି—୧ । ଲସିଯିବା; ଉତରକୁ ପଶିଯିବା—
Lahasi pardibā দবেযাওয়া 1. To sink down.
दबना खसेपड़ा [ଉ— ଛୁଧରେ ପଡ଼ିଅଛି ସର, ଶାଗମେଞ୍ଚାଏ ତା ଉପର, ଉଷାନ୍ତେ ପଡ଼ିଲି ଲହସି, ଅଳପ ଶେଷ ମାଛ ଦଶି ରାମଦାସ. ଦାଢ୍ୟତାଭକ୍ତି ।] ୨ । ପାଣିଆ ବା କାଦୁଅ ପଦାର୍ଥ ଅଣ୍ଡସ୍ଥବସ୍ଥାନରେ ହୋଇ ତଳକୁ ବୋହିପଡ଼ିବା—
2. To fall down (said of a clayey thing.

ଲହସିବା—ଦେ. କ୍ରି—ଲସିବା (ଦେଖ)
Lahesibā Lasibā (See)

ଲହୁ—ଦେ. ବ—(ସଂ. ଲୋହ)—ରକ୍ତ; ଶୋଣିତ—
Lahu রক্ত লো(ল হু Blood
[ଉ—ବଦନ ଅଧରୁ ଲହୁ ଧାରି । ରାଧାନାଥ. ମହାଯାତ୍ରା]

ଲହୁଅ—ଗ୍ରା. ବ (ସ. ଲୌହର ଅଶୁଦ୍ଧ ଉଚ୍ଚାରଣ)—ଲୁହା—
Lahūa লোহা लोहा (ଲହ୍ୱ—ଅନ୍ୟରୂପ) Iron.

ଲହୁଆଣ—ଦେ. ବିଣ—( ସ. ଲୋହମୟ ) ୧ । ରକ୍ତାକ୍ତ—1.
Lahuāṇa Besmeared with blood. ୨ । ରକ୍ତରଞ୍ଜିତ—
রক্তাক্ত लोहुआन 2. Coloured with blood.
(ଲହୁଆନ୍—ଅନ୍ୟରୂପ)

ଲହୁ ଚିତା ଘେ(ଘି)ନିବା—ଦେ. କ୍ରି—ରକ୍ତ ଚିତା ଘେନିବା (ଦେଖ)
Lahu chitā ghe(ghi)niba Rakata chitā
রক্তের টিকা নওয়া लहूकाटीका करना ghenibā. (See)

ଲହୁଛିଙ୍କା—ପ୍ରାଦେ (ସମ୍ବଲପୁର) ବ—ଲଘୁଶଙ୍କା (ଦେଖ)
Laghuchhiṅkā Laghuśaṅkā (See)

ଲହୁ ଜାରି—ଗ୍ରା. ବ (ଲହରଥ) (ସ. ଲୋହ ଓ ଫା. ଜାହେର= ପ୍ରକାଶ)—୧ । ରକ୍ତସ୍ରାବ—1. Bleeding;
Lahu jāri
রক্তাবক্তি haemorrhage. ୨ । ଋତୁସ୍ରାବ—2. Menstrual
लहूजारी flow; menstruation. ଦେ. ବ—ରକ୍ତାକ୍ତ— Bleeding.

ଲହୁଡ଼ା—ଗ୍ରା. ବ (ଅଶ୍ଳୀଳ; ହି. ଲୌଡ଼ା; ଲୋଲ୍ଲ; ସଂ. ଲୁଲ ଧାତୁରୁ
Lahurdā ଉତ୍ପନ୍ନ ଲୋଲ; କମ୍ପା ସଂ. ଲଗୁଡ଼ )—ମେଢ୍ର;
নেওড়া लौड़ा ଶିଶ୍ନ; ପୁରୁଷର ଲିଙ୍ଗ—Penis; male organ.

ଲହୁଡ଼ି—ଗ୍ରା. ବ—ନାହୁଡ଼ି (ଦେଖ)
Lahurdi Naurdi. (See)

ଲହୁଣିଆ(ଆଁ)—ଦେ ବିଣ ଓ ବ—ନହୁଣିଆ (ଦେଖ)
Lahuniā ãñ) Nahuniā; (See)

ଲହୁଣିଆଁ ମାଠ—ପ୍ରାଦେ (ଯାଜପୁର) ବ—ସରୁ କୋମଳ ଚିକ୍କଣ
Lahuniāñ māṭha ବସ୍ତ୍ର—Fine soft. [ଉ—ପୂରୁବ କହେଲ କି ? ଲହୁଣିଆଁ ମାଠ କାକରେ ପଡ଼ିଲେ, ମଇଁଷ ଚହଲ କି ? ଛଗ ।

ଲହୁଣୀ—ଦେ. ବ (ସଂ ନବନୀତ)—ନହୁଣୀ (ଦେଖ)
Lahuni Nahuni, (See)

ଲହୁ ନିକାଳିବା—ଦେ. କ୍ରି—କୌଣସି ବ୍ୟକ୍ତିକୁ କ୍ଷତ କରି ତା ଦେହରୁ
Lahu nikālibā ରକ୍ତ ବାହାର କରାଇବା—To cause
রক্তপাত लहुनिकलना bleeding wound to a person.
(ଲହୁ ନିକାଳିକା—ଗ୍ରାମ୍ୟ ରୂପ)

ଲହୁ ନିକଳିବା—ଦେ. ବ ଦେହରୁ ରକ୍ତ ସ୍ରବିବା—
Lahu nikilibā Bleeding from a wound.
রক্ত বেরিয়ে যাওয়া लहुनिकलना

ଲହୁରୁଣୀ—ଦେ. ବ ( ସ ନଖଚ୍ଛେଦନ )—ଭଣ୍ଡାରୀଙ୍କର ନଖାଗ୍ର କ୍ଷୁଦ୍ର
Laharuṇi ଅସ୍ତ୍ର; ନଖାଗ୍ର ଛେଦନ କରିବାର ଅସ୍ତ୍ର— A nail-
নরুন नहरनी clipper used by barbers; nail cutter,

ଲହୁଲି ବୟସ—ଦେ. ବ—ଯୁବାବୟସ—Young age; the
Lahuli bayasa prime of libe.
যুবাবয়স नवयुवा उम्र

ଲହୁଲୀ—ଦେ. ବିଣ. ସ୍ତ୍ରୀ ( ସ. ନବବାଳା )—ନହୁଲୀ ( ଦେଖ )—
Lahuli Nahuli ( See ) ବ ( ସଂ. ଲୋଲା )—
নূতন বয়সী ଦୁର୍ଗାଙ୍କ ନାମ—Name of Goddess
नवयुवा Durga.

ଲହୁଲୁଅ(ହା)ଣି—ଦେ. ବିଣ—୧ । ରକ୍ତାକ୍ତ—1. Blood
Lahulua(hā)ṇi stained. ୨ । କ୍ଷତ ହୋଇ ରକ୍ତ
রক্তাক্ত ସ୍ରବୁଥିବା ( କ୍ଷତ )—2. Profusely blee-
लोहु लोहुआन ding. ବ—ଲ. ଲୁଅଣି; ସର୍ପାଦି ଜନ୍ତୁଗଣ—
Snakes, reptiles.

ଲହୁଲୁଅ(ହା)ଣିଆ—ଦେ. ବିଣ—ଲହଲୁଅଣି ( ଦେଖ )
Lahulua(hā)ṇiā Lahaluāṇi ( See )

**ଲା** (ଧାତୁ)—ସ—୧ । ଗ୍ରହଣ କରିବା—1. To accept; to
Lā (root) receive. ୨ । ଛେଦନ କରିବା—2. To cut. ୩ । ଘୁଞ୍ଚାଇବା; ଦୂର କରିବା—3. To remove.

**ଲା**—ଦେ.—୧ । (ବି) ଲାହା (ଦେଖ)—1. Lāhā ( See ) ୨ ।
Lā ଲା ଆ କ୍ରିୟାର ଅତୀତକାଳରେ ଅନାଦରାର୍ଥକ ତୃତୀୟ ପୁରୁଷ ଏକବଚନରେ ଲାଗିବା ପ୍ରତ୍ୟୟ ( ଯଥା—ଗଲା, କଲା, ଖାଇଲା ଇତ୍ୟାଦି । )—2. Letter or inflection aded to a verb in 3rd person, singular number, past tense. ୩ । (ବି) (କଚରିଆ)—'ଲାଖରାଜ' ଶବ୍ଦର ସାଙ୍କେତିକ—3. The abbreviation for Lākharāja. (ଯଥା—ଲା-ବାହେଲ, ଲା-ବାଜ୍ୟାପ୍ତି, ଲା-ମଉଜା, ଲା-ଦାର, ଲା-ଦେବୋତ୍ତର, ଲା-ବ୍ରହ୍ମୋତ୍ତର ଇତ୍ୟାଦି । )—ବିଣ ( କ୍ରିୟା ସଙ୍ଗେ ଯୁକ୍ତ ହୋଇ) ଯାହା ସମ୍ବନ୍ଧେ କୌଣସି କ୍ରିୟା କରାଯାଇଅଛି—In respect of which any verb has been applied. (ଯଥା—ଗଲା କଥା, ଶୋଇଲା ଘର, ଖାଇଲା କଂସା, ମଲାମନୁଷ୍ୟ ଇତ୍ୟାଦି ।) ପ୍ରାଦେ (ଗଞ୍ଜାମ) ବୈଦେ. ବି (ଇଂ )—ଆଇନ୍—Law. ପ୍ରାଦେ ( ଉତ୍ତର ବାଲେଶ୍ୱର) ବି (ସଂ. ଲତା)—ଲଇ—Creeper used as string. ପ୍ରାଦେ ( ଲରିଆ )—କର୍ମକାରକ ବା ଦ୍ୱିତୀୟା ବିଭକ୍ତିର ପ୍ରତ୍ୟୟ-କୁ The infixion or suffix added to a noun to denote the accusative case. (ଯଥା—ଏ ବାଡ଼ିଲା [ବାଡ଼ିକୁ] ଭୁଟାଏଲ୍ [ଭାଙ୍ଗିବାକୁ ] ଶକ୍ବେ [ସମର୍ଥ ହେବୁ ] ? )—ବୈଦେ. ଉପପଦ (ଫା )—ଶୂନ୍ୟ; ହୀନ A Persian prefix denoting not, want of, without. ( ଯଥା—ଲା+ଖିରାଜ୍=ଲାଖିରାଜ୍=କରଶୂନ୍ୟ; ଲା+ଭାରସ୍=ଲାଭାରସ୍=ଉତ୍ତରାଧିକାରୀ ହୀନ । )

**ଲାଆ**—ଦେ. ବି—ଲାହା ( ଦେଖ )
Lā-ā Lāhā ( See)

**ଲାଆ(ଇ)କ୍**—ଦେ. ବିଣ ( ସଂ. ନାୟକ )—ଲାଏକ୍ ( ଦେଖ )
Lā-ā(i)k Lāek ( See )

**ଲାଇ**—ଗ୍ରା. ବି—ନାହିଁ ( ଦେଖ )
Lāi Nāhi ( See )

**ଲାଇଟ୍(ଟି)**—ବୈଦେ. ବି ( ଇଂ. ଲାଇଟ୍ )—୧ । ଆଲୋକ—1. Light. ୨ । ପ୍ରଦୀପ—2. Lamp [ଦ୍ର—ଅନ୍ୟ ଇଂରାଜି ଶବ୍ଦ ସଙ୍ଗେ ବ୍ୟବହୃତ ହୋଇଥିବା ଏହି ଶବ୍ଦ ଭାଷାରେ ଚଳେ । ଯଥା ସର୍ଚ୍ଚଲାଇଟ୍, ଇଲେକ୍ଟ୍ରିକ୍ ଲାଇଟ୍, ଲାଇଟ୍ ହାଉସ୍, ଗାସ୍ ଲାଇଟ]
Lāiṭ(ṭi) लाइट ଲାଇଟ

**ଲାଇଟ୍ ହାଉସ୍**—ବୈଦେ. ବି ( ଇଂ )—ସମୁଦ୍ରରେ ରାତିରେ ଜାହାଜଅମାନଙ୍କୁ ବାଟ ଠଉରାଇବାରେ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ଉପକୂଳରେ ବା ଦ୍ୱୀପାଦିରେ ଅବସ୍ଥିତ ଉଚ୍ଚ ଆଲୋକସ୍ତମ୍ଭ ଥିବା ଗୃହ—Light house.
Lāiṭ hāus लाइट हाउस ଲାଇଟ ହାଉସ(ହୌସ)

**ଲାଇ ଦେବା**—ପ୍ରାଦେ. (ଗଞ୍ଜାମ) କ୍ରି—ଲାଇବା (ଦେଖ)
Lāi debā Laibā (See)

**ଲାଇନ୍(ନି)**—ବୈଦେ. ବି—୧ । (ଇଂ. ଲାଇନ୍)—ରେଳ ଗାଡ଼ି ଯିବା ଆସିବା ପାଇଁ ସମାନ୍ତର ରେଖାକାରରେ ପାତିତ ଲୌହ ବର୍ତ୍ତ୍ମଯୁଗ୍ମ—1. A railway line (consisting of a pair of iron rails—(ଯଥା—ରେଲ୍ଲାଇନ୍, ଡବଲ୍ ଲାଇନ୍, ସିଙ୍ଗଲ୍ ଲାଇନ୍) ୨ । କୁଲି, ସେନା ବା ପୁଲିସ ଫଉଜଙ୍କ ରହିବାପାଇଁ ଧାଡ଼ି ଧାଡ଼ି ହୋଇ ନିର୍ମିତ ଘରଶ୍ରେଣୀ; ଲମ୍ବୁନ୍; ଲମ୍ବୁନ୍—2. Line; barracks; rows of houses erected for soldiers, coolies or police force. (ଯଥା· ପୁଲିସ୍ ଲାଇନ୍, ରିଜର୍ଭ୍ ଲାଇନ୍, ମିଲିଟେରି ଲାଇନ୍) ୩ । ରେଖା—3. Line. ୪ । ଶ୍ରେଣୀ; ଧାଡ଼ି—4 Row. ୫ । ଟେଲିଗ୍ରାଫ୍ ବା ଟେଲିଫୋନ୍ ସଂବାଦ ଯେଉଁ ତାର ଦ୍ୱାରା ପ୍ରେରିତ ହୁଏ—5. Telegraphic or telephonic line. ୬ । (ଛାପାଖାନା) ମୁଦ୍ରିତ ବା ଟାଇପ୍ ଯୋଡ଼ା ଯାଇଥିବା ଅକ୍ଷର ମାନଙ୍କ ଧାଡ଼ି—6.(printing) A line of printed or composed types.
Lāin(ni) लाइन् ଲାଇନ

**ଲାଇନ୍ କ୍ଲିଅର୍**—ବୈଦେ. ବି. (ଇଂ. ରେଲୱେ ଶବ୍ଦ)—ରେଲଗାଡ଼ି ଯେଉଁ ଲାଇନ୍ (ରେଲପଥ)ରେ ଯିବ ସେ ପଥରେ କୌଣସି ବାଧା ନାହିଁ, ଏହା ଜଣାଇବାର ସଂବାଦ ବା ସଙ୍କେତ—[ଦ୍ର—କୌଣସି ଷ୍ଟେସନରେ ରେଲଗାଡ଼ି ଆସି ପହଞ୍ଚିବା ପୂର୍ବରୁ ତାହାର ପୂର୍ବବର୍ତ୍ତୀ ଗୋଟିଏ ଷ୍ଟେସନ୍ ଛାଡ଼ି ତତ୍ପୂର୍ବବର୍ତ୍ତୀ ଷ୍ଟେସନକୁ ପ୍ରଥମେ ଏହି ମର୍ମରେ ତାରଖବର ମିଳେ ଯେ, ପ୍ରଥମୋକ୍ତ ଷ୍ଟେସନରୁ ଗାଡ଼ି ଛାଡ଼ିଲା ଏବଂ ସମ୍ବାଦପ୍ରେରକ ଷ୍ଟେସନ୍ ଓ ଯାତ୍ରୀମାନେ ଅପେକ୍ଷା କରୁଥିବା ଷ୍ଟେସନ୍ ମଧ୍ୟସ୍ଥ ଲାଇନ୍‌ରେ କୌଣସି ଅବରୋଧ ନାହିଁ—'Line clear' signal given to a train which is about to start. [ଦ୍ର—ଯାତ୍ରୀମାନେ ରେଲଗାଡ଼ି ପାଇଁ ଅପେକ୍ଷା କରୁଥିବା ଷ୍ଟେସନ୍‌ରେ ତାରଦ୍ୱାରା ଏହି ସମ୍ବାଦ ପହଞ୍ଚିବା ମାତ୍ରକେ ଷ୍ଟେସନ୍ ମୁଣ୍ଡରେ ଗୋଟିଏ ପତାକା ଭଳି ପଟା (signal) କୁ ତଳକୁ ମୁହଁ କରି ଦିଆଯାଏ । ଏହାକୁ ଲାଇନ୍‌କ୍ଲିଅର୍ ସିଗ୍‌ନାଲ୍ ବା ସିଙ୍ଗଲ୍ (Line clear signal) ବୋଲାଯାଏ । ଏହି ଖବର ମିଳିବା ମାତ୍ରକେ ଷ୍ଟେସନ୍‌ବାଲା ଦୁଇଥର ଘଣ୍ଟା ପିଟି ଦେଇ ଏ ସମ୍ବାଦ ଯାତ୍ରୀମାନଙ୍କୁ ଜଣାଇଦିଅନ୍ତି । ଏହାକୁ ଲାଇନ କ୍ଲିଅର୍ ବେଲ୍ ବା ଘଣ୍ଟା ଦେବା (Giving the line clear bell) କହନ୍ତି । ଷ୍ଟେଶନର ପୂର୍ବବର୍ତ୍ତୀ ଷ୍ଟେଶନରେ ରେଲଗାଡ଼ି ପହଞ୍ଚି ସେଠାରୁ ଗାଡ଼ି ଛାଡ଼ିଦେବା ପରେ ଆଉ ଗୋଟିଏ ଘଣ୍ଟା ବାଜେ, ତାକୁ ଆଉଟ୍ (out) ଘଣ୍ଟି ବୋଲାଯାଏ, ଏବଂ ରେଲଗାଡ଼ି ଆସି ପ୍ଲାଟ୍‌ଫର୍ମରୁ ଦେଖାଗଲେ ଆଉଥରେ ଘଣ୍ଟା ଦିଆଯାଏ, ତାକୁ ଇନ୍‌ସାଇଟ୍ (In sight) ଘଣ୍ଟି ବୋଲାଯାଏ ]
Lāin kliar लाइन्क्लिअर् ଲାଇନ କ୍ଲିଅର

ଲାଇନ୍ କ୍ଲିଅର୍ ବେଲ୍—ବୈଦେ.ବ (ଇଂ) (ରେଲ୍‌ୱେ ଶବ୍ଦ)—ଲାଇନ୍‌ରେ
Lāin-kliar bel କୌଣସି ଅବରୋଧ ନ ଥିବାସୂଚକ
[ଲାଇନ୍ କ୍ଲିଅର୍ ଘଣ୍ଟା(ଣ୍ଟି)—ଦେ. ରୂପ ] ଘଣ୍ଟାଧ୍ୱନି—Line
लाइन क्लिआर घण्टा (बेल) clear bell. [ ଦ୍ର—ଲାଇନ୍ କ୍ଲିଅର୍
लाईनक्लियरबेल (घण्टा,घण्टी) ଇଲେ ନୋଟ୍ ଦେଖ ।]

ଲାଇନ୍‌କ୍ଲିଅର ସିଗନାଲ୍—ବୈଦେ.ବ (ଇଂ.ରେଲ୍‌ୱେଶବ୍ଦ)—ଲାଇନ୍‌ରେ
Lāin-kliar signāl କୌଣସି ଅବରୋଧ ନ ଥିବାସୂଚକ ଓ
लाईनक्लियार सिगनाल ତା ଷ୍ଟେଶନର ପ୍ରାନ୍ତ ଭାଗରେ ଉଲମ୍ବ ହୋଇ
लाईनक्लियर सिगनल ହୋଇ ପଡ଼ିବା ପତାକାଯୁକ୍ତ ଦଣ୍ଡ—
Line clear signal.
[ଦ୍ର—ଲାଇନ୍ କ୍ଲିଅର୍ ଇଲେ ନୋଟ୍ ଦେଖ ।]

ଲାଇନ୍ ପରେଟ୍(ଡ୍)—ବୈଦେ. ବ ( ଇଂ. ଲାଇନ୍ + ପାରେଡ୍ )—
Lāin paret(d) ନଯୁକ୍ତ ପରେଟ୍; ପଲ୍‌ଟଣମାନେ ଯେଉଁଠାରେ
(ଲାଇନ୍ ପାରେଡ୍—ଅନ୍ୟରୂପ) ଶ୍ରେଣୀବଦ୍ଧ ହୋଇ ଠିଆ ହୋଇ
लाईन पारेड ଗୁଳି ମାରିବା ଓ ଅଙ୍ଗଚାଳନାଦି ବିଦ୍ୟା ଶିକ୍ଷା କରନ୍ତି—
लाईन परेट Parading line of troops; a place
where parading of troops takes place.

ଲାଇନ୍ ମାନ୍—ବୈଦେ. ବ (ଇଂ. ରେଲୱେ ଶବ୍ଦ)—ରେଲର ଯେଉଁ
Lāin mān କର୍ମଚାରୀ ରେଲ ଲାଇନ୍‌କୁ ଜଗିଥାଏ ଓ
लाईनम्यान ଯାହାଠାରେ ଉକ୍ତ ଲାଇନ୍‌କୁ କୋଳଯ ପକାଇବାର ଭାର
लाइनमैन ଥାଏ—A lineman of a railway.

ଲାଇନିଙ୍ଗ୍—ବୈଦେ. ବ.(ଇଂ)—କୋଟ ବନାର ତଳେ ଦିଆଯିବା ଅନ୍ୟ
Lāining ଭିତରା କନାର ସ୍ତର; ଅସ୍ତର—Lining to the
लाईनिङ्ग लाइनिंग upper layer of cloth in a coat.
( ଲାଇନିଂ—ଅନ୍ୟରୂପ )

ଲାଇଫ୍ ଇନସିଓର୍ କରିବା—ଦେ. କ୍ରି (ଇଂ.ଲାଇଫ୍ + ଇନସ୍ୟୋର୍)—
Lāiph-in sior karibā ଆପଣା ଜୀବନକୁ ବୀମା କରିବା;
लाईफईन सिओर करा କୌଣସି ବ୍ୟକ୍ତିର ମୃତ୍ୟୁ ହେଲେ
लाइफईन स्योर करना ତାହାର ଉତ୍ତରାଧିକାରୀମାନେ ନିର୍ଦ୍ଦିଷ୍ଟ
ପରିମିତ ଟଙ୍କା କୌଣସି କୋମ୍ପାନୀରୁ ପାଇବେ ବୋଲି
ଚୁକ୍ତି କରିବା—To insure a person's life.
[ଦ୍ର—ଏହା ଅଧୁନାତନ ସଭ୍ୟତା ପ୍ରବର୍ତ୍ତିତ ଏକପ୍ରକାର ଜୁଆ
ଖେଳ ସଦୃଶ । ଏ ସମ୍ବନ୍ଧୀୟ କେତେଗୁଡ଼ିଏ ଶବ୍ଦ ଭାଷାରେ
ଚଳୁଅଛି ।]

ଲାଇଫ୍ ଇନ୍‌ସିଓ(ଓ)ରାନ୍ସ—ବୈଦେ. ବ (ଇଂ. ଲାଇଫ୍ ଇନ୍‌ସ୍ୟୁରାନ୍ସ)—
Lāiph insiu(o)rāns ଜୀବନବୀମା ସ୍ୱତ୍ୱ—
लाइफ ईन स्युरान्स लाइफ ईनस्योरेन्स Life insurance.
(ଲାଇଫ ଇନ୍‌ସ୍ୟୁରାନ୍ସ—ଅନ୍ୟରୂପ ) [ଦ୍ର—ଏଥିପାଇଁ ଲୋକେ
ମାସକୁ ମାସ କିମ୍ବା ବର୍ଷ ନିର୍ଦ୍ଦିଷ୍ଟ କିସ୍ତିରେ ଯେଉଁ ଟଙ୍କା
କମ୍ପାନୀକୁ ଦିଅନ୍ତି ତାକୁ ପ୍ରିମିଅମ୍ (Premium) ଓ
କମ୍ପାନୀ ଉକ୍ତ ବ୍ୟକ୍ତିଙ୍କୁ ଯେଉଁ ଚୁକ୍ତିପତ୍ର ଲେଖି ଦିଅନ୍ତି
ତାକୁ ପଲିସି (Policy) ଓ ଟଙ୍କା ଦେବା ବ୍ୟକ୍ତି କମ୍ପାନୀକୁ
ଯେଉଁ ଚୁକ୍ତିପତ୍ର ଲେଖିଦିଏ ତାକୁ (Bond) ବୋଲାଯାଏ ।
ଯେଉଁ ବ୍ୟକ୍ତି ଟଙ୍କା ଦିଏ ତାକୁ ପଲିସି ହୋଲ୍‌ଡର୍
( Policy holder ) ବୋଲାଯାଏ ।]

ଲାଇଫ୍‌ଇନ ସିଉ(ଓ)ରାନ୍ସ କୋମ୍ପାନୀ—ବୈଦେ. ବ (ଇଂ)—ଯୌଥ
Lāiph-insiu(o)rāns kompāni କୋମ୍ପାନୀ ବା ଦଳ
लाईफईनसिउरान्स कम्पानी ଲୋକଙ୍କଠାରୁ ନିର୍ଦ୍ଦିଷ୍ଟ ପରିମାଣରେ ଓ
लाइफईनस्योरेन्स कम्पनी କିସ୍ତିରେ ଟଙ୍କା ନେଇ ଲୋକଙ୍କର
ଲାଇଫ୍ ଇନସିଓର୍ କରନ୍ତି—Life Insurance
Company.

ଲାଇଫ୍‌ଇନ ସିଉ(ଓ)ରାନ୍ସ ପ୍ରିମିଅମ୍—ବୈଦେ. ବ (ଇଂ)—ଉକ୍ତ ଉକ୍ତ
Lāiph-insiu(o)rānsa primiam ନିର୍ଦ୍ଦିଷ୍ଟ କିସ୍ତିରେ ଜୀବନ
लाईफईनसिउरान्स प्रिमियम ବୀମା କୋମ୍ପାନୀକୁ ଦିଆଯିବା ଟଙ୍କା—
लाइफ ईनस्योरेन्स प्रिमियम Life Insurance premium.

ଲାଇଫ୍‌ଇନ ସିଉରାନ୍ସ ବଣ୍ଡ୍—ବୈଦେ. ବ (ଇଂ)—ଟଙ୍କା ଦେବା
Lāiphinsiurānsa band ବ୍ୟକ୍ତିଙ୍କର ଜୀବନବୀମା କୋମ୍ପାନୀକୁ
लाईफईनसिउरान्स बण्ड ଲେଖିଦେବା ଚୁକ୍ତିପତ୍ର—
लाइफईनस्योरेन्स बण्ड Life Insurance bond.

ଲାଇଫ୍ ପଲିସି—ବୈଦେ. ବ (ଇଂ)—ଯେଉଁ ଚୁକ୍ତିପତ୍ର ଦ୍ୱାରା କମ୍ପାନୀ
Lāiph palisi କୌଣସି ବ୍ୟକ୍ତିର ମୃତ୍ୟୁ ଘଟିଲେ ତାହାର
(ଏଣ୍ଡାଉମେଣ୍ଟ ପଲିସି—ବିପରୀତ) ଉତ୍ତରାଧିକାରୀଙ୍କ ନିର୍ଦ୍ଦିଷ୍ଟ ପରି-
लाईफ पलिसि ମାଣରେ ଧନ ଦେବାକୁ ଅଙ୍ଗୀକାର କରନ୍ତି—
लाईफपॉलसी Life policy.

ଲାଇଫ୍ ବେଲ୍ଟ୍—ବୈଦେ.ବ (ଇଂ)—ସମୁଦ୍ରରେ ଜାହାଜରେ ଯାଉଥିବା
Lāiph belt ଯାତ୍ରୀମାନେ ଜାହାଜ ଅକସ୍ମାତ୍ ବୁଡ଼ିଗଲେ ଯେଉଁ
लाईफबेल्ट लाइफ बेल्ट ରବର ନିର୍ମିତ ବାୟୁପୂର୍ଣ୍ଣ କମରପଟିକୁ
ଦେହରେ ବାନ୍ଧିବା ଦ୍ୱାରା ପାଣିରେ ବୁଡ଼ି ମରନ୍ତି ନାହିଁ—
Life-belt

ଲାଇଫ୍ ବୋଟ୍—ବୈଦେ. ବ—(ଇଂ)—ଯେଉଁ ଛୋଟ ଛୋଟ ଡଙ୍ଗା
Lāiph bot ସାହାଯ୍ୟରେ ଜାହାଜର ଯାତ୍ରୀମାନେ ବୁଡ଼ିଯିବା
ଜାହାଜରୁ କୂଳକୁ ପଳାଇ ଆସି ଜୀବନ ରକ୍ଷା କରନ୍ତି—
Life boat. [ଦ୍ର—ଏହି ପ୍ରକାରର କେତେଗୁଡ଼ିଏ ଡଙ୍ଗା
ପ୍ରତ୍ୟେକ ଜାହାଜରେ ଲଟକା ହୋଇ ରଖା ଯାଇଥାଏ;
ବିପଦ ସମୟରେ ଫିଟାଇ ବ୍ୟବହାର କରାଯାଏ ।]

ଲାଇ ଫୁଲା(ଲେ)ଇବା—ଗ୍ରା. କ୍ରି—ନାହିଁ ଗଡ଼େଇବା (ଦେଖ)
Lāi phulā(le)ibā Nāhi gardeibā (See)
[ଲାଇଗଡ଼ା(ଡ଼େ)ଇବା—ଅନ୍ୟରୂପ]

ଲାଇବା—ଗ୍ରା. କ୍ରି—(ସଂ. ଲଭ୍‌ଧାତୁ=ଗ୍ରହଣ କରିବା)—୧ । (ପ୍ରାଚୀନ
Lāibā ପଦ୍ୟ) ସ୍ଥାପନ କରିବା—1. To place. [ଦ୍ର—
लागान लाना ଭଠି ମଥାରେ କରଲାଇ । କହିଲା ବହୁତ ବିନସ୍ମି ।
ରାମ ଦାସ. ଦାର୍ଢ୍ୟତାଭକ୍ତି ।] ୨ । (ପ୍ରାଚୀନ ପଦ୍ୟ)
ଧରିବା—2. To catch; to hold. [ଦ୍ର—ସୁବର୍ଣ୍ଣର
ବେତ ସଙ୍ଗେ ଛନ୍ତି ହସ୍ତେ ଲାଇ । ସ୍ୱାମୀ. ବ୍ରହ୍ମକଉପାଣ.
ଗୀତା.] ୩ । ନାଇବା (ଦେଖ) 3. Nāibā (See)
[ଦ୍ର—ଶଙ୍ଖା ଦୁଇ ବାହୁ ସେ ଦୁଇ ହାତେ ଲାଇ । ବନ
ଶାଢ଼ୀ ଖଣ୍ଡେ ସେ ପିନ୍ଧିଲେ ସୁନ୍ଦରେ । କୃଷ୍ଣସିଂହ ମହାଭାରତ.

ବସ୍ତୁ ] ପ୍ରାଦେ (ଗଞ୍ଜାମ) କ୍ରି—ଧାନ ଆଦିକୁ ଟୋକାଇ ଆଦି ପାତ୍ରରେ ପୂରାଇବା ବା ଭରିବା—To fill up paddy etc in a basket.

**ଲାଇବେଲ୍**—ବୈଦେ. ବି (କଚେରୀ)—(ଇଂ)—ଅପବାଦ ଯୋଗୁଁ Laibel Libel. लाइबेल **लाइबेल** ମାନହାନି—

**ଲାଇବ୍ରେରିଆନ୍**—ବୈଦେ ବି (ଇଂ)—ପୁସ୍ତକାଗାରର ରକ୍ଷକ—Laibrerian लाइब्रेरीआन् **लाइब्रेरियन** Librarian.

**ଲାଇବ୍ରେରି**—ବୈଦେ. ବି—(ଇଂ)—ପୁସ୍ତକାଗାର; ପୁସ୍ତକ ଭଣ୍ଡାର—Laibreri लाइब्रेरी **लाइब्रेरी** Library.
[ଲାଇବ୍ରେ(ବେ)ରି—ଗ୍ରାମ୍ୟରୂପ] (ଦ୍ର—ସ୍ଥାନବିଶେଷରେ ଲାଇବ୍ରେରିର ନାମ ଭିନ୍ନ ଭିନ୍ନ ହୋଇଥାଏ । ଯଥା—କାର୍ ଲାଇବ୍ରେରି; କଲେଜ୍ ଲାଇବ୍ରେରି; ଲ ଲାଇବ୍ରେରି, ହାଇକୋର୍ଟ ଲାଇବ୍ରେରି, ପବ୍ଲିକ୍ ଲାଇବ୍ରେରି, ଟାଉନ୍ ଲାଇବ୍ରେରି ଇତ୍ୟାଦି]

**ଲାଇଲାବ ମୂଳିଆ**—ପ୍ରାଦେ (ଗଡ଼ଜାତ) ବି—ଲହଲାଙ୍ଗୁଳିଆ (ଦେଖ) Lailaba mulia Lahalanguliā (See)

**ଲାଇସେନ୍ସ**—ବୈଦେ. ବି—(ଇଂ)—୧ । କୌଣସି ବିଶିଷ୍ଟ କାର୍ଯ୍ୟ Laisens କରିବାକୁ ରାଜ ସରକାରଙ୍କ ବା କୌଣସି କର୍ତ୍ତୃପକ୍ଷଙ୍କ लाइसेन्स **लाइसेन्स** ପ୍ରଦତ୍ତ ଅନୁମତି—1. License pro-
[ଲାଇସ(ସେ)ନ(ନ୍)—ଗ୍ରାମ୍ୟରୂପ] cured from the Government or from any other authority. ୨ । ରାଜ ସରକାରଙ୍କ ଅନୁମତି ପତ୍ର—2. A deed of license got from the Government. ୩ । ଲାଇସେନ୍ସ ଫିସ୍—3. License fees.
[ଦ୍ର· ମାଦକ ଦ୍ରବ୍ୟାଦି ବିକ୍ରି କରିବା ପାଇଁ, ବନ୍ଧୁକ ସାଙ୍ଗରେ ରଖିବା ପାଇଁ, ଭଡ଼ାରେ ଯାତ୍ରୀମାନଙ୍କୁ ଭଡ଼ାରେ ବୁଲାଇବା ପାଇଁ, ଡାକ୍ତରୀ ଲୋକଙ୍କୁ ନାଟ ପାଠ କରିବା ପାଇଁ ସରକାର ଲୋକଙ୍କ ଠାରୁ ଫିସ୍ ବା ଶୁଳ୍କ ଗ୍ରହଣ କରି ଲାଇସେନ୍ସ ବା ଅନୁମତିପତ୍ର ଦିଅନ୍ତି ।]

**ଲାଇସେନ୍ସ ଡିଉଟି**—ବୈଦେ. ବି (ଇଂ)—କୌଣସି କାର୍ଯ୍ୟପାଇଁ Laisens diuti ଅନୁମତି ପାଇବା ନିମନ୍ତେ ସରକାରଙ୍କୁ ଦିଆଯିବା लाइसेन्स डिउटि **लाइसेन्सड्यूटी** ଶୁଳ୍କ—License fees; license duty; license tax.
ଲାଇସେନ୍ସ ଟାକ୍ସ, ଲାଇସେନ୍ସ ଫିସ୍ } ଅନ୍ୟରୂପ

**ଲାଇସେନ୍ସଦାର**—ବୈଦେ. ବି (ଇଂ ଲାଇସେନ ଫା. ଦାର)—ଯେଉଁ Laisensdar ଲୋକ ଫିସ୍ ଦେଇ ସରକାରଙ୍କଠାରୁ ବା କର୍ତ୍ତୃପକ୍ଷଙ୍କଠାରୁ ଅପଣା ନାମରେ ଅନୁମତିପତ୍ର ହାସଲ କରିଥାଏ लाइसेन्सदार **लाइसेन्सदार** Licensee; license-holder.

**ଲାଉ**—ଦେ. ବି—(ସଂ. ଅଲାବୁ; ପ୍ରା. ଅଲାଉ; ଲାଉ)—୧ କୁଷ୍ମାଣ୍ଡାଦି- Lau ବର୍ଗର କୃଷିଜାତ ଲତା ଓ ତାହାର ଫଳ; ତୁମ୍ବୀ—1. Bottle gourd; white gourd; pumpkin; Cucurbita Lagenaria; Lagenaria Vulgaris.
ସଂ. ଅଲାବୁ, ତୁମ୍ବୀ
ବା. ଲାଉ, ଲାଉ
**कद्दु तुंबी, लाउ**
ତେ. ଉଣ୍ଡ୍ରାବୁ, ଅଡ଼ୀକାୟା
ତ. ଚୁରୈ ସୌ°ପଲ
ଗୁ. ଦୁଧୀଯୁଂ, ଦୁଧଲୁଂ
ଫା. କୁଦୁ ଶିରନ୍
ଆ. ଯୁକ୍ତି ଟେକ୍ଲ କସ
[ ଦ୍ର—ଲାଉ ଅନେକ ପ୍ରକାରର । ତହିଁ ମଧ୍ୟରୁ ତିକ୍ତିଆ ଲାଉ, ଧଳା ଲାଉ, କଳା ଲାଉ, ପିଚାଲାଉ, ପ୍ରଧାନ । ଲାଉ ଲମ୍ବା ଓ ବର୍ତ୍ତୁଳ, ଏପରି ଦୁଇ ଶ୍ରେଣୀରେ ବିଭକ୍ତ । ଏହାର ଫୁଲ ଧଳା; ବୈଦ୍ୟକ ମତରେ ଏହା ହୃଦ୍ୟ, ଗୁରୁପାକ, ବୃଷ୍ୟ, ରୁଚିକାରକ, ଧାତୁବର୍ଦ୍ଧକ, ପୁଷ୍ଟିକର ଓ ପିତ୍ତ ଶ୍ଳେଷ୍ମନାଶକ (ଦ୍ରବ୍ୟଗୁଣ) ]
୨ । ଶିଶୁ ଓ ଅକ୍ଷମ ମାନଙ୍କର ଦୁଇହାତକୁ କାନ୍ଧବାଟେ ଧରି ବୟସ୍କ ବ୍ୟକ୍ତିମାନେ ତାଙ୍କୁ ପିଠିରେ ବହନ କରିବା ପ୍ରଣାଳୀ—2. The carrying of a child or invalid person on the back.

**ଲାଉଆ**—ଦେ. ବିଣ—୧ । ଲାଉପରି ଧଳା—1. White like Laua gourd. [ଯଥା—ଲାଉଆ ଶିମ୍ବୀ ।] ୨ । ଲାଉପରି लाउंब मतन, लेय़े ବଡ଼ ବା ଲାଉ ଆକୃତି ବିଶିଷ୍ଟ—2. Sha- **लाउके माफिक, लावा** ped like a gourd or as big as gourd. (ଯଥା—ଲାଉଆ ଦୁଧ ।)

**ଲାଉଆ ଦୁଧ**—ଦେ· ବି—ଘଟ ସ୍ତନ, ତୁମ୍ବ ସ୍ତନ, ଲାଉ ପରି ବଡ଼ ବା Laua dudha ବର୍ତ୍ତୁଳ ସ୍ତନ—Female breasts as लेय़े माइ **लावा स्तन** big or plump as gourds.

**ଲାଉଆ ଦୁଧୀ**—ଦେ. ବିଣ. ସ୍ତ୍ରୀ—ଅଲାବୁ ପରି ବର୍ତ୍ତୁଳ କୁଚବତୀ (ସ୍ତ୍ରୀ); Laua dudhi ଘଟ ସ୍ତନୀ—(A woman) With big ଝାବ लेय़े माइ plump breasts (compared to **लावस्तनवाली** pumpkins.)
[ ଦ୍ର—ଲାଉଆଦୁଧୀ ସ୍ତ୍ରୀମାନଙ୍କ କୁଚମାନ ବଡ଼ ବଡ଼ ଥିବାରୁ ପୂର୍ଣ୍ଣ ଯୌବନାବସ୍ଥାର ଅଳ୍ପକାଳ ପରେ ଶିଥିଳ ଓ ଅଧୋମୁଖ ହୋଇଯାଏ]

**ଲାଉଆ ପେଟ**—ଦେ· ବି—ସ୍ଥୂଳୋଦର—Pot belly; a belly as Laua peta big as a pumpkin.
लेय़े पेट **लावापेट**

**ଲାଉଆ ପେଟା**—ଦେ· ବିଣ· ପୁଂ—ଲାଉପରି ବଡ଼ ପେଟଯୁକ୍ତ (ବ୍ୟକ୍ତି)—Laua peta Pot-bellied; big bellied.
[ଲାଉଆ ପେଟା, ଲାଉଆପେଟେ(ଟୋ)ଇ—ସ୍ତ୍ରୀ]
लेय़े पेट **लावा पेटवाला**

**ଲାଉ(ଓ)ଆରସ(ସି)**—ବୈଦେ· ବି(ଫା; ନା=ନାହ+ଆରସ୍)—Lau(o)a ra(ri)s(si) ନାଉଆରସ (ଦେଖ)—
[ଲାଉଆର(ରି)ସ୍(ସି)—ଅନ୍ୟରୂପ] Nauaras (See)

**ଲାଉଆ ଶିଂଘୀ**—ଦେ· ବି·—ଲାଉଆଶିଂଘୀ (ଦେଖ) Laua simghi Laua simghi (See)

**ଲାଉ କରିବା**—ଦେ· କ୍ରି—ଶିଶୁ ଓ ଅକ୍ଷମମାନଙ୍କୁ ପିଠିରେ ପକାଇ Lau kariba ସେମାନଙ୍କର ଦୁଇହାତକୁ ବାହକ ଅପଣା କାନ୍ଧ लाउ करा **बकमोंभोलेना** ବାଟେ ଟାଣି କରି ଧରି ବହନ କରିବା—To carry a child or invalid on the back
[ଦ୍ର—ପିଲାମାନଙ୍କୁ ଲାଉ କରିବା ସମୟରେ ବୟସ୍କମାନେ ଏହି

ଶିଶୁଗୀତ ବୋଲି ଥାଆନ୍ତି—ଲାଉ ଡବ ନବ ଆସ। ଲାଉରେ ପଡ଼ନ୍ତି କପୁରବାସ, ଲାଉ ଖାଇଲେ ଖଡ଼ବ କାଶ ।]

**ଲାଉ କଶି**—ଦେ. ବି—ଅତର କାତ ଲାଉ ଫଳ—
Lāu kaśi A raw or very young pumpkin.
लाउ जालि बतिया कद्दू

**ଲଉକା**—ଗ୍ରା. ବି.—(ସ. ନୌକା)—ନୌକା—
Lāukā Boat.

**ଲାଉ ଚି(ଚୁ)ଙ୍ଗୁଡ଼ି**—ଦେ. ବି—ଲାଉଚିଙ୍ଗୁଡ଼ି (ଦେଖ)
Lāu chi(chu)ṅguṛdi Lāu chiṅguṛdi (See)

**ଲଉଡ଼ା**—ଦେ. ବି—ଲହୁଡ଼ା (ଦେଖ)
Lāuṛda Lāhuṛda (See)

**ଲାଉଡଙ୍କିଆ ସାପ**—ଦେ.ବି—ଲାଉଡଙ୍କ ପରି ଖାଗୁଆ ବର୍ଣ୍ଣ ଓ ଆକାର-
Lāu daṅkiā sāpa ଯୁକ୍ତ ଏକ ପ୍ରକାର ସରୁସାପ—A kind of small green serpent;Cyclopis Vernalis. [ଦ୍ର—ଏମାନଙ୍କର ଦେହ ଖାଗୁଆ, ଦେହରେ ୨ । ୩ ଗୋଟି ଧଳା ଡୋର ଦାଗଥାଏ । ଏମାନଙ୍କ ମୁଣ୍ଡ ଓ ଲାଞ୍ଜ ଲମ୍ବା; ଦେହ ଚେପ୍ଟା, ଲମ୍ବରେ ୩ ଫୁଟରୁ କମ୍, ଲାଉଡଙ୍କପରି ଅଧ ଇଞ୍ଚ ବ୍ୟାସ ବିଶିଷ୍ଟ; ଏମାନେ ବୃକ୍ଷଗୁଳ୍ମ ଓ ଗଛ ଓ ଲତା ଆଦିରେ ବିଚରଣ କରନ୍ତି ।]

**ଲାଉତୁମ୍ବା(ମ୍ବୀ)**—ଦେ. ବି—ନାଉତୁମ୍ବା (ଦେଖ)
Lāu tumbā(mbi) Nāutumbā (See)

**ଲାଉ ଥାଳ**—ଦେ. ବି—ବୁଢ଼ା ଲାଉର ମୁଣ୍ଡପାଖରୁ କାଟି ଭିତର ମଧ୍ୟରୁ
Lāu thāḷa ଶସକୁ କୋରି ବାହାର କରି କଠିନ ଚୋପା ବା ଖୋଳପାରେ କରା ଯିବା ପାତ୍ର—A pot made by scarping off the kernel of a ripe pumkin, [ଦ୍ର—ଆମଦେଶର ନାଥ(ଯୋଗୀ)ମାନେ ଏହି ଲାଉ ଥାଳ ସେଇ ଘଷା କରନ୍ତି ଓ ସେଥିରେ ଭାତ ତୋରାଣି ଆଦିମଧ୍ୟ ଖାଆନ୍ତି ।]

**ଲାଉଦଅଣା**—ଦେ. ବି—ନାଉଦଅଣା (ଦେଖ)
Lāu da-aṇā Nāu da-aṇā (See)

**ଲାଉ ବନ୍ଧ**—ଗ୍ରା. ଦେ— (ଅଳ) ବି.—ନାଗବନ୍ଧ ୧ (ଦେଖ)
Lāu bandha Nāgabandha 1 (See)

**ଲାଉମୁଡ଼ା(ଣ୍ଡା)**—ପ୍ରାଦେ.(ସମ୍ବଲପୁର) ବି.—୧ । ନାଗବନ୍ଧ ୧ । (ଦେଖ)
Lāu muṛdā(ṇdā) 1. Nāgabandha 1 (See)
୨ । ନାଗବନ୍ଧ ବା ଚଉକାଠର ଉପର ଓ ତଳ କୋଣରେ କବାଟର ବଣି ରହିବା ପାଇଁ କରା ଯାଇଥିବା ଛିଦ୍ର—2. The holes made on the upper and lover corners of a threshold to hold the corners of a door plate

**ଲାଉ ହେବା**—ଦେ. କ୍ରି.—ବୟୋଜ୍ୟେଷ୍ଠଙ୍କ ପିଠି ଉପରେ (ଶିଶୁ ବା
Lāu hebā ଅକ୍ଷମ ବ୍ୟକ୍ତି) ଚଢ଼ିଅଡ଼ି ହାମୁଡ଼େଇ ହୋଇ ଝୁଲି
नाउ हरया बक मौं मौं होना ରହିବା—To creep into the back of an elder in order to be carried.

**ଲାଏକ**—ବୈଦେ. ବିଣ—(ଅ; ମୂଳ ଫ. ନାୟକ)—୧ । ଉପଯୁକ୍ତ;
Lāek ଯୋଗ୍ୟ—1. Fit; competent. [ଦ୍ର—ପୁଅକୁ ଲାଏକ୍ ଏବଂ ଇଲମ୍‌ଦାର୍ କରିବା ସକାଶେ ଦାରୋଗା ସାହେବଙ୍କର କିଛିମାତ୍ର ସଫଳଯତ୍ନ ନଥିଲା—ଫକୀରମୋହନ ଛମାଣ ଆଠଗୁଣ୍ଠ । ] ୨ । ଗୁଣବାନ୍—2. Endowed. ୩ । ଉର୍ବର—3. Fertile. ୪ । କୃଷିଯୋଗ୍ୟ—4. Cultivable; culturable. ୫ । ଉତ୍କୃଷ୍ଟ—5. Excellent. ୬ । ଲାଖି; ଯଥୋପଯୁକ୍ତ—6. Befitting; becoming. ୭ । ସମର୍ଥ—7. Competent.

**ଲାଏକ୍ ଜମି**—ବୈଦେ. ବି—(ଅ, ଲାୟକ୍ + ଫା. ଜମୀନ୍)—କୃଷି
Lāek jami ବିଷୟରେ ଉତ୍କୃଷ୍ଟ ଜମି; ଉର୍ବର ଜମି—
লায়েক জমি Excelledt or fertile land.
लायक जमीन, अव्वल जमीन

**ଲାଏକ ପଡ଼ିଆ**—ଦେ. ବି—( ସେଟ୍‌ଲମେଣ୍ଟରେ ବ୍ୟବହୃତ ଶବ୍ଦ )—
Lāek paṛdiā ଯେଉଁ ପଡ଼ିଆ ଜମି କୃଷି ହେବାର ଉପଯୁକ୍ତ—
লায়েক পতিতভূমি लायक पडति Cultivable waste.

**ଲାଏକତି**—ଦେ. ବି—୧ । ଯୋଗ୍ୟତା—1. Fitness; compe-
Lāekati লায়েকতী लायकी tence. ୨ । ଉତ୍କର୍ଷ—2. Excellence. [ଦ୍ର—ଲାଏକତି ହେତୁରୁ ତାର ବରଷ ହେଲା ଏକ କଲମରେ କେଲ୍ଡ୍ରାପଡ଼ା ଥାନାରେ ଅଛନ୍ତି । ଫକୀରମୋହନ. ଛମାଣ ଆଠଗୁଣ୍ଠ ।

**ଲାଏକା**—ଗ୍ରା. ବି—ନାହାକା (ଦେଖ)
Lāekā Nāhākā (See)

**ଲାଏଦ୍ ପୁଟା**—ପ୍ରାଦେ.—(ସମ୍ବଲପୁର) ବି.—ଅନ୍ତ୍ରଭୁଜୁଳା—
Lāed puṭā Entrails; bowels.

**ଲାକ (ଇତ୍ୟାଦି)**—ପ୍ରାଦେ. (କଟକ ସହର) ବି.—ନାକ ଇତ୍ୟାଦି—
Laka (etc) Nāka etc (See)

**ଲାକୁଟିକ**—ସ. ବିଣ. ପୁଂ—(ଲକୁଟ + ପ୍ରହରଣଧାରୀ ଅର୍ଥରେ + ଇକ)
Lākuṭika
[ଲାକୁଟିକା—ସ୍ତ୍ରୀ] ଲଗୁଡ଼ଧାରୀ—Armed with a cudgel or club. (Apte) ସ. ବି. ପୁଂ—ପହରାବାଲା—Watchman; sentinel (Apte).

**ଲାକ୍ଷକୀ**—ସ. ବି. ସ୍ତ୍ରୀ—(ଲକ୍ଷ + କ + ଈ)—ସୀତା; ଜାନକୀ —
Lākshaki Sitā

**ଲାକ୍ଷଣିକ**—ସ. ବିଣ—୧ । (ଲକ୍ଷଣ + ସମ୍ବନ୍ଧାର୍ଥେ. ଇକ)—ଲକ୍ଷଣ
Lākshaṇika ସମ୍ବନ୍ଧୀୟ—1. Relating to Lakshaṇa. ୨ । (ଲକ୍ଷଣା + ଇକ) ଲକ୍ଷଣା ସମ୍ବନ୍ଧୀୟ—2. Relating to Lakshaṇā. ୩ । ଲକ୍ଷଣାଦ୍ୱାରା ପ୍ରତିପାଦ୍ୟ (ଅର୍ଥ)—3. Metaphorical ( meaning ); figurative or ascribed. ବି—୧ । ଲକ୍ଷଣଜ୍ଞ; ଲକ୍ଷଣଦ୍ୱାରା ଶୁଭାଶୁଭ ଫଳ ବା ତତ୍ତ୍ୱାଦି ନିରୂପଣ କରି ପାରିବା ବ୍ୟକ୍ତି—1, A person able to diagnise or ascertain a matter from signs or omens. ୨ । ଫଳିତ ଜ୍ୟୋତିଷବେତ୍ତା; ଦୈବଜ୍ଞ—2. Foreteller; one versed in

astrology; fortuneteller. ୩ । ପ୍ରତ୍ୟେକ ଚରଣରେ ୩୨ ମାତ୍ରାଯୁକ୍ତ ଛନ୍ଦୋବିଶେଷ (ହି. ଶ)—3. Name of a Sanscrit metre.

ଲକ୍ଷଣିକାର୍ଥ—ସଂ. ବି—(କର୍ମଧା)—ଲକ୍ଷଣାଦ୍ୱାରା ପ୍ରତିପନ୍ନ ଅର୍ଥ—Lākshaṇikārtha Metaphorical meaning.

ଲକ୍ଷଣ୍ୟ—ସ. ବିଣ.—( ଲକ୍ଷଣ + ସମ୍ବନ୍ଧୀୟାର୍ଥେ ଯ )—୧ । ଲକ୍ଷଣ Lākshaṇya ସମ୍ବନ୍ଧୀୟ—1. Relating to Lakshaṇa. ୨ । ଲକ୍ଷଣଯୁକ୍ତ—2. Having a distinctive mark or sign ୩ । ଶୁଭାଶୁଭ ଜାଣିଥିବା (ବ୍ୟକ୍ତି); ଦୈବଜ୍ଞ— . Versed in astrology.

ଲକ୍ଷା—ସ. ବି (ଲକ୍ଷ ଧାତୁ—ଚିହ୍ନ କରିବା + କରଣ ଅ + ଆ)—Lākshā ୧ । ଲାଖ; ଜଉ; ଅଶ୍ୱତ୍ଥ, ବକୁଳ, କୁସୁମ, ବଦରୀ ଆଦି ବୃକ୍ଷମାନଙ୍କ ଶାଖାରେ ପୁଞ୍ଜୀଭୂତ କ୍ଷୁଦ୍ର କୀଟବିଶେଷଙ୍କ ଦେହନିର୍ଗତ ନିର୍ଯ୍ୟାସ—1. Lac; shell lac. [ ଦ୍ର—ଲକ୍ଷା ଆମଦାନି କରିବା ବ୍ୟକ୍ତିମାନେ ବୈଶାଖ ମାସରେ ବୃକ୍ଷମାନଙ୍କ ଶାଖାରୁ ଏ କୀଟମାନଙ୍କୁ ସଂଗ୍ରହ କରି ଆଣନ୍ତି ଓ ସେମାନେ ସିଝାଇ କରି ଲକ୍ଷା ପ୍ରସ୍ତୁତ କରନ୍ତି । ଲକ୍ଷା କେବଳ ଭାରତବର୍ଷରେ ଆମଦାନି ହୁଏ ଓ ଏଠାରୁ ସମଗ୍ର ଜଗତକୁ ରପ୍ତାନି କରାଯାଏ । ଏହାକୁ ଗନ୍ଧକ ଦ୍ରାବକ ମିଶ୍ରିତ ଜଳରେ ସିଦ୍ଧ କଲେ ଯେଉଁ ରକ୍ତବର୍ଣ୍ଣ ରଙ୍ଗ ପ୍ରସ୍ତୁତ ହୁଏ ତାହାକୁ ତୁଳାରେ ମଡ଼ାଇ ଅଲତା ତିଆରି ହୁଏ ଓ ସେଥିରୁ ଯେଉଁ ସିଠା ବାହାରେ ସେଥିରୁ ଜଉ ବା ଲାଖ ତିଆରି ହୁଏ । ଅଲତା ଦ୍ୱାରା ସ୍ତ୍ରୀଲୋକମାନେ ପାଦକୁ ନାଲି ରଙ୍ଗରେ ରଞ୍ଜିତ କରନ୍ତି । ଲାଖକୁ ତରଳାଇ ଚିଠି ଆଦି ବନ୍ଦ କରାଯାଏ ଓ ଫମ୍ପା ଅଳଙ୍କାର ମଧ୍ୟରେ ଭର୍ତ୍ତି କରାଯାଏ; ଲକ୍ଷାରୁ ଅନେକ ପ୍ରକାର ରଙ୍ଗ, ବାର୍ଣ୍ଣିସ୍, ତେଲ ତିଆରି ହୁଏ ଓ ଏଥିରେ ଶଙ୍ଖା ତିଆରି ହୁଏ । ଭାରତରେ ବହୁ ପ୍ରାଚୀନକାଳରୁ ଲକ୍ଷା ଦ୍ୱାରା ରଙ୍ଗ ପ୍ରସ୍ତୁତ ହୋଇ ଆସୁଅଛି । ବୈଦ୍ୟକ ମତରେ ଏହା କଟୁ, ସ୍ନିଗ୍ଧ, କଷାୟ, ହାଲୁକା, ଶୀତଳ, ବଳକାରକ ଓ କଫ, ରକ୍ତ, ପିତ୍ତ, ହିକ୍କା, କାଶ, ଜ୍ୱର, ବିସର୍ପ, କୁଷ୍ଠ, ରକ୍ତବିକାରନାଶକ ଅଟେ—ହି. ଶ ।] ୨ । ଅଲତା—2. Red colour from shell lac. ୩ । (ବୈଦ୍ୟକ) ଶତପତ୍ରୀ; ଶ୍ୱେତ ଗୋଲାପ—3. Cabbage rose; Rosa Centifloria. ୪ । ଲକ୍ଷାକୀଟ (ଦେଖ)—4. Lākshākīṭa (See)

ଅ. ସ.—ଯଷା, ଜତୁ, ଅଲକ୍ତକ, ଦ୍ରୁମାମୟ, ଅଲକ୍ତ, ରକ୍ତମାତୃକା, କୀଟଜା, କୃମିଜା, ରକ୍ତମାତା, ରକ୍ତା, ପଳଙ୍କଷା, ଯାବ, ବୃକ୍ଷାମୟ, ଜନ୍ତୁକା, ଗନ୍ଧର୍ଷିକା, ଖଦିରିକା, ରଙ୍ଗମାତା, କ୍ରିମିହା, ଦ୍ରୁମବ୍ୟାଧି, ପଳାଶୀ, ସୁଦ୍ରଣୀ, ପାପ୍ରୀ, ଗନ୍ଧନାଦନୀ, ମାଳା, ଦ୍ରବରସା, ପିପ୍ପଳ, ଜତୁକା, ଷଡଙ୍ଘ୍ରି, ଗନ୍ଧର୍ଷିକା, ଗନ୍ଧିଧିକା ।

ଲାଖ, ଲାଁ, ଲାଓ

ଲାଖ, ଲାହୀ

ଫା. ଲକ୍

ଅ. ଲୁକ୍, ଲାଖ

ତେ. ଲତ୍ତୁକ୍, ଲାକା, ଲକ୍କ

ମ. ଲାଖ

ଗୁ. ଲାଖ

ଲକ୍ଷା କୀଟ—ସ. ବି—ଜଉ ପୋକ; ଲାହା ପୋକ—Lākshā kīṭa Coccus Lacca; shell lac insect; (ଲକ୍ଷାକୃମି—ଅନ୍ୟରୂପ) Tachardia Lacca. [ଦ୍ର—ଏହି ପୋକ ଅଶ୍ୱତ୍ଥ, ବଦରୀ, ବକୁଳ, ପଳାଶ, କୋଶାମ୍ର ଆଦି ବୃକ୍ଷର ଡାଳରେ ପୁଞ୍ଜୀଭୂତ ହୋଇ ବସନ୍ତି ଓ ସେମାନଙ୍କ ପେଟରୁ କ୍ଷୁଦ୍ର କ୍ଷୁଦ୍ର ରକ୍ତବର୍ଣ୍ଣ କୀଟ ଜାତ ହୋଇ ଡାଳ ତମାମ ଲେଶି ହୋଇ ଯାଆନ୍ତି, ଏମାନଙ୍କ ବର୍ଣ୍ଣ ନାଲି । ସେହି କୀଟମାନେ ମରିଯିବାରୁ ସେହି ନାଲି ସ୍ତରକୁ ଗଛର ଡାଳରୁ ଚାଞ୍ଛି ଆଣି କର୍ମିଷ୍ଟ ପ୍ରକ୍ରିୟା ଦ୍ୱାରା ଅଲତାରଙ୍ଗ, ଲାଖ ବା ଜଉ, ରଙ୍ଗ, ବାର୍ଣ୍ଣିସ ଆଦି କରାଯାଏ । ]

ଲକ୍ଷା ଗୃହ—ସ. ବି (ମ. ପ. ଲୋ)—ଜଉଗୃହ; ଯେଉଁ ଗୃହରେ ଲକ୍ଷା Lākshā gruha ବୋଳାଯାଇ ଥାଏ (ଏହା ସହଜରେ ନିଆଁ ଲାଗିଯାଏ)—A house daubed with lac. [ଦ୍ର—ପାଣ୍ଡବମାନଙ୍କୁ ପୋଡ଼ି ମାରିବା ପାଇଁ ଦୁର୍ଯ୍ୟୋଧନ ଲାକ୍ଷାଗୃହ ତିଆରି କରାଇଥିଲେ ।]

ଲକ୍ଷା ତରୁ—ସଂ ବି (ବୈଦ୍ୟକ)—୧ । ପଳାଶବୃକ୍ଷ—1. A tree; Lākshā taru Butea Frondosa. ୨ । ସତ୍ୟାମ୍ବା—(ଲକ୍ଷାବୃକ୍ଷ—ଅନ୍ୟରୂପ) 2. A sort of tree; Cocum Butter tree. ୩ । କୋଶାମ୍ର; କୁସୁମଗଛ—3. Schleicheria Trijuga (tree).

ଲକ୍ଷା ତୈଳ—ସ. ବି (ମ. ପ. ଲୋ)—ବୈଦ୍ୟକ ପ୍ରକ୍ରିୟାରେ ସାଧାରଣ Lākshā taila ତେଲ ସଙ୍ଗେ ଲାଖ, ହଳଦୀ ଓ ମଞ୍ଜିଷ୍ଠା ମିଶାଇ ତିଆରି କରାଯିବା ତେଲ—A medicinal oil of which shell lac is an ingredient. [ ଦ୍ର—ଏହା ଦାହ ଓ ଜ୍ୱରନାଶକ (ହି ଶ) ।]

ଲକ୍ଷାଦି ତୈଳ—ସ. ବି (ମ. ପ. ଲୋ)—ସାଧାରଣ ତେଲରେ ଲାଖ, Lākshādi taila ଦୁଧ ବା ଦହି, ରକ୍ତଚନ୍ଦନ, ଅଶ୍ୱଗନ୍ଧା, ହଳଦୀ, ଦାରୁହଳଦି, ଯଷ୍ଟିମଧୁ, କଟୁକୀ, ରେଣୁକା ଆଦି ମିଶାଯାଇ ଯାଇ ପ୍ରସ୍ତୁତ ତେଲ—A medicinal oil. [ଦ୍ର—ଏହା ଜୀର୍ଣ୍ଣଜ୍ୱର, ରାଜଯକ୍ଷ୍ମା ଆଦି ଦୂର କରେ ଓ ବଳବର୍ଦ୍ଧକ (ହି. ଶ) ]

ଲକ୍ଷା ଦ୍ୱୀପ—ସ. ବି (ସ. ଲକ୍ଷଦ୍ୱୀପ: ବୋଧ ହୁଏ ପୂର୍ବେ ମାଳଦ୍ୱୀପପୁଞ୍ଜ ଓ Lākshā dwīpa ଏ ଦ୍ୱୀପପୁଞ୍ଜ ଶ୍ରେଣୀବଦ୍ଧ ଭାବେ ଥିବାରୁ ବହୁ ସଂଖ୍ୟକ କ୍ଷୁଦ୍ର ଦ୍ୱୀପରୁ ଏ ନାମ ହୋଇଅଛି, କିମ୍ବା ଏହା ପ୍ରବାଳ ଦ୍ୱୀପ ଥିବାରୁ ଏହାର ଲାଖ ପରି ରକ୍ତବର୍ଣ୍ଣ ଦେଖି ବଣିକମାନେ ଏହି ନାମ ଦେଇଛନ୍ତି—ବିଶ୍ୱକୋଷ)—ଭାରତ ମହାସାଗରର ଆରବସାଗରର ଦ୍ୱୀପପୁଞ୍ଜ—The Lacadive Islands in the Arabian Sea of the Indian Ocean. [ଦ୍ର—ଏହା ମାଲବାର ଉପକୂଳର କାଲିକଟର ପଶ୍ଚିମରେ ୧୦ ଡିଗ୍ରୀ ଉତ୍ତର ଅକ୍ଷାଂଶ ଓ ୭୨ ଡିଗ୍ରୀ ପୂର୍ବ ଦ୍ରାଘିମାରେ ଅବସ୍ଥିତ । ଏହା ୧୯ଟି ଦ୍ୱୀପରେ ଗଠିତ । ]

ଲାକ୍ଷା ପ୍ରସାଦ—ସଂ. ବି—ପଟ୍ଟିକାଲୋଧ୍ର (ଦେଖ)
Lāksha prasāda Paṭṭikā lodhra. (See)
(ଲାକ୍ଷା ପ୍ରସାଦନ—ଅନ୍ୟରୂପ)

ଲାକ୍ଷା ରଞ୍ଜିତ—ସଂ. ବିଣ (ଲାକ୍ଷା ଦ୍ୱାରା ରଞ୍ଜିତ)—ଅଳତା ରଙ୍ଗଦ୍ୱାରା ରଙ୍ଗ କରି ଯାଇଥିବା—Lac-dyed.
Lāksha rañjita

ଲାକ୍ଷା ରସ—ସଂ. ବି—ଅଳତା—Red dye obtained from shell-lac.
Lāksha rasa

ଲାକ୍ଷା ରାଗ—ସଂ. ବି—ଅଳତାରୁ ବାହାରିବା ରଙ୍ଗ—
Lāksha rāga Red dye from lac.

ଲାକ୍ଷିକ—ସଂ. ବିଣ—୧ । (ଲକ୍ଷ+ଇକ)—ଲକ୍ଷ ସଂଖ୍ୟା ପରିମିତ—
Lākshika 1. Numbering 100 thousand.
୨ । (ଲାକ୍ଷା+ଇକ) ଲାକ୍ଷା ସମ୍ବନ୍ଧୀୟ—
2. Relating to shell lac.

ଲାଖ୍—ଦେ. ବି (ସଂ. ଲକ୍ଷ)—୧ । ଲକ୍ଷ ସଂଖ୍ୟା—1. A lakh; one hundred thousand. ୨ । ତୁଳନା—2. Comparison. ସଂ. ବିଣ—୧ । ଲକ୍ଷ ସଂଖ୍ୟକ—1 Numbering one hundred thousand. ୨ । ଅସଂଖ୍ୟ—2. Innumerable.
Lākh
लाख
लाख

ଲାଖ୍ ଦେବା—ଦେ. କ୍ରି—୧ । ଲାଖ ମାରିବା (ଦେଖ)—1. Lākha māribā. (See) ୨ । କୌଣସି ବସ୍ତୁକୁ ଅନ୍ୟ ବସ୍ତୁ ସଙ୍ଗେ ତୁଳନା କରିବା—2. To compare one thing with another.
Lākh debā
तुलनाकरा
लाख देना

ଲାଖ୍ପତି—ଦେ. ବି—(ସଂ. ଲକ୍ଷପତି)—୧ । ଲକ୍ଷପତି; ଖୁବ୍ ଧନୀ ବ୍ୟକ୍ତି
Lākh-pati 1. Very rich man. ୨ । ଲକ୍ଷ ପରିମିତ ନଗଦ ମୁଦ୍ରା ରଖିଥିବା ବ୍ୟକ୍ତି—2. A millionaire.
[ଦ୍ର—ବହୁଧନ ରଖିଥିବା ବ୍ୟକ୍ତିକୁ ଲକ୍ଷପତି, କୋଟିପତି ବା କୋଡ଼ିପତି ବୋଲାଯାଏ ।]

ଲାଖ୍ପୋଷ(ଷା,ଷି)—ଦେ. ବିଣ (ପୁଂ. ଓ ସ୍ତ୍ରୀ) (ସଂ. ଲକ୍ଷ+ପୋଷକ)—
Lākh-posha(shā,shi) ଯେ ଲକ୍ଷ ଲକ୍ଷ ବା ଅସଂଖ୍ୟ ବ୍ୟକ୍ତିଙ୍କୁ ଅନ୍ନ ସଂସ୍ଥାନ କରେ—A person who is instrumental in maintaining lakhs and lakhs of people.
लक्षपोष
लाखपोषी

ଲାଖ୍ବତି—ସଂ. ବି (ସଂ ଲାକ୍ଷା ଓ ବର୍ତ୍ତି)—ଚିଠି ଆଦିକୁ ମୁଦିବାପାଇଁ ବ୍ୟବହୃତ ଲମ୍ବା ଜଉଖଣ୍ଡ, ଜଉବତି—
Lākh-bati
लाखबाती लाखबती Sticks of shell lac,

ଲାଖ୍ଲାଖ୍—ଦେ. ବି ଓ ବିଣ—ଲକ୍ଷଲକ୍ଷ ସଂଖ୍ୟକ; ଅସଂଖ୍ୟ; ଅସୁମାର—
Lākh-lākh Innumerable; myriads
लाखलाख लाखलाख

ଲାଖ—ଦେ. ବି (ସଂ. ଲାକ୍ଷା)—୧ । ଲାକ୍ଷା; ଜଉ—1. Shell lac; sealing wax. ୨ । (ସଂ. ଲକ୍ଷ୍ୟ) ଲକ୍ଷ୍ୟ; ଶରବ୍ୟ—2. Aim; target. [ଉ—ବାନ୍ଧିଲ ସେ ପଥର ଖଣ୍ଡେ ଲକ୍ଷ କରି ଲାଖ । କୃଷ୍ଣସିଂହ ମହାଭାରତ] ୩ । ତୁଳନା; ଉପମା—3 Comparison ୪ । ପ୍ରଭେଦଜ୍ଞାପକ ଚିହ୍ନ—4. Distinguishing mark. ୫ । (ସଂ. ଲକ୍ଷ) ଶହେ ହଜାର ବା ଦଶ ଅଯୁତ ସଂଖ୍ୟା—5. One hundred thousand. ୬ । ଲକ୍ଷ୍ୟ ସ୍ଥଳରେ ଅସ୍ତ୍ର ଶସ୍ତ୍ରାଦିର ଆଘାତ—6. Hit of a weapon at the target. [ଉ—ବାଜିବ କି ଲାଖ, କର୍ଣ୍ଣ ହେବ ଗୁଣଶିଳୀମୁଖ । ଭଞ୍ଜ. ବୈଦେହୀଶବିଳାସ ।] ବିଣ—୧ । (ସଂ. ନାୟକ) ଲାଏକ (ଦେଖ)—1. Lāek. (See) ୨ । (ସଂ. ଲକ୍ଷ୍ୟ) ତୁଳନୀୟ—2. Comparable. ୩ । ତୁଳନାରେ ସମାନ—3. Equal in comparison.
Lākha
लाख लाख
लक्ष लक्ष
चिह्न निशाना
लाख लाख
लायेक लायक
तुलनीय लाख

ଲାଖ କରିବା—ଦେ. କ୍ରି—କୌଣସି ଲକ୍ଷ୍ୟ ପ୍ରତି ଶର ଆଦି ନିକ୍ଷେପ କରିବା—To aim (an arrow or gun) at a target. [ଦ୍ର—ଯୁଧିଷ୍ଠିର ରଜାଙ୍କ ଗଣ୍ଡିକି କରି ଲାଖ, ବିନ୍ଧିଲେ ବଳାଇଣ ଉତ୍ତମ କରିଶ । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।]
Lākha karibā
लक्ष करा
लक्ष्यबांधना

ଲାଖ ବାଜିବା—ଦେ. କ୍ରି—ଲକ୍ଷ୍ୟଭେଦ; ଲକ୍ଷ୍ୟ ସ୍ଥଳରେ ଅସ୍ତ୍ରଶସ୍ତ୍ରାଦିର ଚୋଟ ପଡ଼ିଥିବା—Striking at a target. [ଉ—ବାଜିବ କି ଲାଖ, କର୍ଣ୍ଣ ହେବ ଗୁଣଶିଳୀମୁଖ । ଭଞ୍ଜ. ବୈଦେହୀଶବିଳାସ ।]
Lākha bājibā
लक्षभेद
लक्ष्यवार होना

ଲାଖବିନ୍ଧା—ଦେ. ବି (ସ. ଲକ୍ଷ୍ୟବେଧନ)—୧ । ଲକ୍ଷ୍ୟ ଭେଦନ—
Lākhabindhā 1. Shooting at a target. [ଦ୍ର—ଦ୍ରୌପଦୀଙ୍କ ସ୍ୱୟମ୍ବର କାଳରେ ତାଙ୍କ ପିତାଙ୍କ ନିର୍ଦ୍ଦିଷ୍ଟ ଲକ୍ଷ୍ୟକୁ ବିନ୍ଧିବାକୁ ସମର୍ଥ ହେବା ବୀରପୁରୁଷ ଉକ୍ତ କନ୍ୟାଙ୍କୁ ବିବାହ କରିବେ ବୋଲି ପଣ କରାଯାଇଥିଲା ଓ ସେହି ଲାଖ ବିନ୍ଧିବାରେ ଯେଉଁ ବୀର ସମର୍ଥ ହେଲେ ସେ ଉକ୍ତ କନ୍ୟାଙ୍କୁ ଲାଭ କଲେ । ] ୨ । ଲାଖବିନ୍ଧା ସଭା (ଦେଖ)—2. Lākhabindhā sabhā. (See) ପ୍ରାଦେ. (ଯାଜପୁର) ବି—ମହାନବମୀ ଦିନ ବିରଜାଙ୍କର ଲାଖବିନ୍ଧା ପଡ଼ିଆରେ ଲକ୍ଷ୍ୟଭେଦ ହେବା—Hitting at the mark in Birajā's target field (at Jajpur) on the 9th day of the bright fortnight of Aświna.
लक्षविंधा
लक्ष्यवेधना

ଦେ. ବିଣ—ଯେଉଁଠାରେ ଲାଖବିନ୍ଧା ହୁଏ—(place) Where target shoting takes place. [ଯଥା—ଲାଖବିନ୍ଧା ପଡ଼ିଆ ।]
लाखविन्धा
लाखबिंधा

ଲାଖ ବିନ୍ଧା(ନ୍ଧେ)ଇବା—ଦେ. କ୍ରି (ଲାଖ ବିନ୍ଧିବାର ପ୍ରଯୋଜକରୂପ)—
Lākha bindhā(ndhe)ibā ଅନ୍ୟ ବ୍ୟକ୍ତି ଦ୍ୱାରା ଲକ୍ଷଭେଦ କରାଇବା—To cause another to hit at a target.
लक्षविंधान
लक्ष्यवेधवाना

ଲାଖବିନ୍ଧା ପଡ଼ିଆ—ପ୍ରାଦେ (ଯାଜପୁର) ବି—ବିରଜାଙ୍କଠାରେ ମହାନବମୀ ଦିନ ଯେଉଁ ପଡ଼ିଆରେ ଲାଖ ବିନ୍ଧାଯାଏ—A field near Birajās temple at Jājpur where a target is aimed at on the ninth day of the bright fortnight of Āświna. ଦେ. ବି—ଯେଉଁ ପଡ଼ିଆରେ ଦଶହରା ସମୟରେ ରଜା ଓ କ୍ଷତ୍ରିୟମାନେ ଲକ୍ଷ୍ୟ
Lākhabindhā pardiā
लक्ष्यवेधनेकामैदान

লাখবিংধা ময়দান — କରନ୍ତି—A field where Rajas and Kshatriyas shoot at targets during the Daśaharā festival.

**ଲାଖବିନ୍ଧା ସଭା**—ଦେ. ବି—ଯେଉଁ ସ୍ୱୟମ୍ବର ସଭାରେ କନ୍ୟାପ୍ରାର୍ଥୀ ପ୍ରତି-
Lākhabindhā sabhā ଦ୍ୱନ୍ଦୀମାନଙ୍କ ସମ୍ମୁଖରେ ନିର୍ଦ୍ଦିଷ୍ଟ
লক্ষভেদ সভা ଲକ୍ଷ୍ୟଭେଦରୂପ ପଣ ସ୍ଥାପିତ ହୋଇଥାଏ—An
लक्ष्यवेधकी सभा assembly where the suitors for the hands of a damsel are required to pass the test of hitting at a fixed target.

**ଲାଖ ବିନ୍ଧିବା**—ଦେ. କ୍ରି (ସଂ. ଲକ୍ଷ୍ୟ+ବିଧ୍ ଧାତୁ)—ଲକ୍ଷ୍ୟ ବା ଶରବ୍ୟକୁ
Lākha bindhibā ବାଣ ବା ଗୁଳିଦ୍ୱାରା ଭେଦ କରିବା—
লক্ষবিংধা To shoot at a target; to hit a target.
लक्ष्यबेधना (ଲାଖ ଭେଦିବା—ଅନ୍ୟରୂପ) [ଲାଖ ବିନ୍ଧା ଯି(ହେ)ବା—କର୍ମବାଚ୍ୟ ରୂପ]

**ଲାଖ ମାରିବା**—ଦେ. କ୍ରି (ସଂ. ଲାକ୍ଷା)—୧ । ଲାଖ ବା ଜଉଦ୍ୱାରା
Lākha māribā ମୁଦିବା—1. To seal with sealing
গালামোহর করা wax. ୨ । (ସଂ. ଲକ୍ଷ୍ୟ) କୌଣସି ପଦାର୍ଥ ଉପରେ
लाखसे मूँदना, लाहदेना ପ୍ରଭେଦଜ୍ଞାପକ ଚିହ୍ନ ଲଗାଇବା—
চিহ্ন দেওয়া 2. To put a distinguishing mark on
निशाना लगाना a thing. ୩ । ଶରବ୍ୟ ସ୍ଥାପନ କରିବା—
লক্ষস্থাপন করা लक्ष्य मारना 3. To set up or fix a target.

**ଲାଖ ମୁଦ(ଦା)**—ଦେ. ବି (ସଂ. ଲାକ୍ଷା ଓ ମୁଦ୍ରା)—୧ । ଜଉମୁଦ; ଲାଖ
Lākha muda(dā) ଦ୍ୱାରା କୌଣସି ବସ୍ତୁକୁ (ଯଥା—
গালামোহরকরা ଚିଠି ଆଦିକୁ) ବନ୍ଦ କରିବା—1. Sealing
लाहसे मूँदना with shell lac. ୨ । ଲାଖ ମୋହର; ଗାଲା
গালামোহর করা ମୋହର—2. Sealing of a cover. ବିଣ—ଯାହା ଜଉମୁଦ ଦ୍ୱାରା ବନ୍ଦ କରା ଯାଇଥାଏ—
ଲା । Sealed with the sealing wax.

**ଲାଖ ମୋହ(ହୋ)ର**—ଦେ. ବି (ସଂ. ଲାକ୍ଷା+ଫା. ମୋହର୍)—
Lākha moha(ho)ra ବନ୍ଦ କରା ଯାଇଥିବା ଚିଠି ଉପରେ
গালামোহর ଲଗା ଯାଇଥିବା ଲାଖ ଉପରେ ବସାଯିବା ନାମାଙ୍କିତ
सीलमोहर ମୁଦ୍ରା; ଗାଲା ମୋହର—Wax or seal on the cover of a closed letter.

**ଲାଖ(ଖି)ରାଜ(ଜୀ)**—ବୈଦେ. ବି (ଫା. ଲା=ନାହିଁ+ଖିରାଜ୍=କର
Lākha(khi)rāj(jī) ଅର୍ଥାତ୍ ରାଜସ୍ୱ; କର ରହିତ)—ନିଷ୍କରଜମି;
লাখেরাজ ଯେଉଁ ଜମିପାଇଁ ରାଜସ୍ୱ ମାଫ୍ କରା ଯାଇଅଛି—
लाखराज Revenue-free tenure. [ଦ୍ର—ହିନ୍ଦୁ, ମୁସଲମାନ୍ ଓ ମରହଟ୍ଟା ରାଜାମାନେ ଦେବସେବାପାଇଁ, ବ୍ରାହ୍ମଣମାନଙ୍କ ଭରଣପୋଷଣ ପାଇଁ, ଭଦ୍ର ପରିବାରଙ୍କ ଭରଣପୋଷଣ ପାଇଁ, ପୀର୍‌ମାନଙ୍କ ସେବା ପାଇଁ ଓ ଦରିଦ୍ର ଅତିଥିଙ୍କ ଖଇରାତ୍ କରିବା ପାଇଁ ଯେଉଁ ଜମିମାନ ଚିରକାଳ ସକାଶେ ବ୍ୟକ୍ତିବିଶେଷଙ୍କୁ ଦାନ କରିଥିଲେ ଓ ଚିରକାଳ ପାଇଁ ଉକ୍ତ ଭୂମିମାନ ରାଜସ୍ୱ ଦାୟିରୁ ମୁକ୍ତ କରି ସନନ୍ଦ ଦେଇ-ଥିଲେ, ତାକୁ ଲାଖରାଜ ବୋଲାଯାଏ । ଭିନ୍ନ ଭିନ୍ନ ଉଦ୍ଦେଶ୍ୟ ଅନୁସାରେ ସେ ସବୁର ଭିନ୍ନ ଭିନ୍ନ ନାମକରଣ ହୋଇଥିଲା, ଯଥା—ଦେବୋତ୍ତର ଲାଖରାଜ, ବ୍ରହ୍ମୋତ୍ତର ଲାଖରାଜ, ଖାନଦସ୍ତୁର ବା ମଦଦ୍‌ମାସ୍ ଲାଖରାଜ, ପିରୋତ୍ତର ଲାଖରାଜ, ଖଏରାତ୍ ଲାଖରାଜ । ଯେଉଁ ଲାଖରାଜ ଜମିମାନ ପୁରୀର ଶ୍ରୀ ଜଗନ୍ନାଥ ଦେବଙ୍କ ଭୋଗ ପାଇଁ ଖଞ୍ଜା ହୋଇଥିଲା ସେମାନ ଅମୃତମଣୋହି ଲାଖରାଜ । ଯେଉଁ ଜମିମାନଙ୍କୁ ପୁରୀର ସ୍ୱାଧୀନ ରାଜାମାନେ କାନ୍ୟକୁବ୍ଜାଗତ ବ୍ରାହ୍ମଣ ଉପନିବେଶୀମାନଙ୍କୁ ଓ ଦେବତାମାନଙ୍କୁ ନାମମାତ୍ର (ଟଙ୍କୀ) ଜମାରେ ଦାନ କରିଥିଲେ, ସେମାନଙ୍କୁ ଯଥାକ୍ରମେ ବ୍ରହ୍ମୋତ୍ତର ଟଙ୍କି ଲାଖରାଜ ଓ ଦେବୋତ୍ତର ଟଙ୍କି ଲାଖରାଜ ବୋଲ'ଯାଏ । ଯେଉଁ ଦାନପତ୍ର ଦ୍ୱାରା ଉକ୍ତ ଲାଖରାଜ ଜମିମାନ ସୃଷ୍ଟ ହୋଇଥିଲା ବା ଦାତାଙ୍କ ପରବର୍ତ୍ତୀ ରାଜା ବା ଦେୱାନମାନଙ୍କଦ୍ୱାରା ଅନୁମୋଦିତ ହୋଇଥିଲା, ସେହି ନିଦର୍ଶନ ପତ୍ରମାନଙ୍କୁ ଲାଖରାଜ ସନନ୍ଦ ବୋଲାଯାଉଥିଲା ।

ଇଂରାଜମାନେ ଓଡ଼ିଶାକୁ ଆସି ସମସ୍ତ ଲାଖରାଜଦାରଙ୍କୁ ସନନ୍ଦମାନ ତଲବ କରି ସେମାନ ସରକାରୀ ରେଜିଷ୍ଟରୀ ବହିରେ ଲେଖି ନେଲେ ଓ ଓଡ଼ିଶାର ରାଜସ୍ୱ ବନ୍ଦୋବସ୍ତ ସମୟରେ ଦେଖାଗଲା ଯେ, ଅନେକଗୁଡ଼ିଏ ଲୋକ ଅନେକ ଜମିକୁ 'ଲାଖରାଜ'ରୂପେ ଭୋଗ କରୁଅଛନ୍ତି । ଏହା ଦେଖି ଭିନ୍ନ ଭିନ୍ନ ମଉଜାର ଲାଖରାଜ ଜମିମାନଙ୍କ ସମ୍ବନ୍ଧେ ସରକାର ବାହାଦୁର ବାଦୀ ହୋଇ ଜମିକୁ ନିଷ୍କରରୂପେ ଭୋଗ କରୁଥିବା ବ୍ୟକ୍ତିମାନଙ୍କୁ ପ୍ରତିବାଦୀ କରି ଗୁଡ଼ିଏ ମକଦ୍ଦମା ଦାଏର୍ କଲେ । ପ୍ରତିବାଦୀମାନଙ୍କ ଦାଖଲ ସନନ୍ଦର ପ୍ରତ୍ୟେକ ମଉଜା ବା ଅଞ୍ଚଳ ବାସନନ୍ଦଭୁକ୍ତ ସମସ୍ତ ଜମି ପାଇଁ ଦାଏର ହେବା ମକଦ୍ଦମାକୁ ଗୋଟିଏ ଲେଖାଏଁ କମିକ ସଂଖ୍ୟା (ଜେନେରାଲ୍ ନମ୍ବର୍ General number) ଦ୍ୱାରା ଚିହ୍ନିତ କରାଗଲା ଏବଂ ଉକ୍ତ ଏକ 'ଜେନେରଲ୍'ଭୁକ୍ତ ଜମିର ଅଂଶମାନଙ୍କୁ ଗୋଟିଏ ଲେଖାଏଁ ସ୍ୱତନ୍ତ୍ର ସଂଖ୍ୟା (ସ୍ପେଶଲ୍ ନମ୍ବର—Special number) ଦ୍ୱାରା ଚିହ୍ନିତ କରା ଗଲା । ଏହି ମକଦ୍ଦମାମାନଙ୍କର ନଥିର ନାମ 'ଲାଖରାଜ ରୁବ୍‌କାରୀ' ।

ପୂର୍ବୋକ୍ତରୂପେ ଦେଶର ନିଷ୍କର ଜମିମାନ ସଂଖ୍ୟାଦ୍ୱାରା ଚିହ୍ନିତ ହୋଇ ମକଦ୍ଦମା ଦାଏର୍ (start) କରା ଗଲାରୁ ଉକ୍ତ ଜମିମାନଙ୍କୁ ନିଷ୍କରରୂପେ ଭୋଗ କରିବାକୁ ଦାବି କରୁଥିବା ବ୍ୟକ୍ତିମାନଙ୍କୁ ସେମାନେ ଯେଉଁ ସନନ୍ଦ ବା ରାଜକୀୟ ନିଦର୍ଶନ ବଳରେ ଏ ଜମିକୁ 'ଲାଖରାଜ' ବୋଲି ଦାବି କରୁଅଛନ୍ତି ତାହା ତଲବ କରାଗଲା । ତଦନୁସାରେ ପକ୍ଷମାନେ ଓଡ଼ିଶାର ସାବେକ୍ ରାଜା ବା ମୁସଲମାନ ରାଜା ବା ମରହଟ୍ଟା ରାଜାଙ୍କ ଅମଳର ସନନ୍ଦମାନ ଦାଖଲ କଲେ ଓ ଦଖଲ ସମ୍ବନ୍ଧେ ପ୍ରମାଣ [illegible] ଉପସ୍ଥାପିତ କଲେ । [illegible] ବନ୍ଦୋବସ୍ତକାରୀ ହାକିମ ଉକ୍ତ ସନନ୍ଦ ଓ ପ୍ରମାଣମାନ

ଜମିର ପରୀକ୍ଷା କରି ଓ ସନନ୍ଦ ଲିଖିତ ପରିମାଣ (କ୍ଷେତ୍ରଫଳ) ସଙ୍ଗେ ଦଖଲ ହେଉଥିବା ଜମିର କ୍ଷେତ୍ରଫଳ (ଏରିଆ)କୁ ମିଳାଇ ଦେଖିବା ପରେ, ଯେଉଁ ଯେଉଁ ସନନ୍ଦମାନ କୃତ୍ରିମ ବା ସନ୍ଦେହଜନକ ଥିବା ଦେଖାଗଲା ସେହି ଜମିମାନଙ୍କୁ 'ବାଜେୟାପ୍ତ' ବା ନାମଞ୍ଜୁର କଲେ ଓ ତହିଁ ଉପରେ କର ଧାର୍ଯ୍ୟ କଲେ । ଯେଉଁ ଜମିମାନ ସନନ୍ଦ ଲିଖିତ ଜମି ଅପେକ୍ଷା ବେଶୀ ଥିବାର ଦେଖାଗଲା ସେହି ଅଧିକା ଜମିମାନଙ୍କୁ 'ଇଜ୍‌ଫିଟ୍' ବା 'ଇଜମିନ୍' କଲେ, ଅର୍ଥାତ୍ ତାକୁ ଲାଖରାଜ ଜମିର ହିସାବରୁ କାଟିଦେଇ ତହିଁ ଉପରେ କର ଧାର୍ଯ୍ୟ କଲେ । ଯେଉଁ ଜମିମାନ ସନନ୍ଦ ଅନୁସାରେ ଠିକ୍ ଥିବା ଦେଖାଗଲା ଓ ଯେଉଁ ଜମିମାନଙ୍କ ସମ୍ବନ୍ଧେ ସନନ୍ଦମାନ ନିଃସନ୍ଦେହରୂପେ ପ୍ରମାଣିତ ହେଲା ତାକୁ 'ବାହେଲ୍' ବା ବହାଲ୍ କଲେ । ପ୍ରତ୍ୟେକ ନମ୍ବର୍ ମକଦ୍ଦମାରେ ଯେଉଁ 'ରାଏ' ବା ଆଦେଶ ଦେଲେ ତାହାକୁ 'ବହେଲ୍ ଫଏସଲା' ବୋଲାଗଲା । ମକଦ୍ଦମାର ନମ୍ବର ଅନୁସାରେ ଉକ୍ତ ଲାଖରାଜ ଜମିମାନ ସେହି ସେହି 'ଜେନେରଲ୍' ଓ 'ସ୍ପେଶାଲ୍' ନମ୍ବରମାନଙ୍କ ଦ୍ୱାରା ଚିହ୍ନିତ ହେଲା । ବନ୍ଦୋବସ୍ତ କର୍ମଚାରୀ ସମସ୍ତ ଜମି ସମ୍ବନ୍ଧେ ପ୍ରୋସିଡିଙ୍ଗ୍ ବା ମକଦ୍ଦମା ଦାଏର କରି ଫଏସଲ କରିଥିବା ସମସ୍ତ 'ବାହେଲ୍', 'ଇଜ୍‌ଫିର' ଓ 'ବାଜ୍ୟାପ୍ତି' ଜମିମାନଙ୍କର ଗୋଟିଏ ଲେଖାଏଁ ତାଲିକା (ଷ୍ଟେଟମେଣ୍ଟ୍, Statement) ପ୍ରସ୍ତୁତ କରି ତାଙ୍କ ଉପରସ୍ଥ ହାକିମ (ଖାସ୍ କମିସନର, Special Commissioner)ଙ୍କ ନିକଟକୁ ପ୍ରେରଣ କଲେ ଓ ଖାସ୍ କମିସନରଙ୍କର ଶେଷ ହୁକୁମଦ୍ୱାରା ଲାଖରାଜମାନ ବାହେଲ, ବାଜ୍ୟାପ୍ତି ଓ ଇଜ୍‌ଫୀର୍ ହେଲା, ଲାଖରାଜ ବାହେଲ୍ ଜମିର ଖଜଣା ଚିରକାଳ ସକାଶେ ମାଫ୍ ହେଲା; ଏବଂ ବାଜ୍ୟାପ୍ତି ଜମି ଉପରେ କ୍ରମଶଃ ଦେଶକାଳଅବସ୍ଥା ବିବେଚନାରେ ଭବିଷ୍ୟତରେ ଜମାବୃଦ୍ଧି ହୋଇ ପାରିବ ବୋଲି ସ୍ଥିର କରାଗଲା ଓ ପକ୍ଷମାନଙ୍କୁ ଉକ୍ତ ରୋବକାରୀ ଓ ଫଏସଲାର ନକଲ ମିଳିଲା । ଏସବୁ ମକଦ୍ଦମାର ହେତୁ, ବିଚାର ଓ ପ୍ରମାଣାଦି ସମ୍ବନ୍ଧେ ୧୮୧୯ ସାଲର ୨ କାନୁନ୍ (Regulation 2 of 1819), ୧୮୨୨ ସାଲର ୭ କାନୁନ, ୧୮୨୫ ସାଲର ୯ କାନୁନ୍, ୧୮୨୮ ସାଲର ୩ କାନୁନ୍‌ମାନ ପ୍ରଧାନ ଅଟେ । ଉକ୍ତ ଲାଖରାଜ୍‌ବାହେଲ୍ ଓ ଲାଖରାଜ୍ ବାଜ୍ୟାପ୍ତି ଫଏସଲା-ମାନଙ୍କରେ ତତ୍‌କାଳପ୍ରଚଳିତ ଅନେକ ଫାରସୀ ଶବ୍ଦ ବ୍ୟବହୃତ ହୋଇଅଛି । ଯେଉଁ ଜମିମାନଙ୍କୁ ରାଜା ବା ବାଦସାହାମାନେ କୌଣସି ବ୍ୟକ୍ତିର ଜୀବନକାଳ ପର୍ଯ୍ୟନ୍ତ ନିଷ୍କରରୂପେ ଦାନ କରିଥିଲେ ସେସବୁକୁ ଜାଗିର ଓ ଯାହା ପୁରୁଷାନୁକ୍ରମେ ଚିରସ୍ଥାୟୀ ନିଷ୍କରରୂପେ ଦାନ କରିଥିଲେ ସେ ସବୁକୁ ବାଦସାହୀ ଲାଖରାଜ ବୋଲିଯାଏ । ଯେଉଁ ଲାଖରାଜମାନ ୧୪ ତାରିଖ ଅକ୍ଟୋବର ୧୮୦୩ ସାଲ (ଇଂରାଜଙ୍କର ଓଡ଼ିଶା ଦଖଲ କରିବାର ସନ) ପୂର୍ବରୁ ଦିଲ୍ଲୀର ମୋଗଲ ସମ୍ରାଟ ବା ବଙ୍ଗ, ବିହାର, ଓଡ଼ିଶାର ମୁସଲମାନ୍ ସୁବାଦାର ଓ ବେରାରର ମରହଟ୍ଟା ରାଜା ବା ସୁବାଦାରମାନେ ନିଷ୍କରରୂପେ ଦାନ କରିଥିଲେ ଅମ୍ବା ଯେଉଁ ଦାନମାନଙ୍କୁ ମଞ୍ଜୁର୍ କରିଥିଲେ ସେହିମାନଙ୍କୁ ଇଂରାଜଗଭର୍ଣ୍ଣମେଣ୍ଟ ସ୍ୱୀକାର ବା ବାହେଲ୍ କଲେ (୧୭୯୩ ସାଲର ୩୭ କାନୁନ୍, ୧୮୦୫ ସାଲର ୧୨ କାନୁନ୍ ଓ ୧୮୨୫ ସାଲର ୧୪ କାନୁନ୍ ଦେଖ) । ବାଦସାହୀ ଲାଖରାଜ ଛଡ଼ା ଯେଉଁ ଜମିମାନଙ୍କୁ ଦଖଲକାରୀମାନେ ବହୁକାଳରୁ ପୁରୁଷାନୁକ୍ରମେ ନିର୍ବିରୋଧେ ଅବିଚ୍ଛିନ୍ନରୂପେ ୧୭୯୦ ସାଲ ପୂର୍ବରୁ ଦଖଲ କରିବାର ପ୍ରମାଣ ମିଳିଲା, ସେମାନଙ୍କ ସମ୍ବନ୍ଧେ ଦଖଲ-କାରୀମାନେ ବାଦସାହୀ ସନନ୍ଦମାନ ଦର୍ଶାଇ ନ ପାରିଲେ ମଧ୍ୟ ସେମାନ ତତ୍‌କାଳୀନ ରାଜସ୍ୱକର୍ମଚାରୀମାନଙ୍କ ହୁକୁମରେ ନିଷ୍କର ରୂପେ ଗଣ୍ୟ କରାଗଲା । ସେ ଜମିମାନ 'ହୁକୁମୀ ଲାଖରାଜ' ବୋଲି ବାହେଲ କରାଗଲା । ଦେବତାମାନଙ୍କ ସେବା ପାଇଁ ଖଞ୍ଜାଥିବା ଜମିମାନଙ୍କ ସମ୍ବନ୍ଧେ (୧୭୯୩ ସାଲର ୧୯ କାନୁନ୍), ଜଗନ୍ନାଥଙ୍କ ସେବାପାଇଁ ଖଞ୍ଜାଥିବା ଅମୃତମଣୋହି ଜମିସମ୍ବନ୍ଧେ (୧୮୦୫ ସାଲର ୧୨ କାନୁନ୍) ମଧ୍ୟ ଇଂରାଜ ସରକାର ଅଇନ୍ ପ୍ରଚାର କରିଥିଲେ । ଜିଲ୍ଲାର ନିଷ୍କର ବା ଲାଖରାଜୀ ଜମିମାନଙ୍କ ନିମନ୍ତେ ଓ ରାଜସ୍ୱଦାୟୀ ବା ମାଲ୍‌ଗୁଜାର୍ ଜମିମାନଙ୍କ ନିମନ୍ତେ କଲେକ୍ଟରଙ୍କ ସିରସ୍ତାରେ ଦୁଇଗୋଟି ସ୍ୱତନ୍ତ୍ର ରେଜିଷ୍ଟର (Registe ) ଅଛି । ଲାଖରାଜୀ ବାହେଲ ଜମିମାନ ଯେଉଁ ରେଜିଷ୍ଟରରେ ଲେଖା ରହେ ତାକୁ ସି. ରେଜିଷ୍ଟରୀ (C. Register) ବୋଲିଯାଏ ।

ଜିଲ୍ଲାର ସମସ୍ତ ଜମିଦାରୀ ସର୍ବର ତାଲିକା ଏ. ରେଜିଷ୍ଟରୀ (A. Register), ପ୍ରତ୍ୟେକ ପ୍ରଗଣାର ଜମିଦାରୀର ତାଲିକା ବି ରେଜିଷ୍ଟରୀ (B. Register), ପ୍ରତ୍ୟେକ ପ୍ରଗଣାର ଲାଖରାଜର ତାଲିକା (ସି. ରେଜିଷ୍ଟରୀ) C. Register ଓ ପୂର୍ବ ମାଲିକ ପରିବର୍ତ୍ତେ ନୂତନ ମାଲିକମାନଙ୍କ ନାମ ଦାଖିଲଖାରଜର ସଂଶୋଧିତ ତାଲିକା—ଡି. ରେଜିଷ୍ଟର୍ (D. Register.)ନାମରେ କଲେକ୍ଟରଙ୍କ ମହାଫିଜ୍‌ଖାନାରେ ରଖା ଯାଇଅଛି । ରାଜସ୍ୱଦାୟୀ ମହାଲ ବା ଜମିଦାରୀମାନ 'ତଉଜି' ବା ସରକାରଙ୍କର ରାଜସ୍ୱଦାୟୀ ଜମିର ତାଲିକାରେ ଥିବା କ୍ରମିକ ନମ୍ବରଦ୍ୱାରା ଚିହ୍ନିତ ହୁଏ ।

ଲାଖରାଜ ଜମିମାନ ଜେନରଲ୍ ନମ୍ବର ଓ ସ୍ପେଶିଆଲ୍ ନମ୍ବର୍‌ଦ୍ୱାରା ଚିହ୍ନିତ ହୁଏ । ଇଂରାଜସରକାର ଲାଖରାଜ ଜମି ଉପରେ ରାଜସ୍ୱ ଚିରକାଳ୍ ସକାଶେ ବସାଇ ପାରିବେ ନାହିଁ ବୋଲି ଅଇନ୍ କରିଅଛନ୍ତି; କିନ୍ତୁ ଲାଖରାଜ ଉପରେ ପଥକର (Road cess) ଆଦି କର ବସିଣି ହୋଇଥାଏ ।]

**ଲଖରାଜ ତଉଫିର**—ବୈଦେ. ବି(ଫା) (ଜତରଥ)—ସାବକ ସନନ୍ଦ
Lākharāj tauphir ଅପେକ୍ଷା ଅଧିକରୁ ଦେଖାଯିବା ଲାଖରାଜ ଜମି, ଯାହା କରଧାର୍ଯ୍ୟ ଯୋଗ୍ୟ ବୋଲି ଇଂରାଜ ସରକାର ସ୍ଥିର କରିଅଛନ୍ତି—Lands found in excess of the areas granted by the original revenue—free grant and assessed to revenue or resumed by the British Government.

**ଲଖରାଜ୍ ଦାର୍**—ବୈଦେ. ବି.—( ଫା. ଲଖିରାଜଦାର୍ )—ନିଷ୍କର
Lākharāj-dār ଜମିର ଅଧିକାରୀ—Holder of rent-
ଲାଖେରାଜଦାର **लाखिराजदार** free tenure.

**ଲଖରାଜ୍ ବାଜ୍ୟା(ଜା)ପ୍ତି**—ବୈଦେ. ବି— (ଫା. ଲଖିରାଜ୍ ବାଜ୍ୟାପ୍ତ)—
Lākharāj bājyā(jā)pti ଯେଉଁ ଲଖରାଜ ଜମିକୁ ଇଂରାଜ
ଲାଖେରାଜ ବାଜ୍ୟାପ୍ତି ଗଭର୍ଣ୍ଣମେଣ୍ଟ ମଞ୍ଜୁର ନ କରି ତହିଁ ଉପରେ
**लाखिराज बाजयाप्ति** କର ଧାର୍ଯ୍ୟ କରି ଅଛନ୍ତି—Resumed
[ ଲଖରାଜ୍(ଜ) ବାଜଥପଦ—ଗ୍ରାମ୍ୟରୂପ ] revenue-free tenure.

**ଲଖରାଜ୍ ବାହି(ହେ)ଲ୍(ଲି)**—ବୈଦେ. ବି.—(ଫା. ଲଖିରାଜ୍ ବହାଲ୍)
Lākharāj bāhi(he)l(li) ଯେଉଁ ଲଖରାଜ ସମ୍ପତ୍ତିକୁ
ଲାଖେରାଜ ବାହେଲ ଇଂରାଜ ଗଭର୍ଣ୍ଣମେଣ୍ଟ ଅନୁମୋଦନ କରିଅଛନ୍ତି
**लाखिराज बहाल** Cofirmed revenue-free tenures.
(ଲଖରାଜ ତଳେ ଲୋଚ ଦେଖ ।)

**ଲଖରାଜ୍ ମଉଜା**—ବୈଦେ. ବି.—(ଫା. ଲଖିରାଜ+ମୌଜା)—ଯେଉଁ
Lākharāj maujā ମଉଜାର ବା ଗ୍ରାମର ସମସ୍ତ ଜମି ନିଷ୍କର
ଲାଖେରାଜୀ ମୌଜା ଅଟେ—A revenue free village.
**लाखिराजी मौजा** [ଦୃ—ପୁରୀ ଜିଲ୍ଲାର ରାଜାଙ୍କ ପ୍ରଗଣାର କେତେକ ଶାସନ ଲଖରାଜ ମଉଜା ଅଟେ ।]

**ଲଖରାଜ୍ ମାହାଲ୍**—ବୈଦେ. ବି—(ଫା. ଲଖିରାଜ ମହାଲ୍)—
Lākharāj māhāl ଯେଉଁ ବହୁଗ୍ରାମ ବିଶିଷ୍ଟ ଜମିମାନ ନିଷ୍କର
ଲାଖେରାଜ ମାହାଲ ଅଟେ—A revenue-free estate.
**लाखिराज महाल** [ଦୃ—କଟକ ଜିଲ୍ଲାର କନିକା ପଟ୍ଟଅ ଗୋଟିଏ ଲଖରାଜ୍ ମାହାଲ ଅଟେ ।]

**ଲଖସାଜ(ଜୀ)**—ଦେ. ବି—( ସଂ. ଲକ୍ଷ ଓ ସଜ )—ଲକ୍ଷ୍ୟ ବିନ୍ଧିବା
Lākha sāja(jī) ସମ୍ବନ୍ଧରେ ନିପୁଣତା—Skill in hitting
ଲକ୍ଷଭେଦ **लक्षभेदका सामर्थ्य** at a target.
ବିଂ. ବି—ଲକ୍ଷ୍ୟ ଭେଦନରେ ନିପୁଣ—Skilful at hitting at a target.

**ଲଖ ସିଲ୍**—ଦେ. ବି—(ସଂ. ଲକ୍ଷ+ଇଂ. ସୀଲ୍)—ସିଲ୍ (ଦେଖ)—
Lākha sil Sil (See)

**ଲଖି**—ଦେ. ବି—(ସଂ. ଲକ୍ଷ୍ୟ)—ତୁଳନା—
Lākhi তুলনা **लायक** [Comparison.
ବିଣ.—୧ । କୌଣସି ବସ୍ତୁ ସଙ୍ଗେ ତୁଳନୀୟ—
ଲାୟେକ 1. Comparable with anything. ୨ ।
**लायक** ସମକକ୍ଷ; ସଦୃଶ; ସମାନ—2. Equal; similar.
୩ । ଯଥୋପଯୁକ୍ତ; ଉପଯୁକ୍ତ—3. Befitting; becoming. (ଯଥା—କନ୍ୟାଲଖି ବର ମିଳିଗଲା)

**ଲଖି ଦେବା**—ଦେ. କ୍ରି(ସଂ.ଲକ୍ଷ)—ଉପମା ଦେବା; କୌଣସି ବସ୍ତୁ ସଙ୍ଗେ
Lākhi debā ତୁଳନା କରିବା—To compare a thing
তুলনা করা **लक्षदेना** with another.

**ଲଖିବା**—ଦେ. କ୍ରି—(ସଂ. ଲକ୍ଷ ଧାତୁ)—୧ । ତୁଳନା କରାଯିବା—
Lākhibā তুলনা করা **लक्ष करना** 1.To to compared.
[ଲଖାଇବା—ପ୍ରଯୋଜକରୂପ] ୨ । ତୁଳନା ଦ୍ୱାରା ସମକକ୍ଷ ବା
লাগা **लगना** ଯୋଗ୍ୟ ହେବା—2. To befit; to be
লগ জানা **चिपक जाना** equal or fitting. ୩ । (ସଂ. ଲଗ୍ ଧାତୁ) ଦୃଢ଼ରୂପେ ସଂଲଗ୍ନ ହେବା; ଲାଗିବା—3. To adhere or stick to; to become fixed to. [ଦୃ—ସନ୍ତତ ତବ ତନୁ କାନ୍ତିରେ ଲଖି । କବସୁର୍ଯ୍ୟ ସଙ୍ଗୀତ କଳ୍ପଲତା ।] ୪ । କୌଣସି ସ୍ଥାନରେ ସ୍ଥାୟୀଭାବରେ ଅବସ୍ଥାନ କରିବା—4. To stay permanently at a place. ୫ । ପ୍ରେମଦ୍ୱାରା ଆସକ୍ତ ହେବା—5. To become attached to by virtue of love. [ଦୃ—ଅସମ୍ଭାଳେ ଭାବ ମନ ଲଖି ଗଲା ମୋହନର ମୁରୁଧାନନେ । ରାଧାନାଥ. ଯଯାତି ।] ୬ । ଆଶାନୁରୂପ ଫଳପ୍ରଦ ହେବା—6. To bear the expected result. [ଯଥା-ତାଙ୍କ ଠାରେ ମୋ ପ୍ରାର୍ଥନାଟା ଲଖିଲା ନାହିଁ ।] ୭ । ଖଟିବା; ପ୍ରଯୋଜ୍ୟ ହେବା—7. To apply to.

**ଲଖି ଯିବା**—ଦେ. କ୍ରି.—୧ । ଦୃଢ଼ରୂପେ ଲାଗିଯିବା—1. To be
Lākhi jibā attached firmly; to stick firmly.
লেগে যাওয়া ୨ । ଉତ୍ତମରୂପେ ପ୍ରଯୋଜ୍ୟ ହେବା; ଉପଯୁକ୍ତ ହେବା
**चिपकजाना** ଖାପ ଖାଇବା—2. To be fitting; to be
**लग जाना** suitable. [ଯଥା—ଏ ଉଗଟ ଏ କଥାକୁ ଠିକ୍ ଲଖି ଗଲା ।]

**ଲଖି ରହିବା**—ଦେ. କ୍ରି—୧ । ଲଖିଯିବା ୧ (ଦେଖ)
Lākhi rahibā লেগে থাকা 1. Lākhi jiba 1 (See)
**लगजाना** ୨ । ସ୍ନେହ ବା ଶ୍ରଦ୍ଧାରେ ଆସକ୍ତ ହେବା—
2. To be attached to by ties of affection or love.

**ଲଖି ହେବା**—ଦେ. କ୍ରି—(ସଂ. ଲକ୍ଷ)—ତୁଳନାରେ ସମକକ୍ଷ ହେବା—
Lākhi hebā To be equal in comparison.
লায়েক হওয়া **लायक होना**

**ଲଖୁ(ଖୁଁ)**—ବୈଦେ. ବିଣ. ଓ ବି—(ସଂ. ଲକ୍ଷ)—(ହିନ୍ଦୀରୁ ଅନୁକୃତ,
Lākhu(khuṅ) ହି. ଲଖୋଁ ଲଖ୍)—ଲକ୍ଷ ଲକ୍ଷ; ଅସଂଖ୍ୟ—
লাখ লাখ **लाखों लाख** Innumerable; countless;
ଲଖ(ଖୁଁ)ଲଖ୍ } ଲଖୋ(ଖୋଁ)ଲଖ୍ }—ଅନ୍ୟରୂପ multitudinous; in myriads.

**ଲଗ୍**—ଦେ. ବି—(ସଂ. ଲଗ୍ ଧାତୁରୁ ଉତ୍ପନ୍ନ ଲାଗିବାର ଅପଭ୍ରଷ୍ଟରୂପ)—
Lāg (ରାଧାଶ୍ୟାମଙ୍କ ପ୍ରବର୍ତ୍ତିତ ଡ୍ରିଲ୍ ସମ୍ବନ୍ଧୀୟ ଆଦେଶ-ବଚନ-ବିଶେଷ); ସମସ୍ତେ ପରସ୍ପରକୁ ଲାଗି କରି ଠିଆ ହୁଅ—

(A term of drill) Close up ! ପ୍ରାଦେ.—(ସମ୍ବଲପୁର) ବ—ଋଣ—Debt. [ ଯଥା—ମୋର ଶହେ ଟଙ୍କା ଲାଗ୍ ଅଛି ।]

ଲାଗ୍ ଖାଇବା—ପ୍ରାଦେ.—(ସମ୍ବଲପୁର) କି—୧ । ଋଣ କରିବା—1. To borrow. ୨ । ଋଣଦ୍ୱାରା ବ୍ୟୟ ନିର୍ବାହ କରିବା—2. To meet one's expenses by borrowing. Lāg khāibā [ ଉ—ଲାଗ୍ ଖାଇଁ, ଲଗେଇ ନାଇ ହୁଇଁ । ଅର୍ଥ=କରଂ ଋଣ କରିବ କାଲୁ ଘର ପାଇଁ ଜମିନ୍ ହେବ ନାହିଁ ।]

ଲାଗ୍ ଲାଗ୍—ଦେ. କ୍ରି. ବିଣ—୧ । ଲଗେ ଲଗେ; ପରେ ପରେ; ପୁନଃ ପୁନଃ—1. Repeatedly; in quick succession. ୨ । ଗୋଟିକ ପରେ ଗୋଟିଏ—2. One after the other.
Lāg lāg
पवे पवे
बारवार, लग लग कर

ଲାଗ—ଦେ. ବି.- (ସଂ. ଲଗ୍ ଧାତୁ; ଲଗ୍ନ)—୧ । ଲଗ୍ନ, ମୁହୂର୍ତ୍ତ କ୍ଷଣ—2. Moment; instant. (ଯଥା—ଏହିଲାଗେ=ଏହିଲାଗରେ=ଏହି କ୍ଷଣରେ ।) ୨ । ନୈକଟ୍ୟ; ନିକଟବର୍ତ୍ତିତା—2. Contiguity; proximity. ୩ । ସମ୍ପର୍କ—3. Connection. କ୍ରି. ବିଣ—ନିକଟ—Near. ବିଣ—ନିକଟବର୍ତ୍ତୀ—Contiguous; adjacent. ପ୍ରାଦେ (କଟକସଦର) ବି—ନାଗ (ଦେଖ) —Nāga (See) ।ଦେ (ସମ୍ବଲପୁର) ବି—୧ । ଋଣ—1. Loan. ୨ । ମହାଜନୀ—2. Money lending.
Lāga
लग्न लगन
लागाओ; लाग
लगाव
लागाओ
लगाव

ଲାଗଣ—ଦେ. ବି (ସଂ. ଲଗ୍ନ)—୧ । ସଂଲଗ୍ନ ହେବା—1. Adherence; being attached. ୨ । କାର୍ଯ୍ୟରେ ଲାଗିବା—2. Being engaged in a work. ୩ । ବନ୍ଧୁସମ୍ପର୍କ—3. Relationship. ୪ । ଲାଭ ବା ସୁଧପାଇଁ ଲୋକଙ୍କୁ ଟଙ୍କା ଅଗଉରା ଦେବା; ଲାଭ ଉଦ୍ଦେଶ୍ୟରେ ଧାନ ବା ଟଙ୍କାକୁ ଖଟାଇବା—4. Advancing money or paddy on loan; investment. [ ଦ୍ର—ଧାନ ଫସଲ ଅମଦାନି ହେଲେ ଖାତକ ମହାଜନଙ୍କୁ ସେକାଳର ଦାଣ୍ଡ ଭାଉ ଅପେକ୍ଷା କିଛି ବେଶି ପରିମାଣରେ ଧାନ ଦେବାର ଚୁକ୍ତି କରି ମହାଜନଠାରୁ ଫସଲ ଅମଦାନି ପୂର୍ବରୁ ଯେଉଁ ଟଙ୍କା ଅଗଉରା ନିଅନ୍ତି ତାକୁ 'ଲାଗଣ' 'ଦାଦନ' ବା 'କାଢ଼ିଅ' କହନ୍ତି ।
Lāgana
लागा; लाग
लगना, लगाव
लागान
लगाना

କୌଣସି ମୂଲିଆ ପରେ ପରିଶ୍ରମ କରି ବା ମାଲ ଲାଗି ସେହି ମୂଲକୁ ବର୍ତ୍ତମାନ ନେଇଥିବା ଟଙ୍କାରେ କ୍ରମେ କ୍ରମେ ମଜୁରି ଦେଇ ସୁଝିବାର କଥା କରି ମହାଜନ ବା ମାଲିକଙ୍କଠାରୁ ଅଗଉରା ଯେଉଁ ଟଙ୍କା ନିଏ ତାକୁ 'ଲାଗଣ' ବା 'ଦାଦନ' କହନ୍ତି ।

ଫଳତଃ କୌଣସି ଲାଭ ଉଦ୍ଦେଶ୍ୟରେ ଟଙ୍କା ବା ଧାନକୁ 'ଲଗାଇବା'କୁ 'ଲାଗଣ' ବୋଲାଯାଏ । ] ଦେ. ବି ଓ ବିଣ—ଲାଗଣା (ଦେଖ)—Lāganā (See) ପ୍ରାଦେ (ଗଡ଼ଜାତ) ବିଣ—ଖୁବ୍ ଶିକାରୀ (କୁକୁର) Very skilful as a hunter (said of a dog).

ଲାଗଣା(ଣି)—ଦେ. ବି—(ସଂ. ଲଗ୍ନିକ)—୧ । ବନ୍ଧୁତାଦ୍ୱାରା ନିକଟ ସମ୍ବନ୍ଧ—1. Relationship. ୨ । ନିକଟ (ଲାଗଣିକ—ଅନ୍ୟରୂପ) ସମ୍ପର୍କୀୟ ବନ୍ଧୁ; ଲଗ୍ନିକ—2 Near relation. ବିଣ—ବନ୍ଧୁତାଦ୍ୱାରା ସମ୍ବଦ୍ଧ; ଲଗ୍ନିକ—Closely related.
Lāganā(ni)
लागाओ
लाग, लगाव लागाओ लागी

ଲାଗପାଟ—ଦେ. ବିଣ—୧ । ନିକଟ—1. Near. ୨ । ନିକଟବର୍ତ୍ତୀ—2. Adjacent; contiguous.
Lāga pāta
लागाओ लगाव

ଲାଗ ମୂଲିଆ—ପ୍ରାଦେ (ଯାଜପୁର) ବି—ପ୍ରତିଦିନ ଜମିଦାରଙ୍କର କାମ କରୁଥିବା ମୂଲିଆ—A fixed day-labourer.
Lāga mūliā

ଲାଗରେ—ଦେ. କ୍ରି. ବିଣ—ନିକଟରେ—Near.
Lāgare

ଲାଗ ଲଖତ୍ର—ପ୍ରାଦେ (କଟକସଦର) ବି (ନ ସ୍ଥାନରେ ଲ ଉଚ୍ଚାରଣ) —ନାଗ ନକ୍ଷତ୍ର (ଦେଖ)—Nāga nakshatra (See)
Lāga lakhatra

ଲାଗା—ପ୍ରାଦେ (କଟକସଦର) ବି—ନାଗା (ଦେଖ) Nāgā (See)
Lāgā

ଲାଗି—ଦେ. ଅ (ସଂ. ଲଗ୍ ଧାତୁ)—୧ । (ଅମୁକର) ହେତୁରୁ; ପାଇଁ; ନିମନ୍ତେ; କାରଣରୁ—1. For; owing to; because of; on account of. [ ଦ୍ର—ଲାଗି, ପାଇଁ, ନିମନ୍ତେ, ଯୋଗୁଁ, ଯୋଗୁରୁ, ଯୋଗେ, ହେତୁ, ହେତୁରୁ ଆଦି ଶବ୍ଦଦ୍ୱାରା ଭାବ ଓ ଅଭାବ ଉଭୟ ଅର୍ଥ ସୂଚିତ ହୁଏ । ସାଧାରଣତଃ ଏହା ବଦକ୍ତିସୂଚକ ଅବ୍ୟୟରୂପେ ଷଷ୍ଠୀ ବିଭକ୍ତି ବିଶିଷ୍ଟ ଶବ୍ଦ ପରେ ବସିଲେ ବ୍ୟବହୃତ ହୁଏ; ଯଥା, ଗୋବିନ୍ଦ ଲାଗି, ଗୋବିନ୍ଦର ଲାଗି, କାହାଲାଗି, କାହାର ଲାଗି, ତୋଲାଗି, ତୋର ଲାଗି । ] [ ଉ—ଶ୍ୟାମ କେଉଁଠେ ଅଛୁଥାଣ, ତାଲାଗି ଯିବ ଏ ପ୍ରାଣ । ଜନଶ୍ରୁତି. ସଙ୍ଗୀତ । ] ୨ । ଉପସ୍ଥିତି ଯୋଗୁଁ—2. On account of the presence of. [ ଉ—ତୋ ଲାଗି ଗୋପ ଦାଣ୍ଡ ମଲା ରେ, କାଳିଆ ସୁନା । ସଙ୍ଗୀତ । ୩ । (ଅମୁକର) ପକ୍ଷରୁ; କୌଣସି ବ୍ୟକ୍ତିଙ୍କର ପ୍ରତିନିଧିରୂପେ—3. On behalf of; as a representative of. ୪ । (ଅମୁକର) ପରିବର୍ତ୍ତରେ—4. In lieu of. ୫ । ନିମନ୍ତେ; (ନିର୍ଦ୍ଦିଷ୍ଟକାଳ ବା ସମୟ) ପାଇଁ—5. For (a space of time). (ଯଥା—ମୁଁ ଦିନକ ଲାଗି ଏଠାକୁ ଆସିଛି) କ୍ରି. ବିଣ (ଲାଗିବା
Lāgi
लागि, लागिया, जन्य
लिये

ଲେଗେ ଲଗକର କ୍ରିୟାର ଅସମାପିକାରୂପ )—୧ । ସଲଗ୍ନ ହୋଇ— 1. Adhering to; closely engaged in. ୨ । ଲାଗିପଡ଼ି; ଅଧ୍ୟବସାୟସହକାରେ—2. With perseverance. ଦେ. ବିଣ—୧ । ଗୃହୀତ—

ଉৎসর্গ ଲଗାହୁଆ 1. Accepted. ୨ । ଉପଭୁକ୍ତ—2. Enjoyed ୩ । ପରିହିତ; ପିନ୍ଧାଯାଇଥିବା—3. Put on, worn. [ଉ—ପ୍ରିୟାଙ୍କୁ ଦିଆଇ ସ୍ୱର୍ଣ୍ଣପଟ, ଆପେ ପିନ୍ଧିବା ତାହା ଲାଗି ପଟ । କବିସୂର୍ଯ୍ୟ. କବିତା । ] ୪ । ନିକଟବର୍ତ୍ତୀ—

লাগাও লাগী 4. Adjoining; adjacent. ୫ । ସଲଗ୍ନ—5. Attached to; adhering. ୬ । ପରିଧାନକାରୀ—5. Wearing. (ଯଥା—ଆଜି ମହାପ୍ରଭୁଙ୍କର ପାଟପଟ-ଲାଗି ବେଶ ହୋଇଅଛି) ୭ । ଉପଭୋଗକାରୀ—

উৎসর্গ ଚଢ଼ାହୁଆ 7. Enjoying. ୮ । ( ନୈବେଦ୍ୟାଦି ) ଅର୍ପିତ— 8. Offered. (ଉ—ମୂଳକୁ ପୂଜିଲେ ଅମୂଳ୍ୟ ହୋଇ, ଉଭ ତୃଜିଲେ ଅମ୍ବ ଲାଗି ହୋଇ । ପ୍ରାଚୀ. ସରଳ ଗୀତା । ) ବି—୧ । (ବେଶ ଆଦି) ଅଙ୍ଗରେ ପିନ୍ଧିବା;

পরা ଲଗାନା ଧାରଣ—1. Putting on the body (e. g. dress, ornaments etc). [ଉ—ରଣଚଣ୍ଡୀଙ୍କର କରେ ଅଳଙ୍କୃତ ଲାଗି । ରାଧାନାଥ. ମହାଯାତ୍ରା ] [ଦ୍ର—ରାଜା ଓ ଦେବତା ଆଦିଙ୍କର ଅଳଙ୍କାର, ବେଶ ଆଦି ଧାରଣ କରିବା ପ୍ରତି 'ଲାଗି' ବୋଲାଯାଏ । ] ୨ । ମାଦକତା;

নেশা নশা ନିଶା; ମତ୍ତତା—2. Intoxication; intoxicating quality. ୩ । ନିଶା ବା ମାଦକତା ଜନ୍ମାଇବା ଗୁଣ— 3. The quality of causing intoxication. [ଉ—ଗଞ୍ଜାଇବ ଲକ୍ଷୀ ଲାଗି ତାର ପୁଣି । କବିସୂର୍ଯ୍ୟ. ବଣୋଦରମ୍ଭ. ଗ ଗୀତ । ] ୪ । ଉପଭୋଗ କରଣ— 4. Enjoyment.

ଲାଗି ଆସିବା—ଦେ. କ୍ରି—ଲାଗିବାକୁ ଆରମ୍ଭ କରିବା— Lāgi āsibā To begin to lāgibā. (See)
লেগে আসা ଲଗନେକୋ ସୁରୁକରନା

ଲାଗି କରିବା—ଦେ. କ୍ରି—ଦେବତାଙ୍କଠାରେ ପୁଷ୍ପ ଆଦି ଅର୍ପଣ କରିବା; Lāgi karibā ପିନ୍ଧାଇବା; ଚଢ଼ାଇବା—To put (flowers
চড়ান ଚଢ଼ାନା etc) on the body of a king or Deity.

ଲାଗି ଖାଇବା—ଦେ. କ୍ରି—ମୂଲ ଲାଗି କମ୍ମା ପରିଶ୍ରମ କରି ଆପଣା ପେଟ Lāgi khāibā ପୋଷିବା—To earn one's livelihood by (ମାଗି ଖାଇବା—ବିପରୀତ) labour; to earn one's bread
খেটে খাওয়া ଲାଗକର ଖାନା by the sweat of one's brow. [ଉ—ଯେ ଲାଗିଖାଏ, ସେ ମାଗିଖାଏ ନାହିଁ, ଯେ ମାଗିଖାଏ ସେ ଲାଗିଖାଏ ନାହିଁ । ଢଗ । ]

ଲାଗି ଚନ୍ଦନ—ଦେ. ବି—୧ । ଦେବତା ଆଦିଙ୍କ ନିମନ୍ତେ ଅଭିପ୍ରେତ Lāgi chandana ଚନ୍ଦନ—1. Sandal paste intended for
চড়ান চন্দন ଚଢ଼ାହୁଆ ଚନ୍ଦନ being put on a Deity. ୨ । ଯେଉଁ ଚନ୍ଦନ ଦେବତାଙ୍କଠାରେ ବୋଳା ହୋଇଥାଏ (ଓ ପରେ ତାହା ତାହାଙ୍କ ଦେହରୁ କଢ଼ାଯାଇ ଥାଏ)— 2. Sandal paste once put on the body of a Deity (and afterwards taken off). [ଦ୍ର—ଏହାପର ଲାଗିମାଲ, ଲାଗି ବେଲପତ୍ରୀ ଆଦି ହୁଏ ।

ଲାଗି ଡକା(କେ)ଇତ—ଦେ. ବି—ମାଦକତାରୂପ ଡକାଇତ— Lāgi ḍakā(ke)ita Intoxication compared to a robber. [ଉ—କୁସୁମୋତ୍ସବ କହେଦ ସ୍ୱର୍ଗ, ଲାଗି ଡକାଇତ ଲାଗୁ ଲାଗୁ । କବିସୂର୍ଯ୍ୟ. ସଙ୍ଗୀତ ]

ଲାଗି ପଡ଼ି (କୌଣସି କାର୍ଯ୍ୟ କରିବା)—ଦେ. କ୍ରି. ବିଣ—(ସହଚର Lāgi pardi ଶବ୍ଦ)—୧ । ଦବାକଣ୍ଠ ମନ ଓ ଦେହକୁ ଲଗାଇ
লেগেপড়ে (কোন কাজ করা) (କୌଣସି କାର୍ଯ୍ୟ କରିବା)—
ଲଗପଡକେ 1. (to do any work) With full force of one's body and mind. ୨ । ବହୁ ପରିଶ୍ରମ ସହକାରେ—2. With great labour; very laboriously. ୩ । ଅବିଚ୍ଛିନ୍ନରୂପେ (କୌଣସି କାର୍ଯ୍ୟ କରିବା)—3. (to do any work) Uninterruptedly; continuously.

ଲାଗି ପଡ଼ିବା—ଦେ. କ୍ରି—କାୟମନୋବାକ୍ୟରେ କୌଣସି କାର୍ଯ୍ୟରେ Lāgi pardibā ନିବିଷ୍ଟ ହେବା—To be closely enga-
লেগেপড়া ged in a piece of work. [ ଦ୍ର—ଏହା
ଲଗପଡନା ଅସମାପିକା ରୂପରେ ଅନ୍ୟକ୍ରିୟା ସହିତ ପ୍ରଯୁକ୍ତ ହୁଏ । ]

ଲାଗିପାଗି—ଦେ. କ୍ରି. ବିଣ (ଜରର୍ଥକ ସହଚର)—ଲାଗିପଡ଼ି (ଦେଖ)— Lāgipāgi Lāgipardi. (See) [ଉ—ରାହୁଯାକ ଲାଗିପାଗ ସାଙ୍ଗିଲି ଅଳଥା । ଉକାସ୍ତ ଗୀତଲହରୀ ।]

ଲାଗି ପାରିବା—ଦେ. କ୍ରି—୧ । ସମାନ ହୋଇ ପାରିବା—1. To be Lāgi pāribā equal to. [ ଉ—ତୁମ୍ଭେ ଏକା ଲାଗିପାର
সমকক্ষ হওয়া ତାହାଙ୍କ ସାଥ । କୃଷ୍ଣସିଂହ. ମହାଭାରତ ବନ । ]
ସମକକ୍ଷ ହୋନା ୨ । (କୌଣସି ବସ୍ତୁ) ପରିହିତ ବା ଅର୍ପିତ ହେବାର ଯୋଗ୍ୟ ହେବା—2. To be suitable or convenient for being put on. (ଯଥା—କଳ୍ପସିଂହାର ପରେ ଠାକୁରଙ୍କ ଶ୍ରୀଅଙ୍ଗରେ ଏ ମାଳାମାନ ଲାଗି ପାରିବ ନାହିଁ ।)

ଲାଗିବା—ଦେ. ବି—ଲାଗିବା କାର୍ଯ୍ୟ—Act of Lāgiba, (See Lāgiba below) (ଯଥା—ଦୁଇଜଣ ବନ୍ଧୁଙ୍କ ମଧ୍ୟରେ କଳି
লাগা ଲାଗିବା ଅସୁନ୍ଦର କଥା) ଦେ: ବିଣ—୧ । ଯାହା ବା ଯେ
ଲଗନା ଲାଗିଥାଏ—1. That which has done the act of Lāgibā (See below) (ଯଥା, ଘର କାଆଉରେ ଲାଗିବା ବ୍ୟକ୍ତି) ୨ । ଯାହା ବା ଯେ ଲାଗିବ—2. That which will do the act of Lāgibā. (See below) ( ଯଥା—ଆଗାମୀ ବର୍ଷ ବର୍ଷାଦିରେ ଲାଗିବା ବ୍ୟକ୍ତି) ଦେ. କ୍ରି (ସଂସ୍କୃତ ଲଗ୍ ଧାତୁ)-୧। (ଅକର୍ମକ) ଅନ୍ୟ

ବସ୍ତୁ ସଙ୍ଗେ ଯୁକ୍ତ ହେବା; ଲଗ୍ନ ହେବା; ଲାଖିବା; ସଂଲଗ୍ନ ହେବା; ଜଡ଼ିତ ହେବା—1. To be attached to another thing; to stick to; to adhere to. [ ଉ—ବାଳୁତ୍ତିମାନେ ଅଙ୍ଗ ଲହଲ୍ଲେ ଲାଗି ରହିଛନ୍ତି ଲାଳ। ଭକ୍ତଚରଣ. ମଥୁରାମଙ୍ଗଳ। ] ୨। (ଅକର୍ମକ) (ପଶୁ ଅର୍ଥ) ଶକଟରେ ଯୋଗୁଡ଼ିବା—2. (beasts) To be yoked to a cart or plough. (ଯଥା—ଏ ଶଗଡ଼ରେ ହଡ଼ାବଳଦ ସଙ୍ଗେ ଦାମୁଡ଼ିଟାଏ ଲାଗିଛି) ୩। (ଅକର୍ମକ) (ଜାହାଜ, ଡଙ୍ଗା, ଅର୍ଥ) ପହଞ୍ଚିବା; ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବା—3. A boat or conveyance; To touch (the shore); to reach the destination. [ ଉ—ବେଳାରେ ଲାଗିଲା ନାବ ରମ୍ଭାବତୀ ପୁରେ। ଉପେ. ବୈଦେହୀଶବିଳାସ। ] ୪। (ଅକର୍ମକ) (ଦେହରେ) ବୋଳାଯିବା; ଲିପାଯିବା—4. To be smeared over; to be anointed. [ଉ—ଦେହେ ଲାଗିଲା ପଙ୍କ ଯେହ୍ନେ; ନ ଯାଇ ପଙ୍କ ପ୍ରକ୍ଷାଳନେ। ଜଗନ୍ନାଥ. ଭାଗବତ ]। ୫। (ଅକର୍ମକ) କୌଣସି ବିଷୟର ସମ୍ପର୍କ ଅନ୍ୟ ବ୍ୟକ୍ତି ବା ବସ୍ତୁଠାରେ ଯୁକ୍ତ ହେବା; ବ୍ୟାପିବା—5. To overtake; to spread over. [ ଉ—ସେ ଦୋଷ ନ ଲାଗଇ ତାର, ନଳିନୀ ପତ୍ରେ ଯେହ୍ନେ ନୀର। ଜଗନ୍ନାଥ. ଭାଗବତ। ] ୬। (ଅକର୍ମକ) ବୁଜି ହେବା; ମୁଦ୍ର ହେବା; ମୁଦ୍ରିତ ହେବା—6. To be closed or shut. (ଯଥା—ଘୋର ଅନିଦ୍ରାଯୋଗୁଁ ମୋ ଆଖି ଲାଗିଯାଉଛି; ଆଖି ଧରିଥିବାରୁ ଆଖିପତା ଲେଟେଇରେ ଲାଗିଯାଇଛି।) ୭। (ଅକର୍ମକ) (ଜିଭ, ପାଟି, ତୁଣ୍ଡ) ଖନ୍ଦା ମାରିବା; ସ୍ପଷ୍ଟରୂପେ ବାକ୍ୟାଦି ଉଚ୍ଚାରଣ କରି ନ ପାରିବା—7. To stammer (said of the tongue or mouth); not to be able to utter words properly. (ଯଥା—ତା ଜିଭ ଲାଗୁଛି; ତା ତୁଣ୍ଡ ଲାଗୁଛି; ତା ପାଟି ଲାଗୁଛି) ୮। (ଅକର୍ମକ) (ଭାତ, ଖାଦ୍ୟ ବା ଶ୍ଳେଷ୍ମା) କଣ୍ଠନାଳରେ ଅଟକିବା—8. To stick in the throat (said of particles of food or phlegm). (ଯଥା—ତଣ୍ଟିରେ ମାଛକଣ୍ଟା, ଭାତ, କଫ ଲାଗୁଛି।) [ ଦ୍ର—ସାଧାରଣ ଲୋକେ ବିଶ୍ୱାସ କରନ୍ତି ଯେ, କେହି ଦୂରସ୍ଥ ବନ୍ଧୁ ତୁମ୍ଭକୁ ଦୂରରେ ଥାଇ ମନେପକାଇଲେ ବା ସ୍ମରଣ କଲେ ଠିକ୍ ସେହି ସମୟରେ ତୁମେ ଖାଇ ବସିଥିଲେ ତୁମ ତଣ୍ଟିରେ ଭାତ ଲାଗିବ।] ୯। (ଅକର୍ମକ; ବିଶେଷତଃ ରାଜା ଓ ଦେବତାଙ୍କଠାରେ ପ୍ରଯୋଜ୍ୟ) ବସ୍ତ୍ର ଅଳଙ୍କାରାଦି ଦେହରେ ପରିହିତ ହେବା; ପିନ୍ଧାଯିବା; ଲାଗି ହେବା—9. To be put on the body; to be worn. [ଉ—ତୋର ଲାଗି ଯେଉଁ ପଟ୍ଟବସ୍ତ୍ର ହେବନ୍ତି ସେଗୁଡ଼ିକର ଅତିରଣ୍ଡ। କବିସୂର୍ଯ୍ୟ. କଳାବତୀ ମଣ୍ଡ. ଓ ଗୀତ।] ୧୦। (ଅକର୍ମକ) (କାର୍ଯ୍ୟରେ) ନିଯୁକ୍ତ ହେବା; ବ୍ୟାପୃତ ହେବା; ରତ ହେବା—10. To be engaged in a work. [ଉ—ଲାଗିଥିଲେ ଜଗାଧଣୀ ସେବାରେ। କବିସୂର୍ଯ୍ୟ. କବିତା ] ୧୧। (ଅକର୍ମକ) ଏକାଦିକ୍ରମେ ଚାଲିବା; (କାର୍ଯ୍ୟର ସ୍ରୋତ) ଅବିଚ୍ଛିନ୍ନ ଭାବରେ ଚାଲିବା; ଜମିବା—11. To continue; to go on. [ଉ—ଉଠେ ଲୀଳା ଲାଗିଛି ଦେଖ ଏସନ। ରାମଶଙ୍କର. ଲୀଳାବତୀ।] ୧୨। (ଅକର୍ମକ) (ପ୍ରଦୀପ ଅର୍ଥ) ଆଲୋକିତ ବା ଅଗ୍ନିଯୁକ୍ତ ହେବା; ଜଳିବା—12. To be lighted, to burn. (ଯଥା—ଏ ଓଦା କାଠଗୁଡ଼ାକ ଜମାରୁ ଲାଗୁ ନାହିଁ) [ଦ୍ର—ଚୁଲି ଲାଗିବାର ଅର୍ଥ ଚୁଲିରେ ନିଆଁ ଲାଗିବା] ୧୩। (ଅକର୍ମକ) କୌଣସି ପଦାର୍ଥରେ କୌଣସି ଅଙ୍ଗ ବା ଅଂଶ ସଂଯୋଜିତ ହେବା—13. To attached to. (ଯଥା—ବଟୁଆରେ ଝୁମ୍ପା ଲାଗିଛି, କଟୁରିରେ ବେଣ୍ଟ, ଟୋପିରେ ଝାଲର ଲାଗିଛି) ୧୪। (ଅକର୍ମକ) (କୌଣସି କର୍ମ ପାଇ ଧନ ବା ପଦାର୍ଥ) ବ୍ୟୟିତ ହେବା—14 To be spent. (ଯଥା—ଏ ଭାଷାକୋଷ ମୁଦ୍ରଣ ପାଇଁ ଲକ୍ଷାଧିକ ଟଙ୍କା ଲାଗିବ) ୧୫। (ଅକର୍ମକ) କୌଣସି କର୍ମ ପାଇଁ ଲୋଡ଼ା ହେବା; ଆବଶ୍ୟକ ହେବା—15. To be required for any work. [ ଉ—ଦ୍ୱାଦଶ ସମ୍ବତ୍ସର ପୂର୍ଣ୍ଣିପାଏ ମୁହିଁ, ଯେତେ ଅନ୍ନ ଲାଗିବ ତୁମ୍ଭର ଦେବଇଁ। କୃଷ୍ଣସିଂହ. ମହାଭାରତ. ବନ।] ୧୬। (ଅକର୍ମକ) ମୂଲ, ମଜୁରି, ଦରମା ବା ପାରିଶ୍ରମିକ ପାଇଁ କାମ କରିବା; ଖଟିବା—16. To work for wages or for pay. [ଉ—ଯେ ଲାଗେ ଖାଏ ସେ ମାଗେ ଖାଏ ନାହିଁ, ଯେ ମାଗି ଖାଏ ସେ ଲାଗି ଖାଏ ନାହିଁ—ଢଗ।] ୧୭। (ଅକର୍ମକ) ( ଗଛ ଅର୍ଥ ) ରୋପିତ ହେବା—17. To be planted. ( ଯଥା—ସଡ଼କ ପାଖଯାକ ବରଗଛ ଲାଗିଛି; ମୋ ବଗିଚାରେ ବହୁତ ମଲ୍ଲୀଗଛ ଲାଗିଛି।) ୧୮। (ଅକର୍ମକ) ଉପୁଜିବା; ଜାତ ହେବା—18. To arise; to ensue. ( ଯଥା—ଦୁଇ ଭାଇଙ୍କ ମଧ୍ୟରେ ବିଷୟ ସମ୍ପତ୍ତି ପାଇଁ ମକଦମା ଲାଗିଲା) ୧୯। (ଅକର୍ମକ) ଫଳବତ୍ ହେବା; ଈପ୍ସିତ ଫଳପ୍ରଦାନ କରିବା—19. To be effective; to produce the desired effect; to result in. (ଯଥା—ମୁଁ ଯେତେ ଘିଅ ଦୁଧ ଖାଇଲି ମୋ ଦେହରେ ଜମାରୁ ଲାଗିଲା ନାହିଁ।) ୨୦। (ଅକର୍ମକ) ଅଧିକା ହୋଇ ଯୁକ୍ତ ହେବା; ବୃଦ୍ଧି ପାଇବା—20. To be added to; to increase. (ଯଥା—ବିନା ପରିଶ୍ରମରେ ମାଗଣା ଭୋଜନ ପାଇବାରୁ ତାଠେଇଁ ମାଉଁସ ଲାଗିଲାଣି।) ୨୧। (ଅକର୍ମକ) ଅଣ୍ଡିରା ପଶୁ ମାଈ ପଶୁକୁ ସଙ୍ଗମ କରିବା;

ଯୋଡ଼ ପଡ଼ିବା—21. To pair; to cohabit (said of male beasts). ( ଯଥା—ହାତୀମାନଙ୍କୁ ବଣରୁ ଧରିଆଣି ଘରେ ପାଳିଲେ ଦେଖାଯାଏ, ସେମାନେ ହାତୁଣୀ ସଙ୍ଗେ ଲାଗନ୍ତି ନାହିଁ । ) ୨୨ । ( ଅକର୍ମକ ) ଚିହ୍ନ ବା ଦାଗରୂପେ ରହିବା; ଦାଗ ଆଉ ନ ଲିଭିବା—22. To be left as a mark or stain; not to be erased; to tarnish. ( ଯଥା—ଯେତେ ଚେଷ୍ଟା କଲେ ମଧ୍ୟ ତା ଲୁଗାରେ ଲାଗିଥିବା ରକ୍ତ ଦାଗ ତାକୁ ଧରି ପକେଇ ଦେଲା । ) ୨୩ । ( ଅକର୍ମକ ) ଶତ୍ରୁତା ଆଚରଣ କରିବା; ଶତ୍ରୁରୂପେ କୌଣସି ବ୍ୟକ୍ତିକୁ ଉତ୍ତ୍ୟକ୍ତ କରିବା; ବିବାଦ କରିବା—23. To act inimically towards a person. [ ଉ—ମୋ ସଙ୍ଗରେ ଲାଗିଲେ ବସିବୁ ଯମ ପାଶ । କୃଷ୍ଣସିଂହ. ମହାଭାରତ. ସଭା ।] ୨୪ । ( ଅକର୍ମକ ) କୌଣସି ବ୍ୟକ୍ତିକୁ ଧରିବା ବା ଜଗିବା ବା ଆକ୍ରମଣ କରିବା-ପାଇଁ ତାହା ପ୍ରତି ଅନ୍ୟ ବ୍ୟକ୍ତି ନିଯୁକ୍ତ ବା ମୁତଏନ୍ ହେବା —24. To be employed or commissioned after; to be deputed. ( ଯଥା—ଉକ୍ତଦିନ ହେଲା ଖାତକଠାରେ ମହାଜନଙ୍କର ପିଆଦା ଲାଗିଛି । ) ୨୫ । ( ଅକର୍ମକ ) ଆକ୍ରମଣ କରିବା ଉଦ୍ଦେଶ୍ୟରେ ପଛରେ ଗୋଡ଼ାଇବା—25. To chase; to pursue. ( ଯଥା—ବିଲୁଆ ପଛରେ କୁକୁରଟା ତାହାକୁ ଲାଗି ଦଶ ସେକେଣ୍ଡରେ ତାକୁ ମାଡ଼ି ବସିଲେ । ) ୨୬ । ( ଅକର୍ମକ ଓ ସକର୍ମକ) ପ୍ରସ୍ତାବିତ ହେବା;କୌଣସି ପଦାର୍ଥ ବା ବିଷୟ ପାଇଁ କଥାବାର୍ତ୍ତା ବା ପ୍ରସଙ୍ଗ ଉତ୍ଥାପିତ ହେବା—26. To be proposed; to be talked about in connection with any matter. [ ଉ—କାଲିରେ ଜାଙ୍କଲି ଶୁଅ; ଗୋଟେଲୋକର ନାମକୁ ବର ଲାଗିଛି ଆଉ ସାଇ ବଢ଼ଭୂଆ—ଗୀତ । ] ୨୭ । ( ଅକର୍ମକ ) ( ଖାଦ୍ୟଦ୍ରବ୍ୟ ) ଖାଇଲା ପତ୍ରରେ ଦିଆଯିବା; ପରିବେଷଣ କରାଯିବା—27. To be served on the plate (said of food). ( ଯଥା—ସଙ୍କ୍ରାନ୍ତି ସଭାରେ ଖିରିପିଠା ଲାଗିଲାଣି; ଏ ଧାଡ଼ିର ଦଶଖଣ୍ଡ ପତ୍ର ମଧ୍ୟରୁ ତିନିଖଣ୍ଡ ପତ୍ରରେ ମାଛ ବେସର ଲାଗି ନାହିଁ । ) ୨୮ । ( ଅକର୍ମକ ଓ ସକର୍ମକ ) ବାଧିବା; ବାଧା ଦେବା; ପୀଡ଼ା ଦେବା ( ଏ ଅର୍ଥର ବଙ୍ଗଳା ଭାଷାରେ ବେଶି ପ୍ରୟୋଗ ହୁଏ । )—28. To give pain; to affect painfully. [ ଉ—ସକର୍ମକ—ତୋରେ ଶରଣ ଯେ ପଶଇ, ସଂସାର ତାକୁ ନ ଲାଗଇ—ଜଗନ୍ନାଥ. ଭାଗବତ; ଅକର୍ମକ—ତାଙ୍କ ମନ୍ତବ୍ୟ ମୋ ହୃଦରେ ଖୁଁଚି କଣା ଲାଗିଗଲା । ]

୨୯ । ( ଅକର୍ମକ ଓ ସକର୍ମକ ) କୌଣସି ବିଷୟ ସ୍ମୃତି ବା ହୃଦୟ ପଟରେ ସ୍ଥାୟିଭାବରେ ଅଙ୍କିତ ହେବା—29. To be permanently impressed on the tablet of the mind. [ ଉ—ସକର୍ମକ—ପ୍ରିୟସଖି ! ମୋ ବେଦନା ନ ଲାଗଇ କିଛି ତୋତେ ବର୍ଣ୍ଣିତରେ । କବିସୂର୍ଯ୍ୟ. ବଶୋଗ୍ରାଚନ୍ଦ୍ର ଠ ଗୀତ—ସକର୍ମକ । ଅକର୍ମକ—ଜଗବନ୍ଧୁର ଦଗ୍ଧେଷ୍ଟ କଥା ମୋ କାନରେ ଲାଗି ଯାଇଛି । ] ୩୦ । ( ଅକର୍ମକ ) ଅଟକିବା—30. To stick to. ( ଯଥା—ନଈରେ ଅଳ୍ପ ପାଣି ଥିବାରୁ ବୋଇତ ଡଙ୍ଗା ଠାଏ ଠାଏ ଲାଗୁଛି । ) ୩୧ । ( ଅକର୍ମକ ) ଆଘାତ ପାଇବା; ବାଜିବା—31. To strike; to collide with; to hit at. ( ଯଥା—ଜାହାଜ ବୁଡ଼ା ପଥରରେ ଲାଗି ଫାଟିଗଲା । ) ୩୨ । ( ଅକର୍ମକ ) କୌଣସି ବିଷୟରେ ଏକାଗ୍ରଚିତ୍ତରେ ରତ ହେବା; ଆସକ୍ତ ହେବା; ଏକାଗ୍ର ମନରେ ନିଯୁକ୍ତ ହେବା; ମଜ୍ଜିବା—32. To be attached to a matter; to be after a thing; to be addicted to a thing. [ ଉ—ସଞ୍ଜବେଳରୁ କଞ୍ଜ ଫୁଟିବା ଯାଏ କୁଞ୍ଜରେ ତୋ ଲୁଲେ ପଦ ଲାଗେ ଲୋ—କବିସୂର୍ଯ୍ୟ. ସଙ୍ଗୀତ । ] ୩୩ । (ଅକର୍ମକ) (କୌଣସି କର୍ମ) ଆରମ୍ଭ ହେବା—33. To be begun, to set in; to be commenced. ( ଯଥା—ଦିନ ୧୦ଟା ବେଳେ କଚେରି ଲାଗେ, ୫ଟା ବେଳେ ଭାଙ୍ଗେ । ) ୩୪ । (ଅକର୍ମକ) କୌଣସି କର୍ମ କରିବାକୁ ଆରମ୍ଭ କରିବା—34. To begin or set to some work. ( ଏ ବ୍ୟବହାର ବଙ୍ଗଳାରେ ବେଶି ଚଳେ) ( ଯଥା—ସଭାରେ ଆମ୍ଭମାନଙ୍କ ଉପସ୍ଥିତ ମାତ୍ରକେ ବକ୍ତା ବକ୍ତୃତା ଦେବାକୁ ଲାଗିଲେ । ) ୩୫ । (ଅକର୍ମକ) (ମୀମାଂସିତ ହୋଇ-ଥିବା ବିଷୟ ବା ପ୍ରସଙ୍ଗ) ପୁନରୁତ୍ଥାପିତ ହେବା; ଉଠିବା—35. ( a matter ) To be reopened. ( ଯଥା—ଭଲଲୋକେ ବସି ସେ ଦୁହିଙ୍କ ବିବାଦ ତ ଭାଙ୍ଗି ଦେଇଥିଲେ, ପୁଣି ଆଜି ସେ କଥା କିଆଁ ଲାଗିଲା ।) ୩୬ । ( ଅକର୍ମକ ) ଘଟିବା—36. To happen. (ଉ—ଲାଗିଛି ମାଲ କଜଳରେ ହାଟ—ଭଜନ ।) ୩୭ । (ଅକର୍ମକ) ବହୁକାଳ ବ୍ୟାପିବା—37. To extend over a long period of time. (ଯଥା—କେତେଙ୍କୁ ଜାତିଆଣ ସଭା ବରଗଛ ତଳେ ଶୁରିବାକୁ ଲାଗିଲାଣି, ତେବେ ସୁଦ୍ଧା ତାଙ୍କ ଅଭୁଆ ଛିଣ୍ଡୁ ନାହିଁ । ] ୩୮ । (ଅକର୍ମକ) ବହୁଦୂର ବା ସ୍ଥାନ ବ୍ୟାପିବା; ଅଧିକାର କରିବା—38. To extend over a long distance; to occupy a long space. (ଯଥା—ଆମ ଗାଁଆଁ ଉତ୍ତରକୋଡ଼ ହ୍ରଦ ମାଇଲେ ଯାଏ ଲାଗିଛି ।) ୩୯ । (ଅକର୍ମକ) ମହାଜନ ବା ବ୍ୟବସାୟରେ (ଧନଆଦି) ଖଟା ହେବା ବା ନିୟୋଜିତ ହେବା—39. To be invested on loan or business. ( ଯଥା—

ଥିଲ କମଳାକରେ ଅମର ଭଳ ଶବ୍ଦ ଭରଣ ଧ୍ୟାନ ଦେଳିରେ ଲାଗିଛି ।) ୪୦ । (ଅକର୍ମକ) ସମାପ୍ତ ନ ହେବା—40. Not to be finished. (ଯଥା—ଘଣ୍ଟ ବାଜଣା-ବେଳଯାଏ ସୁଦ୍ଧା ତାଙ୍କ ଘରେ କିଅଣ ପିଅଣ ଲାଗିଥାଏ ।) ୪୧ । (ଅକର୍ମକ) ସ୍ପର୍ଶ କରିବା—41. To come in contact with; to touch. [ ଉ—କୁସୁମ ଫଳ ଅଗ୍ରଭରେ, କଟପୀ ଲାଗନ୍ତୁ ଭୂମିରେ । ଜଗନ୍ନାଥ. ଭାଗବତ ।) ୪୨ । (ଅକର୍ମକ) ଅନ୍ୟ ବସ୍ତୁ ସଙ୍ଗେ ଜଡ଼ିତ ହେବା; ଛନ୍ଦ ହେବା—42. To be entangled in. [ଉ—କସ୍ କଣ୍ଟା ? କାଳକୋଳ କଣ୍ଟା; ଯହିଁରେ ଲାଗିବ ଲଟାପଟା । କାହାଣିର ନଥା ।] ୪୩ । ( ଅକର୍ମକ ) ଯଥୋପଯୁକ୍ତ କର୍ମରେ ନିୟୋଜିତ ବା ବ୍ୟବହୃତ ହେବା—43. To be employed or used in the proper work. (ଯଥା—ଗାଈର ବାଛୁରି ମରିଯିବାରୁ ଯା ଠେଇଁ ଆଉ ଗୋଟିଏ ବାଛୁରି ଲାଗିଛି ।) ୪୪ । (ଅକର୍ମକ) ସ୍ପର୍ଶ କରିବା, ଛୁଇଁବା—44. To touch. (ଉ—ମାୟା ନ ଲାଗେ ଯାର ଚିତ୍ତେ, କ ପ୍ରଯୋଜନ ତାର ଗ୍ରନ୍ଥେ—ଜଗନ୍ନାଥ. ଭାଗବତ ।) ୪୫ । ( ଅକର୍ମକ ) ଗୋଡ଼ାଇବା; ଆକ୍ରମଣ କରିବା—45. To overtake; to attack. ( ଉ—ବ୍ୟାଧିର ପରିଭବ ନାହିଁ, ଦେହରେ ରୋଗ ନ ଲାଗଇ । ଜଗନ୍ନାଥ. ଭାଗବତ ।) ୪୬ । (ସକର୍ମକ) (ଭୂତ ଆଦି) ମନୁଷ୍ୟଠାରେ ଆବିଷ୍ଟ ହେବା—46. To ;posses a person (said of a ghost or spirit). [ ଉ—ଲାଗିଲାରେ ଲାବଣ୍ୟ-ନିଧିକ ଶ୍ୟାମଳନଣ । କବିସୂର୍ଯ୍ୟ. ରତ୍ନାକର ଉତ୍ତମ୍ଭ । ] ୪୭ । (ସକର୍ମକ) ବ୍ୟାକୁଳ କରିବା—47. To agitate. [ଉ—କରିବ ଭାଗବତ ଧର୍ମ, ଯେଣେ ନ ଲାଗେ ଭବ ଭ୍ରମ । ଜଗନ୍ନାଥ. ଭାଗବତ । ] ୪୮ । (ଅକର୍ମକ) କଳ୍ପନାଦ୍ୱାରା ବୋଧ ହେବା; ଅନୁମିତ ହେବା; ଏକ ବିଷୟ ଅନ୍ୟ ବିଷୟ ପରି ଜଣାଯିବା—48. To seem; to be felt as if. [ଉ—ଇଣା ସୁଧା ସର ପଣାରୁ ମଧୁର ଲାଗୁଥିଲା ଶ୍ୟାମପ୍ରୀତି ଗୋ । କବିସୂର୍ଯ୍ୟ. ସଙ୍ଗୀତ ।] ୪୯ । (ଅକର୍ମକ) ଅନୁଭୂତ ହେବା—49. To be experienced. [ଉ—ନାନା ଦୁର୍ନିମିତ୍ତ ନଭ ଜଳ ଦେଖି, ମନେ ଲାଗେ ବଡ଼ ଡର; ସ୍ୱର୍ଣ୍ଣନାଥ. ପାଣ୍ଡବ ।]

ଭର୍ଲ୍ପ ଯୋଗୀ ସେ ଯୁଗରେ,

ଜ୍ୱରଶୀ ଲାଗେ ମୋର ଚିତ୍ତେ—ଜଗନ୍ନାଥ. ଭାଗବତ ।

୫୦ । ( ସକର୍ମକ ଓ ଅକର୍ମକ ) ( ନାଡ଼ୀର ଗତି ବା ସ୍ପନ୍ଦନ ) ହାତକୁ ଜଣା ପଡ଼ିବା—50. (pulse) To be felt by touch. [ଉ—ଲାଗୁ ନ ଥିଲା ମୋ କରକୁ ନାଡ଼ିକା, ସଜନୀମାନେ ଦେଖି ହେଲେ ତାଡ଼ିକା । କବିସୂର୍ଯ୍ୟ. ସଙ୍ଗୀତ ।] ୫୧ । (ସକର୍ମକ ଓ ଅକର୍ମକ) ପଞ୍ଚ ଇନ୍ଦ୍ରିୟଦ୍ୱାରା ଅନୁଭୂତ ହେବା—51. To be felt by the different organs of sense. [ଦ୍ର—୧। ରସନେନ୍ଦ୍ରିୟଦ୍ୱାରା, ଯଥା—ଖଟା ଲାଗିବା, ମିଠା ଲାଗିବା, ରାଗ ଲାଗିବା, ୨ । ସ୍ପର୍ଶେନ୍ଦ୍ରିୟ ଦ୍ୱାରା, ଯଥା—ଏ ଜଳଘଟା ହାତକୁ ଭାରି ଥଣ୍ଡା ଲାଗୁଛି, ୩ । ଶ୍ରବଣେନ୍ଦ୍ରିୟଦ୍ୱାରା, ଯଥା—ଏ ସ୍ୱର ମୋ କାନକୁ ଭାରି କଡ଼ା ଲାଗୁଛି, ୪ । ଦର୍ଶନେନ୍ଦ୍ରିୟଦ୍ୱାରା ଯଥା—ଏ ରୂପ ଦେଖିବାକୁ ଭାରି ସୁନ୍ଦର ଲାଗୁଛି, ୫ । ଘ୍ରାଣେନ୍ଦ୍ରିୟ ଦ୍ୱାରା, ଯଥା—ଏ ଅତରର ସୁବାସ ଭାରି ମିଠା ଲାଗୁଛି ।] ୫୨ । (ସକର୍ମକ) ଶାସ୍ତ୍ର ବିଧାନ ଅନୁସାରେ କୌଣସି ବ୍ୟକ୍ତିଠାରେ (ଦୋଷ ବା ପାପ) ପ୍ରବର୍ତ୍ତିତ ହେବା—52. (any sin or fault) To apply to; to be attributed to person. [ ଉ—ମୁଁ ମଲେ ତ ତୁମ୍ଭର ହେବ ଏଥି ପଣ; ନ ଲାଗିବ ନାଇ ସ୍ତ୍ରୀହତ୍ୟା ଦୋଷ ।

କୃଷ୍ଣସିଂହ. ମହାଭାରତ. ବନ ]

୫୩ । (ସକର୍ମକ) ଅଭିଭୂତ କରିବା; ପ୍ରଭାବିତ କରିବା—53. To influence; to affect. [ଉ—ଅସ୍ତ୍ରାବ୍ରହ୍ମ; ତାଙ୍କୁ ନ ଲାଗିବ ସୁଖଦୁଃଖ । କୃଷ୍ଣସିଂହ. ମହାଭାରତ, ବନ । ଉ-- ତାଙ୍କୁ ନ ଲାଗେ ଭବବାଧା । ଜଗନ୍ନାଥ. ଭାଗବତ ।] ୫୪ । (ସକର୍ମକ) କୌଣସି ବସ୍ତୁ (ଯଥା—ଅଳଙ୍କାର) ଅନ୍ୟ ବସ୍ତୁ ବା ଉଦ୍ଦେଶ୍ୟ (ଯଥା—ପିନ୍ଧିବା ବ୍ୟକ୍ତିର ଦେହ) ପ୍ରତି ଯଥୋପଯୋଗୀ ହେବା—54. To exactly fit in; to suit; to be suitable for the required purpose. (ଯଥା—ଏ କାଚ ଠିକ୍ ସାଆନ୍ତାଣୀଙ୍କ ହାତକୁ ଭଲ ଲାଗିଲା) ୫୫ । (ସକର୍ମକ) କୌଣସି କର୍ମ କୌଣସି ବ୍ୟକ୍ତିକୁ ନିଯୁକ୍ତ ବା ବ୍ୟାପୃତ କରି ରଖିବା—55. To keep a person engaged. (ଯଥା—ତାଙ୍କୁ ଦିନ ରାତି ଘର ଧନ୍ଦା ଲାଗିଛି) ୫୬ । (ସକର୍ମକ) କୌଣସି ସ୍ଥାନ ଅନ୍ୟସ୍ଥାନର ସୀମାବର୍ତ୍ତୀ ହେବା; ନିକଟରେ ଅବସ୍ଥିତ ହେବା; ନିକଟବର୍ତ୍ତୀ ହେବା—56. To be contiguous to. ( ଉ—ଇନ୍ଦ୍ରଙ୍କର ସର ସେଠାକୁ ଲାଗିଛି । କୃଷ୍ଣସିଂହ. ମହାଭାରତ. ବନ । ) ୫୭ । (ସକର୍ମକ) (ନଈ, ସଡ଼କ, ରାସ୍ତା ଆଦି) ଏକାଦିକ୍ରମେ ବା ଅବିଚ୍ଛିନ୍ନ ଭାବରେ ସ୍ଥିତ ହେବା; ଦୁଇ ସ୍ଥାନ ବା ଦୁଇ ବସ୍ତୁକୁ ଯୋଗ କରିବା—57. To join two things or two places; to extend continuously upto a place, to continue from one place to another. [ଯଥା-ଜଗନ୍ନାଥ ସଡ଼କ ପୁରୀଠାରୁ କଲିକତାକୁ ଲାଗିଛି ।) [ଦ୍ର—ସବାର ବାହକ ଥିବା ଗାଡ଼ିମାନେ ଯାଉ ଯାଉ କୌଣସି ସ୍ଥାନର ନିକଟବର୍ତ୍ତୀ ହେଲେ ସବାରିଭାବରେ କହନ୍ତି—ସୁବାଖିଅ ପର ଲାଗି ରହିଛି । ] ୫୮ । (ସକର୍ମକ) ଦେବତା ଆଦିଙ୍କୁ (ଭୋଗ ବା ନୈବେଦ୍ୟରୂପେ) ଅର୍ପିତ ହେବା—58. To be offered to a Deity as

offering. (ଯଥା—ଏ ଖାଉଲାକଦଳୀଭକ୍ତ ହୃଅନ୍ତୁ ଭୋଗ ଲାଗିବ )—୫୯ । (ସକର୍ମକ) ଅନ୍ୟ ସ୍ଥାନ ସଙ୍ଗେ ମିଳିତ ହେବା—59. To meet; to be joined with. (ଯଥା—ଏ ନଈଟି ସମୁଦ୍ରକୁ ଲାଗିଛି) ୬୦ । (ସକର୍ମକ) କୌଣସି କାର୍ଯ୍ୟର ଭାର ବା ଦାୟିତ୍ୱ କୌଣସି ବ୍ୟକ୍ତିଠାରେ ଅର୍ପିତ ହେବା—60. (a responsibility) To devolve upon a person; to be entrusted to a person. [ ଉ—ଲାଗିଲା ଭୂମୁକୁ ଏ ରଘୁକୁଳ, ପୁଣ୍ୟ ଅଯୋଧ୍ୟାର ଯଶ ବକୁଳ । ମଧୁସୂଦନ. ଶ୍ରୀରାମବନବାସ । ] ୬୧ । କୌଣସି ବ୍ୟକ୍ତିର ଭଲ ମନ୍ଦର ତତ୍ତ୍ୱ ନେବାର ଭାର କୌଣସି ବ୍ୟକ୍ତିଠାରେ ନ୍ୟସ୍ତ ହେବା—61. (the looking after a person) To devolve upon a person, [ ଉ—ସୁଗ୍ରୀବଙ୍କ ଗଳାରେ ନେଇ ଲମ୍ବାଇଲେ, ଲାଗିଲା ତୋତେ ବାବୁ ଅଙ୍ଗଦ ବୋଲିଲେ । କୃଷ୍ଣସିଂହ. ମହାଭାରତ. ବନ ।] ୬୨ । ଦୃଢ଼ରୂପେ ସଂଲଗ୍ନ ହେବା—62. To be firmly fixed to. ( ଯଥା—ନୂଆ ଗଛଟିରେ ଚେର ଲାଗିଲାଣି, ସେ ଏଥର ବଞ୍ଚିଯିବ) ୬୩ । ମୂଲିଆରୂପେ କାମ କରିବା—63. To work for daily wages. [ବ୍ରୁ—ଲାଗିବା (ସଂ. ଲଗ୍ ଧାତୁ) ର ଅର୍ଥ ଏକବସ୍ତୁ ଅନ୍ୟ ବସ୍ତୁର ଦେହକୁ ସ୍ପର୍ଶ କରିବା ବା ଅନ୍ୟ ବସ୍ତୁରେ ଲଗ୍ନ ହେବା ବା ମିଳିତ ହେବା; ଏଣୁ ଏହା ମିଳନର ଦୈହିକ, ବାହ୍ୟ, ଅନ୍ତରିକ, କାଳ୍ପନିକ, ଘନିଷ୍ଠ, ସାମୟିକ, ସ୍ଥାୟୀ, ପ୍ରକାରଭେଦରେ ନାନା ଲକ୍ଷଣାର୍ଥ ( Metaphorical sense) ରେ ଲାଗିବା କ୍ରିୟା ନାନା ପ୍ରକାରରେ ବ୍ୟବହୃତ ହୁଏ; ଯଥା—ଆକ୍ରମଣ କରିବା, ଅଘାତ କରିବା, ବୋଧଗମ୍ୟ ହୋଇପାରିବା; ଅବିଚ୍ଛିନ୍ନ ବା ଅବିରତ ଭାବରେ ଥିବା ବା ରହିବା, ଅଟକିବା, ଧାରବାହିକରୂପେ ସ୍ଥିତ ହେବା, ଛୁଇଁବା, ଜଡ଼ିତ ହେବା, ପ୍ରବେଶ କରିବା, ଉପଯୋଗୀ ହେବା, ଫଳପ୍ରଦ ହେବା, ଘଟିବା, ଗଢ଼ କରିବା, ଯୁକ୍ତ ହେବା ସଂଯୁକ୍ତ ହେବା, ନିଯୁକ୍ତ ହେବା, ନିୟୋଜିତ ହେବା, ପ୍ରବର୍ତ୍ତିତ ହେବା, ଅନୁଷ୍ଠିତ ହେବା, ବ୍ୟୟିତ ହେବା, ଆବଶ୍ୟକ ହେବା, ଯୋଡ଼ା ଯିବା, ସହବାସ କରିବା; ମିଳିତ ହେବା । ଏହି କ୍ରିୟାର ଅସମାପିକାରୂପ ସଙ୍ଗେ ଅନ୍ୟ କ୍ରିୟାର ବ୍ୟବହାର;—ଲାଗିଆସିବା, ଲାଗିଥିବା, ଲାଗିପଡ଼ିବା, ଲାଗିଯିବା, ଲାଗି ରହିବା । ଅନ୍ୟ ଅସମାପିକା କ୍ରିୟା ସଙ୍ଗେ ଏ କ୍ରିୟାର ବ୍ୟବହାର; ଯଥା—କହି ଲାଗିବା, ଖାଇଲାଗିବା । ] ପ୍ରାଦେ. ( ଗଡ଼ଜାତ ଓ

[ଲଗା(ଗେ)ଇବା—ଣିଜନ୍ତରୂପ] ସମ୍ବଲପୁର) କ୍ରି—ଧାରିବା; ଋଣ (ଲଗାଯି[ହେ] ହେବା—କର୍ମବାଚ୍ୟରୂପ) କରିବା—
[ଲଗାଇବା—ଲଗିବା] To borrow.
(ଲଗାଲଗି—ପରସ୍ପର ଲାଗିବା କର୍ମ)

**ଲାଗିବା ନ ଲାଗିବା**—ଦେ. କ୍ରି—ସ୍ପର୍ଶ କରିବା ନ କରିବାପରି ଜଣାଯିବା; Lāgibā na lāgibā ଅତି ସୂକ୍ଷ୍ମରୂପେ ସ୍ପର୍ଶ କରିବା—To seem লাগা না লাগা to touch and not to touch; লগনা ন লগনা to touch very slightly. [ ଉ—ସେ (ଲାଗେ କି ନ ଲାଗେ—ଅନ୍ୟରୂପ) ଘୋଡ଼ାଙ୍କର ବେଗ ଅଦ୍ଭୁତ ଚଳିଲା, ଅବନୀରେ ଖୁର ଲାଗିଲା ନ ଲାଗିଲା । କୃଷ୍ଣସିଂହ. ମହାଭାରତ. ବନ ।]

**ଲାଗିବା ମାଗିବା**—ଦେ. କ୍ରି (ଦ୍ୱନ୍ଦ୍ୱଜାତ ସହଚର ଶବ୍ଦ)—ପରିଶ୍ରମ କରି Lāgibā māgibā ଦେହ ପୋଷିବା ଓ ଭିକ୍ଷା କରି ପେଟ খাটা ও ভিক্ষা করা পোষিবা—To earn by one's personal লাগনা মাংগনা labour and to earn by begging.

**ଲାଗିମନ୍ତ**—ପ୍ରାଦେ (ଯାଜପୁର) ବୈଦେ. ବି. (ଫା. ଲଉଞ୍ଜିମା)—ଲଉ Lāgimanta ଞ୍ଜିମା (ଦେଖ)—Laujimā. (See)

**ଲାଗି ଯିବା**—ଦେ. କ୍ରି (ସଂ.ଲଗ୍ ଧାତୁ)—୧ । ସଂଲଗ୍ନ ବା ସମ୍ମିଶ୍ରିତରୂପେ Lāgi jibā ମିଳିତ ହେବା—1. To become merged in. লেগেযাওয়া ୨ । ଯୋଡ଼ି ହୋଇଯିବା—2 To become joined লগজানা to. ୩ । (କୌଣସି କାର୍ଯ୍ୟ) ବରାବର ଚାଲିବା—3. To continue. [ ଉ—ଉତ୍ସବ ଉପରେ ଉତ୍ସବ ଅପର ଲାଗିଗଲା ଖାଲାତରେ । ରାଧାନାଥ. ଯାଜନଗ ।]

**ଲାଗି ରହିବା**—ଦେ. କ୍ରି—୧ । ବହୁକାଳ ପାଇଁ ସଂଲଗ୍ନ ହେବା— Lāgi rahibā 1. To be attached for a long লেগে থাকা time; to linger. [ଉ—ଏବେ ଯୁବା ଲାଗି ରହିଛି লগরহনা ଶ୍ରବଣେ ଅମାନୁଷୀ ସେ ସହ ବାଣୀ । ରାଧାନାଥ. ଯାଜନଗ ।] ୨। ବହୁକାଳ ପାଇଁ ବ୍ୟାପିବା—2. To continue for a long time. ୩ । କୌଣସି କାର୍ଯ୍ୟରେ ବହୁକାଳ ନିଯୁକ୍ତ ରହିବା—3. To be engaged in a work for a long time.

**ଲାଗି ହେବା**—ଦେ. କ୍ରି—୧ । (ଦେହରେ (ବସ୍ତ୍ର ଅଳଙ୍କାର ଆଦି) Lāgi hebā ପିନ୍ଧିବା—1. To put on (dress or ornaপরা ments) [ଉ—ଦ୍ରବ୍ୟ ବାସ ଲାଗି ହୋଇ ଥୁଅନ୍ତି ବେଶ । পহননা, লগানা ଘନଶ୍ୟାମ. ରସବିନୋଦ ।] ୨ । (ଅଳଙ୍କାର ଆଦି) ଦେହରେ ପିନ୍ଧା ଯିବା; ପରିହିତ ହେବା—2. To be put on. (ଯଥା—ଏତକ ଚମ୍ପାଫୁଲ ମହାଦେବଙ୍କଠାରେ ଲାଗି ହେଲେ ଭଲ ହୁଅନ୍ତା)

**ଲାଗୁଆ**—ଦେ. ବି (ସଂ. ଲଗ୍ ଧାତୁ, ଏହା ଲାଗେଲାଗେ, ଅର୍ଥାତ୍ ଏକାଦି Lāguā କ୍ରମେ ହେଉଥିବାରୁ)—(କୌଣସି ବ୍ୟକ୍ତିଙ୍କର ଦୈନିକ বন্দেজী, বাঁধাবন্দোবস্ত ଆବଶ୍ୟକ ଅଧିକ ଖାଦ୍ୟ ସାମଗ୍ରୀ ଆଦି) ଉକ୍ତ লগার, বঁধেজ ଦ୍ରବ୍ୟ ବିକ୍ରୟକାରୀ ବ୍ୟକ୍ତି ପ୍ରତିଦିନ ଆଣି ତାଙ୍କୁ ଅବିଚ୍ଛିନ୍ନରୂପେ ବା ନିୟମମତେ ଯୋଗାଇବାର ବନ୍ଦୋବସ୍ତ— The system or arrangement of supplying articles daily to a customer; regular daily supply of provisions or arti-

cles of every-day necessity to a person by a particular trader or supplier. (ଯଥା—ସାଆନ୍ତଙ୍କ ଘରେ ପ୍ରତିଦିନ ଦୁଧ ଯାଏ ମାଛ ଲାଗୁଆ ହୋଇଅଛି ।) ବିଣ॰—୧ । ପ୍ରତିଦିନ ନିୟମିତ-
ବন্দেজী, বাঁধা ରୂପେ ଯୋଗାଇବା ପାଇଁ ଜଣେ ବ୍ୟକ୍ତି ସଙ୍ଗେ
बंधेज ବନ୍ଦୋବସ୍ତ
ବା କଣ୍ଟ୍ରାକ୍ଟ କରାଯାଇଥିବା ( ବସ୍ତୁ )—1. (Necessaries) Arranged to be supplied regularly every day by a tradesman or hawker to a house-holder. ୨ । ଯେଉଁ
বন্দেজ, বংধেজ দেনেবালা ବ୍ୟକ୍ତି ପ୍ରତିଦିନ ଲାଗୁଆ ଜିନିଷ ଗୃହସ୍ଥଙ୍କୁ
लगारवाला ଯୋଗାଏ—2. (Trader) Supplying articles of everyday use regularly to a person. (ଯଥା—ଲାଗୁଆ କେଉଟୁଣୀ; ଲାଗୁଆ-ଗଉଡ଼ୁଣୀ ଇତ୍ୟାଦି) ୩ । ଲାଗୁଆ ବସ୍ତୁ ଗ୍ରହଣକାରୀ;
বংধেজ बंधेजलेनेवाला ଯେଉଁ ବ୍ୟକ୍ତିଙ୍କ କୌଣସି ବେପାରୀ ପ୍ରତିଦିନ ଲାଗୁଆ ଜିନିଷ ଯୋଗାଏ—3. (Person) Getting a regular supply of daily necessaries from a supplier; being a regular customer of a trader. [ ଦ୍ର—ଜଣେ ବ୍ୟକ୍ତି ଜଣେ ଗୃହସ୍ଥଙ୍କୁ ପ୍ରତିଦିନ କୌଣସି ଗୋଟିଏ ବସ୍ତୁ ନିୟମିତରୂପେ ବା ଲାଗେଲାଗେ ଯୋଗାଇବାର ବନ୍ଦୋବସ୍ତ ବା ପ୍ରଣାଳୀକୁ ଲାଗୁଆ ବୋଲାଯାଏ । ବିକ୍ରୟକାରୀ ଏହି ପଦାର୍ଥର ମୂଲ୍ୟ ପ୍ରତିଦିନ ନଗଦ ବୁଝି ନେଇ ପାରେ, କିମ୍ବା ମାସକରେ ଥରେ ହିସାବ କରି ନେଇ ପାରେ, କିମ୍ବା ଅଗତୁରା ନେଇପାରେ, କିମ୍ବା ସେଥିପାଇଁ ଯାଗିର ଭୋଗ କରିପାରେ । ଜଣେ ବ୍ୟକ୍ତି ଗୃହସ୍ଥର ଆବଶ୍ୟକ ଭାବତୀୟ ପଦାର୍ଥ ଯୋଗାଇ ପାରେ ନାହିଁ; ତେଣୁ କେଉଟ ଲାଗୁଆରେ ମାଛ ଦିଏ, ଗଉଡ଼ ଦୁଧ ଦିଏ, ତେଲି ତେଲ ଦିଏ, ଗୁଡ଼ିଆ ମିଷ୍ଟାନ୍ନ ଦିଏ ଓ ମୁଦି ଦୈନିକ ଲୋଡ଼ା ସଉଦା ପତ୍ର ଦିଏ । ] ପ୍ରାଦେ (ସମ୍ବଲପୁର) ବିଣ—ଋଣଗ୍ରସ୍ତ—Indebted; heavily involved in debt.

**ଲାଗୁଆ କରିବା**—ଦେ. କ୍ରି—୧ । (କୌଣସିବ୍ୟକ୍ତି ତାଙ୍କୁ) କୌଣସି
Lāguā kariba ଦ୍ରବ୍ୟ ନିୟମିତରୂପେ ଆଣି ଯୋଗାଇବା ପାଇଁ
বাঁধাবন্দোবস্তকরা लगारकरना କୌଣସି ଦ୍ରବ୍ୟବିକ୍ରେତା ସଙ୍ଗେ ବନ୍ଦୋବସ୍ତ କରିବା—1. To arrange or contract with a trader or seller of any provision or commodity, that he should regularly supply a particular article to a person daily. ୨ । (କୌଣସି ବିକ୍ରେତା) କୌଣସି ଦ୍ରବ୍ୟ ନିୟମିତରୂପେ ପ୍ରତିଦିନ ଯୋଗାଇବା ପାଇଁ କୌଣସି କ୍ରେତାଙ୍କ ସଙ୍ଗେ କରାର କରିବା—2. To contract or promise to supply a particular provision regularly to any customer every day.

**ଲାଗୁଆ ଗ୍ରାହକ**—ଦେ॰ ବି—ଯେଉଁ ଗ୍ରାହକ କୌଣସି ବେପାରୀଠାରୁ
Lāguā grāhaka ନିୟମିତରୂପେ ପ୍ରତିଦିନ ସଉଦା କିଣେ—
বাঁধা গ্রাহক लागार ग्राहक A regular customer of a trader.
ଲାଗୁଆ ଗ(ଗି)ରା କ(ଖ)
ଲାଗୁଆ ଗହକ } ଗ୍ରାମ୍ୟରୂପ

**ଲାଗୁଆଣି**—ଦେ॰ ସ—ଚୁଲିରେ ପ୍ରଥମେ ନିଆଁ ଲଗାଇବା ପାଇଁ ଯେଉଁ
Lāguāṇi ଶୁଖିଲା କାଠ ବା ଅନ୍ୟ ସହଜଦାହ୍ୟ ପଦାର୍ଥ
আগুন ধবাবার জিনিস आग पजारनेकी चीज ବ୍ୟବହୃତ ହୁଏ—Any dry or inflammable article (dry chips of wood or straw or paper) used for igniting fire in an oven.

**ଲାଗୁଆ ଦେବା**—ଦେ. କ୍ରି—(ବେପାରୀ ବା ଦ୍ରବ୍ୟ ବିକ୍ରେତା)—
Lāguā debā କୌଣସି ବ୍ୟକ୍ତିଙ୍କୁ ପ୍ରତିଦିନ ନିୟମିତରୂପେ
বন্দেজী দেওয়া लगारदेना କୌଣସି ବସ୍ତୁ ଯୋଗାଇବା—(A trader or sellor) To supply daily any article to a customer.

**ଲାଗୁଆ ନେବା**—ଦେ॰ କ୍ରି—କୌଣସି ବିକ୍ରେତାଠାରୁ 'ଲାଗୁଆ ଚୁକ୍ତିରେ
Lāguā nebā କୌଣସି ବସ୍ତୁ ପ୍ରତିଦିନ ଗ୍ରହଣ କରିବା—
বন্দেজী লওয়া लगार लेना (A house holder) To take a daily supply of any article from a sellor under the 'Lāguā' arrangement.

**ଲାଗୁଆ ମୂଲିଆ**—ଦେ॰ ବି. ପୁଂ—୧ । ଯେଉଁ ମୂଲିଆ ଚୁକ୍ତି କରି ପ୍ରତିଦିନ
Lāguā mūliā ଜଣେ ବ୍ୟକ୍ତିଙ୍କ ନିକଟରେ ମୂଲ ଲାଗେ—
বাঁধামজুর, লাগমইঠা 1. A day-labourer who works
लगार मजदूर for a particular person every-
(ଲାଗୁଆ ମଜୁରିଆ—ଅନ୍ୟରୂପ) day. ୨ । ଯେଉଁ ମୂଲିଆ ଏକ-
(ଲାଗୁଆ ମୂଲିଆଣୀ—ସ୍ତ୍ରୀ) ବର୍ଷ ପାଇଁ ମାଲିକଙ୍କ ଘରକାମ କରେ
2. A labourer who contracts to work for wages for a master for one year.

**ଲାଗୁଡ଼ିକ**—ସ. ବିଣ ଓ ବି॰ ପୁଂ ( ଲଗୁଡ଼+ପ୍ରହରଣାର୍ଥ ଇକ )—
Lagurdika ଲାକୁଟିକ ( ଦେଖ )—
(ଲାଗୁଡ଼ିକୀ—ସ୍ତ୍ରୀ) Lākuṭika ( See )

**ଲାଗୁଣି**—ଦେ. ବି—୧ । ଖଚ; ଚୁଗୁଲି—1. Backbiting.
Lāguṇi ୨ । ଲାଗୁଆଣି ( ଦେଖ )—2. Lāguāṇi
লাগানী নো) चुगली ( See )

**ଲାଗୁଣିଆ(ଆ)**—ଦେ.ବି. ପୁଂ—୧ । ମୂଲିଆ; ଦିନ ମଜୁରିଆ—1. Day-
Lāguṇiā(āṅ) laboure. ୨ । ଲାଗୁଆ ମୂଲିଆ ( ଦେଖ)
লাগানিয়া 2. Lāguā mūliā ( See ) ୩ । ଯେ
लगार ଚୁଗୁଲି କରେ; ଖଚୁଆ—3. A backbiter.
লাগানো ୪ । ଯେଉଁ ବ୍ୟକ୍ତି ତନ୍ତ୍ର ମନ୍ତ୍ରାଦି ପ୍ରୟୋଗ ପୂର୍ବକ
লুতরা चुगलखोर ଅନ୍ୟ ବ୍ୟକ୍ତିଠାରେ ଡାହାଣୀ. ଭୂତ, ରୋଗାଦି
ওঝা ଲଗାଏ—4. A person who employs
टोनिया Tantric means or black magic to

make other people possessed with evil
[ লাগানিয়া, লাগাঅ(ও) spirits. ଦେ. ବଣ—ଅବଶ୍ରାନ୍ତ;
लगातार ଅବଚ୍ଛିନ୍ନ—Uninterrupted.

**ଲଗୁଣିଆ ଭଙ୍ଗୁଣିଆ**—ଦେ. ବ ( ସହଚର ଶବ୍ଦ )—ଖଣ୍ଡୁଆ ଓ କାର୍ଯ୍ୟରେ
Lāguṇiā bhāṅguṇiā ବିଘ୍ନକାରୀ—A backbiter
লাগানিয়া ভাঙ্গানিয়া and a person who puts obsta-
लुतरा उतरा cles in the performance of a work.

**ଲଗୁଣି କରିବା**—ଦେ. କ୍ରି—ପରୋକ୍ଷରେ କୌଣସି ବ୍ୟକ୍ତି ନାମରେ
Lāguṇi karibā ଖଳ କହିବା—To backbite a
লাগান चुगली खाना person.

**ଲଗୁଣି ଭଙ୍ଗୁଣି**—ଦେ. ବ—ଖଳ; ଚଗୁଲି—Backbiting.
Lāguṇi bhāṅguṇi

**ଲଗୁଣୀ**—ଦେ. ବ. ସ୍ତ୍ରୀ—୧ । ମୂଲିଆଣୀ—1. A female day-
Lāguṇī labourer. ୨ । ବନ୍ଧା ମୂଲିଆଣୀ; ଯେଉଁ
বাঁধা মজুরনী ମୂଲିଆଣୀ ପ୍ରତିଦିନ ପ୍ରଭୁଙ୍କ କାମ କରେ—2. A
बंदेजी मजुरनी regular female day-labourer. ପ୍ରାଦେ.
( କଟକସହର ) ବ—ନାଗୁଣୀ; ମାଈ ନାଗସାପ—
A female 'Nāga' serpent.

**ଲଗୁତି**—ଦେ. ବ—ଲଗଉତି ( ଦେଖ )
Lāguti Lagauti ( See )

**ଲଗୁ ଲଗୁ**—ଦେ. ଅ ( ଲାଗିବା କ୍ରିୟାର ଅସମାପିକାରୂପର ଦ୍ୱିପ୍ରୟୋଗ );
Lāgu lāgu —ଅନୁଭୂତ ହେବାର ବା ଲାଗିବାର ଆରମ୍ଭରେ;
লাগতে লাগতে ଆରମ୍ଭ ହେଉ ହେଉ—While beginning;
लगते लगते at the beginning. [ ଉ—କ୍ଷୁଦ୍ରମୋସ୍ତବ
ବଚ୍ଛେଦ ଯଶୁ, ଲାଗି ଉଚାଇତ ଲାଗୁ ଲାଗୁ । କବିସୂର୍ଯ୍ୟ.
ସଙ୍ଗୀତ । ]

**ଲାଗେ**—ଦେ. କ୍ରି. ବଣ. ( ସଂ. ଲଗ୍ନେ ) [ ଏହି ଓ ସେହି ଶବ୍ଦ ସଙ୍ଗେ
Lāge ଯୁକ୍ତ ହୋଇ ବ୍ୟବହୃତ ହୁଏ, ଯଥା—ଏହି ଲାଗେ
क्षने ଏଇ ଲାଗେ, ଇ ଲାଗେ=ବର୍ତ୍ତମାନ; ସେହି ଲାଗେ,
वक्त ସେଇ ଲାଗେ, ସି ଲାଗେ=ତତ୍ କ୍ଷଣାତ୍ ]—
କ୍ଷଣରେ—At a particular moment. ଅ—
লাগে ୧ । କୁକୁରମାନଙ୍କୁ ବଲୁଆ, ମାଙ୍କଡ଼ଆଦି ଶିକାରଙ୍କ ପଛରେ
लागो, लगेलगे ଲଗାଇବା ବ୍ୟକ୍ତିର ଉଚ୍ଚାରଣ କରିବା ଶବ୍ଦ—1.
( Interjection ) A word or halloo uttered
by persons to encourage or exhort
dogs set on a prey. ୨ । ନିକଟରେ; ପାଖରେ;
পাশে ସନ୍ନିକଟରେ—2 Near; by the side of.
पासमे [ ଉ—ମିଳିଲା ଉଥଣ୍ଡ ଲାଗେ । ଯଶୋବନ୍ତ.
ବ୍ରହ୍ମଗୀତା । ] ୩ । ଦେହରେ, ସଙ୍ଗେ—3. In the
সঙ্গে, গায়ে body of; in the company of. [ ଉ—
बदनमे ବଳ୍କଳ ଯେସନେ କଳାମେଘେ, ଦିଶନ୍ତି ଗୋବର୍ଦ୍ଧନର
ଲାଗେ । ଜଗନ୍ନାଥ. ଭାଗବତ । ] ଦେ. କ୍ରି.
লাগে ( ଲାଗିବା କ୍ରିୟାର କର୍ତ୍ତୃପ୍ରକୃତ୍ତି ବର୍ତ୍ତମାନକାଳ ନୃତୀୟ
लगता है ପୁରୁଷ ଏକବଚନ ) ( ସେ, ତାହା )—ଲାଗଇ—
( that ) Does devolve on.

**ଲାଗେ ଲାଗେ**—ଦେ. କ୍ରି. ବଣ—୧ । ଭୂଆଇ ଭୂଆଇ; ଉପର୍ଯ୍ୟୁପରି
Lāge lāge —1. Repeatedly; successively.
একনা(লা)গাড়ে ୨ । ଅବଶ୍ରାନ୍ତ ଭାବରେ—2. Constantly;
लगातार without rest. ୩ । ତତ୍‌କ୍ଷଣାତ—3.
Immediately; at once. ଅ—୧ । ଲାଗିବା
ପ୍ରାୟ; ଅସନ୍ନ; ସ୍ପର୍ଶ ହେବା ପରି—1. Almost
touching; almost clinging. [ ଉ—ଦନ-
ପଦ୍ମର ବେଳେ ଦୁଇ ଜାହାଜ, ଲେଟାଲେଟି ଠୋକର
লাগেলাগে ଲାଗେ ଲାଗେ । ଫକୀରମୋହନ. ଗଳ୍ପସ୍ୱଳ୍ପ । ] ୨ ।
সঙ্গেসঙ্গে ସଙ୍ଗେ ସଙ୍ଗେ; ପାଖେ ପାଖେ; ସାନ୍ନିଧ୍ୟରେ—2. Near
लगातार; साथेसाथ about; by the side of. [ ଉ—
ଅମ୍ଭେ ସକଳେ ତୋର ସଙ୍ଗେ, ଥିବୁ ତୋ ରଥ ଲାଗେ
ଲାଗେ । ଜଗନ୍ନାଥ. ଭାଗବତ । ]

**ଲାଗେ ଶିର୍**—ଦେ. ବ (ନାହାଜିଆ ଭାଷା )—ନମସ୍କାର—(Nuatical
Lāge śir term) Good morning! I bow my
লাগেসীব head. [ଉ—ତଣ୍ଡେଲ—ଲାଗେଶିର; ଖଲାସି-
लागेसीर ଏଁ, ଯୁଁ । ଫକୀରମୋହନ. ଗଳ୍ପସ୍ୱଳ୍ପ । ]

**ଲାଘ୍ (ଧାତୁ)**—ସ—୧ । ସଙ୍ଗେ ସମାନ ହେବା—1. To be equal
Lāgh (root) to. ୨ । ଯଥେଷ୍ଟ ହେବା—2. To
suffice ( Apte ). ୩ । ସମର୍ଥ ହେବା—3. To
be competent ( Apte ).

**ଲାଘବ**—ସ. ବ—(ଲଘୁ+ଭାବ. ଅ)—୧ । ଲଘୁତା; ଲଘୁଭାବ—
Lāghaba 1. Lightness; levity. ୨ । କ୍ଷୁଦ୍ରତ୍ୱ—
2. Smallness; insignificance. ୩ । କ୍ଷିପ୍ରତା;
ଶୀଘ୍ରତା—3. Haste; swiftness; agility.
୪ । ଗୌରବହାନି; ଅପମାନ—4. Dishonour;
diminution of honour. ୫ । ସୁସ୍ଥତା; ଆରୋଗ୍ୟ
5. Convalescence. ୬ । କମି ଯିବା—6.
Becoming less; becoming diminished.
୭ । ଛୋଟ ହେବା—7. Becoming small. ୮ ।
କ୍ଲୈବ୍ୟ; କ୍ଳୀବତା—8. Impotence; eunochism.
ଦେ. ବ—୧ । ଲଘୁହସ୍ତତା—1. Lighthanded-
ness; agility; dexterity. [ ଉ—ଶ୍ରୀକୃଷ୍ଣଙ୍କର
ଯୁଝିବା ଲାଘବ ଦେଖି କରି । କୃଷ୍ଣସିଂହ. ମହାଭାରତ
ଆଦି । ] ୨ । କୌଶଳ—2. Skill. [ ଉ—
ଉଭୟ ବାହିବା ଲାଘବେ ଅର୍ଜ୍ଜୁନଙ୍କ, ରଥ କଲା ଗଗନରେ
ଭସ୍ମ ପବନଙ୍କ । କୃଷ୍ଣସିଂହ ମହାଭାରତ ବିରାଟ ।]

**ଲାଘବକାରୀ**—ସ. ବଣ—୧ । ଯାହା ହାଲୁକା କରେ—1. Lighten-
Lāghabakārī ing. ୨ । ଆରୋଗ୍ୟକାରୀ—
2. Alleviating; curing.

ଲାଘବିକ—ସଂ. ବି—(ଲଘୁ+ଇକ)—ସଂକ୍ଷିପ୍ତ (ବିଶ୍ୱକୋଷ)—
Lāghabika Succinct.

ଲାଘବୀ—ସଂ. ବିଣ. ପୁଂ—(ଲାଘବ+ଇନ୍; ୧ମା. ୧ବ)—୧ । ମିତ-
Lāghabī ବ୍ୟୟୀ—1. Frugal; sparing. ୨ । କଠିନ—
2. Hard.

ଲାଙ୍କିଆ—ଦେ. (ପ୍ରାଚୀନ) ବି.—କଳା ବାହାରିଥିବା ଶସ୍ତ୍ର ବିଶେଷ—
Lāṅkiā A forked weapon.
[ଦ୍ର—ଏହାର ଉପର ଭାଗ ଦନ୍ତୁରିତ ।]

ଲାଙ୍ଗ୍ ଲାଙ୍ଗ୍—ପ୍ରାଦେ (ସମ୍ବଲପୁର) କ୍ରି. ବିଣ—ଲମ୍ବ ଲମ୍ବ ହୋଇ
Lāṅglāṅg (ଶୋଇବା)—Prostrate (lying down).

ଲାଙ୍ଗଡ଼ ପାଙ୍ଗଡ଼ ହେବା—ଦେ. କ୍ରି—(ସଂ. ଲାଙ୍ଗୁଳ)—ଲାଙ୍ଗୁଡ଼ାଇବା
Lāṅgarḍa pāṅgarḍa hebā Lāṅgurḍāibā (See)

ଲାଙ୍ଗଡ଼ ପାଙ୍ଗଡ଼ ହେବା,
ଲାଙ୍ଗୁଡ଼ାଇବା
ଲାଙ୍ଗେଡ଼ଇ ପାଙ୍ଗେଡ଼ଇ ହେବା
ଲାଙ୍ଗ ପାଙ୍ଗ ହେବା
}—ଅନ୍ୟରୂପ

ଲାଙ୍ଗଡ଼ିଆ—ପ୍ରଦେ.—(ଗଞ୍ଜାମ) ବି—ଲାଙ୍ଗୁଡ଼ା ପୋକ (ଦେଖ)
Lāṅgarḍiyā Lāṅgurḍā poka (See)

ଲାଙ୍ଗନୀ—ସଂ. ବି—(ବୈଦ୍ୟକ)—ପୃଶ୍ନିପର୍ଣ୍ଣୀ (ଦେଖ)
Lāṅganī Pṛuśni parṇṇī (See)

ଲାଙ୍ଗଳ—ସଂ. ବି—(ଲନ୍ଗ୍ ଧାତୁ=ଗମନ କରିବା+କର୍ତ୍ତୃ. ଅଳ)—
Lāṅgaḷa ୧ । ଯୁଗବାହ୍ୟ ଭୂମିକର୍ଷଣ ଯନ୍ତ୍ର ବିଶେଷ; ଲଙ୍ଗଳ;
ହଳ—1. Plough. ୨ । ଲହ ଲାଙ୍ଗଳିଆ (ଦେଖ)—
2. Wolfsbane (plant) ୩ । ତାଳବୃକ୍ଷ—3.
Palm tree. ୪ । ପ୍ରାଚୀନ ଭାରତରେ ବ୍ୟବହୃତ
ଲଙ୍ଗଳାକୃତି ଯୁଦ୍ଧାସ୍ତ୍ର—4. A plough-shaped
weapon used in war in ancient India.
[ଦ୍ର—ଏହା ଷଡ଼୍ୟ ହାତ ଦୀର୍ଘ ଓ ମସୃଣ; ଏହା ଦୁଇସ୍ଥାନରେ
ବକ୍ର ଓ ଶିଖାଶୂନ୍ୟ ଏହାର ମୂଳାଂଶ ଓ ମୁଖ ଲୌହବଦ୍ଧ ।
ଏହା ଲଙ୍ଗଳପରି ଆକୃତିବିଶିଷ୍ଟ; ବଳରାମଙ୍କର ଏହା ଓ
ମୂଷଳ ଆୟୁଧ ଥିଲା ] ୫ । ଲିଙ୍ଗ; ଶିଶ୍ନ—5, Male
organ. ୬ । ଚନ୍ଦ୍ରଙ୍କର ଅର୍ଦ୍ଧକ ଠାରୁ କମି ହେବା
ଖଣ୍ଡିତାବସ୍ଥା—6. The crescent shape of the
moon (Apte) (which is less than half-
moon). ୭ । ପୁଷ୍ପ ବିଶେଷ (ହି. ଶ.)—7. A
kind of flower (Apte). ୮ । ଗୃହ ନିର୍ମାଣରେ
ବ୍ୟବହୃତ ଏକ ପ୍ରକାର କାଷ୍ଠ—8. A bit of wood
used in building houses (Apte).

ଲାଙ୍ଗଳକ—ସଂ. ବି—ସୁଶ୍ରୁତ ମତରେ ଭଗନ୍ଦର ରୋଗରେ ଗୁହ୍ୟଦ୍ୱାରରେ
Lāṅgaḷaka ଶସ୍ତ୍ର ଚିକିତ୍ସାଦ୍ୱାରା କରାଯିବା ଛେଦ (ହି. ଶ)—
A plough-shaped incision made in the
anus for curing fistula.

ଲାଙ୍ଗଳକୀ—ସଂ. ବି.—ଲହ ଲାଙ୍ଗଳିଆ ଗୁଳ୍ମ—
Lāṅgaḷakī Wolfsbane (plant).

ଲାଙ୍ଗଳଗ୍ରହ—ସଂ. ବି. ପୁଂ—(ଲାଙ୍ଗଳ+ଗ୍ରହ ଧାତୁ+କର୍ତ୍ତୃ. ଅ)—୧ ।
Lāṅgaḷa graha ହଳୁଆ; ଯେ ହଳବୁଲାଏ—1. Plough-
man. ୨ । ଚଷା; କୃଷକ—2. Cultivator.

ଲାଙ୍ଗଳ ଚକ୍ର—ସଂ. ବି—ଫଳିତ ଜ୍ୟୋତିଷୋକ୍ତ ଲଙ୍ଗଳାକାର ଚକ୍ରବିଶେଷ,
Lāṅgaḷa chakra ଯହିଁଦ୍ୱାରା ଆଗାମୀ ଫସଲ ସମ୍ବନ୍ଧୀୟ ଶୁଭାଶୁଭ
ଫଳ ନିର୍ଣ୍ଣୀତ ହୁଏ [ହି. ଶ.]—A plough-shaped
astrological figure drawn for calculating
the future of thi next crop.

ଲାଙ୍ଗଳ ଦଣ୍ଡ—ସଂ. ବି—[୬ଷ୍ଠୀ ତତ୍]—ଲାଙ୍ଗଳୀଷା; ଈଷ; ଯେଉଁ ଦଣ୍ଡ
Lāṅgaḷa daṇḍa ଲଙ୍ଗଳକୁ ଯୁଆଳି ସଙ୍ଗେ ସଂଯୁକ୍ତ କରେ—
The beam of a plough; plough-staff.

ଲାଙ୍ଗଳ ଧ୍ୱଜ—ସଂ. ବିଣ. ପୁଂ—(ବହୁବ୍ରୀହି) ବଳରାମ—
Lāṅgaḷa dhwaja A name of Baḷarāma.

ଲାଙ୍ଗଳ ପଦ୍ଧତି—ସଂ. ବି (ମ.ପ.ଲୋ)—ହଳଦ୍ୱାରା ଚଷିବା ଯୋଗୁଁ ଭୂମିରେ
Lāṅgaḷa paddhati ଯେଉଁ ଲମ୍ବ ରେଖା ଖୋଳ ହୋଇଯାଏ;
ସିଆର; ସୀତା ରେଖା—The forrow or deep line left
on the ground ploughing by.

ଲାଙ୍ଗଳ ଫଳା—ସଂ. ବି—ଫଳମା; ଫାଳ; ଲଙ୍ଗଳଲୁହା—
Lāṅgaḷa phaḷā Ploughing iron; ploughshare.

ଲାଙ୍ଗଳାକ୍ଷ—ସଂ. ବି.—(ବହୁବ୍ରୀହି)—ଲହଲାଙ୍ଗଳିଆ (ହି. ଶ.)—
Lāṅgaḷāksha Wolfsbane.

ଲାଙ୍ଗଳାସ୍ତ୍ର—ସଂ. ବି—ଲାଙ୍ଗଳ ୪ (ଦେଖ)
Lāṅgaḷāstra Lāṅgaḷa 4 (See)

ଲାଙ୍ଗଳି—ସଂ. ବି—(ଲାଙ୍ଗଳ+ଇ)—୧ । ଲାଙ୍ଗଳୀ ୧ (ଦେଖ)—
Lāṅgaḷi 1. Lāṅgaḷī 1 (See) ୨ । ହ୍ରସ୍ୱ ଈଷଯୁକ୍ତ
ଲଙ୍ଗଳ—2, A plough with a short beam.
୩ । ମଞ୍ଜିଷ୍ଠା—(ହି. ଶ)—3. Indian madder.
୪ । ଜଳପିପ୍ପଳୀ (ହି. ଶ.)—4. Purple lippia
(plant) ୫ । ପୃଶ୍ନିପର୍ଣ୍ଣୀ (ହି. ଶ.)—5. Pruśni
parṇṇī. ୬ । ଗଜପିପ୍ପଳୀ [ହି. ଶ.] (ଦେଖ)—6,
Gajapippaḷī. ୭ । ଚବ୍ୟ; ଗୁଇଁ କାଠ (ହି. ଶ.)
7. Piper Chaba. ୮ । ମହାଶ୍ରାବଣୀ ନାମକ ଲତା
(ହି. ଶ.)—8. A kind of creeper. ୯
ଋଷଭକ ନାମକ ଔଷଧି—9. A kind of rare
herbarious plant.

ଲାଙ୍ଗଳିକ—ସଂ. ବି. ପୁଂ—(ଲାଙ୍ଗଳ+ଇକ)—୧ । ହଳୁଆ; ଯେ ହଳ
Lāṅgaḷika ବୁଲାଏ—1. Ploughman; a tiller.
୨ । ଲାଙ୍ଗଳୀ ୧ (ଦେଖ)—2. Lāṅgaḷī 1 (See)
ବିଣ.—ଲାଙ୍ଗଳସମ୍ବନ୍ଧୀୟ—Relating to a plough.

ଲାଙ୍ଗଳିକା—ସଂ. ବି—(ଲଙ୍ଗଳ+ଇକ+ଆ)—୧ । ଫଳମା; ଲଙ୍ଗଳ-
Lāṅgaḷikā ଲୁହା—1. Ploughshare. ୨ । ରକ୍ତିକା;
ଗୁଞ୍ଜା; କାଇଁଚକୋଳି (ଲତା ଓ ବୀଜ)—2. A creeper;
Abrus Precatorius. ୩ । ମୟୂର ଚୂଳ—3. The

uft of a peacock. ୪ । ମୟୂର ପୁଚ୍ଛ—4. The tail feathers of a peacock

**ଲାଙ୍ଗଳକୀ**—ସଂ. ବଣ. ସ୍ତ୍ରୀ—ଲାଙ୍ଗଳକର ସ୍ତ୍ରୀଲିଙ୍ଗ—
Lāṅgaḷiki Feminine of Lāṅgalika
ସଂ. ବି. ସ୍ତ୍ରୀ—୧ । ଲାଙ୍ଗଳକର ସ୍ତ୍ରୀଲିଙ୍ଗ—1. Feminine of Lāṅgaḷika. ୨ । ଲହଲାଙ୍ଗଳଥ—2. Wolfsbane.

**ଲାଙ୍ଗଳମା**—ସ. ବ—ଲହଲାଙ୍ଗଳଥ [ହି. ଶ.]—
Lāṅgaḷini Wolfsbane.

**ଲାଙ୍ଗଳୀ**—ସଂ. ବି. ପୁଂ—(ଲାଙ୍ଗଳ+ଇନ୍; ୧ମା. ୧କ)— ୧ । ଲଙ୍ଗଳ-
Lāṅgaḷi ଧାରୀ; ହଳୁଆ; କୃଷକ;—Cultivator, ploughman. ୨ । ଲାଙ୍ଗଳାସ୍ତ୍ରଧାରୀ—2. One who is armed with the Lāṅgaḷa weapon. ୩ । (ଲାଙ୍ଗଳ ଏହାଙ୍କ ଅସ୍ତ୍ର ଥିବାରୁ) ଶ୍ରୀକୃଷ୍ଣଙ୍କ ଭାଇ ବଳରାମ—3. Baḷarāma (elder step-brother of Śrikrushṇa). ୪ । ସର୍ପ; ସାପ—4. Serpent. ୫ । (ବୈଦ୍ୟକ) ଲହଲାଙ୍ଗଳଥ (ଦେଖ)—5. Wolfsbane. ୬ । (ବୈଦ୍ୟକ) ଲାଙ୍ଗଳୀଶାକ (ଦେଖ)—6. Lāṅgaḷiśāka. (See) ୭ । (ବୈଦ୍ୟକ) ନାଡ଼ିକେଳ; ନଡ଼ିଆ—7. Cocoanut. ୮ । (ବୈଦ୍ୟକ) ଶୁକଶିମ୍ବି; କପିକଚ୍ଛୁ; ବାଇଡଙ୍କ—8. Cowhage; Mucuna Pruriens. ୯। ଈଶର-ମୂଳ (ଦେଖ)—9. Iśaramūḷa, (See) ୧୦ । (ସ୍ତ୍ରୀ) ପୌରାଣିକ ନଦୀ ବିଶେଷ (ହି. ଶ)—10. Name of a mythological river. ୧୧ । ମଞ୍ଜିଷ୍ଠା (ହି. ଶ)—11. Indian madder. ୧୨ । ପୃଶ୍ନିପର୍ଣ୍ଣୀ (ହି. ଶ) (ଦେଖ)—12. Pruśniparṇṇi. (See) ୧୩ । ଗଜ ପିପ୍ପଳୀ (ହି. ଶ)—13. Plantago Amplexicaulis. ୧୪। ଚବ୍ୟ (ହି. ଶ)—14. Piper Chaba. ୧୫ । ମହାରଣ୍ୟୀ ନାମକ ଲତା (ହି. ଶ)—15. Name of a wild creeper. ୧୬ । ଋଷଭକ (ହି. ଶ)—16. Name of a rare herb.

**ଲାଙ୍ଗଳୀ(ଳି) ବିଷ**—ସ. ବ (ବୈଦ୍ୟକ)—ଲହଲାଙ୍ଗଳଥ (ଦେଖ)
Lāṅgaḷi(ḷi) bisha Wolfsbane.

**ଲାଙ୍ଗଳୀ(ଳି) ଲତା**—ସଂ ବ—ଲାଙ୍ଗଳୀ ୫,୬, ୮, ୧୩ ଓ ୧୫ (ଦେଖ)
Lāṅgaḷi(ḷi) latā Lāṅgaḷi 5, 6, 8 and 13, 15 & (See)

**ଲାଙ୍ଗଳୀଷା**—ସ. ବ (ଲାଙ୍ଗଳ+ଈଷା; ନିପାତନ ସିଦ୍ଧ)—ଲଙ୍ଗଳର
Lāṅgaḷishā ଈଷ—The pole or beam of a
**हरिस** plough.

**ଲାଙ୍ଗଳୀ(ଳି) ଶାକ**—ସ. ବ—ଜଳପିପ୍ପଳୀ; ଏକପ୍ରକାର କଳମ ଶାଗ—
Lāṅgaḷi(ḷi) śāka Purple Lippia; Lippia Nodiflora; Convolvulus Ripens; Ipomœa Reptans.
ଅନ୍ୟ ସ. ନାମ—ତୋୟପିପ୍ପଳୀ, ଜଳାର୍ଣ୍ଣୀ, ଚିତ୍ରଳା, ଶ୍ୟାମାଦନ୍ତ, ଶାରଦୀ, ଶକୁଳାଦନୀ, ମତ୍ସ୍ୟାଦନୀ, ମତ୍ସ୍ୟଗନ୍ଧା ।
**কলমীশাক, কাঁচড়াশাক**
**पनसिगा, गङ्गतिरिया, जलपिपर, करेम्बु**
ଫା. ପିପଲଥାସୀ
ଆ. ଫିଲଫିଲମାୟୂ
ତେ. ତୋମବଚଲଚେଟ୍ଟୁ
ମ. ଜଲପିମ୍ପଲୀ
ଗୁ. ରତବେଲୟୋ
[ ଦ୍ର—ଏହା ପାଣି ଉପରେ ଲଟାଇକର ମାଡ଼େ; ଜଳୁ ଏଥିର ଡେର ଜଳକୂଳରେ ଭୂମିରେ ସଲଗ୍ନ ଥାଏ । ଏହାର ଲତା ରକ୍ତାଭ କୃଷ୍ଣବର୍ଣ୍ଣ, ପତ୍ର ତ୍ରିକୋଣ । ଏହାର ରସ ଶସ୍ତ୍ରକ୍ଷତ ବିଷ ଓ ରକ୍ତ ଦୋଷକୁ ନାଶ କରେ । ଏହାର ପତ୍ରକୁ ଗରିବ ଲୋକମାନେ ଶାଗ କରି ଖାଆନ୍ତି । ବୈଦ୍ୟଶାସ୍ତ୍ର ମତରେ ଏହା ହୃଦ୍ୟ, ଗ୍ରାହୀ, ଚକ୍ଷୁର ହିତକର, ଶୁକ୍ର ବର୍ଦ୍ଧକ, ଲଘୁ, ଧାରକ, ଶୀତବୀର୍ଯ୍ୟ, ରୁକ୍ଷ, କଟୁକଷାୟରସ, କଟୁବିପାକ, ରୁଚକର, ଅଗ୍ନିବର୍ଦ୍ଧକ ଏବଂ ରକ୍ତଦୋଷ, ଦାହ ଓ ବ୍ରଣନାଶକ—ଦ୍ରବ୍ୟଗୁଣ ।]

**ଲାଙ୍ଗଳେଶ୍ୱର**—ଦେ. ବ. ୧। ମହାଦେବଲିଙ୍ଗ ବିଶେଷ—1. Name of
Laṅgaḷeśwara a Siba-liṅga. ୨ । ବାଲେଶ୍ୱର ଜିଲ୍ଲାରେ ଥିବା ସ୍ୱନାମପ୍ରସିଦ୍ଧ ଶିବଲିଙ୍ଗଙ୍କ ନାମରେ ନାମିତ ସ୍ଥାନ—2. Name of a place in Balasore, named according to the Siba Lāṅgaḷeśwara established there.
[ଭି—ରଙ୍ଗଣେ ରଞ୍ଜିତ ସିକଭିଲ ସ୍ଥଳୀ ଲାଙ୍ଗଳେଶ୍ୱର । ଦ୍ୱାଧାନାଥ. ଉଷା ।]

**ଲାଙ୍ଗୁଡ଼**—ଦେ. ବ (ସ. ଲାଙ୍ଗୁଳ)—୧ । ଲାଙ୍ଗୁଳ; ପଶୁ ଅବୟବର ଲମ୍ବ
Lāṅgurḍa ପୁଚ୍ଛ; ଲାଞ୍ଜ—1. The long tail of beasts.
*লেঙ্গুড়, লেজুড়, লেজ, লাঁজ*
**पुँछ, दुम**
୨ । (ଲକ୍ଷଣାର୍ଥ) ପଶୁର ପଛେ ପଛେ ପୁଚ୍ଛ ରହିଥିବା ପରି କୌଣସି ବ୍ୟକ୍ତିଙ୍କୁ ସର୍ବଦା ଅନୁସୃତ କରିଥିବା ବସ୍ତୁ ବା ବ୍ୟକ୍ତି—2. (figurative) A thing or person constantly accompanying following a person; an accompaniment; appurtenance. [ଦ୍ର—କୌଣସି ପଥିକଙ୍କ ସଙ୍ଗରେ ଶିଶୁ ବା ଅକ୍ଷମ ବ୍ୟକ୍ତି ଥିଲେ କହନ୍ତି ଯେ, ସେ ଲୋକ ସାଙ୍ଗରେ ଗୋଟିଏ ଲାଙ୍ଗୁଡ଼ ଅଛି । ଷ୍ଟୀମର୍ ପଛରେ ଖଣ୍ଡେ ଦୁଇ ଖଣ୍ଡ ଡଙ୍ଗାବୋଟ ବନ୍ଧା ହୋଇଥିଲେ କହନ୍ତି ଯେ, ସେ ଷ୍ଟୀମର୍ ପଛରେ ୨ଖଣ୍ଡ ଲାଙ୍ଗୁଡ଼ ବନ୍ଧାହୋଇଛି ।] ୩ । (ଲକ୍ଷଣାର୍ଥ) ଯେଉଁ ଭାର ବା ଦାୟିତ୍ୱକୁ କୌଣସି ବ୍ୟକ୍ତି ନିଜର ଇଚ୍ଛା ବିରୁଦ୍ଧରେ ମଧ୍ୟ ସର୍ବଦା ବହନ କରିବାକୁ ବାଧ୍ୟ ହୁଏ—3. (figurative) An encumbrance.

**ଲାଙ୍ଗୁଡ଼ ଖଣ୍ଡି**—ଦେ. ବଣ ଓ ବ. (ପୁଂ ଓ ସ୍ତ୍ରୀ)—(ସ. ଖଣ୍ଡିତ ଲାଙ୍ଗୁଳ)—
Lāṅgurḍa khaṇḍi ୧ । ଖଣ୍ଡିତପୁଚ୍ଛ (ଜନ୍ତୁ); ଯେଉଁ ପଶୁର ଲମ୍ବ ଲାଞ୍ଜର ଅଗ୍ରଭାଗର ଅଂଶ ଛିଣ୍ଡି ଯାଇଥାଏ; ଯେଉଁ ପଶୁର ଲାଙ୍ଗୁଡ଼ରୁ ଖଣ୍ଡେ (ଲାଙ୍ଗୁଡ଼ ଖଣ୍ଡିଆ—ପୁଂ, ରୂପ) ମାତ୍ର ଅବଶିଷ୍ଟ ଥାଏ—1. Having the end of the tail lopped off; having
*ন্যাজকাটা, লেজকাটা, লেঙ্গুড়কাটা*
**दुमकटा, बंडा**

lost a part of the tail. ୨ । (ଲକ୍ଷଣାର୍ଥ, ମନ୍ଦାର୍ଥ) ଆପଣା ଦଳ ମଧ୍ୟରୁ ବାହାର ଯାଇଥିବା ବା ବାହାରେ ରହିଥିବା ଲୋକ; ଯେଉଁ ବ୍ୟକ୍ତି ଲଙ୍ଗୁଡ଼ଖଣ୍ଡି କଳୁପର ଦଳସ୍ଥ ଅନ୍ୟ ବ୍ୟକ୍ତିଙ୍କ ସହିତ ମିଶେ ନାହିଁ; ଗୋଠ-ଛଣ୍ଡିଆ—2. (Bad sense) A person who does not mix with the members of his party or sect; a renegade.

**ଲଙ୍ଗୁଡ଼ ଗୁଞ୍ଜିବା**—ଦେ. କ୍ରି—(ଭୟରେ କୁକୁର ଆପଣା ଲଙ୍ଗୁଡ଼କୁ Lāngurda gunjibā ଭୂପରକୁ ନ ଟେକି ଦୁଇ ଜଙ୍ଘ ମଧ୍ୟରେ ଲେଜଗୁଟାନ **दुमसिकुड़ाना** ଗୁଞ୍ଜିବାରୁ) (ଲକ୍ଷଣାର୍ଥ) ଭୟଗ୍ରସ୍ତ ହେବା—(figurative) To be overcome with fear.

**ଲଙ୍ଗୁଡ଼ ଟେକିବା**—ଦେ. କ୍ରି—୧ । ଦୌଡ଼ିବା ସମୟରେ (ପଶୁ) ନିଜର Lāngurda ṭekibā ଲଙ୍ଗୁଡ଼କୁ ଊର୍ଦ୍ଧ୍ୱକୁ ଉଠାଇବା—ଲେଁଜତୋଲା **पूंछउठाना** 1. To raise the tail while running (said of a beast). ୨ । (ଲକ୍ଷଣାର୍ଥ) ଉଦ୍ବେଗ ସହିତ ପ୍ରସ୍ତୁତ ରହିବା—2. (figurative) To be ready with eagerness. ୩ । ଉଦ୍ବିଗ୍ନ ହୋଇ କୌଣସି ବିଷୟକୁ ଅପେକ୍ଷା କରିବା—3. To wait for any matter with eagerness. ୪ । (ଲକ୍ଷଣାର୍ଥ: ପଶୁମାନେ ଆନନ୍ଦରେ ଲଙ୍ଗୁଡ଼ ଟେକି ଦଉଡ଼ୁଥିବାରୁ) ଆନନ୍ଦରେ ମତ୍ତ ହେବା—4. (figurative) To be mad with joy.

**ଲଙ୍ଗୁଡ଼ ବାନ୍ଧିବା**—ଦେ. କ୍ରି—୧ । ପଶୁର ଲଙ୍ଗୁଡ଼ପରି ଗୋଟିଏ ଲଙ୍ଗୁଡ଼ Lāngurda bāndhibā ଆପଣାର ପଛରେ ଯୁକ୍ତ କରିବା ବା ଲେଙ୍ଗୁଡ଼(ଲେଜ)ବାନ୍ଧା **पूंछबांधना** ପିନ୍ଧିବା—1. To wear a tail as a dress; to tie a tail to one's hind parts. ୨ । (ଲକ୍ଷଣାର୍ଥ) ଆପଣା ସଙ୍ଗେ ଗୁରୁତ୍ୱ ଅକାମିକା ବ୍ୟକ୍ତି ରଖିବା (ଯାହାଙ୍କୁ ଆପଣାକୁ ଟାଣିବାକୁ ପଡ଼େ)—2. (figurative) To be encumbered ଲେଜୁଡ଼େ ବାଁଧା **दुमभे बांधना** with useless dependants or hangers on.

**ଲଙ୍ଗୁଡ଼ ବିଚ୍ଛାଇବା**—ପ୍ରାଦେ (ଉତ୍ତର ବାଲେଶ୍ୱର) କ୍ରି—ଲଙ୍ଗୁଡ଼କୁ Lāngurda bichhāibā ଇତସ୍ତତଃ ସଞ୍ଚାଳନ କରିବା—ଲେଜନାଡ଼ା, **पुंछहिलाना** To wag the tail.

(**ଲଙ୍ଗୁଡ଼ ହଲ(ଲେ)ଇବା**—ଦେ. ରୂପ)

**ଲଙ୍ଗୁଡ଼ା**—ଦେ. ବିଣ—(ସଂ. ଲାଙ୍ଗୁଲ ଯୁକ୍ତ)—୧ । ଲାଙ୍ଗୁଲଯୁକ୍ତ—Lāngurdā 1. Having a tail; tailed. ୨ । ଯେ ଲେଜୋ **पुंछवाला** ଆପଣା ପଛରେ ଗୋଟାଏ ଲମ୍ବ ଲଞ୍ଜ ପୋଷାକ ରୂପେ ବାନ୍ଧଥାଏ—2. Wearing a tail as a dress. [ଦ୍ର—ଯାତ୍ରାରେ ହନୁମାନ ସୁଅଙ୍ଗ ସାଜିବା ବ୍ୟକ୍ତି ଆପଣା ପଛ ପଟେ ଗୋଟାଏ ଲଙ୍ଗୁଡ଼ ବାନ୍ଧିଥାଏ ।] ୩ । ଲଙ୍ଗୁଡ଼ି ( ଦେଖ )—3. Lāngurdi (See). ୪—ଲଙ୍ଗୁଡ଼ା ପୋକ (ଦେଖ)—Lāngurdā poka (See).

**ଲାଙ୍ଗୁଡ଼ା(ଡ଼େ)ଇବା**—ଦେ. କ୍ରି—( ସଂ. ଲାଙ୍ଗୁଳ )—୧ । (ପଶୁର Lāngurdā(rde)ibā ପଛରେ ଲଙ୍ଗୁଡ଼ ଥିବା ପରି)—କୌଣସି ପେଁାଦେ ପେଁାଦେ ଯାଓୟା ବ୍ୟକ୍ତିର ପଛେ ପଛେ ରହି ସେ ବ୍ୟକ୍ତି **लाँगुलाना, पीछलग गुहोना** ଯେଉଁଆଡ଼େ ଯାଉଥାଏ, ତାହା ପଛେ ପଛେ ଯିବା—1. To follow a person persistently; to hang on the sleeves of a person.

ଲାଙ୍ଗୁଡ଼ି(ଡ଼ି, ଡ଼ୁ) ପାଙ୍ଗୁଡ଼ି(ଡ଼ି, ଡ଼ୁ) ହେବା } ଅନ୍ୟରୂପ
ଲାଙ୍ଗୁଡ଼େଇ ପାଙ୍ଗୁଡ଼େଇ ହେବା }

୨ । ମନରେ କୌଣସି ଗୁପ୍ତ ଉଦ୍ଦେଶ୍ୟ ରଖି ବାହାରେ ଘୁରେବେଡ଼ାନ **लगभाना** ଅନ୍ୟ ଛଳନା ଦେଖାଇ କୌଣସି ସ୍ଥାନରେ ଅପେକ୍ଷା କରି ରହି ଇତସ୍ତତଃ ହେବା; ଲୁଙ୍ଗୁପୁଙ୍ଗୁ ହେବା—2. To loiter at a place on some pretext; to loiter about; to hover about; to haunt about a place. ୩ । ( କୌଣସି ବିଷୟରେ ଆପଣାର ଚିତ୍ତ ବା ମନ )—ସନ୍ଦେହଯୁକ୍ତ ହୋଇ କର୍ତ୍ତବ୍ୟ ନିର୍ଦ୍ଧାରଣ କରି ନ ପାରି ଇତସ୍ତତଃ ହେବା; ଦୋଦୋପାଞ୍ଚ ହେବା—3 To ଇତସ୍ତତ କରା vacillate; to be restless in mind **उधेड़बुन होना** regarding a matter; not to be able to settle what to do; to be unable to settle whether to do or not to do a thing [ଶେଷ ଅର୍ଥରେ ପ୍ରୟୋଗ—ମୁଁ ଲଙ୍ଗୁଡ଼େଇ ହେଉଛି, ବା ମୋମନ ଲଙ୍ଗୁଡ଼େଇ ହେଉଛି । ]

**ଲଙ୍ଗୁଡ଼ା କର**—ପ୍ରାଦେ. ( ଗଡ଼ଜାତ ) ବି—ଗଡ଼ଜାତରେ ଗୋରୁମାନେ Lāngurdā kara ରାଜକୀୟ ଜଙ୍ଗଲରେ ଚରିବା ପାଇଁ ଗୋସ୍ୱାମୀମାନଙ୍କଠାରୁ ଆଦାୟ ହେବା କର—A cess realised from owners of cattle for grazing in the state forests.

**ଲଙ୍ଗୁଡ଼ା ତ(ତା)ର**—ଦେ. ବି ( ସଂ. ଲାଙ୍ଗୁଳ ଓ ତାରା )—ପୁଚ୍ଛଯୁକ୍ତ Lāngurdā ta(tā)rā ତାରା; ଧୂମକେତୁ—Comet. ଲେଜୋତାରା **पुंछलतारा**

**ଲଙ୍ଗୁଡ଼ା ନରସିଂହ ଦେବ**—ଦେ. ବି—ଲାଙ୍ଗୁଲା ନରସିଂହ ଦେବ Lāngurdā narasimha deba ( ଦେଖ )—Lāngulā narasimha deba ( See )

**ଲଙ୍ଗୁଡ଼ା ପୋକ**—ଦେ. ବି—ଏକପ୍ରକାର କୃମି ବା ଅଂଶେଇ—Lāngurdā poka Larva of Eristalis Tenax; ଲେଜୁଡ଼େ ପୋକା rat-tailed larvae; Pupigerous **लंगडिया पिलुआ** larva. [ ଦ୍ର—ଏମାନଙ୍କ ଦେହ କୋମଳ, ମାଂସଳ ଓ ଗୋଲ । ଏମାନେ ପଦହୀନ ଓ ଏମାନଙ୍କର ଗୋଟିଏ ଲଙ୍ଗୁଡ଼ ଥାଏ । ଏମାନେ ପଚା ସଢ଼ା ଘାଅରେ, କର୍ଦ୍ଦମା ପଙ୍କରେ ଓ ମୂତକଳାର ପାଣିରେ ଜନ୍ମନ୍ତି । ]

ପ୍ରକୃତରେ ଏମାନେ ଏକ ଜାତୀୟ ପକ୍ଷଯୁକ୍ତ ପୋକଙ୍କର ( Drone fly ) କୃମି ( larva ଅବସ୍ଥା । ]

**ଲଙ୍ଗୁଡ଼ି**—ଦେ. ବଣ. ପୁଂ. ଓ ସ୍ତ୍ରୀ—୧ । ସେଉଁ ବ୍ୟକ୍ତି ଅନ୍ୟ ବ୍ୟକ୍ତି ସଙ୍ଗେ ସଙ୍ଗେ ଗୋଡ଼ାଇ ଥାଏ; ଅନୁସରଣିଆ— Lāngurdi (ଲଙ୍ଗୁଡ଼ିଆ—ପୁଂ. ରୂପ) [ଲଙ୍ଗୁଡ଼େଇ—ସ୍ତ୍ରୀ] ଲେଜୁଡ଼ 1. One who hangs on the sleeves of another person. ୨ । ପରାନୁଗ୍ରହଭୋଗୀ—2. A hanger on; a toady. **पिछलग्गु, लाग्गु** ୩ । ଲୁଚୁଡ଼ା; ଯେଉଁ ବ୍ୟକ୍ତି ଓର ଉଣ୍ଡି ବୁଲୁଛି ଚକେ ଥାଏ ଓ ବସ୍ତୁର ମାଲିକଙ୍କ ଅମନୋଯୋଗୀ ଥିବା ସମୟରେ **उठाईगीरा; अंटीबाज; उचक्का** ବା ଅନୁପସ୍ଥିତ ସମୟରେ ସୁଯୋଗ ଦେଖି ଚୋରି କରେ—3. A pilferer; one who loiters about a place and seeks proper opportunity to steal or pilfer things when there is none to watch them.

**ଲଙ୍ଗୁଳ**—ସଂ. ବ (ଲଙ୍ଗ୍ ଧାତୁ+କର୍ତ୍ତୃ. ଉଳ)—୧ । (ପଶୁର) ପୁଚ୍ଛ; Lāngula ଲାଞ୍ଜ—1. The tail (of a beast). ୨ । ଶିଶ୍ନ— 2. Membrum virile (Apte)

**ଲଙ୍ଗୁଳ(ଲି,ଲୁ) ପାଙ୍ଗୁଳ(ଲି,ଲୁ) ହେବା**—ଦେ. କ୍ରି—ଲଙ୍ଗୁଡ଼ାଇବା Lāngula(li,lu) pāngula(li,lu) hebā (ଦେଖ) — (ଲଙ୍ଗୁଳେଇବା,ଲଙ୍ଗୁଳେଇ ପାଙ୍ଗୁଳେଇ ହେବା ଅନ୍ୟରୂପ) Lāngurdāibā. (See)

**ଲଙ୍ଗୁଳା** (ଇତ୍ୟାଦି)—ଲଙ୍ଗୁଡ଼ା ଇତ୍ୟାଦି (ଦେଖ) Lāngulā (etc) Lāngurdā etc. (See)

**ଲଙ୍ଗୁଳା ନରସିଂହ ଦେବ**—ଦେ. ବ (ନାମ)—ଖ୍ରୀଷ୍ଟୀୟ ତ୍ରୟୋଦଶ Lāngulā narasimha deba ଶତାବ୍ଦୀର ଉତ୍କଳର ଗଙ୍ଗ- (ଲଙ୍ଗୁଳିଆ ନରସିଂହ ଦେବ—ଅନ୍ୟରୂପ) ବଂଶୀୟ ଜଣେକ ସ୍ୱାଧୀନ ରାଜା—Name of an independent king of Orissa (1237 to 1282 A D) who built the sun temple of Konārka in the Puri district. [କ୍ର—ଏହାଙ୍କ ରାଜବେଶ ମଧ୍ୟରେ କଟିଦେଶର ପଛଆଡ଼େ ଲଙ୍ଗୁଳ ପରି ଗୋଟିଏ ଲମ୍ବ ଲମ୍ବ ଭୂଷଣ ଝୁଲୁ ଥିଲା, ତେଣୁ ସେ 'ଲଙ୍ଗୁଳା', 'ଲଙ୍ଗୁଳିଆ' ବା 'ସପୁଚ୍ଛ' ନରସିଂହ ଦେବ ନାମରେ ପରିଚିତ । ଏ ବିଶେଷ ବଳଶାଳୀ ଥିଲେ । ଦାକ୍ଷିଣାତ୍ୟର ଚଦାଗୁପ୍ତ ରାଜାମାନଙ୍କ ସଙ୍ଗେ ଏ ଯୁଦ୍ଧକରି ଜୟୀ ହୋଇଥିଲେ ବୋଲି ପ୍ରବାଦ ଅଛି ।

କୋଣାର୍କର ପ୍ରସିଦ୍ଧ ସୂର୍ଯ୍ୟମନ୍ଦିରର ନିର୍ମାଣ ଏହାଙ୍କ ରାଜତ୍ୱର ପ୍ରଧାନ ଘଟନା । ଉକ୍ତ ମନ୍ଦିରରେ ଓଡ଼ିଶାର ଦ୍ୱାଦଶ ବର୍ଷର ରାଜସ୍ୱ ନିୟୋଜିତ ହୋଇଥିଲା । ଏହାଙ୍କ ମନ୍ତ୍ରୀ ଶିବେଇ ସାନ୍ତରା ଏ ମନ୍ଦିରରେ କାର୍ଯ୍ୟ କରୁଥିବା ହଜାରେ (ମତାନ୍ତରରେ ୧୨୦୦) ବଢ଼େଇ ବା ପଥରିଆ କାରିଗରଙ୍କ କାର୍ଯ୍ୟର ତତ୍ତ୍ୱାବଧାରକ ନିଯୁକ୍ତ ଥିଲେ । ଏହାଙ୍କ ରାଜତ୍ୱ ସମୟରେ ବଙ୍ଗଳାର ମୁସଲମାନ ଶାସନକର୍ତ୍ତା ତୋଗାନ୍ ଖାଁ ଏକ ଥର ଓ ତାଙ୍କ ପରେ ତୋଗ୍ରଲ୍ ଖାଁ ଲକ୍ଷଣଗ ଓଡ଼ିଶା ଆକ୍ରମଣ କରିଥିଲେ ଓ ଶେଷରେ ପରାଜିତ ହୋଇ ପଳାଇ ଯାଇଥିଲେ ।]

**ଲଙ୍ଗୁଳି**—ଦେ. ବଣ—ଲଙ୍ଗୁଡ଼ି (ଦେଖ) Lānguli Lāngurdi. (See)

**ଲଙ୍ଗୁଳ**—ସ. ବ (ଲଗ ଧାତୁ+କର୍ତ୍ତୃ. ଉଳ; ଯାହା ଜୀବର ପୃଷ୍ଠ Lāngūla ଶେଷରେ ଲାଗିଥାଏ)—୧ । ପଶୁ ଆଦିଙ୍କର ପୁଚ୍ଛ; ଲାଞ୍ଜ; ଲମ୍ବପୁଚ୍ଛ—1. Long tail of beasts. ୨ । ଲୋମଶ ପୁଚ୍ଛ—2. Hairy tail. ୩ । ଶସ୍ୟାଗାର; ଅମାର—3. A granary (Apte). ୪ । ଶିଶ୍ନ, ଲିଙ୍ଗ— 4. Membrum virile.

**ଲାଙ୍ଗୂଲହୀନ**—ସ. ବଣ. ପୁ. ( ଜାହା ଛତ )—୧ । ପୁଚ୍ଛବିହୀନ— Lāngūlahina 1. Tailless. ୨ । ଲଙ୍ଗୁଡ଼କଣ୍ଡି— (ଲାଙ୍ଗୂଲହୀନା—ସ୍ତ୍ରୀ) 2. Shorn of its tail.

**ଲାଙ୍ଗୂଳା**—ସ. ବ—୧ । ପୃଶ୍ନିପର୍ଣ୍ଣୀ (ଉ. ଶ)—1, Hemionites Lāngūlā Cordifolia. ୨। କପିକଚ୍ଛୁ; ବାଇଡଙ୍କ (ଉ. ଶ)— 2. Cowhage.

**ଲାଙ୍ଗୂଳିକା**—ସ. ବ ( ଲାଙ୍ଗୁଳ+ଇକ+ଆ )—ପୃଶ୍ନିପର୍ଣ୍ଣୀ ନାମକ Lāngūlikā ଲତା—A creeper; Hemionites Cordifolia.

**ଲାଙ୍ଗୂଳୀ**—ସ. ବଣ. ପୁଂ (ଲାଙ୍ଗୁଳ+ଇନ୍; ୧ମା. ୧ବ)—ପୁଚ୍ଛଯୁକ୍ତ— Lāngūli Having a tail. ବ. ପୁଂ—୧ । ବାନର; (ଲାଙ୍ଗୂଲିନୀ—ସ୍ତ୍ରୀ) ମର୍କଟ—1. Monkey. ୨ । ଋଷଭକ ନାମକ ଔଷଧ—2. Name of a rare medicinal root. ୩ । ପୃଶ୍ନିପର୍ଣ୍ଣୀ (ଉ. ଶ)—3. Hemionites Cordi folia. ୪ । ବାଇଡଙ୍କ (ଉ. ଶ)—4. Cowhage.

**ଲାଙ୍ଗେଇବା**—ଦେ. କ୍ରି—ଲାଙ୍ଗୁଡ଼ାଇବା (ଦେଖ) Lāngeibā Lāngurdāibā. (See) (ଲାଙ୍ଗେଇ ପାଙ୍ଗେଇ ହେବା—ଅନ୍ୟରୂପ)

**ଲାଚ** (ଇତ୍ୟାଦି)—ପ୍ରାଦେ (କଟକ ସହର) ବା—ନାଚ ଇତ୍ୟାଦି (ଦେଖ) Lācha (etc) Nācha etc (See)

**ଲାଚାର**—ବୈଦେ. ବ. (ଫା)—୧ । ନାଚାର; ଅକ୍ଷମ—1. Unfit; Lāchār unable. ୨ । ଦୁର୍ବଳ; ନିର୍ବଳ—2. Weak. ୩ । ना(ला)चार ନିରୁପାୟ—3. Having no remedy; resour- **लाचार** celess ୪ । ନିରାଶ୍ରୟ—4. Helpless.

**ଲାଚାରି**—ଗ୍ରା. ବ—ସବର୍ଣ୍ଣର ମିଶ୍ରଣ; ଏକୀଭାବ—Unity. [ଦ୍ର—ମିଶିଲା Lāchāri ଗୁରୁ, ଲୋଚନ ବାର-ରୁହ ମଦନୁ ଲଭ ଲାଚାରୁ । ना(ला)चारी କବିସୂର୍ଯ୍ୟ. ବଳଦେବରଥଙ୍କ ମ ଗୀତ ] ବୈଦେ. ବ— **लाचारी** (ଫା.) ବଶତା; ନିରାଶ୍ରୟତା; ନିରୁପାୟତା)— Helplessness; resourcelessness.

**ଲାଛ**—ଦେ, ବ—ଦେ. ବ (ସ. ନସ୍ୟ)—୧ । ନାସ—1. Snuff. Lāchha ୨ । (ସଂ. ଲକ୍ଷ) ତୁଳନା; ଉପମା—2. Comparison. नस्य **नस** ୩ । (ସଂ. ଲକ୍ଷ ଓ ପ୍ରା. ଲଚ୍ଛ ଧାତୁ) ପଶୁମାନଙ୍କ **लक्ष** ଦେହରେ ତପ୍ତଲୌହଶଲାକାଦ୍ୱାରା ଚିହ୍ନିତ ଦାଗ—3. Mark **लच्छ** put on the skin of cattle and horse with

দাগ searing iron. ୪ । ନଳ ବା ବନ୍ଧୁକ ଲାଛିବା—
দাগ 4. Firing of a gun. ୫ । ସଳିତାରେ ଜଳନ୍ତା ଲଗାଇବା—
দাগা फैरकरना 5. Lighting of the wick in a lamp.
সলিতাজালান বত্তীবালনা

ଲାଛି କା(କୁ,ଲୁ)ଛି ଲୁଗା ପିନ୍ଧିବା—ଦେ. କ୍ରି—ଯେଉଁ ଖାଣ୍ଟି ଲୁଗାକୁ
Lāchhi kā(ku,lu)chhi lugā pindhibā ପିନ୍ଧିବା; ବଡ଼
জড়িয়েসড়িয়েকাপড়পরা ଲୁଗାକୁ ଏପ୍ରକାର ଗୋଟିଗାଟି କରି ପିନ୍ଧିବା,
ओछकरकेकपड़ापहनना, खोंसखांसकरपहनना ଯେପରିକି ତାହା
ଅଣ୍ଟୁକୁ ବା ଗୋଡ଼କୁ ବା କଣ୍ଠକୁ ପାଉ ନଥାଏ—
To wear a big cloth in such a manner
that it does not reach the knees.

ଲାଛିବା—ଦେ. କ୍ରି—(ସଂ. ଲକ୍ଷ୍ ଧାତୁ; ପ୍ରା. ଲଚ୍ଛ୍ ଧାତୁ)—୧ । (ଲକ୍ଷ୍ୟ
Lāchhibā ଭେଦ କରିବାକୁ ବନ୍ଧୁକ) ଫାଏର୍ କରିବା—
দাগা फैरकरना 1. To fire a gun at a target; to
shoot at a target ୨ । ବନ୍ଧୁକ ଫୁଟାଇବା;
ବନ୍ଧୁକ ମାରିବା—2. To fire a gun; to shoot.
[ ଉ—କେଉଁ ମୁରୁଗ୍ ଖାଡ଼ରେ ଜଳ, ସଜାଡ଼ିଛନ୍ତି
ଧାଡ଼ିକ ଧାଡ଼ି, ଲୁଚି ଅଛନ୍ତି ଲାଛିଲେ ଉଡ଼ିଯିବ କହିଛି ଯେ ।
ବ୍ରଜନାଥ. ସମରତରଙ୍ଗ । ] ୩ । (ସଂ. ଲାଞ୍ଛ୍ ଧାତୁ=
দাগা दागना ଚିହ୍ନ କରିବା)—ଗୋରୁ ଓ ଘୋଡ଼ାଙ୍କ ଦେହରେ
ଉତ୍ତପ୍ତ ଲୌହ ଶଲାକା ଦ୍ୱାରା ଗାର କାଟିବା—
3. To sear or scorch lines on the body
of cattle and horse with hot iron.
সলিতাজালান বত্তীবালনা ୪ । ପ୍ରଦୀପର ବତିରେ ଅଗ୍ନି
ସଂଯୋଗ କରିବା—4. To light the wick of
a lamp. ୫ । ବାଣ ପ୍ରଭୃତିରେ ଅଗ୍ନି ସଂଯୋଗ
আগুন দেওয়া बालना କରିବା—5. To set fire to a
[ଲଚ୍ଛ ହେ(ଯି)ବା—କର୍ମବାଚ୍ୟରୂପ । ] firework.

ଲାଛି ହେବା—ଦେ. କ୍ରି—୧ । ନିଜେ ନିଜକୁ ଗୁଳିକରି ଆତ୍ମହତ୍ୟା କରିବା-
Lāchhi hebā 1. To shoot one's self to die; to
গুলিখেয়েমরা फैरकरकेखुदमरना commit suicide by
shooting one's self. ୨ । ଦେହ ତମାମ ଲାଛିବାର
দাগান दगाहोना ଦାଗ ଯୁକ୍ତ ହେବା—2. To have searing
দাদা लद्जाना;लदाहोना marks on the whole body.
୩ । (ମନୁଷ୍ୟ) ଅଳଙ୍କାରାଦିରେ ବା (ଗଛ) ଫଳରେ
ପୂର୍ଣ୍ଣ ହେବା; ଲଦି ହେବା—2. To be laden with;
to be overladen with.

ଲାଜ୍ (ଧାତୁ)—ସ.—୧ । ଭାଜିବା—1. To fry. ୨ । ନିନ୍ଦା
Lāj (root) କରିବା—2. To blame; to censure(Apte).

ଲାଜ—ସ. ବି—(ଲାଜ୍ ଧାତୁ+କର୍ମ ଅ); (ସଂ. ନିତ୍ୟ ବହୁବଚନରେ
Lāja ବ୍ୟବହୃତ ଶବ୍ଦ ଲାଜାଃ)—୧ । ଖଇ; ଲିଆ; ଭଜା ଶସ୍ୟ—
1.Fried paddy; fried and parched grain.
[କ୍ରି—ଧାନକୁ ସିଝା ନ ଛଡ଼ାଇ ଭାଜିଲେ ତହିଁରୁ ଲାଜ
(ଲିଆ) ବା ଖଇ ହୁଏ; ସିଝା ଛଡ଼ାଇ ଭାଜିଲେ ତାହା ମୁଢ଼ି
ବା ଚାଉଳଭଜା ହୁଏ । ] ୨ । ଅତପ ତଣ୍ଡୁଳ; ଅରୁଆ
ଚାଉଳ; ଉଷୁନା ଚାଉଳ—2. Rice prepared from
dried paddy ( without par-boiling
it ). ୩ । ଓଦା ଚାଉଳ ବା ଶସ୍ୟ—3.
Moistened rice, wetted grain. ୪ । ଶସ୍ୟ—
4. Grains, ୫ । ଉଶୀର; ବେଣାମୂଳ—
5. The fragrant root of 'Benā' grass
Andropogen Muricatus, ଦେ. ବି—(ସଂ.
ଲଜ୍ଜା)—୧ । ଲଜ୍ଜା—1 Shame; modesty.
লাজ লাজ shyness. [ ଉ—ଶତ୍ରେ ଅଧରେ ସେ ଲାଜ,
ପାଟଳମା ଫୁଟିଲା ହସାଧରର । ରାଧାନାଥ ପାର୍ବତୀ ।]
୨ । ଦୁର୍ନାମ; ଲୋକ ଲଜ୍ଜା—2 Scandal; ignominy.
୩ । ଲଜ୍ଜାଜନକ ବିଷୟ—3. A matter of shame.
ବିଣ—ଲଜ୍ଜାଜନକ —Shameful. [ଉ—ଧରଣୀ-
ଦେବଙ୍କ ଚରଣ ରଜ, ଶିରେ ଘେନିବା ଯେବେ ହେବ-
ଲାଜ । କବିସୂର୍ଯ୍ୟ. କବିତା ।]

ଲାଜ କଥା—ଦେ. ବି—୧ । ଲଜ୍ଜାଜନକ ବିଷୟ—1 Shameful
Lāja kathā matter. [ ଉ—ଲାଜ କଥା ଲୋକେ
ଦେଖିଲେ ଦାଣ୍ଡେ । କବିସୂର୍ଯ୍ୟ. କଶୋଲ୍ଲ ଚମ୍ପୂ. ଲ.ଗୀତ ।]
লাজের কথা लाजकी बात्
୨ । ଅଶ୍ଲୀଳ ବାକ୍ୟ; ଖେଳାର କଥା (ଯେଉଁ କଥା ଭଦ୍ର
ସମାଜରେ କହିବାକୁ ଲଜ୍ଜା ବୋଧ ହୁଏ)—2. Indecent
words.

ଲାଜ କରିବା—ଦେ. କ୍ରି—କୌଣସି ବ୍ୟକ୍ତିଙ୍କ ଅଗ୍ରରେ ଛିଡ଼ା ହେବା
Lāja karibā ପାଇଁ ବା ମୁହଁ ଦେଖାଇବା ପାଇଁ ବା କଥା
କହିବାପାଇଁ ଲୁଣ୍ଠା ବା ଲଜ୍ଜା ବୋଧ କରିବା—
লাজকরা लाजकरना To feel shy.

ଲାଜକୁ—ଦେ. କ୍ରି. ବିଣ—ଲୋକଲଜ୍ଜାକୁ ଭୟ କରି ( କୌଣସି କାର୍ଯ୍ୟ
Lājaku କରିବା ବା ନ କରିବା )—Through fear
[ଲାଜକୁ ତ(ମ)ରେ—ଅନ୍ୟରୂପ] of public scandal.
লজ্জার খাতিরে ( ଯଥା—ମୁଁ ସିନା ଲାଜକୁ ଏ କଥା କରୁଛି,
লজ্জারক্ষা করার জন্য ନହେଲେ ମୋ ଅସ୍ଥା ଏ କଥାକୁ ଚାହୁଁ ନାହିଁ ।)
लाजके मारे

ଲାଜକୁ ଖାଇବା—ଦେ. କ୍ରି—ଲଜ୍ଜାତ୍ୟାଗ କରିବା; ନିର୍ଲଜ୍ଜତା ଆଚରଣ
Lājaku khāibā କରିବା—To be dead to all;
লাজ খাওয়া, লাজপুড়ে খাওয়া feelings of shame; to
लाजकोपीना act shamelessly.

ଲାଜ କୁ(କୋ)ରା(ଳା)—ଦେ. ବିଣ ( ସଂ. ଲଜ୍ଜାଳୁ )—ଲଜ୍ଜାବାନ୍;
Lāja ku(ko)rā(lā) ଲଜ୍ଜାଳୁ, ଲଜ୍ଜାଶୀଳ; ଯେ ଅନ୍ୟବ୍ୟକ୍ତିଙ୍କ
[ଲାଜକୁ(କୋ)ରି(ଳୀ)—ସ୍ତ୍ରୀ] ସାମନାରେ ଠିଆ ହେବାକୁ ବା କଥା
লাজুক କହିବାକୁ ଲଜ୍ଜାବୋଧ କରେ—Modest; shy;
लाजवंत bashful.

ଲାଜକୁ(କୋ)ରି(ଳୀ)—ଦେ.ବିଣ (ସ.ଲଜ୍ଜାଳୁକା)—ଲାଜକୁରାର ସ୍ତ୍ରୀଲିଙ୍ଗ;
Lājaku(ko)ri(li) ଲଜ୍ଜାବତୀ—The feminine of
লজ্জাবতী Lājakurā. ଦେ. ବି (ସ. ଲଜ୍ଜାଳୁ ) ଲଜ୍ଜାଳୁ

লজ্জাবতী ( ଦେଖ ) Lajjālu ( See ) [ଉ—
लाजवंती; लजालू ମଉଳଇ ମୃତପ୍ରାୟେ ପରଶର୍ଶେ ଯଥା ଲାଜକୁଳୀ ଲତା । ରାଧାନାଥ. ଯଯାତି । ]

**ଲାଜକୁ(କୋ)ଷି(ଳୀ)ବଦନ**—ଦେ. ବି (ନାମ)—ଏକପ୍ରକାର ସରୁ
Lājaku(ko)ṛi(ḷi)badana ଶାରଦ ଧାନ—Name of a fine-grained winter paddy. [ ଦ୍ର—ଏହା ଏକପ୍ରକାର ଲଘୁ ଧାନ । ଏହାର ଚାଉଳ ଧଳା; କିନ୍ତୁ ଖୁବ୍ ବାରିକ୍ ନୁହେଁ । ]

**ଲାଜ ଖାଇବା**—ଦେ. କି—ଲଜ୍ଜାବୋଧ ହେବା—Feeling of
Lāja khāibā shame. [ ବ୍ୟବହାର—ତାକୁ ତ
লজ্জাহওয়া ଲାଜ ଖାଉଛି, ସେ ଗୀତ ଗାଇବ କାହିଁ ? ]
**लाजआना**

**ଲାଜ ଛାଡ଼ିବା**—ଦେ. କ୍ରି—୧ । କୌଣସି କାର୍ଯ୍ୟ କରିବାକୁ ମନରୁ ଲଜ୍ଜା
Lāja chhāṛdibā ତ୍ୟାଗ କରିବା—1. To shake off
লজ্জাছাড়া one's modesty. ୨ । ନିର୍ଲଜ୍ଜ ହେବା—
**लाजछोड़ना** 2, To become shameless.

**ଲାଜ ଥୋମଣା**—ଗ୍ରା. ବିଣ. ପୁଂ—ଅତି ଲଜ୍ଜିତ; ଲଜ୍ଜାବନତମୁଖ—
Lāja thomaṇā Very much ashamed; crest-
[ଲାଜ ଥୋମଣିଆ(ଆଁ)—ଅନ୍ୟରୂପ) fallen. (ଯଥା—ସେ ଲାଜ
(ଲାଜ ଥୋମଣୀ—ସ୍ତ୍ରୀ) ଥୋମଣା ହୋଇ ଏଠାରୁ ପଳାଇଲା । )
লজ্জায় মরা **शरमाया हुआ**

**ଲାଜ ଦେବା**—ଦେ. କ୍ରି—କୌଣସି ବ୍ୟକ୍ତିକୁ ଲଜ୍ଜିତ କରାଇବା—
Lāja debā To put a person to shame
(ଲାଜ ଦିଆଇବା—ପ୍ରଯୋଜକରୂପ ) লজ্জা দেওয়া **शरमाना**

**ଲାଜପତ ରାୟ (ଲାଲା)**—ଦେ.ବି (ନାମ)—ଭାରତର ସ୍ୱର୍ଗୀୟ ପ୍ରଧାନ ନେତା-
Lājapata rāya(lālā) ନାୟକଙ୍କ ମଧ୍ୟରୁ ଏକତମ—One
লাজপত রায় of the late prominent leaders of
**लाजपत राय** India; Lala Lajput Rai.
[ ଦ୍ର—ଲାଲା ଲାଜପତ ରାୟ ୧୮୬୫ ମସିହାରେ ପଞ୍ଜାବ ଅନ୍ତର୍ଗତ ଲୁଧିଆନା ଜିଲ୍ଲାର ଜାଗାରାଓନ ନାମକ ଏକ କ୍ଷୁଦ୍ର ପଲ୍ଲୀରେ ଜନ୍ମଗ୍ରହଣ କରିଥିଲେ । ପଞ୍ଜାବୀ ଅଗରୱାଲ ବୈଶ୍ୟ ସମ୍ପ୍ରଦାୟର ଏକ ଗରିବ, ଅଥଚ ଭଦ୍ର ପରିବାରରେ ତାଙ୍କର ଜନ୍ମ । ତାଙ୍କ ବାପ ରାଧାକିଶନ୍ ଏକ ସରକାରୀ ସ୍କୁଲର ଉର୍ଦ୍ଦୁ ଶିକ୍ଷକ ଥିଲେ ଏବଂ ୧୮୭୭ ମସିହାରେ ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ଧର୍ମମତରେ ପ୍ରଭାବାନ୍ୱିତ ହୋଇଥିଲେ । ସେ ସେହି ସମୟଠୁ କଂଗ୍ରେସ ଭକ୍ତ ହେଲେ । କୋହିନୁର ନାମକ ଉର୍ଦ୍ଦୁ ପତ୍ରିକାରେ ରାଧାକିଶନ୍‌ଙ୍କ ଲେଖା ପଞ୍ଜାବରେ ଜାତୀୟଭାବ ଜାଗ୍ରତ କରିଥିଲା । ଲାଲାଜୀଙ୍କ ମାତାଙ୍କ ପ୍ରଭାବ ମଧ୍ୟ ତାଙ୍କ ଉପରେ ଖୁବ୍ ପଡ଼ିଥିଲା । ମାତାଙ୍କ ସରଳତା ଓ ବାଧ୍ୟସଙ୍କୋଚ ପ୍ରଭୃତି ସତ୍‌ସ୍ୱଭାବ ଲାଲାଜୀ ଛଡ଼ାଇ ଆଣିଥିଲେ । ପିତା ରାଧାକିଶନ୍‌ଙ୍କ ଯତ୍ନରେ ଲାଲାଜୀ ଉତ୍ତମ ଶିକ୍ଷାଲାଭ କରିଥିଲେ । ଲାହୋର ଗଭର୍ଣ୍ଣମେଣ୍ଟ କଲେଜ୍‌ରେ ଲାଲାଜୀ ମନୋଯୋଗ ସହକାରେ ଅଧ୍ୟୟନ କରି ଯୋଗ୍ୟତା ଯୋଗୁଁ ଛାତ୍ରବୃତ୍ତି ପାଇଥିଲେ । ତତ୍‌ପରେ ଆଇନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ହିସାର ନାମକ ଶ୍ରେଷ୍ଠ ସହରରେ ଓକାଲତି ଆରମ୍ଭ କଲେ । ଏ ଜଣେ କର୍ମବୀର, ସମାଜ ସଂସ୍କାରକ, ବକ୍ତା ଓ ଲେଖକ ଥିଲେ । ଆର୍ଯ୍ୟ ସମାଜ ସମ୍ପର୍କରେ ସେ ଯାହା ଯାହା କହିଛନ୍ତି, ତାହା ସମସ୍ତ ହିନ୍ଦୁ ସମାଜର ସଂସ୍କାର ଓ ଗଠନରେ ବିଶେଷ ସହାୟତା କରୁଅଛି । ଅସ୍ପୃଶ୍ୟତା ଦୂରୀକରଣ, ବିଧବାବିବାହ, ବାଲ୍ୟବିବାହନିରୋଧ, ଦୀନସେବା ପ୍ରଭୃତି ସାମାଜିକ କାର୍ଯ୍ୟରେ ହାତ ଦେଇ ସେ ଯାହା ଦେଖାଇ ଯାଇ ଅଛନ୍ତି, ତାହା ପ୍ରତ୍ୟେକ ରାଜନୀତିକଙ୍କ ଆଦର୍ଶ ।

ଭାରତର ବକ୍ତା ଓ ଲେଖକମାନଙ୍କ ମଧ୍ୟରେ ଲାଲାଜୀଙ୍କର ସ୍ଥାନ ଅତି ଉଚ୍ଚ ଥିଲା । ତାଙ୍କ ଲିଖିତ 'ଆର୍ଯ୍ୟ ସମାଜ', ଆମେରିକା ଯୁକ୍ତରାଜ୍ୟର କୁମାରୀ ମେୟୋଙ୍କ ଭାରତମାତାର ପ୍ରତିବାଦ ସ୍ୱରୂପ 'ଅସୁଖୀ ଭାରତ' ତାଙ୍କ ଭାଷା ଓ ଭାବର ପରିଚାୟକ । ଇଂରେଜୀ, ଉର୍ଦ୍ଦୁ ଓ ହିନ୍ଦୀ ଭାଷାରେ ଲାଲାଜୀ ବଡ଼ ଯୁକ୍ତିପୂର୍ଣ୍ଣ ଓଜସ୍ୱିନୀ ବକ୍ତୃତା ଦେଇ ପାରୁଥିଲେ । ତାଙ୍କର ଏ ସମସ୍ତ ଗୁଣ ଗୌରବରେ ମୁଗ୍ଧ ହୋଇ ନିଖିଳ ଭାରତ ତାଙ୍କୁ କଂଗ୍ରେସର ୧୯୨୦ ସାଲର ବିଶିଷ୍ଟ ଅଧିବେଶନରେ ସଭାପତି ନିର୍ବାଚିତ କରିଥିଲା ।

ସାଇମନ୍ କମିଶନ୍ ଆଗମନ ବେଳେ ଲାହୋର ବରଲ୍ ଷ୍ଟେସନ୍‌ଠାରେ ଲାଲାଜୀଙ୍କ ଛାତି ଉପରେ ଗୋରା ପୁଲିସ ଅଫିସରଙ୍କ ଠେଙ୍ଗା ପ୍ରହାର ହେବା ଦ୍ୱାରା ସେ ପୀଡ଼ିତ ହୋଇ ପଡ଼ିଥିଲେ ଏବଂ ୧୭।୧୧।୨୮ ସକାଳ ୭ଟା ବେଳେ ୬୪ ବର୍ଷ ବୟସରେ ଦିଲ୍ଲୀ ସହରରେ ଇହଧାମ ତ୍ୟାଗ କଲେ ।

ତା ୨୦।୧୧।୧୯୨୮ ଦୈନିକ ଆଶାରୁ ସଂଗୃହୀତ ।]

**ଲାଜ ପାଇବା**—ଦେ. କ୍ରି—ବହୁଲୋକଙ୍କ ମଧ୍ୟରେ ଅପମାନିତ ହେବା—
Lāja pāibā To be put to shame in the pre
লাজ পাবা **लाज पाना** sence of many persons.
[ଦ୍ର—ଲାଜ କରିବାର ଅର୍ଥ ନିଜେ ଲଜ୍ଜା ବୋଧ କରିବା, କିନ୍ତୁ ଲାଜ ପାଇବାର ଅର୍ଥ ବହୁଲୋକଙ୍କ ମଧ୍ୟରେ ଅପମାନିତ ବା ଲଜ୍ଜିତ ହେବା ।]

**ଲାଜ ପାଣି**—ଦେ. ବି—ନବଜାତ ଶିଶୁକୁ ଷଠିଅର ଦିନ (୭ମ ଦିନ)
Lāja pāṇi ସ୍ନାନ କରାଇବା ସମୟରେ ତା ମୁଖକୁ ଧୋଇବାପାଇଁ ବ୍ୟବହୃତ ପ୍ରଥମ ଅଞ୍ଜଳି ପାଣି—The first handful of water applied to the face of a child on its first bath on the 7th day of its birth.
[ଦ୍ର—ଲୋକ ବିଶ୍ୱାସ ଯେ, ଯେଉଁ ଶିଶୁର ମୁହଁରେ ତାହାର ମାତା ଲାଜ ପାଣି ମାରି ନ ଥାନ୍ତି ସେ ଭବିଷ୍ୟ ଜୀବନରେ ନିର୍ଲଜ୍ଜ ହୁଏ । ଏଥିପାଇଁ କୌଣସି ନିର୍ଲଜ୍ଜ ବ୍ୟକ୍ତିକୁ ଲକ୍ଷ୍ୟ କରି ଲୋକେ କହିଥାନ୍ତି 'ତା ମାଆ ତା ମୁହଁରେ କଅଣ ଲାଜପାଣି ମାରି ନ ଥିଲା କି ?']

**ଲାଜ ପେୟା**—ସଂ. ବି.—ଖଇର ପତଳା ମଣ୍ଡ; ଖଇକୁ ପାଣିରେ ଚକଟି
Lāja peyā ତାକୁ ଲୁଗାରେ ଛାଣି ପାଣିଆ କରି ତିଆରି କରା-
ଯିବା ପାନୀୟ—A thin paste or gruel made by kneading fried paddy in water and then passing it through cloth. [ ଦ୍ର—ଏହା ଲଘୁପାକ, ପିପାସାନାଶକ ଓ ଗ୍ଲାନିନାଶକ; ଏହା ସଙ୍ଗେ ସୈନ୍ଧବ ଲବଣ, ହିଙ୍ଗୁ ଓ ଅଳାଇଚ ଗୁଣ୍ଡ ମିଶାଇଲେ ଏହା ଅଧିକତର ଗୁଣଯୁକ୍ତ ହୁଏ ।]

**ଲାଜ(ଜା)ବନ୍ଧନ**—ସଂ. ବି—(ନ୍ୟାୟ)—ବୃଥା ଭୋଗ ପ୍ରତ୍ୟାଶାକାରୀ
Lāja(jā) bandhana ପ୍ରତି ପ୍ରଯୋଜ୍ୟ ନ୍ୟାୟ ବା ଦୃଷ୍ଟାନ୍ତ—An analogical reference made to a foolish person who, while standing behind a post, extended both his palms round the post and took in his folded palms some fried rice which was being distributed to people; but while he wanted to eat the fried rice he would not bring his palms to the mouth on account of the intervening post, nor could he release his palms, as the fried paddy in the hollow of the folded palms would fall down [ଦ୍ର—ଜଣେ ନିର୍ବୋଧ ବ୍ୟକ୍ତି ଗୋଟିଏ ଖମ୍ବର ପଛଆଡ଼େ ଠିଆ ହୋଇ ଖମ୍ବକୁ ବେଢ଼ାଇ ହାତ ଦୁଇଟିକୁ ଆଗକୁ ବଢ଼ାଇ ଅଞ୍ଜଳା କରି ଅଞ୍ଜଳାରେ ଅଞ୍ଜଳାଏ ଖଇ ପାଇଲା । ସେ ଅବସ୍ଥାରେ ଲୋକଟି ତାହା ଖାଇ ପାରିଲା ନାହିଁ । ଅଥଚ ତାକୁ ଖାଇବା ପାଇଁ ଅଶାନ୍ତ ହୋଇ ରହିଲା; ଆଗରେ ଖମ୍ବ ଥିବାରୁ ଅଞ୍ଜଳାରେ ଥିବା ଖଇକୁ ମୁହଁ ବଢ଼ାଇ ଖାଇ ପାରିଲା ନାହିଁ, ଏଣେ ହାତକୁ ପାଖ ପାଖକୁ ଆଣିଲା ବେଳକୁ ଅଞ୍ଜଳା ଫିଟି ଗଲେ ଖଇତକ ତଳେ ପଡ଼ିବ, ଏଥିଯୋଗୁଁ ଅଞ୍ଜଳା ନ ଫିଟାଇ; ଅତୋଭ୍ରଷ୍ଟ ତତୋଭ୍ରଷ୍ଟ ହୋଇ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ତାକୁ ବନ୍ଧନରେ ପଡ଼ିବାକୁ ହେଲା, ଏହି ନ୍ୟାୟ ।]

**ଲାଜ ବର୍ଦ୍ଦ**—ବୈଦେ. ବି. (ଫା.)—ବୈଦୁର୍ଯ୍ୟ ମଣି ପରି ଲୁରଙ୍ଗ ଦେଖାର
Lāja bardda ମଣି ବିଶେଷ—Lapis lazuli (gem).
ସ. ନାମ—ରାଜବର୍ତ୍ତକ, ରାଜାବର୍ତ୍ତ ମଣି ।
ଲାଜବଦ ଲାଜବର୍ଦ୍ଦ

**ଲାଜ ଭକ୍ତ**—ସଂ. ବି—(ବୈଦ୍ୟକ)—ଖଇ ସିଝା; ଖଇ ଭାତ; ଗରମ
Lāja bhakta ପାଣିରେ ସିଦ୍ଧ ଖଇ—Fried paddy boiled in water. [ଦ୍ର—ଏହା ଲଘୁପାକ, ଶୀତଳ, ଅଗ୍ନି ବର୍ଦ୍ଧକ ଓ ରୁଚିକର ।]

**ଲାଜଭର**—ଦେ. ବି.—ଲଜ୍ଜିତ; ଲଜ୍ଜାପୂର୍ଣ୍ଣ—
Lāja bhara Ashamed; modest.
ଲଜ୍ଜିତ ଲଜାଯା ହୁଆ

**ଲାଜଭର ବଶୁଁ**—ଦେ. ଅ—ଲଜ୍ଜିତ ହୋଇ; ଲଜ୍ଜା ଯୋଗୁଁ
Lājabhara basuñ Due to modesty; on account of modesty.

**ଲାଜ(ଜା)ମଣ୍ଡ**—ସଂ. ବି.—(ବୈଦ୍ୟକ)—ଖଇ ମଣ୍ଡ, ଗରମ ପାଣିରେ
Lāja(jā)manda ସିଝାଇ ଖଇକୁ ଚକଟି ତାହା କପଡ଼ା ଛାଣି କରି ପ୍ରସ୍ତୁତ କରାଯିବା ଘନ ପାନୀୟ; ଲାଜପେୟ—A gruel made by sifting boiled fried paddy through cloth. [ ଦ୍ର—ଏହା ଅଗ୍ନିବର୍ଦ୍ଧକ, ଆମଦୋଷନାଶକ, ଜ୍ୱରାତିସାରନାଶକ ଓ ପଥ୍ୟ । ]

**ଲାଜ ମାଡିବା**—ଦେ. କି—୧ । ଲଜ୍ଜିତ ହେବା—1. Being
Lāja mārdibā ashamed; ufeeling of shame.

ଲାଜ ମାଡ଼ିବା—ଦେ. କି—୧ । ଲଜ୍ଜିତ ହେବା—1. Being
Lāja mārdibā ashamed; feeling of shame.
ଲାଜପାଓୟା ଲାଜଲଗନା ୨ । ଲଜ୍ଜା ବୋଧ କରିବା—
2. Feeling shy. ( ଉ—ତାହାଙ୍କୁ ବସ୍ତ୍ର ଦେଲୁ ଲାଜ ନ ମାଡ଼ିଲା—କୃଷ୍ଣସିଂହ ମହାଭାରତ. ସଭା ।)

**ଲାଜ ମୁଣ୍ଡ ପୋଡ଼ି ଖାଇବା**—ଦେ. କି—ଲାଜକୁ ଖାଇବା (ଦେଖ)
Lāja munda pordi khāibā Lājaku khāibā (See)
[ଲାଜମୁହଁ ପୋଡ଼ିଖାଇବା, ଲାଜର ମଥାଖାଇବା, ଲାଜରମୁଣ୍ଡ(ହଁ)ପୋଡ଼ି ଖାଇବା—ଅନ୍ୟରୂପ ]
ଲାଜେର ମାথা খাওয়া, লাজের মাথা পুড়িয়ে খাওয়া
लाजको फुङ्क खाना

**ଲାଜମୁଷ୍ଟି**—ସ. ବି (୬ଷ୍ଠୀ ତତ୍)—ମୁଠାଏ ଖଇ—
Lājamushti A handful of fried paddy.

**ଲାଜରେ ବୁଡ଼ିଯିବା**—ଦେ. କି—ଅତ୍ୟନ୍ତ ଲଜ୍ଜା ଯୋଗୁଁ ମ୍ରିୟମାଣ
Lājare burdijibā ହେବା; ଅତ୍ୟଧିକ ଲଜ୍ଜାନ୍ୱିତ ହେବା—
ଲାଜରେ ମରିଯିବା(ମରିବା) } ଅନ୍ୟରୂପ— To die with
ଲାଜରେଷଡ଼ି(ରି)ଯିବା } shame.
লাজেডুবেযাওয়া, লাজে মরে যাওয়া, লাজেমরা (ଉ—ସଜ୍ଜନ
लाजमेमरजाना ଲୋକେ ଲାଜରେ ମରଗଲ ଅଙ୍ଗ—ସଙ୍ଗୀତ ।)

**ଲାଜଲାଜ**—ଦେ. କି. ବିଣ ଓ ବିଣ—ଈଷତ୍ ଲଜ୍ଜିତଭାବରେ—
Lājalāja A little shyly; bashfully.
লজ্জালজ্জাকরা लजायाहुआ (ଉ—ଲୋପାମୁଦ୍ରା ଶୁଣିଣ ଲାଜ ଲାଜ ହୋଇ, ବୋଇଲେ କିମ୍ପାଇ ତାଙ୍କୁର ପ୍ରାଣସାଇଁ—କୃଷ୍ଣସିଂହ ମହାଭାରତ. ବନ ।)

**ଲାଜ ସରମ**—ଦେ. ବି (ଏକାର୍ଥକ ସହଚର; ସଂ. ଲଜ୍ଜା ଓ ଫା. ଶରମ୍)—
Lāja sarama ଲଜ୍ଜା—Shame.
লাজসরম लाजशरम

**ଲାଜ(ଜା)ହୋମ**—ସଂ. ବି—ବିବାହବେଦୀରେ ପାଣିଗ୍ରହଣ ଓ ଘୃତ ହୋମ
Lāja(jā)homa ଶେଷ ହେବା ପରେ ଓ ଆଶୀର୍ବାଦପର (ଲାଜାହୁମ—ଦେ. ରୂପ) (ଗର୍ଭାଧାନ ବା ଦ୍ୱିରାଗମନ) ଅନ କରାଯିବା ହୋମରେ ବର କୋଳରେ କନ୍ୟା ଠିଆ ହୋଇ ଦୁହେଁଯାକ ଏକତ୍ର ଅଞ୍ଜଳିବଦ୍ଧ କରି ସେହି ସଂଯୁକ୍ତ

ଅଞ୍ଜଳରେ ଅଞ୍ଜୁଳା ଏ ଖଇ ଅଗ୍ନିରେ ଅନୁଷ୍ଠିତବୋରୂପ ବିଧି—The ceremony of the newly married couple jointly presenting a handful of fried paddy to the sacrificial fire after the completion of the marriage-sacrifice and on the day of consummation of marriage.

ଲଜା—ସଂ. ବି ( ସଂସ୍କୃତ ଲାଜ ଶବ୍ଦ ନିତ୍ୟବହୁବଚନାନ୍ତ 'ଲାଜାଃ'ରୂପେ **Lājā** ବ୍ୟବହୃତ ହୁଏ, ଏଥିପାଇଁ ଭାଷାରେ ମଧ୍ୟ ଖଇକୁ ଲଜା ବୋଲି ବ୍ୟବହାର କରାଯାଏ; କେହି କେହି ଲଜା ଶବ୍ଦକୁ ଅକାରାନ୍ତ ସ୍ତ୍ରୀଲିଙ୍ଗ କହନ୍ତି । ) ୧ । ଖଇ—1. Fried paddy. ୨ । ଖୁଦିଭଜା (ହି. ଶ.)—2. Rice. ମଜା, ଆଠା ଲଜତ ଦେ. ବି—୧ । (ସ.ଲସକ୍ ଧାତୁ)—ଅଠାଳିଆ ପଣ—1. Gumminess, stickiness. ୨ । ଲକ୍ଷଣ; ମୃତ୍ତିକାରେ ଥିବା ରସ ବା ଆର୍ଦ୍ରତା—2. Wetness or moisture of the soil. ୩ । ମଜା; ମାଧୁର୍ଯ୍ୟ—3. Daintiness.

ଲଜିଆ—ଦେ. ବିଣ—ଲାଙ୍ଗୁଳଯୁକ୍ତ—**Lājiā** Having a tail. ନେଜୋ ପୁଚ୍ଛଲ ଗ୍ରା. ବି—ଲଜ୍ଜା—Shame-

ଲଜିଆ ତର—ଦେ. ବି—ଲଞ୍ଜାତର (ଦେଖ) **Lājiā tarā** Lanjātarā (See)

ଲଜିମାତ୍—ବୈଦେ. ବି (ଫା. ଲଜ୍ଞାଜିମା)—ଲାଉଅଜିମା (ଦେଖ) **Lājimāt** Lauājimā (See)

ଲଜୁଆ —ଦେ. ବିଣ. ପୁଂ—ଲାଜକୁଳ'; ଲଜ୍ଜାଶୀଳ—Modest; shy. **Lājuā** ( ଉ—ଲଜୁଆ ବ୍ରାହ୍ମଣ, କାଣୁଆ ଗୋରୁ, [ ଲଜେ(ଜୋ)ଇ—ସ୍ତ୍ରୀ ] ଗାଆଁ ମଝିରେ ଯେବେ ଥାଇ ଜୋଡ଼ି, ଲାଜୁକ ଲଜଖୋର, ଲଜୀଲା କପାଳର ଯେବେ ମୁହଁରେ ଥୋଡ଼ି, ଏ ଖୃଷ୍ଟଙ୍କର ମୁହଁ ପୋଡ଼—ଢଗ ।)

ଲଜୁକ—ଦେ. ବିଣ. ପୁଂ (ବଙ୍ଗଳାରୁ ଅନୁକୃତ)—ଲିଜ୍ଜାଶୀଳ—**Lājuka** Modest; coy. [ ଦ୍ର—ଓଡ଼ିଆରେ ଲଜୁକ ଶବ୍ଦର (ଲଜୁକୀ—ସ୍ତ୍ରୀ) ବ୍ୟବହାର କ୍ୱଚିତ୍ ଦେଖାଯାଏ; କିନ୍ତୁ ଏହାର [ଅଲଜୁକ—ବିପରୀତ] ବିପରୀତ ଅଲଜୁକ ଶବ୍ଦର ଅବାଧ ବ୍ୟବହାର ଲାଜୁକ୍ ଲଜୀଲା ଦେଖାଯାଏ ।]

ଲଜେ—ଦେ. କ୍ରି. ବିଣ—ଲୋକଲଜ୍ଜାକୁ ଡରି—Through fear **Lāje** of being put to shame; for fear of ignominy. (ଲାଜେ ଲାଜେ—ଅବ୍ୟୟରୂପ) [ଉ—ଶ୍ରେଷ୍ଠ ମା ଲାଜେ ନ ଲାଜେ ଖାଇବେ, ଯେବେ ଖାଇବେ ଦୁଆର ଦେଇ ଖାଇବେ । ଢଗ ।] ଲାଜକେମାରେ

ଲଜ୍ୟା—ଗ୍ରା. ବି (ସ. ଲଜ୍ଜା, ଲଜ୍ଜ୍ୟା)—ଲଜ୍ଜା; ଲାଜ—**Lājyā** Shame; modesty.

ଲାଞ୍ଚ—ଦେ. ବି (ସ . ଲଞ୍ଚା—ଶବ୍ଦକୋଷ, ପାଲି. ଲାଞ୍ଚ—ଉତ୍କୋଚ)—**Lāncha** ୧ । ଉତ୍କୋଚ—1. Bribe. [ଉ—ଲାଞ୍ଚ ଦେଇ ଘୁ(ଘୁଁ)ଷ ଥିଲେ କାଞ୍ଚନ କେତେ ବି ପାଞ୍ଚ ପାଣ୍ଡୁରଜ ଘୁଟେ । କବି-ଲାଁଚ ସୂର୍ଯ୍ୟ. କବିତା ] ୨ । ପୁରସ୍କାର—2. Reward. [ଉ—କିଛି ଲାଞ୍ଚ ମାଗୁ ଥାଉ ଲବଣୀ କେମନ୍ତେ । ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।]

ଲାଞ୍ଚ ଖଚ—ଦେ. ବି (ସହଚର ଶବ୍ଦ)—ଉତ୍କୋଚ ଓ ପରୋକ୍ଷରେ ଅନ୍ୟ **Lāncha khacha** ବ୍ୟକ୍ତି ନାମରେ ଅଭିଯୋଗ—Bribe and ଘୁଷଓଲାଗାନୋ ଲାଁଚଚୁଗଲ backbiting.

ଲାଞ୍ଚ ଖାଇବା—ଦେ. କ୍ରି—ପରଠାରୁ ଉତ୍କୋଚ ଗ୍ରହଣ କରିବା—To **Lāncha khāibā** accept bribe. [ ଉ—ସୁଯୋଧନଠାରୁ ଘୁଷଲଯୋ ସମସ୍ତେ ଲାଞ୍ଚ ଖାଇ, ସେ କାଳେ ତା ଦେଖି ରହିଲେ ଭୁଲ ଲାଁଚଖାନା ହୋଇ । କୃଷ୍ଣସିଂ. ମହାଭାରତ. ଉଦ୍ୟୋଗ ।]

ଲାଞ୍ଚଖିଆ—ଦେ. ବିଣ—ଲାଞ୍ଚୁଆ (ଦେଖ)—**Lānchakhia** Lānchuā. (See) ଘୁଷଖୋବ [ଉ—ପୁରୁଣା ପୋଲିସ ଭାରି ଲାଞ୍ଚଖିଆ ଥିଲେ । ଲାଁଚଖୋର ଫକୀରମୋହନ. ଛମାଣ ଆଠଗୁଣ୍ଠ । ]

ଦେ. ବି—ଉତ୍କୋଚଗ୍ରହଣ—Taking of bribe.

ଲାଞ୍ଚ ଖୋଇବା—ଦେ. କ୍ରି—ଅନ୍ୟ ବ୍ୟକ୍ତିକୁ ଉତ୍କୋଚ ଦେବା—**Lāncha kheibā** To bribe a person. (ଲାଞ୍ଚଖିଆଇବା, ଲାଞ୍ଚ ଦେବା—ଅନ୍ୟରୂପ) ଘୁଷଖାଓୟାନ ଲାଁଚ ଦେନା

ଲାଞ୍ଚ ମିଛ—ଦେ.ବି.(ସହଚର ଶବ୍ଦ)--ଉତ୍କୋଚଗ୍ରହଣ ଓ ମିଥ୍ୟାବାଦିତା—**Lāncha michha** Bribery and falsehood. ଘୁଷ ଓ ମିଥ୍ୟା ଲାଁଚଝୁଠା

ଲାଞ୍ଚୁଆ—ଦେ. ବିଣ. ପୁଂ—୧ । ଉତ୍କୋଚଗ୍ରାହୀ—1. Bribe-taker. **Lānchuā** [ ଉ—ଲାଞ୍ଚୁଆଟ କେଉଁ ହେଲ ହେ ବନ୍ଧୁ । [ଲାଞ୍ଚୁ(ଚୋ)ଈ—ସ୍ତ୍ରୀ] କବିସୂର୍ଯ୍ୟ. କଶୋଗ୍ରନ୍ଥ. ଲ. ଗୀତ । ] ଘୁଷଖୋବ ଲାଁଚଖୋର ୨ । ଉତ୍କୋଚଦାତା—2. Bribe-giver.

ଲାଞ୍ଚୁଆ ଖଚୁଆ—ଦେ. ବିଣ. ପୁଂ ( ସହଚର ଶବ୍ଦ )—ଉତ୍କୋଚଗ୍ରାହୀ ଓ **Lānchuā khachuā** ପରୋକ୍ଷରେ ଅଭିଯୋଗକାରୀ—A ଘୁଷଖୋବ ଓ ଲାଗାନେ bribe-taker and backbiter. ଲାଁଚଖୋର ଚୁଗଲଖୋର (ଲାଞ୍ଚୋଇ ଖଚୋଇ--ସ୍ତ୍ରୀ)

ଲାଞ୍ଚୁଆ ମିଛୁଆ—ଦେ. ବିଣ. ପୁଂ ( ସହଚର ଶବ୍ଦ )—ଉତ୍କୋଚଗ୍ରାହୀ ଓ **Lānchuā michhuā** ମିଥ୍ୟାବାଦୀ—A bribe-taker and ଘୁଷଖୋବ ଓ ମିଥ୍ୟାବାଦୀ ଲାଁଚଖୋର ଝୁଠା liar. (ଲାଞ୍ଚୋଇ ମିଛେଇ —ସ୍ତ୍ରୀ)

ଲାଞ୍ଛ୍ (ଧାତୁ)—ସ—୧ । ଚିହ୍ନଦେବା—1. To put a mark. **Lānchh** (root) ୨ । ଦାଗଦେବା—2. To stain with a mark. ୩ । କଳଙ୍କିତ କରିବା—3. To stain; to blemish; to tarnish.

ଲାଞ୍ଛନ—ସ. ବି ('ଲାଞ୍ଛ୍' ଧାତୁ + କର୍ମ. ଅନ)—୧ । ଚିହ୍ନ; ଦାଗ—1. **Lānchhana** A spot; a mark. ୨ । (+କରଣ ଅନ) ଉପାଧି—2. Title. ୩ । ନାମ—3. Name; appellation. ୪ । ଅପବାଦ; କଳଙ୍କ—4. Stain; blemish; stigma. ୫ । (+କର୍ମ ଅନ) ଧ୍ୱଜା ପତାକାଦ ଉପରେ

ଅଙ୍କିତ ବିଶିଷ୍ଟ ଚିହ୍ନ—5. A distinctive sign on a flag. ୬ । ରବି ଫସଲ—6. Cereals; summer crops. ୭ । ( + ଲିଖ. ଅନ )—ଅଙ୍କନ—7. Drawing.

ଲାଞ୍ଛନ'—ସଂ. ବି ( ଲାଞ୍ଛନ+ଅ )—ଲାଞ୍ଛନ ( ଦେଖ )—
Lānchhanā Lānchhana ( See ) ଦେ. ବି—୧ ।
লাঞ্ছনা ଅପମାନ—1. Dishonour; disgrace,
लांछना humiliation. ୨ । ଭର୍ତ୍ସନା—2. Rebuke; reproach. ୩ । ଦୋଷାରୋପ—3. Finding fault with; attributing of a fault.

ଲାଞ୍ଛନା କରିବା—ଦେ. କ୍ରି—ଅପମାନିତ କରିବା—
Lānchhanā kariba To humiliate or disgrace
লাংছনাকবা(দেওযা) लांछना लगाना a person.
(ଲାଞ୍ଛନା ଦେବା—ଅନ୍ୟରୂପ)

ଲାଞ୍ଛନା ଭୋଗ—ସଂ. ବି ( ୬ଷ୍ଠୀ ତତ୍ )—ଅପମାନିତ ହେବା—
Lānchhanā bhoga Being disgraced; humiliation.

ଲାଞ୍ଛନାର ଏକଶେଷ୍—ଦେ. ବି ( ବଙ୍ଗଳାରୁ ଅନୁକୃତ )—ଯଥେଷ୍ଟ-
Lānchhanāra ek-sesh ନାସ୍ତି ଅପମାନ—Utter dis
লাংছনাব একশেষ लांछना का हद्द grace.
(ଲାଞ୍ଛନାର ପରାକାଷ୍ଠା—ଅନ୍ୟରୂପ)

ଲାଞ୍ଛିତ—ସଂ. ବିଣ ( ଲାଞ୍ଛ ଧାତୁ+କର୍ମ. କ୍ତ )—୧ । ଚିହ୍ନିତ—
Lānchhita 1. Marked. ୨ । କଳଙ୍କିତ—2. Stained;
(ଲାଞ୍ଛିତା—ସ୍ତ୍ରୀ) stigmatised. ୩ । ନାମାଙ୍କିତ—3. Bearing a name. ଦେ. ବି—୧ । ଭର୍ତ୍ସିତ—1. Rebuked.
୨ । ଅପମାନିତ—2. Humiliated.

ଲାଞ୍ଜ (ଇତ୍ୟାଦି)- ଦେ. ବି ( ସଂ. ଲଞ୍ଜ )—ଲାଙ୍ଗୁଡ଼ ଇତ୍ୟାଦି (ଦେଖ)
Lānja (etc) Lāngurda etc ( See ) [ ଯଥା—
লে(নে)জ(জা) ତାକୁ ଦେଖିଲେକ ହନୁମାର, ଲାଞ୍ଜ କରିଛ ଗଡ଼
दुम, पूँछ ଅକାର, ବୋଲେ କାହିଁଥିଲେ ଲଙ୍କେଶ୍ୱର ।
ବିଶ୍ୱନାଥ. ବିଚିତ୍ରରାମାୟଣ । ] [ ଦ୍ର—ପଶୁଙ୍କର ଲୋମ-
ଯୁକ୍ତ ପୁଚ୍ଛକୁ ଲାଙ୍ଗୁଡ଼ ବୋଲାଯାଏ, କିନ୍ତୁ ପଶୁ, ପକ୍ଷୀ,
ମତ୍ସ୍ୟାଦିଙ୍କର ପୁଚ୍ଛକୁ ଲାଞ୍ଜ ବୋଲାଯାଏ । ]

ଲାଞ୍ଜକଟା—ଦେ. ବିଣ—ଛିନ୍ନପୁଚ୍ଛ; ଲାଙ୍ଗୁଡ଼ ଖଣ୍ଡିଆ—
Lānja kata Having its tail cut off.
লেজকাটা; নেজকাটা दुमकटाहुआ नंढा, लंडुरा

ଲାଞ୍ଜଗୋବର୍—ଦେ. ବିଣ. ପୁଂ—(ଶଙ୍କା ଓ ଅତ୍ୟଧିକ ପ୍ରହାର ଯୋଗୁଁ
Lānja gabara ଗୋମେଷାଦିଙ୍କର କଳୀଯ୍ ମଳ ଦ୍ୱାରା
লেজেগোবরে डरपोक ଉତ୍ତେଜିତ ତାଙ୍କ ଲାଙ୍ଗୁଡ଼ ଯୁକ୍ତ ମଳରେ
(ଲାଞ୍ଜ ଗୋବରଆ—ଅନ୍ୟରୂପ) ଲେପିତ ହେବାରୁ) (ଲକ୍ଷଣାର୍ଥ)—
(ଲାଞ୍ଜ ଗୋବରୀ; ଲାଞ୍ଜ ଗୋବରେଇ—ସ୍ତ୍ରୀ ) ୧ । ଡରୁଆ
ଭୟଯୁକ୍ତ—1. Frightened. ୨ । ଭୀରୁ—2. Cowards

ଲାଞ୍ଜା—ଦେ. ବିଣ—ପୁଚ୍ଛଯୁକ୍ତ—
Lānja লেং(লাং)জা पुंछल Having tail.
(ଲାଞ୍ଜିଆ—ଅନ୍ୟରୂପ )

ଲାଞ୍ଜି—ଦେ. ବି—(ସଂ. ଲଞ୍ଜ)—୧ । ଚୋଡ଼ ବା ଲମ୍ବ ଜଳାଶୟର
Lānji শেষ छोर ସୂକ୍ଷ୍ମ ମୁଣ୍ଡ ବା ଶେଷଭାଗ—1. The pointed end or apex of a long tank.
বেখা नोक ୨ । ସୂକ୍ଷ୍ମ ରେଖା—2. A thin line. (ଯଥା—
କଜଳ ଲାଞ୍ଜି)—୩ । ପାଗର କମ୍ବା ପିନ୍ଧା ବସ୍ତ୍ରର ଝୁଲନ୍ତା
নে(লে)জ छोर ଓହଳଥିବା ଲମ୍ବ ଅଂଶ—3. The long end of a turban or cloth which hangs down. ୪ । ଢିଙ୍କିର ପୁଚ୍ଛ ବା ଶେଷଭାଗ; ଢିଙ୍କିର
ঢেংকীব লেজ पैतल ଯେଉଁ ଅଂଶରେ ଭୁଟାଳୀ ଗୋଡ଼ ଦିଅନ୍ତି—
4. The back or tail end or pedal of a Dhenki ( husking jack ). ଦେ. ବିଣ—
ଲାଞ୍ଜା (ଦେଖ)—Lānja (See). ପ୍ରାଦେ (ବାଲେଶ୍ୱର)
ବି—୧ । କଟା ହୋଇଥିବା ମାଛର ଲାଞ୍ଜ ସହିତ ଲାଗି-
ଥିବା ଅଂଶ ଖଣ୍ଡ—1. The cut part of a fish with its tail attached. ୨ । ଗୁଡ଼ିର ତଳେ
ବନ୍ଧା ଯାଇଥିବା କାଗଜର ସୂକ୍ଷ୍ମ ପଟର ବା ଲାଞ୍ଜ—
লেজ दुम 2. The paper tail of a kite.

ଲାଞ୍ଜିଆ ବଳଦ—ପ୍ରାଦେ (ଗଡ଼ଜାତ) ବି—ବେଙ୍ଗଳାର ଶେଷ ମୁଣ୍ଡରେ
Lānjia balada ଯୋଗ ହୋଇଥିବା ବଳଦ—The outer-
শেষবলদ पटियावैल most ox of a Bengalā.
(ବିପରୀତ—ମେଢ଼ିଆ ବଳଦ)

ଲାଞ୍ଜିକା—ଦେ. ବି—ଜୁଳୁଜୁଳିଆ ପୋକ—Firefly
Lānjika জোনাকী, জোনিপোকা पटविजना, जुगनू

ଲାଞ୍ଜି ତାରା—ଦେ.ବି—(ସଂ.ଲାଞ୍ଜ ଓ ତାରକା)—ଲାଞ୍ଜାତାରା,ଧୂମକେତୁ—
Lānji tārā Comet.
লেজাতাবা पुंछलतारा

ଲାଞ୍ଜିମୁଠା—ପ୍ରାଦେ (ବାଲେଶ୍ୱର) ବି—ଲାଞ୍ଜି ୧ (ଦେଖ)
Lānjimutha Lānji 1. (See)

ଲାଞ୍ଜୁଆ—ଦେ. ବିଣ—ଲାଞ୍ଜା (ଦେଖ)
Lānjua Lānja. (See)

ଲାଟ୍—ବୈଦେ. ବି (ଇଂ. ଲର୍ଡ଼; ଇଂରେଜ ଅଧିକୃତ ଭାରତବର୍ଷକୁ
Lāt ବିଲାତରୁ ପ୍ରେରିତ ଶାସନକର୍ତ୍ତାମାନେ ବିଲାତର ଲର୍ଡ଼ବଂଶୀୟ
লাট ଥିବାରୁ ଓ ଲର୍ଡ଼ ଉପାଧିଧାରୀ ଥିବାରୁ)—୧ । ଇଂରେଜଶାସିତ
लाट କୌଣସି ପ୍ରଦେଶର ବା ଭାରତବର୍ଷର ଉଚ୍ଚତମ ଶାସନକର୍ତ୍ତା—
1. The Provincial Governor or the Viceroy of India. [ଦ୍ର—ପ୍ରାଦେଶିକ ଗଭର୍ଣ୍ଣରଙ୍କୁ
ଲାଟ୍ ବା ଛୋଟଲାଟ୍; ଭାରତର ଗଭର୍ଣ୍ଣର୍ ଜେନେରାଲଙ୍କୁ
ବଡ଼ଲାଟ୍ ଓ ସେନାପତିଙ୍କୁ ଜଙ୍ଗୀଲାଟ୍ ବୋଲାଯାଏ । ]
লাট ୨ । (ଇଂ. ଲଟ୍) ଅଂଶ; ଭାଗ—2. Part; share;
लाट lot. ୩ । ପୁଞ୍ଜ—3. Group; union. ୪ । ଜଳମଧ୍ୟରେ
ଭାସିଥିବା ଶସ୍ୟାଦିର ଗୋଟିଏ ଗୋଟିଏ ପୁଞ୍ଜ ବା ସମଷ୍ଟି ବା

ଦଫା—4. A lot of any property brought to sale. ୫ । ସମ୍ପତ୍ତି ବା ଜମିଦାରୀ ଆଦି ଗୋଟି ଗୋଟି କରି ନିଲାମ କରାଯିବା ରୀତି—5. Auction sale of properties by lots. [ଦ୍ର—ଅନେକଗୁଡ଼ିଏ ସମ୍ପତ୍ତି ନିଲାମରେ ଉଠିଥିଲେ ତାକୁ ଭିନ୍ନ ଭିନ୍ନ ଅଂଶ ବା ପୁଞ୍ଜ ବା ଦଫାରେ ବିଭକ୍ତ କରାଯାଏ, ଉକ୍ତ ଅଂଶମାନଙ୍କୁ ଲାଟ୍ (ଇଂ. ଲଟ୍ lot) ବୋଲାଯାଏ । ଗୋଟିଏ ଲାଟ୍‌ର ସମ୍ପତ୍ତିର ନିଲାମ ଶେଷ ହେଲେ ତତ୍‌ପରବର୍ତ୍ତୀ ଲାଟ୍‌ର ସମ୍ପତ୍ତି ନିଲାମ କରାଯାଏ । ଏହି କ୍ରମିକ ସଂଖ୍ୟାଯୁକ୍ତ ସମ୍ପତ୍ତିକୁ ଯଥାକ୍ରମେ ୧ ନମ୍ବର ଲାଟ୍, ୨ ନମ୍ବର ଲାଟ୍, ୩ ନମ୍ବର ଲାଟ୍ ବୋଲାଯାଏ । ଏହିପରି ଲାଟ୍ ଲାଟ୍ ହୋଇ ନିଲାମ କରାଯିବା ରୀତିକୁ ମଧ୍ୟ ଲାଟ୍ ବା ଲାଟନିଲାମ ବୋଲାଯାଏ ।]

**ଲାଟ୍‌କଣ୍**—ବୈଦେ. ବି (ଇଂ. ଲ୍ୟାଣ୍ଟର୍ନ)—ଲଣ୍ଠନ୍ (ଦେଖ)
Lāṭ-kaṇ  Lanṭhan. (See)
लाठेन  लालटेन(ल)

**ଲାଟ୍ କମନ୍‌ସ**—ବୈଦେ. ବି (ଇଂ. ଲର୍ଡ୍ ଓ କମନ୍‌ସ)—ଲର୍ଡ୍ ଓ
Lāṭ kaman-s  କମନ୍‌ସ୍ ସଭ୍ୟମାନଙ୍କଦ୍ୱାରା ଗଢ଼ା ବିଲାତର ପାର୍ଲିଆ-
लाटकमन्स  ମେଣ୍ଟ ସଭା—The British Parliament of
लाटकमन्स  the Commons and the Lords.

**ଲାଟ୍ କମିସନର୍**—ବୈଦେ. ବି (ଇଂ. ସେହିପରି ଶବ୍ଦ)—ପ୍ରାଦେଶିକ
Lāṭ kamisanar  ଶାସନକର୍ତ୍ତା ବା ବିଭାଗୀୟ ଶାସନକର୍ତ୍ତା—
লাট কমিসনর  Provincial head and divisional head
लाटकमिस्नर  of administration.

**ଲାଟ୍ କାଉନ୍‌ସିଲ୍**—ବୈଦେ. ବି (ଇଂ. ଲର୍ଡ୍ ଓ କାଉନ୍‌ସିଲ୍)—
Lāṭ kāun-sil  ଭାରତବର୍ଷର ମକଦ୍ଦମାମାନ ହାଇକୋର୍ଟରେ
লাট কাউন্সিল  ନିଷ୍ପତ୍ତି କରାଯିବା ପରେ ହାଇକୋର୍ଟର ବିଚାର
लाटकौंसिल  ବିରୁଦ୍ଧରେ ଅପିଲ୍ ଶୁଣି ମୀମାଂସା କରିବା ପାଇଁ ବିଲାତରେ ସମ୍ରାଟଙ୍କ ପ୍ରତିଷ୍ଠିତ ବିଚାରପତି ଦଳଙ୍କ ଦ୍ୱାରା ସଗଠିତ ସଭା—The Privy Council of England (which hears appeals from the decision of Indian High Courts)

**ଲାଟ୍ ଗଭ(ବ)ର୍ଣ୍ଣର**—ବୈଦେ. ବି (ଇଂ. ଲର୍ଡ୍ ଓ ଗଭର୍ଣ୍ଣର୍)—ଲାଟ
Lāṭ gabha(ba)rṇṇar  ସାହେବ (ଦେଖ)—Lāṭ-sāheb.
লাটগবর্ণর  लाटगवर्नर  (See)

**ଲାଟ୍‌ଗୀର୍ଜା**—ବୈଦେ. ବି (ଇଂ. ଲର୍ଡ୍+ପର୍ତ୍ତୁଗୀଜ୍. ଇଗ୍ରୀଜା)—
Lāṭ girja  ଭାରତର ଯେଉଁ ଗୀର୍ଜା ବା ଖ୍ରୀଷ୍ଟିୟାନ୍ ଭଜନା-
লাট গীর্জা  ଳୟରେ ଲାଟ୍‌ସାହେବ ଓ ବଡ଼ ବଡ଼ ସରକାରୀ କର୍ମଚାରୀ
लाटगीर्जा  ସାହେବମାନେ ଉପାସନା କରନ୍ତି ଓ ଯେଉଁଠାରେ ସରକାରୀ ପାଦ୍ରୀ ଉପାସନା କରନ୍ତି—A church reserved for high Government officials in India. [ଦ୍ର—ଏଥିରେ ସରକାରଙ୍କ ନିଯୁକ୍ତ ଚାପ୍ଲେନ୍ ବା ଲାଟ୍‌ପାଦ୍ରୀ ପୌରୋହିତ୍ୟ କରନ୍ତି ।]

**ଲାଟ୍ ନିଲାମ**—ବୈଦେ. ବି—ନିଲାମ କରାଯିବା ଦ୍ରବ୍ୟମାନଙ୍କୁ ଦଫା ଦଫା
Lāṭ nilāma  କରି ବିଭକ୍ତ କରି କ୍ରମାନ୍ୱୟରେ ଗୋଟିଏ ଗୋଟିଏ
লাটনিলেম  लाटनिलाम  ପୁଞ୍ଜ ବା ଦଫାକୁ ନିଲାମ କରାଯିବା ପଦ୍ଧତି—Auction sale of properties by lots.

**ଲାଟ୍‌ପସନ୍ଦ**—ଦେ. ବି—ଏକ ପ୍ରକାର ଉତ୍କୃଷ୍ଟ କଲମୀ ଆମ୍ବର ଅଧୁନିକ
Lāṭ pasanda  ନାମ—Name given to a kind of
লাটপসন্দ  लाटपसन्द  excellent mango imported to this country.

**ଲାଟ୍‌ପାଦ୍ରୀ**—ବୈଦେ. ବି—(ଇଂ ଲର୍ଡ୍+ପର୍ତ୍ତୁଗୀଜ. ପାଦ୍ରୀ)—୧ ।
Lāṭ pādrī  ଲାଟ୍ ବିଶପ୍ (ଦେଖ)—1. Lāṭ bisap (See)
লাটপাদ্রী  लाटपाद्री  ୨ । ଲାଟ ଗୀର୍ଜାରେ ଉପାସନାର୍ଥ ନିଯୁକ୍ତ ପାଦ୍ରୀ—2. Chaplain. (ଲାଟପାଦରୀ—ଅନ୍ୟରୂପ)

**ଲାଟ୍ ଫାରମ୍**—ବୈଦେ. ବି—(ଇଂ ପ୍ଲାଟ୍ ଫର୍ମ୍)—ପ୍ଲାଟ୍ ଫର୍ମ୍ (ଦେଖ)
Lāṭ phāram  Plāṭ phorm (See).

**ଲାଟ୍‌ବନ୍ଦି**—ଦେ. ବି—୧ । ନିଲାମ ନିମନ୍ତେ ସମ୍ପତ୍ତିମାନଙ୍କୁ ଗୁଡ଼ିଏ ଲାଟ୍‌ରେ
Lāṭ-bandi  ବା ପୁଞ୍ଜରେ ବିଭକ୍ତ କରିବା—1. Parcelling of
লাটবন্দী  लाटबन्दी  properties into different lots for the purpose of auction. ୨ । ଲାଟ୍ ନିଲାମ—2. Auction by lots.—୩ । ଜମିଦାର-ମାନଙ୍କ ପାଇଁ ସରକାରଙ୍କୁ ଦେୟ ରାଜସ୍ୱକୁ ଖଜଣାଖାନାରେ ଜମିଦାରମାନେ ଦାଖଲ କରିବା ନିମନ୍ତେ ବର୍ଷକ ମଧ୍ୟରେ ସରକାରଙ୍କର ନିର୍ଦ୍ଧାରିତ ଦିବସ—3. The day fixed by the Government for the payment of revenue of zamindaries to the Government treasury. [ଦ୍ର—ଓଡ଼ିଶାରେ ବର୍ଷ ମଧ୍ୟରେ ଗଭର୍ଣ୍ଣମେଣ୍ଟ ଲାଟ୍‌ବନ୍ଦିର ଦୁଇଟି କିସ୍ତି ଦିବସ ଧାର୍ଯ୍ୟ କରିଅଛନ୍ତି । ଓଡ଼ିଆ ସନର ବୈଶାଖ = ଏପ୍ରିଲ ୨୮ ତାରିଖ କିସ୍ତି; ଏଥିରେ ଉକ୍ତ ସନର ଦେୟ ରାଜସ୍ୱର ଅଧପଣ ଦାଖଲ କରାଯାଏ ଓ କାର୍ତ୍ତିକ କିସ୍ତି = ନଭେମ୍ବର ୮ ତାରିଖ; ଏଥିରେ ଉକ୍ତ ସନର ଦେୟ ରାଜସ୍ୱର ବାକି ଅଧପଣ ଦାଖଲ କରାଯାଏ । ଏହି ଦୁଇ କିସ୍ତିରେ ରାଜସ୍ୱ ଦାଖଲ ନ ହେଲେ ଉକ୍ତ ଜମିଦାରୀ 'ସୈସୁଲତାନ ନିଲାମ' କରାଯାଏ, ଅର୍ଥାତ୍ ଲାଟ୍‌ରେ ଉଠେ ।] ୪ । ସୈସୁଲତାନ ନିଲାମ; ନିର୍ଦ୍ଧାରିତ କିସ୍ତିରେ ରାଜସ୍ୱ ଦିଆଯାଇ ନ ଥିବା ଜମିଦାରମାନଙ୍କର ନିଲାମ—4. Auction sale af zamindāries for arrears of revenue. [ଦ୍ର—ନିଲାମରେ ଆସିଥିବା ସମ୍ପତ୍ତିମାନଙ୍କୁ ପୃଥକ୍ ପୃଥକ୍‌ରୂପେ ଭିନ୍ନ ଭିନ୍ନ ଦଫାରେ ଡାକିବା କରି ଯିବାକୁ 'ଲାଟବନ୍ଦି' ବୋଲାଯାଏ; (୧ ଅର୍ଥ) । ଏଥିଲାଗି 'ଲାଟବନ୍ଦି' କରିପାଇ ନିଲାମ କରାଯିବା ପଦ୍ଧତିକୁ ଲୋକେ 'ଲାଟବନ୍ଦି' କହନ୍ତି (୨ୟ ଅର୍ଥ) । ନିର୍ଦ୍ଦିଷ୍ଟ କିସ୍ତିର ତାରିଖ ଦିନ ରାଜସ୍ୱ ଦାଖଲ ନ କଲେ ଜମିଦାରୀମାନ ନିଲାମ କରାଯାଏ, ଏଥିପାଇଁ ଲୋକେ ଉକ୍ତ ନିର୍ଦ୍ଧାରିତ କିସ୍ତିକୁ ମଧ୍ୟ 'ଲାଟବନ୍ଦି' କହନ୍ତି; (୩ୟ ଅର୍ଥ) । ରାଜସ୍ୱ ଦିଆଯାଇ ନ ଥିବା ଜମିଦାରୀମାନ

ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା ନିଲାମ କରାଯିବାକୁ ମଧ୍ୟ 'ଲାଟବନ୍ଦି' କହନ୍ତି (୪ର୍ଥ ଅର୍ଥ) ।]

ଲାଟ୍ ବାନ୍ଧିବା—ଦେ. କ୍ରି—୧ । ନିଲାମରେ ଆସିଥିବା ସମ୍ପତ୍ତିମାନ ଯଥା-
Lāṭ bāndhibā କ୍ରମରେ ନିଲାମ କରିବା ଉଦ୍ଦେଶ୍ୟରେ
লাটবাঁধা लाटबांधना ସେମାନଙ୍କୁ ଗୋଟିଏ ଗୋଟିଏ ଦଫା ବା ପୁଞ୍ଜରେ ବିଭକ୍ତ କରିବା—1. To separate or apportion the properties brought to sale into separate lots. ୨ । ଅନେକ ସମ୍ପତ୍ତିକୁ ଭିନ୍ନ ଭିନ୍ନ କିମ୍ବା କ୍ରମିକ ପୁଞ୍ଜରେ ବିଭକ୍ତ କରିବା ବା ତାଲିକା କରିବା—2. To separate or make a list of several properties into different or successive lots.

ଲାଟ୍ ବାହାଦୁର୍—ବୈଦେ. ବି (ଇଂ. ଲର୍ଡ୍ + ଫା. ବାହାଦୁର୍)—
Lāṭ bāhādur ଲାଟ୍ ୧ (ଦେଖ)—Lāṭ 1 (See)

ଲାଟ୍ ବିକିରି—ଦେ. ବି—ବିକ୍ରି କରାଯିବା ଦ୍ରବ୍ୟମାନଙ୍କୁ କେତେକେତେ
Lāṭ bikiri ଗୁଡ଼ିଏ ପୁଞ୍ଜରେ ବିଭକ୍ତ କରି କ୍ରମାନୁସାରେ ଗୋଟିଏ
(ଲାଟ୍ ବିକ୍ରି—ଅନ୍ୟରୂପ) ଗୋଟିଏ ପୁଞ୍ଜକୁ ବିକ୍ରି କରିବା—
লাটবিক্রী लाटबिक्री Sale by lots.

ଲାଟବିଶପ୍— ବୈଦେ. ବି (ଇଂ. ଲର୍ଡ୍ ବିଶପ୍)—ଯେଉଁ ପାଦ୍ରୀ (ବା
Lāṭ-bisap ଖ୍ରୀଷ୍ଟୀୟାନ ଧର୍ମ ଯାଜକ) ପ୍ରଦେଶିକ ଅନ୍ୟ
লাটবিষপ ସମସ୍ତ ପାଦ୍ରୀଙ୍କ ଉପରେ ପ୍ରଧାନ—Lord Bishop
लाटबिशप (of Calcutta, Bombay, Madras etc)

ଲାଟ୍ ଭବନ—ଦେ. ବି—ବଡ଼ଲାଟ ବା ଛୋଟଲାଟଙ୍କ ବାସସ୍ଥାନ—
Lāṭ bhabana Viceroy's or Provincial Gover-
লাটভবন लाटभवन nor's residence.

ଲାଟରେ ଆସିବା—ଦେ. କ୍ରି—କୌଣସି ଜମିଦାରୀର ରାଜସ୍ୱ ନିରୂପିତ
Lāṭ-re āsibā 'ଲାଟବନ୍ଦି' ଦିନ ସରକାରଙ୍କଠାରେ ଦାଖଲ ନ
ଲାଟରେ ଉଠିବା } ଅନ୍ୟରୂପ ହେବାଯୋଗୁଁ ବାକି ରାଜସ୍ୱ
ଲାଟରେ ଠିଆହେବା } ଆଦାୟ କରିବାପାଇଁ ଉକ୍ତ
লাটেআসা লাটেউঠা ଜମିଦାରି ସରକାରଙ୍କ ଦ୍ୱାରା ନିଲାମ କରାଯିବା
लाटमेंआना, लाटमेंउठना ବିଷୟ ସର୍ବସାଧାରଣରେ ବିଜ୍ଞାପିତ ହେବା—To be advertised for sale for arrears of revenue (said of a defaulting zamindari).

ଲାଟରେ ଯିବା—ଦେ. କ୍ରି—୧ । ରାଜସ୍ୱ ବାକି ରହିବାରୁ ଜମିଦାରି
Lāṭ-re jibā ବନ୍ଦୋବସ୍ତନ ନିଲାମ ହୋଇଯିବା—1. To be
লাটে যাওয়া sold by auction for arrears of
लाटमेंजाना revenue (said of Zamindaries).
୨ । ଲାଟନିଲାମଦ୍ୱାରା କୌଣସି ସମ୍ପତ୍ତି ନିଲାମ ହୋଇଯିବା 2. To be sold by auction in lots (said of any property sold by auction sale).

ଲାଟ୍ ସଭା—ଦେ. ବି (ଇଂ. ଲର୍ଡ + ସଂ. ସଭା)—୧ । ବିଲାତ
Lāṭ sabhā ପାର୍ଲିଅମେଣ୍ଟର ହାଉସ୍ ଅଫ୍ ଲର୍ଡ୍ସ—1. The
লাটসভা House of Lords of the British
लाटसभा Parliament. ୨ । ଭାରତର ବା ପ୍ରାଦେଶିକ ଲାଟସାହେବଙ୍କୁ ଶାସନସମ୍ବନ୍ଧୀୟ ପରାମର୍ଶ ଓ ସାହାଯ୍ୟ ଦେବାପାଇଁ ଗଠିତ ମନ୍ତ୍ରିସଭା—2. The Excutive Council of a Governor General or of a Governor. ୩ । ଲାଟସାହେବଙ୍କୁ ଆଇନ୍ ପ୍ରଣୟନ ସମ୍ବନ୍ଧେ ପରାମର୍ଶ ଦେବା ନିମନ୍ତେ ଗଠିତ ସଭା—3. The Legislative Assembly of the Governor General or of a Governor. [ଦ୍ର—ଭାରତର ବଡ଼ଲାଟଙ୍କ ସଭାକୁ 'ବଡ଼ଲାଟ ସଭା' ଓ ପ୍ରାଦେଶିକ ଲାଟମାନଙ୍କ ସଭାକୁ 'ଛୋଟଲାଟ ସଭା' ବୋଲାଯାଏ ।]

ଲାଟ୍ ସାହେ(ହି)ବ—ବୈଦେ. ବି (ଇଂ. ଲର୍ଡ୍ + ଫା. ସାହିବ୍)—
Lāṭ sāhe(hi)ba ଲାଟ୍ ୧ (ଦେଖ)—Lāṭ 1 (See)
লাটসাহেব लाटसाहब

ଲାଟ୍ସାହେବ ବନିବା—ଦେ. କ୍ରି (ବ୍ୟଙ୍ଗ୍ୟ; ଲକ୍ଷଣାର୍ଥ)—କୌଣସି
Lāṭ-sāheba banibā ସ୍ଥାନରେ ସର୍ବେସର୍ବା ବନିବା; କୌଣସି
লাটসাহেব হওয়া ସ୍ଥାନରେ ଏକାଧିପତ୍ୟ ଦେଖାଇବା; ଖଣ୍ଡ-
लाटसाहब बनना ବନିବା—To unduly assume
(ଲାଟ୍ ହେବା—ଅନ୍ୟରୂପ) over-lordship of a place.
[ଦ୍ର—ସାଧାରଣ ଲୋକଙ୍କର ବିଶ୍ୱାସ ଯେ, 'ଲାଟ୍' ହେଲେ ମନୁଷ୍ୟ ସୁଖ ଓ ଶାନ୍ତିରେ ରହେ, ତାହାର ଯାହା ମନ ହୁଏ ସେ ତାହା କରେ, ସେ କୌଣସି ନିୟମ ବା ଆଇନ୍ ମାନେ ନାହିଁ । ତାହା ଉପରେ କିଛି ଅଙ୍କୁଶ ନ ଥାଏ । ଏଥିପାଇଁ ଉପରୋକ୍ତ ଅର୍ଥରେ ଏ ବାକ୍ୟ ପ୍ରୟୋଗ କରାଯାଏ ।]

ଲାଟ୍ ସୁନ୍ଦରୀ—ଦେ. ବି—ଦାକ୍ଷିଣାତ୍ୟରୁ ଏ ଦେଶକୁ ଆସୁଥିବା ଏକପ୍ରକାର
Lāṭ sundari ରକ୍ତିମ ସିନ୍ଦୁରା ଆମ୍ବ—The name of a
লাটসুন্দরী kind of red mango fruit imported
लाटसुंदरी to this country from South India.

ଲାଟ—ସଂ. ବି (ଲଟ୍ ଧାତୁ = ବିଳାସ କରିବା' ଇତ୍ୟାଦି + ଅଣ୍. ଅ)—
Lāṭa ୧ । ପ୍ରାଚୀନ ଦେଶବିଶେଷ; ଆଧୁନିକ ଗୁଜୁରାଟର ଅଂଶ—1. Name of an ancient country; a part of modern Gujarat. [ଦ୍ର— ଏହା ବର୍ତ୍ତମାନ ଭରୌଚ (Broach), ଅହମଦାବାଦ ଆଦି ଅଞ୍ଚଳ; ଅଟେ (ହି. ଶ.) ।] ୨ । ଲାଟ ଦେଶ ପ୍ରଚଳିତ ରୀତି—2. The costom or usage of the Lāṭa country. ୩ । ଦୋଷ—3. Fault; guilt; blemish. ୪ । ବୃଥା ବାକ୍ୟ—4. Foolish talk; idle talk. ୫ । ବସ୍ତ୍ର—5. Cloth. ୬ । ପୋଷାକ—6. Dress. ୭ । କନ୍ଥା, ଜୀର୍ଣ୍ଣ ବସ୍ତ୍ର—7. Torn cloth, rag; worn-out cloth. ୮ । ପଣ୍ଡିତ ଓ ରସିକ ବା ବିଦଗ୍ଧ ବ୍ୟକ୍ତି—8. A learned and gallant or witty person ୯ । ଲାଟ ଦେଶବାସୀ ବ୍ୟକ୍ତି (ହି. ଶ.)—9. An in-

habitant of the ancient Lāṭa country. ୧୦। ଲାଟାନୁପ୍ରାସ (ଦେଖ)—10. Lāṭānuprāsa.(See) ୧୧। କୌଣସି ପଡ଼ିଆର ବର୍ଷାପାଣିକୁ ଅଟକାଇ ରଖିବା ପାଇଁ ରଚିତ ବନ୍ଧ (ହୁ.ଷ.)—11. A dam thrown to keep back the rain water of a meadow. ୧୨। ଲାଟ ଦେଶର ରାଜା—10. A king of the Lāṭa country (Apte) ୧୩। ପାଲଟା ଲୁଗା ବା ଅଳଙ୍କାର—13. Put off or discarded cloth or ornament. ୧୪। ଶିଶୁମାନଙ୍କ ଭାଷା ବା ବୋଲି—14. Childish language (Apte); childish prattle.
ସଂ. ବିଣ.—୧। ବ୍ୟବହୃତ; ଉପଭୁକ୍ତ—1. Used already; enjoyed. ୨। ପାଲଟା (ଲୁଗା)—2. Put off (clothes); worne. ୩। ପୁରାତନ—3. Old (M.W.) ୪। ଜୀର୍ଣ୍ଣ—4. Worn out out;shabby. ୫। ମଳିନ—5. Filthy; dirty; pale. ୬। ବିଶ୍ରୀ—6. Ugly ୭। ଶିଶୁଜନୋଚିତ 7. Childish (M. W.)
ଦେ. ବି—ଭାରତର ଭିନ୍ନ ଭିନ୍ନ ସ୍ଥାନ [ଅଲ୍ଲାହାବାଦ, ଗାଜିପୁର, ଦିଲ୍ଲୀର ଫିରୋଜସ୍ତମ୍ଭ ଓ ଲୌହସ୍ତମ୍ଭ, ଯମୁନାତୀରବର୍ତ୍ତୀ ଜଗଯବୋଧ, କାଶି, ଭରତପୁର, ଧୌଳୀ, ଜୁନାର, ଗିର୍ଣ୍ଣାର, ଜଉଗଡ଼ ଆଦି]ରେ ପ୍ରାଚୀନ ଅକ୍ଷର ଖୋଦିତ ସ୍ତମ୍ଭମାନ (ବିଶ୍ୱକୋଷ); ଲାଟଲିପି (ଦେଖ) —The pillars found in several places of India in which some archeological inscriptions are found. Lāṭalipi (See)
ବୈଦେ.—ବି. (ଇଂ)—ଲାଟ୍ (ଦେଖ)—Lāṭ (See) (ଦ୍ର—'ଲାଟ୍' ଶବ୍ଦସଙ୍ଗେ ବ୍ୟବହୃତଶବ୍ଦ ଓ ବାକ୍ୟ ଗୁଡ଼ିକ ଲେଖାରେ 'ଲାଟ' ସଙ୍ଗେ ମଧ୍ୟ ଲେଖାଯାଏ)। ପ୍ରାଦେ (କଟକ ସହର) ବି.— ନାଟ (ଦେଖ)—Nāṭa ( See )

**ଲାଟକ**—ସଂ. ବିଣ—ଲାଟ ଦେଶ ସମ୍ବନ୍ଧୀୟ—Relating to the **Lāṭaka** (ଲାଟକା—ସ୍ତ୍ରୀ) Lāṭa country (Apte).

**ଲାଟ ମନ୍ଦିର**—ପ୍ରାଦେ. (କଟକ ସହର) ବି.—ନାଟ ମନ୍ଦିର (ଦେଖ) **Lāṭa mandira** Nāṭa mandira (See)

**ଲାଟ ମୋହର**—ଦେ. ବି.—(ମୁସଲମାନୀ ଭାଷା)—ମୟୂର ବସା ଗୁଣା—**Lāṭa mohara** A nose flower with a dancing ମୟୂରବସାନ ନାକଫୁଲ नाचमौर peacock set on it.

**ଲାଟଲିପି**—ଦେ. ବି—ଭାରତବର୍ଷର ଭିନ୍ନ ଭିନ୍ନ ସ୍ଥାନରେ ଅବସ୍ଥିତ ପ୍ରସ୍ତର **Lāṭa lipi** লাটলিপি लाटलिपि ସ୍ତମ୍ଭମାନଙ୍କ ଦେହରେ (ଲାଟ ବର୍ଣ୍ଣମାଳା—ଅନ୍ୟରୂପ) ପାଲି ଓ ସଂସ୍କୃତ ଭାଷାର ମିଶ୍ରଣରେ ଖୋଦିତ ଅକ୍ଷରମାନ—The script found in ancient pillars in many places of India. [ଦ୍ର—ପାଶ୍ଚାତ୍ୟ ମନୀଷୀ ଜେମ୍ସ୍ ପ୍ରିନ୍ସେପ୍ ଏହି ବର୍ଣ୍ଣମାଳା ଆବିଷ୍କାର କରିଥିଲେ। ଏହା ପ୍ରାଚୀନ ବ୍ରାହ୍ମୀଲିପି ସଙ୍ଗେ ସମାନ। ଅଶୋକଙ୍କ ପ୍ରତିଷ୍ଠିତ ୧୪ଟି ଲାଟ-ସ୍ତମ୍ଭରେ ୧୪ଟି ଅଶୋକ ଅନୁଶାସନ ଲିପିବଦ୍ଧ ହୋଇ ଅଛି। ଏ ଲିପିମାନଙ୍କ ପାଠ ଦ୍ୱାରା ବହୁ ପ୍ରତ୍ନତତ୍ତ୍ୱ ଓ ପ୍ରାଚୀନ କୀର୍ତ୍ତିମାନଙ୍କ ବିଷୟ ଜଣା ପଡ଼ିଅଛି—ବିଶ୍ୱକୋଷ]

**ଲାଟାନୁପ୍ରାସ**—ସଂ. ବି.—(ଲାଟ=ଲାଟୀ ରୀତି ପ୍ରଚଳିତ+ଅନୁପ୍ରାସ)—**Lāṭānuprāsa** ଶବ୍ଦାଳଂକାର ବିଶେଷ; ଅନୁପ୍ରାସ ବିଶେଷ; ଲାଟୀରୀତି ସମ୍ମତ ଅନୁପ୍ରାସ ଅଳଂକାର; ତାତ୍ପର୍ଯ୍ୟ ଭେଦ ଥାଇ ଶବ୍ଦଦ୍ୱୟର ପୁନରୁକ୍ତି—A kind of alliteration; a figure of speech in composition in which words derived from the same root are repeatedly used in different meanings. [ଦ୍ର—ଯେଉଁ ଶବ୍ଦାଳଙ୍କାରରେ ଶବ୍ଦମାନଙ୍କର ପୁନରୁକ୍ତି ହୁଏ, ପରନ୍ତୁ ଅନ୍ୱୟକୁ ବଦଳାଇଲେ ତାତ୍ପର୍ଯ୍ୟ ଭିନ୍ନ ଭିନ୍ନ ହୁଏ, ତାକୁ ଲାଟାନୁପ୍ରାସ ବୋଲି-ଯାଏ।]

**ଲାଟିକା**—ସ୍ତ୍ରୀ. ବି—(ସଂ. ନାଟିକା)—ହାତର ବା ଗୋଡ଼ର ନାଡ଼ୀ—**Lāṭikā** Pulse.
ନାଡ଼ୀ ସଂ. ବି (ଲାଟ+କ+ସ୍ତ୍ରୀ. ଆ)—ଲାଟୀରୀତି (ଦେଖ) **ନାଡ଼ି** Lāṭiriti; (See)

**ଲାଟିନ୍(ନି)**—ବୈଦେ. ବି. (ଇଂ. ଲାଟିନ୍)—ପ୍ରାଚୀନ ରୋମ୍ ବା **Lāṭin(ni)** ଇଟାଲୀରେ ପ୍ରଚଳିତ ଭାଷା—The Latin ল্যাটিন लैटिन language. [ଦ୍ର—ସଂସ୍କୃତ ଯେପରି ଅଧିକାଂଶ ଭାରତୀୟ କଥ୍ୟ ଭାଷାର ମାତୃଭାଷା ଅଟେ, ସେହିପରି ଲାଟିନ୍ ଭାଷା ଅଧିକାଂଶ ୟୁରୋପୀୟ କଥ୍ୟ ଭାଷାର ମାତୃଭାଷା ଅଟେ। ଲାଟିନ୍ ଓ ସଂସ୍କୃତ ମଧ୍ୟ ଏକ ଆଦିମ ଭାଷାର ଭିନ୍ନ ଭିନ୍ନ ଶାଖା ଥିବା ବିଷୟ ଭାଷାବିତ୍ ପଣ୍ଡିତମାନେ ସ୍ଥିର କରି ଅଛନ୍ତି। ଏ ଦୁଇ ଭାଷା Aryan ଆର୍ଯ୍ୟ ଭାଷାର ଦୁଇଟି ଶାଖା ମାତ୍ର।]

**ଲାଟିମ**—ଦେ. ବି.—୧। (ସଂ. ଲଟ୍ଟୁ)—ଲଟୁ (ଦେଖ)—**Lāṭima** লাট্টু लट्टू 1. Laṭu (See) [ଲାଟୁ(ଟୁ)—ଅନ୍ୟରୂପ] ୨। (ସଂ. ଯଷ୍ଟି); ପିଲାଙ୍କ ଖେଳନା ଚକିତ ଛୋଟ ବାଡ଼ି—2. Toy stick.

**ଲାଟୀ**—ସଂ. ବିଣ. ସ୍ତ୍ରୀ—(ଲାଟ+ସମ୍ବନ୍ଧାର୍ଥେ. ଅ+ଈ)—ଲାଟ ଦେଶ **Lāṭi** ପ୍ରଚଳିତ—Current in the Lāṭa country.
ସଂ. ବି—୧। ଲାଟୀରୀତି (ଦେଖ)—1. Lāṭi riti (See) ୨। ପ୍ରାକୃତ ଭାଷା ବିଶେଷ—2. Name of a Prākṛuta dialect (Apte).

**ଲାଟୀ ରୀତି**—ସଂ. ବି.—୧। ଲାଟ ଦେଶ ପ୍ରଚଳିତ ପଦ୍ଧତି—1. Usage **Lāṭi riti** of the Lāṭa country. ୨। ସଂସ୍କୃତ ରଚନାର ରୀତି ବିଶେଷ—2. Name of a mode of composition in Sanskrit. [ଦ୍ର—ରୀତି

ତଳେ ଟୀକା ଦେଖ; ଏଥିରେ ବୈଦର୍ଭୀ ଓ ପାଞ୍ଚାଳୀ, ଏ ଦୁଇ ରୀତିର କିଛି କିଛି ଅଂଶ ଅନୁସୃତ ହୁଏ । ଏଥିରେ ଶ୍ରେଷ୍ଠ ଶ୍ରେଷ୍ଠ ପଦ ଓ ଶ୍ରେଷ୍ଠ ଶ୍ରେଷ୍ଠ ସମାସ ଥାଏ—ହି. ଶ., ମୃଦୁ ଓ ଲଳିତ ପଦ ବିନ୍ୟାସଯୁକ୍ତ ଓ ସମାସସୁଭଗ ଓ ବର୍ଣ୍ଣନୀୟ ବସ୍ତୁ ସହିତ ପ୍ରଯୁକ୍ତ ବିଶେଷଣମାନଙ୍କ ସମ୍ବନ୍ଧ-ସମ୍ପୃକ୍ତ ରଚନା ରୀତିକୁ ଲାଟୀରୀତି ବୋଲାଯାଏ ( ବିଶ୍ୱକୋଷ ) ।]

ଲାଟୁ (ଟ୍ଟୁ)—ଦେ. ବି—ଲଟୁ ( ଦେଖ )—
Lāṭu (ttu) Laṭu ( See )

ଲାଟୁଆ—ପ୍ରାଦେ (କଟକସହର) ବି—ନାଟୁଆ ( ଦେଖ )
Lāṭuā Nāṭuā ( See )

ଲାଟ୍ରିନ୍—ବୈଦେ. ବି (ଇଂ. ଲାଟ୍ରିନ୍)—ପାଇଖାନା—
Lātrin ল্যাট্রিন্ लैट्रिन् Latrine.

ଲାଟ୍ରିନ୍ ଟା(ଟି, ଟେ)କସ—ବୈଦେ. ବି—ଲେଟ୍ରିନ୍ ଟାକସ୍ (ଦେଖ)
Lātrin ṭā(ṭi,ṭe)kasa Letrin ṭākas (See)
ল্যাট্রিন টেক্স लैट्रिनटैक्स
[ଲାଟ୍ରିନ୍ ଟା(ଟେ)କ୍ସ—ଅନ୍ୟରୂପ ]

ଲାଠି—ଦେ. ବି (ସଂ. ଯଷ୍ଟି; ପ୍ରା. ଲଟ୍ଠୀ)—୧ । ମନୁଷ୍ୟର ଛାତିଭାବିଶିଷ୍ଟ
Lāṭhi ମୋଟ ଯଷ୍ଟି; ଠେଙ୍ଗା—1. Cudgel; a thick
লাঠি लाठी, लठिया stick. [ ଦ୍ର—ଇଂରାଜୀରେ ମଧ୍ୟ ଏ ଶବ୍ଦ (Lathi) ଚଳୁଅଛି । ଏହି ଭାରତୀୟ ଶବ୍ଦ 'ଲାଠି'କୁ ବର୍ତ୍ତମାନ ଇଂରେଜ ଭାଷା ଏବେ ନିଜସ୍ୱ କରିଅଛି । ଲାଠି ଅପେକ୍ଷା ବାଡ଼ି ସରୁଆ ଓ ଲମ୍ବରେ ସାନ । ଲାଠି ଓ ଠେଙ୍ଗା ପ୍ରାୟ ଏକ । ଲାଠି ଅପେକ୍ଷା ସୋଟା ସ୍ଥୂଳତର, କିନ୍ତୁ ଦୀର୍ଘତାରେ ଶ୍ରେଷ୍ଠ । ଅଶାବାଡ଼ିର ମୁଣ୍ଡରେ ସମକୋଣ ହୋଇ ଖଣ୍ଡିଏ କାଠ ଲାଗିଥାଏ । ] ୨ । ଯୋଗୀ ଓ ବାବାଜିମାନେ ଧରିଥିବା ଯଷ୍ଟି; ଅଶାବାଡ଼ି—2. An ascetic's staff or wand. [ଦ୍ର—ଏହାର ମୁଣ୍ଡକୁ କାଖତଳେ ରଖି ବସିଲାବେଳେ ବିଶ୍ରାମ କରି ହୋଇପାରେ । ] ୩ । ମାଛ ଧରିବା ପାଇଁ ଥୋପଯୁକ୍ତ ଡୋରି ବନ୍ଧା ଯାଇଥିବା ବଡ଼ ଯଷ୍ଟି; ବନଶୀଖଡ଼ା
3. A big and thick rod to which is fastened a rope with a bait for catching fishes; angling rod. ୪ । ତୁଳା ଭୁଲା
আছাড় धुनकी ପେଞ୍ଜିବା ପାଇଁ ବ୍ୟବହୃତ ଧନୁ—
লাঠির মত শক্ত लाठी, कडा 4. Cotton carder's bow,
ଦେ. ବିଣ—ଯଷ୍ଟି ପରି ଲମ୍ବ, ଟାଣ ଓ ଅନମନୀୟ (ଦେହ) (body) Become hard and inflexible as a stick; rigid. [ ଉ—ତା ଦେହ ଲାଠି ହୋଇଗଲାଣି । ]

ଲାଠିଆ—ଦେ. ବିଣ—୧ । ଯଷ୍ଟି ପରି ଲମ୍ବା, ସ୍ଥୂଳ ଓ ଟାଣ—
Lāṭhiā 1. Long, stout and hard as a stick.
লাঠিব মত লেঠেড়া लाठी,लठियल ୨ । ଯଷ୍ଟିଧାରୀ—2. Staff-bearing. ଦେ. ବି.—ଲାଠିଅଲ ( ଦେଖ ) Lāṭhiāla (See).

ଲାଠିଆରୀ(ଲ)—ଦେ. ବିଣ—ପ୍ରହରଣରୂପେ ଯଷ୍ଟିଧାରୀ—Bearing
Lāṭhiārā (la) cudgel as a weapon; armed
লাঠিআড়া(ল), লেঠেড়া(ল) लठैत with cudgel, ଦେ. ବି—
୧ । ଲାଠି ଦ୍ୱାରା ପଥିକମାନଙ୍କୁ ଆଘାତ କରି ଲୁଣ୍ଠନ କରୁଥିବା ଦସ୍ୟୁ—1. Robbers who loot after attacking travellers with lathis. ୨ । ପ୍ରହରଣରୂପେ ଯଷ୍ଟିଧାରୀ ବ୍ୟକ୍ତି—2. Cudgel-bearer; a person armed with a cudgel. ୩ । ଲାଠି ଖେଳରେ ଦକ୍ଷ ବ୍ୟକ୍ତି—3. A person who is proficient in the act of using cudgels skilfully.

ଲାଠିଆ ଲାଠି—ଦେ. ବି—୧ । ଅନ୍ୟୋନ୍ୟରେ ଯଷ୍ଟି ପ୍ରହାର—
Lāṭhiā lāṭhi 1. Fighting with cudgels; cudgell-
লাঠালাঠি लाठालाठी ing. ଦେ. ବିଣ—ପରସ୍ପରକୁ ଲାଠିଦ୍ୱାରା ଆଘାତ କରୁଥିବା—Fighting with cudgels,

ଲାଠି ଖେଳ—ଦେ.ବି—ଲାଠିକୁ ନାନାପ୍ରକାରେ ବୁଲାଇବାର କୌଶଳ-
Lāṭhi khela ପୂର୍ଣ୍ଣ କ୍ରୀଡ଼ା ବା କସରତ—The art of
লাঠিখেলা लाठीखेल लकडीलखेल brandishing cudgel in defence and attack.

ଲାଠି ଖେ(ଖା)ଳିବା—ଦେ. କ୍ରି.—ବ୍ୟାୟାମ, ଆତ୍ମରକ୍ଷା ଓ ଆକ୍ରମଣପାଇଁ
Lāṭhi khe(khā)liba ଯଷ୍ଟିକୁ ନାନା କୌଶଳରେ ଚାଳିତ
লাঠিখেলা, লাঠিচালান, লাঠি ঘোবান କରିବା—To brandish
लाठी(लकडी)खेलना a lathi as exercise, in self-defence and in attack.

[ଲାଠି ବୁଲା(ଲେ)ଇବା ଲାଠି ଘୁରା(ରେ)ଇବା ଲାଠି ଚଳା(ଳେ)ଇବା —ଅନ୍ୟରୂପ ।]

ଲାଠି ଠେଙ୍ଗା—ଦେ.ବି. (ସହଚର; ବହୁବଚନ ସୂଚକ)—ଲାଠି ଆଦି;
Lāṭhi ṭhenga ଭିନ୍ନ ଭିନ୍ନ ଦୈର୍ଘ୍ୟ ଓ ସ୍ଥୂଳତାର ଯଷ୍ଟିମାନ—
লাঠি ঠেঙা लाठीठेंगा Cudgels; various sorts of sticks.
ଲାଠି ବାଡ଼ି } ଅନ୍ୟରୂପ
ଲାଠି ସୋଟା(ଠା) }
[ଦ୍ର—ଲାଠି ପରି ଠେଙ୍ଗା ମୋଟା; ଓ ଦୀର୍ଘ; ଲାଠିଠାରୁ ବାଡ଼ି ସରୁଆ ଓ ଅଦୀର୍ଘ; ସୋଟା ଲାଠିଠାରୁ ମୋଟା ଓ କମ୍ ଦୀର୍ଘ ।]

ଲାଠି ପାହାର—ଦେ. ବି ( ସଂ. ଯଷ୍ଟିପ୍ରହାର)—ଯଷ୍ଟିଦ୍ୱାରା ପ୍ରହାର—
Lāṭhi pāhāra Stroke with a lathi.
লাঠি মার लाठी मार (ଲାଠି ବାଡ଼ି, ଲାଠି ମାଡ଼—ଅନ୍ୟରୂପ)

ଲାଠି ବୁଲା—ଦେ. କ୍ରି—କୌଶଳ ପୂର୍ବକ ଯଷ୍ଟିକୁ ଇତସ୍ତତଃ ଚାଳିତ
Lāṭhi bulā କରିବା—Brandishing a lathi with
লাঠি ঘোরান लाठी घुमाना skill.
[ଲାଠି ବୁଲା(ଲେ)ଇବା—କ୍ରିୟାରୂପ]

ଲଠି ଲଠି ହେବା—ଦେ. କ୍ରି—୧ । ଏକ ଅବସ୍ଥାନରେ ଅଙ୍ଗ ପ୍ରତ୍ୟଙ୍ଗ
Lāṭhi lāṭhi hebā ବହୁକାଳ କଷ୍ଟଲଗ୍ନବରେ ରଖିବାଯୋଗୁଁ
लाठि लाठि करना ଇଙ୍ଗ ନ ହେବା—1. ( the limbs )
**लाठीजैसा होना** To become rigid ( like a stick )
(ଲଠି ହେବା—ଅନ୍ୟରୂପ) on account of being kept long in one position. ୨ । ( ଲକ୍ଷଣାର୍ଥ ) କୌଣସି କାର୍ଯ୍ୟ କରିବାକୁ ଦେହଭଙ୍ଗୀ ଅବଦ୍ୱାରା (ବାକ୍ୟଦ୍ୱାରା ନୁହେଁ ) ଅନିଚ୍ଛା ପ୍ରକାଶ କରିବା—2. ( figurative ) To show ( by bodily expressions and not by words ) unwillingness to do any work.

ଲଠେ(ଠ୍ୟା)ଇବା—ଦେ. କ୍ରି—୧ । ଯଷ୍ଟିଦ୍ୱାରା ପ୍ରହାର କରିବା—1. To
Lāṭhe(ṭhyā)ibā beat with a cudgel. ୨ । ଦେହକୁ
लाठि दियेमारना, लाठान ଯଷ୍ଟି ପରି ଲମ୍ୱାଇବା—2. To stretch
**लठियाना** one's body straight like a stick.

ଲଠ୍ୟାଘାତ -ଦେ. ବି ( ପଣ୍ଡିତଙ୍କ ପ୍ରୟୋଗ; ଦେଶଜ ଶବ୍ଦ ସଙ୍ଗେ
Lāṭhyāghāta ସଂସ୍କୃତ ଶବ୍ଦର ସନ୍ଧି )—ଯଷ୍ଟ୍ୟାଘାତ; ଯଷ୍ଟି
लाठ्याघात ଦ୍ୱାରା ପ୍ରହାର—Striking with a lathi.
**लठ्ठाघात** [ ଦ୍ର—ଏହିପରି ସନ୍ଧି ବ୍ୟବହାର ଓ ସାଧୁର ବିରୁଦ୍ଧ ହେଲେହେଁ, କେତେକ ଲୋକ ଅଛନ୍ତି ପରିହାସ ସ୍ଥଳରେ ଏପରି ବ୍ୟବହାର କରିଥାଆନ୍ତି । ଯଥା—ଲଠୌଷଧ, ଲଠୌଷଧି, ଲଠ୍ୟାଘାତ ଇତ୍ୟାଦି । ]

ଲଠୌଷଧ - ଦେ. ବି ( ପଣ୍ଡିତଙ୍କ ପ୍ରୟୋଗ; ଦେଶଜ ଲଠି ଶବ୍ଦ
Lāṭhyaushadha ସଙ୍ଗେ ସଂ. ଔଷଧର ସନ୍ଧି )—(ବ୍ୟଙ୍ଗ୍ୟ)—
ମୂର୍ଖର ମୂର୍ଖପଣରୂପ ରୋଗର ଉପଶମନାର୍ଥ ଉଦ୍ଦିଷ୍ଟ ପ୍ରଯୁକ୍ତ ଲଠି ବା ଯଷ୍ଟ୍ୟାଘାତରୂପ ଔଷଧ—( Ironical ) The appliance of the stick or cudgel to remove a stupid person's malady of stupidity. [ ଦ୍ର—ଭର୍ତ୍ତୃହରିକୃତ ଗୋଟିଏ ଉଦ୍ଭଟ ଶ୍ଳୋକଅଛି—"ଶକ୍ୟୋ ବାରୟିତୁଂ ଜଲେନ ହୁତଭୁକ୍ ଛତ୍ରେଣ ବର୍ଷାତପୌ, ନାଗେନ୍ଦ୍ରୋ ନିଶିତାଙ୍କୁଶେନ ସମଦୋ ଦଣ୍ଡେନ ଗୌର୍ଗର୍ଦ୍ଦଭୌ । ବ୍ୟାଧିର୍ଭେଷଜ ସଂଗ୍ରହୈଶ୍ଚ ବିବିଧୈର୍ମନ୍ତ୍ରପ୍ରୟୋଗୈର୍ବିଷମ୍, ସର୍ବସ୍ୟୌଷଧ ମସ୍ତିଶାସ୍ତ୍ର ବିହିତଂ ମୂର୍ଖସ୍ୟ ନାସ୍ତ୍ୟୌଷଧଂ" ଏ ଶ୍ଳୋକର ଶେଷ ଚରଣର ପ୍ରାନ୍ତରେ ଥିବା 'ମୂର୍ଖସ୍ୟ ନାସ୍ତ୍ୟୌଷଧଂ' ସ୍ଥାନରେ କେହି ରସଗ୍ରାହୀ ପଣ୍ଡିତ 'ମୂର୍ଖସ୍ୟଲଠୌଷଧଂ' ଅଂଶଟି ଲଗାଇ ଅଛନ୍ତି । ସୁବଳଚନ୍ଦ୍ର—ଅଭିଧାନ । ]

ଲଡ଼୍ (ଧାତୁ)—ସଂ.—୧ । କମ୍ପନ କରିବା—1. To shake. ୨ ।
Lāṛ (root) ସ୍ନେହ ଓ ଯତ୍ନ ପୂର୍ବକ ଲାଳନ କରିବା—2. To bring up with extreme fondness; to maintain with love and care. ୩ । ସ୍ଥାନାନ୍ତରୀକରଣ—3. To remove a thing from a place. ୪ । ( ପୁଚ୍ଛ ଅର୍ଥ ) ଇତସ୍ତତଃ ସଞ୍ଚାଳନ; ହଲାଇବା ( ତୁଳ. ବଂ. ନାଡ଼ା, ନାଡ଼ାନ )—4. To wag ( the tail ).

ଲାଡ଼୍(ଡ୍)—ପ୍ରାଦେ ( ଗଞ୍ଜାମ ) ବୈଦେ. ବି ( ଇଂ ଲର୍ଡ୍ )—ଇଂଲଣ୍ଡର
Lārḍ(rd) ଜମିଦାର ବଂଶର ଉପାଧି—( English title ) Lord.

ଲାଡ଼୍ କରିବା—ପ୍ରାଦେ ( ସମ୍ବଲପୁର ) କ୍ରି ( ତୁଳ. ହି. ଲାଡ଼୍ କରନା)
Lārḍ kariba —ଗେହ୍ଲା କରିବା; ମୁଣ୍ଡି ଦେବା—To treat with excessive fondness; to fondle excessively. [ ଦ୍ର—ଛୁଆଙ୍କୁ ଲାଡ଼୍ କଲେ ମୁଣ୍ଡେ ଗୁହ୍ନିବି । ଋଗ ]

ଲାଡ଼୍‌ରା—ପ୍ରାଦେ (ସମ୍ବଲପୁର) ବିଣ. (ତୁଳ. ହି. ଲାଡ଼ଲା)—ଗେହ୍ଲା
Lārḍ-rā (ପିଲା)—Too much fondled (child).

ଲାଡ଼—ଗ୍ରା• ବି—ନାଡ଼ (ଦେଖ)—Narḍa. (S୩୦) ଦେ. ବିଣ—
Lārḍa (ସଂ. ଲାଳନ) ଗେହ୍ଲା—Too much fondled. [ଦ୍ର—ନୋହିଲେ ଅବା ନେଇ ଭରତଙ୍କୁ ଦେବୁ, ଭାଇ ପଣରେ ଲାଡ଼ ହୋଇ ବାହାରୁ । କୃଷ୍ଣସିଂହ. ମହାଭାରତ ବନ ।]

ଲାଡ଼କ୍(ଖ୍)—ଦେ. ବି—୧ । (ନାମ) ତିବ୍ବତ ଦେଶର ଗୋଟିଏ
Lārḍak(kh) ନଗର—1. Ladakh; a town of
लाड़(द)क(ख) Tibbet. ୨ । (ନାମ) କାଶ୍ମୀର ରାଜ୍ୟସ୍ଥ ପର୍ବତ-
**लाडक** ମାଳା ଓ ପ୍ରଦେଶ—2. Name of a range of hills and province in Kashmere.
[ଦ୍ର—ଲଡ଼କ୍ କାଶ୍ମୀର ମହାରାଜଙ୍କ ଅଧିକୃତ ହିମାଳୟ ସୀମାନ୍ତବର୍ତ୍ତୀ ଗୋଟିଏ ବିଭାଗ ଅଟେ । ଏହା କାଶ୍ମୀରର ପୂର୍ବାଂଶରେ ଅବସ୍ଥିତ ଓ ଏହା କାଶ୍ମୀର ରାଜ୍ୟର ଜଣେ ସ୍ୱତନ୍ତ୍ର ଶାସନକର୍ତ୍ତାଙ୍କଦ୍ୱାରା ଶାସିତ । କୈଳାସଗିରି ଓ ଅସଲ ହିମାଳୟ ପର୍ବତ ମଧ୍ୟରେ ଲଡ଼କ୍‌ପର୍ବତମାଳା ଅବସ୍ଥିତ ଓ ଏହି ପର୍ବତମାଳାର ଉତ୍ତରଦେଶରେ ମାନସ ସରୋବର ଅବସ୍ଥିତ । ଲଡ଼କ୍‌ପ୍ରଦେଶ ବାଟେ ସିନ୍ଧୁ ନଦ ଓ ତହିଁର କେତେକ ଶାଖା ପଶ୍ଚିମ ଦିଗକୁ ପ୍ରବାହିତ ହୋଇଅଛି । ଏହି ପ୍ରଦେଶ ପରି ଏତେ ଉଚ୍ଚତାରେ ପୃଥିବୀରେ ଅନ୍ୟତ୍ର ଲୋକବସତି ନାହିଁ । ଏଠାର ଉପତ୍ୟକା ଓ ଅଧିତ୍ୟକାମାନ ସମୁଦ୍ରପୃଷ୍ଠରୁ ୯ ହଜାରଠାରୁ ୧୭ ହଜାର ଫୁଟ୍ ଉଚ୍ଚ ଓ ଏଥିର କେତେକ ପର୍ବତଶୃଙ୍ଗର ଉଚ୍ଚତା ୨୫ ହଜାର ଫୁଟ୍ । ହିମାଳୟରେ ଏଠାରେ ଦାରୁଣ ଗ୍ରୀଷ୍ମ ଓ ରାତରେ ମର୍ମଭେଦୀ ଶୈତ୍ୟ ଅନୁଭୂତ ହୁଏ । ଲଡ଼କ୍ ବାସୀମାନଙ୍କ ପାଳିତ ମେଣ୍ଢାଙ୍କ ଲୋମରେ ଉତ୍କୃଷ୍ଟ ଶାଲ ପ୍ରସ୍ତୁତ ହୁଏ ଓ ଛେଳିଙ୍କ ପିଠିରେ ପଣ୍ୟଦ୍ରବ୍ୟମାନ ବାହିତ ହୁଏ; ଅଧିବାସୀମାନେ ବଳିଷ୍ଠ, ଖର୍ବାକୃତି ଓ ଦୃଢ଼ଶରୀର । ଏମାନେ ବୌଦ୍ଧଧର୍ମାବଲମ୍ବୀ । ପ୍ରତି ପରିବାରର ଭଳି ଚାଷ ଜମି ଅଛି ଓ ତହିଁରେ ଯବ ଫସଲ ହୁଏ । ସ୍ତ୍ରୀଲୋକ ମାନେ ପୁରୁଷଙ୍କ ପରି ବଳିଷ୍ଠ ଓ କର୍ମିଷ୍ଠ । ସ୍ତ୍ରୀମାନଙ୍କ ମଧ୍ୟରେ ଅବରୋଧ ପ୍ରଥା ନାହିଁ । ଧନବାନ୍ ବ୍ୟକ୍ତିଙ୍କ ଛଡ଼ା

ସାଧାରଣତଃ ରମଣୀମାନଙ୍କର ଏକାଧିକ ସ୍ୱାମୀ ଦୃଷ୍ଟହୁଅନ୍ତି । ପ୍ରାୟ ପ୍ରତି ଗ୍ରାମ ପ୍ରାନ୍ତରେ ବୌଦ୍ଧ ମଠ ଅଛି । ପୂର୍ବେ ଏହା ଭୋଟାନ୍ ରାଜ୍ୟର ଅଧିକାରଭୁକ୍ତ ଥିଲା । ଲାଡ଼କ୍‌ର ବର୍ତ୍ତମାନ ଶାସନକର୍ତ୍ତା ମୁସଲମାନ୍ ଧର୍ମାବଲମ୍ବୀ ଓ କାଶ୍ମୀର ମହାରାଜଙ୍କୁ କର ଦିଅନ୍ତି । ୧୮୭୦ ସାଲଠାରୁ କାଶ୍ମୀର ମହାରାଜ ଓ ଇଂରାଜ ରାଜପ୍ରତିନିଧି ଲର୍ଡ୍ ମେୟୋଙ୍କ ସଙ୍ଗେ ହୋଇଥିବା ସନ୍ଧି ଫଳରେ ଏ ଅଞ୍ଚଳର ବାଣିଜ୍ୟପରିଦର୍ଶନାର୍ଥ ଜଣେ ଇଂରାଜ ଓ ଜଣେ ଦେଶୀୟ କମିଶନର୍ ନିଯୁକ୍ତ ହୋଇଅଛନ୍ତି—ବିଶ୍ୱକୋଷ । )

ଲାଡ଼ନ(ଣ)—ଦେ. ବି (ସଂ. ଲଡ଼୍=କମ୍ପନ କରିବା)—୧ । (ପୁଚ୍ଛ Lardana(na) ଆଦି) ହଲାଇବା; ଇତସ୍ତତଃ ସଞ୍ଚାଳନ—1. Waving; wagging. ୨ । କମ୍ପନ; ଇତସ୍ତତଃ ସଞ୍ଚଳନ—2. Oscillating; swinging. ୩ । ଗେହ୍ଲା କରିବା—୪. Fondling; caressing. (M. W)
नाड़न, नाडा
हिलाना

ଲାଡ଼ି (ଧାତୁ)—ସଂ.—ଯତ୍ନପୂର୍ବକ ପାଳିବା—
Lardi (root) To bring up with care.

ଲାଡ଼ିଅ—ପ୍ରାଦେ (ସମ୍ବଲପୁର, ଗଡ଼ଜାତ) ବି—କାଠ ବା ବାଉଁଶରେ
Lardia ତିଆରି ଟୋକେଇ—A basket made of wood or bamboo.

ଲାଡ଼ିବା—ଦେ. କ୍ରି (ସଂ. ଲଡ଼୍ ଧାତୁ)—୧ । (ଅକର୍ମକ) ଇତସ୍ତତଃ
Lardiba ଝୁଲିବା; ହଲିବା—1. To oscillate; to dangle; to wave to and fro. [ଉ—ବେଙ୍ଗୁଲି ନାଗର କୁଆ ନେଲା । ଗୋଡ଼ ଦିଓଟି ଲାଡ଼ୁଥିଲା—ଛଗ] ୨ । ହଲାଇବା; (ପୁଚ୍ଛ ଆଦି) ଇତସ୍ତତଃ ସଂଚାଳିତ କରିବା—2. To wag; to wave to and fro. [ଉ-ଘଟୋତ୍କଚ ଭଗଦତ୍ତଙ୍କୁ ବିନ୍ଧିକାଣ୍ଡ. କାହିଁ ଯିବ ବୋଲିଟି ଲାଡ଼ିଦେଲା ମୁଣ୍ଡ—କୃଷ୍ଣସିଂହ. ମହାଭାରତ. ଭୀଷ୍ମ । ]
नाड़ा
हीलना
नाड़ाना
लाडना

ଲାଡ଼ି ହେବା—ଦେ. କ୍ରି (ସଂ. ଲଡ଼୍‌ଧାତୁ=କମ୍ପନ କରିବା)—୧ ।
Lardi heba ଆସ୍ଫାଳନ କରିବା—1. To boast; to brag. ୨ । ମୁଣ୍ଡ, ଦେହ ଓ ହସ୍ତାଦିକୁ ଇତସ୍ତତଃ ସଞ୍ଚାଳନ ବା କମ୍ପନ କରି ଅସ୍ଫାଳନ ବା ଗର୍ବ ପ୍ରକାଶ ପୂର୍ବକ କଥା କହିବା; ହଲେଇ ହୋଇ କଥା କହିବା—2. To arrogantly or vehemently speak out by shaking or moving the head, the hands and the body.
घाड़ानेड़े कथावला
लंबीचौडी हाँकना

ଲା(ଲାଁ)ଡ଼ୁ—ପ୍ରାଦେ (ସମ୍ବଲପୁର) ବିଣ—(ଅଶ୍ଳୀଳ ଜାତିଙ୍କ ବ୍ୟବହୃତ
La(lāṅ)rdu ଶବ୍ଦ)—ଲାଣ୍ଡିଆ—Bald-headed.

ଲାଡ଼ୁ ଲାଡ଼ୁ—ଦେ. କ୍ରି. ବିଣ—ନାଡ଼ୁ ନାଡ଼ୁ (ଦେଖ)
Lārdu lārdu Nārdu nārdu. (See)

ଲାଢ଼—ଦେ. ବି (ସଂ. ଲାଟ୍ଟକ)—ଆଧୁନିକ ମୟୂରଭଞ୍ଜ ଓ ସିଂହଭୂମି, ଏ
Lardha ଦୁଇ ଅଞ୍ଚଳର ପ୍ରାଚୀନ ନାମ—The ancient name of modern Mayurbbanj and Singhbhum. [ଦ୍ର—ପଲ୍ଲି ଭାଷାର ଜୈନ ଗ୍ରନ୍ଥରେ ଅଛି ଯେ, ଜୈନଧର୍ମପ୍ରବର୍ତ୍ତକ ପାର୍ଶ୍ୱନାଥ ଏହି ଦେଶ ବୁଲି ପ୍ରଥମେ ଜୈନଧର୍ମ ପ୍ରଚାର କରିଥିଲେ ।]

ଲାଣ୍ଟ(ଣ୍ଟି,ଣ୍ଟେ,ଣ୍ଠ,ଣ୍ଠି,ଣ୍ଠେ)ଣ୍(ନ୍)—ବୈଦେ. ବି (ଇଂ, ଲାନ୍ଥର୍ଣ୍ଣ,
Lanta(nti,nte,ntha,nthi,nthe)n(n) ଲାଣ୍ଟର୍ଣ୍ଣ)—ଲଣ୍ଠଣ୍ (ଦେଖ)—Lantan. (See) [ଲାଣ୍ଟି(ଣ୍ଠି)ଣି(ନି)—ଅନ୍ୟରୂପ]
लाण्टेन, लाण्ठेन
लालटेन(म)

ଲାଣ୍ଠନୀ—ସଂ. ବି. ସ୍ତ୍ରୀ—କୁଳଟା ସ୍ତ୍ରୀ—
Lānthani An unchaste woman. (Apte)

ଲାଣ୍ଡ୍—ବୈଦେ. ବି (ଇଂ. ଲାଣ୍ଡ୍)—ଲଣ୍ଡ୍ (ଦେଖ)—Land.
Land (See) [ଦ୍ର—କେତେକ ସ୍ଥାନବାଚକ ଇଂରେଜୀ ଶବ୍ଦର ଶେଷରେ ଏହି ଲାଣ୍ଡ୍ ଶବ୍ଦ ଲାଗିଥାଏ; ଯଥା—ଇଂଲାଣ୍ଡ୍, ସ୍କଟଲାଣ୍ଡ୍, ଗ୍ରୀନ୍‌ଲାଣ୍ଡ୍, ସୋମାଲିଲାଣ୍ଡ୍ ଇତ୍ୟାଦି ।]
ল্যাণ্ড
लैंड

ଲାଣ୍ଡ୍ ଅକ୍ୱିଜିସନ୍—ବୈଦେ. ବି (ଇଂ. ଲାଣ୍ଡ୍ ଅକ୍ୱିଜିସନ୍)—
Land ākwijisan (ରେଲ, ସଡ଼କ, କେନାଲ, ସ୍କୁଲ, ଡାକ୍ତରଖାନା ଆଦି) ସାଧାରଣ ହିତକର କାର୍ଯ୍ୟପାଇଁ ଜମିର ମାଲିକଙ୍କୁ ଜମିର ମୂଲ୍ୟ ଦେଇ ଗବର୍ଣ୍ଣମେଣ୍ଟଙ୍କର ଉକ୍ତଜମିକୁ ଖରିଦ କରିବାର ପଦ୍ଧତି—Land acquisition; acquisition of land by Government for public purposes.
ল্যাণ্ড ল্যাণ্ডকিজিসন
लैंडएक्वीजिसन
(ଲାଣ୍ଡ୍ ଅକ୍ୱଇଜିସନ୍—ଅନ୍ୟରୂପ)

ଲଣ୍ଡ୍ ସେସ୍—ପ୍ରାଦେ. (ଜୟପୁର) ବୈଦେ. ବି. (ଇଂ. ଲାଣ୍ଡ୍+ସେସ୍)
Land ses ପଥକର—Road cess.
[ଲଣ୍ଡସିସ୍ତ (ସ୍ତୁ)—ଅନ୍ୟରୂପ]

ଲଣ୍ଡିକୋଟଲ୍—ବୈଦେ. ବି (ନାମ) (ଫା)—ଭାରତର ଉତ୍ତର ପଶ୍ଚିମ
Lāndikotal ସୀମାନ୍ତରେ ଅବସ୍ଥିତ ଖାଇବାର୍ ଗିରିସଙ୍କଟସ୍ଥ ସର୍ବୋଚ୍ଚ ଶୃଙ୍ଗ (୩୩୭୮ ଫୁଟ)—The highest mountain peak in the Khaiber pass. [ଦ୍ର—ଏହା ଆଫଗାନିସ୍ଥାନ ଓ ଭାରତର ଉତ୍ତର ପଶ୍ଚିମ ସୀମାନ୍ତ ମଧ୍ୟରେ ଅବସ୍ଥିତ ଓ ଜଣେ ଇଂରେଜ ରାଜପ୍ରତିନିଧିଙ୍କ ଦ୍ୱାରା ଏ ଗିରିସଙ୍କଟ ରକ୍ଷିତ । ଏହା କାବୁଲ ରାଜ୍ୟର ଅନ୍ତର୍ଗତ ।]
লান্দীকোতল
लांडीकोटल

ଲଣ୍ଡିଖାନା—ବୈଦେ. ବି (ନାମ) (ଫା)—ଖାଇବାର୍ ଗିରିସଙ୍କଟର
Lāndikhānā କଠିନ ଓ ଦୁର୍ଗମ ଅଂଶ—Name of the most difficult portion of the Khaiber pass.
লান্দীখানা
लांडीखाना

ଲଣ୍ଡିଆ—ଦେ. ବିଣ. ପୁ.(ସଂ.ମୁଣ୍ଡିତ; ସୁନ୍ଦର ମନଷ୍ୟର ମୁଣ୍ଡଟି ଲଣ୍ଡା ବା
Lāndiā ଠାଙ୍ଗରା ହେଲେ ଅସୁନ୍ଦର ଦେଖାଯାଏ ।)—୧ । କୈଣସି ବିଶେଷ ଅଳଙ୍କାର ବା ଅଙ୍ଗନଥିବା ଯୋଗୁଁ ଅସୁନ୍ଦର ଦେଖାଯାଉଥିବା—1. Looking ungraceful for want of some limb or ornament. ୨ । ଅସୁନ୍ଦର; ସୌଷ୍ଠବହୀନ; ଲାବଣ୍ୟହୀନ—2. Un-
নেড়ে
लण्डा, नंढा
(ଲାଣ୍ଡେଇ—ସ୍ତ୍ରୀ)

graceful; inelegant; unsymmetrical. ୩ । ଶୂନ୍ୟ; ଖାଲି—3. Empty. ୪ । ଶାଖାହୀନ ( ବୃକ୍ଷ )—4. Branchless. ୫ । ଅଳଙ୍କାର ବିହୀନ—5. Unadorned. [ବ୍ୟ—ଘର ଉପରେ ଘର ନ ଥିଲେ, କୋଠା ଉପରେ ଛାତ ନଥିଲେ, ମନୁଷ୍ୟ ମୁଣ୍ଡରେ ଚୁଟକା ନ ଥିଲେ, ସ୍ତ୍ରୀଲୋକ ଦେହରେ ଅଳଙ୍କାର ନ ଥିଲେ, ଗଛରେ ଡାଳ ନ ଥିଲେ, କୂଅ ଉପରେ ଘେରାବନ୍ଧ ନ ଥିଲେ ଲୋକେ କହନ୍ତି—ଏହା ଲାଣ୍ଡିଆ ହୋଇଛି । ] ପ୍ରାଦେ (ଗଡ଼ଜାତ) ବି—ଫୋପଡ଼; ଯେଉଁ ସ୍ଥୂଳଯଷ୍ଟି ନିକ୍ଷେପ କରି ଗଛରୁ ଫଳ ଝଡ଼ାଇବାକୁ ହୁଏ—A piece of stout stick thrown at high trees in order to bring down fruits therefrom.

**ଲଣ୍ଡୀ**—ଦେ. ବିଣ. ସ୍ତ୍ରୀ ( ସଂ. ନଗ୍ନ ବା ମୁଣ୍ଡିତ )—୧ । ମୁଣ୍ଡିତ କେଶା ( ସ୍ତ୍ରୀ )—1. ( woman ) With shaven head. ୨ । ଟାଙ୍ଗରମୁଣ୍ଡୀ; ଟାଙ୍ଗରୀ ( ସ୍ତ୍ରୀ )—2. Bald headed ( woman ). ୩ । ଅଳଙ୍କାର ବିହୀନା—3. Shorn of ornaments. ୪ । ପୁଚ୍ଛହୀନା—4. Tailless. (ଯଥା—ଲଣ୍ଡୀ ମୟୂର । ) ୫ । ଶାଖାହୀନ ( ବୃକ୍ଷ ); ସ୍ଥାଣୁ ( ବୃକ୍ଷ )—5. ( A tree ) Whose branches have been cut off or lopped. [ ଯଥା—ଲଣ୍ଡୀ ବରଗଛ ଛାଇ, ଲଣ୍ଡୀ ବିଧିକି ମୁଁ ଘର କରିବି; ଲଣ୍ଡୀର ବଜଣା ଗାଈ—ଭଗ । ] ଦେ. ବି. ସ୍ତ୍ରୀ—୧ । ଲଣ୍ଡାମୁଣ୍ଡୀ ବା ଟାଙ୍ଗରମୁଣ୍ଡୀ ସ୍ତ୍ରୀ—1. A woman with shaven or bald head. ୨ । ସ୍ତ୍ରୀମାନଙ୍କୁ ଦିଆଯାଉଥିବା ନାମ—2. A name given to women. [ ଦ୍ର—କାହାଣୀରେ ବର୍ଣ୍ଣିତ ଅଛି ଯେ, ପୂର୍ବେ ରାଜାମାନେ ରାଣୀ ଆଦିଙ୍କୁ ଲଣ୍ଡୀ କରି ଅର୍ଥାତ୍ ମୁଣ୍ଡିତମୁଣ୍ଡ କରି ଗୋରୁ ଗୁହାଳ ବା ଘୋଡ଼ାଶାଳର ମଇଳା ସଫା କରିବା କାର୍ଯ୍ୟରେ ନିଯୁକ୍ତ କରି ଦଣ୍ଡ ଦେଉଥିଲେ । ସ୍ତ୍ରୀଲୋକ ପକ୍ଷରେ କେଶ ପ୍ରଧାନ ଶୋଭା ଓ ଅଳଙ୍କାର ଥିବାରୁ ସ୍ତ୍ରୀମାନଙ୍କୁ ଲଣ୍ଡା କରିବାଦ୍ୱାରା ଦଣ୍ଡ ଦିଆଯାଉ ଥିଲା । ଏବେ ମଧ୍ୟ ଭାରତର କେତେକ ଅଞ୍ଚଳରେ ସ୍ତ୍ରୀମାନେ ବିଧବା ହେଲେ ସେମାନଙ୍କୁ ମୁଣ୍ଡିତ କରାଯାଏ । ]

Lāṇḍi
ନେଡୀ, ନେଁଡୀ
नंडी
(ଲଣ୍ଡା—ପୁଂ)

**ଲଣ୍ଡୀ କୂଅ**—ଦେ. ବି—ଯେଉଁ କୂଅର ଘେରାବନ୍ଧ ନ ଥାଏ; ଲଣ୍ଡା କୂଅ—A well unprotected by a high earthen ring.
Lāṇḍi kūa
ନେଡାକୂଆ नंडा कूँआ

**ଲଣ୍ଡୀ ଗଛ**—ଦେ. ବି—ଲଣ୍ଡା ଗଛ; ସ୍ଥାଣୁ—A pollard.
Lāṇḍi gachha ନେଡ଼ାଗାଛ नंडापेड

**ଲଣ୍ଡୀ ବଗୁଲି**—ଦେ. ବି—ଲଣ୍ଡା ବଗୁଲି ( ଦେଖ )
Lāṇḍi baguli Landā baguli ( See )

**ଲଣ୍ଡୀ ମୟୂ(ୟୂ)ର(ରୀ)**—ଦେ. ବି. ସ୍ତ୍ରୀ—ପୁଚ୍ଛହୀନା ମୟୂରୀ—The tailless peahen. [ ଦ୍ର—ମୟୂରୀମାନଙ୍କର ଲଞ୍ଜ ନ ଥିବାରୁ ସେମାନଙ୍କୁ ଲଣ୍ଡୀ ମୟୂର କହନ୍ତି ଓ ପୁଚ୍ଛବିଶିଷ୍ଟ ପୁଂ. ମୟୂରଙ୍କୁ ଲଞ୍ଜା ମୟୂର କହନ୍ତି । ]
Lāṇḍi maya(yū)ra(rī)
ନେଡୀ ମୟୁର
नंडी मयूर

**ଲଣ୍ଡୀ ମୁଣ୍ଡୀ**—ଦେ. ବିଣ. ସ୍ତ୍ରୀ—୧ । ମୁଣ୍ଡିତ କେଶା ( ସ୍ତ୍ରୀ )—1. ( a woman ) With a shaven head.
Lāṇḍi muṇḍi
ନେଁଡ଼ି ମୁଁଡ଼ି नंडी मुंडी
(ଲଣ୍ଡା ମୁଣ୍ଡା—ପୁଂ)

**ଲଣ୍ଡୀ ମୁଣ୍ଡୀ ପୁ(ପୋ)ଇ(ଇଁ) କ(କେ)ରାଣ୍ଡି**—ଦେ. ବି. ସ୍ତ୍ରୀ ( ଗାଳି ଓ ଭୁତ୍ସାର୍ଥରେ ବ୍ୟବହୃତ )—ଅସୁନ୍ଦରୀ ଓ ନୀଚ ସ୍ତ୍ରୀ—An ugly and low woman. [ ଦ୍ର—(ଲଣ୍ଡାମୁଣ୍ଡା ପୁ[ପୋ]ଇ କେରେଣ୍ଡା—ପୁଂ) ଏଥିର ସମ୍ପୂର୍ଣ୍ଣ ପଦ—ଲାଣ୍ଡୀମୁଣ୍ଡୀ (ଲଣ୍ଡାମୁଣ୍ଡା) ପୁଇକେରାଣ୍ଡୀ (ପୁଇକେରେଣ୍ଡା) ସିଂଘିବୁଆରେ ଥାଏ, ଅଧଁଠାପଡର ଖଣ୍ଡିଏ ପାଇଲେ ଗୁହ ଚୁଟ ଖାଏ । ଭଗ]
Lāṇḍi muṇḍi pu(po)i(iṅ) ka(ke)rāṇḍi
ନେଡ଼ୀ ମୁଁଡ଼ୀ
नंडी मुंडी

**ଲଣ୍ଡୁ**—ଦେ. ବିଣ. ପୁଂ ( ସଂ. ମୁଣ୍ଡିତ )—୧ । ଲଣ୍ଡା ( ଦେଖ )—1. Landā ( See ). ୨ । ଲାଣ୍ଡିଆ ( ଦେଖ )—2. Lāṇḍiā ( See ) ୩ । (ସଂ. ଲୁନଶିର) —ଲଣ୍ଡା—3. With the hair of the head cropped up or shavan. ୪ । ଅଳଙ୍କାରହୀନ—4. Shorn of ornaments. ୫ । ଧନହୀନ—5. Shorn of riches. ୬ । ଅପତ୍ୟ ବା ସନ୍ତାନାଦି ହୀନ; ଅଣ୍ଟକୁଡ଼ା—6. Issueless. ୭ । ପରିବାରହୀନ—7. Having no family. ୮ । ସ୍ଥାଣୁ ( ବୃକ୍ଷ )—8. Pollard ( tree ); with its branches lopped off.
Lāṇḍu
ନେଡା
(ଲାଣ୍ଡୋଇ, ଲାଣ୍ଡେଇ—ସ୍ତ୍ରୀ)
नंडा

(ଲାଣ୍ଡୋ—ଅନ୍ୟରୂପ) ବୈଦେ. ବି ( ଇଂ. ଲାଣ୍ଡୋ )—ଏକପ୍ରକାର ଘୁରଚକିଆ ଘୋଡ଼ାଗାଡ଼ି, ଯାହାର ଛାତ ଉପରର ଟପ୍‌କୁ ଦୁଇଫାଳ କରି ତଳକୁ ଖସାଇ ଦିଆଯାଇ ଗାଡ଼ିକୁ ମେଲା କରାଯାଇ ପାରେ—A landau.
ଲ୍ୟାଣ୍ଡୋ
लैंडोगाडी

**ଲଣ୍ଡୁ କରିବା**—ଦେ. କ୍ରି—୧ । ଗଛରେ ଥିବା ଶାଖାକୁ କାଟିବାଦ୍ୱାରା ଗଛକୁ ଶାଖାଶୂନ୍ୟ କରିବା—1. To lop off the branches from a tree. ୨ । ପିନ୍ଧିଥିବା ଅଳଙ୍କାରକୁ କାଢ଼ିବାଦ୍ୱାରା ମନୁଷ୍ୟକୁ ଅଳଙ୍କାରବିହୀନ କରିବା—2. To divest a person of all the ornaments. ୩ । ମୁଣ୍ଡରେ ଥିବା କେଶକୁ କ୍ଷୌର କରିବାଦ୍ୱାରା ଲଣ୍ଡା କରିବା—3. To shave the head of a person clean. ୪ । ପୁତ୍ର ସନ୍ତାନ ଆଦିଙ୍କୁ ହତ୍ୟା କରିବାଦ୍ୱାରା ମନୁଷ୍ୟକୁ ଅପତ୍ୟହୀନ କରିବା
Lāṇḍu karibā
[ଲଣ୍ଡୁ କରା(ରେ)ଇବା—ଅନ୍ୟରୂପ]
ନେଡ଼ାକରା
नंडा करना

—4. To kill all the offsprings of a person. ୫ । କୌଣସି ବ୍ୟକ୍ତିର ପାଖରେ ଥିବା ସମସ୍ତ ଧନକୁ ଅପହରଣ କରିବାଦ୍ୱାରା ତାହାଙ୍କୁ ନିର୍ଧନ କରିବା—5. To deprive a person of all his wealth. ୬ । ମେଣ୍ଢାର ବାଳଯାକ କାଟିନେବା-ଦ୍ୱାରା ମେଣ୍ଢାକୁ ଲଙ୍ଗଳୁଆ କରିବା—6. To shear wool from a sheep.

**ଲାଣ୍ଡୁ ମୁଣ୍ଡା**—ପ୍ରାଦେ (ସମ୍ବଲପୁର) ବଣ. ପୁଂ—୧ । ଲଣ୍ଡାମୁଣ୍ଡା; ମୁଣ୍ଡିତ-Lāndu mundā ମସ୍ତ—1. Having the hairs (ଲାଣ୍ଡୁମୁଣ୍ଡୀ—ସ୍ତ୍ରୀ) cropped or shavern. ୨ । ଚନ୍ଦା-ନେଡ଼া মাথা **ନଂଗାମୁଂଡା** ମୁଣ୍ଡିଆ—2 Bald-headed.

**ଲାତ**—ଦେ. ବ ( ସଂ. ଲତ୍ତ୍ର=ପଦାଘାତ, ଗୋଇଠା )—ନାତ (ଦେଖ) Lāt Nāta (See). ପ୍ରାଦେ (ସମ୍ବଲପୁର) ବ—ମନୁଷ୍ୟର ଲাথ(থ,থি) ଗୋଇଠା—Kick of man. [ ଉ—ପଣ୍ଡିତ **ଲଥାଡ** ଭିତ୍ତିରୁ ଯେ ମାରିସି ଲାତ, ପୁତ୍ରଯାକୁ ସେ ସୁଝଡ଼ାଇ । ଛଗ । ]

**ଲାତ**—ସଂ. ବଣ ( ଲା ଧାତୁ+କର୍ମ. ତ )—ଗୃହୀତ—Taken. Lāta ପ୍ରାଦେ ( କଟକ ସହର ) ବ—ନାତ—Kick (ଲାତା—ସଂ. ବଶେଷ୍ୟ) of beasts.

**ଲାତା(ତେ)ଇବା**—ଦେ. କ୍ରି—ନାତାଇବା ( ଦେଖ )—Lāta(te)ibā Nātaibā ( See )

**ଲାତି**—ପ୍ରାଦେ ( କଟକ ସହର ) ବ. ପୁଂ—ନାତି ( ଦେଖ )—Lāti Nāti ( See ). ସଂ. ବ ( ଲା ଧାତୁ+ଭାବ ତି )—(ଲାତୁଣୀ—ସ୍ତ୍ରୀ) ଗ୍ରହଣ—Taking.

**ଲାତୁଆ**—ପ୍ରାଦେ ( କଟକ ସହର ) ବଣ. ପୁଂ—ନାତୁଆ ( ଦେଖ )—Lātua ଯେଲାথিমাবে **ଲଥଯାହା** Nātuā ( See ) [ଲାତୋ(ତୋ)ଇ—ସ୍ତ୍ରୀ]

**ଲାତୁଣୀ**—ପ୍ରାଦେ. (କଟକ ସହର) ବ—ନାତୁଣୀ (ଦେଖ) Lātuṇi Nātuṇi (See .

**ଲାଥି**—ଦେ. ବ ( ସଂ. ଲତ୍ତ୍ର; ବଙ୍ଗଳାରୁ ଅନୁକୃତ ) ନାତ; Lāthi ଗୋଡ଼ର ପାଦ ଦ୍ୱାରା କରିବା ଅଘାତ—Kick. ଲাথী **ଲାତ**

**ଲାଥୁ ଲାଥୁ**—ଦେ. ବଣ—ମାଂସଳ; ମାଂସାଧିକ୍ୟ ଯୋଗୁଁ ଥଲଥଲିଆ, Lāthu lāthu ଥାଉଳିଆ—Corpulent; fatty. নাদুস নুদুস **ଲଦ୍‌ଲଦ୍, ଥଲଥଲ**

**ଲାଥୁରା**—ଦେ. ବଣ. ପୁଂ—ମାଂସଳ; ଯେଉଁ ବ୍ୟକ୍ତିର ଦେହରେ Lāthurā ମାଂସାଧିକ୍ୟ ଯୋଗୁ ମାଂସପିଣ୍ଡମାନ ଥଲ ଥଲ লাফরা **ବଡ଼ା ମୋଟା** ହେଉଥାଏ—Corpulent; fat; (ଲାଥୁରୀ—ସ୍ତ୍ରୀ) hauing excessive flesh.

**ଲାଦ**—ଦେ. ବ (ସଂ. ଲଡ଼୍ ଧାତୁ—ଉତ୍କ୍ଷେପଣ କରିବା; ଭୁଲ. ଇଂ. Lāda ଲେଡ୍ )—କୌଣସି ବସ୍ତୁ ଉପରେ ହାତୁଡ଼ା ଅବ ঠেসান, খোঁটা . **ନାଦ୍, ଗଦ** ଦ୍ୱାରା ପ୍ରହାର କରିବାକୁ ହେଲେ ସେ ମାଡ଼ ଉକ୍ତ ଜିନିଷ ଉପରେ ଦୃଢ଼ଭାବରେ ବସିବା ପାଇଁ ଜିନିଷର ତଳେ ଦିଆଯିବା ଠେକ; ନାଦ—A fulcrum or support put below a thing in order that the thing may be soundly beaten with a hammer.

**ଲାଦାନ୍(ନି)**—ବୈଦେ. ବଣ ( ଫା ଲାଦାନ୍, ଲାଉଆନ; ଭୁଲ ସଂ. Lādān(ni) କର୍ଦ୍ଦନ )—ଅତି ଗରିବ—Very poor, নাতোয়ান **ଲାଦାନ** indigent. ( ଲାଦାନୀ—ବଶେଷ୍ୟ )

**ଲାଦାନ(ନି) ଛଅ ବିଶ୍ୱା**—ଦେ. ବ—ଅତି ଗରିବ ଅବସ୍ଥା—Lādān(ni) chha-a biswā Utter poverty. অতি গরীব অবস্থা **ଲାଦାନନ୍ତୀବିଶ୍ୱା, ଆଜରୀହାଲତ**

**ଲାଦାବି**—ବୈଦେ. ବ (ଜଡରଆ: ଫା. ଲାଦାଶ୍ମ)—ନାଦାବି ( ଦେଖ ) Lādābi নাদাবী **ଲାଦାବୀ** Nādābi (See)

**ଲାଦିବା**—ଦେ. କ୍ରି (ସଂ. ଲଦ୍ଧ; ପ୍ରା. ଲଦ୍ଦ)—୧ । ଲଦିବା ( ଦେଖ ) Lādibā 1. Ladibā (See). ୨ । କୌଣସି ବସ୍ତୁ লাদা **ଲାଦ୍‌ନା** ଉପରେ ବହୁତ ବୋଝ ଲଦିବା—

ଲଦି ଦେବା } ଲଦି ପକା(କେ)ଇବା } ଅନ୍ୟରୂପ— 2. To put too mu load on a thing. ୩ । ବୋଝ ଚପାଇବା—3. To load. ୪ । ୪ । ଅତ୍ୟଧିକଭାବରେ ବୃଷ୍ଟି କରିବା—4. To shower copiously. (ଉ—ମାଡ଼ ଲାଦିପକାଇବା; ବର୍ଷା ଲାଦିବା; ବୋଲୁଅ ଲାଦିବା ଇତ୍ୟାଦି । )

**ଲାଦି ପକା(କେ)ଇବା**—ଦେ. କ୍ରି—ଅତ୍ୟଧିକରୂପେ ଗଦା କରିବା Lādi pakā(ke)ibā ବା ବୃଷ୍ଟି କରିବା—To rain, লাদা, গাদাকবা **ଲାଦ୍‌ଦେନା** to deal out profusely.

**ଲାଦୁଆ(କା)**—ଦେ. ବଣ ( ଭୁଲ ସଂ. ଲଦ୍ଧା=ଶ୍ରେଷ୍ଠ ମାଠିଆ)—୧ । Lāduā(kā) ପୃଥୁଳ; ମାଂସଳ—1. Corpulent; fat. নাদুসনুদুস ୨ । ଖୁବ୍ ଭାରି—2. Very heavy; cumbrous. **ଲଦ୍‌ଲଦ୍** ୩ । ଭାରି ହେବା ଯୋଗୁଁ ବ୍ୟବହାର କରିବାକୁ [ ଲାଦୁ(ଦେ, ଦୋ)ଇ, ଲାଦୁଣୀ—ସ୍ତ୍ରୀ ] ଅସୁବିଧା ଜନକ—3, Awkward; very heavy and so inconvenient to carry or use; cumbrous and unmanageable.

**ଲାଦୁ ବାଦୁ**—ଦେ: ବଣ—୧ । ଉପର୍ଯୁ୍ୟପରି ଖଦି ହୋଇଥିବା—1. Lādu bādu Huddled together. ୨ । ବସ୍ତୁ ପଦାର୍ଥ

ଲାଦୁର୍ ବାଦୁର୍ } ଲାଦୁରୁ ବାଦୁରୁ } ଅନ୍ୟରୂପ] ଲାଦୁରା ବାଦୁରା } ଏକତ୍ର ସମାବିଷ୍ଟ ହେବା ଯୋଗୁଁ ଅସୁନ୍ଦର ଓ ଅସୁବିଧାଜନକ—2. Cumbrous; awkward.

জা(জো)বড়া **ଲଦ୍‌ବଦ୍** [ ଉ—କେତେକ ସ୍ତ୍ରୀଲୋକ ନାକରେ,କାନରେ, ବେକରେ, ହାତରେ ଲାଦୁବାଦୁ କରି ଅଳଙ୍କାର ପିନ୍ଧନ୍ତି ଓ ପିନ୍ଧୁଥିବା, କରଳାଏଲି ଦିଶନ୍ତି; ସେଥିପାଇଁ ସେସବୁଡ଼ାକ ବଡ଼ ଲାଦୁବାଦୁ ଦେଖାଯାଏ । ]

**ଲାଦୁରା**—ଦେ. ବଣ. ପୁଂ—ଲାଦୁଆ—Cumbrous. Lādurā (ଲାଦୁରୀ—ସ୍ତ୍ରୀ)

ଲାଧ ଦେଶ—ଦେ. ବ ( ସଂ. ଲୁଣ୍ଟକ; ସାଢ଼ ଦେଶ )—ରାଢ଼ ଦେଶ
Lādha desa ( ଦେଖ )—Rardha desa ( See )
বাঢ় राढ

ଲାପ୍—ବୈଦେ. ବଣ ଓ ବ ( ଇଂ. ଲାପ୍ )—ଲାପ୍‌ଲାଣ୍ଡ ବାସୀ ବ୍ୟକ୍ତି—
Lāp The Lapps; inhabitant of Lapland.
ল্যাপ लैप

ଲାପ୍ ଲ(ଲା)ଣ୍ଡ—ବୈଦେ. ବ ( ନାମ ) ( ଇଂ. ଲାପ୍‌ଲାଣ୍ଡ )—
Lāp la(lā)nd ୟୁରୋପୀୟ ରୁଷିଆ ଦେଶର ଉତ୍ତର-ପଶ୍ଚିମ
ল্যাপল্যাণ্ড କୋଣରେ ଅବସ୍ଥିତ ତୁଷାରାଚ୍ଛାଦିତ ପ୍ରଦେଶ—
लैपलैंड Lapland. [ ଦ୍ର—ନରୱେ, ସ୍ୱିଡେନ୍ ଓ ଫିନ୍‌ଲାଣ୍ଡର ଉତ୍ତରାଂଶ ଏବଂ ଇଉରୋପୀୟ ରୁଷିଆର ଉତ୍ତର ପୂର୍ବକୋଣ, ଏ ସମସ୍ତ ଅଞ୍ଚଳକୁ ଲାପ୍‌ଲାଣ୍ଡ ବୋଲାଯାଏ । ]

ଲା(ଲା)ପ—ସଂ. ବ ( ଲପ୍ ଧାତୁ=କହିବା+ଭାବ. ଅ )—କଥନ;
Lā(lā)pa ଭାଷଣ; କହିବା—Speaking; talking.

ଲାପତା(ତ୍ତା)—ବୈଦେ. ବଣ ( ଆ. ଲା+ପତା )—ଯେଉଁ ବ୍ୟକ୍ତିର
Lāpatā(ttā) କୌଣସି ଖବର ବା ଠିକଣା ମିଳୁ ନାହିଁ;
নিবদ্দেশ लापता ଅନ୍ତର୍ହିତ—Untraceable.

ଲାପନୀୟ—ସଂ. ବଣ ( ଲପ୍ ଧାତୁ+କର୍ମ. ଅନୀୟ )—କଥନୀୟ—
Lāpaniya Fit to be spoken.
(ଲାପ୍ୟ—ଅନ୍ୟରୂପ)

ଲାପରବାଇ(ୟୁ)—ବୈଦେ. ବଣ ( ଆ. ଲା+ଫା. ପର୍‌ବାହ୍ )—
Lāparabāi(y) ବେପରୁଆ; ଯାହାର କୌଣସି ବିଷୟ ପାଇଁ
ଲାପରୁଆ, ଲାପରୋ(ରୌ)ଇ } ଅନ୍ୟରୂପ ଚିନ୍ତା ନାହିଁ—Free from all cares and anxieties. ବୈଦେ.
বেপরবায় ବ ( ଫା )—ବେପରୁଆପଣ; ନିଶ୍ଚିନ୍ତତା—Free-
लापरवाहा dom from care or anmely.
বেপরবাভাব लापरवाही

ଲାପ(ଫ)ରା—ଦେ. ବ—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ଭୋଗର ବ୍ୟଞ୍ଜନ
Lāpa(pha)rā ବିଶେଷ ( ଜଗବନ୍ଧୁ ପ୍ରାଚୀନ ଉତ୍କଳ )—
लाफरा A kind of curry prepared for Lord Jagannath of Puri.

ଲାପିକା—ସଂ. ବ ( ଲପ ଧାତୁ+କର୍ମ. ଅକ+ଆ )—ଏକପ୍ରକାର
Lāpikā ପ୍ରହେଳିକା—A kind of riddle or enigma ( Apte ).

ଲାପୀ—ସଂ. ବଣ. ପୁଂ ( ଲପ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ )—
Lāpi କଥନଶୀଳ ( ଶବ୍ଦକୋଷ )—Habituated to speak.
(ଲାପିନୀ—ସ୍ତ୍ରୀ)

ଲାପୁ—ସଂ. ବ—ରୁଦନ୍ତୀ ( ଦେଖ )—( ହି. ଶ )—
Lāpu Rudanti ( See )

ଲାପେ—ପ୍ରାଦେ. ( ଉତ୍ତର ଭାଷା ) ବଣ—ଅନେକ; ବେଶୀ; ବହୁତ—
Lāpe Many; much; too much.

ଲାଫ୍—ପ୍ରାଦେ ( ଉତ୍ତର ବାଲେଶ୍ୱର ଓ ମେଦିନୀପୁର ) ( ସ.ଲମ୍ଫ )—
Lāph ଲମ୍ଫ; ଡିଆଁ; ଲୁଦା—A jump; leap.
লাফ उछलकूद

ଲାଫେଇବା—ଦେ. ବ [ ସ. ଲମ୍ଫ ] ( ବଙ୍ଗଳାରୁ ଅନୁକୃତ )—୧ ।
Lāpheibā ଡେଇଁବା; ଲୁଦା ମାରିବା—1. To jump;
লাফান to leap. ୨ । ଆନନ୍ଦରେ ଲୁଦିବା—2. To
कूदना (ଲାଫିବା—ଅନ୍ୟରୂପ) leap with joy.

ଲାବ—ସଂ. ବ ( ଲୂଭ ଧାତୁ=ଛେଦନ କରିବା+ଭାବ ଅ )—୧ ।
Lāba ଛେଦନ—1. Act of cutting ୨ । (+କର୍ତ୍ତୃ.
(ଲାବା—ସ୍ତ୍ରୀ) ଅ )—ବର୍ତ୍ତିର ବର୍ଗରେ ପକ୍ଷିବିଶେଷ; ବତର ଚଢ଼େଇ
বটেব —2. A species of quail; Perdix
लावा Chinensis, the grey quail; Coturnix
ଅନ୍ୟ ସଂ ନାମ— Communis. [ ଦ୍ର—ବୈଦ୍ୟଶାସ୍ତ୍ର
ବର୍ତ୍ତି, ବର୍ତ୍ତିକ ଅନୁସାରେ ଲାବପକ୍ଷୀ ୪ ପ୍ରକାର—ପାଂଶୁଳ, ଗୌର, ପୌଣ୍ଡ୍ରକ ଓ ଦର୍ଭର । ପାଂଶୁଳ ଲାବର ମାଂସ ଶ୍ଳେଷ୍ମକର, ଉଷ୍ଣବୀର୍ଯ୍ୟ ଓ ବାୟୁନାଶକ । ଗୌର ଲାବର ମାଂସ ଅଳ୍ପଶୀତ, ଲଘୁ, ରୁକ୍ଷ, ଅଗ୍ନିକାରକ ଓ ତ୍ରିଦୋଷନାଶକ । ପୌଣ୍ଡ୍ରକ ଲାବର ମାଂସ ପିତ୍ତକାରକ, ଲଘୁ ଓ ବାତ ଶ୍ଳେଷ୍ମନାଶକ । ଦର୍ଭର ଲାବର ମାଂସ ଶୀତବୀର୍ଯ୍ୟ, ରକ୍ତପିତ୍ତ ଓ ହୃଦ୍‌ରୋଗ ନାଶକ । ବୈଦ୍ୟଶାସ୍ତ୍ର ଅନୁସାରେ ଲାବ ଓ ବର୍ତ୍ତିକ ପକ୍ଷୀ ଭିନ୍ନ ଭିନ୍ନ । ] ୩ । ଲବଙ୍ଗ ( ହି. ଶ. )—3. Cloves. ଦେ. ବ. ସ୍ତ୍ରୀ ( ନାମ )

ଲାବଣ(କ, ଣୀ, ଣା, ନ୍ୟା) [ଲାବନ୍ୟବତୀ, ଲାବା(ବୁ)] } ନାମବାଚକ ଅନ୍ୟ ସ୍ତ୍ରୀଲିଙ୍ଗରୂପ
—୧ । ଲାବଣ୍ୟବତୀ ନାମ୍ନୀ ସ୍ତ୍ରୀର ଡାକ ନାମ—1. ( feminine ) Name for calling Lābanyabati. ୨ । ( ପୁଂ ) ଲାବଣ୍ୟ ନାମକ ପୁରୁଷର ଡାକ
[ଲାବଣ(କ, ନ୍ୟ)—ନାମବାଚକ ଅନ୍ୟ ପୁଂଲିଙ୍ଗରୂପ] ନାମ—
2. ( masculine ) Name for calling Labanya.

ଲାବକ—ସଂ. ବ.—ଲାବ ୨ (ଦେଖ)—Lāba 2. (See)
Lābaka

ଲାବଜ—ସଂ. ବ—ପ୍ରାଚୀନକାଳର ଆନଦ୍ଧ ବାଦ୍ୟ ବିଶେଷ (ହି. ଶ)—
Lābaja A kind of drum used in ancient India.

ଲାବଡ଼(ଡ଼ା)—ଦେ. ବଣ—ଲାବାଡ଼ (ଦେଖ)
Lābarda(rdā) Lābārda (See).

ଲାବଡ଼—ପ୍ରାଦେ. ବ—୧ । (ସମ୍ବଲପୁର, ଗଡ଼ଜାତ) କାଠି ବା ବାଉଁଶର
Lābarda ଟୋକେଇ—1. A basket made of sticks or bamboo. ୨ । (କଳାହାଣ୍ଡି) ଆମ୍ବ ଗଛରୁ ଆମ୍ବ ଝଡ଼ାଇବା ପାଇଁ ମାରିବା ବାଡ଼ି; ଫୋପଡ଼—2. A stick thrown at fruit trees to bring down fruits.

ଲାବଣ—ସଂ. ବଣ (ଲବଣ+ସମ୍ବନ୍ଧାର୍ଥେ. ଅ)—୧ । ଲବଣସମ୍ବନ୍ଧୀୟ—
Lābana 1. Relating to salt. ୩ । ଲବଣମିଶ୍ରିତ—
(ଲାବଣକ—ଅନ୍ୟରୂପ) 3. Mixed with salt. ସ. ବ—
୧ । (ଲବଣ+ଅ; ଲବଣସମୁଦ୍ରରେ ସ୍ଥିତ)—ଲଙ୍କା ଆଦି ଦେଶ—1. Country of Ceylon and other

adjoining countries. ୨ । ନସ୍ୟ; ନାସ (ହି. ଶ.)- 2. Snuff.

**ଲାବଣିକ**—ସଂ. ବିଣ ( ଲବଣ+ଇକ )—ଲାବଣ (ଦେଖ)— **Lābaṇika** Lābaṇa (See). ସଂ. ବି—୧ । ଲବଣ-ବ୍ୟବସାୟୀ—1. Salt merchant; one who trades in salt; a salt dealer. ୨ । ଲୁଣିଆ; ଯେଉଁ ବ୍ୟକ୍ତି ଲବଣ ପ୍ରସ୍ତୁତ କରେ—2. One who manufactures or extracts salt. ୩ । ଲୁଣ ରଖାଯିବା ପାତ୍ର ( ହି. ଶ. ); ଲୁଣ କାଠୁଆ— 3. A pot for keeping salt.

**ଲାବଣ୍ୟ**—ସଂ. ବି (ଲବଣ+ଭାବ. ଯ)—୧ । ଲବଣତ୍ୱ; ଲୁଣିଭାବ— **Lābaṇya** 1. Saltiness, salineness; the quality or condition of being saline. ୨ । ଅତ୍ୟନ୍ତ ସୌନ୍ଦର୍ଯ୍ୟ—2. Beauty; grace; elegance. ୩ । କାନ୍ତି; ଦ୍ୟୁତି—3. Splendour. ୪ । ରୂପର ମାଧୁର୍ଯ୍ୟ; ମନୋମୋହକାରିତା—4. Loveliness; agreeableness; sweetness of appearance. ୫ । ଚାକଚକ୍ୟ—5. Glitter; brightness. [ ଦ୍ର—ମୁକ୍ତାର ଅଭ୍ୟନ୍ତରରୁ ଯେଉଁପରି ତରଳ ଆଭା ଦୃଷ୍ଟ ହୁଏ, କୌଣସି ବ୍ୟକ୍ତିର ଅଙ୍ଗରେ ସେହିପରି ତରଳ ମନୋମୋହକର ଆଭା ପ୍ରତିଭାତ ହେଲେ ତାହାକୁ ଲାବଣ୍ୟ କହନ୍ତି—(ଶବ୍ଦକଳ୍ପଦ୍ରୁମ) ।

ଲବଣ ମିଶ୍ରିତ ନ ହେଲେ କୌଣସି ଖାଦ୍ୟ ସ୍ୱାଦୁ ଲାଗେ ନାହିଁ ଓ ଲବଣ ଜୀବ ଦେହର ଗୋଟିଏ ଅତି ଆବଶ୍ୟକ ଉପାଦାନ । ଦେହ ମଧ୍ୟକୁ ଖାଦ୍ୟ ସହିତ ଲବଣ ନ ଯୋଗାଇଲେ ଦେହ ଲବଣହୀନ ହୋଇଯାଏ; ଫଳରେ ଜୀବନୀ ଶକ୍ତି ସହ ଦେହର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ନଷ୍ଟ ହୁଏ । ଏଥିହେତୁ ଲାବଣ୍ୟର ଏପରି ଅର୍ଥ ହୋଇଅଛି ।] ଦେ.ବି—୧ । (ପୁଂ) ପୁରୁଷଙ୍କ ନାମ—1. (Masculine) A name given to male persons ୨ । (ସ୍ତ୍ରୀ) ଲାବଣ୍ୟବତୀର ଡାକନାମ—2. (feminine) A name for calling Lābaṇyabatī. ଦେ. ବିଣ— ମନୋହର; ସୁନ୍ଦର; ଲାବଣ୍ୟବିଶିଷ୍ଟ—Charming; agreeable. (ଉ—ଲାବଣ୍ୟ ରୂପ ଲକ୍ଷ୍ମୀଧର, ଲଯ୍ୟ କରନ୍ତି ସୁର ନର—କମଳଲୋଚନ ଚଉତିଶା ।)

**ଲାବଣ୍ୟଗର୍ବିତ**—ସଂ. ବିଣ. ପୁଂ (ତୃତୀୟା ତତ୍)—ନିଜର ସୌନ୍ଦର୍ଯ୍ୟ ହେତୁ **Lābaṇya garbita** ଗର୍ବଯୁକ୍ତ—Proud of one's (ଲାବଣ୍ୟଗର୍ବିତା—ସ୍ତ୍ରୀ) (ଲାବଣ୍ୟଗର୍ବ—ବି) beauty.

**ଲାବଣ୍ୟଜନକ**—ସଂ. ବିଣ (ଉପପଦ ତତ୍ପୁରୁଷ)-ସୌନ୍ଦର୍ଯ୍ୟର ଉତ୍ପାଦକ— **Lābaṇyajanaka** Producing beauty or grace of form or elegance.

**ଲାବଣ୍ୟଧାମା**—ସଂ. ବିଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି; ଲାବଣ୍ୟ+ଧାମନ୍; ୧ମା **Lābaṇya dhāmā** ୧ବ)—ଲାବଣ୍ୟମୟ; ଲାବଣ୍ୟର ସ୍ଥାନସ୍ୱରୂପ- (ଲାବଣ୍ୟଧାମ—ଦେ ରୂପ) Graceful; repository of grace. (ଉ—ବସିଛୁ ସ୍ୱାମୀଏ ଲାବଣ୍ୟଧାମାଏ ନାନା ଚତୁକୂଟ ସର- ଭଞ୍ଜ. ବୈଦେହୀଶବିଳାସ ।)

**ଲାବଣ୍ୟନିଧି**—ସଂ. ବି—ମୋତି; ମୁକ୍ତା—Pearl. ଦେ. ବି ସ୍ତ୍ରୀ—୧ । **Lābaṇyanidhi** ସୁନ୍ଦରୀ ସ୍ତ୍ରୀ—1. A beautiful lady. लावण्यनिधि (ଉ—ସାର୍ଥକ କଲୁ ଏ ବିଧିତ ତୁହି ଲାବଣ୍ୟନିଧି— ରାଧାନାଥ. ଚନ୍ଦ୍ରଭାଗା ।) ୨ । ରାଧିକା—2. Rādhā

**ଲାବଣ୍ୟ ପିତୁଳା**—ଦେ.ବି (ସଂ. ଲାବଣ୍ୟ+ପୁତ୍ତଳିକା) ୧ । ସୁନ୍ଦରପ୍ରତିମା- **Lābaṇya pituḷā** 1 A beautiful image. ୨ (ଲାବଣ୍ୟପ୍ରତିମା—ଅନ୍ୟରୂପ) ଲାବଣ୍ୟବତୀ ସ୍ତ୍ରୀ—2. A beautiful lady. लावण्यपुतुल सुन्दरपुतला

**ଲାବଣ୍ୟବତୀ**—ସଂ. ବିଣ. ସ୍ତ୍ରୀ (ଲାବଣ୍ୟ+ଅସ୍ତି ଅର୍ଥରେ ବତ୍+ଈ)— **Lābaṇyabatī** ସୁନ୍ଦରୀ; ଲାବଣ୍ୟମୟୀ (ସ୍ତ୍ରୀ)—Beautiful (ଲାବଣ୍ୟବାନ୍—ପୁଂ) (lady). ଦେ. ବି. ସ୍ତ୍ରୀ—୧ । (ନାମ) ସ୍ତ୍ରୀ- ଲୋକଙ୍କର ନାମ 1. A name given to females. ୨ । କବିବର ଉପେନ୍ଦ୍ର ଭଞ୍ଜଙ୍କ ରଚିତ କାବ୍ୟବିଶେଷ— 2. An Oriya epic composed by Upendra Bhañja. [ ଦ୍ର—'ଲାବଣ୍ୟବତୀ' ୪୮ ଛାନ୍ଦବିଶିଷ୍ଟ ଗୋଟିଏ ପ୍ରସିଦ୍ଧ କାବ୍ୟ । ଏହାର କଥାବସ୍ତୁ ଏହିପରି—

ଥରେ କୈଳାସରେ ମହାଦେବଙ୍କ ଅନୁପସ୍ଥିତିରେ ପାର୍ବତୀ ଏକାକିନୀ ବସିଥିଲେ । ତାଙ୍କ ସଙ୍ଗେ ପଶା ଖେଳିବା ପାଇଁ କେହି ସଙ୍ଗିନୀ ନ ଥିବାରୁ ସେ ମନରୁ ଗୋଟିଏ ଦିବ୍ୟସୁନ୍ଦରୀ କନ୍ୟା ଜାତକଲେ; ସେହି କନ୍ୟାର ନାମ ବାଞ୍ଛାବତୀ । ଦୁହେଁଯାକ ବସି ପଶା ଖେଳୁଥିଲେ, ଏହି ସମୟରେ ମହାଦେବଙ୍କର ଡମରୁ ଶବ୍ଦ ଦୂରରୁ ଶୁଣାଗଲା ।

ପାର୍ବତୀ ବିଚାରିଲେ, ଯେବେ ମହାଦେବ ଏଠାରେ ପହଞ୍ଚି ଏ ସୁନ୍ଦରୀକୁ ଦେଖି ମୁଗ୍ଧ ହୁଅନ୍ତି, ତେବେ ମୋ 'ସୁଭାଗୀପଣ ଭାଙ୍ଗିଯିବ ।' ଏହା ବିଚାରି ସେହି କନ୍ୟାକୁ ମହାଦେବଙ୍କ ଚକ୍ଷୁର ଅନ୍ତରାଳରେ ରଖିବାପାଇଁ ସେଠାରୁ ଗୋଟିଏ ଅଗମ୍ୟ ଅରଣ୍ୟସ୍ଥ ପ୍ରାସାଦରେ ବାସ କରିବାକୁ ପଠାଇଦେଲେ ଏବଂ କହିଲେ, "ଯେବେ ତୁ ଏ ପ୍ରାସାଦର ଦ୍ୱାର ଲଙ୍ଘନ କରିବୁ, ତେବେ ପଞ୍ଚତ୍ୱପ୍ରାପ୍ତ ହେବୁ । ଆଉ ଯେବେ କୌଣସି ପୁରୁଷ ତୋର କର ଧରିବ, ତେବେ ସେ ଆର ଜନ୍ମରେ ତତେ ଲାଭ କରିବ ।"

ଏହିରୂପେ ବାଞ୍ଛାବତୀ ଯାଇ ସେହି ଅରଣ୍ୟସ୍ଥ ପ୍ରାସାଦରେ ବାସକଲା । କିଛିକାଳ ପରେ ପ୍ରଭାକର ନାମକ ଜଣେ ଋଷିପୁତ୍ର କୁମର ରମଣୀରତ୍ନ ଲାଭ କରିବା ଆଶାରେ ତପଃସାଧନ କରି କେଦାରେଶ୍ୱର ତୀର୍ଥକୁ ଯିବା ପଥରେ ଏହି ସୁନ୍ଦରୀ ବାଞ୍ଛାବତୀକୁ ଦେଖି ମୁଗ୍ଧ ହେଲେ ଏବଂ ବାଞ୍ଛାବତୀ ମଧ୍ୟ ଏହି କୁମରଙ୍କୁ ଦେଖି ତାହାଙ୍କ ରୂପରେ ବିମୋହିତା ହୋଇ ତାଙ୍କ ପାଖକୁ ଆସିବା ସମୟରେ ଦ୍ୱାରର ଦେହଳୀକୁ ଅତିକ୍ରମ କରି ତାଙ୍କ ସଙ୍ଗେ ମିଳିତ ହେବାରୁ ପାର୍ବତୀଙ୍କ ବାକ୍ୟାନୁସାରେ ସଙ୍ଗେ ସଙ୍ଗେ ସେଠାରେ ତାହାର ମୃତ୍ୟୁ ହେଲା ।

ଏହି ଦାରୁଣ ଦୃଶ୍ୟ ଦେଖି ଇନ୍ଦ୍ରଦ୍ୟୁମ୍ନର ଦୁଃଖରେ ବିଳାପ କଲେ । ଏହି ସମୟରେ ଆକାଶରୁ ଶୂନ୍ୟ ବାଣୀ ହେଲା—"ତୁ ଗଙ୍ଗା ସାଗର ସଙ୍ଗମରେ ପ୍ରାଣ ଦେଲେ ପର ଜନ୍ମରେ ଏହି ରମଣୀରତ୍ନକୁ ପ୍ରେୟସୀରୂପେ ଲାଭ କରିବୁ ।" ଭ୍ରମର ତାହାହିଁ କଲେ ।

ପର ଜନ୍ମରେ ଉକ୍ତ ଇନ୍ଦ୍ରଦ୍ୟୁମ୍ନର କର୍ଣ୍ଣାଟ ଦେଶର କାଞ୍ଚୀ ନଗରର ରାଜା ଶଶିଶେଖରଙ୍କ ଔରସରେ ରାଣୀ ଶଶିରେଖାଙ୍କ ଗର୍ଭରୁ ଯୁବରାଜରୂପେ ଜନ୍ମଗ୍ରହଣ କଲେ ଓ ତାଙ୍କର ନାମ ହେଲା ଚନ୍ଦ୍ରଭାନୁ । ଏଣେ ସିଂହଳ ଦ୍ୱୀପର ରାଜା ରତ୍ନେଶ୍ୱର ଓ ରାଣୀ ବନ୍ଧୁମତୀ ତାଙ୍କର କନ୍ୟାରୂପରେ ବାଞ୍ଛାବତୀ ଜନ୍ମ ପରିଗ୍ରହ କଲେ ଏବଂ ତାଙ୍କ ନାମ ହେଲା ଲାବଣ୍ୟବତୀ ।

ଲାବଣ୍ୟବତୀ ଅସାଧାରଣ ରୂପବତୀ ହୋଇ ଜଗନ୍ମୋହିନୀ ହୋଇ ଉଠିଲେ । ଯଥାକାଳରେ ତାଙ୍କ କନକାଙ୍ଗରେ ଯୌବନର ସଞ୍ଚାର ହେବାରୁ ତାଙ୍କ କାନ୍ତି ଶତ ଗୁଣରେ ପ୍ରକଟ ହେଲା । ରାଜା ରତ୍ନେଶ୍ୱର କନ୍ୟାଙ୍କ ବିବାହ ପାଇଁ ଆୟୋଜନ କଲେ ଏବଂ ତାଙ୍କ ଚିତ୍ରପଟକୁ ଦେଶ ଦେଶାନ୍ତର ପଠାଇ ବର ଅନ୍ୱେଷଣ କରାଇଲେ । ଚନ୍ଦ୍ରଭାନୁ ଲାବଣ୍ୟବତୀଙ୍କ ସେହି ପରମ ରମଣୀୟ ଚିତ୍ରପଟ ଦେଖି ତାହାଙ୍କଠାରେ ଚିତ୍ତ ସମର୍ପଣ କଲେ । ଦେବୀମାୟାରେ ଚନ୍ଦ୍ରଭାନୁ ଓ ଲାବଣ୍ୟବତୀ, ଉଭୟଙ୍କର ସ୍ୱପ୍ନରେ ଭେଟ ହେଲା ଏବଂ ଦୁହେଁ ଦୁହିଁଙ୍କି ବରଣ କଲେ । ଉଭୟରେ ତାଙ୍କ ପରସ୍ପର ମଧ୍ୟରେ ପ୍ରେମ ପତ୍ରର ଆଦାନ ପ୍ରଦାନ ହେଲା ଓ ଦୁହିଙ୍କର ଏକ ଦେବମନ୍ଦିରରେ ଭେଟ ହେଲା । ଶେଷରେ ସିଂହଳ ରାଜପୁରରେ ଉଭୟଙ୍କର ଯଥାବିଧି ବିବାହ ଉତ୍ସବ ଅନୁଷ୍ଠିତ ହେଲା । ନବୀନ ଦମ୍ପତି ପରମ ପ୍ରେମରେ ଓ ଆନନ୍ଦରେ କିଛି କାଳ ଅତିବାହିତ କଲା ପରେ ଦେବତାଙ୍କ ଶାପରୁ ଦୁହିଙ୍କର ବିଚ୍ଛେଦ ଘଟିଲା । ଶେଷରେ ଚନ୍ଦ୍ରଭାନୁ ଅସୁରମାନଙ୍କୁ ଜୟ କରି ସ୍ୱୀୟ ରାଜଧାନୀକୁ ବାହୁଡ଼ି ବିରହିଣୀ ଲାବଣ୍ୟବତୀ ସଙ୍ଗେ ମିଳିତ ହେଲେ । କର୍ଣ୍ଣାଟରାଜ ପୁତ୍ରଙ୍କୁ ରାଜସିଂହାସନରେ ଅଧିଷ୍ଠିତ କରାଇ ନଳେ ପୁରୁଷୋତ୍ତମରେ ତୀର୍ଥ ବାସ କଲେ । ଚନ୍ଦ୍ରଭାନୁ ସସ୍ତ୍ରୀକ ପରମସୁଖରେ ଓ ଶାନ୍ତିରେ ରାଜ୍ୟ ପାଳନ କଲେ ।]

ଲାବଣ୍ୟ ବର୍ଜି(ର୍ଜ୍ଜି)ତ—ସଂ. ବିଣ. ପୁଂ (ଅନ୍ୟ ତତ୍)—ଲାବଣ୍ୟହୀନ; **Lābaṇya barji(rjji)ta** ସୌନ୍ଦର୍ଯ୍ୟହୀନ—Devoid or (ଲାବଣ୍ୟ ବର୍ଜିତା—ସ୍ତ୍ରୀ) shorn of beauty or grace.

ଲାବଣ୍ୟମୟ—ସଂ. ବିଣ. ପୁଂ—(ଲାବଣ୍ୟ + ପ୍ରାଚୁର୍ଯ୍ୟେ. ମୟ)—ସୌନ୍ଦର୍ଯ୍ୟ- **Lābaṇyamaya** ଶାଳୀ—Full of grace; beautiful. (ଲାବଣ୍ୟମୟୀ—ସ୍ତ୍ରୀ)

ଲାବଣ୍ୟମୂର୍ତ୍ତି—ସଂ. ବି.—(ମ. ପ. ଲୋ)—ସୁନ୍ଦର ରୂପ—Beautiful **Lābaṇya mūrtti** or elegant form. ସଂ. ବିଣ. ପୁଂ (ବହୁବ୍ରୀହି)—ସୁନ୍ଦର ମୂର୍ତ୍ତି ବିଶିଷ୍ଟ—Of graceful form.

ଲାବଣ୍ୟ ରହିତ—ସଂ. ବିଣ. ପୁଂ. (ଅନ୍ୟ ତତ୍)—ଅସୁନ୍ଦର; କଦାକାର— **Lābaṇya rahita** Ungraceful, graceless. (ଲାବଣ୍ୟହୀନ—ଅନ୍ୟରୂପ) (ଲାବଣ୍ୟ ରହିତା, ଲାବଣ୍ୟହୀନା—ସ୍ତ୍ରୀ)

ଲାବଣ୍ୟ ରୂପ—ସଂ. ବି. (ମ. ପ. ଲୋ)—ସୁନ୍ଦର ରୂପ—Graceful **Lābaṇya rūpa** form. ସଂ. ବିଣ. ପୁଂ—(ବହୁବ୍ରୀହି)—ସୁନ୍ଦର ରୂପ ଯୁକ୍ତ—Of graceful form. [ଦ୍ର—ଲାବଣ୍ୟରୂପ ଲକ୍ଷ୍ମୀଧର । ଜୟ କରନ୍ତୁ ସୁର ନର । —କମଳଲୋଚନ ଚଉତିଶା]

ଲାବଣ୍ୟ ସଦନା—ସଂ. ବିଣ. ସ୍ତ୍ରୀ—ଯାହାର ସର୍ବାଙ୍ଗରେ ଲାବଣ୍ୟ **Lābaṇya sadanā** ବିଦ୍ୟମାନ ହୋଇଥାଏ; ଲାବଣ୍ୟବତୀ—Most beautiful; supremely graceful. (ଲାବଣ୍ୟ ସଦନ—ପୁଂ) [ଦ୍ର—ସଖୀର ସାର ଲାବଣ୍ୟସଦନା । ଉପେ. କୋଟିବ୍ରହ୍ମାଣ୍ଡସୁନ୍ଦରୀ]

ଲାବଣ୍ୟ ହାନି—ସଂ.ବି. (ଷଷ୍ଠୀ ତତ୍)—ସୌନ୍ଦର୍ଯ୍ୟ ହାନି—Detriment **Lābaṇya hāni** of beauty or elegance.

ଲାବଣ୍ୟା—ସଂ. ବି—ବ୍ରାହ୍ମୀଶାଗ (ଦେଖ) (ହ. ଶ) **Lābaṇyā** Brāhmi (See).

ଲାବଣ୍ୟାର୍ଜି(ର୍ଜ୍ଜି)ତ—ସଂ. ବି (ଅନ୍ୟ ତତ୍)—ବିବାହ ପରେ ଶ୍ୱଶୁର ଓ **Lābaṇyārji(rjji)ta** ଶାଶୁ ନବବଧୂର ମୁଖ ଦେଖି ଯେଉଁ ଧନ ମୁଖଦେଖାନୀ **मुंहदेखावन** ଉପହାର ଦିଅନ୍ତି; ମୁହଁଦେଖା—Cash presented by the father-in-law and mother-in-law to the bride when they see her face for the first time after marriage.

ଲାବନ(ନ୍ୟ,ନୀ)—ଦେ. ବି—୧ । (ପୁଂ) ଲାବଣ୍ୟ ନାମକ ପୁରୁଷର **Lābana(nya,nī)** ଡାକନାମ—1. (masculine) Name লাবণ্য for calling "Lābaṇya." ୨ । (ସ୍ତ୍ରୀ) ( ଲାବଣ୍ୟବତୀ—ଅନ୍ୟରୂପ ) 'ଲାବଣ୍ୟବତୀ'ର ଡାକନାମ— 2. ( feminine ) Name for calling "Lābaṇyabati."

ଲାବରନ୍—ବୈଦେ. ବି. (ଜାହାଜୀ ଭାଷା) ମାସ୍ତୁଲକୁ ଦୃଢ଼ରୂପେ ଟାଣି **Lābarān** ଧରିବାପାଇଁ ମାସ୍ତୁଲର ଉଭୟପାର୍ଶ୍ୱସ୍ଥ ରଜ୍ଜୁ—Ropes fastened to both sides of the mast of a ship.

ଲାବା—ସଂ. ବି. ସ୍ତ୍ରୀ (ଲାବ + ସ୍ତ୍ରୀ. ଆ)—ଲାବ ପକ୍ଷିଣୀ— **Lābā** A female quail (bird).

ଲାବାକ୍ଷକ—ସଂ. ବି—ଏକପ୍ରକାର ଧାନ (ହ. ଶ)— **Lābākshaka** A kind of paddy.

ଲାବାଡ଼—ଦେ. ବିଣ ( ସଂ. ଲମ୍ପଟ; ତୁଲ. ସଂ. ଲପନ=ଗପିବା)—୧ । **Lābārda** ଲମ୍ପଟ—1. Lecherous. ୨ । ଶଠ— লা(না)ড়ব **लाबर, लबाड, नेवड** 2. Deceitful. ୩ । ନିର୍ଲଜ୍ଜ; ଲଣ୍ଠିତ—3. Shameless. ୪ । ଦୁଷ୍ଟ—4. Wicked. ୫ । ନିର୍ବୋଧ—5. Foolish. ୬ । ମିଥ୍ୟାବାଦୀ—6. Liar; lying. ୭ । ଗପଡ଼ି—7. Talkative.

ଲାବାଣକ—ସଂ.ବ (ନାମ)—ମଗଧ ନିକଟସ୍ଥ ପ୍ରାଚୀନ ଦେଶବିଶେଷ (ହ୍ରୁ.ଶ)
Lābāṇaka Name of an ancient country near Magadha.

ଲବାଣ୍ଡି—ପ୍ରାଦେ (ଗଞ୍ଜାମ) ବ—ନାଗବନ୍ଧ (ଦେଖ)
Lābāṇḍi Nāgabandha (See)

ଲବା(ୱା)ର(ରି)ସ୍(ସି)—ବୈଦେ.ବଣ [କଥିତଆ; ଫା.ଲାୱାରିସ୍(ସି)]—
Lābā(wā)ra(ri)s(si) ୧ । ଲାଉଆରସ୍ (ଦେଖ)—1. Nā
লাওয়ারিস लावारिस uāras (See). ୨ । ଉତ୍ତରାଧିକାରହୀନ—2. Heirless.

ଲବିକ—ସଂ. ବ ( ଲୂ ଧାତୁ =ଛେଦନ କରିବା+କର୍ତ୍ତୃ. ଇକ )—
Lābika ମହିଷ; ମଇଁଷି—Buffalo.

ଲାବିକା—ସଂ. ବ—(ଲାବ+କ+ଆ)—ଲବ ପକ୍ଷୀ (ଦେଖ)
Lābikā Lāba bird (See)

ଲବୀ(ବୁ)—ଗ୍ରା. ବ. ସ୍ତ୍ରୀ—ଲାବଣ୍ୟବତୀର ଡାକନାମ—
Lābi(bu) Name for calling Lābaṇyabatī.

ଲାବୁ(ବୂ)—ସଂ. ବ (ଲୂ ଧାତୁ=ଛେଦନ କରିବା+କର୍ମ. ଉ, ଊ)—୧ ।
Lābu(bū) ଲାଉ; ଅଲାବୁ—1. Pumpkin; gourd ୨ । ତୁମ୍ବା—2. A pot made from gourd.

ଲାବୁକ—ସଂ. ବ (ଲାବୁ+ସ୍ୱାର୍ଥେ କ)—ଲାଉ—
Lābuka Gourd.

ଲାବୁକୀ—ସଂ. ବ (ଲାବୁକ+ଈ) ଏକପ୍ରକାର ବୀଣା—
Lābukī A kind of lute (Apte).

ଲାବୁକେଶ୍ୱର—ସଂ. ବ (ନାମ)—ଭୁବନେଶ୍ୱରର ବିନ୍ଦୁସାଗରକୂଳସ୍ଥ
Lābukeśwara ଶିବଲିଙ୍ଗବିଶେଷ—Name of an image of Śiba at Bhubaneswar.

ଲାବୁ(ୱ)ଲ୍ଦ୍—ବୈଦେ. ବଣ ( କଥିତଆ; ଫା. ଲାୱଲ୍ଦ୍ )—
Lābu(wa)l-d ସନ୍ତାନହୀନ; ନିଃସନ୍ତାନ—Heirless;
লাওয়ালিদ लावलद् issueless.
[ ଲାବୁ(ୱ)ଲ୍ଦୀ—ଭାବବାଚକ ବିଶେଷ୍ୟ ]

ଲାବେଣୀ—ଗ୍ରା. ବ. ସ୍ତ୍ରୀ (ନାମ)—ଲାବଣ୍ୟବତୀର ଡାକନାମ—
Lābeṇī Name for calling "Lābaṇyabatī".

ଲାବେଲ୍—ବୈଦେ. ବ (ଇଂ. ଲାବେଲ୍)—କୌଣସି ଦ୍ରବ୍ୟକୁ ଚିହ୍ନିତ
Lābel କରିବାପାଇଁ ତାହିଁ ଉପରେ ମରାଯିବା କାଗଜର ଟୁକୁଡ଼ା
ল্যা(লে)বেল लेबिल Label.

ଲାଭ—ସଂ. ବ ( ଲଭ୍ ଧାତୁ+ଭାବ ଅ )—୧ । ପାଇବା; ମିଳିବା;
Lābha ଲଭିବା; ପ୍ରାପ୍ତି—1. Receipt; getting; attainment. ୨ । ଉପାର୍ଜନ; ଅର୍ଜନ—2. Acquisition; earning. ୩ । (+କର୍ମ ଅ) ବାଣିଜ୍ୟାଦିଦ୍ୱାରା ମୂଳଧନଠାରୁ ଅଧିକା ମିଳିବା ଧନ; ମୁନାଫା. 3. Profit; gain. ୪ । ସୁଧ—4. Interest. ୫ । ବୃଦ୍ଧି—5. Increase. ୬ । ଉପସ୍ୱତ୍ୱ; ଆୟ—6. Income. ୭ । ଉପରି ଲାଭ; ଫାଉ; ମୂଲ୍ୟ ଦେଇ କିଣିବା ଦ୍ରବ୍ୟ ଅପେକ୍ଷା ବିକେତାଠାରୁ କ୍ରେତା ଯେଉଁ ଅଧିକା ଦ୍ରବ୍ୟ ପାଏ—7. Extra thing received by a purchaser from a vendor in addition to the quantity purchased and paid for. ୮ । ଧନ—8. Wealth; riches. ୯ । ଉପକାର (ହ୍ରୁ. ଶ)—9. Benefit.

ଲାଭଃ ପରଂ ଗୋବଧଃ—ସଂ(ପ୍ରବଚନ)—ଯେଉଁ ସ୍ଥଳରେ କିଛିମାତ୍ର ଲାଭ
Lābhaḥ paraṁ gobadhaḥ ନ ହୋଇ ଓଲଟି ଶେଷରେ ପାପଭାଗୀ ବା କ୍ଷତିଗ୍ରସ୍ତ ହେବାକୁ ହୁଏ, ସେ ସ୍ଥଳରେ ଏହି ପ୍ରବଚନ ବୋଲାଯାଏ—An analogical sentence used when instead of attaining any benefit for doing an act, one commits sin to boot or incurs loss. [ଦ୍ର—ହରିହର ନାମକ ଜଣେ ପ୍ରସିଦ୍ଧ ବୈଦ୍ୟ ଏକ ମୂର୍ଖ ରୋଗୀକୁ ଶୁଣ୍ଠି ଓ ଗୋକ୍ଷୁରର ପାଚନ ସେବନ କରିବାକୁ ବ୍ୟବସ୍ଥା କରିଥିଲେ । ମୂର୍ଖ ଗୋକ୍ଷୁରର ଅର୍ଥ 'ଗୋଖର ନାମକ ଗୁଳ୍ମ' ନ ବୁଝି ଗୋଟିଏ ଗୋରୁ ବଧ କରି ତା ଖୁରା ସଙ୍ଗେ ଶୁଣ୍ଠିର ପାଚନ କରି ଖାଇଲା । ଫଳତଃ ଏତଦ୍ଦ୍ୱାରା ରୋଗୀର ରୋଗ ଆରୋଗ୍ୟ ହେଲା ନାହିଁ; ବୈଦ୍ୟଙ୍କ ଯଶୋହାନି ହେଲା ଓ ବୈଦ୍ୟଙ୍କୁ ଗୋବଧରୂପ ପାପରେ ଭାଗୀ ହେବାକୁ ହେଲା । ଉକ୍ତ ବୈଦ୍ୟ ଏହା ଜାଣିପାରି ମନୋଦୁଃଖରେ ବୋଲିଥିବା ନିମ୍ନଲିଖିତ ଶ୍ଳୋକର ଶେଷ ପାଦ 'ଲାଭଃ ପରଂ ଗୋବଧଃ' :—

ଶୁଣ୍ଠି ଗୋକ୍ଷୁରଯୋର୍ବିଶୁଦ୍ଧ୍ୟ ମନସା କଲ୍କାଶନଂ ଯନ୍ମୟା
ଉକ୍ତଂ ତଦ୍ବିପରୀତକଂ କୃତମହୋ ଗୋକ୍ଷୁରମାକଂ ଦଦୌ
ନାଥୋମୂର୍ଖଜନାଳୟେ ନ ଚ ସୁଖଂ ନୋବା ଯଶୋ ଲଭ୍ୟତେ
ସଦ୍‌ବୈଦ୍ୟେ କବିଭୂପତୌ ହରିହରେ ଲାଭଃ ପରଂ ଗୋବଧଃ
—ସୁବଳଭଦ୍ର]

ଲାଭକର—ସଂ. ବଣ ( ଲାଭ+କୃ ଧାତୁ+କର୍ତ୍ତୃ. ଅ )—୧ । ଲାଭ-
Lābha kara ଜନକ; ଆୟଜନକ—1. Profitable. (ଲାଭକରୀ—ସ୍ତ୍ରୀ) ୨ । ସୁବିଧାଜନକ—2. Advantageous. (ଲାଭକାରକ; ଲାଭକାରୀ—ଅନ୍ୟରୂପ) ୩ । ମଙ୍ଗଳକର—3.
লাভকর Beneficial. ସଂ. ବ ( ଆଧୁନିକ )—ଆୟକର;
लाभकर ମନୁଷ୍ୟର ଲାଭ ଉପରେ ସରକାରଙ୍କ ନେବା ଶୁଳ୍କ; ଇନ୍‌କମ୍‌ଟିକସ—Income tax.

ଲାଭ କରିବା—ଦେ. କ୍ରି—୧ । ଅର୍ଜନ କରିବା—1. To earn.
Lābha karibā ୨ । ପାଇବା—2. To get. ୩ । ଧନାଦି
লাভকরা ଆୟ କରିବା—3. To make a profit.
लाभकरना ୪ । ଆୟ ପାଇବା—4. To get a profit.

ଲାଭ କ୍ଷତି—ସଂ. ବ ( ବିପରୀତାର୍ଥକ ସହଚର )—ବ୍ୟବସାୟର ଆୟ ଓ
Lābha kshati ଲୋକସାନ—Profit and loss.

ଲାଭ ଖାଇବା—ଦେ. କ୍ରି—ବାଣିଜ୍ୟାଦିର ଆୟକୁ ଭୋଗ କରିବା—
Lābha khāibā To enjoy the profits. [ ଉ—
লাভ খাওয়া ଓରନାଳ ଗାଁ ପଦ୍ଧଅ ତଳୀ, ଲାଭ ଖାଇଗଲେ
लाभ उठाना ମାଧ ମାହାନ୍ତି । ଜଗ । ]

**ଲାଭ ଗୃହ**—ସଂ. ବି ( ଜ୍ୟୋତିଷ )—ମନୁଷ୍ୟର ଜନ୍ମ ଲଗ୍ନଠାରୁ ଏକାଦଶ
Lābha gṛuha ସ୍ଥାନ—(astrology) The eleventh place from one's Lagna. [ ଦ୍ର—ଜନ୍ମ କୁଣ୍ଡଳୀରେ ଲଗ୍ନର ୧୧ଶ ଗୃହରୁ ଜାତକର ଧନ ସମ୍ପତ୍ତି, ସନ୍ତାନ, ଆୟୁଃ ଓ ବିଦ୍ୟା ସ୍ଥିର କରାଯାଏ । ]

**ଲାଭ ଜନକ**—ସଂ. ବିଣ ( ଉପପଦ ତତ୍ )—ଯହିଁରୁ ଲାଭ ମିଳେ—
Lābha janaka Profitable.

**ଲାଭ ଜନ୍ୟ**—ସଂ. ବିଣ ( ୫ମୀ ତତ୍ )—ଲାଭରୁ ଜନ୍ମିବା—
Lābha janya Arising from gain or profit.
(ଲାଭଜାତ—ଅନ୍ୟରୂପ)

**ଲାଭଦାୟକ**—ସଂ. ବିଣ. ପୁଂ—ଯାହା ଲାଭ କରାଏ; ଲାଭକର ( ଦେଖ )
Lābhadāyaka Lābhakara (See)
(ଲାଭଦ, ଲାଭଦାତା, ଲାଭଦାୟୀ—ଅନ୍ୟରୂପ)
(ଲାଭଦାୟିକା, ଲାଭଦା, ଲାଭଦାତ୍ରୀ, ଲାଭଦାୟିନୀ—ସ୍ତ୍ରୀ)

**ଲାଭ ନଷ୍ଟି**—ସଂ. ବି ( ବିପରୀତାର୍ଥକ ସହଚର )—ଲାଭ ଓ କ୍ଷତି—
Lābha nashṭi Profit and loss.

**ଲାଭ ପ୍ରଦ**—ସଂ. ବିଣ ( ଉପପଦ ତତ୍ପୁରୁଷ )—ଲାଭଜନକ—
Lābha prada Profitable.

**ଲାଭ ମୂଳ**—ଦେ. ବି—ବାଣିଜ୍ୟାଦିରୁ ଉତ୍ପନ୍ନ ଲାଭ ଓ ମୂଳଧନ—
Lābha mūla Profit and capital (of a trade).

**ଲାଭ ମୂଳକ**—ସଂ. ବିଣ ( ବହୁବ୍ରୀହି )—ଯହିଁର ମୂଳରେ ଲାଭ ଅଛି;
Lābha mūlaka ଲାଭରୁ ଉତ୍ପନ୍ନ—Originating from profit; which has profit as its cause.

**ଲାଭର ପିଆରା**—ଦେ. ବିଣ ( ସଂ. ଲାଭ+ପ୍ରିୟ )—ଯେଉଁ ବ୍ୟକ୍ତି
Lābhara piārā ଲାଭ ହେଉଥିବା ସମୟରେ କେବଳ
ଲାଭେର ପିୟାରା ମନୁଷ୍ୟକୁ ସ୍ନେହ କରେ—One who loves
लाभका प्यारा a person only while the latter is making profit.

**ଲାଭର ସାଥୀ**—ଦେ. ବିଣ—ଯେଉଁ ବ୍ୟକ୍ତି ଲାଭ ବେଳରେ ସଙ୍ଗରେ
Lābhara sāthi ରହେ, ବିପଦ ବେଳରେ ଛାଡ଼ି ପଳାଏ—
ଲାଭେର ସାଥୀ One who keeps company of a
लाभका साथी person while he is earning profit.

**ଲାଭ ଲ(ନ)ଫା**—ଦେ. ବି (ଏକାର୍ଥକ ସହଚର; ସଂ. ଲାଭ+ଫା. ନଫା)
Lābha la(na)phā ଲାଭ ଇତ୍ୟାଦି—Profit or gain.
ଲାଭଟାଭ लाभनफा

**ଲାଭ ଲେଶ**—ଦେ. ବି—୧ । ସାମାନ୍ୟ ମାତ୍ର ଲାଭ; ଅଳ୍ପମାତ୍ର ଲାଭ—
Lābha leśa 1. A little profit. ୨ । ବିକ୍ରେତାଠାରୁ
ଲାଭେର ଲେଶ ମୂଲ୍ୟାନୁଯାୟୀ ଦ୍ରବ୍ୟ କଣିବା ପରେ କ୍ରେତାର
लाभलेश ଅଣିବା ସାମାନ୍ୟ ମାତ୍ର ଅଧିକା ଦ୍ରବ୍ୟ—2. The extra thing taken by the purchaser in addition to what is purchased by him, by way of grace.

**ଲାଭ ଲୋକ୍ସାନ୍(ନ)**—ଦେ. ବି ( ବିପରୀତାର୍ଥକ ସହଚର; ସଂ. ଲାଭ
Lābha lok-sān(ni) +ଫା. ନୁକ୍ସାନ୍ )—ଲାଭ ଓ କ୍ଷତି;
ଲାଭଲୋକସାନ ଲାଭାଲାଭ—Profit and loss.
लाभ नुकसान

**ଲାଭ ସ୍ଥାନ**—ସଂ. ବି [ ଜ୍ୟୋତିଷ )—ଲାଭଗୃହ ( ଦେଖ )
Lābha sthāna Labhagṛuha ( See )

**ଲାଭ ହେତୁକ**—ସଂ. ବିଣ ( ବହୁବ୍ରୀହି )—ଲାଭମୂଳକ ( ଦେଖ)
Lābha hetuka Labhamūlaka ( See )

**ଲାଭା**—ବୈଦେ. ବି ( ଇଂ )—ଆଗ୍ନେୟ ଗିରିରୁ ନିର୍ଗତ ଗଳିତ ଧାତୁ
Lābhā লাভা लावा Lava.

**ଲାଭାର୍ଦ୍ଦି**—ପ୍ରାଦେ ( ପୁରୀ ) ବି ( ଗାଳିରେ ବ୍ୟବହୃତ ) ( ସଂ. ଲାଭ+
Lābhārdi ଲୋଲୁପ )—୧ । ଅତି ଲୋଭୀ ( ବ୍ୟକ୍ତି )—
1. Very avaracious. ୨ । ଲାଭ ପାଇବା ପାଇଁ ଅତ୍ୟଧିକ ବ୍ୟଗ୍ର ( ବ୍ୟକ୍ତି )—2. Hankering after profit.

**ଲାଭାଧିପ**—ସଂ. ବି ( ଫଳିତ ଜ୍ୟୋତିଷ )—ଲାଭଗୃହ ବା ଲଗ୍ନର
Lābhādhipa ଏକାଦଶ ସ୍ଥାନର ଅଧିପତି ଗ୍ରହ—( astrology ) The planet who rules the 11th house in one's horoscope.
ଲାଭାଧିପତି } ଅନ୍ୟରୂପ
ଲାଭାଧୀଶ }

**ଲାଭାର୍ଥୀ**—ସଂ. ବିଣ. ପୁଂ ( ଉପପଦ ତତ୍ )—ଯେ ଲାଭ କରିବାକୁ
Lābhārthi ଇଚ୍ଛୁକ—Desirous of profit or gain.
(ଲାଭାର୍ଥିନୀ—ସ୍ତ୍ରୀ)

**ଲାଭାର୍ହ**—ସଂ. ବିଣ. ପୁଂ—ଲାଭ କରାଯିବାର ଉପଯୁକ୍ତ; ପ୍ରାପ୍ତି ଯୋଗ୍ୟ—
Lābhārha Fit or proper to be gained; obtainable.
(ଲାଭାର୍ହା—ସ୍ତ୍ରୀ)

**ଲାଭାଲାଭ**—ସଂ. ବି ( ଦ୍ୱନ୍ଦ୍ୱ, ଲାଭ+ଅଲାଭ)—ଲାଭ ଓ କ୍ଷତି—
Lābhālabha Profit and loss.

**ଲାଭି**—ଗ୍ରା. ବି ( ସଂ. ନାଭି )—ନାଭି ( ଦେଖ )—
Lābhi Nābhi ( See )
[ ଉ—ବ ଅବା ସେ ଲଙ୍କେଶର ଲାଭିର ଉଦ୍ଧରେ ପ୍ରାଣୀ. ବୁଦ୍ଧକରୂପଣଗୀତା । ]

**ଲାଭି କମଳ**—ଗ୍ରା. ବି ( ସଂ. ନାଭି କମଳ )—ନାଭିକମଳ ( ଦେଖ )
Lābhi kamala Nābhikamala ( See )

**ଲାଭେଚ୍ଛା**—ସଂ. ବି.—( ୬ଷ୍ଠୀ ତତ୍ )—ଲାଭ କରିବାର ଅଭିଳାଷ—
Lābhechchā Desire of profit or gain.
(ଲାଭୈଷଣା—ଅନ୍ୟରୂପ)

**ଲାଭେଚ୍ଛୁ**—ସଂ. ବିଣ. ପୁଂ—ଲାଭ କରିବାକୁ ଅଭିଳାଷୀ—Desirous
Lābhechchu of gaining (ଲାଭେଚ୍ଛୁକ—ଅନ୍ୟରୂପ)

**ଲାଭେଣ୍ଡର୍**—ବୈଦେ. ବି. (ଇଂ ଲାଭେଣ୍ଡର୍)—ଲାଭେଣ୍ଡର ନାମକ
Lābhendar ସୁଗନ୍ଧ ସୁବାସିତ ଅରକ—Lavender water
ଲେଭେଣ୍ଡର लैवेंडर [ ଦ୍ର—ଏହା ଏକ ପ୍ରକାର ବିଦେଶୀୟ ଗୁଳ
(ଲାଭେଣ୍ଡର୍ ୱାଟର୍—ଅନ୍ୟରୂପ) ଲାଭେଣ୍ଡରର ସୁବାସିତ ପତ୍ର ଓ ପୁଷ୍ପର ଅର୍କ ଦ୍ୱାରା ସୁଗନ୍ଧିତ ସୁରମସ୍ୟ ଦ୍ରବ୍ୟ । ଏ ଗୁଳର ନାମ—Lavendula Spika ]

**ଲାଭୈଷୀ**—ସଂ. ବିଣ, ପୁଂ. (ଲାଭ+ଈଷୀ)—ଲାଭ କରିବାକୁ ଇଚ୍ଛୁକ—
Lābhaishi (ଲାଭୈଷିଣୀ—ସ୍ତ୍ରୀ) Desirous of gaining.

**ଲାମଜ୍ଜକ**—ସଂ. ବି [ଲାଧାତୁ=(ଉତ୍ସ୍ରପ ଅର୍ଥ) ଗ୍ରହଣ କରିବା ବା
Lāmajjaka ଘୁଞ୍ଚାଇବା+ମଜ୍ଜା=ସାର+କ, ଯାହା ଦେହର
ଗନ୍ଧବେଣା ଉତ୍ତାପ ଘୁଞ୍ଚାଏ।]—୧। ଗନ୍ଧତୃଣ
लामज, पीलावाला (ଦେଖ)—1. Gandha truṇa
ତେ—ତେଲ୍ଲବଟ୍ଟବେରୁ (See). ୨। ଉଶୀର;ବେଣାମୂଳ—
ମ. ଲାବଜ, ଗାବଲ୍ଲାବାଲ୍ଲ 2. The fragrant root of
ଗୁ. ସୁଗନ୍ଧ ବାଲୁ, ଖଡ଼ଖଲ, Beṇā grass; Andropogen
ଜଲବାଲେ Muricatus. ୩। ଗନ୍ଧବେଣା—
ଅନ୍ୟ ସ. ନାମ—ସୁଣାଳ, 3. Juncus Odoratus. [ଦ୍ର—
ଅମୃଣାଳ, ଲଘୁ, ସେବ୍ୟ, ଏ ତୃଣସଂଯୁକ୍ତ ପ୍ରଦେଶ, ପଞ୍ଜାବ ଓ
ଇଷ୍ଟକାପଥ୍ୟ, ବଲଦ, ଅବଦାହକ] ସିନ୍ଧୁ ପ୍ରଦେଶରେ ବର୍ଷର ସବୁ
ଋତୁରେ ମିଳେ। ଏହା ବେଣା ପରି, କିନ୍ତୁ ଈଷତ୍
ହଳଦିଆ। ଏହାର ମୂଳ କଳଚଟ୍ଟ ଅଂଶ ମୋଟା ଓ ଉହିଁରେ
ରୋମ ଥାଏ। ଏହାର ଦଣ୍ଡ ସିଧା ଓ ଦଣ୍ଡରେ ଚିକ୍କଣ,
ପତଳା ଓ ଲମ୍ବ ପତ୍ର ହୁଏ। ବୈଦ୍ୟକ ମତରେ ଏହା
ଉତ୍ତେଜକ, ଘର୍ମ ନାଶାରକ, ରକ୍ତ ପରିଷ୍କାରକ, ଅଜୀର୍ଣ୍ଣ ଓ
କାଶ ନାଶକ ଓ ବସୁରକାରେ ଓ ଜ୍ୱରରେ ଉପକାରୀ—
(ହି. ଶ)—ଏହା ଶୀତଗ୍ରାହ୍ୟ, ତିକ୍ତରସ, ଲଘୁ ଓ ବିଦୋଷ
ନାଶକ ଓ ରକ୍ତ ଦୋଷ, ଚର୍ମରୋଗ, ଘର୍ମ, ମୂତ୍ରକୃଚ୍ଛ୍ର, ଦାହ
ଓ ବସ୍ତିପୀଡ଼ାନାଶକ—ଦ୍ରବ୍ୟଗୁଣ)

**ଲାମା**—ବୈଦେ. ବି. (ନାମ)—୧। (ତିବତୀୟ ଭାଷା) ତିବତ ଦେଶୀୟ
Lāmā ବୌଦ୍ଧ ପୁରୋହିତ—1. A Buddhist priest of
लामा लामा Tibet. [ଦ୍ର—ତିବତର ବୌଦ୍ଧ ମଠର ମହନ୍ତ;
ବୌଦ୍ଧ ବାବାଜୀମାନେ ଦୁଇ ଶ୍ରେଣୀର ଅଟନ୍ତି—(୧)
ଡାବା ଲାମା (ସନ୍ନ୍ୟାସୀ) ଓ (୨) ଡାବା (ବ୍ରାହ୍ମଣ)।
ଏମାନେ ମୁଣ୍ଡିତ ମସ୍ତକ, ରକ୍ତବସନଧାରୀ, ଚିରକୌମାର
ବ୍ରତୀ। ଲାମାମାନେ ରାଜ୍ୟର ଧର୍ମ ଓ ରାଜନୀତିକ ଅଧ୍ୟକ୍ଷ।
ଏମାନେ ଭୋଜନ ପୂର୍ବରୁ ସ୍ତବ ପାଠ କରନ୍ତି ଓ ଉମରୁ
ବଜାନ୍ତି। ଭୋଜନ ପୂର୍ବରୁ ଓ ଭୋଜନ ସମୟରେ ଇନ୍ଦ୍ର,
ବରୁଣ ଓ ବାୟୁ ପ୍ରଭୃତି ଦେବଗଣଙ୍କର ସ୍ତବ ହୁଏ। ମଧ୍ୟେ
ମଧ୍ୟେ ମହାକାଳୀ, ତାରା ଓ ଶିବଙ୍କର ସ୍ତୁତି ଦ୍ୱାରା ଭଜନ
ସହ ଭୋଜନ ଶେଷ ହୁଏ। ଲାମାମାନଙ୍କ ଦେବାଳୟରେ
ତ୍ରିବିଧ ଉପାସନା ପ୍ରଣାଳୀ ଚଳେ ପ୍ରକାର; ଯଥା—
(୧) ବୈଦିକ ଦେବଗଣଙ୍କର ସ୍ତୁତି; (୨) ପୌରାଣିକ ଓ
ତାନ୍ତ୍ରିକ ଦେବଗଣଙ୍କର ଆରାଧନା; (୩) ବୁଦ୍ଧ ଓ
ବୋଧିସତ୍ତ୍ୱମାନଙ୍କର ସ୍ତୁତି।

ଲାମାମାନଙ୍କର ଦେବସ୍ଥାନରେ ଶକ୍ତି ବା କାଳୀମୂର୍ତ୍ତି
ପ୍ରତିଷ୍ଠିତ। ମଠାଧ୍ୟକ୍ଷ ଏକ ଲାମାଙ୍କର ଆସନ ଅନ୍ୟ ଜଣେ
ଲାମା ଗ୍ରହଣ କରିପାରନ୍ତି ନାହିଁ। ପ୍ରଧାନ ଲାମାଙ୍କର ମୃତ୍ୟୁ
ହେଲେ ତାହାଙ୍କ ପୁନର୍ଜନ୍ମ ଓ ପୁନରାଗମନ ପର୍ଯ୍ୟନ୍ତ ତାଙ୍କ
ଆସନକୁ ଶୂନ୍ୟ ରଖାଯାଏ। ପୁନର୍ଜନ୍ମପରେ ୩ ବର୍ଷଠାରୁ
୭ ବର୍ଷ ବୟସ ମଧ୍ୟରେ ସେହି ମୃତଲାମାଙ୍କ ଦେହାନ୍ତ
ପରେ ମଠର ଅସ୍ତ୍ର ବ୍ୟୟ, ଛିଦ୍ର, ପଶୁ, ସମ୍ପତ୍ତି କଥଣ
ଥିଲା ଏବଂ ବର୍ତ୍ତମାନ କଥଣ ଅଛି, ଯେଉଁ ଶିଶୁ ତାହା କହି
ପାରେ ସେ ପରୀକ୍ଷାରୁ ଉତ୍ତୀର୍ଣ୍ଣ ହୁଏ। ତହୁଁ ଉତ୍ତରୁ ତାଙ୍କ
ମଠର ଅନ୍ୟ ଲାମାମାନେ ଶୂନ୍ୟ ମହନ୍ତଙ୍କ ଆସନରେ
ବସାନ୍ତି।]
୨। (ପେରୁ ଦେଶୀୟ ଭାଷା—ଲାଏମା; ଇଂ. ଲାମା)—
लामा लामा ଦକ୍ଷିଣ ଆମେରିକାର ଏକପ୍ରକାର ରୋମନ୍ଥକ ଉଷ୍ଟ୍ର
ଜାତୀୟ ପଶୁ—2. Llama; Auchenia Lama;
south American beast of the camel
family. [ଦ୍ର—ଏମାନେ ଉଟଠାରୁ ଛୋଟ, ଏମାନଙ୍କର
କୁଜ ନାହିଁ। ଏମାନେ ଆମ ଦେଶର ଗଧ ପରି ଗୃହପାଳିତ
ହୋଇ ବୋଝ ବୁହନ୍ତି। ଏମାନଙ୍କ କୋମଳ ଲୋମରୁ
କୋମଳ ଶୀତବସ୍ତ୍ର ପ୍ରସ୍ତୁତ ହୁଏ ଓ ଚମଡ଼ାରୁ ନାନା
ବ୍ୟବହାର୍ଯ୍ୟ ବସ୍ତୁ ନିର୍ମିତ ହୁଏ। ଏ ଜନ୍ତୁଙ୍କୁ କଞ୍ଚା ଘାସ
ମିଳିଲେ ଏମାନଙ୍କର ପାଣି ପିଇବା ଦରକାର ହୁଏ ନାହିଁ।
ଏମାନଙ୍କ ଗୋଡ଼ର ଅଙ୍ଗୁଳମାନ ପୃଥକ୍ ଓ ପ୍ରତି ଅଙ୍ଗୁଳରେ
ଛୋଟ ଦୃଢ଼ ଖୁରା ଅଛି। ଏମାନେ ମଧ୍ୟ ବନ୍ୟ ଅବସ୍ଥାରେ
ମିଳନ୍ତି ଓ କୁକୁରଙ୍କ ସାହାଯ୍ୟରେ ଏମାନଙ୍କୁ ଶିକାର
କରାଯାଏ। ଏମାନେ ଆକ୍ରମକୋରୀ ଉପରକୁ ଛେପ
ପକାନ୍ତି। ବନ୍ୟ ଅବସ୍ଥାରେ ଏହାକୁ ଗୁଆନା ଓ ଗୃହପାଳିତ
ଅବସ୍ଥାରେ ଲାମା ବୋଲାଯାଏ। ହି. ଶ]

**ଲାମ୍ପ (ମ୍ଫ)**—ବୈଦେ ବି.(ଇଂ. ଲାମ୍ପ)—୧। କାଚ ନିର୍ମିତ ପ୍ରଦୀପ—
Lāmp(mph) 1. Glass lamp. ୨। ଲମ୍ଫ; ଲମ୍ଫ;
ल्या(ले)म्प(फ) लैंप କିରାସିନ ତେଲ ଜଳିବାର ଉପକରଣ—
2. A kerosene lamp

**ଲାମ୍ପ ଫିତା(ବତୀ)**—ଦେ. ବି—କାଚ ପ୍ରଦୀପରେ ଜଳିବା ବର୍ତ୍ତୀ—
Lāmp phitā(bati) Lamp wick.
ल्या(ले)म्प फिते (बाति) लैंपकीबत्ती

**ଲାମ୍ପଟ୍ୟ**—ସଂ. ବି. (ଲମ୍ପଟ+ଭାବ ଯ)—ଲମ୍ପଟତା; କାମୁକତା,
Lāmpatya ରତିବାଜୀ; ବ୍ୟଭିଚାର—Lasciviousness;
fornication, adultery.

**ଲାୟ(ୟେ)କ୍**—ବୈଦେ. ବିଣ. (ଅ. ଲାୟକ୍) ଲାଏକ୍ (ଦେଖ)—
लायक लायक (ନାଲାୟକ—ବିପରୀତ) Laek (See).

**ଲାୟ(ୟେ)କତି**—ବୈଦେ. ବି. (ଫା)—ଲାଏକତି (ଦେଖ)
Laya(ye)kati Lāekati (See).

**ଲାୟାର୍**—ବୈଦେ. ବି (ଇଟାଲୀୟ)—ଇଟାଲିରେ ପ୍ରଚଳିତ ମୁଦ୍ରାବିଶେଷ-
Lāyār Lire;a current silver coin of Italy,lira—
(ଲିରା—ଅନ୍ୟରୂପ) (ଦ୍ର—ଏହା ୧୦୦ଟି ସେଣ୍ଟେସିମି (centesimi)
ରେ ବିଭକ୍ତ ଓ ଏଥିର ଆଧୁନିକ ମୂଲ୍ୟ ବିଲାତ ପ୍ରଚଳିତ ଏକ
ପାଉଣ୍ଡର ୮୨ ଭାଗରୁ ଏକ ଭାଗ, ଅର୍ଥାତ୍ ପାଉଣ୍ଡକୁ ୫୧୫୯
ଧରିଲେ ଏହି ଭାରତ ମୁଦ୍ରାରେ ପ୍ରାୟ ଛଅଅଣା ହେବ।
ଷ୍ଟେଟସମାନ୍ ପତ୍ରିକାର ବିଜ୍ଞାପନ ୨୮।୫।୩୭]

**ଲାରଣ୍ (ନ୍)**—ପ୍ରାଦେ. (କଟକ ସହର) ବି. (ନାମ)—ନାରାୟଣ ନାମର
**Lāraṇ (n)** ବ୍ୟକ୍ତିର ଡାକ ନାମ—Name for calling
(ଲାରୁ, ଲାରଆ, ଲାରୁ, ଲରୁଆ—ଅନ୍ୟରୂପ) Nārāyaṇa.

**ଲାରି**—ପ୍ରାଦେ. (ସମ୍ବଲପୁର) ବି.—କୁଡ଼ିଆ ଘର—Cottage; hut.
**Lāri**

**ଲାର୍ଡ଼(ଡ୍)** ପ୍ରାଦେ. (ଗଞ୍ଜାମ) ବୈଦେ. ବି. (ଇଂ. ଲର୍ଡ୍)—ଲର୍ଡ୍
**Lārḍ (rḍ)** (ଦେଖ)—Lard (See).

**ଲାଲ୍**—ପ୍ରାଦେ. (ସମ୍ବଲପୁର) ବିଣ. (ତୁଳ. ହି. ଲାଲ୍)—ନାଲିଆ; ରକ୍ତ
**Lāl** ବର୍ଣ୍ଣ ବିଶିଷ୍ଟ—Red coloured.
ବୈଦେ. ବିଣ. [ ଫା. ଲାଲ୍=ପ୍ରିୟ, ରକ୍ତବର୍ଣ୍ଣ; ତୁଳନା କର
ସଂ. ଲଲ୍ (ଡ) ଧାତୁ=ଇଚ୍ଛା କରିବା, ବା ସଂ. ଲୋହିତ]—
लाल लाल ରକ୍ତ ବର୍ଣ୍ଣ ବିଶିଷ୍ଟ; ନାଲିଆ; ଲୋହିତ—Red.
लालमुनिया लाल ବି.—୧ । (ଫା. ଲାଲ୍) ଏକପ୍ରକାର କ୍ଷୁଦ୍ର
ଗାୟକ ପକ୍ଷୀ—1. A small singing bird; the
bull finch; Fringilla; Amandava or
Pyrhulla Vulgaris; Sporæginthus
Amandava. [ଦ୍ର.—ଏହା ଘର ଚଟିଆ ଅପେକ୍ଷା
ଛୋଟ । ଏହାର ଦେହ ଅରକ୍ତ ମାଟିଆ ଓ ଶୀତ ଋତୁରେ
ଏହାର ଦେହରେ ଫୁଟୁଫୁଟୁକିଆ ଦାଗ ହୁଏ । ଏମାନଙ୍କର
ଶବ୍ଦ ଅତି ମଧୁର ଥିବାରୁ ଲୋକେ ଏମାନଙ୍କୁ ପାଳନ୍ତି ।]
୨ । (ଫା. ଲାଲ୍) ରକ୍ତବର୍ଣ୍ଣ ରତ୍ନବିଶେଷ; ମାଣିକ—
2. Ruby. ୩ । ନାଲି ରଙ୍ଗ; ରକ୍ତବର୍ଣ୍ଣ—3. Red
colour. ୪ । ନାଲି କାଇଞ୍ଚ—4. The black
tipped seeds of 'Kāiñcha'. ୫ । (ଫା. ନାଲ୍)
नाल नाल ନାଲ୍; ଘୋଡ଼ା ଓ ଗୋରୁଙ୍କ ଖୁରରେ ମରାଯିବା ଲୁହାର
ପାଦୁଆ—5. Shoes put below the hoofs of
horses and bullocks; horse shoe ଦେ.
ବି.—୧ । ରାଜାଙ୍କର ତୃତୀୟ ବା ଚତୁର୍ଥ ରାଜକୁମାରଙ୍କ ଉପାଧି-
लाला लाला 1. The title of the 3rd or 4th son of
a Raja. ୨ । ବିହାରର ଲାଲା କାୟସ୍ଥମାନଙ୍କର
लाला लाला ବଂଶଗତ ଉପାଧି—2. The family title of
the 'Lālā Kāyasthas' of Bihar. ୩ ।
ହିନ୍ଦୁସ୍ଥାନୀ ବ୍ୟକ୍ତିମାନଙ୍କ ନାମ ସଙ୍ଗେ ଯୁକ୍ତ ପଦ—3. A
word attached to the name of Hindu-
stanee persons. [ଦ୍ର—ଆମ ଦେଶରେ ଲୋକଙ୍କ
ନାମ ସଙ୍ଗେ ଯେପରି 'ଚନ୍ଦ୍ର' ଶବ୍ଦ ଯୁକ୍ତ ହୁଏ (ଯଥା—
ରାମଚନ୍ଦ୍ର, କୃଷ୍ଣଚନ୍ଦ୍ର), ସେହିପରି ପଶ୍ଚିମ, ହିନ୍ଦୁସ୍ଥାନ ଆଦି
ଅଞ୍ଚଳରେ 'ଲାଲ୍' ଶବ୍ଦ ଯୁକ୍ତ ହୁଏ । ଯଥା—ମୋହନ
ଲାଲ୍, ଗିରଧାରୀ ଲାଲ୍, ରାମ ଲାଲ୍, ଜୀବନଲାଲ୍, ବ୍ରଜଲାଲ୍
ଇତ୍ୟାଦି । ଏଥିର ଅର୍ଥ ପ୍ରିୟ; ଜୀବନ ଲାଲ=ଶ୍ରୀକୃଷ୍ଣଙ୍କ
ପ୍ରିୟ ବ୍ୟକ୍ତି ।]

**ଲାଲ୍ କରବୀ**—ଦେ. ବି—(ସଂ. ଲୋହିତ କରବୀର)—ନାଲି କରବୀ;
**Lāl karabī** ରଙ୍ଗ କରବୀ ଫୁଲ—The red-flowered
लाल कनेर लाल कनेर oleander.

**ଲାଲ୍ ଗୁଲ୍ (ଲୁ) ଗୁଲ୍ (ଲୁ)**—ପ୍ରାଦେ. (ସମ୍ବଲପୁର) ବିଣ.—ଲାଲ୍‌ଗୁଲାଲ୍
**Lāl gul-(lu)gul(lu)** (ଦେଖ)—Lālgulāl (See).
[ଦ୍ର—ଲାଲ୍ ଗୁଲ୍ ଗୁଲ୍ ଅଥବା ଟୁକ୍ଟା (ଗୁଲ୍)—
ସମ୍ବଲପୁରୀ ବଚନ ।]

**ଲାଲ୍ ଗୁ(ଗୋ)ଲାଲ୍**—ବୈଦେ. ବିଣ. (ଫା). ୧ । ରଙ୍ଗ ଟହ ଟହ;
**Lāl gu(go)lāl** ନାଲି ଟୁକୁ ଟୁକୁ;ରକ୍ତ ରଞ୍ଜିତ ଓ ମନୋହର—
टकटकेलाल लाल टकटके 1, Red coloured and
charming. ୨ । ଖୁବ୍ ରକ୍ତବର୍ଣ୍ଣ ବିଶିଷ୍ଟ—2. Very
red; bright red.

**ଲାଲ୍ ଚଢ଼ା(ଢ଼େ)ଇ**—ଦେ. ବି—ଲାଲ୍ ୧ (ଦେଖ)
**Lāl chardhā(rdhe)i** Lal 1 (See)

**ଲାଲ୍ ଚହଚ**—ଦେ. ବିଣ—ଲାଲ୍‌ଗୁଲାଲ୍ (ଦେଖ)—
**Lāl chahacha** Lāl gulāl (See)
लाल टकटक टकेटकलाल लाल चहचह, लाल दप दप
[ଲାଲ୍ ଚହ ଚହ; ଲାଲ୍ ଟକ ଟକ; ଲାଲ ଟହଟ, ଲାଲ ଟହ ଟହ
ଲାଲ ଟୁହୁଟୁ, ଲାଲ ଟୁକୁ ଟୁକୁ, ଲାଲ ଟୁକ୍‌ଟୁକ୍—ଅନ୍ୟରୂପ]

**ଲାଲ୍ ଚାନ୍ଦି**—ଦେ. ବି—ଟିକ୍କା ପରି ଗୋଲ ଓ ଚେପ୍ଟା ଏବଂ ରକ୍ତାଭ
**Lāl chāndi** ଏକପ୍ରକାର ଛୋଟ ମାଛ—A species of
लालचाँदी flat, round and reddish small
लालचांदी fish; Chanda Lala (of Hamilton's
fishes of the Ganges.)

**ଲାଲ୍ ଚିତା**—ଦେ. ବି (ସଂ. ରକ୍ତଚିତ୍ରକ)—ରକ୍ତଚିତ୍ରକ (ଦେଖ)
**Lāl chitā** Raktachitraka (See)
लालचिता लालचिता

**ଲାଲ୍ ଜରଜର**—ପ୍ରାଦେ (ସମ୍ବଲପୁର) ବିଣ—ନାଲି ଟହଟହ; ରଙ୍ଗ
**Lāl jar-jar** ଟହଟହ; ରକ୍ତାକ୍ତ—Bright red.
(ଲାଲ୍ ଜର୍ଜର୍—ଅନ୍ୟରୂପ)

**ଲାଲ୍ ଟ(ଟି)ଣ(ନ୍)**—ବୈଦେ. ବି. (ଇଂ. ଲଣ୍ଠନ୍)—ଲଣ୍ଠନ୍ (ଦେଖ)
**Lāl ṭa(ṭi)ṇ(n)** Lanṭan (See)
लठेन लालटेन

**ଲାଲ୍ ପଗଡ଼ି**—ଦେ. ବି (ଫା. ଲାଲ୍+ସ. ପ୍ରଗ୍ରହ)—୧ । ମୁଣ୍ଡର
**Lāl pagardi** ନାଲି ପାଗ—1. Red turban. ୨
लालपागड़ी ଲାଲପଗଡ଼ିଆ (ଦେଖ)—2. Lāl pagardiā
लालपगड़ी (See)

**ଲାଲ୍ ପଗଡ଼ିଆ**—ଦେ. ବିଣ—ଯେ ମୁଣ୍ଡରେ ନାଲି ପାଗ ଗୁଡ଼ାଇ ଥାଏ—
**Lāl pagardiā** Wearing a red turban. ଦେ. ବି
लालपागड़ी वाला (ପୁଲିସ କନଷ୍ଟବଲ ଆଦି ମୁଣ୍ଡରେ ନାଲି
लालपगड़ीवाला ପଗଡ଼ି ପିନ୍ଧିଥିବାରୁ)—ପୁଲିସ୍ କନଷ୍ଟବଲଆଦି
—Police constable.
(ଲାଲ୍‌ପଗଡ଼ିଧାରୀ, ଲାଲପଗଡ଼ିବାଲା, ଲାଲପାଗିଆ—ଅନ୍ୟରୂପ)

**ଲାଲ୍ ପଟା(ଟ୍ଟା)**—ଦେ. ବି—ନାଲ୍ ପଟା (ଦେଖ)
**Lāl paṭā(ṭṭā)** Nāla paṭā (See)

**ଲାଲ୍ ପାଣୀ**—ଦେ. ବି—ମଦ—Wine.
**Lāl-pāṇī** লালপানী; लालपानी

ଲାଲ୍ ପୋଷ୍—ବୈଦେ. ବଣ (ଧା)—ଲୋହିତବର୍ଣ୍ଣ ପରିଚ୍ଛଦଧାରୀ—
Lāl posh Wearing red dress.
লালপোষ **लालपोष**

ଲାଲ୍ ବନ୍ଦ(ନ୍ଦି)—ବୈଦେ. ବ (ଫା. ନାଲ୍‌ବନ୍ଦ୍)—ନାଲବନ୍ଦ; ଯେଉଁ
Lāl banda(ndi) ବ୍ୟକ୍ତି ଘୋଡ଼ାଆଦିଙ୍କ ଗୋଡ଼ରେ ନାଲ୍
নালবন্দ ମାରେ—A person who shoes horses; a
**नालबन्द** farrier.

ଲାଲ୍ ବନ୍ଦି—ବୈଦେ. ବ (ଫା. ନାଲ୍‌ବନ୍ଦୀ)—ଘୋଡ଼ାଆଦିଙ୍କ
Lāl bandi ଗୋଡ଼ରେ ନାଲ୍‌ମାରିବା କ୍ରିୟା—The process
নালবন্দী of attaching iron shoes to the
**नालबन्दी** hoofs of horses etc.

ଲାଲ୍ ବାଗ୍—ବୈଦେ. ବ (ନାମ) (ଫା. ଲାଲ୍=ସୁନ୍ଦର+ବାଗ୍=
Lāl bāg ଉଦ୍ୟାନ)—କଟକ ସହରର କାଠଯୋଡ଼ି କୂଳରେ
লালবাগ ଓଡ଼ିଶା ପ୍ରଦେଶର ରେଭିନ୍ୟୁ କମିଶନଙ୍କ କୋଠି
**लालबाग** —The bungalow of the Revenue
Commissioner of Orissa situate in
Cuttack town on the bank of the
Kathjori river. [ଦ୍ର—ପୂର୍ବେ ମୋଗଲ ଓ
ମରହଟ୍ଟା ରାଜତ୍ୱକାଳରେ ଶାସନକର୍ତ୍ତାମାନେ ଏହିଠାରେ
ରହୁଥିଲେ ଏବଂ ଏଠାରେ ସେମାନଙ୍କର କଚେରୀ ଥିଲା । ]

ଲାଲ ବି(ବେ)ହାରୀ—ଦେ. ବ. ପୁଂ—ଲୋକଙ୍କ ନାମ—
Lāl bi(be)hāri Name given to males.
লালবিহারী **लालविहारी**

ଲାଲ୍ ଭଜି—ପ୍ରାଦେ (ବମ୍ବେ) ବ—୧ । କୋଶଲା ଶାଗ—1. A
Lāl bhāji sort of pot herb. ୨ । ମାଂସ ଭଜା—
2. Fried bits of meat. ୩ । ଖାଦ୍ୟାର୍ଥ ବ୍ୟବହୃତ
ମାଂସ—3. Meat.

ଲାଲ୍(ଲ୍)ଲାଳ—ଦେ. ବ (ସଂ. ଲା)—ଲାଳମୟ—
Lāl(l)-lāla লেললেলে **लारदार** Slimy.
[ଲାଳାଳ, ଲାଲ୍‌ଲାଳୁଆ, ଲାଲାଳୁଆ—ଅନ୍ୟରୂପ]

ଲାଲ୍ ସାହେବ—ବୈଦେ. ପ୍ରାଦେ (ଗଡ଼ଜାତ) (ଫା. ଲାଲ୍+ସାହବ)
Lāl saheba —ରାଜାଙ୍କର ୩ୟ ବା ୪ର୍ଥ ରାଜକୁମାରଙ୍କ
লাল সাহেব ଉପାଧି—The title of the 3rd or 4th
**लालसाहब** son of a Raja.

ଲାଳ—ଦେ. ବ (ସଂ. ଲାଳା)—୧ । ଲାଳା; ପାଟିରୁ ବୋହିବା ଶ୍ଳେଷ୍ମ;
Lāla ମୁଖର ସ୍ରାବ—1. Saliva; slaver. [ଦ୍ର—
লাল(লা) **लार, राल, लाला** ବାଳୁଙ୍ଗମାନେ ଅଙ୍ଗଚିହ୍ନରେ
ଲାଗିରହିଛି ଲାଳ—ଭକ୍ତଚରଣ. ମଥୁରାମଙ୍ଗଳ । ] ୨ ।
ପିଚ୍ଛିଳରସ—2 Slime. ୩ । ଅମ; ପେଟ ମଧ୍ୟରେ
ଥିବା ଅମ (ଯାହା ବ ଝାଡ଼ା ସଙ୍ଗେ ବାହାରେ)—
3. Mucus.

(ପାଟିରୁ) ଲାଳ ଉଠିବା—ଦେ. କ୍ରି—ପାଟି ଲାଳାଇବା—
Lāla uthibā Salivation (said of the mouth).
লালাউঠা **पानीपानीहोना; मुहं आना**

(ପାଟିରୁ) ଲାଳ ଗଳିବା—ଦେ. କ୍ରି—ମୁହଁ ଅନ୍ଦରୁ ଲାଳାର ସ୍ରାବ
Lāla galibā ପ୍ରବାହିତ ହେବା ବା କ୍ଷରିତ ହେବା—
লালপড়া **लारबहना(टपकना)** The flowing of
ଲାଳବ(ବୋ)ହିବା } —ଅନ୍ୟରୂପ saliva or slime
ଲାଳ ଚୁହିବା } from the month.
[ଦ୍ର—ସ୍ତ୍ରୀମାନଙ୍କ ମଧ୍ୟରେ ଗୋଟିଏ ବିଶ୍ୱାସ ଅଛି ଯେ,
ଯେଉଁ ଶିଶୁ ଗର୍ଭରେ ଥିଲାବେଳେ ମାତାର ଦୋହଦ-
ଲାଳସା ଅପୂର୍ଣ୍ଣ ରହିଥାଏ, ଅର୍ଥାତ୍ ମାତା ଯେଉଁ ପଦାର୍ଥ
ଖାଇବାକୁ ମନ କରିଥାଏ, ତାହା ଯଦି ଖାଇବାକୁ ପାଇ
ନ ଥାଏ, ତେବେ ଉକ୍ତ ଶିଶୁର ପାଟିରୁ ଲାଳ
ଗଳେ । ]

ଲାଳ(ଲି)ଚ(ଚି)—ବୈଦେ. ବ (ଫା. ନାଲିସ୍)—୧ । ନାଲିସ; କୌଣସି
Lāla(la)cha(chi) ବ୍ୟକ୍ତି ବିରୁଦ୍ଧରେ କର୍ତ୍ତୃପକ୍ଷଙ୍କ ନିକଟରେ
নালিস **नालिस** ଅଭିଯୋଗ କରିବା ବା ମକଦ୍ଦମା ଦାଏର
କରିବା—1. Complaint; filing of a case or
suit against a person. ୨ । ମକଦ୍ଦମା—
2. Case; suit.

ଲାଳଚ(ଚ୍ଚ)—ଦେ. ବ (ସଂ. ଲାଳସା)—୧ । ଲାଳସା (ଦେଖ)—
Lālacha(chā) 1. Lālasā See). ୨ । ସ୍ପୃହା;
লালসা(চা) **लालच** କୌଣସି ବସ୍ତୁପ୍ରତି ଅତ୍ୟଧିକ ଲୋଭ;
ଲୋଲୁପତା—2. Inordinate desire for a
নাইদেওয়া **लाड़** thing. ୩ । (ସଂ. ଲାଳନ)
ଶିଶୁଙ୍କୁ ଅତି ଗେଲବସରରେ ବଢ଼ାଇବା—
3. Bringing up of a child with
excessive fondling.

ଲାଳଚ୍ଚ—ଦେ. ବଣ. ପୁଂ—୧ । ଲାଳସାଯୁକ୍ତ—1. Having an
Lālachā inordinate hankering. ୨ । ଲାଳାୟିତ-
(ଲାଳଚଥ—ଅନ୍ୟରୂପ) 2. Hankering. ୩ । ଖାଦ୍ୟ-
(ଲାଳଚୀ, ଲାଳଚେଇ—ସ୍ତ୍ରୀ) ଦ୍ରବ୍ୟପ୍ରତି ବିଶେଷ ଲୋଭୀ—
লোভী **लालचि** 3. Hankering after dainty
food. ୪ । ଖୋସାମତିଆ—4. Flattering.
୫ । (ସଂ. ଲାଳ) ଲାଳୁଆ; ଲାଳାମୟ—5. Slimy
୬ । ଯାହାଁରୁ ସବଦା ଲାଳ ବହୁଥାଏ—6. Emitting
যাবমুখথেকে লালা পড়ে **लारहा** saliva or slime.
লালচিয়া, লা চো **लालगुडावी** ବୈଦେ. ବଣ (ଫା.
ଲାଲ୍ ସା) ଈଷତ୍ ରକ୍ତବର୍ଣ୍ଣବିଶିଷ୍ଟ—Reddish.

ଲାଳଚ୍ଚ(ଚେ)ଇବା—ଦେ. କ୍ରି (ସଂ. ଲାଳସା)—୧ । ଲାଳାୟିତ ବା
Lālachā(che)ibā କୌଣସି ଦ୍ରବ୍ୟପ୍ରତି ଲାଳସାଯୁକ୍ତ ହେବା—
লালায়িত হওয়া **ललचाना** 1. To be eagerly
hankering after a thing.

ଲାଳ(ଲି)ଚ୍ଚ ଖୋଇ—ଦେ. ବ—ଖାଦ୍ୟାଦି ପ୍ରତି ଲାଳସାଯୁକ୍ତ ପ୍ରକୃତି—
Lāla(li) chā khoi Natural or habitual hanker
লালসা **लालचीस्वभाव** ing after dainties.
(ଲାଳଚଥଖୋଇ, ଲାଳଚଥ ପ୍ରକୃତି, ଲାଳଚ୍ଚପ୍ରକୃତି—ଅନ୍ୟରୂପ)

**ଲାଲ ଚିତା**—ଦେ. ବି ( ସଂ. ରକ୍ତଚିତ୍ରକ )—୧ । ଗୁଳ୍ମବିଶେଷ—
Lalachitā 1. Plumbago Rosea. ୨ । ରକ୍ତ
लालचिता লালচিতা ଚନ୍ଦନର ଚିତା—2. Mark of red sandal paste.

**ଲାଳନ**—ସଂ. ବି (ଲାଡ଼ି ଧାତୁ=ଯତ୍ନପୂର୍ବକ ପାଳନ କରିବା+ଭାବ. ଅନ) ।୧ । ଯତ୍ନପୂର୍ବକ ପାଳନ—1. Tending;
Lālana
(ଲାଳନୀୟ, ଲାଳ୍ୟ, ଲାଳିତ—ବିଣ) bringing up with care.
୨ । ଶିଶୁମାନଙ୍କୁ ସ୍ନେହପୂର୍ବକ ବା ତାଡ଼ନା ନ କରି ବଢ଼ାଇବା—2. Bringing up of a child without strictness; laxity in regulating a child's actions.

**ଲାଳନ ପାଳନ** - ସଂ. ବି—ଶିଶୁମାନଙ୍କୁ ଆଦର ଓ ଯତ୍ନସହିତ ପାଳିବା—
Lālana pālana Bringing up of a child with care and affection.

**ଲାଳନା**—ସଂ. ବି ( ଲାଳନ+ଆ )—ଆଦର; ସ୍ନେହ—Love;
Lālana affection; fondness. [ଉ—ଏମନ୍ତ ହେଲେହେଁ ତ ତାଠାରୁ ଲାଳନା, ନ ତୁଟଇ କେବେ ବିଦୁର ମହାମନା-
କୃଷ୍ଣସିଂହ ମହାଭାରତ ଉଦ୍‌ଯୋଗ ।]

**ଲାଲ୍ ପଗଡ଼ି**—ଦେ. ବି—୧ । ପୁଲିସ କର୍ମଚାରୀଙ୍କର ରଙ୍ଗ ପାଗ—
Lāla pagardi 1. The red turban of police
लालपागड़ी লালপগড়ী officers. ୨ । ରଙ୍ଗ ପାଗ ପରିଧାନକାରୀ ବ୍ୟକ୍ତି—2. One wearing a red turban. ୩ । ପୁଲିସ କର୍ମଚାରୀ—3. Police officer. [ ଉ—ଲାଲପଗଡ଼ିକି ନ ଡରନ୍ତି କିଏ—
(ଲାଲ ପାଗ—ଅନ୍ୟରୂପ) ରାଧାନାଥ ଦରବାର । ]

**ଲାଳ ପଚ ପଚ**—ଦେ. ବିଣ—ଲାଳ ଦ୍ୱାରା ଜର୍ଜରିତ; ଲାଳୁଆ; ଲାଳାମୟ—
Lāla paṭa paṭa Slimy.
[ ଲାଳ ପାଚ ପାଚ—ଅନ୍ୟରୂପ ] लालसानी লালজলপত

**ଲାଲ(ଲ)ପ୍ୟମାନ**—ସଂ. ବିଣ [ ଲପ୍ ଧାତୁର ଯଙ ଲୁଗନ୍ତ=ପୁନଃ ପୁନଃ କହିବା+କର୍ମ ଆନ]—ପୁନଃ ପୁନଃ
Lāla(la)pyamāna
କଥିତ—Repeatedly said.

**ଲାଲ୍ ବତି**—ଦେ. ବି—୧ । ରକ୍ତବର୍ଣ୍ଣର ମହମବତି—1. Red-
Lālabati coloured candle. ୨ । ରକ୍ତବର୍ଣ୍ଣର ଆଲୋକ-
लालबाती লালবত্তী 2. Red light. [ ଉ—ରେଳ ଓ ଜାହାଜରେ ବିପଦ ଆପଦର ଚିହ୍ନ ସ୍ୱରୂପ ନାଲି ଆଲୁଅ ଓ ନାଲି ପତାକା ଦେଖାଇ ଦିଆଯାଏ । ଦୂରରୁ ରକ୍ତବର୍ଣ୍ଣର ଆଲୋକ ବା ପତାକା ଦେଖାଗଲେ ଜଣାଯିବ ଯେ, ରେଲ ଲାଇନ୍‌ରେ କିଛି ବିପଦ ଘଟିବାର ସମ୍ଭାବନା । ନାଲି ଆଲୁଅ ଆଦି ଦେଖିବାମାତ୍ରେ ରେଲଗାଡ଼ି ଓ ଜାହାଜର ଗତି ବନ୍ଦ କରାଯାଏ । ]

**ଲାଲଭଜି**—ପ୍ରାଦେ [ଗଡ଼ଜାତ] ବି—ମୃଗ, ଛେଳି ଆଦିଙ୍କ ମାଂସ—
Lālabhaji Meat of the deer or goat.

**ଲାଲମନ୍**—ଦେ. ବି—୧ । (ଫା. ଲାଲ୍=ରକ୍ତବର୍ଣ୍ଣ+ମୋହନ=
Lālaman ମନୋହର)—ଦୁଧ ଛେନାରୁ ପ୍ରସ୍ତୁତ ଘୃତପକ୍ୱ
लालमोहन ରକ୍ତାବରଣ ବର୍ତ୍ତିକା ରସଗୋଲା—1. A sweet-
লালমন meat made from milk-cheese. ୨ ।
ଲାଲମ(ମୋ)ହନ୍ }
ଲାଲ୍‌ମୋହନ } —ଅନ୍ୟରୂପ
ବୋର୍ଣ୍ଣିଓ ଆଦି ଦ୍ୱୀପର ଏକ ପ୍ରକାର କ୍ଷୁଦ୍ର ଶୁଆ—2. A species of red-bodied parrot-like bird; Cornwurs Carolinus. [ଉ—ଏମାନଙ୍କର ଶରୀର ଗାଢ଼ ରକ୍ତବର୍ଣ୍ଣ ଓ ପକ୍ଷ ଶାଗୁଆ, ଥଣ୍ଟ ଗୋଲାପୀ ଓ ପୁଚ୍ଛ କଳା । ଏମାନେ ଶୁଆଙ୍କଠାରୁ ସାନ, ଲମ୍ବ ଏକ ବିଘତ ମଧ୍ୟରେ । ଲୋକେ ଏହି ପକ୍ଷୀଙ୍କୁ ସଉକରେ ପାଳନ୍ତି ।].
ଲାଲମୋହ(ହୋ)ନ୍
ଲାଲମନ ତୋତା
ଲାଲମୋହ(ହୋ)ନ ତୋତା } —ଅନ୍ୟରୂପ

**ଲାଲ ମେଖ**—ଦେ. ବି.—ଘୋଡ଼ାର ସାଜ ବିଶେଷ—One of the
Lāla mekha fittings of a riding horse.
[ଉ—ସାଜିଲେ ସର୍ବ ସମ୍ଭାର, ଜିନ ଜିନସ ଲାଲମେଖ ଦଉଡ଼ି ଗୁରଜାମା କଢ଼ିଆଲ—ବ୍ରଜନାଥ ବଡ଼ଜେନା ସମର ତରଙ୍ଗ ।]

**ଲାଲ(ଲି)ସ୍(ସି) (ଇତ୍ୟାଦି)**—ବୈଦେ. ବି—ନାଲିସ୍ ଇତ୍ୟାଦି
Lāla(li)s(si) (etc) Nalis etc (See)

**ଲାଳସ**—ସଂ. ବିଣ. ପୁଂ—(ଲାଳସା+ଅ)—୧ । ଲୋଲୁପ—
Lālasa 1. Hankering after (Apte) ୨ । ଅତି
अतिलोभी লালচী ଲୋଭୀ 2. Very covetuous.
[ ଲାଳସୀ—ସ୍ତ୍ରୀ ] ଦେ. ବିଣ—ଲାଳାୟିତ; ଲାଳସା-
ପରାୟଣ—Hankering after. [ ଉ—ବଳାଇ ଚିତ୍ତ ଅନବରତ, ଭଗେ୍ୟ ଗହଣ ତାରକା ମନ୍ତ୍ର, ସୀତା ଶ୍ରୀରାମ ଚରିତ ଗୀତ, କୃତେ ଲାଳସ ଯେ । ଭଞ୍ଜ. ବୈଦେହୀଶବିଳାସ ।] ଦେ.ବି.—ଲୋଭ; ପ୍ରବଳଇଚ୍ଛା—
Avarice; eager desire. [ ଉ—ତୋହର ତ ହୋଇଛି ବାଳକ ବୟସ, ତପସ୍ୟାରେ ଅଛି ତୁ କରିଛୁ
लोभ লালচ ଲାଳସ । କୃଷ୍ଣସିଂହ. ମହାଭାରତ. ଆଦି ।]

**ଲାଳ ସରସର**—ଦେ. ବିଣ.—ଲାଳ ପଚ ପଚ (ଦେଖ)
Lāla sara sara Lāla paṭa paṭa (See)

**ଲାଳସା**—ସଂ. ବି.—[ଲସ୍ ଧାତୁ (ଯଙ ଲୁଗନ୍ତ)+ଭାବ. ଅ+ଆ]—
Lālasā ୧ । ଲୋଭ; ସ୍ପୃହା—1. Hankering; coveting after a thing. ୨ । ଅତ୍ୟଧିକ ଇଚ୍ଛା—
2. Excessive desire. ୩ । ଔତ୍ସୁକ୍ୟ—3. Eagerness. ୪ । କୌଣସି ବସ୍ତୁ ପାଇଁ ପ୍ରାର୍ଥନା—
4. Solicitation; entreaty (Apte) ୫ । ଶୋଚନା; ଅନୁଶୋଚନା—5. Sorrow; regret (Apte). ୬ । ଗର୍ଭିଣୀର ଦୋହଦ; ଗର୍ଭିଣୀର କୌଣସି ବିଶେଷ ଖାଦ୍ୟପ୍ରତି ବାଞ୍ଛା—6. The longing of a pregnant woman after some
लोभी লালচী particular food. ଦେ. ବିଣ. (ପଦ୍ୟ)
ଲୋଭାସକ୍ତ, ଲାଳସାଯୁକ୍ତ—Hankering after a

thing. [ଭ୍ର—ଦେଖିଲେ ଲୋକେ ତାଙ୍କ ହୋଇବେ ଲାଳସା । କୃଷ୍ଣସିଂହ. ମହାଭାରତ. ବନ ।]

ଲାଳସା(ସେ)ଇବା—ଦେ. କ୍ରି—ଲାଳଚଇବା (ଦେଖ)
Lālasā(se)ibā Lālachāibā (See)

ଲାଳସିଆ—ଦେ. ବିଣ. ପୁଂ—ଲାଳସାଯୁକ୍ତ—
Lālasiā लालसी Having a hankering.
[ଲାଳସେଇ—ସ୍ତ୍ରୀ]

ଲାଳସୀ—ଦେ. ବିଣ. ପୁଂ—(ଲାଳସା+ଅସ୍ତ ଅର୍ଥରେ ଇନ୍; ୧ମା.
Lālasi ୧ବ.)—୧ । ଲାଳସିତ—1. Hankering
[ଲାଳସୀନୀ—ସ୍ତ୍ରୀ] after; covetuous for. [ଭ୍ର—ମୁଁ ଗଲେ ମୋ ପ୍ରୀତିରେ ହୋଇଣ ଲାଳସୀ । କୃଷ୍ଣସିଂହ. ମହାଭାରତ. ବନ ।] ୨ । ଇଚ୍ଛୁକ—2. Desirous of. [ଭ୍ର—ଅଶ୍ୱତ୍ଥାମା କୃପ କୃତବର୍ମା ମିଶି, ହୋଇଲେ ଭୂମୁ ରଣରେ ଲାଳସୀ । କୃଷ୍ଣସିଂହ. ମହାଭାରତ. ଶଲ୍ୟ ।]

ଲାଳସୀକ—ସ. ବିଣ—୧। (ଲାଲା+ଇକ, ସ ଆଗମ)—୧। ପିଚ୍ଛିଳ—
Lālasika 1. Slimy. ୨ । ବାଞ୍ଛିତ; ଈପ୍ସିତ—2. Wished for; desired. ସ. ବି—୧ । ଚଟ୍ଣୀ—1. Sauce (Apte). ୨ । ଏବ୍ଣ; ମାଂସର ସୁରୁଆ—2. Gravy (M. W.)

ଲାଲା—ସଂ. ବି—(ଲଲ୍ ଧାତୁ+କର୍ମ. ଅ+ସ୍ତ୍ରୀ. ଆ)—ଲାଳ; ଜିହ୍ୱାରୁ
Lālā କ୍ଷରିତ ପିଚ୍ଛିଳ ତରଳୀୟ ପଦାର୍ଥ—Saliva.

ଲାଲ—ବୈଦେ. ବି (ଫା. ଲାଲ୍=ସୁନ୍ଦର)—୧ । ବିହାର ଓ ଉତ୍ତର-
Lālā ପଶ୍ଚିମ ଦେଶୀୟ କାୟସ୍ଥମାନଙ୍କର ବଂଶୋପାଧି—1. A
लाला title prefixed to the name of Kāyasthas
লালা of Bihar. [ଦ୍ର—ଏହା ନାମ ପୂର୍ବରେ ଲାଗେ । ଯଥା—ଲାଲ ରାମମୋହନ ରାୟ ।] ୨ । ହିନ୍ଦୁସ୍ଥାନ ନାମ ପୂର୍ବରେ ଯୁକ୍ତ ସମ୍ମାନାର୍ହ ଉପାଧି—2. A honorific title prefixed to names. [ଦ୍ର—ବଙ୍ଗଳାରେ ଏହି ଅର୍ଥରେ 'ବାବୁ' ବା 'ଶ୍ରୀଯୁକ୍ତ' ଏବଂ ଓଡ଼ିଆରେ 'ଶ୍ରୀ' ଲେଖାଯାଏ ।] ୩ । (ହିନ୍ଦିରୁ ଅନୁକୃତ) ମୋହରର୍; କିରାନି; ଯେଉଁ ବ୍ୟକ୍ତିର ବ୍ୟବସାୟ ଲେଖାଲେଖି—3. Professional scribe. ୪ । (ହିନ୍ଦିରୁ ଅନୁକୃତ) ପୁଂ—ପ୍ରିୟ ବ୍ୟକ୍ତି ପ୍ରତି ସମ୍ବୋଧନ—4. An address used towards one's dearest person (male).

ଲାଲା କାଇ(ଏ)ଥ—ଦେ. ବି—ବିହାରର କାୟସ୍ଥ ଶ୍ରେଣୀ—
Lālā kāi(e)tha The Kāyasthas of Bihar.
लालाकायस्थ লালাকায়স্থ (ଲାଲା କାୟସ୍ଥ—ଅନ୍ୟରୂପ)

ଲାଲାକ୍ଲିନ୍ନ—ସ. ବିଣ (କର୍ମ୍ମ ତତ୍)—ଲାଳସରସର; ଲାଳହାସ
Lālāklinna କ୍ଲେଦଯୁକ୍ତ—Soiled with saliva; slimy.

ଲାଲାଜୀ ଦେ. ବି (ହିନ୍ଦୀ)—ଭଦ୍ର ଓ ଶିକ୍ଷିତ ବ୍ୟକ୍ତିମାନଙ୍କ ପ୍ରତି
Lālāji ସମ୍ମାନସୂଚକ ସଂବୋଧନ—An honorific term
लालाजी used in addressing educated gentle-
লালাজী [ଲାଲାସାହେବ—ଅନ୍ୟରୂପ] men.

ଲାଲାଟିକ—ସଂ. ବିଣ. ପୁଂ (ଲଲାଟ+ଇକ)—୧ । ଲଲାଟ ସଂବନ୍ଧୀୟ—
Lālātika 1. Relating to the forehead ୨ । ଅଦୃଷ୍ଟ (ଲଲାଟଲିପି—ଋଷ୍ଟି) ବାଦୀ, ଭାଗ୍ୟାପେକ୍ଷୀ—2. Fatalist; depending upon fate. ୩ । ଅଳସ (ବ୍ୟକ୍ତି)—3. Idle (man). ୪ । ଭାଗ୍ୟଲବ୍ଧ—4. Acquired by luck. ବି—ଲଲାଟର ଅଳଂକାର; ମାଙ୍ଗଟୀକା—An ornament for the forehead.

ଲାଲାଟୀ—ସଂ. ବି (ଲଲାଟ+ସ୍ୱାର୍ଥେ. ଈ)—ଲଲାଟ; କପାଳ
Lālāti The forehead.

ଲାଲା ବାବୁ—ଦେ. ବି (ନାମ)—୧ । ବୃନ୍ଦାବନ ଆଦି ଅଞ୍ଚଳରେ ସମ୍ଭ୍ରାନ୍ତ
Lālā bābu କାୟସ୍ଥମାନଙ୍କ ଡାକ ନାମ—1. Name by
लालाबाबू which respectable Kayasthas of
লালাবাবু Brundābana called. ୨ । ବୃନ୍ଦାବନାଦି ଅଞ୍ଚଳରେ ପ୍ରିୟବ୍ୟକ୍ତିଙ୍କ ପ୍ରତି ସଂବୋଧନ—2. An address directed to dear persons in Brundāban etc. ୩ । କଲିକତା ପାଇକପଡ଼ା ଷ୍ଟେଟର ସ୍ୱର୍ଗୀୟ ପ୍ରସିଦ୍ଧ ଜମିଦାର କୃଷ୍ଣଚନ୍ଦ୍ର ସିଂହ—3. The late Krushna Chandra Sinha, Zamindar of Paikpara estate of Calcutta. [ଦ୍ର—ଏ ଦେବାନ ଗଙ୍ଗା ଗୋବିନ୍ଦଙ୍କ ପୁତ୍ର । ଏହାଙ୍କର ପ୍ରଥମ ଯୌବନରେ ପିତାଙ୍କ ସହିତ ମନୋମାଳିନ୍ୟ ହେବାରୁ ଏ ପ୍ରଥମେ ଇଂରାଜ ଗଭର୍ଣ୍ଣମେଣ୍ଟଙ୍କ ଅଧୀନ ବର୍ତ୍ତମାନ ଜିଲ୍ଲାରେ ସିରସ୍ତାଦାର ହୋଇଥିଲେ । ପରେ ଇଂରାଜମାନେ ଓଡ଼ିଶାକୁ ଆସିବା ସମୟରେ ଏ ୧୮୦୩ ସାଲରେ ଇଂରାଜଙ୍କ ଅଧୀନ ମୋଗଲବନ୍ଦୀ ମାହାଲର ଦେବାନ ପଦରେ ନିଯୁକ୍ତ ହେଲେ ଏବଂ ପୁରୀ ଜିଲ୍ଲାର ଅନେକଗୁଡ଼ିଏ ଭୂସମ୍ପତ୍ତି ସରକାରଙ୍କ ନିଲାମ ନିଲାମରେ ଧରିଲେ । ସେ ସବୁ ସମ୍ପତ୍ତି ବର୍ତ୍ତମାନ ପ୍ରଜାମାନଙ୍କ ରହାଙ୍ଗରେ ଲାଲା ବାବୁଙ୍କ ଜମିଦାରୀ ବୋଲି କଥିତ । ତତ୍ପରେ ସେ ସରକାରୀ କାର୍ଯ୍ୟ ଛାଡ଼ି ଘରକୁ ଗଲେ । ଦିନେ ଗୋଟିଏ ଧୋବଣୀ ତା ବାପକୁ "ବାବା ! ବାସନାୟ (କଦଳୀ ବାସ୍ନାଚେର) ଆଗୁନ୍ ଦାଓ, ବେଲା ଯେ ଗଲେ"—ଏହି କଥା କହୁଥିବାର ଶୁଣି ବାକ୍ୟର ଅର୍ଥ ସଂସାର ବାସନା ବୋଲି ଗ୍ରହଣ କରି ଏହାଙ୍କ ମନରେ ବୈରାଗ୍ୟର ଉଦୟ ହେଲା । ସେତେବେଳେ ଏହାଙ୍କ ବୟସ ୩୦ ବର୍ଷ । ଏ ସଂସାର ତ୍ୟାଗ କରି ମଥୁରାବାସୀ ହେଲେ ଏବଂ ବୃନ୍ଦାବନରେ ୨୫ ଲକ୍ଷ ଟଙ୍କା ବ୍ୟୟ କରି "କୃଷ୍ଣଚନ୍ଦ୍ର ମା" ନାମକ ବିଗ୍ରହ ସ୍ଥାପନ ପୂର୍ବକ ଗୋଟିଏ ଚତୁଷ୍କୋଣ ମନ୍ଦିର ନିର୍ମାଣ କରାଇଲେ । ସେ ଏହି ବିଗ୍ରହଙ୍କର ସେବାପାଇଁ ବାର୍ଷିକ ବାଇଶି ହଜାର ଟଙ୍କା ଆୟର ଜମିଦାରୀ ଓ ଗୋଟିଏ ଅନ୍ନସତ୍ର ଖଞ୍ଜିଲେ । ଏ ୪୦ ବର୍ଷ ବୟସରେ ବୈରାଗ୍ୟ ଅବଲମ୍ବନ କରି ବୃନ୍ଦାବନରେ ସାଧୁଙ୍କର ଭିକ୍ଷା କରି ଜୀବନଯାତ୍ରା ନିର୍ବାହ କଲେ । ୪୨ ବର୍ଷ ବୟସରେ ଦିନେ ଏ ବାଟରେ ଯାଉଥିବା ବେଳେ ଏହାଙ୍କ ନିକଟକୁ ନମସ୍କାର

କରିବାକୁ ଗୋଆଲିୟରର ମହାରାଣୀଙ୍କ ଆସିବା ସମୟରେ ଏ ବାଟରୁ ଅଡ଼େଇଗଲେ । ସେଠାକୁ ଫେଲେ ପାର୍ଶ୍ୱରେ ଅଶ୍ୱାରୋହୀମାନଙ୍କ ମଧ୍ୟରୁ ଜଣକର ଅଶ୍ୱର ଖୁର ଏହାଙ୍କ ଶରୀରରେ ବାଜିବାରୁ ସେହି ଆଘାତରେ ଏ ଦେହତ୍ୟାଗ କଲେ । ତାଙ୍କ ସ୍ତ୍ରୀ ପାଇକପଡ଼ାର ପ୍ରସିଦ୍ଧା ରାଣୀ କାତ୍ୟାୟନୀ । ଏହାଙ୍କୁ ବୃନ୍ଦାବନ ଅଞ୍ଚଳରେ ଲୋକେ ଲାଲା ବାବୁ ନାମରେ ଡାକୁଥିଲେ । ସୁବଳଚନ୍ଦ୍ର]

ଲାଲା ବିଷ—ସଂ. ବି ( ବହୁବ୍ରୀହି; ଲାଳାରେ ବିଷ ଯାହାର )—ମାକଡ଼ସା
Lālā bisha ପ୍ରଭୃତି ଜୀବ—Spider etc. (whose
(ଲାଳାସ୍ରାବ—ଅନ୍ୟରୂପ) saliva is poisonous).

ଲାଳାୟମାନ—ସଂ. ବିଣ. ପୁଂ (ଲାଳାଶବ୍ଦରୁ ଲାଳାୟ ନାମ ଧାତୁ+କର୍ତ୍ତୃ.
Lālāyamāna ଅନ)—ଯାହାର ପାଟିରୁ ବା ଯହିଁରୁ ଲାଳ
( ଲାଳାୟମାନା—ସ୍ତ୍ରୀ ) ବୋହୁଥାଏ—Emitting slime; salivating; slobbering, drivelling.

ଲାଳାୟିତ—ସଂ. ବିଣ. ପୁଂ ( ଲାଳାୟ ନାମ ଧାତୁ+କର୍ତ୍ତୃ. ତ )—୧ ।
Lālāyita ଲାଳାଯୁକ୍ତ—1. Slimy ୨ । ଯାହାଠାରୁ ଲାଳ
(ଲାଳାୟିତା—ସ୍ତ୍ରୀ) ବୋହୁଥାଏ—2. Emitting slime; salivating. [ ଭୂ—ବହୁଲେ ଅନନ୍ତ, ଅନନ୍ତ ଲପନ, କଞ୍ଚି ଅଣନ୍ତେ ଲାଳାୟିତ । ଭଞ୍ଜ. ବୈଦେହୀଶ-ବିଳାସ । ] ୩ । ଲାଳସୀ; କୌଣସି ବସ୍ତୁ ପାଇବା ନିମନ୍ତେ ଅତ୍ୟଧିକ ଉତ୍ସୁକ—3. Eagerly hankering after a thing.

ଲାଲା ଲାଜପତ ରାଏ(ୟ)—ଦେ. ବି ( ନାମ )—ଭାରତର ଆଧୁନିକ
Lālā lājapat rāe(ya) ଯୁଗର ସ୍ୱର୍ଗୀୟ ପ୍ରସିଦ୍ଧ ରାଜନୀତିଜ୍ଞ
लाला लाजपत राय ବୀର—The late famous politician
লালা লাজপত রায় of modern India. [ ବି— ଏହାଙ୍କର ଜନ୍ମ ଖ୍ରୀ ୧୮୬୫ ଓ ମୃତ୍ୟୁ ୧୭।୧୧।୧୯୨୮ ରେ । ଏ ପଞ୍ଜାବର ଲୁଧିଆନାରେ ଜନ୍ମଗ୍ରହଣ କରିଥିଲେ; ଜାତିରେ ଏ ଅଗରୱାଲା ବୈଶ୍ୟ । ଏ ଭାରତର ଜଣେ ପ୍ରଧାନ ଦେଶସେବକ, ଜାତୀୟ କର୍ମୀ ଓ ନିର୍ଭୀକ ବୀର । ଏ ଦେଶହିତକର ବହୁ ପୁସ୍ତକ ପ୍ରଣୟନ କରିଥିଲେ ଏବଂ ବହୁ ବାର ରାଜନୀତିକ ଅପରାଧରେ ଦଣ୍ଡ ମଧ୍ୟ ଭୋଗ କରିଥିଲେ । ଏ ମହାତ୍ମା ଗାନ୍ଧିଙ୍କର ଅଦମ୍ୟ ସହକର୍ମୀ ଥିଲେ । ]

ଲାଲାଳୁ—ସଂ. ବିଣ. ( ଲାଳା+ଆଳୁ )—ଯାହାଠାରୁ ଲାଳ ବହୁଥାଏ—
Lālālu Drivelling ( M; W. ).

ଲାଲି—ବୈଦେ ବି ଓ ବିଣ—ନାଲି ( ଦେଖ )
Lāli लाल লাল Nāli ( See )
(ଲାଲିଆ—ଅନ୍ୟରୂପ)

ଲାଳି—ଦେ. (ପ୍ରାଚୀନ ପଦ୍ୟ ) ବି.—(ସଂ. ଲାଲସା)—ଲାଳସା—
Lāli Hankering. [ଭୂ—ଶୁଣତ ହେବ ପରଶାତ୍ମା ପ୍ରୀତି ।
लालचा লালচ ଏମନ୍ତ ମତରେ ଲାଳି ବୋଲନ୍ତି । ପ୍ରାଚୀ.ଗୀତା]

ଲାଲିକ—ସଂ. ବି (ଲାଳା+ଇକ)—ମହିଷ—Buffalo.
Lālika

ଲାଲିକା—ସଂ. ବି. (ଲଲ୍ ଧାତୁ+କରଣ ଅକ+ସ୍ତ୍ରୀ. ଆ )—୧ ।
Lālikā ଆମୋଦଜନକ ଉତ୍ତର; ରହସ୍ୟ ପୂର୍ଣ୍ଣ ଉତ୍ତର—1. A witty or amusing reply. ୨ । ଖୋସାମୋଦ ଉତ୍ତର—2. A jestful reply; a jesting reply (Apte). ୩ । ଦୁଇ ଅର୍ଥଯୁକ୍ତ ରହସ୍ୟ—3, A riddle with two meanings.

ଲାଲିଚ (ଚି, ସ, ସି)—ବୈଦେ. ବି—ନାଲିସ୍ (ଦେଖ)
Lālich (chi, s, si) Nālis (See)
ଦେ. ବି.—ଲାଲସା (ଦେଖ)—Lalasa (See),
लालसा লালচ

ଲାଲି(ଲି,ଲ)ଚିଆ—ଦେ. ବିଣ.—(ସଂ. ଲାଲସୀ) ଅତି ଲାଲସାଯୁକ୍ତ—
Lāli(li,l)chiā लालची লালচী Very desirous;

ଲାଲିତ—ଦେ. ବି—ଧିକ୍କାର—Abuse; reproch.
Lālita धिक्कार ফটকারা

ଲାଳିତ—ସଂ.ବିଣ.ପୁଂ.(ଲାଡ଼ଧାତୁ=ସ୍ନେହରେ ପାଳିବା+କର୍ମ. ତ)—
Lālita ୧ । ଯତ୍ନରେ ପ୍ରତିପାଳିତ—1 Carefully nouri-
(ଲାଳିତା—ସ୍ତ୍ରୀ) shed; brought up with care, ୨ । ପ୍ରଲୋଭିତ କରି ନିଆଯାଇଥିବା—2. Seduced (Apte). ୩ । ଅତ୍ୟନ୍ତ ଗେହ୍ଲା; ଅତ୍ୟନ୍ତ ସ୍ନେହପାଳିତ—3. Excessively or unduly fondled; caressed. ସଂ. ବି (+ଭାବ. ତ)—୧ । ପ୍ରେମ—1. Love. (Apte) ୨ । ସୁଖ; ଆନନ୍ଦ—2. Pleasure; joy. (Apte)

ଲାଳିତକ—ସଂ. ବି. ପୁଂ (ଲାଳିତ+କ)—ଗେହ୍ଲାପୁଅ—A fond-
Lālitaka ling; a darling; a little favourite; a
(ଲାଳିତିକା—ସ୍ତ୍ରୀ) pet. (Apte)

ଲାଳିତ ପାଳିତ—ସଂ. ବିଣ. ପୁଂ (ସହଚର) ବାଲ୍ୟକାଳରୁ ଯତ୍ନ ସହିତ
Lālita pālita ବର୍ଦ୍ଧିତ—Brought up with care
[ଲାଳିତ (ତା) ପାଳିତା—ସ୍ତ୍ରୀ] from childhood.

ଲାଳିତ୍ୟ—ସଂ. ବି (ଲଳିତ+ଭାବାର୍ଥେ. ଯ)—୧ । ଲାବଣ୍ୟ;
Lālitya ସୌନ୍ଦର୍ଯ୍ୟ—1. Beauty, grace. ୨ । କୋମଳତା—2. Softness. ୩ । ମାଧୁର୍ଯ୍ୟ—3. Sweetness. ୪ । ରମଣୀୟତା; କମନୀୟତା; ମନୋହାରିତ୍ୱ—4. Pleasantness; charm; loveliness.

ଲାଳିନୀ ସଂ. ବି. ସ୍ତ୍ରୀ (ଲାଳିନ୍+ସ୍ତ୍ରୀ. ଈ)—ଅସଚ୍ଚରିତ୍ରା ସ୍ତ୍ରୀ—
Lālini A wanton woman. (Apte)

ଲାଳୀ (ଳୀ)—ସଂ. ବି. ପୁଂ (ଲାଡ଼ ଧାତୁ+କର୍ତ୍ତୃ. ଇନ୍+୧ମା. ଏକ)—
Lāli(li) ୧ । ଯେ ପ୍ରଲୋଭିତ କରି ଘରୁ ଲୋକଙ୍କୁ ନେଇଯାଏ—
(ଲାଳିନୀ—ସ୍ତ୍ରୀ) 1. A seducer. (Apte). ୨। ଭୂତ ପ୍ରେତାଦିଙ୍କ ଆବେଶ—2. The being possessed by a demon. (M. W)

**ଲାଲିଳ**—ସଂ. ବ [ଲଲ୍ ଧାତୁ=(ଶିଖା)ଲହଲହ କରିବା + କର୍ତ୍ତୃ. ଇଳ]
Lālila —ଅଗ୍ନି (ବୃ. ଶ)—Fire. (M, W)

**ଲାଲୁ**—ଦେ ବ (ନାମ)—୧ । ଲାଲବିହାରୀର ଡାକ ନାମ—
Lālu 1. Name for calling Lālabihari. ୨ । ରାଜ
[ଲାଲୁଅ—ଅକାରବର୍ଥକ] ପରିବାରର ଲାଲ୍ ସାହେବମାନଙ୍କ ଡାକ
ନାମ—2. A name for calling rajkumars
who are styled as Lal Sahebs.

**ଲାଲୁଆ**—ଦେ. ବଣ. ପୁଂ (ସଂ. ଲାଲାମୟ)—ନାଲୁଅ (ଦେଖ)
Lālua Nālua, (See)
[ଲାଲେ(ଲୋ)ଇ—ସ୍ୱାର୍ଥ] लालामय, लेसलेस जलपत, जसिका

**ଲାଲୁକ**—ଦେ. ବ ପୁରୁଣା ଓ ଫଟଲା ଧାତୁବାସନ ଆଦି ଠସକା ଦ୍ରବ୍ୟ—
Lāluka Brittle things like old metal utensils.
लकलके नाजुक, लचलचा

**ଲାଲୁ(ଲୂ)କା**—ସଂ. ବ—ଏକ ପ୍ରକାର ହାର—
Lālu(lu)kā A kind of necklace, (M, W)

**ଲାଳେଇବା**—ଦେ. କି (ସଂ. ଲାଳାୟ ଧାତୁ)—୧ । (କୌଣସି ବସ୍ତୁ)
Lāleibā ଦେହରୁ ଲାଳ ନିର୍ଗତ କରିବା—1, To emit
लालायुक्त होना slime; to become slimy. ୨ । (ସଂ.
लारसेलतपत होना ଲାଳାୟିତ) ଲାଳାମୟ ହେବା—3. To
लालायित होना be slimy. [ ଉ—ଅନ୍ନ ଆଦି ବାସି
ललचाना ହୋଇଗଲେ ତାହା ଲାଳେଇଯାଏ ।] ୩ । ଲାଳାୟିତ
ଚାଟା ହେବା—3. To hanker after a thing. ୪ । ଜିଭ
चाटना ଦ୍ୱାରା ଚଞ୍ଚଳ ଶୁଷ୍କ ଖାଇବା—4. To lick up any
लालफेना thing. ୫ । ମୁହଁରୁ ଲାଳ ବୁହାଇବା—5, To
लार बहाना slaver; to drivel. [ଦ୍ର—ଏ ଶବ୍ଦ ଜିଭ,
ପାଟି, ମୁହଁ, ଭୁଣ୍ଡ ଆଦି ଶବ୍ଦ ପରେ ବ୍ୟବହୃତ ହୁଏ ।]

**ଲାଲେ ଲାଲ**—ବୈଦେ. ବଣ (ଫା.)—୧ । ସମ୍ପୂର୍ଣ୍ଣରୂପେ ରକ୍ତ ବର୍ଣ୍ଣ;
Lāle lāl ସର୍ବାଙ୍ଗ ରକ୍ତରଞ୍ଜିତ—1, Coloured red
लालेलाल throughout. ୨ । ଲାଲ୍ ଗୁଲାଲ୍ ( ଦେଖ )—
लालेलाल 2, Lāl-gulāl, (See)

**ଲାଶ୍**—ବୈଦେ. ବ (ଦରବାରୀ ଭାଷା, ତୁର୍କୀ ଶବ୍ଦ)—୧ । ମୃତ ଦେହ;
Lās ଶବ; ମୁର୍ଦ୍ଦାର—1, Dead body; corpse. ୨ ।
लाश ଶରୀର; ଦେହ—2, The body. ୩ । (ଇଂ. ଲାଷ୍ଟ)
लाश ଜୋତା ତିଆର କରିବା ପାଇଁ ମୋଚିମାନେ କାଠର ଯେଉଁ
लास फर्मା ବ୍ୟବହାର କରନ୍ତି—3, Shoe-maker's last.
जुतेकाफर्मा

**ଲାଶ୍ ଉଠା(ଠେ)ଇବା**—ଦେ. କି—ଶବକୁ ସ୍ଥାନାନ୍ତରିତ କରିବା—
Lās uthā(the)ibā To remove a corpse or dead
लाशउठान लाशउठाना body from a place,

**ଲାଶ୍ କଟା**—ଦେ. ବ.—ମୃତ୍ୟୁର କାରଣାଦି ନିର୍ଣ୍ଣୟାର୍ଥ ପରୀକ୍ଷା କରିବା-
Lās katā ପାଇଁ ଶବ ବ୍ୟବଚ୍ଛେଦ—Dissection,
लाश्काटा लाश्का चीरफाड

**ଲାଶ୍ କାଟିବା**—ଦେ. କି—ଶବ ବ୍ୟବଚ୍ଛେଦ କରିବା—To dis-
Lās katibā लाश्काटा sect a dead body.
लाश काटना

**ଲାଶ୍ କାଢ଼ିବା**—ଦେ. କି.—୧ । ଶବକୁ ପୋତିବା ବା ପୋଡ଼ିବାପାଇଁ
Lās kardhibā ସ୍ଥାନାନ୍ତରକୁ ନେବା—1 To remove
लाश बाहिरकरा लाश काढ़ना a dead body for in-
[ଲାଶ କଢ଼ାଯି(ହେ)ବା—କର୍ମବାଚ୍ୟରୂପ] terment or cre-
mation. ୨ । (ବ୍ୟଙ୍ଗ୍ୟ) ଅତଣାର ପୃଥୁଳ ଶରୀର
भूड़ीबेबकबेबसा लाशलगाना ବାହାର କରିବା—2. To
exhibit one's fat body.

**ଲାଶ୍ ଖାନା**—ବୈଦେ. ବ. ( ତୁର୍କୀ+ଫା. )—ଡାକ୍ତରଖାନାର ଯେଉଁ
Lās khānā ପ୍ରକୋଷ୍ଠରେ ଶବ ବ୍ୟବଚ୍ଛେଦ ଓ ପରୀକ୍ଷା କରାଯାଏ;
लाश् खाना लाशखाना ମୁର୍ଦ୍ଦାରଖାନା—
(ଲାଶ୍ ଘର—ଅନ୍ୟରୂପ) Dissection room.

**ଲାଶ୍ ଚ(ଚା)ଲାଣ(ଣି)**—ଦେ. ବ. (ଦରବାରୀ ଶବ୍ଦ)—( ତୁର୍କୀ.ଲାସ୍ +
Lās cha(chā)lān(ni) ସଂ. ଚଳନ )—ଅପମୃତ୍ୟୁଘଟିତ
लाशचालान (नि) लाशचालान ଅପମୃତ୍ୟୁ ଦ୍ୱାରା ମୃତ ବ୍ୟକ୍ତିର ଶବ-
ପରୀକ୍ଷାର୍ଥ ପୁଲିସ୍ ଦ୍ୱାରା ଉକ୍ତ ଶବ ଡାକ୍ତରଖାନାକୁ ପ୍ରେରଣ
କରିବା—Sending up by the Police to a
hospital for examination of the dead
body of a person in respect whom an
offence seems to have been committed.

**ଲାଶ୍ ଚ(ଚା)ଲାଣ(ଣି) ଫର୍ଦ୍ଦ(ର୍ଦ୍ଦ)**—ଦେ. ବ (ଦରବାରୀ ଭାଷା)—
Lās cha(chā)lān(ni) pharda(rdda) ଅପମୃତ୍ୟୁଘଟିତ
लाशचालानि फर्द लाशचालानी फर्द ଶବକୁ ପୁଲିସ ଡାକ୍ତର-
ଖାନାକୁ ପଠାଇବା ବେଳେ ଶବବାହକଙ୍କ ହସ୍ତରେ ଶବର
ଲକ୍ଷଣମାନ ବର୍ଣ୍ଣନା ପୂର୍ବକ ଯେଉଁ କାଗଜ ପଠାନ୍ତି—
The descriptive report or paper accom-
panying a dead body which is sent up
by the Police for post mortem exa-
mination

**ଲାଶ୍ ଚେହେରା**—ବୈଦେ. ବ. (ଦରବାରୀ ଭାଷା)—(ତୁର୍କୀ.ଲାସ +ଫା,
Lās cheherā ଚେହରା)—୧ । ଶବରେ ପରିଲକ୍ଷିତ ଲକ୍ଷଣ ଓ
लास चेहारा ଚିହ୍ନମାନ; ସୁରତ୍ ହାଲ୍—1. Marks and
लाशकी सुरतहाल, लाश चेहरा signs observed on a
dead body; appearance of a dead body.
୨ । ଶବରେ ପରିଲକ୍ଷିତ ଚିହ୍ନମାନ ପୁଲିସ୍ ଯେଉଁ
(ଲାଶ୍ ଚେହେରା ଫର୍ଦ୍ଦ-୨ୟ ଅର୍ଥର ଅନ୍ୟରୂପ) କାଗଜରେ ଲେଖିଥାନ୍ତି—
लास चेहारा 2. Inquest report of the Police.
लाशकीतहकीकातकी रिपोर्ट

**ଲାଶ୍ ଜଳା(ଳେ)ଇବା**—ଦେ. କି. (ଦରବାରୀ ଭାଷା )—ଶବକୁ
लाशजालान् ପୋଡ଼ିଦେବା—To burn a dead body.
लाशजलाना [ଲାଶ୍ ଜଳା(ଳେ)ଇ ଦେବା—ଅନ୍ୟରୂପ ]

**ଲାଶ୍ ତଦାରକ୍ (ଖ୍)**—ବୈଦେ. ବ. (ଦରବାରୀ ଭାଷା) (ତୁର୍କୀ.ଲାସ୍ +
Lās tedārak(kh) ଫା.ତଦାରୁକ୍ )—୧ । ଶବଦେହ ପରୀକ୍ଷା

ଲାଶଓଦାରିକ ଲାଶତଦାହକ 1. Inquest.—୨ । ଶବ ଦେହର ଲକ୍ଷଣମାନ ପରୀକ୍ଷା କରିବା—2. Holding of an inquest.

ଲାଶ୍ ବୋହିବା—ଦେ. କ୍ରି—୧ । (ଲୋକର) ମୋଟା ସ୍ଥୂଳ ଶରୀର
Lāś bohibā ଧାରଣ କରିବା—1. To move about
ଲାଶବହା ଲାଶବହନ କରনা, ଲাশঢোনা with a fat body.
୨ । ମୃତ ବ୍ୟକ୍ତିର ଶବକୁ ଯାନାଦିରେ ସ୍ଥାନାନ୍ତରକୁ ନେବା—2. To carry a corpse away from a place in a conveyance.

ଲାଶ୍ଭାରୀ—ଦେ. ବଣ—୧ । ମୋଟା ଓ ଭାରୀ ଦେହ ବଶିଷ୍ଟ (ବ୍ୟକ୍ତି)—
Lāś-bhārī 1. (A person) Having a fat and
লাসভারী লাশভারী heavy body. ୨ । ସ୍ଥୂଳ—
[ଲାଶ୍ ହାଲ୍(ଲୁ)କା—ବିପରୀତ] 2. Fat; corpulent.

ଲାଶ୍ ମ(ମା)ଇ(ଏ)ନା—ବୈଦେ. ବି. (ଉଭୟଅ ଭାଷା) (ତୁର୍କୀ.ଲାସ୍+ଅ ମାଅଏନାହ୍)—୧ । ଲାଶ୍ ତଦାରଖ—
Lāś ma(mā)i(e)na
লাশমায়না লাশমাযনাহ 1 Inquest. ୨ । ଡାକ୍ତରଙ୍କ ଦ୍ୱାରା ଶବଦେହର ପରୀକ୍ଷା—2. Medical examination of a dead body; postmortem examination ୩ । ଶବ ବ୍ୟବଚ୍ଛେଦ ପୂର୍ବକ ପରୀକ୍ଷା—3 Examination of a dead body after dissection.

ଲାଶ୍ ହାଲ୍(ଲୁ)କା—ବୈଦେ. ବଣ (ତୁର୍କୀ ଲାସ୍+ଫା. ହଲ୍କା)—କ୍ଷୀଣ-
Lāś hāl(lu)kā ବା କାୟ ଅଳ୍ପ ଓଜନ ଯୁକ୍ତ ଶରୀର ବଶିଷ୍ଟ
লাসপাতলা (ବ୍ୟକ୍ତି)—(A person) Having a
লাশহল্কা light body.

ଲାଷୁକ—ସ ବଣ. ପୁଂ (ଲଷ୍ ଧାତୁ=ଇଚ୍ଛା କରିବା+କର୍ତ୍ତୃ. ଉକ)—
Lāshuka ଲୋଭୀ—Covetuous (M. W.).
(ଲାଷୁକା—ସ୍ତ୍ରୀ) ଉଦରଂଭରୀ—Greedy (M. W.).

ଲାଷ୍ଟ—ବୈଦେ. ବଣ (ଇଂ. ଲାଷ୍ଟ)—ଶେଷ ସ୍ଥାନୀୟ; ନିମ୍ନତମ—
Lāsht Last; lowest. [ଦ୍ର—ଏହି 'ଲାଷ୍ଟ' ଶବ୍ଦ ସଙ୍ଗେ
লাষ্ট ଅନେକ ଇଂରେଜୀ ଓ ଦେଶୀୟ ଶବ୍ଦ ଯୁକ୍ତ ହୋଇ ଓଡ଼ିଆ
लास्ट ଭାଷାରେ ବ୍ୟବହୃତ ହୁଏ । ଯଥା—ଲାଷ୍ଟ ଧିଲା,ଲାଷ୍ଟକ୍ଲାସ୍, ଲାଷ୍ଟ୍ ଟିଚର୍ ଇତ୍ୟାଦି ।] ବୈଦେ. ବି (ଇଂ) ଲାଶ୍ ୩ (ଦେଖ) Laś 3 (See)

ଲାଷ୍ଟ କ୍ଲାସ୍—ବୈଦେ. ବି (ଇଂ. ଲାଷ୍ଟ କ୍ଲାସ୍)—ବିଦ୍ୟାଳୟର ନିମ୍ନତମ
Lāsht klās ଶ୍ରେଣୀ—Last class of a school.
লাষ্টক্লাস লাষ্টক্লাস (ଲାଷ୍ଟ କଲାସ୍—ଗ୍ରାମ୍ୟରୂପ)
[ଲାଷ୍ଟ ଫ(ଫା)ରମ୍, ଲାଷ୍ଟ ଫ(ଫା)ର୍ମ—ଗଞ୍ଜାମ—ଅନ୍ୟରୂପ]

ଲାଷ୍ଟ ଟିଚ(ଚ୍ଚ)ର୍—ବୈଦେ. ବି (ଇଂ. ଲାଷ୍ଟ ଟିଚର୍)—ବିଦ୍ୟାଳୟର
Lāsht ticha(chā)r ନିମ୍ନତମ ଶ୍ରେଣୀର ଶିକ୍ଷକ; ବିଦ୍ୟାଳୟର
লাষ্টটিচার ସବୁଠାରୁ ଅଳ୍ପ ବେତନ ପ୍ରାପ୍ତ ବା ନିମ୍ନତମ ଶିକ୍ଷକ
लास्टटिचर —Last teacher of a school.
(ଲାଷ୍ଟ ମାଷ୍ଟର୍—ଅନ୍ୟରୂପ)

ଲାସ—ସ. ବି (ଲସ୍ ଧାତୁ=ନୃତ୍ୟ କରିବା+ଭାବ. ଅ)—୧ ।
Lāsa ନୃତ୍ୟ; ନାଚ; କ୍ରୀଡ଼ା—1. Dancing, sporting (M. W.). ୨ । ସ୍ତ୍ରୀ ଲୋକଙ୍କର ନୃତ୍ୟ—2. A dancing of females; dancing as practised by women. [ଦ୍ର—ପୁରୁଷଙ୍କର ନୃତ୍ୟକୁ 'ତାଣ୍ଡବ' ବୋଲାଏ ।] ୩ । ବିଳାସ; ଛଳ—3. Sportiveness; dalliance. ୪ । ଅଙ୍ଗ-ପ୍ରତ୍ୟଙ୍ଗର ନାନାପ୍ରକାର ଲକ୍ଷଣ-ବ୍ୟଞ୍ଜକ ଭଙ୍ଗୀ—4. Various deportments or postures of the limbs denoting various intentions. ୫ । ଡିଆଁ; ଡେଇଁବା—5. Jumping (M. W.); skipping about (Apte). ୬ । (...+ କରଣ. ଅ)—ସୁପ୍; ଝୋଳୁଅ; ଯୂଷ—6. Soup; broth (Apte). ୭ । ଲାଳ—7. Saliva (M. W.).

ଲାସକ—ସ. ବି. ପୁଂ (ଲସ୍ ଧାତୁ+କର୍ତ୍ତୃ. ଅକ)—୧ । ନର୍ତ୍ତକ;
Lāsaka ନାଚୁଆ—1. A male dancer. ୨ ।
(ଲାସିକା—ସ୍ତ୍ରୀ) ଅଭିନେତା; ନଟ—2. An actor. ୩ ।
ମୟୂର—3. Peacock. ସ. ବଣ. ପୁଂ—୧ । ନୃତ୍ୟକାରୀ—1. Dancing (M. W.). ୨ । କ୍ରୀଡ଼ାକାରୀ—2. Gambling; sporting (M. W.). ୩ । ଦୀପ୍ତିକାରକ (ହ. ଶ.). 3. Dazzling.

ଲାସକୀ—ସ. ବି (ଲାସକ+ଈ)—୧ । ନର୍ତ୍ତକୀ—1. A dancing
Lāsakī girl (M. W.) ୨ । ଚନ୍ଦ୍ରଶାଳା—2. A turret; room on the top of a building (M. W.).

ଲାସନ—ସ. ବଣ. ପୁଂ (ଲସ୍ ଧାତୁ+କର୍ତ୍ତୃ. ଅନ)—ଇତସ୍ତତଃ
Lāsana ଚଳୁଥିବା—Moving hither and thither, (M. W.), ସ. ବି. ଗମନ; ଚଳନ—Movement.

ଲାସ ବେଶ—ସ. ବି (ମ. ପ. ଲୋ.)—୧ । ନାଚୁଆର ବେଶ ବା
Lāsa beśa ସାଜସଜ୍ଜା—1. The accoutrements or toilet of a dancer. ୨ । ବିଳାସବେଶ; ରସିକ ରସିକାଙ୍କର ସାଜସଜ୍ଜା—2. Toilet of a gallant or beau.

ଲାସା—ଦେ. ବି (ସ. ରସ; ଲାସ=ସୁପ୍)—୧ । ଚିଟକା ଚୂନର
Lasa ଅଠାଳିଆ ଅବସ୍ଥା; ଚିଟ; ଲାହା—1 Clammi-
লাসা लासा ness (as of mortar or lime)
[ଦ୍ର—ନୂଆ ଚୂନରେ ଲାସା ଥାଏ; ବହୁ କାଳ ପବନ ବାଜିଗଲେ ସେ ଚୂନରୁ ଲାସା ମରିଯାଏ, ଅର୍ଥାତ୍ ଚିଟ ଛାଡ଼ିଯାଏ । ଏହି ଲାସା ମରି ଯାଇଥିବା ଚୂନ ଇଟା ଆଦିକୁ ପରସ୍ପର ସହିତ ଦୃଢ଼ଭାବରେ ବାନ୍ଧି ପାରେନାହିଁ ।]
୨ । ବିରି ବଟା—2. Biri paste. ୩ । ଭୂମିରେ

ଶସ୍ୟ ଉତ୍ପାଦକ ସାର ବସ୍ତୁ ବା ରସ—3. The productive juice which makes lands productive. ୪ । ରସ—4. Juice. ୫ । ସାର—5. Essence. ୬ । ଅଠା—6 Gum; birdlime. ଦେଶଜ. ବି—ତିବ୍ବତର ରାଜଧାନୀ—Lhasa; capital of Tibet.

**ଲସି**—ଦେ. ବି—ନାସି (ଦେଖ)
Lāsi Nāsi (See)

**ଲସିକ**—ସଂ. ବି. ପୁଂ ( ଲସ+ଇକ )—୧ । ନର୍ତ୍ତକ; ନାଚୁଆ—
Lāsika 1. Dancer. ୨ । ନଟ—2. An actor.
[ ଲସିକା(କୀ)—ସ୍ତ୍ରୀ ] ସଂ. ବିଣ. ପୁଂ—ନୃତ୍ୟକାରୀ—Dancing (M. W.)

**ଲସିକା**—ସଂ. ବି (ଲସ ଧାତୁ+କର୍ତ୍ତୃ ଅକ+ଆ)—୧ । ନର୍ତ୍ତକୀ—
Lāsikā 1. A female dancer. ୨ । ବେଶ୍ୟା—2. A prostitute (Apte). ୩ । ଅସତୀ ସ୍ତ୍ରୀ—3. An unchaste women (Apte). ୪ । (+ଭାବ ଅକ+ଆ)—ଏକପ୍ରକାର ନାଟକାଭିନୟ—4. A kind of dramatic performance (Apte).

**ଲସିଙ୍ଗ୍**—ବୈଦେ. ବି (ଇଂ)—ଜାହାଜ ବାନ୍ଧିବା ମୋଟ ଦଉଡ଼ି—
Lasing Lashing; stout rope for a ship.
ଲାସିଙ୍ଗ ଲାସନ

**ଲସିବା**—ଦେ. କ୍ରି—ଉପାଡ଼ି ପକାଇବା—To uproot. [ ଉ—ଉପଡାନ ଉଖାଡ଼ନା ପୁରୁଷ ଉତ୍ତର-ତରଙ୍ଗିଣୀ ସବୁ ଗିର ପ୍ରେମ-ପଲ୍ଲଶୀ ଲସିଲ୍ଲ କଲ୍ଲୋଳେ ଦୁଇ ତୀର ଅନନ୍ତଙ୍କ ଭକ୍ତ ପ୍ରହ୍ଲାଦ । ]

**ଲସୀ**—ସଂ. ବିଣ. ପୁଂ (ଲସ୍ ଧାତୁ+କର୍ତ୍ତୃ ଇନ୍)—୧ । ନୃତ୍ୟକାରୀ—
Lāsi 1. Dancing (M. W.) ୨ । ଇତସ୍ତତଃ ଚଳନ୍ତା—
(ଲସିନୀ—ସ୍ତ୍ରୀ) 2. Moving to and fro (M W.)

**ଲାସ୍ଫୋଟନୀ**—ସଂ. ବି (ଲସନ=ଗମନ+ଆସ୍ଫୋଟନ=ଭେଦନ, କରେ ଯେ; କର୍ତ୍ତୃ ଅନଟ)—୧ । ଫୋଡ଼ଣୀ; ବେଧନୀ—
Lāsphotani
(ଲସ୍ଫୁଟନୀ—ଅନ୍ୟରୂପ) 1. Awl. ୨ । ଛୁଞ୍ଚି; ତୀକ୍ଷ୍ଣ—2. Needle; a large needle. ୩ । ବଢ଼େଇଙ୍କ ଭିର୍ମଚ; ଅଗର—2. Gimlet; auger (M. W)

**ଲାସ୍ୟ**—ସଂ. ବି (ଲସ୍ ଧାତୁ=କ୍ରୀଡ଼ାକରିବା+ଭାବ ଯ)—୧ । ନୃତ୍ୟ;
Lāsya ନାଚ—1. Dancing. ୨ । ସ୍ତ୍ରୀଲୋକଙ୍କର ନୃତ୍ୟ-
(ଲାସ୍ୟକ—ଅନ୍ୟରୂପ) 2. A dancing by females. [ ଉ—ନାନା ମଣ୍ଡିତ ବେଶରେ ପ୍ରବର୍ତ୍ତିଥିବ ହାସରେ ପ୍ରବର୍ତ୍ତିବ ଏ ଲାସ୍ୟରେ ରଙ୍ଗ କଉତରେ—ଉଙ୍କ. ପ୍ରେମ-ସୁଧାନିଧି । ] [ ଉ—ପୁରୁଷଙ୍କ ନୃତ୍ୟକୁ ତାଣ୍ଡବ ବୋଲାଯାଏ । ] ୩ । ତାଳଲୟାନ୍ୱିତ ନୃତ୍ୟ—3. A dancing to time or measure. [ ଦ୍ର—ଲାସ୍ୟ ଏକପ୍ରକାର ନୃତ୍ୟ, ଯାହା ତାଳ, ଭାବ, ବାଦ୍ୟ ଓ ଗୀତ ଓ ଅଙ୍ଗାଦିର ଭଙ୍ଗୀ ଓ ପଦସ୍ଖଳନ ସହକାରେ କରାଯାଏ ଓ ଯଦ୍ଦ୍ୱାରା ନାଟକୀୟ ଛଳରେ ଶୃଙ୍ଗାରାଦିରସର ଉଦ୍ଦୀପନ ହୁଏ । ସାଧାରଣତଃ ସ୍ତ୍ରୀମାନଙ୍କ ନୃତ୍ୟକୁ ଲାସ୍ୟ ବୋଲଯାଏ; ପୁରୁଷଙ୍କ ଉଦ୍ଦଣ୍ଡ ଓ ଶକ୍ତିମୟ ନୃତ୍ୟକୁ ତାଣ୍ଡବ ବୋଲଯାଏ । ଶିବ ତାଣ୍ଡବର ସୃଷ୍ଟିକାରକ ଓ ପାର୍ବତୀ ଲାସ୍ୟର ସ୍ରଷ୍ଟ୍ରୀ । ଲାସ୍ୟ ମଧ୍ୟ ଦୁଇ ପ୍ରକାରର, ଛୁରିତ ଓ ଯୌବତ । ଭରତ ଓ ସାହିତ୍ୟ-ଦର୍ପଣକାର ଅନ୍ୟଙ୍କ ବର୍ଣ୍ଣନାରେ ଲାସ୍ୟର ଦଶ ରୂପ ଦର୍ଶିତ ହୋଇଅଛି, ଯଥା—ଗେୟପଦ, ସ୍ଥିତପାଠ(ଠ୍ୟ), ଆସୀନ, ପୁଷ୍ପଗଣ୍ଡିକା, ପ୍ରଚ୍ଛେଦକ, ତ୍ରିଗୂଢ଼ ବା ତ୍ରିମୂଢ଼କ, ସୈନ୍ଧବ, ଦ୍ୱିମୂଢ଼କ ବା ଦ୍ୱିମୂଢ଼କ, ଉତ୍ତମୋତ୍ତମକ ଓ ଉକ୍ତପ୍ରତ୍ୟୁକ୍ତ ]
( ଲାସ୍ୟା—ସ୍ତ୍ରୀ ) (ହି. ଶ., M. W) ୪ । (ପୁଂ) ନର୍ତ୍ତକ—3. (masculine) Dancer.

**ଲାସ୍ୟବେଶ**—ସଂ. ବି—ଲାସବେଶ (ଦେଖ)
Lāsyabesa Lāsabesa (See)

**ଲାସ୍ୟହାସ୍ୟ(ସ୍ୟ)**—ସଂ. ବି ( ସହଚର )—ନୃତ୍ୟ ଓ ହସ—
Lāsyahāsya(sa) Dance and laughter; dancing accompanied with smiles.

**ଲାସ୍ୟା**—ସଂ. ବି. ସ୍ତ୍ରୀ (ଲସ୍ ଧାତୁ+କର୍ତ୍ତୃ ଯ+ଆ)—ନର୍ତ୍ତକୀ—
Lasya A dancing girl (M. W)

**ଲାହକ୍**—ବୈଦେ. ବିଣ.—(ଫା. ନାହକ୍)—ନାହକ୍ (ଦେଖ)—
Lāhak नाहक नाहक Nāhak (See)
କ୍ରି. ବିଣ—ଅନ୍ୟାୟରୂପେ—Unjustly.

**ଲାହା**—ଦେ. ବି.—୧ । (ସଂ. ଲାକ୍ଷା) ଲାକ୍ଷା, ଲାଖ; ଜଉ—1. Shell-
Lāhā लाहा लाह(ही) lac. ୨ । ଲାଷା (ଦେଖ)—2. Lāsā (See) [ଉ—ନାଃଶେଷ କଲାଚ ଦେହଲାହା ଲାହା କନକ ସୁନ୍ଦ କଶୋଭନ୍ତାନନ ତଆ୍ର ଛ. ଗୀତ । ] ୩ । (ସଂ. ଲାକ୍ଷାକର) ବଙ୍ଗୀୟ ଶୁଦ୍ର ଜାତିର ବଂଶୋପାଧି ବିଶେଷ—3. A family title of sūdras in Bengal. ୪ । ଦେହର ବଳ—4. Bodily strength. ପ୍ରାଦେ. ( କଟକ ସହର ) ବି.—ନାବ; ନୌକା—A boat. [ଉ—ଲାହା ପାଖା ସବୁ ମିଳବ ତ ?—ଦକ୍ଷାଗଡ଼ରଣ. କଟକ ବକ୍ରୟ ।] ବୈଦେ. ପ୍ରାଦେ. (ଗଞ୍ଜାମ) ବି.—(ଇଂ. ଲ)—କାୟୁନ, ଆଇନ୍; ଲ—Law.

**ଲାହାକ**—ପ୍ରାଦେ. (କଟକ ସହର) ବି. ପୁଂ—ନାହାକ (ଦେଖ)—
Lahāka Nāhāka (See)
[ ଲାହାକାଣୀ, ଲାହାକଥାଣୀ—ସ୍ତ୍ରୀ ]

**ଲାହାକା**—ପ୍ରାଦେ. (କଟକ ସହର) ବି.—ନାହାକା (ଦେଖ)
Lāhākā Nāhākā (See)

**ଲାହା(ହି)ଡ଼ି**—ଦେ. ବି.—ବଙ୍ଗଦେଶୀୟ ବଂଶୋପାଧି ବିଶେଷ—
Lāhā(hi)rdi A family title of Bengal; Lāhiri.
लाहिड़ी लाहिड़ी

**ଲାହାମା**—ପ୍ରାଦେ.—(ବାଲେଶ୍ୱର) ବି.—ନଦୀ ମୁହାଣରେ ଧରା ଯିବା
Lāhāma ଏକ ପ୍ରକାର ଲୁଣି ମାଛ—A kind of salt water fish caught in the mouths of rivers.

ଲହାରି—ପ୍ରାଦେ. (ବାଲେଶ୍ୱର) ବି.—୧ । ଲାହି ବା ଲାକ୍ଷରେ ଶଙ୍ଖା
Lāhāri ଛଅର କରୁଥିବା—1. Maker of lac bangles.
লাহারী, শাঁখারী लहेरी, लहेरिया ୨ । ଶଙ୍ଖାରି ଜାତି—2. A caste which manufactures lac bangles.

ଲହାଲିବା—ଦେ. କି.—ନାହାଲିବା (ଦେଖ)
Lahāliba Nahāliba (See)

ଲହି (ଇତ୍ୟାଦି)—ଦେ. ବି.—(ସଂ. ନାଉ)—ନାହି ଇତ୍ୟାଦି (ଦେଖ)
Lāhi (etc) Nāhi etc (See)

ଲହିଆ—ଦେ. ବି.—ନାହିଆ (ଦେଖ)
Lahia Nahia (See)

ଲହୁଡ଼—ଦେ. ବି.—(ସଂ. ଅଲ)—ବିଛା ଆଦିଙ୍କର ବିଷାକ୍ତ ଅଗ୍ରସ୍ଥିତ
Lahurda ଶୁଙ୍କ; ନାହୁଡ଼—The sting of scorpions
হুল ডঙ্ক and other animals.

ଲହୋର—ଦେ. ବି.—(ନାମ)—[ସଂ. ଲବକୋଠ ବା ଲବ କଟକ
Lāhora লাহোর लाहोर ବା ଲବାବଣ୍ୟ,—ଭାରତର ପଞ୍ଜାବ ପ୍ରଦେଶର ଜିଲ୍ଲା ଓ ରାଜଧାନୀ—A district and capital of the Province of Punjab in India.
[ଦ୍ର—ଏହା ପୂର୍ବେ ଶିଖମାନଙ୍କର ରାଜଧାନୀ ଥିଲା । ଏଠାରେ ହାଇକୋର୍ଟ, ବିଶ୍ୱବିଦ୍ୟାଳୟ ଓ ପ୍ରାଦେଶିକ ଲାଟ ସାହେବଙ୍କ ଆବାସ ଆଦି ଅଛି । ଏଠାରେ ଉତ୍କୃଷ୍ଟ ପଶମର ଧୁଷା ଓ ଲୋହି ତିଆରି ହୁଏ । ରାମଚନ୍ଦ୍ର ତାଙ୍କ ପୁତ୍ର କୁଶଙ୍କୁ କୋଶଳ ରାଜ୍ୟର ଏବଂ ଲବଙ୍କୁ ଉତ୍ତର କୋଶଳ ରାଜ୍ୟର ରାଜପଦରେ ଅଭିଷିକ୍ତ କରିଥିଲେ । ଲବ ନିଜ ନାମ ଅନୁସାରେ ଲବକୋଠ (ବର୍ତ୍ତମାନ ଲାହୋର) ନଗର ନିର୍ମାଣ କରି ସେଠାରେ ରାଜଧାନୀ ସଂସ୍ଥାପନ କରିଥିଲେ—(ସୁବଳଚନ୍ଦ୍ର) । ଲବଙ୍କର ପ୍ରତିଷ୍ଠିତ ଏ ନଗରର ନାମ ଲବାବାଡ଼ ଥିଲା । କେତେକ ପ୍ରାଚୀନ ସଂସ୍କୃତ ଗ୍ରନ୍ଥରେ ଏହି ସ୍ଥାନ ଲବାବଣ୍ୟ ନାମରେ ଉଲ୍ଲିଖିତ ହୋଇ ଅଛି—ବିଶ୍ୱକୋଷ ।]

ଲାହୋରୀ—ଦେ. ବିଣ.—ଲାହୋରରେ ପ୍ରସ୍ତୁତ (ଉଣ୍ଣୀବସ୍ତ୍ର)—
Lāhori লাহোরী Manufactured in Lahore.
लाहोरी [ଦ୍ର—ଲାହୋରୀ ଧୁଷା, ଲୋହି, ଶାଲ ଇତ୍ୟାଦି ।]

ଲାହ୍ୱା—ସଂ. ବି.—(ଭୂଲ. ଇଂ ଅଉଲ୍)—ପେଚକ; ଉଲ୍ଲୁକ (ହି. ଶ.)
Lahwā Owl.

ଲାହ୍ୟା—ଦେ. ବି.—ନାହିଆ (ଦେଖ)
Lāhyā Nāhia (See)

ଲି—ଦେ.—୧ । (କଚରିଥା)—(ସାଙ୍କେତିକ) 'ଲିଖିତଂ'ର ସାଙ୍କେତିକ
Li লি लि 1. Abbreviation of 'Likhitam', meaning, Written by (so and so)
নাম या
[ଦ୍ର—ଦଲିଲ ଆଦି ଲେଖିବା ବା ସଂପାଦନ କରିବା ବ୍ୟକ୍ତିର ନାମ ପୂର୍ବେ ଏହି ସାଙ୍କେତିକ ବ୍ୟବହୃତ ହୁଏ । ଯଥା—ଲି । ଗୋପାଳଚନ୍ଦ୍ର—ଅର୍ଥାତ୍, ଏ ପତ୍ରର ଲେଖକ ଗୋପାଳଚନ୍ଦ୍ର । ୨ । ବର୍ତ୍ତମାନକାଳର ସମୀପ ଅତୀତ ବା ଅଦ୍ୟତନ ଅତୀତ କାଳରେ ଅନାଦରାର୍ଥ ପ୍ରଥମ ପୁରୁଷ ଏକ ବଚନ 'ମୁଁ' ପରେ ବ୍ୟବହୃତ କ୍ରିୟାରେ ଲାଗିବା ଚିହ୍ନ । (ଯଥା—କଲି, ଖାଇଲି, ଗଲି ।)—2. Inflection used with verbs in the past tense first person singular. ବୈଦେ. ବି.—(ଚୀନ ଦେଶୀୟ ଭାଷା; ବୌଦ୍ଧ ସାହିତ୍ୟରେ ବ୍ୟବହୃତ) ଚୀନ ଦେଶରେ ବ୍ୟବହୃତ ଦୂରତ୍ୱ ପରିମାଣ ବିଶେଷ—
লী ली A measure of distance of places used in China. [ଦ୍ର—ଏହା ଏକ କୋଶର ୧୬ ଭାଗରୁ ପ୍ରାୟ ଏକ ଭାଗ । ୪୦୦୦ ଲି = ୨୫୦ କୋଶ । (ଛାଡ଼େ. ଭ) ]

ଲିଅ(ୟ,ହ)ଣ—ଦେ. ବି.—(ସଂ. ଲିହାନ, ଲୌହକୃନ୍ତ, ଲିଖନ)—
Lia(ya,ha)ṇa ବେଣ୍ଟଥିବା ଲୁହାର ବଟାଳି—An unhandled iron chisel.

ଲିଅଣ୍ଟ—ପ୍ରାଦେ. (କଟକ ସଦର) ବିଣ—ନିଅଣ୍ଟ (ଦେଖ)
Lianṭa Nianṭa (See)

ଲିଅତ—ପ୍ରାଦେ. (କଟକ ସଦର) ବି.—ନିଅତ (ଦେଖ)
Liata Niata (See)

ଲିଆ—ଦେ. ବି (ସଂ. ଲାଜା)—ଲାଜା; ଖଇ; ଭୃଷ୍ଟ ଧାନ୍ୟାଦି—
Liā Grain fried while inside the chaff.
খই [ଦ୍ର—ଏହା ବାହାରେ ଲିଆମାନଙ୍କୁ ଅଞ୍ଜୋଳ, କରି
लावा ଶ୍ରୀକୃଷ୍ଣ ଦେହରେ ପକାଇଲେ ବାଳୀ । କୃଷ୍ଣସିଂହ. ମହାଭାରତ. ସ୍ତ୍ରୀପ ।] [ଦ୍ର—ଯେଉଁ ଶସ୍ୟକୁ ଭାଜି ଲିଆ କରାଯାଏ, ତାହାର ନାମ ଲିଆ ଶବ୍ଦ ପୂର୍ବେ ଯୁକ୍ତ ହୁଏ । ଯଥା—ଧାନ ଲିଆ, ବାଜରାଲିଆ, ମକାଲିଆ, କଇଁଚିଆ ଲିଆ ଇତ୍ୟାଦି । ]

ଲିଆଇ—ଦେ. ବି—ଲିହାଇ (ଦେଖ)
Liāi Lihāi (See)

ଲିଆକତ(ତି)—ବୈଦେ. ବି (ଅ. ଲିୟାକତ୍=ଯୋଗ୍ୟତା)—୧ ।
Liākata(ti) ମର୍ଯ୍ୟାଦା; ସମ୍ମାନ—1. Dignity; honour;
লেয়াকত लियाकत respect. ୨ । ଯୋଗ୍ୟତା—
2. Ability; merit; fitness. ୩ । ବୁଦ୍ଧି—
3. Intelligence. ୪ । ପଟୁତା—4. Skill.
୫ । ସାମର୍ଥ୍ୟ— Power; strength. ବୈଦେ.
লেয়াকতি, লায়েক लियाकती, लायक ବିଣ (ଅ. ଲାୟକ୍)—
୧ । ଯୋଗ୍ୟ—1. Able; worthy. ୨ । ପଟୁ—
2. Skilful; meritorious. ୩ । ବୁଦ୍ଧିମାନ୍—
3. Intelligent. ୪ । ମର୍ଯ୍ୟାଦାଯୁକ୍ତ; ସମ୍ମାନନୀୟ—
4. Respected; respectable.

ଲିଅ ଖିଆ—ଦେ.ବି—୧ (ସଂ.ଲାଜା+ଖାଦ ଧାତୁ)—ଲିଅ ଖାଇବା—
Liā khiā 1. Eating of fried corn. ୨ । (ନାମ)
খইখাওয়া लावा खाना କୋଣାର୍କର ଅଦୂରରେ ସମୁଦ୍ରରେ ପଡ଼ିଥିବା କ୍ଷୁଦ୍ର ନଦୀ—2. A small river falling into the ocean near Konarak in Puri district. [ଦ୍ର—ପୁରୀଠାରୁ କୋଣାର୍କକୁ ଗଲେ ଏହି

ନଗ୍ରର ମୂହାଣ ନିକଟରେ ଏହାକୁ ଧାଉଁଧୋଇ ଯିବାକୁ ପଡ଼େ । ଉପର ଅଂଶରେ ଏହାର ନାମ କୁଶଭଦ୍ରା । ]

**ଲିଆଖିଆ ବେଲା**—ପ୍ରାଦେ ( ସମ୍ବଲପୁର ) ବି—ସକାଳ ୮ଟା ବେଳ—
Liakhiā belā About 8 A. M [ ଦ୍ର—ସମ୍ବଲପୁରରେ ମୂଲିଆମାନେ ସକାଳେ ୬ଟାବେଳେ ଭଲ ଆଦି କାମ କରିବାକୁ ଯାଆନ୍ତି ଏବଂ ଦୁଇ ଘଣ୍ଟା କାର୍ଯ୍ୟ କରିବା ପରେ କାର୍ଯ୍ୟକ୍ଷେତ୍ରରେ ବିଶ୍ରାମ କରି ଲିଆ ବା ମୁଢ଼ି ଆଦି ଜଳଯୋଗ କରିଥାଆନ୍ତି । ଏହି ପ୍ରଥା ଯୋଗୁଁ 'ଲିଆଖିଆ ବେଲା' ବ୍ୟବହାର ହୋଇଅଛି ।]

**ଲିଆ ଚଡ଼ା** (ଇତ୍ୟାଦି)—ଦେ. ବି—ଖଇଚଡ଼ା ଇତ୍ୟାଦି (ଦେଖ)
Liā chardā (etc) Khaichardā etc (See)

**ଲିଆ ଚଲା**—ଦେ॰ ବି—ଖଇଚଲା (ଦେଖ),
Liā chalā Khaichalā (See)

**ଲିଅ ଚଲା ଲେ)ଇବା**—ଦେ॰ କି—ଖଇ ଚଲେଇବା (ଦେଖ)
Liā chalā(le)ibā Khai chaleibā (See)

**ଲିଅ(ହା)ଜ** (ଇତ୍ୟାଦି)—ବୈଦେ॰ ବି (ଅ.)—ନିଅଜ ଇତ୍ୟାଦି (ଦେଖ)
Liā(hā)ja ( etc ) Niāja etc ( See )
লিহাজ लिहाज

**ଲିଆ(ହା)ଣ**—ଦେ॰ ବି—ଲିଅଣ [ଦେଖ]
Liā(hā)na Liana [See]

**ଲିଆ ଦିଆ**—ପ୍ରାଦେ ( କଟକ ସହର ) ବି—ନିଆ ଦିଆ; ନେବା ଓ ଦେବା; ନେଣ ଦେଣ; ଆଦାନ ପ୍ରଦାନ—
Liā diā Taking and giving; mutual exchange. ଦେ॰ ବି - ଲୋକଙ୍କୁ ଖଇ ବାଣ୍ଟିବା—2. Distribution of fried corn (to people ).
লেন্ দেন
लेन देन

**ଲିଆ ଧାନ**—ଦେ॰ ବି—ଯେଉଁ ଧାନକୁ ଭାଜିଲେ ଭଲ ଖଇ ଫୁଟେ—
Liā dhāna Species of paddy which produce good Liā when fried. [ ଦ୍ର—ସବୁପ୍ରକାର ଧାନକୁ ଭାଜିଲେ ସୁନ୍ଦର ଖଇ ହୁଏ ନାହିଁ । କେତେକ ପ୍ରକାର ଧାନ ଭାଜିଲେ ତହିଁରୁ ବଡ଼ ବଡ଼ ଖଇ ହୁଏ । ]
খইরধান্
लावाकाधान

**ଲିଅ ଫୁଟିବା**—ଦେ. କି—ଖଇ ଫୁଟିବା ( ଦେଖ )
Lia phutibā Khai phutibā ( See )

**ଲିଆ ଭାଜିବା**—ଦେ॰ କି—ଖଇ ଭାଜିବା; ଶସ୍ୟକୁ ଭାଜି ଲିଆରେ ପରିଣତ କରିବା—To fry grains into Liā. [ ଦ୍ର—ଧାନ ଆଦିକୁ ଭାଜି 'ଲିଅ' କରାଯାଏ; ଲିଅକୁ ଭଜାଯାଏ ନାହିଁ । କିନ୍ତୁ କଥାରେ କହନ୍ତି—ଲିଅ ଭାଜିବା, ମୁଢ଼ି ଭାଜିବା, ଇତ୍ୟାଦି । ସେହିପରି ଭାତ ରାନ୍ଧିବା । ]
খইভাজা
लावाभूनना

**ଲିଆ ମଣ୍ଡ**—ଦେ. ବି — ଲାଜାମଣ୍ଡ ( ଦେଖ )—Lājā manda
Liāmanda খইরমণ্ড लावाकमाँड

**ଲିଆରା**—ପ୍ରାଦେ. (କଟକ ସହର) ବିଣ.—ନିଅରା (ଦେଖ)
Liārā Niārā (See).

**ଲିଆରି**—ପ୍ରାଦେ. (ଗଞ୍ଜାମ) ବି—ଗଞ୍ଜାମରେ ଥିବା ଓଡ଼ିଆ ଶୂଦ୍ର ଜାତି ବିଶେଷ—A class of Śūdras in Ganjam.
Liāri [ଦ୍ର—ଏମାନଙ୍କର ପୁରୁଷ ଓ ସ୍ତ୍ରୀ ଉଭୟେ ବାଣିଜ୍ୟ ବେପାର କରନ୍ତି । ଏମାନେ ଓଡ଼ିଶାର ଅନ୍ୟ ଅଞ୍ଚଳର କେଉଟ ଶ୍ରେଣୀର ଅଟନ୍ତି ଓ ଲିଅ ଭାଜନ୍ତି ।]

**ଲିଆ ହୁ ହୋ)ମ**—ଦେ॰ ବି.—( ସ. ଲାଜା ହୋମ )—ଲାଜାହୋମ
Liā hu(ho)ma (ଦେଖ)—Lājā homa (See).
লাজহোম लावाहोम

**ଲିଉକ**—ବୈଦେ. ବି॰ ( ଇଂ ଲିଉକ୍ )—୧ । ବାଇବଲ୍ ଧର୍ମପୁସ୍ତକର ଅଂଶ ବିଶେଷର ପ୍ରଣେତା—1. Luke; name of the compiler of a portion of the Bible. ୨ । ବାଇବଲ୍ ଗ୍ରନ୍ଥର ଅନ୍ତର୍ଗତ ଲିଉକ୍ ଲିଖିତ ସୁସମାଚାର—2. The part of the Bible containing the Gospels of Saint Luke,
Liuk
লুক্ लयुक

**ଲିଏ**—ଦେ॰ ଅ.—ଶିକାର ପଛରେ କୁକୁରମାନଙ୍କୁ ଲଗାଇବା ଶବ୍ଦ—
Lie A halloo made by a hunter to the dog chasing a prey. [ଦ୍ର—ଏହା 'ଧୋ ଧୋ !' ସଙ୍ଗେ ମଧ୍ୟ ବ୍ୟବହୃତ ହୁଏ । ଯଥା—ଧୋ ଧୋ ! ଲିଏ ଲିଏ ! ]
লিএ लगे

**ଲିକ(କ୍କ)**—ଗ୍ରା. ବିଣ.—ନିକ (ଦେଖ)—Nika (See).
Lika(kka)

**ଲିକା(କେ)ଇବା**—ଗ୍ରା॰ କି—ନିକାଇବା (ଦେଖ)—
Likā ke)ibā Nikāibā (See)

**ଲିକୁଚ**—ସ. ବି—ଲକୁଚ (ଦେଖ)
Likucha Lakucha. (See)

**ଲିକୋ**—ପ୍ରାଦେ (ବସ୍ତର) ବିଣ—ନିକ (ଅକ୍ଷତ)—
Liko Fine whole (rice).

**ଲିଖ(ଖା)**—ସଂ॰ ବି (ଲିଖ୍. ଧାତୁ=ଚିହ୍ନ କରିବା+କର୍ତ୍ତୃ. ଅ; +ଆ; କପାତନ)—୧ । କ୍ଷୁଦ୍ର ଉକୁଣି—1. Very small louse. ୨ । ଉକୁଣିଙ୍କର କ୍ଷୁଦ୍ର ଡିମ୍ବ—2. The eggs of lice. ୩ । ପରିମାଣ-ବିଶେଷ—3. A sort of measure. [ ଦ୍ର—୪ ଅଣୁ=୧ ଲିଖା; ମତାନ୍ତରରେ ୮ ପରମାଣୁ=୧ରଜ; ୮ ରଜ=୧ ବାଲାଗ୍ର; ୮ ବାଲାଗ୍ର=୧ ଲିକ୍ଷା, ମତାନ୍ତରରେ ୬ ଲିଖା=୧ ସର୍ଷପ ଓଜନ—ହି॰ ଶ
Likha(khā)
( ଲିକ୍ଷିକା—ଅନଂରୂପ )

ମତାନ୍ତରରେ ସୂର୍ଯ୍ୟକିରଣ କୌଣସି ଜଲାବାଟେ ପଡ଼ିଲେ ସେଥିରେ ଉଡ଼ୁଥିବା ଧୂଳିର ଗୋଟିଏ କଣାର ନାମ ଅଣୁ; ଏପରି ୪ଟି ଅଣୁରେ ଗୋଟିଏ ଲିଖା ହୁଏ ।

ଜାଲାନ୍ତରଗତେ ଭାନୌ ଯତ୍ସୂକ୍ଷ୍ମଂ ଦୃଶ୍ୟତେ ରଜଃ
ତୈଶ୍ଚତୁର୍ଭିର୍ଭବେଲ୍ଲିକ୍ଷା ତେଷାଂ ଷଡ୍ଭିସ୍ତୁ ସର୍ଷପଃ । ]

**ଲିଖ୍ (ଧାତୁ)**—ସ—୧ । ଲେଖିବା—1 To write. ୨ । ଚିତ୍ର କରିବା—2. To paint. ୩ । ଅଙ୍କନ କରିବା—3. To draw.
Likh (root)

ଲିଖ୍‌ରି—ପ୍ରାଦେ (ସମ୍ବଲପୁର) ବିଣ—ଅତି ସାମାନ୍ୟ—
Likh-ri Very insignificant.

ଲିଖ (ଖା,ଖି)—ଦେ॰ ବି (ସଂ ଲିକ୍ଷ)—୧। ଛୋଟ ଉକୁଣି—
Likha(khā,khi) 1. Small louse. [ ଦ୍ର—ଯେସନେକ ନିକି, লিকি ମଥାର କେଶରେ ଥାଇ ଲିଖ। ପ୍ରାଚୀ ବଲ୍ଲଭରୂପଣ ଲୀଖ ଗୀତା।] ୨। ଉକୁଣିଙ୍କ ଡିମ୍—2 Eggs of lice. ୩। একটুকু ଅତି କ୍ଷୁଦ୍ର ପଦାର୍ଥ—3. Very small thing. ୪। जरा ଅତି କ୍ଷୁଦ୍ର ପରିମାଣ—4. Minute quantity. ୫। একটুকু (ପୁଂ ଓ ସ୍ତ୍ରୀ) ଲୋକଙ୍କ ନାମ—5. A name given to जरासा males and females. ଦେ. ବିଣ—ଅତି କ୍ଷୁଦ୍ର—
Very small.

ଲିଖ ଗଜି—ଦେ. ବି (ସହଚର)—ଉକୁଣିଙ୍କର ଡିମ୍ ଓ ଛୁଆ—
Likha gaji Minute eggs and young ones of নিকীওউকুনের ডিম লীখ और ঢীল lice.

ଲିଖଣ—ପ୍ରାଦେ (ସମ୍ବଲପୁର, ଗଡ଼ଜାତ) ବି—ଲିହଣ (ଦେଖ)
Likhaṇa Lihaṇa. (See)

ଲିଖନ—ସଂ. ବି (ଲିଖ୍ ଧାତୁ+ଭାବ. ଅନ)—୧। ଲେଖିବା; ଅକ୍ଷର-
Likhana ବିନ୍ୟାସକରଣ—1. Writing. ୨। ରେଖା ଟାଣିବା—2. Drawing of lines. ୩। ଚିତ୍ର-କରଣ—3 Painting. ୪। ଅଙ୍କନ ଲଗିବା—4. Drawing. ୫। (+କର୍ମ. ଅନ) ଲେଖା; ମସୀଦ୍ୱାରା କଲମରେ ଲେଖାଯିବା ବିଷୟ—5 A writing done with ink and pen. ୬। ପତ୍ର—6. Letter. ୭। (+ଅଧିକରଣ. ଅନ) ଦଲିଲ—7. A document; deed. ୮। ଭାଗ୍ୟ ଲେଖା; ମନୁଷ୍ୟର ଭାଗ୍ୟରେ ବିଧି ତାଙ୍କ କଳ୍ପିତ ଲେଖା—
8. Preordained thing.

ଲିଖନ ପଠନ—ସଂ. ବି (ସହଚର)—୧। ଲେଖିବା ଓ ପଢ଼ିବା—
Likhana paṭhana 1. Writing and reading. ୨। ଲେଖା ପଢ଼ା; ବିଦ୍ୟାଭ୍ୟାସ କରିବା—2. Studying.

ଲିଖନ ପଦ୍ଧତି—ସଂ. ବି (୬ଷ୍ଠୀ ତତ୍)—ଲେଖିବାର ଢଙ୍ଗ—
Likhana paddhati The style of writing.
(ଲିଖନପ୍ରଣାଳୀ, ଲିଖନ ରୀତି—ଅନ୍ୟରୂପ)

ଲିଖନ ଯୋଗ୍ୟ—ସଂ. ବିଣ (୬ଷ୍ଠୀ ତତ୍)—ଲେଖା ଯିବାର ଉପଯୁକ୍ତ—
Likhana jogya Fit to be written.

ଲିଖନାର୍ହ—ସଂ. ବିଣ (୬ଷ୍ଠୀ ତତ୍; ଲିଖନ+ଅର୍ହ)-ଲେଖନୋପଯୁକ୍ତ—
Likhanārha Fit to be written.
(ଲିଖନାର୍ଯ୍ୟ—ଅନ୍ୟରୂପ)

ଲିଖ(ଖି)ରା(ରେ)ଇବା-ଦେ. କ୍ରି—ନିଖାରିବା (ଦେଖ)
Likha(khi)rā(re)ibā Nikhāribā (See)

ଲିଖା—ଦେ॰ ବି. ପୁଂ—ଲିଖ ନାମକ ପୁରୁଷର ଡାକ ନାମ—
Likhā Name for calling Likha.

ଲିଖା(ଖେ)ଇ—ଦେ॰ ବି. ସ୍ତ୍ରୀ—ଲିଖ ନାମ୍ନୀ ସ୍ତ୍ରୀର ଡାକ ନାମ—
Likha(khe)i Name for calling a woman (ଲିଖୀ—ଅନ୍ୟରୂପ) named Likha.

ଲିଖାରିବା—ଦେ॰ କ୍ରି—ନିଖାରିବା (ଦେଖ)—
Likhāribā Nikhāribā (See)

ଲିଖି—ପ୍ରଦେ (ଯାଜପୁର) ବି—ଲିଖ—
Likhi Small louse.

ଲିଖିଏ-ଦେ॰ ବିଣ ଓ ବି (ସଂ ଲିକ୍ଷା)-୧। ଟିକିଏ; ସ୍ୱଳ୍ପମାତ୍ର;
Likhie କିଞ୍ଚିତ—1 A little; a minute quantity. (ଲିଖେ—ଅନ୍ୟରୂପ) ୨। ଅତି କ୍ଷୁଦ୍ର—2. Very small; একটুকু जरासा, लीखकेबराबर, मिसिया thing.

ଲିଖିତ-ସଂ. ବିଣ (ଲିଖ ଧାତୁ+କର୍ମ ତ)-୧। ଯାହା ଲେଖା
Likhita ହୋଇଅଛି—1 Written. ୨। ଅଙ୍କିତ—2. Drawn. ୩। ଚିତ୍ରିତ—3. Painted. ସଂ. ବି—୧। (+ଭାବ. ତ) ଲେଖା—1. Writing. ୨। ଭାରତବର୍ଷର ସ୍ମୃତିପ୍ରଣେତା ମୁନି ବିଶେଷ—2. Name of a Hindu law-giver of ancient India. ୩। (+କର୍ମ ତ) ଲେଖ୍ୟ ପତ୍ର; ଦଲିଲ୍—3. Deed; document; letter.

ଲିଖିତଂ—ଦେ. ବିଣ (ବଚରଅ ଭାଷା) (ସଂ. ଲିଖିତଂ)—ଏହା
Likhitam ଅମୁକଙ୍କ ଦ୍ୱାରା ଲେଖା ହେଲା, ଅମୁକ ଏହି ଦଲିଲ লিখিতং ସମ୍ପାଦନ କରୁଅଛନ୍ତି—(This deed is) लिखितं Written by or executed by. [ଦ୍ର—ସଂସ୍କୃତରେ 'ମୟା ଲିଖିତଂ' ମୋଦ୍ୱାରା ଲିଖିତ। ଅମୁକଦ୍ୱାରା ଲିଖିତଂ ସ୍ଥଳରେ ଓଡ଼ିଆ ଦଲିଲ ଲେଖାରେ ରହି ଯାଇଅଛି ଲିଖିତଂ ଅମୁକ। ଏଥିରେ ସାଙ୍କେତିକ। ଲି। କେହି କେହି ମଧ୍ୟ ପତ୍ର ଶେଷରେ। ଲି। ଲେଖି ଆପଣା ନାମ ସ୍ୱାକ୍ଷର କରନ୍ତି।]

ଲିଖିତ ଜବାବ—ଦେ. ବି (ବଚରଅ)—୧। ବାଦୀର ଅର୍ଜିର
Likhita jabāba ଉତ୍ତରରେ ପ୍ରତିବାଦୀର ଦାଖଲ କରିବା (ମୌଖିକ ଜବାବ—ବିପରୀତ) ଲିଖିତ ବର୍ଣ୍ଣନାପତ୍ର—1. লিখিত জবাব Written statement filed by a लिखित जवाब defendant in a suit. ୨। ଅଭିଯୋଗ ବିରୁଦ୍ଧରେ ଦାଖଲ ଦାଖଲ କରିବା ଲିଖିତ ଉତ୍ତର—2. A written statement filed by an accused. ୩। କୌଣସି ବିଷୟର ଲିଖିତ ଉତ୍ତର—
3. A written reply.

ଲିଖିତ ପ୍ରମାଣ—ଦେ. ବି (ବଚରଅ)—କୌଣସି ବିଷୟ ପ୍ରମାଣ
Likhita pramāṇa କରିବା ପାଇଁ ଲେଖା ହୋଇଥିବା লিখিত প্রমাণ ବିଷୟ; ଦଲିଲ ପ୍ରମାଣ—Documentary लिखित प्रमाण evidence, evidence in the shape (ମୌଖିକ ପ୍ରମାଣ, ଜବାନୀପ୍ରମାଣ—ବିପରୀତ) of a writing.

**ଲିଖିତବ୍ୟ**—ସ. ବିଣ ( ଲିଖ୍ ଧାତୁ+କର୍ମ. ତବ୍ୟ )—୧ । ଲେଖାଯିବାର
Likhitabya ଉପଯୁକ୍ତ—1. Fit to be written.
୨ । ଯାହା ଲେଖା ଯିବ—2. To be written.

**ଲିଗ୍**—ବୈଦେ ବି ( ଇଂ. ଲିଗ୍ )—୧ । ଇଉରୋପୀୟ ସାମୁଦ୍ରିକ
Lig ଦୂରତ୍ୱର ମାପ ପରିମାଣ ବିଶେଷ ( ୨।। ଠାରୁ ୪।। ମାଇଲ୍ )—
लीग 1. A standard of measurement of oceanic
लीग distance. [ ଦ୍ର—ଇଂଲଣ୍ଡର ସ୍ଥଳ ମାପର ଲିଗ୍=
୩ ସ୍ଥଳ ମାଇଲ=୩+୫୨୮୦ ଫୁଟ୍=୫୨୮୦ ଗଜ ।
ଇଂଲଣ୍ଡର ସମୁଦ୍ର ମାପର ଲିଗ୍=୩ ସାମୁଦ୍ରିକ ମାଇଲ=
୩×୬୦୮୦ ଫୁଟ=୬୦୮୦ ଗଜ । ] ୨ । ଦଳ;
ଗୋଷ୍ଠୀ—2. League, society.

**ଲିଗ୍ ଅଫ୍ ନେସନ୍ସ୍(ନ୍)**—ବୈଦେ. ବି (ଇଂ.ଲିଗ୍ ଅଫ୍ ନେସନ୍ସ୍)—
Lig aph nesans(n) । ବିଗତ ମହାସମର ପରେ ଗଠିତ
लीगअफनेसन्स, लीगअफनेसन्स ପାଶ୍ଚାତ୍ୟ ଶକ୍ତିମାନଙ୍କ ଅଧିନାୟକ
ଅନ୍ତର୍ଜାତିକ ସଂଘ—The League of
Nations.

**ଲିଗା(ଘା,ଙ୍ଗା,ଙ୍ଘା)** (ଇତ୍ୟାଦି)—ବୈଦେ. ବି—ନିଗା ଇତ୍ୟାଦି (ଦେଖ)
Ligā(ghā,ṅgā,ṅghā (etc) Nigā etc (See)

**ଲିଙ୍କ୍**—ବୈଦେ.ବି (ଇଂ.ଲିଙ୍କ୍)—୧ । କଡ଼ାଦ୍ୱାରା ୧୦୦ ଖଣ୍ଡ ଲୁହା କାଠି
Link ଗଣ୍ଠା ହୋଇଥିବା ଶିକୁଳଦ୍ୱାରା ଭୂମି ମାପ କରିବାରେ
लिंक लिंक. ବ୍ୟବହୃତ ଚେନ୍ ( ଲୁହା ଶିକୁଳ )ର ୧୦୦
ଭାଗରୁ ୧ ଭାଗ ବା ଖଣ୍ଡ—1. Link of a chain
used in surveying land. ୨ । ଭୂମି ମାପର
ପରିମାଣବିଶେଷ ($\frac{66}{100}$ ଫୁଟ=$\frac{3}{5}$ ଫୁଟ=୭$\frac{23}{25}$ ଇଞ୍ଚ)—
2. Three fifth of a foot. ୩ । କମିଜର
ହାତ ବୋତାମର ଦୁଇ ଭୁଣ୍ଡିକୁ ଯୋଗ କରିଥିବା ଧାତୁର
କଡ଼ା—3. The link of a cuff buttom of a
shirt.

**ଲିଙ୍ଗ୍ (ଧାତୁ)**—ପ—ଗମନକରିବା—
Ling (root) ( ଲିନ୍ଗ ଧାତୁ—ଅନ୍ୟରୂପ ) To go.

**ଲିଙ୍ଗବୁଡ଼ା**—ଦେ. ବି. ଓ ବିଣ—ଲିଙ୍ଗିବୁଡ଼ା (ଦେଖ)
Ling-burdā Lingiburdā (See)

**ଲିଙ୍ଗଲିଙ୍ଗିଆ**—ପ୍ରାଦେ (ସମ୍ବଲପୁର) ବିଣ—ଅତି କ୍ଷୀଣ ବା କୃଶକାୟ—
Ling-lingiā । Very lean.

**ଲିଙ୍ଗ**—ସ. ବି (ଲିଙ୍ଗ୍ ଧାତୁ+କର୍ତ୍ତୃ.ଅ)—୧ । ଚିହ୍ନ; ନିଦର୍ଶନ; ସୂଚକ—
Linga 1. Mark; indication; token; symbol;
emblem; indication. [ ଦ୍ର—ନ୍ୟାୟଦର୍ଶନ
ମତରେ ଲିଙ୍ଗ ୪ ଶ୍ରେଣୀରେ ବିଭକ୍ତ । ଯଥା—
ସଂଯୋଗି—ଯଥା, ଧୂମ ଅଗ୍ନିର ଲିଙ୍ଗ ଅଟେ । ନ୍ୟସ୍ତ—
ଯଥା, ଶୃଙ୍ଗ ଗାଈର ଲିଙ୍ଗ । ସହବର୍ତ୍ତୀ—ଯଥ, ଭାଷା
ମନୁଷ୍ୟର ଲିଙ୍ଗ । ବିପରୀତ—ଯଥା, ଭଲ ମନ୍ଦ ସଙ୍ଗେ
ଥାଏ—ହି. ଶ. । ] ୨ । ହେତୁ; କାରଣ—2. Cause
୩ । ମହାଦେବଙ୍କ ବିଗ୍ରହ: ଶିବଙ୍କର ମୂର୍ତ୍ତିବିଶେଷ—
3. The phallic emblem of God Siba.
[ ଦ୍ର—୧ । ଏହା ମୁଖ ହସ୍ତାଦି ଅଙ୍ଗବିବର୍ଜିତ ଲମ୍ବ ପ୍ରସ୍ତର
ବା ଧାତୁଖଣ୍ଡ ଓ ଏହା ଶକ୍ତିମଧ୍ୟସ୍ଥ ଗର୍ତ୍ତରେ ପ୍ରୋଥିତ
ହୋଇଥାଏ । ମହାଦେବଙ୍କର ମୂର୍ତ୍ତି ଲିଙ୍ଗ(ଉପସ୍ଥ)ରୂପରେ ଓ
ପାର୍ବତୀଙ୍କ ମୂର୍ତ୍ତି ଶକ୍ତି (ଯୋନି) ରୂପରେ ପ୍ରତିଷ୍ଠିତ ହୁଏ ।
ଉକ୍ତ ଶକ୍ତି ଓ ଲିଙ୍ଗମୂର୍ତ୍ତିଦ୍ୱୟ ( ପ୍ରକୃତି ଓ ପୁରୁଷ) ଦ୍ୱାରା
ବ୍ରହ୍ମାଣ୍ଡର ସୃଷ୍ଟି ସୂଚିତ ହୁଏ ।

୨ । ପୂର୍ବେ ପଞ୍ଚମୁଖଯୁକ୍ତ ନରବିଗ୍ରହରୂପେ ଶିବ ପୂଜା
ପାଉଥିଲେ । ଖ୍ରୀଷ୍ଟୀୟ ୧ମ ଓ ୨ୟ ଶତାବ୍ଦୀରେ ଲିଙ୍ଗ-
ବିଗ୍ରହର ପୂଜା ଭାରତରେ ଅନାର୍ଯ୍ୟମାନଙ୍କଠାରୁ ଅଣାଯାଇ
ହିନ୍ଦୁଧର୍ମର ଅଙ୍ଗୀଭୂତ କରି ଯାଇଅଛି—(ହରପ୍ରସାଦ ଶାସ୍ତ୍ରୀଙ୍କ
ଗବେଷଣା) । ଲିଙ୍ଗପୁରାଣରେ ଲେଖାଅଛି ଯେ ଶିବଙ୍କର
ଦୁଇ ରୂପ; ଅଲିଙ୍ଗ ଓ ଲିଙ୍ଗ । ନିଷ୍କ୍ରିୟ ଓ ନିର୍ଗୁଣ ଶିବ
ଅଲିଙ୍ଗ ଅଟନ୍ତି । ଜଗତ୍‌କାରଣରୂପ ଶିବ ଲିଙ୍ଗ ଅଟନ୍ତି ।
ଅଲିଙ୍ଗ ଶିବଙ୍କଠାରୁ ଲିଙ୍ଗଶିବଙ୍କର ଉତ୍ପତ୍ତି । ଶିବଙ୍କୁ ଲିଙ୍ଗୀ
ବୋଲାଯାଏ, ଅତଏବ ଲିଙ୍ଗ ବା ପ୍ରକୃତି ଶିବଙ୍କରହିଁ
ଅଟେ । ଏରୂପେ ଲିଙ୍ଗ ଜଗତ୍‌କାରଣରୂପ ଶିବଙ୍କ ପ୍ରତୀକ
ଅଟେ । ପ୍ରାଚୀନ ମିଶର, ଆରବ, ୟିହୁଦା, ୟୁନାନ୍, ରୋମ୍
ଆଦି ଦେଶରେ ଜଗତ୍‌କାରଣରୂପେ ଦେବତାଙ୍କର ବା
ଈଶ୍ୱରଙ୍କ ଉପାସନା ପାଇଁ 'ଲିଙ୍ଗ'ର ମୂର୍ତ୍ତି ଗୃହୀତ
ହେଉଥିଲା । ପ୍ରାଚୀନ ୟୁନାନୀମାନେ ଲିଙ୍ଗକୁ ଲାଟିନ୍
ଫାଲସ୍ ( Phallus ) କହୁଥିଲେ । ୟିହୁଦୀମାନେ
ବାଆଲ୍ ( Baal ) ଦେବତାଙ୍କ ପ୍ରତିଷ୍ଠା ଲିଙ୍ଗ-
ରୂପରେ କରୁଥିଲେ । ପ୍ରାଚୀନ ବାବିଲୋନିଆର
ଭଗ୍ନାବଶେଷରୁ ମନ୍ଦିରମାନଙ୍କ ମଧ୍ୟରୁ ଅନେକ ଲିଙ୍ଗ
ମିଳି ଅଛନ୍ତି; ଏ ଲିଙ୍ଗମାନ ଭାରତୀୟମାନଙ୍କ
ଶିବଲିଙ୍ଗ ପରି । କିନ୍ତୁ ପ୍ରାଚୀନ ଆର୍ଯ୍ୟମାନଙ୍କ ମଧ୍ୟରେ
ଲିଙ୍ଗରୂପୀ ଶିବଙ୍କ ଉପାସନାର ସୂଚନା ମିଳେ ନାହିଁ ।
ବୈଦିକକାଳରେ କେତେକ ଅନାର୍ଯ୍ୟ ଜାତିଙ୍କ ମଧ୍ୟରେ
ଲିଙ୍ଗପୂଜା ପ୍ରଚଳିତ ଥିଲା । ଅନାର୍ଯ୍ୟ ଜାତିଙ୍କର 'ଶିଶ୍ନ-
ଦେବାଃ'ରୂପେ ଗୋଟିଏ ନାମ ବେଦମନ୍ତ୍ରରେ ଅଛି—ହି ଶ]
୪ । ପୁରୁଷର ଉପସ୍ଥ; ଶିଶ୍ନ—4. Penis; male
organ of generation. (ଲିଙ୍ଗର ଅନ୍ୟ ସଂସ୍କୃତ
ପ୍ରତିଶବ୍ଦ—ଉପସ୍ଥ, ମଦନାଙ୍କୁଶ, ମେହନ, ମେଢ୍ର, କନ୍ଦର୍ପ-
ମୁଷଳ., ଶେପଃ, ଧ୍ୱଜ, ସାଧନ—( ହି. ଶ. )—୫ ।
ଅନୁମାନ—5 Inference. ୬ । ( ନ୍ୟାୟ ଦର୍ଶନ )
ଅନୁମାନସାଧନ—6 ( logic ) Premises
leading to a conlusion. ୭ । ( ବ୍ୟାକରଣ )
ପଦାର୍ଥ ବା ଜୀବାଦିଙ୍କର ପୁରୁଷ, ସ୍ତ୍ରୀ ବା ନପୁଂସକ ଥିବାର
ସୂଚନା—7. ( Grammar ) Gender. ୮ ।
( ସାଂଖ୍ୟ ଦର୍ଶନ ) ପ୍ରକୃତି—8. ( Samkhya philo-
sophy ) Nature; matter; crude matter.
୯ । ଶବ୍ଦର ଅର୍ଥ ପ୍ରକାଶକ ସାମର୍ଥ୍ୟ—9. The power

of a word to make its meaning manifest. ୧୦ । ସନ୍ନ୍ୟାସୀ—10. An anchorite. ୧୧ । ସନ୍ନ୍ୟାସୀର ବେଶ—11. The dress or marks of an anchorite. ୧୨ । ଲିଙ୍ଗ ଶରୀର ( ଦେଖ )—12. Linga śarira ( See ). [ ଉ—ପ୍ରକୃତି ଯେବେ ପୁଣ ଲିଙ୍ଗ, ସ୍ଥୂଳ ଶରୀର ସଙ୍ଗତ । ଜଗନ୍ନାଥ. ଭାଗବତ । ] ୧୩ । ( ସାଂଖ୍ୟଦର୍ଶନ ) ମୂଳ ପ୍ରକୃତି—13. ( Sānkhya philosophy ) Original Nature. [ବ୍ୟୁ—ବିକୃତି ପୁଣି ପ୍ରକୃତିରେ ଲୟ ପ୍ରାପ୍ତ ହୁଏ; ଏଥିପାଇଁ ପ୍ରକୃତିକୁ ଲିଙ୍ଗ ବୋଲାଯାଏ—ହି ଶ• ] ୧୪ । ( ମୀମାଂସା ଦର୍ଶନ )—ଛଅ ଲକ୍ଷଣ, ଯହିଁ ଅନୁସାରେ ଲିଙ୍ଗ ନିର୍ଣ୍ଣୀତ ହୁଏ ( ହି. ଶ. )—( Mimāmsā philosophy ) Six attributes or indications from which sex is ascertained. [ ଉ—ଲକ୍ଷଣ ଯଥା—ଉପକ୍ରମ, ଉପସଂହାର, ଅଭ୍ୟାସ, ଅପୂର୍ବତା, ଅର୍ଥବାଦ ଓ ଉପପତ୍ତି—ହି. ଶ. ] ଦେ. ବି—ବସ୍ତ୍ରାଞ୍ଚଳ ଧଡ଼ିରେ ଅଙ୍କିତ ରଙ୍ଗିନ୍ ଚିହ୍ନ ବା ରେଖା—Coloured figure or line on the hem of a cloth. [ ଉ—ବାହାର କଲେ ନୀଳ ଛୀନ ଶାଢ଼ୀ, ସିନ୍ଦୂରୀ ଧଡ଼ି ଫୁଲ ଲିଙ୍ଗ ପଡ଼ି । ଉଞ୍ଜ• ଲାବଣ୍ୟବତୀ । ]

**ଲିଙ୍ଗକ**—ସ. ବି—କପିତ୍ଥ ବୃକ୍ଷ—The wood apple tree; Lingaka Feronia Elephantum.

**ଲିଙ୍ଗକୁ(ରେ) ବାଜିବା**—ଦେ• ବି—ପୁରୁଷତ୍ୱ ଶକ୍ତିର ହାନି ଘଟିବା—Lingaku(re) bajiba Loss of potency. ପୁରୁଷତ୍ୱହାନି ହଓୟା [ ବ୍ୟୁ—ମୂଷାକୁ ମାଇଲେ ଲିଙ୍ଗକୁ(ରେ) **पुरुषत्वहानि होना** ବାଜେ । ପ୍ରବାଦ । ]

**ଲିଙ୍ଗ ଚକ୍ର**—ସ. ବି (ତନ୍ତ୍ର)—ତନ୍ତ୍ରସାଧନାର୍ଥ ଶରୀର ମଧ୍ୟରେ କଳ୍ପିତ Linga chakra ଛଅଟି ଚକ୍ର ମଧ୍ୟରୁ ଏକତମ—One of the 6 mystic circles inside the body on which the mind of a Tantric devotee has to be concentrated while engaged in Tantric exercise. [ବ୍ୟୁ—ଏଥିର ସ୍ଥାନ ଲିଙ୍ଗମୂଳ । ]

**ଲିଙ୍ଗଚ୍ଛେଦ**—ସ. ବି ୬ଷ୍ଠୀ ତତ୍; ଲିଙ୍ଗ+ଛେଦ; ସନ୍ଧିଦ୍ୱାରା ଚ ସ୍ଥାନରେ Lingachchheda ଚ୍ଛ )—ଶିଶ୍ନ ଛେଦ; ଖାସି କରିବା—(ଲିଙ୍ଗଚ୍ଛେଦନ—ଅନ୍ୟରୂପ) Castration; excision of the male organ.

**ଲିଙ୍ଗଜା**—ସ. ବି—ଲିଙ୍ଗିକା (ଦେଖ)

Lingajā Lingikā. (See)

**ଲିଙ୍ଗ ଜ୍ଞାନ**—ସ. ବି—ଶବ୍ଦର ବା ବସ୍ତୁର ଲିଙ୍ଗ ସମ୍ବନ୍ଧରେ ଅଭିଜ୍ଞତା—Linga jñāna Knowledge about the gender of a word or thing.

**ଲିଙ୍ଗ ଦେହ**—ସ• ବି (ମ. ପ. ଲୋ; ଲିଙ୍ଗବିଶିଷ୍ଟ ଦେହ)—(ଦର୍ଶନ Linga deha ଶାସ୍ତ୍ର) ଅସ୍ଥା ଅବସ୍ଥାନ କରୁଥିବା ଜୀବର ସୂକ୍ଷ୍ମ (ଲିଙ୍ଗ ଶରୀର—ଅନ୍ୟରୂପ) ଦେହ—( Philosophy ) The subtle frame in which the soul is settled. [ଉ—ଶବଦ ଆଦି ମାତ୍ରା ପଞ୍ଚ

ଅପରେ ତ୍ରିଗୁଣ ପ୍ରପଞ୍ଚ ।
ଦଶ ଇନ୍ଦ୍ରିୟ ପଞ୍ଚ ପ୍ରାଣ
ସେ ମନ ବୁଦ୍ଧି ସଙ୍ଗତେଣ ।
ଏହାକୁ ଲିଙ୍ଗ ଦେହ କହି
ଯାବତ ଚେତନା ଏ ବହି ।
ଜଗନ୍ନାଥ. ଭାଗବତ ]

[ବ୍ୟୁ—ଯେଉଁ ସୂକ୍ଷ୍ମ ଶରୀର ପ୍ରାଣୀର ସ୍ଥୂଳଶରୀର ନଷ୍ଟ ହେବା ପରେ ମଧ୍ୟ ସଂସ୍କାରଜନ୍ୟ କର୍ମଫଳ ଭୋଗ କରିବା ପାଇଁ ଜୀବାତ୍ମା ସଙ୍ଗେ ଲାଗି ରହିଥାଏ ତାକୁ ଲିଙ୍ଗଦେହ କହନ୍ତି । ଏଥିରେ ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟମାନଙ୍କର ସବୁ ବୃତ୍ତିମାନ ବିଦ୍ୟମାନ ଥାଏ; କେବଳ ଏ ମାନଙ୍କ ସ୍ଥୂଳରୂପ ନ ଥାଏ । ଏ ଦେହରେ ୧୭ଟି ତତ୍ତ୍ୱ କଳ୍ପିତ ହୋଇଅଛି; ଯଥା—୧୦ ଇନ୍ଦ୍ରିୟ, ମନ, ପଞ୍ଚତନ୍ମାତ୍ର ଓ ବୁଦ୍ଧି—(ହି. ଶ) ।]

**ଲିଙ୍ଗନ**—ସ. ବି (ଲିଗ୍ ଧାତୁ+ ଭାବ• ଅନ)—ଆଲିଙ୍ଗନ; କୁଣ୍ଢାଇବା—Lingana Embracing. (Apte)

**ଲିଙ୍ଗ ନାଶ**—ସ. ବି (ବହୁବ୍ରୀହି; ଯହିଁରେ ବସ୍ତୁମାନଙ୍କ ଲିଙ୍ଗ ବା ଲକ୍ଷଣ Linga nāśa ଜଣା ପଡ଼େ ନାହିଁ)—୧ । ଅନ୍ଧକାର (ହି.ଶ)—1. Darkness. ୨ । ଚକ୍ଷୁରୋଗ ବିଶେଷ (ହି. ଶ); ନୀଳକା—2. A kind of eye-disease; glaucoma. [ବ୍ୟୁ—ଏ ରୋଗରେ ଆଖିକୁ କେତେବେଳେ ଅନ୍ଧାର, କେତେବେଳେ ନାଲି, କେତେବେଳେ ଧଳାଦିଆ ବର୍ଣ୍ଣ ଆଦି ଦେଖାଯାଏ । ସୁଶ୍ରୁତ ଅନୁସାରେ ଆଖିର ୪ର୍ଥ ପଟଳର ବିକାର ଯୋଗୁଁ ଏ ରୋଗ ଜନ୍ମେ । ବାତ ପିତ୍ତ କଫ ଭେଦରେ ଏ ରୋଗ ୩ ପ୍ରକାର—(ହି. ଶ) । ] ୩ । ଶିଶ୍ନର ନାଶ—3 .Loss of penis. (Apte)

**ଲିଙ୍ଗ ପରାମର୍ଶ**—ସ. ବି (ନ୍ୟାୟଶାସ୍ତ୍ର)—ପ୍ରସ୍ତାବ ବା ପକ୍ଷ ମଧ୍ୟରେ ଲିଙ୍ଗକୁ Linga parāmarśa ଚିହ୍ନିବା—(Logic) The recognition of the premises on a subject.

**ଲିଙ୍ଗ ପୁରାଣ**—ସ• ବି—ବ୍ୟାସ ପ୍ରଣୀତ ମହାପୁରାଣ ବିଶେଷ (ପୁରାଣ Linga purāṇa ଦେଖ)—One of the 18 Purāṇas of the Hindus [ବ୍ୟୁ—ଏଥିର ଶ୍ଳୋକ ସଂଖ୍ୟା ୧୧ ହଜାର; ବ୍ରହ୍ମା ମୁଖ୍ୟ ବକ୍ତା; ଏଥିରେ ଶିବଙ୍କ ବ୍ରହ୍ମା ଓ ବିଷ୍ଣୁଙ୍କର ଅଧିଷ୍ଠାନ ଥିବା ବର୍ଣ୍ଣିତ । ଶିବ ସ୍ୱୟଂ ତାଙ୍କର ୨୮ ଅବତାରର ବର୍ଣ୍ଣନ କରିଅଛନ୍ତି । ଏହା ଏକ ସାଂପ୍ରଦାୟିକ ପୁରାଣ; ଶିବଙ୍କ ଦ୍ୱାରା ଶିବଭକ୍ତ ଦଧୀଚ ମୁନିଙ୍କ ରକ୍ଷା, ପଦ୍ମକଳ୍ପରେ ସୃଷ୍ଟିର ଉତ୍ପତ୍ତି, ବୈବସ୍ୱତ ମନ୍ୱନ୍ତରର

ଶବ୍ଦମାନଙ୍କ ବଚନାବଳୀ, ଲିଙ୍ଗ ପ୍ରକାର ପୃଥକ୍ୟାର୍ଥ ଏଥିରେ ବର୍ଣ୍ଣିତ ହୋଇଅଛି । ]

**ଲିଙ୍ଗ, ବଚନ, ପୁରୁଷ, କାରକ**—ସଂ. ବି (ବ୍ୟାକରଣ) ବିଶେଷ୍ୟ ପଦର ଲିଙ୍ଗ, ବଚନ—(grammar) The gender, number, person and case of a noun.
Linga, bachana, purusha, kāraka

**ଲିଙ୍ଗ ବର୍ଦ୍ଧକ**—ସଂ. ବି (ବୈଦ୍ୟକ)—କପିତ୍ଥ—
Linga barddhaka — The wood apple.

**ଲିଙ୍ଗ ବର୍ଦ୍ଧନ**—ସଂ. ବିଣ (ବହୁବ୍ରୀହି)—ଯଦ୍ଦ୍ୱାରା ଲିଙ୍ଗ ଉଦ୍ଦୀପ୍ତ ହୁଏ—
Linga barddhana — Causing erection of the male organ (Apte).

**ଲିଙ୍ଗବସ୍ତି**—ସଂ. ବି—ଲିଙ୍ଗାର୍ଶ ନାମକ ରୋଗ (ହି. ଶ.)—A kind of disease of the penis. [ ଦ୍ର— (ଲିଙ୍ଗାର୍ଶ—ଅନ୍ୟରୂପ) ଏଥିରେ ଲିଙ୍ଗ ବାଟେ ରକ୍ତସ୍ରାବ ହୁଏ । ]
Lingabasti

**ଲିଙ୍ଗବାନ୍**—ସଂ. ବିଣ. ପୁଂ—ଲକ୍ଷଣଯୁକ୍ତ—
Lingabān — Having characteristics.
(ଲିଙ୍ଗବତୀ—ସ୍ତ୍ରୀ) ସଂ. ବି—ଲିଙ୍ଗାଇତ୍ (ଦେଖ)
Lingāit (See)

**ଲିଙ୍ଗ ବୁଡ଼ା**—ଦେ. ବି—ଲିଙ୍ଗିବୁଡ଼ା (ଦେଖ)
Ling burdā — Lingiburdā (See)

**ଲିଙ୍ଗ ବୃତ୍ତି**—ସଂ. ବି (ବହୁବ୍ରୀହି; ଲିଙ୍ଗ=ବେଶ, ତାହା ଅଟେ ବୃତ୍ତି= ଜୀବିକା ଯାହାର)—ସନ୍ନ୍ୟାସୀ ବେଶଧାରୀ; କପଟ ସନ୍ନ୍ୟାସୀ; ଧର୍ମଧ୍ୱଜୀ—A hypocritical religious mendicant; a religious hypocrite. ସଂ. ବିଣ—କପଟବୃତ୍ତି—Hypocritical (See).
Linga brutti

**ଲିଙ୍ଗବେଦୀ**—ସଂ. ବି—ଶିବ ଲିଙ୍ଗର ମୂଳ ଭାଗ—The base or pedestal of a Linga (Apte).
Lingabedi

**ଲିଙ୍ଗ ଭଞ୍ଜନ**—ଦେ. ବି (ସଂ. ଲିଙ୍ଗ+ଭଙ୍ଗ)—ଲିଙ୍ଗ ଶରୀରର ବିନାଶନ —The annihilation of the subtle body. [ ଉ—ଯୋଗେଶ୍ୱରଙ୍କ ଗତି ଯେତେ, ଲିଙ୍ଗଭଞ୍ଜନ ମୋକ୍ଷପଥେ । ଜଗନ୍ନାଥ. ଭାଗବତ । ]
Linga bhangana

**ଲିଙ୍ଗ ଭେଦ**—ସଂ. ବି—ସ୍ତ୍ରୀ, ପୁରୁଷ ଓ କ୍ଲୀବଲିଙ୍ଗ ମଧ୍ୟରେ ପ୍ରଭେଦ—
Linga bheda — Difference of gender.

**ଲିଙ୍ଗରାଜ**—ସଂ. ବି (୬ଷ୍ଠୀ ତତ୍)—ଭୁବନେଶ୍ୱରସ୍ଥ ଶିବଲିଙ୍ଗଙ୍କ ନାମ— Name of the image of Siba at Bhubaneswara. ଦେ. ବି. ପୁଂ—ଲୋକଙ୍କ ନାମ —A name given to males.
Lingarāja
ଲିଙ୍ଗରାଜ
লিঙ্গরাজ

**ଲିଙ୍ଗରାଜଙ୍କ ଚତୁର୍ଦ୍ଦଶ ଯାତ୍ରା**—ଦେ. ବି—ଭୁବନେଶ୍ୱରସ୍ଥ ଲିଙ୍ଗରାଜ ମହାପ୍ରଭୁଙ୍କ ନିକଟରେ ବର୍ଷ ମଧ୍ୟରେ ହେଉଥିବା ଚଉଦଟି ଯାତ୍ରା ('ଯାତ୍ରା' ଶବ୍ଦ ଦେଖ) The fourteen festivals of Lord Lingaraj held during the year at Bhubaneswar.
Lingarājanka chaturdasa jātrā
লিঙ্গরাজ ঠাকুরের চতুর্দশ পর্ব
लिङ्गराज ठाकुरको यात्रा

**ଲିଙ୍ଗ ଶରୀର**—ସଂ. ବି—ଲିଙ୍ଗଦେହ (ଦେଖ)—
Linga sarira — Lingadeha (See)

**ଲିଙ୍ଗ ସମ୍ଭୂତା**—ସଂ. ବି—ଲିଙ୍ଗିକା (ଦେଖ)—
Linga sambhūtā — Lingikā (See)

**ଲିଙ୍ଗସ୍ଥ**—ସଂ. ବି. ପୁଂ—ବ୍ରହ୍ମଚାରୀ (ମନୁ ୮।୬୫) (ହି. ଶ.)—
Lingastha — A religious student (M. W.); a person observing the vow of continence.

**ଲିଙ୍ଗା**—ଦେ. ବି (ସଂ. ଲିଙ୍ଗ)—୧ । ବଳଦଙ୍କ କାନ୍ଧରେ ବାହାରିବା ଉଠୁଳି ବା ଅବୁ—1. A fleshy tumour or wart formed on the shoulder of a bullock. [ ଦ୍ର—ଏହାର ଆକୃତି ଶିବଲିଙ୍ଗ ପରି । ] ୨ । (ଅନାଦରାର୍ଥକ) ଲିଙ୍ଗରାଜର ଡାକ ନାମ —2. Name for calling Lingarāja. ଦେଶଜ ବି—ଲିଂଘା (ଦେଖ)—Linghā (See) ଗ୍ରାମ୍ୟ. (ପୁରୀ) ବି—ଡୋଢ଼; ଲମ୍ବ ଜଳାଶୟ—A long narrow pool. ଦେ. ବିଣ—ଯେଉଁ ବଳଦର କାନ୍ଧରେ ଲିଙ୍ଗା ବାହାରିଥାଏ— (Bullock) Having a tumour or wart growing on the shoulder. [ ଦ୍ର —ଯେଉଁ ବଳଦଙ୍କ କାନ୍ଧ ଉପରେ ଲିଙ୍ଗା ଉଠିବାର ଦେଖାଯାଏ, ଲୋକେ ଉକ୍ତ 'ଲିଙ୍ଗା'କୁ ମହାଦେବ ବୋଲି ବିଶ୍ୱାସ କରି ସେହି ବଳଦକୁ ହଳ ଜମ୍ପା ଶଗଡ଼ ଆଦି କାର୍ଯ୍ୟରେ ଆଉ ବ୍ୟବହାର କରନ୍ତି ନାହିଁ । ]
Lingā
বলদের ঘাড়ের আঁচিল
मस्सा
যে বলদের ঘাড়ে আঁচিল আছে
मस्सावाला (बैल)

**ଲିଙ୍ଗାଇ(ଏ,ୟ)ତ୍**—ଦେ. ବି (ସଂ. ଲିଙ୍ଗାଙ୍କିତ, ଭୁଲ. ସେବାଏତ୍)— ଦକ୍ଷିଣଭାରତରେ ଶିବଲିଙ୍ଗଉପାସକ ସମ୍ପ୍ରଦାୟବିଶେଷ- A sect of Hindus in S. India who are devotees of Siba. [ ଦ୍ର—ଏମାନେ ଶିବଙ୍କର ଏକନିଷ୍ଠ ଉପାସକ ଦ୍ରାବିଡ଼ୀୟ ହିନ୍ଦୁ; ଏମାନେ ସୁନାର ବା ରୁପାର କଣ୍ଠରେ ଶିବଲିଙ୍ଗଙ୍କୁ ରଖି ବାହୁରେ ବା ଗଳାରେ ପିନ୍ଧନ୍ତି, ଏମାନଙ୍କୁ ଜଙ୍ଗମୀ ମଧ୍ୟ ବୋଲାଯାଏ । କିନ୍ତୁ ଏମାନଙ୍କ ମଧ୍ୟରେ କେତେଗୁଡ଼ିଏ ଲୁପ୍ତପ୍ରାୟ ପ୍ରଚଳିତ ଅଛି, ଯାହା ଭାରତର ଅନ୍ୟତ୍ର ଦୃଷ୍ଟ ହୁଏ ନାହିଁ । ଏମାନେ ବେଦର ଓ ବ୍ରାହ୍ମଣଙ୍କ ପ୍ରାଧାନ୍ୟ ଓ ଓ ଜାତିଭେଦ ସ୍ୱୀକାର କରନ୍ତି ନାହିଁ । (ବିଶ୍ୱକୋଷ)]
Lingāi(e,ya)t
লিঙ্গাযত
लिंगायत

**ଲିଙ୍ଗାଗ୍ର**—ସଂ. ବି (୬ଷ୍ଠୀ ତତ୍)—ଲିଙ୍ଗର ଅଗ୍ରଭାଗ; ଲିଙ୍ଗର ମୁଖାଗ୍ର—
Lingāgra — Glans penis (Apte)

**ଲିଙ୍ଗାଙ୍କିତ**—ସଂ. ବିଣ. ପୁଂ (୩ୟା ତତ୍)—ଚିହ୍ନଦ୍ୱାରା ଚିହ୍ନିତ—
Lingānkita — Marked with a sign
ବି. ଲିଙ୍ଗାଇତ୍ (ଦେଖ)—Lingāit (See)

**ଲିଙ୍ଗାନୁଶାସନ**—ସଂ. ବି (ବ୍ୟାକରଣ)—ଲିଙ୍ଗ ସମ୍ବନ୍ଧେ ବ୍ୟାକରଣର ନିୟମମାନ—The laws governing the gender in grammar; the laws of grammatical gender (M.W).
Lingānusāsana

ଲିଙ୍ଗାର୍ଚ୍ଚକ—ସଂ. ବି. ପୁଂ (ଉପପଦ ତତ୍ପୁରୁଷ)—୧ । ପୌତ୍ତଳିକ—
Lingārchchaka 1. Idolator. ୨ । ଲିଙ୍ଗୋପାସକ; ଶୈବ—2. A devotee of Śiba.

ଲିଙ୍ଗାର୍ଶଃ—ସ. ବି. (୬ଷ୍ଠୀ ତତ୍)—୧ । ଲିଙ୍ଗରୁ ରକ୍ତସ୍ରାବ ରୋଗ—
Lingārśah 1. Bloody discharge from the male organ. ୨ । ଉପଦଂଶ ରୋଗ; ଗରମି ବେମାର—2. Syphilis.

ଲିଙ୍ଗାଲିକା—ସ. ବି (ଲିଙ୍ଗ+ଅଲ+କ+ଆ)—କ୍ଷୁଦ୍ର ମୂଷିକ; ଛୁଞ୍ଚେଇ
Lingālikā ମୂଷା—A small species of mouse; ନେଂଟିଇନ୍ଦୁର **छोटाचूहा** a kind of mouse (M.W).

ଲିଙ୍ଗିକା(ନୀ)—ସ. ବି (ଲିଙ୍ଗ+କ+ଈ. ଆ; ଲିଙ୍ଗିନ୍+ଈ)—୧ ।
Lingikā(ni) (ବୈଦ୍ୟକ) ଶିବଲିଙ୍ଗୀଲତା—A creeper. (ଲିଙ୍ଗସମ୍ଭୂତା, ଲିଙ୍ଗୀ—ଅନ୍ୟରୂପ) ୧ । [ବି—ଏହା ଓଡ଼ିଶା ଜଙ୍ଗଲରେ ଜନ୍ମେ । ଏଥିର ଶିବଲିଙ୍ଗିନୀ, ଶିବଲିଙ୍ଗୀ **पचगुरियां** ନାଳ ଶିବଲିଙ୍ଗାକାର; ଫଳ ଅନ୍ୟ ସ. ନାମ—ଶିବବଲ୍ଲୀ, ଶିବବଲ୍ଲିକା କ୍ଷୁଦ୍ର, କୃଷ୍ଣବର୍ଣ୍ଣ ଓ ବହୁପର୍ଣ୍ଣୀ, ଈଶ୍ୱରୀ, ସ୍ୱୟମ୍ଭୂ, ଚିତ୍ରଫଳା, ଶୃଗାଲୀ ଅଟେ ଏକ । ଏହା ଦୁର୍ଗନ୍ଧ-ଦେବୀ, ଚଣ୍ଡା, ଅପସ୍ମାରନାଶା, ଶିବଦା ନାଶକ, କଟୁରସ, ଉଷ୍ଣବୀର୍ଯ୍ୟ, ରସାୟନ ଓ ସର୍ବସିଦ୍ଧିକାରକ ଅଟେ ।] ୨ । ଧର୍ମଧ୍ୱଜିନୀ ସ୍ତ୍ରୀ—2. A hypocrite woman. ୩ । ହସ୍ତିନୀ—3. A female elephant. ସ. ବିଣ. ସ୍ତ୍ରୀ—ଲିଙ୍ଗୀର ସ୍ତ୍ରୀଲିଙ୍ଗ—Feminine of Lingi.

ଲିଙ୍ଗିବୁଡ଼ା—ଦେ. ବି—୧ । ପାଣିତୋରାଣିପୂର୍ଣ୍ଣ କୁଣ୍ଡରେ ନାକକୁ
Lingiburdā ବୁଡ଼ାଇ କେତେକ ବଳଦ ଓ ଗାଈଙ୍କର କୁଣ୍ଡରୁ ମୁଖଡୁବିୟେ ଖାଓଯା **मुंहडुबाकर खाना** ଦାନା ଆଦି ଖାଇବା—1. The act of some bullocks and cows dipping their nose into the manger ସୁସମ୍ପନ୍ନକାଯ **पूराहोना** which is full of liquid food. ୨ । କୌଣସି ବିଷୟ ସମ୍ପୂର୍ଣ୍ଣରୂପେ କରାଯିବା ଅବସ୍ଥା, ଅର୍ଥାତ୍ ଯହିଁରେ କିଛି ଅପୂର୍ଣ୍ଣ ରହି ନ ଥାଏ—2. A condition ମାଥାଡୁବାଅବସ୍ଥା of being filled up or completed. **लाचारी** ୩ । କୌଣସି କାର୍ଯ୍ୟପାଇଁ ଯାହା ଆବଶ୍ୟକ, ତାହା ପୂର୍ଣ୍ଣ ହୋଇ ତହିଁରୁ ବଳିପଡ଼ିବା ଅବସ୍ଥା—3. A condition or state of things where the maximum has already been attained and which will bear no further strain. [ ଉ—ଅମୁକ ଲୋକ ଦେଣାରେ ଲିଙ୍ଗିବୁଡ଼ା ହୋଇ ଯେ ମୁଖଡୁବିୟେ ଖାଯ **मुँहडुबाकरखानेवाला** ଦେ. ବିଣ—୧ । ଯେଉଁ ଗୋରୁ ନାକକୁ ସମ୍ପୂର୍ଣ୍ଣରୂପେ କୁଣ୍ଡରେ ବୁଡ଼ାଇ ଦାନାପାଣି ଖାଏ—1. (A cow or bullock) Which dips its nose into the liquid ସୁସମ୍ପନ୍ନ food in the crator. ୨ । ସମ୍ପୂର୍ଣ୍ଣରୂପେ ସମ୍ପାଦିତ (କୌଣସି ବିଷୟ)—2. Done to completion or fulfilment, complete; full; done to the fill. [ ବି—ଶିବଲିଙ୍ଗକୁ କଳାଶାସ୍ତ୍ରୀ କରିବା ସମୟରେ ପାଣି ପୂର୍ଣ୍ଣରୂପେ ଢାଳି ଲିଙ୍ଗକୁ ପାଣିରେ ବୁଡ଼ାଇ ଦେବାର ଉକ୍ତର ଏ ଶବ୍ଦର ବ୍ୟବହାର ଭାଷାରେ ଚଳିଅଛି । କୌଣସି କାର୍ଯ୍ୟ ପୂର୍ଣ୍ଣରୂପେ କରାଗଲେ ତାହା ଲିଙ୍ଗବୁଡ଼ା ବୋଲାଯାଏ, ଅର୍ଥାତ୍ କୌଣସି କାର୍ଯ୍ୟ ପୂର୍ଣ୍ଣରୂପେ କରାଗଲା, ଆଉ ଅଧିକ ଆବଶ୍ୟକ ନାହିଁ ।] ଯେ ଦେନାଯ ଡୁବେଛେ ୩ । ଅତ୍ୟନ୍ତ ଋଣଗ୍ରସ୍ତ—3. Over head **दिवालिया** and ears in debt.

ଲିଙ୍ଗୀ—ସ. ବିଣ. ପୁଂ—(ଲିଙ୍ଗ+ଇନ୍; ୧ମା. ୧ବ)—୧ ।
Lingi ସନ୍ନ୍ୟାସୀ ବେଶଧାରୀ—1. Assuming or wear- (ଲିଙ୍ଗିନୀ—ସ୍ତ୍ରୀ) ing the garb of a sannyāsi. ୨ । ଧର୍ମଧ୍ୱଜୀ—2. Religious hypocrite. ସ. ବି.-ହସ୍ତୀ—Elephant.

ଲିଙ୍ଗେନ୍ଦ୍ରିୟ—ସ. ବି—(ରୂପକ)—ପୁରୁଷର ଶିଶ୍ନ ବା ମୂତ୍ରେନ୍ଦ୍ରିୟ—
Lingendriya The male urinary organ.

ଲିଙ୍ଗୋତ୍ଥାନ—ସ. ବି.—(୬ଷ୍ଠୀ ତତ୍)—କାମ ପ୍ରବୃତ୍ତିର ଉତ୍ତେଜନା-
Lingotthāna ଜନିତ ଶିଶ୍ନର କାଠିନ୍ୟ ଲାଭ—Erection of the penis through amorous excitement.

ଲିଙ୍ଗୋଦ୍ଧାର—ସ. ବି—(୬ଷ୍ଠୀ ତତ୍)—ଲିଙ୍ଗଚ୍ଛେଦନ—Excision
Lingoddhara or removal of the male organ. (M. W.)

ଲିଙ୍ଗୋପଦଂଶ—ସଂ. ବି—ଲିଙ୍ଗାର୍ଶଃ (ଦେଖ)
Lingopadamsa Lingarśah (See) (M. W)

ଲିଙ୍ଗୋପାସକ—ସଂ. ବି. ପୁଂ—ଶୈବ; ଶିବଲିଙ୍ଗ ପୂଜକ—
Lingopāsaka A devotee of Śiba. [ ଲିଙ୍ଗୋପାସିକା—ସ୍ତ୍ରୀ ]

ଲିଙ୍ଘା—ବୈଦେ. ବି—(ଫା. ନିଗାହ୍)—ନିଗା (ଦେଖ)
Lingha Nigā (See)

ଲିଚ—ଗ୍ରା. ବି.—ଲିଞ୍ଚ (ଦେଖ)
Licha Lincha (See)

ଲିଚ(ଚୁ)—ବୈଦେ. ବି.—( ଚୀନ ଦେଶୀୟ ଭାଷା 'ଲିଚି' )—ଚୀନ୍
Lichi(chu) ଦେଶରୁ ଏ ଦେଶକୁ ଆନୀତ ହୋଇ ସୁସ୍ୱାଦ୍ୟ ଲିଚୁ **लिचु** ଫଳ ଉତ୍ପାଦନ କରୁଥିବା ଏକ ପ୍ରକାର ବୃକ୍ଷ ଓ ତହିଁର ସୁସ୍ୱାଦ୍ୟ ଫଳ—Lichi fruit and tree; Nephelium Litchi; Scytalia Litchi. [ବି—ଏହି ଫଳର ଉପରେ କ୍ଷୁଦ୍ର କୋମଳ କଣ୍ଟକଯୁକ୍ତ ଚୋପା ଥାଏ ଓ ଚୋପା ତଳେ କୋମଳ ଶୁକ୍ଳ ସୁସ୍ୱାଦ୍ୟ ଶସ ଥାଏ; ତହିଁ ମଧ୍ୟରେ କଳା ମଞ୍ଜି ଥାଏ । ଏ ଫଳ ପାଚିଲେ ନାଲି ହୁଏ ଓ ଏହାର ସୁସ୍ୱାଦ୍ୟ ଶସ ଧଳା; ସ୍ଥାନଗୁଣରେ ଏହି ଶସ ସୁସ୍ୱାଦୁ ବା ଅସ୍ୱାଦୁ ହୁଏ । ଆସାମ, ବଙ୍ଗଦେଶ ଓ ସାହାରନପୁରରେ ଏହି ଫଳ ଉତ୍କୃଷ୍ଟ ହୁଏ । ଏ ଫଳ ବସନ୍ତ କାଳରେ ଫଳେ । ଏହାର ପତ୍ର ଆମ୍ବପତ୍ର ପରି, କିନ୍ତୁ ଛୋଟ । ଏହି ଗଛ ଆମ୍ବ ଗଛପରି ବହୁଳ ଧରେ ।]

ଲି(ଲେ)ଞ—ଗ୍ରା. ବିଣ.—(ସଂ. ନୀଚ)—୧ । ନୀଚ (ବ୍ୟକ୍ତି)—
Li(le)ñcha नीच नीच 1. Low; mean (man)
୨ । ନୀଚ ଜାତୀୟ—2. Of low caste.
୩ । ନୀଚମନା—3. Mean-minded.

ଲିଞ୍ଚିଙ୍ଗ୍—ବୈଦେ. ବି.—(ଇଂ. ଲିଞ୍ଚିଙ୍ଗ୍)—ସମାଜ ବିରୁଦ୍ଧରେ ଘୃଣ୍ୟ
Linching ଅପରାଧ କରିଥିବା ବ୍ୟକ୍ତିର ଅପରାଧ ଅଦାଲତରେ ବିଚାର କରି ନ ଯାଇ, ଅପରାଧୀକୁ ସର୍ବସାଧାରଣ ଲୋକେ ଧରି ନେଇ ଗଛରେ ଝୁଲାଇବା, ମାଡ଼ ମାରିବା, ହତ୍ୟା କରିବା ଆଦି ଦ୍ୱାରା ଦଣ୍ଡ ଦେବା ରୂପ ଜଘନ୍ୟ ବର୍ବର ପ୍ରଥା—The practice of lynching or inflicting punishment on an offendar by an infuriated mob. [ ଦ୍ର—ଦେଶର ଶାସକ ଦୁର୍ବଳ ହେଲେ ଏହିପରି ଦୁର୍ଘଟଣା ଘଟି ଥାଏ । ଆମେରିକାବାସୀ ଶ୍ୱେତାଙ୍ଗମାନେ ସ୍ଥାନେ ସ୍ଥାନେ ଅପରାଧୀ ନିଗ୍ରୋମାନଙ୍କୁ ଏହିପରି ଦଣ୍ଡ ଦେଉଥିବା ଶୁଣାଯାଏ ।]

ଲିଟ୍—ସଂ.—(ବ୍ୟାକରଣ)—କ୍ରିୟାର ଅତୀତ କାଳ—
Lit The past tense of a verb. ପ୍ରାଦେ. (କଟକ ସଦର) ବିଣ.—ନିଟ୍ (ଦେଖ)—Nit (See)

ଲିଟ—ସଂ. ବି ( ଲିହ୍ ଧାତୁ + କ୍ତ—ଲିଢ଼; ୧ମା. ୧ବ—ଲିଟ୍ ଅନ୍ୟ
Lita ଶବ୍ଦ ସଙ୍ଗେ ବ୍ୟବହୃତ )—ଲୋଭୀ; ଲାଲସାଯୁକ୍ତ—
A varicious; coveteous; extremelydesirous.
[ ଦ୍ର—ନନ୍ଦର ତନୟ ପୂରନ୍ଦର ମଣି, ମକରନ୍ଦ ଲିଟ ଭୂ ଅରବିନ୍ଦ, ଟି ସୁନ୍ଦରୀ । କବିସୂର୍ଯ୍ୟ ସଙ୍ଗୀତ । ]

(ଲର୍ଡ) ଲିଟନ୍—ଦେ. ବି. ( ନାମ ) ( ଇଂ. ଲିଟ୍ଟନ୍ )—୧ । ବିଲାତର
(Lard) Litan ପ୍ରସିଦ୍ଧ ଉପନ୍ୟାସକାର, ନାଟକକାର, କବି ଓ
लिटन ରାଜମନ୍ତ୍ରୀ—1. Edward Bulwar Lord
लिटन Lytton. [ ଦ୍ର—ଏ ୧୮୦୩ ରୁ ୧୮୭୩ ପର୍ଯ୍ୟନ୍ତ ଜୀବିତ ଥିଲେ । ଏହାଙ୍କ ଗ୍ରନ୍ଥ ସଂଖ୍ୟା ୬୦ ରୁ ବେଶୀ ହେବ । ଏହାଙ୍କର ପୁତ୍ର ଭାରତର ବଡ଼ଲାଟ ହୋଇଥିଲେ ।] ୨ । ପ୍ରଥମୋକ୍ତ ଲର୍ଡ ଲିଟନ୍‌ଙ୍କ ପୁତ୍ର ଓ ଭାରତର ବଡ଼ଲାଟ—2. Edward Robert, Earl of Lytton. [ ଦ୍ର—ଏହାଙ୍କ ଜନ୍ମ ଖ୍ରୀ ୧୮୩୧ ଓ ମୃତ୍ୟୁ ୧୮୯୧ । ଏ ମଧ୍ୟ ଜଣେ ସୁକବି ଓ ରାଜମନ୍ତ୍ରୀ ଥିଲେ । ଏ ଭାରତକୁ ୧୮୭୬ ସାଲରେ ବଡ଼ଲାଟ ହୋଇ ଆସିଥିଲେ । ଏହାଙ୍କ ଅମଳରେ ମହାରାଣୀ ଭିକ୍ଟୋରିଆ ୧୮୭୭ ସାଲରେ ଭାରତର ସମ୍ରାଜ୍ଞୀ ଉପାଧି ଗ୍ରହଣ କରିଥିଲେ । ଏହାଙ୍କ ଅମଳରେ ଆଫଗାନ୍ ଯୁଦ୍ଧ ହୋଇଥିଲା; ଦେଶୀୟ ଭାଷାରେ ପ୍ରକାଶିତ ସମ୍ବାଦପତ୍ରମାନଙ୍କର ସ୍ୱାଧୀନତା ଲୋପ ଓ ଅସ୍ତ୍ରଶସ୍ତ୍ର ସମ୍ବନ୍ଧରେ କାଇଦା ଆଇନ୍ ଦ୍ୱାରା କରା ହୋଇଥିଲା । ଇଙ୍ଗ୍ଲିଶ୍ମ୍ୟାନ୍ ଭାରତବାସୀ ବିଲାତରେ ସିଭିଲ୍ ସର୍ଭିସ୍ ପରୀକ୍ଷା ନ ଦେଇ ବଡ଼ ଚାକିରୀ ପାଇବାର ବିଧାନ ଏହାଙ୍କ ରାଜତ୍ୱର ଅନ୍ୟତମ ସ୍ମରଣୀୟ ବିଷୟ । ଏ ଭାରତରୁ ଫେରି ଯାଇ ଫ୍ରାନ୍ସ ରାଜଧାନୀ ପାରିସ୍ ନଗରରେ ଇଂରାଜ ରାଜାଙ୍କ ପକ୍ଷରୁ ଦୂତରୂପେ ରହିଥିଲେ ଓ ସେହିଠାରେ ଏହାଙ୍କର ପରଲୋକ ପ୍ରାପ୍ତି ହୋଇଥିଲା । ]

ଲିଟରେଟ୍ କନ(ନି)ଷ୍ଟବଲ୍—ବୈଦେ. ବି ( ଇଂ. ଲିଟରେଟ୍
Litaret kana(ni)shtabal କନଷ୍ଟେବଲ୍ )—ଲେଖାପଢ଼ା
लिटरेट कनष्टेबल ଜାଣିଥିବା ପୁଲିସ୍ କନଷ୍ଟେବଲ; ଲିଟରେ
लिटरेट कानष्टेबुल କନଷ୍ଟେବଲ୍—A literate constable of the Indian Police force. [ ଦ୍ର—ଏମାନେ ସାଧାରଣ କନ୍‌ଷ୍ଟେବଲଙ୍କ ଅପେକ୍ଷା ବେଶୀ ଦରମା ପାଆନ୍ତି ଓ ଥାନାର ଡାଇରି ଆଦି ଲେଖାପଢ଼ା କରନ୍ତି । ]

ଲିଟି—ଦେ. ବି ( ସଂ. ମଧୁଲିଟ୍ )—କ୍ଷୁଦ୍ର ପକ୍ଷିବିଶେଷ—A species
Liti of bird; the humming bird; sun bird.
टुनी [ ଦ୍ର—ଏମାନେ ଅତି ଛୋଟ ଓ ପୁଷ୍ପରୁ ମଧୁ ଖାଆନ୍ତି ।
शकरखोरा, गैगा ଏମାନଙ୍କ ଥଣ୍ଟ ଲମ୍ବ ଓ ବଙ୍କା । ] ପ୍ରାଦେ; ( ବସ୍ତର ) ବି—ସାହାଡ଼ା ଗଛ—A kind of tree, Streblus Asper.

ଲିଡର—ବୈଦେ. ବି ( ଇଂ ଲିଡ଼ର )—୧ । ଦଳପତି; ନେତା—
Lidar 1. The leader of a gang. ୨ । ଜାତୀୟ ବା
लिडार ସାମାଜିକ ନେତା—2. Social or national
लिडर leader. ୩ । ସମ୍ବାଦ ପତ୍ରର ସମ୍ପାଦକୀୟ ସ୍ତମ୍ଭରେ ଲିଖିତ ପ୍ରଧାନତମ ସାର୍ଥ ପ୍ରବନ୍ଧ ବା ଅଗ୍ରଲେଖ—3. Leader or leading article in a newspaper.

ଲିଣ୍ଟ—ବୈଦେ. ବି ( ଇଂ )—ଲୁଗାଦ୍ୱାରା ବୁଣା ହୋଇ ତହିଁ ଉପରେ
Lint ଲୁଗା ଛିଣ୍ଡା ହୋଇ ପ୍ରସ୍ତୁତ ଏକପ୍ରକାର କନା—
लिण्ट Lint ( used by surgeons in dressing
लिण्ट wounds ). [ ଦ୍ର—ଏହା ଘାଆ ଆଦି ଉପରେ ବନ୍ଧାଗଲେ ଘାଆରୁ ପାଣି ପ୍ରଭୃତି ଶୀଘ୍ର ଶୋଷିନିଏ । ଏଥିପାଇଁ ଡାକ୍ତରମାନେ ଘାଆ ଓ କ୍ଷତ ଆଦି ଉପରେ ଏହାକୁ ପଟି ପକାଇ ବାନ୍ଧନ୍ତି । ]

ଲିଣ୍ଢୁ—ସଂ. ବିଣ ( ବୈଦିକ )—ପିଚ୍ଛିଳ—
Lindhu Slippery; slimy ( Apte ).

ଲିତା(ତ୍ୟା)—ଦେ. ବି (ସଂ. ଲିପ୍ତା) ଏକଦଣ୍ଡର ୬୦ ଭାଗରୁ ଏକ
Lita(tya) ଭାଗ; ଅତି ଅଳ୍ପକାଳ; କ୍ଷଣମାତ୍ର; ନିମେଷମାତ୍ର—
1. A moment; a minute portion of time. [ଦ୍ର—ବର୍ଷ ମାସ ଦିନ ଲିତ୍ୟାର ମୁହିଁ ଅଟେ ଅଧିପ । ରାଧାନାଥ· ଚନ୍ଦ୍ରଭାଗା ।] ୨ । ଅତ୍ୟଳ୍ପମାତ୍ର—2. A little portion; a little. ପ୍ରାଦେ ( ସମ୍ବଲପୁର ) ବି—ଅଇଁଠା; ଅଇଣ୍ଠା; କୌଣସି ବ୍ୟକ୍ତି ଖାଇ ସାରିବା ପରେ ଖାଇବା ସ୍ଥାନରେ ପଡ଼ିଥିବା ବାସନ ବା ପତର ଓ ଭୁକ୍ତ ଖାଦ୍ୟାଂଶ—Leavings and uncleaned dishes left after meal. ୨ । (କଟକ ସଦର) ବି.
[ଲିଁତା(ତେ)ଇ, ଲିତିଅ—୨ୟ ଅର୍ଥର ଅନ୍ୟରୂପ] ( ନାମ )—

'ନିତ୍ୟାନନ୍ଦ'ର ଡାକ ନାମ—2. Name for calling Nityānanda.

ଲିତାଏ-ଦେ. ବି-(ଲିପ୍ତ)୧ । କ୍ଷଣମାତ୍ର—1. A moment. ୨ । କିଞ୍ଚିନ୍-
Litāe ମାତ୍ର—2. A slight portion. ଦେ. କ୍ରି, ବିଣ—
একদণ্ড ୧ । କ୍ଷଣମାତ୍ର—1. Even for a moment. ୨ ।
एकदंड କିଞ୍ଚିନ୍ମାତ୍ର—2. Slightly [ଉ—ବଂଶାଗ୍ର ଦେଖି ସ୍ଵାମୀ ରଥୁ ଓଲ୍ହାଇ ତୋଳୁ ନ ଭଲେ ଲିତାଏ । ଭଞ୍ଜ. ବୈଦେହୀଶବିଳାସ ।]

ଲିତା ଲଗାଇବା – ଗ୍ରାଦେ. (ସମ୍ବଲପୁର) କ୍ରି—ଅଇଣ୍ଠା ପୋଛିବା; ଏଣ୍ଠୁ
Litā lagāibā ପୋଛିବା; ଲୋକ ଖାଇଥିବା ସ୍ଥାନରୁ ଅଇଣ୍ଠା [ଲିତା ଉଠାଇବା—ଅନ୍ୟରୂପ] ସଫା କରିବା—To cleanse the ground where a person has taken his food.

ଲିଥ(ଥୋ)—ବୈଦେ. ବି (ଇଂ. ଲିଥୋ; ଲିଥୋଗ୍ରାଫି)—ଶିଳ୍ପ କଳା-
Litha(tho) ବିଶେଷ; ଯେଉଁ ବିଦ୍ୟାଦ୍ଵାରା ଚିତ୍ରକୁ ବା ଅକ୍ଷରମାନଙ୍କୁ ପଥର ଉପରେ ଖୋଳି ସେହି ଖୋଦିତ ପ୍ରସ୍ତରରୁ (ଲିଥୋଗ୍ରାଫ୍, ଲିଥ(ଥୋ)ଗ୍ରାଫି—ଅନ୍ୟରୂପ) କାଗଜ ଉପରେ ଛପା
লিথো लिथो ଉଠାଯାଏ—Litho; lithography.

ଲିଥ(ଥୋ) ଛପା—ଦେ. ବି (ଇଂ. ଲିଥୋପ୍ରିଣ୍ଟିଙ୍ଗ୍)—ଚିତ୍ରାଦି ଖୋଦିତ
Litha(tho) chhāpā ପଥରରୁ ଉଠୁଥିବା ମୁଦ୍ରାଙ୍କନ—
লিথোছাপা लिथोछापा Litho printing.
(ଲିଥ[ଥୋ]ପ୍ରିଣ୍ଟିଙ୍ଗ୍, ଲିଥ(ଥୋ)ଗ୍ରାଫ୍ ଛପା, ଲିଥ(ଥୋ)ଗ୍ରାଫ୍ ପ୍ରିଣ୍ଟିଙ୍ଗ୍—ଅନ୍ୟରୂପ)

ଲିଥ(ଥୋ) ନକ୍ସା—ବୈଦେ. ବି (ଇଂ. ଲିଥୋ ମ୍ୟାପ୍)—ଲିଥୋ
Lith(tho) nak-sā ପଦ୍ଧତିରେ ଛପା ହୋଇଥିବା ନକ୍ସା—
লিথোনক্সা लिथोनक्सा Litho map; lithographed map.
ଲିଥ(ଥୋ) ଗ୍ରାଫ୍ ନକ୍ସା,
ଲିଥ(ଥୋ) ଗ୍ରାଫ୍ ମେ(ମ୍ୟା)ପ୍ } ଅନ୍ୟରୂପ
ଲିଥ(ଥୋ) ମେ(ମ୍ୟା)ପ୍

ଲିଥ(ଥୋ) ପ୍ରେସ୍—ବୈଦେ. ବି (ଇଂ. ଲିଥୋ ପ୍ରେସ୍)—ଯେଉଁ
Litha(tho) pres ମୁଦ୍ରାଯନ୍ତ୍ରରେ ଲିଥୋ ପ୍ରଣାଳୀରେ ପୁସ୍ତକାଦି [ଲିଥ(ଥୋ) ଗ୍ରାଫ୍ ପ୍ରେସ୍—ଅନ୍ୟରୂପ] ଛପା କରାଯାଏ—
লিথোপ্রেস लिथोप्रेस Litho press

ଲିଦ - ଗ୍ରାଦେ (କଟକ ସହର) ବି—ନିଦ (ଦେଖ)—Nida, (See)
Lida [ଉ—କାହିଁକି ! ମଲ ! ଅଶ୍ଵର ଏତେବେଳଯାଏ ଲିଦ ଭାଙ୍ଗି ନାହିଁ । ଘଉଡ଼ାଚରଣ. କଟକବଜାର ।]

ଲିନି(ଲି)ମେଣ୍ଟ—ବୈଦେ. ବି (ଇଂ. ଲିନିମେଣ୍ଟ୍)—ବେଦନାଦି
Lini(li)meṇt ନିବାରକ ଔଷଧ ଉପାଦାନ ମିଶ୍ରିତ ତୈଳ ବା
লিনিমেন্ট ଲେପ—Liniment. [ଉ—ଏହାକୁ ବେଦନାଯୁକ୍ତ
लिनिमेंट ଅଙ୍ଗରେ ମାଲିସ୍ କରାଯାଏ ।]

ଲିନେ(ଲେ)ନ୍—ବୈଦେ. ବି (ଇଂ. ଲିନେନ୍)—ଝୋଟ ଓ ଛଣପଟରୁ
Line(le)n ଅତି ସୂକ୍ଷ୍ମ ତନ୍ତୁ ବାହାର କରାଯାଇ ତଦ୍ଵାରା ବୁଣା ହୋଇ
লিনেন ଥିବା ଶୁକ୍ଳ, ଘନ ଓ ସରୁ କନା—
लिनेन Linen.

ଲିପ (ଧାତୁ)—ସ.—୧ । କୌଣସି ପଦାର୍ଥ ଉପରେ ତରଳ ପଦାର୍ଥ
Lip (root) ଘଷିଲା କରି ବୋଳିବା; ଲେପିବା—1. To plaster; to smear; to anoint. [ଦ୍ର—ଏଥି ପୂର୍ବରେ ପ୍ର, ଅନୁ, ସମ୍ ଆଦି ଉପସର୍ଗ ଯୁକ୍ତ ହୁଏ ।] ୨ । ଘୋଡ଼ାଇବା; ଆବୃତ କରିବା—2. To cover; to overspread. ୩ । କଳଙ୍କିତ କରିବା—3. To stain; to contaminate. ୪ । (କ୍ଵଚିତ୍) ଜାଳିବା—4. To enkindle; to inflame (Apte)

ଲିପ୍ ଇୟ(ୟା)ର୍—ବୈଦେ. ବି ( ଇଂ ଲିପ୍ ୟିଅର୍ )—୩୬୬ ଦିନ
Lip iya(yā)r ବିଶିଷ୍ଟ ଇଂରେଜି ବର୍ଷ—Leap year.
[ଲିପ୍ ୟ(ୟା)ର୍—ଅନ୍ୟରୂପ) [ଦ୍ର—ଯେଉଁ ସଂଖ୍ୟାକୁ ୪ ଦ୍ଵାରା
লিপ ইয়র ଭାଗ କଲେ ଭାଗଶେଷ ରହେ ନାହିଁ ତାହାକୁ
लीप इयर ଲିପ୍‌ଇଅର କହନ୍ତି—ଏହି ବର୍ଷର ଫେବୃୟାରୀ ମାସରେ ୨୮ ଦିନ ନ ହୋଇ ୨୯ ଦିନ ହୁଏ । ଏହି ବର୍ଷ ମଧ୍ୟରେ ଖ୍ରୀଷ୍ଟିୟ ପର୍ବମାନ ନିର୍ଦ୍ଧାରିତ ଦିନରେ ନ ପଡ଼ି ଏକଦିନ ପରେ ପଡ଼େ । ଇ. ଲିପ୍ = ଲମ୍ଫିବା—ଅର୍ଥାତ୍ ଗୋଟାଏ ଦିନ ଡେଇଁ ପର୍ବ ପଡ଼େ । ଏଣୁ ଏ ବର୍ଷର ନାମ ଖ୍ରୀଷ୍ଟିଅନ୍ ରାଜ୍ୟମାନଙ୍କରେ ଲିପ୍‌ଇଅର୍ ନାମରେ ଖ୍ୟାତ ।]

ଲିପ—ସ ବି ( ଲିପ୍ ଧାତୁ + ଭାବ. ଅ )—ଅଲମ୍ପନ; ଲିପିବା—
Lipa Smearing; plastering; anointing ( Apte ).

ଲିପତ—ଗ୍ରା ( ପଦ୍ୟ ) ବିଣ—(ସ. ଲିପ୍ତ)—ଲିପ୍ତ ( ଦେଖ )
Lipat Lipta ( See )

ଲିପା—ଦେ. ବି ( ସ. ଲିପ୍ ଧାତୁ )—୧ । ଅଲିମ୍ପନ; ଲେପନ—1.
Lipā Smearing. ୨ । ଘର ଆଦିର କାନ୍ଥରେ ବା ତଳରେ
লেপা ଚୂନ, ଗୋବର ଓ ମାଟି ଆଦିର ଲେପ ବୋଳିବା—
लीपना 2. Smearing the wall or floor or ground with water and clay or cowdung:
লি(লে)পা water. ଦେ. ବିଣ—ଲେପିତ—Smeared.
लिपाहुआ ( ଯଥା—ଲିପାଘର । )

ଲିପା(ପେ)ଇବା—ଦେ. କ୍ରି—(ଲିପିବା କ୍ରିୟାର ଣିଜନ୍ତରୂପ) ଅନ୍ୟଦ୍ଵାରା
Lipā(pe)ibā ଲେପିବା କିମ୍ବା କରାଇବା—To cause to
লেপান लिपवाना smear.

ଲିପା ଝୋଟି - ଦେ. ବି ( ସହଚର ) ( ସ. ଅଲେପନା )—ଘରର
Lipā jhoṭi କାନ୍ଥ ଆଦିକୁ ଲିପିବା ଓ ଲିପିବା ସ୍ଥାନରେ ପିଠଉରେ
আল(লি)পনা ବା ଚୂନରେ ଚିତ୍ର କରିବା—Smearing of
अहिपन the walls and painting them with a white liquid.

ଲିପା ପୋଛା—ଦେ. ବି ( ସହଚର )—ଗୃହ ଆଦିକୁ ମାର୍ଜନ କରି ଓ
Lipā pochhā ଓଳାଇ କାନ୍ଥ ଆଦିରେ ମାଟି ବା ଗୋବର ଆଦି
লেপাপোঁছা ଲେପିବା—Cleansing and smearing the
लिपा पोछा, लिपापोता house with water etc.
(ଲିପାଲିପି—ଅନ୍ୟରୂପ) [ ଉ—ଲିପାପୋଛା କରି କେଉଁ କୋଠା ଏଣକୁଛି । ଗ୍ରାଚୀ. ବୃନ୍ଦାବନରୂପଶଗୀତା । ]
ଦେ. ବିଣ—ମାଜିତ ଓ ଲେପିତ ( ଗୃହାଦି )—
Cleansed and smeared.

**ଲିପା ମୁରୁଜ**—ଦେ. ବି ( ସହଚର )—ଘରର ଚଟାଣକୁ ଲିପିବା ଏବଂ
Lipā muruja ଲିପିବା ପରେ ଲିପା ଜାଗାରେ ମୁରୁଜ ବା
ଆଲିପନା, ଆଳପନା ଚିତ୍ରାଦ୍ୱାରା ଚିତ୍ର ଅଙ୍କନ କରିବା—
अल्पिन Cleansing or smearing a floor and drawing figures with powder over it.

**ଲିପାରି**—ଦେ. ବି ( ନାମ ) ( ଇଂ. ଲିପାରି ଅଇଲଣ୍ଡସ୍ )—ଇଟାଲିର
Lipāri ଦକ୍ଷିଣସ୍ଥ ସିସିଲି ଦ୍ୱୀପର ଉତ୍ତରପୂର୍ବ କୋଣବର୍ତ୍ତୀ
( ଲିପାରି ଦ୍ୱୀପପୁଞ୍ଜ—ଅନ୍ୟରୂପ ) ଦ୍ୱୀପପୁଞ୍ଜ—The Lipari
लिपारी islands to the north-east of Sicily.
**लिपारी** [ ଦ୍ର—ଏଠାରେ ଷ୍ଟ୍ରମ୍ବୋଲି ନାମରେ ପ୍ରସିଦ୍ଧ ଆଗ୍ନେୟ ଗିରି ଅଛି । ]

**ଲିପା ଲେସା**—ଦେ. ବି—କାନ୍ଥ ଆଦିକୁ ଘିବା ଏବଂ ତହିଁରେ ଥିବା
Lipā lesā ଫାଟ ଓ ଛିଦ୍ରମାନଙ୍କରେ ମାଟିଘିଣ୍ଡ ବୋଳିବା—
लेपापोंछा Filling up the cracks with clay
**लीपना पोतना** and smearing the walls with water.
(ଲେସାଲିପା—ଅନ୍ୟରୂପ)

**ଲିପି(ପୀ)**—ସଂ. ବି ( ଲିପ୍ ଧାତୁ + ଭାବ. ଇ; ଈ )—୧ । ଲେଖନ;
Lipi(pī) ଲେଖା—1. Writing. ୨ । ( + କର୍ମ. ଇ)
ଲିଖିତ ପତ୍ରାଦି—2. A written letter. ୩ ।
ଦଲିଲ—3. Document. ୪ । ( + ଭାବ. ଇ )
ଅଙ୍କନ; ଚିତ୍ରକରଣ—4. Drawing. ୫ । ( + କର୍ମ. ଇ ) ଅକ୍ଷର—5. Letter; alphabet; script. ୬ । ( + କରଣ. ଇ) ବର୍ଣ୍ଣମାଳା ଅଙ୍କିତ କରିବା ପଦ୍ଧତି ବା ପ୍ରଣାଳୀ—6. The mode of writing the alphabet.

**ଲିପିକ(କା)ର**—ସ. ବି. ପୁଂ—(ଲିପି + କୃ ଧାତୁ + କର୍ତ୍ତୃ. ଅ)—୧ ।
Lipika(kā)ra ଲେଖକ—1. Writer; scribe; a penman. ୨ । ଯେ ନକଲ ଲେଖେ;
[ଲିପିକରୀ, ଲିପିକାରଣୀ—ସ୍ତ୍ରୀ] ନକଲ ନବିସ୍—2. A copyist.
୩ । ଚିତ୍ରକର—3. Painter. ୪ । ଯେ ଘରର କାନ୍ଥ ଆଦିରେ ଚୂନ ଲିପେ ଓ ସଫେଦ କରେ—4.
A whitewasher, a plasterer (Apte).
ଦେ. ବି. ପୁଂ—୧ । ଯେ ଛପା ଅକ୍ଷରମାନଙ୍କୁ ଏକତ୍ର ବସାଏ—1. A compositor in a printing press. ୨ । ଯେ ଅକ୍ଷରକୁ ମୁଦ୍ରାଯନ୍ତ୍ରଦ୍ୱାରା କାଗଜ
लिपिकर **लिपिकर** ଉପରେ ଛାପେ—2. A printer.

**ଲିପିକର ପ୍ରମାଦ**—ସ. ବି.—ଲେଖିବା ଲୋକର ଲେଖିବା ବେଳେ
Lipikara pramāda ହେବା ଭୁଲ; ଲେଖକର ଲେଖନକାଳୀନ
ଲିପିକର ଭ୍ରମ } —ଅନ୍ୟରୂପ ଭ୍ରମ—Mistake or slip
ଲିପିକର ଦୋଷ } of the pen committed by a writer or copyist
ଦେ. ବି.—ଛାପାଖାନାରେ ଅକ୍ଷର ଯୋଡ଼ିବାବାଲାର ଦୋଷ ବା ଭ୍ରମ—Printer's mistake;
लिपिकर प्रमाद.. **लिपिकर प्रमाद** printing, mistake.

**ଲିପି କଳା**—ସ. ବି. (ରୂପକ)—ଲିପି ବିଦ୍ୟା (ଦେଖ)
Lipi kalā Lipi bidyā (See)

**ଲିପିକା**—ସ. ବି—(ଲିପି + ସ୍ୱାର୍ଥେ + କ + ଆ)—ଲେଖା; ଦଲିଲ—
Lipikā A writing.

**ଲିପି କୁଶଳ**—ସ. ବିଣ. ପୁଂ—(୭ମୀ ତତ୍)—୧ । ଲେଖିବା ବିଷୟରେ
Lipi kusala ପଟୁ—1. Expert in writing. ୨ ।
[ଲିପି କୁଶଳା—ସ୍ତ୍ରୀ] ଚିତ୍ର ବିଦ୍ୟାରେ ଦକ୍ଷ—2. Expert in drawing.
[ଲିପି କୁଶଳତା, ଲିପିକୌଶଳ—ବି]

**ଲିପି କୌଶଳ**—ସଂ. ବି—(୬ଷ୍ଠୀ ତତ୍ ବା ୭ମୀ ତତ୍)—ଲେଖିବାରେ
Lipi kausala ବାହାଦୁରୀ—Skill in writing, excellence in writing or painting; penmanship
ଲିପି ଚତୁରତା(ରୀ)
ଲିପି ଚତୁରତା
ଲିପି ପଟୁତା
ଲିପି ନୈପୁଣ୍ୟ) } —ଅନ୍ୟରୂପ

**ଲିପିତ**—ଦେ. ବିଣ. (ପ୍ରାଚୀନ ପଦ୍ୟ)—(ସଂ. ଲିପ୍ତ)—ଲିପ୍ତ; ଜଡ଼ିତ—
Lipita लिप्त **लिप्त** Involved; attached; addicted.
[ଉ—କର୍ମରେ ସେ ଲିପିତ କେବେହେଁ ନୁହନ୍ତି ।
କୃଷ୍ଣସିଂହ. ମହାଭାରତ ଶାନ୍ତି ।]

**ଲିପିନ୍ୟାସ**—ସଂ. ବି.—(୬ଷ୍ଠୀ ତତ୍)—ଲେଖିବାର କଳା ବା କୌଶଳ
Lipi nyāsa The art of writing (Apte).

**ଲିପି ଫଳକ**—ସଂ. ବି.—[ମ. ପ. ଲୋ]—୧ । ଲେଖିବା ପାଇଁ
Lipi phalaka ବ୍ୟବହୃତ ପଟା—1. Writing tablet or board. ୨ । (ଆଧୁନିକ) କଳା ପଟା—
2. Blackboard.

**ଲିପିବଦ୍ଧ**—ସଂ. ବିଣ—(୭ମୀ ତତ୍)—୧ । ଲିଖିତ—1. Written;
Lipi baddha noted. ୨ । ଲେଖା ହୋଇ ରଖାଯିବା—
2. Reduced to writing.

**ଲିପିବା**—ଦେ. କି—(ସଂ. ଲିପ୍ ଧାତୁ)—ଲେପିବା; କୌଣସି ବସ୍ତୁ
Lipibā ଉପରେ କୌଣସି ତରଳ ବସ୍ତୁକୁ ପତଳା କରି ବୋଳିବା
ଲେପା **लिपना** To anoint; to smear a liquid substance over a thing; to lay a thin layer of any liquid over a thing.
[ଦ୍ର—ଏ କ୍ରିୟାର ସହଚରରୂପେ ଲେଖିବା, ପୋଛିବା, ପୋଛି ଦେବା, ମୁରୁଜ ଦେବା ଆଦି କ୍ରିୟା ବ୍ୟବହୃତ ହୁଏ । ଘନ ତରଳ ପଦାର୍ଥ ଦେହ ଓ ସ୍ଥାନ ଆଦିରେ ଲିପାଯାଏ ଯଥା—(ଦେହରେ) ଚନ୍ଦନ ଲିପିବା; (କାନ୍ଥରେ) ଗୋବର, ମାଟି ଗୋବର, ଗେରୁ, ବଳମାଟି, ରଙ୍ଗ ଆଦି ଲିପିବା । [ଲିପାଯି(ହେ)ବା—କର୍ମବାଚ୍ୟରୂପ]

**ଲିପି ବାହୁଲ୍ୟ**—ସଂ. ବି—(୬ଷ୍ଠୀତତ୍)—ଲେଖାର ଆଧିକ୍ୟ—
Lipi bāhulya. Excess in writing.

**ଲିପି ବିଦ୍ୟା**—ସଂ. ବି—୧ । ଲେଖିବାର କଳା—1. The art
Lipi bidyā of writing; penmanship. ୨ । ଚିତ୍ର ବିଦ୍ୟା
—2. The art of drawing or painting.

ଲିପିଶାଳା—ସଂ. ବି—୧ । ଯେଉଁ ବିଦ୍ୟାଳୟରେ ହସ୍ତାକ୍ଷର ଶିକ୍ଷା
Lipiśālā ଦିଆଯାଏ—1. A writing school (Apte). ୨ । ଚିତ୍ର ବିଦ୍ୟାଳୟ—A school for painting.

ଲିପିସଜ୍ଜା—ସଂ. ବି—ଲେଖିବାର ସାମଗ୍ରୀ ( ଯଥା—କାଗଜ, କଲମ,
Lipisajjā କାଳି, ଦୁଆତ)—Writing materials or apparatus (Apte).

ଲିପୀ—ସ. ବି—ଲିପି (ଦେଖ)
Lipī Lipi (See)

ଲିପେଇ – ଦେ. ବି — ୧ । ଗୃହ ଆଦିକୁ ଲିପିବା ନିମନ୍ତେ ମୂଲିଆଙ୍କୁ
Lipei ଦିଆଯିବା ପାରିଶ୍ରମିକ—1. Wages paid to
ଲେପାଈ लिपाई labourers for smearing the floor and walls of a house. ୨ । ଲେପନକର୍ମ–2 The act of smearing.

ଲିପ୍ତ — ସ. ବିଣ ( ଲିପ୍ ଧାତୁ+କର୍ମ. ତ ) — ୧ । ଉପରେ ବୋଳା
Lipta ହୋଇଥିବା—1. Covered with a thin layer.
( ଲିପ୍ତା—ସ୍ତ୍ରୀ ) ୨ । ( ପୁଂ ) କୃତଲେପନ; ଚର୍ଚ୍ଚିତ—2. Anointed; smeared. ୩ । ସଂଯୁକ୍ତ; ସମ୍ମିଳିତ—3. Connected; joined; united. ୪ । ସଂବଦ୍ଧ; ଜଡ଼ିତ—4. Closely connected. ୫ । କୌଣସି ବିଷୟ ସଙ୍ଗେ ଦୃଢ଼ଭାବରେ ସମ୍ପର୍କଯୁକ୍ତ—5. Involved or complicated in a matter; concerned. ୬ । ପରସ୍ପର ସହିତ ସଂଯୁକ୍ତ – 6. Conjoined to each other. ୭ । ବିଷ ବୋଳା ହୋଇଥିବା ; ବିଷାକ୍ତ-7. Envenomed; poisoned. ୮ । ଖିଆ ହୋଇଥିବା; ଭୁକ୍ତ—8. Eaten (Apte). ସଂ. ବି—ଲିପ୍ତା ଦେଖ)—Liptā (See).

ଲିପ୍ତକ—ସଂ. ବି ( ଲିପ୍ତ+ସଂଜ୍ଞାର୍ଥେ. କ )—ବିଷଦିଗ୍ଧ ଶର—
Liptaka Poisoned arrow; envenomed shaft (Apte).

ଲିପ୍ତ ପ(ପା)ଦ—ସଂ. ବିଣ. ପୁଂ (ବହୁବ୍ରୀହି)—ଯାହାର ପାଦର ଅଙ୍ଗୁଳି-
Lipta pa(pā)da ମାନ ଚର୍ମଦ୍ୱାରା ପରସ୍ପର ସହିତ ସଂବଦ୍ଧ—
[ଲିପ୍ତ ପ(ପା)ଦା—ସ୍ତ୍ରୀ] Web-footed. ସଂ. ବି—ହଂସପଦୀ ପ୍ରାଣୀ-Web-footed animal.

ଲିପ୍ତ ହସ୍ତ—ସଂ. ବିଣ. ପୁଂ—୧ । ଯାହାର ହାତର ଅଙ୍ଗୁଠିମାନ ଚର୍ମ
Liptahasta ଦ୍ୱାରା ଅବଦ୍ଧ—1. Having the
(ଲିପ୍ତହସ୍ତା—ସ୍ତ୍ରୀ) fingers of the hand conjoined with skin; having the fingers of the hand woven together or lightly held together (either from birth or through spasms), ୨ । ଯାହାର ହାତରେ ରଙ୍ଗ ଅବ ବୋଳା ଯାଇଅଛି—2. Having the hands smeared and stained (M. W).

ଲିପ୍ତା—ସଂ. ବି—ଏକ ଲିତା ସମୟ; ଏକ ଦଣ୍ଡର ୬୦ ଭାଗରୁ ଏକ
Liptā ଭାଗ; ଅତି ସୂକ୍ଷ୍ମ କାଳ; ଏକ ପଳ; ୨୪ ସେକେଣ୍ଡ୍—
(ଲିପ୍ତିକା—ଅନ୍ୟରୂପ) (ଓଡ଼ିଆ 'ଲିତା' ଶବ୍ଦ ଏହି ଶବ୍ଦରୁ ଅପଭ୍ରଷ୍ଟ)
A minute portion of time; 24 seconds.
[ଦ୍ର—୧ ଦଣ୍ଡ=୨୪ ମିନିଟ୍ ।
୧ ଦଣ୍ଡ=୬୦ ଲିପ୍ତା ବା ପଳ ।
୧ ଲିପ୍ତା=୬୦ ବିଲିପ୍ତା ବା ବିପଳ । ]

ଲିପ୍ସା—ସଂ. ବି (ଲଭ୍ ଧାତୁ=ପାଇବା+ଇଚ୍ଛାର୍ଥେ. ସନ୍+ଭାବ.+ଅ
Lipsā ଆ )—୧ । ଲଭିବାର ଇଚ୍ଛା; ଲାଭେଚ୍ଛା—1 A desire to gain or acquire a thing ୨ । ଲାଳସା—2. Hankering after a thing. ୩ । କାମନା—3. Desire; wish. ୪ । ଲୋଭ—4. Covetousness; cupidity.

ଲିପ୍ସିତ—ସଂ. ବିଣ ( ଲିପ୍ସା+ସଞ୍ଜାତାର୍ଥେ. ଇତ )—୧ । ବାଞ୍ଛିତ—
Lipsita 1. Desired; wished for; coveted after. ୨ । ଅଭିଲଷିତ—2. Eagerly sought after, longed for. ୩ । ଅଭିଲାଷବିଶିଷ୍ଟ; ଲାଳାୟିତ—3, Hankering after.

ଲିପ୍ସୁ—ସଂ. ବିଣ (ଲଭ୍ ଧାତୁ+ଇଚ୍ଛାର୍ଥେ. ସନ୍+କର୍ତ୍ତୃ. ଉ)—କୌଣସି
Lipsu ବସ୍ତୁ ଲାଭ କରିବାକୁ ଇଚ୍ଛୁକ—Desirous of getting a thing; longing for; hankering after.

ଲିଫି ଲିଫା(ଫି)—ଦେ. ବି—ଝିପି ଝିପି ବର୍ଷା; ଛୋଟ ଛୋଟ ଟୋପାରେ
Liphi liphā(phi) ବର୍ଷା—Drizzling rain; drizzle.
ଝିପାଝିପ ବୃଷ୍ଟି [ଦ୍ର—୮ ଦୁମୁକାଣି ୧୬ ଅବସ୍ଥା, ୩୨ ଲିଫି ଲିଫି, फुहारा. झीसी ୬୪ ଭୁଣ୍ଡାହିସ, ତେବେ ଯାଇ ଚଷାର ପେଟ ଭୁଏ ମୁଦ୍ର । କୃଷିବଚନ ।] ଦେ. ବିଣ—ଟୁପୁରୁ ଟୁପୁରୁ; ଝୁପୁରୁ ଝୁପୁରୁ (ବର୍ଷା)—Drizzling (rain).

ଲିଵ(ଭା,ଭ,ଭା)ର୍ ପୁଲ—ବୈଦେ. ବି (ଇଂ. ଲିଭର୍ପୁଲ୍)—ଇଂଲଣ୍ଡର
Liba(bā,bha,bhā)r pul ପଶ୍ଚିମସ୍ଥ ଲାଙ୍କାସାୟାର୍ ଜିଲ୍ଲାର
लिभारपुल ନଗର ଓ ବନ୍ଦର ବିଶେଷ—The town and
लिमरपूल port of Liverpool in England.
[ଦ୍ର—ଏହା ସୂତା ଲୁଗା ଓ ଲୁଣ ଆଦିର ଗୋଟିଏ ପ୍ରଧାନ ବାଣିଜ୍ୟ କେନ୍ଦ୍ର ଓ ବନ୍ଦର ।]

ଲିବର(ବ୍ରା)ଲ୍—ବୈଦେ. ବି (ଇଂ. ଲିବରାଲ ପାର୍ଟି)—ଇଂଲଣ୍ଡର
Libara(rā)l ସ୍ୱାଧୀନତାର ଦଳ ବିଶେଷ; ଉଦାରନୀତିକ ଦଳ—
लिबाराल लिबरल The Liberal party of England.
( ଲିବର[ବ୍ରା]ଲ ଦଳ—ଅନ୍ୟରୂପ ) ( କନ୍ସର୍ଭେଟିଭ୍—ବିପରୀତ)

ଲିବା—ଦେ. ବି—ଲିଭା (ଦେଖ)
Libā Libhā. (See)

ଲିବା(ବେ)ଇବା—ଦେ. କି—ଲିଭାଇବା (ଦେଖ)
Libā(be)ibā Libhāibā. (See)

ଲିବ(ବୀ) —ସ. ବ (ଲିପ୍ ଧାତୁ+ଭାବ. ଇ,ଈ; ଲପାରନ)-ଲିପି (ଦେଖ)
Libi(bi) Lipi. (See)

ଲିବିବା ଦେ. କି—ଲିଭିବା (ଦେଖ)—Libhiba. (See)[ଉ—
Libiba ବରହିବାକ ପଦଣ ତର୍ଜକରେ ଲିବ । ବଞ୍ଚ.
ବୈଦେହୀଶବିଳାସ ।]

ଲିଭ(ଭା)ର୍—ବୈଦେ. ବ—୧ । (ଇଂ. ଲିଭର୍) ଯକୃତ୍; କଳାବୃକ୍କ—
Libha(bha)r 1. Liver. ୨ । (ଇଂ. ଲେଭର୍) ଅଳ୍ପ ବଳ
ଲିଭାର ପ୍ରୟୋଗ ଦ୍ୱାରା ଗୁରୁ ଭାର ବସ୍ତୁକୁ ଉଠାଇବାର ଯନ୍ତ୍ର; ତଳେ
ଲିଭର ଆଧାର ଦେଇ ଉପରଭାଗ ଅଗ୍ରରେ ଭାର ପ୍ରୟୋଗ ପୂର୍ବକ ଭାରି
ବସ୍ତୁକୁ ଉଠାଇବା ପାଇଁ ବ୍ୟବହୃତ ଲମ୍ବ ଦଣ୍ଡ—
2. Lever.

ଲିଭା—ଦେ. ବ (ସ. ନିର୍ବାହ)—ନିର୍ବାହ—
Libha Conducting.

ଲିଭା(ଭେ)ଇବା—ଦେ. କି (ସ. ନିର୍ବାପ)—୧ । ଲିଭିବା କ୍ରିୟାର
Libha(bhe)iba ଣିଜନ୍ତ ରୂପ—1. Causative of
निभा(बा)ना Libhiba. ୨ । ନିଭାଇବା (ଦେଖ)—2. Nibha-
बुझाना, निमाना iba. (See) ୩ । (ଲକ୍ଷଣାର୍ଥ) (ନାମ) ଲୋପ
କରିବା—3. (figurative) To cause to dis-
appear; to wipe out. [ଉ—ତୋ ନାମ ଲିଭାଇ
ଦେବି ଥିବ ପୃଥିବୀରୁ । ମଧୁସୂଦନ. ବାଲ୍ମୀକୀପୂର୍ଣ ।]
୪ । ଅଗ୍ନି ବା ଆଲୋକକୁ ନିର୍ବାଣ କରିବା; ନିର୍ବାପିତ
କରିବା—4. To extinguish a light or fire.
[ଉ—କି ବାଇ ହୋଇଲି ଲିଭାଇବି ବୋଲି ସୁର
ଧନଞ୍ଜୟ ହେବ ଗୋ । ଜଗତ୍ସୂର୍ଯ୍ୟ. ସଗୀତ । ] ୫ ।
ଲେଖା ଆଦିକୁ ପୋଛି ଦେବା—5. To wipe out a
अनुभव करना writing. ୬ । (ସଂ. ନିର୍ବାହ) କୌଣସି କାର୍ଯ୍ୟକୁ
निबाहना, निमाना ନିର୍ବାହିତ କରିବା —6. To conduct a
work. ୭ । ଅନୁଭବ କରିବା—7. To experi-
चलाना ence. ୮ । କୌଣସି ବ୍ୟକ୍ତିକୁ ପାଳିବା, ପୋଷିବା ବା
ଚଳାଇ ନେବା—8. To maintain or cherish a
person; to enable a person to get on.

ଲିଭାଲିଭି କରିବା—ଦେ. କି—ନିଭାନିଭି କରିବା (ଦେଖ)
Libhalibhi kariba Nibhanibhi kariba. (See)

ଲିଭା ହେବା—ଦେ. କ୍ରି—୧ । (ସ. ନିର୍ବାହ) କୌଣସି ସ୍ଥାନରେ
Libha heba ଚଳିବା—1. To get on at a place. ୨ ।
निर्वाह होना ଜୀବିକା ନିର୍ବାହ କରିବା—2. To get on with
निबहना one's living; to eke out one's existence.
निभाना होना ୩ । (ସ. ନିର୍ବାପିତ) ଲିଭିବାର କର୍ମବାଚ୍ୟ—
निभाहुआ, बुझाहुआ 2. To be extinguished by some
one.

ଲିଭିବା—ଦେ. କି—୧ । (ସ. ନିର୍ବାପିତ) ପ୍ରଦୀପ ଆଦି ନିର୍ବାପିତ
Libhiba ହେବା—1. To be extinct; to go out
निभा(बा) (said of light or fire). ୨ । (ଲେଖା ଆଦି)
बुझना, मिटना ପୋଛି ହୋଇ ଅଦୃଶ୍ୟ ହେବା—2. To be
निर्वाहहोना नबहना wiped out; to disappear.
୩ । (ସ. ନିର୍ବାହ) ଚଳିବା; ଚଳପ୍ରଚଳ ହେବା; ଜୀବନ-
ଯାତ୍ରା ନିର୍ବାହ କରିବା—3. To live; to get on;
to move and have one's being.

ଲିଭିଯିବା—ଦେ. କି—୧ । ମୁଦ୍ରିତ ହୋଇଯିବା; ବୁଜିହେବା—
Libhijiba 1. To be closed. ( ଉ—ନେତ୍ର ଲିଭିଯିବା
चलसेयाओना चकाचौंधीआना ବ୍ରହ୍ମ ରୂପକୁ ଗୃହିଲେ—
निभेयाओना निमजाना ପ୍ରାଚୀ. ବ୍ରହ୍ମନିରୂପଣଗୀତା । ]
୨ । ( ଦୀପ ଆଦିକୁ ) ନିର୍ବାପିତ ହେବା—(a light)
To go out of itself.

ଲିଭିଲା—ଦେ. ବଣ—ନିଭିଲା (ଦେଖ)
Libhila Nibhila (See)

ଲିମ୍—ପ୍ରାଦେ (କଟକ) ବ—ନିମ୍ବ (ଦେଖ)
Lim Nimba (See)

ଲିମ୍(ମ)ନେଟ୍(ଡ୍)—ବୈଦେ. ବ (ଇଂ. ଲେମୋନେଡ୍)—ଲେମନେଡ୍
Lim(ma)net(d) (ଦେଖ)—Lemaned(See)

ଲିମ—ଦେ. ବ (ସ. ନିମ୍ବ) ନିମ (ଦେଖ)
Lima Nima (See)

ଲିମକଣ୍ଟା—ଦେ. ବ—ନିମକଣ୍ଟା (ଦେଖ)
Limakanta Nimakanta (See)

ଲିମଞ୍ଚୁ(ଞ୍ଜୁ)ସ୍—ବୈଦେ. ବ (ଇଂ. ଲେଜେଞ୍ଚସ୍)—ଲଜଞ୍ଚୁସ୍ (ଦେଖ)
Limanchu(nju)s Lajanchus (See)

ଲିମିଟେଡ୍ କମ୍ପାନୀ—ବୈଦେ. ବ (ଇଂ. ଲିମିଟେଡ୍ କମ୍ପାନୀ)—ଯେଉଁ
Limited kampani ଯୌଥ ବ୍ୟବସାୟରେ ଅଂଶୀଦାର-
लिमिटेडकम्पानी लिमिटेडकंपानी ମାନଙ୍କ ଅଂଶ (ସେଅର୍)ର
ପରିମାଣ ଅନୁପାତରେ ସେମାନଙ୍କୁ ଦାୟୀ ହେବାକୁ ହୁଏ—
Limited company.

ଲିମ୍ପ—ସ. ବ ( ଲିପ୍ ଧାତୁ+କର୍ତ୍ତୃ. ଅ )—୧ । ଲେପନକାରୀ—
Limpa 1. One who smears or plasters
୨ । ( +ଭାବ. ଅ ) ଲେପନ—2. Smearing
plastering (M.W)

ଲିମ୍ପଟ—ସ. ବଣ. ପୁଂ (ଲିପ୍ ଧାତୁ+କର୍ତ୍ତୃ. ଅଟ)—ଲମ୍ପଟ; କାମୁକ—
Limpata Lascivious; libidinous. ସ. ବ. ପୁଂ.
ଲିମ୍ପଟ ବ୍ୟକ୍ତି—A lecher (Apte)

ଲିମ୍ପାକ—ସଂ. ବ (ଲିପ୍ ଧାତୁ+କରଣ. ଆକ)—୧ । ଲେମ୍ବୁ ଗଛ—
Limpaka 1. Lemon tree. ୨ । କାଗଜିଲେମ୍ବୁ—
2. Citrus Acida; lime fruit. ୩ । ଗର୍ଦ୍ଦଭ;
ଗଧ—3. The ass.

ଲିମ୍ପା ଫଳ—ସଂ. ବ—ଲେମ୍ବୁ ( ଦେଖ )—Lembu (See)
Limpa phala ( କବିରାଜ ହରେକୃଷ୍ଣ ମିଶ୍ରଙ୍କ ପ୍ରଣୀତ
"ଦ୍ରବ୍ୟଗୁଣ" । )

ଲିମ୍ପି—ସଂ. ବ (ଲିପ୍ ଧାତୁ+ଭାବ, କର୍ମ. ଇ)—ଲିପି (ଦେଖ)
Limpi Lipi (See)

ଲିମ୍ଫ—ବୈଦେ. ବି (ଇଂ. ଲିମ୍ଫ)—ପୂଜ; ବସନ୍ତ ଆଦିର ସ୍ଫୋଟକ
Limph ମଧ୍ୟରୁ ସଂଗୃହୀତ ପୂଜ; ବସନ୍ତ ଆଦିର ସ୍ଫୋଟକ
লিম্ফ ळिंफ ମଧ୍ୟରୁ ସଂଗୃହୀତ ପୂଜ ବା ଲାଳ—
Lymph.

ଲିମ୍ବ(ଇତ୍ୟାଦି)—ଦେ. ବି (ସଂ. ନିମ୍ବ)—ନିମ୍ବ ଇତ୍ୟାଦି (ଦେଖ)
Limba (etc) Nimba etc (See)

ଲିମ୍ବକଡ଼ି—ପ୍ରାଦେ. (ଯାଜପୁର) ବି—ଶିଶୁମାନଙ୍କର ଅଣ୍ଟାରେ ପିନ୍ଧାଯିବା
Limba kardhi ଗହଣାବିଶେଷ—A kind of waist chain
worn by infants.

ଲିୟ(ୟା)ଣ—ଦେ. ବି—ଲିଅଣ (ଦେଖ)
Liya(yā)na Liana (See)

ଲିୟତ—ପ୍ରାଦେ (କଟକ ସହର) ବି—ଲିଅତ [ଦେଖ]
Liyata Liata (See)

ଲିୟା (ଇତ୍ୟାଦି)—ଦେ. ବି—ଲିଆ ଇତ୍ୟାଦି (ଦେଖ)
Liyā (etc) Liā etc. (See)

ଲିୟାକତ୍—ବୈଦେ. ବି—ଲିଆକତ୍ (ଦେଖ)
Liyākat Liakat (See)

ଲିୟାଜ—ବୈଦେ. ବି—ଲିହାଜ (ଦେଖ)
Liyāja Lihāja. (See)

ଲିୟାର—ପ୍ରାଦେ (କଟକ ସହର) ବିଣ—ନିଆର (ଦେଖ)
Liyārā Niārā. (See)

ଲିୟେ—ଦେ. ଅ—ଲିଏ (ଦେଖ)
Liye Lie. (See)

ଲିଲାମ(ମି) (ଇତ୍ୟାଦି)-ପ୍ରାଦେ. (କଟକ ସହର) ବି-ନିଲାମ ଇତ୍ୟାଦି (ଦେଖ)
Lilām(mi) (etc) Nilāma, etc (See)

ଲିଶ୍ (ଧାତୁ)—ସ—୧। ଅଳ୍ପ ହେବା—1. To become little.
Liś (root) ୨। କମିଯିବା—2. To dwindle.

ଲିଶି(ଶୁ)ଣୀ—ଦେ. ବି (ସଂ. ନିଃଶ୍ରେଣୀ)—ନିଶୁଣୀ (ଦେଖ)
Liśi(śu)ṇi Niśuṇi. (See)

ଲିଶୁଡ଼ିବା—ଦେ. ବି—ଲେଶଡ଼ିବା (ଦେଖ)
Liśurdibā Leśardibā. (See)

ଲିଷ୍ଟ(ଷ୍ଟି)—ବୈଦେ. ବି (ଇଂ. ଲିଷ୍ଟ)—୧। ତାଲିକା; ଫର୍ଦ୍ଦ—
Lisht(shti) 1. List. ୨। ଧାରା; ନିୟମ—2. Rule;
লিষ্ট(ষ্টি) regularity. ୩। ନିଶ୍ଚିତ ନିୟମ—3 Unchange-
लिस्ट able rule. ୪। ନିର୍ଦ୍ଦିଷ୍ଟ ସମୟ—4. Fixed time
লিষ্টি, নিষ্টি ୫। (ଇଂ. ନେଷ୍ଟ) ଏକ ପ୍ରକାର ଧାଡ଼ିର ଭିନ୍ନ ଭିନ୍ନ
ଲମ୍ବ ଓ ଓସାରର କଳ ଲୁଗା- 5. Mill-made cloths
of the same border but of different sizes.

ଲିଷ୍ଟି କଣ୍ଟା—ଦେ. ବି—ବାଡ଼ ପାଇଁ ରୋପିତ ଏକପ୍ରକାର କଣ୍ଟକୀଗୁଳ୍ମ;
Lishṭi kaṇṭā ମେହେନ୍ଦି (ଦେଖ)—A kind of thorny
plant grown on hedges, Tylophora
Asthamatica.

ଲିଷ୍ୱ—ସଂ. ବି. ପୁଂ (ଲିଷ୍ ଧାତୁ=ନୃତ୍ୟ କରିବା+କର୍ତ୍ତୃ. ବନ୍)—
Lishwa ନଟ; ନର୍ତ୍ତକ; ନୃତ୍ୟବ୍ୟବସାୟୀ—A professional
[ନିଷ୍ୱା—ସ୍ତ୍ରୀ] dancer; an actor. (Apte)

ଲିସ୍-ବନ୍—ବୈଦେ. ବି (ନାମ)—ପର୍ତ୍ତୁଗାଲ ରାଜ୍ୟର ପ୍ରଧାନ ନଗର—
Lisban The capital of Portugal.
লিস্‌বন্‌ लिस्‌बन

ଲିହ୍ (ଧାତୁ)—ସ—୧। ଚାଟିବା—1, To lick. ୨। ଚାଖିବା—
Lih (root) 2. To taste.

ଲିହଙ୍ଗ(ଙ୍ଗୀ)—ଦେ. ବି—ନିହଙ୍ଗ (ଦେଖ)
Lihanga (ṅgi) Nihanga. (See)

ଲିହଣ—ଦେ ବି (ସଂ. ଲିଖନ, ଲୌହବୃନ୍ତ, ନିହାଣି)—
Lihaṇa କାଠବେଣ୍ଟ ନ ଥିବା ବଢ଼େଇଙ୍କର ବଟାଳି—
নিয়া(হা)নি A chisel, without a wooden handle;
निहानी, रुखानी iron chisel, [ଦ୍ର—ଏଥିର କାଷ୍ଠଚ୍ଛେଦନକାରୀ
[ଲେହଣ—ଅନ୍ୟରୂପ] ଲୌହଫଳକ ବଟାଳିର ଫଳକ ଅପେକ୍ଷା
ଶ୍ରେଷ୍ଠ ଓ ସ୍ଥୂଳତର।]

ଲିହମା—ଦେ. ବି—ଲହିମା (ଦେଖ)
Lihamā Lahimā. (See)

ଲିହାଇ—ଦେ. ବି—୧। (ସଂ. ନାଇ ବା ଲୌହ; ସଂ. ନାମ ଧାତୁ)—
Lihāi ନେହ; ନିହାଇ, କମାର ଯେଉଁ ଲୌହପିଣ୍ଡ ଉପରେ
নিযা(হা)(ই, নে,না)ই ତାତିଲା ଲୁହାକୁ ରଖି ହାତୁଡ଼ିରେ
निहाई ପିଟନ୍ତି—1 Anvil. ୨। (ସଂ. ଲେହ) ଲେହ; ମଇଦାକୁ
[ମ. ଖରଠ] ପାଣିରେ ସିଦ୍ଧ କରି ତିଆରି କରାଯିବା ଅଠା—
লেই 2. Gum or sticking paste made by boiling
लेइ flour in water,

ଲିହାଜ—ବୈଦେ. ବି (ଫା. ଲିହାଜ୍)—୧। ନିଆଜ (ଦେଖ)—
Lihāja 1. Niāja (See) ୨। ସ୍ମରଣ—2. Recollec-
স্মরণ tion; memory. ୩। ଦୃଷ୍ଟି—3, View. ୪। ବିଚାର—
लीहाज 4, Consideration, [ଉ—ଜମିଦାର ଏ ସବୁ ପୂର୍ବ
କାଳର ତହସିଲଦାରଙ୍କ ଉପରେ ଆପୃ ଉଠାଇ ଦେଇ କର୍ମ
ଲିହାଜରେ ଦରମା ବେଶୀ କରି ଦେଇଅଛନ୍ତି।
ଫକୀରମୋହନ, ମାମୁ।]

ଲିହାଜ କରିବା (ରଖିବା)—ଦେ. କ୍ରି.—ନିଆଜ କରିବା (ଦେଖ)
Lihāja karibā (rakhibā) Niāja karibā (See)
মনেরাখা, স্মরণরাখা लिहाजकरना (रखना)

ଲିହାଣ—ଦେ. ବି.—ଲିହଣ (ଦେଖ)—Lihaṇa (See)
Lihāṇa [ଉ—ଲିହାଣରେ ଦନ୍ତ ଘଷିଛି କ୍ଷୁର ଧରି, ଜଳ ତିର
ବୃକ୍ଷକୁ କାଟୁ ନ ଦଗୁର। କୃଷ୍ଣସିଂହ. ମହାଭାରତ ବନ।]

ଲିହାତି—ପ୍ରାଦେ. କଟକ ସହର ଅ.—ନିହାତି (ଦେଖ)
Lihāti Nihāti (See)

ଲିହିତ—ଦେ. (ପଦ୍ୟ) ବିଣ—(ସଂ. ଲିଖିତ)—ଲିଖିତ—
Lihita লিখিত लिखित Written.

ଲିହିବା—ଦେ. (ପଦ୍ୟ) କ୍ରି.—୧। (ସଂ. ଲିଖ୍ ଧାତୁ; ପ୍ରା. ଲିହ୍ ଧାତୁ)
Lihibā লেখা लिखना, लिहना ଲେଖିବା—1. To
write. [ଉ—ଲିହିଲେ ଚିଠାଉ, "ଧନ୍ୟ ଅଯୋଧ୍ୟା
ଈଶ୍ୱର।". ମଧୁସୂଦନ. ବାଲ ରାମାୟଣ।], ୨। (ସଂ.

ଲିହ୍ ଧାତୁ) ଗ୍ରହଣ କରିବା—2. To lick. [ ଉ—ପ୍ରଳୟ ଅଗ୍ନି ପରି ଜଳୁଛି ନୟନ, ଦେଉଛି ଜିଭେ ଲିହି ଲିହି ତା ସୃକ୍କଣ । କୃଷ୍ଣସିଂହ. ମହାଭାରତ ବନ ।]

**ଲିହିମା**—ଦେ. ଓ ବୈଦେ. ବି—(ସଂ. ନିମିଷ; ଅଂ. ଲହମଦ୍)—୧ । Lihimā ଲହମା ଲହମା ନିମିଷ—1. A moment. ୨ । କ୍ଷଣ ମାତ୍ର—2. A twinkle of the eye.

**ଲିହିମାଏ(କେ)**—ଦେ. ଅ.—ନିମିଷକେ—Lihimāe(ke) ଏକ ଲହମାଏ ଏକନିମେଷମେ In a moment.

**ଲୀ (ଧାତୁ)**—ସଂ.—ଲୀନ ହେବା—1. To merge in. ୨ । Lī (root) ଆଲିଙ୍ଗନ କରିବା—2. To embrace.

**ଲୀକ୍ଷା(କ୍ଷା)**—ସ. ବି—(ଲିଷ୍ ଧାତୁ+କର୍ମ. ଅ+ଆ, ନିପାତନ)—Likkā(kshā) ନିକ; ଉକୁଣିର ଡିମ୍ବ—A nit; the egg of louse.

**ଲୀଢ଼**—ସଂ. ବିଣ—(ଲିହ୍ ଧାତୁ+କର୍ମ. ତ)—୧ । ଯାହା ଚଟା Līṛdha ହୋଇଅଛି—1. Licked. ୨ । ଆସ୍ୱାଦିତ—2. Tasted. ୩ । ଭକ୍ଷିତ—3. Eaten; devoured. ୪ । ସ୍ପୃଷ୍ଟ—4. Touched, ୫ । ବିନାଶିତ 5. Destroyed (M. W)

**ଲୀନ**—ସଂ. ବିଣ.—(ଲୀ ଧାତୁ+କର୍ତ୍ତୃ. ତ)—୧ । କୌଣସି ବସ୍ତୁର Līna ଦେହରେ ଲୟ ପ୍ରାପ୍ତ; ମିଳାଇ ଯାଇଥିବା; ଅନ୍ତର୍ଭୁକ୍ତ—1. Dissolved in; absorbed in. ୨ । ମୃତ; ଧ୍ୱଂସ ପ୍ରାପ୍ତ; ବିନଷ୍ଟ—2. Destroyed. [ଉ—ବିଧା ବିଧାନେ ସୁଷେଣ କାଳ କାଳ କାଳଘଣ୍ଟ ଧ୍ୱନି ଲୀନ । ଉପେ. ବୈଦେହୀଶ ବିଳାସ ।] ୩ । ସମ୍ମିଳିତ—3. Intimately mixed. ୪ । ଲୁପ୍ତ—4. Disappeared; extinguished. ୫ । ଆଲିଙ୍ଗିତ—5. Embraced. ୬ । ଶୟିତ—6. Laid; sleeping. ୭ । ଲଗ୍ନ—7. Attached to. ୮ । ମଗ୍ନ; ତନ୍ମୟ—8. Absorbed in. ୯ । ପୂର୍ଣ୍ଣରୂପେ ଲଗ୍ନ—9. Clinging.

**ଲୀୟମାନ**—ସଂ. ବିଣ. ପୁଂ—(ଲୀ ଧାତୁ+କର୍ତ୍ତୃ. ଆନ)—ଲୟପ୍ରାପ୍ତ Līyamāna ହେଉଥିବା—Going to be absorbed in. [ଲୀୟମାନା—ସ୍ତ୍ରୀ]

**ଲୀଳା**—ସଂ. ବି.—(ଲୀ ଧାତୁ=ଆଲିଙ୍ଗନ କରିବା+ଭାବ. କ୍ୱିପ୍=Līlā ଲୀ; ଲୀ+ଲା ଧାତୁ=ଗ୍ରହଣ କରିବା+ଭାବ. ଅ+ଆ)—୧ । ଶୃଙ୍ଗାରଭାବଜନିତ କ୍ରିୟା ବିଶେଷ; ବିଭ୍ରମ; ହାବଭାବ; ଶୃଙ୍ଗାରସୂଚକ ଭଙ୍ଗୀ—1. Amorous sport; dalliance; lascivious exhibitions. ୨ । ଖେଳ; କ୍ରୀଡ଼ା; କେଳି—2 Play; sport. ୩ । ଶୋଭା—3 Beauty. ୪ । ଅଭିନୟ—4 Acting. ୫ । ଭଙ୍ଗୀ—5. Posture. ୬ । ନାନାବିଧ କାର୍ଯ୍ୟକଳାପ ଓ ବ୍ୟାପାର—6. Various acts and doings and events. ୭ । କୌତୁକ; ମଜ୍ଜା, ବିଳାସ—7. Enjoyment; merriment; amusement; mirth. ୮ । ଅଙ୍ଗ, ବେଶ, ଅଳଙ୍କାର, ପ୍ରୀତି ଓ ବାକ୍ୟଦ୍ୱାରା (ନାରୀର ଆପଣାର ପ୍ରିୟତମର ଅନୁକରଣ—8. Act of (a woman) imitating the lover's actions, gait, dress. ornament and postures. ୯ । ସଂସାରରେ ମନୁଷ୍ୟର ବା ଅବତାରଙ୍କର କାର୍ଯ୍ୟକଳାପ—9. The doings of a man or of an incarnation in this world. ଦେ. ବି—୧ । ସ୍ତ୍ରୀଲୋକର ନାମ—1. Name of females. ୨ । ଲୀଳାବତୀ ବା ନୀଳମଣି ଆଦି ସ୍ତ୍ରୀଙ୍କର ଡାକ ନାମ—2. Names for calling Līlābatī or Nīlamaṇi. ୩ । ଭୋଜନାଦି ଦ୍ୱାରା ଉତ୍ସବ—3. A festival. ୪ । ମହାଭାରତ, ଭାଗବତ, ରାମାୟଣର ଚରିତ ବର୍ଣ୍ଣନ ପୂର୍ବକ ନୃତ୍ୟଗୀତାଦି ଓ ଅଭିନୟ—4. Acting of the events of Rāmāyaṇa, Māhābhārata etc. by dancing and music. ୫ । (ସ. ନୀଳମଣି) ନୀଳ ମଣି—5. Sapphire (gem).

**ଲୀଳାଏ**—ଦେ. ଅ. (ପଦ୍ୟ)—ଅବଲୀଳା କ୍ରମେ; ଅକ୍ଳେଶରେ; Līlāe ସହଜରେ—With ease; without any exertion. [ଉ—ବଳେ ହରିଲେ ପାରିଜାତ, ଲୀଳାଏ ଜିଣି ଶଚୀନାଥ । ଜଗନ୍ନାଥ. ଭାଗବତ ।]

**ଲୀଳା କମଳ**—ସ. ବି.—(ମ. ପ. ଲୋ)—ଯେଉଁ ପଦ୍ମଫୁଲକୁ ଧରି Līlā kamala ଓ ହାତରେ ହଲାଇ ଲୋକେ କ୍ରୀଡ଼ା କରନ୍ତି—A toy lotus; a lotus held for sport. [ଉ—କରେ ଶୋଭଇ ଯହିଁ ଲୀଳାକମଳ । ରାଧାନାଥ. ମେଘଦୂତ ।]

**ଲୀଳାକର**—ସ. ବିଣ. ପୁଂ—(ଲୀଳା+କୃ ଧାତୁ+କର୍ତ୍ତୃ. ଅ)—କ୍ରୀଡ଼ାLīlākara କାରକ—Sporting; dallying. (ଲୀଳାକରୀ—ସ୍ତ୍ରୀ)

**ଲୀଳା କଳ୍ପ**—ଦେ. ବି—ଚେଷ୍ଟା ସମୂହ—Līlā kalpa Attempts. ଦେ. ବିଣ.—ଲୀଳା ଯୋଗୁଁ କଳ୍ପିତ—Contrived for sport. [ଉ—ତନ୍ତ୍ର ରଚନା କରିଛ ସେ ଲୀଳାକଳ୍ପେ । ପ୍ରାଚୀ ଭଙ୍ଗବାରିଧ ।]

**ଲୀଳା କାନନ**—ସ. ବି.—(ମ. ପ. ଲୋ; ଲୀଳାର୍ଥ ବ୍ୟବହୃତ କାନନ) Līlā kānana ବିଳାସ କାନନ; ଉପବନ; ବିହାରୋଦ୍ୟାନ—A grove; a pleasure garden.

**ଲୀଳାକ୍ଷେତ୍ର (ଭୂମି)**—ସ. ବି.—(୬ଷ୍ଠୀ ତତ୍)—କ୍ରୀଡ଼ା ଭୂମି; କ୍ରୀଡ଼ାର୍ଥ Līlā kshetra (bhūmi) ବ୍ୟବହୃତ ଭୂମି—The arena or ground of sports.

**ଲୀଳାକ୍ରମେ**—ଦେ. କ୍ରି. ବିଣ (ସ. ଲୀଳାକ୍ରମେଣ)—ଅକ୍ଳେଶରେ—Līlā krama Easily.

**ଲୀଳା ଖେଳ**—ସ. ବି—୧୫ ଅକ୍ଷର ବିଶିଷ୍ଟ ସଂସ୍କୃତ ଛନ୍ଦୋବିଶେଷ—Lilā khela Name of a Sanscrit metre consisting of 15 letttrs. ବିଣ. ପୁଂ—୧। (ବହୁବ୍ରୀହି) ବିଳାସୀ—1. Sportive. ୨। କ୍ରୀଡ଼ାଶୀଳ—2. Playful. ଦେ. ବି—ଲୀଳାଖେଳା [ଲୀଳା ଖେଳା—ସ୍ତ୍ରୀ] (ଦେଖ)—Lilākhelā (See)

**ଲୀଳା ଖେଳା**—ଦେ. ବି—(ଏକାର୍ଥକ ସହଚର ଶବ୍ଦ)—୧। ଲୀଳା ଓ Lilā khelā କ୍ରୀଡ଼ା; ଆମୋଦ ପ୍ରମୋଦ—1. Various লীলাখেলা sports and pastimes; amusements. लिलाखेला ୨। ଜୀବନଯାତ୍ରା; ଇହଲୀଳା—2. The doings of a person from birth till death; earthly existence. [ ପ୍ର—ସଂସାରର ଲୀଳାଖେଳା ସରିଲା ଅମୂଳ। ରାଧାନାଥ. ମହାଯାତ୍ରା ।]

**ଲୀଳାଗତି**—ସ. ବି.—ମ. ପ୍ର. ଯୋ;—ନାନା ମନୋହର ଭଙ୍ଗୀ ସହିତ Lilā gati ଗମନ—Sportive movements.

**ଲୀଳା ନିବୃତ୍ତି**—ସ. ବି (୬ଷ୍ଠୀ ତତ୍)—ଲୀଳା ସମାପନ (ଦେଖ) Lilā nibrutti Lilā samāpana. (See)

**ଲୀଳା ପୁରୁଷୋତ୍ତମ**—ସ. ବି—ଶ୍ରୀକୃଷ୍ଣ (ହି. ଶ) Lilā purushottama Srikrushna. [ପ୍ର—ରାମ ଓ ଶ୍ରୀକୃଷ୍ଣ ଏ ଦୁଇ ପ୍ରଧାନ ଅବତାରଙ୍କ ମଧ୍ୟରେ ରାମଙ୍କୁ ମର୍ଯ୍ୟାଦାପୁରୁଷୋତ୍ତମ ଓ କୃଷ୍ଣଙ୍କୁ ଲୀଳାପୁରୁଷୋତ୍ତମ ବୋଲାଯାଏ—ହି. ଶ. ]

**ଲୀଳାବତୀ**—ସ. ବିଣ. ସ୍ତ୍ରୀ—୧। ବିଳାସବତୀ—1. Sportful Lilābati (woman); playful. ୨। ଶୃଙ୍ଗାରଭାବ (ଲୀଳାବାନ୍—ପୁଂ) ଚେଷ୍ଟାନ୍ୱିତା—2. Dallying; exhibiting amorous symptoms; lascivious ବି. ସ୍ତ୍ରୀ—୧। ନ୍ୟାୟଗ୍ରନ୍ଥ ବିଶେଷ—1. Name of Sanscrit work on logic. ୨। ଏକ ଜାତୀୟ ବେଶ୍ୟା—2. Name of a class of prostitutes. ୩। (ନାମ) ପ୍ରସିଦ୍ଧ ଜ୍ୟୋତିଷାଚାର୍ଯ୍ୟ ଭାସ୍କରାଚାର୍ଯ୍ୟଙ୍କ କନ୍ୟା (ବା କାହାରି କାହାରି ମତରେ ପତ୍ନୀ)—3. Name of the daughter (or wife according to some) of the great Indian astronomer Bhāskarāchārjya. [ ପ୍ର—କଥିତ ଅଛି ଯେ, ଲୀଳାବତୀ ଭାସ୍କରାଚାର୍ଯ୍ୟଙ୍କର ଏକମାତ୍ର କନ୍ୟା ଥିବାରୁ ପିତା ତାଙ୍କୁ ଅତି ଆଦର ଓ ସ୍ନେହରେ ବଢ଼ାଇଥିଲେ। ଭାସ୍କରାଚାର୍ଯ୍ୟ ଅଦ୍ୱିତୀୟ ଜ୍ୟୋତିଃଶାସ୍ତ୍ରବେତ୍ତା ଥିଲେ। ସେ ଲୀଳାବତୀଙ୍କ ଜନ୍ମପତ୍ରିକାକୁ ଗଣନା କରି ଦେଖିଲେ ଯେ ଲୀଳାବତୀ ପତିପୁତ୍ରହୀନା ହେବେ। ଏଥିପାଇଁ ସେ ସ୍ଥିର କଲେ ଯେ କନ୍ୟାଙ୍କୁ ସେ ଏପରି ଶୁଭ ଲଗ୍ନରେ ବିବାହ ଦେବେ ଯେ, କନ୍ୟା ବିଧବା ହେବେ ନାହିଁ ଓ ସନ୍ତାନବତୀ ହୋଇ ପାରିବେ। ବହୁ ଗଣନା ପରେ ଗୋଟିଏ ଶୁଭଲଗ୍ନ ସ୍ଥିର କରି ସେ ଲୀଳାବତୀଙ୍କ ପାଇଁ ବର ଠିକ୍ କଲେ। ଏଣେ ବିବାହର ଲଗ୍ନ (ଶୁଭ ମୁହୂର୍ତ୍ତ) ନିର୍ଣ୍ଣୟାର୍ଥ ଗୋଟିଏ ସଚ୍ଛିଦ୍ର ପାତ୍ର ଜଳ ଉପରେ ଭସାଇ ଦେଲେ ଓ ଗଣନାଦ୍ୱାରା ସ୍ଥିର କଲେ ଯେ ଛିଦ୍ରବାଟେ ପାଣି ପଶି ପଶି ପାତ୍ରଟି ପୂର୍ଣ୍ଣହୋଇ ବୁଡ଼ି ଯିବାମୁହୂର୍ତ୍ତରେ ପାଣିଗ୍ରହଣ ପାଇଁ ନିର୍ଦ୍ଦିଷ୍ଟ ଶୁଭକ୍ଷଣ ଉପସ୍ଥିତ ହେବ। କିନ୍ତୁ ଦୈବର ଗତି ଅତି ବିଚିତ୍ର। ଲୀଳାବତୀ ବାଳସ୍ୱଭାବ ବଶତଃ ସେହି ଭାସମାନ ଜଳପାତ୍ର ଉପରେ ମସ୍ତକ ଅବନତ କରି ସେହି ପାତ୍ର ମଧ୍ୟକୁ ଛିଦ୍ରବାଟେ ପଶୁଥିବା ଜଳକୁ ଚାହିଁ ବସିଲେ। ଏହି ସମୟରେ ଦେଖାଗଲା ଯେ ବେଳ ବହୁତ ଉତ୍ତୁରି ହେଲାଣି, ଅର୍ଥାତ୍ ପାତ୍ରଟି ଜଳପୂର୍ଣ୍ଣ ହେଲା ନାହିଁ ବା ବୁଡ଼ିଲା ନାହିଁ ଓ ସୁତରାଂ ସ୍ଥିରୀକୃତ ବିବାହ ଲଗ୍ନଟି ଗଡ଼ିଗଲା। ଏହା ଦେଖି ଭାସ୍କରାଚାର୍ଯ୍ୟ ବିଳମ୍ବର କାରଣ ଅନୁସନ୍ଧାନ କରି ଦେଖିଲେ ଯେ ଲୀଳାବତୀ ସେ ପାତ୍ର ଉପରେ ମୁଣ୍ଡକୁ ନୁଆଇଁ ଚାହିଁବାବେଳେ ତାଙ୍କ ଲଲାଟର ଅଳଙ୍କାର (ଅଳକା)ରୁ ଗୋଟିଏ ମୁକ୍ତା ଝଡ଼ି ପଡ଼ି ଅଜ୍ଞାତ ଭାବରେ ସେହି ପାତ୍ରର ଛିଦ୍ରକୁ ବନ୍ଦ କରିଥିବାରୁ ପାତ୍ରଟି ନିରୂପିତ ସମୟରେ ଜଳପୂର୍ଣ୍ଣ ହେଲା ନାହିଁ, ଫଳତଃ ବିବାହ ଲଗ୍ନଟି ଅତୀତ ହୋଇଗଲା। ଭାସ୍କରାଚାର୍ଯ୍ୟ ଏହା ଦେଖି ବିଷଣ୍ଣ ହେଲେ ଓ ଦୈବବିଧାନ ଅନିବାର୍ଯ୍ୟ, ଏହା ବିଚାର କରି କନ୍ୟାଙ୍କୁ ଲଗ୍ନ ଗଡ଼ିଯିବା ପରେ ସେ ଦିନ ବିବାହ ଦେଲେ। କିଛି ଦିନ ପରେ କନ୍ୟା ବିଧବା ହେଲେ। ତତ୍ପରେ ଭାସ୍କରାଚାର୍ଯ୍ୟ ଅତି ଯତ୍ନ ସହକାରେ ଲୀଳାବତୀଙ୍କୁ ପାଟୀଗଣିତ ଓ ବୀଜଗଣିତ ଶାସ୍ତ୍ର ଶିକ୍ଷା ଦେଲେ ଓ ଲୀଳାବତୀଙ୍କ ନାମକୁ ଚିରସ୍ମରଣୀୟ କରିବା ସକାଶେ ସ୍ୱପ୍ରଣୀତ ସିଦ୍ଧାନ୍ତ ଶିରୋମଣି ନାମକ ଗ୍ରନ୍ଥର ପାଟୀଗଣିତ ବିଷୟକ ପ୍ରଥମ ଅଧ୍ୟାୟଟିକୁ 'ଲୀଳାବତୀ' ନାମ ଦେଲେ। କେହି କେହି କହନ୍ତି ଯେ ଭାସ୍କରାର୍ଯ୍ୟଙ୍କ ଦ୍ୱାରା ଉପଦିଷ୍ଟା ହୋଇ ଲୀଳାବତୀ ଏ ଗ୍ରନ୍ଥ ରଚନା କରିଥିଲେ।

(ସୁବଳଚନ୍ଦ୍ର. ବଙ୍ଗଲା ଅଭିଧାନ)

କେହି କେହି କହନ୍ତି ଲୀଳାବତୀ ଭାସ୍କରଙ୍କ ବିଧବା କନ୍ୟା। ପୁଣି କେହି କେହି କହନ୍ତି ଲୀଳାବତୀ ତାଙ୍କ ସ୍ତ୍ରୀ ଓ ସ୍ତ୍ରୀଙ୍କ ମନୋରଞ୍ଜନାର୍ଥ ଭାସ୍କର 'ଲୀଳାବତୀ' ରଚନା କରିଥିଲେ। କିନ୍ତୁ ଉକ୍ତ ଗ୍ରନ୍ଥର ସ୍ଥାନେ ସ୍ଥାନେ ବ୍ୟବହୃତ 'ବାଲେ' 'ବାଲ କୁରଙ୍ଗ ଲୋଲନୟନେ !' 'ସଖି' ଆଦି ସମ୍ବୋଧନ ଆପଣା କନ୍ୟା ପ୍ରତି ଓ 'କାନ୍ତେ' ଓ 'ଗଣକା' ଆପଣାର ସ୍ତ୍ରୀ ପ୍ରତି ବ୍ୟବହୃତ ହେବା ଅସମ୍ଭବ।

ଯୋଗେଶଚନ୍ଦ୍ର. ଆମାଦେର ଜ୍ୟୋତିଷୀ।

୪। ଭାସ୍କରାଚାର୍ଯ୍ୟ ରଚିତ ପାଟୀଗଣିତ ଓ ବୀଜଗଣିତ ସମ୍ବନ୍ଧୀୟ ପ୍ରସିଦ୍ଧ ଗ୍ରନ୍ଥ ସିଦ୍ଧାନ୍ତ ଶିରୋମଣିର ପ୍ରଥମ ଅଧ୍ୟାୟର ନାମ—4. Title of the first chapter of a famous work on algebra and arithmetic named Siddhāntaśiromani by Bhāskarāchārjya. [ ପ୍ର—ଏ ଗ୍ରନ୍ଥରେ ଭାସ୍କରାଚାର୍ଯ୍ୟ ଲୀଳାବତୀଙ୍କ ପ୍ରଶ୍ନର ଉତ୍ତର ଛଳରେ

ଧାତୀଗଣିତର ଗୁଢ଼ତର ଜଟିଳ ସମସ୍ୟା ସୂକ୍ଷ୍ମମାନଙ୍କଦ୍ୱାରା ସମାଧାନ କରିଅଛନ୍ତି । ] ୫ । ସମ୍ପୂର୍ଣ୍ଣ ଜାତିର ଏକ ରାଗିଣୀ —5. Name of a secondary tune in Hindu music. [ ଦ୍ର—ଏଥିରେ ସବୁ ଶୁଦ୍ଧସ୍ୱର ଲାଗେ । ଏ ରାଗିଣୀ ଲଳିତ, ଜୟନ୍ତଶ୍ରୀ ଓ ଦେଶକାର ରାଗିଣୀମାନଙ୍କ ମିଶ୍ରଣରେ ହୁଏ । କେହି କେହି ଏହାକୁ ପାଠକ ରାଗର ପୁତ୍ରବଧୂ କହନ୍ତି — ହି. ଶ )—୬ । ସଂସ୍କୃତ ଛନ୍ଦୋବିଶେଷ —6. Name of a Sanscrit metre. [ ଦ୍ର—ଏଥିର ପ୍ରତ୍ୟେକ ଚରଣରେ ୧୦, ୮, ୧୪ ର ବିରାମରେ ୩୨ ମାତ୍ରା ଥାଏ ଓ ଶେଷରେ ଏକ ଜଗଣ ଥାଏ—ହି ଶ. ] ଦେ. ବି. ସ୍ତ୍ରୀ—( ନାମ ) ସ୍ତ୍ରୀଲୋକଙ୍କ ନାମ-A name given to females.

**ଲୀଳାମୟ**—ସଂ. ବିଣ. ପୁଂ ( ଲୀଳା+ପ୍ରାଚୁର୍ଯ୍ୟାର୍ଥେ ମୟ )—ଲୀଳାପୂର୍ଣ୍ଣ; Lilāmaya କ୍ରୀଡ଼ାଯୁକ୍ତ—Full of sports; sportive; (ଲୀଳାମୟୀ—ସ୍ତ୍ରୀ) playful.

**ଲୀଳାୟମାନ**—ସଂ. ବିଣ ପୁଂ( ଲୀଳାଶବ୍ଦରୁ ଲୀଳାୟ ନାମ. ଧାତୁ+କର୍ତ୍ତୃ. Lilāyamāna ଆନ )—କ୍ରୀଡ଼ା କରୁଥିବା—Sporting; (ଲୀଳାୟମାନା—ସ୍ତ୍ରୀ) playing.

**ଲୀଳା ଯାତ୍ରା**—ଦେ. ବି ( ସ. ଲୀଳା+ଯାତ୍ରା )—ମହାଭାରତ, ରାମାୟଣ, Lilā jātra ଭାଗବତଆଦିର ଉପାଖ୍ୟାନିକା ଅବଲମ୍ବନରେ କରାଯିବା (ଲୀଳାସୁଅଙ୍ଗ—ଅନ୍ୟରୂପ) ନାଚ ଓ ସୁଅଙ୍ଗ—Acting and লীলাবযাত্রা dancing made on the basis of लीलायात्रा some of the episodes of the sacred lores ( just like the passion plays of the middle ages in Europe.)

**ଲୀଳାଯାନ**—ସଂ. ବି ( ଲୀଳା+ଯାନ )—ସଲୀଳ ଗମନ; ଧୀର ମନ୍ଥର Lilājāna ଗମନ—Gracefwl gait; short slow and leisurely walk. [ ଉ—ଯେବେ ଥିବ ଲୀଳ ଭୁବନ କି ରାଜହଂସ ଗଜରାଜ ଲୀଳାଯାନ । କବିସୂର୍ଯ୍ୟ. ସଙ୍ଗୀତ । ]

**ଲୀଳାୟିତ**—ସଂ. ବିଣ ( ଲୀଳାଶବ୍ଦରୁ ଲୀଳାୟ ଧାତୁ+କର୍ମ. ତ )— Lilālyita କ୍ରୀଡ଼ିତ—Played with.

**ଲୀଳାରବିନ୍ଦ**—ସଂ. ବି—ଲୀଳାକମଳ ( ଦେଖ )— Lilārabinda Lilākamala ( See )

**ଲୀଳାରେ**—ଦେ. କ୍ରି. ବିଣ—ଅକ୍ଳେଶରେ; ଅବଲୀଳାକ୍ରମେ— Lilāre Easily. [ ଉ—ଏହାଙ୍କୁ ଲୀଳାରେ ସଂହାର, ଲীলাক্রমে ପଣ୍ଡୁକୁ ଯେସନେ କେଶରୀ । ଜଗନ୍ନାଥ. ଭାଗବତ ।] लीलाक्रमे

**ଲୀଳାସଉଧ**—ଦେ. ବି ( ସଂ. ଲୀଳା ସୌଧ )—କେଳି ମନ୍ଦିର— Lilāsaudha A room where lovers enjoy ଲୀଳାସୌଧ } ସଂ. ରୂପ] amorous sports. [ ଉ—ଲୀଳା ଲୀଳାଭବନ ସଉଧରେ ଅରନ୍ତି ଥିଲେ ତ ବଳାଏ । ଲୀଳାମନ୍ଦିର କବିସୂର୍ଯ୍ୟ ସଙ୍ଗୀତ । ]

**ଲୀଳା ସମାପନ**—ସଂ. ବି ( ୬ଷ୍ଠୀ ତତ୍ପୁ )—୧ । ଖେଳର ଶେଷ; Lilā samāpana କ୍ରୀଡ଼ାର ସମାପ୍ତି—1. The end or ଲୀଳା ସମାପ୍ତି } fiuis of sport. ୨ । (ଲକ୍ଷଣାର୍ଥ) ଲୀଳା ସମ୍ବରଣ } ଅନ୍ୟରୂପ ମୃତ୍ୟୁ—2. Death. ଲୀଳା ସାଙ୍ଗ

**ଲୀଳାସ୍ଥାନ**—ସଂ. ବି. ସ୍ତ୍ରୀ—ଲୀଳାକ୍ଷେତ୍ର ( ଦେଖ )— Lilāsthāna Lilāks hetra ( See ) (ଲୀଳାସ୍ଥଳ—ଅନ୍ୟରୂପ)

**ଲୀଳୋଦ୍ୟାନ**—ସଂ. ବି ( ମ. ପ ଲୋ. )—ପ୍ରମୋଦକାନନ; ଉପବନ Lilodyāna —Pleasure garden.

**ଲୁ**—ଦେ. ବି—ଅଜ୍ଞାତକାଳର କ୍ରିୟା ସଙ୍ଗେ ମଧ୍ୟମ ପୁରୁଷ ଅନାଦରାର୍ଥ ବା Lu ଅତି ସ୍ନେହାର୍ଥ ଏକବଚନ ( ତୁ ) ପରେ ଯୁକ୍ତ ହେବା ଅକ୍ଷର ( ଯଥା—କଲୁ, ଗଲୁ )—Inflection affixed to a verb in the past tense लि after 'Thou', as in, "Thou didst". ଦେ. ବି— याहै (ହିନ୍ଦିରୁ ଅନୁକୃତ; ସ. ଲୁକ୍ ଧାତୁ=ଜଳିବା) ଖର ଗରମ ପବନ; ଝାଞ୍ଜି—Hot wind; the simoon.[ଦ୍ର— लू लु ରାଜପୁତାନା ଆଦି ମରୁବହୁଳ ଅଞ୍ଚଳରେ ଖରାଦିନ ଦ୍ୱିପହରେ ଲୁ ବହେ ଓ ସମୟ ସମୟରେ ଏଥିରେ ଲୋକେ ମରି ଯାଆନ୍ତି ।]

**ଲୁଅ**—ଗ୍ରା. ଅ—ଲୋ—Interjection 'Oh'. [ ଦ୍ର—ଏହା ପଦ Lua ଶେଷରେ ଲାଗେ; ଯଥା ବାରୁକାଲୁଓ, ଧନ ଲୁଅ । ] ଦେ. ବି ଲୋ (ସ. ଲୋତ)—ଲୁହ—Tear. [ ଦ୍ର—କେ ନେତ୍ରୁ ଲୁଅ ग़ो, गे, ओ ପକାଏ । ଯାନକୃଷ୍ଣ. ରସକଲ୍ଲୋଳ ।] চোখের জল नोर

**ଲୁଅ(ଆଁ)ଇବା**—ଦେ. କ୍ରି (ସ. ନମ୍ ଧାତୁ)—୧ । ଲଇଁବା କ୍ରିୟାର Luā(ān)ibā ଣିଜନ୍ତ ରୂପ)—1. The causative form নোষান, নোআন of Laiñbā. ୨ । ନତ କରାଇବା—2. To नवा(मा)ना cause to bend. [ଉ—ଯଶୋଦା ଶ୍ରୀମନ୍ତ ଶିରେ ରଖି ଶିର ଲୁଆଇଁଲେ ଲଜ୍ଜାଭରେ । କବିସୂର୍ଯ୍ୟ. ଜଗୋପୀ ଚମ୍ପୂ: ୟ ଗୀତ ।]

**ଲୁଆଣ**—ଦେ. ବିଣ—୧ । ଈଷତ୍ ନତ—1. Slightly bent. ୨ । Luāṇa ଯେଉଁ ଘରର ଛାତର ନମ୍ରତା ହେତୁ ମୁଣ୍ଡ ଲୁଆଇଁ ଭିତର [ଲୁଅଣି, ଲୁଆଣିଆଁ—ଅନ୍ୟରୂପ] ସେ ଘରେ ପଶିବାକୁ ହୁଏ— নীচু 2. Low-roofed (house) where a person has नमा(वा)हुआ to bend his head before entering.

**ଲୁଇ**—ଦେ. ବି (ସ. ଲୋମୀୟ)—ଲୋଇ; ଭାରତର ଉତ୍ତର ପଶ୍ଚିମରେ Lui ତିଆରି ପଶମୀ ମୋଟ ଶୀତ ଚଦର—A coarse लूই woolen wrapper made in N. W. India. लूई ବୈଦେ. ବି (ଫ୍ରେଞ୍ଚ—ଲୁଇସ୍ ଶବ୍ଦର ଲୁଇ ଉଚ୍ଚାରଣ)— लोई ୧ । (ଫ୍ରାନ୍ସରେ ରାଷ୍ଟ୍ରବିପ୍ଳବ ହେବା ପୂର୍ବେ) ଫ୍ରାନ୍ସର ପ୍ରାଚୀନ लुई ରାଜାଙ୍କର ବଂଶଗତ ଉପାଧି—1. Luis; the family title of the kings of France before the

French revolution. ୨ । ପୂର୍ବେ ଫ୍ରାନ୍ସରେ ପ୍ରଚଳିତ ସ୍ୱର୍ଣ୍ଣମୁଦ୍ରା ବିଶେଷ—2. Name of a gold coin formerly current in France. ପ୍ରାଦେ (ସମ୍ବଲପୁର) ବ—କଅଁଳା ବାଛୁରି — A very young calf.

ଲୁଇଁବା—ଦେ. କ (ସ. ନମ୍ ଧାତୁ)—ଲୁଆଁଇବା (ଦେଖ)
Luiñba Luāiñbā. (See)

ଲୁଓ—ଦେ. ଅ—ଲୋ !
Luo ଲୋ जी (Interjection) Oh !

ଲୁଁ—ଦେ. ବ—ଅତୀତ କାଳରେ କ୍ରିୟା ସଙ୍ଗେ ପ୍ରଥମ ପୁରୁଷ
Luñ ମାନ୍ୟାର୍ଥେ ଏକବଚନ (ଅମ୍ଭେ) ଓ ବହୁବଚନ (ଅମ୍ଭେମାନେ) ନାମ ପରେ ଯୁକ୍ତ ହେବା ଅକ୍ଷର—Inflection suffixed to ये a verb in the past tense after I and we.

ଲୁଁଚା—ଦେ. ସଂ (ଅନାଦରାର୍ଥ)—ଲୁଚା; ଗୁଡ଼ାଏ—
Luñchā ଗুচ্ছের थीडावहुत, थीडी Many; much.
(ଲୁଁଚାଏ, ଲୁଁଚାକ—ଅନ୍ୟରୂପ)

ଲୁକ୍ (ଧାତୁ)—ସ—ଲୁଚିବା, ପ୍ରଚ୍ଛନ୍ନ ହେବା—
Luk (root) To be concealed or hidden.

ଲୁକ୍—ସ. ଓ (ଲୁକ୍ ଧାତୁ + ଭାବ କ ପ୍ର)—୧ ଲୋପ —
Luk 1. Disappearance. ୨ । ଲୁଚିବା; ପ୍ରଚ୍ଛନ୍ନତା — 2. Concealment.

ଲୁକଡ଼ି—ପ୍ରାଦେ (ସମ୍ବଲପୁର) ,ବ—ଛୋଟ ମହୁମାଛି—
Luk-ṟdi A tiny species of bees, Apis Florea.

ଲୁକ୍‌ବା—ପ୍ରାଦେ (ସମ୍ବଲପୁର) କ୍ରି—ଲୁଚିବା—
Luk-bā To be concealed; to be in hiding.

ଲୁକ୍‌ଲା(ଲୁ)କାନି—ପ୍ରାଦେ. (ସମ୍ବଲପୁର) ବ—ଲୁଚକାଳି ଖେଳ —
Luk-lā(lu)kāni The play of hide and seek.

ଲୁକ୍‌ଶାନ(ନି)—ବୈଦେ. ପ୍ରାଦେ. (ସମ୍ବଲପୁର) ବ (ଫା. ନୁକ୍‌ସାନ୍)—
Luk-śān(ni) ନୋକସାନ୍; କ୍ଷତି—Loss; damage.

ଲୁକ ପ୍ରାଦେ (କୈାଦ, ବାଲେଶ୍ୱର) ବ—(ଦୁ ସ୍ଥାନରେ ଓ ଉଚ୍ଚାରଣ)—
Luka ଲୋକ—A man.

ଲୁକା(କେ)ଇବା—ପ୍ରାଦେ (ବାଲେଶ୍ୱର ଉତ୍ତରାଞ୍ଚଳ ଓ ମୟୂରଭଞ୍ଜ)—
Lukā(ke)ibā କ୍ରି. (ସ. ଲୁକ୍ ଧାତୁ; ତୁଳ ବ. ଲୁକାନ)—ଲୁଚାଇବା; ଗୋପନ କରିବା—To hide; to conceal. [ଦୃ—କଷ୍ଟେ ସେ ସବୁ ଲୁକାଇ ସେ ସ୍ଥାନେ ନ ରହି, ଯାଇଁ ସଖୀଙ୍କ ମଧ୍ୟେ ବସିଲେ ଗଜମୁଖୀ । ତୁଳସୀ. ଜଗମ ରାମାୟଣ ।]

ଲୁକାଏବା—ପ୍ରାଦେ (ସମ୍ବଲପୁର) କ୍ରି. (ସ. ଲୁକ୍କାୟିତ; ତୁଳ. ହି
Lukāebā ଲୁକାନା)—ଲୁଚାଇବା—To conceal; to hide.

ଲୁକାଲୁକି—ପ୍ରାଦେ (ବାଲେଶ୍ୱର ଉତ୍ତରାଞ୍ଚଳ) ବ—ଲୁଚାଲୁଚି (ଦେଖ)
Lukā luki Luchāluchi. (See)

ଲୁକିଦେବା—ପ୍ରାଦେ (ସମ୍ବଲପୁର, ବାଲେଶ୍ୱର) କ୍ରି—ନିଜେ ଲୁଚିଯିବା—
Lukidebā To hide one's self.

ଲୁକିବା—ପ୍ରାଦେ (ବାଲେଶ୍ୱର ଉତ୍ତରାଞ୍ଚଳ, ସମ୍ବଲପୁର ଓ ଗଞ୍ଜାମ; ତୁଳ
Lukibā ବ. ଲୁକା, ହି. ଲୁକ୍‌ନା) କ୍ରି—ଲୁଚିବା (ଦେଖ)— Luchibā. (See) [ଦୃ—ମୋ ପାଇଁ ତୁ ଲୁକ ଯେତେବେଳେ ଥିଲୁକ ଲାବଣ୍ୟ ପୀୟୂଷପୁର । କବିସୂର୍ଯ୍ୟ. ସଙ୍ଗୀତ ]

ଲୁକୁଡ଼ି—ପ୍ରାଦେ. (ସମ୍ବଲପୁର, ଗଡ଼ଜାତ) ବ—ବୃକ୍ଷ କୋଟରରେ ସଞ୍ଚିତ
Lukuṟdi ମହୁ—Honey collected in the hollows of trees.

ଲୁକୁବା—ପ୍ରାଦେ (ସମ୍ବଲପୁର) କ୍ରି—ଲୁଚିବା—
Lukubā To conceal one's self.

ଲୁକ୍କାୟିତ—ସ. ବଣ ( ଲୁକ୍=ଲୋପ+କାୟ=ଶରୀର=ଲୁକ୍କାୟ;
Lukkāyita ଲୁକ୍କାୟ ନାମ ଧାତୁ=ଲୁପ୍ତ ଶରୀର ପରି ଆଚରଣ କରିବା + କର୍ମ. କ୍ତ)—୧ । ଲୁପ୍ତ; ପ୍ରଚ୍ଛନ୍ନ; ଦୃଷ୍ଟିପଥରୁ ଅନ୍ତର୍ହିତ—Concealed from view; hidden; latent.

ଲୁକ୍କାୟିତ ହେବା—ଦେ. କ୍ରି—ଆପେ ଲୁଚିବା; ଅଦୃଶ୍ୟ ହେବା—
Lukkāyita hebā To hide one's self from view; ଲୁକାୟିত হওয়া लुकायितहोना to disappear.

ଲୁଖା—ଦେ. ବଣ (ସ. ରୁକ୍ଷ ଓ ଶୁଷ୍କ)—ରୁଖା ଶୁଖା (ଦେଖ)
Lukhā रूखा रूखा Rukhā śukhā. (See)
[ଲୁଖା ଶୁଖା - ଅନ୍ୟରୂପ]

ଲୁଖୁରା (ଇତ୍ୟାଦି)—ଦେ. ବଣ (ସ. ରୁକ୍ଷ)—ନୁଖୁରା ଇତ୍ୟାଦି (ଦେଖ)
Lukhurā (etc) Nukhurā etc (See)
( ଲୁଖୁରୀ—ସ୍ତ୍ରୀ )

ଲୁଗଡ଼ା—ପ୍ରାଦେ (କଟକ) ବ—ଶାଢ଼ୀ—
Lugaṟda Long cloth worn by females.

ଲୁଗା—ଦେ. ବ ( ସ. ଲଗ୍ନ; ତୁଳ. ଅ. ଲୁଙ୍ଗ୍ )—୧ । ବସ୍ତ୍ର—
Lugā 1. Cloth. ୨ । ପୋଷାକ—2. Dress. ୩ । କାପଡ଼ ଧୋତି; ଅଧୋବାସ; ଯାହାକୁ ଅଣ୍ଟାରେ ଗୁଡ଼ାଇ ପିନ୍ଧା- कपड़ा, लुगा, धोती ଯାଏ—3. Piece of cloth worn round the waist. ପ୍ରାଦେ ( ସମ୍ବଲପୁର ) ବ. ( ତୁଳ. ହିନ୍ଦିରେ ସ୍ତ୍ରୀମାନଙ୍କ ବ୍ୟବହୃତ ବସ୍ତ୍ରକୁ ଲୁଗା ବୋଲାଯାଏ )—ସ୍ତ୍ରୀଲୋକଙ୍କ ପିନ୍ଧାଲୁଗା; ବଡ଼ଶାଢ଼ୀ— Long cloth worn by females. [ ଦୃ— ପୁରୁଷଙ୍କ ଲୁଗାକୁ ଧୋଉ ନାହାନ୍ତି । ]

ଲୁଗା ଅଣ୍ଟି—ଦେ. ବ-ପିନ୍ଧିଥିବା ଲୁଗାର ଲୁଣ୍ଠରେ ଥିବା ଅଂଶକୁ ଗୋଞ୍ଜି
Lugā aṇṭi ଗୋଞ୍ଜ କରି ତହିଁ ମଧ୍ୟରେ କିଛି ପଦାର୍ଥ ରଖିବା ପାଇଁ କାପଡ଼େର কোঁচড় କରାଯିବା ଥଳି—A bag or pouch धोतीकी थीकरा formed by tucking up the front portion of the loin cloth ( which a man wears and which hangs down in front ), so that it might contain something in it.

ଲୁଗା କାନ—ଦେ. ବ—ବସ୍ତ୍ରାଞ୍ଚଳ; ବସ୍ତ୍ରର ଏକପ୍ରାନ୍ତସ୍ଥ କୋଣ—One
Lugā kāni of the corners of a cloth. [ଦୃ—

କାପড়ের কানি(খুঁট) ପିନ୍ଧା ଲୁଗାର ସାମନା ପାଖ କାନକୁ କୁଞ୍ଚକାନ
**धोतीका छोर** ବା ଫେରକାନ ଓ ପଛପାଖ କାନକୁ କଚ୍ଛକାନ
ବୋଲିଯାଏ । ]

ଲୁଗା କଚ୍ଛ—ଦେ. ବି—ବସ୍ତ୍ରକୁ କ୍ଷାର ବା ସାବୁନ ଦେଇ ଧୋଇ କାଚିବା
Lugā kachā କର୍ମ—Washing and rinsing of the
কাপড়কাচা cloth for cleaning it.
**कपड़ा फीं(खीं)चना**

ଲୁଗାକଚ୍ଛ ସାବି(ବୁ, ବା)ନ୍—ଦେ. ବି—ଯେଉଁ ସାବୁନଦ୍ୱାରା ମଇଳା
Lugākachā sābi(bu, bā)n ଲୁଗା ସଫା କରାଯାଏ—
কাপড়কাচা সাবান Soap for washing cloth.
**कपडाधोनेका साबुन**

ଲୁଗା କାଚିବା—ଦେ. କ୍ରି—ମଇଳା ଲୁଗାକୁ ସଫା କରିବା ପାଇଁ କ୍ଷାର ଓ
Lugā kāchibā ସାବୁନ ଆଦି ଦେଇ ପାଣିରେ ବତୁରାଇ କାଠ
কাপড়কাচা ବା ପଥର ଉପରେ ବାରଂବାର ବାଡ଼େଇବା—
**कपड़ा खीं(फीं)चना,** To beat a soiled cloth on
**कपडा कछारना** stone or wood after drenching
[ଲୁଗାକଚ୍ଛ(ଚେ)ଇବା—ପ୍ରଯୋଜକରୂପ] it with soap etc.

ଲୁଗା କୁଞ୍ଚ—ଦେ. ବି ( ସ. କୁଞ୍ଚନ )—ପରିହିତ ଧୋତିର ସମ୍ମୁଖସ୍ଥ
Lugā kuñcha ଅଂଶ, ଯାହା କୁଞ୍ଚିତ ହୋଇ ନାଭି ପାଖରେ
কাপড়ের কোঁচা ଖୋସାଯାଏ—The front part of the
**कपडाका कोंचा** cloth worn round the loins
which is curled into folds and tucked
into the part adjoining the navel.

ଲୁଗା କୁଞ୍ଚା—ଦେ. ବି ( ସ. କୁଞ୍ଚନ )—ପିନ୍ଧିବା ସମୟରେ ସୁନ୍ଦର ଓ
Lugā kuñchā ସଙ୍କୁଚିତ ଦେଖାଯିବା ଉଦ୍ଦେଶ୍ୟରେ ପିନ୍ଧାଯିବା
কাপড় কোঁচান ଲୁଗାକୁ ନାନାପ୍ରକାର କୌଶଳପୂର୍ବକ କୁଞ୍ଚିତ
**कपडाका कोंचियाना** କରିବା କ୍ରିୟା—The act of curling
and twisting the cloth into various
artistic folds, so that it will look nice
when worn. [ ଦ୍ର—ଆମ ଦେଶରେ ଲୁଗାକୁ
ନାନାପ୍ରକାରରେ କୁଞ୍ଚିବାର ପ୍ରଣାଳୀ ଅଛି ଯଥା—ସରୁକୁଞ୍ଚା,
ଗିଲକୁଞ୍ଚା ଓ ପାଞ୍ଚଅଙ୍ଗୁଠିଆ କୁଞ୍ଚା ଇତ୍ୟାଦି । ]

ଲୁଗା କୁଞ୍ଚା(ଞ୍ଚେ)ଇବା—ଦେ. କ୍ରି ( ସ. କୁଞ୍ଚ୍ ଧାତୁ ଣିଚ୍ )—ପରଧେୟ
Lugā kuñchā(ñche)ibā ବସ୍ତ୍ରକୁ ଅନ୍ୟଦ୍ୱାରା କୁଞ୍ଚିତ
অন্যেরদ্বারা কাপড়কোঁচকান କରାଇବା—To have the
**कपडा कोंचियवाना** cloth twisted into artistic
curls by another.

ଲୁଗା କୁଞ୍ଚିବା—ଦେ. କ୍ରି ( ସ. କୁଞ୍ଚ ଧାତୁ)—ପରିଧେୟ ବସ୍ତ୍ରକୁ ଅଙ୍ଗୁଳି-
Lugā kuñchibā ଦ୍ୱାରା କୁଞ୍ଚିତ କରିବା—To twist cloth
কাপড় কোঁচান into curls and small folds.
**कपडा कोंचियाना**

ଲୁଗା ଗଣ୍ଠି(ଣ୍ଡି)ରି—ଦେ. ବି—ଅନେକଗୁଡ଼ିଏ ଲୁଗା ଏକଜ ହୋଇ
Lugā ganṭhi(ṇḍi)rā ବନ୍ଧାଯାଇ ଥିବା ବଡ଼ ଗଣ୍ଠିରି—
কাপড়ের গাঁঠ A large packet of clothes.
**कपडाका गांठ** [ ଦ୍ର—ଗଣ୍ଠିଟ ବା ଗଣ୍ଡିରି, ଗଣ୍ଠିରି ଅପେକ୍ଷା
ବଡ଼ ଓ ଗାଣ୍ଠି ଅପେକ୍ଷା ଶ୍ରେଷ୍ଠ । ଗଣ୍ଠିରି ଅପେକ୍ଷା ବୋଜଗୁ
ଶ୍ରେଷ୍ଠ । ବୋଜଗୁ ଅପେକ୍ଷା ପୁଳୁଳା ଶ୍ରେଷ୍ଠ । ପୁଳୁଳା
ଅପେକ୍ଷା ପୁଳୁଳ ଶ୍ରେଷ୍ଠ । ପୁଳୁଳା ଅପେକ୍ଷା ପୁଡ଼ା ଶ୍ରେଷ୍ଠ ।
ପୁଡ଼ା ଅପେକ୍ଷା ପୋଟଳା ବା ପୁଟୁଳା ଶ୍ରେଷ୍ଠ । ପୁଟୁଳା ଅପେକ୍ଷା
ପୁଟୁଳ ଶ୍ରେଷ୍ଠ । ]

ଲୁଗା ଗଣ୍ଠିରି—ଦେ. ବି—ଅନେକଗୁଡ଼ିଏ ବସ୍ତ୍ର ଏକଜ ବନ୍ଧା ହୋଇଥିବା
Lugā ganṭhiri ପୁଳା—A bundle of clothes
কাপড়েরগাঁঠরি **कपडाकीगन्ठरी** tied into one
pack.

ଲୁଗା ଗାଣ୍ଠି—ଦେ. ବି—ନୂଆ ଲୁଗା ଏକଜ ଦୃଢ଼ଭାବରେ ବନ୍ଧା
Lugā gānṭhi ହୋଇଥିବା ବଡ଼ ପୁଳା—A bale of
কাপড়েরগাঁঠরী **कपडाकागट्ठर** new clothes.
[ ଦ୍ର—ଗଣ୍ଠିରି ଅପେକ୍ଷା ଗଣ୍ଠିରି ବଡ଼ ଓ ଗଣ୍ଠିରି ଅପେକ୍ଷା
ଗାଣ୍ଠି ଖୁବ୍ ବଡ଼ । ]

ଲୁଗା ଚଉଡ଼ିବା—ଦେ. କ୍ରି—ଲୁଗାକୁ ପ୍ରଥମେ ଦୁଇ ଖଣ୍ଡ, ତା ପରେ
Lugā chautibā ଚାରି ଖଣ୍ଡ, ଏହିପରି କ୍ରମାନ୍ୱୟରେ
কাপড়পাটকরা **कपडाचौपेतना, कपडाको तहलगना** ଛନ୍ଦଭଙ୍ଗ
ପ୍ରସ୍ତୁତ କରିବା—To fold up a cloth.
[ଲୁଗାଚଉଡ଼ା(ଡ଼େ)ଇବା—ପ୍ରଯୋଜକରୂପ]

ଲୁଗା ଚ(ଚା)ଦର—ଦେ. ବି (ସହଚର ଶବ୍ଦ)—ଅଧୋବାସ ଓ ଉତ୍ତରୀୟ;
Lugā cha(chā)dara ପରିଧେୟ ବସ୍ତ୍ର ଓ ଉତ୍ତରୀୟ—
ধোতিচদর **धोतीचादर्** The piece of cloth
[ଲୁଗା ପାଛୁଡ଼ା—ଅନ୍ୟରୂପ] worn round the waist and that put
round the upper part
of the body.

ଲୁଗା ଛାଡ଼ିବା—ଦେ. କ୍ରି (ବଙ୍ଗଳାରୁ ଅନୁକୃତ)—ଲୁଗା ପାଲଟିବା (ଦେଖ)
Lugā chhārdibā Lugā pālaṭibā (See)
কাপড়ছাড়া **कपडाउतारना**

ଲୁଗା ଠେସିବା—ପ୍ରାଦେ (ବୌଦ୍ଧ) କ୍ରି—ଲୁଗା କାଚିବା (ଦେଖ)
Lugā ṭhesibā Lugā kāchibā (See)

ଲୁଗା ଦ(ଦେ)ହ—ଦେ. ବି—ବସ୍ତ୍ରର ଉପରଭାଗ ବା ବୁଣା ( ଯାହା ତ
Lugādı(de)ha ଟାଣି ଓ ଭରଣୀ ସୂତାଦ୍ୱାରା ପ୍ରସ୍ତୁତ )—
কাপড়ের জমি, কাপড়ের গা **कपडाकीजमीन** The texture
of a cloth; the body or ground of a cloth.

ଲୁଗା ଦୋକାନି—ଦେ. ବି—ବସ୍ତ୍ର ବ୍ୟବସାୟୀ—The keeper
Lugādokāni of a cloth-shop.
কাপড় দোকানি **कपडाके दुकानदार**

ଲୁଗା ଧଡ଼ି—ଦେ. ବି—ବସ୍ତ୍ରର ଲମ୍ବ ଦିଗର ଶେଷ ଭାଗ—
Lugā dhardi The border of a cloth.
কাপড়ের পাড় **कपडाकी पाढ़ी(कोर)**

ଲୁଗାପଟା—ଦେ. ବି (ସହଚର ଶବ୍ଦ; ଲୁଗା ଓ ସ. ପଟ୍ଟ)—ସବୁପ୍ରକାରର
Lugāpaṭā ପରିଧେୟ ବସ୍ତ୍ର—All sorts of cloths;
কাপড়চোপড় **कपडाउपडा** clothes'

ଲୁଗା ପାଇବା—ଦେ. କ୍ରି—(ଲୁଗା) ପିନ୍ଧିବାପାଇଁ ଯଥେଷ୍ଟ ଲମ୍ବା ଓ
Lugā pāibā ଓସାର ହେବା—(a cloth) Being

କାপড়পাওয়া **কপড়াপানা** of sufficient length or breadth for a man's wear. [ ଯଥା— ଏ ଲୁଗା ମତେ ପାଇଲା ନାହିଁ । ] ଦେ. କ୍ରି—ପିନ୍ଧିବା ଯୋଗ୍ୟ ନୂତନ ବସ୍ତ୍ର ପ୍ରାପ୍ତହେବା— বপড়পাওয়া **কপড়াপানা** To get a piece of new cloth (as gift, present or by purchase)

ଲୁଗା ପାଲ(ଲି,ଲେ)ଟିବା—ଦେ. କ୍ରି—ବସ୍ତ୍ରାନ୍ତର ପରିଧାନ କରିବାପାଇଁ ପରିହିତ ବସ୍ତ୍ର ତ୍ୟାଗ କରିବା—
Lugā pāla(li,le)ṭibā
কাপড়ছাড়া **কপড়াবদলনা** To change one's cloth for wearing another.
[ ଲୁଗାପାଲଟା(ଟେ)ଇବା—ପ୍ରଯୋଜକ ରୂପ ]
[ଲୁଗା ପାଲ(ଲି,ଲେ)ଟା-ବିଶେଷ୍ୟ]

ଲୁଗା ପିନ୍ଧିବା—ଦେ. କ୍ରି—ବସ୍ତ୍ର ପରିଧାନ କରିବା—To put on or wear a cloth.
Lugā pindhibā
কাপড় পরা **কপড়া পহননা**

ଲୁଗା ପୁଟୁଳା—ଦେ. ବି—ଲୁଗାର ଛୋଟ ପୁଡ଼ା—A small packet of cloths.
Lugā puṭulā কাপড়ের পোঁটলা
[ଲୁଗାପୋଟଳା—ଅନ୍ୟରୂପ] **কপড়াকা পুটলা**

ଲୁଗା ପୁଟୁଳି—ଦେ. ବି—ପୁଟୁଳାଠାରୁ ଛୋଟ ପୁଡ଼ା—
Lugā puṭuli A smaller packet of cloth (smaller than puṭulā).
কাপড়ের পুটলি **কপড়াকা পুটলী**

ଲୁଗା ପୁଡ଼ା—ଦେ. ବି—କେତେଗୁଣ୍ଡ ବସ୍ତ୍ରର ଛୋଟପୁଳା—
Lugā puṛā A tiny packet of cloths.
কাপড়ের পোঁটলি **কপড়াকী পোটলি**

ଲୁଗା ଫେର—ଦେ. ବି—୧ । ଦେହର ଚାରିପାଖରେ ଥରେ ଗୁଡ଼ା ହେବାଭଳି ପିନ୍ଧା ଲୁଗାର ଅଂଶ—1. The
Lugā phera part of the cloth worn, which is taken round the waist. ୨ । ଲୁଗାକୁଞ୍ଚ ( ଦେଖ ) Lugā kuñcha (See)

ଲୁଗା ବଦଳିବା—ଦେ. କ୍ରି—ପରିହିତ ବସ୍ତ୍ର ତ୍ୟାଗ କରି ବସ୍ତ୍ରାନ୍ତର ପରିଧାନ କରିବା—To change
Lugā badaḷibā
কাপড়বদলান **কপড়া বদলনা** one's worn cloth for a fresher one
[ଲୁଗାବଦଳା(ଳେ)ଇବା—ପ୍ରଯୋଜକରୂପ]

ଲୁଗା ବୁ(ବୋ)କ(କି,କୁ)ଚା—ଦେ.ବି—ଲୁଗା ବନ୍ଧା ହୋଇଥିବା ବଡ଼ପୁଡ଼ା
Lugā bu(bo)ka (ki,ku)chā —A big packet of clothes.
কাপড়ের বুকচী কাপড়ের বোচকা
**কপড়াকা বুকচা**
[ ଲୁଗା ବୁ(ବୋ)କ(କି,କୁ)ଚି—ଛୋଟ ଲୁଗା ବୋକଚା ]

ଲୁଗା ବୁଜୁଳା—ଦେ. ବି—ବୋକଚା ଅପେକ୍ଷା ଛୋଟ ପୁଡ଼ା—
Lugā bujuḷā A small packet of clothes.
কাপড়ের পুঁটলী **কপড়াকা পুটলা**

ଲୁଗା ବୁଜୁଳି—ଦେ. ବି—ବୁଜୁଳା ଅପେକ୍ଷା ଛୋଟ ପୁଡ଼ା—
Lugā bujuḷi A smaller packet of cloth than bujuḷā.
কাপড়েরপুঁটলী **কপড়াকীপুটলি**

ଲୁଗା ବୁଣା—ଦେ. ବି ( ସଂ. ବୟନ)—ବସ୍ତ୍ରବୟନ—Weaving of cloth. [ ଦ୍ର—ଏହା ଦୁଇ ପ୍ରକାରର, ହାତ ବୁଣା ଓ କଳବୁଣା ।]
Lugābuṇā
কাপড়বোনা **কপড়াবুনাই**

ଲୁଗା ବୁଣା(ଣେ)ଇବା—ଦେ.କ୍ରି—(ଲୁଗା ବୁଣିବା କ୍ରିୟାର ଣିଜନ୍ତରୂପ—
Lugā buṇā(ṇe)ibā Causative of Lugābuṇibā.)
কাপড় বোনান **কপড়া বুনবানা** —ଅନ୍ୟଦ୍ୱାରା ବସ୍ତ୍ର ବୟନ କରାଇବା--To cause a cloth to be woven.

ଲୁଗା ବୁଣିବା—ଦେ. କ୍ରି ( ସଂ. ବୟନ )—ବସ୍ତ୍ର ବୟନ କରିବା—
Lugā buṇibā To weave a cloth.
কাপড়বোনা **কপড়াবুননা**

ଲୁଗା ବେଣ୍ଟା—ପ୍ରାଦେ (ବାମଣ୍ଡା) ବି—ଏକପ୍ରକାର ଖେଳ—
Lugā beṇṭā A kind of out-door game.

ଲୁଗା ଭାଙ୍ଗିବା—ଦେ. କ୍ରି—ବସ୍ତ୍ରକୁ ଅନେକ ପ୍ରସ୍ଥ କରି ଉପର୍ଯ୍ୟୁପରି ସଜାଡ଼ିବା—To make a cloth into folds.
Lugā bhāṅgibā
কাপড় ভাঁজকরা, কাপড় তো করা
**কপড়াকো তহলগানা(চৌপেতনা)**

ଲୁଗା ମାପି କୁର୍ତ୍ତା କାଟିବା—ଦେ. ପ୍ରବଚନ (ଇଂ. ଅନୁକରଣ)—
Lugā māpi kurttā kāṭibā ଅବସ୍ଥା ଦେଖି ବ୍ୟୟ କରିବା—
কাপড়বুঝে কোটকরা To cut your coat according to the cloth.
**কাপড়ানাপকরকুর্তা কাটনা**

ଲୁଗା ମୁହଁ—ଦେ. ବି—ବସ୍ତ୍ରର ଏକ ପ୍ରାନ୍ତର ସମସ୍ତ ପରିସର—The whole breadth of the end of a cloth.
Lugā muhaṅ
[ ଲୁଗା ମୁହୁଣ୍ଡା—ଅନ୍ୟରୂପ ]
কাপড়েরমুখ **কপড়াকাছোর** [ଦ୍ର—ପୁରୁଷ ପରିଧେୟ ବସ୍ତ୍ରର ମୁହଁରେ ଥିବା ରଙ୍ଗୀନ ଅଂଶ ଅଳ୍ପ ଚଉଡ଼ା ଥାଏ, କିନ୍ତୁ ଶାଢ଼ୀର ମୁହଁ ବେଶି ଚଉଡ଼ା ଥାଏ । ଚଉଡ଼ା ମୁହଁକୁ ମୁହୁଣ୍ଡା ବୋଲାଯାଏ ।]

ଲୁଗାରେ ହଗି ପକା[କେ]ଇବା—ଦେ. କ୍ରି--(ଲକ୍ଷଣାର୍ଥ) ଅତି ଭୟଗ୍ରସ୍ତ
Lugāre hagi pakā(ke)ibā ହେବା—(figurative)
কাপড়ে হওয়া To be terrified; to be so terrified as
**কপড়ামে মাড়া ফীরনা** to sit on the cloth. [ଦ୍ର—ଲୋକେ ଅତି ଭୟଭୀତ ହେଲେ କି। ଖୁବ ମାଡ଼ ଖାଇଲେ ବା ରୋଗାବେଗରେ ବିବଶ ହୋଇ ପଡ଼ିଲେ ଅଜାଣତରେ ଲୁଗାରେ ହଗି ମୁତି ପକାଇବା ଦେଖାଯାଏ ।]
ଲୁଗାରେ ହଗି ମୁତି ପକା(କେ)ଇବା }
ଲୁଗାରେ ଝାଡ଼ା ଫେରିବା } ଅନ୍ୟରୂପ

ଲୁଗାରେ ହେ(ହ)ବା—ଦେ. କ୍ରି (ସ୍ତ୍ରୀଲୋକମାନେ) ଋତୁ ହେବା; ରଜ-
Lugāre he(ha)bā ସ୍ୱଳା ହେବା—To have the menses.
ছোঁয়া হওয়া **কপড়ামে হোনা**

ଲୁଗୁ(ବୁ)ଦି(ଧି)—ପ୍ରାଦେ (ସମ୍ବଲପୁର) ବି—ମରିଚ ଆଦି ସଙ୍ଗେ ଏକତ୍ର
Lugu(bu)di(dhi) ବଟା ଯାଇଥିବା ଭାଙ୍ଗର ଢେଲା—A ball of the paste prepared by pounding hemp (Ganja) leaves with black pepper etc

ଲୁଙ୍ଗଡ଼ା (ଇତ୍ୟାଦି)—ଦେ. ବିଣ. ପୁଂ—ଲୁଙ୍ଗୁଡ଼ା ଇତ୍ୟାଦି (ଦେଖ)
Luṅg-ṛā (etc) Luṅguṛā etc (See)

**ଲୁଙ୍ଗ୍ଡ଼ା(ଡ଼େ)ଇବା**—ଦେ. କି—ଲୁଙ୍ଗୁଡ଼ାଇବା (ଦେଖ)
Lung-rdā(rde)ibā Lungurdāibā (See)

**ଲୁଙ୍ଗ୍ ପୁ(ଲୁ)ଙ୍ଗ ହେବା**—ଦେ. କି—ଲୁଙ୍ଗୁ ପୁଙ୍ଗୁ ହେବା (ଦେଖ)
Lung pu(lu)ng hebā Lungupungu hebā (See)
[ଉ-ବରଷ ସାସ୍ ସାହେବଙ୍କ ଦୁଆରେ ନେଉଳ ପରି ଲୁଙ୍ଗ୍ ଲୁଙ୍ଗ୍ ହେବାରୁ ନାହିଁ । ଫକୀରମୋହନ. ଛମାଣ ଆଠଗୁଣ୍ଠ ।]

**ଲୁଙ୍ଗ୍ରା**—ଦେ. ବି. ଓ ବିଣ—ଲୁଙ୍ଗୁରା (ଦେଖ)
Lung-rā Lungurā (See)

**ଲୁଙ୍ଗ**—ସଂ. ବି.—ମାତୁଲଙ୍ଗ ବୃକ୍ଷ [ହି. ଶ.]—Citron tree.
Lunga [ଲୁଂଗ—ଅନ୍ୟରୂପ]

**ଲୁଙ୍ଗା**—ଦେ. ବିଣ.—୧ । ମାନସିକ ବଳହୀନ—1. Having no
Lungā strength of mind. ୨ । କ୍ଷୁଦ୍ର ପଦାର୍ଥ ଅପହରଣକାରୀ—2. Pilfering. ୩ । ଚୋରି କରିବା ଉଦ୍ଦେଶ୍ୟରେ ଯେ ସୁବିଧା ଖୋଜୁଥାଏ—3. Loitering at a place seeking for opportunities to steal. ୪ । ଲୁଙ୍ଗୁଡ଼ା [ଦେଖ]
4. Lungurdā ( See )

**ଲୁଙ୍ଗି**—ବୈଦେ. ବି (ଫା)—ମୁସଲମାନ୍ ପୁରୁଷମାନଙ୍କର ପିନ୍ଧିବା ଅଳ୍ପ ଲମ୍ବ ଚକିତ ବସ୍ତ୍ର—A small coloured
Lungi cloth worn by Mahomedans. [ ଦ୍ର—
ଲୁଙ୍ଗୀ
ଲୁଂଗୀ
ଏହା ପ୍ରାୟ ଗୁରହାତ ଲମ୍ବ; ଏହାକୁ କେବଳ ଅଣ୍ଟା ଚାରି ପାଖେ ଗୁଡ଼ାଇବାକୁ ହୁଏ, କଣ୍ଟ ବା ଭୁଷ୍ଟ ମାରି ହୁଏ ନାହିଁ । ]

**ଲୁଙ୍ଗୁଡ଼ା**—ଦେ. ବିଣ—୧ । ଯେ ସାମାନ୍ୟ ବସ୍ତୁ ଚୋରି କରେ—
Lungurdā 1. Pilfering; pilfery. ୨ । ଦୁଷ୍ଟ
(ଲୁଙ୍ଗୁଡ଼ିଆ—ଅନ୍ୟରୂପ) —2. Wicked; wanton. ୩ ।
(ଲୁଙ୍ଗୁଡ଼ୀ, ଲୁଙ୍ଗୁଡ଼େଇ—ସ୍ତ୍ରୀ) ଲମ୍ପଟ—3 Adulterous.
ଛିଁଚକେ ଲୁଂଗାଡା ୪ । ନୀଚମନାଃ—4. Mean-minded.
(ଲୁଙ୍ଗୁଡ଼ାପଣ, ଲୁଙ୍ଗୁଡ଼ାପଣିଆଁ—ବି)

**ଲୁଙ୍ଗୁଡ଼ା(ଡ଼େ)ଇବା**—ଦେ. କି—୧ । ସୁବିଧା ପାଇଲେ ସାମାନ୍ୟ ଦ୍ରବ୍ୟ
Lungurdā(rde)ibā ଚୋରି କରି ନେବା ଉଦ୍ଦେଶ୍ୟରେ
ଝୁଙ୍ଗଝୁଙ୍ଗ କରୀ କୌଣସି ସ୍ଥାନରେ ବୁଲିବା—1. To loiter
ଘପାନା at a place seeking for an opportunity to pilfer. ୨ । ଲାଙ୍ଗଡ଼ ପାଙ୍ଗଡ଼ ହେବା ( ଦେଖ )—2. Lāngarda pāngarda hebā ( See )

**ଲୁଙ୍ଗୁଡ଼ା ଚୋର**—ଦେ. ବି—ଯେ ଇତସ୍ତତଃ ବୁଲୁଥାଏ ଓ ସୁବିଧା
Lungurda chora ପାଇଲେ କ୍ଷୁଦ୍ର ବସ୍ତୁମାନ ଚୋରି କରି ନିଏ
(ଲୁଙ୍ଗାଚୋର—ଅନ୍ୟରୂପ) —Pilferer; one who loiters
ଛିଁଚକେ ଚୋର at a place seeking opportunity to
ଲୁଙ୍ଗାଡ଼ା ଚୋର pilfer.

**ଲୁଙ୍ଗୁ ପୁ(ଲୁ)ଙ୍ଗୁ ହେବା**—ଦେ. କି—ଲାଙ୍ଗଡ଼ ପାଙ୍ଗଡ଼ ହେବା ୨
Lungu pu(lu)ngu hebā ( ଦେଖ )—Lāngarda pāngarda hebā 2 ( See )

(ଲୁଙ୍ଗୁର ପୁଙ୍ଗୁର ହେବା, ଲୁଙ୍ଗୁରୁ ପୁଙ୍ଗୁରୁ ହେବା—ଅନ୍ୟରୂପ)

**ଲୁଙ୍ଗୁରା**—ଦେ. ବିଣ ( ସଂ. ନ୍ୟକ୍, ନ୍ୟକ୍କାର=ଘୃଣା )—୧ । ମଇଳା;
Lungurā ଅପରିଷ୍କୃତ ( ସ୍ଥାନ )—1. Unclean (place)
ନୋଂରା,ନୋଂରା ୨ । ଅପରିଷ୍କୃତ ଅପରିଚ୍ଛନ୍ନ ( ପୁରୁଷ )—2.
ଗଂଦା Unclean; untidy (person). ୩ । ଯାହାର ଘର
(ଲୁଙ୍ଗୁରୀ—ସ୍ତ୍ରୀ) ଓ ଦେହ ଅତି ମଇଳା କରିବାର ଅଭ୍ୟାସ—3. Of unclean habit. ୪ । ଲୁଙ୍ଗୁଡ଼ା ( ଦେଖ )—
4 Lungurdā ( See )

**ଲୁଚ୍(ଚି, ଚୁ)କାଳି**—ଦେ. ବି [ ସଂ. ଲୁକ୍ ଧାତୁ ]—ଶିଶୁମାନଙ୍କର
Luch-(chi, chu) kāli ଏକ ପ୍ରକାର ଖେଳ—The
ଲୁକା(କୋ)ଚୁରୀ children's game-hide and seek.
ଲୁକାଲୁକୀ, ଆଁଖମିଚୌନୀ [ଉ—ଲୁଚକାଳି ଖିବା ଖେଳଇ
[ଲୁଚ(ଚୁ)ଲୁଗୁଣୀ—ଅନ୍ୟରୂପ] ତାରକା ଗୀତବ ଘଟନେ
ଗ୍ରଧାନାଥ. ଉଷା । ]
[ଦ୍ର—ଏ ଖେଳରେ ପ୍ରଥମେ ଭାଗ୍ୟ ପରୀକ୍ଷାଦ୍ୱାରା ଜଣକୁ 'ଚୋର' କରାଯାଏ । ଆଉ ଜଣେ ବୁଢ଼ିଅଣୀ ବା ବୁଢ଼ୀମାଈଚୀ ହୁଏ । ବୁଢ଼ୀମାଈଚୀ ଚୋରର ଆଖିକୁ ବୁଜି ଧରେ; ଇତ୍ୟବସରେ ଅନ୍ୟ ଶିଶୁମାନେ ନିକଟବର୍ତ୍ତୀ ସ୍ଥାନରେ ଲୁଚ ଯାଆନ୍ତି । ଚୋରରେ ଆଖି ଫିଟାଯିବା ପରେ ଚୋର ସେମାନଙ୍କୁ ଖୋଜି ବୁଲେ । ଚୋର ଲୁଚଥିବା ପିଲାମାନଙ୍କୁ ଖୋଜୁଥିବା ସମୟରେ ସେମାନେ ଗୋଟି ଗୋଟି ହୋଇ ଚୋରକୁ ଲୁଚ ଲୁଚ ଆସି ବୁଢ଼ିଅଣୀକୁ ଛୁଇଁ ଦେଇ ଜିତିନ୍ତି ହୁଅନ୍ତି । ସେମାନଙ୍କ ମଧ୍ୟରୁ ଯେଉଁ ପିଲା ବୁଢ଼ିଅଣୀକୁ ଛୁଇଁ ପକାଇବା ପୂର୍ବରୁ ଚୋରର ହାତରେ ପଡ଼ିଯାଏ, ସେହି ପିଲାଟି 'ଚୋର' ହୁଏ ଏବଂ ସେ 'ଚୋର' ପ୍ରତି ପୁଣି ପୂର୍ବକଥିତ ବିଧି ଚାଲେ । ]

**ଲୁଚ୍(ଚି, ଚୁ)କାଳି ଖେଳିବା**—ଦେ. କି—୧ । ଲୁଚକାଳି କ୍ରୀଡ଼ା କରିବା
Luch-(chi, chu)kāli khelibā—1. To play the
ଲୁକୋଚୁରୀ ଖେଲା game of hide and seek. ୨ ।
ଆଁଖମିଚୌନୀ ଖେଲନା ଜଣକୁ ଦେଖା ଦେଇ ଲୁଚଯିବା ପୁଣି
ଲୁକାଲୁକୀ ଖେଲନା ଦେଖାଦେଇ ଲୁଚଯିବା, ଏହିପରି କ୍ରମାନ୍ୱୟରେ ଗୁପ୍ତ ହେବା ଓ ଦୃଶ୍ୟ ହେବା—2. To alternately hide oneself from another's view and then appear to him.

**ଲୁଚ୍(ଚୁ)ପୁଚ୍(ଚୁ) ହେବା**—ଦେ. କି ( ସଂ. ଲାଳସାଯୁକ୍ତ )—୧ ।
Luch-(chu)puch-(chu) hebā ଛଟପଟ ହେବା; ହାଇଁପାଇଁ
ହାହଁପାଇଁ କରା ହେବା; ଶଙ୍କଶଙ୍କ ହେବା; କୌଣସି କାର୍ଯ୍ୟ ବା
ଲଲଚାନା, ଲୁସପୁସ ହୋନା ବିଷୟ ପ୍ରତି ଲାଳାୟିତ ହେବା—
ଭୟେକାଁପା 1. To hanker after a thing ୨ ।
ଡରକେମାରେ କାଁପନା ଭୟରେ କମ୍ପିବା—2. To tremble with
ଇତସ୍ତତ କରା fear. ୩ । ସନ୍ଦେହାକ୍ରାନ୍ତ ହୋଇ
ଲୁସପୁସ ହୋନା ଇତସ୍ତତଃ ହେବା—3. To waver through doubt or indecision.

ଲୁଚ(ଚୁ) ପୁଚିଆ—ଦେ. ବଣ—୧ । ଭୟାଳୁଭୀରୁ;ଭୀତ—1. Coward; Luch-(chu) puchiā timid. ୨ । ସନ୍ଦେହାକୁଳ—ଭୀତୁ କାୟର 2. Suspicious. ୩ । ଅସ୍ଥିର ମନାଃ—[ଲୁଚ(ଚୁ)ପୁଚେଇ—ସ୍ତ୍ରୀ] 3. Wavering; fickle. ୪ । ସନ୍ଦିଗ୍ଧ ଶଙ୍କୀ ପତଳା ଓ କୋମଳ (ଖାଦ୍ୟ)—4. ଅସ୍ଥିର ঝিমককনেবালা Soft and thin (food). পাজী পলপলহা

ଲୁଚ—ଦେ. ବ (ସ. ଲୁକ୍ ଧାତୁ)—୧ । ଲୁଚିବା—1. Hiding. Luchā oneself. ୨ । ଲୁଚାଇବା—2.Concealing anything. ଦେ. ଅ—ଲୁଚିବ (ଦେଖ)—Luchāe

ଲୁକା লুকা (See) ଦେ. ବଣ—୧ । ଲୁଚା (ଦେଖ)—1. ଲୋଚ୍ଚା Luchhā (See) [ଯଥା—ଓହୋ କାହୁଥିଲ ଲୌଆ ଦେଖିବା ପାଇଁ କ ପର ! କଳଙ୍କି ବେହାୟା ଲୁଚ । ଲୁକାନ ଉପକାର—ବନମାଳୀ ।] ୨ । ଗୁପ୍ତ—2. ଛିପା Hidden; concealed. ୩ । ଅପ୍ରକାଶ୍ୟ—3. Secret.

ଲୁଚାଇ ଦେବା—ଦେ. କି—(କୌଣସି ବସ୍ତୁକୁ) ଅଦୃଶ୍ୟ କରାଇବା; Luchāi debā ଲୁକ୍କାୟିତ କରିବା—To conceal; to ଲୁକିୟେ ଦେଓୟା লুকাদেনা hide.

ଲୁଚା(ଚେ)ଇବା—ଦେ. କି (ସ. ଲୁକ୍ ଧାତୁ; ଲୁଚିବା କ୍ରିୟାର Luchā(che)ibā ଣିଜନ୍ତରୂପ)—୧ । ପ୍ରଚ୍ଛନ୍ନ କରିବା; ଗୋପନ ଲୁକାନ କରିବା—1. To conceal; to hide. [ଯଥା—ଲୁକାନା ଚଙ୍ଗୋ ଲୁଚାଇ ନଖ ତଳେ । ଭୂପତି ପ୍ରେମପଞ୍ଚାମୃତ ।] ୨ । ଆବୃତ କରିବା; ଘୋଡ଼ାଇବା—2. To cover. (ଯଥା—ମେଘ ଚନ୍ଦ୍ରକୁ ଲୁଚାଇଛି ।) ୩ । ଅନ୍ୟର ଦୃଷ୍ଟି ପଥର ଅନ୍ତରାଳରେ ରଖିବା—3. To hide from another's view. (ଯଥା—ବାଘ ପର ଜନ୍ତୁ ଲୁଚାଇକରି ଖାଏ ।) ୪ । ବାହାରେ ପ୍ରକାଶ ନ କରିବା—4. Not to publish a matter. (ଯଥା—ପାପକୁ କେତେ ଦିନ ଲୁଚାଇବ ?) ୫ । ଲୋକଙ୍କୁ ଦେଖାଇ ନ ଦେବା—5. Not to allow persons to see. (ଯଥା—ନୂଆ ବୋହୂକୁ ଶାଶୁ ଆଉ କେତେଦିନ ଲୁଚାଇ ରଖିଲେ ?)

ଲୁଚା(ଚା, ଛା)ଏ(କ)—ଦେ. ବ. ଓ ବଣ—(ଅନାଦରାର୍ଥ) ଗୁଣ୍ଡାଏ Lucha(chchā, chchhā)e(ka) —Many a. [ଯଥା—গুচ্ছের ସେହିପରି ଗୁଣ୍ଡାଏ ଓ ଗୁଣ୍ଡାକର ଅନାଦରାର୍ଥକ ଟୀଙী ଆକାରଗୁଡ଼ିଏ ଓ ଗୁଡ଼ାକ, ସେହିପରି ଲୁଚାଏ ଓ ଲୁଚାକର ଅନାଦରାର୍ଥକ ଆକାର ଲୁଚାଏ ଓ ଲୁଚାକ ।]

ଲୁଚା(ଚା)କୁ(କୋ)ଚା—ଦେ. ବଣ (ସ. ଲୁଞ୍ଚିତ କୁଞ୍ଚିତ)—୧ । Luchā(chchā)ku(ko)chā ସଙ୍କୁଚିତ—1. Contracted ଜଡ଼ସଡ, କାଁଚୁମାଚୁ and curled. ୨ । ଗୋଡ଼ ହାତ সিকুড়াহুআ ସଙ୍କୁଚିତ କରିଥିବା; ପିଣ୍ଡୀକୃତଶରୀର—2. With the hands and legs contracted or drawn together. ୩ । ଯାହାର ସମସ୍ତ ଅବୟବ ସଙ୍କୁଚିତ ହୋଇଥାଏ—3. Curled and contracted. (ଯଥା—ମୁଁ ଏକସ୍ଥାନରେ ୪ ଘଣ୍ଟା ବସିଥିବାରୁ ମୋ ଗୋଡ଼ ହାତ ଲୁଚାକୁଚା ହୋଇ ଗଲାଣି; ଜର ଲୁଗା ପୁରୁଣା ହୋଇଗଲେ ଲୁଚାକୁଚା ହୋଇ ଯାଏ ।)

ଲୁଚା ଚୋରା—ଦେ. ବଣ (ସହଚର)—୧ । ଗୁପ୍ତ—1. Concealed. Luchā chorā hidden. ୨ । ସାଧାରଣରେ ଅପ୍ରକାଶିତ; ଲୁକାଚୋରা ସାଧାରଣଙ୍କ ଦୃଷ୍ଟିର ଅଗୋଚର—2. Hidden লুকাছিপা from public view. ଦେ. ବ—ଗୋପନ [ଲୁଚୁଚ(ଚୁ)ପା—ଅନ୍ୟରୂପ] କରିବା—Concealment ଲୁକোচুরী

ଲୁଚା ପ୍ରୀତି—ଦେ. ବ—ଗୁପ୍ତପ୍ରଣୟ; ଚୋରାପ୍ରୀତି—Secret love; Luchā priti making love in secret ଗୁପ୍ତপ্রেম ছিপাহুআ প্রেম

ଲୁଚା(ଚା) ଲୁଙ୍ଗ(ଙ୍ଗୁ)ଡ଼ା(ରା)—ଦେ. ବଣ. ପୁଂ (ସହଚର)—ଲୋଚା Luchā(chchā) lung-(ṅgu)rdā(rā) ଲୁଙ୍ଗୁଡ଼ା (ଦେଖ)। [ଲୁଚା(ଚା)ଲୁଙ୍ଗ(ଙ୍ଗୁ)ଡ଼ୀ(ରୀ)—ସ୍ତ୍ରୀ] Lochchā lungurdā (See)

ଲୁଚାଲୁଚି—ଦେ. ବ (ସ. ଲୁକ୍ ଧାତୁ)—୧ । ଅନ୍ୟୋନ୍ୟରେ Luchāluchi ଲୁଚାଇବା କ୍ରିୟା—1. Act of mutuay ଲୁକାଲୁକী concealing. ୨ । ବହୁବସ୍ତୁ ଲୁଚାଇବା କର୍ମ লুকালুকী —2. Concealment of many things. ଦେ. ବଣ (ନିରର୍ଥକ ସହଚର)—ଲୁକ୍କାୟିତ; ଲୁଚାହେବା—Concealed; hidden from view or public gaze. (ଯଥା—ଲୁଚାଲୁଚି କାରବାର ।)

ଲୁଚି—ଦେ. ବ (ସ. ଲୋପ୍ତ୍ରୀ; ସ. ଲୋଚକ=ମାଂସ ପିଣ୍ଡ; Luch ଶ୍ଳଽଚର୍ମ; ତୁଳନାକର ସ. ରୁଚି)—ମଇଦାରେ ଲচী; লুচী ପ୍ରଥମେ ଘିଅ (ମୟାନ) ଦେଇ ପରେ ପାଣି লুচি, লুই ମିଶାଇ ଚକଟି ପିଣ୍ଡ କରି ଉକ୍ତ ପିଣ୍ଡକୁ ବେଲଣାରେ ଖୁବ୍ ପତଳାଭାବରେ ଗୋଲାକାର କରି ବେଲି ଘିଅରେ ଛାଣି ପ୍ରସ୍ତୁତ କରାଯିବା ପିଷ୍ଟକ; ପତଳା ପୁରି—Thin cakes made of flour and fried in ghee. [ଦ୍ର—ଏ ଶବ୍ଦ ବଙ୍ଗଦେଶରେ ବ୍ୟବହୃତ । ଅଦ୍ୟାପି ପଶ୍ଚିମରେ ଓ ଓଡ଼ିଶାରେ ଏ ଶବ୍ଦ ବିଶେଷ ରୂପେ ଚଳ ନାହିଁ । ଅଟା ବା ସୁଜିକୁ ଚକଟି,ବେଲି ଯାହାଁ ଉପରେ ସେକିଲେ ତାହା ରୁଟି ହୁଏ । ତାକୁ ନ ସେକି ଘିଅରେ ଭାଜିଲେ ପୁରି ହୁଏ । ମଇଦା(ସୂକ୍ଷ୍ମଅଟା)କୁ ବେଲି ପୁରି ଅପେକ୍ଷା ପତଳାକରି ଘିଅରେ ଛାଣିଲେ ତାହା ଲୁଚି ହୁଏ । ଲୁଚି ପୁରିଠାରୁ ପତଳା ଓ କୋମଳ । ପୁରି ଓ ରୁଟିକୁ ବେଲିବା ପୂର୍ବରୁ ଅଟା ବା ମଇଦା ସଙ୍ଗେ ପାଣି ଗୋଳାଇ ଚକଟିବାକୁ ହୁଏ, କିନ୍ତୁ ମଇଦାକୁ

ଚକଟ ଲୁଚ ବେଲିବା ପୂର୍ବରୁ ଶୁଖିଲା ମଇଦା ସଙ୍ଗେ ସାମାନ୍ୟ ଘିଅ(ମୟାନ୍)ଗୋଳାଯାଏ ଏଥିର କରିବାଯୋଗୁଁ ଲୁଚ ଫୁଲୁକା ଓ ମସକା ହୁଏ । ଲୁଚ ଖୁବ୍ ପତଳା ଥିବାରୁ ବଙ୍ଗାଳୀମାନେ କାଗଜର ବସ୍ତାପରି ୨୫ଖଣ୍ଡ ଲୁଚକୁ ଏକବସ୍ତା ଲୁଚ ବୋଲି କହନ୍ତି । ବୈଦ୍ୟଶାସ୍ତ୍ରରେ ଅଛି —ସମୀତାୟା ଘୃତାକ୍ତାୟା ଲୋପ୍ତୀଂ କୃତ୍ୱାଚ ବେଲ୍ଲୟେତ୍ । ଅଜେଂୟତାଂ ଭର୍ଜ୍ଜୟେତ୍ ସିଦ୍ଧାଂଶ୍ଚୈଳୀ ଫେନକା ଗୁଣା । ଅର୍ଥାତ୍ ଘୃତାକ୍ତ ମଇଦାକୁ ପାଣିରେ ଗୋଳ ତାକୁ ବେଲି ଲୁଚକର ଘିଅରେ ଭାଜିଲେ ତାହା ଶସ୍କୁଲୀ ହୁଏ ଓ ତାହା ଫେନକା (ଗଜା) ପରି ଗୁଣକର । ଶସ୍କୁଲୀ ଖାସ୍ତା ଲୁଚ ଅଟେ । )

ଲୁଚଆ କୁଚଆ—ଦେ. ବିଣ'—(ସଂ ଲୁଞ୍ଚିତ କୁଞ୍ଚିତ)—ଲୋଚଆ
Luchiā kuchiā କୁଚଆ (ଦେଖ)—Lochiā kuchiā (See)

ଲୁଚଏ(କ)—ଦେ. ବ୍ର. ଓ ବିଣ (ଅଦରସୂଚକ)—ଘୁଳଏ—
Luchie(ka) কিছু থোড়া A small quantity.
(ଦୃ—ଶୁଣି ଉପରେ ଚଢ଼ିଲ ମୁହିଁ ସବ ଲୁଚଏ ଦେଲି ନେଇ । ଜଗନ୍ନାଥ—ଭାଗବତ) [ଦ୍ର. ଲୁଞ୍ଚ ଏ ବହୁତ ପରିମାଣ ଓ ଅନାଦର ଓ ଲୁଚଏ ଅଳ୍ପ ପରିମାଣ ଓ ଆଦର ସୂଚକ ।]

ଲୁଚ କା(କୁ)ଚ(ଛି) ହେବା—ଦେ. କ୍ରି—(ସଂ ଲୁଞ୍ଚିତ କୁଞ୍ଚିତ)—୧ ।
Luchi kā(ku)chi(chhi) hebā କୁଞ୍ଚିତ ହେବା—
কাঞ্চু মাঞ্চু হওয়া জড় সড় হওয়া 1. To be curled.
सिकुड़ना ୨ । ସଙ୍କୁଚିତ ହେବା—2. To be contracted into a small compass.

ଲୁଚ ଛାଙ୍କି(ଣି)ବା—ଦେ. କ୍ରି—ବେଲି ହୋଇଥିବା ଲୁଚକୁ କଡ଼ାଇ
Luchi chhānki(ṇi)bā ଉପରେ ଫୁଟୁଥିବା ଘିଅରେ ପକାଇ
লুচি ছাঁকা, লুচিভাজা ସିଦ୍ଧ କରିବା ପରେ ତାହା ଉଠାଇ
लुचीछानना ଆଣିବା—To roast Luchi. [ଦ୍ର—(ଲୁଚଭାଜିବା—ଅନ୍ୟରୂପ) କଡ଼େଇରେ ବେଶି ଘିଅ ଥାଇ ଲୁଚ ତହିଁରେ ଭାସିବା ପରି ହେଲେ ତାକୁ ଛାଙ୍କିବା ବା ଛାଣିବା କହନ୍ତି ଓ ଅଳ୍ପ ଘିଅ ଥିଲେ ତାକୁ ଭାଜିବା କହନ୍ତି । ]

ଲୁଚ ପୁରି—ଦେ. ବି ( ଏକାର୍ଥକ ସହଚର )—ଲୁଚଆଦି—
Luchi puri लुचीपुरी লুচিটুচি Luchi etc.

ଲୁଚବା—ଦେ. କ୍ରି.—(ସଂ ଲୁକ୍ ଧାତୁ)— ୧ । ଲୁକ୍କାୟିତ ହେବା;
Luchibā লুকান, লুকান ପ୍ରଚ୍ଛନ୍ନ ହେବା—1. To be
लुकना छिपना hidden or concealed. ୨ । ଦେଖା ନ ଯିବା; ଅଦୃଶ୍ୟ ହେବା—2. To be invisible; to disappear. ୩ । ଲୋପ ପ୍ରାପ୍ତ ହେବା—3. To be annihilated. ୪ । ଅନ୍ୟ ବ୍ୟକ୍ତିର ଦୃଷ୍ଟିରୁ ନିଜର ମୁଖକୁ ଗୁପ୍ତ କରିବା—4. To hide one's face from the view of another [ ଦୃ—ଲୁଚନ୍ତି । ଗୋଡ଼ ଦର୍ଶଇ ବଣୁଛି । ଉଗ ।] [ଦ୍ର—ଅବରୋଧ ପ୍ରଥା ଯୋଗୁଁ ସ୍ତ୍ରୀମାନେ ପୁରୁଷମାନଙ୍କୁ ଲୁଚନ୍ତି, ଅର୍ଥାତ୍ ପୁରୁଷମାନଙ୍କ ଆଗରେ ଦେଖା ଦିଅନ୍ତି ନାହିଁ । ବିଶେଷତଃ ନବାଗତ ବଧୂମାନେ ଶିଶୁ ମାନଙ୍କଛଡ଼ା ଅନ୍ୟ ସମସ୍ତଙ୍କୁ ପ୍ରଥମେ ପଥମେ ଲୁଚନ୍ତି ଓ କିଛି ବଧୂମାନେ ପୁତ୍ରକନ୍ୟାଙ୍କର ଜନନୀ ହେବାପରେ ତାଙ୍କର ଏ ଲୁଚିବାର ମାତ୍ରା କେତେ ପରିମାଣରେ କମିଯାଏ; ତଥାପି ସ୍ତ୍ରୀଲୋକମାନେ ଆପଣାର ଦେଢ଼ଶୁର, ମଉଳାଶୁର,ଭଉଣୀଜୋଇଁ, ମାନଙ୍କୁ ଚିରକାଳ ଲୁଚନ୍ତି, ଅର୍ଥାତ୍ ସେମାନଙ୍କ ସମ୍ମୁଖରେ ଆପଣାର ମୁଖ ଦେଖାନ୍ତି ନାହିଁ । ସନ୍ଦିସ୍ତ ଓ କରଣମାନଙ୍କ ଘରେ କନ୍ୟା ଋତୁମତୀ ହେବାପରେ ଆପଣାର ପିତା ଓ ବଡ଼ ଭାଇଙ୍କୁ ମଧ୍ୟ ଲୁଚନ୍ତି । ] ୫ । ଲୁଛିବା (ଦେଖ)
5. Luchhibā (See)

ଲୁଚ ବେଲିବା—ଦେ. କ୍ରି—(ସଂ ବେଲ,ବେଲ୍ଲ ଧାତୁ=ଚାଳନ କରିବା)
Luchi belibā ମଇଦାକୁ ପାଣିରେ ଗୋଳ ଚକଟ ପିଣ୍ଡମାନ
लुचीबेलना ତିଆର କରି ସେହି ପିଣ୍ଡକୁ ପଟା ଉପରେ ପକାଇ
লুচিবেলা ବେଲଣା କାଠିଦ୍ୱାରା ପ୍ରସାରିତ କରିବା—To roll balls into thin sheets for preparing Luchi

ଲୁଚ ମିଠା(ଠେ)ଇ—ଦେ.ବି—(ସହଚର ଶବ୍ଦ)—(ସଂ ଲୋପ୍ତୀ,ମିଷ୍ଟାନ୍ନ)
Luchi mithā(ṭhe)i ଲୁଚ ଓ ତହିଁ ସଙ୍ଗେ ଖିଆ ଯିବା
লুচি সন্দেস, লুচিমণ্ডা ମିଷ୍ଟାନ୍ନ—Luchi accompanied
लुचिमिठाई with sweets.
[ଲୁଚ ଖଜା,ଲୁଚ ତରକାରୀ, ଲୁଚ ମହନଭୋଗ, ଲୁଚ ସନ୍ଦେଶ] }—ଲୁଚ ସଙ୍ଗେ ବ୍ୟବହୃତ ଅନ୍ୟ ପ୍ରକାରର ଉପକରଣମାନ

ଲୁଚ ଯିବା—ଦେ. କ୍ରି.—୧ । ପ୍ରଥମେ ଦେଖା ଦେଇ ପରେ ଦୃଷ୍ଟି
Luchi jibā ପଥରୁ ଅନ୍ତର ହେବା—1. To hide one-
লুকিয়ে যাওয়া लुक जाना self or to disappear
(ଲୁଚ ହୋଇଯିବା—ଅନ୍ୟରୂପ) after once being seen.
(ଦୃ—ଥରେ ଥରେ ଦେଖା ଦେଇଣ ଲୁଚ ଯିବୁ । କୃଷ୍ଣସିଂହ ମହାଭାରତ ବନ । ) ୨ । ସମ୍ପୂର୍ଣ୍ଣରୂପେ ଅଦୃଶ୍ୟ ହେବା—2. To be completely hidden from view. ୩ । ଲୁଛିବା (ଦେଖ)
3. Luchhibā (See)

ଲୁଚ ରହିବା—ଦେ. କ୍ରି—ଲୁକ୍କାୟିତ ହୋଇ କୌଣସି ସ୍ଥାନରେ କିଛି
Luchi rahibā କାଳ ଅପେକ୍ଷା କରିବା—To lie hidden
লুকীয়েবসা for sometime; to be ambushed;
लुक रहना to lie hidden and in waiting.
(ଲୁଚ ବସିବା—ଅନ୍ୟରୂପ)

ଲୁଚା—ଦେ. ବିଣ (ସଂ ଲୁକ୍ ଧାତୁ; ଭୁଲ. ଇଂ. ଲେଚର୍=ଲମ୍ପଟ)—
Luchā ୧ । ଲୋଚା; ଲମ୍ପଟ—1. Lecherous.
ଲୁଚାପଣ, ଲୁଚାପଣିଆ } libidinous. ୨ । ଚୋରକରିବା ସ୍ୱଭାବଯୁକ୍ତ—2. Thievish. ୩ । ଖେଚଡ଼ା; ଦୁଷ୍ଟ—
লোচ্চা लुच्चा 3. Wicked; wanton. ୪ । ( ସଂ ଲୁଞ୍ଚିତ) ଅଲୁଞ୍ଚିତ; ସଙ୍କୁଚିତ—4. Contracted. ୫ । (ସଂ ଲୁଞ୍ଚିତ) ଲୁଞ୍ଚିତ—5. Cured.

ଲୁଚା କୁ(କୋ)ଚା—ଦେ. ବ—ଲୁଚ୍‌କୁଚ୍ (ଦେଖ)
Luchchā ku(ko)chchā Luchākuchā (See)

ଲୁଚା ଲୁଙ୍ଗ(ଙ୍ଗୁ)ଡ଼ା(ରା)—ଦେ. ବଣ.ପୁଂ.(ସ୍ୱଚର)—୧। ଦୁଷ୍ଟ ଓ ଦୁଶ୍ଚରିତ୍ର—1. Wicked and immoral.
Luchchā lung-(ṅgu)ṛdā(rā)
ଲୋଚ୍ଚାନୋଙ୍ଗରା(ଡ଼ା) लुच्चा लंगाड़ा
[ ଲୁଚାଲୁଙ୍ଗ(ଙ୍ଗୁ)ଡ଼ିଆ—ଅନ୍ୟରୂପ] ୨। ଲମ୍ପଟ ଓ ଚୋର—2. Lecherous and thievish.
ଲୁଚା ଲୁଙ୍ଗ(ଙ୍ଗୁ)ଡ଼ୀ(ରୀ)
ଲୁଚାଲୁଙ୍ଗ(ଙ୍ଗୁ)ଡ଼େ(ରେ)ଇ } —ସ୍ତ୍ରୀ

ଲୁଛ(ଛେ)ଇବା—ଦେ.କ୍ରି—୧। ଦୁଇ ପଦାର୍ଥକୁ ଗଣ୍ଡିବା; ତୁଳନା କରିବା
Luchhā(chhe)ibā ତୁଲନାକବା 1. To compare 2 things.
मिलाना; तुलनाकरना, रंगमिलाना ୨। ଅନ୍ୟ ନିମନ୍ତେ ଉଦ୍ଦିଷ୍ଟ ନୂତନ ବସ୍ତ୍ରକୁ ପ୍ରଥମେ ପରିଧାନ କରିବା; ଉପଭୋଗ କରିବା—To wear a new cloth intended for another. [ବି—କେତେକ ବର୍ଷୀୟାନ ଲୋକ ପ୍ରଥମେ ନୂଆ ଲୁଗାକୁ ପିନ୍ଧନ୍ତି ନାହିଁ, ଉକ୍ତ ନୂଆ ଲୁଗାକୁ ଅନ୍ୟ ଜଣେ ବ୍ୟକ୍ତି ( ଆପଣାର ପୁଅ, ଭାଇ ଇତ୍ୟାଦି ) ତାଙ୍କୁ ପ୍ରଥମେ 'ଲୁଛିବା' ପରେ ପ୍ରଥମୋକ୍ତ ବ୍ୟକ୍ତି ଉକ୍ତ ଲୁଗାକୁ ପିନ୍ଧନ୍ତି ।]

ଲୁଛିବା—ଦେ. କ୍ରି ( ସଂ. ସଙ୍କୁଚିତ )—୧। ଲଜ୍ଜାଆଦି ଦ୍ୱାରା ସଙ୍କୁଚିତ ହେବା—1. To be contracted through shame or modesty.
Luchhibā
ଲୁଚ୍ଛିଯିବା } ଅନ୍ୟରୂପ—
ଲୁଚ୍ଛି ହେବା }
[ ଉ—ଲୁଚ୍ଛଯାଇ ତାହାର ହୃଦୟରଣ,
ଜଡ଼ସଡ଼ହওয়া सिकुड़ना ମୋ ରଞ୍ଜନ ଜୀବନ ଧନ ପ୍ରାଣ—ପ୍ରାଚୀ. ରହସ୍ୟମଞ୍ଜରୀ]—୨। ଲଜ୍ଜିତ ହେବା—
ଲଜ୍ଜିତହওয়া शरमाना 2. To be ashamed; to become crestfallen; to blush; to be
মরেযাওয়া लज्जितहोना modest. ୩। ଅନ୍ୟର ଶୋଭାଆଦିଦ୍ୱାରା ମୁଗ୍ଧ ହେବା—3. To be charmed with another's beauty. ୪। କୌଣସି ବ୍ୟକ୍ତିଠାରେ ବା ବିଷୟରେ ସମ୍ପୂର୍ଣ୍ଣରୂପେ ଆସକ୍ତ ହେବା—4. To be completely attached to a matter,
মরেযাওয়া मरजाना thing or person. ୫। ଦୁଃଖରେ ଅଭିଭୂତ ହୋଇପଡ଼ିବା—5. To be overwhelmed with grief. [ଉ—ଲୁଚ୍ଛି ହୋଇଯିବି ଉଠ ମୋ ବାପା—
মিলেযাওয়া मिलना ପ୍ରାଚୀ. ରହସ୍ୟମଞ୍ଜରୀ।] ୬। ଅନ୍ୟ ଦୋଷ ସଙ୍ଗେ ରୂପ, ଗୁଣ ଓ ଆକାର ଆଦିରେ ସମ୍ପୂର୍ଣ୍ଣରୂପେ ସମାନ ହେବା—6 To coincide with another; to fit in with a thing; to fully tally. [ଯଥା—ଏ ଅଳଙ୍କାରଗୁଡ଼ିକ ବୋହୂ ଦେହକୁ ଲୁଚ୍ଛି ଯାଉଛି ।]

ଲୁଚ୍ଛି ଯାଏଁ—ଦେ. ଅ (ଶିଶୁ ଆଦିଙ୍କ ରୂପ ଗୁଣାଦିରେ ମୁଗ୍ଧ ହୋଇଯିବା ବୟୋବୃଦ୍ଧମାନଙ୍କର ସସ୍ନେହବାକ୍ୟ)-ଅହା ! ମୁଁ ମରିଯାଏଁ !
Luchhi jāẽ
মরেযাই वाहवाह

ଲୁଚିଲା(କା)ଛି ହେବା—ଦେ. କ୍ରି—ଲୁଚିକାଚି ହେବା (ଦେଖ)
Luchhilā(kā)chhi hebā Luchikāchi hebā (See)
[ଲୁଚ୍ଛିଲୁଛି ହେବା—ଅନ୍ୟରୂପ]

ଲୁଞ୍ଚ(ଧାତୁ)—ସଂ.—୧। ଛିଣ୍ଡାଇପକାଇବା—1. To tear off; to pluck out. ୨। ପରିତ୍ୟାଗ କରିବା—2. To abandon; to relinquish.
Lunch(root)
[ଲୁଂଚ୍ ଧାତୁ—ଅନ୍ୟରୂପ]
୩। କାଟିବା—3. To cut down. ୪। ଜୋରପୂର୍ବକ ଉପାଡ଼ିବା—4. To uproot with force; to pull out. ୫। ଚୋପା ଛଡ଼ାଇବା—To peel (Apte).

ଲୁଞ୍ଚନ—ସଂ. ବି. (ଲୁଞ୍ଚ ଧାତୁ+ଭାବ. ଅନ)—୧। ଆଙ୍ଗୁଠିରେ ଧରି ବଳପୂର୍ବକ ଉତ୍ପାଟନ କରିବା (ହେ. ଶ)—1. Uprooting with force. ୨। କାଟିବା; କର୍ତ୍ତନ—2 Cutting. ୩। ଛିଣ୍ଡାଇବା—3. Tearing off; plucking. ୪। ଚୋପା ଛଡ଼ାଇବା 4. Peeling off.
Lunchana

ଲୁଞ୍ଚିତ—ସଂ. ବି ( ଲୁଞ୍ଚ ଧାତୁ+କର୍ମ କ୍ତ)—୧। ଛିନ୍ନ; ଛିନ୍ନଭିନ୍ନ—1. Torn to pieces; perforated. ୨। ପରିତ୍ୟକ୍ତ—2. Abandoned; relinquished. ୩। ଭିନ୍ନ—3. Separated. ୪। କର୍ତ୍ତିତ; ଲୂନ—4. Cut off. ୫। ଉତ୍ପାଟିତ—5. Uprooted; plucked. ୬। ଚୋପା ଛଡ଼ାଯାଇଥିବା—6. Peeled.
Lunchita

ଲୁଟ(ଠ) (ଧାତୁ)—ସଂ—୧। ଭୂମିରେ ଗଡ଼ିବା—1. To roll on the ground; to wallow, to welter. ୨। ଲୁଟିକରିବା; ଡକାଟି କରିବା—. To rob; to plunder (Apte) ୩। ବାଧା ଦେବା—3. To resist; to oppose; to impede (Apte). ୪। ଉଜ୍ଜ୍ୱଳ ହେବା—4. To shine (Apte). ୫। ଦୁଃଖ ପାଇବା—5. To suffer pain (Apte). ୬। କହିବା—6. To speak (Apte), ୭। ଆନ୍ଦୋଳନ କରିବା—7. To agitate(Apte). ୮। ଇତସ୍ତତଃ ହେବା; ଚଳିବା; ଚଳଚଳ ହେବା—8. To move; to stir (Apte).
Luṭ(ṭh)(root)

ଲୁଟ(ଠ)—ଦେ. ବି (ସଂ. ଲୁଣ୍ଟ୍ ଧାତୁ)—ଲୁଣ୍ଠ; ବହୁବ୍ୟକ୍ତିଙ୍କ ଦ୍ୱାରା ଦ୍ରବ୍ୟ ଅପହରଣ; ଡକାଇତି—Looting; robbery; dacoity; theft accompanied by the use of force.
Luṭ(ṭh)
লুট্ लुट

ଲୁଟ୍ କରା(ରେ)ଇବା—ଦେ.କ୍ରି—ଲୁଟାଇବା (ଦେଖ)
Luṭ karā(re)ibbā Luṭāibā (See)

ଲୁଟ୍ କରିବା—ଦେ. କ୍ରି—ଦ୍ରବ୍ୟାଦି ବଳପୂର୍ବକ ଅପହରଣ କରିବା—
Luṭ karibā লুটকরা लुटकरना To loot; to plunder

ଲୁଟ୍(ଟୁ)କୁ(ଖ,ଘୁ)ଟ୍(ଟୁ)—ଦେ. ବି (ସଂ.ନଟ ଓ କୂଟ) ନଟକୁଟ (ଦେଖ)
Luṭ(ṭu)ku(khu, ghu)ṭ(ṭu) Naṭakūṭa (See)

ଲୁଟ୍(ଟୁ)କୁ(ଖୁ,ଘୁ)ଟିଆ—ଦେ. ବଣ. [ ପୁଂ—ନଃ ଲୁଟିଆ (ଦେଖ)
Luṭ(ṭu)ku(khu,ghu)ṭiā Naṭakuṭiā (See)
[ଲୁଟ୍(ଟେ)କୁ(ଖୁ,ଘୁ)ଟେଇ—ସ୍ତ୍ରୀ]

ଲୁଟ୍ ତରାଜ(ଜୁ)—ଦେ. ବ ( ଏକାର୍ଥକ ସହଚର ) ( ସଂ. ଲୁଣ୍ଠନ+ଫା. ତରାଜ=ଧ୍ୱଂସ )—୧ । କୌଣସି ସ୍ଥାନ ( ଯଥା—ଦୋକାନ, ହାଟ, ଗୃହ )ର ସମସ୍ତ ଧନ ଦ୍ରବ୍ୟ ବହୁଲୋକଙ୍କ ଦ୍ୱାରା ଅତ୍ୟାଚାର ଓ ବଳପ୍ରୟୋଗପୂର୍ବକ ଲୁଣ୍ଠନ; ଡକାଇତି—Plunder; rapine; dacoity; forcible removal of everything from a place by many people accompanied with violence. [ ଉ—ସାହେବ ସବୁ ହୁକୁମ ଦେଇଛନ୍ତି ଯେ କେହି କୋଉଁଠି ଲୁଟ୍‌ପାଟ୍ କରିବେ ନାହିଁ । ଉକାଉ. କଟକ ବଜ୍ରପୁ । ]
Luṭ tarāja(ju)
(ଲୁଟ୍‌ପାଟ୍—ଅନ୍ୟରୂପ)
लूटपाट, लूटतबाज
लूटपाट, लूटखूंद, लूटमार

ଲୁଟ୍‌ପୁଟ୍—ପ୍ରାଦେ ( ସମ୍ବଲପୁର ) ବଣ—ଲଟେଇ ପଟେଇ ( ଦେଖ )
Luṭ-puṭ Laṭei paṭei ( See )

ଲୁଟ(ଟୁ)ଣି—ଦେ. ବ ଓ ବଣ—ଲୋଟଣି ( ଦେଖ )
Luṭa(ṭu)ṇi Loṭaṇi ( See )

ଲୁଟା—ଦେ. ବ.—(ସ. ଲୁଣ୍ଟ୍ ଧାତୁ)—ଦ୍ରବ୍ୟ ଲୁଣ୍ଠନ କ୍ରିୟା; ଡକେଇତି—Dacoity. ପ୍ରାଦେ (ବାଲେଶ୍ୱର)ବ ଲୋଟା (ଦେଖ)—Loṭā (See)
Luṭā
लूट लूटना

ଲୁଟା(ଠା)ଇବା—ଦେ. କ୍ରି ( ସ. ଲୁଟ୍, ଲୁଠ୍, ଲୁଣ୍ଠ ଧାତୁ; ଲୁଟିବାର ଣିଜନ୍ତରୂପ )—୧ । ଅନ୍ୟମାନଙ୍କ ଦ୍ୱାରା କୌଣସି ବ୍ୟକ୍ତିର ଧନ ଦ୍ରବ୍ୟାଦି ଲୁଣ୍ଠିତ କରାଇବା—1. To cause others to loot a person's property. ୨ । ( ଲକ୍ଷଣାର୍ଥ )—ଅପବ୍ୟୟିତ କରିବା—2. ( fig ) To waste; squander. [ ଉ—ତା ଗନ୍ତାଘର ଗନ୍ତାଘରକୁ ଲୁଟାଇ । କୃଷ୍ଣସିଂହ. ମହାଭାରତ. ବନ । ] ୩ । ( ଅନ୍ୟ ବ୍ୟକ୍ତି ବା ବସ୍ତୁକୁ ) ଭୂମିରେ ଲୁଣ୍ଠିତ କରାଇବା—3. To cause to roll or wallow on the ground. [ ଉ—ଧଵରେ ତରୁଣ ଶିର ଅଛି ରଣ ଲୁଠାଇଲେ ନ ପଶୁରିବାର । କବିସୂର୍ଯ୍ୟ. ସଙ୍ଗୀତ । ]
Luṭā(ṭhā)ibā
लुटकरान
लुटवाना
(ଲୁଠାଇ ଦେବା—ଅନ୍ୟରୂପ)
लुटिए देओया
लुटाना
लुटान
लोटाना

ଲୁଟାଲୁଟି—ଦେ. ବ ( ସହଚର )—୧ । ଲୁଟ୍ ତରାଜ ( ଦେଖ )—1. Luṭ tarāja ( See ). ୨ । ବହୁବ୍ୟକ୍ତି ଭୂମିରେ ଗଡ଼ାଗଡ଼ି ହେବା—2. Many people rolling on the ground.
Luṭāluṭi
लुटालुटि
लूटपाट गड़ागड़ि
लोटालोटी

ଲୁଟି—ଦେ. ବ ( ସ.ଲୁଣ୍ଠନ )—୧ । ଦ୍ରବ୍ୟାଦିର ଲୁଣ୍ଠନ; ଡକାଇତି—1. Looting; dacoity; plunder; rapine. ୨ । ଲଟେଇ; ସୂତା ଗୁଡ଼ା ହେବାର ଯନ୍ତ୍ର—2. A contrivance or reel for winding thread [ ଉ—ଅରେ ଗୁଣ୍ଡଗାଙ୍ଗଳେ ବୁଢ଼ି ! ତୋ ସୂତା ଲୁଟି କାଢ଼, ସୂତା ଲୁଟି ନାହିଁରେ ବୁଢ଼ା ! କଣ୍ଢ ହାଟକୁ ଯାଇଁ । ଅଇଠ ଗୀତ । ] ସୂତା ଗୁଡ଼ଥା ହୋଇଥିବା ଗୋଲ—3. A skein or ball of thread.
Luṭi
लूट
लूटि
नाटाई
रील
लुटी
पेचक

ଲୁଟିଆ—ଦେ. ବ—ଲୁଣ୍ଠନକାରୀ; ବଳ ଓ ଅତ୍ୟାଚାର ପୂର୍ବକ ଦ୍ରବ୍ୟ ଅପହରଣକାରୀ ବ୍ୟକ୍ତି; ଡକେଇତ—Plunderer; freebooter; dacoit; robber. [ ଉ—ବସନ ଲୁଟିଆ, ରସବନୋଦଥା ରସରେ ନ ଥିଲେ ରସି । କବିସୂର୍ଯ୍ୟ—ସଙ୍ଗୀତ । ] ପ୍ରାଦେ ( ଯାଜପୁର ଓ ବାଲେଶ୍ୱର ଆଦି ଅଞ୍ଚଳ ) ବ—ଲୋଟିଆ; ଘଟୋଇ—A small water-pot of metal.
Luṭiā
लूटेवा, लूटेरा, लूटैल
लूटेरा
(ଲୁଟିଆର(ଳ)—ଅନ୍ୟରୂପ)

ଲୁଟି କରିବା—ଦେ. କ୍ରି—୧ । ଦ୍ରବ୍ୟାଦି ବଳପୂର୍ବକ ଅପହରଣ କରିବା—1. To loot; to plunder; to commit dacoity. [ ଉ—ଯେ ପୁଣି କପଟେ ଲୁଚ ନଣ୍ଡା ଛଟେ ଲୁଟଇ ଥାଲଟା ବାସ ଗୋ । କବିସୂର୍ଯ୍ୟ. ସଙ୍ଗୀତ । ] ୨ । ( ଲକ୍ଷଣାର୍ଥ ) ଲୋପ କରିବା—2. ( figurative ) To destroy. [ ଉ—ଜ୍ଞାନ ଘର ଗୋଟିକ କରିଦେଲ ଲୁଟି । କୃଷ୍ଣସିଂହ. ମହାଭାରତ ସଭା । ]
Luṭi karibā
लूटकवा, लूटेनेओया
लूट करना(लेना)
(ଲୁଟିନେବା—ଅନ୍ୟରୂପ)

ଲୁଟିକାଟା—ବୈଦେ. ପ୍ରାଦେ ( ଗଞ୍ଜାମ; ତେ. )—ଯାତ୍ରାକାଳୀନ ସଙ୍ଗରେ ନଥିଲିବା ଆବଶ୍ୟକ ଜିନିଷ, ପଥିକର ପାଖରେ ଥିବା ଜିନିଷ ପତ୍ର—Luggage; bag and baggage.
Luṭikāṭā

ଲୁଟି ତରାଜ(ଜୁ)—ଦେ. ବ—ଲୁଟ୍ ତରାଜ ( ଦେଖ )
Luṭi tarāja(ju) Luṭ tarāja ( See )
(ଲୁଟିପାଟ—ଅନ୍ୟରୂପ)

ଲୁଟି ପଡ଼ିବା—ଦେ. ବ—କୌଣସି ସ୍ଥାନରେ ଦ୍ରବ୍ୟାଦିର ଲୁଣ୍ଠନ କ୍ରିୟା ଘଟିବା—Promiscuous looting or plunder taking place; a state of plunder and confusion. ( ଯଥା—ଏତେ ଲୋକ ଏଠି ଜମା ହୋଇଛ, ଏଠାରେ କଅଣ ଲୁଟି ପଡ଼ୁଛି କି ? )
Luṭi paṛibā
लूटपड़ा, लूटहओया
लूटपड़ना

ଲୁଟିପା(ଲା)ଟି ନେବା—ଦେ. କ୍ରି—କୌଣସି ସ୍ଥାନରୁ ସମସ୍ତ ଦ୍ରବ୍ୟ ବଳପୂର୍ବକ ଓ ନିଃଶେଷ କରି ଅପହରଣ କରିବା—To plunder and sack everything from a place.
Luṭipā(lā)ṭi nebā
लूटपाटकवे नेओया;
लटेपुटे नेओया
लूटपाट लेना

ଲୁଟିପିଟି ନେବା—ଦେ. କ୍ରି ( ସହଚର )—ମନୁଷ୍ୟମାନଙ୍କୁ ପ୍ରହାର କରି ସମସ୍ତ ପଦାର୍ଥ ଲୁଣ୍ଠନ କରିବା—To loot away everything by assaulting the people.
Lutipiṭi nebā
लटेपिटे नेओया।
टमार लेना

ଲୁଟି(ଠି)ବା—ଦେ. କି ( ସଂ. ଲୁଟ୍ ଧାତୁ )—୧ । ଦ୍ରବ୍ୟାଦି ଲୁଣ୍ଠନ କରିବା—1. To plunder, to loot
Luti(thi)bā
ଲୁଟକବା
ଲୂଟନା
ଗଡ଼ା
ଲୋଟନା
ଲୁଟେ ନେଓଆ
ଲୁଟନା
[ ଉ—ଗଲେ ହେଲେ ତାଙ୍କ ମହତ୍ତ୍ୱ ସମ୍ପଦ୍ଭିସ୍ପି ଭୁଝି ଲୁଟି ଯାଇ । କବିସୂର୍ଯ୍ୟ. ସଙ୍ଗୀତ । ] ୨ । ଭୂମିରେ ଲୁଣ୍ଠିତ ହେବା—2. To roll or wallow on the ground; to welter. [ ଉ—ଦେବ-ରାଜଙ୍କ ପାଦତଳରେ ଲୁଟିଲେ । କୃଷ୍ଣସିଂହ. ମହାଭାରତ. ବନ । ] ୩ । ( ଲକ୍ଷଣାର୍ଥ ) ପୂର୍ଣ୍ଣରୂପେ ଉପଭୋଗ କରିବା—3. ( figurative) To enjoy to the fill. [ ଉ—ଲଗାଇଛ ହାଟ ଯେଉଁ ରସରେ, ଲୁଟିବ ହିଆ କାଲି ପ୍ରଦୋଷରେ । କବିସୂର୍ଯ୍ୟ. କଶୋଖଣ୍ଡମ୍ଭ ଲ. ଗୀତ । ] ପ୍ରାଦେ• ( ସମ୍ବଲପୁର ) କି—କୌଣସି ବ୍ୟକ୍ତିଠାରୁ କୌଣସି ପଦାର୍ଥ ଜବରଦସ୍ତି ଛଡ଼ାଇ ନେବା —To forcibly snatch away a thing from a person.

ଲୁଠ୍ (ଧାତୁ)—ସଂ.—୧ । ଭୂମିରେ ଗଡ଼ିବା; ଲୋଟିବା—
Luth (root) 1. To wallow or roll on the ground. ୨ । ତକାଇତି କରିବା—2. To rob; to plunder (Apte ୩ । ଜୋର୍‌ରେ ଭୂମିରେ ପକାଇ ଦେବା—3. To knock down (Apte). ୪ । ଗତି କରିବା—4. To go; to move (Apte). ୫ । ବାଧା ଦେବା—5. To resist; to oppose (Apte). ୬ । ଅନ୍ଦୋଳନ କରିବା—6. To agitate (Apte). ୭ । ହଲଚଲ ହେବା—7. To stir (Apte).

ଲୁଠ୍ (ଇତ୍ୟାଦି)—ଦେ. ବି.—ଲୁଟ୍ ଇତ୍ୟାଦି (ଦେଖ)
Luth (etc) Lut etc (See)
[ଉ—ଗୋଟାଏ ଲୁଠ୍ ଉପଜ ମାମଲା ଉଚ୍ଛୁ ହେବାର ଖୁବ୍ ସମ୍ଭାବନା ଥିଲା । ଫକୀରମୋହନ. ଛମାଣ ଆଠଗୁଣ୍ଠ ।]

ଲୁଠନ —ସଂ. ବି.—(ଲୁଠ୍ ଧାତୁ + ଭାବ. ଅନ)—ଭୂମିରେ ଗଡ଼ିବା—
Luthana Rolling on the ground.

ଲୁଠିତ—ସଂ. ବିଣ. (ଲୁଠ୍ ଧାତୁ + କର୍ତ୍ତୃ. ତ)—୧ । ଭୂମିରେ ଲୁଣ୍ଠିତ; ଭୂମିରେ ଗଡ଼ୁଥିବା—1. Wallowing; rolling
Luthita
on the ground. ୨ । (+ କର୍ମ. ତ)—ବଳପୂର୍ବକ ଅପହୃତ—2. Looted; plundered.

ଲଡ଼ୁ (ଧାତୁ)—ସଂ.—୧ । ମନ୍ଥନ କରିବା—1. To churn.
Lurd(root) ୨ । ଅନ୍ଦୋଳନ କରିବା—2. To agitate. ୩ । ଲାଗିବା—3. To adhere (Apte). ୪ । ଘୋଡ଼ାଇବା—4. To cover (Apte).

ଲୁଡ଼ୁ(ଡ଼ୁ)କା(କି)— ଦେ. ବି—(ସଂ. ଲୁଲ୍ ଧାତୁ; କିମ୍ବା ଲୁଡ଼୍ ଧାତୁ)—
Lurd(rdu)kā(ki) ନୁଡ଼ୁକା; ସ୍ତ୍ରୀଲୋକମାନଙ୍କର କାନର
ବୁଲକ୍, ନୋଲକ୍, ବୁଲକୀ
ଉପର ଭାଗରେ ଛିଦ୍ର କରିସାରି ଭିତ୍ତିରେ ଓ ନାକର ଛିଦ୍ରରେ ଗଳିଥିବା ଫାସିଆ ଓ ଉକ୍ତ ଫାସିଆରୁ ଝୁଲୁଥିବା ଝୁଲ ବା ସେଣ୍ଡୀ—A pendant attached to a ring which is put into a bore on the upper part of the ear or in the septum of the nose. ଦେ•
ଝୁଁମା ଝୁଲକା

ନଡ଼ନଡେ
ଲଡଲଡ
ବିଣ.—୧ । ନଡ଼ନଡ଼ିଆ; ଶ୍ଲଥ—1. Slackened. ୨ । ଶ୍ଲଥଭାବରେ ଝୁଲୁଥିବା—2. Hanging loosely. [ଦ୍ର—ଲଡ଼ୁକା ଶବ୍ଦ ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୋଇ ବିଶେଷଣରେ ହାତଲଡ଼ୁକା (ଯାହାର ହାତ ଝୁଲୁଥାଏ) ଓ କାନ ଲଡ଼ୁକା(ଯାହାର କାନ ଝୁଲୁଥାଏ);ଓ ବିଶେଷ୍ୟରେ କାନ ଲଡ଼ୁକା(କାନର ଉପର ଭାଗରେ ଛିଦ୍ର ମଧ୍ୟ ଦେଇ ଝୁଲୁଥିବା ଅଳଙ୍କାର ବିଶେଷ) ଆଦି ଶବ୍ଦ ହୁଏ । ]

ଲୁଡ଼(ଡ଼ୁ)ବୁ(ଲୁ)ଡ଼(ଡ଼ୁ)—ଦେ. ଅ (ସଂ. ଲୁଲ କିମ୍ବା ଲଡ଼୍ ଧାତୁ)
Lurd-(rdu)bu(lu)rd(rdu) ନଡ଼ବଡ଼ ( ଦେଖ )—
Nardabarda (See) [ ଉ—ବାହୁମାନଙ୍କରେ ଯେ ସାପମାନେ ଖଣ୍ଡୁ ହୋଇ ହେଉଛନ୍ତି ସଙ୍ଗ ଲୁଡ଼ୁବୁଡ଼ୁ କୃଷ୍ଣସିଂହ ମହାଭାରତ ଶଲ୍ୟ । ]

ଲୁଡ଼(ଡ଼ୁ)ବୁଡ଼ି—ଦେ ବିଣ— ନଡ଼ବଡ଼ି (ଦେଖ)
Lurd-(rdu)bu(lu)rdi Nardabardi (See)

ଲୁଡ଼(ଡ଼ୁ)ବୁ(ଲୁ)ଡ଼ିଆ—ଦେ. ଅ—ନଡ଼ନଡ଼ ( ଦେଖ )—
Lurd(rdu)lburdiā Narda narda ( See )
ଦେ. ବିଣ—ନଡ଼ବଡ଼ି (ଦେଖ)—Nardabardi (See)

ଲୁଡ(ଡୋ)—ବୈଦେ. ବି—ଏକପ୍ରକାର ବିଦେଶୀ ଖେଳ —
Luda(do) An indoor game on a board; ludo.
ଲୁଡ଼େ ଲୁଡୋ
[ଦ୍ର—ଚୌରକୋଣିଆ ଗୋଟିଏ ପଟାଉପରେ ପଶା ପାଲିପରି ବିଭିନ୍ନ ବର୍ଣ୍ଣର ଛୋଟ ଛୋଟ ଚଉକୋଣିଆ ଘରମାନ କଟା ଯାଇଥାଏ । ଏଥିରେ ୪ ଜଣ ଖେଳାଳି ଖେଳନ୍ତି; ଗୋଟିଏ ଛୋଟ ସମଚତୁଷ୍କୋଣ କାଷ୍ଠଫଳକକୁ (ଯହିଁରେ ୪ ପାଖରେ ଭିନ୍ନଭିନ୍ନ ସଂଖ୍ୟକ ଚେପି ଚେପିକା ଦାଗଥାଏ ତାକୁ) ଖେଳାଳିମାନେ ଗୋଟିଏ କାଠର ଖୋଳରେ ପୁରାଇ ହାତରେ ଧରି ତାକୁ ହଲାଇ ଦେଇ ଭୂମିରେ ପକାନ୍ତି ଓ ଫଳକର ଯେଉଁ ପାଖ ଉଚ୍ଚହୋଇ ଭୂମିରେ ପଡ଼େ, ସେହି ପାଖରେ ଅଙ୍କିତ ଚିହ୍ନର ସଂଖ୍ୟା ଅନୁସାରେ ଭିନ୍ନ ଭିନ୍ନ ଖେଳାଳିଙ୍କ ଗୋଟିମାନ ଚଳେ । ଏ ଖେଳ ବିଦେଶରୁ(ସମ୍ଭବତଃ ଚୀନ ବା ଜାପାନରୁ) ଆମ ଦେଶକୁ ଆସିଅଛି । ]

ଲୁଡ଼ା(ଢ଼ା)—ପ୍ରାଦେ(ସମ୍ବଲପୁର,ଗଡ଼ଜାତ) ବି (ସଂ.ଆଲୋଡ଼ନ;ହି.ଲୋଢ଼ା
Lurdā(rdhā) ଭୁଲ. ବି. ଲୋଢ଼ା )—ଶିଳପୁଆ—
Pestle-stone.

ଲୁଡୁର ଲଇ—ପ୍ରାଦେ (ଗଡ଼ଜାତ) ବି ( ସଂ. ଲୁଲତଲତା )-ଅସାଢ଼ବେଳେ ଭୂଇଁରେ ଥିବା ଡେଙ୍ଗରୁ
Lurdura lai
ଗଛା ବାହାର ପଥରୁ ଓ ଗଛ ଉପରେ ମାଡ଼ିବା ଲତା

ଲତାବିଶେଷ; କାଞ୍ଜି କାଞ୍ଜିଆ ଦେଖ )—A wild
( ଲୁଡ଼ରୁ, ଲୁଁଡରୁ—ଖଣ୍ଡିଆଳରୂପ ) creeper.
[ଦ୍ର—ଏ ଲତାର ଅଗ ବା ଡଙ୍କ ଅତି କୋମଳ ଓ ଲଡ଼୍ ଲଡ଼୍‌କା; ଏଣୁ ଏହି ନାମ, ଡଙ୍କ ଶଠା, ମାଛ ପୋଡ଼ା ଓ ଅମ୍ବିଳ ଛଅଣରେ ପଡ଼େ । ଏହି ଡଙ୍କ ଉପରେ ଥିବା ଅତି ପତଳା ଚୋପାକୁ କାଢି ଏଥିର ଶସକୁ ଛଅଣ କରନ୍ତି । ]

**ଲୁଣ**—ଦେ. ବି.—( ସଂ. ଲବଣ; ପ୍ରା. ଲୋଣ )—ଲବଣ; ଖଣି ଓ
Luṇa ନୁନ୍ ସମୁଦ୍ରରୁ ଜାତ କ୍ଷାର ରସଯୁକ୍ତ ଦ୍ରବ୍ୟ—Salt.
**निमक, रामरस, नून, लून** ମ. ମୀଠ
[ଦ୍ର—ଲୁଣର ପ୍ରଧାନ ଉତ୍ପତ୍ତି ସ୍ଥାନ ସମୁଦ୍ର; ଏହା ମଧ୍ୟ ଖଣିରୁ ମିଳେ ଓ ରାଜପୁତାନାର ସମ୍ଭର ଆଦି କେତେକ ହ୍ରଦରୁ ମିଳେ । କେତେକ ଝରଣର ପାଉଁଶରୁ ମଧ୍ୟ ଲୁଣ ବାହାରେ ଓ କେତେକ ସ୍ଥଳରେ ମାଟି ଉପରେ ଲୁଣର ସ୍ତର ପଡ଼ିଥାଏ । ଲୁଣ ଅତି ସହଜରେ ଜଳସଙ୍ଗେ ମିଶିଯାଏ ଏବଂ ବାୟୁରୁ ଜଳ ଗ୍ରହଣ କରିବାର ଶକ୍ତି ଲୁଣର ଅଛି; ଏଥିପାଇଁ ଲୁଣ ସମ୍ବନ୍ଧେ ନାଆଁଦିଆ (ପ୍ରହେଳିକା) ଅଛି । "ହୁଙ୍କ ଚଢ଼େଇ । ଟିକିକ ପାଣିରେ ବୁଡ଼ି ମରଇ" । କାଛୁ ଆଦିରେ ଲୁଣପାଣି ବା ଲୁଣି ହାଉଆ ଲାଗିଲେ ସେ କାଛୁରୁ ମାଛି ଓ ଚୂନ ଆଦି ଝୁରିଝୁରି ହୋଇ ଝଡ଼ିପଡ଼େ ।
ଲୁଣ ଅନେକ ପ୍ରକାର ଅଛି ଯଥା—କରକଚଲୁଣ, ପଙ୍ଗା ଲୁଣ, ଭଟ୍ଟଲୁଣ, ସନ୍ଧବଲୁଣ, ଫୁଲ ଲୁଣ; ଖାମ୍ବଲୁଣ ସର ବା ସରଳ ଲୁଣ ଓ ଖାଡ଼ି ( ରି )ଲୁଣ । ]

**ଲୁଣ କାଠୁଆ**—ଦେ. ବି.—କାଠର ବେଣ୍ଟ ଲଗା ଯେଉଁ ଛୋଟ ଆଧାରରେ
Luṇa kāṭhuā ଘରବାରର ପାକଶାଳାରେ ଆବଶ୍ୟକ ଲୁଣ
নুনের কেঠো ରଖାଯାଏ—A wooden receptacle with
**नुनका डोरिया** a handle for keeping the salt required for cooking.

**ଲୁଣ କୋଳି** ( ସଂ. ଲୋଣୀ ) ଲୁଣଲୁଣିଆ ଗୁଳ୍ମର କୋଳି—
Luṇa koḷi Berry of Suaeda Fruticosa plant.
নুনেশাকেরফল **लुनुकाफल** [ଦ୍ର—ଏ କୋଳି ପାଚିଲେ ହଳଦିଆ ହୁଏ ଓ ଖାଇବାକୁ ଈଷତ୍ ଲବଣାକ୍ତ ଲାଗେ ।]

**ଲୁଣ ଖାଇ**—ଦେ. ବି (ଭାତ ସଙ୍ଗେ ଖାଇବାପାଇଁ ଏ ପାତ୍ରରେ ଲୁଣ ବଢ଼ା
Luṇa khāi ହେବାରୁ)—ଏକପ୍ରକାର ଛୋଟ ରେକାବୀ ବା ଥାଳିଆ-
নুনখাবার রেকাবী **रिकाबी** A small plate.

**ଲୁଣ ଖାଇ ଗୁଣ ଗାଇବା**—ଦେ. ବାକ୍ୟ—୧ । ପ୍ରତ୍ୟୁପକାର କରିବା—
Luṇa khāi guṇa gāibā 1. To do good to
নুনখেয়েগুনগাওয়া **नूनखाकरगुनगाना** a person in return for a favour shown. ୨ । କୃତଜ୍ଞତା ପ୍ରକାଶ କରିବା—2. To express gratitude.

**ଲୁଣ ଖାଇବା**—ଦେ. କ୍ରି—କୌଣସି ବ୍ୟକ୍ତିଙ୍କ ଅଧୀନରେ ଚାକିରି କରି
Luṇa khāibā ଜୀବିକା ନିର୍ବାହ କରିବା—To eat the
নুনখাওয়া **नमकखाना** salt of a person; to serve under a person.
[ଉ—ଲୁଣ ଖାଇବ ଯାହାର, ଗୁଣ ଗାଇବ ତାହାର—ଢଗ
ତୋ ଲୁଣ ମୁଁ ଖାଇବି ନାହିଁ, କି, ତୋ ଗୁଣ ମୁଁ ଗାଇବି
নুনালাগা(ধরা),নুনখেয়েযাওয়া **नुनीलगना** ନାହିଁ—ଢଗ । ]
ଦେ. ବି—କୌଣସି ପଦାର୍ଥର ଅଂଶ ଲବଣ ଦ୍ୱାରା କ୍ଷୟପ୍ରାପ୍ତ ହେବା; ଲୁଣିମାରିବା—Being eaten or corroded by the effect of salt.

**ଲୁଣ ଗୋଜି**—ପ୍ରାଦେ (ଗଡ଼ଜାତ ଓ ସମ୍ବଲପୁର) ବି-ଲୁଣ ରଖିବାର ଡାଲା-
Luṇa goji —A tray for salt.

**ଲୁଣ ଗୋଲା**—ଦେ. ବି—ଯେଉଁଠାରେ ବହୁ ପରିମାଣରେ ଲବଣ
Luṇa golā ବାଣିଜ୍ୟାର୍ଥ ଜମା ହୋଇଥାଏ—Salt gola;
নুন্‌গোলা **नमकगोला** a place where salt is stored in large quantities for wholesale sale.

**ଲୁଣ ଚଉ(ଉଁ)ରୀ**—ଦେ. ବି—ଲବଣ ଚାମରୀ (ଦେଖ)
Luṇa chau(uṅ)rī Labaṇa chāmarī (See)

**ଲୁଣ ଚୋର(ରି)**—ପ୍ରାଦେ (ବାମଣ୍ଡା) ବି—ଭୂଇଁରେ ୧୨।୧୩ ଘର କାଟି
Luṇa chora(ri) ଦୁଇ ଦଳ ମଧ୍ୟରେ ଖେଳାଯିବା ଖେଳବିଶେଷ-
An outdoor game, played by two parties by marking out 12 or 13 encircled places on the ground.

**ଲୁଣ ପାଣି**—ଦେ. ବି—ଯେଉଁ ପାଣିରେ ଲୁଣ ଗୋଳା ହୋଇଥାଏ—
Luṇa pāṇi Salt dissolved in water; water
নুনজল **नुनपानी** to which salt has been added. [ଉ—କଟା ଘାଅରେ ଲୁଣପାଣି ମାରିବା—ଢଗ ।]

**ଲୁଣ ପୁଡ଼ା**—ଦେ. ବି (ସଂ. ଲବଣ+ପୁଟ)—କନା ମଧ୍ୟରେ ପୁଳାଏ ଲୁଣ
Luṇa puṛā ଭର୍ତ୍ତିକରି ବନ୍ଧାଯିବା ପୋଟଳା (ଏହାକୁ ନିଆଁ
নুনেরপুটুলী **नुनकी (पु)पोटली** ଉପରେ ଉଷୁମ କରି ବେଦନା-ଯୁକ୍ତ ଅଙ୍ଗକୁ ସେକାଯାଏ)—A packet of salt enclosed in a bit of cloth and used in dry-fomenting affected limbs.

**ଲୁଣ ପୋକ(ଖ)ତାନି**—ଦେ. ବି (ସଂ. ଲବଣ+ପା. ପୋଖ୍‌ତାନ୍)-ସମୁଦ୍ର
Luṇa pok-(kh)tāni ପାଣିରୁ ଲବଣ ପ୍ରସ୍ତୁତ କରିବା ପ୍ରକ୍ରିୟା_
নুন্‌পোকতানি **नमकपोखतान** The process for
[ଲୁଣପୋକ୍ତା(ଖ୍ତା)ନି—ଅନ୍ୟରୂପ ] the manufacture of of salt from the sea water.

**ଲୁଣ ମଡ଼ା(ଡ଼େ)ଇବା**—ଦେ. କ୍ରି—(ଶୁଖୁଆ ଓ ଅଗୁର ଆଦି) କୌଣସି
Luṇa maṛā(ṛe)ibā ପଦାର୍ଥ ଉପରେ ଲୁଣର ସ୍ତର
নুন্‌মাখান **नमकबिछाना** ବିଛାଇବା—To salt; to season with a layer of salt (e g, fish, pickle, hide).

**ଲୁଣ ମନ୍ତ(ନ୍ତୁ)ରା(ରେ)ଇବା**—ଦେ. କ୍ରି (ସଂ. ଲବଣ+ମନ୍ତ୍ର ଧାତୁ)—
Luṇa manta(ntu)rā(re)ibā (ପେଟବଥା ଅଦି) ରୋଗ

ନୁନେମନ୍ତ୍ରପଡା **निमकमंतराना** କରିବା ଉଦ୍ଦେଶ୍ୟରେ ବ୍ୟବହାର [ଲୁଣ ମନ୍ତୁରିବା—ଅନ୍ୟରୂପ] କରିହେବାପାଇଁ ମନ୍ତ୍ର ପାଠପୂର୍ବକ ଲୁଣକୁ ଫୁଙ୍କିବା—To hallow or consecrete a quantity of salt with mystic incanta- (ଲୁଣ ମନ୍ତୁର—ବି) tions to be used as medicine.

ଲୁଣ ମାରିବା—ଦେ. କ୍ରି—ସମୁଦ୍ର ପାଣିରୁ, ଲୁଣିମାଟିରୁ କିମ୍ବା ପାଣିଗରୁ Luna māribā ଉପାୟ ପ୍ରକ୍ରିୟାଦ୍ୱାରା ଲବଣ ପୃଥକ୍ କରିବା- ନୁନ୍‌ମାবা **निमकमारना** To manufacture salt.

ଲୁଣ ଲଙ୍କା—ଦେ. ବି—ଭାତ ଅବା ଖାଇବାପାଇଁ କିମ୍ବା ତରକାରୀରେ Luna lankā ପକାଇବାପାଇଁ ବ୍ୟବହୃତ ଲବଣ ଓ ଲଙ୍କା ନুন্‌লঙ্কা **नि मकमिरची** ମରିଚ—Salt and chilies used in food.
ଲୁଣମରିଚ / ଲୁଣଲଙ୍କ (ଙ୍କା)ମ(ମା)ରିଚ } ଅନ୍ୟରୂପ—

ଲୁଣି(ଣି,ଣୁ)ଲୁଣିଆ—ଦେ. ବି.(ସଂ. ଲୋଣ)—ଏକପ୍ରକାର ଶ୍ରେଷ୍ଠ କୋଳ Luna(ni,nu)luniān ଶାଗ; କାକମାଚୀ; ଲୁଣୁଲୁଣିଆ— লোনী, লোনিযা, নুনেশাগ Suaeda Fruticosa; **लुनुक, छोटीलोनीशाग** Porsulacea. ଦେ ଵିଣ. ଲୁଣିଲୁଣି (ଦେଖ)—Luniluni (See)

ଲୁଣ(ଣୁ)ଶଗଡ଼ ପଥରଗଡ—ଗ୍ରା ବି—ପିଲାମାନଙ୍କର ଏକପ୍ରକାର Luna(nu) śagard pathara garda ଖେଳ—A kind of boy's game named after the cry uttered by 2 boys while carrying a 3rd boy on a seat improvised by entwining their two palms. [ବ୍ର— ଦୁଇଜଣ ଯଥାକ୍ରମେ ଜଣକର ବାମ କର ତଳ ସଙ୍ଗେ ଅନ୍ୟର ଡାହାଣ ହାତର କରତଳ; ଛନ୍ଦନ୍ତି ଓ ତୃତୀୟ ପିଲା ଏହି କରତଳଦ୍ୱୟଦ୍ୱାରା ରଚିତ ଆସନରେ ଅଣ୍ଟା ଭରା ଦେଇ ହାମୁଡ଼େଇ ପଡ଼େ ଓ ଏହି ଦୁଇଜଣଙ୍କ କାନ୍ଧରେ ଦୁଇ ହାତକୁ ପକାଏ। ଏହି ଦୁଇଜଣ ଶୁଲୁଥାଆନ୍ତି ଓ ମୁହଁରେ ବୋଲୁ ଥାଆନ୍ତି 'ଲୁଣ ଶଗଡ ପଥର ଗଡ'। ]

ଲୁଣା—ଦେ. ଵିଣ [ସ. ଲବଣାକ୍ତ]—ଲବଣାକ୍ତ—Saline. ଦେ. ବି Lunā ୧। ଲବଣାକ୍ତ ମୃତ୍ତିକା—1. Saline soil নোনা, লেণা **नमकीन** ୨। ଲବଣାକ୍ତ ସ୍ୱାଦ—2. Saline নুনী মটি **नोनीमिट्टी** taste ୩। ଖାର ମାଟି— নোনা **नमक नस्वाद** 3. Rhesoil.

ଲୁଣା(ଣେ)ଇବା—ଦେ. କ୍ରି (ସଂ. ଲବଣାକ୍ତ)—୧। (ପାଟି) ଲବଣାସ୍ୱାଦ- Lunā(ne)ibā ଯୁକ୍ତ ହେବା—(the mouth) To feel নুননুনলাগা **नमकीनहोना** a saline taste. ୨। ଲବଣାକ୍ତ ହେବା—2. To become saline.

ଲୁଣା(ଣି) ଉଠିବା—ଦେ. ବି—ଲୁଣାଉଠିବା;(କୌଣସି ସ୍ଥାନର ମୃତ୍ତିକା) Lunā(ni) uthibā ଲବଣମୟ ହେବା—Becoming নুনাধরা **नोनीउठना** saline or impregnated with salt.

ଲୁଣା(ଣି)ଘାସ—ଦେ. ବି (ସ. ଲବଣ+ଘାସ)—ଲବଣ ତୃଣ (ଦେଖ) Lunā(ni) ghāsa Labana truna (See) নোনাঘাস **नोनीघास**

ଲୁଣା(ଣି) ମାଛ—ଦେ. ବି (ସଂ. ଲବଣ+ମତ୍ସ୍ୟ)—ସାମୁଦ୍ରିକ ମାଛ— Lunā(ni) māchha Sea-fish. [ବ୍ର-ଅନେକପ୍ରକାର সমুদ্রের মাছ ଲୁଣି ମାଛ ସମୁଦ୍ରରେ ଓ ଘୁଷ୍ଟ ଜଳାର ଚଲକା **समुद्री माछ** ହ୍ରଦରେ ମିଳନ୍ତି। ଏମାନଙ୍କ ମଧ୍ୟରେ ଶଙ୍ଖା, ଶାହାଲ, (ମଧୁର ମାଛ—ବିପରୀତ) କଲାଖଣ୍ଡି, ବଷ୍ଟବାଲଅ ତୁଙ୍ଗେଡ଼, ଡାହାଙ୍କିର ଓ ଗି ଗନ୍ଧଅ ପ୍ରଧାନ। ]

ଲୁଣା(ଣି) ମାଟି—ଦେ. ବି (ସ. ଲବଣ+ମୃତ୍ତିକା)—୧। ଲବଣାକ୍ତ Lunā(ni) māti ମୃତ୍ତିକା—1. Saline soil ୨। ଖାର ল্যোণামাটি, নোনামাটি ମାଟି—2. Rhesoil; fuller's larth. **नोनी मिट्टी**

ଲୁଣା(ଣି) ମାରିବା—ଦେ. କ୍ରି—(ଜମି) ଲବଣାକ୍ତ ହେବା; ଲୁଣା Lunā(ni) māribā ମାରିବା—(the soil) To be un- নোনা মাবা **नोनी मारना** pregnated with salt.

ଲୁଣା(ଣି) ହାଉଆ—ଦେ. ବି. (ସ. ଲବଣାକ୍ତ+ପା. ହବା)— Lunā(ni) hāuā ଲୁଣି ହାଉଆ—Saline breeze; sea নোনা হাওযা breeze; breeze impregnated with **नमकीन हवा, समुद्री हवा** salt.

ଲୁଣି—ଦେ. ଵିଣ (ସଂ. ଲବଣାକ୍ତ)—୧। ଲବଣାକ୍ତ—1. Saline. Luni ୨। ଲବଣସ୍ୱାଦ ବିଶିଷ୍ଟ—2. Having a saline নোনা **नोनी** taste. [ବ୍ର—ଲୁଣି ମଣିଲ ମୁଁ ମଧୁ ହରଲୁ— କବିସୂର୍ଯ୍ୟ. ସଙ୍ଗୀତ। ] ୩। ଯହିଁର ଜଳ ଲୁଣିଆ (ଯଥା—ନଦୀ)—3. Having saline water ୪। ଜୁଆରଥା (ନଈ)—4. Tidal (river). ୫। ସାମୁଦ୍ରିକ (ମାଛ)—5. Of the sea (fishes).

ଲୁଣିଆ(ଆଁ)—ଦେ.ଵିଣ(ସଂ. ଲବଣାକ୍ତ)—୧। ଲବଣାକ୍ତ—1.Saline. Luniā(ān) ୨। ଲବଣ ମିଶ୍ରିତ—2. Impregnated with. নোনা, লোনতা salt. ୩। ଲବଣାସ୍ୱାଦବିଶିଷ୍ଟ—3. Having **नमकीन, नोनिया** the taste of salt. ଦେ. ବି—୧। ଚର୍ମ- **नोनिया** ରୋଗବିଶେଷ; ଦେହରେ ପଦ୍ମକଣ୍ଟକ ପରି ଦୃଢ଼ ବ୍ରଣଗୁଡ଼ିକ ବାହାରି ଥିବା ରୋଗ—1. A sort of skin disease cosisting of hard brist- লুণীয়া,লুনাতি, নোনা ling pimples. ୨। ଲୁଣି ଶାଗ **नोनिया शाग** (ଦେଖ)—2. Luni śāga (See) নুনের ব্যবসাযী ୩। ଲବଣ ବ୍ୟବସାୟୀ—3. Salt- **नोनिया** trader. ୪। ଯେ ଲବଣ ପ୍ରସ୍ତୁତ କରେ—4. Salt-manufacturer.

ଲୁଣିଆଘର ଝିଅ—ଦେ. ବି (ବ୍ୟଙ୍ଗ୍ୟ)—ମହାଲକ୍ଷ୍ମୀ—Goddess Luniāghara jhia Lakshmi. [ବ୍ର—ସମୁଦ୍ରର ଦେବତା **नोनिया घरकी लडकी** ବରୁଣ ଥିବାରୁ ଓ ଲକ୍ଷ୍ମୀ ସମୁଦ୍ରରୁ ଜାତ

(ଲୁଣିଆ ଝିଅ—ଅନ୍ୟରୂପ) ହୋଇଥିବାରୁ ପୁରାଣରେ ଲକ୍ଷ୍ମୀଙ୍କ 'ଲୁଣିଆ ଝିଅ' ବୋଲି କଥା ଛଳରେ କୁହା ଯାଇଅଛି । ]

**ଲୁଣିଆ ଧଣ୍ଡ**—ଦେ. ବି—୧ । (ବ୍ୟଙ୍ଗ୍ୟ) ବରୁଣ ଦେବତା—1. The God of ocean. Luṇiā dhaṇḍa [ ଉ—କାଶ ଯେ ଲୁଣିଆ ଧଣ୍ଡ ଗର୍ଜି ମରୁଥାଇ—ଲକ୍ଷ୍ମୀପୁରାଣ । ] ୨ । ସାମୁଦ୍ରିକ ସର୍ପ—2 Sea serpent.

**ଲୁଣି କୋଳି**—ଦେ. ବି—ଲୁଣି ଲୁଣିକା କୋଳି (ଦେଖ) Luṇi koḷi Luṇi luṇikā koḷi (See)

**ଲୁଣି ଚି(ଚୁ)ଙ୍ଗୁଡ଼ି**—ଦେ. ବି—ସମୁଦ୍ରର ଚିଙ୍ଗୁଡ଼ି; ବଙ୍ଗୋପସାଗରର ଚିଙ୍ଗୁଡ଼ି—Sea-shrimp. Luṇi chi(chu)ṅguṛi নুনী চিংড়ি **समुद्री झिंगा** [ ଦ୍ର—ଏହା ଖାଇବାକୁ ଖୁବ୍ ସୁସ୍ୱାଦୁ । ] (ମଟର ଚିଙ୍ଗୁଡ଼ି—ଭିନ୍ନଶବ୍ଦ)

**ଲୁଣି ନଈ**—ଦେ. ବି (ସଂ. ଲବଣାକ୍ତ+ନଦୀ)—୧ । ଯେଉଁ ନଦୀର ଜଳ ଲୁଣିଆ—1. A river full of salt water. Luṇi naī নোনা নদী **नोनिया नदी** ୨ । ଜୁଆରଥିବା ନଈ—2. A tidal river. ୩ । କଟକ ଜିଲ୍ଲାର ମହାନଦୀର ଶାଖା ଚିତ୍ରୋତ୍ପଳାର ଗୋଟିଏ ଶାଖାନଦୀ—3. Name of a small branch river of the Chitrotpalā, a branch of the Mahānadī in the district of Cuttack.

**ଲୁଣି ପାଣି**—ଦେ. ବି (ସଂ. ଲବଣାକ୍ତ+ପାନୀୟ)—୧ । ଲବଣାକ୍ତ ଜଳ—1. Saline water. Luṇi pāṇi ୨ । ସମୁଦ୍ର ଜଳ—2. Sea water. নোনা জল, নোণা জল **नमकीन जल**

**ଲୁଣି ମାଡ଼ିବା**—ଦେ. ବି—ସମୁଦ୍ରର ଲୁଣା ଜଳ ଭୂମି ଉପରେ ବ୍ୟାପିବା—The spreading or flooding of the salt water over the fields. Luṇi māṛibā নোনা জলের বান **नोनी जल फैलना** [ ଦ୍ର—ଭୂମିରେ ଲୁଣି ମାଡ଼ିଗଲେ ଜମିର ଉର୍ବରତା ନଷ୍ଟ ହୁଏ । ]

**ଲୁଣି ଲାଣି**—ଗ୍ରା. ବିଣ—ଲବଣାକ୍ତ—Saline. Luṇi lāṇi ସ୍ଥଳେ **नोना** [ ଉ—ଅଳ୍ପ ପାଣି ଲୁଣି ଲାଣି, ଖାଲି ପାଣି ଘାଁ-ଲହୁଣି—ଶିଶୁ ଗୀତ । ]

**ଲୁଣି(ଣୁ) ଲୁଣି**—ଦେ. ବିଣ—ଈଷତ୍ ଲବଣାସ୍ୱାଦବିଶିଷ୍ଟ—Having a slightly saline taste. Luṇi(ṇu) luṇi ଅଳ୍ପ ସ୍ଥଳେ **थोडा नामकीन** (ଲୁଣି[ଣୁ]ଲୁଣିଆ—ଅନ୍ୟରୂପ)

**ଲୁଣି(ଣୁ)ଲୁଣିକା(ଆଁ) କୋଳି**—ଦେ. ବି (ସଂ. ଲୋଣିକା; ଲୋଣୀ)—୧ । ଲୋଣା (ଦେଖ)—1. Loṇā (See) Luṇi(ṇu)luṇikā(āñ)koḷi (ଲୁଣଲୁଣକା କୋଳି—ଅନ୍ୟରୂପ) ୨ । ଲୋଣା ଗୁଳ୍ମର କୋଳି—2. The berry of Indian Parslane.

**ଲୁଣି ଶାଗ**—ଦେ. ବି—୧ । ଲୋଣା (ଦେଖ)—1. Loṇā (See) Luṇi śāga ୨ । ଘାର୍ଯ୍ୟାସ୍ତ୍ରୀ ବହୁଶାଖ କ୍ଷୁଦ୍ର ଶାକ ବିଶେଷ—2. Ionidicum Suffruticosum (shrub). ସଂ. ନାମ—ଲବଣ ତୃଣ জুনবোডা, **नोनीशाग** [ଦ୍ର—

ଏହା ଘାସ ମଧ୍ୟରେ ଜନ୍ମେ । ଫଲ ଗୋଲାପୀ, ପଞ୍ଚଦଳ, ଫଳ ତ୍ରିକୋଷ—ଯୋଗେଶଚନ୍ଦ୍ର । ]

**ଲୁଣି ଶୁକୁ(ଖୁ)ଆ**—ଦେ. ବି—ସାମୁଦ୍ରିକ ମାଛର ଶୁଖୁଆ—Dried sea fish. Luṇi śuku(khu)ā ସମୁଦ୍ର মাছের শুঁকো **समुद्री सुखा माछ** ଗ୍ରାଦେ. (ବାଲେଶ୍ୱର) ବି—ଲୁଣ ଦିଆ ହୋଇ ପ୍ରସ୍ତୁତ ହୋଇଥିବା ଶୁଖୁଆ—Dried and salted fish.

**ଲୁଣୁ** (ଇତ୍ୟାଦି)—ଗ୍ରା. ବି—ଲୁଣ ଇତ୍ୟାଦି (ଦେଖ)—Luṇa etc (See) Luṇu (etc) [ ଦ୍ର—ଅନ୍ୟ ଶବ୍ଦ ପୂର୍ବେ ଯୁକ୍ତ ଲୁଣ ଶବ୍ଦରେ ଥିବା 'ଣ' ଉଚ୍ଚାରଣବେଳେ ଲୁ'ରେ ଥିବା ଉକାରର ପ୍ରଭାବରେ 'ଣୁ' ହୁଏ; ଯଥା—ଲୁଣୁକୋଳି; ଲୁଣୁକାଠିଆ; ଲୁଣୁଖାଇ; ଲୁଣୁଲୁଣିଆ । ]

**ଲୁଣ୍ଟ(ଣ୍ଡ)** [ଧାତୁ]—ସଂ.—୧ । ତଳେ ଗଡ଼ିବା—1. To roll on the ground. Luṇṭ(ṇḍ) (root) ୨ । ବଳପୂର୍ବକ ଅପହରଣ କରିବା—2. To rob; to plunder. ୩ । ଖୋଟା ହେବା—3. To be lame or crippled (Apte). ୪ । ଅଳସ ହେବା—4. To be idle (Apte).

**ଲୁଣ୍ଟକ**—ସଂ. ବି.—(ଲୁଣ୍ଟ୍ ଧାତୁ+କର୍ତ୍ତୃ. ଅକ)—ଲେଉଟିଆ ଶାଗ—A kind of potherb; Amaranthus Polygumus. Luṇṭaka

**ଲୁଣ୍ଟନ**—ସଂ. ବି—(ଲୁଣ୍ଟ୍ ଧାତୁ+ଭାବ.ଅନ)—ଲୁଣ୍ଠନ (ଦେଖ) Luṇṭana Luṇṭhana (See)

**ଲୁଣ୍ଟା(ଣ୍ଠା)**—ସଂ. ବି—(ଲୁଣ୍ଟ ଧାତୁ+ଭାବ.ଅ+ଆ)—ଭୂମିରେ ଲୋଟିବା—Rolling (M. W.) Luṇṭā(ṇṭhā)

**ଲୁଣ୍ଟାକ**—ସଂ.ବି.—(ଲୁଣ୍ଟ୍ ଧାତୁ+କର୍ତ୍ତୃ. ଅକ)—ତସ୍କର; ଲୁଣ୍ଠନକାରୀ; ଲୁଟିଅଳି; ଡକାଇତ—Robber; freebooter; dacoit (M. W.) Luṇṭāka

**ଲୁଣ୍ଟିତ**—ସଂ. ବିଣ.—(ଲୁଣ୍ଟ ଧାତୁ+କର୍ମ. ତ)—ଲୁଣ୍ଠିତ; ବଳପୂର୍ବକ ଅପହୃତ—Robbed; plundered (M. W.) Luṇṭita

**ଲୁଣ୍ଠ** (ଧାତୁ)—ସଂ.—୧ । ଭୂମିରେ ଗଡ଼ିବା—1. To wallow. Luṇṭh (root) ୨ । ବଳପୂର୍ବକ ଅପହରଣ କରିବା—2. To rob. ୩ । ଘାଣ୍ଟିବା—3. To stir; to agitate (M. W). ୪ । ଆଳସ୍ୟଯୁକ୍ତ ହେବା—4. To be idle (M. W.) ୫ । ଖୋଟା ହେବା—5. To be lame (M. W.)

**ଲୁଣ୍ଠକ**—ସଂ. ବିଣ.—(ଲୁଣ୍ଠ୍ ଧାତୁ+କର୍ତ୍ତୃ. ଅକ)—୧ । ବଳପୂର୍ବକ ଅପହରଣକାରୀ—1. Plundering. Luṇṭhaka ୨ । ଲୁଣ୍ଠମାନ; ତଳେ ଗଡ଼ୁଥିବା—2. Wallowing. ସଂ. ବି.—୧ । ତସ୍କର; ଡକାଇତ; ଲୁଟିଅଳି—1. Dacoit; plunderer. ୨ । ଯେ ତଳେ ଗଡ଼ୁଥାଏ—2. One who rolls on the ground. ୩ । ମାଂସ ପେଶୀ ବିଶେଷ—3. Name of the muscle which serves to draw up the testicle; cremaster.

**ଲୁଣ୍ଠନ**—ସଂ. ବି.—(ଲୁଣ୍ଠ ଧାତୁ+ଭାବ. ଅନ)—୧। ଭୂମିରେ
Lunṭhana ଗଡ଼ିବା; ତଳେ ଗଡ଼ିବା—1. Wallowing;
[ଲୁଣ୍ଠା—ଅନ୍ୟରୂପ] rolling on the ground. ୨। ବଳପୂର୍ବକ ଅପହରଣ—2. Plundering.

**ଲୁଣ୍ଠମାନ**—ସଂ. ବିଣ. ପୁଂ.—(ଲୁଣ୍ଠ ଧାତୁ+କର୍ତ୍ତୃ. ଆନ)—ତଳେ
Lunṭhamāna ଗଡ଼ୁଥିବା—Wallowing.
[ଲୁଣ୍ଠମାନା—ସ୍ତ୍ରୀ]

**ଲୁଣ୍ଠାକ**—ସଂ. ବି ପୁଂ(ଲୁଣ୍ଠଧାତୁ=ଚୋରି କରିବା+କର୍ତ୍ତୃ. ଅକ)—୧।
Lunṭhāka ବାୟସ; କାକ—1. Crow; raven. ୨।
(ଲୁଣ୍ଠାକୀ—ସ୍ତ୍ରୀ) ଲୁଟୁଆର—2. A plunderer (M.W.)

**ଲୁଣ୍ଠିତ**—ସଂ.ବିଣ. (ଲୁଣ୍ଠ ଧାତୁ+କର୍ମ ତ)—୧। ବଳପୂର୍ବକ ଅପହୃତ—
Lunṭhita 1. Plundered. ୨। (ପୁଂ+କର୍ତ୍ତୃ. ତ)
(ଲୁଣ୍ଠିତା—ସ୍ତ୍ରୀ) ତଳେ ଗଡ଼ୁଥିବା—2. Rolling on the ground.

**ଲୁଣ୍ଠିତା**—ସଂ. ବିଣ. ସ୍ତ୍ରୀ—୧। ଲୁଣ୍ଠିତର ସ୍ତ୍ରୀଲିଙ୍ଗ—1. Feminine
Lunṭhitā. of Lunṭhita ୨। ବଳପୂର୍ବକ ଧରିନେଇ ଯାହା ସଙ୍ଗରେ ରମଣ କରା ଯାଇଥାଏ; ଧର୍ଷିତା—2. Ravished (woman).

**ଲୁଣ୍ଠିବା**—ଦେ. କ୍ରି (ସଂ. ଲୁଣ୍ଠ ଧାତୁ)—୧। ଲୁଣ୍ଠନ କରିବା—
Lunṭhibā 1. To plunder. [ଉ—ଧୂତ
ଲୁଟକରା **लुटना** ସମ୍ପତ୍ତିକ ଶଶୀ ଲୁଣ୍ଠେ ଅଲୁଣ୍ଠିତେ—
ଜଗନ୍ନାଥ. ମହାଯାତ୍ରା ।] ୨। କୌଣସି ବସ୍ତୁକୁ ନିଃଶେଷ କରିନେବା—2. To exhaust a thing
ଗଡ଼ା **लोटना** by removing it. ୩। ଭୂମିରେ ଗଡ଼ିବା—3. To wallow on the ground.

**ଲୁଣ୍ଠିଲୁଣ୍ଠି ନେବା**—ଦେ. କ୍ରି (ଲୁଣ୍ଠି ସଙ୍ଗେ ଲୁଣ୍ଠି ନିରର୍ଥକ ଓ ସମଧ୍ୱନିକ ଶବ୍ଦର ପ୍ରୟୋଗ)-ସମସ୍ତ ଦ୍ରବ୍ୟ ନିଃଶେଷ
Lunṭhilānṭhi nebā
ଲୁଟେପୁଟେ ନଓଆ ପୂର୍ବକ ବୋହି ନେବା—To exhaust a
**लूटपाट करलेना** thing without leaving anything.

**ଲୁଣ୍ଠୀ(ଣ୍ଠି)**—ସଂ. ବି (ଲୁଣ୍ଠ ଧାତୁ+ଭାବ. ଅ+ଈ; ଇ)—ଲୁଣ୍ଠନ
Lunṭhī(nṭhi) (ଦେଖ)—Lunṭhana (See)

**ଲୁଣ୍ଡ (ଧାତୁ)**—ସଂ—ଲୁଣ୍ଠନ କରିବା—
Lunḍ (root) To plunder; to pillage.

**ଲୁଣ୍ଡ**—ସଂ. ବି (ପୁଂ) (ଲୁଣ୍ଡ ଧାତୁ+କର୍ତ୍ତୃ. ଅ)—ଚୋର (ହ. ଶ.)
Lunḍa Thief; robber.

**ଲୁଣ୍ଡା**—ଦେ. ବି (ସଂ. ଲୁଣ୍ଡିକା)—୧। ନିଆଁ ନେବାପାଇଁ ଲୁଗା
Lunḍā ଅଦର ନୁଣ୍ଡା ବା ଖେଣ୍ଟ କରିଥ—1. Wisp of
ଜୁଡା(ଡୋ) straw or other inflammable material.
**जूक** ୨। ଲିପାପୋଛା କନା ପୁଡ଼ା—2. A mass of rags
ନେତାକାନୀ used for besmearing cowdung water
**नूर** mixed with clay on the wall or floor for washing them.
[ଦ୍ର—ଲୁଗାର ଲୁଣ୍ଡା କରି ଲୋକେ ପିଲାଙ୍କ ଝାଡ଼ାଫେରିଥିବା ବସ୍ତ୍ରାଦି ପୋଛି ନିଅନ୍ତି। ତାକୁ ଗୁହଲୁଣ୍ଡା ବୋଲଯାଏ। ନିଆଁ ଲଗାଇବା ପାଇଁ ଲୁଗା ଅଦରରେ ଯେଉଁ ଲୁଣ୍ଡା ବ୍ୟବହୃତ ହୁଏ ତାକୁ ନିଆଁଲୁଣ୍ଡା କହନ୍ତି।)

**ଲୁଣ୍ଡା(ଣ୍ଡେ)ଇବା**—ଦେ. କ୍ରି—୧। ଘରର ତଳକୁ ଓ କାନ୍ଥକୁ ଗୋବର-
Lunḍā(nḍe)ibā ଗୋଳା ପାଣିରେ ବୁଡ଼ା ହୋଇଥିବା କନା-
ନା(ନେ)ତା ଦେଓ୍ୱା ପୁଡ଼ାରେ ଲିପିବା—1. To wash the
**नूर देना** floor and walls of a house with cowdung water by immersing a wisp of rags and drawing it over the walls
ଲୁଣ୍ଡାଦେବା
ଲୁଣ୍ଡାବୁଲା(ଲେ)ଇବା } ଅନ୍ୟରୂପ
ଲୁଣ୍ଡିଦେବା
ଲୁଣ୍ଡିବୁଲା(ଲେ)ଇବା
୨। ଲୁଣ୍ଡାଇ ପୁଣ୍ଡାଇ ନେବା (ଦେଖ)
2. Lunḍāi punḍāi nebā (See)

**ଲୁଣ୍ଡା(ଣ୍ଡେ)ଇ ପୁଣ୍ଡା(ଣ୍ଡେ)ଇ ନେବା**—ଦେ. କ୍ରି (ସଂ. ଲୁଣ୍ଡ ଧାତୁ)—
Lunḍā(nḍe)i punḍā(nḍe)i nebā କୌଣସି ଘରୁ ସମସ୍ତ
ଲଟେପୁଟେ ନଓଆ ପଦାର୍ଥ ଗୋଟି ଗୋଟି କରି ନିଃଶେଷ କରି
**लूटपाट करलेना** ବୋହି ନେବା; ଗୃହର ସମସ୍ତ ଅଂଶରେ (ଲୁଚିଲା ଘର) ହାତ ବୁଲାଇ ଯେଉଁଠାରେ ଯାହା ଅଛି ତାହା ସମସ୍ତ ନେଇଯିବା; ଘରେ କଳାକନା ବୁଲାଇ ଦେବା—
ଲୁଣ୍ଡାଲୁଣ୍ଡି କରିନେବା
ଲୁଣ୍ଡା ବୁଲା(ଲେ)ଇବା } ଅନ୍ୟରୂପ
ଲୁଣ୍ଡିଲୁଣ୍ଡି ନେବା
ଲୁଣ୍ଡେଇ ନେବା
To collect everything from every corner of a place or house and remove the same. (ଯଥା—ତା ଘରୁ ଚୋରମାନେ ସବୁ ପଦାର୍ଥ ଯାକ ଲୁଣ୍ଡାଇ ପୁଣ୍ଡାଇ ନେଇଗଲେ।)

**ଲୁଣ୍ଡା ହାଣ୍ଡି**—ଦେ. ବି—ଲିପା ପୋଛା ହାଣ୍ଡି—The pot used in
Lunḍā hāndi making Lipāpochhā. [ଉ—
ନେ(ନା)ତା ହାଁଡୀ ମନ ହୋଇଅଛି ସେ ମନ୍ଦିରେ ଲୁଣ୍ଡା ହାଣ୍ଡି।
**गोबरौर** ପ୍ରାଚୀ. ବ୍ରହ୍ମନିରୂପଣ ଗୀତ।]

**ଲୁଣ୍ଡି**—ଦେ. ବି (ସଂ. ଲୁଣ୍ଡିକା)—୧। ଲୁଣ୍ଡିକା (ଦେଖ)—1.
Lunḍi Lunḍikā (See). ୨। ଭାତର ମଣ୍ଡଦିଆ ସୂତା
ମାଡଦେଓ୍ୱା ସୂତା —2. The yarn moistened with
**मडियायाहुआ सूता** boiled rice paste. [ଉ—ଲୁଣ୍ଡି-
କାଟିବା, ଭାଗୀ କରିବା, ଲଜ୍ୟାଦି କର୍ମ ବାହାରେ ହୁଏ।
ଫକୀରମୋହନ. ଛମାଣ ଆଠଗୁଣ୍ଠ।]

**ଲୁଣ୍ଡିକା**—ସଂ. ବି—୧। ପାତ୍ରାଦି ମାର୍ଜନ ଓ ଘର ଲିପିବା ପାଇଁ ବ୍ୟବହୃତ
Lunḍikā ତୃଣର କମ୍ବା କନାର ଗୋଲକ—1. A wisp of straw or rags used for smearing the floor and walls of a house and for rinsing utensils. ୨। ଗୋଲି; ଗୋଲକ; ପିଣ୍ଡ —2. A ball; round mass of anything (M. W.). ୩। ସମୁଚିତ ବ୍ୟବହାର—3. Proper conduct (Apte).

**ଲୁଣ୍ଡୀ**—ସଂ. ବି—୧। ଉଚିତ ବ୍ୟବହାର—1. Proper behaviour
Lunḍī (M. W.). ୨। ସମୁଚିତ ବିବେଚନା ଓ କର୍ମ—

2. Acting and judging rightly (M. W.).

ଲୁଣ୍ଡୀକୃତ—ସଂ. ବଣ—ଯାହାକୁ ଗୋଲ କରାଯାଇ ଥାଏ; ପିଣ୍ଡୀକୃତ—
Lunḍikṛuta Made into a ball; rolled up together (M. W.).

ଲୁଟୁ(ଡୁ)ପୁ(ଲୁ)ଟୁ(ଟୁ)—ଦେ. ବଣ—ଲଟପଟ (ଦେଖ)
Lut-(tu)pu(lu)t(tu) Latapata (See)
[ଲୁଟୁର(ଡୁ)ପୁ(ଲୁ)ଟୁର(ଟୁ)—ଅନ୍ୟରୂପ]

ଲୁଟୁ ପୁ(ଲୁ)ଟା(ଟେ)ଇବା—ଦେ. କି—ଲଟପଟାଇବା (ଦେଖ)
Lut pu(lu)tā(te)ibā Latapatāibā (See)

ଲୁଟୁ ପୁ(ଲୁ)ଟିଆ—ଦେ. ବଣ—ଲଟପଟିଆ (ଦେଖ)
Lutu pu,lu)tiā Latapatiā (See)

ଲୁତୁରା—ଦେ. ବଣ—ଲୋତରା (ଦେଖ)
Luturā (ଲୁତୁରୀ—ସ୍ତ୍ରୀ) Lotarā (See)

ଲୁତୁରା କୁ(କୋ)ତୁରା—ଦେ. ବଣ—ଲୋତରା କୋତରା (ଦେଖ)
Luturā ku(ko)turā Lotarā kotarā (See)

ଲୁତୁରା ଧୁ(ଧୋ)ତୁରା—ଦେ. ବଣ—ଲୋତରା ଧୋତରା (ଦେଖ)
Luturā dhu(dho)turā Lotarā dhotarā (See)

ଲୁତୁରିବା—ଦେ. କି—ଲୋତରିବା (ଦେଖ)
Luturibā Lotaribā (See)

ଲୁଦ୍(ଦୁ)କା—ଦେ. ବଣ—ଲାଦୁଆ (ଦେଖ)
Lud-(du)kā Lāduā (See)

ଲୁଦ୍(ଦୁ)ବୁଦ୍(ଦୁ)—ଦେ. ବଣ—ମାଂସଳ ଶରୀର ବଶିଷ୍ଟ; ସ୍ଥୂଳକାୟ—
Lud-(du)bud(du) Fat; corpulent.
ନାଦୁସ ନୁଦୁସ ଲଦ୍‌ବଦ୍

ଲୁଦ୍(ଦୁ)ବୁଦ୍(ଦୁ) ବ୍ୟାଧି—ଦେ. ବ—ନୁଦ୍‌ବୁଦ୍ ବ୍ୟାଧି (ଦେଖ)
Lud-(du) bud(du) byādhi Nud-bud byādhi (See)
মোটাহওয়া রোগ लदबदी बयाधि

ଲୁଦର୍—ପ୍ରାଦେ (ସମ୍ବଲପୁର, ଗଡ଼ଜାତ) ବ—ଲୁଦର; ଲୁଦୁ; ଧାନଅଣ୍ଡ
Ludar ବୋହିବା ପାଇଁ ଶଗଡ଼ ଉପରେ ରଖାଯିବା ଲମ୍ବ ଟୋକାଇ-
A long deep basket for carrying grains and small loose things on a cart.

ଲୁଦୁଲୁଦୁଲୁଦୁ—ଦେ. ବଣ—୧। କଅଁଳିଆ—1. Soft; tender.
Luduluduludu ୨। ଅତି ସ୍ଥୂଳକାୟ—2. Very
মোটা लदलदिया corpulent. [ ଦ୍ର—ଲଦୁ ଲଦୁ ଲଦୁ ସିଆ ଅଟଇ ସେ ପୁଅ । ପ୍ରାଚୀ—ବ୍ରହ୍ମନରୂପଣ ଗୀତା । ]

ଲୁଧିଆନା—ଦେ. ବ—ଦକ୍ଷିଣ ଭାରତର ପଶ୍ଚିମରେ ପଞ୍ଜାବର ଗୋଟିଏ
Ludhiānā ଜିଲ୍ଲା ଓ ତହସିଲ ଓ ନଗର (ପଶମଲୁଗା ପାଇଁ ପ୍ରସିଦ୍ଧ)—Ludhiana,
লুধিআনা लुधियाना name of a district, Tahasil and town in the Punjab, noted for its woolen goods. [ଦ୍ର—ଏହି ନଗର ଶାଲ, ଲୋହ ଅବ ପଶମୀ ବସ୍ତ୍ରପାଇଁ ପ୍ରସିଦ୍ଧ; ଏଠା ମହାଭାରତୋକ୍ତ ସମୁଦ୍ର ଦ୍ଵିନ୍ଦୁ ସ୍ଥାନ; ଏଠା ମହମ୍ମଦ୍‌ଖୋରି ଥିବା ପ୍ରତ୍ନତତ୍ତ୍ୱବିତ୍‌ମାନେ କହନ୍ତି—ବିଶ୍ୱକୋଷ

ଲୁପ୍ (ଧାତୁ)—ସ.—୧। ଲୋପକରିବା—1. To destroy; to
Lup (root) suppres . ୨। ଗୋଳମାଳ କରିବା—
2. To confound; to perplex; to bewilder (Apte) ୩। ଆଲୋଡ଼ନ କରିବା—2. To stir. ୪। ଲୁପ୍ତହେବା—4. To be suppressed or destroyed (Apte). ୫। ଲୋଭ କରିବା—
5. To covet after. ୬। ଲୁଣ୍ଠନ କରିବା—
6. To rob; to plunder (Apte). ୭। ମାଡ଼ିବସିବା—7. To sieze; to pounce upon (Apte.

ଲୁପ୍—ସ. ବ. (ଲୁପ୍ ଧାତୁ+ଭାବ କ୍ୱିପ୍)—୧। ବିନାଶ—
Lup 1. Destruction. ୨। ଲୋପ—
2. Annihilation. ୩। ଅଭାବ—3. Want; absence.

ଲୁପ୍ ଲାଇନ୍—ବୈଦେ. ବ (ଇଂ. ଲୁପ୍‌ଲାଇନ୍)—ଏକ ସ୍ଥାନରୁ ଅନ୍ୟ
Lup lāin ସ୍ଥାନକୁ ବଙ୍କାହୋଇ ଯାଇଥିବା ରେଲ ଲାଇନ ବା
লুপলাইন लुपलाईन ଟେଲିଗ୍ରାଫ୍ ଲାଇନ୍—Loop line;
(କର୍ଡ଼୍ ଲାଇନ—ବିପରୀତ) u rved line of a railway or telegraph line.

ଲୁପତ—ଗ୍ରା. ବଣ (ପଦ୍ୟରେ ବ୍ୟବହୃତ) (ସ. ଲୁପ୍ତ)—ଲୁପ୍ତ;
Lupata ଲୋପପ୍ରାପ୍ତ—Destroyed. ( ଦ୍ର—ନାନା
লুপত लुपत କାଳର ଶସ୍ତ୍ର ଅସ୍ତ୍ରରେ ପୂରିତ, ହୋଇଣ କରେ ଦୁର୍ଯ୍ୟୋଧନରୁ ଲ ପତ—କୃଷ୍ଣସିଂହ. ମହାଭାରତ. ସଭା ।)

ଲୁପ୍ତ—ସ. ବଣ (ଲୁପ୍ ଧାତୁ+କର୍ତ୍ତୃ. ତ)—୧। ଲୋପପ୍ରାପ୍ତ—
Lupta 1. Extinct; annihilated. ୨। ବିନଷ୍ଟ—
2. Ruined; destroyed; spoiled; effaced. ୩। ଗୁପ୍ତ; ଅଦୃଶ୍ୟ ହୋଇଥିବା—3. Disappeared; concealed. ୪। (+କର୍ମ. ତ) ଅପହୃତ—
4. Stolen; robbed; plundered. ୫। ବହୁକାଳରୁ ଯାହା ବ୍ୟବହାରରେ ଚଳୁ ନାହିଁ—
5. Obsolete; disused. ୬। ଅଚ୍ଛନ୍ନ; ଆବୃତ-
6. Covered. ୭। ହଜି ଯାଇଥିବା—7. Lost. ୮। (ବ୍ୟାକରଣ) ଲୋପ ପ୍ରାପ୍ତ (କୌଣସି ଅକ୍ଷର)—
8. (Grammar); Dropped; elided (letter). ୯। ବାଦ୍‌ଦିଆ ଯାଇଥିବା-9. Omitted. ସ. ବ(+କର୍ମ.ତ) ଚୋରି ଯାଇଥିବା ପଦାର୍ଥ; ଅପହୃତ ଧନ; ଚୋରମାଲ—
9. Stolen article.

ଲୁପ୍ତ ଅକାର—ସ. ବ (ଲୁପ୍ତ+ଅକାର)—ଖଣ୍ଡଅକାର (ଦେଖ)—
Lupta akāra Khanḍa akāra (See). [ ଦ୍ର—ଏଥିର ଚିହ୍ନ ଽ ଅଟେ । ଯଥା—ଭବୋଽଧିକ । ]

ଲୁପ୍ତ ଚକ୍ଷୁଃ—ସଂ. ବିଣ ( ବହୁବ୍ରୀହି )—ଯାହାର ଚକ୍ଷୁ ଲୋପ ହୋଇଅଛି
Lupta chakshuh —One who has lost his eyes.

ଲୁପ୍ତ ପିଣ୍ଡୋଦକକ୍ରିୟ—ସଂ. ବିଣ. ପୁଂ (ଲୁପ୍ତ+ପିଣ୍ଡ+ଉଦକ+କ୍ରିୟା, Lupta pindodakakriya ଦ୍ୱନ୍ଦ୍ୱ, ୬ଷ୍ଠୀତତ୍ ଓ ବହୁବ୍ରୀହି)—(ଲୁପ୍ତପିଣ୍ଡୋଦକ କ୍ରିୟା—ସ୍ତ୍ରୀ) ଦେହୁ ବଂଶଧର ନ ଥିବାରୁ ଯେଉଁ ମୃତବ୍ୟକ୍ତିର ପିଣ୍ଡ ଓ ତର୍ପଣକ୍ରିୟା ଲୁପ୍ତ ହୋଇଅଛି—(Deceased ancestors) Who are deprived of the offering of funeral cakes and water, having left no issue after them.

ଲୁପ୍ତପ୍ରାୟ—ଦେ. ବିଣ—ପ୍ରାୟ ବିନଷ୍ଟ; ପ୍ରାୟଶଃ ଲୋପପ୍ରାପ୍ତ—Luptaprāya Nearly gone; nearly destroyed; all but destroyed; almost ruined.
ଲୁପ୍ତପ୍ରାୟ
लुप्तप्राय

ଲୁପ୍ତ ବୁଦ୍ଧି—ସଂ. ବିଣ. ପୁଂ ଓ ସ୍ତ୍ରୀ ( ବହୁବ୍ରୀହି )—ଯାହାର ବୁଦ୍ଧି ନଷ୍ଟ ହୋଇଅଛି; ହତବୁଦ୍ଧି; କିଂକର୍ତ୍ତବ୍ୟବିମୂଢ଼
Lupta buddhi —One who has lost his wits; bewildered.

ଲୁପ୍ତ ରତ୍ନ—ସଂ. ବି ( କର୍ମଧା )—୧ । ଚୋର ଯାଇଥିବା ମଣି—1. Stolen gem. ୨ । ହଜିଥିବା ରତ୍ନ—2. Lost gem. ୩ । ବିନଷ୍ଟ ହୋଇଥିବା ଉତ୍କୃଷ୍ଟ ବସ୍ତୁ—3. An excellent thing which has been lost.
Lupta ratna

ଲୁପ୍ତ ରତ୍ନୋଦ୍ଧାର—ସଂ. ବି ( କର୍ମଧା ଓ ୬ଷ୍ଠୀ ତତ୍ )—ବିନଷ୍ଟ ହୋଇଥିବା ଉତ୍କୃଷ୍ଟ ବସ୍ତୁର ପୁନଃ ପ୍ରାପ୍ତି—Recovery of a lost gem.
Lupta ratnoddhāra

ଲୁପ୍ତ ସାହସ—ସଂ. ବିଣ. ପୁଂ ( ବହୁବ୍ରୀହି )—ଯାହାର ସାହସ ଲୁପ୍ତ ହୋଇଅଛି—One who has lost his courage; disheartened.
Lupta sāhasa
(ଲୁପ୍ତସାହସା—ସ୍ତ୍ରୀ)

ଲୁପ୍ତାକ୍ଷର—ସଂ. ବି ( ବ୍ୟାକରଣ )—ଲୋପକ୍ରିୟା-ପ୍ରାପ୍ତ ଅକ୍ଷର; ଦୁଇଟି ଶବ୍ଦ ବା ପଦ ସଙ୍ଗେ ପ୍ରତ୍ୟୟାଦି ଯୁକ୍ତ ହେଲେ ବ୍ୟାକରଣର ନିୟମ ଅନୁସାରେ ଯେଉଁ ଅକ୍ଷରର ଲୋପଭାବ ( ଯଥା—ଗମ୍+ତ=ଗତ; ଏଠାରେ 'ମ୍' ଲୁପ୍ତାକ୍ଷର ହୋଇଅଛି । )—( Grammar ) A letter which is dropped on the formation of a word.
Luptākshara

ଲୁପ୍ତୋପମା—ସଂ. ବି—ଅର୍ଥାଲଙ୍କାର ବିଶେଷ; ଯେଉଁ ଅଳଙ୍କାରରେ ଉପମାବାଚକ ଶବ୍ଦାଦିର ଉଲ୍ଲେଖ ନ ଥାଏ—(ପୂର୍ଣ୍ଣୋପମା—ବିପରୀତ) A figure of speech; a simile where words indicating comparison are not expressly written; a mutilated or elliptical simile. [ ଉ—ତାହା ସେ ଶିରୀଷ ମୃଦୁ ଅଙ୍ଗିମା, ତାହା ସେ ଗିରୀଶଯୋଗ ଭଙ୍ଗିମା । ଉଞ୍ଚ. ରସିକହାରାବଳୀ । ] [ ଦ୍ର—ଏଥିରେ ଉପମାର ଏକ ବା ଏକାଧିକ ଅଙ୍ଗ ପ୍ରକାଶିତ ହୋଇ ନ ଥାଏ । ]
Luptopamā

ଲୁପ୍ୟ—ଗ୍ରା. ବିଣ ( ସଂ. ଲୁପ୍ତ )—ଲୁପ୍ତ—
Lupya Extinct; disappeared.
ଲୁପ୍ତ लुपत, लपता (ଲୁପ୍ୟାନ୍—ଅନ୍ୟରୂପ)

ଲୁବ୍‌ଲୁବ୍—ଗ୍ରାଦେ. ( ଗଡ଼ିଆଳ ) ବିଣ—ଲାଳାୟିତ—
Lub-lub Hankering.

ଲୁବ(ବୁ)ଧ—ଗ୍ରା. ବିଣ ( ପଦ୍ୟ )—ଲୁବ୍‌ଧ ( ଦେଖ )—
Luba(bu)dha ଲୁବ୍‌ଧ लुबधा Lubdha ( See )
[ ଉ—ତେଣେ ଲୁବଧ ଭୃଙ୍ଗଗଣେ, ଭ୍ରମନ୍ତି ତାର ସନ୍ନିଧାନେ । ଜଗନ୍ନାଥ—ଭାଗବତ । ] ଗ୍ରା. ବି—ଲୋଭ—Covetousness; avarice. [ ଉ—ଅଶା ଲୁବୁଧରେ ପୂରିଲା କାଳ, ଶଣ୍ ପଢେ ଥାଇଁ ମଲ୍ଲ ଶିଆଳ । ଇତ । ]
ଲୋଭ
लोभ

ଲୁବାନ୍—ବୈଦେ. ବି ( ଫା. ଲୁବାନ୍ )—ଲୋବାନ୍ ( ଦେଖ )
Lubān Lobān ( See )

ଲୁବୁଧି(ଧ)—ଗ୍ରା. ବିଣ ( ପଦ୍ୟ ) (ପ୍ରାଚୀନ ପ୍ରୟୋଗ) (ସଂ. ଲୁବ୍ଧ)—
Lubudhi(dha) ଲୁବ୍‌ଧ ( ଦେଖ)—Lubdha ( See )
ଲୁବ୍‌ଧ [ ଉ—ଏ ରୂପ ଦେଖି ଆମ୍ଭ ବୁଦ୍ଧି, କରତେ ହୋଇଣ ଲୁବୁଧି । ପ୍ରାଚୀ. ପୁରୁଷୋତ୍ତମ ଚନ୍ଦ୍ରୋଦୟ । ]
लुबधा

ଲୁବ୍ଧ—ସଂ. ବିଣ. ପୁଂ ( ଲୁଭ୍ ଧାତୁ =ଲୋଭବା ଲୁ ଇଚ୍ଛା କରିବା+କର୍ତ୍ତୃ. ତ )—୧ । ମୁଗ୍‌ଧ; ପ୍ରଲୋଭିତ—1. Allured; tempted; enchanted. ୨ । ଲୋଭଗ୍ରସ୍ତ; ଲୋଲୁପ; ଲାଳାୟିତ—2. Coveting; hankering after; longing for. ୩ । ଲୋଭୀ—3. Covetous; avaricious. ୪ । ଲମ୍ପଟ—4. Lecherous. ୫ । କାମୁକ—5. Amorous; lustful. ସଂ. ବି—୧ । ନକ୍ଷତ୍ର ବିଶେଷ; ଶ୍ୱା—1. Name of a star; the dog star. ୨ । ଲୁବ୍‌ଧକ; ବ୍ୟାଧ—2. A hunter. ୩ । କାମୁକବ୍ୟକ୍ତି—3. A lecher; a libertine ( Apte). ୪ । ଲୋଭୀ ବା ପେଟୁ ବ୍ୟକ୍ତି—4. A covetous or greedy man.
Lubdha
(ଲୁବ୍ଧା—ସ୍ତ୍ରୀ)
(ଲୁବ୍‌ଧତା—ବି)

ଲୁବ୍ଧକ—ସଂ. ବିଣ ( ଲୁବ୍‌ଧ+କ )—୧ । ଲମ୍ପଟ—1. Lecherous. ୨ । ଲୋଭୀ—2. Covetous; avaricious. ସଂ. ବି—୧ । ବ୍ୟାଧ—1. Hunter. ୨ । ପ୍ରଶ୍ୱାନକ୍ଷତ୍ର—2. The star Sirius. ୩ । ପାୟୁ ଇନ୍ଦ୍ରିୟ—3. Anus. [ ଉ—ବୈଶ୍ୱ ବିଷୟକୁ ଯାଇ, ଲୁବ୍ଧକ ମନ୍ତ୍ରୀ ସଙ୍ଗେ ଥାଇ । ଜଗନ୍ନାଥ—ଭାଗବତ । ] ୪ । ପିଣ୍ଡ; ପଶ୍ଚାଦ୍‌ଭାଗ—4. The hinder part ( Apte ). ୫ । ଲୋଭୀ ବା ପେଟୁବ୍ୟକ୍ତି—5. A covetous or greedy man ( Apte ). ୬ । କାମୁକ ବ୍ୟକ୍ତି—6. A libertine ( Apte ).
Lubdhaka Lecherous.

ଲୁବ୍ଧ ଚିତ୍ତ—ସଂ. ବି (କର୍ମଧା)—ଲୋଭଯୁକ୍ତ ହୃଦୟ—Lubdhachitta Covetous heart. ସଂ. ବିଣ. ପୁଂ (ଲୁବ୍ଧଚିତ୍ତା—ସ୍ତ୍ରୀ) (ବହୁବ୍ରୀହି)—ଲୁବ୍ଧାଶୟ (ଦେଖ)—Lubdhāśaya (See)

ଲୁବ୍ଧଚେତାଃ—ସଂ. ବିଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି) (ଲୁବ୍ଧଚେତସ Lubdha chetāh ଶବ୍ଦ, ୧ମା. ୧ବ.)—ଲୁବ୍ଧାଶୟ (ଦେଖ) Lubdhāśaya (See)

ଲୁବ୍ଧ ନେତ୍ର—ସଂ. ବି. (କର୍ମଧା)—ଲାଳସାପୂର୍ଣ୍ଣ ଦୃଷ୍ଟି—Covetous Lubdha netra look; lustful eyes. ସଂ ବିଣ. ପୁଂ. (ଲୁବ୍ଧ ଲୋଚନ—ଅନ୍ୟରୂପ) (ବହୁବ୍ରୀହି)—ଲାଳସାପୂର୍ଣ୍ଣ ଦୃଷ୍ଟି-ଯୁକ୍ତ—Casting covetous glances; eying lustfully.
ଲୁବ୍ଧ ନେତ୍ରା, ଲୁବ୍ଧ ଲୋଚନା } ସ୍ତ୍ରୀ

ଲୁବ୍ଧାଶୟ—ସଂ. ବି (କର୍ମଧାରୟ)—ଲୋଭଯୁକ୍ତ ହୃଦୟ—Covetous Lubdhāśaya mind. ସଂ. ବିଣ. ପୁଂ. (ବହୁବ୍ରୀହି)—(ଲୁବ୍ଧାଶୟା—ସ୍ତ୍ରୀ) ଯାହାର ଚିତ୍ତ ଲୁବ୍ଧ ହୋଇଅଛି—Having a covetous or hankering mind.

ଲୁଭ୍ (ଧାତୁ)—ସଂ.—୧। ଲାଭିବାକୁ ଅଭିଳାଷ କରିବା; ଲୋଭ କରିବା—Lubh (root) 1. To covet after a thing; to hanker after. ୨। ଗୋଳମାଳିଆ କରିବା—2. To bewilder; to confound; to perplex (Apte). ୩। ପ୍ରଲୋଭିତ କରିବା—3. To allure; to entice (Apte).

ଲୁଭ୍ (ଇତ୍ୟାଦି)—ପ୍ରାଦେ. (ଖଡ଼ିଆଳ) ବି—ଲୋଭ ଇତ୍ୟାଦି (ଦେଖ) Lubh (etc) Lobha etc (See)

ଲୁଭ୍‌ଲୁଭ୍‌ନା—ପ୍ରାଦେ. (ଖଡ଼ିଆଳ) ବିଣ—ଲୋଭନୀୟ—Lubh-lubh-nā Alluring.

ଲୁଭାନ୍—ବୈଦେ. ବି (ଫା. ଲୁବାନ୍)—ଲୋବାନ୍ (ଦେଖ) Lubhān Lobān (See)

ଲୁଭିଆ—ପ୍ରାଦେ. (ଜୟପୁର) ବି—ଝୁଡ଼ୁଙ୍ଗ (ଦେଖ)—Jhurdanga Lubhiā (ଲୁଡ଼ୁକା—ଅନ୍ୟରୂପ) (See)

ଲୁଭିତ—ସଂ. ବିଣ. ପୁଂ—ବ୍ୟାକୁଳିତ; ଘାବରାଇ ଯାଇଥିବା (ବ୍ୟକ୍ତି)—Lubhita Perplexed; disturbed (Apte). (ଲୁଭିତା—ସ୍ତ୍ରୀ)

ଲୁମ୍—ସଂ. ବି—ରାଗିଣୀ ବିଶେଷ—A sort of secondery Lum tune in music. [ଦ୍ର—ଏହା ସପ୍ତସ୍ୱର ଓ ସମ୍ପୂର୍ଣ୍ଣ ଝୁମ୍ ଝୁମ୍ ଜାତିର ରାଗ, ଏଥିରେ ସବୁ ଶୁଦ୍ଧ ସ୍ୱର ଲାଗେ; ରାତି ୨ୟ ପ୍ରହରରେ ଗେୟ; ଏହା ମେଘରାଗର ପୁତ୍ର।] ବୈଦେ. ଲୁମ୍ ଲୁମ ବି (ଇଂ. ଲୁମ୍)- ତନ୍ତ—Loom.

ଲୁମ୍‌ଲୁମ୍—ପ୍ରାଦେ. (ଖଡ଼ିଆଳ) ବି—ଉପର୍ଯ୍ୟୁପରି ଖୋଲିବା ଓ ବନ୍ଦ Lum-Lum ହେବା—Twinkling.

ଲୁମ—ଦେ. ବି (ସଂ ଲୋମ)—ଲୋମ; ରୋମ—Fur. Luma রোঁআ, লোম रोआँ, लोम

ଲୁର୍କି—ପ୍ରାଦେ. (ସମ୍ବଲପୁର) ବି (ଭୁଲ. ହି. ଏହି ଅର୍ଥରେ ଏହି Lur-ki ଶବ୍ଦ)—କାନର ଲୁଡ଼ିକା; ଫାସିଅରେ ଝୁବ ଲାଗିଥିବା ଉପର କାନର ଅଳଙ୍କାର—A ring with pendant for the upper part of the ear.

ଲୁଲ୍ (ଧାତୁ)—ସ—୧। ଦୋଳିବା—1. To hang down; to Lul (root) dangle. ୨। ବିଲୋଡ଼ନ କରିବା—2. To agitate ୩। ଗୁଣିବା; ମଳିବା—3. To crush; (ତୁଳ. ଇଂ. ଲୋଲ୍, loll) to press down (Apte).

ଲୁଲ—ପ୍ରାଦେ. (ସମ୍ବଲପୁର) ବି—ଖାଇବା ଜିନଷ (ଯଥା, ଲୁଣ; Lula ଶାଗ ଆଦି) ବାଢ଼ିବା ପାଇଁ ଲୋଡ଼ା ହେବା ଫଳ (ଯଥା, ଶାଳ, ମହୁଲ, ପଲାଶ) ଆଦିର ଡଉପତ୍ରମାନ ଭବିଷ୍ୟତରେ ବ୍ୟବହାର କରିବା ନିମନ୍ତେ ସାଇତି ରଖିବା ଲାଗି ବନ୍ଧାଯାଇଥିବା ମାଳ—A string of cups made of leaves hung up for future use. [ଦ୍ର—ବ୍ୟବହାର କରିବା ପାଇଁ ଏଥିରୁ ଡଉପତ୍ରମାନଙ୍କୁ ଗୋଟି ଗୋଟି କରି ଟାଣି ଆଣିବାକୁ ହୁଏ।]

ଲୁଲନ—ସଂ. ବି (ଲୁଲ ଧାତୁ+ଭାବ. ଅନ)—ଇତସ୍ତତଃ ଝୁଲିବା—Lulana Dangling.

ଲୁଲା—ଦେ. ବିଣ—ନୁଲା (ଦେଖ)—Nulā (See) ପ୍ରାଦେ. Lulā (ଗଞ୍ଜାମ) ବି—ଓଲୁ ଲୋକ—Simpleton.

ଲୁଲାପ(ୟ)—ସଂ. ବି. ପୁ. (ଲୁପ୍ ଧାତୁ=ଅଲୋଡ଼ନ କରିବା+ଅ; Lulāp(ya) ନିପାତନ, ଅଥବା ଲୁଲ୍=ବିଲୋଡ଼ନ+ଅପ୍ ଧାତୁ (ଲୁଲାପୀ[ୟୀ]—ସ୍ତ୍ରୀ) +ଅ; ନିପାତନ)—ମହିଷ; ମଇଁଷି—Buffalo. [ଦ୍ର—ବଶିଷ୍ଠ କ ଧୂମ୍ରାକ୍ଷ ନାହିଁ ଲକ୍ଷ୍ୟ ଯା ଲାଗି ଲୁଲାପ ରଥେ ଯୋଡ ଯେ—ଭଞ୍ଜ. ବୈଦେହୀଶ-ବିଳାସ।]

ଲୁଲାପ କାନ୍ତା—ସଂ. ବି. ସ୍ତ୍ରୀ—ମାଈ ମଇଷି—Lulāpa kāntā A cow-buffalo.

ଲୁ(ନୁ)ଲି—ପ୍ରାଦେ. (ଜୟପୁର) ବି—କାନର ନୋଳ; କାନର Lu(nu)li ଅଳଙ୍କାର ବିଶେଷ—An ornament for the ear; ear-ring.

ଲୁଲି—ଦେ. ବିଣ. ପୁଂ—ଶିଶୁମାନଙ୍କୁ ସ୍ନେହ ସମ୍ବୋଧନ—A term Luli endearment addressed to male children. খোকা, খোকন लाला, ललन (ଲୁଲିଆ—ଅନ୍ୟରୂପ)

ଲୁଳିତ—ସଂ. ବିଣ (ଲୁଲ୍ ଧାତୁ+କର୍ତ୍ତୃ. ତ)—୧। ଦୋଳିତ; Lulita ଅନ୍ଦୋଳିତ; ଲମ୍ବିଥିବା—1. Hanging down. ୨। ଇତସ୍ତତଃ ଗଳିତ—2. Dangling; waving. ୩। କମ୍ପିତ—3. Trembling. ୪। (+କର୍ମ. ତ) ବିଲୋଡ଼ିତ—4. Agitated. ୫। ଲୋଲ; ଯାହା ପତଳା ହୋଇ ବା ଶ୍ଲଥ ହୋଇ ଝୁଲିଥାଏ—5. Wrinkled. ୬। ରମ୍ୟ—6. Pleasing; elegant; beautiful (Apte). ୭। ପରିତ୍ୟକ୍ତ—7. Relinquished, deserted. ୮। ମୁକୁଳା ବା ଅଡ଼ୁଆ ହୋଇଥିବା (କେଶ)—8. Dishevelled (hair) (Apte). ୯। ଦଳିତ—9. Pressed

| ୧ | ଇ | ଉ | ଋ,ଌ | ଠ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇୟ | ଉଅ | ହ୍ମ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଯୈ | ଅକାରାନ୍ତ ବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଜ୍ଞ | ନ୍ନ |

down; crushed ( Apte ). ୧୦ । କ୍ଲାନ୍ତ— 10. Fatigued; drooping ( Apte ),

ଲୁଳିତ ଚର୍ମ—ସଂ. ବି ( କର୍ମଧା )—ବୃଦ୍ଧାବସ୍ଥାହେତୁ ଯୋଗୁ ଶ୍ଳଥ ହୋଇ Lulita charma ଝୁଲି ପଡ଼ିଥିବା ଚର୍ମ—Wrinkled skin due to old age ).

ଲୁଳିତ ଚର୍ମା—ସଂ. ବିଣ. ପୁଂ. ଓ ସ୍ତ୍ରୀ (ବହୁବ୍ରୀହି, ଲୁଳିତ+ଚର୍ମନ୍)— Lulita charmā ବାର୍ଦ୍ଧକ୍ୟହେତୁ ଯୋଗୁ ଯାହାର ଚର୍ମ ଝୁଲି ପଡ଼ିଅଛି— With wrinkled skin.

ଲୁଲି ଧରିବା—ପ୍ରାଦେ. ( ସମ୍ବଲପୁର ) କି—ଦେହରେ ଦଉଡ଼ି ବଳିବା; Luli dharibā ସଉଲି ବଳିବା—To twist thread into rope.

ଲୁଳି ପଡ଼ିବା—ଦେ. କି ( ସଂ. ଲୁଲ ଧାତୁ )—ଝାଉଁଳି ପଡ଼ିବା— Luli pardibā To droop down. [ ଉ—ଲୁଳିପଡ଼ୁ ଭୁ ঝামলে যাওয়া ପଲ୍ଲବ ଦଳେ ମୃଦୁଳ ଭୁଲୀ ତଳପରେ କ୍ଷଣେ— ঝুল জানা କବିସୂର୍ଯ୍ୟ. ସଙ୍ଗୀତ । ]

ଲୁଳିବା—ଦେ. (ପଦ୍ୟ) କ୍ରି.—(ସଂ. ଲୁଲ୍ ଧାତୁ)—୧ । ଶ୍ଳଥ ହୋଇ Lulibā ଝୁଲିବା; ଲଟକିବା—1. To dangle; to be ন্যূলা, দোলা লুকনা, ঝোলনা wrinkled. ୨ । ଦୋହଲିବା—2. To hang to and fro. [ଉ—ସୁସଜ୍ଜ ନାସାପୁଟେ ଲୁଳେ ଗଜମୋତି । ପ୍ରାଚୀ ଶିଶୁ- ଶଙ୍କର. ଉଷା ଅଭିଳାଷ ।] ୩ । କ୍ଲାନ୍ତ ହେବା; ଅବ କ୍লান্ত হওয়া ଯିବା—3. To be exhauste . [ ଉ— থকনা ଲୁଳି ଗଲାନି, ତଳୁଛି ସଖୀରୁ ଚରଣ କଞ୍ଜ । କବିସୂର୍ଯ୍ୟ. শুকিয়ে যাওয়া. ରତ୍ନାକର ଚମ୍ପୂ ।] ୪ । ମଉଳିବା; ମ୍ଳାନହେବା— सूखना 4. To fade, to wither. [ ଉ—ବଦାଳେ ଲୁଳିଲା ନବୀନ ମଞ୍ଜରୀ ପରି ଜମି ମୋର ଉରରେ । କବିସୂର୍ଯ୍ୟ. ସଙ୍ଗୀତ ।] ୫ । ଝାଉଁଳିବା—5. To ঝামলে যাওয়া मुरझाना droop down. [ଉ—ଲୁଳିଲା ଝଞ୍ଜାବାତେ ଲତିକା ପରାୟେ । କୃଷ୍ଣସିଂହ ମହାଭାରତ. ବନ ।]

ଲୁଲୁର (ରୁ) ଲଇ—ଦେ. ବି.—କାଞ୍ଜି କାଞ୍ଜିଅ (ଦେଖ) Lulur(ru) lai Kāñjikāñjia (See)

ଲୁଶ (ଶୁ)ପୁଶ (ଶୁ)—ଦେ. ଅ—ଲୁଚ୍ ପୁଚ୍ (ଦେଖ) Luś(śu) puś(śu) Luch puch (See)

ଲୁଶୁର(ରୁ) ପୁ(ଲୁ)ଶୁର(ରୁ)—ଦେ. ଅ.—ଲଶର ପଶର (ଦେଖ) Luśur(ru) pu(lu)śur(ru) Laśara paśara (See) [ଦ୍ର—ବଡ଼ ମନୁଷ୍ୟ ପ୍ରତି 'ଲଶର ପଶର' ବ୍ୟବହୃତ ହୁଏ ଓ ଛୋଟ ବ୍ୟକ୍ତି ପ୍ରତି ଲୁଶୁରୁ ପୁଶୁରୁ ବ୍ୟବହୃତ ହୁଏ ।]

ଲୁଷ (ଧାତୁ)—ସଂ.—୧ । ହିଂସା କରିବା—1. To try to kill. Lush (root) ୨ । ଚର୍ବଣ କରିବା—2. To chew.

ଲୁଷଭ —ସଂ. ବି. ପୁଂ—(ଲୁଷ ଧାତୁ—କ୍ରୁଦ୍ଧ ହେବା+କର୍ତ୍ତୃ. ଅଭ) Lushabha ମତ୍ତହସ୍ତୀ—An infuriated male elephant; an elephant in rut.

ଲୁସ ଲୁ(ଲା)ସ —ଦେ. ଅ. (ଧ୍ୱନ୍ୟନୁକରଣ) —ଆମ୍ବ ଆଦି ଫଳ କ୍ରମାଗତ Lus lu(lā)s ଝଡ଼ିବା ବେଳେ ହେବା ଶବ୍ଦ—The sound হুড়হুড় गद्‌गद्‌ लद्‌लद्‌ produced by continuous dropping down of fruits,such as mangoes. (ଯଥା—ଗୋଟି ଗୋଟି ହୋଇ ଗଛରୁ ଆମ୍ବ ଲୁସ୍ଲାସ୍ ଝଡ଼ୁଛି । )

ଲୁସ୍‌ଲୁସା—ପ୍ରାଦେ ( ଗଡ଼ିଆଳ ) ବିଣ—ଲଚପଚ; କଅଁଳ—Soft; Luslusā yielding to touch. ( ଲସ୍‌ଲସା—ଅନ୍ୟରୂପ )

ଲୁସୁଡ଼ି— ପ୍ରାଦେ ( ଯାଜପୁର ) ବିଣ.—୧ । ବିଶେଷ ଭାବରେ ସଡ଼ି Lusurdi ଯାଇଥିବା ( ଆମ୍ବ ଆଦି)—1. Badly putri- fied (fruit). ୨ । ଲୁଳିତ (ଚର୍ମ)—Wrinkled (skin).

ଲୁସୁଡ଼ି ପଡ଼ିବା—ଦେ· କି —ପାଣିଆ ହେବାହେତୁ କାଦୁଅ କାନ୍ଥରେ Lusurdi pardibā ଲାଗି ନ ରହି ବୋହିପଡ଼ି ଖସିପଡ଼ିବା— খসেপড়া लथलथ गीरना (clay) Not to sustain (ଲସୁଡ଼ିବା—ଅନ୍ୟରୂପ) itself on account of its being a little watery.

ଲୁହ—ଦେ. ବି. ( ସଂ ଲୋତକ, ପ୍ରା. ଲୋଅ )—ଅଶ୍ରୁ; ଲୋତକ— Luha Tear. ( ଉ—ଏହା କହି ଅଖିରୁ ଯାଉଛି লো, চোখের জল आंसु ଲୁହ ବହି - କୃଷ୍ଣସିଂହ ମହାଭାରତ ଆଦି । ) [ ଦ୍ର—ଶୋକ ଯୋଗୁଁ କିମ୍ବା କଷ୍ଟ ପାଇ ମନୁଷ୍ୟ କାନ୍ଦିଲେ ତା ଅଖିରୁ ଲୁହ ଗଳେ; ଅଖିରେ ଧୂଆଁ ବା ଝାଗ ଦ୍ରବ୍ୟ ଲାଗିଲେ କିମ୍ବା ରୋଗ ହେଲେ ଅଖିରୁ ପାଣି ଗଳେ । ]

ଲୁହ ଗଳିବା—ଦେ. କି—ଲୋତକ ପାତ ହେବା—The trickling Luha gardibā চোখের জল পড়া of tears. आंसू बहना, आंसू गीरना, आंसू टपकना [ ଲୁହ ପଡ଼ିବା, ଲୁହ ବ(ବୋ)ହିବା.—ଅନ୍ୟରୂପ]

ଲୁହ ଟୋପା—ଦେ. ବି—ଲୋତକ ବିନ୍ଦୁ—Drops of tear. Luha topā চোখের জলের ফোঁটা आंसूकी बूंद

ଲୁହ ଧାର(ରା)—ଦେ· ବି (ସଂ. ଲୋତକଧାରା)—ଲୋତକଧାରା—Flow Luha dhāra(rā) or rill of tears. চোখের জলের ধারা आंसूकी धारा

> ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ମୂତ' ନ ମିଳିଲେ 'ମୃତ' ଖୋଜିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଆଗ୍ୟାଁ' ନ ପାଇଲେ 'ଆଜ୍ଞା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍‌' ଦେଖିବେ

**ଲୁହ ନ କାନ୍ଦି ରକ୍ତ କାନ୍ଦିବା**—ଦେ. କ୍ରି— ଅତ୍ୟନ୍ତ ମନୋବେଦନା ପ୍ରକାଶ ପୂର୍ବକ କାନ୍ଦିବା— To shed tears (literally blood) in utter grief or pain. [ ଦ୍ର—ମନକୁ ବିଶେଷ ବାଧା ହେଲେ ଲୋକେ ଏହା କହିଥାଆନ୍ତି, ଅର୍ଥାତ୍ ମୁଁ କାନ୍ଦିବା ଦ୍ୱାରା ମୋ ଆଖିରୁ ଯେଉଁ ଲୁହ ଟୋପାମାନ ପଡ଼ୁଛି ତାହା ପ୍ରକୃତରେ ମୋ ହୃତ୍ପିଣ୍ଡରୁ ରକ୍ତ ବୋହିବା ପରି ମୋ ପ୍ରାଣକୁ କଷ୍ଟ ଦେଉଛି । ]
Luha na kāndi rakta kāndibā
চোখ দিয়ে জল না বেরিয়ে রক্ত বের(ক)ন
आंसू न गीराकर लोहू गीराना

**ଲୁହ ପୋଛିବା**—ଦେ. କ୍ରି—ହସ୍ତ ଓ ବସ୍ତ୍ରାଦିଦ୍ୱାରା ଲୋତକକୁ ପୋଛି ପକାଇବା—To wipe off tears.
Luha pochhibā
চোখের জল পোঁছা
आंसू पोछना

**ଲୁ(ଲୋ)ହ(ହୁ)ରା**—ପ୍ରାଦେ. (ଗଡ଼ଜାତ; ଖଡ଼ିଆଳ) ବି—(ସଂ ଲୋହକାର, ତୁଳ. ହିଂ ଲୁହର )—କମାର—Blacksmith.
Lu(lo)ha(hu)rā

**ଲୁହା**—ଦେ. ବି (ସଂ ଲୌହ, ଲୋହ )—୧ । କଠିନ ଖନିଜ ଧାତୁ-ବିଶେଷ; ଲୌହ ( ଧାତୁ )—1. Iron ( Ferrum ). ୨ । ଲୁହା ପରି ଟାଣ ବସ୍ତୁ—2. Any thing as hard as iron. [ ଦ୍ର—ସଂସାରରେ ବହୁ ଧାତୁ ସଙ୍ଗେ ମିଶ୍ରିତ ଅବସ୍ଥାରେ ଲୁହାର ଗୁଡ଼ିଆ (ore) ଖଣିରୁ ମିଳେ । ଲୁହାର ବର୍ଣ୍ଣ କଳା । ବାୟୁ ଓ ଜଳ ସଂସର୍ଗରେ ଏଥିରେ କଳଙ୍କି ଲାଗେ । ଭାରତରେ ବୈଦିକକାଳରୁ ଏ ଧାତୁର ଜ୍ଞାନ ଚଳି ଆସିଅଛି । ବେଦରେ ଲୁହାକୁ ସଫା କରିବା ବିଧି ଅଛି ଓ ଲୁହାରେ ନିର୍ମିତ କଠିନ ଓ ତୀକ୍ଷ୍ଣ ଅସ୍ତ୍ରଶସ୍ତ୍ରମାନଙ୍କ ବିଷୟ ଉଲ୍ଲେଖ ଅଛି । ବୈଦ୍ୟଶାସ୍ତ୍ର ମତରେ ଲୁହା ପାଞ୍ଚ ପ୍ରକାର :—୧ କାଂସୀ, ୨ ପାଣ୍ଡି, ୩ କାନ୍ତ, ୪ କାଳିଙ୍ଗ ଓ ୫ ବଜ୍ରକ । ପୂର୍ବେ କାଞ୍ଚିଦେଶରୁ କାଞ୍ଚୀ, ପାଣ୍ଡ୍ୟ ଦେଶରୁ ପାଣ୍ଡି ଓ କଳିଙ୍ଗ ଦେଶରୁ କାଳିଙ୍ଗ ଲୁହା ଖଣିରୁ ବାହାରୁଥିଲା । ଯେଉଁ ଲୁହା ଆକାଶରୁ ଉଲ୍କାପିଣ୍ଡରୂପେ ପଡ଼ୁଥିଲା ତାକୁ ବଜ୍ରକ କହୁଥିଲେ । ଶୁଦ୍ଧୀକୃତ ଲୁହାକୁ କାନ୍ତ କୁହାଯାଏ । ଏ ପାଞ୍ଚ ପ୍ରକାର ଲୁହାର ପ୍ରୟୋଗ ବୈଦ୍ୟ ଶାସ୍ତ୍ରରେ ଅଛି । ଲୁହ ବଳପ୍ରଦ ଏବଂ ଶୋଥ, ଶୂଳ, ଅର୍ଶ, କୁଷ୍ଠ, ପାଣ୍ଡୁ, ପ୍ରମେହ, ମେଦ ଓ ବାୟୁନାଶକ; ଆଖିର ଜ୍ୟୋତି ଓ ଆୟୁବୃଦ୍ଧିକର, ଗୁରୁ ଓ ସାରକ ବୋଲି ବୈଦ୍ୟ ଶାସ୍ତ୍ରରେ ଅଛି । ବୈଦ୍ୟକରେ ଲୁହାର ଭସ୍ମ ପ୍ରସ୍ତୁତ କରିବା ପ୍ରକ୍ରିୟା ଓ ଭସ୍ମର ପ୍ରୟୋଗ ଅଛି । ପ୍ରାଚୀନ କାଳରେ ଭାରତର ଲୋକେ ଲୁହାକୁ କଳଙ୍କିରୁ ବହୁଶତ ବର୍ଷ ରକ୍ଷା କରିବା ଉପାୟ ଜାଣୁଥିଲେ । ଦିଲ୍ଲୀର ଲୌହସ୍ତମ୍ଭରେ ୧୫ଶତ ବର୍ଷରେ କଳଙ୍କି ଧରି ନାହିଁ । ପୁରାଣମତରେ ଦେବତାମାନଙ୍କଦ୍ୱାରା ନିହତ ଲୋମକ ଦୈତ୍ୟର ଶରୀରରୁ ଲୁହା ଉତ୍ପନ୍ନ ହୋଇଥିଲା । ଲୌହ ଆର୍ଯ୍ୟ ଶାସ୍ତ୍ରରେ ୩ପ୍ରକାର ଥିବା ଲେଖାଯାଇଅଛି । ତୀକ୍ଷ୍ଣାୟସର ପର୍ଯ୍ୟାୟ ତୀକ୍ଷ୍ଣ, ଶସ୍ତ୍ରାୟସ, ଶସ୍ତ୍ର୍ୟ, ପିଣ୍ଡ, ଶଠ, ଅୟସ, ନିଶିତ, ତୀବ୍ର, ଖଡ୍ଗ, ଚିତ୍ରାୟସ, ମୁଣ୍ଡଜ । ମୁଣ୍ଡାୟସର ପର୍ଯ୍ୟାୟ—ମୁଣ୍ଡ, ଦୃଷତ୍ସାର, ଶିଳାତ୍ମଜ, ଅଶ୍ମଜ, କୃଷିଲୌହ । କାନ୍ତାୟସର ପର୍ଯ୍ୟାୟ—କାନ୍ତ । ହି. ଶ ]
୩ । ବଳଦ ଓ ଘୋଡ଼ାଙ୍କ ଦେହରେ ତତାଇ କରି ଦାଗ ଦେବା ପାଇଁ ବ୍ୟବହୃତ ଲୌହ ଶଳାକା; ତତ୍ତ କାଠି—3. Searing iron. ଦେ. ବିଣ—୧। ଲୌହ ନିର୍ମିତ—1. Made of iron. ୨ । ଲୁହାପରି ଟାଣ—2. Hard as iron. ୩। କଷ୍ଟସହ (ହୃଦୟ)—3. Callous (heart). ୪ । କଠୋର, ନିଷ୍ଠୁର—4. Hard; cruel.
Luhā
ସ. ଲେହ, ଲୋହକ, ଲୌହ, ଜୋଙ୍ଗକ, ଅୟସ, ଶଠ, ନିଶିତ, ତୀବ୍ର, ଖଡ୍ଗ, ଅୟସ, ଶସ୍ତ୍ରକ, ତୀକ୍ଷ୍ଣ, କାଳାୟସ
লোআ, লোহা
लोहा
ତେ. ଇନୁମୁ
ଆ. ହଦୀଦ୍
ଫା. ଆହନ୍

**ଲୁହା ଅଗୁଆ**—ଦେ. ବି—ଲୌହନିର୍ମିତ ବଳୟ ବା ମୁଦି—Ring made of iron. [ ଦ୍ର—କଳା ଖୁବ ବଡ଼, କଳାଠାରୁ କଡ଼ା ଛୋଟ, କଡ଼ାଠାରୁ ମୁଦିଅ ଛୋଟ, ମୁଦିଅଠାରୁ ମୁଦି ଛୋଟ ଓ ମୁଦିଠାରୁ ଅଗୁଆ ବା କଡ଼ି ଛୋଟ ।]
Luhā aguā
লোহা আংগঠী
लोहाकी अंगुठी
ଲୁହାମୁଦି, ଲୁହାମୁଦିଅ } ଅନ୍ୟରୂପ
ଲୁହାକଡ଼ା, ଲୁହାକଳା }

**ଲୁହାକଡ଼ି**—ଦେ. ବି—୧ । କୋଠା ଘରର ଲୌହ ନିର୍ମିତ କଡ଼ି—1. Iron beam. [ଦ୍ର—କୋଠାର ଛାତ ଓ ପୋଲ ଆଦିରେ ଆଡ଼ଧାରଣା ପାଇଁ କଡ଼ି ବ୍ୟବହୃତ ହୁଏ ।] ୨ । ଲୌହନିର୍ମିତ ଛୋଟ ମୁଦିଅ—2. Small iron ring.
Luhā kardi
লোহাবকড়ি
लोहाकाधरन

**ଲୁହା କଣ୍ଟା**—ଦେ. ବି(ସ. ଲୋହକଣ୍ଟକ)—ମୁନିଆ, ଅଳ୍ପ ଲମ୍ବ ଓ ସରୁଆ ଲୌହଖଣ୍ଡ—Iron nail. [ଦ୍ର—ଲୁହା କଣ୍ଟାର ଆକାର ଓ ବ୍ୟବହାର ଅନୁସାରେ ଲୁହାକଣ୍ଟାର ଭିନ୍ନ ଭିନ୍ନ ନାମ ଅଛି ଯଥା— ପିରିକ, ଗୁଲମେଖ, ବାଟିଆ, ଛତିବାଲ, ଗୋଡ଼ଖାଲ, ଟ୍ରମେଖ, ପିନା, ପୀନ ଓ ହଜାରମେଖ ।]
Luhā kantā
লোহাব কাণ্টে
लोहाकीकांटा(टी)

**ଲୁହା କରିବା**—ଦେ.କ୍ରି-(ଲକ୍ଷଣାର୍ଥ)-(ଦେହକୁ ବା ଛାତିକୁ)—ଲୁହାପରି କଠିନ ବା କଷ୍ଟସହ କରିବା—To harden (one's heart or the body) (ଯଥା—ମୁଁ ପ୍ରତିଦିନ କୁସ୍ତି ଖେଳି ମୋ ଦେହକୁ ଲୁହା କରି ଦେଲିଣି ।]
Luhā karibā
লোহারমতশক্ত করা
लोहाबनाना, पत्थरबनाना
[ଲୁହା କରା(କେ)ଇବା—ଅନ୍ୟରୂପ]

ଲୁହା କଳଙ୍କ(ଙ୍କି)—ଦେ. ବି (ସଂ. ଲୌହ+କଳଙ୍କ)—ବହୁକାଳ
Luhā kaḷaṅk(ṅki) ଅବ୍ୟବହୃତ ଅବସ୍ଥାରେ ରହିଲେ
লোহাব মড়িচা ବାୟୁର ଅମ୍ଳଜାନ (oxygen) ର
लोहाका जंग ପ୍ରଭାବରେ ଲୁହା ଉପରେ ପଡ଼ିଯିବା ସ୍ତର ବା ମଳିଗୁ-
(ଲହା ମ ରୁଗୁ—ଅନ୍ୟରୂପ) Iron-rust.

ଲୁହା କାମ—ଦେ. ବି (ସଂ. ଲୌହ+ କର୍ମ)—ଲୌହକାମ ଓ ଦ୍ରବ୍ୟବସ୍ତୁ-
Luhā kāma Iron-works; hard ware.
লোহাবকাজ लोहाका काम (ଯଥା—ଲୁହାଶଙ୍ଖ; ଲୁହାକଡ଼ି)

ଲୁହା ଖଡ଼ିକା—ଦେ. ବି—ପିଠାଖଡ଼ିକା;ଯାହା ଉପରେ ପିଠାକୁ ଓ ଭଜା
Luhā khaṛḍikā ଆଦିକୁ ଲେଉଟାଇବା ପାଇଁ ବ୍ୟବହୃତ ସରୁ
খুনতী ଓ ଲମ୍ବା ଲୌହଯଷ୍ଟି—A thin stick made of
छेलनी iron used in frying or turning things on a
a frying pan over fire. [ଦ୍ର—ଏହାପର ଲୁହା
କରଛୁଲି, ଲୁହାଜାଲିଚଟୁ, ଲୁହାକରେଇ ଓ ଲୁହାତେଲ
ଅନ୍ତ ଶୁଣ ।]

ଲୁହା ଗୁଣା(ଲି)—ପ୍ରାଦେ. (ଗଡ଼ଜାତ) ବି.—ଧାନ ବିଲରେ ହେବା
Luhāguṇā (ḷi) ଏକ ପ୍ରକାର ଘାସ—A kind of weed
growing in the paddy field. [ଦ୍ର—ଏହାର
ଚେର ଏପରି ଶକ୍ତ ଯେ, ଏହାକୁ ବଳୁଆ ମନୁଷ୍ୟ ମଧ୍ୟ
ଉପାଡ଼ି ପାରେ ନାହିଁ ।]

ଲୁହା ଗୁହ(ମଳ)—ଦେ. ବି.—(ସଂ. ମଣ୍ଡୁର, ଲୌହମଳ)—ଲୌହ-
Luhā guha (maḷi) ମଳ; ଲୁହାକୁ ଅଗ୍ନିରେ ଉତ୍ତପ୍ତ କଲେ
লোহাব চর ତହିଁରୁ ବାହାରିବା ମଳ; ମଣ୍ଡୁର—
लोहाकामैल Scoriae.

ଲୁହା ଚଣା—ପ୍ରାଦେ. (ଯାଜପୁର) ବି.—ଲୁହାର ବଡ଼ଚଣା ବା ଛରର୍‌-
Luhā chaṇā Iron shots.

ଲୁହାଚଣା ଖାଇବା—ପ୍ରାଦେ. (ଯାଜପୁର)—କ୍ରି.—(ତୁଳନା କର, ହି.
Luhā chaṇā khāibā ଲୋହାକା ଚନା ଚବାନା)—ଲୁହାର
ବଡ଼ ଚଣା ଖାଇବା [ଦେଖ]—
Luhāra barḍa chaṇā khāibā (See)

ଲୁହାଚଣା ଖିଆ(ଚୋବା)—ପ୍ରାଦେ. [ଯାଜପୁର ବି.—ଏକାଦଶାହ ଶ୍ରାଦ୍ଧ
Luhāchaṇā khiā(chobā) ପରେ କର୍ମକର୍ତ୍ତା ଘରକୁ ଅସି
ଭଜା ବର ଗୁଡ଼ୁଲ ଆଦି ଚୋବାଇବା—The chewing
of fried rice and other grains by the
principal mourner on the eleventh night
of a relative's death after finishing the
night śrāddha.

ଲୁହାଚଣା ଚୋବାଇବା—ପ୍ରାଦେ. ( ଯାଜପୁର ) କ୍ରି—ଏକାଦଶାହ
Luhāchaṇā chobāibā ରାତିରେ ଶ୍ରାଦ୍ଧ ପରେ କର୍ମକର୍ତ୍ତା ଘରକୁ
ଅସି ଭଜା ବର ମୁଗ ଚର୍ବଣ କରିବା—To chew fried
rice and other grains after finishing
the night śrāddha on the eleventh day
of a relative's death.

ଲୁହା ଚୁନା—ଦେ. ବି ( ସଂ. ଲୌହ ଚୂର୍ଣ୍ଣ )—ଲୌହ ଚୂର୍ଣ୍ଣ; ଲୁହାକୁ
Luhā chūnā କରତିଲେ ତହିଁରୁ ବାହାରିବା କ୍ଷୁଦ୍ର କ୍ଷୁଦ୍ର ଲୌହ-
লোহাবখুঁড়ো लोहाका बुरादा ଖଣ୍ଡମାନ—Iron filings

ଲୁହା ଚେନ୍—ଦେ. ବି ( ସଂ. ଲୌହ+ଇଂ. ଚେନ୍ )—ଲୌହ
Luhā chen ଶୃଙ୍ଖଳ; ଲୁହା ଶିକୁଳି—Iron-chain
লেহাব চেন लोहाका चेन

ଲୁହା ଛାତି—ଦେ. ବି ( ଲକ୍ଷଣାର୍ଥ )—୧ । ଲୁହା ପରି କଷ୍ଟସହ ଅର୍ଥାତ୍
Luhā chhāti ଧୈର୍ଯ୍ୟଶୀଳ ଓ ବିପଦରେ ଅଟଳ ହୃଦୟ—
লোহাব হৃদয 1. Patient and callous heart.
लोहाकी छाती ୨ । ନିର୍ଦ୍ଦୟ ହୃଦୟ—2. Hard heart
( ଲୁହାର ଛାତି—ଅନ୍ୟରୂପ )

ଲୁହା ଜାଣି ପାଣି ଦେବା—ଦେ. ବାକ୍ୟ ( ଲକ୍ଷଣାର୍ଥ )—ସମୟ ଓ
Luhā jāṇi pāṇi debā ସୁବିଧା ଦେଖି କୌଣସି ବ୍ୟକ୍ତି ବା
ঝোঁপ বুঝে কোপ দেওযা କୌଣସି ବିଷୟ ପ୍ରତି ଉପଯୁକ୍ତ ପ୍ରୟୋଗ
लोहा देखकर पानी देना କରିବା; ଦେଶକାଳପାତ୍ର ବିବେଚନା
କରି କାର୍ଯ୍ୟ କରିବା; ଶିର ଦୃଷ୍ଟି ଚଢ଼ ଦେବା—
( figurative ) To strike the iron while
it is hot; to catch time by the forelock;
to make the best use of an opportunity.

ଲୁହାଣ(ଣି)—ଦେ. ବିଣ—୧ । ଲୁହାଁଣିଆ (ଦେଖ)—1. Luāṅṇiā
Luhāṇa(ṇi) ( See ) ୨ । ଲୁହା ପରି ଟାଣ—2. Hard
লোহাব মতন as iron. ୩ । ରକ୍ତ ଜର୍ଜରିତ—3. Bes-
लोहाना ( ଲୁହାଣିଆ—ଅନ୍ୟରୂପ ) meared with blood.

ଲୁହା ଦ(ଦେ)ହ—ଦେ. ବି—ଲୁହା ପରି ଟାଣ ଦେହ—A body as
Luhā di(de)ha hard as iron; iron constitu-
লোহাব শবীর लोहाका शरीर tion.
୨ । କଠୋର ବା କଷ୍ଟସହ ହୃଦୟ—2. Hard heart.
୩ । ଅତ୍ୟନ୍ତ ଧୈର୍ଯ୍ୟଶୀଳ ମନ—3. Very patient
mind.

ଲୁହା ଦେବା—ଦେ. କ୍ରି—ବଳଦ, ଗାଈ ଓ ଘୋଡ଼ାଙ୍କ ଦେହରେ
Luhā debā ତାତିଲା ଲୁହା ଦ୍ୱାରା ଦାଗ ଦେବା—
দাগা, লোহার দাগ দেওযা लोहासे दागना To singe
or mark the body of cattle and horse
with a searing iron.

ଲୁହା ପତର—ଦେ. ବି (ସଂ. ଲୌହପତ୍ର)-ଲୌହର ପତଳା ଖଣ୍ଡ—
Luhā patara Thin iron sheet.
লোহাব পাতা लोहाका पत्तर
[ଲୁହାପତ୍ର,ଲୁହା ପରଦ, ଲୁହା ପର୍ଦ୍ଦ—ଅନ୍ୟରୂପ]

ଲୁହା ପାତ—ଦେ. ବି—ଲୌହର ଖଣ୍ଡ ପତଳା ବା ସରୁ ପଟି—
Luhāpata Thin strip of iron.
লোহারপাত लोहाकापतलापत्तर
[ଲୁହାପାତମ ଲୁହାପାତିଆ—ଅନ୍ୟରୂପ]

**ଲୁହାଭସ୍ମ**—ଦେ. ବି (ସଂ. ଲୌହଭସ୍ମ)-ଲୌହଭସ୍ମ (ଔଷଧରେ ବ୍ୟବହୃତ)
Luhā bhasma ଆଧୁନିକ ବୈଜ୍ଞାନିକ ଉପାୟରେ ଅଥବା
ଲୋହାভস্ম लोहाभसम ଆୟୁର୍ବେଦୋକ୍ତ ବିଧିରେ ଭସ୍ମୀ
ଦ୍ୱାରା ଭସ୍ମୀକୃତ ଲୌହ—Iron oxide.

**ଲୁହାଭିଡ଼ା**—ଦେ. ବିଣ—ଲୌହବଳୟବେଷ୍ଟିତ—Girt with iron
Luhābhirdā rings. (ଦୃ—ଧଇଲେ ଟେକି କରେ
লোহাবান্ধান लोहाजडाहुआ ଗଦା ଲୁହାଭିଡ଼ା—କୃଷ୍ଣସିଂହ
ମହାଭାରତ ବନ ।]

**ଲୁହାର**—ପ୍ରାଦେ (ମେଦିନୀପୁର) ବି (ଭୁଲ ବ. ଲୋହାର)—କମାର—
Luhāra Black-smith.

**ଲୁହାର ବଡ଼ଚଣା ଖାଇବା**—ଦେ. କ୍ରି—[ଲକ୍ଷଣାର୍ଥ] ଶରୀରକୁ ଓ
Luhārabardachanākhāibā ହୃଦୟକୁ ଲୌହ ପରି
লোহারযেবাওয়া लोहाकाचनाचबाना କଠିନ, କଠୋର
ବା କଷ୍ଟସହ କରିବା—To make one's body
and mind callous against rough treatment or use. (ଯଥା—ଲୁହାର ବଡ଼ଚଣା
ଖାଇଲେ ଯାଇ ମଣିଷ ଏ ଘରର ଦାଉ ସମ୍ଭାଳି ନର୍ଦ୍ଧ
ହେବା)

**ଲୁହା ରୁଖ**—ଦେ. ବି—ଲୁହାଚୁନା ( ଦେଖ )
Luhā rukha Luhāchūnā (See)

**ଲୁହାରେ ପାଣି ଦେବା**—ଦେ. କ୍ରି—ଅଭିପ୍ରେତ କାର୍ଯ୍ୟପାଇଁ ସମ୍ଭାବକୁ
Luhāre pāṇi debā ଦୃଢ଼ ଓ କଷ୍ଟସହ କରିବା ଉଦ୍ଦେଶ୍ୟରେ
লোহাতে জলদেওয়া लोहामें पानी देना ଉତ୍ତପ୍ତ ଲୌହକୁ
ଜଳଦ୍ୱାରା କ୍ରମଶଃ ଥଣ୍ଡା କରିବା—To temper iron.
[ଦ୍ର—ଏହି 'ପାଣି ଦେବା'ର କୌଶଳ ସବୁ କାରିଗରମାନେ
ଜାଣନ୍ତି ନାହିଁ । ଏକପ୍ରକାର ଲୁହାରେ ଉଚିତ ଯନ୍ତ୍ର 'ପାଣି
ଦେବା'ର କୌଶଳ ବା ଭେଦ ଅନୁସାରେ କଷ୍ଟସହ ବା
ଭଙ୍ଗପ୍ରବଣ ହୁଏ । ଗରମ ହୋଇଥିବା ଲୁହାକୁ ହଠାତ୍
ପାଣିରେ ବୁଡ଼ାଇ ଦେଇ ଥଣ୍ଡା କରାଯାଏ, ଅଥବା କ୍ରମଶଃ
ଧୀରେ ଧୀରେ ଅଳ୍ପ ଅଳ୍ପ ଜଳ ଦେଇ ଥଣ୍ଡା କରାଯାଏ
ଅଥବା ବାୟୁ ଦ୍ୱାରା କ୍ରମଶଃ ଥଣ୍ଡା କରାଯାଏ । ଏହି ପ୍ରକ୍ରିୟାକୁ
'ପାଣିଦେବା' ବୋଲାଯାଏ ।]

**ଲୁହା ଶିକୁଳା(ଳି)**—ଦେ.ବି(ସଂ.ଲୌହଶୃଙ୍ଖଳ)—ଲୌହଶୃଙ୍ଖଳ—Iron
Luhā śikulā(li) chain. [ଦ୍ର—ଭିନ୍ନ ଭିନ୍ନ କାମ ପାଇଁ ଲୁହା
লোহারশিকল लोहाकीशिकली(री) ଶିକୁଳର କଡ଼ାମାନ ବଡ଼ ବା ସାନ ଏବଂ ମୋଟା ବା ସରୁ
କରାଯାଏ । ଜାହାଜମାନଙ୍କରେ ଲଙ୍ଗର ଶିକୁଳା
(ଚେନ୍) ମୋଟ, ବନ୍ଦୀମାନଙ୍କର ଓ ପଶୁମାନଙ୍କ ହାତରେ
ଗୋଡ଼ରେ ବନ୍ଧାଯିବା ଶିକୁଳା (ବେଡ଼ି) ତହୁଁ ମୋଟ, ଜମି
ମାପ କରିବା ପାଇଁ ବ୍ୟବହୃତ ଶିକୁଳା (ଚେନ୍) ତହୁଁ
ମୋଟ ଓ ଘର ଉପର ଅଦି ଝୁଲାଇବା ପାଇଁ ବ୍ୟବହୃତ
ଶିକୁଳା ସବୁଠାରୁ ମୋଟ କରି ଗଢ଼ାଯାଏ ।]

**ଲୁହି(ଇ)**—ପ୍ରାଦେ. (ଗଡ଼ଜାତ, ଖଡ଼ିଆଳ) ବି—ଲୋହି (ଦେଖ)
Luhi(i) Lohi. (See)

**ଲୁହୁକି**—ପ୍ରାଦେ (ସାକ୍ଷୀଗୋପାଳ) ବି—ଝଡ଼ ବରଷା ପାଗ—
Luhuki Windy and rainy weather.

**ଲୁହୁରା**—ପ୍ରାଦେ (ସମ୍ବଲପୁର ଓ ଗଡ଼ଜାତ, ଭୁଲ. ହି. ଲୋହରା) ବି—
Luhurā କମାର; ଲୋହାର—Black-smith.

**ଲୁହ୍ଲୁଆ ଫୁଲ**—ଦେ. ବି କଣିଆ ଶବ୍ଦ)—ରୁପା ବା ସୁନା ଅଳଙ୍କାରରେ
Luhluā phula ଲାଗିବା ଧାତୁ ନିର୍ମିତ ଫୁଲ ବିଶେଷ—Any
ଫୁଲ metal flower used as ornament when
ফুল set on another gold or silver
ornament.

**ଲୂ (ଧାତୁ)**—ସଂ—୧ । ଛେଦନ କରିବା; କାଟିବା—1. To cut.
Lū (root) ୨ । (ସୂତା) କାଟିବା—2. To spin (thread).
୩ । ବିନଷ୍ଟ କରିବା—3. To destroy; to annihilate. (Apte).

**ଲୂଆ**—ପ୍ରାଦେ (କଟକ ସହର ଭିତର, ବ୍ୟବହୃତ)ବିଣ—ନୂଆ;ନୂତନ—
Luā New.

**ଲୂତା**—ସଂ. ବି. ସ୍ତ୍ରୀ (ଲୂ ଧାତୁ+କର୍ତ୍ତୃ. ତ+ଆ)—୧ । ବୁଢ଼ିଆଣି;
Lūtā ମାକଡ଼ସା; ଊର୍ଣ୍ଣନାଭ—1. Spider. [ ଦ୍ର—କହି
ବସିଲେ, ହେବ ଏ ଲୂତା ସୂତା ପ୍ରାୟେ । ଗୋପକୃଷ୍ଣ. ରସ
କଲ୍ଲୋଳ ।] ୨ । ପିମ୍ପୁଡ଼ି (ହି. ଶ)—2. Ant. (Apte)
୩ । କ୍ଷତ; ମର୍ମବ୍ରଣ; ମନୁଷ୍ୟର ଦେହରେ ବୁଢ଼ିଆଣି
ମୁତିଲେ ଯେଉଁ ବ୍ରଣ ହୁଏ (ହି. ଶ)—3. Sores
appearing on the body due to a spider
urinating on one's body. [ ଦ୍ର—ବୈଦ୍ୟକ
ଗ୍ରନ୍ଥରେ ଲୂତା ରୋଗ କେତେ ପ୍ରକାରର ଉଲ୍ଲେଖ ଅଛି ଓ
କେତେ ପ୍ରକାରର ବିଷାକ୍ତ ମାକଡ଼ସାଙ୍କ ନାମ ମଧ୍ୟ ଅଛି,
ଯଥା—ତ୍ରିମଣ୍ଡଳା, ଶ୍ୱେତା, କପିଳା, ପୀତିକା ।
ମାକଡ଼ସାଙ୍କ ମୂତ୍ର, ଛେପ, ନଖ, ରଜ, ଶୁକ୍ର ଓ ପୁରୀଷଦ୍ୱାରା
ବିଷ ସଞ୍ଚାରିତ ହେବା ଲେଖାଅଛି ଲୂତାରୋଗ ମାଧବନିଦାନ—
ହି. ଶ ]

**ଲୂତା ଜାଲ**—ସଂ. ବି (ମ. ପ. ଲୋ)—ମାକଡ଼ସାର ଜାଲ—
Lūtājāla Cobweb.

**ଲୂତାଜାଲବତ୍ତ୍ୱକ୍**—ସଂ. ବି (ଆଧୁନିକ ଦେହ ବିଜ୍ଞାନ)—ଚକ୍ଷୁର ମଧ୍ୟସ୍ଥିତ
Lūtājālbattwak ମାକଡ଼ସାର ଜାଲପରି ପତଳା ଚମଡ଼ା
ବିଶେଷ—( anatomy ) One of the thin
tunics or membranes inside the eye;
Tunica Arachnoides.

**ଲୂତା ତନ୍ତୁ**—ସଂ. ବି (୬ଷ୍ଠୀ ତତ୍)—୧ । ମାକଡ଼ସାର ସୂତା—
Lūtā tantu 1. Spider's thread. ୨ ମାକଡ଼ସାର ଜାଲ—
2. Spider's web; cobweb.

**ଲୂତାତନ୍ତୁନ୍ୟାୟ**—ସଂ. ବି—ମାକଡ଼ସା ଯେଉଁପରି ନିଜ ଦେହରୁ ସୂତା
Lūtātantu nyāya ବାହାରି ନିଜ ଜାଲକୁ ପୁଣି ସଂହରଣ କରେ
ବା ଗିଳିଯାଏ ସେହିପରି ନ୍ୟାୟ (ଏ ବ୍ରହ୍ମାଣ୍ଡକୁ ଈଶ୍ୱର ନିଜ
ଦେହରୁ ଉତ୍ପାଦନ କରନ୍ତି ପୁଣି ପ୍ରଳୟକାଳରେ ଏ ସୃଷ୍ଟିକୁ
ଅପଣାର ଗର୍ଭରେ ପ୍ରବିଷ୍ଟ ବା ବିନାଶ କରନ୍ତି ଏହି ପ୍ରକ୍ରିୟାକୁ
ହିନ୍ଦୁ ଶାସ୍ତ୍ରକାରମାନେ 'ଲୂତାତନ୍ତୁ' ନ୍ୟାୟ ତୁଳନା କରି
ଅଛନ୍ତି)—An analogy of God's creating

the world and dissolving it like the spider weaving the cobweb out of its body and again drawing it in or destroying it.

ଦେ. ବି—ମାକଡ଼ସା ଜାଲ ବୁଣି ମାଛି ମଶା ପୋକଆଦି ଜୀବଙ୍କୁ ଅପେକ୍ଷା କରି ଛକିକରି ରହିଥାଏ ଓ ସେ ଜାଲରେ ମାଛିଆଦି ଆସି ଅଟକି ଗଲେ ସେ ଭୂଲି ଜାଲରେ ଛନ୍ଦଣି ମନ୍ଦଣି ହୋଇଯାଏ ଓ ସେ ଜାଲରୁ ମୁକୁଳିବାକୁ ଯେତିକି ଛଟପଟ ହେଉଥାଏ ତା ଦେହରେ ଜାଲ ସେତିକି ଦୃଢ଼ ହୋଇ ଗୁଡ଼ାଇ ହୋଇ ଯାଉଥାଏ ଓ ଶେଷରେ ସେ ମାଛିଟି ବୁଡ଼ିଅଣି ଜାଲ ଘରରେ ବାନ୍ଧି ହୋଇ ମାକଡ଼ସାର ଆହାରରେ ପରିଣତ ହୁଏ,ସେହିପରି ନ୍ୟାୟ—Like a fly involved in a spider's web.

ଲୂତାତନ୍ତୁ ବିତାନ—ସ. ବି—ଶୂନ୍ୟ ବା ଛାତ ଆକାରରେ ବିସ୍ତୃତ Lūtātantu bitāna ମାକଡ଼ସାର ଜାଲ—A sheet of spider's web.

ଲୂତା ମର୍କଟକ—ସ. ବି—୧ । ଯାଉମାକଡ଼—1. Ape ( Apte ). Lūtā markaṭaka ୨ । ଏକ ଜାତି ମଲ୍ଲୀଫୁଲ—2. A kind of jasmine ( Apte ).

ଲୂତିକା—ସ. ବି. ସ୍ତ୍ରୀ ( ଲୂତା+କ+ସ୍ତ୍ରୀ. ଅ )—ସାନ ଲୂତା; ଛୋଟ Lūtikā ମାକଡ଼ସା—Small spider.

ଲୂନ—ସ. ବିଣ ( ଲୂ ଧାତୁ+କର୍ମ ତ )—୧ । ଛିନ୍ନ; କର୍ତ୍ତିତ—1. Lūna Cut; torn; plucked. ୨ । ଅଗ କଟାଯାଇ ଥିବା; କତୁରା ହୋଇଥିବା—2. Lopped; cropped up ( Apte ). ୩ । ଆହତ—3. Wounded ( Apte )

ଲୂନକ—ସ. ବିଣ ( ଲୂନ+କ )—କର୍ତ୍ତିତ; ଛେଦିତ—Cut off. Lūnaka ସ. ବି—୧ । ପଶୁ; ଚତୁଷ୍ପଦ ଜନ୍ତୁ—1. Beast; quadruped. ୨ । ଅମ୍ଳଲୋଣୀ ଶାକ ( ହୃ. ଶ· )—2 A kind of acid and saline pot herb. ୩ । ଛେଦ; କ୍ଷତ—3. A cut; a wound (Apte). ୪ । ଜୀବ—4. An animal ( Apte )

ଲୂନକ ଶିଖ—ସଂ. ବିଣ. ପୁଂ ( ଲୂନ ହୋଇଅଛି ଶିଖା ଯାହାର; Lūnaka śikha ବହୁବ୍ରୀହି )—ଯାହାର ମୁଣ୍ଡର ଶିଖା ବା (ଲୂନଶିଖ—ଅନ୍ୟରୂପ) ଚୁଟି କଟା ହୋଇଅଛି; ଲଣ୍ଡା—One (ଲୂନକଶିଖା—ସ୍ତ୍ରୀ) the long hair of whose head has been cut or cropped.

ଲୂନ ପକ୍ଷ—ସଂ. ବିଣ. ପୁଂ ( ବହୁବ୍ରୀହି )—ଯେଉଁ ଚଢ଼େଇର ଡେଣା Lūna paksha କଟା ହୋଇଅଛି—(a bird) Whose (ଲୂନପକ୍ଷା—ସ୍ତ୍ରୀ) wings have been cut off.

ଲୂନଶାଖ—ସଂ. ବିଣ (ଲୂନ+ଶାଖା; ବହୁବ୍ରୀହି)—ଯେଉଁ ବୃକ୍ଷର ଅଗ Lūna śākha ଡାଳମାନ କଟା ହୋଇଅଛି—Having the branches ( of a tree ) lopped off.

ଲୂନି—ସଂ. ବି ( ଲୂ ଧାତୁ+ଭାବ. ନି )—କର୍ତ୍ତନ; ଛେଦନ—Lūni Cutting off.

ଲୂମ—ସଂ. ବି ( ଲୂ ଧାତୁ=ଛେଦନ କରିବା+କର୍ମ. ମ )—Lūma ଲାଙ୍ଗୁଡ଼; ପୁଚ୍ଛ—Tail of an animal.

ଲୂମ ବିଷ—ସଂ. ବିଣ ( ବହୁବ୍ରୀହି; ଲୂମରେ ଅଛି ବିଷ ଯାହାର ) Lūma bisha —ଯେଉଁ ଜୀବ ( ଯଥା—ମାକଡ଼ସା, କଙ୍କଡ଼ାବିଛା, ତେନ୍ତୁଳିଆ ବିଛାଆଦି)ଙ୍କର ଲାଙ୍ଗୁଡ଼ରେ ବିଷ ଅଛି—(animal) Having poison in the tail ସଂ. ବି—ମାକଡ଼ସା, କଙ୍କଡ଼ାବିଛା ଓ ତେନ୍ତୁଳିଆ ବିଛାଆଦି ବିଷ-ଲାଙ୍ଗୁଡ଼ିଆ ଜନ୍ତୁ—Scorpion, centepede and spider (carrying poisoned stings in the tail ).

ଲେ—ଦେ. ବିଣ. ( କଚେରୀ ପ୍ରୟୋଗ, ସାଙ୍କେତିକ )—( ଲେଖିତଂ Le ର ସାଙ୍କେତିକ; ଲେଖିତଂ ଅମୁକ ବା ଲେଖକ ଅମୁକ ଲି ଅର୍ଥରେ ବ୍ୟବହୃତ ଲେଖିତଂ ଶବ୍ଦର ସାଙ୍କେତିକ)— ଲି ( ଅମୁକ )ଙ୍କ ଦ୍ୱାରା ଲିଖିତ—An abbreviation corresponding to 'w' or 'written by' (so and so ). ଦେ. ଅ—୧ । ବିସ୍ମୟ ଓ ଆନନ୍ଦ ଲେ ! ଲେ ! ପ୍ରକାଶାର୍ଥକ ଅବ୍ୟୟ—1. Interjection expres- ଲବେ sing gladness and wonder ୨ । କୁକୁରକୁ ଲେନ ଶିକାରର ପଛରେ ଲଗାଇବା ପାଇଁ ସମ୍ବୋଧନ; ଲିଏ !— ଛେ 2. An interjection or halloo used to set dogs on a game. ୩ । ( ବ୍ୟାକରଣ ) ଦେ. କି—ଅତୀତକାଳରେ ଅନ୍ୟ ପୁରୁଷ, ସମ୍ମାନାର୍ଥକ ଏକବଚନ ( ସେ ) ଓ ବହୁବଚନ ( ସେମାନେ ) ଓ ମଧ୍ୟମ ପୁରୁଷ ସମ୍ମାନାର୍ଥକ ଏକବଚନ ( ଆପଣ ) ଓ ବହୁବଚନ ( ଆପଣମାନେ ) ସଙ୍ଗେ କ୍ରିୟାରେ ଯୁକ୍ତ ଅକ୍ଷର, ଯଥା—ସେ ଗଲେ, ଆପଣମାନେ ଆସିଲେ )—Inflection used in the past tense third person singular and plural and 2nd person singular and plural ପ୍ରାଦେ ( କଟକ ସହର ) ଅ—୧ । (କଟକ ସହରଆଙ୍କର ନ ସ୍ଥାନରେ ଲ ଉଚ୍ଚାରଣ) ହର୍ଷ ଓ ଉତ୍ସାହାର୍ଥକ ଅବ୍ୟୟ—( Cuttack slang) An inlerjection used in slang by Cuttack townspeople expressing gladness and buoyancy of spirits. [ ଉ—ଲେଲେ ମଜା !'] ୨ । କ୍ର ନେବାକ୍ରିୟାର ଅନାଦରସୂଚକ ଅନୁଜ୍ଞା ଏକବଚନ ( ତୁ ) ନେ; ଗ୍ରହଣ କର—2. ( you ) Do take.

ଲେ ଆଣ—ପ୍ରାଦେ. ( କଟକ ସହର ) ବି—ନେ ଆଣ ( ଦେଖ ) Le āṇa Ne āṇa ( See)

ଲେଇ—ଦେ. ବି ( ସ. ଲେହ )—୧ । ଲିଆଇ; ଲେହ; ଚୁଡ଼ା, ଅଟା, Lei , ମଇଦା ଖଇ ଆଦି ସିଝା ଯାଇ ବା ଚକଟା ହୋଇ ପ୍ରସ୍ତୁତ ଲେଇ ଲେ ହେବା ମଣ୍ଡ ବା ଅଠା—1. Gum-paste prepared

ନେଈ from boiled flour. ୨ । ( ସଂ. ନାଭ ବା ନେମ ) ନेहाई କମାରମାନେ ଯେଉଁ ଲୌହପିଣ୍ଡ ଉପରେ ଲୁହା ଖଣ୍ଡକୁ ରଖି ହାତୁଡ଼ିରେ ପିଟନ୍ତି — 2. Anvil.

ଲେଇ ଅଣିବା—ପ୍ରାଦେ. (କଟକ ସହର) କ୍ରି—ନେଇ ଆଣିବା (ଦେଖ)
Lei āṇibā Nei āṇibā ( See )

ଲେଇ ଅସିବା—ପ୍ରାଦେ. (କଟକ ସହର) କ୍ରି—ନେଇ ଆସିବା (ଦେଖ)
Lei āsibā Nei āsibā See )

ଲେଉଆ—ଦେ. ବି—ନେଉଆ ( ଦେଖ )
Leuā Neuā ( See )

ଲେଉଆର୍—ବୈଦେ. ବି ( ଫା. ନେୱାର୍ )—ଖଟିଆ ଓ ମଶୁଆରିରେ Leuār ଲଗାଯିବା ଚଉଡ଼ା ଫିତା—Tapes for bedsteads नेओयार नेवार and mosquito nets; cotton-tape. [ ଲେୱା(ବା)ର୍—ଅନ୍ୟରୂପ ]

ଲେଉଟ—ଦେ. ବି ଓ ବିଣ ( ସଂ. ନିବର୍ତ୍ତନ )—ନେଉଟ ( ଦେଖ )—
Leuṭa Neuṭa ( See ) [ ଉ—ଉଠନ୍ତ ଲେଉଟ ଭାଷ, ରସିକା କର ପ୍ରକାଶ, ରସିକେ ବସ୍ତ୍ର ଦେଇ ଲେଖା ଶୁର ଟେପର୍ଣ୍ଣି ଗୋବନ୍ଦ ପାଶ—ଅଭିମନ୍ୟୁ ସାମନ୍ତସିଂହାର ବିଦଗ୍ଧଚିନ୍ତାମଣି । ]

ଲେଉଟ ଉତ(ତ୍ତ)ର—ଦେ. ବି—୧ । ପ୍ରତ୍ୟୁତ୍ତର; କୌଣସି ବ୍ୟକ୍ତି ନିକଟକୁ Leuṭa uta(tta)ra ପ୍ରେରିତ ସମ୍ବାଦର ବା ପ୍ରଶ୍ନର ସେ ଯେଉଁ ଉତ୍ତର पालटा जवाब ଦିଏ—1. A reply in return; a rejoinder. लौटता उत्तर ୨ । ପ୍ରତିଧ୍ୱନି—2. Echo.

ଲେଉଟ ଉପାୟ—ଦେ. ବି—ପ୍ରତିପ୍ରୟୋଗ; ପ୍ରୟୋଗ କରାଯାଇଥିବା Leuṭa upāya କୌଣସି ମନ୍ତ୍ରାଦିର ବା ଔଷଧାଦିର ଫଳର উলটো উপায় ପ୍ରତିଷେଧକ ଉପାୟ; ଉତ୍ତର—Means employ- लौटता उपाय ed to counteract the effect of mystic applications or applied medicines.

ଲେଉଟ କରିବା—ଦେ. କ୍ରି—କୌଣସି ବ୍ୟକ୍ତି ପ୍ରତି ପ୍ରୟୋଗ କରା- Leuṭa karibā ଯାଇଥିବା ମନ୍ତ୍ର କିମ୍ବା ଔଷଧର ଫଳକୁ ନିବାରଣ উলটো উপায় করা ବା ପ୍ରଶମନ କରିବା ପାଇଁ ପ୍ରତିଷେଧକ उलटा करना ଉପାୟ ପ୍ରୟୋଗ କରିବା — To employ counteracting means against the effects of a medicine or a mystic application.

ଲେଉଟ ଖବର—ଦେ. ବି—ଫେରନ୍ତା ଖବର; ପ୍ରତ୍ୟୁତ୍ତର, ପ୍ରେରିତ Leuṭa khabara ସମ୍ବାଦର ଉତ୍ତରରୂପେ ମିଳିବା ସମ୍ବାଦ— ফেরতা খবর Return news; a news which लौटती खबर is received in reply to the news sent.

ଲେଉଟ ଚକୁଳି—ଦେ. ବି—ଏକପ୍ରକାର ମୋଟ ଚକୁଳି ( ଯାହାର Leuṭa chakuḷi ଦୁଇଟି ପାଖକୁ ନିଆଁ ଉପରେ ପାଳିମରେ মোটা চাকলী পিঠা ଲେଉଟା ଯାଇଥାଏ )—A kind of औलटी चपाती, thick pastry cake, both faces of which have been turned over the fire. [ ଦ୍ର—ସାଧାରଣତଃ ଚକୁଳିମାନ ଖୁବ୍ ପତଳା ଥିବାରୁ ଏହାକୁ ନିଆଁ ଉପରେ ଲେଉଟାଇବାକୁ ହୁଏ ନାହିଁ, ଅର୍ଥାତ୍ ନିଆଁରେ ବସିଥିବା କଟେଇରେ ବା ପାଳିମରେ ପିଠଉକୁ ପତଳା କରି ଢାଳି ଦେଇ ଖାଉ କିଛିକ୍ଷଣ ପରେ ତାହାକୁ ଉଠାଇ ଆଣିବାକୁ ହୁଏ । ଏପରି ପତଳା ଚକୁଳିକୁ 'ସରୁ ଚକୁଳି' ବୋଲାଯାଏ । କିନ୍ତୁ ପିଠଉକୁ ବହଳିଆ କରି ଢାଳି ସେହି ମୋଟ ଚକୁଳିକୁ ନ ଲେଉଟାଇଲେ ତାହା ଉତ୍ତମରୂପେ ସିଝି ପାରେ ନାହିଁ । ଏଥିପାଇଁ ତାହାର ତଳପାଖକୁ ପାଳିମରେ ଲୁହାଖଣ୍ଡିକର ସାହାଯ୍ୟରେ ଲେଉଟାଇ ଦେବାକୁ ହୁଏ; ତାହାହେଲେ ଚକୁଳିଟି ଉତ୍ତମରୂପେ ସିଝିଯାଏ । ଏଥିପାଇଁ ଏହାକୁ ଲେଉଟ ଚକୁଳି ବୋଲାଯାଏ । ପରିବାରର କୌଣସି ବ୍ୟକ୍ତି ବିଦେଶକୁ ଯାତ୍ରା କରିବା ପୂର୍ବରୁ ତାଙ୍କ ମାଆ, ଭଉଣୀ ବା ସ୍ତ୍ରୀ ଉକ୍ତ ବ୍ୟକ୍ତିଙ୍କୁ ଲେଉଟ ଚକୁଳି ଖାଇବାକୁ ଦିଅନ୍ତି । ଏଥିର ଉଦ୍ଦେଶ୍ୟ ଓ ଆଶା ଏହି ଯେ, ବିଦେଶକୁ ଯାତ୍ରା କରୁଥିବା ବ୍ୟକ୍ତି ବିଦେଶରେ ବେଶି ଦିନ ନ ରହି ଶୀଘ୍ର ଘରକୁ ଲେଉଟି ଆସିବ । ]

ଲେଉଟ ଜନ୍ମ—ଦେ. ବି—୧ । ପୁନର୍ଜନ୍ମ; ମୃତ୍ୟୁ ପରେ ଆଉ ଥରେ Leuṭa janma ଜନ୍ମିବା—1. Rebirth; birth after पुनर्जन्म दुसरा जनम death. ୨ । ପୁନରବତାର— 2. Reincarnation. [ ଉ—ସେ ଅବତାର ଅନ୍ତେ ଯିବେ ବୈକୁଣ୍ଠପୁର, ଲେଉଟ ଜନ୍ମ ଶୁଣ କହିବା ପ୍ରଭୁଙ୍କର— ପୀତାମ୍ବର. ନୃସିଂହପୁରାଣ । ]

ଲେଉଟ ଜବାବ—ଦେ. ବି—୧ । ଲେଉଟ ଉତର ( ଦେଖ )— Leuṭa jabāba 1. Leuṭa utara ( See ) ୨ । ଶିଶୁ मुखे मुखे जवाब ବା ଭୃତ୍ୟ, ଗୁରୁଜନ ବା ପ୍ରଭୁଙ୍କର ଶାସନ लौटता जवाब ବାକ୍ୟ ଉତ୍ତରରେ ଯେଉଁ ଅବାଧ୍ୟତାସୂଚକ ଉତ୍ତର ଦିଅନ୍ତି—2. Insubordinate reply given to one's elder's or master's words of advice or rebuke.

ଲେଉଟ ଜର—ଦେ. ବି—୧ । ଛାଡ଼ି ଯାଇଥିବା ଜ୍ୱରର ପୁନରାକ୍ରମଣ— Leuṭa jara 1. A relapse of fever. ୨ । ବିରାମ পালটা জর ଜ୍ୱର—2. Remittent fever; inter- दोहरौआ जर mittent fever.

ଲେଉଟ ଡାକ—ଦେ. ବି—୧ । ପ୍ରେରିତ ଚିଠି ପାଇବା ପରେ ଉକ୍ତ Leuṭ ḍāka ଚିଠିର ଉତ୍ତର ପଠାଇବା ପାଇଁ ପରବର୍ତ୍ତୀ ଡାକ ফেরতা ডাক ବା ପୋଷ୍ଟ—1. Return of post; retur- लौटती डाक ning post. ୨ । ପ୍ରତିଧ୍ୱନି —2. Echo. ୩ । ଦୂରରେ ଥିବା କୌଣସି ବ୍ୟକ୍ତିଙ୍କୁ ବଡ଼ ପାଟି କରି ଡାକିଲେ, ସେ ଉକ୍ତ ଡାକ ଶୁଣିବାର ନିଦର୍ଶନରୂପେ ସେ ଯେଉଁ ଡାକ ଦିଅନ୍ତି— 3. A loud sound made by a

distant person in response to a loud call made to him.

ଲେଉଟଣ—ଦେ. ବି—ଲେଉଟିବା କର୍ମ—The act of turning
Leuṭaṇa up or returning.

ଲେଉଟ ପଡ଼ିବା—ଦେ. କ୍ରି—କୌଣସି ସ୍ଥାନକୁ ଯାଇ ସେଠାରୁ
Leuṭa paṛibā ଫେରିବା—To return from a place;
ফিবেআসা **लौट पड़ना** to make a return journey.

ଲେଉଟ ପାଉଟ—ଦେ. ବି ( ଉଦର୍ଥକ ଧ୍ୱନ୍ୟନୁକାରୀ ଦ୍ୱିରୁକ୍ତ ପଦ ) 
Leuṭa pāuṭa —୧ । ଓଲଟ ପାଲଟ; ଉଭୟରୂପେ ଏପାଖ
ওলট পালট ସେପାଖ ଲେଉଟିବା —1. Thorough turning
**लौट पौट** up of both sides. ୨ । ଇତସ୍ତତଃ ଯିବା-
ଆସିବା; ନବର ପଦର—2. Repeated coming and going along a place. ବିଣ—୧ । ବିପର୍ଯ୍ୟସ୍ତ—1. Turned topsy turvy; thoroughly overhauled. ୨ । ଅଣୁଆ ଚଣୁଆ—2. Disorderd; tangled.

ଲେଉଟ ପାଣି—ଦେ. ବି—ସ୍ରୋତଦ୍ୱାରା କୌଣସି ସ୍ଥାନରେ ପହଞ୍ଚି
Leuṭa pāṇi ସେଠାରୁ ଫେରି ଆସିବା ନଦୀର ବଢ଼ି ପାଣି;
ফেবতা জল ପଛୁଆଣି ପାଣି—Backwater which
**लौटता पानी** turns back on meeting an obstruction.

ଲେଉଟ ବଚନ—ଦେ. ବି (ସଂ. ନିବର୍ତ୍ତିତ ବଚନ)—୧ । ପ୍ରତ୍ୟୁତ୍ତର—
Leuṭa bachana 1. Reply; answer. ୨ । ମୌଖିକ
**लौटता वचन** পালটাবচন ଉତ୍ତର—2. Oral reply.
( ଲେଉଟ ବାଚନ୍ଧ, ଲେଉଟ ଭାଷ—ଅନ୍ୟରୂପ )

ଲେଉଟ ବେଭାର—ଦେ. ବି—ଉତ୍ସବାଦି ଉପଲକ୍ଷରେ ପ୍ରେରିତ ବେଭାରର
Leuṭa bebhāra ପ୍ରତିବଦଳରେ ପଠାଯିବା ବେଭାର—
তত্ত্বের বদল তত্ত্ব Return gift; the gift sent in return
**विदाई** for a gift presented to or received by a relative on ceremonial or festive occasions. [ ଦ୍ର—ଅନେ ସମାଜରେ 'ଲେଉଟ ବେଭାର' ଗୋଟିଏ ବଡ଼ ପ୍ରଥା । କୌଣସି ବ୍ୟକ୍ତିଙ୍କର ପରିବାରରେ ବିବାହ, ବ୍ରତ ଆଦି ଉତ୍ସବ ହେଲେ ଉକ୍ତ ଉତ୍ସବରେ ଯୋଗ ଦେବା ପାଇଁ ସେ ବନ୍ଧୁମାନଙ୍କୁ ନିମନ୍ତ୍ରଣ କରନ୍ତି । ଉକ୍ତ ନିମନ୍ତ୍ରଣ ପାଇ ନିମନ୍ତ୍ରିତ ବନ୍ଧୁ ଉକ୍ତ ବ୍ୟକ୍ତିଙ୍କ ଠାକୁ ଏହି ଉପଲକ୍ଷରେ ନଗଦ ଟଙ୍କା ବା ଲୁଗାପଟା ବେଭାର ପଠାନ୍ତି ଓ ନିଜେ ମଧ୍ୟ ଆସି ଉପସ୍ଥିତ ହୁଅନ୍ତି । ଉକ୍ତ ବେଭାରକୁ ଦେବାବାଲା ନିଜେ ନିମନ୍ତ୍ରଣକାରୀଙ୍କୁ ନ ଦେଇ ନିଜର ଭଣ୍ଡାର ବା ଦ୍ରବ୍ୟ ଗୃହରେ ଦାଖଲ କରନ୍ତି । ଉତ୍ସବ ସମାପ୍ତ ହେଲାରୁ ଉତ୍ସବ କର୍ତ୍ତାଙ୍କୁ ନିମ୍ନଲିଖିତ ଲେଉଟ ଦେଇ ଦେବାକୁ ହୁଏ ୧ । ବେଭାର ଆଣିଥିବା ବ୍ୟକ୍ତିଙ୍କୁ ବିଦାୟ, ୨ । ଲେଉଟ ବେଭାର, ( ଏ ଦୁଇ ବିଷୟ ବେଭାରର ପରିମାଣ ଅନୁସାରେ ସ୍ଥିରୀକୃତ ହୁଏ । ) ୩ । ନିମନ୍ତ୍ରିତ ଓ ସମାଗତ ବନ୍ଧୁ ଙ୍କ ମର୍ଯ୍ୟାଦା (ବସ୍ତ୍ର), ୪ । ଉକ୍ତ ବ୍ୟକ୍ତିଙ୍କୁ ବାଟ ଖରଚ, ଓ ୫ । ଉକ୍ତ ବ୍ୟକ୍ତିଙ୍କୁ କିଛି ନଗଦ ବିଦାୟ ।
ଫଳତଃ ଏ ବେଭାର ପ୍ରଥାଦ୍ୱାରା ଉତ୍ସବକର୍ତ୍ତାଙ୍କୁ ଉତ୍ସବର ବ୍ୟୟ ଚଳାଇବା ପାଇଁ ବନ୍ଧୁମାନଙ୍କଠାରୁ 'ସାହାଯ୍ୟ' ନ ମିଳି ଏହି ଉପଲକ୍ଷରେ ତାଙ୍କୁ ଗୁରୁତର ଋଣ ଦେବାକୁ ହୁଏ । ]

ଲେଉଟ ମଣି(ଣି, ନି)ଷ—ଦେ. ବି ( ସଂ. ନିବୃତ୍ତ ମନୁଷ୍ୟ )—ପ୍ରେରିତ
Leuṭa maṇa(ṇi,ni)sha ପତ୍ର ବା ସମ୍ବାଦ ଅଣପ୍ରେରିତ ବ୍ୟକ୍ତିଙ୍କ
ফিবতা লোক ନିକଟରେ ପହଞ୍ଚିବା ପରେ ସେଠାରୁ ଫେରି
**लौटता आदमी** ଲୋକ ଲେଉଟି ଆସେ—A man returning from a place after delivering the letter or news sent through him.
ଲେଉଟ ମନୁଷ୍ୟ, ଲେଉଟ ଲୋକ } ଅନ୍ୟରୂପ

ଲେଉଟା—ଦେ. ବି. ( ସଂ. ନିବର୍ତ୍ତନ )—ନିବର୍ତ୍ତନ; ପ୍ରତ୍ୟାବର୍ତ୍ତନ—
Leuṭā Returning; coming back. [ ଉ—ସହାର
ফিবা **लौटा हुआ** ନେଲା ତା କି ଉଠାରେ ଖେଳା-ଖଞ୍ଜିନ ଲେଉଟା ଆଣି—ଗ୍ରଧାନାଥ. ଯଯାତି । ]

ଲେଉଟା(ଟେ)ଇବା—ଦେ. କ୍ରି (ସଂ. ନିବର୍ତ୍ତନ)—୧ । ନେଉଟାଇବା
Leuṭā(ṭe)ibā (ଦେଖ)—1. Neuṭāibā. (See) [ଉ—
উলটান ଲେଉଟାଇ ଦୃଷ୍ଟାକୁ ସେ ମାଡ଼ଣ ବସିଲା । ରାଧାନାଥ;
**उलटाना** ବେଣୀସଂହାର ।] ୨ । (ଗାଈ) ସଙ୍ଗମ ପରେ ଗର୍ଭଧାରଣ ନ କରିବା—2, (a cow) Not to conceive after intercourse with a bull.

ଲେଉଟା ଜର—ଦେ. ବି—ଲେଉଟ ଜର (ଦେଖ)
Leuṭā jara Leuṭa jara. (See)

ଲେଉଟାଣି—ଦେ. ବି (ସଂ. ନିବର୍ତ୍ତନ)—ଲେଉଟାଇବା କ୍ରିୟା—Act
Leuṭāṇa of reversing.
উলটান **फैराना**

ଲେଉଟାଣି—ଦେ. ବି (ସଂ. ନିବର୍ତ୍ତନ)—୧ । କୌଣସି ସ୍ଥାନରୁ
Leuṭāṇi ଲେଉଟି ଘର ଆସିବା; ଯାଇଥିବା ସ୍ଥାନରୁ ଫେରି
ফেবতী ଆସିବା—1. Coming back from a place.
**लौटानी** ୨ । କୌଣସି ସ୍ଥାନରୁ ଫେରିବା ବେଳର ଭ୍ରମଣ ବା ଯାତ୍ରା—2. Return trip; return journey. କ୍ରି. ବିଣ—୧ । କୌଣସି ସ୍ଥାନରୁ ଫେରିବା ସମୟରେ—1. While returning. ୨ । ଲେଉଟି ଆସିବା-ବେଳେ—2. In the course of the return trip. (ଯଥା—ବାବା ! କଟକ ଲେଉଟାଣି ମୋ ପାଇଁ ହଳେ ଯୋଡ଼ା ଆଣିବା )

ଲେଉଟି—ଦେ. କ୍ରି. ବିଣ—୧ । ଆଉ ଥରେ—1 Once again.
Leuṭi ୨ । ପୁଣି; ପୁନରପି—2. Again. ୩ । ପ୍ରତ୍ୟୁତରେ—
অবাব **फिर** 3. On the other hand.

ଲେଉଟିଅ—ଦେ. ବି—୧ । (ସଂ. ଲ୍ୟୁଷକ] ଏକପ୍ରକାର ଶାଗ; ବଡ଼ଦ
Leuṭiā (ଦ୍ରବ୍ୟଗୁଣ—ଦ୍ରବ୍ୟଗୁଣ)—1. A pot-herb A-
ସଂ. ତଣ୍ଡୁଲୀୟ, ମେଘନାଦ, maranthus Polyga-
ଲ୍ୟୁଷକ, ଭାଣ୍ଡୀର, ତଣ୍ଡୁଲେରକ, mus; Hermaphrodite

ଉଣ୍ଡୀର, ତଣ୍ଡୁଲୀଶାକ, ବିଷଘ୍ନ, ଅଳ୍ପମାରିଷ । ନଟେଶାକ, চাঁপানটিয়া चौलाई; चबाडाई ମ. ଭାଂଦୁଲକା ତେ. ମୋଲାକୁର ତା. ମଲ୍ଲୁକ୍କିରଇ ଗୁ. ତାଂଜଲଜୋ ଫ୍ରା. ସୁପେଦ୍‌ମର୍ଜ ଅ. ବୁକଲେୟୂମାମାଯୂ — Amarant; Amaranthus Tenifolius. [ ଦ୍ର—ଏହା ମାରିଷାଦି (ଖଡ଼ା) ବର୍ଗର ବର୍ଷାୟୁଃଶାକ । ଏହା ଖଡ଼ାଗଛଠାରୁ ଛୋଟ, ଏକପ୍ରକାର ବନ୍ୟ ଲେଉଟିଆ ଗୁଳ୍ମରେ କଣ୍ଟା ଥାଏ (କଣ୍ଟା ଲେଉଟିଆ); ଆଉ ଏକ ପ୍ରକାର ଛୋଟ ଅକଣ୍ଟକୀ ଗୁଳ୍ମ ମଳକୁ ଉଠେ (କାଣୀଲେଉଟିଆ)। ବୈଦ୍ୟକମତରେ ଏହା ହାଲୁକା, ଶୀତଳ, ରୁକ୍ଷ, ପିତ୍ତକଫନାଶକ, ମଳମୂତ୍ରନିଃସାରକ, ବିଷନାଶକ ଓ ପାଚକ ଅଟେ ।

କାଣୀଲେଉଟିଆ, କଣ୍ଟାଲେଉଟିଆ, ବାଡ଼ୁଲେଉଟିଆ, ବଣଲେଉଟିଆ; ନାନାପ୍ରକାର ଲେଉଟିଆ ଶାଗ ଅଛି ।]

୨ । କ୍ରିୟା [ ଲେଉଟି ଆସିବା କ୍ରିୟାର ଅନୁଜ୍ଞା ଅନାଦରାର୍ଥକ ଏକବଚନରେ (ତୁ-କର୍ତ୍ତା ସଙ୍ଗେ) ବ୍ୟବହୃତ ଆକାର] (ତୁ) ଫେରିଆ—2. (verb; you) Do come back. ফিরেআই लौटआओ

**ଲେଉଟି ଆସିବା**—ଦେ. କ୍ରି—୧ । କୌଣସି ସ୍ଥାନରୁ ଫେରି ଆସିବା; ପ୍ରତ୍ୟାବୃତ୍ତ ହେବା—1. To come back from a place; to return. ୨ । ପୁନର୍ବାର ପୂର୍ବାବସ୍ଥା ପ୍ରାପ୍ତ ହେବା—2. To revert to the former condition. Leuṭi āsibā ফিরেআসা लौटआना (ଲେଉଟାଣି ଆସିବା—ଅନ୍ୟରୂପ)

[ଦ୍ର—ହଜିଗଲା ଧନ, ହଜିଗଲା ମନ ଲେଉଟି ଆସେ କି ଆଉ ? ଇଗ] ୩ । ପୁନଃପ୍ରାପ୍ତ ହେବା—3. To be got back; to be recovered.

**ଲେଉଟି ଦାସେ ଘୋଡ଼ା ଚଢ଼ିବା**—ଓଲଟ ଦାସେ ଘୋଡ଼ା ଚଢ଼ିବା (ଦେଖ)—Olaṭi dāse ghorḍā chardhibā. (See) Leuṭi dāse ghorḍā chardhibā উলটোদিগে ঘোড়াচড়া ओलटकरचढना; उलटे चोर, कोतवालको डाँटे

**ଲେଉଟି ପଡ଼ିବା**—ଦେ. କ୍ରି—୧ । ଫେରି ଆସିବା—1. To come back. ୨ । ଉଚ୍ଚ ସ୍ଥାନରୁ ଚାଲିଲୁ କମ୍ପା ଝୁଣ୍ଟି କରି ଚିତପଟାଙ୍ଗ ହୋଇ ପଡ଼ିଯିବା—2. To suddenly fall down on the ground by stumbling. ୩ । ବିପର୍ଯ୍ୟସ୍ତ ହେବା—3. To be upturned or reversed. Leuṭi pardibā ফিরেপড়া लौटपडना

**ଲେଉଟିବା**—ଦେ. କ୍ରି (ସଂ. ନିବର୍ତ୍ତନ)—୧ । ଓଲଟିବା; ବିପର୍ଯ୍ୟସ୍ତ ହେବା—1. To be upturned. ୨ । ବାହୁଡ଼ିବା; କୌଣସି ସ୍ଥାନରୁ ଫେରିବା ବା ପ୍ରତ୍ୟାବର୍ତ୍ତନ କରିବା—2. To come back; to return. [ଦ୍ର—ଶ୍ରୀମଙ୍କର ବଚନେ ପୁରେ ଲେଉଟିଲ—ବୃନ୍ଦାବନ ମହାଭାରତ ସଭା । ] ୩ । ଶରୀରର ଅବସ୍ଥାନକୁ ପରିବର୍ତ୍ତନ କରିବା; କଡ଼ Leuṭibā ফিরা लौटना, उलटना

ଲେଉଟାଇବା—3. To change one's position or sides. (ଦ୍ର—ଶଯ୍ୟରେ ଲେଉଟୁ ନାହିଁ ବିଚ୍ଛେଦ ଅଶେଷ—ପ୍ରାଚୀ ଶିଶୁଣକର ତୃଷାଅଭିଳାଷ ।) ୪ । ମନଷ୍ୟ ଯେଉଁ ଦିଗକୁ ମୁହଁ କରି ଯାଉ ଥାଏ ସେ ଦିଗରୁ ପିଠି କରିବା; ମୁହଁ ଫେରାଇବା; ପଛକୁ ଫେରିବା; ଲୁଳପଡ଼ିବା—4. To turn back; to turn back one's face. ৫ । (ମାଛ ପାଣିରେ) ଚିତହୋଇ ଏ ପାଖ ସେ ପାଖ ହେବା—5. To turn on the sides in water (said of fish). উলটান ୬ । (ଛାଡ଼ିଯାଇଥିବା ଜର ଓ ରୋଗ ଆଦି) ପୁନରାଗମନ ଘଟିବା—6. To relapse; to revert. ୭ । (ମକଦ୍ଦମା), ପୁନର୍ବିଚାର କମନ୍ତେ ନିମ୍ନ ଅଦାଲତକୁ ପଠାଯିବା—7. (case) To be remanded; to be sent back to the lower court for retrial. ୮ । ମଲା ପରେ ପୁଣି ସଂସାରରେ ଜନ୍ମ ହେବା—8. To revert to the world by rebirth after death; to be reborn after death. ୯ । ନିଆଁ ଉପରେ ଦୁଧ, ଭାତ ଆଦି ଫୁଟି ଏ ପାଖ ସେ ପାଖ ଓଲଟିବା—9. To turn (said of boiling rice or milk. ୧୦ । (କଥା) ପରିବର୍ତ୍ତିତ ହେବା—10. To be changed. ବଦଳନା ୧୧ । ପ୍ରତ୍ୟାହୃତ ହେବା—11. To be withdrawn. ୧୨ । [ ପାଲ୍, ନାଟୁଆ] ବଜ ଭଙ୍ଗିବା—12. To cut capers or somersaults. ଦ୍ର—ଲେଉଟିବା ଶବ୍ଦ କ୍ରିୟାବାଚକ ବିଶେଷ୍ୟ ଓ ବିଶେଷଣରୂପେ ମଧ୍ୟ ବ୍ୟବହୃତ ହୁଏ ।]

**ଲେଉଟେନ**—ପ୍ରାଦେ (ସମ୍ବଲପୁର) ବି (ହି. ଲଉଟନା)—ଲେଉଟାଣି—Return. Leuṭen

**ଲେଉଟେନ ଆସିବା**—ପ୍ରାଦେ (ସମ୍ବଲପୁର) କ୍ରି—ଯୌବନପ୍ରାପ୍ତା ବିବାହିତା କନ୍ୟା ଶାଶୁଘରକୁ ପହିଲପାଲି ଯାଇ ସେଠାରେ କିଛିକାଳ ସ୍ୱାମୀଙ୍କ ସଙ୍ଗେ ରହିବା ପରେ ବାପଘରକୁ ପୁଣି କିଛି ଦିନ ପାଇଁ ଫେରି ଆସିବା—Returning of a bride to her paternal home after living for some time with her husband after attaining puberty. Leuṭen āsibā

**ଲେଉଡ଼ା**—ଦେ. ବି—ନେହୁଡ଼ା (ଦେଖ) Nehurdā (See) Leurdā

**ଲେଉଡ଼ା(ଡ଼େ)ଇବା**—ଦେ. କ୍ରି ( ଲେଉଡ଼ିବା କ୍ରିୟାର ଣିଜନ୍ତରୂପ) ନେହୁଡ଼ାଇବା (ଦେଖ) Nehurdāibā (See). Laurdā(rde)ibā

**ଲେଉଡ଼ିବା**—ଦେ. କ୍ରି—ନେହୁଡ଼ିବା (ଦେଖ) Nehurdibā (See) Leurdibā

**ଲେଉଣା ଦେଉଣା**—ଦେ. ବି—ଲେଣ ଦେଣ (ଦେଖ) Leṇa deṇa (See) Leuṇā deuṇā

ଲେଉଣ୍ଡ ଛେଉଣ୍ଡ—ଦେ.ବଣ. ଓ ବ. (ପୁଂ ଓ ସ୍ତ୍ରୀ) ସଣ୍ଡ ଛେଉଁଣ୍ଡ; Leunda chheunda କରଣସ୍ଥ ମାତାପିତୃହୀନ ବାଳକ— ଦୀନହୀନ ଲୁଗାର Helpless orphan.

ଲେଉଣ୍ଡୀ—ଦେ. ବ (ସ. ରଣ୍ଡା; ହୁଡ଼ରୁ ଅନୁକୂଳ )—୧ । ସ୍ତ୍ରୀ— Leundi 1. Woman. ୨ । ଦାସୀ—2. Maid-servant. ଦାସୀ ଲୌଣ୍ଡୀ

ଲେଉଣ୍ଡୀ ଛେଉଣ୍ଡୀ—ଦେ. ବ. ଓ ବଣ (ସ୍ତ୍ରୀ)—ରଣ୍ଡୀଖଣ୍ଡୀ [ଦେଖ] Leundi chheundi Randikhandi (See)

ଲେଏଣ(ଣା,ଣୀ)—ଦେ. ବ (ସ. ଲ ଧାତୁ=ନେବା)—୧ । ନେଏଣ, Le-ena(na,ni) ନେବା—1. Taking. ୨ । ଗ୍ରହଣ— ଲେନ(ନା) ଲେନ 2. Accepting; getting. ୩ । ଅନ୍ୟଠାରୁ ପ୍ରାପ୍ୟ ଧନ—3. Dues. ଦେ. ବଣ. ୧ । ନେୟ—1. Fit to be taken ୨ । ଗ୍ରହଣୀୟ—2. Acceptable ୩ । ଆଦାୟ କରାଯିବା ଯୋଗ୍ୟ—3. Realisable.

ଲେଏଣ(ଣା, ଣୀ) ଦେଏଣ(ଣା, ଣୀ)—ଦେ. ବ. ( ସ. ନେୟନ+ଦାନ; Le-ena(na, ni) de-ena(na, ni) ନେୟ ଓ ଦେୟ)— ଲେନ ଦେନ ୧ । ନେବା ଦେବା—1. Taking and ଲେନ(ନା) ଦେନ(ନା) giving. ୨ । ଆଦାନ ପ୍ରଦାନ—2. Exchange; barter. ୩ । ବିକ୍ରିତ ପଦାର୍ଥର ମୂଲ୍ୟର ଆଦାନ ପ୍ରଦାନ—3. The passing of consideration for a thing sold. ୪ । ପ୍ରାପ୍ୟ ଓ ଦେୟ ଧନ—4. Assets and liabilities. ୫ । ଦୁଇ ଜଣଙ୍କର ପରସ୍ପରର ପାଉଣା ଓ ଦେଣା—5. Dues and debts. ୬ । ଧନ ବା ପଣ୍ୟାଦିର ଆଦାନ ପ୍ରଦାନରୂପେ କାରବାର—6. Business transactions.

ଲେଁଟି—ପ୍ରାଦେ. ( ସମ୍ବଲପୁର ) ବ—ପାଚିଲା ଅମ୍ବ— Lenti Ripe mango.

ଲେକ୍‌ଚ(ଚା)ର୍—ଦେ. ବ ( ଇ. ଲେକ୍‌ଚର୍ )—୧ । ବକ୍ତୃତା— Lek-cha(cha)r 1. Lecture. ୨ । କଲେଜ୍‌ରେ ପ୍ରୋଫେସର୍‌ମାନେ ଛାତ୍ରମାନଙ୍କୁ ପାଠ ପଢ଼ାଇବା ପାଇଁ ଦେବା ବକ୍ତୃତା—2. Lectures delivered in college-classes by professors. ଲେକଚାର ଲେକଚର [ ବ୍ର—ଆଇନ୍ ପରୀକ୍ଷା ଓ ବିଶ୍ୱବିଦ୍ୟାଳୟର ଉଚ୍ଚ ଉପାଧି ପରୀକ୍ଷା ଦେବା ନିମନ୍ତେ କଲେଜ୍‌ରେ ନିମ୍ନ ସୀମାର ନିର୍ଦ୍ଦିଷ୍ଟ ସଂଖ୍ୟକ ଲେକ୍‌ଚର୍ ଦିଆଯିବା ସମୟରେ ଛାତ୍ରମାନଙ୍କର ଉପସ୍ଥିତ ହେବାର ବିଧାନ ଅଛି । ଯେଉଁ ଛାତ୍ର କ୍ଲାସ୍‌ରେ ନିର୍ଦ୍ଦିଷ୍ଟ ସଂଖ୍ୟକ ଲେକ୍‌ଚର୍ ଶୁଣି ନ ଥିବେ, ସେ ପରୀକ୍ଷାରେ ଉପସ୍ଥିତ ହୋଇ ପାରିବେ ନାହିଁ । କ୍ଲାସ୍‌ରେ ଛାତ୍ର ଯେଉଁ ଯେଉଁ ବିଷୟରେ ଲେକ୍‌ଚର୍ ଶୁଣନ୍ତି, ସେହି ସେହି ବିଷୟ ଅନୁସାରେ ଲେକ୍‌ଚର୍‌ମାନଙ୍କ ନାମ ହୁଏ । ଯଥା—ଲଅ(ଲ) ଲେକ୍‌ଚର୍—Law lecture, ସାଏନ୍‌ସ୍ ଲେକ୍‌ଚର୍—Science lecture. ବୋ(ବ)ଟାନୀ ଲେକ୍‌ଚର୍—Botany lecture. କେମିଷ୍ଟ୍ରି ଲେକ୍‌ଚର୍—Chemistry lecture.]

ଲେକ୍‌ଚର୍ ଆଟେଣ୍ଡ୍ କରିବା—ବୈଦେ. କି—କଲେଜର ଲେକ୍‌ଚରର Lek-char atend kariba କ୍ଲାସ୍‌ରେ ଛାତ୍ରମାନଙ୍କୁ ନିର୍ଦ୍ଦିଷ୍ଟ ଲେକଚାର ଆଟେଣ୍ଡ କରା ବିଷୟରେ ବକ୍ତୃତା ଦେଉଥିଲେ ଛାତ୍ର ଲେକଚର ଏଟେଂଡ କରନା ବକ୍ତୃତା ସମୟରେ (ଛାତ୍ର)ର ଉପସ୍ଥିତ ରହିବା —To attend a lecture in a college class.

ଲେକ୍‌ଚର୍ କରିବା ( ଦେବା )—ଦେ. କି—ବକ୍ତୃତା କରିବା—To Lek-char kariba ( deba ) lecture; to deliver ଲେକଚାର ଦେଓୟା ଲେକଚର କରନା a lecture.

ଲେକ୍‌ଚର୍ ଝାଡ଼ିବା—ଦେ. କି ( ବ୍ୟଙ୍ଗ୍ୟ )—ବକ୍ତୃତା କରିବା— Lek-char jhardiba ( ironical ) To lecture. ଲେକଚାର ଝାଡା ଲେକଚର ଝାଡ଼ନା

ଲେକ୍‌ଚରବାଜୀ—ବୈଦେ. ବ ( ଇ. ଲେକ୍‌ଚର୍+ଫା. ବାଜୀ )— Lek-char-baji (ବ୍ୟଙ୍ଗ୍ୟ)—୧ । ଖୁବ୍ ବକ୍ତୃତା ଦେବା କ୍ରିୟା— ଲେକଚାରବାଜୀ (ironical) The act of giving very ଲେକଚରବାଜୀ many lectures. ୨ । ବକ୍ତୃତା ଦେବା (ଲେକ୍‌ଚର୍‌ବାଜ୍—ବଣରୂପ) ଅଭ୍ୟାସ—2. The habit of giving lectures.

ଲେକ୍‌ଚ(ଚା)ର(ରା)ର୍—ଦେ. ବ ( ଇ. ଲେକ୍‌ଚରର୍ )— Lek-cha(cha)ra(ra)r ୧ । ବକ୍ତା; ବକ୍ତୃତାକାରୀ— ଲେକଚରାର ଲେକଚରର 1. A person who delivers a lecture, lecturer. ୨ । କଲେଜର ଛାତ୍ରମାନଙ୍କୁ ନିର୍ଦ୍ଧାରିତ ବିଷୟରେ କ୍ଲାସ୍‌ରେ ବକ୍ତୃତା ଦେବା ଅଧ୍ୟାପକ ବା ଶିକ୍ଷକ—2. A lecturer of a college. [ବ୍ର— ସ୍କୁଲର ଶିକ୍ଷକମାନଙ୍କୁ ଟିଚର୍ ( Teacher ) ଓ ମାଷ୍ଟର ( Master ) ବୋଲାଯାଏ; କଲେଜ୍‌ର ଶିକ୍ଷକମାନଙ୍କୁ ଲେକ୍‌ଚରର୍ ( Lecturer ) ଓ ପ୍ରୋଫେସର ( Professor ) ବୋଲାଯାଏ । ଲେକ୍‌ଚରର୍‌ମାନଙ୍କ ଅପେକ୍ଷା ପ୍ରୋଫେସର୍‌ମାନଙ୍କ ସମ୍ମାନ ଓ ଦରମା ବେଶୀ । ଯେଉଁ ଲେକ୍‌ଚରର୍ ଯେଉଁ ବିଷୟରେ ଛାତ୍ରମାନଙ୍କୁ ବକ୍ତୃତା ଦିଅନ୍ତି ସେହି ବିଦ୍ୟାର ନାମ ଅନୁସାରେ ସେ ଲେକଚରର୍‌ଙ୍କ ନାମକରଣ ହୁଏ । ଯଥା, ଲଅ ଲେକଚରର୍ (Law lecturer); ସାଏନ୍‌ସ୍ ଲେକଚରର୍ (Science lecturer); ଫିଲୋସଫି ଲେକ୍‌ଚରର୍ ( Philosophy lecturer ); ସାନ୍‌ସ୍କ୍ରିଟ୍ ଲେକ୍‌ଚରର୍ (Sanskrit lecturer) । ]

ଲେକ୍‌(ଙ୍କ, ଙ୍କୁ, ଙ୍କେ)ଡ଼ା(ଡ଼ି) ( ଇତ୍ୟାଦି )—ଦେ. ବ—ଲେକଡ଼ା Lek-(nka, nku, nke)rda(rdi) (etc) ଇତ୍ୟାଦି (ଦେଖ) Lekarda etc ( See )

ଲେକ୍‌ନଜର—ବୈଦେ. ବ—ନେକ୍‌ନଜର ( ଦେଖ ) Lek-najara Nek-najara ( See )

ଲେକ୍‌ନାମ୍(ମି)—ବୈଦେ. ବ—ନେକ୍‌ନାମ୍ ( ଦେଖ ) Lek-nam(mi) Nek-nam ( See )

ଲେକ୍(କି)ବଢ଼ି—ବୈଦେ. ବ—ନେକିବଢ଼ି ( ଦେଖ )—Nekibadi Lek-(ki)badi (ଲେକିବଢ଼ିଇ—ଅର୍ଥ୍ୟରୂପ) ( See )

ଲେକା—ଗ୍ରାଦେ. ( ଉତ୍ତରଗଞ୍ଜାମ ) ବି—ପିଲା—
Lekā Child.

ଲେକାପ—ଦେ. ବି—ମେକାପ ( ଦେଖ )
Lekāpa Mekāpa ( See )

ଲେକି(ଖି)ନ୍(ନ)—ବୈଦେ. ଅ ( ଫା. )—୧ । କିନ୍ତୁ—1. But.
Leki(khi)n(n) [ଭି—ଲେକିନ୍ ଉକାଇଣ ନ ହେବ ଅଟେଗେ—ଫକୀରମୋହନ. ଛମାଣ ଆଠଗୁଣ୍ଠ ।] ୨ । ପରନ୍ତୁ —2. On the other hand.
କିନ୍ତୁ लेकिन

ଲେକିବଦି—ବୈଦେ. ବି—ନେକିବଦି ( ଦେଖ )—Nekibadi
Lekibadi ( ଲେକେଇ ବଦେଇ—ଅନ୍ୟରୂପ ) ( See )

ଲେଖ—ସଂ. ବି (ଲିଖ ଧାତୁ+କର୍ମ. ଅ)—୧ । ଦେବତା—1. Deity.
Lekha ୨ । ଲିଖିତ ଆଜ୍ଞା—2. A written order. ୩ । ଲିଖିତ ପତ୍ର; ଦଲିଲ; ପାଣ୍ଡୁଲିପି ପ୍ରଭୃତି—3. A written order; letter; document; manuscript. ୪ । ଚିଠି; ଚିଟଉ—4. Epistle; a letter. ୫ । (+ଭାବ. ଅ) ଲିଖନ—5. Writing. ୬ । (+କର୍ମ. ଅ)ରେଖା—6. Line. ୭ । (+ଭାବ.ଅ) ଅଙ୍କନ;ଚିତ୍ରକରଣ —7. Drawing; painting. ୮ । (+କର୍ମ. ଅ) ଚିହ୍ନ—8. Mark. ୯ । ଅକ୍ଷର; ଲିପି—9. Script; letter; alphabet. ୧୦ । ସ୍ଥଳୀ-10. A place.
ଗଣ୍ୟମାନ୍ୟ ଦେ. ବିଣ—ଲେଖା; ଉଲ୍ଲେଖଯୋଗ୍ୟ; ଯୋଗ୍ୟମାନଙ୍କ
लेख ମଧ୍ୟରେ ପରିଗଣିତ—Counted as one fit. ଦେ.
ମତ लेख ବି—ଜାତି; ସାଦୃଶ୍ୟ—Type. [ ଭି—ତା ଲେଖରେ ଲୋକ ମିଳିବେ ନାହିଁ । ]

ଲେଖକ—ସଂ. ବି. ପୁଂ ( ଲିଖ୍ ଧାତୁ+କର୍ତ୍ତୃ. ଅକ )—୧ ।
Lekhaka ପୁସ୍ତକର ଗ୍ରନ୍ଥକାର—1. Author of a
(ଲେଖିକା—ସ୍ତ୍ରୀ) book. ୨ । ଲିପିକର—2. Writer. ୩ । ଦଲିଲର ଲେଖିବା—3. Scribe of a document. ୪ । ଚିତ୍ରକର—4. Painter. ୫ । ମୁନସୀ; କରଣମ; ମୋହରିର—5. A clerk. [ ଭି—ଏଥିର ସାଙ୍କେତିକ 'ଲେ' ବା 'ଲି' । ଦଲିଲମାନଙ୍କ ଅଦ୍ୟରେ ଦଲିଲ ସମ୍ପାଦନକାରୀ ବ୍ୟକ୍ତିର ନାମ ପୂର୍ବରେ 'ଲେ' କିମ୍ବା 'ଲି' ଲେଖାଯାଏ ଓ ଦଲିଲ ଲେଖାର ଶେଷରେ ଦଲିଲ ଲେଖିଥିବା ଲୋକର ନାମ ପୂର୍ବରେ 'ଲେ' କିମ୍ବା 'ଲି' ଲେଖାଯାଏ । ]

ଲେଖକତ୍ୱ(ତା)—ସଂ. ବି ( ଲେଖକ+ଭାବ. ତ୍ୱ ତା )—୧ ।
Lekhakatwa(tā) ଲେଖିବାର ଶକ୍ତି—1. Penmanship. ୨ । ଲେଖିବା ଗିରି—2. Writership; clerkship. ୩ । ପୁସ୍ତକର ଲେଖକ ବା ଗ୍ରନ୍ଥକାର ହେବା ଏହାର ସ୍ଥିରତା —3. Authorship of a book.

ଲେଖନ—ସଂ. ବି ( ଲିଖ୍ ଧାତୁ+ଭାବ. ଅନ )—୧ । ଲିଖନ; ଅକ୍ଷର
Lekhana ବିନ୍ୟାସ—1. Act of writing. ୨ । ଅଙ୍କନ ବା ଅଙ୍କିବା—2. Drawing. ୩ । ଅକ୍ଷର ବିନ୍ୟାସ —3. Scribbling. ୪ । ଚିତ୍ରକରଣ—4. Painting. ୫ । ରେଖାଙ୍କନ—5. Drawing of a line. ୬ । ଦାନ୍ତ ଘସିବା ବେଳେ ଜିଭ ଚେଲିବା— 6. Act of scraping the tongue while cleansing the mouth. ୭ । ( +ଅଧି ଅନ ) କାଗଜ; ଯାହା ଉପରେ ଅକ୍ଷରବୃନ୍ଦ ଲେଖାଯାଏ—7. Paper. ୮ । ( +କର୍ମ ଅନ ) ଚିଠି—8. Letter. ୯ । ଦଲିଲ—9. Document. ୧୦ । ( +ଅଧି ଅନ ) ଭୂର୍ଜ୍ଜପତ୍ର—10. The bark of the birch tree. ୧୧ । ( +କରଣ ଅନ ) ଯାହାଦ୍ୱାରା ଲେଖାଯାଏ; କଲମ; ଲେଖନୀ—11. Pen; pencil. ୧୨ । ତୂଳୀ—12. Painter's brush. ଦେ. ବି—
लेखन ତାଳପତ୍ର ଉପରେ ଲେଖିବା ପାଇଁ ବ୍ୟବହୃତ ଲୁହାର
लोहाकी लेखनी ମୁନିଆଁ ଲେଖନୀ—A pointed iron pen used for writing upon palm leaves; a stylus. [ ଭି—ତାଳପତ୍ର ଉପରେ ଲେଖନଦ୍ୱାରା ଅକ୍ଷରବାଜ ଲେଖିବା ପାଇଁ ତାଳପତ୍ରକୁ ଲେଖନଦ୍ୱାରା ଖୋଳିବାକୁ ହୁଏ ଓ ଏଥିପାଇଁ ମସୀ ଦରକାର ହୁଏ ନାହିଁ । ଲେଖନର ଅଗ୍ରଭାଗକୁ ( ଯେଉଁ ମୁନିଆଗ୍ରଦ୍ୱାରା ଲେଖାଯାଏ ତାକୁ ) ଲେଖନର ମୁନ ବୋଲାଯାଏ ଓ ଲେଖନର ଅପର-ଦିଗର ଚଟକା ଓ ବ୍ୟଞ୍ଜନାକୃତି ଅଂଶକୁ ଲେଖନର ପକ୍ଷୀ ବୋଲାଯାଏ । ସେହି ପକ୍ଷୀର ଗୋଟିଏ ପାଖ ଛୁରୀପରି ଧାରୁଆ ଓ ସେହି ଛୁରୀଦ୍ୱାରା ତାଳପତ୍ରକୁ ପ୍ରୟୋଜନମାପ୍ର ଆକାରରେ କଟାଯାଏ । ଓଡ଼ିଶାର କରଣମାନେ ଲେଖନଜୀବୀ ବା (ଅଳ୍ପକାଳ) ମସୀଜୀବୀ ଥିବାରୁ ସେମାନଙ୍କ ସକ୍ତ ଲେଖନ ଅଛି । ]

ଲେଖନକାର—ସଂ. ବି—୧ । ଲେଖକ—1. Writer. ୨ । ଯେଉଁ
Lekhanakāra ବ୍ୟକ୍ତି କୌଣସି ଲେଖାକୁ ତାଳପତ୍ରରେ ବା କାଗଜରେ ଲେଖିଥାଏ—2. Scribe; penman. ୩ । ନକଲନବିସ; ଲିପିକର—3. Copyist. ୪ । ଯେ ଲେଖାଲେଖି କରି ଜୀବିକା ନିର୍ବାହ କରେ—4. A professional scribe, writer or author. [ ଭି—ଶୁଦ୍ଧ ଅଶୁଦ୍ଧ ପୁସ୍ତକ ଜାଣିବ, ଲେଖନକାର ଦୋଷ ନ ଧରିବ । ଭଗ । ]

ଲେଖନ କୋଳି—ଦେ. ବି—ଗଡ଼ଜାତର ଏକପ୍ରକାର ଜଙ୍ଗଲି କୋଳି
Lekhana koli —A sort of edible wild berry; Wvaria Hamiltonia ( Haines ). [ ଭି—ଏହା ଫେନ୍ଥା ଫେନ୍ଥା ହୋଇ ଗଛରେ ଫଳେ ଓ ଏହା ଉପରେ ସାମାନ୍ୟ ଧଳା ଲୋମଯୁକ୍ତ ନାଲି ଚୋପା ଥାଏ । ଚୋପା ମଧ୍ୟର ଶସ ଧଳା ଓ କୋମଳ ଏବଂ ଈଷତ ଅମ୍ଳମିଶ୍ରିତ ମଧୁର । ]

**ଲେଖନ ଚଳା(ଳେ)ଇବା**—ଦେ. କ୍ରି—ଲେଖଣୀ ପରିଚାଳନ କରିବା; ଲେଖିବା—To write.
Lekhana chaḻā(ḻe)ibā
কলমচালান लेखनी चलाना

**ଲେଖନ ଛୁ(ଛୋ)ଇଁବା**—ଦେ. କ୍ରି—୧ । (ଦ୍ର—ଯେଉଁ ବ୍ୟକ୍ତି ଆପଣାର ନାମ ଦସ୍ତଖତ୍ କରି ଜାଣେ ନାହିଁ, ତାହାର ଅନୁମତି ଅନୁସାରେ ତାହାଙ୍କ ଅନ୍ୟ ଜଣେ 'ବ କଲମ୍' [ଫା. ବକଲମ୍ = କଲମଦ୍ୱାରା] ଦସ୍ତଖତ କରେ । ଅଶିକ୍ଷିତ ବ୍ୟକ୍ତି ଲେଖକର ଲେଖନକୁ ସ୍ପର୍ଶ କରିବାଦ୍ୱାରା ଆପଣା ନାମ ଲେଖିବାପାଇଁ ଲେଖକକୁ ଅନୁମତି ଦିଏ । )—କୌଣସି ଦଲିଲରେ ଆପଣାର ନାମ ବକଲମ ଦସ୍ତଖତ କରିବା ପାଇଁ ଲେଖକକୁ ଅନୁମତି ପ୍ରଦାନସୂଚକ ଲେଖନକୁ ସ୍ପର୍ଶ କରିବା—1, To touch the stylus or pen (said of an illiterate person who does not know to sign and who by touching the pen authorises the scribe to sign for him). ୨ । ଲେଖାପଢ଼ା ଶିକ୍ଷାମାନ ଆରମ୍ଭ କରିବା—2, To begin to learn. to read and write.
Lekhana chhu(chho)iñbā
কলমছোঁয়া कलम(लेखनी)छूना

**ଲେଖନ ଠାଣ**—ଦେ. ବି—ଲେଖିବାର ଶକ୍ତି; ଲେଖକର ଯେଉଁ ଲେଖନ-ସାମର୍ଥ୍ୟର ଫଳରେ ଲିଖିତ ବିଷୟ ଅବଶ୍ୟ ସିଦ୍ଧ ହୁଏ—The power or might of one's pen. ଦେ. ବିଣ—ଲେଖନ ଠାଣୁଆ (ଦେଖ)—Lekhana ṭāṇuā (See)
Lekhana ṭāṇa
কলমের জোর कलमका जोर
(ଲେଖନ ଜୋର୍—ଅନ୍ୟରୂପ)

**ଲେଖନ ଠାଣୁଆ**—ଦେ. ବିଣ. ପୁଂ—ଯେଉଁ ବ୍ୟକ୍ତିର ଲେଖାରେ ଶକ୍ତି ଅଛି—Weilding the pen strongly
Leknana ṭāṇuā
কলমজোর कलम जोर
[ଲେଖନଠାଣେ(ଣୋ)ଇ—ସ୍ତ୍ରୀ]
(ଲେଖନ ବଳୁଆ, ଲେଖନ ଜୋର୍‌ଦାର୍—ଅନ୍ୟରୂପ)

**ଲେଖନ ତଳେ**—ଦେ. କ୍ରି. ବିଣ—୧ । (ଲକ୍ଷଣାର୍ଥ)—କୌଣସି ବ୍ୟକ୍ତିଙ୍କର କର୍ତ୍ତୃତ୍ୱାଧୀନତାରେ—1. Under the control of.
Lekhan taḻe
কলমেরনীচে कलमके नीचे
(ଲେଖନ ତାବେରେ—ଅନ୍ୟରୂପ)
[ଦ୍ର—ପୂର୍ବେ ସମସ୍ତ ଲେଖା କାର୍ଯ୍ୟ ଲେଖନଦ୍ୱାରା ଚଳୁଥିବାରୁ କୌଣସି ଅଫିସର ବା ସେରସ୍ତାର ଉଚ୍ଚତମ କର୍ମଚାରୀ ଓ ତାଙ୍କର ନିମ୍ନସ୍ଥ କର୍ମଚାରୀମାନେ ସମସ୍ତେ ଲେଖନ ଧରୁଥିଲେ । ଉଚ୍ଚତମ କର୍ମଚାରୀଙ୍କ "ଲେଖନର ତଳେ" ଅର୍ଥାତ୍ ତାଙ୍କ କର୍ତ୍ତୃତ୍ୱାଧୀନ ହୋଇ ଅଧସ୍ତନ କର୍ମଚାରୀମାନେ କାର୍ଯ୍ୟ କରୁଥିଲେ । ସେଥିପାଇଁ କୋହାଯାଉଥିଲା—ତାଙ୍କ ଲେଖନ ତଳେ ୧୦ ଜଣ ଚଳୁଛନ୍ତି । ] ୨ । (ଲକ୍ଷଣାର୍ଥ) ଲେଖନର ଶକ୍ତିଦ୍ୱାରା, ଅର୍ଥାତ୍ ଲେଖାର କ୍ଷମତା ଯୋଗୁଁ; ବିଦ୍ୱତ୍ତା ଯୋଗୁଁ—2. Under the penmanship of; by the might of the pen of; by the learning of (so and so). [ଦ୍ର—ଅମୁକର ଲେଖନ ତଳେ କେତେ ରାଜାରାଜୁଡ଼ା ବନ୍ଧା ହୋଇଅଛନ୍ତି; ଅର୍ଥାତ୍ ଅମୁକର ଲେଖାର ଶକ୍ତିଯୋଗୁଁ ତା ନିକଟରେ କେତେ ରାଜା ଅନୁଗତ । ତା ଲେଖନ ତଳେ ୫୦ ଜଣ ପ୍ରତିପୋଷିତ ହେଉ ଅଛନ୍ତି; ଅର୍ଥାତ୍ ତାହାର ଲେଖା ପଢ଼ାର ଶକ୍ତି ବା ଅର୍ଜନଦ୍ୱାରା ସେ ୫୦ ଜଣଙ୍କୁ ପୋଷୁଛି । ]

**ଲେଖନ ଧରିବା**—ଦେ. କ୍ରି—୧ । ତାଳପତ୍ର ଉପରେ ଲେଖିବା ପାଇଁ ଲେଖନକୁ ନିୟମିତଭାବରେ ଆଙ୍ଗଠିଦ୍ୱାରା ଚିପି ଧରିବା—1. To hold the stylus (iron-pen) properly to write upon palm leaf ୨ । (ଲକ୍ଷଣାର୍ଥ) ଲେଖନଦ୍ୱାରା ଲେଖିବା—2. To write with a stylus. [ଦ୍ର—କାଗଜ ଉପରେ କଲମ ଆଦିଦ୍ୱାରା ଲେଖିବା ସହଜ, କିନ୍ତୁ ତାଳପତ୍ର ଉପରେ ଲେଖନଦ୍ୱାରା ଲେଖିବା କଷ୍ଟକର । କାଗଜକୁ ତଳେ ପକାଇ ତା ଉପରେ କଲମଦ୍ୱାରା ଲେଖି ହୋଇପାରେ, କିନ୍ତୁ ତାଳପତ୍ରକୁ ବାଆଁ ହାତଦ୍ୱାରା ଧରି ଆଣ୍ଠୁ ଉପରେ ଥୟ କରି ରଖି ଡାହାଣ ହାତର ୪ଟି ଆଙ୍ଗୁଠି ଦ୍ୱାରା ଲେଖନକୁ ଧରି ଚଳାଇବାକୁ ହୁଏ । ଲେଖନକୁ ଏକପାଖରେ ଯଥାକ୍ରମେ ତର୍ଜନୀ ଆଙ୍ଗୁଠି, ମଝିଆଙ୍ଗୁଠି ଓ ପର-ଆଙ୍ଗୁଠି ଓ ଅନ୍ୟ ପାଖରେ ବୁଢ଼ାଆଙ୍ଗୁଠିଦ୍ୱାରା ଦୃଢ଼ରୂପେ ଧରିବାକୁ ହୁଏ ଓ ତାଳପତ୍ର ଉପରେ ଲେଖିବା ସମୟରେ ଲେଖକର ବାଆଁ ହାତର ବୁଢ଼ାଆଙ୍ଗୁଠି ଲେଖନର ମୂନକୁ ତାଳପତ୍ର ଉପରେ ନିୟନ୍ତ୍ରିତ କରୁଥାଏ । ଚିପ ଠାଣ କରି ଲେଖନର ମୂନକୁ ନିୟନ୍ତ୍ରିତ ନ କଲେ ତାଳପତ୍ରରେ ଅକ୍ଷର ଲେଖି ହୁଏ ନାହିଁ । ଓଡ଼ିଶାରେ ତାଳପତ୍ର ଓ ଲେଖନଦ୍ୱାରା ସମସ୍ତ ଲେଖା କାମ ଚଳୁଥିଲା ଓ ସ୍କୁଲର ସମସ୍ତ ପୁସ୍ତକର ପୋଥିମାନ ତାଳପତ୍ରରେ ଲେଖନଦ୍ୱାରା ଲେଖା । ଚିଠିପତ୍ର, ହିସାବପତ୍ର ସମସ୍ତ ତାଳପତ୍ରରେ ଲେଖା ହେଉଥିଲା ଓ ଏବେ ମଧ କେତେକ ପୁରୁଣାକାଳିଆ ଲୋକ ଲେଖନ ପତର ଛାଡ଼ି ନାହାନ୍ତି । ସଂସ୍କୃତରେ ଦେବନାଗର ଅକ୍ଷର-ମାନଙ୍କର ଶିରୋଭାଗରେ ଲମ୍ବ ସରଳରେଖା ଅଛି, (ଯଥା—क, म, व )। ବଙ୍ଗଳା ଓ ଓଡ଼ିଆ ଭାଷାର ଅକ୍ଷର ଦେବନାଗର ଲିପିରୁ ଜାତ । କିନ୍ତୁ ବଙ୍ଗଳା ଭାଷାରେ ଅକ୍ଷରମାନଙ୍କ ଶିରୋଭାଗରେ ସରଳରେଖା ରହେ (ଯଥା—ক, ম, ব ) କିନ୍ତୁ ଓଡ଼ିଆ ଅକ୍ଷରମାନଙ୍କ ଶିରୋଭାଗ ଅର୍ଦ୍ଧ ଚନ୍ଦ୍ରାକାର ଟୋପିଯୁକ୍ତ (ଯଥା—କ, ମ, ବ) । ଏଥିର କାରଣ ଏହି କି, ବଙ୍ଗଦେଶରେ ଭୂର୍ଜପତ୍ରରେ ଓ କାଗଜରେ ଲେଖା ଚଳୁଥିବାରୁ ଅକ୍ଷରମାନଙ୍କ ମୁଣ୍ଡରେ ଦେବନାଗର ପରି ସରଳରେଖା ରହିଗଲା; କିନ୍ତୁ ଓଡ଼ିଶାରେ ଲେଖନଦ୍ୱାରା ତାଳପତ୍ରଉପରେ ଲେଖାଯିବାରୁ ଅକ୍ଷରମାନଙ୍କ ମୁଣ୍ଡ ଉପରେ ସରଳରେଖାମାନ କାଟିଲେ ତାଳପତ୍ରର ଅଂଶମାନ ସମାନ୍ତରାଳ ରେଖାମାନଙ୍କଦ୍ୱାରା ଚିରିଯିବ; ଏଥିପାଇଁ ଅକ୍ଷର-ମାନଙ୍କ ମସ୍ତକକୁ ସରଳରେଖାଦ୍ୱାରା ନ ଯୋଡ଼ାଇ ସେହି ସରଳରେଖାମାନଙ୍କ ସ୍ଥଳରେ ବୃତ୍ତାକାର ଟୋପି ଦିଆ ଯାଇଅଛି । ]
Lekhana dharibā
লেখনধরা कलमपकड़ना(धरना)

ତାଳପତ୍ର ଲେଖା ଏ ଦେଶରେ ବିଶେଷଭାବରେ ଚଳନ ନ ଥିବା ସମୟରେ ଓଡ଼ିଆ ଅକ୍ଷରମାନଙ୍କର ମସ୍ତକରେ ପୁରାତନ ଶିଳାଲିପିରେ ଚେପି ନ ଥାଇ ସରଳରେଖାମାନ ଥିବା ଅନେକ ଲିପିରୁ ଦେଖାଯାଏ । ]

**ଲେଖନ ପକ୍ଷି(ଖି)** — ଦେ. ବି — ଲେଖନର ଊର୍ଦ୍ଧ୍ୱାଂଶ,ଯେଉଁ ଅଂଶ Lekhana pakshi(khi) ଦାନ୍ତଘଷା ପରି ଚଟକା ଓ ଗୋଲ ଲେଖনের পাখা ହୋଇଥାଏ—The flat and fan-shaped upper end of a stylus. [ ଦ୍ର—ଏହି ଚଟକା ଅଂଶର ଗୋଟିଏ ପାଖ ଦାନ୍ତ ଥିବା ଛୁରି ପରି ଓ ସେ ଛୁରିଦ୍ୱାରା ତାଳପତ୍ରମାନଙ୍କ କାଟିବାକୁ ହୁଏ । ]

**ଲେଖନ ପଠନ** — ସଂ. ବି ( ସଦ୍ଧର )—ଲେଖାପଢ଼ା— Lekhana paṭhana Reading and writing.

**ଲେଖନ ପତର** — ଦେ. ବି—ପୂର୍ବକାଳରେ ଲେଖିବାର ଦୁଇଗୋଟି Lekhana patara ଉପକରଣ, ଲୌହ ଲେଖଣୀ ଓ ତାଳ লেখন ও তালপাতা ଗଛର ପତ୍ର—Iron stylus and palm leaf, the two materials of writing in ancient Orissa.

ଲେଖନ ପତ୍ର / ଲେଖନ ତାଳ ପତର / ଲେଖନ ତାଳପତ୍ର } ଅନ୍ୟରୂପ

**ଲେଖନ ବସ୍ତି** — ସଂ. ବି—ଉଷାଦ ସପ୍ତ ଧାତୁ ଓ ବାତାଦି ତ୍ରିଦୋଷ ଓ Lekhana basti ବମନ ଆଦିକୁ ପତଳା କରିବାବାଲା ପିଚକାରୀ ( ବୈ. ଶ. )—A syringe which makes the hard things inside the system thin or soft.

**ଲେଖନ ବୁଲିବା** — ଦେ. ବି—୧ । ଲେଖନଦ୍ୱାରା ତାଳପତ୍ର ଉପରେ Lekhana bulibā ଲେଖିବା କାର୍ଯ୍ୟ ଚଳିବା—1. Act of कलम चला writing on palm leaf with कलम जारी होना iron-stylus. ୨ । ( ଲକ୍ଷଣାର୍ଥ ) ଲେଖକମାନେ କାର୍ଯ୍ୟରେ ବ୍ୟାପୃତ ହେବା—2. Act of the writers being engaged in writing. [ ଦ୍ର—ପୂର୍ବକାଳରେ ଜମିଦାରମାନଙ୍କ ସିରସ୍ତାରେ ଲେଖନ ଓ ତାଳପତ୍ରଦ୍ୱାରା ଜମିଦାରର ହିସାବପତ୍ର ଲେଖାଯାଉଥିବାରୁ କର୍ମଚାରୀମାନେ ସମସ୍ତେ ଲେଖନଦ୍ୱାରା ଲେଖୁଥିଲେ । ଏଥିପାଇଁ କୌଣସି ଜମିଦାରଙ୍କ ଇଲାକାରେ ଯେତେଜଣ କର୍ମଚାରୀ ରହୁଥିଲେ ତାଙ୍କ ସିରସ୍ତାରେ ସେତେଗୋଟି ଲେଖନ ବୁଲୁଥିଲା । ଅମୁକଙ୍କର ପାଞ୍ଚଗୋଟି ଲେଖନ ବୁଲୁଛି ବୋଲି କହିଲେ ବୁଝାଯାଉଥିଲା ଯେ, ତାଙ୍କର ସିରସ୍ତାରେ ଲେଖାପଢ଼ି କାମ କରିବାକୁ ପାଞ୍ଚଜଣ ଲେଖକ ବ୍ୟାପୃତ ଅଛନ୍ତି । ପୁରୀ ଜିଲ୍ଲାର ଖମାପଡ଼ାର ପୂର୍ବତନ ପ୍ରସିଦ୍ଧ କ୍ଷତ୍ରିୟ ଜମିଦାର (ସ୍ୱର୍ଗତ ବିଦ୍ୱାନ)ଙ୍କର ଅନେକ ଭୂସମ୍ପତ୍ତି ଥିବାରୁ ବହୁ ଶତ ଲେଖକ କର୍ମଚାରୀ ତାଙ୍କ ଇଲାକାରେ ନିଯୁକ୍ତ ଥିଲେ; ଏଥିପାଇଁ ଲୋକେ କହୁଥିଲେ ଯେ, ସ୍ୱର୍ଗତ ବିଦ୍ୱାନଙ୍କର ଲକ୍ଷେ ଲେଖନ ବୁଲୁଅଛି, ଅର୍ଥାତ୍ ତାଙ୍କ ଇଲାକାରେ ଲକ୍ଷେ ଲେଖକ ନିଯୁକ୍ତ ଅଛନ୍ତି । ]

**ଲେଖନ ମାରିବା** — ଦେ. କ୍ରି ( ଲକ୍ଷଣାର୍ଥ )—ଲେଖିବା— Lekhana māribā To write. কলম মারা कलम मारना

**ଲେଖନ ମୁନ** — ଦେ. ବି—ଲେଖନର ସୂକ୍ଷ୍ମ ଅଗ୍ରଭାଗ— Lekhana muna The point of an iron stylus. কলমের ডগা कलमका नोक

**ଲେଖନମୁନ ବୁ(ଘୁ)ଲିବା** — ଦେ. କ୍ରି—ଲେଖନ ବୁଲିବା ( ଦେଖ ) Lekhanamuna bu(ghā)libā Lekhana bulibā ( See )

**ଲେଖନମୁନ ମାରିବା** — ଦେ. କ୍ରି—ଲେଖିବା—To write. [ ଦ୍ର— Lekhana muna māribā ଭାରତର ଭାଗ୍ୟରେ ବିଧାତା কলম চালান ଏହିପରି ଲେଖନ ମୁନ ମାରିଛନ୍ତି । ଫକୀରମୋହନ- कलमकानोक मारना ଛମାଣ. ଆଠଗୁଣ୍ଠ ।]

**ଲେଖନକ** — ସଂ. ବି. ପୁଂ (ଲେଖନ+ଇକ)—୧ । ହରକରା; ଲେଖ- Lekhanika ହାରକ; ପତ୍ରବାହକ—1. Beaerr or carrier (ଲେଖନିକା—ସ୍ତ୍ରୀ) of a letter. ୨ । ଡାକ ହରକରା, ପତ୍ର- ବାହକ—2. Postman; a postal runner. ୩ । ଲେଖକ—3. Writer. ୪ । ଚିତ୍ରକର—4. Painter. ୫ । ଲିପିକର—5. Scribe; copyist. ୬ ।ଯେ ନିଜ ହାତରେ ଲେଖେ—6. A person who writes with his own hand, ୭ । ଯେଉଁ ବ୍ୟକ୍ତି ନିଜର ନାମ ଦସ୍ତଖତ କରି ଜାଣି ନ ଥିବାରୁ ଆପଣାର ସନ୍ତକ କାଟି ଦିଏ ଓ ତାହାର ବକଲମ ଦସ୍ତଖତ ଅନ୍ୟ ଜଣେ କରିଦିଏ—7. An illiterate person who puts his mark on a paper and whose signature is written by the pen of the scribe.

**ଲେଖଣୀ** — ସଂ. ବି. ସ୍ତ୍ରୀ (ଲିଖ୍ ଧାତୁ+କରଣ. ଅନ+ସ୍ତ୍ରୀ. ଈ)— Lekhanī ୧ । କଲମ; ଲେଖଣୀ; ବର୍ଣ୍ଣତୂଳିକା—1. Pen. ୨ । ଯେଉଁ ଯନ୍ତ୍ରଦ୍ୱାରା କାଗଜ ଆଦି ଉପରେ ଲେଖାଯାଏ— 2. Material or instrument for writing. (ଯଥା—ପେନ୍‌ସିଲ୍, ଲେଖନ ଇତ୍ୟାଦି) ୩ । ଚିତ୍ରକରର ତୂଳିକା—3. Painter's brush. ୪ । ଲେଖିବାର ଢଙ୍ଗ ବା ପଦ୍ଧତି—4 The style of writing. ୫ । କଠିଣ; ଖଡ଼ି; ଚକ୍‌ଖଡ଼ି—5. Chalk; pipe clay.

**ଲେଖଣୀ ଚାଳନ** — ସଂ. ବି (୬ଷ୍ଠୀ ତତ୍)—ଲେଖିବା କ୍ରିୟା—Act of Lekhanī chālana writing; taking up of the ( ଲେଖଣୀଧାରଣ, ଲେଖଣୀ ପରିଚାଳନ—ଅନ୍ୟରୂପ ) pen to write

**ଲେଖଣୀ ପ୍ରସୂତ** — ସଂ. ବିଣ ( ୫ମୀ ତତ୍ )—( ଅମୁକଦ୍ୱାରା ) ଲେଖା Lekhanī prasūta ହୋଇଥିବା—Coming from the pen of; written by.

ଲେଖନୀୟ —ସଂ. ବଣ (ଲିଖ୍ ଧାତୁ+କର୍ମ. ଅନୀୟ)—୧ । ଯାହା ଲେଖା
Lekhaniya ହେବା ଯୋଗ୍ୟ —1. Fit to be written.
୨ । ବର୍ଣ୍ଣନୀୟ—2 Describable.

ଲେଖ ପତ୍ର—ସଂ. ବ (ମ. ପ. ଲୋ) —ଲିଖିତ କାଗଜ; ଦସ୍ତାବଜ (ଦ୍ର.ଶ)
Lekha patra Document.

ଲେଖ ପ୍ରଣାଳୀ—ସଂ. ବ (୬ଷ୍ଠୀ ତତ୍)—ଲେଖିବାର ଢଙ୍ଗ; ଲେଖିବାର
Lekha pranali ଶୈଳୀ—Style of writing.
[ଲେଖ ଶୈଳୀ – ଅନ୍ୟରୂପ]

ଲେଖର୍ଷଭ —ସଂ. ବ (୭ମୀ ତତ୍; ଲେଖ=ଦେବତା; ସେମାନଙ୍କ ମଧ୍ୟରେ
Lekharshabha ଋଷଭ=ଶ୍ରେଷ୍ଠ )—ଦେବରାଜ; ଇନ୍ଦ୍ର —
Indra; the king of the gods.

ଲେଖ ହାର (ହାରକ)—ସଂ. ବ ପୁଂ (ଲେଖ+ହୃ ଧାତୁ+କର୍ତ୍ତୃ ଅ;
Lekhahāra (hāraka) ଅକ) — ଯେଉଁ ଲୋକ ଏକ
ସ୍ଥାନରୁ ସ୍ଥାନାନ୍ତରକୁ ପତ୍ରାଦି ନିଏ; ପତ୍ରବାହକ; ହରକରା
—Letter-carrier; the bearer of a letter.

ଲେଖା—ସଂ. ବ. ସ୍ତ୍ରୀ (ଲିଖ୍ ଧାତୁ+ଭାବ ଅ+ସ୍ତ୍ରୀ. ଆ)—୧ । ଲେଖିବ,
Lekhā କ୍ରିୟା; ଲିଖନ—1. Act of writing. ୨ । (+
କର୍ମ.ଅ+ଆ)ହସ୍ତାକ୍ଷର; ହସ୍ତଲିପି--2. Handwriting.
୩ । ପତ୍ର; ଚିଠି—3. Letter. ୪ । ଦସ୍ତାବଜ;ଦଲିଲ—
4. Document; deed. ୫ । ରେଖା—5. Line.
୬ । ଚିତ୍ର—6. Painting. ୭ । ଅକ୍ଷରମାଳା; ଲିପି —
7. Alphabet; script. ୮ । ଧାଡ଼ି—8. Row.
୯ । ଗଣନା—9. Calculation. ( ଉ—ଏ
ଦୁଃଖକୁ ଭୁମ୍ଭେ କରବ କିମ୍ପା ଲେଖା—କୃଷ୍ଣସିଂହ
ମହାଭାରତ ବନ । ) ୧୦ । ବର୍ଣ୍ଣନା; ଚିତ୍ରଣ—
10 Delineation; description; act of
painting; depicting.
ଦେ. ବ—୧ । କୌଣସି ବ୍ୟକ୍ତିର ଲିଖିତ ଗ୍ରନ୍ଥ—
लेखा 1. The writings of a person;
the works of an author. ୨ । ଲେଖିବାର
ପଦ୍ଧତି ବା ପ୍ରକାର—2. Style of writing;
୩ । ଲିଖିତ ବିଷୟ—3. Anything committed
to writing. [ ଉ—ଖରେ ଭାଜା, ଏକ
ଲେଖା —ଚଗ । ] ୪ । ସାଦୃଶ୍ୟ; ସମାନତା—
4. Similarity; equality. ୫ । ରକ୍ତ, ବିବାହ
ବା ଧର୍ମଦ୍ୱାରା ପ୍ରତିଷ୍ଠିତ ସମ୍ପର୍କ—5. Relationship
( by blood, marriage or religion ).
(ଉ—ସେ ଲେଖାରେ ମୋର ଭାଇ ହେବେ ।
"ନାହି ଲେଖା ମୋହର ଅଛି ତ ସଉଦ"—କୃଷ୍ଣସିଂହ
ମହାଭାରତ ଉଦ୍‌ଯୋଗପର୍ବ । ) ୬ । କପାଳଲେଖନ—
6. The dispensation of fate. ୭ । ତୁଳନାକରଣ
7. Comparison. ୮ । ବିଚାର; ବିବେଚନା—
8. Consideration; view ; opinion.
୯ । ଅନୁମାନ—9. Inference. ( ଉ—ଅଙ୍କ
ଲେଖାରେ ଚନ୍ଦ୍ର, ସୂର୍ଯ୍ୟ କାହାନ୍ତି—ଚଗ । ) ଦେ. ବଣ—
লিখিত, লেখ । लिखाहुआ ୧ । ଲିଖିତ—1. Written.
মতন, লক্ষ্য तरह ୨ । ସଦୃଶ; ତୁଲ୍ୟ; ସମ—2. Equal;
similar. ୩ । ( ସଂ. ଲକ୍ଷ୍ୟ ) ତୁଳନୀୟ—
3. Comparable. (ଉ—ଦେଖିଲେ ସର୍ଗୀ ତାର
ମଧ୍ୟେ ଚନ୍ଦ୍ରରେଖା, ଶୋଭାରେ ଦମୟନ୍ତୀ ହୋଇଅଛୁ
ଲେଖା—କୃଷ୍ଣସିଂହ ମହାଭାରତ ବନ । ) ୪ । ଯେଉଁ
(ଅଲେଖା—ବିପରୀତ) କାଗଜ ଉପରେ ଲେଖା ଯାଇଥାଏ—
4. ( paper ) On which something has
been written. ୫ । ବନ୍ଧୁତାଦ୍ୱାରା ସମ୍ପୃକ୍ତ—
5. Related. (ଉ—ସେ ମୋର ଭାଇ ଲେଖା । )
সম্পর্ক ୬ । ଯୋଗ୍ୟ; ଯୋଗ୍ୟମାନଙ୍କ ଭିତରେ ପରିଗଣିତ—
গণ্য 6. Fit, worth notice; worth mention.
( ଉ—ଏକ ପୃଥ୍ୱ ବ ପୃଥରେ ଲେଖା ?—ଚଗ । )
লেখা ୭ । କପାଳରେ ଲେଖା ହୋଇଥିବା (ବିଷୟ); ଅବଶ୍ୟମ୍ଭାବୀ
7.—Inevitable. ୮ । ପୂର୍ବରୁ ନିର୍ଦ୍ଦିଷ୍ଟ ବା ସ୍ଥିରୀକୃତ—
8. Preordained, settled beforehand.
[ଯଥା—ତୋ ପାଇଁ(ତୋ କପାଳରେ) ଦୁଃଖ ମାତ୍ର ଲେଖା
ହୋଇଛି ।] ୯ । ରୂପେ ପରିଗଣିତ; ବିବେଚିତ—
গণ্য गण्य 9. Counted as; considered as.
(ଉ—ଠେକା କହେ କେଜା ରେ ! ତୁ ଜୋକ ମଣିଷରେ
ଲେଖାରେ—ଚଗ । ସେ ଲେଖା ହୋଇ
ଲକ୍ଷ୍ମୀମନ୍ତମାନଙ୍କରେ—କୃଷ୍ଣସିଂହ ମହାଭାରତ ବନ ।)
करे ଦେ. ଅ—ଲେଖାଏଁ—At the rate of. ପ୍ରତେ
वाले (ଗଡ଼ଜାତ, ଗଞ୍ଜାମ) ଅ—ପରି; ସମାନ—Like. [ ଉ—
ମୋ ଦେହରେ ସିଂହଲେଖା ବଳ ଅଛି ।)

ଲେଖା(ଖେ)ଇ ନେବା—ଦେ. କ୍ରି—ସମ୍ପତ୍ତି ପ୍ରଭୃତିକୁ କାହାଠାରୁ ଦଲିଲ
Lekhā(khe)i nebā ଦସ୍ତାବଜ ଆଦିଦ୍ୱାରା ହସ୍ତାନ୍ତରିତ କରାଇ
লিখিয়েনেওয়া लिखालेना ନେବା—To get a deed
executed by another conveying some
landed property in one's favour.

ଲେଖା(ଖେ)ଇବା—ଦେ. କ୍ରି ( ଲିଖ୍ ଧାତୁର ଣିଜନ୍ତ ଲେଖି ଧାତୁ )—
Lekhā(khe)ibā ଅନ୍ୟ ବ୍ୟକ୍ତି ଦ୍ୱାରା ଲେଖିବା କ୍ରିୟା ସମ୍ପାଦନ
লেখান କରାଇବା—To cause to be written by
लिखवाना another.

ଲେଖାଏ(ରେ)—ଦେ. ବ—୧ । ( କୌଣସି ବ୍ୟକ୍ତିର) ବିବେଚନାରେ;
Lekhāe(re) ଗଣନାରେ—1. According to one's
মতে calculation, knowledge or belief. ୨ ।
लेखामें ଅନୁମାନରେ—2. According to one's
करे inference. [ ଉ—ତା ଲେଖାରେ ଇନ୍ଦ୍ର,
लेखा ଚନ୍ଦ୍ର, କାହାନ୍ତି । ] ୩ । ଲେଖାଏଁ; ପ୍ରତ୍ୟେକକୁ

—3. Each. [ ଉ—ଶକୁନକୁ ପାର୍ଥ କୋଳ୍ପୁବ ପ୍ରହାରିଲେ, ଜଣକେ ତିନି ତିନି ଲେଖାରେ ବାନ୍ଧିଲେ । କୃଷ୍ଣସିଂହ. ମହାଭାରତ. ଦ୍ରୋଣ । ]

**ଲେଖାଏଁ**—ଦେ. ଅ—୧ । କରି; ପ୍ରତ୍ୟେକ ବ୍ୟକ୍ତିଙ୍କୁ; ପ୍ରତ୍ୟେକ Lekhāeñ ବିଷୟରେ—1. (adverb) To each, in the (ଲେଖେଁ—ଅନ୍ୟରୂପ) case of each; in each case. କରে ୨ । ପ୍ରତ୍ୟେକଙ୍କୁ ସମ ପରିମାଣରେ—2 In equal लेखा quantities to each. ୩ । ପ୍ରତ୍ୟେକରେ—3. Each. [ ଉ—କହ ମୁଁ ସାଥିଙ୍କ ଘରେ କାମ କରି ଦିନଅଣା ଲେଖାଏଁ ମୂଲ ପାଏଁ ।

ପ୍ରତ୍ୟେକ କୋଠରୀରେ ୩ ଜଣ ଲେଖାଏଁ ମନୁଷ୍ୟ ରହିବେ ।

ପିଲାମାନେ ଗଣ୍ଡିଏ ଲେଖାଏ ଭାତ ଖାଇ ସ୍କୁଲକୁ ଦଉଡ଼ିଲେ । ]

ମতন ୪ । ପରି; ପ୍ରକାରେ—4. As; like. [ ଉ—ସେ माफिक ଗରିବ ଲେଖେଁ କଷ୍ଟରେ ଚଳୁଛି । ଗଡ଼ଜାତ ଓ ଗଞ୍ଜାମରେ ଏହି ଅର୍ଥରେ ଲେଖା ମଧ୍ୟ ବ୍ୟବହୃତ ହୁଏ । ]

**ଲେଖା କପି**—ଦେ. ବି (ସଂ. ଲିଖିତ+ଇଂ. କପି) ପ୍ରେସ୍‌ରେ Lekhā kapi ଛପା ହେବା ନିମନ୍ତେ ପ୍ରସ୍ତୁତ ହସ୍ତଲିଖିତ ଟାଇପ୍‌କପି, ଛ(ଛା)ପାକପି } ବିପରୀତ ଲେଖ୍ୟ—(printing) Manuscript meant for being printed at a press; copy for the press. লেখাকপী लिखाकौपी

**ଲେଖା କରିବା**—ଦେ କ୍ରି (ଅନ୍ୟ ସମ୍ପର୍କବାଚକ ଶବ୍ଦ ପରେ ଯୁକ୍ତ, Lekhā karibā ଯଥା—ଭାଇ ଲେଖା କରିବା, ପୁଅ ଲେଖା ମতদেখা କରିବା)—କୌଣସି ବ୍ୟକ୍ତି ସଙ୍ଗେ ନିଜର ରକ୍ତ ସମ୍ପର୍କୀୟ लेखाकरना ବ୍ୟକ୍ତି ପରି ବ୍ୟବହାର କରିବା; ଅମୁକରୂପେ ଗଣନ କରିବା; ଅମୁକ ପରି ବ୍ୟବହାର କରିବା—To treat, or look upon a person as one's blood-relation. [ ଉ—ସେ ଦେବ ଶିଷ୍ୟମାନଙ୍କୁ ପୁଅ ଲେଖା କରନ୍ତି । ]

**ଲେଖା କାରକ**—ସ. ବି—ଲେଖକ; କିରାଣି—Writer; scribe; Lekhā kāraka copyist.

**ଲେଖା ଜବାବ୍**—ଦେ. ବି (ଜବାବ)—ମକଦ୍ଦମାରେ ପ୍ରଥମ ପକ୍ଷର Lekhā jabāb ଅରଜି ବା ଅଭିଯୋଗର ଉତ୍ତରରେ ଦାଖଲ লিখিতজবাব କରାଯିବା ଲେଖା ବା ବର୍ଣ୍ଣନା ପତ୍ର—A written लिखाजबाब statement filed in reply to a plaint or charge,

**ଲେଖା ଜୋ(ଯୋ)ଖା**—ଦେ. ବି (ସହଚର) (ଲିଖ୍ ଧାତୁ ଓ ଯୁଜ୍ ଧାତୁ) Lekhā(jo)jokhā ୧ । ହିସାବ ପତ୍ର—1. Accounts. ୨ । লেখাজে ଲେଖିବା ଓ ଗଣନା କରିବା—2. Writing लेखाजोखा and calculating. ୩ । ହିସାବ ପତ୍ର କରିବା—3. Making up of accounts. ୪ । ହିସାବ ମିଳାଇବା— . Squaring up of accounts. ୫ । ଗଣନା—5. Calculation. ବିଣ—ଦୂର ସମ୍ପର୍କରେ ସମ୍ପୃକ୍ତ — Distantly দূরসম্পর্কীয় related. [ ଉ—ଅମ୍ଭ ଆଈ ଲେଖାଜୋଖାରେ लेखाजोखा ବିମଳା ଦେଈଙ୍କ ପିଉସୀ । ପଦ୍ମାକରମୋହନ—ଗଳ୍ପ ସ୍ୱଳ୍ପ ]

**ଲେଖାଧିପ**—ସଂ. ବି (ଷଷ୍ଠୀ ତତ୍; ଲେଖ=ଦେବତା+ଅଧିପ)—୧ । Lekhādhipa ଇନ୍ଦ୍ର; ଦେବରାଜ—Indra, the king of the gods.

୨ । ରାଜା—2. King [ ଉ—ଲେଖାଧିପ ଅଷ୍ଟଦୁର୍ଗର ଭଣେ । କବିସୂର୍ଯ୍ୟ—ବଳେ:ସ୍ୱରଜମ୍ଭ ଲ. ଗୀତି । ]

**ଲେଖା ପଢା(ଢ଼ି)**—ଦେ. ବି (ସହଚର) (ସ. ଲେଖା ଓ ପଠନ)— Lekhā pardhā (rdhi) ୧ । ଲେଖିବା ଓ ପଢ଼ିବା—1. লেখাপড়া(ঢ়া) Writing and reading. ୨ । ବିଦ୍ୟାକୁ लिखापढा ଶିକ୍ଷା; ବିଦ୍ୟାଚର୍ଚ୍ଚା; ପାଠପଢ଼ା—2. Learning education; studies. ୩ । କୌଣସି ଦଲିଲ ଲେଖିବା ଓ ତାହା ପଢ଼ିକରି ଶୁଣାଇବା—3. Writing and reading out of a document. ୪ । ଲିଖିତ ଦଲିଲ ବା ପତ୍ର; ଦସ୍ତାବିଜ୍—4. Document; written deed; record

**ଲେଖାପଢ଼ା(ଢ଼ି) କରିନେବା**—ଦେ. କ୍ରି—କୌଣସି ମୌଖିକ ବିଷୟ Lekhāpardhā(rdhi) karineba ସମ୍ବନ୍ଧେ ଦଲିଲ ଲେଖାଇ [ଲେଖାପଢା(ଢ଼ି)କରି(ରେ)ଇ ନ(ନେ, ବା—ଅନ୍ୟରୂପ] ନେବା— লেখাপড়াকবে নেওয়া To have a document लिखापढा कर(रा)लेना executed in respect of any matter, to have a matter reduced to writing.

**ଲେଖା ପୁସ୍ତକ**—ଦେ. ବି—ହସ୍ତଲିଖିତ ପୁସ୍ତକ—Manuscript; Lekha pustaka written book. (ଲେଖାବହି—ଅନ୍ୟରୂପ) লখাপুস্তক, লেখাবই लिखीपुस्तक [ଛା(ଛ)ପାବହି—ବିପରୀତ]

**ଲେଖା ପ୍ରମାଣ**—ଦେ. ବିଃ (ସଂ. ଲିଖିତ+ପ୍ରମାଣ)—ଲେଖାଦ୍ୱାର Lekhā pramāṇa କୌଣସି ବିଷୟର ପ୍ରମାଣ—Docu- লিখিত প্রমাণ mentary evidence; evidence लिखितप्रमाण, लिखाप्रमाण consisting of writing, (ମୁଖପ୍ରମାଣ—ବିପରୀତ)

**ଲେଖା ପ୍ରମାଣେ**—ଦେ. କ୍ରି, ବିଣ—ଲେଖାର ଅନୁସାରେ— Lekhā pramāṇe According to the writing (ଲେଖା ମାଫିକେ—ଅନ୍ୟରୂପ) লোখামোতাবেক लेखकामाफिक

**ଲେଖା ମଡ଼ା(ଢ଼େ)ଇବା**—ଦେ. କ୍ରି—ଲେଖା ହୋଇଥିବା ଅକ୍ଷର Lekhā mardā(rde)ibā ଉପରେ ବାରମ୍ବାର ଲେଖି କରି লেখা মকস করা ହସ୍ତାକ୍ଷର ଅଭ୍ୟାସ କରିବା—To write on लिखा पक्का करना letters (already written) in order to improve one's handwriting.

ଲେଖା ଯିବା—ଦେ. କ୍ରି.—ଲେଖା ହେବା (ଦେଖ)
Lekhā jibā Lekhā hebā (See)

ଲେଖାର୍ହ—ସ. ବିଣ.—(ଲେଖ + ଅର୍ହ)—ଲେଖନୀୟ—
Lekhārha Fit to be written.
ବି.— ଖାଳ ବୃକ୍ଷ; ମଳୟ ଦେଶ ପ୍ରସିଦ୍ଧ ତାଳବୃକ୍ଷ—
A kind of palm tree of the Malaya peninsula (South India).

ଲେଖାଳି—ଦେ. ବିଣ ଓ ବି—ଲେଖକ—
Lekhāli लेखक लेखनेवाला Writer.

ଲେଖା ଲେଖି—ଦେଶ. ବି—(ସହଚର)—୧ । ଲେଖିବାର ପ୍ରକ୍ରିୟା—
Lekhā lekhi 1. Acts of writing; writings
লেখালেখি, লিখালিখি ୨ । ପରସ୍ପରକୁ ପତ୍ରାଦି ଲେଖିବା—
लिखा लिखि 2. Mutual correspondence. ୩ ।
ବାରଂବାର ଲିଖନ—3. Repeated writings.
ବିଣ.—ପରସ୍ପର ସହିତ ପତ୍ରାଳାପ କରୁଥିବା—
Corresponding with each other.

ଲେଖା ହେବା—ଦେ. କ୍ରି—ଲେଖିବା କ୍ରିୟାର କର୍ମବାଚ୍ୟ ରୂପ)—୧ ।
Lekhā hebā (କୌଣସି ବ୍ୟକ୍ତିଦ୍ୱାରା) ଲିଖିତ ହେବା—
লেখা হওয়া लिखा होना 1. To be written.
୨ । ଶାସ୍ତ୍ରାଦିରେ ବର୍ଣ୍ଣିତ ହେବା—2. To be described in books. ୩ । (ଅନ୍ତର୍ଭୂକ୍ତରୂପେ) ପରିଗଣିତ ହେବା—3. To be counted as.

ଲେଖି—ସମାପିକାକ୍ରିୟା. (ପଦ୍ୟ)—କୌଣସି ଶ୍ରେଣୀରେ ଗଣନା କରାଯାଏ;
Lekhi गण्यहय लेखाहित ଗଣ୍ୟହୁଏ—Counted as.
[ଉ—ଠେକ କହେ ବେଙ୍ଗରେ !
ତତେ କୋଉ ମଣିଷରେ ଲେଖି ରେ ? ଉଗ ।]
ପ୍ରାଦେ. (ମେଦିନୀପୁର) ବି.—ଲିକ୍ଷ—Egg of lice.

ଲେଖି (ଧାତୁ)—ସ.—ଲିଖ୍ ଧାତୁର ଣିଜନ୍ତ—
Lekhi (root) Causative of the root Likh.

ଲେଖିଅ(ଆ)—ଗ୍ରା. ବି—(ସ. ଲେଖକ)—ଲେଖକ—
Lekhia (ā) Scribe; copyist; writer.

ଲେଖି ଅଛି—ଦେ. କ୍ରି.—୧ । ଲିଖିତ ହୋଇଅଛି—
Lekhi achhi লেখা আছে 1. Is written,
लिखा हुआहै ୨ । ଶାସ୍ତ୍ରରେ ନିର୍ଦ୍ଦିଷ୍ଟ ହୋଇଅଛି—2. Is prescribed in the holy books. [ଉ—ବ୍ରାହ୍ମଣଙ୍କୁ ସିନା ଲେଖିଅଛି ଉକ୍ତ । କୃଷ୍ଣସିଂହ. ମହାଭାରତ ବନ ।]

ଲେଖିତ—ସ. ବିଣ—(ଲିଖି ଧାତୁର ଣିଜନ୍ତ ଲେଖି ଧାତୁ + କର୍ମ. ତ)
Lekhita ୧ । ଯାହା ଲିପିବଦ୍ଧ ହୋଇଅଛି—1. Which has been taken down in writing. ୨ । ଲିଖିତ—2. Written. ୩ । ଚିତ୍ରିତ—3. Painted. ୪ । ଅଙ୍କିତ—4. awn..,

ଲେଖିତଂ—ଦେ. ବି ( ଉଚ୍ଚାରଣ )—ଲିଖିତଂ ( ଦେଖ )—
Lekhitaṁ Likhitaṁ ( See ) [ଦ୍ର—ଏହାର ସାଙ୍କେତିକ । ଲେ ।]

ଲେଖିତବ୍ୟ—ସ. ବିଣ ( ଲେଖି ଧାତୁ + କର୍ମ ତବ୍ୟ )—ଲେଖା
Lekhitabya ହେବାର ଉପଯୁକ୍ତ—Fit to be written.

ଲେଖିଥିବା—ଦେ. କ୍ରି—୧ । ପୂର୍ବରୁ ନିର୍ଦ୍ଦିଷ୍ଟ କରିଥିବା—1. To
Lekhithibā have preordained. [ଉ-ଈଶ୍ୱର ଯାହା
লিখেথাকা ହାତେ ତାହାର ମରଣ । ଲେଖିଥାଏ ତାହାର ତାହ
लिखता होना ଧ୍ରୁବ ଜାଣ—କୃଷ୍ଣସିଂହ. ମହାଭାରତ. ବନ ।]
୨ । ପୂର୍ବରୁ ଲେଖିବା—2. To have written before.

ଲେଖି ଦେବା—ଦେ.କ୍ରି ( ସ. ଲିଖ୍ ଧାତୁ )—୧ । ଲେଖିବା କ୍ରିୟା
Lekhi debā ସମ୍ପାଦନ କରିବା—1. To finish writing
লিখে দেওয়া ( something ). ୨ । ହିସାବ ଚୁକ୍ତି କରିବା—
2. To settle up accounts. [ଉ—ଧୃତରାଷ୍ଟ୍ର ରାଜା ତ ସେ ବନକନଙ୍କୁ । ଦେଇଅଛନ୍ତି କି ଲେଖି ବର୍ଜନକୁ—କୃଷ୍ଣସିଂହ ମହାଭାରତ. ଉଦ୍ଯୋଗ । ]
୩ । ଦଲିଲ୍‌ଦ୍ୱାରା କୌଣସି ସମ୍ପତ୍ତି ଦେବା—3. To give away a thing by executing a document.

ଲେଖିନ୍(ନି)—ବୈଦେ. ଅ—ଲେକିନ୍ ( ଦେଖ )
Lekhin(ni) Lekin ( See )

ଲେଖି ନେବା—ଦେ. କ୍ରି—୧ । କୌଣସି ବିଷୟକୁ ଲିପିବଦ୍ଧ କରିବା;
Lekhi nebā କୌଣସି ବିଷୟର ନୋଟ୍ କରିବା—1. To
লিখে নেওয়া write down; to take note of; to
लिख देना reduce to writing. ୨ । ଉତାରି
ନେବା—2. To copy out a matter.

ଲେଖି ପକା(କେ)ଇବା—ଦେ. କ୍ରି—ଅତିଶୀଘ୍ର କୌଣସି ବିଷୟ ଲେଖିବା
Lekhi pakā(ke)ibā To note down (soon or
লিখে ফেল लिख डालना hastily )

ଲେଖି ପଢ଼ି ଦେବା—ଦେ. କ୍ରି—କୌଣସି କାରବାର ବା ଚୁକ୍ତି ସମ୍ବନ୍ଧେ
Lekhi paṛhi debā ଅନ୍ୟ ବ୍ୟକ୍ତିଙ୍କୁ ଦଲିଲ ସମ୍ପାଦନ
লিখে পড়ে দেওয়া କରିଦେବା—To execute a docu-
लिख पढ़कर देना ment in favour of anothe- ( embodying certain transaction or agreement.

ଲେଖି ପଢ଼ି ନେବା—ଦେ. କ୍ରି—କୌଣସି କାରବାର ସମ୍ବନ୍ଧେ ଅପଣା
Lekhi paṛhi nebā - ନାମରେ ଅନ୍ୟ ବ୍ୟକ୍ତିଠାରୁ ଦସ୍ତାବିଜ
লিখে পড়ে নেওয়া ଲେଖାଇ କରି ଗ୍ରହଣ କରିବା—To take
लिख पढ़कर लेना or accept a document in one's favour from another person regardin certain transactions

ଲେଖିବା—ଦେ. କ୍ରି ( ସ. ଲିଖ୍ ଧାତୁ )—୧ । ଲିପିବଦ୍ଧ କରିବା—
Lekhibā 1. To write; to reduce to writing

ଲି(ଲେ)ଖ୍‌ନା ୨ । ଗଣନା କରିବା—2. To calculate.
ଲିଖନା [ଉ—ବୋଲେ ଉପେନ୍ଦ୍ର, ମାସ ଲେଖି କୃଷ ବୈଦେହୀ ଶୋକରେ ସାନ୍ତ—ଉଞ୍ଜ. ବୈଦେହୀଶବିଳାସ । ] ୩ । କୌଣସି ବ୍ୟକ୍ତି ବା ପଦାର୍ଥକୁ କୌଣସି ଶ୍ରେଣୀରେ ଗଣ୍ୟ କରିବା; ଗଣନା କରିବା—3. To count as. [ ଉ—ଶ୍ରବଣେ ଶୂଦ୍ର, ଜୀବେ ସୁଖୀ, ଉକତ ମଧ୍ୟେ ତାକୁ ଲେଖି—ଜଗନ୍ନାଥ. ଭାଗବତ । ] ୪ । ( ସଂ. ଲକ୍ଷ୍ ଧାତୁ ) ତୁଳନା କରିବା—4. To compare. ୫ । ରେଖା ଟାଣିବା—5. To draw a line. ୬ । ରଙ୍ଗାଇବା; ରଞ୍ଜିତ କରିବା—6 To paint. [ ଉ—ଯାହା ପାଦେ ଲକ୍ଷ୍ମୀ ଲେଖିଥିଲେ ଶିରୀନାହା ପଦ ଭୁଞ୍ଜ କରୁ—କବିସୂର୍ଯ୍ୟ. ସଙ୍ଗୀତ । ] ୭ । ଚିତ୍ର ଅଙ୍କନ କରିବା—7. To draw a picture. [ ଉ—ଲଭିଥିବ ଭୁରୁ-ମଧ୍ୟଳକ, ଲେଖି ହିଅ ବେଳେ ନ ଦେଖୁ ଲୋକ—କବିସୂର୍ଯ୍ୟ: କଳୋପାଟମ୍ଭଲଗୀତ ।] ୮ । ବିଚାରିବା;ଭାବିବା; ବିବେଚନା କରିବା—8. To consider; to think. ୯ । କୌଣସି ବ୍ୟକ୍ତି ନିକଟକୁ ଚିଠି ଦେବା; ପତ୍ର ପଠାଇବା—9. To write a letter to a person. ୧୦ । ନକଲ କରିବା—10 To copy down. ୧୧ । ଲିଖିତ ମତ ପ୍ରକାଶ କରିବା—11. To express an opinion in writing.

ଲେଖି ରଖିବା—ଦେ. କ୍ରି—କୌଣସି ବିଷୟକୁ ଭବିଷ୍ୟତରେ କାର୍ଯ୍ୟରେ Lekhi rakhibā ଅସିବା ପାଇଁ ଲେଖି ଆପଣା ନିକଟରେ
ଲିଖେ ରାଖା ରଖିବା—To note down for future
ଲିଖରଖନା reference.

ଲେଖିଲଖି ନେବା—ଦେ. କ୍ରି—କୌଣସି ବିଷୟ ଅମୂଳଚୂଳ ବା ଉତ୍ତମ-Lekhilākhi nebā ରୂପେ ଲେଖିବା—To take down
ଲେଖେ ଟୁ(ଟୌ)କେ ନେଓୟା anything fully or completely.
ଲିଖଓଖ ଲେନା

ଲେଖୁଣିଆ—ଗ୍ରା. ବି ( ସଂ. ଲେଖକ )—୧ । ଲେଖକ—1.Writer.
Lekhunia ୨ । ଲେଖା ବ୍ୟବସାୟୀ—2. Writer by
ଲେଖକ ଲିଖନେବାଲା profession.

ଲେଖୁ ଲେଖୁ କରଣ ହଗୁ ହଗୁ ମରଣ—ଦେ. ଢଗ—ମନୁଷ୍ୟ ବହୁ-Lekhu lekhu karana hagu hagu marana
ଲିଖিতে লিখিতে কাবাণী କାଳ ଲେଖିବା ଅଭ୍ୟାସ କଲେ
ଲିଖତେ ଲିଖତେ ଲିଖ'ନ ପଢ଼ତେ ପଢ଼ତେ ପଢ଼ନ ଶେଷରେ କରଣ ବା ସୁଲେଖକ ହୁଏ ଓ ମନୁଷ୍ୟ ଝାଡ଼ା ରୋଗରେ ଅକ୍ରାନ୍ତ ହେଲେ ଶେଷରେ ମୃତ୍ୟୁମୁଖରେ ପଡ଼େ—(A person becomes an expert by practising writing for a long time and a man meets death by being attacked with diarrhoea or dysentery for long.

ଲେଖେ(ଖେଁ)—ଦେ. ଅ.—୧ । ଲେଖାଏଁ (ଦେଖ)—1. Lekhāen
Lekhe (khen)କବେ ଲେଖା [ଲେଖେ—ଅନ୍ୟରୂପ] (See)
[ଉ—ଏକ ଚଣ୍ଡୁସରେ ଅଛୁ ପୂର୍ବେ ଲେଖେ ବାଢ ପ୍ରାଣୀ. ବୃନ୍ଦାବନ ଗୀତା । ] ୨ । ମତରେ;
ମତେ ଲେଖେ ବିବେଚନାରେ—2, In the opinion of.
[ଉ—କର୍ମ ବେଭାର ମୀମାଂସକେ,
ଜଗତ ସତ୍ୟ ତାଙ୍କ ଲେଖେ—ଜଗନ୍ନାଥ. ଭାଗବତ ।]

ଲେଖ୍ୟ—ସଂ. ବିଣ ( ଲିଖ୍ ଧାତୁ+କର୍ମ. ଯ )—ଲେଖଣୀୟ; ଲିଖନ-Lekhya ଯୋଗ୍ୟ—Fit to be written. ବି—୧ । ଅକ୍ଷର—1. Letter; figure. ୨ । ଅକ୍ଷରମାଳା—2. Script; alphabet. ୩ । ଲିଖିତପତ୍ର—3. Written letter. ୪ । ଦଲିଲ—4. Document. ୫ । ଚିତ୍ର—5. Painting. ୬ । ଦଲିଲ ପ୍ରମାଣ—6. Documentary evidence.

ଲେଖ୍ୟଚୂର୍ଣ୍ଣିକା—ସଂ. ବି ( ଲେଖ୍ୟ=ଚିତ୍ରାଦି+ଚୂର୍ଣ୍ଣି ଧାତୁ=ପେଷଣ Lekhyachurnnikā କରିବା+କରଣ ଅକ+ଆ )—ଚିତ୍ରକରର ତୁଳିକା—A painter's brush.

ଲେଖ୍ୟ ପତ୍ର—ସଂ. ବି ( କର୍ମଧା )—୧ । ଲିଖିତ ପତ୍ରାଦି—1.
Lekhya patra Letter. ୨ । ଦସ୍ତାବିଜ—2. Document. ୩ । ଲେଖାଯିବା ପାଇଁ ବ୍ୟବହୃତ ତାଳପତ୍ର—3.Palm leaves used to write on. ୪ । ( ବହୁବ୍ରୀହି ) ତାଳଗଛ ( ଶବ୍ଦକୋଷ )—4. Palm tree.

ଲେଖ୍ୟ ପ୍ରମାଣ—ସଂ. ବି—ଲିଖିତ ପ୍ରମାଣ; ଦଲିଲ ପ୍ରମାଣ—Lekhya pramāna Documentary evidence.[ଦ୍ର—ହିନ୍ଦୁ ଧର୍ମଶାସ୍ତ୍ରରେ ଲେଖ୍ୟ ପ୍ରମାଣର ଦୁଇ ପ୍ରକାରରୁ ( ମୌଖିକ, ଲେଖ୍ୟ ) ଏକ । ଲେଖ୍ୟ ପ୍ରମାଣ ମଧ୍ୟ ୨ ପ୍ରକାର—ଶାସନ ଓ ଜାନପଦ—ହି. ଶ । ]

ଲେଖ୍ୟସ୍ଥାନ—ସଂ.ବି (ମ.ପ.ଲୋ)—୧ । କାର୍ଯ୍ୟାଳୟ; ଅଫିସ୍; କଚେରୀ—Lekhyasthāna 1. An office; writer's building. ୨ । ଦପ୍ତରଖାନା; ସିରସ୍ତା; ମୁନ୍‌ସୀଖାନା; କରଣାଖାନା—2. A place where clerks are engaged in writing.

ଲେଙ୍କ(ଙ୍କୁ, ଙ୍କେ)ଡ଼ା(ଡ଼ି)—ଦେ. ବି (ସଂ. କଙ୍କୁବ, ଲକ୍ତୁକ)—ଖାଣ୍ଡିବସ୍ତ୍ର; Lenka(nku, nke)rdā(rdi) ଛିଣ୍ଡାଲୁଗା ବା କନା—Rag,
ଲେଙ୍କଡ଼ୁଆ } ଅନ୍ୟରୂପ torn bit of cloth; a shred
ଲେଙ୍କୁ(ଙ୍କେ)ଡ଼ି } of cloth. ବିଣ—ଚିରା; ଖାଣ୍ଡି
ମ୍ୟାକଡା ଚିଥଡ଼ା ( ବସ୍ତ୍ର )—Ragged; torn (cloth).

ଲେଙ୍କ(ଙ୍କେ)ଡ଼ା(ଡ଼ିଆ)—ଦେ. ବି ( ସଂ. ତରକ୍ଷୁ)—ଗଧିଆ; ହେଟାବାଘ; Lenka(nke)rdā(rdiā) ବାଘେଣ୍ଟା—Hyena; wolf,
[ଲେଙ୍କ(ଙ୍କେ)ଡ଼ା(ଡ଼ିଆ)ବାଘ—ଅନ୍ୟରୂପ] the Indian.

নেকড়া, নেকড়াবাঘ, নেকড়িআবাঘ, নেকড়েবাঘ wolf; Canis
हुड़ाड, भेड़िया Pallipes; the striped
Hyena; Hyana Striata [ ଦ୍ର—ଏମାନେ
ମ· ଲମ୍ବା] ଦେଖିବାକୁ କୁକୁରଠାରୁ ବଡ଼; କନ୍ତୁ ସାର୍ଘପୁଚ୍ଛ ।
ଏମାନଙ୍କର ବର୍ଣ୍ଣ ପାଣ୍ଡୁର ଓ ଏମାନଙ୍କ ଦେହରେ ଖାଣ
କଳା କଳା ପଟା ଦାଗମାନ ଥାଏ । ଏମାନେ ଗୁର୍ଣ୍ଣିତର । ମେଣ୍ଢା,
ଛେଳି ପ୍ରଭୃତି ଜୀବ ଏମାନଙ୍କ ଖାଦ୍ୟ । ଏମାନେ ମନୁଷ୍ୟଙ୍କୁ
ଆକ୍ରମଣ କରନ୍ତି ନାହିଁ; କନ୍ତୁ ମଡ଼ାମାଂସ ଖାଆନ୍ତି । ]

ଲେଙ୍କ(ଙ୍କୁ, ଙ୍କେ)ଡ଼ଥ—ଦେ. ବିଣ. ପୁଂ ( ଗାଳିରେ ବ୍ୟବହୃତ )—
Leṅka(ṅku, ṅke)ṛdiā ମାକଡ଼ଥ; ମର୍କଟଥ; ଶୀର୍ଣ୍ଣ—
[ଲେଙ୍କ(ଙ୍କୁ, ଙ୍କେ)ଡ଼ୀ—ସ୍ତ୍ରୀ] Feeble; emaciated.
বোগাপটকা मरा, पतला

ଲେଙ୍କା—ଦେ. ବି—୧ । ଶୂଦ୍ର ବା ଚଷା ଜାତିର ବଂଶୋପାଧି ବିଶେଷ—
Leṅkā 1. A family title of Śūdras. ୨ ।
ରାଜାଙ୍କର ଓ ଦେବତା ଙ୍କର ଶୂଦ୍ର ସେବକ ବିଶେଷ—
2. A class of śūdra sebakas of Rajas or
deities ୩ । କଉଡ଼ି ଖେଳରେ ଭୁଇଁକଟ କଉଡ଼ି ଚିତ
ହୋଇ ପଡ଼ିବାର ଦାନ; ଦୁଗା-3. The state of the
cowrie shells falling on the ground with
the dorsal side up in the game of
cowries. [ ଦ୍ର—କଉଡ଼ିଖେଳରେ ପ୍ରଥମେ ଛକା,
ଅର୍ଥାତ୍ ଛଅକଟ କଉଡ଼ି ଚିତ ହୋଇ ପଡ଼ିଥିଲେ, ତହିଁପରେ
ଲେଙ୍କା, ଅର୍ଥାତ୍ ଭୁଇଁକଟ କଉଡ଼ି ଚିତ ହୋଇ ପଡ଼ିଲେ, ଛଅ
ଦାନର ଜୁଡ଼ି ବା ମାରି ହୁଏ । ]

ଲେଙ୍କାପ—ଦେ. ବି—ମେକାପ ( ଦେଖ )
Leṅkāpa ekāpa ( See )

ଲେଙ୍କୁଡ଼ି ଶେଙ୍କୁଡ଼ି—ଗ୍ରା. ବି ( ସହରରେ )—ଚିରା ଓ ଛିଣ୍ଡାକନାର ସମୂହ
Leṅkurdi śeṅkurdi —A collection of rags
ন্যাকড়া খোকড়া गुदड़ा चिथड़ा and torn clothes.

ଲେଙ୍କେଇ—ପ୍ରାଦେ (ପୁରୀ) ବି. ପୁଂ—ପୁରୀ ଜିଲ୍ଲାରେ ଲୋକଙ୍କୁ ଡାକିବା
Leṅkei ବ୍ୟକ୍ତିଗତ ନାମ—A name given to males
in the district of Puri in Orissa;
( ଯଥା—ଲେଙ୍କେଇ ପ୍ରହରାଜ । )

ଲେଙ୍ଗ୍ଟା—ପ୍ରାଦେ ( ବାଲେଶ୍ୱର ) ବିଣ—( ଭୁଲ ବଂ· ନେଂଟା )—
Leṅg-ṭā ଲଙ୍ଗଳା; ନଗ୍ନ—Naked.

ଲେଙ୍ଗଟ—ଦେ. ବି—ଲଙ୍ଗୋଟା ( ଦେଖ )—Laṅgoṭā ( See )
Leṅgaṭa [ ଦ୍ର—ଲେଙ୍ଗଟ ଲକ୍ଷ୍ମୀ ଦୂର କର, ବାନ୍ଧେ ପକାଇଲେ
ଭିକ୍ଷୁ । ପ୍ରାଚୀ· ଭଗ୍ନଶମାହାତ୍ମ୍ୟ । ]

ଲେଙ୍ଗ(ଙ୍ଗୁ, ଙ୍ଗେ, ଙ୍ଗୋ)ଟା(ଟି)—ଦେ. ବି—ଲଙ୍ଗୋଟା । ( ଦେଖ )
Leṅga(ṅgu, ṅge, ṅgo)ṭā(ṭi) Laṅgoṭā ( See )
লেঙট लंगोट(टी)

ଲେଙ୍ଗ(ଙ୍ଗୁ, ଙ୍ଗେ, ଙ୍ଗୋ)ଟା(ଟି) ଚଢ଼ା(ଢ଼େ)ଇବା—ଦେ. କ୍ରି—
Leṅga(ṅgu, ṅge, ṅgo)ṭā( i) chaṛdhā(ṛdhe)ibā
[ଲେଙ୍ଗ(ଙ୍ଗୁ, ଙ୍ଗେ, ଙ୍ଗୋ)ଟା(ଟି) ମାରିବା—ଅନ୍ୟରୂପ] ଲଙ୍ଗୋଟା
লেঙ্গটমারা ମାରିବା ( ଦେଖ )—Laṅgoṭa māribā
लंगोट(टी) मारना ( See ).

ଲେଙ୍ଗ(ଙ୍ଗୁ, ଙ୍ଗେ, ଙ୍ଗୋ)ଟିଆ—ଦେ. ବିଣ. ପୁଂ—ଯେଉଁ ବ୍ୟକ୍ତି ଲେଙ୍ଗୁଟି
Leṅga(ṅgu, ṅge, ṅgo)ṭiā ହିଦ୍ଧଥାଏ; କୌପୀନଧାରୀ—
[ଲେଙ୍ଗ(ଙ୍ଗୁ, ଙ୍ଗେ, ଙ୍ଗୋ)ଟି ମରି—ଅନ୍ୟରୂପ] Wearing a
ন্যাঙ্গটা कङ्गोटिया strip for loin-cloth. ଦେ. ବି—
[ଲେଙ୍ଗ(ଙ୍ଗେ, ଙ୍ଗେ, ଙ୍ଗୋ)ଟେଇ—ସ୍ତ୍ରୀ] ୧। ବାବାଜୀ; ବୈଷ୍ଣବ—1. An
ascetic ୨। (ଲକ୍ଷଣାର୍ଥ) ସମ୍ବଳହୀନ ଗୃହତ୍ୟାଗୀ ବ୍ୟକ୍ତି—
2. A poor homeless person. ୩। ପରିବାର
ହୀନ ବ୍ୟକ୍ତି—3. A person having no family.

ଲେଙ୍ଗ(ଙ୍ଗେ)ଡ଼ା—ଦେ· ବିଣ· ପୁଂ (ସଂ. ଲଙ୍ଗ; ଭୂଲ. ଫା· ଲଙ୍ଗ୍ =
Leṅga(ṅge)ṛdā ଲଙ୍ଗଡ଼ା)—ଲଙ୍ଗ; ଖୋଟା—Lame. ବି—
[ଲେଙ୍ଗ(ଙ୍ଗେ)ଡ଼ୀ, ଲେଙ୍ଗଡ଼େଙ୍ଗି—ସ୍ତ୍ରୀ] ୧ । ଲଙ୍ଗ ବ୍ୟକ୍ତି—1.Lame
নেঙ্গড়া person. ୨ । ଏକପ୍ରକାର ଉତ୍କୃଷ୍ଟ ଆମ୍ବ
लंगड़ ( ଏହା ମାଲଦହ ଅଞ୍ଚଳରୁ ଏ ଦେଶକୁ ପାଚିଲା
ଅବସ୍ଥାରେ ଆମଦାନି ହୁଏ )—2. Langra mango;
an excellent species of ripe mangoes
imported from Māldā in Bengal.

ଲେଙ୍ଗ(ଙ୍ଗେ)ଡ଼ା ଆମ୍ବ—ଦେ.ବି—୧ । ଏକପ୍ରକାର ଉତ୍କୃଷ୍ଟ ଆମ୍ବ—1. A
Leṅga(ṅge)ṛdā āmba species of excellent
নেঙ্গড়া আম लंगड़ा आम mango. ୨ । ଲେଙ୍ଗଡ଼ା (୨)
[ଦେଖ]—2. Leṅgaṛdā (2) (See)

ଲେଙ୍ଗ(ଙ୍ଗୁ,ଙ୍ଗେ)ଡ଼ା(ଡ଼େ)ଇବା—ଦେ. କ୍ରି·—(ସଂ. ଲଙ୍ଗ୍ ଧାତୁ)—
Leṅga(ṅgu,ṅge)ṛdā(ṛde)ibā ୧ । ଖୋଟାଇବା; ଲଙ୍ଗ·
নেঙ্গচান लंगड़ाना ଭଳି ଚାଲିବା—1. To limp; to walk
lamely. ୨ । (ସଂ. ଲାଙ୍ଗୁଲ)—ଲାଙ୍ଗଡ଼ ପାଙ୍ଗଡ଼ହେବା
(ଦେଖ)—2 Lāṅgaṛda pāṅgaṛda hebā
(See)

ଲେଚ୍ଛିବା—ପ୍ରାଦେ·—(ସମ୍ବଲପୁର) କ୍ରି.—ଲେସିବା—To give a
Lechchh-bā coating over; to daub.

ଲେଚ୍ଛା(ଚ୍ଛା)—ଦେ. ବି—ତ୍ୟାଗ କରଣ—
Lechchhā(chhā) ত্যাগ করা छोड़ना Abandonment.

ଲେଚ୍ଛି(ଛି)ବା—ଦେ. କ୍ରି.—୧ । (ସଂ. ଲକ୍ଷ୍ ଧାତୁ)—ଲାଛିବା (ଦେଖ)
Lechchhi(chhi)bā ত্যাগ করা छोड़ना 1. Lāchhibā
(See) ୨ । ( ସଂ· ତ୍ୟଜ୍ ଧାତୁ ) ତ୍ୟାଗ କରିବା—
2. To abandon; to relinquish, to give
up. [ଦ୍ର—ତାଙ୍କୁ କେମନ୍ତ କରି ମୁରୁଛିବା, ପୋଡ଼ୁ
ପୋଡ଼ୁ ଏ ଜୀବନ ଲେଚ୍ଛିବା । ଦକାଇ ଦାସ ଗୋପୀଭାଷା]

ଲେଚ୍ଛି(ଛି) ହେବା—ଦେ. କ୍ରି.—୧ । ଲେସି ହୋଇବା; ଦେହ ତମାମ
Lechchhi(chhi) hebā ବ୍ୟାପିବା—1. To cover the
ছেয়ে যাওয়া छा जाना whole body with some-
[ଲେଚ୍ଛ ହୋଇଯିବା—ଅନ୍ୟରୂପ] thing (like a layer of
smallpox eruptions). [ ଦ୍ର—ତା' ଦେହସାର
'ବସନ୍ତ' ଲେଚ୍ଛ ହୋଇ ଯାଇଅଛି; ତାକୁ ଛୁଇଁଥ ନା

ବହୁ ମଣ୍ଡରେ ଲେଛ ହୋଇଅଛ ।] ୨ । ଲଛି ହେବା (ଦେଖ)—2. Lāchhi hebā (See)

ଲେଜ(ଜା)ର୍—ବୈଦେ. ବି.—(ଇଂ ଲେଜର୍)—ବ୍ୟବସାୟୀଙ୍କର Leja(jā)r ଖଟାଥାନ ବହି; ଯେଉଁ ଖାତାରେ ପ୍ରତ୍ୟେକ ପଣ୍ୟ ଲେଜାର लेजर ଦ୍ରବ୍ୟ ସମ୍ବନ୍ଧେ ବା ପ୍ରତ୍ୟେକ ବ୍ୟକ୍ତି ସମ୍ବନ୍ଧେ ତାହାଙ୍କର ହିସାବମାନ ଏକତ୍ର ଗୋଟିଏ ଗୋଟିଏ ହେଡଙ୍ଗ୍ ତଳେ ସଙ୍ଗୃହୀତ ହୋଇ ଲେଖା ଥାଏ—A trader's ledger book.

ଲେଜସ୍ଲେଟିଭ୍ ଅସେମ୍ବ୍ଲି—ବୈଦେ.ବି. (ଇଂ)—୧ । ସ୍ତ୍ର ୧୯୩୫ ସାଲର Lejislatibh āsembli ଭାରତ ଶାସନ ସଂସ୍କାର ଆଇନର ପ୍ରବର୍ତ୍ତନ ହେବାରୁ ପ୍ରଦେଶମାନଙ୍କର ବ୍ୟବସ୍ଥାପକ ସଭାମାନଙ୍କ ନାମ—1. Provincial Legislative Assembly (under the Government of India Act 1935.) ୨ । ଭାରତ ଶାସନ ସଂସ୍କାର ଆଇନର ପ୍ରବର୍ତ୍ତନ ପୂର୍ବରୁ ଇଂରାଜ ଶାସିତ ସମଗ୍ର ଭାରତର କେନ୍ଦ୍ରିକ ବ୍ୟବସ୍ଥାପକ ସଭା—2. Central Legislative Assembly for the whole of India before the Government of India Act লেজিস্‌লেটিভ আসেম্ব্‌লি लेजिसलेटिभ आसेम्बली 1935.

ଲେଜସ୍‌ଲେଟିଭ୍ କାଉନ୍‌ସିଲ୍—ବୈଦେ. ବି.—(ଇଂ)—କୌଣସି Lejis-letibh kāun-sil ପ୍ରଦେଶ ପାଇଁ ଆଇନ ପ୍ରସ୍ତୁତ କର ଲେଜିସ୍‌ଲେଟିଭ କାଉନସିଲ ବା ସଭା; ପ୍ରାଦେଶିକ ବ୍ୟବସ୍ଥାପକ ସଭା-लेजिस्लेटिभ कौनसिल Provincial Legislative Council(which is no longer in existence after the Government of India Act. 1935). [ଦ୍ର—ପୂର୍ବେ ପ୍ରାଦେଶିକ ବ୍ୟବସ୍ଥାପକ ସଭାକୁ ଲେଜସ୍ଲେଟିଭ୍ କାଉନ୍‌ସିଲ୍ ଓ ଭାରତର କେନ୍ଦ୍ର ବ୍ୟବସ୍ଥାପକ ସଭାକୁ ଲେଜସ୍ଲେଟିଭ୍ ଅସେମ୍ବ୍ଲି ବୋଲା ଯାଉଥିଲା । ୧୯୩୫ ସାଲର ଭାରତ ସଂସ୍କାର ଆଇନର ପ୍ରବର୍ତ୍ତନ ସଙ୍ଗେ ପ୍ରାଦେଶିକ ବ୍ୟବସ୍ଥାପକ ସଭାମାନଙ୍କୁ ଲେଜସ୍ଲେଟିଭ୍ ଅସେମ୍ବ୍ଲି ଓ ସମଗ୍ର ଭାରତୀୟ ରାଷ୍ଟ୍ର ସଂଘର ବ୍ୟବସ୍ଥାପକ ସଭାକୁ ଫେଡେରାଲ୍ ଅସେମ୍ବ୍ଲି ବୋଲାଗଲା; ଫେଡେରାଲ ଅସେମ୍ବ୍ଲିରେ ବ୍ରିଟିସ ଭାରତର ଓ ଦେଶୀୟ ରାଜ୍ୟମାନଙ୍କର ପ୍ରତିନିଧିମାନେ ରହିବାର ନୂଆ ବ୍ୟବସ୍ଥା ହୋଇଅଛି । ]

ଲେଞ୍ଚ—ଗ୍ରା. ବିଣ (ସଂ. ନୀଚ)—୧ । ନୀଚଶ୍ରେଣୀୟ—1. Of low Lencha class. ୨ । ନୀଚମନାଃ—2. Mean-minded. नीच नीच ୩ । ନିମ୍ନ—3. Low. [ ଉ—ଅପେ ଉଞ୍ଚ ଅପେ ଲେଞ୍ଚ ଅପେ ସବ ସମ—ପ୍ରାଚୀ. ବ୍ରହ୍ମକରୂପଣଗୀତା । ]

ଲେଞ୍ଜ—ପ୍ରାଦେ (ସିଂହଭୂମ ଓ କଳାହାଣ୍ଡି) ବି (ଭୁଲ. ବି. ଲେଂଜ)—Lenja ୧ । ଲାଙ୍ଗୁଡ଼; ଲାଞ୍ଜ—1. Tail. ୨ । ଢିଙ୍କି ଲାଞ୍ଜି—2. The tail end of a husking pedal.

ଲେଞ୍ଜ(ଞ୍ଜେ)ରା—ଦେ. ବି (ସଂ. ଲାଞ୍ଜ—ଲାଙ୍ଗୁଡ଼; ପଶୁର ପଛରେ ଲାଙ୍ଗୁଡ଼ Lenja(nje)rā ପରି ଯାହା ପଦାର୍ଥରେ ଲାଗିଥାଏ)—୧ । ଅଳିଆ ଜଞ୍ଜାଳ कूड़ा करकट 1. Rubbish, sweepings. ୨ । ପିଚୁଟି काँची, कीचड ଆଖିର ଲେଦରା; ପିଚୁଟି; ଚକ୍ଷୁର ମଳ—2. Concrete rheum of the eye; mucus of the eye; exudation from the eye. ୩ । ପଦାର୍ଥର ଦେହରେ ଲାଗିଥିବା ସୂତା ଆଦି ଅଳିଆ—3. Tangles sticking to a thing. ୪ । ଜଞ୍ଜାଳ; ଗୋଳମାଳ; ଅଡୁଆ; ଝଞ୍ଜଟ—4. Complications; confusion; entanglement. ୫ । ଦୁର୍ନାମ; ଅପବାଦ—5. Evil name, scandal. ଦେ. ବିଣ—নোংরা ୧ । ଅଳିଆଯୁକ୍ତ—1. Full of refuse or rubbish. मैला ୨ । ଅଡୁଆ ଓଡୁଆ—2. Tangled; confused. ୩ । ଅପରିଷ୍କୃତ—3. Unswept; uncleansed.

ଲେଞ୍ଜ(ଞ୍ଜେ)ରା ମେଞ୍ଜ(ଞ୍ଜେ)ରା—ଦେ. ବିଣ—୧ । ଅବଦାଉଳିଆ—Lenja(nje)rā menja(nje)rā 1. Clumsy; awkward. নোংরা कूड़ा करकटवाला ୨ । ଅଡୁଆ ଅଡୁଆ—2. Tangled.

ଲେଞ୍ଜରା ଲଗା କାମ—ଦେ. ବି—ଯେଉଁ କାମରେ ଦୁର୍ନାମ ମିଳେ ବା Lenjarā lagā kāma ଯେଉଁ କାମ ସହଜରେ ଛିଣ୍ଡେ ନାହିଁ—জংজাল A work which brings bad name or बदनामी काम dees not come to an easy conclusion.

ଲେଞ୍ଜା—ପ୍ରାଦେ. (ସମ୍ବଲପୁର, ବାମଣ୍ଡା) ବି—୧ । ହେଟା ବାଘ—Lenjā 1. Hyena; wolf. ୨ । ରାମଶିଆଳ (ଦେଖ)—2. Rāmasiāla (See)

ଲେଞ୍ଜା ଲେପ୍ଟା—ପ୍ରାଦେ. (ଗାଙ୍ଗପୁର) ବିଣ—କାଠପଟାଳ ପରି ଲଗା-Lenjā leptā ଲଗି ହୋଇ ଶୋଇ ପଡ଼ିଥିବା (ଲୋକ ବା ବସ୍ତୁ)—Sleeping or placed together densely like logs in a rafter.

ଲେଟ୍—ବୈଦେ. ବିଣ (କଚିରଥା) (ଇଂ. ଲେଟ୍)—ପରଲୋକଗତ; Let ସ୍ୱର୍ଗୀୟ—The late; the deceased. [ ଦ୍ର—লেট मृत ବ୍ୟକ୍ତିର ନାମ ପୂର୍ବରେ ଓଡ଼ିଆ ସାହିତ୍ୟକ ଭାଷାରେ लेट ସ୍ୱର୍ଗୀୟ ଅମୁକ ଲେଖାଯାଏ ଇଂଲାରେ ଏବଂ ବଙ୍ଗଳାର ଅନୁକରଣରେ କେହି କେହି ଓଡ଼ିଆରେ ୰ ଅମୁକ ବୋଲି ଲେଖନ୍ତି । ଇଂରାଜୀ The late so & so ର ଅନୁକରଣରେ ଗଞ୍ଜାମରେ କଚିରଥା ଲେଖାରେ ଲେଟ୍ ଅମୁକ ଲେଖାଯାଏ । ଓଡ଼ିଆ କଚିରଥା ଭାଷାରେ লেট कान ପରେ । ମୁ । (=ଟୁଡୋପା) ଲେଖାଯାଏ, लेट ଯଥା—ଅମୁକ । ମୁ । ] ବୈଦେ. ବି (ଇଂ. ଲେଟ୍)—୧ । ନିର୍ଦ୍ଦିଷ୍ଟ ସମୟ ଗଡ଼ିଯିବା ଅବସ୍ଥା; ଡେରି; କାଳବିଳମ୍ବ 1. Lateness of time; delay. ବିଣ—୨ । କାଳ ବିଳମ୍ବଯୁକ୍ତ; ବିଳମ୍ବିତ—2. Late; delayed. ୩ । ବିଳମ୍ବରେ ଚାଲୁଥିବା (ଘଣ୍ଟା)—3. Going late (clock or watch).

ଲେଟ୍ କରିବା—ଦେ. କ୍ରି—୧ । ନିର୍ଦ୍ଦିଷ୍ଟ ସମୟରେ ନ ପହଞ୍ଚି କାଳବିଳମ୍ବ କରିବା—1. To exceed the fixed time. ୨ । କୌଣସି ଘଣ୍ଟାର କଣ୍ଟାକୁ ପଛଆଡ଼କୁ ଚଳାଇ ଦେଇ ଘଣ୍ଟାଦ୍ୱାରା ଜ୍ଞାପିତ ସମୟକୁ ବିଳମ୍ବିତ କରିବା—2. To make a watch or clock become or go late.
Let karibā
লেট করা
लेट करना

ଲେଟ୍ ପେନ୍ସିଲ—ବୈଦେ. ବି ( ଇଂ. )—ଲେଡ୍ ପେନ୍ସିଲ୍ ( ଦେଖ )
Let pensil — Led pensil ( See )

ଲେଟ୍ ପ୍ରେଜେଣ୍ଟ୍—ବୈଦେ. ବି ( ଇଂ. ଲେଟ୍ ପ୍ରେଜେନ୍ସ )—କର୍ମଚାରୀଙ୍କର ବା ଛାତ୍ରର ନିର୍ଦ୍ଧାରିତ ସମୟ ଗଡ଼ିଯିବା ପରେ ବିଦ୍ୟାଳୟରେ, କାରଖାନାରେ ବା କାର୍ଯ୍ୟାଳୟରେ ଉପସ୍ଥିତ ହେବା ଅବସ୍ଥା—Late presence at the school, office or factory.
Let prejent
লেট প্রেজেন্ট
लेट प्रेजेण्ट

ଲେଟ୍ ଫିସ୍ (ଫୀ)—ବୈଦେ. ବି ( ଇଂ )—ଡାକଘରେ ଚିଠି ଡେରିରେ ପକାଇ ତାହା ସେହି ଦିନର ଡାକରେ ପଠାଯିବା ପାଇଁ ପ୍ରେରକଙ୍କୁ ଦେବାକୁ ପଡ଼ିବା ଅଧିକା ଶୁଳ୍କ ବା ଜରିମାନା—Late fees paid to the post office for a letter posted late
Let phis(phī)
লেট ফিজ
लेट फीश

ଲେଟ୍ ହେବା—ଦେ. କ୍ରି—୧ । କାଳ ବିଳମ୍ବ ଘଟିବା—1. Being late in point of time. ( ଯଥା—ମୁଁ ଅଳ୍ପ କରିବାକୁ ଆସୁ ଆସୁ ଲେଟ୍ ହୋଇଗଲି ।) ଦେ. କ୍ରି—୧ । (ବିଦ୍ୟାଳୟରେ ଛାତ୍ର)ବିଳମ୍ବରେ ଉପସ୍ଥିତ ହେବା—1. To be late in attending school ( said of a student ). ୨ । ( ଘଣ୍ଟା ) ଠିକ୍ ସମୟ ନ ରଖି ବିଳମ୍ବରେ ନିର୍ଦ୍ଦିଷ୍ଟ ସମୟ ଦେଖାଇବା—2. The state of a clock or watch being late. ୩ । ନିର୍ଦ୍ଦିଷ୍ଟ ସମୟରୁ ଏତେ ସମୟ ବିଳମ୍ବ କରିବା—3. To be late (by so much time). (ଯଥା—ଆଜି ମୁଁ ପାଞ୍ଚମିନିଟ୍ ଲେଟ୍ ହେଲି; ଅଜି ମାଡ୍ରାଜ ମେଲ୍ ଘଣ୍ଟାଏ ଲେଟ୍ ହେଲା । )
Let hebā
লেট হওয়া
लेट होना

ଲେଟ—ସ. ବି—ବର୍ଣ୍ଣସଙ୍କର ଜାତିବିଶେଷ ( ଶବ୍ଦକୋଷ )—Name of a hybrid caste.
Leṭa

ଲେଟର୍—ବୈଦେ. ବି (ଇଂ. ଲେଟର୍)—୧ । ଚିଠିପତ୍ର—1. Letter. ୨ । ଛାପାଖାନାରେ ଛାପିବା ପାଇଁ ବ୍ୟବହୃତ ହେବା ଅକ୍ଷରର କାଠି; ଟାଇପ୍—2. ( Printing ) Type.
Letar
লেটার
लेटार

ଲେଟର୍ ଅଫ୍ କ୍ରେଡିଟ୍—ବୈଦେ. ବି ( ବହୁବଚନ ) ( ଇଂ. )—ଯେଉଁ କାରବାର ଚିଠିଦ୍ୱାରା ଜଣେ ବ୍ୟବସାୟୀ ଅନ୍ୟ ଜଣେ ବ୍ୟବସାୟୀଙ୍କ ନିକଟକୁ ପତ୍ରବାହକଙ୍କ ସଙ୍ଗେ କାରବାର ଚଳାଇବା ନିମନ୍ତେ ସୁପାରିସ କରନ୍ତି; ଖାତର ଚିଠି—Letter of credit. [ଦ୍ର—ଏଥିରେ ପତ୍ର ଲେଖକ ଟଙ୍କାର ଗୋଟିଏ ଊର୍ଦ୍ଧ ସୀମା ଲେଖି ଦେଇଥାଆନ୍ତି, ଅର୍ଥାତ୍, ଉକ୍ତ ଚିଠିରେ ଯେଉଁ ବ୍ୟକ୍ତିଙ୍କ ନାମ ଲେଖାଥାଏ ସେ ବ୍ୟକ୍ତିଙ୍କୁ ଏତେ ଟଙ୍କା ଉଚ୍ଚତମ ସୀମା ମଧ୍ୟରେ ଖାତିରରେ ଉଧାର (credit) ଦିଆ ଯାଇପାରେ, ଏହା ଲେଖାଥାଏ । ]
Letar aph kredit
লেটার অফ ক্রেডিট
लेटर अफ क्रेडिट

ଲେଟର୍ ପେପର୍—ବୈଦେ. ବି (ଇଂ.)—ଚିଠି ଲେଖିବା ପାଇଁ ବ୍ୟବହୃତ କାଗଜ—Letter paper; note-paper.
Letar pepar
লেটার পেপার
लेटर पेपर

ଲେଟର୍ ପ୍ରେସ୍—ବୈଦେ. ବି (ଇଂ)—୧ । ବ୍ୟକ୍ତିବିଶେଷଙ୍କ ଦ୍ୱାରା ବ୍ୟବହୃତ ଯେଉଁ ଚିଠି କାଗଜରେ ତାଙ୍କର ନାମ, ଠିକଣା, ଉପାଧି ପ୍ରଭୃତି ମୁଦ୍ରିତ ହୋଇଥାଏ—1. Letter press. ୨ । ଏକ ପ୍ରକାର ଛପା; ପ୍ଲେଟରୁ ଛପା ନ କରି ଅକ୍ଷର (ଟାଇପ୍)ରୁ ଛପା କରିବା ପ୍ରକ୍ରିୟା—2. Letter press printing.
Letar pres
লেটার প্রেস
लेटरप्रेस

ଲେଟର୍ ବ(ବା)କସ—ବୈଦେ. ବି (ଇଂ. ଲେଟରବକସ)—୧ । ମୁହଁ ପଡ଼ିଥିବା ଯେଉଁ ବାକ୍ସରେ [ ଲେଟର୍ ବ(ବା)କ୍ସ—ଅନ୍ୟରୂପ ] ଡାକଘରକୁ ପଠାଯିବା ଚିଠିମାନ ଲୋକେ ପକାଇ ଦିଅନ୍ତି ଓ ଡାକ ବିଭାଗର କର୍ମଚାରୀମାନେ ନିର୍ଦ୍ଦିଷ୍ଟ ସମୟରେ ଆସି ସେହି ବାକସର ମୁହଁ ଫିଟାଇ ବିଭିନ୍ନ ଭିତିରେ ପଡ଼ିଥିବା ଚିଠିମାନ ସଂଗ୍ରହ କରିନିଅନ୍ତି—1. Postal letter-box. ୨ । ବଡ଼ଲୋକମାନଙ୍କ ଦାଣ୍ଡ ପାଖେ ଥିବା ମୁହଁ ପଡ଼ିଥିବା ଡାକବାକ୍ସ, ଯହିଁରେ ଗୃହସ୍ୱାମୀଙ୍କ ପାଇଁ ଅଭିପ୍ରେତ ଚିଠିମାନ ଲୋକେ ପକାଇ ଦିଅନ୍ତି ଓ ଗୃହସ୍ୱାମୀ ସୁବିଧାକଲେ ସେ ବାକ୍ସ ଫିଟାଇ ଚିଠିଗୁଡ଼ିକ କାଢ଼ନ୍ତି—2. A letter-box attached to the outside of a rich perosn's house.
Letar ba(bā)kasa
লেটারবাক্স
लेटरबाक्स

ଲେଟର୍ସ୍ ଅଫ୍ ଅ(ଏ)ଡ୍ମିନିଷ୍ଟ୍ରେଶନ୍—ବୈଦେ. ବି. (ଇଂ) (ବହୁବଚନ)—ଉଇଲ୍ ସମ୍ପାଦନ ନ କରି ମୃତ ହୋଇଥିବା ବ୍ୟକ୍ତିଙ୍କର ସମ୍ପତ୍ତିକୁ ବୁଝା ସୁଝା କରିବା ପାଇଁ ଜଜ ସାହେବଙ୍କ ଦସ୍ତଖତରେ କୌଣସି ବ୍ୟକ୍ତିଙ୍କୁ ଦିଆଯିବା ହୁକୁମନାମା—Letters of administration.
Letar-s aph ā(e)d-minishtresan
লেটার্স অফ আডমিনিষ্ট্রেসান
लेटर्स अफ आडमिनिष्ट्रेसन

ଲେଟର୍ସ୍ ପେଟେଣ୍ଟ୍—ବୈଦେ. ବି (ବହୁବଚନ) (ଇଂ.)—ସମ୍ରାଟ ଓ ରାଜାଙ୍କର ଶୀଲମୋହର ମୁଦ୍ରାଙ୍କିତ ହୁକୁମନାମା, ଯଦ୍ଦ୍ୱାରା, କୌଣସି ବ୍ୟକ୍ତିଙ୍କୁ ବା ସଙ୍ଘଙ୍କୁ କୌଣସି ବିଶେଷ ଅଧିକାର ବା ସ୍ୱତ୍ୱ ପ୍ରଦତ୍ତ ହୋଇଥାଏ—Letters Patent. [ଦ୍ର—ଭାରତର ହାଇକୋର୍ଟମାନ ଇଂଲଣ୍ଡେଶ୍ୱର ଭାରତ ସମ୍ରାଟଙ୍କ ଲେଟର୍ସ୍-ପେଟେଣ୍ଟ୍ (Letters Patent) ଅନୁସାରେ ସ୍ଥାପିତ ଓ ହାଇକୋର୍ଟର ବିଚାର ବିରୁଦ୍ଧରେ ପକ୍ଷମାନେ ଅପିଲ କରିବା ପାଇଁ ଯେଉଁ ସାଧାରଣ ନିୟମମାନ ଅଛି ତାହା ଛଡ଼ା ଏହି ଲେଟର୍ସ୍ପେଟେଣ୍ଟ ଦ୍ୱାରା କେତେକ ଅଧିକା ଅଧିକାର ହାଇକୋର୍ଟକୁ ଦିଆଯାଇଅଛି । ସେହି ଅଧିକାର ଅନୁସାରେ ହାଇକୋର୍ଟର ଜଜମାନଙ୍କ ବିଚାର ବିରୁଦ୍ଧରେ ପୁଣି ଉକ୍ତ ହାଇକୋର୍ଟରେ ଯେଉଁ ଅପିଲ ଦାଏର୍ କରାଯାଏ;
Letār-s petent
লেটার্স পেটেন্ট
लेटर्स पेटेण्ट

ତାକୁ ଲେଟର୍ସ୍ ପେଟେଣ୍ଟ୍ ଅପେଲ ବୋଲାଯାଏ ।

ଇଂଲଣ୍ଡର ରାଣୀ ଏଲିଜାବେଥ୍ଙ୍କଠାରୁ ଇଷ୍ଟଇଣ୍ଡିଆ କମ୍ପାନୀ ଭାରତରେ ବାଣିଜ୍ୟ କରିବାକୁ 'ଲେଟର୍ସ-ପେଟେଣ୍ଟ' ପାଇଥିଲେ ।

କୌଣସି କାରିଗର କୌଣସି ନୂତନ କଳ ଆଦି ଉଦ୍ଭାବନ କଲେ ଓ ତାହା 'ପେଟେଣ୍ଟ' ବା ଏକଚାଟିଆ କରିବାକୁ ପ୍ରାର୍ଥୀ ହେଲେ ସରକାରଙ୍କଠାରୁ ପ୍ରାର୍ଥୀଙ୍କୁ 'ଲେଟର୍ସ-ପେଟେଣ୍ଟ'ମିଳେ, ଅର୍ଥାତ୍ ସେ କଳକୁ ଅନ୍ୟ କେହି ନିର୍ମାଣ କରି ବ୍ୟବସାୟ କରି ପାରିବେ ନାହିଁ ବୋଲି ସମ୍ଭ୍ରମ ଆଦେଶ ହୁଏ । ]

ଲେଠା—ଦେ. ବି—ଲଟର (ଦେଖ)
Leṭā Laṭarā. (See)
লেঠা लफ्फफल्फ (ଲେଠ[ଠେ]ରି—ଅନ୍ୟରୂପ)

ଲେଠା ଛିଣ୍ଡା(ଣ୍ଡେ)ଇବା—ଦେ. କ୍ରି—କୌଣସି ଅଡ୍ଡୁଆକୁ ମୀମାଂସା କରିବା—To settle any
Leṭā chhiṇḍā(ṇḍe)ibā
লেঠাচুকান लफ्फफल्फ छुड़ाना complication.

ଲେଟି—ଦେ. ବି—ଲେଣ୍ଟା (ଦେଖ)
Leṭi Lenṭā. (See)

ଲେଟ୍ୟୁସ୍—ବୈଦେ. ବି (ଇଂ)—କୋବିପରି ଏକପ୍ରକାର ବିଦେଶୀଶାଗ(ଏ. ଗଛର ପତ୍ର ତରକାରୀରେ ବ୍ୟବହୃତ ହୁଏ)—Lettuce
Letus
লেটুস लेट्टुस

ଲେଟ୍ରିନ୍—ବୈଦେ. ବି (ଇଂ)—ପାଇଖାନା—
Letrin Latrine,
ল্যাট্রিন লैट्रिन

ଲେଟ୍ରିନ୍ ଟା(ଟି,ଟେ) କସ(କ୍ସ)—ବୈଦେ.ବି (ଇଂ)—ପାଇଖାନାଟିକସ; ସହରର ଲୋକମାନଙ୍କ ପାଇଖାନାକୁ ମେହେନ୍ତରଦ୍ୱାରା ସଫାକରିବା ଯୋଗୁଁ ଘରୁ ପାଇଖାନାର ମାଲିକଙ୍କଠାରୁ ମିଉନିସିପାଲିଟି ଯେଉଁ ଟିକସ ଆଦାୟ କରନ୍ତି—Latrine tax; tax paid by the owner of a latrine to the Municipality for cleansing it.
Letrin ṭa(ṭi,ṭe) kasa(ks)
ল্যা(লা)ট্রিনটাক্স लट्रिनटैक्स

ଲେଡ୍—ବୈଦେ. ବି (ଇଂ)—୧। ସୀସା ଧାତୁ—1. Lead (metal).
Led
লেড लेड
୨। (ଛାପାଖାନା) ପ୍ରାୟ ତୁଇ ଅଙ୍ଗୁଳ ଓସାରିଆ ସୀସାର ପଟିର) ଯାହା ଛପା ଅକ୍ଷରର ଧାଡ଼ିମାନଙ୍କ ପଂକ୍ତି, ମଝିରେ ଖଞ୍ଜାଯାଏ—2. (printing) Thin plate of lead separating the lines of type.

ଲେଡ୍ ପି(ପେ)ନ୍ସିନ୍( ) - ଦେ. ବି (ଇଂ ଲେଡ୍ପେନସିଲ୍)—କାଠର ଉଙ୍ଗ ଉପରେ ଭରି ଯାଇଥିବା ସୀସାର ପେନସିଲ; ଉଡ଼ର ପେନସିଲ୍—Lead pencil, woodene pencil.
Led pi(pe)nsin(l)
লেড়পেনসিল लेडपैनसिल

ଲେଡ୍ମୋଲ୍ଡ୍—ବୈଦେ. ବି (ଇଂ) (ଛପାଖାନା)—ଛପାଖାନାରେ ବ୍ୟବହୃତ ଲେଡ୍ [ସୀସା] ପାଉଥା ଢାଳିବାର ଛାଞ୍ଚ—(printing), Lead mould
Led mo-ld
লেডমোল্ড लेडमोल्ड

ଲେର୍ଡ଼(ଡ)—ଦେ. ବି—୧ । (ସଂ. ଲେଣ୍ଡ୍)—ଲଣ୍ଡ [ଦେଖ]—Landa (See) ୨ । [ସଂ. ଅର୍ତ୍ତବ]—ଋତୁସ୍ରାବକାଳୀନ ରକ୍ତ; ନେଡ୍ଡ; ଆର୍ତ୍ତବ ଶୋଣିତ—Menstrual blood.
Lerḍa(ḍa)
রক্ত रज

ଲେର୍ଡ଼ଖିଆ—ଦେ. ବିଣ. ପୁଂ [ଅଶ୍ଳୀଳ ଗାଳି]—ଆର୍ତ୍ତବ ରୁଧିରପାନକାରୀ (a term of vile abuse) One who drinks the mentstrual blood.
Lerḍakhiā
রক্তখেকো रजपीनेवाला
(ଲେର୍ଡ଼ଖିଆ ପୁଅ—ଅନ୍ୟରୂପ)

ଲେର୍ଡ଼[ଡ]ପାଣି—ଦେ. ବି—ଲେର୍ଡ଼ ୨ ଦେଖ)
Lerḍa·ḍa)pāṇi Lerḍa 2 (See)

ଲେର୍ଡ଼ା—ଦେ.ବି—କରତଳର ମୂଳ ବା ଲେର୍ଡ଼ଦ୍ୱାରା ଆଘାତ; ଠେଲା—A push with the base of the palm of the hand.
Lerḍā
চেটোবধাকা हथेलिसेमार
[ଦ୍ର—କରତଳର ଅଙ୍ଗୁଠି ଅଂଶ ଓ ସମସ୍ତ କରତଳଦ୍ୱାରା ଅଘାତକୁ (ଚୁପୁଡ଼ା) ବୋଲାଯାଏ ଓ କରତଳର ମୂଳଭାଗ ଦ୍ୱାରା ଠେଲାକୁ ଲେର୍ଡ଼ା ବୋଲାଯାଏ ।]

ଲେଡି(ଡ଼ି)—ଦେ. ବି—୧। କରତଳ—1. Palm of the hand.
Ledi(ṛdi)
চেটো तरहत्ती
হথেলী
[ଦ୍ର—ପ୍ରସାରିତ କରତଳର ଅଙ୍ଗୁଠିମାନଙ୍କ ମୂଳଠାରୁ କରମୂଳ ପ ଯ୍ନ୍ତ ଅଂଶକୁ ଲେଡିଭୁହାଯାଏ ]
(ଭ—ଲେଡିର ଗୁଡ଼ କହୁଣିକି ଗଲେ, କେମନ୍ତ ଘଟଣ ହୁଅଇ ଭଲେ—ବ୍ରଜନାଥ. ସମରତରଙ୍ଗ ।) ୨ । ଲେର୍ଡ଼ (ଦେଖ)—2. Lerda (See)
ବୈଦେ. ବି (ଫା)—୧ । ପାଦର ଗୋଇଠି; ଲେର୍ଡ଼; ଗୁଲ୍ଫର ଶେଷଭାଗ—1. Heel of the foot; the end of the heels.
গোড়ালী एड़ी,एड़ी
এড়ি
୨ । ଲେର୍ଡ଼ ବା ଗୋଇଠିର ଶେଷଭାଗଦ୍ୱାରା ଘୋଡ଼ାଙ୍କ ଛାତିର ପାର୍ଶ୍ୱରେ ଆଘାତ—2. Blows given by a rider on the flanks of a horse with the end of his heels.
জুতোবকাঁটা पेड
୩ । ଲେର୍ଡ଼ ଘୋଡ଼ସବାରର ଗୋଇଠରେ ପିନ୍ଧିବା କଣ୍ଟା—3. Spur used by a rider. (ଭ—କେ ଘୋଡ଼ା ଅଛି; ବହନ୍ତେ ଲେଡି; ଘୋଡ଼ ଲଗାଇ ସେ ବ୍ରଜନାଥ ସମରତରଙ୍ଗ ।)
୪ । ( ସ୍ତ୍ରୀ ) ( ଇଂ. ଲେଡ଼ୀ )—ଇଂରାଜୀ ଲର୍ଡ଼ ଉପାଧି ଭୂଷିତ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ସ୍ତ୍ରୀଙ୍କ ଉପାଧି; ସମ୍ଭ୍ରାନ୍ତା ନାରୀଙ୍କ ଉପାଧି—Lady ( title of females of a Lord family ).
লেডী
लेडी

ଲେର୍ଡ଼ୁଏ—ଦେ. ବିଣ—ହାତର ଲେର୍ଡ଼ର, ମଧ୍ୟଭାଗସ୍ଥ ଖାଲରେ ଯେତେ ପରିମିତ ତରଳ ବା ଚୂର୍ଣ୍ଣ ଦ୍ରବ୍ୟ ଧରାଇ ପାରେ—As much of a powder or liquid as can be held in the hollow of the palm of the hand.
Lerḍie
একচেটো एकचूड़

**ଲେଡ଼ କେଣା(ନିଙ୍ଗ୍)**—ଦେ. ବି ( ଇଂ. ଲେଡୀ କାନିଙ୍ଗ୍—ଭାରତର Ledi keni(ning ଭୂତପୂର୍ବ ବଡ଼ଲାଟ ପତ୍ନୀଙ୍କ ନାମରୁ )—ଲେଡିକେନିং ଏକପ୍ରକାର ବଡ଼ ଗୋଲାକାର ନାଲି ଅବରଣଯୁକ୍ତ लेडीकेनि ଘିଅଛଣା ଗୁପ୍ରଚୂପ୍—A sort of sweetmeat named after Lady Canning.[ଦ୍ର—ଏହା ଦୁଧ-ଛେନା ଓ ଚିନିରେ ଛାଅର ହୋଇ ଘିଅରେ ପୁଅ ହୋଇ ଶିରାରେ ବହୁତ ଯାଇଥାଏ । ଶ୍ରେଷ୍ଠ ଅକୃତିବିଶିଷ୍ଟ ଏ ଶ୍ରେଣୀର ମିଷ୍ଟାନ୍ନକୁ ଗୋଲାପଜାମୁ ବା ପାନ୍ତୁଆ ବୋଲାଯାଏ ଓ ଦୁଇଇଞ୍ଚ ବ୍ୟାସ ବିଶିଷ୍ଟ ମିଷ୍ଟାନ୍ନ ଗୋଲକକୁ ଲେଡିକେନିଙ୍ଗ୍ ବୋଲାଯାଏ । ଘିଅରେ ଭଜା ହୋଇ ନ ଥିବା ଏହି ଶ୍ରେଣୀର ଶ୍ରେଷ୍ଠ ମିଷ୍ଟାନ୍ନକୁ ରସଗୋଲା ଓ ବଡ଼ ଅକୃତି ବିଶିଷ୍ଟ ମିଷ୍ଟାନ୍ନକୁ କ୍ଷୀରମୋହନ ବୋଲାଯାଏ । ଲେଡିକେଣୀର ଉପରେ ପୁର ବା କିସମିସ ଦିଆ ହୋଇଥାଏ ।

ଭାରତର ଭୂତପୂର୍ବ ବଡ଼ଲାଟ ଲର୍ଡ଼କାନିଙ୍ଗ Lord Canningଙ୍କର ପତ୍ନୀ Lady Canning କଲିକତାରେ ୧୮୬୧ ସାଲ ନଭେମ୍ବରମାସରେ ଜ୍ୱରରୋଗରେ ପରଲୋକ ଗମନ କରିଥିଲେ । ସମ୍ଭବତଃ ତାଙ୍କ ନାମକୁ ଚିରସ୍ମରଣୀୟ କରିବା ପାଇଁ, କିମ୍ବା ଏ ପ୍ରକାର ନବାବିଷ୍କୃତ ମିଷ୍ଟାନ୍ନ ତାଙ୍କର ପ୍ରିୟଖାଦ୍ୟସାମଗ୍ରୀ ଥିବାରୁ ଏହି ନାମକରଣ ହୋଇ-ଅଛି । ]

**ଲେଡ଼ ଗୁଡ଼ କହୁଣିକି(କୁ)ବୋହି ଆସିବା(ଯିବା)**—ଦେ. ପ୍ରବଚନ—Lerdi gurda kahuniki(ku) bohi āsibā(jibā) ଲେଡ ଘଟନା অনেক দূর গড়ান ଗୁଡ଼ କହୁଣିକି ବୋହିଯିବା गुड़आया केहुनीतक अबभी चाटतेही हैं ( ଦେଖ )—Nerdi gurda kahuniki bohijibā ( See )

**ଲେଡ଼ ସୁ(ସୁଜ୍)**—ବୈଦେ. ବି ( ଇଂ. ଲେଡୀସୁ )—ସ୍ତ୍ରୀମାନଙ୍କ Ledi sū(sūj) ବ୍ୟବହୃତ ଜୋତା—Shoes worn by লেডীসু জ women, lady shoes. [ ଉ—ବହୁର लेडीसूज ଗୋଡ଼ରେ ଲେଡ଼, ଜୋତା ଏତର ଠକ୍ ଠକ୍ ଶବ୍ଦ ଶୁଣି ଉମର୍କ ପଡ଼ ଠିଆ ହୋଇଗଲେ । ଫଣୀରମୋହନ: [ଲେଡ଼ ଜୋ(ଜ୍ଜ)ତା—ଅନ୍ୟରୂପ] ଗଳ୍ପସ୍ୱଳ୍ପ । ]

**ଲେଡ଼(ଡ, ଡ୍ଡି)ବହଳ**—ଦେ. ବିଣ—ନେଡ଼ ବହଳ ( ଦେଖ ) Lerdi(di, ddi)bahala Nedi bahala ( See )

**ଲେଡ଼ରେ ବାଲ ହେବା**—ଦେ. ବାକ୍ୟ—ଅସମ୍ଭବ ବିଷୟ ସମ୍ବନ୍ଧେ Lerdire bāla hebā ବ୍ୟବହୃତ ବାକ୍ୟ—A sheer impossibility; a palpable absurdity; চেটোতে চুলউঠা (an expression for imposible तलहत्थीमे बालहोना things). [ ଦ୍ର—ଲୋକେ କଥାରେ କହନ୍ତି କାହା ଲେଡରେ ବାଲ ହେଲାଣି ଯେ, ସେ ମୋତେ ମାରିବ ? କାହା ଛାତିରେ ହାଡ଼ ହେଲାଣି, ସେ ମୋ ନାମରେ ମିଛ କଥା କହିବ ବା ଗାଳି ଦେବ ? ଅର୍ଥାତ୍ ଲେଡ଼ରେ କେଶ ଉଠିବା ଓ ଛାତିରେ ହାଡ଼ ହେବା ଯେପରି ଅସମ୍ଭବ, ଏ କାର୍ଯ୍ୟମାନ ମଧ୍ୟ ସେହିପରି ଅସମ୍ଭବ । ]

**ଲେଣ୍(ଣା, ଣି)**—ଦେ. ବି ( ସଂ. ଲା ଧାତୁରୁ ଜାତ )—୧ । ନେବା Len(nā, ni) କ୍ରିୟା—1. The act of taking. ୨ । (ଦେଣା—ଦ୍ୱନ୍ଦ୍ୱସ୍ଥ) ପ୍ରାପ୍ୟ ପଦାର୍ଥ ବା ଧନ—2. Dues. লেন लेन(ना)

**ଲେଣ୍(ଣା, ଣି) ଦେଣ୍(ଣା, ଣି)**—ଦେ. ବି.—(ସମାହାର) ସଂ. ନୟନ Len(nā, ni) den(nā, ni) ଓ ଦାନ)—୧ । ନେବା লেন(না) দেনান ଓ ଦେବା; ଦିଆ ନିଆ—1. Giving and लेनना देनानग taking. ୨ । ବ୍ୟବସାୟଗତ ଅଦଳ ବଦଳ—2. Exchange; barter. ୩ । ବାଣିଜ୍ୟ; ବ୍ୟବସାୟ; କାରବାର (ଯହିଁରେ ପଣ୍ୟ ଓ ଧନାଦିର ଆଦାନ ପ୍ରଦାନ ହୁଏ)—3. Business transaction; trade; mercantile transaction. ୪ । କିଣା ଖରିଦ 4. Sale and purchase of a property. ୫ । କିଣା ସମ୍ପତ୍ତି ପାଇଁ କେତା ବିକେତାଙ୍କ ମଧ୍ୟରେ ମୂଲ୍ୟର ଆଦାନପ୍ରଦାନ—5. Passing of consideration for a property sold. ୬ । ପାଉଣା ଦେଣା, କୌଣସି ବ୍ୟକ୍ତିର ଅନ୍ୟଠାରୁ ପ୍ରାପ୍ୟ ବା ଅନ୍ୟକୁ ଦେୟ ଧନ ବା ବସ୍ତୁ—6. Dues or debts of a person; assets and liabilities of a person.

**ଲେଣ୍ଟା**—ଦେ. ବି—ଲେଟା (ଦେଖ) Lentā Letā (See)

**ଲେଣ୍ଟା(ଣ୍ଡା,ଣ୍ଟି,ଣ୍ଡି)**—ଦେ. ବିଣ. ପୁଂ ଓ ସ୍ତ୍ରୀ—(ଅନାଦରାର୍ଥକ)—(ସଂ. Lentā(ndā,nti,ndi) ଲଘୁଷ୍ଟ) ଅପକୃଷ୍ଟ—1. Inferior. ୨ । ହେୟ ବା ନଗଣ୍ୟ—2. Insignificant. ৩ । ଘୃଣ୍ୟ—3. Hateful; contemptible. ୪ । ଅଯୋଗ୍ୟ—4. Unfit. (ଉ—ଲେଣ୍ଟା କୁକୁର=ନିକୃଷ୍ଟ ଓ ଦୁଷ୍ଟ କୁକୁର—Pariah dog) ବି.—ଅଯୋଗ୍ୟ ବ୍ୟକ୍ତି—1. An unfit person. ( ଉ—ଏ ଲେଣ୍ଟା ଗୁଣ୍ଡାଙ୍କ ମୋ ସାଙ୍ଗରେ ଶତ୍ରୁତା କରି ମୋର କିଛି କରି ପାରିବେ ନାହିଁ ।) লেডী छोटा

**ଲେଣ୍ଡ୍ ଏ(ଆ)କୁଇ(କ୍ୱି)ଜିସନ୍**—ବୈଦେ. ବି-(ଇଂ)—ଲାଣ୍ଡ୍ ଅକ୍ୱିଜିସନ Lend e(ā)kui(kwi)jisan Lānd ākuijisan (See)

**ଲେଣ୍ଡ**—ସଂ. ବି.—( ଲିଣ୍ଡ୍ ଧାତୁ=ତ୍ୟାଗ କରିବା+କର୍ମ ଅ )—Lenda ବିଷ୍ଠାର ଲଣ୍ଡ; ବଡ ମଳଖଣ୍ଡ—Excrement; ordure; a long stiff bit of ordure.

**ଲେଣ୍ଡା**—ଦେ. ବି (ସଂ. ଲେଣ୍ଡ)—ଲେଣ୍ଡ (ଦେଖ) - Lendā Lend. (See)

**ଲେଣ୍ଡି**—ଦେ. ବି—୧ । ଲେଣ୍ଟା (ଦେଖ)—1. Lentā, (See) Lendi ୨ । (ସଂ. ଲେଣ୍ଡ) ଲଣ୍ଡି; ଛେଳି ଅାଦିଙ୍କର କ୍ଷୁଦ୍ର,ଖଣ୍ଡ-লেদী(ড়ী) ବିଶିଷ୍ଟ ମଳ—2. Tiny bits of dung of sheep, ले·डी deer, mouse etc.

**ଲେଣ୍ଡୁ(ଣ୍ଡୋ)**—ବୈଦେ. ବି (ଇଂ)—ଲାଣ୍ଡୋ (ଦେଖ) Lendū(do) Lāndo. (See)

ଲେଣ୍ଡୁଆ—ପ୍ରାଦେ (ବାଲେଶ୍ୱର)—ଲୁଣ୍ଡା (ଦେଖ)
Lendua Lunda. (See)

ଲେଟ୍ରା- ପ୍ରାଦେ (ଗଡ଼ଜାତ) ବି—ଅକାଉଁଆ ଗଣିଆ ଛୋଟ ମାଛ—
Let-ra A kind of scaleless slender fish; Belone Bansila.

ଲେତ—ସଂ. ବି—ଲୋତକ (ଶବ୍ଦକୋଷ)—
Leta Tears.

ଲେଟି—ପ୍ରାଦେ (ସମ୍ବଲପୁର, ଗଡ଼ଜାତ)—୧। ପାଚିଲା ଆମ୍ବ—1. Ripe
Leti mango. ୨। ନଟୁର ଡୋର—2. The string of a spinning top.

ଲେଟ୍ରା—ପ୍ରାଦେ (ସମ୍ବଲପୁର) ବିଣ—ଅଛୁଁଆ—
Letra Untouchable.

ଲେଥା—ଦେ. ବି—ଲେନ୍ଥା (ଦେଖ)—Lentha. (See) ପ୍ରାଦେ
Letha (ସମ୍ବଲପୁର)ବି—୧। ଶାଗର ତରକାରୀ—1. Curry made from potherbs. ୨। (ସମ୍ବଲପୁର ବରଗଡ଼, ବଲାଙ୍ଗିର) ବାସି ତୋରାଣି, ହୁଦ୍, ହଳଦୀବଟା ଖଟା (ତେନ୍ତୁଳି ବା ଆମ୍ବୁଲ) ସଙ୍ଗେ ସିଝ କରାଯାଇ ଛଅଣ କରାଯିବା ପାଣିଆ ତରକାରୀ—2. Watery curry made by boiling stale rice-water with, particles of rice, turmeric paste and, tamarind etc and taken with boiled rice. [ବ୍ର—ଖଟା ଓ ମସଲାଦିଆ ନ ଯାଇ ଛଅଣ କରା ଯାଇଥିବା ବାସି ତୋରାଣିକୁ ରାବ (ଅମ ଅଞ୍ଚଳର କାଞ୍ଜି) କହନ୍ତି । ଗରିବ ଲୋକେ ଭାତ ସଙ୍ଗେ ଏହାକୁ ଛଅ ଣରୂପେ ଖାଆନ୍ତି ।] ୩। (ଆଠମଲ୍ଲିକ) କାଞ୍ଜି--3.Sour gruel.

ଲେଥାଏ—ଦେ. ବି ଓ ବିଣ—ଲେନ୍ଥାଏ (ଦେଖ)—
Lethae Lenthae (See)

ଲେଥା ରାବ(ବ)—ପ୍ରାଦେ.(ସମ୍ବଲପୁର, ବଲାଙ୍ଗିର, ପଶ୍ଚିମ ଗଡ଼ଜାତ)—
Letha rawa(ba) ବି—ହୁଦ୍, ଖଟା, ହଳଦି, ମସଲା ମିଶାଯାଇ ସିଝା ଯାଇଥିବା ବାସି ତୋରାଣି (ଲେଥା) ଓ କିଛି ମିଶା ନ ଯାଇ ସିଝା ଯାଇଥିବା ବାସି ତୋରାଣି (ରାବ)—Stale rice-water boiled into a gruel mixed with particles of rice, turmeric, sour thing and spices and stale rice-water boiled without mixing any such thing with it. [ବ୍ର—ଗରିବ ଲୋକେ ଏ ଦୁଇ ବସ୍ତୁକୁ ଭାତ ସଙ୍ଗେ ଖାଇ ଛଅଣର ଅଭାବ ଦୂର କରନ୍ତି ।]

ଲେଥି—ଦେ. ବି—ଲେନ୍ଥି (ଦେଖ)
Lethi Lenthi (See)

ଲେଡ଼ା(ଡ଼ା)—ଦେ. ବି (ସଂ-ଲେଣ୍ଡ)—ନେଡ଼ (ଦେଖ)
Leda(da) Neda, (See)
नादा नेद लीद्

ଲେଢା(ଢି)—ଦେ. ବି ଓ ବିଣ—ଲେଧ୍କା (ଦେଖ)
Leda(di) Ledh-ka, (See)

ଲେଡ଼ା—ପ୍ରାଦେ—୧। (ଗଡ଼ଜାତ)ବି—ଲଡ଼ିଆ(ଦେଖ)—1.Lardia
Leda (See) ୨। (ସମ୍ବଲପୁର)ବି—ଫୋପଡ଼—A stout rod used for throwing on to trees to bring down fruits. ୩। (କେନ୍ଦୁଝର) ଲେକ—3. Rheum of the eye.

ଲେଡା ପୋକ—ଦେ. ବି—ଧାନ ଓ ରବି ଗଛରେ ଲାଗିବା ଏକ ପ୍ରକାର
Leda poka ପୋକ ବା କୃମି । ( ଏମାନେ ଦିନବେଳେ ଦେଖା· लेदापोक ଯାଆନ୍ତି ନାହିଁ ; ଗଛମୂଳେ ମାଟିତଳେ ଲୁଚି ରହନ୍ତି; घानकाकीड ରାତି ହେଲେ ଗଛକୁ ଚଢ଼ି ପତ୍ର ଓ କଢ଼କୁ ଖାଇଯାଆନ୍ତି । ଏମାନଙ୍କ ପ୍ରଜାପତି ଧଳା)—Cut-worms; (Noctuide),

ଲେଡାଏ—ଦେ. ବିଣ ଓ ବି (ଅନାଦରାର୍ଥକ)—ବେଶୀ; ପୁଳାଏ (ବିଷ୍ଠା);
Ledae ମେଦାଏ (ବିଷ୍ଠା ବା ଗୋବର); ବଡ଼ ଲଣ୍ଡେ (ଗୁହ)—एकनादा एकचोता A large mass or bit (of (ଲେଡେ, ଲେଡାକ— ଅନ୍ୟରୂପ) ordure)·

ଲେଡି—ଦେ. ବି ଘୋଡ଼ା ଲଣ୍ଡି—Bits of horse dung.
Ledi लेदी(दो) लीद्

ଲେଡିଏ—ଦେ· ବିଣ ଓ ବି—(ଆଦରାର୍ଥକ) ଅଳ୍ପ ପୁଳାଏ; ମେଦିଏ—
Ledie A small mass or bit (of ordure).
एकनेद एकचोत (ଲେଡିକ—ଅନ୍ୟରୂପ)

ଲେଡି କାଢ଼ିବା—ଦେ. କ୍ରି—ନେଡି କାଢ଼ିବା (ଦେଖ)
Ledi kardhiba Nedi kardhiba(See)

ଲେଧ୍କା—ଦେ. ବିଣ. ପୁଂ-(ଅନାଦରାର୍ଥକ)-୧। ଅଳସୁଆ—1. Lazy;
Ledh-ka idle. ୨। ମୋଟା ଓ ଅକର୍ମିକା (ମନୁଷ୍ୟ)—मोटा मोटाताजा 2. Fat and lazy (man). ୩। ମେଧା; [ଲେଧା—ଅନ୍ୟରୂପ; ଲେଧୀ, ଲେଧ୍କୀ—ସ୍ତ୍ରୀ] ସ୍ଥୂଳକାୟ—3. Fat; corpulent. ୪। ଯେଉଁ ଗଛ ବା ଲତା ଏଣେ ତେଣେ ଶୋଇ ପଡ଼ିଥାଏ—4. (Any tree or creeper) Which does not creep erect but inclines to a side. ୫। ଝାମ୍ପୁଡ଼ା (ଗଛ)—5. Spreading (tree). ୬। ବଢ଼ିଲା (ଗଛ)—6. Over luxuriant (tree).

ଲେନ୍ତା(ଥା)—ଦେ. ବି ସଂ. ଗ୍ରଂଥି; ଭୁଲ ସଂ. ଲକୁଚ—ଡଉକଳା, କନ୍ଥା)
Lenta(tha) —୧। ପେଣ୍ଡା; ଗୁଚ୍ଛ; ପେନ୍ଥା—1. Cluster; एकराश; झावा,गुच्छा bunch. ୨। କୌଣସି ବସ୍ତୁର ପୁଳା; ମେଣ୍ଡା—2. A mass (of something)—୩। ପୁଞ୍ଜ—3. Collection. ୪। ଏକତ୍ର ଅଣ୍ଟାଯିବା ପଦାର୍ଥର ଗୋଛା—4. A bundle or cluster of something held together, (ଯଥା—ଲେନ୍ଥାଏ ବାଗଡ଼ି; ଲେନ୍ଥାଏ ବାସନ ।)

ଲେନ୍ଥାଏ—ଦେ. ବିଣ ଓ ବି—(ଅନାଦରାର୍ଥକ)—ଗୋଛାଏ; ଏକପେନ୍ଥା
Lenthae एकराश,गुच्छेर एकगुच्छ,एक गुच्छा A cluster of.

ଲେନ୍ଥିଏ—ଦେ. ବିଣ ଓ ବି (ଆଦରାର୍ଥକ)—ଲେନ୍ଥାଠାରୁ କ୍ଷୁଦ୍ରତର
Lenthie एकराश एकगोछ—A smal cluster of.

ଲେନ୍ଦ୍କି ଛୁଆ—ପ୍ରାଦେ (ସମ୍ବଲପୁର) ବ—ଅପୋଗଣ୍ଡ ଶିଶୁ, ଅତି ଶିଶୁ-
Lend-ki chhuā Infant; very young child.

ଲେନ୍ଦ(ନ୍ଦେ,ନ୍ଧ,ନ୍ଧୁ,ନ୍ଧେ)ରା -ଦେ. ବ—ଲେଞ୍ଜରା (ଦେଖ)
Lenda(nde,ndha,ndhu, ndhe)rā Lenjarā (See)
ଦେ. ବଣ. ପୁଂ—ଯାହା ଆଖିରୁ ଲେନ୍ଦରା ବହୁଥାଏ—
Having rheuming eyes.
କାଚୀବାଲା ପିচুটিওয়ালা [ଲେନ୍ଦ(ନ୍ଦେ)ରୀ—ସ୍ତ୍ରୀ]

ଲେନ୍ଦ(ନ୍ଦେ,ନ୍ଧ,ନ୍ଧୁ,ନ୍ଧେ)ରା ଆଖି—ଦେ. ବ—ମଳଯୁକ୍ତ ଆଖି—
Lenda(nde,ndha,ndhu,ndhe)rāakhi Eyes full
ପିচুটিপড়াচোখ କାଚୀବାଲୀଆଁଖ of exhudations
[ଲେନ୍ଦରା ଆଖିଆ(ଆଖେଇ)—ବଣ] rheuming eyes.

ଲେନ୍ଦ(ନ୍ଧୁ,ନ୍ଦେ)ରା(ରେ)ଇବା—ଦେ. କି(ସକର୍ମକ)—୧। କୌଣସି ବିଷୟ
Lendā(ndu,nde)rā(re)ibā ଗୋଳମାଳ କରିବା; କୌଣସି
[ଲେନ୍ଦା(ନ୍ଦେ)ରା ଲଗା(ଗେ)ଇବା] ବିଷୟକୁ ଜଟିଳ କରିବା—
গোলকরা লেথরানা 1. To entangle or confuse a matter. ୨। କୌଣସି ଲେଖାକୁ କାଳି ଇତ୍ୟାଦିଦ୍ୱାରା ବଣା କରି ଲେଖିବା—2. To write clumsily or in a manner blurred by ink.
୩। ଲେନ୍ଦରା ଦେବା (ଦେଖ)—3. Lendarā debā (See)

ଲେନ୍ଦ(ନ୍ଦେ)ରା ଦେବା—ଦେ. କି (ଅକର୍ମକ)—(ଚକ୍ଷୁ) ମଳଯୁକ୍ତହେବା-
Lenda(nde)rā debā (The eyes) To exhude
পচুটিদেওয়া কাচিয়ানা rheum.

ଲେନ୍ଦୁ(ନ୍ଧୁ)—ଦେ. ବ—ଲେନ୍ଦରା (ଦେଖ)

ଲେଉଡି—ପ୍ରାଦେ (ଖଡ୍ଡିଅଲ). ବ—କ୍ଷେତର ହିଡ଼—
Leudi Ridge of fields.
Lendu(ndhu) Lendarā (See)

ଲେନ୍ଦୁ(ନ୍ଧୁ)ଆ—ଦେ. ବଣ. ପୁଂ—୧। ଯାହା ଆଖିରୁ ଲେନ୍ଦରା
Lendu(ndhu)ā ବୋହୁଥାଏ—1. Having eyes
[ଲେନ୍ଦ(ନ୍ଦେ,ନ୍ଧୋ,ନ୍ଧୁ,ନ୍ଧୋ)ଇ—ସ୍ତ୍ରୀ] exhuding rheum.
পিচুটিচোখো কাঁচিবালা ୨। ଲେନ୍ଦରା ବୋହୁଥିବା (ଚକ୍ଷୁ)
2 Rheuming (eyes).

ଲେନ୍‌ସ୍—ବୈଦେ. ବ [ଇଂ]—ନ୍ୟୁବଜପୃଷ୍ଠ କ୍ଷୀଣୋଦର କାଚ; ସୂକ୍ଷ୍ମ-
Len-s ମଧ୍ୟ ବା କ୍ଷୀଣମଧ୍ୟ କାଚ, ଯାହା ମଧ୍ୟଦେଇ ଦେଖିଲେ ପଦାର୍ଥ-
লেনস লেঁস ମାନ ବଡ଼ ବା ସାନ ଦେଖାଯାଏ ଓ ଯେଉଁ କାଚ ଅଣୁବୀକ୍ଷଣଯନ୍ତ୍ର ଓ ଚଷମା ଓ ଦୂରବୀକ୍ଷଣ ଯନ୍ତ୍ରରେ ଲାଗେ—
Lens [ଦ୍ର—ଯେଉଁ କାଚର ପୃଷ୍ଠ ପଟାକୁ ବାହାରି ଥାଏ (କୁବ୍ଜପୃଷ୍ଠ), ତାକୁ convex ଓ ଯେଉଁ କାଚର ଉଦର ଭିତରକୁ ପଶି ଯାଇଥାଏ (କ୍ଷୀଣୋଦର) ତାକୁ concave ଲେନ୍‌ସ୍ ବୋଲାଯାଏ ।

ଲେପ୍‌ଚା(ଚୀ)—ଦେ. ବ—ହିମାଳୟବାସୀ ନେପାଳୀ ପାର୍ବତ୍ୟ ଜାତି-
Lep-chā(chi) ବିଶେଷ—Name of a class of
ল্যাপচাচী লপচাচী wild Nepalese people in the Himālayas.

ଲେପ୍‌ଟି—ପ୍ରାଦେ (ଖଡ୍ଡିଅଲ) ବଣ—ବଙ୍କା—
Lep-ti Curved.

ଲେପ—ସ. ବ (ଲିପ୍ ଧାତୁ+ଭାବ ଅ)—୧। ଲେପନ; ବିଲେପନ—
Lepa 1 Plastering; smearing. ୨। (+କର୍ମ ଅ)—ପ୍ରଲେପ; ମଲମ—2. Ointment; unguent.
୩। ରଙ୍ଗର ସ୍ତର—3. A coating of paint (M.W)
୪। (+ଭାବ ଅ) ପଲସ୍ତରା କରିବା—4. Plastering.
୫। (+କରଣ ଅ) ପଲସ୍ତରା କରିବା ଦ୍ରବ୍ୟ—
5. A plaster ୬। ଭକ୍ଷ୍ୟଦ୍ରବ୍ୟ—6 Food; victuals.
୭। (+କରଣ ଅ) ଚୂର୍ଣ୍ଣ—7. Powder. ୮। ଚୂନ—8. Lime. ୯। ବନ୍ଧନ—9 Binding; fastening ୧୦। ଭୋଜନ—10. Eating. ୧୧। କରତଳରୁ ପୋଛା-ଯିବା ଅନ୍ନ; ପିତୃଲୋକଙ୍କୁ ଦିଆଯିବା ପିଣ୍ଡ ସଙ୍ଗେ ଦିଆଯିବା ଶ୍ରେଷ୍ଠ ପିଣ୍ଡ; ଲେପଭାଗ—11. A small ball of rice given with a larger ball as offering to the manes; "the wipings of the hand.
୧୨। [କର୍ମ. ଅ]—ବଟା ଲଣ୍ଡା—12. Paste. ୧୩। [+କରଣ. ଅ] ସମ୍ବନ୍ଧ—13. Connection. ୧୪। ପାକପାତ୍ରରେ ଲାଗିଥିବା ଅଇଣ୍ଠା ବା ମଳ—14. Any grease or dirt sticking to cooking vessels (M. W). ୧୫। ମଇଳା—15 Impurity (M. W). ୧୬। କଳଙ୍କ; ଦାଗ—16 Stain (M. W). ପ୍ରାଦେ (ବାଲେଶ୍ୱର ମେଦିନୀପୁର; ତୁଳ. ବ ଲେପ) ରେଜେଇ—Quilt.
କୁଟିକୁଟି ଦେ. ବଣ (ସ. ଲିପ୍ତ)—ସଙ୍କୁଚିତ; ସଂଲଗ୍ନ—
সিকুডাহুআ Contracted. [ ଯଥା— ବୁଢ଼ି ହସି ହସି ତ ସେ ଲେପ ହୋଇ ଗଲାଣି । ]

ଲେପ ଉହାଡ଼—ପ୍ରାଦେ (ବାଲେଶ୍ୱର) ବ (ତୁଳ ବ. ଲେପେର ଓୟାଡ଼୍)—ଲେପର ଖୋଳ—A quilt-
Lepa uhārdā
(ଲେପଖୋଳ—ଅନ୍ୟରୂପ) case.

ଲେପକ—ସ. ବଣ. ପୁଂ—ଲେପନକାରୀ; ଯେ ଲେପେ—Plastering;
Lepaka smearing. ୧। ଯେ ପଲସ୍ତରା କରେ;
(ଲେପିକା—ସ୍ତ୍ରୀ) ରାଜମିସ୍ତ୍ରୀ—1. A plasterer; a mason.
୨। ଚିତ୍ରକର ଜାତି ବିଶେଷ—2. Name of a caste of painters. ୩। ଯେ ଛାଞ୍ଚ ବା ଆଦର୍ଶମାନ ତିଆରି କରେ—3. A maker of moulds or models (Apte).

ଲେପଟା(ଟେ)ଇବା—ଦେ. କି (ସ. ଲିପ୍ତ)—(ଜୀବ ଅଙ୍ଗ) ଭୂମିରେ
Lepatā(te)ibā ସଂଲଗ୍ନ ହେବା; ଆପଣା ଦେହକୁ ଭୂମିରୁ
ଲେପଟିବା } ଅନ୍ୟରୂପ ସଂଲଗ୍ନ କରି ଅବସ୍ଥାନ କରିବା ବା
ଲେପଟେଇ ପଡ଼ିବା } ଗଡ଼ି କରିବା—To crouch on
লেপটে পড়া the ground (said of an animal
ঘপানা bringing its body close to the ground). [ ଦ୍ର—ବାଘ ଓ ବିରାଡ଼ି ଶିକାରକୁ ଛକିଲାବେଳେ ଲେପଟାଇ ପଡ଼ନ୍ତି ଓ ଲେପଟାଇ କରି ଗଡ଼

କରନ୍ତି; ମନୁଷ୍ୟ ଲୁଚବା ପାଇଁ ଲେପଟେଇ ପଡ଼େ।
ଏପର ହେଲେ ହଠାତ୍ ତାଙ୍କୁ ଅନ୍ୟ ଲୋକ ବାର ପାରେ ନାହିଁ। ];

ଲେପତ—ଦେ॰ ବ ( ସଂ. ଲୁପ୍ତ )—ଲୁପ୍ତ ( ଗସ୍ତ )—Disappeared.
Lepata ( ଯଥା—ତା ଆଖି ଲେପତ ହୋଇ ଗଲାଣି । )
ଲୁପ୍ତ ଦେ॰ ବ ( ସ. ଲୁପ୍ତ )—ଲୁପ୍ତ ( ଦେଖ )—Lipta
लुपत ( See )

ଲେପତ ପାଦ—ଦେ॰ ବ—ଲୁପ୍ତ ପାଦ ( ଦେଖ )—
Lepata pāda Lipta pāda ( See )

ଲେପ ଦେବା—ଦେ. କି—କୌଣସି ବସ୍ତୁ ଉପରେ କୌଣସି ଦ୍ରବ
Lepa debā ପଦାର୍ଥ ବୋଳବା—To smear or plaster;
লেপদেওয়া लेपदेना to anoint.

ଲେପନ—ସ. ବ ( ଲିପ୍ ଧାତୁ+ଭାବ ଅନ )—୧ । ଲିପିବା କର୍ମ;
Lepana ବୋଳବା—1. Act of smearing or anointing. ୨ । ମୃକ୍ଷଣ—2. Plastering. ୩ । କାନ୍ଥ ଲିପିବା—3. Plastering of a wall. ୪ । ଚୂନ ସଫେଦ କର୍ମ; ଧଉଳାଇବା—4.. White-washing ( M. W. ). ୫ । ( +କର୍ମ. ଅନ ) ମଲମ—5. Ointment. ୬ । ମାଂସ—6. Flesh ( Apte )

ଲେପନକାରୀ—ସ. ବଣ. ପୁଂ—ଯେ ଲେପେ—Smearing;
Lepanakārī plastering (ଲେପନକାରିଣୀ—ସ୍ତ୍ରୀ)

ଲେପନୀୟ—ସ. ବଣ ( ଲିପ୍ ଧାତୁ+କର୍ମ. ଅନୀୟ )—ଯେଉଁ ପଦାର୍ଥ
Lepaniya ବୋଳାଯିବାର ଉପଯୁକ୍ତ—(a thing) Fit to
(ଲେପ୍ୟ—ଅନ୍ୟରୂପ) be smeared or anointed. ପୁଂ—
(ଲେପନୀୟା—ସ୍ତ୍ରୀ) ଯାହା ଦେହରେ ଚନ୍ଦନାଦ ବୋଳାଯିବା ଯୋଗ୍ୟ— ( person ) Requiring to be smeared over with ointment.

ଲେପ ଭାକ୍—ସ. ବ (ଲେପ+ଭଜ ଧାତୁ+କର୍ତ୍ତୃକ୍ୱିପ୍; ଲେପଭାକ୍; ୧ମା
Lepa bhāk ୧ବ. )—ଅପଣାର ଚତୁର୍ଥ, ପଞ୍ଚମ ଓ ଷଷ୍ଠ
ଲେପଭାଗୀ } ଅନ୍ୟରୂପ ପୂର୍ବପୁରୁଷ; ଯେଉଁମାନଙ୍କୁ ଲେପ ଭାଗ
ଲେପଭୁକ୍ ଅର୍ପିତ ହୁଏ—One's ancestors
ଲେପଭାଗଭୁକ୍ in the fourth, fifth and sixth lines of ascent.

ଲେପ ଭାଗ—ସ. ବ ( କରତଳରୁ ପୋଛାଯିବା ଅନ୍ନ )—ଶ୍ରାଦ୍ଧକାଳରେ
Lepa bhāga (୧) ଅପଣାର ପିତୃ, ପିତାମହ, ପ୍ରପିତାମହ (୨) ମାତୃ, ପିତାମହୀ, ପ୍ରପିତାମହୀ (୩) ମାତାମହ, ପ୍ରମାତାମହ, ବୃଦ୍ଧ ପ୍ରମାତାମହଙ୍କୁ ଦଆଯିବା ପିଣ୍ଡମାନଙ୍କ ସଙ୍ଗେ ତାଙ୍କ ଉପରର ତନ ପୁରୁଷଙ୍କୁ ଯେଉଁ ଶେଷପିଣ୍ଡ ଦଆଯାଏ — Smaller rolled balls of rice offered to the ancestors in the fourth, fifth and sixth degrees of ascent along with the larger cakes offered to one's ancestors upto three degrees of ascent during Srāddha. [ ଦ୍ର—ପିଣ୍ଡଦାତାର ଉପରସ୍ଥ ୩ ପୁରୁଷଙ୍କୁ ବଡ଼ ପିଣ୍ଡ ଦଆଯିବାପରେ ହାତରେ ଯେଉଁ ଅନ୍ନାଦ ଲାଗିଥାଏ ତାକୁ ପୋଛପୋଛି କର ଯେଉଁ ଶେଷ ପିଣ୍ଡ ଉକ୍ତ ୩ ପୁରୁଷଙ୍କ ଉପରର ୩ ପୁରୁଷଙ୍କୁ ଅର୍ପିତ ହୁଏ ତାକୁ ଲେପଭାଗ ବୋଲାଯାଏ । ]

ଲେପମୟୀ—ସ. ବ. ସ୍ତ୍ରୀ ( ଲେପ+ମୟ+ଈ )—୧ । କାଠଅବ
Lepamayī କର୍ମିତ ଯେଉଁ ପିତୁଳା ଉପରେ ରଙ୍ଗ ବୋଳାଯାଇ ଥାଏ; ଚଢ କଣ୍ଢେଇ—1. A painted wooden doll. ୨ । କାଷ୍ଠ ମୃତ୍ତିକା କର୍ମିତ ବଗ୍ରହ; ପିତୁଳା—2 Image; idol.

ଲେପର୍—ପ୍ରାଦେ ଶକ୍ତଅଳ ବଣ ୧ । ନଡର—1 Fearless ୨ ।
Lapar ଅଲଜୁକ—2 Shameless ।

ଲେପ(ପ୍ୟ)ସ୍ତ୍ରୀ—ସ. ବ. ସ୍ତ୍ରୀ—୧ । ( ଲେପ=ଲେପନଦ୍ୱାର ସୁବାସିତ
Lepa(pya)strī ଶରୀର ସ୍ତ୍ରୀ, ମ. ପ. ଲୋ. )—ଯେଉଁ ସ୍ତ୍ରୀର
ଲେପ(ପ୍ୟ) କାମିନୀ } ଅନ୍ୟରୂପ ଦେହ ଚନ୍ଦନାଦ ଲେପନଦ୍ୱାରା
ଲେପ(ପ୍ୟ) ନାରୀ ସୁବାସିତ—1 A woman whose body is made fragrant with ointmerits and pastes. ୨ । ଛାଞ୍ଚରେ ଢଳା ହୋଇଥିବା ସ୍ତ୍ରୀ ମୂର୍ତ୍ତି—2 A moulded figure of a woman ( M. W. ). ୩ । ସ୍ତ୍ରୀ ମୂର୍ତ୍ତି—3 An image of a woman.

ଲେପା—ଦେ. ବଣ ( ସଂ ଲୁପ୍ତ )—ଲୁପ୍ତ ( ଦେଖ )—
Lepā Lipta ( See )

ଲେପା(ପେ)ଇବା—ଦେ॰ କ୍ରି.—ଲିପାଇବା ( ଦେଖ )—
Lepā(pe)iba Lipāibā ( See )

ଲେପାକ—ଦେ. ବ. —ମେକାପ ( ଦେଖ )—
Lepāka Mekāpa ( See )

ଲେପାପା(ଫା)—ବୈଦେ. ବ—ଲେଫାଫା (ଦେଖ)
Lepāpā(phā) Lephāphā (See)

ଲେପାଲ ବାଘ—ନେପାଳ ବାଘ (ଦେଖ)
Lepālibāgha Nepāli bāgha (See)

ଲେପି(ଧାତୁ)—ସ. ଲିପ ଧାତୁ ଣିଜନ୍ତ—ଅନ୍ୟଦ୍ୱାରା ଲିପିବା କ୍ରିୟାକରାଇବା
Lepi (root) To cause others to plaster or smear.

ଲେପିତ—ସଂ. ବଣ [ଲେପି ଧାତୁ+କର୍ମ ତ]—ଅନ୍ୟଦ୍ୱାରା ଲିପା
Lepita ହୋଇଥିବା—Caused to be plastered over or anointed.

ଲେପିବା—ଦେ॰ କି (ସଂ ଲିପ ଧାତୁ —ଲିପିବା (ଦେଖ)
Lepibā লেপা लिपना Lipibā (See)

ଲେପୀ—ସଂ. ବଣ. ପୁଂ ଲିପ ଧାତୁ+କର୍ତ୍ତୃ ଇନ୍—ଲେପକ (ଦେଖ
Lepī Lepaka (See) ସଂ. ବ—ଲେଖକ; ଲିପିକାର ହୁ. ସ.
ଲେପିନୀ—ସ୍ତ୍ରୀ Writer; scribe.

ଲେପ୍ୟ—ସଂ ବଣ (କର୍ମ. ଲିପ ଧାତୁ+ଯ)—ଲେପନୀୟ (ଦେଖ)
Lepya [ଲେପ୍ୟା—ସ୍ତ୍ରୀ] Lepaniya (See)

ଲେଫ୍‌ଟେନା(ନେ)ଣ୍ଟ—ବୈଦେ. ବ. (ଇଂ. ଲେଫ୍‌ଟେନାଣ୍ଟ)—୧ । ଉଚ୍ଚ-
Leph-ṭenā(ne)ṇṭ କର୍ମଚାରୀଙ୍କ ଅନୁପସ୍ଥିତିରେ କାର୍ଯ୍ୟ ଚଳାଇବା
ଲେଫ୍‌ଟେଣ୍ଟ—ଅନ୍ୟରୂପ ପାଇଁ ନିଯୁକ୍ତ ବ୍ୟକ୍ତି—1. A lieutenant,
लेफटेनेन्ट **लेफटिनेंट**
୨ । ଇଂରାଜ ସୈନ୍ୟଙ୍କ ଦଳପତିବିଶେଷ (ଏମାନେ କାପ୍ତାନ୍ Captainଙ୍କ ନିମ୍ନ ରେ )—2 A title of officers below Captains in the English army [ଦ୍ର—ନୌ ସେନା, ବାୟୁଯାନସେନା ଓ ସ୍ଥଳ ସେନାଙ୍କ ମଧ୍ୟରେ ଲେଫ୍‌ଟେନେଣ୍ଟ ଅଛନ୍ତି । ଏହି ଶବ୍ଦ ସଙ୍ଗେ ବ୍ୟବହୃତ ଲେଫ୍‌ଟେନାଣ୍ଟ କର୍ନଲ୍ (Lieutenant colonel ) ମଧ୍ୟ ଆମ ଭାଷାରେ ଚଳୁଅଛି । ]

ଲେଫ୍‌ଟେନା(ନେ)ଣ୍ଟ ଗଭର୍ଣ୍ଣର୍—ବୈଦେ. ବ (ଇଂ)—ପ୍ରାଦେଶିକ
Leph-ṭenā(ne)ṇṭ gabharṇṇar ଶାସନକର୍ତ୍ତା; ଶାସନ-
(ଲେଫଟେନେଣ୍ଟ ଗଭର୍ଣ୍ଣର—ଅନ୍ୟରୂପ) କର୍ତ୍ତାଙ୍କ ପ୍ରତିନିଧି—Lieutenant Governor.
लेफ़टेनेन्ट गभर्णर [ଦ୍ର— ପୂର୍ବେ ବ୍ରିଟିସ
**लेफटिनेंट गवर्नर** ଭାରତରେ ବଡ଼ ବଡ଼ ପ୍ରଦେଶର ଶାସକଙ୍କୁ ଗଭର୍ଣ୍ଣର ଓ ଛୋଟ ପ୍ରଦେଶର ଶାସକଙ୍କୁ ଲେଫ୍‌ଟେନାଣ୍ଟ ଗଭର୍ଣ୍ଣର୍ ବୋଲି ଯାଉଥିଲା । ଏବେ ସ୍ୱାଧୀନ ଭାରତର ସବୁ ପ୍ରଦେଶର ଶାସନକର୍ତ୍ତାଙ୍କୁ ଗଭର୍ଣ୍ଣର୍ ବୋଲି ଯାଉଅଛି । ]

ଲେଫ଼ରା କାନ—ପ୍ରାଦେ (ଗଡ଼ଜାତ) ବ—ଓସାର ଲମ୍ବ କାନ—
Leph-erā kān Broad and long ear.

ଲେଫ୍‌ରା ମାରି ବସିବା—ପ୍ରାଦେ (ଗଡ଼ଜାତ) କ୍ରି—ପ୍ରସାରିତହୋଇବସିବା-
Leph-rā māri basibā To sit by spreading the limbs.

ଲେଫ(ଫେ)ଡ଼ା—ଦେ. ବ—୧ । ଏକପ୍ରକାର ବନଜାତ ଲତାଫଳ;
Lepha(phe)rḍā (ଏହା ପଚିଲେ ବା ମିଠାମିଠା ପର ଲାଗେ ଓ
लाफडा ଭକ୍ଷଣ ହୋଇ ଖିଆଯାଏ)—1. A kind of
दैतोहासी edible wild fruit. ୨ । ବନ୍ୟ ଗୁଳ୍ମ ବିଶେଷ—
**किलकिला; दांतदिखाना** 2. Capparis Brevispina.
[ଲେଫ(ଫେ)ଡ଼ୀ—ସ୍ତ୍ରୀ] ୩ । ( ଦାନ୍ତ ଶବ୍ଦ ପରେ ବ୍ୟବହୃତ )
**दांतदिखानेवाला** ଦନ୍ତହସା, ଦାନ୍ତ ଦେଖାଇ ହସିବା—3. Grinning. ଦେ. ବଣ. ପୁଂ—ଦନ୍ତହସା; ଯେ ସବୁବେଳେ ହସେ—Laughing; grinning.

ଲେଫ(ଫେ)ଡ଼ା(ଡ଼େ)ଇବା—ଦେ. କି (ତୁଳ. ଇଂ. ଲାଫ୍‌ଟର୍)—
Lepha(phe)rḍā(rḍe)ibā ( ଦାନ୍ତ ଓ ମୁହଁ ଶବ୍ଦ ପରେ ଏ
[ଲେଫ(ଫେ)ଡ଼ିବା—ଅନ୍ୟରୂପ] ଅର୍ଥରେ ବ୍ୟବହୃତ ହୁଏ )—
(दांत)केलान ୧ । ଓଠକୁ ଫାଡ଼ିଦେଇ ଦାନ୍ତକୁ ଦେଖାଇ
**दांतदिखाना** ହସିବା—1. To grin; to laugh by exhibiting the teeth and opening the lips. ୨ । ମୁହଁକୁ ବିକୃତିବା ବା ବିକୃତ କରିବା—
(ଲେଫଡ଼ା[ଡ଼ି] ହେବା—କର୍ମବାଚ୍ୟ) 2. To make faces.
[ଦ୍ର—ଦାନ୍ତ ଓ ମୁହଁ ଦୁଇ ପ୍ରକାର ଲେଫଡ଼ି ହୁଏ—୧ । କାନ୍ଦିଲେ; ୨ । ହସିଲେ । ଉଭୟ କ୍ରିୟାରେ ଓଠ ଉଚ୍ଚଡ଼ା ହୋଇ ମେଲିହୁଏ ଓ ଦାନ୍ତମାନ ଦେଖାଯାଇ ମୁହଁ ବିକୃତ ଦେଖାଯାଏ । ଦାନ୍ତୁରୀ ମାନଙ୍କର ଦାନ୍ତ ସବୁବେଳେ ପଦାକୁ ବାହାରି ଥିବାରୁ ତାଙ୍କ ମୁହଁ ଲେଫଡ଼ି ହୋଇ ଯାଇଥାଏ । ଏଥିପାଇଁ କଥାରେ କହନ୍ତି ଦାନ୍ତୁରୀର କାନ୍ଦିବା ହସିବା ସମାନ । ]

ଲେଫ(ଫେ)ଡ଼ା ମୁହାଁ—ଦେ. ବଣ. ପୁଂ ( ଭୁକ୍ତାର୍ଥ )—ବିକୃତ ମୁଖଯୁକ୍ତ;
Lepha(phe)rḍā muhāṅ ଯାହାର ଦାନ୍ତ ଲେଫଡ଼ା ହୋଇ ମୁଖ
[ ଲେଫ(ଫେ)ଡ଼ା(ଡ଼ୀ)ମୁହାଁ—ସ୍ତ୍ରୀ] ବିକୃତ ଦେଖାଯାଏ—Having
दैंता **दंतबिदड़ा मुंहा** a grinning face.

ଲେଫାପା(ଫା)—ଦେ. ବ ( ଆ. ଲିଫାଫାହ୍ )—ଚିଠିର ଆବରଣ ବା
Lephāpā(phā) ଖୋଳ; ଯେଉଁ ଖୋଳ ମଧ୍ୟରେ ଚିଠି ବନ୍ଦ
लिफाफा କରାଯାଏ—Envelope; a cover for a letter.
**लिफाफा**

ଲେବ୍‌ରି—ପ୍ରାଦେ (ଗଡ଼ଜାତ) ବଣ—ବଙ୍କା ଓ ସରୁ—Curved and
Leb-ri slender. ( ଯଥା—ଲେବ୍‌ରି ଅଣ୍ଟା= ବଙ୍କା ଓ ସରୁ କଟି)

ଲେବଡ଼(ର)—ଦେ. ବଣ ଓ ବ—ଲେଭଡ଼ ୧ ( ଦେଖ )
Lebarḍa(ra) Lebharḍa 1 ( See )

ଲେବଡ଼(ଡ଼ା, ର, ରା)—ଦେ. ବଣ. ପୁଂ—ଲେଭଡ଼ ୨ ( ଦେଖ )
Lebarḍa(rḍā, ra, rā) Lebharḍa 2 ( See )

ଲେବଡ଼(ଡ଼ା, ର, ରା)ମୁଖା(ମୁହାଁ)—ଦେ. ବଣ—ଲେଭଡ଼ ମୁଖ
Lebarḍa(rḍā; ra; ra)mukhā(muhāṅ) ( ଦେଖ )
[ ଲେବଡ଼( ଡ଼ା, ର, ରା )ମୁଖୀ( ମୁହାଁ )—ସ୍ତ୍ରୀ ] Lebharḍa mukhā ( See )

ଲେବର୍—ବୈଦେ. ବ (ଇଂ. ଲେବର୍=ଦୈହିକ ଶ୍ରମ)—୧ । ବ୍ରିଟିଶ
Lebar ପାର୍ଲିଅମେଣ୍ଟ ସଭାରେ ଶ୍ରମଜୀବୀମାନଙ୍କ ପ୍ରତିନିଧିମାନଙ୍କ
ଲେବର୍‌ଦଳ } ଅନ୍ୟରୂପ ଦ୍ୱାରା ଗଠିତ ଦଳ—1, The Labour
ଲେବର୍‌ପାର୍ଟି } Party of the British
लेबाव **लेबर** Parliament. ୨ । ଦେଶର ଶ୍ରମଜୀବୀମାନଙ୍କ ସମାହାର—2. The body of labourers in a country.

ଲେବର୍ ଗଭର୍ଣ୍ଣମେଣ୍ଟ—ବୈଦେ. ବ (ଇଂ)—ଶ୍ରମଜୀବୀମାନଙ୍କ ପ୍ରତିନିଧି-
Lebar gabharṇṇamenṭ ମାନଙ୍କ ଦ୍ୱାରା ଗଠିତ ବିଲାତର
लेबाव गभर्मेंट ଶାସକ ଦଳ—Labour Government of England.
**लेबर गवर्नमेंट**

ଲେବଲ୍—ବୈଦେ. ବ—୧ । (ଇଂ ଲେଭଲ୍) ଲେଭଲ୍ ( ଦେଖ )—
Lebal 1. Lebhal ( See )
लेवेल ୨ । ଲେବେଲ୍ ( ଦେଖ )—
**लेबुल** 2. Lābel ( See )

ଲେବା—ପ୍ରାଦେ ( କଟକସହର ) କ୍ରି—ନେବା ( ଦେଖ )—
Lebā Nebā See
ବ—ନିଆ ( ଦେଖ )—Niā See

ଲେବା ଦେବା—ଗ୍ରାଦେ [ କଟକସହର ] କି [ ସହରର ]—
Lebā debā ନେବାଦେବା [ ଦେଖ ]—Nebādebā
See ବ—ନିଆଦିଆ [ ଦେଖ ]—Niādiā (See)

ଲେବାର୍—ବୈଦେ. ବ—ନେଉ୍ଆର୍ ( ଦେଖ )
Lebār Neuār ( See )

ଲେବେଲ୍—ବୈଦେ. ବ (ଇଂ)—ଲାବେଲ୍ (ଦେଖ)
Lebel Lābel ( See )

ଲେବୋରେଟରି—ବୈଦେ. ବ ( ଇଂ )—ବୈଜ୍ଞାନିକ ପରୀକ୍ଷାଗାର—
Leboretari ল্যাবোরেটারী Laboratory.
लेबोरेटरी

ଲେଭଡ଼(ର)—ଦେ. ବ—୧ । ଦୁର୍ଗନ୍ଧ; ଦାନ୍ତରେ ଲାଗିଥିବା ଛଉଅ
Lebharda(ra) —1. Tartar and foul crust on
দাঁতেরছাতা the teeth. ଦେ. ବଣ—ଲେଭଡ଼ା (ଦେଖ)
दाँतकामैल Lebhardā ( See )

ଲେଭ(ଭେ)ଡ଼ା—ଦେ. ବଣ. ପୁଂ (ସ. ଅନାଦରାର୍ଥ, ସ. ଲମ୍ପଟ,
Lebha(bhe)rdā ବା ଲପ୍ ଧାତୁ—ଗପିବା, ଭୁଲ୍; ଇଂ.
ন্যা(লা)বড় ଲାବଡ଼ିନେସ୍ )—୧ । ନିର୍ଲଜ୍ଜ—1. Shameless.
बेहया ୨ । ଯେ ନିର୍ଲଜ୍ଜଭାବରେ ଗପେ ବା ହସେ—
[ଲେଭ(ଭେ)ଡ଼ୀ—ସ୍ତ୍ରୀ] 2. Talking or laughing
shamelessly. ୩ । ଲମ୍ପଟ—3. Libidinous.

ଲେଭଡ଼(ର, ଡ଼ା, ରା) ମୁଖା(ହାଁ)—ଦେ. ବଣ. ପୁଂ—୧ । (ଅନାଦରାର୍ଥକ)
Lebharda(ra, rdr, rā) mukhā(hān̐) ଦାନ୍ତ ନ ଘଷି
অপরিষ্কার মুখো मैला दाँतवाला ଥିବାରୁ ଯାହାର ଦାନ୍ତପାକରେ
(ଲେଭେଡ଼[ବ] ମୁହାଁ—ଅନ୍ୟରୂପ) ଛଉଅ ବସିଥାଏ—1. Hav-
[ଲେଭଡ଼(ର, ଡ଼ା, ରା) ମୁଖୀ(ହୀଁ)—ସ୍ତ୍ରୀ] ing the mouth or
teeth full of tartar. ୨ । ଅଘଷା ପାଟିଆ—
2. Not having the face and mouth
washed. ୩ । ନିର୍ଲଜ୍ଜ ମୁହାଁ—3. Having a
shameless face; brazen-face. ୪ । ଲେଫଡ଼ା-
ମୁହାଁ ( ଦେଖ )—4. Lephardā muhān̐
( See )

ଲେଭ(ଭେ)ଡ଼ା(ରା)—ଦେ. ବଣ (ସ. ଲେପିତ)—୧ । ମୁହଁରେ
Lebha(bhe)rdā(rā) ସିନ୍ଦୂର କଜ୍ଜ୍ୱଳ ଆଦି ଲେସି ହୋଇ
জোবড়া ଯାଇଥିବା ଯୋଗୁଁ ଅସୁନ୍ଦର ଦେଖାଯିବା; ଗୁଡ଼ାଏ ଅଳଙ୍କାର
लिहाड़ा ପିନ୍ଧିବା ଯୋଗୁ ଅସୁନ୍ଦର ଦେଖାଯିବା—1. Looking
awkward on account of excess of dress
বেহায়া or overdone toiletee. ୨ । ନିର୍ଲଜ୍ଜ—
बेहया 2. Shameless. ୩ । (ସ. ଲେହ୍ୟ) ନିର୍ଲଜ୍ଜଭାବରେ
লোভী ଲୋଭୀ—3. Shamelessly greedy. [ ଦୃ—
बड़ा लालची ସୁଯୋଧନ· ବଡ଼ା ତ ସଇକ ଲେଭଡ଼ା । ହୋଇଛନ୍ତି,
ଏଣୁ ସେ ହୋଇଛନ୍ତି ଛଡ଼ା—କୃଷ୍ଣସିଂହ. ମହାଭାରତ.
ଶଲ୍ୟ । ]

ଲେଭ(ଭେ)ଲ୍—ବୈଦେ. ବ ( ଇଂ. ଲେଭେଲ୍=ସମତଳ )—୧ ।
Lebha(bhe)l କୌଣସି ସ୍ଥାନର ସମତଳତା ସ୍ଥିର କରିବା
লেভল ନିମନ୍ତେ ବ୍ୟବହୃତ ଯନ୍ତ୍ର—1. A level; a levelling
लेभल insrtument. [ଦୃ—ଏହି ଲେଭଲ୍ ଯନ୍ତ୍ର ମଧ୍ୟରେ ଜଳ
ବା ସ୍ପିରିଟ୍ ବା ପାରଦ ବ୍ୟବହାର କରାଯାଇ
ସ୍ଥାନର ସମତଳତ୍ୱ ନିର୍ଣ୍ଣୟ କରାଯାଏ । ଏଣୁ ଉକ୍ତ
ଦ୍ରବ୍ୟମାନଙ୍କ ନାମାନୁସାରେ ଯନ୍ତ୍ରକୁ water-level,
spirit-level ଓ mercury-level କୁହାଯାଏ । ]
୨ । ସମୁଦ୍ର ପୃଷ୍ଠର ବା ଅନ୍ୟସ୍ଥାନର ଆପେକ୍ଷିକ ଉଚ୍ଚତା—
2. The mean level of the sea or
of any place. ବଣ—ସମତଳ—Level.

ଲେଭ(ଭେ)ଲ୍ କ୍ରସିଙ୍ଗ—ବୈଦେ. ବ (ଇଂ.ଲେଭେଲ୍ କ୍ରସିଙ୍ଗ୍)—ରେଳ
Lebha(bhe)l krasiṅg ଲାଇନ ଯେଉଁଠାରେ ରାଜପଥକୁ
লেভল ক্রাসিঙ্গ କାଟି କରି ଯାଇଥାଏ—Level crossing
लेभल क्रसिं ( where a railway line crosses a
road).

ଲେଭେଣ୍ଡର୍—ବୈଦେ. ବ—ଲାଭେଣ୍ଡର୍ ( ଦେଖ )
Levendar Lābhendar ( See )

ଲେମଉ(ଊ)—ପ୍ରାଦେ (ଖଡ଼ୁଆଳ) ବ—ଲେମ୍ବୁ—Lemon.
Lemau(ūn)

ଲେମଉ ଚହିବା—ପ୍ରାଦେ (ଖଡ଼ୁଆଳ)—ବ—ଭୟଭୀତ ହେବା—
Lemau chinibā Being terrified.

ଲେମଚୁ(ଞ୍ଜୁ)ସ୍—ବୈଦେ. ବ ( ଇଂ. ଲେଜେଞ୍ଜେସ୍ )—ଲେଜଞ୍ଚୁସ୍
Lemachu(ñju)s ( ଦେଖ )—Lejañchus ( See )

ଲେମନ ସିରପ୍—ବୈଦେ. ବ ( ଇଂ. ଲେମନ୍ ସିରପ୍ )—ଲେମ୍ବୁ
Leman sirap ରସଦ୍ୱାରା ସୁଗନ୍ଧୀକୃତ ସରବତ—Lemon
লেমন সিরাপ लेमन सिराप syrup.

ଲେମ୍(ମ,ମୋ)ନେଟ୍(ଡ୍)—ବୈଦେ. ବ (ଇଂ. ଲେମନେଡ୍)—ଲେମ୍ବୁ
Lem-(ma,mo)net(d) ରସଦ୍ୱାରା ସୁବାସିତ ସୋଡ଼ା ମିଶ୍ରିତ ପାନୀୟ;
লেমনেড लेमनेड ସ୍ଫୂର୍ତ୍ତିକାରକ ପାନୀୟ ବିଶେଷ—Lemonade.

ଲେମା(ମ୍ବା)ଲ—ଦେ. ବ. ନାମ ( ଇଂ. ଲ୍ୟାଣ୍ଡ୍ସ=Inland
Lemā(mbā)la carriers; ଯେଉଁମାନେ ସମୁଦ୍ରରୁ ପଣ୍ୟଦ୍ରବ୍ୟ
ଦେଶ ମଧ୍ୟକୁ ବହି ନିଅନ୍ତି । ପୂର୍ବେ ଏହା ସାମୁଦ୍ରିକ
ବାଣିଜ୍ୟର କେନ୍ଦ୍ର ( maritime area ) ଥିବା
ଅନୁମିତ ହୁଏ-ଲକ୍ଷ୍ମୀନାରାୟଣ ସାହୁଙ୍କ ପଠିତ ଇଂରାଜୀ ଗ୍ରନ୍ଥ ।]
—କଟକ ଜିଲ୍ଲାର ସାଲେପୁର ଥାନା ଅନ୍ତର୍ଗତ ଲୁଣୀ ନଦୀ
ନିକଟସ୍ଥ ଗୋଟିଏ ପ୍ରସିଦ୍ଧ ଗ୍ରାମ—[ ଦୃ—ଏଠାରେ କରଣ
ବୈଷ୍ଣବଙ୍କର ଗୋଟିଏ ଗାଦି ଅଛି । ଏହି ଗାଦି ଉତ୍କଳର
ଯାବତୀୟ ପ୍ରସିଦ୍ଧ ଭକ୍ତ ( ଚୈତନ୍ୟ ଦେବଙ୍କ ପଞ୍ଚସଖା )ଙ୍କ
ମଧ୍ୟରୁ ଏକତମ ଅଚ୍ୟୁତାନନ୍ଦ ଦାସଙ୍କର । ଏ ଅନେକଗୁଡ଼ିଏ
ବୈଷ୍ଣବ ଧର୍ମପୁସ୍ତକ ଓ ମାଳିକା ରଚନା କରିଥିଲେ । ଏ
ମଠର ମହନ୍ତମାନେ ଓଡ଼ିଶାର ଗୋପାଳମାନଙ୍କର ଧର୍ମଗୁରୁ ।]
Name of a village in the Cuttack
district in which is situated the seat
of the religious head of the cowherds
of Orissa.

ଲେମା(ମ୍ବା)ଳ ଗାଦି—ଦେ. ବି—ଲେମାଳ ଗ୍ରାମରେ ଥିବା ସ୍ୱର୍ଗୀୟ ଭକ୍ତ
Lemā(mbā)la gādi ଅଚ୍ୟୁତାନନ୍ଦ ଦାସଙ୍କ ମଠ—
[ଲେମା(ମ୍ବା)ଳ ମଠ—ଅନ୍ୟରୂପ] The math of the late saint Achyutānanda Dāsa Goswāmi at Lemāla.

ଲେମା(ମ୍ବା)ଳ ବଟ—ଦେ. ବି.—ଲେମାଳ ଗ୍ରାମରେ ଥିବା ଅଚ୍ୟୁତାନନ୍ଦ
Lemā(mbā)la baṭa ଦାସଙ୍କ ମଠ ସଲଗ୍ନ ବଡ଼ ବରଗଛ [ଦ୍ର—ଏହା ମୂଳରେ ଜ୍ୟୈଷ୍ଠ ପୂର୍ଣ୍ଣିମା(ଅଚ୍ୟୁତାନନ୍ଦଙ୍କ ଦେହତ୍ୟାଗ ଦିବସ) ଦିନ ଅଚ୍ୟୁତାନନ୍ଦ ଦାସଙ୍କ ଭକ୍ତମାନଙ୍କର ଗୋଟିଏ ମେଳା ବା ଉତ୍ସବ ହୁଏ—Name of a banyan tree near the Math of village Lemāla where devotees of Achyutānand a congregate on the full moon day of the month of jyaistha.

ଲେମ୍ବୁ—ପ୍ରାଦେ (ଖ ଅଳ) ବି—ଲେମ୍ବୁ—
Lemu Lemon

ଲେମ୍ବା(ମ୍ଭା)ଉ—ଗ୍ରା. ବି.—ଲେମ୍ବୁ (ଦେଖ)
Lembā(mbhā)u Lembu See)
(ଲେମ୍ବୁଆ—ଅନ୍ୟରୂପ) [ଦ୍ର—ଟଭା, ଲେମ୍ବାଉ, କମିଙ୍ଗା,ଜାମ୍ବିଅ ପ୍ରାଚୀ. ପ୍ରତାପ ଷଷ୍ଠିସେଣା ।]

ଲେମ୍ବୁ—ଦେ.ବି.—(ସ ଜମ୍ବୁ:)—ଜେମ୍ବୁ; ଅମ୍ଳରସମୟ କୋଷପୂର୍ଣ୍ଣ ଫଳ ଓ
Lembu ତହିଁର କଣ୍ଟକଯୁକ୍ତ ବୃକ୍ଷ—Lemon; citrus; Citron
ସ. ଜମ୍ବୁ, ଜମ୍ବୁକ, ଦନ୍ତ ହର୍ଷଣ, Medica (Haines); Citrus
ବସ୍ତିଶୋଧକ Medica (Kirtikar) [ଦ୍ର—
ନେବୁ ନୀମ୍ବୁ ଏ ଶବ୍ଦ ଏହି ଜାତୀୟ ନାନା
ମ. ଲିମ୍ବୁ ଫଳକୁ ବୁଝାଏ । ଓଡ଼ିଆରେ ଲେମ୍ବୁ
ପା. ଲିମୁ କହିଲେ ସାଧାରଣତଃ କମଳା
ତେ. ନିମକାୟ ଲେମ୍ବୁକୁ ବୁଝାଏ । ବଙ୍ଗଳାରେ ନେବୁ
କହିଲେ କାଗଜି ଲେମ୍ବୁକୁ ବୁଝାଏ । ଲେମ୍ବୁ ଅନେକ ପ୍ରକାରର । ଅମର କୋଷରେ ଲେମ୍ବୁ ୩ ଶ୍ରେଣୀରେ ବିଭକ୍ତ ହୋଇଅଛି; ୧ । ନାଗରଙ୍ଗ =ନାରଙ୍ଗ, ୨ ।—ଜମ୍ବୀର = ଜମ୍ବୀଲ; ୩ । ମାତୁଲଙ୍ଗ= ଟଭା । ଫଳତଃ ଲେମ୍ବୁ ଅନେକ ଶ୍ରେଣୀର ଓ ଆକାରର । ସବୁ ଜାତୀୟ ଲେମ୍ବୁ ଗଛରେ ଲମ୍ବ କଣ୍ଟା ଥାଏ ଓ ସବୁ ଜାତୀୟ ଲେମ୍ବୁ ଗଛର ପତ୍ରମଞ୍ଜିରୁ ପତ୍ର ସବୁ ଓ ସବୁଥିର ଫୁଲ ଧଳା ଓ ସୁଗନ୍ଧ । ଏ ବୃକ୍ଷ ଚିର ଶ୍ୟାମଳ (evergreen) । ଫଳ ମଧ୍ୟରେ କୋଷା ଥାଏ ଓ କୋଷା ମଧ୍ୟରେ ଖଟା, ଖଟା ମିଠା ବା ମିଠା ଦାନା ବା ଲୁଆମାନ ଥାଏ ।

ଆମ୍ଭେମାନେ ନିମ୍ନ ଲିଖିତ ବହୁବିଧ ପ୍ରକାରର ଲେମ୍ବୁ ସହିତ ପରିଚିତ ।

୧ । କାଗଜୀ ଲେମ୍ବୁ;—୨ । କାଗଜୀ ଲେମ୍ବୁ;—୩ । ଜମ୍ବିର ବା ଜାମ୍ବିଅ ଲେମ୍ବୁ;—୪ । ଟଭା ବା ତୁରଞ୍ଜ ଲେମ୍ବୁ; ୫ । ଅତାର୍ଶୀ ବା ବାତାର୍ଶୀ ଲେମ୍ବୁ;—୬ । କମ(ମ୍ବ)ଳା; ଲେମ୍ବୁ;—୭ । ନାଗପୁର କମଳା ବା ଶିଲଟୀ କମଳା ବା ସୁରଙ୍ଗୀ କମଳା—୮ । ନାରଙ୍ଗ ବା ନାରଙ୍ଗୀ ଲେମ୍ବୁ । ]

ଲେମ୍ବୁ ଲୁଣ—ଦେ. ବି.—(ସହଚର)—୧ । ଲେମ୍ବୁ ଓ ଲୁଣ—
Lembu luṇa 1. Lemon and salt.
୨ । (ଅବଜ୍ଞାସୂଚକ; ଲକ୍ଷଣାର୍ଥ; ଗାଳିରେ ବ୍ୟବହୃତ ତୁଚ୍ଛାର୍ଥକ ଶବ୍ଦ) ଫଳତଃ କିଛି ନାହିଁ—2. (An abusive or disdainful expression) Trash; next to nothing etc. [ଯଥା,—ଏତେବେଳକୁ ଆସିଲୁ ଯେ, ସମସ୍ତେ ଖାଇ ପିଇ ସାରିଲେଣି, ତୁ ଲେମ୍ବୁ ଲୁଣ ଖାଇବୁ ।]

ଲେୟ—ସ.ବି.—(ଲୀ ଧାତୁ=ଗମନ କରିବା+କର୍ତ୍ତୃ.ଯ) —(ଜ୍ୟୋତିଷ)
Leya ସିଂହ ରାଶି—The sign of Leo or Lion in the Zodiac.

ଲେର—ପ୍ରାଦେ (ଖଡ଼ିଆଳ) ବି—ଅକ୍ଷିର ଲେଟେରା—
Lera The rheum of the eye.

ଲେଲ୍ହା—ପ୍ରାଦେ [ଖଡ଼ିଆଳ] ବିଣ. ପୁଂ—ଦୁର୍ବଳ—Weak
Lel-hā [ଲେଲ୍ହୀ—ସ୍ତ୍ରୀ]

ଲେଲାଇବା—ପ୍ରାଦେ [ ଖଡ଼ିଆଳ ] କି—'ଲେଲେଲେଲେ' ଧ୍ୱନି କରି
Lelāibā ଉତ୍ସାହସୂଚକ ଡାକ ଡାକିବା—To shout 'Lelelele !' to fncite persons or animals.

ଲେଲିହ—ସ. ବି—(ଲିହ ଧାତୁ ଯଙ୍ ଲୁଗନ୍ତ ଲେଲିହ ଧାତୁ+କର୍ତ୍ତୃ. ଅ
Leliha ୧ । ଉକୁଣୀ (ହି. ଶ)—1. Louse. ୨ । ସାପ—2. Serpent.

ଲେଲିହାନ—ସ.ବିଣ.ପୁଂ—(ଲେଲିହ ଧାତୁ+କର୍ତ୍ତୃ.ଅନ)-୧। ଜିଭଦ୍ୱାରା
Lelihāna ଓଠକୁ ବାରଂବାର ଚାଟୁଥିବା—(କୁକୁର ବିଲୁଆଙ୍କପରି)
(ଲେଲିହାନା—ସ୍ତ୍ରୀ) — 1. Repeated icking the lips with t e tongue (said of dogs, cats etc) ୨ । ବାରଂବାର ଚାଟୁଥିବା ବା ଆସ୍ୱାଦନ କରୁଥିବା—2.Repeatedly tasting or licking a thing. ୩। ଯେ ଜିଭ ଲହ ଲହ କରୁଥାଏ(ସର୍ପାଦି)—3.Waving the tongue to and fro;lolling the tongue. (ଉ—ପିଙ୍ଗଳ କେତେ ଲେଲିହାନ ନାଗମାନେ, ବହୁ ଗରଜନ କରନ୍ତି ଅବିଚ୍ଛିନ୍ନେ—କୃଷ୍ଣସିଂହ. ମହାଭାରତ ବନ ।)
ସ. ବି—ସର୍ପ—Serpent ( Apte ).

ଲେଲିହ୍ୟମାନ—ସ. ବିଣ. ପୁଂ ( ଲେଲିହ ଧାତୁ+କର୍ମ. ଅନ )—
Lelihyamāna ଯାହାକୁ ପୁନଃ ପୁନଃ ଚଟା ଯାଉଥାଏ—
[ଲେଲିହ୍ୟମାନା—ସ୍ତ୍ରୀ] Repeatedly being licked.

ଲେଲେଲେଲେ—ପ୍ରାଦେ [ଖଡ଼ିଆଳ] ଅ—ମନୁଷ୍ୟକୁ ବା ଅନ୍ୟ ଜୀବକୁ
elelele କୌଣସି କାର୍ଯ୍ୟରେ ଉତ୍ସାହିତ ବା ଲଗାଇବା ପାଇଁ ବ୍ୟବହୃତ ଧ୍ୱନି—A shouting uttered for inciting a person or animal to do something.

ଲେଶ—ସ. ବ ( ଲିଶ୍ ଧାତୁ=ଅଳ୍ପ ହେବା+କର୍ତ୍ତୃ. ଅ )—୧ ।
Leśa କିଞ୍ଚିନ୍ମାତ୍ର; ସାମାନ୍ୟମାତ୍ର; ଅଳ୍ପମାତ୍ର—1. A little; a very little quantity; a small portion. ( ଉ—ଚନ୍ଦ୍ର ହିଦେ ହେଲେ ଅକର୍ମଶୀଳା ସେ ଲେଶେ

ଦ୍ରୁଗାରୂଢ଼ ଚୋର୍ଦ୍ଦେ—ସାଳକୃଷ୍ଣ ଭଗମୋହନ ଛନ୍ଦ । ) ୨ । ବିନ୍ଦୁ—2. Drop. ୩ । ଚିହ୍ନମାତ୍ର—3. A trace, faint mark. ୪ । କଣା; ଅଣୁ—4. Atom; a minute particle. ୫ । ସଂସର୍ଗ; ସମ୍ବନ୍ଧ (ସ୍ତ୍ରୀ. ଶ)—5. Connection. ୬ । ସାହିତ୍ୟରେ ଅର୍ଥାଲଙ୍କାରବିଶେଷ ( ସ୍ତ୍ରୀ. ଶ )—6. A figure of speech. [ ଦ୍ର—ଏଥିରେ କୌଣସି ବସ୍ତୁର ବର୍ଣ୍ଣନରେ କେବଳ ଏକଅଂଶରେ ଦୋଷଗୁଣ ଥାଏ—ସ୍ତ୍ରୀ. ଶ । ] ୭ । ଏକପ୍ରକାର ଗୀତ ବୋଲା ( ସ୍ତ୍ରୀ. ଶ. )—7. A kind of singing. ବିଣ—୧ । କିଞ୍ଚିନ୍ମାତ୍ର—1. A trace of; a faint ray of. ୨ । ଅଳ୍ପ; ସାମାନ୍ୟ—2. Little. ଦେ. କ୍ରି. ବିଣ—କିଞ୍ଚିନ୍ମାତ୍ର—Slightly; faintly.

**ଲେଶ ଦୃଷ୍ଟି**—ସ. ବି—୧ । ସୂକ୍ଷ୍ମଦୃଷ୍ଟି—1. Discernment; acute observation.
Leśa drushṭi
୨ । ସାମାନ୍ୟମାତ୍ର ଦୃଷ୍ଟି—2. A slight vision; a glance; a sweeping glance.

**ଲେଶ ମାତ୍ର**—ସ. ବି—କିଞ୍ଚିନ୍ମାତ୍ର—A minute particle; a trace; a bit. ବିଣ—କିଞ୍ଚିନ୍ମାତ୍ର; ଅତିଅଳ୍ପମାତ୍ର—a very little of; a particle of; a trace of; a bit of. ( ଦ୍ର—ଲେଶମାତ୍ର ଦୋଷ ତହିଁ ନାହିଁ ଏଥି ସାର !—ଜଗନ୍ନାଥଦାସଙ୍କ ଭାଗବତ ) କ୍ରି. ବିଣ—ସାମାନ୍ୟରେ—Slightly.
Leśa mātra

**ଲେଶମାତ୍ର ଆଶା**—ଦେ. ବି—କ୍ଷୀଣତମ ଆଶା—A ray of hope; the least hope
Leśamātra āśā
লেশমাত্র আশা   लेशमात्र आशा

**ଲେଶମାତ୍ର ସତ୍ୟ(ତା)**—ଦେ. ବି—କିଞ୍ଚିତ୍ ସତ—An iota of truth.
Leśamātra satya(ta)
লেশমাত্র সত্য   लेशमात्र सच्चाई

**ଲେଶମାତ୍ର ସନ୍ଦେହ**—ଦେ. ବି—ସାମାନ୍ୟ ମାତ୍ର ସନ୍ଦେହ—The slightest doubt.
Leśamātra sandeha
লেশমাত্র সন্দেহ   लेशमात्रसन्देह

**ଲେଶେ**—ଦେ. କ୍ରି. ବିଣ ( ସ. ଲେଶ )—ଲେଶମାତ୍ର—Slightly.
লেশমাত   जरामात
[ଦ୍ର—ସାଣା ବାଦ୍ୟ ଶିଖା ଦେଇ ଅଶେଷେ, ଅକାଳ ଗ୍ରୀଷ୍ମ ବୋଲାଇଲେ ଲେଶେ—କବିସୂର୍ଯ୍ୟ ବଳଦେବ ।]

**ଲେଶ୍ୟା**—ସ. ବି—୧ । ଆଲୋକ—1. Light (Apte) ୨ । (ଜୈନ ମତରେ) କର୍ମଦ୍ୱାରା ଜୀବର ବନ୍ଧନାବସ୍ଥା (ସ୍ତ୍ରୀ. ଶ)—2. The state of the life being bound by one's acts.
Leśya

**ଲେଷ୍ଟୁ**—ସ. ବି ( ଲିଷ୍ ଧାତୁ + କରଣ. ତୁ ) —ଲେଣ୍ଡୁ; ଢେଲା; ଢେଲା—A clod of earth.
Leshṭu

**ଲେଷ୍ଟୁଭେଦନ**—ସ. ବି—୧ । ଢେଲା ଭାଙ୍ଗିବାର ହାତୁଡ଼ୀ—1. A hammer for breaking clods. ୨ । ଚଇ; ଚଷ ମାଟିକୁ ଚୂନା କରିବା ପାଇଁ ବ୍ୟବହୃତ ନିଶ୍ରେଣୀ ଆକାରର ଯନ୍ତ୍ର—2. A ladder used for breaking the clods of a ploughed field; a clod-crusher. ୨ । ଚଷ ମାଟିକୁ ଚୂନା କରିବାର ଯନ୍ତ୍ର—2. A harrow.
Leshṭu bhedana

**ଲେସ୍**—ବୈଦେ. ବି ( ଇଂ. ଲେଶ୍ )—୧ । ଲୁଗା ଆଦିର ଧଡ଼ିରେ ଲଗାଯିବା ଉଇଁଛା ଫିତା—1. Lace. ୨ । କାରୁକାର୍ଯ୍ୟଯୁକ୍ତ ଫିତା—2. Worked lace. ୩ । ଜୋତାରେ ବାନ୍ଧିବା ଫିତା—3. Shoe-lace. ୪ । ( ଗ୍ରା. )—ଘୋଡାର ଦାନ୍ତ—Tooth of a horse. ଦେ. ବି ( ସ. ଲେଶ )—ଲେଶ ( ଦେଖ )—Leśa ( See )
Les
লেস লেস

**ଲେସ୍ ଉଠିବା**—ଦେ.ବି—[ଘୋଡା ଛୁଆର] ଦାନ୍ତ ଉଠିବା;[ଘୋଡାର] ସୁବା ଅବସ୍ଥା ହେବା—Teething of a colt.
Les uṭhibā
দাঁত উঠা   दाँत निकलना

**ଲେସ୍ କାମ**—ଦେ. ବି—ଫିତାରେ ବୁଣା ହୋଇଥିବା କାରୁକାର୍ଯ୍ୟ—Lace work; embroidery.
Les kāma
লেসের কায   लेशका काम

**ଲେସ୍ ଧଡ଼ି**—ଦେ. ବିଣ—ଯେଉଁ ଲୁଗାର ଧଡ଼ି ଫିତା ସର—( A cloth ) Having a lace border; ( cloth ) embroidered with lace.
Les dhaṛḍi
লেশ পেড়ে   लेसका कोरवाला
( ଲେସ୍ ଧଡ଼ିଆ—ଅନ୍ୟରୂପ )

**ଲେସ୍ ପିନ୍**—ବୈଦେ. ବି (ଇଂ)—ଏକପ୍ରକାର ଗୋଞ୍ଜିକାଠି—A kind of hairpin.
Lesh-pin

**ଲେସ୍ ବୁଣିବା**—ଦେ. କ୍ରି—ଲୁଗା କାଟିବାର ଭୁଲାର ସୂତାଦ୍ୱାରା ବା ରେଶମ ସୂତା ଦ୍ୱାରା ଫିତା ବୁଣିବା—To spin or plait lace.
Les buṇibā
লেস বোনা   लेस बुनना

**ଲେସ( ସେ )ଡ଼ା**—ଦେ. ବିଣ. ପୁଂ—୧ । ଲେଲଭା; ନିର୍ଲଜ୍ଜ—1. Shameless; impudent. ୨ । ଦୈନ୍ୟ ଭାଷୀ; ଯାହାକୁ ନାହିଁ ନାହିଁ କରୁଥିଲେ ସୁଦ୍ଧା ଯେ କଥା ଉପରେ କଥା କହୁଥାଏ—2. Pugnacious; importunate; pertinacious. ୩ । କୃପଣ—3. Close-fisted. ୪ । ଦନ୍ତବିଷ; ଯେ ସବୁବେଳେ ଦାନ୍ତରେ ହସୁଥାଏ—4. Given to grinning; given to 'vacant laughter' or indecent laughter. ୫ । ପାଣିଆ ( କାଦୁଅ ଆଦି ); ଯାହା ଚୋଷ ସହେ—5. Watery and unsticking ( clay ). ବି—୧ । ଲେସଡ଼ିବା ( ଦେଖ )—1. Lesardibā(See). ୨ । ଦୈନ୍ୟ ପ୍ରକାଶପୂର୍ବକ ପୁନଃ ପୁନଃ ପ୍ରାର୍ଥନା—2. Importunity.
Lesa(se)rdā
নেবড়া   बेहया
[ ଲେସ(ସେ)ଡ଼ୀ—ସ୍ତ୍ରୀ ]

**ଲେସ(ସି, ସେ)ଡ଼ ପଡ଼ିବା**—ଦେ. କ୍ରି—ଲେସଡ଼ି ପଡ଼ିବା—Lesardi pardibā.
Lesa(si, se)rdi pardibā
[ଲେସ(ସି,ସେ)ଡ଼ ଯିବା (ପଡ଼ିଯିବା)—ଅନ୍ୟରୂପ]

**ଲେସ(ସି,ସେ)ଡ଼ିବା**—ଦେ. କ୍ରି—୧ । ଦାନ୍ତକୁ ଓ ଦାନ୍ତକୁ ଲେଫଡ଼ିବା—
Lesa(si,se)rdibā 1. To spread out one's
(দান্ত) বাব কবা **खिदोडना** mouth; to grin. ୨ । ଦୈନ୍ୟ
ପ୍ରକାଶପୂର୍ବକ ପୁନଃ ପୁନଃ ପ୍ରାର୍ଥନା କରିବା—2. To
importune. ୩ । ଲେସଡ଼ିବା (ଦେଖ)—3. Losa-
rdibā (See) ୪ । କୌଣସି କାର୍ଯ୍ୟ ଶକ୍ତିର ଅତୀତ
ହେଲେ ସୁଦ୍ଧା ସେହି କାର୍ଯ୍ୟରେ ସାଧ୍ୟମତ ଲାଗି ରହିବା
সাধ্যমত কবা —4. To persist in a work. [ଉ—
**लगना** ଦାନବେ ଦେବତାଙ୍କ ପ୍ରଭାବ ନ ସହି । ଲେସଡ଼ି ଯୁଦ୍ଧ
କଲେ ମୃତ୍ୟୁ ଇଚ୍ଛା ବହି । ]

**ଲେସନ୍**—ବୈଦେ. ବି(ଇଂ. ଲେସ୍‌ସନ୍)—ପାଠ; ପୁସ୍ତକର ଯେଉଁ ଅଂଶ
Lesan ଥରକପାଇଁ ସନ୍ଦିଷ୍ଟଅଧ୍ୟାୟ—A lesson of a book.
লেসন **लेसन**

**ଲେସରା ମେସରା**—ଦେ. ବିଣ—ଲେନ୍ଦରା ମେନ୍ଦରା ( ଦେଖ )
Lesarā mesarā Lendarā mendarā ( See )

**ଲେସା**—ଦେ. ବି (ସଂ. ଲିଶ୍ ଧାତୁ=ଅଳ୍ପ କରିବା)—୧ । ବହଳ କରି
Lesā ବୋଳିବା; ଘନଲେପନ—1 Smearing thickly. ୨ ।
লেপা କାଦୁଅ ଅଧିକ ପାଣିଆ ଚୂନଗୁଡ଼ିକୁ କାନ୍ଥର ଛିଦ୍ରରେ ବା ଫାଟରେ
**तोपाना** ବହଳକରି ବୋଳିବା-2. Thick smearing of clay
eto on holes and cracks of a wall
[ ଦ୍ର—ପତଳା କରି ବୋଳିବାକୁ ଲିପିବା ବା
ଲେପିବା ଏବଂ ବହଳ କରି ବୋଳିବାକୁ
ଲେସିବା କହନ୍ତି । ଘରର କାନ୍ଥରେ ଚୂନ ଲିପାଯାଏ;
କାଦୁଅ ଲେସାଯାଏ । କାନ୍ଥ ଦେହକୁ ଦୂରରୁ କାଦୁଅ
ପିଣ୍ଡୁଳାକୁ ଫୋପାଡ଼ିବାକୁ ଛାଟ ବା ଛାଟିବା ବୋଲାଯାଏ ।]
লেপা ବିଣ—୧ । ଘନରୂପେ ଲିପ୍ତ; ବହଳିଆ ହୋଇ ବୋଳା
**तोपाहुआ** ହୋଇଥିବା—1. Thickly smeared over
শাণ'দেওযা with clay etc. covered with a thick
**सानाहुआ** coating of. ୨ । ଧାର ହୋଇଥିବା—2. Whet-
ted; sharpened. [ ଉ—ସେ ଶରରୁ କେତେ
ହୋଇଛି ଶିଳାଘଷା, କେତେକ ହୋଇଅଛି ସାଣରେ
ଲେସା । କୃଷ୍ଣସିଂହ. ମହାଭାରତ. ବିରାଟ ।]

**ଲେସା(ସେ)ଇବା**—ଦେ. କ୍ରି—ଲେସିବା କ୍ରିୟାର ଣିଜନ୍ତରୂପ—
Lesā(se)ibā Causative form of the verb Lesibā
লেপান **तोपवाना**

**ଲେସାଲେସି**—ଦେ. ବି (ସହଚର)-ଅନେକ ସ୍ଥାନକୁ ଲେସିବା କ୍ରିୟା—
Lesālesi Acts of coating thickly,
লেপালেপি **तोपातोपी**

**ଲେସା ହେ(ଯି)ବା**—ଦେ. କ୍ରି—ବହଳିଆ ହୋଇ ଲିପା ହେବା; ଘନ
Lesā he(ji)bā ଭାବେ ଲେପିତ ହେବା—To be laid
লেপা হওয়া **तोपा होना** thickly over. (ଯଥା-ତା ଦେହରେ
ଭଚ୍ଛାବସନ୍ତ ଲେସା ହୋଇ ଯାଇଛି )

**ଲେସିକ**—ସଂ. ବି. ପୁଂ—ହାତୀ ଚଢ଼ିଥିବା ବ୍ୟକ୍ତି—
Lesika A rider on an elephant (Apte)

**ଲେସିବା**—ଦେ. କ୍ରି (ସଂ ଲିଶ୍ ଧାତୁ)—୧ । ଘନ ଭାବରେ ଲେପିବା;
Lesibā ବୋଳିବା—1. To lay a thick layer or
লেপা crust; to smear thickly. ୨ । ପଲସ୍ତରା କରିବା—
**तोपना** 2. To plaster. [ଦ୍ର—ଘରର ମାଟିକାନ୍ଥ କରିବାକୁ
ହେଲେ ପ୍ରଥମେ ଭୂଇଁ ଉପରେ ମାଟି ପିଣ୍ଡମାନ ଉପର୍ଯ୍ୟୁପରି
ରଖାଯାଏ (ଏହାକୁ ମାଟି ଦେବା କହନ୍ତି )। କମ୍ପା ଯୋଡା
ହୋଇଥିବା ବାଉଁଶର ବାଡ଼ର ଦେହରେ ମାଟି ଛାଟିବାକୁ
ହୁଏ, ଅର୍ଥାତ୍ ମାଟି ପିଣ୍ଡୁଳାମାନ କିଛି ଦୂରରୁ ଉକ୍ତ ବାଡ଼
ଦେହକୁ ଫୋପାଡ଼ିବାକୁ ହୁଏ ଓ ଉକ୍ତରୂପେ ଛାଟା ହେବା
ମାଟିମାନ ଘନ ହୋଇଥିଲେ ତାହା ସେ ବାଡରେ ଲାଗିରହେ;
ନଚେତ ପାଣିଆ ହୋଇଥିଲେ ଲେସଡି ପଡେ ବା କାନ୍ଥ
ଦେହରୁ ତଳକୁ ବୋହିପଡେ ବା ଖସିପଡେ । କାନ୍ଥରେ
ମାଟି ଛାଟା ସରିଲେ ସେ ଛାଟା ମାଟିରେ ଯେଉଁଠାରେ ଖାଲ
ବା ଫାଟ ଥାଏ, ସେହି ଛିଦ୍ର ଓ ଫାଟମାନଙ୍କରେ ବହଳିଆ
କାଦୁଅ ବା ଗୋବର ଲେସିବାକୁ ହୁଏ; ଅର୍ଥାତ୍ ବହଳ
କରି ବୋଳିବାକୁ ହୁଏ । ଏହିପରି ଲେସିବାଦ୍ୱାରା କାନ୍ଥର
ଛିଦ୍ର ଓ ଫାଟମାନ ମୁଦ୍ରି ହୋଇଯାଏ, ତତ୍ପରେ ତାହା
ଉପରେ ମାଟିକୁ ବା ଗୋବରକୁ ପାଣିଆ କରି ହାତଦ୍ୱାରା
ଲିପିବାକୁ ହୁଏ । ଲିପିବାଠାରୁ ବୋଳିବା ବହଳିଆ,
ବୋଳିବାଠାରୁ ଲେସିବା ବହଳିଆ । ଦେହରେ ଚନ୍ଦନ
ଲିପାଯାଏ, ହଳଦି ବୋଳାଯାଏ । କିନ୍ତୁ ହଳଦିକୁ
ଦେହରେ ବହଳଭାବରେ ବୋଳିଲେ ତାକୁ ଦେଖି ଲୋକେ
କହନ୍ତି,—ସେ ଦେହରେ ହଳଦିଗୁଡାକ ଲେସିଛି । ଇଟା
କାନ୍ଥରେ ଇଟାର ସନ୍ଧି ଅଦ ମୁଦିବା ପାଇଁ ମୋଟ ଚୂନ
ଲେସିବାକୁ ହୁଏ । ତତ୍ପରେ ମୋଟ ଚୂନକୁ ପଲସ୍ତରା କରି
ମସୃଣ କରାଯାଏ ଓ ପଲସ୍ତରା ସରିଲେ ତା ଉପରେ
ସଫେଦା ଚୂନ ବା କଳିଚୂନର ପାଣି ଲିପାଯାଏ ]

**ଲେସି ହେବା**—ଦେ. କ୍ରି—୧ । ଘନ ଭାବରେ ଆବରଣ କରିବା—
Lesi hebā 1. To cover with a thick layer.
(ଲେଶିହୋଇଯିବା—ଅନ୍ୟରୂପ) (ଯଥା—ତା ହାତପାକ ବସନ୍ତ
ছেয়েযাওয়া **पसरजाना, पसरना** ଲେସି ହୋଇ
ଯାଇଅଛି । ତା ମୁହଁରେ ସିନ୍ଦୂର କଜ୍ଜ୍ୱଳ ଲେସି ହୋଇ
ଯାଇଅଛି । ହସ୍ତାକ୍ଷର ବହିରେ କାଳି ଲାଗି ଅକ୍ଷରଗୁଡ଼ାକ
ଲେସି ହୋଇ ଯାଇଅଛି । ଆକାଶରେ ତାରାଗୁଡ଼ାକ
ଲେସି ହୋଇଅଛନ୍ତି ।) ୨ । କୌଣସି ବସ୍ତୁ ଉପରେ
ଘନଭାବରେ ସନ୍ନିବିଷ୍ଟ ହେବା—2. To be crusted
in a thick layer over a thing.

**ଲେସୁନ୍**—ପ୍ରାଦେ (ସମ୍ବଲପୁର, ଖଡ଼ିଆଳ) (ସଂ. ଲଶୁନ)—ରସୁଣ—
Lesun Garlic.

**ଲେହ**—ସଂ. ବି ( ଲିହ୍ ଧାତୁ—ଗୁଣ୍ଡିବା, ଚାଟିବା+ଭାବ. ଅ )—
Leha ୧ । ଚାଟିବା—1. Licking. ୨ । ଗୁଣ୍ଡିବା—
2. Tasting. ୩ । ( +କର୍ମ. ଅ ) ଅବଲେହ—
3. An electuary; a lambative (Apte).
୪ । ଖାଦ୍ୟ—4 Food (Apte). ୫ । ସ୍ୱର୍ଣ୍ଣର

ପ୍ରକାରଭେଦ; ଯହିଁରେ ସନ୍ତୁ ବା ପୃଥିବୀର ଛାୟା ସୂର୍ଯ୍ୟବିମ୍ବକୁ ବା ଚନ୍ଦ୍ରବିମ୍ବକୁ ଉପରେ ଗ୍ରହଣ ପରି ଜଣା ପଡ଼େ ( ବୃ. ଷ. )—5. A kind of eclipse in which the shadow seems to lick the solar or lunar orb. ବିଣ—୧ । ସୁସ୍ୱାଦୁ—1. Agreeable to the taste. ୨ । ଖାଦ୍ୟ; ଭକ୍ଷ୍ୟ—2. Edible. ୩ । ଅସ୍ୱାଦନୀୟ—3. Fit to be tasted. ଦେ. ବି (ସଂ ଅବଲେହ; ଲେହ୍ୟ )—ଯେଉଁ ପଦାର୍ଥକୁ ଚାଟି କରି ଖାଇବାକୁ ହୁଏ; ଚଟଣି—A thing which can be taken by licking; salad.
चाटिनी
चटनी

**ଲେହକ**—ସଂ. ବିଣ. ପୁଂ ( ଲିହ୍ ଧାତୁ+କର୍ତ୍ତୃ ଅକ )—ଯେ ଚାଟେ—
Lehaka [ ଲେହିକା—ସ୍ତ୍ରୀ ] Licking.

**ଲେହନ**—ସଂ. ବି ( ଲିହ୍ ଧାତୁ+ଭାବ. ଅନ )—୧ । ଚାଟିବା—
Lehana 1. Licking; sipping with the lips. ୨ । ଚାଟିବା; ସ୍ୱାଦ ଗ୍ରହଣ—2. Tasting. ୩ । ଭକ୍ଷଣ 3. Eating.

**ଲେହନୀୟ**—ସଂ. ବିଣ ( ଲିହ୍ ଧାତୁ+କର୍ମ ଅନୀୟ )—ଲେହ୍ୟ (ଦେଖ)
Lehaniya Lehya ( See )

**ଲେହର**—ପ୍ରାଦେ (ବସ୍ତର) ବି—ପବନ—Wind. ପ୍ରାଦେ (ଖଡ଼ିଆଳ)
Leharā ବି ଓ ବିଣ —ନେହୁର ( ଦେଖ )—Nehurā (See).

**ଲେହରଇବା**—ପ୍ରାଦେ (ଖଡ଼ିଆଳ) କ୍ରି—ନେହୁରାକରିବା—
Leharāibā To supplicate.

**ଲେହାଇ**—ଦେ. ବି ( ସଂ. ଲେହ୍ୟ )—୧ । ନିହାଇ ( ଦେଖ )
Lehāi 1. Nihāi ( See ) ୨ । ଲିହାଇ ( ଦେଖ )—2. Lihāi ( See )

**ଲେହି(ହିଁ)ବା**—ଦେ. କ୍ରି ( ସଂ ଲିହ୍ ଧାତୁ )—ଚାଟିବା—
Lehi(hiñ)bā चाटा चाटना To lick.
[ ଉ—ବହିବା ଉଦକ ଦେହରୁ ଲେହି । ଉଦ୍ଭ. ବୈଦେହୀଶବିଳାସ । ]

**ଲେହୀ**—ସଂ. ବିଣ. ପୁଂ ( ଲିହ୍ ଧାତୁ+କର୍ତ୍ତୃ. ଇନ୍, ୧ମା. ୧ବ )—
Lehī ଯେ ଚାଟେ; ଲେହନକାରୀ—Licking. ସଂ. ବି—(ଲେହିନୀ—ସ୍ତ୍ରୀ) ଟଙ୍କଣ; ସୁହାଗା; ଠାଙ୍ଗାଣ—Borax. ଦେ. ବି—ଲେହାଇ ( ଦେଖ )—Lehāi (See). ପ୍ରାଦେ (ଖଡ଼ିଆଳ) ବି—ରୋଗୀର ପଥ୍ୟପାଇଁ ଭାତର ଯାଉ—Gruel of rice used as an invalid's diet.

**ଲେହୁ**—ପ୍ରାଦେ ( ଗଡ଼ଜାତ ) ବି—ବନ୍ୟଲତା ବିଶେଷ—
Lehu A sort of wild creeper.
[ବି—ଏଥିର ଫଳ ବଡ଼ରଡ଼ ଅଙ୍ଗୁଳିର ବଡ଼ ଓ ଚେପଟା; ଏହାକୁ ସିଝାଇ ଖିଆଯାଏ । ]

**ଲେହୁଆ**—ଦେ. ବି—ନେହୁଆ (ଦେଖ)—
Lehuā Nehuā (See)

**ଲେହୁଡ଼ା**—ଦେ. ବି—ଆଣ୍ଠୁମାଡ଼ି ବସିବା—Kneeling down.
Lehurdā हाँटुगेड़ेबसा घुटने झुकाना, ठेहुनिया

**ଲେହୁଡ଼ା(ଡେ)ଇବା**—ଦେ. କ୍ରି—ଲେହୁଡ଼ିବା କ୍ରିୟାର ଣିଜନ୍ତରୂପ—
Lehurdā(rde)ibā To cause to kneel down.
হাঁটুগেড়ে বসান घुटनेके बल बैठाना

**ଲେହୁଡ଼ିବା**—ଦେ. କ୍ରି—ଆଣ୍ଠୁମାଡ଼ି ବସିବା—
Lehurdibā To kneel down.
হাঁটু গেড়ে বসা घुटनेके बल बैठना, ठेहुनीया देना

**ଲେହୁଣିଆ(ଅଁ)**—ପ୍ରାଦେ ( ଗଞ୍ଜାମ ) ବି—୧ । ମୁଣ୍ଡକୁ ଭୂମିରେ ରଖି
Lehuniā(añ) ମାକଡ଼ଚଢ଼ ମାରିବା—1. Somersault.
୨ । (ଲକ୍ଷଣାର୍ଥ) କୌଣସି ବହୁତ୍କର କାର୍ଯ୍ୟ ଦେଖାଇବା—2. Exhibition of a wonderful feat.
[ଉ—କଂଗ୍ରେସ୍‌ଦଳର ଉତ୍ସବୃତ୍ତ ଅବସ୍ଥାକୁ ସେମାନେ ଯେଉଁ ଦେଶଦ୍ରୋହ କାର୍ଯ୍ୟ କରି ଆସୁଅଛନ୍ତି, ସବୁଠାରୁ ଏଥର ଲେହୁଣିଆଟା ବଳପଡ଼ୁଛି । ଦୈନିକଆଶା (୨୩।୧୧ ୨୯)]

**ଲେହୁଣିଆ ଛାଟିବା**—ପ୍ରାଦେ (ଗଞ୍ଜାମ) କ୍ରି—ମାକଡ଼ଚଢ଼ ମାରିବା—
Lehuniā chhāṭibā To cut a somersault.

**ଲେହେଣ୍ଟା**—ପ୍ରାଦେ (ଖଡ଼ିଆଳ)—ବିଣ. ଓ ବି—୧ । ଓଲଟା (ଦେଖ)
Leheṅṭā 1. Olaṭā (See) ୨ । ଲେଉଟା (ଦେଖ) 2. Leuṭā (See).

**ଲେହେଁଟାଇବା**—ପ୍ରାଦେ ( ଖଡ଼ିଆଳ ) କ୍ରି—୧ । ଓଲଟାଇବା—
Leheṅṭāibā 1. To turn upside down. ୨ । ଲେଉଟାଇବା—2. To return.

**ଲେହେଁଟିଅ ଶାଗ**—ପ୍ରାଦେ [ଖଡ଼ିଆଳ] ବି—ଲେଉଟିଆଶାଗ—
Leheṅṭiā śāga Amaranth pot herb.

**ଲେହେଁଟିବା**—ପ୍ରାଦେ ( ଖଡ଼ିଆଳ ] କ୍ରି—୧ । ଓଲଟିବା—
Leheṅṭibā 1. To turn upside down. ୨ । ଲେଉଟିବା—2. To turn back; to come back; to revert.

**ଲେହେଣା(ଣୀ)**—ଦେ. ବି ( ସଂ. ଲେହନ )—ଲାଞ୍ଚ ନେବା ଅଭ୍ୟାସ—
Lehenā(na) Habit to taking bribe. [ ଯଥା—ঘুস নেবার অভ্যাস ପିଲାଟାକୁ ମୁଁ ଅଛା ଲେହେଣା ଲଗେଇଛି । ]
घूस लेनेकी आदत ଦେ. ବିଣ—ଲାଞ୍ଚୁଆ—Habituated to taking bribe.

**ଲେହେବଡ଼(ର)**—ଦେ. ବି—ଲେଭଡ଼ (ଦେଖ)
Leahebarda(ra) Lebhard.a (See)

**ଲେହେବଡ଼(ର) ମୁଖା[ହାଁ]**—ଦେ. ବିଣ—ଲେଭଡ଼ମୁଖା (ଦେଖ)
Lehebarda(ra)mukhā (hāñ) Lebhardamukhā. [ଲେହେବଡ଼(ର) ମୁଖୀ—ସ୍ତ୍ରୀ] (See)

**ଲେହେବଡ଼ା(ରା)**—ଦେ. ବିଣ—ଲେଭଡ଼ା (ଦେଖ)
Lehebardā(rā) Lebhardā. (See)

**ଲେହେବଡ଼ା(ରା)ମୁହାଁ**—ଦେ ବିଣ. ପୁଂ—ଲେଭେଡ଼ାମୁହାଁ (ଦେଖ)
Lehebardā(rā)muhāñ Lebhrdāmuhāñ. (See).
(ଲେହେବଡ଼ା[ରା;ଡ଼,ର]ମୁହିଁ—ସ୍ତ୍ରୀ)

**ଲେହେର**—ପ୍ରାଦେ [ବସ୍ତର] ବି—ପବନ—
Leherā Wind.

ଲେହ୍ୟ—ସଂ ବଣ (ଲିହ୍‌ ଧାତୁ+କର୍ମି ଯ)—୧ । ଲେହନୀୟ; ଯାହାକୁ
Lehya ଗୃଣ୍ଟ କରି ଖିଅଯାଏ—1. Fit to be licked; eatable by being licked. ୨ । ଅସ୍ୱାଦନୀୟ—2. Fit to be tasted. ୩ । ସୁସ୍ୱାଦୁ—3. Sweet to the taste. ବି—୧ । ଅମୃତ—1. Nectar; ambrosia. ୨ । ଚଟଣି—2. Salad. ୩ । ଅବଲେହ; ଗୃଣ୍ଟ କରି ଖାଇବା ଦ୍ରବ୍ୟ—3. A lambative. ୪ । ଖାଦ୍ୟ—4. Food (Apte)

ଲେହ୍ୟ ପେୟ—ସ. ବ (ସହଚର)—ଯାହା ଗୃଣ୍ଟ କରି ଖିଅଯାଏ ଓ
Lehya peya ଯାହା ପିଇ କରି ଖିଅଯାଏ—Things which can be licked and those which can be drunk.

ଲୈ—ଦେ. ବ—ଲଇ (ଦେଖ]
Lai Lai (See)

ଲୈଖ(ଷ)ଣ—ଗ୍ରା. ବ—ଲଇଖଣ [ଦେଖ]
Laikha(ksha)na Laikhana, (See).
[ଲୈଖ ଖି,ଷି ଣଥ—ଅନ୍ୟରୂପ]

ଲୈଙ୍ଗ—ସ. ବଣ ( ଲିଙ୍ଗ+ଅ )—ଲିଙ୍ଗ ସମ୍ବନ୍ଧୀୟ—
Lainga Relating to Linga.
ବି—ଲିଙ୍ଗ ପୁରାଣ ( ଦେଖ )—
Linga purāna ( See )

ଲୈଙ୍ଗିକ—ସ. ବଣ ( ଲିଙ୍ଗ+ସମ୍ବନ୍ଧାର୍ଥେ ଇକ )—୧ । ଚିହ୍ନ ସମ୍ବନ୍ଧୀୟ
Laingika —1.Depending on or relating to a
[ଲୈଙ୍ଗିକୀ—ସ୍ତ୍ରୀ) sign or mark (Apte). ୨ । ଅନୁମିତ —2. Inferred. ସ. ବି—୧ । ମୂର୍ତ୍ତି ନିର୍ମାତା—1. A maker of images; statuary (Apte). ୨ । ( ବୈଶେଷିକ ଦର୍ଶନ ) ଅନୁମାନ ପ୍ରମାଣ; ଲକ୍ଷଣ ବା ଚିହ୍ନଦ୍ୱାରା ପ୍ରାପ୍ତ ଅନୁମାନ—2. ( Baiseshika Philosophy ) Inference by means of symptoms or marks.

ଲୈନ(ନେ)ନ୍—ବୈଦେ. ବ ( ଇଂ. ଲିନେନ୍ )—କାର୍ପାସ ବସ୍ତ୍ର—
Laina(ne)n লিনেন लिनेन Linen.

ଲୋ—ଦେ. ଅ—(ସ୍ତ୍ରୀଲୋକମାନଙ୍କୁ ସମ୍ବୋଧନ) ଅଲୋ ! ହେ !—
Lo ( Interjection used in addressing
গো, ও females) Oh ! [ଦ୍ର—ଯାହାଙ୍କ ସଙ୍ଗେ
गो, ओ ଘନିଷ୍ଠତା ଥାଏ ସେମାନଙ୍କୁ ଓ ଆପଣାର ସମଶ୍ରେଣୀର ଓ ଆପଣାଠାରୁ ନିମ୍ନଶ୍ରେଣୀର ସ୍ତ୍ରୀମାନଙ୍କୁ 'ଲୋ' ଶବ୍ଦଦ୍ୱାରା ସମ୍ବୋଧନ କରାଯାଏ । ଇତର ଶ୍ରେଣୀର ଲୋକମାନେ ବାପ ପୁଅ ଆଦିଙ୍କୁ ମଧ୍ୟ ଏହି 'ଲୋ' ଶବ୍ଦଦ୍ୱାରା ସମ୍ବୋଧନ କରନ୍ତି। ସ୍ଥାନବିଶେଷରେ ପ୍ରେମିକା ମଧ୍ୟ ପ୍ରେମିକଙ୍କୁ ଲୋ ଦ୍ୱାରା ସମ୍ବୋଧନ କରିବା ଦେଖାଯାଏ । କଥାରେ ମଧ୍ୟ 'ମାଆଲୋ ବାପଲୋ ହେବା' ( =ଅତି ଆର୍ତ୍ତ ହେବା )ର ବ୍ୟବହାର ଅଛି । ଏହି ଶବ୍ଦ ଅସଲ ଶବ୍ଦର ପୂର୍ବରେ ଓ ପରେ ବ୍ୟବହୃତ ହୁଏ; ଯଥା—ଭଉଣି ଲୋ ! ଲୋ ଭଉଣି ! ]

ଲୋଅର୍ ପ୍ରାଇମେରି—ବୈଦେ. ବଣ ( ଇଂ )—ନିମ୍ନପ୍ରାଥମିକ ଶିକ୍ଷା,
Loar prāimeri ବିଦ୍ୟାଳୟ, କ୍ଲାସ୍)—Lower Primary
লোয়ারপাইমেরি लोअरप्राइमेरी (education, school examination, class).

ଲୋଇ—ଦେ. ବ—ଲୋହି ( ଦେଖ )—
Loi Lohi ( See )

ଲୋକ୍ (ଧାତୁ)—ସ—ଦେଖିବା—To see; to look at. [ଦ୍ର—
Lok (root) ତୁଳ ଇଂ. ଲୁକ୍ ଏବଂ ଜର୍ମାନ୍ ଲୁଗେନ୍ । ]

ଲୋକ—ସ. ବ ( ଲୋକ୍ ଧାତୁ+କର୍ତ୍ତୃ. ଅ )—୧ । ମନୁଷ୍ୟ; ମାନବ
Loka —Man. ୨ । ( +କର୍ମ ଅ ) ଭୁବନ; ଜଗତ୍; ପୃଥିବୀ; ସଂସାର—2 The world; the earth; the creation. ୩ । ତ୍ରିଲୋକ; ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ—3. The heaven, the earth and the nether regions. ୪ । ସପ୍ତଲୋକ; ଭୂଃ, ଭୁବଃ, ସ୍ୱଃ ମହଃ, ଜନଃ, ତପଃ ଓ ସତ୍ୟ; ସପ୍ତ ବ୍ୟାହୃତି—[ଦ୍ର—କେତେକ ଆଧୁନିକ ପଣ୍ଡିତ ଏହି ସପ୍ତଲୋକଙ୍କୁ ନିମ୍ନଲିଖିତରୂପେ ଆଧୁନିକ ଭୂଗୋଳ ଅନୁସାରେ ନିର୍ଦ୍ଧାରଣ କରନ୍ତି, ଯଥା—ଭୂର୍ଲୋକ = ଭାରତ = ଆର୍ଯ୍ୟାବର୍ତ୍ତ, ଦାକ୍ଷିଣାତ୍ୟ ଓ ପୂର୍ବୋପଦ୍ୱୀପ, ବ୍ରହ୍ମଦେଶ । ଭୁବର୍ଲୋକ—ଅନ୍ତରୀକ୍ଷ=ତୁରସ୍କ, ପାରସ୍ୟ ଓ ( ଅପୋଗସ୍ଥାନ= ) ଆଫଗାନସ୍ଥାନ । ସ୍ୱର୍ଲୋକ=ତ୍ରିନାକ=ତିବତ, ତାତାର ଓ ମାଙ୍ଗୋଲିୟା । ମହର୍ଲୋକ, ତପୋଲୋକ ଓ ବ୍ରହ୍ମଲୋକ ବା ସତ୍ୟଲୋକ=ତ୍ରିଦିବ=ସମସ୍ତ ଇଉରୋପୀୟ ଓ ଆସିଆଁକ ସାଇବେରିଆ । ଜନର୍ଲୋକ=ଚୀନସାମ୍ରାଜ୍ୟ । "ମାନବେର ଆଦି ଜନ୍ମଭୂମି" ନାମକ ବଙ୍ଗଳା ଗ୍ରନ୍ଥ]—4. The seven worlds of the Hindu mythology. ୫ । ଚତୁର୍ଦ୍ଦଶଲୋକ—ସପ୍ତସ୍ୱର୍ଗ; ଭୂଃ, ଭୁବଃ, ସ୍ୱଃ, ମହଃ, ଜନଃ, ତପଃ ଓ ସତ୍ୟ ଏବଂ ସପ୍ତପାତାଳ; ଅତଳ, ବିତଳ, ସୁତଳ, ତଳ, ତଳାତଳ, ରସାତଳ, ପାତାଳ ( ପାତାଳ ତଳେ ଟୀକା ଦେଖ )—5. The seven upper regions and the seven nether regionn of the Hindu mythology. ୬ । ସମୂହ—6. Multitude; collection; group; company. ୭ । ଦୃଷ୍ଟି—7. Vision; sight; prospect. ୮ । ଜନ; ବ୍ୟକ୍ତି—8. An individual; person. ୯ । ବ୍ରହ୍ମାଣ୍ଡ—9. The universe, ୧୦ । ନିବାସ ସ୍ଥାନ; ସ୍ଥାନ ହି. ଶ—10. Place; dwelling place; residence. ୧୧ । ପ୍ରଦେଶ; ଅଞ୍ଚଳ (ହି. ଶ)—11. Region; tract; province; locality. ୧୨ । ରାଜ୍ୟର ପ୍ରଜାମଣ୍ଡଳ—12. The people or the subjects (as opposed to the king), (Apte) ୧୩ । ସମାଜ (ହି. ଶ)—13. Society; community. ୧୪ । ପ୍ରାଣୀ (ହି. ଶ)—14. Living being. ୧୫ । ଯଶଃ; କୀର୍ତ୍ତି

(ବ୍ର. ଶ)—15. Fame. ୧୬। ସଂସାରର ସାଧାରଣ ରୀତି ବା ବ୍ୟବହାର—16. The ordinary practice of the world, worldly usage (Apte). ୧୭। ସାତ ସଂଖ୍ୟା—17. The number seven (Apte) ୧୮। ଚଉଦ ସଂଖ୍ୟା—18. The number fourteen, (Apte) ୧୯। ଇହଲୋକ—19, Earthly existence. ଦେ. ବି—୧। ଭୃତ୍ୟ; ଅନୁଚର; ଚାକର—1. Servant; attendant. [ଉ—ଯେବେ ଦୃଢମୂଳ ହେବ ଏ ରାଜ୍ୟଯାକ, ତେବେ ପାଣ୍ଡୁପୁତ୍ରେ ଜନ୍ମିବେ ହୋଇ ଲୋକ।] ୨। କାମ କରିବା ବ୍ୟକ୍ତି—2. A working hand. ୩। ମୂଲିଆ; ମଜୁରଦାର୍, କୁଲି—3, A day-labourer; coolie; workman. [ଉ—ନୃପତିଏ ଲୋକ ପଠାଏ କରି ସେବା, ଆସିଲେ ଯୁଧିଷ୍ଠିରଙ୍କ ରାଜଧାନୀ। କୃଷ୍ଣସିଂହ. ମହାଭାରତ. ସଭାପର୍ବ] ୪। ନିଜେ; ସ୍ୱୟଂ (ଆପଣାକୁ ତୃତୀୟ ପୁରୁଷରେ ବ୍ୟବହାର କରି ବାକ୍ୟରେ) ବ୍ୟବହୃତ—4, One's self; one [ଯଥା—ତିନି ଘଣ୍ଟା ହେଲା ବସି ବସି ଲୋକ ବିରକ୍ତ ହେଲାଣି, ତେବେ ସୁଦ୍ଧା ବାବୁଙ୍କ ମନରେ ଦୟା ଉପୁଜୁ ନାହିଁ] ୫। ଜନସମାଜ; ସର୍ବସାଧାରଣ—5. The public; the human society; the society of human beings, ୬। ରକ୍ଷିତା ସ୍ତ୍ରୀ—6, Concubine. [ଯଥା—ଲୋକ ରଖିବା]

ଲୋକ
लोक
ମାନୁଷ
আদমী

**ଲୋକ ଆଚାର**—ଦେ. ବି (ସଂ. ଲୋକାଚାର)—ଲୋକାଚାର (ଦେଖ)
Loka-āchāra Lokāchāra (See) (ଉ—ବାହୁତ ମାରନ୍ତି ଯେ ଇ, ରଥସେନ ଅଶ୍ୱଜାଇ, କୁଣ୍ଡଳ ଶୋକ କହି, ଲୋକ ଆଚାରେ—ଉପେ. ବୈଦେହୀଶବିଳାସ।)
লোকাচার लोकाचार

**ଲୋକ କଣ୍ଟକ**—ସଂ. ବି (୬ଷ୍ଠୀ ତତ)—୧। ସମାଜର ହାନିକାରକ ବ୍ୟକ୍ତି
Loka kanṭaka 1. Atroublesome or wicked person; the curse of mankind (Apte) ୨। ରାବଣ—2. An epithet of Rābaṇa(Apte) ସଂ. ବିଣ—ସମାଜର ହାନିକାରକ - Injurious to the society.

**ଲୋକ କଥା**—ସଂ. ବି (୬ଷ୍ଠୀ ତତ)—କିମ୍ବଦନ୍ତୀ—
Loka kathā Popular legend (Apte)

**ଲୋକକର(କୃତ୍)**—ସଂ. ବି (ଲୋକ+କୃ ଧାତୁ+କର୍ତ୍ତୃ.ଅ+କ୍ୱିପ୍)—
Lokakara(krut) ସୃଷ୍ଟିକର୍ତ୍ତା—The Creater of the world (Apte),

**ଲୋକ କାନ୍ତ**—ସଂ. ବିଣ (୬ଷ୍ଠୀ ତତ)—ଲୋକସମାଜରେ ଆଦୃତ;
Loka kānta ଲୋକପ୍ରିୟ—Liked by the people; popular (Apte).

**ଲୋକ କାନ୍ତା**—ସଂ. ବି (ବୈଦିକ)—ଋଦ୍ଧି ନାମକ ଔଷଧ ଜଡ—
Loka kāntā A kind of rare medicinai root,

**ଲୋକ କ୍ଷିତ**—ସ ବିଣ—୧। ସ୍ୱର୍ଗଲୋକବାସୀ (ବ୍ର. ଶ)—
Loka kshiti Inhabiting the heaven.

**ଲୋକ ଗଣତି**—ଦେ. ବି (ସ. ଲୋକ ଗଣନା)—କୌଣସି ସ୍ଥାନରେ
Loka gaṇati ଲୋକଙ୍କ ସଂଖ୍ୟା ସ୍ଥିରକରଣ; ସେନ୍‌ସସ୍—
লোক গণ্‌তি लोक गिनती Counting of people of a place; census.

**ଲୋକ ଗଣନା**—ସ. ବି (୬ଷ୍ଠୀ ତତ୍)—ଲୋକ ସୁମାରି; ଲୋକ ସଂଖ୍ୟା
Loka gaṇanā ସ୍ଥିର କରିବା; କେତେ ମନୁଷ୍ୟ ଅଛନ୍ତି ତାହା ଗଣନା କରିବା—Census. (୭ମୀ ତତ୍)—ସାଧାରଣ ଲୋକଙ୍କ ଅଭିମତ—Popular estimation.

**ଲୋକ ଗହଳ(ଳି)**—ଦେ. ବି—ଲୋକ ସମାଗମ; ଜନତା; ଭିଡ—
Loka gahaḷa(ḷi) ভীড भीड Crowd.

**ଲୋକ ଗାଥା**—ସ. ବି (୬ଷ୍ଠୀ ତତ୍)—ସାଧାରଣ ଜନସମାଜରେ ବହୁ
Loka gāthā କାଳରୁ ଚଳି ଆସୁଥିବା ଗୀତ—A song handed down among people (Apte). a popular song handed down from father to son;

**ଲୋକ ଚକ୍ଷୁଃ**—ସ. ବି—୧। (୬ଷ୍ଠୀ ତତ୍) ସାଧାରଣ ବ୍ୟକ୍ତିଙ୍କ ଦୃଷ୍ଟି;
Loka chakshuh ଲୋକସମାଜର ଦୃଷ୍ଟି—1. Public
লোকচক্ষু लोक चक्षु gaze; the sight or the public.
[ଲୋକ ଲୋଚନ—ଅନ୍ୟରୂପ] the eyes of the public.
[ଲୋକ ଚକ୍ଷୁ—ଦେଶଜରୂପ] [ଉ—ସେ ଲୋକଚକ୍ଷୁ ଅନ୍ତରାଳରେ ନାନା ଅନ୍ୟାୟ କରୁଅଛି।] ୨। (ଲୋକ=ଜଗତର +ଚକ୍ଷୁଃ=ଅକ୍ଷିସ୍ୱରୂପ) ସୂର୍ଯ୍ୟ—2. The sun.

**ଲୋକ ଚକ୍ଷୁର ଅଗୋଚର**—ଦେ. ବିଣ—ଯାହା ସର୍ବସାଧାରଣଙ୍କ ଦୃଷ୍ଟିରେ
Loka chakshura agochara ପଡ଼େ ନାହିଁ—Not
লোক চক্ষুর অগোচর visible to the eyes of the world,
लोक चक्षुके अगोचर

**ଲୋକ ଚକ୍ଷୁର ଅଗୋଚରରେ**—ଦେ. କ୍ରି. ବିଣ—ମନୁଷ୍ୟଙ୍କ ଦେଖା ନ
Loka chakshura agocharare ଯିବ ବା ଲୋକେ ନ
লোক চক্ষুর অগোচরে ଦେଖିବେ, ଏପରି ଭାବରେ କୌଣସି କାର୍ଯ୍ୟ
लोक चक्षुके अगोचरमे କରିବା ପ୍ରକାରେ; ଗୋପନରେ—(To do
[ଲୋକ ଚକ୍ଷୁର ଅନ୍ତରାଳରେ—ଅନ୍ୟରୂପ] a thing) In secret or away from the gaze of the public.

**ଲୋକ ଚରିତ୍ର**—ସ. ବି(୬ଷ୍ଠୀ ତତ୍)—ମନୁଷ୍ୟ ଚରିତ୍ର; ମାନବ ପ୍ରକୃତି—
Loka charitra Human nature; man's nature.

**ଲୋକ ଚାରିତ୍ର**—ସ. ବି—ସଂସାରର ଢଙ୍ଗ—
Loka chāritra The ways of the world (Apte).

**ଲୋକ ଜଣ(ଣା)**—ଦେ. ବି—ଏକାଧିକ ଲୋକ; ଲୋକବାତ—Many
Loka jaṇa (ṇā) persons; more than one person.
লোকজন आदामी लोग

**ଲୋକ ଜନନୀ**—ସ. ବି (୬ଷ୍ଠୀ ତତ୍)—ଲକ୍ଷ୍ମୀ—
Loka janani An epethet of Lakshmi.

ଲୋକଜିତ୍—ସ. ବି ( ଲୋକ+ଜି. ଧାତୁ+କ୍ୱିପ୍ )—ଲୋକଜୟକାରୀ; Lokajit ପୃଥିବୀଜୟକାରୀ—Victorious in the [ଲୋକ ଜେତା—ଅନ୍ୟ ବି ରୂପ] world. ବି—ବୁଦ୍ଧଦେବ—A name of the Buddha.

ଲୋକତଃ—ସ. କ୍ରି. ବିଣ ( ଲୋକ+ତସ୍ )—୧ । ସାଧାରଣତଃ—Lokataḥ 1. Popularly. ୨ । ମନୁଷ୍ୟ ସମାଜର ବ୍ୟବହାର ବା ବ୍ୟବହାର ଅନୁସାରେ—2. According to common usage.

ଲୋକ ତୁଷାର—ସ. ବି ( ମ. ଷ. ଲୋ )—କର୍ପୂର—Loka tushāra Camphor.

ଲୋକତ୍ରୟ(ତ୍ରୀ)—ସ. ବି ( ସମାହାର ଦ୍ୱନ୍ଦ୍ୱ )—ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ Lokatraya (yī) ଏ ତିନି ଲୋକର ସମାହାର—The heaven, the earth and the nether regions taken collectively.

ଲୋକ ଦୃଷ୍ଟି—ସ, ବି ( ୬ଷ୍ଠୀ ତତ୍ )—୧ । ଲୋକ ଚକ୍ଷୁଃ ( ଦେଖ )—Loka drushṭi 1. Loka chakshuḥ (See). ୨ । ସାଧାରଣଙ୍କ ଦ୍ୱାରା କୌଣସି ବସ୍ତୁ ଦୃଷ୍ଟ ହେବା—2. Public view. ୩ । ଜନସାଧାରଣଙ୍କ ବିଚାର—3. Public estimation.

ଲୋକ ଦେଖାଣି(ଣିଆ)—ଦେ. ବିଣ—ଲୋକମାନଙ୍କୁ ଦେଖାଇବା ପାଇଁ Lokadekhāṇi(ṇiā) ବାହ୍ୟିକ (କ୍ରିୟାମାନ)—(Action **लोक देखानी** Done to draw public gaze or লোকদেখান notice to one's own self.

ଲୋକଧାରିଣୀ—ସ. ବି—( ଉପପଦ )—ପୃଥିବୀ ( ହି. ଶ )—Lokadhāriṇī The earth.

ଲୋକ ଧ୍ୱନି—ସ. ବି (୬ଷ୍ଠୀ ତତ୍ )—ଜନରବ—Loka dhwani Rumour.

ଲୋକନ—ସ. ବି (ଲୋକ୍ ଧାତୁ+ଭାବ. ଅନ)-୧ ଦର୍ଶନ; ଅବଲୋକନ; Lokana ଦେଖିବା—1. Seeing; viewing. ୨ । ଦୃଷ୍ଟି—2. Vision. ଦେ. ବି—ଲୋକନ(ନି) (ଦେଖ)—Lokana(ni) (See)

ଲୋକନ(ନି)—ଦେ. ବି ( ଅନାଦରାର୍ଥକ ) ଲୋକନାଥର ଡାକନାମ—Lokanani Name for calling Lokanātha.

ଲୋକା(କେ)ଇ, ଲୋକ, ଲୋକୁ, ଲୋକେଇ }—ଅନ୍ୟରୂପ; ଲୋକା, ଲୋ ଆ, ଲୋକୁଆ }—ଅନାଦରାର୍ଥକ ରୂପ

ଲୋକ ନ(ଲ)ଉକର—ଦେ. ବି (ଏକାର୍ଥକ ସହଚର, ସ. ଲୋକ; ପା. Loka na(la)ukara ନୌକର)—ଲୋକବାକ; ଚାକରବାକର; ଲୋକନୌକର, ଲୋକନଉର } ଅନ୍ୟରୂପ ଲୋକନଉର—Servants and labourers a person's; লোকনোকর, চাকর বাকর attendants and servants. **आदमी नौकर**

ଲୋକନ କରିବା—ଦେ (ପଦ୍ୟ) କ୍ରି—ଦେଖିବା—To see. [ଦୃ—Lokana karibā ମାଲବେ ହୃମର୍ତୁ ଲୋକନ କର୍, লোকন করা **लोकन करना** ଏକାଳେ ବିଦେଶ ତ ଲୋକ ନ କର ଉଙ୍ଗ. ଲାବଣ୍ୟବତୀ ।]

ଲୋକନାଥ—ସ. ବି [୬ଷ୍ଠୀ ତତ୍; ଲୋକ+ନାଥ]—୧ । ଜଗନ୍ନାଥ; Lokanātha ପରମେଶ୍ୱର—1. God. ୨ । ଶିବ; ମହାଦେବ—2. Śiba, ୩ । ବ୍ରହ୍ମା—3. Brahmā. ୪ । ବିଷ୍ଣୁଙ୍କର ନାମ—4. A name of Bishṇu(ଯଥା—ଲୋକବନ୍ଧୁର୍ଲୋକନାଥଃ ମାଧବୋ ଭକ୍ତବତ୍ସଳଃ-ସହସ୍ରନାମ) ୫ । ବୁଦ୍ଧ ଦେବ—5. The Buddha. ୬ । ନରନାଥ; ରାଜା—6. A king. লোকনাথ ଦେ. ବି. ପୁଂ —୧ । **लोकनाथ** ମନୁଷ୍ୟଙ୍କର ନାମ—1. A name given to males. ୨ । ପୁରୁଷୋତ୍ତମର ସୀମାମଧ୍ୟସ୍ଥ ଶିବଲିଙ୍ଗଙ୍କ ନାମ—2. Name of an idol of Śiba in the town of Purī. [ ଦୃ—ଏ ବିଗ୍ରହ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରଠାରୁ ୧ ମାଇଲ୍ ଦୂରରେ ଅବସ୍ଥିତ । ଏ ଅନାଦି ଶିବଲିଙ୍ଗ । ବୈଶାଖମାସ ସବୁ ସୋମବାର ଓ ଶିବରାତ୍ରି ଦିନ ଏଠାରେ ବଡ଼ ମେଳା ହୁଏ । ]

ଲୋକନାଥ ଦାସ—ଦେ. ବି. ( ନାମ )—ଟୀକାକାର ବୈଦେହୀଶ ବିଳାସର ପ୍ରସିଦ୍ଧ ଟୀକାକାର—One of Lokanātha dāsa the well-known commentators of Baidehīsabilāsa of Upendra bhañja.

ଲୋକନାଥ ନାୟକ—ଦେ. ବି. ( ନାମ )—ପ୍ରାଚୀନ ଉତ୍କଳର ଜଣେ Lokanātha nāyaka ପ୍ରସିଦ୍ଧ ଗଣିତଜ୍ଞ; [ଏ ଖଡ଼ି ଲୀଳାବତୀ ନାମକ ଗଣିତ ପୁସ୍ତକର ପ୍ରଣେତା—ଭାରତୀ. ଉ. ସା. ଇତିହାସ । ]—A celebrated mathematician of ancient Utkal; author of Khaṛi Līlābatī.

ଲୋକନାଥ ବିଦ୍ୟାଧର—ଦେ. ବି ( ନାମ )—ପ୍ରସିଦ୍ଧ ଓଡ଼ିଆ କବି—Lokanātha bidyādhara [ ଦୃ—ଏହାଙ୍କ ବାସସ୍ଥାନ ଖୋରଧା ବାଣପୁର । ଚିତ୍ରକଳା, ସର୍ବାଙ୍ଗସୁନ୍ଦରୀ, ଚନ୍ଦ୍ରାପୁଷ୍ପା, ପଦ୍ମମାଳା ଓ ରସକଳା ଏହାଙ୍କ ରଚିତ କାବ୍ୟ—ଭାରତୀ. ଉ. ସା. ଇତିହାସ । ] An ancient Oriya poet and author of a number of romances in poetry.

ଲୋକ ନାୟକ—ସ. ବି. ପୁଂ ( ଅଧୁନିକ ପ୍ରୟୋଗ, ୬ଷ୍ଠୀ ତତ୍ )—Loka nāyaka ଲୋକମାନଙ୍କର ନେତା; ଜନସମାଜର ନେତା—[ ଲୋକନେତା—ଅନ୍ୟରୂପ ] A leader of men; a [ ଲୋକନାୟିକା, ଲୋକନେତ୍ରୀ—ସ୍ତ୍ରୀ ] a social leader.

ଲୋକ ନିନ୍ଦା—ସ. ବି ( ମ. ପ. ଲୋ; ଲୋକସମାଜରେ ପ୍ରଚାରିତ Loka nindā ନିନ୍ଦା )—ଲୋକସମାଜରେ ମନୁଷ୍ୟ ନାମରେ ରଟିବା କଳଙ୍କ ବା ଅପବାଦ—Public scandal; public censure; calumny.

ଲୋକନୀୟ—ସଂ. ବଣ ( ଲୋକ୍ ଧାତୁ + କର୍ମ. ଅନୀୟ )—୧ । ଦର୍ଶନୀୟ; Lokaniya ଦର୍ଶନଯୋଗ୍ୟ—1. Fit to be seen visible. ୨ । ମନୋଜ୍ଞ; ସୁନ୍ଦର—2. Agreeable to the sight; beautiful.

ଲୋକନ୍ଦର—ସଂ. ବଣ. ପୁଂ ( ଲୋକଂ = ସମାଜକୁ + ଦୃ ଧାତୁ; ବିଦାରଣ Lokandara କରିବା + କର୍ତ୍ତୃ. ଅ )—କାମୁକ; ଲମ୍ପଟ; ନଷ୍ଟ ( ଲୋକନ୍ଦରୀ—ସ୍ତ୍ରୀ ) ଚରିତ୍ର—Lascivious; immoral; adulterous; libidinous.

ଲୋକପ—ସଂ. ବି. ପୁଂ ( ଲୋକ + ପା ଧାତୁ + କର୍ତ୍ତୃ. ଅ )—୧ । ବ୍ରହ୍ମା Lokapa ( ବ୍ରୁ. ଶ )—1. Brahmā. ୨ । ଲୋକପାଳ [ଲୋକପତି—ଅନ୍ୟରୂପ] (ଦେଖ) (ବ୍ରୁ. ଶ)—2. Lokapāla ( See ) ୩ । ରାଜା ( ବ୍ରୁ. ଶ. )—3. A king.

ଲୋକ ପାବନ—ସଂ. ବଣ. ପୁଂ—ଯେ ତ୍ରିଲୋକ ବା ଜଗତକୁ ପବିତ୍ର Loka pābana କରେ ବା ଉଦ୍ଧାର କରେ—Purifying [ ଲୋକ ପାବନୀ—ସ୍ତ୍ରୀ ] the three worlds.

ଲୋକ ପାଳ—ସଂ. ବି ( ଲୋକ + ପାଳ ଧାତୁ + କର୍ତ୍ତୃ. ଅ )—୧ । ରାଜା Loka pāla 1. A king. ୨ । ଦିକ୍‌ପାଳ; ପୃଥିବୀର ଆଠ ଦିଗରେ ପୃଥିବୀକୁ ଜଗିଥିବା ଆଠଜଣ ଦେବତା—2. Eight Deities considered as the regents of the eight quarters of the earth. [ ଯଥା—ଇନ୍ଦ୍ର, ପୂର୍ବଦିଗର, ଅଗ୍ନି, ଦକ୍ଷିଣ ପୂର୍ବକୋଣର, ଯମ, ଦକ୍ଷିଣଦିଗର, ବରୁଣ, ପଶ୍ଚିମଦିଗର, ସୂର୍ଯ୍ୟ ନୈର୍‌ଋତ ବା ଦକ୍ଷିଣ ପଶ୍ଚିମ କୋଣର, ବାୟୁ ଉତ୍ତର ପଶ୍ଚିମ କୋଣର, କୁବେର, ଉତ୍ତରଦିଗର, ଶିବ, ବା ସୋମ ବା ଈଶାନ ଏ ଉତ୍ତର ପୂର୍ବର ଦିକ୍‌ପାଳ ଅଟନ୍ତି । ] ୩ । ଅବଲୋକିତେଶ୍ୱର ବୋଧିସତ୍ତ୍ୱଙ୍କ ଏକ ନାମ ( ବ୍ରୁ. ଶ )—3. A name of Abalokiteśwara Buddha.

ଲୋକ ପାଳକ—ସଂ. ବି ( ୬ଷ୍ଠୀ ତତ୍ )—ରାଜା— Loka pālaka King.

ଲୋକ ପାଳନ—ସଂ. ବି ( ୬ଷ୍ଠୀ ତତ୍ )—୧ । ଜଗତ୍ ପ୍ରତିପାଳନ— Loka pālana 1. Maintaining the created beings. ୨ । ରାଜାଙ୍କଦ୍ୱାରା ପ୍ରଜାପାଳନ; ରାଜ୍ୟର ସୁଶାସନ—2. The good governance of people by a king. ୩ । ବ୍ରହ୍ମା—3. Brahmā. ୪ । ବିଷ୍ଣୁ—4. Bishṇu. ୫ । ରାଜା—5. A king.

ଲୋକ ପିତାମହ—ସଂ. ବି. ପୁଂ ( ୬ଷ୍ଠୀ ତତ୍ )—ବ୍ରହ୍ମା— Loka pitāmaha God Brahmā.

ଲୋକ ପୀଡ଼ା—ସଂ. ବି ( ୬ଷ୍ଠୀ ତତ୍)—ଅତ୍ୟାଚାର—Oppression. Loka pirdā [ ଉ—ଲୋକ ପୀଡ଼ା ନ କର ଅଭକ୍ତ ଧନ— କୃଷ୍ଣସିଂହ. ମହାଭାରତ. ବନ । ]

ଲୋକ ପ୍ରବାଦ—ସଂ. ବି ( ୬ଷ୍ଠୀ ତତ୍ ବା ମ. ପ. ଲୋ )—୧ । ଜନ- Loka prabāda ଶ୍ରୁତି—1. Rumour; tradition. ୨ । ସାଧାରଣ ବିଶ୍ୱାସ—2. A popular belief

ଲୋକ ପ୍ରବାହ—ସଂ. ବି ( ୬ଷ୍ଠୀ ତତ୍ )—୧ । ଜନସ୍ରୋତ; ଧାଡ଼ି ଲାଗି Loka prabāha ଲାଗିଥିବା ମନୁଷ୍ୟ—1. Rush of people; people passing like a current. ୨ । ଜନତା 2. A crowd of men.

ଲୋକ ପ୍ରସିଦ୍ଧ—ସଂ. ବଣ. ପୁଂ (୭ମୀ ତତ୍)—ଜଗଦ୍‌ବିଖ୍ୟାତ; ବିଶ୍ୱବିଶ୍ରୁତ Loka prasiddha —World-renowned.

ଲୋକ ପ୍ରସିଦ୍ଧି—ସଂ. ବି (୭ମୀ ତତ୍)—ଜଗତରେ ଖ୍ୟାତି— Loka prasiddhi World-wide celebrity.

ଲୋକ ପ୍ରିୟ—ସଂ. ବଣ. ପୁଂ (୬ ଷ୍ଠ ତତ୍)—ଜନପ୍ରିୟ; ସାଧାରଣଙ୍କର Loka priya ପ୍ରୀତିଭାଜନ—Beloved of the people; [ଲୋକପ୍ରିୟା—ସ୍ତ୍ରୀ) loved by the public; popular. [ ଲୋକ ପ୍ରିୟତା—ବି ]

ଲୋକ ପ୍ରୀତି—ସଂ. ବି—ଲୋକାନୁରାଗ ( ଦେଖ ) Loka priti Lokānurāga ( See

ଲୋକ ଫୁଲ—ପ୍ରାଦେ ( ସାଜସୁର ) ବି—ବିବାହ ମୁକୁଟର ମୂର୍ଦ୍ଧାଘରେ Loka phula ଓହଳଥିବା ସୋଲଫୁଲର ମାଳ—The garland of cork-flowers attached to a bridal coronet.

ଲୋକ ବଚନ—ଦେ. ବି—ଲୋକନିନ୍ଦା; ଜନାପବାଦ—Slander; Loka bachana calumny. [ ଉ—କେବଳ ଲୋକ ଲୋକ ନିନ୍ଦା ବଚନକୁ ଭୋ ଦେବ ! କଲ ମୁଁ କାରୁଣ୍ୟ—ବିଶ୍ୱନାଥ ଲୋକ ନିନ୍ଦା ଖୁଣ୍ଟିଆ. ବିଚିତ୍ର ରାମାୟଣ । ] ସଂ. ବି—ଜନରବ [ଲୋକବାର୍ତ୍ତା—ଅନ୍ୟ ସଂ. ରୂପ] —Rumour (Apte)

ଲୋକ ବତ୍ସଳ—ସଂ. ବଣ. ପୁଂ—୧ । ପ୍ରଜାଙ୍କ ପ୍ରତି ସ୍ନେହଶୀଳ; ପ୍ରଜା- Loka batsala ବତ୍ସଳ—1. Loving the subjects; [ଲୋକ ବତ୍ସଳା—ସ୍ତ୍ରୀ] loving the people. ୨ । ଲୋକ ଲୋକ ବତ୍ସଳତା } ବି ବନ୍ଧୁ—2. Philanthropic. ବି— ଲୋକବାତ୍ସଲ୍ୟ } ବିଷ୍ଣୁଙ୍କ ନାମ—Name of Bishṇu.

ଲୋକ ବନ୍ଧୁ—ସଂ. ବଣ (୬ଷ୍ଠୀ ତତ୍) ବିଶ୍ୱହିତୈଷୀ—Philanthropic. Loka bandhu ବି—୧ । ବିଷ୍ଣୁଙ୍କର ନାମ— 1. A name of Bishṇu. ୨ । ସୂର୍ଯ୍ୟ—2. A name of the sun. ୩ । ଶିବ ( ବ୍ରୁ. ଶ )— 3. Śiba. ୪ । ବିଶ୍ୱହିତୈଷୀ ବ୍ୟକ୍ତି—4. Aphilantheropist.

ଲୋକ ବହିର୍ଭୂତ—ସଂ. ବି—ଲୋକାତୀତ ( ଦେଖ ) Loka bahirbhūta Lokātita ( See )

ଲୋକ ବାକ—ଦେ. ବି ( ଅନର୍ଥକ ଧ୍ୱନ୍ୟନୁକାରୀ ୨ୟ ଶବ୍ଦ )— Loka bāka ୧ । ଏକାଧିକ ଲୋକ—1. Many people. लोकजन [ ଉ—ଶାସ୍ତ୍ରୀଙ୍କ ଜାତ ପ୍ରାୟେ ବାଣ୍ଡେ ଲୋକବାକ— आदमी जदमी ମଧୁମଙ୍ଗଳ । ] ୨ । ସଙ୍ଗେ ଥିବା ଏକାଧିକ ଚାକର; ଚାକର ବାକର—2. Attendants; retinue; a body of attendants.

ଲୋକ ବାଦ—ସଂ. ବି ( ୬ଷ୍ଠୀ ତତ୍ )—୧ । ଲୋକ ପ୍ରବାଦ ( ଦେଖ ) Loka bāda 1. Loka prabāda (See) ୨ । ଲୋକାପ-

ବାଦ; ଜନାପବାଦ—2. Calumny; scandal. [ ଉ—ଏ ଲୋକବାଦ ମହାଭୟେ । କଉଣ କେବଣ ଉପାୟେ—ଜଗନ୍ନାଥ. ଭାଗବତ । ]

ଲୋକ ବାନ୍ଧବ—ସଂ. ବି ( ୬ଷ୍ଠୀ ତତ୍ ) —ଜନବାନ୍ଧବ; ସୂର୍ଯ୍ୟ—
Loka bāndhaba The sun.

ଲୋକ ବାହିତ—ସଂ. ବି ( ୩ୟା ତତ୍ )—ଯାହା (ଯେଉଁ ଯାନ )କୁ
Loka bāhita ମନୁଷ୍ୟମାନେ ବହନ କରନ୍ତି-(a conveyance) Drawn or carried by men.

ଲୋକ ବାହ୍ୟ—ସଂ. ବିଣ—୧ । ( ୫ମୀ ତତ୍ ) ଲୋକବହିର୍ଭୂତ;
Loka bāhya ପ୍ରତିଷ୍ଠିତପ୍ରଥା ବିରୁଦ୍ଧ—1. Contrary to established custom. ୨ । ଧର୍ମଭ୍ରଷ୍ଟ—2. Apostatised. ୩ । ( ୩ୟା ତତ୍ ) ମନୁଷ୍ୟଦ୍ୱାରା ବହନୀୟ ( ଯାନ )—3. (conveyance) Fit to be borne or drawn by men.

ଲୋକ ବିଗର୍ହିତ—ସଂ. ବିଣ ( ୩ୟା ତତ୍ )—୧ । ଲୋକାଚାର ବିରୁଦ୍ଧ
Loka bigarhita 1. Contrary to custom. ୨ । ଲୋକମତର ବିପରୀତ—2. Contrary to public opinion.

ଲୋକ ବିଦ୍ୱିଷ୍ଟ—ସଂ. ବିଣ. ପୁଂ ( ୩ୟା ତତ୍ )—ଜନସାଧାରଣ ଯାହାକୁ
Loka bidwishṭa ଦୃଷ୍ଟ ପାଆନ୍ତି ନାହିଁ—Universally disliked ( Apte ).
( ଲୋକ ବିଦ୍ୱିଷ୍ଟା—ସ୍ତ୍ରୀ )

ଲୋକ ବିଦ୍ୱେଷ—ସଂ. ବି (—୧ । (୬ଷ୍ଠୀ ତତ୍ ) ଜନ ସାଧାରଣଙ୍କର
Loka bidwesha ବିରାଗ—1. Dislike of the
[ଲୋକବିରାଗ—ଅନ୍ୟରୂପ] general public. ୨। (୪ର୍ଥୀ ତତ୍) ଲୋକଙ୍କ ପ୍ରତି ବିରାଗ ଭାବ—2. Misanthropy.

ଲୋକବିଦ୍ୱେଷୀ—ସଂ. ବିଣ ଓ ବି. ପୁଂ (୬ଷ୍ଠୀ ତତ୍)—ଯେଉଁ ବ୍ୟକ୍ତି
Lokabidweshī ଲୋକଙ୍କୁ ଘୃଣା କରେ—Misanthropic;
(ଲୋକବିରାଗୀ—ଅନ୍ୟରୂପ) a misanthrope.
[ଲୋକବିଦ୍ୱେଷିଣୀ, ଲୋକବିରାଗିଣୀ—ସ୍ତ୍ରୀ]

ଲୋକ ବିମୋହନ—ସଂ. ବି (୬ଷ୍ଠୀ ତତ୍ )—ଲୋକମାନଙ୍କୁ ମୁଗ୍ଧ
Loka bimohana କରିବା—Fascinating the people. ବିଣ. ପୁଂ—ଲୋକମୁଗ୍ଧକର—Fascinating the people.

ଲୋକ ବିରାଗ—ସଂ. ବି ( ୬ଷ୍ଠୀ ତତ୍ )—ଲୋକସାଧାରଣଙ୍କର କୌଣସି
Loka birāga ବ୍ୟକ୍ତିପ୍ରତି ଅପ୍ରୀତି—Displeasure of the public.

ଲୋକ ବିଶ୍ରୁ (ଖ୍ୟା)ତ—ସଂ, ବିଣ (୭ମୀ ତତ୍)—ଲୋକ ପ୍ରସିଦ୍ଧ (ଦେଖ)
Loka bisru(khyā)ta Loka prasiddha. (See)
(ଲୋକବିଶ୍ରୁତ—ବି)

ଲୋକ ବୃତ୍ତ—ସଂ. ବି (୬ଷ୍ଠୀ ତତ୍)—୧ । ସଂସାରରେ ଚଳୁଥିବା ରୀତି—
Loka brutta 1. The ways of the world; custom prevailing in the world. (Apte) ୨ । ବୃଥା ଗପ—2. Gossip; idle talk. (Apte)

ଲୋକ ବ୍ୟବହାର—ସଂ. ବି (୬ଷ୍ଠୀ ତତ୍)—୧ । ଲୌକିକାଚାର—
Loka byabahāra 1. A popular usage or
(ଲୋକ ବୃତ୍ତାନ୍ତ—ଅନ୍ୟରୂପ) custom. ୨ । ସଂସାରର ରୀତି-ନୀତି—2. The ways of the world; course of events. (Apte) ସଂ. ବିଣ—ସାଧାରଣଭାବ ପ୍ରଚଳିତ—Universally current. (Apte)

ଲୋକ ବ୍ରତ—ଦେ, ବି—୧। ଲୋକସେବାରୂପ ବ୍ରତ—1. A vow
Loka brata of serving the public. ୨ । ଜନସାଧାରଣ କର୍ତ୍ତବ୍ୟ ଧର୍ମାନୁଷ୍ଠାନ—2. Any religious
লোকসেবা ব্রত vow to be observed by men. ୩
लोकसेवाव्रत
ସଂସାରର ରୀତି—3. General practice or way of the world. (Apte)

ଲୋକ ବ୍ରାତ—ସଂ.ବି(୬ଷ୍ଠୀ ତତ୍ )—ଲୋକସମୂହ—The people.
Loka brāta [ଉ—ପ୍ରବୁଦ୍ଧ ହେଲେଣି ସେ ଦେଶ ଲୋକବ୍ରାତ । କୃଷ୍ଣସିଂହ. ମହାଭାରତ. ସଭା ।]

ଲୋକ ଭୟ—ସଂ. ବି (୫ମୀ ତତ୍)—ଜନାପବାଦର ଭୟ—
Loka bhaya Fear of public opinion.

ଲୋକ ଭୁଲାଣିଆ—ଦେ. ବିଣ—ଲୋକଙ୍କୁ କଥାରେ ଭୁଲାଇ ଦେବାପାଇଁ
Loka bhulāṇiā ଉଦ୍ଦିଷ୍ଟ ବା ଅଭିପ୍ରେତ—Meant to
লোক ভুলান mislead people; misleading.
लोकभुलानेवाला

ଲୋକ ମଣ୍ଡଳ—ସଂ. ବି (୬ଷ୍ଠୀ ତତ୍)—୧ । ସଂସାରମଣ୍ଡଳ; ସମଗ୍ର
Loka maṇḍala ପୃଥିବୀ—1. The whole world. ୨ । ଜନସମାଜ—2. The human society; the mankind. ୩ । ଲୋକସମୂହ; ଜନତା—3. A gathering of people.

ଲୋକ ମତ—ସଂ. ବି (୬ଷ୍ଠୀ ତତ୍)—ଜନସାଧାରଣଙ୍କ ଅଭିମତ—
Loka mata Public opinion, popular opinion,
(ଲୋକାଭିମତ—ଅନ୍ୟରୂପ) people's voice.

ଲୋକମତ ବିରୋଧୀ—ସଂ. ବିଣ (୬ଷ୍ଠୀ ତତ୍)—ଜନ ସାଧାରଣଙ୍କ
Lokamata birodhī ଅଭିମତର ପ୍ରତିକୂଳ—Contrary
(ଲୋକମତ ବିରୁଦ୍ଧ—ଅନ୍ୟରୂପ) to public opinion; done in violation of public opinion.

ଲୋକ ମର୍ଯ୍ୟାଦା—ସଂ. ବି (୬ଷ୍ଠୀ ତତ୍)—ଲୋକ ସମାଜରେ ପ୍ରଚଳିତ
Loka marjyādā ରୀତି—Established custom
(ଲୋକମାର୍ଗ—ଅନ୍ୟରୂପ) or ways. (Vpte)

ଲୋକ ମାତା—ସଂ. ବି. ସ୍ତ୍ରୀ (୬ଷ୍ଠୀ ତତ୍, ଲୋକମାତୃ, ୧ମା· ୧ବ]—
Loka mātā କମଳା; ମହାଲକ୍ଷ୍ମୀ—The Goddess of wealth.

ଲୋକ ମୁକୁଟ-ପ୍ରାଦେ. (ଯାଜପୁର) ବି—ଯେଉଁ ପ୍ରକୋଷ୍ଠରେ ବିବାହକୃତ
Loka mukuṭa ଅନ୍ତର କର୍ମ ହୋଇଥାଏ ତହିଁର କାନ୍ଥରେ ପହୁଲେ କଳା ଲଗାଯାଇ ତା ଉପରେ ଦିଆଯିବା ଚିତା ବା ଝୋଟି—The paint or jhoti which is put on

a wall of the room in which marriage or sacred thread rites are to be performed.

ଲୋକ ମୁଖ—ସଂ. ବ (୬ଷ୍ଠୀ ତତ୍)—୧ । ସର୍ବସାଧାରଣଙ୍କ ମତ ବା ମତ; Loka mukha ଜନମତ—1. The mouth of the public; public opinion. ୨ । ଲୋକଙ୍କ ମୁହଁରୁ ଶୁଣାଯିବା ମତ—2. Report; verbal report.

ଲୋକ ଯାତ୍ରା—ସଂ.ବ.—ଧା (୭ମୀ ତତ୍) ଜୀବନ ଯାତ୍ରା;ସଂସାର ଯାତ୍ରା— Loka jātrā 1. Livelihood ୨ । ସଂସାରରେ ଚଳିବା— 2. Living; course of life; to live, move and have one's being. ୩ । (୬ଷ୍ଠୀ ତତ୍) ଶୋଭାଯାତ୍ରା; କୌଣସି ଉତ୍ସବାଦି ଉପଲକ୍ଷେ ବହୁଲୋକଙ୍କର ଏକତ୍ର ଗମନ—A public procession.

ଲୋକଯାତ୍ରା ନିର୍ବାହ—ସଂ. ବ (୭ମୀ ତତ୍; ୬ଷ୍ଠୀ ତତ୍)—ଜୀବନଯାତ୍ରା Lokajātrā nirbāha ଚଳାଇବା—Eking out of one's (ଲୋକଯାତ୍ରା ନିର୍ବର୍ତ୍ତନ—ଅନ୍ୟରୂପ) existence.

ଲୋକଯାତ୍ରା ବିଧାନ—ସଂ. ବ (୭ମୀ ତତ୍; ୬ଷ୍ଠୀ ତତ୍)—୧ । ଲୋକ- Lokajātrā bidhāna ଯାତ୍ରା ନିର୍ବାହ—1. Eking out of one's existence. ୨ । ଲୋକଯାତ୍ରା ନିର୍ବାହର ବିଷୟ ନିର୍ଦ୍ଦେଶକ ଶାସ୍ତ୍ର ବିଶେଷ—2. The science of political economy.

ଲୋକ ରକ୍ଷ—ସଂ. ବ. ପୁଂ (ଲୋକ+ରକ୍ଷ୍ ଧାତୁ+କର୍ତ୍ତୃ. ଅ)—ରାଜା— Lokaraksha (ଲୋକରକ୍ଷକ—ଅନ୍ୟରୂପ) King (Apte)

ଲୋକ ରଖିବା—ଦେ. କ୍ରି.—୧ । ଆପଣାର କାର୍ଯ୍ୟ ନିର୍ବାହାର୍ଥ ଚାକର Loka rakhibā ନିଯୁକ୍ତ କରିବା—1 To entertain or ଲୋକ ৰাখা आदमी रखना employ servants or hands for getting one's work done. ୨ । ଦାସୀ ବା ରକ୍ଷିତା ସ୍ତ୍ରୀ ରଖିବା—2. To retain a concubine.

ଲୋକ ରଞ୍ଜକ—ସଂ. ବିଣ. ପୁଂ—ଯେ ପ୍ରଜାଙ୍କୁ ସନ୍ତୁଷ୍ଟ କରେ; Loka rañjaka Pleasing the people; popular.

ଲୋକ ରଞ୍ଜନ—ସଂ. ବ (୬ଷ୍ଠୀ ତତ୍)—ଲୋକ ସାଧାରଣଙ୍କର ପ୍ରୀତି- Loka rañjana ସାଧନ—Act of pleasing the public; popularity (Apte). ସଂ. ବିଣ— ଲୋକରଞ୍ଜକ (ଦେଖ)—Lokarañjaka (See)

ଲୋକ ରବ—ସଂ. ବ (୬ଷ୍ଠୀ ତତ୍)—ଜନରବ—Rumour. Loka raba

ଲୋକ ଲ(ନ)ଉକର(ରି)—ଦେ.ବ(ସଦୃଶ);ସଂ.ଲୋକ; ଫା. ନୌକର୍) Laka la(na)ukara(ri) ଲୋକବାକ; ଚାକର ବାକର— চাকরবাকর आदमी नौकर Servants and labourers.

ଲୋକ ଲଗା(ଗେ)ଇବା—ଦେ. କ୍ରି—କୌଣସି କାର୍ଯ୍ୟ କରିବାକୁ Loka lagā(ge)ibā ମୂଲିଆଙ୍କୁ ନିଯୁକ୍ତ କରିବା—To engage লোক লগান आदमी लगाना labourers to execute any work

ଲୋକ ଲଜ୍ଜା—ସଂ. ବ—(ମ. ପ. ଲୋ; ଲୋକାପବାଦଜନିତ ଲଜ୍ଜା) Loka lajjā ୧। ଲୋକାପବାଦ—1 Calumny. ୨। ଲୋକାପବାଦ ପ୍ରତି ମନରେ ଭୟ—2, Fear of scandal.

ଲୋକଲଜ୍ଜାର ଭୟ—ଦେ. ବ—ଲୋକାପବାଦ ଭୟ—Fear of Lokalajjāra bhaya public scandal লোকলজ্জার ভয় लोकलज्जाका भय

ଲୋକ ଲସ୍କର—ଦେ. ବ. ( ସଂ ଲୋକ ଓ ଫା. ଲସ୍କର୍ )—ଲୋକବାକ; Loka laskara ଚାକର ବାକର—Attendants and লোক লস্কর लोक लसकर servants

ଲୋକଲ(ଲ)ଜ୍ୟା—ଦେ. ବ (ସଂ. ଲୋକଲଜ୍ଜା)— Loka lā(la)jyā ଲୋକଲଜ୍ଜା (ଦେଖ)—Loka lajjā (See) লোকলজ্জা लोकलज

ଲୋକ ଶିକ୍ଷକ—ସଂ. ବି. ପୁଂ [୬ଷ୍ଠୀ ତତ୍] ୧। ଜନସମାଜର ଶିକ୍ଷାଦାତା। Loka sikshaka ବା ଉପଦେଷ୍ଟା—1. A teacher of the society. [ଯଥା—ବୁଦ୍ଧ; ଶଙ୍କରାଚାର୍ଯ୍ୟ; ଖ୍ରୀଷ୍ଟ; ମହମ୍ମଦ; ଶ୍ରୀକୃଷ୍ଣ; ରାମଚନ୍ଦ୍ର ଓ ଚୈତନ୍ୟ] ୨ । ଉପଦେଶଦ୍ୱାରା ଧର୍ମପ୍ରବର୍ତ୍ତକ—2. A great religious teacher.

ଲୋକ ଶିକ୍ଷା—ସଂ. ବ [୬ଷ୍ଠୀ ତତ୍] ୧ । ଲୋକଙ୍କୁ ଉପଦେଶ ଦେବା— Loka sikshā 1. Teaching the people. ୨ । ସାଧାରଣ ଲୋକଙ୍କର ବିଦ୍ୟାଶିକ୍ଷା—2. Popular education; mass education ୩ । ଜଣକୁ ଦଣ୍ଡ ଦିଆଯିବା ଦ୍ୱାରା ଜନସାଧାରଣଙ୍କର ଶିକ୍ଷା—3. The lesson learnt by the public by seeing another person's punishment [ଦ୍ର—ରାମଚନ୍ଦ୍ର ପ୍ରଜାରଞ୍ଜନାର୍ଥ ସୀତାଙ୍କୁ ନିର୍ବାସନ କରିବାଦ୍ୱାରା ଲୋକଶିକ୍ଷା ଦେଲେ । ଅପରାଧୀ ଦଣ୍ଡ ପାଇବାର ଉଦାହରଣ ଦେଖିଲେ ଲୋକଶିକ୍ଷା ହୁଏ, ଅର୍ଥାତ୍ ଲୋକେ ସେହି ଉଦାହରଣ ଦେଖି ଶିକ୍ଷାଲାଭ କରନ୍ତି ଯେ, ଅପରାଧ କଲେ ଦଣ୍ଡ ପାଇବାକୁ ହେବ ।

ଲୋକ ଶୂନ୍ୟ—ସଂ. ବିଣ (୩ୟା ତତ୍) ୧ । ଯେଉଁଠାରେ କେହି ମନୁଷ୍ୟ Loka sūnya ନ ଥାନ୍ତି—1. Emptied of people. ୨ । ଅଧିବାସୀଶୂନ୍ୟ—2. Depopulated; uninhabited.

ଲୋକ ଶ୍ରେଣୀ—ସଂ. ବ (୬ଷ୍ଠୀ ତତ୍ )—୧ । ଲୋକସମୂହ—1. A Loka sreṇī collection of men ୨ । ମନୁଷ୍ୟମାନଙ୍କ ଧାଡ଼—2. A row of men.

ଲୋକଶ୍ରୁତି—ସଂ. ବ (ମ. ପ. ଲୋ)—ଜନଶ୍ରୁତି; ପ୍ରବାଦ (ହି. ଶ) Loka sruti Rumour.

ଲୋକ ସଂଗ୍ରହ—ସ ବ—୧। (୬ଷ୍ଠୀ ତତ୍) ସଂସାରର ମଙ୍ଗଳ ବା କଲ୍ୟାଣ Loka samgraha 1. The welfare of the world (Apte). ୨ । ସଂସାରର ଲୋକଙ୍କୁ ପ୍ରସନ୍ନ କରିବା [ହି. ଶ]—2. Pleasing the people.

ସଂ. ବିଣ [ ବହୁବ୍ରୀହି ] ସଂସାରର କଲ୍ୟାଣକାମୀ [ ହି. ଶ ].
2. Wishing the good of the world.

ଲୋକ ସଂସୃତି—ସଂ. ବି.—ଭାଗ୍ୟ—
Loka samsruti — Destiny; fate (Apte).

ଲୋକ ସମାକୀର୍ଣ୍ଣ—ସଂ. ବିଣ ( ୩ୟା ତତ୍ )—ବହୁ ମନୁଷ୍ୟଙ୍କ ଦ୍ୱାରା
Loka samākirnna — ପୂର୍ଣ୍ଣ (ସ୍ଥାନ)—Filled with people; crowded(place).

ଲୋକ ସମାଗମ—ସଂ. ବି (୬ଷ୍ଠୀ ତତ୍)—ଜନସମାଗମ; ଜନତା; ଗହଳି—
Loka samāgama — Crowd; rush; a gathering of people.
[ଲୋକସନ୍ଧି (ସନ୍ଧ୍ୟେ)ଲଜ—ଅନ୍ୟରୂପ]

ଲୋକ ସମାଜ—ସଂ ବି (୬ଷ୍ଠୀ ତତ୍ )—ଜନସମାଜ; ଲୋକସମୂହ—
Loka samāja — The human society.

ଲୋକସାକ୍ଷିକ—ସଂ. ବିଣ—(ହିନ୍ଦୁସ୍ମୃତି) ଯେଉଁ ଦଲିଲରେ ସାକ୍ଷୀ ପଡ଼ି
Lokasākshika — ଅଛନ୍ତି—(Hindu law) (a deed) Attested by witnesses (Apte).

ଲୋକ ସାକ୍ଷୀ—ସଂ. ବି (୬ଷ୍ଠୀ ତତ୍)—୧ । ସୂର୍ଯ୍ୟ—1. The sun. ୨ ।
Loka sākshi — ଅଗ୍ନି—2. Fire (Apte) ୩ । ବ୍ରହ୍ମା—3. Brahmā (Apte)

ଲୋକ ସାଧାରଣ—ଦେ. ବି (କର୍ମଧା)—ସର୍ବସାଧାରଣ; ଲୋକମାନେ—
Loka sādhārana — The general public.

ଲୋକସାନ(ନି)—ବୈଦେ. ବି (ଫା ନୁକ୍‌ସାନ୍)—କ୍ଷତି—Loss.
Lokasān(ni) — নোকসান नुकसान

ଲୋକ ସାମାନ୍ୟ—ସଂ.ବିଣ (୭ମୀ ତତ୍ )—ସାଧାରଣ; ଯାହା ସଚରାଚରରେ
Lokasāmānya — ଲୋକସମାଜରେ ଦେଖାଯାଏ ବା ଚଳେ—Human; usual; common.

ଲୋକ ସିଦ୍ଧ—ସଂ ବି ( ୭ମୀ ତତ୍ )—୧ । ସଂସାରରେ ପ୍ରଚଳିତ—
Loka siddha — 1. Current among the people; usual (Apte). ୨ । ବ୍ୟବହାର ସିଦ୍ଧ—2. Customary (Apte). ୩ । ସାଧାରଣତଃ ସ୍ୱୀକୃତ ବା ଗୃହୀତ—3. Generally received or accepted (Apte)

ଲୋକ ସୁମାର୍(ରି)—ଦେ. ବି—( ସଂ. ଲୋକ, ଓ ଫା. ସୁମାର୍ )—
Loka sumār(ri) — ରାଜ୍ୟର ଲୋକମାନଙ୍କ ଗଣନା କରି ଲୋକସଂଖ୍ୟା ସ୍ଥିରୀକରଣ—Census.

ଲୋକସେବକ ସମାଜ—ସ.ବି. (ନାମ) (ଅଧୁନିକ)—(ଯେଉଁ ଲୋକସବୁ-
Loka sebaka samāja — ସାଧାରଣ ହିତକର କାର୍ଯ୍ୟରେ ବ୍ରତୀ ହୁଅନ୍ତି)—ଲାଲା ଲଜପତ୍ ରାୟଙ୍କଦ୍ୱାରା ବିଂଶ ଶତାବ୍ଦୀର ପ୍ରଥମଭାଗରେ ପ୍ରତିଷ୍ଠିତ ସମାଜ—'The Servants of the People Society' founded by the late Lala Lajpat Rai.

ଲୋକ ସେବା—ସଂ ବି.—(୬ଷ୍ଠୀ ତତ୍ )—ସାଧାରଣଙ୍କ ଉପକାର
Loka sebā — କରିବା—Serving the public; doing public good.

ଲୋକ ସଂଖ୍ୟା—ସ. ବି—(୬ଷ୍ଠୀ ତତ୍)—୧ । କୌଣସି ସ୍ଥାନର
Loka samkhyā — ଅଧିବାସୀମାନଙ୍କର ସଂଖ୍ୟା—1. The population or number of people of a place. ୨ । ଲୋକମାନଙ୍କର ସଂଖ୍ୟା—2. The number of people. ଦେ. ବି.—କୌଣସି ସ୍ଥାନର ଲୋକ ଗଣନା—Taking the census of a place.

[ ଦ୍ର—୧୯୨୧ ଖ୍ରୀଷ୍ଟାବ୍ଦରେ କରା ଯାଇଥିବା ଲୋକ ସୁମାରରେ ସ୍ଥୂଳତଃ ସ୍ଥିର ହୋଇଥିଲା ଯେ ସମଗ୍ର ପୃଥିବୀର ଲୋକ ସଂଖ୍ୟା ୧୬୨ କୋଟି; ତହିଁ ମଧ୍ୟରୁ ଖ୍ରୀଷ୍ଟିଆନ୍ ୪୮ କୋଟି, ଇହୁଦୀ ୨ କୋଟି, ମୁସଲମାନ୍ ୧୨୫ କୋଟି, ହିନ୍ଦୁ ୨୧୫ କୋଟି, ବୌଦ୍ଧ ୩୨୫ କୋଟି, ଚନ୍ କନ୍‌ଫିଉକସ୍ ଓ ତା ଓ ଧର୍ମାବଲମ୍ବୀ ୧୩ କୋଟି, ଯାପାନ ସିଣ୍ଟୋ ଧର୍ମାବଲମ୍ବୀ ୧୫ କୋଟି ଓ ଅନ୍ୟ ଧର୍ମାବଲମ୍ବୀମାନେ ୩୨ କୋଟି ।

୧୯୩୧ ସାଲର ଜନ ଗଣନା ଅନୁସାରେ ଭାରତର ଲୋକ ସଂଖ୍ୟା ୩୫ କୋଟି ୨୯ ଲକ୍ଷ ୮୨ ହଜାର ୮୭୭; ତହିଁ ମଧ୍ୟରୁ ହିନ୍ଦୁ ୨୩ କୋଟି ୯୧ ଲକ୍ଷ ୯୩ ହଜାର ୭୭୫, ମୁସଲମାନ୍ ୭ କୋଟି ୭୭ ଲକ୍ଷ ୭୧ ହଜାର ୪୪୫, ଶିଖ ୪୩ ଲକ୍ଷ ୩୫ ହଜାର ୭୭୧, ଜୈନ ୧୨ ଲକ୍ଷ ୫୨ ହଜାର ୧୦୫, ବୌଦ୍ଧ ୧ କୋଟି ୨୭ ଲକ୍ଷ ୮୭ ହଜାର ୮୦୭, ଟ୍ରାଇବାଲ୍ ବା ଆଦିମନିବାସୀ ୮୩ ଲକ୍ଷ ୯୧ ହଜାର ୭୫, ଜୋରାଷ୍ଟ୍ରିଅନ୍ ବା ପାର୍ସୀ ୧ ଲକ୍ଷ ୧୧ ହଜାର ୮୫୩, ଇହୁଦି ୨୪ ହଜାର ୧୪୧, ଅନ୍ୟାନ୍ୟ ୪ ଲକ୍ଷ ୫୧ ହଜାର ୮୭୩ । ଗଡ଼ଜାତବାସିଙ୍କ ଓ ଶ୍ରୀଯୁକ୍ତ ନଗେନ୍ଦ୍ରକୁମାରଙ୍କ ବିବିଧ ବିଷୟସଂଗ୍ରହ)]

ଲୋକସ୍ଥିତି—ସ. ବି (୬ଷ୍ଠୀ ତତ୍ )—୧ । ସଂସାରର ସ୍ଥାୟିତ୍ୱ ବା ରକ୍ଷା—
Loka sthiti — 1. The preservation or stability of the world. ୨ । ମନୁଷ୍ୟବାସ—2. Human residence. ୩ । ମନୁଷ୍ୟସମାଜ—3. Human society. ୪ । ବିଶ୍ୱଜନୀନ ବିଧି—4. An universal law (Apte) ୫ । ସାଂସାରିକ ଅବସ୍ଥିତି—5. Worldly existence (Apte).

ଲୋକହସା—ଦେ. ବି (ସଂ. ଲୋକହାସ୍ୟତା)—୧ । ସର୍ବସାଧାରଣଙ୍କର
Loka hasā — ବିଦ୍ରୂପ—1. Public disgrace; public scorn or derision.
লোকহসা लोकहंसी
୨ । ଲୋକାପବାଦ—2. Scandal. ୩ । ହଟହଟା—3. Condition of being subjected to public scorn. (ଉ—ରସାଲସା ରେ । ଲସି ପୁଣି ଏ କି ଲୋକହସା ରେ—କବିସୂର୍ଯ୍ୟ.ଦଶୋସ୍ତୋମ୍ଭ ଲଗୀତ) । ବିଣ. (ସଂ.ଲୋକହାସ୍ୟ) ଲୋକସମାଜରେ ଉପହାସାସ୍ପଦ;
लोकहंसा — ହଟହଟା—Becoming the butt-end of public scorn; scandalised; publicly disgraced; Derided by the world.

ଲୋକ ହସା(ସେ)ଇବା—ଦେ. କ୍ରି—୧ । ଅଦ୍ୟପ ଲୋକମାନଙ୍କ
Loka hasā(se)ibā ଉପହାସାସ୍ପଦ ହେବାଭଳି କାର୍ଯ୍ୟ କରିବା—
লোকহাসান लोकहँसाना 1. To do something by
[ଲୋକ(କେ)ହସିବା—ବ. ରୂପ] which one will become scandalised. ୨ । ଲୋକହସା କରାଇବା—
2. Lokahasā karāibā (See)

ଲୋକହସା କର(ରେ)ଇବା—ଦେ. କ୍ରି—ଅନ୍ୟ ବ୍ୟକ୍ତି ଲୋକମାନଙ୍କର
Lokahasā karā(re)ibā ଉପହାସାସ୍ପଦ ହେବାଭଳି କାର୍ଯ୍ୟକରିବା—
লোক হসান, লোক হাসাকবান लोकहँसि कराना To do something for which another person ( not the doer) will be scandalised.

ଲୋକହସା ହେବା—ଦେ. କ୍ରି—ଜନସମାଜରେ ହାସ୍ୟାସ୍ପଦ ହେବା—
Lokahasā hebā হাস্যাস্পদ হওয়া To be the butt
लोकहँसाहोना end of public laughter or derision.

ଲୋକହାସ୍ୟ—ସଂ ବିଣ. ପୁଂ (ବହୁବ୍ରୀହି)—ସାଧାରଣଙ୍କଦ୍ୱାରା ଉପହସିତ;
Lokahāsya ଲୋକହସା—Derided by the world;
(ଲୋକହାସ୍ୟା—ସ୍ତ୍ରୀ) being the butt of general
(ଲୋକହାସ୍ୟତା—ବି) redicule (Apte)

ଲୋକ ହିତ—ସଂ.ବି (୬ଷ୍ଠୀ ତତ୍.)—୧ । ମନୁଷ୍ୟସମାଜର ମଙ୍ଗଳ, ଇଷ୍ଟ
Loka hita ବା ଉପକାର —1. The good of the people. ୨ । ବିଶ୍ୱହିତ; ଜଗତର ମଙ୍ଗଳ—
2. The good of the world; universalgood.
୩ । ସର୍ବସାଧାରଣଙ୍କ ମଙ୍ଗଳ—3. Public weal.
ସଂ. ବିଣ—ଲୋକହିତକର—Beneficial to the mankind (Apte).

ଲୋକ ହିତକର—ସଂ. ବିଣ (୬ଷ୍ଠୀ ତତ୍) ସର୍ବସାଧାରଣଙ୍କର ମଙ୍ଗଳଜନକ
Loka hitakara —Beneficial to the public or to the mankind.

ଲୋକହିତ ବ୍ରତ—ସଂ. ବି ( ୬ଷ୍ଠୀତତ୍, ରୂପକ )—ସର୍ବସାଧାରଣଙ୍କ
Loka hitabrata ଉପକାରସାଧନରୂପ ବ୍ରତ—
The vow of performing acts of public
(ଲୋକହିତବ୍ରତୀ—ବିଣ. ପୁଂ) benefit.

ଲୋକ ହିତୈଷଣା—ସଂ. ବି ( ୬ଷ୍ଠୀ ତତ୍ )—ଲୋକମାନଙ୍କର ମଙ୍ଗଳ-
Loka hitaishaṇā କାମନା; ଲୋକହିତ କରିବାର ଇଚ୍ଛା—
Desire or wish for public good; public spirit; public-spiritedness.

ଲୋକ ହିତୈଷୀ—ସଂ.ବିଣ. ପୁଂ ( ୬ଷ୍ଠୀ ତତ୍; ଲୋକ+ହିତୈଷିନ୍; ୧ମା
Loka hitaishi ଏକ)-ଲୋକମାନଙ୍କର ବା ଜନସମାଜର ମଙ୍ଗଳକାମୀ
( ଲୋକହିତୈଷିଣୀ—ସ୍ତ୍ରୀ ) —Wishing public weal;
(ଲୋକହିତୈଷିତା—ବି) desirous of seeing the people benefitted. ବି—ଦେଶହିତୈଷୀ—
Patriot, a public spirited person.

ଲୋକା—ଦେ. ବି. ପୁଂ.—(ଅନାଦରାର୍ଥକ )—ଲୋକନାଥଙ୍କ ଡାକନାମ-
Lokā Name for calling Lokanātha.
লোকা लोकना (ଲୋକଅ—ଅନ୍ୟରୂପ)

ଲୋକାଇ(ଏ)ତ—ଦେ. ବିଣ—(ସଂ. ଲୌକିକ)—ଲୌକିକ (ଦେଖ)
Lokāi(e)ta লৌকিক लौकिक 1. Laukika (See)
୨ । ସାମାଜିକ—2. Social. ୩ । ଲୋକ ବ୍ୟବହାର-
ସିଦ୍ଧ—3 Hallowed by custom or usage.
୪ । ଜନସାଧାରଣଙ୍କଦ୍ୱାରା ଆଦୃତ—
4. Popular.

ଲୋକାଇ(ଏ)ତ ବେଭାର—ଦେ. ବି-ଲୌକିକ ବ୍ୟବହାର;ଲୋକାଚାର
Lokāi(e)ta bebhāra —Customary usage.
লৌকিক ব্যবহাব लौकिक बेवहार

ଲୋକାଇ(ଏ)ତ ମତ—ଦେ. ବି.—ଜନସାଧାରଣଙ୍କର ମତ—
Lokāi(e)ta mata Popular opinion; popular
লোকমত लौकिक मत view.

ଲୋକାକୀର୍ଣ୍ଣ—ସଂ. ବିଣ.—(୩ୟା ତତ୍)—ଜନାକୀର୍ଣ୍ଣ—
Lokākirṇṇa Crowded

ଲୋକାଚାର—ସଂ. ବି. (୬ଷ୍ଠୀ ତତ୍)—ଦେଶାଚାର; ଲୌକିକାଚାର—
Lokāchāra The usage of a country; custom of a country.

ଲୋକାଚାର ବହିର୍ଭୂତ—ସଂ.ବିଣ. (୫ମୀ ତତ୍)—ଦେଶାଚାରର ବିପରୀତ-
Lokāchāra bahirbhūta Contrary to the customs of a country.
ଲୋକାଚାର ବିଗର୍ହିତ } —ଅନ୍ୟରୂପ
ଲୋକାଚାର ବିରୁଦ୍ଧ }

ଲୋକାଚାର ବିହିତ—ସଂ. ବିଣ. (୩ୟା ତତ୍)—ଦେଶାଚାର ଅନୁସାରେ
Lokāchāra bihita କରିବା—Conforming to the local customs.
[ଲୋକାଚାର ସିଦ୍ଧ, ଲୋକାଚାର ସଙ୍ଗତ ( ସମ୍ମତ)—ଅନ୍ୟରୂପ]

ଲୋକାଟ୍—ବୈଦେ. ବି.—(ଚୀନ ଦେଶୀୟ ଭାଷାର ଶବ୍ଦ; ଇଂରାଜୀ
Lokāt ଭାଷାରେ ଗୃହୀତ)—ଗୋଲପଜାମ୍ ଜାତୀୟ ବୃକ୍ଷ ଓ ଫଳ-
লকট लोकट ବିଶେଷ—Loquat.
[ଦ୍ର—ଏ ଗଛ ଚୀନ୍ ଓ ଜାପାନ୍ ଦେଶରୁ ଭାରତକୁ ଅଣା
ଯାଇ ଉଦ୍ୟାନରେ ଲଗା ଯାଇଅଛି ଓ ଏଥିର କୃଷି ହେଉଅଛି ।
ଏଥିର ପତ୍ର ଲମ୍ବ ଓ ମୋଟା, କେତକୀ ପତ୍ରର ଆକାର; କିନ୍ତୁ
କେତକୀପତ୍ର ଅପେକ୍ଷା ବଡ଼ । ଏ ଗଛ ୭୦୮ ହାତ ପର୍ଯ୍ୟନ୍ତ
ଉଚ୍ଚ ହୁଏ । ଫଗୁଣ ଚୈତ୍ରରେ ଏ ଗଛ ଫୁଲେ ଓ
ବୈଶାଖରେ ଫଳେ । ଏଥିର ଫଳ ବଡ଼ ବରକୋଳି ପରି;
ଏହା ପାଚିଲେ ହଳଦିଆ ଓ ଏଥିର ରସ ମିଠା ଓ ରୁଚିକର
ହୁଏ । ଶାହାରନପୁରର ଲୋକାଟ ଉତ୍କୃଷ୍ଟ ଓ ମିଷ୍ଟ ଅଟେ ।]

ଲୋକାତୀତ—ସଂ. ବିଣ.—(୫ମୀ ତତ୍)—୧ । ଲୋକ ବିଗର୍ହିତ—
Lokātita 1. Contrary to customaryusage.
ଲୋକାତିଶୟ }
ଲୋକାଧିକ } —ଅନ୍ୟରୂପ]
ଲୋକାତିଗ }
୨ । ଅଲୌକିକ, ଯେଉଁ କଥା ସଂସାରର ଜଡ଼ ଘଟଣାର ବହିର୍ଭୂତ; ସୃଷ୍ଟି ଛଡ଼ା; ଦୁନିଆରୁ ବାହାର—
2, Unusual; extraordinary.

ଲୋକାଧିପ—ସଂ. ବି.—(୬ଷ୍ଠୀ ତତ୍)—୧ । ଲୋକପାଳ (ଦେଖ)
Lokādhipa 1, Lokapāla (See)
୨ । ବୁଦ୍ଧଦେବ ( ଷ.)—2, The Buddha.

ଲୋକାଧ୍ୟକ୍ଷ—ସଂ. ବି,—(୬ଷ୍ଠୀ ତତ୍)—୧ । ଲୋକନାୟକ—
Lokādhyaksha 1. Leader of men. ୨ । ବିଷ୍ଣୁ; ଭଗବାନ; ଈଶ୍ୱର—2. Bishṇu; God.

ଲୋକାନୁରାଗ—ସଂ. ବି.—ଲୋକସାଧାରଣଙ୍କ ପ୍ରତି ସ୍ନେହ—
Lokānurāga Love for all people.

ଲୋକାନ୍ତ—ଦେ. ବି.—(ସଂ. ଲୋକାନ୍ତ ଋଗତ)—ମୃତ୍ୟୁ—
Lokānta लोकान्त देहान्त Death.

ଲୋକାନ୍ତର—ସ.ବି (ଅବ୍ୟୟୀଭାବ; ଅନ୍ୟ+ଲୋକ)—୧ । ପରଲୋକ;
Lokāntara ମୃତ୍ୟୁର ପରବର୍ତ୍ତି ସଂସାର—1. Another world; the next world after death. ୨ । ଏ ସଂସାର ଛଡ଼ା ଅନ୍ୟ ସ୍ଥିତି—2. Another sphere of existence. ଦେ' ବି (ସ. ଲୋକାନ୍ତର-ଗତି) ମୃତ୍ୟୁ—Death

ଲୋକାନ୍ତର ଗତ—ସ.ବିଣ. ପୁଂ (୨ୟା ତତ୍)—୧ । ମୃତ—1. Dead
Lokāntara gata ୨ । ପରଲୋକଗତ—2. Gone to the next world.
[ଲୋକାନ୍ତରିତ—ଅନ୍ୟରୂପ]
[ଲୋକାନ୍ତରଗତା, ଲୋକାନ୍ତରିତା—ସ୍ତ୍ରୀ ]

ଲୋକାନ୍ତର ଗତି—ସ. ବି—ପରଲୋକପ୍ରାପ୍ତି; ମୃତ୍ୟୁ—Death;
Lokāntaragati departure for the next world.
[ଲୋକାନ୍ତର ଗମନ, ଲୋକାନ୍ତର ପ୍ରାପ୍ତି—ଅନ୍ୟରୂପ]

ଲୋକାପବାଦ—ସ. ବି ( ମ. ପ. ଲୋ )—ଲୋକନିନ୍ଦା; ଜନସମାଜରେ
Lokāpabāda କୌଣସି ବ୍ୟକ୍ତି ନାମରେ ରଟୁଥିବା କଳଙ୍କ—Public opprobrium; infamy.

ଲୋକାପବାଦ ଭୟ—ସ. ବି ( ମ. ପ. ଲୋ, ୫ମୀ ତତ୍ )—ଲୋକ
Lokāpabāda bhaya ନିନ୍ଦାକୁ ଭୟ—Fear of public disgrace or scandal.

ଲୋକାଭାବ—ସ. ବି ( ୬ଷ୍ଠୀ ତତ୍ )—୧ । ଆବଶ୍ୟକୀୟ ଲୋକଙ୍କର
Lokābhāba ଅପ୍ରତୁଳତା—1. Want of men. ୨ । କର୍ମକ୍ଷେତ୍ର ବା ସାହାଯ୍ୟକାରୀ ଲୋକ ନ ମିଳିବା ଅବସ୍ଥା—2. Want of the required hands.

ଲୋକାଭିରାମ—ସ. ବିଣ. ପୁଂ—୧ । (୬ଷ୍ଠୀ ତତ୍) ଲୋକମାନଙ୍କ ପ୍ରୀତି-
Lokābhirāma ଜନକ—1. Pleasing to the people. ୨ । ଲୋକମାନଙ୍କ ଚକ୍ଷୁକୁ ମନୋହର—2. Looking graceful to the eyes of men. ୩ । ଲୋକ-ପ୍ରିୟ—3. Popular, loved by the people. ୪ । ( ୭ମୀ ତତ୍ ) ଅତି ସୁନ୍ଦର—4. Very beautiful.

ଲୋକାୟତ—ସ. ବିଣ ( ଲୋକ+ଆ+ୟତ୍ ଧାତୁ=ୟତ୍ନ କରିବା+ କର୍ତ୍ତୃ. ଅ )—ଚାର୍ବାକମତାବଲମ୍ବୀ; ନାସ୍ତିକମତାବ-
Lokāyata ଲମ୍ବୀ—Following the school of philosophy propounded by Chārbāka; atheist; materialist. [ ଦ୍ର—ଏମାନେ ପରଲୋକ ମାନନ୍ତି ନାହିଁ । ] ବି—୧ । ଚାର୍ବାକ ମୁନିଙ୍କ ମତ—1. The tenets of sage Chārbāka. ୨ । ନାସ୍ତିକ ଦର୍ଶନଶାସ୍ତ୍ର—2. The philosophy of atheism. ୩ । ନାସ୍ତିକତା—3. Atheism. ୪ । ଯେଉଁ ବ୍ୟକ୍ତି ଇହଲୋକ ଛଡ଼ା ପରଲୋକ ସ୍ୱୀକାର କରେ ନାହିଁ ( ହି. ଶ. )—4. A person who dose not believe in an after life. ୫ । ଇହଲୋକ ଛଡ଼ା ଅନ୍ୟ ଲୋକ ନାହିଁ ଏପରି ମତବାଦ—5. Materialism ( Apte ). ୬ । ଇହଲୋକ ଛଡ଼ା ଯେ ଲୋକାନ୍ତର ମାନେ ନାହିଁ—6. A materialist ( Apte ).

ଲୋକାୟତିକ—ସ. ବିଣ. ପୁଂ ( ଲୋକାୟତ+ଇକ )—୧ । ଚାର୍ବାକ
Lokāyatika ମତାବଲମ୍ବୀ—1. Holding the atheistic view of sage Chārbāka. ୨ । ନାସ୍ତିକ—2. Atheistic ବି—ଚାର୍ବାକ ମୁନି—The sage Chārbāka who preached the atheistic system of philosophy. [ ଦ୍ର—ଚାର୍ବାକଙ୍କ ଦର୍ଶନ ନାସ୍ତିକତା ଉପରେ ପ୍ରତିଷ୍ଠିତ । ଏହାଙ୍କର ମତ— "ଯାବଜ୍ଜୀବେତ୍ ସୁଖଂ ଜୀବେତ୍, ଋଣଂ କୃତ୍ୱା ଘୃତଂ ପିବେତ୍; ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଂ କୁତଃ ?" ଅର୍ଥାତ୍ ସଂସାରରେ ଜନ୍ମ ଲଭି ଋଣ କରି ମଧ୍ୟ ଘିଅ ଖାଅ । ଖାଅ, ପିଅ, ମଉଜ କର; ଏ ଜୀବର ପୁନର୍ଜନ୍ମ ନାହିଁ । ଏହାଙ୍କ ମତ ସଙ୍ଗେ ଗ୍ରୀସ୍ ଦେଶର ପଣ୍ଡିତ ଏପିକ୍ୟୁରସଙ୍କ ମତର ସାମଞ୍ଜସ୍ୟ ଅଛି । ତାଙ୍କର ଉପଦେଶ ମଧ୍ୟ ଖାଅ, ପିଅ, ମଉଜ କର—Eat, drink and be merry. ଚାର୍ବାକ ପରଲୋକ ସ୍ୱୀକାର କରୁ ନ ଥିଲେ । ]

ଲୋକାୟିତ—ଦେ. ବିଣ—ଲୋକାଇତ ( ଦେଖ )
Lokāyita Lokāita ( See )

ଲୋକାରଣ୍ୟ—ସଂ. ବି ( ୬ଷ୍ଠୀ ତତ୍ )—୧ । ବହୁ ଲୋକର ସମାଗମ;
Lokāraṇya ଜନତା; ଭିଡ଼—Crowd. ଦେ. ବିଣ—
लोकारण्य ବହୁ ଲୋକରେ ପୂର୍ଣ୍ଣ—Thickly crowded.
आदमीयोंसे भरा

ଲୋକାରାମ—ସଂ. ବି—ଈଶ୍ୱର; ଭଗବାନ୍; ବିଷ୍ଣୁଙ୍କର ଏକ ନାମ—
Lokārāma A name of Bishṇu.

ଲୋକାଲ୍—ବୈଦେ. ବିଣ (ଇଂ)—୧ । ସ୍ଥାନୀୟ—1. Local. ୨ ।
Lokāl ପ୍ରାଦେଶିକ—2. Proivincial. [ ଏହି ଇଂରାଜୀ ଶବ୍ଦଟିକୁ ଅନେକସ୍ଥଳରେ ଇଂରାଜୀ ଶବ୍ଦ ଭାଷାରେ ଚଳୁଅଛି । ]
लोकाल
लोकल

ଲୋକାଲ୍ ଗଭର୍ଣ୍ଣମେଣ୍ଟ—ବୈଦେ. ବି (ଇଂ)—ଇଂରାଜ ଶାସିତ ଭାରତ-
Lokāl gabharnnament ବର୍ଷର ଭିନ୍ନ ଭିନ୍ନ ପ୍ରଦେଶର
लोकाल गभर्णमेण्ट ସ୍ୱତନ୍ତ୍ରଶାସନ ବିଭାଗ—The Local
लोकल गवर्नमेंट Government of a Province of British India. [ ଦ୍ର—ପ୍ରତ୍ୟେକ ଭାରତୀୟ ପ୍ରଦେଶର ଶାସନ ପାଇଁ ଜଣେ ରାଜପ୍ରତିନିଧି ଅଛନ୍ତି । ତାଙ୍କର ବିଶିଷ୍ଟ ଉପାଧି ଅଛି । ଯଥା— ଗଭର୍ଣ୍ଣର୍ ବା ଲାଟ୍ ( Governor ). ଏହାଙ୍କୁ ଶାସନ କାର୍ଯ୍ୟରେ ପରାମର୍ଶ ଦେବା ପାଇଁ ସରକାର

ଗୋଟିଏ ଶାସନସଭା (Executive Council) ନିଯୁକ୍ତ କରିଅଛନ୍ତି ଓ ସ୍ୱାୟତ୍ତଶାସନ କାର୍ଯ୍ୟରେ ପରାମର୍ଶ ଦେବା ପାଇଁ ଜଣ କେତେ ସାଧାରଣ ନିର୍ବାଚିତ ମନ୍ତ୍ରୀ (Ministers) ଅଛନ୍ତି ଓ ପ୍ରଦେଶର ଆଇନ୍ ପ୍ରଣୟନ କାର୍ଯ୍ୟରେ ପରାମର୍ଶ ଦେବା ପାଇଁ ବ୍ୟବସ୍ଥାପକ ସଭା ଅଛି । ]

**ଲୋକାଲ୍ ଟାଇମ୍**—ବୈଦେ. ବି (ଇଂ)—କୌଣସି ସ୍ଥାନରେ ସୂର୍ଯ୍ୟୋଦୟ
Lokāl ṭāim ଓ ସୂର୍ଯ୍ୟାସ୍ତଦ୍ୱାରା ନିର୍ଣ୍ଣିତ ସମୟ—Local time
লোক্যাল টাইম ( as opposed to standard time ).
लोकल टाइम [ ଦ୍ର—ଭାରତବର୍ଷର ସବୁ ରେଲଷ୍ଟେସନମାନଙ୍କରେ ଏକ ନିର୍ଦ୍ଧାରିତ ଟାଇମ୍ ଅନୁସାରେ ସମୟ ଗଣା ହୁଏ । କଟକରେ ମଧ୍ୟ ଷ୍ଟାଣ୍ଡାର୍ଡ଼ ଟାଇମ୍ ଅନୁସାରେ ସବୁ କାର୍ଯ୍ୟାଳୟମାନ ପରିଚାଳିତ ହୁଏ । ରେଲ ପ୍ରଚଳିତ ଷ୍ଟାଣ୍ଡାର୍ଡ଼ ଟାଇମ୍ କଲିକତାର ଲୋକାଲ୍ ଟାଇମ୍ ଅପେକ୍ଷା ୨୪ ମିନିଟ୍ ସ୍ଲୋ ବା ବିଲମ୍ବ ବା ପଛ । ଅର୍ଥାତ, କଲିକତାର ଲୋକାଲ୍ ଟାଇମ୍ ସକାଳ ୭ଟା ବେଳେ ଷ୍ଟାଣ୍ଡାର୍ଡ଼ ଟାଇମ୍ ୬ଟା ବାଜି ୨୪ ମିନିଟ୍ । ଷ୍ଟାଣ୍ଡାର୍ଡ଼ ଟାଇମ୍ ମାନ୍ଦ୍ରାଜର ଲୋକାଲ୍ ଟାଇମ୍ ଅପେକ୍ଷା ୯ ମିନିଟ୍ ଫାଷ୍ଟ୍ ବା ଆଗ, ଦିଲ୍ଲୀର ଲୋକାଲ ଟାଇମ ଅପେକ୍ଷା ୨୨ ମିନିଟ୍ ଆଗ, ବମ୍ବେ ଟାଇମ ଅପେକ୍ଷା ୩ ମିନିଟ୍ ଆଗ ଓ ବିଲାତର ଗ୍ରୀନ୍‌ଉଇଚ୍ ଲୋକାଲ୍ ଟାଇମ୍ ଅପେକ୍ଷା ୫½ ଘଣ୍ଟା ପଛ—ରେଲୱେ ଟାଇମ୍ ଟେବଲ୍ । ]

**ଲୋକାଲ୍ ଟ୍ରେନ୍**—ବୈଦେ. ବି (ଇଂ) (ରେଲୱେ ଶବ୍ଦ)—କୌଣସି
Lokāl ṭren ମଝି ଷ୍ଟେସନରୁ ଅନ୍ୟ କୌଣସି ଷ୍ଟେସନକୁ
লোক্যাল ট্রেন लोकल ट्रेन ଯିବା ଆସିବା କରୁଥିବା ରେଲ ଗାଡ଼ି—Local train of any Railway.

**ଲୋକାଲ୍ ବୋର୍ଡ୍(ର୍ଡ୍)**—ବୈଦେ. ବି (ଇଂ)—ଦେଶର ଜନସାଧାରଣଙ୍କ
Lokāl borḍ(rd) ଦ୍ୱାରା ସ୍ୱାୟତ୍ତଶାସନ ପଦ୍ଧତି ଅନୁସାରେ
লোক্যালবোর্ড लोकलबोर्ड ଇଂରାଜ ଗଭର୍ଣ୍ଣମେଣ୍ଟଙ୍କଦ୍ୱାରା ଗଠିତ କୌଣସି ସବ୍‌ଡିଭିଜନର ମଫସଲର ସ୍ଥାନୀୟ ପ୍ରତିନିଧିମାନଙ୍କଦ୍ୱାରା ଗଠିତ ସମିତି—Local Boards formed by the selected representatives of the inhabitants of a Subdivision, known in Madras as Taluqua Boards. [ଦ୍ର—ମାନ୍ଦ୍ରାଜ ଆଦି ଅଞ୍ଚଳରେ ଏହି ସମିତିମାନଙ୍କ ନାମ ତାଲୁକା ବୋର୍ଡ଼ । ଏହି ବୋର୍ଡ଼୍‌ମାନ ଡିଷ୍ଟ୍ରିକ୍ଟବୋର୍ଡ଼ ବା ଜିଲ୍ଲା ବୋର୍ଡ଼ର ଅଧୀନ । ଗୋଟିଏ ଜିଲ୍ଲାରେ ଯେତେଗୋଟି ସବ୍‌ଡିଭିଜନ୍ ବା ମହକୁମା ଥାଏ, ସେହି ଜିଲ୍ଲାବୋର୍ଡ଼ ଅଧୀନ ସେତେଗୋଟି ଲୋକାଲବୋର୍ଡ଼ ଥାଏ । ଏହି ବୋର୍ଡ଼ମାନ ଜିଲ୍ଲାବୋର୍ଡ଼ର ତତ୍ତ୍ୱାଧୀନତାରେ ଆପଣାର ଇଲାକା ମଧ୍ୟସ୍ଥ କଚ୍ଚା ରାସ୍ତା, ଗ୍ରାମ୍ୟ ରାସ୍ତା, ନଈ ଘାଟ, କାଇନ୍‌ହାଉସ୍ ଓ ପ୍ରାଥମିକ ବିଦ୍ୟାଳୟମାନଙ୍କ ତଦାରଖ କରନ୍ତି । ପୂର୍ବେ ଗଭର୍ଣ୍ଣମେଣ୍ଟ ଏ ବୋର୍ଡ଼ର ମେମ୍ବର ବା ସଭ୍ୟମାନଙ୍କ ନିଯୁକ୍ତ କରୁଥିଲେ । ବର୍ତ୍ତମାନ ସବଡିଭିଜନର ଭିନ୍ନ ଭିନ୍ନ ଥାନାର କରଦାତାମାନେ ଆପଣାର ପ୍ରତିନିଧିସ୍ୱରୂପ ଜଣେ ବ୍ୟକ୍ତିଙ୍କୁ ଲୋକାଲ୍ ବୋର୍ଡ଼ର ସଭ୍ୟ ନିର୍ବାଚିତ କରି ୩ ବର୍ଷ ଲେଖାଏଁ ପାଇଁ ପଠାନ୍ତି । ଏପରି ସବୁ ଥାନାରୁ ଜଣେ ଜଣେ ମେମ୍ବର ଯାଇ ଲୋକାଲବୋର୍ଡ଼ ଗଠନ କରନ୍ତି । ଏହି ମେମ୍ବରମାନେ ଆପଣା ମଧ୍ୟରୁ ଜଣଙ୍କୁ ସଭାପତି (ଚେଆର୍‌ମାନ୍) ଓ ସହକାରୀ ସଭାପତି (ଭାଇସ୍‌ଚେଆର୍‌ମାନ୍) ନିର୍ବାଚିତ କରନ୍ତି । ସଭାପତି ଓ ସହକାରୀ ସଭାପତି ମାସକୁ ମାସ ସବୁ ମେମ୍ବରମାନଙ୍କୁ ଆହ୍ୱାନକରି ଗୋଟିଏ ଗୋଟିଏ ମିଟିଙ୍ଗ୍ କରନ୍ତି ଓ ଅଧିକାଂଶ ମେମ୍ବରଙ୍କ ମତ ଅନୁସାରେ ବୋର୍ଡ଼ର କାର୍ଯ୍ୟମାନ ଚଳାନ୍ତି । ଜିଲ୍ଲା ଓ ସବଡିଭିଜନର ମଫସଲ ପାଇଁ ଯଥାକ୍ରମେ ଡିଷ୍ଟ୍ରିକ୍ଟବୋର୍ଡ଼ ଓ ଲୋକାଲବୋର୍ଡ଼ ଗଠିତ ହୋଇଅଛି । ବଡ଼ ବଡ଼ ସହରକୁ ପରିଷ୍କାର ରଖିବାପାଇଁ ସହରବାସୀଙ୍କ ନିର୍ବାଚିତ କମିସନର୍ ବା ସଭ୍ୟମାନଙ୍କଦ୍ୱାରା ଗଠିତ ମିଉନିସିପାଲିଟି ପ୍ରତିଷ୍ଠିତ ହୋଇଅଛି ଓ ମଫସଲର ବଡ଼ ବଡ଼ ଗ୍ରାମ ପରିଷ୍କୃତ ରଖିବାପାଇଁ ଜିଲ୍ଲାବୋର୍ଡ଼ଙ୍କ ଅଧୀନତାରେ ଗ୍ରାମବାସୀମାନଙ୍କ ପ୍ରତିନିଧିମାନଙ୍କଦ୍ୱାରା ଇଉନିଅନ୍ କମିଟି ଓ ଇଉନିଅନ ବୋର୍ଡ଼ମାନ ଗଠିତ ହୁଏ । ]

**ଲୋକାଲ୍‌ବୋର୍ଡ଼୍ ଚେଆର୍‌ମା(ମ୍ୟା)ନ୍**—ବୈଦେ. ବି (ଇଂ)—ଲୋକାଲ୍
Lokāl borḍ cheār-ma(myā)n ବୋର୍ଡ଼ ମେମ୍ବରମାନଙ୍କ
লোকাল বোর্ডচেআরম্যান लोकलबोर्डचेअरमेन ଦ୍ୱାରା ନିର୍ବାଚିତ ସଭାପତି—Chairman of a Local Board.

**ଲୋକାଲ୍ ବୋର୍ଡ଼୍ ଭାଇସ୍‌ଚେଆର୍‌ମା(ମ୍ୟା)ନ୍**—ବୈଦେ ବି (ଇଂ)—
Lokāl borḍ bhāis-cheār-mā(myā)n ଲୋକାଲ୍
লোকালবোর্ডভাইসচেআরম্যান ବୋର୍ଡ଼ର ମେମ୍ବରମାନଙ୍କ ଦ୍ୱାରା
लोकलबोर्डभाइसचेअरमेन ନିର୍ବାଚିତ ସହକାରୀ ସଭାପତି (ଏ ସଭାପତିଙ୍କ ଅନୁପସ୍ଥିତିରେ ବା ତାଙ୍କ ଅନୁମତିକ୍ରମେ ବୋର୍ଡ଼ର କାର୍ଯ୍ୟ ଚଳାନ୍ତି)—Vice-chairman of a Local Board.

**ଲୋକାଲ୍ ବୋର୍ଡ଼୍ ମିଟିଙ୍ଗ୍**—ବୈଦେ. ବି (ଇଂ)—ସାଧାରଣତଃ ମାସକେ
Lokāl borḍ miṭing ଥରେ ବୋର୍ଡ଼ର କାର୍ଯ୍ୟ ପରିଚାଳନ
(ଲୋକାଲବୋର୍ଡ଼ ସଭା—ଦେ. ରୂପ) ଓ ସଭାପତିଙ୍କୁ ପରାମର୍ଶ
লোকালবোর্ডমিটিঙ্গ लोकलबोर्डमिटिंग ଦେବାପାଇଁ ଆହୂତ ଲୋକାଲ୍‌ବୋର୍ଡ଼୍ ମେମ୍ବରମାନଙ୍କ ସମ୍ମେଳନ ବା ଅଧିବେଶନ—A meeting of a Local Board. [ଦ୍ର—ମାସିକ ସାଧାରଣ ମିଟିଙ୍ଗକୁ ଇଂରାଜୀ ଶବ୍ଦ ପ୍ରୟୋଗପୂର୍ବକ ଅର୍ଡ଼ିନେରି ମିଟିଙ୍ଗ ( ordinary meeting) ଏବଂ ବିଶେଷ କାର୍ଯ୍ୟ ଉପଲକ୍ଷରେ ଆହୂତ ମିଟିଙ୍ଗ୍‌କୁ ସ୍ପେସଲ ( special ) ଓ ପ୍ରତି ବର୍ଷ ମିଟିଙ୍ଗ୍ ଆୟ ବ୍ୟୟର ଅଟକଳ ଫର୍ଦ୍ଦ ( Budget ) ଆଲୋଚନା କରିବା ପାଇଁ ଆହୂତ ଅଧିବେଶନକୁ ବଜେଟ୍ (Budget) ମିଟିଙ୍ଗ୍ ବୋଲାଯାଏ । ]

ଲୋକାଲ୍ ବୋର୍ଡ଼୍ ମେମ୍ବର୍—ବୈଦେ॰ ବି ( ଇଂ. )—ସବ୍‌ଡିଭିଜନ୍‌ରେ
Lokāl bord membar ପ୍ରତ୍ୟେକ ଥାନାର ଭୋଟର୍
লোক্যাল বোড় মেম্বর ମାନଙ୍କଦ୍ୱାରା ନିର୍ବାଚିତ ପ୍ରତିନିଧି—
लोकल बोर्ड मैंबर Member of the Local
[ଲୋକାଲ ବୋର୍ଡ ସଭ୍ୟ —ଦେ॰ ରୂପ] Board elected by the voters of every police station.

ଲୋକାଲ୍ ବୋର୍ଡ୍ ରୋଡ୍—ବୈଦେ॰ ବି (ଇଂ) —ଯେଉଁ କଚ୍ଚା ରାସ୍ତା ଓ
Lokāl bord rod ଗ୍ରାମ୍ୟ ରାସ୍ତାମାନ ଲୋକାଲ୍ ବୋର୍ଡ଼୍
লোক্যাল বোড় বোড ପ୍ରସ୍ତୁତ କରନ୍ତି ଓ ମରାମତ କରନ୍ତି—
लोकल बोर्ड रोड Village roads maintained
[ଲୋକାଲ ବୋର୍ଡ ରାସ୍ତା —ଅନ୍ୟରୂପ] by the Local Boards.

ଲୋକାଲ୍ ସେଲ୍ଫ୍ ଗଭର୍ଣ୍ଣମେଣ୍ଟ୍—ବୈଦେ॰ ବି ( ଇଂ. )—ଇଂରାଜ
Lokāl selph gabharṇṇamenṭ ସରକାରଙ୍କ ତତ୍ତ୍ୱାବଧାନରେ
লোক্যাল সেল্ফ গবর্ণমেণ্ট ଓ ପ୍ରଣୀତ ବିଧି ଅନୁସାରେ ଦେଶର
लोकल सेल्फ गभर्नमेण्ट ଲୋକେ ଆପଣାର ନିର୍ବାଚିତ ପ୍ରତିନିଧି-
ମାନଙ୍କଦ୍ୱାରା ଦେଶର କେତେଗୁଡ଼ିଏ ସାଧାରଣ ହିତକର କାର୍ଯ୍ୟ ( ଯଥା—ପ୍ରାଥମିକ ବିଦ୍ୟାଶିକ୍ଷା, ଦେଶବାସୀଙ୍କ ସ୍ୱାସ୍ଥ୍ୟ, ରାସ୍ତା, ନଈ, ଘାଟ ) ଚଳାଇବାର ଯେଉଁ ପଦ୍ଧତି ଓ ଅଧିକାରକୁ ଇଂରେଜ ଗଭର୍ଣ୍ଣମେଣ୍ଟ ଜନସାଧାରଣଙ୍କୁ ଦେଇଅଛନ୍ତି—Local self-Government. [ଦ୍ର—ଇଂରାଜ ଗଭର୍ଣ୍ଣମେଣ୍ଟ ଭୂରାଜସ୍ୱ ଛଡ଼ା ଦେଶର ପଥକର (ରୋଡ୍ ସେସ୍ ) ଆଦାୟ କରି ତାହା ଏବଂ ଭୂରାଜସ୍ୱରୁ ସରକାରଙ୍କ ଇଚ୍ଛାମତେ କେତେକ ଟଙ୍କା ମଫସଲର ରାସ୍ତା, ପ୍ରାଥମିକ ଶିକ୍ଷା ଓ ସ୍ୱାସ୍ଥ୍ୟ ରକ୍ଷା ପାଇଁ ଜିଲ୍ଲା ବୋର୍ଡ୍‌ଙ୍କ ଜିମା ଦିଅନ୍ତି । ଜିଲ୍ଲା ବୋର୍ଡ଼୍ ମଫସଲର କେତେଗୁଡ଼ିଏ କାମ ନିଜେ ବୁଝନ୍ତି ଓ କେତେଗୁଡ଼ିଏ କାର୍ଯ୍ୟର ଭାର ଲୋକାଲ୍ ବୋର୍ଡ଼୍ ଏବଂ ମଫସଲର ଇଉନିଅନ କମିଟିଙ୍କ ବା ଇଉନିୟନ୍ ବୋର୍ଡ୍‌ଙ୍କ ଉପରେ ଦିଅନ୍ତି । ବଡ଼ ବଡ଼ ସହରର ପ୍ରାଥମିକ ଶିକ୍ଷା, ସ୍ୱାସ୍ଥ୍ୟ ଓ ରାସ୍ତା ଓ ପାଇଖାନାସଫା କାର୍ଯ୍ୟ ପାଇଁ ସହର-ବାସୀଙ୍କ ଉପରେ ଟାକସ୍ ବସାଇ ସେହି ଟାକସ୍ ବ୍ୟୟ କରିବା ପାଇଁ ସହରବାସିମାନଙ୍କ ପ୍ରତିନିଧି ( କମିଶନର୍ ) ମାନଙ୍କଦ୍ୱାରା ଗଠିତ ନାଗରିକ ସଭା (ମ୍ୟୁନିସିପାଲିଟି) ମଧ୍ୟ ସରକାର ଗଠିତ କରିଅଛନ୍ତି । ଏହି ଡିଷ୍ଟ୍ରିକ୍ଟ ବୋର୍ଡ଼୍ ଓ ମିଉନିସିପାଲିଟିମାନଙ୍କଦ୍ୱାରା ଦେଶର ପଯୁକ୍ତ ଉିବଷୟ-ମାନ ବୁଝିବା ରୀତିକୁ ସ୍ଥାନୀୟ ସ୍ୱାୟତ୍ତଶାସନ ( ଲୋକାଲ୍ ସେଲ୍ଫ୍ ଗଭର୍ଣ୍ଣମେଣ୍ଟ୍ ) ବୋଲାଯାଏ । ଏ ଅନୁଷ୍ଠାନ ପାଇଁ ପ୍ରତିନିଧିମାନେ କିପରି ନିର୍ବାଚିତ ହେବେ, କେତେକାଳ ପାଇଁ କାର୍ଯ୍ୟ କରିବେ, ଉକ୍ତ ସଭାମାନ କି କି କାର୍ଯ୍ୟ କି କି ନିୟମରେ ଚଳାଇବେ, ଏ ବିଷୟମାନଙ୍କ ପାଇଁ ଇଂରାଜୀ ସରକାର ଆଇନ୍ ପ୍ରଣୟନ କରିଅଛନ୍ତି । ]

ଲୋକାଲ୍ ସେଲ୍ଫ୍ ଗଭର୍ଣ୍ଣମେଣ୍ଟ ଆଇନ୍—ବୈଦେ॰ ବି(ଇଂ.)—ସରକାରଙ୍କ
Lokāl selph gabharṇṇamenṭ āin ଦ୍ୱାରା ବିଧିବଦ୍ଧ
লোক্যাল সেল্ফ গবর্ণমেণ্ট আইন ଯେଉଁ ଆଇନଦ୍ୱାରା ସହର ଓ
लोकल सेल्फ गभर्नमेण्ट आइन ମଫସଲବାସୀ ଜନସାଧାରଣଙ୍କ
[ଲୋକାଲ୍ ସେଲ୍ଫ୍ ଗଭର୍ଣ୍ଣମେଣ୍ଟ ଆକ୍ଟ୍—ଅନ୍ୟରୂପ] ପ୍ରତିନିଧିମାନେ କେତେକ ନିର୍ଦ୍ଦିଷ୍ଟ ବିଷୟ ବୁଝାସୁଝା କରନ୍ତି—Local self-Government Act. [ ଦ୍ର—ପୂର୍ବେ ଏ ସବୁ କାର୍ଯ୍ୟ ଗଭର୍ଣ୍ଣମେଣ୍ଟ ନିଜ କର୍ମଚାରୀଙ୍କଦ୍ୱାରା ଚଳାଉଥିଲେ । ଭାରତବର୍ଷରେ ଲୋକବତ୍ସଳ ବଡ଼ଲାଟ ଲର୍ଡ଼ ରିପନ୍ ( ଖ୍ରୀ॰ ୧୮୮୦-୮୪) ପ୍ରଥମେ ଦେଶବାସୀଙ୍କୁ ଏମାନ ଚଳାଇବାର ଭାର ଅର୍ପଣ କରିବା ପାଇଁ ଆଇନ୍ ପ୍ରଣୟନ କଲେ । ଏହି ସମୟରୁ ଏହି ଆଇନ କ୍ରମଶଃ ସଂଶୋଧିତ, ପରିବର୍ତ୍ତିତ, ପରିବର୍ଦ୍ଧିତ, ସଂସ୍କୃତ ଓ ବିକୃତ ହୋଇ ତଦ୍ଦ୍ୱାରା ଦେଶର ମଫସଲର ଡିଷ୍ଟ୍ରିକ୍ଟ ବୋର୍ଡ଼୍ ଓ ସହରର ମିଉନିସିପାଲିଟି-ମାନ ପରିଚାଳିତ ହେଉ ବା ବାଟେ କାମମାନ ଶିଖିବା ବିଷୟରେ ଶିକ୍ଷାଦୀକ୍ଷା ଦେଉଅଛନ୍ତି ମାତ୍ର । ]

ଲୋକାଳୟ—ସଂ॰ ବି ( ୬ଷ୍ଠୀ ତତ୍ )—୧ । ଲୋକମାନଙ୍କର ବାସସ୍ଥାନ
Lokālaya ବା ବସତି—1. Human residence । ୨ । ଜନପଦ; ଗ୍ରାମ—2. Village. ୩ । ସହର—3. A town.

ଲୋକାଲୋକ—ସଂ. ବି ( ୬ଷ୍ଠୀ ତତ୍ ) ( ଲୋକ ଧାତୁ=ଦେଖିବା+
Lokāloka ଭାବ. ଅ=ଲୋକ=ଦେଖାଯିବା+ଅଲୋକ=ଅଦର୍ଶନ=ଦେଖା ନ ଯିବା; ସୂର୍ଯ୍ୟକିରଣ ପଡ଼ିବା ଯୋଗୁ ଯାହାର ଏକପାର୍ଶ୍ୱ ଦେଖାଯାଏ ଓ ସୂର୍ଯ୍ୟକିରଣ ନ ପଡ଼ିବା ଯୋଗୁ ଯାହାର ଅପର ପାର୍ଶ୍ୱ ଦେଖାଯାଏ ନାହିଁ )—୧ ସୂର୍ଯ୍ୟକିରଣଦ୍ୱାରା ଏକ ଦିଗ ଆଲୋକିତ ଓ ସୂର୍ଯ୍ୟକିରଣ ନ ପଡ଼ିବାରୁ ଅନ୍ୟ ଦିଗ ଅନ୍ଧକାରାଚ୍ଛନ୍ନ ବ୍ରହ୍ମାଣ୍ଡବେଷ୍ଟନକାରୀ ହିନ୍ଦୁ ପୁରାଣୋକ୍ତ ପର୍ବତମାଳା—1. A mythological chain of mountains which surrounds the universe and the inner face of which is lighted by sunshine and the outer face is dark for not getting the rays of the sun. [ ଦ୍ର—ଏ ପର୍ବତ ସପ୍ତଦ୍ୱୀପା ପୃଥିବୀକୁ ବେଷ୍ଟନ କରିଥିବା ଓ ସପ୍ତସମୁଦ୍ରର ଶେଷ ସୀମାର ଚାରିପାଖରେ ଘେରି ରହିଥିବା କଥା ପୁରାଣରେ ବର୍ଣ୍ଣିତ ହୋଇଅଛି । ଏ ପର୍ବତମାଳାର ଉପତ୍ୟକା ଦେବତାମାନଙ୍କର କ୍ରୀଡ଼ାସ୍ଥଳ । ବୃତ୍ରାସୁରକୁ ବଧ କରି ଇନ୍ଦ୍ର ବ୍ରହ୍ମହତ୍ୟା ପାତକଗ୍ରସ୍ତ ହୋଇ ଏହି ପର୍ବତ ଅତିକ୍ରମ ପୂର୍ବକ ଅନ୍ଧକାର-ମୟ ପ୍ରଦେଶକୁ ପଳାୟନ କରିଥିଲେ । ] ୨ । (କୌଣସି ଗ୍ରନ୍ଥ ମତ ) ଚକ୍ରବାଳ—2. Horizon.

ଲୋ କାଷ୍ଟ୍—ବୈଦେ. ବି ( ଇଂ. )—ହିନ୍ଦୁ ସମାଜର ଅନ୍ତ୍ୟଜ ଶ୍ରେଣୀ;
Lo kāsht ନୀଚ ଜାତି; ହିନ୍ଦୁମାନଙ୍କ ମଧ୍ୟରେ ନୀଚ ଶ୍ରେଣୀ ବା ନୀଚ ଜାତି, ଅସ୍ପୃଶ୍ୟ ଜାତିମାନ ( ଯଥା—ବାଉରି, କଣ୍ଡରା,

ଶାସ୍ତ୍ରୀ, ଡମ, ପାଣ, ହାଡ଼ି ଇତ୍ୟାଦ)—The depressed classes and the untouchable castes; the low castes amongst the Hindus. ( ଦ୍ର— ଦାକ୍ଷିଣାତ୍ୟରେ ଏମାନଙ୍କୁ ପଞ୍ଚମା ବୋଲାଯାଏ । )

ଲୋ କଷ୍ଟ ସ୍କୁଲ—ବୈଦେ. ବି( ଇଂ.)—ଅନ୍ତ୍ୟଜ ଜାତୀୟ ବାଳକମାନଙ୍କ
Lo kāsht skul ପଢ଼ିବା ପାଇଁ ସରକାରଙ୍କ ସ୍ଥାପିତ ବା
ଅନ୍ତ୍ୟଜ ଇସ୍କୁଲ **दलित स्कूल** ସାହାଯ୍ୟପ୍ରାପ୍ତ ପ୍ରାଥମିକ ବିଦ୍ୟାଳୟ—
ଲୋ କାଷ୍ଟ ବିଦ୍ୟାଳୟ } ଅନ୍ୟରୂପ ( Primary) Low caste
ଲୋ କାଷ୍ଟ ଇସ୍କୁଲ } schools established or aided by the Government or District Board etc for imparting elementary education to the depressed class boys amongst the Hindus.

ଲୋକି—ଦେ. ବି (ଆଦରାର୍ଥକ)—ଲୋକନାଥର ଡାକ ନାମ—
Loki Abbreviation for Lokanātha.
লোকী **लोकन**
(ଲୋକକ, ଲୋକା[କେ]ଇ, ଲୋକକ, ଲୋକୁ—ଅନ୍ୟରୂପ)
(ଲୋକା, ଲୋକିଆ, ଲୋକୁଆ—ଅନାଦରାର୍ଥକ ରୂପ)

ଲୋକିତ—ସଂ. ବିଣ (ଲୋକ୍ ଧାତୁ + କର୍ମ. ତ)—ଦୃଷ୍ଟ—Seen.
Lokita [ଦ୍ର— ଜାଲିବାଟେ ବି ଯାସି ଲୋକିତ । ଅଭୂମନ୍ୟୁ. ବିଦଗ୍ଧଚିନ୍ତାମଣି ।]

ଲୋକିତ କରିବା—ଦେ. (ପଦ୍ୟ) କ୍ରି ( ସଂ. ଲୋକ୍ ଧାତୁ )—
Lokita kariba ଦେଖିବା; ଗୃହିବା—To see; to look
লোকিত করা at. [ଦ୍ର—ଯୁକତ ତନୁକୁ ଲୋକିତ କରି ଦ୍ୱିଜାଯ୍ୟା
**लोकित करना** ବୋଲେ । ଭକ୍ତ. କୋଟବ୍ରହ୍ମାଣ୍ଡ ସୁନ୍ଦରୀ]

ଲୋକିବା—ଦେ. (ପଦ୍ୟ) କ୍ରି—ଦେଖିବା—To see. [ ଦ୍ର—ବିଦ୍ୟ
Lokibā ଲୋକରେ ପ୍ରିୟକ ମାଧବୀ ହସାଇ । ଭକ୍ତ. ବୈଦେହୀଶ-
দেখা **निगाह करना** ବିଳାସ ।]

ଲୋକେ—ଦେ. ବି (ବହୁବଚନ)—(ସଂ. ଲୋକ ଶବ୍ଦର ପ୍ରଥମାବିଭକ୍ତି
Loke ବହୁବଚନ ଲୋକାଃ; ୭ମୀ ବିଭକ୍ତି ଏକବଚନ ଲୋକେ)—
লোকেরা ୧ । ମନୁଷ୍ୟମାନେ; ଲୋକମାନେ—1. Men. ୨ ।
**सब लोग** ହସାରର ଲୋକେ; ସର୍ବସାଧାରଣ—2. The general public. ୩ । କେତେକ ବ୍ୟକ୍ତି—3. Some people. ୪ । ଲୋକ ସମାଜ—4. The society, [ଦ୍ର—ଲୋକେ କହନ୍ତି ମୁଁ ବାୟା, କନ୍ତୁ ମୁଁ ଜାଣେ ମୁଁ ବାୟା ନୁହେଁ । ଲୋକେ ମୋ ନାଆଁରେ କେତେ କଥା ରଚନା କରୁଅଛନ୍ତି । ଭୁ ଶେଷରେ ଭାଷା ହଟହଟା ହେବୁ ଲୋକେ ଦେଖିବେ । ମାଇପେ ଗାଳ ଦିଅନ୍ତି 'ତୋ ଠେଇଁ ପୋକର ପଡ଼ୁ, ଲୋକେର ଦେଖନ୍ତୁ ।']

ଲୋକେଇ—ଦେ. ବି—୧ । ଲୋକନାଥର ଡାକ ନାମ—
Lokei 1. Name for calling Lokanātha.
লোকু **लोकन** ୨ । ଲୋକମାନେହିଁ—2. The people.

ଲୋକେଇକ(ତ)—ଦେ. ବିଣ (ସଂ. ଲୌକିକ)—ଲୋକାଇତ (ଦେଖ)
Lokeika(ta) Lokāita. (See)
লৌকিক **लौकिक**

ଲୋକେ ଜାଣିବାକୁ—ଦେ. କ୍ରି. ବିଣ—ଜନ ସାଧାରଣଙ୍କ ଦୃଷ୍ଟିରେ;
Loke jānibāku ବାହ୍ୟ ଭାବରେ ଦେଖିବାରେ—To all
লোকে জানতে **लोगों के जानते** outward appearances.

ଲୋକେଶ—ସଂ. ବି. (୬ଷ୍ଠୀ ତତ୍, ଲୋକ+ଈଶ)—୧ । ଲୋକପାଳ;
Lokeśa ରାଜା—1. A king. ୨ । ବ୍ରହ୍ମା—2. God Brahmā, the Creator. ୩ । ଜଗଦୀଶ୍ୱର—3. God, the Lord of the universe. ୪ । ବୁଦ୍ଧଦେବ—4. The Buddha. ୫ । ପାରଦ—5. Mercury.

ଲୋକେଶ୍ୱର—ସଂ. ବି (୬ଷ୍ଠୀ ତତ୍)—୧ । ଜଗଦୀଶ୍ୱର—1. God.
Lokeśwara ୨ । ବ୍ରହ୍ମା—2. God Brahmā. ୩।ରାଜା—3. A king.

ଲୋକୈଷଣା—ସଂ. ବି—୧ ।ସାଂସାରିକ ଅଭ୍ୟୁଦୟର କାମନା (ହ୍ର.ଶ)—
Lokaishanā 1. Desire for worldly prosperity. ୨ । ପ୍ରତିଷ୍ଠାର ବା ଯଶର କାମନା (ହ୍ର. ଶ)—2. Desire for attaining celebrity. ୩ । ସ୍ୱର୍ଗଲାଭ ବା ସ୍ୱର୍ଗ ସୁଖ ପା କାମନା (ହ୍ର. ଶ)—3. Desire for heaven or heavenly bliss. (Apte).

ଲୋକୋ—ବୈଦେ. ବି (ଇଂ) (ରେଲ ଶବ୍ଦ)—ରେଲ୍ ଇଲାକାର
Loko ରେଲ୍‌ଗାଡ଼ି ସମ୍ବନ୍ଧୀୟ ବିଭାଗ—Loco (Department
লোকো **लोको** of the Railway) [ଦ୍ର—ଏହି 'ଲୋକୋ'
(ଲୋକୋ ଡିପାର୍ଟମେଣ୍ଟ—ଅନ୍ୟରୂପ) ଶବ୍ଦ ଇଂରାଜୀ ଲୋକୋମୋଟିଭ୍ ଶବ୍ଦର ସଂକ୍ଷିପ୍ତ ଆକାର । ରେଲକମ୍ପାନୀ ରେଲ ଚଳାଇବା ସମ୍ବନ୍ଧରେ କେତେଗୁଡ଼ିଏ ସ୍ୱତନ୍ତ୍ର ବିଭାଗ ସୃଷ୍ଟି କରି ଭିନ୍ନ ଭିନ୍ନ ବିଭାଗ ମଧ୍ୟରେ ଭିନ୍ନ ଭିନ୍ନ କାର୍ଯ୍ୟ ବଣ୍ଟନ (Division of labour) କରିଅଛନ୍ତି । ତହିଁ ମଧ୍ୟରୁ ଲୋକୋ (Loco) ଗୋଟିଏ ବିଭାଗ; ଏ ବିଭାଗର କାର୍ଯ୍ୟ ରେଲଗାଡ଼ି ବା ଡବ୍ବା ଓ ଇଞ୍ଜିନ୍‌ମାନଙ୍କ ରକ୍ଷଣାବେକ୍ଷଣ,ମରାମତି ଆଦି । ଏହିପରି ଯାତ୍ରୀ ଓ ମାଲପତ୍ର ବୋହିବା ବିଭାଗ, ଟ୍ରାଫିକ୍ ବିଭାଗ, ପୋଲ ସଡ଼କ ଇତ୍ୟାଦି ଇଞ୍ଜିନିୟରଙ୍କ ବିଭାଗ ଯ ହିମାନଙ୍କୁ ଖାଦ୍ୟ ଯୋଗାଇବା ବା କାଟରିଙ୍ଗ ବିଭାଗ, ଜନପଦ ଜଗିବା ବା ୱାର୍ ଆଣ୍ଡ ୱାର୍ଡ ବିଭାଗ, ରେଲ୍ ପୁଲିସ୍ ବିଭାଗ, ଏହିପରି ଅନେକ ବିଭାଗ ରହିଅଛି । ଏହି ଲୋକୋ ବିଭାଗସମ୍ବନ୍ଧୀୟ ଅନେକଗୁଡ଼ିଏ ଲୋକୋ ଶବ୍ଦଯୁକ୍ତ ବିଦେଶୀ ଶବ୍ଦ ଭାଷାରେ ଚଳଗଲାଣି । ଯଥା—Loco workshop=ଲୋକୋ ବିଭାଗର କାରଖାନା; Loco fireman=ଲୋକୋ ବିଭାଗୀୟ ଇଞ୍ଜିନ-ମାନଙ୍କରେ କୋଇଲା ଦେବା ଲୋକ; =ଲୋକୋ ବିଭାଗ ପାଇ ଦରକାରି କୋଇଲା;

Loco Department = ଲୋକୋ କାର୍ଯ୍ୟବିଭାଗ;
Loco Engineer = ଲୋକୋ ବିଭାଗର ଇଞ୍ଜିନିଅର;
Loco Superintendent = ଲୋକୋ ବିଭାଗର ଅଧ୍ୟକ୍ଷ;
Loco shed = ଲୋକୋ ବିଭାଗର ଗୃହରେ ଥିବା ରେଳଗାଡ଼ିମାନ ରହିବା ଘର ।

**ଲୋକୋକ୍ତି**—ସଂ. ବି.—(୬ଷ୍ଠୀ ତତ୍)—୧ । ପ୍ରବଚନ (ହି. ଶ)—
Lokokti 1. Proverb; popular saying (Apte), ୨ । ଜନମତ; ଲୋକମତ—2. Public opinion; common talk (Apte). ୩ । କାବ୍ୟାଲଙ୍କାର ବିଶେଷ—A figure of speech. [ ବି—ଏଥିରେ ପ୍ରବଚନମାନ ପ୍ରୟୋଗ ପୂର୍ବକ ରଚନାକୁ ଜନପ୍ରିୟ କରାଯାଏ । ହି. ଶ.];

**ଲୋକୋତ୍ତର**—ସଂ. ବିଣ—(୫ମୀ ତତ୍; ଲୋକରୁ ଉତ୍ତର = ଅତୀତ)—
Lokottara ୧ । ଲୋକ ସାମାନ୍ୟ; ଲୋକାତୀତ; ଅଲୌକିକ; ଅସାଧାରଣ; ଯାହା ସାଧାରଣତଃ ଦେଖ ଯାଏ ନାହିଁ—1. Extra-ordinary; uncommon; unusual; unparallelled. ୨ । ଲୋକମାନଙ୍କ ମଧ୍ୟରେ ଶ୍ରେଷ୍ଠ 2. Excellent amongst men. ସଂ. ବି— ଲୋକମାନଙ୍କ ମଧ୍ୟରେ ଶ୍ରେଷ୍ଠ ବ୍ୟକ୍ତି; ଅସାଧାରଣ ବ୍ୟକ୍ତି— A superman; an extra-ordinary person; a paragon.

**ଲୋକୋଶା(ଶ୍ୟା)ନ(ଣି)**—ବୈଦେ. ବି. ଓ ବିଣ.—ଲୋକସାନ୍ ଇତ୍ୟାଦି
Lokośā(śyā)ni(ṇi) (ଦେଖ)—Lokasān etc (See)

**ଲୋଗ୍**—ପ୍ରାଦେ. (ଖଡ଼ୁଆଳ ଓ ହିନ୍ଦି ଭାଷା) ବି.—(ମୂଳ.ହି. ଲୋଗ୍)—
Log ଲୋକ; ମନୁଷ୍ୟ—Man; person.

**ଲୋଗ**—ସଂ. ବି—୧ । ଲୋଷ୍ଟ୍ର; ମାଟିର ଟେଲା—
Loga 1. A clod of earth; a lump of earth. (Apte). ୨ । କାଦୁଅର ପିଣ୍ଡ—2. A lump of clay (M. W.)

**ଲୋଗେଷ୍ଟକ**—ସଂ. ବି.—(ମ. ପ. ଲୋ; ଲୋଗ + ଇଷ୍ଟକ)—୧ । 
Logeshṭaka କାଦୁଅରେ ତିଆରି ଇଟା—1. Brick made from a lump of clay. ୨ । କଞ୍ଚା ଇଟା— 2. Unbaked brick.

**ଲୋଚ୍** (ଧାତୁ)—ସଂ.—୧ । ସାନ୍ତି ପାଇବା—1. To shine; to
Loch (root) be dazzling. ୨ । ଦେଖିବା—2. To see. ୩ । କହିବା—3. To speak (Apte).

**ଲୋଚ**—ସଂ. ବି.—(ଲୋଚ ଧାତୁ + କର୍ତ୍ତୃ. ଅ)—ଅଶ୍ରୁ; ଲୋତକ—
Locha Tear.

**ଲୋଚକ**—ସଂ. ବି—( ଲୋଚ୍ ଧାତୁ + କର୍ତ୍ତୃ. ଅକ )—୧ । ନୟନମଣି;
Lochaka ଚକ୍ଷୁର ତାରା; ଅକ୍ଷିର ପୁଅ—1. The pupil of the eye. ୨ । ଆଖିରେ ଘେନା ଯିବା କଜ୍ଜଳ—llyrium. ୩ । ମାଂସ ପିଣ୍ଡ—3. A lump of flesh. ୪ । ଶ୍ଳଥ ମାଂସବା ଚର୍ମ—4. Loose flesh; wrinkled skin. ୫ । କଦଳୀ ଗଛ— 5. Plantain tree (M. W.) ୬ । କର୍ମୋକ; ସାପ କାତି—6. The slough or outer skin of a serpent (M. W) ୭ । ଲଲାଟଭୂଷଣ— ମାଙ୍ଗ ଟୀକା; ଅଳକା; ମଥାମଣି—7. An ornament or pendant worn on the forehead. ୮ । କର୍ଣ୍ଣଭୂଷଣ — . Earring. ୯ । ନୀଳ ବସ୍ତ୍ର— 9. Blue cloth. ୧୦ । ଭ୍ରୂଭଙ୍ଗି—10. Frown; contracted eyebrow (M. W.) ୧୧ । ପ୍ରଦୀପ ଶିଖାରୁ ଉତ୍ପନ୍ନ କଳା—11. Lamp black (M. W) ୧୨ । କଳା ପୋଷାକ—12. A black dress (M. W.) ୧୩ । ଧନୁର୍ଗୁଣ—13. Bow-string (M. W.) ସଂ. ବିଣ. ପୁଂ—୧ । ଦୁଗ୍ଧ-
[ଲୋଚକା—ସ୍ତ୍ରୀ] ଖାଦକ— 1. Subsisting on milk (M. W.) ୨ । ନିର୍ବୋଧ (ଯେ ଜଳଜଳ କରି ଚାହିଁ ଥାଏ)—2. Stupid, senseless (M. W.)

**ଲୋଚନ**—ସଂ. ବି.—(ଲୋଚ୍ ଧାତୁ + କରଣ. ଅନ)—୧ । ନୟନ;
Lochana ଚକ୍ଷୁ—1. The eye. ୨ । (+ଭାବ. ଅନ)— ଦର୍ଶନ; ଦେଖିବା—2. Seeing; view; looking. ୩ । (+କର୍ତ୍ତୃ. ଅନ)—ସୂର୍ଯ୍ୟ—3. The sun. ୪ । (+ଭାବ. ଅନ) ଆଲୋଚନା—4. Criticism; discussion. ସଂ. ବିଣ.—ଉଜ୍ଜ୍ୱଳକାରୀ—Illuminating; brightening (M. W),

ଦେ. ବି. ପୁଂ—ଲୋକଙ୍କ ନାମ— A name given to males.

**ଲୋଚନ କୋଣ**—ସଂ. ବି.—(୬ଷ୍ଠୀ ତତ୍)—ଆଖିର କୋଣ ଦେଶ;
Lochana koṇa ଆଖିର ଯେଉଁ ପ୍ରାନ୍ତ ନାକର ମୂଳକୁ ଲାଗିଥାଏ— The corner of the eye,

**ଲୋଚନ ଗୋଚର**—ସଂ. ବିଣ.—(୬ଷ୍ଠୀ ତତ୍)—୧ । ଯାହା ଦୃଷ୍ଟିର
Lochana gochara ସୀମା ମଧ୍ୟରେ ଥାଏ; ଦୃଶ୍ୟ—Being within the range of vision; visible. ସଂ. ବି.—ଦୃଷ୍ଟିର ସୀମା—The range or horizon of the eye (M. W.)

[ଲୋଚନ ପଥ, ଲୋଚନ ମାର୍ଗ—ଅନ୍ୟ ବି. ରୂପ]

**ଲୋଚନ ଜଳ**—ସଂ. ବି.—(୬ଷ୍ଠୀ ତତ୍)—ନୟନ ଜଳ; ଅଶ୍ରୁ—
Lochana jala Tears.

**ଲୋଚନ ପୁର**—ଦେ. ବି. (ନାମ)—ଓଡ଼ିଶା କୂଳକୂଳର ପ୍ରାଚୀନ ବନ୍ଦର
Lochana pura ବିଶେଷ—An ancient port on the Orissa coast.

**ଲୋଚନ ପ୍ରାନ୍ତ**—ସଂ. ବି.— (୬ଷ୍ଠୀ ତତ୍)—ଚକ୍ଷୁର ଶେଷଭାଗ
Lochana prānta ଚକ୍ଷୁର ଯେଉଁ ପ୍ରାନ୍ତ କାନ ଆଡ଼କୁ ଥାଏ—

The end of the eye, the corner of the eye towards the ear.

ଲୋଚନ ରଞ୍ଜନ—ସଂ. ବି.—( ୬ଷ୍ଠୀ ତତ୍ )—ନେତ୍ରପ୍ରୀତିକର; ସୁନ୍ଦର-
Lochana rañjana Graceful; beautiful.

ଲୋଚନ ଲୋଭନ—ସ. ବିଣ ( ୬ଷ୍ଠୀ ତତ୍ )—ଲାଳସାବର୍ଦ୍ଧକ (ବସ୍ତୁ); Lochana lobhana ଯାହାକୁ ଦେଖିଲେ ପୁନଃ ପୁନଃ (ଲୋଚନଲୋଭମାନ୍—ଅନ୍ୟରୂପ) ଦେଖିବାକୁ ମନ କଲେ; ଅତି
ଲୋଚନଲୋଭନା
ଲୋଚନଲୋଭମାନ୍ୟା } —ସ୍ତ୍ରୀଲିଙ୍ଗ ସୁନ୍ଦର (ପଦାର୍ଥ)—Very beautiful or charming; tempting to the eye.

ଲୋଚନହିତା—ସ. ବି (ବହୁବ୍ରୀହି; ଲୋଚନ+ହିତ+ଆ)—ତୁତିଆ—
Lochanahitā Plue vitriol (Apte.)

ଲୋଚନା—ଦେ. ବି—(ଅନାଦରାର୍ଥକ) ଲୋଚନ ନାମକ ବ୍ୟକ୍ତିର ଡାକ-
Lochanā ନାମ— Name for calling Lochana.
(ଲୋଚନ—ଅଦରାର୍ଥକ ଦେ. ରୂପ ) ସଂ ବି—ସମାଲୋଚନା Discussion. ସ. ବିଣ. ସ୍ତ୍ରୀ ( ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ଯଥା ସୁଲୋଚନା) ଲୋଚନଯୁକ୍ତା—Eyed; having eyes (used in a compound) ( ଉ— ସୁଲୋଚନା ସୁଲୋଚନେ ହରିକୁ ଚତ୍ର ସୁମନେ ସୁମନେ ପଦ୍ମ ସୁମନେ ସୁମନହାରେ—ଗୋଲୋକ ଇନ୍ଦୁରେଖା ।)

ଲୋଚନାଞ୍ଚଳ—ସ. ବି (୬ଷ୍ଠୀ ତତ୍) ନେତ୍ରକୋଣ—
Lochanāñchala The corner of the eye.(M.W)

ଲୋଚନାନନ୍ଦ—ସ. ବି (୬ଷ୍ଠୀ ତତ୍)—ନେତ୍ରର ତୃପ୍ତି—
Lochanānanda Delight of the eye. (M. W)
(ଲୋଚନାନନ୍ଦକର—ବିଣ)

ଲୋଚନାଭିରାମ—ସ. ବିଣ. ପୁଂ—ସୁନ୍ଦର—
Lochanābhirāma Beautiful; graceful.
(ଲୋଚନାଭିରାମା—ସ୍ତ୍ରୀ) [ଲୋଚନାଭିରାମତା—ବି]

ଲୋଚନି—ଦେ. ବି—(ଅଦରାର୍ଥକ) ଲୋଚନର ଡାକନାମ—
Lochani Name for calling Lochana.

ଲୋଚମସ୍ତକା—ସ. ବି—ଅଜମୋଦା; ବଣଯୁଆଣି (ଦ୍ରବ୍ୟଗୁଣ)
Lochamastakā Seseli Indicum (plant and seed.)

ଲୋଚମାଲକ—ସ. ବି—ମଧ୍ୟରାତ୍ର ପୂର୍ବରୁ ଦେଖାଯିବା ସ୍ୱପ୍ନ—
Lochamālaka A dream seen before midnight.

ଲୋଚା—ଦେ. ବିଣ (ସ. ଲୋଚ=ଶ୍ଳଥ, ବା ଲୁଞ୍ଚିତ ଚର୍ମ)—୧ । କୁଞ୍ଚିତ-
Lochā 1. Crisp; wrinkled; curled.
କোঁচান ନୋଚା ୨ । ସଙ୍କୁଚିତ—2. Contracted.
নোচ্চা ଲୁଚ୍ଚା ୩ । ଲମ୍ପଟ; ଲମ୍ପଟ—3. Adulterous;
লুকান ଲୁକାୟାହୁଆ lascivous; libidinous.
গুচ্ছের ମହା ୪ । ଲୁଚ; ଲୁଚାଯିବା—4.Concealed;
ক্ষমতাহীন অক্ষম, ଅସମର୍ଥ hidden ୫ । (ଅନାଦରାର୍ଥକ.) ସଂଘ; ସମୂହ—5. A collection. ୬ । ( ସ. ସଙ୍କୁଚିତ) ଅକ୍ଷମ; ଅଶକ୍ତ; ଅସମର୍ଥ—6. Disabled; powerless. (ଉ—ଅର୍ଜୁନଙ୍କର ଅଶ୍ୱଘାତରୁ ବଞ୍ଚାଇ, ନ ପାରି ସେ ଅଙ୍ଗେ ରହିଲେ ଲୋଚା ହୋଇ— କୃଷ୍ଣସିଂହ ମହାଭାରତ. ବନ ।)
୭ । ସ୍ୱଳ୍ପ ସୀମା ମଧ୍ୟରେ ଏକତ୍ରୀକୃତ—7. Gathered together in a small compass. [ ଉ—ସବୁ ଶିଳ ଯାକ ଦେକରେ ଲୋଚା—ଚଗ ।]

ଲୋଚା (ଇତ୍ୟାଦି)—ଦେ. ବିଣ—ଲୋଚା ଇତ୍ୟାଦି (ଦେଖ)
Lochā (etc) Lochohā etc (See)

ଲୋଚା(ଚେ)ଇବା—ଦେ. କ୍ରି—୧ । (ହସ୍ତପଦାଦିକୁ) ସଙ୍କୁଚିତ କରିବା—
Lochā(che)ibā 1. To contract. ୨ । (ସ. ଲୁକ୍
গুটান ନୋଚଵାନା ଧାତୁ ) ଲୁଚାଇବା—2. To
লুকান ଲୁକାନା conceal.

ଲୋଚାଏ(କ)—ଦେ. ବି ଓ ବିଣ—୧ । ଲୁଚାଏ; ଲୁଚାକ (ଦେଖ)—
Lochāe(ka) 1. Luchāe; luchāka (See)
গুচ্ছের ବାହିୟାତ ୨ । ( ଅନାଦରାର୍ଥ ) ବହୁତାଏ—
[ଲୋଚାଏ(କ)—ଅଦରାର୍ଥକ ରୂପ] 2. Many; many a; much. (ଉ—ଭାଷା ଲୋଚାଏ ସେ କହନ୍ତି ନାହିଁ-ପ୍ରାଚୀ ସରଚେଗୀତା ।)

ଲୋଚା ଚୋରା—ଦେ. ବି ଓ ବିଣ—ଲୁଚା ଚୋରା (ଦେଖ)
Lochā chorā Luchā chorā (See)
(ଲୋଚାଛପା, ଲୋଚାଛପା—ଅନ୍ୟରୂପ)

ଲୋଚାଣ(ଣି)—ଦେ. ବି (ସଂ. ସଙ୍କୋଚନ; ଲୁଞ୍ଚନ)—ସଙ୍କୁଚନ—
Lochāṇa(ṇi) Act of contracting or curling.
গুটান ନୋଚନା

ଲୋଚା ଯିବା—ପ୍ରାଦେ.—(ଶଢ଼ଥଲ) କ୍ରି.—ଚେପା ହୋଇଯିବା;
Lochā jibā ଆଘାତ ଲାଗି ଦବି ଯିବା—To be pressed down by a stroke.

ଲୋଚା ଲୋ(ଲୁ)ଚି—ଦେ. ବିଣ ( ସଂ. ସଙ୍କୋଚିତ; ଲୁଞ୍ଚିତ )—
Lochā lo(lu)chi ସଙ୍କୁଚିତ—Contracted.
সংকুচিত ନୋଚା

ଲୋଚିଆ—ଦେ. ବିଣ (ସଂ. ସଙ୍କୁଚିତ, ଲୁଞ୍ଚିତ)-ବିଶେଷଭାବରେ ସଙ୍କୁଚିତ-
Lochiā Much contracted or curled.
[ଲୋଚିଆଲୁ(ଲୋ)ଚିଆ—ଅନ୍ୟରୂପ] ( ଯଥା—ଲୁଗାଟାକୁ
গুটিএযাওয়া ନୋଚାନାଘ ମୋଡ଼ମାଡ଼ ଲୋଚିଆ ଦେବା ।

ଲୋଚିଏ(କ)—ଦେ. ବିଣ. ଓ ବି (ଅଦରାର୍ଥକ)—ଲୁଚିକ (ଦେଖ)
Lochie(ka) Luchika (See)
খানিকটা ଥୋଡ଼ାସା

ଲୋଚିକା—ସଂ. ବି (ଲୋଚ୍ ଧାତୁ+କର୍ତ୍ତୃ. ଅକ+ଆ)—ଲୋପ୍ତ୍ରୀ; ଲୁଚି
Lochikā (ଦେଖ)—Luchi (See)

ଲୋଚି କା(କୁ)ଚି(ଛି)ହେବା—ଦେ. କ୍ରି—ଲୁଚିକାଚି ହେବା (ଦେଖ)
Lochi kā(ku)chi(chhi)hebā Luchikāchi hebā(See)

ଲୋଚିବା—ଦେ. କ୍ରି—୧ । ସ. ଲୁଞ୍ଚିତ) ଲୁଚିବା (ଦେଖ)—
Lochibā 1. Luchibā, (See) ୨ । (ସ. ସଙ୍କୁଚିତ; ଲୁଞ୍ଚିତ)
কু(কু)কান କୁଞ୍ଚିତ କରିବା—2. To cause to be wrinkled; to curl.
ଲୁକନା, ସକୁଚାନା

ଲୋଚଲା (ଲୋ)ଚ ହେବା—ଦେ. କ୍ରି (ସଂ. ସଙ୍କୋଚନ)—ସଙ୍କୁଚିତ
Lochilā (lo)chi hebā ହେବା-To be contracted.
कुंचके याओया [ଭୂ-ଲଳେ ଲୋଚ ଲାଚ ହୋଇ ରହିଲେ ତରୁଣୀ।
नोचनाच होना ପ୍ରାଚୀ. ରହସ୍ୟମଞ୍ଜରୀ । ]

ଲୋଚ ଲୁ(ଲୋ)ଚ—ଦେ. ବଣ (ସଂ. ସଙ୍କୁଚିତ; ଲୁଞ୍ଚିତ)—Curled; Lochi lu(lo)chi crisp; wrinkled. [ଭୂ—ଦେହ ଚର୍ମ कुंचके କେତେ ହୋଇଛି ଲୋଚ ଲୋଚ । କୃଷ୍ଣସିଂହ. ମହା- नोचनाच ଭାରତ ଅଦ ।]

ଲୋଚ ହେବା—ଦେ. କ୍ରି (ସଂ. ସଙ୍କୁଚିତ; ଲୁଞ୍ଚିତ)—ସଙ୍କୁଚିତ
Lochi hebā ହେବା—To become crisp or
कुंचके याओया wrinkled. [ଭୂ—ରହିଛି . ଯଦ୍ଵାରା ମଧ୍ୟେ
सक्रुचना ହୋଇ ଲୋଚ । କୃଷ୍ଣସିଂହ. ମହାଭାରତ ଉଦ୍ୟୋଗ]

ଲୋଚ୍ଚା - ଦେ. ବଣ. ପୁଂ (ସଂ. ଲୁଚ୍ ଧାତୁ ଗୋପନକରିବା; ସ. ଲୁଞ୍ଚନ= Lochchā ସଙ୍କୁଚିତ କରିବା) (ମନାର୍ଥ)—୧ । ଲମ୍ପଟ—
नो(लो)च्चा 1. Adulterous; licentious. ୨ । ଚଞ୍ଚଳ.
लुच्चा ଚରିତ୍ର—2. Immoral. ୩ । ଗୁପ୍ତପ୍ରଣୟକାରୀ - 3. (a person) Given to secret and illicit amour. ୪ । ଚୋରିଆ--4. Pilfering ବ— ୧ । ଲମ୍ପଟ ଚରିତ୍ର ବ୍ୟକ୍ତି—1. A profligate; a wencher. ୨ । ଚୋର—2. A pilferer.

ଲୋଚ୍ଚା(ଚ୍ଚେ)ଇବା—ଦେ. କ୍ରି —ଲୋଚାଇବା (ଦେଖ)
Lochchā(chche)ibā Lochāibā. (See)

ଲୋଚ୍ଚାକୁ(କୋ)ଚ୍ଚ(ଚ୍ଚା)—ଦେ. ବଣ—ଲୁଚ୍ଚାକୁଚ୍ଚା (ଦେଖ)
Lochchāku(ko)chā(chchā) Luchākuchā. (See)

ଲୋଚ୍ଚା ଗୁଞ୍ଜା—ଦେ. ବଣ—(ମନାର୍ଥ) ଲୁଚ୍ଚାନୁଗୁଡ଼ା (ଦେଖ)
Lochchā gunjā Luchā nungurdā. (See)
लोच्चा नोंगवा लुच्चा लफङ्गा
[ଲୋଚ୍ଚା ଲପ(ଫ)ଙ୍ଗା—ଅନ୍ୟରୂପ]

ଲୋଜଞ୍ଚ(ଞ୍ଚି,ଞ୍ଚୁ,ଞ୍ଚେ)ସ୍—ବୈଦେ.ବ(ଇଂ. Lozenges ଲୋଜେଞ୍ଜେସ୍)-
Lojañcha(ñchi,ñchu,ñche)s ଲଜଞ୍ଚୁସ୍ (ଦେଖ)—
[ଲୋଜଞ୍ଚ,(ଞ୍ଚି,ଞ୍ଚୁ,ଞ୍ଚେ)ସ୍—ଅନ୍ୟରୂପ] Lajañchus. (See)

ଲୋଟ୍—ସଂ. (ବ୍ୟାକରଣ)— ଧାତୁର ଅନୁଜ୍ଞା ରୂପ
Loṭ Imperative mood of a verb.

ଲୋଟ୍(ଡ୍) (ଧାତୁ)—ସଂ.—ପାଗଳ ହେବା; ଉନ୍ମତ୍ତ ହେବା—
Loṭ(d) (root) To be mad. (Apte)

ଲୋଟ୍(ଟ) (ଇତ୍ୟାଦି)—ବୈଦେ. ବ (ଇଂ. ନୋଟ୍)—ନୋଟ୍ ଇତ୍ୟାଦି
Loṭ(ṭa) (etc) (ଦେଖ)—Noṭ etc. (See)
नोट नोट

ଲୋଟ୍ନି (ଇତ୍ୟାଦି)—ପ୍ରାଦେ.—(ସମ୍ବଲପୁର; ଗଡ଼ଜାତ)—ବ. ଓ ବଣ.
Loṭ-ni (etc) ଲୋଟଣି ଇତ୍ୟାଦି (ଦେଖ)—
Loṭaṇi etc (See)

ଲୋଟ—ଦେ. ବ—୧ । (ସଂ. ଲୋଧ୍ର) ପାଟଳିଆ ଲୋଧ୍ର (ଦେଖ) (ଚରେ
Loṭa କୃଷ୍ଣ. ଦ୍ରବ୍ୟଗୁଣ)—1. Paṭaliā lodhra (See).
୨ । (ସଂ ଲୁଣ୍ଠନ) ଲୁଟ, ଡକାଇତି—
2. Loot; dacoity.

ଲୋଟ(ଟି) ତରଜ(ଜୁ)—ଦେ. ବ—ଲୁଟ୍ ତରଜ (ଦେଖ)
Loṭa(ṭi) tarāja(ju) Luṭ tarāj. (See)
[ଲୋଟ୍ ପଟ୍—ଅନ୍ୟରୂପ]

ଲୋଟଣ -ଦେ. ବ (ସଂ. ଲୁଣ୍ଠ, ଲୁଟ୍ ଧାତୁ, ପ୍ରା. ଲୋଟ୍ ଧାତୁ)—
Loṭaṇa ୧ । ଭୂମିରେ ଗଡ଼ିବା—1. Wallowing or
लोटन rolling on the ground; grovelling. ୨ ।
लोटना, ବିଶେଷ ଶାରୀରିକ ଜ୍ୱାଳାଯୋଗୁଁ ଭୂଇଁରେ ଗଡ଼ିବା—
2. Rolling on the ground on account of extreme physical pain or anguish. ୩ ।
ବନ୍ଧ ଭାଙ୍ଗିବା—3. Capering; cutting somersaults. ୪ । ଏ ପାଖ ସେ ପାଖ ଗଡ଼ିବା ବା ଲେଉଟିବା
—4. Turning on the sides.

ଲୋଟଣି—ଦେ. ବ (ସଂ. ଲୁଠ୍ ଧାତୁ; ପ୍ରା. ଲୋଟ୍ ଧାତୁ)—ଲୋଟଣ
Loṭaṇi (ଦେଖ)—Loṭaṇa, (See) ବଣ—୧ । ଯାହା
लोटन ଲୋଟୁଥାଏ—1. Rolling. ୨ । ଯେ ବନ୍ଧ ଭାଙ୍ଗୁଥାଏ—
लोटनी,लोटनेवाला, लोटन 2. Tumbling, rolling the body, capering; turning somersaults.
୩ । ଭୂମିରେ ମାଡ଼ିଥିବା (ଲତା ଆଦି)—
3. (plants) Spreading about or creeping on the ground.

ଲୋଟଣି ଖଡ଼ା—ଦେ. ବ—କାଞ୍ଜିକାଞ୍ଜିକା (ଦେଖ)
Loṭaṇi khardā Kāñjikāñjikā (See).

ଲୋଟଣି ଜୁଡ଼ା(ଖୋସା)—ଦେ. ବ—ବଙ୍ଗାଳିଆଜୁଡ଼ା; ସ୍ତ୍ରୀ ଲୋକମାନ-
Loṭaṇi jurdā(khosā) ଙ୍କର ଏକପ୍ରକାର ଜୁଡ଼ା; ଯେଉଁ
लोटन खोंपा, फिरिंगीलोटन, लोटन ଜୁଡ଼ା ବେକ
लोटन जुडा ପାଖରେ ଲୋଟୁଥାଏ—A kind of chignon which is so framed as to touch the neck. ( ଭୂ—ଅଂସ ଅବତଂସ ଲହସା ଖୋସାକ ଲୁ-
ବେଣୀ ଲୋଟଣି ଜୁଡ଼ାରେ—ଉପେନ୍ଦ୍ର. ବୈଦେହୀଶ ବିଳାସ । )

ଲୋଟଣି ପାର—ଦେ. ବ—ଯେଉଁ ପାରାମାନେ ଭୂଇଁରେ ବା ଶୂନ୍ୟରେ
Loṭaṇi pārā ଲେଉଟି ଲେଉଟି ବନ୍ଧ ଭାଙ୍ଗନ୍ତି—Tumbler;
लोटन पायरा लोटन कबूतर tumbling pigeon; ground tumbler.

ଲୋଟଣି ବନ୍ଧ—ଦେ. ବ.—ଭୂମିରେ ଗଡ଼ ଗଡ଼ ବା ଶୂନ୍ୟରେ ଲମ୍ଫ
Loṭaṇi bandha ଦେଇ ଶରୀରକୁ ଲେଉଟାଇବା ବନ୍ଧ ବା
लोटन खाओया उलटापलटा ବ୍ୟାୟାମ—Tumbling about on the ground or on the air (a sort of gymnastics).

ଲୋଟଣି ଭଦଭଦଳିଆ—ଦେ. ବଣ.—ଏକ ପ୍ରକାର ଭଦଭଦଳିଆ
Loṭaṇi bhadabhadaliā ଚଢ଼େଇ—A kind of
लोटन नीलकंठ लोटन नीलकण्ठ Indian roller (bird).

ଲୋଟ(ଡ଼)ର ଲଇ—ଦେ. ବି—ଅମ୍ଳିଲା ଲତା ବିଶେଷ; କାଞ୍ଚି କାଞ୍ଚିଅ-
Loṭ(ṛḍa)ra lai ଲତା—A kind of sour creeper; Vitis Auriculata. [ ଦ୍ର—ଏହା ତରକାରୀରେ ବ୍ୟବହୃତ ହୁଏ; ଅମ୍ଳ ବେତସ ପରିବର୍ତ୍ତରେ କବିରାଜମାନେ ଏହାକୁ ଔଷଧରେ ବ୍ୟବସ୍ଥା କରନ୍ତି । )

ଲୋଟା—ଦେ. ବି. (ସଂ. ଲୁଣ୍ଠନ)—୧ । ଭୂମିରେ ଲୁଣ୍ଠନ; ଲୋଟଣ—
Loṭā 1. Wallowing rolling, tumbling about
ଗଡ଼ା ଲୋଟନା [ଦ୍ର—ଏହି ସକାଶରୁ ଦୈତ୍ୟେ କୋଟି କୋଟି; ମରଣ ଦେଲେ ଭୂମିଦେଶରେ ଲୋଟାଟି । କୃଷ୍ଣସିଂହ ମହାଭାରତ—ସଭା] । ୨ । (ସଂ. ଲୋତ; ଲୋପ୍ତ୍ର= ଚୋରମାଲ, ଲୋଟା ଛୋଟ ବସ୍ତୁ ଥିବାରୁ ତାକୁ ଚୋର ଚୋରି କରି ନିଅନ୍ତି; ଏହି ଅର୍ଥସୂତ୍ରୁ) —୨ । ଗଳ; ଛୋଟ ମୁହଁ
ଲୋଟା, ଘଟି ଲୋଟା ଓ ବଡ଼ ପେଟ ଥିବା ଧାତୁ ନିର୍ମିତ ଜଳପାତ୍ର (ଏହା ଗଗରାଠାରୁ ଛୋଟ)—2. A small metal jug [ ଦ୍ର—ଅଥବା ସଂ. ଲୁଣ୍ଠ ଧାତୁ=ଭୂମିରେ ଲୋଟିବାରୁ, ତୁଳନା କର ଇଂ. Tum le =ଟଂବ୍ଲର୍=ପାଣିପିଅ ଗ୍ଲାସ୍; ଇଂ. ଟମ୍ବଲର୍ ଅର୍ଥ ଲୋଟଣି ।)

ଲୋଟା(ଟେ)ଇବା—ଦେ. କ୍ରି (ସଂ. ଲୁଣ୍ଠ ଧାତୁ)—୧ । ଲୋଟିବା କ୍ରିୟାର
Loṭā(ṭe)ibā ଣିଜନ୍ତରୂପ—2. Causative form of the verb Loṭibā.
ଲୋଟାନ ଲୋଟବାନା
ଲୁଟାନ ଲୁଟବାନା (ଉ—ଲୋଟାଅ ଭୂମୁ ପାଦପଦ୍ମରେ ମୋ ମାଥ—କୃଷ୍ଣସିଂହ ମହାଭାରତ ସଭା ।) ୨ । ଲୁଟିବା କ୍ରିୟାର ଣିଜନ୍ତରୂପ—2. Causative form of the verb Luṭibā.

ଲୋଟା କଂସା—ଦେ ବି(ଦ୍ୱନ୍ଦ୍ୱ ସମାସ)—ଲୋଟା ଓ ଅନ୍ୟ ଧାତୁପାତ୍ରମାନ--
Loṭā kaṃsā Jug and other metal-made utensils.
ଘଟିବାଟି ଲୋଟା କାଁସା,
(ଲୋଟା ଗିନ୍ନି, ଲୋଟା ଘଡ଼ା, ଲୋଟା ଥାଳ, ଲୋଟା ଗିନା, ଲୋଟାପିତଳ ଲୋଟା ଗ୍ଲାସ—ଅନ୍ୟରୂପ)
ଲୋଟା କାଁସା, ଲୋଟା ଘଡ଼ା (ଗଗରା), ଲୋଟା ଘଟି, ଲୋଟା ବାଟି ଲୋଟାପିତଳ
ଲୋଟା ଗିଲାସ; ଲୋଟାଗଗରା; ଲୋଟାଲୋଟିୟା; ଲୋଟାବାଟି; ଲୋଟା ତସଲା

ଲୋଟା ଦେବା—ଦେ. କ୍ରି ( ସଂ. ଲୁଣ୍ଠ ଧାତୁ )—ଭୂମିରେ ଗଡ଼ିବା—
Loṭā debā To roll on the ground. [ଉ—
ଗଡ଼ାଗଡି ଦେଓୟା ଲୋଟାଦେନା ଏହି ସକାଶରୁ ଦୈତ୍ୟକୋଟି କୋଟି, ମରଣ ଦେଲେ ଭୂମିଦେଶରେ ଲୋଟାଟି— କୃଷ୍ଣସିଂହ ମହାଭାରତ ବନ । )

ଲୋଟାଲୁଟି—୧ । ଲୁଟାଲୁଟି (ଦେଖ)—1. Luṭāluṭi ( See )
Loṭāluṭi ୨ । ଲୋଟାଲୋଟି ( ଦେଖ )—Loṭāloṭi (See)

ଲୋଟାଲୋଟି—ଦେ. ବି [ଦ୍ୱନ୍ଦ୍ୱ]—ବଡ଼ ଓ ସାନ ଗାଲମାନ—
Loṭāloṭi Water jugs, big and small.
ବଡଘଟୀଛୋଟଘଟୀ ଲୋଟାଲୋଟିୟା

ଲୋଟି—ଦେ. ବି—୧ । ଛୋଟ ଲୋଟା; ଛୋଟ ଗାଳ—
Loṭi 1. Small jug ୨ । ଲୁଟି ( ଦେଖ )—
ଆବଖୋବା ଲୋଟୀ 2. Luṭi (See).

ଲୋଟିଆ—ଦେ. ବି—୧ । ଛୋଟ ଲୋଟା; ଲୋଟି—
Loṭiā ଆବଖୋବା ଲୋଟିୟା 1. Small jug.
ଯେ ଘଟୀ ଧରେ ଯାୟ ୨ । ଯେଉଁ ଭୃତ୍ୟ ପାଣି ଲୋଟା ଧରି ପ୍ରଭୁଙ୍କ
ଖବାସ ସାଙ୍ଗରେ ଥାଏ—2. A personal servant who is the jug-bearer of a master. ୩ ।
ଲୁଟେବା ଲୁଟେରା ଲୁଟିଅଦ୍ର; ଡକାଇତ-3. Pillager; plunderer.

ଲୋଟିଆଇବା—ଦେ. କ୍ରି—ଲୁଟାଇବା ( ଦେଖ )
Loṭiaibā ଲୋଟାନ ଲୁଟବାନା Luṭāibā ( See )

ଲୋଟିଆର(ଲ)—ଦେ. ବି ( ସ. ଲୁଣ୍ଠନକାରୀ )—ଲୁଣ୍ଠନକାରୀ;
Loṭiārā(la) ଡକାଇତ—Plunderer, dacoit.
ଲୁଟେବା ଲୁଟେରା

ଲୋଟି କରିବା —ଦେ. କ୍ରି—ଲୁଟି କରିବା ( ଦେଖ )
Loṭi karibā Luṭi karibā ( See )

ଲୋଟିକା—ସ. ବି—ଖଟାପାଳଙ୍ଗ ଶାଗ—
Loṭikā Sorrel ( M. W ).

ଲୋଟି ତରଜ(ଜ)—ଦେ. ବି—ଲୁଟ୍ ତରଜ ( ଦେଖ )
Loṭi taraja(ju) Luṭ tarāja ( See )

ଲୋଟି ପଡ଼ିବା—ଦେ. ବି—ଲୁଟି ପଡ଼ିବା ( ଦେଖ )—Luṭi
Loṭi parḍibā parḍibā ( See ) ( ଯଥା—ପରଶ୍ରମ ନ କରି ତୁ ଏଠାରୁ ପୁଳାଏ ମାରି ନେବୁ ବୋଲି ବସିଛୁ ! ଏଠାରେ କଅଣ ଲୋଟି ପଡ଼ୁଛି ? )

ଲୋଟି ପା(ଲା)ଟି ନେବା—ଦେ. କ୍ରି—ଲୁଟିପାଟି ନେବା; ସମସ୍ତ ଦ୍ରବ୍ୟ
Loṭi pā(lā)ṭi nebā ଲୁଣ୍ଠନପୂର୍ବକ ଅପହରଣ କରିବା—
ଲୁଟେପୁଟେ ନେଓୟା To loot away every thing.
ଲୁଟପାଟ ଲେନା

ଲୋଟିବା—ଦେ. କ୍ରି (ସ. ଲୁଣ୍ଠ; ପ୍ରା. ଲୋଟ)—୧ । ବିଲୁଣ୍ଠିତ ହେବା—
Loṭibā 1. To roll; to wallow. [ ଉ—ସେ ବନ
ଲୋଟା ଲୋଟନା ପର୍ବତ କୃଷ୍ଣକୃଷ୍ଣକା । ଲୋଟଇ ତା ଶିରେ ବନ
ଲୁଟ କରା ଲଭିକା—ନନ୍ଦକିଶୋର. କର୍ଣ୍ଣଭଞ୍ଜ ।] ୨ । ଲୁଟିନେବା;
ଲୁଟନା ଡକାଇତି କରି ବସ୍ତୁ ଅପହରଣ କରିବା—2. To take things by robbery or dacoity.

ଲୋଟିସ୍ ( ଇତ୍ୟାଦି )—ଗ୍ରା. ବୈଦେ. ବି—ନୋଟିସ୍ ଇତ୍ୟାଦି (ଦେଖ)
Loṭis ( etc ) Notis ( etc ) ( See )

ଲୋଟି ସାଉ(ଉଁ)ଟି ହେବା—ଦେ. କ୍ରି—ଅତ୍ୟନ୍ତ ବିକଳ ହୋଇ
Loṭi sāu(ũ)ṭi hebā ଭୂଇଁରେ ଲୋଟିବା ବା ଗଡ଼ିବା—
ଗଡାଗଡ଼ି ଦେଓୟା ଲୋଟନା, ତଡପନା To roll on the ground
[ଲୋଟି ସାଉ(ଉଁ)ଟି ହୋଇଯିବା—ଅନ୍ୟରୂପ] in excessive pain.

ଲୋଟିସୁ—ଗ୍ରାଦେ. ( ଗଞ୍ଜାମ ) ବି—ନୋଟିସୁ ( ଦେଖ )—Notisu
Loṭisu ( See ) [ ଦ୍ର—ଅଜ୍ଞମାନଙ୍କ ଉଚ୍ଚାରଣ ସ୍ୱଭ ଅନୁସାରେ ଗଞ୍ଜାମର ଓଡ଼ିଆମାନେ କେତେକ ବୈଦେଶିକ

ହଲନ୍ତ ଶବ୍ଦମାନଙ୍କୁ ସ୍ୱରବର୍ଣ୍ଣାନ୍ତ କରି ଉଚ୍ଚାରଣ କରନ୍ତି । ତୁଳନା କର ଜଳ୍ ସ୍ଥଳରେ ଜଳଙ୍ଗା । ]

ଲୋଟି ହୋଇ ପଡ଼ିବା—ଦେ. କ୍ରି—ଆନନ୍ଦରେ ବା ହାସ୍ୟରେ ବା Loṭi hoi pardibā ଦୁଃଖରେ ବିହ୍ୱଳ ହେବା—To be overwhelmed either with joy or sorrow. ଗଡାଗড়ি দেওয়া लोट जाना [ ଲୋଟିଯିବା—ଅନ୍ୟରୂପ ]

ଲୋଠ—ସଂ. ବି ( ଲୁଠ୍ ଧାତୁ+ଭାବ. ଅ )—ଭୂମିରେ ଲୋଟିବା; Loṭha ଗଡ଼ିବା—Rolling; wallowing on the ground ( M. W ).

ଲୋଠନ—ସଂ. ବି (ଲୁଠ୍ ଧାତୁ+ଭାବ. ଅନ)—୧ । ଭୂମିରେ ଗଡ଼ିବା— Loṭhana 1. Rolling on the ground. ୨ । ମୁଣ୍ଡକୁ ହଲାଇବା; ଶିରଃ କମ୍ପନ—2. Wagging of the head ( M. W ).

ଲୋଠଭୂ—ସଂ. ବି (ବହୁବ୍ରୀହି; ଲୋଠ+ଭୂ)—ଯେଉଁ ସ୍ଥାନରେ ଭୂମିରେ Loṭhabhū ବା ଧୂଳିରେ ଘୋଡ଼ା ଗଡ଼ୁଥାଏ—A place where a horse is rolling in dust ( M. W ).

ଲୋଡ୍(ଧାତୁ)—ସଂ-୧ । ଉନ୍ମତ୍ତ ହେବା—1. To be maddened. Loḍ ( root ) ୨ । ମାତିବା—2. To be excited.

ଲୋଡ୍—ବୈଦେ. ବି ( ଇଂ )—୧ । ବୋଝ—1. Load. ୨ । Loḍ ଶଗଡ଼ ବା ଡଙ୍ଗା ଆଦିର ବୋଝ—2. The load of a cart or boat, লোড लोड

ଲୋଡ(ଡ଼)ନ—ସଂ. ବି ( ଲୁଡ୍ ଧାତୁ+ଭାବ. ଅନ )—ଆଲୋଡନ; Loḍa(rḍa)na ଆନ୍ଦୋଳନ—Agitation; agitating.

ଲୋଡନ୍ତା—ଦେ. ବିଣ.—୧ । ଖୋଜୁଥିବା, ଅନ୍ୱେଷଣକାରୀ— Lordantā যে খুজে 1. Searching; seeking after. ढुंढनेवाला [ଉ—ଛଡ ଛଡ଼ ସଖି ! ମୁଁ ବଡ଼ କର୍ମୀଣୀ, କେ ମୋତେ ଲୋଡ଼ନ୍ତା ଅଛ । ପ୍ରା. ଉପେନ୍ଦ୍ରଭଞ୍ଜ ଲାବଣ୍ୟବତୀ । ] ୨ । ଯେ ଲୋଡ଼ୁଥାଏ; ଯାହାର ଦରକାର ଥାଏ— 2. Requiring; needing.

ଲୋଡ଼ା—ଦେ. ବି.—(ସଂ. ଲୋଡ୍ ଧାତୁ=ଉନ୍ମତ୍ତ ହେବା; ଅଥବା ସଂ. Lordā ଲୁଡ୍ ଧାତୁ=ମନ୍ଥନ କରିବା, କୌଣସି ସ୍ଥାନରେ ଯେଉଁ দরকার दरकार ପଦାର୍ଥକୁ ମନୁଷ୍ୟ ଖୋଜୁଥାଏ ସେଥିପାଇଁ ସେ খুজা ढुढा ଲୋକ ସ୍ଥାନକୁ ଦରଣ୍ଡି ମନ୍ଥି ପକାଏ)—୧ । ପ୍ରୟୋଜନ— নিমন্ত্রণ न्यौता 1. Necessity. [ଉ—ପରଣ ଘର କି ଲୋଡ଼ାରେ ଲାଗଇ । ଜଗନ୍ନାଥଦାସଙ୍କ ଭାଗବତ ।] ୨ । ଅନ୍ୱେଷଣ କରିବା; ଖୋଜିବା; ଧୁଣ୍ଡିବା—2. Searching for a thing; search. ୩ । ବନ୍ଧୁ ଆଦିଙ୍କ ବିବାହ ଉତ୍ସବରେ ନିମନ୍ତ୍ରଣ—3. Invitation of relatives to a festival. ୪ । (ପାନବରଜଓ ଭାଷା) ଲୋଡ଼ା; ଲତାରୁ ପାନ ଛିଣ୍ଡାଇବା ବା ତୋଳିବା—4. Technical term of betelgrowers) Plucking of betel-leaves from the creepers. ବିଣ.—ନିମନ୍ତ୍ରିତ— নিমন্ত্রিত न्योतादिया हुआ দরকারী दरकारी ବନ୍ଧୁ ନିମନ୍ତ୍ରିତ— যাকে খুজে ढुंढा हुआ 1. Invited to a festival. ୨ । ପ୍ରୟୋଜନୀୟ, ଦରକାରୀ—2. Necessary. [ଉ—ବନ୍ଧୁ ! ଅଛି କି ଲୋଡ଼ା, ନଥି କାଥଲା କମ୍ରିତ ଚୂଡ଼ା । କବିସୂର୍ଯ୍ୟ. ସଙ୍ଗୀତ । ] ୩ । ଖୋଜା; ଯେଉଁ ଦ୍ରବ୍ୟକୁ ମନୁଷ୍ୟ ଖୋଜୁଥାଏ; ଅନ୍ୱେଷିତ— 3. Searched after. [ଉ—ପୁଷ୍କରଙ୍କ ଗର୍ଭରେ ସେ ସ୍ଥାନ ବରିଅଛି, ତାହାର କେଉଁ ପୁଣ୍ୟ ଅଛି ଲୋଡ଼ା ଅଛି କୃଷ୍ଣଙ୍କ. ମହାଭାରତ. ବନ ।] ୪ । ବାଞ୍ଛିତ; ଇପ୍ସିତ— দরকারী चाहा हुआ 4. Wished for.

ଲୋଡ଼ା ଅଲୋଡ଼ା—ଦେ. ବିଣ (ବିପରୀତାର୍ଥ ସହଚର)—ଦରକାରୀ ଓ Lordā alordā ବେଦରକାରୀ (ପଦାର୍ଥ)—Necessary and unnecessary (things). দরকারী বেদরকারী दरकारी बेदरकारी

ଲୋଡ଼ା(ଡ଼େ)ଇବା—ଦେ. କ୍ରି—ଲୋଡ଼ିବା କ୍ରିୟାର ଣିଜନ୍ତ ରୂପ— Lordā(rḍe)ibā Causative form of the verb Lordibā.

ଲୋଡ଼ା କରିବା—ଦେ. କ୍ରି—ଲୋଡ଼ିବା (ଦେଖ)—Lordibā.(See) Lordā karibā [ଉ—ସେ ଗୋପୀ ଯୁବା ଛବି ଜ୍ଞାନ ବୃଡ଼ା; ସେହି ବନ୍ଧନେ, ବନ୍ଧନ ହୋଇ ମନ, ଅନ ନ କରଇ ଲୋଡ଼ା । ଉଞ୍ଜ. କୋଟିବ୍ରହ୍ମ ସୁନ୍ଦରୀ ।]

ଲୋଡ଼ାକୁ ଆସିବା—ଦେ. କ୍ରି—ଲୋଡ଼ା ଯିବା; ଲୋଡ଼ା ପଡ଼ିବା (ଦେଖ) Lordāku āsibā Lordā pardibā. (See) দরকারে আসা काममे आना

ଲୋଡ଼ା ଚିଜ—ଦେ. ବି—୧ । ଦରକାରୀ ପଦାର୍ଥ, ପ୍ରୟୋଜନୀୟ ବସ୍ତୁ— Lordā chija 1. Necessary thing; useful article. দরকারী জিনিষ ୨ । ଯାହା ଭବିଷ୍ୟତରେ ଆବଶ୍ୟକ ହେବ— दरकारी चीज 2. (that) Which may be of use in future.

ଲୋଡ଼ା ପଡ଼ିବା (ଯିବା, ହେବା)—ଦେ. କ୍ରି—୧ । (କୌଣସି ପଦାର୍ଥ) Lordā pardibā (jibā, hebā) ଦରକାର ପଡ଼ିବା—1. (A দরকার হওয়া thing) To be wanted; to be required, दरकार होना ୨ । ଖୋଜା ଯିବା—2. To be sought for; to be searched after.

ଲୋଡ଼ା ଲୋଡ଼ି—ଦେ. ବି—ପରସ୍ପରକୁ ନିମନ୍ତ୍ରଣ କରିବା— Lordā lordi Mutual invitation. ডাকা ডাকি न्यौतान्यौती

ଲୋଡ଼ା ସଙ୍ଖୁ(ଖୋ)ଳା—ଦେ. ବି(ଏକାର୍ଥକ ସହଚର)—ବନ୍ଧୁବାନ୍ଧବଙ୍କୁ Lordā saṅkhu(ṅkho)lā ଲୋଡ଼ିବା ଓ ସଙ୍ଖୁଳିବା— নিমন্ত্রণ তত্ব Inviting relatives and enquiring after their weal. न्यौतान्यौती

ଲୋଡ଼ି ଆଣିବା—ଦେ. କ୍ରି—୧ । ବରଣ କରିବା—1. To court Lordi āṇibā (something). [ଉ—କାପୁରୁଷ ଲୋଡ଼େଇ

ନିମନ୍ତ୍ରଣ କবে আনা
खरीदना
ସିନା ବିପତ୍ତିକି, ଡରିବା ଭୟ ଲୋଡ଼ି ଅଣନ୍ତି ମଣ୍ଡଳ । କୃଷ୍ଣସିଂହ. ମହାଭାରତ. ବନପର୍ବ । ]
୨ । କୌଣସି ବ୍ୟକ୍ତିଙ୍କୁ ନିମନ୍ତ୍ରଣ କରି ଆଣିବା—
2, To bring a persons by inviting;

**ଲୋଡ଼ିତ**—ସଂ. ବିଣ (ଲୁଡ଼ ଧାତୁ ଣିଚ+କର୍ମ. ତ)—୧ । ଆଲୋଡ଼ିତ;
Lordita ଆନ୍ଦୋଳିତ—1. Agitated (M. W). ୨ । ଚଞ୍ଚଳ; ଦୁଃଖପ୍ରାପ୍ତ—2. Troubled (M. W).

**ଲୋଡ଼ିବା**—ଦେ. କ୍ରି (ସର୍ବନାମ, ସଂ. ଲୁଡ଼୍ ଧାତୁ)—୧ । (କୌଣସି
Lordiba ପଦାର୍ଥ) ଖୋଜିବା—1 To search after.
খুঁজা
ढूंढना
[ଉ—କଶୋର ! ଲୋଡ଼ିଲେ ଆଉ କେ ଦେବ । କବିସୂର୍ଯ୍ୟ ସଙ୍ଗୀତ । ] ୨ । ଦରକାର କରିବା—2. To want;
চাওয়া
चाहना
to require. [ଉ—ମାର ସ । ମାରି, ନ ପୁଣ କାଣ୍ଡାର କାହିଁ ଲୋଡ଼ଇ ଏହା ସୁନ୍ଦର ମତ । ଉପେ. ପ୍ରେମ. ସୁଧାନିଧି ]
[ଲୋଡ଼ା ଯି(ହେ)ବା—କର୍ମବାଚ୍ୟ ରୂପ]
୩ । ବାଞ୍ଛା କରିବା—3 To wish for. ୪ । କୌଣସି ବିଷୟ ପ୍ରତି ଲାଳାୟିତ ହେବା—4. To hanker after something; to long for. [ ଉ—ଲୋଡ଼ି ଶ୍ୟାମ ପ୍ରୀତିକି ପଦ୍ମିଣୀ ଯୁବତୀ କି କେ କହୁନାହିଁ ଧରି ଦଶନେ
ডাকা
न्यौता करना
ଘାସ । କବିସୂର୍ଯ୍ୟ. ସଙ୍ଗୀତ ।] ୫ । ବିବାହାଦି ଉତ୍ସବରେ ବନ୍ଧୁଙ୍କୁ ନିମନ୍ତ୍ରଣ କରିବା—5. To invite relatives on special festivals, ୬ । (ପାନବରଜଅଞ୍ଚଳ ଭାଷା) ପାନ ଲତାରୁ ପାନ ତୋଳିବା—6. To pluck betel leaves from creepers. ପ୍ରାଦେ. (ଗଞ୍ଜାମ)—୧ । ଅନୁରୋଧ କରିବା—1. To request. ୨ । ଡାକିବା—2. To call. [ ଉ—ଦୁଃଖଶ୍ରୀ ସେହିଣି କହିଲ ବହୁରିଙ୍କୁ, ଲୋଡ଼ୁଛନ୍ତି ରଜା ତୁମ୍ଭଙ୍କୁ ଦେଖିବାକୁ—କୃଷ୍ଣସିଂହ. ମହାଭାରତ. ସଭା ।]

**ଲୋଣା**—ଦେ. ବିଣ.—(ସଂ. ଲବଣାକ୍ତ)—ଲୁଣା, ଲବଣାକ୍ତ, ଲୁଣି,
Lona নো(লো)না ଲୁଣିଆ—Saline; salted; im-
नमकीन, नोनी, लोणी
pregnated with salt
ସଂ. ବି.—ଲୋଣୀ (ଦେଖ)—Loni (See)

**ଲୋଣାମ୍ଲା**—ସଂ. ବି.—ଲୋଣୀ ଦେଖ)
Lonāmlā Loni (See)

**ଲୋଣୀ**—ସଂ. ବି.—(ବୈଦ୍ୟକ)—ଛୋଟ ଲୁଣି ଶାଗ, ଏକ ପ୍ରକାର
Loni ଶାକ ବା ବର୍ଷାୟୁ କ୍ଷୁଦ୍ର ଗୁଳ୍ମ; ଲୁଣି ଲୁଣିଆ ଶାକ ଗୁଳ୍ମ—
ସଂ. ଲୋଣା, ଲୋଣୀ(ଛୋଟ ଲୁଣୀ), ବୃହଲ୍ଲୋଣୀ, ଘୋଟିକା
ବୃହଲ୍ଲୋଣୀ
ତେ. ଲୁଣୀ,
ତା. କୋଉଲକୀରଇ
ଫା. ଖୁରଫା
ଅ. ବକ୍ଳିଭୁଲ, ହୁମକା
Indian Parslane; Protulaca oleracea; oxalis. [ଦ୍ର—ଏହାର ପତ୍ର କ୍ଷୁଦ୍ର, ଈଷତ୍ ଅମ୍ଳାକ୍ତ ଏବଂ ଏ କୋଳର ମଞ୍ଜି ଅତି ଛୋଟ ଛୋଟ ଓ ହଳଦିଆ । ଏ ଗୁଳ୍ମ ୨ ପ୍ରକାର, ବୃହଲ୍ଲୋଣୀ ଓ କ୍ଷୁଦ୍ରଲୋଣୀ । ଏ ଗଛ ଉଚ୍ଚରେ ୨ ହାତ ବଢ଼େ ଓ
ସ୍ଥ ଲୁଣୀହିଣୀ, ଲୁଣୀ ମେଣ୍ଟୀ
ନୁନী, লোনী, নুনেশাক
लुनिआ शाक, नोनिआ, लोणी, कुलफा
[ଲୋଣିକା—ଅନ୍ୟରୂପ]
ବହୁ ଶାଖାଯୁକ୍ତ । ଛୋଟ ଲୋଣୀ ରୁକ୍ଷ, ଗୁରୁ, ଅଗ୍ନିଦୀପକ, ଅମ୍ଳ ରସ, ଲବଣ ସ୍ୱାଦ ଓ ଏହା ଅର୍ଶଃ, ବାୟୁ, ଶ୍ଳେଷ୍ମା, ଅଗ୍ନିମାନ୍ଦ୍ୟ ଓ ବିଷ-ଦୋଷ ନାଶକ । ବଡ ଲୋଣୀ—ଅମ୍ଳ ରସ, ସାରକ, ବାତବର୍ଦ୍ଧକ, ଓ ଏହା ଶୋଥ, ନେତ୍ର-ରୋଗର ହିତକର । ଏହାଦ୍ୱାରା କଫ, ପିତ୍ତ, ଚର୍ମରୋଗ ବ୍ରଣ, ଗୁଳ୍ମ, ଶ୍ୱାସ, କାସ, ପ୍ରମେହ ରୋଗର ଶାନ୍ତି ହୁଏ ଦ୍ରବ୍ୟ.ଗୁଣ ।]

**ଲୋଟ**—ସଂ. ବି.—(ଲୁ ଧାତୁ=ଛେଦନ କରିବା+କର୍ମ. ତ)—୧ ।
Lota ଲୋପ୍ତ୍ର; ଚୋରି ମାଲ—1. A stolen article. ୨ । ଷ୍ଟେୟ ଧନ, ଅପହୃତ ଦ୍ରବ୍ୟ—2. Booty; plunder. ୩ । ଲୋତକ; ଅଶ୍ରୁ; ଲୁହ—3. Tears. ୪ । ଚିହ୍ନ-4. Sign; mark. ୫ । ରଣ—5, Battle.

**ଲୋତକ**—ସଂ. ବି.—(ଲୋତ+ସ୍ୱାର୍ଥେ. କ)—ଲୁହ; ଅଶ୍ରୁ—
Lotaka Tears.
[ଉ—ଝରୁଛି ଲୋତକ ନେମି ଠେ ଜଳୁଛି ପ୍ରେମପାବକ । ଗୋଲୋକ—ଇନ୍ଦୁଲେଖା । ]

**ଲୋଟରା**—ଦେ. ବିଣ—(ସଂ. ଲୁଳିତରେ)—୧ । କୋଟରା; ଲତପତ;
Lotarā ଲୋସଡ଼ା; ନରମ; ଅତି କୋମଳ—1. Very soft;
অত্যন্ত নরম
चिप चिपा, पल पल
yielding to the souch. [ଦ୍ର—ଆମ୍ବ ଆଦି ଫଳ ଅତି ପାଚି ଗଲେ ଲୋଟରା ହୋଇଯାଏ ।] ୨ । ଜୀର୍ଣ୍ଣ—2, Worn out. ୩ । ପତଳ ଚର୍ମା; ଲୁଳିତ (ଚର୍ମ)—3. Flabby-skinned; having wrinkled or
লোল
सिकुड़ा हुआ
corrugated skin.

**ଲୋଟରା କୋତରା**—ଦେ. ବିଣ.—(ପୁଂ ଓ ସ୍ତ୍ରୀ)—୧ । ହସି ହସି
Lotarā kotarā ଅବଶ ହୋଇଯିବା—1. Overcome
কুটি পাটি
लोट पोट
or overpowered by laughing
[ଲୋଟରୀ କୋତରୀ—ସ୍ତ୍ରୀ]
much; laughing to the bursting point. ୨ । ଅତ୍ୟନ୍ତ ପଚି ଯାଇଥିବା (ଫଳ)—2, Rotten (fruit.)

**ଲୋଟରୀ**—ଦେ. ବିଣ. ସ୍ତ୍ରୀ—୧ । ଲୋଟରାର ସ୍ତ୍ରୀଲିଙ୍ଗ—
Lotarī লোলচম
लंबी हुई
1, Feminine of lotarā.
୨ । ବାର୍ଦ୍ଧକ୍ୟ ଯୋଗୁଁ ଯେଉଁ ସ୍ତ୍ରୀର ସ୍ତନ ଓ ଅବୟବାଦିର ଦୃଢ଼ତା ଲୋପ ହୋଇଥାଏ ଓ ଚର୍ମ ଆଦି ଝୁଲି ପଡ଼ିଥାଏ; ପଳିତ ଚର୍ମଯୁକ୍ତା ଓ ଲମ୍ବିତସ୍ତନା (ସ୍ତ୍ରୀ)—2. (woman) Soft-skinned and flabby owing to old age; flabby-breasted and flabby-skinned (old woman).

**ଲୋଟରା(ରେ)ଇବା**—ଦେ. କ୍ରି.—(ଲୋଟରାଇବାର ଣିଜନ୍ତ ରୂପ)—
Lotarā(re)ibā ଲତପତ କରିବା; ପାଚିଲା ଫଳକୁ ହାତଦ୍ୱାରା

ଲୋଟର କରିବା } —ଅନ୍ୟରୂପ ଚିପିଚିପି ଅତି କରମ
ଲୋଟର କୋଟରାକରିବା } କରି ଦେବା;
ল(ন)ত ল(ন)তান নরম করা—To soften a ripe fruit
**पल पलाना** by repeatedly pressing it with one's fingers.

ଲୋଟରିବା—ଦେ. କ୍ରି.—(ସଂ. ଲୁଳତ)—ଲୋସଡ଼ ଯିବା—
Lotariba To become very soft and flabby
খুব নরম হওয়া **पल पलाना** (said of over ripe
[ଲୋଟର ଯିବା—ଅନ୍ୟରୂପ] fruits.)

ଲୋଟା—ଦେ. ବିଣ.—(ସଂ. ଲୋଟ)—ଚୋରି (ମାଲ); ଗୁପ୍ତ (ଧନ)—
Lota পোতা; লুকান Stolen or hidden (property).
**गड़ा हुआ** ବି.—ଗୁପ୍ତ ଧନ—Hidden treasure;
পোঁতা ধন **गाड़ाहुआ धन** treasure trove.

ଲୋଟେକ—ଗ୍ରା. ବି.—(ସଂ. ଲୋଟକ)—ଲୋତକ; ଲୁହ—
Loteka লো, নোতক **नोर** Tears.
[ଦ୍ର—ଭାଗ୍ୟ ଏତେକ, ଜନ୍ମ ଲୋଟେକ, ଭାବ ଯେତେକ ଚିନ୍ତା। ଭଞ୍ଜ. ପ୍ରେମସୁଧାନିଧି।]

ଲୋତ୍ର—ସଂ. ବି.—(ଲୁ ଧାତୁ+କର୍ମ. ତ୍ର)—୧। ଚୋରିତ ଧନ; ଚୋରି
Lotra ମାଲ—1. Booty; stolen article. ୨।
ଲୋତକ; ଲୁହ—2. Tears (M. W.)

ଲୋଥ—ଦେ. ବି.—ନୋଥ (ଦେଖ)
Lotha Notha (See)

ଲୋଥ(ଥୁ)ରା—ଦେ. ବି. ଓ ବିଣ. ପୁଂ.—(ସଂ. ସ୍ଥୂଳକାୟ)—୧।
Lotha(thu)ra ନପୁଂସକ ବ୍ୟକ୍ତି; ହେଞ୍ଜେଡ଼ା—1. An
নপুংসক impotent person; eunoch. ୨। ଅଧିକ ବୟସ୍କ
**हिजड़ा** ହୋଇ ସୁଦ୍ଧା ଯେ ବିବାହ କରି ନ ଥାଏ—2. (A
বুড়ো, আইবুড়ো person) Who is still a bachelor in
**कुँवारा** an advanced age. ୩। ଅତି ସ୍ଥୂଳକାୟ ବ୍ୟକ୍ତି—
**मोटा** মোটা 3. A fat or corpulent person.

ଲୋଥ(ଥି,ଥୁ,ଥେ)ରୀ—ଦେ. ବି ଓ ବିଣ—ସ୍ତ୍ରୀ—୧। ସ୍ତ୍ରୀସ୍ୱଭାବରହିତା
Lotha(thi,thu,the)ri ସ୍ତ୍ରୀ; ହେଞ୍ଜେଡ଼ୀ—1. A woman
হিজড়া showing no external signs of femini-
**हिजड़ा[ड़ी]** nity. ୨। ବୟସ୍ଥା କୁମାରୀ; ଅଭିଆଡ଼ୀ; ବଡ଼ବୁଢ଼ୀ—
বুড়ীকন্যা 2. Grown up maid. ୩। ଅତି ସ୍ଥୂଳକାୟା ସ୍ତ୍ରୀ—
**कुँवारी** 3. Very corpulent woman.
মোটা **मोटी**

ଲୋଦର—ଦେ. ବି—ଓଦର (ଦେଖ)
Lodara Odara. (See)

ଲୋଦା—ଦେ. ବି—ନୋଦା (ଦେଖ)
Loda Noda. (See)

ଲୋଦି(ଦୀ)—ଦେ. ବି—ପ୍ରାଚୀନ ଭାରତବର୍ଷର ଏକ ମୁସଲମାନ୍ ରାଜବଂଶର
Lodi(di) ନାମ—Name of a Mahomedan dynasty
লোদী **लोदी** of kings of ancient India.
[ଦ୍ର—ଏ ରାଜବଂଶର ପ୍ରତିଷ୍ଠାତା ବହ୍‌ଲୁଲ୍ ଲୋଦୀ ଖ୍ରୀ ୧୪୫୦ରୁ ୧୪୮୮ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ। ସୈୟଦ୍ ରାଜବଂଶର ଶେଷ ସମ୍ରାଟ ଅଲାଉଦ୍ଦିନ୍ ଏହାଙ୍କୁ ନିଜର ରାଜ୍ୟାଧିକାର ଅର୍ପଣ କଲେ। ଏ ପୂର୍ବେ ସର୍‌ହିନ୍ଦ୍ ପ୍ରଦେଶର ଶାସନକର୍ତ୍ତା ଥିଲେ। ଏହାଙ୍କ ପୁତ୍ର ନିଜାମ୍ ସେକନ୍ଦର୍‌ଶାହା ନାମ ଧାରଣ କରି ଏହାଙ୍କ ପରେ ୧୪୮୮ ଠାରୁ ୧୫୧୭ ପର୍ଯ୍ୟନ୍ତ ରାଜା ହେଲେ। ଏ ବଙ୍ଗର ରାଜାମାନଙ୍କଠାରୁ ବିହାର ଜୟ କଲେ ଓ ଦିଲ୍ଲୀଠାରୁ ଆଗ୍ରାକୁ ରାଜଧାନୀ ଉଠାଇ ନେଲେ। ଏ ହିନ୍ଦୁବିଦ୍ୱେଷୀ ଥିଲେ। ଏହାଙ୍କ ପରେ ଏହାଙ୍କ ପୁତ୍ର ଇବ୍ରାହିମ୍‌ଲୋଦୀ ରାଜା ହେଲେ। ଏହାଙ୍କ ସଙ୍ଗେ ଓ ଜଗ୍‌ପୁରିଆ ଯୋଗୁଁ ଚିତୋରର ରାଣା ସଂଗ୍ରାମସିଂହ ଓ ପଞ୍ଜାବର ଶାସନକର୍ତ୍ତା ଦୌଲତ୍‌ଖାଁ ଲୋଦୀ ବିଦ୍ରୋହୀ ହେଲେ ଓ ଦୌଲତ୍‌ଖାଁଙ୍କ ନିମନ୍ତ୍ରଣ ଅନୁସାରେ କାବୁଲର ସୁଲତାନ୍ ବାବର ଭାରତ ଆକ୍ରମଣ କଲେ ଓ ୧୫୨୬ରେ ପ୍ରଥମ ପାଣିପଥ ଯୁଦ୍ଧରେ ଇବ୍ରାହିମ୍ ଲୋଦୀଙ୍କୁ ପରାସ୍ତ କରି ଭାରତରେ ମୋଗଲ ସାମ୍ରାଜ୍ୟ ସ୍ଥାପନ କଲେ। ଏହି ଲୋଦୀ ବଂଶୀୟ ରାଜାମାନଙ୍କ ଅମଳରେ ଚୈତନ୍ୟ ଦେବ (୧୪୮୬-୧୫୩୩) ଙ୍କ ଆବିର୍ଭାବ ହୋଇଥିଲା। ପ୍ରୋଥେରୋ ସାହେବଙ୍କ ସ୍କୁଲପାଠ୍ୟ ଇଂରାଜ ଭାରତ ଇତିହାସ)

ଲୋଧ(ଧ୍ର)—ସଂ. ବି (ରୁଧ୍ ଧାତୁ=ଆବରଣ କରିବା+କର୍ତ୍ତୃ. ଅ; ରୁଧ୍‌
Lodha(dhra) ଧାତୁ+କର୍ତ୍ତୃ. ର)—ଏକ ପ୍ରକାର ଔଷଧ ବୃକ୍ଷ;
(ଲୋଧ୍ରକ—ଅନ୍ୟରୂପ) ଲୋଧ୍—Symplocus Racemosa;
লোধ, পাঠানীলোধ Symplocus Crataegoides. [ଦ୍ର—
**लोध; पठानीलोध** ଶ୍ୱେତ ଓ ରକ୍ତ ଭେଦରେ ଏହା ଦୁଇ ପ୍ରକାର।
ତେ. ତେଲ୍ଲଲୋ ଦୁଗଚେଟ୍ଟୁ, ଲୋଦ୍ଗ] ରକ୍ତଲୋଧ୍ରର ନାମ ପଟ୍ଟିକା
ଗୁ. ଲୋଦର; ପଠାଣୀଲୋଦର ଲୋଧ୍ର ବା ପାଠଲଆ ଲୋଧ।
ଆ. ମୁଗାମ୍ ଶ୍ୱେତ ଲୋଧର ନାମ ଶାବର
ମ. ଲୋଧ୍ର ଲୋଧ। (ଏହାର ସଂସ୍କୃତ
ଅନ୍ୟ ସଂ. ନାମ—ତିଲ୍ୱ, ତିରୀଟ, ଶାବର, ନାମ ଜୀର୍ଣ୍ଣପର୍ଣ୍ଣୀ, ବୃହତ୍ପର୍ଣ୍ଣୀ,
ଗାଲବ, ସେଧ୍ର, ଗାଲବରୁ, ମାର୍ଜନ, ସ୍ଥୂଳ।) ଏ ବୃକ୍ଷ ଭାରତର
କଲପ୍ରିୟ, ବାଳପ୍ରସାଦ, ତିଲ୍ୱକ; ଜଙ୍ଗଲରେ ଅପ୍ରଚୁର ହୁଏ। ଏ
କାଣ୍ଡକୀଲକ, ହସ୍ତିଲୋଧ୍ରକ, ତିଲକ, ଗଛର ଛାଲ ରଙ୍ଗ ପାଇଁ,
କାଣ୍ଡକୀଲ, ହେମପୁଷ୍ପ, ଲକ୍ଷ୍ମୀ, ଚମଡ଼ାଭିଆର ଓ ଔଷଧରେ
ତିଲ୍ୱକ, କାଠକୀଲକ, ଶମ୍ବର, ଲାଗେ। ଛାଲକୁ ଗରମ
ଜୀର୍ଣ୍ଣପର୍ଣ୍ଣୀ, ବୃହତ୍ପର୍ଣ୍ଣୀ, ସ୍ଥୂଳବଲ୍କଲ। ପାଣିରେ ବତୁରାଇଲେ
ହଳଦିଆ ରଙ୍ଗ ବାହାରେ। ଛାଲକୁ ସାଜ ମାଟି ସଙ୍ଗେ ପାଣିରେ ସିଝାଇଲେ ନାଲି ରଙ୍ଗ ବାହାରେ। ଏ ରଙ୍ଗରେ ଲୁଗା ରଙ୍ଗା ଯାଏ। ବୈଦ୍ୟକ ମତରେ ଏଥିର ଛାଲ କଷାୟ ଓ ଉଦରାମୟ ରୋଗରେ ଉପକାରୀ। ଏଥିର କାଠର ସିଝା ପାଣିରେ କୁଳୁକୁଞ୍ଚା କଲେ ଦାନ୍ତ ଦୃଢ଼ ହୁଏ। ଏଥିର କାଠ ଫାଟି ଯାଏ, କିନ୍ତୁ ଦୃଢ଼ (ହି. ଶ)।
ଏହା ନାତିବୃହତ୍ ଚିରଶ୍ୟାମଳ ତରୁ; ପତ୍ର ଚିକ୍କଣ, ଏକୋତ୍ତର; ଫୁଲ ଅଫୀତ, ସୁଗନ୍ଧ ଓ ବହୁ କେଶର;

ଫୁଲ ଶୀତ କାଳରେ ଫୁଟେ । ଲୁଗା ରଙ୍ଗାଇବା ପାଇଁ ଅଚ୍ଛୁ ଗଛର ଛାଲ ଓ ପଳାଶ ଫୁଲ ବା ବକମ କାଠ ସଙ୍ଗେ ଲୋଧ ଛାଲ ମିଶା ଯାଏ (ଯୋଗେଶଚନ୍ଦ୍ର)
ଏହା ଧାରକ, ଲଘୁ, ଶୀତ ବୀର୍ଯ୍ୟ ଓ ଚକ୍ଷୁର ହିତକର । ଏହା କଫ, ପିତ୍ତ, ରକ୍ତପିତ୍ତ, ରକ୍ତ ଦୋଷ, ଜ୍ୱର, ଅତିସାର ଓ ଶୋଥବିନାଶକ—ଦ୍ରବ୍ୟଗୁଣ ।]

**ଲୋଧା**—ଦେ. ବି.—୧ । ନୋଦା (ଦେଖ)—
Lodhā **धौढी** 1. Nodā (See)
୨ । (ସଂ. ବ୍ୟାଧ). ବ୍ୟାଧ; ବାଘୁଆ; ଶିକାରୀ—
শিকারী **शिकारी** 2. Hunter; fowler.

**ଲୋଧ**—ଦେ. ବି.—(ସଂ. ଲୋଧ)—ଲୋଧ (ଦେଖ)
Lodhu Lodha (See)

**ଲୋଣ୍ଡି**—ପ୍ରାଦେ. (କଟକ) ବି.—ସିଝୁଲା—Curry consisting of water-boiled pot-herbs.
Londi

**ଲୋପ**—ସଂ. ବି.—(ଲୁପ୍ ଧାତୁ+ଭାବ. ଅ)—୧ । ନାଶ; ବିନାଶ; ଭ୍ରଂଶ—
Lopa 1. Spoliation; obliteration; cessation; destruction; annihilation. ୨ । ଲୟ; ତିରୋଧାନ; ଅନ୍ତର୍ଦ୍ଧାନ; ଲୁଚି ଯିବା—2. Disappearance; effacement. ୩ । ଅଭାବ; ଅଦର୍ଶନ—3 Absence. ୪ । (ବ୍ୟାକରଣ) ଶବ୍ଦ ମଧ୍ୟରେ କୌଣସି ଅକ୍ଷରର ତିରୋଧାନ—4. The elision or obliteration of a letter or syllable. [ ଯଥା—ଅପିଧାନ ଶବ୍ଦର 'ଅ' ଲୋପ ହୋଇ ପିଧାନ ଶବ୍ଦ ହୁଏ, ଅବଗାହ ଶବ୍ଦର ଅ ର ଲୋପ ହୋଇ ବଗାହ ଶବ୍ଦ ହୁଏ ।] ୫ । ନଷ୍ଟ ଖାଦ୍ୟ, ପଚା ମାଂସ—5. Spoiled or rotten food; rotten meat.

**ଲୋପକ**—ସଂ. ବିଣ. ପୁଂ—(ଲୁପ୍ ଧାତୁ+କର୍ତ୍ତୃ. ଅକ)—ବିନାଶକ—
Lopaka [ଲୋପିକା—ସ୍ତ୍ରୀ] Destroying.

**ଲୋପ କରିବା**—ଦେ. କ୍ରି.—ବିନାଶ କରିବା—
Lopa karibā To destroy; to expunge; to
লোপ করা **लोप करना, लोपना** cause to disappear.

**ଲୋପତ**—ଗ୍ରା. ବିଣ.—(ସଂ. ଲୁପ୍ତ)—ଲୁପ୍ତ (ଦେଖ)
Lopata লুপ্ত **लुपत** Lupta (See)

**ଲୋପନ**—ସଂ. ବି.—(ଲୁପ୍ ଧାତୁ+ଭାବ. ଅନ)—୧ । ଲୋପକରଣ;
Lopana ବିନାଶନ—Destroying. ୨ । ନଷ୍ଟକରଣ—2. Spoiling.

**ଲୋପନୀୟ**—ସଂ. ବି.—(ଲୁପ୍ ଧାତୁ+କର୍ମ. ଅନୀୟ)—ଯାହା ଲୁପ୍ତ
Lopaniya ହେବାର ଯୋଗ୍ୟ—Capable of becoming obsolete; fit to be expunged.

**ଲୋପ ପାଇବା**—ଦେ. କ୍ରି.—ଲୁପ୍ତ ହେବା; ବିନାଶପ୍ରାପ୍ତ ହେବା—
Lopa pāibā To cease; to disappear.
লোপ পাওয়া **लोप पाना**

**ଲୋପ ପ୍ରାପ୍ତ**—ସଂ. ବିଣ.—ଲୁପ୍ତ—
Lopa prāpta Disappeared; obliterated; elided.

**ଲୋପ ହେବା**—ଦେ. କ୍ରି—ଲୁପ୍ତ ହେବା—
Lopa hebā To cease; to disappear.
লোপ হওয়া **लोप होना**

**ଲୋପା**—ସଂ. ବି. ସ୍ତ୍ରୀ—(ଲୁପ୍ ଧାତୁ ଣିଚ=ଲୁପ୍ତ କରାଇବା+କର୍ତ୍ତୃ ଅ
Lopā +ଆ; ଯେ ନିଜ ରୂପଦ୍ୱାରା ନାରୀମାନଙ୍କର ରୂପାଭିମାନକୁ ଲୁପ୍ତ କରାଇଥିଲେ ।)—ଲୋପାମୁଦ୍ରା (ଦେଖ)
Lopāmudrā (See)

**ଲୋପାକ**—ସଂ. ବି. ପୁଂ—(ଲୋପ=ନାଶ=ବିନଷ୍ଟ ବା ପଚା ମାଂସ+
Lopāka ଅକ; ଯେ ପଚା ମାଂସ ଖାଏ ।)—ଶୃଗାଳ; ବିଲୁଆ—
(ଲୋପାକୀ—ସ୍ତ୍ରୀ) Jackal.

**ଲୋପାକୀ**—ସଂ. ବି.—(ଲୋପାକ+ଈ)—୧ । କୋକଶିଆଳି—
Lopāki 1. A fox. ୨ । ମାଈ ବିଲୁଆ—
2. A she-jackal.

**ଲୋପାପତ୍ତି**—ସଂ. ବି.—(୭ମୀ ତତ୍)—୧ । ଅଭିନ ବିଷୟରେ ଆପତ୍ତି
Lopāpatti ବା ବାଧା—1. Objection regarding on expunged matter. ୨ । କୌଣସି ବସ୍ତୁ ଲୁପ୍ତ ହୋଇ ଅଛି ବା ଲୋପ ପାଇଅଛି ବୋଲି ଆପତ୍ତି କରିବା—2. Objection that a matter has been expunged or has become obsolete.

**ଲୋପା ମୁଦ୍ରା**—ସଂ. ବି. ସ୍ତ୍ରୀ—୧ । [ ଲୁପ୍ ଧାତୁ ଣିଚ୍ ଲୋପି ଧାତୁ=
Lopā mudrā ଲୁପ୍ତ କରାଇବା+ଭାବ. ଅ=(ନାରୀମାନଙ୍କର ରୂପାଭିମାନ) ଲୋପ; ଅ=ନୁହେ+ମୁଦ=ହର୍ଷ+ର ଧାତୁ =ଦାନ କରିବା+କର୍ତ୍ତୃ. ଅ+ଆ=ଯାହା ହର୍ଷ ପ୍ରଦାନ କରେ ନାହିଁ । ଲୋପ+ଅମୁଦ୍ରା । ଯେ ନିଜର ରୂପଦ୍ୱାରା ନାରୀମାନଙ୍କର ରୂପାଭିମାନ ଲୋପ କରୁଥିଲେ ଓ ଯେ ପତିଙ୍କ ଶୁଶ୍ରୂଷାର ଲୋପ ହେଲେ ( ଅର୍ଥାତ୍ ପତିଙ୍କର ସେବା ଶୁଶ୍ରୂଷା ନ କଲେ ) ହର୍ଷଲାଭ କରୁ ନ ଥିଲେ]—ଲୋପା; ମହର୍ଷି ଅଗସ୍ତିଙ୍କ ପତ୍ନୀ—1. The wife of the sage Agasti. [ ଲୋପାମୁଦ୍ରାଙ୍କ ଅନ୍ୟ ନାମ—ଲୋପା, କୌଶୀତକୀ, ବରପ୍ରଦା—ହି. ଶ । ] [ ଉ—ବିଧାତା ହୃଦ ସମ୍ମୁଖେ । ବୋଲିବା ଲୋପାମୁଦ୍ରା ତାକୁ—ଉଜ୍ଜ. ବୈଦେହୀଶବିଳାସ । ] [ ବୃ—ଅଗସ୍ତ୍ୟ ମନୋମତ ପତ୍ନୀ ପାଇବା ଆଶାରେ ସକଳ ପ୍ରାଣୀଙ୍କର ଉତ୍କୃଷ୍ଟ ଅଂଶମାନ ଗ୍ରହଣ କରି ଏହି କନ୍ୟାଙ୍କୁ ସୃଷ୍ଟି କରି ଏହାଙ୍କୁ ପାଳ କରି ବଢାଇବା ପାଇଁ ବିଦର୍ଭ ରାଜାଙ୍କ ନିକଟରେ ଛାଡିଥିଲେ ଓ ଯଥା ସମୟରେ ଉକ୍ତ କନ୍ୟାର ପାଣିଗ୍ରହଣ କଲେ । କଥିତ ଅଛି, ଯେ ଲୋପାମୁଦ୍ରା ସ୍ୱାମୀଙ୍କ ନିକଟରେ ଧନ ପ୍ରାର୍ଥନା କରିବାରୁ ଅଗସ୍ତି ଦୈତ୍ୟରାଜ ଇଲ୍ୱଲକୁ ନିହତ କରି ପ୍ରଭୃତ ଧନରାଶି ଆଣି ଏହାଙ୍କୁ ଦାନ କରିଥିଲେ । ] ୨ । ଅଗସ୍ତି ନାମକ ତାରାର ଦକ୍ଷିଣ ପୂର୍ବ ପାଶରେ ଅବସ୍ଥିତ ଏକ କ୍ଷୁଦ୍ର ତାରା (ହି. ଶ) (ନକ୍ଷତ୍ର ଚଳନ କୋଠ ଦେଖ )—2. A small star to the south east of Canopus (star).

**ଲୋପାୟିତ**—ପ୍ରାଦେ. (ଗଞ୍ଜାମ) ବିଣ ( ମୂଳ. ସଂ. ଗୋପାୟିତ )—ଗୁପ୍ତ—
Lopāyita Concealed; secret.

**ଲୋପାଶକ**—ସଂ. ବି, ( ଲୋପ=ପଶୁ ମାଂସ+ଅଶ୍ ଧାତୁ=ଖାଇବା+
Lopāsaka କର୍ତ୍ତୃ. ଅକ )—ଶୃଗାଳ ( ହି. ଶ )—Jackal.

**ଲୋପି ( ଧାତୁ )**—ସଂ. ( ଲୁପ୍ ଧାତୁ+ଣିଚ୍ )—ଲୁପ୍ତ କରାଇବା—
Lopi (root) To cause to disappear; to destroy.

**ଲୋପିବା**—ଦେ. ( ପଦ୍ୟ ) କ୍ରି—ଲୋପ କରିବା—To destroy.
Lopiba ଲୋପକବା लोपना [ ଉ—ଲୋପିଲେ ହୋଇଣ କାଳର ବଶ—ସ୍ୱଧାନାଥ । ]

**ଲୋପୀ**—ସଂ. ବି ( ଲୁପ୍ ଧାତୁ+କର୍ତ୍ତୃ. ଇନ୍=ଲୋପିନ୍ ଶବ୍ଦ, ୧ମା.
Lopī ୧ବ )—ଯେ ଲୋପ କରେ—Destroying; discontinuing.
( ଲୋପିନୀ—ସ୍ତ୍ରୀ )

**ଲୋପ୍ତ୍ର**—ସଂ. ବି ( ଲୁପ୍ ଧାତୁ+କର୍ମ. ତ୍ର )—୧ । ଚୋରା ମାଲ—
Loptra 1. Stolen property. ୨ । ଲୁଟାଇତ ମାଲ—
2. Booty, proceeds of a loot.

**ଲୋପ୍ତ୍ରୀ**—ସଂ. ବି—ମଇଦାର ଲୁଚି ବା ପୁରି—Wheaten rolls of
Loptri bread. [ ବ୍ୟ—ଲୋପ୍ତ୍ରୀ ପ୍ରସ୍ତୁତ କରିବା ସମ୍ବନ୍ଧେ ବୈଦ୍ୟକ ଗ୍ରନ୍ଥରେ ନିମ୍ନଲିଖିତରୂପେ ଲେଖା ଅଛି—
ଧଳା ଗହମକୁ ଧୋଇ, କୁଟି, ଶୁଖାଇ, ପେଷଣୀରେ ଚଲାଇଲେ ଯେଉଁ ଦ୍ରବ୍ୟ ହୁଏ ତାକୁ ସମିତା ( ମଇଦା ) କହନ୍ତି । ଏହାକୁ ଜଳଦ୍ୱାରା କୋମଳ କରି ତାକୁ ଉତ୍ତମରୂପେ ମର୍ଦ୍ଦନ କରିବ ( ଚକଟିବ ) । ଏହି ଖଳିକୁ ହାତ ସାହାଯ୍ୟରେ ବିସ୍ତୃତ କରି ଲୋପ୍ତ୍ରୀ ବା ପିଠା ପରି କରିବ । ଅଧୋମୁଖ ଘଟକୁ ନିଆଁ ଉପରେ ରଖି ତାହାର ପୃଷ୍ଠଦେଶରେ ଏ ପିଠାକୁ ପାରି ଦେବ ଓ ମୃଦୁ ବହ୍ନିରେ ଏହାକୁ ସିଝା କଲେ ଏହା 'ମଣ୍ଡକ' ହେବ । ଏହି ମଣ୍ଡକ ( ଲୋପ୍ତ୍ରୀ )କୁ ଦୁଗ୍ଧ, ଘୃତ ଓ କନ୍ଦ ସଙ୍ଗେ କିମ୍ବା ସିଦ୍ଧ ମାଂସ ସଙ୍ଗେ କିମ୍ବା ଦହିବରା ସଙ୍ଗେ ଖାଇବ । ଏହା ପୁଷ୍ଟିକାରକ, ଶୁକ୍ରବର୍ଦ୍ଧକ, ବଳକାରକ, ଅତ୍ୟନ୍ତ ରୁଚିଜନକ, ମଧୁରରସ, ମଧୁରବିପାକ, ମଳରୋଧକ, ଲଘୁ ଓ ତ୍ରିଦୋଷନାଶକ - ଦ୍ରବ୍ୟଗୁଣ । ]

**ଲୋପ୍ୟ**—ସଂ. ବିଣ (ଲୁପ୍ ଧାତୁ+କର୍ମ ଯ)—ଲୁପ୍ତ ହେବା ଯୋଗ୍ୟ—
Lopya Expungeable; capable of being obliter-
ଲୋପ ated. ଦେ. ବି—ଲୋପ—Extinction; obliteration.
लोप ଦେ. ବିଣ—ଲୁପ୍ତ—Extinct. [ ଉ—ସବୁ ଭୂମି ଯେବେ ଲୋପ୍ୟ ଦେବରେ । ପ୍ରାଚୀ. ପରବେ ଗୀତ ]

**ଲୋପ୍ୟାନ୍**—ଗ୍ରା. ବିଣ (ସଂ. ଲୋପ୍ୟ)—ଲୁପ୍ତ—
Lopyān Obliterated.
ଲୁପ୍ତ लुप्तवान

**ଲୋ: ପ୍ରା:**—ବୈଦେ. ବିଣ. (ଇଂ. 'ଲୋଅର୍ ପ୍ରାଇମେରୀ'ର ସାଙ୍କେତିକ
Lo: prā ରୂପ)—ନିମ୍ନପ୍ରାଥମିକ—Lower Primary.
ଲୋ: ପ୍ରା लो: प्रा: ( ଯଥା, ଲୋ: ପ୍ରା: ସ୍କୁଲ )

**ଲୋଫ୍**—ବୈଦେ. ବି (ଇଂ. ଲୋଫ୍)—ଫୁଲୁକା ରୁଟି—
Loph Loaf.
লোফ लोफ

**ଲୋବା(ଭା)ନ୍**—ବୈଦେ. ବି (ଅ. ଲୋବାନ; ଫା. ଲୁବାନ୍)—୧ ।
Lobā(bhā)n ଝୁଣାପରି ଗୁଗ୍ଗୁଳ ବିଶେଷ । ଶାଲଜାତୀୟ ଏକ ପ୍ରକାର ବୃକ୍ଷର ନିର୍ଯ୍ୟାସ—1. Olibanm.
ল(লো)বান
लोबान

ସଂ. ପର୍ଯ୍ୟାୟ—ଶିଳାରସ, ଶିହ୍ଲକ]
ତୁରଷ୍କ, କପିତୈଳ, କପିଶାଠକ,
କପି, ଯାବନକଳ୍କ
শিলারস
शीलरस
ଫା. ଶଲୁରସ
ଅ. ଉଷାରକମିସ୍ରା,
ମୋଅଇଚୋଶାଇଲ

[ ବ୍ୟ—ହିନ୍ଦୁମାନେ ଝୁଣାକୁ ଧୂପରେ ବ୍ୟବହାର କଲାପରି ମୁସଲମାନ୍‌ମାନେ ଏହାକୁ ଧୂପରେ ବ୍ୟବହାର କରନ୍ତି] ୨ । ଶିଳାରସ । [ବ୍ୟ—ବୈଦ୍ୟକ ମତେ ଏହା ମଧୁରରସ, ସ୍ନିଗ୍ଧ-ଉଷ୍ଣବୀର୍ଯ୍ୟ, ଶୁକ୍ରଜନକ, କାନ୍ତି, ବର୍ଦ୍ଧକ, ପୁଷ୍ଟିକାରକ ଓ କଣ୍ଠ ଶୋଧକ । ଏହା ଘର୍ମ, କୁଷ୍ଠ-ଜ୍ୱର, ଦାହ ଓ ଗ୍ରହଦୋଷ ନାଶକ]—2. Benzoin; styrax; liquid amber.

ସଂ. କୁନ୍ଦୁରୁ, ଶଲ୍ଲକୀନିର୍ଯ୍ୟାସ,
ମୁକୁନ୍ଦ, କୁନ୍ଦ, କୁନ୍ଦୁର,
ତୀକ୍ଷ୍ଣଗନ୍ଧ, ବର୍ଣ୍ଣସୌରାଷ୍ଟ୍ର, ଶିଖସୀ]
କୁନ୍ଦକ, ଗୋପୁରକ ବହୁଗନ୍ଧ,
ସ୍ୱପଣ ।
ଓ. କୁନ୍ଦୁରୁ
কুন্দুক্, কুন্দ্ বথুটি
—बेरोजा, कुन्दुरु, कुन्दुरलोबान
ଗୁ. କନ୍ଦରୁ, ଶେଷ ଗୁନ୍ଦର
ଫା. କନ୍ଦୁଗରୁମୀ, ଖୋଷ୍ଠୀମସ୍ତକୀ,
ମ. ଅବଲଗୁନ୍ଦର, ସାଲଇଚ୍ଛକ
ଅ. କୁନ୍ଦ୍ରେଲକର୍, ବସ୍ତୁନ୍
ତେ. କୁନ୍ଦୁରୁମ୍

୩ । କୁନ୍ଦୁର—[ବ୍ୟ—ବୈଦ୍ୟକ ମତରେ ଏହା ମଧୁରତିକ୍ତକଟୁରସ, ତୀକ୍ଷ୍ଣ ଓ ଚର୍ମର ହିତକର । ଏହା ଜ୍ୱର, ଘର୍ମ, ଗ୍ରହଦୋଷ, ଅଲକ୍ଷ୍ମୀ, ମୁଖରୋଗ, କଫ, ବାୟୁ ପିତ୍ତଜ ରୋଗ, ଦାହ ଓ ପ୍ରଦର ନଷ୍ଟ କରେ । ଏହାର ଲେପନ ଶୈତ୍ୟୋତ୍ପାଦକ; ଏହାକୁ ତୈଳ ସହିତ ପ୍ରୟୋଗ କଲେ ମେଦ ଓ କୋଷ୍ଠବେଦନା ନଷ୍ଟ ହୁଏ]—The resin of Boswellia Thurifera.

ସଂ. ନାମ—ଶଲ୍ଲକୀ, ଗଜଭକ୍ଷ୍ୟ,
ସୁବହା, ସୁରଭି, ରସା ମହେରୁଣା
କୁନ୍ଦୁରୁକୀ, ସଲ୍ଲକୀ, ବହୁସ୍ରବା
শলই
शालइ, सलइ, कुन्दुरु, धूप
ମ. ଶାଳର ଧୂପ
ତା. କୁଂଲ
ଅ. ଅଲ୍ଲୁବାନ୍, ଲୁବାନ୍
ଗୁ: ଶାଲେଡ଼ୁଂ, ଧୂପେଡ଼ୋ

୪ । ଶଲ୍ଲକୀ—4. Indian olibanum; Boswelli. Serrata; frankincense [ ବ୍ୟ—ଏହା ଭାରତବର୍ଷର ବୃକ୍ଷ ନୁହେଁ । ଏ ବୃକ୍ଷ ଅଫ୍ରିକାର ପୂର୍ବ ଉପକୂଳ ସୋମାଲିଲାଣ୍ଡରେ ଓ ଆରବର ଦକ୍ଷିଣ ସମୁଦ୍ରତଟରେ ହୁଏ ଓ ସେଠାରୁ ଭାରତକୁ ଆସେ । ଶିଳାରସର ଅନ୍ୟ ସଂସ୍କୃତ ନାମ ତୁରଷ୍କ ଥିବାରୁ ଓ ଏହାକୁ ଭାରତର ପଶ୍ଚିମ ଦେଶୀୟ ମୁସଲମାନମାନେ ଧୂପପାଇଁ ବ୍ୟବହାର କରୁଥିବାରୁ ସମ୍ଭବତଃ ଏହା ଲୋବାନ୍= (Storax ବା Benzoin) ହୋଇ ପାରେ । ଅବଶ୍ୟ

ଭାଷାରେ ଏହାର ଅନ୍ୟ ନାମ ଲୋବାନ୍‌ଯାଭା=ଯାଭା ଦ୍ୱୀପର ଲୁବାନ । ଏ ବୃକ୍ଷ ସୁମାତ୍ରା ଯାଭା ଆଦି ଦ୍ୱୀପରେ ହୁଏ । ଫଳତଃ ଇଉରୋପ, ଆମେରିକା, ଭାରତବର୍ଷ ଓ ଭାରତୀୟ ଦ୍ୱୀପପୁଞ୍ଜରେ ଶାଳଜାତୀୟ ଅନେକ ପ୍ରକାର ବୃକ୍ଷର ନିର୍ଯ୍ୟାସରୁ ଝୁଣା ଭଳି ଯେଉଁ ଜିନିଷ ବାହାରେ ତାହା ଧୂପରେ ବ୍ୟବହୃତ ହୁଏ ଓ ସ୍ଥାନବିଶେଷରେ ଲୋବାନ୍‌ର ଝୁଣା, ଶିଳାରସ, ଅମ୍ବର, କୁନ୍ଦୁରୁ ନାମମାନ ବ୍ୟବହୃତ ହୁଏ—ଇଉରୋପରେ ଏଥିରୁ ଏକପ୍ରକାର ଅମ୍ଳରସ ପ୍ରସ୍ତୁତ ହୁଏ, ଯାହାକୁ Benzoic acid ବେନ୍‌ଜୋଇକ୍ ଏସିଡ୍ କହନ୍ତି । ଏହାକୁ ନିଆଁରେ ପକାଇଲେ ସୁଗନ୍ଧ ଧୂଆଁ ବାହାରେ । ବୈଦ୍ୟକମତରେ ଏହା କଷାୟରସ, ଶୀତବୀର୍ଯ୍ୟ ଓ ପୁଷ୍ଟିକାରକ । ଏହା ପିତ୍ତ, କଫ ଅତିସାର, ଉଲ୍ଲୁପିତ୍ତ ଓ ବ୍ରଣନାଶକ ।]

[ ଦ୍ର—ଲୋବାନ୍ ଶବ୍ଦ ଏହି ଅର୍ଥ ପ୍ରାୟ ସମଗୁଣସମ୍ପନ୍ନ ଦ୍ରବ୍ୟକୁ ବୁଝାଏ ।]

**ଲୋବିଆ**—ପ୍ରାଦେ (ସମ୍ବଲପୁର, ସିଂହଭୂମି) ବି—(ସଂ. ଲୋଭ୍ୟ, ଭୂଳ. ଆ. Lobiā ଲୋବିୟା)—୧ । ମୁଗଜାତୀୟ ଏକପ୍ରକାର ଲତା ଓ ବରବଟୀ लोबिया ତାହାର ଛୁଇ ଓ ଶସ୍ୟ; ବରଗୁଡ଼ି—1. A species of kidney-bean; Dolichos Sinensis. ୨। ମୁଗ—2. Phaseolus Mungo; a kind of pulse.

**ଲୋଭ୍‌ହା**—ପ୍ରାଦେ (କଟକ) ବିଣ—ଲୋଭୀ—Lobh-hā Greedy; avaricious.

**ଲୋଭ**—ସଂ. ବି (ଲୁଭ୍ ଧାତୁ=ଲଭିବାକୁ ଇଚ୍ଛା କରିବା+ଭାବ. ଅ)—Lobha ୧ । କୌଣସି ବସ୍ତୁ ଲଭିବାର ଇଚ୍ଛା; ଲାଳସା ବା ଲିପ୍ସା—1. Covetousness; eager desire or hankering; longing for a thing.

[ଲୋଭ ଶବ୍ଦର ଅନ୍ୟ ସଂ. ପ୍ରତିଶବ୍ଦ ତୃଷ୍ଣା, ଲିପ୍ସା, ସ୍ପୃହା, କାଙ୍କ୍ଷା, ଗର୍ଦ୍ଧ, ଲୋଲୁପତା, ଇଚ୍ଛା, ବାଞ୍ଛା, ଅଭିଳାଷ ।]

୨ । ପରଦ୍ରବ୍ୟ ଗ୍ରହଣ କରିବାକୁ ବାଞ୍ଛା—2. Avarice; cupidity. [ ଦ୍ର—ଲୋଭ ନାନାଦି ପଦାର୍ଥ ଓ ବିଷୟପ୍ରତି ଜନ୍ମେ । ଯଥା—ଖାଦ୍ୟ ପ୍ରତି—Greed; ପର ଧନ ପ୍ରତି—avarice; ସ୍ତ୍ରୀଭୋଗପ୍ରତି—Lust; ପର ଧନପ୍ରତି—Covetuousness; ଆପଣାର ଜୀବନପ୍ରତି—Attachment) ୩ । ମମତା; କୌଣସି ପଦାର୍ଥ ବା ବ୍ୟକ୍ତିପ୍ରତି ପ୍ରବଳ ଅନୁରାଗ; ମାୟାକର୍ଷଣ—3. Attachment. [ଦ୍ର—ଆପଣାର ବା ଅପଣା ଅଧିକାରରେ ଥିବା ବସ୍ତୁ ଆଦି ପ୍ରତି ମନରେ ଲୋଭ ଜନ୍ମିଲେ ତାହା ଛାଡ଼ିବାକୁ ମନ ହୁଏ ନାହିଁ, ଏହାକୁ ମମତାବନ୍ଧନ ବା ମାୟାବନ୍ଧନ ବୋଲାଯାଏ । ପରର ବସ୍ତୁ ପର ଅଧିକାରରେ ଥିବା ଧନ ଆଦିପ୍ରତି ମନରେ ଲୋଭ ଜନ୍ମିଲେ ତାହା ନିଜର ଅଧିକାରାଧୀନ କରିବାକୁ ମନ ହୁଏ—ଏହାକୁ ଲୋଭ ବୋଲାଯାଏ । ଲୋଭକୁ ଦମନ କରିବାପାଇଁ ସବୁ ଦେଶର, ସବୁ ଧର୍ମର, ସବୁ କାଳର ଓ ସବୁ ସମାଜର ଉପଦେଶକମାନେ ଉପଦେଶ ଦେଇ ଯାଇଅଛନ୍ତି । ) ୪ । କୃପଣତା—4. Miserliness.

**ଲୋଭ ଉପୁଜା(ଜେ)ଇବା**—ଦେ. ବି (ସଂ. ଲୋଭ ଉପଜାଇ)—ଲୋଭ Lobha upujā(je)ibā ଜନ୍ମାଇବା [ ଦେଖ ]—Lobha ଲୋଭ ଜନ୍ମାନ लोभ उपजाना Janmāibā (See)

**ଲୋଭ ଉପୁଜିବା**—ଦେ. ବି ( ସଂ. ଲୋଭ+ଉପଜାତ )—ଲୋଭ Lobha upujibā ଜନ୍ମିବା [ ଦେଖ ]—Lobha ଲୋଭଜନ୍ମାନ लोभउपजना Janmibā (See)

**ଲୋଭକର**—ସଂ. ବିଣ—ଲୋଭଜନକ [ଦେଖ] Lobhakara Lobhajanaka (See) [ ଲୋଭକାରୀ—ସ୍ତ୍ରୀ ]

**ଲୋଭ କରିବା**—ଦେ. କ୍ରି—୧ । କୌଣସି ଦ୍ରବ୍ୟ ପାଇବାକୁ ବା ନ Lobha karibā ଛାଡ଼ିବାକୁ ମନରେ ପ୍ରବଳ ବାସନା କରିବା-ଲୋଭକରା लोभकरना 1. To have an inordinate hankering after; to covet; to long for ୨ । କୌଣସି ବସ୍ତୁପ୍ରତି ବିଶେଷ ଆସକ୍ତ ହେବା—2 To have a strong attachment to or for anything.

**ଲୋଭ ଛଡ଼ା(ଡ଼େ)ଇବା**—ଦେ. କ୍ରି—ଉପଦେଶଆଦିଦ୍ୱାରା କୌଣସି Lobha chhardā(rde)ibā ବ୍ୟକ୍ତିର ମନରୁ ଲୋଭକୁ ଦୂର ଲୋଭ ଛାଡ଼ାନ କରାଇବା—To cause a man to shake लोभ छुडाना off lust or avarice by good advice.

**ଲୋଭ ଛାଡ଼ିବା**—ଦେ. କ୍ରି—୧ । ମନରୁ କୌଣସି ବସ୍ତୁ ବା ବିଷୟ ପ୍ରତି Lobha chhārdibā ଲାଳସା ବା ମାୟା ତ୍ୟାଗ କରିବା—(ଲୋଭ ତେଜିବା, ଲୋଭ ଛାଡ଼ିଦେବା—ଅନ୍ୟରୂପ) 1. To shake ଲୋଭ ଛାଡ଼ା off the feeling of lust or avarice from लोभ छोडना the mind; to relinquish the desire for something. ୧ । ଲୋଭ ତ୍ୟାଗ—1. Relinquishment of avarice. ୨ । କୌଣସି ବିଷୟ ବା ବ୍ୟକ୍ତି ପ୍ରତି ମାୟା କମିଯିବା—2. Relinquishment of the tie or attachment towards anything. (ଯଥା—ସାଅନ୍ତାଣୀଙ୍କର ମୋଠାରୁ ଲୋଭ ଛାଡ଼ି ଗଲାଣି, ତାଙ୍କ ପୁଅ ମାଇପଙ୍କଠାରୁ ଲୋଭ ଛାଡ଼ି ଗଲାଣି )

**ଲୋଭଜନକ**—ସଂ. ବିଣ (୬ଷ୍ଠୀ ତତ୍)—୧ । ଯାହା ମନରେ ଲୋଭଜାତ Lobhajanaka କରାଏ; ଲୋଭୋଦ୍ଦୀପକ—1. Exciting (ଲୋଭଜନିକା—ସ୍ତ୍ରୀ) cupidity; exciting avarice. ୨ । ପ୍ରଲୋଭନକର—2. Tempting; alluring.

**ଲୋଭଜନିତ**—ସଂ. ବିଣ (୩ୟା ତତ୍)—ଲୋଭରୁ ଉତ୍ପନ୍ନ (ପାପକର୍ମାଦି)—Lobhajanita Sins or acts arising from avarice. (ଲୋଭଜନ୍ୟ, ଲୋଭଜାତ—ଅନ୍ୟରୂପ)

**ଲୋଭ ଜନ୍ମା(ନ୍ମେ)ଇବା**—ଦେ. କ୍ରି (ସଂ. ଲୋଭ+ଜନ୍ମ)—୧ । ଅନ୍ୟ Lobha janmā(nme)ibā ବ୍ୟକ୍ତି ମନରେ ଲୋଭ ବା ପ୍ରାପ୍ତି ଲୋଭଜନ୍ମାନ ଆଶାକୁ ଉତ୍ତେଜିତ କରିବା—1. To excite lust लोभ पैदाकरना or avarice in another person.

( ଯଥା—ଏ ସୁନ୍ଦର ବସ୍ତୁଟି ମୋ ମନରେ ଲୋଭ ଜନ୍ମାଇଲାଣି ) ୨ । ଅନ୍ୟ ବ୍ୟକ୍ତିଙ୍କୁ ପ୍ରଲୋଭିତ କରାଇବା—2. To excite a person's lust; to tempt or seduce a person.

**ଲୋଭ ଜନ୍ମିବା**—ଦେ. କ୍ର—ଲୋଭ ବା ପ୍ରବଳ ଆକାଂକ୍ଷା ଉତ୍ପନ୍ନ
Lobha janmibā ହେବା—The state of being
লোভ হওয়া लोभ पैदा होना overpowered by greed.

**ଲୋଭ ତେଜିବା**—ଦେ. କ୍ରି (ଲୋଭ+ତ୍ୟଜ୍ ଧାତୁ)—ଲୋଭ ଛାଡ଼ିବା
Lobha tejibā (ଦେଖ)—Lobha chhārdibā. (See)
লোভত্যাগ করা लोभत्यजना (त्यागना)

**ଲୋଭ ତ୍ୟାଗ**—ସ.ବି (୬ଷ୍ଠୀ ତତ୍ )—କୌଣସି ବିଷୟ ପ୍ରତି ଆକାଂକ୍ଷାର
Lobha tyāga ପରିତ୍ୟାଗ—Relinquishment of the desire for anything.

**ଲୋଭ ଦେଖା(ଖେ)ଇବା**—ଦେ. କ୍ରି—କୌଣସି ବ୍ୟକ୍ତିଙ୍କୁ ପ୍ରଲୋଭିତ
Lobha dekhā(khe)ibā କରିବା; କୌଣସି ବ୍ୟକ୍ତିର
লোভ দেখান ଲୋଭ ଉଦ୍ରେକ କରାଇବା—To tempt or
लोभ दिखाना allure a person; to put temptations before a person.

**ଲୋଭନ**—ସ. ବି (ଲୁଭ୍ ଧାତୁ+ଣିଚ୍=ଲୋଭି ଧାତୁ+ଭାବ. ଅନ)—
Lobhana ୧ । କୌଣସି ଦ୍ରବ୍ୟ ପ୍ରତି ଅନ୍ୟର ମନରେ ଲୋଭ ଜନ୍ମାଇବା; ପ୍ରଲୋଭନ—1. Tempting; temptation; allurement. ୨ । (+କର୍ତ୍ତୃ. ଅନ) ସ୍ୱର୍ଣ୍ଣ—
(ଲୋଭନା—ସ୍ତ୍ରୀ) 2. Gold. (Apte) ସ. ବିଣ. ପୁଂ (+କର୍ତ୍ତୃ. ଅନ)—ପ୍ରଲୋଭନକାରୀ—Alluring; tempting. (Apte)

**ଲୋଭନୀୟ**—ସ. ବିଣ (ଲୁଭ୍ ଧାତୁ+କର୍ମ. ଅନୀୟ)—୧ । ସ୍ପୃହଣୀୟ—
Lobhanīya 1. Desirable. ୨ । ମନରେ ଲୋଭର
(ଲୋଭନୀୟା—ସ୍ତ୍ରୀ) ଉତ୍ପାଦକ; ଯାହା ଦେଖିଲେ ମନରେ ଲୋଭର ଉତ୍ପୁଜେ—2. Tempting; exciting; longing in the mind. ୩ । ଅତି ସୁନ୍ଦର; ମନୋହର—3. Charming.

**ଲୋଭବନ୍ତ**—ଦେ. ବିଣ (ସଂ. ଲୋଭବାନ୍)—ଲୋଭୀ—Greedy;
Lobhabanta avaricious. [ଉ—ଲୋଭବନ୍ତ ଗୁରୁମାନେ
লোভী लोभी କଳିରେ ପ୍ରବଳ—ପ୍ରାଚୀ. ଗୁରୁଭକ୍ତି ଗୀତା]

**ଲୋଭରହିତ**—ସଂ. ବିଣ. ପୁଂ—ଯାହା ମନରେ ଲୋଭ ନ ଥାଏ;
Lobharahita ଆକାଂକ୍ଷା ରହିତ—Free from covetousness or avarice. [ ଦ୍ର—ଏହିପରି
ଲୋଭବର୍ଜିତ } —ଅନ୍ୟରୂପ] ଲୋଭମୁକ୍ତ; ଲୋଭବିହୀନ; ଲୋଭମୁକ୍ତ;
ଲୋଭହୀନ }
ଲୋଭଶୂନ୍ୟ } ଲୋଭରହିତ ଆଦି ଶବ୍ଦ ହୁଏ ।]
(ଲୋଭରହିତା—ସ୍ତ୍ରୀ) (ଲୋଭ ରାହିତ୍ୟ – ବି)

**ଲୋଭରା**—ପ୍ରାଦେ (ଗଞ୍ଜାମ) ବିଣ. ପୁଂ—ଲୋଭୀ—
Lobharā Avaricious; covetous.
(ଲୋଭରୀ—ସ୍ତ୍ରୀ)

**ଲୋଭରୁ ପାପ ପାପରୁ ମୃତ୍ୟୁ**—ଦେ. ପ୍ରବଚନ (ସ. ଲୋଭାତ୍ ପାପଃ,
Lobharu pāpa pāparu mrutyu ପାପାତ୍ ମୃତ୍ୟୁଃ)—
লোভেপাপ পাপেমৃত্যু लोभसेपाप पापसे मृत्यु ମନୁଷ୍ୟର ମନରେ ଲୋଭ ଜନ୍ମିଲେ ମନୁଷ୍ୟ ଉକ୍ତ ବସ୍ତୁ ପାଇବା ପାଇଁ ପାପ କର୍ମ କରେ ଓ ପାପକର୍ମର ପରିଣାମ ମୃତ୍ୟୁ ଅଟେ—(a proverb) Avarice begets sin and sin leads to death.

**ଲୋଭରେ ପଡ଼ିବା**—ଦେ. କ୍ରି—କୌଣସି ବିଷୟ ପ୍ରତି ଅତ୍ୟନ୍ତ ଲୋଭ-
Lobhare pardibā ଯୁକ୍ତ ହେବା—To fall a victim
লোভে পড়া to temptation; to surrender one's
लोभमे पडना self to tempation.

**ଲୋଭଲୋଭନା**—ପ୍ରାଦେ (ଗଡ଼ଜାତ) ବିଣ—୧ । ଲୋଭନୀୟ—
Lobhalobh-nā 1. Tempting; alluring.
୨ । ମନୋହର—2. Beautiful; charming.

**ଲୋଭ ସମ୍ବରଣ**—ସ. ବି ( ଲୋଭ+ସମ୍+ବୃ ଧାତୁ+ଭାବ. ଅନ )—
Lobha sambaraṇa ଲୋଭ ତ୍ୟାଗ; କୌଣସି ବିଷୟ ପାଇଁ ମନରେ ଜାତ ହେବା ଲୋଭକୁ ସମ୍ଭାଳିବା ବା ନିୟନ୍ତ୍ରିତ କରିବା—Checking of one's greed or
(ଲୋଭସମ୍ଭାଳା—ଦେ. ରୂପ) avarice for a thing.

**ଲୋଭ ସମ୍ଭାଳିବା**—ଦେ. କ୍ରି. ( ସ. ଲୋଭ ସମ୍ବରଣ )—କୌଣସି ବସ୍ତୁ
Lobha sambhālibā ପ୍ରତି ମନରେ ଜାତ ହେବା ପ୍ରବଳ
লোভ সামলান ଲାଳସାକୁ ନିୟନ୍ତ୍ରିତ କରିବା—To check
लोभ संभालना or control one's avarice or greed.

**ଲୋଭୀ**—ଦେ. ବିଣ. ପୁଂ ( ସ. ଲୋଭିତ )—୧ । ଲୋଭଯୁକ୍ତ; ଲୋଭୀ—
Lobhā 1. Covetous; avaricious. ୨ । ଆକର୍ଷିତ
লোভী ଲୋଭିତ; ଲୁବ୍ଧ; ମୁଗ୍ଧ—2. Coveting;
लुभाया हुआ; लालचा, लोभी charmed. ୩ । ପେଟୁ—
[ ଲୋଭେଇ—ସ୍ତ୍ରୀ ] 3. Greedy. ୪ । ପ୍ରଲୋଭିତ—
4. Tempted; allured. [ ଉ—ସେ ସଭାକୁ ସୁଧର୍ମୀ ସଭା ବୋଲି ସଭା । ସବୁ ଲୋକେ ଦେବେ ଦେଖିଲେ ହେବେ ଲୋଭୀ—କୃଷ୍ଣସିଂହ. ମହାଭାରତ. ସଭା । ]

**ଲୋଭା(ଭେ)ଇବା**—ଦେ. କ୍ରି ( ସ. ଲୋଭ ଶବ୍ଦରୁ ନାମ ଧାତୁ ଲୋଭାୟ
Lobhā(bhe)ibā ଧାତୁ )—୧ । ଅନ୍ୟ ବ୍ୟକ୍ତିଙ୍କୁ କୌଣସି
লোভ দেখান ବ୍ୟକ୍ତି ପ୍ରତି ପ୍ରଲୋଭିତ କରିବା—1. To tempt
लुभाना or allure a person towards a thing.
[ ଉ—ଇନ୍ଦ୍ରଙ୍କର ମନ ଯେ ଲୋଭାଇବା ପାଇଁ—ଲୋଭିୟେ ଯାଓୟା କୃଷ୍ଣସିଂହ. ମହାଭାରତ. ବନ । ] ୨ । କୌଣସି ବସ୍ତୁ ବା ବ୍ୟକ୍ତି ପ୍ରତି ( ଆପଣାର ମନ ) ଲୁବ୍ଧ ହେବା—2. To covet for a thing, to run after a thing or object. ୩ । ପ୍ରଲୋଭିତ ହେବା—3. To be tempted or allured.

**ଲୋଭାନ୍**—ବୈଦେ. ବି—ଲୋବାନ୍ ( ଦେଖ )
Lobhān Lobān (See)

**ଲୋଭାନ୍ୱିତ**—ସ. ବଣ. ପୁଂ ( ଜାମ୍ବା ଭତ୍ )—ଲୁବ୍ଧ; ଲାଳାୟିତ—
Lobhānwita Coveting.
( ଲୋଭାନ୍ୱିତା—ଅନ୍ୟରୂପ ) ( ଲୋଭାନ୍ୱିତା—ସ୍ତ୍ରୀ )

**ଲୋଭାଭିଭୂତ**—ସ. ବଣ. ପୁଂ ( ଜମ୍ବା ଭତ୍ )—ଲାଳାୟିତ; ପ୍ରବଳ
Lobhābhibhūta ଲାଳସାଦ୍ୱାରା ଉଦ୍‌ବେଜିତ— Overtaken
[ଲୋଭାର୍ତ୍ତ—ଅନ୍ୟରୂପ] by greed, lust or avarice;
ଲୋଭାଭିଭୂତା } ସ୍ତ୍ରୀ eagerly longing for an
ଲୋଭାର୍ତ୍ତା } object.

**ଲୋଭାର୍ତ୍ତି**—ଦେ. ବଣ ( ସ. ଲୋଭାର୍ତ୍ତ )—ଲୋଭାଭିଭୂତ ( ଦେଖ )
Lobhārtti Lobhābhibhūta ( See )

**ଲୋଭାର୍ଥୀ**—ଦେ. ବଣ ( ସ. ଲୋଭାର୍ଥ )—କୌଣସି ବିଷୟ ପାଇବା
Lobhārthi ପାଇଁ ପ୍ରବଳ ଲୋଭଯୁକ୍ତ ହୋଇ କୌଣସି ସ୍ଥାନରେ
ଉପସ୍ଥିତ—Come to a place with a strong
longing to get a thing.

**ଲୋଭାର୍ହ**—ସଂ. ବଣ. ପୁଂ ( ଲୋଭ+ଅର୍ହ ଧାତୁ+କର୍ତ୍ତୃ. ଅ )—ଯାହା
Lobhārha ଲୋଭ କରିବାର ଯୋଗ୍ୟ, ଲୋଭନୀୟ—
[ ଲୋଭାର୍ହା—ସ୍ତ୍ରୀ ] Fit to be coveted for.

**ଲୋଭି** ( ଧାତୁ )—ସ. ( ଲୁଭ୍ ଧାତୁ+ଣିଚ୍ )—ଲୋଭାଇବା; ଅନ୍ୟକୁ
Lobhi (root) ଲୁବ୍ଧ କରାଇବା—To allure or tempt
a person.

**ଲୋଭିଆ**—ଦେ. ବଣ. ପୁଂ—( ସ. ଲୋଭନ୍ ) ଲୋଭ ପ୍ରକୃତିବିଶିଷ୍ଟ—
Lobhiā Of a covetous nature. ପ୍ରାଦେ (ଗଡ଼ଜାତ.
ଲୋଭୀ ଲୋଭୀ ସିଂହଭୂମି. ବାଲେଶ୍ୱର) ବ ( ଭୂଲ. ହି. ଲୋଭ୍ୟା;
( ଲୋଭେଇ—ବଣ. ସ୍ତ୍ରୀ ) ସଂ. ଲୋଭ୍ୟ)—ବରଗୁଡ଼ି (ଦେଖ)—
Baragurdi ( See )

**ଲୋଭିଆ ଛୁଇଁ**—ପ୍ରାଦେ. ( ବାଲେଶ୍ୱର; ଗଡ଼ଜାତ; ସିଂହଭୂମି ) ବ—
Lobhiā chhuiṅ ବରଗୁଡ଼ି ଛୁଇଁ—The beans of Doli-
chus Sinensis.

**ଲୋଭିତ**—ସଂ. ବଣ ( ଲୋଭ ଧାତୁ+କର୍ମ. ତ )—୧ । ପ୍ରଲୋଭିତ;
Lobhita ଲୁବ୍ଧ; ଯାହା ମନରେ ପ୍ରବଳ ଆକାଙ୍କ୍ଷା ଜନ୍ମିଅଛି—
(ଲୋଭିତା—ସ୍ତ୍ରୀ) 1. Tempted; allured. ୨ । ଲଭିବାକୁ
ଇଚ୍ଛୁକ; ଲାଳାୟିତ—2 Desirous; hankering
after a thing. ୩ । ମୁଗ୍ଧ—3. Charmed.
[ ଉ—ସରସୀ ଶୋଭିତ ଅବାଇଁ ମନ [illegible]
[illegible] ଘଟନା, ବକୁମରେ [illegible]
[illegible] ଲାବଣ୍ୟବତୀ । ]

**ଲୋଭିତା**—ଦେ. ବିଶ (ସଂ. ଲୋଭନ) [illegible] (ଦେଖ)—
Lobhitā; Lobhitā(See) [illegible] ଶୋଭିତା !
ଲୋଭୀତ ଲୋଭିତ [illegible] ଲୋଭିତା—ଉ. ପ୍ରେମ
[illegible] । ] ସଂ. ବିଶ. ସ୍ତ୍ରୀ ( ଲୋଭିତ+ଆ )—
[illegible] Feminine of Lobhita.

**ଲୋଭିବା**—ଦେ. ବି (ସଂ. ଲୁଭ୍ ଧାତୁ) [illegible] ଲୁବ୍ଧ ହେବା; ଲୋଭ-
Lobhibā [illegible] ହେବା—1. To be tempted for
ନ୍ଦିଭିୟେ ଯାଓୟା, ଲୋଭା ( someting ). ୨ । ପାଇବାକୁ
ଇଚ୍ଛା ଅଭିଳାଷ କରିବା—2. To long for; to hanker
after; to desire to get. (ଉ—କୁନ୍ତୀ ନାମରେ
ମୋହର ଅଛି ହୋଇଅଛବ । ସୁନ୍ଦରପଣେ ତାଙ୍କୁ ଲୋଭନ୍ତି
ସଦାଏ—କୃଷ୍ଣସିଂହ. ମହାଭାରତ. ବନ । )

**ଲୋଭୀ**—ସଂ. ବଣ. ପୁଂ (ଲୋଭ+ଇନ୍, ୧ମା ୧ବ)—୧ । ଲୋଭଯୁକ୍ତ;
Lobhi ଲୋଲୁପ—1. Covetous; avaricious.
(ଲୋଭିନୀ—ସ୍ତ୍ରୀ) ୨ । ପେଟୁ—2. Gluttonous. ୩ । ଲୋଭ
ପ୍ରକୃତିଯୁକ୍ତ—3. Greedy by nature. [ବି—ଯେଉଁ
ଦ୍ରବ୍ୟ ପ୍ରତି ମନୁଷ୍ୟ ଲୋଭଯୁକ୍ତ ହୁଏ ସେହି ଶବ୍ଦ ସଙ୍ଗେ
ଲୋଭୀ ଶବ୍ଦ ଯୁକ୍ତ ହୁଏ, ଯଥା—ଅର୍ଥଲୋଭୀ, ଧନଲୋଭୀ,
ଖାଦ୍ୟଲୋଭୀ, ବିଷୟ ଲୋଭୀ, ସଂସାର ଲୋଭୀ ଇତ୍ୟାଦି । )

**ଲୋଭ୍ୟ**—ସଂ. ବଣ ( ଲୁଭ୍ ଧାତୁ+କର୍ମ: ଯ )—ଲୋଭନୀୟ ( ଦେଖ )
Lobhya Lobhaniya ( See )

**ଲୋଭ୍ୟମାନ**—ସଂ. ବଣ. ପୁଂ ( ଲୁଭ୍ ଧାତୁ+କର୍ମ. ଆନ )—୧ ।
Lobhyamāna ଆକୃଷ୍ୟମାଣ—1. Attracted. ୨ । କୌଣସି
ବସ୍ତୁ ପ୍ରତି ଆସକ୍ତ—2, Having an attachment
or hankering for a thing. ୩ । କୌଣସି
ବସ୍ତୁ ପ୍ରତି ଲାଳାୟିତ—3. Coveting; hankering
(ଲୋଭ୍ୟମାନା—ସ୍ତ୍ରୀ) after; longing for.

**ଲୋମ**—ସ. ବି.—(ଲୂ ଧାତୁ=ଛେଦନ କରିବା+କର୍ମ. ମନ୍; ଲୋମନ୍
Loma ଶବ୍ଦ ୧ମା. ୧ବ)—୧ । ଦେହର ସର୍ବାଙ୍ଗରେ ଉଠିବା
କେଶ; ରୋମ (ଇତ୍ୟାଦି) (ଦେଖ)—1. Hair over
the body; Roma (etc), (See) [ ବି—ରୋମ
ଶବ୍ଦ ପୂର୍ବେ ବା ପରେ ଲଗାଯାଇ ଯେଉଁ ଶବ୍ଦ ବ୍ୟବହୃତ
ହୁଏ, ସେମାନ ଲୋମ ଶବ୍ଦ ସଙ୍ଗେ ମଧ୍ୟ ବ୍ୟବହୃତ ହୁଏ । ]
୨ । ପୁଚ୍ଛ; ଲାଞ୍ଜ—2. Tail. ୩ । ପଶୁମାନଙ୍କ ଦେହ
ଉପରେ ଉଠିଥିବା କେଶ; ପଶମ—3. Fur; wool.
୪ । ପକ୍ଷୀଙ୍କ ଦେହରେ ଉଠିଥିବା ଶୋଟପର—4. Down
on the body of birds. ୫ । ଭୂତକେଶୀ
(ଦେଖ)—(ଦ୍ରବ୍ୟଗୁଣ)—5. Bhūtakeśi (See)

**ଲୋମ ଉଖା(ପା)ଡ଼ିବା**—ଦେ. କ୍ରି.—(ସ. ଲୋମ ଉତ୍ପାଟନ)—ରୋମ
Loma ukhā(pā)rdibā ଉଖାଡ଼ିବା (ଦେଖ)—Roma
ukhārdibā (See)

**ଲୋମ ଉଖୁ(ପୁ)ଡ଼ିବା**—ଦେ. କ୍ରି—ରୋମ ଉଖୁଡ଼ିବା (ଦେଖ)
Loma uku(pu)rdibā Roma ukhurdibā (See)
[ଲୋମ ଉଠିଯିବା—ଅନ୍ୟରୂପ]

**ଲୋମ ଉଠିବା(ଉଠିଯିବା)**—ଦେ. କ୍ରି—ରୋମ ଉଠିବା (ଉଠିଯିବା)
Loma uthibā(uthijibā) (ଦେଖ)—Roma uthibā
(uthijbā) (See)

**ଲୋମକ**—ସଂ. ବିଶ. (ଲୋମ+ସ୍ୱାର୍ଥେ. କ)—ଲୋମଶ; ଲୋମଯୁକ୍ତ—
Lomaka Hairy; downy; furry

ଲୋମ କରଣୀ—ସଂ. ବି.—ଜଟାମାଂସୀ (ଦେଖ)
Loma karaṇī Jaṭāmaṁsī (See)

ଲୋମ କର୍କଟୀ—ସ. ବି.—ଅଜମୋଦା (ଦେଖ)
Loma karkaṭī Ajamodā (See)

ଲୋମ କର୍ଣ୍ଣ—ସ. ବିଣ—(ବହୁବ୍ରୀହି; ଲୋମଯୁକ୍ତ କର୍ଣ୍ଣ ଯାହାର)—
Loma karṇṇa ୧ । ଯାହାର କର୍ଣ୍ଣ ଲୋମମୟ—
1. Having ears covered with hair. ୨ । ଶଶା, ଠେକୁଆ—2. Hare. ୩ । ମୂଷା—3. Rat.

ଲୋମ କୂପ—ସ. ବି.—(୬ଷ୍ଠୀ ତତ୍)—ରୋମ କୂପ (ଦେଖ)
Loma kūpa Roma kūpa (See)

ଲୋମ ଗୁଚ୍ଛ—ସ. ବି.—(୬ଷ୍ଠୀ ତତ୍)—ରୋମ ଗୁଚ୍ଛ (ଦେଖ)
Loma guchchha Roma guchchha (See)

ଲୋମଘ୍ନ—ସ ବିଣ.—(ଲୋମ+ହନ୍ ଧାତୁ+କର୍ତ୍ତୃ.ଅ)—ଲୋମନାଶକ;
Lomaghna ଯେଉଁ ବସ୍ତୁର ପ୍ରୟୋଗ ବା ପ୍ରଲେପ ଦ୍ୱାରା ଲୋମ ଉଠିଯାଏ—
Destroying the hair; causing baldness; depilatory. ବି.—୧ । ଇନ୍ଦ୍ରଲୁପ୍ତ; ରୋଗବିଶେଷ [ଏଥିରେ ମୁଣ୍ଡରୁ ଲୋମ ଉଠି ଯାଏ)—1. Baldness. ୨ । ଶିଆଳୀ ଖାଇବା ରୋଗ—2. A disease which causes the hairs of parts of the body to fall down.

ଲୋମଜ—ସଂ ବିଣ.—(ଲୋମ+ଜନ୍ ଧାତୁ+କର୍ତ୍ତୃ. ଅ)—ରୋମଜ
Lomaja Romaja (See)

ଲୋମ ଟ(ଟା)ଙ୍କୁ(ଙ୍ଗୁ)ରିବା—ଦେ. କ୍ରି—ରୋମ ଟଙ୍କୁରିବା (ଦେଖ)
Loma ṭa(ṭā)ṅku(ṅgu)ribā Roma ṭāṅkuribā (See)
ଲୋମ ଠାଳିବା }
ଲୋମ ଠାକୁ(ଙ୍ଗୁ)ର ଉଠିବା } —ଅନ୍ୟରୂପ

ଲୋମ ଟ(ଟା)ଙ୍କୁ(ଙ୍ଗୁ)ରା—ଦେ. ବି.—(ସ. ଲୋମୋଦ୍ଗମ)—ରୋମ
Loma ṭa(ṭā)ṅkū(ṅgu)rā ଟାଙ୍କୁରା [ଦେଖ]. Roma ṭāṅkurā (See)

ଲୋମ ନାଶନ(କ)—ସ. ବି ଓ ବିଣ.—ଲୋମଘ୍ନ ଔଷଧ—
Loma nāśana(ka) A depilatory.
[ଲୋମ ଶାତନ—ଅନ୍ୟରୂପ]

ଲୋମ ପତା—ଦେ. ବି—ଅକ୍ଷିପତା—
Loma patā चोंखेर पाता पपनी Eye-lid.
[ଭୂ—ବାଲକ ବନ୍ଧୁ ଦିଭାମାତା, ନୟନ ବନ୍ଧୁ ଲୋମ ପତା । ଜଗନ୍ନାଥ ଭାଗବତ ।]

ଲୋମ ପାଦ—ସ.ବି—(ନାମ)—ରାମାୟଣ ବର୍ଣ୍ଣିତ ଅଙ୍ଗଦେଶର ରାଜା—
Loma pāda Name of a king of Aṅga country of ancient India. [ଦ୍ର—ଏ ଋଷ୍ୟଶୃଙ୍ଗ ମୁନିଙ୍କ ଶ୍ୱଶୁର । ଏକଦା ଏ ବ୍ରାହ୍ମଣମାନଙ୍କୁ ଅପମାନ ଦେବାରୁ ବ୍ରାହ୍ମଣମାନେ ରାଜ୍ୟ ଛାଡ଼ି ଚାଲିଗଲେ । ଏହାଙ୍କ ରାଜ୍ୟରେ ବାରବର୍ଷ ବର୍ଷା ନ ହେବାରୁ, ଏ ଜରତ୍କାରୁ ଆଦି ବାରନାରୀଙ୍କୁ ପଠାଇ ବିଭାଣ୍ଡକ ଋଷିଙ୍କ ପୁତ୍ର ଋଷ୍ୟଶୃଙ୍ଗଙ୍କୁ ଅଣାଇ ଯଜ୍ଞ କରିବାରୁ ବର୍ଷା ହେଲା ଓ ଋଷ୍ୟଶୃଙ୍ଗ ଲୋମପାଦଙ୍କ ପାଳିତା ଦଶରଥଙ୍କ କନ୍ୟା ଶାନ୍ତାଙ୍କୁ ବିବାହ କଲେ ।]

ଲୋମପାଦ ପୁର—ସଂ. ବି.—ଚମ୍ପାନଗରୀ; ଲୋମପାଦ ରାଜାଙ୍କ
Lomapāda pura ରାଜଧାନୀ; ପ୍ରାଚୀନ ଅଙ୍ଗଦେଶର ରାଜଧାନୀ, (ଆଧୁନିକ ଭାଗଲପୁର)—Ancient capital of the Aṅga country (corresponding to Bhagal pur in Bihar).

ଲୋମ ବିଲ—ସଂ. ବି.—(୬ଷ୍ଠୀ ତତ୍)—ଲୋମ କୂପ—
Loma bila Loma kūpa (See)

ଲୋମ ବିଲୋମ—ଦେ. ବିଣ.—(ସଂ. ଅନୁଲୋମ ବିଲୋମ)—୧ ।
Loma biloma ଅସଂଯତ; ଅସମ୍ବଦ୍ଧ—1. Unarranged; उलट पालट लोम बिलोम disarranged. ୨ । ଓଲଟ-ପାଲଟ—2. Topsyturvy. ବି.—୧ । ଆଗ କଥା ପଛ ଓ ପଛ କଥା ଆଗ ହେବା ଅବସ୍ଥା—1. Want of arrangement or system; inversion of the sequence. ୨ । କାବ୍ୟାଲଙ୍କାର ବିଶେଷ—2. A figure of speech. [ଦ୍ର—ଏ ଅଲଙ୍କାର ଅନୁସାରେ ରଚିତ ପଦର ଆରମ୍ଭରୁ ପଢ଼ିଲେ ଏକ ଅର୍ଥ ଓ ପଦର ଶେଷ ଆଡ଼ୁ ଓଲଟାଇ ପଢ଼ିଲେ ଆଉ ଏକ ଅର୍ଥ ହୁଏ ।]

ଲୋମ ବିଷ—ସଂ. ବିଣ—(ବହୁବ୍ରୀହି; ଲୋମରେ ବିଷ ଅଛି ଯାହାର)—
Loma bisha ଯେଉଁ ଜୀବର ଲୋମ ବିଷମୟ—(animal) Having poison in the hairs. ବି.—ବ୍ୟାଘ୍ର Tiger.

ଲୋମ ଭ୍ରମୀ—ସ. ବି.—(୬ଷ୍ଠୀ ତତ୍)—ଲୋମର ଆବର୍ତ୍ତ ବା ଭଉଁରୀ—
Loma bhramī A whorl of the furs of the body.

ଲୋମ ରାଜି—ସଂ. ବି.—(୬ଷ୍ଠୀ ତତ୍)—ରୋମରାଜି (ଦେଖ)
Loma rāji Roma rāji (See)
[ଲୋମ ଶ୍ରେଣୀ, ଲୋମ ଲତା; ଲୋମାବଳି—ଅନ୍ୟରୂପ]

ଲୋମଶ—ସ. ବିଣ (ଲୋମ+ଯୁକ୍ତାର୍ଥେ ଶ)—ରୋମଶ (ଦେଖ)—
Lomaśa Romaśa (See) ସ. ବି—୧ । ମୁନିବିଶେଷ—(ଲୋମଶା—ସ୍ତ୍ରୀ) 1. Name of a sage. [ଦ୍ର—ଏ ମାର୍କଣ୍ଡେୟ ଋଷିଙ୍କର କନିଷ୍ଠ ଭ୍ରାତା । ପାଣ୍ଡବମାନଙ୍କ ବନବାସ କରିବା ସମୟରେ ଏ ସେମାନଙ୍କୁ ନେଇ ନାନା ତୀର୍ଥ ଭ୍ରମଣ କରିଥିଲେ ଓ ପାଣ୍ଡବମାନଙ୍କୁ ବିବିଧ ଉପଦେଶମୟ ପୌରାଣିକ ଉପାଖ୍ୟାନମାନ ଶୁଣାଇଥିଲେ । ଏ ଅମର ବୋଲି କଥିତ ।] ୩ । ମେଷ; ମେଣ୍ଢା (ସ୍ତ୍ରୀ. ଶ)—3. Sheep; ram.

ଲୋମଶକାଣ୍ଡା—ସ. ବି (ବହୁବ୍ରୀହି, ଲୋମଶ ଅଟେ କାଣ୍ଡ ଯାହାର)
Lomaśa kāṇḍā (ବୈଦ୍ୟକ)—କର୍କଟୀ; କାକୁଡ଼ି—Cucumber.

ଲୋମଶପର୍ଣ୍ଣୀ—ସଂ. ବି (ବୈଦ୍ୟକ)—ମାଷପର୍ଣ୍ଣୀ—
Lomaśa parṇṇī Termanus labialis.
(ଲୋମଶପର୍ଣ୍ଣିନୀ—ଅନ୍ୟରୂପ)

ଲୋମଶ ପୁଷ୍ପକ—ସଂ. ବ (ବୈଦ୍ୟକ)—ଶିରୀଷ ପୁଷ୍ପ—
Lomaśa pushpaka Name of a tree; Acacia Lebbec.

ଲୋମଶ ମାର୍ଜ୍ଜାର—ସ. ବ—ଗନ୍ଧୋତୁ; ଗନ୍ଧମାର୍ଜ୍ଜାର; ଶାଳଅଗଭମ୍; ଗନ୍ଧ
Lomaśa mārjjāra ଗୋକୁଳ—The civet; Vivera Gunda.
(ଅନ୍ୟ ସଂ. ନାମ—ପୂତି କ, ମାର୍ଜାରକ, ସୁଗନ୍ଧି, ମୃଗ୍ଧାରନ)

ଲୋମଶା—ସଂ. ବ (ବୈଦ୍ୟକ)—୧ । କାକଜଙ୍ଘା—1. Leea Hirta
Lomaśā (a herb) ୨ । ବଚ; ବଚ—2. The sweet flag. ୩ । ଶୁକଶିମ୍ବୀ; ବାଇଡଙ୍କ—3. Cowhage. ୪ । ବୈଦିକଯୁଗର ସମ୍ଭ୍ରାନ୍ତ ବିଦୁଷୀ ସ୍ତ୍ରୀ—4. Name of a very learned woman of the vedic age. ୫ । ଅତିବଳା—(ହି. ଣ)—5. Indian mallow. ସଂ. ବଣ (ସ୍ତ୍ରୀ)—ଅତିଶୟ ଲୋମଯୁକ୍ତ—Profusely hairy (woman).

ଲୋମ ଶାତନ—ସଂ. ବ—ହରିତାଳ (ହି. ଣ)—
Loma śātana Yellow orpiment.
ସଂ. ବ ଓ ବଣ—ଲୋମନାଶନ (ଦେଖ)—Loma nāśana (See)

ଲୋମ ଶ୍ରେଣୀ—ସଂ.ବ—ବକ୍ଷଃସ୍ଥଳଠାରୁ କ୍ରମଶଃ ନାଭିକୁ ଯାଇଥିବା ଲୋମ-
Loma śreṇi ରେଖା—The row of furs extending from the breast to the navel.

ଲୋମ ହର୍ଷ—ସଂ. ବ—ରୋମ ହର୍ଷ (ଦେଖ)
Loma harsha Roma harsha (See)

ଲୋମହର୍ଷକ—ସଂ. ବଣ—ରୋମହର୍ଷକ (ଦେଖ)—
Lomaharshaka Romaharshaka (See)

ଲୋମ ହର୍ଷଣ—ସଂ. ବ (୬ଷ୍ଠୀ ତତ୍; ଲୋମ+ହର୍ଷଣ)—୧ । ରୋମାଞ୍ଚ;
Loma harshaṇa ରୋମ ଠାକୁରିବା—1. Horripilation; bristling of the hairs of the body. ୨। (ବହୁବ୍ରୀହି) ଋଷିବିଶେଷ; ବ୍ୟାସ ମୁନିଙ୍କର ପ୍ରିୟ ଶିଷ୍ୟ (ଏହାଙ୍କର ଅନ୍ୟ ନାମ ସୂତ)-2. Name of a sage. [ବି—ଏ ସୂତଜାତୀୟ ପୁତ୍ର । ବ୍ୟାସ ଏହାଙ୍କଠାରେ ପ୍ରୀତହୋଇ ଏହାଙ୍କୁ ସ୍ୱରଚିତ ପୁରାଣମାନ ଅର୍ପଣ କରିଥିଲେ ଓ ଇନ୍ଦ୍ର ପୁରାଣ ଏ ସମସ୍ତଙ୍କୁ ଶୁଣାଇଥିଲେ । ପୁରାଣ କଥନଦ୍ୱାରା ଏ ଶ୍ରୋତାମାନଙ୍କର ଲୋମହର୍ଷଣ ଜାତ କରାଉଥିବାରୁ ଏହାଙ୍କର ଏହି ନାମ ହୋଇଥିଲା ବୋଲି କୂର୍ମ ପୁରାଣରେ ଉକ୍ତ ହୋଇଅଛି । ପରେ ଏହି ନାମ ବଂଶଗତ ହେଲା ଓ ବଳରାମପୁରାଣରେ ଏହାଙ୍କର ପୁତ୍ରଙ୍କୁ ମଧ୍ୟ ଲୋମହର୍ଷଣ ବିଶେଷଣ ଦିଆ ଯାଇଥିଲା ।] ବଣ—୧ । ଲୋମହର୍ଷଣକାରୀ—1. Producing or causing horripilation thrilling. ୨ । ଭୟଙ୍କର—2. Terrific.

ଲୋମହର୍ଷଣ କାଣ୍ଡ—ସଂ. ବ (କର୍ମଧା)—୧ । ଭୟାନକ କାଣ୍ଡ—
Lomaharshaṇa kāṇḍa 1. Terrific matter

ଲୋମହର୍ଷଣ ବ୍ୟାପାର } —ଅନ୍ୟରୂପ ୨ । ଭୀତିପ୍ରାଦକ
ଲୋମହର୍ଷଣ ଘଟଣା } ଘଟଣା—2. A horrible event.

ଲୋମହୃତ୍—ସଂ. ବଣ (ଲୋମ+ହୃ ଧାତୁ=ହରଣ କରିବା+କର୍ତ୍ତୃ
Lomahṛut କ୍ୱିପ୍)—ଲୋମନାଶକ—Depilatory.
ବ(ବୈଦ୍ୟକ)—ହରିତାଳ—Sulphate of arsenic; yellow orpiment.

ଲୋମା—ଦେ ବଣ—ରୋମା (ଦେଖ)—Romā (See)
Lomā ସଂ. ବ— ବଚ, ବଚ(ହି. ଣ)—The sweet flag.

ଲୋମାଞ୍ଚ—ସଂ. ବ—ରୋମାଞ୍ଚ (ଦେଖ)
Lomāñcha Romañcha (See)

ଲୋମାଞ୍ଚିତ—ସଂ. ବଣ—ରୋମାଞ୍ଚିତ (ଦେଖ)
Lomāñchita Romāñchita (See)

ଲୋମାଞ୍ଚିତ ତନୁ—ସ. ବ—ରୋମାଞ୍ଚିତ ତନୁ (ଦେଖ)
Lomāñchitatanu Romāñchita tanu (See)

ଲୋମାଞ୍ଚିବା—ଦେ. କି (ସଂ.ଲୋମାଞ୍ଚ)—ରୋମାଞ୍ଚିତ ହେବା—To have
Lomāñchibā horripilation; to have the বোমাঞ্চহওয়া रोंगटखड़ाहोना रोमांचहोना hairs standing on ends. (ଉ—ତନୁ ଲୋମାଞ୍ଚିଲା ସର୍ବାଙ୍ଗୁଁ ବହିଲା ସ୍ୱେଦଜଳ ଦରଦରେ—ରାଧାନାଥ ଯଯାତି ।)

ଲୋମାବଳି—ସଂ. ବ (୬ଷ୍ଠୀ ତତ୍)—ରୋମରାଜି (ଦେଖ)
Lomābali Romarāji (See)
(ଲୋମାଳି—ଅନ୍ୟରୂପ)

ଲୋମାଲ(ଶ)କା—ସଂ. ବ. ସ୍ତ୍ରୀ (ଲୋମାଳ+କ+ଆ, ଲୋମାଳ ଅଛି
Lomāli(śi)kā ଯାହାର)—୧ । କୋକଶିଆଳୀ—1. Fox ୨ । ଶୃଗାଳୀ—2. She-jackal.

ଲୋମେ—ଦେ. ଅ.—ରୁମେ (ଦେଖ)
Lome Rume (See)

ଲୋମୋତ୍ପାଟନ—ସ. ବ.—(୬ଷ୍ଠୀ ତତ)—ଶରୀରରେ ଲୋମ ଉପାଡ଼ିବା
Lomotpāṭana Uprooting the hairs of the body.

ଲୋମୋତ୍ପାଦନ—ସ. ବ. (୬ଷ୍ଠୀ ତତ୍)—ଶରୀରରେ ଲୋମ ଜନ୍ମାଇବା-
Lomotpādana Causing the growth of the hairs on the body.

ଲୋମୋଦ୍ଗମ—ସ. ବ.—(୬ଷ୍ଠୀ ତତ୍)—ରୋମୋଦ୍ଗମ (ଦେଖ)
Lomodgama Romodgama (See)
[ଲୋମୋଦ୍ଭେଦ—ଅନ୍ୟରୂପ]

ଲୋୟ—ଗ୍ରା. ବ.—(ପ୍ରାଚୀନ ପଦ୍ୟ)—(ସଂ. ଲୋତ)—ଲୁହ;
Loya লো লো(নো)ৰ ଲୋତକ—Tear. [ଉ—ଲେ.ପ୍ୟେ ଦଶା ଦେଖିଲାକ ଲୁଚଙ୍ଗିମା ଡହୁ । ପ୍ରଭାତ, ଶଶିରେଖା ।]

ଲୋୟ(ୟା)ର୍ (ଇତ୍ୟାଦି)—ବୈଦେ. ବଣ—(ସଂ. ଲୋଅର)
Loya(ya)r (etc) ଲୋଅର୍ ଇତ୍ୟାଦି (ଦେଖ)
[ଲୋର—ଅନ୍ୟରୂପ] Loar etc. (See)

ଲୋର—ଗ୍ରା. ବି.—(ସଂ. ଲୋତ)—ଲୋତକ; ଲୁହ; ଅଶ୍ରୁ—
Lora Tears.

ଲୋ(ଲୁ)ରା—ପ୍ରାଦେ (ଗଡ଼ଜାତ)—ବିଣ—ଆବଶ୍ୟକ; ଲୋଡ଼ା—
Lo(lu)rā Necessary. ବି—ଆବଶ୍ୟକତା—Necessity; need.

ଲୋରି—ପ୍ରାଦେ (ଗଡ଼ଜାତ) ବି—ସାଇଁଲୋରି ଗୀତ (ଦେଖ)
Lori [ଲୋରିଅ—ଅନ୍ୟରୂପ] Sāiṅlori gita (See)

ଲୋ(ଲୁ)ରିବା—ପ୍ରାଦେ (ଗଡ଼ଜାତ) କ୍ରି—ଲୋଡ଼ିବା (ଦେଖ)
Lo(lu)ribā Lordibā (See)

ଲୋଲ୍(ଲା)—ପ୍ରାଦେ (ଗଡ଼ଜାତ) ବି—ବେତ; ବେତ ଆଦିର ପ୍ରହାର
Lol(lā) ଯୋଗୁଁ ଶରୀରରେ ଉଠିଯିବା ଲମ୍ବ ଦାଗ—
Long marks left on the body by the stripes of caning.

ଲୋଲ—ସଂ. ବିଣ.—(ଲୋଡ୍ ଧାତୁ+କର୍ତ୍ତୃ. ଅ)—୧। ଅସ୍ଥିର; ଚଞ୍ଚଳ;
Lola ଚପଳ—1. Restless; unsteady; fickle;
(ଲୋଲା—ସ୍ତ୍ରୀ) wavering. ୨। ଲୋଲୁପ; ଲୋଭୀ;
[ ଲୋଲତା(ତ୍ୱ)—ବି ଭାଜ୍ଞାଣ—2. Covetous; cupidous; hankering after; longing for. ୩। ଇଚ୍ଛୁକ—3 Desirous; wistful.
୪। (ଲୁଲ୍ ଧାତୁ+କର୍ତ୍ତୃ. ଅ)—ଶ୍ଲଥ; ଶିଥିଳ—
4. Slack; loose; flaccid. ୫। କମ୍ପମାନ—
5. Trembling; oscillating. ୬। ଲୁଳିତ; ଯାହା ଲଡ଼ଲଡ଼ ହୋଇ ଝୁଲୁଥାଏ—6. Hanging loosely. ୭। ଦୋହୋଲୁଥିବା—7. Swinging.
୮। ପରିବର୍ତ୍ତନଶୀଳ—8. Changeable. ୯। କ୍ଷଣିକ; କ୍ଷଣଭଙ୍ଗୁର—9. Transient. ସଂ. ବି—ଲିଙ୍ଗେନ୍ଦ୍ରିୟ (ହ୍ରୁ. ଶ)—Male organ.

ଲୋଲକ—ସଂ. ବିଣ (ଲୁଲ୍ ଧାତୁ+କର୍ତ୍ତୃ. ଅକ)—୧। ଯାହା ଶ୍ଲଥ-
Lolaka ଭାବରେ ଝୁଲୁଥାଏ—1. Hanging loosely.
(ଲୋଲକା—ସ୍ତ୍ରୀ) ୨। ଦୋଳାୟମାନ—2. Swinging.
ସଂ. ବି—୧। ନୋଲକ (ଦେଖ)—1. Nolaka (See)
୨। ତନ୍ତରେ ଝୁଲୁଥିବା ଏକ ଲଟୁ (ହ୍ରୁ.ଶ)—2. A ball hanging loose from a loom. ୩। ଲଟକଣ—
3. Pendant.

ଲୋଲକର୍ଣ୍ଣ—ସଂ. ବିଣ. ପୁଂ (ବହୁବ୍ରୀହି)—କାନପତଲା (ଲୋକ); ଯେଉଁ
Lolakarṇṇa ବ୍ୟକ୍ତି ସମସ୍ତଙ୍କ କଥା ଶୁଣେ—Listening
(ଲୋଲକର୍ଣ୍ଣୀ—ସ୍ତ୍ରୀ) to every body (M. W)

ଲୋଲକୁଣ୍ଡଳ—ସଂ. ବିଣ. ପୁଂ (ବହୁବ୍ରୀହି)—ଯାହା କାନର କୁଣ୍ଡଳ
Lolakundala ଝୁଲୁଥାଏ—Having dangling or
[ଲୋଲକୁଣ୍ଡଳା—ସ୍ତ୍ରୀ] pendent earings (M. W.)

ଲୋଲଚର୍ମ୍ମ—ସଂ. ବି (କର୍ମଧା)—ଯେଉଁ ଚମ ଝୁଲୁଥାଏ—
Lolacharmma Flaccid skin.

ଲୋଲଚର୍ମ୍ମା—ସଂ. ବିଣ (ବହୁବ୍ରୀହି)—ଲୁଳିତଚର୍ମୀ—
Lolacharmmā Having flaccid skin.

ଲୋଲଜିହ୍ୱ—ସଂ. ବିଣ. ପୁଂ [ବହୁବ୍ରୀହି, ଲୋଲ ଅଟେ ଜିହ୍ୱା ଯାହାର]—
Lolajihwa ୧। ଯାହାର ଜିଭ ଲହଲହ କରେ—1. Having
[ଲୋଲରସନ-ଅନ୍ୟରୂପ] a waving or hanging tongue.
ଲୋଲଜିହ୍ୱା } ସ୍ତ୍ରୀ— ୨। ଯେ ଜିଭକୁ କାଢ଼ି ଲହ ଲହ କରୁଥାଏ-
ଲୋଲରସନା } 2 Moving the tongue; lolling the tongue.

ଲୋଲଜିହ୍ୱା—ସଂ. ବି (କର୍ମଧା)—ଲହଲହ ଜିଭ—Lolling tongue.
Lolajihwā ସଂ. ବିଣ. ସ୍ତ୍ରୀ—ଲୋଲଜିହ୍ୱର ସ୍ତ୍ରୀଲିଙ୍ଗ—
[ଲୋଲରସନା—ଅନ୍ୟରୂପ] Feminine of Lolajihwa.

ଲୋଲଦ୍‌ଭୁଜ—ସଂ. ବିଣ. ପୁଂ (ବହୁବ୍ରୀହି; ଲୋଲତ୍=ଲୋଳୁଥିବା+
Lolad-bhuja ଭୁଜ)—ଯାହାର ହାତ ଝୁଲୁଛି—
[ ଲୋଲଦ୍‌ଭୁଜା—ସ୍ତ୍ରୀ ] Having swinging arms (M. W.)

ଲୋଲମ୍ବ—ସଂ. ବି—ରୋଲମ୍ବ (ଦେଖ)
Lolamba Rolamba (See) (M. W)

ଲୋଲା—ସଂ. ବିଣ ସ୍ତ୍ରୀ (ଲୋଲ+ଆ)—"ଲୋଲ"ର ସ୍ତ୍ରୀଲିଙ୍ଗ—
Lolā 1 Feminine form of the word Lola.)
[ଉ—କାଦମ୍ବିନୀ ଶୋଭେ ଗଗନେ ଧୀରସମୀରଣେ ଲୋଲା- ସୁଧାନାଥ ଚନ୍ଦ୍ରଭାଗା । ] ୨। ଉତ୍ସୁକା—
2 Eager for; desirous of. [ ଉ—ଲକ୍ଷ୍ମୀ କଳସ୍ମି ହିହାରଲୋଲା—କବିସୂର୍ଯ୍ୟ: ସଙ୍ଗୀତ] ସଂ. ବି. ସ୍ତ୍ରୀ-
୧। ଚଞ୍ଚଳା; ଲକ୍ଷ୍ମୀ—1. Goddess Lakshmi.
[ବ୍ର--ଲକ୍ଷ୍ମୀ ଚଞ୍ଚଳା ଥିବାରୁ, ଅର୍ଥାତ୍ ଜଣେ ବ୍ୟକ୍ତି ପାଖରେ ଚିରକାଳ ସ୍ଥିର ହୋଇ ରହୁ ନ ଥିବାରୁ ।] ୨। ଜିହ୍ୱା; ଜିଭ—
2. The tongue. ୩। ବିଦ୍ୟୁତ୍; ଚପଳା—
3. Lightning. ୪। (ନାମ) ମଧୁଦୈତ୍ୟର ମାତା
4. Name of the mother of Demon Madhu.
୫। (ନାମ) ଯୋଗିନୀବିଶେଷ—5. Name of a Jogini. ୬। ଏକ ବର୍ଣ୍ଣବୃତ୍ତ—6. Name of [ବ୍ର— a metre. ଏଥିର ପ୍ରତ୍ୟେକ ଚରଣରେ ଯଥାକ୍ରମେ ମଗଣ, ସଗଣ, ମଗଣ, ଭଗଣ ଓ ଶେଷରେ ଦୁଇ ଗୁରୁ ବର୍ଣ୍ଣ ଥାଏ । ଏଥିରେ ସାତ ଅକ୍ଷର ବାଦ୍ ଯତି ପଡ଼େ—
ହ୍ରୁ. ଶ) ଦେ. ବି—୧। ନୋଳା (ଦେଖ)—
1 Nolā (See). ୨। ପ୍ରାଚୀନ ଅର୍ଣ୍ଣବପୋତବିଶେଷ
(ଜଗବନ୍ଧୁ ପ୍ରାଚୀନ ଉତ୍କଳ) 2 A variety of sea-going vessels in ancient Orissa.

ଲୋଲା—ପ୍ରାଦେ (ଗଡ଼ଜାତ) କ୍ଳୀବ—କ୍ଷେତ ଚଷିବାବେଳେ ଲଙ୍ଗଳରେ
Lolā ଲଗିଯିବା ଜମିର ଘାସ—Grass clinging to the plough during ploughing.

ଲୋଲାକ୍ଷ—ସଂ. ବିଣ. ପୁଂ (ବହୁବ୍ରୀହି)—୧। ଯାହାର ଆଖି ଚଞ୍ଚଳ
Lolāksha ହୋଇ ବୁଲୁଥାଏ—1. Having rolling eyes. ୨। ବାମାସକ୍ତ୍ୱ ବା ଖଳ-
ଲୋଲାକ୍ଷା } —ସ୍ତ୍ରୀ
ଲୋଲାକ୍ଷୀ } ଦୃଷ୍ଟି ବିଶିଷ୍ଟ—2. Looking wan

ଲୋଲଦୃଷ୍ଟି } ଅନ୍ୟ ପୁଂ ଓ ସ୍ତ୍ରୀ
ଲୋଲଚକ୍ଷୁଃ }
tonly upon (M W.)

( ଲୋଲନୟନ, ଲୋଲନେତ୍ର, ଲୋଲଲୋଚନ, ଲୋଲେକ୍ଷଣ—ଅନ୍ୟରୂପ )

**ଲୋଲାପାଙ୍ଗ**—ସଂ. ବିଣ. ପୁଂ (ବହୁବ୍ରୀହି)—ଚଞ୍ଚଳ ଅପାଙ୍ଗବିଶିଷ୍ଟ—
Lolāpānga Having tremulous outer
(ଲୋଲାପାଙ୍ଗୀ—ସ୍ତ୍ରୀ) eye corners (M. W.)

**ଲୋଲାର୍କ**—ସଂ. ବ (ଲୋଲ + ଅର୍କ)—ସୂର୍ଯ୍ୟଙ୍କ ଏକ ଆକାର (ହି. ଶ)
Lolārka A form of the sun (M. W. )
(ଲୋଲଦ୍ଦିବେଶ—ଅନ୍ୟରୂପ)

**ଲୋଲାୟମାନ**—ସଂ. ବିଣ. ପୁଂ (ଲୁଲ୍‌ରୁ ଲୋଲାୟ ନାମ ଧାତୁ + କର୍ତ୍ତୃ. ଅନ )—ଦୋଳାୟମାନ—Hanging
Lolāyamāna
(ଲୋଲାୟମାନା—ସ୍ତ୍ରୀ) loosely.

**ଲୋଲି**—ଦେ. ବ (ସ. ଲୋଲକା)—ନୋଳି (ଦେଖ)
Loli Noli (See)

**ଲୋଳ (ଧାତୁ)**—ସଂ. (ଲୁଲ ଧାତୁ ଣିଜନ୍ତ)—ଦୋହୋଲାଇବା—
Loli (root) To wave; to rock.

**ଲୋଳିଆ**—ଦେ. ବ ଓ ବିଣ—ନୋଳିଆ (ଦେଖ)
Loliā Noliā (See)

**ଲୋଳିକା**—ସି. ବ (ଲୋଲକ + ସ୍ତ୍ରୀ. ଆ)—୧ । କାନର ନୋଳି—
Lolikā 1. Earing. ୨ । ଚକ୍ର; ଝୋଟପାଳଙ୍ଗ ଶାଗ (ଏହାର ପତ୍ର ଜରର ଅକୃତିର ଥିବାରୁ)—2. Rumex Vasicarius; Oxalis Pussilla; (a pot-herb) ୩ । ଗୁଙ୍ଗଡ଼ା; ଗୁଙ୍ଗୁଡ଼ି—3. A flat basket or tray of wicker work.

**ଲୋଳିତ**—ସଂ. ବିଣ (ଲୋଲ ଧାତୁ + କର୍ମ. ତ)—୧ । ଦୋହୋଲୁଥିବା;
Lolita ଦୋଳାୟମାନ—1. Hanging; pendent; oscillating. ୨ । ଚଞ୍ଚଳ; ଅସ୍ଥିର—2. Fickle, wavering. ୩ । କମ୍ପମାନ—3. Trembling. ୪ । ଶ୍ଳଥ—4. Flaccid; flabby. ସ. ବ—ସଙ୍ଗୀତର ରାଗିଣୀ ବିଶେଷ—A particular musical air.

**ଲୋଳିବା**—ଦେ. କ୍ର (ସ. ଲୁଲ ଧାତୁ )—ଦୋହୋଲିବା; ଝୁଲିବା—
Lolibā To hang; to wave. [ଦୃ—ବିବିଧ ବର୍ଣ୍ଣ ପୁଷ୍ପମାଳ, ଦୋଳା ମାନେ ଲୋଳନ୍ତି ଉଚ୍ଚ ସ୍ଥାନେ । ପ୍ରାଚୀ. ପୂର୍ଣ୍ଣଚନ୍ଦ୍ର
डोलना;झोलना [ଲୋଳାଇବା—ଣିଜନ୍ତ] ଛନ୍ଦୋଦୟ ।]

**ଲୋଲୁପ(ଭ)**—ସ. ବିଣ. ପୁଂ (ଲୁଭ ଧାତୁ, ଯଙ୍ଗ ଲୁଗନ୍ତ=ଲୋଲୁଭ ଧାତୁ + କର୍ତ୍ତୃ. ଅ)—୧ । ଅତି ଲୋଭୀ—
Lolupa(bha)
(ଲୋଲୁପା[ଭା]—ସ୍ତ୍ରୀ 1. Very avaricious, greedy. [ଲୋଲୁପତା(ଭ)—ବ] ୨ । କୌଣସି ଦ୍ରବ୍ୟ ପ୍ରତି ଅଭିଳାଷୀ; ଲାଳସାଜ୍ଞିତ—2. Hankering after; longing for. ୩ । ଅତି ଆସକ୍ତ—3. Too much attached. [ଦୃ—ପଦ୍ମଠାରେ ମୋର ମନ ଲୋଲୁପ, ଗୋଲୋକ. ଇନ୍ଦୁରେଖା] [ଦ୍ର—ଲୋଲୁପ ଶବ୍ଦ ଯୋଗରେ ମାଂସଲୋଲୁପ, ଧନଲୋଲୁପ, ଅର୍ଥଲୋଲୁପ, ଖାଦ୍ୟଲୋଲୁପ ଆଦି ସମାସଯୁକ୍ତ ପଦମାନ ଗଢ଼ାଯାଏ ।]

**ଲୋଲୁପା**—ସଂ. ବ (ଲୁଭ ଧାତୁ, ଯଙ୍ଗ ଲୁଗନ୍ତ=ଲୋଲୁଭ ଧାତୁ + ଭାବ.
Lolupā ଅ + ଆ)—ଲାଳସା—Eager desire; longing for (M. W)

**ଲୋ'ଲୋ**—ପ୍ରାଦେ ( ଗଞ୍ଜାମ )—ବିଣ—୧ । ପୁଷ୍ଟ ଶରୀର ଅଥଚ
Lolo ଦୁର୍ବଳ—1. Fat but not strong. ୨ । ନପୁଂସକ—2 Impotent.

**ଲୋଲୋ(ଲୌ)ଷ୍ଠ**—ସଂ. ବିଣ. ପୁଂ—ଚଞ୍ଚଳ ଓଷ୍ଠ ବିଶିଷ୍ଟ—Having
Lolo(lau)shtha moving or restless lips (M,W)
[ଲୋଲୋ(ଲୌ)ଷ୍ଠୀ—ସ୍ତ୍ରୀ]

**ଲୋଶ୍‌କାନ୍(ନି)**—ଦେ. ବ—ଲୋକସାନ୍ (ଦେଖ)
Loskān(ni) Loksān. (See)

**ଲୋଶଡ଼ା**—ଦେ. ବିଣ (ସଂ. ଲମ୍ବିତ, ଶ୍ଲଥ)—୧ । ଯାହା ଲୋସର ପଡ଼ି
Losardā ଥାଏ; ଶ୍ଳଥ; ଲୋତକ—1. Flaccid; flabby.
ଢିଲେ ୨ । (ପୁଂ. ) ଯାହାର ଦେହର ଚର୍ମ ଶ୍ଳଥ ହୋଇଥାଏ—
पिलपिला 2. Flabby-skinned. [ଦ—ଅମ୍ବ ଆଦି ଫଳ ଢିଲେ ଚାମଡା ପାଚଗଲେ କେତେକ ସମୟ ପରେ ନରମା ବା
चमड़ालड़का हुआ ଲୋଶଡା ହୋଇଯାଏ ବା ଘୋଳଯାଏ ।
(ଲୋଶଡ଼ୀ - ସ୍ତ୍ରୀ) ପାଣିଆ କାଦୁଅ ଲୋଶଡ଼ ପଡ଼େ, ଅର୍ଥାତ୍ ଭଙ୍ଗି ଦେଲେ ବୋହି ପଡ଼େ । ଲୋସଡ଼ା କାଦୁଅକୁ କାନ୍ଥରେ ଘଷିଲେ ତାହା କାନ୍ଥରେ ଲାଗି ନ ରହି ଲୋଶଡ ପଡ଼େ । ଲାଉଅଦୁଧୀ ସ୍ତ୍ରୀମାନଙ୍କ ସ୍ତନ ପୂର୍ଣ୍ଣଯୌବନର ଅଳ୍ପକାଳ ପରେ ଲୋସଡ଼ ପଡେ । ମୋଟା ବା ଅତି ପୃଥୁଳ ବ୍ୟକ୍ତିଙ୍କର ପେଟର ଚମ ଲୋଶଡ଼ ପଡ଼ିଥାଏ ।]

**ଲୋଶଡ଼ା(ଡ଼େ)ଇବା**—ଦେ. କ୍ରି—ଲୋସଡ଼ିବା କ୍ରିୟାର ଣିଜନ୍ତରୂପ;
Losardā(rde)ibā ଲୋଶଡ଼ା କରିବା—To cause to
ଢୀଲେ କବା लडकवाना become flabby.

**ଲୋଶଡ଼ି ପଡ଼ିବା**—ଦେ. କ୍ର—୧ । (ପାଣିଆ କାଦୁଅ) ବୋହି ପଡ଼ିବା—
Losardi pardibā 1. (said of watery clay) To
लथलथ करे पड़ा become unstable or unsettled,
लथलथ गीरना ୨ । (ପାଚିଲା ଅମ୍ବ ଆଦି) ଲୋତକ ହେବା—
(ଲୋସଡ଼ିବା—ଅନ୍ୟରୂପ) 2. (said of ripe mango etc) To
नसे बाओया, नसा become flaccid. ୩ । (ସ୍ଥୂଳ ଦେହ ଓ ଚର୍ମ)
पच पचाना ଓହୋଳ ପଡ଼ିବା; ଶ୍ଳଥ ହେବା—3. (said of
बुले पड़ा the skin of a fat person) To hang
लडकजाना flabbily. ୪ । (ବିଗତ ଯୌବନା ସ୍ତ୍ରୀମାନଙ୍କ ସ୍ତନ) ଝୁଲିବା—4. (said of woman's breasts) To hang flabbily; to become flabby.

**ଲୋଶଡ଼ୀ**—ଦେ. ବିଣ. ସ୍ତ୍ରୀ—ଯେଉଁ ସ୍ତ୍ରୀର ପୂର୍ଣ୍ଣ ଯୌବନର ଅଳ୍ପ ଦିନପରେ
Losardi ସ୍ତନମାନ ଝୁଲିପଡ଼େ; ଶ୍ଳଥସ୍ତନା—
लड़काहुआस्तनवाली (women) Whose breasts become flabby very soon after youth.

ଲୋଶନ୍—ବୈଦେ. ବ (ଇଂ)—ପୀଡ଼ିତ ଅଙ୍ଗରେ ମାଲିସ କରିବାରେ ବା
Lośan ପୀଡ଼ିତ ଅଙ୍ଗକୁ ଓଦା ରଖିବାରେ ବା ଧୋଇବାରେ ବ୍ୟବହୃତ
ଲୋସନ ଲୋଶାନ ଔଷଧ ଗୋଳା ହୋଇଥିବା ଡାକ୍ତରୀ ଦ୍ରବ—
Lotion.

ଲୋଷ୍ଟ (ଷ୍ଟ୍ର) (ଧାତୁ)—ସଂ—ରାଶି କରିବା; ଗଦା କରିବା—
Loshta(shṭra) (root) To heap up.

ଲୋଷ୍ଟ(ଷ୍ଟ୍ର,ଷ୍ଟ୍ର,ଷ୍ଠ)—ସଂ. ବ (ଲୋଷ୍ଟ୍ ଧାତୁ+କର୍ମ. ଅ; କ୍ତ; ର; ଠ)—
Loshṭa(shṭa,shṭra,shṭha) ୧ । ଢେଲା; ଟେକା—
(ଲୋଷ୍ଟ[ଷ୍ଟ୍ର]କ—ଅନ୍ୟରୂପ) 1. Clod; a hard lump of
earth. ୨ । ଧାତୁ ଦ୍ରବ୍ୟର କଳଙ୍କି; ମୁରୁଚା—
2 Rust on metal. ୩ । ଲୌହମଳ; ଲୁହାଗୁହ—
3. Scoria; dross

ଲୋଷ୍ଟକ କୃଶ—ସଂ. ବଣ (ବହୁବ୍ରୀହି, ଯହିଁର ଲୋଷ୍ଟକମାନ ଲୁଣି
Loshṭaka kṛuśa ମାରିଯିବା ବା ଜୀର୍ଣ୍ଣହେବା ହେତୁ କୃଶ
ହୋଇଅଛି) ଇଷ୍ଟକାଦିଖଣ୍ଡପରି କ୍ଷୀଣ (ଗୃହ ବା କାନ୍ଥ)
(ମୃଚ୍ଛକଟିକ)—Emaciated as regards the
bricks and other m aterials (said of a
house or wall containing bricks etc)
which have become pulverised.

ଲୋଷ୍ଟ(ଷ୍ଟ୍ର) ଗୁଟିକା—ସଂ. ବ (୬ଷ୍ଠୀ ତତ୍)—କାଦୁଅରେ ତିଆରି ଗୁଳା;
Loshṭa(shṭra) guṭikā ବାଟୁଳ—A pellet of clay
(M. W.)

ଲୋଷ୍ଟ(ଷ୍ଟ୍ର)ଘାତ—ସଂ. ବ (୩ୟା ତତ୍)—ଟେକା ମାଡ଼—A blow
Loshṭa(shṭra)ghāta with a clod (M. W.)

ଲୋଷ୍ଟ(ଷ୍ଟ୍ର)ଘ୍ନ—ସଂ. ବ—୧ । ବିଦା—1. A harrow (M. W).
Loshṭa(shṭra)ghna ୨ । ପଟାମଇ—2. A plank
(ଲୋଷ୍ଟ ଭଞ୍ଜନ, ଲୋଷ୍ଟଭେଦନ—ଅନ୍ୟରୂପ) used to reduce
the clods of a ploughed field into
-powder,-

ଲୋଷ୍ଟ୍ର ଖଣ୍ଡ—ସଂ. ବ—ଢେଲା ବା ଟେକାର ଖଣ୍ଡ—
Loshṭra khaṇḍa A clod of earth.

ଲୋଷ୍ଟ୍ର ନିକ୍ଷେପ—ସଂ. ବ (୬ଷ୍ଠୀ ତତ୍)-କୌଣସି ବସ୍ତୁ ବା ଜୀବ ଅଭିମୁଖେ
Loshṭra nikshepa ଲକ୍ଷ୍ୟ କରି ଟେକା ମାରିବା—
Aiming a clod at an object.

ଲୋଷ୍ଟ୍ରବତ୍—ସଂ. ବ—ଲୋଷ୍ଟ୍ରଖଣ୍ଡ ପରି ହେୟ, ମୂଲ୍ୟହୀନ ବା
Loshṭrabat ଅନାଦରଣୀୟ—Valuless like a clod of
earth. ( ଯଥା—ପରଦ୍ରବ୍ୟକୁ ଲୋଷ୍ଟ୍ରବତ୍ ଜ୍ଞାନ
କରିବ । )

ଲୋଷ୍ଠ—ସଂ. ବ—ଲୋଷ୍ଟ (ଦେଖ)—Loshṭa. (See) [ ଉ—
Loshṭha କେ ବୋଲେ ଲୋଷ୍ଠ ମେରୁ ହେଲା ସମ । ଅଭିମନ୍ୟୁ.
ବିଦଗ୍ଧ ଚିନ୍ତାମଣି । ]

ଲୋହ—ସଂ. ବ [ଲୁ ଧାତୁ=ଛେଦନ କରିବା+କର୍ତ୍ତୃ. ହ; ଅଥବା
Loha (ପ୍ରାଚୀନ ରୁଧ୍ ଧାତୁ=ନାଲି ହେବାରୁ ଉତ୍ପନ୍ନ) ରୁହ ଧାତୁ+
କର୍ତ୍ତୃ. ଅ]—୧ । ଶୋଣିତ; ରକ୍ତ; ଲହୁ—1. Blood.
[ଉ—ଏ ମହାକାଳଙ୍କ ଯାଇ ପ୍ରକ୍ଷାଳିବା ଥରେ, ଉଣେଶେଷେ
ରିପୁଲୋହେ ଅବା ନିଜ ଲୋହେ । ରାଧାନାଥ. ମହାଯାତ୍ରା]
୨ । ଅଗୁରୁ—2. Agallochum; eaggle-
wood. ୩ । ରକ୍ତ ଚନ୍ଦନ—3. Red sandal;
Pteracarpus Santalinus. ୪ । ଲୁହା; ଲୌହ—
4. Iron. [ଉ—ଚନ୍ଦନାଦି ଉପସ୍କର, ହେଉଛି ତପତ
ଲୋହ ଜମ୍ବାଳ ପ୍ରକାର । ଉଞ୍ଜ. ପ୍ରେମସୁଧାନିଧି ।] ୫ ।
ତୈଜସ; ଖଣିଜ ଧାତୁ—5. Metal. (in general).
୬ । ଲୁହା ନିର୍ମିତ ଅସ୍ତ୍ର ଶସ୍ତ୍ରାଦି—6. Weapons and
instruments made of iron. ୭ । ବନସି କଣ୍ଟା—
7. A fish hook. (M. W). ୮ । ନାଲି ବର୍ଣ୍ଣର ଛେଳି
(ହ୍ର. ଶ)—8. The red goat (M. W) ୯ । ଅସ୍ତ୍ର
ଶସ୍ତ୍ର; ହତିଆର—9. Weapon (M. W) ସଂ.ବଣ—
୧ । ରକ୍ତବର୍ଣ୍ଣ ବିଶିଷ୍ଟ; ନାଲିଆ—1. Red (M. W)
୨ । ରକ୍ତାଭ—2. Reddish (M. W) ୩ ।ତମ୍ବାଳିଆ—
3. Copper-coloured (M. W) ଦେ. ବ—
(ସଂ. ଲୋତକ)—ଲୋତକ; ଲୁହ—Tears.

ଲୋହ କଣ୍ଟକ—ସଂ. ବ—ମଦନ ବୃକ୍ଷ (ଦେଖ)
Loha kanṭaka Vanguera Spinosa (tree).

ଲୋହକାନ୍ତ—ସଂ. ବ—ଅୟସ୍କାନ୍ତମଣି; ଚୁମ୍ବକପଥର—
Lohakānta Magnetic iron; loadstone.

ଲୋହକାର—ସଂ. ବ—କମାର—
Lohakāra Blacksmith.
(ଲୋହକାରକ, ଲୋହଘାତକ—ଅନ୍ୟରୂପ)

ଲୋହ କିଟ୍ଟ—ସଂ.ବ—୧ । ଲୌହମଳ—Scoria. ୨ । ଲୁହାର
Loha kiṭṭa କଳଙ୍କି—2. Rust of iron.

ଲୋହଘ୍ନ—ସଂ. ବ—ମଦରଙ୍ଗା (ଦେଖ)
Lohaghna Madaraṅgā (See)

ଲୋହ ଚୂର୍ଣ୍ଣ—ସଂ. ବ ( ୬ଷ୍ଠୀ ତତ )—୧ । ଲୁହାର ଗୁଣ୍ଡା; ଚୁନା—
Loha chūrṇṇa 1.Iron filings. ୨ । ଲୁହାର କଳଙ୍କି-
2. Rust of iron.

ଲୋହଜ—ସଂ. ବ—୧ । ଲୌହମଳ—1. Scoria. ୨ । ଇସ୍ପାତ
Lohaja ଲୁହା—2. Steel from Damuscus
(M. W) ୩ । ପିତ୍ତଳ; କଂସା—3. Brass; bell-
metal (M. W) ୪ । ଲୁହାର କଳଙ୍କି—
4. Rust of iron (M. W).

ଲୋହଜାଲ—ସଂ. ବ—୧ । ଲୁହାର ଜାଲି—1. Iron-netting
Loha jāla (M.W). ୨ । ଲୁହାର ଜାଲର
ସାଞ୍ଜୁ ବା କବଚ—2. A coat of mail
(M. W)

ଲୋହ ଦଣ୍ଡ—ସଂ. ବ—୧ । ଲୁହାର ଛଡ଼ି ବା ଛଡ଼ୀ—1. An iron)
Loha daṇḍa staff. ୨ । ପରଶୁ; ଯୁଦ୍ଧ କୁଠାର—
1, A battle axe (M. W

ଲୋହ ଦ୍ରାବୀ—ସଂ. ବ ( ଲୋହଦ୍ରାବିନ୍ ଶବ୍ଦ )—୧। ଟଙ୍କଣ; ଟାଙ୍ଗଣା;
Loha drābī ସୋହାଗା—1. Borax. ୨। ଅମ୍ଳ ବେତସ (ହ୍ରି. ଶ୍ର)—2. A kind of potherb.

ଲୋହ ନାଳ—ସଂ. ବ—ଲୌହର ବାଣ ବା ନାରାଚ—
Loha nāla Iron arrow or shaft.

ଲୋହ ପଟ୍ଟିକା—ସଂ ବ—ଲୁହାର ମୋଟା ପାଟିଆ—
Loha pattikā An iron plate (M,W)

ଲୋହ ପୃଷ୍ଠ—ସଂ. ବ (ବହୁବ୍ରୀହି; ଲୋହବର୍ ପୃଷ୍ଠ ଯାହାର) କଙ୍କ
Loha prushṭha ପକ୍ଷୀ; ବଗ୍ ଅକାଙ୍କ—Heron (M. W)
[ହ୍ରି—ବସିଚେ ଲୋହପୃଷ୍ଠେ, ଶଙ୍କାଙ୍କ ସାଙ୍କ ଚୁଷ୍ଟେ, କଙ୍କମ୍ସ ମହୋଦର ସେ—ଭଞ୍ଜ. ବୈଦେହୀଶବିଳାସ।] ସଂ. ବଣ-ଲୌହମୟ ପୃଷ୍ଠଯୁକ୍ତ—Having the back made of iron.

ଲୋହ ପ୍ରତିମା—ସଂ. ବ—୧ । ଲୁହାର ମୂର୍ତ୍ତି—1. An iron
Loha pratimā image. ୨। କହାଇ—
2. Anvil (M. W)

ଲୋହ ବର—ସଂ. ବ (ଲୋହ=ଧାତୁ।ଭୂମାନଙ୍କ ମଧ୍ୟରେ ବର=
Loha bara ଶ୍ରେଷ୍ଠ)—ସ୍ୱର୍ଣ୍ଣ—Gold (M. W)

ଲୋହ ବର୍ମ—ସଂ. ବ—ଲୁହାର କବଚ ବା ସାଞ୍ଜୁ—
Loha barma An iron armour; mail (M. W)

ଲୋହ ମୟ—ସଂ. ବଣ—ଲୌହନିର୍ମିତ—
Lohamaya Made of iron.
(ଲୋହମୟୀ—ସ୍ତ୍ରୀ)

ଲୋହ ମାରକ—ସଂ. ବ—ମଦରଙ୍ଗା;ଶାଳିଞ୍ଚଶାକ; ଜଳଜାତଶାକବିଶେଷ
Loha māraka An aquatic vegetable; Alternanthera Cessilis; AchyranthesTriandra (M. W).

ଲୋହ ମୁକ୍ତିକା—ସଂ ବ (କର୍ମଧା)— ନାଲିଆ ମୋତି—
Loha muktikā Red pearl (M.W)

ଲୋହ ରଜଃ—ସଂ. ବ—୧ । ଲୁହାର ଗୁଣ୍ଡ—1. Iron filings
Loha rajah (M.W.) ୨। ଲୁହାର କଳଙ୍କି—
2. Rust of iron (M. W)

ଲୋହରା—ପ୍ରାଦେ(ଗଡ଼ଜାତ ଓ ସମ୍ବଲପୁର ପୁଂ. ବ (ଭୁଲ. ହି. ଲୋହରା)-
Loharā (ଲୋହରେନ୍—ସ୍ତ୍ରୀ) (କମାର)—Blacksmith.

ଲୋହରାଜକ—ସଂ. ବ—ରୁପା—
Loharājaka Silver (M W)

ଲୋହଳ—ସଂ. ବ (ଲୋହ+ଲ ଧାତୁ=ପାଇବା+କର୍ତ୍ତୃ. ଅ)—୧।
Lohala ଲୋହକାର; କମାର—1.Ironsmith. ୨। ଶୃଙ୍ଖଳର ପ୍ରଧାନ ମୁଦ୍ରିଅ—2. The principal link in a chain. ସ. ବଣ—୧ । ଶକା—1. Lisping. ୨। ଅସ୍ପଷ୍ଟବାକ୍; ଅବ୍ୟକ୍ତଭାଷୀ; ଦନ୍ତେଇ କଥା କହୁଥିବା—2. Speaking inarticulately. ୩।ଲୌହନିର୍ମିତ —3. Made of iron (M, W)

ଲୋହ ଶଙ୍କୁ—ସଂ. ବ—୧। ଲୁହାର ଖିଲା ବା ଶୂଳ—1. An iron
Loha śanku stake or spike. ୨। ଏକୋଇଶି ନରକ ମଧ୍ୟରୁ ଏକ (ଏଥିରେ ପାପୀଙ୍କୁ ଶୂଳ ଉପରେ ବସାଇ ଦିଆଯାଏ)—2. One of the 21 hells of the Hindus.

ଲୋହ ଶ୍ଳେଷ୍ମକ—ସଂ. ବ—ଟାଙ୍ଗଣା; ସୁହାଗା (ହ୍ରି. ଶ)
Loha śleshmaka Borax (M. W).
ଲୋହସଂଶ୍ଳେଷ୍ମକ } —ଅନ୍ୟରୂପ
ଲୋହଶୁଦ୍ଧିକର }

ଲୋହସାରକ—ସଂ. ବ (ବୈଦ୍ୟକ)—ଶାଳିଞ୍ଚ; ମଦରଙ୍ଗା ଶାଗ (ଦେଖ)
Lohasāraka Madarangā śāga (See)
(ଲୋହସାର—ଅନ୍ୟରୂପ)

ଲୋହା—ଦେ. ବ (ସଂ ଲୋହ)—ଲୌହ; ଲୁହା—
Lohā লোহা लोहा Iron.

ଲୋହାଖ୍ୟ—ସଂ. ବ (ଲୋହ+ଆଖ୍ୟା+ଅ)—୧ । ଅଗୁରୁ—
Lohākhya 1. Agallochum; eaglewood
୨। ଗୋଲମରିଚ—2. Black pepper (M. W)

ଲୋହାଭିହା(ସା)ର—ସଂ. ବ (ଲୋହ=ଅସ୍ତ୍ରଶସ୍ତ୍ର+ଅଭିସାର; ଅଭିହାର
Lohābhihā(sā)ra ୧ । ଅସ୍ତ୍ର ଶସ୍ତ୍ରାଦିକୁ ମାଜିବା—
1. Cleaning of weapons and instruments.
୨। ଯୁଦ୍ଧଯାତ୍ରା ପୂର୍ବରୁ ରାଜାମାନଙ୍କଦ୍ୱାରା ଅସ୍ତ୍ରଶସ୍ତ୍ରର ନୀରାଜନା ବିଧି—2. Lustration of arms.

ଲୋହାର—ପ୍ରାଦେ (ସମ୍ବଲପୁର) ବ (ଭୁଲ. ହି. ଲୋହାର) (ସଂ)
Lohār ଲୋହକାର ) କମାର—Ironsmith. ପ୍ରାଦେ (ଗଡ଼ଜାତ) ବ (ସଂ ଲୋହକାର)—ଯେଉଁ ଲୋକ ପଥରରୁ ଲୁହାକୁ ତରଳାଇ ଖଣ୍ଡ ଖଣ୍ଡ କରନ୍ତି—One who smelts iron ore and produces iron bars.

ଲୋହାରଖାନା—ପ୍ରାଦେ (ସମ୍ବଲପୁର, ଗଡ଼ଜାତ) ବ—କମାରଶାଳ—
Lohārakhānā A smithy; blacksmith's workshop.

ଲୋହି—ଦେ. ବ—ସଂ ବ.—ଏକପ୍ରକାର ଟାଙ୍ଗଣା—A kind of
Lohi borax (M. W) ୧। (ସଂ ଲୋମୀଯ) ପଶମ
লোই लोई ନିର୍ମିତ ମୋଟା ଶୀତବସ୍ତ୍ର—1. Thick woollen wrapper. ୨। (ସଂ ଲୋପ୍ତ୍ରୀ) ବଳା ହୋଇଥିବା ଅଟାରୁ ନିଆଯିବା ଗୋଟିଏ ରୁଟି ପାଇଁ ଯଥେଷ୍ଟ ପରିମିତ ଗୁଳା—2. A ball of kneaded flour
पेड़ी sufficient for one roll of bread.

ଲୋହିଆ—ଦେ. ବ (ସଂ ଲୋହିତ)—ଧାନ ଗଛ ଅନ୍ଦର ଏକପ୍ରକାର ରୋଗ
Lohiā A sort of paddy-pest (consist-
ধানের রোগবিশেষ ing of red insects attacking the stalks) [କୃ—ଗଛରେ ଏକପ୍ରକାର ନାଲି ଖାଡ଼ ବସି ଗଛକୁ ନଷ୍ଟ କରନ୍ତି।] ବଣ (ସଂ ଲୋହିତାଭ)
लालसा ଈଷତ୍ ରକ୍ତବର୍ଣ୍ଣବିଶିଷ୍ଟ—Reddish

ଲୋହିକା—ସଂ ବ (ଲୋହ+କ+ଆ)—୧। ଲୌହନିର୍ମିତ ପାତ୍ର—
Lohikā 1. Iron vessel. ୨। କଟାହ; କରେଇ—
2. Cauldron. ୩। ଚାଉଳ ଧୋଇବା ବାସନ

କାଠର ଓ ବଡ଼ ଅଗଣ୍ଠିର ପାତ୍ର, ଯହିଁର ମୁହଁ ଲୁହାରେ ବନ୍ଧା ହୋଇଥାଏ—3. A large shallow bowl usually of wood and bound with iron, used for washing rice (M.W).

**ଲୋହିତ**—ସଂ ବି(ରୁହ୍ ଧାତୁ=ଉତ୍ପନ୍ନହେବା+କର୍ତ୍ତୃ ଇତ) ୧। ରକ୍ତବର୍ଣ୍ଣ) Lthita 1 Red colour. ୨। ନଦୀବିଶେଷ—2. Name of a river. ୩। ରୋହିମାଛ (ଦେଖ) 3. Rohi māchha (see) ୪। ମୃଗବିଶେଷ—4. Red deer. ୫। ସର୍ପ—5. Snak ୬। ମସୁର—6. A leguminons plant Ervum; Hersutum; Cicer Lens. ୭। ମଙ୍ଗଳ ଗ୍ରହ—7 Planet Mars. ୮। ମାଣିକ୍ୟ—8 Ruby ୯। କ୍ଲୋ; ରୁଧିର—9. Blood. ୧୦। (ବୈଦ୍ୟକ) କାଶ୍ମୀରଦେଶୀୟ ଗନ୍ଧତୃଣ; ଭୂଣକୁଙ୍କୁମ—10. A sort of fragrant grass of Kashmere. ୧୧। କୁଙ୍କୁମ—11. Saffron. ୧୨। ଯୁଦ୍ଧ—12. War. ୧୩। ରକ୍ତଚନ୍ଦନ—13. Pterocarpus Santalinus. ବିଣ—ରକ୍ତବର୍ଣ୍ଣବିଶିଷ୍ଟ—Red coloured.

**ଲୋହିତକ**—ସଂ ବି (ଲୋହିତ+ସଜ୍ଞାର୍ଥେ କ)—୧। ଶୋଣରତ୍ନ; Lohitaka ପଦ୍ମରାଗମଣି—1. Ruby. ୨। ମଙ୍ଗଳଗ୍ରହ—2. The planet Mars. ୩। ପିତ୍ତଳ—3. Brass. ୪। (ବୈଦ୍ୟକ) ଏକପ୍ରକାର ଶାଳି ଧାନ; ନାଲିଚୁଡ଼ିଆ ଧାନ—4. A kind of red winter paddy. ୫। ତମ୍ବା—5. Copper. ୬। କଂସା—6. Bell metal. ୭। ପଞ୍ଜାବର ଆଧୁନିକ ରୋହିତକ ନଗରର ପ୍ରାଚୀନ ନାମ (ହି. ଶ)—7. Ancient name of the modern Rohtak town in the Panjab.

**ଲୋହିତ ଚନ୍ଦନ**—ସଂ ବି—୧। ରକ୍ତଚନ୍ଦନ (ଦେଖ)—1 Rakta Lohita chandana chandana (See) ୨। କୁଙ୍କୁମ—2. Saffron.

**ଲୋହିତ ନଦୀ**—ଦେ. ବି—୧। ଉତ୍ତର ଅମେରିକାର କାନାଡ଼ାଦେଶର Lohita nadī ନଦୀବିଶେଷ—1. The Red river; name ଲୋହିତ ନଦୀ लोहित नदी of a river in Manitoba of Canada in North America (Lat 48 N and Long 97 W) [ଦ୍ର—ଏହା ଉତ୍ତରାଞ୍ଚଳେ ଷ୍ଟେଟରୁ ଉତ୍ତରମୁଖ ହୋଇ କାନାଡ଼ାର ମାନିଟୋବା ପ୍ରଦେଶର ଭିନିପେଗ୍ ହ୍ରଦରେ ପଡ଼ିଅଛି।] ୨। ଆମେରିକାର ଯୁକ୍ତରାଜ୍ୟର ମିସିସିପି ନଦୀର ଗୋଟିଏ ଉପନଦୀ—2. The Red river, a tributary of the Mississipi river in the United States of America. [ଦ୍ର—ଏହା ରକି ପର୍ବତର ପଶ୍ଚିମପାର୍ଶ୍ୱରୁ ବାହାରି ମିସିସିପି ନଦୀରେ ପଡ଼ିଅଛି।]

**ଲୋହିତ ନୟନ**—ସଂ. ବି ଓ ବିଣ. ପୁଂ—ଲୋହିତଲୋଚନ (ଦେଖ) Lohita nayana Lohita lochana (See) [ଲୋହିତନୟନା—ବିଣ. ସ୍ତ୍ରୀ]

**ଲୋହିତପୁଷ୍ପକ**—ସଂ. ବି (ବୈଦ୍ୟକ)—ଡାଳିମ୍ବ; ଡାଳିମ୍ବ—Lohita pushpaka Pomegranate.

**ଲୋହିତ ବରଣ(ନ)**—ଦେ. ବି (ପଦ୍ୟରେ ବ୍ୟବହୃତ)—ରକ୍ତବର୍ଣ୍ଣ; ନାଲି Lohita barana(na) ରଙ୍ଗ—Red colour. লোহিতবরণ लोहितवरन ବିଣ—ନାଲିରଙ୍ଗବିଶିଷ୍ଟ—Red-coloured.

**ଲୋହିତ ବର୍ଣ୍ଣ**—ସଂ. ବି—ନାଲିରଙ୍ଗ—Red colour. ସଂ. ବିଣ Lohita barnna (ବହୁବ୍ରୀହି) ନାଲିଆ—Red. [ଲୋହିତବର୍ଣ୍ଣା—ସ୍ତ୍ରୀ. ବିଣ]

**ଲୋହିତ ବସନ**—ସଂ. ବି—ନାଲି ଲୁଗା—Red cloth. ସଂ. ବିଣ. Lohita basana ପୁଂ—ଯେ ନାଲି ଲୁଗା ପିନ୍ଧିଥାଏ—Wearing red cloth ଲୋହିତବସନା } ସ୍ତ୍ରୀ. ବିଣ ଲୋହିତବସ୍ତ୍ରା } (ଲୋହିତ ବସ୍ତ୍ର—ଅନ୍ୟରୂପ)

**ଲୋହିତ ମତ୍ସ୍ୟ**—ସଂ. ବି—୧। ରୋହିତ ମତ୍ସ୍ୟ (ଦେଖ)—1. Rohita Lohita matsya matsya (See) ୨। ନାଲିଆ ମାଛ—2. Red fish.

**ଲୋହିତ ମୁଖ**—ସଂ. ବି (କର୍ମଧା)—ନାଲି ମୁହଁ—Red face. ବିଣ. Lohita mukha ପୁଂ (ବହୁବ୍ରୀହି) ୧। ନାଲିଆମୁହାଁ—[ଲୋହିତମୁଖୀ(ଖୀ)—ସ୍ତ୍ରୀ. ବିଣ] 1. Red-faced. ୨। ରାଗାନ୍ୱିତ ହେବାରୁ ଯାହା ମୁହଁ ନାଲି ପଡ଼ିଥାଏ—2. Having the face flushed red with anger.

**ଲୋହିତ ମୃଗ**—ସଂ. ବି—ରକ୍ତବର୍ଣ୍ଣ ମୃଗବିଶେଷ—Lohita mruga Red deer.

**ଲୋହିତ ଲୋଚନ**—ସଂ ବି (କର୍ମଧା)—ରକ୍ତବର୍ଣ୍ଣ ଚକ୍ଷୁ—Red eye. Lohita lochana ବିଣ. ପୁଂ (ବହୁବ୍ରୀହି)—ରକ୍ତବର୍ଣ୍ଣ (ଲୋହିତଲୋଚନା—ସ୍ତ୍ରୀ) ଚକ୍ଷୁବିଶିଷ୍ଟ—Having red eyes.

**ଲୋହିତ ସମୁଦ୍ର**—ଦେ. ବି, ନାମ—ଆରବର ପଶ୍ଚିମରେ ଓ ମିଶରଦେଶର Lohita samudra ପୂର୍ବରେ ଥିବା ଲମ୍ବ ଓ ସରୁଆ ସମୁଦ୍ର (ଲୋହିତସାଗର—ଅନ୍ୟରୂପ) Red sea (between Asia লোহিতসাগৰ लालसागर and Africa) (Latitude 24.N and longi tude 39.E) [ଦ୍ର—ଏହା ଭାରତ ମହାସାଗରର ଅଂଶ। ପୂର୍ବେ ଏହା ଭୂମଧ୍ୟସାଗରଠାରୁ ପୃଥକ୍ ଥିଲା। ସୁଏଜ୍ କାନାଲ ଖୋଳାହେବାଦ୍ୱାରା ଏହା ଭୂମଧ୍ୟ ସାଗର ସଙ୍ଗେ ସଂଯୁକ୍ତ ହେଲା ଓ ଏହି ବାଟେ ଭାରତ ମହାସାଗରରୁ ଭୂମଧ୍ୟସାଗରକୁ ଜାହାଜମାନ ଯିବା ଆସିବା କରୁଅଛି। ଏହା ଦକ୍ଷିଣରେ ବାବଲମଣ୍ଡବପ୍ରଣାଳୀଠାରୁ ଉତ୍ତରରେ ସୁଏଜ କାନାଲ ପର୍ଯ୍ୟନ୍ତ ଲମ୍ବିଅଛି। ଏହା ପ୍ରାୟ ୧୪୦୦ ମାଇଲ ଲମ୍ବା ଓ ଏହାର ପ୍ରଶସ୍ତତମ ଅଂଶର ବିସ୍ତୃତି ୨୩୦ ମାଇଲ। ଏହାର ଗର୍ଭରେ ଅନେକ ସାନ ଟାପୁ ଓ

ପ୍ରବାଳ ଦ୍ୱୀପ ଥିବାରୁ ଏ ବାଟେ ବାଃ ଠଉସବ ଜାହାଜ ଜେବା ଅଣିବା ବିଶେଷ କଷ୍ଟସାଧ୍ୟ ଅଟେ । ଏହାର ପାଣିରେ ଥିବା ଏକପ୍ରକାର କ୍ଷୁଦ୍ର କୀଟାଣୁଙ୍କ ଯୋଗୁଁ ଏହାର ଜଳ ଈଷତ୍ ରକ୍ତାଭ ଦେଖାଯାଏ । ଏଥିପାଇଁ ଏହାରଏହି ନାମ ହୋଇଅଛି ।]

ଲୋହିତାକ୍ଷ—ସଂ, ବି—(କର୍ମଧା ଲୋହିତ+ଅକ୍ଷି )—୧ ନାଲି ଅକ୍ଷି—Lohitākshya 1. Red eyes. ୨ । ବିଷ୍ଣୁ—2. (ଲୋହିତାକ୍ଷୀ—ସ୍ତ୍ରୀ ବିଣ) Bishnu. ୩ । କୋକିଳ—Red eyed. Cuckoo. ସଂ ବିଣ. ପୁଂ (ବହୁବ୍ରୀହି)—ରକ୍ତବର୍ଣ୍ଣ ଚକ୍ଷୁର୍ବିଶିଷ୍ଟ—

ଲୋହିତାଙ୍ଗ—ସଂ. ବି (କର୍ମଧା, ଲୋହିତ+ଅଙ୍ଗ)—ରକ୍ତବର୍ଣ୍ଣ ଦେହ—Lohitanga Red coloured body. ବିଣ. ପୁଂ. (ଲୋହିତାଙ୍ଗୀ—ସ୍ତ୍ରୀ ବିଣ) (ବହୁବ୍ରୀହି)—ରକ୍ତବର୍ଣ୍ଣ ଦେହ ବିଶିଷ୍ଟ—( ଯଥା ଅମେରିକାର ଆଦିମ ଅଧିବାସୀମାନେ ) Having red or copper coloured body. ସ. ବି. ଅଙ୍ଗାରକ ଗ୍ରହ; ମଙ୍ଗଳ ଗ୍ରହ—The planet Mars. [ ଦ୍ର—ଏହା ପୃଥିବୀରୁ ରକ୍ତାଭ ଦେଖା ଯାଏ ।]

ଲୋହିତାୟମାନ—ସ. ବିଣ. ପୁଂ—(ଲୋହିତ ଶବ୍ଦରୁ ଲୋହିତାୟ ନାମ Lohitāyamāna ଧାତୁ+କର୍ତ୍ତ୍ରି.ଆନ)—୧। ରକ୍ତାୟମାନ; ଯାହା (ଲୋହିତାୟମାନା—ସ୍ତ୍ରୀ) ରକ୍ତବର୍ଣ୍ଣ ଧାରଣ କରୁଥାଏ; ଯାହା କ୍ରମଶଃ ନାଲିଆ ହେଉଥାଏ—Assuming red colour, reddening.

ଲୋହିତାୟଃ (ସ୍)—ସ. ବି—(ଲୋହିତ + ଅୟସ୍)—ତମ୍ବା; ତାମ୍ର—Lohitāyah(s) Copper.

ଲୋହିତାଳୁ—ସ. ବି.—ରକ୍ତବର୍ଣ୍ଣ ଆଳୁ—Red yam; Dioscorea Purpurea. ରଙ୍ଗାଆଳୁ लाल अरुई [ଦ୍ର—ଏହାର ଅପର ସଂସ୍କୃତ ନାମ ରକ୍ତାଳୁ; ଅଳୁକା ।]

ଲୋହିତୋଦ—(ବହୁବ୍ରୀହି; ଲୋହିତ+ଉଦ)—ପୁରାଣ ଅନୁସାରେ ୨୧ Lohitoda ନରକରୁ ଏକ—One of the 21 hells of the Hindus

ଲୋହିତ୍ୟ—ସ. ବି—୧ । ବାଲ୍ମୀକି ରାମାୟଣରେ କପିଳବସ୍ତୁ ନଗର Lohitya କୂଳରେ ଅବସ୍ଥିତ ନଗର ବିଶେଷ (ହି. ଶ.)—1. Name of an ancient town. ୨ । ବ୍ରହ୍ମପୁତ୍ର ନଦ (ହି. ଶ.)—2. The river Brahmaputra. ୩ । ପୌରାଣିକ ସମୁଦ୍ର ବିଶେଷ (ହି. ଶ.)—3. Name of a mythlogical sea (See) [ଦ୍ର—ଏହା କୁଶ ଦ୍ୱୀପ ନିକଟରେ ଅବସ୍ଥିତ ।]

ଲୋହିତ୍ୟା—ସ. ବି. ସ୍ତ୍ରୀ—୧ । ନଦୀବିଶେଷ (ହି. ଶ)—Lohityā 1. Name of a river. ୨ । ଏକ ଅପ୍ସରାର ନାମ (ହି. ଶ.)—1. Name of a heavenly nymph.

ଲୋହି ଧୂଷା—ଦେ. ବି—(ସମାହାର ଦ୍ୱନ୍ଦ)—ଲୋହି ଓ ଧୂଷା; ଦୁଇ Lohi dhushā ପ୍ରକାରର, ଅର୍ଥାତ୍ ନାଲି ଓ ଧୂସର ପଶମୀ ବସ୍ତ୍ର—ଲଇଧୂଷା लहिधूसा Two kinds of woollen wrapper (red and ashy in colour).

ଲୋହିନୀ—ସ. ବି. ସ୍ତ୍ରୀ—(ଲୋହିତ+ସ୍ତ୍ରୀ. ଈ; ନିପାତନ)—ରକ୍ତବର୍ଣ୍ଣା ସ୍ତ୍ରୀ Lohinī A red-bodied woman. ବିଣ. ସ୍ତ୍ରୀ—ରକ୍ତବର୍ଣ୍ଣ ବିଶିଷ୍ଟା—Red coloured (woman.)

ଲୋହି ମାରିବା—ଦେ. ବିଂ—(ସ. ଲୋହିତ)—ମୃତ୍ତିକାରେ ପାଣି ଜମି Lohi māribā ତହିଁରୁ ନାଲି ରସ ନିର୍ଗତ ହୋଇ ମାଟିର ଉର୍ବରା (ଲୋହି ମାରିଯିବା—ଅନ୍ୟରୂପ) ଶକ୍ତି କମିଯିବା—The state of a soil becoming depreciated in productive power by a red juice coming out of it, by its being always moistened with stagnant water or underground spring water. लोही मारना

ଲୋହୁ—ଦେ. ବି—(ସଂ ଲୋହିତ)—ରକ୍ତ—Lahu ଲହୁ लहु Blood.

ଲୋହୁଆ—ଦେ. ବିଣ—(ସ. ଲୋହ=ରକ୍ତର)—ବିଶେଷ ଭାବରେ Lahuā ରକ୍ତାକ୍ତ ବା ରକ୍ତରଞ୍ଜିତ—Copiously tinged [ଲୋହୁଲୁହାଣ(ଣି;ଣିଆ)—ଅନ୍ୟରୂପ] with blood.

ଲୋହୁଣୀ—ପ୍ରାଦେ. (ଯାଜପୁର) ବି—ଲହୁଣୀ (ଦେଖ) Lohuṇi Lahuṇi (See)

ଲୋହୁରେନ୍—ପ୍ରାଦେ. ( ଖଡ଼ୁଆଳ ) ବି—ନଖରୁଣୀ—Lohuren Barber's nail-cutter.

ଲୋହୋତ୍ତମ—ସ. ବି—(୭ମୀ ତତ୍; ଲୋହ=ଧାତୁ ମଧ୍ୟରେ ଉତ୍ତମ Lohottama =ଶ୍ରେଷ୍ଠ)—ଧାତୁ ଶ୍ରେଷ୍ଠ; ସ୍ୱର୍ଣ୍ଣ—Gold.

ଲୌ—ଦେ. ବି.—(ସ. ଲୋହ)—ଲହୁ; ରକ୍ତ—Lau Blood.

ଲୌକତା—ଦେ. ବି. ଲୌକିକ ଆଚାର ବ୍ୟବହାର—Laukatā Popular or customary usage.

ଲୌକର (ଇତ୍ୟାଦି)—ବୈଦେ. ବି—ନୌକର ଇତ୍ୟାଦି (ଦେଖ) Laukara (etc) Naukara etc (See)

ଲୌକରି—ବୈଦେ. ବି.—ଚାକିରି; ଭୃତ୍ୟପଣ—Laukari নোকরী नौकरी Service.

ଲୌକା—ଦେ. ବି.—(ସଂ. ନୌକା)—ନୌକା; ଡଙ୍ଗା—Laukā নৌকা नाव Boat.

ଲୌକାୟତିକ—ସ. ବିଣ. ପୁଂ (ଲୋକାୟତ +ଇକ)—୧ । ଚାର୍ବାକ Laukāyatika ମତାବଲମ୍ବୀ—1. Holding the tenets of sage Chārbāka; Epicurean. ୨ । ନାସ୍ତିକ—2. Atheistic. ବି. ପୁଂ—ନାସ୍ତିକ ବ୍ୟକ୍ତି—An (ଲୋକାୟତିକା—ସ୍ତ୍ରୀ) atheist; an infidel.

ଲୌକିକ—ସ. ବିଣ (ଲୋକ+ସମ୍ବନ୍ଧାର୍ଥେ. ଇକ)—୧ । ଜନ Laukika ସାଧାରଣଙ୍କ ସମ୍ବନ୍ଧୀୟ—1, Popular. ୨ । ସାଂସାରିକ—2. Worldly. ୩ । ସାମାଜିକ—

3. Social. ୪ । ଜନ ସମାଜରେ ପ୍ରଚଳିତ; ଲୋକ-ବ୍ୟବହାରରେ ସିଦ୍ଧ—4. Customary; commonly practised. ୫ । ସାଧାରଣ ଲୋକଙ୍କ ବ୍ୟବହୃତ—5. Used by the common people. ୬। ପ୍ରାକୃତ; ଜନ ସାଧାରଣଙ୍କ କଥ୍ୟ (ଭାଷା)—6. Spoken; (language); used by the common people. ୭ । ଯାହା ଲୋକେ ଦେଖିବାକୁ କରାଯାଏ; ବାହ୍ୟ (ଆନ୍ତରିକର ବିପରୀତ—7 Done for show; done for the sake of outward appearance. ୮ । ଅସଂସ୍କୃତ—8. Unrefined. ସ. ବି—ସାତ ମାତ୍ରାର ଛନ୍ଦୋବିଶେଷ (ହ୍ର. ଶ)—Name of a Sanscrit metre. [ ଦ୍ର—ଏହା ୨୧ ପ୍ରକାର—(ହ୍ର. ଶ) । ]

**ଲୌକିକତା(ତ୍ୱ)**—ସ. ବି—୧ । ଦେଶାଚାର; ଦେଶ ବା ସମାଜ ପ୍ରଚଳିତ ବ୍ୟବହାର—1 Usage common or peculiar to a country or society. ୨ । ଲୋକ ବ୍ୟବହାର—2. Popular usage. ୩ । ସାମାଜିକ ରୀତିନୀତି—3. Social usages. ୪ । ମର୍ଯ୍ୟାଦା; ବେଭାର; ଜନ ସମାଜରେ ଚଳୁଥିବା ଭାର ବେଭାର ଆଦି—4. Customary gifts and presents current in society; social amenities and exchanges. [ଦ୍ର—ବିବାହ ଓ ବ୍ରତ ଆଦି ପାରିବାରିକ ଉତ୍ସବରେ ବନ୍ଧୁବାନ୍ଧବମାନଙ୍କୁ ନିମନ୍ତ୍ରଣ କରିବା ଓ ବନ୍ଧୁବାନ୍ଧବମାନଙ୍କ ମଧ୍ୟରେ 'ବେଭାର' ଦିଆ ନିଆକୁ "ଲୌକିକତା" ବୋଲାଯାଏ ।] ୨।ସାଂସାରିକତା—2. Worldliness.
Laukikatā(twa)

**ଲୌକିକ ବ୍ୟବହାର**—ସ. ତ—ଲୌକିକାଚାର (ଦେଖ)
Laukika byabahāra Laukikāchāra. (See)

**ଲୌକିକ ଭାଷା**—ସଂ. ବି—ପ୍ରାକୃତଭାଷା; ଜନସମାଜରେ ଚଳୁଥିବା ଭାଷା; ଘରୋଇ ଭାଷା (ଅର୍ଥାତ୍ ଯାହା ସାହିତ୍ୟଗତ ଭାଷା ନୁହେଁ)—Popular language; popular dialect; language used in common parlance; spoken language; vernacular. (as opposed to literary language) [ ଦ୍ର—ସାଧାରଣ ଲୋକଙ୍କ ବ୍ୟବହୃତ ଭାଷା ପ୍ରାକୃତ ବା ଲୌକିକ ଭାଷା । ସଭ୍ୟ, ଶିକ୍ଷିତ ଲୋକମାନେ ଯେଉଁ ସାହିତ୍ୟଗତ ଭାଷା ବ୍ୟବହାର କରନ୍ତି ତାହା ସଂସ୍କୃତ ଭାଷା ବା ସାହିତ୍ୟିକଭାଷା ଅଟେ । ଦେଶର ଭିନ୍ନ ଭିନ୍ନ ଅଞ୍ଚଳରେ ଯେଉଁ ଭାଷା ବ୍ୟବହୃତ ହୁଏ ତାକୁ ଲୌକିକଭାଷା ବା (dialect) ବୋଲାଯାଏ ଏବଂ ଯେଉଁ ଭାଷା ମାର୍ଜିତ ହୋଇ ସାହିତ୍ୟରେ ବ୍ୟବହୃତ ହୁଏ ତାକୁ ସଂସ୍କୃତଭାଷା ବୋଲାଯାଏ; ଯଥା—ଭାରତବାସୀ ଆର୍ଯ୍ୟମାନେ ଭିନ୍ନ ଭିନ୍ନ ଅଞ୍ଚଳରେ କଥାବାର୍ତ୍ତାରେ ଯେଉଁ ଭାଷାବ୍ୟବହାର କରୁଥିଲେ ବା କରନ୍ତି ତାହା ଲୌକିକ ଭାଷା, ଯଥା—ପ୍ରାକୃତ, ପାଲି, ମାଗଧୀ, ବଙ୍ଗଳା, ଓଡ଼ିଆ, ହିନ୍ଦୀ, ଗୁଜରାଟି ଓ ମରହଟ୍ଟୀ ଇତ୍ୟାଦି ଓ ଯାହା ଲେଖାରେ ଓ ସାହିତ୍ୟରେ ବ୍ୟବହୃତ ହେଉଥିଲା ବା ହୁଏ ତାହା ସଂସ୍କୃତଭାଷା । ଭାଷାର ଉତ୍ପତ୍ତି ସମ୍ବନ୍ଧେ ନାନା ମତ ଦେଖାଯାଏ । କେହି କେହି କହନ୍ତି ଲୌକିକ ବା ପ୍ରାକୃତ ଭାଷାମାନ ସଂସ୍କୃତରୁ ଉତ୍ପନ୍ନ; କେହି କେହି କହନ୍ତି ଲୌକିକ ଭାଷାମାନ ମାର୍ଜିତ ଓ ସଂସ୍କୃତ କରାଯାଇ ସେଥିରୁ ସଂସ୍କୃତଭାଷା ଉତ୍ପନ୍ନ । ସଂସ୍କୃତ ନାଟକ ଆଦିରେ ଦୁଇଟି ଭାଷା ବ୍ୟବହୃତ ହୋଇଥିବା ଦେଖାଯାଏ; ଯଥା—ରାଜା ଓ ପଣ୍ଡିତମାନଙ୍କ ମୁଖରେ ସଂସ୍କୃତଭାଷା ଏବଂ ଭୃତ୍ୟ, ସ୍ତ୍ରୀ ଓ ଇତର ବ୍ୟକ୍ତିଙ୍କ ମୁହଁରେ ଲୌକିକ ବା ପ୍ରାକୃତ ଭାଷା । ଲୌକିକ ଭାଷାମାନ ଭିନ୍ନ ଭିନ୍ନ ଅଞ୍ଚଳରେ ପୃଥକ୍ ପୃଥକ୍; କିନ୍ତୁ ସଂସ୍କୃତ ଭାଷା ସବୁ ଅଞ୍ଚଳରେ ଏକ । 'ପ୍ରାକୃତ'ରୁ ସଂସ୍କୃତ ଜାତ, କି ସଂସ୍କୃତରୁ ପ୍ରାକୃତ ଜାତ, ଏ ସମସ୍ୟାଟି 'ପ୍ରଥମେ ବୀଜରୁ ବୃକ୍ଷ ଜାତ ? କିମ୍ବା ବୃକ୍ଷରୁ ବୀଜ ଜାତ ?' ପରି ଗୋଟିଏ ଜଟିଳ ସମସ୍ୟା ଅଟେ । କେହି କେହି କହନ୍ତି ଯେ, ଓଡ଼ିଆ ଭାଷାର ମାତା ସଂସ୍କୃତଭାଷା, ପୁଣି କେହି କେହି କହନ୍ତି ଓଡ଼ିଆଭାଷା ପ୍ରାକୃତରୁ ଜାତ ହୋଇଅଛି । ଫଳତଃ ଦେଖାଯାଏ ଯେ, 'ପ୍ରାକୃତ' ଭାଷା ସଙ୍ଗେ ଓଡ଼ିଆ ଭାଷାର ଯେତେ ସାଦୃଶ୍ୟ ଅଛି, ସଂସ୍କୃତ ସଙ୍ଗେ ସେତେ ନାହିଁ । ସୂକ୍ଷ୍ମ ଦୃଷ୍ଟିରେ ବିଚାର କଲେ ଦେଖାଯିବ ଯେ ସଂସ୍କୃତଭାଷା ଯେଉଁ 'ପ୍ରାକୃତ' ଭାଷାର ମାର୍ଜିତ ରୂପ ଓଡ଼ିଆ ଆଦି କଥ୍ୟ ଭାଷା ସେହି 'ପ୍ରାକୃତ' ଭାଷାର କ୍ରମଶଃ ପରିବର୍ତ୍ତିତରୂପ । ]
Laukikg bhāshā
[ସଂସ୍କୃତ ଭାଷା—ବିପରୀତ]

**ଲୌକିକ ସଂସ୍କୃତ**—ସ. ବି—ଲୋକସମାଜରେ ପ୍ରଚଳିତ ସଂସ୍କୃତ ଭାଷା—The Sanskrit language in ordinary use (as opposed to vedic Sanskrit). [ ଦ୍ର—ବୈଦିକ ସଂସ୍କୃତ ବା ବୈଦିକ ଯୁଗରେ ଚଳୁଥିବା ସଂସ୍କୃତ ଭାଷାର ବ୍ୟାକରଣ ଓ ସୂତ୍ରମାନ ଲୌକିକ ସଂସ୍କୃତ ବା ପରବର୍ତ୍ତୀ ଯୁଗର ସାହିତ୍ୟରେ ବ୍ୟବହୃତ ସଂସ୍କୃତ ଭାଷାଠାରୁ ପୃଥକ୍ ଅଟେ । ]
Laukikasaṁskṛuta
(ବୈଦିକ ସଂସ୍କୃତ—ବିପରୀତ)

**ଲୌକିକତା ଗ୍ରହଣ**—ସଂ. ବି—ବିବାହାଦି ଉତ୍ସବରେ ବନ୍ଧୁବାନ୍ଧବମାନଙ୍କଠାରୁ ବେଭାର ନେବା—Acceptance of customary gifts or presents from relatives on occasions of family fesivals and ceremonies.
Laukikatā grahaṇa

**ଲୌକିକ ନ୍ୟାୟ**—ସଂ. ବି ( କର୍ମଧା )—ଲୋକସାଧାରଣରେ ପାଳିତ ନିୟମ ( ହ୍ର. ଶ )—Rules observed by the people generally.
Laukika nyāya

**ଲୌକିକାଗ୍ନି**—ସଂ. ବି—ଅସଂସ୍କୃତାଗ୍ନି; ଯେଉଁ ଅଗ୍ନିକୁ ମନ୍ତ୍ରାଦିଦ୍ୱାରା ସଂସ୍କୃତ କରାଯାଇ ନାହିଁ—Fire which has not been hallowed or consecrated by means of mystic rites.
Laukikāgni

[ଦ୍ର—ସାଧାରଣ ଲୋକେ ଯେଉଁ ଅଗ୍ନି ବ୍ୟବହାର କରନ୍ତି ତାହାଙ୍କୁ ଲୌକିକାଗ୍ନି ବୋଲାଯାଏ । ଉକ୍ତ ଅଗ୍ନିକୁ ମନ୍ତ୍ର ଓ ହୋମାଦିଦ୍ୱାରା ସଂସ୍କୃତ ଓ ପବିତ୍ରୀକୃତ କଲେ ତାହା ସଂସ୍କୃତାଗ୍ନି ହୁଏ, ଏବଂ ଏହି ସଂସ୍କୃତାଗ୍ନିଦ୍ୱାରା ବୈଦିକ ହୋମ ଓ ପାକ ଆଦି କରାଯାଏ । ହିନ୍ଦୁଶାସ୍ତ୍ର ମତରେ ବ୍ରାହ୍ମଣ ସଂସ୍କୃତାଗ୍ନିଦ୍ୱାରା ପାକାଦି କରିବେ । ଭିନ୍ନ ଭିନ୍ନ ମନ୍ତ୍ରାଦିଦ୍ୱାରା ଭିନ୍ନ ଭିନ୍ନ କାର୍ଯ୍ୟ ପାଇଁ ସଂସ୍କୃତ ଅଗ୍ନିମାନଙ୍କର ଭିନ୍ନ ଭିନ୍ନ ନାମ ଅଛି ଯଥା—ଗାର୍ହପତ୍ୟ, ଆହବନୀୟ, ଦକ୍ଷିଣ, ଅବସଥ୍ୟ ବା ପଞ୍ଚାସଭ୍ୟ । ଗୃହସ୍ଥ ବ୍ରାହ୍ମଣ ତାହାଙ୍କ ଗୃହରେ ସର୍ବଦା ସଂସ୍କୃତାଗ୍ନିକୁ ରକ୍ଷା କରିବେ ଓ ତଦ୍ଦ୍ୱାରା ଦୈନିକ ପାକ ଓ ଯଜ୍ଞହୋମାଦି କରିବେ ବୋଲି ଶାସ୍ତ୍ରରେ ଆଦେଶ ଅଛି । ]

ଲୌକିକାଗ୍ଚାର—ସଂ. ବି.—(କର୍ମଧା)—୧ । ଲୋକାଗ୍ଚାର; ଦେଶ ବା Loukikāchāra ସମାଜ ପ୍ରଚଳିତ ଆଗ୍ଚାର—1. Customary usage. ୨ । ଲୌକିକତା (ଦେଖ) 2. Loukikatā (See).

ଲୌକ୍ୟ—ସଂ. ବିଣ—(ଲୋକ + ଯ)—୧ । ସାଂସାରିକ—Laukya 1. Worldly (Apte) ୨ । ପାର୍ଥିବ—2. Terrestrial (Apte). ୩ । ମାନୁଷିକ—3. Human (Apte). ୪ । ସାଧାରଣ—4. Common (Apte).

ଲୌ ଜାରି—ଦେ. ବି.—୧ । ରକ୍ତସ୍ରାବ—1. Blooding; hae_ Lau jāri morrhage. ୨ । ଋତୁସ୍ରାବ—2. ରକ୍ତପାତ ଲହୁଜାରୀ Menstrual flux; menstruation.

ଲୌଟ—ଦେ. ବି ଓ ବିଣ—ଲେଉଟ (ଦେଖ) Lauṭa Leuṭa (See)

ଲୌଟା [ଇତ୍ୟାଦି]—ଦେ. ବି ଓ ବିଣ.—(ସଂ. ନିବର୍ତ୍ତନ)—ଲେଉଟା Lauṭā (etc) ଇତ୍ୟାଦି (ଦେଖ) Leuṭā etc (See)

ଲୌଟିବା—ଦେ. କ୍ରି.—ଲେଉଟିବା (ଦେଖ) Lauṭibā Leuṭibā (See)

ଲୌଡ଼ା—ଦେ. ବି—ଲହୁଡ଼ା (ଦେଖ) Lauṛā Lahuṛā (See)

ଲୌଡ଼ି—ଦେ. ବି—ନହୁଡ଼ି (ଦେଖ) Lauṛi Nauṛi (See)

ଲୌତନ—ଗ୍ରା. ବିଣ.—(ସଂ. ନୂତନ)—ନୂତନ; ନୂଆ Lautana ନୋତୁନ ନବତନ New.

ଲୌତି—ପ୍ରାଦେ. ( କଟକ ସହର ) ବି—ନଉତି ( ଦେଖ ) Lauti Nauti ( See )

ଲୌତେୟ—ସଂ. ବି ( ଲୂତା + ଏୟ )—ଲୂତାବର୍ଗ; ଭିନ୍ନ ଭିନ୍ନ ପ୍ରକାରର Lauteya ମାକଡ଼ସା ଶ୍ରେଣୀର ଜୀବଗଣ—The arachnida; the class of insects consisting of different species of spiders.

ଲୌନି—ପ୍ରାଦେ. ( ବସ୍ତର ) ବି—ଲହୁଣୀ ( ଦେଖ ) Launi Lahuṇī ( See )

ଲୌମହରଷଣି—ଦେ. ବି (ପଦ୍ୟ)—ଲୋମହର୍ଷଣଙ୍କ ପୁତ୍ର ଉଗ୍ରଶ୍ରବା—Laumaharashaṇi The sage Ugraśrbā; the son of Lomaharshaṇa. [ ଦ୍ର—କହିଲା ସଭା ମଧ୍ୟେ ଲୌମହରଷଣି । କୃଷ୍ଣସିଂହ, ମହାଭାରତ, ଆଦି । ]

ଲୌଲି—ଦେ. ବିଣ—ଲଉଲି ( ଦେଖ ) Lauli Lauli ( See )

ଲୌଲ୍ୟ—ସଂ. ବି ( ଲୋଲ + ଭାବ. ଯ )—୧ । ଚଞ୍ଚଳ୍ୟ; ଚପଲ୍ୟ—Laulya 1. Fickleness; unsteadiness. ୨ । ଲୋଭ; ପ୍ରବଳ ବାସନା—2. Appetite; lust. ୩ । ଲହଡ଼ାପଣ—3. Waving; wavering quality. ୪ । ଦୀନତା; ପ୍ରଭୁଙ୍କ ନିକଟରେ ପ୍ରାର୍ଥୟିତାର ପ୍ରକାଶ କରିବା ଦୈନ୍ୟଭାବ—4. Humility.

ଲୌହ—ସଂ. ବି ( ଲୋହ + ଅ )—୧ । ଲୁହା—1. Iron. ୨ । Lauha ଶସ୍ତ୍ରାସ୍ତ୍ର ( ହି. ଶ ) 2 Weapons. [ ଦ୍ର—ଲୋହ ଶବ୍ଦ ବିଶିଷ୍ଟ ଶବ୍ଦମାନ ଲୌହ ଶବ୍ଦ ବିଶିଷ୍ଟ ହୋଇ ମଧ୍ୟ ବ୍ୟବହୃତ ହୁଏ । ] ବିଣ—୧ । ଲୁହାରେ ତିଆରି; ଲୌହ ନିର୍ମିତ—1. Made of iron. ୨ । ଲୁହା ପରି ଟାଣୁଆ—2. Hard as iron. ୩ । ଧାତୁମୟ; ଧାତବ—3. Metallic Apte ). ୪ । ତମ୍ବାଳିଆ; ନାଲିଆ—4. Copper coloured; red ( Apte ).

ଲୌହକାର—ସଂ. ବି—କମାର—Lauhakāra Blackimith.

ଲୌହ କିଟ୍ଟ—ସଂ. ବି ( ୬ଷ୍ଠୀ ତତ୍ )—ଲୁହା ମଳ (ଦେଖ )—Luhā Lauha kiṭṭa (ଲୌହମଳ—ଅନ୍ୟରୂପ ) maḷa ( See ).

ଲୌହ କୀଳ—ସଂ. ବି—ଲୁହାର ବଡ଼ କଣ୍ଟା—Lauha kiḷa An iron bolt (M.W).

ଲୌହ ଘଟିତ—ସଂ. ବିଣ—ଯେଉଁ ଔଷଧାଦିରେ ଲୌହ ଉପାଦାନ-Lauha ghaṭita ରୂପେ ବ୍ୟବହୃତ ହୁଏ—Medicine one of whose ingredients is iron. [ ଦ୍ର—ବୈଦ୍ୟଶାସ୍ତ୍ର ଅନୁସାରେ ଲୌହଭସ୍ମ ଘଟିତ ଔଷଧ-ଦ୍ୱାରା ଦେହର ରକ୍ତବିକୃତି ନାଶ ହୁଏ ଓ ରକ୍ତର ତେଜ ବଢ଼େ । ପାଶ୍ଚାତ୍ୟ ବିଜ୍ଞାନର ମତରେ ମଧ୍ୟ ଲୌହ ରକ୍ତର ଗୋଟିଏ ପ୍ରଧାନ ଉପାଦାନ ଓ ବଳକାରକତା ପାଇଁ ଲୌହ-ଘଟିତ ଔଷଧ ପ୍ରୟୋଗ କରାଯାଏ । ଶରୀରର ରକ୍ତରୁ ଲୌହର ଅଂଶ କମିଲେ ରକ୍ତ ଫିକା ପଡ଼ିଯାଏ । ]

ଲୌହ ଚର୍ମ—ସଂ. ବି—ଯୁଦ୍ଧାସ୍ତ୍ରବିଶେଷ—A kind of weapen. Lauha charma [ ଦ୍ର—ଶତଘ୍ନୀ, ଦେଖ ଲୌହଚର୍ମ ଗଦା ଶୂଳ—କୃଷ୍ଣସିଂହ, ମହାଭାରତ, ବନ । ]

ଲୌହଗ୍ଚାରକ—ସଂ. ବି—ନରକବିଶେଷ—Name of a particular division of the hell Lauhachāraka according to the Hindus.

ଲୌହଜ—ସଂ. ବଣ—ଲୌହ ନିର୍ମିତ—Made of iron. ସଂ. ବି—
Lauhaja ଲୁହାର କଳଙ୍କି—Rust of iron ( Apte ).
( ଲୌହଜାତ—ଅନ୍ୟରୂପ )

ଲୌହ ନିର୍ମିତ—ସଂ. ବଣ ( ୩ୟା ତତ୍ )—ଲୁହାରେ ତିଆରି; ଯହିଁର
Lauha nirmita ଉପାଦାନ ଲୌହ ଅଟେ—Made of iron.

ଲୌହ ବନ୍ଧ—ସଂ. ବି—ଲୁହାର ବେଡ଼ି—
Lauha bandha Fetters; irons ( Apte ).

ଲୌହ ବର୍ତ୍ମ—ସଂ. ବି (ଆଧୁନିକ ପ୍ରୟୋଗ)—ଲୁହାରେ ତିଆରି ରାସ୍ତା;
Lauha barttma ଯେଉଁ ଲୁହାର ରାସ୍ତା ଉପରେ ରେଲଗାଡ଼ି ଓ ଟ୍ରାମ ଗାଡ଼ି ଆଦିର ଚକ ଚଳେ—Iron line of rail; railway or tram line.

ଲୌହ ଭସ୍ମ—ସଂ. ବି ( ଔଷଧାଦିରେ ବ୍ୟବହୃତ )—ରସାୟନିକ ବା
Lauha bhasma ବୈଦ୍ୟଶାସ୍ତ୍ରୋକ୍ତ ଉପାୟରେ ଯାଂଶରୂପରେ ପରିଣତ ଲୌହ—Oxide of iron; ferric oxide.
[ ଦ୍ର—ଆଧୁନିକ ଚିକିତ୍ସାଶାସ୍ତ୍ର ଅନୁସାରେ ମଧ୍ୟ ଲୌହ-ଘଟିତ ଔଷଧଦ୍ୱାରା ଦେହସ୍ଥ ରକ୍ତର ତେଜ ବୃଦ୍ଧି ପାଏ । ଆୟୁର୍ବେଦୋକ୍ତ ଶୋଧନ, ମାରଣ ବା ଜାରଣ କ୍ରିୟାଦ୍ୱାରା ଲୌହର ଭସ୍ମ ପ୍ରସ୍ତୁତ କରି ଔଷଧାଦିରେ ବ୍ୟବହାର କରାଯାଏ । ଅଜାରିତ ଲୌହଦ୍ୱାରା ରୋଗ ଓ ମୃତ୍ୟୁ ପର୍ଯ୍ୟନ୍ତ ଘଟେ । ଲୁହାକୁ ଝିଙ୍କଟିକି ପାଉଥି ବା ଚୂର୍ଣ୍ଣ (ରୁଗ) କରି ନିଆଁରେ ତତାଇ ତୈଳ, ଦହି, କାଞ୍ଜି, ଗୋମୂତ୍ର ଓ କୋଳଥ କ୍ୱାଥରେ ବତୁରାଇ, ପୁଣି ଦୁଧ, କାଞ୍ଜି, ଗୋମୂତ୍ର ଓ କୋଳଥ କ୍ୱାଥରେ ବତୁରାଇ, ପୁଣି ଦୁଧ, କାଞ୍ଜି ଓ ତ୍ରିଫଳା ପାଣିରେ ସିଝାଇ, ଗୋମୂତ୍ର ସଙ୍ଗେ ମର୍ଦ୍ଦିତ କରି ଗଜପୁଟଦ୍ୱାରା ଦଗ୍ଧ କରି ଭସ୍ମ ପ୍ରସ୍ତୁତ କରାଯାଏ । ହଜାରେ ଥର 'ଗଜପୁଟ' ପ୍ରକ୍ରିୟାରେ ଦଗ୍ଧ ଲୌହଭସ୍ମ ବିଶେଷ ଫଳପ୍ରଦ । ଅନ୍ତତଃ ୫୦୦ ଥର ପୁଟଦଗ୍ଧ ଲୌହଭସ୍ମ ବ୍ୟବହାର କରିବା ଉଚିତ । ଏହି ଲୌହଭସ୍ମ ନାନା ଅନୁପାନ ସହିତ ଶୂଳରୋଗ, ବାତ, ପୁରାତନ ଜ୍ୱର, ଶ୍ୱାସ ଓ ସନ୍ନିପାତରେ ବ୍ୟବହୃତ ହୁଏ । ଏହାର ମାତ୍ରା ଏକ ରତି ।]

ଲୌହ ଭାଣ୍ଡ—ସଂ. ବି—୧ । ଲୁହାର ହାଣ୍ଡି—1. Pot made of
Lauha bhāṇḍa iron. ୨ । ହାମାମ୍‌ଦସ୍ତା—2. A mortar made of iron.

ଲୌହଭୂ—ସଂ. ବି—ଲୌହ ନିର୍ମିତ ପାକ ପାତ୍ର—
Lauhabhū Kettle; boiler; cauldron (Apte).

ଲୌହମୟ—ସଂ. ବି—ଲୌହ ନିର୍ମିତ—
Lauhamaya Made of iron.

ଲୌହ ମଳ—ସଂ. ବି—ମଣ୍ଡୁର; ଲୁହା ଗୁହ—
Lauha maḷa Scoria.

ଲୌହ ମାରଣ—ସଂ. ବି ( ବୈଦ୍ୟକ )—ବୈଦ୍ୟଶାସ୍ତ୍ରୋକ୍ତ ବିଧିଦ୍ୱାରା
Lauha māraṇa ଭସ୍ମ ପ୍ରସ୍ତୁତ କରିବା ପାଇଁ ଲୌହକୁ
(ଲୌହ ଶୋଧନ—ଅନ୍ୟରୂପ) ଗୋମୂତ୍ର ଆଦି ଦ୍ୱାରା ବିଶେଷାଦି କରିବା ବିଧି—The act of refining iron for preparing oxide.

ଲୌହ ଯୁଗ—ସଂ. ବି—୧ । (ଆଧୁନିକ ପ୍ରୟୋଗ) ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ-
Lauha juga ଦ୍ୱାରା ସ୍ଥିରୀକୃତ ସୃଷ୍ଟିକାଳରୁ ଆଜି ପର୍ଯ୍ୟନ୍ତ ଘଟିଥିବା
लौह युग ତିନି ଯୁଗ ମଧ୍ୟରୁ ଏକତମ (ଯେଉଁ ଯୁଗରେ
लौह युग ଆଦିମ ପ୍ରସ୍ତର ନିର୍ମିତ ଅସ୍ତ୍ର ଶସ୍ତ୍ରମାନଙ୍କ ପରିବର୍ତ୍ତରେ ଲୋକେ ଲୌହର ବ୍ୟବହାର କରିବାକୁ ଶିକ୍ଷା କଲେ )—
1. The iron age of the world. ୨ । କଳିଯୁଗ ( ଯେଉଁ ଯୁଗରେ ଲୋକେ ପୂର୍ବକାଳ ଅପେକ୍ଷା ବେଶୀ କଠୋର ହୃଦୟ ହୋଇଅଛନ୍ତି) —2. The iron age; the Kali juga ( during which men have become harder in heart than before).
୩ । ଲୌହମୟ ଯୁଆଳି; ଲୁହାର ଯୁଆଳି—
3 Yoke made of iron.

ଲୌହ ଶଙ୍କୁ—ସଂ. ବି—ବଡ଼ ଲୁହା କଣ୍ଟା ବା ଖିଲା—
Lauha śaṅku An iron spike (Apte).

ଲୌହ ସାର—ସଂ. ବି—୧ । ଇସ୍ପାତ; ବୈଜ୍ଞାନିକ ପ୍ରକ୍ରିୟାଦ୍ୱାରା କଠିନୀ
Lauha sāra କୃତ ଠାଣ ଲୁହା—1. Steel; hardened iron. [ ଦ୍ର—ଏଥିରେ ପୂର୍ବକାଳୀନ କ୍ଷତ୍ରିୟ ଆଦି ଯୁଦ୍ଧାସ୍ତ୍ର ନିର୍ମିତ ହେଉଥିଲା । ] ୨ । ( ବୈଦ୍ୟକ ) ଲୌହରୁ ଉତ୍ପାଦିତ ଏକପ୍ରକାର ଲବଣ ( ହି. ଶ )—
2. A kind of medicinal salt prepared from iron.

ଲୌହସାରକ—ସଂ. ବି—ଲୋହସାରକ (ଦେଖ)
Lauhasāraka Lohasāraka (See)

ଲୌହା—ସଂ. ବି—ପାଣି ଫୁଟାଇବା ପାଇଁ ବ୍ୟବହୃତ ଲୁହାର ପାତ୍ର—
Lauhā Kettle (Apte).

ଲୌହାଚାର୍ଯ୍ୟ—ସଂ. ବି ( ୬ଷ୍ଠୀ ତତ୍ )—ଧାତୁମାନଙ୍କ ତତ୍ତ୍ୱଜ୍ଞ ଆଚାର୍ଯ୍ୟ;
Lauhāchārjya ଧାତୁତତ୍ତ୍ୱବିତ୍ ( ହି. ଶ )—A person versed in the science of metals; a metallurgist.

ଲୌହାୟସ—ସଂ. ବି—ଲୁହା ଓ ତମ୍ବାରେ ନିର୍ମିତ—
Lauhāyasa Made of iron and copper,

ଲୌହାସବ—ସଂ. ବି ( ବୈଦ୍ୟକ )—ଲୁହା ସାହାଯ୍ୟରେ ପ୍ରସ୍ତୁତ ଏକ-
Lauhāsaba ପ୍ରକାର ସୁରା—A kind of spirits made with the help of iron.

ଲୌହିତ—ସଂ. ବି—ମହାଦେବଙ୍କ ତ୍ରିଶୂଳ ( ହି. ଶ )—
Lauhita The trident of Siba.

ଲୌହିତ୍ୟ—ସଂ. ବି (ଲୋହିତ+ଯ)—୧ । ରକ୍ତବର୍ଣ୍ଣତା—1. Red-
Lauhitya ness. ୨ । ରକ୍ତବର୍ଣ୍ଣ—2. Red colour. ୩ । ବ୍ରହ୍ମପୁତ୍ର ନଦ—3. The river Brahmaputra.
୪ । ରକ୍ତସମୁଦ୍ର; ଯେଉଁ ଠାରେ ରକ୍ତନଦୀ ବୋହୁଥାଏ—
4. A sea of blood; a place where blood flows like the sea. ୫ । ନାଲି ଚାଉଳ ବିଶିଷ୍ଟ ଏକ-ପ୍ରକାର ଧାନ (ହି. ଶ)—5. A kind of paddy with red rice. ୬ । ପର୍ବତ ବିଶେଷ (ହି. ଶ)—
6. Name of a mountain.

**ଲୌହିତ୍ୟା**—ସଂ. ବି. ସ୍ତ୍ରୀ (ଲୌହିତ୍ୟ+ଆ)—ଆସାମର କାମରୂପ ଦେଶର
Lauhityā ଉତ୍ତର ଦିଗରେ ଥିବା ନଦୀ ବିଶେଷ—Name of a river in the Kāmarūpa country of Assam. [ଦ୍ର—ଲୌହିତ୍ୟା ତଟରେ ଯୌତ ପ୍ରାଗ ଜ୍ୟୋତିଷପୁର । ରାଧାନାଥ. ମହାଯାତ୍ରା ।]

**ଲ୍ୟାଙ୍ଗୋଟା**—ପ୍ରାଦେ (ଗଞ୍ଜାମ) ବି—କାଛ—
Lyāṅgoṭā The loin-cloth of a Sannyāsi

**ଲ୍ୟାଣ୍ଡ** (ଇତ୍ୟାଦି)—ବୈଦେ. ବି. (ଇଂ)—ଲାଣ୍ଡ ଇତ୍ୟାଦି (ଦେଖ)
Lyāṇd (etc) Lāṇd etc (See)

# ୱ

**ୱ**—ଅନ୍ତଃସ୍ଥ ବା ଅବର୍ଗ୍ୟ ୱ । ବ୍ୟଞ୍ଜନ ବର୍ଣ୍ଣମାଳାର ଊନତ୍ରିଂଶ ଅକ୍ଷର ଓ
Wa ଅବର୍ଗ୍ୟ ବର୍ଣ୍ଣମାନଙ୍କ ମଧ୍ୟରୁ ଚତୁର୍ଥ ଅକ୍ଷର । ଏହାର ଉଚ୍ଚାରଣ
ବ ଦନ୍ତ ଓ ଓଷ୍ଠ ସାହାଯ୍ୟରେ ହେଉଥିବାରୁ ଏହାକୁ ଦନ୍ତୋଷ୍ଠ୍ୟ ମଧ୍ୟ
ଯ ବୋଲାଯାଏ । ଉପର ପାଟିର ଦାନ୍ତକୁ ତଳ ଓଠ ଉପରେ ଲଘୁ ଭାବରେ ଛୁଇଁଲା ପରି କରି ଉଚ୍ଚାରଣ କଲେ ଏହା ଉଚ୍ଚାରିତ ହୁଏ । ଏହି ଅନ୍ତଃସ୍ଥ ୱର ଉଚ୍ଚାରଣ ଇଂରାଜୀ W (ଡବ୍ଲ୍ୟୁ) ଅକ୍ଷର ଓ ଫାର୍ସୀ 'ୱାଓ' ଅକ୍ଷରର ଉଚ୍ଚାରଣ ସଙ୍ଗେ ସମକକ୍ଷ ଏବଂ ଇଂରାଜୀ V (ଭି) ଅକ୍ଷରର ଉଚ୍ଚାରଣ ସଙ୍ଗେ କେତେକ ଅଂଶରେ ସମାନ । ବର୍ଗ୍ୟ ବ ଓ ଅବର୍ଗ୍ୟ ୱ ମଧ୍ୟରେ ଲକ୍ଷିତ ଆକାରଗତ ପ୍ରଭେଦ ଓଡ଼ିଆରେ ନ ଥିବାରୁ ଭାଷାରେ କ୍ରମଶଃ ଅବର୍ଗ୍ୟ ବ ଯୁକ୍ତ ଶବ୍ଦମାନ ବର୍ଗ୍ୟ ବ [ଇଂରାଜୀ B (ବି), ଫାରସୀ ବେ] ପରି ଉଚ୍ଚାରିତ ହୋଇ, ମୂଳତଃ ଯେଉଁ ଶବ୍ଦମାନଙ୍କରେ ସଂସ୍କୃତରେ ଅବର୍ଗ୍ୟ ୱ ଅଛି, ସେଗୁଡ଼ିକ ବର୍ଗ୍ୟ ବ ରୂପେ ଉଚ୍ଚାରିତ ହୋଇ ସାରି ଅଛି ।

ବର୍ଗ୍ୟ ବ ର ଉଚ୍ଚାରଣ 'ଅମ୍ବା, ଲମ୍ବ, ଉଦ୍ବହ' ଆଦିରେ ଲକ୍ଷିତ ହୁଏ । ଅବର୍ଗ୍ୟ ୱର ଉଚ୍ଚାରଣ 'ଅନ୍ୱୟ, ପକ୍ୱ, ଚତ୍ୱର, ଦ୍ୱିତୀୟ' ଆଦିରେ ଲକ୍ଷିତ ହୁଏ । ସଂସ୍କୃତରେ ବର୍ଗ୍ୟ ବ ଓ ଅବର୍ଗ୍ୟ ୱର ଉଚ୍ଚାରଣରେ ସ୍ୱାତନ୍ତ୍ର୍ୟ ରକ୍ଷିତ ହେଉଥିଲା । ଏବେ ମଧ୍ୟ ହିନ୍ଦୀ, ଓ ମରହଟ୍ଟୀ ଆଦି କେତେକ ଆଧୁନିକ ଭାଷାରେ ଏହି ଉଚ୍ଚାରଣଦ୍ୱୟର ସ୍ୱାତନ୍ତ୍ର୍ୟ ରକ୍ଷିତ ହୋଇ ଆସୁଅଛି, କିନ୍ତୁ ଓଡ଼ିଆ ଭାଷା ଓ ବଙ୍ଗ ଭାଷାରେ ଏହା ରକ୍ଷିତ ହୋଇ ନ ଥିବାରୁ ଓଡ଼ିଆ ଭାଷାରେ ବ-ଅକ୍ଷର ଯୁକ୍ତ ସଂସ୍କୃତ ଭାଷାଗତ ଗୋଟିଏ ଶବ୍ଦକୁ ପାଇବା ନିମନ୍ତେ ସଂସ୍କୃତ ଓ ଓଡ଼ିଆ ଅଭିଧାନରେ ବର୍ଗ୍ୟ ବ ଓ ଅବର୍ଗ୍ୟ ୱ ତଳେ ଖୋଜିବାକୁ ପଡ଼େ । ଅଥଚ ମଧ୍ୟ ସଂସ୍କୃତରେ କେଉଁ ନିୟମ ଅନୁସାରେ ଶବ୍ଦରେ ଥିବା ବ ବର୍ଗ୍ୟ ବା ଅବର୍ଗ୍ୟ ବୋଲି ଜାଣିବାକୁ ହେବ, ତହିଁପାଇଁ ସୁସ୍ପଷ୍ଟ ବିଧି ମିଳୁ ନାହିଁ । ସଂସ୍କୃତ ବ୍ୟାକରଣରେ ନିମ୍ନଲିଖିତ ସୂତ୍ର ଦେଖାଯାଏ—

"ଉପୂର୍ବୌ ଯସ୍ୟ ବଦେଦ୍ୟତେ
ଯୋ ବଃ ପ୍ରତ୍ୟୟ ସନ୍ଧିଜଃ
ଅନ୍ତଃସ୍ଥଂ ତଂ ବିଜାନୀୟାତ୍
ଅନ୍ୟୋ ବର୍ଗୀୟ ଉଚ୍ୟତେ"—

ସଂ. ବ୍ୟାକରଣ ଚନ୍ଦ୍ରିକା ।

ଅର୍ଥାତ୍, ସନ୍ଧିଦ୍ୱାରା ବନେ ପରିଣତ ଉ, ଓ ପ୍ରତ୍ୟୟ-ମାନଙ୍କରେ ଥିବା ବ ଏବଂ 'ଉ'ରୁ ଉତ୍ପନ୍ନ ବ ଅବର୍ଗ୍ୟ ଅଟେ । ସଂସ୍କୃତ କୋଷକାରମାନେ ମଧ୍ୟ ଏ ସମ୍ବନ୍ଧରେ ଅନେକ ସ୍ଥଳରେ ଭୁଲ କରିଥିବା ଦେଖାଯାଏ । କାରଣ, ରାଜା ସର୍ ରାଧାକାନ୍ତ ଦେବଙ୍କ ଶବ୍ଦକଳ୍ପଦ୍ରୁମରେ 'ଵକ' ଓ 'ବକଯୁକ୍ତ' ଶବ୍ଦରୁ କେତେକ ବର୍ଗ୍ୟ ବ ତଳେ, କେତେକ ଅନ୍ତଃସ୍ଥ ବ ତଳେ ଲେଖାଯାଇଅଛି ଓ ଲବଙ୍ଗ, ଲବଣରେ ଥିବା ବକୁ ବର୍ଗ୍ୟ ଓ ଅବର୍ଗ୍ୟ ଉଭୟ ବ-ରୂପେ ଲେଖାଯାଇଅଛି । ଓଡ଼ିଆ ଅଭିଧାନକାର ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ବର୍ଗ୍ୟ ବ ତଳେ ଦେଶଜ ଶବ୍ଦଗୁଡ଼ିକ ଦେଇ ଅଛନ୍ତି ଓ ସଂସ୍କୃତ ଶବ୍ଦକୋଷ ଅନୁସାରେ ସଂସ୍କୃତ ଶବ୍ଦମାନଙ୍କୁ ଯଥାକ୍ରମେ ବର୍ଗ୍ୟ ବ ଓ ଅବର୍ଗ୍ୟ ବ ତଳେ ରଖିଅଛନ୍ତି ।

ଓଡ଼ିଆ ଭାଷାରେ ବର୍ଗ୍ୟ ଓ ଅବର୍ଗ୍ୟ ବ ର ଉଚ୍ଚାରଣରେ ପ୍ରଭେଦ ରକ୍ଷା ହେଉ ନ ଥିବାରୁ ବ୍ୟବହାରରେ 'ବର୍ଗ୍ୟ ବ' ରୂପେ ଉଚ୍ଚାରିତ ସମସ୍ତ ସଂସ୍କୃତ ଶବ୍ଦମାନଙ୍କୁ କେତେକ ବଙ୍ଗୀୟ କୋଷକାର ବର୍ଗ୍ୟ ବ ତଳେ ଦେଇଅଛନ୍ତି । ମୁଁ ମଧ୍ୟ ତାହାହିଁ କରିଅଛି; ତଥାପି, ଏହା କରି ମଧ୍ୟ ଅବର୍ଗ୍ୟ ୱ ର ମୌଳିକ ଉଚ୍ଚାରଣରୁ ଆମ ଭାଷା ଖାଲି ପାଇ ନାହିଁ । ଫାରସୀରୁ ଓ ଇଂରାଜୀରୁ W (ଡବ୍ଲ୍ୟୁ) ଅକ୍ଷରର ଉଚ୍ଚାରଣଯୁକ୍ତ ଯେଉଁ ଶବ୍ଦମାନ ଆମ ଭାଷାରେ ଚଳିଅଛି, ତାକୁ ବ ଦେଇ ଲେଖିଲେ ଲୋକେ ଅବର୍ଗ୍ୟ ୱ ଉଚ୍ଚାରଣ କରିବେ ନାହିଁ । ଏଥିପାଇଁ ତାକୁ କେହି କେହି ଉଅ [ଯଥା—ଉଆରଣ୍ଟ], କେହି କେହି ଓ୍ୱ [ଯଥା—ଓ୍ୱାରେଣ୍ଟ], କେହି କେହି ଓ୍ୟ [ଯଥା—

ଓ୍ୟାରଣ୍ଟ] ଓ କେହି କେହି ଉ [ଯଥା—ଉ୍ୱାରଣ୍ଟ] ଲେଖୁଅଛନ୍ତି ଏବଂ ବଙ୍ଗଦେଶରେ ଓ୍ୟ [ଯଥା—ଓ୍ୟାରଣ୍ଟ] ଦ୍ୱାରା ପ୍ରକାଶ କରୁଅଛନ୍ତି । କବିବର ଶ୍ରୀରାଧାନାଥ ତାଙ୍କ ଦରବାର ପଦ୍ୟରେ 'warrant' [ୱାରଣ୍ଟ]କୁ ବାରେଣ୍ଟ କରିଅଛନ୍ତି ଓ ପାଠକ ତାକୁ ବର୍ଗ୍ୟ ବ ର ଉଚ୍ଚାରଣ କରି ପଢୁଅଛନ୍ତି । ଦେଖିବାକୁ ଗଲେ, ଅବର୍ଗ୍ୟ ୱ ର 'ଉ୍ୱ' ଉଚ୍ଚାରଣ 'ଉ' ଓ 'ଅ' ରୂପକ ଦୁଇଟି ଅକ୍ଷରର ପୃଥକ୍ ସନ୍ନିବେଶଦ୍ୱାରା ପ୍ରତିଭାତ ହୋଇପାରୁ ନାହିଁ, ଅମ୍ଭା ବଙ୍ଗଳାର 'ଓ୍ୟ' ଦ୍ୱାରା ପ୍ରତିଭାତ ହେଉ ନାହିଁ । ଓ ରେ ବ ଫଳା (ଓ୍ୱ) ଅମ୍ଭା ଓ ରେ ଯ ଫଳା (ଓ୍ୟ) ଦେବାଦ୍ୱାରା କେବଳ ଯେ ଅବର୍ଗ୍ୟ ୱ ର ପ୍ରକୃତ ଉଚ୍ଚାରଣ ପ୍ରତିଫଳିତ ହେଉ ନାହିଁ, ତାହା ନୁହେଁ; କିନ୍ତୁ ସ୍ୱରବର୍ଣ୍ଣରେ ଫଳା ଯୋଗ କରିବା ଦ୍ୱାରା ସଂସ୍କୃତ ବ୍ୟାକରଣ ଶାସ୍ତ୍ର-ବିରୁଦ୍ଧ କର୍ମ କରାଯାଉଅଛି । ଯେବେ ସ୍ୱରବର୍ଣ୍ଣରେ ଫଳା ଯୋଗ କରି ବ୍ୟାକରଣବିରୁଦ୍ଧ ଓ ଶାସ୍ତ୍ରବିରୁଦ୍ଧ ନୂଆ ପାଠ କାଢ଼ିବାକୁ ହେଲା, ତେବେ ଅବର୍ଗ୍ୟ ବ ଉ ରୁ ଉତ୍ପନ୍ନ ହେଉଥିବାରୁ ତାହାର ପ୍ରକୃତ ଉଚ୍ଚାରଣକୁ ପ୍ରତିଫଳିତ କରିବା ପାଇଁ ଉ ରେ ବ ଫଳା (ଉ୍ୱ) ଦେଲେ ତାହା ଓ୍ୱ ବା ଓ୍ୟ ଅପେକ୍ଷା ସ୍ପଷ୍ଟତର ଓ ଶୁଦ୍ଧତର ଉଚ୍ଚାରଣ ହେବ । ଏହା ହେଲେ ମଧ୍ୟ ସ୍ୱରବର୍ଣ୍ଣ ଉ ରେ ବ ଫଳା ଦେବା ସଂସ୍କୃତ ବ୍ୟାକରଣର ଶାସ୍ତ୍ରବିରୁଦ୍ଧ ହେବ । ଏଣେ ଗୋଳକଧନ୍ଦାରୁ ରକ୍ଷା ପାଇବାର ଏକମାତ୍ର ଉପାୟ ଏହି କି, 'ୟ' ଲେଖିବାଦ୍ୱାରା ଯେପରି 'ଇଅ' ଉଚ୍ଚାରଣକୁ 'ଯ' ଠାରୁ ପୃଥକ୍ ରଖା ଯାଇଅଛି 'ବ' ରେ ସେହିପରି ଗୋଟିଏ କିଛି ପ୍ରଭେଦଜ୍ଞାପକ ଚିହ୍ନ ଯୋଗ କରି ତାକୁ ବର୍ଗ୍ୟ ବ ଠାରୁ ପୃଥ ଅବର୍ଗ୍ୟ ବ ରେ ପରିଣତ କରିବାଦ୍ୱାରା ଏ ସମସ୍ୟା ସାଧନ କରିବାକୁ ହେବ । ଦେବନାଗରରେ ବ (ब)ରେ ଗୋଟିଏ କଲଣୀ (ब़) ଦେବାଦ୍ୱାରା ବର୍ଗ୍ୟ ଓ କଲଣୀ ନ ଦେଇ (व) ଅବର୍ଗ୍ୟ ବ କରି ଦୁହିଙ୍କ ପ୍ରଭେଦ ରକ୍ଷା କରା ଯାଇଅଛି । ବଙ୍ଗଳାରେ ମଧ୍ୟ (ব) ତଳେ ଗୋଟିଏ ବିନ୍ଦୁ ଦେଇ ଅବର୍ଗ୍ୟ ବ କରାଯାଉଅଛି । ଆଧୁନିକ ବଙ୍ଗୀୟ ଭାଷାର ଲେଖକମାନେ ବଙ୍ଗଳା ବ (ব) ର ନିମ୍ନସ୍ଥ ପାର୍ଶ୍ୱରେଖାଦ୍ୱୟର ସଙ୍ଗମ ନିମ୍ନ କୋଣ ତଳେ ଗୋଟିଏ ବିନ୍ଦୁ ଦେଇ (ব়) ଅବର୍ଗ୍ୟ ବ କୁ ଚିହ୍ନାଉ ଅଛନ୍ତି । ଶ୍ରୀଯୁକ୍ତ ଜ୍ଞାନେନ୍ଦ୍ରମୋହନ ଦାସଙ୍କ 'ବାଙ୍ଗ୍ଲା ଭାଷାର ଅଭିଧାନ'ରେ ଏହି ପଦ୍ଧତି ଅବଲମ୍ବିତ ହୋଇଅଛି । କିନ୍ତୁ ଲେଖିଲାବେଳେ ଟିକିଏ ଅସାବଧାନତା ଯୋଗୁଁ ଉକ୍ତ ବିନ୍ଦୁଟି ବାଆଁ ଆଡ଼କୁ ଘୁଞ୍ଚି ଆସିଲେ ତାହା ବଙ୍ଗୀୟ ବର୍ଣ୍ଣମାଳାର ର (র) ଅକ୍ଷର ହୋଇଯିବ; ଏହି ଆଶଙ୍କା ଥିବାରୁ କେହି କେହି ବଙ୍ଗଳା (ব) ର ନିମ୍ନତମ ପାର୍ଶ୍ୱରେଖା ତଳେ ଗୋଟିଏ ଗାର ଟାଣି ଦେଇ (ব̱) ଅବର୍ଗ୍ୟ ବ କୁ ଚିହ୍ନାଉ ଅଛନ୍ତି । ଆଚାର୍ଯ୍ୟ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧିଙ୍କ 'ବାଙ୍ଗାଲା ଶବ୍ଦକୋଷ'ରେ ଏହି ପଦ୍ଧତି ଅବଲମ୍ବିତ ହୋଇ-ଅଛି; ତଥାପି ଏହି ପ୍ରସ୍ତାବିତ ପରିବର୍ତ୍ତନ ଅଦ୍ୟାପି ବଙ୍ଗୀୟ ସାହିତ୍ୟରେ ଓ ଲେଖାବଳରେ ସର୍ବବାଦିସମ୍ମତରୂପେ ଗୃହୀତ ହୋଇ ନାହିଁ ।

ମୋ କ୍ଷୁଦ୍ର ମତରେ ଯ ସଙ୍ଗେ ୟ ର ଯେଉଁ ସମ୍ପର୍କ, ବ ସଙ୍ଗେ ଅବର୍ଗ୍ୟ ବ ର ସେହି ସମ୍ପର୍କ ବିଦ୍ୟମାନ ଥିବା ଦୃଷ୍ଟିରେ ଅବର୍ଗ୍ୟ ବ କୁ 'ବ଼' ଏପରି ଚିହ୍ନାଇଲେ ବ୍ୟବହାରରେ ବିଶେଷ ସୁବିଧା ଘଟନ୍ତା । ଏହା ଓଡ଼ିଆ ଲିପିର ଶାସ୍ତ୍ରବିରୁଦ୍ଧ ହେବ ନାହିଁ ଓ ଏଥିପାଇଁ 'ୟ' ର ନଜିର ଆମ ଆଗରେ ଥୁଆ ହୋଇଅଛି । ଏ ପ୍ରସ୍ତାବ ମୋର କେତେକ ବିଶିଷ୍ଟ ସାହିତ୍ୟରସିକ ବନ୍ଧୁଙ୍କ ମନକୁ ପାଇନଥିଲା; ପକ୍ଷାନ୍ତରରେ କେତେକ ବିଶିଷ୍ଟ ବନ୍ଧୁ ବଙ୍ଗଳା ଭାଷାରେ ବ ତଳେ ବିନ୍ଦୁ (ବ଼) ଦିଆ ଯିବାର ନଜିର ଦେଇ ଅବର୍ଗ୍ୟ ବ କୁ ବ଼ ରୂପେ ଚିହ୍ନାଇବା ପାଇଁ ମତ ଦେଲେ ଓ ଏଥିପାଇଁ ଅକ୍ଷର ତଳେ ବିନ୍ଦୁ ଦେଇ ଉଚ୍ଚାରଣର ପ୍ରଭେଦ ଦେଖାଇବାରେ ବ୍ୟବହୃତ ଡ (ଡ଼) ଓ ଢ (ଢ଼)ର ନଜିର ମଧ୍ୟ ଦେଲେ । କେହି କେହି ବନ୍ଧୁ ଳ ଠାରୁ ପ୍ରଭେଦ ଜ୍ଞାପକ (ଲ) ପୁଚ୍ଛଯୁକ୍ତ ଲ ର ଦୋହି ଦେଇ ବ କୁ ପୁଚ୍ଛଯୁକ୍ତ କରି (ବ) ଅବର୍ଗ୍ୟ ବ କୁ ଚିହ୍ନାଇବା ପାଇଁ ମତ ପ୍ରକାଶ କଲେ । କିନ୍ତୁ ଏପରି କରିବାଦ୍ୱାରା ଲେଖାର ଭଙ୍ଗୀଲଗା ଯୋଗୁ ଏହା 'ବ୍' ଆକାର ଧାରଣ କଲେ ସମୟରେ (ର୍ବ) ସଙ୍ଗେ ଗୋଳମାଳ ହୋଇପାରେ—ଏପରି ଆଶଙ୍କା ଅଛି ।

ଯାହା ହେଉ, ବର୍ତ୍ତମାନ ଅବର୍ଗ୍ୟ ବ ର ଉଚ୍ଚାରଣକୁ ଚିହ୍ନାଇବା ପାଇଁ ବ ରେ ଗୋଟିଏ ସ୍ୱାତନ୍ତ୍ର୍ୟବୋଧକ ଚିହ୍ନ ଓଡ଼ିଆ ଲିପିରେ ପ୍ରବର୍ତ୍ତିତ କରିବା ଆବଶ୍ୟକ ବୋଲି ଉପଲବ୍ଧି କରି ତାହା ପ୍ରବର୍ତ୍ତାଇବା ନିମନ୍ତେ ମୁଁ ଏ ଭାଷାକୋଷରେ ଅବର୍ଗ୍ୟ ବ ପାଇଁ ଗୋଟିଏ ନୂଆ ଅକ୍ଷର 'ୱ' ଉଦ୍ଭାବନ କଲି । ସଂସ୍କୃତ ମୂଳକ ଉଆଉ ଶବ୍ଦ ଛଡ଼ା ପାରସୀ ଓ ଇଂରାଜୀରୁ ଆନୀତ ହୋଇ ଓଡ଼ିଆରେ ଚଳୁଥିବା ଏହି ଅବର୍ଗ୍ୟ ୱ ଉଚ୍ଚାରଣଯୁକ୍ତ ଶବ୍ଦମାନ କେତେକ ଉଅ [ଯଥା—ଉଆରଣ୍ଟ, ଉଅଲ୍‌ଗମ୍ଭ] ତଳେ ଓ କେତେକ ଓ ତଳେ [ଯଥା—ଓକିଲ, ଓକାଲତନାମା], କେତେକ ଅ ତଳେ [ଯଥା—ଅସୁଲ], କେତେକ ଉ ତଳେ [ଯଥା—ଉଜ୍ଜର] ଓ କେତେକ ବ ତଳେ (ଯଥା—ବଲ୍ଲ) ଏ ଭାଷାକୋଷରେ ସନ୍ନିବେଶିତ ହୋଇଅଛି ଏବଂ ବର୍ତ୍ତମାନ ସେଗୁଡ଼ିକ ଧାରାବାହିକରୂପେ ଏହିଠାରେ ଅବର୍ଗ୍ୟ 'ୱ' ତଳେ ପ୍ରଦତ୍ତ ହେଲା ।

ସଂସ୍କୃତର ବର୍ଗ୍ୟ ବ ଯୁକ୍ତ ଶବ୍ଦମାନ ଭାଷାରେ ବର୍ଗ୍ୟ ବ ଉଚ୍ଚାରଣରେ ବ୍ୟବହୃତ ହେଉଥିବାରୁ ତାହା ବର୍ଗ୍ୟ ବ ତଳେ ଦିଆ ଯାଇଅଛି । ସାଧାରଣତଃ ଶିକ୍ଷିତମାନେ 'ଅବର୍ଗ୍ୟ ବ ସ୍ଥଳରେ 'ଓ୍ୱ' ଲେଖିବା ଦେଖା ଯାଉଥିବାରୁ (ଯଥା- ଓକିଲ ମୁକ୍ତାରମାନଙ୍କ ଲିଖିତ ବା ଅନୁମୋଦିତ ଅରଜି, ଜବାବ୍ ଆଦି) 'ଅବର୍ଗ୍ୟ ବ ସ୍ଥଳରେ 'ଓ୍ୱ' ରୂପକ convention ବା ସାଧାରଣାନୁମୋଦିତ (ପ୍ରଚଳିତ) ରୀତିକୁ ରକ୍ଷା

କର ଏହି 'ୱ' ଅକ୍ଷର ଲେଖାଗଲା । କେହି କେହି 'ୱ' ପରିବର୍ତ୍ତେ 'ଓ୍ୱ' ବା 'ଉ୍ୱ' ବ୍ୟବହାର କରନ୍ତି ଓ କେହି କେହି 'ଉଅ' ଲେଖି ସବୁ ବିବାଦ ମେଣ୍ଟାଇବାର ପ୍ରୟାସ କରନ୍ତି; କିନ୍ତୁ ସେ ବ୍ୟବହାର ଅନ୍ୟ ଭାଷାର ଓ ସଂସ୍କୃତର ପ୍ରତିକୂଳ ହେବା କଥା ମୁଁ ପୂର୍ବରେ ସୂଚନା କରିଅଛି । ଜୟପୁର ସାହିତ୍ୟ ସମ୍ରାଟ୍ ମହାରାଜ ବିକ୍ରମଦେବ ବର୍ମା, ଡି. ଲିଟ୍, ଅବର୍ଗ୍ୟ ୱ କୁ ବର୍ଗ୍ୟ ବଠାରୁ ସ୍ୱତନ୍ତ୍ର ଦେଖାଇବା ପାଇଁ 'ଵ' ର ବ୍ୟବହାର କରିଥାଆନ୍ତି । ଏହା ମଧ୍ୟ ଯୁକ୍ତିଯୁକ୍ତ ବୋଧ ହେଉଅଛି । କିନ୍ତୁ ମହାରାଜଙ୍କର ଏ ବ୍ୟବହାରପ୍ରଣାଳୀ ମୋ ଦୃଷ୍ଟି ଆକୃଷ୍ଟ ହେବା କନ୍ତୁ ପୂର୍ବରୁ ଅବର୍ଗ ୱ ପାଇଁ ଗୋଟିଏ ସ୍ୱତନ୍ତ୍ର 'ଟାଇପ୍' ୱ ପ୍ରସ୍ତୁତ ହୋଇ ଏ ଭାଷାକୋଷର ବହୁ ସ୍ଥାନରେ ବ୍ୟବହୃତ ହୋଇଥିବାରୁ ମହାରାଜଙ୍କ ବ୍ୟବହୃତ 'ଵ' ଆକାର ଭାଷାକୋଷରେ ଚଳାଇବା ଦୁଷ୍କର ହୋଇଅଛି ।]

**ୱକ୍(କ)ଫ୍(ଇତ୍ୟାଦି)**—ବୈଦେ. ବ (କଚରଥ)—ୱାକ୍‌ଫ୍ (ଇତ୍ୟାଦି)
Wak-(ka)ph (etc) (ଦେଖ) Wāk-ph (etc) (See)

**ୱକାଲତ(ତି)**—ବୈଦେ. ବ (କଚରଥ) (ଫା. ୱକାଲତ୍)—୧ । Wakālat(ti) ଓକାଲତ; ଓକାଲତି; ଓକିଲର କାର୍ଯ୍ୟ—
ଉ(ଓ)କାଲତ(ତୀ) **वकालत** Pleading; the work of a pleader. ୨ । ଅନ୍ୟ ବ୍ୟକ୍ତିର ପକ୍ଷାବଲମ୍ବନ ବା ପକ୍ଷ ସମର୍ଥନ—2. Advocacy for a certain person.

**ୱକାଲତନାମା**—ବୈଦେ. ବ (କଚରଥ) (ଫା. ୱକାଲତ୍‌ନାମେହ୍)—
Wakālat-nāmā ଓକାଲତନାମା; ଓକିଲକୁ ପକ୍ଷମାନେ
ଉ(ଓ)କାଲତନାମା **वकालतनामा** ଦସ୍ତଖତ କରିଦେବା କ୍ଷମତାପତ୍ର—Vakalatnama; a written power of authority given to a pleader by a party in a Court.

**ୱକିଲ୍**—ବୈଦେ. ବ—(ଫା)—ଓକିଲ (ଦେଖ)
Wakil **उकील** **वकील** Okila (See)

**ୱକୁ**—ବୈଦେ. ବ ଓ ବଣ (କଚରଥ)—( ଅ. ୱକୁଅ=ଘଟିବା )—
Waku ଉକୁ ( ଦେଖ )—Uku ( See )
ଅକୁ **वकुअ**

**ୱକୁ ସ୍ଥଳ(ସ୍ଥାନ,ଜାଗା)**—ଦେ. ବ [କଚରଥ]—ଘଟନାର ସ୍ଥାନ—
Waku sthala(sthāna,jāgā) Place of occurrence.
ଅକୁସ୍ଥଲ **वकुजगह**

**ୱକ୍ତ(ଖ୍ତ)**—ବୈଦେ. ବ ( ଫା. ୱଖ୍ତ୍ )—୧ । ବଖତ; ଥର—
Wakt(kh-t) 1. Time, occasion. ୨ । ବକ୍ତ୍;
[ ବକ(ଖ)ତ୍—ଅନ୍ୟରୂପ ] ସମୟ—2. Time. ୩ ।
( ବାପଗତ—ବେଳକୁ ) ସୁଯୋଗ—3. Opportune moment.
ଓକ୍ତ, ଓକତ **वखत**

**ୱଗୈରା(ର୍)**—ବୈଦେ. ଅ (କଚରଥ) (ଫା. ୱଗୈରହ୍)—ଅଟେର୍; Wagairā(r) ଓଗେର୍; ଓଗେର; ଇତ୍ୟାଦି—Etcetera;
ଓଗୟରହ, ଓଗୈର **वगैरह** etc.

**ୱଜ୍‌ବ(ବୁ)କ**—ବୈଦେ. ବ (ତୁର୍କୀ. ଉଜ୍‌ବକ୍)—ତାତାର ବା ଅସିଥିକା
Waj-ba(bu)k ତୁର୍କିସ୍ଥାନ ଦେଶର ମୁସଲମାନ୍ ଜାତିବିଶେଷ—
ଉଜବୁକ **उजबक** A Turkish clan of Tartars
[ୱଜ୍‌ବେଗ୍—ଅନ୍ୟରୂପ) in Turkestan; the Uzbegs.
[ଦ୍ର—ଏମାନେ କେତେକ ସ୍ଥାନରେ ତାଜି(ଜ)କ ବା ଆର୍ଯ୍ୟ ବଂଶୀ ଓ କେତେକ ଅଞ୍ଚଳରେ କସାକ, କାଲ୍‌ମାକ୍ ଓ କର୍‌ଗୀଜ୍ ଜାତୀୟ ବଂଶ ମିଶ୍ରଣରେ ସଙ୍କର ଜାତିରେ ପରିଣତ ହୋଇଅଛନ୍ତି—କ୍ଲାଉଜେଡ୍‌ଙ୍କ ଉଦ୍ଧୃତ ଭାରତଭ୍ରମଣ ସାହେବ ।]

**ୱଜନ୍ (ଇତ୍ୟାଦି)**—ବୈଦେ. ବ (ଅ)—ଓଜନ ଇତ୍ୟାଦି (ଦେଖ)
Wajan (etc) ଓଜନ **वजन** Ojana etc (See)

**ୱଜନୀ**—ବୈଦେ. ବଣ (ଅ)—ଭାରି—
Wajani ଓଜନୀ **वजनी** Heavy; weighty

**ୱଜିର୍**—ବୈଦେ. ବ (ଅ ୱଜୀର୍)—ଉଜିର; ମନ୍ତ୍ରୀ—
Wajir **उजीर** **वजीर** Minister.

**ୱଜିରି**—ବୈଦେ. ବ—(ଅ. ୱିଜାରତ୍)—ମନ୍ତ୍ରୀପଣ—
Wajiri **उजीरी** **वजारत** Ministership; ministry.

**ୱଜୁ**—ବୈଦେ. ବ ( ଅ. ୱୁଜୁ ; ୱଜୂ )—ନମାଜ୍ ପଢ଼ିବା ପୂର୍ବରୁ
Waju ମୁସଲମାନଙ୍କର ଶୌଚାର୍ଥ ହାତ ଗୋଡ଼ ଆଦି ଧୁଆ—
ଉଜୁ **वजु** Washing of the hands and feet of a Mahomedan before saying his daily Namaj (prayers). [ଦ୍ର—ୱଜୁ କରିବାର ନିୟମ ଏହି :—ନମାଜ୍ ପଢ଼ିବା ପୂର୍ବରୁ ପ୍ରଥମେ ୩ ଥର ହାତ ଧୋଇବ, ପୁଣି ୩ ଥର କୁଳୁକୁଳୁ କରି ନାକରେ ପାଣି ମାରିବ, ପୁଣି ମୁହଁ ଧୋଇ ଦୁଇ ହାତର କହୁଣି ପର୍ଯ୍ୟନ୍ତ ଧୋଇବ, ପୁଣି ମୁଣ୍ଡ ଉପରେ ଓଦା ହାତକୁ ବୁଲାଇ ଆଣିବ, ଓ ଶେଷରେ ଗୋଡ଼ ଧୋଇବ—ହି. ଶ)

**ୱଜୁହାତ୍**—ବୈଦେ. ବ (କଚରଥ) (ଅ. ୱଜୁହାତ୍=କାରଣସମୂହ)—
Wajuhāt ଉଜୁହାତ୍ ( ଦେଖ )—Ujuhāt (See)
ଅ(ଓ)ଜୁହାତ **वजुहात**

**ୱତନ୍(ନ)**—ବୈଦେ. ବ ( ଅ=ବାସସ୍ଥାନ )—ଓତନ (ଦେଖ)—
Watan(na) Otana (See) ( ଦ୍ର—କଥାରେ
ଭିଟା **वतन** ଲୋକେ କହିଥାଆନ୍ତି—ତୁ ଏଠାକୁ ଦଉଡ଼ି ଆସିଲୁ, ଏଠେଇଁ କଅଣ ତୋ ବାପର ଓତନ ଅଛି ?)

**ୱରାଶତ୍**—ବୈଦେ. ବ (କଚରଥ)—(ଫା)—ଓ୍ୱରାସତ୍; ମୃତବ୍ୟକ୍ତିର
Warāsat ଉତ୍ତରାଧିକାରୀଙ୍କ ଭୋଗ କରିବା ପୈତୃକ ସମ୍ପତ୍ତି—
ଓରାଶତ **वराशत** Heritage.

**ୱରାଶତ୍‌ନାମା**—ବୈଦେ. ବ ( କଚରଥ ) ( ଫା )—ଓ୍ୱରାସତ୍
Warāsat-nāmā ନାମା; ମୃତବ୍ୟକ୍ତିର ସମ୍ପତ୍ତିକୁ
ଓରାଶତନାମା **वरासतनामा** ଉତ୍ତରାଧିକାରୀରୂପେ କିଏ ପାଇବ, ଏହା ଯେଉଁ ଦଲିଲ ଦ୍ୱାରା ଲେଖାପଢ଼ି ହୁଏ—Deed of inheritance.

**ୱରାଶତି**—ବୈଦେ. ବ (କଚରଥ) (ଫା. ୱିରାସତ୍)—ଉତ୍ତରାଧିକାରୀତ୍ୱ;
Warāsati ମୃତ ବ୍ୟକ୍ତିର ସମ୍ପତ୍ତିକୁ ଉତ୍ତରାଧିକାରୀରୂପେ ପ୍ରାପ୍ତ
ଓରାଶତି **विराशती** ହେବାର ଅବସ୍ଥା—Inheritance, succession to a heritage.

ୱରାଶତ ସାଟି(ର୍ଟି)ପି(ଫି)କ(କେ)ଟ୍ —ବୈଦେ. ବ (କଚରଥ) (ଫା. Warāsati sāṭi(rṭi)pi(phi)ka(ke)ṭ ୱିରାସତ+ଇଂ. ওবাসতি সাটীফিকেট সর্টিফিকেଟ୍)—ମୃତ ବ୍ୟକ୍ତିର ସମ୍ପତ୍ତି ଓ विरासत सार्टिफिकेट ପ୍ରାପ୍ୟ ଅଦାୟ କରିବା ନିମନ୍ତେ ଏକଦାର, ଉତ୍ତରାଧିକାରୀଙ୍କୁ ଜଜ୍‌ସାହେବ ଯେଉଁ ହୁକୁମନାମା ବା ନିଦର୍ଶନ ପତ୍ର ଦିଅନ୍ତି ଓ ଯହିଁର ବଳରେ ଉତ୍ତରାଧିକାରୀ ମୃତ ବ୍ୟକ୍ତିର ଦେଣଦାରମାନଙ୍କଠାରୁ ପାଉଣାମାନ ଅଦାୟ କରେ—Succession certificate; a certificate granted by the District Judge authorising an heir to realise money etc. due to a deceased.

2. Probate or Letters of administration.

ୱଲି—ବୈଦେ. ବ (ଅ. ୱଲି)—୧ । ସାଧୁ; ପୀର; ସିଦ୍ଧପୁରୁଷ—1. A Wali saint. ୨ । (କଚରଥ; ନାବାଳଗର) ଅଭିଭାବକ— অলি वली 2. Guardian (of a minor).

ୱଲି ୱଶି—ବୈଦେ. ବ (କଚରଥ; ଅ. ୱଲି=ଅଭିଭାବକ+ୱଶି= Wali waśi ଟ୍ରଷ୍ଟୀ)—ନାବାଳଗର ଅଭିଭାବକ ଓ ତା ସମ୍ପତ୍ତିର অলিঅছি ମାରଫତ୍‌ଦାର ବା ଟ୍ରଷ୍ଟୀ—Guardian of a minor वलीवसी and trustee of his property.

ୱଲି ୱାର(ରି)ସ୍—ବୈଦେ. ବ (କଚରଥ) (ଅ. ୱଲି+ୱାରିସ୍)— Wali wāra(ri)s ୱାଲିୱାରସ୍ (ଦେଖ)— অলিওয়ারিস वलीवारिस Wāliwāras (See)

ୱଲି ୱାର(ରି)ସ୍ ଉତ୍ତରାଧିକାରୀ—ଦେ. ବ (କଚରଥ) ଅ. ୱଲି+) Wali wāra(ri)s uttarādhikārī ୱାରିସ୍+ସଂ. ଉତ୍ତରା- অলিওয়ারিস উত্তরাধিকারী ଧିକାରୀ)—ୱାଲିୱାରସ୍ ଉତ୍ତରାଧିକାରୀ वलीवारिस उत्तराधिकारी (ଦେଖ)—Wāliwāras uttarādhikārī. (See)

ୱଶି—ବୈଦେ. ବ (କଚରଥ) (ଅ. ୱଶୀ)—୧ । ଧର୍ମ କାର୍ଯ୍ୟ ନିମନ୍ତେ Waśi ବା ଅନ୍ୟ ବ୍ୟକ୍ତି ପାଇଁ ନ୍ୟସ୍ତ ସମ୍ପତ୍ତିର ମାରଫତ୍‌ଦାର; ও(অ)ছী वशी ଟ୍ରଷ୍ଟୀ—1. A trustee of any trust property. ୨ । ମୃତବ୍ୟକ୍ତିର ସମ୍ପତ୍ତିର ପର୍ଯ୍ୟବେକ୍ଷଣାର୍ଥ ଅଦାଲତନିଯୁକ୍ତ ବ୍ୟକ୍ତି—2. Executor or administrator to the estate of a deceased person

ୱଶିଅ(ୟ)ତ୍—ବୈଦେ. ବ (କଚରଥ)—(ଅ. ୱସୀୟତ୍)—ଉଇଲ Waśia(ya)t ଦ୍ୱାରା ପ୍ରଦତ୍ତ ସମ୍ପତ୍ତି—Legacy. ওছিয়ত वशियत

ୱଶିଅ(ୟ)ତ୍‌ନାମା—ବୈଦେ. ବ (କଚରଥ)—(ଫା. ୱସୀୟତ୍‌ନାମାହ୍) Waśia(ya)t-nāmā ଉଇଲ୍; ମନୁଷ୍ୟ ମରିବା ପୂର୍ବରୁ ওছিয়তনামা वशियतनामा ଅପଣା ସମ୍ପତ୍ତି ସମ୍ବନ୍ଧେ ଲେଖିଦେବା ଅନୁସାରେ କାର୍ଯ୍ୟକାରୀ ହେବା ଦାନପତ୍ର—Will; testament.

ୱଶିନାମା—ବୈଦେ. ବ (କଚରଥ)—(ଫା)—୧ । ୱକ୍ଫନାମା(?) ଦଲିଲ—1. Trust deed. ୨ । ପ୍ରୋବେଟ Waśināmā ও(অ)ছিনামা वशियतनामा ବା ଲେଟର୍ସ ଅଫ୍ ଆଡମିନିଷ୍ଟ୍ରେସନ୍—

ୱଶୁଲ(ଲି) [ଇତ୍ୟାଦି]—ବୈଦେ.ବ ଓ ବଣ [ଅ]—ଅସୁଲ(ଲି)ଇତ୍ୟାଦି Waśul(li) (etc) (ଦେଖ)—Asul(li) etc (See) উসুল वसूल

ୱହାବୀ—ବୈଦେ.ବ—ଅବଦୁଲ୍ ୱହାବ୍ ନଜ୍‌ଦୀଙ୍କ ପ୍ରବର୍ତ୍ତିତ ମୁସଲମାନ୍ Wahābi ଧର୍ମର ଏକ ସମ୍ପ୍ରଦାୟ—The Wahbis; a ওহাবী वहाबी sect of Mahamedans. [ଦ୍ର—ଅବଦୁଲ୍ ୱହାବ୍‌ଙ୍କର ଆରବ୍‌ଦେଶର ନଜଦ୍ ନାମକ ସ୍ଥାନରେ ଜନ୍ମ ହୋଇଥିଲା । ସେ ହଜରତ୍ ମହମ୍ମଦଙ୍କର ସର୍ବୋଚ୍ଚ ପଦକୁ ଅସ୍ୱୀକାର କରୁଥିଲେ । ଏହି ମତାବଲମ୍ବୀମାନେ କୌଣସି ବ୍ୟକ୍ତିର ବା ସ୍ଥାନର ପ୍ରତିଷ୍ଠା ସ୍ୱୀକାର କରନ୍ତି ନାହିଁ । ଅବଦୁଲ ୱହାବ୍ ଅନେକ ମସ୍‌ଜିଦ୍ ଓ ପବିତ୍ର ସ୍ଥାନକୁ ଭାଙ୍ଗିଥିଲେ ଓ ହଜରତ୍ ମହମ୍ମଦଙ୍କ କବରକୁ ଖୋଳି ଫିଙ୍ଗିଦେବାକୁ ବସିଥିଲେ । ଆରବ ଓ ପାରସ୍ୟରେ ଏହି ମତାବଲମ୍ବୀଙ୍କ ସଂଖ୍ୟା ଅନେକ ଅଛି— ବି. ଶ.]

ୱା (ଇତ୍ୟାଦି)—ଦେ. ବ. ଓ ବଣ (ସ. ଅଭପାନ୍)—ଉଆ; ଅରୁଆ Wā (etc) ଇତ୍ୟାଦି (ଦେଖ)—Uā; Aruā etc (See) আতপ अरवा (ଯଥା—ୱା ଚାଉଳ, ୱା ଚୁଡ଼ା, ୱା ଧାନ, ୱା ଭାତ ।)

ୱାଇନ୍—ବୈଦେ. ବ (ଇଂ. ୱାଇନ୍)—ଡ୍ରାଇନ୍; ବିଲାତି ମଦ— Wāin ওয়াইন वाइन Wine.

ୱାଇନ୍ ଗ୍ଲାସ—ବୈଦେ. ବ. (ଇଂ. ୱାଇନ୍‌ଗ୍ଲାସ)—ମଦ ଖାଇବା Wāin glās ପାଇଁ ବ୍ୟବହୃତ କାଚର ଗାସ—Wine glass. ওয়াইন গ্লাস वाइन ग्लास

ୱାଇଫ—ବୈଦେ. ବ (ଇଂ. ୱାଇଫ୍)—ପତ୍ନୀ— Wāif ওয়াইফ वाइफ Wife.

ୱାଉ—ଦେ.ବ (ସ.ଭବ୍ୟ; ବନ୍ଧୁବାତ)—ଓଉ—Dillenia Indica; Wāu Dillenia Speciosa. চালতা; চালিতা चलता, चल्तू

ୱାଃ—ବୈଦେ. ଅ [ଅ]—ବାଃ ! ବାହାବା ! ବେଶ୍ ! ସାବାସ୍ !— Wāh (Interjection) Well done ! Bravo ! বাঃ वा: (ୱାଃୱାଃ—ଅନ୍ୟରୂପ)

ୱାଁସ—ଗ୍ରା. ବ (ସ. ଅମାବାସ୍ୟା)—ଅମାବାସ୍ୟା; ଉଆଁସ—The day Wāñsa of the lunar fortnight on which অমাবোস্যে अमावस,अमावस; there is no moon the day on which the moon comes in between the sun and the earth.

ୱାଁସୀ—ଗ୍ରା. ବଣ, ସ୍ତ୍ରୀ—[ସ. ଅମାବାସ୍ୟାଜାତା]—ଉଆଁସୀ [ଦେଖ] Wāñsi Uāñsi (See)

ୱାଁସୀ କନ୍ୟା—ଗ୍ରା. ବ. ସ୍ତ୍ରୀ—ଉଆଁସୀ କନ୍ୟା [ଦେଖ] Wāñsi kanyā Uāñsikanyā (See)

ୱାକ [କ]ଫ [ପ]—ବୈଦେ. ବ (କଚରଥ)—୧ । [ଅ. ୱକ୍ଫ୍]—
Wāk-(ka)ph(p) ମୁସଲମାନ ଧର୍ମସ୍ଥାନ ରକ୍ଷାର୍ଥ ବା ଖଇରାତ
ଓয়াকফ **वकफ** ପାଇଁ ସମ୍ପତ୍ତି ଦାନ କରିବା—
1. Waqf; religious or charitable endowment by a Mahomedan. [ଦ୍ର—
ୱାକ୍ଫ୍ ସମ୍ପତ୍ତିର ମାଲିକଙ୍କୁ ମତୱଲ୍ଲି ବା ମତୱଲି ବୋଲାଯାଏ ।]

ୱାକ୍(କା)ଫ(ପ) ନାମା—ବୈଦେ. ବ (କଚରଥ; ଅ. ୱାକ୍ଫ୍ + Wāk(ka)f(p) nāmā ଫା. ନାମା)—ଯେଉଁ ଦଲିଲ ଦ୍ୱାରା
ওয়াকফ নামা କୌଣସି ସମ୍ପତ୍ତି ଧର୍ମାର୍ଥ ଦାନ କରାଯାଏ—ମୁସଲମାନ
**वकफ नामा** ମାନଙ୍କ ଧର୍ମାର୍ଥ ସମର୍ପଣ ପତ୍ର—Waqfnama.

ୱାକ(କି)ପ(ଫ,ବ)—(କଚରଥ) ବୈଦେ.ବଣ (ଅ.ୱାକଫ୍)—୧ । ଯେ
wāka(ki)p(ph,b) ଜାଣେ; ଅବଗତ; ଜ୍ଞାତ—
ওয়াকিফ **वाकिफ** 1. Cognisant; aware, informed. ୨ ।ଅଭିଜ୍ଞ—2. Thoroughly conversant with a matter. ୩ । ଦକ୍ଷ—3. Skilful.

ୱାକ(କି)ପ(ଫ,ବ)କା(ଦା)ର୍—ବୈଦେ. ବଣ (କଚରଥ; ଫା. ୱାକଫ୍-
Wāka(ki)p(f,b)kā(dā)r ହାଲ୍; ଫା. ୱାକଫକାର୍)—
ওয়াকিফ হাল ୧ । କୌଣସି ବିଷୟରେ ଅଭିଜ୍ଞ—
**वाकिफकार** 1. Thoroughly conversant with a matter. [ଉ—ମୁନସି ରଘୁଧର ଦାସ ମଧ୍ୟ ଜଣେ ଓୟାକଫ୍କାର ପୁଲିସ ଅମଲା । ଫକୀରମୋହନ, ଛମାଣ ଆଠଗୁଣ ।] ବ—କୌଣସି ବିଷୟରେ ଦକ୍ଷ (ବ୍ୟକ୍ତି)—
An expert; one in the know of things

ୱାକ(କି)ପ(ଫ,ବ)କା(ଦା)ରି—ବୈଦେ. ବ (ଫା)—ଅଭିଜ୍ଞତା—
Wāka(ki)p(f,b)kā(dā)ri Experience in any
ওয়াকিফদারী **वाकिफदारी** matter.

ୱାକ(କି)ଫ୍ କରିବା(ହେବା)—ଦେ. କି (କଚରଥ)—ଜାଣିବା; ଜ୍ଞାତ
Wāka(ki)f karibā(hebā) ହେବା; ଅବଗତ ହେବା—
ওয়াকফ হওয়া To come to know; to be cognisant of.
**वाकिफ होना**

ୱାକ(କି)ଫ(ପ,ବ) ହାଲ୍—ବୈଦେ. ବଣ (କଚରଥ; ଅ. ୱାକଫ୍
Wāka(ki)f(p,b)hāl ହାଲ୍)—ଅବସ୍ଥାଭିଜ୍ଞ; ଯେ କୌଣସି
ওয়াকিফ হাল ବିଷୟର ଅବସ୍ଥା ବା ସମ୍ବାଦ ଜାଣେ—Cogni-
**वाकिफ हाल** sant of the circumstances or news about a matter.

ୱାକିଙ୍ଗ୍ ଷ୍ଟିକ୍—ବୈଦେ. ବ (ଇଂ. ୱାକିଙ୍ଗ୍ ଷ୍ଟିକ)—ବୁଲିଯିବାବେଳେ
Wāking shtik ସହଜରେ ହାତରେ ଯେଉଁ ବାଡ଼ି ଧରାଯାଏ—
ওয়াকিং ষ্টিক **वाकिंग स्टिक** Walking stick.

ୱାକିଫ୍—ବୈଦେ. ବ (କଚରଥ)—୧ । (ଅ. ୱାକିଫ୍) ଯେଉଁ ବ୍ୟକ୍ତି
Wākif ଆପଣା ସମ୍ପତ୍ତିକୁ ଧର୍ମାର୍ଥ କାର୍ଯ୍ୟ ପାଇଁ ଉତ୍ସର୍ଗ କରନ୍ତି—1. A
ওয়াকিফ dedicator of a property for religious or
**वकीफ** charitable purposes. ୨ । ୱାକ୍ଫ୍ (ଦେଖ)—
2. Wak-f. (See) ବଣ—ୱାକପ୍ (ଦେଖ)—
Wākap. (See)

ୱାଗ(ଗି)ନ(ନି)—ବୈଦେ. ବ (ଇଂ. ୱାଗନ)—ରେଲର ମାଲଗାଡ଼ି—
Wāga(gi)n(ni) Railway waggon.
ওয়াগন **वाग(गि)न**

ୱାଚ—ବୈଦେ. ବ ( ଇଂ. ୱାଚ୍ )—ପକେଟ୍ ଘଣ୍ଟା; ଛୋଟ ଘଣ୍ଟା;
Wāch ଯାହା ପକେଟ୍ ଆଦିରେ ରଖାଯାଇ ପାରେ—Watch.
ওয়াচ [ଦ୍ର—ଏହି ୱାଚ୍ ଶବ୍ଦ ସଙ୍ଗେ ଅନେକ ଗୁଡ଼ିଏ ଇଂରାଜୀ ଶବ୍ଦ
**वाच** ଯୁକ୍ତ ଭାଷାରେ ଚଳୁ ଅଛି; ଯଥା—Keyless, self winding, Railway regulater, Lever watch, Repeater, Chronometer ଇତ୍ୟାଦି ।]

ୱାଚ୍ ଚେ(ଚୈ)ନ୍—ବୈଦେ.ବ (ଇଂ. ୱାଚ୍ ଚେନ୍)—ୱାଚ୍‌କୁ ପକେଟ
Wāch che(chai)na ଆଦିରେ ଝୁଲାଇ ରଖିବା ପାଇଁ ଧାତୁ
ওয়াচ চেন **वाच चैन** ଆଦିର ଶିକୁଳି—Watch Chain.

ୱାଚ୍ ଟାୱାର୍—ବୈଦେ. ବ (ଇଂ. ୱାଚ୍ ଟାୱାର୍)—ଦୂରସ୍ଥ ଶତ୍ରୁମାନଙ୍କ
Wāch ṭawār ଗତିବିଧି ନିରୀକ୍ଷଣ କରିବା ଉଦ୍ଦେଶ୍ୟରେ ଦୁର୍ଗାଦିର
ওয়াচ টাওয়ার ଶିରୋଦେଶରେ ପହରାବାଲାଙ୍କର ଦଣ୍ଡାୟମାନ ହୋଇ
**वाच टावार** ରହିବା ପାଇଁ ନିର୍ମିତ ଘର—
Watch tower.

ୱାଚ୍ ଡଗ୍—ବୈଦେ. ବ (ଇଂ. ୱାଚ୍ ଡଗ୍)—ଯେଉଁ କୁକୁର ଗୃହ
Wāch dag ଆଦିକୁ ସବୁବେଳେ ଜଗିବା ପାଇଁ ରଖାଯାଇଥାଏ—
ওয়াচ ডগ **वाच डग** Watch dog.

ୱାଚ୍ ପ(ପା)କି(କେ)ଟ୍(ଟି)—ବୈଦେ. ବ (ଇଂ. ୱାଚ୍ ପକେଟ୍)—
Wāch pa(pā)ki(ke)ṭ(ṭi) ୱାଚ୍ ରଖିବା ପାଇଁ କୋଟ୍
ওয়াচ পকেট ଆଦିର ଛାତି ପାଖରେ ଥିବା ମୁଣା—
**वाचपाकि(के)ट** Watch pocket.

ୱାଚ୍ ମରାମତ(ତି)—ବୈଦେ. ବ (ଇଂ. ୱାଚ; ଅ. ମରମ୍ମତ୍)—
Wāch marāmat(ti) ବିଗିଡ଼ି ଯାଇଥିବା ପକେଟ୍ ଘଣ୍ଟାର
ওয়াচ মেরামত ସଂସ୍କାର—Watch repair; repairing of
**वाच मरम्मत** watches which have gone out of order

ୱାଚ୍ ମା(ମେ,ମ୍ୟା)ନ—ବୈଦେ. ବ (ଇଂ. ୱାଚ୍‌ମ୍ୟାନ୍ )—ଚଉକିଦାର;
Wāch mā(me,myā)n ପହରାବାଲା; ଜଗୁଆଳ—
ওয়াচম্যান **वाचमैन** Watchman

ୱାଚ୍ ମେକର୍(ର)—ବୈଦେ. ବ ( ଇଂ. ୱାଚ୍‌ମେକର୍ )—୧ । ୱାଚ
Wāch mekar(ra) ପ୍ରସ୍ତୁତକାରୀ ବ୍ୟକ୍ତି—1. Watch
ওয়াচমেকার **वाचमेकर** maker. ୨ । ୱାଚ ମରାମତ କରିବା ବ୍ୟକ୍ତି—2. Watch repairer.

ୱା ଚଉଳ—ଦେ. ବ—ଉଷୁନା ଚାଉଳ; ଅରୁଆ ଚାଉଳ (ଦେଖ)—
Wā chāula Uā chāula; Aruāchāula (See)
আতপচাল **अरवाचावल**

ୱା ଚୁଡ଼ା—ଦେ. ବ—ଧାନକୁ ନ ଉଷାଇଁ ସାମାନ୍ୟ ଗରମ ପାଣିରେ
Wā churdā କିଛିକ୍ଷଣ ବଉରାଇ କରାଯିବା ଚୁଡ଼ା—
আতপচিড়ে अरवाचूड़ा Parched rice from moistened (and not parboiled) paddy.

ୱାଜ୍(ଇତ୍ୟାଦି)—ବୈଦେ. ବ (ଫା. ଅୱାଜ୍)—୧ । ଅୱାଜ୍, ଶବ୍ଦ—
Wāj(etc) 1. Sound. ୨ । ଉଚ୍ଚ ଶବ୍ଦ—
আওয়াজ आवाज 2. High sound. ୩ । ବନ୍ଧୁକ ଆଦିର ଶବ୍ଦ—3. Report of a gun. ୪ । (ଅ. ୱାଜ୍)—ଉପଦେଶ—4. Advice
ওয়াজ वाज ୫ । ଧର୍ମ ବ୍ୟାଖ୍ୟା—5. Religious discourse.

ୱାଜ୍‌ଦାର୍—ବୈଦେ. ବ (ଫା. ଅୱାଜ୍‌ଦାର)—ଉଆଜଦାର (ଦେଖ)
Wāj-dār Uājadār (See)
ওয়াজদার आवाजदार

ୱାଜିବ(ବି)—ବୈଦେ. ବଣ [କଚେରୀ; ଅ. ୱାଜୀବ୍(ବ୍)]—୧ । ହକ୍;
Wājib(bi) ନ୍ୟାଯ୍ୟସଙ୍ଗତ—1. Equitable; just;
ওয়াজি(জে)ব वाजिब rightful. ୨ । ଠିକ୍ ପ୍ରକୃତ—2. Actual. (ଯଥା—ତାଙ୍କର ମୋ ଠାରେ ଶହେଟା ୱାଜିବ୍ ପାଉଣା ହେଉଅଛି । ଅପର ଶୁଣ ନ ଶୁଣ, ମୁଁ ୱାଜିବ୍ କଥା କହିବି ।) ୩ । ଉଚିତ—
3. Proper. ବ—୧ । ହକ୍ କଥା; ନ୍ୟାଯ୍ୟସଙ୍ଗତ ମନ୍ତବ୍ୟ—1. Rightful words; just remarks.
୨ । ନ୍ୟାଯ୍ୟସଙ୍ଗତ ପାଉଣା—2. Just dues.

ୱାଜିବ୍-ଉଲ୍-ଅରଜ୍(ଅର୍ଜ)-ପ୍ରାଦେ (ସମ୍ବଲପୁର,ଗଡ଼ଜାତ)ବୈଦେ.ବ—
Wājib-ul-araj(arj) (ଫା) ଜମିରେ ରଇତ ଓ ଅନ୍ୟାନ୍ୟ
ওয়াজিবউলঅর্জ वाजिबउलअर्ज स्वत्वाधिकारीମାନଙ୍କ ସ୍ୱତ୍ୱ ଓ ଅଧିକାର ଲେଖାଥିବା ସରକାରୀ ଲେଖ—
Wajib-ul-urz; a document in which the rights of different classes of tenants and tenure-holders and rules relating thereto are recorded and published.
[ ଦ୍ର—ପାଟଣା [ ବଲାଙ୍ଗିର ] ଷ୍ଟେଟ୍‌ରେ ମହାରାଜାଙ୍କ ପକ୍ଷରୁ ୱାଜିବ-ଉଲ୍-ଅରଜ୍ ମୁଦ୍ରିତ ହୋଇ ପ୍ରକାଶିତ ହୋଇଅଛି । ]

ୱାଜିରୀ—ବୈଦେ.ବ(ଫା)—ଭାରତର ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ
Wājiri ବାସ କରୁଥିବା ମୁସଲମାନ୍ ଜାତିବିଶେଷ—
ওয়াজীর वाजीरी The Wazirs. [ଦ୍ର—ଏମାନଙ୍କ ବାସସ୍ଥାନ ଅଞ୍ଚଳକୁ ୱାଜିରସ୍ଥାନ୍ ବୋଲାଯାଏ । ]

ୱାଟ୍—ବୈଦେ. ବ (ଇଂ. ୱାଟ୍ ନାମକ ପ୍ରସିଦ୍ଧ ବୈଜ୍ଞାନିକ ଆବିଷ୍କାରକଙ୍କ
Wāt ନାମରୁ)—ବିଦ୍ୟୁତ୍‌ଦ୍ୱାରା ଆଲୁଅ, ପଙ୍ଖା ଓ କଳ ଆଦି
ওয়াট वाट ଚଳାଯିବା ଉପଲକ୍ଷରେ ବ୍ୟବହୃତ ବୈଦ୍ୟୁତିକ ଶକ୍ତିର ନିର୍ଦ୍ଧାରିତ ପରିମାଣବିଶେଷ—A standard unit of electric energy used in driving electric contrivances.

ୱାଟ୍‌ନଟ୍—ବୈଦେ. ବ ( ଇଂ. ହ୍ୱାଟ୍‌ନଟ୍ )—ଥାକ ଥିବା ଏକପ୍ରକାର
Wāt-nat ଖୋଲା ଅଲମାରି, ଯହିଁରେ ବହି, ଅଳଙ୍କାର ଓ
হোয়াটনট छोटीआलमारी ବାସନ ଆଦି ଥାକଥାକ କରି ରଖାଯାଏ—A whatnot.

ୱାଟର୍—ବୈଦେ. ବ ( ଇଂ. ୱାଟର୍ )—୧ । ଜଳ—1. Water.
Wātar ୨ । ତରଳପଦାର୍ଥ; ଦ୍ରବ—2. Liquid.
ওয়াটর वाटर

ୱାଟରପ୍ରୁଫ—ବୈଦେ.ବଣ—(ଇଂ. ୱାଟରପ୍ରୁଫ୍)-ଯେଉଁ ବସ୍ତ୍ରାଦିର ମଧ୍ୟ
Wātar-pruph ଦେଇ ପାଣି ଭେଦି ପାରିବ ନାହିଁ—
ওয়াটারপ্রুফ वाटरप्रूफ Waterproof.
(ଯଥା—ୱାଟରପ୍ରୁଫ୍ ଛତା, ପୋଷାକ, ଜୋତା, କନା, ଟୋପି, କପଡ଼ା ଇତ୍ୟାଦି ।) ବୈଦେ. ବ (ଇଂ) ଯେଉଁ ପୋଷାକର ମଧ୍ୟଦେଇ ବର୍ଷା ପାଣି ଭେଦି ପାରେ ନାହିଁ ବର୍ଷାଗି; ମହମକନାର ପୋଷାକ ବା କୁର୍ତ୍ତା—
A waterproof dress or coat.

ୱାଟରମାର୍କ—ବୈଦେ.ବଣ (ଇଂ.ୱାଟରମାର୍କ)୧ । ନଦୀର ବା ସମୁଦ୍ରର
Wātar mārk କୂଳରେ ବା ତହିଁ ଗର୍ଭରେ ପୋତା ଥିବା
ওয়াটারমার্ক वाटरमार्क ଖୁଣ୍ଟିରେ ଦିଆଯାଇଥିବା ଚିହ୍ନ ଓ ରେଖା, ଯହିଁରୁ ଉକ୍ତ ନଦୀରେ ବା ସମୁଦ୍ରରେ ବଢ଼ି ପାଣି ବା ଜୁଆର ପାଣି କେଉଁ ପର୍ଯ୍ୟନ୍ତ ଉଚ୍ଚତାକୁ ଉଠିଥିଲା,ତାହା, ଜଣାପଡେ—1. Water mark. ୨ । କଳରେ କାଗଜ ତିଆରି ହେଉଥିବାବେଳେ କୌଣସି ଚିହ୍ନ ବା ନାମ ଆଦି ଉକ୍ତ କାଗଜର ଗର୍ଭରେ ବାରହେବା ପାଇଁ କାଗଜ ମଧ୍ୟରେ ଅଙ୍କିତ ସାଧା ଚିହ୍ନ—2. Water-mark in paper. [ ଦ୍ର—ୱାଟର୍‌ମାର୍କ ବିଶିଷ୍ଟ ଅଲେଖା କାଗଜକୁ ଆଲୁଅ ଆଡ଼କୁ ଟେକିକରି ଧରିଲେ, ସେ କାଗଜ ମଧ୍ୟରେ ଥିବା ୱାଟର୍‌ମାର୍କ ବାରି ହୁଏ । କାଗଜ ତିଆରି କରୁଥିବା ଭିନ୍ନଭିନ୍ନ କମ୍ପାନୀମାନଙ୍କର ଟ୍ରେଡ୍ ମାର୍କ, ନାମ ପ୍ରଭେଦ ଓ କାଗଜର ପ୍ରକାରଜ୍ଞାପକ ଚିହ୍ନ ୱାଟର୍ ମାର୍କ ଉକ୍ତ କାଗଜରେ ଅଙ୍କିତ ହୋଇଥାଏ । ]

ୱାଟର ମିଲ୍—ବୈଦେ. ବ (ଇଂ. ୱାଟର୍‌ମିଲ୍)—ଜଳ ସ୍ରୋତର ବଳରେ
Wātar mil ଚକଦ୍ୱାରା ପରିଚାଳିତ ଯନ୍ତ୍ର—Water mill.
ওয়াটারমীল वाटरमील [ଦ୍ର—ପବନଦ୍ୱାରା ପରିଚାଳିତଯନ୍ତ୍ରକୁ ୱିଣ୍ଡ୍‌ମିଲ୍ [wind mill] କୁହାଯାଏ ।]

ୱାଟର୍ ୱ (ୱା)ର୍କସ୍—ବୈଦେ. ବ—(ଇଂ.ୱାଟର୍ ୱର୍କ୍‌ସ୍)—ଜଳକଳ
Wātar wa(wā)rkas ବସିଥିବା ନଗରରେ ନଳ ଆଦି ଦ୍ୱାରା
ওয়াটারওয়ার্কস ଏକ ସ୍ଥାନରୁ ଜଳ ବାଣ୍ଟିବାର କଳ କାରଖାନା;
वाटर वर्कस ପାଣି କଳ—Water works.

ୱାଟର୍ ରେଟ୍—ବୈଦେ. ବ—(ଇଂ. ୱାଟର୍ ରେଟ୍)—କୌଣସି ଜମିକୁ
Wātar ret ବା ଗୃହକୁ ଆବଶ୍ୟକ ଜଳ ଯୋଗାଇବା ବ୍ୟକ୍ତି ଉକ୍ତ
ওয়াটার রেট ଭୂସ୍ୱାମୀ ବା ଗୃହସ୍ୱାମୀଙ୍କଠାରୁ ଯେଉଁ କର ନିଅନ୍ତି—
वाटर रेट Water rate.

**ୱାଟର୍ ଲାଇନ୍(ନ)**—ବୈଦେ. ବ (ଇଂ. ୱାଟର ଲାଇନ୍)—ଜାହାଜର Wāṭar lāin(ni) ବାହାର ପାଖରେ ଯେଉଁ ନିର୍ଦ୍ଦିଷ୍ଟ ରେଖା ଓୟାଟାର ଲାଇନ ପର୍ଯ୍ୟନ୍ତ ଜାହାଜ ପାଣିରେ ବୁଡ଼ି ରହିବାଯାଏ ৱাটর লাইন ବୋଝାଇ କରାଯାଇ ପାରେ ଓ ଯେଉଁ ରେଖା ପର୍ଯ୍ୟନ୍ତ ପାଣି ଲାଗିଲେ ଜାହାଜରେ କେତେ ବୋଝ ଲଦା ହେଲା ବୋଲି ଜଣାଯାଏ—(Nautical) Water line.

**ୱାଟରଲୁ**—ବୈଦେ. ବ (ଇଂ. ନାମ)—ଇଉରୋପର ପ୍ରସିଦ୍ଧ ଯୁଦ୍ଧକ୍ଷେତ୍ର—Wāṭar-lu Name of a famous battlefield; ଓୟାଟାର୍ଲୁ Waterloo. [ଦ୍ର—ଏହି ବେଲଜିଅମ୍ ରାଜ୍ୟର ৱাটর্লু ବ୍ରସେଲସ୍ ନଗରର ଦକ୍ଷିଣ ପୂର୍ବରେ ଅବସ୍ଥିତ । ଏଠାରେ ଖ୍ରୀ ୧୮୧୫ ରେ ଇଂରାଜ ସେନାପତି ଆର୍ଥର ୱେଲେସ୍ଲି, ଡିଉକ୍ ଅଫ୍ ୱେଲିଙ୍ଗ୍ଟନଙ୍କଦ୍ୱାରା ନିର୍ବାସନରୁ ପ୍ରତ୍ୟାବୃତ୍ତ ମହାବୀର ନେପୋଲିଅନ୍ ଯୁଦ୍ଧରେ ପରାସ୍ତ ହୋଇ ଇଂରାଜମାନଙ୍କ ହସ୍ତରେ ଅସ୍ତ୍ର ସମର୍ପଣ କରିଥିଲେ ।]

**ୱାଟର୍ ଲେବ(ବୁ,ଭ,ଭୁ,ଭେ)ଲ**—ବୈଦେ. ବ (ଇଂ. ୱାଟର୍ Wāṭar leba(bu,bha,bhu,bhe)l ଲେଭଲ୍)—୧ । ନଦୀରେ ଓୟାଟାର ଲେଭଲ ବା ଜଳାଶୟରେ ଥିବା ଜଳର ଉପରଭାଗର ସମୁଦ୍ର ৱাটর লেৱল ସଙ୍ଗେ ତୁଳନାରେ ଅପେକ୍ଷିକ ଉଚ୍ଚତା—1. Water-level of a place in comparison with the sea level. [ଦ୍ର—ସବୁ ସ୍ଥାନରେ ସମୁଦ୍ରର ଉଚ୍ଚତା ପ୍ରାୟ ଏକ ଥିବାରୁ ସମୁଦ୍ର ଜଳର ଉଚ୍ଚତାକୁ ମୂଳ କରି ଧରାଯାଏ ଓ ସମୁଦ୍ରର ଉଚ୍ଚତା (ସି-ଲେଭ୍ଲ—Sea level) ଠାରୁ ନଦୀ ଜଳାଶୟାଦିରେ ଥିବା ଜଳର ଉଚ୍ଚତା ବେଶି କି କମ୍, ତହିଁର ହିସାବ ଧରିବାକୁ ହୁଏ । ଏହି ଅପେକ୍ଷିକ ଉଚ୍ଚତାକୁ ୱାଟର ଲେଭଲ୍ ବୋଲାଯାଏ ।] ୨ । ରାଜ ମିସ୍ତ୍ରୀମାନଙ୍କର ସମତଳତ୍ୱ ପରୀକ୍ଷକ ଏକ ପ୍ରକାର ଯନ୍ତ୍ର, ଯହିଁ ଦ୍ୱାରା କୌଣସି ସ୍ଥାନ ବା କାନ୍ଥ ଆଦି ସମତଳ ଅଛି କି ନାହିଁ, ଏହା ସ୍ଥିର କରାଯାଏ—2. Mason's water-level (instrument). [ଦ୍ର-ଏହି ଯନ୍ତ୍ର ଗୋଟିଏ ନଳ ଅଟେ । ଏ ନଳ ମଧ୍ୟରେ ପାଣି ଭର୍ତ୍ତି ହୋଇଥାଏ ଓ ଗୋଟିଏ ମାତ୍ର ବାୟୁର ବୁଦ୍ବୁଦ ଥାଏ । ନଳକୁ ଭୂମିରେ ବା କାନ୍ଥ ଉପରେ ଲମ୍ବ ଭାବରେ ଶୁଆଇ ଦେଲେ ଯେବେ ନଳ ମଧ୍ୟସ୍ଥ ଜଳରେ ଥିବା ବାୟୁ ବୁଦ୍ବୁଦଟି ନଳର ଠିକ ମଝିରେ ରହିବାର ଦେଖାଯାଏ, ତେବେ ଜଣାଯାଏ ଯେ, ଉକ୍ତ ଜମି ବା କାନ୍ଥ ଠିକ୍ ସମତଳ ଅଛି । ଯେଉଁ ନଳରେ ପାଣି ପଶିଥାଏ, ତାକୁ ୱାଟର୍ ଲେଭଲ (water level), ଯହିଁରେ ପାରଦ ପଶିଥାଏ, ତାକୁ ପାରା ଲେଭଲ୍ (Mercury level), ଯହିଁରେ ସ୍ପିରିଟ୍ ବା ଅରକ୍ଷି ପଶିଥାଏ, ତାକୁ ସ୍ପିରିଟ୍ ଲେଭଲ୍ (Spirit level) ବୋଲାଯାଏ । ବିସ୍ତୀର୍ଣ୍ଣ ଭୂଭାଗର ସମତଳତା ଜାଣିବା ପାଇଁ ଆଉ ଏକପ୍ରକାର ଯନ୍ତ୍ର ବ୍ୟବହୃତ ହୁଏ, ତାକୁ ଥିଓଡୋଲାଇଟ୍ (Theodolite) ଓ ଡମ୍ପି ଲେଭଲ(Dumpy level) ବୋଲାଯାଏ ।]

**ୱାଟରିଙ୍ଗ୍ ଷ୍ଟେସନ୍**—ବୈଦେ. ବ (ରେଲୱେ ଶବ୍ଦ; ଇଂ. ୱାଟରିଙ୍ଗ Wāṭariṅg shṭesan ଷ୍ଟେସନ୍)—ଯେଉଁ ଷ୍ଟେସନଠାରେ ରେଲ- (ୱାଟରିଙ୍ଗ ଇଷ୍ଟେସନ—ଅନ୍ୟରୂପ ଗାଡ଼ିର ଇଞ୍ଜିନ୍ ଚଳାଇବା ପାଇଁ ଓୟାଟରିଙ୍ଗ ଷ୍ଟେସନ ଆବଶ୍ୟକ ପାଣି ସଂଗୃହୀତ ହୋଇ ରେଲ ଗାଡ଼ିର ৱাটরিং স্টেশন ଇଞ୍ଜିନ୍ ସଲଗ୍ନ ଜଳାଧାର ମଧ୍ୟରେ ପୂରାଇ ରଖିବାକୁ ହୁଏ—Watering station for a railway engine. [ଦ୍ର—ଏହି ପାଣିକି ତତାଇ ଦେଲେ ତହିଁରୁ ଯେଉଁ ବାଷ୍ପ ବାହାରେ, ତଦ୍ୱାରା ରେଲ ଗାଡ଼ିର ଇଞ୍ଜିନ୍ ଚାଳିତ ହୁଏ । ଭଣ୍ଡାରରୁ ସେ ପାଣିଯାକ ସରିଗଲେ ପୁଣି ଅନ୍ୟ ୱାଟରିଙ୍ଗ୍ ଷ୍ଟେସନ୍‌ରେ ରେଲ ଗାଡ଼ିରେ ପାଣି ପୂରାଇବାକୁ ହୁଏ ।]

**ୱାର୍ଡ଼୍(ଡ଼)**—ବୈଦେ. ବ (ଇଂ. ୱାର୍ଡ୍)—୧ । ମିଉନିସିପାଲିଟି-ଶାସିତ Wārḍ(rḍ) ନଗରର ଭିନ୍ନ ଭିନ୍ନ ଅଂଶ ବା ବିଭାଗ—ଓୟାଡ ৱার্ড 1. Ward of a Municipal town. [ଦ୍ର—ମିଉନିସିପାଲିଟିର ଶାସନକାର୍ଯ୍ୟର ସୁବିଧା ପାଇଁ ଗୋଟିଏ ସହରକୁ କେତେଗୁଡ଼ିଏ ୱାର୍ଡ଼ରେ ବିଭକ୍ତ କରା ଯାଇଥାଏ ଓ ୱାର୍ଡ଼ମାନ ପୃଥକ୍ ପୃଥକ୍ ସଂଖ୍ୟା ଦ୍ୱାରା ଚିହ୍ନିତ ହୋଇଥାଏ ।] ୨ । ଡାକ୍ତରଖାନାରେ ଭିନ୍ନ ଭିନ୍ନ ଶ୍ରେଣୀର ରୋଗୀମାନଙ୍କ ଅବସ୍ଥିତି ନିମିତ୍ତ ନିର୍ଦ୍ଦିଷ୍ଟ ଭିନ୍ନ ଭିନ୍ନ ଅଂଶ ବା ବିଭାଗ—2. Ward of a hospital. [ଦ୍ର—ଭିନ୍ନ ଭିନ୍ନ ୱାର୍ଡ଼ରେ ରୋଗର ବା ଚିକିତ୍ସାର ବିଭିନ୍ନତା ଅନୁସାରେ ୱାର୍ଡ଼ମାନଙ୍କ ନାମକରଣ ହୁଏ । ଯଥା—ସର୍ଜିକାଲ୍ ୱାର୍ଡ଼, ମେଡ଼ିକାଲ ୱାର୍ଡ଼, ଫିମେଲ ୱାର୍ଡ଼ ।] ୩ । ଅଭିଭାବକଙ୍କ ଅଧୀନ ବା ସରକାରୀ କୋର୍ଟ୍ ଅବ୍ ୱାର୍ଡସ୍ (Court of Wards ) ଙ୍କ ତତ୍ତ୍ୱାଧୀନ ନାବାଳଗ—3. A ward (under a guardian or under the Court of Wards). ୪ । ଜେଲଖାନାରେ ଅବରୁଦ୍ଧ ଭିନ୍ନ ଭିନ୍ନ ଶ୍ରେଣୀର କଏଦୀମାନଙ୍କ ରହିବା ପାଇଁ ନିର୍ଦ୍ଦିଷ୍ଟ ଭିନ୍ନ ଭିନ୍ନ ଗୃହପୁଞ୍ଜ—4. Ward of a jail. ୫ । (ଇଂ. ୱାର୍ଡ଼୍) ଶବ୍ଦ; ৱর্ড বାକ୍ୟରେ ଥିବା ପଦ—5. Word.

**ୱାର୍ଡ଼୍(ଡ଼୍) କମିସନର୍**—ବୈଦେ. ବ (ଇଂ. ୱାର୍ଡ଼ କମିସନର)—Wārḍ(rḍ) kamisanar ମିଉନିସିପାଲିଟିର ବିଭିନ୍ନ ୱାର୍ଡବାସୀ ଓୟାର୍ଡ କମିସନାର କରଦାତାମାନଙ୍କ ଦ୍ୱାରା ନିର୍ବାଚିତ ପ୍ରତିନିଧି—ৱার্ড কমিশনর Ward commissioner of a municipality. [ଦ୍ର—ୱାର୍ଡକମିଶନରମାନେ କରଦାତାମାନଙ୍କ ପକ୍ଷରୁ ମିଉନିସିପାଲିଟିର ପରିଚାଳନ କାର୍ଯ୍ୟରେ ଚେଅରମାନଙ୍କୁ ସାହାଯ୍ୟ ଓ ପରାମର୍ଶ ପ୍ରଦାନ କରନ୍ତି ।]

**ୱାର୍ଡ଼ (ଡ଼୍)ସ୍**—ବୈଦେ. ବ (କଟଉଥ) (ଇଂ. କୋର୍ଟ ଅଫ୍ ୱାର୍ଡସ୍)—Wārḍ(rḍ)s କୋର୍ଟ ଅଫ୍ ୱାର୍ଡସ୍ (ଦେଖ)—Koṭ aph wārḍs, (See)

ୱାର୍ଡ୍(ର୍ଡ୍)ସ୍ ଡେପୁଟୀ କଲେକ୍ଟର୍—ବୈଦେ. ବ (ଇଂ.)-କଲେକ୍ଟରଙ୍କ
Wārd(rd)s deputī kalektar   ଅଧୀନ ୱାର୍ଡ୍‌ସ୍ ଷ୍ଟେଟ୍-
ওয়ার্ডস ডেপুটী কলেক্টর   ମାନଙ୍କ ତତ୍ତ୍ୱାବଧାନକାରୀ ଡେପୁଟି
**वार्ड्स डेपुटी कलेक्टर**   କଲେକ୍ଟର—Court of Wards Deputy Collector.

ୱାର୍ଡ୍(ର୍ଡ୍)ସ୍ ମା(ମେ)ନୁଅ(ଆ, ଏ)ଲ୍—ବୈଦେ. ବ (ଇଂ. ୱାର୍ଡ୍‌ସ୍
Wārd(rd)s mā(me)nua(ā,e)l   ମାନୁଅଲ)—କୋର୍ଟ ଅଫ୍
ওয়ার্ডস মানুয়েল   ୱାର୍ଡ୍‌ସ୍‌ଙ୍କ ଅଧୀନରେ ପରିଚାଳିତ ସମ୍ପତ୍ତିମାନ
**वार्ड्स मैनुयल**   ଶୃଙ୍ଖଳାପୂର୍ଣ୍ଣ କରିବାର ଆଇନ ଓ ସରକାରୀ ଉପଦେଶମାନ ଯେଉଁ ବହିରେ ସଂଗୃହୀତ ହୋଇଥାଏ—The Court of Wards manual. [ଦ୍ର—ଉକ୍ତ ସମ୍ପତ୍ତି ପରିଚାଳନା ସମ୍ବନ୍ଧୀୟ କୌଣସି ସମସ୍ୟା ଉପସ୍ଥିତ ହେଲେ ଏହି ମାନୁଅଲ୍‌କୁ ଦେଖି ତଦନୁସାରେ ତହିଁର ମୀମାଂସା କରାଯାଏ ।]

ୱାର୍ଡ୍(ର୍ଡ୍)ସ୍ ଷ୍ଟେଟ୍—ବୈଦେ. ବ (କଚେରୀଅ) (ଇଂ. କୋର୍ଟ ଅଫ୍
Wārd(rd)s shtet   ୱାର୍ଡ୍‌ସ୍ ଏଷ୍ଟେଟ୍)—ଯେଉଁ ରାଜ୍ୟର ବା
[ ୱାର୍ଡ୍(ର୍ଡ୍)ସ୍ ଇ(ଏ)ଷ୍ଟେଟ୍—ଅନ୍ୟରୂପ ]   ଜମିଦାରୀର ସ୍ୱାମୀ
ওয়ার্ডস ষ্টেট   ନାବାଳକ ବା ଅକ୍ଷମ ଥିବାରୁ ତାହା ସରକାରଙ୍କ ଦ୍ୱାରା
**वार्ड्स इस्टेट**   ପରିଚାଳିତ ହେଉଥାଏ—State or Estate under the management of the Court of Wards.

ୱାର୍ଡ୍(ର୍ଡ୍)ର୍—ବୈଦେ. ବ (ଇଂ)—ଜେଲ୍‌ଖାନାରେ କଏଦୀମାନଙ୍କ
Wārda(rda)r   ଜଗିବା ସିପାହୀ—Warder of a jail.
ওয়ার্ডার   **वार्डर**

ୱାପସ୍—ବୈଦେ. ବ [ଫା. ୱାପସ(ସୀ)—ପ୍ରତ୍ୟାବର୍ତ୍ତିତ; ପ୍ରତ୍ୟାବୃତ୍ତ]—
Wāpas   ୧ । ଲେଉଟାଣି; ଫେରି ଆସିବା; ଫେରସ୍ତ;
ওয়াপস   ପ୍ରତ୍ୟାବର୍ତ୍ତନ—1. Returning; coming back.
**वापस**   ୨ । ଉଣାଯାଇଥିବା ପଦାର୍ଥକୁ ବା ଧନକୁ ଫେରାଇଦେବା—2. Refunding. ୩ । ନେଇଥିବା ଦ୍ରବ୍ୟାଦିକୁ ଫେରାଇବା—3. Giving back of a thing taken. ବଣ—ପ୍ରତ୍ୟାବୃତ୍ତ; ଫେରନ୍ତା—Returned; come back.

ୱାପସ୍ ଆଣିବା—ଦେ. କ୍ରି—୧ । ଅପେ ଅନ୍ୟ ବ୍ୟକ୍ତିକୁ ଦେଇଥିବା
Wāpas ānibā   କୌଣସି ଦ୍ରବ୍ୟକୁ ତାହଠାରୁ ଫେରାଇ
ওয়াপস আনা   ଆଣିବା—1. To bring back a thing.
**वापस लाना**   ୨ । ଚାଲିଯାଇଥିବା ବ୍ୟକ୍ତିଙ୍କୁ ବାଟରୁ ପ୍ରତ୍ୟାବୃତ୍ତ କରାଇ ସଙ୍ଗରେ ଆଣିବା—2. To bring back a person who had gone away.
[ୱାପସ୍ ଅଣାଯି(ହେ)ବା—କର୍ମବାଚ୍ୟରୂପ]

ୱାପସ୍ ଆସିବା—ଦେ. କ୍ରି—୧ । କୌଣସି ସ୍ଥାନରୁ (କୌଣସି ବ୍ୟକ୍ତି)
Wāpas āsibā   ଫେରି ଆସିବା; ବାହୁଡ଼ି ଆସିବା; ପ୍ରତ୍ୟାବୃତ୍ତ
ওয়াপস আসা   ହେବା;ଲେଉଟି ଆସିବା—1. To come back
**वापस आना**   from a place; to return. ୨ । (କୌଣସି ବ୍ୟକ୍ତି ନିକଟରୁ କୌଣସି ପ୍ରେରିତ ବସ୍ତୁ) ଲେଉଟାଇ ଦିଆଯିବା—2. To be sent back; to be returned.

ୱାପସ୍ କରିବା—ଦେ. କ୍ରି—ଲେଉଟାଇ ଦେବା; (ଅନ୍ୟ ବ୍ୟକ୍ତିଠାରୁ
Wāpas karibā   ନେଇଥିବା ଧନ ବା ଦ୍ରବ୍ୟାଦି ତାହାକୁ) ଫେରାଇ
ওয়াপস করা; ওয়াপস দেওয়া   ଦେବା—To return a
**वापस करना**   thing or to refund a sum taken
(ୱାପସ ଦେବା—ଅନ୍ୟରୂପ)   from a person.

ୱାପସ(ସୀ) ଖବର—ବୈଦେ. ବ—(ଫା. ୱାପସ୍+ଆ. ଖବର୍)—
Wāpas(si) khabara   ଲେଉଟାଣି ଖବର; ଫେରନ୍ତା ସମ୍ବାଦ;
ফেরতা উত্তর   ପ୍ରେରିତ ସମ୍ବାଦର ଉତ୍ତର, କୌଣସି ସ୍ଥାନକୁ ପଠା
**वापसी खबर**   ଯାଇଥିବା ଖବରର ପ୍ରତ୍ୟୁତ୍ତରରେ ଯେଉଁ ଖବର ଆସେ—Return news, the news or reply sent in return for the news received.

ୱାପସ(ସୀ) ଚିଠି—ଦେ. ବ- (ଫା. ୱାପସ+ସଂ. ଚିଟ୍ ଧାତୁ=ପଠାଇବା)
Wāpas(si) chithi   ୧ । ମାଲିକର ଠିକଣା ନ ମିଳିବାରୁ ବା
ওয়াপস চিঠি   ମାଲିକ ଚିଠିକୁ ଗ୍ରହଣ ନ କରିବା ଯୋଗୁଁ ଯେଉଁ ଚିଠି
**वापसी चिट्ठी**   ପ୍ରେରକଙ୍କ ନିକଟକୁ ଫେରି ଆସେ—1. Returned letter; refused letter or unclaimed letter. ୨ । ପ୍ରତ୍ୟୁତ୍ତର ପତ୍ର; ଲେଉଟାଣି ଚିଠି—2. A letter in reply.

ୱାପସ୍ ଡାକ—ଦେ. ବ—(ଫା. ୱାପସ୍+ଦେ. ଡାକ)—୧ ।
Wāpas ḍāka   ଫେରନ୍ତା ଡାକ; ଲେଉଟାଣି ଡାକ—1. Re-
ফেরতা ডাক   **वापसी डाक** turn of post. [ ଦ୍ର—ଏହି-ପରି ୱାପସ୍ ଲେକ ଓ ୱାପସ୍ ଜବାବ ଆଦି ହୁଏ ।] ୨ । ପ୍ରତିଧ୍ୱନି—2. Echo.

ୱାପସ୍ ନେବା—ଦେ. କ୍ରି.—ଫେରାଇ ନେବା—
Wāpas nebā   To take back.
ওয়াপস নেওয়া   **वापस लेना**

ୱାପସ୍ ପାଇବା—ଦେ. ବ—ଫେରି ପାଇବା; ଫେରସ୍ତ ପାଇବା—
Wāpas pāibā   To get back
ওয়াপস পাওয়া   **वापस पाना**

ୱାପସ୍ ମିଳିବା—ଦେ. କ୍ରି.—ଫେରସ୍ତ ମିଳିବା—To be got back
Wāpas milibā   ওয়াপস মিলা   or refunded.
**वापस मिलना**

ୱାପସୀ—ବୈଦେ. ବଣ—(କଚେରୀଅ) (ଅ.)—ଲେଉଟା, ଫେରାଇ
Wāpasi   ଦିଆ ଯାଇଥିବା—Returned; given back;
ওয়াপসী   **वापसी** refunded. [ ଯଥା—ୱାପସୀ ଦଲିଲ, ୱାପସୀ ଉପାଇନ୍ ଓ ୱାପସୀ ଚିଠି ।]

ୱାର୍—ବୈଦେ. ବ—(ଇଂ. ୱାର)—ଯୁଦ୍ଧ—
Wār   ওয়ার   **वार**   War.

ୱାର୍ ବଣ୍ଡ—ବୈଦେ ବ— ଇଂ. ୱାର୍ ବଣ୍ଡ)—ଗତ ୟୁରୋପୀୟ
Wār band   ମହାଯୁଦ୍ଧ-(୧୯୧୪-୧୮)ର ବ୍ୟୟ ଚଳାଇବା ପାଇଁ
ওয়ারবণ্ড   **वारबाॅड**   ଇଂରାଜ ସରକାର ପ୍ରଜାଙ୍କ ଠାରୁ ନେଇଥିବ

ଋଣ (ୱାର ଲୋନ୍)ର ନିଦର୍ଶନ ରୂପେ ପ୍ରଜାଙ୍କୁ ଦେଇଥିବା ବେଣ୍ଡ୍ ନୋଟ୍—War bond.

ୱର୍ ଲୋନ୍—ବୈଦେ. ବି (ଇଂ)—ଵରଗତ ଖ୍ରୀ. ୧୯୧୪-୧୮ ବ୍ୟାପୀ Wār lon ଯୁଦ୍ଧ ବ୍ୟୟ ନିର୍ବାହାର୍ଥ ସରକାର ଲୋକଙ୍କ ପାରୁ କର ওয়াব লোন্ **वारलोन** ଥିବା ଋଣ— War loan.

ୱାର୍ଡ଼ (ଇତ୍ୟାଦି)—ବୈଦେ. ବି— ୱାଡ୍ ଇତ୍ୟାଦି (ଦେଖ) Wārd (etc) wārd etc (See)

ୱାର୍ଡ୍‌ସ୍—ବୈଦେ. ବି—(ଇଂ. ୱାର୍ଡ୍‌ସ୍)—**କୋର୍ଟ** ଅଫ୍ ୱାର୍ଡ୍‌ସ୍— Wārd-s Court of Wards.

ୱାର୍ଡେନ୍—ବୈଦେ. —ଉଆର୍ଡେନ୍ (ଦେଖ) Wārden ওয়াড়েন **वार्डेन** Uārden (See)

ୱାର(ର୍)ଣ୍ଟ—ବୈଦେ. ବି--(କଚେରୀ)-(ଇଂ. ୱାରଣ୍ଟ)—୧ । ଉଆରଣ୍ଟ; Wāra(rā)nt ଅଭିଯୁକ୍ତ ଅସାମୀ ବା ଦୋଷୀ ବ୍ୟକ୍ତିକୁ ଧରି ଆଣି ওয়ারেন্ট **वारंट** ମାଜିଷ୍ଟ୍ରେଟ୍ ବା ହାକିମଙ୍କ ନିକଟରେ ହାଜର କରାଇବା ପାଇଁ ପୁଲିସ୍ କର୍ମଚାରୀଙ୍କୁ ଦିଆ ଯାଇଥିବା ଆଦେଶ ବା ହୁକୁମନାମା—1. A warrant of arrest. [ଉ—ଜଣେ ଅସାମୀକୁ ହାତକଡ଼ି ଦେଇ ଜେଲ୍‌ଖାନାରୁ ଜେଲ୍‌ୱାରଣ୍ଟ ଧରି ବାହାରିଲେ । ଫକୀରମୋହନ. ଛମାଣ ଆଠଗୁଣ୍ଠ । (ବି—ସ୍ୱଧାନାଥ ଏହି ଶବ୍ଦକୁ 'ୱାରେଣ୍ଟି'ରେ ପରିଣତ କରି ତାଙ୍କର ଦରବାର ପଦ୍ୟରେ ବ୍ୟବହାର କରି ଅଛନ୍ତି ।

୨ । ଗିରଫଦାରୀ—2, Arrest.

ୱାରଣ୍ଟ ଅଫ୍ ପ୍ରେସିଡେନ୍‌ସି—ବୈଦେ. ବି—(ଇଂ)—ଦରବାରରେ Wārant ot presidens ଏବ ଜାହା ପଛେ ଆସନ ପାଇବେ, ওয়াবন্ট অব প্রেসিডেনস ତହିଁର ସରକାରୀ ତାଲିକା— **वारण्ट अफ प्रेसिडेन्स** Warrant of precedence.

ୱାରଣ୍ଟ କରିବା—ଦେ. କି (କଚେରୀ)—୧ । କୌଣସି ବ୍ୟକ୍ତିକୁ ଧରି Wārant karibā ଆଣିବାପାଇଁ ଲିଖିତ ହୁକୁମ ଦେବା— ওয়াবন্টকরা **वारण्टकरना** 1. To issue a warrant of arrest.

୨ । ହାକିମଙ୍କଠାରୁ ପ୍ରାପ୍ତ ୱାରଣ୍ଟ ବଳରେ କୌଣସି ବ୍ୟକ୍ତିକୁ (ରାଜକର୍ମଚାରୀ) ଧରିନେବା—2. To arrest a person on a warrant.

ୱାରଣ୍ଟ ଗିରଫ୍‌ଦାର(ରୀ)—ବୈଦେ ବି (କଚେରୀ; ଇଂ ୱାରଣ୍ଟ+ଫା. Warant giraph-dār(ri) ଗିରେପ୍ତାର୍)—କୌଣସି ବ୍ୟକ୍ତିକୁ ওয়ারন্ট গ্রেপ্তাব(রী) **वारण्टगिरफतारी** ଧରି ହାକିମଙ୍କ ପାଖେ ଉପସ୍ଥାପିତ କରିବାପାଇଁ କୌଣସି କର୍ମଚାରୀଙ୍କୁ ଅଦାଲତରୁ ମିଳିବା ହୁକୁମନାମା—Warrant of arrest. ବୈଦେ ବଣ (କଚେରୀ) ୱାରଣ୍ଟ ଅନୁସାରେ ଧୃତ—Arrested (ୱାରେଣ୍ଟ ଗ୍ରେପ୍ତାର—ଅନ୍ୟରୂପ) under a warrant of arrest.

ୱାରଣ୍ଟ ଜାରି—ଦେ. ବି (କଚେରୀ,ଇଂ ୱାରଣ୍ଟ+ଫା. ଜାରୀ)—୧ । Warant jāri କୌଣସି ବ୍ୟକ୍ତିକୁ ଧରିବାପାଇଁ ହାକିମଙ୍କଠାରୁ ওয়াবন্টজাবি **वारण्टजारी** ୱାରଣ୍ଟ ହୁକୁମ ବାହାରିବା— 1. Issue of a warrant of arrest. ୨ । ହାକିମଙ୍କ ନିକଟରୁ ବାହାରିଥିବା ୱାରଣ୍ଟ ହୁକୁମକୁ ପାଳନ କରି ଉକ୍ତ ବ୍ୟକ୍ତିକୁ ଉକ୍ତ ହୁକୁମକୁ ଦେଖାଇ ତାଙ୍କୁ ଧରିବା— 2. Service of a warrant on a person; i e. arresting him after showing him the warrant of arrest.

ୱାରଣ୍ଟ ପର୍‌ୱା(ବା)ନା—ବୈଦେ. ବି (କଚେରୀ; ଇଂ ୱାରଣ୍ଟ+ଫା· Wārant parwā(bā)nā ପର୍‌ୱାନା)—କୌଣସି ଅସାମୀକୁ (ୱାରଣ୍ଟପର୍‌ୱାନା—ଅନ୍ୟରୂପ) ଧରି ଆଣିବାପାଇଁ ମାଜିଷ୍ଟ୍ରେଟ ଅଫିଙ୍କ ওয়াবন্টপববানা **वारण्टपरवाना** ସ୍ୱାକ୍ଷରରେ କୌଣସି ରାଜକର୍ମଚାରୀଙ୍କ ନିକଟକୁ ପ୍ରେରିତ ଲିଖିତ ଆଦେଶ— A warrant of arrest (issued to a particular police officer or bailiff) against a person.

ୱାରଣ୍ଟ ପ୍ରାର୍ଥନା—ଦେ· ବି (କଚେରୀ; ଇଂ ୱାରଣ୍ଟ+ସ. ପ୍ରାର୍ଥନା)— Wārant prārthanā କୌଣସି ବ୍ୟକ୍ତିକୁ ଧରିବାପାଇଁ ওয়াবন্টপ্রার্থনা **वारण्टप्रार्थना** ହାକିମଙ୍କ ନିକଟରେ ପ୍ରାର୍ଥୀର ଦରଖାସ୍ତ—A petition filed before a Court for the issue of a warrant against a person.

ୱାରଣ୍ଟ ବାହାରିବା—ଦେ. ବି (କଚେରୀ)—କୌଣସି ବ୍ୟକ୍ତିଙ୍କ ଧରି Warant bāhāribā ଆଣିବା ପାଇଁ ହାକିମଙ୍କ ଦସ୍ତଖତରେ ୱାରଣ୍ଟ ওয়াবন্টবেকন **वारण्टनिकलना** କୌଣସି ରାଜକର୍ମଚାରୀଙ୍କ ନିକଟକୁ ପ୍ରେରିତ ହେବା—Issue of a warrant of arrest of a person.

ୱାରଣ୍ଟ ମିଆଦି (କଚେରୀ)—ବୈଦେ. ବି (ଇଂ. ୱାରଣ୍ଟ+ଆ. ମିଆଦ) Warantmiādi କୌଣସି ବ୍ୟକ୍ତିକୁ ୱାରଣ୍ଟରେ ଧରି ଆଣିବା ওয়াবন্টমেয়াদি **वारण्टमिआदी** ପାଇଁ ନିଯୁକ୍ତ କର୍ମଚାରୀଙ୍କ ଖର୍ଚ୍ଚସ୍ୱରୂପ ହାକିମଙ୍କ ନିକଟ ପ୍ରାର୍ଥୀର ଦାଖଲ କରିବା ନିର୍ଦ୍ଦିଷ୍ଟ ମୂଲ୍ୟର କୋର୍ଟ ଫିସ—Process fees filed by a party for the issue of a warrant of attachment of the person of any body.

ୱାରଣ୍ଟରେ ଧରିବା—ଦେ. କ୍ରି—ହାକିମଙ୍କଠାରୁ ପ୍ରାପ୍ତ ୱାରଣ୍ଟ ହୁକୁମ Wārantre dharibā ବଳରେ (ରାଜକର୍ମଚାରୀ) କୌଣସି

ୱାରଣ୍ଟରେ ଗିରଫଦାର କରିବା }
ୱାରଣ୍ଟରେ ଗ୍ରେପ୍ତାର କରିବା } —ଅନ୍ୟରୂପ ବ୍ୟକ୍ତିର ଶରୀରକୁ ଅଧିକାର କରିବା-

ওয়াবন্টে ধরা, ওয়াবন্টে গ্রেপ্তাব করা To arrest a person **वारण्टमें गिरफतार करना** in pursuance of a warrant of arrest.

ୱାରଣ୍ଟ ହୁକୁମ—ବୈଦେ. ବି—[କଚେରୀ]—(ଇଂ. ୱାରଣ୍ଟ+ଫା. Wārant hukuma ହୁକୁମ୍) କୌଣସି ବ୍ୟକ୍ତିଙ୍କୁ ଗିରଫ୍‌ଦାର ওয়াবন্ট হুকুম କରିବା ପାଇଁ ହାକିମଙ୍କର କୌଣସି କର୍ମଚାରୀଙ୍କ

वारंट गिरफतारी वारंट हुकुम ପ୍ରଭୃ ଅଦେଶ—An order issued or recorded by a court for the issue of a warrant of arrest against a person.

ୱ ର(ରେ)ନ୍ ହେଷ୍ଟିଙ୍ଗ୍ସ—ବୈଦେ. ବ (ନାମ)—ବଙ୍ଗର ଗଭର୍ଣ୍ଣର୍ ଓ
Wāra(re)n heshṭings ଭାରତର ପ୍ରଥମ ଗଭର୍ଣ୍ଣର୍ ଜେନେରାଲ୍ (୧୭୭୨—୧୭୮୫) Warren Hastings. [ଦ୍ର—କ୍ଲାଇବଙ୍କ ପରେ ଏ ବଙ୍ଗର ଗଭର୍ଣ୍ଣର୍ ହୋଇ ଅସିଲେ । ଏହାଙ୍କ ଅମଳରେ ବଙ୍ଗ ବହାର ଓଡ଼ିଶାର ରାଜସ୍ୱ ଆଦାୟ ଓ ବିଚାର ଭାର ଇଂରାଜମାନଙ୍କ ହସ୍ତଗତ ହେଲା । ମୁର୍ଶିଦାବାଦରୁ କଲିକତାକୁ ରାଜଧାନୀ ଉଠି ଆସିଲା; ୨ୟ ମହୀଶୂର ଯୁଦ୍ଧ, ରୋହିଲା ଯୁଦ୍ଧ ଓ ୨ୟ ମରହଟ୍ଟା ଯୁଦ୍ଧ ହୋଇଥିଲା । ବିଲାତ ପାର୍ଲିଅମେଣ୍ଟରେ ଏହାଙ୍କ ବିରୁଦ୍ଧରେ ନାନା
वारनहेष्टिस ଅଭିଯୋଗର ଅଭିଯୋଗ ଦାଏର୍ ହୋଇଥିଲା ଓ ଶେଷରେ ଏ ତହିଁରୁ ମୁକ୍ତିଲାଭ କଲେ ।]

ୱାର(ରି)ସ—ବୈଦେ. ବ (କଚରିଆ) (ଫା. ୱାରିସ୍)—୧ । ମୃତ
Wāra(ri)s ବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିର ଉତ୍ତରାଧିକାରୀ—
ওয়ারিস 1. Heir; successor to the property of a
वारिस deceased person. ୨ । କୌଣସି ସମ୍ପତ୍ତିକୁ ଅଧିକାର କରିବା ମାଲିକ; ସମ୍ପତ୍ତିର ଅଧିକାରୀ ବା ସ୍ୱାମୀ—2. Proprietor of a property. ୩ । କୌଣସି ସମ୍ପତ୍ତିର ଦାବୀଦାର୍—3. Claimant to a property.

ୱାରଶ୍‌ଦାର୍—ବୈଦେ. ବ (କଚରିଆ) (ଫା. ୱାରଶ୍ ଶବ୍ଦସଙ୍ଗେ ଯୁଥାରେ
Wāraś-dār ଓ ଭୂମ୍ୟର ଫା.ଦାର୍ ପ୍ରତ୍ୟୟ)—୧ । ୱାରଶ୍—
ওয়ারিস 1. Heir; successor. ୨ । ସମ୍ପତ୍ତିରେ ଦାବୀଦାର୍—
वारिस 2. Claimant to a property.

ୱ ରଶ୍‌ଦାରି—ବୈଦେ. ବ (କଚରିଆ)—୧ । ଉତ୍ତରାଧିକାରିତା—
Waraś-dārī 1. Heirship. ୨ । ଦାବିଦାର୍ ହେବା ଅବସ୍ଥା—
ওয়ারিশদারি वारिसपन 2. Claimantship.

ୱାର(ରି)ଶାନ—ବୈଦେ. ବ (କଚରିଆ) (ଫା. ୱାରଶ୍ ଶବ୍ଦର ବହୁ
Wāra(ri)śān ବଚନ ୱାରଶାନ୍)—ୱାରଶ୍ ମାନେ; ଉତ୍ତରାଧିକାରୀଗଣ—The whole body heirs or
ওয়ারিশান
वारिसान successors.

ୱାରା—ଦେ. ବଣ (ସ୍ଥ. ବାରଣ)—୧ । ଶସ୍ତା; ଶସ୍ତା—1. Cheap.
Wārā ୨ । ଲାଭଯୁକ୍ତ—2. Profitable. ୩ । ବଳି ପଡ଼ିଥିବା—
ওয়ারা 3. Remaining over. ୪ । ଅତିରିକ୍ତ—4 Extra;
वारा supernumerary. ଦେ. ବ—୧ । ବ୍ୟୟ ବଞ୍ଚିବା—1. Saving of expense. ୨ । ଲାଭ—2. Profit.

ୱାରିଜା—ବୈଦେ. ବ (ଫା) (କଚରିଆ)—ଉଆରିଜା (ଦେଖ)
Wārijā Wārijā. (See)

ୱାଲ୍—ବୈଦେ. ବ (ଇଂ. ୱାଲ୍)—କାନ୍ଥ—
Wāl Wall.
দেওয়াল वाल, दिवाल

ୱାଲ୍ କା(କ୍ୟା,କେ)ଲେଣ୍ଡର୍—ବୈଦେ. ବ (ଇଂ. ୱାଲ୍ କାଲେଣ୍ଡର)—
Wāl kā(kyā,ke)lenḍar ମାସର ତାରିଖ ଓ ଦିନମାନ ବଡ଼
ওয়ালক্যালেণ্ডর ବଡ଼ ଅକ୍ଷରରେ ଛପା ହୋଇ ସର୍ବଦା ଦୃଷ୍ଟି ପଡ଼ିବା
वालकैलेंडर ପାଇଁ କାନ୍ଥରେ ଟଙ୍ଗାଯିବା କାଗଜ ଫର୍ଦ—Wall calendar.

ୱାଲ୍‌ଟା(ଟେ,ଟେ)ୟାର୍—ଦେ. ବ—ବିଶାଖାପାଟଣା ଜିଲ୍ଲାର୍‌ବନ୍ଦର୍ ।
Wāl-ṭā(ṭe,te)yār ବେଙ୍ଗଲ ନାଗପୁର ରେଲ୍‌କମ୍ପାନୀର ଗୋଟିଏ
ওয়ালটেয়ার ପ୍ରଧାନ ଜଙ୍କସନ୍ ଓ ବନ୍ଦର—
वालतेर Waltair.
(a port and principal railway junction near Vizag).

ୱାଲ୍‌ଟେର୍—ପ୍ରାଦେ. (ଗଞ୍ଜାମ) ବ—ୱାଲ୍‌ଟାୟାର—
Wāl-ter Waltair.

ୱାଲ୍‌ଦେଁ—ବୈଦେ. ବ (କଚରିଆ) (ଅ. ୱାଲଦେନ, ୱାଲିଦ୍‌ର ବହୁ
Wāl-deṅ ବଚନ)—ମାତାପିତା—Parents.
ওয়াল্‌দেঁ वालदैन

ୱାଲ୍ ପେପର୍—ବୈଦେ. ବ—(ଇଂ. ୱାଲ୍ ପେପର୍)—ଘର
Wāl pepar ସଜାଇବା ପାଇଁ କାନ୍ଥରେ ମଡ଼ାଯିବା ନାନା ଚିତ୍ରିତ
ওয়াল পেপার ଚିତ୍ରିତ କାଗଜ—Wall paper.
वाल पेपर

ୱାଲ୍ ମା(ମ୍ୟା, ମେ)ପ୍—ବୈଦେ. ବ—(ଇଂ. ୱାଲ୍ ମାପ୍)—
Wāl mā(myā,me)p କାନ୍ଥରେ ଟଙ୍ଗା ହେବାର ଉପଯୋଗୀ
ওয়াল ম্যাপ ଭିନ୍ନଭିନ୍ନ ଦେଶର ବଡ଼ ବଡ଼ ନକ୍ସା—Wall map.
वालमैप

ୱାଲ୍ ଲା(ଲ୍ୟା,ଲେ)ମ୍ପ୍—ବୈଦେ. ବ—(ଇଂ. ୱାଲ୍ ଲାମ୍ପ୍)—କାନ୍ଥରେ
Wāl lā lyā, le)mp ମରାଯିବା କାଚ ଦୀପାଧାର; ଦେ. ୱାଲ୍‌ଗିରି—
ওয়াল ল্যাম্প वालडैंफ Wall lamp.

ୱାଲା—ବୈଦେ. ପ୍ରତ୍ୟୟ ପୁଂ.—(ଫା)—ବାଲା (ଦେଖ)
Wālā ওয়ালা वाला Bālā (See)
[ୱାଲୀ—ସ୍ତ୍ରୀ]

ୱାଲି—ବୈଦେ. ବ—(କଚରିଆ)—(ଫା. ୱଲି)—୧ । ସମ୍ପତ୍ତିର ସ୍ୱାମୀ—
Wāli ওয়ালি वलि 1. Proprietor. ୨ । ଅଭିଭାବକ—
2. Patron; guardian. ୩ । ସମ୍ପତ୍ତିର ରକ୍ଷକ—
3 Protector or custodian of a property.
୪ । ରାଜା; ଶାସକ; ପ୍ରଭୁ—4. Lord; king; ruler.
୫ । (ଫା ୱଲଦିୟତ୍) ଛୁଆ ବଂଶଧର—
5. Descendant.

ୱାଲିଦ୍—ବୈଦେ ବ. ପୁଂ.—(କଚରିଆ, ଅ. ୱାଲିଦ୍)—ପିତା—
Wālid ওয়ালিদ वालिद् Father.

ୱାଲିଦା—ବୈଦେ. ବ. ସ୍ତ୍ରୀ—(କଚରିଆ, ଅ. ୱାଲିଦା)—ମାତା—
Wālidā ওয়ালিদা वालिदा Mother.

ୱାଲିଦେଁ—ବୈଦେ. ବ—କଚରିଆ (ଅ. ୱାଲିଦେନ)—(ୱାଲିଦ୍ ଶବ୍ଦର ଦ୍ୱିବଚନ)—ମାତା ଓ ପିତା—Parents.
Walideṅ
(ଭୁଲ ସ. ପୈତର୍ଗୌ ।) ওয়ালদে वालदें

ୱାଲି ୱାର(ରି)ଶ୍—ବୈଦେ. ବ—(କଚେରୀଆ)—(ସଦଉର), (ଅ. ୱଲୀ
Wāli wāra(ri s +ୱାରସ୍)—(ଫା. ୱାଲି=ଧନର ସ୍ୱାମୀ
अलि ओयारिस +ୱାରଶ=ଉତ୍ତରାଧିକାରୀ)—୧। ସମ୍ପତ୍ତିର
बलि वारिस ମାଲିକ ଓ ଉତ୍ତରାଧିକାରୀ—1. Proprietor and successor in respect of any property. ୨। କୌଣସି ବ୍ୟକ୍ତିର ଅନ୍ତେ ତାହାର ତ୍ୟକ୍ତ ସମ୍ପତ୍ତିକୁ ଭୋଗ କରିବା ବଂଶ ବା ଉତ୍ତରାଧିକାରୀ—Successor or heir to a person.

ୱାଲି ୱାର(ରି)ଶ୍ ଉତ୍ତରାଧିକାରୀ—ଦେ. ବ. (କଚେରୀଆ)—(ଏକାର୍ଥ
Wāli wār(ri)s uttarādhikārī ସଦଉର)·(ଅ. ୱଲି,
ୱ.ଉ ୱାର(ରି)ଶ ଉତ୍ତରାଧିକାରୀ } —ଅନ୍ୟରୂପ ୱାରସ୍+ସଂ.
ସ୍ଥଳାଭିଷିକ୍ତ ଉତ୍ତରାଧିକାରୀ)
अलिओयारिस उत्तराधिकारी କୌଣସି ବ୍ୟକ୍ତିର ଅନ୍ତେ ତାହାର
बलिवारिस उत्तराधिकारी ବଂଶଧର,ପୁତ୍ର ପୌତ୍ରାଦି, ଉତ୍ତରାଧିକାରୀ ବା ତାଙ୍କ ସ୍ଥାନରେ ପ୍ରତିଷ୍ଠିତ ବା ନିଯୁକ୍ତ ବ୍ୟକ୍ତି—Heirs, administrators, successors or representatives in interest succeeding to the property of a person after his death; descendants, heirs, successors, representatives in interest coming after a person.

ୱାଶ୍ କୋଟ୍—ବୈଦେ. ବ—(ଇଂ. ୱେଷ୍ଟ କୋଟ)—ୱେଷ୍ଟ କୋଟ
Wāś koṭ (ଦେଖ)—Wesht koṭ (See)
ओयेष्ट कोट वासकोट

ୱାଶ୍ ଟବ୍—ବୈଦେ.ବ—[ଇଂ]—ଲୁଗା ଆଦି ଧୋଇବାର ବଡ଼କୁଣ୍ଡ—
Wāś ṭab Wash tub.
ओयाशटब वाश टब

ୱାଶ୍ ବେଶିନ୍ (ପଟ୍)—ବୈଦେ. ବ—(ଇଂ. ୱାଶ୍ ବେସିନ୍, ପଟ୍)—
Wāś beśin (pat) ଆଧୁନିକ କାଇଦା ମୁତାବକ ମୁହଁହାତ
ओयाश बेसिन ଧୋଇବା ପାଇଁ ମେଜ ଉପରେ ରଖା ଯାଇଥିବା କୁଣ୍ଡ
वाश बेसिन ବା ପଲମ—Wash basin; wash put.

ୱାଶ୍ ଷ୍ଟାଣ୍ଡ—ବୈଦେ. ବ—(ଇଂ. ୱାଶ୍ ଷ୍ଟାଣ୍ଡ) ଆଧୁନିକ କାଇଦା
Wāś shṭāṇḍ ମୁତାବକ ମୁହଁ ହାତ ଧୋଇବା ପାଇଁ କୁଣ୍ଡ ରଖା
ओयाश ष्टाण्ड वास ष्टांड ଯାଇଥିବା ଟେବଲ—Wash stand.

ୱାସ—ଦେ. ବ—(ସଂ. ଆବାସ)—୧। ଉଆସ; ରାଜାମାନଙ୍କ ଅନ୍ତଃପୁର—
Wāsa 1. The harem or female apartments of a
वाज महल राजमहल Rājā.
୨। ରାଜପ୍ରାସାଦ—2 Palace.

ୱାଁସ—ଦେ. ବ—(ସଂ. ଅମାବାସ୍ୟା)—ଉଆଁସ; ଅମାବାସ୍ୟା—The
Wāñsa change of moon; the darkest night of the lunar fortnight.

ୱାସର୍—ବୈଦେ. ବ—(ଇଂ. ୱାଶର୍)—ଲୁହାର ପେଚର ଅଗରେ
Wāsar ବୋଲ୍ଟ ଘଡ଼ା ଦେବା ପୂର୍ବରୁ ଦିଆଯିବା ଲୁହାର,ଚମଡ଼ାର ବା ରବରର ଚକତି—A washer (metal or leather ring) set between the head of the screw and the nut. [ବି—ଯେଉଁ ବସ୍ତୁ ଦେହରେ ଉକ୍ତ ପେଚ ଉଡ଼ାହୋଇ ଥାଏ, ସେ ବସ୍ତୁ ସଙ୍ଗେ ବୋଲ୍ଟକୁ ଦୃଢ଼ କରିବା ପାଇଁ ବୋଲ୍ଟ ଓ ଉକ୍ତ ବସ୍ତୁର ମଝିରେ ୱାସର୍ ଦିଆଯାଏ।]

ୱାସିଙ୍ଗଟନ୍—ବୈଦେ. ବ(ଇଂ)—(ନାମ)—୧। ଆମେରିକା ଯୁକ୍ତରାଜ୍ୟ
Wāsing-ṭan ସଙ୍ଗେ ଇଂରାଜଙ୍କର ଯୁଦ୍ଧ ସମୟରେ ଆମେରିକାର ଜାତୀୟ ବୀର ଓ ସେନାପତି—1. General Washington of the United States of America during the War of Independence. [ବି—ଏହାଙ୍କର ନାମ ଅନୁସାରେ ଯୁକ୍ତରାଜ୍ୟର ପଶ୍ଚିମ ଉତ୍ତର କୋଣରେ ଗୋଟିଏ ପ୍ରଦେଶ ଓ ଯୁକ୍ତରାଜ୍ୟର ମେରିଲାଣ୍ଡ ପ୍ରଦେଶର ଗୋଟିଏ ନଗରର ନାମ ହୋଇଅଛି।] ୨। ଆମେରିକା ଯୁକ୍ତରାଜ୍ୟର ଗୋଟିଏ ପ୍ରଦେଶ ଓ ନଗରର ନାମ—2. Name of a state and town in the United States of America

ୱାସିଲ୍—ବୈଦେ. ବ (କଚେରୀଆ) (ଅ. ୱାସିଲ୍=ପ୍ରାପ୍ତ; ମିଳିଥିବା;
Wāsil ଅସୁଲ ହୋଇଥିବା)—ପ୍ରଜା ଆଦିଙ୍କଠାରୁ ଖଜଣା ଓ
ओयासिल ଧନ ଆଦି ଅସୁଲ ହୋଇଥିବା—Realised (money,
वासिल rent etc).

ୱାସିଲ୍ ବାକି—ବୈଦେ. ବ (କଚେରୀଆ) (ଫା. ୱାସିଲ୍ ବାକୀ)—
Wāsil bākī ୧। ଆଦାୟ ଓ ଅନାଦାୟ ଧନ—1 Realised
ओयासिल बाकी and unrealised (money). ୨। ଧନ
वासिल बाकी ଆଦାୟ କରିବା ଓ ବାକି ରହିବା—2. Realisation of money and non-realisation. ୩। ହିସାବ ଫର୍ଦ୍ଦ, ଯହିଁରେ ପ୍ରତ୍ୟେକ ପ୍ରଜା ଉପରେ ଜମିଦାରଙ୍କର ପ୍ରାପ୍ୟ ଖଜଣାରୁ କେତେ ଆଦାୟ ହୋଇଅଛି ଓ କେତେ ବାକି ଅଛି, ଏହା ଲେଖାଥାଏ—3. A zemindary account which shows the amounts due, amounts realised from and amounts outstanding against each tenant. [ବି—ଜମିଦାରର ପ୍ରତ୍ୟେକ ପ୍ରଜାଠାରୁ ଜମିଦାରଙ୍କର ପ୍ରାପ୍ୟ ବାର୍ଷିକ ଖଜଣା ଓ ଗତ ବରଷ ଗୁଡ଼ାକରେ କେତେ ବାକି ଥିଲା, ଏପରି ମୋଟ ପ୍ରାପ୍ୟ ଲେଖା ଯାଇ ତହିଁ ମଧ୍ୟରୁ ତାହାଠାରୁ ଚଳିତ ବର୍ଷ ମଧ୍ୟରେ ଯେତେ ଖଜଣା ଅସୁଲ (ୱାସିଲ୍) ହୋଇଅଛି, ତାହା ବାଦ ଯାଇ ବର୍ଷ ଶେଷରେ ଉକ୍ତ ପ୍ରଜା ଉପରେ ଜମିଦାରଙ୍କର ଯାହା ବାକି ରହିଲା, ଏହାସବୁ ଯେଉଁ ହିସାବରେ ଲେଖା ଯାଏ, ଉକ୍ତ ହିସାବକୁ ୱାସିଲ୍ ବାକି ବା ଜମା ୱାସିଲ୍ ବାକି ବୋଲିଯାଏ। ପ୍ରତି ବର୍ଷ ଜମିଦାରଙ୍କର ପ୍ରତ୍ୟେକ ପ୍ରଜା ପାଇଁ ଏହିପରି ହିସାବ ଗଢ଼ାଯାଇ ଲେଖାଯାଏ।]

**ୱାସିଲାତ୍**—ବୈଦେ. ବ (କଚେରୀ) (ଅ. ୱାସିଲାତ୍=ଅଦାୟ ହୋଇ-
Wāsilāt ଥିବା ଧନ; ଅଦାୟ ହୋଇଥିବା ଧନର ପ୍ରୟୋଗ )—
ওয়াসিলাৎ ୧ । ମୋଟ ଅଦାୟ ହୋଇଥିବା ଧନ—1. Total
**वासिलात** realisation. ୨ । ତହବିଲର ଭାରପ୍ରାପ୍ତ କୌଣସି କର୍ମଚାରୀ ମଫସଲରୁ ଅସୁଲ ବା ଅଦାୟ କରିଥିବା ଟଙ୍କା ମଧ୍ୟରୁ, ସେ ବ୍ୟୟ କରିଥିବା ବା ମାଲିକ ନିକଟକୁ ପଠାଇ ଥିବା ଟଙ୍କାର ହିସାବ ବାଦ ଦିଆଯାଇ ତାହା ଉପରେ ମାଲିକଙ୍କର ପାଇବା ପାଉଣା ଟଙ୍କା—2. Amount found due from a person entrusted with collection, after giving credit for amounts properly spent or remitted by him to the master.

**ୱାସ୍ତେ**—ବୈଦେ. ଅ ( ଅ. ୱାସ୍ତା=କାରଣ, ୱାସ୍ତେ=କାରଣରୁ )—
Wāste ୧ । ପାଇଁ; ନିମିତ୍ତ—1. For. ୨ । (ଅମୁକ) କାରଣରୁ—
ওয়াস্তে **वास्ते** 2. On account of.

**ୱିକ୍**—ବୈଦେ. ବ (ଇଂ. ୱିକ୍ )—ସପ୍ତାହ; ସାତ ଦିନର ସମାହାର—
Wik উইক **वीक** Week.

**ୱିକ୍ ଏଣ୍ଡ୍**—ବୈଦେ ବ ( ଇଂ. ୱିକ୍ ଏଣ୍ଡ୍ )—ସପ୍ତାହର ଶେଷ ସମୟ
Wik end ଅର୍ଥାତ୍ ଶନିବାର ଉପର ବେଳ ଓ ରବିବାର, ଯେଉଁ
উইক এণ্ড, উইকেণ্ড ସମୟରେ ସପ୍ତାହକ ଯାକ କାର୍ଯ୍ୟ କରିଥିବା
**विक ऐण्ड** ଲୋକେ ଅବସର ଗ୍ରହଣ କରନ୍ତି)—Week end.

**ୱିକ୍‌ଏଣ୍ଡ୍ ରିଟର୍ଣ୍ଣ(ନ୍) ଟିକେ(କ)ଟ୍**—ବୈଦେ. ବ—(ରେଲୱେ ଶବ୍ଦ)—
Wikend rtiarnn(n) tike(ka)t (ଇଂ.) ସପ୍ତାହର ଶେଷ
উইকেণ্ড টিকেট ସମୟରେ ଯାତ୍ରୀମାନେ ରେଲରେ କୌଣସି
**विकऐण्ड रिटर्न टिकेट** ସ୍ଥାନକୁ ଯାଇ ଗୋଟିଏ ନିର୍ଦ୍ଦିଷ୍ଟ ଦିବସ
[ ୱିକେଣ୍ଡ୍ ରିଟର୍ଣ୍ଣ(ନ୍) ଟିକେ(କ)ଟ୍—ଅନ୍ୟରୂପ ] ପୂର୍ବରୁ ଫେରି ଆସିବା ପାଇଁ ଶସ୍ତା ଦରରେ ଦିଆଯିବା ରେଲ ଟିକେଟ୍—Week end return ticket ( granted by the Railway Companies to intending passengers.) [ ଦ୍ର—ବେଙ୍ଗଲ ନାଗପୁର ରେଲ କମ୍ପାନୀରେ ଏହି ୱିକ୍ ଏଣ୍ଡ୍ ରିଟର୍ଣ୍ଣ ଟିକେଟ୍ ପ୍ରତି ସପ୍ତାହରେ ଗୁରୁବାର ଦିନ ରାତି ବାରଟା ପରଠାରୁ କିଣିବାକୁ ମିଳେ । ଯେଉଁମାନେ ଏହି ଟିକେଟ୍ କିଣନ୍ତି, ସେମାନଙ୍କୁ ଆଗାମୀ ମଙ୍ଗଳବାର ରାତି ୧୨ଟା ବେଳକୁ, ବା ତତ୍ପୂର୍ବରୁ ଯାତ୍ରା ଶେଷ କରିବାକୁ ହୁଏ । ଯାତ୍ରା ପଥ ଅନ୍ତତଃ ୫୦ ମାଇଲ କିମ୍ବା ତହିଁରୁ ଊର୍ଦ୍ଧ୍ୱ ନ ହେଲେ ସାଧାରଣତଃ ଏହି ଟିକେଟ କିଣିବାକୁ ମିଳେ ନାହିଁ । ]

**ୱିକେଟ୍**—ବୈଦେ. ବ ( ଇଂ. ୱିକେଟ୍ )—କ୍ରିକେଟ୍ ଖେଳରେ ବାଟ୍
Wiket ଧରିଥିବା ଖେଳାଳି ଭୂଇଁରେ ପୋତା ହୋଇଥିବା
উইকেট ଯେଉଁ କାଠି ତିନି ଖଣ୍ଡକୁ ଅପର ପକ୍ଷର ପେଣ୍ଡୁର
**विकेट** ଦାଉରୁ ଜଗିଥାଏ—Wicket.

**ୱିକେଟ୍ କୀପ(ପା)ର୍**—ବୈଦେ. ବ ( ଇଂ. ଉଇକେଟ୍ କୀପର୍ )—
Wiket kipa(pā)r ୱିକେଟ୍ ପଛରେ ଯେଉଁ ଖେଳାଳି ଠିଆ
উইকেট কীপার **विकेट कीपर** ହୋଇ ୱିକେଟ୍‌କୁ ଜଗିଥାଏ—
Wicket keeper.

**ୱିକେଟ୍ ଡୋର୍**—ବୈଦେ. ବ ( ଇଂ )—ଫାଟକ ଅନ୍ଦରେ ଲଗାଯିବା
Wiket dor ଏକପ୍ରକାର ଘୂର୍ଣ୍ଣାୟମାନ ଦ୍ୱାର; ଯହିଁରେ ଲୋକେ
উইকেট ডোর ଯିବା ଆସିବା କରି ପାରନ୍ତି, କିନ୍ତୁ ଗୋମେଷାଦି
**विकेट डोर** ଯାଇ ପାରନ୍ତି ନାହିଁ—Wicket door.

**ୱିକ୍ଲି ରିପୋର୍ଟ(ଟ୍)**—ବୈଦେ. ବ (ଇଂ. ୱିକ୍ଲି ରିପୋର୍ଟ )—ସାପ୍ତାହିକ
Wikli riport(t) ରିପୋର୍ଟ—Weekly report.
উইকি রিপোর্ট **विकली रिपोर्ट**

**ୱିକ୍ଲି ରିପୋର୍ଟ୍(ଟା)ର୍**—ବୈଦେ. ବ ( କଚେରୀ ) ( ଇଂ. ଉଇକ୍ଲି
Wikli ripot(tā)r ରିପୋର୍ଟର୍ )—ପୂର୍ବେ କଲିକତା ଅନ୍ଦର
উইক্লী রিপোর্টার ହାଇକୋର୍ଟ ଓ ପ୍ରିଭି କାଉନ୍‌ସିଲରେ ନିଷ୍ପତ୍ତି
**विकली रिपोर्टर** ହେବା ମକଦମାର ସ୍ୱଳ୍ପ ଅଂଶ ପ୍ରତି ସପ୍ତାହରେ ପ୍ରକାଶିତ ହେଉଥିବା ଲ-ରିପୋର୍ଟ—Weekly Report; weekly report of cases decided by the High Court and Privy Council.

**ୱିଙ୍ଗ**—ବୈଦେ. ବ ( ଇଂ )—ରଙ୍ଗଭୂମିର ପାର୍ଶ୍ୱ—The wing
Wing উইঙ্গ **विङ्ग** of a pandal or stage.

**ୱିଣ୍ଡ୍ ମିଲ୍**—ବୈଦେ. ବ ( ଇଂ ୱିଣ୍ଡ୍ ମିଲ୍ )—ବାୟୁଦ୍ୱାରା ଗତି ପ୍ରାପ୍ତ
Wind mil ଚକଦ୍ୱାରା ପରିଚାଳିତ କଳ—Wind mill.
উইণ্ড মিল **विंड मिल**

**ୱିଣ୍ଡ୍‌ଶର୍**—ବୈଦେ. ବ ( ଇଂ. ନାମ )—ଲଣ୍ଡନର ପଶ୍ଚିମରେ
Wind-sar ବର୍କସ୍ ସାୟାର୍‌ରେ ଥିବା ଗୋଟିଏ ନଗର,
উইণ্ড সর **विंड सर** ଯେଉଁଠାରେ ଭାରତ ସମ୍ରାଟଙ୍କ ଉଆସ ଅଛି-
[ ୱିଣ୍ଡ ଶଅ(ୱା)ର—ଅନ୍ୟରୂପ ] Windsor. [ ଦ୍ର—ଏହା ଟେମସ୍ ନଦୀକୂଳରେ ଅବସ୍ଥିତ । ଏଠାରେ ଭାରତ ସମ୍ରାଟଙ୍କର ଗୋଟିଏ ବୃହତ୍ ଆବାସ ଅଛି । ]

**ୱିଣ୍ଡୋ**—ବୈଦେ. ବ ( ଇଂ. ୱିଣ୍ଡୋ )—ଝରକା; ପଞ୍ଜର—
Windo উইণ্ডো **विण्डो** Window.

**ୱିଣ୍ଡୋ ଡେଲିଭରୀ**—ବୈଦେ. ବ ( ଡାକବିଭାଗ ଶବ୍ଦ ) ( ଇଂ. ୱିଣ୍ଡୋ
Windo delibhari =ଝରକା + ଇଂ. ଡେଲିଭର=ଅର୍ପଣ)—
উইণ্ডো ডেলিভারী ଡାକଘରର ଝରକା ପାଖେ ଚିଠି ଆଦି ମାଲିକଙ୍କୁ
**विण्डो डेलिभरी** ଅର୍ପଣ କରିବା ପଦ୍ଧତି—Window delivery. [ ଦ୍ର—ବଡ଼ଲୋକ ଓ ବଡ଼ ବଡ଼ ବ୍ୟବସାୟୀ ମାନଙ୍କ ନାମରେ ଆସିବା ଡାକ ଜିନିଷ ଓ ଚିଠିପତ୍ରମାନ ଡାକ ପିଅନ୍ ତାଙ୍କ କୋଠିକୁ ନ ନେଇ, ତାଙ୍କର ଚାକର ଡାକଘରକୁ ଆଣିବା ଗୋଟିଏ ଦୋହରି ଚାବିଦିଆ ବାକ୍‌ସକୁ ଫିଟାଇ ତହିଁରେ ପୋଷ୍ଟମାଷ୍ଟର ଡାକଘରର ଝରକା ପାଖରେ ଚିଠି ଇତ୍ୟାଦି ଭରି ଚାବି ପକାଇ ଦିଅନ୍ତି । ଚାକର ସେ ଚାବିଦିଆ ବାକ୍‌ସକୁ ମାଲିକଙ୍କ ନିକଟକୁ ନେଲାରୁ ମାଲିକ ତାଙ୍କ ପାଖରେ ଥିବା ଦୋହରି ଚାବିକାଠିରେ ସେ ବାକ୍ସକୁ ଫିଟାଇ ତହିଁରୁ ଆପଣା ଚିଠିପତ୍ରକୁ କାଢ଼ନ୍ତି । ଏ ପ୍ରଥାଦ୍ୱାରା ଚାକର ବା ଡାକ ପିଅନଙ୍କ ହାତରେ ଚିଠି ଆଦି ହଜିବାର ସମ୍ଭାବନା ରହେ ନାହିଁ । ]

**ୱିଲ୍(ଲି)**—ବୈଦେ. ବି (ଇଂ. ୱିଲ୍)—ଉଇଲ୍; କୌଣସି ବ୍ୟକ୍ତିଙ୍କର
Wil(li) ମୃତ୍ୟୁ ପରେ ତାଙ୍କ ତ୍ୟକ୍ତ ସମ୍ପତ୍ତିକୁ କିଏ ଭୋଗ କରିବ,
উইল **विल** ବା ତାହା କିପରି ବ୍ୟବହୃତହେବ, ଏ ସମ୍ବନ୍ଧେ ଜୀବିତ
( ୱିଲ୍[ଲି]ନାମା—ଅନ୍ୟରୂପ ) ବ୍ୟକ୍ତିଙ୍କ ଲେଖି ରଖିଯିବା ଦଲିଲ—
Will; testament.

**ୱିଲ୍[ଲି] କରିବା**—ଦେ. କ୍ରି—ଆପଣାର ମୃତ୍ୟୁ ପରେ ଆପଣାର ସମ୍ପତ୍ତି
Wil(li) kariba କିପରି ଓ କିଏ ଭୋଗ କରିବ, ତାହା ପୂର୍ବରୁ
উইল কবা **विल करना** ଲେଖି ଦସ୍ତଖତ୍ କରିବା—To execute a testament or will in respect of one's property; to will away one's property.

**ୱିଲ ପ୍ର(ପ୍ରୋ)ବି(ବେ)ଟ୍**—ବୈଦେ. ବି ( କଚେରୀ ) ( ଇଂ. ୱିଲ୍+
Wil pra(pro)bi(be)ṭ ପ୍ରୋବେଟ )—ୱିଲ କରିଥିବା
উইল প্রোবেট **विल प्रबेट** ବ୍ୟକ୍ତିର ମୃତ୍ୟୁ ପରେ ଉକ୍ତ ଦଲିଲରେ ମୃତ ବ୍ୟକ୍ତି ଯାହାଙ୍କୁ ଭାର ଦେଇଥାଆନ୍ତି, ସେ ଜଜ୍ ସାହେବଙ୍କ ନିକଟରେ ଦରଖାସ୍ତ କରି ଉକ୍ତ ଦଲିଲକୁ ପ୍ରମାଣିତ କରି, ସେହି ଦଲିଲ ଅନୁସାରେ ସମ୍ପତ୍ତିକୁ ପରିଚାଳନ କରିବା ପାଇଁ ଜଜ୍‌ସାହେବଙ୍କଠାରୁ ଯେଉଁ ହୁକୁମନାମା ପାଆନ୍ତି—Probate of a will.
[ ଦ୍ର—ଉକ୍ତ ଭାରପ୍ରାପ୍ତ ବ୍ୟକ୍ତିଙ୍କୁ ଏକ୍‌ଜିକ୍ୟୁଟର୍ (Executor) ବୋଲାଯାଏ ଓ ଉକ୍ତ ଦଲିଲ ବଳରେ ଯେଉଁ ବ୍ୟକ୍ତିମାନେ ମୃତ ବ୍ୟକ୍ତିର ସମ୍ପତ୍ତି ପାଆନ୍ତି ତାଙ୍କୁ ଲେଗେଟୀ (Legatee) ବୋଲାଯାଏ ।]

**ୱିଲାୟତ୍**—ବୈଦେ. ବି (ଆ. ୱିଲାୟତ୍=ବିଦେଶ; ଦୂର ଦେଶ)—
Wilāyat ୧ । ୟୁରୋପ—1. Europe. ୨ । ବିଦେଶ—
বিলায়ত **बिलायत** 2. Foreign country.
୩ । ରାଜ୍ୟ—3. Kingdom. ୪ । ରାଜ୍ୟର ଶାସନ ବିଭାଗ; ପ୍ରଦେଶ—4. A province. ୫ । ଇଂଲଣ୍ଡ—5. England. [ଦ୍ର—ଏହି ୱିଲାୟତ୍ ଶବ୍ଦରୁ ଭାଷାରେ ଇଂଲଣ୍ଡ ଅର୍ଥରେ ବ୍ୟବହୃତ ବିଲାତ୍, ବିଲାଏତ୍ ଶବ୍ଦମାନ ହୋଇଅଛି ।]

**ୱିଲାୟତି**—ବୈଦେ. ବିଣ. ( ଆ )—୧ । ୟୁରୋପୀୟ—
Wilāyati 1. European. ୨ । ବିଲାତି; ଇଂଲଣ୍ଡୀୟ.
বিলায়তী, বিলা(লি)তী 2. English. ୩ । ବିଦେଶରୁ
**बिलायती** ଏ ଦେଶକୁ ଆସିଥିବା—3. Introduced to this country from a foreign country.

**ୱିଲାୟତି ସନ**—ବୈଦେ. ବି—ବିଲାୟତି ସନ; ଫସଲି ସନ; ବିଳାଇତିସନ;
Wilāyati sana ଓଡ଼ିଶାରେ ପ୍ରଚଳିତ ଅବ୍ଦ—
বিলায়তীসন **बिलायतीसन** The year current in Orissa. [ଦ୍ର—ଏ ସନ ମୋଗଲସମ୍ରାଟମାନେ ଏ ଦେଶରେ ଚଳାଇଥିବାରୁ ଏହା ବିଲାୟତି (ବିଦେଶୀୟ) ସନ ନାମରେ ଖ୍ୟାତ । ଏହା ସୌରମାନ ଗଣନାକ୍ରମେ ଚଳେ ଓ ସଂକ୍ରାନ୍ତି ଦିନ ସୌର ମାସର ପ୍ରଥମ ଦିନ ଗଣନା କରାଯାଏ । ଏହି ସନ ଶ୍ରୀ, ଭାଦ୍ର ଶୁକ୍ଳ ଦଶମୀ ଦିନ (ସୁନିଆ) ଆରମ୍ଭ ହୁଏ; କିନ୍ତୁ ଏଥିର ଗଣନା ସୌରମାସ ଗଣନାକ୍ରମେ ଚଳୁଥାଏ । ଶ୍ରୀନ ଭାଦ୍ର ଶୁକ୍ଳ ପକ୍ଷ ଏକାଦଶୀ ଦିନ ଯେଉଁ ସନ (ଯଥା, ୧୩୧୧ ସାଲ କନ୍ୟା ୭ ଦିନ ) ହୋଇଥିବ, ତହିଁ ପରଦିନ ଅର୍ଥାତ୍ ଭାଦ୍ର ଶୁକ୍ଳ ଦ୍ୱାଦଶୀ ଦିନ ତତ୍‌ପରବର୍ତ୍ତୀ ସନ ହେବ (ଯଥା—୧୩୧୨ ସାଲ କନ୍ୟା ୭ ଦିନ) । ଇଂରାଜୀ ସାଲରୁ ୫୯୩ ବାଦଦେଲେ ଏହି ସନ ଆସେ । ଏହି ସନ ଅନୁସାରେ ଓଡ଼ିଶାର ଜମିଦାର୍ କାଗଜପତ୍ର ତିଆରି ହୁଏ । ବଙ୍ଗଦେଶ ପ୍ରଚଳିତ ସନରେ ସୌର ମାସର ଶେଷ ଦିନ ସଂକ୍ରାନ୍ତି । ଓଡ଼ିଶା ପ୍ରଚଳିତ ସନରେ ସୌର ମାସର ଆଦ୍ୟ ଦିନ ସଂକ୍ରାନ୍ତି ଅଟେ । ବଙ୍ଗାବ୍ଦ ସୌର ବୈଶାଖ ୧ ଦିନରୁ ଆରମ୍ଭ ହୁଏ । ସେତେବେଳକୁ ଓଡ଼ିଆ ସନର ଆଠ ମାସ ପ୍ରାୟ ଭୋଗ ହୋଇ ୪ ମାସ ବାକି ଥାଏ । ସନ ଶବ୍ଦ ଦେଖ ।]

**ୱିଲିଙ୍ଗଡନ୍**—ବୈଦେ. ବି—ଲର୍ଡ ୱିଲିଙ୍ଗଡନ୍, ଭାରତର ପୂର୍ବତନ
Wilingdan ବଡ଼ଲାଟ—Lord Willingdon, the
উইলিঙ্গডন **विलिंगडन** late Viceroy of India

**ୱେଟର୍**—ବୈଦେ. ବି (ଇଂ)—ବଡ଼ଲୋକଙ୍କ ପାଖ ଲୋକ; ଅର୍ଦ୍ଦଳୀ
Weṭar ଚାକର—Waiter of rich men.
উয়েটাব **वेटर**

**ୱେଟିଙ୍ଗ୍ ରୁମ**—ବୈଦେ.—(ଇଂ. ୱେଟିଙ୍ଗ୍‌ରୁମ୍)—ଯେଉଁ କୋଠରିରେ
Weṭing rum ରେଳଯାତ୍ରୀମାନେ ରେଳଗାଡ଼ିର ଅପେକ୍ଷାରେ ବା
ওয়েটিং রুম ରେଳଗାଡ଼ିରୁ ଓହ୍ଲାଇ କିଛି ସମୟ ବିଶ୍ରାମ କରନ୍ତି—
**वेटिंग रूम** Waiting room at a Railway Station, a rest house at a Railway station;

**ୱେଦର୍ କକ୍**—ବୈଦେ. ବି—(ଇଂ. ୱେଦର୍ କକ୍)—(କୋଠା
Wedar kak ଉପରେ ରଖା ଯାଇଥିବା) ବାୟୁ ପ୍ରବାହର ଗତି
ওয়েদাব কক ଓ ଦିଗ ନିର୍ଣ୍ଣାୟକ ଯନ୍ତ୍ର—Weathercock.
**वेदरकक**

**ୱେବ୍‌ଷ୍ଟ(ଷ୍ଟା)ର**—ବୈଦେ. ବି—(ନାମ, ଇଂ. ୱେବ୍‌ଷ୍ଟର୍)—ଆମେରିକା
Web-shṭa(shṭā)r ବାସୀ ପ୍ରସିଦ୍ଧ ଇଂରାଜୀ ଅଭିଧାନର
ওয়েবষ্টার ସ୍ୱର୍ଗୀୟ ସଙ୍କଳୟିତା—The late Dr. Noah
**वेबसटर** Webster, the American author of the famous English Dictionary.
ଦ୍ର—ଏ ଅଭିଧାନକାରଙ୍କର ଜନ୍ମ ୧୭୫୮ ଖ୍ରୀ. ମୃତ୍ୟୁ ୮୫ ବର୍ଷ ବୟସରେ ଖ୍ରୀ. ୧୮୪୩ରେ; ଇଂରାଜି ଅଭିଧାନର ସଙ୍କଳନ କର୍ମର ଆରମ୍ଭ ଖ୍ରୀ. ୧୮୦୭; ପ୍ରଥମ ସଂସ୍କରଣର ପ୍ରକାଶ ଖ୍ରୀ. ୧୮୨୮; ୨ୟ ସଂସ୍କରଣ ଖ୍ରୀ. ୧୮୪୦—୪୧]

**ୱେ ବିଲ୍**—ବୈଦେ. ବି—(ଇଂ. ୱେ ବିଲ୍)—ରେଲବେ ଚାଲାଣ
We bil ହେବା ମାଲର ତାଲିକା—Waybill.
ওয়েবিল **वेबिल**

**ୱେଲ୍‌ସ୍**—ବୈଦେ. ବି. ନାମ)—(ଇଂ. ୱେଲ୍‌ସ୍—ଇଂଲଣ୍ଡର ପଶ୍ଚିମାଞ୍ଚଳସ୍ଥ
Wels ওয়েলস **वेल्स** ପ୍ରଦେଶ—Wales
[ଦ୍ର—ଇଂଲଣ୍ଡର ରାଜାଙ୍କ ପ୍ରଥମ ପୁତ୍ର ବା ଯୁବରାଜଙ୍କୁ ପ୍ରିନ୍‌ସ ଅଫ୍ ୱେଲ୍‌ସ୍ ବୋଲାଯାଏ ।]

ୱେଲ(ଲ୍ଲ)ର୍—ବୈଦେ. ବି.—(ଇଂ. ୱେଲର୍)—ଅଷ୍ଟ୍ରେଲିଆ ଦେଶରୁ
Wela(lā)r ଆନୀତ ଏକ ପ୍ରକାର ଉତ୍କୃଷ୍ଟ ଘୋଡ଼ା ( ଏମାନେ
ଓୟେଲାବ वेलर ଖୁବ୍ ବେଗଗାମୀ)—Waler (horse).
[ୱେଲ(ଲ୍ଲ)ର୍ ଘୋଡ଼ା—ଅନ୍ୟରୂପ]

ୱେଲିଙ୍ଗ୍ଟନ—ବୈଦେ.ବି.—(ନାମ)—ଇଂଲଣ୍ଡର ପ୍ରସିଦ୍ଧ ସେନାପତି—
Weliṅgtan Duke of Wellington.
[ଦ୍ର—ଏ ୱାଟର୍ଲୁ ଯୁଦ୍ଧକ୍ଷେତ୍ରରେ ୧୮୧୫ ଖ୍ରୀଷ୍ଟାବ୍ଦରେ ନେପୋଲିଅନ୍‌ଙ୍କୁ ପରାସ୍ତ କରିଥିଲେ । ଏହାଙ୍କ ଜନ୍ମ ଖ୍ରୀ ୧୭୬୯; ମୃତ୍ୟୁ ୧୮୫୨ ।]

ୱେଲେସ୍ଲୀ—ବୈଦେ. ବି (ନାମ) ଇଂ—ଲର୍ଡ଼ ୱେଲେସ୍‌ଲୀ; ଭାରତର
Weleslī ଗଭର୍ଣ୍ଣର୍ ଜେନେରାଲ୍ (ଜନ୍ମ ୧୭୬୦ ଖ୍ରୀ । ଭାରତର
ଓୟେଲେସଲୀ वेलेसली ବଡ଼ଲାଟ ୧୭୯୮—୧୮୦୫;
ମୃତ୍ୟୁ ୧୮୪୨ଖ୍ରୀ)—Marquis of Wellesley. [ଦ୍ର—ଏହାଙ୍କ ଭାରତ ଶାସନକାଳରେ ମହୀଶୂରର ଟିପୁ ସୁଲ୍‌ତାନଙ୍କ ପରାଜୟ ଓ ମୃତ୍ୟୁ ପରେ ମହୀଶୂରର ପୂର୍ବତନ ହିନ୍ଦୁ ରାଜବଂଶଙ୍କୁ ମହୀଶୂରପ୍ରତ୍ୟର୍ପଣ, ନିଜାମଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ, କର୍ଣ୍ଣାଟ ପ୍ରଦେଶରେ ଇଷ୍ଟଇଣ୍ଡିଆକୋମ୍ପାନୀଙ୍କ ଅଧିକାର, ମରହଟ୍ଟା ଶକ୍ତିର ଖର୍ବୀକରଣ, କଲିକତାରେ ଫୋର୍ଟ୍ ୱିଲିଅମ୍ କଲେଜ ସ୍ଥାପନ, ବ୍ୟାରାକ୍‌ପୁରକୁ ବିଶ୍ରାମଭବନସ୍ୱରୂପେ ଗ୍ରହଣ—(ସୁବଳଚନ୍ଦ୍ର) । ଏ ଲର୍ଡ଼ ୱେଲିଂଟନ୍‌ଙ୍କ ବଡ଼ ଭାଇ ଥିଲେ ।]

ୱେଶିସ—ବୈଦେ. ବି (ଇଂ ଅ. ଓଏସିସ୍)—ମରୁଭୂମି ମଧ୍ୟସ୍ଥ ଉର୍ବର
Weśis ଭୂଖଣ୍ଡ—Oasis.
ଓୟେଶୀଷ ओएसिस

ୱେଷ୍ଟ୍ ଇଣ୍ଡିଜ୍—ବୈଦେ. ବି ( ଇଂ ୱେଷ୍ଟ୍ ଇଣ୍ଡିଜ୍ )—ଅଟଲାଣ୍ଟିକମହା-
Wesht indij ସାଗର ଉତ୍ତର ଅମେରିକାର ମେକ୍ସିକୋ
ଓୟେଷ୍ଟଇଣ୍ଡିଜ वेस्ट इंडिज ରାଜ୍ୟର ପୂର୍ବରେ ଥିବା ଦ୍ୱୀପପୁଞ୍ଜ—
West Indies. [ଦ୍ର—ପୃଥିବୀ ଗୋଲାକାର ଥିବାରୁ ଇଉରୋପରୁ ପଶ୍ଚିମବାଟେ ସମୁଦ୍ରେ ସମୁଦ୍ରେ ଗଲେ ଭାରତବର୍ଷ (ଇଣ୍ଡିଆ. India)ରେ ପହଞ୍ଚିବ ବୋଲି ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରେ ଇଉରୋପୀୟମାନଙ୍କର ବିଶ୍ୱାସ ଥିଲା । କାରଣ, ମଝିରେ ଅମେରିକା ମହାଦେଶ ଥିବା ସେମାନେ ଆଦୌ ଅନୁମାନ କରି ନ ଥିଲେ । ଅତଏବ ଯେଉଁ ନାବିକମାନେ ଇଉରୋପରୁ ପଶ୍ଚିମଆଡ଼କୁ ଜାହାଜରେ ଯାଇଥିଲେ ସେମାନେ ଦକ୍ଷିଣଅମେରିକାର ଉତ୍ତରପଶ୍ଚିମ କୋଣରେ ଓ ଉତ୍ତର ଅମେରିକାର ମେକ୍ସିକୋ ରାଜ୍ୟର ପୂର୍ବରେ ଥିବା ଦ୍ୱୀପ-ପୁଞ୍ଜକୁ ଇଣ୍ଡିଜ୍ (ଭାରତ) ବୋଲି ମନେକଲେ ଓ ଅମେରିକାର ଆଦିମନିବାସୀମାନଙ୍କୁ ଇଣ୍ଡିଅନ୍ (ଭାରତୀୟ) ବୋଲି ମନେକଲେ । କିନ୍ତୁ ପରେ ଆଫ୍ରିକାର ଦକ୍ଷିଣସ୍ଥ ଉତ୍ତମାଶା ଅନ୍ତରୀପ ବାଟେ ଭାରତ ଆବିଷ୍କୃତ ହେଲାରୁ ଇଉରୋପୀୟ ନାବିକମାନେ ଆପଣା ଭ୍ରମ ବୁଝିପାରି ଭାରତମହାସାଗରରେ ଥିବା ଦ୍ୱୀପପୁଞ୍ଜକୁ ଇଷ୍ଟଇଣ୍ଡିଜ (East Indies)—ପୂର୍ବ ଭାରତ) ଓ ଅମେରିକାର ଦ୍ୱୀପପୁଞ୍ଜକୁ ୱେଷ୍ଟଇଣ୍ଡିଜ (West Indies)—ପଶ୍ଚିମଭାରତ ନାମ ଦେଲେ ଏବଂ ଭାରତ-ବାସୀଙ୍କୁ Indian (ଭାରତୀୟ) ଓ ଅମେରିକାବାସୀଙ୍କୁ ରେଡ୍‌ଇଣ୍ଡିଅନ୍ Red Indian (ରକ୍ତବର୍ଣ୍ଣ ଭାରତୀୟ) ନାମ ଦେଲେ । ପ୍ରଶାନ୍ତମହାସାଗରରେ ଅଷ୍ଟ୍ରେଲିଆର ଉତ୍ତର ଓ ଉତ୍ତରପୂର୍ବରେ ଅବସ୍ଥିତ ନିଉଗିନି, ଫିଲିପାଇନ୍; ସେଲିବସ, ବୋର୍ଣ୍ଣିଓ, ଯାବା ଓ ସୁମାତ୍ରା ଦ୍ୱୀପମାନ ଇଷ୍ଟ୍ ଇଣ୍ଡିଜ୍ ଦ୍ୱୀପପୁଞ୍ଜର ଅନ୍ତର୍ଗତ । ଆଟଲାଣ୍ଟିକ ମହାସାଗରରେ ମେକ୍ସିକୋର ପୂର୍ବରେ ଏବଂ ଦକ୍ଷିଣ ଅମେରିକାର ଉତ୍ତର ପଶ୍ଚିମରେ ଅବସ୍ଥିତ ପୋର୍ଟୋରିକୋ, ହାଇଟୀ, ଜାମାଇକା, କ୍ୟୁବା, ବାହାମା ଦ୍ୱୀପମାନ ୱେଷ୍ଟ୍ ଇଣ୍ଡିଜ୍ ଦ୍ୱୀପପୁଞ୍ଜର ଅନ୍ତର୍ଗତ ଅଟେ ।]

ୱେଷ୍ଟ୍ କୋଟ୍—ବୈଦେ. ବି ( ଇଂ. ୱେଷ୍ଟ୍ କୋଟ୍)—କୋଟ୍ ତଳେ ଓ
Wesht-kot କାମିଜ ଉପରେ ପିନ୍ଧାଯିବା ହାତ ନ ଥିବା ଓ ଅଣ୍ଟା
(ୱେଷ୍ଟ୍(କୋ)ଟ—ଅନ୍ୟରୂପ) (ୱେଷ୍ଟ) ପର୍ଯ୍ୟନ୍ତ ଲମ୍ବ ଫତେଇ—
ଓୟେଷ୍ଟକୋଟ वासकोट Waiste coat.

ୱେଷ୍ଟ୍ ପେପର୍ ବାସ୍କେ(ସ୍କେ)ଟ୍—ବୈଦେ. ବି ( ଇଂ. ୱେଷ୍ଟ୍ ପେପର୍
Wesht pepar bāsk ːt ବାସ୍କେଟ୍)—ଯେଉଁ ଟୋକେଇରେ
ଓୟେଷ୍ଟପେପାବ ବାସ୍କେଟ ରଦ୍ଦି କାଗଜ ଆଦି ପକାଯାଏ—
वेस्टपेपरबास्केट Waste paper basket.

# ଶ

ଶ—ବ୍ୟଞ୍ଜନବର୍ଣ୍ଣମାଳାର ବିଂଶ ବର୍ଣ୍ଣ । ଏହାର ଉଚ୍ଚାରଣ ସ୍ଥାନ ତାଳୁ (କଣ୍ଠ ଓ ମୂର୍ଦ୍ଧାର ମଧ୍ୟସ୍ଥଳ), ଏଥିପାଇଁ ଏହାକୁ 'ତାଳବ୍ୟ ଶ' କୁହାଯାଏ । ଏହା ମହାପ୍ରାଣ ବର୍ଣ୍ଣ, ଏଥିର ଉଚ୍ଚାରଣପାଇଁ ପାଟି ବାଟେ ଉଷ୍ମା ବା ଶ୍ୱାସ ବାୟୁର ଆଧିକ୍ୟ ଆବଶ୍ୟକ ହୁଏ, ତେଣୁ ଏହାକୁ ଊଷ୍ମବର୍ଣ୍ଣ କୁହାଯାଏ । ଭାଷାରେ ତାଳବ୍ୟ ଶ, ମୂର୍ଦ୍ଧନ୍ୟ ଷ ଓ ଦନ୍ତ୍ୟ ସର ଉଚ୍ଚାରଣରେ ପ୍ରଭେଦ ଦେଖାଯାଏ ନାହିଁ । ଅଧ୍ୟକ୍ଷ ପ୍ରସନ୍ନଦୃଷ୍ଟିରେ ଏହା ଈଷତ୍ ସ୍ପୃଷ୍ଟବର୍ଣ୍ଣ । ସଂସ୍କୃତାଜ୍ଞ ଲେଖକମାନେ ଶ, ଷ, ସ ମଧ୍ୟରେ ପ୍ରଭେଦ ନ ରଖି ସଂସ୍କୃତ ଓ ସଂସ୍କୃତମୂଳକ ଶ, ଷ, ସ ବିଶିଷ୍ଟ ଶବ୍ଦମାନଙ୍କୁ ଯଥେଚ୍ଛାଭାବରେ ଲେଖନ୍ତି ଓ ଅଧିକାଂଶ ସ୍ଥଳରେ 'ଶ' 'ଷ' 'ସ' ସ୍ଥଳରେ 'ସ' ଲେଖିଦିଅନ୍ତି । ମରହଟ୍ଟିଆ ପଣ୍ଡିତମାନେ 'ଶ'କୁ 'ଶ୍ୟ'ରୂପେ ଉଚ୍ଚାରଣ କରିବା ଦେଖାଯାଏ । ଯଥା—

ଶକ୍ତି ସ୍ଥାନରେ—'ଶ୍ୟକ୍ତି'
ଶବ୍ଦ ସ୍ଥାନରେ—'ଶ୍ୟବ୍ଦ'
ଶମ୍ଭୁ ସ୍ଥାନରେ—'ଶ୍ୟମ୍ଭୁ'
ଶକଟ ସ୍ଥାନରେ 'ଶ୍ୟକଟ'
ଶାକାହ୍ନ ସ୍ଥାନରେ 'ଶ୍ୟାକାହ୍ନ'

କେହି କେହି ମଧ୍ୟ 'ଶେ' ଉଚ୍ଚାରଣ କରନ୍ତି । ଯଥା— ଶକ୍ତି ସ୍ଥଳରେ ଶେକ୍ତି, ଶଙ୍କା ସ୍ଥଳରେ 'ଶେଙ୍କା' ।

ପ୍ରକୃତରେ 'ଶ' ଉଚ୍ଚାରଣ ଇଂରାଜୀରେ 'c' ବା 's' ପର ଖୁବ୍ ଲଘୁ (ଯଥା—Nice), ଷ ର ଉଚ୍ଚାରଣ ଇଂରାଜୀ sh (ଯଥା—cash) ଓ ସ ର ଉଚ୍ଚାରଣ ଇଂରାଜୀ ss ପରି (ଯଥା—Hiss) । ପ୍ରାକୃତ ଭାଷାରେ କେବଳ ଗୋଟିଏ 'ସ' ର ବ୍ୟବହାର ଦେଖାଯାଏ । ସାଧାରଣତଃ ଓଡ଼ିଆ ଭାଷା-ଲେଖାରେ ଏ ତିନି 'ଶ, ଷ, ସ' ର ପ୍ରଭେଦ ନ ମାନି ଅଧିକାଂଶ ଲୋକ ଦେଶଜ ସଂସ୍କୃତମୂଳକ ଓ ଅନ୍ୟ ଭାଷାରୁ ଆଗତ ଶବ୍ଦମାନଙ୍କୁ 'ସ' ଲେଖନ୍ତି । ଯଥା—

ସକ (ଫା), ସନଦ (ଫା), ସାବା (ଫା-ସାବାସ୍), ସରକାର (ଫା), ସାଗ (ସଂ—ଶାକ), ସାଇକଲ (ଇଂ—ଶାଇକ୍ଲ୍ (Cycle), ସାବାଡ଼ା (ସଂ—ଶାଟଖୋଟ) ।

ଏଥିପାଇଁ କେବଳ ସଂସ୍କୃତ ଓ ସଂସ୍କୃତମୂଳକ ଦେଶଜ ଶବ୍ଦମାନ ଏ ଭାଷାକୋଷରେ 'ଶ' ତଳେ ଦିଆଗଲା । ପାଠକ-ମାନେ କୌଣସି ଦେଶଜ, ସଂସ୍କୃତମୂଳକ ଓ ଅନ୍ୟଭାଷାଗତ 'ଶ','ଷ' ଯୁକ୍ତ ଶବ୍ଦ କୌଣସିଠାରେ ଲେଖାରେ ଦେଖିଲେ ଓ ତାହା ଏ ଶବ୍ଦକୋଷର ତଦ୍ଭବ୍ ଷ ଓ ଶ ତଳେ ନ ପାଇଲେ 'ସ' ତଳେ ମଧ୍ୟ ଦେଖିବେ । 'ସ' ତଳେ ଯେଉଁ ଦେଶଜ ସଂସ୍କୃତମୂଳକ ଓ ବିଦେଶାଗତ ଶବ୍ଦମାନ ଦିଆଗଲା, ସେଗୁଡ଼ିକୁ 'ସ' ସ୍ଥଳରେ 'ଶ' ଓ 'ଷ' ଯୁକ୍ତ କରି ମଧ୍ୟ ଲୋକେ ଲେଖିଥାଆନ୍ତି ।)

ଶ—ସଂ. ବି (ଶୀ ଧାତୁ=ଶୋଇବା+କର୍ତ୍ତୃ. ଅ)—୧ । ବିଷ୍ଣୁ—
Śa 1 Bishnu. ୨ । ଶିବ;ମହାଦେବ—2. Siba ୩ । (+ଭାବ. ଅ) ସୁଖ—3. Happiness. ୪ । (+କର୍ତ୍ତୃ. ଅ) ଶାସିତା; ଶାସକ ବ୍ୟକ୍ତି—4 Ruler; controller; regulator. ୫ । (+ଅଧିକରଣ. ଅ) ମଙ୍ଗଳ; କଲ୍ୟାଣ; ଶୁଭ—5. Good; weal. (ଉ—'ବିନ୍ଦନ୍ତି ରହିବ ମନ ମନ କମ୍ପି କମ୍ପିଣ ଶ-ବଶବର—ଉ. ବୈଦେହୀଶବିଳାସ ।) ୬ । (+ଅଧି. ଅ) ସୀମା—6. Boundary. ୭ । (+ଭାବ. ଅ) ଶୟନ—7. Sleeping. ୮ । (ଅଧିକରଣ. ଅ) ଧର୍ମ—8. Righteousness ୯ । (ଶୋ ଧାତୁ=ଶାଣ ଦେବା+କର୍ମ. ଅ) ଶସ୍ତ୍ର—9. Weapon.

ଶ—ଦେ. ବି (ସଂ. ଶତ)—୧ । ଶତ ସଂଖ୍ୟା—1. Hundred. ୨ ।
Śa ୨୮୮ ଗୋଟି ନଡ଼ିଆ, ଅର୍ଥାତ୍ ୩ ପଣ ୧୨ ଗଣ୍ଡା (ପୁରୀ ଜିଲ୍ଲା)—2. 288 cocoanuts (Puri district) ଦେ. ବିଣ—ଶତସଂଖ୍ୟକ—Numbering one hundred.
ଶଅ }
ଶଉ } —ଅନ୍ୟରୂପ
श सो; सवो

ଶଅଁବର—ଗ୍ରା. ବି (ସଂ.ଶମ୍ବର)—ଶମ୍ବର (ଦେଖ)—Sãnbara (See)
Śa-añbara (ଉ—ଶଅମ୍ବର ଶଣା, ଶୃଗାଳ କେଉଁଲ ନେପାଳ ମୂଷା—ପ୍ରାଚୀ. ପ୍ରତାପ ଶଶିରେଖା । )
(ଶଅମ୍ବର—ଅନ୍ୟରୂପ)
शम्बर साँभर

ଶଅଁବର ଦଶମୀ—ଗ୍ରା. ବି—ଶମ୍ବର ଦଶମୀ (ଦେଖ)
Śa-añbara daśamī Śambaradaśamī (See)
(ଶଅଁବର ଦଶେଇଁ—ଗ୍ରାମ୍ୟରୂପ) (ଶଅମ୍ବର ଦଶମୀ—ଅନ୍ୟରୂପ)
शम्बरदशमी शांबरदशमी

ଶଅଁବରୀ—ଗ୍ରା. ବିଣ—ଶମ୍ବରମୃଗସମ୍ବନ୍ଧୀୟ; ଶମ୍ବରୀ—Relating to
Śa-añbari the Sambar deer.
[ ଶଅମ୍ବରୀ(ରି)—ଅନ୍ୟରୂପ ] ( ଯଥା—ଶଅମ୍ବରୀ ଚମଡ଼ା )
शम्बरेर साँभरी

ଶଅଁବରୀ ଚମଡ଼ା—ଗ୍ରା. ବି—ଶମ୍ବରୀ ଚମଡ଼ା (ଦେଖ)
Śa-añbari(ri) chamarḍā Śambari chamarḍā (See)
[ ଶଅମ୍ବରୀ ଚମଡ଼ା—ଅନ୍ୟରୂପ ]
शम्बरेर चामडा साँभरी चमडा

ଶଅଁବାଲ(ଳି,ଳୁ)—ଦେ. ବି (ସଂ. ଶୃଙ୍ଗ)—ଶମ୍ବାଳ; ଶମ୍ବାଳୁଆ (ଦେଖ)
Śa-añbāla(li,lu) Śambāli; Śambālua
( ଶଅଁବାଳୁଆ—ଅନ୍ୟରୂପ ) (See)
শুঁয়া পোকা, सुआ भुआ

ଶଅକ—ଦେ. ବି—୧ । (ସଂ. ଶତକ)—ଏକ ଶତ ମାତ୍ର—
Śaaka 1. One hundred only. ୨ । (ସଂ. ଶକ୍ୟ) ସକ୍ (ଦେଖ) 2 Sak (See)
एकश ऐकसौ
भय शाक

ଶଅ(ଇ,ଏ)କଡ଼ା(ଡ଼ା) —ଦେ. ବି—ଶତକଡ଼ା (ଦେଖ)—Ṡatakarā
Ṡa-a(i,e)karḏā(rā) (See) ବିଣ—୧ । ବହୁସଂଖ୍ୟକ—
শতকবা सौकडा 1. Many. ୨ । ପ୍ରାୟ ଏକ ଶତ—
শতেক सो 2. About one hundred,

ଶଅକା(କୁ)ଶଅ(ହ)—ଦେ, ବି ଓ ବିଣ (ସଂ.ଶତ ଶତ)—ଶତ ଶତ(ଦେଖ)
Ṡa-aka(ku)ṡa-a(ha) Ṡataṡata ( See )
শত শত सौका सौ

ଶଅ(ହ)ର—ଦେ. ବି. ପୁଂ ( ସଂ. ଶବର )—୧ । ଶବର (ଦେଖ)—
Ṡa-a(ha)ra 1. Ṡabara (See) ୨ । ଗଡ଼ଜାତର
[ଶଅ(ହ)ରୁଣୀ—ସ୍ତ୍ରୀ] ପାର୍ବତ୍ୟ ଅନାର୍ଯ୍ୟ ଜାତିବିଶେଷ—
শবর शबर 2 A caste of aborigines of the Garjats. [ ଉ—ଏମାନେ ମଧ୍ୟ ମୋଗଲବନ୍ଦୀରେ ଅଳ୍ପସଂଖ୍ୟାରେ ଦେଖାଯାନ୍ତି । ]
୩ । ସହର (ଦେଖ)—3. Sahara (See)

ଶଅର(ରା) ପଲି(ଲୀ)—ଦେ. ବି (ସଂ. ଶବରପଲ୍ଲୀ )—ଶବରମାନଙ୍କ କ୍ଷୁଦ୍ର
Ṡa-ara(rā) pali(lī) ଗ୍ରାମ—A hamlet consisting
শবর পল্লী शबर पल्ली of the huts of Ṡa-ara people.

ଶଅରା—ଦେ. ବି – ସହରା [ଦେଖ]
Ṡa-arā Sahārā (See)

ଶଅରୁଡ଼ି(ଳି)—ଦେ. ବି [ସଂ. ଶରଣ୍ଡ, ଶରଳ]—ଶରାଟି (ଦେଖ)
Ṡa-arḏi(ḻi) Ṡarāṭi (See)

ଶଅରୁଣୀ—ଦେ. ବି. ସ୍ତ୍ରୀ—ଶଅର ଜାତୀୟ ସ୍ତ୍ରୀ—
Ṡa-aruṇi A female of the ṡa-ara caste.
[ଉ—ଶଅରୁଣୀଙ୍କର ନାମୁଡ ନ ନାହିଁ—କେଳାର ହାଡ଼ୁଡ଼ା ଗୀତ ନନ୍ଦଘୋଷ କର୍ଣ୍ଣହରଣୀ ।]

ଶଅଲ—ବୈଦେ. ବି—ଶହଲ (ଦେଖ)
Ṡa-ala Ṡahala (See)

ଶଅ(ଇ,ଉ,ହ)ଳ—ଦେ. ବି—(ସଂ. ଶଲ୍ୟ)—ଲଙ୍ଗଳର ଅଂଶବିଶେଷ;
Ṡa-a(i,u,ha)ḻa ହଳର ଯୁଆଳରେ ବଳଦଙ୍କ କାନ୍ଧ ରହିବା
[ଶିହଳ, ଶିଅଳ—ଅନ୍ୟରୂପ] ଅଂଶର ଉଭୟ ଅଗ୍ରଭାଗ ତଳ ଅଗ୍ରେ ଲଗିଥିବା କାଠର ଖିଲ; ଯୁଗ ଖିଲ—Pins set near both the ends of the yoke of a plough within which and the ends of the yoke the bullocks are yoked.

ଶଅ ଶଅ—ଦେ. ବି. ଓ ବିଣ—ଶତ ଶତ, ଅସଂଖ୍ୟ—
Ṡa-a ṡa-a শত শত सौ सौ Innumerable.

ଶଅ ଶଅ, ହଅ ହଅ—ଦେ. ବି—ଅଜସ୍ର ଧନ—
Ṡa-a ṡ-a, ha-a ha-a Plenty of money or
শ শ, হাজার হাজার wealth (literally hundreds
सौ सौ, हजार हजार and thousands.

ଶଇଁ—ଦେ. ବି—(ସଂ. ଶମୀ) – ଶମୀ (ଦେଖ)
Ṡaiṅ Ṡamī (See)

ଶଇତା(ତ ତି)—ଗ୍ରା. ବି ପୁଂ—ଶତ୍ରୁଘ୍ନ ନାମଧାରୀର ଡାକ ନାମ—
Ṡaita(tā,ti) Names of
শতু शतरू calling Satrughna

ଶଇତାନ (ନି,ନିଆ)[ଇତ୍ୟାଦି]—ବୈଦେ ବି ଓ ବିଣ—(ଅ.ଶୈତାନ ଇଂ.
Ṡaitān(ni;niā) (etc) ଶାଟାନ୍ ସଇତାନ୍(ନି,ନିଆ) [ଇତ୍ୟାଦି].
সয়তান शैतान (ଦେଖ) Saitān (ni;niā) etc (See)

ଶଇଥିଲ(ଲ)—ଗ୍ରା. ବି —(ସଂ. ଶୈଥିଲ୍ୟ)—ଶୈଥିଲ୍ୟ (ଦେଖ)
Ṡaithila(la) Ṡaithilya (See)
শৈথিল্য मन्दी

ଶଇଥିଲ(ଲି)ଆ(ୟା)—ଗ୍ରା ବିଣ.—(ସଂ. ଶିଥିଳ)—୧ । ଶିଥିଳ—
Ṡaithili(li)ā(yā) 1 Ṡithiḻa (See)
୨ । ଅବସର ବିଶିଷ୍ଟ—2. Having leisure.
ଗ୍ରା. ବି.—ଅବସର—Leisure.

ଶଇବାଳ—ଗ୍ରା. (ପଦ୍ୟ) ବି—ଶୈବାଳ (ଦେଖ)
Ṡaibāla Ṡaibāla (See)
[ଉ—ବୁଡ଼ ଶଇବାଳେ କମଳ କଳ—ଉପେ. ବୈଦେହୀଶବିଳାସ ।]

ଶଇଳ—ଗ୍ରା. ବି.—୧ । (ସଂ. ଶୈଳ)—ଶୈଳ (ଦେଖ)
Ṡaila শইল शइल Ṡaila (See)
୨ । (ସଂ. ଶୈଳ) – ଶୟଳ (ଦେଖ)—
Ṡayaḻa ( See ) ୩ । (ସଂ. ଶଲ୍ୟ)—ଶଅଳ (ଦେଖ)—Ṡa-aḻa (See)

ଶଇଳି—ଦେ. ବି.—(ସଂ. ଶୈଳୀ)—ଭାଷାର ଓ ଭାବପ୍ରକାଶର ଢଙ୍ଗ
Ṡaiḻi ବା ଶୈଳୀ—The diction and style of
শৈলী शैली writing.

ଶଉଆର—ବୈଦେ. ବି—(ଫା. ସଵାର୍, ଭୂଲ. ସଂ. ଅଶ୍ୱବାର)—ସବାର
Ṡawāra সওয়ার सवार (ଦେଖ)—Sabāra (See)

ଶଉଆରି—ଦେ. ବି—ସବାରି (ଦେଖ)
Ṡawāri পালকী सवारी Sabāri (See)

ଶଉଚ (ଇତ୍ୟାଦି)—ଗ୍ରା. ବି—ଶୌଚ ଇତ୍ୟାଦି (ଦେଖ)
Ṡaucha (etc) Saucha etc (See)
[ଉ—ଶଉଚ କର୍ମ କରି ସାରୁ—ପ୍ରାଚୀ ପ୍ରେମଭକ୍ତି ଗୀତା ।]

ଶଉଧ—ଗ୍ରା. (ପଦ୍ୟ) ବି.—(ସଂ. ଶୁଦ୍ଧ)—ଶୁଦ୍ଧ (ଦେଖ)
Ṡaudha Suddha (See) [ ଉ—ବହର ସଉଧ ସଦନେ ବହର ଶଉଧ ସଦନେ ଧନ—ଉପେ. ବୈଦେହୀଶବିଳାସ ।]

ଶଉନକ—ଗ୍ରା. (ପଦ୍ୟ) ବି—ଶୌନକ ନାମଧେୟ ଋଷି—
Ṡaunaka Sage Saunaka. [ଉ—ଅଟେ ଶଉନକ ସେ ମନ୍ତ୍ର ପ୍ରଭାବରେ । କୃଷ୍ଣସିଂହ. ମହାଭାରତ. ଆଦି ।]

ଶଉପ—ଦେ. ବି—୧ । (ସଂ. ଶତପୁଷ୍ପା) ପାନମସଲା ଜାତୀୟ ଭୁଷିଜାତ
Ṡaupa ଶାକ ବିଶେଷ ଓ ତାହାର ମଞ୍ଜି—1. Dill seed;
ସଂ. ନାମ—ଶତାହ୍ୱା, ମିଶି, Peucedanum Gravelens;
କାରବୀ, ଅବ ଛତ୍ରା, Anethum Sowa(Kirtikar).
ଶିଫଛତ୍ରା, ସହତ୍ରଛତ୍ରିକା [ଉ—ଏହାର ପତ୍ର ଶାକରୂପେ ଖିଆଯାଏ, ଫଳ

ମାଧବୀ, ଶତପୁଷ୍ପା, ମିଶ୍ରେୟା । ଶାଗ ପତ୍ର; କଳ୍କ ଚେପା ଓ ମସୃଣ,
ଶুଲଫা, ସବା, শলপ ବ୍ୟଞ୍ଜନ ଓ ବଡ଼ିର ମସଲାରୂପେ ଓ
सोआ,सोफ ଔଷଧରେ ଏହା ବ୍ୟବହୃତ ହୁଏ ।
ମ. ଶୋପ, ଶେପୂ, ଏହି ଜାତୀୟ ଏକପ୍ରକାର ବନ
ବାଳଂତଶୋପ ଶାକକୁ ବଣ ଶଉଫ ବା ଖାଜକୀ
ଗୁ. ଶୁବାନୀଭାଜୀ, ଶୁବାଦାନା କହନ୍ତି । ତହିଁର ଫଳ ଶଉଫଠାରୁ
ତେ. ଚେଦସବାପତେଣ୍ଟୁ, ସବାପା ଶ୍ରେଷ୍ଠ, କଳ୍କ ଗନ୍ଧ ଶଉଫ ଗନ୍ଧ ପରି ।
ଫା. ଶୁଭ; ଭୁଶ୍ ମେଶୁଉ Fumaria Parviflova.
ଆ. ଶୀବତ; ଶୀବତ୍ ବତ୍ଲୀଉ [ଏହାର ଅନ୍ୟ ଏକ ଜାତି ପାରସ୍ୟ ଦେଶରେ ଜନ୍ମେ ଯା ଶାହତାର୍, ହ ପିତ୍ ପାପଡ଼ା—Fumaria Officinalis; Fumatory]. ୨ । (ସଂ. ଶପ୍ତ) ଶପ; ସଉପ (ଦେଖ)—Saupa (See)

**ଶଉର(ରା)** (ଇତ୍ୟାଦି)—ଦେ. ବି. ପୁଂ (ସଂ. ଶବର)—ଶବର ଇତ୍ୟାଦି
Śaura(rā) etc (ଦେଖ)—Śabara etc. (See)
[ଶଉରୁଣୀ—ସ୍ତ୍ରୀ]

**ଶଉରା ପଲ୍ଲି(ଲ୍ଲୀ)**—ଦେ. ବି (ସଂ. ଶବରପଲ୍ଲୀ)—ଶଅରପଲ୍ଲି (ଦେଖ)
Śaurāpali(lī) Śa-ara pali. (See)
[ଶଉରାପାଲି—ପ୍ରାଦେ(ସମ୍ବଲପୁର)ରୂପ]

**ଶଉରି**—ଗ୍ରା. ବି. (ପୁଂ) (ସଂ. ଶୌରି)—୧ । ଲୋକଙ୍କ ନାମ—
Śauri 1. Name given to males. ୨ । (ସ୍ତ୍ରୀ) ସ୍ତ୍ରୀଙ୍କ ନାମ—2. Name given to females. ୩ । ଶନି ଗ୍ରହ—3. The planet Saturn. [ ଉ—ପୂର୍ଣ୍ଣି ଚନ୍ଦ୍ରଭୋଗ କରେ ଏ ନତ୍ୟ ଶଉରି ସଙ୍ଗରେ ସବେଦ ଲୁଚ । ଉଣ୍ଡ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।] ୪ । ବିଷ୍ଣୁ—4. Bishṇu. ୫ । ରାମାୟଣବର୍ଣ୍ଣିତ ମର୍କଟଯୂଥପତି—5. Name of a monkey leader in Rāmāyaṇa. [ଉ—ବାଳକଣ୍ଠି ଦାଶରଥି ଶଉରି—ଉଣ୍ଡ. ବୈଦେହୀଶବିଳାସ ।]

**ଶଉରି ବାର**—ଗ୍ରା. ବି (ସଂ. ଶୌରିବାର)—ଶନିବାର—
Śauri bāra Saturday.
शनिवार शनिवार

**ଶଉରି ବେତ**—ଦେ ବି—ଏକପ୍ରକାର ମୋଟା ବେତ । (ବେତ ଶବ୍ଦ ମୋଟ ଦେଖ)—A kind of thick
Śauri beta cane.

**ଶଉଲ୍**—ପ୍ରାଦେ (ଖଡ଼ୁଆଳ) ବି—ଶକୁଳ (ଦେଖ)
Śaul Śakuḷa. (See)

**ଶଉଳ**—ଗ୍ରା. ବି—୧ । (ସଂ. ଶକୁଳ) ଶକୁଳ (ଦେଖ)—1. Śakuḷa
Śauḷa (See). ୨ । (ସଂ. ଶଲ୍ଲ) ଶଅଳ (ଦେଖ)—2. Sa-aḷa. (See)
শোল, শউল सौरी
शगी कनैल

**ଶଉଳ କଡ଼ା(ଢ଼ା)**—ଗ୍ରା. ବି—ଶେଉଳ କଢ଼ା (ଦେଖ)
Śauḷa karḍā(rḍhā) Śeuḷa karḍhā. (See)
ছোটশোল মাছ सौरीका बच्चा

**ଶଏ**—ଗ୍ରା (ପଦ୍ୟ) ବି. ଓ ବିଣ (ସଂ. ଶତ)—ଏକଶତ—A hundred.
Śae (ଶତହ ଶବ୍ଦ ମୋଟ ଦେଖ) [ଉ—ମୋ ଶଏ ବନ୍ଧୁଙ୍କରେ
একশ सौ ବଡ଼ବନ୍ଧୁ ତୁହି । କୃଷ୍ଣସିଂହ. ମହାଭାରତ. ସଭା ।]

**ଶଏ କଡ଼ା(ରା)**—ଦେ. ବି—ଶଅ କଡ଼ା (ଦେଖ)
Śae karḍā(rā) Śa-akarḍā. (See)

**ଶଏତାନ୍(ନି,ନୀଆ)** (ଇତ୍ୟାଦି)—ଦେ. ବି (ଆ. ଶୈତାନ)—ସଇତାନ୍
Śaetān(ni,niā) etc (ନି,ନୀଆ) ଇତ୍ୟାଦି (ଦେଖ)—
শয়তান शैतान Saitān(ni,niā) etc. (See)

**ଶଏ ଅଷ୍ଟଉତ୍ତର**—ଦେ. ବି ଓ ବିଣ (ସଂ.ଅଷ୍ଟୋତ୍ତର ଶତ)—୧୦୮;ଏକ
Śae ashṭauttara ଶତ ଅଠ—One hundred and
[ଶଏ ଅଠ—ଅନ୍ୟରୂପ] eight. [ଉ—ଅଙ୍ଗ ଯେ ଶଏ ଅଷ୍ଟ
একশ আঠ ଉତ୍ତର ଚୋମର, ଜଳ କଲୁଲକୁ ଯେ ଯୁବରେ ପ୍ରହାର ।
एकसौ आठ କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।]

**ଶଏବାନ**—ଦେ. ବି (ସଂ. ଶତବର୍ଣ୍ଣ, ସୁବର୍ଣ୍ଣ=ସୁନା)—ଅଠଥର ଶାଣିତ
Saebāna ସ୍ୱର୍ଣ୍ଣ—Gold which has been polished eight times. [ଉ—ଅଷ୍ଟାବକ୍ର ବୋଲିଲେ ଅଠବାର ଶାଣ ଦେଲେ ସୁନା ଶଏବାନ ହୁଏଟି ଜାଣ । କୃଷ୍ଣସିଂହ. ମହାଭାରତ. ବନ ।]

**ଶଂ**—ସଂ. ବି—୧ । କଲ୍ୟାଣ; ମଙ୍ଗଳ—1. Weal. ୨ । ସୁଖ—
Śaṁ 2. Happiness. ୩ । ଶାନ୍ତି—3. Peace. ୪ । ଅନୁରାଗର ଅଭାବ; ବୈରାଗ୍ୟ—4. Apathy for worldly things. ୫ । ଶାସ୍ତ୍ର—5. Religious books Scripture ବିଣ—ଶୁଭ—Auspicious.

**ଶଂଖି(ଖୀ)**—ଦେ. ବି (ସଂ. ଶଙ୍ଖ)—ଶଙ୍ଖି (ଦେଖ)
Śaṁkī(khī) Śaṅkhī. (See)

**ଶଂପିବା**—ଦେ. କ୍ରି—ଶମ୍ପିବା (ଦେଖ)—Śampibā. (See)
Śampibā ଉ—ଦେବା ଉତ୍ତର ଯା ଅମଙ୍ଗଳେ, ଚୋଇଲେ ଶଂପିଲୁ ବାକ୍ୟ ବଲେ । ଜଗନ୍ନାଥ. ଭାଗବତ ।]

**ଶଂବ**—ସଂ. ବିଣ (ଶମ୍=କଲ୍ୟାଣ+ବ, ଯୁକ୍ତାର୍ଥେ)—୧ । କଲ୍ୟାଣ-
Śaṁba ଯୁକ୍ତ—1. Prosperous. ୨ । ଭାଗ୍ୟବାନ୍—2. Blessed. ୩ । ସୌଭାଗ୍ୟଶାଳୀ—3. Fortunate. ୪ । ସୁଖୀ—4. Happy. ବି—୧। ସୌଭାଗ୍ୟ—1. Good fortune. ୨। କଲ୍ୟାଣ—2. Prosperity. ୩ । ସର୍ପବିଶେଷ—3. Name of a snake. ୪ । ଇନ୍ଦ୍ରଙ୍କ ବଜ୍ରାସ୍ତ୍ର—4. Thunderdolt, the weapon of Indra. ୫ । ଅଣ୍ଟା ଚାରିପାଖେ ପିନ୍ଧାଯିବା ଲୁହା ଶିକୁଳି ( ହ. ଶ )—5. An iron chain worn round the waist. ୬ । ପ୍ରାଚୀନ କାଳର ଏକପ୍ରକାର ମାପ ( ହ. ଶ )—6. A kind of measure used in ancient times. ୭ । ନିୟମିତ ରୂପେ ହଳ କରିବା କର୍ମ ( ହ. ଶ )—7. The act of ploughing regularly.

**ଶଂବର**—ସଂ. ବି ( ଶମ୍=କଲ୍ୟାଣ+ବୃ ଧାତୁ=ବରଣ କରିବା, Śambara ଅଠବରଣ କରିବା+କର୍ତ୍ତୃ. ଅ)—୧ । ସଲିଳ; ଜଳ—

1. Water. ୨ । ବୃତ୍ରାସୁରଙ୍କ ଶତ୍ରୁ ଦୈତ୍ୟବିଶେଷ ( ହ୍ମ. ଶ )—2. Name of demon. [ ବୃ—ବୃତ୍ରାସୁରଙ୍କୁ ରକ୍ଷା କରିବା ପାଇଁ ଇନ୍ଦ୍ର ଏହାଙ୍କୁ ପର୍ବତରୁ ତଳକୁ ପେଲି ମାରି ଦେଲେ । ସ୍କନ୍ଦପୁରାଣ ଓ ମହାଭାରତରେ ଏହାଙ୍କୁ କାମଦେବଙ୍କ ଶତ୍ରୁ ବୋଲି ଯାଇଅଛି—ହ୍ମ ଶ । ] ୩ । ପ୍ରାଚୀନ କାଳର ଶସ୍ତ୍ରବିଶେଷ ( ହ୍ମ. ଶ )—3. An ancient weapon. ୪ । ଯୁଦ୍ଧ; ସମର (ହ୍ମ. ଶ.)—4. War; battle. ୫ । ଏକପ୍ରକାର ମୃଗ; ଶମ୍ବର ହରିଣ ( ହ୍ମ. ଶ )—5. The Sambhar deer: ୬ । ମାଛ ( ହ୍ମ. ଶ )—6. Fish. ୭ । ପର୍ବତବିଶେଷ ( ହ୍ମ. ଶ )—7. Name of a mountain. ୮ । ଚିତ୍ରକ ବୃକ୍ଷ (ହ୍ମ. ଶ)—8. Plumbago Zeylanica ( plant ). ୯ । ଲୋଧ ବୃକ୍ଷ (ହ୍ମ. ଶ )—9. Simplocus Racemosa ( tree ). ୧୦ । ଅର୍ଜ୍ଜୁନ ବୃକ୍ଷ ( ହ୍ମ. ଶ )—10. Terminalia Arjuna (tree). ୧୧ । ତାଳ ବୃକ୍ଷ ( ହ୍ମ. ଶ )—11. Palm tree. ୧୨ । ଶବର ଚନ୍ଦନ ( ଦ୍ରବ୍ୟଗୁଣ ) ( ଦେଖ )—12. Śabara chandana ( See ). ସଂ. ବିଣ. ପୁଂ—୧ । ଅତି ଉତ୍ତମ ( ହ୍ମ. ଶ )—1. Very good. ୨ । ଭାଗ୍ୟବାନ୍ ( ହ୍ମ. ଶ )—2. Fortunate. ୩ । ସୁଖୀ ( ହ୍ମ. ଶ )—3. Happy.
[ ଶଂବରୀ—ସ୍ତ୍ରୀ ]

ଶଂସୁ—ସଂ. ବି ଓ ବିଣ ( ଶମ୍ =କଲ୍ୟାଣ+ସୁଃ ଯୁକ୍ତାର୍ଥେ )—ଶଂବ ( ଦେଖ )—Śamba ( See )
Śamju

ଶଂସ୍ ( ଧାତୁ )—ସଂ—୧ । କହିବା—1. To speak. ୨ । ସୂଚନା କରିବା—2. To indicate; to hint, ୩ । ପ୍ରଶଂସା କରିବା—3. To praise.
Śams ( root )
[ଶଂସ—ଅନ୍ୟରୂପ]

ଶଂସ(ସା)—ସଂ. ବି ( ଶଂସ୍ ଧାତୁ+ଭାବ. ଅ; ଆ )—୧ । ପ୍ରତିଜ୍ଞା ( ହ୍ମ. ଶ )—1. Promise. ୨ । ଶପଥ ( ହ୍ମ. ଶ)—2. Oath. ୩ । କୁହୁକ (ହ୍ମ ଶ)—3. Magic. ୪ । ପ୍ରଶଂସା ( ହ୍ମ. ଶ )—4. Praise. ୫ । ଇଚ୍ଛା ( ହ୍ମ. ଶ )—5. Desire. ୬ । ଖୋସାମତି ( ହ୍ମ. ଶ )—6. Flattery. ୭ । ଘୋଷଣା (ହ୍ମ. ଶ)—7. Declaration. ୮ । ବକ୍ତୃତା ( ହ୍ମ. ଶ )—8. Speech; lecture.
Śamsa(sā)

ଶଂସନ—ସଂ. ବି ( ଶଂସ୍ ଧାତୁ+ଭାବ. ଅନ )—୧ । କଥନ—1. Speaking; utterance. ୨ । ସୂଚନ—2. Indicating; hinting. ୩ । ନିଶ୍ଚୟ କରି କହିବା—3 Assurance. ୪ । ଅଭିଳାଷ; ଇଚ୍ଛା; ବାଞ୍ଛା—4 Wish; desire: inclination. ୫ । ଶ୍ଲାଘା; ପ୍ରଶଂସା—5. Praise; eulogy. ୬ । ଆଶୀର୍ବାଦ—6. Blessing.
Śamsana

ଶଂସିତ—ସଂ. ବିଣ ( ଶଂସ ଧାତୁ+କର୍ମ. ତ )—୧ । କଥିତ—1. Spoken. ୨ । ସୂଚିତ—2. Indicated; hinted; prefaced to ୩ । ଅଭିଳଷିତ; ବାଞ୍ଛିତ—3. Wished for, desired. ୪ । ସ୍ତୁତ; ପ୍ରଶଂସିତ—4. Praised; extolled; applauded. ୫ । ନିଶ୍ଚିତ—5. Certain; assured; sure. ୬ । କୁତ୍ସିତ—6. Ugly; homely. ୭ । ଅନୁଷ୍ଠିତ; ସମ୍ପାଦିତ—7. Performed; done; accomplished.
Śamsita

ଶଂସିତ ବ୍ରତ—ସ. ବିଣ. ପୁଂ—(ବହୁବ୍ରୀହି; ଶଂସିତ ହୋଇଅଛି ବ୍ରତ ଯାହାର)—ଯାହାର ବ୍ରତ ପୂର୍ଣ୍ଣ ହୋଇଅଛି—Whose vows have been performed or accomplished.
Śamsita brata
(ଶଂସିତବ୍ରତା—ସ୍ତ୍ରୀ)

ଶଂସୀ—ସଂ. ବିଣ. ପୁଂ—(ଶଂସ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ.) ୧ । ସୂଚନାକାରୀ; ସୂଚକ—1. Indicating; making known. ୨ । କଥନକାରୀ—2. Speaking. ସ. ବି. ପୁଂ—କଥକ ବକ୍ତା—Speaker.
Śamsī
[ଶଂସିନୀ—ସ୍ତ୍ରୀ]

ଶଂସ୍ତା—ସ. ବି. ପୁଂ—(ଶଂସ୍ ଧାତୁ+କର୍ତ୍ତୃ. ତୃ; ଶଂସ୍ତୃ ଶବ୍ଦର ୧ମା. ୧ବ.)—୧ । ସ୍ତୋତା; ସ୍ତୁତିପାଠକ—1. An eulogist, a panegyrist. ୨ । ସ୍ତାବକ; ଖୋସାମତିଆ, ଚାଟୁକାର—2. Flatterer. ୩ । ହୋତା—3. A priest officiating at a sacrifice.
Śamstā
[ଶଂସ୍ତ୍ରୀ—ସ୍ତ୍ରୀ]

ଶଂସ୍ଥ—ସ. ବିଣ. ପୁଂ—(ଶମ୍=କଲ୍ୟାଣ+ସ୍ଥା ଧାତୁ+କର୍ତ୍ତୃ. ଅ)—ଶୁଭଯୁକ୍ତ, କଲ୍ୟାଣଯୁକ୍ତ; ଭାଗ୍ୟବାନ୍—Blessed, fortunate; prosperous.
Śamstha
(ଶଂସ୍ଥା—ସ୍ତ୍ରୀ)

ଶଂସ୍ୟ—ସ. ବିଣ—(ଶଂସ୍ ଧାତୁ+କର୍ମ. ଯ)—୧ । ବାଞ୍ଛନୀୟ—1. Desirable, wished for. ୨ । ବାଚ୍ୟ—2. Expressible; predicable. ୩ । କଥନୀୟ—3. Fit to be spoken; utterable. ୪ । ପ୍ରଶଂସନୀୟ—4. Commendable; praise worthy. ୫ । ହିଂସନୀୟ—5. Fit to be injured. ୬ । ଗୁଣବାନ୍—6. Qualified; virtuous. ସ. ବି—ଅଗ୍ନି (ହ୍ମ. ଶ)—Fire.
Śamsya
(ଶଂସ୍ୟା—ସ୍ତ୍ରୀ)

ଶକ୍ (ଧାତୁ)—ସ—୧ । ପାରିବା, ପାରଗ ହେବା—1. To be able or competent. ୨ । ବାକ୍ୟଦ୍ୱାରା ସନ୍ତୁଷ୍ଟ କରିବା—2. To please with words.
Śak (root)

ଶକ୍—ବୈଦେ. ବି—(ଅ. ଶକ୍; ଭୁଲ. ସ. ଶଙ୍କା)—୧ । ସନ୍ଦେହ—1. Doubt. ୨ । ଶଙ୍କା—2. Apprehension.
Śak

ଶକ—ସ. ବି—(ଶକ ଧାତୁ+କର୍ତ୍ତୃ. ଅ)—୧ । ଅବ୍ଦ ପ୍ରବର୍ତ୍ତକ ରାଜା ଶାଳିବାହନ—1. Name of a king who introduced a calendar year. ୨ । ଶକାବ୍ଦ; ଶାଳିବାହନ ରାଜାଙ୍କ ପ୍ରବର୍ତ୍ତିତ ସନ—2. Śālibāhana era, the year introduced by king Śālibāhana
Śaka

[ଦ୍ର—ଏହା ଖ୍ରୀଷ୍ଟାବ୍ଦ ସଂଖ୍ୟା ଅପେକ୍ଷା ୭୮ ବର୍ଷ କମ୍, ଅର୍ଥାତ ଖ୍ରୀଷ୍ଟ ଜନ୍ମର ୭୮ ବର୍ଷ ପରେ ଶକର ଗଣନା ଆରମ୍ଭ ହୋଇଥିଲା ।] ୩ । ମଧ୍ୟଏସିଆବାସୀ ପ୍ରାଚୀନ ଜାତି ବିଶେଷ—3 Name of an ancient nation of Central Asia; Scythians. [ଦ୍ର—ଏହି ଜାତି ପ୍ରଥମେ ଗୋଟିଏ ଜାତି ନ ଥିଲେ । ଏମାନେ ଏକାଧିକ ଜାତି ଥିବାରୁ ସଂସ୍କୃତରେ ମଧ୍ୟ ଏମାନେ 'ଶକାଃ' (ବହୁବଚନରେ ଶକ ଜାତିମାନେ) ବୋଲି କଥିତ । ଏମାନେ ମଧ୍ୟଏସିଆର ଯାଯାବର ଯୁଦ୍ଧପ୍ରିୟ ଜାତି ଥିଲେ । ଗ୍ରୀକ୍‌ମାନେ ଏମାନଙ୍କୁ Scythian, (ସିଥିଆନ) ଜାତି ବୋଲି ନାମ ଦେଇଥିଲେ । ଏମାନେ ଖ୍ରୀଷ୍ଟ ଜନ୍ମର ପୂର୍ବ ପ୍ରଥମ ଶତାବ୍ଦୀଠାରୁ ଖ୍ରୀଷ୍ଟଜନ୍ମର ପରବର୍ତ୍ତୀ ଚତୁର୍ଥ ଶତାବ୍ଦୀ ପର୍ଯ୍ୟନ୍ତ ଭାରତକୁ ଦଳଦଳ ହୋଇ ଆକ୍ରମଣ କରୁଥିଲେ । ଏମାନେ କାଶ୍ମୀର, ଅଫଗାନିସ୍ଥାନ, ପଞ୍ଜାବ, ସିନ୍ଧୁ ପ୍ରଦେଶ, ଗୁଜୁରାଟ ଏବଂ ବମ୍ବେଇ ଅଞ୍ଚଳରେ ଉପନିବେଶ ସ୍ଥାପନ କରିଥିଲେ । ଖ୍ରୀଷ୍ଟଜନ୍ମର ପ୍ରଥମ ଶତାବ୍ଦୀରେ ଏମାନଙ୍କ ରାଜା ଶାଳବାହନ ଭାରତରେ ରାଜତ୍ୱ କରୁଥିଲେ ଏବଂ ଏହାଙ୍କ ରାଜତ୍ୱ କାଳ (୭୮ ଖ୍ରୀଷ୍ଟାବ୍ଦ)ରେ ଶକାବ୍ଦ ଭାରତରେ ପ୍ରଚଳିତ ହୋଇଥିଲା ଓ ତାହା ମଧ୍ୟ ଅଦ୍ୟାବଧି ଭାରତରେ ଚଳୁଅଛି । ଏମାନେ ଭାରତରୁ ଗ୍ରୀକ୍ ରାଜାଙ୍କୁ ତଡ଼ି ଆପଣାର ରାଜ୍ୟ ବିସ୍ତାର କରିଥିଲେ । ସିନ୍ଧୁ, ମାଳବ ଓ ପଶ୍ଚିମ ଭାରତରେ ଏମାନେ ବହୁକାଳ (ପ୍ରାୟ ୪୦୦ ବର୍ଷ) ରାଜତ୍ୱ କରିଥିଲେ ଓ ଉଜ୍ଜୟିନୀ ଏମାନଙ୍କର ରାଜଧାନୀ ଥିଲା । ଏମାନଙ୍କୁ ପରାକ୍ରମୀ ହିନ୍ଦୁ ରାଜା ବିକ୍ରମାଦିତ୍ୟ ପରାଜିତ କରି ଭାରତରେ ହିନ୍ଦୁ ରାଜ୍ୟ ବିସ୍ତାର କରିଥିଲେ । ଏହି ଶକଜାତି ମଧ୍ୟରୁ ଗୋଟିଏ ଜାତିର ରାଜା କନିଷ୍କ ଉତ୍ତରଭାରତ, ତୁର୍କୀସ୍ଥାନ ଓ ଅଫଗାନିସ୍ଥାନର ରାଜା ହୋଇଥିଲେ ଏବଂ ପୁରୁଷପୁର (ଆଧୁନିକ ପେଶାବାର) ତାଙ୍କ ରାଜଧାନୀ ଥିଲା । ଏ ୧୪୦ ଖ୍ରୀଷ୍ଟାବ୍ଦରେ ରାଜତ୍ୱ କରୁଥିଲେ ଏବଂ ମଧ୍ୟଏସିଆରେ ଓ ଚୀନଦେଶରେ ବୌଦ୍ଧଧର୍ମର ପ୍ରଚାର କରାଇଥିଲେ । ଏହାଙ୍କ ସମୟର ମୁଦ୍ରା ଏବେ ମଧ୍ୟ ଭୂଗର୍ଭରୁ ମିଳୁଅଛି । ପୁରାଣରେ ସୂର୍ଯ୍ୟବଂଶୀ ରାଜା ନରଷ୍ୟନ୍ତଙ୍କଠାରୁ ଏହି ଜାତିର ଉତ୍ପତ୍ତି ହୋଇଥିବା ବର୍ଣ୍ଣିତ ଅଛି । ରାଜା ସଗର ରାଜା ନରଷ୍ୟନ୍ତଙ୍କ ରାଜ୍ୟଚ୍ୟୁତ ଓ ନିର୍ବାସିତ କରିଥିଲେ । ବର୍ଣ୍ଣାଶ୍ରମ ଆଦି ଧର୍ମ ପାଳନ ନ କରିବାରୁ ଓ ବ୍ରାହ୍ମଣମାନଙ୍କଠାରୁ ପୃଥକ୍ ରହିବାରୁ ନରଷ୍ୟନ୍ତ ମ୍ଳେଚ୍ଛ ହୋଇ ଯାଇଥିଲେ; ତାହାଙ୍କ ବଂଶଧରମାନେ ଶକ ନାମରେ ଅଭିହିତ ହେଲେ । ଆଧୁନିକ ପଣ୍ଡିତମାନେ କହନ୍ତି ଯେ ମଧ୍ୟ-ଏସିଆ ପ୍ରାଚୀନକାଳରେ ଶକଦ୍ୱୀପ ନାମରେ ପ୍ରସିଦ୍ଧ ଥିଲା । ୟୁନାନୀମାନେ ଏ ଦେଶକୁ ସିଥିଆ କହୁଥିଲେ; ଏହି ମଧ୍ୟ-ଏସିଆବାସୀଙ୍କୁ ଶକ୍ କୁହାଯାଉଥିଲା । ଏକ ସମୟରେ ଏ ଜାତି ଅତି ପ୍ରତାପଶାଳୀ ହୋଇଥିଲେ । ଖ୍ରୀଷ୍ଟପୂର୍ବ ୨୦୦ ବର୍ଷରେ ଏ ଜାତି ମଥୁରା ଓ ମହାରାଷ୍ଟ୍ର ଦେଶ ଅଧିକାର କରିଥିଲେ । ଏମାନେ ଆପଣାକୁ ଦେବପୁତ୍ର କହୁଥିଲେ । ଏମାନେ ୧୯୦ ବର୍ଷ ଭାରତରେ ରାଜତ୍ୱ କରିଥିଲେ । କନିଷ୍କ ଓ ହୁବିଷ୍କ ଏହିମାନଙ୍କ ରାଜା ଥିଲେ—(ହି. ଶ) ।] ୪ । ଦେଶ ବିଶେଷ—4. Name of a country; Scythia (ଶକମାନଙ୍କ ଅଧିଷ୍ଠିତ ଦେଶ, ଏସିଆର ମଧ୍ୟଭାଗ) ୫ । ଯେଉଁ ରାଜାଙ୍କ ନାମରେ କୌଣସି ସଂବତ୍ ଚଳେ (ହି. ଶ)—5. A king in whose name any era is started. ୬ । ଶକାବ୍ଦ; ରାଜା ଶାଳବାହନଙ୍କ ପ୍ରବର୍ତ୍ତିତ ସନ—6. The era started by Sālibāhana. ୭ । ତାତାର ଦେଶ (ହି. ଶ)—7. Tartary. ୮ । ଜଳ (ହି ଶ)—8. Water. ୯ । ମଳ (ହି. ଶ)—9. Dirt. ୧୦ । ପଶୁ ବିଶେଷ (ହି. ଶ)—10. A kind of beast.

**ଶକଟ**—ସଂ. ବି (ଶକ ଧାତୁ=ସମର୍ଥ ହେବା+କରଣ. ଅଟ, Śakaṭa ସଂଜ୍ଞାର୍ଥେ)—୧ । ଶଗଡ଼; ଗାଡ଼ି; ଦ୍ୱିଚକ୍ର ଯାନ—1. Cart; two wheeled vehicle. ୨ । ଭାର; ବୋଝ (ହି. ଶ)—2. Load; weight. ୩ । କଂସାନୁଚର ଅସୁର ବିଶେଷ; ଶକଟାସୁର (ଶ୍ରୀକୃଷ୍ଣଙ୍କ ଦ୍ୱାରା ନିହତ)—Name of a demon killed by Śrikṛushṇa. ୪ । ତିନିଶ ବୃକ୍ଷ (ହି. ଶ)—4 Dalbergia Ouigenensis (tree). ୫ । ଧବ ବୃକ୍ଷ (ହି. ଶ)—5. Conocarpus Latifolia (tree). ୬ । ଶରୀର; ଦେହ (ହି ଶ)—6. Body. ୭ । ଦୁଇ ହଜାର ପଲ ଓଜନ (ହି. ଶ)—7. A standard of weight. ୮ । ରୋହିଣୀ ନକ୍ଷତ୍ର (ଯାହାର ଆକୃତି ଶକଟ ପରି) (ହି. ଶ)—8. The 4th asterism.

**ଶକଟ କର୍ମ**—ସଂ. ବି (ମ. ପ. ଲୋ)-ଶଗଡ଼ ଚଳାଇବାରୂପ କର୍ମ (ହି: ଶ:)-
Śakaṭa karma The act of plying a cart.
[ଶକଟ ଚାଳନ, ଶକଟବାହନ—ଅନ୍ୟରୂପ]

**ଶକଟକା**—ଦେ. ବି—ଶକଟାସୁର (ଦେଖ)
Śakaṭakā Śakaṭāsura. (See)
[ଉ—ବହୁବଦନେ ଶକଟକା ନାଶ କଲେ । ରସକଲ୍ଲୋଳ ।]

**ଶକଟ ଚାଳକ**—ସଂ. ବିଣ, ସଂ ଓ ବି.—ଶଗଡ଼ିଆ; (ପୁଂ) ଯେ ଗାଡ଼ି ଚଳାଏ—
Śakaṭa chālaka Cartman, cart-driver.
[ଶକଟବାହକ—ଅନ୍ୟରୂପ]

**ଶକଟ ଧୂମ**—ସଂ. ବି—୧ । ଗୋବର ବା ଘଷିନିଆଁର ଧୂଆଁ (ହି.ଶ)—
Śakaṭa dhūma 1. The smoke arising from the fire of cowdung cakes. ୨ । ନକ୍ଷତ୍ର ବିଶେଷ (ହି. ଶ)—2. Name of a star.

ଶକଟବାହୀ—ସଂ. ବିଣ. ପୁଂ (ଶକଟ ବହନ କରେ ଯେ—ଉପପଦ Śakaṭabāhī ତତ୍)—ଶକଟକୁ ବହନ କରୁଥିବା ବା ଟାଣିବା (ପଶୁ)—(beast) Driving the cart

ଶକଟବାହ୍ୟ—ସଂ. ବିଣ (ଶକଟ ଦ୍ୱାରା ବାହ୍ୟ—ଇତ୍ୟା ତତ୍)—ଶଗଡ଼ Śakaṭabāhya ଦ୍ୱାରା ବୁହାଯିବା (ପଦାର୍ଥ); ଶକଟଦ୍ୱାରା ବହନ-ଯୋଗ୍ୟ (ଦ୍ରବ୍ୟ)—(thing) Which can be carried or removed by a cart.

ଶକଟ ବ୍ୟୂହ—ସଂ. ବି—ଶକଟ ଆକାରରେ ସେନା ସନ୍ନିବେଶ—Śakaṭa byūha A kind of battle array. [ଦ୍ର—ଏ ବ୍ୟୂହରେ ସେନାଭାଗ ସମ୍ମୁଖଭାଗ ସରୁଆ ଓ ପଛ ପାଖ ମୋଟ କରାଯାଇ ଥାଏ ଓ ଏହା ଦେଖିଲେ ଶକଟପରି ଜଣାଯାଏ ।]

ଶକଟହା—ସଂ. ବି (ଶକଟ=ଶକଟାସୁର+ହନ୍ ଧାତୁ=ବଧ କରିବା+ Śakaṭahā କର୍ତ୍ତି. ଅ, ଶକଟାସୁରର ହନ୍ତା)—ଶ୍ରୀକୃଷ୍ଣ—An [ଶକଟାରି—ଅନ୍ୟରୂପ] epithet of Śrikṛushṇa.

ଶକଟା—ସଂ. ବି—ନନ୍ଦରାଜାଙ୍କ ମନ୍ତ୍ରୀ; ଶକଟାର (ଦେଖ)—Name Śakaṭā of the minister of king Nanda. (ଶକଟାର ଓ ଚନ୍ଦ୍ରଗୁପ୍ତ ଦେଖ)—ଦେ. ବି—(ସଂ. ଶକଟ; ଏଥିରେ ଶକଟର ଚକ୍ରଯୁକ୍ତ ଫଟ ଥିବାରୁ)—ଏକପ୍ରକାର ଦ୍ୟୂତ କ୍ରୀଡ଼ା—A kind of country card game. [ଉ—ଖେଳାଇଲା ପଶା ଶକଟା କାରଲୁରେ । କୃଷ୍ଣଚନ୍ଦ୍ର. ମହାଭାରତ. ବନ ।] [ଦ୍ର—ଏଥିରେ ତାସ୍ ଓ ଗଞ୍ଜପାପର ଚକ୍ରପଟମାନଙ୍କ ଦ୍ୱାରା ଖେଳ ହୁଏ; ବାଜି ଲଗାଯାଏ ।] ପ୍ରାଦେ (ଗଡ଼ଜାତ —ପାଳୁଅ ବା ହଳଦୀ ଜାତୀୟ ଗୁଳ୍ମ—A shrub resembling Pālua or turmeric. [ଦ୍ର—ଏହାର ମୂଳକୁ ଘୋର ପାଳୁଅ ସଙ୍ଗେ ମିଶାନ୍ତି । ଖାଇବାକୁ ଏହା କଷା ଲାଗେ ।]

ଶକଟାକ୍ଷ—ସଂ. ବି (୬ଷ୍ଠୀ ତତ୍)—୧ । ଶଗଡ଼ର ଅଖ (ଦ୍ବି. ଣ)—Śakaṭāksha 1. The axle of a cart. ୨ । ଶକଟାକ୍ଷକ (ଦେଖ)—2. Śakaṭākshaka. (See)

ଶକଟାକ୍ଷକ—ସଂ ବି—ଧବ ବୃକ୍ଷ (ଦ୍ବି. ଣ) Śakaṭākshaka Conocarpas Latifolia. (tree)

ଶକଟାର—ସଂ. ବି (ନାମ)—ସଂସ୍କୃତ ମୁଦ୍ରାରାକ୍ଷସ ନାଟକ ବର୍ଣ୍ଣିତ Śakaṭāra ରାଜା ମହାନନ୍ଦଙ୍କ ପ୍ରଧାନ ମନ୍ତ୍ରୀ—Name of the Prime minister of Raja Mahānanda of the Sanscrit drama Mudrā Rākshasa. [ଦ୍ର—ରାଜାଙ୍କ ଦ୍ୱାରା ଅପମାନର ପ୍ରତିଶୋଧ ନେବାପାଇଁ ଏ ଚାଣକ୍ୟଙ୍କ ସଙ୍ଗେ ମିଳି ଷଡ଼ଯନ୍ତ୍ର କରି ନନ୍ଦରାଜବଂଶର ଉଚ୍ଛେଦ ସାଧନ କରି ଚନ୍ଦ୍ରଗୁପ୍ତଙ୍କୁ ରାଜା କରାଇଥିଲେ ।]

ଶକଟାସୁର—ସଂ. ବି—କଂସର ଅନୁଚର ଅସୁର ବିଶେଷ—Name of Śakaṭāsura a demon who assumed the shape of a cart and tried to kill Śrikṛushṇa but was killed by him. [ଉ—ଚରଣସ୍ପର୍ଶରୁ ପେଟ ଦେବାକାଳେ ଶକଟ ଦୈତ୍ୟଟି ଯାହା ସେ ବଧିଲେ ମୁକୁ । କବିସୂର୍ଯ୍ୟ. ସଙ୍ଗୀତ ।] [ଦ୍ର—ଏ କଂସଦ୍ୱାରା ଗୋପପୁରକୁ ପ୍ରେରିତ ହୋଇ ସେଠାରେ ଶକଟ ରୂପ ଧାରଣ କରି ଶ୍ରୀକୃଷ୍ଣଙ୍କ ମାରିପକାଇବାକୁ ବସିଥିଲା; କିନ୍ତୁ ଶ୍ରୀକୃଷ୍ଣ ତାକୁ ବଧ କଲେ ।]

ଶକଟାହ୍ୱା—ସଂ. ବି (ଶକଟ+ଆ+ହ୍ୱେ. ଧାତୁ+କର୍ମ. ଅ+ଆ)—Śakaṭāhwā (ଜ୍ୟୋତିଷ) * ଗୋଟ ତାରାବିଶିଷ୍ଟ ରୋହିଣୀ ନାମକ ନକ୍ଷତ୍ର—The 4th lunar mansion of the Hindu astronomy. [ଦ୍ର—ଏହାର କଳ୍ପିତ ଆକୃତି ଶକଟପରି । ନକ୍ଷତ୍ର ତଳେ ଠିକ୍ ଦେଖ ।]

ଶକଟିକା—ସଂ. ବି. ସ୍ତ୍ରୀ (ଶକଟ+କ+ଆ)—୧ । ମୃତ୍ତକଟିକା; ପିଲାଙ୍କ Śakaṭikā ଖେଳିବାର ଗାଡ଼ି—1. Joy-cart. ୨ । ଛୋଟ [ଶକଟୀ—ଅନ୍ୟରୂପ] ଶକଟ—2. A small cart.

ଶକଡ଼ା—ଦେ. ବି ଓ ବିଣ—ଶଅକଡ଼ା (ଦେଖ)—Śa-a kaṛā. Śakaṛā (See) [ଉ—ଗାଁ ଖୁବ୍ ବଡ଼, ଶକଡ଼ା ଘର, ସେଥିରୁ ଶତକଡ଼ା ଅଧାଅଧି ବଳରାମଗୋଷ୍ଠୀ । ଫକୀରମୋହନ ଗଳ୍ପସ୍ୱଳ୍ପ ।] सैकड़ा

ଶକତ୍—ଦେ. (ପଦ୍ୟ) ବିଣ—ଶକ୍ତ (ଦେଖ)—Śakta. (See) Śakat ବୈଦେ ବିଣ ଓ କ୍ରି. ବିଣ (ଆ. ସଖ୍ତ୍)—୧ । ଶକ୍ତ; शक्त सख़्त ଅତ୍ୟନ୍ତ—1. Very; much. ୨ । ଦୃଢ଼—2 Strong.

ଶକତା—ଦେ. ବି (ପଦ୍ୟ; ସଂ. ଶକ୍ତ)—କାର୍ଯ୍ୟ କରିବାକୁ ସମର୍ଥ—Śakatā समर्थ समर्थ Able to do a thing; capable. [ଉ—ଶୁଣି ସୁମୁଖ ଗୋ କହି ତା ନୋହେ ଶକତା । ଗୋପୀ. ରହସ୍ୟମଞ୍ଜରୀ ।]

ଶକତାନ୍ (ନି)—ବୈଦେ. ବିଣ—ଶକ୍ତ (ଦେଖ) Śakatān(ni) Śakta. (See) [ଶକତାନଥ(ଥା), ଶକତଅ(ଥା)—ଅନ୍ୟରୂପ]

ଶକତି—ଗ୍ରା. ବି (ପଦ୍ୟ)—ଶକ୍ତି (ଦେଖ)—Śakti (See) Śakati [ଉ—ମେଘ ଅନ୍ଧାର ବନେ ଭରି; ସେ ନିଜ ଶକତି शकति शक्ति ସୁମରି—ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।]

ଶକର—ଦେ. ବିଣ (ସଂ. ଶର୍କରା=ଗୁଡ଼)—ଗୁଡ଼ିଆ; ମିଠା—Sweet Śakara शकर शक्कर ଦେ. ବି—ଗୁଡ଼—Molasses.

ଶକର କନ୍ଦ—ଦେ. ବି (ସଂ. ଶର୍କର+କନ୍ଦ)—୧ । ଏକପ୍ରକାର ମିଠା Śakara kanda ମୂଳ; ଗଛଆଳୁ—1. A kind of गछआलू sweet edible root; cassava; tapioca; शकरकंद Manihot Utilissema. [ଦ୍ର—ଏହାର ମୂଳ ମିଠା ଓ ଖାଦ୍ୟରୂପେ ବ୍ୟବହୃତ ହୁଏ । ଏହା ଆଳୁ ପରି ଲତା ନୁହେଁ; ଚକ୍ରଶିଖ ପରି ଏହା ଏକଜାତୀୟ ଗଛ ଓ ଏହାର ପତ୍ର ଶିମିଳପତ୍ର ପରି । ଏହାର ମୂଳ ଧଳା ଓ ଏହାକୁ କଞ୍ଚା ଖିଆଯାଏ । ଏହାର ମୂଳକୁ ଶୁଖାଇ କୁଟି ଏକପ୍ରକାର ସୁଖାଦ୍ୟ ମଇଦା ତିଆରି କରାଯାଏ ।] शकरकन्द आलू ୨ । କନ୍ଦମୂଳ ନାମକ ଲତା କନ୍ଦ;ମିଠା ଆଳୁ—शकरकन्द 2. A species of sweet patato; Ipomœa Batatas. [ଦ୍ର—ଏହା ଲତାର ମୂଳ; କଞ୍ଚା ଖାଇ

ହୁଏ ନାହିଁ । ଏଥିରେ ଶର୍କରାର ଦାନାସବୁ ଗଳି ଶର୍କରା ଥାଏ । ଏହା ଗୁଡ଼ ବର୍ଣ୍ଣର, ଧଳା ଓ ନାଲି । ] ପ୍ରାଦେ. (ବସୁର) ବି (ସଂ. ଶର୍କରା+କନ୍ଦ)—କନ୍ଦ; ନବାତ—Sugar.

ଶକଳ—ସଂ. ବି (ଶକ୍ ଧାତୁ=ସମର୍ଥ ହେବା+କରଣେ ଅଳ)—
Śakala ୧ । ଖଣ୍ଡ; ଅଂଶ—1. Part; share. ୨ । ଚର୍ମ; ଚମଡ଼ା; ଜୀବର ଛାଲ—2. Skin of an animal. ୩ । ମାଛର କାତି—3. Scale of fish. ୪ । ଶକଜାତି—4. The Scythians. ୫ । ଏକପ୍ରକାର ରଙ୍ଗ ବା ବର୍ଣ୍ଣ—5. A kind of colour. ୬ । ଛିଲକା—6. Upper slice. ୭ । ମନୁଙ୍କ ବର୍ଣ୍ଣିତ ପ୍ରାଚୀନ ଦେଶର ନାମ (ହି. ଶ)—7. Name of an ancient country. ୮ । ଡାଳଚିନି (ହି. ଶ)—8. Cloves. ୯ । ଅଁଳା (ହି. ଶ)—9. Embellic myrobalan. ୧୦ । କମଳନାଳ (ହି. ଶ)—10. The stem of lotu . ୧୧ । ଶର୍କରା; ଗୁଡ଼ (ହି. ଶ)—11. Molasses.

ଶକଳାନ୍ତ—ସଂ. ବି (ଶକଳ+ଅନ୍ତ)—ଶକଜାତିସବୁ ରାଜାଙ୍କୁ ପରାସ୍ତ କରି ଭାରତରେ ହିନ୍ଦୁରାଜ୍ୟ ସ୍ଥାପନ କରିଥିବା ବିକ୍ରମାଦିତ୍ୟ ରାଜା—King Bikramāditya who defeated the Scythians and established Hindu kingdom in N. W. India.
Śakalānta
(ଶକଳାନ୍ତକ—ଅନ୍ୟରୂପ)

ଶକଳୀ—ସଂ. ବି (ଶକଳ+ଅସ୍ତି ଅର୍ଥରେ ଇନ୍; ୧ମା. ଏକ)—କାତିଥିବା;
Śakalī ଯେଉଁ ମାଛର କାତି ଅଛି—Scaly (fish). ବି—୧ । ମାଛ—1. Fish. ୨ । ମିରିକାଲି ମାଛ—2. A short of scaly sweet water medium-sized fish; Cirrhina Mrigala. ୩ । ଶାଉଳମାଛ—3. A big species of Śeula; Oppecephalus Wrhal. ୪ । ଶଙ୍କରମାଛ (ହି. ଶ)—4. Trigon Narnak (fish); the stingray.

ଶକବ—ସଂ. ବି—ରାଜହଂସ (ହି. ଶ)—
Śakawa Swan.

ଶକସ—ବୈଦେ. ବି (ଅ)—ଶକ୍ଷ (ଦେଖ)
Śakas Śakhsa (See

ଶକାନ୍ତକ—ସଂ. ବି (୬ଷ୍ଠୀ ତତ୍)—ଶକାରି (ଦେଖ)
Śakāntaka Śakāri (See)

ଶକାବ୍ଦ(ବ୍ଦା)—ସଂ. ବି (ଶକ+ଅବ୍ଦ; ସଂସ୍କୃତରେ ଏହା ପ୍ରାୟଶଃ ବହୁବଚନରେ ପ୍ରଯୁକ୍ତ ହୁଏ)—ଶକଜାତୀୟ ରାଜାଙ୍କଦ୍ୱାରା ପ୍ରବର୍ତ୍ତିତ ସମ୍ବତ୍ସର—The era introduced by a Saka king. [ ବ୍ରୁ—ଶକରାଜା କନିଷ୍କ ୭୮ ଖ୍ରୀଷ୍ଟାବ୍ଦରେ ପେଶାବର ବା ପୁରୁଷପୁରରେ ରାଜତ୍ୱ ଆରମ୍ଭ କରିଥିଲେ । ସେହି ଦିନଠାରୁ ଶକାବ୍ଦ ଆରମ୍ଭ ହୋଇଅଛି । ଜଗଦଲ୍ଲ, ପ୍ରାଚୀନ ବହୁଳ ।
Śakābda(bdā)

ଏ ଅବ୍ଦ ଖ୍ରୀଷ୍ଟାବ୍ଦର ୭୮ ବର୍ଷ ପରେ ଆରମ୍ଭ ହୋଇଥିଲା ଓ ବର୍ତ୍ତମାନ ମଧ୍ୟ ଭାରତରେ ଚଳୁଅଛି । (ସନ ଦେଖ) । କେହି କେହି କହନ୍ତି ଶାଳିବାହନ ଏ ଅବ୍ଦ ଚଳାଇଥିଲେ । (ଶକ ତଳେ ଟୀକା ଦେଖ) । ]

ଶକାର—ସଂ. ବି—୧ । ବର୍ଣ୍ଣମାଳାର ତାଲବ୍ୟ 'ଶ' ଅକ୍ଷର—1. The
Śakāra letter 'Śa' of the alphabet. ୨ । (ନାଟକୀୟ ଭାଷା) ମୂର୍ଖ, ଅଭିମାନୀ ଓ ତୁଚ୍ଛ କୁଳଜାତ ବ୍ୟକ୍ତି ଏବଂ ଐଶ୍ୱର୍ଯ୍ୟଶାଳୀ ରାଜାଙ୍କର ରକ୍ଷିତା ସ୍ତ୍ରୀ (ଫୁଲବାଇ)ର ଭାଇ—2. (a dramatic term) A term used for an illiterate and low born person, a person prone to take offence at small things and the brother of a king's concubine. [ ବ୍ରୁ—ନାଟକରେ ଏ ପାତ୍ରକୁ ଉନ୍ମତ୍ତ, ଚପଳ, ଗର୍ବୀ, ନୀଚ ଓ କଠୋରହୃଦୟରୂପେ ଚିତ୍ରିତ କରାଯାଏ । ଯଥା—ମୃଚ୍ଛକଟିକରେ ସଂସ୍ଥାନକ ।] ସଂ. ବିଣ ପୁଂ—ଶକଜାତୀୟ (ହି. ଶ)—Relating to the Saka tribe.

ଶକାର ବକାର—ଦେ. ବି (ଶଳା ଓ ବାହାଚୋଦ୍ ଗାଳିର ଆଦ୍ୟ ଅକ୍ଷର)
Śakāra bakāra (ବ୍ୟଙ୍ଗ୍ୟାର୍ଥ)—ଅଶ୍ଳୀଳ ଗାଳି—
शकार बकार; बकार शकार Calling of ugly names to
**शकार बकार** a person.

ଶକାର ବକାର କରିବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ଶଳା ବାହାଚୋଦ
Śakāra bakāra karibā ଆଦି ଅଶ୍ଳୀଳ ଭାଷା ପ୍ରୟୋଗପୂର୍ବକ
बकार शकार करना गାଳି ଦେବା—To call ugly names
**शकार बकार करना** to a person.

ଶକାର ବକାର ପଢ଼ିବା, ଶକାର ବକାର ପ୍ରୟୋଗ କରିବା, ଶକାର ବକାର ଲଗାଇବା, ଶକାର ବକାର ଚଳେଇବା } ଅନ୍ୟରୂପ

ଶକାରି—ସଂ. ବି (ଶକମାନଙ୍କର ଅରି; ୬ଷ୍ଠୀ ତତ୍)—ଉଜ୍ଜୟିନୀର
Śakāri ହିନ୍ଦୁରାଜା ବିକ୍ରମାଦିତ୍ୟ—The Hindu king
(ଶକାନ୍ତକ—ଅନ୍ୟରୂପ) Bikramāditya of Ujjayinī who defeated the Scythians. [ ବ୍ରୁ—ଏ ଶକମାନଙ୍କୁ ପରାସ୍ତ କରି ଭାରତରେ ହିନ୍ଦୁରାଜ୍ୟର ପୁନଃସ୍ଥାପନ କରିଥିଲେ । ]

ଶକି(କ୍ଳି)—ବୈଦେ. ବିଣ—ଶକି (ଦେଖ)
Śaki(ki) Saki (See)

ଶକି ପାରିବା—ଦେ. କ୍ରି—(ସଂ. ଶକ୍ ଧାତୁ=ପାରିବା)—କୌଣସି
Śaki pāribā କାର୍ଯ୍ୟକୁ କରି ପାରିବା; ସମର୍ଥ ହେବା—
[ଶକିବା—ଅନ୍ୟରୂପ] 1. To be able to do a work. [ବ୍ରୁ—ଯେଉଁ କାର୍ଯ୍ୟ ପାଇଁ ଯେଉଁ ଶକ୍ତି ଦରକାର, ସେ ଶକ୍ତିଯୁକ୍ତ ବ୍ୟକ୍ତି ଉକ୍ତ କାର୍ଯ୍ୟକୁ ଶକି ପାରେ । ଯଥା—ମୁଁ ଏ ମକଦ୍ଦମା ଖରଚକୁ ଶକିପାରିବ ନାହିଁ; ମୁଁ ଏ ବୋଝକୁ ଶକି ପାରିବି ନାହିଁ—ପ୍ରଚଳିତ ।]

**ଶକୁନ**—ସଂ. ବିଂ ପୁଂ—(ଶକ୍ ଧାତୁ=ପାରଗ ହେବା+କର୍ତ୍ତୃ. ଉନ)—
Śakuna ୧ । ପକ୍ଷୀ—1. Bird. ୨ । ଗୃଧ୍ର; ଶାଗୁଣା—2 Vulture. ୩ । ଶଙ୍ଖଚିଲ—3 The white-headed kite. ୪ । ଉତ୍ସବାଦି ସମୟର ଗୀତ; ମଙ୍ଗଳ ଗାନ—4. Invocatory songs sung on auspicious occasions and festivals. ୫ । ନିମିତ୍ତ; ଶୁଭାଶୁଭ ସୂଚକ ପୂର୍ବ ଲକ୍ଷଣ (ଯଥା—ବାହୁ ସ୍ପନ୍ଦନ, ଚକ୍ଷୁଃସ୍ଫୁରଣ, ଯାତ୍ରା ଅନୁକୂଳ ସମୟରେ ପଶୁ ପକ୍ଷୀ ଆଦି ଦର୍ଶନ)—5 Omen; augery; auspicious premonitory indications (e. g. throbbing of the arms and eyes, seeing particular birds and beasts while starting on a journey). ୬ । ଶୁଭସୂଚକ ପୂର୍ବ ଲକ୍ଷଣ—6 A lucky omen (M W). ସଂ. ବିଣ—ଶୁଭ-ଲକ୍ଷଣଯୁକ୍ତ—Auspicious, indicating good luck (M. W).

[ଦ୍ର—କେତେକ ଚିହ୍ନ ଓ ଲକ୍ଷଣରୁ ଭାବୀ ଶୁଭାଶୁଭ ଜଣା ପଡ଼ିବାର ବିଶ୍ୱାସ ଅଳ୍ପ ବହୁତ ସବୁ ଜାତି ମଧ୍ୟରେ ଆବହମାନ କାଳରୁ ଚଳି ଆସୁଅଛି । ହିନ୍ଦୁମାନଙ୍କର ବିଶ୍ୱାସ ଅନୁସାରେ ପୁରୁଷ ପକ୍ଷରେ ଦକ୍ଷିଣ ବାହୁ ସ୍ପନ୍ଦନ, ଦକ୍ଷିଣ ଚକ୍ଷୁ ସ୍ଫୁରଣ ଓ ସ୍ତ୍ରୀ ପକ୍ଷରେ ବାମ ବାହୁ ଓ ବାମ ଚକ୍ଷୁ ସ୍ଫୁରଣ ଶୁଭ ଶକୁନ ଅଟେ । ମନୁଷ୍ୟର ବାମ ଭାଗରେ ଗୃହ ଉପରୁ ଝିଟିପିଟି ଖସି ପଡ଼ିବା, ଯାତ୍ରା ଅନୁକୂଳ ସମୟରେ ଜଳପୂର୍ଣ୍ଣ କୁମ୍ଭ, ବାମ ପାଖରେ ଶବ, କୋଲୁଆ ଓ ଯାତ୍ରା କାଳରେ ଶଙ୍ଖଚିଲ, ଭଦଭଦଳିଆ ପକ୍ଷୀ, ନେଉଳ, ମାଛ ଓ ଦଧି ଦେଖିବା ଶୁଭ ଶକୁନ ଅଟେ । ପୁରୁଷର ବାମ ବାହୁ ଓ ବାମ ଚକ୍ଷୁ ସ୍ଫୁରଣ, ଦକ୍ଷିଣ ଅଙ୍ଗରେ ପଲ୍ଲୀପତନ, ଯାତ୍ରା ଅନୁକୂଳ ସମୟରେ ଆଗରେ ସାପ, ତେଲିଭାଣ୍ଡନାମ୍ନୀ ତେଲ, ଡାହାଣ ପାଖରେ କୋଲୁଆ ଓ ଶବ, ଭୁଜା ମାଠିଆ, ହାଣ୍ଡି ବୋହି ଯେଉଁ ଆସୁଥିବା କୁମ୍ଭାର, ଯାତ୍ରା ସମୟରେ ମାର୍ଜାର ଯୁଦ୍ଧ, କୁଟୁମ୍ବଙ୍କ ମଧ୍ୟରେ କଳହ, କ୍ରନ୍ଦନ ଓ ଏକାକୀ ଯାଉଥିବା ବୃଦ୍ଧ ବ୍ରାହ୍ମଣ ଦେଖିବା, ରାତିରେ ଘର ପାଖେ ପେଚା ବୋବାଇବା, ଆପଣ ମୁଣ୍ଡରେ ପେଚା ବା କୁଆ ବସିଯିବା, ଘର ଚାଳ ଉପରେ ଶାଗୁଣା ବସିଯିବା, ସକାଳୁ ଉଠି କୁଜଣ ଓ ଅଣ୍ଟୁଭଙ୍ଗା ଲୋକର ମୁହଁ ଚାହିଁବା ଇତ୍ୟାଦି ସମସ୍ତଙ୍କ ପକ୍ଷରେ ଅଶୁଭ ଶକୁନ । ଶୁଭାଶୁଭ ଶକୁନ ସମ୍ବନ୍ଧରେ କେତେଗୁଡ଼ିଏ ପ୍ରବାଦ ଓ ଶ୍ଳୋକ ଅଛି । ଶକୁନର ଅର୍ଥ ପକ୍ଷୀ । ପୂର୍ବେ ପକ୍ଷୀମାନଙ୍କର ଗତିବିଧିରୁ ଲୋକେ ଶୁଭାଶୁଭ ନିର୍ଣ୍ଣୟ କରୁଥିବାରୁ ଶକୁନର 'ଶୁଭାଶୁଭ ଜ୍ଞାପକ ଚିହ୍ନ' ଅର୍ଥ ଚଳି ଅଛି । କାକମାନଙ୍କର ରାବ ଓ ଗତିବିଧି ଦେଖି ଭବିଷ୍ୟତ୍ ନିର୍ଣ୍ଣୟ କରାଯାଏ ଓ ଶକୁନ ଦେଖି ଭବିଷ୍ୟତ ବିଷୟ ଆଗରୁ ଜାଣି ପାରିବା ବିଦ୍ୟାକୁ 'କାକ ଚରିତ୍ର' ବୋଲାଯାଏ । ଏମନ୍ତ କି, ଆପଣାର ମୃତ୍ୟୁକାଳ ଜାଣିବାର ମଧ୍ୟ କେତେଗୁଡ଼ିଏ ଶକୁନ ହିନ୍ଦୁ ଶାସ୍ତ୍ରରେ ଅଛି ।]

**ଶକୁନଜ୍ଞ**—ସଂ. ବିଣ. ପୁଂ (ଶକୁନ+ଜ୍ଞାଧାତୁ=ଜାଣିବା+କର୍ତ୍ତୃ. ଅ)—
Śakunajña ନିମିତ୍ତଜ୍ଞ; ଚିହ୍ନଜ୍ଞ; କାକଚରିତ୍ରଜ୍ଞ—Versed in
[ଶକୁନଜ୍ଞା—ସ୍ତ୍ରୀ] the art of reading omens. [ଦ୍ର—ସାଧାରଣ ଲୋକେ ଏପରି ବ୍ୟକ୍ତିଙ୍କୁ 'ସର୍ବଜ୍ଞ' ବୋଲି ଡାକନ୍ତି । ]

**ଶକୁନଜ୍ଞା**—ସଂ. ବି. ସ୍ତ୍ରୀ (ଶକୁନଜ୍ଞ+ସ୍ତ୍ରୀ. ଆ)—୧ । ଶକୁନ ପତ୍ନୀ;
Śakunajñā ମାଈ ଶାଗୁଣା; ଫୁଲଶାଗୁଣା—1. A she-vulture. ୨ । ଝିଟ୍କୀ; ଝିଟିପିଟି; ଢାଡ଼ୁଅଣୀ—2. The common house lizard. ସଂ. ବିଣ. ସ୍ତ୍ରୀ—ଶକୁନଜ୍ଞର ସ୍ତ୍ରୀଲିଙ୍ଗ—Feminine of Śakunajña.

**ଶକୁନ ବିଦ୍ୟା**—ସଂ. ବି.—ଶକୁନ ବା ପୂର୍ବ ଲକ୍ଷଣମାନ ଦେଖି ଭବିଷ୍ୟତ୍
Śakuna bidyā କଥା ଜାଣିବାର ଶାସ୍ତ୍ର—The art or
(ଶକୁନ ଶାସ୍ତ୍ର—ଅନ୍ୟରୂପ) knowledge of omens or augury.

**ଶକୁନା**—ସଂ. ବି. ସ୍ତ୍ରୀ (ଶକୁନ+ସ୍ତ୍ରୀ. ଆ)—ଝିଟିପିଟି—
Śakunā A small house lizard (M. W).

**ଶକୁନାହୃତ**—ସଂ. ବି—୧ । ଏକପ୍ରକାର ଶୁକ୍ଳ ସରୁ ଚାଉଳ (ବଂ.
Śakunāhṛuta ଦାଦଖାନି ଚାଲ୍) (ହି. ଶ)—1. A kind of fine rice. ୨ । ଏକପ୍ରକାର ମାଛ (ହି. ଶ)—2. A kind of fish. ୩ । ଏକପ୍ରକାର ବାଳରୋଗ; ଶକୁନଗ୍ରହ—3. A kind of infantile disease.

**ଶକୁନି**—ସଂ. ବି. ପୁଂ (ଶକ୍ ଧାତୁ=ପାରିବା+କର୍ତ୍ତୃ. ଉନି)—୧ । ଗୃଧ୍ର-
Śakuni ପକ୍ଷୀ; ଶାଗୁଣା—1. The vulture. ୨ । ଚିଲ—2. The white headed red kite; Falco Ater; the Pondichery eagle (M. W). ୩ । ପକ୍ଷୀ—3. Bird. ୪ । ଜ୍ୟୋତିଷଶାସ୍ତ୍ରୋକ୍ତ କରଣବିଶେଷ—4. Name of one of the 11 astrological conjunctions (considered as auspicious); name of the eigth Karaṇa (M W). [ଦ୍ର—ଜ୍ୟୋତିଷ ଶାସ୍ତ୍ରୋକ୍ତ ୧୧ ଗୋଟି କରଣ ମଧ୍ୟରୁ ଅଷ୍ଟମ । ଏହା ଶୁଭ ।] ୫ । ବିକୁକ୍ଷି ରାଜାଙ୍କ ପାଞ୍ଚ ପୁତ୍ରରୁ ଏକ—5. Name of one of the 5 sons of king Bikukshi. ୬ । ସୁବଳ ରାଜାଙ୍କ ପୁତ୍ର; ସୌବଳ; ଦୁର୍ଯ୍ୟୋଧନଙ୍କ ମାମୁଁ; ଧୃତରାଷ୍ଟ୍ର ପତ୍ନୀ ଗାନ୍ଧାରୀଙ୍କ ଭାଇ । (ଏହାର ଅପଭ୍ରଂଶ ଶକୁନି)—6. Name of the maternal uncle Durjyodhana. ୭ । କୁକୁଡ଼ା—7. A cook (Apte). ୮ । କୃଷ୍ଣଙ୍କଦ୍ୱାରା ନିହତ ଅସୁରବିଶେଷ—8. Name of a demons killed by Śrikṛushṇa. ୯ । ନାଗବିଶେଷ (ହି. ଶ)—9. Name of a mythological serpent, ୧୦ । ହିରଣ୍ୟାକ୍ଷର ପୁତ୍ର ଓ ବୃକର ପିତା; ଦୈତ୍ୟବିଶେଷ (ହି. ଶ)—10. Name of a mythological

शकुनि
शाकुनि

demon. ଦେ. ବି ( ଲକ୍ଷଣାର୍ଥ )—ପର ଘରେ କଳହ ଓ ଅନର୍ଥ ଆଦିର ବୀଜ ବୁଣିବା ବ୍ୟକ୍ତି—A person who sows dissension amongst other persons. [ଦ୍ର—ଦୁର୍ଯ୍ୟୋଧନଙ୍କ ମାମୁଁ ଶକୁନି ଅଧିକାଂଶ ସମୟ ହସ୍ତିନା ନଗରରେ ରହୁଥିଲେ ଓ ଭଣଜାଙ୍କର ମନ୍ତ୍ରିତ୍ୱ କରୁଥିଲେ । ଏ ଅସତ୍ ପ୍ରକୃତିର ଏବଂ ପରର ଅନିଷ୍ଟ ସାଧନରେ ସର୍ବଦା ଆସକ୍ତ ରହୁଥିଲେ । ଗାନ୍ଧାର ( ଅଧୁନାତନ କାନ୍ଦାହାର ) ଦେଶାଧିପତି ସୁବଳ ଏହାଙ୍କ ପିତା । ଗାନ୍ଧାରୀ 'ଭୃଥିଂଶୀ କନ୍ୟା' ଥିବାରୁ ତାଙ୍କର ବୈଧବ୍ୟ ଯୋଗ ଅନିବାର୍ଯ୍ୟ ଦେଖି ପିତା ସୁବଳ ପ୍ରଥମେ ତାଙ୍କୁ ଗୋଟିଏ ଶାହାଡ଼ା ( ଶାଖୋଟ ) ଗଛ ସଙ୍ଗେ ବିବାହ କରାଇ ଦେଲେ । କିନ୍ତୁ ସଙ୍ଗେ ସଙ୍ଗେ ସେ ଶାହାଡ଼ା ଗଛଟି ମରିଗଲା । ଏହିପ୍ରକାରେ ଗାନ୍ଧାରୀଙ୍କର ବୈଧବ୍ୟ ଦଶା କଟିଯିବା ପରେ ଧୃତରାଷ୍ଟ୍ରଙ୍କ ସହିତ ତାଙ୍କର ବିବାହ ହେଲା । ଦୁର୍ଯ୍ୟୋଧନଙ୍କ ସଙ୍ଗେ ଭୀମଙ୍କର କଳହ ହେବାରୁ ଏବଂ ଦୁର୍ଯ୍ୟୋଧନ ଭୀମଙ୍କୁ ଅପମାନ ଦେବାରୁ ଭୀମ ଦୁର୍ଯ୍ୟୋଧନଙ୍କୁ ଗୋଳକ ପୁତ୍ର (ବିଧବା ପୁତ୍ର) ବୋଲି କହିଲେ । ଦୁର୍ଯ୍ୟୋଧନ ଏଥିରେ ମର୍ମାହତ ହୋଇ ଏଥିର କାରଣ ଅନୁସନ୍ଧାନ କଲେ, ଏବଂ ମାତାଙ୍କଠାରୁ ତାଙ୍କ ବିବାହପ୍ରସଙ୍ଗୀୟ ପୂର୍ବୋକ୍ତ କଥା ଅବଗତ ହୋଇ ପ୍ରତିହିଂସାସାଧନାର୍ଥ ସୁବଳ ରାଜା ଓ ତାଙ୍କର ପରିବାରବର୍ଗଙ୍କୁ ଧ୍ୱଂସ କରିବା ନିମିତ୍ତ ଉପାୟ ଚିନ୍ତାକଲେ । ପରେ ସେମାନଙ୍କୁ କପଟରେ ନିମନ୍ତ୍ରଣ କରିଆଣି ଗୋଟିଏ ଅନ୍ଧୁଆ ଘରେ ପୂରାଇ ଅନାହାରରେ ମାରିପକାଇଲେ । ଶେଷକୁ କେବଳମାତ୍ର 'ଶକୁନି' ବଞ୍ଚି ରହିଲେ । ଶକୁନି ସର୍ବଜ୍ଞ ଥିଲେ ଏବଂ ଦୁର୍ଯ୍ୟୋଧନ ତାଙ୍କର ହିତଈଷିତା ସମ୍ବନ୍ଧେ ନାନା ପ୍ରମାଣ ପାଇ ତାଙ୍କୁ କାରାରୁ ମୁକ୍ତି ଦେଇ ମନ୍ତ୍ରି-ପଦରେ ବରଣ କଲେ । ଶକୁନି ଆପଣାର ମୃତ ପିତାଙ୍କ ଅସ୍ଥିକୁ ସଂଗ୍ରହ କରି ସେହି ଅସ୍ଥିରେ ପଶାକାଠି ତିଆରି କରି ରଖିଲେ । ସେ ପଶାକାଠିର ଏହି ଅସାଧାରଣ ଗୁଣ ଥିଲା ଯେ, ଶକୁନି ଯାହା ଦାନ ଡାକୁଥିଲେ ଠିକ୍ ସେହିଁରେ ସେ ଦାନ ପଡ଼ୁଥିଲା । ଦୁର୍ଯ୍ୟୋଧନ ଶକୁନିଙ୍କର ବଂଶ ନାଶ କରିଥିବାରୁ ସେ ଦୁର୍ଯ୍ୟୋଧନଙ୍କର ବଂଶ ନିର୍ମୂଳ କରିବେ ବୋଲି ମନେ ମନେ ଦୃଢ଼ସଂକଳ୍ପ କଲେ ଏବଂ ଉପରେ କପଟ ବନ୍ଧୁତାର ଛଳନା କରି ଦୁର୍ଯ୍ୟୋଧନଙ୍କୁ ମନ୍ତ୍ରଣା ଦେଲେ । ତାଙ୍କରି ମନ୍ତ୍ରଣାରେ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କର ଅନିଷ୍ଟ ସାଧନ କରିବାକୁ ଉତ୍ତେଜିତ ହେଲେ । ଶକୁନି ଦ୍ୟୂତକ୍ରୀଡ଼ାରେ ( ପଶା-ଖେଳରେ) ଅତ୍ୟନ୍ତ ନିପୁଣ ଥିଲେ । ତାଙ୍କର ପ୍ରରୋଚନାରେ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କୁ ପଣ ରଖି ପଶା ଖେଳିବାକୁ ଡାକିଲେ । ଉପର୍ଯ୍ୟୁକ୍ତ ପଶାକାଠିଦ୍ୱାରା 'କପଟଦ୍ୟୂତ' ଖେଳ ଶକୁନି ଯୁଧିଷ୍ଠିରଙ୍କୁ ପରାଜିତ କରି ପାଣ୍ଡବମାନଙ୍କୁ ରାଜ୍ୟଚ୍ୟୁତ ଓ ବନବାସୀ କରାଇଲେ । ପାଣ୍ଡବମାନେ ବନବାସରୁ ଫେରି ଆସିବା ପରେ ଏହାଙ୍କ ପ୍ରରୋଚନାରେ ଦୁର୍ଯ୍ୟୋଧନ ସେମାନଙ୍କୁ ବିନା ଯୁଦ୍ଧରେ ପାଞ୍ଚଖଣ୍ଡି ଗ୍ରାମ ତ ଦୂରର କଥା, ସୂଚ୍ୟଗ୍ର-ପରିମିତ ସ୍ଥାନ ସୁଦ୍ଧା ଛାଡ଼ିଦେବାକୁ ରାଜି ହେଲେ ନାହିଁ । ଏହାର ଫଳସ୍ୱରୂପ ମହାଭାରତ ଯୁଦ୍ଧ ଆରମ୍ଭ ହେଲା ଓ ସେଥିରେ ଶକୁନିଙ୍କ ପିତୃହନ୍ତା ଦୁର୍ଯ୍ୟୋଧନ ନିହତ ହେଲେ ଓ ଶେଷରେ କୁରୁକୁଳ ଓ ପାଣ୍ଡୁକୁଳ ଧ୍ୱଂସ ହେଲେ । ଏହିରୂପେ ଶକୁନି ନିଜର ପିତୃଋଣ ପରିଶୋଧ କଲେ । କିନ୍ତୁ କୁରୁକ୍ଷେତ୍ର ଯୁଦ୍ଧର ଅଷ୍ଟାଦଶ ଦିବସରେ ସେ ନିଜେ କନିଷ୍ଠ ପାଣ୍ଡବ ସହଦେବଙ୍କ ଦ୍ୱାରା ନିହତ ହେଲେ । ଶକୁନିଙ୍କ ଚରିତ୍ରର ଏହି ଦୁର୍ଗୁଣ ଏପରି ବିଖ୍ୟାତ ଯେ, ଯେଉଁ ବ୍ୟକ୍ତି ପରର ଅନିଷ୍ଟ ଘଟାଏ ଓ ପର ଘରେ କଳି ଅନର୍ଥ ଲଗାଏ, ଲୋକେ ତାଙ୍କୁ 'ଶକୁନି' ବା 'ଶକୁନି' ବୋଲି ନାମ ଦିଅନ୍ତି । ଓ କଥାରେ କହନ୍ତି—'ତାଙ୍କୁ ଆସି ଶକୁନି ମାମୁଁ ମିଳିଛି' ଅର୍ଥାତ୍ ବାହ୍ୟ ବନ୍ଧୁତା ଦେଖାଇ ଭିତରେ ଭିତରେ ଏ ତାହାର ଅନିଷ୍ଟ ସାଧନ କରୁଛି । ]

**ଶକୁନିଗ୍ରହ**—ସଂ. ବି—୧ । ବାଳରୋଗବିଶେଷ—1. A kind of infantile disease. [ଦ୍ର—ବନଜାତ ଶକୁନି ଗ୍ରହ, ବୋଲାଇଲେ, ଗର୍ଭରୁ ପିଲାଙ୍କୁ ସେ କାଢ଼ିଣ ଖାଇଲେ— କୃଷ୍ଣସିଂହ ମହାଭାରତ. ବନ । ] ୨। ସ୍କନ୍ଦଙ୍କ ଏକ ଅନୁଚରଙ୍କ ନାମ—Name of a companion of Skanda
Śakunigraha

**ଶକୁନିପ୍ରପା**—ସଂ. ବି (୬ଷ୍ଠୀ ତତ୍)—ଯେଉଁ ଘରେ ପକ୍ଷୀମାନଙ୍କ ଜଳପାନ କରିବାପାଇଁ ପାନି ରଖାଯାଏ—A shed containing a reservoir for birds to drink water; a reservoir in an oviary.
Śakuniprapā

**ଶକୁନିବାଦ**—ସଂ. ବି (୬ଷ୍ଠୀ ତତ୍)—୧ । ପକ୍ଷୀମାନଙ୍କର କାକଳି ବା ଶବ୍ଦ—1. The cry or sound of birds. ୨ । କୁକୁଡ଼ା ଡାକ ବା ଶବ୍ଦ—2. The crowing of a cock. ୩ । ଉଷାକାଳରେ ପକ୍ଷୀଙ୍କ ରବ—3. The cry of birds in the early morning.
Śakunibāda

**ଶକୁନି ମାମୁ(ମୁଁ)**-ଦେ. ବି.—(ଲକ୍ଷଣାର୍ଥ)—(ଦୁର୍ଯ୍ୟୋଧନଙ୍କ ମାମୁଁ ଶକୁନି କପଟ ବନ୍ଧୁତା ଦେଖାଇ ଆପଣା ଭଣଜାର ସର୍ବନାଶ ଘଟାଇଥିଲା ପରି) ଯେଉଁ ଲୋକ ଆପଣାର ବନ୍ଧୁ ହୋଇ ଭିତରେ ଭିତରେ ଅନିଷ୍ଟ ସାଧନ କରେ; ଅଣ୍ଟିରେ ଥାଇ ଅଣ୍ଟି କାଟିବା ଲୋକ—A relative or friend who feigns friendship but who brings about the ruin of a person.
Śakuni māmu(mnñ)
शकुनिमामा शाकुनिमामा

**ଶକୁନୀ**—ସଂ. ବି. ସ୍ତ୍ରୀ—(ଶକୁନ+ଈ, ସ୍ତ୍ରୀ)—୧ । ମାଈ ଶାଗୁଣା—1. A she-vulture. ୨ । ଶ୍ୟାମା ପକ୍ଷୀ—2. A bird (a whistling bird); Cittocincla Macura. ୩ । ମାଈ ଘରଚଟିଆ—3. A hen-sparrow (Apte). ୪ । ସୁଶ୍ରୁତ ଅନୁସାରେ ବାଳ ଗ୍ରହ ବିଶେଷ—Name of an infantile disease
Śakunī

personified. [ ଦ୍ର—ଯେଉଁ ବାଳକକୁ ଏହା ଆକ୍ରମଣ କରେ ତାହାର ଅଙ୍ଗ ଶିଥିଳ ହୁଏ, ଦେହ ଜଳା ପୋଡ଼ା କରେ, ବ୍ରଣ ଆଦି ହୁଏ, ଦେହରୁ ପକ୍ଷୀମାନଙ୍କ ଗନ୍ଧ ପରି ଗନ୍ଧ ବାହାରେ ଓ ସେ ମଝିରେ ମଝିରେ ଚମକେ—ହି. ଶ.]

**ଶକୁନି ମାତୃକା**—ଏକ ପ୍ରକାର ବାଳରୋଗ—
Śakuni mātṛukā A kind of infantile disease.
[ ଦ୍ର—ଏ ବ୍ୟାଧି ପିଲାଙ୍କୁ ଜନ୍ମର ୬ଷ୍ଠ ଦିନ, ୬ଷ୍ଠ ମାସ ବା ୬ଷ୍ଠ ବର୍ଷରେ ଧରେ । ଏଥିରେ ଜ୍ୱର ଓ କମ୍ପ ହୁଏ ଓ ଊର୍ଦ୍ଧ୍ୱଦୃଷ୍ଟି ହୁଏ । ଏହା ବଡ଼ ପୀଡ଼ାଦାୟକ ।
ହି. ଶବ୍ଦସାଗର ।]

**ଶକୁନୀଶ୍ୱର**—ସଂ. ବି—( ୬ଷ୍ଠୀ ତତ୍; ଶକୁନି=ପକ୍ଷୀମାନଙ୍କର+ଈଶ୍ୱର
Śakuniśwara =ରାଜା)—ପକ୍ଷିରାଜ; ଗରୁଡ଼—The king of birds in the Hindu mythology.

**ଶକୁନ୍ତ(ନ୍ତି)**—ସଂ. ବି. ପୁଂ—( ଶକ ଧାତୁ+କର୍ତ୍ତୃ. ଉନ୍ତ; ଉନ୍ତି)—୧ ।
Śakunta(nti) ପକ୍ଷୀ—1. Bird. ୨ । ଶକୁନ; ଗୃଧ୍ର—
(ଶକୁନ୍ତା, ଶକୁନ୍ତୀ—ସ୍ତ୍ରୀ) 2, Vulture. ୩ । ଭାସନାମକ ଗୃଧ୍ର ଜାତୀୟ ପକ୍ଷୀ—3 A species of vulture. ୪ । ଏକ ପ୍ରକାର କୀଟ—4. A species of insects ୫ । ବିଶ୍ୱାମିତ୍ରଙ୍କ ପୁତ୍ରର ନାମ (ହି. ଶ.)—5. Name of the son of Biśwāmitra

**ଶକୁନ୍ତକ**—ସଂ. ବି—(ଶକୁନ୍ତ+କ)—ଏକ ପ୍ରକାର ଛୋଟ ପକ୍ଷୀ (ହି.ଶ.)
Śakuntaka A small species of birds.

**ଶକୁନ୍ତଳା**—ସଂ. ବି. ସ୍ତ୍ରୀ—( ଶକୁନ୍ତ=ପକ୍ଷୀ+ଲ ଧାତୁ=ଲାଳନ କରିବା
Śakuntaḻā +କର୍ମ. ଅ+ଆ, ସ୍ତ୍ରୀ; ଯେ ଶିଶୁକାଳରେ ପକ୍ଷୀଦ୍ୱାରା ଲାଳିତ ହୋଇଥିଲେ)—ଗାନ୍ଧର୍ବ ବିଧାନାନୁସାରେ ରାଜା ଦୁଷ୍ୟନ୍ତଙ୍କର ପରିଣୀତା ମହିଷୀ, ରାଜା ଭରତଙ୍କ ମାତା—Name of the chosen wife of King Dushyanta and mother of king Bharata of India

[ଦ୍ର—ଏ ବିଶ୍ୱାମିତ୍ର ଋଷିଙ୍କ ଔରସରେ ଅପ୍ସରା ମେନକାଙ୍କ ଗର୍ଭରୁ ଜାତ ହୋଇଥିଲେ । ଏ ବିଶ୍ୱାମିତ୍ରଙ୍କ ଗୁପ୍ତ ପ୍ରଣୟରୁ ଜାତ ହୋଇଥିବାରୁ ଏହାଙ୍କୁ ଜନ୍ମ କରି ମେନକା ଜଙ୍ଗଲରେ ପୋପାଡ଼ି ଦେଇଗଲେ । ସେତେବେଳେ ଗୋଟିଏ ପକ୍ଷୀ ଏହି ନବପ୍ରସୂତା କନ୍ୟାକୁ ସ୍ୱୀୟ ପକ୍ଷଦ୍ୱାରା ଆଚ୍ଛାଦନକରି ରକ୍ଷା କରିଥିଲା । ମହର୍ଷି କଣ୍ୱ ଏହି ଅବସ୍ଥାରେ କନ୍ୟାଟିକୁ ଦେଖି ଦୟାର୍ଦ୍ର ହୋଇ ସ୍ୱୀୟ ଆଶ୍ରମକୁ ନେଇ ଆସି ନିଜ କନ୍ୟାପରି ଲାଳନପାଳନ କଲେ ଓ ଏ ଯୁବତୀ ହେଲେ । ରାଜା ଦୁଷ୍ୟନ୍ତ ମୃଗୟାକୁ ଯାଇ ତାହାଙ୍କୁ ଦେଖିଲେ ଏବଂ ତାଙ୍କ ରୂପ ମାଧୁରୀରେ ଏକାନ୍ତ ମୁଗ୍ଧ ହୋଇ ଗାନ୍ଧର୍ବ ବିଧି ଅନୁସାରେ ତାହାଙ୍କୁ ବିବାହ କଲେ । ଆଶ୍ରମରେ କଣ୍ୱ ମୁନିଙ୍କ ଅନୁପସ୍ଥିତିରେ ଏ ଦୁହିଙ୍କର ମିଳନ ହେଲା ଏବଂ ଶକୁନ୍ତଳା ଅନ୍ତଃସତ୍ତ୍ୱା ହେଲେ । ଏହା ପରେ ଦୈବଗତ୍ୟା ଦିନେ ମହର୍ଷି ଦୁର୍ବାସା କଣ୍ୱଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ଦୁଷ୍ୟନ୍ତଗତପ୍ରାଣା ଶକୁନ୍ତଳା ପ୍ରିୟଙ୍କ ଚିନ୍ତାରେ ସେତେବେଳେ ଏପରି ଅଭିଭୂତା ହୋଇଥିଲେ ଯେ, ସେ ମହର୍ଷିଙ୍କ ସତ୍କାର ପ୍ରତି ଦୃଷ୍ଟି ଦେଇ ପାରିଲେ ନାହିଁ । ଏଥିରେ ଦୁର୍ବାସା କୁପିତ ହୋଇ ପୂଜ୍ୟ ପୂଜା ବ୍ୟତିକ୍ରମ ପାଇଁ ତାହାଙ୍କୁ ଅଭିଶାପ ଦେଇ କହିଲେ—"ଯାହାର ଚିନ୍ତାରେ ତୁ ମଗ୍ନ, ସେ ତୋତେ ଚିହ୍ନିବ ନାହିଁ ।" ସଖୀମାନେ ଏ ଅଭିଶାପ ଶ୍ରବଣ କରି ମହର୍ଷିଙ୍କ ନିକଟରେ ବହୁ ଅନୁନୟ ବିନୟ କଲେ । ଫଳରେ ଦୁର୍ବାସାଙ୍କ କ୍ରୋଧ ଶାନ୍ତ ହେଲା ଏବଂ ସେ କହିଲେ—"ପ୍ରଣୟର କୌଣସି ଅଭିଜ୍ଞାନ ବା ଚିହ୍ନ ଦେଖାଇ ପାରିଲେ ଦୁଷ୍ୟନ୍ତ ଶକୁନ୍ତଳାଙ୍କୁ ଚିହ୍ନି ପାରିବେ ।" ଏଥିରେ ସଖୀମାନେ ଟିକିଏ ଆଶ୍ୱସ୍ତ ହେଲେ କାରଣ, ଦୁଷ୍ୟନ୍ତ ନିଜ ପ୍ରଣୟର ଓ ବିବାହର ଭାବୀ ପରିଚୟସୂଚକ ରୂପେ ସ୍ୱନାମାଙ୍କିତ ଗୋଟିଏ ମୁଦ୍ରିକା ଶକୁନ୍ତଳାଙ୍କୁ ପ୍ରଦାନ କରିଥିଲେ । ଏହାପରେ ଦୁଷ୍ୟନ୍ତ ସ୍ୱରାଜଧାନୀକୁ ପ୍ରତ୍ୟାବର୍ତ୍ତନ କଲେ । ତେଣେ ଶକୁନ୍ତଳା ପ୍ରିୟ ବିରହରେ ମ୍ରିୟମାଣା ହୋଇ ଆଶ୍ରମରେ ରହିଲେ । ସଖୀମାନେ ଦୁର୍ବାସାଙ୍କ ଅଭିଶାପ ବୃତ୍ତାନ୍ତ ତାହାଙ୍କୁ ନ ଶୁଣାଇ ଗୋପନରେ ରଖିଥାଆନ୍ତି । ମହର୍ଷି କଣ୍ୱ ଯେତେବେଳେ ଆଶ୍ରମକୁ ଫେରି ଆସିଲେ, ସେତେବେଳେ ଏ ସକଳ ବୃତ୍ତାନ୍ତ ଅବଗତ ହେବା ପାଇଁ ତାଙ୍କୁ ବେଶି ସମୟ ଲାଗିଲା ନାହିଁ । ଧ୍ୟାନ ବଳରେ ସେ ସମସ୍ତ କଥା ଜାଣି ପାରି ଅତ୍ୟନ୍ତ ସୁଖୀ ହେଲେ ଏବଂ ବିଶାଳପକ୍ଷୀ ବୀର ତନୟର ଜନନୀ ହେବା ନିମିତ୍ତ କନ୍ୟାକୁ ଆଶୀର୍ବାଦ କଲେ । ଏହା ପରେ ଶକୁନ୍ତଳାଙ୍କଠାରେ ଗର୍ଭଲକ୍ଷଣମାନ କ୍ରମେ ପ୍ରକାଶିତ ହେଲା । କଣ୍ୱ ତାଙ୍କୁ ଆଶ୍ରମର ଜଣେ ବୃଦ୍ଧା ତପସ୍ୱିନୀ ଏବଂ ଦୁଇଜଣ ମୁନି କୁମାରଙ୍କ ସହିତ ସ୍ୱାମିଗୃହକୁ ପ୍ରେରଣ କଲେ । ସଖୀମାନେ ଦୁର୍ବାସାଙ୍କ ଅଭିଶାପ କଥା ସ୍ମରଣ କରି ବିଦାୟ ସମୟରେ ଦୁଷ୍ୟନ୍ତଙ୍କ ପ୍ରଦତ୍ତ ମୁଦ୍ରିକାଟି ଶକୁନ୍ତଳାଙ୍କ କାନିରେ ବାନ୍ଧି ଦେଇଥିଲେ । ପଥ ମଧ୍ୟରେ ଶଚୀତୀର୍ଥ ଘାଟରେ ସ୍ନାନ କରିବା ସମୟରେ ସେହି ମୁଦ୍ରିକା ତାଙ୍କ ଅଜାଣତରେ ପଣତ କାନିରୁ ନଦୀରେ ଖସି ପଡ଼ିଲା ଏବଂ ଗୋଟିଏ ମାଛ ତାହାକୁ ପାଇ ଖାଦ୍ୟ ଜ୍ଞାନରେ ଗିଳି ଦେଲା । ଏଣେ ଶକୁନ୍ତଳା ଯେତେବେଳେ ଦୁଷ୍ୟନ୍ତଙ୍କ ନିକଟରେ ଉପସ୍ଥିତ ହେଲେ ସେତେବେଳେ ଦୁର୍ବାସାଙ୍କ ଅଭିଶାପ ଫଳରେ ରାଜା ତାହାଙ୍କ କଥା ଭୁଲି ଯାଇଥିଲେ । ଅଭିଜ୍ଞାନମୁଦ୍ରିକାଟି ହଜି ଯାଇଥିବାରୁ ଶକୁନ୍ତଳା ତାହା ମଧ୍ୟ ଦେଖାଇ ପାରିଲେ ନାହିଁ । ଫଳରେ ଦୁଷ୍ୟନ୍ତଙ୍କର ଶକୁନ୍ତଳାଙ୍କ ସହିତ ପ୍ରଣୟ ଏବଂ ଗାନ୍ଧର୍ବ ବିଧାନ ଅନୁସାରେ ବିବାହ ଆଦି କୌଣସି କଥା ମନେ ପଡ଼ିଲା ନାହିଁ । ତେଣୁ ଅନ୍ତଃସତ୍ତ୍ୱା ଶକୁନ୍ତଳାଙ୍କୁ ସେ କୌଣସି ମତେ ଗ୍ରହଣ କରିବାକୁ ରାଜି ହେଲେ ନାହିଁ । ଶକୁନ୍ତଳା ଏହିରୂପେ ଦୁଷ୍ୟନ୍ତଙ୍କ

ଦ୍ୱାରା ପ୍ରତ୍ୟାଖ୍ୟାତା ହୋଇ ଶୋକାକୁଳଚିତ୍ତରେ ରାଜାଙ୍କ ସମୀପରୁ ଫେରି ଆସୁଥିଲା ବେଳେ ତାଙ୍କ ମାତା ମେନକା ଆକାଶ ମାର୍ଗରେ ଆସି ପହଞ୍ଚି ତାଙ୍କୁ ଉଡ଼ାଇ ନେଇ ଗଲେ । ଏହା ପରେ ମାତାଙ୍କ ସହିତ ଶକୁନ୍ତଳା ଇନ୍ଦ୍ରଙ୍କ ରାଜଧାନୀରେ ରହିଲେ ଏବଂ ଏହିଠାରେ ଯଥାସମୟରେ ଗୋଟିଏ ପୁତ୍ର ସନ୍ତାନ ପ୍ରସବ କଲେ ।

ଏଣେ ଦୈବକ୍ରମେ ସେ ଅଭିଜ୍ଞାନ ମୁଦ୍ରାଟି ଯେଉଁ ମାଛ ଗିଳି ଦେଇଥିଲା, ତାକୁ ଜଣେ କେଉଟ ଧରି ଆଣି କାଟିଲା ବେଳକୁ ମାଛ ପେଟରୁ ମୁଦିଟି ପାଇଲା । ଉକ୍ତ କେଉଟଠାରେ ରାଜାଙ୍କ ନାମାଙ୍କିତ ମୁଦିକୁ ଦେଖି ନଗରର ରକ୍ଷିଗଣ ତାକୁ ଚୋର ବୋଲି ମନେ କରି ରାଜାଙ୍କ ଛାମୁକୁ ମୁଦି ସହିତ ଧରି ଆଣିଲେ ଏବଂ ଏ ମୁଦିକୁ ଦେଖିଲା ମାତ୍ରେ ରାଜାଙ୍କର ସବୁ କଥା ମନେ ପଡ଼ିଗଲା । ଶକୁନ୍ତଳାଙ୍କ ପ୍ରତି ନିଜର ରୂଢ଼ ବ୍ୟବହାର କଥା ମନେ ପକାଇ ସେ ଏକାନ୍ତ ଅନୁତପ୍ତ ହେଲେ ଏବଂ ତାଙ୍କ ଅନ୍ୱେଷଣପାଇଁ ବହୁ ଯତ୍ନ କଲେ; କିନ୍ତୁ କୌଣସିଠାରେ ତାଙ୍କର ସନ୍ଧାନ ପାଇ ପାରିଲେ ନାହିଁ । ଏହି ଭଳି ଅବସ୍ଥାରେ ଥରେ ସ୍ୱର୍ଗରେ ଦେବାସୁର ଯୁଦ୍ଧ ଲାଗିଲା । ସେହି ଯୁଦ୍ଧରେ ଦେବତାମାନଙ୍କୁ ସାହାଯ୍ୟ କରିବା ପାଇଁ ଦୁଷ୍ୟନ୍ତ ଇନ୍ଦ୍ରଙ୍କଦ୍ୱାରା ଆହୂତ ହୋଇ ସ୍ୱର୍ଗକୁ ଗଲେ ଏବଂ ଅସୁରମାନଙ୍କୁ ପରାଜିତ କରି ସ୍ୱରାଜ୍ୟକୁ ଫେରି ଆସୁଥିଲା ବେଳେ ବାଟରେ ଗୋଟିଏ ବାଳକକୁ ଦେଖିଲେ । ସେ ବାଳକଟି ଏପରି ନିର୍ଭୀକ ଯେ, ଗୋଟିଏ ସିଂହ ଛୁଆକୁ ଅତି ନିଃଶଙ୍କ ଭାବରେ ତା ମାତା ନିକଟରୁ ଆକର୍ଷଣ କରୁଥାଏ ଏବଂ ତାହା ସଙ୍ଗେ ମନଇଚ୍ଛା କ୍ରୀଡ଼ା କୌତୁକ କରୁଥାଏ । ବାଳକଟିକୁ ଦେଖି, କେଜାଣି କାହିଁକି, ଦୁଷ୍ୟନ୍ତଙ୍କ ହୃଦୟରେ ଅପାର ପୁଲକ ଜାତ ହେଲା । ଏହା ପରେ ସେ ସେଠାରେ ଶକୁନ୍ତଳାଙ୍କୁ ଦେଖି ଚିହ୍ନି ପାରିଲେ ଏବଂ ଉକ୍ତ ବାଳକଟିକୁ ନିଜର ପୁତ୍ର ବୋଲି ଜାଣିଲେ; ସଙ୍ଗେ ସଙ୍ଗେ ମାତା ଓ ପୁତ୍ର ଉଭୟଙ୍କୁ ସଙ୍ଗରେ ଆଣି ରାଜଧାନୀକୁ ଆସିଲେ ଏବଂ ଜୀବନର ଅବଶିଷ୍ଟ ସମୟ ସୁଖରେ ସେମାନଙ୍କ ସହିତ କଟାଇଲେ । ସେହି ରାଜକୁମାର ପରେ ଭରତ ନାମରେ ଖ୍ୟାତ ହୋଇ ପିତୃ ସିଂହାସନର ଅଧିକାରୀ ହେଲେ ଏବଂ ତାଙ୍କର ନାମ ଅନୁସାରେ ଏ ଦେଶର ନାମ ଭାରତବର୍ଷ ହେଲା ।

ଶକୁନ୍ତଳାଙ୍କ ବୃତ୍ତାନ୍ତକୁ ଅବଲମ୍ବନ କରି ମହାକବି କାଳିଦାସ ସଂସ୍କୃତ ଭାଷାରେ ଅଭିଜ୍ଞାନଶକୁନ୍ତଳମ୍ ନାମକ ଏକ ନାଟକ ରଚନା କରିଅଛନ୍ତି ।]

ଦେ. ବି—(ସଂ.—ଅଭିଜ୍ଞାନ ଶକୁନ୍ତଳମ୍)—୧ । ମହାକବି କାଳିଦାସଙ୍କ ବିରଚିତ ନାଟକ ବିଶେଷ—1. Name of a Sanskrit drama by the great Sanskrit poet Kālidāsa.

ଶକୁନ୍ତଳାଖ୍ୟାନ—ସଂ. ବି—(ଷଷ୍ଠୀ ତତ୍, ଶକୁନ୍ତଳା+ଆଖ୍ୟାନ)—୧ । କଣ୍ୱଋଷିଙ୍କ ପାଳିତା କନ୍ୟା ଶକୁନ୍ତଳାଙ୍କ ବୃତ୍ତାନ୍ତ—1. The story of Śakuntalā, the foster daughter of Kaṇva. ୨ । କାଳିଦାସଙ୍କ ରଚିତ ନାଟକ—2. A drama by Kālidāsa named ଅଭିଜ୍ଞାନ ଶକୁନ୍ତଳମ୍ or the story of the lost ring. [ଦ୍ର—ଏହାର ପୂର୍ଣ୍ଣ ନାମ ଅଭିଜ୍ଞାନ ଶକୁନ୍ତଳମ୍ । ଏଥିରେ କଣ୍ୱମୁନିଙ୍କ ଅନୁପସ୍ଥିତିରେ ମହାରାଜ ଦୁଷ୍ୟନ୍ତ ମୃଗୟାର୍ଥେ ଆଶ୍ରମରେ ଉପସ୍ଥିତ ହେବାଠାରୁ ଆରମ୍ଭ କରି ଶକୁନ୍ତଳାଙ୍କ ସଙ୍ଗେ ତାଙ୍କର ମିଳନ, ଗାନ୍ଧର୍ବ ମତରେ ବିବାହ, ଦୁର୍ବାସାଙ୍କ ଅଭିଶାପ, ଶକୁନ୍ତଳାଙ୍କର ଗର୍ଭଧାରଣ, ମୁଦ୍ରିକା ପ୍ରସଙ୍ଗ ଓ ଦୁଷ୍ୟନ୍ତଙ୍କ ରାଜଧାନୀକୁ ଶକୁନ୍ତଳାଙ୍କ ଗମନ ଓ ସେଠାରେ ଦୁଷ୍ୟନ୍ତଙ୍କଦ୍ୱାରା ପ୍ରତ୍ୟାଖ୍ୟାତା ହୋଇ ସେଠାରୁ ପ୍ରସ୍ଥାନ, ଏବଂ ଶେଷରେ ଇନ୍ଦ୍ରଙ୍କ ରାଜଧାନୀରେ ଦୁଷ୍ୟନ୍ତଙ୍କ ସହିତ ଶକୁନ୍ତଳା ଓ ସ୍ୱ ତନୟ ଭରତଙ୍କ ମିଳନ ଆଦି ବୃତ୍ତାନ୍ତ ଅତ୍ୟନ୍ତ ମଧୁର ଓ ପ୍ରାଣସ୍ପର୍ଶୀ ଭାଷାରେ ବର୍ଣ୍ଣିତ ହୋଇଅଛି । କାଳିଦାସଙ୍କର ଏହି ନାଟକକୁ ପାଠ କରି ବିଖ୍ୟାତ ଜର୍ମାନ୍ ପଣ୍ଡିତ ମାକ୍ସ୍ ମୁଲର୍ ଓ ଗେଟେ ଅତ୍ୟନ୍ତ ମୁଗ୍ଧ ହୋଇ ପୃଥିବୀର ସାହିତ୍ୟରେ ତାହାକୁ ଅତି ଉଚ୍ଚ ସ୍ଥାନ ପ୍ରଦାନ କରିଅଛନ୍ତି । ଗେଟେ କହିଅଛନ୍ତି—'ସ୍ୱର୍ଗର ଅନୁପମ ମାଧୁରୀ ଓ ପବିତ୍ରତା ଅନୁଭବ କରିବାକୁ ଇଚ୍ଛା କଲେ 'ଶକୁନ୍ତଳା'—ଏହି ଚାରୋଟି ଅକ୍ଷର ଉଚ୍ଚାରଣ କର । ଶକୁନ୍ତଳା ତଳେ ଟୀକା ଦେଖ ।]

ଶକୁନ୍ତିକା—ସଂ. ବି.—(ଶକୁନ୍ତ+କ+ଆ)—୧ । ଛୋଟ ପକ୍ଷୀ—Śakuntikā 1. A small bird. ୨ । ପ୍ରଜା (ହି. ଶ.)—2. Subject of a king.

ଶକୁନ୍ଦ—ସଂ. ବି—ଧଳା କରବୀ ଫୁଲ—The white variety
Śakunda of scented oleander.

ଶକୁ(କୂ)ଳ(ଳୀ)—ସଂ. ବି (ଶକ୍ ଧାତୁ+କର୍ତ୍ତୃ. ଉଳ, ଊଳ)—ସେହୁଳ
Śaku(kū)la(lī) ମାଛ—A species of scaly fish; [ସକୁଳ—ଅନ୍ୟରୂପ] Ophicephalus Striatus. [ଦ୍ର—
ଶୋଲମାଛ ଏହା କର୍ଦ୍ଦମଚର, ସର୍ପବତ୍ ମୁଣ୍ଡବିଶିଷ୍ଟ, ଶକଲୀ ମାଛ ।
ସୌରୀମାଛ ଏହା ଦୁଇ ହାତ ପର୍ଯ୍ୟନ୍ତ ଲମ୍ବ ହୁଏ ଓ ଏହାର ଦେହ ଗୋଲ, ପିଠି ଫିକା କଳା ଓ ପେଟ ହଳଦିଆ ମିଶା ଧଳା । ଏମାନେ ପଙ୍କ ଓ ଦଳ ମଧ୍ୟରେ ରହନ୍ତି ଓ ସ୍ଥିର-ଜଳାଶୟରେ ବାସ କରନ୍ତି । ଏମାନଙ୍କର ଛୁଆଁଳମାନେ ସିନ୍ଦୂରପରି ନାଲିଆ ।

ଶାଳମାଛ ଏହି ଜାତୀୟ; କିନ୍ତୁ ଏମାନଙ୍କଠାରୁ ବଡ଼ ଓ ଗାଢ଼ତର କୃଷ୍ଣବର୍ଣ୍ଣ । ଶାଳମାଛଙ୍କ ଲାଙ୍ଗୁଡ଼ ପାଖରେ କୃଷ୍ଣ ବର୍ଣ୍ଣ ଚକଚିହ୍ନ ଥାଏ । ଶକୁଳକୁ ଭାଷାରେ ଶହୁଳ, ଶେହୁଳ, ସହୁଳ, ସେହୁଳ ବୋଲାଯାଏ ଓ ଛୋଟ ସେହୁଳମାଛଙ୍କୁ ଶେହୁଳକଡ଼ା (ଖଡ଼ିଆ) ବୋଲାଯାଏ । ଗଡ଼ିଶାମାନେ ଏହି ଜାତୀୟ;କିନ୍ତୁ ଏମାନଙ୍କଠାରୁ ଛୋଟ ଓ ବର୍ଣ୍ଣରେ ଫିକା ।

ଏମାନଙ୍କର ଦେହ ଭାର ଲାଳଳଳୁଅ । ବୈଦ୍ୟଶାସ୍ତ୍ର ଅନୁସାରେ ଏହା ମଧୁରରସ, ମଳସଂଗ୍ରାହକ, ରୁଷ୍ୟ, ରକ୍ତ ପିତ୍ତନାଶକ ଓ ଗୁରୁପାକ ।

ଏମାନଙ୍କର ଜୀବନୀଶକ୍ତି ଅନ୍ୟ ମାଛଙ୍କ ଅପେକ୍ଷା ବେଶୀ; ଏମନ୍ତ କି, ଏମାନଙ୍କୁ ଧରି ଆଣି ଦେହରୁ କାଛ ଛଡ଼ାଇ, ଲଙ୍କ ଓ ଗାଲସି କାଟି ପାଣିରେ ଧୋଇବାକୁ ନେବା ସମୟରେ ଏମାନେ ଧୋଇବା ବ୍ୟକ୍ତିର ହାତରୁ ଖସିଯାଇ ପାଣିରେ ବଞ୍ଚି ରହିବାର ଶୁଣା ଅଛି । ଶେଉଳର ଜୀବନ ଉପର ଛାଣ, ଏ ସମ୍ବନ୍ଧରେ ମଧ୍ୟ ଗୋଟିଏ ଉଗ ଅଛି—'ସାତ ଠକଟା, ପୋଲୁହଗଣ୍ଡା, ବାରୁଦବୃଷଣ, ଗାଲସି କଟା, ଚଲ ପ୍ରସାଦରୁ ସରଗ ଦେଖିଲି, ମତେ ଉବହୁଛି ବନସି କଣ୍ଟା'—ଅର୍ଥାତ୍ ମୁଁ ପେଙ୍କି କର୍ଦମାକ୍ତ ଜଳାଶୟରେ ଥିଲି, ତାକୁ ଲୋକେ ମାଛ ଧରିବା ପାଇଁ ସାତଥର ଠକଟଲେ; ତା ପରେ ପୋଲୁହରେ ବାଣ୍ଡି ମୋତେ ଧରଲେ ଓ ତା ପରେ ମୋ ଦେହରେ ପାଉଁଶ ବୋଳ କାଛ ଛଡ଼ାଇ ମୋର ଗାଲସିକ କାଟି ପୋଖରୀକୁ ଧୋଇବା ପାଇଁ ନେଲେ । ସେଠାରୁ ଗୋଟାଏ ଚଲ ଧୋଇଲାବାଲା ହାତରୁ ମୋତେ ଝାମ୍ପି ନେଲା । ତା ଫଳରେ ମୁଁ ସ୍ୱର୍ଗ (ଆକାଶ) ଦେଖିଲି ଏବଂ ଶେଷରେ ଚଲର ମୁଠାରୁ ଖସି ପଡ଼ି ପୁଣି ପାଣିରେ ପଡ଼ି ବଞ୍ଚିଛି । ଏପରି ଅବସ୍ଥାରେ ଭୁ ଏବେ ମୋତେ ବନସି ପକାଇ ଧରିବାକୁ ବସିଛୁ । ତୋର ବାଞ୍ଛା କିମ୍ପା ପୂର୍ଣ୍ଣ ହେବ କାହିଁ ।

ଲୋକେ ବଡ଼ ଶେଉଳ ମାଛଙ୍କୁ ଧରିବା ପାଇଁ ବନସି କଣ୍ଟାରେ କେରଣ୍ଡି ମାଛ ଗୁନ୍ଥି ପାଣିରେ ପକାନ୍ତି ଓ ଶେଉଳ ମାଛ ବନସି କଣ୍ଟା ସହିତ ଉକ୍ତ କେରଣ୍ଡିକୁ ଗିଳି ପକାଇବାରୁ ବନସି କଣ୍ଟା ଶେଉଳର ତଣ୍ଟିରେ ଲାଗି ଶେଉଳ ଧରା ପଡ଼େ । ଏଥିପାଇଁ ବେଶୀ ଲାଭର ଆଶା ରଖି ପ୍ରଥମେ ସାମାନ୍ୟ ବ୍ୟୟ କରିବା ସମ୍ବନ୍ଧେ 'କେରଣ୍ଡି ଗୁନ୍ଥି ଶେଉଳ ପାଇଁ' ପ୍ରବଚନ ଲୋକେ ବୋଲନ୍ତି ।]

ଶକୁଳା —ସଂ. ବି—କଟୁକି (ଜ୍ୟୋ. ଶ.)—
Śakuḻā Black Hellebore.

ଶକୁଳାକ୍ଷ(କ୍ଷୀ) —ସଂ. ବି.—(ଶକୁଳ+ଅକ୍ଷି; ଶେଉଳମାଛ ପରି ଅକ୍ଷି Śakuḻaksha(kshā) ଯାହାର)—୧ । ଶ୍ୱେତ ଦୁବ; ଧଳା ଦୁବ; ଧଳା ଦୁବ; ଶ୍ୱେତ ଦୁବ—1. Creeping cynodon. सादा दुब सफेद दुब [ଦ୍ର—ଏହାର ଚେର ଗୋରୁମାନଙ୍କ ପକ୍ଷରେ ଅତ୍ୟନ୍ତ ସଂ. ଶ୍ୱେତଦୂର୍ବା, ଶତପର୍ବ୍ୟା, ଉପକାରୀ ଏବଂ ପୁଷ୍ଟିକର । ଏହା ଗୋଲୋମୀ କଷାୟ ତିକ୍ତ ମଧୁର ରସ, ବ୍ରଣନାଶକ, ଚେ. ଶୁକ୍ଳ ଦୁବାଲୁ ତେଜୋବର୍ଦ୍ଧକ ଓ ଶୀତବୀର୍ଯ୍ୟ । ଏହା [ଶକୁଳାକ୍ଷକ—ଅନ୍ୟରୂପ] ବିସର୍ପ, ରକ୍ତଦୋଷ, ପିତ୍ତ, କଫ, ତୃଷ୍ଣା ଓ ଦାହନାଶକ ।]

ଶକୁଳାକ୍ଷୀ - ସଂ. ବି— (ଶକୁଳାକ୍ଷ+ଈ) —ଗଣ୍ଡଦୂର୍ବା—
Śakuḻakshī A kind bulb-rooted grass.

ଶକୁଳାଦନୀ —ସଂ. ବି.—(ଶକୁଳ=ଶେଉଳମାଛ+ଅଦନ=ଭକ୍ଷଣ+ Śakuḻādanī ଈ; ଶେଉଳମାଛର ଖାଦ୍ୟ)—୧ । କେଞ୍ଚୁଅ; କେଞ୍ଚୁଅ; काचडाम; कानशिवे ଗଣ୍ଡୂପଦ—1. Earthworm. ୨ । जलचौलाई କଟୁଟ; କଳଣିର ଲତା—2. A sort of creeper; Commolyna Bengalensis. ୩ । ଜଳପିପ୍ପଳୀ; କଳମ ଶାଗ—3. An aquatic creeper, the pond weed; purple Lippia.) ୪ । କଟ୍ଫଳ; କାଫଳ—4. A medicinal bark; Myrica Sapida; Myrica Nagi. ୫ । କଟୁକୀ (ଜ୍ୟୋ. ଶ.)- 5. Black hellebore. ୬ । ଗଜପିପ୍ପଳୀ (ଜ୍ୟୋ. ଶ.) 6. Scidapus Officinalis. ୭ । ଗଣ୍ଡଦୂର୍ବା (ଜ୍ୟୋ.ଶ) 7. Dactylon cynoden. ୮ । ଜଟାମାଂସୀ (ଜ୍ୟୋ.ଶ) 8. Indian spikenard.

ଶକୁଳାର୍ଭକ --ସଂ. ବି.—(ଶକୁଳ=ଶେଉଳ+ଅର୍ଭକ=ଶିଶୁ; ୬ଷ୍ଠୀ Śakuḻārbhaka ତତ୍)—୧ । ଶେଉଳ ଛୁଆ; ଶେଉଳଶାବକ; ଚଡଇ गडुइ 1. Small śeuḻa fish. ୨ । ଗଡ଼ିଶ; ଗଡ଼ିଶ; ଗଡ଼େଇ ମାଛ—2. Ophicephalus Punctatus. [ଦ୍ର—ଏହି ମାଛମାନେ ଦୈର୍ଘ୍ୟରେ ୧ ଫୁଟ୍ ପର୍ଯ୍ୟନ୍ତ ବଢ଼ନ୍ତି, ଆକାର ଶେଉଳ ମାଛ ପରି; କିନ୍ତୁ ଅଧିକ ଫଟା । ପିଠି ଈଷତ୍ ଶାଗୁଆ ଓ ପେଟ ଧଳା; ମୁଣ୍ଡ ପାଖରେ କଳା ଡୋରି ଥାଏ ।]

ଶକୁଳାହନୀ - ସଂ. ବି—ଜଳ ପିପ୍ପଳୀ ( ଜ୍ୟୋ. ଶ )—Lippia Nodi-
Śakuḻāhanī flora (aquatic plant)

ଶକୁଳୀ – ସଂ. ବି.—୧ । ଶାକୁଳ ମାଛ (ଜ୍ୟୋ. ଶ)—1. Stingray.
Śakuḻī fish; the sea-devil fish. ୨ । ପୌରାଣିକ ନଦୀ ବିଶେଷ (ଜ୍ୟୋ. ଶ)—2. Name of a mythological river. ୩। ଶେଉଳମାଛ—3. Ophicephalus Striatus (fish).

ଶକୃତ୍—ସଂ. ବି.— (ଶକ୍ ଧାତୁ=ଉତ୍ସୃଷ୍ଟ ହେବା+କର୍ତ୍ତୃ. ଋତ୍ )—
Śakṛut ୧ । ପୁରୀଷ;ମଳ;ବିଷ୍ଠା—1. Night soil; foecus; excrement ୨ । ଗୋବର ( ଜ୍ୟୋ ଶ )—2. Cowdung.

ଶକୃତ୍କରି – ସଂ. ବି. ପୁଂ --(ଶକୃତ୍+କୃ ଧାତୁ + କର୍ତ୍ତୃ ଇ; )—
Śakṛutkari (ଶକୃତ୍କରୀ—ସ୍ତ୍ରୀ) ଗୋବତ୍ସ; ବାଛୁରୀ—Calf.

ଶକୃଦ୍ଦ୍ୱାର —ସଂ. ବି.—(୬ଷ୍ଠୀ ତତ୍; ଶକୃତ୍+ଦ୍ୱାର)—ମଳ ଦ୍ୱାର—
Śakṛuddwāra (ଶକୃଦ୍ଦେଶ – ଅନ୍ୟରୂପ)—The anus.

ଶକୃନ୍ମୂତ୍ର—ସଂ. ବି—( ଶକୃତ୍+ମୂତ୍ର; ଦ୍ୱନ୍ଦ୍ୱ )—ମଳ ମୂତ୍ର—Faces
Śakṛunmūtra and urine.

ଶକେଇବା —ଦେ, କ୍ରି—( ଧ୍ୱନ୍ୟନୁକରଣ )—ନିଃଶ୍ୱାସରୋଧ ପୂର୍ବକ
Śakeibā କ୍ରନ୍ଦନର ଧାରକୁ ମଝିରେ ମଝିରେ ବନ୍ଦ କରି କାନ୍ଦିବା; (ଶକେଇ ହେବା—ଅନ୍ୟରୂପ) ତାହାର କ୍ରନ୍ଦନ ଧ୍ୱନି କରିବା— क(को)कान सिसकना To sob; to cry with sobs.

ଶକେଇ—ଦେ. ବି. ସ୍ତ୍ରୀ—ଯେଉଁ ବାଳିକା ବା ସ୍ତ୍ରୀ ଶକେଇ କରି
Śakei କାନ୍ଦେ—A sobbing girl or woman.

कॉंहने सिसकनेवाली ଦେ. ବଣ ସ୍ତ୍ରୀ—Sobbing (woman or girl).

**ଶକେଇ ନାଣି**—ଦେ. ବ.—(ବ୍ୟଙ୍ଗ୍ୟ)—ଶକେଇ (ଦେଖ)—
Śakei nāni Sakei (See).

**ଶକ୍କର୍**—ଦେ.ବ.—(ସଂ.ଶର୍କରା)—୧ । ଗୁଡ଼; ଗୁଳ—1.Molasses.
Śakkar ୨ । ଖଣ୍ଡ—2. Powdered sugar.

**ଶକ୍କର (ରି)**—ସଂ. ବ. ପୁଂ—( ଶକ୍ ଧାତୁ+କର୍ତ୍ତୃ. କର )—୧ । ବୃଷ;
Śakkara(ri) ଷଣ୍ଢ—1. Bull. ୨ । ଶକ୍କର୍ (ଦେଖ)—
2. Śakkar (See).

**ଶକ୍କରୀ**—ସଂ. ବ. ସ୍ତ୍ରୀ—(ଶକ୍କର+ଈ)—୧ । ଚଣ୍ଡାଳୀ, ଚଣ୍ଡାଳୁଣୀ—
Śakkari 1. A woman of the Chandāla caste.
[ବି—ଶୂଦ୍ର ପିତା ଓ ବ୍ରାହ୍ମଣୀ ମାତାଠାରୁ ଉତ୍ପନ୍ନ ଜାତି]—
୨ । କେତେକ ସଂସ୍କୃତ ଛନ୍ଦର ନାମ—2. Name of some Sanskrit metres. [ ବ—ଏହା ୧୪ ଅକ୍ଷର ବିଶିଷ୍ଟ ଛନ୍ଦ; ବସନ୍ତତିଳକା, ଅପରାଧା, ଅପରାଜିତା, ପ୍ରହରଣ କଳିକା, ବାସନ୍ତୀ, ମଞ୍ଜରୀ, କୁଟିଳ, ଇନ୍ଦୁବଦନା, ଚକ୍ର, ନାନ୍ଦୀମୁଖ, ଲଳି, ଆନନ୍ଦ । ଏହି ଛନ୍ଦମାନଙ୍କ ମଧ୍ୟରେ ବସନ୍ତତିଳକା ପ୍ରସିଦ୍ଧ—ହି. ଶ ।] ୩ । ମେଖଳା; ଚନ୍ଦ୍ରହାର—3. Waist-chain; a girdle. ୪ । ପ୍ରାଚୀନ ନଦୀ ବିଶେଷ (ଦ୍ବି. ଶ)—4. Name of an ancient river.

**ଶକ୍କୀ**—ବୈଦେ.ବଣ (ଅଂ.ଶକ୍କୀ)—ସନ୍ଦେହପ୍ରବଣ—Of a suspect-
Śakki शक्की ing nature.

**ଶକ୍ତ**—ସଂ. ବଣ. ପୁଂ—( ଶକ୍ ଧାତୁ+କର୍ତ୍ତୃ. ତ )—୧ । ପାରଗ—
Śakta 1. Competent. ୨ । ସମର୍ଥ—2. Able. ୩ ।
(ଶକ୍ତା—ସ୍ତ୍ରୀ) କର୍ମଠ; ପରିଶ୍ରମୀ—3. Laborious; diligent.
୪ । ଦୃଢ଼; ଟାଣୁଆ; କଠୋର; କଠିନ—4. Strong; hardy; muscular; hard; tight; tough.
୫ । ପ୍ରିୟଂବଦ; ମିଷ୍ଟଭାଷୀ—5. Of sweet speech.
୬ । ଶକ୍ତିଯୁକ୍ତ; ଶକ୍ତିମାନ୍; ବଳବାନ୍; ପରାକ୍ରମୀ; କ୍ଷମତାଶାଳୀ; ବଳୁଆ—6. Powerful; potent. ବୈଦେ.
शक्त सख्त ବଣ (ଫା. ସଖ୍ତ୍) ୧ । ଖୁବ୍ ବଡ଼—1. Very big.
(ଯଥା—ଶକ୍ତ ମାଛ) । ୨। ଅତ୍ୟଧିକ—2. Excessive.
(ଯଥା—ଶକ୍ତ ପରିଶ୍ରମ) । ୩ । ଗୁରୁତର—3. Very serious; critical. (ଯଥା—ଶକ୍ତ ବେମାର) । ୪।
ଶ୍ରମସାଧ୍ୟ—4. Involving labour. (ଯଥା—ଶକ୍ତ ସଜା)—୫ । ଦୃଢ଼; କଠିନ—5. Hard.
ଦେ. କ୍ରି. ବଣ ଓ ବଣର ବଣ—୧ । ଅତି; ଅତ୍ୟନ୍ତ—
शक्त सख्त 1 Very. (ଯଥା—ଶକ୍ତବଡ଼) ୨ । ଦୃଢ଼ରୂପେ-
2 Strongly.

**ଶକ୍ତ କଥା**—ଦେ· ବ. (ଅ. ସଖ୍ତ୍+ସଂ. କଥା)—୧ । ଗୁରୁତର ବିଷୟ
Śakta kathā 1. Serious matter. ୨ । ଅସାଧ୍ୟ ବା କଷ୍ଟ-
शक्तकथा सख्तबात् ସାଧ୍ୟ ବିଷୟ—2. A difficult matter.

**ଶକ୍ତତା**—ସଂ. ବ.—(ଶକ୍ତ+ତା, ଭାବାର୍ଥେ)—୧ । ଦୃଢ଼ତା; କାଠିନ୍ୟ;
Śaktatā କଠୋରତା—1. Hardness; toughness. ୨ ।
ବଳ; ସାମର୍ଥ୍ୟ—2. Ability; strength; competence.

**ଶକ୍ତ ଦଣ୍ଡ**—ଦେ. ବ —ଗୁରୁତର ଦଣ୍ଡ; କଠୋର ଦଣ୍ଡ—Hard or
Śakta danda severe punishment.
शक्तदण्ड सख्त दंड

**ଶକ୍ତ ପରିଶ୍ରମ**—ଦେ. ବ.—କଠିନ ପରିଶ୍ରମ—Hard labour.
Śakta pariśrama শক্ত পরিশ্রম सख्त परिश्रम
(ଶକ୍ତ ପରିଶ୍ରମୀ—ବଣ)

**ଶକ୍ତ ବଡ଼**—ଦେ. ବଣ.—ଅତି ବଡ଼; ଖୁବ୍ ବଡ଼—Very big.
Śakta barda शक्तबड बहुतबडा

**ଶକ୍ତ ବେମାର**—ବୈ ଦେ. ବଣ—୧ । ଗୁରୁତର ଭାବରେ ପୀଡ଼ିତ—
Śakta bemār शक्तबेमार सख्तबीमार Seriously ill.
(ଶକ୍ତ ବେମାର—ଦେ. ରୂପ)

**ଶକ୍ତ ବେମାରି**—ବୈଦେ. ବ (ଫା. ସଖ୍ତ ବିମାରୀ)—ଗୁରୁତର ପୀଡ଼ା-
Śakta bemāri (ଶକ୍ତ ବେମାରି—ଦେ. ରୂପ) Serious
शक्तबेमारी सख्तबिमारी illness.

**ଶକ୍ତର ଭକ୍ତ**—ଦେ.ବ.—(ପ୍ରବଚନ; ବଙ୍ଗଳାରୁ ଅନୁକୃତ)—ସଂସାରରେ
Śaktara bhakta ସମସ୍ତେ ଶକ୍ତିଶାଳୀ ଲୋକଙ୍କୁ ପୂଜା କରନ୍ତି
শক্তের ভক্ত शक्तकाभक्त ବା ଡରନ୍ତି । (Proverb) The world worships power.

**ଶକ୍ତ ମି(ମେ)ହନ୍ତ**—ବୈ ଦେ. ବ—(ଫା. ସଖ୍ତ ମିହନତ୍ )—ଶକ୍ତ
Śakta mi(me)hanta ପରିଶ୍ରମ (ଦେଖ) Śakta
शक्त मेहनत सख्तमिहनत pariśrama (See)
(ଶକ୍ତମେହନତ—ଅନ୍ୟରୂପ)

**ଶକ୍ତ ଲୋକ**—ଦେ· ବ.—୧ । କ୍ଷମତାଶାଳୀ ବ୍ୟକ୍ତି; ପରାକ୍ରମୀ ବ୍ୟକ୍ତି—
Śakta loka शक्तलोक सख्तआदमी 1. Powerful person. ୨ । ଯାହା ସଙ୍ଗେ ବ୍ୟବହାର କରିବା ବା ଚଳିବା କଷ୍ଟକର—2. Difficult or hard to deal with.

**ଶକ୍ତ ସଜା**—ବୈଦେ. ବ. ( ଫା. ସଖ୍ତ+ସଜା )—କଠିନ ଦଣ୍ଡ—
Śakta sajā Severe punishment.
शक्तसाजा सख्तसज़ा

**ଶକ୍ତାଇ**—ଦେ. ବ.—(ଅଂ ସଖ୍ତ୍ )—କଠିନତା; ଦୃଢ଼ତା—Hard-
Śaktāi कठिनता सख्ताई ness.

**ଶକ୍ତି**—ସଂ. ବ.—(ଶକ୍ ଧାତୁ=ପାରିବା, ସମର୍ଥ ହେବା+ଭାବ ତି)—
Śakti ୧ । କ୍ଷମତା; ଅଧିକାର 1. Power; control.
୨ । ତତ୍ତ୍ୱ (୧୪) (ଦେଖ)—2. Tattwa (14) (See). [ ଯି—ଅମୂଲ୍ୟ ସିଂହାସନେ ସ୍ଥିତ, କେଷ୍ଟିତ ପଞ୍ଚଦଶ ଶକ୍ତି ଚକ୍ରେ ଥ—ଭାଗବତ ।] ୩ । ସାମର୍ଥ୍ୟ; ପାରିବା ପଣ—3. Ability; energy; effeciency.
୪ । ପରାକ୍ରମ; ବଳ, 4. Strength; potency; might; force. ୫ । ଶାରୀରିକ ବଳ । 5. Phy-

sical strength. ୬ । ରାଜଶକ୍ତି; ରାଜାଙ୍କର ଯେଉଁ ପରାକ୍ରମ ବଳରେ ସେ ଶତ୍ରୁଙ୍କୁ ଜୟ କରନ୍ତି । 6. Majesty; kingly power derived from energy, good counsel and courage. [ଦ୍ର—ପ୍ରଭୁଶକ୍ତି ବା ପ୍ରଭାବଜ ଶକ୍ତି; ମନ୍ତ୍ର ଶକ୍ତି ବା ମନ୍ତ୍ରଜ ଶକ୍ତି ଓ ଉତ୍ସାହ ଶକ୍ତି ବା ଉତ୍ସାହଜ ଶକ୍ତି ଭେଦରେ ରାଜଶକ୍ତି ତିନି ପ୍ରକାର; କୋଷ ଓ ଦଣ୍ଡ ସମ୍ବନ୍ଧୀୟ ଶକ୍ତି ପ୍ରଭୁ ଶକ୍ତି; ସନ୍ଧି ଓ ବିଗ୍ରହାଦି ସମ୍ବନ୍ଧୀୟ ଶକ୍ତି ମନ୍ତ୍ର ଶକ୍ତି; ପରାକ୍ରମ ପ୍ରକଟିତ କରିବା ଓ ବିଜୟ ଲାଭ କରିବା ଶକ୍ତି ଉତ୍ସାହ ଶକ୍ତି ଅଟେ] ୭ । ବଳ ଓ ପରାକ୍ରମୀ ରାଜ୍ୟ; ଯେଉଁ ରାଜ୍ୟର ଖୁବ୍ ଧନ ବଳ ଓ ସେନା ବଳଅଛି (ହି ଶ) 7. Power; powerful state. ୮ । ଲୌହ ନିର୍ମିତ ମୁନିଆ ଅସ୍ତ୍ର ବିଶେଷ—8. A pointed iron weapon.

[ଦ୍ର—ଶକ୍ତି ପ୍ରାଚୀନ ଭାରତରେ ପ୍ରଚଳିତ ଯୁଦ୍ଧାସ୍ତ୍ର-ବିଶେଷ । ଏହା ଦୁଇ ହାତରୁ ଅଧିକ ଲମ୍ବ ନୁହେଁ । ଦେଖିବାକୁ ଏହା ସିଂହମୁଖାକୃତି, ତୀକ୍ଷ୍ଣନଖର ଓ ଜିହ୍ବା-ବିଶିଷ୍ଟ । ମୁଠାଇ କରି ଧରିବାପାଇଁ ଏହାର ବଡ଼ ବେଣ୍ଟ ଥାଏ । ଏଥିରେ ଘଣ୍ଟି ମଧ୍ୟ ଲାଗିଥାଏ । ଏହାକୁ ବୁଲାଉଲା-ବେଳେ ଘଣ୍ଟି ବାଜେ । ଦୁଇ ହାତରେ ଏହାକୁ ବୁଲାଇ ଶତ୍ରୁ ଉପରକୁ ଫୋପାଡ଼ିବାକୁ ହୁଏ । ସେତେବେଳେ ଏହା ତିର୍ଯ୍ୟକ୍ ଭାବରେ ଗତି କରେ । ଇନ୍ଦ୍ରଜିତର ଏହି ଶକ୍ତି ଦ୍ୱାରା ବିଦ୍ଧ ହୋଇ ଲକ୍ଷ୍ମଣ ରଣଭୂମିରେ ମୂର୍ଚ୍ଛିତ ହୋଇ ପଡ଼ିଥିଲେ ।] ୯ । ଲୌହର ଶାବଳ—9. A crow-bar of iron. ୧୦ । (ନ୍ୟାୟ) ହେତୁର ହେତୁଭୂତଧର୍ମ; କାର୍ଯ୍ୟୋତ୍ପାଦନଯୁକ୍ତ ଧର୍ମ—10.(Hindu philosophy) Energy which results in action. ୧୧ । (ପଦାର୍ଥ ବିଜ୍ଞାନ) ଜଡ଼ ପଦାର୍ଥର ଅନ୍ୟ ପଦାର୍ଥ ଉପରେ ପ୍ରଭାବ ବିସ୍ତାରକ କାର୍ଯ୍ୟକାରୀ ପ୍ରଭାବ—11. (physics) The energy or latent power or potentiality which is existent in a thing ୧୨ । (ନ୍ୟାୟ ଦର୍ଶନ) ପ୍ରକୃତି, ଯାହା ପୁରୁଷ ସଙ୍ଗେ ମିଳିତ ହେବାରୁ ଏ ସୃଷ୍ଟି ହୋଇଅଛି—12. (Nyāya philosophy) The prime energy of matter from which the world was created; the nature. ୧୩ । (ବ୍ୟାକରଣ) ଶବ୍ଦର ବୃତ୍ତିବିଶେଷ; ଶବ୍ଦବିଶେଷର ଅର୍ଥବିଶେଷ ବୋଧ କରାଇବାର କ୍ଷମତା—13. (Grammar) The potency of a word to convey a certain meaning; the import of a word. [ଦ୍ର—ଶବ୍ଦାଲଙ୍କାରରେ ଏହା ତ୍ରିବିଧ; ଯଥା—ଅଭିଧା, ଲକ୍ଷଣା ଓ ବ୍ୟଞ୍ଜନା । ଅଭିଧା ଶକ୍ତି ଦ୍ୱାରା ଶବ୍ଦର ବ୍ୟୁତ୍ପତ୍ତିମୂଳକ ଅର୍ଥ ଜଣାଯାଏ । ଲକ୍ଷଣାଦ୍ୱାରା ଲକ୍ଷିତ ଅର୍ଥ ଏବଂ ବ୍ୟଞ୍ଜନାଦ୍ୱାରା ବ୍ୟଙ୍ଗ୍ୟାର୍ଥ ଜଣାଯାଏ ।] ୧୪ । ଦୁର୍ଗା—14. Goddess Durgā.

୧୫ । ତନ୍ତ୍ରମତରେ ଗୌରୀ ବା ପାର୍ବତୀଙ୍କର ଭିନ୍ନ ଭିନ୍ନ ରୂପ—15. The differnt incarnations of Pārbati as worshipped according to Tantras. [ଦ୍ର—ତନ୍ତ୍ରମତାନୁସାରେ ପାର୍ବତୀଙ୍କର ବିଭିନ୍ନରୂପ ବା ଅବତାର ଶକ୍ତି ନାମରେ ଅଭିହିତ; ଯଥା—ଦଶ ମହାବିଦ୍ୟା, ଚଣ୍ଡୀ, କାଳୀ ଓ ଦୁର୍ଗା ଇତ୍ୟାଦି ।] ୧୬ । ସ୍ତ୍ରୀ ଯୋନି ଅକୃତିବିଶିଷ୍ଟ ଗୌରୀପଟ୍ଟ, ଯହିଁର ମଧ୍ୟସ୍ଥ ଛିଦ୍ରରେ ଶିବଲିଙ୍ଗ ସ୍ଥାପିତ ହୁଏ—16. The phallus or a representation of the female organ in which the Linga of Śiba is erected. [ଦ୍ର—ହିନ୍ଦୁମାନଙ୍କ ମତରେ ଲିଙ୍ଗରୂପୀ ଶିବ ବା ଈଶ୍ୱର ପୁରୁଷ ଓ ଯୋନିରୂପିଣୀ ଶକ୍ତି ପ୍ରକୃତି । ଏହି ଦୁହିଙ୍କ ସଙ୍ଗମରେ ସୃଷ୍ଟିର ଉତ୍ପତ୍ତି । ଏହାହିଁ ଶକ୍ତି ମଧ୍ୟସ୍ଥିତ ଶିବ ଲିଙ୍ଗର ଆଧ୍ୟାତ୍ମିକ ଅର୍ଥ । ହିନ୍ଦୁଶାସ୍ତ୍ର ଅନୁସାରେ ଶକ୍ତି ବିଷ୍ଣୁଙ୍କ ଅଙ୍ଗ-ସମ୍ଭୂତା ଦେବୀ । ପ୍ରକୃତିରୂପିଣୀ ଏହି 'ଶକ୍ତି'ଙ୍କ ଦ୍ୱାରା ଭଗବାନ୍ (ପୁରୁଷ) ଜଗତ୍ ସୃଷ୍ଟି କରିଅଛନ୍ତି, ମାୟା-ରୂପିଣୀ ଏହି 'ଶକ୍ତିଙ୍କ' ଦ୍ୱାରା ଜଗତକୁ ପାଳନ କରୁଅଛନ୍ତି ଏବଂ ସଂହାରରୂପିଣୀ ଏହି 'ଶକ୍ତି'ଙ୍କ ଦ୍ୱାରା ଜଗତକୁ ବିନାଶ କରୁଅଛନ୍ତି । ଏହି ସୃଷ୍ଟି ସ୍ଥିତି ପ୍ରଳୟ ଅବହମାନକାଳରୁ ଲାଗିଅଛି ଓ ଲାଗିଥିବ । ଫଳତଃ ଏକହିଁ ଈଶ୍ୱରଙ୍କର ସୃଷ୍ଟି-କାରିଣୀ ଶକ୍ତି—ବ୍ରହ୍ମା, ପାଳନକାରିଣୀ ଶକ୍ତି—ବିଷ୍ଣୁ ଓ ସଂହାରକାରିଣୀ ଶକ୍ତି ଶିବ ଅଟନ୍ତି । ଅତଏବ ଏହି ଶକ୍ତିଙ୍କୁ 'ଆଦ୍ୟା ଶକ୍ତି' ବୋଲାଯାଏ ଏବଂ ଏ ମହାଦେବଙ୍କ ସ୍ତ୍ରୀରୂପେ କଳ୍ପିତା । ସୃଷ୍ଟି ସ୍ଥିତି ପ୍ରଳୟ ଏହି ଶକ୍ତିଙ୍କଦ୍ୱାରା ଘଟିଅଛି । 'ତନ୍ତ୍ର' ପ୍ରବର୍ତ୍ତନ ଦ୍ୱାରା ଭାରତରେ ଶକ୍ତି ଉପାସନା ବିଶେଷ ଭାବରେ ପ୍ରଚଳିତ ହୋଇଥିଲା ଓ କ୍ରମଶଃ ତାନ୍ତ୍ରିକ ଶକ୍ତି—ଉପାସନାର ଦୋହାଇ ଦେଇ ଶାକ୍ତମାନେ ମଦ୍ୟ, ମାଂସ, ମୈଥୁନ, ମତ୍ସ୍ୟ ଓ ମୁଦ୍ରା । ଆଦିର ଭକ୍ତ ହୋଇ ଉଠିଲେ । ଉତ୍କଳର କୁଳୀନ ବ୍ରାହ୍ମଣମାନେ ଏହି ଶକ୍ତିଙ୍କ ଉପାସକ ବା ଶାକ୍ତ ମତାବଲମ୍ବୀ ଅଟନ୍ତି ।] ୧୭ । ଲକ୍ଷ୍ମୀ—17. Goddess Lakshmī. ୧୮ । ସ୍ତ୍ରୀ ଦେବତା; ଦେବୀ—18. A female Deity; Goddess. ୧୯ । କୌଣସି ବିଶିଷ୍ଟ କର୍ମସାଧନାର୍ଥ ବିଶିଷ୍ଟ ଦେବତାଙ୍କ ପରାକ୍ରମ (ଯଥା—ବୈଷ୍ଣବୀଶକ୍ତି; ରୌଦ୍ରୀଶକ୍ତି)—19. The particular power of a particular Deity; the powers of individual Deities personified. [ଦ—ହିନ୍ଦୁପୁରାଣରେ ଭିନ୍ନ ଭିନ୍ନ ଦେବତାଙ୍କର ଭିନ୍ନ ଭିନ୍ନ ଶକ୍ତି ଓ ଶକ୍ତିମାନଙ୍କର ଭିନ୍ନ ଭିନ୍ନ ଆକାର ଓ ବାହନ କଳ୍ପିତ ହୋଇଅଛି । ଏମାନଙ୍କୁ ଦେବୀ ରୂପରେ କଳ୍ପନା କରାଯାଇ ଅଛି । ଚଣ୍ଡୀ ପୁରାଣର ଅଷ୍ଟମ ଅଧ୍ୟାୟରେ ୧୩ଶଠାରୁ ୨୧ଶ ଶ୍ଳୋକ ପର୍ଯ୍ୟନ୍ତ ବିଷ୍ଣୁ ଶକ୍ତି, ବା ବୈଷ୍ଣବୀ ଶକ୍ତି, ଐନ୍ଦ୍ରୀଶକ୍ତି, ମାହେଶ୍ୱରୀ ଶକ୍ତି, କୈମାରୀଶକ୍ତିଙ୍କର ଯଥାକ୍ରମେ ରୂପ, ଅସ୍ତ୍ର

ଓ ବାହନର ବର୍ଣ୍ଣନା ଅଛି ।] ୨୦ । ତନ୍ତ୍ର ଅନୁସାରେ ଭିନ୍ନ ଭିନ୍ନ ପୀଠର ଅଧିଷ୍ଠାତ୍ରୀ ଦେବୀ, ଶାକ୍ତମାନେ ଯାହାଙ୍କ ଉପାସନା କରନ୍ତି (ହି. ଶ)—20. The presiding Goddesses of different Pithas. (ପୀଠ ତଳେ ଟୀକା ଦେଖ; See notes under Pitha) ୨୧ । (ତାନ୍ତ୍ରିକ ପରିଭାଷା) ନଟୀ, କାପାଳକୀ, ବେଶ୍ୟା, ଧୋବଣୀ, ଭଣ୍ଡାରୁଣୀ, ବ୍ରାହ୍ମଣୀ, ଶୂଦ୍ରା, ଗଉଡ଼ୁଣୀ, ମାଳୁଣୀ, ଯୁବତୀ, ରୂପବତୀ, ସୌଭାଗ୍ୟବତୀ ସ୍ତ୍ରୀ, ଯାହାଙ୍କୁ ତାନ୍ତ୍ରିକମତରେ ଦେବୀରୂପେ କଳ୍ପନା କରି ପୂଜା କରାଯାଏ (ହି· ଶ)—21. Some classes of females worshipped by Tāntrikas as Deities. ୨୨ । (ତନ୍ତ୍ର) ସ୍ତ୍ରୀ ଜନନେନ୍ଦ୍ରିୟ; ଭଗ (ହି. ଶ)—22. The female organ. ୨୩ । ଖଡ୍ଗ (ହି. ଶ)—23. Sword. ୨୪ । (ପୁ°) ପରାଶରଙ୍କ ପିତା (ହି. ଶ)—24. Name of the father of sage Parāśara. ଦେ ବି—କୌଣସି ଦେଶର ରାଜା ବା ଶାସକଙ୍କର ସୈନ୍ୟ ବା ବଳ—The army or force of a country. (ଯଥା—ମିତ୍ରଶକ୍ତିମାନେ ମିଳିତ ହୋଇ ଯୁଦ୍ଧ କଲେ ।)

**ଶକ୍ତିଆ(ୟା)**—ଦେ. ବଣ.—( ସ. ଶକ୍ତିମାନ୍ ) ୧ । ଶକ୍ତିଶାଳୀ—Śaktiā(yā) 1. Powerful; energetic. ୨ । ଶକ୍ତ; ମଜବୁତ—2. Very strong.

**ଶକ୍ତି ଉପାସକ**—ଦେ. ବଣ. ପୁ°—(ସ· ଶକ୍ତ୍ୟୁପାସକ)—ଶାକ୍ତ (ଦେଖ) Śakti upāsaka Śakta (See) [ ଶକ୍ତିଉପାସିକା—ସ୍ତ୍ରୀ ]

**ଶକ୍ତି ଉପାସନା**—ଦେ. ବି. (ସ. ଶକ୍ତ୍ୟୁପାସନା) – ତନ୍ତ୍ର ମତାନୁସାରେ Śakti upāsanā ଦୁର୍ଗାଙ୍କ ପୂଜା—The worship of Durgā according to the tantric rites.

**ଶକ୍ତିକ**—ଦେ. ବି—ଗନ୍ଧକ—Sulpher. [ ଦ୍ର—ପୁରାଣମତରେ Śaktika ପାରଦ ଶିବଙ୍କ ବୀର୍ଯ୍ୟ ଓ ଗନ୍ଧକ ପାର୍ବତୀ(ଶକ୍ତି)ଙ୍କ ରଜଃ ।]

**ଶକ୍ତିକର**—ସ ବଣ (ଶକ୍ତି+କୃ· ଧାତୁ+କର୍ତ୍ତୃ. ଅ)—ବଳପ୍ରଦ—Śaktikara Giving strength. (ଶକ୍ତିକରୀ—ସ୍ତ୍ରୀ) (ଶକ୍ତିକାରକ—ଅନ୍ୟରୂପ)

**ଶକ୍ତି କ୍ଷୟ**—ସ· ବି.—(୬ଷ୍ଠୀତତ୍)—ଶକ୍ତିର ବା ବଳର ବିନାଶ—Śakti kshaya Loss of power or energy. [ଶକ୍ତିନାଶ, ଶକ୍ତିହାନି, ଶକ୍ତିଲୋପ—ଅନ୍ୟରୂପ]

**ଶକ୍ତି ଗ୍ରହ**—ସ. ବଣ—(ଶକ୍ତି+ଗ୍ରହ୍ ଧାତୁ+କର୍ତ୍ତୃ. ଅ)—ଶକ୍ତିନାମକ Śakti graha ଯୁଦ୍ଧାସ୍ତ୍ରଧାରୀ—Armed with the weapon śakti. ସ. ବି—୧ । ଶିବ; ମହାଦେବ—1. Lord Śiba. [ ଦ୍ର—ମହାଦେବ 'ଶକ୍ତିଗ୍ରହ' ନାମରେ ଅଭିହିତ; କାରଣ ଏ ଶକ୍ତିରୂପିଣୀ ଦୁର୍ଗାଙ୍କୁ ଧାରଣ କରି ଅଛନ୍ତି ।] ୨ । ଶବ୍ଦର ଅଥବାତର ବୃତ୍ତିର ବା ଶକ୍ତିର ପରିଜ୍ଞାନ—2. The realisation of the import of a word. ୩ । କାର୍ତ୍ତିକେୟ—3. Kārttikeya, the son of Śiba. [ ଦ୍ର—ଏ ଶକ୍ତି ଅସ୍ତ୍ର ଧାରଣ କରି ଦେବାସୁର ଯୁଦ୍ଧରେ ଦେବ ସେନାଙ୍କର ନାୟକତ୍ୱ ଗ୍ରହଣ କରିଥିଲେ । ]

**ଶକ୍ତିଧର**—ସ. ବଣ. ପୁ°.—(ଶକ୍ତି+ଧୃ ଧାତୁ+କର୍ତ୍ତୃ. ଅ)—୧ । ଶକ୍ତି Śaktidhara ନାମକ ଅସ୍ତ୍ରଧାରୀ—1. Armed with the weapon Śakti. ୨ । ଶକ୍ତିଶାଳୀ—2. Powerful. ସ. ବି. ପୁ°—୧ । କାର୍ତ୍ତିକେୟ—1. Kārtikeya, the son of Śiba. ୨ । ଶିବ; ମହାଦେବ—2. Śiba.

**ଶକ୍ତିଧ୍ୱଜ**—ସ. ବି.—(ବହୁବ୍ରୀହି)—କାର୍ତ୍ତିକେୟ (ହି. ଶ.)—Śakti dhwaja Kārttikeya.

**ଶକ୍ତିପର୍ଣ୍ଣ**—ସ ବି.—ଛତିଆନା; ସପ୍ତପର୍ଣ୍ଣ ବୃକ୍ଷ (ହି. ଶ )—Śaktiparnna Echites Scholaris (tree).

**ଶକ୍ତି ପାଇବା**—ଦେ· କ୍ରି—କ୍ଷମତାଦ୍ୱାରା ଭୂଷିତ ହେବା—To be Śakti pāibā endowed with power or force. ଦେ. ବି.—କୌଣସି କାର୍ଯ୍ୟ କରିବା ପାଇଁ ସମର୍ଥ ହେବା—Ability to do a thing. [ ଯଥା—ଏ ପଥରଟି ଟେକି ଉଠାଇବାକୁ ମୋର ଶକ୍ତି ପାରୁ ନାହିଁ । ଏତେ ଟଙ୍କା ଖର୍ଚ୍ଚ କରିବାକୁ ମୋର ଶକ୍ତି ପାରୁ ନାହିଁ ।]

**ଶକ୍ତି ପାଣି**—ସ ବଣ. ଓ ବି —(ବହୁବ୍ରୀହି)—ଶକ୍ତିଧର (ଦେଖ)—Śakti pāṇi Śaktidhara (See)

**ଶକ୍ତିପୂଜକ**—ସ. ବି. ପୁ°. (୬ଷ୍ଠୀତତ୍ )—ଶାକ୍ତ; ଦୁର୍ଗାଦେବୀଙ୍କ ଭକ୍ତ—Śakti pūjaka A devotee or worshipper of Durgā. (ଶକ୍ତି ପୂଜକା—ସ୍ତ୍ରୀ) (ଶକ୍ତ୍ୟୁପାସକ—ଅନ୍ୟରୂପ)

**ଶକ୍ତିପୂଜା**—ସ. ବି. ( ୬ଷ୍ଠୀତତ୍ ) ୧ । ଦୁର୍ଗାଦେବୀଙ୍କର ପୂଜା—Śakti pūjā 1. Worship of Goddess Durgā. (ଶକ୍ତ୍ୟୁପାସନା—ଅନ୍ୟରୂପ) ୨ । ତାନ୍ତ୍ରିକମତରେ କାଳୀ ଓ ଚଣ୍ଡୀଆଦି ଠାକୁରାଣୀଙ୍କ ପୂଜା (ତନ୍ତ୍ର ଦେଖ)—2. Worship of Deity Durgā according to Tantric rites.

**ଶକ୍ତିପୂର୍ବ**—ସ· ବି.—ପରାଶରଙ୍କ ଏକନାମ (ହି. ଶ)—A name of Śakti pūrba sage Parāśara.

**ଶକ୍ତିପ୍ରଦର୍ଶନ**—ସ· ବି. (ଷଷ୍ଠୀ ତତ୍)—କ୍ଷମତା ଦେଖାଇବା—Show of Śakti pradarśana force, exihibition of one's power or might.

**ଶକ୍ତିପ୍ରୟୋଗ**—ସ. ବି.—( ୬ଷ୍ଠୀ ତତ୍ )—ବଳ ପ୍ରୟୋଗ—Śakti prayoga Application of force.

**ଶକ୍ତିବନ୍ତ**—ଦେ. ବଣ—( ସ°. ଶକ୍ତିମତ୍ )—ଶକ୍ତିମନ୍ତ ( ଦେଖ ) Śakti banta शक्तिमन्त शक्तिमन्त Śaktimanta (See)

**ଶକ୍ତିବର୍ମନ୍**—ଦେ. ବି.–(ନାମ) କଳିଙ୍ଗର ଜନୈକ ରାଜା—Name Śaktibarman of a King of Kalinga [ଦ୍ର-ରାଗୋଲୁ ନାମକ ସ୍ଥାନରୁ ତାଙ୍କ ପ୍ରଦତ୍ତ ଗୋଟିଏ ତାମ୍ର ଶାସନ ମିଳିଅଛି—କେଦାରନାଥ ମହାପାତ୍ର]

ଶକ୍ତିବାଦୀ—ସଂ. ବି. ପୁ.—ଶାକ୍ତ (ଦ୍ର. ଶ)—A worshipper of
Saktibādī (ଶକ୍ତିବାଦିନୀ—ସ୍ତ୍ରୀ) Sakti

ଶକ୍ତିବିଦ୍ଧ—ସଂ. ବିଣ. ପୁଂ—(ଶକ୍ତି ଦ୍ୱାରା ବିଦ୍ଧ; ୩ୟା ତତ୍)—ଶକ୍ତି
Sakti bidha ନାମକ ଅସ୍ତ୍ର ଯାହାର ଦେହକୁ ଭେଦ କରିଥାଏ—
Pierced by the Sakti weapon.
(ଶକ୍ତିବିଦ୍ଧା—ସ୍ତ୍ରୀ) (ଶକ୍ତିବେଧ — ବିଶେଷ୍ୟ)

ଶକ୍ତିବିହୀନ—ସଂ ବିଣ. ପୁଂ—(୩ୟା ତତ୍)—ଅସମର୍ଥ—Impotent.
Sakti bihīna (ଶକ୍ତି ବିହୀନା—ସ୍ତ୍ରୀ)

ଶକ୍ତିବୋଧ—ସ.ବି—(୬ଷ୍ଠୀ ତତ୍)—ଶବ୍ଦର ଅର୍ଥର ବୋଧ (ଦ୍ର. ଶ)—
Sakti bodha Comprehension of the meaning of a word.

ଶକ୍ତିଭୃତ୍—ସ. ବିଣ. ପୁଂ—(ଶକ୍ତି+ଭୃ ଧାତୁ+କର୍ତ୍ତୃ. କ୍ୱିପ୍)
Sakti bhṛut ଶକ୍ତିଶାଳୀ—Powerful; energetic.
ବି—ଦେବତାଙ୍କ ସେନାପତି କାର୍ତ୍ତିକେୟ—Kārttikeya
the commander-in-chief of the forces of the Gods.

ଶକ୍ତିଭେଦ—ସ.ବି.—(୩ୟା ତତ୍) କାହାର ଯୋଗୁଁ ଦ୍ୱାରା ପ୍ରେରିତ ଶକ୍ତି
Sakti bheda ନାମକ ଅସ୍ତ୍ର ବିପକ୍ଷର ଶରୀରରେ ବିଦ୍ଧ ହେବା—
The piercing of the Sakti weapon into the body of a person against whom it is thrown.
[ଦ୍ର—ରାବଣପୁତ୍ର ଇନ୍ଦ୍ରଜିତ୍ ଲକ୍ଷ୍ମଣଙ୍କ ପ୍ରତି ଏହି ଶକ୍ତି ଅସ୍ତ୍ର ପ୍ରୟୋଗ କରିଥିଲେ । ଶକ୍ତିଭେଦ ଫଳରେ ଲକ୍ଷ୍ମଣ ମୂର୍ଚ୍ଛିତ ଏବଂ ମୃତପ୍ରାୟ ହୋଇଥିଲେ । ହନୁମାନ୍ ସତ୍ୱର ଭାରତରେ ଗନ୍ଧମାଦନ ପର୍ବତକୁ ଲଙ୍କାକୁ ବହି ଆଣିବାରୁ ତହିଁରେ ଥିବା ଅମର ମହୌଷଧି ଲକ୍ଷ୍ମଣଙ୍କଠାରେ ପ୍ରୟୋଗ କରାଗଲା ଏବଂ ତହିଁ ବଳରେ ସେ ବଞ୍ଚିଲେ । ଏହି ଘଟଣାକୁ ଲକ୍ଷ୍ମଣଙ୍କ ଶକ୍ତିଭେଦ ବୋଲାଯାଏ ]

ଶକ୍ତିମତ୍—(ଶବ୍ଦ) ସଂ. ବିଣ—(ଶକ୍ତି+ଅସ୍ତି ଅର୍ଥରେ ମତ୍)—୧ ।
Saktimat କାର୍ଯ୍ୟଦକ୍ଷ—1 Competent. ୨ । ବଳବନ୍ତ;
(ଶକ୍ତିମାନ୍—ପୁଂ;ଶକ୍ତିମତୀ ସ୍ତ୍ରୀ) କ୍ଷମତାଶାଳୀ; ଯାହାର ଶକ୍ତି ଅଛି—
2. Potential; powerful; energetic.

ଶକ୍ତିମତ୍ତା(ତ୍ୱ)—ସଂ. ବି.—(ଶକ୍ତିମତ୍+ଭାବାର୍ଥେ ତା)—୧। କାର୍ଯ୍ୟଦକ୍ଷତା-
Saktimattā(ttwa) 1 Competence. ୨ । ଶକ୍ତିଶାଳତା—
2. The state or condition of being powerful; potentiality.

ଶକ୍ତିମନ୍ତ—ଦେ. ବିଣ—(ସ. ଶକ୍ତିମତ୍)—୧ । ଶକ୍ତିଶାଳୀ;
Saktimanta କ୍ଷମତାଶାଳୀ—1 Powerful; energetic
शक्तिमन्त शाक्तिमत [ଦ୍ର—ମହାଶକ୍ତିମନ୍ତ ତ ଅଟନ୍ତି ଦାନବେ—
କୃଷ୍ଣସିଂହ. ମହାଭାରତ ବନ । ୨ । ଧନଶାଳୀ; ଯେଉଁ
ବ୍ୟକ୍ତି ଧନ ସାହାଯ୍ୟରେ ନାନା କାର୍ଯ୍ୟ କରିବାକୁ ସମର୍ଥ—
2. Rich (person); capable of performing many works with the help of money

ଶକ୍ତିମୟ—ସ. ବିଣ—(ଶକ୍ତି+ପ୍ରାଚୁର୍ଯ୍ୟାର୍ଥେ ମୟ)—ସମର୍ଥ ବା
Saktimaya ସାମର୍ଥ୍ୟଯୁକ୍ତ; ଶକ୍ତିଶାଳୀ—Full of energy;
(ଶକ୍ତିମୟୀ—ସ୍ତ୍ରୀ) potential.

ଶକ୍ତିମାନ୍—ସ. ବିଣ. ପୁଂ—(ଶକ୍ତି+ମତ୍; ୧ମା ୧ବ)—ଶକ୍ତିଶାଳୀ,
Saktimān ବଳଶାଳୀ—Powerful; potent; strong.

ଶକ୍ତିମୂଳକ—ସ. ବିଣ—(ବହୁବ୍ରୀହି, ଶକ୍ତି+ମୂଳ+କ)—ଶକ୍ତି ବା
Saktimulaka ବଳ ଉପରେ ପ୍ରତିଷ୍ଠିତ—Founded on or originating from energy or power.

ଶକ୍ତିଯୁକ୍ତ—ସ. ବିଣ—(ଶକ୍ତି ଦ୍ୱାରା ଯୁକ୍ତ; ୩ୟା ତତ୍)—ଯାହାଠାରେ
Sakti jukta ଶକ୍ତି ବା କ୍ଷମତା ନିୟୋଜିତ ହୋଇଅଛି—
(ଶକ୍ତିଯୁକ୍ତା—ସ୍ତ୍ରୀ) To whom or which energy has been joined; endowed with energy or power.

ଶକ୍ତିରହିତ—ସ ବିଣ (ଶକ୍ତି+ରହିତ; ୩ୟା ତତ୍)—
Sakti rahita ସାମର୍ଥ୍ୟହୀନ; କ୍ଷମତାହୀନ; ଦୁର୍ବଳ—Power-
(ଶକ୍ତି ରହିତା—ସ୍ତ୍ରୀ) less; impotent; shorn or
(ଶକ୍ତିରାହିତ୍ୟ—ବିଶେଷ୍ୟ) devoid of energy.

ଶକ୍ତିଲୋପ—ସ. ବି—(ଶକ୍ତିର ଲୋପ; ୬ଷ୍ଠୀ ତତ୍)—ଶକ୍ତିର ବିନାଶ—
Sakti lopa Loss of energy; cessation of power or energy.

ଶକ୍ତିଶାଳୀ—ସ ବିଣ.ପୁଂ—(ଶକ୍ତି+ଅସ୍ତି ଅର୍ଥରେ ଶାଳିନ୍; ୧ମା ୧ବ)—
Saktisāli କ୍ଷମତାଶାଳୀ; ପରାକ୍ରମଶାଳୀ; କ୍ଷମତା ବା ସାମର୍ଥ୍ୟ
(ଶକ୍ତିଶାଳିନୀ—ସ୍ତ୍ରୀ) ବିଶିଷ୍ଟ—Powerful,energetic; having
(ଶକ୍ତିଶାଳିତା—ବି) the necessary ability.

ଶକ୍ତିଶୂନ୍ୟ—ସ. ବିଣ. ପୁ—(ଶକ୍ତି ଦ୍ୱାରା ଶୂନ୍ୟ; ୩ୟା ତତ୍)—ଶକ୍ତି
Sakti sunya ରହିତ (ଦେଖ)—Saktirahita (See).
(ଶକ୍ତିଶୂନ୍ୟା—ସ୍ତ୍ରୀ) (ଶକ୍ତିଶୂନ୍ୟତା—ବି)

ଶକ୍ତିଶେଲ—ଦେ. ବି—ଶକ୍ତିଭେଦ (ଦେଖ) (ଶକ୍ତିଙ୍କ ଦ୍ୱାରା ପ୍ରଦତ୍ତ
Sakti sela ଶେଲ, 'ଶେଲ' ସମ୍ଭୂତ ଶଲ୍ୟ ବା ଶୂଳ ଶବ୍ଦଜ ?
ମଧ୍ୟପଦ ଲୋପୀ; ବା ଶକ୍ତିରୂପକ ଶେଲ, ରୂପକ କର୍ମ-
ଧାରୟ)—ରାବଣ ପୁତ୍ର ଇନ୍ଦ୍ରଜିତ୍‌କୁ ଦୁର୍ଗାଙ୍କ ପ୍ରଦାନ
କରିଥିବା ଶକ୍ତି ନାମକ ଅସ୍ତ୍ର ବା ବାଣ । [ଦ୍ର—ଏହାକୁ
ଇନ୍ଦ୍ରଜିତ୍ ଲକ୍ଷ୍ମଣଙ୍କ ଉପରକୁ କ୍ଷେପଣ କରିବାରୁ ତାଙ୍କର
ଶକ୍ତିଭେଦ ହୋଇଥିଲା ।] The very powerful shaft or dart or weapon given by Goddess Durgā to Rābaṇa's son Indrajit which he threw at Laksmana and which pierced his heart and made him swoon.

ଶକ୍ତିଶୋଧନ—ସ. ବି (୬ଷ୍ଠୀ ତତ୍)—କୌଣସି ସ୍ତ୍ରୀଙ୍କୁ ଶକ୍ତିରୂପେ
Sakti sodhana ପୂଜା କରିବା ପୂର୍ବରୁ ତାଙ୍କୁ ଶୁଦ୍ଧ କରିବାରୂପ
ତାନ୍ତ୍ରିକ ବିଶିଷ୍ଟ କ୍ରିୟା (ଦ୍ର. ଶ)—Purificatory rites performed in respect of the female whom a Tāntrika worshipper worships as incarnation of Sakti.

ଶକ୍ତିଷ୍ଠ—ସଂ. ବଣ.ପୁ (ଶକ୍ତି+ସ୍ଥାଧାତୁ+କର୍ତ୍ତୃଅ)—ଶକ୍ତିମାନ୍(ବି.ଣ)—
Śaktishtha — Rowerful; strong; mighty.

ଶକ୍ତିସଂକେତ ( ସନ୍ଦର୍ଭ )—ଦେ. ବି—କୌଣସି ଦେଶର ବା ଜାତିର
Śakti saṁketa (sandarbha) ଶକ୍ତିର ସଙ୍କେତସୂଚକ ଚିହ୍ନ; ଜାତୀୟ ନିଶାଣ—Coat of arms: the heraldic bearing or igsignia or embroidered surcoat worn over the coat of mail of the warrior of a country or state, or nation. [ ଦ୍ର—ଶ୍ରୀଯୁକ୍ତ ନରସିଂହ ଗନ୍ତାଏତ, ବି.ଇ. ଓଡ଼ିଶାର 'ଶକ୍ତି ସଙ୍କେତ' ରୂପେ ନିମ୍ନଲିଖିତ ଚିହ୍ନଟି ଉଦ୍ଭାବନ କରିଅଛନ୍ତି: ଏ ଚିହ୍ନରେ ବ୍ରହ୍ମପୁରର 'ନିଉ ଓଡ଼ିଶା' ନାମକ ଇଂରାଜୀ ଦୈନିକ ସମ୍ବାଦପତ୍ରର କପି ରାଇଟ୍ (ମୁଦ୍ରଣାଧିକାର) ଥିବାରୁ ତାହାଙ୍କ ସମ୍ପାଦକ ଭାଷାକୋଷରେ ଏହା ପ୍ରକାଶ କରିବାକୁ ଅନୁମତି ଦେଇ ଅଛନ୍ତି ,—(ଶକ୍ତିସଙ୍କେତ—ଅନ୍ୟରୂପ)

ନିଉଓଡ଼ିଶାର ସମ୍ପାଦକଙ୍କ ପ୍ରଦତ୍ତ ବ୍ଲକ୍‌ରୁ ତାଙ୍କ ଅନୁମତି କ୍ରମେ ପ୍ରକାଶିତ ।

Published with the courtesy of the Editor "The New Orissa"

## ORISSA COAT OF ARMS.




'Once risen never sets'

## Orissa Coat of Arms.

(ଓଡ଼ିଶାର ଶକ୍ତିସଂକେତ ବା ଜାତୀୟ ନିଶାଣ)

Orta non occidit
or
Once Risen Never Sets.

This is the motto of the Orissa Coat of Arms designed by Mr. Narasinha Gantayat, Apprentice Civil Engineer, Orissa Central Civil Works. Late Reverend Father Bertram, Ex. Vice chancellor Madras University and Principal Layala College, Madras made its study as follows :—

1. Field—sky-blue.

2. At the bottom,—the sea with a barge (all natural colour), to signify the special features of Orissa,—extensive sea board. The barge is the symbol of the achievements of the Oriyas on the sea. The Oriyas were once a sea-faring race.

3. A silver chevron,—to separate the bottom of the shield from the upper part of it and to prevent the shield looking empty.

4. The two symbols representing two special features of Orissa :—

(i) Barabati fort, the stronghold of the kings of Orissa where the Oriyas saw a glorious past.

(ii) The famous Puri temple—a great social and religious centre. The cult of Jagannath is the symbol of Oriya culture which is a form of universal brotherhood. It is this peculiar trait of Oriya culture that makes the historic race distinguished among the races of India.

5. The gold star is the symbol of Orissa, its glory, the genius of its race etc. This star rises but does not set. It is the central object of the shield and gives it its significance. Hence the motto 'Orta non occidit' which means 'Risen once, it never sets.'

6. The cusp with two crossed swords is the symbol of the warlike character of the Oriyas and of their military glory. The two swords are fastened together to show unity; hence U. O.—United Orissa.

7. The fresh green leaves—sign of hope. The Oriyas will start revival of their past glory with full hope and confidence ;

Briefly, the different symbols of the cusp signity the past glory, the present hope and the future determination of the Oriyas.

*Note* :—The objects on the shield are only symbols; they need not necessarily be real pictures.

(Sd.) N Gantayet. B. E.
Apprentice Engineer,
Nauapara
Dt. Sambalpur.

## ଶକ୍ତି ସଙ୍କେତ (ସନ୍ଦର୍ଭ)

ବା

ଓଡ଼ିଶାର ଜାତୀୟ ନିଶାଣ (Orissa Coat of Arms)
'Orta non occidit' (once risen never sets)

ହୋଇଛି ବାରେ ଭବେ ଯାର ଉଦୟ
ଘଟିବ ନାହିଁ କେବେ ତାର ବିଲୟ ।

ଏହା ହେଉଛି 'ଓଡ଼ିଶାର ଜାତୀୟ ନିଶାଣ' ବା 'ଓଡ଼ିଶା ଶକ୍ତି ସଙ୍କେତର ଅଭୀଷ୍ଟ ମନ୍ତ୍ର । ଶ୍ରୀମାନ ନରସିଂହ ଗନ୍ତାୟତ ଏପ୍ରେଣ୍ଟିସ୍ ସିଭିଲ୍ ଇଞ୍ଜିନିଅର୍ ( Apprentice Civil Engineer), ଓଡ଼ିଶା ସେଣ୍ଟ୍ରାଲ୍ ପିଡବ୍ଲ୍ୟୁଡି ଓ୍ୱାର୍କ୍ସ୍ ଏହାର ଶିଳ୍ପୀ;ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ଭୂତପୂର୍ବ ଭାଇସ ଚାନ୍ସେଲର୍ ଓ ମାନ୍ଦ୍ରାଜ ଲୟୋଲା କଲେଜର ଭୂତପୂର୍ବ ପ୍ରଧାନ ଅଧ୍ୟାପକ ସ୍ୱର୍ଗତ ରେଭରେଣ୍ଡ୍ ଫାଦର୍ ବେଟ୍ରାମ୍ ନିମ୍ନ ମର୍ମରେ ଏହାର ସଂକ୍ଷିପ୍ତ ବ୍ୟାଖ୍ୟା କରିଅଛନ୍ତି ।

ଉକ୍ତ 'ଓଡ଼ିଶାର ଜାତୀୟ ନିଶାଣ'ର ସଂକ୍ଷିପ୍ତ ବର୍ଣ୍ଣନା ନିମ୍ନରେ ଦିଆଗଲା—

୧ । ପଟ୍ଟିର ଦେହର ବର୍ଣ୍ଣ—ସୁନୀଳ ଆକାଶର ବର୍ଣ୍ଣ ।

୨ । ତାହାର ତଳ ଭାଗରେ ସମୁଦ୍ର ଉପରେ କ୍ଷୁଦ୍ର ନୌକାଟିଏ ଭାସମାନ । (ସମଗ୍ର ଅଙ୍କିତ ରଙ୍ଗ ବିଶେଷ ପ୍ରାକୃତିକ ବୋଧ ହୁଏ) । ଓଡ଼ିଶାର ବିଶେଷତ୍ୱ ସୁବିସ୍ତୀର୍ଣ୍ଣ ଉପକୂଳ, ସମୁଦ୍ର ଓ ନଦୀ ନୌକାଦ୍ୱାରା ସୂଚିତ । ଦିନେ ଓଡ଼ିଆ ଜାତି ସମୁଦ୍ର ଯାତ୍ରାରେ ଅତୀବ ପାରଦର୍ଶୀ ଥିଲା । ସେହି ଜଳଯାତ୍ରାକୁଶଳ ଓଡ଼ିଆର କୃତିତ୍ୱ—ସୂଚକ ସଙ୍କେତ ପଟ୍ଟିରେ କ୍ଷୁଦ୍ର ନୌକା ରୂପେ ପ୍ରଦର୍ଶିତ । (ଅତୀତରେ ଉତ୍କଳୀୟମାନେ ଜଳଯାତ୍ରା ଯୋଗେ ସୁମାତ୍ରା, ବୋର୍ଣ୍ଣିଓ, ଯାବା ଓ ଅନ୍ୟାନ୍ୟ ଦ୍ୱୀପରେ କାରବାର କରି ଅଜସ୍ର ଧନ ଉପାର୍ଜନ କରୁଥିବାର ପ୍ରମାଣ ଓଡ଼ିଶା ଇତିହାସରୁ ଯଥେଷ୍ଟ ମିଳେ । ଶ୍ରୀମତୀ ଚନ୍ଦ୍ରମଣି ଦେବୀଙ୍କ କୃତ 'ନୀଳଗଗନ ତାରା'ରେ ଲିଖିତ ଅଛି—

ହେଉଥିଲା କାରବାର ରେ, ନୀଳଗଗନ ତାରା !
ସୁମିତ୍ରା, ବୋର୍ଣ୍ଣିଓ,ଜାବାଦ୍ୱୀପ ସହ ଆମରି ଧନ ଭଣ୍ଡାରରେ,
ନୀଳଗଗନ ତାରା !
ସାତ ସଉଦାଗର ଥାଇ ରେ, ନୀଳଗଗନ ତାରା !
ମୁଣ୍ଡାମୁଣ୍ଡା ସୁନା ଆଣୁଥିଲେ ନାବେ ବିଦେଶୁ ପାଲଟି ପାଲରେ,
ନୀଳଗଗନ ତାରା !

୩ । ଶିଖରାକୃତି ଶୁଭ୍ର ରଜତାଭ କଟିବନ୍ଧଟି ପଟ୍ଟିର ତଳଭାଗକୁ ତାହାର ଊର୍ଦ୍ଧ୍ୱ ଭାଗଠାରୁ ପୃଥକ୍ କରି ଛବିର କମନୀୟତା ସୃଷ୍ଟି କରିଅଛି ।

୪ । ଓଡ଼ିଶାର ଦୁଇଟି ସ୍ୱତନ୍ତ୍ର ବୈଶିଷ୍ଟ୍ୟ ଦୁଇଟି ସଙ୍କେତ ଦ୍ୱାରା ଚିହ୍ନିତ ହୋଇଅଛି—

ପ୍ରଥମଟି—ଓଡ଼ିଶାର ଅତୀତ ଗୌରବର ମୂକ ସାକ୍ଷୀ ଓ ଉତ୍କଳ ନରପତି ବୃନ୍ଦଙ୍କ ଅଭେଦ୍ୟ ଦୁର୍ଗ ବାରବାଟି ।

ଦ୍ୱିତୀୟଟି—ଧର୍ମ-ପୀଠ ଜଗତ୍ ପ୍ରସିଦ୍ଧ ପୁରୀମନ୍ଦିର । ଓଡ଼ିଆଙ୍କ ସାର୍ବଜନୀନମୈତ୍ରୀଭାବ ଓ ସଭ୍ୟତା ପୁରୀ ଜଗନ୍ନାଥଙ୍କ ପ୍ରବର୍ତ୍ତିତ ଧାରାରେ ଅନୁପ୍ରାଣିତ; ବିଶ୍ୱଭ୍ରାତୃତ୍ୱଭାବ ଓଡ଼ିଆ ସଭ୍ୟତାର ଏକ ବିଶେଷତ୍ୱ, ପୁଣି ଏହି ବୈଶିଷ୍ଟ୍ୟଗୁଣ ଯୋଗୁଁ ଭାରତର ଅନ୍ୟାନ୍ୟ ଜାତି ମଧ୍ୟରେ ଓଡ଼ିଆ ଜାତି ଅତି ଇତିହାସ ପ୍ରସିଦ୍ଧ ।

୫ । ଓଡ଼ିଶାର ଜାତୀୟ ପ୍ରତିଭା ଓ ଯଶଃକୀର୍ତ୍ତି ସ୍ୱର୍ଣ୍ଣ ନକ୍ଷତ୍ରଟି ଦ୍ୱାରା ସୂଚିତ ହୋଇଅଛି । ଏ ନକ୍ଷତ୍ର ଉଦୟ ହୋଇଅଛି କିନ୍ତୁ କଦାଚ ଅସ୍ତ ହେବ ନାହିଁ । ନକ୍ଷତ୍ରଟି ପଟ୍ଟିର ପ୍ରଧାନ ବସ୍ତୁରୂପେ ସନ୍ନିବିଷ୍ଟ ହୋଇ ପଟ୍ଟିଟିକୁ ଭାବରଞ୍ଜିତ କରିଅଛି । ଅତଏବ ପଟ୍ଟିର ଅନ୍ତର୍ନିହିତ ମନ୍ତ୍ର—"ହୋଇଛି ବାରେ ଭବେ ଯାର ଉଦୟ, ଘଟିବ ନାହିଁ କେବେ ତାର ବିଲୟ" । ଅର୍ଥାତ୍ ଉତ୍କଳର ଗୌରବ ଥରେ ଉଇଁ ଥିଲା କଦାପି ଅସ୍ତ ହେବ ନାହିଁ ।

୬ । ପଟ୍ଟିର ଶିରୋଭାଗରେ ଯେଉଁ ଦୁଇଟି ଶାଣିତ କୃପାଣ ମୁହାଁମୁହିଁ ହୋଇ ଦେଇଥିବା ଭାବରେ ପରସ୍ପର ଛନ୍ଦା ହୋଇଅଛି, ତାହା ଓଡ଼ିଆ ଜାତିର ସମରକୁଶଳତା ଓ ରଣକୀର୍ତ୍ତି ଘୋଷଣା କରୁଅଛି । ଦୁଇଟି ଖଡ୍ଗ ଏକାଠି ବନ୍ଧାହୋଇ ଏକତାର ପରିଚୟ ଦେଉଅଛି; ଅତଏବ ଇଂରାଜୀ ଅକ୍ଷରଦ୍ୱୟ U O (ୟୁ ଓ) (ସମ୍ମିଳିତ ଓଡ଼ିଶା) ସଂକ୍ଷିପ୍ତଭାବେ ଅଙ୍କିତ ହୋଇଅଛି ।

୭ । ସତେଜ ସବୁଜ ରଙ୍ଗର ପତ୍ର ଗୁଚ୍ଛଟି-ଆଶାର ଚିହ୍ନ ମାତ୍ର । ଓଡ଼ିଆମାନେ ପୂର୍ଣ୍ଣ ଆଶା ଭରସାରେ . ଅତୀତ ଗୌରବର ପୁନରୁଦ୍ଧାର କରିବାକୁ ଉଦ୍ୟତ ହେବେ ।

ମୂଳତଃ—ଓଡ଼ିଶାର ଏହି ଜାତୀୟ ନିଶାଣରେ ସମଗ୍ର ଓଡ଼ିଆ ଜାତିର ଅତୀତ ଗୌରବ, ବର୍ତ୍ତମାନ ଆଶା ଓ ଭବିଷ୍ୟତ ସଂକଳ୍ପ ଏକାଧାରରେ ସୂଚିତ ହୋଇଅଛି ।

ବିଶେଷ ଦ୍ରଷ୍ଟବ୍ୟ—ପଞ୍ଚୁର ଅଙ୍କର ପଦାର୍ଥଗୁଡ଼ିକ ସାଙ୍କେତିକ ଭାବେ ସନ୍ନିବିଷ୍ଟ । ସେ ଗୁଡ଼ିକ ପ୍ରକୃତ ପ୍ରକୃତି ବୋଲି ଧରାଯିବା ଉଚିତ ନୁହେଁ ।]

ଶକ୍ତି ସମ୍ପନ୍ନ—ସଂ ବିଣ—(ଶକ୍ତିଦ୍ୱାରା ସମ୍ପନ୍ନ; ୩ୟାତତ୍ )—ଶକ୍ତିଶାଳୀ
Śakti sampanna (ଦେଖ) Śaktiśāli (See)
(ଶକ୍ତି ସମ୍ପନ୍ନା—ସ୍ତ୍ରୀ)

ଶକ୍ତି ସାମର୍ଥ୍ୟ—ସଂ. ବି.—(ଏକାର୍ଥବାଚକ ସଦ୍ୱନ୍ଦ)—କୌଣସି କାର୍ଯ୍ୟ
Śakti sāmarthya କରିବାପାଇଁ ଶାରୀରିକ ବଳ ଓ ସାମର୍ଥ୍ୟ—
Strength and ability to do a thing.

ଶକ୍ତି ସାର—ଦେ.ବି.—(ବିଜ୍ଞାନ ପରିଭାଷା)—ଖାଦ୍ୟାଦିର ସାରବାନ୍ ବା
Śakti sāra ପୁଷ୍ଟିକର ଅଂଶ—Vitamin
शक्तिसार शक्तिसार

ଶକ୍ତି ହାନି—ସ. ବି.—(୬ଷ୍ଠୀତତ୍ )—ଶକ୍ତି ବା ସାମର୍ଥ୍ୟ କମିଯିବା—
Śakti hāni Detriment of power or energy; loss of energy.

ଶକ୍ତି ହାନିକର—ସଂ ବିଣ.—ଯାହାଦ୍ୱାରା ଶକ୍ତିହାନି ଘଟେ—Detri-
Śaktihānikara mental to energy; that which causes loss of energy.
(ଶକ୍ତି ହାନିଜନକ—ଅନ୍ୟରୂପ)

ଶକ୍ତିହୀନ—ସ. ବିଣ. ପୁ.—(୩ୟାତତ୍)—ଦୁର୍ବଳ; ସାମର୍ଥ୍ୟଶୂନ୍ୟ; କ୍ଲୀବ—
Śakti hina Weak; powerless; impotent.
(ଶକ୍ତି ହୀନା—ସ୍ତ୍ରୀ; ଶକ୍ତି ହୀନତା—ବିଶେଷ୍ୟ)

ଶକ୍ତି ହେତିକ—ସଂ.ବି. ଓ ବିଣ.ପୁ.—(ଶକ୍ତି+ହେତି+କ; ଶକ୍ତି—ଅସ୍ତ୍ର
Śakti hetika ବିଶେଷ ଅଟେ ହେତି=ପ୍ରହରଣ ଯାହାର; ବହୁବ୍ରୀହି —ଶକ୍ତି ଅସ୍ତ୍ରକୁ ପ୍ରହରଣ ବା ଆୟୁଧରୂପେ ବ୍ୟବହାର କରିବା ଯୋଦ୍ଧା; ଶକ୍ତି ଅସ୍ତ୍ରଧାରୀ ଯୋଦ୍ଧା—A warrior using the Śakti as his weapon or armed with the Śakti weapon.
(ଶକ୍ତିପ୍ରହରଣ—ଅନ୍ୟରୂପ; ଶକ୍ତି ହେତିକା, ଶକ୍ତି ପ୍ରହରଣା—ସ୍ତ୍ରୀ)

ଶକ୍ତି ହେତୁକ—ସ. ବି—(ଶକ୍ତି ଅଟେ ହେତୁ ବା ମୂଳ ଯାହାର;
Śakti hetuka ବହୁବ୍ରୀହି) ୧ । ଶକ୍ତିମୂଳକ—1. Originating from power or energy. ୨ । ଶକ୍ତି ବା ବଳ ଉପରେ ପ୍ରତିଷ୍ଠିତ—2. Based on strength or power or force.

ଶକ୍ତି ହ୍ରାସ—ସ. ବି ( ଶକ୍ତିର ହ୍ରାସ; ୬ଷ୍ଠୀ ତତ୍ )—ଶକ୍ତି ବା କ୍ଷମତା
Śakti hrāsa କମିଯିବା—Detriment or lessening of energy.

ଶକ୍ତି—ସ. ବି—ମାତ୍ରିକ ଛନ୍ଦୋବିଶେଷ—Name of a syllabic
Śakti metre. ଦ୍ର—ଏଥିର ପ୍ରତ୍ୟେକ ଚରଣରେ ୧୮ ମାତ୍ରା ଥାଏ । ଏଥିରେ ପ୍ରଥମ, ୬ଷ୍ଠ, ୧୧ଶ ଓ ୧୬ଶ ଲଘୁ । ଏହି ଛନ୍ଦ ଭୁଜଙ୍ଗୀ ଓ ଚନ୍ଦ୍ର ବା ବୃତ୍ତର ଢଙ୍ଗରେ ରଚିତ । ଏହି ଛନ୍ଦ ପାର୍ସୀଭାଷାର 'କରୀମା ବବକ୍ଷାୟ ବରହାଲମା' କବିତ୍ୱମ୍ ଅର୍ଥରେ କମଦେ ବବା' ବୃତ୍ତ ସଙ୍ଗେ ମିଳେ—ହି. ଶ. ]

ଶକ୍ତୁ—ସ. ବି (ଶକ୍ ଧାତୁ=ବୋଲିବା+କର୍ମ. ତୁ)—ଛତୁ; ଛତୁଆ;
Śaktu ଯବ ଗୋଧୂମାଦିର ଚୂର୍ଣ୍ଣ, ଯାହା ଖାଦ୍ୟରୂପେ
ଛାତୁ सत्तु ବ୍ୟବହୃତ ହୁଏ—Corn meal. [ଦ୍ର—
(ସକ୍ତୁ—ଅନ୍ୟରୂପ) କଞ୍ଚା ଶସ୍ୟାଦିର ଚୂର୍ଣ୍ଣକୁ ଚୂନା ବା ଅଟା ବୋଲାଯାଏ । ଏ ଚୂନା ବା ଅଟାକୁ ଅଗ୍ନି ସାହାଯ୍ୟରେ ସିଦ୍ଧ କଲେ ଖିଆଯାଏ । କିନ୍ତୁ ଶସ୍ୟାଦିକୁ ପ୍ରଥମେ ଭାଜି ପରେ ଚୂନା କଲେ ଉକ୍ତ ଚୂନାକୁ ଶକ୍ତୁ ବା ଛତୁଆ ବୋଲାଯାଏ । ଏହାକୁ ନ ସିଝି ପାଣିରେ ଚକଟି ଖିଆ ଯାଇ ପାରେ । ଯେଉଁ ଶସ୍ୟରୁ ଛତୁ କରାଯାଏ, ତାକୁ ସେହି ଶସ୍ୟର ଶକ୍ତୁ ବୋଲାଯାଏ । ଯଥା—ଯବ ଶକ୍ତୁ, ମୁଦ୍ଗ ଶକ୍ତୁ, ଗୋଧୂମ ଶକ୍ତୁ ଇତ୍ୟାଦି । ]

ଶକ୍ତୁକ—ସ. ବି(ଶକ୍ତୁ+କ)—ଉଗ୍ରବିଷବିଶେଷ—A sort of acute
Śaktuka poison. [ଦ୍ର—ଏହାକୁ ଚୂରିଲେ ଏହା
(ଶକ୍ତୁକ—ଅନ୍ୟରୂପ) ଶକ୍ତୁ ପରି ଚୂନା ହୋଇଯାଏ ।]

ଶକ୍ତୁଫଳା—ସଂ. ବି (ଶକ୍ତୁ=ଶସ୍ୟାଦିର ଚୂର୍ଣ୍ଣ ପରି ଫଳ ଯାହାର—
Śaktuphalā ବହୁବ୍ରୀହି; ଶକ୍ତୁ+ଫଳ+ଅ+ଆ,
(ଶକ୍ତୁଫଳିକା, ଶକ୍ତୁଫଳୀ—ଅନ୍ୟରୂପ) ସ୍ତ୍ରୀ)—ଶମୀବୃକ୍ଷ; ସାଇଁ ଗଛ—Prosopis Specigera; Acasia Suma; the spung tree. [ଦ୍ର—ଏହାର ଛୁଇଁ ମଧ୍ୟରେ ଥିବା ଫଳରେ ଶକ୍ତୁ ବା ଛତୁଆ ପରି ଗୁଣ୍ଡା ଗୁଣ୍ଡା ଈଷତ୍ ମିଷ୍ଟ ମନୁଷ୍ୟର ଖାଦ୍ୟୋପଯୋଗୀ ଦ୍ରବ୍ୟ ଜନ୍ମୁଥିବାରୁ ଏପରି ନାମ ହୋଇଅଛି ।]

ଶକ୍ତ୍ୟର୍ଦ୍ଧ—ସଂ. ବି—ବିଶେଷ କାୟିକ ପରିଶ୍ରମ ଯୋଗୁଁ ଦେହରୁ ବାହାରିବା
Śaktyarddha ଘର୍ମ ଓ ଘନ ନିଶ୍ୱାସ—Sweat and long gasping breath due hard labour.
ସ.ବିଣ—ପରିଶ୍ରମ ବା କ୍ଲାନ୍ତି ଯୋଗୁଁ ଘର୍ମାକ୍ତ ଓ ଘନ ନିଶ୍ୱାସ ମାରୁଥିବା—Perspiring and panting through fatigue or exertion (Apte).

ଶକ୍ତ୍ରି—ସଂ. ବି. ପୁଂ—ବଶିଷ୍ଠ ମୁନିଙ୍କର ଜ୍ୟେଷ୍ଠ ପୁତ୍ର ଓ ପରାଶରଙ୍କ
Śaktri ପିତା—The eldest son of sage Baśishṭha. [ଦ୍ର—ଏହାଙ୍କ ପତ୍ନୀଙ୍କ ନାମ ଅଦୃଶ୍ୟନ୍ତୀ । ଏକଦା ରାଜା କଲ୍ମାଷପାଦ ମୃଗୟାରୁ ଫେରିବା ସମୟରେ ବାଟରେ ଏହାଙ୍କୁ ଦେଖିଲେ । ଏ ରାଜାଙ୍କୁ ବାଟ ଛାଡ଼ି ନ ଦେବାରୁ ରାଜା ଏହାଙ୍କୁ କଶାଘାତ କଲେ । ତହୁଁ ଏ କ୍ରୁଦ୍ଧ ହୋଇ ରାଜାଙ୍କୁ ଅଭିଶାପ ଦେବାରୁ ରାଜା ରାକ୍ଷସ ହୋଇଗଲେ ଏବଂ ସଙ୍ଗେ ସଙ୍ଗେ ଏହାଙ୍କୁ ଗ୍ରାସ କଲେ । ସେହି ସମୟରେ ଏହାଙ୍କର ପତ୍ନୀ ଅଦୃଶ୍ୟନ୍ତୀ ଗର୍ଭବତୀ ହୋଇଥିଲେ ଓ ସେହି ଗର୍ଭରୁ ପରାଶର ମୁନି ଜାତ ହେଲେ ।]

ଶକ୍ୟ—ସ. ବିଣ—(ଶକ୍ ଧାତୁ=ପାରିବା+କର୍ମ.ଯ)—୧ । ସମ୍ଭବପର,
Śakya ଯାହା ହୋଇପାରେ ବା ଘଟିପାରେ; ଘଟିବାଯୋଗ୍ୟ—
1. Feasible; possible; probable. ୨ । ସାଧ୍ୟ; ଯାହା ସାଧିତ ହୋଇ ପାରେ—2. Performable; accomplishable; capable of being

| ୧ | ଇ | ଉ | ଋ,ଋ | ଌ | ଏ | ହ୍ରସ୍ୱ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇୟ | ଉଅ | ଛ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଢ଼ | ନ୍ନ |

performed; practicable. ୩। ଶକ୍ତିଦ୍ୱାରା ବୋଧ—3. Capable of being understood by one's ability. ୪। ବାଚ୍ୟ; ବଚନଦ୍ୱାରା ପ୍ରକାଶିତ ହେବା ଯୋଗ୍ୟ—4. Expressible. ୫। ଅଭିଧାବୃତ୍ତି ଦ୍ୱାରା ବୋଧ୍ୟ (ଶବ୍ଦ); ବାଚ୍ୟ (ଶବ୍ଦ)—5. Predicable (word),(a word) which can be understood from its derivation or import. ସଂ. ବି—ଶବ୍ଦଶକ୍ତି ଦ୍ୱାରା ପ୍ରକଟିତ ଅର୍ଥ (ହି. ଶ)—The connotative meaning of a word. (ଯଥା—'ଅଗ୍ନି' ଶବ୍ଦରୁ ଅଭିଧା ବୃତ୍ତିଦ୍ୱାରା 'ଅଙ୍ଗାର'ର ବୋଧ ହୁଏ। ଅତଏବ 'ଅଗ୍ନି' ଶବ୍ଦର 'ଅଙ୍ଗାର'ଶବ୍ଦ 'ଶକ୍ୟ' ବା ବାଚ୍ୟ ଅଟେ—ହି. ଶ) ଦେ. ବି—କୌଣସି କାର୍ଯ୍ୟ ସାଧିବାର ଶକ୍ତି; କ୍ଷମତା; ଶକ୍ୟତା; ସାମର୍ଥ୍ୟ—

ଶକ୍ତି ଶକ Power or ability to do a thing; strength. [ଯଥା—ଏ ବୁଢ଼ା ବୟସରେ ମୋର ବିଛଣାରୁ ଉଠିବାର ଶକ୍ୟ ନାହିଁ। ଜ—ଅନ୍ଧ ପଦ ଚଢ଼ିଛି ଯିବା ଶକ୍ୟ ନାହିଁ—କୃଷ୍ଣସିଂହ ମହାଭାରତ ବନ।] ଦେ ବିଣ.—କ୍ଷମ; ସମର୍ଥ—Competent; able. [ଜ—ସୁଭଦ୍ର କଟଣେ ଶକ୍ୟ ନୋହେ; କର୍ଣ୍ଣ ଗଦ୍‌ଗଦେ ବାକ୍ୟ କହେ—ଜଗନ୍ନାଥ. ଭାଗବତ।]

**ଶକ୍ୟ ପାଇବା**—ଦେ. କ୍ରି.—ସମର୍ଥ ହେବା; କୌଣସି କାର୍ଯ୍ୟ କରିବାକୁ Śakya pāibā ସାମର୍ଥ୍ୟଯୁକ୍ତ ହେବା—Being able to do a thing.
ଶକ୍ତି ହୱା ଶକ୍ତିହୋନା [ଯଥା—ରୋଗ ଯୋଗୁଁ ଚାଲିବାକୁ ମୋର ଶକ୍ୟ ପାଉନାହିଁ।]

**ଶକ୍ୟ ପ୍ରାପ୍ତି**—ସଂ. ବି—ନ୍ୟାୟଦର୍ଶନ ଅନୁସାରେ ପ୍ରମାଣର ଯେଉଁ Śakya prāpti ପ୍ରମାଣ ଦ୍ୱାରା ପ୍ରମେୟ ସିଦ୍ଧ ହୁଏ (ହି. ଶ)—(Logic) The proof by which a proposition to be proved is established.

**ଶକ୍ର**—ସ. ବିଂ ପୁଂ—(ଶକ୍ ଧାତୁ+କର୍ତ୍ତୃ. ର)—୧। ଇନ୍ଦ୍ର—Sakra 1. Indra. ୨। ପେଚକ—2. Owl. ୩। କୁଟଜ ଗଛ; ପିତାକୋରୁଆ—3. A plant; Wrightia Antidysenterica. ୪। ଅର୍ଜୁନ ବୃକ୍ଷ—4. A tree; Terminalia Alata Glabra. [ଦ୍ର—(୧, ୩, ୪)—ବରୁଣ ଶକ୍ରାହ୍ୱ ସୁମନସ ଛୁଁଚି ଯଣ୍ଡି। ଉକ୍ତ. ବୈଦେହୀଶବିଳାସ।] ୫। (ଜ୍ୟୋତିଷ) (ଶକ୍ରାଣୀ—ସ୍ତ୍ରୀ) ଜ୍ୟେଷ୍ଠା ନକ୍ଷତ୍ର (ଇନ୍ଦ୍ର ଏଥିର ଅଧିଷ୍ଠାତା)—5. (Hindu astrology) The 18th lunar mansion. ୬। ମହାଦେବଙ୍କ ନାମ—6. A name of Śiba. (Apte). ୭। ଚଉଦ ସଂଖ୍ୟା—7. The number fourteen. (Apte) ଦେ. ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—Name given to male persons.

**ଶକ୍ର କାର୍ମୁକ**—ସଂ. ବି (୬ଷ୍ଠୀ ତତ୍)—ଇନ୍ଦ୍ରଧନୁ—Śakra kārmuka Rainbow.

**ଶକ୍ରକ୍ରୀଡ଼ାଚଳ**—ସଂ. ବି (ଶକ୍ର ବା ଇନ୍ଦ୍ରଙ୍କର କ୍ରୀଡ଼ାଚଳ ବା କ୍ରୀଡ଼ା Śakra krīdāchala ପର୍ବତ)—(ପୌରାଣିକ) ସୁମେରୁ ପର୍ବତ—The mythological Sumeru mountain range.

**ଶକ୍ର ଗୋପ**—ସଂ. ବି (ଶକ୍ର=ଇନ୍ଦ୍ର+ଗୁପ୍ ଧାତୁ=ରକ୍ଷା କରିବା+ Śakra gopa କର୍ମ ଅ)—ଇନ୍ଦ୍ରଗୋପ; ସାଧବଘର ବୋହୂ ପୋକ—मखमलीपोका बीरबहूटी—A sort of red insect; the coccinila insect.

**ଶକ୍ରଜ**—ସ. ବିଣ ପୁଂ—(ଶକ୍ର=ଇନ୍ଦ୍ର+ଜନ୍ ଧାତୁ=ଜାତହେବା+ Śakraja କର୍ତ୍ତୃ ଅ)-ଇନ୍ଦ୍ରଙ୍କଠାରୁ ଉତ୍ପନ୍ନ—Born of Indra. ବି. ପୁଂ-୧। ଇନ୍ଦ୍ରଙ୍କ ପୁତ୍ର—1. The son of Indra. ୨। କାକ—2. A crow. (Apte)

**ଶକ୍ରଜା**—ସ. ବି.—ଇନ୍ଦ୍ରବାରୁଣୀ ଲତା (ହି.ଶ)—Colocynth Śakrajā creeper.

**ଶକ୍ର ଜାଲ**—ସ. ବି.—ଇନ୍ଦ୍ରଜାଲ (ହି. ଶ) Śakra jāla Magic.

**ଶକ୍ରଜିତ୍**—ସ. ବି.—(ଶକ୍ର=ଇନ୍ଦ୍ର+ଜି=ଜିଣିବା+କର୍ତ୍ତୃ କ୍ୱିପ୍; ସେ Śakrajit ଇନ୍ଦ୍ରଙ୍କୁ ଜୟ କରିଥିଲେ)—ମେଘନାଦ; ଇନ୍ଦ୍ରଜିତ୍; ରାବଣର ପୁତ୍ର—The son of Rābaṇa. ବିଣ—ଇନ୍ଦ୍ର ଜୟକାରୀ—Victorious over Indra.

**ଶକ୍ର ତରୁ**—ସ. ବି.—ଗଞ୍ଜେଇ ଗଛ (ହି. ଶ) Śakra taru Cannabis Indica (plant).

**ଶକ୍ର ଦାରୁ**—ସ.ବି.—୧। ଦେବଦାରୁ (ହି.ଶ) 1. Pinus Deodar Śakra dāru (tree) ୨। ଶାଳଗଛ (ହି.ଶ) 2. Shorea Robusta (tree).

**ଶକ୍ର ଦିକ୍**—ସ. ବି.—ପୂର୍ବଦିଗ (ସହିଁର ଦିକ୍‌ପାଳ ଇନ୍ଦ୍ର) Śakra dik The East.

**ଶକ୍ର ଦୈବତ**—ସ. ବି. (ବହୁବ୍ରୀହି)—ଜ୍ୟେଷ୍ଠା ନକ୍ଷତ୍ର Śakra daibata The 18th asterism.

**ଶକ୍ର ଦ୍ରୁମ**—ସ.ବି. (ଶକ୍ରନାମକ ଦ୍ରୁମ; ମ.ପ ଲୋ.କର୍ମଧା)-୧। ଦେବଦାରୁ Śakra druma 1. The Deodār tree; the pine; Pinus Longifolia; Cedras Deodar. ୨। ବଉଳଗଛ (ହି.ଶ)—2.The Bakula tree.

**ଶକ୍ର ଧନୁ (ନୁଃ)**—ସ. ବି.—(ଶକ୍ରଙ୍କ ଧନୁ; ୬ଷ୍ଠୀତତ୍)—ଇନ୍ଦ୍ର ଧନୁ—Śakra dhanu(nuḥ) Rainbow.

**ଶକ୍ର ଧ୍ୱଜ**—ସ ବି.—(ଶକ୍ରଙ୍କ ପୂଜା କରିବା ନିମିତ୍ତ ଧ୍ୱଜ;ମ. ପ.ଲୋ.)-ପତାକା ବିଶେଷ—A flag set up in honour Śakra dhwaja of Indra; a pillar worshipped on the

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ମୃତ' ନ ମିଳିଲେ 'ମୃତ' ଖୋଜିବେ; 'ବଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଆର୍ଶୀ' ନ ପାଇଲେ 'ଆର୍ଶି' ଦେଖିବେ, 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ

12th. day of the bright fortnight of the month of Bhādra. [ ଦ୍ର—ଭାଦ୍ରମାସ ଶୁକ୍ଳ ଦ୍ୱାଦଶୀ (ବାମନ ଜନ୍ମ) ଦିନଠାରୁ ପାଞ୍ଚଦିନ ପର୍ଯ୍ୟନ୍ତ ଇନ୍ଦ୍ରଙ୍କ ଉଦ୍ଦେଶ୍ୟରେ ପୂଜା କରାଯିବା ପାଇଁ ନିର୍ମିତ ଧ୍ୱଜାକାରସ୍ତମ୍ଭ ଏହି ନାମରେ କଥିତ ।]

ଶକ୍ର ନନ୍ଦନ—ସଂ.ବି.—(୬ଷ୍ଠୀ ତତ୍) ମଧ୍ୟମ ପାଣ୍ଡବ; ଅର୍ଜୁନ—Arjuna,
Śakra nandana the 3rd Pāndaba brother.

ଶକ୍ର ନେମି—ସଂ. ବି.—୧ । ଦେବଦାରୁ ଗଛ (ହି. ଶ)—1. Pinus
Śakra nemi Deodar ୨। ମେଷଶୃଙ୍ଗୀ (ହି. ଶ) 2. Mesha Śṛungī (See) ୩ । କୁଟଜ ଗୁଳ୍ମ (ହି. ଶ) 3. Wrightea Antidysenterica (plant).

ଶକ୍ର ପର୍ଯ୍ୟାୟ—ସଂ.ବି.—କୁଟଜ ଗୁଳ୍ମ—Wrightea Antidysen-
Śakra parjyāya terica (plant)

ଶକ୍ର ପାଦପ—ସଂ. ବି.—୧ । ଶକ୍ରପର୍ଯ୍ୟାୟ (ଦେଖ) 1. Sakra
Śakra pādapa parjyāya (See) ୨ । ଦେବଦାରୁ ବୃକ୍ଷ—2. The Debadāru tree (Apte)

ଶକ୍ର ପୁର(ରୀ)—ସଂ. ବି.(୬ଷ୍ଠୀତତ)—ଇନ୍ଦ୍ରପୁରୀ; ଅମରାବତୀ—The capi-
Śakra pura (purī) tal of Indra in heaven.

ଶକ୍ର ପୁଷ୍ପ—ସଂ.ବି—ଇନ୍ଦ୍ରଯବ; କୁଟଜ ବୀଜ (ହି.ଶ)—The seeds of
Śakra pushpa Holarrhena Antidysenterica.

ଶକ୍ରପୁଷ୍ପୀ(ଷ୍ପା)—ସଂ. ବି (ଶକ୍ର+ପୁଷ୍ପ+ଇନ୍;+ଆ)—୧। ଲଙ୍ଗଲୀ; ଲଙ୍ଗୁଳିଆ ନାମକ ଲତା; ଅଗ୍ନିଶିଖା—
Śakrapushpī(shpā) Wolfsbane; Aconitum Napellus; Gloriosa Superba; Menispermum Cordifolium. ୨ । ନାଗଦମନୀ (ହି. ଶ)—2. Indian wormwood.
(ଶକ୍ରପୁଷ୍ପିକା—ଅନ୍ୟରୂପ)

ଶକ୍ର ପ୍ରସ୍ଥ—ସଂ. ବି—ଇନ୍ଦ୍ରପ୍ରସ୍ଥ ନଗର—
Śakra prastha The ancient town of Indraprastha.

ଶକ୍ର ବଲ୍ଲୀ—ସଂ. ବି (ବୈଦ୍ୟକ)—ଇନ୍ଦ୍ରବାରୁଣୀ, ପାଞ୍ଚଅଙ୍ଗୁଳିଆ ବା ମହାକାଳ ଲତା—The colocynth creeper.
Śakra ballī
(ଶକ୍ରଭୂ; ଶକ୍ରଭବା—ଅନ୍ୟରୂପ)

ଶକ୍ରବାହ—ସଂ. ବି—(ଶକ୍ର+ବହ୍, ଣିଚ୍.ଧାତୁ+କର୍ତ୍ତୃ. ଅ)—(ଇନ୍ଦ୍ରଙ୍କ ବାହନ) ମେଘ—The clouds.
Śakrabāha
(ଶକ୍ରବାହନ—ଅନ୍ୟରୂପ)

ଶକ୍ର ବୀଜ—ସଂ. ବି (ବୈଦ୍ୟକ)—ଇନ୍ଦ୍ରଯବ; କୁଟଜ ବା ପିତାକୋରୁଆ ଗଛର ମଞ୍ଜି—The seed of Hollarhena Antidysenterica.
Śakra bīja
(ଶକ୍ରଯବ—ଅନ୍ୟରୂପ)

ଶକ୍ର ଭ(ଭୁ)ବନ—ସଂ. ବି [ଶକ୍ରଙ୍କ ଭ(ଭୁ)ବନ; ୬ଷ୍ଠୀ ତତ୍]—(ଇନ୍ଦ୍ରଙ୍କ ଘର) ସ୍ୱର୍ଗ—The heaven.
Śakra bha(bhu)bana
(ଶକ୍ରବାସ—ଅନ୍ୟରୂପ)

ଶକ୍ରଭିତ୍(ଦ୍)—ସଂ. ବି (ଶକ୍ର+ଭିଦ୍ ଧାତୁ+କ୍ୱିପ୍; ଯେ ଅସ୍ତ୍ର ଦ୍ୱାରା ଇନ୍ଦ୍ରଙ୍କୁ ଭେଦ କରିଥିଲେ)—ରାବଣ ପୁତ୍ର ଇନ୍ଦ୍ରଜିତ୍—The eldest son of Rābaṅa.
Śakrabhit(d)

ଶକ୍ର ଭୂରୁହ—ସଂ. ବି—କୁଟଜ; ପିତାକୋରୁଆ (ହି. ଶ)
Śakra bhūrūha Holarrehena Antidysenterica.
(ଶକ୍ରବୃକ୍ଷ—ଅନ୍ୟରୂପ)

ଶକ୍ରମାତୃକା—ସଂ. ବି—୧। ଭାର୍ଗୀ (ହି. ଶ)—1. Clerodendron
Śakramātṛukā Syphonanthus ୨ । ଇନ୍ଦ୍ରଧ୍ୱଜ—2. A banner consecreted to Indra.
(ଶକ୍ରମାତା—ଅନ୍ୟରୂପ)

ଶକ୍ରମୂର୍ଦ୍ଧା—ସଂ. ବି—୧ । ବଲ୍ମୀକ; ଉଇହୁଙ୍କା—1. Anthill. ୨ ।
Śakramūrddhā ପାହାଡ଼—2. A hillock. (Apte)

ଶକ୍ର ଲୋକ—ସଂ. ବି—୧। ଇନ୍ଦ୍ରପୁରୀ—1. The town of Indra.
Śakra loka (Apte). ୨ । ଇନ୍ଦ୍ରଲୋକ; ସ୍ୱର୍ଗ—2. Heaven.

ଶକ୍ର ଶରାସନ—ସଂ. ବି (ଶକ୍ର+ଶରାସନ=ଧନୁ; ୬ଷ୍ଠୀ ତତ୍)—ଇନ୍ଦ୍ରଧନୁ—
Śakra śarāsana The rainbow.

ଶକ୍ରଶାଖୀ—ସଂ. ବି (ବୈଦ୍ୟକ)—କୁଟଜଗୁଳ୍ମ; ପିତାକୋରୁଆ ଗଛ—
Śakraśākhī Wrightea Antedysenterica plant.

ଶକ୍ରଶାଳା—ସଂ. ବି.—ଯଜ୍ଞଶାଳା; ହୋମଗୃହ—A house
Śakraśālā where offerings are made to the Gods unto a sacrificial fire; a sacrificial ground. (Apte)

ଶକ୍ରଶିରଃ—ସଂ. ବି—ବଲ୍ମୀକ; ଉଇହୁଙ୍କା—Anthill. [ ଦ୍ର—
Śakraśirah ତୁଳନା କର ମେଘଦୂତର ଶ୍ଳୋକ, ବଲ୍ମୀକାଗ୍ରାତ୍ ପ୍ରଭବତି ଧନୁଃ ଖଣ୍ଡମାଖଣ୍ଡଲସ୍ୟ=ଇନ୍ଦ୍ରଧନୁ ହୁଙ୍କା ଅଗରୁ ବାହାରୁଅଛି । ]

ଶକ୍ର ସାରଥି—ସଂ. ବି (ଶକ୍ରଙ୍କ ସାରଥି; ୬ଷ୍ଠୀ ତତ୍)—ମାତଳି; ଇନ୍ଦ୍ରଙ୍କ ରଥଚାଳକ ବା କୋଚୁଆନ—The charioteer of Indra, an epithet of Mātali.
Śakra sārathi

ଶକ୍ର ସୁତ—ସଂ. ବି—୧ । ଇନ୍ଦ୍ରଙ୍କ ପୁଅ—1. Son of Indra. ୨ ।
Śakra suta ଜୟନ୍ତ—2. An epithet of Jayanta.
(ଶକ୍ରାତ୍ମଜ—ଅନ୍ୟରୂପ) ୩ । ଅର୍ଜୁନ—3. An epithet of Arjuna. ୪ । ବାଳି—4. An epithet of Bāli.

ଶକ୍ର ସୁଧା—ସଂ. ବି—କୁନ୍ଦୁରୁ; (ହି. ଶ) ଲୋବାନ୍—
Śakra sudhā Olibanum.

ଶକ୍ରସୃଷ୍ଟା—ସଂ. ବି—ହରୀତକୀ; ହରିଡ଼ା (ହି. ଶ)
Śakrasṛushṭā Myrobalan.

ଶକ୍ରା—ଦେ. ବି. ପୁଂ. (ଅନାଦରାର୍ଥ) ଶକ୍ର ନାମକ ବ୍ୟକ୍ତିର ଡାକନାମ— Śakrā A name for calling Śakra, a name given to males.
(ଶକ୍ରିଆ—ଅନ୍ୟରୂପ)
[ଶକ୍ରି(କ୍ରୁ)—ଅନାଦରାର୍ଥକ]

ଶକ୍ରାଖ୍ୟ—ସଂ. ବି ( ଶକ୍ର+ଆଖ୍ୟା=ନାମ ଯାହାର; ବହୁବ୍ରୀହି)— Śakrākhya ପେଚକ; ପେଚା—An owl.

ଶକ୍ରାଗ୍ନି—ସଂ. ବି ( ବହୁବ୍ରୀହି )—ବିଶାଖା ନକ୍ଷତ୍ର ( ଇନ୍ଦ୍ର ଓ ଅଗ୍ନି ଏ ନକ୍ଷତ୍ରର ସ୍ୱାମୀ) (ହି. ଶ)— Śakrāgni The 16th asterism.

ଶକ୍ରାଣୀ—ସଂ. ବି.ସ୍ତ୍ରୀ (ଶକ୍ର+ଈ. ସ୍ତ୍ରୀ ଅର୍ଥରେ; ନିପାତନ)—୧ । ଇନ୍ଦ୍ରାଣୀ; ଶଚୀ—1. The wife of Indra. ୨ । Śakrāṇī ନିର୍ଗୁଣ୍ଡୀ (ହି. ଶ); ବେଗୁନିଆ—The five leaved chaste tree.

ଶକ୍ରାଦନ—ସଂ. ବି—ଭାଙ୍ଗ (ହି. ଶ)—A drink made from Śakrādana the leaves of Indian hemp.

ଶକ୍ରାବତୀ—ସଂ. ବି— କୃଷ୍ଣଙ୍କ ଅଷ୍ଟ ପଟ୍ଟମହିଷୀଙ୍କ ମଧ୍ୟରୁ ଜଣେ— Śakrābatī One of the eight queens of Lord Krushṇa. [ ଭ—ମିତ୍ରାବିନ୍ଦା ସୁନନ୍ଦା ଶକ୍ରାବତୀ— ଗାଢ଼ୀ ରତ୍ନସ୍ୟମଞ୍ଜରୀ ।]

ଶକ୍ରାରି—ସଂ ବି (ଶକ୍ରଙ୍କ ଅରି=ଶତ୍ରୁ; ଷଷ୍ଠୀ ତତ୍‌)—୧ । ଇନ୍ଦ୍ରଙ୍କ ଶତ୍ରୁ—1. Enemy of Indra. ୨ । ଇନ୍ଦ୍ରଜିତ୍‌— Śakrāri 2. Indrajit, the son of Rābaṇa. [ଭ—ବିଷାଦ ଅସହ୍ୟ ହେଲେ ବସ୍ତୁ ଭଗଣ ଶକ୍ରାରି ଙ୍ଗମହ କୃପାଣ—ଉପେ. ବୈଦେହୀଶବିଳାସ ।]

ଶକ୍ରାଶନ—ସଂ. ବି (ଶକ୍ର+ଅଶନ=ଭକ୍ଷଣୀୟ ପଦାର୍ଥ)—୧ । କୁଟଜ Śakrāśana ବୃକ୍ଷ, ପିତାକୋରୁଆ ଗଛ—1. Hollarhena Antidysenterica plant. ୨ । ସିଦ୍ଧି; ଗଞ୍ଜେଇ ଗଛର ପତ୍ର—2. The leaves of the Indian hemp (an intoxicant). ୩ । ବିଜୟା; ଭାଙ୍ଗ (ହି. ଶ)—3. A drink made with the leaves of Indian hemp. [କ୍ର—ଏହା ଇନ୍ଦ୍ରଙ୍କ ଭକ୍ଷଣୀୟ ପଦାର୍ଥ । ରାବଣ ସହିତ ଯୁଦ୍ଧରେ ଯେଉଁ ବାନର-ସେନାମାନେ ନିହତ ହୋଇଥିଲେ, ସେମାନଙ୍କୁ ଅମୃତ ସେଚନଦ୍ୱାରା ବଞ୍ଚାଇବାବେଳେ ସେମାନଙ୍କ ଶରୀରରେ ପତିତ ଅମୃତବିନ୍ଦୁର ଛିଟାରୁ ଏହାଇ ଗଛ ଉତ୍ପନ୍ନ ହୋଇଥିବା ପ୍ରସିଦ୍ଧ ଅଛି । ]

ଶକ୍ରାସନ - ସଂ. ବି (ଷଷ୍ଠୀ ତତ୍‌)—୧ । ଇନ୍ଦ୍ରଙ୍କ ଆସନ—1. The Śakrāsana seat of Indra. ୨ । ସିଂହାସନ (ହି.ଶ) 2. Throne.

ଶକ୍ରାହ୍ୱ(ହ୍ୱା)—ସଂ. ବି—୧ । ଇନ୍ଦ୍ରଯବ; ପିତାକୋରୁଆ ଗଛର ମଞ୍ଜି— Śakrāhwa(hwā) 1. The seeds of Hollarhena Antidysentrica. ୨ । କୁଟଜ ବୃକ୍ଷ—2. The above plant.

ଶକ୍ରି—ସଂ. ବି—୧ । ମେଘ (ହି. ଶ)—1. Cloud. ୨ । ବଜ୍ର(ହି ଶ) Śakri 2. Thunder. ୩ । ହାତୀ ( ହି. ଶ. )— 3 Elephant. ୪ । ପର୍ବତ ( ହି. ଶ. )— 4. Mountain.

ଶକ୍ରି(କ୍ରୁ)—ଦେ. ବି.—(ଆଦରାର୍ଥକ)—ଶକ୍ର ନାମକ ବ୍ୟକ୍ତିର ଡାକ Śakri(kru) ନାମ—Name for calling Śakra.

ଶକ୍ରେନ୍ଦ୍ର—ସଂ. ବି.—ଇନ୍ଦ୍ରଗୋପକୀଟ (ହି. ଶ.)— Śakrendra Cochineal insect.

ଶକ୍ରୋତ୍ଥାନ—ସଂ. ବି ( ଶକ୍ର+ଉତ୍ଥାନ )—ଭାଦ୍ର ଶୁକ୍ଳ ଦ୍ୱାଦଶୀଠାରୁ Śakrotthāna ଇନ୍ଦ୍ରଧ୍ୱଜ ସ୍ଥାପନପୂର୍ବକ ଇନ୍ଦ୍ରଙ୍କ ପୂଜାରୂପ ( ଶକ୍ରୋତ୍ଥାପନ, ଶକ୍ରୋତ୍ସବ—ଅନ୍ୟରୂପ ) ଉତ୍ସବ— The festival consisting of setting up a flag and worshipping Indra for 5 days from the 12th day of the bright fortnight of the month of Bhādra. [କ୍ର—ଭାଦ୍ର ଶୁକ୍ଳ ଦ୍ୱାଦଶୀ ଦିନ ପୂର୍ବକାଳରେ ଜମିଦାର-ମାନଙ୍କର ପୁଣ୍ୟାହ ଉତ୍ସବ ଓ ଜମିଦାରୀ ବର୍ଷ ବା ପୁରୀର ଗଜପତି ରାଜାଙ୍କ ନୂଆ ଅଙ୍କର ଆରମ୍ଭ ହୁଏ । ]

ଶକ୍ୱର—ସଂ. ବି (ଶକ୍ ଧାତୁ+କର୍ତ୍ତୃ ବର)—୧ । ବଳଦ (ହି. ଶ)— Śakwara 1 Bullock. ୨ । ଆକାଶ (ହି. ଶ)— 2. The sky.

ଶକ୍ୱରୀ—ସଂ. ବି (ଶକ୍ ଧାତୁ+କର୍ତ୍ତୃ ବର+ଈ)—୧ । ଅଙ୍ଗୁଠି Śakwarī (ହି. ଶ)—1. Finger. ୨ । ପ୍ରାଚୀନ ନଦୀ ବିଶେଷ (ହି. ଶ)—2. Name of an ancient river. ୩ । ମେଖଳା ( ହି. ଶ)—3. Girdle. ୪ । ଗାଈ (ହି. ଶ)—4. Cow. ୫ । ଛନ୍ଦୋବିଶେଷ (ହି. ଶ)—5. Name of a metre.

ଶକ୍ୱା—ସଂ. ବି (ଶକ୍ ଧାତୁ+କର୍ତ୍ତୃ. ବନ୍; ୧ମା. ୧ବ)—ହାତୀ Śakwā (ହି. ଶ)—Elephant,

ଶଖତ୍—ବୈଦେ. ବିଣ (ଅ. ସଖତ୍)—ଶକ୍ତ (ଦେଖ) Śakhat Śakta. (See)
(ଶଖତିଆ, ଶକ୍ତଦାର, ଶଖତାଡିଆ—ଦେ. ରୂ।)

ଶଖସ୍—ବୈଦେ. ବି (ଅ. ଶେଖ୍ସ)—ଶଖ୍ସ (ଦେଖ) Śakhas Śakhs. (See)

ଶଖି ପାରିବା—ଦେ. କ୍ରି (ସଂ. ଶକ୍ ଧାତୁ)—ଶକି ପାରିବା (ଦେଖ) Śakhi pāribā ପାବା ସକନା Śaki pāribā. (See)
(ଶକ୍ଷିବା—ଅନ୍ୟରୂପ)

ଶଖ୍ୟ(କ୍ଷ)—ଦେ. ବିଣ ଓ ବି (ସଂ. ଶକ୍ୟତା)—ଶକ୍ୟ (ଦେଖ) Sakhya(ksha) Śakya. (See)

ଶଖ୍ସ—ବୈଦେ. ବି (ଅ.ଶଖ୍ସ=ବ୍ୟକ୍ତି)—୧ । ବ୍ୟକ୍ତି; ଜନ— Śakhsa 1. Person. ୨ । ଶକ୍ତି—2. Power. ୩ । ଶଖସ ସହନଶୀଳତା—3. The state of bearing ଆଖସ much; forbearance. ୪ । ଧୈର୍ଯ୍ୟ—4. Patience.

**ଶଗଡ଼**—ଦେ.ବ (ସଂ.ଶକଟ)—୧ । ଦ୍ୱିଚକ୍ରଯୁକ୍ତ ଗୋଯାନ;ବଳଦଗାଡ଼ି—Śagarda 1. Bullock cart. ୨ । ଗୋଟିଏ ଗାଡିରେ ବୋହାଯାଇ ହେବା ପରିମିତ (ଧାନ ଆଦି) ବସ୍ତୁ—2. A cart-load, (of grains etc) ୩ । ଶକଟାସୁର (ଦେଖ)—3. Śakatāsura. (See) ୪ । ଶକଟାସୁର ପରି ବିଶାଳକାୟ ବ୍ୟକ୍ତି—4. A person as big as the demon Śakatā.

ଶଗଡ଼
ଗରୁବ ଗାଡି
ହୁଙ୍କଡା

[ଉ—'ଅଗଡ଼ ବଗଡ଼ ଖାଏ ଯେ, ଶଗଡ଼ପରି ହୁଏ ସେ'—ଢଗ । (ଅର୍ଥାତ୍ ଯେ ଖୁବ୍ ଗୁଡ଼ାଏ ଖାଏ, ସେ ଶକଟାସୁର ପରି ବିଶାଳକାୟ ହୁଏ ।] ପ୍ରାଦେ. (ଗଞ୍ଜାମ)—୧ । ଗଞ୍ଜାମରେ ପ୍ରଚଳିତ ଧାନ୍ୟାଦି ଶସ୍ୟର ମାପ ବିଶେଷ—1. A unit of measure of grain equal to three bharaṇas. [ଦ୍ର—୧ ଶଗଡ଼=୩ ଭରଣ=୬୦ ନୌଟି=୨୪୦ ଗୌଣୀ=୯୬୦ ଅଡ଼ା; ୨୪ ତୋଳା ଓଜନ ପରିମିତ ସେରକୁ ଗଞ୍ଜାମରେ ଅଡ଼ା ବୋଲାଯାଏ ।] ୨ । ଯେଉଁ ଜମିରୁ ୧ ଶଗଡ଼ ଧାନ ଉତ୍ପନ୍ନ ହୁଏ—2. An area of land which produces one cart load of paddy in an ordinary year. [ଦ୍ର—ଦୁଇ ଖଣ୍ଡି ଲମ୍ବ ବାଉଁଶ ବା କାଠ ଦଣ୍ଡା(=ସଂ. ଦଣ୍ଡ) ଏକ ମୁଣ୍ଡରେ ଏକତ୍ର ସଂଲଗ୍ନ ହୋଇ ଥାଏ ଓ ଅନ୍ୟ ମୁଣ୍ଡରେ ଦୁଇ ହାତ ଛଡ଼ା ହୋଇ କାଠ (ଫଳ) ଦ୍ୱାରା ସଂଲଗ୍ନ ହୋଇଥାଏ । ଏହି ଲମ୍ବ ତ୍ରିକୋଣାକାର କାଷ୍ଠ ଦ୍ୱୟ ଏକତ୍ର ହୋଇଥିବା ମୁଣ୍ଡ (ଝୁର ମୁଣ୍ଡି)ରେ ଯୁଗକାଷ୍ଠ (ଯୁଆଳି) ସଂଲଗ୍ନ ହୋଇଥାଏ । ଏହି ଯୁଆଳିର ଦୁଇ ମୁଣ୍ଡରେ ବଳଦ ଯୋଚ୍ଚ ହୁଅନ୍ତି । ଶଗଡ଼ର ଦଣ୍ଡାଦ୍ୱୟର ମଧ୍ୟଭାଗ ଗୋଟିଏ ଅଖ (ଅକ୍ଷ) ଉପରେ ସ୍ଥାପିତ ହୁଏ ଓ ଅଖର ଦୁଇ ମୁଣ୍ଡରେ ଚକ ଲାଗିଥାଏ । ଯୁଆଳିର ଦୁଇ ମୁଣ୍ଡରେ ବଳଦ ଯୋଚ୍ଚି ହୋଇ ଗତି କଲେ ସେ ଚକ-ମାନ ଚଳେ । ଶଗଡ଼ ସାଧାରଣତଃ ଦୁଇଚକ ବିଶିଷ୍ଟ ହୁଏ ଓ ଦୁଇଟି ବଳଦ ବା ମଇଁଷି ଶଗଡ଼କୁ ଟାଣନ୍ତି; କିନ୍ତୁ ଉତ୍ତର-ପଶ୍ଚିମ ଭାରତରେ (ବୃନ୍ଦାବନ ଆଦିରେ) ଶଗଡ଼ମାନ ଚାରି ଚକ ବିଶିଷ୍ଟ ହୁଏ ଓ ଚାରୋଟି ବଳଦ ସେଭଳି ଶଗଡ଼କୁ ଟାଣନ୍ତି । ମାନ୍ଦ୍ରାଜ ଅଞ୍ଚଳରେ ପୂର୍ବେ ଚଳୁଥିବା ଓ ବର୍ତ୍ତମାନ କଟକରେ ଚଳୁଥିବା ଏକପ୍ରକାର ଶଗଡକୁ ଗୋଟିଏ ବଳଦ ମଝିରେ ଲାଗି ଟାଣେ । ଶଗଡ଼ଟଣା କାର୍ଯ୍ୟରେ ସାଧାରଣତଃ ବଳଦମାନେ ଲାଗନ୍ତି । କେତେକ ସ୍ଥାନରେ ମଇଁଷିମାନେ ମଧ୍ୟ ଶଗଡ଼ ଟାଣିବା ଦେଖାଯାଏ ।

ଶଗଡ଼ର ଭିନ୍ନ ଭିନ୍ନ ଅଙ୍ଗ ଏବଂ ଉପକରଣମାନଙ୍କ ନାମ ଏବଂ ପ୍ରକାରଭେଦ—

(୧) ଝୁରମୁଣ୍ଡି—ଦୁଇ ଦଣ୍ଡାର ତ୍ରିକୋଣାକାର ଅଗ୍ରଭାଗ । (୨) ଝୁର ବା ମୁହଣ୍ଡା—ଦୁଇଟି ଦଣ୍ଡା ଏକତ୍ର ହୋଇଥିବା ସ୍ଥାନ,ଯାହା ଯୁଆଳିର ମଧ୍ୟସ୍ଥଳରେ ସଂଲଗ୍ନ ହୁଏ; ଦଣ୍ଡାର ଅଗମୁଣ୍ଡ । (୩) ନଦା, ନଦା ଦଉଡ଼ି - ଯୁଗବନ୍ଧନ ରଜ୍ଜୁ ;ଯେଉଁ ଦଉଡ଼ା ଦ୍ୱାରା ଝୁରକୁ ଯୁଆଳିର ମଧ୍ୟଭାଗ ସଙ୍ଗେ ବନ୍ଧାଯାଏ । (୪) କଣ୍ଡଲ; କନ୍ଦଲ ଖିଲ—ଦୁଇଟି ଦଣ୍ଡାକୁ ଝୁର ପାଖରେ ମେଣ୍ଢାଶିଙ୍ଗା ସଙ୍ଗେ ଏକତ୍ର ଯୋଖିଥିବା ଖିଲ । (୫) ଯନ୍ତ୍ରା—ଶଗଡର ଦୁଇ ଦଣ୍ଡାକୁ ମଜଭୁତ୍ କରି ରଖିବା ପାଇଁ ଶଗଡ଼ର ଆଗ ଓ ପଛ ପାଖରେ ବ୍ୟବହୃତ ଲୁହା ପାତିଆର ବଳୟ । (୬) ଯୋଖିଆ—ଦୁଇ ଆଡ଼ରେ ଦାନ୍ତ ବାହାରିଥିବା କଣ୍ଟା, ଯାହା ଓଲିଆର ଦାନ୍ତକୁ ଘାହିଆରେ ସଂଲଗ୍ନ କରି ଚପି ରଖିବା ପାଇଁ ହାଣିରେ କାଡ଼ିଆଯାଏ—(୭) ଯୁଆଳି—ଝୁରରେ ବନ୍ଧା ହେବା ଦଣ୍ଡ, ଯାହାର ଦୁଇ ପାଖ ବଳଦଙ୍କ କାନ୍ଧରେ ରହେ । (୮) କାକୁଲି—ଯୁଆଳିର ଦୁଇ ମୁଣ୍ଡରେ ଥିବା ଛିଦ୍ରରେ ଗଳିଥିବା କାଠର ଖିଲ । ଏଥିରେ ବଳଦଙ୍କ ବେକରେ ଲାଗିଥିବା ଦଉଡ଼ିକୁ ବାନ୍ଧି ଦିଆଯାଏ । ଏହି ଖିଲ ଦୁଇଟି ବଳଦଙ୍କ କାନ୍ଧର ବାହାର ପାଖକୁ ରହେ । ହଳର ଯୁଆଳିରେ ଏହି ଖିଲକୁ 'ଶଅଳ' ବୋଲାଯାଏ ଏବଂ ଏହା ବଳଦଙ୍କ କାନ୍ଧର ଭିତର ପାଖକୁ ରହେ । (୯) ଦଣ୍ଡାକାଟି—ଶଗଡ଼ର ଦଣ୍ଡାର ପଛରେ ଥିବା ଅଗ୍ରଭାଗ, ଯାହାକୁ ମୁଠାଦ୍ୱାରା ଧରି ଶଗଡ଼ର ଗତିକୁ ନିୟନ୍ତ୍ରିତ କରାଯାଏ । (୧୦) ଫଳି ବା ଫଳ—ଦୁଇଟି ଦଣ୍ଡାର ମଝିରେ ଦିଆ ଯାଇଥିବା କାଷ୍ଠଫଳକ । (୧୧) ପାଶ୍ୱଫଳିଆ—ତ୍ରିଭୁଜାକାର ଶଗଡ଼ଦଣ୍ଡା ଦ୍ୱୟର ଆଗପାଖର ଅର୍ଦ୍ଧାଂଶ,ଯେଉଁ ଅଂଶରେ ଘନ ସନ୍ନିବିଷ୍ଟ ପାଞ୍ଚ ଗୋଟି ଫଳ ଥାଏ ଓ ଯେଉଁଠାରେ ଗାଡ଼ି ଅଡ଼ାଇବା ଲୋକ ବସେ ।

(୧୨) ପଘା—ବଳଦଙ୍କ ବେକରେ ଲାଗିଥିବା ରଜ୍ଜୁ । ଯାହା କାକୁଲି ସଙ୍ଗେ ଗୁଡ଼ିଆ ହୋଇ ଝୁରରେ ବନ୍ଧାଯାଏ । (୧୩) ପ(ପା)ଗୁଠୀ—ପଘାର ଯେଉଁ ବଳୟାକୃତି ଅଂଶ ବଳଦଙ୍କ ବେକ ଚାରିପାଖେ ବୁଲିଥାଏ । (୧୪) ତୁଣ୍ଡୀ—ବଳଦଙ୍କ ମୁହଁରେ ଗଳିଥିବା ଦଉଡ଼ିର ଖୋଳ ବା ଫମ୍ପୀ । (୧୫) ପଘାଦଣ୍ଡା—ପଘାର ଯେଉଁ ଲମ୍ବ ଅଂଶ ପଗୁଣ୍ଠଠାରୁ ଲମ୍ବ ହୋଇ ବାହାରିଥାଏ । (୧୬) ମୁଠା ବା ମୁଠି—ଦଣ୍ଡା ଦ୍ୱୟର ପଛମୁଣ୍ଡ, ଯାହାକୁ ହାତଦ୍ୱାରା ମୁଠାଇ ଶଗଡ଼ର ଗତିକୁ ନିୟନ୍ତ୍ରିତ କରାଯାଏ । (୧୭) ତନ୍ତ୍ରି ବା ତେନ୍ତ୍ରା—ଶଗଡ଼ର ଦଣ୍ଡାତଳେ ଦିଆଯିବା ଲମ୍ବକାଠ ଦୁଇ ଖଣ୍ଡ । ଏହି କାଠରେ ଘର ହୋଇ ତା ମଧ୍ୟରେ ଅଖ ପଶେ ଓ ଦଣ୍ଡା ସହିତ ଖିଲ ବା ଦଉଡ଼ି ଦ୍ୱାରା ଏହା ସଂଲଗ୍ନ ହୁଏ । (୧୮) ତ(ତେ)ନ୍ତ୍ରା ଖିଲ—ତେନ୍ତ୍ରାକୁ ଦଣ୍ଡାରେ ସଂଲଗ୍ନ କରିବା ପାଇଁ ବ୍ୟବହୃତ ଖିଲ । (୧୯) ତେନ୍ତ୍ରା ଘର—ଦଣ୍ଡା ସଂଲଗ୍ନ ତେନ୍ତ୍ରାର ମଝିରେ ଯେଉଁ ଗାତ ବା ନାଳ ଖୋଳାଯାଇଥାଏ ଓ ଯହିଁରେ ଶଗଡ଼ର ଅଖ ପଶେ । (୨୦) ଅଖ—ଯେଉଁ ଦଣ୍ଡ ଉପରେ ଦଣ୍ଡା ରହେ ଓ ଯାହାର ଦୁଇ ମୁଣ୍ଡରେ ଚକ ଲାଗେ । (୨୧) ଅଖ ଛିଦ୍ର—ଅଖ ମୁଣ୍ଡରେ ଅଣକିଳ ପଶିବା ପାଇଁ ଖୋଳାଯାଇଥିବା ଛିଦ୍ର; ଅକ୍ଷାଗ୍ରଛିଦ୍ର । (୨୨) ଅଣକିଳ—ଅଖର ଦୁଇ ମୁଣ୍ଡରେ ଚକ

ଲାଗିବା ପରେ ଅଖର ଯେଉଁ ଅଂଶ ଚକର ନାଣ୍ଡିର ସୀମାରୁ ବାହାରିଥାଏ, ତହିଁରେ ଥିବା ଛିଦ୍ରରେ ପଶିଥିବା ଖିଳା, ଯାହା ଚକକୁ ଅଖ ସଙ୍ଗେ ଅଟକାଇ ରଖେ; ଅକ୍ଷାଗ୍ର-କୀଲକ । (୨୩) ପଟର(ରା)ଖିଲ—ଶଗଡ଼ର ସ୍କନ୍ଧ ଓ ହାଲକୁ ମଜଭୁତ୍ ରଖିବା ପାଇଁ ମରାଯିବା ଖିଲ ।
(୨୪) ଚକ—ଅଖର ଦୁଇ ମୁଣ୍ଡରେ ଲାଗିଥିବା ଚକ୍ର । (୨୫) ଝାମ, ଝାମା ବା ହାଲ—ଚକର ପରିଧିରେ ବାହାରେ ଚାରିଆଡ଼େ ଘେରାହୋଇଥିବା ଲୁହାର ମୋଟ ପଟର । (୨୬) ପହିଆ(ଯା) ବା ପହ୍ୟା—ଚକର ଅନ୍ୟ ନାମ । ପହିଆ ତିନିପ୍ରକାର । ଯଥା—(କ) କଣ୍ଟକା—ଏଥିର ପହି ଓ ଅର ମୋଟା । (ଖ) ଦକ୍ଷିଣୀ—ଏଥିର ପହି ଓ ଅର ସରୁଆ । (ଗ) ପଟାଳିଆ—ଅର ନ ଥିବା ଚକ । ଏହା ଗୁଡ଼ିଏ ମୋଟ ପଟାର ସମଷ୍ଟି ମାତ୍ର । ଏଭଳି ଚକ ଗଡ଼ଜାତ ଶଗଡ଼ ବା ଗୋଟିଆରେ ବ୍ୟବହୃତ ହୁଏ ।

(୨୭) ପହି—ଚକର ପରିଧି । (୨୮) ପୁଟି(ଠୀ)—ଚକର ପରିଧିର ଅଂଶମାନ । ଏହା ବୃତ୍ତଖଣ୍ଡାକାର କାଷ୍ଠ ଅଟେ । ସାଧାରଣତଃ ଆମ ଦେଶରେ ଶଗଡ଼ ଚକ(ପହି)ରେ ୬ ଖଣ୍ଡି ପୁଟୀ ଲାଗେ ଓ ୩ ଯୋଡ଼ା ବା ୬ଟି ଅର ବ୍ୟାସରୂପେ ବ୍ୟବହୃତ ହୁଏ । ଶଗଡ଼ର ବ୍ୟାସ-ଅର ୬ ଖଣ୍ଡି ଓ ବ୍ୟାସାର୍ଦ୍ଧ ଅର ୧୨ ଖଣ୍ଡି ଅଟେ । ପୁଟୀର ଶେଷରେ ଗୋଟିଏ ଲେଖାଏଁ ଛିଦ୍ର ହୋଇଥାଏ ସେହି ଛିଦ୍ରରେ ସମ୍ଭାଇବା ଭଳି ଖଣ୍ଡିଏ ଖିଲ (ପଟର) ତାକୁ ଦୁଇ ଛିଦ୍ର ମଧ୍ୟରେ ପୁରାଯାଏ ଓ ଖିଲ ପୁରାଯିବା ପରେ ୨ଟି ପୁଟୀକୁ ଦୃଢ଼ଭାବରେ ବାଡ଼େଇ ଦେଲେ ତାହା ଜୋର୍ ଖାଇଯାଏ । (୨୯) ଅର—ଶଗଡ଼ର ଲହିଆଠାରୁ ପରିଧି ବା ପୁଟି ବା ପହି ପର୍ଯ୍ୟନ୍ତ ଲାଗିଥିବା କାଠଖଣ୍ଡ (ବ୍ୟାସାର୍ଦ୍ଧ) ମାନ । (୩୦) ପଟରା, ପୋଟରା, ପିତାଳା ବା ଫୁସିଅର—ଶଗଡ଼ ଚକର ପୁଟିରେ ଥିବା ଛିଦ୍ରରେ ଅରର ଅଗ୍ରଭାଗକୁ ପୁରାଇ ତାହାକୁ ପୁଟି ସହିତ ଦୃଢ଼ଭାବରେ ଜଡ଼ିତ କରି ରଖିବା ପାଇଁ ବ୍ୟବହୃତ ହେଉଥିବା ଖିଲ । (୩୧) ମେଣ୍ଢାଶିଙ୍ଘ(ଙ୍ଘା)—ଶଗଡ଼ର ଯୁଆଳର ମଝିରେ ପୋତାଯିବା ଖିଲ; [ଦଣ୍ଡାର ଅଗ ମୁଣ୍ଡ ବା ଝୁରିର ଅଗର ତଳେ ଲଗାଯାଇ ଏହି ଖିଲ ଚାରିପାଖେ ଦଉଡ଼ି ଗୁଡ଼ାଯାଇ ଯୁଆଳ ଓ ଝୁରି ଏକତ୍ର ଦୃଢ଼ରୂପେ ବନ୍ଧାଯାଏ ଓ ଶଗଡ଼ରେ ଯୋଚାଯିବା ବଳଦଙ୍କ ପଘାଦଉଡ଼ିର ଶେଷ ମୁଣ୍ଡ ଏହି ଖିଲରେ ବନ୍ଧାଯାଏ । (୩୨) ମେଣ୍ଢି(ଣ୍ଢୀ)—ଅଖର ଅଗ୍ରଭାଗ ଚକର ଲହିଆର ଛିଦ୍ରଠାରୁ ସରୁ ହେଲେ ତାକୁ ଲହିଆର ଛିଦ୍ରକୁ ଗୁହିଁ ମୋଟା କରିବା ପାଇଁ ଅଖରେ ଯେଉଁ କାଷ୍ଠଖଣ୍ଡ ମରାଯାଏ । (୩୩) ଶଟ୍ ବା ଶାଟ୍—ଦୁଇ ଦଣ୍ଡାକୁ ଯୋଖିଥିବା ଶଗଡ଼ ପଛପାଖର ଶେଷ ଫଳ । (୩୪) ଶାଟ୍ କିଳା ବା ଶାଟ୍ ଖିଲ—ଶଗଡ଼ ପଛପାଖରେ ଦୁଇ ଦଣ୍ଡାକୁ ଭେଦକରି ଯେଉଁ ଫଳ ଲାଗିଥାଏ, ତାହା ଖସିଗଲା ନ ଯିବା ପାଇଁ ତା ଅଗରେ ମରା ଯାଇଥିବା କାଠର ଖିଲ । (୩୫) ଶଟ୍ ଦଉଡ଼ା(ଡ଼) ବା ଶାଟ୍ ଦଉଡ଼ି(ରି)—ଦଣ୍ଡାର ଦୁଇ ପଛ ମୁଣ୍ଡକୁ ଶେଷ ଫଳ ସହିତ ଭିଡ଼ି ରଖିବା ଦଉଡ଼ି । (୩୬) ଶଟ୍‌କ ବା ଶଟକ ଦଉଡ଼ା—ଶଗଡ଼ରେ ଯୋଚାଯିବା ବଳଦଙ୍କ ବେକର ପଘାକୁ ବାଙ୍କୁଲିରେ ଅଟକାଇ ରଖିବାପାଇଁ ପଘାରେ ଲାଗିଥିବା ଶେଷ କଲସ୍ତାକୃତି ଦଉଡ଼ି । (୩୭) ସଣ୍ଡିଆ(ଯା), ସଣ୍ଡି(ଣ୍ଡ)ଅ(ଯା) ବା ସଣ୍ଡି(ଣ୍ଡୀ)ଅ(ଯା)କଳା—ଦୁଇ ପୁଟିକୁ ବୃତ୍ତାକାରଭାବରେ ଯୋଡ଼ିଥିବା ଖିଲ । ପୁଟିମାନଙ୍କ ସନ୍ଧି ମଧ୍ୟରେ ଏହା ଲାଗିଥାଏ । (୩୮) ନାଣ୍ଡି ବା ତୁମ୍ବ—ଚକର କେନ୍ଦ୍ରସ୍ଥ ସ୍ଥୂଳ କାଷ୍ଠପିଣ୍ଡ, ଯହିଁରେ ପରିଧିର ଏକ ମୁଣ୍ଡରେ ଲାଗିଥିବା ଅରମାନଙ୍କର ଅନ୍ୟ ମୁଣ୍ଡ ସନ୍ନିବିଷ୍ଟ ହୋଇଥାଏ ଓ ଯାହାର ମଧ୍ୟସ୍ଥ ଛିଦ୍ର (ଲହିଆ)ରେ ଅଖ ପଶେ । (୩୯) ବନ୍ଧ ବା ଲହିଆ ବନ୍ଧ—ନାଣ୍ଡିର ଦୁଇପାଖର ପରିଧିରେ ପିଟା ଯାଇଥିବା ଲୁହାର ପାତିଆ । (୪୦) ଲହିଆ—ଚକର ନାଣ୍ଡିମଧ୍ୟସ୍ଥ ଛିଦ୍ର, ଯାହା ମଧ୍ୟଦେଇ ଅଖ ପଶିଥାଏ । (୪୧) ଓଲୁଥ—ଅଖଦ୍ୱାରା ଲହିଆ ଘୋରି ହୋଇ ନ ଯିବ ବୋଲି ତହିଁରେ ଯେଉଁ ଲୌହନିର୍ମିତ ବଳୟ ଦିଆଯାଏ । ଏହା ଚୁଡ଼ିକି ସମା ପରି; କିନ୍ତୁ ଏହାର ପରିଧିରେ ଦୁଇଟି ଦାନ୍ତ ଥାଏ । ଯୋଚିଆଦ୍ୱାରା ସେ ଦାନ୍ତକୁ ନାଣ୍ଡିରେ ବସାଯାଏ । (୪୨) କାଳ—ଶଗଡ଼ର ଅଖ ଲହିଆ ମଧ୍ୟରେ ଘୂରି ତାକୁ ଘଷି ଖାଇ ନ ଯିବ ବୋଲି ଅଖର ମୁଣ୍ଡରେ ଦିଆଯିବା ଚେଲର କାଣ୍ଡ । (୪୩) ଟେପେଇ—ଶଗଡ଼ର ଝୁରିକୁ ଭୂମିରୁ ଉଠାଇ ଶଗଡ଼ର ଦଣ୍ଡାକୁ ଭୂମି ସଙ୍ଗେ ସମାନ୍ତରାଳ କରିବାପାଇଁ ଝୁରି ତଳେ ଦିଆ ହେବା ତ୍ରିକୋଣାକାର କାଷ୍ଠ । (୪୪) ବତା ବା ପାଟେଣି ବତା—ଶଗଡ଼ ଦଣ୍ଡାର ତ୍ରିକୋଣାକାର ଅଂଶର (ଯହିଁରେ ମଝିରେ ମଝିରେ ଖଣ୍ଡିଏ ଲେଖାଏଁ ଫଳ ଆଡ଼ବାଗରେ ମରାଥାଏ ସେ ଫଳମାନଙ୍କ) ମଧ୍ୟରେ ଥିବା ଫାଙ୍କକୁ ବନ୍ଦ କରିବା ପାଇଁ ଫଳ ମଧ୍ୟରେ ଲମ୍ବଭାବରେ ଗଳା ଯାଇଥିବା ବତା ବା ବାଉଁଶ । (୪୫) ଉଦର, ଓଦର ବା ରୁଦ୍ର—ଧାନ ଆଦି ପଦାର୍ଥ ଶଗଡ଼ରେ ବୁହାଯିବା ପାଇଁ ବାଉଁଶ ପାତିଆରେ ବୁଣା ହୋଇଥିବା ବଡ଼ ଓ ଲମ୍ବ ଟୋକାଇ । (୪୬) ଛାଟ(ଟି) ବା ଛପର(ରା)—ମନୁଷ୍ୟ ବସିବା ପାଇଁ ଶଗଡ଼ ଉପରେ ସଂଲଗ୍ନ କରାଯିବା ବୃତ୍ତାକାର ଛପ୍ପା । ଏହା ତାଳପତ୍ର କମ୍ବା ବାଉଁଶପାତିଆ, ଅଥବା ତଲେଇରେ ନିର୍ମିତ ହୁଏ । (୪୭) ନୋଥର—ଶଗଡ଼ ଉପରେ ଛାଟିକୁ ବାନ୍ଧିବା ନିମନ୍ତେ ବ୍ୟବହୃତ କାଠର ବା ବାଉଁଶର ଫର୍ମା । (୪୮) ନୋଥର ପଟା—ନୋଥରର ନିମ୍ନତମ ଅଂଶର କାଠ, ଯାହା ଶଗଡ଼ର ଦଣ୍ଡା ଉପରେ ବସା ଯାଇ ଥାଏ । (୪୯) ଉଦର (ଓଦର, ରୁଦ୍ର) ଶଗଡ଼—ଯେଉଁ ଶଗଡ଼ ଉପରେ ଜିନିଷ ପତ୍ର ବୋହିବା ପାଇଁ ରୁଦ ବା ଲମ୍ବ ଟୋକାଇ ରଖା ଯାଇଥାଏ । (୫୦) ଛାଟି (ଛାଟ, ଛପର, ଛପରା) ଶଗଡ଼—ଯେଉଁ ଶଗଡ଼ ଉପରେ ଆଚ୍ଛାଦନ ଥାଏ । (୫୧) ଏକବଳଦିଆ ଶଗଡ଼—ଯେଉଁ ଶଗଡ଼ରେ ଗୋଟିଏ ବଳଦ ବା ଘୋଡ଼ା ଲାଗିଥାଏ

ଗଞ୍ଜାମ ଅଞ୍ଚଳରେ ଏହା ବଣ୍ଡି ବା ବାଣ୍ଡି ଶଗଡ଼ ଓ ଝଟକା ନାମରେ ଅଭିହିତ ହୁଏ । ଉତ୍ତର ଭାରତରେ ଏହାର ନାମ ଏକ୍କା (୫୨) ଖାଲି ଶଗଡ଼— ବୋଝାଇ ହୋଇ ନ ଥିବା ଶଗଡ଼ । (୫୩) ବୋଝାଇ ବା ଲଦଣ ଶଗଡ଼— ଯେଉଁ ଶଗଡ଼ରେ ବୋଝ ଲଦା ହୋଇଥାଏ । (୫୪) ଉଲାର ବା ଟପାଳିଆ ଶଗଡ଼— ଯେଉଁ ଶଗଡ଼ରେ ଲଦା ହୋଇଥିବା ବୋଝର ଭାର ଅକ୍ଷର ପଛ ପାଖକୁ ବେଶି ଥାଏ ଓ ଏଥିଯୋଗୁ ଶଗଡ଼ର ଆଗ ପଖ ଟେକି ଉଠି ଯାଉଥାଏ । (୫୫) ଦବଣ ବା ଜୁଙ୍ଗ ଶଗଡ଼— ଯେଉଁ ଶଗଡ଼ରେ ଲଦା ହୋଇଥିବା ବୋଝର ଭାର ଅକ୍ଷର ଆଗ ପାଖକୁ ବେଶି ଥାଏ ଓ ଏଥିପାଇଁ ଶଗଡ଼ର ଜୁଙ୍ଗ ଚଳକୁ ଦାବି ହେଉଥାଏ । (୫୬) ଗୋଷ୍ଠଅ ଶଗଡ଼— ଜଙ୍ଗଲାଭର ପାର୍ବତ୍ୟ ଓ ଅସମ ଭୂମି ଉପରେ ଚଳିବା ପାଇଁ ବ୍ୟବହୃତ ଏକ ପ୍ରକାର ଛୋଟ ଶଗଡ଼ । ଏହାର ଚକରେ ଲୁହାଅ, ଘୁଞ୍ଚି ବା ଅର ଦିଆ ନ ଯାଇ ଖଣ୍ଡିଏ ମୋଟା ପଟାକୁ ଗୋଲାକାର କରାଯାଇ କବାଟ ପରି ସଂଲଗ୍ନ କରା ଯାଇଥାଏ । (୫୭) କେଉଁରେଣ୍ଡ ଶଗଡ଼— କାଠର ପ୍ରକୋଷ୍ଠଯୁକ୍ତ ଏକପ୍ରକାର ଗାଡ଼ି । ଗଞ୍ଜାମ ଅଞ୍ଚଳରେ ଏହା ବାଣ୍ଡି ଶଗଡ଼ ନାମରେ ଅଭିହିତ । (୫୮) ଶବାର ଶଗଡ଼— ଯେଉଁ ଗାଡ଼ିରେ ମନୁଷ୍ୟ ବସନ୍ତି । କେଉଁରେଣ୍ଡ ଶଗଡ଼ ମଧ୍ୟ ଏହି ନାମରେ ଅଭିହିତ ହୁଏ । (୫୯) ଭଡ଼ା ଶଗଡ଼— ଯେଉଁ ଗାଡ଼ି କେରେୟାରେ ବୁଲାଯାଏ ।]

**ଶଗଡ଼ ଅଡ଼ା**— ଦେ. ବି.— [ସଂ. ଶକଟ+ଆ. ଅଡ଼ା]— ଶଗଡ଼ମାନ ଏକତ୍ର ରଖାଯିବା ସ୍ଥାନ— A cart-stand; a garage for carts.
Śagarḍa arḍā
ଗରୁର ଗାଡ଼ିର ଆଡ୍ଡା
छकडा का आड्डा

**ଶଗଡ଼ ଅଡ଼ା(ଡ଼େ)ଇବା**— ଦେ. କ୍ରି.— ଗାଡ଼ି ଚଳେଇବା— To drive a cart.
Śagarḍa arḍā (rḍe)ibā
ଗାଡ଼ି ଚାଲାନ
छकडा हांकना
[ଦ୍ର— ଶଗଡ଼ଆ ଶଗଡ଼କୁ ଅଡ଼ାଏ ନାହିଁ; ଶଗଡ଼ରେ ଯୋଚି ହୋଇଥିବା ବଳଦକୁ ଅଡ଼ାଏ ।]

**ଶଗଡ଼ ଅଣ୍ଟା(ଣ୍ଟେ)ଇବା**— ଦେ. କ୍ରି.— ବାଲିଅରେ ବା କାଦୁଅରେ ବଳଦ ଟାଣି ପାରୁ ନଥିବା ଶଗଡ଼ର ଦଣ୍ଡା ପାଖରେ ମନୁଷ୍ୟ ହାତ ଓ ଅଣ୍ଟାଦ୍ୱାରା ବଳ ପ୍ରୟୋଗ କରିବା— To push a heavily laden cart (which the bullocks are drawing with difficulty through sand or mud) with one's hands and waist to accelerate its movement.
Śagarḍa aṇṭā(ṇṭe)ibā
ଗରୁର ଗାଡ଼ୀ ଠେଲା
छकडा ठेलना

**ଶଗଡ଼ କଟା(ଟେ)ଇବା**— ଦେ. କ୍ରି.— ବିପରୀତ ଦିଗରୁ ଆସୁଥିବା ଶଗଡ଼ ଆଦି ସଙ୍ଗେ ଧକ୍କା ନ ଲାଗିବା ଉଦ୍ଦେଶ୍ୟରେ ଶଗଡ଼ର ବଳଦକୁ କଡ଼ିକି କରି ଶଗଡ଼କୁ ଏକପାର୍ଶ୍ୱସ୍ଥ କରିବା— To cause a cart to swerve to one side, so as not to collide with another cart or conveyance coming from the opposite direction.
Śagarḍa kaṭā(ṭe)ibā
ଗାଡ଼ିର ପଥକଟା
छकडा कटाना

**ଶଗଡ଼ ଗାଡ଼ି**— ଦେ. ବି.— ୧ । ଛାଇ ଶଗଡ଼— 1. A thatched cart. ୨ । (ସମଷ୍ଟିର) ଶକଟ ଇତ୍ୟାଦି । 2. Carts etc.
Śagarḍa gārḍi
ଗରୁବଗାଡ଼ୀ
छकडागाडी

**ଶଗଡ଼ ଗୁଳା**— ଦେ. ବି.— ଶଗଡ଼ର ଚକ ଯାଇଥିବା ଭୂମିରେ ଚିହ୍ନିତ ସମାନ୍ତରାଳ ରେଖାଚିହ୍ନଦ୍ୱୟ— The parallel lines left or traced on the ground by the wheels of a cart; cart track.
Śagarḍa guḷā
ଗରୁବଗାଡ଼ୀର ଚାକାବଦାଗ
छकडाकी पौटी

**ଶଗଡ଼ ଘଣି(ଣୀ)**— ଦେ. ବି.— କାଦୁଅ ବା ପଙ୍କମୟ ସ୍ଥାନରେ ଅନେକ ଶଗଡ଼ ଯିବା ଆସିବା କରିବାରୁ ଭୂମିରେ ପୁରୁ ଯାଇଥିବା ଗଭୀର ଗର୍ତ୍ତ— Deep ruts made in clayey soil by heavy cart traffic.
Śagarḍa ghaṇi (ṇī)
ଗାଡ଼ୀର ଚାକାବଗର୍ତ୍ତ
छकडा पौट(टी)

**ଶଗଡ଼ ଘିଡ଼ିଘିଡ଼େଇବା**— ଦେ. ବି. ଶକଟ ଘଡ଼ ଘଡ଼ ଶବ୍ଦ କରି ଚଳିବା— A cart moving with a rattling sound; the rattling sound made by a moving cart.
Śagarḍa ghirḍi ghirḍeibā
ଗାଡ଼ୀ ଘଡଘଡ କରେ ଯାଓୟା
छकडा घडघडना

**ଶଗଡ଼ ଚକ**— ଦେ. ବି.— ବଳଦ ଗାଡ଼ିର ଚକ— The wheels of a cart.
Śagarḍa chaka
ଗାଡ଼ୀର ଚାକା
छकडा पहिया

**ଶଗଡ଼ ଝୁରା**— ଦେ. ବି.— ଶଗଡ଼ର ଜୁଆଳିର ମଧ୍ୟ ସ୍ଥଳରେ ଦୁଇ ଦଣ୍ଡାର ଆଗ ମୁଣ୍ଡର ସଂଯୁକ୍ତ ହେବା ସ୍ଥାନ— The middle of the yoke where the beams of a cart meet.
Śagarḍa jhurā
ଗାଡ଼ିର ମାଥା
छकडा की मुहडा

**ଶଗଡ଼ ଯୁଆଳି**— ପ୍ରାଦେ· (ଗଞ୍ଜାମ)— ବି.— ଶଗଡ଼ଝୁରା (ଦେଖ)
Śagarḍa juāḷi Śagarḍa jhurā (See)
ଦେ. ବି.— ଶଗଡ଼ର ଯୁଗକାଷ୍ଠ— The yoke of a cart.

**ଶଗଡ଼ ଯୁ(ଯୋ)ଚ(ଚି)ବା**— ଦେ. କ୍ରି.— (ସଂ ଶକଟ+ଯୁଜ୍ ଧାତୁ)- ଶକଟର ଯୁଗରେ ପଶୁଙ୍କୁ ଲଗାଇବା— To yoke beasts to a cart.
Śagarḍa ju(jo)chi(ti)bā
ଗାଡ଼ୀ ଯୋତା
छकडा जोतना
(ଦ୍ର— ପ୍ରକୃତରେ ଶଗଡ଼ ଯୋଚା ଯାଏ ନାହିଁ, ଶଗଡ଼ରେ ବଳଦ ଯୋଚା ଯାଆନ୍ତି ।)

**ଶଗଡ଼ ଢିପିଢିପେଇବା**— ଦେ. କ୍ରି.— ଗାଡ଼ିର ଦଣ୍ଡାର ପଛମୁଣ୍ଡରେ ଉପର୍ଯ୍ୟୁପରି ଭାର ପ୍ରୟୋଗ ଓ ଭାରକୁ ଉଠାଇ ନେବା ଦ୍ୱାରା ଶଗଡ଼ର ଏ ମୁଣ୍ଡ ସେ ମୁଣ୍ଡ ଅଣ ଉପରେ ଉଠୁଥିବା ଓ ପଡ଼ୁଥିବା— The state of a cart moving like a see-saw by alternately applying load and lessening it on the back end.
Śagarḍa ḍhipiḍhipeibā
छकडा डुगुर डुगुर होना

ଶଗଡ଼ ଢିପିଢିପେଇଲା; ଓପର (ତଳ) ପାଟିରେ ଦାନ୍ତ ନାହିଁ, ଅଇଁଠା ଚଟେଇଲା—ଯେଉଁ ବାଳକ ବା ବାଳିକାଙ୍କର ଦୁଧ ଦାନ୍ତ ପଡ଼ିଯାଇ ନୂଆ ଦାନ୍ତ ଉଠି ନ ଥାଏ, ତାକୁ ସାଙ୍ଗ ପିଲାଏ ଏହି ଗୀତ ପଦକ ବୋଲି ଚଡ଼ାନ୍ତି
Śagarḍa ḍhipiḍhipeilā; Opara (taḷa) pāṭire dānta nāhiṅ, ainṭhā chaṭeilā
—A doggerel used by children to those of them who have lost their milk teeth.

ଶଗଡ଼ ଦଉଡ଼ା(ଡ଼ି)—ଦେ. ବି.—ଶଗଡ଼ରେ ବୁହାଯିବା କାଠ ଆଦିକୁ ବା ବୁଦାକୁ ଶଗଡ଼ ସଙ୍ଗେ ମଜଭୁତ କରି ବାନ୍ଧିବା ପାଇଁ ବ୍ୟବହୃତ ୧୫।୨୦ ହାତ ଲମ୍ବା ମୋଟା ଦଉଡ଼ା
Śagarḍa daurḍā (rḍi)
छकड़ा का रस्सा
—A thick long rope which is kept in a cart to tie any thing to be carried on it.

ଶଗଡ଼ ଦଣ୍ଡା—ଦେ. ବି (ସଂ. ଶକଟ+ଦଣ୍ଡ)—୧। ଶଗଡ଼ର ଯେଉଁ ଦୁଇଟି ଦଣ୍ଡ ଅଗ ପାଖରେ ଯୁଆଳରେ ମିଳିଥାଏ ଓ ପଛରେ ଦ୍ୱିଭୁଜ ହୋଇ ବାହାରିଥାଏ
Śagarḍa danḍā
गाड़ीब डाण्डा
छकड़ा डंडा
—1. The beams or arms of a cart.
୨। ଶଗଡ଼ର ଦଣ୍ଡ ଦ୍ୱୟର ପଶ୍ଚାଦଭାଗସ୍ଥ ଶେଷାଂଶ; ମୁଠା—2. The back ends of the beams of a cart. [ଦ୍ର—ଏହାକୁ ହାତରେ ଧରି ବଳ ପ୍ରୟୋଗ କଲେ ଶଗଡ଼ର ଅଗ ପାଖର ଗତି ବିପରୀତ ଦିଗକୁ ନିୟନ୍ତ୍ରିତ ହୁଏ।]

ଶଗଡ଼ ନନ୍ଧା—ଦେ. ବି—ଶଗଡ଼ର ଧୁରିକୁ ଯୁଆଳର ମଧ୍ୟସ୍ଥଳ ସହିତ ଦଉଡ଼ାଦ୍ୱାରା ବାନ୍ଧିବା
Śagarḍa nandhā
छकड़ाका मुहड़ा बाँधना
(ଶଗଡ଼ ନନ୍ଧିବା—କ୍ରିୟାରୂପ)
—Tying the front end of the beams of a cart securely to the middle of the yoke.

ଶଗଡ଼ ପଛକେ କିଆବାଡ଼ (ଗୋହିରି)ରେ ପଡ଼ୁ (ପଶୁ), ଶଗଡ଼ିଆର ମୂଲ (ଭଡ଼ା) ମାରା ହବନାହିଁ—ପ୍ରବଚନ—କୌଣସି ବ୍ୟକ୍ତି କୌଣସି ଦ୍ରବ୍ୟକୁ ସ୍ଥାନାନ୍ତରକୁ ନେବା ପାଇଁ କୌଣସି ଶଗଡ଼ିଆ ସଙ୍ଗେ ଭଡ଼ାର ଚୁକ୍ତି କରି ଉକ୍ତ ପଦାର୍ଥକୁ ଶଗଡ଼ରେ ବୋଝାଇ କରି ବାଟରେ ଯାଉଥିଲାବେଳେ ବା ନେଉଥିଲାବେଳେ ଅକସ୍ମାତ୍ ଯେବେ ଉକ୍ତ ଗାଡ଼ି ଶଗଡ଼ସହିତୁ ଗଡ଼ିପଡ଼ି ସଡ଼କ ପାର୍ଶ୍ୱସ୍ଥ କିଆବାଡ଼ରେ ପଡ଼ିଯାଏ ଓ ତନ୍ନିବନ୍ଧନ ବାହିତ ଦ୍ରବ୍ୟମାନ ଭୁଣିଯାଏ କିମ୍ବା ନଷ୍ଟ ହୋଇଯାଏ, ତେବେ ସେ କ୍ଷତି ଦ୍ରବ୍ୟସ୍ୱାମୀ ସହେ। କିନ୍ତୁ ଶଗଡ଼ିଆ ସଙ୍ଗେ ଚୁକ୍ତି ହୋଇଥିବା ଭଡ଼ା ଶଗଡ଼ିଆ ଛାଡ଼େ ନାହିଁ। ଅର୍ଥାତ୍, ଲୋକସାନ ହେଲେ ଦ୍ରବ୍ୟସ୍ୱାମୀ ତାହା ସହେ ଓ ଶଗଡ଼ିଆକୁ ଚୁକ୍ତି ହୋଇଥିବା ଭଡ଼ା ଦେବାକୁ ସେ ବାଧ୍ୟ ହୁଏ। କାରଣ, ଲାଭ ଖାଇଥାଆନ୍ତା ଦ୍ରବ୍ୟସ୍ୱାମୀ, କ୍ଷତି ସହିବ ସେହି। କିନ୍ତୁ ଶଗଡ଼ିଆ ଲାଭର ଭାଗୀ ନୁହେଁ, କ୍ଷତିରେ ଭାଗୀ ହେବ ଅବା କାହିଁକି?—
Śagarḍa pachhake kiābārḍare parḍu (paśu), śagarḍiāra mūla (bharḍā) mārā heba nāhiṅ
तेरे भोजमे आग लगे हमे जो पुरीसे काम
A proverb meaning 'A carrier must be given his hire even if the cart overturns on the roadside and the articles are spoiled thereby. The owner of the article has to suffer the loss occasioned by the mishap and not the cartman. This is applied to cases where out of two persons engaged in a transaction, one person takes the risk and the other takes no risk but gets his wages.

ଶଗଡ଼ ପହି(ହୀ)—ଦେ. ବି (ସଂ ଶକଟ+ପରିଧି)—୧। ଶଗଡ଼ର ଚକ—
Śagarḍa pahi(hī)
गाडिब चाका
छकड़ाका पहिया
1. The wheel of a cart. ୨। ଶଗଡ଼ ଚକର ପରିଧି—2. The rim of a cart-wheel.
(ଶଗଡ଼ପହିଅ[ସ୍ଥା], ଶଗଡ଼ ପହ୍ୟା—ଅନ୍ୟରୂପ)

ଶଗଡ଼ ଫିଟା(ଟେ)ଇବା—ଦେ. କ୍ରି—ଶଗଡ଼ରେ ଯୋଗ ହୋଇଥିବା ବଳଦଙ୍କୁ ଯୁଆଳରୁ ମୁକ୍ତ କରିବା—
Śagarḍa phiṭā(ṭe)ibā
गाडि खुला
बैल खोलना
To unyoke the beasts of a cart.

ଶଗଡ଼ ବଟି—ଦେ. ବି (ସଂ. ଶକଟ+ପା. ବଣ୍ଟା)—ଅନ୍ୟ ବ୍ୟକ୍ତିର ଜମି ଉପରେ କିଛି କାଳ ପାଇଁ ଶଗଡ଼କୁ ରଖିବାକୁ ହେଲେ ଶଗଡ଼ିଆର ଉକ୍ତ ଜମିର ମାଲିକକୁ ଦେବା କର ବା ଶୁଳ୍କ-
Śagarḍa baṭi
गाड़िब माशुल
छकड़ाकाबटा
[ଶଗଡ଼ ମାଅ(ହା)ସୁଲ-ଅନ୍ୟରୂପ]
A fee paid to the owner of a land by a cartman for keeping the cart on it for some time

ଶଗଡ଼ ବଳଦ—ଦେ. ବି.—(ସହଚର)—୧। ଶଗଡ଼ ଓ ଶଗଡ଼ବୁହା ବଳଦ—1. Cart and its bullocks. ୨। ଶଗଡ଼ ବୁହାରେ ଅଭ୍ୟସ୍ତ ବଳଦ; ଶଗଡ଼ିଆ ବଳଦ—2. Bullocks broken to the cart; draught bullocks.
Śagarḍa baḷada
गाड़ीब बलद
छकड़ाका बैल

ଶଗଡ଼ ବାଟ—ଦେ. ବି.—ଯେଉଁ ରାସ୍ତାରେ ଶଗଡ଼ ଯିବା ଆସିବା କରି ପାରେ; ଶକଟ ଗମନାଗମନର ଉପଯୋଗୀ ପ୍ରଶସ୍ତ ରାସ୍ତା—Cart road; a road for cart traffic.
Śagarḍa bāṭa
गरुब गाड़ीब बास्ता
[ଶଗଡ଼ ରାସ୍ତା—ଅନ୍ୟରୂପ]

ଶଗଡ଼ ବାଟୁଆ—ଦେ. ବି—ଏକପ୍ରକାର ସୁଗନ୍ଧି ବନ୍ୟଗୁଳ୍ମ—
Śagarḍa bāṭuā A kind of wild tree with aromatic flowers; Eugenia Bractiata.
[ଦ୍ର—ଏହାର କୋଳି ଲୋକେ ଖାଆନ୍ତି, ଏହାର ଫୁଲ ଅତ୍ୟନ୍ତ ସୁବାସିତ।] [ଦ୍ର—ବାଳି ସ୍ତୂପ ଖୋଲେ ଉଙ୍ଗେ ଯହିଁ ପ୍ରଜାପତିଙ୍କ ଥାଟ, ସୁରେ ଶଗଡ଼ ବାଟୁଆ କଲୁଞ୍ଜେ କରନ୍ତି ନାଟ। ରାଧାନାଥ ଉଷା।]

ଶଗଡ଼ ବୁହାଇବା—ଦେ. କ୍ରି—ଶଗଡ଼ ଟାଣୁଥିବା ପଶୁମାନଙ୍କୁ ସାରଥିରୂପେ ନିୟନ୍ତ୍ରିତ କରି ଶଗଡ଼କୁ ଚାଳିତ କରିବା—To drive a cart.
Śagarḍa buhāibā
गाड़िचालान
छकड़ाहाँकना

ଶଗଡ଼ ବୋହିବା—ଦେ. କ୍ରି—୧ । (ପଶୁ) ଶକଟକୁ ଟାଣିବା—
Sagarda bohibā 1. (oxen) To draw a cart.
ଗାଡ଼ୀକେବହ୍ନା ୨ । ଶଗଡ଼ ବୁହାଇବା (ଦେଖ)—2. Sagarda
छकड़ाकोखींचना buhāibā (See)

ଶଗଡ଼ ଭଡ଼ା—ଦେ. ବି (ସଂ. ଶକଟ+ଭାଟକ)—ଅନ୍ୟ ବ୍ୟକ୍ତିଙ୍କ ବା
Sagarda bhardā ଅନ୍ୟ ବ୍ୟକ୍ତିଙ୍କ ପଦାର୍ଥକୁ ଶଗଡ଼ରେ ନେବା
ଗାଡ଼ିଭାଡ଼ା छकड़ाभाड़ा ପାଇଁ ଶଗଡ଼ିଆର ନେବା ମୂଲ୍ୟ
ବା କେରେୟା—Cart hire.

ଶଗଡ଼ ସରି—ଦେ. ବି (ସଂ. ଶକଟ ଓ ସୃ ଧାତୁ)—ଶଗଡ଼ ଗୁଳା—
Sagarda sari Tracks left by cart wheels on
ଗାଡ଼ିର ଚାକାର ଦାଗ the ground; cart-track.
छकड़ाकी पौटी

ଶଗଡ଼ା—ପ୍ରାଦେ (ଉତ୍ତର ବାଲେଶ୍ୱର) ବି—ଦୋଳା—
Sagardā Cradle; a swing.

ଶଗଡ଼ି—ଦେ. ବି (ସଂ ଶକଟ)—୧ । ଶକଟ; ଶଗଡ଼—1. Cart. ୨ ।
Sagardi ଭାର ଦ୍ରବ୍ୟକୁ ଅଳ୍ପ ବଳପ୍ରୟୋଗପୂର୍ବକ ରଜ୍ଜୁଦ୍ୱାରା
କପିକଲ घिरनी, चरखी ଉପରକୁ ଉଠାଇବା ପାଇଁ
ବ୍ୟବହୃତ ଏକପ୍ରକାର କଳ—2. A pulley (consisting of a grooved wheel). [ଦ୍ର—ଏହି କଳରେ ଗୋଟିଏ ମାତ୍ର ଚକ ଥାଏ ଏବଂ ତାହା ଗୋଟିଏ ଦୃଢ଼ ଅକ୍ଷ ଉପରେ ଘୂରୁଥାଏ । ଏହି ଚକର ପରିଧିରେ ଗୋଟିଏ ଗାର ଖୋଳାହୋଇ ତା ଉପରେ ରଜ୍ଜୁ ଗଳିଥାଏ । ରଜ୍ଜୁର ଏକ ମୁଣ୍ଡରେ ଭାର ଦ୍ରବ୍ୟକୁ ବାନ୍ଧି ରଜ୍ଜୁଟିକୁ ଶଗଡ଼ିର ପରିଧିବାଟେ ଘୂରାଇ ଆଣି ତଉଡ଼ିର ବିପରୀତ ମୁଣ୍ଡକୁ ତଳଆଡ଼କୁ ଟାଣିଲେ ଆର ମୁଣ୍ଡରେ ଝୁଲିଥିବା ବସ୍ତୁ ଉପରକୁ ଉଠେ ଓ ଏ ମୁଣ୍ଡରେ ବଳପ୍ରୟୋଗକୁ ଅଳ୍ପ କରିଦେଲେ ଆର ମୁଣ୍ଡରେ ଭାରି ବସ୍ତୁ ତଳକୁ ଖସେ ।]

ଶଗଡ଼ିଆ—ଦେ. ବିଣ (ସଂ. ଶାକଟିକ)—୧ । ଶକଟସମ୍ବନ୍ଧୀୟ—
Sagardiā 1. Relating to the cart ୨ । ଶକଟ
ଟାଣିବାରେ ନିଯୁକ୍ତ (ବ୍ୟକ୍ତି ବା ପଶୁ)—2. Engaged in work in connection with a cart. (ଯଥା—ଶଗଡ଼ିଆ ବଳଦ, ଶଗଡ଼ିଆ ପୋଡ଼ିହ) ଦେ. ବି—
ଗରୁବଗାଡ଼ୀବଗାଡ଼ୋଆନ गाडिवान, छकड़ावाला ୧ । ଗାଡ଼ୁଆନ; ଶକଟବାହ; ସ.ରଥୀ—1. A cart driver; cart man. ୨ । ଯେଉଁ ବ୍ୟକ୍ତି ଶଗଡ଼ଦ୍ୱାରା ଜୀବିକା ନିର୍ବାହ କରେ—2. A person who earns his living by carrying things in carts; a carrier of things and men by cart. (ଦ୍ର—ଉଖାର କେଲା, ଶଗଡ଼ିଆ, ଜନମନ୍ଦ; ଲୋକେ ଗଲେ ସ୍ଥାନ ନ ଦେବ କଦାଚନ—ବୃନ୍ଦାବନ ମହାଭାରତ ଶାନ୍ତି ।) ପ୍ରାଦେ (ବାଲେଶ୍ୱର) ବି—ଶଗଡ଼ ସରି—A cart track.

ଶଗଡ଼ିଆ ପଶିଲେ (ଆସିଲେ) ମୁଣ୍ଡବୋହିଆ ପଳାନ୍ତି—ପ୍ରବଚନ—
Sagardiā pasile (āsile) mundabohiā palānti.
ଘୋଡ଼ା ଦେଖଲେ ଖୋଁଡ଼ା ହଓଆ गाडीकाआमनेमोटियाभागजाताहै
କୌଣସି କାର୍ଯ୍ୟ ପାଇଁ ଯୋଗ୍ୟତର ବ୍ୟକ୍ତି ପହଞ୍ଚିଲେ ପୂର୍ବ ନିଯୁକ୍ତ ଅପେକ୍ଷାକୃତ ଅଯୋଗ୍ୟ ବ୍ୟକ୍ତିମାନେ ସେ କ୍ଷେତ୍ରରୁ ବିଦାୟ ଗ୍ରହଣ କରନ୍ତି—ଏପରି ସ୍ଥଳରେ ଲକ୍ଷଣାର୍ଥରେ ଏ ପ୍ରବଚନ ବାକ୍ୟଟି ବ୍ୟବହୃତ ହୁଏ ।
A sentence used to mean'—Less useful people give place to more useful people
[ଦ୍ର—ମୁଣ୍ଡରେ ବୋହିବାଦ୍ୱାରା ଅଳ୍ପ ପରିମିତ ପଦାର୍ଥ ନେବା ଆଣିବା କରାଯାଇ ପାରେ । କିନ୍ତୁ ଶଗଡ଼ଦ୍ୱାରା ବହୁତ ପଦାର୍ଥ ବୁହାଯାଏ । ଏଥିପାଇଁ କୌଣସି ପଦାର୍ଥକୁ ସ୍ଥାନାନ୍ତରକୁ ବୁହାଇବାକୁ ହେଲେ ଲୋକେ ମୁଣ୍ଡବୋହିଆଙ୍କ ଅପେକ୍ଷା ଶଗଡ଼ିଆଙ୍କୁ ଅଧିକ ପସନ୍ଦ କରନ୍ତି । କୌଣସି ପଦାର୍ଥକୁ ବୁହାଇବା ଆଗରୁ ମୁଣ୍ଡ ବୋହିଆଙ୍କ ଦ୍ୱାରା କାମ ଚଳୁଥିବା ସ୍ଥାନରେ ଯଦି ଶଗଡ଼ିଆମାନେ ଉପସ୍ଥିତ ହୁଅନ୍ତି, ତେବେ ଲୋକେ ମୁଣ୍ଡ ବୋହିଆଙ୍କୁ ଆଉ ନିଯୁକ୍ତ ନ କରି ଶଗଡ଼ିଆଙ୍କଦ୍ୱାରା ଉକ୍ତ କାର୍ଯ୍ୟ କରାନ୍ତି । ଏଥିପାଇଁ ମୁଣ୍ଡବୋହିଆମାନେ ସେଠାରେ ଜୀବିକା ନିର୍ବାହର ଉପାୟ ନ ଦେଖି ସେ ସ୍ଥାନ ପରିତ୍ୟାଗ କରନ୍ତି । ଏହି ପ୍ରକାରେ ଆମ ଦେଶରେ ରେଲ ପହଞ୍ଚିବାରୁ ଶଗଡ଼ିଆଙ୍କର ଦାନା ମରୁ ।]

ଶଗଡ଼ିଆ ବଳଦ—ଦେ. ବି.—ଯେଉଁ ବଳଦମାନେ ଶଗଡ଼ ଟାଣିବା
Sagardiā balada ପାଇଁ ମଣ ହୋଇଥାନ୍ତି—Bullocks
ଗାଡ଼ୀବବଲଦ छकड़ाकाबैल broken to the cart, bullocks trained to draw carts

ଶଗଡ଼େ—ଦେ. ବିଣ ଓ ବି—୧ । ଭଡ଼ାଏ, ଏକଗାଡ଼ି ପରିମିତ—
Sagarde 1. One cart-load of. ୨ । ବହୁ ପରିମିତ—
ଏକଗାଡ଼ୀ एकगाडी 2. Large quantity of. [ଯଥା—ତା ପେଟରେ ଶଗଡ଼େ ବିଦ୍ୟା ଅଛି]

ଶଙ୍କ୍ ବା ଶନ୍‌କ୍ (ଧାତୁ)—ସଂ.—୧ । ଭୀତ ହେବା—1. To
Sank or san-k (root) dread; to be afraid. ୨ । ଆଶଙ୍କା କରିବା—2 To fear; to apprehend. ୩ । ସନ୍ଦେହ କରିବା—3. To doubt; to suspect. [ଦ୍ର—ଏହି ଧାତୁ ପୂର୍ବେ ଆ, ପରି ଆଦି ଉପସର୍ଗମାନ ଯୁକ୍ତ ହୁଏ ।]

ଶଙ୍କ—ସଂ. ବି (ଶଙ୍କ୍ ଧାତୁ+କର୍ତ୍ତୃ. ଅ)—ଶକଟବାହୀ ବୃଷ; ଶଗଡ଼ିଆ
Sanka ବଳଦ—A cart-ox, an ox for drawing cart. ଗ୍ରା. (ଗଞ୍ଜାମ) ବି—ଶଙ୍ଖ; ପୋଲ—Bridge.

ଶଙ୍କନୀୟ—ସଂ. ବିଣ (ଶଙ୍କ୍ ଧାତୁ+କର୍ମ. ଅନୀୟ)—୧ । ଯାହାକୁ ଶଙ୍କା
Sankaniya କରଯାଏ—1. To be feared. ୨ । ଶଙ୍କାର
(ଶଙ୍କନୀୟା—ସ୍ତ୍ରୀ) ବିଷୟୀଭୂତ—2. Apprehensible. ୩ । ଯାହା ସମ୍ବନ୍ଧରେ ସନ୍ଦେହ ହୁଏ—3. Doubtful; questionable.

ଶଙ୍କର—ସଂ. ବଣ. ପୁଂ (ଶମ୍=ମଙ୍ଗଳ+କୃ ଧାତୁ+କର୍ତ୍ତୃ. ଅ; ଯେ
Śaṅkara ମନୁଷ୍ୟର ମଙ୍ଗଳବିଧାନ କରେ)—ମଙ୍ଗଳ-ଜନକ;
(ଶଙ୍କରୀ—ସ୍ତ୍ରୀ) ଶୁଭଙ୍କର—Auspicious ବି—୧। ମହାଦେବ;
ଶିବ—1. Siba. ୨। ଶଙ୍କରାଚାର୍ଯ୍ୟ (ଦେଖ)—
2. Śaṅkarāchārjya, (See). ୩। ଭୀମସେନୀ କର୍ପୂର
(ହି. ଶ)—3. Barus camphor. ୪। ପାରାବତ
(ହି. ଶ)—4. Pigeon. ୫। ଏକ ମାତ୍ରିକ ଛନ୍ଦ
(ହି. ଶ)—5. A syllabic metre. [ ଦ୍ର—ଏଥିର
ପ୍ରତ୍ୟେକ ଚରଣରେ ୧୬ ଓ ୧୦ କ୍ରମରେ ୨୬ ମାତ୍ରା ଥାଏ
ଓ ଅନ୍ତରେ ଗୁରୁ ଲଘୁ ବର୍ଣ୍ଣ ଥାଏ—(ହି. ଶ)।]
୬। ମେଘ ରାଗର ଅଷ୍ଟମପୁତ୍ର, ରାଗ ବିଶେଷ (ହି. ଶ)—
6. Name of a secondary musical tune.
ଦେ. ବି—୧। ହାଙ୍ଗର ପରି ଏକ ପ୍ରକାର ବଡ଼
ସାମୁଦ୍ରିକ ମାଛ; ମୁଣ୍ଡାମଗର ବା ଖଣ୍ଡା ମଗର—1. Saw-
fish; Pristis Perrotteti; Pristis Pectina-
tus. [ଦ୍ର—ଏହି ସାମୁଦ୍ରିକ ମାଛ ୪।୨ ହାତ ଲମ୍ବ
ଓ ଏହାର ଥୋମଣି ୨ ହାତ ପର୍ଯ୍ୟନ୍ତ ଓ କରତ ବା ପାନଆ
ପରି ଦାନ୍ତ ବିଶିଷ୍ଟ । ଏ ଦାନ୍ତଦ୍ୱାରା ସେ ଜୀବମାନଙ୍କୁ
ଆକ୍ରମଣ କରେ ଓ କ୍ଷତ କରି ମାରି ପକାଏ।] ୨।
ଶାଙ୍କୁର ମାଛ—2. Ray fish. ୩। ପୁରୁଷଲୋକଙ୍କ
ନାମ—3. A name given to males. ୪।
ବୈଷ୍ଣବ କରଣ ନାମରେ ଏକ କରଣ ଗ୍ରନ୍ଥ ରଚୟିତା।
(ଦ୍ର—ଏ ୧୬୮୮ ଶକାବ୍ଦରେ ସେ ବିଦ୍ୟମାନ ଥିଲେ। ରୈବତକ
ପର୍ବତରେ ତାଙ୍କର ନିବାସ ଥିଲା)—4. Name of the
author of an astronomical treatise.

ଶଙ୍କରଗୁଡ଼ିଆ ପାଲା—ଦେ. ବି—ଉତ୍କଳ ଦେଶ ପ୍ରଚଳିତ ୧୬ ପାଲା
Śaṅkaragurḍiā pālā ମଧ୍ୟରୁ ଏକତମ—Name of a
Pālā out of the sixteen pālās prevalent
in Orissa.

ଶଙ୍କର ଚିଲ—ସ. ବି.—ଶଙ୍ଖଚିଲ (ଦେଖ)
Śaṅkara chilla Śaṅkha chila (See)

ଶଙ୍କର ଚୂଡ଼—ସ. ବି—ବିଷଧର ସର୍ପ ବିଶେଷ—
Śaṅkara churḍa A kind of poisonous snake.
[ଦ୍ର—ଏହା ଲମ୍ବରେ ୧।୧୦ ହାତ ହୁଏ। ଏହାର ବିଷଦାନ୍ତ
ବଡ଼ ଓ ଏହାର ଦଂଶନ ସାଂଘାତିକ। ବଙ୍ଗଦେଶର ସୁନ୍ଦର
ବଣରେ କେବଳ ଏ ସର୍ପ ଦେଖା ଯାଆନ୍ତି। ଏହାକୁ ଧରିବା
ବଡ଼ କଷ୍ଟକର (ହି.ଶ)।

ଶଙ୍କର ଜଟା—ସ. ବି.—ରୁଦ୍ରଜଟା (ଦେଖ)
Śaṅkara jaṭā Rudrajaṭā (See)

ଶଙ୍କର ଦାସ—ଦେ. ବି. (ନାମ)—ଜନୈକ ପ୍ରାଚୀନ ଓଡ଼ିଆ କବି।
Śaṅkara dāsa Name of an ancient Oriya poet.
[ଦ୍ର—ବାରମାସୀ କୋଇଲି ଏହାଙ୍କ ଦ୍ୱାରା ରଚିତ—
ବିନାୟକ, ଉତ୍କଳ ସାହିତ୍ୟର ଇତିହାସ।]

ଶଙ୍କର ଦିଗ୍‌ବିଜୟ—ସ.ବି.—ବିଦ୍ୟାରଣ୍ୟ ମୁନିଙ୍କ ରଚିତ କାବ୍ୟ ବିଶେଷ
Śaṅkara dig-bijaya —An epic composed by
sage Bidyāraṇya.
[ଦ୍ର—ଏହି କାବ୍ୟ ଖଣ୍ଡିକରେ ଶଙ୍କରାଚାର୍ଯ୍ୟଙ୍କ ଜୀବନ
ବୃତ୍ତାନ୍ତ ଓ ଦିଗ୍‌ବିଜୟ ବର୍ଣ୍ଣିତ ହୋଇଅଛି । ୧୬ ଗୋଟି
ସର୍ଗରେ ପୁସ୍ତକଟି ପରିସମାପ୍ତ। ଏଥିର ପ୍ରଥମ ଓ ଦ୍ୱିତୀୟ ସର୍ଗ
(ଜଗଦ୍‌ଗୁରୁଚର୍ଯ୍ୟା) ପୁରୀ ଶଙ୍କରାନନ୍ଦ ବା ଗୋବର୍ଦ୍ଧନ
ମଠାଧୀଶ ଜଗଦ୍‌ଗୁରୁ ଶଙ୍କର ଶ୍ରୀ ୧୧୦୮ ଦଣ୍ଡୀ ସଚ୍ଚିଦାନନ୍ଦ
ସରସ୍ୱତୀ ସ୍ୱାମୀ ଓଡ଼ିଆ ପଦ୍ୟରେ ଅନୁବାଦ କରି ପ୍ରକାଶ
କରିଛନ୍ତି।]

ଶଙ୍କରପାତିଆ(ୟା) ଭାଲୁ—ପ୍ରାଦେ. (ଗଡ଼ଜାତ) ବି (ସ. ଶଙ୍ଖ)—ଏକ-
Śaṅkarapātiā(yā) bhālu ପ୍ରକାର ଭାଲୁ—A kind
of bear, the skin of whose snout and
the fur of whose belly are as white
as conch shell. (ଦ୍ର—ଏମାନଙ୍କ ମୁହଁର ବା
ଥୋଡ଼ର ଚମ ଓ ପେଟର ଲୋମ ଶଙ୍ଖ ପରି ଧଳା
ହୁଏ।)

ଶଙ୍କର ପାଲି—ପ୍ରାଦେ. ( ଯାଜପୁର ) ବି.—ସତ୍ୟନାରାୟଣ ପୂଜାରେ
Śaṅkara pālā ନୈବେଦ୍ୟ ଉଦ୍ଦେଶ୍ୟରେ ଘିଅରେ ଛଣା ହୋଇ
ପ୍ରସ୍ତୁତ ହୋଇଥିବା ମିଷ୍ଟାନ୍ନ ଗୁଳିକା ବିଶେଷ—A ball
of flour kneaded and fried in ghee,
and meant to be offered at the worship
of Satya nārāyaṇa.

ଶଙ୍କର ପ୍ରିୟ—ସ. ବି.—(ଶଙ୍କର ପ୍ରିୟ ଯାହାର; ବହୁବ୍ରୀ)—୧।
Śaṅkara priya ତିତିର ପକ୍ଷୀ—1. The partridge.
୨। ଧାତୁରା (ହି. ଶ.)—2. Datura Fustosa.
୩। ଦ୍ରୋଣ ପୁଷ୍ପୀ ଗୟସ ଫୁଲ (ଦେଖ)—3. Gayasa
(See) ସ. ବଣ—ଶିବଙ୍କର ପ୍ରିୟ; ଶିବ ବଲ୍ଲଭ—
Favourite of Śiba.

ଶଙ୍କର ପ୍ରିୟା—ସ. ବି.—( ଶଙ୍କରଙ୍କର ପ୍ରିୟା, ୬ଷ୍ଠୀ ତତ୍)—୧।
Śaṅkara priyā ପାର୍ବତୀ; ଦୁର୍ଗା—1. Goddess Pārbatī.
୨। ଶଙ୍ଖଚିଲ (ଦେଖ)—2. Śaṅkhachila (See)

ଶଙ୍କର ବୀର୍ଯ୍ୟ (ଶୁକ୍ର, ରେତଃ)—ସଂ. ବି—ପାରଦ—
Śaṅkara birjya (śukra, retaḥ) Quicksilver.

ଶଙ୍କର ମତ୍ସ୍ୟ—ସଂ. ବି.—୧। ଶଙ୍କୁଚ; ଶାଙ୍କୁର ମାଛ—
Śaṅkara matsya 1. The sting ray; sea devil.
୨। ଖଣ୍ଡା ମଗର—2. The sawfish.

ଶଙ୍କର ଶୈଳ—ସଂ. ବି.—(ମ. ପ. ଲୋ)—କୈଳାସ ପର୍ବତ (ହି.ଶ)
Śaṅkara śaila A name of the Kailāsa
mountain.

ଶଙ୍କରା—ଦେ. ବି. ପୁଂ—(ଅନାଦରାର୍ଥକ)—ଶଙ୍କର ନାମକ ବ୍ୟକ୍ତିର
Śaṅkarā ଡାକ ନାମ—Name for calling Śaṅkara.
[ଶବ୍ଦ—ଅନ୍ୟରୂପ]

**ଶଙ୍କରାଚାର୍ଯ୍ୟ**—ସଂ. ବି—(ନାମ)—ବେଦାନ୍ତ ଭାଷ୍ୟକାର ଅଦ୍ୱୈତବାଦୀ **Sankarāchārjya** ଆଚାର୍ଯ୍ୟ ବିଶେଷ—Name of a famous commentator of the Upanishads. and religious reformer. [ଦ୍ର—ଦାକ୍ଷିଣାତ୍ୟ ଅନ୍ତର୍ଗତ କେରଳ ଦେଶର ଚିଦମ୍ବର ବା କାଲଡି ଗ୍ରାମ ଏହାଙ୍କ ଜନ୍ମସ୍ଥାନ । ୭୮୮ ଖ୍ରୀଷ୍ଟାବ୍ଦରେ ସେ ଭୂମିଷ୍ଠ ହୋଇଥିଲେ ଏବଂ ୮୨୦ ଖ୍ରୀଷ୍ଟାବ୍ଦରେ ୩୨ ବର୍ଷ ବୟସରେ କେଦାରନାଥ ନିକଟରେ ପ୍ରାଣ ତ୍ୟାଗ କରିଥିଲେ । ଏହାଙ୍କ ପିତାଙ୍କ ନାମ ଶିବଗୁରୁ ଓ ମାତାଙ୍କ ନାମ ସୁଭଦ୍ରା ଥିଲା । ବାଲ୍ୟକାଳରେ ୩ ବର୍ଷ ବୟସରେ ଏ ପିତାଙ୍କୁ ହରାଇ ମାତାଙ୍କ ଲାଳନ ପାଳନରେ ବଢ଼ିଥିଲେ । ୬ ବର୍ଷ ବୟସରେ ଏ ମହାପଣ୍ଡିତ ହୋଇଥିଲେ ଓ ୮ ବର୍ଷ ବୟସରେ ସନ୍ନ୍ୟାସ ଗ୍ରହଣ କଲେ । ୧୬ ବର୍ଷ ବୟସରେ ମାତାଙ୍କୁ ଛାଡ଼ି ଏ ଭାରତର ନାନା ସ୍ଥାନରେ ଭ୍ରମଣ କରିଥିଲେ ଏବଂ ଭ୍ରମଣ ଶେଷରେ ପୁନର୍ବାର ଗୃହକୁ ଫେରି ଆସି ରୁଗ୍‌ଣା ମାତାଙ୍କ ସେବାରେ ନିଜକୁ ନିୟୋଜିତ କରିଥିଲେ । କିଛିଦିନ ପରେ ମାତାଙ୍କର ପରଲୋକ ପ୍ରାପ୍ତି ଘଟିବାରୁ ସେ ଗୃହତ୍ୟାଗ କରି ପୁଣି ଧର୍ମପ୍ରଚାରାର୍ଥେ ଭାରତ ଭ୍ରମଣରେ ବହିର୍ଗତ ହୋଇଥିଲେ । ତାଙ୍କ ବୟସ ଯେତେବେଳେ ୧୬ ବର୍ଷ ହେଲା, ସେତେବେଳେ ସେ ପରମହଂସତ୍ୱ ଲାଭ କରିଥିଲେ । ସେ ସମୟରେ ଭାରତରେ ବ୍ରାହ୍ମଣ୍ୟ ଧର୍ମର ଅଧୋଗତି ଘଟିଥିଲା ଏବଂ ବୌଦ୍ଧ ଧର୍ମ ପ୍ରବଳ ହୋଇ ଉଠିଥିଲା । କିନ୍ତୁ ଶଙ୍କର ବୌଦ୍ଧ ପଣ୍ଡିତମାନଙ୍କୁ ଯୁକ୍ତି ଦ୍ୱାରା ପରାସ୍ତ କରି ଅଦ୍ୱୈତ ବ୍ରାହ୍ମଣ୍ୟ ଧର୍ମର ପୁନଃ ସଂସ୍ଥାପନ କଲେ ଏବଂ ଭାରତର ସ୍ଥାନେ ସ୍ଥାନେ ଶିବମନ୍ଦିର ଓ ମଠମାନ ସ୍ଥାପନ କରି ସେ ସ୍ଥାନମାନଙ୍କୁ ହିନ୍ଦୁଧର୍ମର ତଥା ହିନ୍ଦୁ ଶାସ୍ତ୍ରାଲୋଚନାର କେନ୍ଦ୍ରରେ ପରିଣତ କରିଥିଲେ । ଭାରତର ଚାରି ଦିଗରେ ଏହାଙ୍କ ପ୍ରତିଷ୍ଠିତ ଚାରି ଗୋଟି ମଠ ଆଜି ପର୍ଯ୍ୟନ୍ତ ଶିଷ୍ୟ ପ୍ରଶିଷ୍ୟାନୁକ୍ରମେ ମଠଧାରୀମାନଙ୍କଦ୍ୱାରା ପରିଚାଳିତ ହୋଇ ଆସୁଅଛି । ପଶ୍ଚିମରେ ଦ୍ୱାରକାସ୍ଥିତ ଶାରଦା ମଠରେ ପୀଠାଧିକାରୀଙ୍କ ନାମ ହସ୍ତାମଲକାଚାର୍ଯ୍ୟ । ଦଶନାମୀ ସନ୍ନ୍ୟାସୀମାନଙ୍କ ମଧ୍ୟରୁ ତୀର୍ଥ ଓ ଆଶ୍ରମ ନାମଧାରୀ ସନ୍ନ୍ୟାସୀମାନଙ୍କ ବାସ ନିମିତ୍ତ ଏହି ମଠଟି ଉଦ୍ଦିଷ୍ଟ । ଉତ୍ତରରେ ବଦରିକାଶ୍ରମସ୍ଥିତ ଯୋଶୀ(ଶୀ) ମଠ ବା ଜ୍ୟୋତିଃ ମଠରେ ପୀଠାଧିକାରୀଙ୍କ ନାମ ତୋଟକାଚାର୍ଯ୍ୟ । ଗିରି, ପର୍ବତ ଓ ସାଗର ନାମଧାରୀ ସନ୍ନ୍ୟାସୀମାନଙ୍କ ବାସ ନିମିତ୍ତ ଏହି ମଠଟି ଉଦ୍ଦିଷ୍ଟ । ପୂର୍ବରେ ପୁରୀସ୍ଥିତ ଗୋବର୍ଦ୍ଧନ ମଠରେ ପୀଠାଧିକାରୀଙ୍କ ନାମ ପଦ୍ମପାଦାଚାର୍ଯ୍ୟ । ବନ ଓ ଅରଣ୍ୟ ନାମଧାରୀ ସନ୍ନ୍ୟାସୀମାନଙ୍କ ବାସ ନିମିତ୍ତ ଏହି ମଠଟି ଉଦ୍ଦିଷ୍ଟ । ଦକ୍ଷିଣରେ ମାନ୍ଦ୍ରାଜ ପ୍ରଦେଶସ୍ଥିତ ଶୃଙ୍ଗେରୀ (ଋଷ୍ୟଶୃଙ୍ଗାଶ୍ରମ) ମଠରେ ପୀଠାଧିକାରୀଙ୍କ ନାମ ମଣ୍ଡନମିଶ୍ର ବା ସୁରେଶ୍ୱରାଚାର୍ଯ୍ୟ । ପୁରୀ, ଭାରତୀ ଓ ସରସ୍ୱତୀ ନାମଧାରୀ ସନ୍ନ୍ୟାସୀମାନଙ୍କ ବାସାର୍ଥେ ଏହା ଉଦ୍ଦିଷ୍ଟ ।

ଶଙ୍କରାଚାର୍ଯ୍ୟଙ୍କ ବିରଚିତ ବେଦାନ୍ତଭାଷ୍ୟ, ଭଗବଦ୍‌ଗୀତା ଭାଷ୍ୟ ଓ ମୋହମୁଦ୍‌ଗର ଆଦି ଗ୍ରନ୍ଥ ଭାରତରେ ସର୍ବତ୍ର ଆଦୃତ । ଜ୍ୟୋତିଷ ଶାସ୍ତ୍ରରେ ଏହାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଥିଲା; କିନ୍ତୁ ଘଟନାକ୍ରମେ ତହିଁରୁ ତାଙ୍କର ଆସକ୍ତି ହ୍ରାସ ପାଇ ଥିଲା । ତାଙ୍କ ଧର୍ମମତ ବେଦାନ୍ତର ଏକେଶ୍ୱରବାଦ ଉପରେ ପ୍ରତିଷ୍ଠିତ; କିନ୍ତୁ ସର୍ବସାଧାରଣଙ୍କ ପାଇଁ ସେ ଶୈବଧର୍ମ ପ୍ରଚାର କରିଥିଲେ । ଏହାଙ୍କ ସମ୍ବନ୍ଧରେ କେତେଗୁଡ଼ିଏ କିଂବଦନ୍ତୀ ପ୍ରଚଳିତ ଅଛି । ଏ ସଂସାରୀ ନ ଥିଲେ; ଅଥଚ ସଂସାରର ଭୋଗ ସମ୍ବନ୍ଧରେ ଅଭିଜ୍ଞତା ଲାଭ କରିବା ପାଇଁ ପରକାୟ ପ୍ରବେଶ ବିଦ୍ୟାବଳରେ ଜଣେ ରାଜାଙ୍କ ଶରୀରରେ କିଛିକାଳ ପାଇଁ ପ୍ରବେଶ କରିଥିଲେ । ଥରେ ଶିଷ୍ୟମାନଙ୍କୁ ପରୀକ୍ଷା କରିବା ପାଇଁ ସେ ଗୋଟିଏ ଧୋବା ଘରେ ପହଞ୍ଚି ସେଠାରେ ଧୋବାର ପାକରେ ପ୍ରସ୍ତୁତ ମଣ୍ଡା ପିଠା ଖାଇଲେ ଓ ତାଙ୍କ ଶିଷ୍ୟମାନେ ମଧ୍ୟ ଗୁରୁଙ୍କ ଦେଖା ଦେଖି (ଜିହ୍ୱା ଲାଳସାର ବଶବର୍ତ୍ତୀ ହୋଇ) ମଣ୍ଡା ପିଠା ଖାଇ ଦେଲେ । ପରେ କିଛି ଦୂର ଯାଇ ଶଙ୍କର କହିଲେ ଯେ, ଧୋବା ଘରେ ପିଠା ଖାଇଥିବାରୁ ଶରୀର ଅପବିତ୍ର ହେଲା । ତଦନନ୍ତର ସେ ଶରୀରକୁ ଶୁଦ୍ଧ କରିବା ବ୍ୟାଜରେ ଗୋଟିଏ ଅଙ୍ଗାରଶାଳରେ ଆଉଟା ହେଉଥିବା ଗଳିତ ରାଙ୍ଗଗୁଡ଼ିଏ ପିଇ ଦେଲେ । ଶିଷ୍ୟମାନେ ଏହା ଦେଖି କାଳେ ପାଟି ପୋଡ଼ିଯିବ ଏହି ଭୟରେ ଗୁରୁଙ୍କ ଅନୁକରଣ କଲେ ନାହିଁ । ଏହା ଦର୍ଶନ କରି ଶଙ୍କର ସେହି ଶିଷ୍ୟମାନଙ୍କୁ ତ୍ୟାଗ କଲେ ଏବଂ ସେହିଦିନଠାରୁ ଉକ୍ତ ଶିଷ୍ୟ ଓ ସେମାନଙ୍କ ଶିଷ୍ୟାନୁଶିଷ୍ୟମାନେ 'ଦଶନାମୀ' (ଗିରି, ପୁରୀ, ଭାରତୀ ଆଦି) ନାମରେ ପରିଚିତ ।

ଶଙ୍କରାଚାର୍ଯ୍ୟ ପରିବ୍ରାଜକ ସନ୍ନ୍ୟାସୀ ଥିଲେ ଓ ତାଙ୍କର ଶିଷ୍ୟମାନେ ତାଙ୍କୁ ସାକ୍ଷାତ୍ ଶିବ ବୋଲି ବିଶ୍ୱାସ କରୁଥିଲେ ଏବଂ କହୁଥିଲେ 'ଶଙ୍କରଃ ଶଙ୍କରଃ ସାକ୍ଷାତ୍' । ଭାରତର ସର୍ବତ୍ର ଓ ତିବ୍ବତ ଦେଶରେ ସେ ଧର୍ମପ୍ରଚାରାର୍ଥେ ଭ୍ରମଣ କରିଥିଲେ । ତାଙ୍କର ଏହି ଧର୍ମପ୍ରଚାର ଫଳରେ ଭାରତରୁ ବୌଦ୍ଧ ଧର୍ମର ପ୍ରଭାବ ହ୍ରାସ ପାଇଥିଲା ଏବଂ ଶୈବ ଧର୍ମ କ୍ରମେ ପ୍ରବଳ ହୋଇ ଉଠିଥିଲା । ସେ ୩୨ ବର୍ଷ ବୟସରେ କେଦାରନାଥ ତୀର୍ଥରେ ପରଲୋକ ଗମନ କଲେ ।

ଶଙ୍କରାଚାର୍ଯ୍ୟ ୬୦୮ ଶକାବ୍ଦ ବୈଶାଖ ଶୁକ୍ଳ ତୃତୀୟା ଦିବସ ଦକ୍ଷିଣ ଭାରତର ପଶ୍ଚିମ ସମୁଦ୍ର ତୀରସ୍ଥ କେରଳ ଦେଶାନ୍ତଃପାତୀ କାଲଡ଼ି ଗ୍ରାମରେ ପରମବୈଦିକ ଶିବଗୁରୁ ନାମା ନୈଷ୍ଠିକ କୁଳୀନ ବ୍ରାହ୍ମଣଙ୍କ ଔରସରେ ଆଦର୍ଶ ଚରିତ୍ରା ସନ୍ତାନାଭିକାଂକ୍ଷିଣୀ ସତୀ ସୁଭଦ୍ରାଦେବୀଙ୍କ ଗର୍ଭରୁ ଜନ୍ମ ପରିଗ୍ରହ କରିଥିଲେ । ଶଙ୍କରଙ୍କ ଆବିର୍ଭାବର ତୃତୀୟ ବର୍ଷ ଶିବଗୁରୁ ପରଲୋକାନ୍ତରିତ ହେବାରୁ ଶଙ୍କରଙ୍କର ଶୈଶବୀୟ ଶିକ୍ଷା

ବିଧବା ଜନନୀଙ୍କ ଉପରେ ନିର୍ଭର କରିଥିଲା । ଶଙ୍କର ସପ୍ତମ ବର୍ଷରେ ଉପନୀତ ହୋଇ ମାତାଙ୍କର ନିର୍ଦ୍ଦେଶାନୁସାରେ ଗୁରୁ ଗୃହରେ ବାସକରି ଦୁଇବର୍ଷ ମଧ୍ୟରେ ଗୁରୁଙ୍କ କୃପାରୁ ସକଳ ଶାସ୍ତ୍ରରେ ପାରଦର୍ଶିତା ଲାଭ କରିଥିଲେ । ମହାତ୍ମା ଶଙ୍କର ଜ୍ଞାନାଲୋକରେ ଆଲୋକିତ ହୋଇ ଅସାଧାରଣ ଭଗବଦ୍‌ଭକ୍ତିର ନିଦର୍ଶନ ପ୍ରଦର୍ଶନ ସଙ୍ଗେ ସଙ୍ଗେ ସନ୍ନ୍ୟାସ ଗ୍ରହଣର ପ୍ରୟାସ ପ୍ରକାଶ କଲେ । କିନ୍ତୁ ତାଙ୍କର ଏକାପତ୍ୟା ବିଧବା ମାତା ସେଥିରେ ଅନଭିମତ ପ୍ରକାଶ କରିବାରୁ ବାଧ୍ୟ ହୋଇ ଶଙ୍କରଙ୍କୁ ସ୍ୱଳ୍ପ ସମୟ ଅପେକ୍ଷା କରିବାକୁ ପଡ଼ିଥିଲା । ବିଧାତାଙ୍କ ନିରଙ୍କୁଶ ଇଚ୍ଛା ପ୍ରଭାବରେ ଶଙ୍କର ଏକଦା ମାତାଙ୍କ ସଙ୍ଗେ ନଦୀ ପାରି ହେବା ସମୟରେ ନକ୍ରଗ୍ରସ୍ତ (କୁମ୍ଭୀରଦ୍ୱାରା ଆକ୍ରାନ୍ତ) ହୋଇ କୌଣସି ପ୍ରକାରେ ସେଥିରୁ ମୁକ୍ତ ହୋଇ ନ ପାରିବାରୁ ଏ ବିପଦରୁ ରକ୍ଷା ମିଳିଲେ ତାଙ୍କର ସନ୍ନ୍ୟାସ ଗ୍ରହଣୀୟ ବୋଲି ମାଆଙ୍କୁ ଅନୁମତି ପ୍ରାର୍ଥନା କରିବାରୁ ମାଆ ଅନନ୍ୟଗତିକା ହୋଇ ଅନୁମତି ପ୍ରଦାନ କରିଥିଲେ । ଅନନ୍ତର ସନ୍ନ୍ୟାସୀ ଶଙ୍କର ଗୋବିନ୍ଦ ଯୋଗୀ ରୂପେ ଅବତୀର୍ଣ୍ଣ ପତଞ୍ଜଳି ଦେବଙ୍କର ଶିଷ୍ୟତ୍ୱ ଗ୍ରହଣକରି ତତ୍ ପ୍ରସାଦରୁ ପରଂବ୍ରହ୍ମ ସାକ୍ଷାତ୍‌ପ୍ରଦ ବିଭିନ୍ନ ଉପଦେଶ ସହ ସମାଧିବିଧି ଶିକ୍ଷାକଲେ । ତଦନନ୍ତର ମହାଯୋଗୀ ଶଙ୍କର ସ୍ୱକୀୟ ଗୁରୁପାଦଙ୍କ ଆଜ୍ଞାନୁସାରେ ବାରାଣସୀରେ କିୟତ୍‌କାଳ ଅବସ୍ଥାନକରି ନିତ୍ୟନୈମିତ୍ତିକ କର୍ମକାଣ୍ଡାନୁଷ୍ଠାନ ଏବଂ ଶାସ୍ତ୍ରାଲୋଚନା ସହକାରେ ବ୍ରହ୍ମସୂତ୍ରର ଭାଷ୍ୟ ପ୍ରଣୟନକରି ଆଚାର୍ଯ୍ୟତ୍ୱ କରିବାରେ ଲାଗିଲେ । ଆଚାର୍ଯ୍ୟତ୍ୱର ପ୍ରାରମ୍ଭରେହିଁ ସନନ୍ଦନାଦି କତିପୟ ବ୍ୟକ୍ତି ଶଙ୍କରଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ଘଟଣାକ୍ରମେ ଏହିଠାରେ ସ୍ୱାମୀପାଦଙ୍କର ସାକ୍ଷାତ୍ ଶଙ୍କର(ଶିବ) ଦର୍ଶନ ହୋଇଥିଲା । ଅନନ୍ତର ଛଦ୍ମବେଶ-ଗତ ବ୍ୟାସଦେବଙ୍କ ସଙ୍ଗେ ଶଙ୍କରଙ୍କର ସାକ୍ଷାତ୍‌କାର ଏବଂ ଦୀର୍ଘକାଳବ୍ୟାପୀ ଶାସ୍ତ୍ର ଚର୍ଚ୍ଚା ହେବାପରେ ବ୍ୟାସ ସ୍ୱୟଂ ଶଙ୍କରଙ୍କୁ ଆୟୁର୍ବୃଦ୍ଧି ଆଶୀର୍ବାଦ ପ୍ରଦାନପୂର୍ବକ ଉପନିଷଦ୍ ଗୀତା ପ୍ରଭୃତି ଗ୍ରନ୍ଥର ଭାଷ୍ୟ ପ୍ରଣୟନାର୍ଥ ଉତ୍ସାହ ଦାନ କରି ଦିଗ୍‌ବିଜୟ ନିମନ୍ତେ ଆଦେଶ ପ୍ରଦାନ କଲେ ।

ମହାଯୋଗୀ ଶଙ୍କର ବ୍ୟାସାଦେଶରେ ଦିଗ୍‌ବିଜୟ ବ୍ୟାପାରରେ ସଂଲିପ୍ତ ହେଲେ । ନାନା ସ୍ଥାନରେ ନାନା କୁଟବୁଦ୍ଧି, ତୀକ୍ଷ୍ଣବୁଦ୍ଧି, ପ୍ରଭାବଶାଳୀ ବୌଦ୍ଧ ମତାବଲମ୍ବୀମାନଙ୍କ ସଙ୍ଗେ ଶଙ୍କରଙ୍କର ମହାଯୁଦ୍ଧ ହୋଇଗଲା । କିନ୍ତୁ ସର୍ବତ୍ର ଶଙ୍କରଙ୍କର ଜୟବୈଜୟନ୍ତୀ ଉଡ୍ଡୀନ ହେଲା, ସର୍ବତ୍ର ଜୟଢକ୍କା ନିନାଦିତ ହେଲା । ବେଦାନ୍ତ ବିରୋଧୀ ବୌଦ୍ଧମତାବଲମ୍ବୀ ଏବଂ ନାସ୍ତିକ ପନ୍ଥୀମାନେ ସ୍ୱାମୀପାଦଙ୍କର ଅମୋଘ-ଅଲୌକିକ ଜ୍ୱଳନ୍ତ ଶାସ୍ତ୍ର ପ୍ରଭାବରେ ବିଧ୍ୱସ୍ତାହଂକାର ହୋଇ ସ୍ୱସ୍ୱ ଭ୍ରମ ପ୍ରମାଦ ଦୂରକରିବାର ସୁବର୍ଣ୍ଣ ସୁଯୋଗ ଲାଭ କଲେ । ଆଚାର୍ଯ୍ୟ ଦେବଙ୍କର ପ୍ରତିପକ୍ଷବୃନ୍ଦ ମଧ୍ୟରେ ମଣ୍ଡନ ମିଶ୍ରଙ୍କ ସମ୍ବାଦ କୌତୂହଳୋଦ୍ଦୀପକ ଏବଂ ମଣ୍ଡନମତଖଣ୍ଡନ ଶଙ୍କରଙ୍କର ଚରମ ଗୌରବବ୍ୟଞ୍ଜକ ।

ଶଙ୍କର ତତ୍‌କାଳୀନ ପ୍ରୟାଗତୀର୍ଥବାସୀ ତପସ୍ୱୀ ଭଟ୍ଟପାଦ କୁମାରିଲଙ୍କର ଅସାଧାରଣ ପ୍ରତିଭା, ପ୍ରବଳ ଧର୍ମାନୁରାଗ ଓ ଅସମ୍ଭାବିତ କାର୍ଯ୍ୟକଳାପରେ ଆକୃଷ୍ଟ ହୋଇ ତାହାଙ୍କ ଦ୍ୱାରା ସ୍ୱରଚିତ ଭାଷ୍ୟର ବାର୍ତ୍ତିକସୂତ୍ର ପ୍ରଣୟନୋଦ୍ଦେଶ୍ୟରେ ଭଟ୍ଟଙ୍କ ନିକଟରେ ଉପଗତ ହୋଇ ସ୍ୱାଭିପ୍ରାୟ ଜ୍ଞାପନ କଲେ । କିନ୍ତୁ ସେତେବେଳେ ଭଟ୍ଟପାଦ ମହୋଦୟ ତନୁତ୍ୟାଗ ନିମନ୍ତେ ଅନଲୋପବିଷ୍ଟ ହୋଇଥିବାରୁ ଶଙ୍କରଙ୍କର ଅଭିପ୍ସିତ ଜାଣି ପାରିଲେହେଁ ପ୍ରତିଜ୍ଞାଭଙ୍ଗ ଭୟରେ ଅନଳ ସମାଧିରୁ ନିଃସୃତ ନ ହୋଇ ମାହିଷ୍ମତୀପୁରବାସୀ ସ୍ୱକୀୟ ପଟ୍ଟଶିଷ୍ୟ ମଣ୍ଡନ ମିଶ୍ରଙ୍କ ସହ ମଣ୍ଡନ ପତ୍ନୀ ପରମ ବିଦୁଷୀ ଶାପଭ୍ରଷ୍ଟା ସରସ୍ୱତୀ ଉଭୟଭାରତୀଙ୍କ ମାଧ୍ୟସ୍ଥ୍ୟରେ ଯୁକ୍ତି ତର୍କର ଉତ୍ତବ୍ୟତା ନିରୂପଣ କରି ମଣ୍ଡନଙ୍କର ଜୟ ପରାଜୟରେ ସ୍ୱୟଂ ଫଳଭାଗୀ ହେବେ ବୋଲି ସ୍ୱୀକୃତ ହୋଇ ଶଙ୍କରଙ୍କୁ ବିଦାୟ ଦେଇ ସ୍ୱୟଂ ଜ୍ୱଳଦନଳରେ ପ୍ରବେଶ କରି ତନୁତ୍ୟାଗ କଲେ ।

ଶଙ୍କର ମଣ୍ଡନଙ୍କର ପରାକ୍ରମରେ ତତ୍‌କାଳୀନ ଅଦ୍ୱିତୀୟ ମୀମାଂସକ କୁମାରିଲଙ୍କର ପରାଜୟ ଧ୍ରୁବ ଜାଣି ସ୍ୱକୀୟ ଦିଗ୍‌ବିଜୟର ପ୍ରଥମ ଏବଂ ପ୍ରଧାନ ଯୁଦ୍ଧସ୍ଥଳ ମାହିଷ୍ମତୀ ପୁରୀରେ ପଦାର୍ପଣ କରି ମଣ୍ଡନଙ୍କ ମନ୍ଦିରରେ ଉପସ୍ଥିତ ହେଲେ । କିନ୍ତୁ ପରମ ପଣ୍ଡିତ ମଣ୍ଡନ ମିଶ୍ର ସେତେବେଳେ ଗୃହର ପ୍ରବେଶଦ୍ୱାର ରୁଦ୍ଧ କରି ପିତୃଶ୍ରାଦ୍ଧରେ ବ୍ୟସ୍ତ ଥିବାରୁ ଶଙ୍କର ମାର୍ଗାନ୍ତର ନ ପାଇ ଯୋଗବଳରେ ଆକାଶ ମାର୍ଗରେ ମଣ୍ଡନମନ୍ଦିରରେ ପ୍ରବେଶ କରି ମଣ୍ଡନଙ୍କ ନିକଟରେ ସ୍ୱାଭିପ୍ରାୟ ଜ୍ଞାପନ କଲେ । ଶ୍ରାଦ୍ଧାନ୍ତେ ମଣ୍ଡନ ପତ୍ନୀଙ୍କ ମଧ୍ୟସ୍ଥତାରେ ଅଷ୍ଟାଦଶ ଦିବସବ୍ୟାପୀ ଶାସ୍ତ୍ର ବିଚାରରେ ମଣ୍ଡନ ପରାଭୂତ ହେବାରୁ ସର୍ତ୍ତାନୁସାରେ ମଣ୍ଡନଙ୍କୁ ସନ୍ନ୍ୟାସ ଗ୍ରହଣ କରିବାକୁ ହେବ ଜାଣି ତତ୍ପତ୍ନୀ ଉଭୟଭାରତୀ ଶଙ୍କରଙ୍କୁ କହିଲେ, "ଯତିରାଜ ! ପତ୍ନୀ ପତିର ଅର୍ଦ୍ଧାଙ୍ଗ, ସୁତରାଂ ମୋତେ ପରାସ୍ତ ନ କରିବା ପର୍ଯ୍ୟନ୍ତ ଆପଣଙ୍କର ଜୟ ଅପୂର୍ଣ୍ଣାଙ୍ଗ, ବୋଲି ଜାଣିବେ ।" ଏଥିରେ ଶଙ୍କର ଏକମତ ହେବାରୁ ଉଭୟଭାରତୀ ତାହାଙ୍କୁ କାମଶାସ୍ତ୍ର ବିଷୟକ କେତେକ ସମସ୍ୟାର ସମାଧାନପାଇଁ ଆମନ୍ତ୍ରଣ କଲେ । କିନ୍ତୁ ଆକୁମାର ସନ୍ନ୍ୟାସୀ ଶଙ୍କର ତତ୍‌କ୍ଷଣାତ୍ ତହିଁର ସମାଧାନରେ ପ୍ରବୃତ୍ତ ନ ହୋଇ ମାସାନ୍ତେ ସମସ୍ୟାର ଉତ୍ତର ଦେବାକୁ ପ୍ରତିଶ୍ରୁତ ହୋଇ ପ୍ରତ୍ୟାବୃତ୍ତ ହେଲେ । ଶଙ୍କର ପରକାୟ ପ୍ରବେଶ ବିଷୟରେ ସିଦ୍ଧିଲାଭ କରିଥିଲେ । କେବଳ କୌଣସି ସଦ୍ୟୋମୃତ ଭୋଗୀ ବ୍ୟକ୍ତିର ଶବ ଲାଭ କରିପାରିଲେ ତଦ୍ଗତ ହୋଇ କାମଶାସ୍ତ୍ରାବବୋଧ କରି ମଣ୍ଡନପତ୍ନୀକୃତ ସମସ୍ୟା ସମାଧାନ କରି ପାରିବେ ବୋଲି ଭାବି ସଶିଷ୍ୟ ହୋଇ ଶଙ୍କର ଶବାନୁସନ୍ଧାନ କରିବାରେ ଲାଗିଲେ । ଦୈବାତ୍ କୌଣସି ରାଜଶବ ତାଙ୍କର ଦୃଷ୍ଟିଗୋଚର ହେବାରୁ ଶଙ୍କର ତଦ୍‌ଗତ ହୋଇ କାମଶାସ୍ତ୍ରର ଅବବୋଧ କଲେ । ତଦନନ୍ତର ଆଚାର୍ଯ୍ୟଦେବ ଯଥା ସମୟରେ ମଣ୍ଡନ ମନ୍ଦିରରେ ସଶିଷ୍ୟ ଉପସ୍ଥିତ ହେଲେ । କିନ୍ତୁ ମଣ୍ଡନପତ୍ନୀ ଏତତ

ଦେବୀରୁ ଶଙ୍କରଙ୍କ ଅଦ୍ଭୁତ କୌଶଳ ଅବଗତ ହୋଇଥିବାରୁ ବିଚାର ବ୍ୟତିରେକେ ପରାଜୟ ସ୍ୱୀକାର କରି ଶାପାନ୍ତ ସମ୍ପୂର୍ଣ୍ଣ ହେବାରୁ ସ୍ୱଧାମ ପ୍ରସ୍ଥାନପାଇଁ ଇଚ୍ଛାପ୍ରକାଶ କଲେ । ଆଚାର୍ଯ୍ୟଦେବ ଯୋଗବଳରେ ମଣ୍ଡନ ପତ୍ନୀଙ୍କୁ ସାକ୍ଷାତ୍ ସରସ୍ୱତୀ ଦେବୀ ବୋଲି ଜାଣିପାରି ବହୁ ସ୍ତୁତି କଲେ । ଦେବୀ ଭକ୍ତର ସ୍ତୁତିରେ ପ୍ରସନ୍ନା ହୋଇ ତତ୍ପ୍ରତିଷ୍ଠିତ ଶୃଙ୍ଗେରୀମଠରେ ଅଧିଷ୍ଠାନ କରିବାକୁ ପ୍ରତିଶ୍ରୁତି ଦେଲେ । ମଣ୍ଡନ ଏହି କନ୍ୟାକର ଅପାର୍ଥିବ ଘଟଣା ଦର୍ଶନରେ ସ୍ତମ୍ଭିତ ହୋଇ ସନ୍ନ୍ୟାସବେଶରେ ଆଚାର୍ଯ୍ୟଙ୍କର ଅନୁଗମନ କଲେ ।

ସନ୍ଦର୍ଭ ଶଙ୍କର ଅଙ୍ଗ, ବଙ୍ଗ, କଳିଙ୍ଗ, ଗୌଡ଼, ମିଥିଳା, ନେପାଳ, କାଶ୍ମୀର, ସୌରାଷ୍ଟ୍ର, ବାହ୍ଲିକ, ନୈମିଷ, କୁରୁ, ପାଞ୍ଚାଳ ପ୍ରଭୃତି ପ୍ରଦେଶମାନ ଭ୍ରମଣକରି ନିଜର ପାଣ୍ଡିତ୍ୟ ଏବଂ ଶକ୍ତି ସାହାଯ୍ୟରେ ନାନା ଅମାନୁଷିକ ଘଟଣା ପ୍ରଦର୍ଶନ ତଥା ଭିନ୍ନ ମତାବଲମ୍ବୀ ଦିଗ୍ବିଜୟୀ ପଣ୍ଡିତମାନଙ୍କୁ ନିରୁତ୍ତର ଏବଂ ନିରସ୍ତ କରି ଭାରତର ସର୍ବତ୍ର ଅଦ୍ୱୈତବାଦର ପୁନଃ ପ୍ରତିଷ୍ଠା କରି ଶାନ୍ତି ସଂସ୍ଥାପନ କଲେ ।

ମହାତ୍ମାମାନଙ୍କର ମୁହୂର୍ତ୍ତ ସୁଦ୍ଧା ମୂଲ୍ୟବାନ୍ । କର୍ତ୍ତବ୍ୟ ସାଙ୍ଗ ହେଲେ ସେମାନଙ୍କର ଅନ୍ତର୍ଧାନ ପ୍ରାକୃତିକ । ପୁଣି ଇତର ସାଧାରଣଙ୍କ ପକ୍ଷରେ ଯାହା 'ଅସମ୍ଭବ ବା ଅସାଧ୍ୟ, ସେମାନଙ୍କ ପକ୍ଷରେ ତାହା ଅକଷ୍ଟକର ଓ ଅଳ୍ପସମୟ-ସାଧ୍ୟ । ଶଙ୍କର ୩୨ ବର୍ଷ ବୟଃକ୍ରମ ମଧ୍ୟରେ ମହତ୍ତ୍ୱଭାବରେ ସମ୍ପୂର୍ଣ୍ଣ ଶାନ୍ତି ଆନୟନ କରିପାରିଥିଲେ । ତେଣୁ ସେହି ନିରୂପିତ କାଳର ପରିସମାପ୍ତ ହୋଇ ଆସିବାରୁ ସହସ୍ର ସହସ୍ର ଶିଷ୍ୟ ମଧ୍ୟରେ ପ୍ରିୟତମ ସନନ୍ଦନଙ୍କୁ ପଦ୍ମପାଦାଚାର୍ଯ୍ୟ ନାମରେ ଶ୍ରୀଜଗନ୍ନାଥ କ୍ଷେତ୍ର ପ୍ରତିଷ୍ଠିତ ଗୋବର୍ଦ୍ଧନ ପୀଠରେ, ସରସ୍ୱତୀପତି ମଣ୍ଡନମିଶ୍ରଙ୍କୁ ସୁରେଶ୍ୱରାଚାର୍ଯ୍ୟ ନାମରେ ଋଷ୍ୟଶୃଙ୍ଗାଶ୍ରମ ପ୍ରତିଷ୍ଠିତ ଶୃଙ୍ଗେରୀ ପୀଠରେ, ଶ୍ରୀବେଳିନିବାସୀ ପ୍ରଭାକର ମୂକପୁତ୍ରଙ୍କୁ ବାକ୍ପଟୁତା ପ୍ରଦାନ କରି ହସ୍ତାମଲକାଚାର୍ଯ୍ୟ ନାମରେ ଦ୍ୱାରକାପ୍ରତିଷ୍ଠିତ ଶାରଦା ପୀଠରେ ଏବଂ ଅନ୍ୟତମ ମହାମୂର୍ଖ ଶିଷ୍ୟ ଗିରିଙ୍କୁ ଦିବ୍ୟଜ୍ଞାନ ଦାନ କରି ତୋଟକାଚାର୍ଯ୍ୟ ନାମରେ ବଦରିକା-କ୍ଷେତ୍ର ପ୍ରତିଷ୍ଠିତ ଜ୍ୟୋତିଃ ପୀଠରେ ଅଧ୍ୟକ୍ଷତା ପ୍ରଦାନ କରି ସ୍ୱୟଂ କୈଳାସ ଯାତ୍ରାକରି ସେଠାରେ ସ୍ୱଦେହରେ ଶଙ୍କର ମୂର୍ତ୍ତିରେ ଲୀନ ହେଲେ-ଶ୍ରୀକ୍ଷେତ୍ରରୁ ଭୋଗବର୍ଦ୍ଧନ ପୀଠାଧୀଶ ଶ୍ରୀ ୧୧୦୮ ଦଣ୍ଡୀ ସଚ୍ଚିଦାନନ୍ଦ ସରସ୍ୱତୀ ସ୍ୱାମୀଙ୍କ ପ୍ରକାଶିତ ଶଙ୍କର ଦିଗ୍ବିଜୟର ଓଡ଼ିଆ ଅନୁବାଦ, ପ୍ରଥମ ଖଣ୍ଡର ମୁଖବନ୍ଧରେ ଶ୍ରୀଜଗନ୍ନାଥ ରଥ କାବ୍ୟତୀର୍ଥଙ୍କ ସନ୍ଦର୍ଭ ।

**ଶଙ୍କରାଦି**—ସଂ. ବି—ଧଳା ଅରକ ଗଛ (ଛ୍ର. ଶ.)—The white flowered variety of Calotropis Gigantea plant.
Śaṅkarādi

**ଶଙ୍କରାନନ୍ଦ ମଠ**—ଦେ. ବି—ପୁରୀରେ ପ୍ରତିଷ୍ଠିତ ଭୋଗବର୍ଦ୍ଧନ ମଠ—Bhogabarddhana math established at Puri.
Śaṅkarānanda matha
শঙ্করানন্দ মঠ शङ्करानन्द मठ

[ଦ୍ର—ବ୍ରହ୍ମଚାରୀ ବାଳବ୍ରହ୍ମାନନ୍ଦ ସରସ୍ୱତୀ ନାମରେ ଜଣେ ବ୍ରହ୍ମଚାରୀ ଓଡ଼ିଶାର ରାଜା ଅନଙ୍ଗଭୀମଦେବଙ୍କ ଅମଳରେ ପୁରୀରେ ଗୋଟିଏ ମଠ ସ୍ଥାପନ କରି ତାହାକୁ ନିଜର ଶିଷ୍ୟ ଶଙ୍କରାନନ୍ଦଙ୍କ ତତ୍ତ୍ୱାବଧାନରେ ଛାଡ଼ି ଦେଇଥିଲେ । ଉକ୍ତ ଶିଷ୍ୟଙ୍କର ନାମାନୁସାରେ ଉକ୍ତ ନାମ 'ଶଙ୍କରାନନ୍ଦ ମଠ' ହୋଇଅଛି । ଅଦ୍ୟାପି ଏହା ସେହି ନାମରେ ପରିଚିତ । ଶ୍ରୀମଦ୍ଭାଗବତର ପ୍ରସିଦ୍ଧ ଟୀକାକାର ଶ୍ରୀଧର ସ୍ୱାମୀ ଏହି ଶଙ୍କରାନନ୍ଦ ମଠ ବା ଭୋଗବର୍ଦ୍ଧନ ମଠର ଶିଷ୍ୟ । ଗଙ୍ଗବଂଶାବତଂସ ଅନଙ୍ଗଭୀମ ନରେଶଙ୍କ ରାଜତ୍ୱକାଳରେ ପୁନର୍ନବ-ପ୍ରତିଷ୍ଠିତ ଶ୍ରୀ ଜଗନ୍ନାଥଦେବଙ୍କର ବୈଧ ଅର୍ଚ୍ଚନା ବିଧି ପର୍ଯ୍ୟବେକ୍ଷଣ ନିମନ୍ତେ ଉପଯୁକ୍ତ ନୈଷ୍ଠିକ ବ୍ରହ୍ମଚାରୀଙ୍କର ଅଭାବ ପରିଲକ୍ଷିତ ହେବାରୁ ପରମ ଭାଗବତ ଉତ୍କଳ ଅଧୀଶ୍ୱର ଅନଙ୍ଗଭୀମ ଚିନ୍ତାକୁଳ ହେଲେ । ସୁତରାଂ ଭକ୍ତଚିନ୍ତାମଣିଙ୍କର ସ୍ୱପ୍ନାଦେଶରେ ନୃପତିଶେଖରଣି ଶୃଙ୍ଗେରୀ ସରସ୍ୱତୀ ପୀଠରୁ-ଆଗତ ଭଗବଦ୍ଦର୍ଶନାଭିଳାଷୀ ପରମନୈଷ୍ଠିକ ବାଳବ୍ରହ୍ମାନନ୍ଦ ସରସ୍ୱତୀଙ୍କୁ ଦର୍ଶନ କରି କୃତାର୍ଥ ହୋଇ ଜଗନ୍ନାଥମନ୍ଦିରର ତାବନ୍ତୀୟ ଭାର ତାହାଙ୍କଠାରେ ଅର୍ପଣ କଲେ । ଅନନ୍ତର ତଚ୍ଛିଷ୍ୟ ଶ୍ରୀ ଶଙ୍କରାନନ୍ଦ ସରସ୍ୱତୀ ଜ୍ଞାନବିଜ୍ଞାନରେ ତଥା ନିଷ୍ଠାନିୟମସମାସ୍ଥରେ ଅନନ୍ୟସାଧାରଣ, ହୋଇ ଭୋଗବର୍ଦ୍ଧନ ସ୍ୱନାମ ପ୍ରସିଦ୍ଧ ଶଙ୍କରାନନ୍ଦ ପୀଠର ପତିରୂପେ ଭୁବନେଶ୍ୱର ପ୍ରତିଷ୍ଠିତ କୋଟି ଲିଙ୍ଗଙ୍କର ସମସ୍ତ ସୁଷ୍ଠୁ ପରିଚାଳନ ବ୍ୟବସ୍ଥାଦାୟିତ୍ୱ ଲାଭ କଲେ । କ୍ରମେ ଶ୍ରୀକ୍ଷେତ୍ରସ୍ଥ ଶ୍ରୀ ଲୋକନାଥ ମନ୍ଦିରାଧିକାର ଏବଂ ପାର୍ବତ୍ୟାଞ୍ଚଳୀୟ କପିଳାସ କ୍ଷେତ୍ରାଧିକାର ଶଙ୍କରାନନ୍ଦ ମଠାଧିକୃତ ହେଲା । ସୂଳତଃ ଉତ୍କଳ ପ୍ରଦେଶସ୍ଥ ତାବନ୍ତୀୟ ବଶିଷ୍ଟ ହରିହର କ୍ଷେତ୍ର ଶଙ୍କରାନନ୍ଦ ମଠାଧୀନ ହେଲା ଏବଂ ତାହା ଅଦ୍ୟାପି ଅକ୍ଷୁଣ୍ଣ ରହିଅଛି । ଇଦୃଶ ଖ୍ୟାତିସମ୍ପନ୍ନ ପ୍ରଭାବଶାଳୀ ଶଙ୍କରାନନ୍ଦପୀଠରେ ପ୍ରାୟ ଶତାଧିକ ମହାତ୍ମାଙ୍କର ପଟ୍ଟାନ୍ତର ହୋଇଯାଇ ଅଛି । ବୈକୁଣ୍ଠଗତ ପରମକୀର୍ତ୍ତିମାନ୍ ତପସ୍ୱୀପର ସଚ୍ଚିଦାନନ୍ଦ ସରସ୍ୱତୀଙ୍କ ପରେ ରାମକୃଷ୍ଣାନନ୍ଦ ଏବଂ ଶିବାନନ୍ଦଙ୍କର ତିରୋଧାନ ହୋଇ ଯାଇଅଛି । ବର୍ତ୍ତମାନ ଶ୍ରୀ ୧୧୦୮ ଶ୍ରୀ ସଚ୍ଚିଦାନନ୍ଦ ସରସ୍ୱତୀ ସ୍ୱାମିପାଦ ପ୍ରୋକ୍ତ ପୀଠର ଅଧୀଶରୂପେ ଅଧିଷ୍ଠିତ ହୋଇଅଛନ୍ତି ।]

**ଶଙ୍କରାବାସ**—ସଂ. ବି (ଶଙ୍କର + ଆବାସ; ୬ଷ୍ଠୀ ତତ୍)—୧ । ମହାଦେବ-ପୁର; କୈଳାସ—1. The Kailāsa mountain. ୨ । (କୈଳାସ ପର୍ବତ ପରି ଶୁଭ୍ର) କର୍ପୂର—2. Camphor.
Śaṅkarābāsa
(ଶଙ୍କରାଳୟ—ଅନ୍ୟରୂପ)

**ଶଙ୍କରାଭରଣ**—ଦେ. ବି—ରାଗିଣୀବିଶେଷ—Name of a metre.
Śaṅkarābharaṇa
(ରାଗ ତଳେ ନୋଟ୍ ଦେଖ)

[ଦ୍ର—ଏହାର ପ୍ରଥମ ପାଦ ୧୪ ଅକ୍ଷର, ୨ୟ ପାଦ ୧୪ ଅକ୍ଷର, ତୃତୀୟ ପାଦ ୮ ଅକ୍ଷର ଓ ୪ର୍ଥ ପାଦ ୧୪ ଅକ୍ଷର ଅଟେ । ଏହା ଆନନ୍ଦଭୈରବୀ ରାଗର ଅନୁରୂପ । ଲାବଣ୍ୟବତୀର ସପ୍ତଦଶ ଛାନ୍ଦ ଏହି ରାଗିଣୀରେ ରଚିତ ।]

ଯଥା—

ବନ୍ଧୁକ ଲାଗିଲା ଯାଇ ହିଙ୍ଗୁଳଦ୍ବୀପରେ
ସାଧବସ୍ତ୍ରୀଗଣମାନେ ଅତି ପ୍ରମୋଦରେ
ତଲେ ବନ୍ଧୁକ ବଜାଇ
ଅର୍ଘ୍ୟସ୍ଥାଳୀମାନ କରେ ହୁଳହୁଳି ଦେଇ ।]

ସଂ. ବି—ସଙ୍ଗୀତ ଶାସ୍ତ୍ରର ଏକପ୍ରକାର ରାଗ—A kind metre. [ ଦ୍ର—ଏ ନଟନାରାୟଣ ରାଗର ପୁତ୍ର । ଏହା ଗାଇବାର ସମୟ ପ୍ରଭାତ ଓ ମତାନ୍ତରରେ ସାୟଂକାଳରେ ୧୬ ଠାରୁ ୨୦ ଦଣ୍ଡ ପର୍ଯ୍ୟନ୍ତ ସମୟ । ]

**ଶଙ୍କରାହ୍ବା**—ସଂ. ବି—ଶମୀ ବୃକ୍ଷ (ହି. ଶ)—
Śankarāhwā The spung tree.

**ଶଙ୍କରୀ**—ସଂ. ବିଂ ସ୍ତ୍ରୀ—(ଶଙ୍କର+ଈ ୧ । ପାର୍ବତୀ—1. Goddess Śankari Pārbati. ୨ । (ବୈଦ୍ୟକ) ଶମୀକ ଗଛ (ଦେଖ) 2. Samika gachha ( See ); Prosopis Spicigera (tree). ୩ । ମଞ୍ଜିଷ୍ଠା—3. Indian madder (tree) ୪ । ମାଳବକୌଶ ରାଗର ସହଚରୀ ରାଗିଣୀ ବିଶେଷ--4.Name of a secondary tune.
ସଂ. ବିଣ. ସ୍ତ୍ରୀ—ଶଙ୍କରର ସ୍ତ୍ରୀ—Feminine of Śankara.
ଦେ. ବି. ସ୍ତ୍ରୀ—ଶୁଭଦାୟିନୀ ସ୍ତ୍ରୀ—ସ୍ତ୍ରୀ ଲୋକଙ୍କ ନାମ—A name given to females.

**ଶଙ୍କ(ଙ୍କୁ)ରୁ**—ଦେ. ବି. ପୁଂ—(ଆଦରାର୍ଥକ) ଶଙ୍କର ନାମର ଡାକ ନାମ । Śanka(nku)ru Name given to male persons. शङ्कर शङ्कुरु [ଶଙ୍କୁ—ଅନ୍ୟରୂପ]

**ଶଙ୍କର୍ଷଣ**—ସଂ. ବି—୧ । ବିଷ୍ଣୁ (ହି.ଶ) 1. Bishnu ୨ । ରୋହିଣୀଙ୍କ Śankarshaṇa ପୁତ୍ର (ହି. ଶ) 2. Name of the son of Rohiṇi.

**ଶଙ୍କା**—ସଂ. ବି. ସ୍ତ୍ରୀ—(ଶଙ୍କ୍ ଧାତୁ+ଭାବ. ଅ+ଆ)—ତ୍ରାସ; ଭୟ—
Śankā Dread; fear; apprehension. ୨ । ଭୀତି; ହଠାତ୍ ଭୟ—2. Alarm; fright; panic. ୩ । ସଂଶୟ; ସନ୍ଦେହ—3. Doubt; suspicion. ୪ । ବିତର୍କ—4. Conjecture; inference. ୫ । ସମ୍ଭାବନା—5. Possibility; probability. (ଉ—ଯେଉଁଠାରେ ଝଣ୍ଟକ ଭୂମି ହୋଇଥିଲା, ସେହିଠାରେ ତାଙ୍କର ଜଳାଶଙ୍କା ହେଲା । କୃଷ୍ଣସିଂହ. ମହାଭାରତ-ସଭା.) ୬ । ସାହିତ୍ୟରେ ସଞ୍ଚାରିଭାବ ବିଶେଷ; ଆପଣାର କୌଣସି ଅନୁଚିତ ବ୍ୟବହାର ବା ଅନ୍ୟକାରଣରୁ ଉତ୍ପନ୍ନ ଇଷ୍ଟହାନିର ଚିନ୍ତା (ହି. ଶ)—6. Fear or apprehension of injury or loss on account of one's improper act.

**ଶଙ୍କା(ଙ୍କେ)ଇବା**—ଦେ. କ୍ରି (ସଂ. ଶଙ୍କ୍ ଧାତୁ ଣିଚ୍; ଶଙ୍କିବାର ଣିଜନ୍ତ Śankā(nke)ibā ରୂପ)—୧। ଶଙ୍କିତ କରାଇବା; ଡରାଇବା—ভয় দেখান 1. To frighten. [ ଉ—ଉତ୍ତମା । ମେରୁ शङ्का करना ଉପମା ଶଙ୍କାଇବ । ଉଞ୍ଜ. ପ୍ରେମସୁଧାନିଧି । ]
୨ । ସନ୍ଦିହାନ କରାଇବା; ସନ୍ଦେହ ଜନ୍ମାଇବା—2. To raise suspicion; to cause doubt.

**ଶଙ୍କାକର**—ସଂ. ବିଣ (ଶଙ୍କା+କୃ. ଧାତୁ+କର୍ତ୍ତୃ. ଅ;)—
Śankākara ୧ । ଭୟଜନକ—1. Producing fear; alarming. ୨ । ସନ୍ଦେହଜନକ—2. Producing doubt.

**ଶଙ୍କା କରିବା**—ଦେ. କ୍ରି—୧ । ଶଙ୍କିତ ହେବା; ମନରେ ଭୀତହେବା—
Śankā karibā 1. To fear; to apprehend; to শঙ্কা করা शङ्का करना dread, ୨ । ସନ୍ଦେହ କରିବା—2. To suspect.

**ଶଙ୍କାକୁଳ**—ସଂ. ବିଣ, ପୁଂ—( ଶଙ୍କା+ଆକୁଳ; ୬ଷ୍ଠୀତତ୍ )—ଅତ୍ୟନ୍ତ Śankākula ଶଙ୍କିତ—Alarmed; filled with panic; (ଶଙ୍କାକୁଳିତ—ଅନ୍ୟରୂପ) apprehensive.
ଶଙ୍କାକୁଳା, ଶଙ୍କାକୁଳିତା—ସ୍ତ୍ରୀଲିଙ୍ଗ

**ଶଙ୍କା ଜନକ**—ସଂ. ବିଣ—( ଶଙ୍କା+ଜନକ; ଉପପଦ ତତ୍ ପୁରୁଷ )—
Śankā janaka ଭୀତି ଉତ୍ପାଦକ—Alarming.

**ଶଙ୍କା ଦାତା**—ସଂ. ବିଣ. ପୁଂ—୧ । ଯେ ମନରେ ଭୟ ଜନ୍ମାଏ—
Śankā dātā 1. Raising fear in anothr's mind; alarming. ୨ । ଯେ ସନ୍ଦେହ ଜାତ କରାଏ—2. Raising doubt or suspicion.
(ଶଙ୍କାଦାତ୍ରୀ—ସ୍ତ୍ରୀ)

**ଶଙ୍କା ଦେବା**—ଦେ. କ୍ରି—ଅନ୍ୟର ମନରେ ଭୟ ଉତ୍ପାଦନ କରିବା—
Śankā debā শঙ্কা দেওয়া शङ्का देना To alarm a person.

**ଶଙ୍କାନ୍ୱିତ**—ସଂ. ବିଣ. ପୁଂ—(ଶଙ୍କା+ଅନ୍ୱିତ=ଯୁକ୍ତ, ୩ୟାତତ୍)—
Śankānwita ୧ । ଭୟାନ୍ୱିତ; ଭୀତ; ତ୍ରସ୍ତ—1. Alarmed; filled with fear. ୨ । ସନ୍ଦିହାନ—2. Doubting; suspecting.
(ଶଙ୍କାନ୍ୱିତା—ସ୍ତ୍ରୀ)

**ଶଙ୍କା ଭୂମି**—ସଂ. ବି. (୬ଷ୍ଠୀତତ୍) ୧ । ଭୟଜନକ ଦ୍ରବ୍ୟ—1. Object Śankā bhumi of fear. ୨ । ଶଙ୍କାର ସ୍ଥାନ ବା ବିଷୟ; ଭୟଜନକ ସ୍ଥାନ—2. A ground of fear.

**ଶଙ୍କା ଯୁକ୍ତ**—ସଂ.ବିଣ ପୁଂ—(ଶଙ୍କା+ଯୁକ୍ତ; ୩ୟାତତ୍)—ଶଙ୍କାନ୍ୱିତ—
Śankā jukta (ଶଙ୍କାଯୁକ୍ତା—ସ୍ତ୍ରୀ) Alarmed.

**ଶଙ୍କା ରହିତ**—ସଂ. ବିଣ—(ଶଙ୍କା+ରହିତ; ୫ମୀତତ୍)—୧ । ନିଃଶଙ୍କ;
Śankā rahita ନିର୍ଭୟ—1. Fearless. ୨ । ସନ୍ଦେହରହିତ; 2. Doubtless; free from doubt.
(ଶଙ୍କା ରହିତା—ସ୍ତ୍ରୀ) (ଶଙ୍କାରହିତ୍ୟ—ବି)

**ଶଙ୍କାରି**—ପ୍ରାଦେ.(ଗଞ୍ଜାମ)ବି.—ଗଞ୍ଜାମ ଜିଲ୍ଲାର ଶୂଦ୍ରକ ଜାତି ବିଶେଷ—
Śankāri A caste of Śudras in the district of Ganjām

**ଶଙ୍କାଶୀଳ**—ସଂ. ବିଣ.—ଶଙ୍କିତ ପ୍ରକୃତି ବିଶିଷ୍ଟ— Timorous Śankāśila (ଶଙ୍କାଶୀଳା—ସ୍ତ୍ରୀ) timid.

**ଶଙ୍କା ସୂଚକ**—ସଂ.ବିଣ (୬ଷ୍ଠୀତତ୍) ୧ । ଭୀତିବ୍ୟଞ୍ଜକ—1. Indicating fear. ୨ । ଭୟଜ୍ଞାପକ—
Śankā suchaka 2. Signifying danger.

ଶଙ୍କାସ୍ପଦ—ସ. ବ—( ଶଙ୍କା + ଆସ୍ପଦ; ୬ଷ୍ଠୀତତ୍ )—୧ । ଶଙ୍କାଭୂମି; Sankāspada ଯାହାକୁ ଭୟ କରାଯାଏ—1. Object of fear or dread. ୨ । ଯାହା ସମ୍ବନ୍ଧରେ ସର୍ବଦା ଶଙ୍କିତ ହେବାକୁ ହୁଏ; ଶଙ୍କାମୟ ବିଷୟ ବା ବ୍ୟକ୍ତି—2. Object of suspicion.

ଶଙ୍କାହର—ସ.ବଣ ପୁଂ—(ଶଙ୍କା + ହୃ ଧାତୁ = ହରଣ କରିବା + କର୍ତ୍ତୃ.ଅ) Sankā hara ଭୟ ନାଶକ—Dispelling fear or suspicion; freeing a person from dread or doubt. ଶଙ୍କାହରା—ସ୍ତ୍ରୀ

ଶଙ୍କା ହରଣ—ସ.ବ.—(ଶଙ୍କା+ହରଣ; ୬ଷ୍ଠୀ ତତ୍)—ଶଙ୍କା ବା ଭୟର Sankā harana ନାଶ—Dispelling of doubt.

ଶଙ୍କାହୀନ—ସ. ବଣ. ପୁଂ—( ୩ୟା ତତ୍ ) ଭୟଶୂନ୍ୟ—Fearless. Sankāhina (ଶଙ୍କାହୀନା—ସ୍ତ୍ରୀ ଶଙ୍କାହୀନତା—ବ)

ଶଙ୍କି - ଦେ. ବ.—ଶଙ୍ଖି (ଦେଖ) Sanki Sankhi (See)

ଶଙ୍କିତ—ସ. ବଣ. ପୁଂ—( ଶଙ୍କା+ଇତ; ସଞ୍ଜାତାର୍ଥେ )—୧ । ଭୀତ; Sankita ତ୍ରସ୍ତ—1. Terrified; alarmed; frightened; afraid. ୨ । ସନ୍ଦିଗ୍ଧ—2. Doubting; doubtful; suspecting. ୩ । ଅବିଶ୍ୱସ୍ତ—3. Untrustworthy ୪ । (ଶଙ୍କ୍ ଧାତୁ+କର୍ମ.ତ)—ତର୍କିତ-4. Suspected;conjectured. ୫ । ଅନିଶ୍ଚିତ; ସନ୍ଦେହଯୁକ୍ତ (ହି ଶ)—5 Uncertain; doubtful; ( ବୈଦ୍ୟକ )—ବ—ଚୋର ନାମକ ଗନ୍ଧଦ୍ରବ୍ୟ—A scented herb; Andropogen Acicularis.

ଶଙ୍କିତ ବର୍ଣ୍ଣ—ସ. ବ. (ଶଙ୍କିତ = ଭୀତ + ବର୍ଣ୍ଣ = ଜାତି;ଯେଉଁ ଶ୍ରେଣୀର Sankita barnna ବ୍ୟକ୍ତି ସର୍ବଦା ଧରା ପଡ଼ିବାର ଶଙ୍କାରେ ଥାଏ; କିମ୍ବା ଶଙ୍କିତ=ଭୟଯୁକ୍ତ+ବର୍ଣ୍ଣ=ବାକ୍ୟ ଯାହାର; ଯେ ଡର ଡର କଥା କହେ ବା ସାହସ କରେ ନାହିଁ)—ଚୌର, ତସ୍କର; ଚୋର—Thief.

ଶଙ୍କିଣି(ନି)—ଦେ. ବ. ପୁଂ—( ସ. ଶକୁନି )—ଦୁର୍ଯ୍ୟୋଧନଙ୍କ ମାମୁଁ; Sankini(ni) शकुनि शकुनि ଶକୁନି (ଦେଖ)—The maternal uncle of King Durjyodhana Sakuni (See)—; ପୁ ଓ ସ୍ତ୍ରୀ—ପରଘରେ ଅନ୍ତଃକଳହ ଲଗାଇବା ବ୍ୟକ୍ତି—A person शकुनिमामा शकुनिमामा who foments quarrel in another's family.

ସ୍ତ୍ରୀ—( ସ. ଶାକିନୀ )—୧ । (ଗାଳି) ଡାଆଣୀ; ମନ୍ଦ ସ୍ତ୍ରୀ ଲୋକ । शाकिनी शंखिनी 1. (abuse) A mean or wicked woman; a witch. ୨ । ଉପଦେବତା ବିଶେଷ—2. A class of wicked female ghosts.

ଶଙ୍କିତବ୍ୟ—ସ.ବଣ. ପୁଂ ( ଶଙ୍କ୍ ଧାତୁ+କର୍ମ. ତବ୍ୟ )—ଶଙ୍କାମୟ—Sankitabya Deserving to be feared or (ଶଙ୍କିତବ୍ୟା—ସ୍ତ୍ରୀ) suspected.

ଶଙ୍କିବା—ଦେ. କ୍ରି.—(ସ.ଶଙ୍କ୍ ଧାତୁ)—୧ । ଭୟ କରିବା, ଭୀତହେବା— Sankiba শঙ্কা করা शक करना 1 To fear; to dread. [ଉ—ତାଙ୍କର ସାମର୍ଥ୍ୟକୁ ଜାଣିଣ ଶଙ୍କିଲେ—କୃଷ୍ଣସିଂହ. ମହାଭାରତ. ବନପର୍ବ] ୨ । ସନ୍ଦେହ କରିବା—2. To शङ्कित होना suspect. ୩ । (ସ. ସଙ୍କୋଚ)—କୌଣସି କାର୍ଯ୍ୟ सकुचना କରିବାକୁ ପଛଘୁଞ୍ଚା ଦେବା; ସଙ୍କୋଚ ବୋଧ କରିବା ବା ପଶ୍ଚାତ୍‌ପଦ ହେବା—3. To shrink from doing a thing; to fight shy of a matter.

(ଉ—ବନ୍ଦୀ ଭଳେ ବନ୍ଦୀ କରି ଇନ୍ଦ୍ର ଗଲା ଶଙ୍କି—ବିଶ୍ୱନାଥ. ବିଚିତ୍ରରାମାୟଣ) ୪ । ଲଜ୍ଜାବୋଧକରିବା—4. To feel shy.

ଶଙ୍କି ଯିବା—ଦେ. କ୍ରି—ଶଙ୍କିବା ( ଦେଖ )—Sankiba (See). Sanki jibā (ଉ—ଦେଖି ଶଙ୍କିଯାନ୍ତି ଗ୍ରାମ୍ୟଲୋକେ ଭିତରର ভয়পাওয়া ପଳାଇଯାନ୍ତି ଥୋକେ—ଫକୀରମୋହନ. ଛମାଣ ଅଠଗୁଣ୍ଠ)

ଶଙ୍କୁ—ସ. ବ (ଶକ୍ ଧାତୁ+ଅଧାଦାନେ ଉ; ଯାହାଯୋଗୁ ଲୋକେ ଭୀତ Sanku ହୁଅନ୍ତି)—୧ । ମୁନିଆ ଅସ୍ତ୍ରବିଶେଷ; ଚେଣ୍ଡା; ମୁନା—1. A pointed weapon; harpoon. ୨ । ଶେଲ; ଭେଲ; ବର୍ଚ୍ଛା; ଭାଲ—2. Spear. javelin. ୩ । ଶଲ୍ୟ; ବାଣ—3. Arrow; dart. ୪ । କୀଳକ; ଖିଲ, ଖୁଣ୍ଟା; ମେଖ—4. A peg; a stake. ୫ । ଗୋଜଣା; ମୁନିଅବାଡ଼ି; ଶୂଳ—5. A pointed stake. ୬ । ବାର ଅଙ୍ଗୁଳି ଲମ୍ବର କାଠି; ମାପିବାରେ ବ୍ୟବହୃତ ମାପ କାଠି—6. A rod measuring 12 digits or about 10 inches; a measuring rod. ୭ । ଘଣ୍ଟା ଯନ୍ତ୍ରର ସମୟ-ଜ୍ଞାପକ କଣ୍ଟା—7. The index or hand of a timepiece; the hands of a dial. ୮ । ସ୍ଥାଣୁ; ଥୁଣ୍ଟା ଗଛ—8. The stump of a lopped-off tree;pollard. ୯ । ଶିବ;ମହାଦେବ—9. God Siba. ୧୦ । ବିକ୍ରମାଦିତ୍ୟ ରାଜାଙ୍କ ସଭାର ନବରତ୍ନ (ପଣ୍ଡିତ) ମଧ୍ୟରୁ ଜଣେ—10. Name of one of the 9 poet-laureates or Jewels of the court of king Bikramāditya ୧୧ । (ଗଣିତ) ସଂଖ୍ୟାବିଶେଷ; ଲୀଳାବତୀ ଅନୁସାରେ ଦଶ ଲକ୍ଷ କୋଟି ସଂଖ୍ୟା; ଏକ ପଦ୍ମ (ହି. ଶ)—11. Name of a mathematical number;10 trillions. [ଦ୍ର—୧ ସଂଖ୍ୟା ପରେ ୧୩ଟି ଶୂନ୍ୟ ଦେଲେ ଏ ସଂଖ୍ୟା ହେବ] ୧୨ । ଶଙ୍କୁଚ, ମତ୍ସ୍ୟବିଶେଷ; ଶାଙ୍କୁଚମାଛ—12.The stinging ray;the sea devil; uraria Picta. ୧୩ । ପାପ, କଳୁଷ—13. Sin. ୧୪ । ପୁଂ ଚିହ୍ନ, ଲିଙ୍ଗ, ମେଢ୍ର । 14. Penis; the male organ of generation; Pudendum oirile.

୧୫ । ଶେୈବ ନାମକ ଗନ୍ଧଦ୍ରବ୍ୟ; ଶେୈବକ—15. A scented herb; Andropogen Aciculates. ୧୬--ବଲ୍ମୀକ; ହୁଙ୍କ । 16. Ant-hill. ୧୭ । ଭୂତ—17. Ghost; goblin; gnome. ୧୮ । ହଂସ (ହି. ଶ)—18. A swan; gander. ୧୯ । କନ୍ଦର୍ପ—19. Cupid. ୨୦ । ଶିବଙ୍କ ଅନୁଚର ଗନ୍ଧର୍ବ ବିଶେଷ । 20. Name of an attendant of God Siba; a demigod. ୨୧ । (+ଭାବ.ବ୍ରୁ) ଶଙ୍କା; ଭୟ; ତ୍ରାସ—21. Fear; fright; alarm. ୨୨ । ପତ୍ରର ଶିରା—22. The fibres or ridges of a leaf. ୨୩ । ବିକ୍ରମାଦିତ୍ୟଙ୍କ ବଡ଼ଭାଇ—23. Name of a king; elder brother of King Bikramāditya.

[ଦ୍ର—ଏ ମହାରାଜ ବିକ୍ରମାଦିତ୍ୟଙ୍କ ବଡ଼ଭାଇ । ଏ ପ୍ରଥମେ ରାଜା ହୋଇଥିଲେ; କିନ୍ତୁ ପରେ ଅତ୍ୟନ୍ତ ପାପାସକ୍ତ ଓ ଅତ୍ୟାଚାରୀ ହୋଇ ଉଠିଲେ ଓ ବିକ୍ରମାଦିତ୍ୟଙ୍କୁ ମାରି ପକାଇବାକୁ ଚେଷ୍ଟା କରି ତାଙ୍କର ହସ୍ତରେ ଶେଷରେ ନିହତ ହେଲେ ।]

୨୪ । ତ୍ରିଶଙ୍କୁ ନାମକ ରାଜା; ସୂର୍ଯ୍ୟବଂଶୀୟ ରାଜା ହରିଶ୍ଚନ୍ଦ୍ରଙ୍କ ପିତା—24. Name of the father of King Harischandra of the solar dynasty of ancient Oudh. ୨୫ । ନଖୀ ନାମକ ଗନ୍ଧଦ୍ରବ୍ୟ—(ହି. ଶ) 25. Shell of fasciolaria. ୨୬ । ଜୁଆ ଖେଳର ବାଜି (ହି. ଶ)—26. A stake in a game at hazard. ୨୭ । ଉଗ୍ରସେନଙ୍କ ଏକପୁତ୍ର (ହି. ଶ)—27. Name of a son of Ugrasena. ୨୮ । ଶୂଳ; ଅଗ ସରୁ ଓ ମୂଳ ମୋଟଥିବା ଖୁଣ୍ଟି (ହି. ଶ) 28. A post with a tapering top. ୨୯ । ବୃକ୍ଷ ଅଙ୍କୁର ଭୂମିରୁ ରସ ଶୋଷିବା ଶକ୍ତି (ହି. ଶ)—29. The power of vegetables to draw juice from the ground. ୩୦ । ଖୁଣ୍ଟି; ଛୋଟ ସ୍ତମ୍ଭ (ହି. ଶ)—30. Small pillar; post. ୩୧ । ରାକ୍ଷସ (ହି. ଶ)—31. Demon ୩୨ । ବିଷ (ହି. ଶ)—32. Poison. ୩୩ । ପ୍ରାଚୀନକାଳର ବାଦ୍ୟବିଶେଷ (ହି. ଶ)—33. Name of an ancient musical instrument.

ଶଙ୍କୁ,² ଶାଙ୍କୁ ଦେ. ବି.—୧ । ଭୂମିକୁ ଚିହ୍ନଟ କରିବା ପାଇଁ ଭୂଇଁରେ ପୋତା ଯିବା ଖୁଣ୍ଟି—1. A peg driven into the ground as a landmark. ୨ । କୌଣସି ଜମି ମାପ କରି ଚିହ୍ନଟ କରିବା ପାଇଁ ସ୍ଥିର କରାଯିବା ସ୍ଥାନର ନିକଟ ବା ଦୂରରେ ସ୍ଥିତ କୌଣସି ସ୍ଥାୟୀ ଚିହ୍ନ, ଯେଉଁ ଚିହ୍ନଠାରୁ ମାପ କରି ଖୋଜା ଯାଉଥିବା ଜମିକୁ ନିର୍ଣ୍ଣୟ କରାଯାଏ—2. A permanent object or landmark (e. g. a temple, an old tree) which is taken to be the starting point of measurement to find out the identity of any plot of land. ୩ । କୌଣସି ବସ୍ତୁକୁ ଅନ୍ୟ ବସ୍ତୁଠାରୁ ଚିହ୍ନାଇବା ପାଇଁ ତହିଁରେ ଥିବା ବିଶେଷ ଚିହ୍ନ—3. A distinguishing mark attached to a thing. ୪ । ଭୂଇଁ ଜମିର ସୀମା ଚିହ୍ନାଇବା ପାଇଁ ପୋତା ଯାଇଥିବା ସ୍ତମ୍ଭ ବା ପ୍ରସ୍ତରଖଣ୍ଡ—4. Boundary post. ୫ । ଯେଉଁ ଚିହ୍ନରୁ ଜମିର ମାପ ଆରମ୍ଭ କରାଯାଏ ।—5. The starting point in a surveying.

ଶଙ୍କୁଆ—ଦେ.ବି.—(ସଂସ୍କୃତ)—ନଦୀ ଓ ପୋଖରୀ ଆଦିରୁ ପାଣି ବୋହି Sankua ଯିବା ପାଇଁ ଓ ଉପରେ ଲୋକ ଯିବା ଆସିବା ପାଇଁ ସଂକୋ ପୁଲ, ସାଙ୍କୁ ନିର୍ମିତ ହୋଇଥିବା ପୋଲ; ସେତୁ—A bridge; culvert.

ଶଙ୍କୁକର୍ଣ୍ଣ—ସ. ବି—(ଶଙ୍କୁ=ଖୁଣ୍ଟିକ ପରି ଠିଆ ହୋଇଥାଏ କର୍ଣ୍ଣ Sanku karnna ଯାହାର; ବହୁବ୍ରୀ)—୧ । ଗର୍ଦ୍ଦଭ; ଗଧ—[ଶଙ୍କୁକର୍ଣ୍ଣୀ—ଅନ୍ୟରୂପ] 1. The ass. ୨ । ରାକ୍ଷସବିଶେଷ—2. Name of a demon. ୩ । ମହାଦେବ ଲିଙ୍ଗ ବିଶେଷ—3. The name of a Siba Linga. [ଭ—ଶଙ୍କୁକର୍ଣ୍ଣ ମହାଦେବଙ୍କୁ ଯେ ପୂଜଇ ଦଶ ଅଶ୍ୱମେଧର ଫଳ ସେ ଲଭଇ । କୃଷ୍ଣସିଂହ, ମହାଭାରତ ବନ ।] ସ. ବିଣ. ପୁଂ—ଯାହାର କାନ ଖିଲା ପରି ଠିଆ ହୋଇଥାଏ—Having the ears standing erect like pegs.

ଶଙ୍କୁଚି—ସ. ବି.—(ଶଙ୍କ୍ ଧାତୁ+ଅପାଦାନେ. ଉଚି)—ଶାଙ୍କୁଚ ମାଛ Sankuchi (ଦେଖ)—The ray or sea-devil fish trygon; stingray.

ଶଙ୍କୁଚ୍ଛାୟା—ସ. ବି—ପ୍ରାଚୀନକାଳର ୧୨ ଅଙ୍ଗୁଳ ଉଚ୍ଚ ଏକ ମୁନିଆ Sankuchchhāyā ଖୁଣ୍ଟି, ଯାହାର ଛାୟାଦ୍ୱାରା ସମୟର ପରିମାଣ ଜଣା ଯାଉଥିଲା [ହି. ଶ.]—A pointed stake 12 digits long with the help of the shadow of which, the time of the day could be ascertained in ancient India.

ଶଙ୍କୁଡ଼ି—ଦେ. ବି. ଓ ବିଣ—ଶଙ୍ଖୁଡ଼ି (ଦେଖ)
Sankurdi Sankhurdi (See)

ଶଙ୍କୁଣି(ନି)—ଦେ. ବି.—ଶଙ୍କିନି (ଦେଖ)
Sankuni(ni) Sankini (See)

ଶଙ୍କୁତରୁ—ସ. ବି.—ଶାଳବୃକ୍ଷ (ହି. ଶ.)
Sanku taru Shorea Robusta (tree).
[ଶଙ୍କୁବୃକ୍ଷ—ଅନ୍ୟରୂପ]

ଶଙ୍କୁଦ୍ୱାର—ସ. ବି (ନାମ)—ଗୁଜରାଟ ସମୀପସ୍ଥ ଏକ କ୍ଷୁଦ୍ର ଦ୍ୱୀପ, Sanku dwāra ଯେଉଁଠାରେ ଶଙ୍କୁନାରାୟଣଙ୍କ ମୂର୍ତ୍ତି ଅଛି [ହି. ଶ.]—Name of an islet off the coast

of Gujerat where an image of Bishṇu is worshipped.

ଶଙ୍କନ—ଦେ. ବ—(ସ. ଶକୁନ) —ଶକୁନ; ଶୁଭାଶୁଭସୂଚକ ଚିହ୍ନ—
Śaṅkuna ଶକୁନ Omen; premonitory signs or indications. [ଢ଼—ପ୍ରିୟ ମିଳିବା ଆଗମନ, ମୋର ବଢ଼ିବା ଏ ଶଙ୍କନ । ଭୂପତି. ପ୍ରେମପଞ୍ଚାମୃତ ।]

ସ. ବ.—(ନାମ)—ଶଙ୍କୁଦ୍ୱାର ଠାପୁରେ ପ୍ରତିଷ୍ଠିତ
Śaṅku nārāyaṇa ନାରାୟଣ ମୂର୍ତ୍ତି (ହି. ଶ.)—The image of Bishṇu in the islet of Śaṅkudwāra.

ଶଙ୍କୁ(ଙ୍କି)ଣୀ—ଦେ. ବ—୧ । (ପୁଂ) ଶକୁନି; ଦୁର୍ଯ୍ୟୋଧନଙ୍କ ମାମୁଁ—
Śaṅku(ṅki)ṇī 1. The maternal uncle of Durjyodhana. ୨ । (ସ୍ତ୍ରୀ) ଶଙ୍ଖିଣୀ ୨ (ଦେଖ)
2. Śaṅkhinī 2 (See)

ଶଙ୍କୁଣୀ ଡ(ଡା)ଙ୍କୁଣୀ—ଦେ. ବ. (ସ୍ତ୍ରୀ)—( ଗାଳରେ ବ୍ୟବହୃତ—ସ, ଶଙ୍ଖିଣୀ+ଡାକିନୀ)—ନର ପିଶାଚୀ—
Śaṅkuṇī ḍa(ḍā)ṅkuṇī A female devil.

ଶଙ୍କନ୍ୟ—ଗ୍ରା. ବ.—(ସ. ଶକୁନ)—ଶକୁନ (ଦେଖ)
Śaṅkunya Śakuna (See)

ଶଙ୍କୁ ପଟ୍ଟ—ସ. ବ—୧ । ଶଙ୍କୁ ଯନ୍ତ୍ରର ବା ସୂର୍ଯ୍ୟଘଟିକାର ଉପରେ ଥିବା
Śaṅku patta ପଟ୍ଟ—The dial or face of a sundial.
୨ । ସୂର୍ଯ୍ୟ ଘଟିକା—2. The sundial.

ଶଙ୍କୁ ଫଣୀ—ସ. ବ—(ସ. ଶଙ୍କୁଫଣୀନ୍)—ଜଳଚର (ହି. ଶ.)=
Śaṅku phaṇī An aquatic animal.

ଶଙ୍କୁଫଳୀ—ସ. ବ (ଶଙ୍କୁ+ଫଳ+ଇନ୍; ୧ମା. ୧ବ)—ସଫେଦ
Śaṅkuphalī ବବୁର ଗଛ (ହି. ଶ )—The white
( ଶଙ୍କୁଫଳକା—ଅନ୍ୟରୂପ ) variety of Acacia Arabica.

ଶଙ୍କୁ ମୁଖ—ସ. ବ (ବହୁବ୍ରୀହି)—୧ । କୁମ୍ଭୀର (ହି. ଶ)—
Śaṅku mukha 1. Alligator. ୨ । ମୂଷା (ହି. ଶ)—
2. Mouse.

ଶଙ୍କୁମୁଖୀ—ସ. ବ (ଶଙ୍କୁ+ମୁଖ+ଇନ୍)—ଜୋକ (ହି. ଶ)
Śaṅkumukhī Leech.

ଶଙ୍କୁ ଯନ୍ତ୍ର—ସ. ବ—ସୂର୍ଯ୍ୟଘଟିକା.—The sundial. [ଦ୍ର—ଏହି
Śaṅku jantra ଘଟିକାର ପଟ୍ଟ ଉପରେ ଗୋଟିଏ କାଠି (ଶଙ୍କୁ) ଠିଆକାରରେ ପୋତା ହୋଇଥାଏ ଓ ଉକ୍ତ ଶଙ୍କୁର ଛାଇ ପଟ୍ଟ ଉପରେ ଚିହ୍ନିତ ସ୍ଥାନରେ ପଡ଼ିକ ହୋଇ ସମୟ ଜ୍ଞାପନ କରେ ।]

ଶଙ୍କୁର—ସ. ବଣ. ପୁଂ (ଶଙ୍କ୍ ଧାତୁ+୫ମୀ. ଉର)—ଭୟଙ୍କର—
Śaṅkura Terrific. ସ. ବ—ପୌରାଣିକ ଦାନବ ବିଶେଷ (ହି. ଶ)—Name of a demon.

ଶଙ୍କୁରି—ଗ୍ରା. ବ ଓ ବଣ ( ଶୁଦ୍ରଙ୍କ ବ୍ୟବହୃତ ଶବ୍ଦ )—ଶଙ୍ଖୁଡ଼ି
Śaṅkuri (ଦେଖ)—Śaṅkhuṛi. (See)

ଶଙ୍କୁଳା—ସ. ବ (ଶଙ୍କ୍ ଧାତୁ+ ଅପାଦାନେ. ଉଳ; କମ୍ବା ଶଙ୍କୁ+
Śaṅkulā ସ୍ୱାର୍ଥେ. ଲ;+ଆ )—ଗୁଆକାତି—A nut-cracker.

ଶଙ୍କୁଳିବା—ଦେ. କି—ଶଙ୍ଖୁଳିବା (ଦେଖ)
Śaṅkuḷibā Śaṅkhuḷibā. (See)

ଶଙ୍କୋଚ—ସ. ବ (ଶଙ୍କ୍ ଧାତୁ+ଅପାଦାନେ. ଓଚ)—ଶାଙ୍କୁଚ ମାଛ
Śaṅkocha (ଦେଖ)—Śāṅkucha māchha (See)

ଶଙ୍କୋଶିକ—ସ. ବଣ—(ସାଂଖ୍ୟ ଦର୍ଶନ)—ନୈମିତ୍ତିକ (ହି. ଶ)
Śaṅkośika (Sāṅkhya philosophy) Casual.

ଶଙ୍ଖ—ସ. ବ (ଶମ୍ ଧାତୁ=ଶାନ୍ତ କରିବା+କର୍ତ୍ତୃ. ଖ; ଯେ ଅପଣାର
Śaṅkha ମଧୁର ଶବ୍ଦ ଦ୍ୱାରା ଜଗତକୁ ଶାନ୍ତ କରେ )—
ଅନ୍ୟ ସ. ନାମ—ମୁଖର, ବହୁନାଦ, ପାର୍ଥନାଦ, ବାରିଭବ, ହରପ୍ରିୟ, କମ୍ବୁ, କମ୍ବୋଜ, ପାବନଧ୍ୱନ, ଅବ୍ଜ, ଅନ୍ତଃକୁଟିଳ, ସୁନାଦ, ମହାନାଦ, ଜଳଜ, ଅର୍ଣ୍ଣୋଭବ, ଶ୍ୱେତ, ପୂତ ।
শাংখ
ଶା'ଙ୍ଖ
୧ । ଶେଣ୍ଡାକାଟିଆ, ଭଳି ଅପୃଷ୍ଠବଂଶୀ ବଡ଼ ସାମୁଦ୍ରିକ ପ୍ରାଣୀର କଠିନ ଶୁକ୍ଳବର୍ଣ୍ଣ ଅବରଣ ବା ଖୋଳ—1. A marine conch shell; Turbinella Rapa. [ଦ୍ର—ଏହା ମଧ୍ୟରୁ ମାଂସଗୁଡ଼ିକ ସଢ଼ିଗଲେ ଏହା ଜଳପାତ୍ରରୂପେ ବ୍ୟବହୃତ ହୁଏ ଏବଂ ହିନ୍ଦୁମାନେ ଦେବାରାଧନାଦିରେ ବ୍ୟବହୃତ ଜଳ ଏଥିରେ ରଖନ୍ତି । ଏହାର ପୃଷ୍ଠଭାଗର ଏକପ୍ରାନ୍ତରେ ଅବର୍ତ୍ତ ବା ଭଉଁରୀ ଥାଏ । ସେହି ଭଉଁରୀର ମୁଣ୍ଡକୁ ଛିଦ୍ର କରି ସେହି ବାଟେ ଫୁଙ୍କିଲେ ଉଚ୍ଚ ଓ ଗମ୍ଭୀର ସ୍ୱର ହୁଏ । ହିନ୍ଦୁମାନଙ୍କ ବିବାହାଦି ମଙ୍ଗଳ କାର୍ଯ୍ୟରେ ଓ ଦେବାଳୟରେ ଏହା ବଜାଯାଏ । ଏହା ପୂର୍ବେ ଯୁଦ୍ଧରେ ଭେରୀରୂପେ ବ୍ୟବହୃତ ହେଉଥିଲା । ଭିନ୍ନ ଭିନ୍ନ ଯୋଦ୍ଧାଙ୍କର ଶଙ୍ଖର ଭିନ୍ନ ଭିନ୍ନ ନାମ ଥିଲା ଯଥା—ଶ୍ରୀକୃଷ୍ଣଙ୍କ ଶଙ୍ଖର ନାମ ପାଞ୍ଚଜନ୍ୟ, ଅର୍ଜୁନଙ୍କର ଦେବଦତ୍ତ, ଭୀମଙ୍କର ପୌଣ୍ଡ୍ର, ଯୁଧିଷ୍ଠିରଙ୍କର ଅନନ୍ତବିଜୟ, ନକୁଳଙ୍କର ସୁଘୋଷ ଓ ସହଦେବଙ୍କର ମଣିପୁଷ୍ପକ । ସିଂହଳ ଓ ଉତ୍କଳତଟବର୍ତ୍ତୀ ସମୁଦ୍ରରୁ ସାଧାରଣତଃ ଶଙ୍ଖ ମିଳେ । ପୁରୀର ଉପକୂଳ ସମୁଦ୍ରରେ କ୍ଷୁଦ୍ର କ୍ଷୁଦ୍ର ଶଙ୍ଖ ମିଳେ । ଶଙ୍ଖକୁ କାଟି ବାଙ୍ଗୁ ବଳୟ (ଶଙ୍ଖା) ତିଆରି କରନ୍ତି । ବୈଦ୍ୟଶାସ୍ତ୍ର ଅନୁସାରେ ଏହା ଉପରସ ମଧ୍ୟରେ ଗଣ୍ୟ । ଶଙ୍ଖର ଭସ୍ମ ଔଷଧରେ ଲାଗେ । ଶଙ୍ଖ ପୋଡ଼ିଲେ ଚୂନ ହୁଏ । ଶଙ୍ଖର ବର୍ଣ୍ଣ ଧଳା । କେତେକ ଶଙ୍ଖର ଅବର୍ତ୍ତ ଡାହାଣ ଆଡ଼କୁ ବୁଲିଥାଏ । ଏହାକୁ ଦକ୍ଷିଣାବର୍ତ୍ତକ ଶଙ୍ଖ କୁହାଯାଏ । ସେହିପରି କେତେକ ଶଙ୍ଖ ବାମାବର୍ତ୍ତକ । ଦକ୍ଷିଣାବର୍ତ୍ତକ ଶଙ୍ଖ କ୍ୱଚିତ୍ ମିଳେ ଓ ଦକ୍ଷିଣାବର୍ତ୍ତକ ଶଙ୍ଖ ଯାହାର ଥାଏ, ସେ ଆପଣାକୁ ଭାଗ୍ୟବାନ୍ ମନେ କରେ । ସମୁଦ୍ରରେ ନାନାଜାତୀୟ ଓ ନାନା ଅକାରର ତଥା ବର୍ଣ୍ଣର ଶଙ୍ଖ ଦେଖାଯାଆନ୍ତି । ସାଧାରଣତଃ ଶଙ୍ଖର ଅବର୍ତ୍ତ (ଭଉଁରୀ)ମାନ ବାମ ଆଡ଼କୁ ବୁଲିଥାଏ; ଏହାକୁ ବାମାବର୍ତ୍ତ ଶଙ୍ଖ କୋଲାଯାଏ । କୌଣସି କୌଣସି ଶଙ୍ଖର ଅବର୍ତ୍ତ ଡାହାଣ ଅଡ଼କୁ ବୁଲିଥାଏ, ଏହାକୁ ଦକ୍ଷିଣାବର୍ତ୍ତ ଶଙ୍ଖ କୋଲାଯାଏ ଓ ଏହା ଅତି ଶୁଭଦାୟକ ଓ ଧନବର୍ଦ୍ଧକ ବୋଲି ବିବେଚିତ । ବୈଦ୍ୟକ-

ମତରେ ଶଙ୍ଖ କେଶହିତକର, ଚକ୍ଷୁ, କଫ, ରୁଧିରବିକାର, ବିଷଦୋଷ, ବାୟୁ, ଶୂଳ, ଶ୍ୱାସ, ଅଜୀର୍ଣ୍ଣ, ସଗ୍ରହଣୀ ରୋଗର ଉପକାରକ । ଦକ୍ଷିଣାବର୍ତ୍ତ ଶଙ୍ଖର ଗୁଣ ବାମାବର୍ତ୍ତ ଶଙ୍ଖ ଅପେକ୍ଷା ବେଶି ।

ଶଙ୍ଖ ଭସ୍ମ ଜ୍ୱର, କାଶ, ଶ୍ୱାସ, ଅତିସାର ଆଦି ରୋଗରେ ଉପକାରୀ । ଏହା ସ୍ତମ୍ଭକ ଓ ବାଜୀକରଣରୂପେ ଗଣ୍ୟ । ବିଲ, ପୋଖରୀ, ନଈରେ ଯେଉଁ ଗେଣ୍ଡା (Snail) ଦେଖା ଯାଆନ୍ତି ଓ ଯେଉଁ କଉଡ଼ି ଆମ୍ଭେମାନେ ବ୍ୟବହାର କରୁଁ, ଶଙ୍ଖମାନେ ସେହି ଶ୍ରେଣୀର ସାମୁଦ୍ରିକ ଜୀବ; କିନ୍ତୁ ଏମାନଙ୍କ ଅସ୍ଥି ମୋଟା । ଇଂରାଜୀଭାଷାରେ ଓ ନାନାଜାତୀୟ ନାନା-ବର୍ଣ୍ଣର ଶଙ୍ଖର ନାମ ଅଛି । ଯଥା—

Queen conch—ଗୋମୁଖୀ ଶଙ୍ଖ, Pujrula—ଏକପ୍ରକାର ଶଙ୍ଖ । Music shell—ଯେଉଁ ଶଙ୍ଖର ମୁଣ୍ଡିରେ ଛିଦ୍ର କରି ଲୋକେ ବଜାନ୍ତି । Harp shell—ପିଠିରେ ଲମ୍ବ ଲମ୍ବ ରେଖା ଥିବା ଚକିତ ଶଙ୍ଖ । Drill shell—ଫୋଡ଼ ଥିବା ଶଙ୍ଖ । Periwinkle—ବଡ ଗେଣ୍ଡା ପରି ଶଙ୍ଖ । Scalaria—କାଣ୍ଡବିଶିଷ୍ଟ ଶଙ୍ଖ । Earsnail—ଛୋଟ ଓ ଚିତ୍ରିତ ଶଙ୍ଖ । Nassa—ଛୋଟ ଓ ରେଖାଙ୍କିତ ଶଙ୍ଖ । Margimellia—ଛୋଟ, ମସୃଣ ଓ ନାଲିଡୋରିଯୁକ୍ତ ଶଙ୍ଖ । Cone—ବଡ଼ ଓ ଛିଟପକା ଶଙ୍ଖ । Mitershell—ଖୁବ୍ ଲମ୍ବ ଗୋଜିଆ ଓ ଛିଟପକା ଶଙ୍ଖ । Oliva—ମାଟିଆ ହଳଦିଆ ଓ ଅତି ସୁନ୍ଦରରୂପେ ଚକ୍ର ବିଚିତ୍ରିତ ଶଙ୍ଖ । Nautilus—ଗୋଲ ଚଟକା ଓ ଆବର୍ତ୍ତମୟ ଶଙ୍ଖ । Unicorn shell—ଏକଶିଙ୍ଘା ଶଙ୍ଖ । Univalve shell—ଏକପାଖିଆ ଶଙ୍ଖ । Tulip shell—ବହୁପାଙ୍କୁଡ଼ାବିଶିଷ୍ଟ ଶଙ୍ଖ । Triton shell—ବଡ ଶଙ୍ଖ । Turritella—ଲମ୍ବ ଗୋଜିଆ ଶଙ୍ଖ । Turbenella—ଯେଉଁ ଶଙ୍ଖର ମୁହଁ ଗୋଜିଆ] । ୨ । ଲଲାଟାସ୍ଥି; ମୁଣ୍ଡର ଖପୁରିର ସମ୍ମୁଖାଂଶ 2. The bone of the forehead; the temporal or frontal bone. (ଉ—ଶଙ୍ଖ ଶୋଣିତେ ଚର୍ଣ୍ଣ କଲି ପିତେ—ପ୍ରାଚୀ. ରସକଲ୍ଲୋଳ) ୩ । ସ୍ତ୍ରୀମାନଙ୍କର ଶଙ୍ଖନିର୍ମିତ କରବଳୟ; ଶଙ୍ଖା—3. Conch shell bracelets. ୪ । ଗଳଦେଶ; ବେକର ସମ୍ମୁଖଦିଗର ନଳି; ଶଙ୍ଖି—4. The gullet;throat. ୫ । କୁବେରଙ୍କର ନିଧିବିଶେଷ—5. Name of one of the gems of Kubera. ୬ । ଲକ୍ଷ କୋଟି ସଂଖ୍ୟା—(ଏକ ସଂଖ୍ୟାର ଡାହାଣରେ ୧୨ଟି ଶୂନ୍ୟ ଦେଲେ ଏହି ସଂଖ୍ୟା ହୁଏ) 6.Ten thousand millions; a billion. (ଉ—ବଳ କେତେ ବୋଲି ଯେତେ ଶଙ୍ଖ ସେହି, ବାରସିରେ ଜନକ ତେତେ ଶଙ୍ଖ ନାହିଁ—ଉପେ. ବୈଦେହୀଶବିଳାସ ) [ ଦ୍ର—ସଂଖ୍ୟା ଗଣନ ସମ୍ବନ୍ଧରେ ବ୍ରହ୍ମାଣ୍ଡପୁରାଣୋକ୍ତ ନିମ୍ନଲିଖିତ ଶ୍ଳୋକଟି ସହାୟକ—

ଏକଂ ଦଶଂ ଶତଞ୍ଚୈବ ସହସ୍ରମୟୁତଂ ତଥା
ଲକ୍ଷଂ ଚ ନିୟୁତଞ୍ଚୈବ କୋଟିରର୍ବୁଦମେବ ଚ
ବୃନ୍ଦଃ ଖର୍ବୋ ନିଖର୍ବଶ୍ଚ ଶଙ୍ଖପଦ୍ମୌ ଚ ସାଗରଃ
ଅନ୍ତ୍ୟଂ ମଧ୍ୟଂ ପରାର୍ଦ୍ଧଂ ଚ ଦଶବୃଦ୍ଧ୍ୟା ଯଥାକ୍ରମଂ—ଶବ୍ଦକୋଷ]

୭ । ସର୍ପବିଶେଷ; ଶଙ୍ଖଚୂଡ଼—7. Name of a species of serpents. [ ଦ୍ର—ଏହା ଅଷ୍ଟ ନାଗ ମଧ୍ୟରୁ ଏକ । ଅଷ୍ଟ ନାଗଙ୍କ ନାମ—ଅନନ୍ତ, ବାସୁକି, ପଦ୍ମ, ମହାପଦ୍ମ, ତକ୍ଷକ, କୁଳୀର, କର୍କଟ, ଶଙ୍ଖ—ଶବ୍ଦକୋଷ] ୮ । ଶଙ୍ଖାସୁର (ଦେଖ)—8. Name of a demon Śaṅkhāsura (See) ୯ । ଧର୍ମଶାସ୍ତ୍ରପ୍ରଣେତା ଋଷି-ବିଶେଷ—9 Name of a Hindu lawgiver. ୧୦ । ହସ୍ତିଦନ୍ତଦ୍ୱୟର ମଧ୍ୟଭାଗ ଅଂଶ—10. The part of the elephant's head between the two tusks. ୧୧ । ଗନ୍ଧଦ୍ରବ୍ୟ ବିଶେଷ—11. A fragrant substance. ୧୨ । ନଖୀନାମକ ଔଷଧ—12. Fasciolaria; Onyx Unguis; Odoratus; shell. [ ଦ୍ର—ଏହା ସମୁଦ୍ରଜାତ ଶମ୍ବୁକବିଶେଷର ମୁଖର ଖୋଳ । ଏହାକୁ ଉତ୍ତପ୍ତ କଲେ ଏଥିରୁ ସୁବାସ ବାହାରେ ଏବଂ ଏହାକୁ ତେଲରେ ଭିଜାଇଲେ ତେଲ ସୁଗନ୍ଧ ହୁଏ । ] ୧୩ । ରଣବାଦ୍ୟବିଶେଷ—13. Name of a martial musical instrument. ୧୪ । ଶଙ୍ଖ ବିଷ; ଶଙ୍ଖିଆ—14. White arsenic.

୧୫ । କାନମୁଣ୍ଡା (ହି. ଶ.)—15. The part of the face near the ears. ୧୬ । ଚରଣ ଚିହ୍ନ (ହି. ଶ.)—16. Footmarks. ୧୭ । ରାଜା ବିରାଟଙ୍କ ପୁତ୍ର (ହି. ଶ.)—17. A son of King Birāṭa. [ଦ୍ର—ବିରାଟଙ୍କ ଅନ୍ୟ ପୁତ୍ରର ନାମ ଉତ୍ତର ।] ୧୮ । ଚମ୍ପକପୁରୀର ରାଜା ହଂସଧ୍ୱଜଙ୍କ ପୁରୋହିତ ଓ ଲିଖିତଙ୍କ ଭାଇ (ହି. ଶବ୍ଦସାଗର)—18 Name of a priest of king Haṁsadhwaja. ୧୯ । ରାଜା ବିକ୍ରମାଦିତ୍ୟଙ୍କ ବଡ଼ଭାଇ (ଧାରାନଗର ରାଜା ଗନ୍ଧର୍ବସେନଙ୍କ ବଡ଼ପୁଅ; ଯାହାଙ୍କୁ ମାରି ସକାଇ ବିକ୍ରମାଦିତ୍ୟ ରାଜା ହୋଇଥିଲେ) (ହି.ଶ.)—19. Name of the elder brother of Bikramāditya. ୨୦ । ବର୍ଣ୍ଣବୃତ୍ତ ବିଶେଷ—20. Name of a metre. [ଦ୍ର—ଏଥିରେ ୨ ତଗଣ ଓ ୧୪ ରଗଣ ଥାଏ । ଏହା ଦଣ୍ଡକ ବୃତ୍ତର ଅନ୍ତର୍ଗତ—ହି. ଶ.) ।] ୨୧ । ବାୟୁ ଚଳିବା ଶବ୍ଦ (ହି. ଶ.)—21. The sound of blowing of wind.

ଦେ. ବି—ସଙ୍କ; ଛୋଟ ପୋଲ—Culvert.

**ଶଙ୍ଖକ**—ସଂ. ବି—(ଶଙ୍ଖ+ସ୍ୱାର୍ଥେ. କ)—୧। ଶଙ୍ଖ; କମ୍ବୁ—
Śaṅkhaka 1. Conch. ୨। ଶଙ୍ଖା; ଶଙ୍ଖ ନିର୍ମିତ ବଳୟ—
2. Bracelets made of conch shell.
୩। କପାଳ; ଲଲାଟ—3. Brow; forehead; temple.
୪। ଶିରୋରୋଗ ବିଶେଷ; କପାଳରେ ଭୀଷଣ ବେଦନା;
ଅଧାକପାଳ ବଥା—4. Violent pain in the
forehead; migrim. ୫। ମସ୍ତକ (ହି. ଶ.)—
5. Head. ୬। ସ୍ୱାର୍କଷ (ଦେଖ)—(ହି. ଶ)—
6. Copperas; green vitriol. ୭। କଙ୍କଣ
(ହି. ଶ.)—7. Wristlet. ୮। ଶଙ୍ଖନିଧି (ହି. ଶ)—
8. Name of a rare gem.

**ଶଙ୍ଖ କନ୍ଦ**—ସଂ. ବି—୧। ଶଙ୍ଖସାରୁ (ଦେଖ) (ହରେକୃଷ୍ଣ ଦ୍ରବ୍ୟଗୁଣ)—
Śaṅkha kanda 1. Śaṅkhasāṛu. (See) ୨। ଶଙ୍ଖାଳୁ
(ଦେଖ) (ହି. ଶ)—2. Śaṅkhāḷu: (See)

**ଶଙ୍ଖକାର(ରୀ)**—ସଂ. ବି—ଶଙ୍ଖାରି; ଯେ ଶଙ୍ଖର ଦ୍ରବ୍ୟମାନ ନିର୍ମାଣ
Śaṅkhakāra(rī) କରେ—A manufacturer of shell
bracelets and other articles. [ଦ୍ର—ପୁରାଣ
ଅନୁସାରେ ବିଶ୍ୱକର୍ମା ପିତା ଓ ଶୂଦ୍ରା ମାତାଠାରୁ ଏ ସଙ୍କର
ଜାତିର ଉତ୍ପତ୍ତି। (ହି. ଶ)।]

**ଶଙ୍ଖକୁସୁମା**—ସଂ. ବି—୧। ଶଙ୍ଖପୁଷ୍ପୀ (ଦେଖ) (ହି. ଶ)—1. Śaṅkha
Śaṅkhakusumā pushpī. (See) ୨। ଧଳା ଅପରାଜିତା
(ହି. ଶ)—2. The white flowered variety
of the clitoris creeper.

**ଶଙ୍ଖକୂଟ**—ସଂ. ବି (ବହୁବ୍ରୀହି)—୧। ନାଗ ବିଶେଷ (ହି. ଶ)—
Śaṅkhakūṭa 1. Name of a Nāga. ୨। ପୌରାଣିକ
ପର୍ବତ ବିଶେଷ—2. Name of a mythological
mountain.

**ଶଙ୍ଖ କ୍ଷୀର**—ସଂ. ବି (୬ଷ୍ଠୀ ତତ୍)—(ଶଙ୍ଖର ଦୁଗ୍ଧପରି) ଅସମ୍ଭବ ବିଷୟ
Śaṅkha kshīra (ହି. ଶ)—An impossibility; an
(ଶଙ୍ଖ ଦୁଗ୍ଧ—ଅନ୍ୟରୂପ) improbable thing.

**ଶଙ୍ଖ କ୍ଷେତ୍ର**—ସଂ. ବି—ଶ୍ରୀକ୍ଷେତ୍ର; ପୁରୀ—Puri town. [ଦ୍ର—ଶଙ୍ଖ
Śaṅkha kshetra ଯେପରି ଅଣୁଅଛି ରଚ୍ଛିରେଖା ଏ ବାରତା
ସୁଖପ୍ରଦ। ରାଧାନାଥ. ପାର୍ବତୀ।] [ଦ୍ର—ଉତ୍କଳଖଣ୍ଡ
ନାମକ ଗ୍ରନ୍ଥରେ ପୁରୁଷୋତ୍ତମ ଶଙ୍ଖକ୍ଷେତ୍ରରୂପେ ବର୍ଣ୍ଣିତ
ହୋଇଅଛି।]

**ଶଙ୍ଖ ଚକ୍ର ଗଦା ପଦ୍ମଧାରୀ**—ସଂ. ବି—ଶୁରବାହୁରେ ଗୁରଗୋଷ୍ଠ
Śaṅkha chakra gadā padmadhārī ଚତୁର୍ଦ୍ଧାରୀ ବିଷ୍ଣୁ—
Bishṇu. [ଦ୍ର—ନାରାୟଣଙ୍କ ଚତୁର୍ଭୁଜ ମୂର୍ତ୍ତି। ଏହାଙ୍କ
ଶଙ୍ଖର ନାମ ପାଞ୍ଚଜନ୍ୟ। ଚକ୍ରର ନାମ ସୁଦର୍ଶନ। ଗଦାର
ନାମ କୌମୋଦକୀ ଓ ପଦ୍ମର ନାମ ପଦ୍ମପୁଷ୍ପ କିମ୍ବା ପଦ୍ମ-
ନିଧି।]

**ଶଙ୍ଖଚରୀ(ର୍ଚ୍ଚୀ)**—ସଂ. ବି—(ଶଙ୍ଖ=ଲଲାଟ+ଚର ଧାତୁ+କର୍ତ୍ତୃ. ଅ+ଈ;
Śaṅkhacharī(rchchī) ଚର୍ଚ୍ଚ ଧାତୁ+କର୍ତ୍ତୃ. ଈ)—୧।
ଲଲାଟିକା(ଦେଖ)—1 Lalāṭikā (See) ୨। ଭ୍ରୂ,ଲଲାଟ
(ହି. ଶ)—2 Brow. ୩। ଚନ୍ଦନଦ୍ୱାରା ଲଲାଟରେ ଅଙ୍କିତ
ଚିହ୍ନ—3. A mark on the forehead made
with sandal (Apte).

**ଶଙ୍ଖଚିଲ**—ଦେ. ବି.—(ସଂ. ଶଙ୍ଖର ଚିଲ୍ଲ)—ପ୍ରସିଦ୍ଧ ବର୍ଣ୍ଣରେ ହବାଡର
Śaṅkhachila ମତ୍ସ୍ୟପ୍ରିୟ ପକ୍ଷୀବିଶେଷ। [ଦ୍ର—ଏହାର ମୁଣ୍ଡ,
শঙ্খচিল सौमेर चील ଗଳା ଓ ପେଟ ଶଙ୍ଖ ପରି ଧଳା। ଏହା ପ୍ରାୟ
ଏକ ହାତ ଦୀର୍ଘ ଏବଂ ଏହାର ପିଠି ଓ ମୁଣ୍ଡ ଦେଖିବାକୁ
ନାଲି। ଏହାର ଚଞ୍ଚୁ ବଡ଼ ଓ ଚେପ୍ଟା ଏବଂ ଗୋଡ଼ ଛୋଟ
ଓ ନଖ ବଙ୍କା] The Brahmini kite;
Haliastus Indus.

[ଦ୍ର—ତନ୍ତ୍ରରେ ଏହି ପକ୍ଷୀ ଦୁର୍ଗାଙ୍କ ଅଂଶ ବୋଲି
ବର୍ଣ୍ଣିତ ହୋଇଅଛି। ଦେବୀ ପୁରାଣରେ ଏହାକୁ ଶଙ୍କରପ୍ରିୟା
ନାମରେ ଅଭିହିତ କରାଯାଇଅଛି। କୌଣସି ଉଦ୍ଦେଶ୍ୟରେ
ଯାତ୍ରା ବା ଅନୁକୂଳ କରିବା ସମୟରେ ହିନ୍ଦୁମାନେ ଶଙ୍ଖଚିଲ
ଉଡ଼ିବା ଦେଖିଲେ ତାହାକୁ ଶୁଭସୂଚକ ଶକୁନ ବୋଲି ଜ୍ଞାନ
କରନ୍ତି। ପୋଖରୀରେ ଲୋକେ ମାଛ ଧରିଲେ ଉପରେ
ଶଙ୍ଖଚିଲମାନେ ଉଡ଼ନ୍ତି ଓ ପାଣିରୁ ନଖଦ୍ୱାରା ଛୋଟ ଛୋଟ
ମାଛ ଝାମ୍ପି ନେଇ ଖାଆନ୍ତି। ଏମାନଙ୍କର ବୋବାଳି
ମନୁଷ୍ୟର ବିକଳ କାନ୍ଦଣା ପରି ଶୁଣାଯାଏ।]

**ଶଙ୍ଖଚୂଡ଼**—ଦେ. ବି.—(ସଂ ଶଙ୍ଖଚୂଡ)—୧। ଅଜଗର ସର୍ପ 1. A
Śaṅkhachuṛda species of asp; Naia Bungarus.
শঙ্খচূড় शंखचूड [ଦ୍ର—ଶଙ୍ଖଚୂଡ଼ ଶୁକ୍ଳ ଫଣା ବିଶିଷ୍ଟ. ନାଗ-
ଜାତୀୟ ବିଷଧର ସର୍ପ ବିଶେଷ। ଏହାର ଲମ୍ବ ୮ ହାତଠାରୁ
୧୦ ହାତ ପର୍ଯ୍ୟନ୍ତ ହେବାର ଦେଖାଯାଏ; ଫଣା ନାଗ
ସାପର ଫଣାଠାରୁ ଟିକିଏ ଛୋଟ।] ୨। ଏକ ପ୍ରକାର
ସାମୁଦ୍ରିକ ସାପ, ଶୁକ୍ଳ ଫଣା ବିଶିଷ୍ଟ ସମୁଦ୍ରଜାତ ସର୍ପ ବିଶେଷ-
2. A species of sea snakes.

**ଶଙ୍ଖ ଚୁଡ଼ି**—ଦେ. ବି.—ଶଙ୍ଖ ନିର୍ମିତ ହସ୍ତ ବଳୟ—Bracelet
Śankha churḍi or wristlet made of
শাঁখা शंखकी चूडी conch.

**ଶଙ୍ଖ ଚୂନ**—ଦେ. ବି.—(ସଂ. ଶଙ୍ଖଚୂର୍ଣ୍ଣ)—ଯେଉଁ ଚୂନ ଶଙ୍ଖ ପୋଡ଼ା
Śaṅkha chuna ହେବାଦ୍ୱାରା ପ୍ରସ୍ତୁତ ହୁଏ—Quicklime
শাঁখের চুন शङ्ख चून produced by burning conches.

**ଶଙ୍ଖଚୁନି**—ପ୍ରଦେ. (ବାଲେଶ୍ୱର) ବି—ଶଙ୍ଖଚିଲ (ଦେଖ)
Śaṅkhachuni Śaṅkhachila (See)

**ଶଙ୍ଖଚୂଡ଼**—ସଂ. ବି. ୧। ଶଙ୍ଖଚୂଡ଼ (ଦେଖ)—1 Śaṅkhachuṛda
Śaṅkhachūṛda (See)—୨। ଅସୁର ବିଶେଷ—2 Name
of a demon. [ଦ୍ର—ଏହାଙ୍କ ପତ୍ନୀଙ୍କ ନାମ ତୁଳସୀ।
କଠୋର ତପସ୍ୟା ଦ୍ୱାରା ଏ ବିଷ୍ଣୁଙ୍କୁ ସନ୍ତୁଷ୍ଟ କରାଇ ତୁଳସୀ
ନାମ୍ନୀ ପରମ ରୂପବତୀ ସାଧ୍ୱୀ ପତ୍ନୀ ପ୍ରାପ୍ତ ହୋଇଥିଲେ। ବ୍ରହ୍ମ-
ବୈବର୍ତ୍ତ ପୁରାଣ ମତରେ ବହୁକାଳ ରାଜତ୍ୱ କରିବାପରେ
ଦେବତାମାନଙ୍କ ସଙ୍ଗେ ଏହାଙ୍କର ବିବାଦ ଉପସ୍ଥିତ ହେଲା
ଏବଂ ଦେବତାମାନେ ତାଙ୍କ ସହିତ ଯୁଦ୍ଧରେ ପରାଜିତ

ହେଲେ । ଶେଷରେ ମହାଦେବ ଏହାଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ । ଏହି ଯୁଦ୍ଧ ଲାଗିଥିଲାବେଳେ ସାଧ୍ୱୀ ତୁଳସୀ ଏଣେ ପତିଙ୍କ ମଙ୍ଗଳ କାମନାକରି ବିଷ୍ଣୁଙ୍କ ଆରାଧନା କରିବାରୁ ଶଙ୍ଖଚୂଡ଼ଙ୍କୁ ମହାଦେବ ବଧ କରିପାରିଲେ ନାହିଁ । ପରେ ଦେବତାମାନଙ୍କ ସକରୁଣ ଅନୁରୋଧରେ ନିଜେ ବିଷ୍ଣୁ କୂଟକରି ଶଙ୍ଖଚୂଡ଼ଙ୍କ ରୂପ ଧାରଣ କରି ତପୋନିଷ୍ଠା ତୁଳସୀଙ୍କର ତପସ୍ୟାଭଙ୍ଗ କଲେ ଓ ତହିଁ ଫଳରେ ଶଙ୍ଖଚୂଡ଼ ରଣକ୍ଷେତ୍ରରେ ଶିବଙ୍କ ଦ୍ୱାରା ନିହତ ହେଲେ । ତୁଳସୀ ଏହା ଜାଣିପାରି ବିଷ୍ଣୁଙ୍କୁ ଶାପ ଦେବାକୁ ଉଦ୍ୟତା ହୁଅନ୍ତେ ବିଷ୍ଣୁ ତାଙ୍କୁ ନାନା ପ୍ରବୋଧ ବାକ୍ୟରେ ସାନ୍ତ୍ୱନା ଦେଇ ପତିଙ୍କ ସହିତ ସହମୃତା ହେବାକୁ ପ୍ରବର୍ତ୍ତାଇଲେ ଓ ସାଧ୍ୱୀ ପରଜନ୍ମରେ ତୁଳସୀ ବୃକ୍ଷ ରୂପରେ ପୃଥିବୀରେ ଜନ୍ମ ଲଭି ତପସ୍ୟାଚରଣ ବଳରେ ବିଷ୍ଣୁଙ୍କ ଶିରରେ ସ୍ଥାନ ପାଇବେ ବୋଲି ବର ଦେଲେ । ଏହି ଶଙ୍ଖଚୂଡ଼ ଅସୁରର ଅନ୍ୟ ନାମ ଜଳନ୍ଧର । ପୁରାଣାନ୍ତର ମତରେ କୃଷ୍ଣଙ୍କୁ ମାରିବାପାଇଁ କଂସ ଏହାଙ୍କୁ ପଠାଇଥିଲା ଏବଂ ଏହାକୁ କୃଷ୍ଣ ବଧ କଲେ । ସୁଦାମା ନାମକ ଗୋପ ରାଧାଙ୍କ ଶାପରେ ଏହି ଅସୁର ହୋଇଥିଲା । (ହି. ଶ)] ୩ । (ନାମ) କୁବେରଙ୍କ ଦୂତ ଓ ସଖା (ହି.ଶ) 3 Name of a messenger and friend of Kubera. ୪ । (ନାମ) ଯକ୍ଷ ବିଶେଷ —(ହି. ଶ) 4. Name of a Jaksha ୫ । (ନାମ) ପୁରାଣାନୁସାରେ ଦ୍ୱାରକାନିବାସୀ ଏକ ଗୃହସ୍ଥ – 5 Name of an inhabitant of Dwārakā [ଦ୍ର—ଏହାଙ୍କ ପୁତ୍ରମାନେ ଜନ୍ମ ହେବା ପରେ ଅଦୃଶ୍ୟ ହୋଇ ଯାଉଥିଲେ—ହି.ଶ] ୬ । ତୀର୍ଥ-ସ୍ଥାନ ବିଶେଷ (ହି.ଶ)—6.Name of a holy place

**ଶଙ୍ଖ ଚୂର୍ଣ୍ଣ**—ସ. ବି—ଶଙ୍ଖକୁ ପୋଡ଼ି ପ୍ରସ୍ତୁତ କରାଯିବା ଚୂନ [ଦ୍ର— Sankha chūrnna ଏହା ଉଷ୍ଣ, ଲବଣ ରସ ଓ କୃମି, ଶୂଳ, ପ୍ଳୀହା ଆଦି ରୋଗରେ ଉପକାରକ] —Quicklime got by burning conch.

**ଶଙ୍ଖଚୂଳ**—ଦେ. ବି. (ସ. ଶଙ୍ଖଚୂଡ଼) —ଏକ ଜାତୀୟ ସାପ—Nam Sankhachūla of a class of cobra

**ଶଙ୍ଖଚୂର୍ଣ୍ଣୀ**—ସ. ବି. ସ୍ତ୍ରୀ—ଉପଦେବତା ବିଶେଷ; ଶଙ୍ଖ ନୀ, ଡାକିନୀ ପରି Sankhachūrnni ଦୁଷ୍ଟ ଦେବତା—A demi-goddess ଶାଁଖଚୁନ୍ନୀ said to be wicked. [ଦ୍ର—ଏ ଉପଦେବତା ସ୍ତ୍ରୀ- ଶାଁଖିନୀ ଜାତି; କେହି ରାତିରେ ବାହାରେ ପିଷ୍ଟକାଦି ଲୋଭନୀୟ ପଦାର୍ଥ ନେଇ କରି ଗଲେ ଏ ତାହାକୁ ପଥଭ୍ରାନ୍ତ କରି ଭୁଆଁ ବୁଲାଇ, ସେ କ୍ଳାନ୍ତ ହେଲେ ତାଠାରୁ ସେଖାଦ୍ୟ ଛଡ଼ାଇ ନିଏ ଓ ଶେଷରେ ପଥିକର ରକ୍ତ ଶୋଷି ପ୍ରାଣ ନିଏ । ଯୋଗେଶ୍ୱର ।]

**ଶଙ୍ଖଜ**—ସ. ବିଣ—ଶଙ୍ଖରୁ ଜାତ—Born or produced from Sankhaja conch. ସ. ବି—କପୋତ ଡିମ୍ବପରି ବୃହଦାକାର ମୁକ୍ତା, ଯାହା ଶଙ୍ଖ ମଧ୍ୟରୁ ମିଳେ—A large pearl shaped like a pigeon's egg got from conch shell.

**ଶଙ୍ଖଜୀରା**—ସ. ବି (ଭୁଲ. ଫା. ସଙ୍ଗ୍‌ଜରାହତ୍)—ଏକ ପ୍ରକାର ଧଳା ଚିକ୍କଣ Sankhajirā ପଥର, ଯହିଁର ଚୂର୍ଣ୍ଣ ଘାଆ ପୂରିବା ପାଇଁ ଔଷଧ ଶଂଖଜୀରା, **संगजराहत**, ରୂପେ ବ୍ୟବହୃତ ହୁଏ—A kind of white smooth stone, the powder of which is used for healing sores; pumice stone. [ଦ୍ର– ହିନ୍ଦୀ ଶବ୍ଦସାଗର ଲେଖିଅଛନ୍ତି ଯେ ଏ ଶବ୍ଦ ଫା. ସଙ୍ଗ୍‌ଜରାହତ୍‌ର ସଂସ୍କୃତରୂପ । ଏଥିରେ ମୂର୍ତ୍ତି ଆଦି ତିଆରି ହୁଏ । ଏହା ପାଣିରେ ବଢ଼ୁଥିଲେ ଫୁଲିଯାଏ ଓ ଶୁଖିଲେ କଠିନ ହୁଏ । ଏହା ମୂର୍ତ୍ତି ଆଦି ତିଆରି କରିବାରେ ବ୍ୟବହୃତ ହୁଏ । ହି. ଶ ]

**ଶଙ୍ଖଣ**—ସଂ. ବି (ନାମ)—ପ୍ରବୃଦ୍ଧ ରାକ୍ଷସର ପୁତ୍ର (ହି. ଶ)— Sankhana Name of the son of Prabruddha demon.

**ଶଙ୍ଖତୀର୍ଥ**—ସଂ. ବି—ଶଙ୍ଖକ୍ଷେତ୍ର (ଉତ୍କଳ ଖଣ୍ଡ ଗ୍ରନ୍ଥ ଦ୍ରଷ୍ଟବ୍ୟ)— Sankha tirtha Sankha kshetra (See) (See Utkala khanda ).

**ଶଙ୍ଖ ଦାରକ**—ସଂ. ବି—ଶଙ୍ଖକାର (ଦେଖ) (ହି. ଶ) Sankha dāraka Sankhakāra (See)

**ଶଙ୍ଖଦ୍ରାବ**—ସଂ. ବି (ବୈଦ୍ୟକ)—ଏକପ୍ରକାର ଅର୍କ, ଯହିଁରେ ଶଙ୍ଖ Sankhadrāba ମିଳେଇ ଯାଏ (ହି. ଶ)—A kind of (ଶଙ୍ଖଦ୍ରାବକ—ଅନ୍ୟରୂପ) acid which dissolves conch shell. [ଦ୍ର—ଅଧସେର ସ୍ୱାରକଶ, ଏକସେର ଲୁଣ ଫିଟିକିରି, ଏକସେର ସୈନ୍ଧବଲୁଣ, ଏକସେର ସୋରାକୁ ଚୂର୍ଣ୍ଣ କରି କୁଟି କରି ଏଥିରୁ ରସ ବାହାର କରାଯାଏ । ଏଥିର ସେବନରେ ଶୂଳ, ଗୁଳ୍ମ, ଅର୍ଶ, ପ୍ଳୀହା, ଉଦରରୋଗ, ଅଗ୍ନିମାନ୍ଦ୍ୟ ଓ ବାତରୋଗ ଦୂର ହୁଏ । ଏହାକୁ କାଚ ବା ଚିନାମାଟି ଶିଶିରେ ରଖିବାକୁ ହୁଏ । ଏହାକୁ ସେବନ କରିବାବେଳେ ମୁହଁରେ ବାଜି ନ ଲାଗିବା ଦରକାର । ନଚେତ୍ ଜିଭର ଓ ଦାନ୍ତର ହାନି ହୁଏ—ହି.ଶ ।] ସ. ବିଣ—ଯହିଁରେ ଶଙ୍ଖ ମିଳାଇଯାଏ (ହି. ଶ) (କୌଣସି ରସ ବା ସାର)—(a juice or liquid) Able to dissolve conch shell.

**ଶଙ୍ଖଦ୍ରାବୀ**—ସଂ. ବି (ବୈଦ୍ୟକ)—ଅମ୍ଳ ବେତସ ନାମକ ଏକପ୍ରକାର Sankhadrābi ଖଟା ଶାଗ; ପାଳଙ୍ଗଜାତୀୟ ଶାକ ବିଶେଷ— The common sorrel (a potherb); country sorrel; Rumex Viesicarius.

**ଶଙ୍ଖଦ୍ୱୀପ**—ସଂ. ବି—ପୁରାଣୋକ୍ତ ଦ୍ୱୀପ ବିଶେଷ (ହି. ଶ) Sankhadwipa Name of a mythological island.

**ଶଙ୍ଖଧର**—ସଂ. ବି. ପୁଂ (ଶଙ୍ଖ+ଧୃ ଧାତୁ+କର୍ତ୍ତୃ. ଅ)—ବିଷ୍ଣୁ, Sankhadhara (ହି. ଶ)—Bishnu.

**ଶଙ୍ଖଧରା**— ସଂ. ବି (ବୈଦ୍ୟକ)— ହିଲମୋଚିକା; ହିଡ଼ମିଚ୍ଚ ଶାଗ—
Śaṅkhadharā A sort of vegetable whose leaves are cooked and eaten; Exhydra Hingcha.

**ଶଙ୍ଖ ଧ୍ୱନି**—ସ. ବି.—(୬ଷ୍ଠୀ ତତ୍) ୧। ଶଙ୍ଖ ଫୁଙ୍କିଲେ ତହିଁରୁ ଉତ୍ପନ୍ନ
Śankha dhwani ଶବ୍ଦ—1. The sound produced by blowing a conch. ୨। ଭୟ ଭୀତ ବା ହତାଶବ୍ୟକ୍ତିର ଉଚ୍ଚାରିତ ଶବ୍ଦ— 2. A cry of alarm or despair (Apte).

**ଶଙ୍ଖଧ୍ମା(ଧ୍ମ)** ସ. ବି.—( ଶଙ୍ଖ+ଧ୍ମା ଧାତୁ+କର୍ତ୍ତୃ କ୍ୱିପ୍ )—ଶଙ୍ଖବାଦକ;
Śaṅkhadhmā(dhma) ଶଙ୍ଖୁଆ— One who blows through a conch (as a horn); a conch blower (Apte)

**ଶଙ୍ଖନ**—ସ. ବି. ପୁଂ ୧। (ନାମ)— ଅଯୋଧ୍ୟାର ରାଜା କଲ୍ମାଷପାଦଙ୍କ
Śaṅkhana ଏକପୁତ୍ର—(ହି ଶ.)—1. Name of a son of king Kaḷmāshapada ୨। (ନାମ)— ବଜ୍ରନାଭର ପୁତ୍ର (ହି. ଶ )—2 Name of the son of Bajrānābha.

**ଶଙ୍ଖ ନଖ (ଖୀ, ଖା)** ସ. ବି.—୧। କ୍ଷୁଦ୍ର ଶଙ୍ଖ—1. Tiny conch
Śaṅkha nakha( khi, khā ) shell. ୨। ଗେଣ୍ଡା— 2. Snail. ୩। ନଖୀ ନାମକ ଗନ୍ଧଦ୍ରବ୍ୟ—3. Shell or onyx

**ଶଙ୍ଖନାଭି**—ସ.ବି.—୧। ଏକ ପ୍ରକାର ଶଙ୍ଖ (ହି. ଶ.)—A kind of
Śaṅkhanābhi conch shell ୨। ଏକ ପ୍ରକାର ଗନ୍ଧଦ୍ରବ୍ୟ (ହି. ଶ)—A kind of scent.

**ଶଙ୍ଖନାଭି ମଣ୍ଡଳ**—ଦେ. ବି.—ପୁରୀ ଜଗନ୍ନାଥଙ୍କର ରତ୍ନ ସିଂହାସନ—
Śaṅkha nābhi maṇḍaḷa The raised platform or pulpit on which the idols Jagannātha, Baḷabhadra and Subhadrā are set.

**ଶଙ୍ଖନାମ୍ନୀ**—ସଂ. ବି. ସ୍ତ୍ରୀ.—ଶଙ୍ଖପୁଷ୍ପୀ (ଦେଖ) (ହି. ଶ.) —
Śaṅkhanāmnī Śaṅkhapushpī (See)

**ଶଙ୍ଖ ନିଧି**—ସଂ. ବି.—କୁବେରଙ୍କ ନିଧି ବିଶେଷ (ଏହା ସମୁଦ୍ରରୁ ଜାତ)
Śaṅkha nidhi Name of a gem said to be in the possession of Kubera, the God of riches. [ଦ୍ର— ମାର୍କଣ୍ଡେୟ ପୁରାଣ ୬୮ ଅଧ୍ୟାୟରେ ଲେଖାଅଛି ଯେ, ୮ ପ୍ରକାର ନିଧି ମଧ୍ୟରେ ଶଙ୍ଖ ଅଷ୍ଟମ ନିଧି । ଏହା ରଜଃ ଓ ତମୋଗୁଣ ବିଶିଷ୍ଟ । ଏହାର ଅଧୀଶ୍ୱର ରଜଃ ଓ ତମୋଗୁଣ ବିଶିଷ୍ଟ ହୁଏ । ସେ ସର୍ବଦା କେବଳ ଆତ୍ମ ପରିପୋଷଣ-ରତ; ଏ ମନ୍ତ୍ରୀ, ସୁହୃଦ୍, ଭାର୍ଯ୍ୟା, ଭ୍ରାତା, ପୁତ୍ର, ପୁତ୍ରବଧୂ ଆଦି ସ୍ୱଜନଙ୍କ ଅନ୍ନବସ୍ତ୍ରାଦି ପ୍ରତି କିଛି ମାତ୍ର ଦୃଷ୍ଟିପାତ କରେ ନାହିଁ, କେବଳ ଆତ୍ମପରିତୃପ୍ତି ପାଇଁ ବ୍ୟସ୍ତ ଥାଏ ।— ବିଶ୍ୱକୋଷ ]

**ଶଙ୍ଖନିଧି ପଦ୍ମନିଧି**—ସ. ବି.—(ସଦ୍ଗର)— କୁବେରଙ୍କର ଦୁଇଟି ନିଧି—
Śaṅkha nidhi padma nidhi Name of two rare gems of God Kubera. [ଉ—ଶଙ୍ଖନିଧି ଉପ ପଦ୍ମନିଧି ନିଧି ଦୁଇ, କୁବେରଙ୍କ ସେବା ସେ କରଥାନ୍ତି ଭଲେ । କୃଷ୍ଣସିଂହ. ମହାଭାରତ ସଭା ।] [ଦ୍ର— ଲୋକଙ୍କର ବିଶ୍ୱାସ ଯେ, ଭାଗ୍ୟକ୍ରମେ ଯେଉଁ ବ୍ୟକ୍ତିଙ୍କ ହାତରେ ଶଙ୍ଖନିଧିର ଓ ପଦ୍ମନିଧିର ଚିହ୍ନ ଥାଏ, ସେ ଯେଉଁ ବସ୍ତୁକୁ ଛୁଏଁ, ତାହା ସୁନା ପାଲଟି ଯାଏ, ଓ ସେ ଲୋକର ଅତଳାତଳ ସମ୍ପତ୍ତି ମାଡ଼ି ଯାଏ । ତାହାର ଭଣ୍ଡାରରୁ ଯେତେ ବ୍ୟୟ ହେଲେ ସୁଦ୍ଧା ତାର ଭଣ୍ଡାର ଅସରନ୍ତି ହୋଇ ରହେ । ଏଥିପାଇଁ ଖୁବ୍ ଧନୀବ୍ୟକ୍ତିଙ୍କୁ ଲୋକେ କହୁଥାନ୍ତି—ତା ହାତରେ ଶଙ୍ଖନିଧି ପଦ୍ମନିଧି ଅଛି ।]

**ଶଙ୍ଖ ପାଣି**—ସଂ. ବି—(ବହୁବ୍ରୀହି)— ବିଷ୍ଣୁ—
Śaṅkha pāṇi Bishṇu.

**ଶଙ୍ଖ ପାଳ**—ସଂ. ବି—୧। ସୂର୍ଯ୍ୟ—1. The sun (Apte).
Śaṅkha pāḷa ୨। (ଭୁଲ. ଫା. ଶକ୍ର ପାରା)— ଏକପ୍ରକାର ମିଠାଇ ବା ଗଜା (ହି. ଶ.)—2. A kind of sweet-meat. [ଦ୍ର—ଏହା ଶଙ୍ଖକୋଣିଆ ହୋଇ ଘିଅରେ ଛଣା ହୋଇ ଖିଆର ହୁଏ । ଏହା ମିଠା ଓ ନିମକି, ଦୁଇ ପ୍ରକାର ହୁଏ । ମଇଦାରେ ଘିଅ ମିଶାଇ ପାଣିରେ ବା ଦୁଧରେ ଚକଟି ଏହାକୁ ମୋଟା ରୁଟି ପରି ବେଲି ଛୁରୀଦ୍ୱାରା ଶଙ୍ଖ କୋଣିଆ କରି କଟାଯାଏ । ନିମକି କରିବାକୁ ହେଲେ ମଇଦା ସଙ୍ଗେ ଲୁଣ ଓ ଜୁଆଣି ଆଦି ମିଶାଇ ଚକଟା ଯାଏ । ମିଠା କରିବାକୁ ହେଲେ ଘିଅରେ ଛାଣି ଶିରାରେ ପାଗିବାକୁ ହୁଏ । (ହି. ଶ.) ।] ୩। ଏକପ୍ରକାର ସାପ (ହି.ଶ.) 3. A kind of serpent. ୪। ଏକ ନାଗର ନାମ (ହି. ଶ.)—4. Name of a Nāga. ୫। କର୍ଦ୍ଦମ ଋଷିଙ୍କ ପୁତ୍ର—5. Name of a son of sage Karddama.

**ଶଙ୍ଖ ପାଷାଣ**—ସଂ. ବି—ଶଙ୍ଖିଆ (ହି. ଶ.)—
Śaṅkha pāshāṇa Arsenic.

**ଶଙ୍ଖ ପୁର**—ଦେ ବି.—(ପିଠାରେ ବ୍ୟବହୃତ) ଯେଉଁ ନଡ଼ିଆକୋରାର
Śaṅkha pura ପୂରରେ ଅଳ୍ପ ଗୁଡ଼ ଗୋଳିଆ ହୋଇଥିବାରୁ ତାହା ( ଶଙ୍ଖପୁର ) ଧଳା ଦିଶେ—Scraped cacoanut mixed with very little sugar for being put inside sandwich cakes.

**ଶଙ୍ଖପୁଷ୍ପୀ(ଷ୍ପା)**—ସଂ. ବି—୧। ଏକପ୍ରକାର ବର୍ଷାୟୁଃ କ୍ଷୁଦ୍ର ଶାକ; ଶ୍ୱେତ
Śaṅkha pushpī(shpā) ବନବନା (ଫରେଲୁଷ୍ଟ. ଦ୍ରବ୍ୟଗୁଣ)-
ସଂ. ନାମ—ଶଙ୍ଖାହ୍ୱା, ଶଙ୍ଖିନୀ, ମାଙ୍ଗଲ୍ୟକୁସୁମା, କେଶିନୀ ଦନ୍ତୋତ୍ପଳ, ମେଧ୍ୟା, ଅଧଃପୁଷ୍ପୀ, ଅମରପୁଷ୍ପୀ, ସଙ୍ଖୀ, ଶଙ୍ଖାହୁଲୀ
ଡାନକୁନି, शंखाहुली
शंखाहोली, কোড়িয়াল
[ଶଙ୍ଖପୁଷ୍ପିକା—ଅନ୍ୟରୂପ]
1. Canscora Decussata; Evalvulus Erecta. [ଦ୍ର- ଏହା ତିକ୍ତକଷାୟ ରସ ବିଶିଷ୍ଟ ଦେଖିବାକୁ ସପୁଣ ଗଛ ପରି । ଏହାର ମୂଳ ଚତୁଷ୍କୋଣ, ପତ୍ର ଅଗ୍ରମୁଖୀ; ଫୁଲ ଅଙ୍କଳ ଶ୍ୱେତ ଓ ସୁଶ୍ୱେତ ଦଳ-ବିଶିଷ୍ଟ; ଏହାର

ପାଖୁଡ଼ା ଗୁଚ୍ଛକ ଏକତ୍ର ଯୁକ୍ତ । ଫଳ ଦ୍ୱିକୋଷବିଶିଷ୍ଟ ଏବ ବୀଜ ବହୁକୋଣବିଶିଷ୍ଟ । ଶୀତକାଳରେ ସାଧାରଣତଃ ଏହି ଫଳ ପାଚିବା ଦେଖାଯାଏ । ପାଣି ଜୁଳିଆ କ୍ଷେତରେ ଏହି ଗଛ ହୁଏନି । ଏହା ଅଗ୍ନିବର୍ଦ୍ଧକ, ସାରକ, ବଳକାରକ, କାନ୍ତି-ଜନକ, ମେଧା ଓ ସ୍ମୃତିକାରକ, ରସାୟନ, ସ୍ୱର ପରିଷ୍କାରକ ଓ କୃମି କୁଷ୍ଠାଦିନାଶକ, କ୍ଲେଦୋଷ, ବିଷ-ଦୋଷ, ଅପସ୍ମାର ଓ ଭୂତାବେଶନାଶକ ଏବଂ ଜ୍ୱରନାଶକ ।] ୨ । ଶ୍ୱେତ ଅପରାଜିତା (ହି· ଶ.)—2. The white flowering clitoris creeper. ୩ । ଯୂଥିକା (ହି. ଶ )—3. Jasminum Auriculatum (plant.)

**ଶଙ୍ଖ ପ୍ରସ୍ଥ**—ସଂ. ବି.—ଚନ୍ଦ୍ରଙ୍କ ମଧ୍ୟରେ ଦେଖାଯିବା ଚିହ୍ନ ବା କଳଙ୍କ—
Śankha prastha The marks or spots noticed inside the disc of the moon.

**ଶଙ୍ଖ ଫୁଙ୍କିବା**—ଦେ. କି—୧ । ଶଙ୍ଖର ପଛ ଛିଦ୍ରକୁ ମୁଖଦ୍ୱାରା ଫୁଙ୍କିବା—
Śankha phunkibā 1. To blow a conch shell.
[ଶଙ୍ଖ ବଜା(ଜେ)ଇବା—ଅନ୍ୟରୂପ) ୨ । (ଲକ୍ଷଣାର୍ଥ) ବଡ଼ପାଟି କରି କନ୍ଦୁଷଣ ସ୍ୱର କରି କାନ୍ଦିବା—2. To weep with a loud and continuous tune.
୩ । (ଲକ୍ଷଣାର୍ଥ)--ବିବାହାଦି ମଙ୍ଗଳ ଉତ୍ସବରେ ଶଙ୍ଖ ବଜାଇବା ଶଙ୍ଖୁଆ ବାଜିବା ପରି ଉତ୍ସବର ଆମୋଦ ଅନ୍ୟମାନେ ଭୋଗ କରିବା ଅବସ୍ଥାରେ ଅପେ ନିଷ୍ଫଳ ହୋଇ ଫେରିବା—( figurative ) To return without gain from a place where others reap fruit.

**ଶଙ୍ଖ ବଣିକ୍**— ସ. ବି.—ଶଙ୍ଖାରି (ଦେଖ)
Śankha banik Śankhāri (See)

**ଶଙ୍ଖ (ଙ୍ଖା)ବର**—ପ୍ର ଦେ (ଗଡ଼ଜାତ) ବି—ବଡ଼ ବର ଗଛ
Śankha (ṅkhā)bara Big banian tree

**ଶଙ୍ଖବଳୟ**—ସ. ବି—ଶଙ୍ଖନିର୍ମିତ ହାତଖଡ଼ୁ—A bracelet or
Śankha balaya wristlet made of conch.

**ଶଙ୍ଖ ବ(ପ)ଲିତା**—ଦେ.ବି--ଅଗ୍ନେୟଗିରିରୁ ଉତ୍ପନ୍ନ ଏକପ୍ରକାର ଅଦାହ୍ୟ
Śankha ba(pa)litā ତନ୍ତୁମୟ ପଦାର୍ଥ—Asbestos.
আসবেষ্টস শাঁখপলীতা [ ଦ୍ର—ଏହା ଏକପ୍ରକାର ତନ୍ତୁମୟ ଖଣିଜ ବସ୍ତୁ; ଅଗ୍ନେୟଗିରିରୁ ବାହାରେ । ଏଥିର ରଙ୍ଗ ଧଳା ଓ ଶାଗୁଆ; ଏହା ରେଶମ ପରି ଚକଚକିଆ, ଏହା ଜଳିବ ନିଆଁ ଧରେ ନାହିଁ । ଏଥିପାଇଁ ଗାସ୍‌ର ଭାଟିରେ ଏହା ଲଗାଯାଏ । ଏହା ମଧ୍ୟ ଉତ୍ତାପ ଓ ବିଦ୍ୟୁତର ଗୃହକ (conductor)ନୁହେ । ଏହା ବନ୍ଧନ ତାରରେ ଗୁଡ଼ାଯାଏ । ନିଆଁ ଲାଗି ନ ଯିବା ପାଇଁ ଏଥିରେ ଏକ ପ୍ରକାର ଲୁଗା ତିଆରି କରାଯାଏ । କଳମାନଙ୍କ ଜୋଡ଼ ଜାଗାରେ ଓ ଅଗ୍ନିର ଅଭେଦ୍ୟ (fire proof) ଲୁହା ସିନ୍ଦୁକମାନଙ୍କ ବାକ୍ସରେ ଏହା ବ୍ୟବହୃତ ହୁଏ । ଏହା କର୍ସିକା ଦ୍ୱୀପ, ସ୍କଟଲଣ୍ଡ, କାନାଡା, ଇଟାଲି ଆଦି ଦେଶରେ ମିଳେ—ବିଶ୍ୱକୋଷ]

**ଶଙ୍ଖ ବଟୀ**—ସଂ. ବି —ସଂଗ୍ରହଣୀ, ଶୂଳ, ବାୟୁରୋଗ ଆଦିର ଆରୋଗ୍ୟାର୍ଥ
Śankha baṭī ବ୍ୟବହୃତ ଆୟୁର୍ବେଦିକ ବଟିକା—
(ଶଙ୍ଖବଟିକା—ଅନ୍ୟରୂପ) A kind of medicinal pill prepared from oxide of conch-shell as an antidote against dysentery, colic, wind.
[ଦ୍ର—ଶଙ୍ଖ ଭସ୍ମ ଏକ ତୋଳା ସଙ୍ଗେ ଯବକ୍ଷାର, ହେଙ୍ଗୁ, ପଞ୍ଚ ଲବଣ, ଶୁଣ୍ଠି, ମରିଚ, ପିପଳୀ, ଶୋଧିତ ମହୁରୀ, ଶୋଧିତ ପାରା, ଶୋଧିତ ଗନ୍ଧକ ଓ ଜଳୀ ପ୍ରତ୍ୟେକ ୧୦ ତୋଳା ମିଶାଇ ଲେମ୍ବୁରସରେ ଭଲ କରି ଘଷି ବଟିକା ତିଆରି କରାଯାଏ । ଏ ବଟିକାକୁ ଲବଙ୍ଗ ବତୁରା ପାଣି ସଙ୍ଗେ ସେବନ କଲେ ସଂଗ୍ରହଣୀ, ଶୂଳ ଓ ବାୟୁରୋଗ ଭଲ ହୁଏ—(ହି.ଶ)]

**ଶଙ୍ଖବଟୀ ରସ**—ସଂ. ବି—ଶୂଳରୋଗନିବାରକ ବଟିକାବିଶେଷ—
Śankhabaṭī rasa A kind of medicinal pill.
[ ଦ୍ର—ଗୋଟିଏ ବଡ଼ ଶଙ୍ଖକୁ ପୋଡ଼ି ୧୧।୧୬ଟି ଲେମ୍ବୁ ରସରେ ଏହାକୁ ଥଣ୍ଡା କରାଯାଏ । ଏହି ଶଙ୍ଖର ଚୂର୍ଣ୍ଣରେ ଏକ ତୋଳା ତେନ୍ତୁଳକ୍ଷାର, ୫ ତୋଳା ସୈନ୍ଧବ ଲବଣ, ଏକ ତୋଳା ସୈନ୍ଧବ, ଏକ ତୋଳା ସାମୁଦ୍ର ଲବଣ, ଏକ ତୋଳା କାଚଲବଣ, ଏକ ତୋଳା ବିଟଲବଣ, ୨ ମଶା ଶୁଣ୍ଠି, ୨ ମଶା ମରିଚ, ୨ ମଶା ପିପଳୀ, ଏକ ତୋଳା ହେଙ୍ଗୁ, ଶୋଧିତ ପାରା, ଗନ୍ଧକ ଓ ମହୁରୀ ଏକ ତୋଳା-ଲେଖାଏଁ ଏକତ୍ର ଚୂର ପାଣିରେ ଖଲ କରିଲା ପରେ ଗୋଳା ପ୍ରସ୍ତୁତ କରାଯାଏ (ହି. ଶ)]

**ଶଙ୍ଖବାତ**—ସ. ବି—ଶଙ୍ଖକ ୪ (ଦେଖ) (ହି. ଶ)
Śankhabāta Śankhaka 4 (See)

**ଶଙ୍ଖ ବିଷ**—ସ. ବି—ଶଙ୍ଖିଆ—White arsenic; Arsenicum
Śankha bisha Album. [ଦ୍ର—ଏହା ଏକପ୍ରକାର
শেঁকো(খো),শিমুলক্ষার ଖଣିଜ ସ୍ଥାବର ବିଷ; ଦେଖିବାକୁ
সঁখিয়া ଏହା ଧଳା ଓ ବଡ଼ ବଡ଼
ତେ. ତେଲ୍ଲପାଷାଣମ୍ ଦାନାଯୁକ୍ତ । ଟିକି ଟିକି ଭଙ୍ଗା
ତା. ବେଲ୍ଲଇପାଷାଣମ୍ ଶଙ୍ଖଖଣ୍ଡ ପରି ଏହା ଦେଖାଯାଏ ।
ଏହା ସ୍ୱାଦବିହୀନ, ଉଷ୍ଣବୀର୍ଯ୍ୟ, ତୀକ୍ଷ୍ଣ, ଅଗ୍ନିବର୍ଦ୍ଧକ, ପାଚକ, ବଳକାରକ ଓ ଜ୍ୱରନାଶକ । ରତିର ୧/୬୪ ଠାରୁ ୧/୩୨ ପର୍ଯ୍ୟନ୍ତ ମାତ୍ରାରେ ସାବଧାନତା ସହିତ ଏହାକୁ ଔଷଧରୂପେ ପ୍ରୟୋଗ କରାଯାଏ । ମାତ୍ରା ବଳପଡ଼ିଲେ ହିକ୍କା, ଆକ୍ଷେପ, ଧନୁଷ୍ଟଙ୍କାର, ମୂର୍ଚ୍ଛା, ପ୍ରଳାପ, ଶ୍ୱାସକୃଚ୍ଛ୍ରତା, ଉଦରଶୂଳ, ପିପାସା, ଦାହ ଓ ଶେଷରେ ମୃତ୍ୟୁ ଘଟାଏ । ଏହାର କୌଣସି ରଙ୍ଗ ନ ଥିବାରୁ ଓ ଏହା ଜଳଠାରୁ ବାରି ହେଉ ନ ଥିବାରୁ ଲୋକେ ଜଳ ସଙ୍ଗେ ଖାଦ୍ୟରେ ଏହାକୁ ଗୋଳାଇ ଲୋକଙ୍କୁ ଓ ପ୍ରାଣୀଙ୍କୁ ବିଷ ପ୍ରୟୋଗ କରି ମାରିପକାନ୍ତି ।]

**ଶଙ୍ଖବେଲା ନ୍ୟାୟ**—ସଂ. ବି—ଯେଉଁଠାରେ ବେଳା ବିଶେଷରେ ଶଙ୍ଖ
**Sankhabelā nyāya** ଫୁଙ୍କିବାର ନିୟମ ଅଛି (ଆଜିକାଲି କେତେକ ସହରରେ କର୍ଣ୍ଣ ବେଳାରେ ତୋପ ପଡ଼ିବା-ପରି), ସେଠାରେ ଶଙ୍ଖର ଧ୍ୱନି ଶୁଣିଲେ ସମୟ ନିରୂପଣ କରାଯିବାପରି ନ୍ୟାୟ—An analogy of a locality where the time of the day or night is known to the public by the blowing of a conch.

**ଶଙ୍ଖ ଭସ୍ମ**—ସଂ. ବି (୬ଷ୍ଠୀତତ୍)—୧ । ବୈଦ୍ୟଶାସ୍ତ୍ରୋକ୍ତ ବିଧିରେ ଶଙ୍ଖକୁ
**Sankha bhasma** ପ୍ରଥମେ ଚୂନ୍ନୀର ଲେମ୍ବୁରସରେ ବୁଡ଼ାଇ ଶୋଧନ କରି ଲଥିଁରେ ପୋଡ଼ କରାଯିବା ପାଉଁଶ । [ଏହା ଗାର ଗୁଣଯୁକ୍ତ ଓ ଅମ୍ଳ ପିତ୍ତ,ଶୂଳ,ଗୁଳ୍ମ, କୃମିଆଦି ରୋଗରେ ଉପକାରକ ।]—The ashes of conch used as medicine.

୨ । ଚୂନ (ହି ଶ)—2. Quicklime.

**ଶଙ୍ଖଭୃତ୍**—ସ.ବି.—(ଶଙ୍ଖ+ଭୃ ଧାତୁ=ଧାରଣ କରିବା+କର୍ତ୍ତୃ କ୍ୱିପ୍)
**Sankhabhrut** (ଶଙ୍ଖଧାରୀ) ବିଷ୍ଣୁ—Name of Bishnu.
ବି. ବିଣ—ଯେ ଶଙ୍ଖ ଧରିଥାଏ—Holding a conch.

**ଶଙ୍ଖମଲ୍**—ବୈଦେ. ବି—( ଫା ସଂଗ ମର୍ମର ) ଶଙ୍ଖମର୍ମର ପଥର—
**Sankhamal** साদা মার্বেল পাথর संगमरमर Marble stone. (ଭୁ—ଯୋଗୀଙ୍କ ହାତରେ ଶଙ୍ଖମଲ, ଯୋଗୀ ନ ବୁଝନ୍ତି ବଳତଳ—ଭଗ)

**ଶଙ୍ଖ ମଲ୍‌ମଲ୍**—ବୈଦେ. ବି.—(ଫା.ସଂଗ ମର୍ମର୍)—୧ । ଧଳା ମାର୍ବଲ
**Sankha mal-mal** ପଥର—White marble. ୨ । ଶଙ୍ଖ
সাদা মার্বেল संगमरमर ମର୍ମର ବାସନ—2. Utensils made of white marble.

**ଶଙ୍ଖ ମର୍ମର**—ବୈଦେ. ବି. (ଫା. ସଂଗମର୍ମର୍, ଫା ସଂଗ୍=ପଥର+ଅ.
**Sankha marmara** ମର୍ମର; ଦ୍ରଷ୍ଟବ୍ୟ ସଂ ଶଙ୍ଖ+ଇଂ ମାର୍ବଲ; ତୁଲ. ଲାଟିନ୍ ମାର୍ମୋରସ୍, ଗ୍ରୀକ୍ ମର୍ମାରସ୍; ଫ୍ରେଞ୍ଚ ମାର୍ବରେ; ତୁଲ. ଇଂ. ମାର୍ଲ; ଇ. ମାର୍ମୋରିଆନ୍=ମାର୍ଲ ପ୍ରସ୍ତୁର ନିର୍ମିତ)—
শঙ্খমর্মর, সাদামার্বেল ଧଳା ମାର୍ବଲପଥର—(ଏହା ଶଙ୍ଖତୁଲ୍ୟ ଶ୍ୱେତ
संगमर्मर ବର୍ଣ୍ଣ ମାର୍ବଲ୍ ଥିବାରୁ) White marble, calcium carbonate. [ବି—ଭାରତରେ ଜୟପୁର ରାଜ୍ୟ, ଆଜମୀର, ବିଶନଗଡ଼, ଯୋଧପୁର ଓ ମଧ୍ୟପ୍ରଦେଶର ଜବଲପୁରରେ ଏ ପଥରର ଖଣି ଓ ପାହାଡ଼ମାନ ଅଛି । ଶଙ୍ଖ ମର୍ମର ପଥର ଏକପ୍ରକାର ଚୂନମିଶା କଡ଼ା ପଥର (lime stone). ଏଥିରେ କାଲ୍‌ସିଅମ୍ (calcium) ନାମକ ମୌଳିକ ବସ୍ତୁ ବେଶି ପରିମାଣରେ ଥାଏ । ଏହା ଖୁବ ପାଲିସ୍ ହୁଏ ଓ ଏଥିରେ ସୂକ୍ଷ୍ମ କାରୁକାର୍ଯ୍ୟ କରାଯାଇପାରେ । ଧଳା, କଳା, ହଳଦିଆ, ନାଲି ଓ ଶାଗୁଆ, ଏପରି ନାନାବର୍ଣ୍ଣର ଶଙ୍ଖ ମର୍ମର ପଥର ପାହାଡ଼ରୁ ଓ ଖଣିରୁ ମିଳେ । ଏକ ପ୍ରକାର ମର୍ମର ( Shell marble ) ପଥରରେ ଶଙ୍ଖ (shell) ର ଅଂଶ ଥାଏ । ମର୍ମର ବା ମାର୍ବଲ ପଥରରେ ମୂର୍ତ୍ତି, ଟାଇଲ୍, ବାସନ, ଚଉକି, ଟେବଲ ଆଦି ହୁଏ ।]

**ଶଙ୍ଖ ମହୁରି**—ଦେ. ବି (ଦ୍ୱନ୍ଦ୍ୱ)—ବିବାହାଦି କାର୍ଯ୍ୟରେ ବଜାଯିବା ଶଙ୍ଖ
**Sankha mahuri** ଓ ମହୁରି—Conch and flute
শাঁখসানাই शंख पिपही, शंखसहनाई blown on festivities.

**ଶଙ୍ଖ ମାଳା**—ସଂ. ବି—(୬ଷ୍ଠୀ ତତ୍)—କ୍ଷୁଦ୍ର ଶଙ୍ଖମାନ ଗୁନ୍ଥା ହୋଇ
**Sankha mālā** କରି ଯାଇଥିବା ମାଳା (ଏହା ଘୋଡ଼ା ବେକରେ (ଶଙ୍ଖମାଳକା—ଅନ୍ୟରୂପ) ଝୁଲୁଥାଏ)—A garland made of small conches strung together (put on the neck of horses.)

**ଶଙ୍ଖ ମାଳିନୀ**—ସଂ. ବି—ଶଙ୍ଖପୁଷ୍ପୀ (ଦେଖ)
**Sankha mālini** Sankhapushpi (See)

**ଶଙ୍ଖ ମୁଖ**—ସଂ. ବି—(ଶଙ୍ଖ ପରି ଧଳା ମୁଖ ଯାହାର; ବହୁବ୍ରୀହି)—କୁମ୍ଭୀର
**Sankha mukha** Crocodile.

**ଶଙ୍ଖ ମୁଗୁନି**—ଦେ. ବି—ଈଷତ୍ ହରିତ୍ ବା କଳା ମର୍ମର ପଥର—
**Sankha muguni** Greenish or black marble.
শাঁখমুগুনী संगमूसा

**ଶଙ୍ଖ ମୂଳକ**—ସଂ. ବି—(ବହୁବ୍ରୀହି)—ମୂଳା (ହି. ଶ.)—
**Sankha mūlaka** Radish.

**ଶଙ୍ଖଳନା**—ଦେ. ବି—ଶଠଙ୍କ.ଲା; କୁଶଳ ପ୍ରଶ୍ନ—Enquiring
**Sankhalanā** about one's health and
দেখতেআসা कुशलपुछना prosperity.
[ଭୁ—ମୋହ ପରି ବନ୍ଧୁର ମୁକ ଡାକରାରୁ । ଅସୁଅଛନ୍ତି ଶଙ୍ଖଳନା କରିବାକୁ । କୃଷ୍ଣସିଂହ ମହାଭାରତ ବନ ।]

**ଶଙ୍ଖଲା**—ଦେ. ବି—(ସଂ. ଶଙ୍ଖ)—୧ । ଶଙ୍ଖାଳ; ପ୍ରିୟବସ୍ତୁ ବା ବ୍ୟକ୍ତି—
**Sankhalā** One's dearest thing or person. ୨ । କୁଶଳାଦି ପ୍ରଶ୍ନ—2. Enquirings about a person's weal.

**ଶଙ୍ଖ ଲିଖିତ**—ସ. ବିଣ—ନିର୍ଦ୍ଦୋଷ (ହି. ଶ)—Faultless; flaw-
**Sankha likhita** less. ସ. ବି. ପୁଂ—୧ । ନ୍ୟାୟଶୀଳ ରାଜା (ହି ଶ)—1. A righteous king ୨ । ଶଙ୍ଖ ଓ ଲିଖିତ ନାମକ ଦୁଇ ଋଷି, ଯେଉଁମାନେ ମିଳି କରି ଗୋଟିଏ ସ୍ମୃତିଗ୍ରନ୍ଥସଙ୍କଳନ କରିଥିଲେ—2. Sankha and Likhita, two sages, the joint authors of a treatise on Hindu law. ୩ । ଶଙ୍ଖ ଓ ଲିଖିତଙ୍କ ସଙ୍କଳିତ ସ୍ମୃତିଗ୍ରନ୍ଥ—3. Title of a treatise on Hindu Land by Sankha and Likhita.

**ଶଙ୍ଖ ଶିଳା**—ସ. ବି.—ଶଙ୍ଖ ମୁଗୁନି ପଥର—
**Sankhasilā** Marble.

**ଶଙ୍ଖ ଶୁକ୍ତିକା**—ସ. ବି—ସିପ (ହି. ଶ)
**Sankha suktikā** Bivalve shell.

**ଶଙ୍ଖସ**—ସ. ବି.—ଶଙ୍ଖରେ ନିର୍ମିତ ଚୁଡ଼ି ବା ଖଡ଼ୁ (ହି ଶ)
**Sankhasa** Bangle made of conch

ଶଙ୍ଖ ସଙ୍କାଶ—ସଂ. ବ—ଶଙ୍ଖାଳୁ (ଦେଖ) (ହି. ଶ)
Sankha sankāsa Sankhālu (See)

ଶଙ୍ଖ ସାରୁ—ଦେ. ବ—(ସଂ. ଶଙ୍ଖକନ୍ଦ; ଶଙ୍ଖର ଆକୃତି ପରି ଏହାର Sankha sāru ଆକୃତି ଥିବାରୁ) ୧ । ଏକ ପ୍ରକାର ସାରୁ—ମାନକଚୁ **सांकालु** 1. A species of arum· Arum Indicum; Alocacia Indica. [ଦ୍ର—ଏହାର ମୂଳ ଲମ୍ବ ଓ ଏହା ସାମାନ୍ୟ ମିଷ୍ଟ, ମାଣସାରୁ ଜାତୀୟ । ଏଥିର ଗୁଷ କରାଯାଏ ଓ ଏହାର ଗଛ ସାରୁ ଗଛପରି ।]
ଶାଙ୍କାଲୁ ୨ । ଏକପ୍ରକାର ଆଳୁ; ମିଠା ଆଳୁ; ଚନ୍ଦ ବା ଚେଣୀ ଆଳୁ—**शंखालु** 2. Pachyrhizus Angulatus [ଦ୍ର—ଏହା (ଅନ୍ୟ ସଂ—ଶଙ୍ଖାଳୁ) ଲତାକନ୍ଦ । ଶିମ୍ବ ଲତା ପରି ଏହାର ଲତା କିପର୍ଣ୍ଣି । ଏହି ଆଳୁର ଆକାର ଶଙ୍ଖପରି ଏବଂ ବର୍ଣ୍ଣ ଧଳା । ଏହା ମିଠା ଏବଂ ଏଥିରେ ଜଳ ଭାଗ ଅଧିକ । ସାଧାରଣ ଆଳୁ ପରି ଏଥିରେ ଗାଲ ନ ଥାଏ ଓ ଏହା କଞ୍ଚା ଖାଇ ହୁଏ । ]

ଶଂଖା—ଦେ. ବ.—(ସଂ ଶଙ୍ଖକ)—୧ । ଶଙ୍ଖନିର୍ମିତ ଭୁଜର ବଳୟ—Sankhā 1. Bracelets made of conch shell.
ଶାଂଖା ୨ । ଲାଖରେ ତିଆରି ଏକପ୍ରକାର କାଚ ବଳୟ । (ଏହା ମଧ୍ୟରେ **शङ्ख की चूड़ी** କାଚ ଥାଏ ଓ ଉପରେ ଲାଖ ବୋଳାଯାଇଥାଏ ଏବଂ ସେହି ଲାଖ ଉପରେ ଖଣ୍ଡ ଖଣ୍ଡ ଦର୍ପଣ ଓ ଶଙ୍ଖ ପଥ ମରାଯାଇଥାଏ) । 2. Bracelet made of glass bangles covered with shell lac to which bits of looking glass and conch-shell are stuck. ୩ । ସୁନା କିମ୍ବା ରୁପାରେ ନିର୍ମିତ ବଳୟ—3. Bracelet made of gold or silver. [ଦ୍ର—ବଙ୍ଗ ଦେଶରେ ହାତରେ ଲୌହ ବଳୟ ବା ଶଙ୍ଖ ନିର୍ମିତ ବଳୟ ଓ ସିନ୍ଥିରେ ସିନ୍ଦୂର କଲା ପେପରି ଅବିଧବା ସ୍ତ୍ରୀମାନଙ୍କର ସଧବା ଚିହ୍ନ, ଆମ ଦେଶରେ ସେହିପରି ହାତରେ ଶଙ୍ଖା ଓ କପାଳରେ ସିନ୍ଦୂର ଫୋଟି ଅବିଧବାମାନଙ୍କର ଚିହ୍ନ । ଅବିବାହିତା କନ୍ୟାମାନେ ମଧ୍ୟ ଏହା ପରିଧାନ କରନ୍ତି, କିନ୍ତୁ ସଧବା ସ୍ତ୍ରୀର ଏହା ପ୍ରଧାନ ଚିହ୍ନ । ବିବାହ କାଳରେ ପ୍ରତ୍ୟେକ ବାଳିକା ଏହା ପରିଧାନ କରନ୍ତି । ବଡ଼ଲୋକ ଘରର କନ୍ୟା ଓ ବଧୂମାନେ ହାତରେ ସୁନା ରୁପାର ଖଡୁ ଓ ଚୁଡ଼ି ପିନ୍ଧିଲେ ମଧ୍ୟ ବିବାହ କାଳରେ ହାତରେ ଉଭୟ ଶଙ୍ଖା ପିନ୍ଧିବାର ବିଧି ଅଛି । ଶୂଦ୍ର ଓ ହାଡ଼ୁଆ ଜାତୀୟ ସ୍ତ୍ରୀମାନଙ୍କ ମଧ୍ୟରେ ଶଙ୍ଖାର ବିଶେଷ ପ୍ରଚଳନ ଅଛି । ଏକ ହାତରେ ପିନ୍ଧିବା ପାଇଁ ତେରେଗୁଡ଼ିଏ ଶଙ୍ଖାକୁ ମୁଠାଏ ଶଙ୍ଖା ବୋଲାଯାଏ ଓ ଦୁଇହାତର ଶଙ୍ଖାକୁ ଦମୁଠା ଶଙ୍ଖା ବୋଲାଯାଏ । ବିବାହ ସମୟରେ ବର କନ୍ୟାହାତରେ ଶଙ୍ଖା ପିନ୍ଧାଇଦେବାର ବିଧି ଅଛି । ଶୂଦ୍ରମାନେ(ଯେଉଁମାନଙ୍କ ସମାଜରେ ବିଧବା ବା 'ଦୁତିଅ' ପ୍ରଥାଚଳେ) ଯେଉଁ ଦୁତିଅ-ସ୍ତ୍ରୀକୁ ବିବାହ କରନ୍ତି, ତାକୁ ଶଙ୍ଖା ଦୁଇମୁଠା ପିନ୍ଧାଇ ଦେଲେ ଦୁତିଅ ବିବାହ ବିଧି ସମାହିତ ହୁଏ । 'ତୋ ଶଙ୍ଖା ବଜ୍ର ହେଉ'(ତୋ ହାତର ଶଙ୍ଖା ବଜ୍ର ପରି ଦୃଢ଼ ବା ଚିରସ୍ଥାୟୀ ହେଉ, ଅର୍ଥାତ୍, ତୁ ଚିରକାଳ ସଧବା ହୋଇ ଥିବୁ) ଏହା ସଧବା ସ୍ତ୍ରୀ ଓ ବାଳିକାମାନଙ୍କ ପକ୍ଷରେ ଗୋଟିଏ ଆଶୀର୍ବାଦ । ଆମ ଦେଶରେ ଶଙ୍ଖା ନାମରେ ଲାଖମଡ଼ା କାଚ ପ୍ରଚଳିତ, କିନ୍ତୁ ମେଦିନୀପୁର ଆଦି ଅଞ୍ଚଳରେ ସ୍ତ୍ରୀମାନେ ଶଙ୍ଖରୁ ତିଆରି ବଳୟ (ପ୍ରକୃତ ଶଙ୍ଖା) ପିନ୍ଧନ୍ତି । ]
୪ । ( ଅନାଦରାର୍ଥକ ) ଶଙ୍ଖାସୁର—4. Name of Sankhāsura. [ଦ୍ର—ବେଦ ଚୋରକର ସମୁଦ୍ରରେ ଲୁଚିଥିବା ଶଙ୍ଖାସୁରକୁ ଭଗବାନ ମୀନରୂପରେ ମାରିଥିଲେ ଓ ବେଦ ଉଦ୍ଧାର କରିଥିଲେ ।] (ଲ—ପ୍ରଥମେ ମୀନରୂପ ଧରି, ବେଦ ଆଣିଲୁ ଶଙ୍ଖା ମାରି—ଭୂପତି ପ୍ରେମପଞ୍ଚାମୃତ ।) ଦେ.
ସାଦା **उज्ज्वल** ବିଣ. ପୁଂ—ଶଙ୍ଖ ପରି ଶୁକ୍ଳ—White as (ସ୍ତ୍ରୀ—ଶଙ୍ଖୀ) conch. (ଯଥା—ଶଙ୍ଖା ଭୂମିରି;ଶଙ୍ଖୀ ବଳଦ ।)

ଶଙ୍ଖା ଙ୍ଖେ ଈ—ଦେ: ବ (ସଂ. ଶଙ୍ଖିନୀ)—ଗ୍ରାମଦେବୀଙ୍କ ନାମବିଶେଷ—Sankhā(nkhe)ī Name of a village-goddess
ଶାଙ୍ଖିଚୁନୀ **शंखिनी**

ଶଙ୍ଖା ପିନ୍ଧା(ନ୍ଧେ)ଇବା—ଦେ. କ୍ରି—୧ । ସ୍ତ୍ରୀଲୋକର ହାତରେ 'ଶଙ୍ଖା' Sankhā pindhā(ndhe)ibā ଅଳଙ୍କାର ପରିଧାନ [ଶଙ୍ଖାମୁଠା ଦିଆ(ଦେଇବା)—ଅନ୍ୟରୂପ] କରାଇବା—ଶାଙ୍ଖାପବାନ **चूड़ीपहनाना** 1. To put on sankhā into the hands of a woman. ୨ । ଯେଉଁ ସମାଜରେ 'ଦୁତିଅ' ପ୍ରଥା ଚଳେ ସେହି ସମାଜର କୌଣସି ପୁରୁଷ କୌଣସି ବିଧବାକୁ ଦୁତିଅ ପ୍ରଥା ଅନୁସାରେ ବିବାହ କରିବା—2. To marry a widow by the Dutia form of widow-marriage. [ଦ୍ର—ଓଡ଼ିଶାରେ ଯେଉଁମାନଙ୍କ ସମାଜରେ 'ଦୁତିଅ' ବିବାହ ପ୍ରଥା ଚଳେ ସେ ସମାଜରେ ବିବାହକାରୀ ପୁରୁଷ ଦ୍ୱିତୀୟ ହେଉଥିବା ସ୍ତ୍ରୀର ହାତରେ ଶଙ୍ଖା ପିନ୍ଧାଇଦେବାଦ୍ୱାରା ଦୁତିଅ ବିବାହର ପାଣିଗ୍ରହଣ କାର୍ଯ୍ୟ ସାଙ୍ଗ ହୁଏ ।]

ଶଙ୍ଖା ବଜର(ବଜ୍ର) ହେଉ—ଦେ.ବ (ସଧବା ସ୍ତ୍ରୀମାନଙ୍କପ୍ରତି ଆଶୀର୍ବଚନ)-Sankhā bajara (bajra) heu ତୋର ଶଙ୍ଖା ବଜ୍ର ପରି ଲୋହାବଜହଉଁକ **चूड़ीयजहो** ଦୃଢ଼ ବା ଚିରସ୍ଥାୟୀ ହେଉ, ଅର୍ଥାତ୍ ତୁ ଚିରକାଳ ସଧବା ହୋଇଥାଅ—A blessing to females meaning 'May your husband live long'. [ଦ୍ର—ଏହିପରି ମଧ୍ୟ 'ତୋ ଖଡ଼ୁ ବଜର ହେଉ' 'ତୋ କାଚ ବଜର ହେଉ', 'ତୋ ସୁନା ଖଡ଼ୁ ବଜର ହେଉ' 'ତୋ ମଥାର ସିନ୍ଦୂର ବଜର ହେଉ' ଆଦି ଆଶୀର୍ବଚନ ବ୍ୟବହାର କରାଯାଏ ।]

ଶଙ୍ଖାବର୍ତ୍ତ—ସଂ. ବ (ବହୁବ୍ରୀହି; ଶଙ୍ଖର ଆବର୍ତ୍ତ ପରି ଆବର୍ତ୍ତ ଯାହାର). Sankhābarta ଏକପ୍ରକାର ଭଗନ୍ଦର ରୋଗ (ହି. ଶ)—A kind of fistula.

ଶଙ୍ଖା ମୁଠା—ଦେ. ବି—ସ୍ତ୍ରୀର ଏକ ହାତରେ ପିନ୍ଧାଯିବା ଏକାଧିକ ଶଙ୍ଖା-
Śaṅkhā muṭhā A set of conch-bracelets
একসেটশাঁখা एकमुट्ठीचूड़ी for one hand.
(ଦ୍ର—ଏହିପରି କାଚମୁଠା, ଚୁଡ଼ିମୁଠା, ଖଡ଼ୁମୁଠା ଆଦିର ବ୍ୟବହାର ଅଛି ।)

ଶଙ୍ଖାମୁଠିଆ—ଦେ. ବି—୧ । ଦଶାଜାତୀୟ ବିଷଧର ସାପ—ଏହା
Śaṅkhāmuṭhiā ଦଶାଠାରୁ ବଡ଼ । [ଦ୍ର—
শাঙ্খিনী শঙ্খিনী गलगोआर ଏମାନେ ପାଞ୍ଚ ଛ ହାତ ପର୍ଯ୍ୟନ୍ତ ବଢ଼ନ୍ତି । ଏମାନଙ୍କ ଦେହରେ ଶଙ୍ଖାମୁଠା ପରି ଧଳା ଓ କଳା ଚୁଡ଼ି (rings) ଚିହ୍ନିତ; କୃଷ୍ଣବର୍ଣ୍ଣ ଦେହରେ ହଳଦିଆ ଶଙ୍ଖା ପରି ଦାଗ; ଜିହ୍ୱା ନାଲି; ମୁଣ୍ଡ ଓ ଗଳା ହଳଦିଆ; ଲାଞ୍ଜର ଅଗ ମୋଟା ।] 1. Bungarus Fasciatus (a snake) ୨ । ଏକଜାତୀୟ ଲୁଣୀମାଛ —2 A sort of sea fish.

ଶଙ୍ଖାମେରି—ଦେ. ବି—ଓଡ଼ିଆ ଗଡ଼ଜାତ ବଡ଼ମ୍ବା ରାଜ୍ୟସ୍ଥିତ ଦେବୀ
Śaṅkhāmerī ବିଶେଷ—Name of a Goddess in the State of Baramba in Orissa Feudatory States (on the bank of the river Mahānadī).
[ଦ୍ର—ମହାନଦୀ କୂଳରେ ଏହି ଦେବୀଙ୍କ ପୀଠ ଅବସ୍ଥିତ । ନଈ ବଢ଼ି ସମୟରେ ମହାନଦୀରେ ଚଳୁଥିବା ଡଙ୍ଗାର ବାହକମାନେ ଏହାଙ୍କୁ ପୂଜା ଓ ମାନସିକ କଲେ ଡଙ୍ଗା ବିପଦ୍‌ଗ୍ରସ୍ତ ହୁଏ ନାହିଁ ବୋଲି ଲୋକଙ୍କର ବିଶ୍ୱାସ । ଏଠାରେ ମହାନଦୀ ସ୍ରୋତର ଭୀଷଣ ମୋଡ଼ ଅଛି ଓ ସେ ମୋଡ଼କୁ ନିରାପଦରେ ପାର ହୋଇ ଯିବା ପାଇଁ କେଉଟମାନେ ଶଙ୍ଖାମେରୀଙ୍କର ଆଶ୍ରା କରନ୍ତି ।]

ଶଙ୍ଖାରି—ସଂ. ବି (ଶଙ୍ଖ=ଶଙ୍ଖାସୁର+ଅରି)—ଶଙ୍ଖାସୁରର ହନ୍ତା;
Śaṅkhāri ବିଷ୍ଣୁ—Bishṇu. ଦେ. ବି. ପୁଂ (ସଂ. ଶଙ୍ଖକାର)
শাংকারি —ଯେ ଶଙ୍ଖା ତିଆରି କରି ବିକି କରି ଜୀବିକା ନିର୍ବାହ
शंखरी କରେ (ଭୁଲଜାତିର ଓଡ଼ିଆ—କଂସାରି)—
(ଶଙ୍ଖାରୁଣୀ—ସ୍ତ୍ରୀ) Manufacturer or seller of Śaṅkhā or shell lac bracelets.

ଶଙ୍ଖାଳି—ସଂ. ବି (ଶଙ୍ଖ+ଅଳି)—ଶଙ୍ଖସମୂହ—A collection
Śaṅkhāḷi of conch shells. ଦେ. ବି—୧ । କୌଣସି
মূলধন मूलधन ବ୍ୟକ୍ତିର ମୂଳଧନ—1. The capital or
বতন; পিয়ব stock of a person. ୨ । (ପ୍ରିୟ ବ୍ୟକ୍ତିକୁ
रतन, लाल, प्यार ସମ୍ବୋଧନ) ଧନ ପରି ପ୍ରିୟତମ ବ୍ୟକ୍ତି—
2. One's dearest person.

ଶଙ୍ଖାଳୁ(ରୁ)—ସଂ. ବି—ଚେଙ୍ଗି ଅଳୁ; ଚିନି ଅଳୁ; ମିଠା ଅଳୁ—
Śaṅkhāḷu(ru) Pachyrhizus Angulatus (a sort
(ଶଙ୍ଖାଳୁକ—ଅନ୍ୟରୂପ) of sweet yam). [ଦ୍ର—ଏହା ଶ୍ୱେତବର୍ଣ୍ଣ ଲତାକନ୍ଦ ବିଶେଷ । ଏହା ଶିମ୍ବଜାତୀୟ ହିପର୍ଣ୍ଣୀ ଲତା ଓ ଏହାର ମୂଳରେ ଥିବା କନ୍ଦ ଶଙ୍ଖ ପରି ଧଳା । ଏହାକୁ କଞ୍ଚା କାଟି ଖାଇହୁଏ ।]

ଶଙ୍ଖାସୁର—ସଂ. ବି—୧ । ମତ୍ସ୍ୟାବତାରରେ ବିଷ୍ଣୁଙ୍କଦ୍ୱାରା ହତ ସମୁଦ୍ର-
Śaṅkhāsura ବାସୀ ଅସୁରବିଶେଷ—1. Name of a demon who had stolen and concealed the Bedas in the deep sea and after killing whom Bishṇu in his first incarnation of the fish recovered the scriptures. [ଦ୍ର—ସୃଷ୍ଟି ପ୍ରଳୟସମୁଦ୍ରରେ ମଗ୍ନ ହେବା କାଳରେ ଏ ଅସୁର ବେଦକୁ ଚୋରାଇ ନେଇ ସମୁଦ୍ରର ଗଭୀରତମ ପ୍ରଦେଶରେ ଲୁଚାଇ ରଖିଥିଲା । ବିଷ୍ଣୁ ପ୍ରଥମ ବା ମତ୍ସ୍ୟ ଅବତାର ଗ୍ରହଣ କରି ପ୍ରଳୟ ପୟୋଧିର ଜଳ ମଧ୍ୟରେ ପ୍ରବେଶ କରି ଶଙ୍ଖାସୁରକୁ ବଧ କରି ତାଠାରୁ ବେଦ ଛଡ଼ାଇ ଆଣି ବେଦକୁ ରକ୍ଷା କଲେ ।] ୨ । ମୁର ଦୈତ୍ୟର ପିତା (ହ୍ରି. ଶ.)—2. Name of the father of demon Mura.

ଶଙ୍ଖାସ୍ଥି—ସଂ. ବି.—୧ । ମୁଣ୍ଡର ହାଡ଼ (ହି. ଶ.)—1. Skull.
Śaṅkhāsthi ୨ । ପୃଷ୍ଠାସ୍ଥି ମେରୁଦଣ୍ଡ ହାଡ଼ (ହି. ଶ.)—
2. Backbone.

ଶଙ୍ଖାହୁଳି—ସଂ. ବି—ଶଙ୍ଖପୁଷ୍ପୀ (ହି. ଶ.) (ଦେଖ)
Śaṅkhāhuḷī Śaṅkha pushpī (See)
[ଶଙ୍ଖାହ୍ୱା—ଅନ୍ୟରୂପ]

ଶଙ୍ଖି—ଦେ. ବି—(ସଂ. ଶଙ୍ଖ)—୧ । ଗଳା; ଚୋଣ୍ଟି; ତଣ୍ଟି—
Śaṅkhi গলাব নালী नरेटी, कंठ 2. Throat.
୨ । କଣ୍ଠନାଳ; ଶ୍ୱାସ ନାଳ—2. Gullet.
[ଦ୍ର—ବେକର ସମ୍ମୁଖ ଭାଗରେ ଥିବା ଉମ୍ପିରୁତ ଶ୍ୱାସ ନଳୀକୁ ଶଙ୍ଖି ବୋଲାଯାଏ ଓ ଏହି ଶଙ୍ଖିର ମଧ୍ୟଭାଗରେ ଉଚ୍ଚା ହୋଇ ଗୋଟିଏ ହାଡ଼ ବାହାରି ଥାଏ । ସେହି ସ୍ଥାନକୁ ଚିପି ଦେଲେ ବା ମୋଡ଼ି ଦେଲେ ଶ୍ୱାସ ରୁଦ୍ଧ ହୋଇ ପ୍ରାଣୀ ମରିଯାଏ ।] [ଯଥା—ଏ ବାହାରେ ପିଲ୍ଲ-ମାନଙ୍କ ଶଙ୍ଖି ଚିପି ବଧିଲୁ ପାପିଷ୍ଠ ସେ ପିଙ୍ଗ ହୋଇ କୋପୀ । କୃଷ୍ଣସିଂହ. ମହାଭାରତ. ବନ ।] ବି. ପୁ—
শাংখেব মত সাদা ଶଙ୍ଖ ପରି ଶୁକ୍ଳ ବର୍ଣ୍ଣ—White as a conch.
उजली ବି. ସ୍ତ୍ରୀ—(ପୁଂ. ଶଙ୍ଖା)—ଶଙ୍ଖ ପରି ଶୁକ୍ଳବର୍ଣ୍ଣା—
সাদা उजला White as a conch (female.)

ଶଙ୍ଖିଆ—ଦେ. ବି—ଶଙ୍ଖ ବିଷ (ଦେଖ)—Śaṅkhabisha (See)
Śaṅkhiā শেকো संखिया

ଶଙ୍ଖିକା—ସଂ. ବି (ଶଙ୍ଖ+କ+ସ୍ତ୍ରୀ. ଆ)—ଶ୍ୱେତ ତୃଣ ବିଶେଷ; ଶ୍ୱେତ
Śaṅkhikā ପୁଷ୍ପୀ; ଗୁଗୁଡ଼ିଆ (ଦେଖ)—A sort of white grass; Lone thorn; Andropogen Aciculatus.

ଶଙ୍ଖି ଚିଙ୍ଗୁଡ଼ି—ପ୍ରାଦେ (ବାଲେଶ୍ୱର) ବି—ଏକ ଜାତୀୟ ଶ୍ୱେତବର୍ଣ୍ଣ
Śaṅkhi chiṅgurḍi ଚିଙ୍ଗୁଡ଼ି ମାଛ—A white variety of shrimps.

**ଶଙ୍ଖି ଚିପିବା**—ଦେ. କି—ପ୍ରାଣୀକୁ ହତ୍ୟା କରିବା ପାଇଁ ଉଣ୍ଡିକୁ ଚିପିବା—To strangle an animal by pressing its throat or gullet.
Sañkhi chipibā
ଗଳାଟି(ଟେ)ପା **गलाघोंटना**

**ଶଙ୍ଖିନ**—ସ. ବି—ଶିମ୍ବିସ ବୃକ୍ଷ (ହି. ଶ)
Sañkhina Acacia Arabica.

**ଶଙ୍ଖିନଳା(ଳୀ)**—ଦେ. ବି (ସ. ଶଙ୍ଖ ଓ ନାଳ)—ଉଣ୍ଡିର ନଳୀ; ଯେଉଁ ବାଟେ ପେଟକୁ ଖାଦ୍ୟ ଯାଏ ଓ ପେଟରୁ ବାୟୁ ଆଦି ଆସେ—The gullet; wind pipe.
Sañkhinaḷā(ḷi)
ଗଳାର ନାଳୀ **नरेटी, टेंटुवा**

**ଶଙ୍ଖିନିକା**—ସଂ. ବି—ଗ୍ରନ୍ଥିପର୍ଣ୍ଣୀ; ଗଣ୍ଠିଅନା (ହି. ଶ)
Sañkhinikā A kind of shrub.

**ଶଙ୍ଖିନୀ**—ସଂ. ବି. ସ୍ତ୍ରୀ (ଶଙ୍ଖ+ଇନ୍+ସ୍ତ୍ରୀ. ଈ)—୧। କାମଶାସ୍ତ୍ର ଅନୁସାରେ ସ୍ତ୍ରୀଜାତିର ମଧ୍ୟରୁ ଏକ ଜାତୀୟା ସ୍ତ୍ରୀ—1. One of the 4 classes of females classified according to the Hindu erotic works. [ଦ୍ର—ସ୍ତ୍ରୀଜାତିର ସ୍ତ୍ରୀ ଯଥା—ପଦ୍ମିନୀ, ଚିତ୍ରିଣୀ, ଶଙ୍ଖିନୀ, ହସ୍ତିନୀ। ଶଙ୍ଖିନୀର ଲକ୍ଷଣ-ଦୀର୍ଘକାୟା, ଦୀର୍ଘକେଶା, ସ୍ଥୂଳସ୍ତନା, ନାତିକୃଶା, କୋପନା, ସଦ୍ରୋମ ଶରୀର ବିଶିଷ୍ଟା, କୋପନ ସ୍ୱଭାବା ଓ ଅତିସତ୍ତ୍ୱ ଯୁକ୍ତା, କ୍ଷାର ଗନ୍ଧଯୁକ୍ତା, ବୃହତ୍ ନେତ୍ରବିଶିଷ୍ଟା, ଲଜ୍ଜା ଓ ଶଙ୍କା ରହିତା ଓ ଅଧୀରା। ପୁରୁଷମାନେ ମଧ୍ୟ ରତିଶାସ୍ତ୍ରକାରମାନଙ୍କ ଦ୍ୱାରା ଚାରି ଶ୍ରେଣୀରେ ବିଭକ୍ତ। ଯଥା—ଶଶ, ମୃଗ, ବୃଷ ଓ ଅଶ୍ୱ। ଏହା ମଧ୍ୟରୁ ବୃଷ ଜାତୀୟ ପୁରୁଷ ଶଙ୍ଖିନୀଜାତୀୟା ସ୍ତ୍ରୀର ଉପଯୁକ୍ତ ସହଚର ବା ସ୍ୱାମୀ ବୋଲି କାମଶାସ୍ତ୍ରରେ ଲିଖିତ ହୋଇଅଛି।
Sañkhini

ଶଙ୍ଖିନୀ ଜାତୀୟା ସ୍ତ୍ରୀର ଲକ୍ଷଣ :—

ଦୀର୍ଘାତିଦୀର୍ଘ ନୟନା ବରସୁନ୍ଦରୀ ସା
କାମୋପଭୋଗରସିକା ଗୁଣଶୀଲଯୁକ୍ତା
ରେଖାତ୍ରୟେଣ ଚ ବିଭୂଷିତ କଣ୍ଠଦେଶା
ସମ୍ଭୋଗ କେଳିରସିକା କିଲ ଶଙ୍ଖିନୀ ସା।
ଶଶକେ ପଦ୍ମିନୀ ତୁଷ୍ଟା, ଚିତ୍ରିଣୀ ରମତେ ମୃଗମ୍
ବୃଷଭେ ଶଙ୍ଖିନୀ ତୁଷ୍ଟା ହସ୍ତିନୀ ରମତେ ହୟମ୍।
ପଦ୍ମିନୀ ପଦ୍ମଗନ୍ଧା ଚ ମୀନଗନ୍ଧା ଚ ଚିତ୍ରିଣୀ
ଶଙ୍ଖିନୀ କ୍ଷାରଗନ୍ଧାସ୍ୟାତ୍ ମଦଗନ୍ଧାଚ ହସ୍ତିନୀ।
ବିଶ୍ୱକୋଷ ଉଦ୍ଧୃତ ରସମଞ୍ଜରୀ]

୨। ଉପଦେବତା ବିଶେଷ; ଡାକଣୀଙ୍କ ପରି ଦୁଷ୍ଟ ଉପଦେବତା—2. Female goblin; a class of wicked demigod or ghost. [ଦ୍ର—ଏମାନେ ରାତିରେ ନିର୍ଜନ ପ୍ରାନ୍ତର ଓ ବୃକ୍ଷତଳେ ଶୋଇଥିବା ଏକାକୀ ପଥିକର ଶଙ୍ଖି ଚିପି ରକ୍ତ ପିଅନ୍ତି ବୋଲି ପ୍ରବାଦ ଅଛି। ଏମାନେ ସଧବା ନାରୀର ପ୍ରେତ ବୋଲି ଲୋକ-ବିଶ୍ୱାସ। ଏହି ଉପଦେବତା ଶାହାଡ଼ା ଗଛରେ ବାସ କରନ୍ତି ବୋଲି ଶାସ୍ତ୍ରରେ ଲିଖିତ ଅଛି; ଏଥିପାଇଁ ଶାହାଡ଼ା ଗଛକୁ ଶଙ୍ଖିନୀବାସ ବୋଲାଯାଏ) ୩। (ବୈଦ୍ୟକ) ଶ୍ୱେତ ପୁଷ୍ପୀ; ଗୁଗୁଚିଆ—3. A sort of herb, lone thorn. ୪। (ବୈଦ୍ୟକ) କସ୍ତୁରୀ ବା ଯବତିକ୍ତା, ଶ୍ୱେତ [ଅନ୍ୟ ସ. ନାମ—ଯବତିକ୍ତା, ବଳକନା; ଭୂଇଁ ନିମ୍ବ; ଏକପ୍ରକାର ମହାତିକ୍ତା, ସୂକ୍ଷ୍ମପୁଷ୍ପୀ, ଭଦ୍ରତିକ୍ତା,] ବର୍ଷାୟୁଃ ବନ୍ୟ ଶାକ (ଏହାର ଫୁଲ ଦୁଇ ପାଦା, କର୍ଣ୍ଣିଣୀ, ନାକୁଲୀ] ଧଳା ହୋଇଥିବା ହେତୁ ଏପରି ନେତ୍ରମୀଳା, ଅକ୍ଷପୀଡ଼ା, ନାମକରଣ ହୋଇଅଛି।) ଭଦ୍ରତିକ୍ତା ମାହେଶ୍ୱରୀ, ତିକ୍ତା, ସା'ସା (ଦେଖ)—4. Andrographis Paniculata. [ଦ୍ର—ଏହାର ଲତା ଓ ଫଳ ଶିବଲିଙ୍ଗୀ (ସ. ଶିବ ବଲ୍ଲୀ, ଲିଙ୍ଗିନୀ) ପରି; ଶିବଲିଙ୍ଗୀର ଫଳ ଉପରେ ଧଳା ବିନ୍ଦୁ ମାନ ଥାଏ; ଶଙ୍ଖିନୀ ଫଳ ଉପରେ ଏହା ନ ଥାଏ। ଏଥିର ସାଙ୍ଗ ଶଙ୍ଖ ପରି। ସାଙ୍ଗରୁ ତେଲ ବାହାରେ; ଏହା ବୈଦ୍ୟକ ମତରେ ସ୍ନିଗ୍ଧ, କଟୁ, ଗୁରୁ, ତୀକ୍ଷ୍ଣ, ଉଷ୍ଣ, ଅଗ୍ନିଦୀପକ, ବଳକର, ରୁଚିକାରୀ, ଓ କଫଦୋଷ, ଆମ-ଦୋଷ, କ୍ଷୟ, ରୁଧିର ବିକାର, ଉଦର ଦୋଷ ଆଦିର ଶାନ୍ତିକର। ହି. ଶ.] ୫। (ବୈଦ୍ୟକ) ଶ୍ୱେତ ପୁନ୍ନାଗ—5. A species of Alexandrian laurel. ୬। ବୌଦ୍ଧମାନଙ୍କ ପୂଜିତା ଶକ୍ତି ବିଶେଷ (ହି. ଶ)—6. A female Deity worshipped by the Buddhists. ୭। ଶରୀରସ୍ଥ ଦଶ ନାଡ଼ି ମଧ୍ୟରୁ ଗୋଟିଏ ନାଡ଼ି—(ଦଶନାଡ଼ି ତଳେ କୋଠ ଦେଖ)—ଗୁହ୍ୟଦ୍ୱାରର ନାଡ଼ୀ—7. The vein near the anus. ୮। ମୁହଁର ନାଡ଼ି (ହି. ଶ.)—8. Vein of the face or mouth. ୯। ଶିପ—9. Bivalve shell ୧୦। ଅପ୍ସରାବିଶେଷ (ହି ଶ) 10. Name a heavenly nymphs. ୧୧। ତୀର୍ଥ ବିଶେଷ; ଶଙ୍ଖ ତୀର୍ଥ (ଦେଖ)—11. Sañkha tirtha (See) ୧୨। ଶଙ୍ଖ ପୁଷ୍ପୀ (ଦେଖ) (ହି. ଶ.)—12. Sañkhapushpi (See) ୧୩। ଶ୍ୱେତଚୂର୍ଣ୍ଣୀ; ଗୁଗୁଚିଆ (ଶବ୍ଦକୋଷ)—13. Andropogen Aciculatus. ୧୪। ଚର୍ମକଷା (ଶବ୍ଦକୋଷ); ମାଂସ-ରୋହିଣୀ—14. Red wood tree; Soymida Febrifuga. ୧୫। ଶ୍ୱେତ ଅପରାଜିତା (ଶବ୍ଦକୋଷ)—15. The white flowered variety of Clitoria Terratia creeper. ୧୬। ଶ୍ୱେତ-ବୃନ୍ଦା (ଶବ୍ଦକୋଷ)—16. Name of a plant. ୧୭। ଶ୍ୱେତ ଚୁକା (ଶବ୍ଦକୋଷ)—17. The white variety of Bladder dock. ସ. ବିଣ. ସ୍ତ୍ରୀ—(ଶଙ୍ଖିନ୍+ସ୍ତ୍ରୀ. ଈ)—ଶଙ୍ଖଧାରିଣୀ—(a female) Holding a conch.

**ଶଙ୍ଖିନୀ ଡଙ୍କିନୀ**—ସ. ବି.—ଏକପ୍ରକାର ଉନ୍ମାଦ (ହି. ଶ.)—
Sañkhini ḍankini A kind of insanity.

[ ଦ୍ର—ଏଥିର ଲକ୍ଷଣ, ସର୍ବାଙ୍ଗରେ ପୀଡ଼ା, ନେତ୍ର ବ୍ୟଥା, ମୂର୍ଚ୍ଛା, କମ୍ପ, ଜ୍ୱାଳା, ହାସ୍ୟ, ପ୍ରଳାପ, ଅରୁଚି, ସ୍ୱରରୋଧ, ବଳ ଓ କ୍ଷୁଧା ନାଶ, ଜ୍ୱର ଓ ଶିରୋଭ୍ରମ ହି. ଶ. ]

**ଶଙ୍ଖିନୀ ଫଳ**—ସଂ. ବି.—(ବୈଦ୍ୟକ)—ଶିରୀଷ ଗଛ—
Śaṅkhinī phala  Acacia Lebbec.

**ଶଙ୍ଖିନୀ ବାସ**—ସଂ. ବି.—( ଶଙ୍ଖିନୀ=ଉପଦେବତାଙ୍କର+ବାସ= ଆବାସ)—ଶାଖୋଟ ବୃକ୍ଷ; ଶାହାଡ଼ା ଗଛ; ( ଶାହାଡ଼ାର ଅନ୍ୟ ନାମ ଭୂତାବାସ )—Streblus Asper (tree).
Śaṅkhinī bāsa

**ଶଙ୍ଖିପିତା(ତେ)ଇ**—ଦେ. ବିଣ ( ପୁଂ. ଓ ସ୍ତ୍ରୀ ) (ସଂ. ଶଙ୍ଖ ଓ ପୀତରୁ)—
Śaṅkhipitā(te)i  ଧଳା ଓ ହଳଦିଆ ବର୍ଣ୍ଣ ମିଶ୍ରିତ—
ଫ୍যାকাসে হলদে Of mixed white and yellow colour.
उजला पीला  ( ଯଥା—ଶଙ୍ଖିପିତେଇ ବିରାଡ଼ି । )

**ଶଙ୍ଖି ବିରାଡ଼ି**—ଦେ. ବି ( ପୁଂ. ଓ ସ୍ତ୍ରୀ )—ଧଳା ବିରାଡ଼ି—A white cat.
Śaṅkhi birārdi
সাদা বেরাল  उजला बिलाव(र)

**ଶଙ୍ଖି ମୋଡ଼ିବା**—ଦେ. କ୍ରି—ପ୍ରାଣୀକୁ ବଧ କରିବା ପାଇଁ ବା ଗଳାକୁ ମୋଡ଼ିବା—To wring out the neck of an animal with a view to taking away his life.
Śaṅkhi mordibā
গলা মোড়া
नरेटि मसोड़ना

**ଶଙ୍ଖୀ**—ସଂ. ବିଣ. ପୁଂ ( ଶଙ୍ଖ+ଇନ୍; ୧ମା., ୧ବ )—୧ । ଶଙ୍ଖଯୁକ୍ତ—1, Having a conch; connected with conch. ୨ । ଶଙ୍ଖଧାରୀ—2. Having a couch. ସଂ. ବି—୧ । ବିଷ୍ଣୁ—1. Bishnu. ୨ । ସମୁଦ୍ର—2. The Ocean. ୩ । ଶଙ୍ଖାରି—3. A trader in or manufacturer of conch shell bangles or shell-lac bangles. ୪ । ଏକପ୍ରକାର ବୃକ୍ଷ—4. Vinca Pusilla Murr (Kirtikar). ୫ । ସର୍ପବିଶେଷ (ହି. ଶ)—5. A kind of snake. ପ୍ରାଦେ. ( ବାଲେଶ୍ୱର )
Śaṅkhi
(ଶଙ୍ଖିନୀ—ସ୍ତ୍ରୀ)
(ଶଙ୍ଖୀଭୁଅଁଡ଼ି—ଅନ୍ୟ ପ୍ରାଦେ. ରୂପ) ବି—ସାମୁଦ୍ରିକ ମତ୍ସ୍ୟବିଶେଷ—A kind of sea fish. [ ଦ୍ର—ଏହା ଦେଖିବାକୁ ମନୋହର ବା କେବଣ୍ଡି ମାଛ ପରି । ]

**ଶଙ୍ଖୋଦଧି ମଳ**—ସଂ. ବି—ସମୁଦ୍ର ଫେନ ( ହି. ଶ )—
Śaṅkhodadhi mala  The bone of cuttle fish.

**ଶଙ୍ଖୋଦରୀ**—ସଂ. ବି—ଉଦ୍ୟାନର ଶୋଭା ପାଇଁ ଲଗା ଯିବା ଏକପ୍ରକାର ନାତି ବୃହତ ଓ ନାତି କ୍ଷୁଦ୍ର ତରୁ—A kind of mediumsized tree planted in gardens for show. [ ଦ୍ର—ଏହାର ପତ୍ର ଗୁଲୁଞ୍ଚ ପତ୍ର ପରି । ହଳଦିଆ ଓ ନାଲି ଫୁଲ ଭେଦରେ ଏ ଗଛ ଦୁଇ ପ୍ରକାର । ଏଥିର କଢ଼ମାନ ଅଙ୍ଗୁଠି ପରି ମୋଟ, ତେଣ୍ଟା ଓ ୩।୪ ଅଙ୍ଗୁଳ ଲମ୍ବ । ଏଥିର ଫୁଲ ଗୋଛ ହୋଇ ବାରମାସ ଫୁଟେ; କିନ୍ତୁ ଅଷାଢ଼ ମାସରେ ବେଶି ଫୁଟେ । ଫୁଲ ଗନ୍ଧହୀନ । ଏଥିର କାଠ ଟାଣୁଆ; ଏ ଗଛ
Śaṅkhodarī
गुलप(तु)री

ମଞ୍ଜିରୁ ଓ କଲମରୁ ଉତ୍ପନ୍ନ ଯାଏ । ବୈଦ୍ୟକମତରେ ଏହା କଫ, ବାତଶୂଳ ଓ କୋମଳରୋଗ ଦୂର କରେ—ହି. ଶ । ]

**ଶଙ୍ଖୁ**—ଦେ. ବି ( ସଂ. ଶଙ୍କୁ )—ଶଙ୍କୁ ( ଦେଖନ୍ତୁ ଅର୍ଥ ଦେଖ )
Śaṅkhu  Śaṅku ( See )

**ଶଙ୍ଖୁଆ**—ଦେ. ବିଣ (ସଂ.ଶଙ୍ଖ)—୧ । ଶଙ୍ଖାକୃତିବିଶିଷ୍ଟ—1. Conch-shaped. ( ଯଥା—ଶଙ୍ଖୁଆ ଆମ୍ବ ।) ୨ । ଶଙ୍ଖ ବର୍ଣ୍ଣବିଶିଷ୍ଟ—2. Conch coloured. (ଯଥା—ଶଙ୍ଖୁଆ କିମ୍ଭୀର ।) ୩ । ଶଙ୍ଖ ପରି ଧଳା—3. White as couch ଦେ. ବି—୧ । ଦେବ ମନ୍ଦିରରେ ଓ ବିବାହାଦି ଶୁଭ କାର୍ଯ୍ୟ ଉପଲକ୍ଷରେ ଯେ ଶଙ୍ଖ ବଜାଏ; ଶଙ୍ଖବାଦକ—1. A person who blows the conch on occasion of festivals. ( ଉ—ମଧୁପ ଶଙ୍ଖୁଆ ମଣ୍ଡି କରି ଭୂମ୍ବିକାରୁ ପ୍ରବେ ହେଉଛନ୍ତି—ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି । ) [ ଦ୍ର—ହିନ୍ଦୁର ପ୍ରତ୍ୟେକ ଶୁଭକର୍ମରେ ଓ ଦେବ ମନ୍ଦିରରେ ଓ ବିଶେଷ ଘଟନା ଉପଲକ୍ଷରେ ଶଙ୍ଖ ବଜାଯାଏ ଏବଂ ଏହା ମଙ୍ଗଳ ବାଦ୍ୟ ବୋଲି ପରିଚିତ । ] ୨ । ଶଙ୍ଖବିଷ—2. Arsenic. ୩ । ଏକପ୍ରକାର ଧଳାବର୍ଣ୍ଣର କୁମ୍ଭୀର—3 A kind of alligator with white hide and snout.
Śaṅkhuā
শঁাখের মতন
शंखके पैसा
যে শাঁখ বাজায়
शंख फुकनेवाला
শেঁকো
शंखिया
সাদা কুমীর  उजला मगर

**ଶଙ୍ଖୁଆ ମହୁରି**—ଦେ. ବି ( ସହଚର ) ( ସଂ. ଶଙ୍ଖବିଷ+ମଧୁର )—ଦୁଇଟି ବିଷାକ୍ତ ଦ୍ରବ୍ୟ; ଶଙ୍ଖିଆ ଶଙ୍ଖୁଆ ଓ ଭିକ୍ଷି ମହୁରି—Arsenic and aconite.
Śaṅkhuā mahurā
শেঁকো ও মেডাশিংঘা
शंखिया महुरा

**ଶଙ୍ଖୁଆ ମହୁରିଆ**—ଦେ. ବି ( ସହଚର )—ବିବାହାଦି ମଙ୍ଗଳ କାର୍ଯ୍ୟରେ ଶଙ୍ଖ ବଜାଇବା ବ୍ୟକ୍ତି ଓ ମହୁରି ବଜାଇବା ବ୍ୟକ୍ତି—The blower of a conch and the blower of a flute on any social festival.
Śaṅkhuā mahuriā
যে শাংখ বাজায় ও যে সানাই বাজায়
शंख बजानेवाला और सहनाई बजानेवाला

**ଶଙ୍ଖୁଡ଼ି**—ଦେ. ବି ( ସଂ. ସଙ୍କର; ଏସ୍ତୁ ତ. ସଙ୍କାର=ଅବର୍ଜନା କିମ୍ବା ସଞ୍ଚାର=ଲବଣ ମିଶ୍ରିତ)—୧ । ଜଳପକ୍ୱ ଖାଦ୍ୟ—1. Any food boiled in water ( e. g. rice, curry etc ). ( ଯଥା—ଭାତ, ଡାଲି, ତିଅଣ, ଜଳପକ୍ୱ ପିଠା । ) ୨ । ଉଚ୍ଛିଷ୍ଟ ଖାଦ୍ୟ—2. Part of any food left after having been tasted or partaken of. ଦେ. ବିଣ—୧ । ଜଳଦ୍ୱାରା ପକ୍ୱ ହୋଇଥିବା ( ଖାଦ୍ୟ )—1. ( food ) Boiled with water. ୨ । ଉଚ୍ଛିଷ୍ଟ (ଖାଦ୍ୟ)—2. (food) Already tasted and left. [ ଦ୍ର—ସାଧାରଣତଃ ଜଳରେ ସିଦ୍ଧ ଖାଦ୍ୟକୁ ଶଙ୍ଖୁଡ଼ି ଓ ଜଳରେ ସିଦ୍ଧ ହୋଇ ନ ଥିବା ଏବଂ ଘୃତ ଓ ତେଲରେ ପକ୍ୱ ହୋଇଥିବା ଖାଦ୍ୟକୁ ନଶଙ୍ଖୁଡ଼ି ବୋଲିଯାଏ । ଉଦାହରଣ ସ୍ୱରୂପ ଭାତ, ଡାଲି, ତିଅଣ, ମଣ୍ଡା, ଏଣ୍ଡୁରି, ଚକୁଳି, ଗୁଡ଼ୁଲର କ୍ଷୀର ଆଦି
Śaṅkhurdi
সকড়ী
सखरी

ଶଙ୍ଖୁଡ଼ି ଓ ମିଠାଇ, କାକରା, ପିଠା, ଅଭଡା, ଗହମ ଖିରି, ଚୁଡ଼ାଭଜା, ଗହମ ଓ ଅରୁଆ ଘୃତପକ୍ୱ ପିଠା, ଇତ୍ୟାଦି ଜଳଖିଆ ସାମଗ୍ରୀ ନିଶଙ୍ଖୁଡ଼ି। ଶଙ୍ଖୁଡ଼ି ଜିନିଷକୁ ଅନ୍ୟ ଲୋକ ବା ଶୂଦ୍ରାଦି ଛୁଇଁ ଦେଲେ ତାହା ମାରି ହୋଇଯାଏ; କିନ୍ତୁ ନିଶଙ୍ଖୁଡ଼ି ପଦାର୍ଥରେ ସ୍ପର୍ଶ ଦୋଷ ଲାଗେ ନାହିଁ। ଏ ଶଙ୍ଖୁଡ଼ି ନିଶଙ୍ଖୁଡ଼ିର ବାରଣ ସମ୍ବନ୍ଧରେ କେତେଗୁଡ଼ାଏ ଦେଶାଚାର ମଧ୍ୟ ଚଳେ। ଯଥା—ଭଜା କମ୍ପା ତରକାରୀ ଲୁଣ ପକ୍କା ରନ୍ଧା ହୋଇଥିଲେ ତାହା ଶଙ୍ଖୁଡ଼ି ହୋଇଯାଏ। କିନ୍ତୁ ଲୁଣ ପଡ଼ି ନ ଥିଲେ ତାହା ନିଶଙ୍ଖୁଡ଼ି ଥାଏ। ଗୁଡ଼ଜର ଓ ଘିଅର ପିଠା ଶଙ୍ଖୁଡ଼ିରେ ଗଣ୍ୟ ହୁଏ; କିନ୍ତୁ ଗହମ ଅଟାର ପିଠା ଓ ରୁଟି ନିଶଙ୍ଖୁଡ଼ି ଅଟେ। ଶଙ୍ଖୁଡ଼ି ପଦାର୍ଥକୁ ଖାଇବା ପୂର୍ବରୁ ବ୍ରାହ୍ମଣ ଚଳୁ କରେ; କିନ୍ତୁ ନିଶଙ୍ଖୁଡ଼ି ଖାଦ୍ୟ ପାଇଁ ଚଳୁ କରିବା ଦରକାର ହୁଏ ନାହିଁ। ଶଙ୍ଖୁଡ଼ି ହେଉ ବା ନିଶଙ୍ଖୁଡ଼ି ହେଉ, କୌଣସି ଖାଦ୍ୟକୁ ଜଣେ ବ୍ୟକ୍ତି ଖାଇଲେ ଅବଶିଷ୍ଟ ଖାଦ୍ୟ ଅଇଁଠା (ଉଚ୍ଛିଷ୍ଟ) ହୁଏ। କିନ୍ତୁ ଶଙ୍ଖୁଡ଼ି ପଦାର୍ଥ ଅଇଁଠା ହେବାର ନିୟମ ବଡ଼ କଡ଼ା। ଶଙ୍ଖୁଡ଼ି ପଦାର୍ଥକୁ ଇତର ଜାତୀୟ ବ୍ୟକ୍ତି ଛୁଇଁ ଦେଲେ ତାହା ଖାଇ ଯୋଗାଏ ନାହିଁ; କିନ୍ତୁ ନିଶଙ୍ଖୁଡ଼ି ପଦାର୍ଥ ସମ୍ବନ୍ଧରେ ସେତେ କଡ଼ା ନିୟମ ପ୍ରତିପାଳିତ ହୁଏ ନାହିଁ; ନିଶଙ୍ଖୁଡ଼ି ପଦାର୍ଥକୁ ଇତର ବ୍ୟକ୍ତି ଛୁଇଁଲେ ତାହା ମାରି ବା ଅଖାଦ୍ୟ ହୁଏ ନାହିଁ। ସମ୍ଭବତଃ ଲବଣ (କ୍ଷାର) ମିଶାଯାଇ ପକ୍ୱ ହୋଇଥିବା (ସକ୍ଷାର) ଖାଦ୍ୟକୁ ନୀଚଜାତର ଲୋକ ଛୁଇଁଲେ ତାହା ମାରି ହେବାର ସଙ୍କେତରୁ ଏ ଶଙ୍ଖୁଡ଼ି ଶବ୍ଦର ଉତ୍ପତ୍ତି ହୋଇଅଛି। ହିନ୍ଦୁସ୍ଥାନୀ ଓ ମାରବାଡ଼ୀମାନଙ୍କ ଦୃଷ୍ଟିରେ 'ରୁଟି' ମଧ୍ୟ ଶଙ୍ଖୁଡ଼ି ରୂପେ ଗଣ୍ୟ; କିନ୍ତୁ ଓଡ଼ିଶାରେ 'ରୁଟି' ନିଶଙ୍ଖୁଡ଼ି ରୂପେ ଗଣ୍ୟ; 'ଶଙ୍ଖୁଡ଼ି' ବସ୍ତୁ ସ୍ପର୍ଶ ଦୋଷ ଦୂଷିତ ହୁଏ, କିନ୍ତୁ 'ନିଶଙ୍ଖୁଡ଼ି'ରେ ସ୍ପର୍ଶ ଦୋଷ ଲାଗେ ନାହିଁ।]

**ଶଙ୍ଖୁ(ଙ୍ଖୋ)ଳା**—ଦେ. ବି—(ସ. ଶଙ୍ଖ; କାରଣ ପୂର୍ବେ ବନ୍ଧୁଘରକୁ **Sankhu(nkho)lā** ଶଙ୍ଖୁଳା ପଠାଯିବା ବୋଝ ଓ ବ୍ୟକ୍ତି ସଙ୍ଗେ ଜଣେ ଶଙ୍ଖୁଆ ଶଙ୍ଖ ବଜାଇ ବଜାଇ ଯାଉଥିଲା। ବିବାହାଦି ମଙ୍ଗଳ କାର୍ଯ୍ୟ ଉପଲକ୍ଷରେ ଜୋଇଁ, ଭଣଜା ଓ ମାମୁ ଆଦିଙ୍କ ନିକଟକୁ ପଠା ଯାଉଥିବା ନିମନ୍ତ୍ରଣ ପତ୍ର ଓ ଡାଲି ନେଇଯିବା ଭଣ୍ଡାରୀ ଓ ପଣ୍ଡା ସଙ୍ଗେ ସଙ୍ଗେ ଜଣେ ଶଙ୍ଖୁଆ ଶଙ୍ଖ ବଜାଇ ବଜାଇ ଯାଉଥିବା ପ୍ରଥାରୁ ଏ ଶବ୍ଦ ଜାତ ହୋଇଅଛି)।

ନିମନ୍ତ୍ରଣ ନ୍ୟୌତା ୧। ବିଶିଷ୍ଟ ବନ୍ଧୁବାନ୍ଧବଙ୍କ ନିକଟକୁ ବିବାହାଦି ଉତ୍ସବ ଉପଲକ୍ଷେ ପ୍ରେରିତ ସବିଧି ନିମନ୍ତ୍ରଣ—1. Formal or ceremonial invitation sent to particular relatives (e. g. maternal uncle, sister's son, son-in-law on occasions of marriage etc. ୨। ବନ୍ଧୁବାନ୍ଧବଙ୍କୁ ବିବାହାଦି ଉପଲକ୍ଷେ ନିମନ୍ତ୍ରଣ—2. Invitation sent to relatives on ceremonial occasions.

ତତ୍ତ୍ୱ ସଂଦେଶ ୩। ଝିଅ, ବୋହୂ ଓ ବନ୍ଧୁବାନ୍ଧବଙ୍କ କୁଶଳାଦିର ତତ୍ତ୍ୱ ନେବାପାଇଁ ପ୍ରେରିତ ଦ୍ରବ୍ୟ ସମ୍ଭାର—3. Presents sent along with formal enquiries to one's relatives. ୪। ଶାଶୁଘରେ ଥିବା ଝିଅ ନିକଟକୁ ପିତା ମାତାଙ୍କ ନିକଟରୁ ପଠାଯିବା ତତ୍ତ୍ୱ ବା ବୋଝ ଓ ଉପହାର—4. Presents sent by the parents to the daughter who has gone to her husband's house. ୫। ପିତ୍ରାଳୟକୁ ଯାଇଥିବା ବଧୂ ନିକଟକୁ ଶାଶୁ ଶଶୁରଙ୍କ ଘରୁ ପଠାଯିବା ତତ୍ତ୍ୱ ଓ ଉପହାର—5. Presents sent by the husband's family for making enquiries a bout the health of the daughter-in-law who has gone to her father's house—

କୁଶଳପ୍ରଶ୍ନ ଜିଜ୍ଞାସା ୬। କୌଣସି ବ୍ୟକ୍ତିର କୁଶଳ ପ୍ରଶ୍ନ କରଣ—6. Enquiry about a person's health etc.

ଆଦର ଆଦର ୭। ଆଦର; ଅଭ୍ୟର୍ଥନା—7. Regard.

ଦେ. ବଣ—ବିବାହାଦିକୁ ନିମନ୍ତ୍ରିତ (ବନ୍ଧୁ)—
ନିମନ୍ତ୍ରିତ ନ୍ୟୌତା ହୁଆ Invited to a social occasion.

[ଦ୍ର—ଜୋଇଁଙ୍କ ଘରକୁ ଓ ବଧୂ ପିତୃଗୃହରେ ଥିବା ସମୟରେ ତା ସ୍ୱାମୀଙ୍କ ଘରୁ ତା ପିତୃଗୃହକୁ ପଠାଯିବା ତତ୍ତ୍ୱକୁ ସାଧାରଣତଃ ଶଙ୍ଖୁଳା ବୋଲାଯାଏ। ଏଥିର ଉଦ୍ଦେଶ୍ୟ ସେଠାରେ ଥିବା ଆପଣାର ଜୋଇଁ ବା ଝିଅ ବା ବୋହୂଙ୍କ କୁଶଳସମ୍ବାଦ ବୁଝିବା। ଝିଅ ବା ବୋହୂଙ୍କ ପାଇଁ କଡ଼ା ବଳଯା, ଫୁଲମାଳ, ସିନ୍ଦୁର, ପାନିଆ, ଶାଢ଼ୀ, ମେଞ୍ଚିସୁଣ୍ଡା, ଖୁଞ୍ଚିଆ, ଫରୁଆ ଆଦି ଓ ନାନା ପ୍ରକାର ମୁଆଁ (ବର୍ତ୍ତମାନ ସଭ୍ୟତାଶିକ୍ଷାନୁସାରେ ଲାଭେଣ୍ଡର, ଏସେନ୍ସ, ସାବୁନ, ବାସନା ତେଲ ଓ ମିଠାଇ ଆଦି) ପ୍ରଭୃତି ସ୍ତ୍ରୀ-ବ୍ୟବହାର୍ଯ୍ୟ ପଦାର୍ଥମାନ ପଠାଯାଏ। ଜୋଇଁ ଘରକୁ ପାନ ଗୁଆ, ମାଛ, ଲୁଗାଯୋଡ଼ା ଆଦି ପୁରୁଷ-ବ୍ୟବହାର୍ଯ୍ୟ ପଦାର୍ଥମାନ ପଠାଯାଏ। ଝିଅ ପ୍ରଥମେ ଶାଶୁଘରକୁ ଯିବାର କେତେ ଦିନପରେ ତା ବାପ ଘରୁ ଶଙ୍ଖୁଳା ପଠାଯାଏ ଓ ବିବାହପରେ ନବବଧୂ କେତେକ ଦିନ ଶାଶୁଘରେ ରହି ବାପ ଘରକୁ ଫେରି ଯିବାର କେତେକ ଦିନ ପରେ ଶାଶୁଘରୁ ବଧୂ ନିକଟକୁ ବଧୂର ପିତ୍ରାଳୟକୁ ଶଙ୍ଖୁଳା ପଠାଯାଏ। ଏ ଶଙ୍ଖୁଳା ପଠାଯିବା ଗୋଟିଏ ଲୌକିକ ଆଚାର ଅଟେ। କୌଣସି ସ୍ତ୍ରୀ ଗର୍ଭବତୀ ହେଲେ ଗର୍ଭଧାରଣର ୮।୯ ମାସ ପରେ ପିତ୍ରାଳୟରୁ ଓ ବନ୍ଧୁବାନ୍ଧବମାନଙ୍କ ଘରୁ ପଠାଯିବା ଶଙ୍ଖୁଳାକୁ 'ଡଡ଼ଖିଆ' (ବଙ୍ଗଳା-'ସାଧ') ବୋଲାଯାଏ। ଝିଅର ଉଦ୍ଦେଶ୍ୟରେ ପଠାଯିବା ବୋଝକୁ 'ଝିଅ-ଶଙ୍ଖୁଳା' ବୋଲାଯାଏ। ଏହିପରି ବୋହୂ-ଶଙ୍ଖୁଳ ଓ ଜୋଇଁ ଶଙ୍ଖୁଳା ଶବ୍ଦମାନ ବ୍ୟବହୃତ ହୁଏ।]

ଶଙ୍ଖୁଳା ବେଭାର—ଦେ. ବି.—ନିମନ୍ତ୍ରଣ ସଙ୍ଗେ ଝିଅ, ଜୋଇଁ ଓ
Śaṅkhuḷā bebhāra ବୋହୂଙ୍କ ନିକଟକୁ ପଠାଯିବା ଉପଢୌକନ
तत्त्व सन्देश —Presents sent on occasions of formal invitations or enquiries issued to relatives [ଦ୍ର—ସାଧାରଣତଃ ଭଣ୍ଡାରୀଙ୍କ ଦ୍ୱାରା ଶଙ୍ଖୁଳା ବୋଝ ପଠାଯାଏ ।]
(ଶଙ୍ଖୁଳା ବୋଝ—ଅନ୍ୟରୂପ)

ଶଙ୍ଖୁଳିଆ—ଦେ. ବି—୧ । ଯେଉଁ ଭଣ୍ଡାରୀ ଶଙ୍ଖୁଳା ବୋଝ ନେଇ
Śaṅkhuḷiā ଜଣେ ଯାଏ—1. The bearer of presents
যে তত্ত্বনিয়ে যায় and formal invitations to relatives.
ভারিয়া ୨ । ରାଜାଙ୍କର ଭଣ୍ଡାରୀ ଭୃତ୍ୟ ବିଶେଷ—
2. A class of Raja's barber servants,

ଶଙ୍ଖୁଳିବା—ଦେ କ୍ରି (ସ. ଶଙ୍ଖ; ଶଙ୍ଖୁଳା ବୋଝ ସଙ୍ଗେ ଶଙ୍ଖ ଥାଉ
Śaṅkhuḷibā ଥିବାରୁ)—୧ । ବନ୍ଧୁବାନ୍ଧବମାନଙ୍କୁ ବିଶେଷ
निमन्त्रण करना ଉତ୍ସବାଦି ଉପଲକ୍ଷରେ ନିମନ୍ତ୍ରଣ କରିବା—1. To
न्यौता देना send formal invitations to relatives on special festive occasions, ୨ । ଝିଅ ଜୋଇଁ
तत्त्व पाठान ପ୍ରଭୃତିଙ୍କ ନିକଟକୁ ଶଙ୍ଖୁଳା ବୋଝ ପଠାଇବା—
संदेश भेजना 2. To send formal presents to the son-in-law and daughter. ୩ । କୌଣସି
কুশল প্রশ্নকরা ବନ୍ଧୁଙ୍କର କୁଶଳ ସମ୍ବାଦ ବୁଝିବା ବା ତତ୍ତ୍ୱ
जिज्ञासा करना ନେବା—3. To make enquiries about the health of one's relative or friend.
(ଉ—ପାଣ୍ଡବେ ଦୁର୍ଯ୍ୟୋଧନ ଜାନୁକୁ ଭାଙ୍ଗିଲେ, ଧୃତରାଷ୍ଟ୍ର ନୃପଙ୍କୁ ଶଙ୍ଖୋଳ ବାହାରିଲେ । କୃଷ୍ଣସିଂହ. ମହାଭାରତ. ଅାଦି ପର୍ବ ।) [ଦ୍ର—ବନ୍ଧୁ ଓ ସୁହୃଦ୍‌ମାନଙ୍କୁ ନିକଟେ ଯାଇ ବା ଲୋକ ପଠାଇ ଶଙ୍ଖୁଳିବାକୁ ହୁଏ ।] ୪ । ଖୋଜିବା;
ଲୋଡ଼ିବା—4. To search after, to seek. (ଉ—
খোঁজা ढूंढना ତେଣୁ ସେ ସ୍ୱାମୀକି ଶଙ୍ଖୁଳେ, ତା ଯୋଗ୍ୟବର
(ଶଙ୍ଖୁଳା ଯି[ହେ]ବା—କର୍ମବାଚ୍ୟରୂପ) ନାହିଁ ମିଳେ । ଜଗନ୍ନାଥ ଭାଗବତ ।)

ଶଙ୍ଖେ—ଦେ. ବିଣ—୧ । ଶଙ୍ଖ ମଧ୍ୟରେ ପୂର୍ଣ୍ଣ ହେବା ପରିମିତ (ଜଳ)—
Śaṅkhe 1. A conch-full of (water). ୨ । ଅତି ଅଳ୍ପ
একশাঁখ ପରିମିତ—2. Very little in quantity.
एकशंख (ଉ—ସମୁଦ୍ରକୁ ଶଙ୍ଖେ ପାଣି—ନ୍ୟାୟବଚନ; ଅର୍ଥାତ୍ ଯେଉଁଠାରେ ଜଳ ଅପ୍ରମେୟ, ସେଠାରେ ଏକ ଶଙ୍ଖପୂର୍ଣ୍ଣ ଜଳ ଢାଳିବା ଓ ନ ଢାଳିବା ସମାନ । ଧନୀକୁ ଧନ ଦେବା ନ୍ୟାୟ ଓ ତେଲିଆ ମୁଣ୍ଡରେ ତେଲ ଢାଳିବା ନ୍ୟାୟ)

ଶଙ୍ଖେଈ—ଦେ. ବି. ସ୍ତ୍ରୀ—ଗ୍ରାମଦେବୀ ବିଶେଷଙ୍କ ନାମ—
Śaṅkhei Name of a village Goddess.
(ଶଙ୍ଖେଶ୍ୱରୀ—ଅନ୍ୟରୂପ)

ଶଙ୍ଖୋଦଧି ମଳ—ସ. ବି—ସମୁଦ୍ର ଫେଣ (ହି. ଶ)
Śaṅkhodadhi maḷa The bone of cuttle fish; cuttle bone.

ଶଙ୍ଖୋଦରୀ—ସ. ବି (ବୈଦ୍ୟକ)—ବୋମ୍ବାଇ ପ୍ରଦେଶରେ ଗୁଲ୍‌ତୁରୀ
Śaṅkhodarī ନାମରେ ପରିଚିତ ନାତିବୃହତ୍ ବୃକ୍ଷ ବିଶେଷ—
गुलप(तु)री, सिस्थेकर A sort of tree. [ଦ୍ର—ଏହା ମଧ୍ୟମାକାର ବୃକ୍ଷ, ଏହାକୁ ଲୋକେ ବଗିଚାରେ ଶୋଭାପାଇଁ ଲଗାନ୍ତି । ଏହାର ପତ୍ର ଶୁକ୍ଳଶୁଣ୍ଡା ପତ୍ରପରି; ହଳଦିଆ ଓ ନାଲି ଫୁଲ ଭେଦରେ ଏ ଗଛ ଦୁଇ ପ୍ରକାର । ଏହାର କଣ୍ଟି ମାନ ଅଙ୍ଗୁଠି ପରି ମୋଟା, ଚେପଟା ଓ ୪।୫ ଅଙ୍ଗୁଳ ଲମ୍ବ ହୁଏ ଓ ଏଥିରେ ୭।୮ ଦାନା ଥାଏ । ଏହାର ଫୁଲ ଗୁଚ୍ଛ ଗୁଚ୍ଛ ହୋଇ ବାରମାସ ଫୁଟେ । ଅନ୍ୟ ମାସମାନଙ୍କ ଅପେକ୍ଷା ଆଷାଢ଼ ମାସରେ ବେଶି ଫୁଲ ଫୁଟେ । ଫୁଲ ଗନ୍ଧହୀନ । ଏହାର କାଠ ଦୃଢ଼ । ଏ ବୃକ୍ଷ ବୀଜରୁ ଓ କଲମରୁ ଉତ୍ପନ୍ନ ହୁଏ । ଏଥିର କାଥ କେତେ ରୋଗରେ ଦିଆଯାଏ । ବୈଦ୍ୟଙ୍କ ମତରେ ଏହା ଗରମ ଓ କଫ, ବାତ, ଶୂଳ ଆମବାତ ଓ କୋଷ୍ଠ ରୋଗରେ ହିତକର । ହି. ଶ ]

ଶଙ୍ଖୋଳା—ଦେ. ବି—ଶଙ୍ଖୁଳା (ଦେଖ)
Śaṅkhoḷā Śaṅkhuḷā. (See)

ଶଙ୍ଖୋଳିବା—ଦେ. କ୍ରି—ଶଙ୍ଖୁଳିବା (ଦେଖ)
Śaṅkhoḷibā Śaṅkhuḷibā. (See)
(ଉ—ପୁତ୍ରପତ୍ର ବନ୍ଧୁ ଲେଖା କୁଟୁମ୍ବ ଶଙ୍ଖୋଳ । ପ୍ରାଚୀ. ଶ୍ରୀଗୁରୁଭକ୍ତି ଗୀତା ।)

ଶଙ୍ଖୋଳି ଯିବା—ଦେ. ବି—କୁଶଳ ସମ୍ବାଦ ଜାଣିବା ନିମିତ୍ତ ବନ୍ଧୁ-
Śaṅkhoḷi jibā ବାନ୍ଧବଙ୍କ ଘରକୁ ସ୍ୱୟଂ ବୁଲିଯିବା—To call
দেখতে যাওয়া at the house of a person to enquire
देखने जाना how he is doing. (ଉ—ବଢ଼ାଇ ବୀଣାରେ ନାରଦ ବାମରେ ଶଙ୍ଖୋଳ ଯାଇ କି । ଭଞ୍ଜ. ବୈଦେହୀଶବିଳାସ ।)

ଶଚ୍(ଧାତୁ)—ସ.—କହିବା—
Śach (root) To speak.

ଶଚି(ଚୀ)—ସଂ. ବି. ସ୍ତ୍ରୀ (ଶଚ୍ ଧାତୁ=କହିବା+କର୍ତ୍ତୃ ଅ+ସ୍ତ୍ରୀ ଇ, ଈ;
Śachi(chī) ଯେ ମଧୁର ବାକ୍ୟ କହନ୍ତି)—୧ । ଇନ୍ଦ୍ରଙ୍କ ପତ୍ନୀ;
(ଅନ୍ୟ ସଂ ନାମ—ଇନ୍ଦ୍ରାଣୀ, ଐନ୍ଦ୍ରୀ, ପୁଲୋମଜା, ମାହେନ୍ଦ୍ରୀ, ଜୟବାହିନୀ) ଇନ୍ଦ୍ରାଣୀ—1. The wife of Indra, the king of gods.
[ଦ୍ର—ଏ ଦାନବରାଜ ପୁଲୋମାଙ୍କ କନ୍ୟା । ଇନ୍ଦ୍ରଙ୍କ ଔରସରେ ଏହାଙ୍କର ଯେଉଁ ପୁତ୍ର ହୋଇଥିଲା ତାର ନାମ ଜୟନ୍ତ । ଇନ୍ଦ୍ର ପଦ ତପସ୍ୟାଦ୍ୱାରା ଲଭ୍ୟ, ଅତଏବ କାଳକ୍ରମେ ଅନେକଙ୍କ ଭାଗ୍ୟରେ ଇନ୍ଦ୍ରତ୍ୱ ମିଳେ । କିନ୍ତୁ ଯେ ଇଚ୍ଛା ସେ ଇନ୍ଦ୍ର ହୁଅନ୍ତୁ, ଶଚୀ ଇନ୍ଦ୍ରଙ୍କର ପଦବୀସମ୍ପର୍କିତା (official) ପତ୍ନୀ । ଏଥିପାଇଁ ଢଗ ଅଛି—କେତେ ଇନ୍ଦ୍ର ଗଲେଣି ଏକା ଶଚୀ ବସିଛି ।] ୨ । ଶତମୂଳୀ; ଶତାବରୀ; ଛତୁଆରି—2. The climbing asparagus; Asparagus Racemosus. ୩ । ଶୁକ୍ଳା; ପିଡ଼ିଙ୍ଗଶାଗ (ହି. ଶ)—3. Trigonella Corniculata. ୪ । ବକ୍ତୃତ୍ୱ ଶକ୍ତି; ବାଗ୍ମିତା

(ହି. ଶ)—4. Eloqence. ୫ । ପ୍ରଜ୍ଞା; ବୁଦ୍ଧି; ଅକଲ (ହି. ଶ)—5. Intelligence. ଦେ. ବି—

ଶଚୀଦେବୀ **शचीदेवी** ୧ । ଶ୍ରୀଚୈତନ୍ୟଦେବଙ୍କର ମାତା ଓ ଜଗନ୍ନାଥ ମିଶ୍ରଙ୍କର ପତ୍ନୀ—1. The name of the mother of Śrī Chaitanya. [ଦ୍ର—ଶ୍ରୀଚୈତନ୍ୟଙ୍କ ମାତା ଶଚୀଦେବୀଙ୍କ ସାଂସାରିକ ଜୀବନ ସୁଖମୟ ନ ଥିଲା । ଏକାଦିକ୍ରମେ ତାଙ୍କର ଆଠଗୋଟି କନ୍ୟା ଜନ୍ମି ଗୋଟିକ ପରେ ଗୋଟିଏ ସମସ୍ତେ ଶିଶୁ ଅବସ୍ଥାରେ ମରି ଯାଇଥିଲେ; ନବମ ଗର୍ଭରେ ବିଶ୍ୱରୂପ ଜନ୍ମିଥିଲେ ଓ ସେ ବାଲ୍ୟକାଳରେ ସନ୍ନ୍ୟାସୀ ହୋଇ ଗୃହତ୍ୟାଗପୂର୍ବକ କେଉଁଆଡ଼େ ଚାଲିଗଲେ; ଦଶମ ଗର୍ଭରେ ଶ୍ରୀଚୈତନ୍ୟ ଜନ୍ମଗ୍ରହଣ କଲେ । ଶଚୀଦେବୀ ଚୈତନ୍ୟଙ୍କର ବାଲ୍ୟକାଳରେ ବିଧବା ହେଲେ । ଶଚୀଦେବୀ ଚୈତନ୍ୟଙ୍କ ବିବାହ କରାଇଲେ ଓ ପ୍ରଥମା ପୁତ୍ରବଧୂ ମୃତା ହେବାରୁ ମାତା ପୁତ୍ରକୁ ପୁନର୍ବାର ବିଷ୍ଣୁପ୍ରିୟାନାମ୍ନୀ ବାଳିକାଙ୍କ ସହିତ ବିବାହିତ କରାଇଲେ । କିନ୍ତୁ ଏହାର ଅଳ୍ପ ଦିନ ପରେ ଚୈତନ୍ୟ ସନ୍ନ୍ୟାସୀ ହୋଇ ଗୃହତ୍ୟାଗ କଲେ ଏବଂ ଶଚୀଦେବୀ ପୁତ୍ରବଧୂଙ୍କ ସହିତ ଘୋର ବିରହ-ଦୁଃଖରେ କାଳାତିପାତ କଲେ । ଚୈତନ୍ୟଦେବଙ୍କ ପୂର୍ବପୁରୁଷ ମଧୁକର ମିଶ୍ର ଉତ୍କଳାଧିପତି କପିଳେନ୍ଦ୍ରଦେବଙ୍କ ଭୟରେ ଯାଜପୁରରୁ ଯାଇ ବଙ୍ଗଦେଶର ଶ୍ରୀହଟ୍ଟରେ ବାସ କରୁଥିଲେ । ଶ୍ରୀହଟ୍ଟରେ ଚୈତନ୍ୟଦେବଙ୍କ ପିତା ଜଗନ୍ନାଥ ମିଶ୍ର ଜନ୍ମଗ୍ରହଣ କରିଥିଲେ ।] ୨ । (ସ୍ତ୍ରୀ)—ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—2. A name given to females. ୩। (ପୁଂ)—ଶଚୀନ୍ଦ୍ରର ଡାକନାମ—3. A name for calling a male named Śachīndra.

ଶଚ(ଚୀ)ତନୟ—ସଂ. ବି ( ୬ଷ୍ଠୀ ତତ୍ )—ଇନ୍ଦ୍ର ପୁତ୍ର; ଜୟନ୍ତ— Śachi(chī)tanaya Jayanta, the son of Indra. [ଶଚ(ଚୀ)ନନ୍ଦନ—ଅନ୍ୟରୂପ] ଦେ. ବି—ଶ୍ରୀଚୈତନ୍ୟଦେବ— Śrī Chaitanya.

ଶଚ(ଚୀ)ତୀର୍ଥ—ସଂ. ବି—ପ୍ରାଚୀନ ତୀର୍ଥବିଶେଷ ( ହି. ଶ )— Śachi(chī)tīrtha Name of an ancient holy bathing place. [ଦ୍ର—କାଳିଦାସଙ୍କ ଅଭିଜ୍ଞାନ ଶାକୁନ୍ତଳମ୍ ନାଟକର ପଞ୍ଚମାଙ୍କରେ ଅନ୍ତଃସତ୍ତ୍ୱା ଶକୁନ୍ତଳା ଦୁଷ୍ମନ୍ତଙ୍କ ରାଜଧାନୀକୁ ଆସିବାବେଳେ ଶଚୀତୀର୍ଥର ଜଳାବତାରରେ ବା ଇନ୍ଦ୍ରଘାଟରେ ସ୍ନାନ କଲାବେଳେ ତାଙ୍କ ହାତରେ ବନ୍ଧାଥିବା ଦୁଷ୍ମନ୍ତଙ୍କ ପ୍ରଦତ୍ତ ଅଭିଜ୍ଞାନମୁଦ୍ରିକାଟି ହଜି ଯାଇଥିବା କଥା ପ୍ରକାଶ କରିଥିବା ଉଲ୍ଲେଖ ଅଛି । ଏହା ଗଙ୍ଗାନଦୀର ଗୋଟିଏ ଅବତରଣ ଘାଟ ବୋଲି ଟୀକାକାର ଲେଖିଅଛନ୍ତି ।]

ଶଚ(ଚୀ) ନାଥ—ସଂ ବି—(୬ଷ୍ଠୀ ତତ୍)—୧ । ଇନ୍ଦ୍ର; ଦେବରାଜ— Śachi(chī)nātha 1. Indra, the king of the gods. ଶଚିନାଥ **शचीनाथ** ଦେ. ବି. ପୁଂ—୨ । ପୁରୁଷଙ୍କ ନାମ— (ଶଚୀ[ଚୀ]ପତି—ଅନ୍ୟରୂପ) 1. A name given to males. ୨ । ଶ୍ରୀ ଚୈତନ୍ୟଦେବଙ୍କ ପିତା ଜଗନ୍ନାଥ ମିଶ୍ର— 2. The father of Chaitanya.

ଶଚ(ଚୀ) ନାହା—ଦେ. ବି—(ସଂ. ଶଚୀନାଥ)—ଇନ୍ଦ୍ର— Śachi(chī) nāhā Indra; the king of the gods. ଶଚୀନାହା **शचिनाहा** [ଦ୍ର—ଯାହା ପଦେ ଲକ୍ଷ୍ମୀ ଲେଖିଥିଲେ, ଶଚୀନାହା ପଦ ଭୃତ୍ୟ କରି । ଜଗନ୍ନାଥଙ୍କ ସଙ୍ଗୀତ ।]

ଶଚନ୍ଦ୍ର—ଦେ. ବିଣ—ଛଚନ୍ଦ୍ର (ଦେଖ) Śachindra Chchachindra (See)

ଶଚ(ଚୀ) ମାତା—ଦେ. ବି. ସ୍ତ୍ରୀ—ଶଚୀ ଦେବୀ; (ସେ ଚୈତନ୍ୟଦେବଙ୍କ Śachi(chī) mātā ମାତା ଥିବାରୁ ଭକ୍ତମାନଙ୍କଦ୍ୱାରା ଜଗନ୍ମାତା ଶଚିମାତା ରୂପେ ଅଭିହିତା)—Mother Śachi, the mother of Śrī Chaitanya.

ଶଚୀନ୍ଦ୍ର—ସଂ. ବି ( ଶଚୀ+ଇନ୍ଦ୍ର )—୧ । (ଦ୍ୱନ୍ଦ୍ୱ) ଶଚୀ ଓ ଇନ୍ଦ୍ର— Sachīndra 1. Śachī and her husband Indra. ୨ । (୬ଷ୍ଠୀ ତତ୍, ଶଚୀଙ୍କର ଇନ୍ଦ୍ର ବା ସ୍ୱାମୀ) ଦେବରାଜ ଇନ୍ଦ୍ର—2. Indra, the husband of Śachi. ଶଚୀନ୍ଦ୍ର **शचीन्द्र** ଦେ. ବି. ପୁଂ—ପୁରୁଷଙ୍କ ନାମ—A name given to males. ଦେ. ବିଣ—୧ । ବିଦ୍ୟା ଅଭ୍ୟାସ ପଢ଼ିବା ବାହାଦୁର **बहादुर** ବିଷୟରେ ମନୋଯୋଗୀ ଓ ଅଧ୍ୟବସାୟୀ ( ଇଙ୍ଗ୍ଲିଶ ସଙ୍ଗେ ଭୁଲନା)—1. Attentive to and persevering in one's studies. ୨ । ବାହାଦୁର; ପ୍ରଶଂସନୀୟ— Praiseworthy.

ଶଜ—ଦେ. ବି—(ସଂ ଶସ୍ୟ)—୧ । ଅପକ୍ୱ ତାଳ ଓ ନଡ଼ିଆ ଆଦିର Śaja ଖୋଳ ମଧ୍ୟରେ ଥିବା କୋମଳ ପଦାର୍ଥ—1 The soft ଶାଁସ **कोआ** kernel inside the stone of raw palm and cocoanut fruits. ୨ । ସଜ (ଦେଖ) 2. Saja (See).

ଶଜନା—ଦେ. ବି.—(ସଂ ଶୋଭାଞ୍ଜନ )—ନାତିଦୀର୍ଘ ଗ୍ରାମ୍ୟ ଶାକତରୁ Śajanā ବିଶେଷ—The drumstick plant; the horse radish; Hyparanthera Moringa; Moringa Pterygosperma.

ସଂ. ନାମ—ଶିଗ୍ରୁ, ଶୋଭାଞ୍ଜନ, ତୀକ୍ଷ୍ଣଗନ୍ଧକ, ଅକ୍ଷୀବ; ମୋଚକ, ମୂଳକପର୍ଣ୍ଣୀ (ରକ୍ତ ଶଜନାର ସଂ. ନାମ—ମଧୁଶିଗ୍ରୁ)
ଶଜିନା
**सहजन, सहिंजन**
ମ. ଡାଲସେଙ୍ଗୁଳା
ଶେବଗା
ତେ ମୁନଗା, ମୁନଗା, ମୁନଗ।
ତା. ମୋରୁଙ୍ଗ, ମୋରୁଙ୍ଗାଇ
ଗୁ. ସର୍ଗବୋ, ସରଗବୋ

[ଦ୍ର—ଏହି ଗଛର କାଠ ଧଳା ଓ ଲଘୁ, ଡାଳ ନରମ; ଗଛରୁ ଅଠା ବାହାରେ । ପତ୍ର ଦଳ୍ପତ୍ର; ଫଳ (ଛୁଇଁ)ର ମଧ୍ୟରେ ପକ୍ଷଯୁକ୍ତ ତ୍ରିକୋଣାକାର ମଞ୍ଜି ଥାଏ । ଏହାର ପତ୍ର, ଫୁଲ ଓ ଫଳକୁ ଲୋକେ ଖାଆନ୍ତି । ଏହାର ମୂଳ ରସୁଣ ଓ ଔଷଧରେ ବ୍ୟବହୃତ ହୁଏ । ଏଥିର ଛାଲ ମଧ୍ୟ ଔଷଧରେ ଲାଗେ । ଫୁଲ ଶ୍ଳେଷ୍ମାର ପଥ୍ୟ ଓ ରେଚକ । ଡାଳ ପୋତିଲେ ଗଛ ହୁଏ । ଗଛ ମୂଳେ ପାଣି ପ

ଫୁଟାଇଲେ ଗଛରେ ଶୁଅଁ ବାଳ ପୋକ ଲାଗନ୍ତି ନାହିଁ । ପ୍ରତିବର୍ଷ ଏ ଗଛର ଗଣ୍ଡିରେ ଓ ଡାଳରେ ଶୁଅଁବାଳ ପୋକ ବ୍ୟାପିଯାଇ ଏ ଗଛର ପତ୍ରଯାକ ଖାଇଯାଆନ୍ତି । ଏ ଛୁଇଁର ମଞ୍ଜିରୁ ଏକପ୍ରକାର ତେଲ(Ben oil) ବିଲାତରେ ପ୍ରସ୍ତୁତ ହୋଇ ଘଣ୍ଟାର କଳ ଆଦିରେ ଦିଆଯାଏ । ଡାଳ ପୋତିଲେ ଯେଉଁ ଗଛ ହୁଏ, ତାହାକୁ ଶଜନା ଓ ମଞ୍ଜିରୁ ଯେଉଁ ଗଛ ହୁଏ, ତାହାକୁ ମୁଗୁନା (ବ. ନାଜନା) ବୋଲାଯାଏ । ମୁଗୁନାଛୁଇଁ ଶଜନାଛୁଇଁ ପରି ସୁସ୍ୱାଦୁ ନୁହେଁ । ମୁଗୁନା ଛୁଇଁ ବାରମାସୀ ଫଳେ । ଶଜନାଛୁଇଁ ଶୀତ, ବସନ୍ତ ଓ ଗ୍ରୀଷ୍ମ କାଳରେ ଫଳେ । ଏ ଗଛର ଗଣ୍ଡିରୁ ଏକପ୍ରକାର ଅଠା ବାହାରେ । ବୈଦ୍ୟଶାସ୍ତ୍ରମତେ ଶଜନା ଅଗ୍ନିପ୍ରଦୀପକ ଓ ବାୟୁ, କ୍ରିମି, ବିଷ, ପ୍ଲୀହା, ଗୁଲ୍ମାଦିର ନାଶକ । ଏହାର ମଞ୍ଜି ଚକ୍ଷୁର ହିତକର । ବୈଦ୍ୟଶାସ୍ତ୍ରମତରେ ଏହା କଟୁ-ମଧୁର-ତିକ୍ତ-ରସ, କଟୁବିପାକ, ତୀକ୍ଷ୍ଣ, ଉଷ୍ଣବୀର୍ଯ୍ୟ, ଲଘୁ, ଅଗ୍ନିଦୀପକ, ରୁଚିକର, ବିଦାହୀ, ଧାରକ, ଶୁକ୍ରବର୍ଦ୍ଧକ, ରକ୍ତପିତ୍ତ-ପ୍ରକୋପକ ଓ ଚକ୍ଷୁର ହିତକର । ଏହା କଫ, ବାୟୁ, ବିଦ୍ରଧି, ଶୋଥ, କ୍ରିମି, ମେଦୋଦୋଷ, ଅପଚୀ, ବିଷ, ପ୍ଲୀହା, ଗୁଲ୍ମ, ଗଳଗଣ୍ଡ ଓ ବ୍ରଣ ପ୍ରଭୃତି ନାଶକ । ଶଜନାର ବଲ୍କଲ ଓ ପତ୍ରର ରସ ବେଦନାପ୍ରଶମକ । ଶଜନାର ମଞ୍ଜି ଚକ୍ଷୁର ହିତକର, ବିଷଘ୍ନ ଓ ଅବୃଷ୍ୟ । ରକ୍ତ ଶଜନା ପତ୍ରର ରସର ନାସ ନେଲେ ଶିରେରୋଗ ଭଲ ହୁଏ । ଶଜନାର ମଞ୍ଜିକୁ 'ଶ୍ୱେତ ମରିଚ' ବୋଲାଯାଏ । ବୈଦ୍ୟଶାସ୍ତ୍ରମତରେ ଶ୍ୟାମ, ଶ୍ୱେତ ଓ ରକ୍ତବର୍ଣ୍ଣ ଭେଦରେ ଶଜନା ତିନି ପ୍ରକାର । ]

**ଶଜନା ଅଠା**—ଦେ. ବି—ଶଜନା ଗଛର ଗଣ୍ଡିର ଝାଳରୁ ବାହାରିବା ନିର୍ଯ୍ୟାସ—Gum exuded from the trunk of Śajanā
Śajanā athā
শজনা আঠা **सहिंजन गोंद**

**ଶଜନା ଗଛ ମୂଳେ କୁଢ଼େଇଲି ପାଉଁଶ, ତତେ ଦେଖି ମୋରି ଭାରି ଶରଧା**—ଦେ. ଉଗ (ବ୍ୟଙ୍ଗ୍ୟ)—ରସହୀନ, ଛନ୍ଦୋହୀନ, ଯତିହୀନ, ଅମିତ୍ରାକ୍ଷର କବିତା ପ୍ରତି ବ୍ୟଙ୍ଗ—An ironical couplet spoken in travesty of poetasters composing blank verse.
Śajanā gachha mūle kurḍheili pāunśa, tate dekhi mora bhāri Śaradhā
টেবিলের সূত্রধর কাপড়ের তাঁতি

**ଶଜନା ଛୁ(ଛୋ)ଇଁ**—ଦେ. ବି—ଶଜନା ଗଛରେ ଫଳିବା ଛୁଇଁ—The pods of horse radish.
Śajanā chhu (chho)iṅ
শজিনা ডাঁটা **सहिंजनका छिमी**
ଦେ.—ମୁନଗ ପାଣ୍ଡୁ

**ଶଜନା ଫୁରୁ ଫୁରି**—ଦେ.ବି—ଶଜନା ଗଛରଗଣ୍ଡିରୁ ମନକୁ ଝଡ଼ି ପଡ଼ିଥିବା ଶୁଖିଲା ଛେଲି ବା ବକଳ—(ଏହା ଔଷଧରେ ଲାଗେ)—Dry peelings of the bark of a Śajanā tree.
Śajanā phuru phuri
শজিনার শুকনো ছাল **शहजन बकलोइया**
[ଶଜନା ଛଲି—ଅନ୍ୟରୂପ]

**ଶଜନା ଶାଗ**—ଦେ. ବି - ଶାଗରୂପେ ବ୍ୟବହୃତ ଶଜନାଗଛର ପତ୍ର—The leaves of Śajanā tree fried and eaten as potherb.
Śajanā śāga
শজিনার শাক **शाहिजनाका शाक**
[ଦ୍ର—ଏହା ରୁଚିକର ଓ ଜୀର୍ଣ୍ଣକାରକ ।]

**ଶଜାରୁ**—ପ୍ରାଦେ.—(ମେଦିନୀପୁର)—ବି—(ସଂ. ଶଲ୍ଲକୀ;ତୁଳ. ବ. ସଜାରୁ ଓ ଛେଦାରୁ)—ଝିଙ୍କ—Porcupine.
Śajāru

**ଶଜିନା (ଇତ୍ୟାଦି)**—ଦେ. ବି—ଶଜନା ଇତ୍ୟାଦି (ଦେଖ)
Śajinā (etc) Śajanā etc (See)

**ଶଞ୍ଚାଣ**—ଦେ. ବି –(ସଂ. ଶ୍ୟେନ; ସଞ୍ଚାନ)—ଛଞ୍ଚାଣ; ଶ୍ୟେନ ପକ୍ଷୀ; ବାଜପକ୍ଷୀ—Hawk (bird).
Śañchāṇa
বাজ; শ্যেন পাখী **बाज; शिकरा**

**ଶଟ୍ (ଧାତୁ)**—ସଂ.—୧ । ଗମନ କରିବା—1. To go. ୨ । ଗତି କରିବା—2. To move. ୩ । ବୃଦ୍ଧି ପାଇବା—3. To grow; to increase. ୪ । ଅବସନ୍ନ ହେବା—4. To be pulled down or spent up; to become exhausted. ୫ । ଭେଦକରିବା 5. To pierce.
Śaṭ (root)

**ଶଟ୍**—ଦେ. ଅ—(ଧ୍ୱନ୍ୟନୁକରଣ)—୧ । ହଠାତ୍ ଗତି କରି ବାହାରି ଯିବା ପ୍ରକାରରେ—1. Suddenly (going off). ୨ । ଶଟ୍ ଶବ୍ଦ କରି (ଯଥା, ଦୃଢ଼ ହୋଇ ମରା ଯାଇଥିବା ଠିପି ବୋତଲରୁ ବାହାରି ଯିବା ଶବ୍ଦ)—2. With a loud jerking or snapping sound like that of a cork coming out of a bottle to which it had been tightly fitted. ଦେ. ବି.—(ସଂ. ଶଠ; ଶାଠ୍ୟ)—୧ । ମେଳ; ଯୋଗ ସାଜସ—1. Collusion; combination. ୨ । କୁମନ୍ତ୍ରଣା; ଷଡ଼୍ଯନ୍ତ୍ର—2. Conspiracy; plot. ୩ । ପ୍ରତାରଣାପୂର୍ଣ୍ଣ କାର୍ଯ୍ୟ—3. Fraud. ୪ । ସ୍ତ୍ରୀ ପୁରୁଷଙ୍କ ମଧ୍ୟରେ ଅବୈଧ ବା ଗୁପ୍ତ ପ୍ରଣୟ; ପାପ ଦୋସ୍ତି—Illicit or secret love between two lovers. ୫ । ପରସ୍ପରଙ୍କ ମଧ୍ୟରେ ଠାରଠୋରଦ୍ୱାରା ଭାବ ବିନିମୟ; ଠାର—5. Mutual exchange of messages by secret gestures. ୬ । ଅଭିସାର—6. Assignation for the secret meeting of two lovers; love tryst. ୭ । ଗୁପ୍ତ ପରାମର୍ଶ—7. Secret consultation. ଦେ. ବି.—ଶାଠ୍ (ଦେଖ)—Śāṭ (See)
Śaṭ
শট্, শট করে **शट, शट करके**
ଶଟ୍କନା, ଶଟ୍କନ ଶଟ୍କର ଶଟ୍କର୍ }—ଅନ୍ୟରୂପ
শাট **सट**

**ଶଟ୍(ଟ୍)କଟ୍**—ବୈଦେ. ବି—(ଇଂ. ଶର୍ଟ୍ କଟ୍)—୧ । କୌଣସି ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା ପାଇଁ ପଡ଼ିଥିବା ରାସ୍ତା ମାନଙ୍କ ମଧ୍ୟରୁ ସିଧା ରାସ୍ତା—1. Straight road from one place to another. ୨ । ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାପାଇଁ ସବୁଠାରୁ କମ ଦୂରତ୍ୱର

ବାଟ—Shortest route. ବିଣ.—୧ । ସବୁଠାରୁ ଅଳ୍ପ ଦୂରତାବିଶିଷ୍ଟ—1. Shortest. ୨ । ସିଧା (ରାସ୍ତା)—2. Straight (road).

ଶଟ୍(ର୍ଟ୍)କଟ୍ ନିଶ (ମୁଛ)—ଦେ.ବି—୧। ଖଣ୍ଟ ଖଣ୍ଟ ହୋଇ କଟା ଯାଇ-
Sat(rt)-kat nisa (muchha) ଥିବା ନିଶ—1. Short-cut mustaches. ୨ । ଶେଷ ଭାଗରୁ କଟା ହୋଇ-ଥିବା ନିଶ—2. Mustaches cropped at the ends.

ଶଟକି(କ)ରି—ଦେ. ଅ—ଶଟ୍ (ଦେଖ)
Sat-ki(ka)ri Sat (See)
[ଶଟକଳା(କ),ଶଟ୍‌ଦ(ଧ)ସ୍—ଅନ୍ୟରୂପ]

ଶଟ୍‌କା—ଦେ. ବି—(ଶଟ୍ ଧାତୁ=ଶବ୍ଦ କରିବା; ହୁକାରୁ ଯେଉଁ ବାଟେ
Sat-kā ଶଟ୍‌କା सटक ଧୂଆଁ ଶବ୍ଦ କରେ)—୧ । ହୁକାର ଚିଲମରୁ କମ୍ବୁର ଜଳପାତ୍ରକୁ ଧୂଆଁ ଅସିବାର ନଳ—1. The main tube or cylinder of a hubble bubble. ୨ । ବନ୍ଧିଶିରେ ମାଛ ଧରିବା ପାଇଁ ବ୍ୟବହୃତ ଧନୁସାକାର ଯନ୍ତ୍ର ବିଶେଷ । [ ଦ୍ର—ଏହା ଧନୁର ଅକାରରେ ବନସିର ଲମ୍ବ ସୂତ ସଙ୍ଗେ ଏପରି ବନ୍ଧା ହୋଇ ଭୂମିରେ ପୋତା ହୋଇ ଥାଏ ଯେ, ସୂତ୍ରର ଅଗରେ କଣ୍ଟାରେ ଲାଗିଥିବା ଖୋପକୁ ମାଛ ଖାଇବା ମାତ୍ରକେ କଣ୍ଟା ଓ ବକ୍ରିତ ଶଟ୍‌କା ଜୋରେ ଉଠି ମାଛକୁ ଉପରକୁ ଟିକି ସ୍ଥଳ ଭାଗରେ ଆଣି ଫିଙ୍ଗି ଦିଏ ।]—A bow-like contrivance joined to the angling string, which starts with a jerk as soon as the fish swallows the bait attached to an angling hook.

ଶଟ୍‌କା(କେ)ଇବା—ଦେ. କ୍ରି—(ସଂ ଶଟ୍ ଧାତୁ=ଶବ୍ଦ କରିବା;
Sat-kā(ke)iba ଶଟକିବା କ୍ରିୟାର ଣିଜନ୍ତ ରୂପ)—କୌଣସି
ଶটকান सटकाना ଦ୍ରବ୍ୟର ଦୃଢ଼ ସଲଗ୍ନ ହୋଇଥିବା ବସ୍ତୁକୁ (ଯଥା—ବୋତଲରୁ ଠିପିକୁ) ହଠାତ୍ କାଢ଼ି ଦେବା; ଶବ୍ଦ ଧ୍ୱନି ପୂର୍ବକ କୌଣସି ଗର୍ତ୍ତରୁ ଠିପିକୁ ହଠାତ୍ କାଢ଼ି ଦେବା—To suddenly take out a thing from inside another (as a cork from a bottle) with a jerk and snapping sound.

ଶଟ୍‌କି—ଦେ. ବି—ଶଗଡ଼ରେ ଯୋଖି ଯିବା ବଳଦଙ୍କ ବେକର ପଘାକୁ
Sat-ki କାତୁଲିରେ ଅଟକାଇବା ପାଇଁ ବ୍ୟବହୃତ ପଘାରେ
দড়ীৰ ফাঁস ଲାଗିଥିବା ଖଣ୍ଟ ଲକ୍ଷ୍ମ-ବଳୟ—A small rope-
जोता ring attached to the neck-rope of a
(ଶଟ୍‌କି[ଖା]ବିଉଡ଼ା[ଡ଼ୀ]—ଅନ୍ୟରୂପ) bullock yoked to a cart and which is slipped into the pin at the end of the yoke

ଶଟ(ର୍ଟ୍)ହାଣ୍ଡ—ବୈଦେ. (ଇଂ.) ବି—ବକ୍ତାଙ୍କ ଉଚ୍ଚାରିତ ପ୍ରତ୍ୟେକ
Sat(rt)-hānd ଶବ୍ଦକୁ ଓ ଅକ୍ଷରକୁ ସଙ୍ଗେ ସଙ୍ଗେ ଲିପିବା ପାଇଁ
সর্টহ্যাণ্ড ବ୍ୟବହୃତ ଏକପ୍ରକାର ସାଙ୍କେତିକ ରେଖାକ୍ଷର ବିଶିଷ୍ଟ
सॉटहैंड ବର୍ଣ୍ଣମାଳା; ସଂକ୍ଷିପ୍ତ ଲେଖା ।—Short-hand. [ଦ୍ର—ଏହା ଏବେ ଅବିଷ୍କୃତ ହୋଇଅଛି । ବକ୍ତାଙ୍କୁ ଶଟ୍‌ହାଣ୍ଡ (ରେଖାକ୍ଷର)ରେ ଲିପି କେଲ ପରେ ତାକୁ ସାଧାରଣ ଭାଷାରେ ତର୍ଜମା କରାଯାଏ]

ଶଟ—ସଂ. ବି (ଶଟ୍ ଧାତୁ=ଭେଦ କରିବା+କର୍ତ୍ତୃ. ଅ)—୧ । ଅମ୍ଳ
Sata ରସ—1. Acid or sour taste. ୨ । ଏକ ପ୍ରାଚୀନ ଦେଶର ନାମ (ବୃ. ସ)—2. Name of an ancient country. ଦେ. ବି—ଶଟ୍ (ଦେଖ)—Sat (See)

ଶଟ(ଟି)କିବା—ଦେ. କ୍ରି (ସଂ. ଶଟ୍ ଧାତୁ)—୧ । ହଠାତ୍ ଜୋର୍
Sata(ti)kiba ସହିତ ବାହାରିଯିବା (ଯଥା—ବୋତଲ ମୁହଁରୁ
সটকান ଠିପି); ରମକିଯିବା—1. To go off with a
सटकना snapping sound. ୨ । ପଳାୟନ କରିବା; ଦ୍ରୁତଗତି କରିବା—2. To move with a great force; to run away; to flee away. ୩ । ମୃତ ହେବା—3. To die. (ଯଥା—ଅମୁକ ଲୋକ ବସନ୍ତରେ ଶଟକି ଗଲେ ।)

ଶଟପଟା(ଟେ)ଇବା—ପ୍ରାଦେ. (ବାଲେଶ୍ୱର) କ୍ରି—(ସଂ. ଶଟ୍ ଧାତୁ=
Satapatā(te)iba ଜୀର୍ଣ୍ଣ ହେବା ଓ ପିଠ୍ ଧାତୁ କ୍ଲେଶକ; ଭୂଲ
শিটপিটান ସଂ. ସଙ୍କଟପନ୍ନ)—୧ । ଲଜ୍ଜା ଓ ଭୟ ଯୋଗୁଁ କ୍ଳିଷ୍ଟ
शिटपिटाना ହେବା; ଅପ୍ରତିଭ ହେବା; ହତ୍‌ବୁଦ୍ଧି ହୋଇ ଯିବା—1.To be unnerved through fear. ୨ । ଭୟ-କମ୍ପିତ ହେବା—2. To tremble through fear.

ଶଟର୍ ପ(ବ)ଟର୍—ଦେ. ବି—ଶଟାବଟା (ଦେଖ)
Satar pa(ba)tar Satābatā (See)

ଶଟା—ସଂ. ବି (ଶଟ୍ ଧାତୁ=ବୃଦ୍ଧି ପାଇବା+କର୍ତ୍ତୃ. ଅ+ଆ)—୧ ।
Satā ସିଂହ ଓ ଘୋଟକ ଆଦିଙ୍କ ମସ୍ତକ ଓ ବେକ ଆଦି କେତେକ ସ୍ଥାନରେ ବଢ଼ିଥିବା କେଶ; କେଶର—1. Manes (of horse or lion). ୨ । ମନୁଷ୍ୟ ମୁଣ୍ଡର ଜଟା—2. Clotted or matted hair grown on the head. ୩ । ଅଣ୍ଡିରା ଗଛର (ଯଥା—ତାଳ ଗଛର) ଜଟା—3. The long flower-stalks of some trees (e. g. male palm tree); ament; catkin.

ଶଟାର୍(ଙ୍ଗ୍, ନ୍)—ଦେ. କ୍ରି. ବିଣ (ସଂ. ଝଟିତ; ହଠାତ୍)—୧ । ଝଟ୍;
Satār(ng, n) ଭୂମିରେ ହଠାତ୍ ଲମ୍ବ ହୋଇ ଦଣ୍ଡବତ୍ ଶୋଇ
শটান, শটান করে ପଡ଼ିବା ପ୍ରକାରେ; ଲଟ୍‌କିନା—1. (to lie
हठात, सटसे the ground) Prostrate and suddenly. (ଯଥା—ସେ ଶଟାଙ୍ଗ୍ ଶୋଇ ପଡ଼ିଲା ।) ୨ । କୌଣସି ସ୍ଥାନରୁ ହଠାତ୍ ଚାଲିଯିବା ପ୍ରକାରେ—2. (to leave a place) All on a sudden. (ଯଥା—ସେ ସେଠୁଁ ଶଟାଙ୍ଗ୍ ଚାଲି ଗଲା ।) ୩ । କୌଣସି ସ୍ଥାନକୁ ହଠାତ୍ ପଶିଯିବା

[ଶଟାଂ, ଶଟାଙ୍ଗ୍, ଶଟାସ୍ କିନା, କିନ, କିର, କର, ଦିସ୍, ଧସ୍ —ଅନ୍ୟରୂପ]

ପ୍ରକାରେ—3. (to enter a place) All on a sudden. (ଯଥା—ସେ ଘର ଭିତରକୁ ଶଟାକ୍ ପଶି ଗଲା ।) ୪ । ସିଧାସିଧି କୌଣସି ସ୍ଥଳରେ ଗତି କରିବା ପ୍ରକାରେ—4. Straightway. (ଯଥା—ମୁଁ କଟକରୁ ଶଟାଙ୍ଗ୍ ପୁରୀ ଗଲି ।)

ଶଟାପ(ସ)ଟ୍—ଦେ. ଅ (ଧ୍ୱନ୍ୟନୁକରଣ)—୧ । ଶଟ୍ ଶଟ୍ ଶବ୍ଦ କରି—
Śaṭāpa(sa)ṭ 1. By making cracking sound.
শটানস্ত্র সটাপট ୨ । (ସଂ. ଝଟିତି) ଝଟ୍; ଶୀଘ୍ର—2. Sharp

ଶଟା(ଠା)ବଟା—ଦେ. ବି (ସଂ. ଶଠ୍ ଧାତୁ ଓ ବଞ୍ଚନ)—୧ । ଭଣ୍ଡାଭଣ୍ଡି;
Śaṭā(ṭhā)baṭā ଠକାଠକି—1. Inveigling; cheating.
যেমন তেমন, টেনেটুনে [ଦୃ—କହିଲା କଥା ମୋ ମନ୍ତ୍ରିଙ୍କ ଶଠା-
অঁটাবঁটাঃ জোসো ବଟା—କୃଷ୍ଣସିଂହ, ମହାଭାରତ, ସଭା ।]
୨ । (ସଂ. ଶଠ୍ ଧାତୁ=ଗତି କରିବା ଓ ବଟ୍ ଧାତୁ=ବେଷ୍ଟନ କରିବା) ଯେନ ତେନ ପ୍ରକାରେ କୌଣସି କାର୍ଯ୍ୟର ସମାଧାନ—2. Accomplishment of any matter by any means whatever. ୩ । କୌଣସି କାର୍ଯ୍ୟକୁ ଅଳ୍ପ ବନ୍ଦୋବସ୍ତରେ ଅତି କଷ୍ଟରେ ସମାଧାନ କରିବା—3. Accomplishment of any work anyhow i. e. with great
হাএবান difficulty. ୪ । ଗୋଳମାଳ; ଜଞ୍ଜାଳ—4. Con-
ঝঞ্ঝট fusion. [ଦୃ—ସେ ସ୍ଥାନରେ ତ ଅଛି ଏତେ ଶଠା ବଠା—କୃଷ୍ଣସିଂହ, ମହାଭାରତ, ବନ ।] ୫ । ହଇରାଣ—
তুচ্ছ 5. Trouble ଦେ. ବିଣ—୧ । ତୁଚ୍ଛ; ହେୟ—
সটর পটর 1. Negligible. ୨ । ଅପ୍ରୟୋଜନ—2. Unnecessary. ୩ । ହଇରାଣିଆ—3. Troubled.

ଶଟା(ଠା)ବଟା କରିବା—ଦେ. କ୍ରି—୧ । ଭଣ୍ଡାଭଣ୍ଡି କରିବା—
Śaṭā(ṭhā)baṭā kariba 1 To inveigle; to cheat
টেনেটুনে কাষ কবা ୨ । କଷ୍ଟେ ସୃଷ୍ଟେ କୌଣସି କାର୍ଯ୍ୟକୁ ସମାଧାନ
অ'টাব'টা করনা କରିବା—2. To accomplish a work anyhow. ୩ । ଯେ କୌଣସି ଉପାୟରେ କୌଣସି କାମକୁ ଶେଷ କରିବା—3. To accomplish a work by means fair or foul. (ଯଥା—ମୋ ହାତରେ ପଇସା କଉଡ଼ି ନ ଥିଲା, ଏଣେ କନ୍ୟା ଦାୟରୁ ମୁକ୍ତି ନ ପାଇଲେ ରକ୍ଷା ନାହିଁ । ଏଥିପାଇଁ
হাএরান কবা ଶଠାବଠା କରି ଟଙ୍କାଅଣି ବିଭାଘରଟି କରିଦେଲି ।]
হৈরান করনা ୪ । ହଇରାଣ କରିବା—4. To trouble; to harass.

ଶଟିତ—ସଂ. ବିଣ—(ଶଟ୍ ଧାତୁ+କର୍ମ ତ)—ପର୍ଯ୍ୟୁଷିତ; ବାସି—
Śaṭita Stale; musty.

ଶଟି(ଠି)ବା—ଦେ. କ୍ରି. ୧ । (ଶଟ୍ ଧାତୁ=ଗତି କରିବା)-ମୃତ ହେବା—
Śaṭi(ṭhi)ba 1. To die. ୨ । (ସଂ. ଶଠ୍ ଧାତୁ)—ଭଣ୍ଡିବା;
সটকান খতমহোনা ଠକାଇବା—2. To cheat; to in-
ঠকান ফুসলানা veigle.

ଶଟୀ(ଟି,ଠି)—ସଂ. ବି.—ବୈଦ୍ୟକ—(ଶଟ୍ ଧାତୁ+କର୍ତ୍ତୃ+ଇ, ଈ)—୧ ।
Śaṭī(ṭi,ṭhi) ଗନ୍ଧଶୁଣ୍ଠି—1. Curcuma Zeodaria; Zeodary
শঠী, গন্ধশঠী [ଦ୍ର—ଏହି ହରିଦ୍ରାଦି ବର୍ଗର ବନ୍ୟ ଶାକ
কচুর, কচুরকেচুরি ବିଶେଷର ମୂଳ; ହିମାଳୟ ଓ ଚ
কালি হলদী ଓଡ଼ିଶାର ଗଡ଼ଜାତମାନଙ୍କରେ ବହୁଳ ଭାବରେ
ଅନ୍ୟ ସଂ. ନାମ—ଗନ୍ଧମୂଳା, ଜନ୍ମେ । ଏହା କର୍ପୂର ଗନ୍ଧୀ; ଏହାକୁ
ଗନ୍ଧମୂଳୀ, ବେଧମୁଖ୍ୟ,ଗନ୍ଧ, କୁଟି ଧୋଇ ଶୁଖାଇଲେ ଏଥିରୁ ଏକ
କଚୁର, କର୍ଚ୍ଚୁର, ସୁଗନ୍ଧା, ପ୍ରକାର ପାଲୁଅ ହୁଏ । ପୂର୍ବେ ବକମ
ଶଠୀ, ସଟିକା, ଦ୍ରାବିଡ଼, କାଠର ରଙ୍ଗରେ ଏହି ପାଲୁଅକୁ
କଲ୍ପକ, ପଲାଶ, କର୍ବୁର, ରଙ୍ଗାଇ ଅବିର କରା ଯାଉଥିଲା ।
କର୍ଚ୍ଚୂର, ଷଢ଼ାଶିକା, ସୁଭଦ୍ରା, ପାଲୁଅ ଅଗ୍ନିଦୀପକ, ରୁଚିକର, କଟୁ-
ବହୁଗନ୍ଧା, ପୃଥୁପଲାଶିକା ତିକ୍ତରସ, ସୁଗନ୍ଧଯୁକ୍ତ, ଉଷ୍ଣବୀର୍ଯ୍ୟ
ପା—ଜରଂବାଦ, ଜଡବାର ଓ ଲଘୁପାକ । ଏହାଦ୍ୱାରା ଗଳଗଣ୍ଡ,
ଆ—ଅରଲୁଲ୍କା ଫୁଟ୍ ଗଣ୍ଡମାଳା, ବ୍ରଣ, କାଶ, ବାୟୁ, କଫ
ଢେ—ଦାଗ୍ରେସଲ୍ଲୁ । ଓ ମୁଖର ଜଡ଼ତା ନିବାରିତ ହୁଏ ।]
ଶଟିକା } ଅନ୍ୟରୂପ । ୨ । ଆମ୍ବ ଅଦା (ହି. ଶ); ଅମ୍ବ
ଶଠୀକା } ହଳଦିଆ ଗଦ—2. Curcuma Amada. ୩ । ସୁଗନ୍ଧବାଳା; କୁରୁବେଲ (ହି. ଶ) 3. Pavonia Odorata. ୪ । ଗନ୍ଧପଲାଶୀ (ହି. ଶ)—4. A species of Zeodary.

ଶଟକ—ସଂ. ବି.—(ବୈଦ୍ୟକ)—ଶାଳତଣ୍ଡୁଳ ଚୂର୍ଣ୍ଣ, ଘୃତ ଓ ଜଳ ମିଶ୍ରିତ
Śaṭṭaka ଲେପ ବିଶେଷ; ପିଠଉ । [ଦ୍ର—ଏହାକୁ ରୁଟି ଉପରେ ଲେପି ପୁଣି ସେଣ୍ଟିକୁ ଚଢ଼ାଇ କରି ବେଲ ଘିଅରେ ଛାଣିଲେ ଫେଣୀ ତିଆରି ହୁଏ]—A liquid made of rice-flour mixed with ghee and water.

ଶଟ୍ୟ—ଦେ. ବି.—ଶାଠ—
Śaṭya Practice; formal rites and acts.

ଶଠ୍ (ଧାତୁ)—ସଂ.—ବଞ୍ଚନା କରିବା—
Śaṭh (root) To cheat.

ଶଠ—ସଂ. ବିଣ. ପୁଂ—(ଶଠ୍ ଧାତୁ+କର୍ତ୍ତୃ. ଅ)—୧ । ବଞ୍ଚନାକାରୀ;
Śaṭha ପ୍ରତାରକ; ଧୂର୍ତ୍ତ—1 Sly; cheating; knavish; fraudulent; deceitful; crafty; treacherous. ୨। ପାଜି; ଖଳ—2. Wicked; wily. ୩ । ଜଡ଼ ବୁଦ୍ଧି (ହି. ଶ)—3. Stupid. ୪ । ଅଳସୁଆ (ହି. ଶ)—4. Idle. ବି. ପୁଂ—୧ । ଦୁର୍ଜନ ବ୍ୟକ୍ତି—1. A wicked person ୨ । ଧୂର୍ତ୍ତ ବ୍ୟକ୍ତି; ଠକ—2. A cheat; swindler. ୩ । ଗୂଢ଼ ବିପ୍ରିୟକାରୀ ନାୟକ; ଯେଉଁ ନାୟକ ବାହାରେ ଜଣେ ସ୍ତ୍ରୀ ପ୍ରତି ପ୍ରେମ ଦେଖାଏ ଓ ଅନ୍ତରରେ ଅନ୍ୟ ଜଣକୁ ପ୍ରେମ କରେ—3. A lover who professes love for a woman while loving another in his heart; a wily lover. ୪ । ଉଦାସୀନ ବ୍ୟକ୍ତି—4. An unconcerned person; an indifferent person. ୫ । କୁଙ୍କୁମ; ଜାଫ୍ରାନ—5. Saffron.

୬ । ଟଗର; ଟଗର ( ଫୁଲ ଗଛ )—6. Taberna Montana; Coronaria(flower-tree)-୭। ଲୌହ-7. Iron. ୮ । ଧୁସ୍ତୁର; ଧାତୁରୁ—8.Thorn apple. ୯ । ଇସ୍ପାତ (ହି ଶ)—9. Steel. ୧୦ । ରକ୍ତଚିତ୍ରକ (ହି. ଶ)—10 Plumbago Zeylanica. ୧୧ । ତାଳ ବୃକ୍ଷ (ହି.ଶ)—11. Palmyra. ୧୨ । ଅଁଳା-12. Embelic Myrobalan (tree) ୧୩ । ମଧ୍ୟସ୍ଥ ବ୍ୟକ୍ତି (ହି. ଶ)—13 A mediator

ଦେ ବି—ଶଟ୍ (ଦେଖ)—Śat (See)

ଶଠ କରିବା—ଦେ. କ୍ରି—(ସଂ. ଶଠ) ୧ । ପାପ ପ୍ରଣୟ କରିବା—1.To Śatha kariba have illicit love ୨ । ଠାରାଠାରି କରିବା; সাটকরা सटकरना ଠାରଦ୍ୱାରା ପରସ୍ପର ଭାବ ବିନିମୟ କରିବା—2. To exchange messages by means of secret gestures ୩ । ଅଭିସାର କରିବା—3.To make an amatory assignment for meeting a lover; to tryst.

ଶଠତା(ତ୍ୱ)—ସଂ. ବି (ଶଠ+ଭାବାର୍ଥେ ତା; ତ୍ୱ)—୧ । ଖଳତା—Śathatā(twa) 1. Wickedness; knavery. ୨ । ପ୍ରତାରଣା; ଠକାମି—2. Cheating; deception; deciet; craftiness. ୩। ବିଶ୍ୱାସଘାତକତା—3. Treachery.

ଶଠତାଚରଣ—ସଂ. ବି (୬ଷ୍ଠୀ ତତ୍)—ପ୍ରତାରଣାପୂର୍ଣ୍ଣ ବ୍ୟବହାର—Śatnatācharaṇa Fraudulent conduct; practice of deceit.

ଶଠତାଚାରୀ—ସଂ. ବି. ପୁଂ—ପ୍ରତାରକ—Śathatāchāri Practising fraud; deceiving. (ଶଠତାଚାରିଣୀ—ସ୍ତ୍ରୀ; ଶଠତାଚାର, ଶଠତାଚାରିତା—ବିଶେଷ୍ୟ)

ଶଠ ନାୟକ—ସଂ. ବି—ଶଠ ୩ (ଦେଖ) Śatha nāyaka Śatha 3. (See)

ଶଠାଙ୍ଗା(ନ୍ୱା)—ସଂ. ବି—ପାଠା; ଅକାଳବିନ୍ଧ ଲତା (ହି. ଶ) Śathāngā(nwā) Stephania Hernandifolia (creeper).

ଶଠାବଟା—ଦେ. ବି—ଶଟାବଟା (ଦେଖ) Śathābatā Śaṭābaṭā. (See)

ଶଠି(ଠୀ)—ସଂ. ବି—ଶଟୀ (ଦେଖ)—Śaṭi. (See) ଦେ. ବି—Śathi(ṭhi) ଷଠି (ଦେଖ)—Shaṭhi. (See) (ଶଟିକା, ଶଠୀକା—ଅନ୍ୟ ସଂ. ରୂପ)

ଶଠିବା—ଦେ. ବି—ଶଟିବା (ଦେଖ) Śaṭhibā Śatibā. (See)

ଶଠୋଦରକ—ସଂ. ବିଣ. ପୁଂ—ଧୂର୍ତ୍ତ (ହି. ଶ) Śaṭhodaraka Crafty. ( ଶଠୋଦରିକା—ସ୍ତ୍ରୀ )

ଶଡ଼(ଢ଼)—ଦେ. ବି (ସଂ. ଶଠ ଧାତୁ)—୧ । ଶଳା; ଗୋପନ Śarḍa(rḍha) ପରାମର୍ଶ—1. Secret consultation. সড় ୨ । ଗୋପନରେ ମେଳ—2. Secret combination. सुलूप ୩ । ଏକ ବା ଦୁଇ ମାସ୍ତୁଲ ଥିବା ଛୋଟ ଜାହାଜ—सुलुप 3. Sloop. ଦେ.ବିଣ—(ସଂ.ଶଠ୍ ଧାତୁ=ଭେଦ କରିବା)—পাকা ଯେଉଁ ମାଟିର ପାତ୍ରରେ ଦୁଧ, ଘିଅ ବା ତେଲ ଆଦି ରହୁଥିବାରୁ पोसा ଉକ୍ତ ଦ୍ରବ୍ୟର ଛିଦ୍ରମାନ ଭେଦ କରୁଥିବାରୁ ସେଥିରେ ପରେ ଘିଅ ଆଦି ରଖିଲେ ଉକ୍ତ ଘିଅ ଆଦିକୁ ଉକ୍ତ ପାତ୍ର ଶୋଷି କରି ନାହିଁ—3. (an earthen pot) Which has been used for keeping oil etc. and the pores of which are well saturated; impermeable (earthen pot); (a pot) rendered impervious to ghee or oil. (ଦ୍ର—ଶଡ ଘଡ଼ିରେ ବା ଶଡ଼ ହାଣ୍ଡିରେ ଘିଅ ଓ ତେଲ ରଖାଯାଏ) ।

ଶଡ଼କ—ଦେ. ବି—(ସଂ. ଶଠ୍ ଧାତୁ ଗତି କରିବା)—ସଡ଼କ (ଦେଖ) Śarḍaka Sarḍaka. (See)

ଶଡ଼ କରିବା—ଦେ. କ୍ରି—କୌଣସି ପାତ୍ରରେ ଘିଅ ବା ତେଲ ଆଦି Śarḍa kariba ପୂରାଇ ଏହାକୁ ଘଡ଼ାଦିର ଅଭେଦ୍ୟ କରିବା—পাকান To put oil or ghee etc in an earthen पोसा करना pot,so that it will not soak further oil etc in future; to render an earthen pot impervious to ghee, oil etc.

ଶଡ଼କା—ଦେ. ବିଣ (ସଂ. ଶୀର୍ଣ୍ଣାଙ୍ଗ କମ୍ରା ସଂ. ସଙ୍କୁ; ସଂକ୍ଷ୍ୟଙ୍ଗ)—Śarḍakā ୧ । ଶୀର୍ଣ୍ଣ ଓ ପାସ ହୋଇ ବଢ଼ି ଯାଇଥିବା (ଗଛ)—বোগাপটকা; লিকলিকে 1. Slender and tall. (tree) सड़ंग; सुडुङ्ग ୨ । (ପୁଂ.) ଶୀର୍ଣ୍ଣ ଦେହ ଓ ଡେଙ୍ଗା -(ବ୍ୟକ୍ତି)—(ଶଡ଼କୀ—ସ୍ତ୍ରୀ) 2.Weak and tall (person). (ଦ୍ର—ଗଛ ଓ ମନୁଷ୍ୟ ଶଡ଼କା ହୋଇ ବଢ଼ିଗଲେ ଅସୁନ୍ଦର ଦେଖାଯାଆନ୍ତି) । চুমুক ଦେ. ବି—(ଧ୍ୱନ୍ୟନୁକରଣ; ବାୟୁରବାର ଧ୍ୱନିରୁ) ଏକ सुड़क ବାଘୁର (ତରକାରି ଓ ଡାଲି ଆଦି ତରଳ ଖାଦ୍ୟଦ୍ରବ୍ୟର) ପରିମିତ; ଚୋପ୍‌ଡ଼ା; ସୋଡ଼କା—One big sip of a liquid food.

ଶଡ଼ଙ୍ଗ(ଙ୍ଗା)—ଦେ. ବିଣ—ଶଡ଼କା (ଦେଖ) Śarḍanga(ngā) Sarḍak, (See)

ଶଡ଼ଦିଆଲି—ଦେ. ବି (ସଂ. ଶାର୍ଦ୍ଦୂଳ; ଏଥିରେ ଶାର୍ଦ୍ଦୂଳର ଚିହ୍ନ ଲେଖା Śarḍadiāli ଥିବାରୁ)—ଦୁଆର ମୁହଁର ଚଉକାଠ ଉପରେ ପଡ଼ିବା ପଟା—Lintel. ବୈଦେ. ବି—ସଡ଼ଦିଆଲି (ଦେଖ)—Sarḍa dibāla, (See)

ଶଡ଼ା(ଢ଼ା)—ଦେ. ବିଣ (ସଂ. ଶଠ୍ ଧାତୁ=ଅବସନ୍ନ ହେବା, ବା ଶଠ= Śarḍā(rḍhā) ଅମ୍ଳରସ, ଅଳ୍ପ ଆଦି ଶଡ଼ା ହେଲେ ଅମ୍ଳ পচা सड़ा ହୁଏ)—୧ । ବିକୃତ; ପର୍ଯ୍ୟୁଷିତ (ଅନ୍ନ ବ୍ୟଞ୍ଜନାଦି)-1. Become stale or musty; decomposed. ୨ । ପୋଚଥା; ପୋଚ୍; ପୋଚରି; ପଚ୍ (ଫଳାଦି)—2. Rotten; putrefied. ୩ । ପୂଜପୂର୍ଣ୍ଣ; ପଚ୍

( ଘାଅ, ଘଚ )—3. Putrid; gangrened; gangrenous; full of pus; purulent.
(ଶଢ଼ୀ—ସ୍ତ୍ରୀ) ପୁଂ—ଯେଉଁ ବ୍ୟକ୍ତିର ଦେହରେ ଘଚ ଅଛ
ପଚା ସଡାହୁଆ ଥାଚବା ଯୋଗୁଁ ଦେହ କଦର୍ଯ୍ୟ ହୋଇଥାଏ-
(a person) Whose body is full of rotten sores.

**ଶଡ଼ା(ଡ଼େ)ଇ**—ଦେ. ବ—ଶଡ଼ାଇ (ଦେଖ)
Sarḍā(rḍe)i Sarḍhāi (See)

**ଶଡ଼ା(ଢ଼ା,ଡ଼େ,ଢ଼େ)ଇବା**—ଦେ. କ୍ରି—୧। ଶଢ଼ବାକ୍ରିୟାର ଣିଜନ୍ତରୂପ-
Sarḍā(rḍhā,rḍe,rḍhe)ibā 1. To cause to rot.
ପଚାନ ସଡାନା ୨। କୌଣସି ବସ୍ତୁକୁ (ଯଥା—ନଳିତା, ଛଣପଟ ଅବବା ଖୋଲଯୁକ୍ତ ଡାଙ୍ଗକୁ) ଜଳରେ କେତେ ଦିନ ବୁଡ଼ାଇବା—2. To keep a thing, such as jute stem, hemp, immersed in water for some days. [ଦ୍ର—ନଳିତା, ଛଣପଟ, ବାଉଁବଣିଆ ଗଛକୁ କେତେଦିନ ପାଣିରେ ଶଡ଼ାଇଲେ ତାହାର ଖୋଲ ଶଡ଼ିଯାଏ ଓ ତନ୍ତୁମାନ ଅଲଗା ହୋଇ ବାହାରିଯାଏ।] ୩।
ପାକାନ ପୋସନା (ପାକ ଅବସ୍ଥା) ଶଡ଼ କରିବା (ଦେଖ)
ସର୍ବନାଶକରା ସତ୍ୟାନାଶକରନା 3. Sarḍa karibā (See)
୪। (ଲକ୍ଷଣାର୍ଥ) ବିନାଶକରିବା; ଲୋପକରିବା—
4. To destroy (କ—ସଢ଼ାଇବାକୁ ତା ବଢ଼ାଇ କହି, ଦୁର୍ଗନ୍ଧ ଯେବେ ଗୈବାଇବ ଘଣ୍ଟି—କବିସୂର୍ଯ୍ୟ. ସଙ୍ଗୀତ।)

**ଶଡ଼ା(ଢ଼ା) କାନ**—ଦେ.ବ—ପାଚିଥିବା ବା ପୂଜମୟ କାନ—Ear full
Sarḍā(rḍhā) kāna ପଚା କାନ ସଡା କାନ of pus.
[ ଶଡ଼ା(ଢ଼ା)କାନା, ଶଡ଼ା(ଢ଼ା)କାନିଆଁ—ପୁଂ. ବଣ.—ଶଡ଼ା(ଢ଼ା)-କାଣୀ, ଶଡ଼ା(ଢ଼ା) କାନେଇ—ସ୍ତ୍ରୀ. ବଣ।]

**ଶଡ଼ା ଗନ୍ଧ**—ଦେ ବ (ସ୍ତ୍ର ଶଟ+ଗନ୍ଧ)—ପଚା ପଦାର୍ଥର ଦୁର୍ଗନ୍ଧ—
Sarḍā gandha Putrid smell; foul smell.
ପଚାଗନ୍ଧ ସଡ଼ାଗଂଧ

**ଶଡ଼ା ଘା**—ଦେ. ବ—ଯେଉଁ ଘାରେ ମାଂସ ଶଡ଼ି ଯାଇଥାଏ—
Sarḍā ghā Putrid or rotten sore.
(ଶଡ଼ା ଘାଅ—ଅନ୍ୟରୂପ) [ ଦ୍ର—ଏହିପରି ଶଡ଼ା ଫଳି,
ପଚା ଘା ସଡା ଘାବ ଶଡ଼ା ପଣ, ଶଡ଼ା ଆମ୍ବ ଆଦି ଶବ୍ଦ ହୁଏ।]

**ଶଡ଼ା ପଙ୍କ**—ଦେ. ବ—୧। ଯେଉଁ ପଙ୍କରେ ପତ୍ର, ଗଛ ଓ ଫଳ ଆଦି
Sarḍā Panka ପଚି ଶଡ଼ି ଯାଇଅଛି—1. Slime or
ପଚା ପାଙ୍କ ସଡା କୀଚଡ mud full of decomposed matter. ୨। ବହୁକାଳରୁ ଅପରିଷ୍କୃତ ଥିବା ନଳୀ ଆଦିର ଦୁର୍ଗନ୍ଧ ଓ କୀଟଯୁକ୍ତ ପଙ୍କ—2. Foul slime of long uncleansed cesspools and gutters.

**ଶଡ଼ା ପ(ପୋ)ଚର**—ଦେ ସ.ବଣ(ସହଚର; ଶଟ ଓ ପର୍ଯ୍ୟୁଷିତ)-ପର୍ଯ୍ୟୁଷିତ
Sarḍā pa(po)charā ଓ ଶଡ଼—Musty and putrid.
[ଶଡ଼ାପଚର, ଶଡ଼ାପୋଚ; ଶଡ଼ାପୋଚଡ଼ା(ସ୍ତ୍ରୀ)—ଅନ୍ୟରୂପ]
ପଚାଗଳା ସଡାପଚା

**ଶଡ଼ା ମାଛ**—ଦେ ବ—ଯେଉଁ ମାଛ ଏକାଧିକ ଦିନ ରହିବାରୁ
Sarḍā māchha ପର୍ଯ୍ୟୁଷିତ ହୋଇଥାଏ—Rotten fish.
ପଚା ମାଛ ସଡା ମାଛ (ଦ୍ର—ଏହିପରି ଶଡ଼ା ମାଂସ ଆଦି ଶବ୍ଦ ହୁଏ।)

**ଶଡ଼(ଢ଼ି)ଙ୍ଗ**—ଦେ. ବ (ସ. ଶୀର୍ଣ୍ଣାଙ୍ଗ ବମ୍ବା ସ. ଯଷ୍ଟ୍ୟଙ୍ଗ ବମ୍ବା ଶଲ୍ୟ)—
Sarḍi(rḍhi)nga ୧। କଣ୍ଡା; ମାକୁ, କେଉଟମାନେ ଜାଲ
କାଁଡ଼ିୟା; କେଁଡ଼େ; ମାକୁ ବୁଣିବା ସମୟରେ ସୂତା ଗୁଡ଼ାଅ ଯାଇଥିବା
ନାଟୀ ଯେଉଁ ମୁନିଆ କାଠି ଧରି ସେଥିରୁ ସୂତା ଫିଟାଇ ଜାଲ ବୁଣନ୍ତି—[ଦ୍ର—ଏ କାଠିର ଦୁଇ ମୁଣ୍ଡ ମୁନିଆ ଓ ଚିରା, ମଝିରେ ଛିଦ୍ର ହୋଇ ଏଥିରେ ସୂତା ଗୁଡ଼ାଅ ହୋଇଥାଏ।)—
A rod in which thread is twisted in such a manner that the thread can be used gradually in weaving a fishing net; shuttle for weaving net. ୨।
ତାକୁଡ, ତାଫିଲ କେଉଟମାନେ ବାଆଁ ହାତରେ ଯେଉଁ କାଠଶଳିକ
ଢରକୀ ଧରି ଡାହାଣ ହାତରେ କଣ୍ଡାଦ୍ୱାରା ଜାଲର ଘରକୁ ଫାଶ ଦେଇ ବୁଣନ୍ତି—2. A slender rod held by the left hand while a net is woven by the shuttle held in the right hand.
ପ୍ରାଦେ. (ଗଡ଼ଜାତ) ବ.—ଶାଳଗଛର ଫଳ—The fruit or berry of Shorea Robusta.

**ଶଢ଼ଙ୍ଗା**—ଦେ. ବଣ—୧। ଶଢ଼କା (ଦେଖ)—1. Sarḍakā (See)
Sarḍingā ୨। ଛଡ଼ିନ୍ଦା (ଦେଖ)—2. Chhardindā (See). (ଯଥା—ଟୋକାଟା ଶଢ଼ଙ୍ଗା ହୋଇ ବଢ଼ିଛି।)

**ଶଢ଼ଙ୍ଗା ବାଉଁଶ**—ଦେ. ବ—ଲମ୍ବ ଓ ସରୁ ବାଉଁଶ—Long and
Sarḍingā bāunśa slender bamboo; Bambusa
ବାଶନୀ ବାଁଶ ସୁରଙ୍ଗୀବାଂସ Vulgaris.

**ଶଢ଼(ଢ଼ି)ପଡ଼ିବା**—ଦେ. କ୍ରି—(ସ ଶଠ୍ ଧାତୁ=ଅବସନ୍ନ ହେବା)—
Sarḍi(rḍhi)parḍibā ବ୍ରଣ ବା କ୍ଷତଯୁକ୍ତ ସ୍ଥାନରେ) ବେଦନା
ଖସେପଡ଼ା ଅନୁଭୂତ ହେବା; ଫାଟି ପଡ଼ିବା—To have a
ଦର୍ଦ୍‌କରନା sensation of aching or bursting in a
ଫଟଜାନା part of the body where there is a big sore or ulcer.

**ଶଢ଼(ଢ଼ି)ବା**—ଦେ. କ୍ରି (ସଂ. ଶଠ୍ ଧାତୁ=ଅବସନ୍ନ ହେବା, ଛେଦ
Sarḍi(rḍhi)bā କରିବା; ସଂ. ଶଟ=ଅମ୍ଳରସ; ଶଡ଼ା ପଦାର୍ଥ
ପଚା ଅମ୍ଳ ହୁଏ, ପ୍ରା. ସଡ୍ ଧାତୁ=ପଚିବା)—୧। (ଖାଦ୍ୟାଦି)
ସଡନା ପଚିବା; ପର୍ଯ୍ୟୁଷିତ ହେବା—1. To rot; to fer-
(ଖଢ଼(ଢ଼ି)ଥିବା—ଅନ୍ୟରୂପ) ment; to putrefy; to be decomposed. ୨। (ଘଚ ଆଦି) ପୂଜଯୁକ୍ତ ହେବା—

2. To fester; to rankle; to be full of pus or purulent. ୩ । ( ଫଳ ଅର୍ଥ ) ପକ୍ୱ ହେବା ପରେ ନଷ୍ଟ ହେବା—3. To rot (said of ripe fruits) ୪ । (ଲକ୍ଷଣାର୍ଥ) ଅତି ଦୁଃଖ ବା କ୍ଲେଶ ଦ୍ୱାରା ଅଭିଭୂତ ହେବା; କଷ୍ଟପାଇବା; ହଢ଼ଗଢ଼ ହେବା—4. To be afflicted with pain. [ଉ—ଲଲାଟକୁ ହେ ! ଲଭେ ମୁଁ ଗଳୁଛି ସଢ଼ି । କବିସୂର୍ଯ୍ୟ. ବଳଦେବ ରଥ, ଲ ଗୀତ]
୫ । ଦୁଃଖରେ ଶୀର୍ଣ୍ଣ ହେବା—5. To become emaciated through grief. [ ଉ—ଫୁଙ୍କି ଦେଲେ ଉଡ଼ି ଯିବା ପରି ଶଢ଼ି ଅଛି ତନୁ ବାହୁଗ୍ଯ । କବିସୂର୍ଯ୍ୟ. ବଳଦେବରଥ ।] ୬ । ନଷ୍ଟ ହେବା; ବିନାଶପ୍ରାପ୍ତ ହେବା-6. To be ruined. [ଉ—କାହିଁକି ଛାଡ଼ି ନରେ ଇଷ୍ଟ କଥା ଶଢ଼ି, ଅନିଷ୍ଟ କଥା କରି ଯାଥିଛି ଶଢ଼ି— କୃଷ୍ଣସିଂ. ମହାଭାରତ. ବନ ।] ୭ । ମୁଗ୍ଧ ହେବା; ପ୍ରୀତ ହେବା—7. To be charmed or enamoured. [ ଉ—ତୋ ବନସ୍ତ ବଚନେ ଗଲିଣି ମୁଁ ଶଢ଼ି । କୃଷ୍ଣସିଂ. ମହାଭାରତ ବନ ।]
[ଶଢ଼ିଯିବା—ଅନ୍ୟରୂପ]

ଶଢ଼େଇ—ଦେ. ବି—ଶଢ଼ାଇ (ଦେଖ)
Śardei Śardhāi. (See)

ଶଢ଼—ଦେ. ବି—ଶଡ଼ (ଦେଖ)
Śardha Śarda. (See)

ଶଢ଼ କରିବା—ଦେ. କ୍ରି—କୌଣସି ମାଟିର ନୂଆ ପାତ୍ରରେ ପ୍ରଥମେ ଘୃତ Śardha karibā ବା ତେଲ ଆଦି ରଖିବା ଦ୍ୱାରା ତାହାର ପାକାନ ଛିଦ୍ରମାନଙ୍କୁ ଉକ୍ତ ଦ୍ରବ ଦ୍ୱାରା ଏପରି ପୂର୍ଣ୍ଣ କରାଇବା, ପୌସନା ଯେ, ସେହି ପାତ୍ରରେ ଭବିଷ୍ୟତରେ ଘୃତ ଆଦି ରଖିଲେ ତାହା ଅଉ ଶୋଷି ନେବ ନାହିଁ—To cause the pores of a new earthen pot to be saturated with ghee etc, so that in future it will not soak up any such thing to be kept in it.

ଶଢ଼ା—ଦେ. ବିଶ—ଶଡ଼ା (ଦେଖ)
Śardhā Śardā. (See)

ଶଢ଼ାଇ—ଦେ. ବି.—(ଯ ଶଢ଼ି ଧାତୁ ଭେଦ କରିବା; ଯାହାକୁ ଭେଦ Śardhai କଲେ ନଡ଼ିଆର କୋମଳାଂଶ ପାଇବାକୁ ହୁଏ )— ନାରକେଲେର ଖୋଲ (ମାଳା) ନଡ଼ିଆ ଫଳର ଖୋଳପା; ନଡ଼ିଆର ନାରୀୟଲ କୀ ଗୁଠଲୀ, ସଢ଼ାଇ ଭିତରେ ଥିବା ଓ କୋମଳାଂଶକୁ ଆବୃତ କରିଥିବା ଦୃଢ଼ ଆବରଣ—Cocoanut shell; the hard cover round the kernel of cocoanuts. [ ଦ୍ର—ଏହା ପାନପାତ୍ରରୂପେ ବ୍ୟବହୃତ ହୁଏ ଏବଂ ଏଥିରେ ବେଣ୍ଟ ଲଗାଇ ଅଣକ କରାଯାଏ । ଆଜି କାଲି ଶଢ଼େଇଦ୍ୱାରା ଗୁଡ଼ା ପାକ ଓ ବୋତାମ ଆଦି ତିଆରି କରାଯାଉଅଛି । ଗୋଟିଏ ନଡ଼ିଆର ଦୁଇଟି ଫାଳକୁ ଦୁଇଟି ଶଢ଼େଇ ବୋଲାଯାଏ । ଯହିଁରେ ଆଖି ବା ଛିଦ୍ର ଥାଏ ତାକୁ 'ଆଖି ଶଢ଼େଇ' ବା 'ମାଇ ଶଢ଼େଇ' କିମ୍ବା 'ମୁହଁ ଶଢ଼େଇ' ବା 'ମୁଣ୍ଡ ଶଢ଼େଇ' ବୋଲାଯାଏ । ଯହିଁରେ ଆଖି ନ ଥାଏ ତାକୁ 'ଗାଣ୍ଡି ଶଢ଼େଇ' ବା 'ଅଣ୍ଡିରା ଶଢ଼େଇ' ବୋଲାଯାଏ । ମୁହଁ ଶଢ଼େଇରେ ଅଣକ ତିଆରି ହୁଏ ଓ ଗାଣ୍ଡି ଶଢ଼େଇରେ ଗୁଡ଼, ପାଣି ଇତ୍ୟାଦି ତରଳ ପଦାର୍ଥ ରଖାଯାଏ । ଗୋଟାକଥା ବା ଅଖଣ୍ଡିତ ନଡ଼ିଆ ଖୋଳ ବା ଶଢ଼େଇକୁ ଲୋକେ ତେଲଧାର, ଗୁଣ୍ଡି ରଖିବା ପାତ୍ର, ଗୁଡ଼ାଖୁ ଖାଇବା ହୁକାର ଜଳାଧାର ରୂପେ ବ୍ୟବହାର କରନ୍ତି ଓ ତାହାକୁ ଖୁମ୍ପା ନାମରେ ଅଭିହିତ କରନ୍ତି । ଅଖଣ୍ଡିତ ନଡ଼ିଆଖୋଲର ମୁଣ୍ଡରୁ ଖଣ୍ଡିଏ ଛୋଟ ଚକଟି କାଟି ଦେଇ ସେଥିରେ ବେଣ୍ଟ ଲଗାଇ ତାକୁ ବୈରାଗୀମାନେ କମଣ୍ଡଳୁ କରନ୍ତି । ଅଖଣ୍ଡିତ ବଡ଼ ଶଢ଼େଇକୁ ଖୁମ୍ପ, ଛୋଟକୁ ଖୁମ୍ପୀ ଓ ଅତି ଛୋଟହେଲେ ତାକୁ କଣ୍ଠା ବୋଲାଯାଏ । କଣ୍ଠାରେ ନାସ ଓ ଔଷଧ ବଟିକା ଆଦି ରଖାଯାଏ ।]

ଶଢ଼ା(ଢ଼େ)ଇ କଲା —ଦେ. ବି.—ଓଡ଼ିଶାର ଉତ୍ତରାଞ୍ଚଳ ସ୍ଥିତ ଏକ ଓଡ଼ିଆ Śardhā(rdhe)ikalā ଗଡ଼ଜାତ । (ଏହା ଉତ୍କଳଭାଷୀ ଅଞ୍ଚଳ ଅଟେ)—Name of an Oriya-speaking State situated in the north of Orissa.

ଶଢ଼ା(ଢ଼େ)ଇ ଝାଳ—ଦେ. ବି.—ଶଢ଼େଇ ଜଳୁଥିବା ଅବସ୍ଥାରେ ତା Śardhā(rdhe)i jhāla ଉପରେ ଗୋଟିଏ ଧାତୁ ପାତ୍ର ଓଲଟାଇ ନାରକେଲେର ମାଲାର ଘାମ ଦେଲେ ସେ ଧାତୁ ପାତ୍ରର ଗାତ୍ରରେ ଲାଗି- ନାରୀୟଲକୀ ଗୁଠଲୀକା ପସୀନା ଯିବା କୃଷ୍ଣବର୍ଣ୍ଣ ସ୍ୱେଦ—[ଦ୍ର— ଏହା ଯାଦୁର ଔଷଧ ରୂପେ ବ୍ୟବହୃତ ହୁଏ)—Perspiration or black liquid deposit left on the inside of a metal pot upturned over a burning cocoanut-shell.

ଶଢ଼ା(ଢ଼େ)ଇ ଫୋଡ଼ିବା—ଦେ. କ୍ରି.—ଅଣକ ପ୍ରସ୍ତୁତ କରିବା ନିମିତ୍ତ Śardhā(rdhe)i phordibā ବେଣ୍ଟ ଲଗାଇବା ପାଇଁ ମାଳ ନାରକେଲେର ମାଲା ଛେଁଦା କରା ଶଢ଼େଇରେ ଛିଦ୍ର କରିବା—To ନାରୀୟଲକୀ ଗୁଠଲୀ ଛେଦନା make a hole in a cocoanut shell to attach a handle for making a ladle or spoon.

ଶଢ଼ା(ଢ଼େ)ଇ ବାଲିଆ —ଦେ. ବିଶ—ପୁରୀ ଜିଲ୍ଲାରେ ନଡ଼ିଆ ବେପାର Śardhā(rdhe)i bāliā କରୁଥିବା ଏକ ଶ୍ରେଣୀର ବ୍ରାହ୍ମଣ; [ଦ୍ର— ଶାସନୀ ବ୍ରାହ୍ମଣମାନଙ୍କ ଅପେକ୍ଷା ସମାଜରେ ଏମାନଙ୍କ ସ୍ଥାନ ନ୍ୟୂନ ।] A title of some Brāhmaṇa traders who trade in cocoanuts in the district of Puri, having settled there after removing from two villages of these names of the Cuttack district [ଦ୍ର—ଏମାନଙ୍କର ଆଦିମ ନିବାସ ସ୍ଥାନ କଟକ ଜିଲ୍ଲାର ହରିହରପୁର ପ୍ରଗନ୍ନାର 'ଶଢ଼େଇ ଓ 'ବାଲିଆ' ନାମକ ଦୁଇଟି ଗ୍ରାମ । ଏ ଗ୍ରାମ

ଭୁଇଁଷ୍ଟ କଟକ ସହରଠାରୁ ୨୦ ମାଇଲ ଦୂରରେ ପୂର୍ବରେ ଅବସ୍ଥିତ । ଏବେ ମଧ୍ୟ ସେଠାରେ ଏହି ମହାଜନମାନଙ୍କର ପୂଜିତ ଇଷ୍ଟ ଦେବତା ଅଛନ୍ତି । ଏହି ମହାଜନମାନଙ୍କ ମଧ୍ୟରେ ସତ୍ୟବାଦୀର 'ଓଡ଼ା' ବଂଶ ପ୍ରଧାନ ଅଟନ୍ତି । ]

ଶଢ଼ିଙ୍ଗ(ଙ୍ଗା, ଙ୍ଗି)—ଦେ. ବି.—ଶଡ଼ିଙ୍ଗ (ଙ୍ଗା, ଙ୍ଗି) (ଦେଖ)
Śardhinga(ngā, ngi) Śardinga (ngā, ngi) (See)

ଶଢ଼େଇ - ଦେ. ବି —ଶଢ଼ାଇ (ଦେଖ)
Śardhei Śardhāi (See)

ଶଢ଼େଇଏ—ଦେ. ବିଣ—୧ । ଏକ ଶଢେଇ ପୂର୍ଣ୍ଣ (ଗୁଡ଼ଆଦି) 1. Śardheie (Molasses etc) One cocoanut half shell full of. ୨ । ଅଳ୍ପଅଳ୍ପ ପରିମିତ—2. Small in quantity. [ଉ—ଗୁଡ଼ ଅଣିଥିଲି ଅଢ଼େଇଏ; ପୁଅ ବାହାକଲି, ଝିଅ ବାହାକଲି, ଆଉ ରହିଗଲା ଶଢ଼େଇଏ । —ଛଗ]

ଶଢେଇବା—ଦେ. କ୍ରି.—୧ । ଶଢାଇବା (ଦେଖ)—1. Śardhāibā Śardheibā (See). ୨ । ଦାନ କରିବା—2. To give; to bestow.

ଶଣ୍ (ଧାତୁ)—ସଂ—୧ । ସୂତ୍ର ପ୍ରଦାନ କରିବା—1. To give Śaṇ(root) fibres. ୨ । ରସ ବା ସୁଖଦାନ କରିବା—2. To give pleasure or delight

ଶଣ -ସ. ବି.—(ଶଣ ଧାତୁ+କର୍ତ୍ତୃ. ଅ)—୧ । ଛଣପଟ—1 The Śaṇa sun-hemp; flax hemp; Crotalaria Juncea
शण, शणपाट [ଦ୍ର—ଏହା ଏକ ପ୍ରକାର କୃଷିଜାତ ଗୁଳ୍ମ । ଏହାର. सन ଗଛକୁ ପାଣିରେ ସଢାଇଲେ ଛୋଟଠାରୁ ଡାଳୁଅ, ତେ—ଶଣମନୁଟେକ,] ଚିକ୍କଣ ଓ ଧରୁଆ ଏକ ପ୍ରକାର ତନ୍ତୁ ମିଳେ, ଯାହାରେ । ଏହାର ଫୁଲ ଚୋପା ହଳଦିଆ । ବର୍ତ୍ତମାନ ବେଲଜେଟ୍ଟ ଜୋଟର ପ୍ରଚଳନ ହେବାରୁ ଏହାର ଚାଷ କମି ଯାଇଅଛି । ତା—ଜେନମ୍ମଜର]. ବ୍ରାହ୍ମଣମାନଙ୍କର ଉପନୟନ ସମୟରେ ବ୍ରହ୍ମଚାରୀର ପରିଧେୟ ମେଖଳା ଏଥିରେ ପ୍ରସ୍ତୁତ ହୁଏ ଏବଂ କେଉଟମାନଙ୍କର ବଡ଼ ଜାଲ ଏଥିରେ ବୁଣାଯାଏ । ପୂର୍ବେ ଏଥିରେ କ୍ଷତ୍ରିୟମାନଙ୍କର ପଇତା ହେଉଥିଲା । ଏ ଗଛର ପତ୍ର ଅମ୍ଳ-କଷାୟ ରସ, ବମନକାରକ, ମଳଭେଦକ, ରକ୍ତସ୍ରାବ-କାରକ ଓ ଗର୍ଭପାତକ । ଶଣର ଫୁଲ ମଳରୋଧକ ଓ ରକ୍ତପିତ୍ତରେ ଉପକାରକ । ଏହାର ବୀଜ ରକ୍ତଶୋଧକ । ଏହାର ଚୁଇଁ ଶୁଖିଗଲେ ଏହାର ମଧ୍ୟସ୍ଥ ମଞ୍ଜି ଯୋଗୁଁ ଏହା ରଣ-ଝଣ ବାଜେ ] ୨ । ଗଞ୍ଜେଇ ଗଛ (ହି.ଶ) - 2 Indian hemp ୩ । ବଣ ଛଣପଟ (ହି.ଶ)—3. The wild Sun hemp; Crotalaria.

ଶଣକ—ସ. ବି—ପ୍ରାଚୀନ ଋଷିବିଶେଷ (ହି. ଶ)—
Śaṇaka Name of a sage.

ଶଣ୍କନ୍ଦ—ସ. ବି—ରୋହିଣୀ ନାମକ ସୁଗନ୍ଧଦ୍ରବ୍ୟ (ହି. ଶ)—
Śaṇa kanda Soymida Febrifuga.

ଶଣକନ୍ଦା—ସ. ବି—ନାଗଫେଣିଆ (ହି. ଶ)—
Śaṇakandā Opuntia Dilleni (plant).

ଶଣଘଣ୍ଟା—ସ. ବି—ଶଣପୁଷ୍ପୀ (ଦେଖ)—
Śaṇaghaṇṭā Śaṇapushpī (See)
(ଶଣଘଣ୍ଟିକା —ଅନ୍ୟରୂପ)

ଶଣ ଚୂର୍ଣ୍ଣ—ସ. ବି—ପାଣିରେ ବହୁଦିନ ବତୁରି ହୋଇ ସଢ଼ି ଯାଇଥିବା Śaṇa chūrṇṇa ଛଣପଟ ଗଛକୁ ପିଟକରି ତହିଁରୁ ଛଣପଟ ତନ୍ତୁ କାଢ଼ିନେବା ପରେ ଯେଉଁ ଛୋଟ ଭାଗମାନ ରହିଯାଏ (ହି. ଶ)—Small bits of sun-hemp which remain after the fibres are separated from the stems.

ଶଣ ତନ୍ତୁ—ସ. ବି—ଛଣପଟ ଗଛର ଛାଲରୁ ବାହାରିବା ସୂକ୍ଷ୍ମ ସୂତ୍ର—
Śaṇa tantu Fibres of flax hemp.

ଶଣପଟ—ଦେ. ବି (ସ. ଶଣ+ପଟ୍ଟ)—ଶଣ ୧ (ଦେଖ)
Śaṇapaṭa Śaṇa 1 (See)

ଶଣ ପୁଷ୍ପ—ସ. ବି—ଛଣପଟ ଗଛର ଫୁଲ—The flower of the Śaṇa pushpa Sun hemp. [ଦ୍ର—ଏହା ଗାଢ଼ ହଳଦିଆ, ଓଲଟ ଘଣ୍ଟି ପରି ଦେଖାଯାଏ ଓ ଏ ଫୁଲର ମୂଳଦେଶ ଗାଢ଼ ରକ୍ତବର୍ଣ୍ଣବିଶିଷ୍ଟ । ଏ ଫୁଲର ହଳଦିଆବର୍ଣ୍ଣ ଥିବାରୁ କନକଗୋରୀ ସୀତାଙ୍କର କାନ୍ତିକୁ ବୈଦେହୀଶବିଳାସର ୧୦ମ ଛାନ୍ଦରେ କବି ଉପେନ୍ଦ୍ର ଭଞ୍ଜ 'ଶଣ ପୁଷ୍ପ'ର କାନ୍ତି ସଙ୍ଗେ ତୁଳନା କରିଅଛନ୍ତି ଓ ଅନ୍ୟ କବିମାନେ ମଧ୍ୟ ଗୌରାଙ୍ଗୀ ସ୍ତ୍ରୀମାନଙ୍କୁ ଶଣପୁଷ୍ପ ସଙ୍ଗେ ତୁଳନା କରିଥାଆନ୍ତି ଯଥା—"ବିଭୁ । ଶଣପୁଷ୍ପେ ଯା କାନ୍ତି ଜାଣ, ବିଭୂଷଣ କରି କରିଥିଲୁ ଅଣ ।" ହରଦ୍ରାକୁଙ୍କୁମର ଗୌରାଙ୍ଗୀ ଲଳନାଙ୍କ ଦେହବର୍ଣ୍ଣ ପ୍ରତି ଶଣପୁଷ୍ପର ଅଭା ଖଟିପାରେ; କିନ୍ତୁ ଅନ୍ୟ ଦେଶର ପାଉଡର୍ ବୋଳା ଗୋରାଗୋରୀଙ୍କ ପ୍ରତି ଏହା ଖଟିବା ଅସମ୍ଭବ । ] ୨ । ଶତପୁଟ ସୁବର୍ଣ୍ଣ—2. Gold which has been burnt and washed a hundred times.

ଶଣପୁଷ୍ପୀ - ସ. ବି (ବୈଦ୍ୟକ)—୧ । ବନ୍ୟ ଛଣପଟ ଗଛ । [ଦ୍ର—ଏହାର ଫୁଲ ଛଣପଟ ଗଛର ଫୁଲ ପରି । ଏହାର ଚୁଇଁ ରଣଝଣ ବାଜେ । ଏହା କଟୁ ତିକ୍ତରସବିଶିଷ୍ଟ ଓ କଫ, ବାତ, ଅଜୀର୍ଣ୍ଣ, ଜ୍ୱର ଓ ରକ୍ତ ଦୋଷନାଶକ । ]
Śaṇapushpī
(ଶଣସମା, ଶଣିକା—ଅନ୍ୟରୂପ)
बणशण, झणझणिया
घागरी, शनई, बनशनई, शनहुली
झुनझुनिया
ଅନ୍ୟ ସ. ନାମ—ଘଣ୍ଟା, ଘଣ୍ଟାରବା]
1. Crotalaria. ୨ । ହରଡ଼ (ହି. ଶ)—2. Pigeon pea.

ଶଣଶିଫା—ସ. ବି—ଛଣପଟ ଗଛର ମୂଳ—
Śaṇaśiphā The root of the flax-hemp plant.

ଶଣ ସୂତ୍ର—୧ । ଛଣୀ; ଛଣପଟର ଦଉଡ଼ି—1. String made of Śaṇa sūtra flax fibres. ୨ । ଛଣପଟର ଛାଲରୁ ବାହାରିବା ତନ୍ତୁ—2. The fibres of flax hemp. ୩ । ଛଣପଟନିର୍ମିତ ଜାଲ—3. Flaxen net. ୪ । ପବିତ୍ରକ; କୁଶ ଆଦିର କଟୁ ବା ମୁଦ୍ରିକା; କୁଶକଟୁ (ହି. ଶ) 4. A ring made of kuśa-grass.

ଶଣାଳୁକ—ସଂ. ବି—ଅରଗ୍ବଧ; ସୁନାରି ଗଛ (ହି. ଶ)
Śaṇāluka Cassia Fistula tree.

ଶଣୀ—ସ. ବି. ସ୍ତ୍ରୀ (ଶଣ + ଈ)—ଶଣତନ୍ତୁ; ଶଣବଲ୍କଲକୁ ପାଣିରେ
Śaṇī ସଢ଼ାଇଲେ ତହିଁମଧ୍ୟରୁ ବାହାରିବା ତନ୍ତୁ; ଛଣୀ—
Flax; flax fibre.

ଶଣୀର—ସ. ବି—୧ । ଶୋଣ ନଦୀଗର୍ଭସ୍ଥ ଉର୍ବର ଦ୍ୱୀପତଟ—
Śaṇīra 1. Very fertile islets in the bed of the Sone river. ୨ । ସରଯୂ ନଦୀର ଶାଖାମାନଙ୍କ ଦ୍ୱାରା ବେଷ୍ଟିତ ଜନପଦବିଶେଷ ଏକ ଦ୍ୱୀପ; ଦର୍ଦସ୍ଥାନ (ହି.ଶ)
2. Name of a tract surrounded by the branches of the Saraju river

ଶଣ୍ଟା(ଣ୍ଟେ)ଇବା—ଦେ. କ୍ରି.—(ସ ଶଣ୍ଡ୍ ଧାତୁ—୧ ଶାଣ୍ଟିବା (ଦେଖ)
Śaṇṭā(ṇṭe)ibā 1 Śāṇṭibā (See) ୨ । ଶଣ୍ଡାଇବା (୧) (ଦେଖ)—2 Saṇḍāibā (1) (See)

ଶଣ୍ଠ—ସଂ. ବିଣ. ପୁ—୧ । ଅବିବାହିତ (ହି. ଶ.)—
Śaṇṭha 1. Unmarried. ୨ । ନପୁଂସକ; ହେଣ୍ଡେଡ଼ା (ହି. ଶ)—2. Impotent; eunoch. ୩। ଜଡ଼ବୋଧ(ହି.ଶ)
3. Stupid.

ଶଣ୍ଡ୍ (ଧାତୁ)—ସଂ. ବ—୧ । ଗଦା କରିବା—1. To heap up;
Śaṇḍ (root) to collect. (Apte) ୨ । ଆଘାତ କରିବା—
2. To hurt; to wound.

ଶଣ୍ଡ(ଣ୍ଢ)—ସଂ.ବି ପୁଂ (ଶଣ୍ ଧାତୁ=ସୁଖଦାନ କରିବା + କର୍ତ୍ତୃ.ଡ,ଢ)—
Śaṇḍa(ṇḍha) ୧ । ବୃଷ; ବୃଷଭ; ଷେଣ୍ଢ—1 A bull; brahmani bull. (ଦ୍ର—ଏହା ମହାଦେବଙ୍କ ବାହନ) ୪ ।
ষাঁড়
साँड(ड), सँड(ढ़) ହେଣ୍ଡଡ଼ା; ନପୁଂସକ; କ୍ଲୀବପୁରୁଷ—2. A eunoch by birth. ୩ । ଶୁକ୍ରାଚାର୍ଯ୍ୟଙ୍କ ଏକ ପୁତ୍ର—
3. A son of Śukrāchārjya. [ ଦ୍ର—ଏ ଅସୁରମାନଙ୍କ ପୁରୋହିତ ଥିଲେ ।] (ଦ୍ର—ଶୁକ୍ରର ସୁତ ବେଦଜ୍ଞାନ ଶଣ୍ଡ ଅମର୍କ ନାମ ଦୁଇ । ଜଗନ୍ନାଥ. ଭାଗବତ ।) ୨ । ରାଜାମାନଙ୍କ ଅନ୍ତଃପୁରର ସ୍ତ୍ରୀମାନଙ୍କ ଜଗୁଆଳ କ୍ଳୀବ ପୁରୁଷ—4. A eunuch kept to guard the females of a harem. [ ଦ୍ର—ଅନ୍ତଃପୁର ରାକ୍ଷୀଙ୍କ ଧରିବା ଭଳି ଆଗେ ରାଜା ଓ ବାଦସାହାମାନେ ମନୁଷ୍ୟବାଳକମାନଙ୍କୁ 'ଧରି' ସେମାନଙ୍କୁ କ୍ଳୀବ କରୁଥିଲେ । ଦୈହିକ କ୍ଳୀବତା ଦ୍ୱାରା ମାନସିକ କ୍ଳୀବତା ଘଟୁଥିଲା କି ନାହିଁ, ଏହା ଗଭୀର ସନ୍ଦେହର ବିଷୟ । ] ୫ । ଦଳ; ପଲ୍ଲ—
5. A crowd. ୬ । ପଦ୍ମ ସମୂହ—6. A collection of lotus flowers. ୭ । ବନ୍ଧ୍ୟପୁରୁଷ—
7. A barren male. ୮ । ଉନ୍ମତ୍ତ ବ୍ୟକ୍ତି—
8. Maddened or intoxicated person. ସ. ବିଣ—୧ । କ୍ଲୀବ—1. Emasculated; impotent. ୨ । ମଦୁଆଳ; ପାନୋନ୍ମତ୍ତ—2. Drunkard. intoxicated. ୩ । କାମୁକ; ଲମ୍ପଟ—3. Licentious; amorous; libidinous. ୪ । ଉନ୍ମତ୍ତ (ହି. ଶ.)—4. Mad. ଦେ. ବି.—୧ । କଟକ ଜିଲ୍ଲାର ଲୁପ୍ତ ରାଜ୍ୟ କୁଜଙ୍ଗର ରାଜବଂଶର ଉପାଧି—1. The family-title of the late Rājās of Kujaṅga Estate in the district of Cuttack. ୨ । ଦଳପତି—2. Leader of a group; headman.

ଶଣ୍ଡ(ଣ୍ଢ) ଚୂଳ—ଦେ ବି—ବୃଷର କକୁଦ୍—
Śaṇḍa(ṇḍha) chūḷa The hump on the shoulder of an Indian bull.
ষাঁড়ের ঝুঁটি ক़िल्होड

ଶଣ୍ଡ(ଣ୍ଢ)ତା(ତ୍ୱ)—ସ. ବି—୧ । ନପୁଂସକତ୍ୱ; ମୁଷ୍କଚ୍ଛେଦ ହେବା ଅବସ୍ଥା—
Śaṇḍa(ṇḍha)tā(twa) 1. Castration; emasculation; loss of virility. ୨ । ବନ୍ଧନମୁକ୍ତ ଷଣ୍ଢ ପରି ଉଚ୍ଛୃଙ୍ଖଳ ବ୍ୟବହାର—2. Unrestrained conduct like a bull set at liberty. ୩ । କ୍ଳୀବତା—3, Impotence.

ଶଣ୍ଡ(ଣ୍ଢ) ପଛଆଡ଼—ଦେ. ବି—(ବ୍ୟଙ୍ଗ)—ବୃଷଭର ପଶ୍ଚାଦ୍ଭାଗ ଅର୍ଥାତ୍
Śaṇḍa(ṇḍha) pachha ārḍa ବୃଷଣ ବା ଅଣ୍ଡକୋଷ—
ষাঁড়ের পেছন দিক (ironical) The testicle of a bull
गोला बैलका आंड [ ଦ୍ର—ବୃଷଭରୂପ ବାହନ ଉପରେ ବସିଥିବା ଭୋଳାନାଥଙ୍କ ଭୋଳା ପଣ ଭାଙ୍ଗି ଦେଇ ଭକ୍ତ ପ୍ରତି ତାଙ୍କ ଦୃଷ୍ଟିକୁ ଆକୃଷ୍ଟ କରାଇବା ଆଶାରେ ଭକ୍ତ ମହାଦେବ ମନ୍ଦିରକୁ ଦର୍ଶନ କରିବାକୁ ଗଲାବେଳେ ମନ୍ଦିରରେ ପ୍ରତିଷ୍ଠିତ ପାଷାଣମୟ ବୃଷଭର ପଛଅଡ଼ (ବୃଷଣ)ରେ ଟିକିଏ ହାତ ଲଗାଇ ଦିଏ । ଏପରି କଲେ ଷଣ୍ଢକୁ କୁତୁ କୁତୁ ଲାଗିବା ହେତୁ ସେ ଚଞ୍ଚଳ ହୋଇ ଉଠିବ ଓ ତହିଁର ଫଳରେ ତା ଉପରେ ବସିଥିବା ଭୋଳାନାଥଙ୍କର ଆସନ ଦୋହଲି ଯିବ ଓ ଧ୍ୟାନ ଭାଙ୍ଗି ବା ନିଶା ଭୋଳ ମଧ୍ୟ ଭାଙ୍ଗି ଯିବ; ବାହନ ଷଣ୍ଢର ଚଞ୍ଚଳତାର କାରଣ ନିର୍ଣ୍ଣୟ କରିବା ପାଇଁ ସେ ପଛ ଆଡ଼କୁ ଚାହିଁ ଦେଲେ ଭକ୍ତ ଉପରେ ତାଙ୍କର ଆଖି ପଡ଼ିବ ଓ ଭକ୍ତ ଏହି ସୁଯୋଗ ପାଇ ମହାଦେବଙ୍କ ଆଗରେ ଦଣ୍ଡବତ୍ ଲଟ୍‌କିକି ପଡ଼ି ଯାଇ ଆପଣାର ଦୁଃଖ ଜଣାଇବ, ଏହି କାଳ୍ପନିକ ଆଶାରେ ଭକ୍ତ ଶିବଲିଙ୍ଗକୁ ଦର୍ଶନ କରିବାକୁ ଯିବାବେଳେ ପ୍ରଥମେ ଷଣ୍ଢର ପଛଅଡ଼େ ହାତ ମାରି ଦେଇ ଷଣ୍ଢକୁ ଖର କରନ୍ତି । ଏହା ଆଜିକାଲିର ନୂଆ କଥା ନୁହେଁ; ପାଠରେ ମଧ୍ୟ ଅଛି ଯେ, 'ବୃଷସ୍ୟ ବୃଷଣଂ ସ୍ପୃଷ୍ଟ୍ୱା ଶଙ୍କରସ୍ୟାବଲୋକନଂ ।']

ଶଣ୍ଡ(ଣ୍ଢ) ପଛଆଡ଼ୁ ପାଇବା—ଦେ. କ୍ରି—(ନ୍ୟାୟ)—(ଲକ୍ଷଣାର୍ଥ ଓ
Śaṇḍa(ṇḍha) pachha-ārḍu pāibā ବ୍ୟଙ୍ଗ) ବୃଥା କାର୍ଯ୍ୟ

ଷଣ୍ଢ ପଛ ଆଶ୍ରା କରିବା
ଷଣ୍ଢ ପଛ ଧରିବା
ଷଣ୍ଢର ପଛଅଡ଼େ ଗୋଡାଇବା
ଷଣ୍ଢପଛେ ଗୋଡ଼ାଇବା
ଷଣ୍ଢ ପଛେ ଧାଇଁବା
—ଅନ୍ୟରୂପ

କରିବା; ଜଣେ ଦାଳ ଆଶା ଲୁବ୍ଧ ହୋଇ ପରିଶ୍ରମ କରି ପରେ ନିରାଶ ବା ନିଷ୍ଫଳ ହେବା—

କଲାପୋଡ଼ା ପାଓଯ୍ଯା To be after a wild goose chase; **गोला बैलका आंड सेवना** to pursue a chimera; to become baffled in one's hope after pursuing it for some time; to be tantalised. [ଦ୍ର—ବଳଦର ଅଣ୍ଡ ପ୍ରତ୍ୟାଶା ନ୍ୟାୟ (ଦେଖ)—ଦେଖ ଏକ ମଧ୍ୟ ଅଛି—'ଆଶାଲୁବ୍ଧ ହୋଇ ପୂର୍ବଭ୍ରାନ୍ତ କାଳ, ଶଣ୍ଢ ପଛେ ଧାଇଁ ମଲା ଶୃଗାଳ।' ଗଡଜାତର ରସିକ କବି ଯଦୁମଣି କୌଣସି ରାଜାଙ୍କ ନିକଟରେ ଅପଣାର ପ୍ରାର୍ଥନା ପୂର୍ଣ୍ଣ ନ ହେବା ସମ୍ବନ୍ଧେ କହିଥିଲେ—'ଦେବ ଦେବଙ୍କର ବାହନ ପଛଅଣ୍ଡୁ ପାଇଲି।' ଅର୍ଥାତ୍, କିଛି ପାଇଲି ନାହିଁ।]

**ଶଣ୍ଢ(ଣ୍ଢ)ପଣ**—ଦେ. ବି—୧। (ଲକ୍ଷଣାର୍ଥ) ଉଚ୍ଛୃଙ୍ଖଳତା—1. (figurative) Lawlessness; the state of acting without restraint. ୨। ଶାରୀରିକ ବଳପ୍ରକାଶ—2. Show of physical force. ୩। ସାହସ—3. Heroism. ୪। ପ୍ରୌଢ଼ି; ବାହାଦୁରୀ—4. Bragging of one's power or might. ୫। କାମୁକତା; ଲମ୍ପଟତା; ବହୁ ସ୍ତ୍ରୀଙ୍କ ଦଳ ମଧ୍ୟରେ ନାଗରତ୍ୱ—5. Licentiousness; the state of playing the gallant to a number of women. ୬। ପୁରୁଷତ୍ୱ; ଅଣ୍ଡିରପଣିଆ—6. Virility; potency; manhood.
Sa͏ṇda(ṇdha)pana
বাহাদুরী **संडपन**
( ଶଣ୍ଢ[ଣ୍ଢ] ପଣିଅ[ଆଁ]—ଅନ୍ୟରୂପ )

**ଶଣ୍ଢ(ଣ୍ଢ) ବନିବା**—ଦେ. କ୍ରି—(ଲକ୍ଷଣାର୍ଥ) କୌଣସିଠାରେ ଦଳ ମଧ୍ୟରେ ଦଳପତିରୂପେ ଅଧିକାର ବିସ୍ତାର କରିବା—(figurative) To establish one's mastery or leadership in a group.
Sa͏ṇda(ṇdha) banibā
ষাঁড় হওয়া **सांड बनना**

**ଶଣ୍ଢ ମହାଦେବଙ୍କର, ଗାଈ ସହଦେବଙ୍କର, ବଳଦ ବାପୁଡ଼ା କାହାର ନୁହେଁ**—(ପ୍ରବଚନ)—ବଳଦ ବିଚରାର କେହି ମୁରବି ନାହିଁ—The poor bullock has got no protector or patron. [ଦ୍ର—ଅଣ୍ଡିରା ବାଛୁରୀର ମୁଷ୍କଚ୍ଛେଦ ଅଶାସ୍ତ୍ରୀୟ ଥିବା ବିଷୟକୁ ଲକ୍ଷ୍ୟ କରି ଏ ପ୍ରବଚନ ବ୍ୟବହୃତ। ଶଣ୍ଢ ମହାଦେବଙ୍କର ବାହନ ଥିବା କଥା ଶାସ୍ତ୍ରରେ ଅଛି; ଗାଈମାନଙ୍କର ରକ୍ଷକ ରୂପରେ ପାଣ୍ଡବ ସହଦେବ ବୋଲି ପୁରାଣାଦିରେ ବର୍ଣ୍ଣିତ ଅଛି। କିନ୍ତୁ ଛିନ୍ନମୁଷ୍କ ବଳଦର ସ୍ୱାମୀ ବା ରକ୍ଷକରୂପେ ଶାସ୍ତ୍ର ପୁରାଣାଦିରେ କୌଣସି କାହାର ନାମୋଲ୍ଲେଖ ଦେଖାଯାଏ ନାହିଁ (କାରଣ, ଶାସ୍ତ୍ରରେ ମୁଷ୍କଚ୍ଛେଦର ବ୍ୟବସ୍ଥା ନାହିଁ)। ଲୋକେ ଶଣ୍ଢ ପ୍ରତି କଷ୍ଟକର ବ୍ୟବହାର କଲେ ମହାଦେବ ଖପା ହେବେ, ଏବଂ ଗାଈ ପ୍ରତି କଷ୍ଟକର ବ୍ୟବହାର କଲେ ସହଦେବ ଖପା ହେବେ; କିନ୍ତୁ ବଳଦକୁ ଅଧିକରୁ ଅଧିକ ପରିଶ୍ରମ କରାଇଲେ କିମ୍ବା ଯଥେଷ୍ଟ ଖାଦ୍ୟ ଓ ବିଶ୍ରାମ ନ ଦେଇ ତା ପ୍ରତି କଷ୍ଟକର ବ୍ୟବହାର କଲେ ସେ ବିଚରାର ହାହାକାର ଶୁଣିବାକୁ କେହି ନାହିଁ। ଏଥିପାଇଁ ବଳଦ ବାପୁଡ଼ା ପ୍ରତି ତୁମେ ଯେତେ ଜୁଲମ କରିବ, କର—ଏହି ମର୍ମ ବ୍ୟଙ୍ଗଦ୍ୱାରା ଏ ପ୍ରବଚନରେ ସୂଚିତ ହୋଇଅଛି। ଯେଉଁ ବ୍ୟକ୍ତିର କେହି ରକ୍ଷାକର୍ତ୍ତା ବା ଆଶ୍ରୟଦାତା ନ ଥାଏ, ତାହା ପ୍ରତି ଏ ପ୍ରବଚନ ପ୍ରୟୋଗ କରାଯାଏ।]
Sandha mahādebankara, gāi sahadebankara, balada bāpurdā kāhāri nuhen
বলদের বাপ মা নেই
**गाडी गाडीवालाका, पहिया जोहारका, बैल सरकारका**

**ଶଣ୍ଢ ମହାଦେବଙ୍କୁ ଆଶ୍ରା କରିବା ନ୍ୟାୟ**—ଦେ. ନ୍ୟାୟ—ମହାଦେବଙ୍କ ପରି ବଡ଼ଲୋକର ଆଶ୍ରା କରି ବୃଷଭର ଘାସ ଗ୍ରାସ ଛଡ଼ ନ ହେବା ନ୍ୟାୟ—A proverb used figuratively to mean that an unlucky person will not fare better even if he takes shelter under the Almighty Siba (God). [ଦ୍ର—ବୃଷଭ ଦେବଦେବ ମହାଦେବଙ୍କର ବାହନ ଥିବାରୁ ସେ ସ୍ୱୟଂ ମହାଦେବଙ୍କର ବିଶେଷ ଅନୁଗ୍ରହର ପାତ୍ର ଅଟେ। ଯେଉଁ ଆଶୁତୋଷ ମହାଦେବ କେତେ କେତେ ଲୋକଙ୍କୁ ବର ଦେଇ କ୍ଷଣମାତ୍ରକ ମଧ୍ୟରେ ସେମାନଙ୍କର ଦୁଃଖଦାରିଦ୍ର୍ୟ ଦୂର କରିଅଛନ୍ତି ଓ କରି ଯାଉଛନ୍ତି, ବୃଷଭ ତାଙ୍କର ବାହନ ହୋଇ ତାଙ୍କୁ ଚିରଦିନ ଆଶ୍ରା କରି ସୁଦ୍ଧା ତାହାର କପାଳ ଦଶା ଫେରିଲା ନାହିଁ; ଅର୍ଥାତ୍ ମହାଦେବଙ୍କ ବାହନ ବୃଷଭ କପାଳରେ ଯେଉଁ ଘାସ ଗ୍ରାସ (ଘାସ ଖାଇ ପ୍ରାଣଧାରଣ କରିବା) ଲେଖା ଅଛି, ତାହାକୁ ବରଦାନଦ୍ୱାରା ସ୍ୱୟଂ ମହାଦେବ ଖଣ୍ଡି ପାରି ନାହାନ୍ତି। ଏହାର ତାତ୍ପର୍ଯ୍ୟ ଏହି ଯେ, ଯାହାର କର୍ମରେ କିମ୍ବା ଭାଗ୍ୟରେ ଭଲ ଲେଖା ନାହିଁ, ସେ ବଡ଼ଲୋକଙ୍କ ଆଶ୍ରା କଲେ ସୁଦ୍ଧା ତା ଦୁର୍ଦଶା ମୋଚନ ହେବ ନାହିଁ।] (ତୁ—ଶିବେ ଆଶ୍ରା କରି ବୃଷ, ❋ ❋ ନ ଗଲା ତା ଘାସ ଗ୍ରାସ—ଉଦ୍ଧ ପ୍ରେମସୁଧାନିଧି।)
Sandha mahādebanku āsrā karibā nyaya
বৃষভ মহাদেবকে আশ্রয় কবিবাব ন্যায

**ଶଣ୍ଢ(ଣ୍ଢ) ଲଗା(ଗେ)ଇବା**—ଦେ. କ୍ରି—ଋତୁମତୀ ବା ବୃଷସ୍ୟନ୍ତୀ ଗାଈ ସଙ୍ଗେ ସଙ୍ଗମାର୍ଥ ବୃଷଭକୁ ଛୁଆଇବା—To cause a bull to co-habit a cow.
Sa͏ṇda(ṇdha) lagā(ge)ibā
পাল দেখান **सांड लगाना**

**ଶଣ୍ଢ(ଣ୍ଢ) ଲଢା(ଢେ, ଢ଼ା, ଢ଼େ)ଇବା**—ଦେ. କ୍ରି—ଦୁଇଟି ଶଣ୍ଢକୁ ବାକ୍ୟାଦିଦ୍ୱାରା ଉତ୍ତେଜିତ କରାଇ ପରସ୍ପର ସଙ୍ଗେ ଯୁଦ୍ଧରେ ପ୍ରବୃତ୍ତ କରାଇବା—To instigate or set two bulls to fight with each oeher.
Sa͏ṇda(ṇdha) lardhā(rdhe, rdā, rde)ibā
ষাঁড় লড়ান **सांड लडाना**

**ଶଣ୍ଢ(ଣ୍ଢ) ଲଢା(ଢେ, ଢ଼ା, ଢ଼େ)ଇ**—ଦେ. ବି—୧। ଦୁଇଟି ବୃଷଙ୍କ ଭିତରେ ଯୁଦ୍ଧ—1. Bull fight. ୨। (ଲକ୍ଷଣାର୍ଥ) ଦୁଇଜଣ ସମବଳ ବ୍ୟକ୍ତିଙ୍କ ମଧ୍ୟରେ ବିବାଦ—
Sa͏ṇda(ṇdha) lardhā(rdhe, rdā, rde)i
ষাঁড়ের লড়াই **सांडकी लडाई**

( ଯଥା—ଭଲ, ମାଲ୍ଲମଲ୍ଲମା ଆଦି )—୨. Fight between two equally strong persons. ୩ । ( ଲକ୍ଷଣାର୍ଥ ) ଦୁଇ ଜଣଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ—3. ( figurative ) Fierce fight between two persons.

**ଶଣ୍ଢା**—ସଂ. ବି—୧ । ମହୁ ପଡ଼ିଥିବା ଦୁଧ; ଦହି ( ହି. ଶ )—1. Sour **Saṇḍā** milk to which acid has been added. ୨ । ଶୁକ୍ରାଚାର୍ଯ୍ୟଙ୍କ ପୁତ୍ର ( ହି. ଶ. )—2. A son of Sukrācharjya. ୩ । ଯକ୍ଷବିଶେଷ ( ହି. ଶ )—3. Name of a Jaksha

**ଶଣ୍ଢା(ଣ୍ଢା)**—ଦେ. ବି ( ସଂ. ଶଣ୍ ଧାତୁ=ଦାନ କରିବାରୁ କିମ୍ବା **Saṇḍā(ṇḍhā)** ସଂ.ଦଣ୍ଡ)—୧ । ପିଆଜ ଆଦିର ପତ୍ର ଗୁଚ୍ଛ ମଧ୍ୟରୁ ପିଆଜେର ଶାଈ, ସିଧା ଓ ଲମ୍ବ ହୋଇ ବାହାରିଥିବା ଦଣ୍ଡ ବା ଛଡ଼ ପିଆଜ କଳି (ସାଧାରଣତଃ ଏହାର ଅଗରେ ଥୋପାଏ ଫୁଲ ଧରେ)—ହଁଟଲ A long stem or scape issuing out and standing erect from a cluster of leaves of plants, such, onion, garlic etc. ( ଯଥା—ପିଆଜ, ବାଉଁଶଗଛ, ଉଇଫଳ ଗଛରୁ ବାହାରିଥିବା ଶଣ୍ଢା । )

ଶୋଯାଁପୋକା ଦେ. ବି.—୧ (ସଂ. ଶୁଣ୍ଡ)—ଶୁଆଁ ଥିବା ପରି ଏକ-ଭୂଆ ପ୍ରକାର ପୋକ—1. A kind of caterpillar-like insect found on leaves of certain plants. [ଦ୍ର—ଏମାନେ ଶଳ ଗଛର ପତ୍ର ଓ ବାଉଁଶ ପତ୍ର ଆଦିରେ ଲାଗି ଥାଆନ୍ତି ଏବଂ ପତ୍ର ସଙ୍ଗେ ଗୋରୁମାନେ ଏହି ପୋକଙ୍କୁ ଖାଇଦେଲେ ମରିଯାଆନ୍ତି । ] ୨ । (ସଂ ଶୁଣ୍ଡ) —(ବେକର) ଘାଡ଼େରଗାଁଠ ପଛ ଅଂଶ—2. The back or nape of the ଗୁଦ୍ଦୀ neck. ୩ । (ସଂ ଶୁଣ୍ଡ)—ଗଛରୁ ନୂଆ ବାହାରିଥିବା ଡଁଟା ଲମ୍ବ ସଳଖ ଶାଖା ବା ଡାଳ—3. A long slender, ନମନ୍ତ୍ରୋଡ shoot issuing from a tree. ୪ । ଜରଶଣ୍ଢା; ଜ୍ବରଠୁଁଟା, ଜ୍ବରଠୁଁଟୋ ଜ୍ବର ହେବା ପରେ ଜରରେ ଓ ଓଠରେ ବାହାରି ଜ୍ଵରପାଦ ଯିବା ବ୍ରଣ ବା ବିସ୍ଫୋଟକ—4. Fever blister; herpes; eruptions or rashes coming out on the lips and mouth after fever.

ନାକେର ଡଁଟି ୫ । (ସଂ. ଦଣ୍ଡ) ନାସିକା ଛିଦ୍ରଦ୍ୱୟର ମଧ୍ୟସ୍ଥ ଦଣ୍ଡାକୃତି ନାକକା ମଧ୍ୟ ଅସ୍ଥି—5. The wall between the ନାସା nostrils.. ୬ । କମ୍ପଜ୍ୱର ଯୋଗୁଁ ନାସିକା ଛିଦ୍ରର ଅନ୍ତର୍ଦେଶରେ ଓହୋଳି ପଡ଼ିବା ମାଂସପିଣ୍ଡ; ଝୁହା –6. A lump of flesh which hangs down inside the nostrils as a result of ague. ୭।ଶଣ୍ଢାସୁର (ଦେଖ)—7. Sandhāsura (See) ୮ । (ସଂ. ଷଣ୍ଡ) ଷଣ୍ଡା ଭେଙ୍ଗା ଓ ସ୍ଥୂଳକାୟ ବ୍ୟକ୍ତି—8. A stout and ମୋଟା ତାଜା ଆଦମୀ tall person.

ଷଣ୍ଡା ଦେ. ବଣ.—୧ । ଢେଙ୍ଗା ବା ଲମ୍ବ ଓ ସ୍ଥୂଳ—1. Tall ମୋଟାସୋଟା and stout. ୨ । ବନ୍ଧ୍ୟା; ଯେଉଁ ବୃକ୍ଷ ଅତିସ୍ଥୂଳ ଓ ଷଁଡ଼ା ଢେଙ୍ଗା ହୋଇ ବଢ଼ିଯିବାରୁ ଫଳ ଉତ୍ପାଦନ କରିପାରେ ନାହିଁ—2.(a tree or plant) Which does not bear fruit owing to its overluxuriant ଷାଁଡା growth. ୩ । (ସ୍ତ୍ରୀ) ବନ୍ଧ୍ୟା; ଅତି ସ୍ଥୂଳକାୟ ଓ ମାଂସଳ ଧୂମ୍ନୀ ହେବା ଯୋଗୁଁ ଯେଉଁ ସ୍ତ୍ରୀର ଗର୍ଭ ହୁଏ ନାହିଁ – 3 (a woman) Who becomes incapable of conception owing to her growing fat, ୪ । ଷଣ୍ଡା (ପୁଂ) ସ୍ଥୂଳକାୟ ଓ ନପୁଂସକ, ଅର୍ଥାତ୍ ସନ୍ତାନଜନନରେ ଘୁମ୍ମା, ହଁଡ ଅକ୍ଷମ (ପୁରୁଷ)—4 (a male) Incapable of bringing about conception on account of his corpulence. ୫ । (ସଂ.ଷଣ୍ଡବତ୍)—ବଳିଷ୍ଠ 5 Strong ୬ । ମୋଟାସୋଟା—6.Stout. ୭ । କାର୍ଯ୍ୟ ପ୍ରସ୍ତୁତ କରିବା ପାଇଁ ପ୍ରସ୍ତୁତ—7. Ready to do any ତୟାର work. ୮ । କାର୍ଯ୍ୟଦକ୍ଷ; କର୍ମଠ—8. Able; fit for work ୯। ଶଣ୍ଡକ (ଦେଖ)—9 Sardakā(See)

**ଶଣ୍ଢା ଶ୍ଢେ)ଇବା**—ଦେ. କ୍ରି—(ସଂ. ଶଣ୍ଢ)—୧। (ସକର୍ମକ) ଏକ ପଦାର୍ଥକୁ **Saṇḍā(ṇḍe)ibā** ବା ବ୍ୟକ୍ତିକୁ ଅଣି ଅନ୍ୟ ପଦାର୍ଥ ବା ବ୍ୟକ୍ତି ଜୋଟାନ ସହିତ ଜୁଟ କରାଇଦେବା; ଜୁଟାଇବା—1. To cause a ଜୁଟାନା thing or person to meet another. ଡ଼ାଟାଦেওয়া ୨ । (ଅକର୍ମକ) (ବୃକ୍ଷାଦି) ଗଜାଇବା; କୁଆଁଦେବା; ଅଂକୁରানা ଶଣ୍ଢାଦେବା—2. To send forth new stems, sprout or shoots; to sprout. ୩ । ପୁରୁଷ (ପର ପୁରୁଷ ବା ଜାରକୁ ନେଇ ସ୍ତ୍ରୀ ଲୋକ ( ପର ସ୍ତ୍ରୀ ବା ପରବଧୂ ଆଦି)ର ନିକଟରେ କାମ ପ୍ରବୃତ୍ତି ଚରିତାର୍ଥ କରିବା ଜোগান ପାଇଁ ପହଞ୍ଚାଇବା —3 To act as a panderer; to ଜୁଟାନା secure amorous meeting between a woman and a lover. ୪ (ଗଛଆଦି) ଶଣ୍ଢା ହୋଇ ଷাঁড়া ବଢ଼ିବା; ବନ୍ଧ୍ୟାଇବା (ଦ୍ର—ଗଛମାନ ଶଣ୍ଢାଇଲେ ସେଥିରେ ବଢ଼ଜାନা ଫଳ ଧରେ ନାହିଁ); ବନ୍ଧ୍ୟା ହୋଇ ବଢ଼ିବା—4. To grow overluxuriantly (said of plants which do not bear fruit owing to overgrowth). ୫ । (କୌଣସି ସ୍ତ୍ରୀ) ଅତିରିକ୍ତ ରୂପେ ସ୍ଥୂଳ ଘୂମ୍ନୀହোনা ଓ ମାଂସଳ ହେବା—5. (A woman) To grow excessively fat. [ଦ୍ର—ଏପରି ହେଲେ ସ୍ତ୍ରୀ ଗର୍ଭ ଧାରଣ କରିବାକୁ ଅକ୍ଷମା ହୁଏ ।] ୬ । ମଦମଦେଇବା; জবজব হওয়া ଢମଢମେଇବା; (କୌଣସି ସ୍ତ୍ରୀ) ଅଶେଷ କାମାତୁର ତরসনা ହୋଇ ନିକଟରେ ଉପସ୍ଥିତ ପୁରୁଷ ସଙ୍ଗମାର୍ଥ ନେତ୍ରଦ୍ୱାରା ଚକାସହି ହାବ ଭାବ ଉଦ୍‌ବେଗ ବା ଅସ୍ଥିରତା ପ୍ରକାଶ କରିବା—6. (A woman) To show signs of excessive eagerness for satiating her lust with any man appearing before her.

**ଶଣ୍ଢା(ଣ୍ଢା) ତଳି**—ଦେ. ବି.—ବେଢ଼ସଣ ହୋଇ ଧାନ ରୁଇବାରୁ ଶଣ୍ଢା **Saṇḍhā(ṇḍā) taḷi** ବାହାରିବା ପରେ ଅନ୍ୟ କ୍ଷେତ୍ରରେ ধানের বড়চারা ରୁଅଯିବା କ୍ଷେତ୍ର ଧାନରୁଦା—Paddy seedling ধানহন transplanted in a field after it has sent forth many shoots.

ଶଣ୍ଢା(ଣ୍ଢା) ଦେବା—ଦେ. କ୍ରି—(କୌଣସି ବୃକ୍ଷ) ଲୁଅଁ ଦେବା ବା ଶଙ୍ଖା
Sanḍā (ṇḍhā) debā ବାହାର କରିବା—(A tree) To
ଡଁଟି ଦେଓଯା ଅଁକୁରଦେନା send forth its shoot or stalk of flower.

ଶଣ୍ଢା(ଣ୍ଢା)ମର୍କ—ସ. ବି—(ଶଣ୍ଡ+ମର୍କ; କପାଳକ ସିଦ୍ଧ)—ଶଣ୍ଡ ଓ ମର୍କ;
Sanḍā(ṇḍhā)marka ଶୁକ୍ରାଚାର୍ଯ୍ୟଙ୍କର ପୁତ୍ରଦ୍ୱୟଙ୍କ ନାମ—
Name of the two sons of sage Sukrā-chārjya who were engaged as tutors to Prahlāda(the devotee child of the demon-king Hiranya Kasipu). [ବ୍ରୁ—ଶୁକ୍ରାଚାର୍ଯ୍ୟଙ୍କର ଏହି ପୁତ୍ରଦ୍ୱୟ, ଦୈତ୍ୟ ହିରଣ୍ୟକଶିପୁଙ୍କର ପୁତ୍ର ଭକ୍ତ ପ୍ରହ୍ଲାଦଙ୍କୁ ବିଦ୍ୟାଶିକ୍ଷା ଦେବାପାଇଁ ନିଯୁକ୍ତ ହୋଇଥିଲେ। ଏମାନେ ନାନା ପ୍ରକାରେ ପ୍ରହ୍ଲାଦଙ୍କୁ ହରି-ଭକ୍ତିରୁ ବିଚଳିତ କରିବାକୁ ଚେଷ୍ଟାକରି ଅକୃତକାର୍ଯ୍ୟ ହୋଇଥିଲେ। କେହି କେହି ଏ ଦୁଇ ପୁତ୍ରଙ୍କ ନାମ ଶଣ୍ଢା ଓ ମର୍କ; କେହି କେହି ଶଣ୍ଡ ଓ ଅମର୍କ ଥିବା କହନ୍ତି ]

ଶଣ୍ଢା(ଣ୍ଢା)ମାର୍କା—ଦେ.ବିଣ—(ସ ଶଣ୍ଢାମର୍କ, ଏମାନଙ୍କର ବୃହଦାକାରରୁ)
Sanḍā(ṇḍhā)mārkā ଅତି ସ୍ଥୂଳକାୟ ଓ ଡେଙ୍ଗା ବ୍ୟକ୍ତି—A
ଷଣ୍ଡାମାର୍କା ଘୁସ୍ନା person of gigantic stature.

ଶଣ୍ଢା(ଣ୍ଢା)ସୁର—ସ. ବି—ଶ୍ରୀକୃଷ୍ଣଙ୍କ ଦ୍ୱାରା ନିହତ ବୃଷ ବେଶଧାରୀ ଅସୁର
Sanḍā(ṇḍhā)sura ବିଶେଷ—A demon who assumed the shape of a bull and was killed by Srikṛushṇa. [ବ୍ରୁ—ଶ୍ରୀକୃଷ୍ଣ ଆପଣାର ବାଳ୍ୟକାଳ ଦ୍ୱାରା ଏହାର ଚଣ୍ଡି ଚିପି ଏହାଙ୍କୁ ମାରି ପକାଇ ଥିଲେ।]

ଶଣ୍ଢି(ଣ୍ଢି)ଆ—ଦେ. ବିଣ (ସ. ଶଣ୍ଡ)—୧। ଶଣ୍ଡ ସମ୍ବନ୍ଧୀୟ—
Sanḍi(ṇḍhi)ā 1. Relating to bull. ସ୍ତ୍ରୀ. ବିଣ—
(ଶଣ୍ଢେଇ—ସ୍ତ୍ରୀ) ୨। ଶଣ୍ଢାମାର୍କା; ବୃହତ୍‌କାୟ (ବ୍ୟକ୍ତି)—
ସାଁଡ଼ା 2. Of gigantic stature. ୩। ବୃଷାଳ ହୋଇ ଡାଳ
ବେଜା ବଢ଼ାହୁଆ ପତ୍ର ବଢ଼ି ଫୁଲ ଫଳ ଧରି ନ ଥିବା (ଗଛ);
ବଢ଼ା—3. (a tree) Overluxuriant in growth. ୪। କାଚିଶଣ୍ଢିଆ; ମୁଷ୍କଚ୍ଛେଦନ ବେଳେ ଦୋଷ ରହିଯିବାରୁ ଯେଉଁ ଅଣ୍ଡିରି ବାଛୁରି ଶଣ୍ଡପରି ଦେଖାଯାଏ ଏବଂ ବେଳେ ବେଳେ ତାହାର ଲକ୍ଷଣସବୁ ଉଦ୍‌ଭୂତ ହୁଏ—4. (a bullock) Which has not completely lost its virility on account of defective castration. ୫। ଦେ. ବି—ଖୁବ୍ ବଳୁଆ ମାଟି ଯୋଗୁଁ ଗଛ (ଲଙ୍କାମରିଚ, ବାଇଗଣ ଆଦି) ଖୁବ୍ ବୃଷାଳ ହୋଇ ଡାଳ ପତ୍ର ମେଲିଥିବା, କିନ୍ତୁ ଫୁଲ ଫଳ ନ ଧରିବା ଅବସ୍ଥା—5. The state of a tree growing over luxuriantly in a very rich soil. ୬। ଶଣ୍ଢା (୩) ଓ (୪) (ଦେଖ)—6. Sanḍhā (3) and (4). (See)

ଶଣ୍ଢି(ଣ୍ଢି)ଆ(ୟା) ମାରିବା—ଦେ. କ୍ରି—(ବାଇଗଣ, ଲଙ୍କାମରିଚ ଆଦି
Sanḍi(ṇḍhi)ā(yā) māribā ଗଛ) ବଳୁଆ ମାଟିରେ ବଢ଼ୁତ
ସାଁଡ଼ା ଡାଳ ପତ୍ର ମେଲିବା—To grow overluxuriantly
ବେଜା ବଢ଼ଜାନା without bearing any fruit.

ଶଣ୍ଡି(ଣ୍ଡୀ)ଲ(ଲ)—ସ. ବି (ଶଣ୍ଡ=ନପୁଂସକ+ଇଲ)—ଉର୍ଦ୍ଧ୍ୱରେତା
Sanḍi(ṇḍi)la(la) ମୁନି ବିଶେଷ—Name of a sage of subdued carnal passion. [ବ୍ରୁ—ଏ ଜଣେ ଗୋତ୍ର ପ୍ରବର୍ତ୍ତକ ଋଷି ଥିଲେ। ଏହାଙ୍କ ନାମରୁ ଶାଣ୍ଡିଲ୍ୟ ଗୋତ୍ର ହୋଇଅଛି।]

ଶଣ୍ଡି(ଣ୍ଢି)ଲ(ଲ୍ୟ)—ଦେ. ବି—ଶାଣ୍ଡିଲ୍ୟ ବାତ (ଦେଖ)
Sanḍi(ṇḍhi)la(lya) Sāṇḍilya bāta (See)

ଶଣ୍ଡେ(ଣ୍ଢେ)ଇ—ଦେ. ବିଣ. ସ୍ତ୍ରୀ—ଅଣ୍ଡିରଚଣ୍ଡୀ; ମକମକେଇ; ଢମ
Sande(ṇḍhe)i ଢମେଇ; ବୃଷସ୍ୟନ୍ତୀ (ସ୍ତ୍ରୀ); କାମାତୁର ହୋଇ
(ଶଣ୍ଢିଆ,ଶଣ୍ଢିଆଣୀ--ଅନ୍ୟରୂପ) ପୁରୁଷ ସଙ୍ଗମାର୍ଥିନୀ--(a woman).
କାମୁକୀ Eagerly hankering after or soliciting
ଥିରାଇ cohabitation.

ଶତ୍‌ପଥୀ(ଷ୍ଠି)—ଦେ. ବି (ସଂ. ଶତପଥୀ)—ଶତପଥୀ (୨) ଓ (୩)
Sat-pathī(sti) (ଦେଖ)—Satapathī (2) and (3) (See)

ଶଟ୍ ଶଟ୍ ଶଟ୍—ଦେ. ଅ (ସଂ. ଶତଂ ଜୀବ)—ଝିଟିପିଟିର ଶବ୍ଦ ଶୁଣି
Sat sat sat ଅମଙ୍ଗଳନିବାରଣାର୍ଥ ଉଚ୍ଚାରିତ ଶବ୍ଦତ୍ରୟ—
ଶାଟ୍, ଶାଟ୍, ଶାଟ୍ [ବ୍ରୁ—କୌଣସି ସମୟରେ ଝିଟିପିଟି (ଗୃହ-ଗୋଧିକା) ର ଶବ୍ଦ ଶୁଣିଲେ ତାହା ଅମଙ୍ଗଳଜନକ ଥିବାରୁ ଉକ୍ତ ଅମଙ୍ଗଳକୁ ଏଡ଼ିବା ନିମନ୍ତେ ଲୋକେ କହୁଥିଲେ 'ଶତଂଜୀବ' ଓ ଉକ୍ତ ବାକ୍ୟ ବର୍ତ୍ତମାନ ଶଟ୍, ଶଟ୍, ଶଟ୍ ଆକାରରେ ରହିଅଛି। ଉକ୍ତ ଶତଂ ବାକ୍ୟକୁ 'ସତ୍ୟ' ସଙ୍ଗେ ଭ୍ରମବଶତଃ ଏକ ମନେ କରି ଲୋକେ ଝିଟିପିଟି ଶବ୍ଦ ଶୁଣିଲେ କହନ୍ତି—'ସତ୍ୟ ସତ କହୁଛି']—Words repeated by persons on hearing the croaking of house lizards.

ଶତ—ସଂ. (ସଂଖ୍ୟାବାଚକ) ବି.(ଶୋ. ଧାତୁ=ଶାଣ ଦେବା+କର୍ମ.ଅତ)
Sata —ଶହେ; ୧୦୦ ସଂଖ୍ୟା; ଦଶର ଦଶଗୁଣ ସଂଖ୍ୟା—The number 100; hundred. ସଂ. ବିଣ—୧। ଏକ ଶହ ସଂଖ୍ୟକ—1. Numbering one hundred. ୨। ବହୁ ସଂଖ୍ୟକ—2. Numerous. [ବ୍ରୁ—ସଂସ୍କୃତ ଭାଷାରେ ଏହା ଏକବଚନାନ୍ତ 'ଶତଂ' ରୂପରେ ବହୁବଚନ ଅର୍ଥରେ ବ୍ୟବହୃତ ହୁଏ।]

ଶତକ—ସଂ. ବି (ଶତ+ପରିମାଣାର୍ଥେ. କ)—୧। ଶତସଂଖ୍ୟା; ଏକଶତ
Sataka ମାତ୍ର; ଶତକ; ଶହେ—1. One hundred only. ୨। ଶତ ଶ୍ଳୋକ ସମ୍ବଳିତ କାବ୍ୟ ବା ଗ୍ରନ୍ଥ—2 A poem consisting of 100 couplets or stanzas. (ଯଥା—ବୈରାଗ୍ୟଶତକ) ୩। ଶତ-ପରିମିତ ପୁଞ୍ଜ—3. A group of one hundred. ୪। ଶତାବ୍ଦୀ (ହି. ଶ)—4. A centry (Apte).

୫ । ବିଷ୍ଣୁ (ହି. ଶ)—5. Bishnu. ସଂ. ବିଣ—୧ । ଶତସଂଖ୍ୟକ— 1. Numbering one hundred. (ଶତିକା—ସ୍ତ୍ରୀ) ୨ । ଶତପରିମିତ—2. Consisting of one hundrel only. ୩ । ଶତ ଭାଗ ବା ଅବୟବଯୁକ୍ତ— 3. Consisting of one hundred parts.

**ଶତକଡ଼ା(ଡ଼ା)**—ଦେ. ଅ (ସ. ଶତକ; ସଂ. ଶତକୃତ୍ୟ)—ପ୍ରତି ଏକଶତ
Śatakardā(rā) ସଂଖ୍ୟକ ହିସାବ ଗଣନା ଅନୁସାରେ; ଶତକେ; शतकवा सैकडा ;ଶଅକଡ଼ା—Per cent.

**ଶତକଡ଼ାଦିଶ**—ଦେ. ବି. ଓ ବିଣ—ଶତ ସଂଖ୍ୟା ଅନୁପାତରେ ଦଶ-
Śatakardādaśa Ten per cent. [ଦ୍ର— शतकवादश दसोत्रा" ଏଣ୍ଡପର ;ଶତକଡ଼ା ଏକ; ;ଶତକଡ଼ା ଦୁଇ ଆଦି ସଂଖ୍ୟାବାଚକ ଶବ୍ଦ ବ୍ୟବହୃତ ହୁଏ ।]

**ଶତକପାଳେଶ**—ସଂ. ବି—ଶିବଙ୍କ ମୂର୍ତ୍ତିବିଶେଷ (ହି. ଶ)—
Śatakapāleśa One of the images of Śiba.

**ଶତକର୍ମା**—ସଂ.ବି (ଶତକର୍ମନ୍; ୧ମା ୧ବ)—ଶନିଗ୍ରହ (ବିଶ୍ୱକୋଷ)—
Śatakarmā The planet saturn.

**ଶତକୀର୍ତ୍ତି**—ସଂ. ବି (ଶତ=ଶତସଂଖ୍ୟକ, ବହୁସଂଖ୍ୟକ+କୀର୍ତ୍ତି= 
Śata kirtti କୀର୍ତ୍ତିଜନକ କାର୍ଯ୍ୟ ଯାହାର)—୧ । ଯେ ବହୁ ଯଶସ୍କର କାର୍ଯ୍ୟ ଦ୍ୱାରା କୀର୍ତ୍ତିଶାଳୀ ହୋଇ ଅଛନ୍ତି— 1. One who has earned renown by hundreds of works of charity. ୨ ।ଜୈନ ସନ୍ୟାସୀ—2. A Jaina recluse. ୩ । ବୌଦ୍ଧ ଶ୍ରମଣ କ—3. A Buddhist saint. ୪ । ଜୈନ ଭବିଷ୍ୟତ୍ ଗୁରୁଙ୍କ ନାମ—4. Name of a future saint mentioned in the Jaina scriptures.

**ଶତକୁନ୍ଦ**—ସ. ବି (ଶତ+କୁନ୍ଦ)—କରବୀର ପୁଷ୍ପ; କରବୀ ଫୁଲ—
Śatakunda The sweet scented oleander; rosebay; Nerium Odorum. (ଅନ୍ୟ ସ ନାମ—କରବୀର, ଚଣ୍ଡୀପୁଷ୍ପ,ଅଶ୍ୱମାରକ) कवरी सफेदकनेर ଫା—ଖରଜେହରା, ଆ—ଦଫ୍ଲା, ତେ— ଗନେରୁ, କନେରୁଚେଟ୍ଟୁ ।

**ଶତ କୁମ୍ଭ**—ସ. ବି (ବୈଦ୍ୟକ)—୧ । ଶ୍ୱେତକରବୀର; କରବୀ ଫୁଲ—
Śata kumbha 1. Rosebay, sweet scented oleander; Nerium Odorum. ୨ । ସ୍ୱର୍ଣ୍ଣ ଖଣି ଥିବା ପୌରାଣିକ ପର୍ବତବିଶେଷ—2. Name of a mythological mountain containing gold mines. ୩ । ସୁବର୍ଣ୍ଣ; ସୁନା (ହି. ଷ)— 3. Gold (Apte). ୪ । ପ୍ରାଚୀନ ପର୍ବତବିଶେଷ- Name of an ancient mountain.

**ଶତକୁସୁମା**—ସ. ବି—ଶତପୁଷ୍ପ; ଶଉଫ—
Śatakusumā Dill seed; Anethun Graveoleas

**ଶତକୃତ୍ୱଃ**—ସ. ଅ—(ଶତ+କୃତ୍ୱସ୍)—ଶହେଥର (ବିଶ୍ୱକୋଷ)—
Śatakrutwah A hundred times.

**ଶତ କୋଟି**—ସ. ବି—୧। ଶହେ କୋଟି ବା ଦଶ ଅର୍ବୁଦ ବା ଏକବୃନ୍ଦ
Śata koti ସଂଖ୍ୟା—1. One billion (in number). ୨ । ଶତଧାରଯୁକ୍ତ ବଜ୍ରାସ୍ତ୍ର—2. A weapon with one hundred edges. ୩ । ହୀରା (ବିଶ୍ୱକୋଷ)— 3. Diamond. ବିଣ—ବହୁସଂଖ୍ୟକ; ଅସଂଖ୍ୟ— Numerous; innumerable; countless (ଯଥା—ପ୍ରଣାମ ଶତ କୋଟି ଜନେଦନଙ୍କ ଚରଣେ—ପଦ୍ମଚ ଶିରୋଦାମାରେ)

**ଶତକୌମ୍ଭ**—ସଂ. ବି (ଶତକୁମ୍ଭ+ଅ)—ସ୍ୱର୍ଣ୍ଣ; ସୁନା—
Śatakaumbha Gold.
(ଶତକୌମ୍ଭକ—ଅନ୍ୟରୂପ)

**ଶତ କ୍ରତୁ**—ସଂ. ବି [ଶତସଂଖ୍ୟକ କ୍ରତୁ=ଅଶ୍ୱମେଧ ଯଜ୍ଞ, (ସମ୍ପନ୍ନ
Śata kratu ହୋଇଅଛି) ଯାହାଙ୍କଦ୍ୱାରା—ବହୁବ୍ରୀହି]—୧ । ବାସବ; ଇନ୍ଦ୍ର; ଦେବରାଜ—1. Indra. [ଦ୍ର—ଶତ ସଂଖ୍ୟକ ଅଶ୍ୱମେଧ ଯଜ୍ଞ ସମ୍ପାଦନକାରୀ ବ୍ୟକ୍ତି ଇନ୍ଦ୍ରପଦ ଲାଭ କରନ୍ତି । ] ୨ । ଶତସଂଖ୍ୟକ ଅଶ୍ୱମେଧ ଯଜ୍ଞ ସମ୍ପାଦନକାରୀ ବ୍ୟକ୍ତି—2. A person who performs 100 horse sacrifices. ସ. ବିଣ—୧ । ବହୁକର୍ମୀ (ବିଶ୍ୱକୋଷ)—1. Performing many acts. ୨ । ବହୁପ୍ରଜ୍ଞ (ବିଶ୍ୱକୋଷ)—2. Very intelligent and wise.

**ଶତ ଖଣ୍ଡ**—ସଂ. ବି—୧। ବହୁଖଣ୍ଡ ବା ବିଭାଗ—1. Hundreds of
Śata khanda pieces; hundred parts. ୨ । ସ୍ୱର୍ଣ୍ଣ; ସୁନା—2. Gold. ୩ । ସ୍ୱର୍ଣ୍ଣନିର୍ମିତବସ୍ତୁ (ହି.ଶ)- 3. Anything made of gold.

**ଶତଗୁ**—ସଂ. ବିଣ (ବହୁବ୍ରୀହି; ଶତ+ଗୋ; ଗୋ ସ୍ଥାନରେ ଗୁ ଆଦେଶ)
Śatagu ଗୋଶତପରିମାଣଧନବିଶିଷ୍ଟ; ଯାହାର ଶହେ ଗାଈ ଅଛନ୍ତି—Owning one hundred heads of kine.

**ଶତ ଗୁଣ**—ସଂ. କ୍ରି.ବିଣ ଓ ବିଣ—ବହୁ ଗୁଣରେ; ଶହେ ଗୁଣ ହୋଇ—
Śata guna Hundredfold; manyfold.
(ଶତଗୁଣିତ—ଅନ୍ୟରୂପ)

**ଶତ ଗ୍ରନ୍ଥି**—ସଂ. ବିଣ (ବହୁବ୍ରୀହି; ଶତ ଅଛି ଗ୍ରନ୍ଥି ଯାହାର)—ଅନେକ
Śata granthi ସ୍ଥାନରେ ଗଣ୍ଠି ହୋଇଥିବା; ଶହେ ବା ବହୁ ଗ୍ରନ୍ଥିଯୁକ୍ତ (ତଗିକନା)—Having hundreds of knots, knotted at hundreds of places (e. g. a rag)

(ବୈଦ୍ୟକ) ବି—ଦୁବ; ଦୁବଘାସ— Creeping grass; creeping cynodon. [ଦ୍ର— ଶ୍ୱେତଦୁବ ଓ ନୀଳଦୁବ ଉଭୟକୁ ଶତଗ୍ରନ୍ଥି ବୋଲଯାଏ ।]

ଅନ୍ୟ ସଂ. ନାମ—ଦୁର୍ବା, ସହସ୍ରବୀର୍ଯ୍ୟା, ଭାର୍ଗବୀ, ଶତପର୍ବିକା, ରୁହା, ଅନନ୍ତା, କଚ୍ଛରୁହା, ଅମୃତବଲ୍ଲୀ; ମହାବରା

**ଶତଘମା**—ଦେ. (ପଦ୍ୟ) ବି.—(ସଂ. ଶତଘ୍ନୀ)—ଗୋଟିଏ ଅସ୍ତ୍ରର ନାମ-
Śataghani Name of a weapon.
[ଯଥା—ଏକ ସମୟରେ ଶହେ ଲୋକଙ୍କୁ ମାରିବା ଏ ଅସ୍ତ୍ରର ବିଶେଷତ୍ୱ ।] [ଦ୍ର—ପଟ୍ଟିଶ କରବାଳ ତହିଁ ଶତଘମା—କୃଷ୍ଣସିଂହ. ମହାଭାରତ. ବନ ।]

**ଶତଘ୍ନ**—ସଂ. ବିଣ. ପୁଂ—(ଶତ+ହନ୍ ଧାତୁ+କର୍ତ୍ତୃ. ଅ)—ଯେ ଏକ
Śataghna ସମୟରେ ଶହେ ବ୍ୟକ୍ତିଙ୍କୁ ହତ୍ୟା କରିପାରେ—
Capable of killing one hundred persons at a time.

**ଶତଘ୍ନୀ**—ସଂ. ବିଣ. ସ୍ତ୍ରୀ—(ଶତଘ୍ନ+ସ୍ତ୍ରୀ. ଈ)—ଶତଘ୍ନର ସ୍ତ୍ରୀଲିଙ୍ଗ—
Śataghni Feminine of śataghna.
ବି.—୧ । ଏକକାଳୀନ ଶତ ସଂଖ୍ୟକ ସୈନ୍ୟ ବିନାଶକାରୀ ପ୍ରାଚୀନ ଭାରତର ଯୁଦ୍ଧାସ୍ତ୍ର ବିଶେଷ—1. A missile or kind of weapon used in the wars of ancient India, resembling the modern cannon. [ଦ୍ର—ଶତଘ୍ନୀ ଦେଖି ଲୌହତମି ଗଦା ଶୂଳ । କୃଷ୍ଣସିଂହ. ମହାଭାରତ. ବନ । ] [ଦ୍ର—ମହାଭାରତରେ ଏ ଅସ୍ତ୍ରର ଉଲ୍ଲେଖ ଅଛି । ବୈଶମ୍ପାୟନୋକ୍ତ ଧନୁର୍ବେଦର ୭ମ ଅଧ୍ୟାୟରେ ଏହି ଅସ୍ତ୍ର ସମ୍ବନ୍ଧରେ ନିମ୍ନଲିଖିତ ବର୍ଣ୍ଣନା ଅଛି —ଏହା କଣ୍ଟକିତ, ଲୌହସାରନିର୍ମିତ, ମୁଦ୍ଗରକଳ୍ପ, ସୁଦୃଢ଼ ଓ ବର୍ତ୍ତୁଳ, ଚତୁର୍ହସ୍ତ ପରିମିତ ଲମ୍ବ,ମୁଠାଯୁକ୍ତ । ଗଦାକୁ ପ୍ରୟୋଗ କାଳରେ ଯେଉଁପରି ବଳ୍ଗନ କରାଯାଏ, ଏହାର ବଲ୍ଗନ ମଧ୍ୟ ତଦ୍ରୂପ ।- ମହାଭାରତରେ ବଡ଼ ପଥର ବା କାଠର ଗୁଣ୍ଡା ବା ଖୋଳରେ ବନ୍ଧୁକ ଗୁଳି ଓ ଲୁହା ଭରିକରି ବନ୍ଦ ଶତଘ୍ନୀ ଛାଡ଼ିବ କରି ଯାଉଥିଲା; ଏହାକୁ ଶତ୍ରୁ ଉପରକୁ ଫିଙ୍ଗା ଯାଉଥିଲା । [ହି. ଶ.]
ମଲ୍ଲିନାଥ ରଘୁବଂଶ (୧୨।୭୫)ର ଟୀକାରେ ଲୌହକଣ୍ଟକାଚିତ ଯଷ୍ଟି ବିଶେଷକୁ ଶତଘ୍ନୀ ରୂପେ ନିର୍ଦ୍ଦେଶ କରିଅଛନ୍ତି (ବିଶ୍ୱକୋଷ) ।] ୨ । ଗଳରୋଗ ବିଶେଷ—2. A kind of throat disease. [ଦ୍ର—ତ୍ରିଦୋଷର ପ୍ରକୋପ ହେତୁ ଗଳା ମଧ୍ୟରେ ବର୍ତ୍ତି ସଦୃଶ କଠିନ କଣ୍ଠରୋଧକାରୀ, ବେଦନାଯୁକ୍ତ ମାଂସାଙ୍କୁର ପରିବୃତ ଶୋଥ ହୁଏ । ଏହା ପ୍ରାଣନାଶକ ଅଟେ । (ହି. ଶ.) ବିଶ୍ୱକୋଷ ।] ୩ । ସ୍ତ୍ରୀ ବୃଶ୍ଚିକ—3. A female scorpion. ୪ । ବୃଶ୍ଚିକାଳି; ବିଛୁଆତି—4. The stinging nettle; Fragia Involucrata. ୫ । ଏକପ୍ରକାର ଘାସ (ହି. ଶ.)—5. A kind of grass. ୬ । କରଞ୍ଜ (ବିଶ୍ୱକୋଷ)—6. Pongamia Glabra (tree).

**ଶତଚ୍ଛଦ**—ସଂ. ବି.—(ବହୁବ୍ରୀହି, ଶତ+ଛଦ=ପାଖୁଡ଼ା ବା ପକ୍ଷ; ସନ୍ଧିଯୋଗ୍ୟ ହ)—୧ । ଶତଦଳ ପଦ୍ମ—1.
Śatachchhada
Hundred-petalled lotus. ୨। କାଠହଣା ପକ୍ଷୀ—2. The wood-pecker.

**ଶତ ଜଟା**—ସଂ. ବି—(ବହୁବ୍ରୀହି; ଶତ+ଜଟା)—ଶତମୂଳୀ—
Śata jatā Thorny Asparagus.

**ଶତଜିତ୍**—ସଂ. ବି—(ଶତ+ଜି ଧାତୁ+କର୍ତ୍ତୃ. କ୍ୱିପ)—୧ । ବିଷ୍ଣୁ -
Śatajit 1. Bishṇu. ୨ । ଭାଗବତୋକ୍ତ ବିରଜଙ୍କ ଏକ ପୁତ୍ର—2. A son of Birāja. ୩ । ଭାଗବତୋକ୍ତ ସହସ୍ରଜିତଙ୍କ ପୁତ୍ର—3. A son of Sahasrajit. ୪ । ଭାଗବତୋକ୍ତ ଭଜମାନଙ୍କ ପୁତ୍ର—4. A son of Bhājamān. ୫ । ଯଜ୍ଞବିଶେଷ (ହି. ଶ.)—5. Name of a Bedic sacrifice. ୬ । ଯକ୍ଷବିଶେଷ (ବିଶ୍ୱକୋଷ)—6. Name of a Jaksha.

**ଶତଜିହ୍ୱ**—ସଂ. ବି—(ବହୁବ୍ରୀହି; ଶତ+ଜିହ୍ୱା)—ଶିବ—
Śata jihwa Śiba.

**ଶତ ଜୀବୀ**—ସଂ. ବିଣ ପୁଂ. (ଶତ+ଜୀବ୍‌ଧାତୁ+କର୍ତ୍ତୃ ଇନ୍; ୧ମା. ୧ବ)
Śata jibi —ଯେ ଶହେ ବର୍ଷ ବଞ୍ଚେ—Living for a hundred years.
[ଶତଜୀବିନୀ—ସ୍ତ୍ରୀ]

**ଶତ ତମ**—ସଂ. ବିଣ—ଶହେ ସଂଖ୍ୟାର ପୂରକ—
Śata tama [ଶତତମୀ—ସ୍ତ୍ରୀ] Hundredth.

**ଶତ ତାରା**—ସଂ. ବି—(ଜ୍ୟୋତିଷ)—ଶତ ତାରକାବିଶିଷ୍ଟ ମଣ୍ଡଳାକାର
Śata tārā ଶତଭିଷା ନକ୍ଷତ୍ର । (ଏହାର ଅଧିଷ୍ଠାତ୍ରୀ ଦେବତା [ଶତତାରକା—ଅନ୍ୟରୂପ] ବରୁଣ; ନକ୍ଷତ୍ର ତଳେ ଟୀକା ଦେଖ—
(Astrology) The 24th lunar mansion (See notes under Nakshatra.)

**ଶତ ଦନ୍ତିକା**—ସଂ. ବି.—(ବୈଦ୍ୟକ)—୧ । ନାଗଦନ୍ତୀ; ବିଛୁଆତି—
Śata dantikā 1. Fragia Involucrata. ୨। ହସ୍ତିଶୁଣ୍ଡୀ;
[ଶତଦନ୍ତୀ—ଅନ୍ୟରୂପ] ହାତୀ ଶୁଣ୍ଢ଼ୀ ଗଛ [ହି.ଶ ]—2. A kind of tree Helio tropium Indicum
୩ । ନଖୀ ନାମକ ଗନ୍ଧ ଦ୍ରବ୍ୟ ( ହି. ଶ. )—3. Shell (scent)

**ଶତ ଦଳ**—ସଂ. ବିଣ—(ଶତ ସଂଖ୍ୟକ ଦଳ=ପାଖୁଡ଼ା ଯାହାର,
Śata dala ବହୁବ୍ରୀହି)—Many-petalled lotus.

**ଶତଦଳ ମଲ୍ଲୀ**—ସଂ. ବି—ମୁଗୁରା ମଲ୍ଲୀ; ଅନେକ ପାଖୁଡ଼ାଯୁକ୍ତ ମଲ୍ଲୀ ଫୁଲ;
Śatadala malli ମୁଗୁରା ମଲ୍ଲୀ—Many-petalled Jasminum Sambac.
ସଂ.—ମଲ୍ଲିକା, ମଦୟନ୍ତୀ, ଶୀତଭୀରୁ, ଭୂପଦୀ, ତୃଣଶୂନ୍ୟ
ତେ. ମଲ୍ଲେଚେଟ୍ଟୁ [ଶତଦଳ ମଲ୍ଲିକା—ଅନ୍ୟରୂପ]
ଶতদল মল্লিকা মোতিয়া

**ଶତଦଳା**—ସଂ. ବି—(ଶତଦଳ+ସ୍ତ୍ରୀ. ଆ)—୧ । ସେବତୀ (ହି. ଶ.)-
Śatadalā 1. Muskrose. ୨ । ଗୋଲାପ (ବିଶ୍ୱକୋଷ)—2. Rose.

**ଶତଦାହ ହେମ**—ସଂ. ବି—ଶହେ ଥର ପୋଡ଼ା ଯାଇଥିବା ସୁନା—
Śatadāha hema Gold which has been burnt in fire a hundred times. [ଦ୍ର—ଶତଦାହ ହେମର ପିତୁଳା ପ୍ରକାର । କୃଷ୍ଣସିଂହ. ମହାଭାରତ ଅଦି ।]

**ଶତଦ୍ରୁ (ଦ୍ରୂ)**—ସଂ.ବି—(ଶତ=ବହୁ ଶାଖାରେ+ଦ୍ରୁ ଧାତୁ=ଗମନ କରିବା
Śatadru(drū) +କର୍ତ୍ତୃ. ଉ)—ପଞ୍ଜାବର ପଞ୍ଚନଦ ମଧ୍ୟରୁ ଏକ-

ଅନ୍ୟ ସଂ. ନାମ—ଶିତଦ୍ରୁ, ଶତଦ୍ରୁ ।] ଉମ;ସିନ୍ଧୁ ନଦୀର ଶାଖା ବିଶେଷ
ଶତଦ୍ରୁକା,—ବିଶ୍ୱକୋଷ The Sutlej river; a tributary of the Indus. [ ଦ୍ର—ଏହା ବାହାବଲପୁର ମିତ୍ରରାଜ୍ୟ ଓ ଇଂରାଜ ଅଧିକୃତ ପଞ୍ଜାବ ପ୍ରଦେଶର ସୀମା । ଏହା ହିମାଳୟ ପର୍ବତର ଉତ୍ତରରେ ଥିବା ମାନସ ସରୋବରର ପଶ୍ଚିମସ୍ଥ ରାବଣ ହ୍ରଦରୁ ବାହାର ହିନ୍ଦୁକୁଶ ପଶ୍ଚିମକୁ ଯାଇ ହିମାଳୟକୁ ଭେଦ କରି କୈଲାସ ପର ଦେଶୀୟ ରାଜ୍ୟର ସିମ୍ଲା ପାହାଡ଼ ପାଖ ଦେଇ ଲୁଧିଆନା ଓ ଫିରୋଜପୁର ତଥା ବାହାବଲପୁର ନଗର ବାଟେ ବହି ଚେନାବ (ବିପାଶା ବା ବ୍ୟାସ) ନଦୀରେ ମିଳି କିଛି ଦୂର ଯାଇ ସିନ୍ଧୁ ନଦ ସଙ୍ଗେ ମିଠନ୍-କୋଟ ନାମକ ସ୍ଥାନରେ ମିଳିତ ହୋଇଅଛି । ବୈଦ୍ୟଶାସ୍ତ୍ର ମତରେ ଏହି ନଦୀର ଜଳ ନିର୍ମଳ, ସୁସ୍ୱାଦ, ଶୀତଳ, ଲଘୁପାକ, ଅଗ୍ନିବର୍ଦ୍ଧକ, ପାଚକ, ବଳକର ଓ ମେଧା-ଜନକ । ମହାଭାରତରେ ବର୍ଣ୍ଣିତ ହୋଇଅଛି ଯେ, ପୁତ୍ରଶୋକାତୁର ବଶିଷ୍ଠ ମୁନି ଏହି ନଦୀର ଜଳରେ ଝାସ ଦେବାରୁ ଏ ନଦୀ ବିପ୍ରଙ୍କୁ ଅଗ୍ନି ତୁଲ୍ୟ ବୋଧ କରି ଶତଧା ବିଦ୍ରୁତା ହେଲି ଓ ତଦବଧି ଏହି ନଦୀର ନାମ ଶତଦ୍ରୁ ହେଲା । ଶତଦ୍ରୁ, ସିନ୍ଧୁ ଓ ବ୍ରହ୍ମପୁତ୍ର, ଏ ତିନ ନଦୀ ହିମାଳୟ ପର୍ବତର ଉତ୍ତର ପାର୍ଶ୍ୱସ୍ଥ ମାଳଭୂମିରେ ଥିବା ମାନସସରୋବର ଓ (ମାନସ ସରୋବର ପଶ୍ଚିମରେ ଅବସ୍ଥିତ) ରାବଣ ହ୍ରଦରୁ ବାହାରି ଅଛନ୍ତି । ସିନ୍ଧୁ ନଦୀ ପଶ୍ଚିମ ଦିଗକୁ ବହି ହିମାଳୟର ପଶ୍ଚିମ ମୁଣ୍ଡ ବାଟେ ଓ ବ୍ରହ୍ମପୁତ୍ର ପୂର୍ବକୁ ବହି ହିମାଳୟର ପୂର୍ବ ମୁଣ୍ଡ ବାଟେ ବୁଲି ଭାରତବର୍ଷକୁ ଆସିଅଛି । କିନ୍ତୁ ଶତଦ୍ରୁ ନଦୀ ଦକ୍ଷିଣ ପଶ୍ଚିମ ଦିଗକୁ ବହି ହିମାଳୟକୁ ଭେଦ କରି ହିମାଳୟର ଦକ୍ଷିଣରେ ଆସି ସିନ୍ଧୁ ନଦୀରେ ମିଳିଅଛି । ପଞ୍ଚ ନଦ ମଧ୍ୟରୁ ସିନ୍ଧୁ ନଦୀ ପଶ୍ଚିମରେ ଓ ଶତଦ୍ରୁ ପୂର୍ବରେ ଅବସ୍ଥିତ । (ଅନ୍ୟ ତିନି ନଦୀ ରାବି, ଚେନାବ ଓ ଝେଲମ) । ଶତଦ୍ରୁର ଉତ୍ପତ୍ତି ସ୍ଥାନ ଭାରତର ସମତଳ ଭୂଭାଗଠାରୁ ୧୫ ହଜାର ଫୁଟ୍ ଉର୍ଦ୍ଧ୍ୱରେ ଅବସ୍ଥିତ । ପାର୍ବତ୍ୟଦେଶରୁ ବାହାରି ଶତଦ୍ରୁ ଯେଉଁଠାରେ ପ୍ରଥମେ ସମତଳ ଭୂମିରେ ପଡ଼ିଅଛି, ସେହି ଭୂଖଣ୍ଡର ନାମ ରୋପଡ଼ । ଏହି ସମତଳ ଭୂମିରେ ଶତଦ୍ରୁ ନଦୀର ଗଭୀରତା ୪ ହଜାର ଫୁଟ୍ । ହିମାଳୟ ପର୍ବତର ଗର୍ଭକୁ ଭେଦ କରି ଶତଦ୍ରୁ ବହୁଥିବା ସ୍ଥାନରେ ଏହାର ପ୍ରସ୍ତରମୟ ତଟର ଉଚ୍ଚତା କୋଡ଼ିଏ ହଜାର ଫୁଟ୍—ବିଶ୍ୱକୋଷ ]

ଶତଧା—ସଂ. କ୍ରି. ବିଣ(ଶତ+ପ୍ରକାରାର୍ଥେ ଧା)—୧ । ଶହେ ଖଣ୍ଡରେ—
Śatadhā 1. Into hundred parts. ୨ । ଶହେ ଆଡ଼େ—2. In hundred directions. ୩ । ଶହେ ପ୍ରକାରରେ—3. In hundred ways. ୪ । ଶହେ ଥର—4. Hundred times. ୫ । ବହୁଧା—5. In many parts or ways. ସଂ. ବି—ଦୂବା ( ହି. ଶ )—The creeping grass.

ଶତଧାମା —ସଂ. ବି ( ଶତ ଅଟେ ଧାମନ୍=ଦେହ, ତେଜଃ ଯାହାଙ୍କର,
Śatadhāmā ବହୁବ୍ରୀହି )—ବିଷ୍ଣୁ—Bishṇu.

ଶତଧାର —ସଂ. ବିଣ ( ଶତ ଅଟେ ଧାର ଯାହାର=ବହୁବ୍ରୀହି; ଶତ+
Śatadhāra ଧାର )—୧ । ବହୁଧାରବିଶିଷ୍ଟ ( ନଦୀ )—
(ଶତଧାରା—ସ୍ତ୍ରୀ) 1. ( river ) Consisting of hundreds of currents or lines. ୨ । ବହୁ ଧାର ବା ଦାଢ଼ବିଶିଷ୍ଟ ( ଅସ୍ତ୍ର )—2. Hundred-edged; many-edged. ବି—ଅଶନି; ବଜ୍ର—Thunder; thunderbolt.

ଶତ ଧାରା—ବେ. ବି ( ଶତ+ଧାରା; କର୍ମଧା )—ବହୁଧାରା; ଅନେକ
Śata dhārā ସ୍ରୋତ—Hundred currents.

ଶତ ଧୃତି – ସ.ବି (ବହୁବ୍ରୀହି;ଶତ+ଧୃତି=ଯଜ୍ଞ)—୧। ଇନ୍ଦ୍ର;ଦେବରାଜ
Śatadhṛuti —1. Indra. ୨ । ବ୍ରହ୍ମା—2. Brahmā; the Creator. ୩ । ସ୍ୱର୍ଗ—3. Heaven.

ଶତ ଧୌତ —ସ. ବିଣ—ଶହେଥର ଧୁଆ ଯାଇଥିବା ( ଘୃତ )—
Śata dhauta ( ghee ) Washed with water a hundred times. [ ଦ୍ର—ଘୃତକୁ ଶତବାର ଉତ୍ତପ୍ତ କରି ଶୀତଳ ଜଳରେ ନିର୍ବାପିତ କଲେ କିମ୍ବା ଘୃତକୁ ଶତବାର ଶୀତଳ ଜଳରେ ମନ୍ଥନ କରି ଧୋଇଲେ ତାହାକୁ 'ଶତଧୌତ ଘୃତ' ବୋଲାଯାଏ । ଏହା ମାଲିସ କଲେ ଦାହ, କ୍ଷତ, ବ୍ରଣ ଓ ବାତର ଉପଶମ ହୁଏ । ]

ଶତ ଧୌତ ଘୃତ—ସ. ବି ( କର୍ମଧା )—ଶହେଥର ଧୁଆ ହୋଇଥିବା
Śata dhauta ghṛuta ଘିଅ ( ଶତଧୌତ ଦେଖ )—Ghee washed a hundred times with water (See above).

ଶତନେତ୍ରିକା—ସଂ. ବି ( ଶତ+ନେତ୍ର+କ+ଆ )—ଶତାବରୀ—
Śatanetrikā Asparagus Racemosus.

ଶତ ପତି—ସ. ବି (୬ଷ୍ଠୀ ତତ୍ )—ଶହେ ବ୍ୟକ୍ତିଙ୍କ ମାଲିକ ବା ସର୍ଦ୍ଦାର
Śata pati (ହି. ଶ )—The headman of one hundred persons.

ଶତ ପତ୍ର —ସଂ. ବି ( ଶତ ଅଟେ ପତ୍ର ଯାହାର; ବହୁବ୍ରୀହି )—୧ । ପଦ୍ମ
Śata patra ( ଦେଖ )—1. Lotus; Nelumbium
(ଶତପତ୍ରକ— ଅନ୍ୟରୂପ) Speciosum. ୨ । ମୟୂର—
( ଶତପତ୍ରୀ—ସ୍ତ୍ରୀ ) 2. Peacock. ୩ । ସାରସ ପକ୍ଷୀ—3. Indian crane. ୪ । ଶୁକ—4. Parrot. ୫ । କାଠହଣା ଚଢ଼େଇ—5. Wood-pecker. ୬ । ଶତପତ୍ରୀ (ଦେଖ) ( ହି. ଶ )—6. Śatapatri (See) ୭ । ମଇନା; ଶାରିକା (ହି. ଶ)—7. Myna bird. ୮ । ବୃହସ୍ପତି ( ହି. ଶ )—8. The planet Jupiter. ସଂ. ବିଣ—୧ । ଶହେ ପତ୍ରବିଶିଷ୍ଟ—1. Having a hundred leaves. ୨ । ଶହେ ପାଖୁଡ଼ା ବିଶିଷ୍ଟ—2. Hundred-petalled. ୩ । ଶହେ ପକ୍ଷ ବିଶିଷ୍ଟ—3. Hundred-feathered.

ଶତପତ୍ରା—ସଂ. ବଣ. ସ୍ତ୍ରୀ ( ଶତପତ୍ର+ସ୍ତ୍ରୀ ଆ )—ଶତପତ୍ରର ସ୍ତ୍ରୀଲିଙ୍ଗ— Satapatra Feminine of Satapatra. ସଂ. ବି. ସ୍ତ୍ରୀ—ଦୁବ୍ବା ( ହ୍ରି. ଶ )—The creeping cynoden (grass).

ଶତପତ୍ରୀ—ସଂ. ବି—୧ । ସେବତୀ ଫୁଲ (ଏହାର ବହୁ ଦଳ ଥିବାରୁ)— Satapatri 1. Cabbage rose; musk rose; Rosa Centifolia. [ ଦ୍ର—ନାଲି, ଧଳା ଓ ହଳଦିଆ ଭେଦରେ ଏହା ତିନିପ୍ରକାର । ଏ ଦେଶରେ ସାଧାରଣତଃ ହଳଦିଆ ସେବତୀ ଅଧିକ ଦୃଷ୍ଟ ହୁଏ । ବୈଦ୍ୟକମତରେ ଏହା ଶୀତଳ, ତିକ୍ତ-କଷାୟ, ସୁଗନ୍ଧ ଓ ରୁଚିକର । ଏହା କୁଷ୍ଠ, ମୁଖରୋଗ, ସ୍ଫୋଟକ, ପିତ୍ତ ଓ ଦାହନାଶକ (ରାଜନିର୍ଘଣ୍ଟ)] ୨। ଶ୍ୱେତ ବା ପାଟଳବର୍ଣ୍ଣ ଗୋଲାପଫୁଲ ( ଶବ୍ଦ-କୋଷ)—2. Red or crimson rose. ୩ । ଶତଦଳ ମଲ୍ଲିକା ( ଶବ୍ଦକୋଷ )—3. Many-petalled Jasmine.

ଅନ୍ୟ ସଂ. ନାମ—ତଳିକା, ତରୁଣୀ, ସେବନ୍ତୀ, ସ୍ଥୂଳ-କେଶର, କର୍ଣ୍ଣିକା, ସେବତୀ, ମହାକୁମାରୀ, ଗନ୍ଧାଢ୍ୟା, ସେମନ୍ତୀ, ଲକ୍ଷା, କୃଷ୍ଣା, ଅତିମଞ୍ଜୁଳା, ସୁମନାଃ, ସୁଶୀତା, ଶିବବଲ୍ଲଭ, ସୌମ୍ୟଗନ୍ଧୀ, ଶତଦଳା, ସୁବୃତ୍ତ ।
ସେଓତି, ସେଉଁତି
ସେବତୀ
ଦ୍ରା. ସେବନ୍ତି
ତେ. ଚେମନ୍ତିଚେଟ୍ଟୁ
ଫା. ଗୁଲେମୁଷ୍କୀ
ଆ. ଜଲଂଜବିନ୍
( ଶତପତ୍ରିକା—ଅନ୍ୟରୂପ )

ଶତ ପଥ - ସଂ. ବି ( ବହୁବ୍ରୀହି; ଶତ=ବହୁ+ପଥ=ଶାଖା ବା ଉପ-ଦେଶ)—ଯଜୁର୍ବେଦର 'ବ୍ରାହ୍ମଣ' ଅଂଶବିଶେଷ— Sata patha (ଶତପଥ ବ୍ରାହ୍ମଣ—ଅନ୍ୟ ବି. ରୂପ) Name of a supplement to the Jajurbeda. [ ଦ୍ର—ଏହା ଶୁକ୍ଳ-ଯଜୁର୍ବେଦର 'ବ୍ରାହ୍ମଣ' ବିଶେଷ; ଏହାର କର୍ତ୍ତା ମହର୍ଷି ଯାଜ୍ଞବଲ୍କ୍ୟ । ଏହାର ମାଧ୍ୟନ୍ଦିନ ଓ କାଣ୍ୱଶାଖା ମିଳୁଅଛି । ଯଜୁର୍ବେଦରେ ଥିବା ସବୁଗୋଟି ବ୍ରାହ୍ମଣ ମଧ୍ୟରେ ଶତପଥ ବ୍ରାହ୍ମଣ ପ୍ରଧାନ ଓ ବୃହତ୍ତର ଅଟେ । ଏଥିରେ ଅଗ୍ନିହୋତ୍ର-ଠାରୁ ଅଶ୍ୱମେଧ ପର୍ଯ୍ୟନ୍ତ କର୍ମକାଣ୍ଡରାଜିର ବିଶଦ ଓ ସୁନ୍ଦର ବର୍ଣ୍ଣନା ଅଛି - ହି. ଶ । ]

ଶତପଥିକ—ସଂ. ବଣ. ପୁଂ—୧ । ନାନା ମାର୍ଗରେ ବିଚରଣକାରୀ— Satapathika 1. Walking in hundreds of ways. (ଶତପଥିକା—ସ୍ତ୍ରୀ) ୨ । ନାନାମତାବଲମ୍ବୀ—2. Following various doctrines ସଂ ବି—ଶତପଥୀ ୧ (ଦେଖ) Satapathi 1 ( See )

ଶତପଥୀ—ସଂ. ବି ( ଶତପଥ+ଅଛି ଅର୍ଥରେ ବା ଜ୍ଞାତାର୍ଥେ ଇନ୍ )— Satapathi ଯଜୁର୍ବେଦାନ୍ତର୍ଗତ ଶତପଥ ବ୍ରାହ୍ମଣ ନାମକ ଅଂଶ ଅଧ୍ୟୟନକାରୀ ବ୍ରାହ୍ମଣ—A Brāhmana who is learned in the Sataptha portion of the Jajurbeda. ଦେ. ବି—୧ । ବୈଦିକ ବ୍ରାହ୍ମଣଙ୍କର ବଂଶୋପାଧି ବିଶେଷ—1. Family-title of certain Brāhmaṇas. ୨ । କେତେକ ସାଗୁଆ ଓ ପନିପରିବା ବ୍ରାହ୍ମଣଙ୍କର ବଂଶୋପାଧି—2. A family title of some Brāhmaṇas who grow and sell vegetables.

ଶତ ପଦ—ସଂ. ବି (ବହୁବ୍ରୀହି; ଶତ ଅଟେ ପଦ=ପ୍ରକୋଷ୍ଠ ଯାହାର)— Sata pada ୧ । (ଜ୍ୟୋତିଷ) ଶିଶୁର ନାମକରଣାର୍ଥ ପ୍ରଥମ ବର୍ଣ୍ଣ ସୂଚକ ଶତ ପ୍ରକୋଷ୍ଠଯୁକ୍ତ ଚକ୍ର ବିଶେଷ; ନାମଦ୍ୱାରା ନକ୍ଷତ୍ର ଜ୍ଞାପକ ଚକ୍ରବିଶେଷ—1. An astrological circle with 100 compartments drawn for the purpose of giving name to a child. [ଦ୍ର—ଶିଶୁର ନାମକରଣ ସମୟରେ ଏ ଚକ୍ରରେ ଥିବା ଅକ୍ଷରମାନଙ୍କ ଅନୁସାରେ ଶିଶୁର ନାମ ରଖାଯାଏ ।] ୨।ଶତପଦୀ (ଦେଖ)—2. Satapadi (See)

ଶତପଦୀ—ସଂ. ବି (ଶତ+ପଦ+ଇନ୍; ୧ମା. ୧ବ)—୧ । କଣ; Satapadi ଛେଳୁକିଆ କୀଟ—1. Centipede. ୨ । କାନଖୁଣ୍ଟିଆ କୀଟ; କର୍ଣ୍ଣଜଳୁକା—2. Nereis, a very slender myriapcd or chillognatha. ୩ । ଚେଲୁଣି ପୋକ—3 Iulus; galley worm. ୪ । ଶତାବରୀ—4. Asparagus Recemosus. ୫ । ରକ୍ତାକାରାଯୁ ଓ ନାଲିମଞ୍ଜରୀବିଶିଷ୍ଟ ଗୁଳ୍ମ ବିଶେଷ (ହି. ଶ)—5. A kind of red-flowered Amaranth pot-herb.

ଶତ ପଦ୍ମ—ସଂ. ବି—ଶ୍ୱେତପଦ୍ମ— Sata padma The white lotus.

ଶତପର୍ବା—ସଂ. ବି (ଶତ ଅଟେ ପର୍ବନ୍=ପର୍ବ ଯାହାର; ବହୁବ୍ରୀହି; ଶତ Sataparbba ପର୍ବନ୍; ୧ମା. ୧ବ)—୧ । ବଂଶ; ବାଉଁଶ—1. Bamboo. ୨ । ଏକପ୍ରକାର ଆଖୁ; କନ୍ତାର ଆଖୁ—2. A species of slender sugarcane. (ଦ୍ର—ଏହା ସରୁ ଓ ଏହାର ପର୍ବ ଶ୍ରେଷ୍ଠ) ୩। (ଶତ+ପର୍ବ+ଆ)—କୋଜାଗର ପୂର୍ଣ୍ଣିମା; କୁମାର ପୂର୍ଣ୍ଣିମା—3. The full moon of the month of Āswina. ୪ । ଶୁକ୍ର ଋଷିଙ୍କ ପତ୍ନୀ—4. Name of the wife of sage Sukra. ୫। ଦୁବ୍ବା; ଦୁବଘାସ—5. Creeping grass; meadow grass; Agrostis Cyrasurisides. ୬ । କଟୁକା (ହି. ଶ)—6. Black hellebore. ୭। ବଚ (ହି. ଶ)—7. The sweet flag. ୮ । କଲମ୍ବ ଶାଗ (ହି. ଶ)—8. Convolvulus Repens (potherb).

ଶତପର୍ବିକା—ସଂ. ବି (ଶତପର୍ବ+କ+ଆ)—୧ । ବଚ୍; ବଚ— Sataparbbika 1. The sweet flag. ୨ । ଦୁବ୍ବା; ଦୁବ ଘାସ—2. Creeping cynoden grass. ୩ । ଯବ (ହି. ଶ)—3. Barley. ୪ । ନାଲ ଦୁବ୍ବା—4. Another sort of grass; Panicum Dactylon.

ଶତପସ୍ତି—ଗ୍ରା. ବି (ସଂ. ଶତପଥୀ)—ଶତପଥୀ ଉପାଧିର ଅଶୁଦ୍ଧ Satapasti ଉଚ୍ଚାରଣ—An incorrect spelling of the family-title Satapathi.

ଶତ ପାଦ—ସଂ. ବି—(ବହୁବ୍ରୀହି; ଶତ+ପାଦ)—୧। ଛନ୍ଦୁଳିଆ ବିଛା—
Sata pāda 1. Centipede. ୨। କାଳକୁଟ୍ଟିଳ ବିଛା; କର୍ଣ୍ଣ-
କଳୌକା—2. Nereis. ୩। ବୃଶ୍ଚିକ ବର୍ଗୀୟ ପ୍ରାଣୀ—
3. The myriapoda. ୪। (ବୈଦ୍ୟକ) କାକୋଲୀ—
4. A medicinal root; Cocculus Indicus.

ଶତପାଦିକା—ସଂ. ବି—(ଶତ+ପାଦ+କ+ଆ)—୧। ଶତପାଦ (ଦେଖ)
Satapādikā 1. Satapāda (See). ୨। କାକୋଲୀ
(ହି. ଶ) (ଦେଖ)—2. Kākoḷī (see)

ଶତପୁତ୍ରୀ—ସଂ ବି.—୧। ପୋଲ୍ଲ ଝଡ଼ି—1. Luffa Acutangula.
Sataputtrī (creeper) which bears fruits in clusters. ୨। ଶତାବରୀ—2. Asparagus Racemosus.

ଶତପୁଷ୍ପ—ସଂ ବି.—୧। (ନାମ) କିରାତାର୍ଜୁନୀୟ କାବ୍ୟକର୍ତ୍ତା, ଭାରବି.—
Satapushpa 1. Poet Bhārabi, the author of Kirāṭārjunīya. ୨। (ବୈଦ୍ୟକ) ଶୋଉପ—2. Anethum Sowa; dill seed. ୩। ଷାଠିଏ
ଧାନ—3. A kind of paddy which ripens in 60 days.

ଶତପୁଷ୍ପା—ସଂ. ବି.—(ବୈଦ୍ୟକ)—୧। ଶୋଉପ (ଦେଖ)—1. Dill
Satapushpā seed; Pancedanum Sowa; saupa (See) ୨। ପାନମହୁରୀ (ହି. ଶ)—2. Fenul seed.
୩। ଗଡ଼େଧୂକ; ଗଳଗଣ୍ଡ (ହି. ଶ)—3. Sida Spinosa (plant).

ଶତପୁଷ୍ପିକା } ଅନ୍ୟରୂପ
ଶତପୁଷ୍ପୀ }

ଶତପୋଦ(ନ)କ—ସଂ ବି.—୧। ଏ ପ୍ରକାର ଭଗନ୍ଦର ରୋଗ (ହି.ଶ)—
Satapoda(na)ka 1. A kind of fistula. [ବି—
ଏ ରୋଗରେ ଗୁହ୍ୟଦ୍ୱାର ପାଖେ ବହୁମୁଖ ବ୍ରଣ ହୁଏ ଓ
ସେହି ମୁଖରେ ବାଟେ ମଳ, ମୂତ୍ର ଓ ଶୁକ୍ର ବାହାରେ ]
୨। ଶୁକ୍ରରୋଗ ବିଶେଷ; ଲିଙ୍ଗ ଉପରେ ବହୁ ଛିଦ୍ର ହେବା
ରୋଗ ବିଶେଷ (ହି ଶ)—2. A kind of porous
boil on the penis. ୩। ଚାଲୁଣୀ (ଶବ୍ଦକୋଷ)
3. A sieve.

ଶତପୋରକ—ସଂ ବି—ଆଖୁ (ହି ଶ)
Sataporaka Sugarcane.
(ଶତପୋର—ଅନ୍ୟରୂପ।)

ଶତଫଳା(ଳ)—ସଂ. ବି.—(ବୈଦ୍ୟକ)—(ଶତ+ବହୁ+ଫଳ+ଅ; ବହୁ
Sata phalā(la) ବ୍ରୀହି)—ବାଉଁଶ; ବାଉଁଶ—Bamboo.

ଶତବର୍ଗ—ସଂ. ବି.—ଗେଣ୍ଡୁଫୁଲ; କୁସୁମଫୁଲ—Safflower. [ଭି—
Satabarga ଶତବର୍ଗ ଭୁରଥନା ଉଙ୍ଗମଞ୍ଜୀ ମୁତୁଲା ଏ ଚନ୍ଦ୍ରବମା
—ପ୍ରାଚୀ. ରହସ୍ୟ ମଞ୍ଜରୀ]

ଶତବଳୀ—ସଂ ବି.(ନାମ)—୧। ରାମାୟଣୋକ୍ତ ବାନର ଯୂଥପତି ବିଶେଷ—
Satabaḷī Name of a commander of monkeys, sent by Rāmachandra in quest of Sitā towards the north. [ବି—ଏହାଙ୍କର ନାମ
ରାମାୟଣରେ ଅଛି ଓ ବୈଦେହୀଶବିଳାସରେ ୪୩ଶ ଛାନ୍ଦ
୨୩ଶ ପଦରେ ଭଞ୍ଜ ଲେଖି ଅଛନ୍ତି—"ବିଭେଦକେ ଦୁଃଖ
ରଖି, ବାରୁଣୀକି ଶୌର୍ଯ୍ୟ ଯେଷି ବର୍ଗେ ଉଦ୍ଭବେ ଶତବଳୀ,
ଅବଳା ବଳଦ ହେବା ମନାସି" । ଏହାଙ୍କର ବାସ ସ୍ଥାନ
ସାବର୍ଣ୍ଣି ମେରୁ ପର୍ବତ । ରାବଣ ସୀତାଙ୍କୁ ହରଣ କରିବାପରେ
ସୁଗ୍ରୀବ ଓ ରାମଚନ୍ଦ୍ରଙ୍କ ଦ୍ୱାରା ପ୍ରେରିତ ହୋଇ ସୀତାଙ୍କୁ
ଖୋଜିବା ପାଇଁ ଏ ଉତ୍ତର ଦିଗକୁ ଯାଇଥିଲେ।] ୨। ମତ୍ସ୍ୟ
(ହି. ଶ)—2. Fish.

ଶତବଲ୍ଲୀ—ସଂ ବି.—(ବୈଦ୍ୟକ)—୧। ନୀଳଦୂବା; ଏକପ୍ରକାର ଘାସ।
Satabalḷī 1. A sort of creeping grass. ୨।
କାକୋଲୀ (ହି. ଶ) (ଦେଖ)—2 Kakoḷī (see).

ଶତ ବାଦନ—ସଂ. ବି—ବହୁତ ବାଦ୍ୟର ଏକ ସଙ୍ଗେ ବାଜିବା—
Sata bādana The simultaneous sounding or concert of many musical instruments.

ଶତ ବାର—ଦେ. ବି. ଓ କ୍ରି. ବିଣ—ଶହେ ଥର—
Sata bāra A hundred times.
शतबार सौदफा

ଶତବାର୍ଷିକ—ସଂ. ବିଣ (ଶତବର୍ଷ+ଇକ)—ପ୍ରତି ଶହେ ବର୍ଷରେ ହେଉଥିବା।
Sata bārshika କା କରୁଥିବା—Centennial.

ଶତବାର୍ଷିକୀ—ସଂ. ବି—୧। ଅନାବୃଷ୍ଟି [ହି. ଶ]—1. Drought.
Satabārshikī ୨। କୌଣସି ଶତବାର୍ଷିକ ଉତ୍ସବ—
2. A centenary. ସଂ. ବିଣ. ସ୍ତ୍ରୀ—ଶତବାର୍ଷିକର
ସ୍ତ୍ରୀଲିଙ୍ଗ—Feminine of satabārshika.

ଶତବାହୀ—ସଂ. ବି. ସ୍ତ୍ରୀ—ଯେଉଁ ସ୍ତ୍ରୀ ପିତ୍ରାଳୟରୁ ବହୁ ଧନ ସମ୍ପତ୍ତି
Satabāhī ନେଇ ଶାଶୁଘରକୁ ଆସେ (ହି. ଶ)—
A woman who brings valuable things and immense riches with her from her father's house to the house of her husband.

ଶତ ବିଧ—ସଂ. ବିଣ (ବହୁବ୍ରୀହି; ଶତ+ବିଧା)—ନାନାବିଧ—
Sata bidha Of various kinds.

ଶତବୀର—ସଂ. ବି—ବିଷ୍ଣୁ (ହି. ଶ)—
Satabira Bishṇu.

ଶତବୀର୍ଯ୍ୟା—ସଂ. ବି (ବୈଦ୍ୟକ)—୧। ଶ୍ୱେତ ଦୂବା; ଧଳା ଦୂବ—
Satabirjyā 1. (white) Creeping cynoden. ୨।
ଶତାବରୀ—2. Asparagus Racemosus. ୩। ଦେଶି
ଦ୍ରାକ୍ଷା; କିସିମିସି—3. Raisin; dried grape. ୪।
ମୂଷଳୀ—4. The white variety of Tāḷa-mūḷī.

ଶତବେଧି(ଧୀ)—ସଂ. ବି (ବୈଦ୍ୟକ)—ଅମ୍ଳପାଳଙ୍ଗ ଶାଗ; ଚୁକା—
Satabedhi(dhī) Country sorrel (potherb); Rumex Vescicarius.
(ଶତବେଧିନୀ—ଅନ୍ୟରୂପ)

ଶତଭିଷା(ଷ)—ସଂ. ବି (ଜ୍ୟୋତିଷ)—(ଶତ+ଭିଷକ୍ ଧାତୁ=ଚିକିତ୍ସା
Satabhishā(sha) କରିବା+କର୍ତ୍ତୃ. କ୍ୱିପ୍)—ଶତତାରା
(ଶତଭିଷକ୍—ଅନ୍ୟରୂପ) (ଦେଖ)—Satatārā, (See)
(ନକ୍ଷତ୍ର ତଳେ ଟୀକା ଦେଖ)

**ଶତ ଭୀରୁ**—ସଂ. ବ [ବହୁବ୍ରୀହି; ଶତ=ବହୁସଂଖ୍ୟକ ବପ୍ରେମୀ ଅଛନ୍ତି
**Śata bhīru** ଭୀରୁ ଯହିଁର (ଶବ୍ଦକୋଷ)]—ମଲ୍ଲିକା—
Jasmine; Jasminum Zambac.

**ଶତ ମଖ**—ସଂ. ବ (ବହୁବ୍ରୀହି; ଶତ+ମଖ=ଯଜ୍ଞ ଯେ କରିଅଛନ୍ତି)—
**Śata makha** ୧ । ଶତକ୍ରତୁ; ଇନ୍ଦ୍ର—1. Indra. ୨। ପେଚା
(ହି. ଶ)—2 Owl.

**ଶତ ମୟୂଖ**—ସ. ବ (ବହୁବ୍ରୀହି)—ଚନ୍ଦ୍ର (ହି. ଶ)
**Śata mayukha** The moon.

**ଶତମଲ୍ଲ**—ସ. ବ—ଶଙ୍ଖୁଆ ବିଷ (ହି. ଶ)
**Śatamalla** Arsenic.

**ଶତ ମାନ**—ସଂ. ବ (ଶତ+ମାନ=ପରିମାଣ ଯାହାର)—୧। ଏକ ପଳ
**Śata māna** ପରିମିତ ରୌପ୍ୟ; ୪ ତୋଳାପରିମିତ ରୌପ୍ୟ—
1. Silver weighing 4 tolās (rupees)—
[ଦ୍ର—ମନୁସଂହିତାର ଅଷ୍ଟମ ଅଧ୍ୟାୟ ଅନୁସାରେ ଘରର ଗବାକ୍ଷ ଛିଦ୍ରବାଟେ ଆସୁଥିବା ସୂର୍ଯ୍ୟକିରଣରେ ପରିଦୃଷ୍ଟ ଏକ ଧୂଳିକଣାକୁ ତ୍ରସରେଣୁ ବୋଲିଯାଏ (ମନୁ ୮।୧୩୨); ୮ ତ୍ରସରେଣୁ=୧ ଲିକ୍ଷା; ୩ ଲିକ୍ଷା=୧ ରାଜସର୍ଷପ; ୩ ରାଜସର୍ଷପ=୧ ଗୌରସର୍ଷପ (୮।୧୩୩); ୬ ସର୍ଷପ=୧ ମଧ୍ୟମ ଯବ; ୩ ଯବ=୧ କୃଷ୍ଣଳ; ୫ କୃଷ୍ଣଳ=୧ ମଷା; ୧୬ ମଷା=୧ ସୁବର୍ଣ୍ଣ (୮।୧୩୪); ୪ ସୁବର୍ଣ୍ଣ=୧ ପଲ; ୧୦ ପଲ=୧ ଧରଣ; ୨ କୃଷ୍ଣଳ=୧ ରୌପ୍ୟ ମଷା (୮।୧୩୫); ୧୬ ରୌପ୍ୟ ମଷା=୧ ରୌପ୍ୟ ଧରଣ ବା ରଜତ ପୁରାଣ [୮।୧୩୬]। ୧୦ ଧରଣ=୧ ରୌପ୍ୟ ଶତମାନ। ୪ ସୁବର୍ଣ୍ଣ=୧ ନିଷ୍କ—[ମନୁ ୮।୧୩୭]। ୨। ଆଢ଼କ ପରିମାଣ; ପରିମାଣବିଶେଷ—2 A unit of measure. [ଦ୍ର—ପୂର୍ବେ ଶସ୍ୟାଦି ମାପିବାରେ ଏହି ପରିମାଣ ବ୍ୟବହୃତ ହେଉଥିଲା। ଆଜିକାଲି ମଧ୍ୟ ଏହାର ପ୍ରଚଳନ ଅଛି। ଗୃହ ଆଢ଼କରେ ଏକ ଦ୍ରୋଣ ହୁଏ। କେତେକ ସ୍ଥାନରେ ଏକ ଅଢ଼କର ନାମ ମଧ୍ୟ ଦ୍ରୋଣ। ଏହାର ଓଜନ ୩୨ ସେର କିମ୍ବା ୬୪ ସେର। ବୈଦ୍ୟକ ମତାନୁସାରେ ଏହାର ଓଜନ ୮ ସେର। ଜ୍ୟୋତିଷଶାସ୍ତ୍ରାନୁସାରେ ୧୦୦ ଯୋଜନ ଲମ୍ବା ଓ ୩୦ ଯୋଜନ ଚଉଡ଼ା ସ୍ଥାନ ଅଢ଼କ ନାମରେ କଥିତ ହୁଏ।] ୩। ତାରମାକ୍ଷିକ ନାମକ ଉପଧାତୁ [ହି. ଶ] 3. Iron pyrites. ୪। ଚତୁର୍ତୋଳାପରିମିତ ସୁବର୍ଣ୍ଣଦ୍ରବ୍ୟ [ହି. ଶ]—4. A golden article weighing 4 tolās. ସଂ. ବଣ—ପୁଂ (ବହୁବ୍ରୀହି) ୪ ତୋଳା ପରିମିତ—Weighing 4 Tolās.

**ଶତମାରି**—ସଂ ବ. ପୁଂ (ଶତ+ମୃ ଧାତୁ ଣିଚ୍ ମାର ଧାତୁ+କର୍ତ୍ତ୍ତୃ.
**Śatamāri** ଇନ୍, ଯେଉଁ ବ୍ୟକ୍ତି ପାରଦକୁ ଶତବାର ମାରଣ କରିଅଛନ୍ତି)—ଉତ୍ତମ ଚିକିତ୍ସକ ବା ବୈଦ୍ୟ—A skilful physician. [ଦ୍ର—ଯେଉଁ ବୈଦ୍ୟ ଊର୍ଦ୍ଧ୍ୱପାତନ, ଅଧଃପାତନ, ତିର୍ଯ୍ୟକ୍‌ପାତନ—ଏହି ତ୍ରିବିଧ ଜଳପ୍ରକ୍ରିୟା ଦ୍ୱାରା ଶୋଧିତ ପାରଦକୁ କାଚ ବୋତଲରେ ବନ୍ଦକରି କ୍ରମାଗତ ପୁଟପାକଦ୍ୱାରା ରସସିନ୍ଦୂର [ମକରଧ୍ୱଜ] ନାମକ ରସାୟନ ପ୍ରସ୍ତୁତ କରିବାରେ ଶତବାର କୃତକାର୍ଯ୍ୟ ହୁଅନ୍ତି ତାଙ୍କୁ ଶତମାରି ବା ବୈଦ୍ୟ ବୋଲିଯାଏ। ଅରୁ ଯେ ସହସ୍ରବାର ସେଥିରେ କୃତକାର୍ଯ୍ୟ ହୁଅନ୍ତି, ତାଙ୍କୁ ସହସ୍ରମାରି ବା ଚିକିତ୍ସକ ବୋଲିଯାଏ।] ବିଣ—ଶତସଂଖ୍ୟକ ଜୀବର ବା ବ୍ୟକ୍ତିର ପ୍ରାଣନାଶକାରୀ—Killing a hundred beings.

**ଶତମାର୍ଜ**—ସଂ. ବ. ପୁଂ—[ଶତ+ମୃଜ୍ ଧାତୁ+କର୍ତ୍ତ୍ତୃ ଅ)— ଯେଉଁ
**Śatamārja** ବ୍ୟକ୍ତି ଅସ୍ତ୍ରଶସ୍ତ୍ରାଦି କମାଣ ଓ ପାଲିସ କରେ—
Armourer.

**ଶତ ମୁଖ**—ସ. ବଣ. ପୁ. (ଶତ ମୁଖ ଯାହାର; ବହୁବ୍ରୀହି)—୧। ଶତ
**Śata mukha** ମୁଖଯୁକ୍ତ—1. Heavy 100 faces. ୨। ବହୁ
ମୁଖବିଶିଷ୍ଟ—2. Heavy many faces, ୩। ବାଚାଳ—
3. Talkative.

**ଶତମୁଖୀ**—ସ. ବ. ସ୍ତ୍ରୀ (ଶତ ମୁଖ+ସ୍ତ୍ରୀ. ଈ)—୧। ସମ୍ମାର୍ଜନୀ; ଝାଡ଼ୁଣୀ;
**Śatamukhī** କଢ଼ିଣା—1. Broomstick. ୨। ତୁଳିକା—
2 A brush. ୩। ଦୁର୍ଗା (ଶବ୍ଦକୋଷ)—
3. Durgā.

**ଶତମୂଳା**—ସ. ବ (ଶତ ଅଟେ ମୂଳ ଯାହାର, ବହୁବ୍ରୀହି)—
**Śatamūlā** ୧। (ବୈଦ୍ୟକ) ଦୁବ୍ବା; ଦୂବ—1. Creeping
grass. ୨। ବଚ; ବଚ—2. The sweet flag,
Acorus Calamus. ୩। ଶତାବରୀ—
3. Asparagus Racemosus.

**ଶତମୂଳୀ**—ସ. ବ. ସ୍ତ୍ରୀ (ଶତମୂଳ+ସ୍ତ୍ରୀ. ଈ)—୧। ଶତାବରୀ (ଦେଖ)—
**Śatamūlī** 1. Śatābarī, (See). ୨। ତାଳମୂଳୀ (ହି. ଶ)
(ଦେଖ)—2. Tālamūlī, See). ୩। ବଚ—
3. The sweet flag.

**ଶତଯଷ୍ଟିକ**—ସଂ. ବ (ଶତ+ଯଷ୍ଟି+କ; ଶତ ଯଷ୍ଟି ଅଟେ ଯାହାର) —
**Śatajashṭika** ଶତହେନରଥା ହାର—A necklace with
one hundred strings.

**ଶତରୁଦ୍ର**—ଦେ. ବ - (ସ. ଶତରୁଦ୍ରୀ)—ମହାଦେବଙ୍କର ସ୍ତବ-
**Satarudra** ବିଶେଷ—Name of a hymn to Śiba,
୧। ଶତରୁଦ୍ରୀ ୧, ୨ (ଦେଖ)—1. Śatarudrī-
1, 2 (See). ସ. ବ—୧। ରୁଦ୍ରଙ୍କ ଶତ ମୁଣ୍ଡଯୁକ୍ତ ରୂପ
ବିଶେଷ (ହି. ଶ.)—1. A hundred-headed
form of Rudra. ୨। ଶୈବ ଦର୍ଶନ ମତରେ
ଆତ୍ମାର ଉତ୍ପାଦିକା ଶକ୍ତିବିଶେଷ (ହି. ଶ.)—2. Name
of a Divine energy said to be the progenitor of the soul.

**ଶତ ରୁଦ୍ରୀ**—ସ. ବ—୧। ଯଜ୍ଞର ହବିଃ (ହି. ଶ)—1. The ghee
**Śata rudrī** intended for bedic sacrifice.
[ଶତରୁଦ୍ରୀୟ—ଅନ୍ୟରୂପ] ୨। ଯଜୁର୍ବେଦର ଅଂଶବିଶେଷ, ଯହିଁରେ ରୁଦ୍ରଙ୍କ ସ୍ତୋତ୍ର ଅଛି—2. A portion of the Jajurbeda containing a hymn to the Rudra Deity. ୩। ଉକ୍ତ ଅଂଶରେ ଥିବା ରୁଦ୍ର ସ୍ତୋତ୍ର—

3. A hymn of the Jajurbeda. [ଦ୍ର—ଏହାକୁ ପାଠ କରି ରୁଦ୍ରାଭିଷେକ କରାଯାଏ ।]

ଶତ ରୂପା—ସ. ବି.—(ଶତ ଅଟେ ରୂପ ଯାହାର; ଶତ+ରୂପ+ସ୍ତ୍ରୀ ଆ)—୧ । ସାବିତ୍ରୀ; ବ୍ରହ୍ମାଣୀ—1. The wife
Śatarūpā
of Brahmā. ୨ । ବ୍ରହ୍ମାଙ୍କ ଏକ ମାନସୀ କନ୍ୟା ଓ ସ୍ୱାୟମ୍ଭୁବ ମନୁଙ୍କ ମାତା—2. The mother of Swāyambhuba Manu. [ଦ୍ର—ବିଷ୍ଣୁପୁରାଣରେ ଲେଖା ଅଛି ଯେ ଏ ସ୍ୱାୟମ୍ଭୁବ ମନୁଙ୍କ ପତ୍ନୀ ଥିଲେ)—

ଶତଶଃ—ସ. ଅବ୍ୟୟ—(ଶତ+ଶସ୍; ବାରାର୍ଥେ)—୧ ।ଶହେ ଥର—
Śataśah 1. A hundred times. ୨ । ଶତ ସଂଖ୍ୟାରେ; ଶହେ ପରିମିତ—2. By hundreds. ୩ । ଶହେ ପ୍ରକାରେ—3. In hundred ways. ୪ । ଶହେ ଗୁଣରେ—4. Hundredfold.

ଶତ ଶଲାକା—ସ. ବି.—(ବହୁବ୍ରୀହି)—ଛତ୍ର; ଛତା—
Śata śalākā Umbrella.

ଶତଶାଖ—ସ. ବିଣ.—(ଶତ+ଶାଖା; ବହୁବ୍ରୀହି)—୧ । ଶତଶାଖା-
Śataśākha ବିଶିଷ୍ଟ—1. Having hundred branches. ୨ । ବହୁ ଶାଖାଯୁକ୍ତ—2. Having many branches.

ଶତ ଶାରଦ—ସ. ବି—(ତୁଳନା କର—ଇଂ. ଶତ ଗ୍ରୀଷ୍ମ ଋତୁ)—ଶତ
Śata śārada ସମ୍ବତ୍ସର; ଶତ୍ୱବର୍ଷ—A hundred years; a century, a hundred autumns.

ଶତ ଶୀର୍ଷ—ସ. ବି—(ବହୁବ୍ରୀହି)—୧ । ବିଷ୍ଣୁ—1. Bishṇu.
Śata śirsha ୨ । ରାମାୟଣ ବର୍ଣ୍ଣିତ ଅଭିମନ୍ତ୍ରିତ ଅସ୍ତ୍ରବିଶେଷ—2. Name of a consecreted weapon.
ସ. ବିଣ. ପୁଂ—ଶତ ମସ୍ତକଯୁକ୍ତ—
(ଶତଶୀର୍ଷା—ସ୍ତ୍ରୀ) Hundred-headed.

ଶତଶୀର୍ଷା—ସ. ବି. ସ୍ତ୍ରୀ—ବାସୁକୀ ଦେବୀ (ହି. ଶ; ମହାଭାରତ ଖ୍ର.)—
Śataśirshā The Goddess Bāsuki.

ଶତ ଶୃଙ୍ଗ—ସ. ବିଣ.—(ଶତ ଅଟେ ଶୃଙ୍ଗ ଯାହାର)—୧ । ଶହେ ଶୃଙ୍ଗ
Śata śrunga ବିଶିଷ୍ଟ—1. Having 100 peaks. ୨। ଅସଂଖ୍ୟ ଶିଖାଯୁକ୍ତ—2. Having many peaks or heads. ସ. ବି—ପର୍ବତବିଶେଷ—Name of a mountain. [ଦ୍ର—ଏହି ଶୈଳ ମହାମେରୁ ନିକଟସ୍ଥ କୋଳର ନିକଟରେ ଅବସ୍ଥିତ । ଏ ପର୍ବତସ୍ଥ ଦେବଗାଣ୍ଡି ବିଷୟ ଶତଶୃଙ୍ଗ ମାହାତ୍ମ୍ୟରେ ବର୍ଣ୍ଣିତ ହୋଇଅଛି—ବିଶ୍ୱକୋଷ ।]

ଶତସଂଖ୍ୟ—ସ. ବିଣ—(ବହୁବ୍ରୀହି)—ଯାହା ସଂଖ୍ୟାରେ ଶହେ—
Śatasamkhya Numbering a hundred.
(ଶତସଂଖ୍ୟକ—ଅନ୍ୟ ବିଣ ରୂପ) ସ. ବି—ବିଷ୍ଣୁପୁରାଣୋକ୍ତ ଦଶମ ମନ୍ୱନ୍ତରର ଦେବତା ବିଶେଷ—Name of a Deity of the tenth manwantara.

ଶତ ସହସ୍ର—ସ. ବି ଓ ବିଣ.—୧ । ସହସ୍ରର ଶତଗୁଣ; ଏକଲକ୍ଷ—
Śata sahasra 1. A hundred thousand. ୨ । ଅସଂଖ୍ୟ—2 Innumerable

ଶତ ସାହସ୍ର—ସ. ବିଣ.—(ଶତ+ସହସ୍ର+ଅ)—୧ । ଶତ ସହସ୍ର
Śata sāhasra ଶ୍ଳୋକଯୁକ୍ତ (ଗ୍ରନ୍ଥ)—1. Having a
(ଶତ ସାହସ୍ରୀ—ସ୍ତ୍ରୀ) hundred thousand slokas. ୨ । ଲକ୍ଷସଂଖ୍ୟକ—2. Numbering one hundred thousand. ବି.—ଲକ୍ଷ ସଂଖ୍ୟା—A hundred thousand.

ଶତସୁତା—ସ. ବି—ଶତମୂଳୀ; ଶତାବରୀ—
Śatasutā Asparagus Racemosus.

ଶତହ୍ରଦା—ସ. ବି. ସ୍ତ୍ରୀ—(ଶତ ଅଟେ ହ୍ରଦ=ଆଲୋକ ବା ଶବ୍ଦ ଯାହାର;
Śata hradā ବହୁବ୍ରୀହି)—୧ । ବିଦ୍ୟୁତ୍; ବିଜୁଳି—
1. Lightning. ୨ । ବଜ୍ର—2. Thunderbolt. ୩ । ଦକ୍ଷ କନ୍ୟାବିଶେଷ; ବାହୁପୁତ୍ରଙ୍କ ସ୍ତ୍ରୀ—3. Name of one of a daughter of Daksha. ୪ । ବିରାଧ ରାକ୍ଷସର ମାତା—4. Name of the mother of demon Birādha.

ଶତା—ସ. ବି—ଶତାବରୀ—
Śatā Asparagus Racemosus

ଶତାଂଶ—ସ. ବି—୧ । ଶହେ ଭାଗ—1. A hundred parts.
Śatāṇśa ୨ । ଶହେ ଭାଗରୁ ଏକ ଭାଗ (ବିଶ୍ୱକୋଷ)—2. A hundredth part.

ଶତାକ୍ଷୀ—ସ. ବି. ସ୍ତ୍ରୀ—(ଶତ+ଅକ୍ଷ+ଈ)—୧ । ରାତ୍ରି—1. The
Śatākshi night. ୨ । ପାର୍ବତୀ—2. Pārbati. ୩ । ଦୁର୍ଗା—3. Durgā. ୪ । ଶତପୁଷ୍ପ; ଶଲ୍ୟପ—4. Dill seed.

ଶତାଙ୍ଗ—ସ. ବି—(ଶତ ଅଟେ ଅଙ୍ଗ ଯାହାର)—୧ । ରଥ—
Śatānga 1. A car. (ଉ—ବାକାଦେ ମୁଁ ଭାଙ୍ଗିଲି ଶତାଙ୍ଗ ମୋତେ ହାଣି । ଉକ୍ତ. ବୈଦେହୀଶବିଳାସ ।) ୨ । ତିନିଶ ବୃକ୍ଷ; ବାନ୍ଧନ ବୃକ୍ଷ; ଭଥତ୍ରୁ—2. A timber tree; Ougenia Dalbergieides. ୩ । ଦନୁବଂଶୋକ୍ତ ଦାନବ ବିଶେଷ (ବିଶ୍ୱକୋଷ)—3. Name of a demon. ସ. ବିଣ.—ଶତାବୟବ ବିଶିଷ୍ଟ—Having a hundred parts or limbs.

ଶତାଙ୍ଗୁଳ—ସ. ବିଣ—ଶହେ ଅଙ୍ଗୁଳ ପରିମାଣ—A unit of
Śatāngula length of 100 digits. ସ. ବି—ତାଳ ବୃକ୍ଷ (ହି. ଶ.)—Palmyra tree.

ଶତାଧିକ—ସ. ବିଣ.—୧ । ସଂଖ୍ୟାରେ ଏକଶତ ବେଶୀ—1 Num-
Śatādhika bering one hundred in excess. ୨ । ଶତ ସଂଖ୍ୟାରୁ ବେଶି ସଂଖ୍ୟକ—2. Numbering more than a hundred.

ଶତାଧିପତି—ସଂ. ବିଣ (ଷଷ୍ଠୀ ତତ୍)—୦ । ଶହେ ବ୍ୟକ୍ତିର ବା ବସ୍ତୁର
Śatādhipati ଅଧିପତି—1 Lord over a hundred. ୨ । ଶତ ବର୍ଷ ବୟସ୍କ—2 Aged one hundred years, centenarian.

ଶତାନକ—ସ. ବି (ବହୁବ୍ରୀହି; ଶତ+ଅନକ=ବାଦ୍ୟ)—ଶ୍ମଶାନ—
Śatānaka Cremation ground.

ଶତାନନ—ସଂ. ବିଣ. ପୁଂ ( ଶତ+ଆନନ, ବହୁବ୍ରୀହି )—ଶତମୁଖ
Śatānana ( ଦେଖ )—Śatamukha ( See ) ସଂ. ବି—
ବେଲ; ଶ୍ରୀଫଳ ( ହି. ଶ )—Aegle Marmelos.

ଶତାନନ୍ଦ—ସଂ.ବି—୧ । ଗୌତମ ମୁନିଙ୍କର ନାମାନ୍ତର—1. Another
Śatānanda name of Gautama. ୨ । ଗୌତମ ମୁନିଙ୍କ
ପୁତ୍ର; ଜନକ ରାଜାଙ୍କ ପୁରୋହିତ—2. Priest of king
Janaka. [ ଦ୍ର—ମହର୍ଷି ଗୌତମଙ୍କ ଔରସରେ ତାଙ୍କ
ପତ୍ନୀ ଅହଲ୍ୟାଙ୍କ ଗର୍ଭରୁ ଶତାନନ୍ଦ ଜାତ ହୋଇଥିଲେ ।
ଇନ୍ଦ୍ର ଅହଲ୍ୟାଙ୍କ ସତୀତ୍ୱ ନାଶ କରିବାରୁ ଅହଲ୍ୟାଙ୍କୁ ବଧ
କରିବା ପାଇଁ ଶତାନନ୍ଦଙ୍କୁ ଆଦେଶ ଦେଇ ଗୌତମ
ତପସ୍ୟାର୍ଥ ବନକୁ ଗଲେ । ଶତାନନ୍ଦ ପିତାଦେଶ ପାଳନ ଓ
ମାତୃବଧ ଏହି ଦୁଇ ବିଷମ ସମସ୍ୟାରେ ପଡ଼ି ହତବୁଦ୍ଧି
ହୋଇଥିଲେ । ଏହିପରି ସମୟରେ ଗୌତମ ଅହଲ୍ୟାଙ୍କୁ
ନିରପରାଧା ଥିବାର ଜାଣି ପାରି ବନରୁ ପ୍ରତ୍ୟାଗତ ହେଲେ ଓ
ଶତାନନ୍ଦ ତାଙ୍କର ଆଦେଶ ପାଳନ କରି ନଥିବା ଦେଖି
ଆନନ୍ଦିତ ହେଲେ । (ବିଶ୍ୱକୋଷ)] ୩ । ଦେବକୀନନ୍ଦନ କୃଷ୍ଣ
—3. A name of Krushna. ୪ । ବ୍ରହ୍ମା—
4. Brahmā. ୫ । ବିଷ୍ଣୁଙ୍କ ରଥ—5. Name of
the car of Bishnu. ୬ । ବିଷ୍ଣୁ—6. Bishnu.

ଶତାନି ପତାନି—ଦେ. ବି—କୌଣସି ବ୍ୟକ୍ତିର ଊର୍ଦ୍ଧ୍ୱତନ ସାତପୁରୁଷ ଓ
Śatāni patāni ନିମ୍ନତନ ସାତ ପୁରୁଷର ବଂଶୀୟ ବ୍ୟକ୍ତିଗଣ—
One's ancestors and descendants up to 7
generations.

ଶତାନି ପତାନି ଶୋଧିବା—ଦେ. ବି (ସଂ. ଶପ୍ ଧାତୁରୁ )—(ଉପହାସ ଓ
Śatāni patāni śodhiba ଗାଳିରେ ) ସାତ ପୁରୁଷ ଲଗାଇ
সাতপুরুষ তুলে গাল দেওয়া ମନୁଷ୍ୟଙ୍କୁ ଗାଳି ଦେବା—To call
दशपुरुषको उखेलना names to a person's seven
( ଶତାନି ପତାନି ଲଗାଇ ଶୋଧିବା—ଅନ୍ୟରୂପ ) higher and
lower generations.

ଶତାନୀକ—ସଂ. ବିଣ ( ଶତ+ଅନୀକ=ସୈନ୍ୟ ଯାହାର )—୧ । ଶତ
Śatānika ସୈନ୍ୟ ବିଶିଷ୍ଟ—1. Having a hundred
soldiers. ୨ । ବୃଦ୍ଧ—2. Old. ବି—୧ । ବୃଦ୍ଧ
ରାଜା—1. An old king. ୨ । ଶତ ସୈନ୍ୟର
ଅଧିନାୟକ—2. Captain of a hundred sol-
diers. ୩ । ଜନମେଜୟ ରାଜାଙ୍କ ପୁତ୍ର ସହସ୍ରାନୀକଙ୍କ
ପିତା—3. The son of king Janamejaya.
[ ଦ୍ର—ଏ ଚତୁର୍ଥ ଯୁଗରେ ରାଜତ୍ୱ କରୁଥିବା ଚନ୍ଦ୍ରବଂଶୀୟ
ଦ୍ୱିତୀୟ ରାଜା । ] ୪ । ସୁଦାସ ରାଜାଙ୍କ ପୁତ୍ର, (ଭାଗବତ)—
4. The son of king Sudāsa. ୫ । ବ୍ୟାସ ଶିଷ୍ୟ
ମୁନିବିଶେଷ(ହି.ଶ.)—5. Name of a disciple of
sage Byāsa. ୬ । ଦ୍ରୌପଦୀଙ୍କ ଗର୍ଭଜାତ ନକୁଳ ପୁତ୍ର—
6 Name of the son of Nakula. [ ଦ—
ଏ କୁରୁକ୍ଷେତ୍ର ଯୁଦ୍ଧରେ ବୀରତ୍ୱ ପ୍ରକାଶ କରି ଯୁଦ୍ଧ
କରିଥିଲେ । କିନ୍ତୁ ଯୁଦ୍ଧାବସାନରେ ଅଶ୍ୱତ୍ଥାମାଙ୍କଦ୍ୱାରା
ରାତ୍ରିରେ ହତ ହୋଇଥିଲେ । ] ୭ । ଶ୍ୱଶୁର ( ହି.
ଶ )—7. Father-in-law. ୮ । ଅସୁରବିଶେଷ
( ହି. ଶ )—8. Name a demon.

ଶତାବଧାନ—ସଂ. ବିଣ ପୁଂ (ବହୁବ୍ରୀହି)—ଯେଉଁ ମନୁଷ୍ୟ ଏକ ସମୟରେ
Śatābadhāna ବହୁ କଥା ଶୁଣି ପର୍ଯ୍ୟାୟକ୍ରମେ ମନେ ରଖନ୍ତି
( ଶତାବଧାନ—ସ୍ତ୍ରୀଲିଙ୍ଗ ରୂପ ) ଓ ଏକ ସଙ୍ଗେ ବହୁ କାର୍ଯ୍ୟ କରି
ପାରନ୍ତି; ଶ୍ରୁତିଧର—A person who can remem-
ber many things uttered simultane-
ously and do many things together.
ସଂ. ବି—ଏକ ସମୟରେ ନାନା କର୍ମ ଓ ଧ୍ୱନି ପ୍ରତି ମନୋ-
ଯୋଗ ଦେଇ ସେମାନ ସ୍ମରଣ କରିବା ଶକ୍ତି—Concen-
tration of one's mind on various sub-
jects and sounds performed and uttered
simultaneously.

ଶତାବଧାନୀ—ସଂ. ବିଣ. ପୁଂ—ଶତାବଧାନ ( ଦେଖ )—Śatāba-
Śatābadhāni dhāna ( See ) ଦେ. ବି—ଶତାବଧାନ
শতাবধানী କର୍ମ—The exhibition of attending to
शतावधानी a hundred matters simultaneously.

ଶତାବରୀ—ସଂ. ବି ( ଶତ=ଶତମୂଳ+ଆ+ବୃ. ଧାତୁ+କର୍ତ୍ତୃ. ଇନ୍;
Śatābari ଯାହା ଶତେ ମୂଳଦ୍ୱାରା ଭୂମିକୁ ଆବ-
ରଣ କରେ )—୧ । ଶତମୂଳୀ;
ଛତଭୁଇଁ ଲତା; ବାଲବରୁଣୀ ଲତା—
1. Asparagus Racemosus.
[ ଦ୍ର—ଏହା ଏକପ୍ରକାର କଣ୍ଟକମୀ
ଲତା । ସାନ ବଡ଼ ଭେଦରେ ଏହା
ଦୁଇ ପ୍ରକାର,—ଶତାବରୀ ଓ ମହା
ଶତାବରୀ । ଏହାର ମୂଳ ମାଂସଳ ଓ
ମଧୁର ତିକ୍ତରସ, ଶୁକ୍ରବର୍ଦ୍ଧକ, ଶୀତଳ,
ସ୍ତନ୍ୟଜନକ, ବାତପିତ୍ତ କଫନାଶକ,
ଚକ୍ଷୁର ହିତକାରୀ, ବଳକର ଓ ରସା-
ୟନ । ଏହାର ପତ୍ରମାନ କ୍ଷୁଦ୍ର, ଶଲ୍ଲ
ତୁଲ୍ୟ ଓ ପତ୍ରର କୋଣରୁ ହରିଦ୍ରାଭ
ସୁଗନ୍ଧିତ କେଶର ବାହାରି ଥାଏ ।
ଏହା ଗୁଲ୍ମ, ଅତିସାର, ବାୟୁ, ପିତ୍ତ,
ରକ୍ତ ଦୋଷ ଓ ଶୋଥନାଶକ । ]
( ଦ୍ର—ବସ୍ତାରେ ସ୍ୱର୍ଗ ସ୍ୱଦଶ ଅଧିକରେ
ସତ । ବୃନ୍ଦ ବୃନ୍ଦ ରମ୍ଭା ଶତାବରୀ

ଅନ୍ୟ ସଂ. ନାମ—ଶତମୂଳୀ,
ବହୁସୁତା, ଅଭୀରୁ, ଇନ୍ଦୀବରୀ,
ବରୀ, ନାରାୟଣୀ, ଶତପଦୀ,
ଶତବୀର୍ଯ୍ୟା, ପୀବରୀ ।
ମହାଶତାବରୀର ପର୍ଯ୍ୟାୟ—
ଶତମୂଳୀ,ଊର୍ଦ୍ଧ୍ୱକଣ୍ଟିକା,ସହସ୍ର-]
ବୀର୍ଯ୍ୟା, ହେରୁ, ଋଷ୍ୟପ୍ରୋକ୍ତା,
ମହୋଦରୀ ।
শতমূলী
शफेद मूषली,
शतावर, शतावरी
ମ. ସାମୀକାଣ୍ଡେସେରୁ
ଗୁ. ଶତାବରୀ
ତେ. ଚଣ୍ଡି, ଚଣ୍ଡିଗଡ୍ଡଲୁ,
ପିଲ୍ଲିପିଚରୀ
ଫା. ଗୁକ୍ ଦସ୍ତୀ, ଆ.ଶକାଲୁଲ-
ମିସ୍ରି,

ଝୋରିବତ—ଉତ୍ତ. ବୈଦେହୀଶବିଳାସ ।) ୨ । ଇନ୍ଦ୍ର-
ଭାର୍ଯ୍ୟା ଶଚୀ; ଇନ୍ଦ୍ରାଣୀ—2. A name of Sachi
୩ । ଶଠୀ;ଗନ୍ଧଶୁଣ୍ଠି—3 Curcuma Zerumbet

ଶତାବର୍ତ୍ତ(ର୍ତ୍ତୀ)—ସଂ. ବି ( ଶତ+ଆବର୍ତ୍ତ, ଶତାବର୍ତ୍ତ+ଇନ୍; ୧ମା.
Śatābartta(rtti) ୧ବ )—୧ । ବିଷ୍ଣୁ; ନାରାୟଣ—
1. Bishnu. ୨ । ମହାଦେବ ( ହି. ଶବ୍ଦସାଗର )—

2. Śiba. ୩ । ହରିବଂଶୋକ୍ତ ପବିତ୍ର ବନବିଶେଷ (ହି. ଶ) —3. Name of a sacred forest.

ଶତାବ୍ଜ—ସଂ. ବି—ଶତପଦ୍ମ (ଦେଖ)
Śatābja Śatapadma. (See)

ଶତାବ୍ଦ—ସଂ. ବିଣ (ବହୁବ୍ରୀହି)—ଏକଶତ ବର୍ଷବ୍ୟାପୀ ବା ବୟସ୍କ—
Śatābda Relating to a hundred years. ସଂ. ବି—ଶତାବ୍ଦୀ (ଦେଖ) (ହି. ଶ)—Śatābdi. (See)

ଶତାବ୍ଦୀ—ସଂ. ବି—୧ । (ଶତ+ଅବ୍ଦ; ସମାହାର ଦ୍ୱିଗୁ) ଏକଶତ ବର୍ଷ-
Śatābdi କାଳ—1 A century. ୨ । ଏକଶତ ବର୍ଷ ସମୟର ସୀମା ମଧ୍ୟସ୍ଥ କୌଣସି କାଳ (ହି. ଶ)—2. A time within a century.

ଶତାୟୁଃ—ସଂ. ବିଣ. ପୁଂ (ଶତ=ଶତବର୍ଷ ଆୟୁଃ ଯାହାର, ବହୁବ୍ରୀହି)-
Śatāyuh ୧ । ଶତବର୍ଷଜୀବୀ—1. Living for a hundred years. ୨ । ଦୀର୍ଘଜୀବୀ—2. Long-lived. ସଂ. ବି—୧ । (ମହାଭାରତ) ପୁରୂରବାଙ୍କ ଏକ ପୁତ୍ର (ହି. ଶ)—1. Name of a son of Purūrabā. ୨ । (ବିଷ୍ଣୁପୁରାଣ) ଉଶନାଙ୍କ ଏକପୁତ୍ର—2. Name of a son of Uśanā.

ଶତାର—ସଂ. ବି (ବହୁବ୍ରୀହି; ଶତ+ଅର)—୧ । ବଜ୍ର—
Śatāra 1. Thunder. ୨ । ବିଷ୍ଣୁ ସୁଦର୍ଶନ ଚକ୍ର—2. Bishṇu's disc (weapon).

ଶତାରୁ—ସଂ. ବି (ବହୁବ୍ରୀହି; ଶତ+ଅରୁସ୍)—୧ । ଏକପ୍ରକାର କୁଷ୍ଠ
Śatāru ରୋଗ (ହି. ଶ)-1. A kind of leprosy. [ଦ୍ର—(ଶତାରୁଷୀ—ଅନ୍ୟରୂପ) ଏ ରୋଗରେ ଚମଡ଼ା ଉପରେ ନାଲି ଓ କଳା ଓ ଦାହଯୁକ୍ତ ବ୍ରଣମାନ ଉଠେ (ହି. ଶ)]

ଶତାଶିନ—ସଂ. ବି—ବଜ୍ର (ହି. ଶ)
Śatāśina Thunder.

ଶତାହ୍ୱା—ସଂ. ବି (ବୈଦ୍ୟକ)—୧ । ଶତପୁଷ୍ପା; ଶଲ୍ପ—1. Dill
Śatāhwā seed; fenul seed. ୨ । ଶତାବରୀ (ହି. ଶି)—(ଶତାହ୍ୱୟା—ଅନ୍ୟରୂପ) 2. Asparagus Racemosus.

ଶତାଷ୍ଟକ—ସଂ. ବି—ଅଷ୍ଟୋତ୍ତର ଶତ; ଏକଶହ ଆଠ (ବିଶ୍ୱକୋଷ)—
Śatāshṭaka One hundred and eight.

ଶତିଆ(ୟା)—ଦେ. ବି—ଝିଟିପିଟି; ଗୃହଗୋଧିକା—The common
Śatiā(yā) house lizard. [ଦ—ଗୃହରେ ଗୋଟିଏ ଟିକଟିକୀ ଝିଟିପିଟି ଟକ୍‌ଟକ୍ ଶବ୍ଦ କଲେ ତାହା ଶୁଣିବା ଲୋକର ଛିପକିଲୀ ପରମାୟୁ ହାନି ହେବା ଆଶଙ୍କାରେ ବୋଲାଯାଏ 'ଶତଂ ଜୀବ'। ଏଥିରୁ କ୍ରମଶଃ ଉକ୍ତ ମୌଳିକ ଭାବ ଲୋପ ହୋଇ ବର୍ତ୍ତମାନ ଲୋକେ ଝିଟିପିଟି ରାବ ଶୁଣିଲେ କହୁଥାନ୍ତି :—ଶତିଆ ସତ କହୁଛ; ଶତିଆ ଶତ୍ ଶତ୍ ଶତ୍ ।]

ଶତିକ—ସଂ. ବି (ଶତ+ଇକ)—୧ । ଶତ ସମ୍ବନ୍ଧୀୟ—1. Rela-
Śatika ting to one hundred. ୨ । ଶତ ମୁଦ୍ରାରେ [ଶତିକା—ସ୍ତ୍ରୀ] କ୍ରୀତ—2. Purchased for one hundred coins. ୩ । ଯାହାର ଶତମୁଦ୍ରା ମୂଲ୍ୟ—3. Valued at a hundred coins. ୪ । ଯେଉଁ ଭୂମିର ନିର୍ଦ୍ଧାରିତ କର ଶତମୁଦ୍ରା—4. (land) Assessed at a rent of hundred coins. ୫ । ଯାହାର ଆୟୁଃ ଶତବର୍ଷ—5 (a person) Whose life is 100 years long. ସଂ. ବି. ପୁଂ—ଶତବର୍ଷବୟସ୍କ ବ୍ୟକ୍ତି—Centenarian.

ଶତିକ(କା,କେ)ଇ—ଦେ. ବି ଓ ବିଣ ସ୍ତ୍ରୀ (ବ୍ୟଙ୍ଗାର୍ଥ) (ସଂ. ସତ୍ୟ ବା
Śatika(kā,ke)i ସତ୍ତାରୁ ବା ଶତଭାଷିଣୀ)—୧ । ମିଥ୍ୟାବାଦିନୀ-
सती —1. Lying (woman). ୨ । ବାଚାଳ (ସ୍ତ୍ରୀ)—
सती 2. Talkative (woman). [ଦ୍ର—ଶତିକଇ ପୁରସ୍ତମ ଗଳ୍ପ, ଭୁଣ୍ଡି କଥା କହୁ କହୁ ମଲ୍ଲି । ଢଗ ।]

ଶତିକା—ସଂ. ବି. ସ୍ତ୍ରୀ (ଶତିକ+ସ୍ତ୍ରୀ. ଆ)—ଶହେ ପର୍ଯ୍ୟନ୍ତ ଅଙ୍କ ବା
Śatikā ସଂଖ୍ୟା—The figures up to 100.

ଶତୀ—ସଂ. ବି (ଶତ୍+ଇନ୍; ୧ମା. ୧ବ)—ଶତର ସମୂହ—
Śati A collection of hundreds. ସଂ. ବିଣ—ଶତ ସଂଖ୍ୟା ବିଶିଷ୍ଟ (ବିଶ୍ୱକୋଷ)—Numbering one hundred.

ଶତୁରା—ଦେ.ବି (ସଂ.ଶତ୍ରୁଘ୍ନ)—(ଅନାଦରାର୍ଥକ) ଶତ୍ରୁଘ୍ନର ଡାକ ନାମ—
Śaturā Names for calling Śatrughna,
[ଶତୁର, ଶତୁରୁ—ଆଦରାର୍ଥକ ରୂପ]
शतु शतुआ

ଶତୁରୁ—ଗ୍ରା. ବି (ସଂ. ଶତ୍ରୁ)—୧ । ଶତ୍ରୁ—1. Enemy.
Śaturu ୨ । ଶତ୍ରୁଘ୍ନର ଡାକନାମ—
शत्रु शत्रुघ्न 2. A name for calling Śatrughna.

ଶତୃ (ପ୍ରତ୍ୟୟ)—ସ—ଏହି ପ୍ରତ୍ୟୟ ସଂସ୍କୃତ ଧାତୁ ସଙ୍ଗେ ଯୁକ୍ତ ହେଲେ
Śatṛu (suffix) ଉକ୍ତ କ୍ରିୟା କରୁଥିବା ବିଶେଷଣ ଶବ୍ଦ ପ୍ରସ୍ତୁତ ହୁଏ । କୃ ଧାତୁ+ଶତୃ=କୁର୍ବତ୍, ଶ୍ରୁ ଧାତୁ+ଶତୃ=ଶୃଣ୍ୱତ୍ ଇତ୍ୟାଦି)—An inflection or suffix added to a root. [ଦ୍ର—ଓଡ଼ିଆରେ ଏହି 'ଶତୃ' ପ୍ରତ୍ୟୟକୁ 'ଅତ୍' ପ୍ରତ୍ୟୟ ବୋଲାଯାଏ । ଏହାର ବ୍ୟବହାର ଓଡ଼ିଆଭାଷାରେ ବିରଳ; ସମାସବଦ୍ଧ ଶବ୍ଦରେ କ୍ୱଚିତ୍ ଏହାର ବ୍ୟବହାର ଦେଖାଯାଏ; ଯଥା, ଚଳତ୍ଶକ୍ତି; ପଠଦ୍ଦଶା ।] ବି (ସଂ. ଶତ୍ରୁର ଅଶୁଦ୍ଧ ବର୍ଣ୍ଣବିନ୍ୟାସ) ଶତ୍ରୁ (ଦେଖ)—Śatru (See)

ଶତେ—ଦେ. ବିଣ—୧ । ଶତ ସଂଖ୍ୟକ—1. Numbering a
Śate hundred. ୨ । ବହୁସଂଖ୍ୟକ—2. Many.
शत; शत शत सौ (ଦ୍ର—ଶତେ କଥାରେ ସତ୍ତା ଭୁଲେ—ଢଗ ।)

ଶତେକ—ଦେ. ବି—ଏକ ଶତ ମାତ୍ର—Only one hundred.
Śateka (ଦ୍ର—ଶତେକ ଆପଣେ ଯୋଡ଼ିଲେ ନର୍ମି କର—
एकशत सतैक କୃଷ୍ଣସିଂହ ମହାଭାରତ ବନ ।)
ବିଣ—ଏକଶତସଂଖ୍ୟକ; ଶହେ—Numbering one hundred. (ଦ୍ର—ଏମନ୍ତେ ଶତେକ ବରଷ, ମନୁଷ୍ୟ ପରମାୟୁ ଶେଷ—ଜଗନ୍ନାଥ ଭାଗବତ ।)

ଶତେର—ସଂ. ବି (ଶଦ୍ ଧାତୁ=ନାଶ କରିବା, ଗମନ କରିବା+କର୍ମ
atera ଏର)—୧ । ଶତ୍ରୁ—1. Enemy; foe.

୨ । (+ଭାବ ଏଵ) ହିଂସା—2. Envy; jealousy
୩ । କ୍ଷତ; ଘାଆ (ହି. ଶ)—3. Wound.

ଶତ୍ୱରୀ—ସଂ. ବ (ଶଦ୍ ଧାତୁ+କର୍ତ୍ତ୍ରି ବର+ସ୍ତ୍ରୀ ଈ)—ରାତ୍ରି
Śatwarī (ବିଶ୍ୱକୋଷ; ହି. ଶ; ତ୍ରିକାଣ୍ଡଶେଷ)—Night.

ଶତ୍ୟ—ସଂ. ବଣ (ଶତ+ଯ)—୧ । ଶତଦ୍ୱାରକ୍ରୀତ (ବିଶ୍ୱକୋଷ)—
Śatya 1. Purchased wth a hundred.
ସଂ. ବ—ଶତର ବିକାର (ବିଶ୍ୱକୋଷ)—A variation or change of one hundred.

ଶତ୍ର—ସଂ. ବ—ବଳ (ବିଶ୍ୱକୋଷ)—
Śatra Strength.

ଶତ୍ରି—ସଂ. ବ (ଶଦ୍ ଧାତୁ+କର୍ତ୍ତ୍ରି ତ୍ରି)—୧ । ହସ୍ତୀ (ହି. ଶ)—
Śatri 1. Elephant. ୨ । ରାଜର୍ଷିବିଶେଷ (ହି. ଶ)
2. Name of a Rājarshi.

ଶତ୍ରୁ—ସଂ. ବ (ଶଦ୍ ଧାତୁ+କର୍ତ୍ତ୍ରି ତ୍ରୁ)—୧ । ରିପୁ; ବୈରୀ—
Śatru 1. Foe. ୨ । ବିପକ୍ଷ—2. Adversary; opponent. ୩ । (ଜ୍ୟୋତିଷ) ଲଗ୍ନଠାରୁ ୬ଷ୍ଠ ସ୍ଥାନ—3. (astrology) The 6th place from one's lagna. ୪ । ନାଗଦମନୀ (ହି. ଶ) 4. Indian worm wood plant. [ବି—ଗ୍ରନ୍ଥମାର୍ଥରେ ଶତ୍ରୁଶବ୍ଦର ଅନ୍ୟ ସ.ପର୍ଯ୍ୟାୟ—ଶାତବ, ସପତ୍ନ, ଅରି, ଦ୍ୱେଷଣ, ଦୁର୍ହୃଦ୍, ଦ୍ୱିଷ, ବିପକ୍ଷ, ଅହିତ, ଅମିତ୍ର, ଦସ୍ୟୁ, ଶାତ୍ରବ, ଅଭିଘାତୀ, ପର, ଅରାତି, ପ୍ରତ୍ୟର୍ଥୀ, ପରିପନ୍ଥୀ, ବୃଷ, ପ୍ରତିପକ୍ଷ, ଦ୍ୱିଷତ୍, ଘାତକ, ଦ୍ୱେଷୀ, ବିଦ୍ୱିଷ, ହିଂସକ, ଅପ୍ରିୟ, ଦୌର୍ହୃଦ—ବିଶ୍ୱକୋଷ।]

ଶତ୍ରୁକଣ୍ଟକ(କା)—ସଂ ବ—ଗୁଆ (ହି ଶ)—
Śatru kanṭaka(kā) Areca nut.

ଶତ୍ରୁଘନ—ଗ୍ରା. ବ (ସଂ ଶତ୍ରୁଘ୍ନ)—ଶତ୍ରୁଘ୍ନ (ଦେଖ)—Śatrughna
Śatrughana (see). (ଉ—ରାମ ଲକ୍ଷ୍ମଣ ଶତ୍ରୁଘନ, ଭରତ ଭୁଲେ ଗୁଣଗଣ—ଜଗନ୍ନାଥ ଭାଗବତ।)

ଶତ୍ରୁଘାତୀ—ସଂ. ବଣ ଓ ବ. ପୁ (ଶତ୍ରୁ+ହନ୍ ଧାତୁ+କର୍ତ୍ତ୍ରି.ଇନ୍; ୧ମା
Śatru ghāti ୧ବ)—ବୈରିନାଶକ, ଶତ୍ରୁହନ୍ତା; ଯେ ଶତ୍ରୁକୁ
(ଶତ୍ରୁଘାତିନୀ—ସ୍ତ୍ରୀ) ହତ୍ୟା କରେ—Killing the enemy; slayer of the enemy. ବ—ଶତ୍ରୁଘ୍ନଙ୍କର କନିଷ୍ଠ ପୁତ୍ର—Name of the younger son of Śatrughna.

ଶତ୍ରୁଘ୍ନ—ସଂ. ବଣ ପୁଂ (ଶତ୍ରୁ+ହନ୍ ଧାତୁ=ବଧକରିବା+କର୍ତ୍ତ୍ରି. ଅ; ଯେ
Śatrughna ଶତ୍ରୁକୁ ବଧକରେ)—ଶତ୍ରୁହନ୍ତା; ଶତ୍ରୁକୁ ଯେ ହତ୍ୟା କରେ—Killing an enemy. ବି—ଶତ୍ରୁହତ୍ୟାକାରୀ ବୀର—1. A slayer of the enemy. ୨ । ଦଶରଥଙ୍କର ପତ୍ନୀ ସୁମିତ୍ରାଙ୍କ ଗର୍ଭଜ ଯମଜ କନିଷ୍ଠ ସନ୍ତାନ; ଲକ୍ଷ୍ମଣଙ୍କର କନିଷ୍ଠ ଭ୍ରାତା—2. The younger twin brother of Lakshmaṇa, born of Sumitrā, a queen of Daśaratha. [ବି—ଅଯୋଧ୍ୟାର ରାଜା ଦଶରଥଙ୍କର ଚାରି ପୁତ୍ର ମଧ୍ୟରେ ଲକ୍ଷ୍ମଣ ଯେପରି ରାମଚନ୍ଦ୍ରଙ୍କର ଏକାନ୍ତ ଅନୁଗତ ଥିଲେ, ଶତ୍ରୁଘ୍ନ ମଧ୍ୟ ସେହିପରି ଭରତଙ୍କର ଭକ୍ତ ଓ ଏକାନ୍ତ ଅନୁଗତ ଥିଲେ। ରାମଚନ୍ଦ୍ରଙ୍କ ବିବାହ କାଳରେ ଏ ଜନକଙ୍କ ଝିଅଶ୍ରୁତକୀର୍ତ୍ତିଙ୍କ ପାଣିଗ୍ରହଣ କରିଥିଲେ । ରାମଚନ୍ଦ୍ରଙ୍କ ବନବାସ ଓ ତଜ୍ଜନିତ ଶୋକହେତୁ ଦଶରଥଙ୍କ ମୃତ୍ୟୁ ଘଟିବା କାଳରେ ଏ ଭରତଙ୍କ ମାତୁଳାଳୟ କେକୟ ରାଜ୍ୟରେ ଥିଲେ ଏବଂ ସଂବାଦ ପାଇ ସେଠାରୁ ଫେରି ଆସି ରାମଚନ୍ଦ୍ରଙ୍କୁ ବନରୁ ବାହୁଡ଼ାଇ ଆଣିବାପାଇଁ ଭରତଙ୍କ ସହିତ ଯାଇଥିଲେ। କିନ୍ତୁ ରାମଚନ୍ଦ୍ର ପିତୃସତ୍ୟ ପାଳନ କରି ଫେରି ନ ଆସିବାରୁ ଭରତ ରାମଚନ୍ଦ୍ରଙ୍କ ପାଦୁକାକୁ ସିଂହାସନରେ ପ୍ରତିଷ୍ଠିତ କରି ନନ୍ଦୀଗ୍ରାମରେ ଅବସ୍ଥାନପୂର୍ବକ ରାଜ୍ୟଶାସନ କଲେ ଓ ସେହିଠାରେ ଶତ୍ରୁଘ୍ନ ଭରତଙ୍କ ଅନୁଚର ରୂପେ ରହିଲେ । ରାମଚନ୍ଦ୍ରଙ୍କ ବନପ୍ରତ୍ୟାଗମନ ପରେ ଏ ଭରତଙ୍କ ସଙ୍ଗେ ନନ୍ଦୀଗ୍ରାମରୁ ଅଯୋଧ୍ୟାକୁ ଅଇଲେ । ରାମଚନ୍ଦ୍ରଙ୍କ ଆଦେଶକ୍ରମେ ଏ ଲବଣ ନାମକ ରାକ୍ଷସକୁ ବଧ କରି ତାହାର ମଧୁପୁରୀ ରାଜଧାନୀକୁ ଧ୍ୱଂସକରି ସେହିଠାରେ ମଥୁରା ରାଜ୍ୟ ସ୍ଥାପନକରି ନିଜର ପୁତ୍ର ସୁବାହୁ ଓ ଶତ୍ରୁଘାତୀଙ୍କୁ ଉକ୍ତ ରାଜ୍ୟର ଭାର ଅର୍ପଣ କରି କିଛିଦିନପରେ ରାମଚନ୍ଦ୍ରଙ୍କ ସଙ୍ଗେ ସରଯୂ ନଦୀରେ ଯୋଗବଳରେ ତନୁତ୍ୟାଗ କଲେ। ] ୩ । ସ୍ୱଫଳ୍କଙ୍କ ଏକପୁତ୍ର (ହି ଶ)—3. Name of Swaphalka. ଦେ.ତ—୧ । ପୁରୁଷଙ୍କ ବ୍ୟକ୍ତି ନାମ । शत्रुघ्न ଶତ୍ରୁଘ୍ନ ନାମ—1. A name given to males.

ଶତ୍ରୁଘ୍ନୀ—ସ. ବଣ. ସ୍ତ୍ରୀ—(ଶତ୍ରୁଘ୍ନ+ଈ)—ଶତ୍ରୁଘ୍ନର ସ୍ତ୍ରୀଲିଙ୍ଗ—
Śatrughnī Feminine of Śatrughna. ସ. ବ—ହତିଆର; ଅସ୍ତ୍ର ଶସ୍ତ୍ର (ହି. ଶ)—Weapon; offensive weapon.

ଶତ୍ରୁଚର—ସ. ବ—(ଶତ୍ରୁ+ଚର; ୬ଷ୍ଠୀ ତତ୍)—ବିପକ୍ଷ ପକ୍ଷର ଗୁଇନ୍ଦା
Śatruchara ଶତ୍ରୁର ଚର ବା ପ୍ରଣିଧି—A spy or informer of the enemy.

ଶତ୍ରୁଜୟ—ସ. ବ—(୬ଷ୍ଠୀ ତତ୍)—ଶତ୍ରୁବିଜୟ (ଦେଖ)
Śatru jaya Śatru bijaya (See)

ଶତ୍ରୁଜୟୀ—ସ. ବଣ—ଶତ୍ରୁବିଜୟୀ (ଦେଖ)
Śatru jayī Śatru bijayī (See)

ଶତ୍ରୁଜିତ୍—ସ. ବଣ—(ଶତ୍ରୁ+ଜି ଧାତୁ+କର୍ତ୍ତ୍ରି. କ୍ୱିପ୍)—ଶତ୍ରୁବିଜୟୀ—
Śatrujit Vanquishing one's foe.
ସ. ବ—୧ । କୁବଳୟାଶ୍ୱଙ୍କ ପିତାଙ୍କ ନାମ—
1. Name of father of king Kubalayāswa.

ଶତ୍ରୁଞ୍ଜୟ—ସ. ବଣ. ପୁଂ—(ଶତ୍ରୁଂ=ଶତ୍ରୁକୁ+ଜି ଧାତୁ=ଜୟକରିବା
Śatruñjaya +କର୍ତ୍ତ୍ରି. ଅ ଉପପଦ ତତ୍)—ଶତ୍ରୁକୁ ଜୟକାରୀ; ଯେ ଶତ୍ରୁକୁ ପରାଜିତ କରେ—Vanquishing an enemy, the vanquisher of one's enemy. ବ—୧ । ପର୍ବତ ବିଶେଷ; ଗୁଜୁରାଟର ଅନ୍ତର୍ଗତ ତୈର୍ଥିକ ପର୍ବତ;

ବିମଳାଦ୍ରି—1. Name of the mountain Girnar in Gujerat ( W. India) [ ବି—ଏହା ଜୈନମାନଙ୍କର ଗୋଟିଏ ପ୍ରସିଦ୍ଧ ତୀର୍ଥ, ଏହା କାଠିଆ ବାଡ଼ରେ ପାଲିଟାନା ନଗର ନିକଟରେ ଅବସ୍ଥିତ । ଏଠାରେ ଅନେକ ଜୈନ ଦେବ ମନ୍ଦିର ଓ ପ୍ରସ୍ତରର କାରୁକାର୍ଯ୍ୟ ଅଛି ।] ୨ । ରାମଚନ୍ଦ୍ରଙ୍କର ବାହନ ହସ୍ତୀର ନାମ; ମହାବଳ ଓ ମହାକାୟ ହସ୍ତୀ—2. Name of a big elephant belonging to Ramchandra. [ବି—ରାମଚନ୍ଦ୍ର ମାତୁଳାଳୟରୁ ଏହି ହସ୍ତୀକୁ ଉପହାର ପାଇଥିଲେ ଓ ବନଗମନ କାଳରେ ଏହାକୁ ସୁଯଜ୍ଞଙ୍କୁ ଦେଇ ଯାଇଥିଲେ ।] ୩ । ପରମେଶ୍ୱର (ଛ. ଶ)—3. God.

ଶତ୍ରୁତା (ତ୍ୱ)—ସଂ. ବି—(ଶତ୍ରୁ+ଭାବାର୍ଥେ. ତା, ତ୍ୱ)—୧ । ବିପକ୍ଷତା; Śatrutā(twa) ବୈରିତା—1. Enmity; hostility. ୨ । ପ୍ରତିକୂଳତା—2. Opposition; contrariety; unfavourableness.

ଶତ୍ରୁତା କରିବା—ଦେ. କ୍ରି—କୌଣସି ବ୍ୟକ୍ତି ବିରୁଦ୍ଧରେ ଶତ୍ରୁଭାବରେ Śatrutā kariba କାର୍ଯ୍ୟ କରିବା—To act inimically to a person. শত্রুতা কবা শত্রুতা করনা

ଶତ୍ରୁତାଚରଣ—ସଂ. ବି—(୬ଷ୍ଠୀ ତତ୍; ଶତ୍ରୁତା+ଆଚରଣ)—ବୈରିଭାବ Śatrutācharaṇa ଆଚରଣ କରିବା; ଶତ୍ରୁରୂପେ କୌଣସି ବ୍ୟକ୍ତିର ଅନିଷ୍ଟାଚରଣ—Acts of hostility.

ଶତ୍ରୁତାଚାରୀ—ସଂ. ବଣ ପୁଂ—(ଶତ୍ରୁତା+ଆ+ଚର ଧାତୁ+କର୍ତ୍ତ୍ରି. ଇନ୍ Śatrutāchārī ୧ମା. ୧ବ)—ଯେ ଶତ୍ରୁତାଚରଣ କରେ— [ଶତ୍ରୁତାଚାରିଣୀ—ସ୍ତ୍ରୀ] Doing acts of hostility; acting inimically.

ଶତ୍ରୁତାନଳ—ସଂ. ବି—( ଶତ୍ରୁତା+ଅନଳ; ରୂପକ )—ଅଗ୍ନିପରି Śatrutānala ଭୟାନକ ଅନିଷ୍ଟକାରୀ ଶତ୍ରୁତା—Fierce hostility or enmity compared to fire.

ଶତ୍ରୁତାପନ—ସଂ. ବି—(ଶତ୍ରୁ+ତାପନ; ୬ଷ୍ଠୀ ତତ୍)—୧ । ଶତ୍ରୁଦ୍ୱାରା Śatrutāpana ଉତ୍ପୀଡ଼ନ—1 Oppression practised on a person by one's enemy. ୨ । (୬ଷ୍ଠୀ ତତ୍)—ଆପଣାର ଶତ୍ରୁକୁ ଉତ୍ପୀଡ଼ନ କରିବା—2. Oppressing one's enemies. ବଣ (ଶତ୍ରୁ+ତାପି ଧାତୁ=କଷ୍ଟ ଦେବା+କର୍ତ୍ତ୍ରି. ଅନ)—ଶତ୍ରୁର ପୀଡ଼ାଦାୟକ Oppressive to the enemy.

ଶତ୍ରୁତା ଭାବ—ଦେ. ବି—ଶତ୍ରୁଭାବ (ଦେଖ) Śatrutā bhāba Śatru bhāba (See)

ଶତ୍ରୁତାଭାବ ପୋଷଣ କରିବା—ଦେ. କ୍ରି—କୌଣସି ବ୍ୟକ୍ତି ବିରୁଦ୍ଧରେ Śatrutā bhāba poshaṇa kariba ବୈରଭାବ ମନରେ ରଖିବା—To retain a feeling of enmity against a person. শত্রুতা পোষণকবা

ଶତ୍ରୁଦମ(ଳ)ନ—ସଂ. ବି—୧ (ଶତ୍ରୁ+ଦମ୍ [ଳି]ଧାତୁ+ଭାବ. ଅନ)— Śatru dama(ḷa)na ଶତ୍ରୁକୁ ପରାଜୟ କରଣ—Vanquishing the foe. ୨ । (+କର୍ତ୍ତ୍ରି. ଅନ)—ଶତ୍ରୁ ମର୍ଦ୍ଦନକାରୀ ବ୍ୟକ୍ତି—2. Vanquisher of the enemy. ୩ । ଦଶରଥ ପୁତ୍ର ଶତ୍ରୁଘ୍ନଙ୍କ ଏକ ନାମ—3. A name of Śatrughna.

ଶତ୍ରୁଦ୍ରୁମ—ସଂ. ବି—ଅମ୍ଳବେତସ (ବୈଦ୍ୟକୋଷ)— Śatru druma Common sorrel.

ଶତ୍ରୁଦ୍ରୋହ—ସଂ. ବି—ବିପକ୍ଷକୁ ନାଶ କରିବା— Śatru droha Distruction of one's foe.

ଶତ୍ରୁନାଶ—ସଂ. ବି—(୬ଷ୍ଠୀ ତତ୍)—ଶତ୍ରୁକୁ ପୀଡ଼ା ଦେବା— Śatru nāśa The destruction of the enemy.

ଶତ୍ରୁନିପୀଡ଼ିତ—ସଂ. ବଣ—(ଶତ୍ରୁ+ନିପୀଡ଼ିତ, ୩ୟା ତତ୍)—ଶତ୍ରୁଦ୍ୱାରା Śatru nipirditā ଉତ୍ପୀଡ଼ିତ—Oppressed by the enemy. (ଶତ୍ରୁ ନିପୀଡ଼ନ-ବିଶେଷ୍ୟ)

ଶତ୍ରୁନିର୍ଯ୍ୟାତନ—ସଂ. ବି—(୩ୟା ତତ୍)—ଶତ୍ରୁଦ୍ୱାରା ପୀଡ଼ନ— Śatru nirjyātana Oppression practised on a person by one's enemy.

ଶତ୍ରୁନ୍ତପ—ସଂ. ବଣ. ଓ ବି ପୁଂ—(ଶତ୍ରୁ+ତପ୍ ଧାତୁ+କର୍ତ୍ତ୍ରି. ଅ)— Śatruntapa ଶତ୍ରୁଂ ଜୟକାରୀ—(ହିଷ୍ଟୋପଦେଶ)— [ଶତ୍ରୁଦମ—ଅନ୍ୟରୂପ] Vanquishing one's foes.

ଶତ୍ରୁପକ୍ଷ—ସ. ବି (୬ଷ୍ଠୀ ତତ୍)—୧ । ବିପକ୍ଷ ଦଳ—1 Enemy's Śatru paksha party. ୨ । ବିପକ୍ଷ ପକ୍ଷ—2. The enemy. ୩ । ବିପକ୍ଷର ସେନା—3. The enemy's army.

ଶତ୍ରୁପଣ—ଦେ. ବି—ଶତ୍ରୁତା—Enmity. Śatru paṇa শত্রুতা शत्रुताई, शत्रु पन (ଶତ୍ରୁ ପଣିଆ[ସ୍ତ୍ରୀ]—ଅନ୍ୟରୂପ)

ଶତ୍ରୁପୀଡ଼ନ ସ. ବି—ଶତ୍ରୁ ନିର୍ଯ୍ୟାତନ ( ଦେଖ ) Śatru pirdana Śatru nirjyātana (See)

ଶତ୍ରୁ ପୀଡ଼ା—ସ. ବି ( ମ. ଗ ଶ୍ଳୋ )—ଶତ୍ରୁକୃତ ଅତ୍ୟାଚାର— Śatru pirdā Oppression by the enemy.

ଶତ୍ରୁବଧ—ସ. ବି ( ୬ଷ୍ଠୀ ତତ୍ )—ଆପଣାର ଶତ୍ରୁର ହତ୍ୟା— Śatru badha The murder of one's enemy, killing one's enemy. ଶତ୍ରୁ ହତ୍ୟା—ଅନ୍ୟରୂପ )

ଶତ୍ରୁବଳ—ସ. ବି ( ୬ଷ୍ଠୀ ତତ୍ )—୧ । ବିପକ୍ଷର ଶକ୍ତି ବା କ୍ଷମତା— Śatru bala 1. The power of the enemy. ୨ । ବିପକ୍ଷର ସେନାବଳ—2. The enemy's force or army. ସ. ବଣ ( ଶତ୍ରୁ+ବିଦ୍ୟମାନାର୍ଥେ ବଳ )—ଯାହାର ଶତ୍ରୁ ବିଦ୍ୟମାନ ଅଛି ( ବୈଦ୍ୟକୋଷ )—Having enemies.

ଶତ୍ରୁବାଧା—ସ. ବି ( ମ. ଗ. ଶ୍ଳୋ )—ଶତ୍ରୁ ପୀଡ଼ା ( ଦେଖ ) Śatru badhā Śatru pirdā ( See )

ଶତ୍ରୁବିଜୟ—ସ. ବି ( ୬ଷ୍ଠୀ ତତ୍ )—ଶତ୍ରୁର ପରାଜୟ; ଶତ୍ରୁକୁ ପରାସ୍ତ Śatru bijaya କରିବା—The defeat of the foe.

**ଶତ୍ରୁ ବିଜୟୀ** — ସଂ. ବିଣ. ଓ ବି ପୁଂ—ଯେ ଶତ୍ରୁଙ୍କୁ ପରାଜିତ କରେ; ଶତ୍ରୁଜୟୀ—
Śatru bijayi Vanquishing one's enemy; vanquisher of one's foes.
( ଶତ୍ରୁ ବିଜୟିନୀ—ସ୍ତ୍ରୀ )

**ଶତ୍ରୁ ବିଜିତ** — ସଂ. ବିଣ ( ଶତ୍ରୁ + ବିଜିତ; ୩ୟା ତତ୍ )— ଶତ୍ରୁଦ୍ୱାରା ପରାଜିତ—Vanquished or conquered by the enemy.
Śatru bijita
( ଶତ୍ରୁ ବିଜିତା — ସ୍ତ୍ରୀ )

**ଶତ୍ରୁ ବିଗ୍ରହ** — ସଂ. ବି—ଶତ୍ରୁତାପୂର୍ବକ ଯୁଦ୍ଧ; ଶତ୍ରୁଭାବରେ ଆକ୍ରମଣ ( ଶବ୍ଦକୋଷ )—Fight with inimical motive.
Śatru bigraha

**ଶତ୍ରୁ ବିନାଶନ** — ସଂ. ବି—୧ । ଶତ୍ରୁ ବିନାଶକାରୀ—1. Destroyer of the foes. ୨ । ମହାଦେବ (ହି ଶ)—2. Mahādeba.
Śatru binā̇śana

**ଶତ୍ରୁ ଭଙ୍ଗ** — ସଂ. ବି—ମୁଞ୍ଜ ତୃଣ ( ହି. ଶ )—The Muñja grass.
Śatru bhanga

**ଶତ୍ରୁ ଭଞ୍ଜ ଦେବ** — ଦେ. ବି (ନାମ)—ଭଞ୍ଜବଂଶୀୟ ଜନୈକ ଖ୍ୟାତନାମା ରାଜା—A famous king of the Bhañja dynasty. [ ଦ୍ର—ଏ ପ୍ରଥମ ଶିଳାଭଞ୍ଜଙ୍କ ପୁତ୍ର ଥିଲେ ଓ ଉଭୟ ଖିଞ୍ଜଳ ମଣ୍ଡଳ ( ଅଧୁନାତନ ବୌଦ୍ଧ, ଦଶପଲ୍ଲା ଓ ଘୁମସର )ର ଅଧୀଶ୍ୱର ଥିଲେ । ବିକ୍ରମ ସମ୍ବତ୍ ୮୦୦ ବା ୭୪୩ ଖ୍ରୀଷ୍ଟାବ୍ଦରେ ଲିଖିତ ତାଙ୍କର ତାମ୍ରଶାସନରୁ ଜଣାଯାଏ ଯେ ସେ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀର ମଧ୍ୟ ଭାଗରେ ରାଜତ୍ୱ କରୁଥିଲେ—ଶ୍ରୀମାନ୍ କେଦାରନାଥ ମହାପାତ୍ର. ବି.ଏ, ଙ୍କ ଟିପ୍ପଣୀ । ]
Śatrū bhañja deba

**ଶତ୍ରୁ ଭାବ** — ସଂ. ବି—ଶତ୍ରୁତା—Enmity
Śatru bhāba ( ଶତ୍ରୁଭାଭବ—ଦେ. ରୂପ )

**ଶତ୍ରୁ ଭୂମିଜ** — ସଂ. ବି—ନୀଳାଞ୍ଜନ ( ହି. ଶ; ଶବ୍ଦକୋଷ )—The blue collyrium.
Śatru bhūmija

**ଶତ୍ରୁ ମର୍ଦ୍ଦକ** — ସଂ. ବିଣ. ଓ ବି ପୁଂ—ବିପକ୍ଷକୁ ଯେ ପରାଜୟ କରେ—Vanquisher of one's foes.
Śatru marddaka
( ଶତ୍ରୁ ମର୍ଦ୍ଦିକା — ସ୍ତ୍ରୀ ) (ଶତ୍ରୁବିମର୍ଦ୍ଦକ—ଅନ୍ୟରୂପ)

**ଶତ୍ରୁ ମର୍ଦ୍ଦନ** — ସଂ. ବି—୧ । (୬ଷ୍ଠୀ ତତ୍) ବିପକ୍ଷକୁ ପରାଜିତ କରିବା—1. Vanquishing the enemy. ୨ । ଶତ୍ରୁଘ୍ନଙ୍କ ଏକ ନାମ—2. Name of Śatrughna ୩ । କୁବଳୟାଶ୍ୱଙ୍କ ପୁତ୍ର ( ହ୍ରି ଶ )—3. Name of the son of Kubaḷāyaśwa. ବିଣ. ପୁଂ—ବିପକ୍ଷକୁ ଦମନକାରୀ—Vanquishing the enemy
Śatru marddana
(ଶତ୍ରୁବିମର୍ଦ୍ଦନ—ଅନ୍ୟରୂପ)

**ଶତ୍ରୁ ମିତ୍ର** — ସଂ. ବି ( ଦ୍ୱନ୍ଦ୍ୱ )—୧ । ଶତ୍ରୁ ଓ ମିତ୍ର—1. Foe and friend. ୨ । ( ୬ଷ୍ଠୀ ତତ୍ ) ଆପଣା ବିପକ୍ଷର ମିତ୍ର—2. The friend of one's enemy.
Śatru mitra

**ଶତ୍ରୁ ମିତ୍ରୁ** — ଗ୍ରା. ବି ( ସଂ. ଶତ୍ରୁ ମିତ୍ର )—ଶତ୍ରୁ ଓ ମିତ୍ର—Friend and foe.
Śatru mitru शत्रु मित्र शत्रुमित्र

**ଶତ୍ରୁ ଶଙ୍କା** — ସଂ. ବି—୧ । ବିପକ୍ଷ ଯୋଗୁଁ ମନରେ ଜାତ ଭୟ—1. The fear of the enemy. ୨ । ଶତ୍ରୁଠାରୁ ଅନିଷ୍ଟ ଘଟିବାର ଆଶଙ୍କା—2. Apprehension of injury from the foe.
Śatru śaṅkā

**ଶତ୍ରୁ ଶାସନ** — ସଂ. ବି ( ୬ଷ୍ଠୀ ତତ୍ )—ବିପକ୍ଷକୁ ଦଣ୍ଡ ଦେବା—The punishing of one's enemies. [ ଦ୍ର—ଏଥିରୁ ବିଶେଷଣରେ ( ପୁଂ ) ଶତ୍ରୁଶାସ୍ତା ଓ ( ସ୍ତ୍ରୀ ) ଶତ୍ରୁଶାସ୍ତ୍ରୀ ହୁଏ । ]
Śatru śāsana

**ଶତ୍ରୁ ଶଙ୍କୁଳ** — ସଂ. ବିଣ ( ୩ୟା ତତ୍ )—ଶତ୍ରୁଦ୍ୱାରା ପରିପୂର୍ଣ୍ଣ—Infested by the enemy.
Śatru śaṅkaḷa

**ଶତ୍ରୁ ଶଲ** — ଦେ. ବି ( ସଂ. ଶତ୍ରୁ + ଶଲ୍ୟ )—କ୍ଷତ୍ରିୟମାନଙ୍କ ବଂଶୋପାଧି ବିଶେଷ (ଜଗନ୍ନାଥ ପ୍ରାଚୀନ ଉତ୍କଳ)—A family-title of the Kshatriyas.
Śatru sala

**ଶତ୍ରୁ ସ(ସା)ହ** — ସଂ. ବିଣ. ପୁଂ ( ଶତ୍ରୁ + ସହ ଧାତୁ + କର୍ତ୍ତୃ ଅ )—ଶତ୍ରୁର ବିକ୍ରମ ସହନଶୀଳ ( ଶବ୍ଦକୋଷ )—Able to beat the prowess or brunt of the enemy.
Śatru sa(sā)ha

**ଶତ୍ରୁ ସାତ୍** — ସଂ. ବି ( ଶତ୍ରୁ + ପରିଣତାର୍ଥେ ସାତ୍ )—୧ । ଶତ୍ରୁରୂପେ ପରିଣତ ( ଶବ୍ଦକୋଷ )—1. Changed into a foe. ୨ । ଶତ୍ରୁର ହସ୍ତଗତ ( ଶବ୍ଦକୋଷ )—2. Occupied or taken possession of by the enemy.
Śatru sāt

**ଶତ୍ରୁ ହନ୍ତା** — ସଂ. ବିଣ ଓ ବି. ପୁଂ—ବୈରୀ ହନନକାରୀ—Destructive of one's foes, ସଂ. ବି (ନାମ)—ହରିବଂଶୋକ୍ତ ଶମ୍ବର ଦୈତ୍ୟର ଏକ ମନ୍ତ୍ରୀ ( ଶବ୍ଦକୋଷ )—Name of a minister of demon Śambara.
Śatru hantā
( ଶତ୍ରୁ ହନ୍ତ୍ରୀ—ସ୍ତ୍ରୀ )

**ଶତ୍ରୁହା** — ସଂ. ବିଣ ଓ ବି ( ଶତ୍ରୁ + ହନ୍ ଧାତୁ + କ୍ୱିପ୍; ଶତ୍ରୁହନ୍ ଶବ୍ଦ ୧ମା. ୧ବ )—ଶତ୍ରୁହନ୍ତା ( ଦେଖ )—Śatruhantā (See) ବି—୧ । ଶତ୍ରୁଘ୍ନଙ୍କର ଏକ ନାମ (ହି. ଶ.)—1. A name of Śatrughna. ୨ । ଶ୍ୱଫଳ୍କଙ୍କର ଏକପୁତ୍ର (ଶବ୍ଦକୋଷ)—2. Name of a son of Śwaphaḷka.
Śatruhā

**ଶତ୍ରୁ ହିଂସା** — ସଂ. ବି—(୬ଷ୍ଠୀ ତତ୍)—ବିପକ୍ଷକୁ ଦଣ୍ଡ ଦେବା—Punishing the enemy.
Śatru himsā

**ଶଦ୍ (ଧାତୁ)** — ସ—୧ । ଗମନ କରିବା—1. To go. ୨ । ଗତି କରିବା—2. To move. ୩ । ନାଶ କରିବା—3. To destroy, ୪ । ଅନିଷ୍ଟ କରିବା—4. To injure. ୫ । ଛେଦନ କରିବା—5 To cut.
Śad (root)

**ଶଦ** — ସଂ. ବି—୧ । ଫଳମୂଳାଦି (ହି. ଶ)—1. Vegetable; fruits and roots. ୨ । କର; ରାଜସ୍ୱ (ହି. ଶ)—2. Rent. ୩ । ପରିବା (ହି. ଶ)—3. Kitchen vegetables.
Śada

**ଶଦକ** — ସଂ. ବି—ତୁଷି ବା ତୁଷ ଯାହାର କାଢ଼ିଯାଇ ନ ଥିବା ଶସ୍ୟ ( ହି. ଶ )—Grain with the chaff intact.
Śadaka

**ଶଦରଙ୍ଗା** — ଦେ. ବି—ମଦରଙ୍ଗା ଶାଗ ପରି ଏକପ୍ରକାର ଶାଗ; ଶାଳିଞ୍ଚ (ହରେକୃଷ୍ଣ, ଦ୍ରବ୍ୟଗୁଣ)—ଶାଳିଞ୍ଚ (ଦେଖ)—Śāliñcha (See)
Śādarangā
शाकेशाक

ଶଡ଼(ର୍ଦ୍ଦି)ଅଲି — ପ୍ରାଦେ (ଗଞ୍ଜାମ) ବି — କବାଟର ଚଉକାଠ ଉପରେ
Sadi(rdi)ali ବଅଯିବା ପଟା — Lintel.
(ଶାଡ଼ୁଲି, ଶାର୍ଦ୍ଦୁଳି — ଦେ· ରୂପ)

ଶଦ୍ରି — ସଂ· ବି (ଶଦ୍ ଧାତୁ + କର୍ତ୍ତୃ· ରି) — ୧ । ମେଘ — 1. The
Sadri cloud. ୨ । ମଧ୍ୟମ ପାଣ୍ଡବ; ଅର୍ଜୁନ — 2. Arjuna.
୩ । ହସ୍ତୀ — 3. Elephant. ୪ । ବିଦ୍ୟୁତ୍ —
4. Lightning. ୫ । ଖଣ୍ଡ (ହ୍ର· ଶ) —
5. Piece; bit.

ଶଦ୍ରୁ — ସଂ· ବିଣ (ଶଦ୍ ଧାତୁ + କର୍ତ୍ତୃ· ରୁ) — ୧ । ଗମନଶୀଳ —
Sadru 1. Moving; tending to move. ୨ । ପତନଶୀଳ — 2. Having a tendency to fall.
୩ । କ୍ଷୟଶୀଳ — 3. Having a tendency to decay; decaying. ୪ । ପତନକର୍ତ୍ତା — 4. Causing to fall. ସଂ· ବି — ୧ । ବିଷ୍ଣୁ (ହ୍ର· ଶ) —
1. Bishnu. ୨ । ଗଣ୍ଡା (ବୈଦ୍ୟକୋଷ) —
2. Rhinoceros.

ଶଧ — ଦେ· ବି (ସଂ· ଶ୍ରଦ୍ଧା) — ସଧ (ଦେଖ) — Sadha. (See)
Sadha [ଉ — ଅପାଙ୍ଗେ ଗୁହିଁ ପୁଲକିତ ହୋଇଲ ନ ଗୁହିଁ ଗୁହିଁବାକୁ ଶଧ । ପ୍ରାଚୀ· ଉଷାଅଭିଳାଷ ।]

ଶନ୍ବ୍ (ଧାତୁ) — ସଂ — ୧ । ଗମନ କରିବା - 1. To go. ୨ ।ଗ୍ଲିବା —
Sanb (root) 2. To walk; to travel.

ଶନ — ସଂ· ବି — ୧ । ଶାନ୍ତି (ହ୍ର· ଶ) — 1. Peace. ୨ । ସ୍ଥିରତା (ହ୍ର· ଶ) — 2. Stillness. ୩ । ଛଣପଟ (ବୈଦ୍ୟକୋଷ) —
Sana 3. Hemp; Cannabis Sativa. ଦେ· ବି — ଶନି ନାମକ ବ୍ୟକ୍ତିର ଡାକ ନାମ — A name for calling Sani.

ଶନକ — ସଂ· ବି — (ନାମ) ଶମ୍ବରର ଏକ ପୁତ୍ର (ହ୍ର· ଶ)
Sanaka Name of a son of demon Sambara.

ଶନକାବଲ୍ଲି — ସଂ· ବି — ଗଜପିପ୍ପଳୀ (ହ୍ର· ଶ)
Sanakābali Scindapsus Officinalis.

ଶନପର୍ଣ୍ଣୀ — ସଂ· ବି — କଟୁକୀ (ହ୍ର· ଶ)
Sanaparnni Black hellebore.

ଶନପୁଷ୍ପୀ — ସଂ· ବି — ଶଣପୁଷ୍ପୀ (ହ୍ର· ଶ)
Sanapushpi Crotalaria Juncia.

ଶନଶନ — ଦେ· ବି — ସନ ସନ (ଦେଖ) — Sana sana. (See)
Sanasana [ଉ — ଶନ ଶନ ଶରିଲ୍ଭୁକ ଗୁଳିଲ୍ଲ ଅମ୍ବରେ । ବୃଧାନାଥ ।]

ଶନା — ଦେ· ବି· ପୁଂ (ଅନାଦରାର୍ଥକ) — ଶନି ନାମକ ବ୍ୟକ୍ତିର ଡାକ
Sanā ନାମ — A name for calling Sani.
शनि शनिचरा, शनिया
[ ଶନିଆ, ଶନୁଆ — ଅନ୍ୟରୂପ ]
( ଶନୁ, ଶନେଇ — ଆଦରାର୍ଥକରୂପ )

ଶନା(ନେ)ଇ - ଦେ· ବି — ୧ । ତୁରୀ — 1. A bugle; a clarion.
Sanā(ne)i ୨ । (ଆଦରାର୍ଥକ) ଶନି ନାମକ ବ୍ୟକ୍ତିର ଡାକ ନାମ — 2. A name for calling a person named Sani.
सहनाई, पिपही
शन्नु, शनाई शन्तु

ଶନି — ସଂ· ବି (ଶଣ୍ ଧାତୁ = ଦାନ କରିବା + ସଂଜ୍ଞାର୍ଥେ· ଇ; ଅଥବା ଶୋ
Sani ଧାତୁ = କ୍ଷୀଣ ହେବା + କର୍ତ୍ତୃ· ଅନି) — ୧ । ସପ୍ତମ ଗ୍ରହ;

ଶନି ଗ୍ରହର ପର୍ଯ୍ୟାୟ — ଶନି, ଶନୈଶ୍ଚର, ସୌରି, ଛାଳାବାସା, ମନ୍ଦ, କ୍ଷପ୍ୟସୂନୁ, ପାତଙ୍ଗି, ଗ୍ରହନାୟକ, ଛାୟାସୁତ, ଭାସ୍କରି(ଟ), ନୀଳାମ୍ବର, ଅର୍କ, କୋଡ଼, ବକ୍ର, କୋଳ, ସପ୍ତାଂଶୁ, ପଙ୍ଗୁ, କାଳ, ସୂର୍ଯ୍ୟପୁତ୍ର, ଅସିତ

ଗ୍ରହବିଶେଷ ( ସୂର୍ଯ୍ୟଙ୍କ ଔରସରେ ଛାୟାଦେବୀ ଶ୍ରାପ୍ତାଙ୍କ ଗର୍ଭଜାତ ସନ୍ତାନ) — 1. The seventh planet, said to be the son of the Sun; Saturn.

[ବି — ପୁରାଣ ମତରେ ଶନିଗ୍ରହ ଚିତ୍ରରଥଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ସ୍ତ୍ରୀଙ୍କ ଋତୁ ରକ୍ଷା ନ କରିବା କାରଣରୁ ଏହାଙ୍କ ସ୍ତ୍ରୀ ଏହାଙ୍କୁ ଅଭିଶାପ ଦେଲେ ଯେ, ଏ ଯେଉଁ ବସ୍ତୁକୁ ଗୁହିଁବେ, ତାହା ବିନଷ୍ଟ ହେବ । ପାର୍ବତୀଙ୍କର ଗଣେଶ ଜନ୍ମ ହେବାରୁ ଏ ବିଷ୍ଣୁଙ୍କ ଆଦେଶରେ ନବଜାତ ଗଣେଶଙ୍କୁ ଦେଖିବାକୁ ଗଲେ ଓ ଗଣେଶଙ୍କ ମସ୍ତକରେ ଏହାଙ୍କ ଦୃଷ୍ଟି ପଡ଼ିବାମାତ୍ରକେ ତାଙ୍କର ମୁଣ୍ଡଟି ଉଡ଼ିଗଲା । ଦେବତାମାନେ ତତ୍‌କ୍ଷଣାତ୍ ଗୋଟିଏ ହାତୀର ମୁଣ୍ଡ ଆଣି ଗଣେଶଙ୍କ ଗଣ୍ଡିରେ ଲଗାଇଦେଲେ ଓ ତଦବଧି ଗଣେଶ ଗଜାନନ ହେଲେ । ପାର୍ବତୀଙ୍କ ଶାପରୁ ଏ ଖଞ୍ଜ ହୋଇଗଲେ । ଜ୍ୟୋତିଷଶାସ୍ତ୍ରାନୁସାରେ ଏ ଅମଙ୍ଗଳ ଗ୍ରହ । ଏହାଙ୍କର ଗତି ଧୀର ଥିବାରୁ ଏହାଙ୍କର ଅନ୍ୟ ନାମ ମନ୍ଦ ଓ ଶନୈଶ୍ଚର । ଥରେ ଗୋଟିଏ ରାଶିକୁ ଅତିକ୍ରମ କରିବାକୁ ଶନିଙ୍କୁ ଅଢ଼େଇ ବର୍ଷ ଲାଗେ । ଶନିଙ୍କର ଗୋଚରକାଳ ମଧ୍ୟରେ ୭ମ, ୮ମ ଓ ୯ମ ସାଢ଼େ ସାତ ବର୍ଷକୁ ଶନିଦଶା ଏବଂ ୧୨ଶ,ଜନ୍ମ ଓ ୨ୟ ୭½ବର୍ଷକୁ ଶନି ସାଢ଼େସାତ ବୋଲାଯାଏ । ଶନି ଶଦ୍ରକଷ୍ଟକ ଗ୍ରହ ବୋଲି ଲୋକଙ୍କର ବିଶ୍ୱାସ । ଏଥିପାଇଁ ଯନ୍ତ୍ରପାତରେ ଶୂଦ୍ରମାନଙ୍କୁ ବେଶି ବିପନ୍ନ ହେବାକୁ ପଡ଼େ ବୋଲି ଲୋକେ ବିଶ୍ୱାସ କରନ୍ତି । ଶନି ମନୁଷ୍ୟର ଜନ୍ମରାଶିସ୍ଥ ହେଲେ ବନ୍ଧୁନାଶ, ମନସ୍ତାପ; ୨ୟରେ କ୍ଲେଶ; ତୃତୀୟରେ ଶତ୍ରୁନାଶ ଓ ବନ୍ଧୁଲାଭ; ୪ର୍ଥରେ ଶତ୍ରୁବୃଦ୍ଧି; ୫ମରେ ପୁତ୍ର ଭ୍ରଂଶ ଓ ଅର୍ଥନାଶ; ୬ଷ୍ଠରେ ଅର୍ଥଲାଭ; ୭ମରେ ଅକସ୍ମାତ୍; ୮ମରେ ଦେହପୀଡ଼ା; ୯ମରେ ଧନକ୍ଷୟ; ୧୦ମରେ ମାନସିକ ଉଦ୍‌ବେଗ; ୧୧ଶରେ ବହୁଲାଭ ଓ ୧୨ଶରେ ଅନର୍ଥ ଘଟେ । ଶନିଗ୍ରହ ରାଶିରୁ ନିର୍ଗମନକାଳରେ ଗୋଚର ଫଳ ପ୍ରଦାନ କରନ୍ତି । ଯେଉଁ ବ୍ୟକ୍ତିର ଲଗ୍ନର ୭ମ ଘରେ ଶନି ଥାଆନ୍ତି, ସେ ବ୍ୟକ୍ତି ଶ୍ରେଷ୍ଠ ହୁଏ । ଶନିବାର ବିବାହ, କ୍ଷୌରାଦିକର୍ମ ପରିବର୍ଜିତ । ଶନିବାରର ଦିବସର ଅଷ୍ଟମଭାଗ ବାରବେଳା ଓ

ପ୍ରଥମଭାଗ ଓ ଶେଷଭାଗ କାଳବେଳା । ଶନିବାରର ରାତ୍ରିର ପ୍ରଥମଭାଗ ଓ ଶେଷଭାଗ କାଳରାତ୍ରି । ଶନିବାରରେ ବାଳକାର ପ୍ରଥମ ରଜୋଦର୍ଶନ ଘଟିଲେ ସେ ବାଳକା ବିଧବା ହୁଏ ।

ମନୁଷ୍ୟର ଜୀବନକାଳ ମଧ୍ୟରେ ନାକ୍ଷତ୍ରିକ ମତାନୁସାରେ ବୁଧମହାଦଶା ପରେ ଓ ବୃହସ୍ପତିମହାଦଶା ପୂର୍ବରୁ ଶନିର ମହାଦଶା ଭୋଗ ହୁଏ । ଏ ମହାଦଶାର ଭୋଗକାଳ ଦଶ ବର୍ଷ । କେତେକ ମତରେ ଶନିମହାଦଶା ୧୯ ବର୍ଷ ଓ ତାହା ବୃହସ୍ପତି ମହାଦଶା ପରେ ଓ ବୁଧ ମହାଦଶା ପୂର୍ବରୁ ପଡ଼େ । ଶନି ଗ୍ରହଙ୍କ ଶାନ୍ତି ନିମିତ୍ତ ମାଷ, ତେଲ, କୃଷ୍ଣତିଳ, ମହିଷ ଓ ଲୌହଦାନ ପ୍ରଶସ୍ତ । ଶନିବାରରେ ଜ୍ୱର ଧରିଲେ ଉକ୍ତ ଜ୍ୱର କଷ୍ଟପ୍ରଦ ହୁଏ । ନୀଳମଣି ଶନି ଗ୍ରହଙ୍କର ପ୍ରିୟମଣି ।

ଏହା ସୌରଜଗତର ନବ ଗ୍ରହଙ୍କ ମଧ୍ୟରେ ୭ମ ଗ୍ରହ । ସୂର୍ଯ୍ୟଙ୍କଠାରୁ ଏହାର ଦୂରତ୍ୱ ୮୮ କୋଟି ୩୦ ଲକ୍ଷ ମାଇଲ, ଅର୍ଥାତ୍ ପୃଥିବୀ ଅପେକ୍ଷା ସୂର୍ଯ୍ୟଙ୍କଠାରୁ ୧୦ ଗୁଣ ଦୂରରେ ଏହା ଅବସ୍ଥିତ । ଏହାର ବ୍ୟାସ ୭୫ ହଜାର ୮ଶହ ମାଇଲ । ଥରେ ସୂର୍ଯ୍ୟଙ୍କ ଚାରିଆଡ଼େ ବୁଲିବାକୁ ଏହାକୁ ୨୯ ବର୍ଷ ୧୬୭ ଦିନ ଲାଗେ ଓ ଗୋଟିଏ ରାଶିକୁ ଟପିବାକୁ ପ୍ରାୟ ୨½ ବର୍ଷ ଲାଗେ । ବୃହସ୍ପତିଙ୍କୁ ଛାଡ଼ିଦେଲେ ଏ ସବୁ ଗ୍ରହଠାରୁ ବଡ଼ । ଏହାର ବ୍ୟାସ ପୃଥିବୀର ବ୍ୟାସର ନଅ ଗୁଣ । ଏହାର ୧୦ଟି ଓ ମତାନ୍ତରରେ ୮ଟି ଉପଗ୍ରହ ବା ଚନ୍ଦ୍ର ଅଛନ୍ତି । ଏ ସବୁ ଗ୍ରହଠାରୁ ବେଶି ଉଜ୍ଜ୍ୱଳ । ଏ ଆପଣା ଅକ୍ଷ ଉପରେ ୩୭୮ ଦିନରେ ଥରେ ବୁଲିଆସେ । ଏଗ୍ରହର ଚାରିପାଖେ ଗୋଟିଏ ବଡ଼ ବଳୟ ଅଛି । ଏହି ବାହ୍ୟ ବଳୟରୁ ଶନିର ପିଣ୍ଡର ଦୂରତ୍ୱ ୬ ହଜାର ୯ ଶତ ମାଇଲ ବାହ୍ୟ ବଳୟର ଓସାର ୧୧ ହଜାର ୨ ଶହ ମାଇଲ । ବଳୟର ବ୍ୟାସ ୧ ଲକ୍ଷ ୭୨ ହଜାର ୮ ଶହ ମାଇଲ ଓ ଘନତା ଶହେ ମାଇଲରୁ କିଛି ଅଳ୍ପ । (ବି. ଶ)

ଫଳିତଜ୍ୟୋତିଷ ମତରେ ଏ ଗ୍ରହ କୃଷ୍ଣ, ଶୂଦ୍ର, ବକ୍ର ଓ ସୂର୍ଯ୍ୟମୁଖ, ଗୃଧ୍ରବାହନ, ସୌରାଷ୍ଟ୍ରଦେଶାଧିପତି, ନପୁଂସକ ଓ ତମୋଗୁଣଯୁକ୍ତ, କଷାୟରସର ଅଧିପତି, ମକର ଓ କୁମ୍ଭ ରାଶିର ଓ ନୀଳକାନ୍ତମଣିର ଅଧିପତି, ଚତୁର୍ଭୁଜ, ବାଣ,ଶୂଳ, ଧନୁଃ ଓ ବରଧାରୀ । ଯମ ଏ ଗ୍ରହର ଅଧିପତି ଓ ପ୍ରଜାପତି ପ୍ରତ୍ୟଧିଦେବତା ।

ପଦ୍ମପୁରାଣ ମତରେ ସୂର୍ଯ୍ୟଙ୍କ ସ୍ତ୍ରୀ ଛାୟାଙ୍କ ଗର୍ଭରୁ ଏହାଙ୍କର ଉତ୍ପତ୍ତି ହୋଇଥିଲା । ଏହାଙ୍କୁ କଶ୍ୟପମୁନିଙ୍କ ସନ୍ତାନ ବୋଲି ମଧ୍ୟ କୁହାଯାଏ । ଶନି ଓ ମଙ୍ଗଳ ସ୍ଥାନବିଶେଷରେ ଏକସ୍ଥାନଗତ ହେଲେ ରାଜଯୋଗକାରକ ହୁଅନ୍ତି ।]

୨। ଦୁର୍ଭାଗ୍ୟ (ବି. ଶ)—2. Misfortune; illluck.

୩। ଶନିବାର—3. Saturday. (ଉ— ଉଦୟ ଅସ୍ତ ଶନିର ସାଥି—ଖନାବଚନ ।) ଦେ. ବି—୧ । କୁଦୃଷ୍ଟି-

शनि ग्रानि ଯୁକ୍ତ ବ୍ୟକ୍ତି—1. A person with evil eyes. ୨ । କୃପଣ ବ୍ୟକ୍ତି—2. A miser. ୩। ଖୋଞ୍ଚା ଲୋକ—3. A lame man.

**ଶନି ଗୋଚର**—ସଂ. ବି [ଜ୍ୟୋତିଷ]—ଶନି ଗ୍ରହ ପ୍ରତ୍ୟେକ ରାଶିକୁ
Śani gochara ଅତିକ୍ରମ କରିବା କାଳ ୨½ ବର୍ଷ—A period of 2½ years which it takes Saturn to cross one of the zodiac signs.

**ଶନି ଚଳନ**—ସଂ. ବି [୬ଷ୍ଠୀ ତତ୍]—ଶନି ଗ୍ରହର ଗୋଟିଏ ରାଶିରୁ ଅନ୍ୟ
Śani chalana ରାଶିକୁ ଯିବାର କାଳ—The time
[ଶନିସଞ୍ଚାର—ଅନ୍ୟରୂପ] when the planet Saturn crosses the boundary of 2 signs.

**ଶନିଜ**—ସଂ. ବି—ଗୋଲମରିଚ [ହି. ଶ]—
Śanija Black pepper

**ଶନି ଦଶା**—ସଂ. ବି—୧ । ଜାତକରେ ଶନିଙ୍କର ପ୍ରଭାବ ପଡ଼ିଲେ ଘଟିବା
Śani daśā ଅବସ୍ଥା—( ଶନି ତଳେ ନୋଟ ଦେଖ )—
ଶନିମହାଦଶା—ଅନ୍ୟରୂପ) 1. The condition of a person due to the planet Saturn (see the notes under Śani) ୨ । ଅଭାବ ଓ ଦୁଃଖମୟ ଅବସ୍ଥା—2. A time of want and misery.

**ଶନି ଦୃଷ୍ଟି**—ଦେ. ବି.—୧ । ମନ୍ଦ ବା ଅଶୁଭ ଦୃଷ୍ଟି—1. Bad or in-
Śani drushṭi शनिदृष्टि ग्रानिद्दष्टि auspicious look. ୨ । କୋଅନୁଗ୍ରହ ଦୃଷ୍ଟି; ପ୍ରତିକୂଳ ଦୃଷ୍ଟି, କୋପଦୃଷ୍ଟି—2. Evil eye.

**ଶନି ପ୍ରଦୋଷ**—ସଂ.ବି.—କୌଣସି ମାସର କୃଷ୍ଣା ତ୍ରୟୋଦଶୀ ଶନିବାରରେ
Śani pradosha ପଡ଼ିଲେ ସେ ଦିନ ଅନୁଷ୍ଠିତ ଶିବ ପୂଜା ରୂପ ବ୍ରତ ଓ ପର୍ବ (ହି.ଶ)—A festival observed if a Saturday falls on the 13th of a dark lunar fortnight.

**ଶନି ପ୍ରସୂ**—ସଂ. ବି ( ୬ଷ୍ଠୀ ତତ୍ )—ସୂର୍ଯ୍ୟଙ୍କ ଏକ ପତ୍ନୀ; ଛାୟା—
Śani prasū Chhāyā; one of the 2 wives of the Sun god.

**ଶନି ପ୍ରିୟ**—ସଂ. ବି (୬ଷ୍ଠୀ ତତ୍) ନୀଳମଣି—Sapphire.
Śani priya.

**ଶନି ବାର**—ସଂ. ବି.—ଶୁକ୍ରବାରର ପରବର୍ତ୍ତୀ ଓ ରବିବାରର ପୂର୍ବବର୍ତ୍ତୀ
Śani bāra (ଶନିବାସର—ଅନ୍ୟରୂପ) ଦିବସ—Saturday.

**ଶନିବାର ଗଣ୍ଡା**—ପ୍ରାଦେ. (ଗଡ଼ଜାତ)—ବି. (ତୁଳ. ହି. ଶନିଚରି)—
Śanibāra gaṇḍā ପ୍ରତି ଶନିବାରରେ ଚଟଶାଳୀର ପ୍ରତ୍ୟେକ ଛାତ୍ରଙ୍କଠାରୁ ଗୁରୁଙ୍କର ପ୍ରାପ୍ୟ ଗଣ୍ଡାକୋଡ଼ି କଉଡ଼ି—20 pieces of cowries paid to the teacher by his pupils on every Saturday. (ଦ୍ର—ବିହାର ପ୍ରାନ୍ତର ପ୍ରାଇମେରୀ ସ୍କୁଲମାନଙ୍କରେ ପ୍ରତି ଶନିବାର ପ୍ରତ୍ୟେକ ଛାତ୍ର ଘରୁ ୧ପାଏ ଚାଉଳ, ୧ ପଇସା ଓ ଗୋଟିଏ ଗୁଆ ସ୍କୁଲକୁ ଅଣନ୍ତି । ପିଲାମାନେ ସଂଗୃହୀତ

ପଇସା ମଧ୍ୟରୁ କିଛି ଅଂଶରେ ଗୁଡ଼ ଆଦି ଆଣି କେତେକ ଗୃହୀଙ୍କୁ ଡକାଇ ତା ସଙ୍ଗେ ଗୁଡ଼ ମିଶାଇ ଗଣେଶଙ୍କ ସ୍ତବ ପାଠ କରନ୍ତି ଓ ଉକ୍ତ ଗୁଡ଼ ଗୃହୀ ସ୍ତ୍ରୀମାନଙ୍କ ମଧ୍ୟରେ ବଣ୍ଟାଯାଏ । ବାକି ଗୃହୀ, ପୁତ୍ର ଓ ଗୁଆ ଗୁରୁ କରନ୍ତି । ଏ ପ୍ରଥାକୁ ସ୍ଥାନରେ 'ଶନିଚରି' ବୋଲାଯାଏ । )

ଶନିରୁହ - ସଂ ବି ( ଶନି+ରୁହ ଧାତୁ+କର୍ତ୍ତୃ. ଅ; ଏହା ଶନିଙ୍କ Śaniruha ବାହନ ଥିବାରୁ )—ମହିଷ; ମଇଁଷି ( ହି. ଶ. ) — Buffalo.

ଶନିଶ୍ଚର—ଗ୍ରା. ବି—( ସ. ଶନୈଶ୍ଚର )—ଶନି ଗ୍ରହ—The planet Saniśchara शनि शनिचर Saturn.

ଶନି ସପ୍ତା - ଦେ. ବି.—ମନୁଷ୍ୟର ଜନ୍ମ ରାଶିଠାରୁ ୭ମ, ୮ମ ଓ ୯ମ Śani sapta ରାଶିରେ ଶନିଗ୍ରହ ରହିବାର କାଳ ୨½ ବର୍ଷ— शनि साढ़ेसात शनिका फल (ଏହା ଅଶୁଭ)—The time when the saturn is on the 7th, 8th and 9th houses from a man's natal sign. [ଦ୍ର—ଶନି ତଳେ ନୋଠ ଦେଖ । ଏ ସମ୍ବନ୍ଧରେ 'ଶନିସପ୍ତା ଯମର ଦୂତ, ଛଡ଼ାଇ କିଏ କୋଡ଼ିର ପୁତ' ବୋଲି ଗୋଟିଏ ଲୋକ ବଚନ ଅଛି ।]

ଶନି ସାଢ଼େ ସାତ—ଦେ. ବି.—(ଶନି ତଳେ ନୋଟ୍ ଦେଖ)--ଜାତକର Sani sārde sāti ଜନ୍ମ ରାଶିଠାରୁ ୧୨ଶ, ଜନ୍ମ ବା ୧ମ ଓ ୨ୟ शनि साढ़े सात शनि साढे साती ରେ ଶନି ଗ୍ରହର ଥିବା କାଳ ୭½ବର୍ଷ (ଏହା ଅଶୁଭକାଳ)-A period of 7½ years in a man's life when the planet Saturn is on the 12th and the 2nd and the first sings from a man's natal sign.

ଶନେଇ—ଦେ. ବି—(ଆଦରାର୍ଥକ) ଶନି ନାମକ ବ୍ୟକ୍ତିର ଡାକ ନାମ— Śanei Name for calling a person named Śani. शनि, शनाई शन्तु

ଶନୈଃ—ସ. ଅ—୧ । ଅସ୍ତ୍ରେ ଅସ୍ତ୍ରେ; ଧୀରେ ଧୀରେ— Śanaiḥ 1. Slowly. ୨ । କ୍ରମଶଃ; କ୍ରମେ କ୍ରମେ— [ଶନୈକଃ, ଶନୈଃ ଶନୈଃ—ଅନ୍ୟରୂପ] 2. By degrees. ୩ । ମୃଦୁ ଭାବରେ—3. Gently. ୪ । ଅଳ୍ପ ଅଳ୍ପ— 4. Little by little.

ଶନୈଃ କ ପ(ନ୍ଥା) ଶନୈଃ ପନ୍ଥା ଶନୈଃ ପର୍ବତ ଲଙ୍ଘନଂ— ସ. ଶ୍ଳୋକାଂଶ Śanaiḥ ka(pa)ntha śanaiḥ pantha ପ୍ରଚଳନ—କ୍ରମଶଃ śanaiḥ parbata laṅghanam ଅଳ୍ପ ବାଟ ଗଲି ଗଲି ଶେଷରେ ପର୍ବତ ଲଙ୍ଘନ କରାଯାଇପାରେ—A Sanskrit proverb meaning—Climb slowly and you will surmount a mountain. [ଦ୍ର—ଏହାର ସମଭାବାର୍ଥକ ଓଡ଼ିଆ ପ୍ରଚଳନ 'ଧୀର ପାଣି ପଥର କାଟେ' ଓ ସମଭାବାର୍ଥକ ଇଂରେଜୀ ପ୍ରଚଳନ—'Slow and steady wins the race.'

ଦ୍ର—ଏଥିର ପୂର୍ଣ୍ଣଶ୍ଳୋକ—ଶନୈଃ ପନ୍ଥା ଶନୈଃ କନ୍ଥା ଶନୈଃ ପର୍ବତ ଲଙ୍ଘନମ୍ । ଶନୈଃକର୍ମଚଧର୍ମଶ୍ଚ ଏତେ ପଞ୍ଚ ଶନୈଃ ଶନୈଃ ।

ଏଥିର ଅର୍ଥ :—ପଥ ଅତିକ୍ରମ, ଭଲଭାବର କନ୍ଥାରେ ପଶଣିଛି, ପର୍ବତଲଙ୍ଘନ କର୍ମ ଓ ଧର୍ମ, ଏ ୫ଟି କର୍ମ ଧୀରେ ଧୀରେ ଥାଏତ ଦ୍ରୁତ—ସୁଫଳତନ । ]

ଶନୈର୍ଗଙ୍ଗମ୍—ସ. ଅ—ଯେଉଁ ସ୍ଥାନରେ ଗଙ୍ଗା ଧୀରେ ଧୀରେ ପ୍ରବାହିତ Sanairgangam ହେଉଥିବି; ଧୀରଗଙ୍ଗ ଦେଶ (ବିଶ୍ୱକୋଷ)—A place or country where the Ganges is flowing slowly

ଶନୈର୍ମେହ—ସ. ବି (ଶନୈଃ+ମେହ)—ପ୍ରମେହ ରୋଗ ବିଶେଷ— Sanairmeha A kind of gonorrhoea. [ ଦ୍ର—ଏହି ( ଶନୈଃପ୍ରମେହ—ଅନ୍ୟରୂପ ) ମେହ ରୋଗରେ ମୂତ୍ର ବେଗ ଉତ୍ପନ୍ନ ନ ହୋଇ ପ୍ରବା ପ୍ରାୟ ସକଳ ସଂଯୁକ୍ତ ଧୀରେ ଧୀରେ ଅଳ୍ପ ଅଳ୍ପ ମୂତ୍ର ଅତି କଷ୍ଟରେ କଟେ ହେଉଥାଏ— ବିଶ୍ୱକୋଷ ।]

ଶନୈର୍ମେହୀ—ସ ବି ଓ ବିଣ. ପୁଂ (ଶନୈର୍ମେହ+ଇନ୍; ୧ମା ୧ବ)— Sanairmehi ଶନୈର୍ମେହ ରୋଗଗ୍ରସ୍ତ ବ୍ୟକ୍ତି —A person suffering from the Sanairmeha variety of gonorrhoea.

ଶନୈଶ୍ଚର—ସ. ବି (ଶନୈଃ=ଧୀରେ ଧୀରେ+ଚର୍ ଧାତୁ=ଗତି Sanaiśchara କରିବା +କର୍ତ୍ତୃ. ଅ; ଶନିଗ୍ରହର ଗତି ଅନ୍ୟ ଗ୍ରହମାନଙ୍କ ଗତି ଅପେକ୍ଷା ଧୀରତର ଥିବାରୁ)-ଶନିଗ୍ରହ— The planet Saturn.

ଶନ୍ତ—ସ. ବିଣ. ପୁଂ (ଶଂ=ସୁଖ+ତ)—ସୁଖୀ (ବିଶ୍ୱକୋଷ) — Śanta ( ଶନ୍ତା—ସ୍ତ୍ରୀ ) Happy.

ଶନ୍ତନୁ—ସ. ବିଣ ( ଶଂ+ତନୁ )—ଶ୍ରେୟପୂର୍ଣ୍ଣ ଦେହ ବିଶିଷ୍ଟ Śantanu (ବିଶ୍ୱକୋଷ)—Having a body full of weal. ସ. ବି—ଶାନ୍ତନୁ (ଦେଖ)— Śantanu. (See)

ଶନ୍ତ(ନ୍ତୁ) - ସ. ବିଣ (ଶଂ+ତି; ତୁ)—ମଙ୍ଗଳଯୁକ୍ତ; କଲ୍ୟାଣଯୁକ୍ତ Śanti(ntu) (ବିଶ୍ୱକୋଷ)—Full of prosperity or weal.

ଶପ୍ (ଧାତୁ)—ସଂ—୧ । ଶପଥ କରିବା; ଦିବ୍ୟ କରିବା—1. To Śap (root) take an oath. ୨ । ଅଭିଶାପ ଦେବା— 2. To curse. ୩ । ଗାଳି ଦେବା—3. To abuse.

ଶପ—ଦେ. ବି (ସଂ. ଶଷ୍ପ=ତୃଣ ବିଶେଷ; ତୁଳ. ଅ. ସଫ୍=ଶପ Śapa ମସିଣା, ଆସନ)—ତୃଣ ବିଶେଷଦ୍ୱାରା ବୁଣା ହୋଇଥିବା ମସିଣା—A mat woven with a sort of reed.

ଶପ ଚଟା(ଟେ)ଇ
ଶପ ମସି(ଣି)ଣା } ଅନ୍ୟରୂପ
ଶପ ମସୁ(ଣୁ)ଣୀ

ସ. ବି (ଶପ୍ ଧାତୁ+ଭାବ.ଅ)— शपथ, शपथ ग्रहण ୧ । ଗାଳି ଦେବା; ଭର୍ତ୍ସନ (ବିଶ୍ୱକୋଷ)— चटाई, सफ 1. Rebuking. ୨ ଶପଥ ( ବିଶ୍ୱକୋଷ )— 2. Oath.

ଶପତ (ତି)—ଗ୍ରା. ବି. (ସଂ. ଶପଥ)—ଶପଥ; ରାଣ—
Śapata(ti) Oath
କିରେ **सपत, सौगंध**

ଶପଥ(ନ)—ସଂ ବି (ଶପ୍ ଧାତୁ + ଭାବ. ଅଥ, ଅନ)—୧ । ଆଲପ;
Śapatha(na) ରାଣ; ଧର୍ମତଃ ପ୍ରତିଜ୍ଞା; ଚୋକ୍ତ—1. Oath; a solemn promise by uttering the name of a God, Deity or a person in connection with one's speech. [ଦ୍ର—ଶପଥ ଶବ୍ଦ ଅଙ୍କ ବଚନ ସହେ । ଓଡ୍ରୀ. 'ଶ' ଗୀତ ।] ୨ । ପ୍ରତିଜ୍ଞା; କବୁଲ—2. Promise. ୩ । ଗାଳି; ତିରସ୍କାର—3. Abuse. [ଦ୍ର—ଈଶ୍ୱରଙ୍କର ବା କୌଣସି ବିଶିଷ୍ଟ ବ୍ୟକ୍ତିଙ୍କ ନାମୋଚ୍ଚାରଣପୂର୍ବକ କୌଣସି ବିଷୟ କହିବା ବା ପ୍ରତିଜ୍ଞା କରିବା ବା ଅନ୍ୟବ୍ୟକ୍ତିଙ୍କୁ କୌଣସି ଅନୁରୋଧ କରିବା ବା ଗାଳି ଦେବାକୁ ଶପଥ ବୋଲଯାଏ; ଯେବେ ମୁଁ ମିଥ୍ୟା କଥା କହେଁ ତାହେଲେ ଈଶ୍ୱର ମୋତେ ଦଣ୍ଡ ଦେବେ, ଏହାକୁ ଶପଥ ବୋଲଯାଏ ।]

ଶପଥ କରିବା—ଦେ. କ୍ରି—ଧର୍ମ ପ୍ରମାଣେ କୌଣସି ବିଷୟ କହିବା—
Śapatha karibā To take an oath.
**शपथ करा शपथ करना**

ଶପଥ ପତ୍ର—ସଂ. ବି (କଟରଥ)—ଧର୍ମତଃ ପ୍ରତିଜ୍ଞାପୂର୍ବକ ଲେଖାଯିବା
Śapatha patra କୌଣସି ଲେଖ; ଏଫିଡେଭିଟ୍—An affidavit; a sworn statement in writing; written statement on oath.

ଶପଥ ପୂର୍ବକ—ଦେ. କ୍ରି. ବିଣ—ଧର୍ମତଃ ପ୍ରତିଜ୍ଞା କରି (କୌଣସି ବିଷୟ
Śapatha pūrbaka କହିବା)—(to state something)
**शपथपूर्वक शपथपूर्वक** On oath.

ଶପମାନ—ସଂ. ବିଣ. ପୁଂ (ଶପ୍ ଧାତୁ + କର୍ତ୍ତୃ ଅନ)—୧ । ରାଣ ପକାଉ
Śapamāna ଥିବା—Taking oath; speaking on
(ଶପ.ମାନା—ସ୍ତ୍ରୀ) oath ୨ । ଗାଳି ଦେଉଥିବା—
2. Abusing.

ଶଁପା—ଦେ. ବି—ଶମ୍ପା (ଦେଖ)
Sãmpā Sampā (See)

ଶଁପା(ପେ)ଇବା—ଦେ. କ୍ରି—ଶମ୍ପାଇବା (ଦେଖ)
Sãmpā(pe)ibā Śampāibā (See)

ଶଁ(ଶ)ପିବା—ଦେ. କ୍ରି (ସ ଶପ ଧାତୁ)—ଶମ୍ପିବା (ଦେଖ)—
Sãm(sa)pibā Śampibā (See) [ଦ୍ର—ଶଁପନ୍ତୁ
**सपा गालीदेना** ବହେ ବସାଦେ, କବଳେ ଘଡ଼ ସ୍ୱାମୀ ହୁଦେ—ଜଗନ୍ନାଥ ଭାଗବତ ।]

ଶପୋଟ—ଦେ.ବି—ବନ୍ଧାବନ୍ଧ କରି କବାଡ଼ି କରିବା—Tightening.
Śapota [ଦ୍ର—ଅଣଚଣା ଅଣପୋଛ ହୋଇଛୁ ଶପୋଟ,
**कषा कसना** ଅଣସଖା ଅଣଲ୍ପଣା ହୋଇଛୁ କ୍ଷେପଟ—ପ୍ରାଚୀ. ବିଦଗ୍ଧଚିନ୍ତାମଣି ।]

ଶପ୍ତ—ସ. ବିଣ (ଶପ୍ ଧାତୁ + କର୍ମ କ୍ତ)—ଶାପଗ୍ରସ୍ତ; ଅଭିଶପ୍ତ—
Śapta Cursed. ବି (+ଭାବ କ୍ତ)—୧ । ଧର୍ମତଃ ଅଙ୍ଗୀକାର—1. Solemn promise; a promise made on oath. ୨ । ଉଲୁପ; ଉଶିରଣ-
ଉଲୁଖଡ଼ **उलप** ତୃଣବିଶେଷ; [ଦ୍ର—ଏହା ମେଦିନୀପୁର ଅଞ୍ଚଳରେ ହୁଏ । ଏଥିରୁ ଶପ ମସିଣା ବୁଣାଯାଏ । ମେଦିନୀପୁରରେ ଓ ବଙ୍ଗଦେଶରେ ଏହାକୁ 'ଉଲୁଖଡ଼' ବୋଲଯାଏ]—2. A kind of grass, the stalks of which are woven into fine mats; Saccharum Cylindricum; Imperata Arundinacea.

ଶପ୍ତା—ସ. ବି ଓ ବିଣ ପୁଂ [ଶପ ଧାତୁ+କର୍ତ୍ତୃ ତୃ; ୧ମା ୧ବ]—ଶାପ
Saptā ଦେବା ବ୍ୟକ୍ତି [ବିଶ୍ୱକୋଷ]—A pronouncer
[ଶପ୍ତ୍ରୀ—ସ୍ତ୍ରୀ] of curse.

ଶପ୍ୟ—ସ. ବିଣ ପୁଂ (ଶପ ଧାତୁ+କର୍ମ ଯ)—ଯାହାକୁ ଶାପ ଦେବା
Śapya କର୍ତ୍ତବ୍ୟ (ବିଶ୍ୱକୋଷ)—Deserving to be cursed.

ଶଫ୍ତାଲୁ—ବୈଦେ ବି—(ଫା)—ବିଦେଶାଗତ ଏକପ୍ରକାର ଖାଦ୍ୟ ଫଳ
Śaph-tālu ବୃକ୍ଷ ଗୀଠ୍—Peach; Prunus
**সফতালু शफताल्, सताल्** Persica, [ଦ୍ର—ଏହା ନାତିଶୀତୋଷ୍ଣ ଭରତ ଓ ଭାରତର ଶୀତପ୍ରଧାନ ଅଞ୍ଚଳରେ ହୁଏ । ପତ୍ର ଲମ୍ବା, ମୁନିଆ; ପତ୍ର ଝଡ଼ିବା ପରେ ଓ ନୂଆ ପତ୍ର ବାହାରିବା ପୂର୍ବରୁ ଏଥିରେ ନାଲି ଫୁଲ ଧରେ । ଫଳ ଉମ୍ବିର ଫଳ ପରି ଗୋଲ ଓ ପାଚିଲେ ଶାଗୁଆ ଓ ନାଲି ମିଶା ବର୍ଣ୍ଣ; ଏ ଫଳ ଉପରେ ଖୁବ୍ ସରୁ ଧଳା ଲୋମ ଥାଏ । ଏ ଫଳ ଖାଇବାକୁ ମିଠା ଲଗେ । ଗଛ ବାଦାମ ମଞ୍ଜି ପରି । ଏଥିର ୫।୦ ନାଳ ଓ ଦୃଢ଼ ଓ ଭିତରୁ ଏକପ୍ରକାର ସୁଗନ୍ଧ ବାହାରେ । ଲୋକେ ଏହାକୁ ବଗିଚାରେ ଲଗାଇ ଫଳ ଉତ୍ପାଦନ କରି ବିକନ୍ତି ଓ ଖାଆନ୍ତି ।]

ଶଫ—ଦେ ବି (ସଂ ଶପ୍ତ)—ଶପ (ଦେଖ)
Śapha Śapa (See).
ସଂ. ବି (ଶମ୍ ଧାତୁ ଣିଚ୍=ଶମି ଧାତୁ=ଶାନ୍ତ ହେବା + କର୍ତ୍ତୃ. ଅ; ନିପାତନ)—୧ । ପଶୁର ଖୁରା—1. The hoof of a beast. ୨ । ବୃକ୍ଷର ଚେର—2. The root of a tree. ୩ । ନଖୀ ନାମକ ଗନ୍ଧଦ୍ରବ୍ୟ—3. (a scent) Shell.

ଶଫକ—ସଂ. ବି (ଶଫ+ସ୍ୱାର୍ଥେ କ)—ଗୋଖୁର; ଗୋରୁର ଖୁରା
Śaphaka (ବିଶ୍ୱକୋଷ)—The hoof of cattle.

ଶଫର—ସଂ. ବି (ଶଫ=ଖୁର+ର ଧାତୁ=ଦାନ କରିବା+କର୍ତ୍ତୃ. ଅ)—ଶଫରୀ; ପୋଷ୍ଟି ମତ୍ସ୍ୟ; କେରାଣ୍ଡି ମାଛ—
Śaphara
(ଶଫରୀ—ସ୍ତ୍ରୀ) A tiny species of carp; Cyprinus
**পুঁটি** Chrysophanus; Cyprinus Sophoria; Bar-
**पोठि; पोठिया** bus Chola; a species of shiner fish.
(କେରାଣ୍ଡି ଦେଖ)

ଶଫରାଧିପ—ସ. ବି.—(୬ଷ୍ଠୀତତ୍; ଶଫର+ଅଧିପ)—ଇଲିଶିମାଛ—
Śapharādhipa The Hilsa fish.
(ଅନ୍ୟ ସ. ନାମ—ଇଲୀଶ, ବାରିକର୍ପୂର; ଗାଙ୍ଗେୟ, ଜଳତାଳ)

ଶଫରୀ —ସଂ ବି. ସ୍ତ୍ରୀ—( ଶଫର+ଈ )—୧ । କେରାଣ୍ଡି ମାଛ—1. Ṡapharī Barbus Chola. ୨ । ଶୁଙ୍ଗେରୀ; ଅମ୍ଳଛ ଶାକ; ଅମ୍ବିଳଭ ଶାଗ ( ଶବ୍ଦକୋଷ )—Woodsorrel (a pot herb)

ଶଫରୀ ଫର୍ଫରାୟତେ—ସ. ବାକ୍ୟ-(ଗୋଟିଏ ସଂସ୍କୃତ ଶ୍ଳୋକର ଶେଷାଂଶ । Ṡapharī pharpharāyate ଶ୍ଳୋକଟି ଏହି—"ଅଗାଧ ଜଲସଂଚାରୀ ନ ଗର୍ବଂ ଯାତି ରୋହିତଃ, ଅଙ୍ଗୁଷ୍ଠ ଜଲମାତ୍ରେଣ ଶଫରୀ ଫର୍ଫରାୟତେ" । ଏହାର ଅର୍ଥ ଏହି ଯେ—ଗଭୀର ଜଳରେ ବିଚରଣ କରୁଥିବା ରୋହି ମାଛ ଗର୍ବ କରେ ନାହିଁ ଅର୍ଥାତ୍ ପାଣି ଉପରେ ସର୍ବଦା ବାଡ଼େଇ ହୁଏ ନାହିଁ; କିନ୍ତୁ ଅଳ୍ପ ମାତ୍ର ଜଳରେ ବିଚରଣକାରୀ କେରାଣ୍ଡି ମାଛ ପାଣି ଉପରେ ଫର ଫର ହେଉଥାଏ) । (ଲକ୍ଷଣାର୍ଥ)—ବିଦ୍ୱାନ୍ ବା ମହତ୍ ବ୍ୟକ୍ତି ଗର୍ବ ପ୍ରକାଶ କରେ ନାହିଁ; କିନ୍ତୁ ନୀଚ ଓ ସ୍ୱଳ୍ପ-ହୃଦୟ ବ୍ୟକ୍ତି ଅପଣାର ବଡ଼ିମା ଦେଖାଇ ହୁଏ —The last foot of a Sanskrit sloka used as a proverb meaning:—"Mean people are arrogant and boastful, while great men are always grave."

ଶଫରୁକ—ସଂ ବି.—ସିନ୍ଦୁକ; ବାକ୍ସ (ହି.ଶ) Ṡapharuka Chest; box

ଶଫୋରୁ—ସଂ ବିଣ.—ପୁଂ ଓ ସ୍ତ୍ରୀ (ବହୁବ୍ରୀହି; ଶଫ+ଊରୁ)—ଯାହାର Ṡaphoru ଜଙ୍ଘ ଗାଈଖୁରାପରି ଦୁଇଭାଗ -Having the thighs divided like cow's hoof.

ଶବ୍ (ଧାତୁ)—ସଂ—୧ । ବିକାର ପ୍ରାପ୍ତ ହେବା; ବିକୃତ ହେବା—Ṡab (root) 1. To become changed. ୨ । ଗମନ କରିବା—2. To go.

ଶବ—ସଂ ବି—(ଶବ୍ ଧାତୁ+କର୍ତ୍ତୃ ଅ)—୧ । ମୃତ ଶରୀର; ମଡ଼ା, Ṡaba ମୁର୍ଦ୍ଦାର—1. Corpse; dead body; carcass. [ଉ—କହନ୍ତେ ସେହି କାଳରେ ବସିଲେ ନାହିଁ କୋଳରେ ଶବକୁ ସର୍ବେ ସେ କଥା କହି । ଉ.ଭ. ବୈଦେହୀଶବିଳାସ ।] [ଦ୍ର—କେବଳମନୁଷ୍ୟର ମୃତଶରୀର ସମ୍ବନ୍ଧେ ଶବ ଶବ୍ଦ ବ୍ୟବହୃତ ହୁଏ—( ହି. ଶ )] ୨ । ଜଳ—2. Water.

ଦେ'ବି.— ଭବିଷ୍ୟତରେ ଗଙ୍ଗା ଅବା ତୀର୍ଥରେ ନିକ୍ଷିପ୍ତ ହେବା ପାଇଁ କିମ୍ବା ସମାଧିରେ ପୋଡ଼ା ଯିବା ପାଇଁ ସଞ୍ଚିତ ଶବଦାହ ଭସ୍ମ ମଧ୍ୟରୁ ସଂଗୃହୀତ ଅସ୍ଥିଖଣ୍ଡ—A piece of bone gathered from the ashes of cremation and kept to be consigned to a sacred river, such as the Ganges or to a grave.

ଶବ ଅସ୍ଥି

ଶବକାମ୍ୟ—ସ. ବି (ଶବ ଅଟେ କାମ୍ୟ ବା ବାଞ୍ଛନୀୟ ଯାହାର; ଯେ ଶବ Ṡabakāmya ମାଂସ ଖାଇବାକୁ ଇଚ୍ଛା କରେ)—କୁକ୍କୁର—The dog.

ଶବକୃତ୍—ସ. ବି—କୃଷ୍ଣଙ୍କ ନାମ (ହି. ଶ) Ṡabakṛut A name of Kṛushṇa.

ଶବ ଗୃହ —ଦେ. ବି (ଅଧୁନାତନ)—ମୃତ୍ୟୁର କାରଣ ନିର୍ଣ୍ଣୟାର୍ଥେ ଶବ-Ṡaba gṛuha ପରୀକ୍ଷା କରିବାପାଇଁ ଯେଉଁ ଘରେ ଶବ ଶବଗୃହ मुर्दाखाना, शवगृह ରଖାଯାଏ—Dead-house; morgue; a house where a corpse is deposited for examination.

ଶବଦ—ଗ୍ରା ଓ୍ବପଦ୍ୟ.ବି (ସଂ.ଶବ୍ଦ)—ଶବ୍ଦ (ଦେଖ)—Ṡabda (See) Ṡabada [ଉ—ଶବଦ ନ ଥାଇ ସ୍ତବଧ କରାଇ—ଜଗନ୍ନାଥ ଶବଦ शबद ସଙ୍ଗୀତ ।]

ଶବଦ ବ୍ରହ୍ମ—ଗ୍ରା. ବି ( ସଂ ଶବ୍ଦବ୍ରହ୍ମ )—ଶବ୍ଦବ୍ରହ୍ମ; ନାଦବ୍ରହ୍ମ—Ṡabada brahma The Supreme Soul as exist- ଶବ୍ଦବ୍ରହ୍ମ शबदब्रह्म ing in sound. (ଉ—ଶବଦବ୍ରହ୍ମ ତୋର ନାମ, ସେ ନିତ୍ୟ ସତ୍ୟ ନିରୂପମ—ଭୂପତି ପ୍ରେମପଞ୍ଚାମୃତ ।)

ଶବ ଦହନ —ସଂ ବି —ମୁର୍ଦ୍ଦାରପୋଡ଼ା;ମୃତବ୍ୟକ୍ତିର ଶବକୁ ପୋଡ଼ିବାରୂପ Ṡaba dahana ସଂସ୍କାର —Cremation; burning (ଶବଦାହ—ଅନ୍ୟରୂପ) of a corpse to ashes. (ଦ୍ର—ହିନ୍ଦୁମାନଙ୍କ ମଧ୍ୟରେ ଶବକୁ ପୋଡ଼ିବାର ଏବଂ ଖ୍ରୀଷ୍ଟିଆନ ଓ ମୁସଲମାନମାନଙ୍କ ମଧ୍ୟରେ ଶବକୁ ପୋତିବାର ରୀତି ଅଛି ।)

ଶବଦହନାଶୌଚ—ସଂ ବି—ଶବଦାହକ୍ରିୟାରେ ଲିପ୍ତ ବ୍ୟକ୍ତିମାନଙ୍କର Ṡabadahanāṡaucha ଦୈହିକ ଅଶୁଦ୍ଧି—Impurity of a person's body owing to his having taken part in the cremation of a corpse. [ଦ୍ର—ହିନ୍ଦୁସ୍ମୃତି ମତରେ ଗୋତ୍ରୀୟ ବ୍ୟକ୍ତି ଦଶରାତ୍ର, ଜ୍ଞାତି ତ୍ରିରାତ୍ର ଦାହକ୍ରିୟା କରିଥିବା ବ୍ୟକ୍ତି ତ୍ର୍ୟହ ଓ ଦୂର ସମ୍ପର୍କୀୟ ବ୍ୟକ୍ତିର ଶବଦହନକାରୀ ବ୍ୟକ୍ତି ଏକ ଦିନ ମାତ୍ର ଅଶୌଚ ପାଳନ କରିବେ ।]

ଶବଦାହକ—ସଂ. ବି ଓ ବିଣ.ପୁଂ (ଶବ+ଦହ୍ ଧାତୁ+କର୍ତ୍ତୃ ଅକ)—ଯେ Ṡabadāhaka ମୁର୍ଦ୍ଦାର ପୋଡ଼େ—One who (ଶବଦାହୀ—ଅନ୍ୟରୂପ) cremates the dead body. [ଶବଦାହିକା, ଶବଦାହିନୀ—ସ୍ତ୍ରୀ]

ଶବଦାହ ସ୍ଥାନ—ସ ବି—ଶ୍ମଶାନ; ମଶାଣି—Ṡabadāha sthāna Cremation ground.

ଶବ ଦେହ—ସଂ. ବି - ମୃତଦେହ; ମୁର୍ଦ୍ଦାର - Ṡaba deha Dead body.

ଶବ ପରୀକ୍ଷା—ସଂ ବି (ଅଧୁନାତନ)—ମୃତ୍ୟୁର କାରଣ ଓ ଲକ୍ଷଣ ନିର୍ଣ୍ଣୟାର୍ଥେ Ṡaba parikshā ମୃତଦେହର ବୈଜ୍ଞାନିକ ପରୀକ୍ଷା—Post mortem examination.

ଶବ ପ୍ରୋଥନ—ସଂ. ବି (୬ଷ୍ଠୀ ତତ୍)—ମୃତବ୍ୟକ୍ତିର ଶବକୁ ଭୂମିରେ Ṡaba prothana ପୋତିବା; କବରଦେବା—Burial of a dead body.

**ଶବର ପଲ୍ଲୀ**—ସଂ. ବି—ଶବରମାନଙ୍କ ଗ୍ରାମ—
Śabara palli  A hamlet of Śabaras or hill-tribes

**ଶବର ଭାଷ୍ୟ**—ସଂ. ବି—ଶବର ସ୍ୱାମୀକୃତ ବେଦାନ୍ତର ବା ମୀମାଂସା ସୂତ୍ରର
Śabara bhāshya  ପ୍ରସିଦ୍ଧ ଭାଷ୍ୟ—A commentary on the Bedānta by Śabaraswāmi.

**ଶବର ସ୍ୱାମୀ**—ସଂ. ବି. ନାମ—୧ । ଶବର ୮ (ଦେଖ)—1. Śabara
Śabara swāmi  8. (See) [ଦ୍ର—ଏ ଶବରଭାଷ୍ୟ ଓ ଶବର କୌସ୍ତୁଭ ନାମକ ଦୁଇ ଗ୍ରନ୍ଥର ପ୍ରଣେତା ।] ୨ । ହର୍ଷବର୍ଦ୍ଧନକୃତ ଲିଙ୍ଗାନୁଶାସନର ପ୍ରସିଦ୍ଧ ଟୀକାକାର ଓ ଭଟ୍ଟଦୀପ୍ତ ସ୍ୱାମୀଙ୍କ ପୁତ୍ର—2. Name of a commentator on Harshabarddhana's treatise on grammatical genders.

**ଶବରୀ**—ସଂ. ବି. ସ୍ତ୍ରୀ (ଶବର+ସ୍ତ୍ରୀ. ଈ)—୧ । ଶବର ପତ୍ନୀ—
Śabari  1. A Śabara woman. ୨ । ତ୍ରିକାଳଦର୍ଶିନୀ ତାପସୀ ବିଶେଷ—2. Name of a seeress. [ଦ୍ର—ଏ ଶବର ଜାତିର ଶ୍ରମଣାନାମ୍ନୀ ତପସ୍ୱିନୀ ଥିଲେ । ରାବଣହୃତା ସୀତାଙ୍କ ଅନ୍ୱେଷଣକାରୀ ରାମଚନ୍ଦ୍ର ଏହାଙ୍କ ଆଶ୍ରମରେ ପହଞ୍ଚିବାରୁ ଏ ରାମଚନ୍ଦ୍ରଙ୍କୁ ଅଭ୍ୟର୍ଥନା କଲେ ଓ ତାଙ୍କ ଅନୁମତିରେ ତାଙ୍କ ସମ୍ମୁଖରେ ଚିତାଗ୍ନିରେ ପ୍ରବେଶ କରି ସ୍ୱର୍ଗଲାଭ କଲେ—ହି. ଶ ।] ଦେ. ବି—ଓଡ଼ିଶାର କୋରାପୁଟ ଜିଲ୍ଲାର ଜୟପୁର ରାଜ୍ୟରେ ପ୍ରବାହିତ ନଦୀ ବିଶେଷ—Name of a tributary of the Godavari river flowing in the Joypore Estate in the Koraput district of Orissa. [ଦ୍ର—ଏହା ପୂର୍ବଘାଟ ପର୍ବତରୁ ବାହାରି ପାର୍ବତ୍ୟ ଦେଶରେ ପ୍ରପାତାକାରରେ ପଡ଼ି କୋରାପୁଟ ଓ ଜୟପୁର ନଗରର ଖଣ୍ଡଦୂରରେ ଜୟପୁର ରାଜ୍ୟବାଟେ ଯାଇ ଶିଲେରୁ ନାମକ ନଦୀ ସଙ୍ଗେ ମିଳିତ ହୋଇ ଭଦ୍ଦିଗୁଦେମ ( Vaddigudem ) ନଗରଠାରେ ଗୋଦାବରୀ ନଦୀରେ ଉତ୍ତରଅଙ୍ଗ ମିଶିଅଛି ।]

**ଶବଳ**—ସଂ. ବିଣ (ଶବ୍ ଧାତୁ+କର୍ତ୍ତୃ. ଅଳ)—କର୍ବୁର ବର୍ଣ୍ଣ; ନାନା-
Śabala  ବର୍ଣ୍ଣଯୁକ୍ତ; ବହୁରଙ୍ଗୀ—Variegated. ବି—୧ ।
(ଶବଳା[ଳୀ]—ସ୍ତ୍ରୀ)  ନାନାବର୍ଣ୍ଣର ସମାବେଶ—1. Variega-
[ଶବଳତା(ତ୍ୱ)—ବି]  ted colour. ୨ । ନାଗବିଶେଷ (ହି.ଶ)-2. Name of mythological Nāga. ୩ । ଗନ୍ଧତୃଣ (ହି. ଶ)—3. A kind of scented grass. ୪ । ଚିତ୍ରକ; ଚିତାଗଛ (ହି. ଶ)—4. Plumbago Zeylanica. ୫ । ଜଳ; ପାଣି (ହି. ଶ)—5. Water.

**ଶବଳ ଚେତନ**—ସଂ. ବିଣ. ପୁଂ (ବହୁବ୍ରୀହି)—୧ । ପୀଡ଼ା ବା କଷ୍ଟ
Śabala chetana  ଆଦି କାରଣରୁ ବିଶେଷ ଅସ୍ଥିରମତି
(ଶବଳଚେତନା—ସ୍ତ୍ରୀ)  (ହି. ଶ)—1. Restless in mind owing to sickness or trouble. ୨ । ଉଦ୍ବେଗ ବା ବ୍ୟଥିତ ହେବା ଯୋଗୁ ଅନ୍ୟମନସ୍କ—2. Inattentive owing to grief or trouble.

**ଶବଳା(ଳୀ)**—ସଂ. ବି (ଶବଳ+ଆ, ଈ)—୧ । ନାନାବର୍ଣ୍ଣଯୁକ୍ତା-
Śabalā(lī)  ଗାଈ—1. A cow of variegated colour. ୨ । ବଶିଷ୍ଠଙ୍କ କାମଧେନୁ—2. Name of Baśishṭha's cow; name of a fabulous cow belonging to Baśishṭha. [ଦ୍ର—ଏହି କାମଧେନୁକୁ ନେବାପାଇଁ ଗାଧିରାଜ ପୁତ୍ର ମହାରାଜ ବିଶ୍ୱାମିତ୍ର ବଶିଷ୍ଠଙ୍କୁ ମାଗିଲେ । କିନ୍ତୁ ବଶିଷ୍ଠ ଦେବାକୁ ଅସମ୍ମତ ହେବାରୁ ବିଶ୍ୱାମିତ୍ର ତାହାଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ । ଶବଳା ଅସଂଖ୍ୟ ସୈନ୍ୟ ପ୍ରସବକରିବାରୁ ବିଶ୍ୱାମିତ୍ର ଶେଷରେ ପରାସ୍ତ ହୋଇ ଫେରିଗଲେ । ] (ବର୍ତ୍ତୁଳ ଚଳେ କୋଠ ଦେଖ ) ସଂ. ବିଣ.—ବିବିଧବର୍ଣ୍ଣ ବିଚିତ୍ରିତା (ସ୍ତ୍ରୀ)—Variegated (feminine). [ଉ—ବଳାହକ ଶ୍ରେଣୀ ନେତ୍ର ଶବଳା—ଭକ୍ତ. ବୈଦେହୀଶବିଳାସ ।]

**ଶବଳିତ**—ସଂ. ବିଣ. (ଶବଳ+ଇତ)—୧ । ମିଶ୍ରିତ (ହି. ଶ)—
Śabalita  1. Mixed together. ୨ । କର୍ବୁର ବର୍ଣ୍ଣ ବିଶିଷ୍ଟ (ବିଶ୍ୱକୋଷ)—2. Variegated.

**ଶବ ଶୟନ**—ସଂ. ବି. (ବହୁବ୍ରୀହି)—୧ । ଶ୍ମଶାନ—1. Cremation
Śaba śayana  ground. ୨ । କବରସ୍ଥାନ—2. Burial ground; cemetary.

**ଶବ ସାଧନ**—ସଂ. ବି.—ଅପଘାତ ମୃତ୍ୟୁ ଦ୍ୱାରା ମୃତ ହୋଇଥିବା ବ୍ୟକ୍ତିର
Śaba sādhana  ମଡ଼ା ଉପରେ ଉପବିଷ୍ଟ ହୋଇ ତାନ୍ତ୍ରିକ ପ୍ରକ୍ରିୟା ଦ୍ୱାରା ମନ୍ତ୍ର ଜପିବା—Repeating of certain mystic formulas while seated on the dead body of a man who met with an accidental death.

**ଶବ ସଂସ୍କାର(ସତ୍କାର)**—ସଂ. ବି.—ମଡ଼ାକୁ ପୋଡ଼ିବାରୂପ ବିଧି—The
Śaba samskara(satkāra)  ceremony of cremation of a dead body.

**ଶବାଚ୍ଛାଦନ(ନୀ)**—ସଂ. ବି—ମୃତ ଦେହ ଉପରେ ଘୋଡ଼ାଯିବା ଆବରଣ
Śabāchchhādana(nī)  —A covering for a corpse.

**ଶବାଧାର**—ସଂ. ବି.—ଶବବହନ ପାତ୍ର; କଫିନ୍; ଯେଉଁ ବାକ୍ସରେ
Śabādhāra  ଶବକୁ ରଖି କବର ଦେବାକୁ ହୁଏ—A coffin.

**ଶବାନୁଯାତ୍ରିକ**—ସଂ. ବି. ପୁଂ. (ଷଷ୍ଠୀ ତତ୍)—୧ । ଶବବାହକ ବ୍ୟକ୍ତି—
Śabānujātrika  1. Carriers of a corpse. ୨ । ଯେଉଁ
(ଶବାନୁଯାୟୀ—ଅନ୍ୟରୂପ)  ବ୍ୟକ୍ତିମାନେ ଶବସଙ୍ଗେ ଶ୍ମଶାନକୁ ଯାଆନ୍ତି—2. Followers of a dead bady to the cremation ground or burial.

**ଶବାନ୍ନ**—ସଂ. ବି.—୧ । ନଷ୍ଟଅନ୍ନ (ହି. ଶ)—1. Spoiled food.
Śabānna  ୨ । ଖାଦ୍ୟରୂପେ ବ୍ୟବହୃତ ଶବମାଂସ (ହି. ଶ)—2. Meat of a human corpse.

ଶବାରୂଢ଼—ସଂ. ବଣ ପୁଂ—(ଶବ+ଆରୂଢ଼; ୭ମୀତତ୍)—ଶବ ଉପରେ Sabārūrdha ବସିଥିବା—Seated on a corpse. (ଶବାରୂଢା—ସ୍ତ୍ରୀ) (ଶବାସୀନ—ଅନ୍ୟରୂପ)

ଶବାରୂଢ଼ା—ସ. ବ. ସ୍ତ୍ରୀ—କାଳିକା—Goddess Kāli. ସଂ. ବଣ Sabārūrdhā ସ୍ତ୍ରୀ—ଶବାରୂଢ଼ର ସ୍ତ୍ରୀଲିଙ୍ଗ—Feminine of (ଶବାସୀନା ଅନ୍ୟରୂପ) sabārūrdha.

ଶବାସନ—ସ.ବ.--(ରୂପକ)–ତନ୍ତ୍ର ସାଧନାର୍ଥ ଆସନରୂପେ ବ୍ୟବହୃତ ଶବ-Sabāsana A corpse used as a seat to perform some mystic rituals. ବଣ. ପୁଂ—(ବହୁବ୍ରୀହି)—ଶବ ଉପରେ ବସି ଜପ କରୁଥିବା (ବ୍ୟକ୍ତି)—Performing Japa, being seated on a corpse.

ଶବାସନା—ସ.ବ. ସ୍ତ୍ରୀ. (ବହୁବ୍ରୀହି)—କାଳିକା—Goddess Kāli. Sabāsanā ସଂ ବଣ ସ୍ତ୍ରୀ—ଶବାସନର ସ୍ତ୍ରୀଲିଙ୍ଗ—Feminine of sabāsana.

ଶବ୍ଦ (ଧାତୁ)— ସଂ. —ଧ୍ୱନି କରିବା—To make a sound. Sabd (root)

ଶବ୍ଦ—ସଂ.ବ.—(ଶବ୍ଦଧାତୁ+ଭାବ ଅ)—୧। ଧ୍ୱନି; ରବ; ଶ୍ରବଣେନ୍ଦ୍ରିୟଗ୍ରାହ୍ୟ Sabda ବିଷୟ—1. Noise; sound; a matter which can be perceived by the ear. [ଶବ୍ଦର ପର୍ଯ୍ୟାୟ—ନିନାଦ, ନିନଦ, ଧ୍ୱନି, ଧ୍ୱାନ ରବ, ସ୍ୱନ, ସ୍ୱାନ, ନିର୍ଘୋଷ, ନିହ୍ରାଦ, ନାଦ, ନିସ୍ୱାନ, ନିସ୍ୱନ, ଆରବ, ଆରାବ, ସଂରାବ, ବିରାବ,ସଂରବ, ସ୍ୱର, ଘୋଷ]—୨। (+କର୍ମ ଅ)—ଅର୍ଥବୋଧକ ଧ୍ୱନି—2. A sound denoting a meaning. [ଦ୍ର—ଏକ ବା ଅଧିକ ବର୍ଣ୍ଣର ସଂଯୋଗରେ କଣ୍ଠ ଓ ତାଳୁ ଆଦି ଦ୍ୱାରା ଉତ୍ପନ୍ନ ସ୍ୱଚ୍ଛନ୍ଦ ବ୍ୟକ୍ତ ଓ ସାର୍ଥକ ଧ୍ୱନି, ଯାହା ଶୁଣିବା ବ୍ୟକ୍ତିର ମନରେ ବିଶିଷ୍ଟ ପଦାର୍ଥ ବା ବ୍ୟକ୍ତି ଆଦିର ବୋଧହୁଏ,ତାହାକୁ ଶବ୍ଦ ବୋଲିଯାଏ ।] ୩। ଖ୍ୟାତି;ଯଶଃ—3. Renown; fame. ୪। (ବ୍ୟାକରଣ) ବିଭକ୍ତିରହିତ ନାମ—4. (Grammar) A crude name; a root word without inflection.

[ଦ୍ର—ଶବ୍ଦ—(ବ୍ୟାକରଣ ପରିଭାଷା) ଏହା ବ୍ୟାକରଣର ଅଦ୍ୟ ପଦାର୍ଥ ପ୍ରତି ପ୍ରଯୋଜ୍ୟ । ଶବ୍ଦ ବାକ୍ୟର ଅଙ୍ଗ; ବାକ୍ୟ ଶବ୍ଦର ଶରୀର । ଏତଦ୍‌ବ୍ୟତୀତ 'ଦର୍ଶନ'ଶାସ୍ତ୍ରରେ 'ଶବ୍ଦ' ଅପ୍ରଚଳିତ ଅର୍ଥରେ ବ୍ୟବହୃତ ହୋଇଥାଏ । ଶାସ୍ତ୍ରରୁ ବା ଗୁରୁଙ୍କଠାରୁ ଯେଉଁ ଜ୍ଞାନ ଆମ୍ଭେମାନେ ପାଉଁ ତାହା ଶବ୍ଦ ନାମରେ ପ୍ରକାଶିତ । କେତେକ ଦାର୍ଶନିକଙ୍କ ମତରେ ଜ୍ଞାନ ତିନି ପ୍ରକାରରେ ଉତ୍ପନ୍ନ ହୁଏ । ଯଥା, ପ୍ରତ୍ୟକ୍ଷ (Perception), ଯୁକ୍ତି (Inference) ଏବଂ ଶବ୍ଦ (authority);ତୁଳନା କର—"ଆପ୍ତୋପଦେଶଃ ଶବ୍ଦଃ।" —ନ୍ୟାୟଦର୍ଶନ । ଅନେକଙ୍କ ମତରେ ଆପ୍ତୋପଦେଶ-ଲବ୍ଧ ଜ୍ଞାନ ବିଶୁଦ୍ଧ ଅଟେ; ଏଣୁ ସର୍ବୋତ୍କୃଷ୍ଟାମାୟ । ଅନ୍ୟ ପ୍ରକାର ଜ୍ଞାନରେ ଭ୍ରମ ରହି ପାରେ । କିନ୍ତୁ ଋଷି ଓ ମହାପୁରୁଷଙ୍କର ଭ୍ରମ ଘଟିବା ସମ୍ଭବ ଯୋଗ୍ୟ ନୁହେଁ । ମହାପୁରୁଷମାନେ ପ୍ରତ୍ୟକ୍ଷ ବା ଯୁକ୍ତି ବଳରେ ଏହି ଜ୍ଞାନର ଅଧିକାରୀ ହୁଅନ୍ତି । ତୁଳନା କର "ସ (ଶବ୍ଦ) ଦ୍ୱିବିଧୋ ଦୃଷ୍ଟା ଦୃଷ୍ଟାର୍ଥତ୍ୱାତ୍ ।" —ନ୍ୟାୟଦର୍ଶନ ।

ଅସ୍ମମାନଙ୍କ ଧର୍ମଶାସ୍ତ୍ର ସାଧାରଣତଃ ଦୁଇଭାଗରେ ବିଭକ୍ତ ହୋଇଥାଏ, ଶ୍ରୁତି ଓ ସ୍ମୃତି । ଶ୍ରୁତି ପ୍ରଥମ ସ୍ଥାନୀୟ; ସ୍ମୃତି ଦ୍ୱିତୀୟ ସ୍ଥାନୀୟ । ବିଶେଷ ବେଦରେ ଯେଉଁ ଜ୍ଞାନ ନିବଦ୍ଧ ରହିଅଛି ତାହା ଶ୍ରୁତି, ତାହା 'ଶବ୍ଦ' ଆଖ୍ୟାରେ ମଧ୍ୟ ଅଖ୍ୟାତ । 'ଶବ୍ଦ' ପ୍ରମାଣ ଅବଶ୍ୟକ କରେ ନାହିଁ; 'ଶବ୍ଦ' ନିଜେ ନିଜର ପ୍ରମାଣ ଅଟେ ।)

[ପ୍ରୋଫେସର୍ ବଟକୃଷ୍ଣ ଘୋଷ]

[ଦ—ଧାତୁ ଆଦି ସଙ୍ଗେ ଉପସର୍ଗ, ଉପପଦ ବା ପ୍ରତ୍ୟୟାଦି ଯୁକ୍ତ କରାଯାଇ ଯାଇ ଶବ୍ଦ ଉତ୍ପନ୍ନ କରାଯାଏ ଓ ଉକ୍ତ ମୌଳିକ ଶବ୍ଦ ଭିନ୍ନ ଭିନ୍ନ ବିଭକ୍ତି, ଲିଙ୍ଗ, ବଚନ ଓ କାରକରେ ଭିନ୍ନ ଭିନ୍ନ ରୂପ ଧାରଣ କରେ । ଯଥା—ଦା ଧାତୁ+ତୃନ୍ ପ୍ରତ୍ୟୟ=ଦାତୃନ୍ ଶବ୍ଦ । ଏହାର ପ୍ରଥମା ବିଭକ୍ତି ଏକ ବଚନ ପୁଂଲିଙ୍ଗ--ଦାତା, ବହୁବଚନ ଦାତାରଃ; ସ୍ତ୍ରୀଲିଙ୍ଗ ଏକବଚନ ଦାତ୍ରୀ ଇତ୍ୟାଦି । ଏହି-ପରି ରାଜନ୍ ଶବ୍ଦରୁ ରାଜା, ମାତୃ ଶବ୍ଦରୁ ମାତା, ଗୁଣବତ୍ ଶବ୍ଦରୁ ଗୁଣବାନ୍ ହୁଏ । ମୂଳଶବ୍ଦରେ ବିଭକ୍ତିଯୁକ୍ତ ହେଲେ ତାହା ପଦ ହୁଏ । ପୂର୍ବୋକ୍ତ ଦାତା, ଦାତ୍ରୀ ଓ ରାଜା ପ୍ରଭୃତି ଗୋଟିଏ ଗୋଟିଏ ପଦ ।] ୫। (ବ୍ୟାକରଣ) ବିଶେଷ୍ୟ—5. (Grammar) Noun. ୬। ଅର୍ଥ ବାଚକ ଏକ ବା ଏକାଧିକ ଅକ୍ଷର—6. One or more letters conveying a meaning. ୭। ବାକ୍ୟର ଅଙ୍ଗ—7. The components of a sentence; word. ୮। ବର୍ଣ୍ଣ; ଅକ୍ଷର—8. Letter; alphabet. ୯। ନାମ—9. Name. ୧୦। କଣ୍ଠାଦି ନିଃସୃତ ଧ୍ୱନି—10. Note; voice; tone. ୧୧। ବେଦ; ଶ୍ରୁତି—11. The Bedas. ୧୨। ଓଁ (ଧ୍ୱ-ଣ)—12. The sound Oṁ. ୧୩। (ବିଜ୍ଞାନ) ଜଡ଼ ପଦାର୍ଥର ଗୁଣବିଶେଷ, ଯଦ୍ୱାରା ଏହା ଶ୍ରବଣେନ୍ଦ୍ରିୟ ଦ୍ୱାରା ଅନୁଭୂତ ହୁଏ—12. One of the attributes of matter by which it is perceptible to the sense of hearing and becomes known. [ଦ୍ର—ଦୁଇଟି ପଦାର୍ଥ ପର-ସ୍ପରକୁ ଆଘାତ କରିବାଦ୍ୱାରା ବାୟୁମଣ୍ଡଳରେ ଯେଉଁ କମ୍ପନ ଜାତ ହୁଏ, ତାହାହିଁ ଶବ୍ଦ । ଉକ୍ତ କମ୍ପନ ଲହରୀରୂପରେ ବାୟୁଦ୍ୱାରା ଗତି ପ୍ରାପ୍ତ ହୋଇ କର୍ଣ୍ଣକୁହର ମଧ୍ୟରେ ଥିବା ଖୁବ୍ ପତଳା ଚମଡ଼ା ଜାଲିରେ ବାଜିଲେ ଉକ୍ତ ଚମଡ଼ା ଜାଲି କମ୍ପିଉଠେ ଓ କର୍ଣ୍ଣଧାରୀ ପ୍ରାଣୀ ସେହି କମ୍ପନକୁ ଶବ୍ଦରୂପରେ ଅନୁଭବ କରେ । ଅର୍ଥବାଚକ ଶବ୍ଦକୁ ପଦ ବୋଲିଯାଏ ।

ଗୁଡ଼ିଏ ଶବ୍ଦର ସମଷ୍ଟି ବାକ୍ୟ ଅଟେ । ଭାଷାରେ ଥିବା ଅକ୍ଷରମାନ ମନୁଷ୍ୟ କଣ୍ଠରୁ ଉଚ୍ଚାରିତ ଗୋଟିଏ ଗୋଟିଏ ଶବ୍ଦ ବା ଧ୍ୱନି ଅଟେ । ଶବ୍ଦ ପ୍ରଥମେ ମନୁଷ୍ୟର ହୃଦୟରୁ ଜାତ ବାଟେ ବହିର୍ଗତ ହୁଏ ଓ ତାହା ପାଟି ବାଟେ ଆସିବା ସମୟରେ ପାଟିର ଭିନ୍ନ ଭିନ୍ନ ସ୍ଥାନକୁ ସ୍ପର୍ଶ କରି ଭିନ୍ନ ଭିନ୍ନ ରୂପ ଧାରଣ କରି ଭିନ୍ନ ଭିନ୍ନ ସ୍ୱର ବା ବ୍ୟଞ୍ଜନବର୍ଣ୍ଣ ସୃଷ୍ଟି କରେ । ବିଜ୍ଞାନର ମତ ଏହି ଯେ, ଜଡ଼ପଦାର୍ଥର ପାଞ୍ଚଗୋଟି ଇନ୍ଦ୍ରିୟଗ୍ରାହ୍ୟ ଗୁଣ ଥିବାରୁ ମନୁଷ୍ୟ ପଞ୍ଚେନ୍ଦ୍ରିୟଦ୍ୱାରା ଉକ୍ତ ପଦାର୍ଥର ଅସ୍ତିତ୍ୱକୁ ଅନୁଭବ କରି ଜଡ଼ପଦାର୍ଥ ସମ୍ବନ୍ଧରେ ଜ୍ଞାନଲାଭ କରେ । ଯଥା—

ଦର୍ଶନେନ୍ଦ୍ରିୟଦ୍ୱାରା ଗ୍ରାହ୍ୟ—ରୂପ (ସୁନ୍ଦର ବା ଅସୁନ୍ଦର), ରସେନ୍ଦ୍ରିୟଦ୍ୱାରା—ରସ ( ମିଠା, ଖଟା ), ଘ୍ରାଣେନ୍ଦ୍ରିୟଦ୍ୱାରା—ଗନ୍ଧ ( ସୁଗନ୍ଧ, ଦୁର୍ଗନ୍ଧ ), ସ୍ପର୍ଶେନ୍ଦ୍ରିୟଦ୍ୱାରା—ସ୍ପର୍ଶ ( କୋମଳ, କର୍କଶ ), ଶ୍ରବଣେନ୍ଦ୍ରିୟଦ୍ୱାରା—ଶବ୍ଦ ( ଉଚ୍ଚ ବା ଅନୁଚ୍ଚ, କଠୋର ବା କୋମଳ ) ।

ଶବ୍ଦତରଙ୍ଗ ବାୟୁଦ୍ୱାରା ଚାଳିତ ହୋଇ ଦୂରକୁ নୀତ ହୁଏ । ଏଥିପାଇଁ ବାୟୁକୁ ଶବ୍ଦବାହ ବୋଲାଯାଏ । ପରୀକ୍ଷା ଦ୍ୱାରା ଦେଖାଯାଏ ଯେ, ବାୟୁ ନ ଥିବା ଶୂନ୍ୟ ସ୍ଥାନରେ ଶବ୍ଦତରଙ୍ଗ ଚଳି ପାରେ ନାହିଁ ଓ ବାୟୁ ଶୂନ୍ୟ ସ୍ଥାନରେ ନୀତ ହେବା ଶବ୍ଦ ଅନ୍ୟତ୍ର ଗମନ କରି ପାରେ ନାହିଁ । ଶବ୍ଦର ଗତି ଘଣ୍ଟାକେ ୭୬୦ ମାଇଲ ଅଟେ । ଆଲୋକର ଗତି ଶବ୍ଦର ଗତି ଅପେକ୍ଷା ଶୀଘ୍ରତର । ଏଥିପାଇଁ ଏକ ସ୍ଥାନରେ ଆଲୋକ ଓ ଶବ୍ଦ ଯୁଗପତ୍ ଉତ୍ପନ୍ନ ହେଲେ ଦୂରରୁ ପ୍ରଥମେ ଆଲୋକ ଦେଖାଯାଏ ଓ ତାହାର କିଛିକ୍ଷଣ ପରେ ଉକ୍ତ ଶବ୍ଦ ଶୁଣାଯାଏ ।

ବାୟୁ ଉପରେ ବା କୌଣସି ପଦାର୍ଥ ଉପରେ ଆଘାତ ପଡ଼ିବାରୁ ଯେଉଁ କମ୍ପ ବାୟୁରେ ଉତ୍ପନ୍ନ ହୋଇ କାନ ପର୍ଯ୍ୟନ୍ତ ଯାଏ ଓ କାନ ଭିତରେ ଏକ ବିଶେଷ ପ୍ରକାର କ୍ଷୋଭ ଉତ୍ପନ୍ନ କରେ ତାହା ଶବ୍ଦ ବା ଧ୍ୱନି । ପ୍ରାୟ ସବୁ ପଦାର୍ଥରେ ଆଘାତ କରି କିମ୍ବା ପଦାର୍ଥର ଶୀଘ୍ର ଶୀଘ୍ର ଗତି ଉତ୍ପନ୍ନ କରି ଶବ୍ଦ ଉତ୍ପାଦିତ କରାଯାଏ । ଯଦି କୌଣସି ପଦାର୍ଥ ଉପରେ ଅନ୍ୟ କୌଣସି ପଦାର୍ଥ ପଡ଼େ ବା ପଦାର୍ଥର ବାରମ୍ବାର ଗତି ଉତ୍ପନ୍ନ କରାଯାଏ ତେବେ ବାୟୁରେ ଏକପ୍ରକାର କମ୍ପନ ଉପସ୍ଥିତ ହୁଏ । ଉକ୍ତ କମ୍ପନ ଚତୁର୍ଦ୍ଦିଗକୁ ବିସ୍ତୃତ ହୁଏ ଓ କାନରେ ବାଜିଲେ ତାହା ଅନୁଭୂତ ହୁଏ । ବାୟୁ ଶବ୍ଦବାହକ ଅଟେ ଓ ଅନେକ ପ୍ରକାର ଗ୍ୟାସ୍, ଜଳ ଓ ଅନେକ ତରଳ ଓ ଦୃଢ଼ ପଦାର୍ଥ ଶବ୍ଦବାହକ ଅଟେ । ଆଲୋକ ପରି ଶବ୍ଦର ପରିବର୍ତ୍ତନ ହୁଏ, ଅର୍ଥାତ୍ ଶବ୍ଦ ଗତି କରିବା ବେଳେ ମାର୍ଗରେ ବାଧା ପାଇ ଫେରି ଆସେ । ଏହାକୁ ପ୍ରତିଧ୍ୱନି ବୋଲାଯାଏ । ଯଦି ଏକପ୍ରକାର ବହୁ ଶବ୍ଦ ଲଗା ଲଗି ହୋଇ ବା ଧାରାକ୍ରମେ ଜନ୍ମେ ତେବେ ତହିଁରୁ ‘ସ୍ୱର’ ବା ‘ସୁର୍’ ଉତ୍ପନ୍ନ ହୁଏ । ଶବ୍ଦର ୨ଟି ମୁଖ୍ୟ-ଭେଦ ଅଛି । ବର୍ଣ୍ଣାତ୍ମକ ଓ ଧ୍ୱନ୍ୟାତ୍ମକ । କଣ୍ଠ ଓ ତାଲୁ ଆଦିର ସହାୟତାରେ ଉତ୍ପନ୍ନ ଶବ୍ଦ ଧ୍ୱନି; ଏହା ବ୍ୟକ୍ତ ଓ ଅବ୍ୟକ୍ତ । ଯାହା ଶୁଣିବାକୁ ସ୍ପଷ୍ଟ ଓ ଅର୍ଥ ଯୁକ୍ତ ତାହା ବ୍ୟକ୍ତ ଓ ଯାହା ଅସ୍ପଷ୍ଟ ଓ ଅର୍ଥହୀନ ତାହା ଅବ୍ୟକ୍ତ । ବର୍ଣ୍ଣାତ୍ମକ ଛଡ଼ା ଅନ୍ୟ ପ୍ରକାର ଶବ୍ଦ ଧ୍ୱନ୍ୟାତ୍ମକ ଅଟେ । ମୀମାଂସାକାର ଶବ୍ଦକୁ ନିତ୍ୟ ଓ ସାଙ୍ଖ୍ୟକାର ଶବ୍ଦକୁ ଆକାଶର ଗୁଣ ବୋଲି କହିଅଛନ୍ତି —ହି. ଶ । ]

**ଶବ୍ଦକର**—ସଂ. ବିଣ. ପୁଂ (ଶବ୍ଦ+କୃ ଧାତୁ+କର୍ତ୍ତୃ. ଅ)—ଧ୍ୱନିକାରକ; ଯେ
Śabdakara ଶବ୍ଦ କରେ—Making a sound;
( ଶବ୍ଦକରୀ—ସ୍ତ୍ରୀ ) uttering a sound; sounding.
( ଶବ୍ଦକାରକ, ଶବ୍ଦକାରୀ—ଅନ୍ୟରୂପ )

**ଶବ୍ଦ କରିବା**-ଦେ. କ୍ରି—୧ । ( ଜୀବ ) ନିଜର କଣ୍ଠ ବା ଅବୟବାଦି
Śabda kariba ଦ୍ୱାରା ଧ୍ୱନି ଉତ୍ପାଦନ କରିବା—1. To
शब्दकरा produce a sound or noise. ୨ । ପାଟି
शब्द करना କରିବା—2. To utter a sound, to cry.
୩ । ( ଜଡ଼ପଦାର୍ଥ ) ଅନ୍ୟ ବସ୍ତୁର ପ୍ରତିଘାତ ବା ଘର୍ଷଣ ଦ୍ୱାରା ଶବ୍ଦାୟମାନ ହେବା—3. To resound; to produce a sound due to friction.

**ଶବ୍ଦ କାଣ୍ଡ**—ସ. ବି—୧ । କୋଳାହଳ, ଗୋଳମାଳ—1. Noise;
Śabda kāṇḍa hue and cry. ୨ । ଶବ୍ଦାଧ୍ୟାୟ, ବ୍ୟାକରଣାଦି ଗ୍ରନ୍ଥର ଯେଉଁ ଅଂଶରେ ଶବ୍ଦମାନଙ୍କ ବିଷୟ ଆଲୋଚିତ ହୋଇଥାଏ—2. Chapter or part of a grammar dealing with words.

**ଶବ୍ଦ କୋଷ**—ସଂ. ବି—୧ । ଯେଉଁ ପୁସ୍ତକରେ ଧାରାବାହିକରୂପେ
Śabda kosha ଭାଷାର ଶବ୍ଦମାନ ସଂଗୃହୀତ ହୋଇଥାଏ—1. A compilation of words; lexicon; word book; vocabulary. ୨ । ଯେଉଁ ପୁସ୍ତକରେ ଭାଷାର ଶବ୍ଦ ଓ ଶବ୍ଦାର୍ଥମାନ ଲିପିବଦ୍ଧ ହୋଇଥାଏ; ଅଭିଧାନ; ଡିକ୍ସିନାରୀ; ଶବ୍ଦାର୍ଥ ପ୍ରକାଶକ ଗ୍ରନ୍ଥ—2. A dictionary.

**ଶବ୍ଦକୋଷକାର**—ସଂ.ବି.ପୁଂ-ଅଭିଧାନର ସଂଗ୍ରାହକ; ଅଭିଧାନ ଗ୍ରନ୍ଥକାର—
Śabdakoshakāra A lexicographer; compiler of a dictionary,

**ଶବ୍ଦଗ୍ରହ**—ସଂ. ବି (ଶବ୍ଦ+ଗ୍ରହ ଧାତୁ=ଗ୍ରହଣ କରିବା+କର୍ତ୍ତୃ. ଅ;
Śabdagraha ଯାହାଦ୍ୱାରା ଶବ୍ଦମାନ ଗୃହୀତ ବା ଅନୁଭୂତ ହୁଏ)—୧ । ଶ୍ରବଣେନ୍ଦ୍ରିୟ; ଶ୍ରୁତି; କର୍ଣ୍ଣ—1. The ear; sense of hearing. ୨ । (+ଭାବ. ଅ) ଶବ୍ଦ ବୋଧ; ଶବ୍ଦର ତାତ୍ପର୍ଯ୍ୟ ଜ୍ଞାନ—2. Comprehending the sense of a word; the understanding of a word. ୩ । ଏକପ୍ରକାର କାଳ୍ପନିକ ବାଣ (ହି. ଶ)—3. A kind of imaginary arrow. ସ. ବିଣ—ଶବ୍ଦକୁ ଗ୍ରହଣକାରୀ—Receiving a sound.

ଶବ୍ଦଚାତୁରୀ(ର୍ଯ୍ୟ)—ସଂ. ବି (୭ମୀ ତତ୍)—୧ । ଶବ୍ଦମାନଙ୍କ ପ୍ରୟୋଗରେ
Śabdachāturī(rjya) ଚତୁରତା—1. Dexterity in the use of expressions. ୨। ବାଗ୍ମିତା (ହି.ଶ)—2. Oratory.

ଶବ୍ଦଚାଳି—ସଂ. ବି—ଏକପ୍ରକାର ନୃତ୍ୟ (ହି. ଶ)
Śabdachāḷi A kind of dance.

ଶବ୍ଦ ଚିତ୍ର—ସଂ. ବି—ଅନୁପ୍ରାସ ନାମକ ଅଳଙ୍କାର (ହି. ଶ)
Śabda chitra Alliteration.

ଶବ୍ଦ ଚୋ(ଚୌ)ର—ସଂ. ବି—ଯେଉଁ ଗ୍ରନ୍ଥକାର ଅନ୍ୟ ଗ୍ରନ୍ଥକାରଙ୍କ
Śabda cho(chau)ra ରଚିତ ବା ବ୍ୟବହୃତ ଶବ୍ଦମାନ ଚୋରି କରେ, ଅର୍ଥାତ୍ ଅନ୍ୟବ୍ୟକ୍ତିଙ୍କ ରଚିତ ଶବ୍ଦମାନଙ୍କୁ ଆପଣାର ରଚନା ବୋଲି ପ୍ରକାଶ କରେ; ଗ୍ରନ୍ଥତସ୍କର—A person who passes off another author's words as his own; a plagiarist, a literary thief (Apte).

ଶବ୍ଦ ଚୋରି—ଦେ. ବି (ସଂ. ଶବ୍ଦଚୌର୍ଯ୍ୟ)—ଅନ୍ୟଗ୍ରନ୍ଥକାରଙ୍କ ରଚିତ ବା
Śabda chori ବ୍ୟବହୃତ ଶବ୍ଦକୁ ଆପଣାର ବୋଲି କହି ଆପଣା
शब्दचुरि ଲେଖାରେ ବ୍ୟବହାର କରିବା—Act of plagiaris-
शब्दचोरी ing; plagiarism.

ଶବ୍ଦ ଚୌର୍ଯ୍ୟ—ସଂ. ବି—ଅପର ଗ୍ରନ୍ଥକାର ବା ଲେଖକଙ୍କ ରଚିତ ବା
Śabda chaurjya ବ୍ୟବହୃତ ଶବ୍ଦକୁ ଆପଣାର ବୋଲି ପ୍ରକାଶ କରିବା ପାଇଁ ଆପଣା ଲେଖାରେ ଉକ୍ତ ଶବ୍ଦର ବ୍ୟବହାର—Plagiarism; act of plagiarising.

ଶବ୍ଦଜ୍ଞ—ସଂ. ବିଣ; ପୁଂ (ଶବ୍ଦ+ଜ୍ଞା. ଧାତୁ+କର୍ତ୍ତୃ. ଅ)—ଯେ ଶବ୍ଦ-
Śabdajña ମାନଙ୍କ ବିଷୟରେ ଉତ୍ତମରୂପେ ଅବଗତ—
( ଶବ୍ଦଜ୍ଞା—ସ୍ତ୍ରୀ ) Well acquainted with sounds or words.

ଶବ୍ଦ ତରଙ୍ଗ—ସଂ. ବି (ଶବ୍ଦ+ତରଙ୍ଗ; ୬ଷ୍ଠୀ ତତ୍)—୧ । ଶବ୍ଦର ବା
Śabda taraṅga ଧ୍ୱନିର ଢେଉ; (ଯାହାର ବାୟୁଦ୍ୱାରା ସ୍ଥାନାନ୍ତରକୁ ଗତି ହୁଏ)—1. Sound-waves. ୨ । ଉପର୍ଯ୍ୟୁପରି ହୋଉଥିବା ଶବ୍ଦ; ଅନର୍ଗଳ ଧ୍ୱନି—2. Repeatedly hissing sound; sounds succeeding one another like a wave; an uninterrupted sound; a succession of tones or sounds or noise.

ଶବ୍ଦନ—ସଂ. ବି (ଶବ୍ଦ୍ ଧାତୁ+ଭାବ. ଅନ)—୧ । ଶବ୍ଦ; ଧ୍ୱନି—
Śabdana 1. Sound, noise; report. ୨ । ଶବ୍ଦ କରିବା—2. Making a sound. ବିଣ—ଶବ୍ଦାୟମାନ—Resounding.

ଶବ୍ଦ ନୃତ୍ୟ—ସଂ. ବି—ଏକପ୍ରକାର ନୃତ୍ୟ (ହି. ଶ)—
Śabda nṛutya A kind of dance.

ଶବ୍ଦ ପତି—ସଂ. ବି—ନାମ ମାତ୍ର ନେତା; ଯେଉଁ ନେତାଙ୍କର କେହି
Śabda pati ଅନୁଗାମୀ ବ୍ୟକ୍ତି ନ ଥାନ୍ତି (ହି. ଶ)—A leader in name only (Apte).

ଶବ୍ଦପ୍ରବୃତ୍ତି—ସଂ. ବି—୧ । ଶବ୍ଦର ଉତ୍ପତ୍ତି—The origin of
Śabda prabṛutti words. ୨ । ବୈଖରୀ, ମଧ୍ୟମା, ପଶ୍ୟନ୍ତୀ ଏବଂ ସୂକ୍ଷ୍ମା ବା ପରା, ଏହି ଚତୁର୍ବିଧ ବାଙ୍ନିଷ୍ପତ୍ତି—2. Four modes of expressing words; oral expression.

ଶବ୍ଦ ପ୍ରମାଣ—ସଂ. ବି (ବ୍ୟବହାରଶାସ୍ତ୍ର)—କୌଣସି ବ୍ୟକ୍ତିର ଶବ୍ଦ ବା କଥନ
Śabda pramāṇa ଉପରେ ପ୍ରତିଷ୍ଠିତ ପ୍ରମାଣ—(Law) Evidence based on the words of a person; oral evidence.

ଶବ୍ଦପ୍ରାଶ—ସଂ. ବି—ଶବ୍ଦର ଅର୍ଥର ଅନୁସନ୍ଧାନ; ଶବ୍ଦାର୍ଥର ଜିଜ୍ଞାସା—
Śabdaprāśa Enquiry about the meaning of a word.

ଶବ୍ଦବହ—ସଂ. ବିଣ ( ଶବ୍ଦ+ବହ୍ ଧାତୁ+କର୍ତ୍ତୃ ଅ )—ଶବ୍ଦକୁ ଯେ
Śabda baha ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ବହନ କରେ—Carrying a wave of sound from one place to another. ବି—୧ । ଆକାଶ—1. The sky. ୨ । ବାୟୁ—2. The air.

ଶବ୍ଦ ବହୁଳ—ସଂ. ବିଣ—୧ । ଯହିଁରେ ଅନେକ ଶବ୍ଦ ଥାଏ—
Śabda bahuḷa 1. Wordy; abounding in words; full of verbiage. ୨ । ବହୁ ଧ୍ୱନିଯୁକ୍ତ—2. Full of many sounds.

ଶବ୍ଦ ବାରିବା—ଦେ. କ୍ରି—ଅନ୍ୟ ବ୍ୟକ୍ତିର ବା ବସ୍ତୁର ଉତ୍ପନ୍ନ ଶବ୍ଦକୁ
Śabda bāribā ଠଉର କରିବା—To distin-
शब्दसुना शब्दपहचानना guish a sound to locate the source and nature of a sound proceeding from a person or object.

ଶବ୍ଦ ବିଜ୍ଞାନ—ସଂ. ବି—୧ । ଶବ୍ଦଶାସ୍ତ୍ର; ଶବ୍ଦ ସମ୍ବନ୍ଧେ ଧାରାବାହିକ ଜ୍ଞାନ—
Śabda bijñāna 1 The science of words;
ଶବ୍ଦବିଦ୍ୟା } —ଅନ୍ୟରୂପ phonology. ୨ । ବ୍ୟାକରଣ—
ଶବ୍ଦଶାସ୍ତ୍ର 2 Grammar.

ଶବ୍ଦ ବିନ୍ୟାସ—ସଂ. ବି—ଅର୍ଥବୋଧକ ଶବ୍ଦମାନଙ୍କୁ ଯଥାସ୍ଥାନରେ
Śabda binyāsa ବସାଇବା; ଶବ୍ଦମାନଙ୍କର ଶୃଙ୍ଖଳାପୂର୍ବକ ସ୍ଥାପନ—Arrangement of words in a sentence, composition.

ଶବ୍ଦ ବିରୋଧ—ସଂ. ବି—ଯେଉଁ ବିରୋଧ ବାସ୍ତବ ବା ଭାବଗତ ନୁହେଁ;
Śabda birodha କିନ୍ତୁ ଶବ୍ଦରୁ ଜଣାପଡ଼େ (ହି. ଶ)—Opposition not actual but due to words.

ଶବ୍ଦ ବେଦୀ—ଦେ. ବିଣ ପୁଂ—ଯେ ସମସ୍ତପ୍ରକାର ଶବ୍ଦ ଜାଣେ—Knowing
Śabda bedī all kinds of sounds. ( ଉପଗନ୍ଧବହ ଯେ ଚୁମ୍ବଇଗଜ, ତହୁଁ ସର୍ପାଦି ଶବ୍ଦବେଦୀ—ଜଗନ୍ନାଥ. ଭାଗବତ ।)

ଶବ୍ଦ ବେଧୀ—ସଂ. ବିଣ. ପୁଂ—(ଶବ୍ଦ+ବ୍ୟଧ୍ ଧାତୁ+କର୍ତ୍ତୃ. ଇନ୍; Śabda bedhī ୧ମା. ୧ବ )—ଶବ୍ଦଭେଦୀ (ଦେଖ)—(ଶବ୍ଦବେଧିନୀ—ସ୍ତ୍ରୀ) Śabdabhedī (See). ବି.—୧ । ରାଜା ଦଶରଥ—1. King Daśaraha ୨ । ଅର୍ଜ୍ଜୁନ—2. Arjuna. ୩ । ଶବ୍ଦଭେଦୀ ବାଣ—3. An arrow which hits a target by following the sound. ୪ । ଯେଉଁ ବ୍ୟକ୍ତି ବା ବାଣର ଶବ୍ଦରେ ଶତ୍ରୁର ଭୀତି ଜନ୍ମେ—4. An arrow or person who produces fear in the mind of the enemy by its or his sound.

ଶବ୍ଦ ବୋଦ୍ଧା—ସଂ. ବିଣ. ଓ ବି. ପୁଂ (ଶବ୍ଦ+ବୁଧ୍ଧାତୁ+କର୍ତ୍ତୃ. ତୃ= Śabda boddhā ଶବ୍ଦବୋଦ୍ଧୃ; ୧ମା. ୧ବ. )—ଶବ୍ଦଜ୍ଞ—(ଶବ୍ଦବୋଦ୍ଧ୍ରୀ—ସ୍ତ୍ରୀ) Acquainted with sounds or words; master of words.

ଶବ୍ଦ ବୋଧ—ସ. ବି.—(ଶବ୍ଦ+ବୋଧ; ୬ଷ୍ଠୀ ତତ୍)—୧ । ଶବ୍ଦର ବା Śabda bodha ଧ୍ୱନିର ଜ୍ଞାନ—1. Knowledge of words or sounds. ୨ । ଶବ୍ଦର ଅର୍ଥ ବୁଝିବା—2. Understanding the meaning of words. ୩ । (ସ୍ମୃତିଶାସ୍ତ୍ର) ସାକ୍ଷୀ ଦ୍ୱାରା ପ୍ରାପ୍ତଜ୍ଞାନ; ଯେଉଁ ଜ୍ଞାନ ସାକ୍ଷୀର ପ୍ରମାଣରୁ ମିଳେ (ବ୍ୟ. ଶା)—3. (Law) Knowledge derived from oral evidence.

ଶବ୍ଦ ବ୍ରହ୍ମ—ସ. ବି.—(ଶବ୍ଦରୂପ ବ୍ରହ୍ମ; ରୂପକକର୍ମଧାରୟ)—୧ । ଶବ୍ଦାତ୍ମକ Śabda brahma ବ୍ରହ୍ମ ଓ ଚୈତନ୍ୟ—1. The Soul of the universe from which the sounds originate or emanate. [ଦ୍ର—ବେଦାନ୍ତ ଶାସ୍ତ୍ରରେ ନାଦବିନ୍ଦୁ ସମ୍ବଳିତ ଓଁକାର ଧ୍ୱନିକୁ ଶବ୍ଦ ବ୍ରହ୍ମ ବୋଲି ବର୍ଣ୍ଣିତ ହୋଇଅଛି; ମୈତ୍ରେୟୋପନିଷଦରେ ଶବ୍ଦ ବ୍ରହ୍ମ ଓ ପରବ୍ରହ୍ମ ଭେଦରେ ବ୍ରହ୍ମର ଦୁଇ ପ୍ରକାର ଭେଦ କଳ୍ପିତ ହୋଇଅଛି । ୨ । ଶ୍ରୁତି; ବେଦ—2. The Bedas [ଦ୍ର—ଏହା ଅପୌରୁଷେୟ ବା ଈଶ୍ୱରଙ୍କଠାରୁ ଆଗତ ବୋଲି ହିନ୍ଦୁମାନେ ବିଶ୍ୱାସ କରନ୍ତି ।]

ଶବ୍ଦ ଭେଦୀ—ସ.ବିଣ. ପୁଂ (ଶବ୍ଦ+ଭିଦ୍ ଧାତୁ+କର୍ତ୍ତୃ.ଇନ୍ ୧ମା.୧ବ)—Śabda bhedī ଲକ୍ଷ୍ୟ ବସ୍ତୁର ଶବ୍ଦକୁ ବାରି ଯେ ଲକ୍ଷ୍ୟକୁ ବିଦ୍ଧ କରି ପାରନ୍ତି—Able to hit at a target by following the sound. ବି.—୧ । ରାଜା ଦଶରଥ—1. King Daśaratha. ୨ । ଅର୍ଜ୍ଜୁନ—2. Arjuna. ୩। ଶବ୍ଦକୁ ବାରି ଲକ୍ଷ୍ୟଭେଦକାରୀ ବାଣ—3. A kind of arrow hitting at an invisible target by the sound only. ୪ ।
ଶବ୍ଦଭେଦନୀ—ସ୍ତ୍ରୀ } ପାୟୁ; ଗୁହ୍ୟଦ୍ୱାର—4. The anus.
ଶବ୍ଦଭେଦନ—ବି }

ଶବ୍ଦଭେଦୀ ବାଣ—ସ. ବି—ଶବ୍ଦକାରକ ଅଦୃଶ୍ୟ ବ୍ୟକ୍ତି ବା ବସ୍ତୁକୁ ବିଦ୍ଧ Śabdabhedī bāṇa କରିବାକୁ ସମର୍ଥ ବାଣ—An arrow which strikes at an invisible target by following the sound which emanates from the target [ଦ୍ର—ଅର୍ଜ୍ଜୁନ ଓ ଦଶରଥ ଶବ୍ଦଭେଦୀ ବାଣ ମାରିବା ଶିଖି ଥିଲେ । ଥରେ ଦଶରଥ ମୃଗୟାକୁ ଯାଇ ଅରଣ୍ୟରେ ଜଣେ ଅନ୍ଧ ଋଷିଙ୍କ ପୁତ୍ରକୁ ... ଶବ୍ଦ ଭେଦୀ ବାଣ ପ୍ରୟୋଗ କଲେ । ... ଦଶରଥ ... ଏହା ଦେଖି ସେ ... ସମସ୍ତ କଥା ଜଣାଇଲେ । ... ମୃତ୍ୟୁମୁଖରେ ପଡ଼ିଲେ । ... ପୁତ୍ରଶୋକରେ ମୃତ୍ୟୁ ଘଟିବ ।' ... ପ୍ରାଣତ୍ୟାଗ କଲେ । ତାଙ୍କ ... ଦଶରଥଙ୍କ ଜୀବନରେ ରାମଚନ୍ଦ୍ରଙ୍କ ବନବାସଜନିତ ଦୁଃଖ ଘଟିଲା ଏବଂ ପୁତ୍ରଶୋକରେ ସେ ପ୍ରାଣତ୍ୟାଗ କଲେ ।]

ଶବ୍ଦମୟ—ସ.ବିଣ. ୧ । (ଶବ୍ଦ+ପ୍ରଚୁରାର୍ଥେ ମୟ)—ଶବ୍ଦପୂର୍ଣ୍ଣ—Śabda maya 1. Full of sounds ୨ । ଧ୍ୱନି ବ୍ୟାପ୍ତ—(ଶବ୍ଦମୟୀ—ସ୍ତ୍ରୀ) 2 Diffused with sound. ୩ । ଶବ୍ଦାୟମାନ—3. Resounding.

ଶବ୍ଦମହେଶ୍ୱର—ସ. ବି.—ମହାଦେବ—A name of Śiva. Śabda maheśwara [ଦ୍ର—କଥିତ ଅଛି ଯେ ପାଣିନିଙ୍କ ବ୍ୟାକରଣ ରଚନା କରିବାକୁ ଶିବ ଆଦେଶ କରିଥିଲେ—ସ୍ତ୍ର ଶ.; ସଙ୍କାନ୍ତ କୌମୁଦୀରେ ଲେଖାଅଛି ଯେ "ନୃତ୍ୟାବସାନେ ନଟରାଜରାଜୋ ନନାଦ ଢକ୍କାଂ ନବ ପଞ୍ଚ ବାରଂ; ଉଦ୍ଧର୍ତ୍ତୁକାମଃ ସନକାଦି ସିଦ୍ଧା-ନେତଦ୍ ବିମର୍ଷେ ଶିବ ସୂତ୍ରଜାଲମ୍—ଅର୍ଥାତ୍ ତାଣ୍ଡବ ନୃତ୍ୟ ଶେଷରେ ସନକାଦି ସିଦ୍ଧ ପୁରୁଷମାନଙ୍କୁ ଉଦ୍ଧାର କରିବା ପାଇଁ ଶିବ ୯+୫=୧୪ ଥର ଡମରୁ ବଜାଇଲେ । ପାଣିନି ବ୍ୟାକରଣର ପ୍ରଥମୋକ୍ତ ୧୪ ସୂତ୍ରର ସଂଖ୍ୟାରୁ ଜଣାଯାଏ ଯେ ଏହା ଶିବସୂତ୍ର ସମ୍ଭୂତ ଅଟେ ।]

ଶବ୍ଦ ମାରିବା(ଶୁଣିବା)—ଦେ. କ୍ରି.—କୌଣସି ବ୍ୟକ୍ତିର ଡାକ ଶୁଣି ଉତ୍ତର Śabda māriba(suṇiba) ଦେବା—ଡାକ ଶୁନା ଶବଦ ସୁନନା To respond to a sound or call. [ଶବଦ ମାରିବା—ଅନ୍ୟରୂପ]
[ଦ୍ର—ମୃତ ବା ମୂର୍ଚ୍ଛିତ ବ୍ୟକ୍ତି ଶବ୍ଦ ମାରେ ନାହିଁ । ଅର୍ଥାତ୍ କୌଣସି ଶବ୍ଦ ବା ଡାକ ଦେଲେ ସେ ତାହା ବାରି ପାରେ ନାହିଁ, କିମ୍ବା ତହିଁର ଉତ୍ତର ଦିଏ ନାହିଁ ।]

ଶବ୍ଦ ମାଳ—ସଂ. ବି—ପୋଲ ବାଉଁଶ (ହି. ଶ.)—
Śabda māla Hollow bamboo.

ଶବ୍ଦ ଯୋନି —ସଂ. ବି—(ଶବ୍ଦ+ଯୋନି; ୬ଷ୍ଠୀ ତତ୍)—୧ । ଶବ୍ଦର
Śabda joni ଉତ୍ପତ୍ତି ସ୍ଥାନ—1 The origin of a sound·
୨ । (ବ୍ୟାକରଣ) ଶବ୍ଦର ମୂଳ ବା ପ୍ରକୃତି; ଧାତୁ—
2. The root of a word.

ଶବ୍ଦ ରୂପ —ସଂ. ବି.—(ଶବ୍ଦ+ରୂପ; ୬ଷ୍ଠୀ ତତ୍)—(ବ୍ୟାକରଣ) ଭିନ୍ନ
Śabda rūpa ଭିନ୍ନ ବିଭକ୍ତି, ବଚନ, ଲିଙ୍ଗ ଓ କାରକରେ ଶବ୍ଦର
ଭିନ୍ନ ଭିନ୍ନ ଆକୃତି—( grammar) Inflection of a
word; different forms assumed by a
word in different numbers, genders,
persons and cases.

ଶବ୍ଦ ଲହରୀ —ସଂ. ବି (୬ଷ୍ଠୀ ତତ୍)—ଶବ୍ଦ ତରଙ୍ଗ (ଦେଖ)
Śabda laharī Śabda taranga (See)

ଶବ୍ଦ ଶକ୍ତି—ସଂ. ବି(୬ଷ୍ଠୀ ତତ୍ —୧ । ଶବ୍ଦର କ୍ଷମତା ବା ଅର୍ଥ—
Śabda śakti 1. The force or signification of
a word. ୨ । ଶବ୍ଦର ଅଭିଧା, ଲକ୍ଷଣା, ବ୍ୟଞ୍ଜନାଆଦି
ଅର୍ଥବୋଧକ ବୃତ୍ତିତ୍ରୟ—2 The power of words
to convey different literal, inferred and
allegorical meanings.
[ ଦ—ଶବ୍ଦର ଯେଉଁ ଶକ୍ତି ଦ୍ୱାରା କୌଣସି ବିଶେଷ ଭାବ
ପ୍ରଦର୍ଶିତ ହୁଏ ତାକୁ ଶବ୍ଦଶକ୍ତି ବୋଲିଯାଏ । ଯଦି ଶବ୍ଦ
କୌଣସି ବାକ୍ୟର ବା ବାକ୍ୟାଂଶର ଅଙ୍ଗ ହୋଇଥାଏ, ତେବେ
ତହିଁର ଅର୍ଥ ସାଧାରଣ ଗୃହୀତ ଅର୍ଥ ବା ବାକ୍ୟର ତାତ୍ପର୍ଯ୍ୟ
ଅନୁସାରେ ସାଧାରଣ ଅର୍ଥରୁ କିଛି ଭିନ୍ନ ହୁଏ ।
ଯେଉଁ ଶକ୍ତି ଅନୁସାରେ ଉକ୍ତ ସାଧାରଣ ଅର୍ଥ ବା ସାଧାରଣ
ଅର୍ଥରୁ ଭିନ୍ନ ଅର୍ଥ ପ୍ରକଟିତ ହୁଏ ତାକୁ ଶବ୍ଦଶକ୍ତି ବୋଲିଯାଏ ।
ଶବ୍ଦଶକ୍ତି ୩ ପ୍ରକାର—ଅଭିଧା, ଲକ୍ଷଣା ଓ ବ୍ୟଞ୍ଜନା । ଏ
ତିନି ଶକ୍ତିରୁ ପ୍ରକଟିତ ଅର୍ଥ ଯଥାକ୍ରମେ ବାଚ୍ୟ, ଲକ୍ଷ୍ୟ ଓ
ବ୍ୟଙ୍ଗ୍ୟ ଏବଂ ଏହି ଭିନ୍ନ ଭିନ୍ନ ଅର୍ଥକୁ ପ୍ରକଟିତ କରିବା
ଶବ୍ଦମାନଙ୍କୁ ଯଥାକ୍ରମେ ବାଚକ, ଲକ୍ଷକ ଓ ବ୍ୟଞ୍ଜକ ବୋଲି-
ଯାଏ—ହି. ଶ । ]

ଶବ୍ଦ ଶାସ୍ତ୍ର—ସଂ. ବି—୧ । ବ୍ୟାକରଣ ଶାସ୍ତ୍ର—1. Grammar; the
Śabda śāstra science of words. ୨ । ଧ୍ୱନି ଶାସ୍ତ୍ର—
2. Phonetics; the science of sound in
uttered words.

ଶବ୍ଦ ଶୂନ୍ୟ—ସଂ. ବି (ଶବ୍ଦଦ୍ୱାରା ଶୂନ୍ୟ; ୩ୟା ତତ୍)—ନିଃଶବ୍ଦ; ନୀରବ—
Śabda śūnya Soundless; silent
( ଶବ୍ଦ ଶୂନ୍ୟା—ସ୍ତ୍ରୀ )

ଶବ୍ଦ ଶ୍ଳେଷ—ସଂ. ବି—ଯେଉଁ ଶବ୍ଦ ଦୁଇ ବା ତତୋଽଧିକ ଅର୍ଥରେ ପ୍ରଯୁକ୍ତ
Śabda ślesha ହୁଏ ( ହି. ଶ )—A word which is
employed in two or more meanings.

ଶବ୍ଦ ସଂଗ୍ରହ—ସଂ. ବି (୬ଷ୍ଠୀ ତତ୍)—୧ । ଗୁଚ୍ଛିବା ଶବ୍ଦର ଏକତ୍ର ଲିଖନ—
Śabda samgraha 1. Collection of words.
୨ । ଅଭିଧାନ; ଶବ୍ଦକୋଷ—2. Dictionary;
lexicon; vocabulary.

ଶବ୍ଦ ସମ୍ଭବ—ସଂ. ବି ( ବହୁବ୍ରୀହି; ଶବ୍ଦର ସମ୍ଭବ ହୁଏ ଯହିଁରୁ )—ବାୟୁ
Śabda sambhaba ( ହି. ଶ )—Air.

ଶବ୍ଦ ସାଗର—ସଂ. ବି ( ଶବ୍ଦ+ସାଗର; ରୂପକ କର୍ମଧା )—ସମୁଦ୍ରବତ୍
Śabda sāgara ଅପରିମେୟ ବା ଅସୀମ ଶବ୍ଦସମୂହ—Words
compared to the ocean. ଦେ. ବି—ଶବ୍ଦକୋଷ
—Dictionary.

ଶବ୍ଦ ସାଧନ—ସଂ. ବି—ବ୍ୟାକରଣର ଯେଉଁ ଅଙ୍ଗରେ ଶବ୍ଦମାନଙ୍କର
Śabda sādhana ବ୍ୟୁତ୍ପତ୍ତି, ଭେଦ ଓ ରୂପାନ୍ତର ଆଦି ଆଲୋ-
ଚିତ ହୋଇଥାଏ—( grammar ) Etymology·
[ ଦ—ଶବ୍ଦମାନଙ୍କ ସଂଜ୍ଞା, କ୍ରିୟା, ବିଶେଷଣ, କ୍ରିୟା-
ବିଶେଷଣ, ସର୍ବନାମ ଆଦି ବ୍ୟାକରଣର ଏହି ଅଙ୍ଗର
ଅନ୍ତର୍ଗତ—ହି. ଶ । ]

ଶବ୍ଦ ସୌନ୍ଦର୍ଯ୍ୟ—ସଂ. ବି ( ୬ଷ୍ଠୀ ତତ୍ )—ଶବ୍ଦମାନଙ୍କ ଉଚ୍ଚାରଣର
Śabda saundarjya ସୁଗମତା ( ହି. ଶ )—Facility of
pronouncing words.

ଶବ୍ଦ ସୌଷ୍ଠବ—ସଂ. ବି (୬ଷ୍ଠୀତତ୍)—କୌଣସି ଲେଖାରେ ବା ଶୈଳୀରେ
Śabda saushthaba ପ୍ରଯୁକ୍ତ ଶବ୍ଦମାନଙ୍କ କୋମଳତା ବା
ସୁନ୍ଦରତା ( ହି. ଶ )—Fineness or softness of
words in a writing or style.

ଶବ୍ଦ ହୀନ—ସଂ. ବିଣ ( ଶବ୍ଦ+ହୀନ; ୩ୟା ତତ୍ )—୧ । ନୀରବ;
Śabda hīna ନିଃଶବ୍ଦ—1. Silent. ୨ । ଶବ୍ଦ ଶୂନ୍ୟ—
2. Soundless. ସଂ. ବି—ଶବ୍ଦମାନଙ୍କର ଏପରି
ପ୍ରୟୋଗ, ଯାହା ପୂର୍ବାଚାର୍ଯ୍ୟମାନେ ପ୍ରୟୋଗ କରି
ନାହାନ୍ତି ( ହି. ଶ )—Application of a word
which has not been done by classical
writers.

ଶବ୍ଦ ହେତୁକ—ସଂ. ବିଣ ( ଶବ୍ଦ ଅଟେ ହେତୁ ଯାହାର; ବହୁବ୍ରୀହି; ଶବ୍ଦ
Śabda hetuka +ହେତୁ+କ )—ଶବ୍ଦରୁ ଜାତ—
Caused by or originating from sound.

ଶବ୍ଦାକର—ସଂ. ବି ( ୬ଷ୍ଠୀ ତତ୍; ଶବ୍ଦ+ଆକର )—୧ । (ବ୍ୟାକରଣ)
Śabdākara ଶବ୍ଦ ଯୋନି; ଧାତୁ—1. ( grammar.) A
root or radix of a word. ୨ । ଶବ୍ଦକୋଷ—
2. Dictionary.

ଶବ୍ଦାକ୍ଷର—ସଂ ବି—ଧ୍ୱନିପୂର୍ବକ ଉଚ୍ଚାରିତ ଓଁ ଶବ୍ଦ ( ହି. ଶ )—
Śabdākshara The word 'Oṁ' uttered with a
sound.

ଶବ୍ଦାଖେୟ ସଂ. ବି—ଉଚ୍ଚୈଃସ୍ୱରରେ ବା ଜୋର୍ ସହିତ କଥିତ ଶବ୍ଦ
Śabdākheya ( ହି. ଶ )—A word uttered loudly
or with force.

ଶବ୍ଦାଡ଼ମ୍ବର —ସଂ.ବି—୧। ଅଡମ୍ବର ଯୁକ୍ତ ଶବ୍ଦ—1. High-sound-
Śabdārdambara ing words. ୨। ବାଗାଡ଼ମ୍ବର—
2. Grandiloquence.

ଶବ୍ଦାଢ୍ୟ—ସଂ. ବି—କଂସା ନାମକ ଧାତୁ ( ହି. ଶ )—
Śabdādhya Bell metal.

ଶବ୍ଦାତିଗ - ସଂ. ବିଣ ( ଶବ୍ଦ+ଅତି+ଗମ୍ ଧାତୁ+କର୍ତ୍ତୃ. ଅ )—
Śabdātiga ୧। ଯାହା ଶବ୍ଦର ଗତିଠାରୁ ଚଞ୍ଚଳତର—
1. Swifter than the velocity of words.
୨। ଶବ୍ଦାତୀତ—2. Beyond expression;inexpressible. ବି—ବିଷ୍ଣୁଙ୍କର ନାମାନ୍ତର—An epithet of Bishnu.

ଶବ୍ଦାତୀତ—ସଂ. ବିଣ ( ଶବ୍ଦ+ଅତୀତ; ୬ଷ୍ଠୀ ତତ୍ )—୧। ଶବ୍ଦଦ୍ୱାରା
Śabdātīta ଅପ୍ରକାଶ୍ୟ—1. Inexpressible by words.
୨। ବାକ୍ୟାତୀତ—2 Beyond the power of words. ବି—ଭଗବାନଙ୍କର ନାମାନ୍ତର—An epithet of God.

ଶବ୍ଦାଧିଷ୍ଠାନ—ସଂ. ବି ( ଶବ୍ଦ+ଅଧିଷ୍ଠାନ; ୬ଷ୍ଠୀ ତତ୍ )—ଶ୍ରବଣେ-
Śabdādhishthāna ନ୍ଦ୍ରିୟ; କର୍ଣ୍ଣ—The ear; the organ of hearing.

ଶବ୍ଦାଧ୍ୟାହାର—ସଂ. ବି—ଅସଂପୂର୍ଣ୍ଣ ବାକ୍ୟକୁ ପୂର୍ଣ୍ଣ କରିବା ପାଇଁ ତହିଁରେ
Śabdādhyāhāra ଅନ୍ୟ ଶବ୍ଦର ଯୋଜନ ( ହି. ଶ )—
Adding some word or words to complete an incomplete sentence.

ଶବ୍ଦାନୁଶାସନ—ସଂ. ବି—୧। ବ୍ୟାକରଣ ଶାସ୍ତ୍ର—1. Grammar.
Śabdānuśāsana ୨। ଶବ୍ଦ ସମ୍ବନ୍ଧରେ ନିୟମ—2. Rules about words.

ଶବ୍ଦାନୁସନ୍ଧାନ—ସଂ. ବି—ଶବ୍ଦର ଉତ୍ପତ୍ତି ବିଷୟରେ ଅନୁସନ୍ଧାନ—
Śabdānusandhāna Enquiry or investigation about the cause or root of words or sounds

ଶବ୍ଦାମ୍ବୁଧି—ସଂ. ବି ( ଶବ୍ଦ+ଅମ୍ବୁଧି; ରୂପକ )—ଶବ୍ଦସାଗର—
Śabdāmbudhi The ocean of words.

ଶବ୍ଦାୟମାନ—ସଂ. ବିଣ—(ଶବ୍ଦ ଧାତୁ+ଯ (କ୍ୟଙ୍)=ଶବ୍ଦାୟ ନାମ
Śabdāyamāna ଧାତୁ+କର୍ତ୍ତୃ ଆନ)—୧। ଶବ୍ଦକାରୀ; ଯାହା ଶବ୍ଦ କରୁଅଛି—1. Making a sound. ୨। ଯହିଁରୁ ଶବ୍ଦ ବାହାରୁଛି—2. Ringing; resounding.

ଶବ୍ଦାର୍ଥ - ସଂ. ବି.—(ଶବ୍ଦ+ଅର୍ଥ, ଦ୍ୱନ୍ଦ୍ୱ) —୧। ଶବ୍ଦ ଓ ଅର୍ଥ—1. A
Śabdārtha word and its meaning. ୨। (୬ଷ୍ଠୀ ତତ୍)—ଶବ୍ଦର ଅର୍ଥ—2. Meaning of a word.
[ଦ୍ର—ଶବ୍ଦର ଅର୍ଥ ତିନି ପ୍ରକାର। ଯଥା—ବାଚ୍ୟାର୍ଥ, ଲକ୍ଷ୍ୟାର୍ଥ ଓ ବ୍ୟଙ୍ଗ୍ୟାର୍ଥ। ଏହି ତିନି ତିନି ଅର୍ଥ ଯଥାକ୍ରମେ ଅଭିଧା, ଲକ୍ଷଣା ଓ ବ୍ୟଞ୍ଜନା ବୃତ୍ତିଦ୍ୱାରା ପ୍ରକାଶିତ ହୁଏ।] ୩। ଧ୍ୱନିର ଅର୍ଥ—3. Meaning of a sound; significance of a sound. ୪। ଧ୍ୱନିର ଉଦ୍ଦେଶ୍ୟ—4. The object of a sound.

ଶବ୍ଦାର୍ଥ କୋଷ—ସଂ. ବି. (ଦ୍ୱନ୍ଦ୍ୱ ଓ ୬ଷ୍ଠୀତତ୍)—ଅଭିଧାନ—
Śabdārtha kosha Dictionary.

ଶବ୍ଦାର୍ଥ ପ୍ରକାଶ—ସଂ. ବି.—ଶବ୍ଦର ଅର୍ଥକୁ ପ୍ରକାଶିକରଣ—The ex-
Śabdārtha prakāśa pressing or giving out of the meaning of words; explaining the meaning of words or sounds.

ଶବ୍ଦାର୍ଥ ପ୍ରକାଶକ—ସଂ. ବିଣ. ଓ ବି ପୁ.—୧ । ଯେଉଁ ବ୍ୟକ୍ତି ଶବ୍ଦର ଅର୍ଥ-
Śabdārtha prakāśaka ମାନଙ୍କ ବୁଝାଇ ଦିଏ—1. Explaining the meaning of words. ୨। ଅଭିଧାନକାର—2.Lexicographer ୩। କ୍ଲୀ-ଅଭିଧାନ (ଶବ୍ଦାର୍ଥପ୍ରକାଶିକା—ସ୍ତ୍ରୀ) 3. Dictionary.

ଶବ୍ଦାର୍ଥ ସଂଗ୍ରହ ସଂ. ବି ଶବ୍ଦର ଅର୍ଥମାନଙ୍କ ଏକତ୍ର କରିବା—
Śabdartha samgraha Collection or compilation of the meanings of words.

ଶବ୍ଦାଳଙ୍କାର—ସଂ.ବି —(ଶବ୍ଦ+ଅଳଙ୍କାର; ଶବ୍ଦସମ୍ପୃକ୍ତ ଅଳଙ୍କାର;ମ. ପ.
Śabdālankāra ଲୋ )—ଶବ୍ଦର ଶୋଭା ସମ୍ପାଦନକାରୀ କାବ୍ୟାଙ୍ଗ ବିଶେଷ—Figures of speech; art of composition.
[ଦ୍ର—ଅଳଙ୍କାର ଦ୍ୱାରା ଯେପରି ମନୁଷ୍ୟର ଶୋଭାବୃଦ୍ଧି ପାଏ, ସେହିପରି ଶବ୍ଦାଳଙ୍କାରଦ୍ୱାରା ଶବ୍ଦମାନଙ୍କର ଶୋଭା ବୃଦ୍ଧି ପାଏ। ଜେଲେ ଜେଲେ ଆମ ଦେଶରେ ସ୍ତ୍ରୀମାନଙ୍କର ଶୋଭାକୁ ଅତିଶୟ ରୂପେ ବୃଦ୍ଧି କରିବା ପାଇଁ ଯେପରି ନାକଦଣ୍ଡି, ନାକ ପୁଡ଼ା, କାନପତ୍ରା, କାନପାଶ, ବେକ, ହାତ, ବାହା, ଅଣ୍ଟା ଓ ଅଙ୍ଗୁଠି ଆଦିରେ ଉପର୍ଯ୍ୟୁପରି ଅଳଙ୍କାର ଲଦି ହୁଅଯାଏ, ଓଡ଼ିଶାର ପ୍ରାଚୀନ ସାହିତ୍ୟରେ ତଦାଗାନୁନ ରୁଚିକୁ ଅନୁସରଣ କରି ସେହିପରି ଶବ୍ଦ ଓ ଅର୍ଥର ଉତ୍କର୍ଷ ସାଧନ ପାଇଁ ଅଳଙ୍କାର ଲଦି ବହୁ ପ୍ରାଚୀନ ସାହିତ୍ୟର ଅପୂର୍ବ ଶୋଭା ସମ୍ପାଦନ କରିବାପାଇଁ ଚେଷ୍ଟା ହୋଇଥିବାର ଦୃଷ୍ଟାନ୍ତ ବିରଳ ନୁହେଁ। ବହୁ ଅନୁପ୍ରାସଯୁକ୍ତ ରଚନାରେ ଉତ୍କଳର ସର୍ବଶ୍ରେଷ୍ଠ ପ୍ରାଚୀନ କବି ଉପେନ୍ଦ୍ର ଭଞ୍ଜ ଯେଉଁ କୃତିତ୍ୱ ଦେଖାଇ ଅଛନ୍ତି, ତାହା ଅନ୍ୟାନ୍ୟ ସଭ୍ୟ ସାହିତ୍ୟରେ କ୍ୱଚିତ ଦେଖା ଯାଇଥାଏ। ସାହିତ୍ୟରେ ଅଳଙ୍କାର ଦୁଇ ପ୍ରକାର। ଯଥା—ଶବ୍ଦାଳଙ୍କାର ( art of composition ) ଓ ଅର୍ଥାଳଙ୍କାର (rhetorical figure of speech) ଶବ୍ଦାଳଙ୍କାର ଦ୍ୱାରା ଶବ୍ଦମାନଙ୍କର ଶୋଭା ବଢ଼େ ଓ ଅର୍ଥାଳଙ୍କାର ଦ୍ୱାରା ଅର୍ଥର ଶୋଭା ବଢ଼େ। ଶବ୍ଦାଳଙ୍କାରର ଉଦାହରଣ :—
(୧) ଅନୁପ୍ରାସ—Alliteration; ଏକ ବ୍ୟଞ୍ଜନବର୍ଣ୍ଣର ପୁନଃ ପୁନଃ ବିନ୍ୟାସକୁ ଅନୁପ୍ରାସ ବୋଲାଯାଏ। ଯଥା—
( ଲ ର ଅନୁପ୍ରାସ )
ଲୁଞ୍ଚଗଲେ ଗଲେ ବାଳ ବୁଲିବା ଟେକ୍ସା
ଲଗାଲ ଗାଲ ଲୁପମାଳ ନ ଦେଇ।
ଭଞ୍ଜ—ଲାବଣ୍ୟବତୀ।

( ଶ ଓ ସର ଅନୁପ୍ରାସ )

ଦୃଶ୍ୟ ଅହେ ସୁମନେ ନଦୀକକ୍ଷେ ସୁମନେ
ସଂବେଶ ଅବେଶ ଶ୍ରୀରାମ,
ବସୁଧା ସୁଧାମୟୀ ବସୁଧା ସୁଧା ପିଇ
ସୁଧାଂଶୁଲଭ ଛବେ ରମ୍ୟ, ସେ
ବସି ଶୁଭ୍ର, ବଜ୍ରସିଂହାସନରେ ଉହିଁ, ବର୍ଣ୍ଣ ଶୁଭ୍ର ।
ବସନେ ବିରାଜିତ ହୋଇ;
ବର-ବର୍ଣ୍ଣିନୀ ସୀତା ବରବର୍ଣ୍ଣିନୀ ଯୁକ୍ତା
କୋଳରେ ଅଛନ୍ତି ବସାଇ ସେ ।

ଉଦ୍ଧୃ—ବୈଦେହୀଶ ବିଳାସ

୨ । ଯମକ—Analogue. ଏକାକାର ଭିନ୍ନାର୍ଥକ ପଦ ଦ୍ୱୟର ବିନ୍ୟାସକୁ ଯମକ ବୋଲାଯାଏ । ଯମକ ବହୁପ୍ରକାର; ଯଥା—

(କ) ଆଦ୍ୟଯମକ—

ବିରଳ ବିରଳ ଅଛନ୍ତି ମୀନ ଭକ୍ଷଣ ପାଇଁ
ବଗାବକ ଶ୍ରେଣୀଜାଳେ ଉଳା । ଏଥି ଖେଳା କରଇ ।

ଉଦ୍ଧୃ - ଲାବଣ୍ୟବତୀ

(ଖ) ମଧ୍ୟ ଯମକ —

ଦେଖରେ ନଳିନ ନଳିନୀ ନଳିନୀରେ ପୂରିତ
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ ।

ଉଦ୍ଧୃ—ଲାବଣ୍ୟବତୀ

(ଗ) ପ୍ରାନ୍ତ ଯମକ —

ଭ୍ରମିବ ବିଶ୍ୱର କରେ ଶାପ ଦାନ କାର୍ତ୍ତିକରେ
ପ୍ରୟାଗେ ସ୍ନାନ ମକରେ ଯେହୁ ନ କରେ
ବସେ କି ସେ ଅଲୋକରେ ଭିତ୍ତି ସୀମା ଅଙ୍କରେ
ସେତ୍ର ବସେ ପଲଙ୍କରେ କି ହୁଙ୍କରେ ।
ପୂର୍ବେ ସେବିଥିଲେ ଶଙ୍କରେ
ସେ ଫଳୁ ଧର ଉଚ୍ଚ ଗ୍ରଫଳ ଲଭେ ।

ଉଦ୍ଧୃ—ପ୍ରେମସୁଧାନିଧି

(ଘ) ଆଦ୍ୟ ପ୍ରାନ୍ତ ଯମକ —

ଶର ଶରଧର ଶରଖଣ୍ଡୀଶର ଖର ଜର ଚାର ଚାର
ବାର ବାର ବାଜିବାର ଭର ଭର ହସ୍ତ ହସ୍ତ ହର ହର

ଉଦ୍ଧୃ—ବୈଦେହୀଶବିଳାସ

(ଙ) ମାଳ ଯମକ—ଏକ ଚରଣ ମଧ୍ୟରେ ତିନ ବା ତତୋଧିକ ଯମକ ରହିଲେ ମାଳ ଯମକ ହୁଏ ।

ଉଦ୍ଧରଇ ମାଳ ଯମକରେ କବ ମନେ
ରୂଳେ ସୀମ ରାମ ରାମକେଶୀ ସେନ ବନେ

ଉଦ୍ଧୃ—ବୈଦେହୀଶବିଳାସ

(ଚ) ସର୍ବ ଯମକ :—

ଅହିମକର ତାପନାଶେ ଶୋଭି ସାରସ ତଳେ
ଅହିମକର ତାପନାଶେ ଶୋଭି ସାରସ ତଳେ ।

ଉଦ୍ଧୃ - ଲାବଣ୍ୟବତୀ

ଏହା ଛଡ଼ା ଉତ୍କଳର ପ୍ରାଚୀନ ସାହିତ୍ୟରେ କବିମାନେ ନାନାପ୍ରକାରରେ ଯମକ ରଚନା କରି ନିଜ ନିଜର ଶବ୍ଦ ପାଣ୍ଡିତ୍ୟ ଦେଖାଇ ଅଛନ୍ତି ଏବଂ ତାହା ସଙ୍ଗେ ସଙ୍ଗେ ମଧ୍ୟ ଶ୍ରେଣୀଭେଦରେ ବିଭିନ୍ନ ନାମ ଦେଇ ଯମକର ସଙ୍ଖ୍ୟାବୃଦ୍ଧି କରିଅଛନ୍ତି । ତନ୍ମଧ୍ୟରୁ କ୍ୱଚିତ୍ରେ କେତୋଟିର ଉଦାହରଣ ଦିଆଯାଉଅଛି—

(୧) ଗୋମୂତ୍ର ଛନ୍ଦ—ବାଜି ବାଣ ଭୁବସାତ କୁନ୍ତପାତ ଗର୍ଜି ଶବ ବାଣ ରହି, ବାଜିଗଣ ପଦଧୂଳି ବିତରେଇ ଅଶ୍ୱୀରକ ସଙ୍ଗ ବହି । ଉଦ୍ଧୃ. ବୈଦେହୀଶବିଳାସ ।

(୨) ଶୃଙ୍ଖଳା—ବରଥ ରଥରେ ମନ ମନ କମ୍ପି କର୍ମିଣ ଶଂକଶ କର, କରଶକ କର ଶକଟ କଟର ଉଷ୍ଟ୍ରର କର ସାଉ । ଉଦ୍ଧୃ. ବୈଦେହୀଶବିଳାସ ।

(୩) ବିଲୋମାନୁଲୋମ—ସାର ଯେତେ ସେନାବାର ଋଷା ସାର ରବା ନାଶେ ଲେକେ ରବ, ବଢ଼ିବ ତେଜ ପୁରତର ଭମ ମଭ ରତ ରପୁ ଜତ ହେବ । ଉଦ୍ଧୃ. ବୈଦେହୀଶବିଳାସ ।]

(୪) ମୁଷ ବନ୍ଧ—ବିଶାଳ ଶାଳ ତାଳଜାଳ ହେଳ ଧୟ କଣ୍ଟକ ଜାବଧନ ସେ, ବହୁ କରେ କପି କନ୍ଧାବନ୍ତ ବନ୍ତ୍ର ବବଶେ ଶେଷେ ଶେଷେ ସେ । ଉଦ୍ଧୃ. ବୈଦେହୀଶ-ବିଳାସ ।]

(୫) ଗଦାବନ୍ଧ—ବଦା ସଦା ମୋଦା ଗଦା ଘରଧର ତର ଭାବ ତାହି ବହି, ବହି ନଗ୍ନ ମନ ହୃଦଛନ୍ଦ କର ବହି କୋଟି ତାହି ବହି । ଉଦ୍ଧୃ. ବୈଦେହୀଶବିଳାସ ।

(୬) ଶରବନ୍ଧ - ଶର ଶରଧର ଶରଖଣ୍ଡୀଶର ଖର ଜର ଚାର ଚାର ବାର ବାର ବାଜିବାର ଭର ଭର ହସ୍ତ ହସ୍ତ ହର ହର । ଉଦ୍ଧୃ. ବୈଦେହୀଶବିଳାସ ।

ଏହିପରି ନାନା ଚକ୍ରବନ୍ଧ, ମେଷଯୁଦ୍ଧ, କର୍ଣ୍ଣଶୃଙ୍ଖଳ, ସିଂହାବଲୋକନ ପ୍ରଭୃତି ଶବ୍ଦାଳଂକାର ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବିରଳ ନୁହେ ।]

ଶବ୍ଦିତ - ସଂ. ବିଣ ( ଶବ୍ଦ+ଇତ )—୧ । ଧ୍ୱନିତ; ନିନାଦିତ—
Śabdita 1. Sounded; resounding. ୨ । ଆହୂତ—2. Called.

ଶବ୍ଦେନ୍ଦ୍ରିୟ—ସଂ. ବି [ଶବ୍ଦ ଅନୁଭବୀ ଇନ୍ଦ୍ରିୟ, ମ. ପ. ଲୋ] —କାନ—
Śabdendriya The ear.

ଶମ୍—ସଂ. ବି (ଶମ୍ ଧାତୁ=ଶମ୍ଯନ କରିବା+ଅଧିକରଣ. ଅମ୍)—
Śam ୧ । କଲ୍ୟାଣ—1. Prosperity; blessing. ୨ । ସୁଖ—2. Happiness. ୩ । ହର୍ଷ; ଆନନ୍ଦ—( ଶଂ—ଅନ୍ୟରୂପ ) 3. Delight; pleasure.

ଶମ୍ (ଧାତୁ)—ସଂ—୧ । ଶାନ୍ତ ହେବା—1. To be pacified; to
Śam (root) be tranquil. ୨ । ନିବୃତ୍ତ ହେବା—2. To cease; to refrain ୩ । ବନ୍ଦ ହେବା—3. To stop. ୪ । ରାଶି ରାଶି ଜମା କରିବା—4. To heap up.

ଶମ —ସଂ. ବି (ଶମ୍ ଧାତୁ+ଭାବ. ଅ)—୧ । ନିବୃତ୍ତି—1. Cessa-
Śama tion. ୨ । ଶାନ୍ତି—2. Tranquility; calmness; quietitude; peace. ୩ । ଉପଶମ—3. Restraint; alleviation; state of being

assuaged. ୪ । ଚିତ୍ତର ସ୍ଥିରତା—4. Calmness of mind, peace of mind ୫ । ନିର୍ବେଦ—5. Placidity. ୬ । ମୋକ୍ଷ; ମୁକ୍ତି—6. Salvation; liberation; liberation of the spirit from matter. ୭ । ଚିତ୍ତବୃତ୍ତି ଦମନ —7. Control of passions. ୮ । ମନଃସଂଯମ; ଅନ୍ତଃକରଣର ନିଗ୍ରହ; ବିଷୟର ବାସନାତ୍ୟାଗ—8. Concentration of mind; withdrawing the mind from worldly thoughts; control of one's thought.

[ଦ୍ର—ସାଂସାରିକ ବିଷୟର ଦୋଷଦର୍ଶନ ପୂର୍ବକ ମନ ଯେତେବେଳେ ସାଂସାରିକ ବିଷୟରୁ ନିବୃତ୍ତହୋଇ ଏକ-ବ୍ରହ୍ମରେ ନିଯୁକ୍ତରୂପେ ଅବସ୍ଥାନ କରେ, ମନର ସେହି ଅବସ୍ଥାକୁ ଶମ ବୋଲାଯାଏ । ଶମ(ମନଃ ସଂଯମ) ଓ ଦମ (ଇନ୍ଦ୍ରିୟ ସଂଯମ) ଦ୍ୱାରା ମନ ଓ ଇନ୍ଦ୍ରିୟମାନଙ୍କୁ ବିଷୟରୁ ନିବୃତ୍ତ କରିବାର ଚେଷ୍ଟା କରିବା ଯୋଗସାଧନର ପ୍ରଥମ ସୋପାନ ।] ୯ । ମଙ୍ଗଳ; କଲ୍ୟାଣ—9. Prosperity; blessing. ୧୦ । ସୁଖ—10. Happiness; bliss. ୧୧ । ଚିକିତ୍ସା—11. Treatment. ୧୨ । ପାଣି; ହସ୍ତ—12. Hand. ୧୩ । କ୍ଷମା—13. Forgiveness. ୧୪ । ତିରସ୍କାର 14 Reproach; censure. ୧୫ । ଶାନ୍ତି (ଦେଶ) 15. Śānti (Se) ୧୬ । ସାହିତ୍ୟରେ ଶାନ୍ତରସର ସ୍ଥାୟୀ ଭାବ (ହ୍ର. ଶି)—16 The permanent character of the sentiment of Tranquility in literature. ୧୭ । ବାହ୍ୟେନ୍ଦ୍ରିୟ ନିଗ୍ରହ (ଗ୍ର. ଷ) 17. The controlling of one's organs of sense.

**ଶମକ**—ସଂ. ବିଣ (ଶମ୍ ଧାତୁ+କର୍ତ୍ତୃ. ଅକ)—୧ । ଉପଶମକାରକ—
**Śamaka** 1. Alleviating, assuaging ୨ । ଶାନ୍ତି-
(ଶମିକା—ସ୍ତ୍ରୀ) କାରକ—2. Pacifying. ୩ । ନିବୃତ୍ତିକାରକ—3. Restraining.

**ଶମକା(କେ)ଇବା**—ଦେଶଜ କ୍ରି (ସ. ଶମ୍ ଶବ୍ଦରୁ ନାମଧାତୁ)—ଢିଙ୍କିର ଯୋର
**Śamakā(ke)ibā** ବା ପାହାର (ଯହିଁରେ ଶମା ଲାଗିଥାଏ ତାହା)
ଭାନା ଦ୍ୱାରା ଢିଙ୍କି ମୁଣ୍ଡର ଖାତ ମଧ୍ୟରେ ସ୍ଥାପିତ ବସ୍ତୁମାନଙ୍କୁ ଜୋର୍‌ରେ
सरकाना କୁଟିବା—To pound or beat vigorously any article put in the hole by the pestle of Dhinki.[ଦ୍ର—ଦେ ଶମକୋଇଲେ ! ଢିଙ୍କି ଦେ ଶମକୋଇଲେ ! ଶମା ଭୁଚଇ ଧାନାକୁ ସରୁଭୁଣୀ ଚଙ୍କି ଲଞ୍ଜିରେ ଖାଅନ୍ତୁ ବଙ୍ଗଳା ପାନ । ଢିଙ୍କିକୁଟା ଗୀତ ।]

**ଶମଠ**—ସଂ. ବି (ଶମ ଧାତୁ+ବହୁଳାର୍ଥେ. ଅଠ)—
**Śamaṭha** ୧ । ମହାଭାରତୋକ୍ତ ଜଣେ ବ୍ରାହ୍ମଣ (ବିଶ୍ୱକୋଷ)—1. Name of a Brāhmaṇa. ୨ । ତୂଳ, ବୃକ୍ଷବିଶେଷ—2. Mulberry. ୩ । ଶାକ ବିଶେଷ—3. A kind of potherb.

**ଶମତା** ଦେ. ବି (ଦ, ସ୍ତ୍ରୀ ପ୍ରୟୋଗ)—୧ । ନିବୃତ୍ତି -1. Cessa-
**Śamatā** tion. ୨ । ଶାନ୍ତି—2. Tranquility. calmness. ୩ । ଉପଶମ—3. Assuaging; relief; alleviation. ୪ । ମୁକ୍ତି—4. Liberation.
[ଦ୍ର 'ଶମ' ଶବ୍ଦ ସହିତ ଲାଗିଥାରେ ଗୁଣବାଚକ ବା କ୍ରିୟାବାଚକ ବିଶେଷ୍ୟ, ତହିଁରେ 'ତା' ପ୍ରତ୍ୟୟ ... ଲଗାଇ ଏପରି ପଦ କରିବା ବ୍ୟାକରଣ ବିରୁଦ୍ଧ । ... ପ୍ରଚଳିତ ବଙ୍ଗଳା ଅଭିଧାନମାନଙ୍କରେ ଏ ଶବ୍ଦ ... ବୋଲି ଉଲ୍ଲେଖ କରାଯାଇ ଅଛି, ମାତ୍ର ... ଅଭିଧାନପ୍ରଣେତା ଅପ୍ରେ ଓ ଦକ୍ଷିଣର ... 'ଶମତା' ଶବ୍ଦକୁ ସେମାନଙ୍କ ସମସ୍ତ ଅଭିଧାନମାନଙ୍କରେ ସ୍ଥାନ ଦେଇ ନାହାନ୍ତି । ତେଣୁ ଏହାକୁ ଦେଶଜ ବା ... ଶବ୍ଦରୂପେ ଆମ୍ଭେମାନେ ଗ୍ରହଣ କଲୁ ।]

**ଶମଥ**—ସଂ. ବି.—(ଶମ୍ ଧାତୁ+ଭାବ. ଅଥ)— ୧ । ଶାନ୍ତି—
**Śamatha** 1. Calmness; tranquility. ୨ । ମନର ସ୍ଥିରତା—2. Peace of mind. ୩ । ମନଃସଂଯୋଗ—3. Mental application. ୪ । ନିବୃତ୍ତି—4. Cessation; stoppage. ୫ । (+କର୍ତ୍ତୃ. ଅଥ); ସଚିବ; ମନ୍ତ୍ରୀ—5. A counsellor; minister.

**ଶମ ଦମ**—ସଂ. ବି.—(ଦ୍ୱନ୍ଦ୍ୱ; ସମାହାର)—ମନଃସଂଯୋଗ ଓ ଇନ୍ଦ୍ରିୟ-
**Śama dama** ସଂଯମ—Control of passions and control of external organs. (ଯୋଗ ସାଧନାର ବା ତପସ୍ୟାର ଏ ଦୁଇଟି ପ୍ରଧାନ ସୋପାନ)—

**ଶମନ**—ସଂ. ବି.—(ଶମ୍ ଧାତୁ ଶବ୍ ଶମି ଧାତୁ=ଶାନ୍ତ କରିବା+ଭାବ
**Śamana** ଅନ)—୧ । ଯଜ୍ଞାର୍ଥ ପଶୁ ବଧ—1. Killing of an animal for religious sacrifice. ୨ । ମନଃଶାନ୍ତି —2 Mental tranquility. ୩ । ନିବାରଣ—3 Restraining; prevention. ୪ । ବନ୍ଦ କରିବା 4. Stopping. ୫ । ଉପଶମ; ଶାନ୍ତ କରାଇବା—5. Alleviating; assuaging ୬ । ଉପଶମ—6. Relief; alleviation. ୭ । ହିଂସା; ଦ୍ୱେଷ—7. Malice; hurting; injuring. ୮ । ତିରସ୍କାର—8. Abuse; reproach. ୯ । କ୍ଷତି—9. Injury. ୧୦ । ଶାପ; ଅଭିଶାପ—10. Curse; imprecation. ୧୧ । ଚର୍ବଣ—11. Chewing. ୧୨ । ଆଘାତ—12. Blow; stroke. ୧୩ । ଦମନ—13. Subduing; subjugation. ୧୪ । ପୁଂ—(+କର୍ତ୍ତୃ. ଅନ) କୃତାନ୍ତ; ଯମ—14. The God of death. ୧୫ । ମୃଗ ବିଶେଷ—15. A species of deer. ୧୬ । ଡାଲିଯୁକ୍ତ; ବିରି; ମାଷ—16. A kind of pulse; Phaseolus Radiatus. ୧୭ । ଅନ୍ନ (ହ୍ର. ଶ.)—17. Food. ୧୮ । ମଟର (ହ୍ର. ଶ)—18. Pea. ୧୯ । ବମନ ବିରେଚନ ଦ୍ୱାରା ବାତାଦି ଦୋଷକାରକ

ଔଷଧ (ହ୍ର. ଷ.) 19. A medicine which causes vomiting & purging. ୨୦ । ଏକ ପ୍ରକାର ବସ୍ତି କର୍ମ—20. A kind of injection by the enema. (ପ୍ର—ଛିମ୍ବୁକ, ଯଷ୍ଟିମଧୁ, ମୁଥା ଓ ରସାଞ୍ଜନ ଏହି ସମସ୍ତର କ୍ୱାଥରେ ଦୁଗ୍ଧ ମିଶାଇ ବସ୍ତି ପ୍ରୟୋଗ କଲେ ସବୁ ଦୋଷ ଉପଶମ ହୁଏ (ବିଶ୍ୱକୋଷ) ।) ୨୧ । ରୋଗ ନିବାରଣାର୍ଥ ଧୂମ ପାନବିଶେଷ— Smoking for medicinal purposes. ୨୨ । ଅରୁଣ; ସୂର୍ଯ୍ୟସାରଥି (ବିଶ୍ୱକୋଷ)—22. Dawn personified.

**ଶମନ ଦ୍ୱାର**—ସଂ. ବି—୧ । ଯମପୁରର ଦ୍ୱାର—1. The door of **Śamana dwāra** death; death's door. ୨ । ମୃତ୍ୟୁ—2. Death.

**ଶମନ ପୁର(ରୀ)**—ସଂ. ବି—୧ । ଯମପୁର; କୃତାନ୍ତପୁରୀ—1. The **Śamana pura(rī)** abode of the God of death. ୨ । ମୃତ୍ୟୁପରେ ମନୁଷ୍ୟର ପ୍ରେତ ବା ଆତ୍ମା ଯେଉଁଠାକୁ ଯାଏ—2. The abode of the departed spirits

ଶମନ ଭବନ, ଶମନ ସଦନ, ଶମନ ନଗର(ରୀ) }—ଅନ୍ୟରୂପ

**ଶମନ ବସ୍ତି**—ସଂ. ବି—ଶମନ ୨୦ (ଦେଖ) **Śamana basti** amana 20 (See)

**ଶମନ ସ୍ୱସା**—ସଂ. ବି. ସ୍ତ୍ରୀ—(ଶମନ ସ୍ୱସୃ, ୬ମା. ୧ବ)—ଯମୁନା ବା **Śamana swasā** କାଳନ୍ଦୀ ନଦୀ—The river Jamunā

**ଶମନୀ** ସଂ. ବି. ସ୍ତ୍ରୀ—(ଶମନ+ଈ)—ରାତ୍ରି— **Śamani** Night.

**ଶମନୀୟ**—ସଂ. ବିଣ—(ଶମ ଧାତୁ+କର୍ମ ଅନୀୟ)—ଶମିତ ହେବା ଯୋଗ୍ୟ **Śamaniya** —Fit to be alleviated.

**ଶମନୀଷଦ୍**—ସଂ. ବି ପୁଂ ଓ ସ୍ତ୍ରୀ—(ଶମନୀ=ଶର୍ବରୀ+ସଦ୍ ଧାତୁ=ଗମନ **Śamanishad** କରିବା+କର୍ତ୍ତୃ. କ୍ୱିପ୍)—ନିଶାଚର; ରାକ୍ଷସ— A demon.

**ଶମୟିତା**—ସଂ. ବିଣ. ପୁଂ—(ଶମ୍ ଧାତୁ ଣିଚ୍ ଶମି ଧାତୁ+କର୍ତ୍ତୃ. ତୃ; **Śam yitā** ଶମୟିତୃ ଶବ୍ଦ, ୧ମା. ୧ବ)—୧ । ଉପଶମକାରକ— [ଶମୟିତ୍ରୀ—ସ୍ତ୍ରୀ] 1. Assuaging; alleviating. ୨ । ନିବାରକ—2. Preventing. ୩ । ଦମନକାରୀ—3. Subduing; controlling. ୪ । ବିନାଶକ— 4. Destroying.

**ଶମଳ**—ସଂ ବି—(ଶମ୍ ଧାତୁ+କର୍ତ୍ତୃ. ଅଳ)—୧ । ପୁରୀଷ; ମଳ; ବିଷ୍ଠା **Śamala** 1. Ordure; dung. ୨ । (+କର୍ମ. ଅଳ)—ପାପ—2. Sin. [ ଭ—ଲୁଚିଛୁ ଯୋଷଣର ଫଳ, ତାହାର ଯେତେକ ଶମଳ; ସେ ଫଳ ଈଶ୍ୱର ଦିଅନ୍ତି, ପାପୀ ତା ଏକାକେ ଭୁଞ୍ଜନ୍ତି । ଜଗନ୍ନାଥ. ଭାଗବତ । ] ୩ । ଅପରାଧ—3. Crime; guilt.

**ଶମ ଶମ**—ସଂ. ବି—ଶିବ (ହ୍ର. ଷ.)— **Śama śama** Śiba.

**ଶମଶାନ**—ଗ୍ରା. (ପଦ୍ୟ) ବି.—(ସଂ. ଶ୍ମଶାନ)—ଶ୍ମଶାନ (ଦେଖ)— **Śamaśāna** शशान समसान Śmaśāna (See)

[ଉ—ବିଳସାଇ ଯଥା ଅଳକା ଚଳାଇ ଈଶ୍ୱରଙ୍କୁ ଶମଶାନେ । ଉପେ. ବୈଦେହୀଶବିଳାସ ।]

**ଶମା ମି,(ମୀ)ଦେ.** ବି—(ସ.ଶମ, ଶମ୍ୟା)—୧। ଢିଙ୍କିର ଥୋଡ ବା ସାହାଳର **Śamā(mi,mī)** ଅଗରେ ଲଗିବା ଲୌହ ବଳୟ—1. The शामा साम iron ring surrounding the head of the pestle of a Dhiṅki. ୨ । ମୁଷଳର ବା ମୁଦ୍‌ଗରର ବା ଯଷ୍ଟିର ମୁଣ୍ଡରେ ଜଡ଼ିତ କରି ଯାଇଥିବା ଲୌହ ବଳୟ—2. An iron ring put round the head of a mace, cudgel or pestle. ୩ । ଚିତ୍ରକରମାନଙ୍କର ପଶାର ଗୋଟି ବା ସାର କାଟିବା ଅସ୍ତ୍ରବିଶେଷ—3. An instrument used by painters to cut out the balls or pieces used in chess and other games ୪ । ଶଗଡ଼ ଚକର ମଧ୍ୟଛିଦ୍ରରେ ଦିଆ ଯାଇଥିବା ଶକ୍ତ ମୋଟା ଲୁହା ବଳୟ—4. The thick ring put inside the nave of a wheel.

**ଶମାନ୍ତକ**—ସଂ. ବି—(୬ଷ୍ଠୀ ତତ୍; ଶମ=ଶାନ୍ତି+ଅନ୍ତକ)—କାମ- **Śamāntaka** ଦେବ—Cupid.

**ଶମାର୍ଥୀ**—ସଂ. ବିଣ—(ଶମ+ଅର୍ଥ ଧାତୁ+କର୍ତ୍ତୃ. ଣିନ୍; ଶମାର୍ଥିନ୍ ୧ମା **Śamārthī** ୧ବ.)—ଶାନ୍ତିପ୍ରୟାସୀ—Desiring peace. [ଶମାର୍ଥିନୀ—ସ୍ତ୍ରୀ]

**ଶମି ମୀ)**—ସଂ.ବି—(ଶମ ଧାତୁ=ଶାନ୍ତ କରିବା+କର୍ତ୍ତୃ.ଇ,ଈ,ଏହା ପୀଡ଼ା **Sami(mī)** ଶାନ୍ତ କରେ ବୋଲି)—୧ । ଶମି ବା ଶାଇଁ ଗଛ— 1. The spung tree. Prosopis Spicigera; Adenanthera Spicigera (Kirtikar).

ଅନ୍ୟ ସଂ ନାମ—ଶକ୍ତୁଫଳା(ଲୀ) ତୁଙ୍ଗା, କେଶହନ୍ତ୍ରୀ, ଶିବାଫଳା, ମଙ୍ଗଲ୍ୟା, ଲକ୍ଷ୍ମୀ, ଶମୀର, ସାକ୍ତିକା ଶକ୍ତୁ ଫଳା, କାଜକାର, ଶିବା, ଶୁଭଦା, ପତ୍ରକା, ପାପନାଶିନୀ, ଶାନ୍ତା, ଇତରପୁଫଳା, କେଶମଥନୀ, ଈଶାନୀ,ତପନତନୟା], ଇଷ୍ଟା, ଶୁଭକରୀ, ହବର୍ଗନ୍ଧା, ମେଧ୍ୟା, ସମୁଦ୍ରା, ସୁରଭି, ପାପଶମନୀ, ଭଦ୍ରା, ଶଙ୍କରୀ, ସୁପତ୍ରା, ସୁଖଦା

ତେ. ଶମୀଚେଟ୍ଟୁ

ମ. ଶମୀ, ଶେଁମ୍ବୀ

शाई

छोंकर, शमी, छिकुर, सफेद कीकर

[ବି—ଏହା ଏକ ପ୍ରକାର କଣ୍ଟା-ଯୁକ୍ତ ଗଛ, ଓ ବବୁର ଜାତୀୟ । ଏହାର କାଠ ହୋମରେ ସମିଧ ରୂପେ ବ୍ୟବହୃତ ହୁଏ । ଏହାର ଛାଲ ଧଳା ଓ ଫଟାଫଟା; ମଧ୍ୟମ ବଡ଼ ଗଛର ମଞ୍ଜ କଳା; ଶାଖା ଓ ପତ୍ରକରେ କଣ୍ଟା ଥାଏ; ପତ୍ର ଦ୍ୱିପକ୍ଷ ଓ ପତ୍ରି ୭ ଠାରୁ ୧୦ ଯୋଡ଼ା । ଫୁଲ ଛୋଟ, ହଳଦିଆ ଓ କଦମ୍ବ ଫୁଲର ଅନୁରୂପ ବିଶିଷ୍ଟ ଓ କେଶରଯୁକ୍ତ; ମଞ୍ଜି ଚେପଟା ଓ କଳା, ଛୁଇଁ ଚେପଟା ଓ ୮।୧୦ ଅଙ୍ଗୁଳ ଲମ୍ବା । ଫଳରୁ ଛତୁଆ ପରି ଲୋକେ ମିଷ୍ଟ ସୃଷ୍ଟି କରନ୍ତି । ଏହି ଶୁଣ୍ଠା ମନୁଷ୍ୟର ଖାଦ୍ୟ । ରାଜପୁତାନା, ପଞ୍ଜାବ, ବୋମ୍ବାଇ ଓ ଓଡ଼ିଶାରେ ଏ ଗଛ ଦେଖାଯାଏ । ପୂର୍ବ-କାଳରେ ଋଷିମାନେ ଶମି କାଠ ଘଷି ଅଗ୍ନି ଉତ୍ପାଦନ କରୁ ଥାଉଥିଲେ । ଏହାର କାଠ ଖୁବ୍ ଦୃଢ଼ । ବୈଦ୍ୟ ଶାସ୍ତ୍ର

ଅନୁସାରେ ଏହା ତିକ୍ତକଟୁକଷାୟ, ଶୀତବୀର୍ଯ୍ୟ, ରେଚକ ଓ ଲଘୁ । ଏହା କଫ, କାଶ, ଶ୍ୱାସ, କୁଷ୍ଠ, ଅର୍ଶ ଓ କୃମି ରୋଗରେ ଉପକାରୀ । ଏ ଗଛ ଦୁଇ ପ୍ରକାର । ଯଥା— ୧ । ବଡ଼ (ଯାହା ଉପରେ ବର୍ଣ୍ଣିତ ହେଲା ଏବଂ ୨ । ଛୋଟ (କଣ୍ଟା କୁସୁମ)—Acacia Suma. ।] ୨ । ଶିମ୍ବୀଧାନ୍ୟ ( ବୃ. ଶ )—2. Cereals. ୩ । ଶିମ୍ବ ( ବିଶ୍ୱକୋଷ )—3 Bean. ୪ । ଯଜ୍ଞ ( ବୃ. ଶ )—4. Vedic sacrifice. ୫ । ( ଭାଗବତ ) ଉଶୀନର-ଙ୍କର ଏକ ପୁତ୍ର ( ବୃ. ଶ )—5. Name of a son of Usinara. ୬ । ( ହରିବଂଶ ) ଅନ୍ଧକଙ୍କର ଏକ ପୁତ୍ର ( ବିଶ୍ୱକୋଷ )—6. Name of a son of Andhaka. ୭ । ସୋମରାଜୀ; ବାକୁଚୀ (ବିଶ୍ୱକୋଷ) —7. Serratula Anthelmintica. ୮ । କର୍ମ ( ବିଶ୍ୱକୋଷ )—8. Act. ଦେ. ବି—୧ । ଶମା ( ଦେଖ )—1. Samā ( See ) ୨ । ଚଉକାଠର

শামা କଣରେ ମରା ଯାଇଥିବା ଲୌହବଳୟ ( ଯାହା ଉପରେ

साम କବାଟର ସାବଳ ବୁଲୁଥାଏ)—2. The ring put to the corners of the doorframe on which the doors do revolve or turn.

**ଶମି(ମୀ) କଣ୍ଟା**—ଦେ. ବି ( ସଂ. ଶମି ବା ଶମୀ ଓ କଣ୍ଟକ )— Sami(mi) kanṭā ବବୁଲଜାତୀୟ କ୍ଷୁଦ୍ର କଣ୍ଟାଳ ତରୁ—

শমি কাঁটা; শাই কাঁটা Acacia Suma. [ଦ୍ର—ଏହା ଶମୀ

छोटी कीकर ଗଛ ପରି, କିନ୍ତୁ ଛୋଟ । ଗ୍ରାଳ ଧଳା; ପତ୍ରବ ବୃନ୍ତହୀନ, କଣ୍ଟା ଯୋଡ଼ା ଯୋଡ଼ା ବାହାରେ; ପତ୍ର ଦ୍ୱିପକ୍ଷ, ପକ୍ଷ ୩୦ ଠାରୁ ୪୦ ପର୍ଯ୍ୟନ୍ତ, ପକ୍ଷ ୧୦ ଠାରୁ ୨୦ ଯାଏ; ଫୁଲ ଧଳା ବା ଆପାଣ୍ଡୁର; ଛୁଇଁ ୪।୫ ଅଙ୍ଗୁଳ ଲମ୍ବ । ଓଡ଼ିଶା, ଛୋଟନାଗପୁର ଓ ପଶ୍ଚିମ ବଙ୍ଗରେ ଏ ଗଛ ଜନ୍ମେ । ]

**ଶମିତ**—ସଂ. ବିଣ ( ଶମ୍ ଧାତୁ ଣିଚ୍=ଶମି ଧାତୁ+କର୍ମ. ତ )— Samita ୧ । ଦମିତ—1. Controlled. ୨ । ନିବାରିତ— 2 Prevented. ୩ । ବିନାଶିତ—3. Destroyed. ୪ । ଉପଶମିତ—4. Assuaged; alleviated; appeased.

**ଶମିବା**—ଦେ. କି (ପଦ୍ୟ) (ଶମଧାତୁ)— ୧ । ଉପଶମ କରିବା—1. To Samibā alleviate. [ଉ—ପଥଶ୍ରମ ଶମିବୁ ସୁଖ-ନୟନେ—

শমনা ରାଧାନାଥ. ମେଘଦୂତ । ] ୨ । ଦମନ କରିବା—

समना 2. To check. ୩। ନିବାରଣ କରିବା—3. To prevent. [ ଉ— ଶମଇ ଏ ମହାଅଗ୍ନି ଅମୃତ ସାଗର —ମଧୁସୂଦନ, କବିତା । ]

**ଶମ(ମୀ)ର**—ସଂ.ବି (ଶମି+ର; କ୍ଷୁଦ୍ରାର୍ଥେ)—କ୍ଷୁଦ୍ର ଶମୀ ବୃକ୍ଷ; ଶମିକଣ୍ଟା Sami(mi)ra ( ଦେଖ )—Sami kanṭā ( See )

**ଶମି ରୋହ**— ସଂ. ବି ( ଶମି=ବୃକ୍ଷବିଶେଷ+ରୁହ୍ ଧାତୁ+କର୍ତ୍ତୃ. ଅ )— Sami roha ମହାଦେବ; ଶିବ—Siba.

**ଶମିଲା**—ସଂ. ବି—ଜାଇଫୁଲଗଛଜାତୀୟ ଏକପ୍ରକାର ଗୁଳ୍ମ (ବୃ. ଶ)— Samilā A kind of plant akin to the Spanish Jasmine.

**ଶମି ସାବେ(ବ)ଳି**—ଦେ.ବି (ସଦ୍ଧଚର)—କବାଟର ଏକପ୍ରକାର କଳ— Sami sābe(ba)li A contrivance consisting of a

साम सावल ring and a pivot or pin in revolving doors. [ଦ୍ର—ପୂର୍ବେ କବାଟମାନ ଚଉକାଠରେ ଲଗାଇବା ପାଇଁ କବଜା ବ୍ୟବହୃତ ହେଉ ନ ଥିଲା । ବଡ଼ କବାଟରେ ଭମଣୀ ଓ କବଜା ଲଗା ଯାଉଥିଲା ଓ ସାଧାରଣ କବାଟର ୨ଟି କଣରେ ଗୋଟିଏ ଲେଖାଏଁ ଲୁହାର ବା କାଠର ଖିଲା (ସାବେଲୀ) ଲଗା ଯାଉଥିଲା ଓ ଚଉକାଠରେ ଲୁହାର ଶମି ମରା ଯାଉଥିଲା । ସେହି ଶମିରେ କବାଟର ସାବଳ ବୁଲିବାରୁ କବାଟ ଖୋଲା ଯାଉଥିଲା ଓ ମୁଦା ହେଉଥିଲା ।]

**ଶମୀ**—ସଂ. ବି ( ଶମ୍ ଧାତୁ+କର୍ତ୍ତୃ. ଈ )—୧ । ଶମି ( ଦେଖ )— Sami 1. Sami ( See ) ୨ । ଶିମ୍ବ, ମୁଗ, କାଙ୍ଗ, ମଟର ପ୍ରଭୃତି ଛୁଇଁର ଖୋସା—2. The pod of leguminous seeds ୩ । ଛୁଇଁ—3. The pod of

(ଶମ୍ବୀ — ସ୍ତ୍ରୀ) some plants. ବିଣ. ପୁଂ ( ଶମ୍ ଧାତୁ+କର୍ତ୍ତୃ. ଇନ୍, ଶମିନ୍ ୧ମା. ୧ବ )—୧ । ଶମଗୁଣ ବିଶିଷ୍ଟ; ଯେ ଆପଣାର ମନକୁ ସଂଯମ କରୁଅଛି; ମନଃସଂଯମୀ; ଜିତେନ୍ଦ୍ରିୟ- 1. Able to control one's passions; self restrained; self-controlled; forbearing. ୨ । ଧୀର—2. Sagacions; patient; deliberate; temperate. ୩ । ଗମ୍ଭୀର—3. Grave. ୪ । ଶାନ୍ତ—4. Serene; peaceful; calm.

**ଶମୀକ**—ସଂ. ବି ( ଶମ୍ ଧାତୁ+କର୍ତ୍ତୃ. ଈକ )—ମୁନିବିଶେଷ; ଶୃଙ୍ଗୀଙ୍କ Samika ପିତା—Name of a sage; father of sage Srungi. [ ଦ୍ର—ଏ ଅତ୍ୟନ୍ତ କ୍ଷମାଶୀଳ ତପସ୍ୱୀ ଥିଲେ । ରାଜା ପରୀକ୍ଷିତ ମୃଗୟାକୁ ଯାଇ ଗୋଟିଏ ମୃଗ ପଛରେ ଗୋଡ଼ାଉ ଗୋଡ଼ାଉ ମୃଗଟି ଅଦୃଶ୍ୟ ହେଲା ଓ ରାଜା ଯାଇଁ ଶମୀକଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ଶମୀକ ସେତେବେଳେ ତପସ୍ୟାରେ ନିରତ ଥିଲେ । ରାଜା ତାହାଙ୍କୁ ମୃଗର ବୃତ୍ତାନ୍ତ ପଚାରିବାରୁ ମୁନି ମୌନବ୍ରତାଲମ୍ବନ କରିଥିବା ହେତୁ କୌଣସି ଉତ୍ତର ପ୍ରଦାନ କଲେ ନାହିଁ । ଏଥିରେ ରାଜା କ୍ରୁଦ୍ଧ ହୋଇ ତାଙ୍କ ବେକରେ ଗୋଟିଏ ମୃତ ସର୍ପ ପକାଇ ଦେଲେ । ଶମୀକଙ୍କ ପୁତ୍ର ଶୃଙ୍ଗୀ ସେତେବେଳେ ଆଶ୍ରମରେ ନ ଥିଲେ । ଆଶ୍ରମକୁ ଫେରି ଆସି ପିତାଙ୍କ ବେକରେ ମୃତ ସର୍ପ ପଡ଼ିଥିବାର ଦେଖି ଶୃଙ୍ଗୀ ଅତ୍ୟନ୍ତ କୁପିତ ହେଲେ ଏବଂ ସଙ୍ଗେ ସଙ୍ଗେ ପିତାଙ୍କ ସ୍କନ୍ଧରୁ ମୃତ ସର୍ପଟି ବାହାର କରି ଦେଇ ଏ କାର୍ଯ୍ୟର କର୍ତ୍ତା (ରାଜା ପରୀକ୍ଷିତ)ଙ୍କୁ ଅଭିଶାପ ଦେଲେ— "ଯେଉଁ ବ୍ୟକ୍ତି ମୋ ପିତାଙ୍କ ଗଳାରେ ମୃତ ସର୍ପ ଲମ୍ବାଇ ଦେଇଅଛି, ସେ ଆଜିଠାରୁ ଏକ ସପ୍ତାହ ମଧ୍ୟରେ ସର୍ପାଘାତରେ ମୃତ୍ୟୁ ବରଣ କରିବ ।" ଯାଇ ଭଙ୍ଗ ପରେ

ଶମୀଙ୍କ ପୁତ୍ରର ଏହି ଦାରୁଣ ଆଚରଣରେ ଅତ୍ୟନ୍ତ ଦୁଃଖିତ ଓ ଅସନ୍ତୁଷ୍ଟ ହୋଇ ମୃତ୍ୟୁ ପାଇଁ ପ୍ରସ୍ତୁତ ହେବାକୁ ରାଜା ପରୀକ୍ଷିତଙ୍କୁ ସଂବାଦ ପ୍ରଦାନ କଲେ ଓ ଶମୀକଙ୍କ ଶାପ ଫଳରେ ପରୀକ୍ଷିତ ତକ୍ଷକ ଦଂଶନରେ ମୃତ ହେଲେ । ]

**ଶମୀ ଗର୍ଭ**—ସଂ. ବି ( ଶମୀ ଗର୍ଭରେ ଯାହାର; ବହୁବ୍ରୀହି; ଶମୀ Śami garbha ବୃକ୍ଷର କାଷ୍ଠ ଯଜ୍ଞର ସମିଧରୂପେ ବ୍ୟବହୃତ ( ଶମୀଜାତ—ଅନ୍ୟରୂପ ) ହେଉଥିବାରୁ ) —୧ । ଅଗ୍ନି —1. Fire. ୨ । ବ୍ରାହ୍ମଣ—2. A Brāhmaṇa.

**ଶମୀଜ**—ସଂ. ବି (ଶମୀ=ଛୁଇଁ+ଜନ୍ ଧାତୁ+କର୍ତ୍ତୃ.ଅ)—ଶମୀଧାନ୍ୟ; Śamija ଶମୀଧାନ୍ୟ ( ଦେଖ )—Śamidhānya ( See )

ଅନ୍ୟ ସଂ ନାମ—ଶିମ୍ବୀଜ, ଶିମ୍ବୀଭବ, ସୂର୍ଯ୍ୟ ଓ ବୈଦଳ

**ଶମୀଧାନ୍ୟ** ସଂ. ବି.—(ଶମୀ=ଛୁଇଁ+ଧାନ୍ୟ) - ବିରି, ମୁଗ, କୋଳଥ Śamidhānya ଆଦି ଛୁଇଁଯୁକ୍ତ ଶସ୍ୟ; ଶିମ୍ବୀଧାନ୍ୟ—Leguminous or pod-bearing grains.

ଅନ୍ୟ ସଂ ନାମ—ଶମୀଜ, ଶିମ୍ବୀଜ, ଶିମ୍ବୀଭବ, ସୂର୍ଯ୍ୟ, ବୈଦଳ

[ଦ୍ର—ବିରି, ମୁଗ, କୋଳଥ, ଚଣା, ବରଗୁଡ଼ି, ଶିମ୍ବ, ମସୁର, ହରଡ଼, ବୁଟ, ମଟର ଆଦି ଏହି ଶମୀଧାନ୍ୟ ବା ଶିମ୍ବୀ ଧାନ୍ୟ ଶ୍ରେଣୀରେ ଅନ୍ତର୍ଗତ ।]

**ଶମୀପତ୍ରା (ତ୍ରୀ)**—ସଂ.ବି—(ବୈଦ୍ୟକ)—୧। ଲଜ୍ଜାଳୁ; ଲାଜକୋଳି ଲତା— Śamipatrā (tri) 1 A creeper; Mimosa Pudica. ୨ । ପାଣି ଲାଜକୋଳି ଲତା (ହି. ଶ)—2 A species of mimosa growing in water.

**ଶମୀର**—ସଂ. ବି· —(ଶମୀ+କ୍ଷୁଦ୍ରାର୍ଥେ ର,)—୧ । କ୍ଷୁଦ୍ର ଶମୀବୃକ୍ଷ; ଶମି Śamira କଣ୍ଟା (ଦେଖ) Śamikaṇṭā (See) ୨ । ସୋମରାଜୀ (ହି.ଶ)—2. Serratula Anthelmintica.

**ଶମୀର କନ୍ଦ**—ସଂ. ବି—ବାରାହୀକନ୍ଦ; ଅଳୁ Śamira kanda Disocorea; yam.

**ଶମ୍ପା**—ସଂ. ବି.—(ଶମ୍=ସୁଖ, ହର୍ଷ+ପା ଧାତୁ=ପାନ କରିବା ଅର୍ଥାତ୍ Sampā ନଷ୍ଟ କରିବା+କର୍ତ୍ତୃ ଅ+ଆ; ଯାହା ନିଜର ପ୍ରଜ୍ଜ୍ୱଳନ ଦର୍ଶନରେ ହର୍ଷକୁ ନାଶ କରେ ।)—୧ । ବିଦ୍ୟୁତ; ଚଞ୍ଚଳ 1. Lightning. ୨ । କଟି (ଦେ. ଶ) 2 Waist.

शंपा शाप ଦେ. ବି.– (ସଂ ଶପ୍ ଧାତୁ=ଅଭିଶାପ ଦେବା) ୧ । ଶମ୍ପିବା; ଗାଳିଦେବା—1. Abusing. ୨ । ଅଭିଶାପ ଦେବା—2. Cursing. ୩ । ଅଭିସମ୍ପାତ—3. Curse; imprecation.

**ଶମ୍ପା (ମ୍ପେ) ଇବା**—ଦେ. କ୍ରି—ଶମ୍ପିବା କ୍ରିୟାର ପ୍ରଯୋଜକ ରୂପ; ଅନ୍ୟ Śampa(mpe)ibā ଦ୍ୱାରା କୌଣସି ବ୍ୟକ୍ତିକୁ ଗାଳି ବା ଅଭିଶାପ शंपाना शापदिलवाना ଦିଆଇବା—To cause to be abused or cursed by another.

**ଶମ୍ପାକ**—ସଂ ବି.—(ଶମ୍=ହର୍ଷ+ପାକ=ଯେ ପାକ କରେ) —୧ । Śampāka ଆରଗ୍ୱଧ ବା ସୁନାରି ଗଛ—1. A tree; Cassia Fistula. ୨ । ଅଳକ୍ତକ, ଅଳତା—2. Lac dye used in painting the feet ୩ । ପାଚନ—3. Cooking ୪ । ବିପାକ (ଶବ୍ଦକୋଷ); ପରିଣାମ 4. Result; final result.

**ଶମ୍ପା ଗଉରୀ**—ଦେ.ବି ଓ ବିଣ.ସ୍ତ୍ରୀ (ସଂ ଶମ୍ପା=ବିଦ୍ୟୁତ ଓ ଗୌରୀ)— Śampa gauri ବିଦ୍ୟୁତ୍ ପରି ଗୌରବର୍ଣ୍ଣା ସ୍ତ୍ରୀ—A woman शंपागारी having a complexion as bright as the lightning

ଶମ୍ପା ଗୌରୀ } ଅନ୍ୟରୂପ
ଶମ୍ପା ଗୋରୀ }

**ଶମ୍ପାତ**—ସଂ ବି.—(ଶମ୍+ପାତ) ୧ । ଆରଗ୍ୱଧ ବୃକ୍ଷ—1. Cassia Śampāta Fistula(tree). ୨। ଅଭିସମ୍ପାତ (ଶବ୍ଦକୋଷ)—2. Curse.

**ଶମ୍ପିବା**—ଦେ. କ୍ରି—(ସଂ ଶପ୍ ଧାତୁ=ଶାପଦେବା)—୧ । ଅଭିଶାପ Śampibā ଦେବା—1. To curse ୨ । ଗାଳିଦେବା—2. To शंपा, शांपदेओया शापदेना abuse.

[ଦ୍ର—ସ୍ତ୍ରୀ ଲୋକମାନେ ଶତ୍ରୁକୁ କିମ୍ବା ଯାହା ସଙ୍ଗେ କଳି କଲେ, ତାକୁ ଶମ୍ପନ୍ତି । ତୁ ମର, ତୋ ପୁଅ ମରୁ, ତୋ ସ୍ୱାମୀ ମରୁ, ତୋ କୁଳ ବୁଡ଼ୁ, ଇତ୍ୟାଦି ଅଭିଶାପଯୁକ୍ତ ଗାଳି ଦିଅନ୍ତି । ]

**ଶମ୍ବ୍ (ଧାତୁ)**—ସଂ.ବି—୧। ସ୍ତୂପ କରିବା—1 To heap up. ୨ । Śamb (root) ଗମନ କରିବା—2. To go, to move.

**ଶମ୍ବ**—ସଂ.ବି—(ଶମ୍ବ୍ ଧାତୁ+କର୍ତ୍ତୃ ଅ)—୧ । ଅଶନି ବଜ୍ର—1. Thun- Śamba derbolt (ଉ—ହାତେଣ ବନ୍ଧେ ଶମ୍ବ ସଦୃଶ କଳମ୍ବ ଭୂମ୍ବକୁ ଏକା ଅଭିନ୍ନ—କବିସୂର୍ଯ୍ୟ; କପୋତ ଲୋଭ ୫ ଗୀତ ।) ୨ । ଢିଙ୍କି ଶମୀ; ଢିଙ୍କି ପାହାରର ମୁଣ୍ଡକୁ ବେଷ୍ଟନ କରିଥିବା ଲୌହ ବଳୟ; ମୂଷଳର ଅଗ୍ରକୁ ବେଢ଼ିଥିବା ଲୌହ ମଣ୍ଡଳ —2. The iron ring on the head of the pestle of a Ḍhiṅki. ୩। ଲୌହବଳୟବେଷ୍ଟିତାଗ୍ର ମୁଦଗର— 3. A mace headed with an iron ring. ୪ । ଲୌହମୟ କାଞ୍ଚି, ଅଣ୍ଟାରେ ପିନ୍ଧିବା ଲୁହା ହିଞ୍ଚୁଳି—4. A waist-chain of iron. ୫ । ଭୂମିକୁ ଦ୍ୱିତୀୟବାର ଚଷିବା; ଦୋଓଡ଼ ଚାଷ; ଅନୁଲୋମ କର୍ଷଣ —5. Second ploughing; ploughing a field for the second time ୬ । ଦରିଦ୍ର ବ୍ୟକ୍ତି 6. A poor man. ୭ । ପ୍ରାଚୀନ କାଳର ମାନବିଶେଷ (ହି. ଶ)—7. An ancient standard of measurement. ୮ । ଭାଗ୍ୟବାନ୍ ବ୍ୟକ୍ତି (ଶବ୍ଦକୋଷ)—8. A lucky person.

ବିଣ —(ଶମ୍=ସୁଖ+ବ)—୧ । ଭାଗ୍ୟବାନ; ସୌଭାଗ୍ୟଶାଳୀ— 1. Fortunate; prosperous; lucky. ୨ । ଶୁଭାନ୍ୱିତ—2 Blessed; auspicious ୩ । ସୁଖୀ— 3 Happy ୪ । ଦରିଦ୍ର (ଶବ୍ଦକୋଷ)—4 Poor.

(ସମ୍ବ—ଅନ୍ୟରୂପ)

**ଶମ୍ବକ**—ଦେ. ବି.—ଶମ୍ବୁକ (ଦେଖ) Śambaka Śambuka (See)

[ଉ—ଶମ୍ବର ନାମରେ ଦୃପ୍ତ, ପୃଥ୍ୱୀରେ ଛପ ଅଚରେ —ମଧୁସୂଦନ, ଭୃତ୍ତରସମଚରତ]

**ଶମ୍ବଧର**—ସଂ. ବ (ଶମ୍+ଧୃ ଧାତୁ+କର୍ତ୍ତୃ ଅ, ବହୁବ୍ରୀହି)—ଇନ୍ଦ୍ର—
Śambadhara God Indra. [ଉ—ସମ୍ବଧର ମଣି ଜମ୍ଭନନ୍ଦ ବଧିବମ୍ ଯୁଗ ଘନଚମ୍ ହଉବରୁ । କବିସୂର୍ଯ୍ୟ. ସଙ୍ଗୀତ ।]

**ଶମ୍ବର**—ସଂ. ବ (ଶମ୍ବ୍ ଧାତୁ+କର୍ତ୍ତୃ. ଅର)—୧ । ବୃହତ୍କାୟ ମୃଗ
Śambar ବିଶେଷ—1. A species of large deer, the Śambar deer (having three-pronged antlers); Curvus Unicolour; Rusa Aristotelis; Rusa Equina. [ଦ୍ର—ଏମାନେ ଘୋଡ଼ାଙ୍କ ପରି ବୃହତ୍କାୟ ଓ ପିଙ୍ଗଳବର୍ଣ୍ଣବିଶିଷ୍ଟ । ଏମାନଙ୍କ ଶିଙ୍ଗ ମୃଗ ଶିଙ୍ଗଠାରୁ ବଡ଼ ଓ ତିଶାଖ; କିନ୍ତୁ ଏଥିର ଭିତର ଫମ୍ପା । ଏମାନଙ୍କ ଦେହ ଚିତ୍ରବର୍ଣ୍ଣ ନୁହେଁ । ଏହି ଜାତୀୟ ମୃଗମାନଙ୍କ ମାଂସକୁ ପାଣିରେ ସିଝାଇଲେ ସିଝାପାଣି ତଳେ ପାତ୍ରରେ କାତୁଆ ପରି ମୃତ୍ତିକାର ସ୍ତର ବସିଯାଏ । ଓଡ଼ିଶାର ଗଡ଼ଜାତମାନଙ୍କରେ ଏମାନେ ପ୍ରଚୁର ପରିମାଣରେ ଦେଖାଯାଆନ୍ତି ।] ୨ । ବୃହତ୍କାୟ ସାମୁଦ୍ରିକ ମତ୍ସ୍ୟବିଶେଷ—2. A species of big sea-fish. ୩ । ମେଘ (ଆପ୍ଟେ)—3. Cloud (Apte). ୪ । ପର୍ବତ ବିଶେଷ—4. Name of a mountain. ୫ । ଯୁଦ୍ଧ—5. Battle. ୬ । ଶ୍ରେଷ୍ଠତା—6. Superiority ୭ । ଚିତ୍ରକ ବୃକ୍ଷ; ଧଳାଚିତା ଗଛ—7. A tree; Plumbago Zeylanica. ୮ । ଅର୍ଜ୍ଜୁନ ବୃକ୍ଷ—8. A tree; Terminalia Arjuna. ୯ । ବୌଦ୍ଧ ବିଶେଷ—9. A class of Buddhists. ୧୦ । ଜଳ; ବାରି—10. Water. ୧୧ । ଧନ—11. Wealth; riches. ୧୨ । ବୌଦ୍ଧ ବ୍ରତ ବିଶେଷ—12. Name of a Buddhistic vow. ୧୩ । ଲୋଧ୍ର ବୃକ୍ଷ—13. A tree; Symplocos Racemosus. ୧୪ । କାମଦେବଙ୍କଦ୍ୱାରା ନିହତ ଅସୁର ବିଶେଷ—14. Name of a demon. [ଦ୍ର—ଏ ଅସୁର ପୂର୍ବରୁ ଜାଣିପାରିଥିଲା ଯେ, ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନଙ୍କ ହାତରେ ତାର ନିଧନ ହେବ । ତେଣୁ ପ୍ରଦ୍ୟୁମ୍ନଙ୍କୁ ତାଙ୍କ ଜନ୍ମର ୬ଷ୍ଠ ରାତ୍ରିରେ ସୂତିକାଗାରରୁ ଚୋରି କରି ଆଣି ସମୁଦ୍ରରେ ପକାଇ ଦେଲା ଓ ତତ୍କ୍ଷଣାତ୍ ଗୋଟିଏ ମାଛ ତାଙ୍କୁ ଗିଳି ଦେଲା । ଦୈବଗତ୍ୟା ସେ ମାଛକୁ କେଉଟ ଧରି ଅସୁରର ଘରକୁ ଆଣିଲା । କନ୍ଦର୍ପପତ୍ନୀ ରତିଦେବୀ ମାୟାବତୀ ନାମ ଧାରଣ କରି ସେହି ଅସୁର ଘରେ ଥିଲେ । ସେ ମାଛକୁ କାଟି ତାହା ପେଟ ଭିତରୁ ଆପଣାର ସ୍ୱାମୀ ପ୍ରଦ୍ୟୁମ୍ନଙ୍କୁ ପାଇ ତାଙ୍କୁ ଯତ୍ନପୂର୍ବକ ଲାଳନପାଳନ କରି ଅସୁରବିଦ୍ୟା ଶିକ୍ଷା ଦେଲେ । କ୍ରମେ ପ୍ରଦ୍ୟୁମ୍ନ ଷୋଡ଼ଶବର୍ଷ ବୟସରେ ପଦାର୍ପଣ କରନ୍ତେ ମାୟାବତୀ ତାଙ୍କ ପୂର୍ବର ସକଳ ବୃତ୍ତାନ୍ତ ଜଣାଇଲେ । ତହୁଁ ପ୍ରଦ୍ୟୁମ୍ନ (ଯେ ପୂର୍ବ ଜନ୍ମରେ କନ୍ଦର୍ପ ଥାଇ ମହାଦେବଙ୍କ କୋପାନଳରେ ଭସ୍ମୀଭୂତ ହୋଇଥିଲେ, ସେ) ଶମ୍ବରାସୁରର ପ୍ରାଣସଂହାର କରି ରତି ଦେବୀଙ୍କୁ ପୁନର୍ବାର ସ୍ତ୍ରୀରୂପେ ପ୍ରାପ୍ତ ହେଲେ ।] ୧୫ । ଦିବୋଦାସଙ୍କ ଶତ୍ରୁ ଦୈତ୍ୟବିଶେଷ (ହି. ଶ)—15. Name of another demon. [ଦ୍ର—ଦିବୋଦାସଙ୍କୁ ରକ୍ଷା କରିବା ପାଇଁ ଇନ୍ଦ୍ର ଏହାକୁ ପାହାଡ଼ରୁ ତଳକୁ ଫିଙ୍ଗି ମାରିପକାଇଥିଲେ—ହି. ଶ ।] ୧୬ । ମତ୍ସ୍ୟ (ହି ଶ)—16. Fish. ୧୭ । ତାଳ ବୃକ୍ଷ (ହି. ଶ)—17. Palmyra tree. ୧୮ । ଶବର ଚନ୍ଦନ (ଦ୍ରବ୍ୟଗୁଣ)—18. A kind of sandal. ସ. ବିଣ—୧ । ଶ୍ରେଷ୍ଠ—1. Excellent. ୨ । ଭାଗ୍ୟବାନ୍ (ହି. ଶ)—2. Fortunate. ୩ । ସୁଖୀ (ହି. ଶ)—3. Happy. ଦେ. ବି—୧ । ଉତ୍କଳ ଦେଶ ପ୍ରଚଳିତ ସୂର୍ଯ୍ୟପୂଜା ଉତ୍ସବ ବିଶେଷ; ଶମ୍ବର ଦଶମୀ—1. A festival of worshipping the Sun-god. ୨ । (ସଂ. ଶାମ୍ବର) ରାଜପୁତାନାର ଅନ୍ତର୍ଗତ ଲବଣୋତ୍ପାଦକ ହ୍ରଦ (ଶାମ୍ବର ଦେଖ)—2. Name of a lake in Rajputana; the Sambhar lake (See Śāmbhara) ୩ । ରାଜପୁତାନାର ଶାମ୍ବର ହ୍ରଦର ନିକଟବର୍ତ୍ତୀ ଏକ ନଗର—3. Name of a town on the Śāmbhara lake.

**ଶମ୍ବର କନ୍ଦ**—ସ. ବି—ବାରାହୀ କନ୍ଦ—A kind of edible root
Śambara kanda Diosco; rea yam.

**ଶମ୍ବର ଚନ୍ଦନ**—ଦେ. ବି.—ଶବର ଚନ୍ଦନ (ଦେଖ)—Sabara
Śambara chandana chandana (See).

**ଶମ୍ବର ଦଶମୀ**—ଦେ. ବି—(ସ. ଶାମ୍ବ ଦଶମୀ)—ବ୍ରତ ବିଶେଷ; ପୌଷ
Śambara daśamī ମାସର ଶୁକ୍ଳ ଦଶମୀ—(ଏ ଦିନ ସୂର୍ଯ୍ୟ-ଶାମ୍ବଦଶମୀ ପୂଜା କରାଯାଏ)—A festival of worshipping (ଶମ୍ବର ଦଶେଇ—ଗ୍ରାମ୍ୟରୂପ) the Sun on the 10th day of the bright fortnight of the month of Pousha.

**ଶମ୍ବର ଦୂଷଣ**—ସଂ. ବି—କାମଦେବ; ଶମ୍ବରାରି—Cupid. [ଉ—
Śambara dushṇa ବୋଲି ଦେଲି ବି ଚନ୍ଦନ ଶମ୍ବରଦୂଷଣ-ଭଞ୍ଜ—ବୈଦେହୀଶବିଳାସ]

**ଶମ୍ବର ଦେଶଜ**—ସ.ବି.—ଶ୍ୱେତ ଲୋଧ୍ର (ବିଶ୍ୱ କୋଷ)—The white
Śambara deśaja variety of Simplocus Racemosus.

**ଶମ୍ବର ସୂଦନ**—ସ. ବି—୧ । ଶମ୍ବରାସୁରର ଶତ୍ରୁ; ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନ-
Śambara sūdana Name of Śrikṛushṇa's
ଶମ୍ବରାରି—ଅନ୍ୟରୂପ son. ୨ । କାମ; କନ୍ଦର୍ପ; ମଦନ—2. Cupid (deified).

**ଶମ୍ବରାସୁର**—ସଂ. ବି—ଶମ୍ବର (୧୪) (ଦେଖ)—Śambara (14)
Śambarāsura (See)

**ଶମ୍ବରାହାର**—ସଂ. ବି (ଷଷ୍ଠୀତତ୍)—ବନ ବଦର; ଭୁଇଁ ବରକୋଳି
Śambarāhāra Wild Jujube.

ଶମ୍ବରି—ଦେ. ବିଣ—ଶଅଁବରି (ଦେଖ)
Śambari Śa-añbari (See)
শম্বরের साम्भरी

ଶମ୍ବରି ଚମଡ଼ା—ଦେ. ବି—ଶମ୍ବର ମୃଗର ପରିଷ୍କୃତ ଚର୍ମ—
Śambari chamarḍā Sambhar hide; Sambhar leather.
শম্বরের চামড়া साम्भरीचमड़ा

ଶମ୍ବରୀ - ସଂ. ବି—୧ । ଅଖୁପର୍ଣ୍ଣୀ; ମୂଷାକାନି (ଦେଖ) Mushākāni
Śambari (See) ୨ । ବୃହଦନ୍ତୀ ବୃକ୍ଷ—2. The large Croton tree. ୩ । ମାୟା—3. Illusion.

ଶମ୍ବରୀଗନ୍ଧା—ସଂ. ବି—ବନ ତୁଳସୀ (ବୈ. ଶ)
Śambarīgandhā Wild Basil plant.

ଶମ୍ବଳ—ସଂ. ବି—(ଶମ୍ବ ଧାତୁ=ଗମନ କରିବା+କରଣ ଅଳ)—୧ ।
Śambaḷa ପାଥେୟ; ବାଟ ଖର୍ଚ୍ଚ; ସମ୍ବଳ—1 Travelling expenses. ୨ । ପାଣ୍ଡି; ପୁଞ୍ଜି—2. Capital; stock in trade. ୩ । ଧନ—3. Wealth; riches: ୪ । ମାତ୍ସର୍ଯ୍ୟ; ପରଶ୍ରୀକାତରତା—4. Pain on seeing another's weal. ୫ । କୂଳ; ତୀର—5. Shore; bank. ୬ । ଈର୍ଷା—6. Envy. ୭ । ଶମ୍ବର (ଦେଖ)—7. Śambara. (See)

ବିଣ. ପୁଂ—୧ । ପରଶ୍ରୀକାତର—1.Unable to endure another's prosperity; pained at another's weal. ୨ । ଈର୍ଷୀ—2. Envious; spiteful.
(ଶମ୍ବଳା—ସ୍ତ୍ରୀ)

ଶମ୍ବଳୀ—ସଂ ବି. ସ୍ତ୍ରୀ—( ଶମ୍ବଳ+ଈ )—କୁଟ୍ଟିନୀ (ଶବ୍ଦକଳ୍ପଦ୍ରୁମ)—
Śambaḷi A panderess; a procuress; a bawd.

ଶମ୍ବା—ସଂ.ବି.—(ଶମ୍ ଧାତୁ+କର୍ତ୍ତୃ. ବ+ଆ)—ଶମା (ଦେ )—
Śambā Śamā (See).

ଶମ୍ବାକୃତ—ସଂ. ବିଣ.—(ଶମ୍ବ=ଦ୍ୱିଗୁଣ ବାର କର୍ଷଣ+କୃତ; ଅ
Śambākṛuta ଆଗମ)—ଦୁଇ ଓଡ଼ ଚଷା ହୋଇଥିବା (କ୍ଷେତ୍ର)—Twice ploughed (field)

ଶମ୍ବାଳି(ଳୁ)ଆ—ଦେ. ବି.—(ସ.ଶୁକ)—ଶମ୍ବଳ ଲୋମାବୃତ ଏକ ଜାତୀୟ
Śambāḷi(ḷu)ā କୃମି; ଶମ୍ବାଳଅ—Caterpiller; wooly bear.
শুঁয়াপোকা ৰুআ (ଶମ୍ବାଳୁ[ଳି]—ଅନ୍ୟରୂପ)

ଶମ୍ବୁ(ମ୍ବୂ)—ସଂ. ବି.—(ଶମ୍ ଧାତୁ=ଶାନ୍ତ ହେବା+ଉ; ବ ଓ ଉ
Śambu(mbū) ଆଗମ)—୧ । ଶାମୁକ; ଦୁଇ ଫାଳିଆ ଶଙ୍ଖ; ଶାମୁକା—1. Bivalve shell. ୨ । ଶଙ୍ଖ—2. Conch shell. ୩ । ଗେଣ୍ଡା—3. Snail. ୪ । ଗଜକୁମ୍ଭର ଅଗ୍ରଭାଗ—4. The fore part of the elephant's head. ୫ । ଦୈତ୍ୟ ବିଶେଷ 5. Name of a demon.

ଶମ୍ବୁ(ମ୍ବୂ)କ—ସଂ. ବି.—(ଶମ୍ବୁ, ଶମ୍ବୁ+କ)—୧ । ଶମ୍ବୁ (ଦେଖ) 1.
Samba(mbu)ka Śambu (See). ୨ । ଜନୈକ ଶୂଦ୍ର ତାପସ (ରାମଚନ୍ଦ୍ର ଏହାର ଶିରଚ୍ଛେଦନ କରିଥିଲେ)—2. Name of a Śūdra sage beheaded by Rāmachandra.

[ବି—ଏ ତ୍ରେତାଯୁଗରେ ସ୍ୱର୍ଗକାମନାରେ କଠୋର ତପସ୍ଚରଣରେ ପ୍ରବୃତ୍ତ ହେଲେ, କିନ୍ତୁ ଶୂଦ୍ରର ତପସ୍ୟାରେ ଅଧିକାର ନ ଥିବାରୁ ରାଜ୍ୟରେ ପାପ ସଂଚାର ହେଲା ଏବଂ ଏହି ପାପର ଫଳରେ ଗୋଟିଏ ବ୍ରାହ୍ମଣ କୁମାର ଅକାଳରେ ମୃତ୍ୟୁମୁଖରେ ପତିତ ହେଲା । ପିତା ମୃତ ପୁତ୍ରକୁ ନେଇ ରାଜା ରାମଚନ୍ଦ୍ରଙ୍କ ନିକଟରେ ପହଞ୍ଚିବାରୁ ରାମଚନ୍ଦ୍ର ଏବଂଭୂତ ଅକାଳ ମୃତ୍ୟୁର କାରଣ ଅନୁସନ୍ଧାନ କରିବାକୁ ବହିର୍ଗତ ହୋଇ ଅରଣ୍ୟ ମଧ୍ୟକୁ ଯାଇ ଦେଖିଲେ ଯେ, ଏହି ଶୂଦ୍ରମୁନି ଗୋଡ଼କୁ ଉର୍ଦ୍ଧ୍ୱକୁ ଓ ମୁଣ୍ଡକୁ ତଳକୁ କରି ସ୍ୱଦେହକୁ ଟଙ୍ଗାଇଦେଇ ତପସ୍ୟା କରୁଅଛନ୍ତି; ରାମଚନ୍ଦ୍ର ଏହା ଦେଖି ଏ ତପସ୍ୱୀଙ୍କର ଶିରଚ୍ଛେଦନ କଲେ ଏବଂ ତତ୍ଫଳରେ ମୃତ ବ୍ରାହ୍ମଣପୁତ୍ର ବଞ୍ଚି ଉଠିଲା ଓ ଶୂଦ୍ର ତପସ୍ୱୀ ସ୍ୱର୍ଗଲାଭ କଲେ ।]

ଶମ୍ବୁକଣ୍ଠୀ—ସଂ ବିଣ. ସ୍ତ୍ରୀ—କମ୍ବୁକଣ୍ଠୀ; ଯେଉଁ ସ୍ତ୍ରୀର କଣ୍ଠ ଶଙ୍ଖପରି
Śambukanṭhī ରେଖାତ୍ରୟଯୁକ୍ତ—(a woman) Having a neck with 3 wrinkles (which are considered graceful). (ଉ—ଶମ୍ବୁକଣ୍ଠୀ କମ୍ବୁନଦ ଗୋଷ୍ଠୀ, ଶମ୍ବୁଜତ ଉରଜ ଗୁରୁଭୂଷା—ସଙ୍ଗୀତ)

ଶମ୍ଭ—ସଂ. ବିଣ—(ଶମ୍=କଲ୍ୟାଣ+ଭା ଧାତୁ=ପ୍ରାପ୍ତି ପାଇବା+କର୍ତ୍ତୃ
Śambha ଅ)—୧ । କଲ୍ୟାଣ ଯୁକ୍ତ—1. Blessed: prosperous. ୨ । ଶୁଭଯୁକ୍ତ—2 Auspicions. ବି.—୧ । ବଜ୍ର; ଅଶନି—1. Thunderbolt. ୨ । ବର୍ଚ୍ଛାର ଫଳା—2 The blade of a spear.

ଶମ୍ଭଳ—(ଳା)ସଂ ବି.—(ଶମ୍+ଭଲ ଧାତୁ+କର୍ତ୍ତୃ.ଅ+ଆ)—୧ । ଗଣ୍ଡକାନ୍ତ
Śambhaḷa(ḷā) ଅଞ୍ଚଳର ଅନ୍ତର୍ଗତ ସ୍ୱନାମଖ୍ୟାତ ପ୍ରାଚୀନ ଗ୍ରାମବିଶେଷ; (ଅଧୁନାତନ ସମ୍ବଲପୁର)—1. The ancient name of Sambalpur. [ବି—ମହାଭାରତର ବନପର୍ବରେ ଏ ଗ୍ରାମର ନାମ ଉଲ୍ଲେଖ ଅଛି । କେହି କେହି ଏହାକୁ ଯୁକ୍ତ-ପ୍ରଦେଶର ମୋରାଦାବାଦ (ଏଠାରୁ ୧୦ ମାଇଲ ପୂର୍ବବର୍ତ୍ତୀ) ଅଞ୍ଚଳର କୌଣସି ଗ୍ରାମ ବୋଲି କହନ୍ତି । ଭାଗବତ (୧୨।୨।୧୮) ରେ ଏହି ଗ୍ରାମରେ ବିଷ୍ଣୁ କଳ୍କି ଅବତାର ଗ୍ରହଣ କରିବେ ବୋଲି ସଂକେତ କରା ଯାଇଅଛି । ବିଷ୍ଣୁ କଳ୍କି ରୂପରେ ଏଠାରେ ଅବତୀର୍ଣ୍ଣ ହୋଇ ବନ୍ଧୁ ବାନ୍ଧବ ସହ ସହସ୍ର ବର୍ଷ ଅବସ୍ଥାନ କରିବେ । ସ୍କନ୍ଦ ପୁରାଣରେ ଶମ୍ଭଳ ମହାତ୍ମ୍ୟରେ ଏ ତୀର୍ଥର ପରିଚୟ ପ୍ରଦତ୍ତ ହୋଇଅଛି । (ବିଶ୍ୱକୋଷ)

୨ । ଯୁକ୍ତ ପ୍ରଦେଶର ମୋରାଦାବାଦ ଜିଲ୍ଲାର ଅନ୍ତର୍ଗତ ଗୋଟିଏ ତହସିଲ ବା ସବ୍‌ଡିଭିଜନ୍ ଓ ତହିଁର ଗୋଟିଏ ପ୍ରଗନ୍ନା ଓ ସବ୍‌ଡିଭିଜନର ରାଜଧାନୀ—2 A subdivision, Pergana and subdivisionl headquarters of the district Moradabad in U.P.

ଶମ୍ଭଲା(ଲୀ)—ସଂ ବି. ସ୍ତ୍ରୀ—(ଶମ୍ ଧାତୁ=ଗମନ କରିବା+ଲ ଧାତୁ=
Śambhaḷā (ḷī) ଗ୍ରହଣ କରିବା+କର୍ତ୍ତୃ.+ଅ+ଆ;+ଈ; କମ୍ବା

ଶମ୍=ସୁଖ+ଭଲ ଧାତୁ=ବଣ୍ଟନା କରିବା+କର୍ତ୍ତୃଂଅ+ଅ; +ଈ) - ଶମ୍ଭଲୀ; କୁଟ୍ଟିନୀ; ଦୂତୀ; ପ୍ରଣୟଦୂତିକା—A procuress; bawd; a panderess; a female messenger employed between two lovers. [ଉ—ତାମ୍ବୂଳ କରଙ୍କଧର ଗୃହକୁ ପଶ୍ଚାତେ ଧନିକ ନନ୍ଦନଗଣ ଶମ୍ଭଲୀ ଶୋଷିତ ସର୍ବସ୍ବ,—ରାଧାନାଥ]

**ଶମ୍ଭୁ** - ସ.ବି—(ଶମ୍=କଲ୍ୟାଣ+ଭୂ ଧାତୁ=ପ୍ରାପ୍ତି ପାଇବା+ଅଧିକରଣ Sambhu ଉ; ଯାହାଙ୍କଠାରେ କଲ୍ୟାଣ ମିଳିପାରେ)—୧। ମହାଦେବ; ଶିବ—1. Siba. ୨। ବିଷ୍ଣୁ—2 Bishṇu. ୩। ବ୍ରହ୍ମା—3. Brahmā. ୪। ବୁଦ୍ଧ—4. Buddha. ୫। (ବୈଦ୍ୟକ) ଧଳା ଅର୍କ ଗଛ—5 Calotropis Gigantea (white variety) ଦେ. ବି. ପୁଂ—ଶମ୍ଭୁ ଶଂଭୁ ଲୋକଙ୍କ ନାମ—A name given to males.

**ଶମ୍ଭୁଆ** —ଦେ. ବି (ଅନାଦରାର୍ଥକ)—ଶମ୍ଭୁର ଡାକ ନାମ— Sambhuā Name for calling Sambhu. ଶଭ୍ଭୁ ଶଂଭୁଆ

**ଶମ୍ଭୁକର** —ଦେ. ବି—୧। ପୁରୀ ଜିଲ୍ଲା ସିହାଳି ବ୍ରାହ୍ମଣ ଶାସନର Sambhukara କେତେକ କୁଳୀନ ବ୍ରାହ୍ମଣଙ୍କର ପୂର୍ବପୁରୁଷଙ୍କ ନାମ; (ଏହାଙ୍କ ନାମ ଅନୁସାରେ ଏହାଙ୍କ ବଂଶଧରମାନେ 'ଶମ୍ଭୁକର ମିଶ୍ର' ବୋଲି ଏ ପର୍ଯ୍ୟନ୍ତ ପରିଚିତ)— 1. Name of a Brahman from whom are descended the Sambhukara misra Brāhmaṇas of Puri. ୨। ପୁରୀ ଜିଲ୍ଲାର ସିହାଳିର ଶାସନର ବ୍ରାହ୍ମଣମାନଙ୍କର ଶାଖା ବିଶେଷ—2. Name of a sect of Brāhmaṇas of Puri.

**ଶମ୍ଭୁକର ବାଜପେୟୀ** —ଦେ. ବି—ପୁରୀ ଜିଲ୍ଲାର ସିହାଳିଶାସନର Sambhukara bājapeyi ପ୍ରସିଦ୍ଧ ପ୍ରାଚୀନ ପଣ୍ଡିତ । [ଦ୍ର— ଏହାଙ୍କ ରଚିତ ସ୍ମୃତି ଶାସ୍ତ୍ର ଏପର୍ଯ୍ୟନ୍ତ ଦାକ୍ଷିଣାତ୍ୟରେ ପ୍ରାମାଣିକ ଗ୍ରନ୍ଥରୂପେ ପ୍ରଚଳିତ ।]—Name of the author of a treatise on Hindu law who was a resident of the Puri district.

**ଶମ୍ଭୁକର ମିଶ୍ର** —ଦେ. ବି—୧। ଶମ୍ଭୁକର (୧) (ଦେଖ) Sambhukara misra 1. Sambhukara (1) (See) ୨। ଶମ୍ଭୁକର ପଦ୍ଧତି ନାମକ ସ୍ମୃତିଶାସ୍ତ୍ର ପ୍ରଣେତା— 2. Author of Sambhukara paddhati, a treatise on Hindu law.

**ଶମ୍ଭୁ ଗିରି** —ସ. ବି.—(ଷଷ୍ଠୀ ତତ୍ ବା ମ.ପ.ଲୋ.)—କୈଳାସ ପର୍ବତ— Sambhu giri The Kailāsa mountain.

**ଶମ୍ଭୁଚନ୍ଦ୍ର (ନାଥ)** —ଦେ. ବି. ପୁଂ—ପୁରୁଷ ନାମ—A name given Sambhuchandra (nātha) ଶମ୍ଭୁନାଥ ଶଂଭୁନାଥ to males.

**ଶମ୍ଭୁଚନ୍ଦ୍ର ମୁଖୋପାଧ୍ୟାୟ** -ବଙ୍ଗର ସ୍ୱର୍ଗୀୟ ପ୍ରସିଦ୍ଧ ଲେଖକ,ଗ୍ରନ୍ଥକାର ଓ ରାଜ- Sambhuchandra mukhopādhyāya ନୀତିଜ୍ଞ—Name of a late Bengali author and politician. [ଦ୍ର—ଏ ୧୮୩୯ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରି ୧୮୯୪ ଖ୍ରୀଷ୍ଟାବ୍ଦରେ ସ୍ୱର୍ଗାରୋହଣ କରିଥିଲେ । ଏ ହିନ୍ଦୁ ପାଟ୍ରିଅଟ୍ ଓ ମୁଖାର୍ଜିସ୍ ମାଗାଜିନ୍ ଏବଂ ରଇସ ଆଣ୍ଡ ରୟତ୍ସ ପ୍ରଭୃତି ଇଂରାଜୀ ପତ୍ରିକାର ସମ୍ପାଦକ ଥିଲେ । ମୁର୍ଶିଦାବାଦ ନବାବଙ୍କ ଦେୱାନ, କାଶୀପୁର ରାଜାଙ୍କ ସେକ୍ରେଟେରି ଏବଂ ତ୍ରିପୁରା ମହାରାଜାଙ୍କ ମନ୍ତ୍ରୀରୂପେ ମଧ୍ୟ ଏ କେତେକ କାଳ କାର୍ଯ୍ୟ କରିଥିଲେ । ଲକ୍ଷ୍ନୌର Talukdar's Association ( ତାଲୁକଦାରମାନଙ୍କ ସଂଘ ) ଏବଂ କଲିକତାର Indian League (ଭାରତୀୟ ସଂଘ) ଆଦି ରାଜନୀତିକ ଅନୁଷ୍ଠାନମାନ ଏହାଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ଏ ଇଂରାଜୀ ଭାଷାରେ ସୁପଣ୍ଡିତ, ନିର୍ଭୀକ ଏବଂ ତେଜସ୍ୱୀ ଥିଲେ ଏବଂ ରାଜନୀତିକ ବିଷୟାବଳି ସମ୍ବନ୍ଧରେ ଅନେକ ମୂଲ୍ୟ ପୁସ୍ତକ ରଚନା କରିଥିଲେ । ବଙ୍ଗୀୟ ସିଭିଲିଆନ୍ ସ୍ମିଥ୍ ସାହେବ ଏହାଙ୍କ ଜୀବନଚରିତ ପ୍ରଣୟନ କରିଅଛନ୍ତି । ଅହମଦାବାଦ ଗୋର୍ଜର ବିଶ୍ୱବିଦ୍ୟାଳୟ ଏହାଙ୍କ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ଏହାଙ୍କୁ ଡାକ୍ତର 'Doctor' ଉପାଧି ପ୍ରଦାନ କରିଥିଲେ । ]

**ଶମ୍ଭୁ(ମ୍ଭୋ)ଜୀ** —ଦେ. ବି ( ନାମ)—ଛତ୍ରପତି ଶିବାଜୀଙ୍କର ଜ୍ୟେଷ୍ଠପୁତ୍ର— Sambhu(mbho)ji The eldest son of Sibāji ଶମ୍ଭୁଜୀ ଶଂଭୁଜୀ and king of the Marhattas. [ଦ୍ର— ଖ୍ରୀ. ୧୬୫୮ ରେ ଏହାଙ୍କର ଜନ୍ମ ଓ ୧୬୮୯ ରେ ମୃତ୍ୟୁ । ଯୁବକ ଅବସ୍ଥାରେ ଏ ଅତି ଉଚ୍ଛୃଙ୍ଖଳ ହେବାରୁ ଶିବାଜୀ ଏହାଙ୍କୁ ବନ୍ଦୀ କରିଥିଲେ । କିନ୍ତୁ ଶିବାଜୀଙ୍କ ମୃତ୍ୟୁ ପରେ ୧୬୮୦ରେ ଏ ରାଜା ହେଲେ । ଏହାଙ୍କ ଅମଳରେ ରାଜ୍ୟରେ ନାନା ବିଶୃଙ୍ଖଳା ଘଟିଲା ଓ ଅବଶେଷରେ ଏ ଅରଙ୍ଗଜେବଙ୍କଦ୍ୱାରା ବନ୍ଦୀ ହେଲେ । ମୋଗଲ ସମ୍ରାଟ ଅରଙ୍ଗଜେବ ଏହାଙ୍କୁ ମୁସଲମାନ ଧର୍ମରେ ଦୀକ୍ଷିତ ହେବା ନିମିତ୍ତ କହିବାରୁ ଏ ତାଙ୍କୁ କଟୂକ୍ତି ଦ୍ୱାରା ତିରସ୍କାର କଲେ । ଏହାର ଫଳସ୍ୱରୂପ ଅରଙ୍ଗଜେବଙ୍କ ଆଦେଶରେ ଏହାଙ୍କ ଚକ୍ଷୁ ଉତ୍ପାଟିତ ଏବଂ ଜିହ୍ୱା କର୍ତ୍ତିତ ହେଲା ଏବଂ ସେ ଏଥିର ଫଳରେ ପ୍ରାଣତ୍ୟାଗ କଲେ । ]

**ଶମ୍ଭୁଜୀ ଦ୍ୱିତୀୟ** —ଦେ ବି (ନାମ) - ଛତ୍ରପତି ଶିବାଜୀଙ୍କ ନାତି— Sambhuji dwitiya Name of a grandson of ଦ୍ୱିତୀୟ ଶମ୍ଭୁଜୀ Sibāji [ଦ୍ର—ଏ ଶିବାଜୀଙ୍କ କନିଷ୍ଠ ପୁତ୍ର ରାଜାରାମଙ୍କ ଦ୍ୱିତୀୟ ଶାମ୍ଭୁଜୀ ଦ୍ୱିତୀୟ ପୁତ୍ର । ଏହାଙ୍କ ଜ୍ୟେଷ୍ଠଭ୍ରାତାଙ୍କ ମୃତ୍ୟୁ ପରେ ଏ ରାଜା ହେଲେ ଏବଂ କୋଲାପୁରଠାରେ ରାଜଧାନୀ ସ୍ଥାପନ କଲେ । ଏହାଙ୍କ ବଂଶଧରମାନେ ବର୍ତ୍ତମାନ କୋଲାପୁରର ରାଜା ଅଛନ୍ତି ।]

**ଶମ୍ଭୁଜୀ ଗଣେଶ** —ଦେ.ବି (ନାମ)-ଓଡ଼ିଶାର ଜଣେ ମରହଟ୍ଟା ଶାସନକର୍ତ୍ତା Sambhuji ganesha —Name of a Marଶମ୍ଭୁଜୀ ଗଣେଶ hatta Governor of Orissa. [ଦ୍ର—ଭବାନୀ ଶାଂଭୁଜୀ ଗଣେଶ ପଣ୍ଡିତଙ୍କ ଉତ୍ତାରୁ ଏ ମରହଟ୍ଟା ଅମଳରେ ଓଡ଼ିଶାର ସୁବାଦାର ରୂପେ ନିଯୁକ୍ତ ହୋଇଥିଲେ । ଖ୍ରୀ. ୧୭୬୯ ଠାରୁ ୧୭୭୧ ପର୍ଯ୍ୟନ୍ତ ଏ ଓଡ଼ିଶାର ସୁବାଦାର ଥିଲେ । ଏ ଅତ୍ୟନ୍ତ ପ୍ରଜାପୀଡ଼କ ଥିଲେ ଓ ଓଡ଼ିଶାରେ ନାନା ପ୍ରକାରର

ନୂତନ କର ବସାଇଥିଲେ । ଏହାଙ୍କ ଶାସନର ଶେଷ ଭାଗରେ ଓଡ଼ିଶାରେ ଏକ ଭୟଙ୍କର ଦୁର୍ଭିକ୍ଷ ପଡ଼ି ଶତ ଶତ ଗ୍ରାମ ଜନଶୂନ୍ୟ କରି ଦେଇଥିଲା ।]

**ଶମ୍ଭୁ ତେଜଃ**—ସ. ବି ( ୬ଷ୍ଠୀତତ୍ )—ପାରଦ (ହି. ଶ.)—
Sambhu tejah Mercury.
[ଦ୍ର—ପାରଦ ଶିବଙ୍କ ବୀର୍ଯ୍ୟ ବୋଲି ପୁରାଣରେ କଥିତ ।]

**ଶମ୍ଭୁ ଦୈତ୍ୟ**—ଦେ· ବି—ଶାରଳା ଦାସଙ୍କ ରଚିତ ବିଲଙ୍କା ରାମାୟଣରେ
Sambhu daitya ବର୍ଣ୍ଣିତ ବିଲଙ୍କା ରାବଣର ସେନାପତି ଅସୁରବିଶେଷ—Name of a demon, general of Bilanka Rābana. [ ଦ୍ର—ଏହାଙ୍କ ଭାଇଙ୍କର ନାମ ନିଶମ୍ଭୁ ବୋଲି କବି ଲେଖି ଅଛନ୍ତି ।]

**ଶମ୍ଭୁନାଥ ପଣ୍ଡିତ**—(ନଞ୍ଚିଶ୍)—ଦେ. ବି. (ନାମ)—ଖ୍ରୀ: ୧୮୨୦ରେ
Sambhunātha Pandita ଏହାଙ୍କ ଜନ୍ମ ଓ ୧୮୬୭ରେ ମୃତ୍ୟୁ । ଏ କଲିକତା ବାସୀ କାଶ୍ମୀରୀ ବ୍ରାହ୍ମଣ ଥିଲେ । ସ୍ୱୀୟ ପ୍ରତିଭା ବଳରେ ଏ ପ୍ରଥମେ କଲିକତାର ସଦର ଦେବାନି ଅଦାଲତରେ ମାସିକ ଟ ୨୦ରେ ମୋହରରଗିରି କାର୍ଯ୍ୟରୁ କଲିକତାରେ ସରକାରୀ ଓକିଲ, କଲିକତା ପ୍ରେସିଡେନ୍ସି କଲେଜର ଆଇନ ଅଧ୍ୟାପକ ଓ କଲିକତା ହାଇକୋର୍ଟର ଜଜ୍ ହୋଇଥିଲେ । ଏ ଅତି ନ୍ୟାୟପର ଓ ଭଦ୍ର ଥିଲେ; ଏପରି କି, ଚାକରମାନଙ୍କୁ 'ତୁମ୍ଭେ' ବୋଲି ସମ୍ବୋଧନ କରୁଥିଲେ । ଏ କଲିକତାରେ ଗୋଟିଏ ସାଧାରଣ ଚିକିତ୍ସାଳୟ ପାଇଁ ବହୁତ ଖଞ୍ଜି ଯାଇଅଛନ୍ତି । ଏହାଙ୍କ ନାମାନୁସାରେ ସେଠାରେ ଗୋଟିଏ ଚିକିତ୍ସାଳୟ (ଶମ୍ଭୁନାଥ ପଣ୍ଡିତ ହସ୍ପିଟାଲ୍) ଅଛି ।

**ଶମ୍ଭୁ ପ୍ରିୟା (କାନ୍ତା)**—ସ. ବି. ସ୍ତ୍ରୀ—୧ । ପାର୍ବତୀ; ଦୁର୍ଗା—
Sambhu priyā (kāntā) 1. Pārbati; Durgā.
୨ । ଆମଳକୀ; ଅଁଳା—2. Embellic Myrobalan; Phyllanthus Embellica.

**ଶମ୍ଭୁ ବଲ୍ଲଭ**—ସ·ବି—ଶ୍ୱେତ କମଳ; ଶ୍ୱେତ କଇଁ—White water-
Sambhu ballabha lily; Nymphea lotus.

**ଶମ୍ଭୁ ବୀଜ(ର୍ଯ୍ୟ)**—ସ. ବି (୬ଷ୍ଠୀତତ୍)—ପାରଦ—
Sambhu bija(rjya) Mercury.

**ଶମ୍ଭୁ ଭୂଷଣ**—ସ. ବି (୬ଷ୍ଠୀତତ୍)—ଚନ୍ଦ୍ର (ହି. ଶ.)—
Sambhu bhūshana The moon.

**ଶମ୍ଭୁ ମନୁ**—ସ. ବି—ସ୍ୱାୟମ୍ଭୁବ ମନ୍ୱନ୍ତର (ହି. ଶ.)—
Sambhu manu The 1st Manwantara.

**ଶମ୍ଭୁ ଲୋକ**—ସ. ବି—ଶିବ ଲୋକ; କୈଳାସ (ହି. ଶ.)—
Sambhu loka The Kailāsa mountain.

**ଶମ୍ୟା**—ସ. ବି—(ଶମ୍ ଧାତୁ=ଶାନ୍ତ ହେବା+କରଣ. ଯ+ଆ)—
Samyā ୧ । ଯୁଗକୀଳକ; ଶଗଡ଼ ଯୁଆଳିର ବାଙ୍ଗୁଲି, ବଳଦ ଯୁଆଳିର ଶଙ୍କୁ—1. The pegs or spikes attached to the ends of the yoke. ୨ । ଲଗୁଡ଼; ଯଷ୍ଟି—2. Strick; cudgel.

**ଶମ୍ୟାକ**—ସ. ବି—(ଶମ୍ଯ+ଅକ)—୧ । ଶମୀପତ୍ରଗ; ଶମୀ ଫଳରେ
Samyāka ଥିବା ଚେରେ— 1. A powder found in the fruit of the spung tree. ୨ । ଶମୀ ବୃକ୍ଷ (ଦେଖ)—2. Sami bruksha (See) [ଦ୍ର—ତୋପାଦରେ ଲହିଲ୍ ଅଳତା ପୋଛି ଶମ୍ୟାକ ଧଳ ନଦେ ।] ୩ । ଅରବ୍ୱେଧ ବୃକ୍ଷ; ସୁନାରୀ ଗଛ (ହି. ଶ)—
3. Cassia fistula (tree)

**ଶଯ**—ଦେ. ବି—(ସ. ଶଯ୍ୟା)—ଶଯ୍ୟା, ଶେଯ, ବିଛଣା—
Saja Bed; bedding.

**ଶୟ୍ୟ**—ସ· ବି—(ଶୀ ଧାତୁ=ଶୋଇବା+ଅଧିକରଣ. ଅ; ଯାହା ଉପରେ
Saya ଶୟନ କରଯାଏ)—୧ । ଶଯ୍ୟା—1. Bed; bedding. ୨ । (+କରଣ. ଅ ଯାହାର ପରାକ୍ରମ ଯୋଗେ ଜୀବ ଶୟନ କରେ)—ନିଦ୍ରା—2. Sleep. ୩ । ( +ଭାବ· ଅ)—ଶୟନ—3. Sleeping; lying in bed. ୪ । ପଣ—4. Wager. ୫ । (+ଅଧିକରଣ. ଅ) ହସ୍ତ—( ଏହା ଉପରେ ମୁଣ୍ଡ ଦେଇ ଲୋକେ ଶୁଅନ୍ତି ବୋଲି)—5 The hand. ୬ । (+ଅଧିକରଣ; ଅ ସର୍ପ—6. Serpent. **ବିଣ.** ପୁଂ—(+କର୍ତ୍ତୃ. ଅ)—
[ଶୟା—ସ୍ତ୍ରୀ] ଶୟନକାରୀ—Sleeping; lying down
[ଦ୍ର—ସମାସରେ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ, ଯଥା—ଭୂଶୟ=ଯେ ଭୂମିରେ ଶୁଏ; ବଳେଶୟ=ଯେ ବଳ ବା ଗର୍ତ୍ତରେ ଶୁଏ; କମଳେଶୟ=ଯେ ପଦ୍ମ ଉପରେ ଶୋଇଥିଲେ ଅର୍ଥାତ୍ ବ୍ରହ୍ମା; ଗୁହାଶୟ=ଯେ ଗୁହାରେ ଶୁଏ ।]

**ଶୟଣ୍ଡ(ତ)**—ସଂ· ବିଣ·ପୁଂ (ଶୀ ଧାତୁ+କର୍ତ୍ତୃ ଅଣ୍ଡ; (ଅତ)-ନିଦ୍ରାଶୀଳ-
Sayanda(ta) (ଶୟଣ୍ଡା—ସ୍ତ୍ରୀ) Sleepy.

**ଶୟଚାନ**—ପ୍ରାଦେ (ମେଦିନୀପୁର) ବି (ସଂ. ଶ୍ୟେନ) ଶ୍ୟେନ, ଶଞ୍ଚାଣ—
Sayachāna Hawk. [ ଦ୍ର—କେହେ ଏହାକୁ ଓଡ଼ିଆ ଶବ୍ଦ ବୋଲି ଲେଖି ଅଛନ୍ତି । କିନ୍ତୁ ଏହା ବଙ୍ଗଳାରେ ବ୍ୟବହୃତ ।]

**ଶୟ(ୟା)ଣ୍ଡକ**—ସଂ. ବିଣ—(ଶୟଣ୍ଡ+କ)—କୃକଲାସ (ବିଶ୍ୱକୋଷ);
Saya(yā)ndaka Chameleon.

**ଶୟଥ**—ସଂ· ବି—( ଶୀ ଧାତୁ=ଶୋଇବା+କର୍ତ୍ତୃ. ଅଥ )—୧ ।
Sayatha ଅଜଗର ସାପ—1. The Boa snake. ୨ । ବରାହ—2. Wild boar. ୩ । (+ଭାବ. ଅଥ)—ମୃତ୍ୟୁ—3. Death. ୪ । (+କରଣ. ଅଥ) ଯମ—(ବିଶ୍ୱକୋଷ)—4. The God of death. ୫ । (+କର୍ତ୍ତୃ. ଅଥ)—ମତ୍ସ୍ୟ—5. Fish. ୬ । (+ଭାବ. ଅଥ)—ଗାଢ଼ ନିଦ୍ରା (ହି. ଶ)—6. Slumber. ବିଣ-ନିଦ୍ରାଳୁ— Sleepy.

**ଶୟନ**—ସ. ବି.—(ଶୀ ଧାତୁ=ଶୋଇବା+ଭାବ ଅନ)—୧ । ନିଦ୍ରା-
Sayana 1. Sleep. ୨ । ବିଶ୍ରାମ—2. Rest; repose. ୩ । ଶୋଇବା—3. sleeping, lying down.

୪ । (+ଅଧିକରଣ ଅନ) ଶଯ୍ୟା; ବିଛଣା—4. Bed. [ଦ୍ର—ସୁବର୍ଣ୍ଣ ରଚିତ ଶୟନ, ବସନ ଉଜ୍ଜ୍ୱଳ ଅଙ୍କନ ଢଳଲାଥ—ଭାଗବତ]

୫। ଖଟ ପଲଙ୍କ ଆଦି ଶଯ୍ୟାଧାର—5. Bedding; bedstead; couch. ୬। ମୈଥୁନ; ସ୍ତ୍ରୀ ସହବାସ—6. Copulation; sexual intercourse; cohabitation.

ଶୟନ ଏକାଦଶୀ—ଦେ. ବି.—(ସଂ. ଶୟନୈକାଦଶୀ)—ଆଷାଢ଼ ଶୁକ୍ଳ
Śayana ekādaśī ଏକାଦଶୀ; ହରିଶୟନ; ସୁପ୍ତ ଜଗନ୍ନାଥ
শয়ন একাদশী ଦେବଙ୍କର ଦ୍ୱାଦଶ ଯାତ୍ରା ମଧ୍ୟରୁ ଏକତମ—The
शयन एकादशी 11th day of the bright fortnight of Āshā<u>r</u>dha on which the Deity Jagannātha is supposed to sleep for four months. [ଦ୍ର—ଶ୍ରୀ ଜଗନ୍ନାଥ ଦେବ ରଥ ଯାତ୍ରା ପରେ ଗୁଣ୍ଡିଚା ମନ୍ଦିରରୁ ଫେରି ଆସି ଦେବୋତ୍ଥାନ (କାର୍ତ୍ତିକ ଶୁକ୍ଳ ଏକାଦଶୀ) ପର୍ଯ୍ୟନ୍ତ ଚାରିମାସ ନିଦ୍ରିତ ହୁଅନ୍ତି । କଥିତ ଅଛି ଯେ, ବିଷ୍ଣୁ ପ୍ରତିମା ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ସ୍ନାନ କରନ୍ତି, ରଥ ଯାତ୍ରା ପର୍ଯ୍ୟନ୍ତ ପୀଡ଼ିତ ରହନ୍ତି, ରଥ ଯାତ୍ରାରୁ ଫେରି ଶୟନ କରନ୍ତି, ଭାଦ୍ର ଶୁକ୍ଳ ଏକାଦଶୀ ଦିନ ପାର୍ଶ୍ୱ ପରିବର୍ତ୍ତନ କରନ୍ତି, କାର୍ତ୍ତିକ ଶୁକ୍ଳ ଏକାଦଶୀ ଦିନ ନିଦରୁ ଉଠନ୍ତି ଓ ମାର୍ଗଶିର ଶୁକ୍ଳ ଷଷ୍ଠୀଠାରୁ ଶୀତ ଲୁଗା ଘୋଡ଼ି ହୁଅନ୍ତି ।]

ଶୟନ କକ୍ଷ—ସଂ.ବି.—(ମ.ପ.ଲୋ; ଶୟନ + କକ୍ଷ)-ଶୟନାଗାର; ଶୋଇଲ
Śayana kaksha ଘର; ଯେଉଁ ଘରେ ଲୋକେ ଶୁଅନ୍ତି—Bedroom; dormitory.
(ଶୟନ କୁଠରି, ଶୟନପ୍ରକୋଷ୍ଠ—ଅନ୍ୟରୂପ)

ଶୟନ କରିବା—ଦେ. କ୍ରି. (ସଂ ଶୀ ଧାତୁ, ଶୟନ)—ଶୋଇବା—
Śayana kariba To sleep.
শয়ন করা शयन करना

ଶୟନ କର୍ତ୍ତା—ସଂ ବିଣ. ପୁଂ—ଯେ ଶୋଇଥାଏ—
Śayana karttā Sleeping; asleep.
(ଶୟନକର୍ତ୍ତ୍ରୀ—ସ୍ତ୍ରୀ)

ଶୟନ କାରକ—ସଂ. ବିଣ.—ଯେଉଁ ଦ୍ରବ୍ୟ ପ୍ରୟୋଗ କଲେ ନିଦ୍ରା ଆସେ;
Śayana kāraka ନିଦ୍ରାକାରକ; ଶୟନ ଜନକ—Inducing sleep; soporific.

ଶୟନକାଳ—ସଂ ବି.—ଶୋଇବାର ବେଳ—
Śayana kāla The time of sleep.

ଶୟନ ଗୃହ—ସଂ ବି.—ଶୋଇବା ଘର—
Śayana gruha Sleeping room; dormitory.

ଶୟନ ଚତୁର୍ଦ୍ଦଶୀ—ସଂ ବି.—ଆଷାଢ଼ ଶୁକ୍ଳ ଚତୁର୍ଦ୍ଦଶୀ—The 14th
Śayana chaturddaśī day of the bright fortnight of Āshā<u>r</u>dha. [ଦ୍ର—ମହାଦେବ ଆଷାଢ଼ ଶୁକ୍ଳ ଚତୁର୍ଦ୍ଦଶୀଠାରୁ କାର୍ତ୍ତିକ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ନିଦ୍ରାଯାଆନ୍ତି । ବେଙ୍କର ପ୍ରିୟ ଦିବସ ଚତୁର୍ଦ୍ଦଶୀ ଦିନ ଶିବଙ୍କର ଉତ୍ସବମାନ (ଯଥା—ଶୟନ, ଉତ୍ଥାପନ) ହୁଏ ଓ ଏକାଦଶୀ ବିଷ୍ଣୁଙ୍କର ପ୍ରିୟ ଦିବସ ଥିବାରୁ ସେ ଦିନ ବିଷ୍ଣୁଙ୍କର ଉତ୍ସବମାନ (ଯଥା—ଶୟନ, ପାର୍ଶ୍ୱ ପରିବର୍ତ୍ତନ, ଉତ୍ଥାପନ, ପ୍ରାବରଣ) ହୁଏ । ଏ ଦିନ ଭୁବନେଶ୍ୱରର ଲିଙ୍ଗରାଜଙ୍କର ଚତୁର୍ଦ୍ଦଶ ଯାତ୍ରା ମଧ୍ୟରୁ ଗୋଟିଏ ଯାତ୍ରା ।]

ଶୟନ ଜନକ—ସଂ ବିଣ.—ଶୟନୋତ୍ପାଦକ; ଯେଉଁ ଔଷଧ ବା ଦ୍ରବ୍ୟ
Śayana janaka ପ୍ରୟୋଗ କଲେ ନିଦ ମାଡ଼େ—Producing sleep; inducing sleep; soporific.

ଶୟନ ଜନ୍ୟ—ସଂ ବିଣ.—ଶୟନମୂଳକ; ନିଦ୍ରାରୁ ଉତ୍ପନ୍ନ—Pro-
Śayana janya duced or induced by sleep; resulting from sleep; brought about by sleep.
(ଶୟନଜାତ, ଶୟନଜନିତ—ଅନ୍ୟରୂପ)

ଶୟନ ଦ୍ୱାଦଶୀ—ସଂ.ବି.—ଆଷାଢ଼ ଶୁକ୍ଳ ଦ୍ୱାଦଶୀ—(ଦ୍ର—ଏ ଦିନ ରଘୁନାଥ
Śayana dwādaśī ଦେବ ବା ରାମଚନ୍ଦ୍ରଙ୍କ ବିଗ୍ରହଙ୍କର ଦ୍ୱାଦଶ ଯାତ୍ରା ମଧ୍ୟରୁ ଶୟନ ଯାତ୍ରା ଅନୁଷ୍ଠିତ ହୁଏ ।)—The 12th day of the bright fortnight of Āshā<u>r</u>dha (a festival of idols representing Rāmachandra)

ଶୟନ ନିବର୍ତ୍ତକ—ସଂ.ବିଣ.—ଯାହା ନିଦ୍ରାରେ ବାଧା ଘଟାଏ ବା ମନୁଷ୍ୟକୁ
Śayana nibartaka ଉନିଦ୍ର କରାଏ—Producing sleeplessness; obstructing sleep.

ଶୟନ ନିବାରକ
ଶୟନ ପ୍ରତିବନ୍ଧକ } ଅନ୍ୟରୂପ
ଶୟନ ବ୍ୟାଘାତକ

ଶୟନ ନିବାରଣ—ସଂ ବି.—ଶୋଇବା ବିଷୟରେ ବାଧା ଦେବା—
Śayana nibārana Obstruction of one's sleep; the causing of sleeplessness.

ଶୟନ ନିବୃତ୍ତି—ସଂ ବି.—(ଶୟନ+ନିବୃତ୍ତି, ୬ଷ୍ଠୀତତ୍)—ନିଦ୍ରାତ୍ୟାଗ;
Śayana nibrutti ନିଦ ଭାଙ୍ଗିଯିବା; ନିଦରୁ ଉଠିବା—Awaking from sleep; cessation of sleep.

ଶୟନ ପ୍ରତିବନ୍ଧକ—ସଂ ବି.—ଶୋଇବା ସମ୍ବନ୍ଧେ ବିଘ୍ନ ବା ବାଧା—An
Śayana pratibandhaka obstacle to a sleep; disturbance to sleep.
ସଂ ବିଣ—ଶୟନ ନିବର୍ତ୍ତକ (ଦେଖ)
Śayana nibarttaka (See)

ଶୟନ ବାସଃ—ସଂ ବି. (ମ. ପ. ଲୋ)—ରାତ୍ରିବାସ ଲୁଗା; ପଶାଳକରା
Śayana basaḥ ଲୁଗା; ଯେଉଁ ଲୁଗାକୁ ମନୁଷ୍ୟ ରାତିରେ ଶୋଇଲା ବେଳେ ପିନ୍ଧେ—Cloth worn by a person going to sleep.
(ଶୟନବାସ—ଦେ. ରୂପ)

ଶୟନ ଭଙ୍ଗ—ସଂ ବି.—୧ । ନିଦ୍ରାଭଙ୍ଗ; ନିଦଭାଙ୍ଗିବା—1. Awaking
Śayana bhanga from sleep ୨ । ନିଦ୍ରାରେ ବ୍ୟାଘାତ—2. Interruption in sleep.

ଶୟନ ଭଞ୍ଜକ—ସଂ ବିଣ. ପୁଂ—ଯେ ବା ଯାହା ନିଦ ଭଙ୍ଗାଏ—
Śayana bhañjaka Breaking or disturbin sleep.
(ଶୟନ ଭଞ୍ଜିକା—ସ୍ତ୍ରୀ)

ଶୟନ ଭଞ୍ଜନ—ସଂ ବି.—ଶୋଇବା ବ୍ୟକ୍ତିକୁ ବା ପ୍ରାଣୀକୁ ଉଠାଇବା—
Śayana bhañjana Awaking or arousing (a being) from sleep.

ଶୟନ ଯାତ୍ରା—ଦେ·ବି—୧ ବିଷ୍ଣୁ ବିଗ୍ରହଙ୍କର ବା ଜଗନ୍ନାଥ ମହାପ୍ରଭୁଙ୍କର
Śayana jātrā ଗୋଟିଏ ଯାତ୍ରା; ଶୟନ ଏକାଦଶୀ (ଦେଖ)—
1. Śayana ekādaśī ( See ). (ଯଥା —ଏମନ୍ତେ ଚତୁର୍ମାସ୍ୟା ହୋଇ, ଶୟନ ଯାତ୍ରା ସେ ହୁଅଇ—ଯଶୋବନ୍ତ ପ୍ରେମଭକ୍ତିଗୀତା ।) ୨ । ମହାଦେବ ବା ଲିଙ୍ଗରାଜଙ୍କର ଗୋଟିଏ ଯାତ୍ରା; ଶୟନ ଚତୁର୍ଦ୍ଦଶୀ (ଦେଖ)-2. Śayana chaturddaśī (See). ୩ । ରାମଚନ୍ଦ୍ର ବା ରଘୁନାଥଙ୍କର ଗୋଟିଏ ଯାତ୍ରା; ଶୟନ ଦ୍ୱାଦଶୀ ( ଦେଖ )—
3. Śayana dwādaśī ( See ).

ଶୟନ ଯୋଗ୍ୟ—ସଂ. ବିଣ—ଶୟନୀୟ ( ଦେଖ )
Śayana jogya Śayanīya ( See )

ଶୟନାକାଙ୍‌କ୍ଷା—ସଂ· ବି—ଶୋଇବାକୁ ଇଚ୍ଛା—A desire to sleep.
Śayanākāṅkshā ( ଶୟନାଭିଳାଷ—ଅନ୍ୟରୂପ )

ଶୟନାକାଙ୍‌କ୍ଷୀ—ସଂ· ବିଣ· ପୁଂ ( ଶୟନ+ଆ+କାଙ୍‌କ୍ଷ ଧାତୁ+କର୍ତ୍ତୃ. ଇନ୍; ୧ମା· ୧ବ )—ଶୋଇବାକୁ ଉତ୍ସୁକ
Śayanākāṅkshī
(ଶୟନାକାଙ୍‌କ୍ଷିଣୀ—ସ୍ତ୍ରୀ) —Desiring sleep; wishing to sleep; praying to be permitted to sleep.
ଶୟନାର୍ଥୀ, ଶୟନାଭିଳାଷୀ } ଅନ୍ୟରୂପ
(ଶୟନାର୍ଥିନୀ, ଶୟନାଭିଳାଷିଣୀ—ସ୍ତ୍ରୀ)

ଶୟନାଗାର—ସଂ. ବି ( ଶୟନ+ଆଗାର )—ଶୟନ ଗୃହ; ଶୋଇବା
Śayanāgāra ଘର—Bed room, sleeping apartment.
( ଶୟନାବାସ—ଅନ୍ୟରୂପ )

ଶୟନାରୂଢ଼—ସଂ.ବିଣ.ପୁଂ(୭ମୀ ତତ୍)--ଶୋଇବା ପାଇଁ ବିଛଣାକୁ ଯାଇ-
Śayanārūrdha ଥିବା—One who has taken to the
(ଶୟନାରୂଢ଼ା—ସ୍ତ୍ରୀ) bed for the purpose of sleeping, gone to bed.

ଶୟନାର୍ହ—ସଂ. ବିଣ—ଶୟନ ପାଇଁ ଉପଯୋଗୀ; ଶୟନଯୋଗ୍ୟ—
Śayanārha Fit or proper to be slept in or on.
( ଶୟନାସ୍ପଦ—ଅନ୍ୟରୂପ )

ଶୟନୀୟ—ସଂ. ବିଣ ( ଶୀ· ଧାତୁ+ଅଧିକରଣ. ଅନୀୟ )—ଶୟନୋପ-
Śayanīya ଯୋଗୀ; ଶୋଇବା ପାଇଁ ଉପଯୁକ୍ତ ( ଶଯ୍ୟା, ଗୃହ ଇତ୍ୟାଦି ); ଯାହା ଉପରେ ବା ଯହିଁରେ ମନୁଷ୍ୟ ବା ଜୀବ ସ୍ୱଚ୍ଛନ୍ଦରେ ଶୋଇ ପାରେ—Fit to be slept in or on. ବି—୧ । ଶଯ୍ୟା; ବିଛଣା; ଶେଯ—1. Bed. ୨ । ଶୟନ କରିବାର ସ୍ଥାନ—2. A place to sleep in. ୩ । ପଲଙ୍କ; ଖଟ—3. Bedstead; couch.

ଶୟନୀୟକ—ସଂ. ବି ( ଶୟନୀୟ+ସ୍ୱାର୍ଥେ. କ )—ଶୟନୀୟ. ବି· (ଦେଖ)
Śayanīyaka Śayanīya (noun) ( See )

ଶୟନୀୟୋପଭୋଗ—ସଂ· ବି—ଶେଯରେ ଶୋଇବା—Sleeping on
Śayanīyopabhoga or the enjoying of a bed.

ଶୟନେଚ୍ଛା—ସଂ· ବି—ଶୋଇବାର ଇଚ୍ଛା—
Śayanechhā Desire to sleep.

ଶୟନେଚ୍ଛୁ—ସଂ. ବିଣ—ଶୋଇବା ପାଇଁ ଅଭିଳାଷୀ—
Śayanechhu Desirous of sleeping.
( ଶୟନେଚ୍ଛୁକ—ଅନ୍ୟରୂପ )

ଶୟନୈକାଦଶୀ—ସଂ. ବି—ଶୟନ ଏକାଦଶୀ ( ଦେଖ )—
Śayanaikādaśī Śayana ekādaśī ( See )

ଶୟନୋତ୍ସବ—ସଂ· ବି—ଶୟନ ଯାତ୍ରା ( ଦେଖ )
Śayanotsaba Śayana jātrā ( See )

ଶୟନୋଦ୍ୟମ—ସଂ. ବି—ଶୋଇବା ପାଇଁ ଯୋଗାଡ଼—Prepara-
Śayanodyama tion to go to sleep; going to bed.
(ଶୟନୋପକ୍ରମ, ଶୟନୋଦ୍‌ଯୋଗ—ଅନ୍ୟରୂପ )

ଶୟନୋପଯୁକ୍ତ—ସଂ. ବିଣ—ଯାହା ଉପରେ ବା ଯହିଁରେ ଶୁଆ ଯାଇ
Śayanopajukta ପାରେ; ଶୟନଯୋଗ୍ୟ—Fit or proper to be slept on or slept in.

ଶୟଳ—ଦେ. ଗ୍ରା. (ପଦ୍ୟ) ବି ( ସଂ. ସଂସାର )—୧ । ପୃଥିବୀ; ସଂସାର—
Śayaḷa 1. The earth; the world. [ ଉ—ସେ ବ୍ରହ୍ମଜ୍ଞାନ ପୂର୍ବକାଳେ, କେ ଅଣି ସଞ୍ଚିଲା ଶୟଳେ—ପ୍ରାଚୀ. କଳ୍ପିଗମାହାତ୍ମ୍ୟ ।] ୨ । ( ସଂ. ଶୈଳ )—ଶୈଳ; ଶଇଳ—2. Mountain, rock. [ଉ—ମଳୟ ଶୟଳବନ ଶୋଭି ସେ ବନ—ପ୍ରାଚୀ. ଶିଶୁଶଙ୍କର. ଉଷା ଅଭିଳାଷ । ]
সংসার / সংসার / शैल / शाइल

ଶୟାନ—ସଂ· ବିଣ·ପୁଂ ( ଶୀ· ଧାତୁ+କର୍ତ୍ତୃ· ଆନ, [ଶାନଚ୍ ])—୧। ଯେ
Śayāna ଶୋଇଛି; ନିଦ୍ରିତ—1. Sleeping; asleep.
(ଶୟାନା—ସ୍ତ୍ରୀ) ୨ । ଶଯ୍ୟାରେ ଶୋଇଥିବା; ଶଯ୍ୟାଗତ;ଶୟିତ—2. Lying on bed.

ଶୟାନକ—ସଂ. ବି ( ଶୟାନ+କ )—୧ । ସର୍ପ—1. Serpent.
Śayānaka ୨ । ଏଣ୍ଡୁଅ—2. Chameleon. ୩ । ଅଜଗର—3. Boa. (Apte).

ଶୟାମୂତ୍ର—ସଂ. ବି—ଶଯ୍ୟାମୂତ୍ର; ଶୋଇବା ଅବସ୍ଥାରେ ବିଛଣାରେ; ମୂତ୍ର-
Śayāmūtra ତ୍ୟାଗ ( ବିଶ୍ୱକୋଷ )—Passing of urine during sleep.

ଶୟାଳୁ—ସଂ. ବିଣ ( ଶୀ· ଧାତୁ=ଶୋଇବା+ଶୀଳାର୍ଥେ ଆଳୁ )—
Śayāḷu ୧ । ଶୟନଶୀଳ; ଯେ ସର୍ବଦା ଶୁଏ—1. Given to sleeping. ୨ । ନିଦ୍ରାଳୁ—2. Sleepy. ବି—୧ । କୁକ୍କୁର—1. Dog. ୨ । ଶୃଗାଳ—2. Jackal. ୩ । ଭୁଜଙ୍ଗମ; ସର୍ପ—3. Serpent. ୪ । ଅଜଗର—4. Boa constrictor.

ଶୟିତ—ସଂ· ବିଣ. ପୁଂ ( ଶୀ. ଧାତୁ=ଶୋଇବା+କର୍ତ୍ତୃ. ତ )—
Śayita ୧ । ସୁପ୍ତ; ନିଦ୍ରିତ; କୃତଶୟନ—1 Asleep. ୨ ।
( ଶୟିତା—ସ୍ତ୍ରୀ ) ଯେ ଶୋଇବା ପାଇଁ ବିଛଣାରେ ପଡ଼ିଛି—2. Lying down to sleep; reclining on bed. ୩ । ନିଦ୍ରାଳୁ ( ବିଶ୍ୱକୋଷ )—3. Sleepy. ବି—୧ । ବସନ୍ତ କୁସୁମ; ଔଉ ( ବ. ଗୁଳଚା )—1. Dillenia Speciosa. ୨ । ଶୟନ—2. Sleeping. ୩ । ଅଜଗର—3. Boa constrictor. ୪ । ଗଇଭଣା (ଦ୍ରୁ. ଗ)—4. Cordia Myxa.

ଶୟିତବାନ୍—ସଂ. ବିଣ. ପୁଂ (ଶୀ ଧାତୁ+କର୍ତ୍ତି. ତବତ୍)—୧ । ସୁପ୍ତ; Śayitabān ନିଦ୍ରିତ—1. Sleeping; asleep. ୨ । ନିଦ୍ରାଳୁ (ଶୟିତବତୀ—ସ୍ତ୍ରୀ) (ବିଶ୍ୱକୋଷ)—2. Sleepy. ସଂ. ବି. ୧ । (+ଭାବ. ତ)—ଶୟନ—1, Sleeping. ୨ । ବସନ୍ତ କୁସୁମ; ଔଉ—2. Dillenia Speciosa.

ଶୟିତବ୍ୟ—ସଂ. ବିଣ—(ଶୀ ଧାତୁ+ଅଧିକରଣ ତବ୍ୟ)—ଶୟନୀୟ Śayitabya (ଦେଖ) Śayaniya (see)

ଶୟିତା—ସଂ. ବିଣ. ସ୍ତ୍ରୀ (ଶୟିତ+ସ୍ତ୍ରୀ ଆ)—ଶୟିତର ସ୍ତ୍ରୀ ଲିଙ୍ଗ Śayitā Feminine of Śavita. ସଂ. ବିଣ. ପୁଂ.(ଶୀ ଧାତୁ +କର୍ତ୍ତି. ତୃ; ୧ମା ୧ବ) ଶୟନକାରୀ— (ଶୟିତ୍ରୀ—ସ୍ତ୍ରୀ) Sleeping.

ଶୟୁ—ସଂ.ବି.ପୁଂ—(ଶୀ ଧାତୁ=ଶୋଇବା+କର୍ତ୍ତି. ଉ)—୧ । ଅଜଗର Śayu ସର୍ପ—1. The Boa constrictor. ୨ । ପ୍ରାଚୀନ ବୈଦିକ ଋଷିବିଶେଷ—2. Name of a sage. (ଶୟୁନ - ଅନ୍ୟରୂପ)

ଶୟେ—ଦେ. ବିଣ ଓ ବି.—ଶହେ; ଏକଶତ—One hundred. Śaye [କୃ—ଶୟେ ଅଷ୍ଟ ଗୋଟି ଯେ ତୁଳସୀ ମାଳ କର—ପ୍ରାଚୀ. ଏକশ একসৌ ଶ୍ରୀ ଗୁରୁଭକ୍ତିଗୀତା]

ଶଯ୍ୟା—ସଂ ବି—(ଶୀ ଧାତୁ=ଶୋଇବା+ଅଧିକରଣ ଯ+ଆ, ଯନ୍ନିଟରେ ଶୟନ କରାଯାଏ)—୧ । ତଳ୍ପ; ବିଛଣା—1. Bed; bedding. ୨ । ଖଟ ପଲଙ୍କ ଆଦି—2. Bedstead; couch. ୩ । ଶୟନ ସ୍ଥାନ—3. A place for sleeping in. ୪ । ଶେଯ—4 A cushin spread on the ground for sleeping on. ୫ । ନଦୀର ସ୍ରୋତ ବହି ଯିବାର ସ୍ଥାନ—5: The bed or channel of a river: ୬ । (+ଭାବ ଅ+ଆ) ଶୟନ—6 sleeping. Śajyā

ଶଯ୍ୟା କରିବା—ଦେ. କ୍ରି—୧ । ବିଛଣା ପକାଇବା, ଶୋଇବା ପାଇଁ Śajyā karibā ଭୂମିରେ ବା ଖଟ ଉପରେ ବିଛଣା କରିବା—1 শয্যা করা शय्या करना To spread the bed. ୨। ଶୟନ କରିବା; ଶୋଇବା—2 To sleep.

ଶଯ୍ୟା ଗତ—ସଂ. ବିଣ—(ଶଯ୍ୟାକୁ ଗତ=ପ୍ରାପ୍ତ, ୨ୟା ତତ୍)—୧ । Sajyā gata ଶଯ୍ୟାଶାୟୀ; ବିଛଣାରେ ଶୋଇଥିବା; ଶାୟିତ—1 Sleeping on bed; lying on the bed. (ଶଯ୍ୟାଗତା—ସ୍ତ୍ରୀ) ୨। କଠିନ ପୀଡ଼ା ଯୋଗୁଁ ବିଛଣାରୁ ଉଠିବାର ଶକ୍ତି ରହିତ; କଟଖ ଲଗା—2. Confined to bed (owing to serious illness).

ଶଯ୍ୟାଗତ ପୀଡ଼ା—ଦେ. ବି—ଗୁରୁତର ପୀଡ଼ା; ଯେଉଁ ପୀଡ଼ା ଯୋଗୁ Śajyāgata pirdā ମନୁଷ୍ୟ କଟଖଲଗା ହୋଇ ପଡ଼ୁଥାଏ— শয্যাগত পীড়া Serious illness which confines the शय्यागत पीड़ा patient to bed.

ଶଯ୍ୟାଗତ ପୀଡ଼ିତ—ଦେ.ବିଣ—ଗୁରୁତରଭାବରେ ପୀଡ଼ିତ; ଯେଉଁ ରୋଗୀ Śajyāgata pirdita ବିଛଣାରୁ ଉଠିପାରେ ନାହିଁ—Very শয্যাগত পীড়িত seriously ill and obliged to be शय्यागत पीड़ित confined to bed.

ଶଯ୍ୟାଗାର—ସଂ. ବି—ଶୟନ ଗୃହ; ଶୟନ କକ୍ଷ— Śajyāgāra Bed-room; sleeping room. (ଶଯ୍ୟାଗୃହ—ଅନ୍ୟରୂପ)

ଶଯ୍ୟା ଗୁରୁ—ସଂ. ବି. ପୁଂ—(ସ୍ତ୍ରୀର) ସ୍ୱାମୀ; ପତି— Śajyā guru (a woman s) Husband.

ଶଯ୍ୟାଚ୍ଛାଦନ—ସଂ. ବି (୬ଷ୍ଠୀତତ୍)—ଶଯ୍ୟାସ୍ତରଣ; ବିଛଣାର ଘୋଡ଼ଣି— Śajyāchchhādana Bedsheet; a cover for the bed.

ଶଯ୍ୟାତଳ—ସଂ ବି (୬ଷ୍ଠୀ ତତ୍)—୧ । ବିଛଣାର ତଳଦେଶ; ବିଛଣାର Śajyātala ଉପର ଭାଗ—1. The surface of the bed ୨ । ଖଟତଳ—2 The patch of ground below the bedstead. ୩ । ଶଯ୍ୟାର ନିମ୍ନଭାଗ— 3. The part under the bed.

ଶଯ୍ୟା ଦାନ—ସଂ. ବି—୧ । ମୃତ୍ୟୁଶଯ୍ୟାଦାନ—1. Gift of a Śajya dāna bed to a Brāhmaṇa during funeral obsequies. ୨ । (ଜୀବିତ ବ୍ୟକ୍ତିର) ବ୍ରାହ୍ମଣଙ୍କୁ ଶଯ୍ୟାର ଦାନ—2. Gift of a bedding to a Brāhmaṇa.

ଶଯ୍ୟା ପାତି(ରି)ବା—ଦେ. କ୍ରି—୧ । ଶଯ୍ୟା ରଚନା କରିବା—1. To Śajyā pāti(ri)bā make up the bed. ୨ । ଶୋଇବା বিছানা পাতা ପାଇଁ ଭୂମିରେ ଶଯ୍ୟାକୁ ବିସ୍ତୃତ କରିବା—2. To बिछौना डालना spread the bed on the ground; to lay the bed.

ଶଯ୍ୟା ପାର୍ଶ୍ୱ—ସଂ. ବି (୬ଷ୍ଠୀ ତତ୍)—୧ । ବିଛଣାର ପାଖ— Śajyā pārśwa 1. Side of the bed; the part near the bed; bedside.

ଶଯ୍ୟା ପାଳକ—ସଂ. ବି (୬ଷ୍ଠୀ ତତ୍)—ରାଜାମାନଙ୍କ ଶୟନଗୃହରକ୍ଷକ— Śajyā pālaka The superintendent of a Raja's (ଶଯ୍ୟାରକ୍ଷ—ଅନ୍ୟରୂପ) bedchamber.

ଶଯ୍ୟା ପ୍ରାନ୍ତ—ସଂ. ବି (୬ଷ୍ଠୀ ତତ୍)—ବିଛଣାର ଏକ ମୁଣ୍ଡ— Śajyā prānta The edge of the bed.

ଶଯ୍ୟା ପ୍ରାପ୍ତ—ସଂ. ବିଣ. ପୁଂ (୨ୟା ତତ୍)—ଶୟିତ — Śajyāprāpta Sleeping; asleep. (ଶଯ୍ୟାଗତ—ଅନ୍ୟରୂପ) [ଶଯ୍ୟାପ୍ରାପ୍ତା, ଶଯ୍ୟାଗତା—ସ୍ତ୍ରୀ]

ଶଯ୍ୟା ମାଡ଼ିବା—ଦେ. କ୍ରି—ଶଯ୍ୟାରେ ଶୋଇବାରେ ବ୍ୟବସ୍ଥା କରିବା- Śajyā mārdibā ପାଇଁ ଶେଯକୁ ସ୍ପର୍ଶ ମାତ୍ର କରିବା—To (ଶଯ୍ୟା ଛୁ[ଛୋ]ଇଁବା—ଅନ୍ୟରୂପ) tread on the bed; to বিছানা মাড়া touch the bed (with a view to carry शय्या छूना out a behest to go to bed.)

ଶଯ୍ୟା ମୂତ୍ର—ସଂ. ବି (୭ମୀ ତତ୍)—ଶିଶୁମାନଙ୍କର ଶଯ୍ୟାରେ ମୂତିବା Śajyā mūtra ରୋଗ—A disease peculiar to infants of making water while sleeping

ଶଯ୍ୟା ରଚନ(ନା)—ସଂ. ବି—ଶେଯ ଶେଯାଇବା; ଶଯ୍ୟା ପ୍ରସ୍ତୁତକରଣ;
Śajyā rachana(nā) ଶୋଇବା ପାଇଁ ବିଛଣା ପାରିବା—
Laying or spreading of the bed; preparing the bed.

ଶଯ୍ୟାଶାୟୀ—ସଂ. ବିଣ. ପୁଂ (ଶଯ୍ୟା+ଶୀ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)—ଶଯ୍ୟାଗତ (ଦେଖ)—
Śajyā śāyī
(ଶଯ୍ୟାଶାୟିନୀ—ସ୍ତ୍ରୀ) Śajyāgata. (See)

ଶଯ୍ୟା ସଙ୍ଗିନୀ—ସଂ. ବି. ସ୍ତ୍ରୀ—(ସ୍ୱାମୀଙ୍କ ସଙ୍ଗରେ ଯେ ଏକ ଶଯ୍ୟାରେ
Śajyā sanginī ଶୁଅନ୍ତି) ସ୍ତ୍ରୀ; ଭାର୍ଯ୍ୟା; ପତ୍ନୀ—(Female)
(ଶଯ୍ୟାସହଚରୀ—ଅନ୍ୟରୂପ) Partner of the bed; wife; consort.

ଶଯ୍ୟା ସଙ୍ଗୀ—ସ. ବି. ପୁଂ—(ସ୍ତ୍ରୀ ସଙ୍ଗେ ଯେ ଏକ ଶଯ୍ୟାରେ ଶୁଅନ୍ତି)
Śajyā sangi ସ୍ୱାମୀ; ଭର୍ତ୍ତା; ପତି—(Male) Partner of
(ଶଯ୍ୟାସହଚର—ଅନ୍ୟରୂପ) the bed; husband.

ଶଯ୍ୟାସ୍ତରଣ—ସଂ. ବି (୬ଷ୍ଠୀ ତତ୍)—ଶେଯ ଉପରେ ପଡ଼ିବା ଗୁଦଡ଼;
Śajyāstarana ବିଛଣା ଗୁଦଡ଼—Bed sheet; a covering for the bed.

ଶଯ୍ୟୋତ୍ତରଚ୍ଛଦ—ସଂ. ବି (୬ଷ୍ଠୀତତ୍; ଶଯ୍ୟା+ଉତ୍ତରଚ୍ଛଦ)—ଶଯ୍ୟା-
Śajyottarachchhada ଛାଦନ; ବିଛଣାଗୁଦଡ଼—Bedsheet.
(ଶଯ୍ୟୋତ୍ତରପ୍ରସ୍ତ—ଅନ୍ୟରୂପ)

ଶଯ୍ୟୋପଭୋଗ—ସଂ. ବି (୭ମୀତତ୍)—ବିଛଣାରେ ଶୋଇବା—
Śajyopabhoga Sleeping on the bed; enjoying a sleep or rest on a bed.

ଶର୍‌ଗି—ପ୍ରାଦେ (ସମ୍ବଲପୁର) ବି—ଶାଳ ଗଛ—
Śar-gi Sāl tree.

ଶର୍‌ବନା—ପ୍ରାଦେ. (ସମ୍ବଲପୁର) ବି—ଶର୍ବନା (ଦେଖ)
Śar-banā Sārbanā. (See)

ଶର୍‌ବିନ୍ଧା—ଦେ. ବି ଓ ବିଣ—ଶରବିନ୍ଧା (ଦେଖ)
Śar-bindhā Sarabindhā (See)

ଶର—ସଂ. ବି (ଶୃ ଧାତୁ=ଭେଦ କରିବା; ହିଂସା କରିବା+
Śara କର୍ତ୍ତୃ.ଅ)—୧ । ବାଣ; ଶର, ଇଷୁ—Arrow; shaft.
[ଉ—ବକଶିତ କୁମୁଦେ ନଳିନୀ ପ୍ରଭି......ମୋଦେ ଭୁଙ୍କେ ଭୁତର ଶର ଭେଦେ । ଉଷ. ବୈଦେହୀଶବିଳାସ ।]
[ ଦ୍ର—ପୁରାଣମାନଙ୍କର ନାନା ଗ୍ରନ୍ଥମାନଙ୍କରେ ସମବାୟୁକ୍ତ ଓ ନାନା ଅସାଧାରଣ ଗୁଣବିଶିଷ୍ଟ ଶରମାନଙ୍କ ନାମ ଲେଖାଅଛି । ଯଥା—ବାବଲ ଶର, କଲୁସ୍ୱ—ଶର, ରୁଦ୍ର ଶର, ବ୍ରହ୍ମଶର, ବଜ୍ର ଶର, ପଶୁପତି ବା ପାଶୁପତ ଶର, ଜ୍ୱାଳାବଳ ଶର, ବାରୁଣୀ ବା ବଦବୋଡ଼ା ଶର, ପବନ ଶର, ଗରୁଡ଼ ବା ଗାରୁଡ଼ୀ ଶର, ଭୁଜ ଶର, ଗାଲ ଶର, ଅଗ୍ନି ଶର, ମୁଷଳ ଶର, ମନଭେଦୀ ଶର, ପର୍ବତ ଶର, ଶକ୍ତିଶୁଳା ଶର, ନାଗପାଶ ଶର, ଯମଦାଢ଼ ଶର, ବରୁଣ ଶର, ଚନ୍ଦ୍ର ଶର, ଛେଲ ଶର, ଦଶ ପକ୍ଷ ଶର, ଇତ୍ୟାଦି । ନୃସିଂହପୁରାଣ, ଶାରଳା ମହାଭାରତ ଓ ବଳଙ୍କ ରାମାୟଣ ଦ୍ରଷ୍ଟବ୍ୟ ।] ୨ । ବାଣ ତୃଣ; ଏକ ପ୍ରକାର କାଠିଯୁକ୍ତ ଘାସ; ମୁଞ୍ଜ ତୃଣ; ଶର ତୃଣ [ଦେଖ]—
2. A sort of reed; Saccharum Sara. ୩ । ଦଧି ଦୁଗ୍ଧର ଉପରେ ପଡ଼ୁଥିବା ଘନ ଆବରଣ—3. Cream (of milk or curds); a thick layer formed on the surface of milk or curds. ୪ । ଜଳ—4. Water. ୫ । (ସାମୁଦ୍ରିକ ଶାସ୍ତ୍ର) ମନୁଷ୍ୟର ଦେହରେ ଥିବା ଶରାକୃତି ରେଖା ଚିହ୍ନ—5. (Palmistry) Linear mark resembling the arrow on a person's body. ୬ । ଭଣୀର; ବେଣା ଚେର [ହି.ଶ]—6. The root of Benā grass. ୭ । ବର୍ଚ୍ଛାଗ୍ରର ଫଳକ [ହି.ଶ]—7.The blade of a spear. ୮ । ଅଘାତ—8.Wound (Apte) ୯ । ପାଞ୍ଚ ସଂଖ୍ୟା—9. The number five. ୧୦ । ହିଂସା—10. Injury; harm (Apte). ୧୧ । ପୁରାଣୋକ୍ତ ଅସୁରବିଶେଷ-11. Name of a mythological demon. ଦେ. ବି ସ୍ତ୍ରୀ—ଶ୍ରଦ୍ଧା ନାମ୍ନୀ ସ୍ତ୍ରୀର ଡାକ ନାମ—Name for calling Śraddhā.

ଶର କାଣ୍ଡ—ଦେ. ବି—(ଏକାର୍ଥକ ସହଚର)—୧ । କାଣ୍ଡ; ଧନୁର୍ବାଣ
Śara kānda 1. Arrow. ୨ । ଶର ତୃଣ [ଦେଖ]—
ଶବ ଶରକଣ୍ଡା 2. Śara truna (See)

ଶର କାରି(ରୀ)—ଦେ. ବି—ବାଉଳିଆ; ଶବର—
Śara kārī(ra) Fowler; bird-catcher.
[ଉ—ଯେସନେ ଶରକାରୀ ପଥେ, ଶର ବାନ୍ଧଇ ହେଠ ମାଥେ ।] ସଂ. ବି—ଶର ନିର୍ମାତା ବ୍ୟକ୍ତି [ହି.ଶ]—
A manufacturer of arrows.

ଶର କ୍ଷେପ—ସଂ. ବି—(୬ଷ୍ଠୀ ତତ୍)—ଧନୁଦ୍ୱାରା ବାଣ ମାରିବା—
Śara kshepa Shooting with a bow.
[ଶରକ୍ଷେପଣ, ଶରତ୍ୟାଗ, ଶର ନିକ୍ଷେପ—ଅନ୍ୟରୂପ]

ଶର ଖଂଗକ—ସଂ. ବି—ଉଲୁଷ ତୃଣ; ଅଣଖୁଆ—
Śara khamgaka Imperata Arundinacia (reed).
ଅନ୍ୟ ସଂ. ନାମ—ଉଲୁଷ
ଉଲୁ उलप, उलूक

ଶର ଖଡ୍ଗ—ସଂ. ବି—ଶର ଗଛ ମୂଳ (ଦେଖ)
Śara khadga Śara gachha muḷa (see)

ଶର ଗଛ ମୂଳ—ଦେ.ବି—ଶରଗଛର ଚେର—The root of Śara
Śara gachha mūḷa. plant. [ ଦ୍ର—ଏହା ଔଷଧରେ ବ୍ୟବହୃତ ହୁଏ । ଏହାର ସଂସ୍କୃତ ନାମ ଶରଖଡ୍ଗ—ହରେକୃଷ୍ଣ. ଦ୍ରବ୍ୟଗୁଣ । ]

ଶରଗା—ପ୍ରାଦେ. ( ସିଂହଭୂମ ) ବି—ଶାଳୁଅ କାଠ; ଶାଳୁଅ ଗଛ—
Śaragā Sal tree.

ଶର ଗୁନ୍ଥାଣି—ଦେ. ବି ( ୬ଷ୍ଠୀ ତତ୍ )—ଶର ଗୁନ୍ଥିବା କାର୍ଯ୍ୟ—The
Śara gunthāṇi act of piercing a thing with a number of arrows so as to resemble sewing. [ ଉ—ଶର ଶେଷ ଶରଗୁନ୍ଥାଣିକି ସେ କଲେ—କୃଷ୍ଣସିଂହ. ମହାଭାରତ. ଆଦି । ]

ଶର ଗୁଲ୍ମ—ସଂ. ବି—୧ । ଶରତୃଣ ( ଦେଖ )—1. Saratruna
Sara gulma ( See ) ୨ । ରାମାୟଣୋକ୍ତ ଯୂଥପତି ମର୍କଟ ବିଶେଷ—2. The name of a leader of monkey-soldiers mentioned in the Rāmāyana.

ଶର ଚିହ୍ନ—ସଂ. ବି ( ଆଧୁନିକ ପ୍ରୟୋଗ )—କୌଣସି ବିଷୟ ବା
Sara chihna ଲେଖା ପ୍ରତି ବିଶେଷ ଭାବରେ ଦୃଷ୍ଟି ଆକର୍ଷଣ
ଶରଚିହ୍ନ ଶରଚିହ୍ନ କରିବା ଉଦ୍ଦେଶ୍ୟରେ କିମ୍ବା ନଦୀର ଓ ମାର୍ଗାଦିର ଗତିକୁ ବା ପ୍ରବାହର ଦିଗକୁ ନକସାରେ ଚିହ୍ନାଇବା ପାଇଁ ବ୍ୟବହୃତ ବାଣାକୃତି ଚିହ୍ନ, (ଯଥା—→ )—The arrow mark; a sign used in writing to indicate the direction of the flow of a river or road or in directing the reader's particular attention to something following.

ଶରଚ୍ଚନ୍ଦ୍ର—ସଂ. ବି ( ଶରତ୍+ଚନ୍ଦ୍ର, ୭ମୀ ତତ୍ ବା ମ. ପ. ଲୋ. )—ଶରତକାଳରେ ନିର୍ମଳ
Sarachchandra ଆକାଶରେ ପଡ଼ିଥିବା ଚନ୍ଦ୍ର—The autumnal moon in its cloudless splendour; the moon shining in the bright autumn sky. [ ଦ୍ର - ଶରତ୍କାଳରେ ଆକାଶରେ ମେଘ ନ ଥିବାରୁ ଚନ୍ଦ୍ର ଭାରି ଶୋଭା ବା ଉଜ୍ଜ୍ୱଳ ଦେଖାଯାଏ । ] ଦେ ବି ପୁଂ—ପୁରୁଷଙ୍କ ନାମ—Name given to males.

ଶରଚ୍ଚନ୍ଦ୍ର ଦାସ—ଦେ. ବି (ନାମ)—ବଙ୍ଗଦେଶ ପର୍ଯ୍ୟଟକ ଓ ତିବ୍ବତ
Sarachchandra dāsa ଭାଷାରେ ପ୍ରସିଦ୍ଧ ଗ୍ରନ୍ଥପ୍ରଣେତା—The famous Bengalee traveller and author (on Tibbet). [ଦ୍ର—୧୮୪୯ ଖ୍ରୀଷ୍ଟାବ୍ଦରେ ଏ ଜନ୍ମଗ୍ରହଣ କରିଥିଲେ । ତିବ୍ବତ ଓ ଚୀନ ଦେଶ ଭ୍ରମଣ କରି ଏ ତିବ୍ବତ ଭ୍ରମଣବୃତ୍ତାନ୍ତ, ତିବ୍ବତୀୟ-ଇଂରାଜୀ ଅଭିଧାନ ରଚନା କରିଥିଲେ । ଗଭର୍ଣ୍ଣମେଣ୍ଟ ଏହାଙ୍କୁ ସ୍ୱୟଂ ରାୟବାହାଦୁର ଓ C. I. E ଉପାଧିରେ ଭୂଷିତ କରିଥିଲେ । ତିବ୍ବତୀୟ ଭାଷା ତଥା ଅଞ୍ଚଳ ବ୍ୟବହାର ଓ ବୌଦ୍ଧଧର୍ମ ସମ୍ବନ୍ଧରେ ଏହାଙ୍କର ଅଭିଜ୍ଞତା ପୃଥିବୀବିଖ୍ୟାତ । ଏ ଗଭର୍ଣ୍ଣମେଣ୍ଟଙ୍କ ଅଧୀନତାରେ ତିବ୍ବତ ଭାଷାର ଅନୁବାଦକକର୍ମ କରି ୧୯୦୪ ଖ୍ରୀଷ୍ଟାବ୍ଦରେ ପେନ୍‌ସନ୍ ଗ୍ରହଣ କରିଥିଲେ ।]

ଶରଚ୍ଚନ୍ଦ୍ରନିଭାନନ—ସଂ. ବି. ପୁଂ (ଶରଚ୍ଚନ୍ଦ୍ର+ନିଭ=ସଦୃଶ+ଆନନ,
Sarachchandranibhānana ବହୁବ୍ରୀହି)—ଶରତ୍କାଳୀନ ଚନ୍ଦ୍ର ପରି ମନୋହର ମୁଖ—A face as beautiful as the autumn moon. ସଂ. ବିଣ. ପୁଂ ( ବହୁବ୍ରୀହି )—ଶରତ୍କାଳୀନ ଚନ୍ଦ୍ର ପରି ମନୋହର ମୁଖଯୁକ୍ତ—Having a face as fair as the autumn moon.
(ଶରଚ୍ଚନ୍ଦ୍ରନିଭାନନା—ସ୍ତ୍ରୀ)

ଶରଚ୍ଚନ୍ଦ୍ରପ୍ରଭ—ସଂ. ବିଣ. ପୁଂ (ଶରଚ୍ଚନ୍ଦ୍ରଙ୍କ ପରି ପ୍ରଭା ଯାହାର; ଶରଚ୍ଚନ୍ଦ୍ର
Sarachchandraprabha +ପ୍ରଭା; ବହୁବ୍ରୀହି)—ଶରଚ୍ଚନ୍ଦ୍ର ପରି ନିର୍ମଳ—Bright as the moon in the autumn sky.
(ଶରଚ୍ଚନ୍ଦ୍ରପ୍ରଭା—ସ୍ତ୍ରୀ)

ଶରଚ୍ଚନ୍ଦ୍ରମରୀଚି—ସଂ. ବି (ଶରଚ୍ଚନ୍ଦ୍ର+ମରୀଚି, ୬ଷ୍ଠୀ ତତ୍)—ଶରତ୍-
Sarachchandramarichi କାଳୀନ ଚନ୍ଦ୍ରର କିରଣ—The rays of the moon in autumn.

ଶରଚ୍ଛଶୀ—ସଂ. ବି (ଶରତ୍+ଶଶୀ; ୭ମୀ ତତ୍)—ଶରତ୍କାଳୀନଚନ୍ଦ୍ର-
Sarachchhasi Autumn moon.

ଶରଜ—ସଂ. ବି (ଶର+ଜନ୍ ଧାତୁ=ଜାତହେବା+କର୍ତ୍ତୃ ଅ, ଶରରୁ
Saraja ଜାତ )—୧ । ସଦ୍ୟୋଜାତ ଘୃତ—1. Fresh clarified butter. ୨ । ନବନୀତ (ହି. ଶ)—2. Butter. ୩ । ଶରଜନ୍ମା (ଦେଖ)—3 Sarajanmā (See) ସଂ. ବିଣ—କାଣ୍ଡଶର ଗଛରୁ ଉତ୍ପନ୍ନ ବା ନିର୍ମିତ—Produced from or made of sara reed.

ଶରଜନ୍ମା—ସଂ. ବି (ଶର+ଜନ୍ମନ୍, ଶରଜନ୍ମନ୍; ୧ମା. ୧ବ; ଶର=
Sarajanmā ଶର ବନରେ ଜନ୍ମ ଯାହାଙ୍କର)—ଷଡ଼ାନନ; କାର୍ତ୍ତିକେୟ—Kārttikeya, the elder son of Mahādeba.

ଶର ଜାଲ(ଳ)—ସଂ. ବି (୬ଷ୍ଠୀ ତତ୍)—ଶରସମୂହ; ଜାଲ ପରି ଘନ-
Sara jāla(la) ଭାବରେ ପରସ୍ପର ଲଗିହୋଇ ଦେଖା ଯାଉଥିବା ବହୁ ଶରମାନ—A net of arrows; a very thick discharge of arrows resembling a network formed in air.

ଶରଟ—ସଂ. ବି (ଶୃ ଧାତୁ=ହିଂସାକରିବା, ବଧକରିବା+କର୍ତ୍ତୃ ଅଟ)—
Sarata ୧ । କୃକଳାସ; ଏଣ୍ଡୁଅ—1. Camelleon. ୨ । କୁସୁମଶାକ; କୁସୁମ ଫୁଲ—2. Saflower plant; Carthamus Tinctorius. ୩ । କରଞ୍ଜ (ହି.ଶ) 3. Pongamia Glabra (tree).

ଶରଟୀ—ସଂ. ବି—ଲାଜକୋଳି ଗୁଳ୍ମ (ହି. ଶ)
Sarati Mimosa Pudica (plant).

ଶରଣ—ସଂ. ବି.—(ଶୃ ଧାତୁ=ହିଂସା କରିବା+ଭାବ ଅନ)—୧ ।ବଧ;
Sarana ହିଂସା—1. Killing; injuring (Apte). ୨ । ରକ୍ଷଣ—2. Protecting. ୩ । ରକ୍ଷା—3. Saving; protection. ୪ । ଆଶ୍ରୟ—4. Refuge; shelter; protection. ୫ । ଗୃହ—5. House. ୬ । ରକ୍ଷକ—6. Protector ୭ । ଆଶ୍ରୟ ନେବା ସ୍ଥାନ 7. A place of refuge, asylum; sanctuary (Apte). ୮ । ବିଶ୍ରାମ ସ୍ଥାନ—8. Lair; resting place (Apte). ୯ । ବିହାରର ତ୍ରିହୁତ ଡିଭିଜନର ସାହାବାଦ ଜିଲାର ଉତ୍ତରରେ ଥିବା ଶାରଣ ନାମକ ଜିଲା ( ହି. ଶ )—9. District Sāran in Bihar. ୧୦ । ଜଳ—10. Water (M. W.)

ଦେ. ବି.—୧ । ଆଶ୍ରୟସ୍ଥଳ ବ୍ୟକ୍ତି; ଆଶ୍ରୟ ଦାତା—1 One who gives shelter. [ଉ—ଗଦ୍ଧରଣ ମୋର ଶରଣ ରଙ୍ଗ କାରଣ ହେବ ।—ଭକ୍ତ. ପ୍ରେମସୁଧାନିଧି]
ଶବ୍ଦ ଶରଣ

୨। ଶରଣାଗତ ବ୍ୟକ୍ତି; ଆଶ୍ରିତ ଲୋକ—2. A person who has come for refuge. [ଉ—ଶରଣ ସମ୍ଭାଳ; ଆଶ୍ରୟ ମୋତେ ଦିଅ ଗରବେ।
—ରାଧାନାଥ, ଚନ୍ଦ୍ରଭାଗା]

ନକ୍ଷତ୍ର ୩। (ଜ୍ୟୋତିଷ) ଉତ୍ତରାଷାଢ଼ା ନକ୍ଷତ୍ରଠାରୁ ୫ଟି ନକ୍ଷତ୍ର ପର୍ଯ୍ୟନ୍ତ ପଡ଼ିବା ତିଥି; ଶରଣ ପଞ୍ଚକ (ଦେଖ)। [ଦ୍ର—ଏହି ୫ ଦିନ ଭୂମି ଖନନ, ତୃଣ କାଷ୍ଠାଦି ଛେଦନ ନିଷିଦ୍ଧ]—3. The period of five days beginning from Uttarāshārdhā during which digging of earth and cutting of straw is prohibited. [ଦ୍ର—ଧନୁ—ମୀନ ଦ୍ୱୟୋର୍ମଧ୍ୟେ ଯଦି ତିଷ୍ଠତି ଚନ୍ଦ୍ରମା, ନ ଛେଦ୍ୟଂ ତୃଣକାଷ୍ଠଂ ତ ନ ଯାତ୍ରା ଦକ୍ଷିଣେ ଦିଶି। ଶରଣ ପଞ୍ଚକ ସମ୍ବନ୍ଧରେ ଏହିଭଳି ଗୋଟିଏ ଜ୍ୟୋତିଷ ବଚନ ଆମ ଦେଶରେ ଚଳେ।] ୪। ଗତି—
4. Motion.
(ଉ—ବଳାହଂସକ ନାଦେ ଗତି ବଢ଼ାଇବ ଶୁଣାଇ ବଳାତ୍କାରେ ମନ୍ଦ ଶରଣେ ଗଜହଂସ ଜଣାଇ—ଭଞ୍ଜ ବୈଦେହୀଶବିଳାସ।) ୫। (ନାମ) ଜୟଦେବଙ୍କ ସମସାମୟିକ ଜଣେକ ସଂସ୍କୃତ କାବ୍ୟରଚୟିତା—5. Name of a poet of Jayadeba's time. [ଦ୍ର—ଗୀତଗୋବିନ୍ଦ ପ୍ରଥମ ସର୍ଗର ଚତୁର୍ଥ ଶ୍ଲୋକରେ ଉମାପତି ଧର, ଶରଣ, ଆଚାର୍ଯ୍ୟ ଗୋବର୍ଦ୍ଧନ, କବିରାଜ ଧୋୟୀ ଓ ଜୟଦେବ କବିଙ୍କ ନାମ ଉଲ୍ଲେଖ ଅଛି। ଦୁର୍ବୋଧ ସନ୍ଦର୍ଭର ଦ୍ରୁତ ରଚନା ନିମନ୍ତେ ଶରଣ କବିଙ୍କୁ ପ୍ରଶଂସା କରି ଯାଇଅଛି।]

**ଶରଣଦ**—ସଂ. ବି. ପୁଂ—ଯେ ଆଶ୍ରୟ ଦିଏ—
Śaraṇada Protector; one who gives shelter.
[ଶରଣଦାତା—ଅନ୍ୟରୂପ] [ଶରଣଦା, ଶରଣଦାତ୍ରୀ—ସ୍ତ୍ରୀ]

**ଶରଣ ଦେବା**—ଦେ. କ୍ରି.—ବିପନ୍ନ ବ୍ୟକ୍ତିକୁ ଆଶ୍ରୟ ଦେବା—
Śaraṇa debā To give shelter to a person in danger.
[ଶରଣ ରଖିବା—ଅନ୍ୟରୂପ]

**ଶରଣ ଧରଣୀ**—ଦେ. ବି—ଗଞ୍ଜାମର ଅଠଗଡ଼ ରାଜ୍ୟ—Name of
Saraṇa dharaṇi the estate of Athagarda in Ganjām. [ଦ୍ର—କଳାପାହାଡ଼ ଯେତେବେଳେ ଓଡ଼ିଶାକୁ ଆକ୍ରମଣ କଲା, ସେତେବେଳେ ଓଡ଼ିଶାର ରାଜା ପୁରୀରୁ ଜଗନ୍ନାଥ ଦେବଙ୍କୁ ସଙ୍ଗରେ ନେଇ ଅଠଗଡ଼ ରାଜ୍ୟରେ ଆଶ୍ରୟ (ଶରଣ) ଗ୍ରହଣ କରିଥିଲେ ଓ ଅଠଗଡ଼ର ତଦାନୀନ୍ତନ ରାଜା ଓଡ଼ିଶା ରାଜାଙ୍କୁ ବିଶେଷ ଆଦର ସମ୍ମାନ ସହିତ ଆଶ୍ରୟ (ଶରଣ) ଦେଇଥିଲେ। ଏହା ଛଡ଼ା ଅଠଗଡ଼ର ରାଜାମାନେ ପୁରୁଷାନୁକ୍ରମେ ବହୁ ସମ୍ମାନାର୍ହ ବ୍ୟକ୍ତିଙ୍କୁ ଆଶ୍ରୟ ଦେଇ ଆସିଥିବାରୁ 'ଅଠଗଡ଼' ରାଜ୍ୟ ଶରଣ ଧରଣୀ ବା ଶରଣ ରାଜ୍ୟ ନାମରେ ପୂର୍ବେ ଅଭିହିତ ହେଉଥିଲା।]
[ଉ—ଜୟଇ ଶ୍ରୀ ବାଲୁକେଶ ଶରଣ ଧରଣୀ ଈଶ—
କବିସୂର୍ଯ୍ୟ. ବଳୋଗୋରଚମ୍ପୂ, କ. ଗୀତ।]

**ଶରଣ ଧରିବା(ଯିବା)**—ଦେ. କ୍ରି—ଆସନ୍ନ ବିପଦରୁ ରକ୍ଷା ପାଇବା ପାଇଁ
Śaraṇa dharibā(jibā) (ବିପନ୍ନ ବ୍ୟକ୍ତି) କୌଣସି ମହତ୍ ବ୍ୟକ୍ତିଙ୍କ ଠାରେ ଆଶ୍ରୟପ୍ରାର୍ଥୀ ହେବା; ଶରଣାଗତ ହେବା—
শরণ লওয়া
शरण लेना(पकड़ना) To take shelter under a great personage to be saved from danger.
ଶରଣ ନେବା
ଶରଣ ପଶିବା } —ଅନ୍ୟରୂପ
[ଉ—ବିକଳେ ଶରଣ ଗଲି ଶରଣ-ବତ୍ସଳ ପାଦପଦ୍ମେ—ରାଧାନାଥ. ମହାଯାତ୍ରା; ଆମଠାରେ ଆସି ତାଙ୍କର ଲୋକମାନେ ଶରଣ ପଶିଛନ୍ତି ଯୁଦ୍ଧ ଅର୍ଥେ ମନେ।—କୃଷ୍ଣସିଂହ. ମହାଭାରତ. ବନ।]

**ଶରଣ ପଞ୍ଚକ**—ସଂ. ବି—(ଜ୍ୟୋତିଷ) ପ୍ରତ୍ୟେକ ମାସରେ ଚନ୍ଦ୍ର
Śaraṇa panchaka ମକର ଓ କୁମ୍ଭ ରାଶିରେ ରହିବା କାଳ ଅର୍ଥାତ୍ ଉତ୍ତରାଷାଢ଼ା (୨୧ଶ), ଶ୍ରବଣା (୨୨ଶ), ଧନିଷ୍ଠା (୨୩ଶ), ଶତଭିଷା (୨୪ଶ), ଓ ପୂର୍ବ ଭାଦ୍ରପଦ (୨୫ଶ) ନକ୍ଷତ୍ରମାନଙ୍କର ଏକାଦିକ୍ରମେ ପଡ଼ିଥିବା ୫ଟି ଦିବସ। (ଏହି ୫ ଦିନ କାଳ ତୃଣ କାଷ୍ଠାଦି ଛେଦନ ଓ ଗୃହ ନିର୍ମାଣ, ଗୃହାଚ୍ଛାଦନ ଆଦି କାର୍ଯ୍ୟ ନିଷିଦ୍ଧ)—(Hindu astrology) The period of five days beginning from Uttarāshārdhā asterism during which no artisan's work should be done. [ଦ୍ର—ମୈଥିଳୀ ପଞ୍ଜିକାରେ ଧନିଷ୍ଠାଠାରୁ ଆରମ୍ଭ କରି ରେବତୀ ପର୍ଯ୍ୟନ୍ତ ନକ୍ଷତ୍ର ବର୍ଣ୍ଣିତ ତିଥିମାନଙ୍କରେ ତୃଣକାଷ୍ଠାଦି ସଂଗ୍ରହ, ଦକ୍ଷିଣ ଦିଗକୁ ଯାତ୍ରା ଓ ଗୃହଚ୍ଛାଦନ ନିଷିଦ୍ଧ।
(ହି. ଶ) ପଞ୍ଚକ ଶବ୍ଦ ତଳେ ଟୀକା ଦେଖ।]

**ଶରଣ ପଞ୍ଜର**—ସଂ. ବି—(ରୂପକ)—ପଞ୍ଜୁରି ସଙ୍ଗେ ତୁଳନା କରାଯିବା
Śaraṇa pañjara ଆଶ୍ରୟଦାତା ବ୍ୟକ୍ତି, (ଯେଉଁପରି ପକ୍ଷୀ ପଞ୍ଜୁରି ମଧ୍ୟରେ ଥିଲେ ବାହ୍ୟ ଆପଦ ବିପଦରୁ ନିରାପଦ ଥାଏ, ସେହିପରି ଯେଉଁ ବ୍ୟକ୍ତିଙ୍କ ଆଶ୍ରୟ କରିବାଦ୍ୱାରା ବିପନ୍ନ ବ୍ୟକ୍ତି ନିରାପଦ ହୁଏ।)—A personage under whose shelter a person is safe from danger like a bird in a cage.
(ଯଥା—କ୍ଷମାସାଗର କରୁଣାନିଧି, ଶରଣ ପଞ୍ଜର ମୁରାରି—
ଜଗନ୍ନାଥ ଭାଗବତ।)

**ଶରଣ ପଞ୍ଜର ମାନୋଦ୍ଧାରଣ**—ଦେ. ବି—ଅଠଗଡ଼ର ରାଜା ଧୁମୁସରର
Śaraṇa pñjara mānoddhāraṇa ରାଜାଙ୍କ ସହିତ ଯୋଗ ଦେଇ ପୁରୀର ରାଜା ଦିବ୍ୟସିଂହ ଦେବଙ୍କୁ ଶତ୍ରୁ ହସ୍ତରୁ ରକ୍ଷା କରିଥିବାରୁ) ପୁରୀ ରାଜାଙ୍କଦ୍ୱାରା ଅଠଗଡ଼ ରାଜାଙ୍କୁ ପ୍ରଦତ୍ତ ଉପାଧି—A title of honour given to Rājā of Athagarda by Maharaja Dibyasimha Deba of Puri.

**ଶରଣ ପାତ୍ର**—ସଂ. ବି.—ଆଶ୍ରୟ ସ୍ଥଳ—
Śaraṇa pātra One who gives shelter.
(ଉ—ସବୁବେଳେ ତୁମ୍ଭେ ତ ମୋ ଶରଣ ପାତ୍ର।
କୃଷ୍ଣସିଂହ. ମହାଭାରତ ସ୍ୱର୍ଗ।)

ଶରଣ ପ୍ରାର୍ଥନ(ନା)—ସଂ. ବି.—( ୬ଷ୍ଠୀ ତତ୍ )—କୌଣସି ବ୍ୟକ୍ତିଙ୍କ
Śaraṇa prārthana(nā) ନିକଟରେ ଆଶ୍ରୟ ପାଇବାପାଇଁ
(ଶରଣ ଯାଞ୍ଚା—ଅନ୍ୟରୂପ) ପ୍ରାର୍ଥନା—Prayer for being given protection.

ଶରଣପ୍ରାର୍ଥୀ—ସଂ. ବିଣ. ପୁଂ—(ଉପପଦ ସମାସ)—ଯେ ଅନ୍ୟ ବ୍ୟକ୍ତି
Śaraṇa prārthī ଠାରେ ଆଶ୍ରୟ ପ୍ରାର୍ଥନା କରେ—
(ଶରଣ ପ୍ରାର୍ଥିନୀ—ସ୍ତ୍ରୀ) Seeking shelter.

ଶରଣ ବତ୍ସଳ—ସଂ. ବିଣ. ପୁଂ—(୭ମୀ ତତ୍; ଶରଣ=ଆଶ୍ରୟ+ବତ୍ସଳ
Śaraṇa batsala =ଅନୁରାଗୀ)—ଯେ ଶରଣାଗତ ଲୋକଙ୍କୁ
(ଶରଣ ବତ୍ସଳା—ସ୍ତ୍ରୀ) ସ୍ନେହ କରେ—One who loves a
(ଶରଣ ବାତ୍ସଲ୍ୟ; ଶରଣବତ୍ସଳତା—ବି) person who seeks shelter under him.

ଶରଣ ବୋଲିବା—ଦେ.କ୍ରି—ମୁଁ ଶରଣାର୍ଥୀ ଅଟେ, ଏହା ମୁହଁରେ
Śaraṇa bolibā କହିବା—To say that I am desiring shelter at your hands.
ଶରଣ ନିଲାମ ବଲେ ବଲା
शरणा बोलना (ଉ—ତରଣ କଂଜେ ଭୁ ଯେଉ ଦେଲେ ଦେହଲେ
ଶରଣ ବୋଲିବ ସିନା—କବିସୂର୍ଯ୍ୟ, ସଙ୍ଗୀତ)

ଶରଣ ମାଗିବା—ଦେ. କ୍ରି—ଆଶ୍ରୟ ପ୍ରାର୍ଥନା କରିବା—To seek
Śaraṇa māgibā refuge; to ask or pray for
ଶରଣଚାଓୟା shelter; to approach a person for
शरणमांगना shelter. [ଉ—ପିତୁ ମାତୃ ହୀନା ଅନାଥା ବାଳକା
ଶରଣ ମାଗେ ବିକଟଳେ—ରାଧାନାଥ, ପାର୍ବତୀ]

ଶରଣ ଯିବା—ଦେ.କ୍ରି—୧। ଆଶ୍ରୟ ପ୍ରାର୍ଥନା କରିବା—1. To pray
Śaraṇa jibā for shelter ୨। ଶରଣ ଧରିବା (ଦେଖ)
2. Śaraṇa dharibā (see) [ଉ—ତୋର ଶରଣ
ଗଲି ମୁହିଁ, ମୋ ଗର୍ବ ଭଙ୍ଗ ଭାବଗ୍ରାହୀ ! ଜଗନ୍ନାଥ—
ଭାଗବତ]

ଶରଣ ରକ୍ଷଣ—ସଂ. ବି—(ଶରଣ+ରକ୍ଷ ଧାତୁ+ଭାବ ଅନ) ଶରଣାଗତ
Śaraṇa rakshaṇa ବ୍ୟକ୍ତିଙ୍କୁ ବିପଦରୁ ରକ୍ଷା କରିବା—Protection of a person (who takes shelter)
ଶରଣାଗତରକ୍ଷଣ शरणागतरक्षण from danger.

ଶରଣ ରକ୍ଷଣ ବାନା—ଦେ. ବି—ସଂ ବିଣ—(ଶରଣ+ରକ୍ଷ ଧାତୁ କର୍ତ୍ତୃ.
Śaraṇa rakshaṇa bānā ଅନ=ଯେ ଆଶ୍ରିତ ବ୍ୟକ୍ତିଙ୍କୁ ରକ୍ଷା
शरणागतरक्षक କରେ=ଶରଣରକ୍ଷଣ+ଦେଶଜ ବାନା)—ଶରଣାଗତ ବ୍ୟକ୍ତିଙ୍କୁ ରକ୍ଷା କରିବା ଯାହାର ବ୍ରତ—A person (who is compared to a flag) whose avowed duty is to protect persons taking
ଶରଣାଗତରକ୍ଷକ shelter under him.

ଶରଣ ରାଜ୍ୟ—ଦେ. ବି.—ଶରଣ ଧରଣୀ (ଦେଖ)—
Śaraṇa rājya Śaraṇa dharaṇī (see)

ଶରଣ ସୋଦର—ଦେ. ବି (୬ଷ୍ଠୀତତ୍ ଶରଣ+ସୋଦର=ସହାୟ)—
Śaraṇa sodara ଶରଣାଗତର ମିତ୍ର-Friend of one who
ଶରଣାଗତେର ବନ୍ଧୁ has taken shelter under him.
शरणागतका मित्र [ଉ—ଭୁ ଯେବେ ଶରଣସୋଦର, ଏ ସ୍ନେହପାଶ ଛେଦ ମୋର—ଜଗନ୍ନାଥ. ଭାଗବତ।]

ଶରଣ ସ୍ଥଳ (ସ୍ଥାନ)—ସଂ. ବି—ଆଶ୍ରୟ ସ୍ଥାନ; ଯେଉଁଠାରେ ବିପନ୍ନଲୋକ
Śaraṇa sthala (sthāna) ଆଶ୍ରୟ ନିଏ—A place of shelter or refuge.

ଶରଣ ହୀନ—ସଂ. ବିଣ. ପୁଂ (୩ୟା ତତ୍ ପୁରୁଷ)—ନିରାଶ୍ରୟ; ଅଶରଣ;
Śaraṇa hīna ଅସହାୟ—Shelterless; a person
(ଶରଣ ହୀନା—ସ୍ତ୍ରୀ) having no protector.

ଶରଣୀ—ଦେ. ବି (ସଂ. ଶରଣ=ଜଳ)—ଛୋଟକେଉଣ୍ଡି; ସେରଣା
Śaraṇī ମାଛ; (ସଂ.ନାମ ସହାୟସଂଗ୍ରହ) ବୃହତ୍ଫଳ—1. Barbus
ଶରଣପୁଁଟି Sarana (fish). (ସମାସରେ) ଆଶ୍ରିତା ସଂ. ବି. ସ୍ତ୍ରୀ
पोठा (ସ୍ତ୍ରୀଲୋକ)—Protected (female). [ଉ—
ଧାତ୍ରୀବଶବର୍ତ୍ତୀ ସ୍ୱାମୀ ଧ୍ୟାୟ କନ୍ୟାର—ରାଧାନାଥ. ମହାଯାତ୍ରା।] ସଂ. ବି—ଗନ୍ଧପ୍ରସାରଣୀ ଲତା (ବୃ. ଶ)—
Paederia Faetida (creeper).

ଶରଣାଗତ—ସଂ. ବିଣ. ପୁଂ (ଶରଣ=ଆଶ୍ରୟକୁ+ଆଗତ=ପ୍ରାପ୍ତ; ୨ୟା
Śaraṇāgata ତତ୍)—ଯେ ବିପଦରୁ ଉଦ୍ଧାର ପାଇବା ପାଇଁ
[ଶରଣାପନ୍ନ—ଅନ୍ୟରୂପ] ଅନ୍ୟ ବ୍ୟକ୍ତି ନିକଟରେ ଶରଣ ନେଇ
ଶରଣାଗତା } —ସ୍ତ୍ରୀ
ଶରଣାପନ୍ନା }
ଥାଏ; ଆଶ୍ରିତ—Taking shelter to be saved from danger.
ବି. ପୁଂ—୧। ଆଶ୍ରିତ ବ୍ୟକ୍ତି—1. One who has taken refuge; a refugee. ୨। ଶିଷ୍ୟ; ଚେଲା
(ବୃ. ଶ)—2. Disciple.

ଶରଣାଗତ ପାଳକ—ସଂ. ବିଣ ଓ ବି ପୁଂ—ଯେଉଁ ବ୍ୟକ୍ତି ଶରଣାଗତଙ୍କୁ
Śaraṇāgata pālaka ରକ୍ଷା କରେ ବା ପାଳନ କରେ—
(ଶରଣାଗତ ରକ୍ଷକ—ଅନ୍ୟରୂପ) The protector of a refugee.
(ଶରଣାଗତ ପାଳକା, ଶରଣାଗତ ରକ୍ଷିକା—ସ୍ତ୍ରୀ)

ଶରଣାଗତ ପାଳନ—ସଂ. ବି (୬ଷ୍ଠୀ ତତ୍)—ଶରଣାପନ୍ନ ବ୍ୟକ୍ତିଙ୍କୁ
Śaraṇāgata pālana ବିପଦରୁ ରକ୍ଷା କରିବା—The
(ଶରଣାଗତ ରକ୍ଷା—ଅନ୍ୟରୂପ) protection of a refugee from danger. ବିଣ. ପୁଂ—ଶରଣାଗତ ପାଳକ
(ଦେଖ)—Śaraṇāgata pālaka (See)

ଶରଣାଦି—ଦେ. ବିଣ (ସଂ. ଶରଣାର୍ଥୀ)—ଶରଣାଗତ—Seeking
Śaraṇādi protectio. [ଉ—ଶରଣାଦି ଲୋକେ ରକ୍ଷିବ
ସବୁ କାଳେ, ଯେ ଜାଣିବାର ଦେବ ବଳେ ଅବା ବଳେ—
କୃଷ୍ଣସିଂହ. ମହାଭାରତ. ବନ।]

ଶରଣାର୍ତ୍ତିହର—ସଂ. ବିଣ. ପୁଂ (୬ଷ୍ଠୀ ଓ ଉପପଦ)—ଶରଣ ପାଇବ
Śaraṇārttihara ପାଇଁ ପ୍ରାର୍ଥନାକାରୀ ବ୍ୟକ୍ତିର ବେଦନାକୁ
(ଶରଣାର୍ତ୍ତିହରା—ସ୍ତ୍ରୀ) ଯେ ହରଣ କରନ୍ତି—Removing the grievance of a person seeking shelter

ଶରଣାର୍ଥୀ—ସଂ. ବିଣ. ପୁଂ (ଉପପଦ ତତ୍ପୁରୁଷ, ଶରଣ କାମନାରେ ଅର୍ଥ
Śaraṇārthī =ପ୍ରାର୍ଥୀ)—ଶରଣପ୍ରାର୍ଥୀ—Praying for
(ଶରଣୈଷୀ—ଅନ୍ୟରୂପ) being given shelter; seeking
(ଶରଣାର୍ଥିନୀ, ଶରଣୈଷିଣୀ—ସ୍ତ୍ରୀ). refuge

ଶରଣି(ଣୀ)—ସଂ. ବି ( ଶରଣ+ଇ, ବିକଳ୍ପେ ଈ; ଗମନାର୍ଥ ଯାହାକୁ **Śarani(ṇī)** ଆଶ୍ରା କରାଯାଏ )—୧ । ମାର୍ଗ; ପଥ; ରାସ୍ତା—1 Path; road; way. ୨ । ଇନ୍ଦ୍ର ଦୁହିତା; ଜୟନ୍ତୀ—2. Name of Indra's daughter. ୩ । ଜୟନ୍ତୀ ବୃକ୍ଷ; ଅଗ୍ନିମନ୍ଥ ବା ଅଗବଥୁ ଗଛ—3 A tree; Premna Serratifolia. ୪। ପ୍ରସାରଣୀ ଲତା; ପସାରୁଣୀ ଲତା—4. A creeper; Paederia Foetida (creeper). ୫ । ପୃଥିବୀ ( ହି. ଶ )—5. The earth. ୬ । ହିଂସା (ହି. ଶ)—6. Injury. ୭ । ରେଖା; ପଂକ୍ତି—7. Row; line ( Apte ).

ଶରଣ୍ଡ—ସଂ. ବିଣ (ଶୃ ଧାତୁ=ବଧ କରିବା+କର୍ତ୍ତୃ. ଅଣ୍ଡ)—୧ । ଧୂର୍ତ୍ତ—**Śaranda** 1. Wicked. ୨ । ଲମ୍ପଟ; କାମୁକ—2. Lecherous. ବି—୧ । ( +କର୍ମ. ଅଣ୍ଡ ) ପକ୍ଷୀ—1. Bird. ୨ । ଏକପ୍ରକାର ଅଳଙ୍କାର ( ହି. ଶ )—2. A kind of ornament. ୩। ଝିଟିପିଟି (ହି. ଶ)—3. House-lizard. ୪ । ଏଣ୍ଡୁଅ ( ହି. ଶ )—4. Chameleon. ୫ । ଧୂର୍ତ୍ତ ବ୍ୟକ୍ତି—5. A rogue ୬ । କାମୁକ ବ୍ୟକ୍ତି—5. A lecher.

ଶରଣ୍ଡା—ଦେ. ବି—ସରଣ୍ଡା ( ଦେଖ )—Sarandā ( See ) **Śarandā** [ ଦ୍ର—ଏ ପରେ ଶରଣ୍ଡା ମୁଦ୍ରେ ପଦଚଣ୍ଡେ ଉଠିବ ବହ୍ନି-ମୟୂଖ—ରାଧାନାଥ. ପାର୍ବତୀ । ]

ଶରଣ୍ୟ—ସଂ. ବି. ପୁଂ ( ଶରଣ+ସମର୍ଥାର୍ଥେ; ଯ )—୧ । ଆଶ୍ରୟ **Śaranya** ଦାତା; ବିପଦରୁ ରକ୍ଷାକର୍ତ୍ତା—1. Saviour; (ଶରଣ୍ୟା—ସ୍ତ୍ରୀ) protector. ୨ । ଆଶ୍ରୟ—2. Shelter; refuge. ୩ । ରକ୍ଷଣ—3. Protection. ୪ । ଗୃହ—4. House ୫ । କ୍ଷତି—5. Loss; mischief. ୬ । ଆଘାତ—6. Hurt; blow; stroke. ବିଣ. (ଶରଣ୍ୟତା—ବି) ପୁଂ—ଶରଣାଗତ ରକ୍ଷଣ ସମର୍ଥ; କୌଣସି ବ୍ୟକ୍ତିକୁ (ଶରଣ୍ୟା—ସ୍ତ୍ରୀ) ବିପଦରୁ ରକ୍ଷା କରିବାକୁ ସମର୍ଥ—Able to protect a person from danger

ଶରଣ୍ୟା—ସଂ. ବି. ସ୍ତ୍ରୀ ( ଶରଣ୍ୟ+ଆ )—ଦୁର୍ଗା; ଭବାନୀ—Durgā, **Śaranyā** ସଂ. ବିଣ. ସ୍ତ୍ରୀ—ଶରଣ୍ୟର ସ୍ତ୍ରୀଲିଙ୍ଗ—Feminine of Śaranya.

ଶରଣ୍ୟୁ—ସଂ. ବି ( ଶୃ ଧାତୁ+କର୍ତ୍ତୃ. ଅନ୍ୟୁ )—୧ । ମେଘ—**Śaranyu** 1. Cloud. ୨ । ବାୟୁ—2. Wind. ୩ । ରକ୍ଷାକର୍ତ୍ତା—3. Protector. ୪ । ( ସ୍ତ୍ରୀ ) ସୂର୍ଯ୍ୟପତ୍ନୀ (ହି. ଶ)—4. A wife of the Sun-god.

ଶରତ୍—ବୈଦେ. ( ଫା ) ବି ( ବଚରଥ ) ( ଅ. ଶର୍ତ୍ତ )—କୌଣସି **Śarat** କଥାବାର୍ତ୍ତାର ବା ଚୁକ୍ତିର ଅନୁସଙ୍ଗିକ ନିୟମ ବା ଅଙ୍ଗ—শর্ত Condition or terms of any contract. शरत, शर्त [ ଯଥା—ସନ୍ଧି ଶରତ୍, ପଚାର ଶରତ୍ । ] ଦେ. ବି (ସଂ. ଶରତ୍ଚନ୍ଦ୍ର)—ଶରଚ୍ଚନ୍ଦ୍ରର ଡାକ ନାମ—Name for calling Śarachchandra- ସଂ. ବି (ମୂଳଶବ୍ଦ) (ସଂ. ଶରତ୍ ଶବ୍ଦର ପ୍ରଥମା ବିଭକ୍ତିର ୧ ବଚନରେ 'ଶରଦ୍' ହୁଏ, ମାତ୍ର ଓଡ଼ିଆରେ ସାଧାରଣତଃ ପ୍ରଥମା ବିଭକ୍ତିରେ 'ଶରତ୍' ଶବ୍ଦ ବ୍ୟବହୃତ ହୁଏ )—ଋତୁ ବିଶେଷ; ବର୍ଷାର ପରବର୍ତ୍ତୀ ଓ ହେମନ୍ତର ପୂର୍ବବର୍ତ୍ତୀ ଋତୁ; ଆଶ୍ୱିନ ଓ କାର୍ତ୍ତିକ ଏହି ଦୁଇ ମାସ ( ମତାନ୍ତରେ ଭାଦ୍ର ଓ ଆଶ୍ୱିନ ମାସ ଦ୍ୱୟ )—Autumn season ( months of Āświna and Kārttika or Bhādra and Āświna ). [ ଦ୍ର—ବୈଦିକ କାଳରେ ଓ ବୈଦ୍ୟକ ଗ୍ରନ୍ଥ ମତରେ ଭାଦ୍ର ଓ ଆଶ୍ୱିନ ମାସକୁ ଶରଦୃତୁ ବୋଲି ଯାଉଥିଲା; ବର୍ତ୍ତମାନ ଆଶ୍ୱିନ ଓ କାର୍ତ୍ତିକକୁ ଶରଦ୍ ଋତୁ ବୋଲାଯାଏ । ( ହି. ଶ ଓ ବିଶ୍ୱକୋଷ ) । ମାଧବାଚାର୍ଯ୍ୟଙ୍କ ପ୍ରଣୀତ କାଳମାଧବ ନାମକ ଗ୍ରନ୍ଥରେ ଇଷ ( ଆଶ୍ୱିନ ) ଓ ଊର୍ଜ୍ଜ ( କାର୍ତ୍ତିକ ) ମାସଦ୍ୱୟକୁ ଶରତ୍କାଳ ବୋଲି ଯାଇଅଛି । ]

ଶରତ୍କାମୀ—ସଂ. ବି.—(ଶରତ୍+କାମିନ୍; ଶରତ୍ କାଳରେ ଯାହାଙ୍କର **Śarat-kāmi** ସଙ୍ଗମ କାଳ ଘଟେ )—କୁକ୍କୁର—The dog (whose pairing season is autumn).

ଶରତ୍କାଳ—ସଂ. ବି.—ଶରଦୃତୁ—**Śarat-kāla** Season of autumn

ଶରତ୍କାଳୀନ—ସଂ.ବିଣ.—ଶାରଦୀୟ; ଶରତ୍କାଳ ସମ୍ବନ୍ଧୀୟ-Autumnal; **Śarat-kālina** relating to autumn.

ଶରତ୍କାଳୀନ ଉତ୍ସବ—ସ.ବି.—ଆଶ୍ୱିନ ପର୍ବ; ଶାରଦୀୟ ଦୁର୍ଗୋତ୍ସବ—**Śarat-kālina utsaba** The worship of Goddess Durgā in autumn.

ଶରତ୍ କୁମାର—ଦେ. ବି. ପୁଂ—ଲୋକଙ୍କ ନାମ—A name given **Śarat-kumāra** to males.
শরতকুমার शरतकुमार
(ଶରତ କୁମାରୀ—ସ୍ତ୍ରୀ)

ଶରତ୍ ପଦ୍ମ—ସଂ. ବି. (ମ .ପ. ଲୋ)—ଶ୍ୱେତ ପଦ୍ମ (ହି. ଶ) **Śarat-padma** White lotus.

ଶରତ୍ ପର୍ବ—ସଂ. ବି.—(ମ. ପ. ଲୋ; ଶରତ୍+ପର୍ବନ୍; ୧ମା ୧ବ)—**Śarat-parba** କୋଜାଗର ପୂର୍ଣ୍ଣିମା; କୁମାର ପୂର୍ଣ୍ଣିମା—The fullmoon of the month of Āświna. ଦେ. ବି.— ଶାରଦୀୟ ଦୁର୍ଗୋତ୍ସବ—The worship of Durgā শারদীয় উৎসব in Āświna.

ଶରତ୍ ପୂର୍ଣ୍ଣିମା—ସଂ. ବି.—ଆଶ୍ୱିନ ପୂର୍ଣ୍ଣିମା; କୁମାର ପୂର୍ଣ୍ଣିମା—The full-**Śarat-pūrṇnimā** moon of the month of Āświna.

ଶରତ୍ ଶଶୀ—ଦେ. ବି.—(ସଂ ଶରଚ୍ଛଶୀ)—ଶରଚ୍ଚନ୍ଦ୍ର (ଦେଖ)—**Śarat śaśi** Śarachchandra (See)

ଶରତ—ଦେ. ବି.—(ସଂ. ଶରତ୍)—୧ । ଶରତ୍କାଳ—1 Autumn. **Śarata** ୨ । ଶରଚ୍ଚନ୍ଦ୍ରର ଡାକନାମ—2 Name for calling শরৎ शरत Śarachhandra. ବୈଦେ. ବି.—ଶରତ୍ (ଦେଖ) Śarat (See)

ଶର ଟାଳିବା—ପ୍ରାଦେ (ଯାଜପୁର) କ୍ରି.—ଟାଳିବା; ହିଁ ହିଁ ବୋଲି କହି **Śara tālibā** ଦିନକୁ ଦିନ ଘୁଞ୍ଚାଇବା—To postpone; to put off things from day to day.

ଶର ତୃଣ —ସଂ ବି.—ଧାନ୍ୟାଦିବର୍ଗର ପାର୍ଯ୍ୟ‌ୟ ତୃଣ ବିଶେଷ; ମୁଞ୍ଜତୃଣ;
Śara truṇa କାଣ୍ଡଶର—The muñja grass, Saccharum Arundinaceum, Var Cilearis; the penr-eed grass.
ଏହାର ଫ. ପର୍ଯ୍ୟାୟ— ଶର, କାଶ, ତେଜନ ଇକ୍ଷୁ ବେଷ୍ଟନ, ମୁଞ୍ଜ, ମୁଞ୍ଜାତକ, ସ୍ଥୂଳଦର୍ଭ, ସୁମେଖଳ ।
ଓ—ଶର, କାଣ୍ଡଶର ଶର
काँडा, रामशर, सरपत, सरकंडा
ତେ—ଲେଣ୍ଡୁ, କାଙ୍କ ବେବୁରୁ, ଗୁନ୍ଦ୍ର ।
[ବ୍ର-ଏହାର ଗଛ ଅଣ୍ଟ ଗଛ ପରି ୮।୧୦ ହାତ ତେଙ୍ଗା; ବନ୍ଧ ପରି ସରୁ । ଏହାର ଅଗ୍ରଭାଗ ଶର ଲୁଅଣି ଓ ଯାନ ବାହନର ଛାଞ୍ଚ ହୁଏ । ଏହାର ଡାଙ୍ଗ ଦ୍ୱାରା ଧନୁଶରର ବେଣ୍ଟ ହୁଏ ଏବଂ କାଠି କଲମ ମଧ୍ୟ ହୁଏ । ବୈଦ୍ୟଶାସ୍ତ୍ର ମତରେ ଏହା ମଧୁରରସ୍କୁ ରସ, ଶୀତଳ, ବଳଶାର୍ଦ୍ଦୀକାରକ, ଶୁକ୍ରବର୍ଦ୍ଧକ ଓ ଦାହ, ତୃଷ୍ଣା, ମଦ, ଭ୍ରାନ୍ତି, ଅସ୍ତ୍ର ଦୋଷ, ମୂତ୍ରକୃଚ୍ଛ୍ର, ବିସର୍ପ, ନେତ୍ର ରୋଗ ଓ ତ୍ରିଦୋଷ ପକ୍ଷେ ଉପକାରକ ।]

ଶରଦ୍—ସଂ. ବି (ଶୃ ଧାତୁ+କର୍ତ୍ତୃ. ଅଦି) – ୧ । ଶରତ୍ (ଦେଖ) –
Śarad 1. Śarat. (See) ୨ । ବତ୍ସର; ସମ୍ବତ୍ସର —2. Year.
ଅନ୍ୟ ସଂସ୍କୃତ ନାମ—ଶାରଦା, କାଳପ୍ରଭାତ] ବୈଦେ. ବି— ମେଘାନ୍ତ, ବର୍ଷାବସାନ, ପ୍ରାବୃଡ଼ତ୍ୟୟ । ସରଦ୍ (ଦେଖ)-
Sarad. (See).

ଶରଦ—ସଂ ବି—ଶାରଦାସ୍ୱ ବୀଣାସନ୍ତ୍ର; ସରସ୍ୱତୀଙ୍କ ବୀଣା—A sort of
Śarada lute said to be used by Saraswatī.
ଦେ.ବି—୧ । (ସ.ଶରଦ୍)ଶରତ୍କାଳ—1. Autumn.
[ଭ୍ର—ଏହିରୂପେ ବରଷାକାଳ ଶେଷ କରି, ଶରଦ ଆଗମନ ଦେଖି ନୃପଧାଇଁ । କୃଷ୍ଣସିଂହ. ମହାଭାରତ. ବନ । ]
ଶରଦୀ ବୈଦେ. ବି (ଫା. ଶର୍ଦ୍ଦ)—ସରଦ୍ (ଦେଖ)—Sarad
सरदी (See) [ଭ୍ର—କାଶ ନଶମ ନ କରେ ନୂଆଇ ଶରଦ । ପ୍ରାଚୀ. ଚନ୍ଦ୍ରକରୁଣ ଗୀତା । ]

ଶରଦ ଜର—ଦେ. ବି (ଅ. ଶର୍ଦ୍ଦ+ସଂ. ଜ୍ୱର)—ଶରଦ ବା କଫ-
Śarada jara ଜନିତ ଜ୍ୱର—Catarrhal fever.
ଶରଦୀ ଜ୍ୱର सरदी जर

ଶରଦଣ୍ଡ —ସଂ. ବି—୧ । ଚାବୁକ (ହି. ଶ)—1. Whip. ୨ । ଶର
Śaradaṇḍa ତୃଣ (ଦେଖ)—2. Śaratruṇa. (See).

ଶରଦନ୍ତ—ସଂ. ବି (ଶରଦ୍+ଅନ୍ତ, ୬ଷ୍ଠୀ ତତ୍)—ହେମନ୍ତଋତୁ
Śaradanta (ମାର୍ଗଶିର ଓ ପୁଷ; ମତାନ୍ତରେ କାର୍ତ୍ତିକ ଓ ମାର୍ଗଶିର)—The season of early winter.

ଶରଦ(ଦୁ, ଦୋ,)ଲ(ଳି,)—ଦେ.ବି(ସଂ. ଶାର୍ଦ୍ଦୂଳ; ଏଥିରେ ଶାର୍ଦ୍ଦୂଳାଦିଙ୍କ
Śarad(du,do)la(li) ଚିତ୍ର ଖୋଦିତ ହେଉଥିବାରୁ )—
ଶରଦଲ ୧ । ଦୋଠାର ବାଡ଼ିର ଓ ବହଗାର ଏବଂ ଦୂଳଅ
शार्दूल ଗୁଳ ଉପର କାଠ ରୁଅର ମୁଁହରେ ଆଡ଼ବାଗରେ ଯେଉଁ ଲମ୍ବ ପଟା ମରାଯାଏ; ଭାରତଥ ( ବ୍ର—ବହଗାର ଓ ରୁଅର ଅଗକୁ ଏହା ଖରବର୍ଷାରୁ ରକ୍ଷା କରେ)—1. A plank attached to the ends of the rafters to protect the ends from the wearing effect of sun and rain. ୨ । ଦରାଣ୍ଟର ଦଉକାଠର ତୁଳ ଗାଣର ତେଙ୍ଗ କାଠକୁ ଲାଗି ଚଉକାଠ ଉପରେ ପଡ଼ିଥିବା ଚକିତ ପଟା; ଶାର୍ଦ୍ଦୂଳ ପଟା—2. A plank laid over the threshold of a door. [ବ୍ର—ଏଥିର ଉପରେ ପୁଣି କାନ୍ଥ ବନ୍ଦା ଯାଏ । ପୂର୍ବେ ଶିଳ୍ପରେ ସୂକ୍ଷ୍ମ ଜ୍ଞାନ ନ ଥିବାରୁ ଚଉକାଠ ଉପରେ ଦୁଇ କାନ୍ଥକୁ ଲଗାଇ ପଟା ଅଡ଼େଇ ପକା ଯାଇ ସେ ପଟା ଉପରେ ପୁଣି କାନ୍ଥ ବନ୍ଧାଯାଉଥିଲା ।]

ଶରଦା—ସଂ. ବି (ଶରଦ୍+ଆ)—୧ । ଶରତ୍କାଳ (ହି. ଶ)—
Śaradā 1. Autumn. (Apte) ୨ । ବର୍ଷ; ସାଲ (ହି. ଶ)—
2. Year. (Apte).

ଶରଦି—(ଇତ୍ୟାଦି) ବୈଦେ. ବି—ସରଦି ଇତ୍ୟାଦି (ଦେଖ)
Śaradi (etc) Saradi etc. (See)

ଶରଦିଜ —ସଂ ବିଣ (ସଂ. ଶରଦି=ଶରତ୍କାଳରେ+ଜନ୍ ଧାତୁ+
Śaradija ଡ଼ି. ଅ; ଅଲୁକ୍ ସମାସ)--ଶରତ୍କାଳରେ ଜାତ;
ଶାରଦୀୟ—Produced in autumn; autumnal.

ଶରଦି(ଦେ)ନ୍ଦୁ —ସଂ. ବି [ ଶରତ୍(ଦ୍)+ଇନ୍ଦୁ, ଶରଦା+ଇନ୍ଦୁ ]—
Śaradi(de)ndu ଶରଚ୍ଚନ୍ଦ୍ର (ଦେଖ)—Śarachchandra (See)

ଶରଦିନ୍ଦୁ ନିଭାନନ—ସଂ. ବିଣ. ପୁଂ (ଶରତ୍+ଇନ୍ଦୁ+ନିଭ=ସଦୃଶ+
Śaradindu nibhānana ଆନନ; ବହୁବ୍ରୀହି )—ଶରଚ୍ଚନ୍ଦ୍ର
(ଶରଦିନ୍ଦୁ ନିଭାନନା—ସ୍ତ୍ରୀ) ନିଭାନନ (ଦେଖ)-Śarachchandra nibhānana. (See)

ଶରଦୁଦ୍ଭବ –ସଂ. ବି (ବହୁବ୍ରୀହି; ଶରତ୍ କାଳରେ ଉଦ୍ଭବ ଯାହାର)—
Śaradudbhaba ବୃନ୍ତରୂପକ ଶାକ; କେଉଟଅ ଶାଗ (ବିଶ୍ୱକୋଷ)—Amaranthus Gangeticus (pot herb).

ଶରଦ୍ୱାନ୍—ସଂ. ବି (ଶରଦ୍ୱତ୍; ୧ମା. ୧ବ)—୧ । ଗୌତମ ମୁନିଙ୍କ
Śaradbān ପୁତ୍ର; କୃପ ଓ କୃପୀଙ୍କ ପିତା—[ବ୍ର—ଶର ସଙ୍ଗେ ଜନ୍ମି ଥିବାରୁ ଏହାଙ୍କର ନାମ ଶରଦ୍ୱାନ୍ ହୋଇଥିଲା ।]
1. Son of sage Gautama, father of Krupa and Krupī. ୨ । ଶରତ୍କାଳ (ହି. ଶ) —
2. Autumn.

ଶରଦ୍ରାସ—ସଂ. ବି—ଶରତ୍କାଳୀନ ରାସଯାତ୍ରା; କାର୍ତ୍ତିକ ପୂର୍ଣ୍ଣିମା ଦିନ
Śaradrāsa ଅନୁଷ୍ଠିତ ଶ୍ରୀକୃଷ୍ଣଙ୍କର ରାସୋତ୍ସବ—The festival of 'Rāsa' observed on the fullmoon day of Kārttika.

ଶରଧା—ଦେ. ବି (ସ. ଶ୍ରଦ୍ଧା; ପଦ୍ୟରେ ବ୍ୟବହୃତ)—୧ । ସ୍ନେହ;
Śaradhā ଶ୍ରଦ୍ଧା—1. Affection; liking. ୨ । ଆଗ୍ରହ—
ଶାଧ 2. Eagerness. [ଭ୍ର—ତେଜିଲ ବସ୍ତ୍ରଥାନ୍ତ ବନ୍ଧନ ଶରଧାରୁ
सरधा କୃଷ୍ଣସିଂହ. ମହାଭାରତ. ସଭା । ] ୩ । ଲାଳସା—
3. Hankering. ୪ । (ସ୍ତ୍ରୀ)ଶ୍ରଦ୍ଧା ନାମ୍ନୀ ସ୍ତ୍ରୀର ଡାକନାମ—
4. Name for calling Śraddhā.

**ଶରଧା(ଧେ)ଇବା**—ଗ୍ରା. କ୍ରି ( ପଦ୍ୟ)—୧ । କୌଣସି ବ୍ୟକ୍ତି ବା ବସ୍ତୁ ପ୍ରତି ସ୍ନେହଯୁକ୍ତ ହେବା, ଶ୍ରଦ୍ଧାଯୁକ୍ତ ହେବା—1. To like or love a thing or person; to have a liking or affection for. ୨ । (କୌଣସି ବସ୍ତୁ ପ୍ରତି) ଅତ୍ୟାକାଂକ୍ଷିତ ରୂପେ ଲାଳାୟିତ ହେବା—2. To have a hankering after (some thing); to hanker after.
Śaradhā (dhe)ibā
ভালবাসা **शरधा करना**
(ଶରଧା କରିବା, ଶରଧା ପାଇବା—ଅନ୍ୟରୂପ)

**ଶରଧା ନାମ**—ଦେ. ବି—(ସଂ. ଶ୍ରଦ୍ଧାନାମ)—ଶ୍ରଦ୍ଧା ନାମ (ଦେଖ)
Śaradhā nāma Sraddhā nāma (See)

**ଶରଧା ବନ୍ଧୁ**—ଦେ. ବି.—ପ୍ରୀତିବନ୍ଧୁ; ମହାପ୍ରସାଦ ବନ୍ଧୁ—1. God relation. ୨ । ଅତି ଶ୍ରଦ୍ଧାର ପାତ୍ର—2. Very dear person.
Śaradhā bandhu
প্রীতিবন্ধু, পাতানবন্ধু **शरधाबन्धु**

**ଶରଧା ବଳା(ଳେ)ଇବା**—ଦେ. କ୍ରି—କୌଣସି ବ୍ୟକ୍ତି ବା ବସ୍ତୁ ପ୍ରତି ଶ୍ରଦ୍ଧାନ୍ୱିତ ହେବା—To have a liking for any person or thing. [ ଉ—ପଙ୍କଜରେ ଭୃଙ୍ଗ ରହିବାରେ ସଦା, ଚମ୍ପାଦୂତ ଯହିଁ କଳାକୁ ଶରଧା । ରାଧାନାଥ. ଚନ୍ଦ୍ରଭାଗା ।]
Śaradhā baḷa(ḷe)ibā
শাধ করা **ललचाना**

**ଶରଧା ବଳିବା**—ଦେ· ବି—ଶ୍ରଦ୍ଧାନ୍ୱିତ ହେବା; ମନରେ ଶ୍ରଦ୍ଧାଧିକ୍ୟ ଜାତ ହେବା—Having a liking for; hankering.
Śaradhā baḷibā
শাধ হওয়া **लालच होना**

**ଶରଧା ବାଲି**—ଦେ. ବି—(ସଂ ଶ୍ରଦ୍ଧା ଓ ବାଲୁକା)—ଜଗନ୍ନାଥଙ୍କ ବଡ଼-ଦାଣ୍ଡର ବା ରଥଦାଣ୍ଡର ଧୂଳି ( ଭକ୍ତମାନେ ଏହାକୁ ଭକ୍ତି ସହିତ ଦେହରେ ବୋଳି ହୁଅନ୍ତି)—The dust of the car-road of Puri. [ଉ—ଶରଧା ବାଲିରେ ଗଲେ ଜଗନ୍ନାଥ ରଥ । ଚୂଡ଼ୁଙ୍ଗ ଗୀତ; × × × ଜଗନ୍ନାଥ ମହାପ୍ରଭୁଙ୍କ ରଥ ଅଗ ଶରଧା ବାଲିରେ ଭକ୍ତ ଗଡ଼ଗଲ ପର ×× × ସଙ୍ଗ ଯାଇ ଠିଆହେଲା । ଫକୀରମୋହନ. ଭ୍ରମଣ ଅଠଚ୍ଛେ ।]
Śaradhā bāli

**ଶରଧା ମଣି**—ଦେ. ବି. ସ୍ତ୍ରୀ—ସ୍ତ୍ରୀ ଲୋକଙ୍କ ପ୍ରଚଳିତ ନାମ—Name of females.
Śaradhā maṇi **शरधा मणि**

**ଶରଧା ଲାଗିବା**—ଦେ. ବି—(ମତେ) କୌଣସି କାର୍ଯ୍ୟ ସୁଖକର ବୋଧ ହେବା—Seeming pleasant.
Śaradhālāgibā
ভাললাগা **अच्छा लगना**

**ଶରଧି**—ସଂ. ବି (ଶର+ଧା ଧାତୁ=ଧାରଣ କରିବା+ଅଧିକରଣ. ଇ)—ତୂଣ; ବାଣାଧାର; ଶରତୂଣୀ—A quiver.
Śaradhi

**ଶରଧୀ**—ଦେ. ବି. ସ୍ତ୍ରୀ—ଶ୍ରଦ୍ଧାନାମ୍ନୀ ସ୍ତ୍ରୀର ଡାକ ନାମ—Name for calling Sraddhā.
Śaradhi **शरधा**

**ଶର ନିକ୍ଷେପ**—ସଂ. ବି.—ଶର ବିନ୍ଧା (ଦେଖ)—
Śara nikshepa Śara bindhā (See)

**ଶର ପକ୍ଷ**—ସଂ. ବି.—ଶର ପୁଙ୍ଖ (୧) (ଦେଖ)
Śara paksha Śara puṅkha (1) (See)

**ଶର ପଙ୍ଖ**—ସଂ. ବି.—ଯବାସ ଗୁଳ୍ମ (ହି. ଶ)
Śara paṅkha Rogonia Arabica (plant).

**ଶର ପଞ୍ଜର**—ସଂ. ବି—ଶରଶଯ୍ୟା (ଦେଖ) (ବିଶ୍ୱକୋଷ)—
Śara pañjara Śaraśajyā (See)

**ଶର ପତ୍ର**—ସଂ. ବି.—ଶାଗୁଆନ; ଶାଗୁଆନ ଗଛ
Śara patra The teak tree

**ଶର ପାପ(ପୁ)ଡ଼ି**—ଦେ. ବି.—ଶରପାପଡ଼ି (ଦେଖ)
Śara pāpa(pu)ṛdi Śarapāpaṛdi (See)
সবপাপড়ী **शरपापड़ी**

**ଶରପୀଡ଼ା**—ଦେ.ବି.—(ସ ଶରୀରପୀଡ଼ା)—କୌଣସି ଅନର୍ଗଳ ଶାରୀରିକ କର୍ମ ବା କ୍ଳାନ୍ତି ଯୋଗୁଁ ଶରୀର ପୀଡ଼ା—The aching of the body on account of excessive physical labour or fatigue. (ଯଥା—ମୋ ଦେହଟା ଶରପୀଡ଼ା କରୁଛି ।]
Śarapirḍā
ব্যথা **व्यथा; पीड़ा**

**ଶରପୁଙ୍ଖ(ଙ୍ଖୀ)**—ସଂ. ବି—୧ । (୬ଷ୍ଠୀତତ୍) ଶର ବା ବାଣର ଯେଉଁ ଅଂଶରେ ପର ବା ପକ୍ଷ ଲାଗିଥାଏ—1. The feathered part or end of an arrow. ୨ । (ବହୁବ୍ରୀହି)(ବୈଦ୍ୟକ) ବନନୀଲ 2 The purple Tephrosia; Tephrosia Purpurea [ବ୍ର—ଏହାର ଅନ୍ୟ ନୀଳ ଗୁଳ୍ମ ପତ୍ର । ବୈଦ୍ୟଶାସ୍ତ୍ର ମତରେ ଏହା କଟୁ, ଉଷ୍ଣ, କୃମି ଓ ବାତରୋଗ ନାଶକ । ଏହାର ମୂଳ ମୂଷିକ ବିଷ-ନାଶକ, ରକ୍ତ ପରିଷ୍କାରକ, ରସାୟନ, ଜ୍ୱର, ପ୍ଳୀହା, ଯକୃତ, ବ୍ରଣ, ବିଷଦୋଷ, ଶ୍ୱାସ, କାଶ ନାଶକ । ଶରପୁଙ୍ଖ ଦୁଇ ପ୍ରକାର—ଶ୍ୱେତ ଓ ପୀତ । ଶ୍ୱେତ ଜାତୀୟ ଶରପୁଙ୍ଖ ଅଧିକ ଗୁଣଶାଳୀ ।]
Śarapuṅkha(ṅkhi)
ଅନ୍ୟ ସଂ ନାମ—ପ୍ଳୀହା ଶତ୍ରୁ, ପ୍ଳୀହା ଶତ୍ରୁ, କାଣ୍ଡପଙ୍ଖା, ବାଣପୁଙ୍ଖା, ଶାମ୍ବୁକପୁଙ୍ଖା]
শরপুঙ্খা, বননীল, শরপুঙ্খ
**शरफोङ्का, सरफोका**
ମ—ଉନ୍ନ(ବା)ଲୀ
ତେ—ବେଲବେଳୁଖି ଚେଟ୍ଟୁ,
କେକ୍ଷୋଲ
ତା—କୋଲ୍ଲ ଯୁଦ୍ଦୁବେଲ୍ଲଇ

**ଶରପୁଳି**—ଦେ. ବି ( ସଂ. ଶର ଓ ପୂର )—ଏକପ୍ରକାର ପିଠା—A kind of sweet wheaten cake; fried in ghee ( made in Sākshigopāla temple, Puri ) [ ବ୍ର—ଏହା ଗହମ ଚୂନାର ଖଳରେ ନିର୍ମିତ ଘୃତପକ୍ୱ ମିଷ୍ଟାନ୍ନ ଜାତୀୟ । ସତ୍ୟବାଦୀ ଗୋପୀନାଥଙ୍କୁ ଭୋଗ କରାଯିବା ବଡ଼ ଜାତୀୟ ପିଠାକୁ ଗୋଟିଏ ସରିରେ ଦେଇଥାଆନ୍ତି ପର ମଣ୍ଡାମଣ୍ଡ ରଖି ତା ଉପରେ ଖଣ୍ଡ ଛଣା ଯାଇ-ଥାଏ । ]
Śarapuḷi
শরপুরিয়া, শরপুার
**शरपुरीन**

**ଶର ପ୍ରୟୋଗ**—ସଂ. ବି ( ୭ମୀ ତତ୍ )—ଲକ୍ଷ୍ୟ ବସ୍ତୁ ବା ସ୍ଥାନ ଅଭିକୁ ଧନୁ ଦ୍ୱାରା ଶର ବା ବାଣ ପ୍ରୟୋଗ କରିବା; ବାଣ ମାରିବା; ଶର କ୍ଷେପ—Shooting with the bow and arrow.
Śara pryoga
ଶର ଯୋଜନ, ଶର କ୍ଷେପ } ଅନ୍ୟରୂପ

**ଶର ବଣ**—ଦେ. ବି ( ସଂ. ଶର ବନ )—ଯେଉଁ ବଣ ଶର ଗଛରେ ପୂର୍ଣ୍ଣ—A forest or jungle of Śara reeds. [ ଉ—ଶର ବଣରେ ଶର କଇଁଚ ରହିଲେ —କୃଷ୍ଣସିଂହ. ମହାଭାରତ. ଅଦି ।] [ ବ୍ର—କାର୍ତ୍ତିକେୟଙ୍କର ଶର ବନରେ ଜାତ ହୋଇଥିବା କଥା ପୁରାଣରେ ଉଲ୍ଲେଖ
Śara baṇa
শর বন **शर वन**

(ଶ୍ରବଣ—ଗ୍ରାମ୍ୟରୂପ) ଅଛ । ] ଗ୍ରା ଓ ପଦ୍ୟ—୧ । (ସ. ଶ୍ରବଣ)—
श्रवण श्रवन ଶ୍ରବଣ; ଶୁଣିବା—1. Hearing. [ ଦ୍ର—
ଶରବଣ କରନ୍ତ ଋଷିଗିର—ଅଭିମନ୍ୟୁ ବଧ ଉଗ୍ରଚଣ୍ଡାମଣି । ]
୨ । କାନ—2. Ear.

ଶରବଣା—ଗ୍ରା. ବି ( ସ. ଶ୍ରବଣା )—ଶ୍ରବଣା ନକ୍ଷତ୍ର ( ଦେଖ )—
Sarabaṇā Srabaṇā nakshatra ( See )
( ନକ୍ଷତ୍ର ଶବ୍ଦରେ ଟୀକା ଦେଖ )
श्रवणा श्रवना ପ୍ରାଦେ. (ସମ୍ବଲପୁର)ବି—ବନ୍ୟ ତରୁବିଶେଷ
Gareinia Cowa ( Haines ).

ଶର ବନ—ସ. ବି—ଶର ତୃଣର ବନ—
Sara bana Jungle of Sara reeds.

ଶରବନା—ପ୍ରାଦେ ( ସମ୍ବଲପୁର ) ବି—ଶର୍ବନା ( ଦେଖ )
Sarabanā Sarbanā ( see )

ଶର ବର୍ଷଣ—ସ. ଭ ( ୬ଷ୍ଠୀ ତତ୍ )—ଏକ ସମୟରେ ଉପର୍ଯ୍ୟୁପରି ବହୁ
Sara barshaṇa ଶରବିକ୍ଷେପ—Shooting of
ଶର ବୃଷ୍ଟି—ଅନ୍ୟରୂପ ) many arrows at a time.

ଶରବାଣି—ସ. ବି ( ଶର+ବନ୍ ଧାତୁ=ପ୍ରୟୋଗ କରିବା+କର୍ମ.
Sarabāṇi ଇ )—୧ । ବାଣର ଅଗ୍ରଭାଗ—1. The point
of an arrow. ୨ । ( +କର୍ତ୍ତୃ ଇ ) ଶରଜୀବୀ;
ଧନୁର୍ଦ୍ଧର ପଦାତିକ ସୈନ୍ୟ—2. Infantry; foot
soldier; archer. ୩ । ଶରକ୍ଷେପୀ—3. Profes-
sional archer.

ଶର ବାରଣ—ସ. ବି ( ବହୁବ୍ରୀହି )—ଢାଲ ( ବିଶ୍ୱକୋଷ )—
Sarabāraṇa Shield.

ଶର ବିଦ୍ଧ—ସ. ବିଣ ( ଶର+ବିଦ୍ଧ; ତୃତୀୟା ତତ୍ )—ବାଣବିଦ୍ଧ; ଶରାହତ
Sara biddha ବାଣଦ୍ୱାରା ଫୋଡ ହୋଇଥିବା—Wounded
( ଶରବିଦ୍ଧା—ସ୍ତ୍ରୀ) with arrows; pierced with darts.

ଶରବିନ୍ଧା—ଦେ. ବି—ଧନୁଦ୍ୱାରା ଲକ୍ଷ୍ୟ ପ୍ରତି ଶର ପ୍ରୟୋଗ କରିବା—
Sarabindhā 1. Shooting with arrows. ୨ । ଲକ୍ଷ୍ୟ
शरबिंधा शर बिंधना ଭେଦ—2. Shooting at a target.
शरबिंधा शरबिन्धना ଦେ.ବିଣ—୧ । ଶରବିଦ୍ଧ—1. Pierced
with arrows. ୨ । ( ଲକ୍ଷଣାର୍ଥ ) ଅତ୍ୟନ୍ତ ଲଜ୍ଜିତ
ଲଜ୍ଜାରେ ମ୍ରିୟମାଣ—2. Much ashamed; put
to shame [ ଦ୍ର—ଶରବିନ୍ଧା ବ୍ୟକ୍ତିର ମୁଖ ପରି
ଯାହାର ମୁଖ ଲଜ୍ଜାଦ୍ୱାରା ବିକୃତ ହୋଇଯାଏ ।]

ଶର ବିନ୍ଧିବା—ଦେ. କ୍ରି—ଧନୁଦ୍ୱାରା ଦୂରରୁ ବା ଲକ୍ଷ୍ୟ ବସ୍ତୁ ପ୍ରତି ଶର
Sara bindhibā ନିକ୍ଷେପ କରିବା—To shoot an
शरबेंधा, शरछोड़ा शर बींधना arrow.

ଶରବୀଜ—ସଂ. ବି—ଭଦ୍ରମୁଞ୍ଜ (ଦେଖ) (ବୃ. ଶ)
Sarabīja Bhadra muñja. (See).

ଶରବ୍ୟ—ସ. ବି—(ଶର+ଯ; ବ ଆଗମ; କିମ୍ବା ଶର+ବେଷ୍ଟ୍ ଧାତୁ;
Sarabya ଶବରଣ କରିବା+କରଣ. ଅ )—ଶରର ଲକ୍ଷ୍ୟ;
ଯାହାକୁ ଲକ୍ଷ୍ୟ କରି ଶର ମାରିବାକୁ ହୁଏ—
The target; butt.

ଶରଭ—ସ. ବି—(ଶୃ ଧାତୁ=ହିଂସା କରିବା+କର୍ମ. ଅଭ)—୧ । ଅଷ୍ଟ
Sarabha ପାଦ ମୃଗବିଶେଷ (କାଳ୍ପନିକ)—1. A fabulous
ଅନ୍ୟ ସଂ. ନାମ—ମହାମୃଗ, deer with 8 legs. [ଦ୍ର—
ମହାସ୍କନ୍ଧୀ, ମହାମନାଃ, ପୁରାଣ ଆଦିରେ ଲେଖା ଅଛି ଯେ,
ଅଷ୍ଟପାଦ, ମହାସିଂହ, ମନସ୍ୱୀ ଶରଭ ଅଷ୍ଟପାଦ, ଊର୍ଦ୍ଧ୍ୱନୟନ ଓ
ପର୍ବତାଶ୍ରୟ । (ବିଶ୍ୱକୋଷ) ଊର୍ଦ୍ଧ୍ୱପାଦଚତୁଷ୍ଟୟଯୁକ୍ତ ଓ ଏ ଜୀବ
ସିଂହକୁ ମାରିବାକୁ ସମର୍ଥ ।] [ ଦ୍ର—ବଳବନ୍ତ ହେଲେ
ଯଥା କେଶରୀ, ବଧେ ଗଜାଦି ଶରଭକୁ ଡରି । ଭଞ୍ଜ.
ବୈଦେହୀଶବିଳାସ । ] ୨ । ଓଟ୍ଟ୍ର; ଓଟ—2. Camel.
୩ । କରିଶାବକ, ହାତୀ ଛୁଆ—3. The young of
an elephant ୪ । ଶ୍ରୀରାମଙ୍କ ସେନାର ଯୂଥପତି ବାନର
ବିଶେଷ ( ବୃ. ଶ )—4. Name of a monkey-
leader of Rāma's army. ୫ । ଶଲଭ; ପତଙ୍ଗ-
ବିଶେଷ; ଝିଣ୍ଟିକା—5. The grasshopper; locust.
[ଦ୍ର—ଏମାନେ ଶସ୍ୟକ୍ଷେତ୍ର ଲତାଦିକୁ ଚରି ନଷ୍ଟ କରନ୍ତି ।]
୬ । ଶିଶୁପାଳର ପୁତ୍ର ବିଶେଷ—6. Name of a son
of the demon Sisupāla. ୭ । ଦାନବ ବିଶେଷ
—7. Name of demon. ୮ । ନାଗ ବିଶେଷ
( ବିଶ୍ୱକୋଷ )—8. Name of a mythological
serpent. ୯ । ବିଷ୍ଣୁ ( ବୃ. ଶ )—9. Name of
Bishṇu. ୧୦ । ପକ୍ଷୀବିଶେଷ ( ବୃ. ଶ )—10. A
species of bird. ୧୧ । ବର୍ଣ୍ଣବୃତ୍ତ ବିଶେଷ ( ବୃ.
ଶ )—11. Name of a Sanscrit metre.
[ ଦ୍ର—ଏଥିର ପ୍ରତ୍ୟେକ ଚରଣରେ ୪ ନଗଣ ଓ ୧
ସଗଣ ଥାଏ । ଏଥିର ଅନ୍ୟ ନାମ ଶଶିକଳା, ମଣିଗୁଣ—
( ବୃ. ଶ )]—୧୨ । ସିଂହ ( ବୃ. ଶ)—12. Lion.

ଶରଭଙ୍ଗ—ସ. ବି—ରାମାୟଣ ବର୍ଣ୍ଣିତ ମୁନି ବିଶେଷ—Name of a
Sarabhaṅga sage (described in the Rāmāyaṇa).
[ ଦ୍ର—ଏହି ମୁନି ଦଣ୍ଡକାରଣ୍ୟରେ ତପସ୍ୟା କରୁଥିଲେ ।
ବନବାସ କାଳରେ ରାମଚନ୍ଦ୍ର ଏହାଙ୍କ ଆଶ୍ରମରେ ଉପସ୍ଥିତ
ହୋଇ ଦେଖିଲେ ଯେ,ଏହାଙ୍କୁ ଏହାଙ୍କର କଠୋର ତପସ୍ୟା-
ଲବ୍ଧ ବ୍ରହ୍ମଲୋକକୁ ନେବା ପାଇଁ ସ୍ୱୟଂ ଇନ୍ଦ୍ରଦେବ ଅସ୍ତ୍ର
ଉପସ୍ଥିତ ହୋଇଅଛନ୍ତି । କିନ୍ତୁ ଏହାଙ୍କ ନିକଟରେ ଉପସ୍ଥିତ
ହୋଇଥିବା ଅତିଥି ରାମଚନ୍ଦ୍ରଙ୍କୁ ସତ୍କାର କରିବା ପାଇଁ
ଋଷି ଇନ୍ଦ୍ରଙ୍କ ସଙ୍ଗେ ବ୍ରହ୍ମଲୋକକୁ ଯିବା କାର୍ଯ୍ୟ ସ୍ଥଗିତ
ରଖିଲେ ଓ ରାମଚନ୍ଦ୍ରଙ୍କୁ କହିଲେ ଯେ ମୁଁ ମୋ ତପସ୍ୟା
ବଳରେ ଯେଉଁ ପୁଣ୍ୟଲୋକମାନ ଅର୍ଜ୍ଜନ କରିଅଛି, ସେ
ସମସ୍ତକୁ ଆପଣ ଗ୍ରହଣ କରନ୍ତୁ । ରାମଚନ୍ଦ୍ର ଏଥିରେ ଅସମ୍ମତ
ହେଲେ । ପରେ ରାମଚନ୍ଦ୍ରଙ୍କୁ ତାଙ୍କର ଆଶ୍ରୟ ସ୍ଥାନ ସେ
ନିର୍ଦ୍ଦେଶ କରିଦେଲେ ଓ ତାଙ୍କ ସମ୍ମୁଖରେ ଅଗ୍ନି ସ୍ଥାପନ
ପୂର୍ବକ ମନ୍ତ୍ରୋଚ୍ଚାରଣ କରି ସେଥିରେ ଆହୁତ ଦେଇ
ଶେଷରେ ଆପଣା ଶରୀରକୁ ମଧ୍ୟ ସେଥିରେ ଝାସ
ଦେଲେ । ତାଙ୍କ ଦେହ ଉକ୍ତ ଅଗ୍ନିରେ ଭସ୍ମୀଭୂତ ହେବାରୁ
ଅଗ୍ନିରୁ ଗୋଟିଏ ଉଜ୍ଜ୍ୱଳ ବର୍ଣ୍ଣବିଶିଷ୍ଟ କୁମାର ଉତ୍ପନ୍ନ

ହେଲେ । ଉକ୍ତ କୁମାର ବନ୍ଧି ମଧ୍ୟରୁ ଉଠି ସଶରୀର ବ୍ରହ୍ମଲୋକକୁ ଗମନ କଲେ । ]

ଶର ଭଜା—ଦେ. ବି – ଦୁଧ ଅଉଟା ହେବା ପରେ କଡ଼େଇରେ ପଡ଼ିବା Śara bhajā ପିଠା ପରି ଗୋଲକାର ଶରର ଆବରଣକୁ ସାବ- ଶର ଭାଜା ଧାନତାପୂର୍ବକ ପ୍ରସ୍ତୁ ପ୍ରସ୍ତୁ କରି ଉଠାଇ ଅନେକଗୁଡ଼ିଏ शर भाजा ପ୍ରସ୍ତୁକୁ ଉପଯୁ୍ୟପରି ରଖି ଉହିଁରେ ଚିନି ବା ଖଣ୍ଡ ଚୂନା ଛିଞ୍ଚି ଘିଅରେ ଭାଜି ତିଆରି କରାଯିବା ମିଷ୍ଟାନ୍ନବିଶେଷ— A sort of sweetmeat consisting of layers of cream sprinkled over with powdered sugar and fried in ghee.

ଶରଭର—ଦେ. ବି—ଶରାଧିକ୍ୟ—Excess of arrows. [ଉ— Śarabhara ସାର ଶରଭର ଶର ଶର୍ଣ୍ଣ ଖର ଖର କରି ଡାକ शरभर ଡାକି— ଉଞ୍ଜ. ବୈଦେହୀଶବିଳାସ । ]

ଶରଭା—ସ. ବି. ସ୍ତ୍ରୀ—୧ । ଶୁଷ୍କ ଶରୀରବିଶିଷ୍ଟା ଓ ବିବାହର ଅଯୋଗ୍ୟା Śarabhā କନ୍ୟା ( ହି. ଶ )—1. A girl with emaciated body and unfit for marriage. ୨ । ଏକପ୍ରକାର କାଷ୍ଠ ନିର୍ମିତ ଯନ୍ତ୍ର (ହି. ଶ)—2. A kind of instrument made of wood.

ଶରଭୂ—ସ. ବି. ପୁଂ ( ଶର=ଶର ତୃଣ+ଭୂ ଧାତୁ=ହେବା+କର୍ତ୍ତୃ. Śarabhū କ୍ୱିପ୍; ଏହାଙ୍କୁ ଗଙ୍ଗାଦେବୀ ଶର ବଣରେ ନିକ୍ଷେପ କରିଥିବାରୁ )—କାର୍ତ୍ତିକେୟ; ଷଡ଼ାନନ; କାର୍ତ୍ତିକେୟ— Kārttikeya.

ଶରମ—ଗ୍ରା. ବି ( ପଦ୍ୟ ) ( ସ. ଶ୍ରମ )—ଶ୍ରମ; ପରିଶ୍ରମ—Labour. Śarama श्रम सरम [ ଉ—ଘନସାର ବାସ ପ୍ରଖର ନିଶ୍ୱାସ ଶରମଭରୁ ପ୍ରସରେ—କବିସୂର୍ଯ୍ୟ. ସଙ୍ଗୀତ । ] ଦେଶଜ. ସରମ ( ଫା ) ବି. ( ଫା. ଶରମ୍ )—ଲଜ୍ଜା; ବ୍ରୀଡ଼ା; ଲଜ୍ଜା— शरम Modesty; feeling of shame; bashfulness.

ଶର ମନ୍ଦିର—ଦେ. ବି (ଶର+ମନ୍ଦିର)—ରାଜକନ୍ୟା ଓ କ୍ଷତ୍ରିୟକନ୍ୟାଙ୍କ Śara mandira ପ୍ରଥମ ରଜୋଦର୍ଶନ ଉପଲକ୍ଷରେ କରାଯିବା ତୀବ ଘର ଉତ୍ସବ—A festival observed on the appearance of the menses of the girls of Raj families. [ ଉ—ମହାଦେବୀ ର ପରମ ବିଦୁଷୀ × × × କଲେ ଶର-ମନ୍ଦିର ଫଗମାସ— କବିସୂର୍ଯ୍ୟ. ଚନ୍ଦ୍ରକଳା । ] [ ଦ୍ର—ଗୃହ କଲରେ ଶର ଗୁଚ୍ଛଳରେ କୋଠି କରାଯାଇ ଏଥିରେ ପଞ୍ଚବର୍ଣ୍ଣୀ ମୁରୁଜ ଦିଆଯାଏ ଓ ଘର କୋଣରେ ଗୁଣ୍ଡେଇଣ୍ଡ ଗଛ ଓ ଗୁଣ୍ଡେଇଣ୍ଡ କଦଳୀଗଛ ପୋତା ଯାଏ । ତହିଁରେ ପୂର୍ଣ୍ଣକୁମ୍ଭ ଥାପି ଉପରେ ଶୁଦ୍ଧ ଅଗ୍ରାଣି ଜୁଲରେ ସାତଗୋଟ ରଖି ରତୁସ୍ନାନ ହାନ ବାଳକାକୁ ବସାନ୍ତି ଓ ଗୁଣ୍ଡିଏ ବାଳକା ହଳଦୀ ପାଣି ଫିଙ୍ଗାଫିଙ୍ଗି ହୁଅନ୍ତି । ତା ପରେ ଗର୍ଭଜଳରେ ରଜସ୍ୱଳା ବାଳକାର ଅଭିଷେକ କରାଯାଏ ଏବଂ ଉପୂରେ ଦେବତା ଦର୍ଶନ ଓ ବ୍ରାହ୍ମଣଙ୍କୁ ଦାନ ଦିଆଯାଏ । ]

ଶର ମଲ୍ଲ—ସ. ବି ( ଶର=ତୃଣ+ମଲ୍ଲ ଧାତୁ=ଧାରଣ କରିବା+ Śara malla କର୍ତ୍ତୃ. ଅ; ଯେଉଁମାନେ ଶର ତୃଣାଦିକୁ ଥଣ୍ଟରେ ଧରି କରି ନେଇ ନୀଡ଼ ନିର୍ମାଣ କରନ୍ତି )—୧ । ସୁକ୍ରକାଳକା ପକ୍ଷୀ (ଶବ୍ଦକୋଷ)—1. A bird; the pied myna. ୨ । ( ଶର ବିଷୟରେ ମଲ୍ଲ ) ଶରଦ୍ୱାରା ଯୁଦ୍ଧ କରିବା ବ୍ୟକ୍ତି; ତୀରନ୍ଦାଜ—2. An archer; a warrior fighting with arrows.

ଶର ମୁଖ (ଭୃଷ୍ଟି)—ସ. ବି ( ୬ଷ୍ଠୀ ତତ୍ )—ଶରର ଅଗ୍ରଭାଗ—The Śara mukha (bhrushṭi) fine point or shaft of a narrow.

ଶର ମୁଣା(ଣି)—ଦେ. ବି—ତୂଣୀର; ଯେଉଁ ମୁଣିରେ କା ଥଳିରେ ଶରମାନ Śara muṇā(ṇi) ରଖା ଯାଇଥାଏ ଓ ଯାହା ଧାନୁଷ୍କ କାନ୍ଧ ବଶବର୍ତ୍ତୀ ରେ ତଳେ ପିଠିଆଡ଼େ ଝୁଲୁଥାଏ ଏବଂ ଧନୁ ମାରିବା ବେଳେ तरकश ଯହିଁରୁ ତୀରନ୍ଦାଜ ଗୋଟିଏ ଗୋଟିଏ ଶର କାଢ଼ି ଧନୁରେ ଲଗାଏ—A quiver.

ଶର ମୁନ—ଦେ. ବି—ଶରର ଅଗ୍ରଭାଗ—The sharp point of Śara muna शरेर डगा शरका नोक an arrow.

ଶରଯୁ(ଯୂ)—ସ. ବି ( ଶୃ ଧାତୁ=ହିଂସା କରିବା+କର୍ତ୍ତୃ. ଅଯୁ, ବିକଳ୍ପେ Śarajū(jū) ଅଯୂ )—ଅଯୋଧ୍ୟା ଦେଶସ୍ଥ ନଦୀ ବିଶେଷ— Name of a river in Ajodhyā [ ଦ୍ର—ଶରଯୁ ନଦୀ ଘର୍ଘରା ନଦୀର ଗୋଟିଏ ଶାଖା ଅଟେ । ଏହା ହିମାଳୟର ଦକ୍ଷିଣପାର୍ଶ୍ୱରୁ ବାହାରି ଘର୍ଘରା ନଦୀ ସଙ୍ଗେ ବହ୍ରାଇଚ ( Bahraich ) ଜିଲ୍ଲାରେ ମିଳିଅଛି । ଘର୍ଘରା ନଦୀ ହିମାଳୟର ଉତ୍ତରପାର୍ଶ୍ୱରୁ ବାହାରି ହିମାଳୟକୁ ଭେଦ କରି ଆସିଅଛି । ଶରଯୁ ଓ ଘର୍ଘରା ମିଳିତ ହେବା ପରେ ବହ୍ରାମ ଘାଟଠାରେ ହିମାଳୟରୁ ପ୍ରବାହିତ ଚଉକା ନାମକ ଅନ୍ୟ ଗୋଟିଏ ନଦୀ ଏଥିରେ ପଡ଼ିଅଛି ଓ ଏ ସମ୍ମିଳିତ ନଦୀମାନ ଗୋଗରା ( ଘର୍ଘରା ) ନାମରେ ପ୍ରବାହିତ ହୋଇ ଛପରା ନିକଟରେ ଉତ୍ତର ପଶ୍ଚିମ ଅଞ୍ଚଳୁ ଆସି ଗଙ୍ଗା ସଙ୍ଗେ ମିଶିଅଛି । ଅଯୋଧ୍ୟା ସମ୍ମିଳିତ ଘର୍ଘରା ନଦୀର ଦକ୍ଷିଣ କୂଳରେ ଅବସ୍ଥିତ । ଏ ସମ୍ମିଳିତ ଧାରକୁ କେହି କେହି ଘର୍ଘରା ଓ କେହି କେହି ସରଯୁ ନାମରେ ଅଭିହିତ କରନ୍ତି ଓ ଏଥିପାଇଁ ଅଯୋଧ୍ୟାନଗର ଶରଯୁ କୂଳରେ ଅବସ୍ଥିତ ଥିବା ବାଲ୍ମୀକିରାମାୟଣାଦି ଗ୍ରନ୍ଥରେ ବର୍ଣ୍ଣିତ ହୋଇଅଛି ।

ରାମ ଲକ୍ଷ୍ମଣ ଏହି ଶରଯୁ ନଦୀରେ ଝାସ ଦେଇ ସ୍ୱର୍ଗାରୋହଣ କରିଥିଲେ ଓ ଏହି ନଦୀ ତୀରରେ ମହାପୁରୁଷ ତୁଳସୀ ଦାସଙ୍କ ଆଶ୍ରମ ଥିଲା । ] ଦେ. ବି ( ସ୍ତ୍ରୀ )— ଶରଯୁ ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—Name given to शरयू females.

ଶରଯୁ(ଯୂ) ଦାସ—ଦେ. ବି. ପୁ°—ପଶ୍ଚିମାମାନଙ୍କର ନାମ—A name Śarju(jū) dāsa given to males amongst the ଶରଯୁ ଦାସ शरयु दास people of N. W.P.

**ଶରଯୁ(ଯୂ) ଦାସ ମଠ**—ଦେ• ବି—ପୁରୀ ସହରର ଗୋଟିଏ ମଠର ନାମ; (ଏଥିର ବୈଷ୍ଣବମାନେ ରାମଭକ୍ତ)—
Śaraju(jū) dāsa maṭha
শরযু দাসের মঠ
शरयु दासका मठ
Name of a Maṭha in the town of Purī.

**ଶର ଯୋଖିବା**—ଦେ. କ୍ରି (ସ. ଶର ଯୋଜନ)—୧ । ଧନୁରେ ଶର ଲଗାଇବା—1. To apply an arrow to a bow; to fix an arrow to the string of a bow. ୨ । ଲକ୍ଷ ବିନ୍ଧିବା—2. To shoot at a target; to shoot at an aim with the bow.
Śara jokhibā
শর সন্ধান করা
शर मारना

**ଶରଳ**—ସ. ବି (ଶୃ ଧାତୁ + କର୍ତ୍ତୃ. ଅଳ; ବିକଳ୍ପେ ସରଳ)—୧ । ଦେବଦାରୁ ଗଛ—1. The pine; Pinus Longifolia. ୨ । ସଜ୍ଜନ; ଅକପଟହୃଦୟ ବ୍ୟକ୍ତି—2. A frank person; an open-hearted person; upright man; a good man. ୩ । ଜଳ; ପାଣି—3. Water. ସ. ବିଣ—୧ । ସରଳ; ଅବକ୍ର; ସିଧା—1. Straight. ୨ । କ୍ରୂର—2. Cruel. ୩ । ଶଠ; ପ୍ରତାରକ—3. Deceitful. ୪ । ବକ୍ର—4. Crooked; distorted.
Śaraḷa

**ଶରଳକ**—ସ• ବି (ଶରଳ + କ)—ଜଳ; ପାଣି—Water.
Śaraḷaka

**ଶରଳତା**—ସ. ବି—ସରଳତା (ଦେଖ)
Śaraḷatā
Saraḷatā (See)

**ଶରଲୋମା**—ସ. ବି (ଶରଲୋମନ୍; ୧ମା ୧ବ)—ପ୍ରାଚୀନ ଋଷିବିଶେଷ—Name of a sage. [ଦ୍ର—ଏ କେତେକ ଋଷିଙ୍କ ସଙ୍ଗେ ଭରଦ୍ୱାଜଙ୍କଠାରେ ଆୟୁର୍ବେଦସଂହିତା ଗ୍ରନ୍ଥ ପାଇଁ ପ୍ରାର୍ଥନା କରିଥିଲେ—ହି. ଶ)
Śaralomā

**ଶର ଶଯ୍ୟା**—ସଂ. ବି (ଶରଦ୍ୱାରା ରଚିତ ଶଯ୍ୟା, ମ. ପ. ଲୋ)—୧ । ଶରର ପୁଙ୍ଖମାନ ଭୂମିରେ ଲଗି ମୁନଗୁଡ଼ିକ ଉପରଆଡ଼କୁ ଥିବା ଅବସ୍ଥାରେ ଶରର ମୁନମାନଙ୍କଦ୍ୱାରା ରଚିତ ଶଯ୍ୟା—1. A bed made up by the bristling points of arrows. ୨ । ଯୁଦ୍ଧକ୍ଷେତ୍ର (ଯଉମାନଙ୍କଦ୍ୱାରା କ୍ଷିପ୍ତ ଶରମାନ ଯେଉଁଠାରେ ଶଯ୍ୟା ପରି ଭୂମିରେ ବିଛାଇ ହୋଇଥାଏ)—2. A battlefield (covered with a layer of arrows).
Śara śajyā

**ଶରଶଯ୍ୟାଶାୟୀ**—ସଂ. ବିଣ. ପୁଂ—ଯେ ଶରଶଯ୍ୟା ଉପରେ ଶୋଇ ଥାଆନ୍ତି—Lying on a bed of arrows. ବି—ଭୀଷ୍ମ—Bhishma.
Śaraśajyāśāyi
(ଶରଶଯ୍ୟାଶାୟିନୀ—ବିଣ. ସ୍ତ୍ରୀ)

**ଶର ଶୁଆ(ଆଁ)ରି(ଲି)**—ଦେ.ବି—ଏକପ୍ରକାର ଘିଅରେ ଭଜା ମିଷ୍ଟାନ୍ନ ପିଠା—A kind of sweet cake. [ଦ୍ର—ଅଟାରେ ଛେନା ଓ ଚିନି ମିଶାଯାଇ ଘିଅରେ ମୁଦ୍ରାକାର ପିଠାମାନ ଛଣାଯାଏ ଓ ପରେ ତାହା ଘନ ଅଗୁଡ଼ା ଭିତରେ ବୁଡ଼ା ଯାଏ ।]
Śara śuā(āṅ)ri(li)

**ଶର ଶେଯ**—ଦେ ବି.—ଶରଶଯ୍ୟା—Bed of arrows. (ଉ—ଶରଶେଯେ ଭୀଷ୍ମ ବୋଇଲେ ଅର୍ଜୁନ, ଜୀବନ ଶାନ୍ତି ପାଇଁ ପଥ ଦେ ଜୀବନ—କୃଷ୍ଣସିଂହ ମହାଭାରତ ଅନୁ ।)
Śara śeja
শরশয্যা
शरकाबिछौना

**ଶରସନ୍ଧା**—ଦେ• ବି (ସଂ. ଶରସନ୍ଧାନ)—ବାଣ ବିନ୍ଧିବା—Aiming with an arrow. (ଉ—ଏହିଠାରେ ନାଗପାଶରେ ହୋଇ ବନ୍ଧା, ପଡ଼ିଥିଲେ ଲକ୍ଷ୍ମଣ ଧନୁ ଶରସନ୍ଧା—କୃଷ୍ଣସିଂହ ମହାଭାରତ ବନ )
Śara sandhā
শরবিন্ধা
शरबिंधना

**ଶର ସନ୍ଧାନ**—ସଂ. ବି (୬ଷ୍ଠୀ ତତ୍)-ବାଣନିକ୍ଷେପ; ଲକ୍ଷ୍ୟପ୍ରତି ଶର ମାରିବା-Shooting with an arrow; aiming at a target with bow and arrow
Śara sandhāna

**ଶର ସ୍ତମ୍ଭ**—ସଂ. ବି—୧ । ଯେଉଁ ବିଦ୍ୟାଦ୍ୱାରା ବିପକ୍ଷର ଶରଚାଳନ କରିବାର ଶକ୍ତି ରହିତ କରାଯାଏ—1. The magical art by which the adversary's power of shooting arrow is restrained. ୨ । ଶରର ଦଣ୍ଡ (ବିଶ୍ୱକୋଷ)-2. The body or stock of an arrow. ୩ । ପ୍ରାଚୀନ ପ୍ରବରକାର ଜଣେ ଋଷି—3 Name of a sage who was the progenitor of a clan. ୪ । ମହାଭାରତୋକ୍ତ ସ୍ଥାନବିଶେଷ—4 Name of an ancient locality.
Śara stambha

**ଶରା**—ଦେ. ବି (ସଂ• ଶରାବ)—ହାଣ୍ଡି ଆଦି ପାତ୍ରର ଢାଙ୍କୁଣୀ; ମାଟିର ଛୋଟ ପଲମ ବା ଥାଳିଆ - A shallow plate of earth [ଦ୍ର—ବଡ଼ ଆକାରର ଶରାକୁ ପଲମ ବା ତେଲଉଣୀ ବୋଲାଯାଏ । ]
Śarā
সরা
सरवा

**ଶରାଗ(କ)**—ପ୍ରାଦେ (ସିଂହଭୂମି) ବି—ଜାତିବିଶେଷ—A caste inhabiting Singhbhum. [ଦ୍ର—ସଂ• ଶ୍ରାବକ । ଏମାନେ ପୂର୍ବେ ଜୈନଧର୍ମାବଲମ୍ବୀ ଥିଲେ ଓ ବାଣିଜ୍ୟ ବ୍ୟବସାୟଦ୍ୱାରା ଖୁବ୍ ଲାଭବାନ ହୋଇ ସିଂହଭୂମିର ନାନା ସ୍ଥାନରେ ବଡ଼ ବଡ଼ ଜଳାଶୟମାନ ଖୋଳାଇଥିଲେ ।]
Śarāga(ka)
শরক

**ଶରାଘାତ**—ସ. ବି.—(୬ଷ୍ଠୀତତ୍)—ଶରଦ୍ୱାରା ଆଘାତ ବା ପ୍ରହାର—Striking or shooting at a thing with the arrow.
Śarāghāta

**ଶରାଟି (ଡ଼ି, ତି, ରି, ଳ, ଳି, ଳୀ)**—ସଂ. ବି—(ଶର—ଜଳ + ଅଟ ଧାତୁ—ଗମନ କରିବା + କର୍ତ୍ତୃ ଇ) ୧ । ଜଳଚର ପକ୍ଷିବିଶେଷ; ତେରେଇ; ଟିଁ ଟିଁ ଅଁ ପକ୍ଷୀ—1. A teal (aquatic bird); Dendrocycna Javanica; a species of fresh water duck; Anas Carolinensis. [ଦ୍ର—ଏହା ପାତିହଂସ ଜାତୀୟ ପ୍ଲବଗ ବର୍ଗର ପ୍ରାୟ ଏକହାତ ଦୀର୍ଘ ପକ୍ଷୀ; ମୁଣ୍ଡ ଫିକା ନାଲି; ପକ୍ଷ ଛୋଟ ଓ ଗୋଲ; ଲାଞ୍ଜ ଖରସ; ଥଣ୍ଟ ଚଟକା ଓ ଗୋଲ । ଏ ପକ୍ଷୀ ଦଳବଦ୍ଧରୂପେ
Śarāṭi (ṛḍi, ti, ri, ḷa, ḷi, ḷī)
শড়াল, শরাল(লী)
टिटिहरी

ଝଡ଼ପାରେ ନାହିଁ; କିନ୍ତୁ ପର୍ବତପାରେ ଓ ପାଣିରେ ବୁଡ଼ିପାରେ। ଏହାର ମାଂସ ସୁଖାଦ୍ୟ ଥିବାରୁ ଲୋକେ ଏମାନଙ୍କୁ ଶିକାର କରନ୍ତି । ]

ଶରାଟିକା—ସଂ. ବି—୧ । ଶରାଟି (ଦେଖ)—1. Śarāṭi (See) Śarāṭikā ୨ । ଲଜ୍ଜାଳୁଲତା ( ହି. ଶ )—2 Mimosa Pudica (plant)

ଶରାନୁସନ୍ଧାନ—ସଂ. ବି—ଶରସନ୍ଧାନ (ଦେଖ)— Śarānusandhāna Śarasandhāna (See)

ଶରାବ—ସଂ. ବି—(ଶର=ଦୁଧସର; ଆ ଲ+ଅବ୍ ଧାତୁ=ରକ୍ଷାକରିବା Śarāba +ଅଧିକରଣ ଅ; ଯହିଁରେ ଜଳ, ଦୁଧସର ଆଦି ରଖା ଯାଏ)—୧ । ଶରା; ଚଟକା ମୃତ୍ପାତ୍ର—1 A shallow earthen pot; a tray; a shallow saucer. ୨ । ସେର ପରିମାଣ; କୁଡ଼ବ ପରିମାଣ; ମାଣିକା; ୬୪ ତୋଳା (ବିଶ୍ୱକୋଷ)-2 A standard of measure. [ ଦ୍ର—ବୈଦ୍ୟକରେ ୬୪ ତୋଳା ଓଜନର ସେରର ବ୍ୟବହାର ହୁଏ । (ହି. ଶ)

ଶରାବକ—ସଂ. ବି—(ଶରାବ+ସ୍ୱାର୍ଥେ. କ)—୧ । ଶରାବ (ଦେଖ)— Śarābaka 1 Śarāba (see) ୨ । ମୁଖଶୂନ୍ୟ ପୀଡ଼କାଭେଦ (ବିଶ୍ୱକୋଷ)— 2. A kind of boil or eruption without a head.

ଶରାବତୀ—ସଂ. ବି. ସ୍ତ୍ରୀ:—(ଶର=ତୃଣ+ବତ+ସ୍ତ୍ରୀ. ଈ)—୧ । ନଦୀ Śarābati ବିଶେଷ—1 Name of a river [ଦ୍ର—ଏହା ସମ୍ଭବତଃ ରାମଗଙ୍ଗା ନଦୀ ବା ବାଣଗଙ୍ଗା ନଦୀ; ଗ୍ରୀକ୍ ଐତିହାସିକ ଟଲେମି ଏହାକୁ ସରବସ୍ ନାମରେ ଉଲ୍ଲେଖ କରି ଅଛନ୍ତି—ବିଶ୍ୱକୋଷ)

ଶରାବର—ସଂ. ବି (ଶର+ଆ+ବୃ ଧାତୁ+କର୍ତ୍ତୃ. ଅ)—୧ । ଢାଲ— Śarābara 1. Shield. ୨ । କବଚ—2. Coat of arms. (ଶରାବରଣ—ଅନ୍ୟରୂପ)

ଶରାବଲମ୍ବନ—ଦେ. ବି (୬ଷ୍ଠୀ ତତ୍; ଶର+ଅବଲମ୍ବନ)—୧ । Śarābalambana ଜଳାଶୟ—1. Tank; pond. ୨ । ଶରମୁଣା—2. A quiver. (ଦ୍ର—[୧ ଓ ୨] ବାଟରୀ ଛିଣ୍ଡିଲେ ଶରାବଲମ୍ବନ ସଦା ତଳସେ ଭଲରେ । ଉପେ. ବୈଦେହୀଶବିଳାସ ।)

ଶରାବାପ—ସଂ. ବି (ଶର+ଆ+ବପ ଧାତୁ+ଅଧି. ଅ)—ଧନୁ— Śarābāpa Bow.

ଶରାବିକା—ସଂ. ବି (ଶରାବ+କ+ଆ)—୧ । ଶରାପରି ଘୂର ପାଶ ଉଚ୍ଚ ଓ ମଝି ଗଭୀର ବ୍ରଣ (ହି. ଶ)—1. A kind of Śarābikā boil with the rim higher than the middle. ୨ । ଏକପ୍ରକାର କୁଷ୍ଠରୋଗ (ହି. ଶ)— 2. A kind of leprosy.

ଶରାମୁହାଁ—ଦେ. ବିଣ. ପୁଂ (ଅନାଦରାର୍ଥେ)—ଯେଉଁ ବ୍ୟକ୍ତିର ମୁଖ Śarāmuhāṅ ଶରାପରି ଚଟକା ଓ ଅସୁନ୍ଦର—A person (ଶରାମୁହୀଁ—ସ୍ତ୍ରୀ) having a wide and flat face.
ভোঁতা মুখো चकरमुहाँ

ଶରାରି(ରୀ) ମୁଖ—ସଂ. ବି—୧ । ଶରାଟି (ଦେଖ)—1. Śarāti Śarāri(rī) mukha (See) ୨ । ଶରାଟି ପକ୍ଷୀର ମୁହଁର ଆକୃତିବିଶିଷ୍ଟ ପୂଜ ନିଷ୍କାସନାର୍ଥ ବ୍ୟବହୃତ ସୁଶ୍ରୁତୋକ୍ତ ଯନ୍ତ୍ର ବିଶେଷ ( ବିଶ୍ୱକୋଷ )—2, An ancient surgical instrument for extracting pus.

ଶରାରୁ——ସଂ. ବିଣ (ଶୃ ଧାତୁ=ହିଂସା କରିବା+ଶୀଳାର୍ଥେ ଅରୁ)— Śarāru ୧ । ହିଂସାକାରୀ; ହିଂସ୍ର—1. Mischievous; hurtful. ୨ । ଅନିଷ୍ଟକାରୀ; ଘାତକାରକ— 2. Injurious.

ଶରାରୋପ—ସଂ. ବି (ବହୁବ୍ରୀହି; ଶର+ଆରୋପ)— Śarāropa ଧନୁକ; କାର୍ମୁକ—A bow.

ଶରାଳି(ଳୀ)—ସଂ. ବି—୧ । ପକ୍ଷିବିଶେଷ; ଶରାଟି ( ଦେଖ )— Śarāḷi(ḷī) 1. Teal. ୨ । ଶରସମୂହ—2. Arrows. ( ଦ୍ର—[୧ ଓ ୨—ଅର୍ଥରେ ତ ଶରାଳୀରେ ଯୁକ୍ତ ହୋଇଛନ୍ତି । ଉପେ. ବୈଦେହୀଶବିଳାସ ।)

ଶରାଶ୍ରୟ—ସଂ. ବି (ଶର+ଆଶ୍ରୟ; ୬ଷ୍ଠୀ ତତ୍)—ତୂଣୀର; ବାଣାଧାର— Śarāśraya A quiver.

ଶରାସନ ସଂ. ବି—୧ । (ଶର+ଅସ୍ ଧାତୁ=କ୍ଷେପଣ କରିବା+ Śarāsana କରଣ ଅନ; ଯାହାଦ୍ୱାରା ଶର କ୍ଷେପଣ କରାଯାଏ)— (ଶରାସ—ଅନ୍ୟରୂପ) ଧନୁକ; କାର୍ମୁକ—1. A bow. ୨ । ଧୃତ-ରାଷ୍ଟ୍ରଙ୍କ ଏକପୁତ୍ର (ହି. ଶ)—2. Name of a son of Dhṛutarāshṭra.

ଶରାସ୍ୟ—ସଂ. ବି (ବହୁବ୍ରୀହି; ଶର ଅଟେ ଅସ୍ୟ=ମୁଖ ଯାହାର)—ଧନୁକ— Śarāsya A bow.

ଶରାହତ—ସଂ. ବିଣ. ପୁଂ (ଶର+ଆହତ; ୩ୟା ତତ୍)—ଶରଦ୍ୱାରା Śarāhata ଆହତ; ବାଣବିଦ୍ଧ—Pierced or struck (ଶରାହତା—ସ୍ତ୍ରୀ) with an arrow; smitten with an arrow.

ଶରିକା—ସଂ. ବି—ଏକପ୍ରକାର ପ୍ରାସାଦ (ହି. ଶ) Śarikā A kind of building.

ଶରିଅ(ୟ)ତ୍—ବୈଦେ. ବି (ଫା. ଶର୍ତ୍ତ)—ଶର୍ତ୍ତ; ଚୁକ୍ତିର ଭିନ୍ନ ଭିନ୍ନ Śaria(ya)t ଅଙ୍ଗ)—Terms; different conditions of an agreement. ବିଣ—ମୁସଲମାନମାନଙ୍କ ସମ୍ପତ୍ତି ବା ଦାୟାଦାଧିକାର ଶାସ୍ତ୍ର ସମ୍ବନ୍ଧୀୟ—Relating to the Mahomedan law of inheritance.

ଶରିଘର(ରା)—ଦେ. ବି (ସଂ. ଶର)—୧ । ଲିଙ୍ଗ—1. Penis. ୨ । Śarighara(rā) ପଶୁଆଦିଙ୍କର ଉଦ୍ଧତ ଲିଙ୍ଗ—2. The লিঙ্গ केला erected penis of beasts.

ଶରିଫ୍—ବୈଦେ. ବି (ଆ.)—ସହରର ପ୍ରଧାନ ମଣ୍ଡଳ ବା ନେତା— Śariph Sheriff; the headman of a town. শেরিফ सरीफ ବିଣ—ମାନନୀୟ; ପୂଜ୍ୟ—Venerable.

ଶରିମା—ସଂ. ବି (ଶୃ ଧାତୁ+ଭାବ. ଇମନ୍, ଶରିମନ୍, ୧ମା. ୧ବ)— Sarimā ପ୍ରସବ—Production; birth.

**ଶରୀ** – ସ. ବି.—(ବୈଦ୍ୟକ)—ଏରକା ନାମକ ଜଳଜ ପତ୍ର କାଠିଯୁକ୍ତ
Śarī ତୃଣ; ବେରୁଆଁ; ସେନ୍ଦ୍ରସ; ସନ୍ତସ—Elephant grass;
Typhe; Typha Elephantina. ଦେ. ବି.(ଜ ଶର)
ଶব ସ্বর ଗୃପ—Bow. [ ଉ—ବାମ ପାଦରେ ମୀନ ଚକ୍ର, ସଙ୍ଖ
ଶରୀ ତ୍ରିକୋଣବନ୍ଦ—ପ୍ରାଣୀ ପୂର୍ଣ୍ଣଚନ୍ଦ୍ରମରୋଦୟ ]—ସ୍ତ୍ରୀ.
शवीव शरीर ବି—ଶରୀର—Body. ( ଯଥା—
କନ୍ଧୁତ୍ତ ଦେହର ଭୁଗ୍ରନ୍ତ, ଶରୀ ସସାର ଏକଗତ—ପ୍ରାଚୀ.
ନିର୍ଣ୍ଣୟମାହାତ୍ମ୍ୟ । )

**ଶରୀର** — ସଂ. ବି (ଶୃ ଧାତୁ=ବିନଷ୍ଟ ହେବା, ଶୀର୍ଣ୍ଣ ହେବା+କର୍ତ୍ତୃ ଈର;
Śarīra ଯାହା ରୋଗ ବା ଜରାଦ୍ୱାରା ଶୀର୍ଣ୍ଣ କିମ୍ବା ବିନଷ୍ଟ
[ଅନ୍ୟ ସଂ ନାମ—କଳେବର, ଗାତ୍ର, ହୁଏ)—୧ । ଜୀବାତ୍ମାଙ୍କ
ବିଗ୍ରହ, କାୟ, ମୂର୍ତ୍ତି, ତନୁ, କ୍ଷେତ୍ର, କଳେବର; ଦେହ;
ପିଣ୍ଡ, ସ୍କନ୍ଧ, ପଞ୍ଜର, କରଣ, ବନ୍ଧ, କାୟା; ବିଗ୍ରହ; ସ୍ୱ
ମୃଦ୍‌ଗଲ, ବପୁଃ, ସଂହନନ, ବର୍ଷ୍ମ, ପୁର ଅଙ୍ଗର ସମାହାର—
ଧନ, ଅଙ୍ଗ, ଭୂତାତ୍ମା, ବଳ, ବେର, Body; the corpo-
ପୁଦ୍‌ଗଳ] real frame.

[ ଦ୍ର—ଶରୀର ଶବ୍ଦ ଅତ୍ମାଠାରୁ ପୃଥକ୍ ସମସ୍ତ ଅଙ୍ଗକୁ ବୁଝାଏ । ପରନ୍ତୁ ହିନ୍ଦୁ ଶାସ୍ତ୍ରରେ ଶରୀରକୁ ୨ ପ୍ରକାର କରାଯାଇଅଛି । ସୂକ୍ଷ୍ମ ଶରୀର ଓ ସ୍ଥୂଳ ଶରୀର । ବୁଦ୍ଧି, ଅହଙ୍କାର, ମନ, ୫ ଜ୍ଞାନେନ୍ଦ୍ରିୟ, ୫ କର୍ମେନ୍ଦ୍ରିୟ ଓ ପଞ୍ଚତନ୍ମାତ୍ରର ସମୂହକୁ ସୂକ୍ଷ୍ମ ବା ଲିଙ୍ଗ ଶରୀର ବୋଲି ଯାଇଅଛି ଓ ହସ୍ତ, ପଦ, ମୁଖ, ମୁଣ୍ଡ, ପେଟ, ପିଠି ଆଦି ଅଙ୍ଗର ସମୂହକୁ ସ୍ଥୂଳ ଶରୀର ବୋଲି ଯାଇଅଛି । ସ୍ଥୂଳ ଶରୀରରେ ସୂକ୍ଷ୍ମ ଶରୀର ଅବସ୍ଥାନ କରେ । ଜୀବ ମୃତ ହେଲେ ସୂକ୍ଷ୍ମ ଶରୀର ସ୍ଥୂଳ ଶରୀରରୁ ବାହାରି ପରଲୋକକୁ ଯାଏ ଓ ସ୍ଥୂଳ ଶରୀର ପଞ୍ଚଭୂତରେ ମିଶିଯାଏ—ହିଂ ଶ ।] ଦେ. ବି—
शवीव शरीर, बदन ୧ । ସ୍ୱାସ୍ଥ୍ୟ—1. Health. (ଉ—
ଶରୀର ଦେଖି ଧର୍ମ କର—ପ୍ରବଚନ ।) ୨ । ଶାରୀରିକ
ଅବସ୍ଥା—2. Bodily condition. ୩ । ମନ—
3. Mind. (ଯଥା—ଏତେ କି କର୍ଯ୍ୟ ତୋ ଶରୀର,
ବିଶ୍ୱାସ ନାହିଁଲୁ ଅମ୍ଭର—ଜଗନ୍ନାଥ ଭାଗବତ ।)

**ଶରୀର କ୍ଷୟ**—ସ. ବି—(୬ଷ୍ଠୀତତ୍)—୧ । ଦେହର ନାଶ ବା ଧ୍ୱଂସ—
Śarīra kshaya 1. Wasting or decay of the
body. ୨ । ମୃତ୍ୟୁ—2. Death.

**ଶରୀରଗ**—ସ. ବି—(ଶରୀର=ଦେହଦ୍ୱାରା+ଗମ ଧାତୁ+କର୍ତ୍ତୃ ଅ; ଯେ
Śarīraga ଦେହଦ୍ୱାରା ଗମନ କରେ)—ସରୀସୃପ—Reptile.
ବିଣ.—ସର୍ପାଦି ପରି ବକ୍ର ଗମନ କାରୀ—Moving crookedly;
or sliding like a reptile.

**ଶରୀର ଗତ**—ସ. ବିଣ—(୨ୟାତତ୍) ୧ । ଦେହମଧ୍ୟସ୍ଥ—Situated
Śarīra gata in the body. ୨ । ଦେହ ସମ୍ବନ୍ଧୀୟ—2
Relating to the body; bodily; corporeal.

**ଶରୀର ଗ୍ରନ୍ଥି (ସନ୍ଧି)**—ସଂ. ବିଣ (୬ଷ୍ଠୀ ତତ)—ଦେହର ସନ୍ଧିସ୍ଥଳ—
Śarīra granthi (sandhi) The joints of the
body.

**ଶରୀର ଛାଡ଼ିବା**—ଦେ. କି—ମୃତ ହେବା—To die. ( ଉ—
Śarīra chhāṛibā ଏଠାରେ ମୁହିଁ ତ ଛାଡ଼ିବି
দেহ ত্যাগ করা शरीर छोड़ना ଶରୀର—କୃଷ୍ଣସିଂହ.
ମହାଭାରତ, ବନ । )

**ଶରୀରଜ** – ସ. ବିଣ—(ଶରୀର=ଦେହରୁ+ଜନ୍ ଧାତୁ+କର୍ତ୍ତୃ. ଅ)—
Śarīraja ଦେହରୁ ଜାତ—Born of or produced
[ଶରୀରଜା—ସ୍ତ୍ରୀ] from the body. ବି.—୧ । ପୁତ୍ର—
1. Son. ୨ । କାମ—2. Cupid. ୩ । ରୋଗ;
ବ୍ୟାଧି—3. Disease.

**ଶରୀର ଜାତ** – ସ. ବିଣ—(୫ମୀ ତତ୍)—ଦେହରୁ ଉତ୍ପନ୍ନ—
Śarīrajāta Born of the body.

**ଶରୀର ଦେଖି ଧର୍ମ କର**—ଦେ. ପ୍ରବଚନ—ଶାରୀରିକ ଶକ୍ତି ଅନୁସାରେ
Śarīra dekhi dharma kar ଧର୍ମସାଧନ କରିବ, ଅର୍ଥାତ୍
शवीव बुझे धवम कव ଶରୀର ରୁଗ୍ଣ ଥିଲେ କଠୋର ଧର୍ମ ସାଧନରେ
शरीर देखके धरम करो ପ୍ରବୃତ୍ତ ହେବା ଅନୁଚିତ—A pro-
verb meaning—Practice austerities in
consideration of your health or so far
as your health allows.

**ଶରୀର ଧାରଣ**—ସଂ. ବି—(୬ଷ୍ଠୀ ତତ୍)—ଦେହ ଧରିବା; ବଞ୍ଚିବା—
Śarīra dhāraṇa Living.

**ଶରୀରଧାରୀ**—ସଂ. ବିଣ. ପୁଂ (ଶରୀର+ଧୃ ଧାତୁ=ଧାରଣ କରିବା+
Śarīradhārī କର୍ତ୍ତୃ. ଇନ୍; ୧ମା. ୧ବ )—ଦେହଧାରୀ; ଦେହ
(ଶରୀରଧାରିଣୀ—ସ୍ତ୍ରୀ) ବିଶିଷ୍ଟ—Corporeal; having a
body.

**ଶରୀର ଧ୍ୱଂସ** —ସଂ. ବି (୬ଷ୍ଠୀ ତତ୍)—୧ । ଶରୀର କ୍ଷୟ; ଦେହନାଶ—
Śarīra dhwaṁsa 1. Destruction of the body.
୨ । ପ୍ରାଣନାଶ, ମୃତ୍ୟୁ—2. Death.

**ଶରୀର ଧ୍ୱଂସକ**—ସଂ. ବିଣ.ପୁଂ—ଯାହା ଶରୀରକୁ ବା ଦେହକୁ ନାଶ କରେ
Śarīra dhwaṁsaka —Destroying the body.
(ଶରୀର ଧ୍ୱଂସିକା—ସ୍ତ୍ରୀ)

**ଶରୀର ନାଶ**—ସଂ. ବି (୬ଷ୍ଠୀ ତତ୍)—ଶରୀର କ୍ଷୟ (ଦେଖ)
Śarīra nāśa Śarīra kshaya. (See)

**ଶରୀର ପଣ** —ସଂ. ବି (ରୂପକ କର୍ମଧା)—୧ । ପ୍ରାଣପଣ; କୌଣସି କାର୍ଯ୍ୟ-
Śarīra paṇa ସାଧନ କରିବା ପାଇଁ ଆପଣାର ଦେହକୁ ବା ପ୍ରାଣକୁ
ପଣରୂପେ ରଖିବା; ଦେହପାତନ ହେଉ ପଛକେ କାର୍ଯ୍ୟ
ସାଧନ କରିବି, ଏବମ୍ଭୂତ ପ୍ରତିଜ୍ଞା—1. Keeping the
body as a stake for accomplishing a
work; the undertaking of a work at the
risk of losing of one's life. ୨ । ଶରୀର କ୍ଷୟ
(ଶବ୍ଦକୋଷ); ମୃତ୍ୟୁ—2. Death.

**ଶରୀର ପତନ**—ସଂ. ବି (୬ଷ୍ଠୀ ତତ୍)—୧ । ଶରୀର କ୍ଷୟ; ଦେହନାଶ—
Śarīra patana 1. Destruction of the body.
୨ । ମୃତ୍ୟୁ—2. Death.

**ଶରୀର ପାତ(କ)**—ସଂ. ବି—(୬ଷ୍ଠୀ ତତ୍)—୧ । ମୃତ୍ୟୁ—
Śarira pāta(ka) 1. Death. ୨ । ଦେହକୁ ନାଶକରିବା-
[ଶରୀର ପତନ—ଅନ୍ୟରୂପ] 2. Act of destroying the body. ୩ । ମୃତ୍ୟୁ ଘଟାଇବା—3. Causing of death.

**ଶରୀର ପାତନ ଅବା କାର୍ଯ୍ୟର ସାଧନ**—ଦେ· ବାକ୍ୟ—କାର୍ଯ୍ୟ ସାଧନ
Śarira pātana abā kārjyara sādhana କରୁ କରୁ
ମନ୍ତ୍ରେର ସାଧନ କିମ୍ବା ଶରୀର ପତନ ମୃତ୍ୟୁ ଘଟୁ ପଛକେ, କାର୍ଯ୍ୟ ସିଦ୍ଧ
शरीर पातन या कार्य्यका साधन ହେଉ—Do or Die.
[ସଂ. ଶରୀର° ବା ପାତୟେତ୍ କାର୍ଯ୍ୟଂ ବା ସାଧୟେତ୍ ।]

**ଶରୀର ପାଳକ**—ସଂ. ବିଣ—୧ । ଶରୀର ରକ୍ଷକ (ଦେଖ)
Śarira pāḷaka 1. Śarira rākshaka (See)
[ଶରୀର ପାଳିକା—ସ୍ତ୍ରୀ] ୨ । ଯେ ଶରୀରକୁ ପାଳନ କରେ—
2. Maintaining or looking after the body.

**ଶରୀର ପାଳନ**—ସ. ବି—ଶରୀର ରକ୍ଷଣ (ଦେଖ)
Śarira pāḷana Śarira rakshaṇa (See)

**ଶରୀର ବିକ୍ରୟ**—ସ. ବି—ଅପଣାର ଦେହ ବା ଜୀବନକୁ ଅନ୍ୟବଶ୍ୟରୂପ
Śarira bikraya କରି ଦେବା—
Selling of one's body to another.

**ଶରୀର ବିଜ୍ଞାନ**—ସ. ବି—(ଆଧୁନିକ)—ଶରୀର ଶାସ୍ତ୍ର (ଦେଖ)
Śarira bijñana [Śarira śāstra (See)

**ଶରୀର ବୃତ୍ତ**—ସ· ବିଣ—ଶରୀରର ସୌନ୍ଦର୍ଯ୍ୟ ବଢ଼ାଇବା ପାଇଁ ଆବଶ୍ୟକ
Śarira bṛutta (ପଦାର୍ଥ) (ହି. ଶ·)—(Anything)
Which is necessary for increasing bodily grace.

**ଶରୀର ବୃତ୍ତି**—ସ· ବି—(୬ଷ୍ଠୀ ତତ୍)—ଜୀବିକା—
Śarira bṛutti Livelihood.

**ଶରୀରଭାକ୍**—ସ. ବିଣ—(ଶରୀର + ଭଜ୍ ଧାତୁ = ଭଜନା କରିବା +
Śarira bhāk କର୍ତ୍ତୃ. କ୍ୱିପ୍; ଶରୀରଭାକ୍, ୧ମା. ୧ବ·)—
ଶରୀରୀ; ଶରୀରଧାରୀ—Corporeal; assuming a body. ବି·—୧ । ଜନ୍ତୁ; ଦେହଧାରୀ ପ୍ରାଣୀ—
1. Animal; animal body; living body. ୨ । ମନୁଷ୍ୟ—2. Man. ୩ । ଜୀବାତ୍ମା—3. The embodied soul. ୪ । ପ୍ରାଣ—4. Life; the vital principle,

**ଶରୀର ଭୂଗୋଳ**—ଦେ. ବି—ବୈଷ୍ଣବ କବି ଶ୍ରୀ ବଳରାମ ଦାସଙ୍କ
Śarira bhūgoḷa (୧୬ଶ ଶତାବ୍ଦୀ) ରଚିତ ଆଧ୍ୟାତ୍ମିକ ପଦ୍ୟ-
ଗ୍ରନ୍ଥ—Name of a metaphysical poem by poet Baḷarāma Dāsa.

**ଶରୀର ଭୃତ୍**—ସ. ବିଣ—( ଶରୀର + ଭୃ ଧାତୁ + କର୍ତ୍ତୃ. କ୍ୱିପ୍ )—
Śarira bhṛut ଦେହଧାରୀ; ଶରୀରୀ—Corporeal. ସ.
[ଶରୀରଭାକ୍—ଅନ୍ୟ ରୂପ] ବି.—୧ । ଜୀବାତ୍ମା—
1. The soul. ୨ । ବିଷ୍ଣୁ—2. Bishṇu.

**ଶରୀରଭେଦ**—ଦେ. ବି—୧ । ଶରୀର ମଧ୍ୟସ୍ଥ ନାଡ଼ୀ ଓ ଅସ୍ଥି ସମ୍ବନ୍ଧୀୟ
Śarira bheda ତତ୍ତ୍ୱଜ୍ଞାନ; ଯୋଗସାଧନ ସମ୍ବନ୍ଧୀୟ ତତ୍ତ୍ୱ—
1. Metaphysical discussion of the human soul and of the practising of concentration by controlling the breath etc. ୨ । ଉପେନ୍ଦ୍ର ଭଞ୍ଜର ଶେଷଭାଗର ବୈଷ୍ଣବ କବି
ଅରକ୍ଷିତ ଦାସ (କଟକ ଜିଲ୍ଲା ଅଲଟି ପାହାଡ଼ବାସୀ)ଙ୍କ
ଯୋଗସାଧନ ଓ ଭଜନ ବିଷୟକ ପଦ୍ୟ ଗ୍ରନ୍ଥ—2. Name of poem by Arakshita Das.

**ଶରୀରଭେଦ ଭଜନ**—ଦେ. ବି—ସାଧାରଣ ଲୋକଙ୍କ ମଧ୍ୟରେ ପ୍ରଚଳିତ
Śarira bheda bhajana ଯୋଗସାଧନବିଷୟକ ଅର୍ଥାତ
ଶରୀରଭେଦବିଷୟକ ଭଜନ—Hymns regarding metaphysical practice of Joga or breath control.

**ଶରୀର ମଣ୍ଡଳ**—ଦେ. ବି—(ବିଜ୍ଞାନ ପରିଭାଷା)—ସମସ୍ତ ଅବୟବ—
Śarira maṇḍaḷa Organism.

**ଶରୀରମାଦ୍ୟଂ ଖଳୁ ଧର୍ମ ସାଧନଂ**—ସ. ଶ୍ଲୋକାଂଶ;—ଶରୀର ସୁସ୍ଥ
Śariramādyam khaḷu dharma ଥିଲେ ଲୋକ ଧର୍ମ
sādhanam ସାଧନ କରିବାକୁ ସମର୍ଥ ହୁଏ—(ଭୁଲ ଲାଟିନ୍—
Mens sana in corpore sano. ଇଂ· ପ୍ରବଚନ—
A sound mind in a sound body.)

**ଶରୀର ମୂଳକ**—ସ. ବିଣ—( ବହୁବ୍ରୀହି; ଶରୀର + ମୂଳ + କ; ଶରୀର
Śarira mūḷaka ଅଟେ ମୂଳ ଯାହାର)—୧ । ଶରୀରଜ (ଦେଖ)
1. Śariraja (See) ୨ । ଦେହ ସମ୍ବନ୍ଧୀୟ—
2. Bodily ୩ । ଦେହରୁ ଉତ୍ପନ୍ନ—
3 Originating in the body.

**ଶରୀର ରକ୍ଷକ**—ସ. ବିଣ୍. ପୁଂ—ଯେ ଦେହକୁ ରକ୍ଷା କରେ—Protecting the body.
Śarira rakshaka
(ଶରୀର ରକ୍ଷିକା—ସ୍ତ୍ରୀ) ବି.—ରାଜା ଆଦିଙ୍କ ଦେହକୁ କୌଣସି
ଅଘାତରୁ ରକ୍ଷା କରିବା ପାଇଁ ନିଯୁକ୍ତ ବ୍ୟକ୍ତି—Body-guard; protector of the body.

**ଶରୀର ରକ୍ଷଣ**—ସଂ. ବି.(୬ଷ୍ଠୀ ତତ୍)—୧ । ଦେହ ଧାରଣ; ବଞ୍ଚିବା—
Śarira rakshaṇa 1. Living. ୨ । ଉପଯୁକ୍ତ ଆହାର
(ଶରୀର ରକ୍ଷା—ଅନ୍ୟରୂପ) ବିହାରାଦିଦ୍ୱାରା ଦେହକୁ ସୁସ୍ଥ ରଖିବା—
2. Keeping one's body in health with proper food and exercise. ୩ । ସ୍ୱାସ୍ଥ୍ୟ-
ରକ୍ଷା—3. Hygiene ୪ । ଦେହକୁ ବିପଦ ବା
ଅଘାତ ଆଦିରୁ ରକ୍ଷା କରିବା—4. Protecting the body from danger.

**ଶରୀରରକ୍ଷୀ**—ସ. ବି. ପୁଂ—ରାଜା ଆଦିଙ୍କ ଦେହକୁ ଶତ୍ରୁର ଆକ୍ରମଣରୁ
Śarira rakshi ରକ୍ଷା କରିବା ପାଇଁ ନିଯୁକ୍ତ ଭୃତ୍ୟ—Body-guard.

**ଶରୀର ଶାସ୍ତ୍ର**—ସଂ. ବି(ମ. ପ. ଲୋ)—ଶରୀର ବିଜ୍ଞାନ; ଯେଉଁ ଶାସ୍ତ୍ରରେ
Śarira śāstra ଶରୀରର ସମସ୍ତ ବିଷୟ ଆଲୋଚିତ ହୋଇଥାଏ
Anatomy.

**ଶରୀର ଶୁଦ୍ଧି**—ସଂ. ବି. (୬ଷ୍ଠୀ ତତ୍)—୧ । ଦେହଶୁଦ୍ଧି—1. Purification of the body. ୨ । ଶରୀର ସଂସ୍କାର (ଦେଖ)—2. Śarīra saṁskāra (See)
Śarīra śuddhi

**ଶରୀର ଶୋଧନ**—ସଂ. ବି —୧ । (୬ଷ୍ଠୀ ତତ୍) ଦେହକୁ ଶୁଦ୍ଧ କରିବା—1. Purification of the body. ୨ । (ବହୁବ୍ରୀହି) ଯେଉଁ ଔଷଧ ଶରୀରର ଦୂଷିତ ମଳ, ପିତ୍ତ ଓ କଫକୁ ଊର୍ଦ୍ଧ୍ୱ ବା ଅଧୋମାର୍ଗରେ ଦେହରୁ ବାହାର କରି ଦିଏ । (ହି: ଶ)—2. Any medicine which purges off impurities from the body:
Śarīra śodhana

**ଶରୀର ସଂସ୍କାର**—ସଂ. ବି —୧ । (୬ଷ୍ଠୀ ତତ୍) ଦେହକୁ ପରିଷ୍କାର ରଖିବା କର୍ମ—1. Act of cleaning the body. ୨ । ଦେହଶୁଦ୍ଧି—2. Purification of the body. ୩ । ଦେହର ଶୋଭାବୃଦ୍ଧିକରଣାର୍ଥେ ଅଙ୍ଗରାଗାଦି ପ୍ରୟୋଗ; ପ୍ରସାଧନ—3. Toilet. [ଦ୍ର—ମନ୍ତ୍ର, ଆଚମନ, ପ୍ରାଣାୟାମ, ପ୍ରାଯ଼ଶ୍ଚିତ୍ତ ଆଦି ଦ୍ୱାରା ଦେହର ଅନ୍ତଃଶୁଦ୍ଧି ହୁଏ ଏବଂ ଅଙ୍ଗରାଗ ଲେପନ, ସ୍ନାନ, ମାର୍ଜ୍ଜନ, ପ୍ରସାଧନାଦି ଦ୍ୱାରା ଦେହର ବହିଃ ଶୁଦ୍ଧି ହୁଏ ।] ୪ । ଗର୍ଭାଧାନ ଠାରୁ ଅନ୍ତ୍ୟେଷ୍ଟି ପର୍ଯ୍ୟନ୍ତ ବେଦବିହିତ ଷୋଳ ଗୋଟି ସଂସ୍କାର (ହି. ଶ)—4. The sixteen bodily rites performed in respect of a person from conception till death.
Śarīra saṁskāra

**ଶରୀରସ୍ଥ**—ସଂ. ବିଣ—(ଶରୀର+ସ୍ଥା ଧାତୁ+କର୍ତ୍ତୃ ଅ) ୧ । ଶରୀରରେ ଅବସ୍ଥିତ—1. Existing in the body ୨ । ଜୀବିତ (ହି.ଶ)—2. Living
Śarīrastha

**ଶରୀର ହାନି**—ସଂ. ବି—୧ । ଶରୀର କ୍ଷୟ ( ଦେଖ )—1. Śarīra kshaya ( See ) ୨ । ଦେହର କ୍ଷତି—2. Injury to the body.
Śarīra hāni

**ଶରୀରାନ୍ତ**—ସଂ. ବି (୬ଷ୍ଠୀ ତତ୍)—ମୃତ୍ୟୁ—Death
Śarīrānta

**ଶରୀରାବରଣ**—ସଂ. ବି (୬ଷ୍ଠୀ ତତ୍)—୧ । ଚର୍ମ; ଚମଡ଼ା—1 Skin. ୨ । ବର୍ମ; ଢାଲ—2. Armour; shield. ୩ । ଦେହକୁ ଘୋଡ଼ାଇବା ପଦାର୍ଥ—3 A covering for the body. ୪ । ଦେହକୁ ଘୋଡ଼ାଇବା କର୍ମ—4. Covering the body.
Śarīrābaraṇa

**ଶରୀରାର୍ପଣ**—ସଂ. ବି ( ୬ଷ୍ଠୀ ତତ୍ )—କୌଣସି ଉଦ୍ଦିଷ୍ଟ କାର୍ଯ୍ୟରେ ନିଜର ଦେହକୁ ସମର୍ପଣ କରିବା—Offering of one's body to a particular aim or work.
Śarīrārpaṇa

**ଶରୀରାସ୍ଥି**—ସଂ. ବି. (୬ଷ୍ଠୀ ତତ୍)—କଙ୍କାଳ; ଅସ୍ଥି ପଞ୍ଜର—Skeleton
Śarīrāsthi

**ଶରୀରୀ**—ସଂ.ବିଣ.ପୁଂ(ଶରୀର+ଅସ୍ତ୍ୟର୍ଥରେ ଇନ୍,୯ମା୧ବ)—୧। ଦେହଧାରୀ—1. Assuming a body. ୨ । ମୂର୍ତ୍ତିଧାରୀ—(ଶରୀରଣୀ—ସ୍ତ୍ରୀ) 2. Corporeal. ବି—୧ । ଦେହୀ; ଜୀବ; ପ୍ରାଣୀ;ଜନ୍ତୁ—1. Animal; creature;being. ୨ । ଆତ୍ମା—2. Soul. ୩ । ଜୀବାତ୍ମା—3. Life. ୪ । ମନୁଷ୍ୟ—4. Human being.
Śarīrī

**ଶରୀ(ରେ)ଷ୍ଟ**—ସଂ. ବି—ଅମ୍ବଗଛ (ହି. ଶ)—Mango tree.
Śarī(re)shṭa

**ଶରୁ**—ସଂ. ବି ( ଶୃ ଧାତୁ=ବଧ କରିବା+କର୍ତ୍ତୃ. ଉ)—୧ । କ୍ରୋଧ—1. Anger. ୨ । ବଜ୍ର—2.Thunder. ୩ । (+କରଣ+ଉ) ଅସ୍ତ୍ର;ଆୟୁଧ—3. Weapon ୪ । ବାଣ;ଶର—4. Arrow. ୫ । (+ଭାବ. ଉ) ହିଂସା; ହତ୍ୟା; ମାରଣ (ହି. ଶ)—5. Killing. ସଂ. ବିଣ—୧ । ହିଂସ୍ରକ (ହି. ଶ)—Ferocious. ଦେ. ବିଣ (ସଂ. ଶର; ଶରକର)—୧ । ନିକର୍ଷ୍ୟ; ସୂଚ୍ୟଗ୍ରବିଶିଷ୍ଟ; ସୂକ୍ଷ୍ମାଗ୍ର—1. Sharp-pointed. ୨। ସୂକ୍ଷ୍ମ—2. Slender;fine. ୩। ଅପ୍ରଶସ୍ତ—3. Narrow. ୪ । ଲମ୍ବ ଓ ପତଳା—4. Thin and long. ୫ । ସରୁ ଇତ୍ୟାଦି (ଦେଖ)—5. Saru etc (See)
Śaru
ଶକ
ଶାହ

**ଶରୁଆ**—ଦେ. ବିଣ—ସୂକ୍ଷ୍ମ—Slender.
Śaruā

**ଶରୁଆ ସଜ**—ଦେ. ବିଣ. ପୁଂ—୧ । କ୍ଷୀଣଦେହ (ପୁରୁଷ)—1. Slender-bodied (man). ସ୍ତ୍ରୀ—୨ । କ୍ଷୀଣଦେହା, (ସ୍ତ୍ରୀ)—2. A Slender woman. ୩ । ଚପଳା ବା ନଷ୍ଟା ସ୍ତ୍ରୀ—3. A loose or fickle woman. [ ଉ—'ଭୂ ମୋତେ ବୋଲୁଛୁ ଶରୁଆ ସଜ, ପରବାସ କରି ନ ଯା'—ଉଗ । ]
Śaruā saja
বোগাপটকা
ছুবলা পতলা

**ଶରୁ ମୋଟ(ଟା)**—ଦେ. ବିଣ—ସରୁ ମୋଟ (ଦେଖ)—Saru moṭa (See)
Śaru moṭa(ṭā)

**ଶରେଜ**—ସଂ. ବି (ଶରେ=ଶରବଣରେ+ଜନ ଧାତୁ+କର୍ତ୍ତୃ. ଅ)—ଶରଜନ୍ମା; କାର୍ତ୍ତିକେୟ—Kārttikeya,
Śareja

**ଶର୍କର**—ସଂ. ବି (ଶୃ ଧାତୁ=ବଧ କରିବା; ନଷ୍ଟ ହେବା+କର୍ତ୍ତୃ. ଅ)—୧ । କଙ୍କର—1. Gravel; pebbles. ୨ । ବାଲୁକା କଣା—2. Grains of sand. ୩ । ଜଳଜ ପ୍ରାଣୀ ବିଶେଷ—3. A kind of aquatic animal, ୪ । ପୌରାଣିକ ଦେଶ ବିଶେଷ—4. Name of a mythological country. [ଦ୍ର—ଏହା କୂର୍ମଚକ୍ରର ପୁଚ୍ଛଭାଗରେ ଅବସ୍ଥିତ—(ହି. ଶ) । ] ୫ । ଉକ୍ତ ଦେଶବାସୀ ବ୍ୟକ୍ତି—5. A resident of the above country. ୬ । ଶର୍କରା (ଦେଖ)—6. Śarkarā (See)
Śarkara

**ଶର୍କରକ**—ସଂ. ବି (ଶର୍କର+କ)—ମିଠାଲେମ୍ବୁ; ମିଠାକମଳା—Sweet orange.
Śarkaraka

**ଶର୍କର କନ୍ଦ**—ସଂ. ବି—ମିଠା ଆଳୁ; ଶକରକନ୍ଦ ଆଳୁ; ଏକପ୍ରକାର ସୁସ୍ୱାଦୁ ଲତାକନ୍ଦ—The sweet potato; Convolvolus Batatas; Ipomœa Batatas. [ଦ୍ର—ଏହା ଦୁଇ ପ୍ରକାର । ଏକପ୍ରକାରର ମୂଳ ନାଲି ଓ ଅନ୍ୟ ପ୍ରକାରର ମୂଳ ଧଳା । ଉଭୟ ପ୍ରକାରର ସ୍ୱାଦ ମିଠା । ଶତକଡ଼ା ୧୦।୧୨ ଭାଗ ଶର୍କରା ଓ ୧୬ ଭାଗ ଶ୍ୱେତସାର ଏଥିରେ ଥାଏ ।]
Śarkara kanda

ଶର୍କରଜା—ସଂ. ବି (ଶର୍କରା+ଜନ ଧାତୁ+କର୍ତ୍ତୃ. ଅ+ଆ)—ଚିନି;
Śarkarajā ମିଠାଖଣ୍ଡ ( ଶବ୍ଦକୋଷ )—Powdered sugar.

ଶର୍କରା—ସଂ. ବି (ଶୃ ଧାତୁ=ବଧ କରିବା, କଷ୍ଟ ଦେବା+କର୍ତ୍ତୃ.
Śarkarā କର+ଅ)—(ତୁଳନା କର—ଶର୍କରାର ଲାଟିନ୍ ନାମ ପ୍ରଥମ ଅର୍ଥର ଅନ୍ୟ ସଂ. ନାମ— ସକ୍କାରମ୍; ଗ୍ରୀକ୍ ସକ୍କର୍; ଶର୍କର; ସିତା, ଶୁକ୍ଳୋପଲା, ଶୁକ୍ଳା, ଡେଜନ୍—ସକ୍କର୍; ଅରବୀ-ମତ୍ସ୍ୟଣ୍ଡିକା, ଅହ୍ନିଷ୍ଟକା, ଗୁଡ଼ୋଦ୍ଭବା—ଶବ୍ଦକୋଷ। ମଧ୍ୟରୋଧଲା, ମିଳାଣ୍ଡି, ଖେତା, ଶକ୍କର୍; ଇଂରେଜୀ—ସୁଗର୍) ସୁଭଶିରା, ୧। ଚିନି; ଖଣ୍ଡ; କନ୍ଦ; ଗୁଡ଼ଆଦି ମିଷ୍ଟ ପଦାର୍ଥ—1. Sugar.
୨। କର୍ପର ଖଣ୍ଡ; ଖପର; ଭାଙ୍ଗି ଅଧର ଛୋଟ ଖଣ୍ଡ—2. Potsherd. ୩। ପଦାର୍ଥର କ୍ଷୁଦ୍ର କ୍ଷୁଦ୍ର ଖଣ୍ଡ—3. Small bits or pieces. ୪। କଙ୍କର—4. Gravel. ୫। ରୋଗ ବିଶେଷ; ମଧୁମେହ—5. A disease, sugar in the urine; ୬। ଅଶ୍ମରୀ; ପଥରୀ ନାମକ ରୋଗ—6. Stone in the bladder. ୭। ତ୍ରିଦୋଷ ଯୋଗୁ ମାଂସ, ଶିରା ଓ ସ୍ନାୟୁରେ ଗ୍ରନ୍ଥି ଉତ୍ପନ୍ନ ହେବା ରୋଗ (ଉକ୍ତ ଗ୍ରନ୍ଥିରୁ ଘିଅ, ମହୁ ଓ ଚର୍ବିପରି ପୂଜ ବାହାରେ (ହୁ. ଶ)—7. A disease in which there grow knots inside the body.

ଶର୍କରାଚଳ—ସଂ ବି.—ଦାନାର୍ଥ ପର୍ବତାକାରରେ ଜମା ହୋଇଥିବା
Śarkarāchala ଶର୍କରା—A big heap of sugar gathered for being given away to Brahmanas.

ଶର୍କରା ଧେନୁ—ସଂ ବି.—ଦାନାର୍ଥେ ଶର୍କରା ନିର୍ମିତ ଧେନୁ—Sugar
Śarkarā dhenu made into the shape of a cow and intended to be given away to Brahmans.

ଶର୍କରା ମେହ(ପ୍ରମେହ)—ସଂ ବି.— ମଧୁମେହ
Śarkarā meha(prameha) Sugar in the urine.

ଶର୍କରା ସପ୍ତମୀ—ସଂ. ବି. ବୈଶାଖ ଶୁକ୍ଳା ସପ୍ତମୀ—The 7th day of
Śarkarā saptamī the bright lunar fortnight of Baiśākha. [ଦ୍ର—ଏଥିରେ ସୂର୍ଯ୍ୟଙ୍କ ପୂଜା କରାଯାଏ ଓ ତହିଁର ସନ୍ଧ୍ୟାରେ ସ୍ଥରେ ଶର୍କରା ପୂର୍ଣ୍ଣ କରି ରଖାଯାଏ —(ହୁ. ଶ)

ଶର୍କରାସବ—ସଂ. ବି.—ଗୁଡ଼ ଆଦିରୁ ପ୍ରସ୍ତୁତ ମଦ—Spirituous
Śarkarāsaba liquor distilled from sugar. [ଦ୍ର—ଏହା ଅମ୍ଳପିତ୍ତ, ରକ୍ତପିତ୍ତ, କାମଳ, ଶ୍ୱାସ, ପାଣ୍ଡୁ,ବାୟୁ ଆଦି ରୋଗରେ ବ୍ୟବହୃତ ହୁଏ ।]

ଶର୍କରିକ(ଲ)—ସଂ.ବିଣ—(ଶର୍କରା+ଇକ, ଇଲ)-୧। ଶର୍କରା ବିଶିଷ୍ଟ—
Śarkarika(la) 1. Sugary; sugared. ୨। କଙ୍କରମୟ 2. Gravelly.

ଶର୍କରୀ—ସଂ ବି.—(ଶର୍କରା+ଈ) —୧। ସଂସ୍କୃତ ଛନ୍ଦୋବିଶେଷ—
Sarkarī 1. Name of a Sanskrit metre. [ଦ୍ର—ଏହା ୧୪ ଅକ୍ଷରର ବୃତ୍ତି। ଏହାର ୧୩ ମୁଖ୍ୟ ଭେଦ ଅଛି ହୁ. ଶ] ୨। ନଦୀ—2 River. ୩। ମେଖଳା—3. Waist band; girdle. ୪। ଲେଖନୀ; କଲମ—4. Pen.

ଶର୍କରୀୟ—ସଂ. ବିଣ—(ଶର୍କରା + ଈୟ)—ଶର୍କରା ସମ୍ବନ୍ଧୀୟ—
Śarkarīya Relating to sugar;

ଶର୍କରୋଦକ—ସଂ ବି.—(ଶର୍କରା ମିଶ୍ରିତ ଉଦକ, ମ.ଧ. ଲୋ)—ଚିନି
Śarkarodaka ଆଦି ମିଶ୍ରିତ ଜଳ; ପଣା; ସର୍ବତ—Water or drink sweetened with sugar, sugared drink. [ଦ୍ର—ଏଥିରେ ଅଳାଇଚ, ଲବଙ୍ଗ, କର୍ପୂର ଓ ଗୋଲମରିଚ ଗୁଣ୍ଡ ମିଶାଯାଏ । ବୈଦ୍ୟକ ମତରେ ଏହା ବଳ ବର୍ଦ୍ଧକ, ରୁଚିକାରକ, ବାୟୁ ପିତ୍ତ ଓ ରକ୍ତ ଦୋଷ ନାଶକ ଓ ବମନ; ମୂର୍ଚ୍ଛା, ଦାହ ଓ ତୃଷା ପ୍ରଶମକ—ହୁ.ଶ]

ଶର୍କୋଟି—ସ. ବି— ସାପ (ହୁ.ଶ)
Śarkoti Serpent.

ଶର୍ଦ୍ଧ—ସଂ. ବି—(ଶୃଧ୍ ଧାତୁ=ଅପାନ ବାୟୁ ତ୍ୟାଗ କରିବା+ଅ)—୧।
Śarddha ସଶବ୍ଦ ଅପାନ ବାୟୁ ତ୍ୟାଗ; ବାତକର୍ମ; ପାଦିବା —Breaking wind; loud expulsion of wind through the anus. ୨। ଆର୍ଦ୍ରତା—2. Dampness. ୩। ତେଜଃ ( ଶବ୍ଦକୋଷ ) 3. Energy
(ଶର୍ଦ୍ଧନ—ଅନ୍ୟରୂପ)

ଶର୍ଦ୍ଧଂଜହ—ସଂ.ବିଣ.ପୁଂ—(ଶର୍ଦ୍ଧଂ=ଅପାନ ବାୟୁକୁ+ହା ଧାତୁ=ତ୍ୟାଗ
Śarddhamjaha କରିବା+କର୍ତ୍ତୃ ଅ)—୧। ଖୁବ ଶବ୍ଦକାରେ ବାତକର୍ମକାରୀ; ପାଦୁରା—1. Given to breaking wind loudly; expelling wind loudly through the anus. ୨। (+କରଣ. ଅ) ମାଷ; ବିରି—2. A kind of pulse; Phaseolus Radiatus; Dolichos Polisus. ୩। ଯେଉଁ ଦ୍ରବ୍ୟ ସେବନ କଲେ ମଳ ଦ୍ୱାର ବାଟେ ବାୟୁ ବାହାରିଥାଏ (ଶବ୍ଦକୋଷ)—3. A thing which causes wind to escape through the anus.
(ଶର୍ଦ୍ଧଜହ—ଅନ୍ୟରୂପ, ଶର୍ଦ୍ଧଂଜହା—ସ୍ତ୍ରୀ)

ଶର୍ବ (ଧାତୁ)—ସଂ —ବଧ କରିବା
Śarbb (root) To kill

ଶର୍ବ—ସଂ ବି. ପୁଂ—(ଶର୍ବଧାତୁ=ବଧ କରିବା+କର୍ତ୍ତୃ ଅ)—୧। ମହା-
Śarbba ଦେବ; ଶିବ—Śiba. ୨। ବିଷ୍ଣୁ—2 Bishnu. ୩। (+ଭାବ.ଅ) ହିଂସା—3.Injury. ୪। ଗତି (ଶବ୍ଦକୋଷ)—4. Motion.
(ଶର୍ବାଣୀ—ସ୍ତ୍ରୀ)

ଶର୍ବଣ, ଗ୍ରା ବି.—(ସଂ ଶ୍ରବଣ)—ଶ୍ରବଣ (ଦେଖ)
Śarbaṇa सरवन Śrabaṇa (see)

ଶର୍ବଣ କରିବା—ଗ୍ରା କ୍ରି.—(ସଂ ଶ୍ରବଣ)—ଶୁଣିବା, ଶ୍ରବଣ କରିବା ।
Śarbaṇa kariba सरवन करनाँ To hear.

ଶର୍ବଣା – ଗ୍ରା. ବି —(ସଂ ଶ୍ରବଣା)—ଶ୍ରବଣା (ଦେଖ)
Ṡarbaṇā Ṡrabaṇā (See)

ଶର୍ବନା – ପ୍ରାଦେ (ସମ୍ବଲପୁର) ବି (ସଂ. ଶ୍ରାବଣ)—ଶାରଗୁଣୀ ଘାସ(ଦେଖ)
Ṡarbanā A kind of weed. ( ଯଥା—
ଖେତ କଣାଏ ଶର୍ବନା, ଗାଁ କଣାଏ ବାମନା—ଛଗ । )
(ଶର୍ବନା—ଅନ୍ୟରୂପ)

ଶର୍ବର –ସଂ ବି. (ଶୃ ଧାତୁ +ଅଧିକରଣ ଅ) ୧ । ଅନ୍ଧକାର—1. Darkness. ୨। ସନ୍ଧ୍ୟା—2. Evening. ୩ (+କର୍ତ୍ତୃ ଅ)
Ṡarbbara
କାମଦେବ—3 Cupid. ୪। ନାରୀ ଜାତି (ବିଶ୍ୱକୋଷ)—4. Womankind

ଶର୍ବରୀ —ସଂ ବି. ସ୍ତ୍ରୀ —( ଶୃ ଧାତୁ+ଅଧି.ବର+ଈ )—୧ । ରାତ୍ରି—1 Night. ୨। ସନ୍ଧ୍ୟା—2.Evening. ୩ ।
Ṡarbbarī
ହରିଦ୍ରା—3 . Turmeric. ୪ । ସ୍ତ୍ରୀ; ନାରୀ—4. Woman. ୫ । (ପୁଂ; ଶର୍ବର+ଈନ୍) ବାର୍ହସ୍ପତ୍ୟ ସମ୍ବତ୍ସର ବିଶେଷ—5. Name of a year of the Jupiter. [ ଦ୍ର—ଏଥିରେ ପୃଥିବୀରେ ଦୁର୍ଭିକ୍ଷର ଭୟ ହୁଏ—ହି. ଶ]

ଶର୍ବରୀକ—ସଂ ବିଣ—ଅପକାରକ (ହି ଶ)
Ṡarbbarīka Injurious

ଶର୍ବରୀକର—ସଂ ବି—ବିଷ୍ଣୁ
Ṡarbbarīkara Bishṇu

ଶର୍ବରୀଦୀପକ— ସଂ ବି.—(୬ଷ୍ଠୀ ତତ୍) —ଚନ୍ଦ୍ର
Ṡarbbarīdīpaka The moon
(ଶର୍ବରୀଶ—ଅନ୍ୟରୂପ)

ଶର୍ବରୀପତି—ସଂ ବି—(୬ଷ୍ଠୀ ତତ୍)— ୧ । ଚନ୍ଦ୍ର—1. The moon.
Ṡarbbarīpati ୨ । ମହାଦେବ—2. Ṡiba

ଶର୍ବଲା—ସଂ ବି—(ଶର୍ବଧାତୁ=ବଧ କରିବା+କରଣ ଅଲ+ଆ)—
Ṡarbbalā ୧ । ଶାବଳ—1. Crowbar. ୨ । ତୋମରାସ୍ତ୍ର—2. A long pointed weapon.
(ଏଥିର ଅନ୍ୟରୂପ ସର୍ବଲା)

ଶର୍ବାଣୀ – ସଂ. ବି. ସ୍ତ୍ରୀ ( ଶର୍ବ=ମହାଦେବ+ସ୍ତ୍ରୀ. ଆନୀ )—ଗୌରୀ,
Ṡarbbāṇī ( ଶର୍ବ—ପୁଂ ) ପାର୍ବତୀ—Pārbatī.

ଶର୍ବନା—ପ୍ରାଦେ. ( ସମ୍ବ. ପୁର ) ବି ( ସଂ ଶ୍ରାବଣ )—ଶାରଗୁଣୀ ଘାସ
Ṡarbbanā ( ଦେଖ )—A kind of weed. (ଉ—ଖେତ କଣାଏ ଶର୍ବନା, ଗାଁ କଣାଏ ବାଁମନା—ଛଗ । )

ଶର୍ମ – ଗ୍ରା. ବି— ୧ । (ସଂ ଶ୍ରମ)— ଶ୍ରମ (ଦେଖ)—Ṡrama (See).
Ṡarma
ବୈଦେ. ବି—୨ । ସରମ୍ (ଦେଖ)—2. Ṡaram (See). ସଂ. ବି (ଶୃ ଧାତୁ+କର୍ତ୍ତୃ ମନ; ଶର୍ମନ୍ ଶବ୍ଦ, ୧ମା ୧ବ)—୧ । କଲ୍ୟାଣ; ସୁଖ—1. Blessing; bliss; happiness. (ଯଥା—ଶର୍ମ ଏପରି ସ୍ୱପ୍ନ ହୋଇଲା ଅସି—କବିସୂର୍ଯ୍ୟ ଜବଚାକଲ୍ଲୋଳ ।) ୨ । ମଙ୍ଗଳ—2. Prosperity. ୩ । ସଙ୍ଗସୁଖ—3. Pleasures of companionship. (ଉ—କେ ରସବନ୍ତ ଜର୍ମ କହିଲା, କର୍ମ କର କୃଷ୍ଣ ଶର୍ମ ଖେଳିଲ—ରସକଲ୍ଲୋଳ ।) ୪ । ଗୃହ; ଘର (ହି. ଶ)—4 House; res'dence. ୫ । ସୁଖୀ ବ୍ୟକ୍ତି—5. A happy person

ଶର୍ମଦ —ସଂ. ବିଣ (ଶର୍ମନ୍+ଦା ଧାତୁ+କର୍ତ୍ତୃ ଅ )—ସୁଖଦାୟକ—
Ṡarmada Blissful; causing happiness.
(ଶର୍ମଦା —ସ୍ତ୍ରୀ) ବି. ପୁଂ—ବିଷ୍ଣୁ—Bishṇu.

ଶର୍ମନ୍—ସ. ଶବ୍ଦ (ଶୃ ଧାତୁ+ମନ୍)—ଶର୍ମା (ଦେଖ)—
Ṡarman Ṡarmā (See)

ଶର୍ମପ୍ରଦ —ସଂ. ବିଣ (ଶର୍ମନ୍+ଦା ଧାତୁ+କର୍ତ୍ତୃ ଅ)—ସୁଖପ୍ରଦ—
Ṡarmaprada Ministering to one's happiness,
(ଶର୍ମପ୍ରଦା—ସ୍ତ୍ରୀ)

ଶର୍ମବାନ୍—ସଂ. ବିଣ. ପୁଂ (ଶର୍ମନ୍+ବତ୍, ୧ମା ୧ବ)—୧ । ସୁଖୀ—
Ṡarmabān 1, Happy. ୨ । ଭାଗ୍ୟବାନ—
(ଶର୍ମବତୀ—ସ୍ତ୍ରୀ) 2. Fortunate; lucky.

ଶର୍ମର —ସଂ. ବି—୧ । ଏକପ୍ରକାର ବସ୍ତ୍ର (ହି. ଶ)—1. A kind of
Ṡarmara cloth. ସଂ. ବିଣ—ସୁଖଦାୟକ ( ବିଶ୍ୱକୋଷ )—Giving pleasure or happiness.

ଶର୍ମରା(ରୀ) —ସଂ. ବିଣ. ସ୍ତ୍ରୀ [ଶର୍ମର+ସ୍ତ୍ରୀ ଆ; ଈ]—ଶର୍ମରର ସ୍ତ୍ରୀଲିଙ୍ଗ—
Ṡarmarā(rī) Feminine of Ṡarmara,
ସଂ. ବି—ଦାରୁହରିଦ୍ରା—Cascinium Fenestratum (root).

ଶର୍ମା – ସଂ. ବି ପୁଂ (ଶୃ ଧାତୁ=ନାଶକରିବା+ମନ୍; ଶର୍ମନ୍ ୧ମା ୧ବ;
Ṡarmā
ଯେ ବ୍ରହ୍ମଜ୍ଞାନଦ୍ୱାରା ଅମଙ୍ଗଳକୁ ନାଶ କରନ୍ତି)— ୧ । ବ୍ରାହ୍ମଣଙ୍କ ଉପନାମ ବା ବଂଶୋପାଧି ପରେ ଯୁକ୍ତ ଉପାଧି- 1. An appellation added to the name and family title of a Brāhmaṇa. [ ଯଥା- ଅମୁକ ମିଶ୍ରଶର୍ମା; ଅମୁକ ଦାଶଶର୍ମା; ଅମୁକ ଦେବଶର୍ମା] [ ଦ୍ର— ସାଧାରଣତଃ ବ୍ରାହ୍ମଣମାନଙ୍କ ବଂଶଗତ ଉପାଧି ପରିବର୍ତ୍ତେ ଶାଖାଗତ ଉପାଧି ( ଯଥା—ଦେବ, ଦାଶ, କର, ଧର) ପରେ ଶର୍ମା ଶବ୍ଦ ବ୍ୟବହୃତ ହୁଏ । କ୍ଷତ୍ରିୟମାନଙ୍କ ଉପାଧି ବର୍ମା ।] ସଂ ବିଣ—ସୁଖୀ [ପ୍ରକୃତିବାଦ]—Happy. ଦେ. ବି—୧ । ବ୍ରାହ୍ମଣ
শমা शमा
ମାତ୍ର—1. Any Brahman. ୨ । ମୁଁ ସ୍ୱୟଂ—2. I myself. (ଯଥା —ଅପଣ ସିନା ମୋତେ ଭୁଲାଉଛନ୍ତି, କିନ୍ତୁ ଶର୍ମା ଭୁଲିବା ଜନ୍ତୁ ନୁହନ୍ତି ।)

ଶର୍ମାକ୍ଷ —ସଂ ବି—ମସୁର (ହି. ଶ)—
Ṡarmāksha Dolichos Sinensis.

ଶର୍ମିଲ — ସଂ. ବିଣ ଶର୍ମା+ଇଲ, ଯୁକ୍ତାର୍ଥେ) —ଶର୍ମାଉପାଧିଯୁକ୍ତ ବ୍ରାହ୍ମଣ-
Ṡarmila A class of Brahmans having Ṡarmā as their surname. ( ଉ— ସେଠାରେ ରହୁଛନ୍ତି ଶର୍ମିଲ ବ୍ରାହ୍ମଣ, ତାହାଙ୍କୁ ମୋର ସମୀପକୁ ଘେନିଆଣ—କୃଷ୍ଣସିଂହ ମହାଭାରତ, ଅନୁଶାସନ । )

ଶର୍ମିଷ୍ଠା--ସଂ. ବି. ସ୍ତ୍ରୀ--ରଜା ଯଯାତିଙ୍କର ସାନ ରାଣୀ--The younger
Ṡarmishṭhā wife of King Jajāti. (ଦ୍ର—ଏ ଦୈତ୍ୟପତି ବୃଷପର୍ବାଙ୍କ କନ୍ୟା ଓ ରଜା ଯଯାତିଙ୍କ କନିଷ୍ଠା ପତ୍ନୀ । ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀଙ୍କର ଏ

ସ୍ତ୍ରୀ ଥିଲେ । ଏକଦା ଉଭୟେ ସ୍ନାନାର୍ଥ ଯାଇଥିଲେ ଏବଂ ସ୍ନାନାନ୍ତେ ଭ୍ରମବଶତଃ ଦେବଯାନୀ ଶର୍ମିଷ୍ଠାଙ୍କ ଲୁଗାକୁ ପିନ୍ଧିପକାଇବାରୁ ଶର୍ମିଷ୍ଠା ଏହାଙ୍କ ଉପରେ କ୍ରୁଦ୍ଧା ହୋଇ ଏହାଙ୍କୁ ପ୍ରହାରକଲେ ଏବଂ ଗୋଟିଏ କୂପରେ ନିକ୍ଷେପକଲେ । ରାଜା ଯଯାତି ଦୈବକ୍ରମେ ସେ କୂପବାଟେ ଯାଉ ଯାଉ ଦେବଯାନୀଙ୍କୁ ଉଦ୍ଧାର କଲେ । ଦେବଯାନୀ ଏ ବିଷୟ ପିତା ଶୁକ୍ରାଚାର୍ଯ୍ୟଙ୍କୁ କହିବାରୁ ସେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଦୈତ୍ୟପତିଙ୍କ ରାଜ୍ୟ ପରିତ୍ୟାଗ କରିବାକୁ ଉଦ୍ୟତ ହେଲେ । ତହୁଁ ତାଙ୍କ କ୍ରୋଧକୁ ଶାନ୍ତ କରାଇବା ପାଇଁ ବୃଷପର୍ବା କନ୍ୟା ଶର୍ମିଷ୍ଠାକୁ ଦେବଯାନୀଙ୍କ ପରିଚାରିକାରୂପେ ଦେବାକୁ ସ୍ୱୀକାର କଲେ । ଦେବଯାନୀ ଯଯାତିଙ୍କୁ ବିବାହ କରି ଯଯାତିଙ୍କ ନଗରକୁ ଯିବା ସମୟରେ ଶର୍ମିଷ୍ଠା ତାଙ୍କ ସଙ୍ଗେ ଦାସୀରୂପେ ଗଲେ ଓ ଯଯାତି ତାଙ୍କ ରୂପରେ ମୁଗ୍ଧ ହୋଇ ତାଙ୍କୁ ଗୋପନରେ ବିବାହ କଲେ । ଏହି ବିବାହରେ ଶର୍ମିଷ୍ଠାଙ୍କ ଗର୍ଭରୁ ଯଯାତିଙ୍କ ଔରସରେ ଦ୍ରୁହ୍ୟୁ, ଅନୁ ଓ ପୁରୁ ନାମକ ତିନି ପୁତ୍ର ଜାତ ହେଲେ ଓ ସେମାନଙ୍କ ମଧ୍ୟରୁ ପୁରୁ ଯଯାତିଙ୍କ ସିଂହାସନରେ ବସିଲେ ।] ଦେ. ବି— ଅଧୁନାତନ ଯୁଗର ଓଡ଼ିଆ କବି ରାୟସାହେବ ନନ୍ଦକିଶୋର ବଳଙ୍କ ରଚିତ ପଦ୍ୟ କାବ୍ୟ (ଏଥିରେ ଶର୍ମିଷ୍ଠା ଓ ଯଯାତିଙ୍କ ବିଷୟ ବର୍ଣ୍ଣିତ ହୋଇଅଛି)—Name of a poem by the modern poet late Rāi Sāhib Nandakishore Bala.

**ଶର୍ଜ(ର୍ଯ୍ୟ)**—ସଂ. ବି (ଶୃ ଧାତୁ+କର୍ତ୍ତୃ ଅ)—ଯୋଦ୍ଧା (ହି. ଶ)—
Śarja(rjya) Warrior.

**ଶର୍ଯ୍ୟା(ର୍ଜା)**—ସଂ. ବି. ସ୍ତ୍ରୀ (ଶୃ ଧାତୁ=ହିଂସାକରିବା+ଅଧିକରଣ ଯ+ସ୍ତ୍ରୀ. ଆ)—ରାତ୍ରି—The night.
Śarjyā(jā)

**ଶର୍ଜା(ର୍ଯ୍ୟା)ତ**—ସଂ. ବି—ମନୁଷ୍ୟ (ହି. ଶ)—
Śarjā(rjyā)ta Man.

**ଶର୍ଯ୍ୟା(ର୍ଜା)ତି**—ସଂ. ବି—ବୈବସ୍ୱତ ମନୁଙ୍କ ପୁତ୍ର ରାଜାବିଶେଷ—
Śarjyā(jā)ti Name of a king who was the son of Baibaswata Manu. [ଦ୍ର— ଏ ରାଜା ବୈବସ୍ୱତମନୁଙ୍କ ପୁତ୍ର । ଏକଦା ଏ ସୈନ୍ୟସାମନ୍ତ ସହ ଚ୍ୟବନ ମୁନିଙ୍କ ଆଶ୍ରମରେ ପହଞ୍ଚିଲେ ଓ ସେଠାରେ ଏହାଙ୍କ କନ୍ୟା ସୁକନ୍ୟା ବାଲ୍ୟଚପଳତା-ବଶତଃ ଚ୍ୟବନଙ୍କ ଆଖି ଫୁଟାଇଦେବାରୁ ମୁନିବର କ୍ରୁଦ୍ଧ ହୋଇ ଏହାଙ୍କ ସୈନ୍ୟ ସାମନ୍ତଙ୍କ ମଳତ୍ୟାଗ ବନ୍ଦ କରିଦେଲେ । ଅବଶେଷରେ ମୁନିଙ୍କର କ୍ରୋଧ ଶାନ୍ତିପାଇଁ ଶର୍ଯ୍ୟାତି ଆପଣା କନ୍ୟାକୁ ଚ୍ୟବନଙ୍କ ସହିତ ବିବାହ କରାଇଥିଲେ ।]

**ଶର୍ଶରୀକ**—ସଂ. ବିଣ. ପୁଂ—(ଶୃ ଧାତୁ=ହିଂସା କରିବା—+ଅତିଶୟାର୍ଥେ ଦ୍ୱିତ୍ୱ+ଈକ)—ହିଂସ୍ର; ଖଳ—
Śarśarīka Deceitful; wicked; malicious.
[ଶର୍ଶରୀକା—ସ୍ତ୍ରୀ]
ବି—୧ । ଖଳ ବ୍ୟକ୍ତି—1. A wicked person; a rogue. ୨ । ଅଶ୍ୱ—2. Horse. ୩ । ମଙ୍ଗଳାଚରଣ—3. Decorating a house or person in token of some festivity. ୪ । ଅଗ୍ନି—4. Fire.

**ଶର୍ଷପ**—ସଂ. ବି—ସୋରିଷ; [ସର୍ଷପର ଅନ୍ୟରୂପ (ଶବ୍ଦ ରତ୍ନାବଳୀ)]—
Śarshapa Mustard

**ଶଲ୍(ଲ୍)** [ଧାତୁ]—ସଂ.—ଗମନ କରିବା—
Śal(l) root To go.

**ଶଲ(ଲ)**—ସଂ. ବି—( ଶଲ୍ ଧାତୁ+କର୍ତ୍ତୃ. ଅ )—୧ । ଝିଙ୍କ କାଟିଙ୍କ ଶରୀରର ଲୋମ—1. The spines of a porcupine; the quills of a porcupine. ୨ । ବ୍ରହ୍ମା—2. God Brahmā. ୩ । ଉଷ୍ଟ୍ର—3. Camel. ୪ । କ୍ଷୁଦ୍ର ଅସ୍ତ୍ର; ଭଲ୍ଲ—4. Javelin. ୫ । କ୍ଷେତ୍ର ବିଶେଷ (ବିଶ୍ୱକୋଷ)—5 A sort of field. ୬ । ବୃକ୍ଷ ବିଶେଷ (ହି. ଶ)—6 A kind of tree. ୭ । କଂସର ଜଣେ ମଲ୍ଲର ନାମ [ହି. ଶ]—7. Name of an athlete of demon Kaṁsa. ୮ । କଂସର ଅମାତ୍ୟ ବିଶେଷ [ହି. ଶବ୍ଦସାଗର ]—8 Name of a minister of Kaṁsa. ୯ । ବାସୁକି ବଂଶୀୟ ନାଗ ବିଶେଷ—9. Name of a serpent of the family of Bāsuki. ୧୦ । ଶାନ୍ତନୁ ରାଜପୁତ୍ର (ବିଶ୍ୱକୋଷ)—10 Name of a son of Śāntanu. ୧୧ । ଶଲ୍ୟ ରାଜ [ହି. ଶ]—11 A name of king Śalya. ୧୨ । ତାଳବୃକ୍ଷ [ବିଶ୍ୱକୋଷ]—12 Palm tree. ୧୩ । ଶିବାନୁଚର ଭୃଙ୍ଗୀ (ହି. ଶ)—13 A name of Bhṛungi ୧୪ । ଧୃତରାଷ୍ଟ୍ରଙ୍କ ଏକପୁତ୍ର (ହି. ଶ)—14 Name of a son of Dhṛutarāshṭra. ୧୫ । ସୋମଦତ୍ତଙ୍କ ପୁତ୍ର(ବିଶ୍ୱକୋଷ)--15.Son of Somadatta. ଦେ. ବି—(ସଂ. ଶଲ୍ୟ)—୧ । ବାଧା; ବିଘ୍ନ—1. Obstacle. ୨ । ଅନିଷ୍ଟକାରୀ ବ୍ୟକ୍ତି—2. An injurious person. ୩ । ମନ୍ଦ; ଅମଙ୍ଗଳ—3. Adversity. ୪ । କଣ୍ଟକ; କଣ୍ଟା—4. A pin; a thorn. [ଉ— ଉତ୍ତମ ଅନ୍ନମାନ କଲ, ଦୁଦଲୁ ହୋଇଲା ଏ ଶଲ— ରୂପଞ୍ଚ. ପ୍ରେମ ପଞ୍ଚାମୃତ ।] ୫ । ଶତ୍ରୁ—5 Enemy. [ଉ—ଏ ଅନ୍ତେ ମଞ୍ଜଲ ମୁଗୁଲ,
ପୃଥୀକି ହୋଇବେ ସେ ଶଲ । ଜଗନ୍ନାଥ ଭାଗବତ ।
ଅସିବ ମୋହନା ମୁଗୁଲ,
ପୃଥୀକି ହୋଇବ ସେ ସଲ । ମାଳିକା ] ଦେ. ବିଣ— ୧ । ମନ୍ଦ—1. Bad. [ ଯଥା—ଭଲ କହିଲେ ଶଲ ବୁଝେ--ଢଗ ।] ୨ । ଶତ୍ରୁଭାବାପନ୍ନ—2. Inimical. ୩ । ଅମଙ୍ଗଳକାରୀ; ଅନିଷ୍ଟକାରୀ—3. Injurious; hurtful. [ଉ—ଯେ ମୋର ନ କରିବ ବୋଲ, ସେହି ମୋହର ଶତ୍ରୁ ଶଲ । ଜଗନ୍ନାଥ. ଭାଗବତ ।]

କାଁଟା
ସଲ

ଶଲକ—ସଂ. ବି—(ଶଲ ଧାତୁ+କର୍ତ୍ତୃ. ଅକ)—୧ । ଲୂତା; ମାକଡ଼ସା-
Śalaka 1, Spider. ୨ । ତାଳ ବୃକ୍ଷ—2. Palm tree.
୩ । ଝିଙ୍କ କାଠି—3. The quills of porcupine.

ଶଲକୀ—ଦେ. ବି.—(ସଂ. ଶଲ୍ଲକୀ)—ଝିଙ୍କ—
Śalakī Percupine.
[ ଉ—ବିବିଧ ବନ ଅଦୃଶ୍ୟ ଶଲକୀ ସ୍ୱ ଶଲବଂଶ, ଝାଡ଼ ଝାଡ଼ ନ ଉଭସ ଗଣ୍ଡ ପ୍ରଚଣ୍ଡେ ।
ଭଞ୍ଜ. ବୈଦେହୀଶବିଳାସ ।]

ଶଲଙ୍ଗ—ସଂ. ବି ( ଶଲ ଧାତୁ+କର୍ତ୍ତୃ. ଅଙ୍ଗ )—୧ । ଲୋକପାଳ; ରାଜା
Śalaṅga ( ବିଶ୍ୱକୋଷ )—1. King; ruler; governor.
୨ । ଲବଣ ବିଶେଷ ( ବିଶ୍ୱକୋଷ )—2. A kind of salt.

ଶଲଭ—ସଂ. ବି ( ଶଲ୍ ଧାତୁ+କର୍ତ୍ତୃ. ଅଭ )—୧ । ପତଙ୍ଗ; ପଙ୍ଗପାଳ;
Śalabha ଝିଣ୍ଟିକା—1. Locust; grasshopper. (ଉ—ଏହା ପାଇଁ କେତେ ମହାପ୍ରାଣୀ ହେଲେ ଅହବାନଳେ ଶଲଭ—ରାଧାନାଥ. ପାର୍ବତୀ । ) ୨ । ଅସୁର ବିଶେଷ—2. Name of demon.

ଶଲରା—ଦେ. ବି—୧ । (ସଂ. ଶଲ୍ଲକୀରୁ; ଏହାର କଣ୍ଟାମାନ ଶଲ୍ଲକୀ ଦେହର କଣ୍ଟା ପରି ବଡ଼ ଓ ମୂନିଆ ଥିବାରୁ )—ମଦନ ବୃକ୍ଷ—1. A sort of thorny tree; Bushy Gardenia; Randia Dumetrum. ୨ । (ସଂ. କାରବେଲ୍ଲ )—ଏକପ୍ରକାର କଲରା ବା କୁଆମଇତା ଲତା ଫଳ; କୁନ୍ଦୁରୁକୀ—2. A kind of bitter fruit with a rough rind used in curry. Memordica Charantica; Hairy Memordica; Tricosanthes Cucumerina. ( ଦ୍ର—ଏହା ଭେଦକ, ଲଘୁ, ଶୀତବୀର୍ଯ୍ୟ, ଭେଦକ; ଜ୍ୱର, କଫ, ପିତ୍ତ, ରକ୍ତପାଣ୍ଡୁ, ମେହ ଓ କୃମିନାଶକ । )
Śalarā
ময়না মদন ফল
করেলা, উচ্ছে
करैला, करैली
ଫା. କରେଲା
ତେ. କାକର, କାକରକାୟ
ଅ. ଜସ୍ ସାଉଲ୍ ହମାର୍
ସଂ. ପର୍ଯ୍ୟାୟ—କାରବେଲ୍ଲ, କଠିଲ୍ଲ

ଶଲଳ—( ଶଲ୍ ଧାତୁ+କର୍ମ. ଅଳ )—ଝିଙ୍କ କାଠି—
Śalaḷa The spines of a porcupine.

ଶଳା—ସଂ. ବି ( ଶଲ୍ ଧାତୁ+କର୍ତ୍ତୃ. ଅ+ଆ )—ଶଳାକା; ଶଳ୍ଲକା; ସରୁ କାଠି (ବିଶ୍ୱକୋଷ )—A thin twig. ଦେ. ବି ( ସଂ. ଶ୍ୟାଳକ )—୧ । ଶ୍ୟାଳକ—1. Wife's brother. [ଦ୍ର—ଶଳାର ସ୍ତ୍ରୀକୁ ଶଳାଭାଉଜ ଓ ଅପଣା ସ୍ତ୍ରୀର ସାନ ଭଉଣୀକୁ ଶାଳୀ ଏବଂ ବଡ଼ ଭଉଣୀକୁ ଦେଢ଼ଶାଶୁ ବୋଲଯାଏ । ] ୨ । ଗାଳି ବିଶେଷ—2. A term of abuse.
Śaḷā
শালা
साला

ଶଲା—ଦେ. ବି—୧ । ଶଳା ( ଦେଖ )—1. Śaḷā ( See )
Śalā ୨ । ଶଲାଇ ( ଦେଖ )—2. Śalāi ( See)

ଶଲା(ଲେ)ଇ—ଦେ. ବି—୧ । ( ସଂ. ଶଲାକା ବା ଶଲ୍ୟ )—ସନ୍ଧା; ଘାଅ ଅନ୍ଦରୁ ପୂଜ ନିଗିଡ଼ିବା ପାଇଁ ଘାଅ ମୁହଁ ବାଟେ ଭିତରକୁ ଦିଆଯିବା ବଳିତା ବା କାଠି—1. A wick or tube introduced into a sore through the mouth to drain it. [ ଦ୍ର—ଅକାଳବନ୍ଧ ପତ୍ରର ଭେଣ୍ଟ ଶଲାଇ ଦେଲେ ଘାଅର ମୁହଁ ବନ୍ଦ ହୋଇ ଯାଏ ନାହିଁ । ] ୨ । କାନ କୁଣ୍ଡାଇବା ପାଇଁ ବ୍ୟବହୃତ କାଠି—2 A quill or twig to scratch the earhole. ୩ । (ସଂ. ଶଲ୍ଲକୀ )—ଲୋବାନ୍; ସୁଗନ୍ଧ ବୃକ୍ଷନିର୍ଯ୍ୟାସ ବିଶେଷ; ଧୂପରେ ବ୍ୟବହୃତ ଗୁଗ୍ଗୁଳୁ ବିଶେଷ—3. Fankincense; olibanum.
Śalā(le)i
শলাই
सलाई
শলই, শালই
सलई, सलग

ଶଲା(ଲେ)ଇବା—ଦେ. କ୍ରି ( ସଂ. ଶଲା )—୧ । କାନର ବା ନାକର ଛିଦ୍ରରେ କାଠି ପୂରାଇବା—1. To thrust a wick or twig into the earhole or nostril. ୨ । (କାନ ଓ ନାକ ) ଛିଦ୍ରରେ କୌଣସି ପଦାର୍ଥ ପଶିବା ଯୋଗୁଁ ସଲ ସଲ ଅନୁଭବ କରିବା—2. (the ear or nostril) To have an itching sensation owing to the presence of a foreign matter.
Śalā(le)ibā
কাঠি দেওয়া
सलाई देना
সড়সড় করা
खुजलाना,
सवसवाना

ଶଲା(ଲେ)ଇ ହେବା—ଦେ. କ୍ରି—କାନର ଓ ନାକର ଛିଦ୍ର ମଧ୍ୟରେ କାଠି ବା ବାଳ ଆଦି ପଶିଥିବାରୁ (କାନ ବା ନାକ) ଭଲ ଭଲ ବା ସଲ ସଲ ହେବା—(the ear or nostril ) To have a sensation of itching due to the presence of a foreign matter inside it.
Śalā(le)i hebā
সড়সড় করা
सवसवाना,
खुजलाना

ଶଳାକ—ସଂ. ବି ( ଶଲ୍ ଧାତୁ+କର୍ତ୍ତୃ ଅକ )—ଶଳାକା ( ଦେଖ )
Śaḷāka Śaḷākā ( see )

ଶଳାକ ଧୂର୍ତ୍ତ—ସଂ. ବି—ନଳୁଆ କେଳା; ଯେ ନଳ ଆଦିଦ୍ୱାରା ପକ୍ଷୀ ଧରେ
Śaḷāka dhūrtta ( ହୃ. ଶ )—One who catches birds with the help of telescopic rods.

ଶଳାକା—ସଂ. ବି ( ଶଲ୍ ଧାତୁ+କର୍ତ୍ତୃ. ଅକ+ଆ )—୧ । କାଡ଼ି; ସରୁ କାଠି—1. A thin twig, a thin rod.
Śaḷākā
୨ । କ୍ଷୁଦ୍ର ଯଷ୍ଟି—2. A small stick. ୩ । ଘାଅ ଅନ୍ଦରେ ଦିଆଯିବା ସନ୍ଧା—3. A probe. ୪ । ଖଡ଼ିକା—4. The slender and hard twig on the back of a palm leaf. ୫ । ଖିଲା; ଖିଲ—5. Peg; pin. ୬ । ନଳ—6. Tube, pipe; ୭ । ଶଲ୍ୟ; ବାଣ; ଶର—7 Arrow; dart. ୮ । କଣ୍ଟା—8. Thorn; prick; nail. ୯ । ବର୍ଛା—9. Spear; javelin. ୧୦ । ସରୁ ହାଡ଼; ନଳହାଡ଼; କଳହାଡ଼—10. A slender bone having marrow inside it. ୧୧ । କଲମ—11. Pen. ୧୨ । ମାଛକଣ୍ଟା—12. Fish bone. ୧୩ । ପେନ୍-

ସିଲ୍—13, Pencil. ୧୪ । ଦାନ୍ତକାଠି (ବିଶ୍ୱକୋଷ)—14. A tooth pick; a twig used as a tooth brush. ୧୫ । ଚିତ୍ରକରର ତୂଳି (ବିଶ୍ୱକୋଷ)—15. Painter's brush. ୧୬ । ଦିଆସିଲି କାଠି (ବିଶ୍ୱକୋଷ)—16 Match-stick. ୧୭ । ବଚ—17. A sort of slender root; Acorus Calamus. ୧୮ । ଶାରିକା; ଶାଗୁ ପକ୍ଷୀ—18. A bird; Gracula Religiosa. ୧୯ । ଝିଙ୍କି କାଟି-19. The spine or quill of a percupine. [ଦ୍ର—ଝିଙ୍କେଲ ଶଲାକା ଯେଉଁଥିରେ କୁଟିଚି ଶଲ୍ଲକୀ-ରାଧାନାଥ ମହାଯାତ୍ରା] ୨୦ । ଅସ୍ଥି; ହାଡ (ହି. ଶ)—20. Bone. ୨୧ । ମଦନ ବୃକ୍ଷ (ହି. ଶ)—21. Bushy Gardenia (tree) ୨୨ । ତୃଣ; କୁଟା (ହି. ଶ)—22. Straw, twig. ୨୩ । ଶଲ୍ଲକୀ ବୃକ୍ଷ (ହି. ଶ)—23. Boswellia Serrata. ୨୪ । ଆଖିରେ ସୁର୍ମା ଲଗାଇବା କାଠି (ହି. ଶ)—24. A pick to put collyrium on the eyes. ୨୫ । ପଶାକାଠି (ହି. ଶ)—25. Dice. ୨୬ । ରାମାୟଣୋକ୍ତ ପ୍ରାଚୀନ ନଦୀ ବିଶେଷ (ହି. ଶ)—26. Name of an ancient river. ୨୭ । ଛତାର କାଡ଼ି (ବିଶ୍ୱକୋଷ)—27. The spine of an umbrella. ୨୮ । ମୂତ୍ର ମାର୍ଗ ଶୋଧନାର୍ଥ ବ୍ୟବହୃତ ଯନ୍ତ୍ର (ବିଶ୍ୱକୋଷ)—18. Catheter.

**ଶଲାକା ପୁରୁଷ**—ସଂ. ବି—ବୌଦ୍ଧମାନଙ୍କର ତେଷଠି ଦେବ ପୁରୁଷ—
Śalākā purusha Collective name of 63 idols worshipped by the Buddhists.

**ଶଲାକା ଯନ୍ତ୍ର**—ସଂ. ବି—ଶରୀରର ନାନା ସ୍ଥାନରେ ବିଦ୍ଧ ଶଲ୍ୟ ସମ୍ବନ୍ଧର
Śalākā jantra ଅନ୍ୱେଷଣୋଦ୍ଧାରଣାର୍ଥ କାର୍ଯ୍ୟରେ ବ୍ୟବହୃତ ଯନ୍ତ୍ର (ବିଶ୍ୱକୋଷ)—A surgical instrument for probing and extracting pins from the body.

**ଶଲାଟ**—ସଂ ବି—(ଶଲ୍ ଧାତୁ=ଗମନ କରିବା+କର୍ତ୍ତୃ. ଅଟ)—ଏକ ଗଡ଼ା
Śalāṭa (ଚଳିତ); ଏକ ଶଗଡ଼ ପରିମିତ ବସ୍ତୁ—A cartload of any thing. [ଦ୍ର—ଏକବିଂଶତି ମତରେ ଏହା ବଳଦର ଘଳ ପରିମିତ]

**ଶଲାଟୁ**—ସଂ. ବି—(ଶଲ୍ ଧାତୁ=ଗମନ କରିବା+କର୍ତ୍ତୃ ଅଟୁ)—
Śalāṭu ୧ । ଅମ ଫଳ; କଞ୍ଚା ଫଳ; ଅପକ୍ୱ ଫଳ—1. Raw fruit; an unripe fruit. ୨ । ମୂଳ ବିଶେଷ—2. A kind of root ୩ । ବିଲ୍ୱ ବୃକ୍ଷ—3. Bilwa or Marmalos tree.

**ଶଲାତୁର**—ସଂ. ବି—(ନାମ) ପାଣିନିଙ୍କ ବାସସ୍ଥାନ—Name of the
Śalātura village where Pāṇini lived [ଦ୍ର—ଏଥିପାଇଁ ପାଣିନିଙ୍କର ଏକ ନାମ ଶାଲାତୁରୀୟ ଅଟେ—]

**ଶଳା ପରିହାସ**—ଦେ. ବି—ଶ୍ୟାଳକ ଓ ଭଗିନୀପତି ମଧ୍ୟରେ ଥଟ୍ଟା ବଚନ—
Śaḷā parihāsa Jest or jokes passing between a person and his brother-in-law.
ଠାଟ୍ଟା ପରିହାସ ଶାଲା ପରିହାସ

**ଶଳା ପରିହାସି**—ଦେ. ବି. ଓ ବିଣ. ପୁଂ (ସଂ. ଶ୍ୟାଳକ ଓ ପରିହାସ)—
Śaḷā parihāsi ଶଳା ସମ୍ପର୍କୀୟ ବ୍ୟକ୍ତି, ଯାହାକୁ ପରିହାସ (ଶଳା ପରିହାସିଆ[ଆ]—ଅନ୍ୟରୂପ) କରାଯାଏ—A person [ଶଳାପରିହାସୀ—ସ୍ତ୍ରୀ] who stands in the relationship of a brother-in-law to a person and with whom a person can cut jokes.
ଠାଟ୍ଟାର ସମ୍ବନ୍ଧ
ଶାଲା ପରିହାସୀ

**ଶଳା ବାହା(ହି)ଞ୍ଚୋ**—ଦେ. ବି (ଅଶ୍ଳୀଳ ଗାଳି; ସଂ. ଶ୍ୟାଳକ ଓ ହି.
Śaḷā bāhā(hi)ñcho ବହାନ୍‌ଚୋଦ୍)—କୌଣସି ବ୍ୟକ୍ତିକୁ (ଶଳା ବାହାଞ୍ଚୋତ୍—ଅନ୍ୟରୂପ) ଶଳା ଓ ବାହାଞ୍ଚୋ (ଅପଶବ୍ଦ ଶାଳା ଭାଞ୍ଚୋଦ ଭଗିନୀର ସତୀତ୍ୱ ନାଶରୂପ ପାପାଶ୍ରୟ)ରୂପ ଗାଳି—
ଶାଲା ବହାନଚୋଦ୍ A vile term of abuse meaning you are my Śālā and you are the violator of the chastity of your own sister.

**ଶଳା ବିଧା**—ଦେ. ବି—ବିବାହ ସମୟରେ ବରକୁ ଶଳାର ମାରିବା ବିଧା
Śaḷā bidhā (ଥଟ୍ଟାରେ)—A blow given by the bride's brother to the bridegroom at the time of marriage (in jest).
[ଦ୍ର—ବିବାହରେ ବରକନ୍ୟାଙ୍କ ହାତଗଣ୍ଠି ପଡ଼ିବା ପରେ ବର ଯାଇ କୁକର୍ମ ବେଦୀରେ ଗୋଟିଏ ଶିଳ ଉପରେ ବସେ ଓ ତାକୁ ଶାଶୁ ଅଳ୍ପ ସିନ୍ଦୂର କଜ୍ଜଳ ଦେଇ ସାରିବା ପରେ ବର ସେଠାରୁ ଉଠି ଆସିଲାବେଳେ କନ୍ୟାର ଭାଇ ସେ ଶିଳକୁ ବରର ଉପରକୁ ଲେଉଟାଇ ଦିଏ ଏବଂ ବରକୁ ଗୋଟିଏ ବିଧା ମାରେ । ପୂର୍ବେ ଜବରଦସ୍ତି କନ୍ୟା ହରଣ କରି ନେଉଥିବା ବ୍ୟକ୍ତିକୁ କନ୍ୟାର ଭାଇ ଅଳ୍ପକ ମାଡ଼ ଦେବା ଓ ପଥର ଫୋପାଡ଼ିବାର ସ୍ମୃତିରୁ ଏ ପ୍ରଥା ରହିଯାଇଥିବା ପରି ବୋଧ ହୁଏ । ଏବେ ଶଳାବିଧା କେବଳ ଥଟ୍ଟାରେ ମରାଯାଏ ।]
୨ । (ଲକ୍ଷଣାର୍ଥ) ଥଟ୍ଟାରେ ମରାଯିବା ବିଧା—2. A light blow given in jest.

**ଶଳା ଭଉଣୀଗିଆ(ହା)**—ଗ୍ରା. ବି (ଅଶ୍ଳୀଳ ଗାଳି)—ଉଦ୍ଦିଷ୍ଟ ବ୍ୟକ୍ତି
Śaḷā bhauṇi giā(hā) ଉଦ୍ଦେଶ୍ୟ କରିବା ବ୍ୟକ୍ତିର ଶାଳକ ଅଟେ ଓ ନିଜର ଭଗିନୀର ସତୀତ୍ୱ ନାଶକାରୀ ପାପୀ ଅଟେ—A term of vile abuse.
ଶାଲା ଭାଞ୍ଚୋଦ
ଶାଲା ବହାନ ଚୋଦ୍
[ଦ୍ର—କୌଣସି ବ୍ୟକ୍ତିଦ୍ୱୟଙ୍କ ମଧ୍ୟରେ କଳି ଲାଗିଲେ ପରସ୍ପର ପକ୍ଷରେ ମାତା, ଭଗିନୀ, ସ୍ତ୍ରୀ ଓ କନ୍ୟାକୁ ଉଦ୍ଦେଶ୍ୟ କରି ଗାଳି ଦେବାର ପ୍ରଥା ପ୍ରାୟ ସବୁ ଦେଶରେ ଦେଖାଯାଏ । ଆମ ଦେଶରେ ଉଣେଇ ଜାତିରେ ସମାଜ ଚକ୍ଷୁରେ 'ଶଳା' ହେବା ଅତି ହୀନ ଅବସ୍ଥା ବୋଲି ବିବେଚିତ ହୁଏ । ଏମନ୍ତ କି, କେତେକ ରାଜବଂଶରେ ଦେଖାଯାଇଛି ଯେ, ରାଜକନ୍ୟାକୁ କେହି ବ୍ୟକ୍ତି ବିବାହ କଲେ ରାଜ-ପୁତ୍ରଙ୍କୁ ବ୍ୟକ୍ତିର ଶଳା ହେବେ ଓ ତାଙ୍କର ସ୍ୱଳ୍ପ ଲୋକ

ଚକ୍ଷୁରେ ହୀନ ହୋଇଯିବେ, ଏଥିପାଇଁ ଅନେକ ରାଜା ଆପଣା ପରିବାରର କନ୍ୟାମାନଙ୍କୁ ଶରକୁମାରୀ କରି ରଖନ୍ତି । ଆମ ଦେଶରେ ପଦେପଦେକେ ଲୋକଙ୍କୁ ଶଳା ବୋଲି ଗାଳି ଦେବା, ଇତର ସାଧାରଣଙ୍କ କଥା ଛାଡ଼ି ଦିଅନ୍ତୁ, ସମାଜର ଉଚ୍ଚତର ସ୍ତରର ଭଦ୍ରଲୋକରୂପେ ପରିଚିତ ବ୍ୟକ୍ତିଙ୍କଠାରେ ମଧ୍ୟ ବିରଳ ନୁହେଁ । ମନୁଷ୍ୟ ରାଗିଯାଇ କଥା କଥାକେ ଅନ୍ୟ ବ୍ୟକ୍ତିଙ୍କୁ ଶଳା ବୋଲି ଗାଳି ଦିଅନ୍ତି । ]

ଶଳା ଭାଉଜ—ଦେ. ବି. ସ୍ତ୍ରୀ (ସଂ. ଶ୍ୟାଳକ ଓ ଭ୍ରାତୃଜାୟା)—ଶ୍ୟାଳକ-Śaḷā bhāuja ଜାୟା; ଶ୍ୟାଳକ ପତ୍ନୀ—The wife of one's wife's brother.
ଶେଲେଜ ସାଲହୋଜୀ
[ଦ୍ର—ଆମ ଦେଶରେ ଶଳାଭାଉଜଙ୍କ ସଙ୍ଗେ ତାଙ୍କ ସ୍ୱାମୀଙ୍କ ଭଉଣୀପତିଙ୍କର ଶଳା-ପରିହାସ ସମ୍ପର୍କ ବିଦ୍ୟମାନ ।]

ଶଳା ଭି(ଭେ)ଣେ(ଣୋ)ଇ—ଦେ. ବି (ଅପେକ୍ଷିକ ସମ୍ବନ୍ଧର ଶବ୍ଦଦ୍ୱୟ)—Śaḷā bhi(bhe)ṇe(ṇo)i ଶ୍ୟାଳକ ଓ ଭଉଣୀପତି; ପରସ୍ପର ସଙ୍ଗେ ଶ୍ୟାଳକ ଓ ଭଉଣୀପତି ସମ୍ପର୍କଯୁକ୍ତ ବ୍ୟକ୍ତିଦ୍ୱୟ—A person and his sister's husband. (ଉ—ଶଶୁର ଚୋରି ଶଳା ଘରେଇ, ଭିଣେଇ କଂସା ଖାଇବେ କାହିଁ—ପ୍ରହେଳିକା ।)
ଶାଲାভগিনীপতী ସାଲାବହନୋଇ

ଶଳା(ଳ)ଭୋଳି—ସଂ. ବି—ଉଷ୍ଟ୍ର [ବିଶ୍ୱକୋଷ]
Śalā(la)bholi Camel.

ଶଳା ମଉଳା—ଦେ. ବି [ସଂ. ଶ୍ୟାଳକ+ମାତୁଳ]—କୌଣସି ବ୍ୟକ୍ତିଙ୍କର Śaḷā mauḷā ଶ୍ୟାଳକ ଓ ମାମୁଁ—A person's wife's brother and mother's brother.
শালামামা ସାଲାମାମା
[ଦ୍ର—ସାଧାରଣତଃ ଦେଖାଯାଏ ଯେ, କୌଣସି ପରିବାରରେ ଶଳା ଓ ମାମୁଁ ବସିଥିବାଯାକେ ପରିବାରସ୍ଥ ବ୍ୟକ୍ତିଙ୍କଠାରୁ ଖୁବ୍ ସମ୍ମାନ ପାଉଥାଆନ୍ତି । କିନ୍ତୁ ସେମାନେ ଅସରୋଜ ଥିବାରୁ ସେମାନଙ୍କ ମୃତ୍ୟୁ ଘଟିଲେ ଉପର୍ଯ୍ୟୁକ୍ତ ପରିବାରରେ ସେମାନଙ୍କ ପାଇଁ ଶ୍ରାଦ୍ଧ ହୁଅନ୍ତି ନାହିଁ ଓ ସେମାନଙ୍କ ଭଉଣୀମାନେ ଅର୍ଥାତ୍ ଉପର୍ଯ୍ୟୁକ୍ତ ପରିବାରର ସ୍ତ୍ରୀ ଓ ମା ମାନଙ୍କ ମୃତ୍ୟୁ ପରେ ଶଳାଙ୍କୁ ଓ ମାମୁଁଙ୍କୁ ଉକ୍ତ ପରିବାରସ୍ଥ ବ୍ୟକ୍ତିମାନେ ପୂର୍ବପରି ଚେତେ ଆଦର କରନ୍ତି ନାହିଁ । ଏଥିପାଇଁ ପ୍ରବଚନ ଅଛି ଯେ, ଶଳା ମଉଳା ବନ୍ଧୁରେ ସାରି, ମଲେ ହାଣ୍ଡି କୁଣ୍ଢେଇରୁ ବାହାର । ]

ଶଳାର ପୁଅ—ଦେ. ବି—୧ । ଶାଳକ ପୁତ୍ର—1. The son of one's Śaḷāra pua wife's brother. ୨ । ଗାଳିରେ ବ୍ୟବହୃତ (ଶଳାର ପୋ—ଅନ୍ୟରୂପ) ଅର୍ଥାତ୍ ତୋ ପିଉସୀ ମୋର ସ୍ତ୍ରୀ ସ୍ଥାନୀୟା—2. A term of abuse, meaning brother inl aw's son.
শলারবেটা ସାଲାକା ବେଟା

ଶଳା ଶଶୁର—ଦେ. ବି—(ଆପେକ୍ଷିକ ସମ୍ବନ୍ଧର ଶବ୍ଦ ଦ୍ୱୟ)—(ସଂ.ଶାଳକ Śaḷā śaśura ଓ ଶ୍ୱଶୁର)—୧ । ଶଳା ଓ ଶ୍ୱଶୁର—1. One's wife's brother and wife's father. ୨ । ଗାଳି ବିଶେଷ—2. A term of abuse by calling a person as the speaker's wife's brother and wife's father.
শালাশশুর ସାଲାସଶୁର

ଶଲ(ଡ଼ି)ଙ୍ଗ—ଦେ. ବି—କେଉଟମାନେ ଜାଲ ବୁଣିବା ସୂତାକୁ ଯେଉଁ Śali(ṛdi)ṅga କାଠିର ଦୁଇପାଖର ବେକରେ ଥିବା କଣାରେ ସୂଆ ଗଳାଇ ଥାଆନ୍ତି—A stick with holes at its two ends used by fishermen for weaving nets by bringing out thread through the said holes.

ଶଲିତା—ଦେ. ବି—(ସଂ. ଶଲା ; କମ୍ପା ସର୍ବ୍ୱ—ସବ୍ଦ)—୧ । ପ୍ରଦୀପର Śalitā ବଳତା; ବସ୍ତ୍ରଖଣ୍ଡ ବଳା ହୋଇ ଭିଅର ହୋଇଥିବା ବର୍ତ୍ତୀ—1 A roll of rag used as wick for oil lamps. ୨ । ବନ୍ଧୁକର ପାଣ୍ଠି ଛିଦ୍ରରେ ନିଆଁ ଲଗାଇବା ପାଇଁ ବ୍ୟବହୃତ ବର୍ତ୍ତିକା—2. Wick used to ignite the touchhole of a gun.
শলিতা ବତ୍ତୀ

ଶଲିତା କନା—ଦେ. ବି—ଯେଉଁ କନା ବା ବସ୍ତ୍ରଖଣ୍ଡକୁ ବଳି ଶଲିତା Śalitā kanā ପ୍ରସ୍ତୁତ କରାଯାଏ—Rag used for being rolled into lamp wick.
শাতোকানি, শলিতানি ବତ୍ତୀକା କପଡ଼ା

ଶଲିବା—ଦେ. କ୍ରି—ଖଣ୍ଡିବା; ଶେଷ ହେବା; ସରିଯିବା—To pass, Śalibā away to end. [ଉ—ଅମା ପୁରୁଷ ଭଗବାନ;ଅଯ୍ଥା ଚୁକେ ଯାଓଯ୍ଯା ଉପରେ ତାଙ୍କୁ ଚିହ୍ନ; କମଲ ଅଛି ଅନେ ଭୁଲି । ଏ ଜନ୍ମ ମୃତ୍ୟୁ ଯାଇ ଶଲି ।—ପ୍ରାଚୀ; କଣ୍ଠୁଣ ମାହାତ୍ମ୍ୟ ]
ଖତମହୋନା / ଖତନହୀନ

ଶଲୀ—ସଂ. ବି.—(ଶଲା+ଈ)—୧ । କ୍ଷୁଦ୍ର ଶଲାକା—1. A small Śali rod ୨ । ଧାନ୍ୟ ଗୃହଳର ପରିମାଣ ବିଶେଷ—(ପ୍ରାୟ ୨ ମହଣ)—2. A measure of corn, about 1113 of a ton. ୩ । ଝିଙ୍କ (ହ୍ୱ. ଶ)—3. Porcupine.

ଶଲୁକା—ଦେ. ବି. ସଂ. ବି (ଦେଶ) (ଶଲ୍ ଧାତୁ+କର୍ତ୍ତୃ.ଉକ+ଅ)-ଶତପ Śalukā ନାମକ ମସଲା—Anethum Sowa; Indian fennel. ଦେ ଦେ. ବି. (ଫା)—ସ୍ତ୍ରୀଲୋକମାନଙ୍କ ଅଧାହାତିଆ କୁର୍ତ୍ତା—A kind of female jacket
শলুকা ସାଲୁକା

ଶଲ୍କ—ସଂ. ବି—(ଶଲ ଧାତୁ=ଗତି କରିବା+କର୍ତ୍ତୃ କ)—୧ । Śalka ଛାଲ; ମାଛ ଓ ସାପ ଆଦିଙ୍କ ଉପରେ ଶ୍ଳଥ ଆବରଣ—1. Slough; scales (of fish or reptiles). ୨ । ବୃକ୍ଷାଦିର ବଳ୍କଳ ବା ଛିଦ୍ର—2. Bark of trees. ୩ । ଖଣ୍ଡ—3. Bits; pieces.

ଶଲ୍କ ଦେହ—ସଂ. ବିଣ. ପୁଂ—(ଶଲ୍କ ଅଛି ଦେହରେ ଯାହାର; ବହୁବ୍ରୀହି) Śalka deha ଯାହା ଦେହରେ ଛାଲ ଥାଏ—Having scales on the body. [ଶଲ୍କଦେହା—ସ୍ତ୍ରୀ]

ଶଲ୍କ ଦେହୀ—ସଂ. ବିଣ. ଓ ବି—(ଶଲ୍କ+ଦେହ+ଅଛି ଅର୍ଥରେ ଇନ୍; Śalka dehī ୧ମା. ୧ବ)—ଯାହା ଦେହରେ ଛାଲ ଥାଏ; ଛାଲଥିବା (ଜୀବ)—Having scales on the body; Lepidota (animals). ବି.—ଏକ ପ୍ରକାର ମାଛ;

ଶାଲ ମାଛ ଜାଗପ୍ର—A sort of fish, resembling Mastacembelus Armatus.

ଶଲ୍କଲ—ସଂ. ବି—(ଶଲ୍କ+ଲା ଧାତୁ=ଗ୍ରହଣ କରିବା+କର୍ତ୍ତ୍ରି. ଅ)—
Śalkala ୧ । ବୃକ୍ଷର ବଲ୍କଲ; ବୃକ୍ଷତ୍ୱକ୍—1. Bark of trees. ୨ । ମତ୍ସ୍ୟତ୍ୱକ୍; ମାଛ ଚାଲ—2. Scale of a fish.

ଶଲ୍କଲୀ—ସଂ. ବିଣ. ପୁଂ—(ଶଲ୍କଲ+ଅସ୍ତ୍ୟ ଅର୍ଥରେ ଇନ୍; (ମା. ୧ବ)—
Śalkalī ୧ । ଶଲ୍କଯୁକ୍ତ—1. Scaly. ୨ । ବଲ୍କଲଶାଲୀ—[ଶଲ୍କୀ—ଅନ୍ୟରୂପ] 2. Having barks. ବି.—ମତ୍ସ୍ୟ—[ଶଲ୍କଲୀନୀ—ସ୍ତ୍ରୀ] Fish.

ଶଲ୍ୱ—ସଂ. ବି—ଶାଲ୍ୱ ଦେଶ (ଦେଖ)
Śalwa Śalwa country (See).

ଶଲ୍ମଳି (ଳୀ)—ସଂ. ବି—ଶାଲ୍ମଳୀ ବୃକ୍ଷ; ଶିମିଳି ଗଛ (ହି. ଶ)—
Śalmali (lī) Silk cotton tree.

ଶଲ୍ୟ—ସଂ. ବି—(ଶଲ୍ ଧାତୁ=ଗମନ କରିବା+କର୍ମ. ଯ)—୧ । ଶଙ୍କୁ;
Śalya ଖିଲକ—1. A peg; a pin. ୨ । ଖୁଣ୍ଟା; ଖିଲ; ଶୂଳୀ—2. Stake. ୩ । ଶଳାକା—3. A pin or slender rod. ୪ । ଦେହ ମଧ୍ୟରେ ପ୍ରବେଶ କରିଥିବା ଅସ୍ତ୍ର, କଣ୍ଟା, ଶର ଆଦି ପୀଡ଼ାଦାୟକ ଜାତପଦାର୍ଥ—4. Any extraneous substance which enters the body and causes pain. [ଦ୍ର—ସୁଶ୍ରୁତ ମତରେ ଶରୀର ମଧ୍ୟସ୍ଥ ଶଲ୍ୟ ଦୁଇ ପ୍ରକାର । ଶାରୀର ଓ ଆଗନ୍ତୁ । ବାତ ପିତ୍ତ ଆଦି ଦୋଷରୁ ରୋମ, ନଖ, ଶରୀରସ୍ଥ ଧାତୁ, ଅନ୍ନ, ମଳ ଆଦି ଦୂଷିତ ହୋଇ ପୀଡ଼ା ବା ରୋଗ ଉତ୍ପାଦନ କଲେ ତାକୁ ଶାରୀର ଶଲ୍ୟ ବୋଲାଯାଏ । ବାହାରର କୌଣସି ବସ୍ତୁ (ଲୁହା, କାଠ) ଶରୀରରେ ପ୍ରବେଶ କରି ପୀଡ଼ା ଉତ୍ପନ୍ନ କଲେ ତାକୁ ଆଗନ୍ତୁ ଶଲ୍ୟ ବୋଲାଯାଏ—ହି. ଶ. ।] ୫ । ଶର; ଭେଲ; ବାଣ, ଭଲ—5. Arrow; dart. [ଦ୍ର—ବାଣ ସେବନ ଭଷ ଭଷବାସ ପ୍ରକାଶ ଶଲ୍ୟ ବ ଶଲ୍ୟ ଲାବ ବହୁ ସେ । ଭଞ୍ଜ. ବୈଦେହୀଶବିଳାସ ।] ୬ । ଶଲେଇ; ସନ୍ଧା—6. A probe put into a wound. ୭ । ତୋମର; ଶାବଳ—7. A crow bar. ୮ । ଲେମ୍ବୁ ଆଦି ଗଛର ବଡ଼ କଣ୍ଟା—8. Big thorns of trees, such as orange. ୯ । କଣ୍ଟକ; କଣ୍ଟା—9. Nail; thorn. ୧୦ । ମାଛ କଣ୍ଟା—10. Fish-bone. ୧୧ । ମଦନ ବୃକ୍ଷ; ମଅଣ ଗଛ—11. A tree; Randia Dumetorum. ୧୨ । ଅସ୍ଥି; ହାଡ଼—12. Bone. ୧୩ । ମୁନିଆ ଅସ୍ତ୍ର ବିଶେଷ; ବର୍ଚ୍ଛା; ଭାଲ—13. A pointed weapon; Javelin. ୧୪ । ବିଷ; ଗରଳ—14. Poison; venom. ୧୫ । ଚିକିତ୍ସାର୍ଥ ଦେହରେ ବ୍ୟବହୃତ ଅସ୍ତ୍ର—15. Surgical instrument. ୧୬ । ଗାଳି; ଦୁର୍ବାକ୍ୟ—16. Evil words; reproach. ୧୭ । ସୀମା; ବାଡ଼ଘେର—17. Boundary. ୧୮ । ଗୋରୁଙ୍କର ମଶାଣି ବଣ୍ଡା—18. A place where the carcase of cattle are thrown. ୧୯ । ଝିଙ୍କ—19. Porcupine. [ଦ୍ର—ବନ ମୁଖ ବଳୀ ଶଲ୍ୟ ଝିଙ୍କର ବହୁଳ ଭଞ୍ଜ. ବୈଦେହୀଶବିଳାସ ।] ୨୦ । ମଦ୍ର ଦେଶର ରାଜା; ନକୁଳ ଓ ସହଦେବଙ୍କ ମାମୁଁ; ମାଦ୍ରୀଙ୍କ ଭାଇ—20. The name of the maternal uncle of Nakula and Sahadeba (Pāṇḍabas.) [ଦ୍ର—ଏ ପଣ୍ଡୁଙ୍କର କନିଷ୍ଠା ଭାର୍ଯ୍ୟା ମାଦ୍ରୀଙ୍କର ଭାଇ । ଦ୍ରୌପଦୀଙ୍କ ସ୍ୱୟଂବର ସଭାରେ ଏ ଉପସ୍ଥିତ ହୋଇ ଲକ୍ଷ୍ୟ ଭେଦ କରି ନ ପାରି ଅର୍ଜୁନଙ୍କ ଦ୍ରୌପଦୀଲାଭରେ ଭୀମଙ୍କ ସହିତ ମଲ୍ଲଯୁଦ୍ଧରେ ପ୍ରବୃତ୍ତ ହୋଇ ହାରିଥିଲେ । କୁରୁକ୍ଷେତ୍ର ଯୁଦ୍ଧରେ ଏ ପାଣ୍ଡବମାନଙ୍କ ପକ୍ଷରେ ଯୋଗ ଦେବା ପାଇଁ ସସୈନ୍ୟ ଆସୁଥିଲେ; କିନ୍ତୁ ଦୁର୍ଯ୍ୟୋଧନ କୌଶଳକ୍ରମେ ଏହାଙ୍କୁ ନିଜ ପକ୍ଷରେ ବରଣ କଲେ । ଯୁଦ୍ଧର ପ୍ରାକ୍କାଳରେ ଯୁଧିଷ୍ଠିର ଏହାଙ୍କୁ ନମସ୍କାର କରିବାରୁ, 'ବିଜୟୀ ହୁଅ' ବୋଲି ସେ ତାଙ୍କୁ ଆଶୀର୍ବାଦ କଲେ । କୁରୁକ୍ଷେତ୍ର ଯୁଦ୍ଧରେ ୧୬ଶ ଓ ୧୭ଶ ଦିବସରେ ଏ ମହାବୀର କର୍ଣ୍ଣଙ୍କର ସାରଥି ହୋଇଥିଲେ ଓ କର୍ଣ୍ଣଙ୍କ ମୃତ୍ୟୁ ପରେ କୌରବମାନଙ୍କର ସେନାପତି ହେଲେ; କିନ୍ତୁ ଅଷ୍ଟାଦଶ ଦିବସରେ ଯୁଧିଷ୍ଠିରଙ୍କ ହସ୍ତରେ ଏ ନିହତ ହେଲେ ।] ୨୧ । ଧାକଡ଼ା ଖଇର (ହି.ଶ)—21. Grey catechu. ୨୨ । ଶିଳନ୍ଦ ମାଛ (ହି.ଶ) ଜଳଗାମାଛ—22 Silunda Gangetica fish. ୨୩ । ଲୋଧ୍ର ବୃକ୍ଷ (ହି. ଶ)—23. Simplocos Racemosus (tree). ୨୪ । ବିଲ୍ୱ ବୃକ୍ଷ (ହି.ଶ) 24. Bilwa tree. ୨୫ । ପାପ (ହି.ଶ)—25. Sin. ୨୬ । ଭୂମିଗର୍ଭରେ ଥିବା ଅସ୍ଥି (ହି.ଶ) (ଯାହା ମୂଳଦୁଆ ପକାଇବା ପୂର୍ବରୁ ଖୋଳି କରି କାଢ଼ିବା ଉଚିତ)—26. Bones under the ground of sites for houses.

ଦେ. ବି—ଝିଙ୍କ କାଟି—Spines of a porcupine. [ଦ୍ର—ବଶଲ୍ୟ ଗୋଡ଼ୁଁ ସେ ଶଲ୍ୟ । ଭଞ୍ଜ—ବୈଦେହୀଶ ବିଳାସ ]

ଶଲ୍ୟକ—ସଂ ବି.—(ଶଲ୍ୟ+ଅସ୍ତ୍ୟ ଅର୍ଥରେ କ)—୧ । ଝିଙ୍କ—1.
Śalyaka Porcupine. ୨ । କଣ୍ଟାଗଛ—2. A thorny plant or tree. ୩ । ମଦନ ବୃକ୍ଷ; ମଦନଗଛ—3. A tree; Randia Dumetorum; Bushy Gardenia. ୪ । ଖଇର (ହି. ଶ)—4. Catechu. ୫ । ଜଳଗା ମାଛ (ହି.ଶ)—5. Silunda Gangetica (fish) ୬ । ଲୋଧ୍ରବୃକ୍ଷ (ହି. ଶ)—6 Simplocos Racemosus ୭ । ବିଲ୍ୱବୃକ୍ଷ (ହି.ଶ)—Bilwa tree

ଶଲ୍ୟ କଣ୍ଠ—ସଂ ବି.—(ଶଲ୍ୟ=କଣ୍ଟା । କଣ୍ଠ ପର୍ଯ୍ୟନ୍ତ ଯାହାର; ବହୁବ୍ରୀହି)
Śalya kaṇṭha ଝିଙ୍କ—Porcupine.

ଶଲ୍ୟକ ମାଂସ—ସଂ. ବି.—ଝିଙ୍କର ମାଂସ—
Śalyaka māṁsa The flesh of porcupine. [ଦ୍ର—ବୈଦ୍ୟଶାସ୍ତ୍ର ମତରେ ଏହି ମାଂସ ମଧୁର ରସ, ଶୀତଳ, ଲଘୁପାକ, ସ୍ନିଗ୍ଧ, ଅଗ୍ନିବର୍ଦ୍ଧକ; ପିତ୍ତ, ଶ୍ୱାସ, କଫ, କାଶ ଓ ବିଷଦୋଷ ନାଶକ। ଏ ଖାଦ୍ୟ ହିକ୍କା ଶ୍ୱାସ ରୋଗରେ ବିଶେଷ ଫଳପ୍ରଦ।]

ଶଲ୍ୟକର୍ତ୍ତା—ସଂ. ବି.—(ଶଲ୍ୟ+କର୍ତ୍ତୃ)—ଶସ୍ତ୍ର ଚିକିତ୍ସକ (ହି.ଶ)
Śalyakarttā Surgeon.

ଶଲ୍ୟଜ ନାଡ଼ୀବ୍ରଣ—ସଂ. ବି—ଦେହରେ ଶଲ୍ୟ ପଶିବା ଫଳରେ ଜାତ
Śalyaja nārdibraṇa ନାଲୀ ଘାଆ (ହି.ଶ)—Sinus due to the entry of any extraneous matter into the body

ଶଲ୍ୟ ପଶୁ—ସଂ. ବି.—(ଶଲ୍ୟ ଯୁକ୍ତ ପଶୁ; ମ. ପ. ଶ୍ଳୋ.)—୧। ଶଜାରୁ;
Śalya paśu ଝିଙ୍କ—1. Porcupine. ୨। ବଜ୍ରକାପଟା ନାମକ ଜୀବ—2. Pangoline.

ଶଲ୍ୟ ବିଦ୍ୟା (ତନ୍ତ୍ର)—ସଂ. ବି.—୧। ଶବବ୍ୟବଚ୍ଛେଦ ବିଦ୍ୟା; ଦେହରେ
Śalya bidyā (tantra) ଅସ୍ତ୍ରପୋଗର ବିଦ୍ୟା—1. Science of surgery; science of dissection ୨। ଦେହରେ ପଶିଥିବା କଣ୍ଟା ଆଦି କାଢ଼ିବା ବିଦ୍ୟା—2. The science dealing with the extraction of foreign bodies from the body,

ଶଲ୍ୟ ବିଦ୍ଧ—ସଂ.ବିଣ—(ଶଲ୍ୟ+ବିଦ୍ଧ, ୩ୟାତତ୍)—ଶର ବା କଣ୍ଟାଦ୍ୱାରା
Śalya biddha ବିଦ୍ଧ—Pierced with a nail or dart.

ଶଲ୍ୟ ଭେଦ—ସଂ.ବି--(୬ଷ୍ଠୀତତ୍)-ଦେହରେ କଣ୍ଟା ବା ଶର ଗଳିଯିବା—
Śalya bheda The piercing of the body with a dart or nail.

ଶଲ୍ୟ ଲୋମ—ସଂ. ବି—(୬ଷ୍ଠୀତତ୍; ଶଲ୍ୟ+ଲୋମନ୍. ୧ମା. ୧ବ)-ଝିଙ୍କ
Śalya loma କାଠି (ହି.ଶ)—The quills of porcupine.

ଶଲ୍ୟ ଶାସ୍ତ୍ର—ସଂ ବି—ଶଲ୍ୟ ବିଦ୍ୟା (ଦେଖ)
Śalya śāstra Śalya bidyā (see)

ଶଲ୍ୟା—ସଂ ବି—(ଶଲ୍ୟ+ଆ)—୧। ମେଦା ନାମକ ଔଷଧ—1.
Śalyā A rare herb. ୨। ନାଗବଲ୍ଲୀ (ହି. ଶ)—2. Betel creeper. ୩। ବିକଙ୍କତ; ଭଇଞ୍ଚ (ହି ଶ)—3. Flacourtia Cataphracta (plant).

ଶଲ୍ୟାରି—ସଂ ବି—(ଶଲ୍ୟ+ଅରି; ୬ଷ୍ଠୀତତ୍;—ଏହାଙ୍କ ଦ୍ୱାରା
Śalyāri ଶଲ୍ୟହତ ହୋଇଥିବାରୁ)--ଯୁଧିଷ୍ଠିର; ଜ୍ୟେଷ୍ଠ ପାଣ୍ଡବ—Judhishṭhira, the eldest Pāṇḍaba.

ଶଲ୍ୟୋତ୍ପାଟନ—ସଂ ବି—(୬ଷ୍ଠୀତତ୍; ଶଲ୍ୟ+ଉତ୍ପାଟନ) ୧। ଦେହରେ
Śalyotpāṭana ପଶିଯାଇଥିବା କଣ୍ଟା ବା ଶରକୁ କାଢ଼ିବା—1. Extraction of a nail or dart from a wounded body. ୨। ଗୃହର ବାସ୍ତୁର ତଳୁ ପୋତାଥିବା ମନୁଷ୍ୟ ବା ପଶୁ ଆଦିଙ୍କ ଅସ୍ଥିକୁ ବାହାର କରିବା ରୂପ ସଂସ୍କାର--2. The act or ceremony of digging out the bones of animals which may be found underneath the surface of a site where a new house is going to be built.

ଶଲ୍ଲ୍ (ଧାତୁ)—ସ—ଗମନ କରିବା—
Śall (root) To go,

ଶଲ୍ଲ—ଦେ. ବି (ସଂ. ଶଲ୍ୟ)-ଶଲ (ଦେଖ)—Sala. (See) ସଂ. ବି—
Śalla (ଶଲ୍ଲ୍ ଧାତୁ+କର୍ତ୍ତୃ ଅ)—୧। ଶଲ୍କ; ଛାଲି—1. Scales on the body of some animals. ୨। ବଲ୍କଳ—2. Bark. ୩। ତ୍ୱକ୍; ଚର୍ମ—3. Skin; rind. ୪। ଭେକ; ବେଙ୍ଗ—4. Frog. ୫। ଶଲର (ଦେଖ)—5. Śalarā. (See) [ଦ୍ର—ଏହା ଶଲର ଜାତୀୟ; ଏଥିର ଫଳ କଲରଠାରୁ ଲମ୍ବ। ଦ୍ରବ୍ୟଗୁଣ।]

ଶଲ୍ଲକ—ସଂ. ବି (ଶଲ୍ଲ୍ ଧାତୁ+କର୍ତ୍ତୃ. ଅକ)—୧। ଶଲ୍କ; କାଛ—
Śallaka 1. Scales on the body of certain animals. ୨। ବଲ୍କଳ; ତ୍ୱକ୍—2. Bark; rind. ୩। ଝିଙ୍କ ଦେହରେ ଥିବା କାଠି—3. The quills of porcupine. ୪। ଶଣପଟ ଗଛ; ଶଣ ଗଛ—4. The Śaṇa hemp plant. ୫। ଚମଡ଼ା (ହି. ଶ)—5. Skin. ୬। ଝିଙ୍କ (ହି. ଶ)—6. Porcupine.

ଶଲ୍ଲକୀ—ସଂ. ବି (ଶଲ୍ଲକ+ଈନ୍)—୧। ଝିଙ୍କ; ଶଜାରୁ—1. Porcu-
Śallakī pine. [ଦ୍ର--ଉତ୍ତ୍ରୋଳ ଶଲାକା ଯେଉଁରେ ଭୂଷିତ ଶଲ୍ଲକୀ—(ଶଲ୍ଲୀ—ଅନ୍ୟରୂପ) ରଘୁନାଥ. ମହାଯାତ୍ରା।] ୨। (ବୈଦ୍ୟକ)

| | |
|---|---|
| ସଂ. ପର୍ଯ୍ୟାୟ—ଗଜଭକ୍ଷ୍ୟା, ସୁବହା, ସୁରଭି, ରସା, ମହେରୁଣା, କୁନ୍ଦୁରୁକୀ, ବଲ୍ଲକୀ, ବହୁସ୍ରବା, ସଲ୍ଲକୀ। ଓ. ଶଲେଇ, ଶଲଇ ଶଳଈ | କଣ୍ଟା ବହୁଳ ଗଛ; ଶଲର ଜଣା ଗଛ—2. A tree; Bushy Gardenia. ୩। (ବୈଦ୍ୟକ) ଶାଲବୃକ୍ଷ ବିଶେଷ; (ଏହାର ଅଠାରୁ ଲୋବାନ୍ ନାମକ ଧୂପ ବାହାରେ)—3. Boswellia Serrata; Indian Olibanum. |
| ହ୍ଲିନ୍ଦ. ଶାଲଗ ମ. ଶାଲସୃ ଧୂପ ତା. ଗୁଂଲ | |

[ଦ୍ର—ଏହି ଗଛର ଗଣ୍ଡିରୁ ହାଣି ଦେଲେ ଯେଉଁ ନିର୍ଯ୍ୟାସ ବାହାରେ, ତାହା ଶୁଖିଗଲେ କୁନ୍ଦୁରୁଖୁଣ୍ଟ ବା ଲୋବାନ୍ ହୁଏ ଏବଂ ତାହାକୁ ନିଆଁରେ ତାକୁ ପକାଇଲେ ସୁଗନ୍ଧ ଧୂମ ବାହାରେ। ବୈଦ୍ୟଶାସ୍ତ୍ର ମତରେ ଏହା କଷାୟ ରସ, ଶୀତବୀର୍ଯ୍ୟ, ପୁଷ୍ଟିକର; ପିତ୍ତ, ଶ୍ଳେଷ୍ମା, ଅତିସାର, ରକ୍ତପିତ୍ତ ଓ ବ୍ରଣ ରୋଗର ଔଷଧ।]

ଶଲ୍ଲକୀ ନିର୍ଯ୍ୟାସ—ସଂ.ବି (ବୈଦ୍ୟକ)—କୁନ୍ଦୁରୁଖୁଣ୍ଟ; ଲୋବାନ; ଶିଲା-
Śallakī nirjyāsa ରସ—Indian olibanum; Benzoin; Styrax Benzoin; liquid amber;
(ଶଲ୍ଲକୀଦ୍ରବ, ଶଲ୍ଲକୀରସ—ଅନ୍ୟରୂପ)

| | |
|---|---|
| ସଂ. ପର୍ଯ୍ୟାୟ—କୁନ୍ଦୁରୁ, ମୁକୁନ୍ଦ, ସୁଗନ୍ଧ, କୁନ୍ଦକ, କୁନ୍ଦୁରୁ, କୁନ୍ଦ, ପାଲଙ୍କା, ପାଲଙ୍କୀ, କୁନ୍ଦୁ, କୁନ୍ଦୁରୁ, କୁନ୍ଦୁରୁ, ତୀକ୍ଷ୍ଣଗନ୍ଧ, | [ଦ୍ର—ଏହା ଧୂଣାଠାରୁ ଧୂପଗ୍ରାଙ୍ଗ ବ୍ୟବହୃତ ହୁଏ। ହିନ୍ଦୁମାନେ ଦେବାଳୟାଦିରେ ଧୂଣଦ୍ୱାରା ଧୂପ |

ବଲୀ, ଗୌରାଷ୍ଟ୍ର, ଶ୍ରିଗନ୍ଧ, ଗାନ୍ଧ୍ରଣ, ଶୋପ୍ତବକ, ବହୁଗନ୍ଧ, ପାଳନ୍ଦ, ସ୍ତୁସଣ ।
ଓ. ଲବାନ୍, କୁନ୍ଦୁରୁଗୋନ୍ଦ
ନବାନ୍, কুন্দকখোটি
କୁନ୍ଦୁରୁ, ଗୁନ୍ଦବପୀହୀ
ଫା. କୁନ୍ଦରୁମୀ, ଖୋଷ୍ଠୀମସ୍ତୁଙ୍କା,
ଅ. କୁନ୍ଦରେକର, ବସ୍ତୁନ୍
ଟେ. କୁନ୍ଦୁରୁମ୍

ଦେବାପର ମୁସଲମାନ୍ମାନେ ଏଥିରେ ଧୂପ ଦିଅନ୍ତି । ବୈଦ୍ୟଶାସ୍ତ୍ର ଅନୁସାରେ ଏହା ମଧୁର କଟୁ ତିକ୍ତ ରସ । ଏହା ପାନ ଓ ବାହ୍ୟ ପ୍ରୟୋଗରେ ଶୀତଳ ଓ କଫ, ପିତ୍ତ, ବାତ, ପ୍ରଦର, ଗ୍ରହ୍ନ, ଜ୍ୱର, ସ୍ୱେଦ, ଚର୍ମରୋଗ, ଗ୍ରହଦୋଷ, ମୁଖରୋଗ, କଫ ଓ ବାୟୁର ଶାନ୍ତିକାରକ । ଏହା ତକ ସହିତ ପ୍ରୟୋଗ କଲେ ବା ଲେପ ଦେଲେ ମେହ ଓ କୋଷବୃଦ୍ଧିଜନିତ ବେଦନା ଶାନ୍ତ ହୁଏ ।]

ଶଲ୍ଲିକା—ସଂ. ବି—ନାବ; ନୌକା (ଦ୍ର. ଶ)—
Śallikā Boat;

ଶଶ୍ (ଧାତୁ)—ସଂ—ଲମ୍ଫ ଦେଇ ଗତି କରିବା; ପ୍ଲୁତଗତି କରିବା—
Śaś (root) To move jumping; to frisk about.

ଶଶ୍‌କାଲ(ଲେ)—ଗ୍ରା. କ୍ରି. ବିଣ (ସଂ. ତତ୍କାଲଂ ବା ସଦ୍ୟଃକାଳଂ)—
Śaś-kāla(le) ୧। ତତ୍କ୍ଷଣାତ୍—1. Immediately;
ସକାଳେ ତୁରନ୍ତ, ଝଟ all at once. ୨। ଅଣ୍ଡ; ଚଞ୍ଚଳ; ଶୀଘ୍ର—2. Early.

ଶଶ—ସଂ. ବି (ଶଶ୍ ଧାତୁ+କର୍ତ୍ତି. ଅ, ଯେ ଲମ୍ଫଦେଇ ଚାଲେ)—୧।
Śaśa ଶଶକ; ଠେକୁଆ; ବଳେଶଯ଼ଜାତୀୟ ଚତୁଷ୍ପଦ ପଶୁ—1. Hare; rabbit. ୨। କାମଶାସ୍ତ୍ରବର୍ଣ୍ଣିତ 'ଶଶଜାତୀୟ ପୁରୁଷ'—2. One of the four classes into which the Hindu amatory science has classified males. [ଦ୍ର—ଏଜାତୀୟ ପୁରୁଷ ମୃଦୁଭାଷୀ, ସୁଶୀଳ, କୋମଳାଙ୍ଗ, ସତ୍ୟବାଦୀ ଓ ଗୁଣବାନ୍ ଅଟନ୍ତି ।] ୩। ଝୁଣା—3. Resin. ୪। ଲୋଧ; ଲୋଧ୍ରଗଛ—4. A tree; Symplocus Racemosus. ୫। ଚନ୍ଦ୍ରଙ୍କ ଦେହରେ ଲକ୍ଷିତ କୃଷ୍ଣବର୍ଣ୍ଣ ଦାଗ—5. Dark spots seen on the surface of the moon. [ଦ୍ର—ପୁରାଣରେ ଅଛି ଯେ, ଗୋଟିଏ ଶଶକ (କଲ୍ପାନ୍ତରରେ ମୃଗ) ତୃଷାର୍ତ୍ତ ହୋଇ ମରୁଭୂମିରେ ଚନ୍ଦ୍ରଙ୍କୁ (ଜ୍ୟୋତ୍ସ୍ନା ଚନ୍ଦ୍ରକରଶୋଭାସିତ ମରୁପ୍ରାନ୍ତରକୁ) ଗୋଟିଏ ଜଳାଧାର ବୋଲି ମନେକରି ଜଳ ପାନ କରିବାପାଇଁ ଦଉଡ଼ି ଦଉଡ଼ି ଯାଇ ଦେଖିଲା ଯେ, ସେଠାରେ ପାଣି ନାହିଁ । ଏହା ଦେଖି ଶଶକର ହୃଦୟ ଭାଙ୍ଗିଗଲା ଓ ସେ ମରିଗଲା । ତାହାଠାରେ ଅଣା ଲଗି ଶଶକ ପ୍ରାଣ ହରାଇଥିବାରୁ ସେହି ଶଶକଟି ଚନ୍ଦ୍ରଙ୍କ ଦେହରେ କଳଙ୍କସ୍ୱରୂପ ଲାଗିରହିଲା ଏବଂ ସେହିଦିନଠାରୁ ଚନ୍ଦ୍ର ଶଶାଙ୍କ ହେଲେ ।]

ଶଶ(ଷ,ସ)—ଦେ. ବି (ସଂ. ଶସ୍ୟ)—୧। ନଡ଼ିଆ, ତାଳ, କଷାରୁଆଦି
Śaśa(sha,sa) ଫଳର କଠିନ ଆବରଣ ମଧ୍ୟରେ ଥିବା

শাস গুদা କୋମଳ ଅଂଶ—1. The soft kernel inside the hard rind of certain fruits. ୨। ଗଛର ମଞ୍ଜ—2. The pith of trees.

ଶଶକ—ସଂ. ବି (ଶଶ୍ ଧାତୁ+କର୍ତ୍ତୃ ଅକ ବା ଶଶ+ସ୍ୱାର୍ଥେ କ; ଯେ
Śaśaka ଡେଇଁ ଡେଇଁ ଚାଲେ)—ଶଶ (ଦେଖ)
Śaśa (See)

ଶଶ କନ୍ଦ—ସଂ. ବି—କ୍ଷୀରକନ୍ଦ୍ରଟା; କ୍ଷୀରି (ଦେଖ) (ବିରେକୃଷ୍ଣ ଦ୍ରବ୍ୟଗୁଣ)
Śaśa kanda Kshiri (See)

ଶଶକାଲ(ଲେ)—ଗ୍ରା. କ୍ରି. ବିଣ—ଶଶ୍‌କାଲ (ଦେଖ)
Śaśakāla(le) Śaś-kāla (See)

ଶଶ ଘାତକ(ଘାତୀ)—ସଂ. ବି—ବାଜ; ଶ୍ୟେନ—
Śaś ghātaka(ghātī) Hawk.

ଶଶଜାତୀୟ ନର—ସଂ. ବି—ହିନ୍ଦୁଶାସ୍ତ୍ର (କୋକଶାସ୍ତ୍ର)ରେ ବର୍ଣ୍ଣିତ ପୁରୁଷ-
Śaśajātīya nara ମାନଙ୍କର ଚାରୋଟି ଶ୍ରେଣୀ ବାଣ୍ଟି ଜାତି ମଧ୍ୟରୁ ଏକତମ—One of the four classes of male persons classified by the Hindu amatory treatises; a class of males of mild, pious and luxurious bent of mind and slender in build. [ଦ୍ର—ପୁରୁଷମାନେ କୋକଶାସ୍ତ୍ରର ବର୍ଣ୍ଣନା ଅନୁସାରେ ଚାରି ଶ୍ରେଣୀରେ ବିଭକ୍ତ—

୧। ଅଶ୍ୱଜାତୀୟ ପୁରୁଷ ।
୨। ବୃଷଜାତୀୟ ପୁରୁଷ ।
୩। ମୃଗଜାତୀୟ ପୁରୁଷ ।
୪। ଶଶଜାତୀୟ ପୁରୁଷ ।

ଏହି ୪ର୍ଥ ଶଶଜାତୀୟ ପୁରୁଷ ମୃଦୁକାୟ, କୋମଳସ୍ୱଭାବ, ଲାଜୁ, ଧନସ୍ତ୍ରୀ, ସୁକୁମାରାଙ୍ଗ, ସ୍ନେହୀ ଓ ମଧୁର, ପ୍ରେମଶୀଳ ଏବଂ କାମକ୍ରୀଡ଼ାରେ ସାଧାରଣରୂପେ ଅସକ୍ତ ଓ ଧାର୍ମିକ ତଥା ସ୍ଥିର ବର୍ଣୀଭୂତ । ଏହି ଶଶଜାତୀୟ ପୁରୁଷଙ୍କ ପ୍ରତି ପଦ୍ମିନୀଜାତୀୟା ସ୍ତ୍ରୀ ଉପଯୁକ୍ତା ।]

ଶଶଧର—ସଂ. ବି (ଶଶ+ଧୃ ଧାତୁ+କର୍ତ୍ତୃ ଅ; ଯେ ଶଶଚିହ୍ନକୁ
Śaśadhara ଦେହରେ ଧାରଣ କରିଥାନ୍ତି)—୧। ଶଶାଙ୍କ; ଚନ୍ଦ୍ର—1. The moon. ୨। କର୍ପୂର—
শশধর হাস্যধর 2. Camphor. ଦେ. ବି. ପୁଂ—ପୁରୁଷଙ୍କ ନାମ—A name given to males. ଦେ. ବିଣ (ସଂ. ଶଶଧର=ଚନ୍ଦ୍ର)—୧। କୌଣସି କାର୍ଯ୍ୟ ସାଧନ ବିଷୟରେ ପାରଗମ—1. Capable; able.
সমর্থ ୨। ଯୋଗ୍ୟ (ବ୍ୟକ୍ତି)—2. Worthy (person). ୩। କୁଣ୍ଠିତ—3. Loth; averse. (ଯଥା—ଭୁଲ କଥାରେ ଏବେ ଶଶଧର କାହିଁକି ହେଉଅଛୁ ?)

ଶଶପ୍ଲୁତକ—ସଂ. ବି (ରତିଶାସ୍ତ୍ର)—ନାଗର ଓ ନାଗରୀଙ୍କ କାମକ୍ରୀଡ଼ା
Śaśaplutaka ସମୟରେ ପରସ୍ପର ଅଙ୍ଗରେ କରିବା ନଖାଘାତ—The scratching by the nail on the body of the lovers made during amatory enjoyment.

| ଽ | ଇ | ଉ | ଋ,ୠ | ଓ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ୍ଞ | ଶ,ଷ | କ୍ଷ | ଇୟ୍ | ଉଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ʾ | ଈ | ଊ | ରୁ | ଲୁ | ଏ୍ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଵ | ନ୍ |

ଶଶବିନ୍ଦୁ—ସଂ. ବି (ଶଶ ଅଛି ବିନ୍ଦୁ=ଚିହ୍ନ ଯାହାର)—୧ । ଶଶାଙ୍କ; Śaśabindu ଚନ୍ଦ୍ର—1. The moon. ୨ । ବିଷ୍ଣୁଙ୍କ ନାମ—2. A name of Bishṇu. ୩ । ଗନ୍ଧର୍ବ ଚିତ୍ରରଥଙ୍କ ପୁତ୍ର; ରାଜନ୍ୟବିଶେଷ—3. Name of a king of ancient India, son of Gandharba Chitraratha.

ଶଶ ବିଷାଣ—ସଂ. ବି (୬ଷ୍ଠୀ ତତ୍)—ଠେକୁଆର ଶିଙ୍ଗ ବା ଶିଙ୍ଗ, ଅସମ୍ଭବ Śaśa bishāṇa ବା ଅଳୀକ କଥା—The hares, (ଶଶ ଶୃଙ୍ଗ—ଅନ୍ୟରୂପ) horn; impossibility. [ଦ୍ର—ଠେକୁଆର ଶିଙ୍ଗ ନାହିଁ, ଅତଏବ ଠେକୁଆର ଶିଙ୍ଗ ବୋଲି ସଂସାରରେ କିଛି ବସ୍ତୁ ନାହିଁ । ଅସମ୍ଭବ ବା ଅଳୀକ ବିଷୟର ଦୃଷ୍ଟାନ୍ତ ସ୍ଥଳରେ ଏ ଶବ୍ଦ ପ୍ରୟୋଗ କରାଯାଏ । ଏହିପରି ଅସମ୍ଭବ ବିଷୟବାଚକ ଅନ୍ୟ ଶବ୍ଦମାନ । ଯଥା—ଆକାଶକୁସୁମ, ବନ୍ଧ୍ୟାପୁତ୍ର, କୂର୍ମଲୋମ । ଏ ସବୁ ସଂସ୍କୃତ ଶବ୍ଦ । ଓଡ଼ିଆରେ ମଧ୍ୟ ଏହିପରି କେତେକ ଶବ୍ଦ ଅଛି । ଯଥା—ଆକାଶ କଇଁଆ, ଲେଡ଼ାରେ ବାଳ, ଛେଳିର ହାଡ଼, ଘୋଡ଼ାଡିମ୍ବ. ବଙ୍ଗଳାରେ 'ସୋନାର ପାଥରବାଟି' 'କାଁଠାଲେର ଆମସତ୍ତ୍ୱ' 'ଘୋଡ଼ାର ଡିମ' ଇତ୍ୟାଦି । ଇଂରାଜୀରେ castles in the air 'horse's egg'] (ଉ—ତୋହର ଭାଗ୍ୟେ କି ଲେଖାଥିଲା ଅଧା ଗୋଡ଼ିବା ଶଶବିଷାଣ—ରାଧାନାଥ. ଯଯାତି ।)

ଶଶ ବ୍ୟସ୍ତ—ସଂ. ବିଣ—( ଆଧୁନିକ ପ୍ରୟୋଗ; ବଙ୍ଗଳା ବ୍ୟବହାରରୁ Śaśa byasta ଗୃହୀତ; ଶଶ ଠେକୁଆ ପରି ବ୍ୟସ୍ତ=ତ୍ରସ୍ତ, ଭୂଷିବ୍ଧିତ; ମ. ପ. ଲୋ)—୧ । ଅତ୍ୟନ୍ତ ଭୂଷିବ୍ଧିତ—1. Hurried; very restless; much perturbed ୨ । ଅତ୍ୟନ୍ତ ତ୍ରସ୍ତ; ତ୍ରସ୍ତବ୍ୟସ୍ତ; ଲଙ୍ଗଳା ଟୁଙ୍ଗୁଳା; ଭୀତ କମ୍ପିତ—2 Much frightened; very much ruffled. ୩ । କିଂକର୍ତ୍ତବ୍ୟ ବିମୂଢ଼—3 Dumb-founded.

ଶଶବ୍ୟସ୍ତତା—ସଂ. ବି.—ଅତ୍ୟନ୍ତ ତ୍ରସ୍ତଭୀତ ହେବା ଅବସ୍ଥା—The Śaśabyastatā state of being in hot haste; hurry; hot haste; confusion.

ଶଶବ୍ୟସ୍ତେ—ଦେ. କ୍ରି. ବିଣ—୧ । ଅତ୍ୟନ୍ତ ଭୂଷିବ୍ଧିତ ଭାବରେ—Śaśabyaste 1. Hurriedly ୨ । ସଂଭ୍ରମେ—2 With शशव्यस्तहये त्वरत due respect. [ଉ—ଅଳନ୍ତର ଶଶବ୍ୟସ୍ତେ ଉଠି ନ ପ୍ରମଣି, ନମାଇ ଜାମାତୃବରେ ଆଲିଙ୍ଗି ଆଦରେ । —ଚିନ୍ତାମଣି, ବିଦଗ୍ଧମାଧବ]

ଶଶଭୃତ୍—ସଂ. ବି—(ଶଶ+ଭୃ ଧାତୁ=ଧାରଣ କରିବା+କର୍ତ୍ତୃ କ୍ୱିପ୍ Śaśa bhṛut —ଶଶାଙ୍କ; ଶଶଧର (ଦେଖ)—Śaśānka; Śaśadhara (See).

ଶଶଯାଗ(ନ) ତୀର୍ଥ—ସଂ. ବି—ତୀର୍ଥ ବିଶେଷ—The name of a Śaśajāga(na)tirtha sacred place of pilgrimage [ଉ—ଶଶ ଯାଗ ତୀର୍ଥେ କାର୍ତ୍ତିକ ପୂର୍ଣ୍ଣିମୀ, ଦାନ ସ୍ନାନ କଲେ ହୁଅଇ ବଡ଼ ଧର୍ମୀ । କୃଷ୍ଣସିଂହ. ମହାଭାରତ ବନ । ]

ଶଶ ଲାଞ୍ଛନ—ସଂ. ବି—(ଶଶଅଛି ଲାଞ୍ଛନ=ଚିହ୍ନ ଯାହାର; ବହୁବ୍ରୀହି)—Śaśa lānchchhana ଶଶାଙ୍କ; ଚନ୍ଦ୍ର—The moon.

ଶଶସ୍ଥଳୀ—ସଂ. ବି—ଗଙ୍ଗା ଯମୁନାର ମଧ୍ୟବର୍ତ୍ତୀ ଦେଶ—The Doab; Śaśa sthali the country lying between the Ganges and the Jamuna. [ଦ୍ର—ଏହା ବର୍ତ୍ତମାନ ଦୋଆବ୍ ନାମରେ ଖ୍ୟାତ ।]

ଶଶ ହହ—ଦେ. ବି. ଓ ବିଣ—ଶ, ହ, (ଦେଖ)—Śaśa haha Śa, ha, (See)

ଶଶା—ଦେ. ବି.—୧ । (ସଂ. ଶଶକ) ଶଶକ; ଠେକୁଆ—Śaśā 1 The hare; rabbit. ୨ । (ସଂ. ତ୍ରପୁଷୀ; ସଂ. ଶଶ୍ୟ; ବଙ୍ଗଳାରୁ ଅନୁକୃତ) କାକୁଡ଼ି; କଞ୍ଚିଆଳ କାକୁଡ଼ି—2. Cucumber; Cucumis Hardwickii. [ଦ୍ର—ଏହା କୁଷ୍ମାଣ୍ଡାଦି ବର୍ଗର କୃଷି-ଜାତ ଲତା ଓ ତାହାର କଞ୍ଚାଖାଇ ଫଳ । ପତ୍ର ପଞ୍ଚଶାଖା ବା ଅଙ୍ଗୁଳି ଯୁକ୍ତ ଓ ରୋମଶ, ଫୁଲ ହଳଦିଆ । ଫଳ ଲମ୍ବ ଓ ଗୋଲ ଓ ଅବ୍ଦନ୍ତମୟ । ବସନ୍ତ କାଳରେ କ୍ଷେତରେ ଚାଷ କରି ଯେଉଁ ଫସଲ କରାଯାଏ, ସେ ଫଳ ୪।୫ ଇଞ୍ଚ ଲମ୍ବ । ଏହାକୁ ବଲଶଶା ବା ମୁଣ୍ଡି କାକୁଡ଼ି ବୋଲାଯାଏ । ବର୍ଷା ଦିନେ ଘର ବାଡ଼ିରେ ଯେଉଁ ଫସଲ ଉଞ୍ଚା ଉପରେ ମାଡ଼େ, ସେ ଫଳର ସ୍ଥୂଳତା ପ୍ରାୟ ୩ଇଞ୍ଚ, ବ୍ୟାସ ଓ ଲମ୍ବ ପ୍ରାୟ ୧୨ ଫୁଟ ପର୍ଯ୍ୟନ୍ତ ହୁଏ । ବୈଦ୍ୟଶାସ୍ତ୍ର ମତରେ ଏହା ମଧୁର ରସ, ଶୀତଳ, ଗୁରୁପାକ, ରୁଚିକର, ବଳନାଶକ, ମୂତ୍ରକାରକ, ଓ ଭ୍ରମ, ପିତ୍ତ, ଦାହ, ପିପାସା, କ୍ଲାନ୍ତି, ରକ୍ତପିତ୍ତ ତଥା ବମନ ରୋଗରେ ଉପକାରକ । ଶ୍ୱେତ ଓ ନୀଳବର୍ଣ୍ଣ ଭେଦରେ ଶଶା ଦୁଇ ପ୍ରକାର । ନୀଳ ଅପେକ୍ଷା ଶ୍ୱେତ ଅଧିକ କଫକାରକ; ପକ୍ୱଶଶା, ଅମ୍ଳ ରସ, ଉଷ୍ଣବୀର୍ଯ୍ୟ, ପିତ୍ତବର୍ଦ୍ଧକ ଓ ବାତ ନାଶକ । କାକୁଡ଼ି ମଞ୍ଜି ଶୀତଳ, ରୁକ୍ଷ, ମୂତ୍ରବର୍ଦ୍ଧକ ଏବଂ ପିତ୍ତ, ରକ୍ତ ଓ ମୂତ୍ରକୃଚ୍ଛ୍ର ରୋଗର ଉପଶମକାରକ । କାକୁଡ଼ି କଅଁଳ ଥିବା ଅବସ୍ଥାରେ ଖାଇବାକୁ ରୁଚିକର ଲାଗେ । ଫଳ ବୁଢ଼ା ହୋଇଗଲେ ତା ଗୋଷା ଟାଣ ଓ

ସଂ. ତ୍ରପୁଷା, ତ୍ରପୁସ, କଣ୍ଟକୀ-ଫଳ, ସୁଧାବାସ(ସା), ତ୍ରପୁଷୀ, ସୁଶୀତଳ, ପୀତ ପୁଷ୍ପା, କାଣ୍ଟାଳୁ, ତ୍ରପୁକର୍କଟୀ, ବହୁଫଳା, କଣ୍ଟକୀ ଲତା, କୋଷ ଫଳା, ଗୁଣ୍ଠିଲ ଫଳା
ମ. ତୌଶୀ, କର୍କଟୀ
ତା. ମଦେବେଦ୍ଦର କୋଙ୍କଣେ
ଫା. ଖସ୍ପାର୍, ବାରଙ୍ଗ
ଆ. କସଦ
ତେ. କୋଙ୍କ କଇଥ

ଶଶା ଖୀରା

ସାଧାରଣ ଲୋକେ ଅପର ପୃଷ୍ଠାରେ ସ୍ଥାପିତ ୧ଚକ୍ଷିତ ଅକ୍ଷର ଓ ମାତ୍ରା ଏବଂ ୨ଚକ୍ଷିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚକ୍ଷିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼'ଖୋଜିବେ; 'ମୂଢ଼' ନ ମିଳିଲେ 'ମୂଢ' ଖୋଜିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ'ଅର୍ଘ' ଦେଖିବେ,'ଅଳବଡ଼' ନ ପାଇଲେ 'ଅଲବଡ଼'ଦେଖିବେ।

ନାଲିଆ ବୁଏ ଏବଂ ଏହାକୁ କାଟି ଚକଚାଏ ଓ ଅମ୍ବିଲ କରାଯାଏ । ପୁଟି କାକୁଡ଼ି ମଧ୍ୟ ଏହି ଜାତୀୟ ।]

**ଶଶାଙ୍କ**—ସଂ. ବି (ଶଶ ଅଛେ ଅଙ୍କ=ଚିହ୍ନ ଯାହାର, ଶଶ ଅଛୁ ଅଙ୍କ= Śaśāṅka କୋଳରେ ଯାହାର; ବହୁବ୍ରୀହି)—୧ । ଚନ୍ଦ୍ର—1 The moon. ଦେ. ବି—୧ । ପ୍ରାଚୀନ ବଙ୍ଗର ଗୁପ୍ତ ବଂଶର ଜଣେ ରାଜା—2 Name of a king of ancient Bengal. [ବ୍ର—ପ୍ରାଚୀନ ବଙ୍ଗର ଅନ୍ତର୍ଗତ କର୍ଣ୍ଣସୁବର୍ଣ୍ଣ (ଅଧୁନାତନ କାନସୋନା) ରାଜ୍ୟର ପ୍ରସିଦ୍ଧ ରାଜା । ଏ କାନ୍ୟକୁବ୍ଜର ରାଜା ହର୍ଷବର୍ଦ୍ଧନଙ୍କ ସମସାମୟିକ । ମାଳବ ରାଜାଙ୍କର ଏ ମିତ୍ର ଥିଲେ । ହର୍ଷବର୍ଦ୍ଧନ ରାଜାଙ୍କ ଭାଇ ରାଜ୍ୟବର୍ଦ୍ଧନ ମାଳବ ରାଜ୍ୟକୁ ଆକ୍ରମଣ କରି ଅଧିକାର କରିବାରୁ ଶଶାଙ୍କ ପ୍ରଚ୍ଛନ୍ନଭାବରେ ରାଜ୍ୟବର୍ଦ୍ଧନଙ୍କ ଶିବିରରେ ପ୍ରବେଶ କରି ତାଙ୍କୁ ହତ୍ୟା କଲେ ଓ ଏହି ଅପରାଧରେ ହର୍ଷବର୍ଦ୍ଧନ ଏହାଙ୍କ ରାଜ୍ୟକୁ ଆକ୍ରମଣ କରି ଅଧିକାର କଲେ । ଏ ଚୀନ ପରିବ୍ରାଜକଙ୍କ ବର୍ଣ୍ଣିତ କର୍ଣ୍ଣସୁବର୍ଣ୍ଣାଧିପତି ଶଶାଙ୍କ ନରେନ୍ଦ୍ର ଗୁପ୍ତ ଥିବା ପ୍ରତ୍ନତତ୍ତ୍ୱବିଦ୍‌ମାନେ କହନ୍ତି ।] ୨ । ବଙ୍ଗର ଗୁପ୍ତ ବଂଶର ଶେଷ ରାଜା—3. The last king of Gupta dynasty of Bengal. [ବ୍ର—ଏ ମହା ବୌଦ୍ଧ ବିଦ୍ୱେଷୀ ଥିଲେ । ଗୁପ୍ତ ସାମ୍ରାଜ୍ୟର ଧ୍ୱଂସ ପରେ ସପ୍ତେଇକାର ନାନାବଙ୍ଗ ଦଳମଣ୍ଡିରେ ଏ ରାଜ୍ୟ ସ୍ଥାପନ କରିଥିଲେ । (ବିଶ୍ୱକୋଷ) । ୩ । ପୁରୁଷଙ୍କ ନାମ—3. A name given to males.

**ଶଶାଙ୍କ ମୌଳି**—ସ. ବି. ପୁ—(ଶଶାଙ୍କ ମୌଳି=ଶିରରେ ଯାହାର; Śaśāṅka mauli ବହୁବ୍ରୀହି)—ଶିବ—Śiba

ଶଶାଙ୍କ ମୁକୁଟ } —ଅନ୍ୟରୂପ
ଶଶାଙ୍କ ଶେଖର }

**ଶଶାଙ୍କ ରେ(ଲେ)ଖା**—ସ. ବି—କ୍ଷୀଣ ବା କ୍ଷୟପ୍ରାପ୍ତ ଚନ୍ଦ୍ର; ଖଣ୍ଡଚନ୍ଦ୍ର— Śaśāṅka re(le)khā The crescent of the moon

**ଶଶାଙ୍କ ସୁତ**—ସ.ବି(ଷଷ୍ଠୀ ତତ୍)—ଚନ୍ଦ୍ର ତନୟ ବୁଧ—The planet Śaśāṅka suta mercury.

ଶଶାଙ୍କଜ }
ଶଶାଙ୍କତନୟ } —ଅନ୍ୟରୂପ

**ଶଶାଙ୍କୋପଳ**—ସ. ବି—ଚନ୍ଦ୍ରକାନ୍ତ ମଣି (ହି. ଶ)—Moonstone. Śaśāṅkopaḷa

**ଶଶା ଜୀବନ**—ଦେ. ବି—ଠେକୁଆ ପରି ସୁକୁମାର ପ୍ରାଣ (ଯେଉଁ ଜୀବନ Śaśā jibana ସାମାନ୍ୟ ଆଘାତରେ ନଷ୍ଟ ହୋଇ ଯାଏ ।)— ଶଶାଜୀବନ; সুকুমার सुकुमार Delicate life.

**ଶଶାଣ୍ଡୁଳି**—ସ. ବି—ଏକ ପ୍ରକାର କାକୁଡ଼ି; ପିତା କାକୁଡ଼ି (ରାଜନିର୍ଘଣ୍ଟ); Śaśāṇḍuḷi କଞ୍ଚା ଅଳ କାକୁଡ଼—A sort of cucumber. [ଅନ୍ୟସଂନାମ—ତଣୁଲୀ କ୍ଷେତ୍ର- [ବ୍ର—ଏହା ତିକ୍ତ,କଟୁ, ଅମ୍ଳ, ମଧୁର, ସଂଭବା, ଶୁଦ୍ରାମ୍ଳା,କ୍ଷେମଫଳା, କଫ ନାଶକ, ଦାହ କାରକ, କଫଧୂମ୍ରା, କୃତ୍ରିଫଳା ଶୋଷକ, ରୁଚିକର ଓ ପିତ୍ତ—ବିଶ୍ୱ- তিতকাকুড় कड़वि ककड़ि କୋଷ)

**ଶଶାଦ**—ସଂ ବି—(ଶଶ=ଠେକୁଆ+ଅଦ୍ ଧାତୁ—ଭକ୍ଷଣ କରିବା+ Śaśāda କର୍ତ୍ତୃ ଅ;ଯେ ଠେକୁଆକୁ ମାରି ଖାଏ ।)—ବାଜପକ୍ଷୀ;ଶ୍ୟେନ; (ଶଶାଦନ—ଅନ୍ୟରୂପ) ଛଞ୍ଚାଣ—(Hawk); falcan ୨ । ଇକ୍ଷ୍ୱାକୁଙ୍କ ର ଏକପୁତ୍ର—2. Name of a son of Ikshwaku. [ବ୍ର—ଏହାଙ୍କର ଅନ୍ୟନାମ ବିକୁକ୍ଷି;କଥିତ ଅଛି ଯେ, ଏ ପିତାଙ୍କ ଆଦେଶରେ ଶ୍ରାଦ୍ଧାର୍ଥ ମୃଗୟା କରିବାକୁ ଯାଇ ବହୁ ମୃଗ ବଧ କରିଥିଲେ ଓ ଫେରିଲା ବେଳକୁ କ୍ଲାନ୍ତହୋଇ ଗୋଟିଏ ଠେକୁଆ ବଧ କରି ତା ମାଂସ ଖାଇଥିଲେ । ଭାଗବତ —ବିଶ୍ୱକୋଷ]

**ଶଶା ମାଂସ**—ଦେ.ବି.—(ବୈଦ୍ୟକ) ଠେକୁଆର ମାଂସ—The meat Śaśā mamsa of hare [ବ୍ର—ଏହା ଶୀତସ୍ପର୍ଶ, ଲଘୁ, ସଂଗ୍ରାହକ, ରୁକ୍ଷ, ମଧୁର ରସ, ଅଗ୍ନିକାରକ, କଫ ପିତ୍ତ ବାୟୁଅଦ ଓ ଜ୍ୱର, ଅତିସାର, ରକ୍ତ ଦୁଷ୍ଟି ଏବଂ ଶ୍ୱାସ ରୋଗ ନାଶକ ।]

**ଶଶିଅଳ**—ଦେ. ବିଣ—(ସଂ ଶସ୍ୟଳ)—୧ । ଶସ୍ୟଳ; ଶସ୍ୟଶାଳୀ (ଭୂମି) Śaśiaḷa 1. (Land or soil) Full of crops. ୨ । উর্বর उपजाऊ ଉର୍ବର—2. Productive; fruitful. ୩ । ପ୍ରଚୁର ଓ ବଳିଷ୍ଠ ଭାବେ ବୃଦ୍ଧି ପାଉଥିବା (ବୃକ୍ଷାଦି) 3. ( Trees and plants) Growing luxuriantly; of luxuriant growth.

**ଶଶିକର**—ସଂ. ବି.—( ଶଶିନ୍+କର, ଷଷ୍ଠୀ ତତ୍ )—ଜ୍ୟୋତ୍ସ୍ନା; Śaśi kara ଚନ୍ଦ୍ରକିରଣ—Moonlight; the rays of the moon.

**ଶଶିକରାଲୋକିତ**—ସଂ: ବିଣ—(ଶଶିକର ଦ୍ୱାରା ଆଲୋକିତ; ତୃତୀୟା ତତ୍) Śaśikarālokita—ଜ୍ୟୋତ୍ସ୍ନାଲୋକିତ;ଚନ୍ଦ୍ର କିରଣ ଦ୍ୱାରା ଆଲୋକିତ; ବା ଉଜ୍ଜ୍ୱଳ ହୋଇଥିବା— Lit by the rays of the moon; moon-lit.

ଶଶିକରୋଜ୍ଜ୍ୱଳ }
ଶଶିକରୋଦ୍ଭାସିତ } —ଅନ୍ୟରୂପ

**ଶଶି କଳା**—ସ. ବି—(ଶଶିନ୍+କଳା; ଷଷ୍ଠୀ ତତ୍)—୧ । ଚନ୍ଦ୍ରକଳା, Śaśi kaḷā ଚନ୍ଦ୍ରଙ୍କର ଅଂଶ (୧୬ଟି)—1. The digits of the moon. ୨ । ପଞ୍ଚଦଶାକ୍ଷର ଛନ୍ଦୋବିଶେଷ—(ଏହାର ପ୍ରତ୍ୟେକ ଚରଣରେ ୪ ନଗଣ ଓ ୧ ସଗଣ ଅର୍ଥାତ୍ ସବୁ ବର୍ଣ୍ଣ ଲଘୁ; କେବଳ ଶେଷ ବର୍ଣ୍ଣଟି ଗୁରୁ ଅଟେ) —2. Name of a Sanskrit metre of 15 syllables. ଦେ. ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ— শশি কলা शशि कला A name given to females.

ଶଶିକା—ଦେ. ବି. ସ୍ତ୍ରୀ—ଶଶୀ ନାମ୍ନୀ ସ୍ତ୍ରୀର ଡାକ ନାମ—
Śaśikā शशी शशी Name for calling Śaśī.

ଶଶିକାନ୍ତ—ସଂ. ବି—(ଶଶୀ ଅଟେ କାନ୍ତ ଯାହାର, ବହୁବ୍ରୀହି)—
Śaśi kānta ୧ । ଚନ୍ଦ୍ରକାନ୍ତ ମଣି—1. Moonstone.
शशिकान्त शशीकान्त ୨ । କୁମୁଦ—2. Water-lily. ଦେ.
ବି ପୁଂ—ପୁରୁଷଙ୍କ ନାମ—
A name given to males.

ଶଶିକୋଟି—ସଂ. ବି—(୬ଷ୍ଠୀ ତତ୍)—ଶୁକ୍ଳଚନ୍ଦ୍ରର ଦୁଇଟି ଅଗ୍ର ବା
Śaśi koṭi ଶୃଙ୍ଗ—The two horns of the lunar crescent.

ଶଶିଖଣ୍ଡ—ସଂ. ବି—୧ । ଚନ୍ଦ୍ରର କଳା ବା ଅଂଶ—1. Digit of
Śaśi khaṇḍa the moon. ୨ । ମହାଦେବ (ହି ଶ)—
2. Śiba. ୩ । ବିଦ୍ୟାଧର ବିଶେଷ (ହି. ଶ)—
3. Name of a Bidyādhara.

ଶଶିଗୁହ୍ୟା—ସଂ. ବି—ଯଷ୍ଟିମଧୁ (ହି. ଶ)—
Śaśi guhya Liquorice.

ଶଶିଜ—ସଂ. ବି—(ଶଶି+ଜନ୍ ଧାତୁ+କର୍ତ୍ତୃ. ଅ)—ବୁଧ ଗ୍ରହ—
Śaśija The comet mercury
[ଶଶି ତନୟ, ଶଶି ପୁତ୍ର, ଶଶି ସୁତ—ଅନ୍ୟରୂପ]

ଶଶିଜୀବନ—ସଂ. ବି—(ଶଶୀ ଅଟନ୍ତି ଜୀବନ ଯାହାର; ବହୁବ୍ରୀହି)—
Śaśi jībana ୧ । କୁମୁଦ; କଇଁ—1. Water lily. ୨ ।
ଔଷଧି—2. Medicinal and annual plants; herbs. ଦେ. ବି—ବଙ୍ଗର ଜଣେ ସୁବିଖ୍ୟାତ ନୈୟାୟିକ ସ୍ୱର୍ଗୀୟ ପଣ୍ଡିତ । (ଏହାଙ୍କ ଉପାଧି ତର୍କରତ୍ନ ଥିଲା)—
Name of a late Bengali Pandit versed in Hindu Logic.

ଶଶିଠାର—ଦେ. ବି—ଓଡ଼ିଆରେ ଏକପ୍ରକାର ଠାର—
Śaśi ṭhāra ठार A cypher language in Oriya.
चिकारी [ଉ—ତର ଅବ୍ୟସ୍ତ, ଶସ୍ତ୍ର ହସ୍ତକୁ କର ଅସ୍ତ, ବଣି ଭୋଷିଲ ଶଶିଠାରକୁ ସେ—କବିସୂର୍ଯ୍ୟ. ସଙ୍ଗୀତ । ]
[ ଦ୍ର—ଏଥିରେ ବର୍ଣ୍ଣମାଳାର ଅକ୍ଷରମାନଙ୍କ ସ୍ଥାନରେ ଯଥାକ୍ରମେ ଅନ୍ୟ ନିର୍ଦ୍ଦିଷ୍ଟ ଅକ୍ଷର ଲଗାଇ କଥା ଭାଷା କରଯାଏ । ଯଥା—
ଅ ସ୍ଥାନରେ କ ଓ କ ସ୍ଥାନରେ ଅ । ଏହିପରି ଅନ୍ୟ ମାତ୍ରା ଯୁକ୍ତ ଅକ୍ଷରରେ; ଆ ସ୍ଥାନରେ କା କା ସ୍ଥାନରେ ଆ

| | |
|---|---|
| ଇ—କି | ଈ—କୀ |
| ଉ—କୁ | ଊ—କୂ |
| ଋ—କୃ | ଋ—କୄ |
| ଏ—କେ | ଐ—କୈ |
| ଓ—କୋ, | ଔ—କୌ । |
| ଖ—ଗ, | ଗ ସ୍ଥାନରେ ଖ । |
| ଘ—ଙ, | ଚ ବର୍ଗ=ଟ ବର୍ଗ । |
| ଝ—ଞ, | ତ ବର୍ଗ=ପ ବର୍ଗ |
| ନ—ଯ, | ଯ=ଶ, ର=ଷ |
| ଲ—ସ, | ବ=ସ । |

[ଉ—ମୁଁ ଭାତ ଖାଉଅଛି । ଶଶିଠାରରେ—ନୂ ଧାପ ଗାକୁ କଠି; ବାବାରେ ! ଅସ—ଶଶିଠାରରେ—ଦାଦା ସେ କାବ]

ଶଶିଦେବ—ସଂ ବି.—ରନ୍ତିଦେବ (ବିଶ୍ୱକୋଷ)
Śaśideba King Rantideba

ଶଶିଦୈବ—ସଂ ବି—(ବହୁବ୍ରୀହି; ଶଶୀ ଅଟନ୍ତି ଦୈବ ବା ଅଧିଷ୍ଠାତୃଦେବ
Śaśidaiba ଯାହାର)—ମୃଗଶିରା ନକ୍ଷତ୍ର (ହି. ଶ)—The 5th lunar asterism.

ଶଶିନ୍ (ଶବ୍ଦ)—ସଂ—(ଶଶ=ଠେକୁଆ+ଅସ୍ତ୍ୟର୍ଥରେ ଇନ୍; ଶଶିନ୍
Śaśin ଶବ୍ଦର ୧ମା. ୧ବ. ଶଶୀ; ଏହାଙ୍କ ଅଙ୍କରେ ଶଶ ଥିବାରୁ)
ଚନ୍ଦ୍ର—The moon (root word.)

ଶଶିପ୍ରଭ—ସଂ ବିଣ. ପୁଂ—(ଶଶିନ+ପ୍ରଭା,ଶଶୀର ପ୍ରଭାପରି ପ୍ରଭା ଯାହାର)
Śaśi prabha —୧ । ଚନ୍ଦ୍ରପରି ଦୀପ୍ତିମାନ୍—1 Bright
(ଶଶିପ୍ରଭା—ସ୍ତ୍ରୀ) as the moon. ୨ । ଶୁଭ୍ରବର୍ଣ୍ଣ ବିଶିଷ୍ଟ—
2. White as the moon.
ସଂ ବି.—୧ । ଚନ୍ଦ୍ରକାନ୍ତ ମଣି—1. Moonstone; a gem.
୨ । ମୁକ୍ତା—2. Pearl. ୩ । କୁମୁଦ; କଇଁ (ହି. ଶ)—3. Waterlily.

ଶଶିପ୍ରଭା—ସଂ ବି.—(୬ଷ୍ଠୀତତ୍)—୧ । ଚନ୍ଦ୍ରକିରଣ; ଜ୍ୟୋତ୍ସ୍ନା ।—
Śaśi prabhā Moonlight. ୨ । (ବହୁବ୍ରୀହି) କୁମୁଦ କଇଁ
—2. Water lily. ସଂ. ବିଣ. ସ୍ତ୍ରୀ—ଶଶିପ୍ରଭର ସ୍ତ୍ରୀଲିଙ୍ଗ—
Feminine of Śaśiprabha.
ଦେ. ବି. ସ୍ତ୍ରୀ—ସ୍ତ୍ରୀ ଲୋକଙ୍କ ନାମ—A name given to women.

ଶଶିପ୍ରିୟା—ସଂ ବି—(୬ଷ୍ଠୀତତ୍)—୨୭ ନକ୍ଷତ୍ର (ହି.ଶ)
Śaśi priyā The 27 asterisms.

ଶଶିବଦନା—ସଂ ବିଣ. ସ୍ତ୍ରୀ—(ଶଶିବତ୍ ବଦନ ଯାହାର; ବହୁବ୍ରୀହି—
Śaśibadanā ଶଶିନ୍+ବଦନ+ଆ) ଶଶିମୁଖୀ; ଚନ୍ଦ୍ରାନନା;
ବିଧୁମୁଖୀ—Having the face as beautiful and bright as the moon. [ ଦ୍ର—ଶଶିବଦନାର ପୁଂଲିଙ୍ଗ ଶଶିବଦନ; କିନ୍ତୁ କବିମାନଙ୍କର ପୁରୁଷଙ୍କ 'ଶଶିବଦନ' ବିଶେଷଣ ଦେବାର ଶୁଣା ନାହିଁ । ]
ବି.—ଷଡ଼କ୍ଷର ଛନ୍ଦୋବିଶେଷ । [ଦ୍ର—ଏହାର ପ୍ରତ୍ୟେକ ଚରଣରେ ୧ ନଗଣ ଓ ୧ ଜଗଣ ଥାଏ, ଅର୍ଥାତ ୧ମ ଗୁରୁ ବର୍ଣ୍ଣ ଓ ଶେଷ ଦୁଇବର୍ଣ୍ଣ ଗୁରୁ]—Name of a Sanskrit metre of 6 syllables.

ଶଶିବଦନୀ—ଦେ. ବିଣ. ସ୍ତ୍ରୀ—(ସଂ ଶଶିବଦନା)-ଶଶିବଦନା (ଦେଖ)
Śaśibadanī Śaśibadanā (See)

ଶଶିଭାଲ—ସଂ ବି.—(ବହୁବ୍ରୀହି)—ମହାଦେବ—
Śaśi bhāla Śiba
(ଶଶିଭାଲ-ସ୍ତ୍ରୀ)—ସଂ ବିଣ. ପୁ.—ଯାହାଙ୍କ ଭାଲରେ ଚନ୍ଦ୍ର ଅଛି—
Having the moon on the brow.

ଶଶିଭାଲିନୀ—ସଂ ବିଣ. ସ୍ତ୍ରୀ—(ଶଶିନ୍+ଭାଲ+ଇନ୍+ସ୍ତ୍ରୀ ଈ)-ଯାହାଙ୍କ
Śaśibhālinī ଲଲାଟରେ ଚନ୍ଦ୍ର ଅଛି—(a female) Having the moon on the brow. ବି.—ଦୁର୍ଗା—
(ଶଶଭାଲୀ—ପୁଂ) Goddess Durgā

ଶଶି ଭଲ୍ଲୀ—ଦେ. ବି. ସ୍ତ୍ରୀ (ସ. ଶଶିଭଲ୍ଲ)—ଦୁର୍ଗା; କାଳୀ—Durgā.
Śasibhāli ସ. ବି. ପୁଂ (ଶଶିନ୍+ଭଲ+ଇନ୍; ୧ମା. ୧ବ)—ଶିବ; ମହାଦେବ—Śiba.
ସ. ବଣ. ପୁଂ—ଯାହାଙ୍କ ମସ୍ତକରେ ଚନ୍ଦ୍ର ଅଛି—Having the moon on the brow.

ଶଶି ଭୂଷଣ—ସ. ବ (ଶଶିନ୍+ଭୂଷଣ; ଶଶୀ ଅଟେ ଭୂଷଣ ଯାହାର; ବହୁବ୍ରୀହି)—ଚନ୍ଦ୍ରଚୂଡ଼; ଶିବ; ମହାଦେବ—Śiba. ଦେ. ବ. ପୁଂ—ଲୋକଙ୍କୁ ଦିଆଯିବା ନାମ—A name given to males.
Śasi bhūshaṇa
ସଂ. ବଣ. ପୁଂ (ବହୁବ୍ରୀହି)—ଚନ୍ଦ୍ର ଯାହାଙ୍କର ଅଳଙ୍କାର—Decorated with the moon.
(ଶଶିଭୂଷଣା—ସ୍ତ୍ରୀ)

ଶଶିଭୃତ୍—ସ. ବ (ଶଶିନ୍+ଭୃ ଧାତୁ+କର୍ତ୍ତୃ. କ୍ୱିପ୍)—ଶଶିଭୂଷଣ; ମହାଦେବ—Śiba.
Śasibhrut
( ଶଶିମୌଳୀ—ଅନ୍ୟ ପୁଂ. ରୂପ )—ସଂ. ବଣ. ପୁଂ ଓ ସ୍ତ୍ରୀ—ଶଶିଭୂଷଣ (ଦେଖ) Śasibhūshaṇa. (See)

ଶଶି ମଣି—ସ. ବ—ଚନ୍ଦ୍ରକାନ୍ତ ମଣି (ହି. ଶ) The moonstone.
Śasimaṇi

ଶଶି ମଣ୍ଡଳ—ସଂ. ବ (୬ଷ୍ଠୀ ତତ୍)—ଚନ୍ଦ୍ରମଣ୍ଡଳ—The disc of the moon.
Śasi maṇḍala

ଶଶିମୁଖୀ—ସଂ. ବଣ. ସ୍ତ୍ରୀ (ଶଶି+ମୁଖ+ସ୍ତ୍ରୀ. ଈ)—ଚନ୍ଦ୍ରମୁଖୀ; ଚନ୍ଦ୍ରବଦନା; ଚନ୍ଦ୍ରାନନା—(Female) Having the face as fair as the moon.
Śasimukhī
(ଶଶିମୁଖ—ପୁଂ)
শশিমুখী ଦେ.ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—A name given to females.
शशिमुखी

ଶଶିୟଳ—ଦେ. ବଣ—ଶଶିଅଳ (ଦେଖ)—Śasiaḷa. (See)
Śsiyaḷa

ଶଶି ରେଖା—ସଂ.ବ—୧ । ଶଶାଙ୍କ ରେଖା (ଦେଖ)—1. Śaśāṅka rekhā. (See) ଦେ. ବି. ସ୍ତ୍ରୀ—୧ । ସ୍ତ୍ରୀଗଣଙ୍କ ନାମ—1. A name given to females ୨ । ଉପେନ୍ଦ୍ର ଭଞ୍ଜଙ୍କ ଅପ୍ରକାଶିତ କ୍ଷୁଦ୍ର କାବ୍ୟ ଓ ତହିଁର ନାୟିକା—2. Name of the heroine and title of a small poem ( unpublished ) of poet Upendra Bhañja. ୩ । ବାଙ୍କିର ରାଜା ପଦ୍ମନାଭ ହରିଚନ୍ଦନଙ୍କ ପ୍ରଣୀତ କାବ୍ୟ ଓ ତଦ୍‌ବର୍ଣ୍ଣିତ ନାୟିକାର ନାମ—3. Name of a poem and the heroine thereof of poet Padmanābha Harichandana of Bāṇki. [ଦ୍ର-ଏ ଗ୍ରନ୍ଥ ସ୍ଥାନୀ ସମିତି ପ୍ରଥମେ ପ୍ରକାଶିତ କରଥଛନ୍ତି ।]
Śasi rekhā
শশি রেখা
शशिरेखा

ଶଶି ଲେଖା—ସଂ. ବ—୧ । ଶଶାଙ୍କ ରେଖା (ଦେଖ)—1. Śaśāṅka rekhā. ( See ) ୨ । ଅନ୍ୟ ସ. ପର୍ଯ୍ୟାୟ—ଅବଲ୍ଗୁଜ, ବାକୁଚୀ, ( ବୈଦ୍ୟକ ) ବାକୁଚୀ; ସୋମରାଜୀ, ସୁପର୍ଣ୍ଣିକା, କୃଷ୍ଣଫଳା, ସୋମା, ବାକୁଚ ମଞ୍ଜି; ସୋମବଲ୍ଲୀ, ପୂତିଫଳୀ, କାଳମେଷୀ, ବୀଜ—2. A seed; Serratula Anthelmintica; Psorata Cerylifolia, କୃଷ୍ଣାରୀ—
Śasi lekhā
হাকুচি, বাকুচী, সোমরাজী
बायची; बावची, बकुचि,
कालिपजिरीरित
ଓ. ବାକୁଚ
ତେ. ଛପ୍ପୁଚେଟ୍ଟୁ, କେଲବଯ୍ୟକ୍ଷ୍ମେ,
ମ. ବାକୁଚୀ
ତା° କୋଗିବିତ୍ତୁଲୁ
୩ । ଗୁଳୁଚ (ହି. ଶ)—3. Tinaspora Cordifolia. ୪ । ଛନ୍ଦୋ ବିଶେଷ—4. A kind of Sanscrit metre.

ଶଶି ଶେଖର—ସଂ. ବ. ଓ ବଣ ପୁଂ (ଶଶୀ ଅଛନ୍ତି ଶେଖରରେ, ବା ଶଶୀ, ଶେଖର = ଶିରୋଭୂଷଣ ଯାହାଙ୍କର ଚୂଡ଼ାରେ ବହୁବ୍ରୀହି)—ଚନ୍ଦ୍ରଚୂଡ଼; ଚନ୍ଦ୍ରଶେଖର; ଶିବ; ମହାଦେବ—Śiba, ଦେ. ବ. ପୁଂ—ଲୋକଙ୍କ ନାମ—Name given to males.
Śasi śekhara
শশিশেখর
शशि शेखर

ଶଶୀସେଣା—ଦେ. ବ—ଓଡ଼ିଆ କବି ପ୍ରତାପ ରାୟଙ୍କ ପ୍ରଣୀତ କାବ୍ୟ ଓ ତାହାର ନାୟିକାର ନାମ—Name of an Oriya poem and the heroine thereof by Poet Pratāpa Rāya.
Śaśisenā

ଶଶୀ—ସଂ. ବ (ଶଶ=ଠେକୁଆ+ଅସ୍ତି ଅର୍ଥରେ ଇନ; ଶଶିନ୍ ଶବ୍ଦ ୧ମା, ୧ବ)—୧ । ଶଶାଙ୍କ; ଚନ୍ଦ୍ର—1. The moon. ୨ । କର୍ପୂର—2. Camphor.
Śasi

ଶଶୀଶ—ସଂ. ବ—୧ । ମହାଦେବ—1 Śiba. ୨ । ସ୍କନ୍ଦ; କାର୍ତ୍ତିକେୟ (ହି. ଶ)—2. Kārttikeya.
Śaśīsha

ଶଶୁର—ଦେ. ବ. ପୁଂ (ସଂ. ଶ୍ୱଶୁର)—ଶ୍ୱଶୁର; ଅପଣା ସ୍ୱାମୀଙ୍କର ବା ସ୍ତ୍ରୀଙ୍କର ପିତା—Father-in-law.
Śaśura
শশুর ससुर (ଶାଶୁ—ସ୍ତ୍ରୀ)

ଶଶୁର ଜୋଇଁ(ଜୁଆଁଇଁ, ଜ୍ୱାଇଁ)—ଦେ.ବ (ଆପେକ୍ଷିକ ଦ୍ୱନ୍ଦ୍ୱ)—ଶଶୁର ଓ ଜାମାତା—Father-in-law and son-in-law.
Śaśura joiñ(Juāiñ, jwāiñ)
শশুরজামাই ससुरजमाइ

ଶଶୁର ପୁଅ—ଦେ. ବ.ପୁଂ (ଗାଳି)—ଶ୍ୟାଳକ—Wife's brother.(a term of abuse.
Śaśura pua
শশুরেবেটা ससुरकाबेटा

ଶଶୋର୍ଣ୍ଣ—ସଂ ବ (୬ଷ୍ଠୀ ତତ୍; ଶଶ+ଊର୍ଣ୍ଣ)—ଠେକୁଆ ଲୋମ—The fur of hare or rabbit.
Śaśorṇṇa

ଶଶ୍ୱତ—ସଂ. ଅ [ଶଶ୍ ଧାତୁ=ପ୍ଳୁତଗତିରେ ଚାଲିବା+କର୍ତ୍ତୃ.ବତ୍]—୧ । ବାରଂବାର—1. Repeatedly. ୨ । ସର୍ବଦା—2. Always; constantly; frequently. ୪ । ଚିରସ୍ଥାୟୀ ଭାବରେ—4. Permanently.
Śaśwat

ଶସ୍ତ୍ର—ଗ୍ରା. ବ (ସଂ ଶସ୍ତ୍ର)—୧ । ଶସ୍ତ୍ର—1 Instrument; implement. ୨ । କାର୍ଯ୍ୟସାଧନର ଉପାୟ—2 Means to achieve an object.
Śasra
শস্তর शस्तर
ଗ୍ରା. ବଣ ଓ ବଣ (ସଂ. ସହସ୍ର)—ସହସ୍ର; ହଜାର—Thousand.

ଶଷ ସ୍)—(ଧାତୁ)—ସଂ—୧ । ବଧକରିବା—1. To kill. ୨ । ନାଶ
Śash(s) (root) କରିବା—2 To destroy.

ଶଷ —ପ୍ରଦେ (ମେଦିନୀପୁର) ବି—(ଭୁଲ. ବି. ଶାସ)—ଅମ୍ବ
Sasha ଟାକୁଅର ଭିତରେଥିବା କୋମଳ—Soft content of the mango seed.

ଶଷ୍କାଲ(ଲେ)—ଦେ. କ୍ରି. ବିଶ (ସଂ ତତ୍‌କାଳ)—୧ । ତତ୍‌କାଳେ;
Śashkāla(le) ତତ୍‌କ୍ଷଣାତ୍—1. At once.
সকালে(ল) তুরত ୨ । ଅତି ଶୀଘ୍ର—2. Very soon.

ଶଷ୍କୁ (ଷ୍କୁ)ଲ—ସଂ. ବି (ଶଷ୍ ଧାତୁ=ଡେଇଁବା ଗଡ଼ିକରିବା+କୁଳି.
Śashku(sku)la କୂଳ)—୧ । ଏକପ୍ରକାର ଶକଳୀମାଛ; ଶେଉଳ ମାଛ (ଏମାନେ ପଙ୍କୁଅ ପାଣିରେ ରହନ୍ତି)
1. A kind of fish living in muddy water; Ophicephalus Striatus. ୨ । ଶୀଳ ମାଛ—
2. A sort of fish bigger than Śeula. ୩ । ବୃକ୍ଷବିଶେଷ କରଞ୍ଜ—3 A kind of tree; Pongamia Indica. ୪ । ଅପୂପ ବା ପିଷ୍ଟକ ବିଶେଷ; ଚକୁଳିପିଠା—4. A sort of baked pastry cake.

ଶଷ୍କୁ (ଷ୍କୁ)ଳା—ସଂ; ବି (ଶଷ୍ ଧାତୁ+କୁଳ+ଆ)—ତଣ୍ଡୁଳାଦିମିଶ୍ରିତ
Śashku(sku)lā ଯବାଗୁ—Barley gruel mixed with rice etc.

ଶଷ୍କୁ (ଷ୍କୁ)ଳୀ—ସଂ ବି.—(ଶଷ୍କୁଲ+ଈ)—୧ । କର୍ଣ୍ଣଚ୍ଛିଦ୍ର—1. Ear-
Śashku (sku)li hole; auditory passage. ୨। ଲୁଚି—
2. Fried thin pastry cake. ୩ । ଚକୁଳି ପିଠା—
3. A kind of cake or pie. [ ଦ୍ର—ବୈଦ୍ୟଶାସ୍ତ୍ର ଅନୁସାରେ ଘୃତ ମର୍ଦ୍ଦିତ ମଇଦାକୁ ବେଲଣାରେ ବେଲି ଘିଅରେ ଭାଜିଲେ ତାହା ଶଷ୍କୁଲୀ ହୁଏ । ] ୪ । ଶାଳମାଛ (ହି. ଶ)—4. Opiceppalus Marulius; Gangetic wrhal fish. ୫ । ଶଷ୍କୁଳା (ଦେଖ)—
5. Śashkulā (See)

ଶଷ୍ପ(ଷ୍ପ)—ସଂ ବି.—(ଶଷ୍ ଧାତୁ+କର୍ମ ପ; ଯାହା ପଶୁ ଅଧିକ କ୍ଷୁଧା ନାଶ
Śashpa (spa) କରେ)—୧ । (ବୈଦ୍ୟକ) ମାଳଦୁବ; ହରିତ ତୃଣ—1. A species of green grass. ୨। ବାଲ-ତୃଣ; ନବତୃଣ—2. New grass, young grass. ୩ । କଅଁଳ ଘାସ—3. Tender grass. ୪ । ପ୍ରତିଭାର ହାନି—4. Loss of talents. ୫ । ବୁଦ୍ଧିର ନାଶ—
5. Loss of understanding. ୬। ବିଶ୍ୱାସହାନି (ବିଶ୍ୱାସଲୋପ)—6. Loss of confidence.

ଶଷ୍ପ ଶଯ୍ୟା—ସ. ବି—(ଶଷ୍ପଦ୍ୱାରା ରଚିତ ଶଯ୍ୟା; ମ. ସ. ରେ)—କଅଁଳ
Śashpa śajyā ଘାସରେ ରଚିତ ବିଛଣା—A bed of tender grass.

ଶଷ୍ପ ଶ୍ୟାମ—ସ. ବିଣ—ଘାସଯୋଗୁଁ ସାଗୁଆ ବର୍ଣ୍ଣ ଦେଖା ଯାଉ ଥିବା
Śashpa śyāma (ଭୂମି)—(Land) Looking green on account of the growth of grass.

ଶଷ୍ପସମନ୍ୱିତ—ସ. ବିଣ—(ଶଷ୍ପ ଦ୍ୱାରା)—ନବ ତୃଣଦ୍ୱାରା ଆଚ୍ଛାଦିତ
Sashpa samanwita (ସ୍ଥାନ)—(Place) Overgrown (ଶଷ୍ପାବୃତ—ଅନ୍ୟରୂପ) with new grass.

ଶସ୍—(ଧାତୁ)—ସ.—୧ । ବଧ କରିବା—1. To kill. ୨ ।
Śas (root) ନାଶ କରିବା—2. To destroy.

ଶସ—ଦେ. ବି (ସ. ଶସ୍ୟ)—ମଞ୍ଜି ଭିତରର କୋମଳ ଦ୍ରବ୍ୟ—
Śasa Pith inside a fruit.
শাস গুদ্দা

ଶସନ—ସ. ବି—(ଶସ ଧାତୁ+ଭାବ ଅନ)—୧ । ମାରଣ 1. Killing. ୨ । ବଧ—2. Murder. ୩ । ଯଜ୍ଞାର୍ଥେ ପଶୁ
Śasana ବଧ—3. Killing of an animal as sacrifice. ୪ । ବିନାଶ—4. Destruction. ୫ । (+ଅଧି ଅନ) —ପଶୁଙ୍କ ବଳି ଦାନ ସ୍ଥାନ—5. A place for animal sacrifice.

ଶସାନ—ଦେ. ବି—(ସ. ଶ୍ମଶାନ)—ଶ୍ମଶାନ (ଦେଖ)
Śasāna Śmasāna (See)
শসান সমসান

ଶସ୍କାଳ(ଲେ)—ଦେ. କ୍ରି ବିଣ—ଶଶ୍‌କାଳ (ଦେଖ)—
Śaskāla (le) Śaskāla (See)

ଶସ୍ତ—ସ. ବିଣ—(ଶଂସ୍ ଧାତୁ=ସୁଖୀ କରିବା; ଆଶୀର୍ବାଦ କରିବା+
Śasta କର୍ମ ତ)—୧ । ସୁଖୀ—1. Happy. ୨ । ଆନନ୍ଦିତ—
2. Glad ୩ । କଲ୍ୟାଣ ଯୁକ୍ତ—3. Auspicious; blessed. ୪ । ପ୍ରଶସ୍ତ—4 Broad. ୫ । ସ୍ତୁତ; ପ୍ରଶଂସିତ—5. Praised. ୬। ଉତ୍କୃଷ୍ଟ—6.Excellen. ୭ । (ଶସ୍ ଧାତୁ=ବଧ କରିବା+କର୍ମ ତ)—ହତ. 7 Killed. ସ. ବି—୧ । କଲ୍ୟାଣ—1. Blessing. ୨ । ସୁଖ—2 Happiness ୩ । ଶରୀର; ଦେହ—
3. Body. ଦେ. ବିଣ—୧ । ନିଶ୍ଚିତ—1. Certain. ୨ । ସ୍ଥିରୀକୃତ—2. Decided. (ଯଥା—ଏକଥା ଅନ୍ତେ ଶସ୍ତ କରନ୍ତୁ )। ଦେ. ବି—୧ । (ସଂ. ଶସ୍ତ୍ର) ଶସ୍ତ୍ର; ଯନ୍ତ୍ର—
1. Instrument; tool; weapon. ୨। ପ୍ରତିକାର—
2. Remedy ୩। ଉପାୟ ଅବଲମ୍ବନ—3. Resource; means.
শস্ত্র হাস্তর

ଶସ୍ତକ—ସଂ. ବି—(ଶସ୍ତ+କ)—ଅଙ୍ଗୁଳିତ୍ର; ହସ୍ତାନା—
Śastaka Gloves.

ଶସ୍ତା—ଦେ. ବିଣ—(ସଂ. ଶସ୍ତ—ସୁଖ; ଯାହା ଯୋଗୁଁ କେତା ସୁଖୀହୁଏ)
Śastā —ସୁଦେଷ୍ଟା; ସୁଲଭ—Cheap. ବି.—ସୁଲଭ ମୂଲ୍ୟ—
সস্তা সস্তা Cheapness; cheap price.

ଶସ୍ତାଖିଆ—ଦେ. ବି—ଖାଦ୍ୟଦ୍ରବ୍ୟ ସୁଲଭ ମୂଲ୍ୟରେ ପାଇ ଭୋଗ
Śastā khia କରିବା—Getting or enjoying things
সস্তায়পাওয়া সস্তাখানা cheaply. ଦେ. ବିଣ ପୁ.—(ଶସ୍ତା ଖାଇ (ଇ)—ସ୍ତ୍ରୀ) (ବ୍ୟଙ୍ଗାର୍ଥେ) ଏହା ଅର୍ଥ ବ୍ୟବୃତ୍ତ ଓ
যেসস্তায়চলে সস্তাখানেবালা ଏହା ପରିଶ୍ରମରେ ସେ ଖାଦ୍ୟ ବା ଅନ୍ୟ କୌଣସି ପଦାର୍ଥ ପାଇବା ଆଶା ପୋଷି କାର୍ଯ୍ୟ-

ରେ ଅଭ୍ୟସ୍ତ ହୁଏ; ଯେଉଁ ବ୍ୟକ୍ତି ଶସ୍ତା ଦରରେ ପଦାର୍ଥ-ମାନ ଭୋଗ କରେ—Habituated to enjoying or getting things cheaply. (ଭୁଲ—ମାଗଣା ଖିଆ, ଫୋକଟଖିଆ)।

**ଶସ୍ତା ଦର**—ଦେ. ବି—ସୁଲଭ ମୂଲ୍ୟ—
Śastā dar Cheap rate; cheap price.
(ଶସ୍ତାଦାମ୍—ଅନ୍ୟରୂପ.) শস্তাদর सस्तादर

**ଶସ୍ତା, ତିନ ଅବସ୍ଥା(ସ୍ଥା)**—ଦେ. ପ୍ରବଚନ—କୌଣସି ଦ୍ରବ୍ୟକୁ ସାଧାରଣ
Śastā, tini abastā(sthā) ମୂଲ୍ୟଅପେକ୍ଷା ଶସ୍ତାରେ କଣିବା ପରେ
শস্তার তিন অবস্থা ସାଧାରଣତଃ ଦେଖାଯାଏ ଯେ, ଯୁକ୍ତ ବସ୍ତୁ
सस्ता तिन अवस्था ନିକୃଷ୍ଟ ବା ଖରାପ ଥିବାରୁ ବଣିକେ ତାକୁ ଶସ୍ତାରେ ଦେଉଛନ୍ତି। ଏହି ଅନୁଭବରୁ ଏ ପ୍ରବଚନ ଚଳୁଅଛି। ଏହାର ସମାର୍ଥସୂଚକ ଇଂରାଜୀ ପ୍ରବଚନ—To look a gift horse in the mouth. ଏହାର ଅର୍ଥ—Cheap things are generally found to be bad.

ଶସ୍ତା, ସ୍ଥାନ ଅବସ୍ଥା
ଶସ୍ତାରେ ସ୍ଥାନସ୍ଥା } ଅନ୍ୟରୂପ।
ଶସ୍ତାରେ ସ୍ଥାନବସ୍ଥା

**ଶସ୍ତି**—ସଂ. ବି—(ଶଂସ୍ ଧାତୁ+ଭାବ. ତି)—ପ୍ରଶଂସା; ସ୍ତୁତି
Śasti Praise; eulogy.

**ଶସ୍ତ୍ର**—ସଂ. ବି.—(ଶସ୍ ଧାତୁ=ବଧ କରିବା+କରଣ ତ୍ର; ଯାହା ଦ୍ୱାରା
Śastra ବଧ କରାଯାଏ)—୧।ପ୍ରହରଣ; ଆୟୁଧ—1. Weapon. ୨। ଯାହା ହସ୍ତଦ୍ୱାରା ଧାରଣ କରି ଶତ୍ରୁକୁ ପ୍ରହାର କରାଯାଏ 2. A weapon which is applied to an enemy by holding it in the hand. ୩। ଲୌହ—3 Iron. [ଦ୍ର—ଯେଉଁ ଆୟୁଧକୁ ଶତ୍ରୁ ଉପରକୁ ଦୂରରୁ ଫୋପଡ଼ା ଯାଏ, ତାହାକୁ ଅସ୍ତ୍ର ବୋଲାଯାଏ। ଯଥା—ଆଗ୍ନେୟାସ୍ତ୍ର। ଯାହାକୁ ହାତରେ ଧରିପ୍ରହାର କରାଯାଏ ତାକୁ ଶସ୍ତ୍ର ବୋଲାଯାଏ।] ୪। ଅସ୍ତ୍ରବୈଦ୍ୟଙ୍କ ଅସ୍ତ୍ରୋପଚାରର ସାଧକ ଯନ୍ତ୍ର—4. Surgical instrument. [ଦ୍ର—ସୁଶ୍ରୁତରେ ୧୬୫ ପ୍ରକାରର ଚିକିତ୍ସାର୍ଥ ଅସ୍ତ୍ରର ଉଲ୍ଲେଖ ଅଛି। ଏହି ଅସ୍ତ୍ରମାନ ଦୁଇ ଭାଗରେ ବିଭକ୍ତ। ଯଥା—ଯନ୍ତ୍ର ଓ ଶସ୍ତ୍ର। ଶସ୍ତ୍ର ୨୪ ପ୍ରକାରର ଓ ବାକି ୧୦୧ ଯନ୍ତ୍ର।] ୫। ବଢ଼େଇ, କମାର, ଆଦିଙ୍କ ଯନ୍ତ୍ର ବା ହତିଆର—5. Tools or instruments of artisans; implement. ଦେ. ବି.-ଅସ୍ତ୍ର—Weapon; missile [ଉ—ଏ ବ୍ରହ୍ମଶସ୍ତ୍ର ତେଜ ଘୋର, ଭୁ ବ୍ରହ୍ମଶସ୍ତ୍ରରେ ନିବାର। ଜଗନ୍ନାଥ—ଭାଗବତ]

**ଶସ୍ତ୍ରକ**—ସଂ. ବି.—(ଶସ୍ତ୍ର+କ)—ଲୌହ; ଲୁହା
Śastraka Iron.

**ଶସ୍ତ୍ର କର୍ମ**—ସଂ. ବି.—ଚିକିତ୍ସାର୍ଥ ଶସ୍ତ୍ର ପ୍ରୟୋଗ—(ହି. ଶ)
Śastra karma Surgery.

[ଦ୍ର—ସୁଶ୍ରୁତରେ ୮ ପ୍ରକାର ଶସ୍ତ୍ର କାର୍ଯ୍ୟର ଉଲ୍ଲେଖ ଅଛି—ଛେଦନ, ଲେଖନ, ଭେଦନ, ବିଦ୍ରାବଣ, ବନ୍ଧନ, ଆହରଣ, ଏଷଣ ଶୋଷଣ ଓ ସେବନ—ବିଶ୍ୱକୋଷ]
ଶସ୍ତ୍ରକାର୍ଯ୍ୟ } ଅନ୍ୟରୂପ।
ଶସ୍ତ୍ର କ୍ରିୟା

**ଶସ୍ତ୍ର କାରକ**—ସଂ. ବି.—ଯେଉଁ ବ୍ୟକ୍ତି ଶସ୍ତ୍ର ନିର୍ମାଣ କରେ; ଶସ୍ତ୍ରନିର୍ମାତା—
Śastra kāraka Instrument maker; manufacturer of weapons.

**ଶସ୍ତ୍ର କ୍ଷତ**—ସଂ. ବି.—(ଶସ୍ତ୍ରଜନିତ ବା ଦ୍ୱାରା କ୍ଷତ)—ଶସ୍ତ୍ରଦ୍ୱାରା ଉତ୍ପନ୍ନ କ୍ଷତ-
Śastra kshata Wound caused by a weapon.

**ଶସ୍ତ୍ର ଗୃହ(ଶାଳା)**—ସଂ. ବି —(ମ. ଘ. ଲେ)—ଯେଉଁ ଘରେ ବହୁ ଶସ୍ତ୍ର
Śastra gṛuha (Śālā) ସଞ୍ଚିତ ହୁଏ—Armoury.

**ଶସ୍ତ୍ର ଗ୍ରହଣ**—ସଂ ବି.—(୬ଷ୍ଠୀତତ୍)—ଯୁଦ୍ଧ କରିବା ପାଇଁ ଶସ୍ତ୍ରକୁ ହାତକୁ
Śastra grahaṇa ନେବା—The taking up of arms.

**ଶସ୍ତ୍ର ଗ୍ରାହକ**—ସଂ ବଣ. ପୁଂ—ଯେ ଯୁଦ୍ଧ କରିବାକୁ ଶସ୍ତ୍ର ଧରେ—
Śastra grāhaka Taking up arms to fight.
(ଶସ୍ତ୍ରଗ୍ରାହୀ—ଅନ୍ୟରୂପ; ଶସ୍ତ୍ର ଗ୍ରାହିକା, ଶସ୍ତ୍ର ଗ୍ରାହିଣୀ)—ସ୍ତ୍ରୀ।

**ଶସ୍ତ୍ର ଚାଳନ(ନା)**—ସଂ ବି. (୬ଷ୍ଠୀତତ୍)—୧। ଯୁଦ୍ଧାର୍ଥ ହତିଆରକୁ ବ୍ୟବ-
Śastra chāḷana (nā) ହାର କରିବା—1. The using of arms. ୨। ଶସ୍ତ୍ର ପ୍ରୟୋଗ (ଦେଖ)—2. Śastra prayoga (See).

**ଶସ୍ତ୍ର ଚୂର୍ଣ୍ଣ**—ସଂ ବି.—ମଣ୍ଡୁର; ଲୁହାଗୁହ
Śastra chūrṇṇa Scorial.

**ଶସ୍ତ୍ରଜୀବୀ (ବୃତ୍ତି)**—ସଂ. ବଣ—୧। ଯେଉଁ ବ୍ୟକ୍ତି ଶସ୍ତ୍ର ବ୍ୟବହାର କରି
Śastrajībi (bṛutti) ଜୀବିକା ନିର୍ବାହ କରେ—1. Living by arms. ୨। ଶସ୍ତ୍ର ବ୍ୟବସାୟୀ—2. Trading in arms. ବି.—ଯୁଦ୍ଧ ବ୍ୟବସାୟୀ—A soldier by profession.

**ଶସ୍ତ୍ରତ୍ୟାଗ**—ସଂ ବି. (୬ଷ୍ଠୀତତ୍)—ଯୁଦ୍ଧରୁ ବିରତ ହେବାପାଇଁ ଶସ୍ତ୍ରକୁ
Śastra tyāga ପରିତ୍ୟାଗ କରିବା—Relinquishment of arms.

**ଶସ୍ତ୍ର ତ୍ୟାଗୀ**—ସଂ ବଣ. ପୁଂ—ଶସ୍ତ୍ର ତ୍ୟାଗ କରିଥିବା (ବ୍ୟକ୍ତି)
Śastra tyāgi Laying down one's weapon.
(ଶସ୍ତ୍ର ତ୍ୟାଗିନୀ—ସ୍ତ୍ରୀ)

**ଶସ୍ତ୍ରଧର**—ସଂ ବଣ. ପୁଂ—ଶସ୍ତ୍ର ଧାରକ (ଦେଖ)—Śastradhāraka
Śastradhara (See)
ସଂ ବି. ସୈନିକ; ସିପାହି (ହି' ଶ)—Soldier.

**ଶସ୍ତ୍ର ଧାରକ**—ସଂ ବଣ. ପୁଂ—ଶସ୍ତ୍ରଦ୍ୱାରା ସଜ୍ଜିତ; ଯେ ହାତରେ ହତିଆର
Śastra dhāraka ଧରିଥାଏ—Bearing arms; armed with weapons.
(ଶସ୍ତ୍ରଧାରୀ—ଅନ୍ୟରୂପ)
(ଶସ୍ତ୍ର ଧାରକା, ଶସ୍ତ୍ର ଧାରିଣୀ)—ସ୍ତ୍ରୀ।

**ଶସ୍ତ୍ର ଧାରଣ**—ସଂ ବି. (୬ଷ୍ଠୀତତ୍) ଯୁଦ୍ଧାର୍ଥ ଶସ୍ତ୍ରକୁ ଧରିବା—Bearing
Śastra dhrāṇa of arms for fighting.

**ଶସ୍ତ୍ର ପାଣି(ହସ୍ତ)**—ସଂ ବଣ.—(ଶସ୍ତ୍ର ଅଛି ପାଣିରେ ଯାହାର; ବହୁବ୍ରୀହି)-
Śastra pāṇi(hasta) ଶସ୍ତ୍ରଧାରୀ; ଯେ ହାତରେ ଶସ୍ତ୍ର ଧରିଥାଏ—Holding weapons; armed with weapons.

ଶସ୍ତ୍ର ପ୍ରୟୋଗ—ସଂ ବି.(୬ଷ୍ଠୀତତ୍)— ୧। ଯୁଦ୍ଧାର୍ଥ ବିପକ୍ଷ ବିରୁଦ୍ଧରେ ଅସ୍ତ୍ରର
Śastra prayoga ବ୍ୟବହାର—1. Wielding or using weapons against an enemy. ୨ । ଚିକିତ୍ସାର୍ଥ ରୋଗୀ ଦେହରେ ଶସ୍ତ୍ର ଚଳାଇବା—2. Performing an operation on a patient.

ଶସ୍ତ୍ର ବିଦ୍ଧ—ସଂ. ବିଣ (୩ୟା ତତ୍)—ଶସ୍ତ୍ରଦ୍ୱାରା ଆହତ—
Śastra biddha Pierced with weapons.

ଶସ୍ତ୍ର ବିଜ୍ଞାନ (ବିଦ୍ୟା)—ସଂ. ବି—୧ । ଯୁଦ୍ଧାର୍ଥ ଶସ୍ତ୍ରଚାଳନ ବିଦ୍ୟା—
Śastra bijñāna (bidyā) 1. The art of using weapons in war.
[ଶସ୍ତ୍ରତନ୍ତ୍ର, ଶସ୍ତ୍ର ଶାସ୍ତ୍ର—ଅନ୍ୟରୂପ]
୨ । ଚିକିତ୍ସାର୍ଥ ଶସ୍ତ୍ର ପ୍ରୟୋଗ ବିଦ୍ୟା—2. Surgery. ୩ । ଯଜୁର୍ବେଦର ଏକ ଉପବେଦ; ଧନୁର୍ବେଦ—
3. A supplementary part of the Jajurbeda dealing with the use of bow.

ଶସ୍ତ୍ର ବିନ୍ଦୁ—ସଂ. ବି—(ବୈଦ୍ୟକ) କ୍ଷୁଦ୍ର ଗୁଳ୍ମ ବିଶେଷ—A species
Śastra bindu of medicinal plant; Amyris Punctata.

ଶସ୍ତ୍ର ଭୃତ—ସଂ. ବିଣ ପୁଂ ଓ ସ୍ତ୍ରୀ – (ଶସ୍ତ୍ର+ଭୃ ଧାତୁ+କର୍ତ୍ତୃ. କ୍ୱିପ୍)—
Śastra bhṛut ଶସ୍ତ୍ରଧାରୀ—Bearing arms; armed. ବି.—ଶସ୍ତ୍ରଧାରୀ ଯୋଦ୍ଧା—Armed warrior.

ଶସ୍ତ୍ର ମାର୍ଜ – ସଂ. ବି. ପୁଂ—(ଶସ୍ତ୍ର+ମୃଜ ଧାତୁ+କର୍ତ୍ତୃ. ଅ)—ଶସ୍ତ୍ରକୁ
Śastra mārja ମାଜି ସଫା କରିବା ବ୍ୟକ୍ତି—A person who cleanses weapons.
[ଶସ୍ତ୍ରମାର୍ଜକ—ଅନ୍ୟରୂପ]

ଶସ୍ତ୍ରମାର୍ଜ୍ଜନ—ସଂ. ବି—(୬ଷ୍ଠୀ ତତ୍)—ଶସ୍ତ୍ରକୁ ମାଜି ସଫା କରିବା—
Śastra mārjjana The cleansing of arms; the furbishing of weapons.

ଶସ୍ତ୍ର ସାଧନ—ସଂ. ବି—୧ । ଶସ୍ତ୍ରାଭ୍ୟାସ—1. Military training.
Śastra sādhana ୨ । ଶସ୍ତ୍ର ବିଦ୍ୟାରେ ସିଦ୍ଧିଲାଭ—2. Attaining success in the weilding of weapons.

ଶସ୍ତ୍ର ହତ—ସଂ. ବିଣ—(୩ୟା ତତ୍)—ଶସ୍ତ୍ରାଘାତଦ୍ୱାରା ମୃତ—
Śastra hata Killed by weapons.

ଶସ୍ତ୍ରହତ ଚତୁର୍ଦ୍ଦଶୀ—ସଂ. ବି—ଗୌଣ ଆଶ୍ୱିନ କୃଷ୍ଣା ଚତୁର୍ଦ୍ଦଶୀ ଓ
Śastrahata chaturddaśī ଗୌଣ କାର୍ତ୍ତିକ କୃଷ୍ଣା ଚତୁର୍ଦ୍ଦଶୀ. The 14th days of the dark lunar fortnights of the months of Āświna and Kārttika. [ଦ୍ର—ଏ ଚତୁର୍ଦ୍ଦଶୀରେ ଯୁଦ୍ଧରେ ଶସ୍ତ୍ରହତ ବ୍ୟକ୍ତିମାନଙ୍କର ଶ୍ରାଦ୍ଧ ପ୍ରଶସ୍ତ । ଶବ୍ଦକୋଷ ।]

ଶସ୍ତ୍ରାଗାର—ସଂ. ବି—(୬ଷ୍ଠୀ ତତ୍)—ଶସ୍ତ୍ରଶାଳା—
Śastrāgāra Armoury.
[ଶସ୍ତ୍ରାଳୟ—ଅନ୍ୟରୂପ]

ଶସ୍ତ୍ରାଘାତ—ସଂ. ବି—(୬ଷ୍ଠୀ ତତ୍, ଶସ୍ତ୍ର+ଆଘାତ)—ଶସ୍ତ୍ରଦ୍ୱାରା ପ୍ରହାର
Śastrāghāta —A blow with a weapon.

ଶସ୍ତ୍ରାଙ୍ଗା—ସଂ. ବି—ଅମ୍ଳଲୋଣୀ ଶାକ (ହି. ଶ), ଅମ୍ଳିଲତ ଶାଗ—
Śastrāṅgā Wood sorrel (pot herb).

ଶସ୍ତ୍ରାଜୀବ—ସଂ. ବି. ପୁଂ—ବହୁବ୍ରୀହି (ଶସ୍ତ୍ର ଅଟେ ଆଜୀବ=ଜୀବିକା
Śastrājība ଯାହାର)—ଶସ୍ତ୍ରଜୀବୀ (ଦେଖ)—Śastrajībī (See)
[ଶସ୍ତ୍ରାଜୀବା, ଶସ୍ତ୍ରୋପଜୀବନୀ—ସ୍ତ୍ରୀ] [ଶସ୍ତ୍ରୋପଜୀବୀ—ଅନ୍ୟରୂପ]

ଶସ୍ତ୍ରାଭ୍ୟାସ—ସଂ. ବି—୧ । ଶସ୍ତ୍ର ପରିଚାଳନ ଶିକ୍ଷା କରିବା—
Śastrābhyāsa 1 Training or practice in the use of weapons. ୨ । ଯୁଦ୍ଧବିଦ୍ୟା ଶିକ୍ଷା—2. Military training.

ଶସ୍ତ୍ରାଭ୍ୟାସୀ – ସଂ. ବିଣ. ପୁଂ—ଶସ୍ତ୍ର ପରିଚାଳନ ଶିକ୍ଷା କରୁଥିବା ବ୍ୟକ୍ତି-
Śastrābhyāsī (person) Under military training.
[ଶସ୍ତ୍ରାଭ୍ୟାସିନୀ—ସ୍ତ୍ରୀ]

ଶସ୍ତ୍ରାୟସ—ସଂ. ବି—(ମ. ପ. ଲୋ;)—ଯେଉଁ ଉତ୍କୃଷ୍ଟ ଲୁହା ଦ୍ୱାରା ଶସ୍ତ୍ର
Śastrāyasa ନିର୍ମିତ ହୁଏ—Steel with which weapons are made.

ଶସ୍ତ୍ରାସ୍ତ୍ର—ସଂ. ବି—(ଦ୍ୱନ୍ଦ୍ୱ)—ଶତ୍ରୁ ଦେହରେ ଲଗାଇବାର ଓ ଦୂରରୁ
Śastrāstra ଫୋପାଡ଼ିବାର ହତିଆରମାନ—Weapons and missiles.

ଶସ୍ତ୍ରାହତ—ସଂ. ବିଣ. ପୁଂ—(୩ୟା ତତ୍, ଶସ୍ତ୍ର+ଆହତ)—ଶସ୍ତ୍ରଦ୍ୱାରା
Śastrāhata ଆଘାତପ୍ରାପ୍ତ—Wounded or struck with weapons; smitten with a weapon.
[ଶସ୍ତ୍ରାହତା—ସ୍ତ୍ରୀ]

ଶସ୍ତ୍ରୀ—ସଂ. ବିଣ. ପୁଂ—(ଶସ୍ତ୍ର+ଇନ୍; ୧ମା. ୧ବ)—ଶସ୍ତ୍ରଧାରୀ—
Śastrī Armed with weapons. ସଂ. ବି—(ଶସ୍ତ୍ର+ କ୍ଷୁଦ୍ରାର୍ଥେ. ଈ)—ଛୁରୀ—Knife.
(ଶସ୍ତ୍ରିଣୀ ବିଣ. ସ୍ତ୍ରୀ)

ଶସ୍ତ୍ରୋତ୍ଥାପନ—ସଂ. ବି—ଶତ୍ରୁ ଅଙ୍ଗକୁ ଆକ୍ରମଣ କରିବାକୁ ହତିଆର
Śastrotthāpana ଉଠେଇବା—The lifting of a weapon to strike an enemy.
[ଶସ୍ତ୍ରୋତ୍ତୋଳନ—ଅନ୍ୟରୂପ]

ଶଷ୍ପ (ଇତ୍ୟାଦି)—ସଂ. ବି—ଶଷ୍ପ ଇତ୍ୟାଦି (ଦେଖ)
Śaspa (etc) Śashpa etc (See)

ଶସ୍ୟ—ସଂ. ବି (ଶସ୍ ଧାତୁ=ହିଂସା କରିବା, ବଧ କରିବା+କର୍ମ. ଯ;
Śasya ପ୍ରାଣୀମାନେ ଯାହାକୁ ହିଂସା କରି ଅର୍ଥାତ୍ ଯାହାକୁ ଖାଇ ବଞ୍ଚନ୍ତି)—୧ । କୃଷିକର୍ମ ଦ୍ୱାରା ଉତ୍ପନ୍ନ ଫସଲ—1. Agriculturul produce. ୨ । ବୃକ୍ଷ ଓ ଲତାର ଫଳ—2. Fruits of trees, plants and creepers. ୩ । ଫଳର ସାରାଂଶ—3. The kernel or marrow inside fruits. ୪ । କୃଷିଦ୍ୱାରା ଉତ୍ପନ୍ନ ଧାନ୍ୟାଦି ବାର୍ଷିକ ଫସଲ—4. Grains; annual crops raised by agriculture; corn. ୫ । ସଦ୍‌ଗୁଣ—5. Good quality. ୬ । ପ୍ରତିଭାର ହାନି (ହି. ଶ)—6. Loss of talents. ୭ । କାଳତୃଣ (ଶବ୍ଦକୋଷ)—7. Young and tender grass. ବିଣ (ଶନ୍ସ୍ ଧାତୁ+କର୍ମ. ଯ)—ପ୍ରଶସ୍ୟ; ପ୍ରଶଂସନୀୟ; ପ୍ରଶଂସାର୍ହ—Praiseworthy; commendable.

ଶସ୍ୟକ—ସଂ. ବି—ଏକପ୍ରକାର ରତ୍ନ ( ହ. ଶ )—
Sasyaka A kind of gem.

ଶସ୍ୟ କୁଳ—ସଂ. ବି—ଧାନ୍ୟାଦି ଶସ୍ୟସମୂହ—Various crops
Śasya kuḷa and grains; cereals.

ଶସ୍ୟ କ୍ଷେତ୍ର—ସଂ. ବି—ଯେଉଁ ବିଲରେ ଶସ୍ୟ ହୋଇ ଫସଲ ଅବାଦ
Śasya kshetra କରାଯାଏ—Cornfield.

ଶସ୍ୟଘ୍ନୀ—ସଂ. ବି ( ଶସ୍ୟ+ହନ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଈ )—ଘେଉର
Śasyaghnī ଘୃଷ୍ଣୀ ( ହ. ଶ); ଗୁଗୁଚଥା—Spear-grass.

ଶସ୍ୟ ଜନକ—ସଂ ବିଣ ( ଉପପଦ ତତ୍ପୁରୁଷ; ଶସ୍ୟ+ଜନଧାତୁ+କର୍ତ୍ତୃ.
Śasyajanaka ଅକ )—ଶସ୍ୟୋତ୍ପାଦକ; ଯାହା (ଯେଉଁ ଭୂମି)
ଫସଲ ଉତ୍ପାଦନ କରେ—Producing crops; yielding crops.

ଶସ୍ୟ ଧ୍ୱଂସ—ସଂ. ବି ( ୬ଷ୍ଠୀ ତତ୍ )—ଧାନ୍ୟାଦି ଫସଲର କ୍ଷୟ—
Śasya dhwaṁsa Destruction of crops.
[ ଶସ୍ୟ ନାଶ—ଅନ୍ୟରୂପ ]

ଶସ୍ୟ ଧ୍ୱଂସକ—ସଂ.ବିଣ ଓ ବି. ପୁଂ ( ଉପପଦ ତତ୍ପୁରୁଷ )—ଧାନ୍ୟାଦି
Śasya dhwaṁsaka ଫସଲର କ୍ଷୟକାରୀ; ଯେ ଫସଲ ନାଶ
[ଶସ୍ୟନାଶକ—ଅନ୍ୟରୂପ] କରେ—Destructive of crops.
(ଶସ୍ୟ ଧ୍ୱଂସିକା, ଶସ୍ୟନାଶିକା—ସ୍ତ୍ରୀ)

ଶସ୍ୟ ଧ୍ୱଂସୀ—ସଂ. ବିଣ. ପୁଂ—ଶସ୍ୟ ଧ୍ୱଂସକ ( ଦେଖ )—Śasya
Śasya dhwaṁsī dhwaṁsaka ( See ) ସଂ. ବି—
(ଶସ୍ୟଧ୍ୱଂସିନୀ—ବିଣ. ସ୍ତ୍ରୀ) ତୁତ ବୃକ୍ଷ; ତୁତ୍ ଗଛ—Mulberry tree.

ଶସ୍ୟ ନିମିତ୍ତକ—ସଂ. ବି ( ଶସ୍ୟ+ନିମିତ୍ତ=କାରଣ+କ )—ଶସ୍ୟରୁ
Śasya nimittaka ଜାତ—Produced from crops.

ଶସ୍ୟ ବୃଦ୍ଧି—ସଂ. ବି (୬ଷ୍ଠୀ ତତ୍)—ଫସଲର ବୃଦ୍ଧି—The increase
Śasya bruddhi of the yield of corn.

ଶସ୍ୟ ଭକ୍ଷକ—ସଂ. ବିଣ—ଯେଉଁ ଜୀବ ଶସ୍ୟ ଖାଇ ପ୍ରାଣ ଧାରଣ କରେ—
Śasya bhakshaka Feeding on corn; granivorous.
[ଶସ୍ୟଭୁକ୍, ଶସ୍ୟଭୋଜୀ, ଶସ୍ୟାଦ—ଅନ୍ୟରୂପ ]

ଶସ୍ୟ ରକ୍ଷଣ—ସଂ. ବି ( ୬ଷ୍ଠୀ ତତ୍ )—ଧାନ୍ୟାଦି ଫସଲକୁ ( ମରୁଡ଼ି,
Śasya rakshaṇa ରୋଗ ଓ ବନ୍ୟଜନ୍ତୁଙ୍କ କର୍ତ୍ତୃକ ) ଧ୍ୱଂସରୁ
ରକ୍ଷା କରିବା—Guarding of corn from destruction ( by drought, disease and wild animals ).

ଶସ୍ୟଲ—ସଂ. ବିଣ ପୁଂ ( ଶସ୍ୟ+ଲା ଧାତୁ=ଗ୍ରହଣ କରିବା+ଅ )—
Śasyaḷa ଶସ୍ୟପୂର୍ଣ୍ଣ; ପ୍ରଚୁର ଶସ୍ୟପୂର୍ଣ୍ଣ; ଶସ୍ୟଶାଳୀ—Full of
[ ଶସ୍ୟଲା—ସ୍ତ୍ରୀ] growing corn.

ଶସ୍ୟ ଶାଳା—ସଂ. ବି—୧ । ଶସ୍ୟାଗାର; ଅମାର—1. Granary.
Śasya śāḷā ୨ । ଖଳା—2. Threshing floor.

ଶସ୍ୟ ଶାଳୀ—ସଂ. ବିଣ (ଶସ୍ୟ+ଅସ୍ତି ଅର୍ଥରେ ଶାଳିନ୍, ୧ମା. ୧ବ)—
Śasya śāḷī ( ଧାନ୍ୟାଦି ) ଶସ୍ୟରେ ପରିପୂର୍ଣ୍ଣ—Abounding
[ଶସ୍ୟଶାଳିନୀ—ସ୍ତ୍ରୀ] in crops.

ଶସ୍ୟ ଶ୍ୟାମଳ—ସଂ. ବିଣ ପୁଂ ( ୩ୟା ତତ୍ )—ଶସ୍ୟ ଯୋଗୁଁ ସାଗୁଆବର୍ଣ୍ଣ
Śasya śyāmaḷa ଦେଖା ଯାଉଥିବା ( ଭୂମି )—Green
[ଶସ୍ୟ ଶ୍ୟାମଳା—ସ୍ତ୍ରୀ] with crops. [ ଉ—ସୁଫଳା ସୁଫଳା ଏ ଶସ୍ୟଶ୍ୟାମଳା ଧରି ଅଭିଧାନେ ଦେଇ—ରାଧାନାଥ. ମହାଯାତ୍ରା । ]

ଶସ୍ୟ ସଂଗ୍ରହ—ସଂ. ବି ( ୬ଷ୍ଠୀ ତତ୍)—କ୍ଷେତରେ ପାଚିଥିବା ଧାନ ଫସଲ
Śasya saṁgraha ଆଦିକୁ ଆଣି ଅମଳ କରିବା—Harvesting of crops.

ଶସ୍ୟ ସଂଗ୍ରାହକ—ସଂ. ବିଣ ଓ ବି ପୁଂ—ପାଚିଥିବା ଧାନ ଆଦି ଫସଲକୁ
Śasya saṁgrāhaka ଅମଳ କରିବା ବ୍ୟକ୍ତି—One who harvests or makes collection of crops.
(ଶସ୍ୟ ସଂଗ୍ରାହିକା—ସ୍ତ୍ରୀ)

ଶସ୍ୟ ସଂସ୍ଥାନ—ସଂ. ବି—କ୍ଷେତରୁ ଧାନ ଆଦି ଫସଲକୁ ସଂଗ୍ରହ ବା ଅମଳ
Śasya saṁsthāna କରି ଅମାରରେ ସାଇତିବା—Storing of corn or grain after harvesting.
ଶସ୍ୟ ସଂସ୍ଥାପନ, ଶସ୍ୟ ସଂଚୟ, ଶସ୍ୟ ସଞ୍ଚୟ } ଅନ୍ୟରୂପ

ଶସ୍ୟ ସଂସ୍ଥାପକ—ସଂ. ବିଣ ଓ ବି ପୁଂ (ଉପପଦ ତତ୍)—ବଡ଼ ଚାଷୀ,ଧାନ
Śasya saṁsthāpaka ଆଦି ଯେ ଜମା କରି ରଖେ—Storer of grains.
[ ଶସ୍ୟ ସଂଚୟୀ, ଶସ୍ୟ ସଞ୍ଚୟୀ—ଅନ୍ୟରୂପ ]

ଶସ୍ୟ ସମ୍ବର—ସଂ. ବି (ଶସ୍ୟ+ସମ୍+ବୃ ଧାତୁ+କର୍ତ୍ତୃ. ଅ)—୧ । ଶାଳ
Śasya sambara ବୃକ୍ଷ—1. The Śāḷa tree. ୨ । ଅଶ୍ୱକର୍ଣ୍ଣ; ଲତା ଶାଳ—2. A species of spreading Śāḷa tree.

ଶସ୍ୟ ସମ୍ଭାର—ସଂ. ବି ( ୬ଷ୍ଠୀ ତତ୍ )—ଶସ୍ୟରାଶି; ପ୍ରଚୁର ଶସ୍ୟ—
Śasyā sambhāra A rich crop.

ଶସ୍ୟାଗାର—ସଂ. ବି ( ୬ଷ୍ଠୀ ତତ୍ )—ଅମାର—
Śasyāgāra Granary.

ଶସ୍ୟାଧାର—ସଂ. ବି—ଶସ୍ୟ ସଞ୍ଚୟ କରିବା ପାତ୍ର—
Śasyādhāra A receptacle for storing grain.

ଶସ୍ର—ଗ୍ରା. ବି ( ସଂ. ଶସ୍ତ୍ର )—ଶସ୍ତ୍ର (ଦେଖ)—Śastra (See)
Śasra [ ଉ—ଶାସ୍ତ୍ରାରମ୍ଭ ଶସ୍ରଖାଇ ଏହା ନ ବିସ୍ମର—ଶିବ-
शस्त्र ସ୍ୱରୋଦୟ । ] ଗ୍ରା ବିଣ ଓ ବି—ସହସ୍ର (ଦେଖ)—
शस्तर Sahasre (See) Thousand. [ ଉ—ସୁଦର୍ଶନ ଚକ୍ର ବାଡ଼ ଶସ୍ରେ ଗୁଣ ସୀମା—ବ୍ରହ୍ମକଳ୍ପଜଗୀତା ।]

ଶହ—ଦେ. ବି. ଓ ବିଣ ( ସଂ. ଶତ )—୧ । ଶତ ସଂଖ୍ୟା; ୧୦୦—
Śaha 1. Hundred, 100. ୨ । ଶଅ ( ଦେଖ )—
शउ, श 2. Śā-a ( See ) ୩ । ବହୁ; ଅନେକ—3. Many;
सौ numerous. ଗ୍ରାଦେ (ପୁରୀ) ବିଣ ଓ ବି-ନଡ଼ିଆ ଗଣିବାରେ ବ୍ୟବହୃତ ପରିମାଣ ବିଶେଷ; ଛଅପଣ ୧୨ ଗଣ୍ଡା—
4. A unit used in counting cocoanuts, 288 cocoanuts.

ଶ,ହ—ଦେ· ବି.ଓ ବିଣ ( ଶହ ଓ ହଜାର ଶବ୍ଦଦ୍ୱୟର ସାଙ୍କେତିକ )—
Śa,ha ୧। ଶତ ଶତ ଓ ସହସ୍ର ସହସ୍ର; ଅସଂଖ୍ୟ—1. Hundreds
হাজার হাজার and thousands. ୨ । ଶତଶତ ସହସ୍ର ସହସ୍ର
सौ सौ, हजार हजार ମୁଦ୍ରା—2. Hundreds and thousands of coins.

ଶହକ—ଦେ. ବି ଓ ବିଣ ( ସଂ. ଶତକ )—ଏକଶତ ମାତ୍ର—
Sahaka একশ एकसौ One hundred only.

ଶହକଡ଼ା — ଦେ. ବ — ଶଅକଡ଼ା ( ଦେଖ ) — Śa-akardā ( See )
Śahakardā শতকবা सौकडा

ଶହକ ବହକ — ଦେ. ବ — ସକ୍ ବକ୍ ( ଦେଖ ) —
Śahaka bahaka Sak bak ( See )

ଶହକା( କୁ ) ଶହ — ଦେ. ବ ଓ ବଣ — ଶତ ଶତ; ବହୁଶତ —
Śahakā(ku) śaha Hundreds and hundreds. ଦେ.
শত শত सौका सौ କି. ବଣ — ଶହ ଶହ କରି — By hundreds.

ଶହକିଆ — ଦେ. ବଣ — ୧ । ଏକଶତ ସମ୍ବନ୍ଧୀୟ — 1. Relating to
Śahakiā 100. ୨ । ଯେଉଁ ପ୍ରତ୍ୟେକ ପୁଞ୍ଜ ବା ଗୋଷ୍ଠରେ
একশ একশ ୧୦୦ ଲେଖାଏଁ ବସ୍ତୁ ଥାଏ — 2. Consisting of
एकसौका things grouped into one hundred in each group.

ଶହକେ — ଦେ. କି. ବଣ — ୧ । ଶତ ସଂଖ୍ୟା ମଧ୍ୟରେ — 1. In a
Śahake hundred; amongst or out of hundred.
শতকবা सौमे ୨ । ଅନେକଙ୍କ ମଧ୍ୟରେ — 2. Out of many.

ଶହମ୍ବର (ଇତ୍ୟାଦ) — ଦେ. ବ — ଶଅଁବର ଇତ୍ୟାଦ (ଦେଖ)
Śahambara (etc) Śa-aṅbara. etc (See)

ଶହମ୍ବାଲି — ଦେ ବ — ଶଅଁବାଲ (ଦେଖ)
Śahambāḷi Śa-aṅbāḷi. (See)
(ଶହମ୍ବାଳୁ, ଶହମ୍ବାଳୁଆ — ଅନ୍ୟରୂପ)

ଶହର — ଦେ. ବ (ସଂ. ଶବର) — ଶଅର (ଦେଖ) — Śa-ara. (See)
Śahara ବୈଦେ. ବ — ସହର (ଦେଖ) — Śahara. (See)
শবর सवर সহব शहर

ଶହର(ରା) ପଲ୍ଲି — ଦେ. ବ — ଶଅରପଲ୍ଲ (ଦେଖ)
Śahara(rā) palli Hamlet inhabited by Śabaras.
শবব পল্লী सवर पल्ली

ଶହରା — ଦେ. ବ — ଏକ ପ୍ରକାର ଲଘୁ ଶାରଦ ଧାନ (ଏହାର ଶ୍ୱେତ
Śaharā ଚଳା ଓ ଶୁଭ୍ର ଚାଉଳ) — A sort of coarse winter paddy. ପ୍ରାଦେ. (ସମ୍ବଲପୁର) ବ — ଶବର; ଶବର — Bird-catcher; fowler; Savara.

ଶହରଡ଼ି(ଲି) — ଦେ. ବ (ସଂ. ଶରଣ୍ଡ; ଶରଳ) — ଶରାଟି (ଦେଖ)
Śaharārḍi(li) Śarāṭi. (See)

ଶହରୁଣୀ — ଦେ. ବ. ସ୍ତ୍ରୀ (ସଂ. ଶବରୀ) — ଶବର ପତ୍ନୀ —
Śaharuṇi শবরী सबरी A śabara woman.
(ଶହର — ମୂ°)

ଶହଳ — ଦେ. ବ (ସଂ. ଶଲ୍ୟ) — ଶଅଳ (ଦେଖ)
Śahaḷa Śa-aḷa. (See)
ଦେ. କି. ବଣ ଓ ବଣ — ସହଳ (ଦେଖ) —
Sahaḷa (See)

ଶହଲ — ଦେ. ବ (ସଂ. ଶଲ୍ୟ) — ୧ । ଶଲ (ଦେଖ) — 1. Śala
Śahala (See). ୨ । ଶଲ୍ୟ; କଣ୍ଟକ; ବାଧା — 2. Obstacle;
সস্তা impediment. ବୈଦେ (ଅବବ) ବଣ (ଅ. ସହଲ୍ = सस्ता ସୁପ୍ରାପ୍ୟ; ଶସ୍ତା) — ଶସ୍ତା — Cheap. (ଉ — ଭୂଣୀମହଲ, ବାଟରେ ଶସ୍ତୁଆ ଭାଉ ଶହଲ — ଭଗ ।)

ଶହସ୍ତ୍ର(ସ୍ର) — ଗ୍ରା. ବ (ସଂ. ଶସ୍ତ୍ର) — ୧ । ଶସ୍ତ୍ର (ଦେଖ) — 1. Śastra
Śahastra(sra) (See) ୨ । କାର୍ଯ୍ୟସାଧନର ଉପାୟ —
শস্তব 2. Expedient or means employed for
शस्तर accomplishing an object.

ଶହୁରା — ଦେ. ବ. ପୁ° (ସଂ. ଶବର) — ଶବର (ଦେଖ)
Śahurā শবর सवर Śabara. (See)
(ଶହୁରଣୀ, ଶହୁରୁଣୀ — ସ୍ତ୍ରୀ)

ଶହୁରା ପଲ୍ଲି(ଲ୍ଲି) — ଦେ. ବ — ଶବରପଲ୍ଲି (ଦେଖ)
Śahurā palli(lli) Śabarapalli. (See)
শববপল্লী सबरपल्ली

ଶହେ — ଦେ. ବ ଓ ବଣ (ସଂ. ଶତ) — ଏକ ଶତ — One hundred.
Śahe [ଦ୍ର — ପୁରୀ ଜିଲ୍ଲାରେ ବାରବାରରେ ଶହେ ନଭୁଅର ଅର୍ଥ
একশ ଏକଶହ ନଭୁଆ ନୁହେଁ; ଶହେ ନଭୁଅର ଅର୍ଥ ୨।୦/୧୨
एकसौ ବା ୨୮୮ ଗୋଟା ନଡ଼ିଆ ।]

ଶହେ କଡ଼ା(ରା) — ଦେ. ବଣ — ୧ । ଶତକରା — 1. Per cent.
Śahekardā(rā) ୨ । ଶତ ଶତ — 2. Hundreds of, ୩ ।
শতকবা सैकडा ବହୁ ସଂଖ୍ୟକ — 3. Many; numerous; innumerable.

ଶହେକେ — ଦେ. କି. ବଣ — ଏକଶତ ମଧ୍ୟରେ —
Śaheke Amongst a hundred.
শতকবা सौमें

ଶହେଗଣ୍ଡ — ଗ୍ରା. ବ — ଶଗଡ଼
Śahegarḍa Bullock cart.
[ଦ୍ର — ଏଥିରେ ୧୦୧ ଖଣ୍ଡ କାଠ ଥିବାରୁ ଏପରି ନାମକରଣ ହୋଇ ଥିବା ଗ୍ରାମ୍ୟ ପ୍ରବାଦ ଅଛି । ]

ଶାଁସ — ଦେ. ବ — (ସଂ. ଶସ୍ୟ) — ୧ । ନଡ଼ିଆ ଆଦ ଫଳ ମଧ୍ୟସ୍ଥ
Śāṅsa କୋମଳ ସାରଭାଗ — 1. The kernel inside
শাস गुदा fruits, such as cocoanuts. ବୈଦେ. ବ.
শাসী शाशी ( ଫ° ଶାଶ୍ = କାଚ ଭଳି ଯାହା ସଫା ) — କବାଟ ଓ ଅଲମାରରେ ଲଗିବା କାଚର ଫଳକ — 2. A pane of glass, to put on a door or almirah.

ଶାଅଡ଼ା — ଦେ. ବ — (ସଂ. ଶାଖୋଟ) — ଶାହାଡ଼ା (ଦେଖ)
Śā-arḍā Śāhārḍā (See)

ଶାଅଣ (ଇତ୍ୟାଦ) — ଦେ. ବ — (ଫ. ଶାଣ) — ଶାଣ ଇତ୍ୟାଦ (ଦେଖ)
Śā-āṇa (etc) Śāṇa etc (See)
[ଉ — ସେ ଶରରୁ କେତେ ହୋଇଛ ଶିଳା ସଖା, କେତେକ ହୋଇଅଛୁ ଶାଅଣରେ ଲେଖା । କୃଷ୍ଣସିଂହ ମହାଭାରତ ବନ୍ଧ ।]

ଶାଅଣିବା — ଦେ. କ୍ରି — ଶାଣ ଦେବା (ଦେଖ)
Śāāṇibā Śāṇa debā (See)
শাণদেওয়া सानदेना

ଶାଅସ୍ତ୍ର(ସ୍ତ୍ର) — ଗ୍ରା. ବ — (ସ. ଶାସ୍ତ୍ର) — ଶାସ୍ତ୍ର (ଦେଖ)
Śā-āsra(stra) Śāstra (See)

ଶାଅଁବାଳି—ଦେ. ବ—(ସଂ. ଶୂକ)—ଶମ୍ବାଳି (ଦେଖ)
Śā-aṅbāḷi Śambāḷi (See)
ଶାଅଁବାଳଅ(ୟା); ଶାଅଁବାଳୁଆ } —ଅନ୍ୟରୂପ
ଶାଅମ୍ବାଳ, ଶାଅମ୍ବାଳୁଅ

ଶାଅରିଆ—ପ୍ରାଦେ.—(ଗଡ଼ଜାତ) ବ—ଶାଉଳିଆ (ଦେଖ)
Śā-ariā Śāuḷiā (See)

ଶାଅଳା—ପ୍ରାଦେ. (ଗଡ଼ଜାତ) ବ—ଗୋରୁମାନଙ୍କର ରୋଗ—
Śā-aḷā A fatal disease of the cows.
[ଦ୍ର—ଏହି ରୋଗରେ ଗୋରୁମାନଙ୍କର ବେକ ଫୁଲେ, ଆଗ ଚଢ଼ୁଆ ଫୁଲିଯାଏ; କିଛି ଖାଇ ପାରନ୍ତି ନାହିଁ। ମୁହଁରୁ ନାଳ ଗଡ଼େ। ଦିନେ ବା ଦେଢ଼ ଦିନରେ ଗୋରୁ ମରିଯାଏ। ମନୁଷ୍ୟ ଶରୀରରେ ପ୍ଲେଗ ରୋଗ ଭଳି ଏ ଅତି ମାରାତ୍ମକ।]

ଶାଇ—ଦେ. ବ—ସାହି (ଦେଖ)
Śāi Śāhi (See)

ଶାଇପ[ପ୍ୟ]—ଗ୍ରା. ବ.—[ସଂ. ଶାପ]—ଅଭିଶାପ—
Śāipa (pyā) Curse. [ଉ—ଜାଣି ନ ପାରନ୍ତି ବଅସ ଧାଏ, ଏବେ ମରୁଅଛି ଗୁରୁ ଶାଇପେ। ଛନ୍ଦ।]

ଶାଇଁ—ଦେ. ବ—୧। (ସଂ. ଶମୀ)—ଶମୀବୃକ୍ଷ—1. A tree;
Śāiṅ Prosopis Spicigera; Mimosa Suma;
শাঁই ছিঁকুর, ছোঁকর spung tree. ୨। ବୁଢ଼ା
দড়ি सिरा ମୂଳାର ମଝିରେ ଥିବା ଚେମଡ଼ା ଅଂଶ ବା ତନ୍ତୁ—
2. Tenacious fibre inside an over-grown radish.

ଶାଇଁଆ(ୟା)—ଦେ. ବଣ—ବୁଢ଼ା (ମୂଳା); ଯେଉଁ ମୂଳା ଚେମଡ଼ା ହୋଇ
Śāiṅā(yā) ଯାଇଥାଏ—A radish which has
দড়িদড়ি सिराबाला become fibrous.

ଶାଇଁକଣ୍ଟା—ଦେ. ବ (ସଂ. ଶମୀକଣ୍ଟକ)—ଶମୀକଣ୍ଟା (ଦେଖ)—
Śāiṅkaṇṭā Śamīkaṇṭā (See); A tree; Acacia
শাইকাঁটা Suma.

ଶାଉଶାଙ୍କ—ଗ୍ରା. ବ (ନାମ)—ଗୁପ୍ତ ବଂଶର ପ୍ରସିଦ୍ଧ ରାଜା ଶଶାଙ୍କ (ଦେଖ)
Śāuśāṅka Śaśāṅka (See
শশাঙ্ক शशाङ्क

ଶାଉଁଳା(ଳି)—ଦେ. ବିଣ—୧। (ସଂ. ଶ୍ୟାମଳ)—ଶ୍ୟାମଳବର୍ଣ୍ଣବିଶିଷ୍ଟ—
Śāuṅḷa(li) 1. Dark blue. (ଯଥା—ଶାଉଁଳୀ
(ଶାଉଁଳୀ—ସ୍ତ୍ରୀ) ନାକରେ ସାଉଁଳୀ ସୁନା, ମାଇଭ ଫଟେଇଲା
শ্যামলবর্ণ श्यामलवरण, काला, श्यावल ଛନ୍ଦ।) ୨।
ସାଉଁଳା (ଦେଖ)—2. Sāuṅḷā (See)

ଶାଉଁଳୀ—ଦେ. ବ. ଓ ବିଣ ସ୍ତ୍ରୀ (ସଂ. ଶ୍ୟାମଳା)—କାଳୀ ସ୍ତ୍ରୀ—
Śāuṅḷi A dark complexioned woman.
শ্যামলবর্ণ श्यावली; काली

ଶାଏକ—ଗ୍ରା. ବ (ସଂ. ଶାୟକ)—ଶାୟକ (ଦେଖ)
Śāeka Śāyaka (See)

ଶାକ୍ରା ଚିଙ୍ଗୁଡ଼ି—ପ୍ରାଦେ (ବାଲେଶ୍ୱର) ବ—ଏକପ୍ରକାର ସାମୁଦ୍ରିକ
Śāk-rā chiṅguṛi ଚିଙ୍ଗୁଡ଼ିମାଛ—A kind of sea-shrimp.

ଶାକ—ସଂ. ବ (ଶକ୍ ଧାତୁ=ସମର୍ଥହେବା+କରଣ ଅ; ଏହା ସାହାଯ୍ୟରେ
Śāka ମନୁଷ୍ୟ ଅନ୍ନ ଭୋଜନ କରିବାକୁ ସମର୍ଥ ହୁଏ)—
୧। ଶାଗ; ଅନ୍ନ ସଙ୍ଗେ ବ୍ୟଞ୍ଜନରୂପେ ବ୍ୟବହୃତ ବୃକ୍ଷାଦିର ଫଳ, ଫୁଲ, ବୃନ୍ତ, ମୂଳ, ପତ୍ରାଦି; ଶାକସବଜି—1. Vegetable used as food or curry; greens ୨। ଭଜିମିଶ ଭୋଜନ; ତରକାରୀ—2. Vegetable curry. ୩। ତରକାରୀସ୍ୱରୂପ ବ୍ୟବହୃତ କେତେକ ବୃକ୍ଷର ପତ୍ର ଓ କ୍ଷୁଦ୍ର ଶାଖା; ପତ୍ରଶାକ—3. Potherb. ୪। ଭାରତର ରାଜବଂଶବିଶେଷ—(ବୁଦ୍ଧଦେବ ଏହି ବଂଶରେ ଜନ୍ମିଥିଲେ)—4. Name of a royal family of India. ୫। (ଶକ+ଅ)—ଶକଦ୍ୱୀପ; ଆର୍ଯ୍ୟାବର୍ତ୍ତର ଅନ୍ତର୍ଗତ ଷଷ୍ଠ ଦ୍ୱୀପ—5. One of the six islands of the ancient N. India of the Hindus. ୬। ଶାଳ ବୃକ୍ଷ; ଶାଗୁଆନ ଗଛ—6. The teak wood (tree); Tectona Grandis. ୭। କୌଣସି ପ୍ରସିଦ୍ଧ ରାଜାଙ୍କ ରାଜତ୍ୱକାଳରୁ ଅଥବା ପ୍ରଧାନ ଘଟଣାରୁ ଅବଲମ୍ବନ କରି ଗଣାହେବା ସମ୍ବତ୍—7. An era dating from the reign of a celebrated king or from the date of some important event. ୮। ଶକାବ୍ଦ; ଶାଳୀବାହନାବ୍ଦ—(ଏହା ଖ୍ରୀଷ୍ଟାବ୍ଦର ୭୬ ଅବ୍ଦରୁ ଆରମ୍ଭ ବର୍ଷ)--8. The era beginning from 76 A. D. ୯। ଭୂର୍ଜ୍ଜବୃକ୍ଷ (ହି. ଶ)—8. Birch tree. ୧୦। ଶିରୀଷଗଛ (ଦେଖ) (ହି. ଶ)—10. Accacia Lebbec (tree). ୧୧। ଶକ୍ତି; ବଳ (ହି. ଶ)—11. Strength; power. [ଦ୍ର—ଭାଷାରେ ଶାକ ବା ଶାଗ କେବଳ କେତେକ ବୃକ୍ଷର ପତ୍ର (ଯାହା ଖାଦ୍ୟରୂପେ ବ୍ୟବହୃତ ହୁଏ)କୁ ବୁଝାଏ; କିନ୍ତୁ ସଂସ୍କୃତ ଶାକର ଅର୍ଥ ଅବାର୍ଯ୍ୟ ସକଳପ୍ରକାର ଉଦ୍ଭିଦ ଓ ଉଦ୍ଭିଦର ସକଳ ପ୍ରକାର ଅଂଶ। ଓଡ଼ିଆରେ ଶାକର ଅର୍ଥ ହେଉଛି ଶାକସବଜି ବା ଭଜମିଶ ତରକାରୀର ଉପକରଣ ରୂପେ ବ୍ୟବହୃତ ପତ୍ର, ପୁଷ୍ପ, ଶାଖା ଆଦି। ହିନ୍ଦୀରେ ଶାକର ଅର୍ଥ ସବଜୀ ଭୋଜନ। ଭାବପ୍ରକାଶ ଗ୍ରନ୍ଥରେ ବର୍ଣ୍ଣିତ ଅଛି, ଶାକ ଷଡ଼୍‌ବିଧ—ପତ୍ର, ପୁଷ୍ପ, ଫଳ, ନାଳ, କନ୍ଦ(ମୂଳ) ଓ ସ୍ୱେଦଜ (ଛତୁ)।

ଅମରଟୀକାରେ ଶାକ ଦଶବିଧ—ମୂଳ, ପତ୍ର, କରୀର (ବାଉଁଶ ଆଦିର କଅଁଳ ବା ଗଜା), ଅଗ୍ର (ବେତ ଆଦିର ଅଗ), ଫଳ, କାଣ୍ଡ (ଡେଙ୍ଗା), ଅଧିରୂଢ଼କ [ତାଳ, ନଡ଼ିଆ ଆଦିର ଶୁଙ୍କୁ), ତ୍ୱକ୍ (ଛାଲ), ପୁଷ୍ପ, ଛତ୍ରିକା (ଛତୁ)। ବୈଦ୍ୟଶାସ୍ତ୍ର ଅନୁସାରେ ପ୍ରାୟ ସମସ୍ତ ଶାକ ବିଷ୍ଟମ୍ଭୀ, ଗୁରୁ, ରୁକ୍ଷ, ଅତିଶୟ ମଳଜନକ ଓ ମଳମୂତ୍ରନିଃସାରକ। ଶାକ

ଶରୀର ଓ ଅସ୍ଥି ନାଶକ; ଏହା ନେତ୍ର, ବର୍ଣ୍ଣ, ରକ୍ତ, ଶୁକ୍ର, ପ୍ରଜ୍ଞା, ସ୍ମୃତି ଓ ଗତି ବିନଷ୍ଟ କରେ ଏବଂ ଅକାଳରେ ବାର୍ଦ୍ଧକ୍ୟ ଜନ୍ମାଏ । ଏଥିରେ ରୋଗମାନେ ବାସ କରନ୍ତି । ସୁତରାଂ ସୁବୁଦ୍ଧି ବ୍ୟକ୍ତି ଶାକ ଭୋଜନ ପରିତ୍ୟାଗ କରିବେ । ନିମ୍ନରେ କେତେଗୁଡ଼ିଏ ଶାକର ଓଡ଼ିଆ ନାମ ସେମାନଙ୍କ ସଂସ୍କୃତ ନାମ ସହିତ ପ୍ରଦତ୍ତ ହେଉଅଛି—

| ସଂସ୍କୃତ | ଓଡ଼ିଆ |
|---|---|
| ବାସ୍ତୁକ— | ବଥୁଆ |
| ଗ୍ରୀଷ୍ମସୁନ୍ଦରକ— | ପିତାଶାଗ |
| ନାଳିଷ— | ମଦରଙ୍ଗା |
| ପୋତକୀ— | ପୋଇ |
| ଚାଙ୍ଗେରୀ— | ଚୋପଦନା |
| ତଣ୍ଡୁଲୀ | ଲେଉଟିଆ |
| ପାଲଙ୍କ୍ୟା— | ପାଲଙ୍ଗ |
| ପଟଶାକ— | ନାଳିତାଶାଗ |
| କଳମ୍ବୀ— | କଳମ |
| ଲୋଣୀ— | ଲୁଣୀଲୁଣିଆ |
| ଶୃଙ୍ଗେରୀ— | ଅମ୍ବିଳତି |
| ଚୁକ୍ର; ଚୁକ୍ରିକା— | ଖଟାପାଲଙ୍ଗ |
| ହିଲମୋଚିକା— | ହିଡ଼ିମିଚ୍ଛ |
| ସୁନିସନ୍ନକ— | ସୁନିସୁନିଆ |
| ଚଣକଶାକ— | ବୁଟଶାଗ |

ଏହା ଛଡ଼ା କେତେଗୁଡ଼ିଏ ଗଛର ଓ ଲତାର ପତ୍ର ମଧ୍ୟ ଶାକରୂପେ ବ୍ୟବହୃତ ହୁଏ । ଯଥା—ଶୋଭାଞ୍ଜନ ( ଶଜନା ), ସାରୁ ( କଚୁ ), ପଟୋଳ ( ପୋଟଳ ), ସର୍ଷପ ( ସୋରିଷ), ଯବାନୀ ( ଯୁଆଣୀ), ମୂଳକ ( ମୂଳା ), କାରବେଲ୍ଲ [ କଲରା ] କୁଷ୍ମାଣ୍ଡ [ କଖାରୁ ] । ] ସଂ. ବିଣ. [ ଶକ+ଅ ]—ଶକ ସମ୍ବନ୍ଧୀୟ—Relating to Saka.

**ଶାକ କଳମ୍ବକ**—ସଂ. ବି.—୧ । ପିଆଜ (ହି, ଶ)—1. Onion. ୨। ରସୁଣ (ହି. ଶ)—2. Garlic.
Śāka kaḻambaka

**ଶାକ ଗଛ**—ଦେ. ବି.—ଶାଗୁଆନ ବୃକ୍ଷ—The teak wood tree.
Śāka gachha (ଦ୍ର—ପର୍ବତ ପର ଶାକ ଗଛ ତହିଁ ଅଛି; ଏଣୁ ଶାକ ସାଗୁୟାନ ସଗୁଆନ ଦ୍ୱୀପ ବୋଲି କହନ୍ତି ବୋଲାଉଛି ।—କୃଷ୍ଣସିଂହ ମହାଭାରତ ।)

**ଶାକ ଚୁକ୍ରିକା**—ସ. ବି—୧ । ଅମ୍ଳ ଲୋଣି ଶାଗ; ଅମ୍ବିଳତି ଶାଗ (ଦେଖ)
Śāka chukrikā 1. Āmiḻiti Śāga (See) ୨। ତିନ୍ତୁଳ—(ହି. ଶ)—2. Tamarind.

**ଶାକଟ**—ସ. ବିଣ—(ଶକଟ+ଅ)—ଶକଟ ସମ୍ବନ୍ଧୀୟ—Relating
Śākaṭa to cart; vehicular. ବି—(ଶକଟ+ବହନାର୍ଥେ. ଅ)—୧ । ଯୁଗ୍ୟ; ଯୁଗବାହୀ ପଶୁ—1. Beasts yoked to a cart or plough. ୨। ଶ୍ଳେଷ୍ମାତକ ବୃକ୍ଷ; ବହୁକାର ବା ଗଉରଭଣା—2. Cordia Myxa (tree). ୩ । ଓଉ, ଭବ୍ୟାଳକ—3. Dillenia Speciosa (tree). ୪ । ଗାଡ଼ିର ବୋଝ (ହି. ଶ)—4. Cart-load. ୫ । ଧବ ବୃକ୍ଷ (ହି. ଶ)—5. Anogisus Latifolia (treet).

**ଶାକ(କେ)ଟା**—ପ୍ରାଦେ ( ଗଡ଼ଜାତ ). ବି.—ନାତିଦୀର୍ଘ ବନ୍ୟ
Śāka(ke)ṭā ଗଛ; [ଏଥିର ଫଳ ଚେପ୍ଟା; ଏ ଫଳକୁ ଛେଚ ରସ ବାହାର କରି ଶୁଖାଇ ଚୂରି ପିଠା ଓ କ୍ଷିରି କରି ଲୋକେ ଖାଆନ୍ତି ।]—A kind of wild tree with flat fruits, the soft kernel of which is used as food.

**ଶାକଟାଖ୍ୟ**—ସ. ବି—ଧବ ବା ଧଅ ଗଛ—A timber tree; Cono
Śākaṭākhya carpus Latifolia; Anogisus Latifolia.

**ଶାକଟାୟନ**—ସ. ବି—(ଶକଟ+ଅୟନ)—ଜନୈକ ପ୍ରସିଦ୍ଧ ସଂସ୍କୃତ
Śākaṭāyana ବୈୟାକରଣିକ—Name of a Celebrated Sanskrit grammarian of ancient times. [ଦ୍ର—ଏହାଙ୍କ ରଚିତ ବ୍ୟାକରଣ ଗ୍ରନ୍ଥ ବର୍ତ୍ତମାନ ଦୁଷ୍ପ୍ରାପ୍ୟ । କେବଳ ଖଣ୍ଡିଏ ପୋଥି ଲଣ୍ଡନରେ India house ( ଇଣ୍ଡିଆହାଉସ୍ ) ନାମକ ଭାରତସମ୍ବନ୍ଧୀୟ କାର୍ଯ୍ୟାଳୟର ଓ ଆଉଖଣ୍ଡିଏ ପୋଥି ମାନ୍ଦ୍ରାଜନଗରସ୍ଥ ପଣ୍ଡିତ ସମାଜର ପୁସ୍ତକାଳୟରେ ଅଛି । କେହି କେହି ଏହାଙ୍କୁ ପାଣିନିଙ୍କ ପୂର୍ବକାଳୀନ ଏବଂ ଆଉ କେହି କେହି ତାଙ୍କ ପରବର୍ତ୍ତୀ ବୋଲି କହନ୍ତି । କିନ୍ତୁ ଏହାଙ୍କ ନାମର ଉଲ୍ଲେଖ ପାଣିନି ବ୍ୟାକରଣରେ ଅଛି (ହି. ଶ)]

**ଶାକଟିକ**—ସ. ବିଣ.ପୁଂ—(ଶକଟ+ଇକ)—୧। ଶକଟ ସମ୍ବନ୍ଧୀୟ—1.
Śākaṭika Relating to a cart. ୨। ଶକଟାରୋହୀ—2. Riding on a cart; travelling by carts. ୩ । ଶକଟଚାଳକ—3. Driving a cart. ବି.—ଶଗଡ଼ିଆ; ଗାଡ଼ିଆନ୍—Cartman; cart driver.

**ଶାକଟୀନ**—ସ. ବିଣ—(ଶକଟ+ଈନ)—ଶକଟ ସମ୍ବନ୍ଧୀୟ—Relat-
Śākaṭīna ing to cart. ବି.—୧ । ଖଣ୍ଡିଏ ଗାଡ଼ିରେ ବୋହାଇ ହେବା ପରିମିତ ଦ୍ରବ୍ୟ—1. A cartload of any thing. ୨ । ବିଂଶତି ତୁଲା ପରିମାଣ; ୨୦୦୦ ପଲ; ୨୯୦୦ ଅଉନ୍ସ—2. A unit of measure or weight.

**ଶାକ ତରୁ**—ସଂ. ବି—୧। ଶାଗୁଆନ ଗଛ—1. The teak tree;
Śāka taru Teoetona Grandis. [ଦ୍ର-ଏହା ଗମ୍ଭୀରାକାରୀ ବଡ଼ ତରୁ । ନୂତନ ମଞ୍ଜକାଠ ହଳଦିଆ ଓ ଗଛ ପାକଲ ହେଲେ ଲୋହିତ ରଙ୍ଗ ଧାରଣ କରେ । ] ଭିସର୍ ନାଲି ହୁଏ । ଏଥିର କାଠ ଅନ୍ୟ କାଠ ଅପେକ୍ଷା କୋମଳତର ଓ ବହୁତର କାଳସ୍ଥାୟୀ; ଏଥିଦ୍ୱାରା ଖୁବ୍ ପାଲିଶ୍ କାମ ହୁଏ । ଯାଭା ଓ ବ୍ରହ୍ମ ଦେଶର ଜଙ୍ଗଲମାନଙ୍କରେ ଏହି ଗଛ ଜନ୍ମେ, କିନ୍ତୁ ଆମ ଦେଶରେ

ଶାକବୃକ୍ଷ } ଶାକଦ୍ରୁମ } —ଅନ୍ୟରୂପ ଶେଗୁନ
ଅନ୍ୟ ସଂ ପର୍ଯ୍ୟାୟ— ଶାକ, କକଚ ପତ୍ର, ସ୍ଥିରସାର, ଗୃହଦ୍ରୁମ, ଅଜପତ୍ର

ଶ୍ରେଷ୍ଠକାଷ୍ଠ, ଶଉପତ୍ର, ଗଛରୁ ଅଗ୍ନି ଲଗାଇଲେ ଗଛ ହୁଏ । ପତ୍ର
ଅର୍କ୍କୋପମା, ମହାପତ୍ର, ବଡ଼ ବଡ଼ ଓ ଲୋମଶ ଏବଂ ଧାର କଠା କଠା;
ଅର୍କ୍କୋପମ— ବର୍ଷକୁ ବର୍ଷ ପତ୍ର ଝଡ଼େ । ଶୀତକାଳରେ
**ଶାଗୌନ, ଶାଗବନ, ଶଗୁନ** ଫଳ ହୁଏ । ଏହାର ଫୁଲ ଫେଣ୍ଡା ଫେଣ୍ଡା ।
ଶେଗୁନ ବୈଦ୍ୟଶାସ୍ତ୍ର ଅନୁସାରେ ଏହାର ଛେଲିର
ଫା—ଫିଲଗୋଶ କ୍ୱାଥ ଔଷଧରେ ବ୍ୟବହୃତ ହୁଏ । ଏହା
ଅ—ଅଲ୍ଲନୁଲ୍‌ଫିଲ୍ ମଧୁର କଷାୟ ରସ, ସାରକ, ରୁକ୍ଷ, ବଳ-
ତେ—ଟେକଟେଙ୍କୁ,ଟେକ୍କୁ କର ଏବଂ ଜ୍ୱର, ଦାହ, କଫ, ପିତ୍ତ ଓ
ତା—ଟେକ ଶ୍ରମ ନାଶକ ୨ । ବରୁଣ ବୃକ୍ଷ (ହି. ଶ)
ମ- ସାଗ୍ୱେ, ସାଗବନ୍ 2. Crateava Religiosa tree.

**ଶାକ ଦ୍ୱୀପ**—ସ.ବ—(ଶକ+ଅ=ଶାକ ଶାକ+ଦ୍ୱୀପ)—୧ । ଭାରତର
Śāka dwīpa ଉତ୍ତର ପଶ୍ଚିମସ୍ଥ ପ୍ରାଚୀନ ଦେଶ ବିଶେଷ, [ଦ୍ର—
କେହି କେହି ଏହାକୁ ସିଥିଆ (Scythia) ଓ କେହି
କେହି ଅଧୁନାର ପାରସ୍ୟ (Persia) ବୋଲି ନିରୂପଣ
କରନ୍ତି । ଏହି ଦେଶବାସୀ ଶକ ଜାତୀୟ ସାର (Scythians) ମାନେ ଖ୍ରୀଷ୍ଟ ଜନ୍ମର ପୂର୍ବ ୧ମ ଶତାବ୍ଦୀ ଓ ପରବର୍ତ୍ତି-
ଶତାବ୍ଦୀରେ ଭାରତ ଆକ୍ରମଣ କରି ସେଠାରେ ରାଜ୍ୟ ସ୍ଥାପନ
କରିଥିଲେ । ଇରାନ୍ ଓ ତୁର୍କିସ୍ଥାନ ମଧ୍ୟରେ ଏହା ପ୍ରାଚୀନ
କାଳରେ ଅବସ୍ଥିତ ଥିଲା । ଏ ଦେଶରେ ଅକ୍ସସ୍ ନଦୀ
ପ୍ରବାହିତ (ହି. ଶ) ( ଶକ ଚଳେ ନୋହ୍ ଦେଶ )—1.
Ancient Scythia or Persia. ୨ । ପୁରାଣାନୁ-
ସାରେ ସାତଦ୍ୱୀପରୁ ଏକ—2. Name of one of the
7 mythological islands. [ ଦ୍ର—ଏ ଦ୍ୱୀପରେ
ଗୋଟିଏ ବଡ଼ ଶାଗୁଆନ ଗଛ ଥିଲା ବୋଲି କଥିତ । ଏ ଦ୍ୱୀପର
ଚାରିପାଖେ କ୍ଷୀର-ସମୁଦ୍ର (ହି.ଶ)]

**ଶାକଦ୍ୱୀପୀ**—ସ. ବ.ପୁଂ—(ଶାକଦ୍ୱୀପ+ଇନ୍; ୧ମା. ୧ବ. )—୧ । ମଗ
Śākadwīpī ବ୍ରାହ୍ମଣ—1. A Brāhmaṇa of the ancient country of Maga (Arakan). ୨ । ଶାକ-
ଦ୍ୱୀପବାସୀ-2.Ancient Scythians or Persians.
[ଦ୍ର—ପ୍ରଧାନ ସଂସ୍କୃତ ବୈୟାକରଣିକ ପାଣିନି ଶାକଦ୍ୱୀପୀ
ବ୍ରାହ୍ମଣ ବଂଶୀୟ ଥିଲେ ଓ ଶୁଙ୍ଗଦିନ ନାମକ ମୁନି ଏହି ବଂଶର
ଆଦିପୁରୁଷ ଥିଲେ । ଶାକଦ୍ୱୀପୀ ବ୍ରାହ୍ମଣମାନଙ୍କର ଜମ୍ବୁ
ଦ୍ୱୀପକୁ ଆଗମନ ବିଷୟ ହରିବଂଶରେ ଅଛି ଯେ, କୃଷ୍ଣଙ୍କ
ପୁତ୍ର ଶାମ୍ବ ସୂର୍ଯ୍ୟମନ୍ଦିର ନିର୍ମାଣକରି ଯଜ୍ଞ କରିବାକୁ ଇଚ୍ଛା କଲେ;
ସୂର୍ଯ୍ୟୋପାସନାବିଧିଜ୍ଞ ବ୍ରାହ୍ମଣ ଶାକଦ୍ୱୀପରେ ମିଳିବା କଥା
ଶାମ୍ବ ଜାଣିବାରୁ ସେଠାରୁ କେତେ ବ୍ରାହ୍ମଣଙ୍କୁ ଡକାଇଲେ ।
ଏ ସମୟରେ ଭାରତରେ ଓ ଶାକଦ୍ୱୀପରେ ଆର୍ଯ୍ୟ ସଭ୍ୟତା
ଥିଲା । ପ୍ରାଚୀନ କାଳରେ ପାରସ୍ୟରେ ଯଜ୍ଞକାରୀ ପୁରୋହିତଙ୍କୁ
'ମଗ' ବୋଲି ଯାଉଥିଲା । ଏଥିପାଇଁ ଶାକଦ୍ୱୀପୀ ବ୍ରାହ୍ମଣଙ୍କୁ
ମଗ ବ୍ରାହ୍ମଣ ବୋଲି ଯାଉଥିଲା—ହି. ଶ ।] ସ. ବଣ.—
ଶାକଦ୍ୱୀପବାସୀ—Residing in Śākadwīpa.
(ଶାକଦ୍ୱୀପୀୟ)—ଅନ୍ୟରୂପ ।

**ଶାକ ନାଳ**—ଦେ. ବ.—ହଂସାଦି ବର୍ଗର ବଡ଼ (ଏକ ହାତରୁ ଉଚ୍ଚ)
Śāka nāla ଜଳଚର ବା କୂଳେଚର ପକ୍ଷୀ । ( ଏମାନେ ତୃଣମସ୍ତ
ଶାକନାଳ ଜଳାଭୂମିରେ ଚରନ୍ତି, ଦେଖି ଖଇବ, ମୁଣ୍ଡ ଗୋଲପୀ ]—
**ଲାଲଶିରା** The pink-headed duck; Rhodenessa Caryophyllacea.

**ଶାକ ପତ୍ର**—ସ. ବ.—୧ । ଶାଗ; ତରକାରୀ ରୂପେ ବ୍ୟବହୃତ ବୃକ୍ଷାଦିର
Śāka patra ପତ୍ର—1. Leaves of potherb. ୨ ।
ଶୋଭାଞ୍ଜନ ବୃକ୍ଷ (ହି. ଶ)—2. Moringa tree.

**ଶାକପାର୍ଥିବ**—ସଂ ବ. ପୁ—(ମ. ପ. ଲୋ. ଶାକପ୍ରିୟ ପାର୍ଥିବ; ଶକ+ଅ
Śākapārthiba +ପାର୍ଥିବ)—୧ । ନିଜ ନାମରେ ଅଙ୍କ (ସନ)
ଚଳାଇବାର ପ୍ରିୟ ରାଜା—1. A king fond of starting an era in his name (Apte). ୨ ।
ନିରାମିଷ ଭୋଜନ ପ୍ରିୟ ରାଜା—2. A vegetarian king.

**ଶାକ ବଂଶ**—ସ.ବ —ପ୍ରାଚୀନ ଭାରତର ରାଜବଂଶ ବିଶେଷ (ଏହି ବଂଶରେ
Śāka baṁśa ବୁଦ୍ଧଦେବ ଜନ୍ମିଥିଲେ)—Name of a royal family of ancient India.

**ଶାକ ବର**—ସ. ବ.—ଜୀବଶାକ (ହି. ଶ)
Śāka bara A kind of pot herb.

**ଶାକବରା**—ସ. ବ—ଜୀବନ୍ତୀ ଲତା (ହି. ଶ)
Śākabarā Celtis Orientalis (creeper).

**ଶାକ ବଲ୍ଲୀ**—ସଂ ବ.—ଲତାକରଞ୍ଜ (ଦେଖ)
Śāka ballī Latā Karañja (See)

**ଶାକ ବାଟ(ବାଟିକା)**—ସଂ ବ.—ଶାଗ କିଆରି (ବିଶ୍ୱକୋଷ)
Śāka bāṭa(bāṭikā) A plot of land on which pot herbs are grown.

**ଶାକବାଲେୟ**—ସଂ ବ.—ବ୍ରାହ୍ମଣ ଯଷ୍ଟିକା (ହି.ଶ)—Clerodendron
Śākabāleya Syphonanthes (plant).

**ଶାକବିନ୍ଦକ**—ସଂ ବ—ବେଲ ଗଛ (ହି. ଶ)
Śāka bindaka Bilwa tree.

**ଶାକ ବିଲ୍ୱ**—ସଂ ବ.—ବାର୍ତ୍ତାକୀ; ବାଇଗଣ—Egg plant; Solanum Melongena.
Śāka bilwa

**ଶାକବୀର**—ସଂ. ବ.—୧ । ବଥୁଆ ଶାଗ—1. Chenopoduim
Śākabīra (pot herb). ୨ । ପୁରୁଣୀ ଶାଗ—2. Hogweed.
୩ । ଜୀବଶାକ (ହି. ଶ)—3 A kind of potherb.

**ଶାକଭାଜି**—ଦେ. ବ—ଘିଅ ବା ତେଲାଦି ଦ୍ୱାରା ଭର୍ଜିତ ଶାକ ପତ୍ର—
Śākabhāji Pot herb fried in ghee or oil.
ଶାକଭାଜୀ **ଶାକଭାଜୀ**

**ଶାକଭୁକ୍**—ସଂ ବଣ.—(ଶାକ+ଭୁକ୍ ଧାତୁ+କର୍ତ୍ତୃ.କ୍ୱିପ୍)—ଯେ କେବଳ
Śāka bhuk ଶାଗ ଖାଇ ବଞ୍ଚେ—Vegetarian; granivorous.
(ଶାକଭୋଜୀ, ଶାକଭକ୍ଷ)—ଅନ୍ୟରୂପ ।

**ଶାକ ମତ୍ସ୍ୟ**—ସ ବଂ—(ଶାକ ମିଶ୍ରିତ ମତ୍ସ୍ୟ;ମ ପ ଲୋ)--ନାନାବିଧ ଶାକ-
Śāka matsya ସବଜି ସହିତ ପକ୍ୱ ମତ୍ସ୍ୟ; ମାଛ ମକୁର—
ଶାକମାଛ **ଶାକମଛଲୀ** Curry prepared by cooking vegetables with fish. (ଦ୍ର—ବୈଦ୍ୟଶାସ୍ତ୍ର ମତରେ
ଏହା ସ୍ୱାଦୁ, ଗୁରୁପାକ, ରୁଚିକର,ପୁଷ୍ଟିକର ଓ ଶୁକ୍ରବର୍ଦ୍ଧକ) ।

ଶାକମ୍ଭରୀ—ସଂ ବି—(ଶାକଂ=ଶାଗକୁ+ଭୃ ଧାତୁ=ପୋଷଣ କରିବା+ କର୍ତ୍ତୃ ଅ+ସ୍ତ୍ରୀ ଈ; ଅଲୁକ୍ ସମାସ, ଯେ ଶାକ ଦ୍ୱାରା ଜୀବମାନଙ୍କୁ ଭରଣ କରିଥିଲେ)—୧ । ଶିବା; ଦୁର୍ଗା—
Śākambharī
1. Goddess Durgā.
[ଦ୍ର—ମାର୍କଣ୍ଡେୟ ପୁରାଣାନ୍ତର୍ଗତ ଦେବୀମାହାତ୍ମ୍ୟ ବା ଚଣ୍ଡୀ-ତନ୍ତ୍ରର ୧୧ଶ ଅଧ୍ୟାୟରେ ଦୁର୍ଗା ଦେବତାମାନଙ୍କୁ କହି ଅଛନ୍ତି ଯେ, ଯେତେବେଳେ ପୃଥିବୀରେ ୧୦୦ ବର୍ଷକାଳ ଅନାବୃଷ୍ଟି ହେବ, ସେହି ସମୟରେ ଅଯୋନିଜାରୂପେ (ସତୀରୂପେ) ପୃଥିବୀରେ ଅବତୀର୍ଣ୍ଣା ହୋଇ ମୁଁ ମୋ ନିଜ ଦେହସମ୍ଭୂତ ପ୍ରାଣଧାରକ ଶାକଦ୍ୱାରା ଦୁର୍ଭିକ୍ଷପୀଡ଼ିତ ଲୋକମାନଙ୍କୁ ଭରଣପୋଷଣ କରି ବଞ୍ଚାଇବି, ଏଥିପାଇଁ ମୋ ନାମ ଶାକମ୍ଭରୀ ହେବ ଓ ସେହି କାଳରେ ମୁଁ ଦୁର୍ଗମାଖ୍ୟ ଅସୁରକୁ ବିନାଶ କରିବି ଏବଂ ସେହିହେତୁରୁ ମୋ ନାମ ଦୁର୍ଗା ହେବ ।] ୨ । ସ୍ୱନାମଖ୍ୟାତ ତୀର୍ଥ; ଅଜମିର ଅନ୍ତର୍ଗତ ନଗରୀ ବିଶେଷ—2. Name of a sacred city in Ajmeer. [ଦ୍ର—ଏଠାରେ ଦୁର୍ଗା ଦେବୀ ମାସକୁ ମାସ ଥରେ ମାତ୍ର ଶାକାହାର କରି ସହସ୍ର ବର୍ଷ ଅତିବାହିତ କରିଥିଲେ ଓ ସେଠାକୁ ଆସିଥିବା ମହର୍ଷିମାନଙ୍କୁ ଶାକ ଦ୍ୱାରା ସତ୍କାର କରିଥିବାରୁ ନଗରଟିର ଏପରି ନାମକରଣ ହୋଇଅଛି ।] ୩ । ଶମ୍ଭର ହ୍ରଦଜାତ ଲବଣ—3. Salt produced from the salt-lake of Rājputānā.

ଶାକମ୍ଭରୀୟ—ସଂ. ବି (ଶାକମ୍ଭରୀ=ଦେଶବିଶେଷ+ଈୟ)—ରୌମକ ବା ଶାମ୍ଭରଲବଣ; ଶମ୍ଭରହ୍ରଦଜାତ ଲବଣ—
Śākambharīya
ଅନ୍ୟ ସଂ. ପର୍ଯ୍ୟାୟ—ଗୁଡ଼ାଖ୍ୟ, ରୌମକ ।
ଓ. ଶମ୍ଭରୀ ଲୁଣ
ଶାମ୍ବରୀ ନୁନ
निमक साँभर
ଅ ମିଲ୍‌ଟ୍ରଲ୍ ଅବକାର
Salt produced from the salt-lake of Rājputānā (in Central India). [ଦ୍ର—ରାଜପୁତାନାର ଶମ୍ଭର ହ୍ରଦର ଲୁଣିପାଣିକୁ ସୂର୍ଯ୍ୟକିରଣ ସାହାଯ୍ୟରେ ଶୁଖାଇ ଏ ଲୁଣ ମିଳିଥାଏ । ଏହା କରକଚ ଲବଣପରି ମିଶ୍ରଲବଣ ।] ସଂ. ବିଣ—ଶମ୍ଭର ହ୍ରଦଜାତ—Produced from the Sambar lake of Rajputana.

ଶାକ ଯୋଗ୍ୟ—ସଂ. ବି (ବୈଦ୍ୟକ)—ଧାନ୍ୟାକି; ଧନିଆ—
Śāka jogya Coriander (seed and plant); Coriadrus Sativum.

ଶାକର—ଦେ. ବି (ସଂ. ଶର୍କରା)—୧ । ଶର୍କରା; ଗୁଡ଼, କନ୍ଦ ଅଦି—
Śākara 1. Sugar. (ଉ—ସରଲବଣୀ ଛେନା ଦହି, ସଙ୍ଗତେ ମିଠି ଶାକର ମିଶାଇ । ପ୍ରାଚୀ. ପ୍ରେମଭକ୍ତି. ବ୍ରହ୍ମଗୀତା ।)
सक्कर
शाकवा खटमधुर; खटमिठ
ଭୁ. କନ୍ଦ
ଓ. ଶାକର
शाकर
ଫା. ଶାକର
ଅ. ଶକ୍କର
ଇଂ. ସୁଗର୍
ଲ. ସାକ୍କାରିନ୍
୨ । ଗୁଡ଼ରୁ ବା କନ୍ଦରୁ ପ୍ରସ୍ତୁତ ଚୂନା; ଖଣ୍ଡ—2. Sugar powder; pulverised sugar. ୩ । ଖଟା ଓ ମିଠା ମିଶାଇ ପାକ କରାଯାଇଥିବା ତରକାରୀ ବିଶେଷ; ମଧୁ ରୁଚ—3. A curry seasoned with sugar and acid. ୪ । ଗୁଡ଼ରେ ବା କନ୍ଦରେ ଛାଞ୍ଚର ଛାପି ଥିବା ଏକପ୍ରକାର ମିଷ୍ଟାନ୍ନ—4. A kind of round and flat sweetmeat. [ଦ୍ର—ଏହା ଦୁଇପ୍ରକାର; କନ୍ଦରୁ ଯାହା ଛାଞ୍ଚର ହୁଏ, ତାହା ଧଳା ଦିଶୁଥିବାରୁ ତାହାକୁ ଶ୍ୱେତ ଶାକର କହନ୍ତି ଓ ଗୁଡ଼ରୁ ଛାଞ୍ଚର ଶାକର ନାଲି ଦିଶୁଥିବା ହେତୁ ତାକୁ ନାଲିଶାକର କହନ୍ତି ।]

ଶାକର କନ୍ଦ—ଦେ. ବି—ଶକର କନ୍ଦ (ଦେଖ)
Śākara kanda Śakara kanda. (See)

ଶାକର ପଟା(ଟା)—ଦେ· ବି (ସଂ. ଶିଖର ପଟ୍ଟିକା)—ଦ୍ୱାରବନ୍ଧ
Śākara patā(ttā) ଚଉକାଠ ଉପରେ ବିଆଯାଇଥିବା ପଟା; ଶାଦୁର୍ଲୀ ପଟା—The lintel.
सवदल
शाहदल

ଶାକରା—ଦେ. ବି (ସଂ. ଶର୍କରା)—୧ । ଶାକର (ଦେଖ)—
Śākarā 1. Śākara (See) ୨ । ଏକ ପ୍ରକାର ଖଜା; (ଏହା କନ୍ଦ ବା ଗୁଡ଼ର ଦ୍ରବ ଦ୍ୱାରା ପ୍ରସ୍ତୁତ । ଦ୍ରବ ଅବସ୍ଥାରେ ଏହାକୁ ଛାଞ୍ଚରେ ଢାଳିବା ପରେ ଶୁଖାଇ ଟାଣ କରାଯାଏ]—2. A cake made by pouring liquid sugar into moulds and then drying it up in air.

ଶାକରାଜ(ଟ୍)-ସଂ. ବି (ଶାକ+ରାଜନ୍, ଶାକ+ରାଜ ଧାତୁ+କର୍ତ୍ତୃ.କ୍ୱିପ୍;
Śākarāja(t) ଶାକମାନଙ୍କ ମଧ୍ୟରେ ପ୍ରଧାନ)—(ବୈଦ୍ୟକ) ବାସ୍ତୁକ ବା ବଥୁଆ ଶାଗ—A kind of pot herb; the goose foot; Chenopodium (white and red varieties) [ଦ୍ର-ଶାଗମାନଙ୍କ ମଧ୍ୟରେ ଏହା ଉତ୍କୃଷ୍ଟ ଥିବାରୁ ଏହି ନାମ—ହି. ଶ]
ଅନ୍ୟ ସ.—ବାସ୍ତୁକ, ବାସ୍ତୁକ, ଖାର ପତ୍ର, ଯବଶାକ (ଧଳା), କ୍ଷେତ୍ରବାସ୍ତୁକ, ଗୌଡ଼ବାସ୍ତୁକ (ନାଲି) ।
ଓ. ବଥୁଆ
ଫା. ମୁର୍ଗସେଲେସା, ସର୍ମକ
ଅ. ସ୍ରେକ୍ ଉଲ୍ଲ୍
ବେଥୋ
बथुआ चिल्ली [ଶାକ ଶ୍ରେଷ୍ଠ—ଅନ୍ୟରୂପ]

ଶାକରୀ—ସଂ. ବି—(ଶକାର=ମୂର୍ଖ ଓ ଦୁଷ୍ଟ ଜାତ ବ୍ୟକ୍ତି+ଅ+ଈ;
Śākarī ନପାତିତ)—ପ୍ରାକୃତ ଭାଷା; ଇତରଜନବ୍ୟବହୃତ ଭାଷା-The vulgar language; the language used by the common people; a spoken dialect.

ଶାକଳ—ସଂ. ବି—୧ । (ଶାକ+ଲା ଧାତୁ+ଅଧିକରଣ· ଅ)—
Śākala ପ୍ରାଚୀନ ମଦ୍ର ଦେଶର ନଗର ବିଶେଷ—1. Name of a town in the Madra country of ancient India.
୨ । (ସକଳ+ଅ)=ଖଣ୍ଡ—Piece. ୩ । ସର୍ପବିଶେଷ [ହି· ଶ]—3. A kind of snake. ୪ । ଋଗ୍‌ବେଦର ଏକ ଶାଖା ବା ସଂହିତା—[ହି. ଶ· ]—

4. Name of a branch of the Rugbeda. ୫ । କାଠର ତଆର ଡାବଜ (ବ୍ରି. ଶ)—5. A locket made of wood. ୬ । ହୋମର ସାମଗ୍ରୀ (ଯଥା—ସବ, ତିଳ, ମଧୁ, ଘୃତ) ବ୍ରି. ଶ—6. Materials for performing fire sacrifice. ସଂ ବଣ—୧ । ଶକଳ ନାମକ ଦ୍ରବ୍ୟରେ ରଞ୍ଜିତ ( ବ୍ରି. ଶ )—1. Dyed with Śakaḻa. ୨। ଖଣ୍ଡ ସମ୍ବନ୍ଧୀୟ (ବ୍ରି. ଶ)—2. Relating to a piece.

ଶାକ ଶାକନ (ଶାକଟ)—ସଂ. ବ—(ଶାକ+ଶାକନ, ଶାକଟ=କ୍ଷେତ୍ର) Śāka śākina(śākaṭa) ଶାଗ ବଗିଚା—A field or a plot of land growing pot-herbs.

ଶାକ ଶାଳ—ସଂ. ବ—ମହାନିମ୍ବ; ମାହାଳ ଗଛ (ବ୍ରି. ଶ)—Śākaśāḻa Persian Lilac tree.

ଶାକ ଶ୍ରେଷ୍ଠ—ସଂ. ବ—ବଥୁଆ—Śaka śreshṭha Chenopodium,

ଶାକ ଶ୍ରେଷ୍ଠା—ସଂ. ବ—୧ । ଜାବନ୍ତୀ ଲତା—1. Celtis Orientalis. Śāka śreshṭhā ୨ । ବାଇଗଣ—2. Eggplant. ୩ । କୁଷ୍ମାଣ୍ଡ ଲତା ( ଶବ୍ଦକୋଷ )—3. White gourd. ୪ । ତରଭୁଜ ଲତା (ଶବ୍ଦକୋଷ)—4. Water melon. ୫ । କୋଉଡ଼କଖାରୁ—5. Red gourd.

ଶାକ ସବଜି—ଦେ. ବ—( ସବ୍‌ଜୀ )—ତରକାରୀ ପାଇଁ ଅଣାଯାଇ Śāka sabaji ଶାକାଦି—Vegetables used as शाकशबजी, शाकपाता शाकसबजी food; greens; pot herb.

ଶାକା—ସଂ. ବ—ହରଡ଼ା (ଶବ୍ଦକୋଷ)—Śākā Myrobalan.

ଶାକାଙ୍ଗ—ସଂ. ବ—(ଶାକ ଭକ୍ଷଣର ଅଙ୍ଗ=ଉପଯୋଗୀ)—ଗୋଲ-Śākāṅga ମରିଚ—Black pepper.

ଶାକାନ୍ନ—ସଂ. ବ—(ଶାକ ମିଶ୍ରିତ ଅନ୍ନ, ମ. ପ. ଲୋ)—୧ । ଶାଗଭାତ; Śākānna ଅନ୍ନ ସଙ୍ଗେ ଖିଆ ଯିବା ଶାକ ବା ଭୂଇ ବ୍ରି ଅହାର୍ଯ୍ୟ—[ସୂପାନ୍ନ, ଫଳାନ୍ନ, ମିଷ୍ଟାନ୍ନ—ବିପରୀତ] 1. Vegetable food; vegetable curry served with rice (as opposed to meat food or sweetmeats.) ୨ । ନିରାମିଷ ଖାଦ୍ୟ—2. Non-animal food; meal consisting of vegetables only. ୩ । ଅନାଡ଼ମ୍ବର ଓ ସହଜଲଭ୍ୟ ସାଧାରଣ ଖାଦ୍ୟ—3. Ordinary simple fare.

ଶାକାନ୍ନଭୁକ୍—ସଂ. ବଣ ଓ ବି—ଯେ କେବଳ ଶାକାନ୍ନ ଖାଏ; ନିରାମିଷାଶୀ. Śākānna bhuk A vegetarian. [ଶାକାନ୍ନଭୋଜୀ—ଅନ୍ୟରୂପ]

ଶାକାମ୍ଳ—ସଂ. ବ—ତେନ୍ତୁଳି—Śākāmḻa Tamarind.

ଶାକାରିକୀ—ସଂ. ବ—(ଶକାର=ନାଟକୀୟ ଭାଷାରେ ସ୍ୱଜାଙ୍କ ଶ୍ୟାଳକ; Śākāriki ଶକାର+ଇକ+ଈ; ସ୍ୱଜଶ୍ୟାଳକଙ୍କ ବ୍ୟବହୃତ [ଶାକାରୀ—ଅନ୍ୟରୂପ] ଅପଭ୍ରଂଶ)—୧ । ଅପଭାଷା; ଅଶ୍ଳୀଳଭାଷା-1. Obscene language; slang. ୨ । ପ୍ରାକୃତ ଭାଷା ବିଶେଷ—(ବ୍ରି. ଶ)—2. Name of a dialect.

ଶାକାଷ୍ଟକା(ମୀ)—ସଂ. ବ—ଶ୍ରାଦ୍ଧୀୟ ଦିନ ବିଶେଷ; ଟୀକା ଗୃହ୍ୟମାନ Śākāshṭakā(mī) ଫାଲ୍ଗୁନ ମାସର କୃଷ୍ଣାଷ୍ଟମୀ—The eighth day of the dark fortnight of Falgoon (when vegetable food is offered to the ancestors) [ବି—ଏ ଦିନ ଶ୍ରାଦ୍ଧରେ ପିତୃଲୋକଙ୍କୁ ଶାକ ଅର୍ପଣ କରି ଶ୍ରାଦ୍ଧ କରାଯାଏ ।]

ଶାକାହାର—ସଂ. ବ—(୬ଷ୍ଠୀ ତତ୍)—ଶାକ ଅଧିକ ଭୋଜନ—Śākāhāra Vegetarian diet. [ମାଂସାହାର—ବିପରୀତ]

ଶାକାହାରୀ—ସଂ. ବଣ. ଓ ବି. ପୁଂ.—ଯେ କେବଳ ଫଳ ମୂଳ ଶାକାଦି ଭକ୍ଷଣ Śākāhārī କରି ଜୀବନ ଧାରଣ କରନ୍ତି—Vegetarian; [ଶାକାହାରିଣୀ—ସ୍ତ୍ରୀ] living on a vegetarian diet.

ଶାକିନ—ସଂ. ବ. କ୍ଳୀ—(ଶାକ+ଇନ)—ଶାକ କ୍ଷେତ—Śākina A field for growing pot-herbs and kitchen-vegetables.

ଶାକିନୀ—ସଂ. ବ. ସ୍ତ୍ରୀ—(ଶାକ+ଇନ୍+ଈ)—୧ । ଦୁର୍ଗାଙ୍କ ଅନୁଚରୀ-Śākinī ବିଶେଷ—1. A class of female attendants of Durgā. ୨ । ସ୍ତ୍ରୀ ଭୂତ; ଡାହାଣୀ—2. A female ghost. ୩ । ଶାକଯୁକ୍ତ ଭୂମି; ଶାକକ୍ଷେତ; ଶାଗ ବଗିଚା—3. A field growing pot herbs.

ଶାକୀ—ସଂ. ବ. ପୁଂ—(ଶାକ+ଇନ୍)—୧ । ନାଲିସ କରିବା ବ୍ୟକ୍ତି Śākī (ବ୍ରି. ଶ)—1. Complainant. ୨ । ଚୁଗୁଲିଆ [ବ୍ରି. ଶ]—2. Backbiter. ୩ । (ସ୍ତ୍ରୀ)—ଶାକକ୍ଷେତ (ଶବ୍ଦକୋଷ)- 3. A plot for growing pot-herb ସଂ. ବଣ. ପୁଂ—ଶକ୍ତିଶାଳୀ (ଶବ୍ଦକୋଷ)—Powerful.

ଶାକୁନ—ସଂ. ବଣ ( ଶକୁନ+ଅ )—୧ । ନିମିତ୍ତଜ୍ଞ—1. Versed Śākuna in augury. ୨ । ପକ୍ଷୀ ସମ୍ବନ୍ଧୀୟ—2. Relating to birds. ୩ । ଅନ୍ୟର କ୍ଳେଶଦାୟକ; ପରପୀଡ଼କ—3. Oppressive; hurtful to others. ୪ । ଶୁଭାଶୁଭ ଲକ୍ଷଣ ସମ୍ବନ୍ଧୀୟ—4. Relating to augury. ବ—୧ । ପଶୁ ପକ୍ଷୀମାନଙ୍କ ଡାକ ପ୍ରଭୃତି ଲକ୍ଷଣଦ୍ୱାରା ଶୁଭାଶୁଭ ନିର୍ଣ୍ଣାୟକ ଶାସ୍ତ୍ର—1. The science of augury; the occult science. ୨ । କାକଚରିତ ଗ୍ରନ୍ଥ—2. The science of foretelling the future by flight and sound of birds, augury. ୩ । (ପୁଂ) ଭବିଷ୍ୟଦ୍ ବକ୍ତା—3. Sooth-sayer; augur. ୪ । (ପୁଂ) ଚଢ଼େଇମାରୁ (ବ୍ରି. ଶ)—4. A fowler.

ଶାକୁନ ବିଦ୍ୟା — ସଂ. ବି — କାକଚରିତ୍ର ବିଦ୍ୟା —
Śākuna bidyā The science of augury.
( ଶାକୁନ ଶାସ୍ତ୍ର, ଶାକୁନତନ୍ତ୍ର, ଶାକୁନ ବିଜ୍ଞାନ—ଅନ୍ୟରୂପ )

ଶାକୁନି—ସଂ. ବି ( ଶକୁନ+ଅ+ଇ )—ଚଢ଼େଇମାରୁ ( ହି. ଶ )—
Śākuni A fowler.

ଶାକୁନିକ—ସଂ. ବି. ପୁଂ ( ଶକୁନ+ମାରକ ଅର୍ଥରେ ଇକ )—୧। Śākunika ଚଢ଼େଇମାରୁ; ପକ୍ଷୀମାରକ; ବ୍ୟାଧ—1 A fowler. (ଶାକୁନିକୀ—ସ୍ତ୍ରୀ) ୨। ଜ୍ୟୋତିଷ; ଭବିଷ୍ୟଦ୍‌ବକ୍ତା—2. Soothsayer; an augur. ୩। ଶକୁନ ବା ଗୃଧ୍ରସମୂହ—
3. A collection of vultures.

ଶାକୁନୀ—ସଂ. ବି ( ଶକୁନ+ଇନ୍; ପ୍ରା. ୧ବ )—ଯେ ମାଛ ଧରେ;
Śākuni ମାଛୁଆ ( ହି. ଶ )—1. Fisherman. ୨। ଏକ ପ୍ରକାର ପ୍ରେତ ( ହି. ଶ)—2. A class of goblins.
୩। ଶକୁନ ବିଚାରକ ବ୍ୟକ୍ତି (ହି. ଶ)—3. An augur; a soothsayer.

ଶାକୁନେୟ—ସଂ. ବିଣ ( ଶକୁନ+ଏୟ )—ପକ୍ଷିସମ୍ବନ୍ଧୀୟ ( ହି. ଶ )—
Śākuneya Relating to birds. ସଂ. ବି. ପୁଂ—୧। ଏକ ପ୍ରକାର ଛୋଟ ପେଚା ( ହି. ଶ )—1. A small species of owl. ୨। ବକାସୁର ଦୈତ୍ୟ ( ହି. ଶ )—2. Demon Bakāsura ୩। ମୁନିବିଶେଷ ( ହି. ଶ )—3. Name of a sage.

ଶାକୁନ୍ତଳେୟ—ସଂ. ବି. ପୁଂ ( ଶକୁନ୍ତଳା+ଅପତ୍ୟାର୍ଥେ ଏୟ )—ଶକୁନ୍ତଳାଙ୍କ ପୁତ୍ର; ମହାରାଜ ଭରତ—King
Śākuntaleya Bharata of ancient India.

ଶାକୁନ୍ତିକ—ସଂ. ବି ( ଶକୁନ୍ତ+ଇକ )—ଚଢ଼େଇମାରୁ ( ହି. ଶ )—
Śākuntika A fowler.

ଶାକୁଳିକ—ସଂ. ବି. ପୁଂ—୧। (ଶକୁଳ=ମତ୍ସ୍ୟ+ମାରକାର୍ଥେ ଇକ)—
Śākulika ଧୀବର; ମତ୍ସ୍ୟଜୀବୀ—1. Fisherman. ୨। ( ଶାକୁଳିକୀ—ସ୍ତ୍ରୀ ) ( ଶକୁଳ+ସମୂହାର୍ଥେ ଇକ ) ମତ୍ସ୍ୟସମୂହ ( ହି. ଶ )—2. A shoal or collection of fishes.

ଶାକେଶ୍ୱର—ସଂ. ବି—ଯେଉଁ ରାଜାଙ୍କ ନାମରେ ସମ୍ଭତ୍ ଚଳେ—
Śākeśwara A king in whose name an era is started.

ଶାକ୍କର—ସଂ. ବି—୧। ( ଶକ୍କର+ସ୍ୱାର୍ଥେ ଅ ) ଷଣ୍ଢ; ବୃଷଭ—
Śākkara 1. Bull. ୨। ସଂସ୍କୃତ ଛନ୍ଦୋବିଶେଷ—
2. The name of a Sanskrit metre.

ଶାକ୍ତ—ସଂ. ବିଣ. ପୁଂ ( ଶକ୍ତି=ଦୁର୍ଗା+ଉପାସକ ଅର୍ଥରେ ଅ )—
Śākta ୧। ଦୁର୍ଗା ବା ଶକ୍ତି ଉପାସନାକାରୀ—1. Worshipping of the Goddess Durgā. ୨। ଦୁର୍ଗାଙ୍କ ମନ୍ତ୍ରରେ ଦୀକ୍ଷିତ—2. Initiated into the mystic incantation of Durgā. ୩। ତାନ୍ତ୍ରିକ; ତନ୍ତ୍ରସାଧକ—3. Performing tantric rituals ୪। ଶକ୍ତି ସମ୍ବନ୍ଧୀୟ—4. Relating to Śakti. ବି. ପୁଂ—୧। ଶକ୍ତି ଉପାସକ—1. A devotee or worshipper or Durgā. ୨। ତାନ୍ତ୍ରିକ ପୂଜକ—2. Worshipper of Durgā through tantric rituals. [ ଦ୍ର—ଶାକ୍ତମାନଙ୍କ ପୂଜାବିଧାନ ବୈଦିକ ପୂଜାରୁ ଭିନ୍ନ। ଶାକ୍ତମାନେ ଈଶ୍ୱରଙ୍କ ଶକ୍ତିଙ୍କୁ ଶିବପତ୍ନୀ ଦୁର୍ଗାରୂପେ ଉପାସନା କରନ୍ତି। ଏ ଉପାସନା ପଦ୍ଧତି ଦୁଇ ପ୍ରକାର—ଦକ୍ଷିଣାଚାର ଓ ବାମାଚାର। ବାମାଚାର ବା ବାମମାର୍ଗୀମାନଙ୍କ ପୂଜାରେ ପଞ୍ଚମକାରର ବ୍ୟବହାର ହୁଏ। ସ୍ତ୍ରୀଙ୍କ ଜନେନ୍ଦ୍ରିୟକୁ ଶକ୍ତିଙ୍କ ପ୍ରତୀକ ବୋଲି ଧରି ଶାକ୍ତମାନେ ବହିଷ୍ଟ ସାଧନରେ ଏଥିର ପୂଜା କରନ୍ତି—ହି. ଶ। ] ୩। ଶକ୍ତି ଉପାସକ ହିନ୍ଦୁ ସମ୍ପ୍ରଦାୟ—3. The Hindu sect who are divotees of Śakti. [ ଦ୍ର—ହିନ୍ଦୁମାନେ ଉପାସ୍ୟ ଦେବତାଙ୍କ ନାମ ଅନୁସାରେ ଭିନ୍ନ ଭିନ୍ନ ସମ୍ପ୍ରଦାୟରେ ଅଭିହିତ ହୁଅନ୍ତି। ଯଥା—ବିଷ୍ଣୁ ଉପାସକ ବୈଷ୍ଣବ, ଶିବ ଉପାସକ ଶୈବ, ଶକ୍ତି ଉପାସକ ଶାକ୍ତ, ଗଣପତି ଉପାସକ ଗାଣପତ୍ୟ, ସୂର ଅର୍ଥାତ୍ ସୂର୍ଯ୍ୟ ଉପାସକ ସୌର। ଏହାପରି ବ୍ରହ୍ମଉପାସକମାନେ ଆପଣାକୁ ବ୍ରାହ୍ମନାମରେ ଅଭିହିତ କରୁଅଛନ୍ତି। ]

ଶାକ୍ତାଗମ—ସଂ. ବି (କର୍ମଧା, ଶାକ୍ତ+ଆଗମ)—ତନ୍ତ୍ର ଶାସ୍ତ୍ର—
Śāktāgama The Tantras.

ଶାକ୍ତିକ—ସଂ. ବିଣ. ପୁଂ (ଶକ୍ତି+ଇକ)—୧।ଶକ୍ତିସମ୍ବନ୍ଧୀୟ—Relating
Śāktika to Śakti. ୨। ଶକ୍ତି ଅସ୍ତ୍ରଧାରୀ ସଜ୍ଜିତ—2. Armed with the Śakti weapon. ସଂ. ବି ପୁଂ—ଶାକ୍ତ; ଶକ୍ତିଉପାସକ—1. A worshipper of Śakti.
ଶାକ୍ତେୟ } ଶାକ୍ତ୍ୟ } ଅନ୍ୟରୂପ

ଶାକ୍ତୀକ—ସଂ. ବି (ଶକ୍ତି+ପ୍ରହରଣାର୍ଥେ ଈକ)—ଶକ୍ତି ଅସ୍ତ୍ରଧାରୀ ଯୋଦ୍ଧା—
Śāktīka Warrior armed with the Śakti weapon. ସଂ. ବିଣ—ଶକ୍ତି ଅସ୍ତ୍ର ସମ୍ବନ୍ଧୀୟ ( ହି. ଶ )—Relating to Sakti weapon.

ଶାକ୍ୱର—ସଂ. ବିଣ ପୁଂ ( ଶକ୍ ଧାତୁ+କର୍ତ୍ତୃ. ବର )—ଶକ୍ତିଶାଳୀ ( ହି.
Śākwara ଶ )—Mighty. ସଂ. ବି—୧। ଇନ୍ଦ୍ର ( ହି. ଶ )—1. Indra. ୨। ଇନ୍ଦ୍ରଙ୍କ ବଜ୍ର (ହି. ଶ )—2. The thunderbolt of Indra. ୩। ଷଣ୍ଢ ( ହି. ଶ )—3. Bull. ୪। ପ୍ରାଚୀନକାଳର ଏକ ସାଧୁ ବା ସଂସ୍କାର ( ହି. ଶ )—4. Name of an ancient custom or rite.

ଶାକ୍ୟ—ସଂ. ବି(ଶାକ=ବଂଶ ବିଶେଷ+ତହିଁରେ ଜାତ ଅର୍ଥରେ ଯ;ଶାକ
Śākya ବଂଶରେ ଜାତ )—୧। ବୁଦ୍ଧଦେବ; ଗୌତମ ବୁଦ୍ଧ—1. The great religious reformer Buddha. ୨। ନେପାଳ ତରାଇ ପ୍ରଦେଶବାସୀ ପ୍ରାଚୀନ କ୍ଷତ୍ରୀୟ ଜାତି ( ହି ଶ )—2. Name of an ancient Kshatriya tribe of Nepal Tarai. [ ଦ୍ର—ବୌଦ୍ଧ
ଶାକ୍ୟ ମୁନି } ଶାକ୍ୟ ସିଂହ } ଅନ୍ୟରୂପ

ଗ୍ରନ୍ଥରେ ଶାକ୍ୟମାନଙ୍କୁ ଇକ୍ଷ୍ୱାକୁ ବଂଶୀୟ ବୋଲି ପାଇଅଛୁ । ଯେଉଁ ସ୍ଥାନରେ ଏମାନେ ବାସ କରୁଥିଲେ ସେଠାରେ ପ୍ରଚୁର ଶାକ (ଶାଗୁଆନ) ଗଛ ଥିଲା । ଏଥିପାଇଁ ଏ ବଂଶର ନାମ ଶାକ୍ୟ ହେଲା । ପଣ୍ଡିତମାନେ କହନ୍ତି, ଲେ(ଲି)ଚ୍ଛବୀଙ୍କ ପରି ଶାକ୍ୟମାନେ ବ୍ରାତ୍ୟ କ୍ଷତ୍ରିୟ ଥିଲେ—ହି. ଶ । ]

ଶାକ୍ର—ସଂ. ବିଣ ( ଶକ୍ର+ଅ )—ଇନ୍ଦ୍ର ସମ୍ବନ୍ଧୀୟ—Relating to Śākra Indra. ସଂ. ବି—[ ଇନ୍ଦ୍ର ଏ ନକ୍ଷତ୍ରର ଅଧିପତି ] ଜ୍ୟେଷ୍ଠା ନକ୍ଷତ୍ର (ହି. ଶ)—The 18th asterism.

ଶାକ୍ରୀ—ସଂ. ବି. ସ୍ତ୍ରୀ—୧ । ଇନ୍ଦ୍ରାଣୀ; ଶଚୀ—1. The wife of Śākri Indra. ୨ । ଦୁର୍ଗା ( ହି. ଶ )—2. Durgā.

ଶାଖ୍ ( ଧାତୁ )—ସଂ—ବିସ୍ତୃତ ହେବା; ବ୍ୟାପିବା—To spread; to Śākh ( root ) extend; to fill completely; to pervade.

ଶାଖ—ସଂ. ବି—(ଶାଖ ଧାତୁ+କର୍ତ୍ତୃ ଅ)—୧ । କାର୍ତ୍ତିକେୟ (ହି. ଶ) Śākha 1. Kārttikeya, ୨ । ଅଂଶ; ଭାଗ (ହି. ଶ)—2. Part. ୩ । କରଞ୍ଜ (ହି. ଶ)—3. Pongamia Glabra (tree).

ଶାଖା—ସଂ. ବି—(ଶାଖ ଧାତୁ+କର୍ତ୍ତୃ ଅ+ସ୍ତ୍ରୀ ଆ)—୧ । ବୃକ୍ଷର ଅଙ୍ଗ-Śākhā ବିଶେଷ; ବିଟପ; ଗଛର ଡାଳ—1. Branch; bough of a tree; offshoot. ୨ । ଅଂଶ; ଭାଗ—2. Part; section. ୩ । ବେଦର ଅଂଶ ବିଶେଷ—3. Name of section of the Bedas. ୪ । ବାହୁ—4. The arm. ୫ । କର—5. The hand. ୬ । ଗ୍ରନ୍ଥର ପରିଚ୍ଛେଦ; ଅଧ୍ୟାୟ—6. Chapter of a book. ୭ । ଦେଶାଂଶ; ପ୍ରଦେଶ—7. Province. ୮ । ସମୀପତା; ସାମୀପ୍ୟ—8. Nearness; vicinity. ୯ । ପକ୍ଷାନ୍ତର—9. Another side. ୧୦ । ବଂଶର ଅଦିପୁରୁଷଠାରୁ ଭିନ୍ନ ଭିନ୍ନ ବଂଶଧରମାନଙ୍କ ବଂଶ—10. Branch of a family; families of different descendants of a particular ancestor. ୧୧ । ନଦୀରୁ ନିର୍ଗତ ହୋଇଥିବା ଶାଖା—11. Branch of a river. ୧୨। ସମୁଦ୍ରରୁ ବାହାରିଥିବା ଲମ୍ବ ଉପସାଗର--12. A long arm of the sea. ୧୩ । ଏକ ଜାତିର ବା ଧର୍ମର ଭିନ୍ନ ସଂପ୍ରଦାୟ—13. A religious sect or branch of nation. [ଉ—ସାନ ଶାଖା ମୂଳକ ବଡ଼ ଶାଖା ସେ ସମବସ୍ତୁ—ପ୍ରାଚୀ. ଗୁରୁଭକ୍ତି ଗୀତା । ୧୪ । ଶରୀରର ଅବୟବ (ହାତ, ଗୋଡ଼) (ହି: ଶ)—14. A limb of the body. ୧୫ । ଅଙ୍ଗୁଳି (ହି.ଶ)—15. Finger. ୧୬ । ଚଉକାଠ (ହି: ଶ)—16. Door-frame. ୧୭ । ଗୃହର ଏକପାଖ (ହି.ଶ)—17. A side of a house. ୧୮ । ମୂଳ ବସ୍ତୁରୁ ନିର୍ଗତ ଅଂଶ (ହି.ଶ) 18. A part which is an offshoot from an original thing. ୧୯ । ବିଭାଗ; ହିଂସା (ହି. ଶ)—19. Division; share. ୨୦ । କୌଣସି ଶାସ୍ତ୍ରର ବା ବିଦ୍ୟାର ଅନ୍ତର୍ଗତ ଅଂଶ ବା ବିଭାଗ (ହି.ଶ)—20. Part or subdivision of a work or science. ୨୧ । ବେଦର ସଂହିତାମାନଙ୍କର ପାଠ ବା କ୍ରମଭେଦ, ଯାହା କୌଣସି କୌଣସି ଋଷି ଆପଣା ଗୋତ୍ର ବା ଶିଷ୍ୟ ପରମ୍ପରା କ୍ରମେ ଚଳାଇଥିଲେ (ହି: ଶ)—21. A school or traditional recension of the Bedas; traditional text followed by a school (Apte). [ଦ୍ର—ଋଗ୍‌ବେଦର ୫ ଶାଖା, ଯଜୁର୍ବେଦର ବହୁ ଶାଖା ମଧ୍ୟରେ ନଅଟି ପ୍ରସିଦ୍ଧ (ହି. ଶ)]—୨୨ । ବିଶିଷ୍ଟ ମତବାଦୀ ଦଳ—22. Party holding a particular view or tenet; faction (Apte).

ସଖା ଦେ. ବି (ସଂ. ସଖା)—୧ । ସଖା; ବନ୍ଧୁ—1. Friend. ସହାୟକ ୨ । (ସଂ. ସହାୟକ) ସହାୟ—2. Help. (ଉ—ଏଥି ହୋଇ ଭାର ନାହିଁ କିଛି ଶାଖା । ପ୍ରାଚୀ. ବୃନ୍ଦାବନରୂପଣ. ଗୀତା ।) ୩ । ପ୍ରଧାନ ଖାଦ୍ୟ ସଙ୍ଗେ ଖିଆଯିବା ପଦାର୍ଥ; ଅନ୍ନ ସଙ୍ଗେ ଖିଆଯିବା ବ୍ୟଞ୍ଜନାଦି—3. Curry etc. taken with rice or the principle article of food.

ଶାଖାଗ୍ର—ସଂ. ବି (୬ଷ୍ଠୀ ତତ୍; ଶାଖା+ଅଗ୍ର)—୧ । ଡାଳର Śākhāgra ଅଗ୍ରଭାଗ—1. The top of a branch. ୨ । କରାଗ୍ରଭାଗ; ଅଙ୍ଗୁଳି—2. The fingers of the hand.

ଶାଖା କଣ୍ଟ—ସଂ. ବି—ମନସାବୃକ୍ଷ; ସିହୁଣ୍ଡ (ହି. ଶ) Śākhā kanṭa Euphorbia (tree).

ଶାଖା ଚଙ୍କ୍ରମଣ—ସଂ. ବି—୧ । ଏକ ଡାଳରୁ ଅନ୍ୟ ଡାଳକୁ Śākhā chaṅkramaṇa ଡେଇଁବା—1. Leaping from one branch to another. ୨ । ଏକ ବିଷୟରୁ ଅଧା ଛାଡ଼ି ଅନ୍ୟ ବିଷୟରେ ହାତ ଦେବା (ହି. ଶ)—2. Desultory work. ୩ । ଏକ ବିଷୟ ପୂରା ନ ପଢ଼ି ଏଥିରୁ ଥୋଡ଼ାଏ ସେଥିରୁ ଥୋଡ଼ାଏ ପଢ଼ିବା (ହି. ଶ)—3 Desultory study, (Apte).

ଶାଖା ଚ୍ୟୁତ—ସଂ. ବି (୫ମୀ ତତ୍)—ଡାଳରୁ ଖସିପଡ଼ିଥିବା; ଡାଳରୁ ଛିଡ଼ି Śākhā chyuta ପଡ଼ିବା—Fallen from the branch; (ଶାଖାଭ୍ରଷ୍ଟ—ଅନ୍ୟରୂପ) separted from the branch.

ଶାଖାଦ—ସଂ. ବିଣ ଓ ବି (ଶାଖା+ଅଦ୍ ଧାତୁ+କର୍ତ୍ତୃ. ଅ)—ଗଛର Śākhāda ଡାଳ ଖାଇବା ପଶୁ (ଯଥା—ଗୋ, ମେଷ, ଛାଗ)—Animals living on branches.

ଶାଖା ନଗର—ସଂ. ବି (ନଗରର ଶାଖା; ୬ଷ୍ଠୀ ତତ୍)—ବୃହତ୍ Śākhā nagara ନଗରର ସମୀପସ୍ଥ କ୍ଷୁଦ୍ର ନଗର; ଉପନଗର; (ଶାଖାପୁର—ଅନ୍ୟରୂପ) ନଗରର ଉପକଣ୍ଠସ୍ଥିତ ବସତି—Suberb of a town.

ଶାଖା ନଦୀ—ସଂ. ବି—ବଡ଼ ନଦୀରୁ ବାହାରିଥିବା କ୍ଷୁଦ୍ର ନଦୀ—Śākhā nadī Branch of a river.

[ଦ୍ର—ଯେଉଁ ନଦୀ ପ୍ରଧାନ ନଦୀରେ ଆସି ପଡ଼ିଥାଏ ତାକୁ ଉପନଦୀ ବୋଲାଯାଏ ।]

ଶାଖା ନାଳ—ଦେ॰ ବି—କେନାଲରୁ ବାହାରିଥିବା ଶାଖା; ଉପନାଳ—
Śākhā nāla Distributay or branch canals
[ শাখা কেনাল rising from the main canal for the
शाखा नहर purpose of irrigation.

ଶାଖାନ୍ତର—ସଂ. ବି (ଅନ୍ୟ ଶାଖା; କର୍ମଧାରୟ)—ଅନ୍ୟ ଶାଖା—
Śākhāntara Another branch.

ଶାଖାନ୍ତରାଳ—ସଂ. ବି (୬ଷ୍ଠୀ ତତ୍)—ଶାଖାମାନଙ୍କ ଅନ୍ତସ୍ଥଳ ବା
Śākhāntarāla ବ୍ୟବଧାନ—The space between two branches.

ଶାଖା ପଥ—ସଂ. ବି—ଶାଖା ରଥ୍ୟା (ଦେଖ)
Śākhā patha Śākhā rathyā. (See)
(ଶାଖାବର୍ତ୍ମ—ଅନ୍ୟରୂପ)

ଶାଖାପିତ୍ତ—ସଂ. ବି—ଦେହର ଶେଷ ମୁଣ୍ଡରେ ଥିବା ଅବୟବ (ହାତ, Śākhāpitta ଗୋଡ଼, ଲିଙ୍ଗ) ମାନଙ୍କର ସ୍ଫୀତି—The inflamation of the extremities of the body (e.g. hands, penis, shoulders.) (Apte).

ଶାଖା ବାତ—ସଂ. ବି (ମ. ପ. ଲୋ)—ହାତ ଗୋଡ଼ରେ ହେବା ବାତ
Śākhā bāta (ହି. ଶ)—Gout.

ଶାଖା ମୃଗ—ସଂ. ବି (ଶାଖାସ୍ଥିତ ଯେ ମୃଗ=ପଶୁ; ମ ପ. ଲୋ)—
Śhākhā mruga ୧ । ବାନର; ମର୍କଟ; ମାକଡ଼—1.Monkey, ape. ୨ । ଗୁଣ୍ଡୁଚି ମୂଷା—2. Squirrel. (Apte

ଶାଖାମ୍ଲ(ଳ)—ସଂ. ବି—ବାଗାର; ଜଳବେତସ—A species of Śākhāmla(la) cane growing on the edge of water.

ଶାଖାମ୍ଳ—ସଂ. ବି—ତେନ୍ତୁଳ (ହି. ଶ)
Śākhāmla Tamarind.

ଶାଖାର(ଦା)ଣ୍ଡ—ସଂ. ବି ପୁଂ (ଶାଖା=ବେଦର ଶାଖା+ରମ୍ ଧାତୁ=
Śākhāra(da)ṇda କ୍ରୀଡ଼ା କରିବା+ଡ, କର୍ମ୍ମ ଶାଖା=
ବେଦାଂଶରେ+ରଣ୍ଡ=ନିଷ୍ଫଳ)—ଯେଉଁ ବ୍ରାହ୍ମଣ ସ୍ୱାବଲମ୍ବିତ ବେଦାଂଶ ପରିତ୍ୟାଗ କରି ଶାଖାନ୍ତର ଅଧ୍ୟୟନ କରନ୍ତି—A Brāhmaṇa who forsakes his own section of the Bedas and reads another section; a Brāhmaṇa who has changed his own school of the Bedas, (Apte).

ଶାଖା ରଥ୍ୟା—ସଂ. ବି.—୧ । ବଡ଼ ରାସ୍ତାରୁ ଶାଖାରୂପେ ବାହାରିଥିବା
Śākhā rathyā ଛୋଟ ରାସ୍ତା—1. A branch road.
୨ । ଷୋଡ଼ଶ ହସ୍ତ ପ୍ରସ୍ଥଯୁକ୍ତ ପଥ—(ଶବ୍ଦକୋଷ) 2. A road 16 cubits broad.

ଶାଖା ରସ—ସଂ. ବି.—ମକରନ୍ଦ; ପୁଷ୍ପରସ; ପୁଷ୍ପମଧୁ—The nectar
Śākhā rasa or the honey of flowers.

ଶାଖାଲ—ସଂ. ବି.—(ଶାଖା+ଲା ଧାତୁ=ଅଗ୍ରସର କରିବା+କର୍ତ୍ତୃ.ଅ)-ଜଳ
Śākhāla ବେତସ (ହି. ଶ)—A species of ratan.

ଶାଖାଶିକା(ଫା)—ସଂ. ବି.—(ଶାଖା+ଅଶ୍ ଧାତୁ+କର୍ତ୍ତୃ. ଅ କ+ଆ;)
Śākhāśikā (phā) ବହୁବ୍ରୀହି; ଶାଖାର ଶିଫା=ଚେର)—ବଟାଦି ବୃକ୍ଷର ଓହଳ; ଅବରୋହ—The aerial roots of banian and other trees; a root growing from branches.

ଶାଖା ସ୍ଖଳିତ -ସଂ. ବି—(କର୍ମ୍ମୀତତ୍)—ଶାଖାଚ୍ୟୁତ (ଦେଖ)
Śākhā skhalita Śākhāchyuta (See).

ଶାଖି—ସଂ. ବି.—ତୁରସ୍କ ଦେଶ (ଶବ୍ଦକୋଷ)
Śākhi Turkey.

ଶାଖୀ—ସଂ. ବିଣ.ପୁଂ—(ଶାଖା+ଅସ୍ତ୍ୟର୍ଥରେ ଇନ୍, ୧ମା. ୧ବ.) ୧ ।
Śākhī ଶାଖାଯୁକ୍ତ—1. Having branches. ୨ । ବେଦର
(ଶାଖିନୀ-ସ୍ତ୍ରୀ) କୌଣସି ଶାଖାର ଅନୁଯାୟୀ (ହି.ଶ)—2. According to some Śākhā of a Beda. ବି.—୧ । ବୃକ୍ଷ; ଗଛ—1. A tree. ୨ । ବେଦ—2. The Bedas. ୩ । ନୃପ ବିଶେଷ—3. Name of a king. ୪ । ତୁରସ୍କ ଦେଶୀୟ ଲୋକ (ହି. ଶ)—4. A Turk. ୫ । ବେଦର କୌଣସି ଶାଖାଧ୍ୟାୟୀ ବ୍ୟକ୍ତି—5. A person studying a certain Śākhā of the Bedas. ଦେ. ବି.—୧ । ପଦାତି—1. Infantry. [ଦ୍ର—ବକ୍ଷରେ ଶାଖୀ ଫଳକ ଧାରି ଶୋଭି ଆମ୍ଭ ପ୍ରତି ପାଳନ୍ତୁ—ଭଞ୍ଜ—ବୈଦେହୀଶବିଳାସ]

ଶାଖୋଚାର—ସଂ ବି—(୬ଷ୍ଠୀତତ୍) ବିବାହ ସମୟରେ ବଂଶାବଳୀର କଥନ
Śākhochchara (ହି.ଶ)—Description of the geneology of the parties during a marriage.

ଶାଖୋଟ—ସଂ. ବି—(ଶାଖା+ସଙ୍କୋଚାର୍ଥେ ଓଟ)—ଭୂତବୃକ୍ଷ; ଶାହାଡ଼ାଗଛ-
Śākhoṭa A small tree; Trophis Aspera; Streplus Asper. [ଦ୍ର—ବୈଦ୍ୟଶାସ୍ତ୍ର ଅନୁସାରେ ଏହା ତିକ୍ତ ଓ ଉଷ୍ଣବୀର୍ଯ୍ୟ; ଅର୍ଶ, ବାୟୁ, କଫ ଓ ଅତିସାର ନାଶକ; ଏହାର ଛାଲ ବାଟି ପ୍ରଲେପ ଦେଲେ ଶ୍ଳୀପଦ ଭଲ ହୁଏ] (ଧଳାଗଛ) ଆରୋଗ୍ୟ ହୁଏ(ଶବ୍ଦକୋଷ)। ଲୋକେ ଏହାର ଛୋଟ ଶାଖାକୁ ଦାନ୍ତକାଠି ରୂପେ ବ୍ୟବହାର କରନ୍ତି ।]
ଅନ୍ୟ ସ ପର୍ଯ୍ୟାୟ— ପୀତ, କୈଶିକୋଙ୍କ, ଖୀର ନାଶନ, ପୀତଫଳ, ପୀତ ଫଳକ, ଗବାକ୍ଷୀ, ଭୂତାବାସ, ଭୂତବୃକ୍ଷ, ଅକ୍ଷଧର, ଖରଚ୍ଛଦ, ଶର୍ଙ୍ଗାବାସ, ଧୂକାବାସ, ପିଶାଚଦ୍ରୁ, କର୍କଶଚ୍ଛଦ, ସକଟ, ଭୂସପଜ । ଶେଓଡ଼ା, শাওড়া सिओडा, सहोरा ତେ—ଭାରଣିକେତେଟୁ । ମ—ସହୋଡ଼ ।

ଶାଗ—ଦେ ବି—(ସ ଶାକ)—୧ । ଶାକ (ଦେଖ)—1. Śāka(See).
Śāga ୨ । (ଜୟପୁର) ବ୍ୟଞ୍ଜନ; ତିଅଣ—2. Curry.
শাক साग [ଦ୍ର—ସାଧାରଣତଃ କେତେକ ବୃକ୍ଷ ଓ ଗୁଳ୍ମ ଏବଂ ଲତାମାନଙ୍କର କୋମଳ ପତ୍ର, ଯାହାକୁ ଅଗ୍ନି ଉତ୍ତାପରେ ପାକ କରି ଅନ୍ନାଦି ସଙ୍ଗରେ ଖିଆଯାଏ, ତାକୁ ଶାଗ ବୋଲାଯାଏ । ଜୁନ୍ଦୀରେ ସବୁପ୍ରକାରର ପରିବା ଓ ପତ୍ରକାର ତିଅଣକୁ ଶାଗ ବୋଲାଯାଏ । ଅନେକ ପ୍ରକାରର ଗୁଳ୍ମ ଶାଗରୂପେ ବ୍ୟବହୃତ ହୁଏ ।' ଯଥା—

କୃଷିଦ୍ୱାରା ଉତ୍ପନ୍ନ :—

୧ । ଲେଉଟିଆ—ଏହା ତିନି ପ୍ରକାର—(ସଂ ତଣ୍ଡୁଲୀୟ) । (କ) ସାଧାରଣ (ଖ) କାଣ୍ଟି (ଗ) କଣ୍ଟା । ୨ । କୋଶଳା—ଏହା ପାଞ୍ଚପ୍ରକାର—(କ) ଲଟା, (ଖ) ଡେଙ୍ଗା, (ଗ) ଡେଙ୍ଗା, (ଘ) ଧଳା, (ଙ) ନାଲି । ୩ । ଖଡ଼ା ବା ମାରିଷ—ଏହା ଚାରି ପ୍ରକାର—(କ) ଖାଇ ବା ଖାରଅ ବା ଗୋବରଅ, (ଖ) ମିଠା, (ଗ) କାଳି, (ଘ) କଣ୍ଟାମାରିଷ । ୪ । ପୁରୁଣି—ଏହା ତିନି ପ୍ରକାର—(ସଂ ପୁନର୍ନବା) (କ) ଶେତ ବା ଧଳା, (ଖ) ନାଲି, (ଗ) ନେଳ । ୫ । ପାଳଙ୍ଗ—ଏହା ତିନି ପ୍ରକାର—(ସଂ. ପାଲଙ୍କ୍ୟା; ବ—ପାଲଙ୍) (କ) ମିଠା, (ଖ) ଖଟା, (ସଂ ଚୁକ୍ରା) । (ଗ) ଜଳବେତ ବା ଜାଇବେତ, (ଜଳ ବେତସ) । ୬ । ପିଡ଼ଙ୍ଗ—(ସଂ ପୂତିକା) । ୭ । ବଥୁଆ—ଏହା ଦୁଇ ପ୍ରକାର—(ସଂ ବାସ୍ତୁକ, ଶାକରାଟ୍) (କ) ଧଳା, (ଖ) ନାଲି ବା ଝାଙ୍ଗୀ (ସଂ ରକ୍ତ ବା ଗୌଡ଼ ବାସ୍ତୁକ) ୮ । ବଳଙ୍ଗ ମଦରଙ୍ଗା । ୯ । ଚକୁଣ୍ଡା (ସଂ ଚକ୍ରମର୍ଦ୍ଦ)—ଏହା ଦୁଇ ପ୍ରକାର—(କ) ସାଧାରଣ, (ଖ) ଭାଲୁଚକୁଣ୍ଡା । ୧୦ । କୋବି—ଏହା ତିନି ପ୍ରକାର—(କ) ବନ୍ଧା (ଏହାର ପତ୍ର ଖାଦ୍ୟ), (ଖ) ଫୁଲ (ଏହାର ଫୁଲ ଖାଦ୍ୟ), (ଗ) ଓଲ୍ (ଏହାର ମୂଳ ଖାଦ୍ୟ) । ୧୧ । ପୋଇ (ସଂ ପୋତକୀ, ଉପୋଦକୀ) ।

ବିନା କୃଷିରେ ପଡ଼ିଆରେ ଜାତ :—

୧ । କନାଟିରେ ବା କାନକଟିର । ୨ । ବାଲୁବାଲୁଆ । ୩ । ଲକଲୋ(ଲୁ)ଲ (ସଂ ଲକ୍ଷ୍ମଣାଲୁଲା; ବ—ଲକ୍ଷ୍ମାଲ) । ୪ । ଗୟସ । ୫ । ପିତାଶାଗ (ସଂ ଗ୍ରୀଷ୍ମ ସୁନ୍ଦରକ, ବ—ଗୀମେଶାକ୍) । ୬ । କାଳକାଳୁଆ । ୭ । ମୁଠିଶାଗ (ବ—ଗିମା) । ୮ । ଆମରୁଳ (ସଂ ଅମ୍ଳଲୋଣିକା, ଚାଙ୍ଗେରୀ) । ୯ । ଲୁଣି ଶାଗ (ବଂ—ନୁନା, ସଂ. ଲୋଣୀ) । ଏହା (କ) ସାଧାରଣ ଓ (ଖ) ବଡ଼ ଲୁଣି ଭେଦରେ ଦୁଇ ପ୍ରକାର) ।

ପାଣିରେ ଓ ପାଣି କୂଳରେ ଜାତ :—

୧ । କଳମ ବା କଳମ୍ବ [ସଂ କଲମ୍ବୀ, ବଂ. କଲମୀ] ୨ । ସୁନୁସୁନିଆ [ସଂ. ସୁନିସଣ୍ଣ, ବଂ. ସୁସ୍‌ନି] । ୩ । ହିଡ଼ିମିଚ୍ଛ ବା ହିଡ଼ହିଡ଼େଇ ବା ହିଡ଼ମିଚ ବା ହିଡ଼ହିଡ଼େଇ [ସଂ. ହିଲମୋଚିକା, ବ ହିଂଚ୍] ୪ । ମଦରଙ୍ଗା [ସଂ. ଶାଲିଞ୍ଚ, ବଂ. ଶାଲିଞ୍ଚ ବା ଶାଞ୍ଚେଶାକ] ୫ । କୋଇଲେଖା [ସଂ. କୋକିଲାକ୍ଷ] ।

ଗୁଳ୍ମ ଓ ଲତା, ଯାହାର କୋମଳ ପତ୍ର, ଡଙ୍କ ଓ ଫୁଲ ଓ ଡାଙ୍ଗ ଶାଗରୂପେ ବ୍ୟବହୃତ ହୁଏ :—

୧ । ମୂଳା [ସଂ. ମୂଲକ] ୨ । ମେଙ୍ଗଣ୍ଟ [ସଂ. ଘଣ୍ଟା କର୍ଣ୍ଣ; ବ. ଘେଁଟୁ ] ୩ । ବୋଇତ କଖାରୁ । ୪ । କନ୍ଦମୂଳ । ୫ । ପୋଟଳ କାକୁଡ଼ିଆ । ୬ । ସୋରିଷ [ସଂ. ସର୍ଷପ] ୭ । ଲାଉ [ସଂ. ଅଲାବୁ] ୮ । ଧନିଆ [ସଂ ଧନ୍ୟାକ] ୯ । ନଳିତା [ସଂ. ପଟ୍ଟଶାକ] ୧୦ । ଯୁଆଣୀ [ସଂ. ଯବାନୀ] ୧୧ । କଲରା [ସଂ. କାରବେଲ୍ଲ] ୧୨ । ଲଙ୍କାମରିଚ । ୧୩ । ପୋଟଳ [ସଂ. ପଟୋଲ] ୧୪ । କଳଙ୍ଗ ଅରୁ । ୧୫ । କଇଞ୍ଚ କାଙ୍କୁଡ଼ [ସଂ. କର୍କଟ] ୧୬ । ପୁନ୍ଦଣା ବା ଗୋଦନା [ସଂ ଗୋରଖା] ୧୭ । ବୁଟ [ସଂ. ଚଣକ] ୧୮ । ଚଣା [ସଂ ଚଣକ] ୧୯ । ମଟର [ସଂ କଲାୟ ଶାକ] ୨୦ । ସାରୁ [ସଂ. କଚୁ ] ।

ବଡ଼ ଗଛ, ଯହିଁର କୋମଳ ପତ୍ର ଓ କଢ଼ ଶାଗରୂପେ ବ୍ୟବହୃତ :—

୧ । ଜାମ୍ବ [ସଂ ଜମ୍ବୁ] ୨ । ବରଡ଼ା [ଗଡ଼ଜାତରେ] ୩ । ଶଜନା [ସଂ ଶୋଭାଞ୍ଜନ] ୪ । ଝୁମ୍ପୁଡ଼ି, ୫ । ମୁଷକଣୀ [ଗଡ଼ଜାତରେ] ୬ । ଧଳଗ୍ରୁ, ୭ । ଭଦଭଦଳିଆ ।

ଯେଉଁ ବନ୍ୟ ଗୁଳ୍ମାଦିର ପତ୍ର ଶାକରୂପେ ବ୍ୟବହୃତ ହୁଏ, ତାହାର ନାମ ଜଣା ନ ଥିଲେ ବହୁ ନାନା ଜାତୀୟ ଗୁଳ୍ମର ପତ୍ରକୁ ମିଶାଇ ଶାଗରୂପେ ବ୍ୟବହୃତ ହେଲେ ତାହାକୁ ଅନାମନା ବା ଅଜାବନା ଶାଗ କହନ୍ତି । ଏହା ଛଡ଼ା ସାଧାରଣ ଲୋକେ ଅନ୍ୟାନ୍ୟ ବୃକ୍ଷ ଗୁଳ୍ମାଦିର ପତ୍ରକୁ ଶାଗ ରୂପେ ବ୍ୟବହାର କରନ୍ତି ଓ ଦୁର୍ଭିକ୍ଷ ସମୟରେ ଅନ୍ନାଭାବ-ଗ୍ରସ୍ତ ଗରିବ ଲୋକେ ପଡ଼ିଆରେ ଜନ୍ମୁଥିବା ନାନା ଗୁଳ୍ମର ପତ୍ରାଦିକୁ ଶାଗରୂପେ ଖାଆନ୍ତି ।

**ଶାଗ କିଆରି**—ଦେ. ବି—କୃଷିଦ୍ୱାରା ଶାକଗୁଳ୍ମ ଜନ୍ମାଇବାର କ୍ଷୁଦ୍ର କ୍ଷେତ୍ର—Sāga kiāri Small plot of land on which pot-herbs are grown. (ଶାଗ ପଟାଳି—ଅନ୍ୟରୂପ) শাকেরকেয়ারি सागकियारि

**ଶାଗ ଖରଡ଼ା**—ଦେ. ବି—ଅଗ୍ନି ଉତ୍ତାପରେ ସିଦ୍ଧ ଶାକ; ଶାଗ ଭଜା—Sāga kharardā Pot herbs boiled in water on fire. (ଉ—ଖାଇବାକୁ ଶାଗ ଖରଡ଼ା ତାଙ୍କୁ ଦେଲେ, —ଦ୍ୱିଶ୍ୱସଂଡ଼. ମହାଭାରତ; ବନ.) শাগভাজা सागरांधना

**ଶାଗ ପେଜ**—ଦେ.ବି—(ସହଚର)—ଶାକ ଓ ଅନ୍ନମଣ୍ଡ—Meal consisting of rice—water and pot-herbs. Sāga peja ফেনশাক सागमांड

**ଶାଗ ଭଜା**—ଦେ. ବି—( ସଂ. ଶାକ ଓ ଭର୍ଜିତ )—୧ । ତେଲ ବା ଘିଅ ଦ୍ୱାରା ଭର୍ଜିତ ଶାକ—1. Fried pot-herb. Sāga bhājā শাকভাজী सागभाजी ୨ । (ସହଚର) ଶାଗ ଖରଡ଼ା ଓ ଫଳମୂଳାଦିର ଭଜା—2. Boiled pot-herb and fried fruits.

**ଶାଗ ଭାତ**—ଦେ. ବି—(ସଂ. ଶାକ ଓ ଭକ୍ତ)—ଶାକାନ୍ନ (ଦେଖ) Sāga bhāta Sākānna (See) শাকভাত सागभात

**ଶାଗ ମାଛ**—ଦେ. ବି—(ସହଚର)—ବ୍ୟଞ୍ଜନ ରୂପେ ବ୍ୟବହୃତ ଶାକ ଓ ମତ୍ସ୍ୟ—Pot herbs and fish used as curry. Sāga māchha শাকমাছ सागमाछ

ଶାଗ ମାରିଷ—ପ୍ରାଦେ (ବାଲେଶ୍ୱର) ବି.—ଖଡ଼ା (ଶାକଗୁଳ୍ମ)
Śāga mārisha Amaranth (potherb).

ଶାଗ ମୁଗ—ଦେ. ବି.—(ଦ୍ୱନ୍ଦ୍ୱ)—(ସଂ. ଶାକ ଓ ମୁଦ୍ଗ) ୧। ବ୍ୟଞ୍ଜନ
Śāga muga ରୂପେ ବ୍ୟବହୃତ ଶାକ ଓ ଡାଲି ରୂପେ ବ୍ୟବହୃତ
ଶାକମୁগ সাগমুগ মুগ—1. Potherb and cereals used as separate curries. ୨। ମୁଗ ଡାଲିରେ ଶାଗ ମିଶାଇ ରନ୍ଧାଯିବା ଏକ ପ୍ରକାର ତରଣ—2. A curry prepared from pot-herbs and cereals mixed together.

ଶାଗ(ଗି)ଲି ମାଛ(ଛି)ଲି କରିବା—ଦେ. କ୍ରି.—ହାଟରୁ ବା ବଜାରରୁ ଶାଗ
Śāga(gi)li māchha(chhi)li kariba ଓ ମାଛ କିଣିବାରେ
শাগেমাছেখরচকরা অর্থব্যয় করনা—To spend money
সাগমছলিকরনা in purchasing vegetables and fish for curry.

ଶାଗୁଆ—ଦେ. ବିଣ—(ସଂ ଶାକ)—ଶାକ ପରି ହରିଦ୍‌ବର୍ଣ୍ଣ—
Saguā Of green colour like leaves.
শাবজা; শবুজ সবজা
[ଶାଗେ(ଗୋ)ଇ—ସ୍ତ୍ରୀ]

ଶାଗୁଆନ୍(ଣି, ନ, ନି)—ଦେ. ବି.—(ସଂ. ଶାକ)—ଶାକତରୁ (ଦେଖ)
Śaguān(ṇi, na, ni) Śākataru (See)
শেগুন সাগুআন

ଶାଗୁଣା-ଦେ. ବି. ପୁଂ.—(ସଂ. ଶକୁନ=ପକ୍ଷୀ; ଶକୁନ=ଗୃଧ୍ର)—
Śaguṇā ମାଂସାଶୀ ପକ୍ଷିବିଶେଷ; ଗୃଧ୍ର—The common
[ଶାଗୁଣୀ—ସ୍ତ୍ରୀ] vulture. [ଦ୍ର—ସେହୁ ବାଟରେ ହଂସ
শকুনি ଶାଗୁଣା ଏ ମିଶ, ଯାଇଣ ବୁଲୁଅଛନ୍ତି ମେରୁଶିଖବାସୀ।—
গিধ କୃଷ୍ଣସିଂହ. ମହାଭାରତ. ବନ]
ଅ—ସଗୁନ୍ [ଦ୍ର—ଏହା ପ୍ରସିଦ୍ଧ ବର୍ଣ୍ଣେର ଧଳାତର ଭୂଇ ହାତ ଘାର୍ଦ୍ଦ ମାଂସାଶୀ ପକ୍ଷୀ। ଏହାର ପକ୍ଷ କଳା ଓ ମାଟିଆ; ଚଂଚୁ ଦୀର୍ଘ ଓ ବଙ୍କାଗ୍ର ବଳିଷ୍ଠ; ମୁଣ୍ଡରେ ଓ ବେକରେ ପର ନାହିଁ; ଗଳା ପାଖରେ ଗୋଟିଏ ଚମଡା ଥଳି ଥାଏ। ଏମାନେ ଶବ ଭକ୍ଷଣ କରନ୍ତି ଓ ଶ୍ମଶାନ ଏବଂ ମଡ଼ା ପଡ଼ିବା ଯାଗାରେ ବହୁତ ଦେଖା ଯାଆନ୍ତି; ଶ୍ମଶାନ ନିକଟସ୍ଥ ବୃକ୍ଷରେ ବସା କରି ରହନ୍ତି। ଏମାନେ ବହୁ ଉଚ୍ଚରେ ଆକାଶରେ ଉଡ଼ନ୍ତି ଏବଂ ବହୁଦୂରରୁ ଓ ବହୁ ଉଚ୍ଚତାରୁ ଶବକୁ ଦେଖି ଓ ଶବର ବାସନା ବାରି ସେଠାରେ ପହଞ୍ଚନ୍ତି।]

ଶାଗୁଣା ସମସ୍ତଙ୍କ ମାଉଁସ ଖାଏ
ଶାଗୁଣା ମାଉଁସ କିଏ ଖାଇଲେ କେଁକେଁ ହଉଥାଏ } —ଦେ.ଛଗ;ନ୍ୟାୟ—
Śāguṇā samastaṅka māuṅsa khāe
Śāguṇā māuṅsa kie khāile keṅ keṅ hauthāe } (ଶ୍ଳେଷ-ବ୍ୟାଜ
ଶକୁନି সবাব মাংস খায় ଏହୁ ଯେ, ଶାଗୁଣା ସବୁ ଜୀବର ମାଂସ ଭକ୍ଷଣ କରେ, କିନ୍ତୁ ମୃତ ଶାଗୁଣାର ମାଂସ କିଛି ଖାଇଲେ ତହିଁର ପ୍ରତିବାଦସ୍ୱରୂପ ଅନ୍ୟ ଶାଗୁଣାମାନେ ଦଳବଦ୍ଧ ହୋଇ କେଁ କେଁ ଶବ୍ଦ କରନ୍ତି)—ଯେଉଁ ଲୋକ ସମସ୍ତଙ୍କ ଅନିଷ୍ଟ କରେ, କିନ୍ତୁ ତାର କେହି ଅନିଷ୍ଟ କରିବାର ଦେଖିଲେ ବିରକ୍ତ ହୁଏ, ଏହି ସ୍ଥଳରେ ଏ ନ୍ୟାୟ ପ୍ରଯୁଜ୍ୟ।

ଶାଗୁଣାଙ୍କୁ ମଡ଼ା ବାସିବା ନ୍ୟାୟ—ଦେ. (ନ୍ୟାୟ)—(ଶବ ପଡ଼ିଲେ ବହୁ
Śaguṇāṅku maḍhā bāsibā nyāya ଦୂରରୁ ଶାଗୁଣା
মড়ার শকুন পড়বার ন্যায় মরকৌর গিধোকাজোনায় ମାନେ ଆକୃଷ୍ଟ
(ଧ ଗୁଣା ମଡ଼ାକୁ ବେଢ଼ିବା ନ୍ୟାୟ—ଅନ୍ୟରୂପ) ହୋଇ ଦଳବଦ୍ଧ ଆସନ୍ତି)—କୌଣସି ଲୋକଙ୍କର ପଦାର୍ଥଦ୍ୱାରା ବହୁ ପ୍ରାର୍ଥୀ ପ୍ରଲୋଭିତ ହୋଇ କୌଣସି ସ୍ଥାନରେ ଜମା ହେଲେ ଏ ନ୍ୟାୟ ବୋଲାଯାଏ—Just like vultures gathering round a carcase in large numbers, being attracted by its scent from a long distance.

ଶାଙ୍କର—ସଂ. ବିଣ—( ଶଙ୍କର+ଅ )—୧। ଶଙ୍କର ବା ଶିବ
Śaṅkara ସମ୍ବନ୍ଧୀୟ—1. Relating to Śiba. ୨। ଶଙ୍କରାଚାର୍ଯ୍ୟ ସମ୍ବନ୍ଧୀୟ (ଯଥା, ଶାଙ୍କର ଭାଷ୍ୟ)—
2. Relating to Śaṅkarācharjya. ବି.—
୧। ବୃଷ—1. Bull. ୨। ଛନ୍ଦୋବିଶେଷ—2. Name of a metre. ୩। ଆର୍ଦ୍ରା ନକ୍ଷତ୍ର (ଶିବ ଏଥିର ଦେବତା)—3. The 6th asterism. ୪। ଏକ ପ୍ରକାର ସୋମ ଲତା (ହ୍ର. ଶ.)—
4. A kind of Soma creeper.

ଶାଙ୍କର ଭାଷ୍ୟ—ସଂ. ବି—(କର୍ମଧା)—ଶଙ୍କରାଚାର୍ଯ୍ୟ ପ୍ରଣୀତ ବେଦାନ୍ତ-
Śaṅkara bhāsya ଦର୍ଶନ, ଗୀତା ଓ ଉପନିଷଦ ସମୂହର ଭାଷ୍ୟ ବା ଟୀକା—Commentaries on Bedānta, Bhagbadgitā and Upanishads by Śaṅkarācharya.

ଶାଙ୍କରି—ସଂ. ବି—(ଶଙ୍କର+ଅପତ୍ୟାର୍ଥେ. ଇ)—୧। କାର୍ତ୍ତିକେୟ—
Śāṅkari 1 The deity of Kārttikeya. ୨। ଗଣେଶ-
2. The Deity Ganesha. ୩। ଅଗ୍ନି (ହ୍ର. ଶ)—
3. Fire. ୪। ମୁନି ବିଶେଷ (ହ୍ର. ଶ)—4. Name of a sage. ୫। ଶମୀ ବୃକ୍ଷ (ହ୍ର. ଶ)—5. Samī tree (See).

ଶାଙ୍କରୀ—ସଂ. ବି—( ଶଙ୍କର+ଅ+ଈ )—ଶିବଙ୍କ ଦ୍ୱାରା କର୍ତ୍ତୃକ
Śāṅkarī ଅକ୍ଷରମାଳାଙ୍କ ବିଷୟ; ସଂସ୍କୃତ ବ୍ୟାକରଣର ଅକ୍ଷର ସମ୍ବନ୍ଧୀୟ ୧୪ ସୂତ୍ର (ହ୍ର. ଶ)—The 14 aphorisms about the alphabets in Sanscrit grammar.

ଶାଙ୍କିତ—ସଂ. ବି—ସୌରଭ ନାମ ଗନ୍ଧ ଦ୍ରବ୍ୟ (ହ୍ର. ଶ)—
Śāṅkita A medicinal scent.

ଶାଙ୍କୁ(ଙ୍କୋ)ଚ(ଛ,ସ,ସି)—ଦେ. ବି—(ସଂ.ଶଙ୍କୋଚ,ସଙ୍କୁଚ)—ସାମୁଦ୍ରିକ
Śāṅku(ṅko)cha(chha,sa,si) ମତ୍ସ୍ୟ ବିଶେଷ—The ray fish; the sea devil; the stingray; Trigon Narnak trurus. [ଦ୍ର—ଏହାର ଦେହ ଚତୁଷ୍କୋଣ ଓ ଚେପ୍‌ଟା;
ଶାଁକୁଚ(ଚ)
ଶାଁକୋଚ(ଚ)
ଶାଁକୋସ(ସି) } —ଅନ୍ୟରୂପ

**সঙ্কুচী** ମେରୁ ହାଡ଼ରୁ ଲମ୍ବ ପୁଚ୍ଛ ବାହାର ଥାଏ; ପୁଚ୍ଛ ଦନ୍ତୁର, ସରୁ ଓ ୩।୪ ହାତ ଦୀର୍ଘ । ଏହାର ପୁଚ୍ଛ ହଲାଣ୍ଟ । ଓଡ଼ିଶାର ଓ ଚଟ୍ଟଗ୍ରାମର ସମୁଦ୍ରରେ ସାଧାରଣତଃ
শাঁকোচ, শঙ্কুস ଏମାନେ ଦେଖାଯାଆନ୍ତି ।]

ଶାଙ୍କୁଡ(ସ) କଣ୍ଟା—ଦେ. ବି—ଶାଙ୍କୁଡ ମାଛର ଦୀର୍ଘ ଓ ଦନ୍ତୁର ଲାଙ୍ଗୁଡ଼—
Sāṅkucha(sa) kanṭā The long barbed tail of ray-
শাঁকুষ কাঁটা; শাঁকুষনেজ **सकुचीका दुम** fish; caudal sting or spine of the ray fish.

ଶାଙ୍କୁଡ ଲାଞ୍ଜ
ଶାଙ୍କୁ(କୋ)ଡ କଣ୍ଟା
ଶାଙ୍କୁ(କୋ)ଡ ଲାଞ୍ଜ —ଅନ୍ୟରୂପ]
ଶାଙ୍କ(କୋ)ଡ(ସ)କଣ୍ଟା
ଶାଙ୍କୁ(କୋ)ଡ(ସ) ଲାଞ୍ଜ

[ ବ୍ର—ଏଥିର ଦେହ ଯାକ କ୍ଷୁଦ୍ର କ୍ଷୁଦ୍ର କଣ୍ଟାରେ ପୂର୍ଣ୍ଣ । ଏହା ଭାର ଚେମେଡ଼ା । ଘୋଡ଼ାର ଶୁଣ୍ଠିକରୁଥିଲେ ଏହା ବ୍ୟବହୃତ ହୁଏ । ଏହାକୁ ଲଞ୍ଜରେ ଚଢ଼ାଇ ଏଥିଦ୍ୱାରା ନାନା ରୋଗରେ ଚାବୁ ଦିଆଯାଏ । କୌଣସି ଜୀବ ଦେହରେ ଶାଙ୍କୁଡ ମାଛ ବ କଣ୍ଟାରେ ଅଘାତ କଲେ ସେ କ୍ଷତ ସହଜରେ ଶୁଖେ ନାହିଁ । ]

ଶାଙ୍କୁଚୀ—ସଂ. ବି—ଶାଙ୍କୁଡ ମାଛ [ହିଂ. ଶ]—
Sāṅkuchi The sting ray fish.

ଶାଙ୍କୁ(କୋ)ଳା(ଳି)—ଦେ. ବି (ସ. ଶୃଙ୍ଖଳ)—୧ । ଧାତୁ ଅବର ମୁଦ୍ରା ଯୁକ୍ତ ଶୃଙ୍ଖଳ—1. Chain.
Sāṅku(ṅko)ḷā(ḷi)
শি(শে)কল **सिकड़ी** [ ବ୍ର—ବୃତ୍ତ ଯାର ଅର୍ଧୀନତା- ଶାଙ୍କୁଳ ବର୍ଜନା—ବ୍ରାଧାନାଥ ମହାଯାତ୍ରା । ] [ ବ୍ର— ଶାଙ୍କୁଳର ମୁଦ୍ରାମାନଙ୍କୁ କଡ଼ି (ଡ଼ି)ବୋଲାଯାଏ ।] ୨ । କଇଦଙ୍କ ହାତ ଗୋଡ଼ରେ ପଡ଼ିବା ବେଡ଼ି—2. Fetters. (ବ୍ର—ଶାଙ୍କୁଳ ଦେଇ ବନ୍ଦୀ ଘରେ, ଅନେକ ଯାଦବ ସଙ୍ଗରେ—ଜଗନ୍ନାଥ ଭାଗବତ ।) ୩ । ସଧବା ସ୍ତ୍ରୀଙ୍କ ହାତରେ
লোহা **चूड़ी** ପିନ୍ଧାଯିବା ଶଙ୍ଖ ବା ବଳୟ (ସଧବାର ଚିହ୍ନ)- 3. Wristlets worn by women having their husbands living. ( ବଙ୍ଗଳାରେ ଏହି ଅର୍ଥରେ 'ଲୋହା' [ଲୌହବଳୟ] ବ୍ୟବହୃତ ହୁଏ ।) ୪ ।
কবাটি **दाँती मुरमुठ** ରୋଗ ବା କାଳ ବା ଅଚେତନ ଅବସ୍ଥା ପୋଷ୍ଟ ହାତର ମୁଠା ଓ ଦାନ୍ତୁପାଟିର ଦୃଢ଼ବଦ୍ଧ ହେବା ଅବସ୍ଥା; ଲାକ—4. The state of the hold of the fist or of the jaws being locked up (due to fits or disease).

ଶାଙ୍କଳା(ଳି) କାଢ଼ିବା—ଦେ. କ୍ରି—ସ୍ୱାମୀର ମୃତ୍ୟୁ ଘଟିଲେ ସ୍ତ୍ରୀର ହାତରେ
Sāṅkuḷa(ḷi) kāṛhibā ଥିବା ଶଙ୍ଖକୁ ହାତରୁ ବାହାର
হাতের লোহা খুলা **चूडीफोड़ना** କରିବା; ଖଣ୍ଡ କରିବା—
To take off the wristlets from the wrist of a woman who has recently become a widow. [ବ୍ର—ସ୍ୱାମୀର ମୃତ୍ୟୁ ହେଲେ ବଧବା ହୋଇଥିବା ସ୍ତ୍ରୀର ହାତର ଶଙ୍ଖକୁ ଗ୍ରାମର ସେ ବଳ, ଭଣ୍ଡାରୁଣୀ ବା ପଣ୍ଡା କାଢ଼େ ।]

ଶାଙ୍କୁଳା(ଳି) ଦେବା—ଦେ. କ୍ରି—ଶୃଙ୍ଖଳ ଦ୍ୱାରା ବନ୍ଧନ କରିବା—
Sāṅkuḷa(ḷi) debā To enchain; to bind with fetters.
[ଶାଙ୍କୁଳା(ଳି) ପକା(ଡେ)ଇବା—ଅନ୍ୟରୂପ]
শিকলদেওয়া **कड़ीदेना**

ଶାଙ୍କଳା(ଳି) ପଡ଼ିଯିବା—ଦେ. କ୍ରି—ରୋଗ ବା କାଳ ବା ଅଜ୍ଞାନତା
Sāṅkuḷā(ḷi) paṛijibā ଯୋଗୁଁ ମନୁଷ୍ୟର ହାତ ମୁଠା
কবাটিপড়া **दाँतीलगजाना, मुरमुठलगना** ବା ଦାନ୍ତୁପାଟିର ଜାକ ପଡ଼ିଯିବା—The locking up of the clasp of the hand or of the jaws (due to fit etc).

ଶାଙ୍କୁଳିବା—ଦେ. କ୍ରି ( ଓଡ଼ିଆ ଶାଙ୍କୁଳ ଶବ୍ଦରୁ ନାମଧାତୁ )—ଶୃଙ୍ଖଳରେ
Sāṅkuḷibā ବାନ୍ଧିବା—To enchain. (ବ୍ର—ସାଙ୍ଗିକି
শিকলে বাঁধা **सिकड़ी बाँधना** ଶାଙ୍କୁଳଥିଲେ ନୃପର ଶାମ୍ଭିଳ— ଅଚୀ. ବ୍ରହ୍ମକରୁପଣ ଗୀତା )

ଶାଙ୍କୋଳି—ଦେ. ବି. (ସଂ. ଶୃଙ୍ଖଳ)—ବେଡ଼ି; ଶିକୁଳି—
Sāṅkoḷi শিকল **सिकड़ी (स्त्री)** Chain; fetter.
[ବ୍ର—ସ୍ୱାର୍ଥାନ୍ଧ ବୃଦ୍ଧିକେ, ଉଚ୍ଚବେ ସ୍ୱଦୁଚ୍ଚେ ପୁଣି ସ୍ୱାର୍ଥର ଶାଙ୍କୋଳି, ଭାରତର ଗଳଦେଶେ—ରାଧାନାଥ--ମହାଯାତ୍ରା]

ଶାଙ୍କୋଳି ଦେବା—ଦେ. କ୍ରି—ଶୃଙ୍ଖଳା ଦ୍ୱାରା ବନ୍ଧନ କରିବା—To
Sāṅkoḷi debā শিকল দেওয়া **सिकड़ी देना** enchain.
[ବ୍ର—ବଳା ଦୋଷରେ ଚିକ୍ଲିଳ ଛଳେ ଶାଙ୍କୋଳ ଦିଏ ଲୋକ । ଭଞ୍ଜ. ବୈଦେହୀଶବିଳାସ]

ଶାଙ୍ଖ—ସଂ ବିଣ. (ଶଙ୍ଖ+ଅ)—୧ । ଶଙ୍ଖ ସମ୍ବନ୍ଧୀୟ—1. Relating
Sāṅkha to conch. ୨ । ଶଙ୍ଖରେ ନିର୍ମିତ—2. Made of conch. ସଂ ବି—ଶଙ୍ଖଧ୍ୱନି (ହି. ଶ)—The sound of blowing of conch.

ଶାଙ୍ଖାରି—ସଂ ବି—ଶଙ୍ଖ ବିକ୍ରୟକାରୀ ଜାତି (ହି.ଶ)—A caste of
Sāṅkhāri Hindus selling conch shells.

ଶାଙ୍ଖିକ—ସଂ ବି. ପୁଂ—(ଶଙ୍ଖ+ଶାଦକାର୍ଥେ ଇକ)—୧ । ଶଙ୍ଖ ବଣିକ;
Sāṅkhika ଶଙ୍ଖାରି—1. A dealer of conch shells and conch shell ornaments. ୨ । ଶଙ୍ଖ ବଜାଇବା ବ୍ୟକ୍ତି ( ହି.ଶ )—2. A blower of
(ଶାଙ୍ଖିକୀ—ସ୍ତ୍ରୀ) conch. ସଂ. ବିଣ—୧ । ଶଙ୍ଖ ସମ୍ବନ୍ଧୀୟ— Relating to conch. ୨ । ଶଙ୍ଖନିର୍ମିତ—Made of conch shells.

ଶାଙ୍ଖୁଳି—ଦେ. ବି. (ସଂ. ଶୃଙ୍ଖଳ)—ବେଡ଼ି; ଶିକୁଳି
Sāṅkhuḷi শিকল **सिकड़ी(स्त्री)** Fetters; chain.
[ବ୍ର—ମଦନ ଚରଣେ ଶାଙ୍ଖୁଳ, ଏଣୁ ନ ପାରେ ପ୍ରାଣୀ ଚଳି ଚଳନ୍ତି—ଭାଗବତ

ଶାଙ୍ଖ୍ୟ—ସଂ ବିଣ. (ଶଙ୍ଖ+ଯ)—୧ । ଶଙ୍ଖ ସମ୍ବନ୍ଧୀୟ—1 Relating
Sāṅkhya to conch. ୨ । ଶଙ୍ଖ ନିର୍ମିତ (ହି.ଶ)—2. Made of conch shell.

ଶାଙ୍ଗ(ଙ୍ଗି)—ଦେ. ବି—(ସଂ ଶଙ୍କୁ; ଶକ୍ତି)—ବେଞ୍ଚ ଭାର ଓ ଲମ୍ବ ପଥରକୁ
Sāṅga(ṅgi) ବା କାଠକୁ ସ୍ଥାନାନ୍ତର କରିବାକୁ ହେଲେ

ଉପାୟ—The four means to be applied by a king towards the enemy. [ଦ୍ର—୧ । ଶାମ=ବନ୍ଧୁତା ସ୍ଥାପନ ୨ । ଦାନ—ଅର୍ଥ ବିତରଣ; ୩ । ଦଣ୍ଡ ଦେବା ଓ ୪ । ଶତ୍ରୁ ମଧ୍ୟରେ ଅନ୍ତର୍ବିବାଦ ଜନ୍ମାଇବା]

ଶାମନ—ସଂ. ବି—(ଶାମି ଧାତୁ+ଭାବ ଅନ)—୧ । ଶାନ୍ତି—1. Peace;
Śāmana tranquility. ୨ । ମାରଣ; ବଧ—2. Killing; slaughter. ୩ । (+କର୍ତ୍ତୃ. ଅନ) ଯମ—3. The God of death. ସଂ. ବିଣ—(ଶମନ+ଅ) ଯମ ସମ୍ବନ୍ଧୀୟ—Relating to Jama.

ଶାମନୀ—ସଂ. ବିଣ. ସ୍ତ୍ରୀ (ଶମନ+ଅ+ସ୍ତ୍ରୀ ଈ)—ଶାମନର ସ୍ତ୍ରୀଲିଙ୍ଗ—
Śāmanī Feminine of Śāmana. ସଂ. ବି, ସ୍ତ୍ରୀ—୧ । (ଶମନଙ୍କ ଅଧିଷ୍ଠିତ ଦିଗ୍) ଦକ୍ଷିଣ ଦିଗ—1. The South. ୨ । (ଶାମନ+ଈ) ଶାନ୍ତି; ସୁସ୍ଥତା (ହ୍ର ଶ) 2. Tranquility; stillness. ୩ । ଅନ୍ତ; ସମାପ୍ତି—3. End; completion. ୪ । ବଧ; ହତ୍ୟା (ହ୍ର. ଶ) 4. Slaughter.

ଶାମଳ—ଦେ. ବିଣ—(ସଂ. ଶ୍ୟାମଳ) ଶ୍ୟାମଳ ଦେଖ—
Śāmaḻa Śyāmaḻa (See).
स्यामल

ଶାମଳ ପକ୍ଷୀ—ଦେ. (ପ୍ରାଚୀନ ଓଡ଼ିଆ) ବି—ଛଞ୍ଚାଣ (ମାଦଳା ପାଞ୍ଜି)—
Śāmaḻa pakshi Hawk.

ଶାମଳିବା—ଦେ. କ୍ରି—ଶ୍ୟାମଳିବା (ଦେଖ)—Śyāmaḻibā (See)
Śāmaḻibā (ଉ—ବେଗେ କଳକଳରେ ଶାମଳେ ଗୃମର—ଉଞ୍ଜ. ବୈଦେହୀଶ ବିଳାସ)

ଶାମଳୀ—ଦେ. ବିଣ. ସ୍ତ୍ରୀ—ଶ୍ୟାମଳୀ (ଦେଖ)—
Śāmaḻi Śyāmaḻi (see)

ଶାମସୁନ୍ଦର—ଦେ. ବି. ପୁଂ.—ଶ୍ୟାମସୁନ୍ଦର ଆଦରରେ ଡାକ ନାମ—
Śāmasundara Name of calling Śyāmasundara
শ্যামসুন্দর श्यामसुंदर [ ଶାମ ଚରଣ, ଶାମବନ୍ଧୁ, ଶାମ ନାମସ୍ଥଳେ—ଅପଭ୍ରଂଶ]

ଶାମା—ଦେ. ବି—୧ । (ସଂ. ଶ୍ୟାମା)—Śyāmā (see) ୨ ।
Śāmā (ସଂ. ଶମ୍ପା) ଶମ୍ପା (ଦେଖ)—2. Śampā (see)
শ্যামা श्यामा सामा श्याम
শ্যামা ୩ । (ସଂ. ଶ୍ୟାମା)—ଶ୍ୟାମା ପକ୍ଷୀ (ଦେଖ)—3. Śyāmā
श्यामा pakshi (See). ୪ । (ସଂ. ଶ୍ୟାମ) (ଅନାଦରାର୍ଥରେ)—ଶ୍ୟାମସୁନ୍ଦରର ଡାକ ନାମ—4. Name for calling Syāma sundara. ବୈଦେ. ବି—(ଅ. ସାମା)—ସାମା (ଦେଖ)—Sāmā (See)

ଶାମା ଢିମା—ଦେ. ବିଣ—ଅସମ୍ପୂର୍ଣ୍ଣରୂପେ ବା ଅବ୍ୟବସ୍ଥିତ ରୂପେ
Śāmā dhimā ସମ୍ପାଦିତ (କର୍ମ)—(any work) Done
यातो रामाढिमा in a haphazard or incomplete or slipshod manner.

ଶାମି—ଦେ. ବି—୧ । (ସଂ. ଶମୀ)—ଛୋଟ ଶମୀ; ଶମି (ଦେଖ)
Śāmi সামী शामी 1. Śami (See)

ଶାମିଆ, ଶାମୁ ଶାମୁଆ } —୨ୟ ଅର୍ଥର ଅପଭ୍ରଂଶ } ୨ । ଶ୍ୟାମସୁନ୍ଦରର ଆଦରସୂଚକ ଡାକ ନାମ—Name for
শ্যামা calling Syāmasundara in fondness.

ଶାମିତ୍ର—ସଂ. ବି—(ଶାମି ଧାତୁ+କରଣ. ଇତ୍ର)—୧ । ଯଜ୍ଞରେ ମାଂସ
Śāmitra ପାକ କରିବା ପାଇଁ ପ୍ରଜ୍ୱାଳିତ ଅଗ୍ନି [ହ୍ର. ଶ.]—1. Fire lighted for dressing meat in a vedic sacrifice. ୨ । (+ଅଧି ଇତ୍ର) ଯଜ୍ଞାଗ୍ନି ପ୍ରଜ୍ୱାଳିତ ହେବା ସ୍ଥାନ (ହ୍ର. ଶ)—2. The place where the above fire is lighted. ୩ । ଯଜ୍ଞୀୟ ପଶୁବଧ ସ୍ଥାନ—3. The place where an animal is sacrificed for Jajña. ୪ । (+ଭାବ. ଅନ) ଯଜ୍ଞ—4. Vedic sacrifice. ୫ । ଯଜ୍ଞ ପାତ୍ର—5. Sacrificial vessel. ୬ । ଯଜ୍ଞାର୍ଥ ପଶୁ ବଧ (ହ୍ର. ଶ)—6. Slaughter of beasts for vedic sacrifice.

ଶାମିବା—ଦେ. କ୍ରି—(ସଂ. ଶମ୍ ଧାତୁ)—୧ । ଉପଶାନ୍ତ ହେବା—
Śāmiba शमा शान्त होना 1. To be pacified. ୨ । ଉପଦ୍ରବରୁ ବିରତ ହେବା—2. To cool down; to abate.

ଶାମୀଲ—ସଂ. ବି—୧ । ଭସ୍ମ; ପାଉଁଶ (ହ୍ର. ଶ)—
Śāmila 1. Ashes. ୨ । ସ୍ରକ୍; ମାଳା (ହ୍ର. ଶ)—2. Garland.

ଶାମୁକ—ଦେ. ବି—(ସଂ. ଶମ୍ବୁକ)—ଶମ୍ବୁକ (ଦେଖ)
Śāmuka শামুক सितुआ Śambuka (See)

ଶାମୁକା—ଦେ. ବି—(ସଂ. ଶମ୍ବୁକ)—୧ । ଶମ୍ବୁକ; ଶୁକ୍ତି—
Śāmukā 1. Oyster; bivalve shell; Ampullaria.
শামুক सितुआ ୨ । ଶିଶୁମାନଙ୍କୁ ଦୁଧ ପିଆଇବା ପାଇଁ ବ୍ୟବହୃତ
ঝিনুক सितुआ ଶମ୍ବୁକାକୃତି ରୌପ୍ୟର ବା ଅନ୍ୟ ଧାତୁର ଗୁଳି—2. A feeding cup shaped like the valve of an oyster and used in feeding infants. [ଦ୍ର—ସଦ୍ୟୋଜାତ ଶିଶୁର ନାଭି ତଳଟାରୁ ଫୁଲର ନାଡ଼ ଛେଦନ କରିବାକୁ ଶାମୁକାର ତୀକ୍ଷ୍ଣ ଧାର ବ୍ୟବହୃତ ହୁଏ । ଜୀବନ୍ତ ଶାମୁକା ଗଣ୍ଡ କଲା ବେଳେ ଦୁଇ ପାଖର ଖୋଳକୁ ଖୋଲାଇ ପାଦ ପରି ମେଲା କରି ତହିଁ ମଧ୍ୟରୁ ଗୋଡ଼ ବାହାର କରି ତହିଁ ସାହାଯ୍ୟରେ ଗୁଲେ । ଶତ୍ରୁ ଆକ୍ରମଣ କଲେ ଗୋଡ଼କୁ ଭିତରକୁ ସଙ୍କୁଚିତ କରି ନେଇ ଦୁଇ ଖୋଳକୁ ରୁଦ୍ଧ କରେ । ଶାମୁକାର ଖୋଳକୁ ଭାଙ୍ଗି ତହିଁ ମଧ୍ୟରେ ଥିବା ମାଂସକୁ ଅନେକ ଦେଶର ଗରିବ ଲୋକେ ସିଦ୍ଧ କରି ଖାଆନ୍ତି । ଏକ ପ୍ରକାର ଶାମୁକାର ଖୋଳର ଭିତରସ୍ଥ ଚାନ୍ଦିରୁ ମୁକ୍ତା ବାହାରେ ।]

ଶାମୁକି—ଦେ. ବି—ଛୋଟ ଶାମୁକା—
Śāmuki A small oyster shell.
ছোটঝিনুক छोटासितुआ

**ଶାମୂଲ୍ୟ**—ସଂ. ବି—ବେକରେ ପକା ଯିବା ଉଲ୍ଲୀ ବସ୍ତ୍ର; କମ୍ଫର୍ଟର୍ (ହି. ଶ)
Sāmulya  A woollen wrapper for the neck; a comforter.

**ଶାମୂଲ**—ସଂ. ବି.—ଉଲ୍ଲୀବସ୍ତ୍ର (ହି. ଶ.)—
Sāmūla  Woollen cloth.

**ଶାମେଇବା**—ଦେ. କି—(ସଂ. ଶମ୍ ଧାତୁ ଣିଚ୍; ଶାମି ଧାତୁ)—
Sāmeibā  ଉପଶାନ୍ତ କରିବା—To pacify; to assuage.
ଶାନ୍ତ କରା  ଶାନ୍ତ କରା

**ଶାମ୍ବ**—ସଂ. ବି—୧ । ଶମ୍ବୁକ; ଶାମୁକା—1. Oyster shell.
Sāmba ୨ । ଜାମ୍ବବତୀଙ୍କ ଗର୍ଭଜାତ ଶ୍ରୀକୃଷ୍ଣଙ୍କ ପୁତ୍ର—
2. Name of a son of Srikrushna.
[ଦ୍ର—ଏହାଙ୍କୁ ବଳରାମ ସ୍ନେହପୂର୍ବକ ଶିକ୍ଷା ଦେଇଥିଲେ । ଦୁର୍ଯ୍ୟୋଧନଙ୍କ କନ୍ୟା ଲକ୍ଷ୍ମଣାଙ୍କୁ ଏ ବଳପୂର୍ବକ ହରଣ କରିବାରୁ କୌରବମାନେ ଏହାଙ୍କୁ ପରାସ୍ତ କରି ବନ୍ଦୀ କରିଥିଲେ, କିନ୍ତୁ କୌରବ ସଭା ବଳରାମ ହସ୍ତିନାପୁରକୁ ଯାଇ ଏହାଙ୍କୁ ମୁକ୍ତ କରାଇ ଲକ୍ଷ୍ମଣାଙ୍କ ସଙ୍ଗେ ଏହାଙ୍କର ବିବାହ କରାଇଲେ । ଏ ବଜ୍ରନାଭପୁରକୁ ଯାଇ ପ୍ରଦ୍ୟୁମ୍ନଙ୍କୁ ଶମ୍ବରାସୁର ବଧରେ ସାହାଯ୍ୟ କରିଥିଲେ । ଶ୍ରୀକୃଷ୍ଣଙ୍କ ଅନ୍ୟପୁତ୍ରମାନେ ରଙ୍ଗ ରହସ୍ୟ କରିବା ଉଦ୍ଦେଶ୍ୟରେ ଏହାଙ୍କୁ ନାରୀବେଶ କରି ଏହାଙ୍କ ପେଟରେ ଲୁଗା ତଳେ ଗୋଟିଏ ଲୌହପାତ୍ର ରଖି ତା ଉପରେ ଲୁଗା ଗୁଡ଼ାଇ ଦେବାରୁ ଶାମ୍ବ ଗୋଟିଏ ଅନ୍ତଃସ୍ତ୍ରସବା ନାରୀ ପରି ଦେଖା ଗଲେ । କୁମାରମାନେ ସେଠାରେ ଉପସ୍ଥିତ ବିଶ୍ୱାମିତ୍ର ଆଦି ଋଷିମାନଙ୍କଠାରୁ ନାରୀବେଶଧାରୀ ଶାମ୍ବଙ୍କୁ ନେଇ ଥଟ୍ଟା କରିବା ଉଦ୍ଦେଶ୍ୟରେ ଋଷିମାନଙ୍କୁ ପଚାରିଲେ—ଏ ନାରୀ ଗର୍ଭରୁ ପୁତ୍ର ବା କନ୍ୟା, କିଅଣ ଜାତ ହେବ ? ଋଷିମାନେ କୁମାରମାନଙ୍କ ଧୃଷ୍ଟତା ଜାଣି ପାରି କ୍ରୁଦ୍ଧ ହେଲେ ଓ ଶାପ ଦେଲେ ଯେ, ଏହା ଗର୍ଭରୁ ଏକ ଲୌହ ମୁଷଳ ଜାତ ହେବ ଓ ତାକୁ ଲୌହ ମୁଷଳ ଯଦୁବଂଶକୁ ନାଶ କରିବ । ସକାଳୁ ସତ ଶାମ୍ବଙ୍କ ଗର୍ଭରୁ ଗୋଟିଏ ମୁଷଳ ବାହାରିଲା । କୁମାରମାନେ ଏହାକୁ ନେଇ ମଥୁରାର ରାଜା ଉଗ୍ରସେନଙ୍କ ନିକଟରେ ଉପସ୍ଥିତ ହୋଇ ତାଙ୍କୁ ସମସ୍ତ ସମାଚାର ଜଣାଇଲେ । ସେ କହିଲେ—ଏ ମୂଷଳକୁ ନେଇ ସମୁଦ୍ର ପାଣିରେ ପଙ୍କଡ ପୃଷ୍ଠରେ ଘୋରି ଘୋରି କ୍ଷୟ କର । ତଦନୁସାରେ କୁମାରମାନେ ଏ ମୂଷଳକୁ ପଙ୍କଡରେ ଘଷିବାରୁ ତହିଁରୁ ଉତ୍ପନ୍ନ ଲୌହଚୂର୍ଣ୍ଣ ସମୁଦ୍ର ଜଳରେ ମିଶି ଭାସି ଭାସି ସମୁଦ୍ର ତୀରରେ ଲାଗିଲା ଓ ସେଠାରେ ଏରକାର ବନ (ସନ୍ତରା ବଣ) ଜାତ ହେଲା । ଏତେ ଘୋରି ଘୋରି ସୁଦ୍ଧା ଅବଶେଷରେ ମୂଷଳରୁ ଖଣ୍ଡେ ଲୁହା ବାକି ରହିଗଲା । କୁମାରମାନେ ତାକୁ ଶାଳର ନ କରି ସମୁଦ୍ର ଗର୍ଭକୁ ଫିଙ୍ଗି ଦେଲେ । ତାକୁ ଗୋଟିଏ ମାଛ ଗିଳିଦେଲା । ଜଣେ କେଉଟ ସେ ମାଛକୁ ଜାଲରେ ଧରି ଆଣି ଜାରା ନାମକ ଶବରକୁ ଦେଲା । ମାଛ ପେଟରୁ ସେ ଲୁହା ଖଣ୍ଡି ପାଇ ଜାରାଶବର ସେଥିରେ ଗୋଟିଏ ଶର ତିଆରି କରାଇଲା ଓ ଶବର ଦ୍ୱାରା ନିକ୍ଷିପ୍ତ ସେହି ବାଣରେ ବିଦ୍ଧ ହୋଇ ଶ୍ରୀକୃଷ୍ଣ ନର ଦେହ ତ୍ୟାଗ କଲେ । ତାକୁ ଏରକାବନରେ ଯଦୁବଂଶର କୁମାରମାନେ ହଣାହଣି ହୋଇ ମଲେ । ( ଏ ଚରିତ ଭାଗବତ ୧୧ଶ ସ୍କନ୍ଧରେ ବର୍ଣ୍ଣିତ ହୋଇଅଛି । ) ଶାମ୍ବ ଗୁରୁଜନମାନଙ୍କୁ ଅପମାନ ଦେବାରୁ ସେମାନଙ୍କ ଶାପରେ କୁଷ୍ଠୀ ହେଲେ ଓ ସେ ଶାକଦ୍ୱୀପରୁ ବ୍ରାହ୍ମଣଙ୍କୁ ଅଣାଇ ସୂର୍ଯ୍ୟଙ୍କୁ ପୂଜା କରି ଆରୋଗ୍ୟଲାଭ କଲେ । ଶାମ୍ବ କୋଣାର୍କ ତୀର୍ଥରେ ସୂର୍ଯ୍ୟ ପୂଜା କରୁଥିବା ମହାଭାରତରେ ଉଲ୍ଲେଖ ଅଛି । ଗୋଟିଏ ଉପପୁରାଣର ନାମ ଶାମ୍ବପୁରାଣ । ଏ ଉପପୁରାଣ ନାରଦ ଶାମ୍ବଙ୍କୁ କହିଥିଲେ । ଏହି ପୁରାଣରେ ସୂର୍ଯ୍ୟ ସ୍ତବରାଜସ୍ତୋତ୍ର ଓ ସୂର୍ଯ୍ୟଙ୍କ ଏକବିଂଶତି ନାମ ଅଛି । ]

**ଶାମ୍ବ ଦଶମୀ**—ସଂ. ବି—ପୌଷ ଶୁକ୍ଳଦଶମୀ—The 10th day
Sāmba dasamī of the bright-lunar fortnight of Pausha.

**ଶାମ୍ବ ପୁରାଣ**—ସଂ. ବି—ଉପପୁରାଣ ବିଶେଷ—Name of a minor
Sāmba purāṇa mythology. [ ଦ୍ର—ଏହା ନାରଦ ସୂର୍ଯ୍ୟଭକ୍ତ ଶାମ୍ବଙ୍କୁ କହିଥିଲେ । ]

**ଶାମ୍ବିକ**—ସଂ. ବି (ଶମ୍ବୁ+ଜୀବିକାର୍ଥେ. ଇକ)—ଶଙ୍ଖାରି—A dealer
Sāmbabika in or manufacturer of shell-articles.

**ଶାମ୍ବର**—ସଂ. ବିଣ ( ଶମ୍ବର+ଅ )—ଶମ୍ବର ସମ୍ବନ୍ଧୀୟ—Relating
Sāmbara to Sambara. ସଂ. ବିଣ—୧ । ଶାମ୍ବର ଲବଣ—
1. Salt corlected from the Sambar lake.
୨ । ଲୋଧ୍ର ବୃକ୍ଷ ( ହି. ଶ )—2. Slmplocus Racemosus (tree).

**ଶାମ୍ବର ଶିଳ୍ପ**—ସଂ. ବି—ଇନ୍ଦ୍ରଜାଲ ( ହି. ଶ )—
Sāmbara silpa  Magic.

**ଶାମ୍ବରି**—ଦେ. ବି (ସଂ. ଶାକମ୍ଭରୀ)—୧ । ଶାମ୍ବର ଲବଣ—1. The
Sāmbari salt derived from the Sambar lake of Rajputana. ୨ । ଶମ୍ବର ନାମକ ମୃଗର ଚର୍ମ—
ଶାংভরী  सांभरी  2. The hide of Sambara deer.

**ଶାମ୍ବରିକ**—ସଂ. ବି—୧ । ( ଶାମ୍ବର+ଇକ, କର୍ମାର୍ଥେ ) ଶଙ୍ଖାରି—
Sāmbarika 1. A dealer in shells. ୨ । ( ଶାମ୍ବର +ଇକ ) ଯାଦୁଗର୍—2. Magician.

**ଶାମ୍ବରୀ**—ସଂ. ବି ( ଶମ୍ବର=ଅସୁର ବିଶେଷ+ତତ୍ କୃତାର୍ଥେ. ଅ+
Sāmbarī ସ୍ତ୍ରୀ. ଈ )—୧ । ମାୟା—1. Illusion. ୨ ।
( ଶାମ୍ବରୀ ବିଦ୍ୟା—ଅନ୍ୟରୂପ ) କୁହୁକ ବିଦ୍ୟା; ଇନ୍ଦ୍ରଜାଲ; ମାୟା ବିଦ୍ୟା—2. Magic; sorcery; the black art.

[ ବ୍ର—କଥିତ ଅଛି ଯେ ଶମ୍ବର ଦୈତ୍ୟ ପ୍ରଥମେ ଇନ୍ଦ୍ରଜାଲର ପ୍ରୟୋଗ କରିଥିଲା—ହି ଶ । ] ୩ । ( ସ୍ତ୍ରୀ ) ଯାଦୁକର ସ୍ତ୍ରୀ; କୁହୁକିନୀ ( ହି. ଶ )—3. A female magician. ୪ । ଏକପ୍ରକାର ଚନ୍ଦନ; ଶାମ୍ବର ଚନ୍ଦନ ( ହି. ଶ )—4. A kind of sandal wood. ୫ । ଲୋଧ ( ହି. ଶ )—5. Simplocus Racemosus. ୬ । ମଖାନାମା ଲତା (ହି. ଶ)—6. A kind of wild creeper.

ଶାମ୍ବୁ(ମ୍ବୂ)କ—ସଂ. ବ (ଶମ୍ବୁ[ମ୍ବୂ]କ+ସ୍ୱାର୍ଥେ. ଅ)—ଶମ୍ବୁକ; ଶାମୁକା—
Śambu(mbū)ka Oyster shell.

ଶାମ୍ଭବ—ସଂ. ବଣ.ପୁଂ (ଶମ୍ଭୁ+ଅଣ୍, ଉପାସକାର୍ଥ ଅର୍ଥରେ ଅ)—ଶିବ
Śambhaba ସମ୍ବନ୍ଧୀୟ—Relating to Śiba. ବ—୧ । (ଶାମ୍ଭବୀ–ସ୍ତ୍ରୀ) ଶୈବ; ଶିବ ଉପାସକ—1. A worshipper of Śiba. ୨ । ଶମ୍ଭୁ ପୁତ୍ର—2. The son of Śiba. ୩ । ( ବୈଦ୍ୟକ ) ଦେବଦାରୁ ବୃକ୍ଷ—3. The pine; the cedar tree; Pinus Longifolius. ୪ । ଗୁଗ୍ଗୁଳ—4. Bedellium. ୫ । କର୍ପୂର—5. Camphor. ୬ । ବିଷ ବିଶେଷ—6. A kind of poison. ୭ । ଶିବମଲ୍ଲିକା ବୃକ୍ଷ (ହି ଶ); ଅଗସ୍ତି ଗଛ—7. Sesbania Grandiflora tree.

ଶାମ୍ଭବୀ—ସଂ. ବ ( ଶମ୍ଭୁ+ଈ )—୧ । ଭବାନୀ; ଦୁର୍ଗା; ପାର୍ବତୀ—
Śāmbhabi 1. Durgā; Pārbati. ୨ । ନୀଳଦୁବା—2. A sort of blue grass, Panicum Dactylon. ସଂ. ବଣ. ସ୍ତ୍ରୀ—ଶାମ୍ଭବର ସ୍ତ୍ରୀଲିଙ୍ଗ—Feminine of Śāmbhaba.

ଶାମ୍ଭର—ସଂ. ବ—୧ । ( ନାମ ) ରାଜପୁତନାର ଲବଣ ଉତ୍ପାଦକ
Śāmbhara ଶମ୍ଭର ହ୍ରଦ—1. The salt lake Śambara in Rajaputana. ୨ । ଶାମ୍ଭରୀ ଲବଣ—2. Salt got from Śambhara lake.

ଶାମ୍ଭରି ଲବଣ—ଦେ. ବ ( ସଂ. ଶାକମ୍ଭରୀ )—ରୌମକ ଲବଣ; ଶମ୍ଭର
Śambhari labaṇa ହ୍ରଦରୁ ଉତ୍ପନ୍ନ ଏକପ୍ରକାର ଲୁଣ—
सम्बर लवण A kind of salt extracted from the
सांभर नमक salt lake of Rajaputana.

ଶାମ୍ୟ—ଦେ. ବଣ—ଉପଶାନ୍ତ; ଶାନ୍ତ ଶୀତଳ—Pacified. [ଉ—
Śāmya ଏମନ୍ତେ ପ୍ରଭୁ ବୋଲନ୍ତେ, ଯାଦବ କଲ କର ଶାମ୍ୟ—
शान्त शम ଜଗନ୍ନାଥ. ଭାଗବତ । ] ସଂ. ବ ( ଶମ+ଯ )—୧ । ଶମତା ବା ଶାନ୍ତିର ଭାବ (ହି. ଶ)—1. Conciliation; pacification. ୨ । ବନ୍ଧୁତା; ଗୁରୁସମ୍ବନ୍ଧ ( ହି. ଶ )—2. Relationship; kinship. ୩ । ଶାନ୍ତି ( ହି. ଶ )—3. Peace; tranquility.

ଶାମ୍ୟକର—ଦେ. ବ—ଶୀତଳକର; ଶାନ୍ତକର—Alleviating.
Śāmyakara [ ଉ—ମୋ ଦେହ ତାପ କରାଇ ଶାମ୍ୟକର ଇହସ୍ୱି ଅନାଇ—ପ୍ରାଚୀ. ରସକାଲ୍ଲୋଳ । ]

ଶାମ୍ୟପ୍ରାସ—ସଂ. ବ—ଯଜ୍ଞର ବଳି (ହି: ଶ)
Śāmyaprāsa Victim of a sacrifice.

ଶାମ୍ରାଣୀ—ପ୍ରାଦେ (ଗଞ୍ଜାମ) ବ—ଝୁଣା
Śāmrāṇi Resin.

ଶାୟକ—ସଂ. ବ—(ଶୋ ଧାତୁ=ତୀକ୍ଷ୍ଣ କରିବା+କର୍ମ ଅକ)—୧ ।
Śāyaka ବାଣ; ଶର; ଶର—1. Arrow. ୨ । ଖଡ୍ଗ—2. Sword. [ଉ—ଯବେ କୋଟି କୋଟି ଶାୟକ ଶାୟକ ମସ୍ତକ ପରେ ଲୁଲନ୍ତି । ଭଞ୍ଜ—ବୈଦେହୀଶବିଳାସ ]

ଶାୟିକ—ସଂ. ବ ପୁଂ—ଯେ ଶଯ୍ୟା ଦ୍ୱାରା ଅପଣା ଜୀବିକା ନିର୍ବାହ କରେ
Śāyika A person who ekes out his living by hiring or selling beds or beddings.

ଶାୟିତ—ସଂ. ବଣ.—(ଶୀ ଧାତୁ ଣିଚ=ଶାୟିଧାତୁ=ଶୁଆଇବା+କର୍ମରେ ତ)
Śāyita ୧ । ଯାହାକୁ ଶୁଆଇ ଦିଆଯାଇଥାଏ—1 Caused to (ଶାୟିତା—ସ୍ତ୍ରୀ) sleep; laid to sleep. ୨। ଭୂମିରେ ପକାଯାଇଥିବା 2. Felled to the ground; made to fall; laid down.

ଶାୟିତା—ସଂ ବଣ ସ୍ତ୍ରୀ (ଶାୟିତ+ଆ)-ଶାୟିତର ସ୍ତ୍ରୀଲିଙ୍ଗ—Feminine
Śāyitā of Śāyita ସଂ ବ—ଶୟନ; ଶୋଇବା (ହି. ଶ) Sleeping.

ଶାୟୀ ସଂ ବଣ ପୁଂ—(ଶୀ ଧାତୁ+କର୍ତ୍ତୃ. ଇନ୍; ଅନ୍ୟ ଶବ୍ଦ ସଙ୍ଗେ
Śāyi ସମାସରେ ବ୍ୟବହୃତ, ଯଥା—ଜଳଶାୟୀ, କ୍ଷୀରୋଦଶାୟୀ
(ଶାୟିନୀ—ସ୍ତ୍ରୀ) ଶାୟୀ)—ଯେ ଶୟନ କରେ—(In compound) Sleeping on. [ ଉ—ଦର୍ଭଶାୟୀ ହେଲେ ଶ୍ରୀରାମ ସପ୍ତମ । ରାଧାନାଥ—ଚିଲିକା ।]

ଶାର (ଧାତୁ)—ସଂ—ଦୁର୍ବଳ ହେବା—
Śār (root) To become weak.

ଶାର—ସଂ ବଣ.—(ଶୃ ଧାତୁ=ହିଂସା କରିବା+କର୍ତ୍ତୃ. ଅ; ଶମ୍ଭା ଶାର
Śāra ଧାତୁ+କର୍ତ୍ତୃ ଅ)—୧ । କୃଷ୍ଣ, ରକ୍ତ ଓ ଶୁକ୍ଳ, ଏହିଭଳି ବର୍ଣ୍ଣ ମିଶ୍ରିତ—1 Of mixed colour (black, red and white mixed). ୨ । ନୀଳ ଓ ପୀତ ବର୍ଣ୍ଣ ମିଶ୍ରିତ—2. Of mixed colour ( blue and yellow mixed ) ୩ । ନାନାବର୍ଣ୍ଣ ଯୁକ୍ତ—3. Variegated. ବ.—୧। ହରିଦ୍ବର୍ଣ୍ଣ; ଶାଗୁଆ ରଙ୍ଗ—1. Green colour; emerald. ୨ । ପୀତବର୍ଣ୍ଣ—2. Yellow. ୩। ବାୟୁ—3. The air. ୪। ହିଂସା—4. Envy; malice; hostility. ୫ । ଏକ ପ୍ରକାର ପଶା (ହି. ଶ)—5. A kind of dice. ସ୍ତ୍ରୀ—ଶାରୀ; ମଇନା ପକ୍ଷୀ—The hill-myna bird.

ଶାରଗୁଣା—ଗ୍ରା. ବି. ସ୍ତ୍ରୀ° (ସଂ ଶକୁନ)—ଶକୁନ ପକ୍ଷୀ—
Sāraguṇā शकुन गीध The vulture.
(ଶ ର ଗୁଣୀ)—ସ୍ତ୍ରୀ

ଶାରଗୁଣି—ଦେ. ବି.—(ସଂ ଶ୍ରାବଣ)—ଶାରଦ ଧାନ କିଆରରେ ଜନ୍ମିବା
Sāraguṇi ଏକ ପ୍ରକାର ଲତାଘାସ—A kind of creeping
আগাছা weed growing in paddy fields. [ଦ୍ର—
ଶାଗୁଣି ଘାସ, ଶାଗୁଣି ଘାସ, ଶାଙ୍ଗଣା(ଣି) ଅନ୍ୟରୂପ] ଏହାର ପତ୍ର ବାଇଁଶ ପତ୍ର ପରି । ଏ ଘାସକୁ କିଆରିରୁ ଉପାଡ଼ିଲେ ଏହାର ଅଗ ଛିଣ୍ଡି ଆସେ ଓ ମୂଳ କିଆରିରେ ରହି ପୁଣି ଜନ୍ମିଲେ ଓ ଧାନ କିଆରିଯାକ ମାଡ଼ି ଧାନ ଗଛକୁ ନଷ୍ଟ କରିଦିଏ । ଏହାକୁ ସମ୍ବଲପୁର ଅଞ୍ଚଳରେ ଶର୍‌ବନା ବୋଲି କହନ୍ତି ।]

ଶାରଙ୍ଗ—ସଂ ବି—(ବହୁବ୍ରୀହି; ଶାର=ନାନା ବର୍ଣ୍ଣ ବିଶିଷ୍ଟ+ଅଙ୍ଗ
Sāraṅga ଯାହାର)—୧ । ସାରଙ୍ଗ (ଦେଖ)—1. Sāraṅga (See) ୨ । ମୟୂର—2. Pea-cock. ୩ । ଅବ୍ଜ; ପଦ୍ମ-3. Lotus. ୪ । ଚନ୍ଦ୍ର—4. The moon. ୫ । ମରାଳ; ହଂସ—5. Swan. ୬ । ଶୃଚକ—6. Coccyster, genus Coculus. ୭ । ଗଜ—7 Elephant. ୮। ଭୃଙ୍ଗ—8. Black bee. ୯ । ମରୁବାହନ; ମୃଗ—9. Deer. ୧୦ । ଶୁକ୍ଳପକ୍ଷ ରାତ୍ରି—10. Moonlit night. ୧୧ । ସୁକାନ୍ତି; ଶୋଭା—11. Beauty. ୧୨ ଗୃହ; ବାସ—12. Residence; house. ୧୩ । କୁସୁମ-13. Safflower. ୧୪ । ସିଂହ-14. Lion. ୧୫ କୋକିଳ—15. Cuckoo. ୧୬ । ସାରିସ ପକ୍ଷୀ—16. The white stork or crane. ୧୭ । କର୍ପୂର—17. Camphor. ୧୮ । ଅଗୁରୁ—18. Agalochia ୧୯ । ସୁବର୍ଣ୍ଣ—19. Gold. ୨୦ । ରତ୍ନ—20. Gem. ୨୧ । ବସୁଧା—21. The earth. ୨୨ । ବୀଣା—22. Harp. ୨୩ । ଘନ; ମେଘ—23. Cloud. ୨୪ । ଖଞ୍ଜନ ପକ୍ଷୀ—24. Wagtail (a bird) ୨୫ । ଶଙ୍ଖ-25. Conch. ୨୬ । ମନ୍ମଥଚାପ—26. The bow of Cupid. ୨୭ । ବିଘ୍ନ—27. Obstacle. [ଦ୍ର—ଧ୍ୱନି ମଞ୍ଜରୀ ପୁସ୍ତକରେ ଶାରଙ୍ଗ ଶବ୍ଦର ଉପରଲିଖିତ ଅର୍ଥମାନ ମିଳେ—

"ଅବ୍ଜେ ଚନ୍ଦ୍ରମରାଳଶୃଚକଗଜେ ଭୃଙ୍ଗେ ମରୁବାହନେ,
ଶୁକ୍ଳାରାତ୍ରି ସୁକାନ୍ତି ବାସ କୁସୁମେ ସିଂହେ ପିକେ ସାରସେ,
କର୍ପୂରାଗୁରୁ ହେମ ରତ୍ନ ବସୁଧା ବୀଣା ଘନେ ଖଞ୍ଜନେ,
ଶଙ୍ଖେ ମନ୍ମଥଚାପ ବିଘ୍ନ କଠିନେ ଶାରଙ୍ଗ ଶବ୍ଦ ସ୍ମୃତଃ ।"
'ଶାରଙ୍ଗ' ଶବ୍ଦର କେତେକ ଭିନ୍ନ ଭିନ୍ନ ଅର୍ଥ ଯୁକ୍ତ ଗୋଟିଏ ସଙ୍ଗୀତର ପଦ ଅଛି ।

ଶାରଙ୍ଗରଦ ପଲଙ୍କେ
ଶାରଙ୍ଗ ପଙ୍କିଳ ଅଙ୍କେ
ଶାରଙ୍ଗ ମୁଖୀ ଶାରଙ୍ଗ ଶାରଙ୍ଗରେ ମାରିଲେ ।

ବିଣ—୧ । କଠିନ—1 Hard. ୨ । ନାନାବର୍ଣ୍ଣଯୁକ୍ତ; ଚିତ୍ର—2. Variegated; of mixed colour; mottled; spotted. ଦେ. ବି.—୧ । ଶାରଙ୍ଗୀ
শাবঙ্গ (ଦେଖ)—1. Sāraṅgī (See) ୨ । (ସଂ ଶାର୍ଙ୍ଗ) ବିଷ୍ଣୁଙ୍କ
शारंगी ଧନୁ—2. Name of the bow of Bishṇu.

ଶାରଙ୍ଗକ—ସଂ ବି.—ଏକ ପ୍ରକାର ପକ୍ଷୀ (ହି.ଶ)
Sāraṅgaka A kind of bird.

ଶାରଙ୍ଗ ଧର—ଦେ. ବି—ସାରଙ୍ଗଧର (ଦେଖ)
Sāraṅga dhara Sāraṅga dhara (see)

ଶାରଙ୍ଗ ଯୋଡ଼ି—ଦେ: ବି.—୧ । କଟକର ଦକ୍ଷିଣସ୍ଥ ଗୋଟିଏ କ୍ଷୁଦ୍ର ଗ୍ରାମ
Sāraṅga joṛdi 1. Name of a village to the south of Cuttack. [ଦ୍ର—ଏଠାରେ ଓଡ଼ିଶା ରାଜାଙ୍କର ନଅରର ଭଗ୍ନାବଶେଷ ଦେଖାଯାଏ ।] ୨ । ପୁରୀ-ଜିଲ୍ଲାର ଗ୍ରାମ ବିଶେଷ—2. Name of a village in the district of Puri

ଶାରଙ୍ଗଷ୍ଠା—ସଂ ବି.—୧ । କାକଜଙ୍ଘା (ହି.ଶ)—1. Leea Hirta
Sāraṅgashṭā (plant). ୨ । ଗୁଞ୍ଜା (ହି. ଶ)—2. The seed of Abrus Precatorius.

ଶାରଙ୍ଗଶରଧାରୀ—ଦେ. ବି—ବିଷ୍ଣୁ
Sāraṅgaśaradhārī Bishnu [ଦ୍ର—ବନୋଦୀ ସାରଙ୍ଗରେ ଶାରଙ୍ଗଶରଧାରୀ ଯେ, ଉଞ୍ଜ—ବୈଦେହୀଶବିଳାସ]

ଶାରଙ୍ଗାକ୍ଷୀ—ସଂ ବି. ସ୍ତ୍ରୀ.—ଏଣୀନୟନା; ମୃଗଲୋଚନା—Having
Sāraṅgākshī eyes as graceful as those of a deer.

ଶାରଙ୍ଗୀ -ସଂ ବି.—(ଶାରଙ୍ଗ=ଭୃଙ୍ଗ+ଈ; ଏହାର ଶବ୍ଦ ଭୃଙ୍ଗର
Sāraṅgī ଝଙ୍କାର ପରି ଥିବାରୁ)—ତାରଯୁକ୍ତ ବାଦ୍ୟଯନ୍ତ୍ର ବିଶେଷ [ସା'ର(ରେ)ଙ୍ଗୀ—ଦେ ରୂପ] ଏକପ୍ରକାର ବେହେଲା—A sort of stringed musical instrument; a kind of lute. [ଦ୍ର—ବୀଣାର ତନ୍ତ୍ରମାନ ଅଙ୍ଗୁଳି ଦ୍ୱାରା ବାଜିତ ହୁଏ, କିନ୍ତୁ ଶାରଙ୍ଗୀର ତନ୍ତ୍ରମାନ ବେହେଲାର ଛଡ଼ି ପରି ଧନୁସାକାର ଯଷ୍ଟି ଘର୍ଷଣରେ ବାଜିତ ହୁଏ ।

শাবঙ্গ বাজিয়ে ଦେ. ବି.—ଶାରଙ୍ଗବାଦ୍ୟ ବାଦକ—A person
शारंगी बजानेवाला who plays on the 'Sāraṅgī' instrument.

ଶାରଦ—ସଂ ବିଣ (ଶରଦ୍+ସମ୍ବନ୍ଧ ଅର୍ଥରେ. ଅ)—୧ । ଶରତ୍-
Sārada କାଳୀନ; ଶାରଦୀୟ-1. Autumnal. ୨। ଅପ୍ରତିଭ—
(ଶାରଦା[ଦୀ]-ସ୍ତ୍ରୀ) 2. Confounded. ୩ । ବିନୀତ; ଶାଳୀନ—3. Obedient; humble. ୪ । ନବୀନ; ନୂତନ—4. New. ୫ । ପ୍ରଶସ୍ତ—5. Wide; broad. ୬ । ସାମ୍ବତ୍ସରିକ—6. Annual. ୭ । ଲଜ୍ଜାବାନ୍ (ହି.ଶ)—7. Coy; modest. ବି—୧ । ଶରତ୍‌କାଳ (ଶ୍ରାବଣ ଓ ଅଶ୍ୱିନ ମାସ)—1. Autumn. ୨ । (ଶରଦ୍= ବତ୍ସର+ସ୍ୱାର୍ଥେ. ଅ) ବତ୍ସର; ବର୍ଷ—2. Year. ୩ ।

ପୀଡ଼ା; ରୋଗ—3. Disease. ୪ । ଶରତ୍କାଳୀନ ଧାନ୍ୟ—4. Autumnal paddy. ୫ । ଶରତ୍କାଳୀନ ଶସ୍ୟ ବିଶେଷ—5. A sort of autumnal grain. ୬ । ଶସ୍ୟ—6. Grain; corn. ୭ । ଏକ ଜାତୀୟ ମୁଗ; ମେଥି ମୁଗ; ପୀତ ମୁଦ୍ଗ—7. A kind of bean; yellow variety of Phaseolus Moonga. ୮ । ଶ୍ୱେତ ପଦ୍ମ—8. White lotus. ୯ । ବକୁଳ—9. Mimusops Elengi ( tree ). ୧୦ । ସପ୍ତପର୍ଣ୍ଣୀ; ଛତିଆନା—10. Alstonia Scholaris ( tree ). ୧୧ । ମେଘ (ହ୍ରି. ଶ)—11. Cloud. ୧୨ । କାଶ ତୃଣ (ହ୍ରି. ଶ)—12. Saccharum Spontaneum. ୧୩ । ରୋଗ ବିଶେଷ (ହ୍ରି. ଶ)—13. A kind of disease.

**ଶାରଦ ଚନ୍ଦ୍ର**—ସଂ. ବି (କର୍ମଧା; ଶାରଦ+ଚନ୍ଦ୍ର)—ଶରତ୍କାଳୀନ Śārada chandra ନିର୍ମଳଚନ୍ଦ୍ର; ଶରଚ୍ଚନ୍ଦ୍ର—Clear moon (ଶାରଦଚନ୍ଦ୍ରମା, ଶାରଦ ଶଶୀ—ଅନ୍ୟରୂପ) appearing in autumn nights.

**ଶାରଦ ଧାନ**—ଦେ. ବି (ସଂ. ଶାରଦ+ଧାନ୍ୟ)—ଶରତ୍କାଳରେ Śārada dhāna ବାହାରି ଶୀତକାଳରେ କଟାଯିବା ଧାନ; ଶାଳ ଆମନ ଧାନ ଧାନ—Winter-rice (paddy). [ଦ୍ର—ଏହି ଅଗହନୀ, ଜଡ଼ହନ ଧାନ ପ୍ରାୟ ଉଚ୍ଚ ଜମିରେ ହୁଏ । ବୈଶାଖ ଓ ଜ୍ୟୈଷ୍ଠ ମାସରେ ବୁଣା ହୋଇ ପୁଷ, ମାଘରେ କଟାଯାଏ ଏଥିରେ ସରୁ ମୋଟ ଧାନ ଅଛି । ଏହାର କେତେକ ପ୍ରକାର ଯଥା—

୧ । ଲଘୁ—ଛୋଟଚମ୍ପା, ମୋଟରି, ରଙ୍ଗେଇସିଣା, କଳିଅଳ, ବାଙ୍କୁଆ, ଲଙ୍କା, ବୋଦଲାଚମ୍ପା, ସଅ(ହ)ରି, ଜାଇବା, ବଙ୍କିପାଣି, ପଲସଫୁଲ, ଭୂତମୁଣ୍ଡି, କଣାରୁଅ ।

୨ । ଗୁରୁ—କାଳାଜିର, ନରସିଂହଭୋଗ, ସୁରୁଳ, ବଅଳଭୋଗ, ଦୁର୍ଗାଭୋଗ, ନୃସିଂହଭୋଗ, ମଧୁମାଳତୀ, ବାଇଗଣମାଖୋଇ, ଗଙ୍ଗାବାଲି, ମାଛକଣା, ଧଳାହେଉଟ, ଜଲାହେଉ, ମୁକ୍ତାହେଉ, ଗୋପାଳଭୋଗ, ରଘୁନାଥ, ମକର, କାମୋଦ, ବଅଣାଗୁଣ୍ଡି, ଭୁଲସିଫୁଲ, ବଗପହିଆ, କଳାପହିଆ, ଚମ୍ପା, ତୁଳି, ମେଥିବାସ, ବାସମତୀ, କଳାଜିର, ଜାଲକୁଲୁଆ, ପିମ୍ପୁଡ଼ିବାସ, ସୁବର୍ଣ୍ଣକେତକୀ, ଗୁଆପେଣ୍ଡି ।

୩ । ପାଣିରେ ହେବା ଗୁରୁ ଶାରଦ ଧାନ—

ଖୁବର୍ଣ୍ଣ, ଲଙ୍କା, ବାଲୁଙ୍ଗାମର୍ଦ୍ଦନ, ହରଶଙ୍କର, ଦୁବ, ବୋଇତାଳପହିଆ, କୋଇଲ୍‌ବାଇ, ବଣେଇସିଆଳ, ଖୁଷ୍ଣ, ସଙ୍କୁଚିଆ, ରକ୍ତଚନ୍ଦନ, ବାଉଁଶମୂଳୀ, ହଳଦିଆ ମାଗୁର ।]

**ଶାରଦ ନିଶା**—ସଂ. ବି—ଶରତ୍କାଳୀନ ନିର୍ମଳାକାଶଯୁକ୍ତ ରାତ୍ରି—Śārada niśā Clear and cloudless nights of autumn. (ଶାରଦ ଯାମିନୀ, ଶାରଦ ରଜନୀ, ଶାରଦ ରାତ୍ରି—ଅନ୍ୟରୂପ)

**ଶାରଦ ଯାବନାଳ**—ସଂ. ବି (ବୈଦ୍ୟକ)—ଶରତ୍କାଳରେ ଉତ୍ପନ୍ନ Śārada jābanāla ବାଜରା—A sort of autumnal maize. [ଦ୍ର—ଏହା ମଧୁରରସ, ଶୀତଳ, ଗୁରୁପାକ, ପିଚ୍ଛଳ, ଶ୍ଳେଷ୍ମାବର୍ଦ୍ଧକ, ଶୁକ୍ରଜନକ, ବଳକର ଓ ପୁଷ୍ଟିକର ।]

**ଶାରଦ(ଦୁ,ଦୋ,ଦୌ)ଳି**—ଦେ. ବି—ଶାର୍ଦ୍ଦୂଳ (ଦେଖ) Śārada(du,do,dau)li Śārddūli. (See)

**ଶାରଦା**—ସଂ. ବି. ସ୍ତ୍ରୀ (ଶାରଦ+ଆ)—୧ । ବାଗ୍‌ଦେବୀ; ସରସ୍ୱତୀ—Śāradā 1; The Goddess of learning. ୨ । ଦୁର୍ଗା—2. Goddess Durga. ୩ । ଶ୍ୟାମାଲତା; ଶାରିବା; ସୁଅଁଲଇ—3. Indian sarsaparilla; Hemidesmus Indicus (creeper). ୪ । ବ୍ରାହ୍ମୀ; ଥାଲକୁଡ଼ି ମଣ୍ଡୁକପର୍ଣ୍ଣୀ—4. A sort of plant; Indian pennywort. ୫ । ହିଳମୋଚିକା, ହିଡ଼ିମିଚ୍ଛଶାଗ—5. A sort of aquatic potherb. ୬ । ସ୍ଥଳକମଳ—6. Jonidium Saffruticosum. ୭ । ବୀଣାବିଶେଷ (ହ୍ରି. ଶ)—7. A kind of lute. ୮ । ପ୍ରାଚୀନକାଳର ଲିପିବିଶେଷ—8. A kind of ancient script. ଦେ. ୧ । (ସ୍ତ୍ରୀ) ସ୍ତ୍ରୀଲୋକମାନଙ୍କ ନାମ—1. Name of females. ୨ । (ପୁଂ) ଶାରଦାକୁମାରର ଡାକନାମ—2. Name for calling Śāradākumāra.

শারদা शारदा

**ଶାରଦା କୁମାର**—ସଂ. ବି. ପୁଂ—ସରସ୍ୱତୀ ପୁତ୍ର; ପଣ୍ଡିତ—A learned Śāradā kumāra man. ଦେ. ବି. ପୁଂ—(ଶାରଦା ନନ୍ଦନ—ଅନ୍ୟରୂପ) ପୁରୁଷଙ୍କ ନାମ—A name given to males.

**ଶାରଦା ବିଲ୍**—ବୈଦେ. ବି (ଇଂ)—ହରବିଲାସ ଶାରଦାଙ୍କ ପ୍ରଣୀତ Śāradā bil ୧୯୨୮ ର ବାଲ୍ୟବିବାହ ନିରୋଧ ଆଇନ-(ଶାରଦା ଆଇନ୍—ଦେ. ରୂପ) Imperial Act 19 of 1928 (child-marriage Restraint Act) [ଦ୍ର—ଏହି ଆଇନ ଦ୍ୱାରା ବାଳକ ୧୮ ବର୍ଷରୁ କମ ବୟସରେ ଓ ବାଳିକା ୧୪ ବର୍ଷରୁ କମ ବୟସରେ ବିବାହ କରି ପାରିବେ ନାହିଁ ଏହି ଆଇନ୍‌ର ମାନି ସନ୍ତାନମାନଙ୍କ ବିବାହ ଦେଲେ ଅଭିଭାବକ, ଅଥବା ସାବାଳଗ ବିବାହକାରୀ ବା ବିବାହର ଯୋଗାଡ଼ କରିବା ଲୋକଙ୍କୁ ଏକ ମାସ ଅଶ୍ରମ କାରାଦଣ୍ଡ ଏବଂ ଏକ ହଜାର ଟଙ୍କା ପର୍ଯ୍ୟନ୍ତ ଜରିମାନା ହେବ ]

শারদা আইন(বৌল) शारदा कानुन

**ଶାରଦିକ**—ସଂ. ବି (ଶରତ୍+ଇକ)—୧ । ଶରତ୍‌ଋତୁରେ ହେବା Śāradika ଜ୍ୱର (ହ୍ରି. ଶ)—1. Autumnal fever. ୨ । ରୋଗ (ହ୍ରି. ଶ)—2. Disease. ୩ । ଶ୍ରାଦ୍ଧ (ହ୍ରି.ଶ) 3. Rice-offerings to the manes.

**ଶାରଦୀ**—ସଂ. ବି (ଶାରଦ+ଈ)—୧ । ଶରତ୍ ପୂର୍ଣ୍ଣିମା; କୋଜାଗର Śāradi ପୂର୍ଣ୍ଣିମା; କୁମାରପୂର୍ଣ୍ଣିମା—1. The full moon day of Āświna. ୨ । (ବୈଦ୍ୟକ) ପାଣିଶିଉଳି

ଜଳପିପ୍ପଳୀ—2. Purple Lippia Nodiflora; a kind of 'aquatic creeper. ୩ । ସପ୍ତପର୍ଣ୍ଣୀ ବୃକ୍ଷ; ଛତିଅନା ଗଛ—3. Alstonia Scholaris(tree). ୪ । (ଶର୍+ଈ)—ଅପରାଜିତା (ହି.ଶ)—4. Clitoris flower and creeper. ୫ । ଶ୍ୱେତକମଳ (ହି. ଶ) 5. White lotus. ୬ । ଅନ୍ନ ଓ ଫଳ ଆଦି (ହି. ଶ)- 6. Food grains and fruits. ସଂ. ବଣ. ସ୍ତ୍ରୀ—ଶାରଦର ସ୍ତ୍ରୀଲିଙ୍ଗ—Feminine of Sārada.

ଶାରଦୀୟ—ସଂ. ବଣ (ଶରଦ୍+ଈୟ)—ଶରତ୍କାଳୀନ—
Sāradiya Autumnal.
( ଶାରଦୀୟା—ସ୍ତ୍ରୀ )

ଶାରଦୀୟ ଉତ୍ସବ—ସଂ. ବି—ଶରତ୍କାଳରେ ଅନୁଷ୍ଠେୟ ଉତ୍ସବ—
Sāradiya utsaba Autumnal festival.

ଶାରଦୀୟ ପୂଜା—ସଂ. ବି—ଶରତ୍କାଳୀନ ଦୁର୍ଗାପୂଜା—The wor-
Sāradiya pūjā ship of Durgā held during autumn.
(ଶାରଦୀୟ ମହାପୂଜା—ଅନ୍ୟରୂପ

ଶାରଦୀୟ ପୂର୍ଣ୍ଣିମା—ସଂ. ବି—କୁମାରପୂର୍ଣ୍ଣିମା; ଆଶ୍ୱିନର ପୂର୍ଣ୍ଣିମା—
Sāradiya pūrnnimā The full moon of Aswina.

ଶାରଦ୍ୱତ—ଦେ.ବି (ସଂ. ଶାରଦ୍ୱତ)—କୃପାଚାର୍ଯ୍ୟ—Krupācharjyā
Sāradwata (ଭୁ—ଅର୍ଜୁନ ଶରେ ପୀଡ଼ାପାଇ ଶାରଦ୍ୱତ, ପଡ଼ିଲେ କାଳ ରଥେ ହୋଇଣ मूर्छित—କୃଷ୍ଣସିଂହ ମହାଭାରତ. ଦ୍ରୋଣ]

ଶାରଦ୍ୟ—ସଂ. ବଣ.—( ଶରଦ୍+ଯ )—ଶରତ୍କାଳ ସମ୍ବନ୍ଧୀୟ—
Sāradya Autumnal.

ଶାରି(ରୀ)—ସଂ. ବି—(ଶୃ ଧାତୁ—ବଧ କରିବା+କର୍ତ୍ତୃ. ଇ;)—୧ ।
Sāri(rī) (ପୁଂ)—ଅକ୍ଷ ଗୁଟିକା; ପାଶକ; ପଶା ଖେଳର ଗୋଟି; ପାଶ ଖେଳିବାର ବଳ—1. A chessman; balls of metal, wood or ivory used in the game of dice. ୨ । (ସ୍ତ୍ରୀ)—ମଇନା; ଶାରୀ ପକ୍ଷୀ—2.The myna bird; Gracula Religiosa. ୩ । ବୀଣା ବଜାଇବାର ଯଷ୍ଟି—3. A stick used in tuning the harp. ୪ । (+କର୍ମ ଇ) ଯୁଦ୍ଧ ସମୟରେ ହାତୀ ପିଠିରେ ପକାଯିବା ପଲାଣ—4. A cushion put on the back of a war elephant; the pack saddle of a war-elephant. ୫ । ପ୍ରତାରଣା; ଛଳ—5. Cheating; deception. ୬ । ଭର୍ତ୍ସନା 6. Rebuke; censure. ୭ । ଏକ ପ୍ରକାର ଗୀତ (ହି.ଶ)—7. A kind of song. ଦେ. ବି. (ସ୍ତ୍ରୀ)—
शारी सारिका ସ୍ତ୍ରୀ ଲୋକଙ୍କ ନାମ—A name given to females.

ଶାରିଆ—ଦେ. ବି.—(ସ୍ତ୍ରୀ)—ଶାରି ନାମ୍ନୀ ସ୍ତ୍ରୀର ଡାକ ନାମ—Name
Sāriā for calling a woman named Sāri. ବଣ--
सारिया ଗେହ୍ଲା; ଗେହ୍ଲି—Fondly brought up.

ଶାରିକା—ସଂ. ବି—( ଶାର+କ+ଆ )—୧ । ମଇନା ପକ୍ଷୀ—1.
Sārikā Hill myna. ୨ । ଚତୁରଙ୍ଗ ବା ପଶାଖେଳ (ହି. ଶ)- 2. The game of dice. ୩ । ସାରଙ୍ଗୀ ଆଦି ବଜାଇବା କମାଣୀ (ହି.ଶ)—3. A bow to set stringed instruments to music. ୪ । ବୀଣା ବା ସାରଙ୍ଗୀ ଆଦି ବାଦନ କର୍ମ (ହି.ଶ)—4. Playing on the harp. ୫ । ଦୁର୍ଗା (ହି.ଶ)—5 Durgā.

ଶାରିତ—ସଂ. ବଣ—ରଙ୍ଗିନ୍; ନାନା ବର୍ଣ୍ଣ (ହି.ଶ)
Sārita Multicoloured.

ଶାରି(ରୀ) ଫଳ(ପଟ୍ଟ)—ସଂ. ବି.—ପଶା ଖେଳର ଛକ; ପଶାପାଲି—
Sāri(rī) phala(paṭa) The chessboard; the board in the game of dice.
[ଶାରି(ରୀ)ଫଳକ—ଅନ୍ୟରୂପ]

ଶାରିବା—ସଂ. ବି—(ବୈଦ୍ୟକ)—୧ । ସୁଅଁ ଲଇ; ଶ୍ୟାମାଲତା; କୃଷ୍ଣ
Sāribā ଶାରିବା—1. Indian sarsaparilla ୨। ଚେରିକୁ
ଅ. ସ—ଶ୍ୟାମା, ଚନ୍ଦନଗୋପିକା,] ଲଇ; ଶୁକ୍ଳଶାରିବା (ଲତା); ଅନନ୍ତମୂଳ—2. Indian sarsaparilla; Hemidesmus Indicus. [ଦ୍ରୁ—ଉଭୟ ଶାରିବାର ପତ୍ର ସାମୁଖର ପତ୍ର; କୃଷ୍ଣ ଶୁକ୍ଳ ଶାରିବା ପତ୍ର ଉପରେ ଧଳା ଦାଗ-ମାନ ଥାଏ; ଏଥିର ମୂଳ ଔଷଧରେ ବ୍ୟବହୃତ ହୁଏ ।] ୩ । ଜବାସ; ଦୁରାଲଭା (ହି. ଶ)—Fogonia Arabica (plant).
ଗୋପୀ, ଗୋପବଧୂ ।
শ্যামালতা ত্রুধী
ଓ—ସୁଅଁ ଲଇ
ତେ—ସାଲାପା
ଅନ୍ୟ ସ—ଅନନ୍ତା, ଧବଳା, ଗୋପୀ, ଗୋପକନ୍ୟା, କୃଶୋଦରୀ, ସ୍ଫୋଟା, ଗୋପବଲ୍ଲୀ, ଲତା, ଅସ୍ଫୋଟା, ଚନ୍ଦନା ।
অনন্তমূল अनन्तमूल, उपलसारि
ଓ—ଗୁଅ ପାନ ଲତା, ଚେମେଡ଼ ଲଇ

ଶାରି(ରୀ) ଶୃଙ୍ଖଳା—ସଂ ବି—ପାଶକ ବିଶେଷ; ଏକପ୍ରକାର ପଶାଖେଳ—
Sāri(rī) Śrunkhaḷā A sort of game at dice.

ଶାରି(ରୀ) ଶୃଙ୍ଗ—ସଂ.ବି.—ପଶା ଖେଳିବା ଗୋଟି (ହି.ଶ)—The bits
Sāri (rī) śrunga or chessmen in the game of dice.

ଶାରୀ—ସଂ ବି—୧। ଶାରି (ଦେଖ)—1. Sāri (See) ୨ । କୁଶ ତୃଣ
Sārī (ହି.ଶ)—2.The kuśa grass. ୩ ।ମୁଞ୍ଜ ତୃଣ (ହି.ଶ) Muñja grass. ୪ । ଖେଳିବାର ଗେଣ୍ଡୁ (ହି ଶ) —4. Play ball.

ଶାରୀର—ସଂ ବଣ—(ଶରୀର+ସମ୍ବନ୍ଧାର୍ଥେ ଅ)—୧ । ଶରୀର ସମ୍ବନ୍ଧୀୟ;
Sārīra ଦୈହିକ—Relating to the body; corporal; bodily ୨। ଦେହଜାତ—2. Born of the body. ବି—୧ । ଜୀବାତ୍ମା—1 The Vital Force inside the body. ୨ । ବୃଷ—2 A bull ୩ । ବେଦାନ୍ତସୂତ୍ର 3. A maxim of the Bedānta philosophy; ୪ । ଶରୀର ପ୍ରତି ହେବା ଦୁଃଖ—4 The troubles to which the body is subject. [ଦ୍ରୁ—ଏହା ତିନିପ୍ରକାର, ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ] ।

ଶାରୀରକ- ସଂ ବଣ—(ଶାରୀର+କ )—ଶରୀରରୁ ଉତ୍ପନ୍ନ (ହି. ଶ)—
Sāriraka Born of the body. ସଂ ବି—ବେଦାନ୍ତ ମୀମାଂସା ସମ୍ବନ୍ଧୀୟ ଶଙ୍କରଭାଷ୍ୟ – A commentary on the Bedānta by 'Sankarāchārjya; an enquiry into the nature of the embodied spirit; applied to the famous pantheistic commentary by 'Sankarāchārjya'

ଶାରୀରକ ଭାଷ୍ୟ—ସଂ ବି—ଶାରୀରକ (ଦେଖ)
Sāriraka bhāshya Sāriraka (See)

ଶାରୀରକ ସୂତ୍ର—ସଂ ବି—ବେଦବ୍ୟାସଙ୍କ ରଚିତ ବେଦାନ୍ତ ସୂତ୍ର—
Sāriraka sūtra The aphorisms of Bedānta by Bedabyāsa.

ଶାରୀର ତତ୍ତ୍ୱ—ସଂ ବି—ଶରୀର ସମ୍ବନ୍ଧୀୟ ଜ୍ଞାତବ୍ୟ ବିଷୟ—
Sārira tattwa The principles of physiology.
[ଶାରୀର ବିଧାନ – ଅନ୍ୟରୂପ]

ଶାରୀର ବିଜ୍ଞାନ—ସଂ ବି—ଜୀବ ଶରୀର ସମ୍ବନ୍ଧୀୟ ତତ୍ତ୍ୱଜ୍ଞାପକ ଶାସ୍ତ୍ର—
Sārira bijnāna The science of the body; physiolgy.
ଶାରୀର ବିଦ୍ୟା, ଶାରୀର ବିଧାନ, ଶାରୀର ଶାସ୍ତ୍ର }—ଅନ୍ୟରୂପ

ଶାରୀର ସ୍ଥାନ—ସଂ ବି – ବୈଦ୍ୟକ ତତ୍ତ୍ୱ ବର୍ଣ୍ଣିତ ଶାସ୍ତ୍ର; ଦେହର ଭିନ୍ନ
Sārira sthāna ଭିନ୍ନ ଅଂଶ ସମ୍ବନ୍ଧୀୟ ଶାସ୍ତ୍ର; ଦେହାଂଶ ସ୍ଥାନ ବିଦ୍ୟା—Anatomy.

ଶାରୀରିକ—ସଂ ବଣ—( ଶରୀର+ସମ୍ବନ୍ଧାର୍ଥେ. ଇକ )—୧ । କାୟିକ,
Sāririka ଦୈହିକ; ଶରୀର ସମ୍ବନ୍ଧୀୟ—1. Corporal; bodily. ୨ । ଶରୀରଜାତ; ଦେହରୁ ଉତ୍ପନ୍ନ—2. Born of the body. ବି.—୧ । ଜୀବାତ୍ମା—1. The Vital Essence; vitality; the vital principle of living beings. ୨ । ବେଦାନ୍ତ ସୂତ୍ର—2. The maxims of the Bedānta philosophy.

ଶାରୁକ—ସଂ ବଣ. ପୁଂ—(ଶୃ ଧାତୁ=ହିଂସା କରିବା+କର୍ତ୍ତୃ. ଉକ)
Sāruka ୧ । ହିଂସ୍ର—1. Revengeful; spiteful; mis-
[ଶାରୁକା—ସ୍ତ୍ରୀ] chievous. ୨ । ହତ୍ୟାକର; ଘାତକ—2. Murderous.

ଶାରେଙ୍ଗିବାଉଁଶ—ଦେ. ବି—ଡେଲିଙ୍ଗି ବାଉଁଶ (ଦେଖ)
Sārengi bāunsa Delingi bāunsa (See)

ଶାର୍କ—ସଂ ବି—୧ । ଚିନି; ଶର୍କରା ( ହି. ଶ )—1. Sugar.
Sārka ୨ । (ନାମ) ଗୋତ୍ର ପ୍ରବର୍ତ୍ତକ ଋଷି ବିଶେଷ (ହି. ଶ)—2. Name of a sage who was the progenitor of a clan.

ଶାର୍କକ—ସଂ ବି—୧ । ଦୁଧର ଫେଣ (ହି. ଶ)—1. Froth of
Sārkaka milk. ୨ । ଚିନିର ଖଣ୍ଡ (ହି. ଶ)—2. A ball of sugar. ୩ । ମାଂସର ଖଣ୍ଡ (ହି. ଶ)—3. A lump of meat.

ଶାର୍କର—ସଂ ବଣ—(ଶର୍କରା+ଇଦମର୍ଥେ. ଅ)—୧ । ଶର୍କରାରୁ ଜାତ
Sārkara 1. Produced from sugar. ୨ । ଶର୍କରା ମିଶ୍ରିତ [illegible]—2. Sugared. ୩ । କଙ୍କର ମିଶ୍ରିତ; ଗୋଡ଼ିଆ—3. Gravelly. ୪ । ଦାନାଦାର—4. Crystalline. ବି.—୧ । ମିଶ୍ରି—1. Sugar candy. ୨ । ଦୁଧର ଫେଣ (ହି. ଶ)—2. Foam of milk. ୩ । ଲୋଧ୍ର ବୃକ୍ଷ [ହି. ଶ]—3. Simplocus Racemosus. ୪ । ଗୋଡ଼ିଆ ଭୂମି (ହି. ଶ)—4. Gravelly soil.

ଶାର୍କରକ—ସଂ ବି—(ଶାର୍କର+କ)—୧ । କଙ୍କରମୟ ସ୍ଥାନ (ହି. ଶ)—
Sārkaraka 1. Gravelly soil. ୨ । ଯେଉଁ ସ୍ଥାନରେ ବହୁତ ଚିନି ପ୍ରସ୍ତୁତ ହୁଏ [ହି.ଶ]—2. A place where a large quantity of sugar is manufactured. ସଂ. ବଣ—କଙ୍କରମୟ (ହି. ଶ)—Gravelly.

ଶାର୍କର ମଦ୍ୟ—ସଂ. ବି—ଚିନି ଓ ଧାଇ ଫୁଲରୁ ପ୍ରସ୍ତୁତ ମଦ୍ୟ—
Sārkara madya Wine distilled from sugar and Dhataki flower.

ଶାର୍ଙ୍ଗ—ସଂ. ବଣ—[ଶୃଙ୍ଗ+ସମ୍ବନ୍ଧାର୍ଥେ. ଅ)—୧ । ଶୃଙ୍ଗ ସମ୍ବନ୍ଧୀୟ—
Sārnga 1. Relating to horn. ୨ । ଶୃଙ୍ଗ ନିର୍ମିତ—2. Made of horn. ବି.—୧ । ଧନୁ—1. A bow. ୨ । ବିଷ୍ଣୁଙ୍କ ଧନୁ—2. The bow of Bishnu. ୩ । ଅଦ୍ରକ; ଅଦା—3. Ginger. ୪ । ସାମଗାନ ବିଶେଷ—4 A kind of vedic song.

ଶାର୍ଙ୍ଗକ—ସଂ. ବି ( ଶାର୍ଙ୍ଗ+କ )—୧ । ଧନୁର୍ଦ୍ଧାରୀ ବ୍ୟକ୍ତି—1. A
Sārngaka bowman. ୨ । ପକ୍ଷୀ (ହି.ଶ)—2. Bird.

ଶାର୍ଙ୍ଗଧର—ସଂ. ବି. ପୁଂ (ଶାର୍ଙ୍ଗ+ଧୃ ଧାତୁ+କର୍ତ୍ତୃ. ଅ )—୧ । ବିଷ୍ଣୁ—
Sārngadhara 1. Bishnu. ୨ । ଧନୁର୍ଦ୍ଧାରୀ ବ୍ୟକ୍ତି ( ବିଶ୍ୱକୋଷ )—2. An-archer. ଦେ. ବି. ପୁଂ—ଲୋକଙ୍କ ନାମ—A name given to males.
ଶାର୍ଙ୍ଗଧାରୀ, ଶାର୍ଙ୍ଗଧନ୍ୱା, ଶାର୍ଙ୍ଗଭୃତ୍, ଶାର୍ଙ୍ଗାୟୁଧ } ଅନ୍ୟରୂପ

ଶାର୍ଙ୍ଗପାଣି—ସଂ ବି ( ବହୁବ୍ରୀହି )—୧ । ଧନୁର୍ଦ୍ଧର—1. Archer.
Sārngapāni ୨ । ବିଷ୍ଣୁ—2. Bishnu.

ଶାର୍ଙ୍ଗରବ—ସଂ. ବି. ପୁଂ ( ଶୃଙ୍ଗରବ+ଅ )—ଶୃଙ୍ଗରବ ଋଷିଙ୍କ ଗୋତ୍ରଜ
Sārngaraba ବ୍ୟକ୍ତି—A person descended from Srungaraba sage. [ଦ୍ର—କାଳିଦାସଙ୍କ ଅଭିଜ୍ଞାନ ଶାକୁନ୍ତଳମ୍ ନାଟକରେ ଶକୁନ୍ତଳାଙ୍କ ସଙ୍ଗେ ଦୁଷ୍ମନ୍ତଙ୍କ ରାଜସଭାକୁ କଣ୍ୱଙ୍କର ଯେଉଁ ଶିଷ୍ୟଦ୍ୱୟ ଯାଇଥିଲେ, ତାଙ୍କ ମଧ୍ୟରୁ ଶାର୍ଙ୍ଗରବ ଜଣେ । ]

ଶାର୍ଙ୍ଗଷ୍ଟା(ଷ୍ଠା)—ସଂ. ବି—୧ । କାକଜଙ୍ଘା (ହି.ଶ)—1. Leea Hirta
Sārngashtā(shthā) (plant). ୨ । କାକମାଚି (ବିଶ୍ୱକୋଷ )—2. Nightshade. ୩ । ଲତାକରଞ୍ଜ (ବିଶ୍ୱକୋଷ)—3. Creeping Pongamia. ୪ । ଗୁଞ୍ଜା ( ବିଶ୍ୱକୋଷ )—4. Abrus Precatorus.

୫ । ମହାକରଞ୍ଜ (ହୃ. ଶ)—5. A species of Pongamia.

ଶାର୍ଙ୍ଗୀ—ସ. ବ ପୁଂ (ଶାର୍ଙ୍ଗ+ଇନ୍; ୧ମା. ୧ବ)—୧ । ଧନୁର୍ଦ୍ଧରବ୍ୟକ୍ତି
Sārngi 1. An archer. ୨ । ବିଷ୍ଣୁ—2. Bishnu.
(ଶାର୍ଙ୍ଗିଣୀ—ସ୍ତ୍ରୀ) ସଂ. ବିଣ. ପୁଂ—ଧନୁର୍ଦ୍ଧର—Holding or armed with a bow

ଶାର୍ଦ୍ଦୂଳ—ସ. ବ. ପୁଂ ( ଶୃ ଧାତୁ=ହିଂସା କରିବା+କର୍ତ୍ତୃ. ଦୂଳ )—
Sārddūla ୧ । ବ୍ୟାଘ୍ର; ବାଘ—1. Tiger. ୨ । ରାକ୍ଷସ—
(ଶାର୍ଦ୍ଦୂଳୀ—ସ୍ତ୍ରୀ) 2. Demon. ୩ । ଶରଭ; ଅଷ୍ଟପାଦ କାଳ୍ପନିକ ମୃଗବିଶେଷ—3. A fabled deer having 8 legs. ୪ । ପକ୍ଷୀ ବିଶେଷ—4 A kind of bird. ୫ । ଯଜୁର୍ବେଦର ଏକ ଶାଖା ( ହୃ. ଶ )—5. Name of a branch of the Jajurbeda. ୬ । ଚିତକ ବୃକ୍ଷ ( ହୃ. ଶ )—6. Plumbago Zeylanica ଦେ. ବ—ଶାର୍ଦ୍ଦୂଳ ନାମଧାରୀ ରାକ୍ଷସ—Name of a demon [ ଦ୍ର—ପ୍ରଥମରେ ରାମଚନ୍ଦ୍ର ମର୍କଟ ଓ ଭଲ୍ଲୁକ ସେନାମାନଙ୍କ ସଙ୍ଗରେ ଯେତେବେଳେ ଲଙ୍କାରେ ଅବସ୍ଥାନ କଲେ, ଶୁକ ଓ ସାରଣ ନାମକ ଦୁଇ ମନ୍ତ୍ରୀଙ୍କୁ ଶ୍ରୀରାମଙ୍କ ସୈନ୍ୟ କଳିବାକୁ ରାବଣ ପଠାଇଲା । ସେମାନେ ଲଙ୍କାକୁ ଫେରି ଯାଇ ରାମଙ୍କର ଅସଂଖ୍ୟ ସୈନ୍ୟ ଥିବା କଥା ରାବଣକୁ କହିବାରୁ ରାବଣ ସେମାନଙ୍କ କଥାରେ ଅବିଶ୍ୱାସ କରି ଏହି ରାକ୍ଷସକୁ ପୁଣି ଥରେ ସୈନ୍ୟ କଳିବାକୁ ପଠାଇଲା । ଏହି ରାକ୍ଷସର ବିଶେଷତ୍ୱ ଏହି ଯେ, ସେ କଥାଚାଳକଠାରୁ ଗୋଟିଏ ଅଞ୍ଜନ ପାଇଥିଲା, ସେହି ଅଞ୍ଜନକୁ ଆଖିରେ ଲଗାଇଲେ ସେ ସହସ୍ର ଯୋଜନ ଦୂରରେ ଥିବା ପଦାର୍ଥ ଦେଖି ପାରୁଥିଲା । ଶାର୍ଦ୍ଦୂଳ ଉକ୍ତ ଅଞ୍ଜନ ଲଗାଇ ଲଙ୍କା ପ୍ରାଚୀରରେ ଚଢ଼ି ରାମଚନ୍ଦ୍ରଙ୍କର ସୈନ୍ୟ କଳନା କରିଥିଲା ।] ସଂ. ବି ( ଲକ୍ଷଣାର୍ଥ )—ଶ୍ରେଷ୍ଠ—Chief. [ ଦ୍ର—ଶ୍ରେଷ୍ଠତା ବୁଝାଇବା ପାଇଁ ଏହା ନର ପ୍ରଭୃତି ଶବ୍ଦ ସଙ୍ଗେ ଯୁକ୍ତ ହୁଏ । ଯଥା—ନରଶାର୍ଦ୍ଦୂଳ । ]

ଶାର୍ଦ୍ଦୂଳ କନ୍ଦ—ସ. ବ—ବନ୍ୟପଳାଣ୍ଡୁ ( ହୃ. ଶ )—
Sārddūla kanda Wild onion.

ଶାର୍ଦ୍ଦୂଳ ବିକ୍ରୀଡ଼ିତ—ସ. ବ—୧ । ଊନବିଂଶତ୍ୟକ୍ଷର ଯୁକ୍ତ ସଂସ୍କୃତ
Sārddūla bikrirdita ଛନ୍ଦୋବିଶେଷ—1. A metre of 19 syllables. [ ଦ୍ର—ଏଥିର କ୍ରମ—ମଗଣ, ସଗଣ, ଜଗଣ, ସଗଣ, ତଗଣ, ତଗଣ ଓ ଏକଗୁରୁ ବର୍ଣ୍ଣ । ଏଥିର ଦ୍ୱାଦଶ ଓ ଶେଷାକ୍ଷରରେ ଯତିପାତ ହୁଏ । ଏଥିର ୪ର୍ଥ, ୫ମ, ୭ମ, ୯ମ, ୧୦ମ, ୧୧ଶ, ୧୫ଶ ଓ ୧୮ଶ ବର୍ଣ୍ଣ ଲଘୁ ଓ ଅନ୍ୟ ବର୍ଣ୍ଣମାନ ଗୁରୁ । ଏଥିର ଉଦାହରଣ—ମାର୍ତ୍ତଣ୍ଡୈ ର୍ମୁନୟଶ୍ଚ ଯତ୍ର ବିରତାଃ ପୂର୍ବୈନ୍ଦୁ ବିମ୍ବାନନେ ! ତଦ୍‌ବୃତ୍ତଂ ପ୍ରବଦନ୍ତି କାବ୍ୟରସିକାଃ ଶାର୍ଦ୍ଦୂଳବିକ୍ରୀଡ଼ିତଂ ।"

୨ । ବ୍ୟାଘ୍ରର କ୍ରୀଡ଼ା (ବିଶ୍ୱକୋଷ)—2. The playing frolicing of a tiger.

ଶାର୍ଦ୍ଦୂଳ ଲଳି(ସି)ତ—ସଂ. ବ—ଅଷ୍ଟାଦଶାକ୍ଷରଯୁକ୍ତ ସଂସ୍କୃତ ଛନ୍ଦୋ-
Sārddula lali(si)ta ବିଶେଷ—A metre of 18 syllables. [ଦ୍ର—ଏଥିର ପ୍ରତ୍ୟେକ ଚରଣରେ ଯଥାକ୍ରମେ ମଗଣ, ସଗଣ, ଜଗଣ, ସଗଣ, ତଗଣ ଓ ସଗଣ ଥାଏ (ହୃ. ଶ)]

ଶାର୍ଦ୍ଦୂ(ର୍ଦ୍ଦୋ)ଳୀ—ଦେ. ବ (ସ. ଶାର୍ଦ୍ଦୂଳ; ଏଥିରେ ଶାର୍ଦ୍ଦୂଳର ବା
Sārddū(rddo)li ବ୍ୟାଘ୍ରର ଚିତ୍ର ଚିତ୍ରିତ ହେଉଥିବାରୁ)—
ଶରଦଳ ୧ । କବାଟର ଚଉକାଠ ଉପରେ ବସଥିବା ଚଟ୍ଟାଣପଟା—
ଶାଦୁଳ(ଚ) 1. A plank put over the doorframe over which the upper wall is raised. ୨ କୋଠାର ବା ଖଲଘରର କଡ଼ଗାର ମୁଣ୍ଡରେ ବସଥିବା ପଟା 2. The plate put at the end of rafters. ୩ । ଶଗଡ଼ର ବଢ଼ଲ—3, Part of a bullock cart; the wooden pin passing through the heads of the two poles joined together at the front where the yoke is tied to them.

ଶାର୍ବର –ସ. ବଣ (ଶର୍ବରୀ+ସମ୍ବନ୍ଧାର୍ଥେ. ଅ)—୧ । ରାତ୍ରିସମ୍ବନ୍ଧୀୟ—
Sārbbara 1. Relating to night. ୨ । ରାତ୍ରିକାଳୀନ—2. Nocturnal; nightly. ବ—ଗାଢ଼ ଅନ୍ଧକାର—Deep darkness; utter darkness.

ଶାର୍ବରିକ—ସଂ. ବ (ଶର୍ବରୀ+ଇକ)—ରାତ୍ରି ସମ୍ବନ୍ଧୀୟ (ହୃ. ଶ)
Sārbbarika Nocturnal.

ଶାର୍ବରୀ—ସଂ. ବ—୧ । (ସ୍ତ୍ରୀ) (ଶାର୍ବର+ଈ) ରାତ୍ରି; ରଜନୀ—
Sarbbari 1. Night. ୨ । ଲୋଧ୍ର (ହୃ. ଶ)—2. Simplocus Racemosus. ୩ । (ପୁଂ) (ଶାର୍ବର+ଇନ୍ ୨ୟମା. ୧ବ) ବୃହସ୍ପତିଙ୍କ ୬୦ ସମ୍ବତ୍ସର ମଧ୍ୟରୁ ୩୪ଶ ସମ୍ବତ୍ସର (ହୃ. ଶ)—3. Name of the 34th out of the 60 years of the cycle of the planet Jupiter.

ଶାଲ୍ (ଧାତୁ)—ସଂ—୧ । ଗମନ କରିବା—1. To go. ୨ । ଶ୍ଲାଘା
Sāl (root) କରିବା; ପ୍ରଶଂସା କରିବା—2. To praise.

ଶାଲ୍—ପ୍ରାଦେ (ସମ୍ବଲପୁର) ବ. (ସଂ. ଶିଳା)—ଶିଳ—
Sāl Pestling stone-slab; flat mortar of stone,

ଶାଲ୍‌ପତ୍‌ନି—ପ୍ରାଦେ (ସମ୍ବଲପୁର)—ଖଟାଶପତ୍‌ନି—
Sālpatni Civet cat.

ଶାଲ୍‌ପୁଆ—ପ୍ରାଦେ (ସମ୍ବଲପୁର) ବ. (ସଂ. ଶିଳାପୁତ୍ର)—ଶିଳପୁଅ—
Sālpuā Pestle of stone.

ଶାଳ—ସଂ. ବ (ଶାଲ୍ ଧାତୁ+କର୍ମ. ଅ)—୧ । ସର୍ପମୁଖୀ ଶକଳୀ
Sāla କର୍ଦ୍ଦମରେ ମତ୍ସ୍ୟ ବିଶେଷ—1. A species of scaly
ଗଜାଳ, ଶାଳ fish; Ophecephalus Wrahl; Marulius.
ଶାଳ ମାଛ [ଦ୍ର—ଏହା ଶେଉଳଚାଆଁସ୍ତୁ, ମାଛ ଶେଉଳଠାରୁ ବଡ଼

ବଡ଼ ଓ କୃଷ୍ଣବର୍ଣ୍ଣ । ଏମାନଙ୍କର ଲଞ୍ଜ ଧଳା ଓ ତହିଁରେ କୃଷ୍ଣ ବର୍ଣ୍ଣର ଚକଚକ ଥାଏ । ଏହାକୁ ବ୍ରାହ୍ମଣମାନେ ଖାଆନ୍ତି ନାହିଁ । ଏ ମାଛ ଛଅହାତ ପର୍ଯ୍ୟନ୍ତ ବଢ଼ିବା ଦେଖାଯାଏ ।]
୨ । ଶାଳିବାହନ ରାଜା—2. King Śālibāhana.
୩ । ପ୍ରାଚୀର; ପ୍ରାକାର—3 A wall. ୪ । ବୃହତ୍ ଅରଣ୍ୟ ତରୁ; ସର୍ଜ ବୃକ୍ଷ; ଶାଳୁଆ ଗଛ—4. Shorea Robust; the sal tree, [ଦ୍ର—ଭାରତର ସବୁ ପାର୍ବତ୍ୟ ଜଙ୍ଗଲରେ ଏ ଗଛ ଜନ୍ମେ । ଏହାର ପତ୍ର ଅଶ୍ୱକର୍ଣ୍ଣପତ୍ର ଲମ୍ବ । ଏଥିର ପତ୍ରମାନଙ୍କୁ ଏକତ୍ର ଖଡ଼ିକାରେ ସିଲେଇ କଲେ ଖଲିପତ୍ର ହୁଏ । ଏ ଗଛର ଗଣ୍ଡିରେ ଛେଦ କଲେ ଏଥିର ବାହାରିବା ନିର୍ଯ୍ୟାସ ସବୁ ଝୁଣା ହୁଏ । ଝୁଣାର ସଂସ୍କୃତ ନାମ ରାଳ, ସର୍ଜରସ ।

ଅନ୍ୟ ସଂ. ନାମ – କାର୍ଶ୍ୟ, ଅଶ୍ୱକର୍ଣ୍ଣିକା, ଯକ୍ଷଧୂପ, ସାଳ, ସର୍ଜ, ଅଶ୍ୱକର୍ଣ୍ଣ, ଲତାତରୁ, ଶସ୍ୟ ସମ୍ବର, ଶଙ୍କୁବୃକ୍ଷ ।
शाल
शाल, साल
ତେ—ଏପଚେଟ୍ଟୁ
ତା—କୁଙ୍ଗିଲିୟମ୍
କୋଲ୍—ସର୍ଜୋମ

ଏହି ସର୍ଜରସ କଷାୟରସ ଓ କଫ, କୃମି, ସ୍ୱେଦ, ବ୍ରଣ, ବ୍ରଧ୍ନ, ବଦ୍ରଧି, କର୍ଣ୍ଣରୋଗ ଓ ଯୋନିରୋଗର ଉପଶମକାରକ । ଏ ବୃକ୍ଷର ଶୁଖିଲା ନିର୍ଯ୍ୟାସକୁ ଦହନ ଅଙ୍ଗାରରେ ପକାଇଲେ ଏଥିରୁ ସୁବାସିତ ଧୂମ ବାହାରେ । ଏଥି ପାଇଁ ଏହା ଦେବମନ୍ଦିରରେ ଧୂପରୂପେ ବ୍ୟବହୃତ ହୁଏ । ଝୁଣା ଝୁଣା ତିକ୍ତକଷାୟ, ଶୀତବୀର୍ଯ୍ୟ, ଗୁରୁପାକ, ମଳରୋଧକ, ତ୍ରିଦୋଷନାଶକ ଏବଂ ରକ୍ତଦୁଷ୍ଟ, ଅଗ୍ନିଦଗ୍ଧ କ୍ଷତ, ସ୍ୱେଦ, ଜ୍ୱର, ବ୍ରଣ, ବିସର୍ପ, ବିପାଦିକା, ଭଗ୍ନକ୍ଷତ, ଶୂଳ, ଅତିସାର ଓ ଗ୍ରହଦୋଷର ଉପଶମକାରକ ।.ଏକ ଅଣା ଓଜନ ଝୁଣାଚୂନା ସଙ୍ଗେ ସମାନ ପରିମାଣ ଚିନି ମିଶାଇ ଖାଇଲେ ଆମାଶୟ ରୋଗର ଉପଶମ ହୁଏ । ଝୁଣା ବାର୍ଣ୍ଣିସ୍ ତିଆରି କରିବାରେ ଉପାଦାନରୂପେ ବ୍ୟବହୃତ ହୁଏ ।

ଡାକ୍ତରମାନେ ପରୀକ୍ଷାଦ୍ୱାରା ସ୍ଥିର କରିଅଛନ୍ତି ଯେ ଝୁଣାଚୂନାକୁ ଢିଅରେ ଘୋଳ ପାଣିରେ ମନ୍ଥି ଓ ଦୁଧ ସଙ୍ଗେ ମିଶାଇ ଖାଇଲେ ଶରୀରରେ କାମଶକ୍ତିର ଉଦ୍ଦୀପନା ହୁଏ (ବିଶ୍ୱକୋଷ) । ଶାଳ ଗଛର ଗଣ୍ଡିରେ ଚମଡ଼ା ସଫା ଓ ରଙ୍ଗ କରାଯାଏ । ଗଣ୍ଡିର କ୍ୱାଥରୁ ଏକପ୍ରକାର ନାଲି ଓ କଳା ରଙ୍ଗ ବାହାରେ ।

ଏହାର ଫଳରୁ ଏକପ୍ରକାର ଖାଦ୍ୟୋପଯୋଗୀ ଚୂର୍ଣ୍ଣ ତିଆରି ହୁଏ । ଦୁର୍ଭିକ୍ଷ ସମୟରେ ଲୋକେ ଏହି ଫଳର ଅଞ୍ଚା ଖାଆନ୍ତି ।

ଏହାର କାଠ ଓ ବିଶେଷତଃ ମଞ୍ଜ ଅତ୍ୟନ୍ତ ଶକ୍ତ ଓ ଏଥିରେ ଘରର ଖୁଣ୍ଟ, ଶେଣୀ, କଡ଼ି, ବର୍ଗା, ଚଉକାଠ ପ୍ରଭୃତି ବହୁତ କାମ ହୁଏ ।

ଶାଳ ଗଛର ପତ୍ର ଶୁଖିଗଲେ ବହୁତ ଦିନ ଅବିକୃତ ହୋଇ ରହେ । ଏଥିପାଇଁ ଶାଳ ପତ୍ରକୁ ସିଲେଇ କରି ଖଲି ପତ୍ର ଓ ଡଲୁପତ୍ର କରାଯାଏ । ଡାଳର ଅଗରେ ଫୁଲ ଗୋଛ ହୋଇ ଫୁଟେ । ଫୁଲ ହଳଦିଆ ଓ ସୁବାସ ।]

ଅନ୍ୟ ସଂ. ସର୍ଜକ, ଅଜକର୍ଣ୍ଣ
ମରିଚପତ୍ରକ
बाँजिशाल

୫। ଶାଳୁଆଣି ଗଛ; ଶାଳଭେଦ; ଏକପ୍ରକାର ଶାଳଜାତୀୟ କ୍ଷୁଦ୍ରତର ପତ୍ର ବିଶିଷ୍ଟ ଅରଣ୍ୟ ତରୁ—5, Another kind of timber tree, ୬ । ନଦୀବିଶେଷ (ହ୍ର ଶ)—6. Name of a river. ୭ । ଅସ୍ତ୍ରବିଶେଷ; ଅପରାଧୀକୁ ଦଣ୍ଡ ଦେବାପାଇଁ ବ୍ୟବହୃତ ଶୂଳବିଶେଷ—7. A pointed stake used in thrusting it into the anus of criminals. ୮ । ଦୁଃଖ; ବ୍ୟଥା—8. Misery; agony. ୯ । ବୃକ୍ଷ (ହ୍ର. ଶ) 9. Tree. ୧୦ । ବୃକାସୁରର ଏକ ପୁତ୍ର (ହ୍ର ଶ)- 10. Name of a son of demon Bṛuka. ୧୧ । ଝୁଣା (ହ୍ର ଶ)—11. Resin. ୧୨ । ପୀତଶାଳ; ପିଆଶାଳ (ଗଛ) (ହ୍ର ଶ)—12. The Indian Kino tree; Pentaptera Tomentosa.

शाल साल ଦେ. ବି.—(ସଂ ଶାଳା)—୧ । ଅଶ୍ୱାଦିଙ୍କ ରହିବାର ଘର—1. A shed for horse, sheep etc. [ଯଥା—ଘୋଡ଼ାଶାଳ, ମେଣ୍ଢାଶାଳ ଇତ୍ୟାଦି ।] ୨ ।
शाल घर କମାର, କୁମ୍ଭାର ଆଦିଙ୍କ ଅଗ୍ନିଶାଳା ବା କାରଖାନା—2. A workshop; a smithy. [ ଯଥା—କମାର ଶାଳ, ବଢ଼େଇଶାଳ, ତେଲିଶାଳ ।] ୩ ।
शाल कोल्हुआरा ଆଖୁ ପେଡ଼ାଯିବାର ସ୍ଥାନ; ଅଙ୍କୁଶାଳ—3. A place where sugarcanes are pressed.
खाली गड्ढा ୪ । ଟେରକୁ ଟେଣାଦ୍ୱାରା ପାଣି ବୁହାଇବା ପାଇଁ ଜଳାଶୟର ଏକ ପାଖରେ ଖୋଳା ହୋଇଥିବା ଖାତ ବା ପହଣି—4. A hole or trench made in a corner of a tank at which water is baled out for irrigation purpose.

ଶାଲ୍—ବୈଦେ. ବି—ସାଲ (ଦେଖ)
Śāla Sāla (See)

ଶାଳକ—ସ. ବି—୧ । ନଳିତା ଶାଗ; ଝୋଟ ଗଛ—
Śāḷake 1. Jute plant. ୨ । ଥଟ୍ଟା କଥା (ହ୍ର. ଶ)—2. Joke.

ଶାଳ କଲ୍ୟାଣୀ—ସ. ବି—(ବୈଦ୍ୟକ)—ଏକପ୍ରକାର ପ୍ରସିଦ୍ଧ ପତ୍ରଶାକ-
Śāḷa kalyāṇi A species of pot-herb ussd in medicine. [ଦ୍ର—ଏହା ମଧୁର ରସ, ଶୀତଳ, ଗୁରୁପାକ, ରୁକ୍ଷ, ଓ ମଳଭେଦକ ।]

ଶାଳିଗ୍ରାମ—ଗ୍ରା. ବି.—(ସ. ଶାଳଗ୍ରାମ)—ଶାଳଗ୍ରାମ ୨ (ଦେଖ)
Śāḷagirāma Śāḷagrāma 2 (See)

ଶାଳଗ୍ରାମ—ସ. ବି—(ଶାଳ=ଶାଳ ବୃକ୍ଷ+ଗ୍ରାମ=ସମୂହ ଅଛି ଯେଉଁଠାରେ)—୧ । ଦେଶ ବିଶେଷ—1. Name
Śāḷagrāma

of a country. ୨ । (ଗଣ୍ଡକୀ ନଦୀ କୂଳରେ ଶାଳ ବୃକ୍ଷ ବହୁଳ ଗୋଟିଏ ଗ୍ରାମର ନିକଟସ୍ଥ ନଦୀ ଗର୍ଭରୁ ଶାଳଗ୍ରାମ ଶିଳା ମିଳୁ ଥିବାରୁ ଏହି ନାମ—ଗଣ୍ଡକୀ ଶିଳା; ବଜ୍ରକୀଟ ଦ୍ୱାରା ଛିଦ୍ରଯୁକ୍ତ ହୋଇଥିବା ଚକ୍ର ଓ ଛିଦ୍ର ବିଶିଷ୍ଟ ଗଣ୍ଡକୀ ନଦୀଗର୍ଭସ୍ଥ ନାନା ବର୍ଣ୍ଣର ଶିଳାପିଣ୍ଡବିଶେଷ—2. A geode stone; name of perforated round pebbles found in the bed of the Gadṇakī river and worshipped as Bishṇu. [ଦ୍ର—ଏହା ବିଷ୍ଣୁଙ୍କର ମୂର୍ତ୍ତିରୂପେ ବିବେଚିତ । ପୁରାଣ ଅନୁସାରେ ଶାଳଗ୍ରାମ ଅଷ୍ଟାଦଶ ପ୍ରକାରର । ଯଥା—

(୧) ଲକ୍ଷ୍ମୀନାରାୟଣ—୧ ଦ୍ୱାର, ୪ ଚକ୍ର, ବନମାଳା, ଗୋଷ୍ପଦ ଚିହ୍ନଯୁକ୍ତ, ମେଘବର୍ଣ୍ଣ ।

(୨) ଲକ୍ଷ୍ମୀ ଜନାର୍ଦ୍ଦନ—୧ ଦ୍ୱାର, ୪ ଚକ୍ର, ବନମାଳା ଚିହ୍ନ ।

(୩) ରଘୁନାଥ—୨ ଦ୍ୱାର, ୪ ଚକ୍ର, ବନମାଳା ଓ ଗୋଷ୍ପଦଚିହ୍ନ ।

(୪) ଦଧିବାମନ—ଦୁଇ ଚକ୍ରଯୁକ୍ତ, ଅତି କ୍ଷୁଦ୍ର, ନବ-ମେଘ ବର୍ଣ୍ଣ, ଗୃହୀ ପକ୍ଷରେ ଶୁଭଦ ।

(୫) ଶ୍ରୀଧର—୨ ଚକ୍ରଯୁକ୍ତ, କ୍ଷୁଦ୍ର, ବନମାଳା ଚିହ୍ନ ଧାରକ ।

(୬) ଦାମୋଦର—୨ ଚକ୍ର, ସ୍ଥୂଳ, ବର୍ତ୍ତୁଳାକାର ।

(୭) ବଳରାମ—୨ ଚକ୍ର, ସୁନ୍ଦର, ବର୍ତ୍ତୁଳାକାର, ଶର, ତୂଣ ଓ ରୂପ ଚିହ୍ନଯୁକ୍ତ ।

(୮) ରାଜରାଜେଶ୍ୱର—୭ ଚକ୍ର, ମଧ୍ୟଭାଗ ବର୍ତ୍ତୁଳ, ତୂଣ ଓ ଛତ୍ର ଚିହ୍ନ ।

(୯) ଅନନ୍ତ—୧୪ ଚକ୍ର, ସ୍ଥୂଳ, ମେଘବର୍ଣ୍ଣ ।

(୧୦) ମଧୁସୂଦନ—୨ ଚକ୍ର, ଚନ୍ଦ୍ରାକାର, ଗୋଷ୍ପଦଚିହ୍ନ, ମେଘବର୍ଣ୍ଣ ।

(୧୧) ଗଦାଧର—୧ ଚକ୍ର, ଅତିକ୍ଷୁଦ୍ର, ଗଦା ଓ ସୁଦର୍ଶନ ଚିହ୍ନ ।

(୧୨) ହୟଗ୍ରୀବ—୨ ଦ୍ୱାର ବା ଛିଦ୍ର, ଚକ୍ର, ଗଦା ଓ ସୁଦର୍ଶନ ଚିହ୍ନ ।

(୧୩) ନରସିଂହ—୨ ଚକ୍ର, ବିକଟ ଅଗ୍ରଭାଗ, ବକ୍ରକୃତାକାର, ଅଶୁଭ, ଅଧିକାରୀର ସଙ୍କଟ ଓ ଗୃହତ୍ୟାଗ ସୂଚକ ।

(୧୪) ଲକ୍ଷ୍ମୀ ନରସିଂହ—୨ ଚକ୍ର, ବିକୃତ, ବନମାଳାଚିହ୍ନ, ସୁଖଦ ।

(୧୫) ବାସୁଦେବ—ଦ୍ୱାରଦେଶରେ ୨ ଚକ୍ର, ସ୍ୱସ୍ତିକ ଆକାର, ସର୍ବକାମପ୍ରଦ, ଶୁଭଦ ।

(୧୬) ପ୍ରଦ୍ୟୁମ୍ନ—ବହୁଛିଦ୍ର, ଦୀର୍ଘଚକ୍ର, ମେଘବର୍ଣ୍ଣ, ସୁଖଦ ।

(୧୭) ସୁଦର୍ଶନ—ଏକଦ୍ୱାରରେ ଏକ ଲଗ୍ନ, ୨ ଚକ୍ର, ବହୁ ସୁଖଦ ।

(୧୮) ଅନିରୁଦ୍ଧ—ବର୍ତ୍ତୁଳାକାର, ପୀତ ବର୍ଣ୍ଣ । ଶାସ୍ତ୍ରରେ ଶାଳଗ୍ରାମ ଶିଳାର ଫଳଶ୍ରୁତି ନିମ୍ନଲିଖିତରୂପେ ବର୍ଣ୍ଣିତ ହୋଇଅଛି । (୧) ଛତ୍ରାକାର—ରାଜ୍ୟପ୍ରଦ । (୨) ବର୍ତ୍ତୁଳାକାର—ଲକ୍ଷ୍ମୀପ୍ରଦ । (୩) ଶକଟାକାର—ଦୁଃଖଦ । (୪) ଶୂଳାଗ୍ରାକାର—ମୃତ୍ୟୁଦ । (୫) ବିକୃତାକାର—ଦାରିଦ୍ର୍ୟଜନକ । (୬) ପିଙ୍ଗଳବର୍ଣ୍ଣ—ହାନିକର । (୭) ଭଗ୍ନଚକ୍ର—ବ୍ୟାଧିକର । (୮) ବିଦୀର୍ଣ୍ଣାକାର—ମୃତ୍ୟୁଦ । 'ଓଁ ନମୋ ନାରାୟଣ' ଏହି ମନ୍ତ୍ରଦ୍ୱାରା ଶାଳଗ୍ରାମଙ୍କ ପୂଜା କରାଯାଏ । 'ଶାଳଗ୍ରାମର ଶୋଇବା ବସିବା ସମାନ' ପ୍ରବଚନ—ଶାଳଗ୍ରାମଶିଳା ବର୍ତ୍ତୁଳାକାର ବା ଗୋଲ ଥିବାରୁ ସବୁ ଅବସ୍ଥାରେ ଶାଳଗ୍ରାମର ଅବସ୍ଥିତି ସମାନ । ସକଳ ଅବସ୍ଥାରେ ସମଭାବଯୁକ୍ତ ବା ବିଶେଷତ୍ୱବିହୀନ ବ୍ୟକ୍ତି ପ୍ରତି ଏ ପ୍ରବଚନ ପ୍ରଯୁକ୍ତ ହୁଏ ।]

**ଶାଳଗ୍ରାମ ଶିଳା**—ସଂ. ବି—ଶାଳଗ୍ରାମ; ଗଣ୍ଡକୀ ନଦୀ ଗର୍ଭରୁ ପ୍ରାପ୍ତ **Sālagrāma silā** ଉପଳ ଖଣ୍ଡ—Balls or pieces of pebble found in the bed of the Gaṇḍaki river; geode stone.

**ଶାଳଗ୍ରାମୋଦକ**—ସଂ. ବି—ଯେଉଁ ଜଳରେ ଶାଳଗ୍ରାମ ଶିଳାଙ୍କୁ ସ୍ନାନ **Sālagrāmodaka** କରା ଯାଇଥାଏ ସେହି ପବିତ୍ର ଜଳ—Sacred water in which a Sālagrāma has been washed [ଦ୍ର—ଏହାକୁ ବିଷ୍ଣୁପାଦୋଦକ ରୂପେ ଭକ୍ତମାନେ ଗ୍ରହଣ କରନ୍ତି ।]

**ଶାଳ ଘର**—ଦେ. ବି—୧ । କମାର, ଅଠାରି, ବଢ଼େଇ ଆଦି ଶିଳ୍ପୀଙ୍କ **Sāla ghara** କର୍ମଗୃହ—1. The workshop of a brazier, carpenter or other artisan. ୨ । ଯେଉଁ ଘରେ ବୋଲୁଅରୁ ଗୁଡ଼ ତିଆରି ହୁଏ—2. A shed where cane juice is boiled to be made into molasses.

**ଶାଲଙ୍କଟଙ୍କଟ**—ସଂ. ବି—(ଶାଲଙ୍କଟଙ୍କଟା + ଅପତ୍ୟାର୍ଥେ ଅ)—ସୁକେଶୀ **Sālankaṭānkaṭa** ରାକ୍ଷସ—A name of demon Sukesī. (ଦ୍ର—ଏ ବିଦ୍ୟୁତ୍‌କେଶୀର ଭାର୍ଯ୍ୟା ଶାଲଙ୍କଟଙ୍କଟାର ଗର୍ଭରୁ ଜନ୍ମ ହୋଇଥିଲା—ବିଶ୍ୱକୋଷ)

**ଶାଲଙ୍କାୟନ**—ସଂ. ବି—୧ । ଜଣେକ ମୁନି—1. Name of a **Sālankāyana** sage. ୨ । ବିଶ୍ୱାମିତ୍ରଙ୍କ ଏକପୁତ୍ର—2. Name of a son of Biswāmitra. ୩ । ଶିବଙ୍କର ଅନୁଚର; ନନ୍ଦୀ—3. The cheaf attendant of 'Siba'.

**ଶାଲଙ୍କାୟନଜା**—ସଂ. ବି. ସ୍ତ୍ରୀ—ବ୍ୟାସଙ୍କ ମାତା ସତ୍ୟବତୀ—**Sālankāyanajā** A name of the mother of Byāsa.

**ଶାଲଙ୍କି**—ସଂ. ବି—ପାଣିନିଙ୍କ ନାମ (ହି. ଶ)—**Sālanki** A name of Pāṇini.

**ଶାଲଙ୍କୀ**—ସଂ. ବି—୧ । ଗୁଡ଼ି (ହି. ଶ)—1. Paper kite.—୨ । **Sālanki** କାଠ ପିତୁଳା (ହି. ଶ)—2. Wooden doll.

ଶା(ଶି)ଲଙ୍କୀ-ବୈଦେ.ବି. (ଆ)—ମୁସଲମାନଙ୍କ ବ୍ୟବହୃତ ମାଟିର ଭୋଜନ
Śā(śi)lanki ପାତ୍ର—An earthen lesh died by
শালঙ্কি সাঁঙ্কি Muslims.

ଶାଲଜ - ସଂ. ବି— ଶାଳ ୧ । (ଦେଖ)
Śāḻaja Śāḻ 1. (See).

ଶାଲ(ଳି)ଞ୍ଚ—ସଂ.ବି— (ବୈଦ୍ୟକ)— ମଦରଙ୍ଗା ଶାଗ—An aquatic
Śāla(li)ñcha creeper; Alternathera Sessilis.
ଅନ୍ୟ ସଂ.— ନାମ ଶାଲଞ୍ଚ, [ଦ୍ର—ଏହା ଅଗ୍ନି ବର୍ଦ୍ଧକ; କଫ ବାତ
ନାଶକ, ଲୌହସାରକ, ପ୍ରଶମକ ତିକ୍ତରସ; ପ୍ଲୀହା, କଫ; ପିତ୍ତ,
ହେଷ୍ଟେ; ଓ ମଦରଙ୍ଗା; କାଶୀ ଓ ଅର୍ଶରୋଗ ନାଶକ ।
ମର୍ଦ୍ଦନ; ଶାଲିଞ୍ଚ, শাঞ্চা শাঞ্চেষাক, শাঞ্চি शालंच शान्तिशाग

ଶାଲ ତରୁ ସଂ. ବି— ଶାଲ ୪ (ଦେଖ)
Śāḻa taru Śāḻa 4 (See)

ଶାଲତି—ସଂ.ବି—(ଶାଲ=ବୃକ୍ଷବିଶେଷ+ତି)— ଶାଲ କାଠରେ ନିର୍ମିତ
Śāḻati କ୍ଷୁଦ୍ର ନୌକା ବିଶେଷ—A sort of amall boat
made of Sal wood.

ଶାଲ ନିର୍ଯ୍ୟାସ—ସଂ. ବି (ଷଷ୍ଠୀତତ୍) — ସର୍ଜରସ; ଝୁଣା —
Śāḻa nirjyāsa Resin.

ଶାଲପର୍ଣ୍ଣୀ—ସଂ. ବି—(ଶାଲ=ଶାଲ ବୃକ୍ଷର ପର୍ଣ୍ଣ=ପତ୍ର ପତ୍ର ଯାହାର, ଶାଲ+ପର୍ଣ୍ଣ+ଈପ୍)—ଶିମ୍ବାଦି ବର୍ଗର
Śāḻaparṇṇi
[ଶାଲପଣୀ (ଲ)— ଦେ. ରୂପ] ଦ୍ୱିଧା ଉଦ୍ଭିଦ ବିଶେଷ—Des-
ଅନ୍ୟ ସଂ.ନାମ—ସ୍ଥିରା, ଦୀର୍ଘମୂଳା, modium Gangeticum;
ସୁଦଳା, ବିପର୍ଣ୍ଣୀ, ପୀବରୀ, ଗୁହା, Hedysarum Gangeticum;
ଏକପର୍ଣ୍ଣୀ, ଧ୍ରୁବା, ବିଦାରିଗନ୍ଧା, Waria Hamosa; Flam-
ଦୀର୍ଘମୂଳା, ପୀତନୀ, ତନ୍ବୀ, ingia Paniculata: Flem-
ସୁଧା, ସୁଭଗା, ଦେବୀ; ଶାଲପର୍ଣୀ ingia Stricta. [ଦ୍ର—
ଶାଲଦଳା, ପୃଶ୍ନିପର୍ଣ୍ଣୀ, ଅଂଶୁମତୀ] ଏହାର ପତ୍ରର ମୂଳ ଗୋଲ ଓ
শালপানি, শালানি ଦୀର୍ଘ । ପତ୍ରର ତଳପାଖ ଲୋମଶ ଓ
सरिवन ଶାଲପତ୍ରର ଆକାର ବିଶିଷ୍ଟ ; ଫୁଲ
ମ. ଶାଲବନ୍, ଭୁଇଁଶେବଗା ଶ୍ୱେତ ଓ ବାଇଗଣୀ । ଏକ ଜାତିର
ତେ. ସୁପ୍ପାକୁପୋର, ଫୁଲ ଧଳା । ଏହାର ଛୁଇଁରେ ୫-୬
ଗିଯାକୁପଚ୍ଚ ଗୋଟି ମଞ୍ଜି ଥାଏ । ଭୂଇଁ ଶୀତଳକେ
ଯାଏ । ଏହା ବୈଦ୍ୟଶାସ୍ତ୍ରୋକ୍ତ ଦଶମୂଳ ପାଚନର ଗୋଟିଏ
ଉପକରଣ ।
ଏହା ପୁଷ୍ଟିକର, ରସାୟନ, ତିକ୍ତମଧୁରରସ ଓ ଗୁରୁପାକ;
ଏହା ବମନ; ଜ୍ୱର, ଶ୍ୱାସ, ଅତିସାର, ଶୋଥ, ତ୍ରିଦୋଷ,
କ୍ଷତ, କାସ ଓ କୃମି ରୋଗରେ ଉପକାରୀ । ଏହା ଅଭାବରେ
ପୃଶ୍ନିପର୍ଣ୍ଣୀ ବ୍ୟବହାର କରିବାର ଉପଦେଶ ଅଛି ।]

ଶାଲ ପହଣୀ— ଦେ. ବି—ଜଳାଶୟରୁ ଛେଣାଦ୍ୱାରା ପାଣି ଉଠାଇବା ପାଇଁ
Śāḻa pahaṇi କୂଳରେ ଖୋଳା ହୋଇଥିବା ଅର୍ଦ୍ଧଚନ୍ଦ୍ରାକାର
ডোবগাড়ি गड्ढा ଗର୍ତ୍ତ (ଯେଉଁ ପହଣୀର ଦୁଇ ପାଖରେ ଲୋକେ
বালি ଠିଆ ହୋଇ ଛେଣାଦ୍ୱାରା ପାଣି ଉପରକୁ ଉଠାନ୍ତି ।)—
A pit grooved into the shore of a tank from which the accumulated water is baled out by persons standing on its rim. [ଦ୍ର— ଛେଣା ତଳେ ନୋଟ ଦେଖ]

ଶାଲବ — ସଂ ବି —ଲୋଧ୍ର (ଦ୍ର. ଶ)
Śāḻaba Simplocos Recemosus.

ଶାଲବଣିଆ(ଆଁ)—ଦେ. ବି.—(ସଂ. ଶାଳ ବନ)-ଶାଳ ଗଛର ବଣ—A
Śāḻa baṇiā(āṅ) forest of Śal trees, (ଭୁଲ—
শালবন सालबन ଚାଲ ବର୍ଣ୍ଣିଅ)

ଶାଲବଣିଆ(ଆଁ) ବାରହା— ଦେ. ବି—ଏକ ପ୍ରକାର ବରାହ—
Śāḻabaniā b(āṅ)ār-hā A species of boar.
শাল বনের বরাহ (ଦ୍ର—ବାରହା ତଳେ ନୋଟ ଦେଖ ।)

ଶାଲ ବାନ୍ଧିବା— ଦେ. କ୍ରି—ଛେଣାରେ ପାଣି ଉଠାଇବା ପାଇଁ ଶାଲ
Śāḻa bāndhibā ପ୍ରସ୍ତୁତ କରିବା—To dig a reser-
ঝালী বাঁধা voir or pit on the shore of a tank for
गड्ढा खोदना baling out water from it. [ଦ୍ର—
ମେଞ୍ଚୁକୁ ଲଗାଇ ଶାଲ ବାନ୍ଧନ୍ତି—ପ୍ରାଚୀ. ସବଚେଗୀତା । ]

ଶାଲ ବେଷ୍ଟ (ରସ)—ସଂ. ବି—ଶାଲନିର୍ଯ୍ୟାସ; ଝୁଣା ( ଶବ୍ଦକୋଷ )—
Śāḻa beshṭa (rasa) Resin.

ଶାଲଭ— ସଂ. ବିଣ ( ଶଲଭ+ଅ )—ଶଲଭ ସମ୍ବନ୍ଧୀୟ—Relating
Śālabha to Śalabha or moth. ସଂ. ବି—ପତଙ୍ଗ
ପାବକକୁ ଲମ୍ଫିବା ଭଳି ବିନା ବିଚାରରେ କୌଣସି ଆପଦକୁ
ଡେଇଁ ପଡ଼ିବା ( ଦ୍ର. ଶ )—Jumping into a
danger without due consideration
(like a moth jumping into a light ).

ଶାଲ ଭେଦ—ସଂ. ବି—ଶାଲ ୫ ( ଦେଖ )
Śāḻa bheda Śāḻa 5 ( See )

ଶାଲଭଞ୍ଜି(ଞ୍ଜୀ)— ସଂ. ବି (ଶାଲ=ଶାଲ କାଠ+ଭଞ୍ଜ୍ ଧାତୁ+ସମ୍ପ୍ରଦାନ
Śāḻabhañja(ñji) ଇ;+ଈ; ଯାହା ପାଇଁ ଶାଲକାଠକୁ
( ଶାଲଭଞ୍ଜିକା—ଅନ୍ୟରୂପ ) ଭାଙ୍ଗନ୍ତି )—୧ । କାଷ୍ଠ
ପୁତ୍ତଳିକା; କାଷ୍ଠଖୋଦିତ ମୂର୍ତ୍ତି; ଯୁଆପାଳି—1. A
wooden doll. ୨ । (+କର୍ତ୍ତୃ. ଅ;+ଈ) ଗଣିକା;
ବେଶ୍ୟା—2. Prostitute; harlot ୩ । ( +
ଅଧିକରଣ. ଅ;+ଈ) କ୍ରୀଡ଼ାବିଶେଷ—3. A kind of
game.

ଶାଲ ମର୍କଟ—ସଂ. ବି— ଡାଳିମ୍ବ ଗଛ—Pomegranate tree.
Śāḻa markaṭa ( ଶାଲ ମର୍କଟକ—ଅନ୍ୟରୂପ )

ଶାଲ ମାଛ— ଦେ. ବି— ଶାଲ ୧ ( ଦେଖ )—Śāḻa 1 ( See )
Śāḻa māchha সাল মাছ शाल मछ

ଶାଲ ମୁହାଁ—ଦେ. ବି—ପାଣିରୁହା ଶାଲର ଯେଉଁଠାରେ ଛେଣାରେ
Śāḻa muhāṅ ରୁହାଯିବା ପାଣି ପ୍ରଥମେ ପଡ଼େ—A place
ঝালী মাথনা where the water baled out is
first deposited.

ଶାଲ ଯୁଗ୍ମ (ଦ୍ୱୟ)—ସଂ. ବି—ଶାଳୁଅ ଓ ପିଅଶାଳ ଗଛ—
Śāḻa jugma (dwaya) The Śāḻa & the Piāśāḻa
trees.

ଶାଲର—ଦେ.ବି (ସଂ.ଶଲ୍ଲକ)—ଏକପ୍ରକାର ବଡ଼ କଣ୍ଟା ଗଛ;ଶଲର—
Śālara A kind of thorny tree. [ଦ୍ର—ଏଥିର କଣ୍ଟା ହିଁ କଣ୍ଟା ପତ୍ର । କେଳ ଅଖାଦ୍ୟ, ପତ୍ରକୁ ବାଟିଦେଇଥିବା ଘାଅରେ ବାନ୍ଧ ଦେଲେ ଘାଅ ଭଲ ହୋଇଯାଏ । ପତ୍ରର ବର୍ଣ୍ଣ ଧଳା । କୋଳ ଅର୍ଥ ଲା କୋଳ ପତ୍ର । ]

ଶାଲ ଶାକ—ସଂ. ବି—ନଳିତା ଶାଗ—
Śāla śāka The leaves of jute plant.

ଶାଲ ଶୃଙ୍ଗ—ସଂ. ବି—କାନ୍ଥର ଅଗ୍ରଭାଗ ( ହ୍ଵ. ଶ )—
Śāla śrunga The top of a wall.

ଶାଲ ସାର—ସଂ. ବି—୧ । ହିଙ୍ଗୁ—1. Assafoetida. ୨ । ଝୁଣା
Śāla sāra —2. Resin. ୩ । ଶାଲ ଗଛ—3. The Śala tree. ୪ । ବୃକ୍ଷ ( ହ୍ଵ. ଶ )—4. Tree.

ଶାଲା—ସଂ. ବି ( ଶାଲ୍ ଧାତୁ=ଗମନ କରିବା+କର୍ମ. ଅ+ଆ; ଯେଉଁଠାକୁ ବିଶ୍ରାମାର୍ଥେ ଗମନ କରାଯାଏ)—୧ । ଆଳୟ; ଗୃହ—
Śālā 1. House; abode. ୨ । ଗୃହୈକଦେଶ; ଗୃହର ଅଂଶ—2. A part of a house. ୩ । କୌଣସି କାର୍ଯ୍ୟରେ ବା ଉଦ୍ଦେଶ୍ୟରେ ବ୍ୟବହୃତ ଗୃହ—3. A room or place used for a particular purpose. [ଯଥା—ପାଠଶାଳା, ଅଗ୍ନିଶାଳା, ଯଜ୍ଞଶାଳା] ୪ । ଘରର ଶାହାଡ଼ି—4. Row of houses ୫ । ବଡ଼ ଡାଳ—5. A big branch. ୬ । ଇନ୍ଦ୍ରବଜ୍ରା ଓ ଉପେନ୍ଦ୍ରବଜ୍ରା ବୃତ୍ତଦ୍ଵୟର ଯୋଜନରେ ରଚିତ ବୃତ୍ତ ବିଶେଷ—6. Name of a mixed Sanscrit metre. [ ଦ୍ର—ଏଥିର ତୃତୀୟ ଚରଣ ଉପେନ୍ଦ୍ରବଜ୍ରା ଓ ବାକି ୩ ଚରଣ ଇନ୍ଦ୍ରବଜ୍ରା ବୃତ୍ତ—ହ୍ଵ. ଶ । ]

ଶାଳା—ସଂ. ବି—ଶାଲା ( ଦେଖ )—Śālā ( See.) ବୈଦେ. ବି
Śālā (ହିନ୍ଦିରୁ ଓ ବଙ୍ଗଳାରୁ ଅନୁକୃତ. ସଂ. ଶ୍ୟାଲକ) —ଶଳା;
ସାଳା ଶ୍ୟାଳକ—Wife's brother. [ ଦ୍ର—ଶଳା ଶବ୍ଦର
ସାଲା ଏହି ଆକାର ଗାଳିରେ ବ୍ୟବହୃତ ହୁଏ । ସାଧାରଣତଃ ଆମ ଦେଶରେ ଦେଖାଯାଏ ଯେ ଶିକ୍ଷିତ ଓ ବଡ଼ ଲୋକେ ରାଗିଗଲେ ହିନ୍ଦୀ ଭାଷାର ଆଶ୍ରୟ ନିଅନ୍ତି । ]

ଶାଲାକ—ସଂ. ବି (ଶଲାକା+ଅ)—୧ । ଚିକିତ୍ସାରେ ବ୍ୟବହୃତ ଅସ୍ତ୍ର—
Śālāka 1. Surgical instrument. ୨ । ଲଟା; ଜଙ୍ଗଲ ( ହ୍ଵ. ଶ )—2. Jungle. ୩ । ଜଙ୍ଗଲ ଜାଳି ଉତ୍ପାଦନ କରାଯିବା ଅଗ୍ନି (ହ୍ଵ. ଶ)—3. Fire produced by setting fire to a jungle.

ଶାଲାକୀ—ସଂ. ବି ପୁଂ (ଶାଲାକ+ଇନ୍)—୧ । ଅସ୍ତ୍ରଚିକିତ୍ସକ—1. A
Śālāki surgeon. ୨ । ଭଣ୍ଡାରୀ—2. A barber. ୩ । ଭଲ୍ଲଧାରୀ ବ୍ୟକ୍ତି—3. A person carrying a Javelin.
(ଶାଲାକିନୀ—ସ୍ତ୍ରୀ)

ଶାଲାକ୍ୟ—ସଂ. ବି—ଆୟୁର୍ବେଦୋକ୍ତ ଅଷ୍ଟାଙ୍ଗ ଚିକିତ୍ସାର ଏକାଙ୍ଗ, ଯହିଁରେ
Śālākya ଶିରୋରୋଗ, ନେତ୍ରରୋଗ, କର୍ଣ୍ଣରୋଗ, ମନ୍ୟା, ଭ୍ରୂ, ଶଙ୍ଖ, କଣ୍ଠ, ଜିହ୍ଵା, ଓଷ୍ଠାଧର, ମୁଖଗହ୍ଵର ପ୍ରଭୃତି ସ୍କନ୍ଧର ଉପରେ ଥିବା ଦେହାଂଶର ରୋଗମାନଙ୍କର ବିବରଣ ଓ ସେମାନଙ୍କ ପ୍ରତୀକାର କର୍ମ ( ଯଥା—ଅଞ୍ଜନ, ନସ୍ୟ, ବର୍ତ୍ତୀ, ଅଭ୍ୟଙ୍ଗ, ମୁଖଗଣ୍ଡୂଷ କ୍ରିୟା ) ବର୍ଣ୍ଣିତ ହୋଇଅଛି—Title of a section of the Hindu medical science dealing with the diseases of the ear, head, eye, throat etc and their treatments.

ଶାଲାଙ୍କୀ—ସଂ. ବି ( ଶାଲ=ଶାଲକାଠ+ଅଙ୍କ୍ ଧାତୁ=ଗମନ
Śālānki କରିବା+ଅପାଦାନେ ଅ+ଈ )—ଶାଲଭଞ୍ଜୀ; କାଠର ପିତୁଳା—A wooden doll.

ଶାଲାଜିର—ସଂ. ବି—ଶରାବ; ଶରା ( ଶବ୍ଦକୋଷ )—
Śālājira A small earthen pan.

ଶାଲାଞ୍ଚି—ସଂ. ବି—ମଦରଙ୍ଗା ଶାଗ ( ଶବ୍ଦକୋଷ )—
Śālānchi An aquatic potherb.

ଶାଲଣ ତୁଙ୍ଗ—ଦେ. ବି—ଉତ୍କଳର ପ୍ରାଚୀନ ତୁଙ୍ଗବଂଶୀୟ ଜଣେ ରାଜା—
Śālāna tunga A king of the Tunga dynasty of ancient Utkala. [ ଦ୍ର—ଏହି ତୁଙ୍ଗ ରାଜାମାନେ ନିଜକୁ ଅଷ୍ଟାଦଶ ଗୋଣ୍ଡ୍ରମାଧିପତି ବୋଲି ଘୋଷଣା କରୁଥିଲେ । ଏମାନେ ଯମଗର୍ତ୍ତ ମଣ୍ଡଳର ରାଜା ଥିଲେ । ଏମାନଙ୍କ ଦାନପତ୍ରରେ ବର୍ଣ୍ଣିତ ଗ୍ରାମମାନ ବଣାଇ, କେନ୍ଦୁଝର, ପାଲଲହଡ଼ା ପ୍ରଭୃତି ରାଜ୍ୟରେ ଚିହ୍ନିତ ହୋଇଅଛି—ଶ୍ରୀମାନ୍ କେଦାରନାଥ ମହାପାତ୍ର । ]

ଶାଲାତୁର—ସଂ. ବି ( ନାମ )—ବର୍ତ୍ତମାନ ଲାହୋର—Modern
Śālātura Lahore. (ଦ୍ର—କାଶ୍ମୀର, ପୁଷ୍କଳାବତୀ, ତକ୍ଷଶିଳା-ପୁରୀ, ଶାଲାତୁର, ହଂସପୁର ଅଧିକାର ସେତେ—ସୁଧାକାଥ. ମହାସାବା ।)

ଶାଲାତୁରୀୟ—ସଂ. ବି—ସାଲାତୁରୀୟ (ଦେଖ)
Śālāturiya Sālāturiya. (See)

ଶାଲାନୀ—ସଂ. ବି—ଶାଲପର୍ଣ୍ଣୀ (ହ୍ଵ. ଶ)
Śālāni Śālaparnni. (See)

ଶାଲାବୃକ—ସଂ. ବି (ଶାଲା=ଗୃହ+ବୃକ=ହେଟା)—୧ । ବାନର—
Śālābruka 1. Monkey. ୨ । କୁକ୍କୁର—2. Dog. ୩ । ବିଡ଼ାଲ—3. Cat. ୪ । ଶିଆଳ; ଶୃଗାଳ—4. Jackal. ୫ । ହରିଣ—5. Stag. ୬ । ଗନ୍ଧ-ଗୋକୁଳ; ଗାନ୍ଧମାର୍ଜାର—6. The civet cat; Viverra Gunda. ୭ । କୋକଶିଆଳ (ହ୍ଵ. ଶ)—7. Fox.

ଶାଲାମୃଗ—ସଂ. ବି—ଶୃଗାଳ; ବିଲୁଆ—
Śālā mruga Jackal.

ଶାଲାର—ସଂ. ବି (ଶାଲା=ଗୃହ+ଋ. ଧାତୁ=ଗମନ କରିବା+
Śālāra କରଣ. ଅ)—୧ । ହସ୍ତୀର ନଖ—1. The nails of an elephant. ୨ । ନିଶୁଣି; ସିଡ଼ି—2. Staircase or ladder. ୩ । ପକ୍ଷୀର ପିଞ୍ଜରା—3. Bird's cage. ୪ । କାନ୍ଥରେ ଲାଗିଥିବା ଖୁଣ୍ଟ (ହ୍ଵ. ଶ)—4. Pillar attached to a wall.

**ଶାଳି**—ସଂ. ବି (ଶାଲ୍ ଧାତୁ=ପ୍ରଶଂସା କରିବା+କର୍ମ. ଇ; ଲୋକେ ଏହାକୁ ପ୍ରଶଂସା କରନ୍ତି)—୧ । ହୈମନ୍ତିକ ବା ଶାରଦ ଧାନ—1. Autumnal paddy; winter paddy. (ଉ—ଯାକୁ ମିଳଇ ଦ୍ରବ୍ୟ ଶାଳି ଅନ୍ନ, ତାର ବଗଡ଼ା ଗୁଡେ କାହିଁ ମନ । ଗୋପାଭୋଗ । ) [ଦ୍ର—
Śāli

ଅନ୍ୟ ସଂ. ନାମ—ମଧୁର, ରୁଚ୍ୟ] ସୁଶ୍ରୁତରେ କଳମଧାନ୍ୟ ବା ବ୍ରୀହିଶ୍ରେଷ୍ଠ, ନୃପପ୍ରିୟ, କଳୁତଚକଳୋପୁନ୍ନ ଧାନ୍ୟକୁ ଧାନ୍ୟୋତ୍ତମ, କେଦାର, ଶାଳି ବୋଲାଯାଇଅଛି ଓ ସୁଭୁମାରକ । ଷଷ୍ଟିକା ଧାନ୍ୟ (ଷାଠିଆ ଧାନକୁ) ଆମନ ଧାନ ଏହି ଶ୍ରେଣୀଭୁକ୍ତ କରାଯାଇଅଛି । ଜଡ଼ହନ, ଅଗହନୀ ଅତଏବ . ଏହା ବଡ଼ଆଳଧାନ ଅଟେ; କିନ୍ତୁ ସୁଶ୍ରୁତରେ ଓ ଅଧୁନାତନ ବ୍ୟବହାରରେ ଏହା ଶାରଦ ବା ହୈମନ୍ତିକ ଧାନ୍ୟ ଅର୍ଥରେ ବ୍ୟବହୃତ ହେଉଅଛି । ଏ ଧାନର ଚାଉଳ ଧଳା ଦେଖାଯାଏ । ଭାବ ପ୍ରକାଶରେ ଧାନ୍ୟକୁ ପାଞ୍ଚ ଶ୍ରେଣୀରେ ବିଭକ୍ତ କରାଯାଇଅଛି । ଶାଳିଧାନ୍ୟ, ବ୍ରୀହିଧାନ୍ୟ, ଶୁକଧାନ୍ୟ, ଶିମ୍ବୀଧାନ୍ୟ ଓ କ୍ଷୁଦ୍ର ଧାନ୍ୟ । ଲଣ୍ଡା ନ ହୋଇ ଯେଉଁ ହୈମନ୍ତିକ ଧାନରୁ ଧଳା ଚାଉଳ ବାହାରେ ତାକୁ ଶାଳିଧାନ୍ୟ ବୋଲାଯାଏ । ଶାଳିଧାନ୍ୟର ପ୍ରକାର ଭେଦ,—ରକ୍ତଶାଳି, କଳମ, ପାଣ୍ଡୁକ, ଶକୁନାହୃତ, ସୁଗନ୍ଧକ, କର୍ଦ୍ଦମକ, ମହାଶାଳି, ଦୂଷକ, ପୁଷ୍ପାଣ୍ଡକ, ମହିଷମସ୍ତକ, ଦୀର୍ଘଶୂକ, କାଞ୍ଚନକ, ହାୟନ, ଲୋଧ୍ରପୁଷ୍ପକ । ଏ ଧାନ୍ୟର ଅନ୍ୟ ସଂସ୍କୃତ ନାମମାନଙ୍କରୁ ଦେଖାଯାଉଛି ଯେ, ସରୁ ଓ ଧଳା ଚାଉଳବିଶିଷ୍ଟ ଧାନ୍ୟ ଶାଳିଧାନ୍ୟ ଅଟେ । ବୈଦ୍ୟକମତରେ ଏହା ମଧୁର କଷାୟରସ, ସ୍ନିଗ୍ଧ, ବଳକର, ସ୍ୱରପ୍ରସାଦକ, ଶୁକ୍ରବର୍ଦ୍ଧକ, ଈଷତ୍ ବାୟୁ ଓ କଫବର୍ଦ୍ଧକ, ଶୀତବୀର୍ଯ୍ୟ, ପିତ୍ତନାଶକ, ମୂତ୍ରବର୍ଦ୍ଧକ, ମଳକାଠିନ୍ୟ ଓ ମଳର ଅଳ୍ପତାକାରକ, ଲଘୁପାକ, ରୁଚକର । ଯେଉଁ ଶାଳିଧାନଗଛକୁ ପ୍ରଥମେ ଡଳ ପକାଇ ପରେ ଜଳରେ ରୁଅଯାଏ ତାକୁ ରୋପିତଶାଳି (ରୁଆ) ଓ ଯାହା ଏକାଥରକେ ମଞ୍ଜିରୁ ଜନ୍ମି କେତରେ ବଢ଼େ ତାକୁ ଦାପିତଶାଳି (ବୁଣା) ବୋଲାଯାଏ—ବିଶ୍ୱକୋଷ ।] ୨ । ଗନ୍ଧମାର୍ଜାର; ଶାଳିଆ ପତନ—2. The civet-cat. ୩ । ସିଂହ—3. Lion. ୪ । ବାସୁଦେବ ଚାଉଳ (ହି. ଶ)—4. A kind of fine paddy with scented rice. ୫ । କଳାଜୀର (ହି. ଶ)—5. Black cumin-seed. ୬ । ରସାଳେକ୍ଷୁ (ବିଶ୍ୱକୋଷ)—6. Juicy sugarcane. ୭ । ପକ୍ଷୀ (ବିଶ୍ୱକୋଷ)—7. Bird.

**ଶାଳିଆ**—ପ୍ରାଦେ (ଅଠମଲ୍ଲିକ) ବି—ଶାବେଙ୍ଗେ ବାଉଁଶ—
Śāliā A species of bamboo,

**ଶାଳିଆ ପ(ପୁ,ପୋ)ତନି**—ଦେ. ବି ( ସଂ. ଶାଳ; ଶାଳାବୃକ )—
Śāliā pa(pu,po)tani ଗନ୍ଧମାର୍ଜାର; ଗନ୍ଧକଗୁଲ; ଖଟ୍ଟାସ—ସଂ. ନାମ—ଗନ୍ଧନକୁଲ, ଗନ୍ଧମାର୍ଜାର, The civet cat; ଖଟ୍ଟାସ । Viverra Gunda; ଗନ୍ଧଗୋକୁଲା, ଭାମ Viverricula Malaccennensis. ଗଂଧ ବିଲାବ [ଦ୍ର—ଏହାର ଦେହରୁ କସ୍ତୁରି ପରି ଏକପ୍ରକାର ମୃଦୁମଧୁର ଗନ୍ଧ ବାହାରେ ଓ ଏହାର ଅଣ୍ଡକୋଷକୁ କାଟିକରି ଲୋକେ ରଖନ୍ତି । ଦୁଷ୍ଟ ବ୍ରଣରେ ଏହି କୋଷକୁ ଘୋରିକରି ଲେପ ଦେଲେ ତାହା ଉପଶାନ୍ତ ହୁଏ । ଏମାନେ ଓଧଙ୍କାଠାରୁ କିନ୍ତୁ ବିଲୁଆଠାରୁ ବଡ଼; ଲୋମ କୃଷ୍ଣ ଓ ପାଣ୍ଡୁର; ମୁହଁ କୋଡ଼ ପରି ଚୋଙ୍ଗା; ଲାଞ୍ଜ ୧୯ ହାତ ପର୍ଯ୍ୟନ୍ତ ଲମ୍ବ । ଲାଞ୍ଜରେ ଧଳା କଳା ପଟ୍ଟ ବା ଶଙ୍ଖାମୁଠିଆ ଚିହ୍ନ ଥାଏ । ଏମାନେ ଫଳ ମୂଳ ଖାଆନ୍ତି ।
ବୈଦ୍ୟଶାସ୍ତ୍ର ଅନୁସାରେ ଏହା ବୀର୍ଯ୍ୟବର୍ଦ୍ଧକ, ରକ୍ତଦୂଷକର । ଏହା କଫ, ବାୟୁ, କଣ୍ଡୁ, କୁଷ୍ଠ, ଘର୍ମ ଓ ଶରୀରର ଦୁର୍ଗନ୍ଧନାଶକ ।]

**ଶାଳିଆ ବାଉଁଶ**—ଦେ. ବି—ଡେଲିଙ୍ଗି ବାଉଁଶ (ଦେଖ)
Śāliā bāunsa Delingi bāunsa (See)

**ଶାଳିକ**—ସଂ. ବି (ଶାଳା+ଇକ)—୧ । ତନ୍ତୀ—1. A weaver
Śālika (Apte). ୨ । ଶୁଳ୍କ—2. Toll; tax (Apte). ୩ । ତନ୍ତୀମାନଙ୍କ ଗ୍ରାମ—A village of weavers (Apte). ସଂ. ବିଣ (ଶାଳି+କ)—ଚାଉଳରୁ ପ୍ରସ୍ତୁତ—Prepared from rice (M. W)

**ଶାଳିକପିଷ୍ଟ**—ସଂ ବି (ଶାଳିକ=ଚାଉଳରୁ ପ୍ରସ୍ତୁତ+ପିଷ୍ଟ)-ଚାଉଳଚୂନା-
Śālika pishta Rice flour (M. W).

**ଶାଳିକା**—ସଂ. ବି (ଶାଳା+କ+ଆ)—୧ । ଆଧାର—1. Receptacle.
Śālikā ୨ । ସାରିପକ୍ଷୀ—2. The myna bird. ୩ । ବଡ଼ାସାରୁ; ଦେଶୀ ଅଳୁ—3. Yam. ୪ । ଶାଳପର୍ଣ୍ଣୀ (ହି. ଶ)—4. Śālaparnni (See) ୫ । ଗୃହ, ଆବାସ (ହି. ଶ)—5. Abode; residence.

**ଶାଳିଗୋପ**—ସଂ. ବି. ପୁ (ଶାଳି+ଗୁପ ଧାତୁ=ରକ୍ଷାକରିବା+କର୍ତ୍ତୃ ଅ)
Śāligopa ଧାନ୍ୟକ୍ଷେତ୍ରରକ୍ଷୀ; ଯେଉଁମାନେ ରାତିରେ
( ଶାଳିଗୋପୀ—ସ୍ତ୍ରୀ ) ଭୁଡ଼ୁଆ କରି ଫସଲ ଜଗନ୍ତି—Persons who watch crops in the night.

**ଶାଳିଞ୍ଚ(ଞ୍ଚୀ)**—ସଂ. ବି—ଶାଳଞ୍ଚ (ଦେଖ)
Śālincha(nchi) Śālancha (See)

**ଶାଳିତ**—ଦେ. ବିଣ (ସଂ. ଶବଳିତ )—ଚର୍ଚ୍ଚିତ—Coloured;
Śālita painted. [ଦ୍ର—ବର୍ଣ୍ଣିବି ବିଧୁଁ ଶାଳିତ
ଚିତ୍ରିତ ଚିକ୍ରିତ ସାଧୁ ହଙ୍ଗୁଳ କଲା ଶଙ୍ଖେ—ଉତ୍ତ. ବୈଦେହୀଶବିଳାସ ।]

**ଶାଳିତାପତି**—ପ୍ରାଦେ ( ଧଳଭୂମ ) ବି—ସ୍ତ୍ରୀଙ୍କ ଭଗ୍ନୀପତି; ସଢ଼ୁ—
Śālitāpati One's wife's sister's husband.

**ଶାଳିନୀ**—ସଂ. ବିଣ. ସ୍ତ୍ରୀ (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ବ୍ୟବହୃତ
Śālini ହୁଏ, ଯଥା—ସୌନ୍ଦର୍ଯ୍ୟଶାଳିନୀ)—ଯୁକ୍ତା; ବିଶିଷ୍ଟା—
(ଶାଳୀ—ପୁ) (feminine) A suffix added to another word to denote 'having' ବି—

ବ.—(ଶାଳନ୍ + ଈ)—ଏକାଦଶାକ୍ଷର ଛନ୍ଦୋବିଶେଷ—Name of a metre of 11 syllables. [ଦ୍ର—ଏଥିରେ ଯଥାକ୍ରମେ ଏକ ମଗଣ, ଦୁଇ ତଗଣ ଓ ଓ ଶେଷରେ ଦୁଇ ଗୁରୁ ବର୍ଣ୍ଣ ଥାଏ । ଏଥିର ଚରଣର ୪ର୍ଥ ଓ ୧୧ଶ ଅକ୍ଷରରେ ବିଶ୍ରାମ ହୁଏ; ୬ଷ୍ଠ ଓ ନବମ ବର୍ଣ୍ଣ ଲଘୁ ଓ ଅନ୍ୟ ସବୁ ବର୍ଣ୍ଣ ଗୁରୁ ।]

ଶାଳମାକରଣ—ସଂ. ବ-ନ୍ୟକ୍କାରବଚନ; ଭର୍ତ୍ସନା; ଭଣ୍ଡ ନା (ବିକାଶଶେଷ) Śālinīkaraṇa Rebuke; calling names.

ଶାଳପର୍ଣ୍ଣୀ—ସଂ. ବ —୧ । ମାଷପର୍ଣ୍ଣୀ (ଦେଖ)—1 Māshaparṇṇi Śāliparṇṇi (See) ୨ । ମେଦା ନାମକ ଔଷଧ—2. Name of a rare herb. ୩ । ପୃଶ୍ନିପର୍ଣ୍ଣୀ (ହ ଶ) (ଦେଖ)—3. Pṛuśniparṇṇi (See). ୪ । ଶାଲପର୍ଣ୍ଣୀ ( ହ. ଶ ) (ଦେଖ)—4 Śālaparṇṇi (See).

ଶାଳି ପିଷ୍ଟ—ସଂ. ବ (ଶାଳ=ଧାନ୍ୟ+ପିଷ୍ଟ=ଚୂର୍ଣ୍ଣ; ଏଥିର ବର୍ଣ୍ଣ Śāli pishṭa ସାଦୃଶ୍ୟରୁ)—ସ୍ଫଟିକମଣି—Quartz.

ଶାଳିବହ—ସଂ. ବି. ଓ ବଣ ପୁଂ—( ଶାଳ+ବହଧାତୁ+କର୍ତ୍ତୃ. ଅ )—Śālibaha ଧାନ୍ୟବହନକାରୀ ବ୍ୟକ୍ତି(ବିଶ୍ୱକୋଷ) ( ଶାଳୀଁବ୍ରା—ସ୍ତ୍ରୀ) Person carrying paddy.

ଶାଳିବା—ଦେ. କ୍ରି.(ସଂ. ଶବଲ)—ରଙ୍ଗାଇବା; ଚିତ୍ରିକରିବା—Sāliba ଚିତକବା **ରଙ୍ଗନା** To paint.

ଶାଳିବାହ—ସଂ. ବ (ଶାଳ+ବହ ଧାତୁ+କର୍ତ୍ତୃ ଅ)—ଧାନ୍ୟବହନକାରୀ Śālibāha ବୃଷ (ବିଶ୍ୱକୋଷ)—Bullock carrying paddy on its back.

ଶାଳିବାହନ—ସଂ. ବ (ଶାଳ=ସିଂହ+ବାହନ ଯାହାର; ସିଂହରୂପୀ Śāli bāhana ଗୋଟିଏ ଯକ୍ଷକୁ ଏ ବଶୀଭୂତ କରି ତାକୁ ବାହନରୂପେ ବ୍ୟବହାର କରୁଥିବାର କମ୍ବଦନ୍ତୀ ଥିବାରୁ ଏହି ନାମ)—ଶକାବ୍ଦପ୍ରବର୍ତ୍ତକ ନୃପବିଶେଷ—Name of a king who introduced 'Śakābda' era into India. [ ଦ୍ର—ଶକ ଓ ଶକାବ୍ଦ ତଳେ ନୋଟ ଦେଖ । ଶକାବ୍ଦ ୧୮୪୮=ଇଂରାଜ୍ୟାବ୍ଦ ୧୯୨୬—୨୭ =ହସ୍ତିଗ୍ରହ ୧୩୩୩—୩୪; ଶକାବ୍ଦ ଇଂରାଜ୍ୟାବ୍ଦଠାରୁ ୭୮ ବର୍ଷ କମ୍ ।]

ଶାଳିବାହନାବ୍ଦ—ସଂ ବ—(ଶାଳିବାହନ ପ୍ରବର୍ତ୍ତିତ ଅବ୍ଦ; ମ. ପ. ଲୋ) Śālibāhanābda ଶକାବ୍ଦ (ଦେଖ)—Śakābda (See) ( ଶାଳବାହନ ଶକାବ୍ଦ—ଅନ୍ୟରୂପ )

ଶାଳି ଶକ୍ତୁ—ସଂ ବ—ଶୀତେ ଧାନର ଗୁଣ୍ଡଳକାର ଚୂନା—Śāli śaktu Winter rice fried and powdered. [ଦ୍ର—ବୈଦ୍ୟଶାସ୍ତ୍ର ଅନୁସାରେ ଏହା ମଧୁରରସ, ଶୀତବୀର୍ଯ୍ୟ, ଲଘୁପାକ, ମଳରୋଧକ । ଏହା ତୃଷ୍ଣା, ବମନ,ଜ୍ୱର ଓ ରକ୍ତ-ଦୋଷ ପକ୍ଷରେ ଉପକାରକ ।]

ଶାଳି ହୋତ୍ର—ସଂ ବ (ଶାଳ=ଧାନ୍ୟ+ହୋତ୍ର=ହୋମ)—୧ । ଅଶ୍ୱ; Śālihotra ଘୋଡ଼ା—1. The horse. ୨ । ନକୁଳକୃତ ଅଶ୍ୱଶାସ୍ତ୍ରବିଶେଷ-2. The title of a treatise on horses by Nakula ୩ । ଭୋଜରାଜକୃତ ଅଶ୍ୱବୈଦ୍ୟକ ଗ୍ରନ୍ଥ—3. Title of a treatise on horses and cure of horse-deseases by Bhojarājā. ୪ । ଘୋଡ଼ପ୍ରବର୍ତ୍ତକ ମୁନିବିଶେଷ—4. Name of a sage.

ଶାଳିହୋତ୍ରୀ—ସ ବ ପୁଂ (ଶାଳିହୋତ୍ର+ଇନ୍, ୧ମା ୧ବ)—୧ । ଅଶ୍ୱ Śālihotrī ବୈଦ୍ୟ—1. Horse doctor. ୨ । ପଶୁ ଚିକିତ୍ସକ ( ହ. ଶ )—Veterinary doctor

ଶାଳୀ—ସଂ ବଣ ପୁଂ (ଶାଳିନ୍ ଶବ୍ଦ,ଅନ୍ୟ ଶବ୍ଦ ସହିତ ଯୁକ୍ତ ହୁଏ, ଯଥା—Śālī ପରାକ୍ରମଶାଳୀ, ଐଶ୍ୱର୍ଯ୍ୟଶାଳୀ; ଏହା ସଂସ୍କୃତ (ଶାଳିନୀ—ସ୍ତ୍ରୀ) ବ୍ୟାକରଣର ପ୍ରତ୍ୟୟବିଶେଷ । ଅନ୍ୟ ଅର୍ଥରେ ଶବ୍ଦରେ ଯୁକ୍ତ ହୁଏ )—ବିଶିଷ୍ଟ; ଯୁକ୍ତ—(Added to another word) Joined with; having; full of. (similar to the English suffix 'ful'. as in powerful). ସଂ ବ ( ସ୍ତ୍ରୀ ) ୧ । ଶାଳ+ଈ)—କୃଷ୍ଣ ଜୀରକ; କଳାଜୀରା—1 Black variety of cumin seed; Nigella Sativa. ୨ । ମେଥି ( ହ. ଶ )—2 Fenugreek. ୩ । ଶାଲପର୍ଣ୍ଣୀ (ହ. ଶ) —3 Śālaparṇṇī (See) ୪ । ଦୁରାଲଭା ( ହ. ଶ )—4. Durālabhā (See)

ଶାଳୀ ଶାଳୀ ଦେ. ବ.ସ୍ତ୍ରୀ—(ସଂ.ଶ୍ୟାଲୀ)—ଆପଣା ସ୍ତ୍ରୀଙ୍କ କନିଷ୍ଠା ଭଗ୍ନୀ; ଶାଳିକା—Wife's younger sister. [ଦ୍ର-ସ୍ତ୍ରୀଙ୍କ ବଡ଼ ଭଉଣୀଙ୍କୁ ଓଡ଼ିଆରେ ଦେଢ଼ଶାଶୁ ବୋଲାଯାଏ । ଶାଳୀଙ୍କ ସ୍ୱାମୀ ସଢ଼ୁ ଅଟନ୍ତି; ଶାଳୀଙ୍କ ପୁଅ ପୁତୁରା ଓ ତାଙ୍କ ଝିଅ ଝିଆରୀ ଅଟନ୍ତି; ଓଡ଼ିଆ ସମାଜରେ ସ୍ତ୍ରୀଙ୍କ ବଡ଼ ଭଉଣୀ ଦେଢ଼ଶାଶୁ ଭଉଣୀହୋଇଥିବାରୁ ପରିହାସସମ୍ପର୍କୀୟା ନୁହନ୍ତି; କେବଳ ସ୍ତ୍ରୀଙ୍କ ସାନ ଭଉଣୀ ଶାଳୀ ଉଭୟେଇଙ୍କର ପରିହାସସମ୍ପର୍କୀୟା ଅଟନ୍ତି । ବଙ୍ଗୀୟ ସମାଜରେ ସ୍ତ୍ରୀଙ୍କର, ବଡ଼, କ ସାନ, ସବୁ ଭଉଣୀ ଶାଳୀ ଅଟନ୍ତି ଓ ଉଭୟେଇଙ୍କର ପରିହାସସମ୍ପର୍କୀୟା ଅଟନ୍ତି ।] ୨ । ସ୍ତ୍ରୀଲୋକଙ୍କ ପ୍ରତି ବ୍ୟବହୃତ ଗାଳି—2. A term of vile abuse to a female. [ଉ—ଗରବର ମାଇପ ସମସ୍ତଙ୍କ ଶାଳୀ—ଢଗ] [ଉଭୟେ(ଶୋ)ଇ—ଆଞ୍ଚଳିକ ସଂଲଗ୍ନ ଶବ୍ଦ]

ଶାଳୀନ—ସଂ. ବଣ. ପୁଂ—( ଶାଳା=ଗୃହ+ଯୋଗ୍ୟାର୍ଥେ ଈନ, ଯେ Śālina ଗୃହକୁ ପ୍ରବେଶ କରିବାର ଯୋଗ୍ୟ ଅଟେ)—୧ । ବିନୀତ (ଶାଳୀନା—ସ୍ତ୍ରୀ) 1. Humble. ୨ । ଭଦ୍ର; ନମ୍ର—2. Gentle. ୩ । ଲଜ୍ଜାଶୀଳ; ସଲଜ୍ଜ—3 Coy, modest. ୪ । ତୁଲ୍ୟ; ସଦୃଶ—4. Similar; equ ୫ । ଶାଳା ସମ୍ବନ୍ଧୀୟ—5 Relating to house. ୬ । ଧନବାନ୍ ( ହ. ଶ )—6. Rich. ୭ । ଦକ୍ଷ; ଚତୁର (ହ. ଶ)—7. Clever; skilful. ସଂ. ବ—(ଶାଳ+ଇନ)-ଉତ୍କୃଷ୍ଟ ଧାନ୍ୟ (ବିଶ୍ୱକୋଷ)—Excellent paddy.

ଶାଳୀନତା(ତ୍ୱ)—ସଂ ବି—(ଶାଳୀନ+ଭାବେ ତା;ତ୍ୱ)—୧ । ନମ୍ରତା;
Sālinatā(twa) ଭଦ୍ରତା—1. Gentleness; humbleness
୨ । ଲଜ୍ଜାଶୀଳତା—2. Modesty.

ଶାଳୀନା—ସଂ ବିଣ—(ଶାଳୀନ+ଆ)—ଶାଳୀନର ସ୍ତ୍ରୀଲିଙ୍ଗ—
Sālinā Feminine of Sālina, ସଂ. ବି—୧ । ଶତପୁଷ୍ପା;
ଶତ୍ରୁପ—1. Dill seed; fennel seed, Anethum
Graveyolens. ୨ । ପାନମଧୁରି—2. Aniseed.

ଶାଳୀ ପରିହାସ—ଦେ. ବି—ଶ୍ୟାଳିକା ଓ ଭଗ୍ନୀପତିଙ୍କ ମଧ୍ୟରେ ପ୍ରଚଳିତ
Sāli parihāsa ଥଟ୍ଟା—Jesting and joking mutu-
শালীর ঠাট্টা साली ठट्ठा ally exchanged between a
साली परिहास girl or woman and her elde
sister's husband.

ଶାଳୀ ପରିହାସୀ—ଦେ. ବିଣ ସ୍ତ୍ରୀ—ଶ୍ୟାଳିକା ସ୍ଥାନୀୟା (ସ୍ତ୍ରୀ); ଯେଉଁ ସ୍ତ୍ରୀଙ୍କ
Sāli parihāsi ସଙ୍ଗେ କୌଣସି ପୁରୁଷ ଥଟ୍ଟା ପରିହାସ କରି
শালীর মতন পারন্তু—A woman related to a male
साली परीहासी as a sister-in-law with whom he
(ସ ଲୀ ଲେଖା—ଅନ୍ୟରୂପ) can cut jokes

ଶାଳୀ ଭିଣେଇ(ଣା)ଇ—ଦେ. ବି—(ସହଚର; ଅପେକ୍ଷିକ ଶବ୍ଦଦ୍ୱୟ)—
Sāli bhiṇe(ṇo)i ଶ୍ୟାଳିକା ଓ ଭଗ୍ନୀପତି—
শালী ভগিনপতি Persons related mutually as
सालीबहनोई sister-in-law and sister's husband.

ଶାଳୀୟ—ସଂ. ବିଣ—୧ । (ଶାଳା+ଈୟ)—ଶାଳା ସମ୍ବନ୍ଧୀୟ—1. Re-
Sāliya lating to Sālā. ୨ । ଶାଳବୃକ୍ଷ ସମ୍ବନ୍ଧୀୟ—2.
Relating to the Sāla tree. ସଂ. ବି—
ଜଣେ ବୈଦିକ ଆଚାର୍ଯ୍ୟ—Name of a vedic
preceptor

ଶାଳୁ(ଲୁ)—ସ.ବି-(ଶଲ୍ ଧାତୁ=ହିଂସା କରିବା+କର୍ତ୍ତୃ.ଉ)—୧। କଷାୟ
Sālu(lu) ଦ୍ରବ୍ୟ—Astringent thing. ୨ । ଭେକ;
ବେଙ୍ଗ—2. Frog. ୩ । ଗନ୍ଧର୍ବ ବିଶେଷ—3.
Name of a Gandharba'. ୪ । ଶାଳୁକ;ପଦ୍ମ-
ମୂଳ—4. The root of lotus. ୫ । ବୈଦ୍ୟକ
ନାମକ ଔଷଧ—5. Name of a medicinal
herb. ୬ । ଫଳ ବିଶେଷ (ହି. ଶ)—6. A kind
of fruit. ୭ । ପଦ୍ମକନ୍ଦ—7. The root of
lotus.

ଶାଳୁଆ—ଦେ. ବି—(ସଶାଳ)—୧ । ଶାଳ ୪ (ଦେଖ)—1. Sāla
Sāluā 4 (See) ୨ । ବାଉଁଶ କାଟିରେ ବୁଣା ହୋଇଥିବା
শাল साल, सालु ମାଛ ଧରିବାର କାଡ଼ୁଯୁକ୍ତ ଯନ୍ତ୍ର—2. A
सिरकि Contrivance made by weaving split
শালকাঠেরডোঙ্গা bamboos for catching fish. ୩ ।
सालुकाडोंगि ଶାଳଗଛ କାଟିକି ଖୋଳ ଡଙ୍ଗା—3. A small
যাবাসিঅনিতেজলবহে boat made of 'Sāla' tree
दौडिवाला ୪ ଶେଣୀଦ୍ୱାରା ପାଣି ବୋହିବାରେ ନିଯୁକ୍ତ ଲୋକ-
ଦ୍ୱୟ—4. Pairs of labourers engaged in
baling out water from a tank by means
of a Seṇā.

ଶାଳୁଆ ଗଜା—ଦେ. ବି—ଛୋଟ ବା ନୂଆଁ ଳିଆ ଶାଳୁଆ ଗଛ—Sal
Sāluā gajā sapling.
শালের চারা(গজা) सालुकापौधा

ଶାଳୁଆଣି—ଦେ. ବି—୧ । ଶାଳ ୫ (ଦେଖ)—1. Sāla 5 (See)
Sāluāṇi ছোটসালগাছ ୨। ଛୋଟ ଓ ଗଣ୍ଠି ଗଣ୍ଠିଆ ଶାଳଗଛ—
सालुका ठुटा 2. Small knotty Sal tree.

ଶାଳୁଆ ପ(ପୁ, ପୋ(ତ)ତା)ନି—ଦେ. ବି—ଶାଳିଆ ପତନି (ଦେଖ)—
Sāluāpa(pu;po)ta(tā)ni Sāliā patani (See)

ଶାଲୁ(ଲୂ)କ—ସ. ବି-(ଶଲ୍ ଧାତୁ=ଗମନ କରିବା+କର୍ମବାଚ୍ୟ;ଊକ)—
Sālu(lū) ka ୧ । କୁମୁଦ; କଇଁ—1. Water lily. ୨ ।
পদ্মেরগোড়া,শালুক ପଦ୍ମକନ୍ଦ; ପଦ୍ମ ଫୁଲର ମୂଳ; ପଦ୍ମମୂଳ—2.
कसेरु,भसिड The tuberous root of lotus. [ଗୁ—
ଚେ. ଚାଉଳାୟ ବୈଦ୍ୟକ ଅନୁସାରେ ଏହା ମଧୁର ଶୀତଳରସ,
ଅନ୍ୟ. ସ. ପରିପୂରଣ; ଶାଲୁ] ମଳ ରୋଧକ, ଶୁକ୍ରବର୍ଦ୍ଧକ, କଫଜନକ
ଓ ପିତ୍ତ ଶାନ୍ତିକର ।]

ଶାଲୁ(ଲୂ)ର—ସ. ବି-(ଶଲ୍ ଧାତୁ-ଗମନ କରିବା+କର୍ତ୍ତୃ. ଉର;ଊର)—
Sālu(lū)ra ଭେକ; ବେଙ୍ଗ—Frog; toad

ଶାଲୁଶାଲୁ—ଦେ. ବିଣ.—ସାଲୁ ସାଲୁ (ଦେଖ)
Sālu sālu Sālu sālu (See)

ଶାଲୂକିନୀ ଦଶାଶ୍ୱମେଧ—ସ. ବି-ହିନ୍ଦୁମାନଙ୍କର ତୀର୍ଥବିଶେଷ—Name
Sālūkini dasāswamedha of a place of Hindu
pilgrimage. [ହି—ଶାଲୂକିନୀ ଦଶାଶ୍ୱମେଧେ
ଅଶ୍ୱମେଧ,ଫଳ ଲଭଇ ସ୍ନାନ କଲେ କରି ବୋଧ—କୃଷ୍ଣସିଂହ
ମହାଭାରତ. ବନ । ]

ଶାଳେୟ—ସଂ. ବି (ଶାଳ=ଧାନ୍ୟ+ଉତ୍ପାଦକାର୍ଥେ ଏୟ)—୧ । ଯେଉଁ
Sāleya କ୍ଷେତ୍ରରେ ଶାରଦ ଧାନ ଜନ୍ମେ—1. A field
wing winter paddy. ୨ । ଶାରଦ ଧାନ
ଜନ୍ମାଇବାର ଉପଯୁକ୍ତ ଭୂମି—2. A field fit for
growing winter paddy. ୩ । ଶତପୁଷ୍ପା;
ଶତ୍ରୁପ—3. Dill seed. ୪ । ମଧୁରିକା; ପାନମଧୁରି—
4. Aniseed. ୫ । ବାଳମୂଳକ (ବିଶ୍ୱକୋଷ)—
5. Young radish. ସଂ. ବିଣ—୧ । (ଶାଳ+
ଏୟ) ଶାଳ ବୃକ୍ଷ ସମ୍ବନ୍ଧୀୟ—1. Relating to Sāla
tree. ୨ । (ଶାଳା+ଏୟ) ଶାଳା ସମ୍ବନ୍ଧୀୟ—
2. Relating to Sala.

ଶାଳେୟା—ଦେ. ବି—ବନ୍ୟଜନ୍ତୁ ବିଶେଷ (ଶାଳଅପଚିତ ?)—Name
Sāleyā of a wild animal; (civetcat ?) ସଂ. ବି—
ମେଥି (ହି. ଶ)— Fenugreek.

ଶାଳେହା—ଦେ. ବି (ସଂ. ଶାଳ-ଗନ୍ଧ ମାର୍ଜାର)—ଏକପ୍ରକାର କ୍ଷୁଦ୍ର ମୃଗ-
Sālehā A species of small deer.

ଶାଲୋତ୍ତର—ସଂ. ବି (ଶାଳା=ଗୃହ ଗୃହ+ଉତ୍ତର)—୧ । ମୃଗ
Sālottara ବିଶେଷ; ପାଣିନି ମୁନିଙ୍କ ଗୁରୁ—1. Name of a

sage who was the teacher of the famous Sanskrit grammarian Pāṇini. ୨ । ପାଣିନି ମୁନିଙ୍କ ଆଶ୍ରମ—2. The hermitage of Pāṇini.

**ଶାଲୋତ୍ତରୀୟ**—ସଂ. ବି (ଶାଲୋତ୍ତର ମୁନି+ଶିଷ୍ୟାର୍ଥେ ଈୟ)—
**Śālottarīya** ଶାଲୋତ୍ତର ମୁନିଙ୍କ ଶିଷ୍ୟ; ବିଖ୍ୟାତ ବ୍ୟାକରଣ-ସୂତ୍ର ପ୍ରଣେତା ପାଣିନି—Pāṇini; the famous Sanskrit grammarian.

**ଶାଲ୍ୱ**—ସଂ. ବି (ଶାଲ +ସଂଜ୍ଞାର୍ଥେ. ବ)—୧ । ଉତ୍ତର ଭାରତସ୍ଥ ପ୍ରାଚୀନ
**Śālwa** ଦେଶ ବିଶେଷ; ମରୁ ଦେଶ—1 Name of an ancient country in North India. ୨।(ନାମ) ପ୍ରାଚୀନ ସୌଭ ରାଜ୍ୟର ଅଧୀଶ୍ୱର—2. Name of a king of the ancient Saubha kingdom. [ଦ୍ର—ମହାଭାରତରେ ଲେଖାଅଛି ଯେ, କାଶୀରାଜଙ୍କ କନ୍ୟା ଅମ୍ବା, ଅମ୍ବିକା ଓ ଅମ୍ବାଳିକାଙ୍କୁ ଭୀଷ୍ମ ହରଣ କରି ନେବା ସମୟରେ ଭୀଷ୍ମଙ୍କ ସଙ୍ଗେ ଶାଲ୍ୱଙ୍କର ଯୁଦ୍ଧ ହୋଇଥିଲା; ତହିଁରେ ଶାଲ୍ୱ ପରାସ୍ତ ହୋଇଥିଲେ । କାଶୀରାଜଙ୍କ କନ୍ୟା ଅମ୍ବା ଶାଲ୍ୱଙ୍କୁ ବିବାହ କରିବାକୁ ପୂର୍ବରୁ ଇଚ୍ଛା କରିଥିଲେ । ଏହା ଜାଣିପାରି ଭୀଷ୍ମ ଅମ୍ବାଙ୍କୁ ଏହାଙ୍କ ପାଖକୁ ପଠାଇଦେଲେ । କିନ୍ତୁ ଏ ଅମ୍ବାଙ୍କୁ ଗ୍ରହଣ କଲେ ନାହିଁ । ଏ ଶିଶୁପାଳଙ୍କର ମିତ୍ର ଥିଲେ । ଶ୍ରୀକୃଷ୍ଣ ଶିଶୁପାଳଙ୍କୁ ମାରିବାପରେ ଶ୍ରୀକୃଷ୍ଣଙ୍କୁ ହତ୍ୟା କରିବା ଉଦ୍ଦେଶ୍ୟରେ ଶାଲ୍ୱ ଦ୍ୱାରକାକୁ ଅବରୋଧ କଲେ ଓ ଏହି ଯୁଦ୍ଧରେ ଏ ଶ୍ରୀକୃଷ୍ଣଙ୍କଦ୍ୱାରା ନିହତ ହେଲେ—(ହି. ଶ) । ]

**ଶାଲ୍ୱଣ**—ସଂ. ବି—୧ । ଫୋଟକୁ ପଚାଇବା ପାଇଁ ତହିଁ ଉପରେ ଦିଆ
**Śālwaṇa** ଯିବା ଲେପ; ପୁଲ୍‌ଟିସ୍ (ହି. ଶ)—1. Poultice put on a boil to ripen it or to bring it to a head. ୨। ଫଳ ଆଦିର ପୋଡ଼ା ଓ ଚକଟା—୨ । ଭର୍ତ୍ତା—2. Sauce prepared by kneading burnt fruits.

**ଶାଲ୍ୱିକ**—ସଂ. ବି—ଏକ ପ୍ରକାର ପକ୍ଷୀ; ଯଦୁ ଚଢ଼ୁ (ହି. ଶ)
**Śālwika** A kind of bird.

**ଶାଲ୍ମଳ(ଳି,ଳୀ)**—ସଂ. ବି(ଶାଲ୍ ଧାତୁ=ଦୂରକୁ ଗମନ କରିବା +କର୍ତ୍ତୃ.
**Śālmala(li, lī)** ମଳ;+ଇ,+ଈ; ଏହାର ଶିଅ ଏକ ମାଇଲ୍ ପର୍ଯ୍ୟନ୍ତ ମଧ୍ଯ ଉଡ଼ି ଉଡ଼ି ଯିବାରୁ)—୧ । ଶିମିଳୀ ଗଛ—1. The silk cotten tree; Bombax Heptapyhlla, Bombax Malabarica. [ଦ୍ର—ଏହା ଜବାଦ ବର୍ଗର ବୃହତ୍ ତରୁ; କାଠ ଧଳା ଓ ହାଲୁକା । ପତ୍ର ପାଞ୍ଚ ସପ୍ତପର୍ଣ୍ଣୀ । ବର୍ଷରେ କେତେକ ମାସ ଗଛରୁ ପତ୍ର ଝଡ଼ି ପଡ଼ି

[ଅନ୍ୟ ସଂ. ନାମ—ମୋଚ୍ଚ, ପିଚ୍ଛିଳା] ପୂରଣୀ, ରକ୍ତପୁଷ୍ପା, ସ୍ଥିରାୟୁଃ, କଣ୍ଟକାଢ୍ୟା, ତୂଳିନୀ ।
ଶିମুল
শেমূল, শেমুর, শেমল
ବାଂ ସୁଲି
ତେ. ବୁରୁଗା
ତାଞ୍ଜା. ବୁର
ମ. ଶାମ୍ୱରୀ

ଯାଆନ୍ତେ; ଫୁଲ ରକ୍ତବର୍ଣ୍ଣ ଓ ନିର୍ଗନ୍ଧ । ଏହାର ଫଳ ବା ଭଣ୍ଡା ମଧ୍ୟରୁ ମଞ୍ଜି ଓ ତୂଳା ବାହାରେ ।

ବୈଦ୍ୟଶାସ୍ତ୍ର ଅନୁସାରେ ଏହାର ଛାଲ ଓ ମୂଳ ଶୀତବୀର୍ଯ୍ୟ, ମଧୁର ବିପାକ, ରସାୟନ, କଫ, ବାତରକ୍ତ ଓ ରକ୍ତପିତ୍ତନାଶକ ।

ଏହାର ମୂଳ ଅତ୍ୟନ୍ତ ଶୁକ୍ରବର୍ଦ୍ଧକ । ଏହାର ଫୁଲ ଓ ଫଳ ମଧୁର କଷାୟରସ, ଗୁରୁପାକ, ଶୀତଳ ଓ ବାୟୁବର୍ଦ୍ଧକ ।

ଶିମିଳୀ ଗଛର ଅଠାକୁ ମୋଚରସ ବୋଲାଯାଏ ଓ ମୂଳକୁ ଶିମିଳୀମୂଷଳୀ ବୋଲାଯାଏ । ଏ ଗଛର ଗଣ୍ଡିରେ ଓ ଡାଳରେ କଣ୍ଟାଥାଏ ।

ଶାଲ୍ମଳୀ ୪ ପ୍ରକାର । ରକ୍ତଶାଲ୍ମଳୀ, ଶ୍ୱେତଶାଲ୍ମଳୀ, ପୀତଶାଲ୍ମଳୀ ଓ କୂଟଶାଲ୍ମଳୀ । ଶେଷୋକ୍ତ ଶିମିଳୀ ଗଛ କଣ୍ଟକହୀନ । ଏହା ପର୍ବତରେ ଉତ୍ପନ୍ନ ହୁଏ । ଏହାର ସଂସ୍କୃତ ନାମ—ପାର୍ଶ୍ୱଦ୍ରୁ, ଚିରଜୀବ, କଣ୍ଟକଦ୍ରୁମ, ସ୍ଥୂଳଫଳ ଓ ତୂଳବୃକ୍ଷ । ଦ୍ରବ୍ୟଗୁଣ କଳ୍ପଦ୍ରୁମ ।

କୂଟଶାଲ୍ମଳୀ—ଏହା କଣ୍ଟକ ନାନାଶକ ଶିମିଳିଜାତୀୟ ଶ୍ରେଷ୍ଠ ଗଛ—A species of silk cotton tree.

ପୀତଶାଲ୍ମଳୀ—କୁମ୍ଭୀ ନାମକ ବନ୍ୟଗଛ । ଏହାର କାଠ ଲଘୁ, ପତ୍ର ପଞ୍ଚାଙ୍ଗୁଳ; ପତ୍ର ବର୍ଷକେ ଥରେ ଝଡ଼େ । ଫୁଲ ସ୍ୱର୍ଣ୍ଣ ପୀତ; ତହିଁର ବର୍ଣ୍ଣ ଶିମିଳି ଫୁଲପରି; ଭଣ୍ଡାରୁ ତୂଳା ବାହାରେ । ଫଳ କୁମ୍ଭାକାର—Coculospermum Gossypium.

ଶ୍ୱେତ ଶାଲ୍ମଳୀ—ଏହା ଜବାଦ ବର୍ଗର ବୃକ୍ଷ । ଫୁଲ ଧଳା । କେଶର ୫ ଗୋଟି । ଏଥିର ଭଣ୍ଡାରୁ ତୂଳା ବାହାରେ—Eriodendron Anfractuosum.

ଶିମିଳୀର ତୂଳା ବ୍ୟତୀତ ଶିମିଳୀ ଗଛର ଅନ୍ୟ ବ୍ୟବହାର ସମସ୍ତେ ଜ୍ଞାତ ନୁହନ୍ତି । ଶିମିଳୀ ସାଧାରଣ ଚକ୍ଷୁରେ ଦେଖିବାକୁ ଜଘନ୍ୟ ପଦାର୍ଥ; କିନ୍ତୁ ଯେଉଁମାନେ ଭସ୍ମରେ ରତ୍ନ ଖୋଜି ନେଇ ପାରନ୍ତି; ସେମାନଙ୍କ ଚକ୍ଷୁରେ ଶିମିଳୀ ଅପଦାର୍ଥ ନୁହେ । ଶିମିଳୀ ଗଛର ନିମ୍ନଲିଖିତ ଗୁଣ ଅଛି । ଶିମିଳୀ ମୂଳ—ଅତି ବଳକର ପଦାର୍ଥ ଓ ଉତ୍ତେଜକ; ନିସ୍ତେଜ ଏବଂ ଅବସନ୍ନାବସ୍ଥାରେ ଏହାର ରସ ଖାଇଲେ ଉପକାର ହୋଇ ପାରେ; ଏହା ରସାୟନ । ଅଧିକ ମାତ୍ରାରେ ମୂଳ ବା ଛାଲର ରସ ଖାଇଲେ ବମନ ହୁଏ ।

ଶିମିଳୀର ଛାଲ—ଗଛର ଛାଲ ଉପରେ ଯେଉଁ ସବୁ କୋମଳ କଣ୍ଟା ଥାଏ, ସେଥିରୁ ଦୁଇ ଗୋଟା ଜଳରେ ବାଟି ବ୍ରଣର ମୁହଁରେ ପ୍ରଲେପ ଦେଲେ ବ୍ରଣ ସହଜରେ ଫାଟିଯାଏ ।

ଶିମିଳୀ ଅଠା—ଗଛ କାଟିଲେ ଅଠାପରି ଯେଉଁ ପଦାର୍ଥ ବାହାରେ ବୈଦ୍ୟମାନେ ତାହାକୁ 'ମୋଚରସ' କହିଥାଆନ୍ତି । ଆୟୁର୍ବେଦ ମତରେ ମୋଚରସ, ଅମ୍ଳ, ଅତିସାର ଏବଂ ଉଦରପୀଡ଼ାରେ ବ୍ୟବହାର ହୁଏ । ଏଥିର ଗୁଣ

ସ୍ନିଗ୍ଧ ଏବଂ ସଙ୍କୋଚକ । କୌଣସି କୌଣସି ସ୍ଥଳରେ ଏହି ଅଠାର ଅଭ୍ର ଗୋଟିଏ ଅଦ୍ଭୁତ ଗୁଣ ଶୁଣାଯାଏ । ଏହି ଅଠା ଶୁଖିଗଲାରୁ ଗୁଣ୍ଡ କରି ଦୁଇ ଗୁର ଉଷ୍ଣ ପାନ ମସଲା ସହିତ ମିଶାଇ ଖାଇଲେ ପୁରୁଷର ସନ୍ତାନ ଉତ୍ପାଦନ ଶକ୍ତି ଅତ୍ୟନ୍ତ ବୃଦ୍ଧି ହୁଏ । ମିଶ୍ରି ସରବତ୍ ସହିତ ଏହି ଅଠା ଦୁଇ ଏକ ରତି ମିଶାଇ ସ୍ତ୍ରୀଲୋକମାନେ ଗୁର ପାଞ୍ଚ ଦିନ ବ୍ୟବହାର କଲେ ସେମାନଙ୍କର ରକ୍ତର ଅଧିକ୍ୟ ଉପଶମିତ ହୁଏ ।

ଶିମଳୀ କାଠ—ଶିମିଳୀ ଗଛ ଅତି ପ୍ରକାଣ୍ଡ । ସୁତରାଂ ଏହାର ତକ୍ତା ଅତ୍ୟନ୍ତ ପ୍ରଶସ୍ତ ହୁଏ । କିନ୍ତୁ ଅଳ୍ପ ଦିନରେ ନଷ୍ଟ ହୋଇଯାଏ ବୋଲି ଲୋକେ ବେଳେ ଆଗ୍ରହ ସହିତ ଏହାର ତକ୍ତା ବ୍ୟବହାର କରନ୍ତି ନାହିଁ । ଯଦି ଚୂନ ପାଣିରେ ଏହାର ତକ୍ତାକୁ ବତୁରାଇ ଛାୟାରେ ଶୁଷ୍କ କରି ପରେ ଖଟ, କବାଟ, ଗବାକ୍ଷ ପ୍ରଭୃତି ପ୍ରସ୍ତୁତ କରାଯାଏ, ତେବେ ସେମାନ ଦୀର୍ଘକାଳ ସ୍ଥାୟୀ ହୁଏ, ଉଇ ପୋକ ଲାଗି ଶୀଘ୍ର ନଷ୍ଟ ହୋଇପାରେ ନାହିଁ ।

ଶିମିଳୀ ମଞ୍ଜି—ଶିମଳୀ ମଞ୍ଜିରୁ ଏକ ପ୍ରକାର ଈଷତ ପୀତବର୍ଣ୍ଣ ତେଲ ପ୍ରସ୍ତୁତ ହୁଏ । ଶିମିଳୀ ମଞ୍ଜିରୁ ତୈଳପ୍ରସ୍ତୁତ କରିବା ପ୍ରଥା ଏ ଦେଶରେ ନାହିଁ । କିନ୍ତୁ ତୈଳ ପ୍ରସ୍ତୁତ କରି ପାରିଲେ ବେଶ୍ ଦୁଇ ପଇସା ଲାଭ ହୋଇ ପାରନ୍ତା । ଏ ଦେଶରେ ପ୍ରଚୁର ଶିମିଳୀ ଗଛ ଜନ୍ମିଥାଏ । ଏହାର ମଞ୍ଜି ମଧ୍ୟ ଅଳ୍ପ ମୂଲ୍ୟରେ ସଂଗ୍ରହ କରାଯାଇ ପାରେ । ତୈଳ ପ୍ରସ୍ତୁତ କରିବା କଠିନ ନୁହେଁ । ଘଣା ଦ୍ୱାରା ଯେପରି ଅନ୍ୟ ତୈଳ ପ୍ରସ୍ତୁତ ହୁଏ, ସେହିପରି କଲେ ହୋଇ ପାରେ ।] ୨ । ପୁରାଣୋକ୍ତ ସପ୍ତଦ୍ୱୀପାନ୍ତର୍ଗତ ଦ୍ୱୀପବିଶେଷ—2. Name of one of the seven mythological islands of the earth. [ଦ୍ର—ପୁରାଣ ଅନୁସାରେ ଏ ଦ୍ୱୀପର କ୍ଷେତ୍ରଫଳ କୌଶ ଦ୍ୱୀପର ଦ୍ୱିଗୁଣ । ଏ ଦ୍ୱୀପରେ ଶିମିଳୀ ଗଛ ବହୁତ ଥିବା କଥିତ । ଏହା ଇକ୍ଷୁରସ ସମୁଦ୍ର ପରିବେଷ୍ଟିତ । ଏଥିରେ ଶ୍ୱେତ, ଲୋହିତ, ଜୀମୂତ, ହରିତ, ବୈଦ୍ୟୁତ, ମାନସ ଓ ସୁପ୍ରଭ ନାମକ ସାତଗୋଟି ବର୍ଷ ଅଛି ଓ ଏ ବର୍ଷମାନଙ୍କରେ ଯଥାକ୍ରମେ କୁମୁଦ, ଉନ୍ନତ, ବଳାହକ, ଦ୍ରୋଣ, କଙ୍କ, ମହିଷ ଓ କକୁଦ ନାମକ ସାତ ପର୍ବତ ଓ ଯୋନୀ, ତୋୟା, ବିତୃଷ୍ଣା, ଚନ୍ଦ୍ରା, ଶୁକ୍ଳା, ବିମୋଚନୀ ଓ ନିବୃତ୍ତି ନାମକ ସାତ ନଦୀ ଅଛି—(ହି. ଶ) ।] ୩ । ପୁରାଣୋକ୍ତ ନରକ ବିଶେଷ—3. Name of a part of the hell. [ଦ୍ର—ଏଥିରେ ପାପୀଙ୍କ ଦେହକୁ ଶିମିଳୀ ଗଛର କଣ୍ଟାରେ ଘଷି ଦଣ୍ଡ ଦିଆଯାଏ ।] ୪ । ମୋଚରସ—4. The gum of Silk cotton tree. ଦେ. ବି—୧ । ଶିମୁଳିପାଳ (ଦେଖ)—1. Śimulipaḷa. (See) ୨ । ପର୍ବତ ବିଶେଷ—2. Name of a mountain. [ ଦ୍ର—ଶାଳ୍ମଳୀ ଶବ୍ଦକୁ ବହୁ ସ୍ଥାନେ ଭଳ ବନାନ କରେ ।

ବିଧାନ ଅ. ଦ୍ରଷ୍ଟ୍ୱା ।]

ଶାଲ୍ମଳ(ଳୀ)କନ୍ଦ—ସଂ. ବି—ଶାଲ୍ମଳ ଗଛର ମୂଳ—The esculent Śālmaḷi(ḷī)kanda root of silk cotton tree used in medicine. [ଦ୍ର—ଏହା ଔଷଧରେ ଲାଗେ । ମହାରାଷ୍ଟ୍ର ଦେଶରେ ଏହା ଶମୂଶକନ୍ଦ ବୋଲାଯାଏ । ଏହା ମଧୁର ରସ, ଶୀତଳ, ମଳଭେଦକ; ପିତ୍ତ, ଦାହ, ସନ୍ତାପ ଓ ଶୋଥ ରୋଗର ଉପଶମକାରକ ।]

ଶାଲ୍ମଳିକ—ସଂ. ବି—ରୋହିତକ ବୃକ୍ଷ (ହି. ଶ)
Śālmaḷika Andersonia Rohitaka. (tree)

ଶାଲ୍ମଳିନୀ—ସଂ. ବି—ଶିମିଳୀ ଗଛ (ହି. ଶ
Śālmḷinī Silk cotton tree.

ଶାଲଳପତ୍ରକ—ସଂ. ବି (ଶାଲ୍ମଳ+ପତ୍ର+ସାଦୃଶ୍ୟାର୍ଥେ. କ)—ସପ୍ତଚ୍ଛଦ Śālmaḷipatraka ବା ଛଚିଆନା ଗଛ—Alstonia Scholaris. (tree)

ଶାଲ୍ମଳ(ଳୀ)ଫଳ—ସ. ବି—ତେଜବତୀ ନାମକ ବୃକ୍ଷ (ହି. ଶ)
Śālmaḷi(ḷī)phala Toothache tree.

ଶାଲ୍ମଳ(ଳୀ) ଫଳକ—ସ.ବି—ଶିମୁଳିକାଠର ପଟା, ଯହିଁ ଉପରେ Śālmali(ḷī) phalaka ଛୁରୀ ଅଦିକୁ ଘଷି ଧାର କରାଯାଏ—(ହି. ଶ)A wooden strop for sharpening knives etc.

ଶାଲ୍ମଳ(ଳୀ)ବେଷ୍ଟ—ସ. ବି—ମୋଚରସ, ଶିମିଳ ଗଛର ଅଠା ବା Śālmaḷi(ḷī)beshṭa ନିର୍ଯ୍ୟାସ—The gum of the silk- (ଶାଲ୍ମଳ ବେଷ୍ଟକ—ଅନ୍ୟରୂପ) cotton tree. [ଦ୍ର—ଏହା ଅ. ସ—ପିଚ୍ଛ; ମୋଚସ୍ରାବ; ଶୀତବର୍ଯ୍ୟ, ଧାରକ; ସ୍ନିଗ୍ଧ; ଶୁକ୍ର ମୋଚରସ, ମୋଚନିର୍ଯ୍ୟାସ ବର୍ଦ୍ଧକ ଓ କଷାୟ ରସ ।]

ଶାଶ୍—ପ୍ରାଦେ(ସମ୍ବଲପୁର)ବି—(ତୁଲ. ହି. ସାସ୍)—ଶାଶୁ—
Śaś Mother-in-law. ବୈଦେ. ବି(ଇଂ)—ଶାର୍ଶି (ଦେଖ) Śāśi (See).

ଶାଶା—ପ୍ରାଦେ(ଗଡଜାତ) ବି—୧ । ( ସ. ଶ୍ମଶ୍ରୁ )ଶ୍ମଶ୍ରୁ; ଦାଢି—
Śāśā Beard. ୨ । (ସ ଶ୍ୱଶ୍ରୂ) ଶାଶୁ—2. Mother-in-law.

ଶାଶି (ର୍ଶି)—ବୈଦେ.ବି—(ଇଂ. ସାଶ୍;ଫା.ଶୀସା=କାଚ)—କବାଟରେ Śāśi(rsi) ବା ଝରକାରେ ଲଗିବା କାଚର ପଟା—The sash ଶାର୍ଶି ଶିସକାପଟକା of a door or window.

ଶାଶୁ—ଦେ. ବି. ସ୍ତ୍ରୀ—(ସଂ. ଶ୍ୱଶ୍ରୂ)—ଶ୍ୱଶ୍ରୂ, ଅପଣାର ସ୍ୱାମୀଙ୍କର ବା Śāśu ସ୍ତ୍ରୀଙ୍କର ମାତା—Mother-in-law. [ଦ୍ର—ଓଡ଼ିଆ (ଶ୍ୱଶୁର—ପୁଂ) ଭାଷାରେ ଶାଶୁ ଶବ୍ଦ ପୂର୍ବରେ ଅନ୍ୟ ଶବ୍ଦ ଯୁକ୍ତ ଶାଶ ସାଲିକ ହୋଇ ଶ୍ୱଶ୍ରୂସ୍ଥାନୀୟା ଗୁରୁଜନମାନଙ୍କ ନାମ ପ୍ରକାଶ କରେ । ଖୁଡ଼ୀଶାଶୁ, ଦେଢେଇଶାଶୁ; ଦେଢ଼ଶାଶୁ, ଗୋସେଇଁଶାଶୁ; ଅଈଶାଶୁ; ମାଇଁଶାଶୁ; ପାଳିଶାଶୁ; କନିଅଶାଶୁ ।

ଶାଶୁଏଇଗ—(ଝିଅ)—ଗ୍ରା. ବିଣ ଓ ବି ସ୍ତ୍ରୀ—ଯେଉଁ ବାଳକାର ବା Śāśueiti (jhia) ସ୍ତ୍ରୀର ଶାଶୁ ଜୀବିତା ଅଛନ୍ତି—( agirl ) ଯାବଶାଶୁଡୀଆଛେ ସାସବାଲେ Having her mother in- (ଶାଶୁଇଗ—ଅନ୍ୟରୂପ) law living.

ଶାଶୁ ଓଳଗା—ଦେ ବି—ନବବଧୂର ପ୍ରଥମେ ଶାଶୁଘରକୁ ଯିବା ଉପଲକ୍ଷେ
Sāśu olagā ଶାଶୁଙ୍କୁ ଭେଟିବା ପାଇଁ ସଙ୍ଗରେ ନେଇଥିବା ଶାଢ଼ୀ
ଶାশুড়ীর প্রণামীকাপড় —A cloth taken by a bride
सासकेलिये कपड़ा with her for her mother-in-law on the occasion of her making obeisence on her first visit to her husband's house after puberty.

ଶାଶୁଖିଆ—ଗ୍ରା. ବିଣ. ପୁଂ (ସ୍ତ୍ରୀଲୋକଙ୍କର ପ୍ରୟୋଗସ୍ଥାନୀୟ ପୁରୁଷ ବ୍ୟକ୍ତି
Sāśukhiā ପ୍ରତି ପରିହାସ ମଧୁର ଭର୍ତ୍ସନ, ଏଥିର ଅର୍ଥ—ଜୋ
(ଶାଶୁ ମୁଣ୍ଡଖିଆ—ଅନ୍ୟରୂପ) ଶାଶୁ ମଲେ)—ଶ୍ୱଶ୍ରୂହୀନ; ମୃତ-
ଶାଶୁଖାଇ } ସ୍ତ୍ରୀ ଶ୍ୱଶ୍ରୂକ(ବ୍ୟକ୍ତି)—(a male) Whose
ଶାଶୁମୁଣ୍ଡଖାଇ } mother-in-law is dead. [ଦ୍ର—
ଏ ବାକ୍ୟର ପ୍ରୟୋଗକାରିଣୀଙ୍କର ଯେଉଁ ପୁରୁଷର ଶାଶୁ ପରିହାସ ସ୍ଥାନୀୟା, ସେହି ପୁରୁଷକୁ ଶାଶୁଖିଆ ବିଶେଷଣରେ ସମ୍ବୋଧନ କରାଯାଏ । ଯଥା—ଶୁଣ୍ଡି ପୁରୁଷକୁ, ମାଇଁ ଭଣଜାଙ୍କୁ; କହୁଛନ୍ତି 'ହା ! ଶାଶୁଖିଆ ! କି କଲୁ, କଲୁ ! ଆମ ଘରେ ଖାଇବାକୁ ଆସିବୁ ବୋଲି କାଲି କହିଥିଲୁ; ଅଇଲୁ ନାହିଁ ।' ଏ ଶବ୍ଦର ସ୍ତ୍ରୀ ଲିଙ୍ଗ ଆକାରର ବ୍ୟବହାର କ୍ୱଚିତ୍ ଶୁଣାଯାଏ । ]

ଶାଶୁ ଘର—ଦେ. ବି—(କୌଣସି ସ୍ତ୍ରୀର) ଶ୍ୱଶୁରାଳୟ ବା ସ୍ୱାମି-ଗୃହ—
Sāśu ghara The family or house of one's hus-
শশুরবাড়ী सासरे band. [ଦ୍ର—ପୁରୁଷ ପକ୍ଷରେ 'ଶ୍ୱଶୁରଘର' ଓ ସ୍ତ୍ରୀ ପକ୍ଷରେ 'ଶାଶୁଘର' ବୋଲାଯାଏ । କିନ୍ତୁ ବଙ୍ଗଦେଶରେ ଉଭୟଙ୍କ ପକ୍ଷରେ ଶଶୁରବାଡ଼ି ବୋଲାଯାଏ ।]

ଶାଶୁଘରକୁ ଯିବା—ଦେ. କ୍ରି—(ବିବାହିତା କନ୍ୟା) ବୟଃପ୍ରାପ୍ତା ହେବା
Sāśugharaku jibā ପରେ ସ୍ୱାମିଗୃହକୁ ବାସ କରିବାକୁ ଯିବା
শশুরবাড়ী যাওয়া सासरेजाना —To go to live in the husband's family after attaining puberty. [ଦ୍ର—ଯେଉଁ ସମାଜରେ ବାଲ୍ୟବିବାହ ପ୍ରଥା ଅଛି, ସେ ସ୍ଥାନରେ ବାଳିକା କନ୍ୟା ସ୍ନାନ ଯାଇବା ପର୍ଯ୍ୟନ୍ତ ପିତୃଗୃହରେ ରହେ । ବୟଃପ୍ରାପ୍ତା ହେଲା-ପରେ ଶୁଭଦିନ ଦେଖି ଭାର ବେଭାର ସହିତ ପ୍ରଥମେ ଶାଶୁ ଘରକୁ ଯାଏ । (ଏହାକୁ ପହିଲିପାଳି ଯିବା ବା ଭାର ନେଇ ଯିବା ବା ପୁଅଣୀ ହୋଇ ଯିବା କହନ୍ତି) । ସେ ସ୍ୱାମିଗୃହରେ କେତେକ ଦିନ ରହିବା ପରେ ପିତୃଗୃହକୁ ଫେରି ଆସେ । (କେତେକ ସ୍ଥଳରେ ଏହାକୁ ଅଣ୍ଟା ସଲଖିବାକୁ ଆସିବା କହନ୍ତି ।) ପୁଣି କିଛିଦିନ ବାପଘରେ ରହିବା ପରେ ପୁଣି ଦ୍ୱିତୀୟ ଥର ସ୍ୱାମୀ-ଗୃହକୁ ଦୁଇଁ ପାଳି ଯିବା ବା ଦୁଅରପାଳି ଯିବା ବୋଲାଯାଏ ।
ସ୍ତ୍ରୀ ପକ୍ଷରେ ଶ୍ୱଶୁରାଳୟକୁ 'ଶାଶୁଘର' ବୋଲାଯାଏ, କିନ୍ତୁ ପିତୃଗୃହକୁ 'ମାଆଘର' ବୋଲି ନ ଯାଇ 'ବାପଘର' ବୋଲା-ଯାଏ ।]

ଶାଶୁଘର ଗାଁ—ଦେ. ବି—( ସ୍ତ୍ରୀ ପକ୍ଷରେ ) ସ୍ୱାମୀଙ୍କ ବାସସ୍ଥାନ ଗ୍ରାମ—
Sāśughara gāṅ The village of one's husband
শশুর বাড়ীর গ্রাম ( in the case of a woman ).
सासरेका गाँ (ଶାଶୁଘର ଗାଆଁ—ଅନ୍ୟରୂପ)

ଶାଶୁ ଟଙ୍ଗା(ଙ୍ଗେ)ଇ—ପ୍ରାଦେ.(ବାଲେଶ୍ୱର) ବି—ଏକପ୍ରକାର ଲୁଣି ମାଛ-
Sāsu tangā(ṅge)i A species of sea-fish.

ଶାଶୁ ଠଣାଖାଇ—ପ୍ରାଦେ. ( ବାଲେଶ୍ୱର ) ବି—ନାତିବୃହତ କାତିଯୁକ୍ତ
Sāśu ṭhaṇākhāi ସାମୁଦ୍ରିକ ମତ୍ସ୍ୟ ବିଶେଷ—A species of moderate-sized scaly sea-fish. [ଦ୍ର—ଏହାର ମୁହଁ ଏବଂ ସମସ୍ତ ଦେହ ଚେପ୍ଟା ଏବଂ ଏହା ଦେଖିବାକୁ ସୁନ୍ଦର ଅଟେ । ]

ଶାଶୁ ବୋହୂ—ଦେ. ବି(ସଂ. ଶ୍ୱଶ୍ରୂ ଓ ବଧୂ; ଅପେକ୍ଷିକ ଶବ୍ଦର ଶବ୍ଦଦ୍ୱୟ)-
Sāśu bohu ଶ୍ୱଶ୍ରୂ ଓ ବଧୂ—Two females related
শাশুড়ী বৌ सास बहू to one another as mother-in-law and daughter-in-law.

ଶାଶୁ ଶଶୁର—ଦେ. ବି ( ଦ୍ୱନ୍ଦ୍ୱସମାସ ଅଧିକର ଶବ୍ଦ ) - ଆପଣାର ଶାଶୁ
Sāśu śaśura ଓ ଶ୍ୱଶୁର—One's mother-in-law
শশুর শাশু सास ससुर and father-in-law.

ଶାଶ୍ୱତ—ସଂ. ବିଣ. ପୁଂ (ଶଶ୍ୱତ୍=ସର୍ବଦା+ଭବ ଅର୍ଥରେ ଅ)—ନିତ୍ୟ;
Sāśwata ସନାତନ; ଚିରସ୍ଥାୟୀ—Eternal; perpetual;
(ଶାଶ୍ୱତ - ଅନ୍ୟରୂପ—ପ୍ରକୃତିବାଦ) existing for eternity.
( ଶାଶ୍ୱତୀ—ସ୍ତ୍ରୀ ) [ ଦ୍ର—ଏହା ଈଶ୍ୱରଙ୍କର ବିଶେଷଣରୂପେ ମଧ୍ୟ ବ୍ୟବହୃତ ହୁଏ । ] ବି—୧ । ଭଗବାନ୍; ଈଶ୍ୱର—
1. God. ୨ । ବେଦବ୍ୟାସ ମୁନି—2. Sage Beda-byāsa. ୩ । ଶିବ—3. Śiba. ୪ । ସ୍ୱର୍ଗ ( ବି. ଶ )—4. Heaven. ୫ । ଅନ୍ତରୀକ୍ଷ ( ବି. ଶ )—5. The sky; the heavens.

ଶାଶ୍ୱତିକ—ସଂ. ବିଣ. ପୁଂ (ଶଶ୍ୱତ+ଭବାର୍ଥେ ଇକ)—ଶାଶ୍ୱତ (ଦେଖ)
Sāśwatika Sāśwata ( See )
( ଶାଶ୍ୱତିକା—ସ୍ତ୍ରୀ )

ଶାଶ୍ୱତୀ—ସଂ. ବିଣ. ସ୍ତ୍ରୀ ( ଶାଶ୍ୱତ+ଈ )—ଶାଶ୍ୱତର ସ୍ତ୍ରୀଲିଙ୍ଗ—Femi-
Sāśwati nine of Sāśwata. ବି—ପୃଥିବୀ ( ବି. ଶ )—
The earth.

ଶାଷ୍କୁଲ—ସଂ. ବିଣ. ପୁଂ (ଶଷ୍କୁଲୀ=ମାଂସ+ଭକ୍ଷଣାର୍ଥେ ଅ; କଦାଚିତ୍)—
Sāshkula ୧ । ମାଂସାହାରୀ (ବି. ଶ)—1. Meat-eating.
(ଶାଷ୍କୁଲା—ସ୍ତ୍ରୀ) carnivorous. ୨ । ମତ୍ସ୍ୟ ବା ମାଂସାହାରୀ—
2. Eating flesh or fish ( Apte ).

ଶାସ୍ ( ଧାତୁ )—ସ - ୧ । ଶାସନ କରିବା—1. To rule; to
Sās ( root ) govern. ୨ । ଦମନ କରିବା—2. To restrain. ୩ । ଆଜ୍ଞା ବା ଆଦେଶ ଦେବା—3. To order; to command; to decree. ୪ । ଉପଦେଶ ଦେବା—4. To advise. ୫ । ଶିକ୍ଷା ଦେବା; ତାଲିମ୍ କରିବା—5. To teach; to train; to instruct (Apte). ୬ । କହିବା; ଜଣାଇବା—6. To tell; to communicate; to inform ( Apte ). ୭ । ବ୍ୟବସ୍ଥା କରିବା; ଆଇନ୍ କରିବା—7. To enact.

୮ । ଦଣ୍ଡ ଦେବା—8. To punish; to chastise. ୯ । ଇଚ୍ଛା କରିବା—9. To wish; to desire (Apte). ୧୦ । ପୋଷିବା, ବଶ କରିବା—10. To tame; to subdue (Apte).

**ଶାସ**—ସଂ. ବି ( ଶାସ୍ ଧାତୁ+ଭାବ ଅ ) ( ବୈଦିକ )—୧ । ଶାସନ—
**Śāsa** 1. Rule. ୨ । ସ୍ତବ; ସ୍ତୁତି (ଋ. ସ)—2. Hymn; praise.

**ଶାସକ**—ସଂ.ବି ଓ ବିଶ ପୁଂ(ଶାସ୍ ଧାତୁ+କର୍ତ୍ତୃ. ଅକ) —୧। ଶାସନକର୍ତ୍ତା—
**Śāsaka** 1. Ruler; administrator. ୨ । ଉପଦେଷ୍ଟା—
( ଶାସିକା—ସ୍ତ୍ରୀ ) 2. Advisor. ୩ । ଦମନକାରୀ—3. Restrainer; checker. ୪ । ଦଣ୍ଡଦାତା—4. Punisher; chastiser.

**ଶାସନ**—ସଂ. ବି ( ଶାସ୍ ଧାତୁ+ଭାବ. ଅନ )—୧ । ଆଜ୍ଞା; ଆଦେଶ—
**Śāsana** 1. Order; command. ୨ । ଉପଦେଶ—2. Advice ୩ । (+କରଣ. ଅନ) ଅନୁଶାସନ; ସନନ୍ଦ—3. Sanad; edict. ୪ । (+ଭାବ. ଅନ) ଦମନ—4. Restraining. ୫ । (+କରଣ. ଅନ) ଆଜ୍ଞାପତ୍ରିକା; ଲିଖିତପତ୍ର; ଆଦେଶପତ୍ର—5. Written order; precept. ୬। କୂଟ ଲିଖିତ; ଠାରରେ ଲେଖା-6. A cypher writing. ୭। (+ଭାବ. ଅନ) ରାଜ୍ୟ ପାଳନ ( ଯଥା—ଦୋଷୀକୁ ଦଣ୍ଡ ଦେବା, ନିର୍ଦ୍ଦୋଷକୁ ରକ୍ଷା କରିବା, ପ୍ରଜାଙ୍କ ସୁଖସ୍ୱଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ଦେବା ଆଦି )—7. Administration; ruling of a kingdom. ୮ । (+ଭାବ. ଅନ) ପ୍ରତିପାଳନ—8. Governance; bringing up. ୯ । (+କର୍ମ. ଅନ) ରାଜଦତ୍ତ ଭୂମି—9. Land given by a king. ୧୦ । ଶାସ୍ତ୍ର; ଦେବତା ବା ମୁନି ପ୍ରଣୀତ ଗ୍ରନ୍ଥ—10. Scriptures. ୧୧ । ଆଇନ୍; ବିଧି—11. Rule; law. ୧୨ । (+ଭାବ. ଅନ) ବଶରେ ରଖିବା (ହ୍ର. ଶ)—12. Keeping under control. ୧୩ । ଇନ୍ଦ୍ରିୟ ନିଗ୍ରହ ( ହ୍ର. ଶ )—13. Controlling one's organs. ୧୪ । ନିୟନ୍ତ୍ରଣ ( ହ୍ର. ଶ )—14. Controlling. ୧୫ । (+କରଣ. ଅନ) ଦଣ୍ଡ—15. Punishment. ଦେ. ବି—ବ୍ରାହ୍ମଣମାନଙ୍କୁ
শাসন
অস্থোত্তর গাঁও
ସନନ୍ଦଦ୍ୱାରା ଦିଆ ଯାଇଥିବା ନିଷ୍କର ଭୂମି ସମ୍ବଳିତ ଗ୍ରାମ—A village consisting of lands given to Brāhmaṇas free of revenue. [ ଦ୍ର—ପୂର୍ବେ ଓଡ଼ିଶାରେ ବୌଦ୍ଧଧର୍ମର ପ୍ରାଦୁର୍ଭାବ ହୋଇଥିଲା । ତତ୍ପରେ ଉତ୍କଳର ପ୍ରଥମ ହିନ୍ଦୁ ରାଜା ଜନମେଜୟ ଓ ତତ୍ପରବର୍ତ୍ତୀ ଯଯାତିକେଶରୀ ଆଦି ରାଜାମାନେ ଉତ୍କଳରେ ବୌଦ୍ଧଧର୍ମର ହ୍ରାସ ଓ ହିନ୍ଦୁଧର୍ମର ପ୍ରତିଷ୍ଠା କରିବାକୁ ଚେଷ୍ଟା କରିଥିଲେ । ଯଯାତିକେଶରୀ (ଖ୍ରୀଷ୍ଟ ୫ମ ଶତାବ୍ଦୀ) ସତ୍କର୍ମଶୀଳ ଓ ସଦାଚାରୀ ଦଶ ସହସ୍ର ବ୍ରାହ୍ମଣଙ୍କୁ କାନ୍ୟକୁବ୍ଜ (କନୌଜ)ରୁ ନିମନ୍ତ୍ରଣ କରି ଅଣି ତଦାନୀନ୍ତନ ରାଜଧାନୀ ଯାଜପୁରଠାରେ ଗୋଟିଏ ଅଶ୍ୱମେଧ ଯଜ୍ଞର ଅନୁଷ୍ଠାନ କଲେ ଓ ନବାଗତ ବ୍ରାହ୍ମଣମାନଙ୍କୁ ନିଷ୍କର ଭୂମି ଦାନ କରି ଯାଜପୁର ଅଞ୍ଚଳରେ ବ୍ରାହ୍ମଣମାନଙ୍କ 'ଶାସନ'ମାନ ବସାଇଲେ । ତାଙ୍କ ପରବର୍ତ୍ତୀ କେଶରୀ ବଂଶୀୟ ରାଜାମାନେ ( ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ), ଗଙ୍ଗବଂଶୀୟ ରାଜାମାନେ (ଦ୍ୱାଦଶ ଶତାବ୍ଦୀରୁ ଷୋଡ଼ଶ ଶତାବ୍ଦୀ) ଓ ଭୋଇବଂଶୀୟ ରାଜାମାନେ ଓଡ଼ିଶାର ସ୍ଥାନେ ସ୍ଥାନେ ଓ ପୁରୀ ଜିଲ୍ଲାରେ ( ବିଶେଷତଃ ରାଜାଙ୍କ ଚତୁଃପାର୍ଶ୍ୱରେ ) ଏହିପରି ନିଷ୍କର ଭୂମି ବ୍ରାହ୍ମଣମାନଙ୍କୁ ଦାନ କରି ସ୍ଥାନେ ସ୍ଥାନେ ବ୍ରାହ୍ମଣ ଉପନିବେଶମାନ ବସାଇବାର ସୂତ୍ରପାତ କଲେ । ଯେଉଁ ତାମ୍ରପତ୍ରାନୁଶାସନ ( ତମ୍ବା ପଟା ସନନ୍ଦ ) ମାନଙ୍କଦ୍ୱାରା ରାଜାମାନେ ବ୍ରାହ୍ମଣମାନଙ୍କୁ ନିଷ୍କର ଭୂମିମାନ ଦାନ କରି ବ୍ରାହ୍ମଣ ଶାସନମାନ ବସାଇଥିଲେ, ସେହି ଶାସନ-ପତ୍ରମାନ କେତେକ ମିଳିଅଛି ଓ ଉକ୍ତ ପତ୍ରମାନଙ୍କରୁ ତଦାନୀନ୍ତନ ଓଡ଼ିଆ ଭାଷାର ଓ ଅକ୍ଷରର ପରିଚୟ ମିଳେ । ବୌଦ୍ଧ ଧର୍ମର ପ୍ରାଦୁର୍ଭାବ ସମୟରେ ଓଡ଼ିଶାରେ ଯେଉଁ ବ୍ରାହ୍ମଣମାନେ ବାସ କରୁଥିଲେ ଓ ବୌଦ୍ଧଧର୍ମର ପ୍ରଭାବରୁ ଆଚାରଭ୍ରଷ୍ଟ ହୋଇଥିଲେ ସେହିମାନେ ବର୍ତ୍ତମାନ ପଣ୍ଡା, ପଢ଼ିଆରୀ, ପନିଆରୀ, ସାରୁଆ ବ୍ରାହ୍ମଣରୂପେ ଗଣ୍ୟ ହେଲେ । ଏମାନଙ୍କୁ ଲୌକିକ ବ୍ରାହ୍ମଣ ବୋଲାଯାଏ । ଯେଉଁମାନେ କାନ୍ୟକୁବ୍ଜରୁ ଆଗତ ହୋଇ 'ବ୍ରାହ୍ମଣଶାସନ'ମାନଙ୍କରେ ଉପନିବେଶ କଲେ, ସେମାନଙ୍କ ବଂଶଧରମାନେ ଉଚ୍ଚଶ୍ରେଣୀର ଶାସନୀ ବା ବୈଦିକ ବ୍ରାହ୍ମଣରୂପେ ପରିଚିତ । ଯେଉଁମାନେ ମାସ୍ତାନ ବା କଳଭଦ୍ରଗୋତ୍ରୀ ବ୍ରାହ୍ମଣରୂପେ ପରିଚିତ ସେମାନଙ୍କ ପୂର୍ବପୁରୁଷମାନେ ବୌଦ୍ଧଧର୍ମାବଲମ୍ବୀ ଥିବା କେତେକ ଐତିହାସିକ ଅନୁମାନ କରନ୍ତି ଓ ନବାଗତ ବୈଦିକ ବ୍ରାହ୍ମଣମାନେ ସେମାନଙ୍କୁ ବ୍ରାହ୍ମଣ ବୋଲି ସ୍ୱୀକାର କଲେ, କିନ୍ତୁ ସେମାନଙ୍କ ସ୍ଥାନ ବୈଦିକ ଓ ଲୌକିକ ବ୍ରାହ୍ମଣମାନଙ୍କ ନିମ୍ନରେ ରହିଲା । ଏହି ଶ୍ରେଣୀର ବ୍ରାହ୍ମଣମାନେ ପୁରୀର ବଡ଼ଦେଉଳ ଓ ଭୁବନେଶ୍ୱର ଦେଉଳରେ ସୂପକାରରୂପେ ନିଯୁକ୍ତ ହେଲେ । ଏବେ ମଧ୍ୟ ଅନେକ ମାସ୍ତାନ ବ୍ରାହ୍ମଣଙ୍କର ଉପାଧି ଶୂଦ୍ରୋଚିତ (ଯଥା—ସାହୁ, ପଧାନ, ସ୍ୱାଇଁ, ମହାନ୍ତି) ଅଟେ ଓ ସେମାନେ ଅନେକସ୍ଥଳେ ଶୂଦ୍ରୋଚିତ କାର୍ଯ୍ୟ (ଯଥା—ହଳ କରିବା, ପିକା ଖାଇବା) କରିବା ଦେଖାଯାଏ । ଭୂମିଦାନକାରୀ ରାଜାମାନଙ୍କ ନାମାନୁସାରେ ବ୍ରାହ୍ମଣଶାସନମାନଙ୍କର ନାମ ହୋଇଅଛି [ଯଥା—ବୀରନରସିଂହ ପୁର (ନରସିଂହଦେବଙ୍କ ନାମାନୁସାରେ); ବୀର ପ୍ରତାପପୁର, ପ୍ରତାପ ପୁରୁଷୋତ୍ତମପୁର, ପ୍ରତାପ ରାମଚନ୍ଦ୍ରପୁର, ବାସୁଦେବପୁର, ବୀର ରାମଚନ୍ଦ୍ରପୁର, ଶ୍ରୀରାମଚନ୍ଦ୍ରପୁର, ବଡ଼ ରାମଚନ୍ଦ୍ରପୁର, ବିଶ୍ୱନାଥପୁର, ବୀର ଗୋବିନ୍ଦପୁର, ରାୟ ଗଦାଧରପୁର, ବୀର ପୁରୁଷୋତ୍ତମପୁର, ଶ୍ରୀପୁରୁଷୋତ୍ତମପୁର, ମକୁନ୍ଦପୁର] । କଥିତ ଅଛି ଯେ, ପୁରୀ

ଜିଲ୍ଲାର ରହାଙ୍ଗ ପ୍ରଗଣାରେ ୧୦ ଶାସନ ଓ ଲମ୍ବେଇ ପ୍ରଗଣାରେ ୬ ଶାସନ ଅଛି । ଯେଉଁ ବ୍ରାହ୍ମଣଶାସନମାନଙ୍କୁ ରାଜାଙ୍କ ମନ୍ତ୍ରୀ ଓ କର୍ମ୍ମୀମାନେ ବସାଇଥିଲେ ସେମାନଙ୍କୁ କରବାଡ଼ ବୋଲାଯାଏ (ଯଥା—ଜଗନ୍ନାଥ ବିଦ୍ୟାଧରପୁର, ଦାମୋଦରପୁର) । କଥିତ ଅଛି ଯେ, ରହାଙ୍ଗ ଓ ଲମ୍ବେଇ ପ୍ରଗଣାରେ ୧୬ ଶାସନ ଓ ୩୨ କରବାଡ଼ ଅଛି । ଏହି ରହାଙ୍ଗ ଶାସନମାନଙ୍କର ଗ୍ରାମ-ଶାସନ ପ୍ରଣାଳୀ ଭାରତ-ବର୍ଷର ପ୍ରାଚୀନ ଗ୍ରାମ୍ୟ ସମାଜ (Village Community) ର ସାକ୍ଷୀରୂପେ ଅଦ୍ୟାବଧି ବିଦ୍ୟମାନ ଅଛି । ପ୍ରତ୍ୟେକ 'ଶାସନ' ଗୋଟିଏ ସାଧାରଣ-ସମାଜ-ସଂଘ ରୂପେ ପ୍ରତିଷ୍ଠିତ ହୋଇଥିଲା । ଗ୍ରାମବାସୀ ବ୍ରାହ୍ମଣମାନଙ୍କୁ 'ମହାଜନ' ବୋଲାଯାଏ । ବ୍ରାହ୍ମଣେତର ବ୍ୟକ୍ତି 'ମହାଜନ' ଉପାଧି ବା ଅଧିକାର ପାଇବାର ହକ୍‌ଦାର ନୁହନ୍ତି ଓ ଗ୍ରାମର ସାଧାରଣ ସେବକ (ଯଥା—ଧୋବା, ଭଣ୍ଡାରି, କମାର, କୁମ୍ଭାର, ପଣ୍ଡା, ନାହାକ ଓ ବଜନ୍ତ୍ରୀ)ମାନେ ଜାଗିର ଭୋଗ କରି ଗ୍ରାମର 'ମହାଜନ'ମାନଙ୍କ ସେବା କରୁଥିଲେ । ଗ୍ରାମର ପ୍ରତିଷ୍ଠିତ ଦେବତା ଓ ତାଙ୍କ ତଳେ ଖଞ୍ଜା ଥିବା ଭୂମି ମଧ୍ୟ ଗ୍ରାମବାସୀ (ମହାଜନ)ମାନଙ୍କର ସାଧାରଣ ବା କୋଠ ସମ୍ପତ୍ତି । ଗ୍ରାମର ସାଧାରଣ ଭୂମିରେ ଓ ଦେବତାଙ୍କ ଉପରେ ଗ୍ରାମବାସୀ ବ୍ରାହ୍ମଣ (ମହାଜନ)ମାନଙ୍କର ଅଧିକାର ଥିଲା । ଗ୍ରାମର କୂଅ, ଦେଉଳ, କୋଠ, ହଳର ଅଧିରେ କେବଳ ମାତ୍ର ମହାଜନମାନଙ୍କ ଅଧିକାର ଥିଲା । ଏହି 'ଶାସନବାସୀ' ଅନେକ ପଣ୍ଡିତ ଓ ଯଜ୍ଞକାରୀ ଭାରତ-ବିଖ୍ୟାତ ହୋଇଥିଲେ । ନୃସିଂହ ବାଜପେୟୀଙ୍କ ରଚିତ ସ୍ମୃତି ଅଦ୍ୟାବଧି ଦାକ୍ଷିଣାତ୍ୟରେ ପଠନୀୟ ହେଉଅଛି । ମୋଗଲ ସମ୍ରାଟ ଆକବରଙ୍କ ସଭାରେ ଶତ୍ରୁଘ୍ନ ରାଏଗୁରୁ ଓ କବି ପାତ୍ରୁ ମିଶ୍ର ବିଶେଷ ପାଣ୍ଡିତ୍ୟ ଦେଖାଇ ସମ୍ମାନିତ ହୋଇଥିଲେ ।

କେତେକ ନୀତ ହୋଇର ବ୍ରାହ୍ମଣଙ୍କୁ ରାଜାମାନେ ସମ୍ମାନିତ କରି 'କୁଳୀନ' କରଥିଲେ ଓ ସେମାନେ ସାମନ୍ତ, ଚତୁର୍ଦ୍ଦିଶ ଅଙ୍କ ସଙ୍ଖ୍ୟାରେ ଏ ପର୍ଯ୍ୟନ୍ତ ଶାସନବ୍ରାହ୍ମଣଙ୍କ ମଧ୍ୟରେ ସମ୍ମାନ ପ୍ରାପ୍ତ ହେଉଅଛନ୍ତି ।

ପୁରୀଜିଲ୍ଲାର ଏହି ସାମନ୍ତମାନଙ୍କ ମଧ୍ୟରେ ୪ ଗୋଷ୍ଠି ବଂଶ ପ୍ରଧାନ ।

ଯଥା :—

ନନ୍ଦ ସାଆନ୍ତ—ଉତୁରା ବରପଦାର

ବତ୍ସ ସାଆନ୍ତ—ବୀର ନରସିଂହପୁରର

ବାଜପେୟୀ ସାଆନ୍ତ—ବିଶ୍ୱନାଥପୁରର

ଗୁଆଳିଆ (ଗୋଆଳେୟ) ସାଆନ୍ତ—ହରେକୃଷ୍ଣପୁରର ।

ପୁରୀ ଜିଲ୍ଲାର ଶାସନମାନଙ୍କ ସମ୍ବନ୍ଧେ ରସର୍ଚ୍ଚ-ପଣ୍ଡିତ ଶ୍ରୀ ବିଶ୍ୱନାଥ ରଥ କାବ୍ୟତୀର୍ଥ ନିମ୍ନଲିଖିତ ସନ୍ଦର୍ଭ ଦେଇ-ଅଛନ୍ତି—ଶାସନ ଶବ୍ଦର କେତେଗୁଡ଼ିଏ ଅର୍ଥ ଅଛି । ସେଥିମଧ୍ୟରୁ ଗୋଟିଏ ଅର୍ଥ 'ରାଜଦତ୍ତ ଭୂମି' । ଏହି ଶାସନ ଗୁଡ଼ିକ ପୂର୍ବକାଳରେ ଉତ୍କଳର ରାଜା ବା ରାଜାଙ୍କ ପାତ୍ରମନ୍ତ୍ରୀଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । କଟକ ଜିଲ୍ଲାରେ ମଧ୍ୟ ଅନେକ ଗୁଡ଼ିଏ ଶାସନ ତତ୍‌କାଳୀନ ରାଜାମାନଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବାର ପ୍ରମାଣ ମିଳେ । କଥିତ ଅଛି ଯେ,ଗଙ୍ଗବଂଶୀୟ ଅନଙ୍ଗ ଭୀମଦେବ ( ସିଂହାସନାରୋହଣ ୧୧୯୯ ଖ୍ରୀ: ମୃତ୍ୟୁ ୧୨୬୩)ଯୁଦ୍ଧସ୍ଥଳରେ ଅଜ୍ଞାତସାରରେ ବ୍ରହ୍ମହତ୍ୟା କରିଥିବାରୁ ତଜ୍ଜନିତ ପାପରୁ ମୁକ୍ତ ହେବା ସକାଶେ ୪୫୦ ବ୍ରାହ୍ମଣ ଶାସନ ବସାଇ ବ୍ରାହ୍ମଣମାନଙ୍କୁ ବିସ୍ତର ଭୂମି ଦାନ କରିଥିଲେ; କିନ୍ତୁ ସେଗୁଡ଼ିକର ବର୍ତ୍ତମାନ ନାମ ଜାଣି ବାହାର କରିବା ଦୁଷ୍କର । ବର୍ତ୍ତମାନ ଶାସନ ବୋଇଲେ ପୁରୀ ଜିଲ୍ଲାର ବ୍ରାହ୍ମଣ ଶାସନ ବୋଲି ବୁଝାଯାଏ । ପୁରୀ ଜିଲ୍ଲାର ଉକ୍ତ ବ୍ରାହ୍ମଣ ଶାସନଗୁଡ଼ିକ ଅଧିକାଂଶ ଭୋଇ ବଂଶୀୟ ରାଜାମାନଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇ-ଅଛି । କେବଳ ୧୪୦୯ ଖ୍ରୀଷ୍ଟାବ୍ଦରେ ସୂର୍ଯ୍ୟବଂଶୀୟ ରାଜା କପିଳେନ୍ଦ୍ର ଦେବ ପୁରୀ ନିକଟରେ ନିଜ ନାମାନୁସାରେ କପିଳେଶ୍ୱରପୁର ଶାସନ ବସାଇ ବ୍ରାହ୍ମଣମାନଙ୍କୁ ବିସ୍ତର ଜମିବାଡ଼ି ଦାନ କରିଥିଲେ ଏବଂ ଉକ୍ତ ରାଜା ମଧ୍ୟ ୧୪୫୯ ଖ୍ରୀଷ୍ଟାବ୍ଦରେ ଶ୍ରୀଦାମୋଦରପୁର ନାମକ ଆଉ ଗୋଟିଏ ବ୍ରାହ୍ମଣ ଶାସନ ପୁରୀ ନିକଟରେ ବସାଇଥିଲେ । ଉକ୍ତ କପିଳେଶ୍ୱର ପୁରରେ ଓଡ଼ିଆ ଭାଗବତ ପ୍ରଣେତା ଭକ୍ତକବି ଜଗନ୍ନାଥ ଦାସ ଜନ୍ମ ଗ୍ରହଣ କରିଥିଲେ ଏବଂ ଦାମୋଦରପୁର ଶାସନ ସ୍ୱର୍ଗୀୟ ମହାମହୋପାଧ୍ୟାୟ ପଣ୍ଡିତ ସଦାଶିବ ମିଶ୍ର କାବ୍ୟକଣ୍ଠଙ୍କ ଜନ୍ମସ୍ଥାନ ଅଟେ । କପିଳେନ୍ଦ୍ର ଦେବଙ୍କର ଜନୈକ ମନ୍ତ୍ରୀ ଗୋପୀନାଥ ମହାପାତ୍ର କଟକ ଜିଲ୍ଲାରେ ଗୋପୀନାଥପୁର ଶାସନ ବସାଇ ସେଠାରେ ଜଗନ୍ନାଥ ମନ୍ଦିର ନିର୍ମାଣ କରାଇଥିଲେ ।

ସୂର୍ଯ୍ୟବଂଶୀୟ ପ୍ରତାପରୁଦ୍ର ଦେବ (ଖ୍ରୀ.୧୪୯୭—୧୫୩୨) ପୁରୀରେ ବୀରପ୍ରତାପପୁର ଶାସନ ଏବଂ ବାଲିପାଟଣା ନିକଟ-ବର୍ତ୍ତୀ ପ୍ରତାପ ଶାସନ ବସାଇ ବ୍ରାହ୍ମଣମାନଙ୍କୁ ବିସ୍ତର ଭୂମିଦାନ କରିଥିଲେ । ଉକ୍ତ ବୀରପ୍ରତାପପୁର ଶାସନରେ ପୈଶାଚୀ ଭାଷାର ବ୍ୟାକରଣ "ପ୍ରାକୃତସର୍ବସ୍ୱ" ପ୍ରଣେତା ମାର୍କଣ୍ଡେୟ କବୀନ୍ଦ୍ର ଜନ୍ମ ଗ୍ରହଣ କରିଥିଲେ । ସେ ମଧ୍ୟ ତତ୍‌ପ୍ରଣୀତ ପୁସ୍ତକରେ ପ୍ରତାପରୁଦ୍ରଦେବ ବୀରପ୍ରତାପପୁର ଶାସନ ବସାଇ ଥିବା କଥା ଲେଖି ଯାଇଅଛନ୍ତି ।

\+ \+ \+ \+

୧୫୬୮ରୁ ୧୭୫୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଖୋର୍ଦ୍ଧବଂଶୀୟ ରାଜା-ମାନେ ରାଜତ୍ୱ କରିଥିଲେ । ଏହି ବଂଶର ପ୍ରଥମ ରାଜା ରାମଚନ୍ଦ୍ର ଦେବ ୧୫୬୮ ରୁ ୧୬୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ୩୨ ବର୍ଷ ରାଜତ୍ୱ କରିଥିଲେ । ଉକ୍ତ ରାମଚନ୍ଦ୍ର ଦେବ ପୁରୀ ନିକଟରେ ଶ୍ରୀରାମଚନ୍ଦ୍ର ପୁର (ଦୁଇ ଶ୍ରେଣୀ); 'ବୀର ରାମଚନ୍ଦ୍ର ପୁର' (ତିନି ଶ୍ରେଣୀ ), 'ପ୍ରତାପ ରାମଚନ୍ଦ୍ର ପୁର' (ପାଟଣା), ବଡ଼ ରାମଚନ୍ଦ୍ରପୁର (କୋଣ୍ଡଙ୍ଗା) ଓ 'ଉଭୟମୁଖୀ ରାମଚନ୍ଦ୍ର ପୁର'; ଏହିପରି ନଅ ଶାସନ ବସାଇ ଥିବାର କିମ୍ବଦନ୍ତୀ ଅଛି । ଏ ରାଜାଙ୍କର ମନ୍ତ୍ରୀ ଦାସ ବିଦ୍ୟାଧର 'ଦାସ ବିଦ୍ୟାଧର ପୁର'

ଶାସନ ଏବଂ ଛକ୍କ ବିଦ୍ୟାଧର 'ରାୟ ଚକ୍ରଧର ପୁର' ଶାସନ ବସାଇଥିଲେ ।

ପୁରୁଷୋତ୍ତମ ଦେବ ରାମଚନ୍ଦ୍ର ଦେବଙ୍କ ପୁତ୍ର ଅଟନ୍ତି । ସେ ଖ୍ରୀ. ୧୬୦୦ରୁ ୧୬୨୨ ପର୍ଯ୍ୟନ୍ତ ୨୨ବର୍ଷ ରାଜପଣ କରିଥିଲେ । ଏ ରଜା ବୀର ପୁରୁଷୋତ୍ତମପୁର, ଶ୍ରୀ ପୁରୁଷୋତ୍ତମ ପୁର ଶାସନଦ୍ୱୟ ବସାଇଥିଲେ । ତଦନନ୍ତର ତାହାଙ୍କ ପୁତ୍ର ନରସିଂହ ଦେବ ଖ୍ରୀ. ୧୬୨୨ରୁ ୧୬୪୬ ପର୍ଯ୍ୟନ୍ତ ରାଜପଣେ କରିଥିଲେ । ଏ ରାଜା ବୀର ନରସିଂହପୁର ଶାସନ ବସାଇଥିଲେ ।

ଏହି ସମୟରୁ ଶାସନମାନଙ୍କରେ ସାମନ୍ତ,ଭଟ୍ଟମିଶ୍ର ଓ ବୈଦିକ, ଏପରି ୩ଶ୍ରେଣୀର ସୃଷ୍ଟି ହେଲା । କୁଳମର୍ଯ୍ୟାଦା ଅନୁସାରେ ବ୍ରାହ୍ମଣମାନେ ଜମିବାଡ଼ି ଦାନ ପାଇଲେ ଏବଂ ଗ୍ରାମର ମୁଖ୍ୟ ସାମନ୍ତ ଦାନାଧ୍ୟକ୍ଷ ହେଲେ । ଏହିପରି ୧୬୨୨ ଖ୍ରୀ.ରୁ ପୁରୀରେ କୌଳୀନ୍ୟ ପ୍ରଥା ବ୍ରାହ୍ମଣମାନଙ୍କ ମଧ୍ୟରେ ପ୍ରଚଳିତ ହେଲା । ପୂର୍ବରେ ଶାସନମାନଙ୍କରେ ଟଙ୍କି ଖଞ୍ଜଣା ନ ଥିଲା । ଏହି ନରସିଂହ ଦେବ ଶାସନମାନଙ୍କରେ ଟଙ୍କି ବସାଇଲେ । ଏ ରାଜାଙ୍କର ମନ୍ତ୍ରୀ କହ୍ନାଇ ବିଦ୍ୟାଧର ପୁର, ରାଜାଙ୍କ ସାନଭାଇ ବିଶ୍ୱନାଥ ରାୟ, ବିଶ୍ୱନାଥପୁର ଶାସନ ବସାଇଲେ ।

ତତ୍ପରେ ନରସିଂହ ଦେବଙ୍କ ଭାଇ ବଲଭଦ୍ର ଦେବ ୧୬୪୬ରୁ ୧୬୫୫ ପର୍ଯ୍ୟନ୍ତ ରାଜପଣ କଲେ । ଏ ରାଜା ପୁରୀରେ ବୀର ବଲଭଦ୍ରପୁର ଶାସନ ବସାଇଲେ । ଏହି ଶାସନରେ ମଧ୍ୟ ବସନ୍ତ ସାମନ୍ତ ଦାନାଧ୍ୟକ୍ଷ । ବଲଭଦ୍ରଙ୍କ ମୃତ୍ୟୁ ପରେ ତାହାଙ୍କ ପୁତ୍ର ମୁକୁନ୍ଦ ଦେବ ୧୬୫୫ ରୁ ୧୬୯୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜପଣ କଲେ । ଏ ରାଜା ଭୂମନା ବରପଦାଠାରେ ଶ୍ରୀମୁକୁନ୍ଦପୁର ଶାସନ ଦାନ କରି ନନ୍ଦ ସାମନ୍ତଙ୍କୁ ଦାନାଧ୍ୟକ୍ଷ କଲେ ।

\+ \+ \+ \+

ପ୍ରତାପରୁଦ୍ର ଦେବଙ୍କର ଜନୈକ ପ୍ରଧାନ ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର ଖ୍ରୀ. ୧୫୩୪ ରୁ ୧୫୪୧ ପର୍ଯ୍ୟନ୍ତ ରାଜତ୍ୱ କରି ବୀରଗୋବିନ୍ଦପୁର ବ୍ରାହ୍ମଣଶାସନ ବସାଇଥିଲେ ଏବଂ ବୀର-ଗୋବିନ୍ଦପୁର ପୋଖରୀ ଖୋଳାଇ ଥିଲେ ।

× × × ×

ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ତାହାଙ୍କ ପୁତ୍ର ଦିବ୍ୟସିଂହ ଦେବ ଖ୍ରୀ୧୬୯୩ରୁ ୧୭୨୦ ପର୍ଯ୍ୟନ୍ତ ରାଜପଣ କଲେ । ଏ ରାଜାଙ୍କ ଅମଳରେ ମୋଗଲମାନେ ଆସି କଟକ ଦଖଲ କରିବାରୁ ମୋଗଲବନ୍ଦୀର ସୃଷ୍ଟି ହେଲା । ଦିବ୍ୟସିଂହଦେବଙ୍କ କନିଷ୍ଠ ଭ୍ରାତା ହରେକୃଷ୍ଣଦେବ ଖ୍ରୀ୧୭୨୦ରୁ ୧୭୨୫ ପର୍ଯ୍ୟନ୍ତ ରାଜତ୍ୱ କଲେ । ଏ ରାଜା ୧୭୨୨ ଖ୍ରୀଷ୍ଟାବ୍ଦରେ ପୁରୀ ନିକଟରେ ବୀରହରେକୃଷ୍ଣପୁର ଶାସନ ବସାଇ ଗୋଅହେୟ (ଗୁଅଡ଼ିଆ) ନାମକ ଚତୁର୍ଥ ଶ୍ରେଣୀ ସାମନ୍ତ ସୃଷ୍ଟି କଲେ । ଏହି ଶାସନରେ କେତେକ ଲବ୍ଧପ୍ରତିଷ୍ଠ ବ୍ରାହ୍ମଣ ପଣ୍ଡିତ ଜନ୍ମ ଗ୍ରହଣ କରିଥିଲେ । ତନ୍ମଧ୍ୟରେ, ଗଦାଧରପଦ୍ଧତିନାମକ ସ୍ମୃତି ପ୍ରଣେତା ଏବଂ ଶାସନର ପ୍ରଥମ ଦାନାଧ୍ୟକ୍ଷ ରାଜଗୁରୁ ଗଦାଧର ମହାପାତ୍ର ଏବଂ ଅଷ୍ଟାଦଶ ବିଦ୍ୟାରେ ଅଷ୍ଟାଦଶ ପ୍ରକାଶ ପ୍ରଣେତା ବାସୁଦେବ ରଥ, ସୂର୍ଯ୍ୟଶତକ ରଚୟିତା ପଣ୍ଡିତ ଗୋପୀନାଥ ମିଶ୍ର ଓ ଆଶୁ ସଂସ୍କୃତ କବି ପଣ୍ଡିତ ବିଷ୍ଣୁ ରଥ ପ୍ରଭୃତି ପ୍ରଧାନ ଥିଲେ । ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ସେନାପତି ଜୟୀ ରାଜଗୁରୁ ଏହିଶାସନରେ ଜନ୍ମଗ୍ରହଣ କରିଥିଲେ ।

ରାଜା ହରେକୃଷ୍ଣଙ୍କ ପୁତ୍ର ଗୋପୀନାଥ ଦେବ ୧୭୨୫ରୁ ୧୭୩୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ୭ ବର୍ଷ ରାଜତ୍ୱ କଲେ । ଏହାଙ୍କ ସମୟରେ ଏହାଙ୍କର ଜଣେ ଭାଇ ଭ୍ରମରବର ରାଉତରାୟ ଗୋପୀନାଥ ଦେବଙ୍କ ନାମାନୁସାରେ ପୁରୀ ଅଠରନଳା ପାଖରେ ଗୋପୀନାଥପୁର ବା ରାଉତରାୟପୁର ଶାସନ ବସାଇଲେ । ଦ୍ୱିତୀୟ ରାମଚନ୍ଦ୍ରଦେବଙ୍କ ପୁତ୍ର ବୀରକେଶରୀ ଦେବ ବୀରକେଶରୀପୁର ଶାସନ ବସାଇ ଥିଲେ ।

ତଦନନ୍ତର ଭୋଇ ବଂଶର ଶେଷ ରାଜା ମୁକୁନ୍ଦଦେବଙ୍କ ସମୟରେ ଓଡ଼ିଶା ଇଂରେଜମାନଙ୍କର ହସ୍ତଗତ ହେଲା ଏବଂ ସେହି ଦିନଠାରୁ ଖୋର୍ଦ୍ଧା ପରିବର୍ତ୍ତେ ପୁରୀ ବାଲିସାହି ପୁରୁଣା ନଅରଠାରେ ରାଜା ଜଗନ୍ନାଥ ଦେବଙ୍କ ସେବାପୂଜା ବୁଝିବା ସକାଶେ ଖୋର୍ଦ୍ଧାର ମାଲିକାନାସୂତ୍ରେ ମାସକୁ ୨୩୩୩ ଟଙ୍କା ଗଭର୍ଣ୍ଣମେଣ୍ଟଙ୍କଠାରୁ ପାଇଲେ ।

ଏ ଗଲା ମୋଟାମୋଟି ଶାସନମାନଙ୍କର ପ୍ରତିଷ୍ଠାର ସମୟ ନିରୂପଣ । ବର୍ତ୍ତମାନ ପୁରୀ ଜିଲ୍ଲାର ପ୍ରଧାନ ପ୍ରଧାନ ଶାସନମାନଙ୍କର ନାମ ତଳରେ ବିବୃତ ହେଲା—

ବ୍ରହ୍ମାଙ୍ଗଶାସନମାନ ।

୧ । ବୀରହରେକୃଷ୍ଣପୁର ।

୨ । ବୀରବଲଭଦ୍ରପୁର ।

୩ । ବୀରନରସିଂହପୁର—(ବିଶିଷ୍ଟ ତାନ୍ତ୍ରିକ ପଣ୍ଡିତ ବିଶ୍ୱନାଥ ଷଟ୍‌ଯୋଷି ଓ ଭାଷା ଅନିରୁଦ୍ଧ ନାଟକ ପ୍ରଣେତା ଚନ୍ଦ୍ରଶେଖର ରାଜଗୁରୁଙ୍କ ଜନ୍ମସ୍ଥାନ ।)

୪ । ବିଶ୍ୱନାଥପୁର—ବିଶିଷ୍ଟ ବାଜପେୟୀ ସାମନ୍ତଙ୍କ ବାସସ୍ଥାନ ।

୫ । ବୀରକେଶରୀପୁର ।

୬ । ବୀରପୁରୁଷୋତ୍ତମପୁର ।

୭ । ଶ୍ରୀରାମଚନ୍ଦ୍ରପୁର ।

୮ । ନୀଳାମ୍ବରପୁର ।

୯ । ବାସୁଦେବପୁର ।

୧୦ । ଦାମୋଦରପୁର ।

୧୧ । ରାୟଚକ୍ରଧରପୁର ।

୧୨ । ବୀରପ୍ରତାପପୁର ।

୧୩ । ପ୍ରତାପପୁରୁଷୋତ୍ତମପୁର ।

୧୪ । ଜଗନ୍ନାଥବିଦ୍ୟାଧରପୁର (ବଡ଼ୁ ଜଗନ୍ନାଥ ବିଦ୍ୟାଧର ଦ୍ୱାରା ପ୍ରତିଷ୍ଠିତ ଓ ମହାମହୋପାଧ୍ୟାୟ ଜଗନ୍ନାଥ ମି ଦେ'ସାଂଖ୍ୟନ୍ୟାୟତୀର୍ଥ ଏବଂ ପଣ୍ଡିତ ଚକ୍ରାମଣି

ତର୍କବାଗୀଶ, ମୃତ୍ୟୁଞ୍ଜୟ ତର୍କପଞ୍ଚାନନ, ପଣ୍ଡିତପ୍ରବର ଶ୍ରୀନବନ୍ଧୁ ମିଶ୍ର ପଣ୍ଡିତଙ୍କର ଜନ୍ମସ୍ଥାନ ।)

୧୫ । ପ୍ରତାପରାମଚନ୍ଦ୍ରପୁର ।

୧୬ । କନ୍ଦେଇବିଦ୍ୟାଧରପୁର ।

୧୭ । ଦାସବିଦ୍ୟାଧରପୁର ।

୧୮ । ବୀରଗୋବିନ୍ଦପୁର ।

୧୯ । ଶ୍ରୀରାମଦାସପୁର ।

୨୦ । ଗଙ୍ଗାନାରାୟଣପୁର ।

୨୧ । ବିଜେରାମଚନ୍ଦ୍ରପୁର ।

୨୨ । ମାଲତିପାଟପୁର ।

୨୩ । ସୋମପାଞ୍ଜପୁର ।

୨୪ । କପିଳେଶ୍ୱରପୁର ।

୨୫ । ଉଭୟମୁଖୀ ରାମଚନ୍ଦ୍ରପୁର ।

୨୬ । ଗୋକୁଳପୁର ।

୨୭ । କାଶୀବିଶ୍ୱେଶ୍ୱରପୁର ।

୨୮ । କାଶୀଜଗନ୍ନାଥପୁର (କୋରୁଅ)

୨୯ । ଭର୍ଗପୁର (ଭାର୍ଗିପୁର)

୩୦ । ଶ୍ରୀପୁରୁଷୋତ୍ତମପୁର } । ପ୍ର ।

୩୧ । ଦେବପୁର } ଲେମ୍ବୋଇ

୩୨ । ଶ୍ରୀମୁକୁନ୍ଦପୁର, ପ୍ରଃ ସିରେଇ—(ପଣ୍ଡିତପ୍ରବର ସୃଷ୍ଟିଦ୍ଧିମ ସାମନ୍ତ ବିଶ୍ୱନାଥ ବ୍ରହ୍ମା ଏହି ଗ୍ରାମରେ ଜନ୍ମ ଗ୍ରହଣ କରି ୧୦୮ ବର୍ଷ ପରମାୟୁ ଭୋଗକରି ଏକ ଲକ୍ଷ ଗାୟତ୍ରୀ ଜପ ଓ ଯଜ୍ଞ କରିଥିଲେ । ଏହା ନନ୍ଦ ସାମନ୍ତମାନଙ୍କର ପ୍ରଧାନ ଗ୍ରାମ ।)

୩୩ । ଲଳିତାପାଟପୁର । ( ସିରେଇ )

୩୪ । ସାରଙ୍ଗଧର ବୀରକିଶୋରପୁର ,,

୩୫ । ମୈତ୍ରୀ ବିଲୋଚନପୁର ।

୩୬ । ସତ୍ୟଭାମାପାଟପୁର ।

୩୭ । ମାଣିକନ୍ତା ପାଟପୁର । (ପାଞ୍ଚଗଡ଼ ଖୋର୍ଦ୍ଧା )

୩୮ । ମୁକୁନ୍ଦପୁର । ,,

୩୯ । ଜଗନ୍ନାଥପୁର ,,

୪୦ । ମାଣିକଗୋପବଂଶହିପୁର । ,,

୪୧ । ଇନ୍ଦ୍ରପୁର । ,,

୪୨ । ବଡ଼ଗୋପୀନାଥ ଗୋପୀନାଥପୁର । ,,

୪୩ । ଅଚ୍ୟୁତରାଜପୁର । (ବାଣପୁର ଖୋର୍ଦ୍ଧା)

୪୪ । କୁଶଡ଼ିପା ଜଗନ୍ନାଥପୁର ,,

୪୫ । ଗୋପାଳପୁର ,,

୪୬ । ସାମନ୍ତରାୟପୁର ,,

୪୭ । ଜୀବନଦେଇପୁର ,,

୪୮ । ଗଙ୍ଗାଧରପୁର ।

୪୯ । ଶ୍ରୋତ୍ରୀୟପୁର ।

୫୦ । ଶ୍ରୀକଳାସପୁର ।

୫୧ । ବସନ୍ତପୁର ।

"ଦେବ" ସଞ୍ଜ୍ଞକ ଶାସନମାନ ରଜାଙ୍କଦ୍ୱାରା, ପାଟ ଓ ଦେଇ ସଂଜ୍ଞକ ରାଣୀଙ୍କଦ୍ୱାରା, (ରାୟ) ସଂଜ୍ଞକ ରାଜାଙ୍କ ଜନନୀ ଗୁରୁଙ୍କ ଦ୍ୱାରା ଓ ବିଦ୍ୟାଧର ସଞ୍ଜ୍ଞକ ବକ୍ସି ବା ମନ୍ତ୍ରୀଙ୍କଦ୍ୱାରା ପ୍ରତିଷ୍ଠିତ ହୋଇଥିବା ଅନୁମିତ ହୁଏ ।

ପୂର୍ବଜନ୍ମା ରାଜପୂଜ୍ୟ ଉପରଲିଖିତ ବ୍ରାହ୍ମଣଶାସନମାନଙ୍କ ବ୍ରାହ୍ମଣମାନେ ଉତ୍କଳରାଜବଂଶଧର ପୁରୀ ଗଜପତି ମହାରାଜଙ୍କ ରାଜନବକଳ୍ପ ପ୍ରତିବର୍ଷ ପୁଷ୍ୟାଭିଷେକ ମରଦନ ରାଜାଭିଷେକ ଅବସରରେ ସୁବର୍ଣ୍ଣୋପସ୍ଥାନ ଓ ନାଉକେଳ ଘେନି ଆସନ୍ତି । ରାଜା ରାଜବେଶରେ ସିଂହାସନରେ ବସି ବ୍ରାହ୍ମଣମାନଙ୍କୁ ଆସନ ଦିଅନ୍ତି । ତତ୍ପରେ ଶାସନମାନଙ୍କର ନାମ ଡକାଯାଏ । ଗୋଟିକ ପରେ ଗୋଟିଏ ଶାସନର ବ୍ରାହ୍ମଣ ରାଜଗୁରୁଙ୍କ ହସ୍ତରେ ଉପସ୍ଥାପିତ ସମର୍ପଣ କରନ୍ତି । ତତ୍ପରେ ରାଜା ବ୍ରାହ୍ମଣମାନଙ୍କୁ ୩ ଥର ପରିକ୍ରମା କରି ସାଷ୍ଟାଙ୍ଗ ପ୍ରଣିପାତ କରନ୍ତି । ବ୍ରାହ୍ମଣମାନେ ଜଳେ ଆଣିଥିବା ହଳଦିଆ ଚାଉଳ ଧରି ଆଶୀର୍ବାଦମନ୍ତ୍ର ପାଠକରି ପ୍ରଧାନଙ୍କ ହସ୍ତରେ ଉକ୍ତ ଚାଉଳ ଦିଅନ୍ତି । ପ୍ରଧାନ ରାଜଗୁରୁମାନଙ୍କୁ ଉକ୍ତ ଚାଉଳ ନେଇ ଦିଏ । ରାଜଗୁରୁମାନେ ଆଶୀର୍ବାଦ ଚାଉଳ ରାଜାଙ୍କ ମସ୍ତକରେ ଦେଇ ପଇତାଲାଗି କରନ୍ତି । ତତ୍ପରେ ବ୍ରାହ୍ମଣମାନଙ୍କର ପଦରଜ ରାଜାଙ୍କୁ ସ୍ପର୍ଶ କରାଯାଏ, ବ୍ରାହ୍ମଣଭୋଜନ ହୁଏ ଓ ଶାସନବାଡ଼ି ଦକ୍ଷିଣା ଓ ଗ୍ରାମ ଅଧିଷ୍ଠାତ୍ରୀ ଦେବୀଙ୍କ ସମର୍ପଣ ପାଇଁ ଶ୍ରୀମହାପ୍ରସାଦ ଦିଆଯାଇ ବ୍ରାହ୍ମଣମାନଙ୍କୁ ବିଦାୟ କରାଯାଏ ।

ଯାଜପୁରରେ କେଶରୀବଂଶୀୟ ରାଜାମାନଙ୍କ ପ୍ରତିଷ୍ଠିତ ଷୋଡ଼ଶ ବ୍ରାହ୍ମଣଶାସନ ଅଛି । କେଶରୀବଂଶୀୟ ରାଜାମାନେ ଖ୍ରୀଷ୍ଟ ୬ଷ୍ଠ ଶତାବ୍ଦୀଠାରୁ ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଉକ୍ତ ବଂଶର ଯଯାତିକେଶରୀ (ଖ୍ରୀ ୫୫୨ରେ ସିଂହାସନାରୋହଣ) ଯାଜପୁରରେ ଯଜ୍ଞ କରି କାନ୍ୟକୁବ୍ଜରୁ ଦଶ ସହସ୍ର ବ୍ରାହ୍ମଣ ଆଣାଇ ଯାଜପୁର ଓ ପୁରୀରେ ବହୁ ଭୂମି ଦାନ କରି ବ୍ରାହ୍ମଣଶାସନମାନ ବସାଇଥିଲେ । ପୁରୀ ଜିଲ୍ଲାର ଉକ୍ତ ବ୍ରାହ୍ମଣଶାସନମାନଙ୍କୁ ନିର୍ଣ୍ଣୟ କରିବା ଦୁଷ୍କର ଅଟେ ।]

ଶାସନ କରିବା—ଦେ. କ୍ରି—୧ । ଆୟତ୍ତ କରିବା—1. To control. Śâsana karibā ୨ । ଦମନ କରିବା—2. To subjugate. शासन करना ୩ । ଦଣ୍ଡ ଦେବା—3. To punish. ୪ । ରାଜ୍ୟକୁ ନିୟମରେ ଚଳାଇବା—4. To rule a country. শাসন করা

ଶାସନକର୍ତ୍ତା—ସଂ. ବି. ପୁଂ—୧ । ଯେ ରାଜ୍ୟ ଶାସନ କରନ୍ତି—Śâsana karttā 1. Ruler or governer of a country. ୨ । ଦମନକର୍ତ୍ତା—2. Cotroller.

ଶାସନ କୋଠ—ଦେ. ବି—ଶାସନ ମହାଜନ କୋଠ (ଦେଖ)—Śāsana kotha Śâsana mahājana kotha (See) गरमजरुआ आम

ଶାସନ ତନ୍ତ୍ର—ସଂ. ବ—ଶାସନ ପଦ୍ଧତି (ଦେଖ)
Śāsana tantra Śāsana paddhati (See)

ଶାସନ ଦଣ୍ଡ—ସଂ. ବ—ରାଜ୍ୟ ଶାସନ କରିବାର ଚିହ୍ନରୂପେ ରାଜାଙ୍କ ଧୃତ ଦଣ୍ଡ ବା ଯଷ୍ଟି—Sceptre.
Śāsana daṇḍa

ଶାସନଧର—ସଂ. ବି. ପୁଂ—୧। ଶାସକ—1. A ruler. ୨। ରାଜଦୂତ 2. Envoy.
Śāsanadhara

ଶାସନ ପତ୍ର—ସଂ. ବ ୧। ଆଜ୍ଞାପତ୍ରିକା; ଲିଖିତ ଆଜ୍ଞା; ହୁକୁମନାମା—1. Written order. ୨। ରାଜାଜ୍ଞା ଲିପିବଦ୍ଧ ହୋଇଥିବା ଧାତୁପତ୍ର ବା ଶିଳା—2. Metal plate or stone on which royal order or edicts are engraved.
Śāsana patra
( ଶାସନ ପତ୍ରିକା—ଅନ୍ୟରୂପ )

ଶାସନ ପଦ୍ଧତି—ସଂ. ବ—ରାଜ୍ୟକୁ ଶାସନ କରିବାର ରୀତି—The form of government of a country.
Śāsana paddhati
[ ଶାସନ ପ୍ରଣାଳୀ; ଶାସନ ତନ୍ତ୍ର—ଅନ୍ୟରୂପ]
[ଦ୍ର ‌ କାଳଭେଦରେ ଓ ଭିନ୍ନ ଭିନ୍ନ ଦେଶରେ ଭିନ୍ନ ଭିନ୍ନରୂପେ ଶାସନ ପ୍ରଣାଳୀ ପ୍ରଚଳିତ ହୁଏ। ଅନେକ ପ୍ରକାର ଶାସନ ପଦ୍ଧତି (ବା ଶାସନତନ୍ତ୍ର) ଦେଖାଯାଏ। ଯଥା—

ଇଚ୍ଛା ତନ୍ତ୍ର ବା ସ୍ୱେଚ୍ଛାଧୀନ ତନ୍ତ୍ର—ରାଜାଙ୍କ ଅବାରିତ ଇଚ୍ଛା ଅନୁସାରେ ରାଜ୍ୟ ଶାସନ—Absolute monarchy (ପୂର୍ବକାଳର ଋଷିଆ, ଅଧୁନାତନ କାବୁଲ, ପାରସ୍ୟ)। ନିୟମ ତନ୍ତ୍ର-ନିର୍ଦ୍ଧାରିତ ନିୟମ ଅନୁସାରେ ରାଜାଙ୍କ ଦ୍ୱାରା ରାଜ୍ୟଶାସନ -Limited monarchy (ଯଥା,ମିଶର,ଗ୍ରୀସ୍,ଇଟାଲୀ)। ପ୍ରଜାତନ୍ତ୍ର- ପ୍ରଜାମାନଙ୍କ ନିର୍ବାଚିତ ସଭାର ପରାମର୍ଶରେ ରାଜାଙ୍କଦ୍ୱାରା ରାଜ୍ୟଶାସନ-Constitutional monarchy (ଯଥା—ଅଧୁନାତନ ଇଂଲଣ୍ଡ।)

ସାଧାରଣ ତନ୍ତ୍ର—ପ୍ରଜାଙ୍କ ନିର୍ବାଚିତ ବ୍ୟକ୍ତିଙ୍କ ଦ୍ୱାରା ରାଜ୍ୟ ଶାସନ—Democracy; republican form of Government. (ଯଥା—ଆମେରିକା, ଫ୍ରାନ୍ସ, ଅଧୁନାତନ ଭାରତ।]

ଅମଲା ତନ୍ତ୍ର—ରାଜନିଯୁକ୍ତ କର୍ମଚାରୀ ବା ରାଜପ୍ରତିନିଧିଙ୍କ ଦ୍ୱାରା ରାଜ୍ୟ ଶାସନ—Bureaucracy (ଯଥା—ଭାରତବର୍ଷ)

ସମ୍ଭ୍ରାନ୍ତ ତନ୍ତ୍ର—ରାଜ୍ୟର ଉଚ୍ଚକୁଳୋଦ୍ଭବ ବା ଭୂସ୍ୱାମୀ ବା ବଡ଼ଲୋକଙ୍କଦ୍ୱାରା ପରିଚାଳିତ ଶାସନ ପ୍ରଣାଳୀ—Oligarchy ]

ଶାସନ ବାହକ—ସଂ. ବି. ପୁଂ (ଷଷ୍ଠୀ ତତ୍)—୧। ରାଜାଜ୍ଞାକୁ ଲୋକଙ୍କ ପାଖେ ପହଞ୍ଚାଇବା ବ୍ୟକ୍ତି—1. Herald. ୨। ରାଜଦୂତ (ହି. ଶ)—2. Ambassador.
Śāsana bāhaka

ଶାସନ ମହାଜନ—ଦେ. ବ—ପୁରୀ ଜିଲ୍ଲାର ରାଜପ୍ରତିଷ୍ଠିତ ବ୍ରାହ୍ମଣ ଶାସନ ଗ୍ରାମର ଅଧିବାସୀ ଓ ଗ୍ରାମର ଭୂସ୍ୱତ୍ୱରେ ଅଧିକାରୀ ବୈଦିକ ବ୍ରାହ୍ମଣ—Proprietor and resident Brahman of a Brahman-village-community.
Śāsana mahājana
शासनवासी ब्राह्मण
ब्राह्मण गाँवका व्यक्ति

ଶାସନ ମହାଜନ କୋଠ—ଦେ. ବ—ବ୍ରାହ୍ମଣ ଶାସନବାସୀ ସ୍ୱତ୍ୱାଧିକାରୀ ସମସ୍ତ ବ୍ରାହ୍ମଣଙ୍କର ଏକତ୍ର ମାଲି ସମ୍ପତ୍ତି—Joint property of the whole body of proprietor-Brahmans of a village community. [ଦ୍ର—ଗ୍ରାମର ଦେବତା, ଦେଉଳ, ଦେବତାଙ୍କ ଖଞ୍ଜା ଭୂମି, ଗ୍ରାମର ଅନାବାସୀ, ପୁଷ୍କରିଣୀ ଓ ଜଳାଶୟ ଇତ୍ୟାଦି ବସ୍ତୁମାନ ଶାସନ ମହାଜନ କୋଠ ଅଟେ।]
Śāsana mahājana kotha
शासन ब्राह्मणदेर यौथ सम्पत्ति
गरमजरुआ आम

ଶାସନ ମହାଜନାନ୍—ଦେ. ବ (ବହୁବଚନ)—ବ୍ରାହ୍ମଣ ଶାସନର ସ୍ୱତ୍ୱାଧିକାରୀ ବ୍ରାହ୍ମଣଗଣ—The whole body of resident proprietor-Brahmans of a Brahmana village governed by the village community system.
Śāsana mahājanān
शासन ग्रामेर ब्राह्मणेरा
ग्रामवासी

ଶାସନ ଶିଳା—ସଂ. ବ (ମ. ପ. ଲୋ)—ଯେଉଁ ଶିଳା ଉପରେ ରାଜାଜ୍ଞା ଖୋଦିତ ହୋଇଥାଏ (ହି. ଶ)—Stone slab containing royal edicts.
Śāsana śilā

ଶାସନହର—ସଂ. ବି. ପୁଂ (ଶାସନ+ହୃ ଧାତୁ+କର୍ତ୍ତୃ ଅ)—୧। ଆଜ୍ଞାବାହକ; ବାର୍ତ୍ତାବହ—1. A carrier of orders. ୨। ରାଜଦୂତ—2. A royal messenger. ୩। ପିଆଦା—3. Peon. ୪। ରାଜାଜ୍ଞା ଲୋକଙ୍କୁ ଜଣାଇବା ବ୍ୟକ୍ତି—4. Herald.
Śāsanahara
ଶାସନହାରକ } ଅନ୍ୟରୂପ
ଶାସନହାରୀ }

ଶାସନା—ସଂ. ବ (ଶାସନ+ଆ)—୧। ଶାସନ; ଦମନ—1. Controlling. ୨। ନିୟମାଧୀନତା—2. Discipline.
Śāsanā

ଶାସନାଧୀନ—ସଂ. ବିଣ. ପୁ (ଷଷ୍ଠୀ ତତ୍)—୧। ଶାସନର ବଶୀଭୂତ—1. Subject to rule or order. ୨। ଆଜ୍ଞାର ବଶବର୍ତ୍ତୀ; ଆଜ୍ଞାବହ—2. Obedient. ୩। ଅଧିକାରଭୁକ୍ତ—3. Brought under control.
Śāsanādhīna
(ଶାସନାଧୀନା—ସ୍ତ୍ରୀ)
(ଶାସନାଧୀନତା—ବ)

ଶାସନାର୍ହ—ସଂ.ବିଣ. ପୁଂ—୧। ଶାସିତ ହେବାର ଯୋଗ୍ୟ—1. Fit to be ruled or restrained. ୨। ଦଣ୍ଡାର୍ହ—2. Punishable.
Śāsanārha
(ଶାସନାର୍ହା—ସ୍ତ୍ରୀ)

ଶାସନୀ—ସଂ. ବ—ଲୋକଙ୍କୁ ଧର୍ମ ଉପଦେଶ ପ୍ରଦାନକାରିଣୀ ସ୍ତ୍ରୀ (ହି. ଶ)—A religious female preacher.
Śāsanī
शासनी
ଦେ.ବିଣ (ସଂ. ଶାସନ)-ଦାକ୍ଷିଣାତ୍ୟ ବ୍ରାହ୍ମଣ; ବ୍ରାହ୍ମଣଶାସନବାସୀ କୁଳୀନ ବ୍ରାହ୍ମଣ—A high class Brāhmaṇa resident of a Brahman village. [ଦ୍ର—ପୂର୍ବେ ରାଜାମାନେ ଯେଉଁ ବ୍ରାହ୍ମଣମାନଙ୍କୁ ଦେଶାନ୍ତରରୁ ଆଣି ଭୂମି ଦାନ ଦେଇ ଏ ଦେଶରେ ବ୍ରାହ୍ମଣ ଶାସନ ବସାଇ ରଖାଇ ଥିଲେ, ସେମାନେ ଏଠାର ପୂର୍ବ ଅଧିବାସୀ ବ୍ରାହ୍ମଣଙ୍କ ଅପେକ୍ଷା ଉଚ୍ଚତର ବିବେଚିତ ହେଉଥିବାରୁ ସେହିମାନଙ୍କ ବଂଶଧରମାନେ 'ଶାସନୀ' ବ୍ରାହ୍ମଣ ବୋଲି ପରିଚିତ। ଅଧମ ବ୍ରାହ୍ମଣମାନେ ପଣ୍ଡା, ପଣ୍ଡାଅସ୍ତି,
श्रोत्रीय

ମଢ଼ିଆ ଅଢ଼ ନାମରେ ଓ ସମ୍ବଲପୁର ଅଞ୍ଚଳରେ ଅରଣ୍ୟକ ( ଝାଡ଼ୁଆ ) ବ୍ରାହ୍ମଣରୂପେ ପରିଚିତ । ]

**ଶାସନୀଏ**—ଦେ. ବି—(ବହୁବଚନ)—ଶାସନୀ ବା କୁଳୀନ ବ୍ରାହ୍ମଣ-ମାନେ—A number of high caste Brahmins
Sāsanie
शासनीब्राह्मणगण
[ଦ୍ର—ପଣ୍ଡା ପଣ୍ଡା ଡାକନ୍ତୁ **ग्रामकाब्राह्मणलोग** ବସିଲେ ମଣ୍ଡପେ ଶାସନୀଏ । ଗଣ୍ଡା ଗଣ୍ଡା ବସି ଗଲେ ଚଉକେ ପାଛି ଧାଡ଼ି । ଉଦ୍ଭଟ. ଓଡ଼ିଆ ଶ୍ଳୋକ ।]

**ଶାସନୀୟ**—ବି. ବିଣ—(ଶାସ ଧାତୁ+କର୍ମ ଅନୀୟ)—୧ । ଯାହାକୁ ଶାସନ କରାଯାଇ ପାରେ; ଶାସ୍ୟ; ଦମ୍ୟ—1. Corrigible. ୨ । ଶାସନ କରିବାର ଯୋଗ୍ୟ—2. Fit to be ruled; controllable. ୩ । ଦଣ୍ଡ୍ୟ—3. Punishable; fit to be punished. ୪ । ଶିକ୍ଷଣୀୟ—4. Teachable.
Sāsaniya
(ଶାସନୀୟା—ସ୍ତ୍ରୀ)

**ଶାସିତ**—ବି. ବିଣ—(ଶାସ ଧାତୁ ଣିଚ୍+କର୍ମ ତ)—୧ । ଦଣ୍ଡିତ—1. Punished. ୨ । ଦମିତ—2. Checked; controlled. ୩ । ଶିକ୍ଷିତ—3. Taught. ୪ । ପାଳିତ (ରାଜ୍ୟ)—4. Administered; ruled over; governed. ବି. ବି—୧ । ପ୍ରଜା (ପ୍ର. ଶ)—1. Subject of a king. ୨ । ନିଗ୍ରହ; ସଂଯମ (ପ୍ର. ଶ)—2. Controlling; ristraint.
Sāsita
(ଶାସିତା—ସ୍ତ୍ରୀ)

**ଶାସିତା**—ସଂ. ବି. ପୁଂ.—(ଶାସିତୃ ଶବ୍ଦ, ୧ମା. ୧ବ; ଶାସ୍ ଧାତୁ+କର୍ତ୍ତୃ ତୃ)—୧ । ରାଜା—1. King. ୨ । ଶାସକ; ଶାସନ-କର୍ତ୍ତା—2. Ruler. ୩ । ଦମନ କର୍ତ୍ତା—3. Controller. ୪ । ଶିକ୍ଷକ—4. Preceptor-teacher. ୫ । ଉପଦେଶକ—5. Advisor ୬ । ଦଣ୍ଡ ଦେବାବାଲା ବ୍ୟକ୍ତି—6. Punisher.
Sāsitā
(ଶାସିତ୍ରୀ—ସ୍ତ୍ରୀ)

**ଶାସିତ୍ରୀ**—ସଂ ବି. ସ୍ତ୍ରୀ—(ଶାସିତୃ+ସ୍ତ୍ରୀ ଈ) ୧ । ଶାସିତାର ସ୍ତ୍ରୀଲିଙ୍ଗ—1. The feminine of Sāsita. ୨ । ଶାସନ-କର୍ତ୍ତ୍ରୀ—2. Governess; a female ruler.
Sāsitrī

**ଶାସିବା**—ଦେ. କ୍ରି.—(ସଂ. ଶାସ ଧାତୁ)—୧ । ଶାସନ କରିବା—1. To rule. [ଦ୍ର—ନବୁ ଶକ୍ତି ବାର ଶାସିବ କେତାଳ ଭୁଷ୍ଟେ, ଚନ୍ଦ୍ରାମଣି—ବିକ୍ରମାଦିତ୍ୟ ।]—୨ । ଗାଳି ଦେବା—2 To reprimand
Sāsibā
शासा **शासनकरना**

**ଶାସୀ**—ବି. ବିଣ ଓ ବି. ପୁଂ (ଶାସ ଧାତୁ+କର୍ତ୍ତୃ ଇନ୍; ୧ମା. ୧ବ.; ଏଥିର ବ୍ୟବହାର ଅନ୍ୟ ଶବ୍ଦର ଶେଷରେ ହୁଏ, ଯଥା—ଭୁବନ ଶାସୀ)—ଶାସନକାରୀ—Ruling; governing.
Sāsī
(ଶାସିନୀ—ସ୍ତ୍ରୀ)

**ଶାସ୍ତା**—ସଂ. ବି. ଓ ବିଣ. ପୁଂ.(ଶାସ୍ତୃ ଶବ୍ଦ;୧ମା.୧ବ; ଶାସ ଧାତୁ+କର୍ତ୍ତୃ ତୃ) ୧ । ରାଜା—1 King ୨ । ଶାସକ—2. Ruler. ୩ । ଶିକ୍ଷାଦାତା; ଉପାଧ୍ୟାୟ; ଗୁରୁ—3. Preceptor; teacher. ୪ । ପରିଚାଳକ—4. A guide; controller. ୫ । ଶାସ୍ତିଦାତା—5. Punisher. ୬ । ଶାକ୍ୟସିଂହ; ବୁଦ୍ଧଦେବ—6. The Buddha. ୭ । ପିତା (ପ୍ର. ଶ)—7. Father.
Sāstā
(ଶାସ୍ତ୍ରୀ—ସ୍ତ୍ରୀ)

**ଶାସ୍ତି**—ସଂ. ବି (ଶାସ୍ ଧାତୁ+ଭାବ ତି)—୧ । ଶାସନ; ଦଣ୍ଡ; ନିଗ୍ରହ—1. Punishment; correction; chastisement. ୨ । ନିୟମ; ବିଧାନ—2. Rule; discipline. ୩ । ଦମନ; ଶାସନ—3. Restraining; controlling.
Sāsti

**ଶାସ୍ତିଦାତା**—ସଂ. ବିଣ ଓ ବି. ପୁଂ ( ଉପପଦ ତତ୍ପୁରୁଷ)—ଦଣ୍ଡଦାତା; ଯେ ଦଣ୍ଡ ଦିଏ—Punisher; chastiser; one who corrects or metes out punishment.
Sāstidātā
ଶାସ୍ତିଦାୟୀ, ଶାସ୍ତିବିଧାୟକ, ଶାସ୍ତିବିଧାତା }—ଅନ୍ୟରୂପ
ଶାସ୍ତିଦାତ୍ରୀ, ଶାସ୍ତିଦାୟିନୀ, ଶାସ୍ତିବିଧାୟିକା, ଶାସ୍ତିବିଧାତ୍ରୀ }—ସ୍ତ୍ରୀ

**ଶାସ୍ତିଦାନ**—ସଂ. ବି ( ୬ଷ୍ଠୀ ତତ୍ )—ଦଣ୍ଡଦେବା—Punishing; meting out of punishment.
Sāsti dāna

**ଶାସ୍ତି ଦେବା**—ଦେ. କ୍ରି—ଦଣ୍ଡ ଦେବା—To punish; to chastise.
Sāsti debā
शास्तिदेओया **शास्तिदेना**

**ଶାସ୍ତି ବିଧାନ**—ସଂ. ବି (୬ଷ୍ଠୀ ତତ୍)—ଦଣ୍ଡବିଧାନ; ଦଣ୍ଡଦାନ—Meting out of punishment.
Sāsti bidhāna

**ଶାସ୍ତି ଯୋଗ୍ୟ**—ସଂ. ବିଣ ପୁଂ (୬ଷ୍ଠୀ ତତ୍)—ଦଣ୍ଡ ପାଇବାର ଉପଯୁକ୍ତ—Deserving punishment; fit to be punished; punishable
Sāsti jogya
(ଶାସ୍ତ୍ୟର୍ହ—ଅନ୍ୟରୂପ)
(ଶାସ୍ତିଯୋଗ୍ୟା, ଶାସ୍ତ୍ୟର୍ହା—ସ୍ତ୍ରୀ)

**ଶାସ୍ତ୍ର**—ସଂ. ବି (ଶାସ୍ ଧାତୁ=ଶାସନ କରିବା+କରଣ ତ୍ର)—୧ । ବେଦ ତନ୍ତ୍ର, ସ୍ମୃତି, ପୁରାଣାଦି ଧର୍ମଗ୍ରନ୍ଥ; ଦେବତା ବା ମୁନିପ୍ରଣୀତ ଗ୍ରନ୍ଥ—1. Books of revelations; scripture; sacred lore; books of divine authority. [ଦ୍ର—ଯାହା ସତ୍ୟବିଦ୍ୟା ପ୍ରତିପାଦନ କରେ ଓ ଯଦ୍ଦ୍ୱାରା ମନୁଷ୍ୟର ସତ୍ୟାସତ୍ୟ, ଧର୍ମାଧର୍ମ, ନ୍ୟାଯ୍ୟାନ୍ୟାଯ୍ୟ, ବିଧେୟାବିଧେୟ କର୍ମର ଶିକ୍ଷାଲାଭ ହୁଏ ତାହା ଶାସ୍ତ୍ର । ଶାସ୍ତ୍ରଦ୍ୱାରା ଜନସମାଜ ଶିକ୍ଷାପ୍ରାପ୍ତ ହୋଇ ନିୟମରେ ଚଳନ୍ତି । ସାଧାରଣତଃ ହିନ୍ଦୁଶାସ୍ତ୍ର ତିନି ଭାଗରେ ବିଭକ୍ତ । ଯଥା—
Sāstra

ଶ୍ରୁତି—ବେଦ; ସ୍ମୃତି—ଧର୍ମଶାସ୍ତ୍ରାଦି; ପୁରାଣ—ଦେବତାଦିଙ୍କର ଓ ସୃଷ୍ଟି ସ୍ଥିତି ପ୍ରଳୟାଦିର ବୃତ୍ତାନ୍ତ । ବେଦମୂଳକ ଶାସ୍ତ୍ରମାନଙ୍କ ସଂଖ୍ୟା ୧୮ଟି—

ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଜ୍ୟୋତିଷ, ଛନ୍ଦ, ଋଗ୍‌ବେଦ, ଯଜୁର୍ବେଦ, ସାମବେଦ, ଅଥର୍ବବେଦ, ମୀମାଂସା, ନ୍ୟାୟ, ଧର୍ମଶାସ୍ତ୍ର, ପୁରାଣ, ଆୟୁର୍ବେଦ, ଧନୁର୍ବେଦ, ଗାନ୍ଧର୍ବବେଦ, ଅର୍ଥଶାସ୍ତ୍ର । ଏହି ୧୮ ଶାସ୍ତ୍ରକୁ ୧୮ ବିଦ୍ୟା କୋଲଯାଏ । ହିନ୍ଦୁମାନଙ୍କର ସବୁ ଧର୍ମ ପୁସ୍ତକ ଶାସ୍ତ୍ର ସଂଜ୍ଞାର ଅନ୍ତର୍ଭୁକ୍ତ ।]

୨ । ବିଜ୍ଞାନ; କୌଣସି ବିଶିଷ୍ଟ ବିଷୟ ବା ପଦାର୍ଥ ସମ୍ବନ୍ଧେ ଧାରାବାହିକରୂପେ ସଂଗୃହୀତ ଜ୍ଞାନ ( ଯଥା—ପ୍ରାଣିଶାସ୍ତ୍ର, ଅର୍ଥଶାସ୍ତ୍ର, ବନସ୍ପତିଶାସ୍ତ୍ର)—2. Science. ୩ । (+ଭାବ.

ଶ) ଶାସନ—3. Rule; governance. ୪ । ଅଜ୍ଞା—4. Command.

ଶାସ୍ତ୍ର ଇକ୍ଷା—ଦେ. ବଣ (ସଂ.ଶାସ୍ତ୍ରେକ୍ଷା)—ବେଦ ସାହାଯ୍ୟରେ ଚକ୍ଷୁ—Seeing
Śāstra īkshā through the medium of the Bedas.
(ଉ—ଯେ ଛନ୍ଦୋମୟ ଶାସ୍ତ୍ରଇକ୍ଷା, ଯେ ଭାବେ ସୃଷ୍ଟିକର ଚିନ୍ତା—ଜଗନ୍ନାଥ ଭାଗବତ ।)

ଶାସ୍ତ୍ର କର୍ତ୍ତା—ସଂ. ବି. ପୁଂ—ଶାସ୍ତ୍ରଗ୍ରନ୍ଥର ଲେଖକ; ଶାସ୍ତ୍ର ପ୍ରଣେତା—
Śāstra karttā Author or compiler of sacred books.
ଶାସ୍ତ୍ରକାର
ଶାସ୍ତ୍ରକାରକ } —ଅନ୍ୟରୂପ
ଶାସ୍ତ୍ରକାରୀ

ଶାସ୍ତ୍ର କହୁଛି—ଦେ. (ବାକ୍ୟ)—(ଏବିଷୟ) ଶାସ୍ତ୍ରରେ ଲେଖାଅଛି—
Śāstra kahuchhi A phrase meaning 'So say the sacred books'; it is enjoined in the sacred books.
[ଶାସ୍ତ୍ରକହେ,ଶାସ୍ତ୍ରଲାଗୁଛି, ଶାସ୍ତ୍ରବୋଲୁଛି, ଶାସ୍ତ୍ରଭାଷୁଛି, ଶାସ୍ତ୍ରଲେଖୁଛି]—ଅନ୍ୟରୂପ
शास्त्रवले शास्त्रलिखते शास्त्रकहतीहै

ଶାସ୍ତ୍ରକୃତ୍—ସ. ବି—(ଶାସ୍ତ୍ର+କୃ ଧାତୁ+କର୍ତ୍ତୃ କ୍ୱିପ୍)—୧। ଶାସ୍ତ୍ରକର୍ତ୍ତା—
Śāstrakṛut 1. Author of a sacred book. ୨ । ଆଚାର୍ଯ୍ୟ—2. Preceptor. ୩ । ଋଷି; ମୁନି—3. A sage.

ଶାସ୍ତ୍ର ଗଣ୍ଡ—ସ.ବି ଓ ବିଣ—(ଶାସ୍ତ୍ର+ଗଣ୍ଡ)—ଯେଉଁ ବ୍ୟକ୍ତି ସକଳ ଶାସ୍ତ୍ରରୁ
Śāstra gaṇḍa କିଛି କିଛି ଉପରଠାଉରିଆ ଖବରେ ଜାଣେ—(a person) Who knows something superficially of every sacred book; a superficial scholar of the scriptures.

ଶାସ୍ତ୍ର କୋବିଦ—ସ. ବି ଓ ବିଣ. ପୁଂ—(୭ମୀ ତତ୍)—ଧର୍ମଗ୍ରନ୍ଥ ସମ୍ବନ୍ଧେ
Śāstra kobida ପଣ୍ଡିତ—Learned in the sacred lore.
(ଶାସ୍ତ୍ର କୋବିଦା—ସ୍ତ୍ରୀ)

ଶାସ୍ତ୍ର ଚକ୍ଷୁଃ—ସଂ ବି—୧ । (ଯାହା ଶାସ୍ତ୍ରଜ୍ଞାନ ବିଷୟରେ ଚକ୍ଷୁ ସ୍ୱରୂପ,
Śāstra chakshuḥ ରୂପକ) ବ୍ୟାକରଣ—1. Grammar.
୨ । (ବହୁବ୍ରୀହି; ଶାସ୍ତ୍ର ଅଟେ ଚକ୍ଷୁ ଯାହାର) ପଣ୍ଡିତ; ଜ୍ଞାନୀ ବ୍ୟକ୍ତି—2. A wise or learned person.

ଶାସ୍ତ୍ର ଚର୍ଚ୍ଚା—ସ. ବି—ଶାସ୍ତ୍ର ସମ୍ବନ୍ଧେ ଆଲୋଚନା—
Śāstra charchchā Discussion about religious or sacred lore.

ଶାସ୍ତ୍ର ଚାରଣ—ସ. ବିଣ ଓ ବି. ପୁଂ (୭ମୀ ତତ୍)—ଶାସ୍ତ୍ରଜ୍ଞ (ଦେଖ)—
Śāstra chāraṇa Śāstrajña (see)

ଶାସ୍ତ୍ର ଚିନ୍ତନ—ସ. ବି ( ୭ମୀ ତତ୍ )—ଧର୍ମ ଶାସ୍ତ୍ର ସମ୍ବନ୍ଧରେ ମାନସିକ
Śāstra chintana ଆଲୋଚନା—Reflections on the sacred books.
(ଶାସ୍ତ୍ରଚିନ୍ତା—ଅନ୍ୟରୂପ)

ଶାସ୍ତ୍ର ଜାଳ(ଲ)—ସଂ. ବି ( ୬ଷ୍ଠୀ ତତ୍ )—୧ । ଶାସ୍ତ୍ରସମୂହ—
Śāstra jāḷa(la) 1. The body of sacred books.
୨ । (ରୂପକ) ଦୁରୂହ ଧର୍ମଶାସ୍ତ୍ର—2. Intricate books on religion.

ଶାସ୍ତ୍ରଜ୍ଞ—ସଂ. ବିଣ. ପୁଂ—ଶାସ୍ତ୍ର ସମ୍ବନ୍ଧେ ପାରଦର୍ଶୀ—Versed or
Śāstrajña proficient in the sacred lore. ବି ୧ ।
(ଶାସ୍ତ୍ରଜ୍ଞା—ସ୍ତ୍ରୀ) ଗଣକ—1. Astrologer. ୨ । ଜ୍ୟୋତିଃ
(ଶାସ୍ତ୍ରଜ୍ଞତା—ବି) ଶାସ୍ତ୍ରରେ ପଣ୍ଡିତ—2. A person versed in the science of the luminous bodies in the heavens; astronomer.

ଶାସ୍ତ୍ର ଜ୍ଞାନ—ସଂ. ବି (୭ମୀ ତତ୍ )—ଶାସ୍ତ୍ର ସମ୍ବନ୍ଧରେ ଅଭିଜ୍ଞତା—
Śāstra jñāna Knowledge of religious lore.

ଶାସ୍ତ୍ର ତତ୍ତ୍ୱ—ସଂ. ବି (୬ଷ୍ଠୀ ତତ୍)—ଶାସ୍ତ୍ରବିହିତ ରହସ୍ୟ; ଶାସ୍ତ୍ରରେ ଥିବା
Śāstra tattwa ଗୂଢ଼ ବିଷୟ—The truths or mysteries propounded in the religious books.

ଶାସ୍ତ୍ର ତତ୍ତ୍ୱଜ୍ଞ—ସଂ. ବିଣ. ପୁଂ—ଯେ ଶାସ୍ତ୍ରର ଗୂଢ଼ ତତ୍ତ୍ୱମାନ ଜାଣେ—
Śāstra tattwajña Versed in the mysteries of relgious science. ସଂ. ବି—୧ । ଗଣକ—1. Astrologer. ୨ । ଜ୍ୟୋତିଷୀ—
(ଶାସ୍ତ୍ରତତ୍ତ୍ୱଜ୍ଞା—ସ୍ତ୍ରୀ; ଶାସ୍ତ୍ରତତ୍ତ୍ୱଜ୍ଞତା—ବି) 2. Astronomer.

ଶାସ୍ତ୍ରଦର୍ଶୀ—ସଂ. ବିଣ. ଓ ବି. ପୁଂ—ଶାସ୍ତ୍ରଜ୍ଞ (ଦେଖ)
Śāstra darśi Śāstrajña (See)
( ଶାସ୍ତ୍ରଦର୍ଶିନୀ—ସ୍ତ୍ରୀ )
( ଶାସ୍ତ୍ରଦର୍ଶିତା—ବି )

ଶାସ୍ତ୍ର ଦୃଷ୍ଟି—ସଂ.ବି—(୭ମୀ ତତ୍) ଶାସ୍ତ୍ରବିଚାରରୁ ବିଚାର—Scriptural
Śāstra dṛushṭi point of view. ସଂ. ବିଣ. (ପୁଂ ଓ ସ୍ତ୍ରୀ) (ବହୁବ୍ରୀହି) ଶାସ୍ତ୍ରଜ୍ଞ (ଦେଖ)—Śāstrajña (See)

ଶାସ୍ତ୍ରପଢ଼ା ଜ୍ଞାନ—ଦେ. ବି—ଶାସ୍ତ୍ର ପଢ଼ି ଯେଉଁ ଜ୍ଞାନ ଜନ୍ମେ;
Śāstra parḍhā jñāna ଶାସ୍ତ୍ରଜ୍ଞାନ—Knowledge derived from reading the Śāstras.
शास्त्रज्ञान शास्त्रगयान

ଶାସ୍ତ୍ର ପ୍ରଚାର—ସଂ.ବି (୬ଷ୍ଠୀ ତତ୍)— ସର୍ବସାଧାରଣରେ ଶାସ୍ତ୍ରଜ୍ଞାନପ୍ରକଟନ—
Śāstra prachāra Disseminating the truths of the sacred books.

ଶାସ୍ତ୍ର ପ୍ରଣୟନ—ସ. ବି—ଶାସ୍ତ୍ର ଗ୍ରନ୍ଥ ଲେଖିବା—
Śāstra praṇayana Writing of sacred books.

ଶାସ୍ତ୍ର ପ୍ରଣେତା—ସଂ. ବି. ପୁଂ—( ଶାସ୍ତ୍ର+ପ୍ରଣେତ୍ର, ୧ମା ୧ବ )—
Śāstra praṇetā ଶାସ୍ତ୍ର ଗ୍ରନ୍ଥ ଲେଖକ—Writer or author or compiler of sacred books.
[ଶାସ୍ତ୍ର ପ୍ରଣେତ୍ରୀ—ସ୍ତ୍ରୀ]

ଶାସ୍ତ୍ର ପ୍ରସଙ୍ଗ—ସଂ. ବି—(୬ଷ୍ଠୀ ତତ୍ )—ଶାସ୍ତ୍ର ସମ୍ବନ୍ଧେ ଚର୍ଚ୍ଚା ବା
Śāstra prasaṅga ଆଲୋଚନା—Discussion or conversation regarding the ś

ଶାସ୍ତ୍ର ବକ୍ତା—ସଂ. ବି. ପୁଂ—(ଶାସ୍ତ୍ର+ବଚ ଧାତୁ+କର୍ତ୍ତୃ. ତୃ, ୧ମା.
Śāstra baktā ୧ବ)—ଯେ ଶାସ୍ତ୍ର ବ୍ୟାଖ୍ୟା କରେ—One who explains the texts of the religious books,
[ଶାସ୍ତ୍ର ବକ୍ତ୍ରୀ—ସ୍ତ୍ରୀ]

ଶାସ୍ତ୍ର ବର୍ଜ୍ଜିତ—ସଂ. ବଣ—(୩ୟା ତତ୍) —୧ । (ପୁଂ) ଶାସ୍ତ୍ରଜ୍ଞାନଶୂନ୍ୟ—
Śāstra barjjita 1. Devoid of knowledge of the śāstras. ୨ । ଅଶାସ୍ତ୍ରୀୟ—2. Against the (ଶାସ୍ତ୍ରବର୍ଜ୍ଜିତ—ଅନ୍ୟରୂପ) precepts of the Śāstras.

ଶାସ୍ତ୍ର ବଳ—ସଂ. ବି—୧ । (ରୂପକ) ଶାସ୍ତ୍ରଜ୍ଞାନ ରୂପ ଶକ୍ତି—
Śāstra bala 1. Power consisting of mastery over religious lore. ୨ । (୬ଷ୍ଠୀ ତତ୍) ଶାସ୍ତ୍ରର ପ୍ରଭାବ—2. The potency of the sacred books. ୩ । (ମ. ପ. ଲୋ) ଶାସ୍ତ୍ରଜ୍ଞାନଜନିତ ଶକ୍ତି—3. Power derived from knowledge of the Śāstras.

ଶାସ୍ତ୍ର ବହିର୍ଭୂତ—ସଂ.ବି—(୫ମୀ ତତ୍)—ଶାସ୍ତ୍ର ଲିଖିତ ନିୟମର ବିରୁଦ୍ଧ—
Śāstra bahirbhūta Opposed to the precepts of the śāstras.
[ଶାସ୍ତ୍ର ବର୍ଜିତ, ଶାସ୍ତ୍ର ବିରୁଦ୍ଧ—ଅନ୍ୟରୂପ]

ଶାସ୍ତ୍ରବିଦ୍—ସଂ. ବଣ ଓ ବି ପୁଂ. ଓ ସ୍ତ୍ରୀ—(ଶାସ୍ତ୍ର + ବିଦ୍ ଧାତୁ + କର୍ତ୍ତୃ. Śāstrabid କ୍ୱିପ୍)—ଶାସ୍ତ୍ରଜ୍ଞ (ଦେଖ)—Śāstrajña (See)

ଶାସ୍ତ୍ର ବିଧି(ବିଧାନ)—ସଂ. ବି—(୬ଷ୍ଠୀ ତତ୍)—ଶାସ୍ତ୍ରରେ ନିର୍ଦ୍ଦିଷ୍ଟ
Śastra bidhi (bidhāna) ନିୟମ—Scriptural precept.

ଶାସ୍ତ୍ର ବିରୋଧ—ସ. ବି—୧ । (୬ଷ୍ଠୀ ତତ୍) ଶାସ୍ତ୍ରୋକ୍ତ ବିଧିର ଲଙ୍ଘନ—
Śāstra birodha 1. Infringement of the rules of the Śāstras. ୨ । (୭ମୀ ତତ୍)ଅନେକ ଶାସ୍ତ୍ର ମଧ୍ୟରେ କୌଣସି ବିଷୟରେ ମତଭେଦ—2. Difference of opinion regarding a certain matter found in different religious books.

ଶାସ୍ତ୍ର ବିଶାରଦ—ସ. ବିଣ. ପୁଂ (୭ମୀ ତତ୍)—ଶାସ୍ତ୍ରଜ୍ଞ (ଦେଖ) —
Śāstra bisārada Śāstrajña (see)
(ଶାସ୍ତ୍ର ବିଶାରଦା—ସ୍ତ୍ରୀ)

ଶାସ୍ତ୍ର ବିହିତ—ସ. ବିଣ—ଶାସ୍ତ୍ର ସଙ୍ଗତ (ଦେଖ)—
Śastra bihita Śāstra saṅgata (See)

ଶାସ୍ତ୍ର ବୋଧ—ସ. ବି—ଶାସ୍ତ୍ରଜ୍ଞାନ (ଦେଖ)—
Śastra bodha Śāstrajñāna (see)

ଶାସ୍ତ୍ର ବ୍ୟାଖ୍ୟା—ସ. ବି—ଶାସ୍ତ୍ର ଲିଖିତ ବିଷୟମାନ ଶ୍ରୋତାଙ୍କୁ ବୁଝାଇବା-
Śastra byākhyā Explaining the tenets of the sacred books to the hearers.
(ଶାସ୍ତ୍ର ବ୍ୟାଖ୍ୟାନ—ଅନ୍ୟରୂପ)

ଶାସ୍ତ୍ର ବ୍ୟୁତ୍ପତ୍ତି—ସ. ବି—(୭ମୀ ତତ୍)—ଶାସ୍ତ୍ର ଜ୍ଞାନରେ ପାରଙ୍ଗମତା—
Śastra byutpatti Proficiency in the Śāstras.

ଶାସ୍ତ୍ର ମତ—ସଂ. ବି—ଶାସ୍ତ୍ର ଲିଖିତ ମତ—Opinions expressed
Śāstra mata in the sacred books. ବିଣ—ଶାସ୍ତ୍ରସଙ୍ଗତ ଦେଖ—Śāstra saṅgata (See)

ଶାସ୍ତ୍ର ମର୍ମ—ସଂ. ବି (୬ଷ୍ଠୀ ତତ୍)—ଶାସ୍ତ୍ରର ତାତ୍ପର୍ଯ୍ୟ—
Śāstra marma The object or substance of the Śāstras.

ଶାସ୍ତ୍ର ମର୍ମଜ୍ଞ—ସଂ. ବିଣ. ପୁଂ—ଶାସ୍ତ୍ରର ତାତ୍ପର୍ଯ୍ୟ ଜ୍ଞାତା—
Śāstra marmajña Versed in the secrets of the Śāstras.
(ଶାସ୍ତ୍ରମର୍ମଜ୍ଞା—ସ୍ତ୍ରୀ; ଶାସ୍ତ୍ରମର୍ମଜ୍ଞତା—ବି)

ଶାସ୍ତ୍ରମୂଳକ—ସଂ. ବିଣ—ଶାସ୍ତ୍ରରୁ ଉତ୍ପନ୍ନ; ଶାସ୍ତ୍ରଲିଖିତ (ବିଧାନ)
Śastramūlaka Based on the divine books.

ଶାସ୍ତ୍ର ଶିଳ୍ପୀ—ସଂ. ବିଣ—୧ । କାଶ୍ମୀର ଦେଶ—1. The country
Śāstra silpī of Kashmere in India ୨ । କାଶ୍ମୀର ଦେଶବାସୀ ବ୍ୟକ୍ତି—2. An inhabitant of Kashmere. ୩ । ଭୂମି; ଜମି (ବ୍ର. ଶ)—3. Land.

ଶାସ୍ତ୍ର ସଙ୍ଗ(ମ୍ମ)ତ—ସ. ବିଣ—୧। ଶାସ୍ତ୍ରର ନିୟମସଙ୍ଗତ; ଶାସ୍ତ୍ରାନୁମୋଦିତ
Śāstra saṅga(mma)ta ଶାସ୍ତ୍ରରେ ନିର୍ଦ୍ଦିଷ୍ଟ—1. Enjoined by or laid down in the divine lore; conformatory to the rules enjoined in the Śāstras; approved by the sacred books. ୨ । ଆଇନ ବା ବିଧି ସଙ୍ଗତ—2. Lawful.

ଶାସ୍ତ୍ର ସିଦ୍ଧ—ସ. ବିଣ—(୩ୟା ତତ୍)—ଶାସ୍ତ୍ର ସଙ୍ଗତ—Established
Śāstra siddha by sacred texts or authority (Apte).

ଶାସ୍ତ୍ରାଧ୍ୟୟନ—ସ. ବି.—(୬ଷ୍ଠୀ ତତ୍)—ଶାସ୍ତ୍ର ଗ୍ରନ୍ଥର ପାଠ—
Śāstrādhyāyana Study of divine lore.

ଶାସ୍ତ୍ରାଧ୍ୟାପକ—ସ. ବିଣ. ଓ ବି. ପୁଂ—ଯେ ଶିଷ୍ୟମାନଙ୍କୁ ଶାସ୍ତ୍ର ପଢ଼ାନ୍ତି—
Śāstradhyāpaka Teaching the sacred lore.

ଶାସ୍ତ୍ରାଧ୍ୟାପନ(ନା)—ସ. ବି(୬ଷ୍ଠୀ ତତ୍)—ଶିଷ୍ୟମାନଙ୍କୁ ଶାସ୍ତ୍ର ପଢ଼ାଇବା—
Śāstrādhyāpana(nā) The teaching of the sacred books.

ଶାସ୍ତ୍ରାଧ୍ୟାୟୀ—ସ. ବିଣ. ପୁଂ—ଶାସ୍ତ୍ର ପାଠ କରୁଥିବା—
Śāstrādhyāyī Studying the sacred lore.
[ଶାସ୍ତ୍ରାଧ୍ୟାୟିନୀ—ସ୍ତ୍ରୀ]

ଶାସ୍ତ୍ରାନୁମୋଦିତ——ସ. ବି—(୩ୟା ତତ୍)—ଶାସ୍ତ୍ରସଙ୍ଗତ (ଦେଖ)
Śastrānumodita Śāstrasaṅgata (See)

ଶାସ୍ତ୍ରାନୁଶୀଳନ—ସ. ବି (୬ଷ୍ଠୀ ତତ୍)—ଶାସ୍ତ୍ର ଚର୍ଚ୍ଚା (ଦେଖ)
Śāstrānusīlana Śāstra charchchā (See)

ଶାସ୍ତ୍ରାବର୍ତ୍ତ ଲିପି—ସ ବି.—ଲଳିତ ବିସ୍ତର ଅନୁସାରେ ପ୍ରାଚୀନ କାଳର
Śāstrābartta lipi ଏକ ପ୍ରକାର ଲିପି—(ହି. ଶ.)—Name of an ancient script.

ଶାସ୍ତ୍ରାର୍ଥ—ସ. ବି—(୬ଷ୍ଠୀ ତତ୍)—ଶାସ୍ତ୍ର ବାକ୍ୟର ତାତ୍ପର୍ଯ୍ୟ—
Śāstrārtha The meaning of divine texts.

ଶାସ୍ତ୍ରାଳାପ—ସ. ବି—ଶାସ୍ତ୍ର ସମ୍ବନ୍ଧେ କଥୋପକଥନ—Conversation
Śāstrālāpa about religious books.

ଶାସ୍ତ୍ରାଲୋଚନ(ନା)—ସ. ବି—ଶାସ୍ତ୍ରଚର୍ଚ୍ଚା (ଦେଖ)
Śāstrālochana(nā) Śāstra charchchā (See)

ଶାସ୍ତ୍ରୀ—ସ. ବିଣ. ପୁଂ—(ଶାସ୍ତ୍ର + ଇନ୍; ୧ମା. ୧ବ)—ଶାସ୍ତ୍ରଜ୍ଞ;ଶାସ୍ତ୍ରଦର୍ଶୀ—
Śāstrī Versed in the sacred lore. ବି. ପୁଂ—୧ । ପଣ୍ଡିତ—1. A learned man; a Pandit.

୨ । ବ୍ରାହ୍ମଣମାନଙ୍କ ବଂଶୋପାଧି—2. A family-title of Brāhmaṇas. ୩ । ପଣ୍ଡିତମାନଙ୍କର ସମ୍ମାନାର୍ଥକ ଉପାଧି ବିଶେଷ—3. An honorary title bestowed on Pandits. ୪ । ଧର୍ମ ଶାସ୍ତ୍ରାଦିରେ ପଣ୍ଡିତ—4 A person learned in the sacred lore. ଦେ. ବି.—କେତେକ ବିଶ୍ୱ ବିଦ୍ୟାଳୟ ଓ ବିଦ୍ୟାପୀଠରେ(ଯଥା—ପାଟନା,କାଶୀରେ)ନିର୍ଦ୍ଦିଷ୍ଟ ପରୀକ୍ଷାରେ ଉତ୍ତୀର୍ଣ୍ଣ ପଣ୍ଡିତଙ୍କୁ ଦିଆଯିବା ଉପାଧି—A title bestowed on certain Pandits who pass the prescribed examination.

ଶାସ୍ତ୍ରୀୟ—ସଂ. ବିଣ—(ଶାସ୍ତ୍ର+ଈୟ)—ଶାସ୍ତ୍ର ସମ୍ବନ୍ଧୀୟ—
Śāstrīya Relating to scriptures; sastric.

ଶାସ୍ତ୍ରୀୟତା—ସଂ. ବି—ଶାସ୍ତ୍ରବିହିତ ଅବସ୍ଥା—
Śāstrīyatā Lawfulness.

ଶାସ୍ତ୍ରୋକ୍ତ—ସଂ. ବିଣ.—(୭ମୀ ତତ୍)—ଶାସ୍ତ୍ରକଥିତ; ଶାସ୍ତ୍ରରେ ଲିଖିତ
Śāstrokta Laid down in books of divine authority.

ଶାସ୍ତ୍ରୋପଦେଶ—ସଂ. ବି—୧ । (ମ.ପ ଲୋ) ଶାସ୍ତ୍ର ନିର୍ଦ୍ଦିଷ୍ଟ ଉପଦେଶ ବା
Śāstropadeśa ଉପଦେଶ—1.Precepts or rules enjoined by the sacred books. ୨ । (୭ମୀ ତତ୍) ଶାସ୍ତ୍ର ସମ୍ବନ୍ଧେ ଶିକ୍ଷାଦାନ—2. Instruction about the Śāstras.

ଶାସ୍ତ୍ରୋପଦେଶକ—ସଂ. ବିଣ. ଓ ବି. ପୁଂ—ଶାସ୍ତ୍ରୀୟ ଉପଦେଶଦାତା ଗୁରୁ
Śāstropadeśaka —An instructor of sastric
[ଶାସ୍ତ୍ରୋପଦେଶିକା, ଶାସ୍ତ୍ରୋପଦେଷ୍ଟ୍ରୀ—ସ୍ତ୍ରୀ precepts.
[ଶାସ୍ତ୍ରୋପଦେଷ୍ଟା—ଅନ୍ୟରୂପ]

ଶାସ୍ୟ—ସଂ. ବିଣ—(ଶାସ ଧାତୁ+କର୍ମ. ଯ)—୧ । ଶାସନୀୟ—
Śāsya 1. Capable of being ruled or guided. ୨ । ଶିକ୍ଷଣୀୟ—2. Fit to be learnt. ୩ । ଦଣ୍ଡନୀୟ—3. Punishable.

ଶାସ—ଗ୍ରା. ବି—ଶାହାସ୍ର (ଦେଖ)
Śāsra Śāhāsra (See)

ଶାହସ୍ର—ଗ୍ରା. ବି—ଶାହାସ୍ର (ଦେଖ)
Śāhasra Śāhāsra (See)

ଶାହା—ଦେ. ବି (ସ. ଶାଖା)—୧ । ଶାଖା—1. Branch. ୨ ।
Śāhā ଶଗଡର ଫଳ—2. The cross bars put bet-
ଶାଖା ଶାଖା ween the shafts of bullock carts.
୩ । (ସ. ସହାୟ)—ସହାୟ—3. Help. ୪ । (ସ.
ସହାୟ ସହାୟ ଶ୍ୱାସ)—ଜୀବନ; ଜୀବନୀ ଶକ୍ତି; ପ୍ରାଣବାୟୁ—
ପ୍ରାଣ ସାଁସ 4. Life; vitality; life-breath. ବୈଦେ.
ସାହ ଶାହ ବି. ୧ । (ଫା)—ପାରସ୍ୟର ରାଜାଙ୍କ ଉପାଧି—1. Title of the kings of Persia. ୨ । (ଫା) ରାଜା—2. King.

ଶାହା ଉ(ଗ୍ର)ଡ଼ିଯିବା—ଦେ. କ୍ରି—ଦେହରୁ ପ୍ରାଣବାୟୁ ବାହାରିଯିବା—
Śāhā u(chhā)rdijibā The extinction of life; the
প্রাণউড়েযাওয়া fleeing away of the vital spark
(ଶାହା ବାହାରିଯିବା—ଅନ୍ୟରୂପ) जीवछूटजाना from the body.

ଶାହାଡ଼ା—ଦେ.ବି—(ସଂ ଶାଖୋଟ)—ଶାଖୋଟ ବୃକ୍ଷ । [ଦ୍ର—ଏହାର
Śāhārdā କାଠ ଧଳା ଓ ଡାଳ ଚିକ୍କଣ । ଏହାର ପତ୍ରମାନ
ସଂ. ପର୍ଯ୍ୟାୟ— ଶକ୍ତ ଓ ଖର ସ୍ପର୍ଶ । ଲୋକ ବାଲିକଥା ।
ଶାଖୋଟ; ପୀତଫଳ; ଏହାର ଶକ୍ତ ଡାଳକୁ ଦାନ୍ତକାଟିରୂପେ
ଭୂତବାସ, ଖରଚ୍ଛଦ; ବ୍ୟବହାର କରନ୍ତି । ଏହା ପଡ଼ିଆରେ
ଶର୍ଦ୍ଦନାବାସ । ଜନ୍ମେ । ଏ ଗଛ ସାଧାରଣତଃ ଗୁଳ୍ମ
শেওড়া শাওড়া ରୂପ ହୁଏ ଓ ବହୁକାଳର ପୁରୁଣା
सहोड़ साहोड़ ଗଛ ଖର୍ବ ଓ ଗ୍ରନ୍ଥିଳ ହୁଏ । ଏ
ମ—ଶନ୍ଦୋଡ଼ ଅବସ୍ଥାରେ ଏହାକୁ ମୁଣ୍ଡି ଶାହାଡ଼ା
ତେ—ଭାରଣକେଟେଟ୍ଟୁ; ବୋଲଯାଏ]—A tree; Streb-
ବରଣିକେ ଟେଟ୍ଟୁ lus Asher, Mulberry
Morus Indica. (Haines) [ଦ୍ର—ବୈଦ୍ୟଶାସ୍ତ୍ର ଅନୁସାରେ ଏହା ତିକ୍ତରସ, ଉଷ୍ଣବୀର୍ଯ୍ୟ, ପିତ୍ତକାରକ ଓ ବାୟୁ ନାଶକ । ଏହାର ଛାଲ ରକ୍ତପିତ୍ତ, ଅର୍ଶ, ଅତିସାର ଓ ବାତଶ୍ଳେଷ୍ମା ରୋଗରେ ଉପକାରକ । ଏହାର ଛାଲର ପ୍ରଲେପଦ୍ୱାରା ଶ୍ୱେତ ବା ଧବଳ କୁଷ୍ଠ ରୋଗର ଉପଶମ ହୁଏ ଓ ଏହାର କାଠର ପ୍ରଲେପଦ୍ୱାରା ଚିକିତ୍ସା କରିଯାଏ ।]

ଶାହାଡ଼ାଗଛକୁ ବିଭା ହେବା—ଦେ. କ୍ରି—କୌଣସି ବ୍ୟକ୍ତିର ଏକାଧିକ
Sāhārdāgachhaku bibhā hebā ସ୍ତ୍ରୀ ମୃତା ହେଲେ ତୃତୀୟ
(ଶାହାଡ଼ା ଗଛକୁ ଶଙ୍ଖା ପିନ୍ଧାଇବା--ଅନ୍ୟରୂପ) ବା ୪ର୍ଥ ସ୍ତ୍ରୀକୁ ବିବାହ
ফুলগাছেবসঙ্গেবিবাহহওয়া କରିବା ପୂର୍ବରୁ ସେ ପ୍ରଥମେ ଗୋଟିଏ ଶାହାଡ଼ା ଗଛକୁ ଶଙ୍ଖା ପିନ୍ଧାଇ ନାମମାତ୍ର ବିବାହ କରିବା ଓ ତତ୍ପରେ ନୂତନ ସ୍ତ୍ରୀକୁ ବିବାହ କରିବା—To go through the ceremony of marriage with a Streblus Asher tree (Said of a widower who has lost two or three wives).

ଶାହାଡ଼ା ଝଟେଇ—ଦେ. ବି—ଶାହାଡ଼ା ଗଛର ଶୁଖିଲା ଡାଳ ଯହିଁରୁ ପତ୍ର
Sahārdājhatei ଝଡ଼ି ପଡ଼ିଥାଏ—Dry and leafless
শেওড়াবঝাঁটা सहोड़ाकीझाँखी branch of Streblus.
(ଶାହାଡ଼ାଝାଟି—ଅନ୍ୟରୂପ) Asher.

ଶାହାଣ—ଦେ. ବି.(ସଂ. ଶାଣ)—୧ । ଶାଣ (ଦେଖ)—1. Śāṇa
Śāhāṇa (See) ୨ । ସାହାଣ—(ଦେଖ)—2. Sāhāṇa
শাণ सान (See).

ଶାହାଣ ପଥର—ଦେ ବି (ସଂ. ଶାଣ ପ୍ରସ୍ତର)—ଶାଣ ପଥର (ଦେଖ)—
Śāhāṇa pathara Śāṇa pathara (See).
শাণপাথর सानपत्थर

ଶାହାସ—ଗ୍ରା. ବି. (ସଂ. ଶାସ୍ତ୍ର)—ଶାସ୍ତ୍ର (ଦେଖ)—
Śāhāsra Śāstra (See).
শাস্তর शास्तर (ଉ. ନିର୍ଗୁଣ ଚେତନ କୁଠାର ସବୁ ଶାହାସ୍ର ମଧ୍ୟେ ସାର ରୂପର—ପ୍ରେମପଞ୍ଚାମୃତ)

ଶାହି —ଦେ. ବ. (ସଂ. ଶାଖା)—୧ । ଏକ ଶ୍ରେଣୀସ୍ଥ ବା ଜାତୀୟ ବହୁ Śāhi ପରିବାର ବସତି କରୁଥିବା ଗ୍ରାମର ବା ସହରର ଅଂଶ; ପାଡା मोहल्ला, टोला ପଡ଼ା—1. Part of a town or village where families of one caste or profession reside. (ଯଥା—ପଠାଣ ଶାହି, ଗଉଡ଼ ଶାହି, ପାଣ ଶାହି, ବ୍ରାହ୍ମଣ ଶାହି ଓ ବାଉରିଶାହି) ୨ । ପୁରୀ ସହରର ସାତ ଗୋଟି ବଡ଼ିଆ ଅଂଶ—2. Seven divisions or chief streets of the town of Puri. [ଦ୍ର—ପୁରୀର ସାତ ଶାହିର ନାମ— ୧ । ବାସେଲୀ ଶାହି ୨ । ହରଚଣ୍ଡି ଶାହି ୩ । ମାର୍କଣ୍ଡେଶ୍ୱର ଶାହି ୪ । ଦୋଳମଣ୍ଡପ ଶାହି ୫ । ବାଲି ଶାହି ୬ । କୁଣ୍ଡେଇବେଣ୍ଟ ଶାହି ୭ । ଚ଼ୁଡଙ୍ଗ ଶାହି ।

ପ୍ରବାଦ ଅଛି ଯେ ପୁରୀରେ ସାତ ଶାହି ଓ ୪୨ ଜାତି ଅର୍ଥାତ୍ ଶ୍ରେଷ୍ଠ ଗଲି ଅଛି ଏବଂ ବାଉଁଜରେ ୫୨ ବଜାର ୫୩ ଗଳି ଅଛି । କିନ୍ତୁ ପୁରୀରେ ଅଧୁନାତ ଶାହିର ସଂଖ୍ୟା ଅନେକ ଅଧିକ] ୩ । ଶ୍ରେଣୀ; ପଂକ୍ତି; ଧାଡ଼ି—3. Line; row. ୪ । ପ୍ରତିବେଶୀମାନଙ୍କର ଗୃହଶ୍ରେଣୀ—4 Row of houses of neighbours. [ଦ୍ର—ସାଧାରଣତଃ ପୁରୀ ସହରରେ ଭିନ୍ନ ଭିନ୍ନ ଅଂଶକୁ ଶାହି, କଟକରେ ବଜାର, ସମ୍ବଲପୁରରେ ପଡ଼ା ଓ ବାଲେଶ୍ୱରରେ ଗଞ୍ଜ ବୋଲାଯାଏ । କଲିକତାରେ ପାଡ଼ା ବା ଟୋଲି ବୋଲାଯାଏ ।] ପ୍ରାଦେ (କଟକ ଜିଲ୍ଲା ଓ ତନ୍ନିକଟବର୍ତ୍ତୀ ଅଞ୍ଚଳ) ବ—ଅଗଣା; ପ୍ରାଙ୍ଗଣ—Courtyard. ବୈ.ଦେ. ବଣ—(ଅନ୍ୟଶବ୍ଦ ସଙ୍ଗେ ଯୁକ୍ତ ହୁଏ ସାହୀ साही ଯଥା—ବାଦଶାହି, କୁତବଶାହି, ନିଜାମଶାହି; —ପା. ଶାହ(+ବଣ ପ୍ରତ୍ୟୟ ଈ)—ଶାହା ସମ୍ବନ୍ଧୀୟ— Relating to Śāhā or king.

ଶାହିଜ(ଜ୍ୟ)—ଗ୍ରା. ବ (ସଂ. ସାହାଯ୍ୟ)—ସାହାଯ୍ୟ (ଦେଖ) Śāhija(jya) Sāhājya (See)

ଶାହି ଜାତ—ପ୍ରାଦେ. ( ପୁରୀ ସହର ) ବ.—ଗୋସାଣୀ ଜାତ—The Śāhi jāta procession of taking the image of ଶାହି ଜାତ୍ରା, ଶାହି ଯାତ୍ରା } ଅନ୍ୟରୂପ Goddess Durgā from different Śāhis of Puri town during the Durga puja festival. [ଦ୍ର—ପୁରୀ ସହରରେ ଦୁର୍ଗାପୂଜା ଦଶମୀ ସମୟରେ ପ୍ରତି ଶାହିରୁ ଦେବୀ ବା ଗୋସାଣୀ ପ୍ରତିମାମାନଙ୍କୁ ଅନ୍ୟାନ୍ୟ ଶାହିକୁ ନେଇଯିବା ଉପଲକ୍ଷରେ ଏହି ଶୋଭାଯାତ୍ରା ହୁଏ । ଏଥିରେ ନାନା ପ୍ରତିମୂର୍ତ୍ତି, ନାଗା ଓ ମଲ୍ଲମାନେ କ୍ରୀଡ଼ା କରନ୍ତି ଓ ଯାତ୍ରାଦଳ ବେଳେ ବେଳେ ଅଶ୍ଳୀଳ ଗାଳି ଓ ଭାଷା ବ୍ୟବହାର କରନ୍ତି । ପୁରୀ ସହରର ଦେଖାଦେଖି କ୍ରମେ କ୍ରମେ ପୁରୀ ଜିଲ୍ଲାର ମଫସଲ ଗ୍ରାମମାନଙ୍କରେ ଦୋଳଅଡ ଯାତ୍ରା ସମୟରେ ଶାହିଜାତ ବାହାରିବା ଦେଖା ଯାଉଅଛି ।]

ଶାହି ପଡ଼ିଶା (ପଡ଼ୋଶ)—ଦେ. ବ—(ସମାନାର୍ଥ ଶବ୍ଦର)—ପଡ଼ୋଶୀ- Śāhi pardiśā (pardośa) ମାନେ— Neighbours. ପାଡ଼ାପଡ଼ଶୀ टोलापड़ोसा [ଦ୍ର—ଦାଣ୍ଡରେ ଲମ୍ବରେ କାଢ଼ିବ ଶିଙ୍ଗା, ଦେଖି ମରୁଥିବେ ଶାହି ପଡ଼ିଶା । କୃଷି ବଚନ ।]

ଶାହି ଭାଇ —ଦେ. ବ—ଏକ ଶାହିରେ ବାସ କରୁଥିବା ଯୋଗୁଁ ଭାଇ Śāhi bhāi ସମ୍ପର୍କରେ ସମ୍ପର୍କିତ ବ୍ୟକ୍ତିଗଣ—Persons rela- ଗ୍ରାମ୍ୟ সুবাদে ভাই टोलापड़ोसा भाइ ted to each other as brethren on account of their living in the same part of a town or village.

ଶାହି ଶାହି—ଦେ. ଅ—ଏକ ଶାହିରୁ ଅନ୍ୟ ଶାହିକୁ; ପ୍ରତି ଶାହିରେ— Śāhi Śāhi From one part of the town or ପାড়াপাড়া टोलाटोला village to another. [ଦ୍ର—ଶାହି ଶାହି ହୋଇ ବୁଲଇ ଗୋରସ, ମଦ ବିକାଯାଏ ବସି—ଭଗ]

ଶି —ଦ. ବ.—୧ । ଶିବ (ହ୍ର.ଶ)—1. Śiba. ୨ । ସୁଖ (ହ୍ର.ଶ)— Śi 2. Happiness. ୩ । ସୌଭାଗ୍ୟ (ହ୍ର.ଶ)—3. Prosperity; good fortune. ୪ । ଶାନ୍ତି (ହ୍ର.ଶ)—4. Peace. ୫ । ଧୈର୍ଯ୍ୟ (ହ୍ର.ଶ)—5. Patience.

ଶି (ଧାତୁ)—ସଂ—ତୀକ୍ଷ୍ଣ କରିବା; ପଜେଇବା— Śi (root) To sharpen; to whet.

ଶିଅ—ଦେ ବ —(ସଂ ଶିଫ)—୧ । ଗଛର ଚେର—1. Root. ୨ । Śia ବରଗଛର ଯେଉଁ ଚେର ଭୂମି ଉପରେ ଦେଖା ଯାଉଥାଏ— শিকড় 2. Creeping roots of banian tree which जड़, सिर appear over the ground.

ଶିଅ କାଟିବା—ଦେ କ୍ରି (ଲକ୍ଷଣାର୍ଥ)—(ଗଛର ଚେର କାଟିଲେ ଗଛଟି Śia kātibā ଯେପରି ମରିଯାଏ ସେହିପରି) କୌଣସି ବ୍ୟକ୍ତିର শিকড়কাটা ଅନିଷ୍ଟ ଘଟାଇବା—(figurative) To injure जड़काटना a person; to strike at the root of a person's interests.

ଶି ଅକ୍ଷର—ଦେ ବ (ସଂ ଶ୍ରୀ ଓ ଅକ୍ଷର,ବା ସିଦ୍ଧିରସ୍ତୁ)—ସି ଅକ୍ଷର (ଦେଖ) Śi akshara क अक्षर सि अक्षर Si akshara (See)

(ଢାକୁ) ଶି ଅକ୍ଷର ବରୁଣେଇ ପର୍ବତ—ଦେ. ପ୍ରବଚନ—ସେ ନିରକ୍ଷର (Ṭāku) Śi akshara barunei parbata. ବା ମୂର୍ଖ ଅଟେ —He is an illitrate person ( literally, alphabets appear like mountains to him).

ଶି ଅକ୍ଷର ବିବର୍ଜିତ—ଦେ. ବଣ. —ସି ଅକ୍ଷର ବିବର୍ଜିତ (ଦେଖ) Śi akshara bibarjita Śi akshara bibarjita. क अक्षर गोमांस सि अक्षर नहीं जाननेवाला (See)

ଶିଅର୍—ବୈଦେ. ବ—ଶିୟର (ଦେଖ) Śiar Siyar (See)

ଶିଅର—ଦେ. ବ—ଶିୟର (ଦେଖ) Śiara Śiyara (See)

ଶିଅଳ—ଦେ. ବ—( ସଂ. ଶୃଙ୍ଖଳ; ଏମାନେ ଅଣ୍ଟାକୁ ଓ ଗୋଡ଼କୁ Śiaḷa ଶିକୁଳି ଗଛ ସଙ୍ଗେ ଶୃଙ୍ଖଳବଦ୍ଧ କରି ଗଛରେ ଚଢ଼ନ୍ତି]— পাশী, সিওলী ୧ । ନୀଚ ହିନ୍ଦୁ ଜାତି ବିଶେଷ, ଯେଉଁମାନେ ତାଳ पासी ଓ ଖଜୁରି ଗଛ କାଣ୍ଡ ଉହିଁରୁ ତାଡ଼ି ବାହାର କରନ୍ତି (ଏମାନେ ମଦ୍ୟ ତାଡ଼ି ବିକନ୍ତି) -1. A low Hindu caste

which extracts toddy from palmyra and date palm trees. ୨ । ତାଡ଼ି ବିକ୍ରୟୀ—2. A toddy dealer. ୩ । ( ସଂ ଶଲ୍ୟ ) ହଳର ଯୁଆଳିର
शली अगରେ ଥିବା କୀଳକ; ଯୁଗକୀଳକ, ଯହିଁରେ ଯୁଗବାନ୍ଧି
कनेल ପଶୁଙ୍କ ବେକାକୁ ଅଟକାଯାଏ—3. Pins attached to the ends of the yoke of the plough to which the neck-rope of the bullocks are attached. [ ଦ୍ର—ଶଗଡର ଯୁଆଳିର ଅଗରେ ଉପର ଅଡ଼ୁ ମାରି ହୋଇଥିବା ଦୁଇଗୋଟା କୀଳାକୁ ବାଲୁଳି ଓ ହଳର ଯୁଆଳିର ଅଗକୁ କଞ୍ଚାବୁଲ ଓଡ଼ ତଳ ଅଡ଼ୁ ମାରି ହୋଇଥିବା ଦୁଇ କୀଳାକୁ ଶିଅଳି କହନ୍ତି । ]

ଶିଆଡ଼ିଗୁଳି—ପ୍ରାଦେ (ସିଂହଭୂମି) ବି—ବିଷାକ୍ତ ସର୍ପ ବିଶେଷ
Śiārḍiguḻi A class of venomous snakes

ଶିଆର—ଦେ. ବି. [ ସଂ. ଶୀରା ]—୧ । ହଳଦ୍ୱାରା କ୍ଷେତରେ ଖୋଳା ହେବା ଗୋହିର; ଲଙ୍ଗଳ କର୍ଷିତ ରେଖା; ଲାଙ୍ଗଳପଦ୍ଧତି—
Śiāra
লাঙ্গলেররেখা 1. Furrow. ୨ । ଶିଆର ପରି ଗଭୀର ବା ଲମ୍ବା ଗାତ
রেখা सिराउर 2. Furrow like grooves. ୩ । କେଶକୁ ଫାଳ କରିବା ଯୋଗୁଁ ମୁଣ୍ଡରେ ପଡ଼ିବା ଦାଗ; ମାଙ୍ଗ; ଚେର—3. Parting line of plaited hair.

ଶିଆରି(ଳି)—ଦେ. ବି.—ଶାଳ ଗଛରେ ମାଡ଼ିଥିବା ଏକ ପ୍ରକାର ମୋଟା
Śiāri(ḻi) ଲତା—A wild creeper having watery juice sufficient to quench thirst. [ଦ୍ର—ଏହାକୁ କାଟି ଦେଲେ ଏହା ମଧ୍ୟରୁ ଈଷତ୍ କଷାୟ ରସଯୁକ୍ତ ତରଳ ପାଣିପରି ଜଳୀୟ ରସ ବାହାରେ । ଜଙ୍ଗଲ ଅରଣ୍ୟରେ ତୃଷାର୍ତ୍ତ ପଥିକ ଏ ଜଳଦ୍ୱାରା ତୃଷା ନିବାରଣ କରେ । ଏ ଲତାରେ ପିଲାମାନେ ଦୋଳି ଖେଳନ୍ତି । ଏ ଲତାର ବ୍ୟାସ ୧ ଫୁଟ ପର୍ଯ୍ୟନ୍ତ ମୋଟା ହେବା ଦେଖାଯାଏ । ଏଥିର ପତ୍ର ସାଗୁଆନ ପତ୍ର ଭଳି ବଡ଼ ଓ ପତ୍ରର ଉପର ପଦ୍ମପତ୍ର ପରି ମସୃଣ । ଏହାର ପତ୍ରରେ ଦନା ବା ଖଲିପତ୍ର ସିଲେଇ କରି ଖାଦ୍ୟ ପାତ୍ର ରୂପେ ବ୍ୟବହାର କରାଯାଏ ।] [ଉ—ଦୋଳ ଖାଉ ଥାଉ ଶିଆରି ଲଟାରେ କୃଷ୍ଣ କେଳି ଥିବେ ହୋଇ, ଶିଆରି ବଣରେ ବାଇଆ ବସା ଗୋ । ହୋଇଁରେ ବାଇଆ ହୋଇଁ ! ଶିଶୁଗୀତ; ନନ୍ଦକିଶୋର—ହୋଇଁରେ ବାଇଆ ହୋ ।

ଶିଆରିବା—ଦେ. କି (ସଂ. ଶୀରା)—୧ । ହଳଦ୍ୱାରା ପଡ଼ିଆଭୂମିକୁ
Śiāribā ଚଷିବା—1. To draw furrows on the (ଶିଆରେଇବା—ଅନ୍ୟରୂପ) field by the plough. ୨ ।
রেখাকাটা କେଶଗୁଚ୍ଛକୁ ଅଙ୍ଗୁଳି ବା ପାନିଆ ଦ୍ୱାରା ଚିରିବା—
सिराउर करना, सिउथ फारना 2. To part the hair into furrows with fingers or comb. [ ଦ୍ର—ଲଙ୍ଗଳ ଦ୍ୱାରା କ୍ଷେତରେ ଯେଉଁପରି ଗୋଟିଏ ରେଖା (ଶୀରା) ପଡ଼ିଯାଏ, ମୁଣ୍ଡବାଳକୁ ହାତ ଅଙ୍ଗୁଳିରେ ବା ପାନିଆ ଦ୍ୱାରା ଶିଆରି ଦେଲେ ମୁଣ୍ଡରେ ଗୋଟିଏ ରେଖା ଦୃଷ୍ଟ ହୁଏ, ଏହି ଭାବକୁ ଶିଆରିବା ଶବ୍ଦର ଏହି ଅର୍ଥ ହୋଇ ଅଛି । ] ୩ । ଅଶୁ, କାଇଗଣ, ଆଳୁ ଆଦି ଲଗାଇବା ନିମିତ୍ତରେ କୋଡ଼ି ଦ୍ୱାରା ମାଟିରେ ଉଚ୍ଚ ସମାନ୍ତରାଳ ରେଖାମାନ ଗଢ଼ା କରିବା—3. To heap up lines of earth by the spade in the fields dug for raising certain crops.

ଶିଆ(ୟା)ଳ—ଦେ. ବି (ସଂ. ଶୃଗାଳ)—ଶୃଗାଳ; ବିଲୁଆ—
Śia(yā)ḻa Jackal; Canis Aureus.
শি(শে)য়াল सियार (ଉ—ଭଲ ଦେଖୁଥି କାଳୁଡ଼ି ବାଡ଼ି, ଖାଏ (ସ୍ତ୍ରୀ ଅଳୀ—ସ୍ତ୍ରୀ) ଶିଅଳ ବେକ ମୋଡ଼ି । ଢଗ ।)

ଶିଆ(ୟା)ଳି—ଦେ. ବି—୧ । (ସଂ. ଶୃଗାଳ) ଶୃଗାଳ; ବିଲୁଆ—
Śia(yā)ḻi 1. Jackal. ୨ । (ସଂ. ଶୃଗାଳୀ) ସ୍ତ୍ରୀ ଶୃଗାଳ—
শি(শো)য়াল 2. She-jackal. ୩ । ମୁଣ୍ଡକୁ କେଶଶୂନ୍ୟ ବା
सिआर ଟାଙ୍ଗରା କରିବାର କାରଣରୂପେ କଳ୍ପିତ ଏକପ୍ରକାର
শি(শে)য়ালী ପୋକ—3. A kind of imaginary insect
सिआरनी which are said to cause baldness on the head. ୪ । ଶିଆରି (ଦେଖ)—4. Śiāri. (See)
শিঅলী, শেঅলা ୫ । ( ସଂ. ଶୈବାଳ ) ଶିଉଳି
सेमार, सेवार (ଦେଖ)—5. Śiuḻi, (See)
ତେ. ନାକୁ (ଉ—ଶରଣେ ମସ୍ୟ ଯେ, ଚକ୍ରର
ପା. ଓଶମେ, ଦଜ୍ର ଶିଆଳ, ଛଡ ବଂଶ, ଗଦାଟି କୁମ୍ଭୀର
ଅ. ଭୁମିଲବ ଆବଳୀ; କୃଷ୍ଣସିଂହ. ମହାଭାରତ ଦ୍ରୋଣ ।) ୬ । କୋକଶିଆଳ—6. fox.

ଶିଆଳିଆ(ୟା)—ଦେ. ବିଣ—୧ । ଶୃଗାଳ ପରି ବା ଶୃଗାଳଜାତୀୟ—
Śiaḻiā(yā) 1. Like a jackal or belonging to
শোয়ালের মতন the jackal species. ୨ । ଶୈବାଳମୟ—
सिआरियो 2, Mossy.

ଶିଆ(ୟା)ଳିଆ(ୟା) ପ(ପୁ, ପୋ)ତ(ତି)ନି—ଦେ. ବି—ଶାଳିଆପଟନି
Śia(yā)ḻiā(yā) pa(pu, po ta(ti)ni (ଦେଖ)—Śāḻiā patani. (See)

ଶିଆ(ୟା)ଳି କଣ୍ଟା—ଦେ. ବି ( ସଂ. ଶୃଗାଳକଣ୍ଟକ; ବନ୍ୟ(କ୍ଷୁପ-
Śiā(yā)ḻi kaṇṭā ବିଶେଷ)—୧ । କଣ୍ଟାକୁସୁମ (ଦେଖ)—
শিয়ালকাঁটা, শিয়াকাঁটা, শেয়ালকাঁটা 1, Kaṇṭākusuma,
भरभांड, सत्यानासी (See) Mimosa Rubricanis.
୨ । ଅଗସ୍ତ ଗୁଳ୍ମ—2, Mexican poppy; Argemone Mexicana; Gamboje thistle. [ଦ୍ର—ଏହା ବନ୍ୟ ବର୍ଷାୟୁଃ କଣ୍ଟକୀ ଶାକ ବିଶେଷ; ପତ୍ର ଓ ଫଳ କଣ୍ଟକମୟ; ପତ୍ର ଶ୍ୱେତ । ଏହାର କ୍ଷୀର ପୀତବର୍ଣ୍ଣ, ଫୁଲ ପୀତବର୍ଣ୍ଣ, ଷଟ୍‌ଦଳ । ଏହାର ମଞ୍ଜିରୁ ତେଲ ବାହାରେ । ଏହି ତେଲ ଚର୍ମରୋଗରେ ଉପକାରକ । ଏହାର କ୍ଷୀର ଦ୍ୱାରା କାଛୁ, କୁଣ୍ଡିଆ, ବଇଛ ଆଦି ଚର୍ମରୋଗରେ ଦେହରେ ବୋଳନ୍ତି ।] ୩ । କାନକୋଳି (ଦେଖ)—
3, Kanakoḻi, (See)

ଶିଆଳି କୋଳି — ଦେ. ବି (ସଂ. ଶୃଗାଳ କୋଳକା; ସଂ. କାମାଙ୍ଗୁର
Śiāli koli କର୍କନ୍ଧୁ) — ୧। ଭୁଇଁ ବରକୋଳି; କର୍କନ୍ଧୁ—
শেকুল, শিয়াকুল, শে কুল 1. A sort of jejube; Zizy-
लता बैर pus Aenoplia. ୨। କାନକୋଳି (ଦେଖ)—
2. Kānakoli. (See)

ଶିଆଳ ଖାଇବା — ଦେ. ବି. — ମସ୍ତକରେ ଇନ୍ଦ୍ରଲୁପ୍ତ ବା କେଶଶୂନ୍ୟତା
Śiāli khāibā ରୋଗ—The disease of bald-
টাক পড়া चंदाहोना ness; alopecia.

ଶିଆଳଖିଆ — ଦେ. ବିଣ — କେଶଶୂନ୍ୟ; ଟାଙ୍ଗର(ମୁଣ୍ଡ); ଖଲଡ଼—
Śiāli khia টেকো चंदा Bald (head).
ଦେ. ବି—୧। କେଶ ଶୂନ୍ୟତା—1. Bald-headed-
ness. ୨। ଇନ୍ଦ୍ରଲୁପ୍ତ ରୋଗ—2. Alopecia.

ଶିଆଳି ଦନା — ଦେ. ବି — ଶିଆଳି ପତ୍ରରେ ସିଅଁ ହୋଇ ଥିବା ପାଣାକୃତି
Śiāli danā ଦୋନା—A receptacle made of the
শিআলী পাতাবদোনা Śiali leaves sewn together.

ଶିଆଳୀ — ଦେ. ବି — ୧। (ସଂ. ଶୃଗାଳୀ) ଶୃଗାଳୀ; ମାଈକୋକିଆ—
Śiāli 1. A she-jackal. ୨। (ସଂ. ଶୈବାଳ) ଶିଉଳି—
শিয়ালী सियाली(री) 2. Moss.

ଶିଇୟା — ପ୍ରାଦେ (ଗଞ୍ଜାମ) ବି — ଶିକାୟା (ଦେଖ)
Śiiyā Śikāyā. (See)

ଶିଉଳି — ଦେ. ବି (ସଂ. ଶୈବଳ; ଶୈବାଳ; ଶୈଳେୟ)—
Śiuli ୧। ଶୈବାଳ; ଜଳଜାତ ଅତି କ୍ଷୁଦ୍ର ଉଦ୍ଭିଦ—
শিঅলি, শিউলি, শেঅ(ও,আ)লা, শেঅলি 1. Moss; a
सेवार; सिवार species of algæ. [ବି—ଏହା ଜଳରେ
ବହୁକାଳ ପଡ଼ିରହିବା କାଠ ଓ ପଥର ଉପରେ ମାଡ଼ିଯାଏ
ଓ ଏଥିଯୋଗୁଁ ଉକ୍ତ କାଠ ବା ପଥର ଚିକ୍କଣ ହୁଏ। ଅତ୍ୟ-
ଧିକ ସ୍ୱାଦୁ ଭିଜା କା ପଥର ଉପରେ ମଧ୍ୟ ଶିଉଳି ମାଡ଼େ।
ଶିଉଳି ଅନେକ ପ୍ରକାର, ଯଥା—ଜ(କେ)ଳି ଶିଉଳି,
(ବଂ. ଚୁଲ ଶେଅଲା, Spirogyra; କେଶପରି ସରୁ ଓ
ଦୀର୍ଘ ଲାଲାମୟ ହରିଦ୍ବର୍ଣ୍ଣ ଅପୁଷ୍ପକ ଉଦ୍ଭିଦ); ଗୁଡ଼ ଶିଉଳି
ବା ଗୁଡ଼ଗଛ ଦଳ (ବଂ. ଗୁଡ଼ ଶେଅଲା, Hydrilla
Verticillata, ସପୁଷ୍ପକ ଜଳଜମଗ୍ନ ଲତାମୟ
ଶାଖାନ୍ୱିତ ଜଳଜ ଶାକ ବିଶେଷ; ଏହାକୁ ଗୁଡ଼ ଉପରେ
ଘୋଡ଼ାଇଲେ ଗୁଡ଼ର ବର୍ଣ୍ଣ ଧଳା ହୁଏ), ପଟା ଶିଉଳି
(ବଂ. ପାଟା ଶେଅଲା, Blyxa, ଜଳଜମଗ୍ନ ସପୁଷ୍ପକ
ଶାଖାହୀନ ଉଦ୍ଭିଦ; ପତ୍ର ଗୋଲ ଗୋଲ; ଫୁଲ ଛୋଟ ଓ
ଧଳା।] ୨। (ସଂ. ଶୀଭଳୀ) ପାଣି ଶିଉଳୀ (ଦେଖ)—
2. Pānisiuli. (See) ୩। (ସଂ, ଶିଫାଳ ବା
শিউলী ଶେଫାଳ) ଶେଫାଳ; ଗଙ୍ଗଶିଉଳି ଫୁଲ; ଶିଙ୍ଘଡ଼ାହାର—
सिंगरहार 3. Night jasmine; Nyctanthes Arbor-
tristes (a flowering tree). ୪। କେଉଟଙ୍କ
ବଂଶୋପାଧି ବିଶେଷ—4. A family title of
some fishermen.

ଶିଉଳି — ପ୍ରାଦେ (ସମ୍ବଲପୁର) ବି. (ସମ୍ବଲପୁରୀ ଉଚ୍ଚାରଣ ଳ ସ୍ଥାନରେ
Śiuli ଲ) — ଶିଉଳି (ଦେଖ) — Śiuli. (See)

ଶିଉଳିଆ — ଦେ. ବିଣ — ଶୈବାଳଯୁକ୍ତ—
Śiulia Mossy.
শেঅলী পড়া सेवारगिराहुआ

ଶିଉଳି ଧରିବା — ଦେ. ବି — ପାଣି, ପଥର ବା କାଠ ଉପରେ ଶୈବାଳ
Śiuli dharibā ଜାତ ହେବା—The growing of
(ଶିଉଳି ପଡ଼ିବା, ଶିଉଳି ମାଡ଼ିବା — ଅନ୍ୟରୂପ) moss on
শেঅলিধরা (পড়া) सेवारलगना water, stone, wood
etc.

ଶିଂ — ଦେ. ବି — (ସଂ. ଶୃଙ୍ଗର ଅପଭ୍ରଂଶରୂପ) — ଶିଂଗ (ଦେଖ)
Śiṁ Śiṁga (See)

ଶିଂକ୍‌ଲା(ଲି) — ପ୍ରାଦେ (ସମ୍ବଲପୁର) ବି. (ସଂ ଶୃଙ୍ଖଳ) — ଶୃଙ୍ଖଳ; ଶିକୁଳି;
Śiṁk-lā(li) ଜଞ୍ଜିର—Chain.

ଶିଂଗ(ଘ) — ଦେ. ବି. (ସଂ ଶୃଙ୍ଗ) — ୧। ଶୃଙ୍ଗ—1. Horn. [ଭୂ—
Śiṁga(gha) ଜାଣି ଘୋଡ଼ାର ଶିଂଘ ନାହିଁ, ଶିଂଘ ଥିଲେ ଘୋଡ଼ା
ଚଢ଼ନ୍ତା ନାହିଁ। ଢଗ] ୨। (ସଂ. ଶୃଙ୍ଗ) ଧାନ,
শিং सिंग ଗହମ ଓ ଯବ ଆଦିର ଅଗରେ ଥିବା ମୁକୁଅଁ
ଶୁକ—2. Awn; hairlike terminal appen-
শৃঙ্গ सुंग dage; pike or beard attached to the
end of a grain of wheat or barley.
সিংহ सिंह ୩। (ସଂ. ସିଂହ) ସିଂହ—3. Lion. ୪। ସିଂହ ନାମକ
ବଂଶୋପାଧିର ଡାକନାମ—4. Name for calling
the family title Simha. ୫। ସିଂହମାସ(ଦେଖ)—
5. Simha māsa (see)

ଶିଂଗ(ଘ) କଙ୍ଗେଇ (ପାନିଆ) — ଦେ. ବି. — ମହିଷ ଆଦିଙ୍କ ଶୃଙ୍ଗ ନିର୍ମିତ
Śiṁga(gha) kaṅgei (pāniā) ପାନିଆ — Comb made
শিংএর চিরুনী सिंगकी कंगही of horn.

ଶିଂଗ(ଘ)ଡ଼ାହାର — ଦେ. ବି. (ସଂ ଶୃଙ୍ଗାରହାର) — ଶେଫାଳିକା (ଦେଖ
Śiṁga(gha)ṛdāhāra Śephālikā (See)
শিউলি ফুল सिंगरहार, हरसिंगार ଦେ.—ପଗଳମୁଲୀ

ଶିଂଗ(ଘ, ଗା, ଘା, ଗି, ଘି, ଗେ, ଘେ)ଡ଼ା — ଦେ. ବି — (ସଂ. ଶୃଙ୍ଗାଟକ) —
Śiṁga(gha, ga, gha, gi, ghi, ge, ghe)ṛdā ୧। ଶୃଙ୍ଗା-
ସଂ. ଶୃଙ୍ଗାଟକ, ଜଳ ଫଳ, ଟକ; ଜଳୀୟ ଲତା ଫଳ ବିଶେଷ—
ଅଚ୍ଛକେଶର, ତ୍ରିକୋଣ ଫଳ, Water-chestnut; water-
କୁବ୍ଜକ, ଶଙ୍ଗାଟ, ଜଳସୂଚୀ; calteof, Trapa Byspinosa.
ଜଳାଶୟ [ଭି — ଏହି ଜଳଜଲତା ତ୍ରିକୋଣ ଓ ଶୃଙ୍ଗ
ଦେ. ପାଣିଶିଙ୍ଘଡ଼ା ବିଶିଷ୍ଟ। ଏହାର ପୁଷ୍ପ ଶ୍ୱେତବର୍ଣ୍ଣ ଓ
শিঙেড়া, শিঙ্গাড়া ଚତୁର୍ଦଳ। ଏହା ଶୀତ ବୀର୍ଯ୍ୟ, କଷାୟ-
सिंघाड़ा; सिंघरा, पानीफल ମଧୁର ରସ, ଗୁରୁପାକ, ପୁଷ୍ଟିକର,
ଧାରକ, ଶୁକ୍ରଜନକ, ବାୟୁ ଓ କଫ ବର୍ଦ୍ଧକ। ଏହା ପିତ୍ତ ଓ
ରକ୍ତଦୋଷ ନାଶକ। ଏହି ଫଳର ଗ୍ରେଫା ମଧ୍ୟରେ କରମ
ସୁସ୍ୱାଦ୍ୟ ଶସ ଥାଏ।] ୨। ଉତ୍ତରେ ଭଜା ମାଂସ ବା ସିଝା
ଆଳୁ ଆଦି ପୁର ଦିଆ ଯାଇ ଶୃଙ୍ଗାଟକ ଆକାରରେ ପୁଡ଼ା

ଭୋଜିଥିବା ଭଜା ପଠା—2. A sort of pie or sandwich in which fried meat or curry is enclosed and fried in ghee. [ ଦ୍ର—"ଭିଷ ପ୍ରକାଶରେ" ଶୃଙ୍ଗାଟକ ନାମକ ଏକ ପ୍ରକାର ଭୃଜାନ୍ନ (ପକ୍ୱ ଖାଦ୍ୟ) ବର୍ଣ୍ଣିତ ଅଛି । ମାଂସକୁ ଛୋଟ ଛୋଟ କରି କାଟି ଗାଣିରେ ସିଝାଇ ମସଲା ସହିତ ଘିଅରେ ଭାଜି ତାହାକୁ ମଇଦା ଚୋଲି ମଧ୍ୟରେ ପୂର ଦେଇ ଘିଅରେ ଛାଣିଲେ ଏହା ପିଠା ହୁଏ । ଏହା ଖାଦ୍ୟ ରୁଚକର, ବଳ-କର୍ତ୍ତା ଓ ଶୁକ୍ରବର୍ଦ୍ଧକ, ବାତ ପିତ୍ତ କଫ ନାଶକ । ବର୍ତ୍ତମାନ ଗୁଡ଼ଅକ ଦୋକାନରେ ଛଅର ହେଉଥିବା ସିଙ୍ଗା ଅଳୁର ପୂର ଦିଅ ଛନକୋଣିଆ ମଇଦାର ପୁଡ଼ିଆ ଏହି ଶୃଙ୍ଗାଟକର ପ୍ରକାର ଭେଦ ।] ୩ । ଶୃଙ୍ଗାଟକ ଅକୃତି ବଶିଷ୍ଟ ସ୍ୱର୍ଣ୍ଣାଳଙ୍କାର ବିଶେଷ । (ଏଥିରେ ଡୋର ଲଗା ଯାଇ ସେ ଡୋରକୁ କେଶ ସଲଗ୍ନ କରି ଏ ଅଳଙ୍କାରକୁ ସ୍ତ୍ରୀଲୋକ-ମାନେ କପାଳର ଉର୍ଦ୍ଧ୍ୱ ଭାଗରେ ପିନ୍ଧନ୍ତି)—3. A sort of gold ornament shaped like water chestnut and worn on the forehead. ୪ । (ନାମ) ତାଳଚେରର ନଦୀ ବିଶେଷ—4. Name of a river in Talcher State. [ଦ୍ର—ଏହା ଅନଗୁଳ ଅଞ୍ଚଳ ବାହାରି ତାଳଚେରର ସତ୍ରମ ଗ୍ରାମର ହିଦସ୍ୱାଭ ପାର୍ଶ୍ୱରେ ବ୍ରାହ୍ମଣୀ ନଦୀରେ ପଡ଼ିଛି । ଏହା କୂଳରେ ହିଙ୍ଗୁଳା ପୀଠ ଅବସ୍ଥିତ । ହିଙ୍ଗୁଳାର ତଳେ ଶୀକା ଦେଖ ।]

**ଶିଂଗଲ୍**—ବୈଦେ. ବିଣ (ଇଂ. ସିଙ୍ଗଲ୍)—ଏକ ସରଖି; ସରୁ—
Śimgal सिङ्गल सिंगल Single. [ଯଥା—ଶିଂଗଲ ପେଠ, ସିଗନାଲ सिगनाल ଶିଂଗଲ ଲାଇନ୍ ।] ବି—(ଇଂ. ସିଗ୍ନାଲ୍; ରେଳରେ ବ୍ୟବହୃତ ଭାଷା) ଷ୍ଟେସନକୁ ଗାଡ଼ି ଅସିବା ପୂର୍ବରୁ ଷ୍ଟେସନର ଉଭୟ ପାର୍ଶ୍ୱରେ ଖଣ୍ଡୁରରେ ଥିବା ଖୁଣ୍ଟି ଉପରେ ବନ୍ଧାଯିବା କ୍ଷେପକ ଦଣ୍ଡ—Signal or semaphore hoisted on a pole near a Railway station before the arrival of a train.
[ଶିଙ୍ଗ(ଙ୍ଗି)ଲ୍—ଅନ୍ୟରୂପ]

**ଶିଂଗ(ଘ,ହ)ରା**—ପ୍ରାଦେ.—(ସମ୍ବଲପୁର) ବି.—(ସଂ. ଶୃଙ୍ଗ; ସଂ. ନାମ
Śimg-(gh,h)rā ଶିଲନ୍ଦ) - ଜଲଙ୍ଗ ମାଛ (ଦେଖ)
Silinda Gangetica (fish).

**ଶିଂଗଲ୍ ଲାଇନ୍**—ବୈଦେ. ବି—(ରେଳଓ୍ୱେ ପଡ଼ଲର ଶବ୍ଦ) ଦୁଇ
Śimgal lāin ଷ୍ଟେସନ ବିଗରୁ ରେଳ ଗାଡ଼ି ଯିବା ଅସିବା ପାଇଁ सिङ्गल लाइन सिंगल लाइन ପଡ଼ିଥିବା ଏକ ଯୋଡ଼ା ମାତ୍ର ଲୌହ [ବିପରୀତ—ଡବଲ୍ ଲାଇନ] ପଥ—Single line of a railway (as opposed to double line.)
[ ଦ୍ର—ଡବଲ୍ ଲାଇନରେ ଷ୍ଟେସନ ବିଗରୁ ଏକସମୟରେ ଅସୁଥିବା ଦୁଇଟି ରେଳ ଗାଡ଼ିର ସଂଘର୍ଷ ହେବାର ଅଶଙ୍କା ନ ଥାଏ । କାରଣ, ଗୋଟିଏ ଲାଇନରେ ଏକ ଦିଗରୁ ଗାଡ଼ିମାନ ଯାଏ ଏବଂ ଅନ୍ୟ ଲାଇନ୍‌ରେ ଅପର ଦିଗରୁ ଗାଡ଼ିମାନ ଅସେ ।]

**ଶିଂଗା(ଘା)**—ଦେ. ବି—(ସଂ ଶୃଙ୍ଗ)—ମହିଷ ଶୃଙ୍ଗ ନିର୍ମିତ ବାଦ୍ୟ
Śimgā(ghā) (ଏହାର ଅଗ୍ରଭାଗସ୍ଥ ଛିଦ୍ର ବାଟେ ଫୁଙ୍କିଲେ ଶଙ୍ଖ शिङ्गा सिंगा ପରି ଶବ୍ଦ ହୁଏ)—An instrument for blowing made of horn; horn. [ଭ—ପୃଥ୍ୱୀକି ସଂଗ୍ରାମ ଶିଂଗା ଘୋଷି ବନ୍ଧୁ ଘୋଷେ ।
ରାଧାନାଥ . ମହାଯାତ୍ରା ।]

**ଶିଂଗା(ଘା)ଣି**—ଦେ. ବି—(ସଂ ଶିଂଘାଣ)—୧ । ନାସିକା ଲାଳୁଡ଼ କଫ
Śimgā(ghā)ṇi ବା ଶ୍ଳେଷ୍ମା—1. Snot; mucus of the सिकनि पोटा, बलगम nose. ୨ । ଲୌହ ମଳ —
2. Rust of iron.

**ଶିଂଗା(ଘା)ଣିଆ**—ଦେ. ବିଣ. ପୁଂ—ଯେଉଁ ବ୍ୟକ୍ତିର ବା ବାଳକର
Śimgā(ghā)ṇiā ନାକରୁ ବିଶେଷ ଭାବରେ ଶିଂଘାଣି ବହେ—सिक्‌नि नेको (a boy or person) From whose पोटावाला nostrils much mucus comes out; (a person) with a running nose
( ଶିଂଗା[ଘା]ଣେଇ—ସ୍ତ୍ରୀ )

**ଶିଂଗା(ଘା)ଣି ନାକ**—ଦେ.ବି—ଶିଂଘାଣିଯୁକ୍ତ ନାସିକା—A running
Śimgā(ghā)ṇi nāka nose; nostril befouled with सिकनि नाक पोटावाला नाक mucus; snotted nose. [ ଭ—ଅଗେରେ କାଳିଆ ! ଛି ଛି କରୁଥିଲୁ ଶିଂଘାଣି ନାକକୁ ଦେଖି । ଏବେ ରେ କାଳିଆ ! କିଏ ମରୁଥିଲୁ ଥକ ଯଉବନ ଦେଖି—ଚମ । ]

**ଶିଂଗା(ଘା)ଣି ନାକା**—ଦେ. ବିଣ. ପୁଂ—ଯେଉଁ ବ୍ୟକ୍ତିର ନାକ ଶିଂଘାଣି
Śimgā(ghā)ṇi nākā ପୂର୍ଣ୍ଣ—Having nostrils be-शिकनी नेका fouled with mucus; having a पोटा नाकवाला running or snotted nose.
( ଶିଂଗା[ଘା]ଣି ନାକୁ[କି]ଆ—ଅନ୍ୟରୂପ )
(ଶିଂଗା[ଘା]ଣି ନାକି, ଶିଂଗା[ଘା]ଣି ନାକେଇ - ସ୍ତ୍ରୀ)

**ଶିଂଗା(ଘା)ଣି ପାଚିବା**—ଦେ. ବି—ନାକର ଶିଂଘାଣ ଘନ ଓ ହଳଦିଆ
Śimgā(ghā)ṇi pāchibā ହେବା—The mucus of the nostrils becoming thick and yellowish.

**ଶିଂଗା(ଘା)ଣେଇ**—ଦେ. ବି. ସ୍ତ୍ରୀ—ଶିଂଗାଣିଆର ସ୍ତ୍ରୀଲିଙ୍ଗ—
Śimgā(ghā)nei Feminine of Śimgāṇiā.

**ଶିଂଗା(ଘା)ପୁର**—ଦେ. ବି. ନାମ—ସିଙ୍ଗାପୁର ( ଦେଖ )
Śimgā(ghā)pura Singāpura ( See )

**ଶିଂଗା(ଘା) ଫୁଙ୍କିବା**—ଦେ. କି ( ମୃତ୍ୟୁକାଳ ପୂର୍ବେ ହଟ୍ଟୋ ସହିତ
Śimgā(ghā) phuṅkibā ଶିଂଗା ବଜା ହେଉଥିବାରୁ )—शिंगा फुका सिंगा फुंकना ୧ । ମୃତ ହେବା; ମରିବା—1. To (ଶିଂଗା ବଜା[ଜେ]ଇବା—ଅନ୍ୟରୂପ ) die. ୨ । କୌଣସି କାର୍ଯ୍ୟର ଫଳ ଅନ୍ୟ ଲୋକ ଭୋଗ କରିବା ଅବସ୍ଥାରେ ଫଳ ପାଇବା ଅଶାରେ ଅଶାନ୍ୱିତ(ବ୍ୟକ୍ତି) ନିଷ୍ଫଳ ହେବା—2. Not to attain one's hoped for gain;

not to get what one wanted. ୩ । ଶିଂଗାକୁ ଫୁଙ୍କିବା, ବଜାଇବା—3. To blow the horn.

ଶିଂଗା(ଘା)ର—ଦେ. ବି (ସଂ. ଶୃଙ୍ଗାର)—୧ । ରଜା ଓ ଦେବତାଙ୍କର Simga(ghā)ra ବେଶ ବା ସଜ୍ଜାବିନ୍ୟାସ—1. Toilette of সাজগোজ a king or Deity. ୨ । ଭୂଷଣ; ଅଳଙ୍କାର; ବେଶ; सिंगार ସଜ୍ଜା—2. Toilette. ୩ । ପରିପାଟୀ; ବେଶଜନିତ ସୌନ୍ଦର୍ଯ୍ୟ—3. Beauty or grace due to toilette. ବିଣ—୧ । ଶ୍ରେଷ୍ଠ—1. Excellent. ୨ । ସୁନ୍ଦର; ପରିପାଟୀଯୁକ୍ତ—2. Beautiful; decent.

ଶିଂଗାର ଖଇ—ଦେ. ବି—ଘୃତ ଓ ଖଣ୍ଡ ମିଶ୍ରିତ ଖଇ—Fried Simgāra khai paddy mixed with ghee and sugar.

ଶିଂଗା(ଘା)ର ବର୍ଢ଼ିବା(ହେବା)—ଦେ. ବି—ରଜାଙ୍କର ବା ରାଣୀଙ୍କର Simgā(ghā)ra bardhibā (hebā) ବା ଦେବତାଙ୍କର ବେଶ সাজগোজ হওয়া सिंगार होना ହେବା ମାତ୍ର--The toilette op- ( ଶିଂଗା[ଘା]ର[ରି] ବଢ଼େଇ ହେବା—କ୍ରିୟାରୂପ ) erations of a king or queen or a Deity.

ଶିଂଗାର ବେଶ—ଦେ. ବି( ସଂ. ଶୃଙ୍ଗାର+ବେଶ )—ପରିପାଟୀ ସଜ୍ଜା— Simgāra beśā Decent toilette. সিঙ্গার सिंगार वेश

ଶିଂଗା(ଘା)ର ହାର—ଦେ. ବି ( ସଂ. ଶୃଙ୍ଗାରହାର )—ଶୃଙ୍ଗାର ହାର Simgā(ghā)ra hāra ( ଦେଖ )—Śrungāra hāra ( See )

ଶିଂଗା(ଘା)ଳ—ଦେ. ବିଣ. ପୁଂ ( ସଂ. ଶୃଙ୍ଗାଳ )—ବଡ଼ଶୃଙ୍ଗଯୁକ୍ତ— Simgā(ghā)la Having big horns; big-horned. সিংগা(গে)ল सिंगवाला

ଶିଂଗା(ଘା)ରି—ଦେ. ବି. ପୁଂ ଓ ସ୍ତ୍ରୀ ( ସଂ. ଶୃଙ୍ଗାର=ବେଶ; ଶୃଙ୍ଗାର- Simgā(ghā)ri କାରୀ)—୧ । ରଜାଙ୍କର ବା ରାଣୀଙ୍କର বেশকারী ବେଶକାରୀ ଭୃତ୍ୟ ବା ଭୃତ୍ୟା—1. A servant सिंगारी who attends to the toilette of a king or queen. ୨ । ( ପୁଂ ) ଦେବତାଙ୍କ ବେଶକାରୀ ସେବକ —2. A servant who dresses up idols. ୩ । ( ସ୍ତ୍ରୀ ) ନର୍ତ୍ତକୀ—3. A dancing girl. ୪ । ବେଶ୍ୟା—4. Prostitute.

ଶିଂଗା(ଘା)ରିବା—ଦେ. କ୍ରି (ସଂ. ହିଂହ=ଶିଂହ ପରି ଦୁର୍ଦ୍ଧର୍ଷ କରିବା Simgā(ghā)ribā ଅର୍ଥରୁ)—୧ । ମନ୍ତ୍ର ଦ୍ୱାରା ପ୍ରୟୋଗପୂର୍ବକ বিগড়ান ଦୁଗ୍ଧବତୀ ଶାନ୍ତଗାଈକୁ ଦୁଷ୍ଟା କରିବା— बिगाडना, बिगडाना 1. To cause a quiet milch-cow to become vicious by employing charms. [ ଦ୍ର—ଗାଈକୁ ଶିଂଘାରଲେ ସେ ଗାଈ ଦୁଧ ଦୁହାଇଁ ଦିଏ ନାହିଁ ଓ ଦୁଧ ଦୁହିଁଲା ବେଳେ ଲାତ ମାରେ ଓ ଅଥିର ହୁଏ ଓ ଡରେ ।] ୨। ମନ୍ତ୍ରମୁଗ୍ଧ ଜୀବକୁ ମନ୍ତ୍ର ପ୍ରଭାବରୁ ମୁକ୍ତ କରି ତାହାର ପରାକ୍ରମ ଦେଖାଇବାକୁ ଉତ୍ତେଜିତ କରିବା— 2. To excite an animal to fury after freeing it from an enchantment.

ଶିଂଗି ଘି)—ଦେ. ବି (ସଂ. ଶୃଙ୍ଗୀ)—ଅଶକଲୀ ଶୃଙ୍ଗଯୁକ୍ତ କ୍ଷୁଦ୍ର ମତ୍ସ୍ୟ— Simgi(ghi) A sort of small scaleless fish; সিংগী सिंगी Saccobranchus Fossilis. [ ଦ୍ର— ଏ ମାଛ ପଙ୍କ ପାଣିରେ ରହନ୍ତି; ବର୍ଣ୍ଣ ପାଣ୍ଡୁର । ଏମାନଙ୍କ ନାକ ଉପରେ ଗୋଟିଏ ଓ ଗାଲରି ତଳେ ୨ଟି ଲମ୍ବା ଥାଏ । ଏମାନଙ୍କ ଶିଂଘ ମନୁଷ୍ୟ ଦେହରେ ବିନ୍ଧିଲେ ଯନ୍ତ୍ରଣାପ୍ରଦ ହୁଏ । ]

ଶିଂଗି(ଘି)ଟାଳି—ଦେ. ବି—ଧଳା ଶିଂଗି ମାଛ—A kind of spiked Simgi(ghi)tāli small white fish. [ ଦ୍ର—ଶିଂଗିମାଛ ପଙ୍କରେ ରହନ୍ତି, ଶିଂଗିଟାଳି ନଈ ଆଦିରେ ରହନ୍ତି । ]

ଶିଂଗି(ଘି)ଟାଳି ମୁହାଁ—ଦେ. ବିଣ. ପୁଂ—କ୍ରୋଧୀ; ଯାହାର ମୁହଁ କ୍ରୋଧ Simgi(ghi)tāli muhāñ ଲକ୍ଷଣଯୁକ୍ତ—Having a ক্রোধী क्रोधी [ଶିଂଟିମୁହାଁ—ଅନ୍ୟରୂପ] frowning face. { ଶିଂଟି(ଘି) ଟାଳିମୁହୀଁ / ଶିଂଗି(ଘି)ମୁହୀଁ }—ସ୍ତ୍ରୀ]

ଶିଂଟି(ଘି)ଡ଼ା—ଦେ. ବି—ଶିଂଗଡ଼ା ( ଦେଖ ) Simgi(ghi)rdā Simgardā ( See )

ଶିଂଗି(ଘି) ମାଇଲା ପରି ମୁହଁ କରିବା —ଦେ. କ୍ରି ୧ । ଯନ୍ତ୍ରଣା ଯୋଗୁଁ Simgi(ghi) māilā pari muhañ karibā ମୁଖକୁ ବିକୃତ মুখ বিকৃত করা କରିବା—1. To frown in agony ( as मुहँ सिकुडाना if stung by a Singhi fish). ୨ । ମୁଖରେ ବିରକ୍ତିଭାବ ପ୍ରକାଶ କରିବା, ଭ୍ରୂକୁଟି କରିବା; ରାଗରେ ହେବା—2. To frown; to scowl.

ଶିଂଗି ଘି) ମାଛ ପରି ମୁହଁ କରିବା—ଦେ. କ୍ରି.—କ୍ରୋଧଯୁକ୍ତମୁଖହେବା- Simgi (ghi) māchha pari muhañ karibā To মুখ ভাংগচান सिंगिके जैसे मुहँ करना frown.

ଶିଂଗି(ଘି) ଶିଂଗ(ଘି) ହେବା—ଦେ. କ୍ରି—୧ । ଶିଂଟିମାଛପରି ମୁହଁକରିବା Simgi(ghi) simgi(ghi) hebā —1. To frown- রাগে গবগব করা ୨ । କ୍ରୋଧରେ ଗର ଗର ହେବା—2. To घिनाना growl with nger.

ଶିଂଗେ ଘେ)ଇ—ଦେ. ବି. ସ୍ତ୍ରୀ ( ସଂ. ସିଂହବାହିନୀ )—ପାନବରଜଅ- Simge(ghe)i ମାନଙ୍କ ପୂଜିତା ଦେବୀ —A Goddess worshipped by betel-planters.

ଶିଂଗେ(ଘେ)ଇ ପୂଜା—ଦେ. ବି—ପାନ ବରଜମାନଙ୍କ ପୂଜା ବିଶେଷ— Simge(ghe)i pūjā A ritual or worship performed by betel-planters.

ଶିଂଗେ(ଘେ)ଡ଼ା—ଦେ. ବି—ଶିଂଗଡ଼ା (ଦେଖ) Simge(ghe)rdā Simgardā (see)

ଶିଂଘାଣ—ସ ବି—ସିଂହାଣ (ଦେଖ) Simghāna Simhāna (see)

{ ଶିଂଘାଣକ / ଶିଂଘାଣ } ଅନ୍ୟରୂପ

ଶିଂଘାଣୀ—ସଂ. ବି. (ଶିଂଘାଣ+ଇନ୍)—ନାକ (ହି. ଶ) Simghāni Nose.

ଶିଂଘିତ—ସ. ବଣ.—ଆଘ୍ରାତ (ହି. ଷ)
Simghita Scented.

ଶିଂଘିଣୀ—ସ. ବିଶ.—ନାକ (ହି. ଶ)—
Simghini Nose.

ଶିଂଶପା—ସ.ବ(ଶୀଘ୍ର ବା ଶୀର୍ଷ+ପା ଧାତୁ+କର୍ତ୍ତୃ.ଅ, ନିବ=ମଙ୍ଗଳ+ଶୀ ଧାତୁ=ରକ୍ଷା କରିବା+କର୍ତ୍ତୃ ଅ+ଅ)—୧ । ଅନ୍ୟ ସ. ନାମ–ପିଚ୍ଛିଳା, ଶ୍ୟାମା, କୃଷ୍ଣସାର, ଅଗୁରୁ, କପିଳା, ଭସ୍ମଗର୍ଭା ।
Simśapā ଶିଶୁ ଗଛ—1. Dalbergia Sissoo; a timber tree; the blackwood sissoo.
ଶିଶୁ
शिशम
ତେ—ଶିଶୁକର୍ରୁ
ତା—ଜାକୁକ୍ ଲୁକଟ୍ଟୁଲ୍

[ଦ୍ର—ଏହା ଗୋଟିଏ ବଡ଼ ଆରଣ୍ୟ ବୃକ୍ଷ । ଏଥିର କାଠ ନାଲି, କଳା ଓ କଟିଳ ବର୍ଣ୍ଣ । ଏ ଗଛ ଖୁବ୍ ଶକ୍ତ ଓ ଏ ଗଛର ଗଣ୍ଡରେ ବେଳେ ବେଳେ ପଥର ଓ ମାଟି ପଶିଥିବାର ଦେଖାଯାଏ । ଏ ଗଛ ପଥୁରିଆ ଯାଗାରେ ଉଠେ । ଏଥିରେ ଟେବୁଲ୍, ଚଉକି, ଆଲମାରି ଆଦି ହୁଏ । ଏହି କାଠରୁ ଅଗ୍ନି ଉତ୍ତାପରେ ଏକ ପ୍ରକାର ତେଲ ବାହାର କରାଯାଏ । ଉକ୍ତ ତେଲ ଜାଳୁ କୁଣ୍ଠ ଆଦି ଚର୍ମ ରୋଗରେ ଉପକାରୀ ।

ବୈଦ୍ୟକ ମତରେ ଏ ବୃକ୍ଷ କଟୁ,ତିକ୍ତ କଷାୟ ରସ,ଉଷ୍ଣବୀର୍ଯ୍ୟ, ଅଗ୍ନିବର୍ଦ୍ଧକ, କଫବାୟୁନାଶକ, ବର୍ଣ୍ଣବର୍ଦ୍ଧକ, ବ୍ରଣ, କୃମି, ଦାହ, ପିତ୍ତ, ଅତିସାର ଓ କୁଷ୍ଠ, ଶ୍ୱିତ୍ର ଓ ଶୋଥରେ ଉପକାରକ ଓ ଗର୍ଭପାତକ ।

ଶ୍ୱେତ, ପୀତ, କୃଷ୍ଣ ଓ କପିଳ ବର୍ଣ୍ଣ ଭେଦରେ ଶିଶୁକାଠ ଚାରି ପ୍ରକାର । କପିଳ ବର୍ଣ୍ଣର ଶିଶୁ ତିକ୍ତରସ, ଶୀତବୀର୍ଯ୍ୟ, ଶାନ୍ତିକାରକ; ବାତ, ପିତ୍ତ,ଜ୍ୱର, ହିକ୍କା ଓ ବମନ ନିବାରକ । ଏଥିର କାଠରେ ଏକ ପ୍ରକାର ତେଲ ଥିବାରୁ ଏହା ଭଲ ରୂପେ ଜଳେ ଓ ଜଳିଲା ବେଳେ ଭୁର ଧୂଆଁ ଉଠେ ।]

୨ । ଅଶୋକ ବୃକ୍ଷ (ହି. ଶ)—2. Aśoka tree (M. W). [ଦ୍ର—ଶଂଶପା ବୃକ୍ଷର ଡାଳେ, ହନୁ ମନେ ମନେ ଭାଳେ, ଏଥିମଧ୍ୟେ ଜାନକୀ ଜନକ ଜନମା ଦେଖିଲିଇ ବୋଲି ବୋଲେ—ବିଶ୍ୱନାଥ. ବିଚିତ୍ର ରାମାୟଣ ।]

[ଦ୍ର—ବିଶ୍ୱନାଥ ଖୁଣ୍ଟିଆଙ୍କ ବିଚିତ୍ର ରାମାୟଣରେ ରାବଣ-ହୃତା ସୀତାଙ୍କୁ ଠାବ କରିବାକୁ ଯାଇ ହନୁମାନ ଶିଶୁପାଗଛ ଡାଳରେ ବସିବା କଥା ଲେଖାଥିବା ଦେଖି ରାବଣର 'ଅଶୋକବନ'ରେ ଶିଶୁଗଛଟିଏ ଥିଲା ବୋଲି କେହି କେହି ଭାବନ୍ତି । ଅଶୋକବନରେ 'ଶିଶୁଗଛ' କିପରି ଉଠିଲା, ଏପରି ସନ୍ଦେହ ଜନ୍ମିବା ସ୍ୱାଭାବିକ, କିନ୍ତୁ 'ଶଂଶପା'ର ଏକ ଅର୍ଥ 'ଶିଶୁଗଛ' ଓ ଅନ୍ୟ ଅର୍ଥ 'ଅଶୋକଗଛ' ଥିବାରୁ ହନୁ ଅଶୋକ ଯାଇ ବୃକ୍ଷର ଡାଳରେ ବସିବା କଥା ସ୍ୱାଭାବିକ ବୋଲି ବୋଧହୁଏ ।]

ଶିଂଶୁପା—ଦେ. ବ—(ସ. ଶଂଶପା)—ଶିଂଶପା (ଦେଖ)
Simśupā Simśapa (See)

ଶିଁଶା—ଦେ. ବ—ଶିଶା (ଦେଖ)
Siṅśā Siśā (See)

ଶିଁଶି—ବୈଦେ. ବ.(ଫା)—ଶିଶି; ଛୋଟ ବୋତଲ—
Siṅśi Phial, small bottle.

ଶିକ୍—ଦେ. ଓ ବୈଦେ. ବ(ସ ଶଲାକା ବା ଶିଖା ଫା. ସୀଖ୍)-୧। ଲୁହାର ସରୁ ଯଷ୍ଟି ବା ଦଣ୍ଡ—1. Thin iron rod. ୨ । ଶିଖ୍ (ଦେଖ)—2. Sikh (See) ବୈଦେ. ବ (ଫା)—ଯଷ୍ଟି ଆକାର ବିଶିଷ୍ଟ ପୂର୍ବକାଳରେ ପ୍ରଚଳିତ ଦେଶୀ ବନ୍ଧୁକ—A kind of old country gun as thin as a rod.
Sik
शिक
ହ୍ର ସୀକ

ଶିକ୍ କବାବ୍—ବୈଦେ. ବ(ଫା)—ଶିକ୍‌ଦ୍ୱାରା ସିଦ୍ଧ କବାବ୍; ଲୁହାକାଠିରେ ଫୋଡ଼ା ହୋଇ ନିଆଁ ଉପରେ ଧରାଯାଇ ସିଦ୍ଧ କରାଯାଇଥିବା ମାଂସ ବା ମତ୍ସ୍ୟ—Roasted meat; fish or meat fried over fire by being pierced with an iron rod.
Sik-kabāb
(ଶିକ୍ ପୋଡ଼ା—ଅନ୍ୟରୂପ)
शिककाबाब
सीककबाब

ଶିକ୍‌ଲ(ଲି)—ପ୍ରାଦେ. (ସମ୍ବଲପୁର) ବ(ସ ଶୃଙ୍ଖଳ)—୧ । ଶୃଙ୍ଖଳ; ଶିକୁଳି; ଶିକୁଳ—1. Chain. ୨ । କାନରେ ପିନ୍ଧାଯିବା ଗୋଟାର ଓ ନୋଳ ଆଦିକୁ କାନରେ ଝୁଲାଇ ରଖିବା ପାଇଁ ବ୍ୟବହୃତ ସୁନାର ବା ରୁପାର ସରୁ ଝଞ୍ଜିର—2. Slender chain of gold or silver attached to heavy earrings to keep the latter suspended.
Sik-lā(li)
[ଶିକ୍ଲା(କ୍ଲ)—ଅନ୍ୟରୂପ]

ଶିକ—ପ୍ରାଦେ (ବାମଣ୍ଡା) ବ.—(ସ ଶିଖା) ଅଗ୍ରଭାଗ
Sika Top.

ଶିକଡ଼—ପ୍ରାଦେ (ମେଦିନୀପୁର; ସ. ଶଫା) ବ—ଶିଅ; ଗଛର ଚେର—
Sikarda Root of a tree. [ଦ୍ର—ଶିକଡ ଶବ୍ଦ ବଙ୍ଗଳା ଭାଷାରେ ବ୍ୟବହୃତ ହୁଏ । ଓଡ଼ିଆରେ ନାହାକା ଚେରକୁ ଶିଅ ଓ ଅନ୍ୟାନ୍ୟ ଚେରକୁ ଚେର ବୋଲି କେହି କେହି ବ୍ୟବହାର କରନ୍ତି । ଭାଗବତରେ ମଧ୍ୟ ଅଛି—ପଞ୍ଚ ଶିକଡ଼ ଚଳେ ଗର୍ଣ୍ଣ, ଅସ୍ଥି ଏହାର ଷଡ଼ ଗୋଷ୍ଠ ।]

ଶିକଳ(ଳା,ଳି)—ଦେ. ବ—(ସ ଶୃଙ୍ଖଳ)—ଶିକୁଳା; ଶିକୁଳ—
Sikala(lā, li) Chain. [ଦ୍ର—ଦନ୍ତ କଟକ ଭୁଙ୍ଗ ପୁଥିଲୁ ବାସ୍ତୁ ଶିକଳା ଧାଇଁ ଧାରେ ଶୋହ । ଭଞ୍ଜ—କୋଟିବ୍ରହ୍ମାଣ୍ଡସୁନ୍ଦରୀ ।]
शिकल सिकड़

ଶିକଲା—ପ୍ରାଦେ. (କଳାହାଣ୍ଡି)ବ—ଶିକଳ (ଦେଖ)
Sikalā Sikala (See)

ଶିକା—ଦେ. ବ (ସ ଶିକ୍ୟ)—୧ । ହାଣ୍ଡି, ଗଡ଼ୁ ଆଦି ଝୁଲାଇ ରଖିବା ନିମନ୍ତେ ବ୍ୟବହୃତ ରଜ୍ଜୁମୟ ଆଧାର—1. A net-work hanging basket of ropes used for suspending articles and pots; a hanging shelf made of ropes woven like a cage. [ଦ୍ର—ଏହାକୁ ଘରର ଛାତରୁ ଓ ବାଉଁଶରୁ ଝୁଲାଇ ତହିଁରେ ଖାଦ୍ୟ ପାଦାର୍ଥ ରଖାଯାଏ ।] [ଦ୍ର—ବିରାଡ଼ି କପାଳକୁ ଶିକା ଛିଡ଼ିବା ନ୍ୟାୟ—ଶିକାରେ ରଖାଯାଇ ମଥାନରୁ ଝୁଲି ହୋଇଥିବା ଖାଦ୍ୟ ପଦାର୍ଥ
Sikā
शिका
सिका, छींका,
सिकहर

(ଦୁଧ, ମାଛଆଦି)କୁ ବିଲେଇ ଖାଇପାରେ ନାହିଁ । ଏଥିପାଇଁ ଭୂମିରେ ବସି ସତୃଷ୍ଣ ନୟନରେ ସେହି ଶିକାରେ ଥିବା ଦ୍ରବ୍ୟ ଆଡକୁ ଅନାଇ ରହିଥାଏ । ଦୈବଗତ୍ୟା ଶିକାର ଦଉଡ଼ି ଛିଣ୍ଡିଗଲେ ଶିକାରେ ଥିବା ପାଜ ଓ ଖାଦ୍ୟ ଭୂମିରେ ପଡ଼ିଯାଏ ଓ ବିଲେଇ ତାହା ଖାଇବାକୁ ସମର୍ଥ ହୁଏ । କୌଣସି ଅସାଧ୍ୟ ବା ଅପ୍ରାପ୍ୟ ବସ୍ତୁ ତତ୍‌ପ୍ରତ୍ୟାଶୀ ବ୍ୟକ୍ତିକୁ ଦୈବଗତ୍ୟା ମିଳିଗଲେ ଏ ନ୍ୟାୟର ଉଦାହରଣ ଦିଆଯାଏ । ]

୨ । ବାହୁଙ୍ଗିର ଦୁଇ ପାଖରେ ବୋଝ (ଅଟା) ଝୁଲାଇ ଦ୍ରବ୍ୟ ବହିବା ନିମନ୍ତେ ବ୍ୟବହୃତ ରଜ୍ଜୁମୟ ଆଧାର—2. A sling or cage of ropes attached to either end of a pole which is carried across the shoulders and is used for carrying things in it. ବୈଦେ. ବି(ଅ) ସିକ୍କା (ଦେଖ) Sikkā (See).

ଶିକା ଛିଣ୍ଡିବା—ଦେ. ବି—ଝୁଲା ହୋଇଥିବା ଶିକାର ଦଉଡ଼ି ଛିଣ୍ଡି Śikā chhiṇḍibā ଯିବାରୁ ଶିକା ତଳେ ଖସି ପଡ଼ିବା—The শিকা ছিঁড়া छींकाटूटना falling down of a Śikā. [ଉ—ବିଲେଇ କପାଳକୁ ଶିକା ଛିଣ୍ଡିଲା—ତଗ ।]

ଶିକା ଦଉଡ଼ା(ଡ଼ି,ଗ,ର)—ଦେ.ବି—ଯେଉଁ ଦଉଡ଼ିକୁ ବୁଣି ଶିକା ତିଆର Śikā daurḍā (rḍi,rā,ri) କରାଯାଏ—String or rope শিকাবদড়ি छींकाकीरस्सी used in preparing a Śikā.

ଶିକା ବାହା(ହି,ହୁ)ଙ୍ଗି—ଦେ ବି—(ସଙ୍କର ଶବ୍ଦ; ସଂ. ଶିକ୍ୟା+ Śikā bāhā(hi,hu)ṅgi ବହଙ୍ଗିକା)—ଦ୍ରବ୍ୟାଦି ଲାଦିବାକୁ শিকাবাঙ্গী सीकाबहिंगा ବୋଝ ନେବା ପାଇଁ ବ୍ୟବହୃତ ଶିକା ଓ ବାହୁଙ୍ଗି—Two string cages and the pole used in carrying things in them over the shoulders.

ଶିକା ଭାଙ୍ଗିବା—ଦେ. କ୍ରି—ଦଉଡ଼ିକୁ କୌଶଳ କ୍ରମେ ବୁଣି ଶିକା ତିଆର Śikā bhāṅgibā କରିବା—To prepare a Śikā by সিকাতৈবকবা सीकाभांगना looping strings like a cage.

ଶିକା ଭାର—ଦେ. ବି—(ସଙ୍କର ଶବ୍ଦ)—(ସ. ଶିକ୍ୟା+ଭାର)—ଶିକା Śikā bhāra ଓ ବାହୁଙ୍ଗିଦ୍ୱାରା ବାହିତ ଭାର—Weights সিকাভাব भार carried by means of a pole from both ends of which 'Śikās' are suspended.

ଶିକାର—ଦେ. ଓ ବୈଦେ. ବି—(ସଂ. ଶିକାରୀ=ମୃଗବଶେଷ; ଫା. Śikāra ଶୀକାର୍=ମୃଗୟାଲବ୍ଧ ଜୀବ)—୧ । ମୃଗୟା—1. সিকাব शिकार Hunting; chase. ୨ । ମୃଗୟାର୍ଥ ପଶୁ—2. A beast of prey for hunting. ୩ । ପ୍ରାଦେ (ଗଡ଼ଜାତ ଓ ସମ୍ବଲପୁର) ବି (ମୂଳ ହି. ଏହି ଅର୍ଥରେ ଏହି ଶବ୍ଦ) ୧ । ମୃଗୟା ଲବ୍ଧ ମାଂସ—1. Meat obtained by hunting. ୨ । ଖାଦ୍ୟ ମାଂସ—2. Meat. ୩ । ମୃଗୟାହତ ଜନ୍ତୁ—3. Animal killed by a hunter; prey. ୪ । (ଲକ୍ଷଣାର୍ଥ) ଖାଦ୍ୟ—4. Food. ୫ । (ଲକ୍ଷଣାର୍ଥ) ଯେଉଁ ବ୍ୟକ୍ତି ବା ଲୋଭନୀୟ ବସ୍ତୁ ଅଯତ୍ନ ବା ଅଧୀନ ହେଲେ କୌଣସି ବ୍ୟକ୍ତିର ଲାଭ ବା ଆନନ୍ଦ ବା ମଙ୍ଗଳ ହୁଏ—5. (figurative), Any person or article on getting whom under one's control, one gains much or derives pleasure. ୬ । (ଲକ୍ଷଣାର୍ଥ) କୌଣସି ହିଂସ୍ର ଜନ୍ତୁ ଦ୍ୱାରା ବା ଭୟଙ୍କର ରୋଗଦ୍ୱାରା ଆକ୍ରାନ୍ତ ହୋଇ ମରିବା ବ୍ୟକ୍ତି—6. (figurative) A person who becomes a prey or succombs to the attack of a wild animal or fell disease (ଯଥା—ଏ ବରଷ ଅନେକ ଗ୍ରାମରେ ପ୍ରାୟ ଶହେ ଲୋକ ହାଇଜାରେ ଶିକାର ହେଲେ ।)

ଶିକାର କରିବା—ଦେ. କ୍ରି—ମୃଗୟା କରିବା— Śikāra karibā To hunt; to prey. সিকাবকবা शिकारकरना

ଶିକାର ଜୁଟିବା—ଦେ.କ୍ରି—୧ । ମୃଗୟା ନିମନ୍ତେ (ମୃଗ) ଶିକାରୀର ହାବୁଡ଼େ Śikāra juṭibā ପଡ଼ିବା—1. The appearing of a (ଶିକାର ହାବୁଡ଼ିବା—ଅନ୍ୟରୂପ) prey before a huntere. সিকাবজুটা शिकारजुटना ୨ । (ଲକ୍ଷଣାର୍ଥ) ଠକାଇବା ନିମନ୍ତେ ବା ଧନ ନେବାପାଇଁ ଈପ୍ସିତ ଧନଲୋଭୀର ହାବୁଡ଼େ ନିର୍ବୋଧ ବ୍ୟକ୍ତି ପଡ଼ିବା—2. Appearance of a person who can be cheated or fleeced.

ଶିକାର ବନ୍ଦ—ବୈଦେ. ବି—(ଫା) କୌଣସି ଦ୍ରବ୍ୟକୁ ବା ମୃଗୟା ଲବ୍ଧ Śikāra band ଜୀବକୁ ବାନ୍ଧି ଆଣିବା ପାଇ ଘୋଡ଼ାର ଜୀନ ପଛ- শিকাববন্দ शिकारबंद ଆଡ଼େ ଯେଉଁ କଡ଼ା ବା ଫର୍ମା ବନ୍ଧା ହୋଇ ଥାଏ—A contrivance or frame attached to the back of the saddle for carrying anything or a prey tied to it.

ଶିକାରୀ—ଦେ. ବି.—ମୃଗୟୁ—A hunter; huntsman. ବିଣ. Śikari —୧ । ମୃଗୟା ପ୍ରିୟ—1 Fond of hunting সিকাবী शिकारी ୨ । ମୃଗୟା ପଟୁ (କୁକୁର ଆଦି)—2 (Dogs etc) Sharp or keen at hunting ୩ । (ଲକ୍ଷଣାର୍ଥ) ଧୂର୍ତ୍ତ; ଚତୁର—3 (Figurative) Cunning. ୪ । ମୃଗୟାରେ ବ୍ୟବହୃତ ବା ଆବଶ୍ୟକ—4. Necessary for a hunter.

ଶିକୁଳା(ଳି)—ଦେ. ବି—(ସଂ. ଶୃଙ୍ଖଳ)—୧ । ଜଞ୍ଜିର; ଶୃଙ୍ଖଳ— Śikuḷā(ḷi) 1. Chain, [ଉ—ଳ ଭୂଷଣେ ଦ୍ୱିଜାରିର ଏସ୍ୱାର୍ଥ সিকল सकल ଶିକୁଳ । ଚିନ୍ତାମଣି ବ୍ରହ୍ମାଣ୍ଡ୍ୟ] ୨ । କବାଟକୁ ଚଉକାଠରେ ଅଟକାଇବା ପାଇଁ ବ୍ୟବହୃତ ଶୃଙ୍ଖଳ—2. Door chain. ୩ । ଶାଙ୍କୁଳା (ଦେଖ) 3. Sāṅkuḷā (See) ୪ । ଶିକୁଳା ଘାସ (ଦେଖ)— 4 Śikuḷā ghāsa (See) [ ଉ—ଶିକୁଳା ଦୁର୍ମେ ଅଭିଳାଷ ସେହି ଶିଖର ତୁଳେ ବହୁର । ଜାଳଥିବେ ଶୁଷ୍କ ଧନୁର୍ଦ୍ଧର ତଣେ ଅଜଲ ରଣ ସୁନ୍ଦର । ରାଧାନାଥ ଗ୍ରନ୍ଥାବଳୀ]

**ଶିଖୁଲା ଘାସ** —ଦେ. ବି—ଅସଠର ଲଠା ବା ଘସ ବସିଥିଲା ଲମ୍ବ, ଡାଳୁଅ
**Śikulā ghāsa** ଓ ସରୁ ଦଣ୍ଡ ବାହାର ଥିବା ଏକ ପ୍ରକାର ବନ୍ୟ ଘାସ—A kind of wild grass with a long feathered stem coming out of it; Heteropogen Contortus ( Haines ). [ବି—ଏ ଘାସର ଦଣ୍ଡାଗ୍ରରେ ଥିବା କଣ୍ଟା ବାଗର ଦେହରେ ଲାଗିବା ଭୟରେ ଏ ଘାସ ବଢ଼ିଥିବା ବାଟରେ କାଖ ଯାଏ ନାହିଁ । ଏହା ୫ ଫୁଟ ପର୍ଯ୍ୟନ୍ତ ଉଚ୍ଚ ହୁଏ; ଶେଯ ଓ ଅନୁର୍ବର ମାଟିରେ ବଢ଼େ । ଏହା ଗୃହ ଘର ଛପର କରିବାରେ ଲଗା (ଛଣ) ପରି ଲାଗେ । ଏ ଘାସ ବଢ଼ିଥିବା ବାଟ ଦେଇ ମନୁଷ୍ୟ ଗଲେ ଏଥିର ଶିଙ୍ଘମାନ ପଥିକର ଲୁଗାରେ ଫୋଡ଼ି ହୋଇଯାଏ ।]

**ଶିକ୍ଥ**—ସଂ. ବି—(ଷିଚ ଧାତୁ=ସେଚନ କରିବା+କରଣ ଥ)—୧ । **Siktha** ମହଣ; ମହୁଚିଠା—1. Wax; beeswax. ୨ । [ଶିକ୍ଥକ—ଅନ୍ୟରୂପ] ଏକ ଗ୍ରାସ ଅନ୍ନ—2. A mouthful of food. ୩ । ଶିଠା; ଅଠାଳିଆ ଘନ ବସ୍ତୁ—3. Any gummy solid. ୪ । ଶୁଖିଲା ଅଠା—4. Dried gum; gum-resin.

**ଶିକ୍ୟ(କ୍ୟା)**—ସଂ. ବି—(ଶକ୍ ଧାତୁ=ପାରଗ ହେବା+କର୍ତ୍ତୃ. ଯ+ **Śikya(kyā)** ଅ; ନିପାତନ; ଯାହା ଭାର ଧାରଣ କରିବାକୁ ପାରଗ ହୁଏ)—ଶିକା; ଦ୍ରବ୍ୟ ଝୁଲାଇବା ପାଇଁ ବ୍ୟବହୃତ ଦଉଡ଼ିର ପିଞ୍ଜରା—A network or cage of strings in which things are kept suspended.

**ଶିକ୍ୟିତ**—ସଂ. ବିଣ—(ଶିକ୍ୟ+ଇତ)=ଶିକାରେ ରଖା ଯାଇଥିବା **Sikyita** ବା ଝୁଲା ଯାଇଥିବା—Suspended or kept in a śikā or loop.

**ଶିକ୍ରିଣୀ**—ଦେ. ବି—ଶିଖରିଣୀ ୩ (ଦେଖ)
**Śikriṇī** Śikhariṇī 3 (See)

**ଶିକ୍ଷ୍ (ଧାତୁ)**—ସଂ.—୧ । ଶିକ୍ଷା କରିବା; ଶିଖିବା—1. To learn. **Śiksh (root)** ୨ । ପାଠ ପଢ଼ିବା; ବିଦ୍ୟାର୍ଜନ କରିବା—2. To study; to acquire knowledge. ୩ । ଅଭ୍ୟାସ କରିବା—3. To practise. ୪ । ତାଲିମ ହେବା—4. To be trained. ୫ । (ବୈଦିକ) ଶିକ୍ଷା ଦେବା; ପାଠ ପଢ଼ାଇବା—5. To teach. ୬ । (ବୈଦିକ) ତାଲିମ କରିବା—6. To train. [ବି—ଏଥିର ଣିଜନ୍ତ ଶିକ୍ଷି ଧାତୁ ।]

**ଶିକ୍ଷକ**—ସଂ. ବି. ପୁଂ—(ଶିକ୍ଷ୍ ଧାତୁ ଣିଚ୍=ଶିକ୍ଷି ଧାତୁ+କର୍ତ୍ତୃ. ଅକ; **Śikshaka** ଅଥବା ଶିକ୍ଷା+ସ୍ୱାର୍ଥେ. କ; ଭୁଲ. ମୀମାଂସକ)— [ଶିକ୍ଷ(କ୍ଷି)କା—ସ୍ତ୍ରୀ] ୧ । ଯେ ପାଠ ପଢ଼ାନ୍ତି; ଅଧ୍ୟାପକ; ଶିକ୍ଷାଗୁରୁ— 1. Teacher; tutor; preceptor. [ବି— ଏଥିର ସ୍ତ୍ରୀଲିଙ୍ଗରେ ଶିକ୍ଷକା ଓ ଶିକ୍ଷିକା; ଉଭୟ ସାଧାରଣତଃ ଲେଖକମାନେ ଶିକ୍ଷୟିତ୍ରୀ ଶବ୍ଦ ବ୍ୟବହାର କରନ୍ତି । ଶିକ୍ଷା ଦିଆ ଯାଉଥିବା ଭିନ୍ନ ଭିନ୍ନ ସ୍ଥାନ ଓ ବିଷୟ ଅନୁସାରେ ଶିକ୍ଷକଙ୍କର ଉପାଧି ହୁଏ । ଯଥା—ଗୃହ ଶିକ୍ଷକ, ବିଦ୍ୟାଳୟ ଶିକ୍ଷକ, ବିଜ୍ଞାନ ଶିକ୍ଷକ, ଗଣିତ ଶିକ୍ଷକ ।] ୨ । ଶାସନକର୍ତ୍ତା; ଶାସକ—2. Controller; ruler. ୩ । ତାଲିମ ଦିଅନ୍ତା—3. Trainer (M. W) ସଂ. ବିଣ—ଶିକ୍ଷା ଦାନ କାରୀ (ବ୍ୟକ୍ତି)—Teaching.

**ଶିକ୍ଷଣ**—ସଂ. ବି—୧ । (ଶିକ୍ଷି ଧାତୁ+ଭାବ. ଅନ)—ଅଧ୍ୟାପନା— **Śikshaṇa** 1. Teaching. ୨ । (ଶିକ୍ଷ ଧାତୁ+ଭାବ. ଅନ) ଶିଖିବା; ଅଧ୍ୟୟନ—2. Reading; learning. ୩ । ଅଭ୍ୟାସ—3. Habit; practice. ୪ । ଉପଦେଶ—4. Advice. ୫ । ଦମନ— 5. Controlling.

**ଶିକ୍ଷଣୀୟ**—ସଂ. ବିଣ.—(ଶିକ୍ଷ ଧାତୁ+କର୍ମ. ଅନୀୟ)—୧ । ଶିଖାଇବାର **Śikshaṇīya** ଯୋଗ୍ୟ; ଶିକ୍ଷା ଦେବା ନିମନ୍ତେ ଉପଯୁକ୍ତ ବିଷୟ— [ଶିକ୍ଷଣୀୟା—ସ୍ତ୍ରୀ] 1. Fit to be taught; teachable. ୨ । ଶିଖିବାର ଉପଯୁକ୍ତ—2. Fit to be learnt.

**ଶିକ୍ଷୟିତା**—ସଂ. ବି. ପୁଂ—(ଶିକ୍ଷି ଧାତୁ+କର୍ତ୍ତୃ. ତୃ=ଶିକ୍ଷୟିତୃ; ୧ମା. **Sikshayitā** ଏ.)—୧ । ଶିକ୍ଷକ; ଶିକ୍ଷାଦାତା; ଶିକ୍ଷାଗୁରୁ— [ଶିକ୍ଷୟିତ୍ରୀ—ସ୍ତ୍ରୀ] 1. Teacher; instructor. ୨ । ଯେ ତାଲିମ କରେ—2. Trainer.

**ଶିକ୍ଷା**—ସଂ. ବି—(ଶିକ୍ଷ୍ ଧାତୁ+ଭାବ. ଅ+ଆ)—୧ । ଅଧ୍ୟୟନ— **Śikshā** 1. Reading; learning; studying. ୨ । ବିଦ୍ୟାଳୟରେ ବା ଗୁରୁଙ୍କ ନିକଟରେ ବିଦ୍ୟାଭ୍ୟାସ— 2. Studying in a school or under a preceptor. ୩ । ଦମନ; ଶାସନ—3. Subduing; subjugating; controlling; ruling. ୪ । ଜ୍ଞାନ ଲାଭ—4. Acquisition of knowledge. ୫ । ଉପଦେଶ—5. Advice; precept; instruction. ୫ । ଅନୁଶୀଳନ; ଅଭ୍ୟାସ 5. Training; exercise. ୬ । ବିନୟ 6. Humility. ୭ । ଦକ୍ଷତା; ନିପୁଣତା—7. Skill; art. ୮ । କର୍ମ ସାଧନାର୍ଥ ଇଚ୍ଛା—8. Wish to accomplish (M. W) ୯ । ଦଣ୍ଡ—9. Chastisement, punishment (M. W.) ୧୦ । ଉଚ୍ଚାରଣ ବୋଧକ ବେଦାଙ୍ଗ ବିଶେଷ —10. The science which teaches proper articulation of vedic texts; a branch of the Bedas dealing with pronunciation. [ବି—ଏହା ଛଅ ବେଦାଙ୍ଗ ମଧ୍ୟରୁ ଏକତମ, ଏଥିରେ ବେଦମାନଙ୍କର ବର୍ଣ୍ଣ, ସ୍ୱର, ମାତ୍ରା ଆଦିର ନିରୂପଣ ଅଛି ଓ ଏଥିରେ ମନ୍ତ୍ରମାନଙ୍କ ଠିକ୍ ମତେ ଉଚ୍ଚାରଣ ବିଷୟ ଶିକ୍ଷା ଦିଆ ଯାଇଅଛି;

ଏବା ବେଦର ବ୍ରାହ୍ମଣଭାଗରେ ଓ ପ୍ରାତିଶାଖ୍ୟ ସୂତ୍ରରେ ଅଛି ।]

୧୧ । ଦଶମୂଳର ଅନ୍ତର୍ଗତ ବୃକ୍ଷବିଶେଷ; ଶ୍ୟୋନାକ; ପଣପଣା—11. Bignonia Indica; Orocylum Indicum; Colosanthus Indica. ପ୍ରାଚୀନ (ଶବ୍ଦ ମ) ବି—(ଭୁଲ ବୁଝିବାରେ ଏହି ଅର୍ଥରେ ଏହି ଶବ୍ଦର ପ୍ରୟୋଗ)—୧ । କାରାବାସ, ଅର୍ଥଦଣ୍ଡ ଆଦି ରାଜଦଣ୍ଡ—1. Punishment meted out to criminals. ୨ । କାରାଗାର; ଜେଲ୍—2. Jail.

ଶିକ୍ଷା କର(ଶୁଳ୍କ)—ସଂ. ବି (ଆଧୁନିକ ପ୍ରୟୋଗ)—ଦେଶରେ ବାଳକବାଳିକାମାନଙ୍କୁ ଶିକ୍ଷା ଦେବାର ବ୍ୟୟ ଚଳାଇବାପାଇଁ ପ୍ରଜାଙ୍କଠାରୁ ଆଦାୟ କରାଯିବା ଟିକସ—Education cess.
Śikshā kara(śulka)
শিক্ষা কর शिक्षा कर

ସଂ. ବି (ଶିକ୍ଷା+କୃ ଧାତୁ+କର୍ତ୍ତୃ. ଅ)—୧ । ଶିକ୍ଷକ—1. Teacher (Wilson). ୨। ବ୍ୟାସଙ୍କର ଏକ ନାମ—(ଶିକ୍ଷାକରବର—ଦେ. ରୂପ) 2. A name of Byāsa (M. W).

ଶିକ୍ଷା କରିବା—ଦେ. କି (ସଂ. ଶିକ୍ଷ ଧାତୁ)—୧ । ଶିଖିବା—1. To learn. ୨ । ତାଲିମ ହେବା—2. To undergo training; to be trained.
Śikshā karibā
শিক্ষা করা शिक्षा करना

ଶିକ୍ଷାକାଙ୍କ୍ଷା—ସଂ. ବି—କୌଣସି ବିଷୟ ଶିଖିବାପାଇଁ ଇଚ୍ଛା—Desire to learn.
Śikshākānkshā

ଶିକ୍ଷାକାଙ୍କ୍ଷୀ—ସଂ. ବିଣ. ପୁଂ (ଉପପଦ ସମାସ, ଶିକ୍ଷା+ଆ+କାଙ୍କ୍ଷ ଧାତୁ+କର୍ତ୍ତୃ. ଇନ୍=ଶିକ୍ଷାକାଙ୍କ୍ଷିନ୍ ଶବ୍ଦ, ୧ମା ୧ବ)—ଶିକ୍ଷା କରିବାକୁ ଇଚ୍ଛୁକ—Desirous of learning; bent on studying.
Śikshākānkshī
(ଶିକ୍ଷାକାଙ୍କ୍ଷିଣୀ—ସ୍ତ୍ରୀ)

ଶିକ୍ଷାକାର—ସଂ. ବି—ଅନ୍ୟକୁ ଶିକ୍ଷା ଦେବାପାଇଁ ଉପଯୁକ୍ତ ଗାୟକ—A singer capable of teaching others (M. W).
Śikshākāra

ଶିକ୍ଷାକାରୀ—ସଂ. ବିଣ ଓ ବି. ପୁଂ—ଯେ ଶିକ୍ଷା କରେ—Learning; learner
Śikshākārī
(ଶିକ୍ଷାକାରିଣୀ—ସ୍ତ୍ରୀ)

ଶିକ୍ଷା କ୍ରମ—ସଂ. ବି (୬ଷ୍ଠୀ ତତ୍)—ଜ୍ଞାନାର୍ଜନ କରିବାର କ୍ରମୋନ୍ନତ ପଦ୍ଧତି—Gradual steps in education.
Śikshā krama

ଶିକ୍ଷାକ୍ଷର—ସଂ. ବି—ଶିକ୍ଷା (ବେଦାଙ୍ଗ)ର ନିୟମ ଅନୁସାରେ ଉଚ୍ଚାରିତ ଧ୍ୱନି—A sound pronounced according to the rules of Śikshā (M. W)
Śikshākshara

ଶିକ୍ଷା ଗୁରୁ—ସଂ. ବି (୬ଷ୍ଠୀ ତତ୍)—୧ । ଶିକ୍ଷାଦାତା; ଶିକ୍ଷକ—1. Teacher. ୨ । ଧର୍ମଗୁରୁ—2. A religious preceptor (M. W)
Śikshā guru

ଶିକ୍ଷା ଗ୍ରହଣ—ସଂ. ବି (୬ଷ୍ଠୀ ତତ୍)—ଗୁରୁଙ୍କଠାରୁ ଶିକ୍ଷାଲାଭ କରିବା—Learning from a teacher.
Śikshā grahaṇa
(ଶିକ୍ଷାଗ୍ରାହୀ—ବିଣ. ପୁଂ)

ଶିକ୍ଷା ଗ୍ରାହକ—ସଂ. ବି. ପୁଂ—ଶିଷ୍ୟ; ଛାତ୍ର—Student: pupil.
Śikshā grāhaka
(ଶିକ୍ଷାଗ୍ରାହିକା—ସ୍ତ୍ରୀ)

ଶିକ୍ଷା ଦଣ୍ଡ—ସଂ. ବି (ମ. ଧ. ଲୋ)—୧ । କୌଣସି ବ୍ୟକ୍ତିକୁ ଶିକ୍ଷା ଦେବା ଉଦ୍ଦେଶ୍ୟରେ ପ୍ରଦତ୍ତ ଦଣ୍ଡ—1. Punishment serving as a lesson. (M. W) ୨ । କୌଣସି ମନ୍ଦ ଅଭ୍ୟାସକୁ ଛଡାଇବା ପାଇଁ ଦିଆଯିବା ଦଣ୍ଡ (ହ୍ରୁ. ଶ)—2. Punishment meted out to eradicate any bad habit.
Śikshā daṇḍa

ଶିକ୍ଷା ଦାତା—ସଂ. ବି. ପୁଂ—ଶିକ୍ଷକ—Teacher.
Śikshā dātā
(ଶିକ୍ଷାଦାତ୍ରୀ—ସ୍ତ୍ରୀ)

ଶିକ୍ଷା ଦାନ—ସଂ. ବି (୬ଷ୍ଠୀ ତତ୍)—ବିଦ୍ୟାଦାନ—Imparting of education.
Śikshā dāna

ଶିକ୍ଷା ଦାୟକ—ସଂ. ବି ଓ ବିଣ. ପୁଂ—୧। ଶିକ୍ଷାଦାତା—1. Teacher. ୨ । ଯହିଁରୁ ଶିକ୍ଷାଲାଭ ହୁଏ—2. Educative.
Śikshā dāyaka
(ଶିକ୍ଷାଦାୟିକା—ସ୍ତ୍ରୀ)

ଶିକ୍ଷା ଦୀକ୍ଷା—ସଂ. ବି (ଆଧୁନିକ ପ୍ରୟୋଗ)—ଶିକ୍ଷା ଓ ମନ୍ତ୍ରାଦି ଗ୍ରହଣ—Learning and being initiated into a matter.
Śikshā dikshā
শিক্ষাদীক্ষা शिक्षादीक्षा

ଶିକ୍ଷା ଦେବା—ଦେ. କି—୧ । ଛାତ୍ରଙ୍କୁ କୌଣସି ବିଷୟ ବା ଶାସ୍ତ୍ର ଶିଖାଇବା—1. To impart education; to teach; to train. ୨ । ଦଣ୍ଡ ଦେବା—2. To mete out punishment. ୩ । ପରାମର୍ଶ ଦେବା; ମନ୍ତ୍ରଣା ଦେବା; ଉପଦେଶ ଦେବା—3. To advise. (ଦ୍ର—ଭାଇଙ୍କି ଯେଉଁ ସାର୍ଥ ଯିବେ ଶିକ୍ଷାଦେଇ । କୃଷ୍ଣସିଂହ. ମହାଭାରତ. ବନ । ] ୪ । (ମନ୍ଦ ଅର୍ଥ) କୁପରାମର୍ଶ ଦେବା—4. To give bad advice.
Śikshā debā
শিক্ষা দেওয়া शिक्षा देना

ଶିକ୍ଷା ନବିଶ(ଶୀ)—ଦେ. ବି (ସଂ. ଶିକ୍ଷା ଓ ଫା. ନବିଶ୍)—ଯେଉଁ ବ୍ୟକ୍ତି କୌଣସି ବିଷୟ ଶିକ୍ଷା କରିବା ପାଇଁ ଅଭିଜ୍ଞ ବ୍ୟକ୍ତିଙ୍କ ନିକଟରେ ବହୁଦିନ କାର୍ଯ୍ୟ କରେ—Apprentice; a tyro; a novice.
Śikshā nbiś(śi)
শিক্ষানবীস शिक्षानवीस

ଶିକ୍ଷା ପଦ—ସଂ. ବି—୧ । ଉପଦେଶ (ହ୍ରୁ. ଶ)—1. Advice. ୨ । ବୌଦ୍ଧ ଧର୍ମଗ୍ରନ୍ଥ ବିନୟପିଟକର ଏକ ପ୍ରକରଣ (ହ୍ରୁ. ଶ)—2. Name of a chapter of the Buddistic Scripture Binayapiṭaka. ୩ । ନୈତିକ ଉପଦେଶ—3. A moral precept. (M. W).
Śikshā pada

ଶିକ୍ଷା ପଦ୍ଧତି—ଦେ. ବି (୬ଷ୍ଠୀ ତତ୍)—ପାଠ ପଢ଼ିବାର ରୀତି—Mode of education.
Śikshā paddhati

ଶିକ୍ଷା ପରିଷଦ୍—ସଂ. ବି—୧। ଏକ ଋଷି ବା ଅଧ୍ୟାପକଙ୍କ ଅଧୀନ ଓ ତାଙ୍କ ନାମରେ ପ୍ରସିଦ୍ଧ ବୈଦିକକାଳର ବିଦ୍ୟାଳୟ (ହ୍ରୁ. ଶ)—1. An educational institution
Śikshā parishad

of the Bedic times under a sage or preceptor. ୨ । ଅଧୁନିକ ଶିକ୍ଷାର ବ୍ୟବସ୍ଥାକାରୀ ସଭା ବା ସମିତି—2. An association for the imparting or controlling of education.

**ଶିକ୍ଷା ପାଇବା**—ଦେ. କ୍ରି —୧ । ଅନ୍ୟ ବ୍ୟକ୍ତିଠାରୁ ଶିକ୍ଷାଲାଭ କରିବା—1. To learn a thing from another. ୨ । ଦଣ୍ଡ ପାଇବା—2. To suffer or undergo punishment. ୩ । ପରାମର୍ଶ ପାଇବା—3. To get advice.
Sikshā pāibā
শিক্ষা পাওয়া
शिक्षा पाना

**ଶିକ୍ଷା ପ୍ରଣାଳୀ**—ସଂ. ବି—ଶିକ୍ଷାପଦ୍ଧତି (ଦେଖ)
Sikshā prāṇāli Sikshāpaddhati. (See)

**ଶିକ୍ଷାପ୍ରଦ**—ସଂ. ବଣ (ଶିକ୍ଷା+ପ୍ର+ଦା ଧାତୁ+କର୍ତ୍ତୃ. ଅ)—ଯହିଁରୁ ଶିକ୍ଷାଲାଭ ହୁଏ—Educative; imparting education.
Sikshāprada
(ଶିକ୍ଷାପ୍ରଦା—ସ୍ତ୍ରୀ)

**ଶିକ୍ଷାପ୍ରାପ୍ତ**—ସଂ. ବଣ. ପୁଂ (୬ଷ୍ଠୀ ତତ୍)—୧ । ଶିକ୍ଷିତ—1. Educated. ୨ । କୌଣସି ବିଷୟରେ ତାଲିମ ହୋଇଥିବା—2. Trained.
Sikshā prāpta
(ଶିକ୍ଷାପ୍ରାପ୍ତା—ସ୍ତ୍ରୀ)

**ଶିକ୍ଷାବାନ୍**—ସଂ. ବଣ—୧ । (ପୁଂ) ବିଦ୍ୱାନ୍—1. Learned (M. W). ୨ । ଉପଦେଶପ୍ରଦ (ଗଳ୍ପ)—2. Instructive; full of instruction (as a tale) (M. W).
Sikshāban
(ଶିକ୍ଷାବତୀ—ସ୍ତ୍ରୀ)

**ଶିକ୍ଷା ବିଜ୍ଞାନ**—ସଂ ବି. (ଅଧୁନିକ ପ୍ରୟୋଗ)—ପାଠ ପଢ଼ାଇବାର ବା ଶିକ୍ଷା ଦେବାର ପଦ୍ଧତିମାନ ଯେଉଁ ଶାସ୍ତ୍ରରେ ଧାରାବାହିକରୂପେ ଆଲୋଚିତ ହୋଇଥାଏ—The science of teaching; the science dealing with the principles and skill which should be applied in the imparting of knowledge to learners.
Sikshā bijnāna

**ଶିକ୍ଷା ବିଭାଗ**—ସ. ବି (ଅଧୁନିକ ପ୍ରୟୋଗ; ଶିକ୍ଷା ବିଷୟକ ବିଭାଗ; ଷ. ତ. ଲୋ)—ଯେଉଁ ସରକାରୀ ବିଭାଗ ଉପରେ ସର୍ବସାଧାରଣ ଲୋକଙ୍କୁ ଶିକ୍ଷାଦେବା ଭାର ନ୍ୟସ୍ତ ଥାଏ—Education Department, the department of public instruction. [ଦ୍ର—ଇଂରେଜଶାସିତ ଭାରତରେ ଶିକ୍ଷାବିଭାଗରେ ଭିନ୍ନ ଭିନ୍ନ ପଦଧାରୀ କର୍ମଚାରୀ ଅଛନ୍ତି; ଯଥା—ଡାଇରେକ୍ଟର୍ ବା ଡିରେକ୍ଟର୍ (Director), ଇନ୍ସପେକ୍ଟର୍ (Inspector), ଡେପୁଟି ବା ଡିଷ୍ଟ୍ରିକ୍ଟ ଇନ୍ସପେକ୍ଟର୍ (District Inspector) ଓ ସବ୍ ଇନ୍ସପେକ୍ଟର୍ (Sub-inspector).
Sikshā bibhāga
শিক্ষাবিভাগ
शिक्षा विभाग

**ଶିକ୍ଷା ବିସ୍ତାର**—ସ. ବି (୬ଷ୍ଠୀ ତତ୍)—ବିଦ୍ୟାଚର୍ଚ୍ଚାର ପ୍ରସାର—Diffusion or spread of education.
Sikshā bistāra

**ଶିକ୍ଷା ଭଙ୍ଗ**—ସ. ବି (୬ଷ୍ଠୀ ତତ୍)—ପାଠ ପଢ଼ିବା ପୂର୍ଣ୍ଣ ନ ହେଉଣୁ ଅଧିଁରେ ଉପସ୍ଥିତ ହେବା ବାଧା—Interruption in study before it is finished.
Sikshā bhanga

**ଶିକ୍ଷାଭିଳାଷ**—ସ. ବି—ଶିକ୍ଷାକାଙ୍କ୍ଷା (ଦେଖ)
Sikshābhilāsha Sikshākānksha. (See)

**ଶିକ୍ଷାଭିଳାଷୀ**—ସ. ବଣ. ପୁଂ—ଶିକ୍ଷାକାଙ୍କ୍ଷୀ (ଦେଖ)
Sikshābhilāshi Sikshākānkshi. (See)
(ଶିକ୍ଷାଭିଳାଷିଣୀ—ସ୍ତ୍ରୀ)

**ଶିକ୍ଷା ମନ୍ଦିର**—ସ. ବି—ବିଦ୍ୟାଳୟ; ସ୍କୁଲ—School.
Sikshā mandira
( ଶିକ୍ଷାଗାର, ଶିକ୍ଷାଳୟ—ଅନ୍ୟରୂପ )

**ଶିକ୍ଷା ମିଳିବା**—ଦେ. ବି—୧ । ଶିକ୍ଷା ପ୍ରାପ୍ତ ହେବା—1. The receiving of learning. ୨ । ଦଣ୍ଡ ପାଇବା—2. The getting of a lesson.
Sikshā milibā
শিক্ষা হওয়া
शिक्षा मिलना

**ଶିକ୍ଷାରେ ପଡ଼ିବା**—ଦେ. କ୍ରି—ଅନ୍ୟର କୁପରାମର୍ଶ ଦ୍ୱାରା ପରିଚାଳିତ ହେବା—To be led or guided by another's bad advice.
Sikshare pardibā
কথায় পড়া
शिक्षामे पडना

**ଶିକ୍ଷାର୍ଥୀ**—ସ. ବଣ. ପୁଂ (ଶିକ୍ଷାର୍ଥିନ୍ ଶବ୍ଦ, ୧ମା. ୧ବ)—ପାଠ ପଢ଼ିବାକୁ ପ୍ରାର୍ଥୀ; ପାଠାର୍ଥୀ—Desirous of reading. ସ. ବି—୧ । ଛାତ୍ର—1. Pupil; student. ୨ । ଶିକ୍ଷା ନବିଶ—2. Apprentice; tyro.
Siksharthi
(ଶିକ୍ଷାର୍ଥିନୀ—ସ୍ତ୍ରୀ)

**ଶିକ୍ଷାର୍ହ**—ସ. ବଣ. ପୁଂ (ଶିକ୍ଷା+ଅର୍ହ ଧାତୁ+କର୍ତ୍ତୃ. ଅ)—ଯେ ଶିକ୍ଷା ପାଇବାର ଉପଯୁକ୍ତ—Deserving to be educated.
Siksharha
(ଶିକ୍ଷାର୍ହା—ସ୍ତ୍ରୀ)

**ଶିକ୍ଷା ଲଭ୍ୟ**—ସ. ବି (୩ୟା ତତ୍)—ଯାହା ଶିକ୍ଷାଦ୍ୱାରା ମିଳେ—Attainable through education.
Siksā labhya

**ଶିକ୍ଷା ଲାଭ**—ସ. ବି (୬ଷ୍ଠୀ ତତ)—ଜ୍ଞାନଲାଭ—Acquisition of knowledge.
Sikshā lābha

**ଶିକ୍ଷା ଶୁଳ୍କ**—ସ. ବି (ଅଧୁନିକ ପ୍ରୟୋଗ)—ଶିକ୍ଷାକର; ରାଜ୍ୟରେ ଶିକ୍ଷା ବିସ୍ତାର ପାଇଁ ପ୍ରଜାଙ୍କଠାରୁ ଆଦାୟ ହେବା ଟିକସ—Tax levied from tenants for spread of education.
Siksā sulka

**ଶିକ୍ଷା ସଂଘ**—ସଂ. ବି (ଅଧୁନିକ ପ୍ରୟୋଗ)—ଶିକ୍ଷା ବିଷୟକ ସଂଘ; ମ. ପ. ଲୋ )—(ଶିକ୍ଷା ସମ୍ବନ୍ଧେ ଆଲୋଚନା କରିବା ପାଇଁ ଆହୂତ ସଭା—Educational conference; Education committee; Council of Education.
Sikshā samgha
(ଶିକ୍ଷାସଭା, ଶିକ୍ଷାସମିତି—ଅନ୍ୟରୂପ)

**ଶିକ୍ଷା ସମାପ୍ତି**—ସଂ. ବି (୬ଷ୍ଠୀ ତତ୍)—ଶିକ୍ଷା ବିଷୟରେ ନିର୍ଦ୍ଦିଷ୍ଟ ସୀମାରେ ପହଞ୍ଚିଥିବା ଅବସ୍ଥା—Completion of an educational course.
Siksh āsamāpti

**ଶିକ୍ଷା ସାଙ୍ଗ କରିବା**—ଦେ. କ୍ରି—୧ । କୌଣସି ବିଷୟରେ ଶିକ୍ଷା କରିବା ପାଇଁ ନିର୍ଦ୍ଦିଷ୍ଟ ପନ୍ଥାର ଶେଷ ପର୍ଯ୍ୟନ୍ତ ଯିବା—1. To finish one's educa-
Sikshā sānga karibā
শিক্ষা সাঙ্গ করা

शिक्षा सांग करना education. ୨ । ପାଠ ପଢ଼ା ଶେଷ କରି ବିଦ୍ୟାଳୟ ତ୍ୟାଗ କରିବା; ପାଶ୍ କରିବା—2. To pass the prescribed final examination in a school or college.

**ଶିକ୍ଷା ସୋପାନ**—ସଂ. ବି.—(୬ଷ୍ଠୀ ତତ୍)—ଶିକ୍ଷାକ୍ରମ (ଦେଖ)
Śikshā sopāna Śikshākrama (See)

**ଶିକ୍ଷା ହୀନ**—ସଂ ବିଣ. ପୁଂ—(ଵଞ୍ଚୀତତ୍)—ଅଶିକ୍ଷିତ
Śikshā hina Uneducated; illiterate.
(ଶିକ୍ଷାବିହୀନ—ଅନ୍ୟରୂପ) (ଶିକ୍ଷାହୀନା, ଶିକ୍ଷାବିହୀନା—ସ୍ତ୍ରୀ)

**ଶିକ୍ଷି** (ଧାତୁ)—ସଂ (ଶିକ୍ଷ୍ ଧାତୁର ଣିଜନ୍ତ ରୂପ)—୧ । ଶିକ୍ଷା ଦେବା;
Śikshi (root) ଶିଖାଇବା—1. To teach; to cause to learn. ୨ । ତାଲିମ କରିବା—2. To train. ୩ । ଅଧ୍ୟାପନା କରିବା—3. To impart knowledge. ୪ । ଉପଦେଶ ଦେବା—4. To advise; to instruct.

**ଶିକ୍ଷିତ**—ସଂ.ବିଣ.ପୁଂ (ଶିକ୍ଷା+ଇତ)—୧। ଶିକ୍ଷାପ୍ରାପ୍ତ—1. Educa-
Śikshita ted. ୨ । କୌଣସି ବିଷୟରେ ତାଲିମ ହୋଇଥିବା-
(ଶିକ୍ଷିତା—ସ୍ତ୍ରୀ) 2. Trained. ୩ । ବିଦ୍ୱାନ୍; କୃତବିଦ୍ୟ—
(ଅଶିକ୍ଷିତ—ବିପରୀତ) 3. Learned. ୪ । ଦକ୍ଷ; ନିପୁଣ; ଚତୁର 4. Expert; skilful; clever (M.W). ୫ । ଉପଦିଷ୍ଟ—5. Instructed; tutored. ୬ । ବଶ୍ୟ; ବିନୀତ—6. Gentle; mild; docile. ୭। ଅଭ୍ୟସ୍ତ—7. Practised (M. W) ୮ । ଶିଖା ଯାଇଥିବା, ଅଧୀତ—8. Learnt; studied.

**ଶିକ୍ଷିତ ସମାଜ**—ସଂ. ବି (ଅଧୁନିକ ବ୍ୟବହାର)—କୃତବିଦ୍ୟ ବ୍ୟକ୍ତିସମୂହ;
Śikshita samāja ପଣ୍ଡିତସମୂହ—Educated society, (ଶିକ୍ଷିତସମ୍ପ୍ରଦାୟ—ଅନ୍ୟରୂପ) the educated people.

**ଶିକ୍ଷିତାକ୍ଷର**—ସଂ. ବିଣ. ପୁଂ (ବହୁବ୍ରୀହି)—ଶିକ୍ଷିତ; ବିଦ୍ୱାନ୍ (ହି.ଶ)—
Śikshitākshara Educated; learned.
(ଶିକ୍ଷିତାକ୍ଷରା—ସ୍ତ୍ରୀ) ସଂ. ବି—ଶିକ୍ଷାକାରୀ ଛାତ୍ର (ଶବ୍ଦକୋଷ)—Pupil student.

**ଶିକ୍ଷିତୁକାମ**—ସଂ.ବିଣ ପୁଂ(ଶିକ୍ଷିତୁମ୍+କାମ; ତୁଲ. ଗନ୍ତୁକାମ)—ଶିକ୍ଷା
Śikshitukāma କରିବାକୁ ଇଚ୍ଛୁକ—Willing to learn
[ଶିକ୍ଷିତୁକାମା—ସ୍ତ୍ରୀ] (M. W). ସଂ. ବି. ପୁଂ—କୌଣସି ବିଦ୍ୟାକୁ ପ୍ରଥମେ ଶିଖୁଥିବା ବ୍ୟକ୍ତି—A biginner in his art (M.W).

**ଶିକ୍ଷ୍ୟ**—ସଂ. ବିଣ (ଶିକ୍ଷ ଧାତୁ+କର୍ମ.ଯ)—ଶିକ୍ଷଣୀୟ—
Śikshya Fit to be learnt or taught (M. W)

**ଶିଖ୍(ଖ)**—ଦେ.ବି (ସଂ.ଶିଷ୍ୟ ଏମାନେ ଜଣେ ଧର୍ମଗୁରୁଙ୍କ ଶିଷ୍ୟ ଥିବାରୁ;
Śikh(kha) ଅଥବା ସଂ. ଶିଖା, ଏମାନଙ୍କ ମୁଣ୍ଡରେ ଶିଖା ବା ଲମ୍ବ
शिख सिख କେଶଗୁଚ୍ଛ ଥିବାରୁ)—ଉତ୍ତର ପଶ୍ଚିମାଞ୍ଚଳର ଧର୍ମ ସମ୍ପ୍ରଦାୟବିଶେଷ—The Sikhs. [ଦ୍ର—ଏ ଧର୍ମପ୍ରତିଷ୍ଠାତା ନାନକ ଖ୍ରୀ. ୧୪୬୯ ଠାରୁ ୧୫୩୯ ପର୍ଯ୍ୟନ୍ତ ଜୀବିତ ଥିଲେ । ଶିଖମାନଙ୍କ ଧର୍ମଗ୍ରନ୍ଥ 'ଗ୍ରନ୍ଥ ସାହେବ'ରେ ନାନକ, କବୀର ଓ ରାମାନନ୍ଦଙ୍କ ଉପଦେଶତତ୍ତ୍ୱ ସଂଗୃହୀତ ହୋଇ ଅଛି । ଏ ଗ୍ରନ୍ଥର ଯେଉଁ ଅଂଶରେ ନାନକଙ୍କ ଉପଦେଶ ମାନ ଅଛି ତାକୁ ଜପଜୀ ବୋଲାଯାଏ । ନାନକ ଜାତିଭେଦ ସ୍ୱୀକାର କରୁ ନ ଥିଲେ । ସେ ଏକେଶ୍ୱରବାଦୀ ଥିଲେ । ସେ ହିନ୍ଦୁ ଓ ମୁସଲମାନମାନଙ୍କୁ ଏକ ଧର୍ମ ପନ୍ଥାରେ ମିଳାଇବାକୁ ଚେଷ୍ଟା କରିଥିଲେ । ଲୋକଙ୍କ ହିତକର କର୍ମ କରିବାକୁ ସେ ଉପଦେଶ ଦେଉଥିଲେ । ତାଙ୍କ ଶିଷ୍ୟମାନଙ୍କୁ ଶିଖ କୁହାଯାଉଥିଲା । ଶିଖସମ୍ପ୍ରଦାୟରେ ପ୍ରତିମାପୂଜା, କପଟାଚାର, ସତୀଦାହ, ଅବରୋଧ ପ୍ରଥା, ମଦ୍ୟାଦି ମାଦକଦ୍ରବ୍ୟ ସେବନ, ଧୂମ୍ରପାନ, ବାଳବଧ, ଅପବାଦ, ତୀର୍ଥଯାତ୍ରା ନିଷିଦ୍ଧ । ରାଜଭକ୍ତି, କୃତଜ୍ଞତା, ସତ୍ୟ, ସଦ୍‌ଗୁଣ, ଲୋକୋପକାର, ନୈତିକଜୀବନ, ପବିତ୍ର ଗାର୍ହସ୍ଥ୍ୟଜୀବନ ଯାପନ କରିବା ଏ ସମ୍ପ୍ରଦାୟପନ୍ଥୀମାନଙ୍କ କର୍ତ୍ତବ୍ୟ । ନାନକ ନିଜ ପୁଅକୁ ତାଙ୍କ ଅନ୍ତେ ଗୁରୁରୂପେ ମନୋନୀତ ନ କରି ତାଙ୍କ ଶିଷ୍ୟ ଲେହଣାଙ୍କୁ ଅଙ୍ଗଦ ନାମ ଦେଇ ମନୋନୀତ କଲେ । ନାନକଙ୍କ ଶିଷ୍ୟ ପ୍ରଶିଷ୍ୟ ଓ ପୁତ୍ରପୌତ୍ରାଦିକ୍ରମେ ଶିଖମାନଙ୍କର ନାନକଙ୍କୁ ମିଶାଇ ୧୦ ଜଣ ଧର୍ମଗୁରୁ ହୋଇଥିଲେ । ୩ୟ ଗୁରୁ ଅମର ଦାସ । ୪ର୍ଥ ଗୁରୁ ରାମ ଦାସ ପ୍ରାଚୀନ ରାମଦାସପୁରକୁ ଅମୃତସହର ନାମ ଦେଇ ଶିଖମାନଙ୍କ ପବିତ୍ର ସ୍ଥାନ ପ୍ରତିଷ୍ଠିତ କଲେ । ରାମ ଦାସଙ୍କ ପୁତ୍ର ଅର୍ଜୁନ (୫ମ ଗୁରୁ)(ଖ୍ରୀ ୧୫୮୧—୧୬୦୬) 'ଗ୍ରନ୍ଥ ସାହେବ'କୁ ସଙ୍କଳନ କଲେ ଏବଂ ଗୁରୁଙ୍କ ପୁତ୍ର ପୌତ୍ରାଦିକ୍ରମେ ଗୁରୁ ହେବେ ବୋଲି ବିଧାନ କଲେ । ସେ ଅମୃତସହରରେ ହରମନ୍ଦିର ବା ଦରବାର ସାହେବ ନାମକ ଗୋଟିଏ ସ୍ୱର୍ଣ୍ଣମଣ୍ଡିତ ମନ୍ଦିର ନିର୍ମାଣ କଲେ । ଏହାଙ୍କ ପରେ ୬ଷ୍ଠ ଗୁରୁ ହରଗୋବିନ୍ଦ (ଖ୍ରୀ ୧୬୦୬—୧୬୪୫)ଙ୍କ ଅମଳରେ ଶିଖମାନଙ୍କ ମଧ୍ୟରେ ଆଡ଼ମ୍ବର ଓ ଯୁଦ୍ଧ ପ୍ରବୃତ୍ତି ପଶିଲା । ମୋଗଲ ସମ୍ରାଟ ଜାହାଙ୍ଗୀର ତାଙ୍କୁ ଗୋଆଲିଅର ଦୁର୍ଗରେ ବନ୍ଦୀ କଲେ । ତାଙ୍କ ପରେ ୭ମ ଗୁରୁ ହର ରାଏ, ୮ମ ହରିକିଷନ ଓ ୯ମ ଗୁରୁ ତେଗବାହାଦୁର ଗୁରୁ ହେଲେ । ତେଗବାହାଦୁରଙ୍କୁ ଆରଙ୍ଗଜେବ୍ ଖ୍ରୀ ୧୬୭୫ ରେ ହତ୍ୟା କଲେ । ତାଙ୍କ ପୁତ୍ର ୧୦ମ ଗୁରୁ ଗୋବିନ୍ଦ ସିଂହ ପିତାଙ୍କ ହତ୍ୟାର ପ୍ରତିଶୋଧ ନେବାପାଇଁ ଶିଖମାନଙ୍କୁ ଅସ୍ତ୍ର ଶସ୍ତ୍ର ସଜ୍ଜିତ କରି ଖାଲସା (ଈଶ୍ୱରଙ୍କ ସମ୍ପତ୍ତି) ନାମ ଦେଇ ଶିଖଦଳକୁ ଯୁଦ୍ଧବିଦ୍ୟା ଶିକ୍ଷା ଦେଲେ । କୃପାଣରେ ମନ୍ଥିତ ହୋଇଥିବା ଜଳ (ପାହୁଲ)କୁ ପିଇ ଲୋକେ ଶିଖ ଧର୍ମରେ ଦୀକ୍ଷିତ ହେବାର ବିଧି ହେଲା । ଶିଖଧର୍ମ ଗ୍ରହଣ କଲେ ଜାତ୍ୟନାଶ, କୁଳନାଶ, ଧର୍ମନାଶ ଓ କର୍ମନାଶ ହେଲା ବୋଲି ବିବେଚିତ ହେଲା । ପ୍ରତ୍ୟେକ ଶିଖ 'କ' ଅକ୍ଷରାଦ୍ୟ ୪ଟି ବସ୍ତୁ ବ୍ୟବହାର କରନ୍ତି । ୧ । କେଶ (କେଶ ଓ ଶ୍ମଶ୍ରୁ ରକ୍ଷା) । ୨ । କଡ଼ା (ହାତରେ ଲୁହା ଖଡ଼ୁ ପିନ୍ଧିବା) । ୩ । କୃପାଣ (କଟିପାଖ ଦାଢ଼ଥିବା ଖଣ୍ଡା ଧାରଣ) ଓ ୪ । କଙ୍ଗେଇ (କେଶରେ ପାନିଆ

ଶୋଷିବା) । ଏ ସମ୍ପ୍ରଦାୟ ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ଏକତା ସ୍ଥାପନ କରିବାପାଇଁ ପ୍ରତିଷ୍ଠାତାଙ୍କଦ୍ୱାରା ଅଭିପ୍ରେତ ହୋଇଥିଲେହେଁ ଏହା ଘଟନାକ୍ରମେ ମୋଗଲସାମ୍ରାଜ୍ୟର ଘୋର ବିରୋଧୀ ଓ ଶତ୍ରୁ ହେଲା । ଗୁରୁଗୋବିନ୍ଦଙ୍କ ପରେ ମୋଗଲସାମ୍ରାଜ୍ୟର ପତନ ସଙ୍ଗେ ଶିଖମାନଙ୍କର ଅଭ୍ୟୁଦୟ ହେଲା ଓ ଶିଖମାନେ ବାରମ୍ବାର ମୋଗଲମାନଙ୍କୁ ପରାସ୍ତ କରି ଉତ୍ତର ପଶ୍ଚିମ ଭାରତ (ପଞ୍ଜାବ)ରେ ପ୍ରବଳ ଶିଖରାଜ୍ୟ ସ୍ଥାପନ କରିଥିଲେ । ଏମାନଙ୍କର ବିଖ୍ୟାତ ରାଜା ରଣଜିତ୍ ସିଂହ (ରାଜତ୍ୱ ଖ୍ରୀ. ୧୮୦୦—୧୮୩୯)ଙ୍କ ଅମଳରେ ଶିଖ ରାଜ୍ୟ ବିଶେଷ ଉନ୍ନତ କରିଥିଲା । ତତ୍ପରେ ଶିଖମାନଙ୍କ ସଙ୍ଗେ ଇଂରାଜଙ୍କର ପ୍ରଥମେ ଖ୍ରୀ ୧୮୪୫ରେ ତତ୍ପରେ ୧୮୪୮ ରେ ଯୁଦ୍ଧ ହୋଇଥିଲା । ଶିଖମାନେ ପରାଜିତ ହେଲେ ଓ ଇଂରାଜମାନେ କେତେଗୁଡ଼ିଏ ଶିଖ ରାଜ୍ୟ ହସ୍ତଗତ କରି ପଞ୍ଜାବ ପ୍ରଦେଶକୁ ଇଂରାଜଶାସନଭୁକ୍ତ କଲେ । ଶିଖମାନେ ଇଂରାଜଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ କରି ଇଂରାଜମାନଙ୍କ ଅଧୀନତାରେ ପଲ୍ଟଣ ହେଲେ । ଭାରତୀୟ ସୈନ୍ୟମାନଙ୍କ ମଧ୍ୟରେ ସେମାନେ ଖୁବ୍ ବୀର ଓ ଇଂରାଜଭକ୍ତ ସେନା ଅଟନ୍ତି । ରଣଜିତ୍ ସିଂହଙ୍କ ବଂଶଧରମାନେ ଇଂରାଜ ସରକାରଙ୍କଠାରୁ ବୃତ୍ତି ପାଆନ୍ତି । ବର୍ତ୍ତମାନ ମଧ୍ୟ ପଞ୍ଜାବରେ ନାଭା, ପାତିଆଲା ଆଦି ରାଜ୍ୟରେ ଶିଖ୍ରାଜାମାନଙ୍କ ବଂଶଧରମାନେ ଭାରତସମ୍ରାଟଙ୍କ ମିତ୍ରରାଜାରୂପେ ରାଜତ୍ୱ କରୁଅଛନ୍ତି । ଶିଖ୍ ସୈନ୍ୟମାନେ ବିଗତ ଇଉରୋପୀୟ ମହାଯୁଦ୍ଧରେ ଇଉରୋପର ରଣକ୍ଷେତ୍ରରେ ଅସୀମ ସାହସ ସହକାରେ ଇଂରାଜମାନଙ୍କ ପକ୍ଷରେ ଯୁଦ୍ଧ କରି ସଭ୍ୟଜଗତକୁ ଚମତ୍କୃତ କରି ଅଛନ୍ତି । ଏମାନଙ୍କର ଉପାସନା ମନ୍ଦିରକୁ ଗୁରୁଦ୍ୱାର ବୋଲାଯାଏ । ଅମୃତସହରରେ ଏମାନଙ୍କର ଗୁରୁଦ୍ୱାର ମନ୍ଦିର ସ୍ୱର୍ଣ୍ଣମଣ୍ଡିତ । ଏବେ ଗୁରୁଦ୍ୱାରରେ ଉପାସନା କରିବା ସମ୍ବନ୍ଧେ କେତେକ କଡ଼ା ଆଇନ୍ ହେବାରୁ ସେମାନେ ଧର୍ମ ସାଧନ ସମ୍ବନ୍ଧେ ନିଜର ସ୍ୱାଧୀନତା ଅକ୍ଷୁଣ୍ଣ ରଖିବା ପାଇଁ ଅମ୍ଳାନ ବଦନରେ ସମସ୍ତ କ୍ଳେଶ, ଦଣ୍ଡ ଓ କାରାବାସ ସହ୍ୟକରି ସଭ୍ୟ ଜଗତକୁ ସ୍ତମ୍ଭିତ କରି ଅଛନ୍ତି ଓ ଅବଶେଷରେ ଇଂରାଜ ଗଭର୍ଣ୍ଣମେଣ୍ଟ ଆଇନ୍ ପ୍ରଣୟନ କରି ଶିଖମାନଙ୍କୁ ଧର୍ମସାଧନ ସମ୍ବନ୍ଧେ ପୂର୍ଣ୍ଣ ସ୍ୱାଧୀନତା ଦେଇ ଅଛନ୍ତି । ଶିଖ ସମ୍ରାଟ ରଣଜିତ୍ ସିଂହଙ୍କ ନାମ ବଳୟରେ ଉଇଗନ୍ଧ୍ୟା ପ୍ରାପ୍ତ ହୋଇ ପୃଥିବୀରେ ଅଦ୍ୱିତୀୟ କିବେତ୍ କୋହିନୁର ରୂପେ ପରିଚିତ ହୋଇଥିଲେ । ନାନକ ତଳେ ଟୀକା ( ଦେଖ ) ପାଠ୍ୟପୁସ୍ତକ ଭାରତ ଇତିହାସରୁ ସଂଗୃହୀତ । ]

**ଶିଖ୍(ଖ) ଗୁରୁ**—ଦେ. ବି—ଶିଖ୍ ସମ୍ପ୍ରଦାୟର ଧର୍ମଗୁରୁ—The successive religious heads of the Sikhs.
Sikh(kha) guru
শিখগুরু सिक्खगुरू
[ ଦ୍ର—ନାନକଙ୍କୁ ମିଶାଇ ସଂଖ୍ୟାରେ ସେମାନେ ଦଶ ଜଣ, ଯଥା,—ନାନକ, ଅଙ୍ଗଦ, ଅମରଦାସ, ରାମଦାସ, ଅର୍ଜୁନ, ହରଗୋବିନ୍ଦ, ହରରାଓ ହରକିଷନ୍; ତେଗବାହାଦୁର, ଗୁରୁଗୋବିନ୍ଦ) (ବିଶ୍ୱକୋଷ)

**ଶିଖ୍(ଧାତୁ)**—ସଂ—ଯିବା—(ଶବ୍ଦକୋଷ—)
Sikh (root) To go.

**ଶିଖ୍(ଖ)ସମର (ଯୁଦ୍ଧ)**—ଦେ. ବି—ଶିଖମାନଙ୍କ ସଙ୍ଗେ ଇଂରାଜଙ୍କର ୧୮୪୫ ଓ ୧୮୪୮ ସାଲରେ ଘଟିଥିବା ଯୁଦ୍ଧ (ଶିଖ ତଳେ ନୋଟ ଦେଖ)—The wars of the British with the Sikhs in 1845 and 1848 A. D in India.
Sikh(kha) samara(juddha)

**ଶିଖ**—ଦେ. ବି—(ସଂ. ଶିଖର)—୧ । ଶିଖର; ଅଗ୍ରଭାଗ—1. Head top. ୨ । ଗିରି ଶିଖର; ପର୍ବତର ଅଗ୍ରଭାଗ—2. The top or summit of a mountain. ୩ । ଉଚ୍ଚତା—3. Height. (ଯଥା—ଏଗଛଟି ଶିଖରେ ବଢି ଯାଉଅଛି ।)—୪। ଶିଖ୍ (ଦେଖ)—4. Sikh (See) ବିଣ—୧ । ଶ୍ରେଷ୍ଠ; ପ୍ରଧାନ—1. Chief. (ଉ—ସଞ୍ଜୟ କହିଲେ ହେ ନୃପକୁଳ ଶିଖ । କୃଷ୍ଣସିଂହ. ମହାଭାରତ. ବନ ।) ୨ । ଉଚ୍ଚ—2. High. ସଂ. ବିଣ ପୁଂ—( ସମାସରେ ଶିଖା ଶବ୍ଦ ଅନ୍ୟ ସଙ୍ଗେ ଯୁକ୍ତ ହୋଇ ଅକାରାନ୍ତ 'ଶିଖ' ହୁଏ ।)—ଶିଖାଯୁକ୍ତ (ଯଥା —ଲୂନଶିଖ,ପଞ୍ଚଶିଖ,ଦ୍ୱିଶିଖ) —(In compound words) Having Sikha.
Sikha
শিখর शिखा
লংবা शिखा
শিখ शाख
শিখৰ शिखर

**ଶିଖକ**—ସଂ. ବି—ଲେଖକ; ମୋହୋରର (ହ. ଶ)—Writer; scribe.
Sikhaka

**ଶିଖଣ୍ଡ**—ସଂ. ବି (ଶିଖିନ୍—ମୟୂର+ଗମ ଧାତୁ—ଗମନ କରିବା+କର୍ତ୍ତୃ ଅ) ୧ । ମୟୂର ପୁଚ୍ଛ—1. The tail of a peacock. ୨ । ଶ୍ରୀକୃଷ୍ଣଙ୍କ ମୁକୁଟରେ ଶୋଭାର୍ଥ ଖଞ୍ଜା ଯାଇଥିବା ମୟୂର ଚନ୍ଦ୍ରକା—2. Tail of a peacock attached to the crown of Srikrushna. ୩। କାକପୁଚ୍ଛ; ଜୁଲୁପି; କରୁଣିବାଳ—3. Locks of short flowing hair left above the cheeks. ୪ । ଶିଖା; ଚୂଡ଼ା; ମସ୍ତକର ଏକ ଦେଶରେ ବର୍ଦ୍ଧିତ ଲମ୍ବ କେଶ ଗୁଚ୍ଛ—4. Pigtail or a long tuft of hair left on a part of the head.
Sikhanda
(ଶିଖଣ୍ଡକ—ଅନ୍ୟରୂପ)

**ଶିଖଣ୍ଡିକ**—ସଂ. ବି. (ଶିଖଣ୍ଡ+ଇକ) —୧। କୁକ୍କୁଟ; କୁକୁଡ଼ା—1. A cock. ୨ । ଶିଖା; ଚୂଡ଼ା—2. Tuft of hair left on the crown after the tonsure ceremony of a Hindu boy. ୩ । ଶିଖଣ୍ଡ (ଦେଖ)—3. Sikhanda (See) ୪ । ଏକ ପ୍ରକାର ରତ୍ନ ( ହ. ଶ ) 4. A kind of gem.
Sikhandika

**ଶିଖଣ୍ଡିକା**—ସଂ.ବି ସ୍ତ୍ରୀ—୧ । କୁକ୍କୁଟୀ—1. A hen. ୨ । ଶିଖା—2. Pigtail.
Sikhandika

**ଶିଖଣ୍ଡିନୀ**—ସଂ. ବିଣ. ସ୍ତ୍ରୀ—ଶିଖା ଧାରିଣୀ—Having a pigtail on the head. ବି.—୧। ଦ୍ରୁପଦ ରାଜାଙ୍କର ପୁରୁଷ ବେଶଧାରୀ କନ୍ୟା ଶିଖଣ୍ଡୀ—1. The daughter of
Sikhandini

king Drupada attired like a male. ୨। ମୟୂରୀ—2. Pea-hen. ୩। କୁକ୍କୁଟୀ—3. Hen. ୪। ମଲ୍ଲିକା ବିଶେଷ—4. A species of jasmine. ୫। ଯୂଥିକା (ହି. ଶ)—5. Jasminum Auriculatum ୬। ଗୁଞ୍ଜା (ହି. ଶ)—6 Abrus Practorius ୭। କାଶ୍ୟପ ପୁତ୍ରୀ ଦୁଇ ଜଣ ଅପ୍ସରା (ସେ ଋଗ୍‌ବେଦର ଏକ ମନ୍ତ୍ରର ଦ୍ରଷ୍ଟ୍ରୀ ଥିଲେ (ହି. ଶ)—7 Names of two daughters of sage Kāsyapa.

**ଶିଖଣ୍ଡୀ**—ସ. ବିଣ. ପୁଂ (ଶିଖଣ୍ଡ+ଅସ୍ତି ଯାହାର ଅର୍ଥରେ ଇନ୍ ୧ମା. ୧ବ)—୧। ଶିଖାଯୁକ୍ତ—1. Having a tuft of hair left on the temple.
**Śikhaṇḍī**
(ଶିଖଣ୍ଡିନୀ—ସ୍ତ୍ରୀ)

ବି—୧। ବିଷ୍ଣୁ—1 Bishṇu. ୨। ଗୁଞ୍ଜା; କାଇଁଚ—2 A creeper and its black-tipped red seed; Abrus Precatorius. ୩। ମୟୂର—3. Peacock. ୪। ଓଢ଼ଣା; ସ୍ତ୍ରୀମାନେ ଶାଢ଼ୀ ଉପରେ ପକାଇବା ପାଟର ଉପବସ୍ତ୍ର—4. A silken sheet put on the wearing cloth of females ୫। କୁକ୍କୁଟ—5. Cock. ୬। ଶର; ବାଣ—6. Arrow; dart. ୭। ସ୍ୱର୍ଣ୍ଣଯୂଥିକା; ହଳଦିଆ ଯାଇ— 7. The yellow single-petalled Jasminum Auriculatum ୮। ମୟୂର ପୁଚ୍ଛ (ହି. ଶ)—8. Peacock tail. ୯। ଶିବ [ହି. ଶ]—9. Śiba. ୧୦। ଶିଖା (ହି. ଶ)—10 Pigtail. ୧୧। ଦ୍ରୁପଦ ରାଜାଙ୍କ ପୁତ୍ର—11. Name of the son of king Drupada. [ଦ୍ର—ଏ ପୂର୍ବ ଜନ୍ମରେ କାଶୀରାଜଙ୍କ ଦୁହିତା 'ଅମ୍ବା' ଥିଲେ। ଏହାଙ୍କୁ ଭୀଷ୍ମ ବରଣ କରି ବିବାହ ନ କରିବାରୁ ଏ ପରଜନ୍ମରେ ଭୀଷ୍ମଙ୍କର ମରଣର କାରଣ ହେବା ପାଇଁ ସଙ୍କଳ୍ପ କରି କ୍ଲୀବ ରୂପେ ଜନ୍ମି ଥିଲେ। ଏ ପ୍ରକାଶ୍ୟ ଭାବରେ ପୁରୁଷ ବେଶଧାରୀ ଥିଲେ ଓ ଦଶାର୍ଣ୍ଣ ଦେଶର ରାଜକୁମାରୀଙ୍କ ସଙ୍ଗେ ବିବାହିତ ହୋଇଥିଲେ। ରାଜକୁମାରୀଙ୍କ ପିତା ଏହାଙ୍କର କ୍ଲୀବତ୍ୱ ଜାଣି ପାରି ଏହାଙ୍କ ବିରୁଦ୍ଧରେ ଯୁଦ୍ଧ ଯାତ୍ରା କରିବାରୁ ଏ ପଳାଇ ଯାଇ ଅରଣ୍ୟରେ ଆଶ୍ରୟ ନେଲେ। ସେଠାରେ ସ୍ଥୂଳକର୍ଣ୍ଣ ନାମକ ଜଣେ ଯକ୍ଷ ଏହାଙ୍କ ଠାରେ ଦୟା ବହି ଏହାଙ୍କ କ୍ଲୀବତ୍ୱକୁ ଗ୍ରହଣ କରି ନିଜର ପୁରୁଷତ୍ୱ ଏହାଙ୍କୁ ଅର୍ପଣ କରିବାରୁ ଏ ନିଜ ରାଜ୍ୟକୁ ଫେରି ଆସି ପୁରୁଷରୂପେ ସଂସାର ଧର୍ମ ପାଳନ କଲେ। ଏ ଦ୍ରୋଣଙ୍କ ଠାରୁ ଧନୁର୍ବେଦ ଶିକ୍ଷା କରିଥିଲେ। କୁରୁକ୍ଷେତ୍ରର ଏ ପାଣ୍ଡବ ପକ୍ଷୀୟ ଥିଲେ। ଏ ନପୁଂସକ ବୋଲି ଭୀଷ୍ମ ଏହାଙ୍କ ଉପରେ ଶର ନିକ୍ଷେପ କରିବାକୁ କୁଣ୍ଠିତ ହେଉଥିଲେ। ଏଥିପାଇଁ ଯୁଦ୍ଧର ଦଶମ ଦିନ ଅର୍ଜ୍ଜୁନ ଏହାଙ୍କୁ ଆଗଙ୍କାର ଆଗରେ ରଖି ଭୀଷ୍ମଙ୍କ ସଙ୍ଗେ ଯୁଦ୍ଧ କଲେ ଓ ଭୀଷ୍ମ ଶିଖଣ୍ଡୀଙ୍କୁ ଦେଖି ଅର୍ଜ୍ଜୁନଙ୍କ ଆଡ଼କୁ ଶର ମାରଲେ ନାହିଁ ଓ ଅର୍ଜ୍ଜୁନ ଏହି ସୁଯୋଗ ଦେଖି ଭୀଷ୍ମଙ୍କୁ ନିହତ କଲେ। ଯୁଦ୍ଧ ଶେଷରେ ଅଶ୍ୱତ୍ଥାମାଙ୍କ କର୍ତ୍ତୃକ ନୈଶ ହତ୍ୟା କାଣ୍ଡରେ ଏ ହତ ହେଲେ।] ୧୨। (ନାମ) ରାମଚନ୍ଦ୍ରଙ୍କ କପିସେନାର ଏକ ମାକଡ଼ (ହି. ଶ)—12. Name of a monkey of Rāmachandra's monkey-army. ୧୩। ବୃହସ୍ପତି (ହି. ଶ.)—13. Bṛuhaspati.

**ଶିଖର**—ସଂ ବି (ଶିଖା=ଚୂଡ଼ା+ଅସ୍ତି ଅର୍ଥରେ ର)—୧। ପର୍ବତ ଶୃଙ୍ଗ—1. Mountain summit. ୨। ବୃକ୍ଷାଗ୍ର—2. Tree-top. ୩। ଖଡ୍ଗର ଅଗ ବା ମୁନ—3. The point of a sword. ୪। ଅଗ୍ରଭାଗ—4. Top. ୫। ପକ୍ୱ ଡାଳିମ୍ବ ବୀଜ ସଦୃଶ ବର୍ଣ୍ଣ ବିଶିଷ୍ଟ ରତ୍ନ ବିଶେଷ—5. A species of garnet of the colour of ripe pomegranate seeds. ୬। ରୋମାଞ୍ଚ; ପୁଲକ—6. Horripilation; the standing of the hairs of the body on their ends. ୭। କକ୍ଷ; କୋଠରି—7 A room; compartment. ୮। ଶୁଷ୍କତୃଣ—8. Hay; dry grass. ୯। ମନ୍ଦିରର ଗୋଲକଯୁକ୍ତ ଚୂଡ଼ା (ହି. ଶ)—9. The spire of a temple. ୧୦। ଗୁମ୍ବଜ (ହି. ଶ)—10. Dome. ୧୧। ଅସ୍ତ୍ର ବିଶେଷ (ହି. ଶ)—11. A kind of weapon. ୧୨। କୁନ୍ଦକଳିକା (ହି. ଶ)—12. Bud of Kunda flower. ୧୩। ଲବଙ୍ଗ (ହି. ଶ)—13. Clove. ୧୪। କାଖ (ହି. ଶ)—14. Flank. ୧୫। ତାନ୍ତ୍ରିକ ମୁଦ୍ରା ବିଶେଷ (ହି. ଶ)—15. A pose of the fingers. ସଂ ବିଣ—ଶ୍ରେଷ୍ଠ—Chief. [ଉ—ସଭାକୁ ଆସି ପୁଣି ସେ ନୃପଶେଖର—କୃଷ୍ଣସିଂହ. ମହାଭାରତ. ବନ।] ଦେ. ବି. ପୁଂ—ଚନ୍ଦ୍ରଶିଖରର ଡାକ ନାମ—Name for calling Chandra-śikhara.
**Śikhara**
চন্দ্র শেখর

**ଶିଖର ଦାସ**—ଦେ. ବି (ନାମ)—ନୀଳସୁନ୍ଦରଗୀତାର ପ୍ରଣେତା ଖ୍ରୀଷ୍ଟୀୟ ୧୭ଶ ଶତାବ୍ଦୀର ଜଣେକ ଓଡ଼ିଆ କବି—An Oriya poet of the 17th century A. D. author of Nīlasundaragitā.
**Śikhara dāsa**

**ଶିଖରଣି**—ଦେ. ବି (ସଂ. ଶିଖରଣୀ)—ଶିଖରଣୀ (୩) (ଦେଖ)—Śikhariṇī (3) (See)
**Śikharaṇi**
शिखरनी शिखरनी, शिखरन्

**ଶିଖର ଦଶନା**—ସ. ବିଣ. ସ୍ତ୍ରୀ (ଶିଖର ପରି ଦଶନ ଯାହାର)—୧। ପକ୍ୱ ଦାଡ଼ିମ୍ବ ବୀଜବତ୍ ବା କୁନ୍ଦ କଳିକାବତ୍ ଦନ୍ତ ବିଶିଷ୍ଟା (ସ୍ତ୍ରୀ)—(A woman) Having the teeth as beautiful as garnets. ୨। ଦୃଢ଼ାଗ୍ର ଭାଗ ବିଶିଷ୍ଟ ଦନ୍ତଯୁକ୍ତା (ସ୍ତ୍ରୀ)—2. (A woman)
**Śikhara daśanā**

Having pointed teeth. [ ଦ୍ର—ସାମୁଦ୍ରିକ ମତରେ ଯେଉଁ ସ୍ତ୍ରୀର ଦନ୍ତ ସୂକ୍ଷ୍ମାଗ୍ର ହୋଇଥାଏ ସେ ସ୍ୱାମି-
(ଶିଖରଦଶନ—ପୁଂ) ସୌଭାଗ୍ୟବତୀ ହୁଏ—ପ୍ରକୃତିବାଦ)

**ଶିଖର ପଟ୍ଟିକା**—ସଂ. ବି—ଶାକର ପଟା (ଦେଖ)—
Sikhara pattikā Sakara patā (See)

**ଶିଖର ବାସୀ**—ସଂ. ବିଣ. ପୁଂ (ଶିଖରବାସିନ ୧ମା ୧ବ)—ଯେ
Sikhara bāsi ଶିଖରରେ ବାସ କରେ—Living on the
(ଶିଖରବାସିନୀ—ସ୍ତ୍ରୀ) summit of a mountain or on the top of a tree ବି. ପୁଂ—ମହାଦେବ—Siba.

**ଶିଖର ବାସିନୀ**—ସଂ. ବି. ସ୍ତ୍ରୀ (ଶିଖର=କୈଳାସ ଶିଖରରେ ଯେ
Sikhara bāsini ବାସ କରନ୍ତି)—ପାର୍ବତୀ; ଦୁର୍ଗା—Goddess Durgā.

**ଶିଖରା**—ସଂ. ବି—୧। ମୁର୍ବା (ଉ. ଶ)—1. Mūrbbā (see) ୨।
Sikharā ବିଶ୍ୱାମିତ୍ରଙ୍କଦ୍ୱାରା ରାମଚନ୍ଦ୍ରଙ୍କୁ ପ୍ରଦତ୍ତ ଗଦା (ଉ. ଶ)—
2. Name of a club or mace given by Biswāmitra to Rāmachandra.

**ଶିଖରାଦ୍ରି**—ସଂ. ବି—ବିଭୂତ; ତିନୋଟି ଶୃଙ୍ଗ ବିଶିଷ୍ଟ ପୌରାଣିକ ପର୍ବତ
Sikharādri ବିଶେଷ—Name of a mythological mountain with three peaks.

**ଶିଖରିଣୀ**—ସଂ. ବିଣ. ସ୍ତ୍ରୀ ( ଶିଖର+ଇନ+ସ୍ତ୍ରୀ. ଈ)—ଶିଖରଯୁକ୍ତ—
Sikharini (female) Having a top. ବି—୧। ଉତ୍ତମା ସ୍ତ୍ରୀ—
1. An excellent woman. ୨। ମଲ୍ଲିକା ଫୁଲ—
2. Jasmine flower. ୩। ରସାଳା; ଦୁଗ୍ଧଦଧିର ଓ ଚିନିମିଶ୍ରିତ ଘନ ମିଷ୍ଟାନ୍ନ ପାନୀୟ ବିଶେଷ—3. A sweet thick drink made of creams and sugar.
[ଦ୍ର—ଭାବପ୍ରକାଶ ମତରେ ଜଳ ବିହୀନ ମାହିଷ ଦଧି ୧୬ ସେର, ପରିଷ୍କୃତ ଚିନି ୮ ସେର ଏକତ୍ର ମିଶାଇ ପରିଷ୍କୃତ ବସ୍ତ୍ରରେ ଘଷିଲେ ତଳିରେ ୩୨ ସେର ଦୁଧ ମିଶାଇ ଛାଣି-
ଦେଲେ ଗୋଟିଏ ମୃତ୍ପାତ୍ର ରଖି କର୍ପୂରାଦି ଉକ୍ତ ଦ୍ରବ୍ୟଦ୍ୱାରା ଏହାକୁ ସୁବାସିତ କରାଯିବ। ତତ୍ପରେ ଏଥିସଙ୍ଗେ ଅଳାଇଚ ଲବଙ୍ଗ, କର୍ପୂର, ମରିଚ ଚୂର୍ଣ୍ଣ ମିଶାଇବ। ଏହା କ୍ଲାନ୍ତି ଦୂରକାରକ, ବଳକର, ଶୁକ୍ର ବର୍ଦ୍ଧକ, ବାୟୁ ଓ ପିତ୍ତ ନାଶକ; ଅଗ୍ନିପ୍ରଦୀପକ, ଶରୀରର ରୂପରସ କାରକ, ସ୍ନିଗ୍ଧ, ଶୀତଳ, ସାରକ ଓ ରକ୍ତ,ପିତ୍ତ,ପିପାସା, ଦାହ, ପ୍ରତିଶ୍ୟାୟ ନାଶକ। କେବଳ ବସନ୍ତଋତୁରେ ଅନ୍ୟ ଋତୁରେ ଏହା ସେବ୍ୟ। ଏହାର ନାମ ରସାଳା। ରାଜ ନିର୍ଘଣ୍ଟରେ ଅଛି ଯେ, ଦଧି ୩୨ ପଲ, ଖଣ୍ଡ ୮ ପଲ, ମରିଚଚୂର୍ଣ୍ଣ, ଗୁଡ଼ତ୍ୱକ ଓ ଏଳାଚୂର୍ଣ୍ଣ ୮ ପଲ, ମଧୁ ୪ ପଲ, ଘୃତ ୪ ପଲ, ଗୋଟିଏ ଭାଣ୍ଡରେ ରଖି ଉତ୍ତମରୂପେ ମନ୍ଥନ କଲେ ଏହା ଶିଖରିଣୀ ହୁଏ ଶବ୍ଦକୋଷ।] ୪। ରୋମାବଳୀ—4. A row of down growing on particular parts of the body. ୫। ସପ୍ତଦଶାକ୍ଷର ଛନ୍ଦୋବିଶେଷ—(ଦ୍ର—ଏଥିର ୬ଷ୍ଠ ଓ ଶେଷ ଅକ୍ଷରରେ ଯତି; ଏଥିର ୨।୩।୪।୫ ୧୧।୧୩ ଓ ୧୭ ବର୍ଣ୍ଣଗୁରୁ; ଅନ୍ୟବର୍ଣ୍ଣମାନ ଲଘୁ,ଶବ୍ଦକୋଷ)।
5 Name of a Sanscrit metre of 17 syllables ୬। ନବ ମଲ୍ଲିକା; ନାଥଳ ଫୁଲ (ଉ .ଶ)
6. Jasminum Arborescens (flower) ୭। କିସମିସ୍ (ଉ. ଶ)—7. Raisin. ୮। ମୁର୍ବା (ଉ. ଶ)-
8. Mūrbbā (See).

**ଶିଖରୀ**—ସଂ. ବିଣ. ପୁଂ (ଶିଖର+ଇନ; ୧ମା ୧ବ)—ଶିଖରଯୁକ୍ତ—
Sikhari Having a point, head or summit.
(ଶିଖରିଣୀ—ବିଣ ସ୍ତ୍ରୀ) ବି—୧। ପର୍ବତ—1. Mountain.
୨। ତରୁ; ବୃକ୍ଷ—2. Tree. ୩। ଅପାମାର୍ଗ—3. A herb; Achyranthes Aspera. ୪। କୋଟ; ଦୁର୍ଗ—4. Fort; fotress. ୫। ଟିଟ୍ଟିଭ ପକ୍ଷୀ—
5. A kind of bird; the tatler bird; Totanus Flavipes. ୬। ମଲ୍ଲିଙ୍ଗ—
6. Mistletoe; a parasitic plant.
୭। କୁନ୍ଦୁରୁ—7. Frankincense. ୮। ଯାବ-ନାଲ; ଜନାର; ବାଜରା—8. Indian maize. ୯। ପାର୍ବତ୍ୟ ଦୁର୍ଗ—9. A hill-fort. ୧୦। ଲୋବାନ (ହି.)—10. Olibanum. ୧୧। କକଡ଼ାଶୃଙ୍ଗୀ (ଉ. ଶ)—11. Rhus Succedanea. (herb).
୧୨। ମୃଗ ବିଶେଷ (ଉ. ଶ)—12. A kind of deer.

**ଶିଖରେ ବଢ଼ିବା**—ଦେ. କ୍ରି—ଉଚ୍ଚତା ବା ଡେଙ୍ଗା ଦିଗରେ ବୃଦ୍ଧି
Sikhare bardhibā ପାଇବା—To grow in tallness
लम्बायबाड़ा सुड़ंगहोना or height.

**ଶିଖଲୋହିତ**—ସଂ. ବି (ବଙ୍କୁକ୍ରୀଡ଼)—ପୋକଶୁଂଘା ଗୁଳ୍ମ—
Sikhalohita Blumea Odorata. (plant)

**ଶିଖା**—ସଂ. ବି (ଶୀ ଧାତୁ=ଶୟନ କରିବା+ସଂଜ୍ଞାର୍ଥେ ଖ+ଆ)—
Sikhā ୧। ଚୂଡ଼ା; ଅଗ୍ରଭାଗ—1. Top. ୨। ପର୍ବତର ଶିଖର—2 Summit or crest of mountain.
୩। କିରୀଟ; ମୁକୁଟ—3. Crown; headdress; crest. ୪। ଶିର; ମୌଳି—4. Head. ୫। କ୍ରମଶଃ ସରୁ ହୋଇଯାଇଥିବା ଅଗ୍ରଭାଗ; ମୁନ—5. Tapering top; sharp point. ୬। ମସ୍ତକର ଅଂଶ-ବିଶେଷରେ ବଢ଼ାଯାଇଥିବା ଲମ୍ବ କେଶଗୁଚ୍ଛ; ଚୁଟି—
6. Tuft of long hair left on the head; pigtail; lock of hair on the head. [ଦ୍ର—ଶାସ୍ତ୍ରରେ ଅଛି ଯେ, ହିନ୍ଦୁମାନେ ଶିଖା ଧାରଣ କରିବେ। ପୂଜା, ଜପ କରିବା ସମୟରେ ଗାୟତ୍ରୀ ପାଠପୂର୍ବକ ଶିଖା ବନ୍ଧନ (କାଳରେ ଗଣ୍ଠି ପକାଇବା) କର୍ତ୍ତବ୍ୟ। ମୁକ୍ତଶିଖ ବ୍ୟକ୍ତିର ଅଚମନ ପୂଜା ଅଶୁଦ୍ଧ। (ଶବ୍ଦକୋଷ)।] ୭। ଜଳୁଥିବା ନିଆଁର ଶୀର୍ଷ
—7. The flame of a burning fire; the spire of a flame. ୮। ଅର୍ଚ୍ଚି; ଜ୍ୱାଳା—
8. Lustre. ୯। ଶାଖା—9. Bough; branch.
୧୦। ମଞ୍ଚଥିବା ଶସ୍ୟାଦିର ଶାଖା—10. The prong

of a pointed weapon. ୧୧ । କାମଜ୍ୱର—11. Amorous fever; morbid excitement due to lust. ୧୨ । ତୁଳସୀ—12. Holy Basil. ୧୩ । ଲଙ୍ଗଳଫଳଥା ଲତା—13. A kind of creeper; Gloriosa Surperba. ୧୪ । ମୟୂର, କୁକୁଡ଼ା ଆଦି ପକ୍ଷୀଙ୍କ ମସ୍ତକ ଉପରେ ଉଠିଥିବା ପକ୍ଷଗୁଚ୍ଛ ବା ଜଟ—14. Tuft of feathers on the heads of peacock and other birds. ୧୫ । ପ୍ରକାଶ; କିରଣ (ବ୍ଦ. ଶ)—15. Ray of light. ୧୬ । ବସ୍ତ୍ରର ଅଞ୍ଚଳ ବା କାନ (ବ୍ଦ. ଶ)—16; The end of the cloth. ୧୭ । ଗୋଡ଼ ଅଙ୍ଗୁଠିର ଅଗ୍ରଭାଗ (ବ୍ଦ. ଶ)—17. Tip of a finger of the foot. ୧୮ । ସ୍ତନର ଅଗ୍ରଭାଗ ବା ଭୂଣ୍ଡି (ବ୍ଦ. ଶ)—18. Nipple. ୧୯ । ଚେର ଚେର (ବ୍ଦ ଶ)—19. Root. ୨୦ । ଅଗ୍ରପଥ; ନାୟକ (ବ୍ଦ. ଶ)—20. Leader. ୨୧ । ଶ୍ରେଷ୍ଠ ବ୍ୟକ୍ତି (ବ୍ଦ. ଶ)—21. Headman; chief person. ୨୨ । ମୂର୍ବା (ବ୍ଦ.ଶ)—22. Transveria Zeylanica (plant). ୨୩। ଜଟାମାଂସୀ (ବ୍ଦ.ଶ)—23. Indian spikenard. ୨୪ । ବଚ୍ଚ (ବ୍ଦ. ଶ)—24. Orris root. ୨୫ । ଏକ ବର୍ଣ୍ଣବୃତ୍ତ ( ବ୍ଦ. ଣ )—25. Name of a metre. [ ଦ୍ର—ଏଥିର ବିଷମ ପାଦମାନଙ୍କରେ ୨୮ ଲଘୁମାତ୍ରା ଓ ଅନ୍ତରେ ଏକ ଗୁରୁ ବର୍ଣ୍ଣ ଥାଏ; ସମ ପାଦରେ ୩୦ ଲଘୁ ମାତ୍ରା ଓ ଅନ୍ତରେ ଏକ ଗୁରୁ ମାତ୍ରା ଥାଏ—ବ୍ଦ. ଶ ] । ସଂ. ବିଣ. ସ୍ତ୍ରୀ (ପୁଂ ଶିଖ;ଅନ୍ୟ ଶବ୍ଦ ସଙ୍ଗେ ସମାସବଦ୍ଧ ହୋଇ ଲଗେ) ଶିଖାଯୁକ୍ତା—(in a compound) Tufted (feminine).

ଶିଖାଇ ଦେଲ(ବା) ବୁଦ୍ଧି—ଦେ. ବି—ନିଜର ମସ୍ତିଷ୍କରୁ ଉଦ୍ଭାବିତ ନ ହୋଇ ଅନ୍ୟ ବ୍ୟକ୍ତିଠାରୁ ଉପଦେଶ ଦ୍ୱାରା ପ୍ରାପ୍ତ ବୁଦ୍ଧି—Intelligence which is not one's own but derived from others; intelligence or plan of action due to tutoring by others. (ଦ୍ର—ଶିଖାଇଦେଲ ବୁଦ୍ଧି, ପାଣି-ଅଣିଲ ଉଅଣ—ଢଗ ।)

Sikhāi dela(bā) buddhi
শিখিয়েদেওয়াবুদ্ধি सिखाईहुईबुद्धि

ଶିଖା(ଖେ)ଇବା—ଦେ. କ୍ରି (ସଂ ଶିକ୍ଷ ଧାତୁ ଣିଜନ୍ତରୂପ)—୧। କୌଣସି ବ୍ୟକ୍ତିକୁ ଶିକ୍ଷାଦେବା; ପଢାଇବା—1. To teach. ( ଦ୍ର—ଅନ କେ ଶିଖାଇଲ ଭୁଷାକୁ ରେ—କବିସୂର୍ଯ୍ୟ. ସଙ୍ଗୀତ ।) ୨ । ଉପଦେଶ ଦେବା—2. To instruct; to advise. ୩। ଉପାୟ ବତାଇବା—3. To teach a person the way to do a thing. ୪। (ମନ୍ଦାର୍ଥ) ମନ୍ଦଶିକ୍ଷାଦେବା; ମନ୍ଦବୁଦ୍ଧି ଦେଇବା—4. To instigste; to give bad advice. ୫ । ତାଲିମ କରିବା—5. To train. ୬ । (ଶିଖାଇଦେବା—ଅନ୍ୟରୂପ) ପ୍ରବର୍ତ୍ତାଇବା—6. To induce.

Sikhā(khe)ibā
শিখান, শেখান सिखलाना

ଶିଖା କନ୍ଦ(ମୂଳ)—ସଂ. ବି (ବହୁବ୍ରୀହି)—୧ । ଶାଲଗମ (ବ୍ଦ. ଶ)—1. Turnip. ୨ । ଗାଜର (ବ୍ଦ. ଶ)—2. Carrot.

Sikhā kanda(mūla)

ଶିଖା ଛାଡ଼ିବା(ରଖିବା)—ଦେ. କ୍ରି—ମସ୍ତକର ଅଂଶବିଶେଷରେ କେଶର ଗୁଚ୍ଛ ରଖି ଖିଅର ହେବା—To leave out a tuft of long hair at one part of the head after shaving.

Sikhā chhāṛdibā(rakhibā)
শিখাছাড়া शिखाछोड़ना

ଶିଖାଣ—ଦେ. ବି (ସଂ ଶିକ୍ଷ ଧାତୁ ଣିଜନ୍ତରୂପରୁ)—୧ । ପଢାଇବା—1. Tutoring. ୨ । ଅଧ୍ୟାପନା—2. Teaching. ୩ । ଉପଦେଶ—3. Instruction. ୪ । ଅନ୍ୟ ବ୍ୟକ୍ତିର ପ୍ରରୋଚନା—4. Instigation of another person. ୫ । ବିଦ୍ୟା ଶିକ୍ଷା—5. Education.

Sikhāṇa
শিক্ষা शिक्षा सिखावट

ଶିଖାଣିଆ—ଦେ. ବିଣ—୧ । ଯେ ଅନ୍ୟ ବ୍ୟକ୍ତିକୁ ମନ୍ଦ ପରାମର୍ଶ ଦିଏ—1. Instigating giving evil advice. ୨ । ଅନ୍ୟର ଉପଦେଶରୁ ପ୍ରସୂତ—2. Due to another's advice; learnt from another. ( ଯଥା—ଶିଖାଣିଆ ବୁଦ୍ଧି ।) ଦେ. ବି—ମନ୍ଦ ଉପଦେଶଦାତା—Evil adviser.

Sikhāṇiā
শিক্ষাদাতা सिखानेवाला
সিখান सिखोहुई
বুদ্ধিদাতালোক सिखानेवाला

ଶିଖା ତରୁ—ସଂ. ବି—ଦିଲିସଜ; ପାପଠୁଣୀ (ବ୍ଦ. ଶ)

Sikhā taru Lampstand.

ଶିଖାଧ(ଧା)ର—ସଂ. ବି (ଶିଖା+ଧୃ ଧାତୁ+କର୍ତ୍ତୃ. ଅ)—୧ । ମୟୂର (ବ୍ଦ. ଶ)—Peacock. (ଶିଖାଧାରକ—ଅନ୍ୟ ବି.ରୂପ) ୨ । ମଞ୍ଜୁଘୋଷ (ବୁଦ୍ଧଦେବ)—2. Manjughosha. (ଶିଖାବତୀ—ବିଣ. ସ୍ତ୍ରୀ) ସଂ. ବିଣ. ପୁଂ—ଯାହାର ଶିଖା ଅଛି—Having a tuft; tufted.

Sikhādha(dhā)ra

ଶିଖା ଧାରଣ—ସଂ. ବି (୬ଷ୍ଠୀ ତତ୍)—ମୁଣ୍ଡରେ ଚୂଟି ରଖିବା—Growing a long tuft on the head.

Sikhā dhāraṇa

ଶିଖା ପାଶ—ସଂ. ବି (ଶିଖା+ବହୁଲାର୍ଥେ ପାଶ ଭୂଲ. କେଶପାଶ )—ଚୂଟି—A fine tuft of hair on the head; pigtail.

Sikhā pāsa

ଶିଖାପିତ୍ତ—ସଂ. ବି—ହାତର ଓ ଗୋଡ଼ର ଫୁଲା ଓ ଜଳାପୋଡ଼ା ରୋଗ (ବ୍ଦ.ଶ)—A disease accompanied by swelling and burning sensation of the foot and hand.

Sikhāpitta

ଶିଖାବତୀ—ସଂ ବିଣ. ସ୍ତ୍ରୀ—'ଶିଖାବାନ୍'ର ସ୍ତ୍ରୀଲିଙ୍ଗ—Feminine of Sikhāban. ସଂ ବି. ସ୍ତ୍ରୀ—ମୂର୍ବା—Sansveria Zeylanica.

Sikhābati

ଶିଖାବନ୍ଧନ—ସଂ ବି (୬ଷ୍ଠୀ ତତ୍)—ଚୁଟିରେ ଗଣ୍ଠି ପକାଇବା ବା ଜଡ଼ାଇବା—Tying of the tuft of hair of the head into a knot or chignon.
Śikhā bandhana
(ଶିଖାବନ୍ଧ—ବିଣ)

ଶିଖାବର—ସଂ ବି (ଶିଖା+ଅସ୍ତି ଅର୍ଥରେ ବର)—ପଣସବୃକ୍ଷ (ହି.ଶ)—Jack fruit tree.
Śikhābara

ଶିଖାବଳ—ସଂ ବି (ଶିଖା+ଅସ୍ତି ଅର୍ଥରେ ବଳ ଭୁଳକାଦର ବଳ୍ପାବଳ)-୧ । ଶିଖୀ; ମୟୂର—1. Peacock ୨ । ପଣସବୃକ୍ଷ [ହି. ଶ]—2. Jack fruit tree
Śikhābaḷa

ଶିଖାବଳା—ସ.ବି—ମୟୂର ଶିଖା (ବିଶ୍ୱକୋଷ)—Tuft of feathers on the head of a peacock.
Śikhābaḷā

ଶିଖାବାନ୍—ସଂ ବିଣ ପୁଂ (ଶିଖା+ଅସ୍ତି ଅର୍ଥରେ ବତ୍; ଶିଖାବତ୍ ଶବ୍ଦ; ୧ମା. ୧ବ)—ଶିଖା' ବିଶିଷ୍ଟ—Having a tapering point or tuft ସଂ. ବି—୧ । କେତୁଗ୍ରହ—1. The Dragon's tail or the Decending node ୨ । ଅଗ୍ନି—2. Fire. ୩ । ଚିତ୍ରକ ବୃକ୍ଷ; ଚିତା ଗଛ—3. The leadwort plant ୪ । ମୟୂର (ହି. ଶ)—4. Peacock.
Śikhābān
(ଶିଖାବତୀ—ସ୍ତ୍ରୀ)

ଶିଖା ବୃକ୍ଷ—ସଂ ବି—ଦୀପରୁଖା; ପିଲସଜ [ହି. ଶ]—Lampstand
Śikhā bruksha

ଶିଖା ବୃଦ୍ଧି—ସଂ ବି[ଶିଖା ପରି ବୃଦ୍ଧି ଯାହାର, ବହୁବ୍ରୀହି]—୧। ପ୍ରତିଦିନ ବଢ଼ୁଥିବା ସୁଧ; ଚକ୍ରବୃଦ୍ଧି ସୁଧ[ହି. ଶ]—1. Compound interest; interest which goes on accumulating every day. ୨। (ହିନ୍ଦୁ ଦାୟ) ଦାୟିକାବୃଦ୍ଧି; ମୂଳଧନ ନଷ୍ଟ ନ ହୋଇ ପ୍ରତିଦିନ ଯେଉଁ ସୁଧ ଲଭ ହୁଏ (ବିଶ୍ୱକୋଷ)—(Hindu Law) Interest which accrues daily without affecting the capital.
Śikhābruddhi

ଶିଖାଭରଣ—ସଂ. ବି (୬ଷ୍ଠୀ ତତ୍; ଶିଖା+ଆଭରଣ)—୧ । ମୁକୁଟ (ହି. ଶ)—1. Crown; coronet. ୨ । ଶ୍ରେଷ୍ଠ ବ୍ୟକ୍ତି—2. Chief person.
Śikhābharaṇa
(ଶିଖାମଣି—ଅନ୍ୟରୂପ)

ଶିଖା ମୁଣ୍ଡନ—ସ. ବି—(୬ଷ୍ଠୀ ତତ୍)—ମୁଣ୍ଡର ଲମ୍ବ କେଶକୁ ଛାଡ଼ି ଶେଷ ଭଲ ଖିଅର ହେବା—Shaving of the head without leaving a tuft or lock; complete tonsure.
Śikhā muṇḍana

ଶିଖା ମୁଣ୍ଡା(ଣ୍ଡେ)ଇବା—ଦେ.କ୍ରି (ସ.ଶିଖାମୁଣ୍ଡନ)—ଶିଖାମୁଣ୍ଡନ କରିବା—To have the head shven without having a lock.
Śikhā muṇḍā(ṇḍe)ibā
शिखांमुँड़ान शिखमुंडना
[ଦ୍ର—ଲୋକେ ଲଣ୍ଡାଇବାକୁ ଭଜର ଶିଖା ମୁଣ୍ଡାନ୍ତି, ଲଣ୍ଡାର ଅନ୍ୟ ଲୋକର ଶିଖା ମୁଣ୍ଡି ଦିଏ ।]

ଶିଖା ମୋଚନ—ସଂ ବି ( ୬ଷ୍ଠୀ ତତ୍ )—ଶିଖାର ଗଣ୍ଠି ଫିଟାଇବା—Untying of the knot or chignon of hair of the head.
Śikhā mochana

ଶିଖାଳ—ସଂ. ବି (ଶିଖା+ଅସ୍ତି ଅର୍ଥରେ ଳ)—ମୟୂର (ବିଶ୍ୱକୋଷ)—Peacock.
Śikhāḷa

ଶିଖାଳୁ—ସଂ.ବି—ମୟୂରର ଶିଖା (ବିଶ୍ୱକୋଷ)—Tuft of feather on the head of the peacock.
Śikhāḷu

ଶିଖା ଶିଖି—ଦେ. ବି (ସଂ ଶିକ୍ଷା)—୧ । ନାନା ବିଦ୍ୟା ଶିଖାଇବା କର୍ମ—1. Teaching of many kinds of knowledge. ୨ । ବହୁବାର ଶିକ୍ଷା ଦେବା କର୍ମ—2. Teaching many a time. ୩ । ଚୁଗୁଲି—3. Backbiting. (ଉ—ରସିକାଙ୍କ ଶିକ୍ଷାମଣି ! ଯେବେ ଶିଖାଶିଖି ତାଙ୍କୁ ଶୁଣି—କବିସୂର୍ଯ୍ୟ-ସଂଗୀତ) ୪ । (ମନ୍ଦାର୍ଥ) ଅନ୍ୟକୁ କୁଶିକ୍ଷା ଦେବା—4. (Bad sense) Tutoring a person; giving bad advice.
Śikhā śikhi
शिखांशिखिं सिखापढ़ा

ଶିଖିକଣ୍ଠ—ସଂ ବି ( ୬ଷ୍ଠୀ ତତ୍. )—୧ । (ଶିଖିନ୍+କଣ୍ଠ) ମୟୂର କଣ୍ଠ—1. The neck of the peacock. ୨ । ଶିଖିର କଣ୍ଠର ବର୍ଣ୍ଣ ପରି ବର୍ଣ୍ଣ ଯାହାର; ବହୁବ୍ରୀହି)-ତୁତିଆ—Blue vitriol; sulphate of copper. ସଂ. ବିଣ—ମୟୂରର କଣ୍ଠ ସଦୃଶ—Resembling the neck of the peacock.
Śikhikaṇṭha

ଶିଖିଗ୍ରୀବ—ସଂ ବିଣ ପୁଂ—( ବହୁବ୍ରୀହି; ଶିଖିନ୍+ଗ୍ରୀବା )—ମୟୂର କଣ୍ଠ ସଦୃଶ—Resembling the neck of the peacock. ସଂ. ବି—୧ । ତୁତିଆ (ହି. ଶ)—1. Blue vitriol. ୨ । ଏକ ପ୍ରକାର ନୀଳ ରତ୍ନ—(ହି. ଶ)—2. A kind of sapphire.
Śikhigriba
(ଶିଖିଗ୍ରୀବା—ବିଣ. ସ୍ତ୍ରୀ )

ଶିଖିଧ୍ୱଜ—ସଂ. ବି—୧ । ( ଶିଖିନ୍+ଧ୍ୱଜ=ଚିହ୍ନ; ବହୁବ୍ରୀହି )—ଦେବ ସେନାପତି କାର୍ତ୍ତିକେୟ—God Kārttikeya ୨ । ( ୬ଷ୍ଠ ତତ୍ )—ଧୂମ; ଧୂଆଁ—2 Smoke ସ. ବିଣ—ଯହିଁରେ ମୟୂରର ବା ଅଗ୍ନିର ଚିହ୍ନ ଅଛି—Bearing the symbol of fire or peacock.
Śikhidhwaja

ଶିଖିନୀ—ସ. ବି. ସ୍ତ୍ରୀ ( ଶିଖିନ୍+ଈ )—୧ । ମାଈ ମୟୂର—1. Peahen. ୨ । ମାଈ କୁକୁଡ଼ା—2. Hen. ୩ । ମୟୂର-ଶିଖା ଗଛ ( ହି. ଶ )—3. Celosia Cristata (Apte).
Śikhini

ଶିଖିପୁଚ୍ଛ—ସ. ବି (୬ଷ୍ଠୀ ତତ୍)—ମୟୂରର ଲାଞ୍ଜ; ଚନ୍ଦ୍ରକଯୁକ୍ତ ଲାଞ୍ଜ—The tail of a peacock; the tail feather of a peacock.
Śikhipuchchha
ଶିଖି ଚନ୍ଦ୍ରକା }
ଶିଖିବର୍ହ } ଅନ୍ୟରୂପ

ଶିଖିପ୍ରିୟ—ସଂ. ( ୬ଷ୍ଠୀ ତତ୍ )—ଜଙ୍ଗଲ ବରକୋଳି ( ହି. ଶ )—The wild Jujube plant.
Śikhipriya

ଶିଖିବର୍ଦ୍ଧକ—ସ. ବି (ଏହା ଉଦରାଗ୍ନି ବର୍ଦ୍ଧକ ଥିବାରୁ)—କୁଷ୍ମାଣ୍ଡ; ପାଣିକଖାରୁ—Pumpkin; Cucurbita Pepo; Benincasa Cerifera.
Śikhibarddhaka

ଶିଖିବା—ଦେ. କି ( ସଂ. ଶିକ୍ଷ ଧାତୁ )—୧ । କୌଣସି ବିଷୟରେ ଜ୍ଞାନ
Śikhibā ଲାଭ କରିବା—1. To acquire knowledge
शिखा सिखना in any matter ୨ । ଶିକ୍ଷା ପାଇବା—
[ ଶିଖା(ଖେ)ଇବା—ଣିଜନ୍ତରୂପ ] 2. To be educated.
[ ଉ—ଶିଶୁଟି ସାରବେ ସେ ମନ୍ତ୍ରୀ ଅଗ୍ରଗୁରୁବିଦ୍ୟା ବଳେ କଳଠାରୁ—ଚନ୍ଦ୍ରାମଣି. ଭଜମାଧବ୍ୟ । ]
୩ । ବିଦ୍ୟାର ଅଭ୍ୟାସ କରିବା—3. To learn; to master. ୪ ତାଲିମ ହେବା—4. To be trained.
୫। ଅଭିଜ୍ଞତା ଲାଭ କରିବା—5. To gain experience. ୬ । କୌଣସି ବିଷୟ ଅଭ୍ୟାସ କରିବା –6. To practise a thing.

ଶିଖିବାହନ—ସଂ. ବି. ପୁଂ ( ବହୁବ୍ରୀହି )—କାର୍ତ୍ତିକେୟ—
Śikhibāhana Kārttikeya.
( ଶିଖିବାହନା—ସ୍ତ୍ରୀ ) ସ. ବିଣ. ପୁଂ—ମୟୂରବାହନ—Riding on a peacock.

ଶିଖିବ୍ରତ—ସଂ. ବି—ବ୍ରତବିଶେଷ—A sort of religious
Śikhibrata penance. [ ଟୀ—ଶରତ୍ ପୂର୍ଣ୍ଣିମାରେ ଅଗ୍ନି ଯେ, ପ୍ରତିପଦ୍ ତିଥିରେ ଏକବାର ଭୋଜନ କରି ଏ ବ୍ରତ ଅନୁଷ୍ଠାନ କରିଯାଏ । ବ୍ରତ ସମାପ୍ତ ହେଲେ କପିଳା ଧେନୁ ଦାନ କରିଯାଏ । ଏ ବ୍ରତାନୁଷ୍ଠାତାଙ୍କର ଅଗ୍ନିଲୋକକୁ ଗତି ହୁଏ—ବିଶ୍ୱକୋଷ । ]

ଶିଖିମଣ୍ଡଳ—ସଂ. ବି—ବରୁଣ ବୃକ୍ଷ—A tree, Crataeva
Śikhimaṇḍala Religiosa.

ଶିଖିଯୂପ—ସଂ. ବି—ଶ୍ରୀକାରୀ ନାମକ ମୃଗ ( ହ୍ରି. ଶ )—
Śikhijūpa A kind of deer.

ଶିଖିଶିଖା—ସଂ. ବି ( ଷଷ୍ଠୀ ତତ୍, ଶିଖିନ୍ + ଶିଖା )—୧ । ମୟୂରର
Śikhiśikhā ଶିଖା ବା ମୁଣ୍ଡରେ ଥିବା ପକ୍ଷପୁଞ୍ଜ—1. The tuft of feathers over the head of a peacock. ୨ । ଅଗ୍ନିଶିଖା; ଅଗ୍ନିର ଜଳନ୍ତା ଧାସ୍—2. The flame of a burning fire. [ ଉ—ଘୃତଘଟକୁ ଶିଖିଶିଖା ପାଶରେ ରଖି ଶୀଘ୍ରଦେଖା ଏବା ସହଲ ରେ—କବିସୂର୍ଯ୍ୟ. କଶୋସ୍ତ୍ରାମ୍ଭ ସଂଗୀତ ।]

ଶିଖିଶୃଙ୍ଗ—ସଂ. ବି ( ବହୁବ୍ରୀହି )—ଚିତ୍ରହରିଣ ( ହ୍ରି. ଶ )—
Śikhiśṛuṅga Spotted deer.

ଶିଖୀ—ସଂ. ବିଣ. ପୁଂ ( ଶିଖା + ଅସ୍ତି ଅର୍ଥରେ ଇନ୍, ଶିଖିନ୍ ଶବ୍ଦ,
Śikhī ୧ମା. ୧ବ )—୧ । ଶିଖା ବିଶିଷ୍ଟ—1. Having a Śikhā. ୨ । ଚୂଡ଼ିଥ—2. Having a pigtail or tuft. ୩ । ଚୂଳିଥ—3. Having a hump or humps. ସଂ. ବି—୧ । ଅଗ୍ନି—1. Fire. ୨ । ମୟୂର—2. Peacock. ୩ । ବ୍ରାହ୍ମଣ—3. A Brāhmaṇa. ୪ । ବୃଷ; ଷଣ୍ଢ—4. Bull. ୫ । ଅଶ୍ୱ—5. Horse. ୬ । ପର୍ବତ—6. Mountain. ୭ । ଶର; ବାଣ—7. Arrow; dart. ୮ । ବୃକ୍ଷ—8. A tree. ୯ । କୁକୁଡ଼ା—9. Cock. ୧୦ । ମେଥି—10. Trigonella Faenum Graecum. ୧୧ । ସୁନସୁନିଆଶାଗ—11. A pot herb; Marselia Quadrifoliata. ୧୨ । ଚିତ୍ରକଗଛ ( ଧଳା ଓ ନାଲି )—12. A herbacious plant; Plumbago Zeylancia and Rosea. ୧୩ । କେତୁଗ୍ରହ—13. The descending node; the Dragon's tail ୧୪ । ଏକ ପ୍ରକାର ଧଳାବଗ ପକ୍ଷୀ (ହ୍ରି. ଶ)—14. A kind of crane. ୧୫ । (ଅଗ୍ନି ୩ ପ୍ରକାର ଥିବାରୁ) ତିନି ସଂଖ୍ୟା ( ହ୍ରି. ଶ )—15. The number three. ୧୬ । ଦୀପ (ହ୍ରି. ଶ)—16. Lamp. ୧୭ । ପିତ୍ତ (ହ୍ରି. ଶ)—17. Bile. ୧୮ । ଧୂମକେତୁ [ହ୍ରି. ଶ]—18. Comet. ୧୯ । ଶତାବରୀ [ହ୍ରି.ଶ]—19. Asparagus Racemosus. ୨୦ । ଜଟାଧାରୀ ସାଧୁ [ହ୍ରି. ଶ]—20. An anchorite with matted locks. ୨୧ । ନାଗ ବିଶେଷ [ହ୍ରି. ଶ ]—21. Name of a mythological serpent. ୨୨ । ଇନ୍ଦ୍ର [ହ୍ରି. ଶ]—22. God Indra. ୨୩ । ବଗ [ହ୍ରି. ଶ] -23 Paddy bird. ୨୪ । ଅପାମାର୍ଗ [ହ୍ରି. ଶ]—24. Achyranthes Aspera. ୨୫ । ଶୂକ ଶିମ୍ବୀ; ବାଇଡଙ୍କ [ ବୈଦ୍ୟକୋଷ ]—25. Cowhage. ୨୬ । ବିଷ ବିଶେଷ [ହ୍ରି. ଶ ]—
(ଶିଖିନୀ—ବିଣ. ସ୍ତ୍ରୀ) 26. A kind of poison.

ଶିଖୁଆ—ଦେ. ବିଣ. ପୁଂ—(ସଂ. ଶିକ୍ଷ ଧାତୁ) —୧ । ଯେ ଶୀଘ୍ର କୌଣସି
Śikhuā ବିଦ୍ୟା ଶିଖି ପାରେ—1.Apt to learn any thing
बुद्धिमान होनहार in a short time. ୨ । ଯେ ଲୋକଙ୍କୁ ମନ୍ଦ
(ଶିଖେଇ[ଖୋ]ଇ—ସ୍ତ୍ରୀ) ପରାମର୍ଶ ଦିଏ—2. Giving bad
যে শিক্ষা দেয় सीखाने वाला advice to people.
ଦେ. ବି—ଏକ ପ୍ରକାର ଖେଳ—A kind of game.

ଶିଖେ ଶିଖେ—ଦେ.କି ବିଣ—ଗଛର ବା ପାହାଡ଼ମାନଙ୍କର ଅଗ୍ରଭାଗରେ
Śikhe Śikhe —Along the top or summit (ଯଥା,
शिखाय় शिखाय় सिखरों ମେଘ ପାହାଡ଼ ଶିଖେ ଶିଖେ ଚରୁଛି)

ଶିଗ୍ରୁ—ସଂ. ବି—(ଶି ଧାତୁ=ଗମନ କରିବା + କର୍ତ୍ତୃ. ରୁ; ଗ ଆଗମ;
Śigru ଯାହା କ୍ଷୁଧାକୁ ଗମନ କରେ)—୧ । ଶୋଭାଞ୍ଜନ; ଶଜନା (ଗଛ)—1. Horse radish; Hypernathera Moringa (tree). [ଦ୍ର—ଏହା ଶ୍ୟାମ, ଶ୍ୱେତ ଓ ରକ୍ତ ଭେଦରେ ୩ ପ୍ରକାରର; ଶଜନା (ଦେଶ) ।] ୨ । ଶାକ (ହ୍ରି.ଶ.)—2. Pot herb; kitchen herb.

ଶିଗ୍ରୁଜ—ସଂ. ବି.—ସଜନା ମଞ୍ଜି —
Śigruja The seed of morninga bean.

ଶିଙ୍ଖାଳୁ—ପ୍ରାଦେ (ଗଡ଼ଜାତ) ବି—ନୀଚ ଶୂଦ୍ର ମୂଲିଆ—
Śiṅkhālu A low class of labourers.

ଶିଙ୍ଗ(ଙ୍ଘ)—ଦେ. ବି—(ସଂ. ଶୃଙ୍ଗ)—୧ । ପଶୁଅଙ୍କ ଶିଙ୍ଗ; ବିଷାଣ—
Śiṅga(ṅgha) 1. Horn. [ ଉ—ଗୋରୁଙ୍କ ଶିଙ୍ଗ ଥିବ
शिङ्ग सींग ନାହିଁ; ତୁଲଜ୍ଞ ଅଗ୍ନି ଜାଳେ ଜାଳେ—ପ୍ରାଚୀଗ୍ରନ୍ଥ

ମାଳା ।] ୨ । (ସଂ. ଶୂକ)—ଗହମ,ଯବ ଓ ବାଲୁଙ୍ଗା ଧାନ ଅଗ୍ରର ଅଗରେ ବାହାରି ଥିବା ଛୁଞ୍ଚ ପରି ଶିଣା—2. The awn or the beard or needle-like filaments at the end of a grain of wheat, paddy or barley.

[ଦ୍ର—ସଂ. 'ଶୃଙ୍ଗ'ର ଅପଭ୍ରଂଶ 'ଶିଙ୍ଗ'; ଏହିପରି ଅନେକ କେତେଗୁଡ଼ିଏ ଅପଭ୍ରଷ୍ଟ ଶବ୍ଦ (ଯଥା—ଶୃଙ୍ଖଳରୁ ଶିଖି, ମୃଗରୁ ମିରିଗ, ପୃଷ୍ଠରୁ ପିଠି)ରୁ ଅନୁମିତ ହୁଏ ଯେ ଏକ ସମୟରେ ସ୍ୱର 'ଋ' ବର୍ଣ୍ଣ ବର୍ତ୍ତମାନ ଓଡ଼ିଆ ଉଚ୍ଚାରଣ 'ରୁ' ପରି ନ ହୋଇ 'ରି'ରୂପେ ଉଚ୍ଚାରିତ ହେଉଥିଲା । ପୁଣି କେତେକ ସଂସ୍କୃତ ଋ—ଯୁକ୍ତ ଶବ୍ଦର 'ଉ' ଉଚ୍ଚାରଣ ବିଶିଷ୍ଟ ଓଡ଼ିଆ ଅପଭ୍ରଂଶ ମଧ୍ୟ ଅଛି :—ଗୃହସ୍ଥ=ଘରସ୍ତ; କୃଷ୍ଣ=କୁଷ୍ଣ ।] [ଦ୍ର—ଶିଂଗ(ଘ) ଇତ୍ୟାଦି (ଦେଖ)—Śinga(gha) etc (see)

ଶିଙ୍ଗ(ଘ,ଙ୍ଗା,ଘ,ଙ୍ଗି,ଙ୍ଗେ,ଙ୍ଘେ)ଡ଼ା—ଦେ. ବି (ସଂ ଶୃଙ୍ଗାଟକ)—ଶିଙ୍ଗଡ଼ା—(ଦେଖ)—Śingarda. (See)
Śinga(ṅgha,ṅgā,ṅghi,ṅgi,ṅghi,ṅghe, ṅghe)ṛdā

ଶିଙ୍ଗା(ଘା)ଡ଼ା ହାର—ଦେ. ବି—ଶିଂଗଡ଼ାହାର (ଦେଖ)
Śingā(ṅghā)ṛdā hāra Śiṁgarḍāhāra. (See)

ଶିଙ୍ଗ(ଘା) ଇତ୍ୟାଦି—ଦେ ବି—ଶଂଗା(ଘା) ଇତ୍ୟାଦି (ଦେଖ)
Śiṅg(aṅgha) etc Śiṁgā(ghā) etc. (See)

ଶିଙ୍ଗାର ହାର—ଦେ, ବି (ସଂ. ଶୃଙ୍ଗାରହାର)—ଶିଂଗଡ଼ାହାର (ଦେଖ)
Śiṅgāra hāra Śiṁgarḍā hāra. (See)

ଶିଙ୍ଗି(ଙ୍ଘି)ଶୂଳା—ଦେ. ବିଣ—ଟିଙ୍ଗିଶୂଳା (ଦେଖ)
Śiṅgi(ṅghi)śūlā Tiṅgiśūlā. (See)

ଶିଙ୍ଘ (ଧାତୁ)—ସଂ—ଅଘ୍ରାଣ କରିବା—
Śiṅgha (root) To smell.

ଶିଙ୍ଘାଣ—ସଂ. ବି (ଶିଙ୍ଘ୍ ଧାତୁ=ଅଘ୍ରାଣ କରିବା+କର୍ମ୍ମ. ଅନ)—
Śiṅghāṇa ୧ । ଲୌହ ମଳ—1. Rust of iron. ୨ । ନାସାମଳ; ଶିଂଘାଣି—2. Snot; mucus of the nose. ୩ । କାଚପାତ୍ର—3. Glass pot. ୪ । ଶ୍ମଶ୍ରୁ (ହି. ଶ)—4. Beard. ୫ । ସ୍ଫୀତ ଅଣ୍ଡକୋଷ (ହି. ଶ)—5- Swollen testicle; hydrocele.

ଶିଙ୍ଘାଲ—ଦେ. ବିଣ. ପୁଂ—ଶୃଙ୍ଗବିଶିଷ୍ଟ (ହରିଣ ବା ଶମ୍ବର)—
Śiṅghāla Horned (male antelope).
শিংগাল सिंगवाला

ଶିଙ୍ଘିଣୀ—ସଂ. ବି (ଶିଙ୍ଘ୍ ଧାତୁ+କରଣ ଇନ୍+ଈ)—୧ । ନାକପୁଡ଼ା
Śiṅghiṇī (ବଙ୍ଗକୋଷ)-1. Nostril. ୨ । ନାକ (ହି. ଶ)—2. Nose.

ଶିଙ୍ଘିତ—ସଂ. ବିଣ (ଶିଙ୍ଘ୍ ଧାତୁ=ଅଘ୍ରାଣ କରିବା+କର୍ମ. ତ)—
Śiṅghita ଅଘ୍ରାତ—Smelt.

ଶିଜୁ(ଝୁ) (ଇତ୍ୟାଦି)—ଦେ. ବି—ସିଜୁ ଇତ୍ୟାଦି (ଦେଖ)
Śiju(jhu) (etc) Siju etc. (See)

ଶିଜୁ(ଝୁ) ସୋଲ(ଲ୍ହ)—ଦେ. ବି—ପୁରୁଣା ସିଜୁ ଗଛର ଛାଲ, ଯାହା ଖୁବ୍ ହାଲୁକା ଥିବାରୁ ଜାଲର ଅଗରେ ବନ୍ଧାଯାଏ ଓ ଜାଲକୁ ଗଭୀର ଜଳରେ ଭସାଇ ରଖେ—The bark of old Euphorbia tree used as floats for fishing nets.
Śiju(jhu) sola(lha)
শীজবেশোলা थीजका कोटिला

ଶିଞ୍ଜ (ଧାତୁ)—ସଂ—ଅବ୍ୟକ୍ତ ମଧୁର ଧ୍ୱନି କରିବା—
Śiñj (root) To utter sweet inarticulate sound.

ଶିଞ୍ଜ(ଞ୍ଜା)—ସଂ. ବି (ଶିଞ୍ଜ ଧାତୁ=ଅବ୍ୟକ୍ତ ମଧୁର ଧ୍ୱନି କରିବା+ଅ; ସ୍ତ୍ରୀ. ଆ)—ଶିଞ୍ଜିତ (ଦେଖ)—
Śiñja(ñjā) Śiñjita. (See)

ଶିଞ୍ଜ(ଞ୍ଜି)କା—ସଂ. ବି—କଟିଧୃକ; ଅଣ୍ଟାସୂତା (ହି. ଶ)
Śiñj(ñji)kā Waist-chain.

ଶିଞ୍ଜନ—ସଂ. ବି (ଶିଞ୍ଜ ଧାତୁ=ଅବ୍ୟକ୍ତ ଧ୍ୱନି କରିବା+ଭାବ. ଅନ)—
Śiñjana ୧ । ଅବ୍ୟକ୍ତ ମଧୁର ଶବ୍ଦ—1. A sweet and indistinct sound. ୨ । ଅଳଙ୍କାରର ମଧୁର ଝଙ୍କାର ବା ଧ୍ୱନି—2. Tinkling of ornaments; clanging.

ଶିଞ୍ଜିତ—ସଂ. ବିଣ (ଶିଞ୍ଜ୍ ଧାତୁ=ଅବ୍ୟକ୍ତ ଧ୍ୱନି କରିବା+କର୍ତ୍ତି ତ)—୧ । ମୁଖର; ଶବ୍ଦ କରୁଥିବା—1. Resounding. ୨ । ମଧୁର ଝଣ ଝଣ ଶବ୍ଦକାରୀ—2. Tinkling. ସଂ ବି ୧ । (ଭାବ, ତ) ଅବ୍ୟକ୍ତ ମଧୁର ଧ୍ୱନି—1. Sweet indistinct sound. ୨ । ଅଳଙ୍କାରର ଝଣ ଝଣ; ରୁଣୁଝୁଣୁ ନାଦ—2. The tinkling of ornaments. ୩ । (+କର୍ତ୍ତୃ ତ) ଧନୁର୍ଗୁଣ—3. The cord of a bow; bow string. ୪ । ନୂପୁର—4. Tinkling anklet ୫ । ବଳୟ—5. A large ring.
Śiñjita

ଶିଞ୍ଜିନୀ—ସ. ବି—(ଶିଞ୍ଜ୍ ଧାତୁ+କର୍ତ୍ତି ଇନ୍+ସ୍ତ୍ରୀ ଈ)—୧। ଧନୁର୍ଗୁଣ
Śiñjinī 1. Bow string ୨ । ନୂପୁର—2 Tinkling anklet. ୩ । ମୁଦି; ମୁଦରା—3. Ring ସ. ବିଣ ଶିଞ୍ଜୀର ସ୍ତ୍ରୀ ଲିଙ୍ଗ—Feminine of Śiñji.

ଶିଞ୍ଜୀ—ସ. ବିଣ. (ଶିଞ୍ଜ୍ ଧାତୁ+କର୍ତ୍ତୃ ଇନ୍, ଶିଞ୍ଜିନ୍ ଶବ୍ଦ)-ମଧୁର ଶବ୍ଦକାରୀ—Tinkling; clanging.
Śiñjī
(ସ୍ତ୍ରୀ ଶିଞ୍ଜିନୀ—ସ୍ତ୍ରୀ)

ଶିଠ. ଦେ. ବି—୧ । ଶିଠା (ଦେଖ)—Śiṭhā (See) ୨ । ଶିଠ (ଦେଖ)—2. Śiṭha (See).
Śiṭa

ଶିଟା—ଦେ. ବି ଓ ବିଣ—ଶିଠା (ଦେଖ)—
Śiṭā Siṭhā (See)

ଶିଠ—ଦେ. ବି.—ଶିଠା (ଦେଖ)—Śiṭhā (See). ପ୍ରାଦେ
Śiṭha (ଗଡ଼ଜାତ). ବି—(ସଂ. ଶ୍ରେଷ୍ଠ)—୧ । ରାଜାଙ୍କ ଭଣ୍ଡାରର ଓ ଖମାରର ତତ୍ତ୍ୱାବଧାରକ କର୍ମଚାରୀ; ଯେଉଁ ବ୍ୟକ୍ତି ଖମାରରୁ ଜିନିଷ ପତ୍ର ଦିଅା ନିଆ କରେ—An officer of a Rājā's household who is in charge of

the palace and granary.
[ଦୃ—ସେହି ବ୍ୟକ୍ତି ଅସ୍ଥ ବ୍ୟସ୍ଥ ଲେଖାଲେଖି କରନ୍ତି ତାଙ୍କୁ କରଣ ବୋଲାଯାଏ ।] ୨ । ଦୂତ—2. Messenger [ଭି—କେ ଦ୍ୱାର ଶିଠ ପେଷିଲେ, କେହୁ ଆପଣେ ଅସିଲେ· ବ୍ରଜନାଥ ସମରତରଙ୍ଗ] ପ୍ରାଦେ (କଳମାଳ) ବ (ସଂ· ଶ୍ରେଷ୍ଠ; ଶ୍ରେଷ୍ଠ ଭାଷା)—ଓଡ଼ିଆଭାଷା—The Oriya language

ଶିଠା—ଦେ· ବ· (ସଂ. ଶିଷ୍ଟ, ଉଚ୍ଛିଷ୍ଟ, ଅବ ଷ୍ଟ କମା କାଢ଼ି)—୧ ।
Sitha ତେଲ ଅଧର ତାଳି—1. The sediment of the
शिटा शिटे oil left at the bottom of a pot;
गाद्द सिठा dregs ୨ । ମହୁ ଶିଠା; ମହମ—2.Wax. ୩ । ଭାଙ୍ଗ ଅାଦି ଛଣାଯିବା ପରେ ଛଣା କନାରେ ରହିଯିବା ଖଦଡ଼ା ବସ୍ତୁ - ३. Refuse left after sifting pasted ganja leaves. ୪ । ଦ୍ରବ୍ୟାଦିର ବର୍ଜନୀୟ ଅଂଶ—4. Dregs; refuse. ଦେ· ବଣ—ମହୁ ଶିଠାପରି ବିବର୍ଣ୍ଣ—Pale as wax·discoloured; wan. [ଯଥା—ତା ମୁହଁ ଶିଠା ପଡ଼ି ଗଲାଣି]

ଶିଠି(ଠା)କରଣ—ଦେ· ବ—୧ । ରଜାଙ୍କ ଭୂଅସ ଓ ଗମାଗରକର୍ମଗୃହସ୍ଥ
Sithi(tha)karana ଦ୍ୱୟ—ଶିଠ ଓ କରଣ—1 The two officers namely Sitha and Karana of a Raja's palace and granary. ୨ । ଶେଠ କରଣ (ଦେଖ)—2 Setha karana (See)

ଶିଣ୍ଡାକି—ସଂ· ବ·—ମୂଳାପତ୍ରର ରସରେ ବେଶର ଓ ଲୁଣ ମିଶାଇ
Sindaki କମା ବେଶରରେ ଶୁଖିଲ ଚୂନା ପକାଇ ପ୍ରସ୍ତୁତ କରଯିବା କାଞ୍ଜି (ହି· ଶ)—A sour gruel used as curry. [ଦ୍ରୁ—ବୈଦ୍ୟକ ଅନୁସାରେ ଏହା ରୁଚକାରୀ, ଲଘୁପାକ, କଫକର, ପିତ୍ତକର ଅଟେ—ହି· ଶ)

ଶିତପୁଟ—ସଂ· ବ ୧ । ବିଡ଼ାଲ ଜାତୀୟ ପଶୁ ବିଶେଷ—1. A species
Sit-puta of cat-like animal. ୨ । କୃଷ୍ଣ ଭ୍ରମର—2. Black bee. ୩ । ହରିଣ (ଶବ୍ଦକୋଷ)—3. Deer. ୪ । ପଶୁ (ଶବ୍ଦକୋଷ)—4. Beast.

ଶିତ—ସଂ ବଣ (ଶି ଧାତୁ+କର୍ମ ତ)—୧ । ଶାଣିତ—1. Whet-
Sita ted; sharpened. ୨ । ତୀକ୍ଷ୍ଣ—2. Sharp. ୩ । କ୍ଷୀଣ; କୃଶ—3 Slender; lean. ୪ । ଦୁର୍ବଳ—4. Weak. ୫ । କ୍ଷୟ ପ୍ରାପ୍ତ—5. Decayed waned. ୬ । ପତଳା—6 Thin. ୭ । ମୁନିଆ—7. Sharp pointed. ସଂ. ବ ୧ । (ନାମ) ବିଶ୍ୱାମିତ୍ରଙ୍କ ଗୋତ୍ରର ଏକ ଋଷି (ହି· ଶ)—1.Name of a sage. ୨ । ବୃଷ (ଶବ୍ଦକୋଷ)—2. Bull. ୩ । ରଜତ; ରୌପ୍ୟ (ଶବ୍ଦକୋଷ)—3. Silver. ଗ୍ରା. ବ. ଓ ବଣ (ସଂ ଶୀତ)—ଶୀତ ଇତ୍ୟାଦି (ଦେଖ)—Sita etc (See).

ଶିତକର—ସଂ ବ—କର୍ପୂର (ରାଜନିର୍ଘଣ୍ଟ)
Sitakara Camphor

ଶିତଖଣ୍ଡ—ସଂ· ବ·—ସାତ (ହରେକୃଷ୍ଣ ଦ୍ରବ୍ୟଗୁଣ)—
Sita khanda Powdered sugar

ଶିତଦ୍ରୁ—ସ· ବ—(ଶିତ=କ୍ଷୀଣ ଭାବରେ+ଦ୍ରୁ ଧାତୁ=ଗମନକରିବା
Sitadru କର୍ତ୍ତୃ· ଉ)—ଶତଦ୍ରୁ (ଦେଖ)—Satadru (See).

ଶିତ ନିର୍ଗୁଣ୍ଡୀ—ସ· ବ—୧ । ଶେଫାଳିକା (ହି· ଶ)—1. Nyctan-
Sita nirgundi thes flower. ୨ । କଳା ବେଗୁନିଆ (ଶବ୍ଦକୋଷ)—2. The black variety of Vitex Trifolia.

ଶିତ ପର୍ଣ୍ଣୀ—ସ. ବ—(ବହୁବ୍ରୀହି)—ମୁଥା [ହି· ଶ]—
Sita parnna Bulbous grass root.

ଶିତବ(ବା)ର—ସ. ବ—ଶତାବରୀ (ହି. ଶ)—
Sitaba(ba)ra Asparagus Racemosus

ଶିତଲା—ପ୍ରାଦେ. (ସମ୍ବଲପୁର)—ବ.—(ସ. ଶୀତଳା)—ଓଳଷତା,
Sitala ବସନ୍ତ ଓ ଗୋମଡ଼କ ଆଦି ଲାଗିଲା ବେଳେ ପଣା ଭୋଗ କରି ଗ୍ରାମ ଦାଣ୍ଡରେ ଢାଳି ଦେବା କର୍ମ—The act of pouring on a public road the sugared drink after it is offered to the Goddesses of cholera, small pox and cattle pestilence during their prevalence.

ଶିତଲା ମା—ପ୍ରାଦେ· (ସମ୍ବଲପୁର) ବ.—(ସ. ଶୀତଳା+ମାତା)
Sitala ma ବସନ୍ତ ରୋଗ—Small-pox.

ଶିତ ଶାକ—ସ. ବ—ଶାଳିଞ୍ଚ ବା ମଦରଙ୍ଗା ଶାଗ—An aquatic
Sita saka pot herb; Alternanthera Sesseles.

ଶିତ ଶୂକ—ସ. ବ—(ଶିତ=ତୀକ୍ଷ୍ଣ ଅଟେ ଶୂକ ଯାହାର; ବହୁବ୍ରୀହି)-
Sita suka ୧ । ଗହମ; ଗୋଧୂମ—1. Wheat. ୨ । ଯବ-2. Barley.

ଶିତସାର—ସ. ବ.—(ବୈଦ୍ୟକ)—(ଶିତ=କ୍ଷୀଣ ଅଟେ ସାର ଯାହାର,
Sita sara ବହୁବ୍ରୀହି)—୧ । ଶାଳିଞ୍ଚ; ମଦରଙ୍ଗା ଶାଗ—[ଶିତଶାର—ଅନ୍ୟରୂପ] 1.A kind of pot herb;Alternanthera Sessilis. ୨ । କେନ୍ଦୁ ଗଛ (ଶବ୍ଦକୋଷ)-2. Diospyrus Embryopteris (tree).

ଶିତା—ସ· ବ—ନବାତ; ଚିନି (ହରେକୃଷ୍ଣ. ଦ୍ରବ୍ୟଗୁଣ)—
Sita Sugar.

ଶିତାଦ୍ରିକର୍ଣ୍ଣୀ—ସ· ବ—ଶ୍ୱେତ ଅପରାଜିତା ଲତା (ଶବ୍ଦକୋଷ)—
Sitadrikarnni The white flowered variety of Aparajita creeper.

ଶିତା ଫଳ—ସ. ବ.—ଆତ (ହି. ଶ)—
Sita phala Custard apple.

ଶିତାବର—ସ. ବ—୧ । ସୋମରାଜୀ [ହି. ଶ.]—1. Serratula
Sitabara Anthelmintica (plant and seed).

୬। ସୂକୁସୂକଥ ଶାଗ—2. Blepharis Edulis (pot-herb). ୩। ଶତାବରୀ [ବୈ. ଶ]—
3. Asparagus Racemosus.

**ଶିତି**—ସଂ. ବଣ—(ଶି ଧାତୁ+କର୍ମ. ତି)—୧। କୃଷ୍ଣବର୍ଣ୍ଣଯୁକ୍ତ—
Śiti 1. Black; ୨। ଶୁକ୍ଳ—2 White. ସଂ. ବ—୧। କୃଷ୍ଣ ବର୍ଣ୍ଣ—1. Black colour. ୨। ଧଳା ରଙ୍ଗ—2. White colour. ୩। ଭୂର୍ଜ ପତ୍ରର ଗଛ—[ଶବ୍ଦକୋଷ]—3. The birch tree.

**ଶିତି କଣ୍ଠ**—ସଂ.ବି.ପୁଂ—(ବହୁବ୍ରୀହି; ଶିତି=କୃଷ୍ଣବର୍ଣ୍ଣ ଅଟେ କଣ୍ଠ ଯାହାର)-
Śiti kaṇṭha ୧। ନୀଳକଣ୍ଠ; ଶିବ, ମହାଦେବ—1 Śiba. ୨। ମୟୂର—2. Peacock. ୩। ଦାତ୍ୟୂହ, ଡାହୁକ ପକ୍ଷୀ—3. The water-hen; Amaurornis Phaenicurus. ୪। ଚାତକ (ବୈ. ଶ.)—4. Pied crested cuckoo; swift. ୫। ନାଗ ଦେବତା—5. Serpent worshippeda as Deity.

**ଶିତି ଚନ୍ଦନ**—ସଂ. ବ—କସ୍ତୁରୀ (ବୈ. ଶ)—
Śiti chandana Musk

**ଶିତିଚାର**—ସଂ. ବ—ସୁନୁସୁନିଆ ଶାଗ [ଶବ୍ଦକୋଷ]—
Śitichāra Belpharis Edulis (aquatic pot-herb).

**ଶିତିଚ୍ଛଦ(ପକ୍ଷ)**—ସଂ. ବ—(ଶିତି=ଶୁକ୍ଳ ଅଟେ ଛଦ=ପକ୍ଷ ଯାହାର; ବହୁବ୍ରୀହି)—ହଂସ—Swan.
Śitichchhada (paksha)

**ଶିତିବ(ବା)ର**—ସଂ. ବ—(ବୈଦ୍ୟକ)—ଜଳ କର୍ଦ୍ଦମଜ ଅମ୍ଳସ୍ୱାଦ ଶାକ ବିଶେଷ; ସୂକ୍ଷ୍ମପର୍ଣ୍ଣିକ; ସୁନୁସୁନିଆ ଶାଗ—
Śitiba(bā)ra A pot herb; Blepharis Edulis; Marsilea Qauadrifoliata.

**ଶିତିବାସାଃ**—ସଂ. ବି. ପୁଂ—[ଶିତି=କୃଷ୍ଣ ବର୍ଣ୍ଣ ଅଟେ ବାସଃ=ବସ୍ତ୍ର ଯାହାର; ଶିତି ବାସସ୍ ଶବ୍ଦ ୧ମା. ୧ବ]—
Śiti bāsāḥ ନୀଳାମ୍ବର; ବଳରାମ; ଶ୍ରୀକୃଷ୍ଣଙ୍କ ଜ୍ୟେଷ୍ଠ ବୈମାତ୍ରେୟ ଭ୍ରାତା—
Balarāma; elder step-brother of Srikrushṇa.

**ଶିତି ମୂଳକ**—ସଂ. ବ—ଉଶୀର; ବେଣାଚେର [ବୈ. ଶ]—
Śiti mūlaka The root of Beṇā grass.

**ଶିତିରତ୍ନ**—ସଂ. ବ—ନୀଳା [ବୈ. ଶ.]—
Śiti ratna Sapphire.

**ଶିତି ସାରକ**—ସଂ. ବ—(ଶିତି=କୃଷ୍ଣ ବର୍ଣ୍ଣ ଅଟେ ସାର=ଜର୍ଣ୍ଣାଂଶ+କ)—ତନ୍ଦୁକ; ତେନ୍ଦୁ—A kind of tree and its fruit; Diospyros Embryopteris; ebony.
Śiti sāraka [ଶିତି ସାର—ଅନ୍ୟରୂପ]

**ଶିତୁଲିଆ**—ଦେ. ବ—ଦେହରେ ଓ ବିଶେଷତଃ ମୁଣ୍ଡରେ ଏକାଦିକ୍ରମେ ବାହାରିବା ବହୁ କଷ୍ଟପ୍ରଦ ବ୍ରଣ—[ବି—ସାଧାରଣତଃ ଦେଖା ଯାଏ ଯେ, ଗ୍ରୀଷ୍ମ ଋତୁ ଶେଷରେ ଓ ବର୍ଷା ଋତୁରେ ଦେହରେ ଗୋଟିକ ପରେ ଗୋଟିଏ ବହୁତ ବ୍ରଣ ଉଠେ]—
Situliā Generalised furunculosis; multiple eruption of boils of varying sizes on the skin on different parts of the body.

**ଶିଥିଳ**—ସଂ. ବଣ.—(ଶ୍ଲଥ ଧାତୁ=ଦୁର୍ବଳ ହେବା+କର୍ତ୍ତୃ. ଇଲ; ନିପାତନ)—୧। ଶ୍ଲଥ; ଢିଲା; ଢୁଗୁଲା, ଢେଲ—
Sithila 1. Loose; slack; lax; not tight. ୨। ଅବସନ୍ନ; କ୍ଲାନ୍ତ—2. Languid; tired. ୩। କ୍ଷୀଣ; ଦୁର୍ବଳ—3. Weak, tender. [ବି—ପାଣି ପାଦ ତାର ଶିଥିଳ ଅଛି। ଗୋଲକ. ଇନ୍ଦୁରେଖା।] [ଶୈଥିଲ୍ୟ, ଶିଥିଳତା—ବ] ୪। ଅଳସ—4. Idle; dull. ୫। ଅବହେଳିତ, ପରିତ୍ୟକ୍ତ—5. Neglected; uncared for. ୬। ଅଡୁଆ; ଅଲୁଳାୟିତ—6. Hanging loose; dishevelled. ୭। ଅଦୃଢ଼ବାକ୍ୟ (ବୈ.ଶ)—7. Of unstable promise. ୮। ଅସ୍ପଷ୍ଟରୂପେ ଶୁଣାଯିବା (ବୈ. ଶ)—8. Indistinct.

**ଶିଥିଳତା(ତ୍ୱ)**—ସଂ. ବ (ଶିଥିଳ+ଭାବେ. ତା; ତ୍ୱ)—୧। ଶ୍ଲଥଭାବ—
Sithilatā(twa) 1. Looseness; laxity; slackness. ୨। କ୍ଷୀଣତା—2. Weakness. ୩। ଶ୍ରାନ୍ତି—3. Langour. ୪। ଆଳସ୍ୟ—4. Laziness. ୫। ନିୟମ ପାଳନରେ ଅଦୃଢ଼ତା—5. Want of discipline. ୬। ସାମର୍ଥ୍ୟର ହାନି—6. Loss of strength. ୭। (ବ୍ୟାକରଣ) ବାକ୍ୟରେ ଶବ୍ଦମାନଙ୍କର ପରସ୍ପରଠାରୁ ଅର୍ଥସମ୍ବନ୍ଧର ଅଭାବ (ବୈ. ଶ)—7. (grammar) Incohorence or want of relationship between the words of a sentence. ୮। (ନ୍ୟାୟ ଶାସ୍ତ୍ର) ତର୍କରେ କୌଣସି ଅବୟବର ଅଭାବ—8. (Logic) Want of a premise in a syllogism or argument.

**ଶିଥିଳା(ଳେ)ଇବା**—ଦେ. କ୍ରି (ସଂ. ଶିଥିଳ ଶବ୍ଦଜ)—ଢିଲା କରିବା; ଢୁଗୁଲା କରିବା—To relax; to loosen.
Sithilā(le)ibā ଶିଥିଲ କରা शिथिलाना

**ଶିଥିଳିଆ**—ଦେ. ବଣ (ସଂ. ଶିଥିଳ)—ଶିଥିଳ (ଦେଖ)
Sithiliā शिथिल शिथिल Śithila, (See)

ଶିଥିଳତା ଦେ. ବ (ସଂ. ଶିଥିଳତା)—ଶିଥିଳତା (ଦେଖ)
शिथिलाई Sithilatā, (See)

**ଶିଥିଳିତ**—ଦେ. ପଦ୍ୟ) ବଣ (ସଂ. ଶିଥିଳୀକୃତ)—ଶ୍ଲଥଭାବଯୁକ୍ତ—
Śithilita Having looseness or laxity; loosened.
शिथिलित [ବି—ଉଡ଼ି-ଚାପେ ଶିଥିଳିତ ଚୂଳ ପୁଷ୍ପରାଶି।
ଶିଥିଳିତ ମଧୁସୂଦନ. ଋଷିର ସମତରୁ।]

**ଶିଥିଳୀକରଣ**—ସଂ. ବ (ଶିଥିଳ+ଅଭୂତ ତଦ୍ଭାବେ ଚ୍ୱି+କରଣ)—
Sithilīkaraṇa ଅଶିଥିଳବସ୍ତୁକୁ ଶିଥିଳ କରିବା—
(ଶିଥିଳୀକୃତ—ବଣ) Slackening; loosening.

**ଶିଥିଳୀଭୂତ**—. ବଣ (ଶିଥିଳ+ଅଭୂତ ତଦ୍ଭାବେ ଚ୍ୱି+ଭୂତ)—
Sithilībhūta ଢିଲା ହୋଇଥିବା (ଅଶିଥିଳ ବସ୍ତୁ)
(ଶିଥିଳୀଭାବ—ବ) Become slack.

ଶିନା—ସଂ. ବି—ଭୂଇଁଅଁଳା (ବୃ. ଶ)
Sinā Phyllanthus Niruri (plant).

ଶିନି—ସଂ. ବି (ଶି ଧାତୁ=ଶାଣ କରିବା+କର୍ତ୍ତୃ. ନି)—୧ । ଗର୍ଗ
Sini ଋଷିଙ୍କ ପୁତ୍ର (ବୃ. ଶ)—1. Name of the son of Sage Garga. ୨ । ଯଦୁବଂଶୀୟ ନୃପ ବିଶେଷ—2. Name of a king of the Jadu dynasty of ancient India. [ ଦ୍ର—ଏ ଦେବକରାଜକନ୍ୟା ଦେବକୀଙ୍କ ବିବାହସଭାରୁ ଦେବକୀଙ୍କୁ ବସୁଦେବଙ୍କର ଭାର୍ଯ୍ୟାର୍ଥ ବଳପୂର୍ବକ ଆଣିଥିଲେ ଓ ସେହି ସମୟରେ ସୋମଦତ୍ତ ନାମକ ଜଣେ ରାଜା ଏହାଙ୍କୁ ବାଧା ଦେବାରୁ ଶିନି ସୋମଦତ୍ତଙ୍କୁ ପଦାଘାତ କରିଥିଲେ । ଏହାଙ୍କ ପୁତ୍ରଙ୍କ ନାମ ସତ୍ୟକ ଓ ପୌତ୍ରଙ୍କ ନାମ ସାତ୍ୟକି । ସାତ୍ୟକି ପାଣ୍ଡବ ପକ୍ଷୀୟ ଯୋଦ୍ଧା ଥିଲେ । ] ୩ । ଅକ୍ରୂରଙ୍କ ପିତା—(ହରିବଂଶ)—3. Name of the father of Akrūra. ୪ । କ୍ଷତ୍ରିୟ ବିଶେଷ (ବୃ. ଶ)—4. A class of Kshatriyas. ୫ଦେ. ବି—ଶ୍ରୀନିବାସର ଡାକ
ଶ୍ରিনী শিনিবাস ନାମ—Name for calling Srinibāsa.

ଶିପ—ଦେ. ବି (ସଂ. ଶୁକ୍ତି, ପା. ସିପ୍ପି)—୧ । ଶାମୁକା; ଶୁକ୍ତିର
Sipa ଖୋଳ—1. Oyster shell, mother of pearls, শামুক,ঝিনুক [ଦ୍ର—ଏହାର କାଟ ପାଲିସ୍ କରି ବୋତାମ,ଛୁରୀବେଣ୍ଟ
सितुआ, सीप ଆଦି ତିଆରି କରାଯାଏ ।] ୨ । ନଡ଼ିଆ ଫୁଲଗୁଚ୍ଛକୁ
চাপ ଆବୃତ କରିଥିବା ଖୋଳ; ନଡ଼ିଆର ଫୁଲର ଖୋସା—2. The
नारियलफूलका खोल sheath enclosing the cluster of cocoanut-flowers. [ଦ୍ର—ଏହା ଶବ୍ଦାର୍ଥ ଧାତୁ (ଶବ୍ଦକୋଷ) ଗତ ଦେଖାଯାଏ । ଏହି ନଡ଼ିଆ ଶିପ ବା ଖୋଷାକୁ ଚିରୁଡ଼ା ଚିରୁଡ଼ା କରି ତାର୍ ବାନ୍ଧ ତହିଁରେ ଅଗ୍ନି ବା ବଢ଼ୁଆ କରାଯାଏ; ସେ ବଢ଼ୁଆରେ ନିଆଁ ଲଗାଇଲେ ତହିଁରୁ ଯେ ଧୂଆଁ ବାହାରେ, ସେ ଧୂଆଁ ଦ୍ୱାରା ମଶାମାନେ ପଳାଇଯାଆନ୍ତି । ମଶାମାନଙ୍କ ପକ୍ଷରେ ଅନ୍ୟ ଧୂଆଁ ଅପେକ୍ଷା ଏ ଧୂଆଁ ଅଧିକତର ଅସହ୍ୟ ହେବା ପରୀକ୍ଷା କରାଯାଇଅଛି । ]

ଶିପ ଚୂନ—ଦେ. ବି (ସ. ଶୁକ୍ତି+ଚୂର୍ଣ୍ଣ)—ଶାମୁକାକୁ ପୋଡ଼ି ତହିଁରୁ
Sipa chūna ପ୍ରସ୍ତୁତ କରାଯିବା ଚୂନ—Lime prepared by
শামুকের চুন. सीपका चूना burning oyster shells.

ଶିପ ବୋତାମ—ଦେ. ବି (ସ. ଶୁକ୍ତି+ଇଂ. ବଟନ୍)—ଶାମୁକାକୁ କାଟି
Sipa botāma ତହିଁରୁ ପ୍ରସ୍ତୁତ କରାଯିବା ବୋତାମ—
ঝিনুকের বোতাম सीपका बोताम Buttons made from mother of pearls.

ଶିପା—ଦେ. ବିଣ—୧ । ସଙ୍କୁଚିତ—1. Contracted. ୨ । ଯାହା
Sipā ଶିପ ପରି ଶୁଖି ସେମିତି ଯାଇଥାଏ—2. Shrunken.
শিপা, শিপশিপা, ছিপছিপে सिकुड़ाहुआ ୩ । କ୍ଷୀଣ—3. Lean; emaciated; reduced. ୪ । ଶୀର୍ଣ୍ଣ ଓ ଦୀର୍ଘ—4. Thin and long; lean and tall.

ଶିପା(ପେ)ଇବା—ଦେ. କି—୧ । ସଙ୍କୁଚିତ ହେବା; ଶୁଖି ସେମିତି ଯିବା—
Sipā(pe)ibā 1. To be contracted; to shrink;
গুটিয়েযাওয়া सिकुड़ना to be reduced
( ଶିପା[ପେ]ଇଯିବା—ଅନ୍ୟରୂପ ) ୨ । କ୍ଷୀଣ ହେବା—2 To become lean or emaciated. ୩ । ( ଶିଜନ୍ତ ) ସଙ୍କୁଚିତ କରିବା—3 To cause to shrink.

ଶିପାଛ(ଛୁ)ଡ଼ା—ଗ୍ରାଦେ (ଗଞ୍ଜାମ) ବି—( ସଂ ଶୀତ+ପ୍ରଚ୍ଛଦ ?)—
Si pachha(chhu)rdā ଶୀତ ଚଦର—Wrapper for the winter.

ଶିପି—ସଂ. ବି—୧ । ରଶ୍ମି—1. Ray. ୨ । ତେଜଃ—2. Sipi Brightness; splendour. ୩ । ଚମଡ଼ା; ଛାଲ—3. Skin; hide. ଦେ. ବି—ଶିପ ଇତ୍ୟାଦି (ଦେଖ)—Sipa etc (See)

ଶିପିବା—ଦେ. କି—୧ । ସଙ୍କୁଚିତ ହେବା—
Sipibā संकुचितहওয়া सिकुड़ना 1. To be contracted.
[ଶିପିଯିବା—ଅନ୍ୟରୂପ] ୨ । ଶୁଖି ସେମିତି ଯିବା—2. To shrink and wither. ୩। କ୍ଷୀଣ ହେବା—3. To be reduced; to be emaciated; to become lean.

ଶିପିବିଷ୍ଟ—ସ ବିଣ. ପୁଂ (ଶିପି=ତେଜଃ+ବିଶ୍ ଧାତୁ+ଅପାଦାନ ତ)-
Sipibishta ୧ । କୁତ୍ସିତ—1. Having shrunken
(ଶିପିବିଷ୍ଟା—ସ୍ତ୍ରୀ) or nasty skin. ୨ । କୁଷ୍ଠରୋଗଗ୍ରସ୍ତ—2. Leprous; suffering from leprosy. ୩ । ଜନ୍ମତଃ ଅନାବୃତ ମେଢ୍ର (ଶବ୍ଦକୋଷ)—3. Having no foreskin since birth. ୪ । ଟାଙ୍ଗରା—4. Bald. ସ ବି. ପୁଂ—୧ । ବିଷ୍ଣୁଙ୍କର ନାମାନ୍ତର ( ବିଷ୍ଣୁଙ୍କର ସହସ୍ର ନାମ ମଧ୍ୟରୁ ଏକନାମ )—1. One of the names of Bishnu. [ଦ୍ର—ମହାଭାରତରେ ଭଗବାନ କହିଅଛନ୍ତି ଯେ, ମୁଁ ଶିପି ଅର୍ଥାତ୍ ତେଜଃପ୍ରକାଶ କରି ଜଗତର ସବୁ ପଦାର୍ଥରେ ପ୍ରବେଶ କରେଁ ବୋଲି ମୋର ନାମ ଶିପିବିଷ୍ଟ ହୋଇଅଛି] ୨ । ଶିବ (ନକେ)—Siba.

ଶିପ୍ର—ସ ବି (ନାମ) —ଶିପ୍ରାନଦୀର ଉତ୍ପତ୍ତିସ୍ଥଳ ହିମାଳୟସ୍ଥ ଦେବକ୍ରୀଡ଼ା
Sipra ସ୍ଥଳୀ ସରୋବରବିଶେଷ (କାଳିକାପୁରାଣ)—Name of a mythological lake on the Himalayas which is the source of the Siprā river.

ଶିପ୍ରା—ସଂ. ବି (ନାମ)—୧ । କାଳିକାପୁରାଣୋକ୍ତ ଶିପ୍ର ସରୋବରରୁ
Siprā ଉତ୍ପନ୍ନ ନଦୀବିଶେଷ—1. Name of a mythological river. ୨ । ସିପ୍ରା (ଦେଖ) —2. Siprā (See) [ ଭ—ଶୁଦ୍ଧ ଶିପ୍ରା ସ୍ରୋତ ବକ୍ଷ୍ୟାତ ଜଗତେ, ମହାନଦୀ ନାମ ରହିଲୁ ସ୍ମରଣେ —ଭ୍ରଧାନାଥ ଚନ୍ଦ୍ରିକା ।]

**ଶିଫ(ଫା)**—ସ ବି—(ଶୀ ଧାତୁ=ଶୋଇବା+କର୍ତ୍ତ୍ରି ଫ; +ଅ ) ତନ୍ତୁ-
Ṡipha(phā) ବିଶିଷ୍ଟ ଚେର—1. Fibrous root. ୨। ବର ଆଦିର ଓହଳ—2. Aerial roots such as those of banian trees. ୩। ହଳଦୀ—3. Turmeric. ୪। ପଦ୍ମକନ୍ଦ—4. The root of lotus. ୫। ମାଂସିକା; ଜଟାମାଂସ (ହି. ଶ)-5. Indian Spikenard. ୬। ମାତା (ହି.ଶ)-6. Mother. ୭। ଲତା (ହି.ଶ)—7. Creeper. ୮। କୋରଡ଼ାରେ ପ୍ରହାର (ହି. ଶ)—8. Stroke with a whip. ୯। ଏକ ବୃକ୍ଷ, ଯାହାର ତନ୍ତୁ-ମୟ ଚେରରୁ କୋରଡ଼ା ତିଆର ହେଉଥିଲା (ହି. ଶ)—9. Name of a tree with fibrous roots. ୧୦। ନଦୀ [ହି. ଶ]—10. River. ୧୧। ପ୍ରାଚୀନ ନଦୀବିଶେଷ (ହି. ଶ)—11. Name of on ancient river. ୧୨। ଶିଖା; ଚୁଟି [ହି. ଶ]—12. Pigtail on the head. ୧୩। ଶତପୁଷ୍ପା, ଶୁଲୁଫ [ବିଶ୍ୱକୋଷ]—13. Dill seed.

**ଶିଫା କନ୍ଦ**—ସ ବି [୬ଷ୍ଠୀ ତତ୍)—ପଦ୍ମମୂଳ—
Ṡiphā kanda The root of lotus.
(ଶିଫାକ—ଅନ୍ୟରୂପ)

**ଶିଫାଧର**—ସ ବି (ଶିଫା+ଧୃ ଧାତୁ+କର୍ତ୍ତ୍ରି ଅ)—ଡାଳ;ଶାଖା (ହି ଶ)
Ṡiphādhara —Branch.

**ଶିଫାରୁହ**—ସ ବି (ଶିଫ+ଅ+ରୁହ୍ ଧାତୁ=ଜନ୍ମିବା+କର୍ତ୍ତ୍ରି ଅ)—
Ṡipharuha ବଟବୃକ୍ଷ—The banian tree.

**ଶିଫାଲି(ଳୀ)**—ସ ବି [ଶୀ ଧାତୁ=ଶୟନକରିବା+କର୍ତ୍ତ୍ରି ଫ=ଶିଫ;ଶିଫ +ଅଳ)—ଶେଫାଳି (ଦେଖ)—
Ṡiphāḷi(ḷī) Ṡephāḷi (See)
(ଶିଫାଳିକା—ଅନ୍ୟରୂପ

**ଶିବ**—ସ ବି. ପୁଂ [ଶୀ ଧାତୁ=(ଅଣିମାଦି ଗୁଣ) ଶୋଇବା+ଅଧିକରଣ
Ṡiba ଅ; କିମ୍ବା ଶୋ ଧାତୁ [ଅଶୁଭ] ନାଶକରିବା+କର୍ତ୍ତ୍ରି ବ;
[ଶିବା—ସ୍ତ୍ରୀ] ଯେ ଅନିଷ୍ଟ ନାଶ କରନ୍ତି] ୧। ମହାଦେବ, ଶଙ୍କର; ଈଶ୍ୱରଙ୍କର ତ୍ରିମୂର୍ତ୍ତି ମଧ୍ୟରୁ ଏକତମ—
1. God Mahādeba, one of the trinity of the Hindu pantheon.

[ଦ୍ର—ହିନ୍ଦୁମତରେ ବ୍ରହ୍ମା—ସୃଷ୍ଟି କରନ୍ତି, ବିଷ୍ଣୁ ପାଳନ କରନ୍ତି ଓ ଶିବ ବିନାଶ କରନ୍ତି। ପୁରାଣ ସମୂହରେ ଓ ରାମାୟଣ ଓ ମହାଭାରତରେ ଶିବ ମହାତ୍ମ୍ୟ କୀର୍ତ୍ତିତ ହୋଇ ଅଛି। ବେଦ ଓ ସଂହିତାରେ ଯେ ରୁଦ୍ର ବୋଲି ପରିଚିତ, ରାମାୟଣ, ମହାଭାରତ ଓ ପୁରାଣାଦିରେ ସେହି ଶିବ ନାମରେ ପ୍ରସିଦ୍ଧି ଲାଭ କରିଅଛନ୍ତି। ମହାଭାରତ ଅନୁ-ଶାସନ ପର୍ବରେ ୧୭ ଅଧ୍ୟାୟରେ ଶିବଙ୍କ ସହସ୍ର ନାମ ଅଛି। ଶିବଙ୍କର ଅନ୍ୟ ନାମ :—ଶମ୍ଭୁ, ଈଶ, ପଶୁପତି, ଶୂଳୀ, ବାସୁଦେବ, ମହେଶ୍ୱର, ଈଶ୍ୱର, ଶର୍ବ, ଈଶାନ, ମୃତ୍ୟୁଞ୍ଜୟ, ଶଙ୍କର, ଚନ୍ଦ୍ରଶେଖର, ଭୂତେଶ, ହରରୂପ, ଖଣ୍ଡ-ପରଶୁ, ଗିରିଶ, ଗିରୀଶ, ଜୟନ୍ତ, ମୃଡ, କୃତ୍ତିବାସ, ପିନାକୀ, ବିଶ୍ୱେଶ, ପ୍ରମଥାଧିପ, ଉଗ୍ର, କପର୍ଦ୍ଦୀ, ଶ୍ରୀକଣ୍ଠ, ଧରଣୀଶ୍ୱର, କପାଳ ଭୃତ୍, ବାମଦେବ, ସିଦ୍ଧଦେବ, ମହାଦେବ, ବିରୂପାକ୍ଷ, ତ୍ରିଲୋଚନ, ବ୍ୟୋମଦେବ, କୃଶାନୁରେତାଃ, ସର୍ବଜ୍ଞ, ଧୂର୍ଜଟି, ଜଟାଧର, ନୀଳଲୋହିତ, ହର, ସ୍ମରହର, ଭର୍ଗ, କଙ୍କାଳମାଳୀ, ତ୍ର୍ୟମ୍ବକ, ତ୍ରିପୁରାନ୍ତକ, ଗଙ୍ଗାଧର, ଭୀଷଣ, ଅନ୍ଧକରିପୁ, କ୍ରତୁଧ୍ୱଂସୀ, ବୃଷଧ୍ୱଜ, ବ୍ୟୋମକେଶ, ଭୀରୁ, ଭବ, ଭୀମ, ସ୍ଥାଣୁ, ରୁଦ୍ର, ଉମାପତି, ସ୍ଥିର, ହର୍ତ୍ତା, ଉଗ୍ର, ବୃଷପର୍ବା, ବୈଶ୍ୱାନର, ଭଗାଲୀ, ବରଦ, କଣ୍ଟେ-କାଳ, ପାଂଶୁଚନ୍ଦନ, ଦିଗମ୍ବର, ଅଟ୍ଟହାସ, ସାର, ଭଦ୍ର, ପଞ୍ଚାନନ, କାଳଞ୍ଜର, ପୁରଦ୍ୱିଟ୍, ବୃଷାକପି, ମହାକାଳ, ଖଣ୍ଡ-ପର୍ଶୁ, ନନ୍ଦିବର୍ଦ୍ଧନ, ଶମ୍ଭୁ, ଭୁଜ, କଟ୍ପ୍ରୁ, ଭୈରବ, ଭୂତ ନାଥ, ଶର୍ବ, ଧ୍ରୁବ, ଶିବିବିଷ୍ଟ, ଗୁଡାକେଶ, ଦେବଦେବ, ଶୂଳଧର, ମହାନଟ, ସନ୍ଧ୍ୟାନାଟୀ, ସୁପ୍ରସାଦ, ବୃଷଭଧ୍ୱଜ, ଚନ୍ଦ୍ରାପୀଡ, ଶିପିବିଷ୍ଟ, ବଟେଶ୍ୱର, ବିଶ୍ୱେଶ୍ୱର, ବିଶ୍ୱନାଥ, କାଶୀନାଥ, କୁଳେଶ୍ୱର, ଅସ୍ଥିମାଳୀ, ବିଶାଳାକ୍ଷ, ପ୍ରିୟତମ, ବିଷମାକ୍ଷ, ଊର୍ଦ୍ଧ୍ୱରେତାଃ, ଯମାନ୍ତକ, ନନ୍ଦୀଶ୍ୱର, ଅଷ୍ଟମୂର୍ତ୍ତି, ଅଧୀଶ, ଖେଚର, ଭୃଙ୍ଗୀଶ, ଅର୍ଦ୍ଧନାରୀଶ, ରସନାୟକ, ପିନାକପାଣି, ଫଣୀଧରଧର, ମହାକାଳ, କୈଳାଶନିକେତନ ହିମାଦ୍ରିତନୟାପତି। )

୨। ବେଦ—2. The Bedas. ୩। ହିନ୍ଦୁ ଜ୍ୟୋତିଷୋକ୍ତ ବିଷ୍କୁମ୍ଭାଦି ଅନ୍ତର୍ଗତ ଯୋଗ ବିଶେଷ—3. One of the auspicious conjunctions in the Hindu astrology. ୪। ମୋକ୍ଷ; ମୁକ୍ତି—4. Salvation. ୫। ପାରଦ—5. Mercury; quick-silver. ୬। ଶିବଲିଙ୍ଗ—6. The phallic emblem of God Mahādeba representing the male organ of generation. ୭। ସୈନ୍ଧବ ଲବଣ—7. Rock salt. ୮। ଜଳ—8. Water. ୯। ଶୁଭ; ମଙ୍ଗଳ—9. Bliss, prosperity. ୧୦। ସୁଖ—10. Happiness. ୧୧। ଶଙ୍କୁ; ଖୁଣ୍ଟା (ହି ଶ)—11. Peg. ୧୨। ଗୁଗ୍ଗୁଲ (ହି. ଶ)—12. Bdellium. ୧୩। ବୃକ୍ଷ ବିଶେଷ (ହି. ଶ)—13. A kind of tree. ୧୪। କଳା ଧୂତୁରା (ହି. ଶ)—14. The black variety of Detura Fastuosa ୧୫। ଦେବ (ହି.ଶ)—15. Deity. ୧୬। ଶୁଭଗ୍ରହ (ହି. ଶ)—16. Auspicious planet. ୧୭। ରୁଦ୍ର; କାଳ (ହି. ଶ)—17. Time personified. ୧୮। ବସୁ ଦେବତା (ହି. ଶ)—18. Basu Deity. ୧୯। ମୃଗ ବିଶେଷ (ହି. ଶ)—19. A kind of deer ୨୦। ଏକ ପ୍ରକାର ଗୌଡ଼ୀ ମଦିରା (ହି. ଶ)—20. A kind of spirit distilled from mollases ୨୧। ପ୍ଲକ୍ଷ ଦ୍ୱୀପ ବା ଜମ୍ବୁ ଦ୍ୱୀପର ଏକ ବର୍ଷର ନାମ (ହି.ଶ)

21. Name of a mythological division of the Plaksha or Jambu dwīpa. ୨୨ । ନୃତ୍ୟବିଶେଷ (ହି॰ ଶ)—22. A kind of dancing. ୨୩ । ଛନ୍ଦୋବିଶେଷ (ହି॰ ଶ)—23. Name of a Sanscrit metre. [ ଦ୍ର—ଏଥିର ପ୍ରତ୍ୟେକ ଚରଣ ୫ ଓ ୬ଷ୍ଠ ବିଶ୍ରାମରେ ୧୧ ମାତ୍ରା ଓ ଅନ୍ତରେ ସଗଣ, ରଗଣ, ନଗଣରୁ ଏକ ଗଣ ଥାଏ । ଏଥିର ୩ୟ, ୬ଷ୍ଠ ଓ ୯ମ ମାତ୍ରା ଲଘୁ (ହି: ଶ) ୨୪ । ପରମେଶ୍ୱର; ଭଗବାନ୍ (ହି॰ ଶ)—24. God. ୨୫ । ପଶୁ ବନ୍ଧନ କାଷ୍ଠ ବା ସ୍ତମ୍ଭ (ପ୍ରକୃତିବାଦ )—25. A post for tying a beast. ୨୬ । ଲିଙ୍ଗ; ମେଢ୍ର (ପ୍ରକୃତିବାଦ)—26. Penis; male organ. ୨୭ । ସୋହାଗା (ହି. ଶ) 27. Borax. ୨୮ । ଅଁଳା (ହି. ଶ)—28. Embelic myrobalan. ୨୯ । କଦମ୍ବ (ହି॰ ଶ)—29. Neuclea Kadamba. ୩୦ । ଫିଟ୍‌କିରି (ହି॰ ଶ) 30. Alum. ୩୧ । ସିନ୍ଦୂର (ହି॰ ଶ)—31. Red lead. ୩୨ । ମରିଚ (ହି॰ ଶ)—32. Black pepper. ୩୩ । ରାଶିଫୁଲ (ହି॰ ଶ)—33. Flower of Sessamum. ୩୪ । ଚନ୍ଦନ (ହି. ଶ)—34. Sandal. ୩୫ । ଲୁହା (ହି: ଶ)—35. Iron. ୩୬ । ବାଲି (ହି॰ ଶ)—36. Sand. ୩୭ । ନୀଳକଣ୍ଠ ପକ୍ଷୀ—(ହି. ଶ)—37. The blue Jay; the Indian roller bird. ୩୮ । କାକ (ହି. ଶ)—38. Crow. ୩୯ । ବଉଳ ଗଛ (ହି. ଶ)—39. Mimusops Elengi (tree). ୪୦ । ଜୁଇଫୁଲ ( ଶବ୍ଦକୋଷ)—40. Jasminum Pubescens ( flower ). ୪୧ । ଅଦ୍ୱୈତ ବ୍ରହ୍ମ—41. The Essential Unit or the Root Divinity pervading the universe. ୪୨ । ବିଲୁଅ; ଶୃଗାଳ—42. Jackal. ସଂ. ବିଣ. ପୁଂ.—୧ । ଶୁଭଦ; ମଙ୍ଗଳମୟ—1. Auspicious; blissful. (ଶିବା—ସ୍ତ୍ରୀ) ୨ । ରମ୍ୟ; ରମଣୀୟ; ସୁନ୍ଦର—2. Beautiful. ୩ । ସୁଖପ୍ରଦ—Bestowing happiness or bliss. ଦେ. ବି॰ ପୁଂ—ଶିବ ସୀଖ ଲୋକଙ୍କୁ ଦିଆଯିବା ନାମ—A name given to males. [ ଦ୍ର—ଲୋକଙ୍କୁ ଶିବପ୍ରସାଦ, ଶିବନାଥ, ଶିବନାରାୟଣ, ଶିବଶଙ୍କର, ଶିବଦେବ, ଶିବପଦ ଆଦି ନାମ ମଧ୍ୟ ଦିଆଯାଏ ।]

**ଶିବକ**—ସଂ. ବି—୧ । କଣ୍ଟା—1. Nail. ୨ । ଖିଲକ—2. Peg.
**Śibaka** ୩ । ଗୋରୁମାନଙ୍କ ଗାଡ କଣ୍ଡୁୟନ ନିମିତ୍ତ ଗୋଠରେ ପୋତା ହୋଇଥିବା ଖିଳ—3. Pegs driven into the floor of a cattle-shed for cattle scratching their itching bodies.

**ଶିବକର**—ସଂ. ବିଣ. ପୁଂ—ମଙ୍ଗଳକାରକ—
**Śibakara** Bestowing bliss.
ସଂ. ବି—(ନାମ) ଜୈନଙ୍କର ୨୪ ଜଣ ମଧ୍ୟରୁ ଏକ—Name of one of the Jaina saints.

**ଶିବକର ଦେବ**—ଦେ. ବି—(ନାମ) —ଭୌମ ବଂଶର ରାଜା—
**Śibakara deba** A king of the Bhauma dynasty. [ ଦ୍ର—ଭୌମ ବଂଶର 'ଶିବକର ଦେବ' ନାମଧେୟ ତିନି ଜଣ ରାଜା ରାଜତ୍ୱ କରୁଥିଲେ । ପ୍ରଥମ ଶିବକର ବୌଦ୍ଧ ଥିଲେ । ତାଙ୍କର ଅପର ନାମ ଉନ୍ମତ୍ତକେଶରୀ । କିନ୍ତୁ ଦ୍ୱିତୀୟ ଓ ତୃତୀୟ ଶିବକର ଦେବ ପରମ ମାହେଶ୍ୱର ଓ ପ୍ରବଳ ପ୍ରତାପୀ ଥିଲେ । ଲେଖକ—କେଦାରନାଥ ମହାପାତ୍ର ।]

**ଶିବ କାଞ୍ଚି(ଞ୍ଚୀ)**—ସଂ. ବି—ଦାକ୍ଷିଣାତ୍ୟର କାଞ୍ଚି ନଗରର ଏକ ଅଂଶ—
**Śiba kāñchi(chī)** A part of the town Kāñchi or Conjeeveram in the Deccan.
[ ଦ୍ର—କାଞ୍ଚିନଗରୀ ଶିବକାଞ୍ଚି ଓ ବିଷ୍ଣୁକାଞ୍ଚି, ଏପରି ଦୁଇ ଭାଗରେ ବିଭକ୍ତ । ଶିବକାଞ୍ଚିରେ ଏକାମ୍ରନାଥ ନାମକ ଶିବଲିଙ୍ଗ ପ୍ରତିଷ୍ଠିତ । ଏହି ମନ୍ଦିର ପ୍ରାଙ୍ଗଣରେ ଗୋଟିଏ ଅତି ପ୍ରାଚୀନ ଆମ୍ର ବୃକ୍ଷ ଅଛି । ଏହି ବୃକ୍ଷର ଚାରି ଗୋଟି ଶାଖାରେ ଯଥାକ୍ରମେ ମିଷ୍ଟ, କଟୁ, ତିକ୍ତ ଓ ଅମ୍ଳ ରସଯୁକ୍ତ ଆମ୍ର ଫଳ ପ୍ରତିଦିନ ଏକାମ୍ରନାଥଙ୍କ ଭୋଗ ଲାଗିବାର ପ୍ରବାଦ ଅଛି । ଏହି ମନ୍ଦିର ବେଢ଼ାରେ ଥିବା 'ଗୋପୁରମ୍' ଉଚ୍ଚତା ୧୮୮ ଫୁଟ ଓ ପ୍ରସ୍ଥରେ ୭୪ ଫୁଟ । ଏହି ମନ୍ଦିର ସମ୍ମୁଖରେ ଷୋଡ଼ଶ ସ୍ତମ୍ଭ ମଣ୍ଡପ ଓ ବାମ ପାର୍ଶ୍ୱରେ ସହସ୍ର ସ୍ତମ୍ଭ ନାମକ ମଣ୍ଡପ ଅଛି । ଏକାମ୍ରନାଥଙ୍କ ଚଳନ୍ତି ପ୍ରତିମା ପଞ୍ଚଧାତୁ ନିର୍ମିତ ଓ ଚତୁର୍ଭୁଜ । ଫାଲ୍ଗୁନ ମାସରେ ୧୦ ଦିନ ଏ ମୂର୍ତ୍ତି ନଗର ଭ୍ରମଣ କରନ୍ତି ଓ ଉତ୍ସବର ଶେଷ ଦିନ ଏକାମ୍ରନାଥଙ୍କ ସହିତ ଏକ ମାଇଲ ଦୂରରେ ମନ୍ଦିରସ୍ଥିତା କାମାକ୍ଷୀ ଦେବୀଙ୍କର ବିବାହ ଉତ୍ସବ କରାଯାଏ । ଏକାମ୍ରନାଥଙ୍କ ମୂର୍ତ୍ତି ବାଲୁକା ଓ ମୃତ୍ତିକାନିର୍ମିତ ହେଲେହେଁ ବହୁକାଳ ସ୍ନିଗ୍ଧ ପଦାର୍ଥ ଲେପନରେ କୃଷ୍ଣ ପ୍ରସ୍ତରବତ୍ ଦେଖାଯାଆନ୍ତି । ଏ ମୂର୍ତ୍ତି ଦାକ୍ଷିଣାତ୍ୟରେ ଶିବଙ୍କର କ୍ଷିତିମୂର୍ତ୍ତି ଅଟନ୍ତି । ଗଭର୍ଣ୍ଣମେଣ୍ଟ ଏ ଦେବ ପୂଜା ନିମନ୍ତେ ବାର୍ଷିକ ଦୁଇହଜାର ଟଙ୍କା ଦିଅନ୍ତି । ମଦନମୋହନ. ତୀର୍ଥଦର୍ଶନ ।]

**ଶିବକୀର୍ତ୍ତନ**—ସଂ.ବି (ବହୁବ୍ରୀହି)—୧। ଶୈବ—1. A worshipper
**Śiba kirttana** of Śiba ୨ । ବିଷ୍ଣୁ—2. Bishṇu.
୩ । ଶିବଙ୍କ ଦ୍ୱାରପାଳ (ହି॰ ଶ)—
3. Doorkeeper of Śiba.

**ଶିବ କ୍ଷେତ୍ର**—ସଂ. ବି ( ଶିବଅଧିଷ୍ଠିତ କ୍ଷେତ୍ର; ମ॰ ପ॰ ଲୋ )—
**Śiba kshetra** ୧ । ବାରାଣସୀ; କାଶୀ—1. Benares.
[ଦ୍ର—ଉତ୍କଳରେ ଭୁବନେଶ୍ୱର ସାଧାରଣତଃ ଶିବକ୍ଷେତ୍ର ନାମରେ ପ୍ରସିଦ୍ଧ; କିନ୍ତୁ ପୁରାଣ ଅନୁସାରେ ପୁରୀ ବା ପୁରୁଷୋତ୍ତମ ଶିବକ୍ଷେତ୍ର ଅଟେ ଓ ଏ କ୍ଷେତ୍ରର ରକ୍ଷକ

'ଲୋକନାଥ' ଶିବ ଅଟନ୍ତି । ] ୨ । କୈଳାସ - 2. The Kailāsa mountain. ୩ । ଶ୍ମଶାନ (ବିଶ୍ୱକୋଷ)— 3. Cremation ground.

**ଶିବ ଗଙ୍ଗା**—ସଂ ବି (ନାମ)—୧ । ମାନ୍ଦ୍ରାଜର ମଦୁରା ଜିଲ୍ଲା ଅନ୍ତର୍ଗତ
**Śiba gaṅgā** ଗୋଟିଏ ବଡ଼ ଜମିଦାରୀ (କ୍ଷେତ୍ରଫଳ ୧୨୨° ବର୍ଗ ମାଇଲ)—1. Name of a big estate in the district of Madura. ୨ । ମହୀଶୂର ରାଜ୍ୟର ବାଙ୍ଗାଲୁର ଜିଲ୍ଲାର ଗୋଟିଏ ପର୍ବତ (ଉଚ୍ଚତା ୪୫୯ ଫୁଟ) ଓ ତତ୍ପାଦଦେଶସ୍ଥ ଗ୍ରାମ—2. Name of a mountain in the Mysore State and a village at its foot. ୩ । ଶିବଙ୍କ ମନ୍ଦିରସନ୍ନିକଟସ୍ଥ ନଦୀ ବା ତୀର୍ଥ (ହି. ଶ —3. A river or sacred bathing place near a temple of Siba.

**ଶିବ ଗଣ**—ସଂ ବି (ଷଷ୍ଠୀ ତତ୍)—ଶିବଙ୍କ ଅନୁଚର ପ୍ରମଥଗଣ —
**Śiba gaṇa** The attendants of God Mahādeba.

**ଶିବ ଗିରି**—ସ. ବି (ମ. ପ. ଲୋ; ଶିବସେବିତ ଗିରି)—କୈଳାସ—
**Śiba giri** The Kailāsa mountain. [ଉ—ରୁପେ ଶୋଭିଛି ଶିବଗିରି । ଜଗନ୍ନାଥ. ଭାଗବତ ।] ଦେ. ବି—(ନାମ) ମାନ୍ଦ୍ରାଜ ପ୍ରଦେଶର ଟିନେଭେଲି ଜିଲ୍ଲାର ଗୋଟିଏ ଜମିଦାରୀ ଓ ନଗର—Name of an estate and town in Tinnevely district of Madras,

**ଶିବଗୁରୁ**—ଦେ, ବି—ଶଙ୍କରାଚାର୍ଯ୍ୟଙ୍କ ପିତା ଓ ବିଦ୍ୟାଧିରାଜଙ୍କ ପୁତ୍ର
**Śibaguru** (ହି. ଶ)—Name of the father of Śankarāchārjya.

**ଶିବ ଘର୍ମଜ**—ସଂ ବି (ଶିବ + ଘର୍ମ = ଝାଳ + ଜନ୍ ଧାତୁ = ଜାତ
**Śiba gharmaja** ହେବା + କର୍ତ୍ତୃ. ଅ)—ମଙ୍ଗଳ ଗ୍ରହ— Mars (planet),

**ଶିବ ଚତୁର୍ଦ୍ଦଶୀ**—ସ. ବି—ଶିବରାତ୍ରି; ଫାଲ୍ଗୁନ କୃଷ୍ଣଚତୁର୍ଦ୍ଦଶୀ—The
**Śiba chaturddaśi** 14 day of the dark lunar fortnight of the month of Phālguna, [ଦ୍ର—ପ୍ରତି ମାସର କୃଷ୍ଣଚତୁର୍ଦ୍ଦଶୀ ଶିବଙ୍କ ପୂଜାପକ୍ଷରେ ପ୍ରଶସ୍ତ ଅଟେ ।]

**ଶିବଜା**—ସ. ବି—ଶିବଲିଙ୍ଗିନୀ (ଦେଖ)
**Śibajā** Śibaliṅgini, (See)

**ଶିବଜୀ**—ଦେ. ବି (ନାମ)—ଶିବାଜୀ (ଦେଖ)
**Śibaji** Śibāji. (See)

**ଶିବ ଜ୍ଞାନ**—ସଂ ବି (ଶିବର ବା ମଙ୍ଗଳର ଜ୍ଞାନ ହୁଏ ଯାହାଦ୍ୱାରା)—୧ ।
**Śiba jñāna** ଶୁଭାଶୁଭ କାଳବୋଧକ ଶାସ୍ତ୍ର ବିଶେଷ—1. The sciencee dealing with auspicious and inauspicious periods. ( ଶିବାଗୌରୀ ତଳେ ଟୀକା ଦେଖ) ୨ । ମଙ୍ଗଳ ବା ଶୁଭ ସମ୍ବନ୍ଧୀୟ ଜ୍ଞାନ— 2. Knowledge about happiness or bliss.

**ଶିବତାତି**— ସଂ ବିଣ (ଶିବ + ତାତି)— ଶୁଭଜନକ; ମଙ୍ଗଳଦାୟକ—
**Śibatāti** Auspicious, bestowing happiness;

**ଶିବ ତୀର୍ଥ**—ସ. ବି (ମ. ପ. ଲୋ; ଶିବନିର୍ମିତ ତୀର୍ଥ)—କାଶୀ—
**Śiba tirtha** Benares.

**ଶିବ ତେଜଃ**—ସ. ବି (ଷଷ୍ଠୀ ତତ୍)—ପାରଦ—
**Śiba tejah** Mercury.

**ଶିବତ୍ୱ(ତା)**—ସ. ବି (ଶିବ + ତ୍ୱ, ତା)—୧ । ଶିବପଦ—
**Śibatwa(tā)** 1. The position or state of God Śiba. ୨ । ଶିବ ସାଯୁଜ୍ୟ (ଦେଖ)— 2. Śiba sājujya. (See)

**ଶିବତ୍ର**—ସ. ବି—(ଶିବ + ତ୍ରୈ ଧାତୁ + କର୍ତ୍ତୃ. ଅ)—ଶିବ ପୂଜାର୍ଥ ଉତ୍ସର୍ଗ
**Śibatra** ହୋଇଥିବା କରର ବୃତ୍ତି—Land assigned rent-free for the worship of God Śiba.

**ଶିବଦ**—ସ. ବିଣ. ପୁ°—ମଙ୍ଗଳ ବିଧାୟକ; ଶୁଭଦାତା—
**Śibada** Bestowing bliss or happiness. [ଦ୍ର— [ଶିବଦା, ଶିବଦାୟିନୀ—ସ୍ତ୍ରୀ] ଶିବ ନୟନାନଳରେ ବିତେଜ; ଶିବଦ ହୋଇ କଲେତ ମନୋଜ । ବିଶ୍ୱମ୍ଭର ବଡଜେ (ଶିବଦାତା—ଅନ୍ୟରୂପ) ମହାଭାରତ ।

**ଶିବ ଦତ୍ତ**—ସ. ବି—ବିଷ୍ଣୁଙ୍କ ସୁଦର୍ଶନ ଚକ୍ର—
**Śiba datta** The discus, weapon of Bishṇu.

**ଶିବ ଦର୍ଶନ**—ସ. ବି—ମହାଦେବଙ୍କୁ ଦେଖିବା—
**Śiba darśana** A visit to the Deity Śiba. (ଶିବ ଦରଶନ—ଗ୍ରାମ୍ୟରୂପ)

**ଶିବଦାସ ପୁର**—ଦେ. ବି (ନାମ)—ଯାଜପୁର ଟାଉନର ଏକ କୋଶ
**Śibadāsa pura** ଦୂରରେ ଅବସ୍ଥିତ ଓ ବିରଜା ମନ୍ଦିରର ନିକଟବର୍ତ୍ତୀ ଏକ ବିଶିଷ୍ଟ କରଣ ବସ୍ତି-A well known Karaṇa-village near the temple of Goddess Birajā one mile from the Jajpur town. [ଦ୍ର—ଏହା ଶିବେଶ୍ୱର ମହାଦେବଙ୍କ ନାମାନୁସାରେ ସ୍ଥାପିତ ଓ ବୈତରଣୀର ଶାଖାନଦୀ ଗୌରୀକୂଳରେ ଅବସ୍ଥିତ । ଋଗ୍‌ବେଦ ଓ ପୁରାଣମାନଙ୍କରେ କଳିଙ୍ଗର ତଥା ବିରଜା ତୀର୍ଥର ବର୍ଣ୍ଣନା ଥିବାରୁ, ଶିବଦାସପୁରର ଇତିହାସ ଏଥି ସହିତ ପ୍ରଚ୍ଛନ୍ନଭାବରେ ରହିଛି । ପ୍ରଚଳିତ କିମ୍ବଦନ୍ତୀ, ପ୍ୟାରୀମୋହନଙ୍କ ଓଡ଼ିଶା ଇତିହାସ, ନନ୍ଦକିଶୋର ବହିଦାରଙ୍କ କରଣ ଜାତିର ଇତିହାସ ଅନୁସାରେ ଯଯାତି କେଶରୀ ଯେତେବେଳେ ଯାଜପୁରରେ ରାଜଧାନୀ ସ୍ଥାପନା କରି ତନ୍ନିକଟ୍ୟ ଚତୁର୍ଦ୍ୱାର ନଅର (ଅଧୁନା—ନଅରପଦା)ରେ ବାସ କରୁଥିଲେ, ସେହି ସମୟରେ ଶାସନ କାର୍ଯ୍ୟର ଶୃଙ୍ଖଳା ନିମନ୍ତେ ମଗଧ (ବିହାର)ରୁ କରଣ(ଲେଖକ)ମାନଙ୍କୁ ଅଣାଇ ପ୍ରଥମେ ସେଠାରେ ବସାଇଥିଲେ । ରାଜେନ୍ଦ୍ର ଲାଲ ମିତ୍ରଙ୍କ ଓଡ଼ିଶାର ପ୍ରତ୍ନତତ୍ତ୍ୱ ନାମକ ଗ୍ରନ୍ଥରେ ଏହି ନଅରପଦା ବିଷୟରେ ଲେଖା ଅଛି । କାଳକ୍ରମେ ଏହି କରଣମାନେ ଶିବଦାସପୁର, ସଦାଶିବପୁର ଓ ପାଣ ପଡ଼ା (ଅଧୁନା ପଟ୍ଟନାୟକ ସାହି) ଓ ନାଉଖିଆ ଗ୍ରାମମାନଙ୍କୁ ଉଠି ଯାଇଥିଲେ । ଏ ଗ୍ରାମ ଯଯାତିକେଶରୀଙ୍କଦ୍ୱାରା ସ୍ଥାପିତ ହୋଇଥିଲା । ପଣ୍ଡିତ ବିନାୟକ ମିଶ୍ରଙ୍କ ମତରେ ଏହା ଭୌମ ବା କେଶରୀ ବଂଶୀୟ ରାଜାମାନଙ୍କର ରାଜଧାନୀ ଥିଲା ।

ଏ ସ୍ଥାନର ଭୂଗର୍ଭରୁ ଅସଂଖ୍ୟ ଶିବ ଓ ଦୁର୍ଗା ମୂର୍ତ୍ତିମାନ ଆବିଷ୍କୃତ ହୋଇଅଛି । ବର୍ତ୍ତମାନ ସୁପ୍ରସିଦ୍ଧ "କାନୁନ୍‌ଗୋ" ବଂଶ ପୂର୍ବେ ରାଜମନ୍ତ୍ରୀ ଥିଲେ । ଏହାଙ୍କ ବଂଶଧରମାନେ ଓଡ଼ିଶା ରାଜାଙ୍କ ଠାରୁ ବେବର୍ତ୍ତା, ପଟ୍ଟନାୟକ ଓ କାନୁନ୍‌ଗୋ ଉପାଧିମାନ ପାଇଥିଲେ ।

ଏହି ବଂଶର ଶୁକଦେବ ଦାସ ବେବର୍ତ୍ତା, ସଂସ୍କୃତ ହରଗୌରୀ ମାଧବ ନାଟକର ଓଡ଼ିଆ ଅନୁବାଦକ ବନମାଳୀ ଦାସ ପଟ୍ଟନାୟକ ଓ ଉତ୍କଳଦୀପିକା ସମ୍ବାଦର ସମ୍ପାଦକ ସାଧୁଚରଣ କାନୁନ୍‌ଗୋ ଆଦି ହିନ୍ଦୁ, ମୁସଲମାନ୍, ମରହଟ୍ଟା ଓ ଇଂରାଜମାନଙ୍କ ରାଜତ୍ୱରେ ବିଶେଷ ପ୍ରସିଦ୍ଧି ଲାଭ କରିଥିଲେ ।]

ଲେଖକ—ଚନ୍ଦ୍ରଶେଖର ଦାସ ।

**ଶିବଦାରୁ**—ସଂ. ବି.—ଦେବଦାରୁ ବୃକ୍ଷ—
Śiba dāru Deodar; pine tree.

**ଶିବଦିଶ**—ସଂ. ବି—ଈଶାନକୋଣ (ଶବ୍ଦକୋଷ)
Śiba diśa The north-east quarter.

**ଶିବଦୂତିକା**—ସଂ. ବି. ସ୍ତ୍ରୀ —(ଶିବ=ମହାଦେବ+ଦୂତ=ବାର୍ତ୍ତାବହ
Śiba dūtikā +ଈ; ଯେ ମହାଦେବଙ୍କୁ ଦୂତରୂପେ ପଠାଇଥିଲେ
(ଶିବଦୂତୀ—ଅନ୍ୟରୂପ) ୧ । ଦୁର୍ଗା—1. Goddess Durgā.
[ଦ୍ର—ମାର୍କଣ୍ଡେୟ ପୁରାଣାନ୍ତର୍ଗତ ଦେବୀ ମାହାତ୍ମ୍ୟ ବା ଚଣ୍ଡୀର ଅଷ୍ଟମ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି ଯେ, ଶୁମ୍ଭ ନିଶୁମ୍ଭ ଅସୁରଦ୍ୱୟଙ୍କୁ ବିନାଶ କରିବା ପୂର୍ବରୁ ଦୁର୍ଗାଙ୍କରୁ ଦେବତାମାନଙ୍କର ତେଜ ଗ୍ରହଣପୂର୍ବକ 'ଚଣ୍ଡୀ' ରୂପ ଧାରଣ କରି ଉକ୍ତ ଅସୁରଦ୍ୱୟଙ୍କ ନିକଟକୁ ମହାଦେବଙ୍କଦ୍ୱାରା ପ୍ରଥମେ ସମ୍ବାଦ ପଠାଇଲେ ଯେ, ତୁମ୍ଭେମାନେ ଯେବେ ବଞ୍ଚି ରହିବାକୁ ଇଚ୍ଛା କର ତେବେ ଦେବତାମାନଙ୍କ ପ୍ରତି ଅତ୍ୟାଚାର କର ନାହିଁ। ଓ ପାତାଳ ପୁରକୁ ଯାଇ ସେଠାରେ ବାସ କର; ଯେବେ ଏହା ନ କରିବ ତେବେ ତୁମ୍ଭମାନଙ୍କ ମାଂସଦ୍ୱାରା ମୋ ଶିବାଗଣ ତୃପ୍ତିଲାଭ କରିବେ । ସ୍ୱୟଂ ଶିବ ଦେବୀଙ୍କ କର୍ତ୍ତୃକ ଦୂତ କର୍ମରେ ନିଯୁକ୍ତ ହୋଇ ଥିବାରୁ ସେହି କାଳରୁ ଦୁର୍ଗାଙ୍କର 'ଶିବଦୂତୀ' ନାମ ଖ୍ୟାତ ହେଲା ।] ୨ । ଦୁର୍ଗାଙ୍କର ରୂପାନ୍ତର ଧାରିଣୀ ଯୋଗିନୀ ବିଶେଷ—2. An incarnation of Durgā. [ଦ୍ର—ଅଷ୍ଟଯୋଗିନୀ ମଧ୍ୟରେ ଶିବଦୂତୀ ଶେଷ ଯୋଗିନୀ । ଅଷ୍ଟ ଯୋଗିନୀ, ଯଥା, ବ୍ରହ୍ମାଣୀ, ମାହେଶ୍ୱରୀ, କୌମାରୀ, ବୈଷ୍ଣବୀ, ବାରାହୀ, ନାରସିଂହୀ, ଐନ୍ଦ୍ରୀ ଓ ଶିବଦୂତୀ (ଶବ୍ଦକୋଷ)] । ୩ । କାର୍ତ୍ତିକେୟଙ୍କର ଏକ ମାତୃକାଙ୍କ ନାମ—3. Name of a Mātṛkā of Kārttikeya.

**ଶିବଦୈବ**—ସଂ. ବି—ଆର୍ଦ୍ରା ନକ୍ଷତ୍ର (ଏଥିର ଅଧିଷ୍ଠାତ୍ରୀ ଦେବତା ଶିବ)-
Śiba daiba The sixth asterism.

**ଶିବଦ୍ୱାଦଶନାମ**—ସଂ. ବି—ମହାଦେବଙ୍କର ୧୨ ଗୋଟି ନାମାନ୍ତର—
Śiba dwādasanāma 12. names of Śiba (by
(ଶିବ ଦ୍ୱାଦଶ ନାମାଳୀ—ଅନ୍ୟରୂପ) uttering which the votary is promised to be free from the stain of various heinous sins of commission. [ଦ୍ର—ଶିବଙ୍କ ଦ୍ୱାଦଶ ନାମ ଯଥା ୧ ମହାଦେବ, ୨ ମହେଶ୍ୱର, ୩ ଶଙ୍କର, ୪ ବୃଷଭଧ୍ୱଜ, ୫ କୃତ୍ତିବାସ, ୬ କାମାଙ୍ଗନାଶନ, ୭ ଦେବଦେବେଶ, ୮ ନୀଳକଣ୍ଠ, ୯ ଈଶ୍ୱର, ୧୦ ପାର୍ବତୀପ୍ରିୟ, ୧୧ ରୁଦ୍ର, ଓ ୧୨ ଶିବ ।

ଏହି ଦ୍ୱାଦଶ ନାମକୁ ତିନିସନ୍ଧ୍ୟାରେ ଉଚ୍ଚାରଣ କଲେ ବ୍ରହ୍ମହତ୍ୟା, ଗୁରୁତଳ୍ପ ଗମନ, ସ୍ତ୍ରୀ ହତ୍ୟା, ବାଳହତ୍ୟା, ଗୋହତ୍ୟା, କୃତଘ୍ନତା, ବୃଷଲୀଗମନ, ସୁରାପାନ ପାପରୁ ଲୋକ ମୁକ୍ତିଲାଭ କରେ—ହିନ୍ଦୁ ଶାସ୍ତ୍ରରେ ଏହିପରି ଉଲ୍ଲେଖ ଅଛି ।]

**ଶିବଦ୍ୱିଷ୍ଟା**—ସଂ. ବି—କେତକୀ ଫୁଲ; କିଆ ଫୁଲ—Pandanus
Śiba dwishṭā Odoratissimus (flower).
[ଦ୍ର—ଶିବ ପୂଜାରେ ଏଥିର ବ୍ୟବହାର ନିଷିଦ୍ଧ ।]

**ଶିବଦ୍ରୁମ**—ସଂ. ବି—(ଶିବଙ୍କ ପ୍ରିୟଦ୍ରୁମ; ମ. ପ. ଲୋ)—ବେଲଗଛ—
Śiba druma The marmalos tree.

**ଶିବଧନୁଃ**—ସଂ. ବି—(୬ଷ୍ଠୀ ତତ୍)—ଶିବଙ୍କ ବ୍ୟବହୃତ ଧନୁ; ପିନାକ-
Śiba dhanuh The bow of Śiba; Pināka.

**ଶିବଧର୍ମ**—ସଂ. ବି—୧ । ତନ୍ତ୍ର ଶାସ୍ତ୍ର (ଏହାକୁ ଶିବ ପାର୍ବତୀଙ୍କ ନିକଟରେ
Śiba dharma ପ୍ରକାଶ କରିଥିଲେ ।)—1. The Tantras.
୨ । ଉପପୁରାଣ ବିଶେଷ—
2. Name of a minor Purāna.

**ଶିବଧାତୁ**—ସଂ. ବି—୧ ପାରଦ—1. Quicksilver. [ଦ୍ର—ହିନ୍ଦୁ
Śiba dhātu ଶାସ୍ତ୍ର ଅନୁସାରେ ଏହା ଶିବଙ୍କର ରେତଃ ବୋଲି କଥିତ ।] ୨ । ଗୋଦନ୍ତୀ ନାମକ ମଣି (ହି. ଶ.)—
2. A kind of gem.

**ଶିବନାଥ ଶାସ୍ତ୍ରୀ**—ଦେ. ବି(ନାମ)—ବଙ୍ଗୀୟ ବ୍ରାହ୍ମସମାଜର ସ୍ୱର୍ଗୀୟ ପ୍ରସିଦ୍ଧ
Śiba nātha śāstri ଆଚାର୍ଯ୍ୟ—A late Brahmo mis-
शिवनाथ शास्त्री শিবনাথ শাস্ত্রী sionary of Bengal.
[ଦ୍ର—ଏ ଚବିଶ ପ୍ରଗଣା ଅନ୍ତର୍ଗତ ଜୟନଗର ମଜିଲପୁର ଗ୍ରାମବାସୀ ବ୍ରାହ୍ମଣ ପଣ୍ଡିତ ହରାନନ୍ଦ ବିଦ୍ୟାସାଗରଙ୍କ ପୁତ୍ର । ଏ ଯୌବନ କାଳରେ ବ୍ରାହ୍ମ ଧର୍ମ ଗ୍ରହଣ କରି ପରେ ବ୍ରାହ୍ମସମାଜରେ ଆଚାର୍ଯ୍ୟ ପଦ ଗ୍ରହଣ କରିଥିଲେ । ଏ ଜଣେ ପ୍ରସିଦ୍ଧ ବକ୍ତା ଥିଲେ । ଏ ଅନେକ କାବ୍ୟ (ନିର୍ବାସିତର ବିଲାପ, ପୁଷ୍ପମାଳା), ଉପନ୍ୟାସ (ମେଜ ବୌ, ନୟନ ତାରା) ଓ ବ୍ରାହ୍ମ ସଙ୍ଗୀତ ରଚନା କରିଥିଲେ । କଟକର ସ୍ୱର୍ଗୀୟ ମଧୁସୂଦନ ରାଓଙ୍କ ପରିବାର ସଙ୍ଗେ ଏହାଙ୍କ ପରିବାର ବିବାହ ବନ୍ଧନରେ ସମ୍ବଦ୍ଧ ହୋଇଥିଲେ । ଏହାଙ୍କର ପୂର୍ବପୁରୁଷ ଶ୍ରୀକୃଷ୍ଣ ଉଦ୍‌ଗାଥା (ଓଝା) ଯାଜପୁର ବାସୀ ଉତ୍କଳୀୟ ପଣ୍ଡିତ ଥିଲେ ଓ ଘଟଣା ପ୍ରସଙ୍ଗରେ ଯାଜପୁରରୁ ଯାଇ ବଙ୍ଗଦେଶରେ ବାସ କରିଥିଲେ । ଏ ଇଉରୋପ ଓ ଆମେରିକା ଆଦି ଦେଶ ପର୍ଯ୍ୟଟନ କରି ଜଣେ ସୁବକ୍ତା ରୂପେ ଖ୍ୟାତି ଲାଭ କରିଥିଲେ ।]

**ଶିବନିର୍ମାଲ୍ୟ**—ସଂ. ବି—(୬ଷ୍ଠୀ ତତ୍)—୧ । ମହାଦେବଙ୍କ ଅର୍ପିତ
Śiba nirmālya ନୈବେଦ୍ୟ—1. Offerings made to
God Śiba. [ଦ୍ର—ଶାସ୍ତ୍ର ଅନୁସାରେ 'ଶିବ ନିର୍ମାଲ୍ୟ'

ଅଗ୍ରାହ୍ୟ ଅଟେ, ଅର୍ଥାତ୍, ଶିବନୈବେଦ୍ୟଙ୍କୁ 'ଶୈବ' ଛଡ଼ା ଅନ୍ୟ ହିନ୍ଦୁ ଭୋଜନ କରିବେ ନାହିଁ । କିନ୍ତୁ ଧାତୁ ନିର୍ମିତ ଲିଙ୍ଗ, ସ୍ୱୟମ୍ଭୂଲିଙ୍ଗ ଅବା କେତେକ ଶିବଙ୍କୁ ଅର୍ପିତ ଭୋଗକୁ ସାଧାରଣ ହିନ୍ଦୁମାନେ ଭୋଜନ କରିବାର ବିଧି ଅଛି । କେହି କେହି ପଣ୍ଡିତ କହନ୍ତି ଯେ, ନୈବେଦ୍ୟ ଦ୍ରବ୍ୟକୁ ମହାଦେବ ଓ ବିଷ୍ଣୁ ଉଭୟଙ୍କ ନାମରେ ଉତ୍ସର୍ଗ କଲେ କିମ୍ବା ଶିବଙ୍କୁ ନିବେଦିତ ଭୋଗକୁ ବିଷ୍ଣୁଙ୍କୁ ଅର୍ପଣ କଲେ ତାକୁ 'ଶିବ ନିର୍ମାଲ୍ୟ' ସାଧାରଣ ଙ୍କର ଗ୍ରହଣୀୟ ହୁଏ । ଭୁବନେଶ୍ୱର 'ଲିଙ୍ଗରାଜ' ଦେବଙ୍କୁ ବିଷ୍ଣୁ ମନ୍ଦିରେ ନୈବେଦ୍ୟ ସମର୍ପିତ ହୁଏ ଓ ସେ ସ୍ୱୟମ୍ଭୁ ଲିଙ୍ଗ ଅଟନ୍ତି । ତେଣୁ ଲିଙ୍ଗରାଜଙ୍କ ପ୍ରସାଦ ଶିବ ନିର୍ମାଲ୍ୟ ନୁହେ ବୋଲି କେହି କେହି କହନ୍ତି ।] ୨ । (ଲକ୍ଷଣାର୍ଥ)—ଶିବ ନିର୍ମାଲ୍ୟ ପରି ଅଗ୍ରାହ୍ୟ ପଦାର୍ଥ—2, (figurative) Any article which a man is forbidden to partake of.

**ଶିବ ପଞ୍ଚାକ୍ଷର**—ସଂ. ବି—୫ ଗୋଟି ଅକ୍ଷର ସମନ୍ୱିତ ମହାଦେବଙ୍କୁ ପୂଜା କରିବାର ମନ୍ତ୍ର—A mystic incantation or formula consisting of 5 letters for invoking God Śiba.
Śiba pañchākshara
[ ଶିବ ପଞ୍ଚାକ୍ଷର ମନ୍ତ୍ର—ଅନ୍ୟରୂପ ] (ମନ୍ତ୍ର :—ନମଃ ଶିବାୟ । )

**ଶିବ ପତ୍ର**—ସଂ. ବି—ରକ୍ତପଦ୍ମ ( ଶବ୍ଦକୋଷ )—
Śiba patra Red lotus.

**ଶିବ ପୁତ୍ର**—ସଂ. ବି—୧ । ପାରଦ (ବୈ. ଶ)—1. Mercury. ୨ । ମହାଦେବଙ୍କ ପୁତ୍ର (ଗଣେଶ, କାର୍ତ୍ତିକେୟ)—2. Son of Śiba.
Śiba putra

**ଶିବ ପୁର**—ଦେ. ବି ( ନାମ )—କଲିକତାର ଗଙ୍ଗାକୂଳରେ ଫୋର୍ଟ୍ ୱିଲିୟମ୍ ଦୁର୍ଗର ଅପର ପାରରେ ଅବସ୍ଥିତ କୁସୁଲ କଣ୍ଟାର ହାବଡ଼ା ନଗରର ଦକ୍ଷିଣ ଉପକଣ୍ଠସ୍ଥ କ୍ଷୁଦ୍ର ନଗର—Sibpur; a suberb of Howra on the opposite side of Calcutta on the Ganges. [ବି—ଏଠାରେ ପୃଥିବୀରେ ବିଖ୍ୟାତ ରାଜକୀୟ ଉଦ୍ଭିଦ୍‌ତତ୍ତ୍ୱ-ଉଦ୍ୟାନ ( Royal Botanical gardens ) ଓ ଇଞ୍ଜିନିଅରିଙ୍ଗ୍ କଲେଜ୍ ( Sibpur Engeneering College ) ଅଛି । ]
Śiba pura

**ଶିବ ପୁରାଣ**—ସ. ବି—ଅଷ୍ଟାଦଶ ପୁରାଣ ମଧ୍ୟରୁ ଏକତମ—One of the 18 Purāṇas. [ ବି—ପୁରାଣ ଶବ୍ଦେ କୋଠ ଦେଖ । ]
Śiba purāṇa

**ଶିବ ପୁରୀ (ରାଜଧାନୀ)**—ସଂ. ବି—ବାରାଣସୀ; କାଶୀ—
Śiba purī (rājadhānī) Benares.

**ଶିବ ପୁଷ୍ପକ**—ସ. ବି—ଅର୍କଫୁଲ—
Śiba pushpaka Calotropis Gigantea.

**ଶିବ ପୂଜକ**—ସ. ବି. ପୁଂ—ଶିବ ଭକ୍ତ ( ଦେଖ )—
Śiba pūjaka Śiba bhakta ( See )
( ଶିବପୂଜକା —ସ୍ତ୍ରୀ )

**ଶିବ ପୂଜନ**—ସ. ବି—ମହାଦେବଙ୍କ ଅର୍ଚ୍ଚନା—
Śiba pūjana Worship of God Śiba.
( ଶିବ ପୂଜା—ଅନ୍ୟରୂପ )

**ଶିବପ୍ରସାଦ ସିଂହ**—ଦେ. ବି ( ନାମ )—ଓଡ଼ିଶାର ଜଣେ ସ୍ୱର୍ଗୀୟ ସାଧାରଣ ହିତୈଷୀ ବ୍ୟକ୍ତି—Name of a late patriot of Orissa. [ବି—ଏହାଙ୍କର ଜନ୍ମ ସ୍ଥାନ ରାମବାଗ (ଜାଜପୁର) । ଏ ଓଡ଼ିଶାରେ ପ୍ରଥମେ ମୁନସଫ୍ କାର୍ଯ୍ୟ କରିଥିଲେ; ସାଧାରଣ ହିତକର କାର୍ଯ୍ୟରେ ସଚ୍ଚିଦାନନ୍ଦ, ହରେକୃଷ୍ଣ, ବିଚ୍ଛନ, ନନ୍ଦକିଶୋର ଓ ଗୌରୀଶଙ୍କର ପ୍ରଭୃତିଙ୍କର ବିଶିଷ୍ଟ ସହକର୍ମୀ ଥିଲେ । ଏ ନିଜ ଜନ୍ମ ସ୍ଥାନ ରାମବାଗରେ ଗୋଟିଏ ମାଇନର ସ୍କୁଲ୍ କରାଇଥିଲେ; ଏ ତଦାନୀନ୍ତନ ବଡ଼ଲାଟଙ୍କଠାରୁ ସମ୍ମାନସୂଚକ ପ୍ରଶଂସାପତ୍ରମାନ ପାଇଥିଲେ । ]
Śibaprasāda simha

**ଶିବ ପ୍ରିୟ (ବଲ୍ଲଭ)**—ସ. ବି ( ୬ଷ୍ଠୀ ତତ୍ )—୧ । ମହାଦେବଙ୍କ ପ୍ରିୟ ପଦାର୍ଥ—1. A thing liked by Śiba. ୨ । ରୁଦ୍ରାକ୍ଷ—2. A tree and its berries; Elaiocarpus Ganitrus. ୩ । ବେଲପତ୍ର—3. The Marmalos leaves. ୪। ବକ ବୃକ୍ଷ; ଅଗସ୍ତି ଗଛ—4. Sesbania Grandifloria. ୫ । ଧୁତୁରା—5. Thorn apple; Datura Fastuosa. ୬ । ସ୍ଫଟିକ—6. Crystal; quartz. ୭ । ଭଙ୍ଗ ( ବୈ ଶ )—7. A drink made frmo ganja leaves.
Śiba priya (ballabha)

**ଶିବ ପ୍ରିୟା (ସୁନ୍ଦରୀ)**—ସ. ବି—ପାର୍ବତୀ; ଦୁର୍ଗା—
Śiba priyā ( sundarī ) Goddess Durgā.

**ଶିବ ପ୍ରୀତି**—ସ. ବି ( ବହୁବ୍ରୀହି )—ବିଲ୍ୱ ବୃକ୍ଷ ( ବୈ. ଶ )—
Śiba prīti The bilwa tree.

**ଶିବ ବଲ୍ଲଭା**—ସ. ବି ( ୬ଷ୍ଠୀ ତତ୍ )—୧ । ଦୁର୍ଗା; ପାର୍ବତୀ—1. Pārbatī. ୨ । ଶତପତ୍ରୀ; ସେବତୀ ଫୁଲ 2. Musk rose.
Śiba ballabhā

**ଶିବ ବଲ୍ଲୀ, (ବଲ୍ଲିକା)**—ସ ବି—ଶିବ ଲିଙ୍ଗିନୀ ( ଦେଖ )
Śiba balli (balli; ballikā) Śiba linginī ( See )

**ଶିବ ବାହନ (ବୃଷଭ)**—ସଂ. ବି ( ୬ଷ୍ଠୀ ତତ୍ )—ଷଣ୍ଢ—Bull; the carrier of Śiba.
Śiba bāhana ( brushabha )
[ ବି—ସାଧାରଣତଃ ମହାଦେବଙ୍କ ବାହନକୁ 'ବାସୁଅ ବଳଦ' ବୋଲି ଲୋକେ ଡାକନ୍ତି । ]

**ଶିବ ବୀର୍ଯ୍ୟ**—ସ. ବି ( ୬ଷ୍ଠୀ ତତ୍ )—ପାରଦ—
Śiba birjya Mercury; quick-silver.

**ଶିବ ଭକ୍ତ**—ସଂ. ବି. ପୁଂ ( ୬ଷ୍ଠୀ ତତ୍ )—ଶୈବ, ଯେଉଁ ହିନ୍ଦୁଙ୍କ ଇଷ୍ଟଦେବ ମହାଦେବ ଅଟନ୍ତି—A devotee of God Śiba. [ ବି—ଇଷ୍ଟଦେବତାଙ୍କ ନାମ ଅନୁସାରେ ଭକ୍ତମାନଙ୍କ ଶ୍ରେଣୀବିଭାଗ ହୋଇଥାଏ, ଯଥା — ବିଷ୍ଣୁପୂଜକ—ବୈଷ୍ଣବ, ଶିବପୂଜକ — ଶୈବ,
Śiba bhakta
(ଶିବଭକ୍ତା—ସ୍ତ୍ରୀ)

ଗଣପତି ପୂଜକ – ଗାଣପତ୍ୟ, ସୂର୍ଯ୍ୟପୂଜକ—ସୌର, ଶକ୍ତିପୂଜକ—ଶାକ୍ତ । ]

**ଶିବଭଟ୍ଟ ଷାଠେ(ଠି)ୟା** –ଦେ. ବ ( ନାମ )—ମରହଟ୍ଟା ରାଜତ୍ୱ
Sibabhaṭṭa shāṭhe(ṭhi)yā କାଳରେ ଓଡ଼ିଶାର ଜଣେକ ଶାସନକର୍ତ୍ତା—The name of a governor of Orissa during the rule of the Marahaṭṭās [ ବ୍ର—ଯେଉଁ ସମୟରେ ସମସ୍ତ ଉତ୍କଳ ପ୍ରଦେଶ ମହାରାଷ୍ଟ୍ର ଶାସନାଧୀନ ହୋଇ ସେ ସମୟରେ ନାଗପୁରର ମହାରାଷ୍ଟ୍ର ରାଜା ରଘୁଜୀ ଭୋଁସଲଙ୍କଦ୍ୱାରା ଶିବଭଟ୍ଟ ଷାଠେୟା ଷାଠେ ) ଓଡ଼ିଶାର ଶାସନକର୍ତ୍ତାରୂପେ ପ୍ରେରିତ ହୋଇଥିଲେ । ଏ ଉତ୍କଳର ପ୍ରଥମ ମରହଟ୍ଟା ସୁବାଦାର; ଏ ଜାତିରେ ସାରସ୍ୱତ ବ୍ରାହ୍ମଣ ଥିଲେ । ବ୍ରାହ୍ମଣ ହେଲେହେଁ ଏ ଯୁଦ୍ଧ ବିଦ୍ୟାରେ ଅତ୍ୟନ୍ତ ପାରଦର୍ଶୀ ହୋଇଥିଲେ । ଏ ଓଡ଼ିଶାରେ ୮ ବର୍ଷ ଶାସନ କାର୍ଯ୍ୟ ଚଳାଇ ନାଗପୁରର ଭୋଁସଲ ରାଜାଙ୍କୁ ନିର୍ଦ୍ଦିଷ୍ଟ କର ଅଦାୟ କରି ଦେଉଥିଲେ । ଏହି ସାମାନ୍ୟ ୮ ବର୍ଷ ମଧ୍ୟରେ ଓଡ଼ିଶାରେ ଭୂମିର ରାଜସ୍ୱ ବନ୍ଦୋବସ୍ତ (Revenue Settlement) କରାଇ ଦେଶରେ ସୁଶୃଙ୍ଖଳ ଶାସନ ପ୍ରତିଷ୍ଠାପୂର୍ବକ ଶାନ୍ତି ଅନୟନ କରିଥିଲେ । ଶିବଭଟ୍ଟଙ୍କର ଶାସନକାଳ ମଧ୍ୟରେ ଖୋର୍ଦ୍ଧାର ରାଜାର ଦେବଙ୍କର ବିଦ୍ରୋହ ଘଟିଥିଲା । ଏହି ବିଦ୍ରୋହକୁ ବିଚକ୍ଷଣତା ସହିତ ଦମନପୂର୍ବକ ଓଡ଼ିଶାର ଅନ୍ୟାନ୍ୟ ଅଂଶ ସହିତ ଗଡ଼ଜାତ ରାଜ୍ୟମାନ ମଧ୍ୟ କବଳିତ କରି ଓ ଜମାବନ୍ଦି ଧାର୍ଯ୍ୟ କରି ଶିବଭଟ୍ଟ ଓଡ଼ିଶାର ରାଜସ୍ୱ ସ୍ଥିର କରି ଯାଇଥିଲେ ।

ଶିବଭଟ୍ଟ ୧୧୬୩ ଅମଲୀ ସନ ( ଖ୍ରୀ. ୧୭୫୫ ) ଠାରୁ ୧୧୭୧ ଅମଲୀ ସନ (ଖ୍ରୀ. ୧୭୬୩) ପର୍ଯ୍ୟନ୍ତ ଓଡ଼ିଶାର ଶାସନକର୍ତ୍ତା ଥିଲେ । ୧୭୬୪ ଖ୍ରୀଷ୍ଟାବ୍ଦରେ ହଠାତ୍ ଭୋଁସଲ ରାଜାଙ୍କ ସହିତ ଏହାଙ୍କର ମନୋମାଳିନ୍ୟ ଘଟିବାରୁ ଏ ଶାସନ କାର୍ଯ୍ୟ ପରିତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ । ଉଦବଧି ଏହାଙ୍କ ବଂଶଧରମାନେ ଓଡ଼ିଶାରେ ବାସ କରି ଆସୁଅଛନ୍ତି । ଏମାନେ କଟକର ସୁପରିଚିତ ଷାଠିୟା ପରିବାର ଅଟନ୍ତି । ଦୀର୍ଘକାଳ ଓଡ଼ିଶାରେ ବାସ କରି ଏମାନେ ସ୍ୱଜାତିର ବ୍ୟବହାର ଓ ଭାଷା ପ୍ରଭୃତି ତ୍ୟାଗ କରି ଉତ୍କଳୀୟ ବ୍ରାହ୍ମଣମାନଙ୍କ ସହିତ ବୈବାହିକ ସମ୍ବନ୍ଧ ସ୍ଥାପନ କରିଅଛନ୍ତି ଓ ଓଡ଼ିଆକୁ ମାତୃଭାଷା କରିଅଛନ୍ତି । ଏହି ବଂଶର ସ୍ୱର୍ଗୀୟ ଭାଗୀରଥି ଷାଠିୟା ଦୀର୍ଘକାଳ କଟକ ପ୍ରିଣ୍ଟିଂ କମ୍ପାନୀରେ ପ୍ରିଣ୍ଟର୍ (ମୁଦ୍ରାକର) ରୂପେ କାର୍ଯ୍ୟ ଚଳାଇ ଉତ୍କଳର ପ୍ରାଚୀନ ସାହିତ୍ୟର ଉଦ୍ଧାର ପାଇଁ ବହୁ ପରିଶ୍ରମ କରିଥିଲେ । ତାଙ୍କ ସ୍ୱ ରଚିତ ଅନେକ ପୌରାଣିକ ଓଡ଼ିଆ ଗ୍ରନ୍ଥ ମଧ୍ୟ ଏବେ ସ୍ୱଚ୍ଛନ୍ଦ ଆଦରଣୀୟ ହେବା ଦେଖାଯାଏ । ଏ ପରିବାର ମଧ୍ୟରେ ଶିଳ୍ପ, ସାହିତ୍ୟ ଓ କ୍ରୀଡ଼ା କୁଶଳତାର ପରିଚୟ ଏବେ ସୁଦ୍ଧା ମିଳେ । ଷ୍ଟର୍ଲିଙ୍ଗ୍ ସାହେବଙ୍କ ଓଡ଼ିଶା ବା କଟକର ବିବରଣ Mr. A. Sterling's Geographical, statistical and historical account of Orissa proper or Cuttack ) ନାମକ ଗ୍ରନ୍ଥରେ 'ଷାଠେୟା' ଶବ୍ଦ ବିକୃତ ହୋଇ Sāntiā ( ସାଣ୍ଟିଆ ) Sāuntiā (ସାଉଣ୍ଟିଆ) Sāntarā ( ସାନ୍ତରା ) ପ୍ରଭୃତି ରୂପ ଧାରଣ କରିଅଛି । ଇଂରାଜ ଐତିହାସିକମାନଙ୍କର ଏବଂବିଧ ବିକୃତିର ଛାୟା ଉତ୍କଳର ଐତିହାସିକମାନଙ୍କ ସଙ୍କଳିତ ଗ୍ରନ୍ଥରେ ମଧ୍ୟ ପଡ଼ିଥିବା ଦେଖାଯାଏ—ସନ୍ଦର୍ଭ ଲେଖକ. ଶ୍ରୀ ଅପୂର୍ବକୃଷ୍ଣ ସରକାର ବି. ଏ. । ]

**ଶିବଭଟ୍ଟ ସାମନ୍ତ ରାଓ**—ଦେ. ବ ( ନାମ )—ଶିବଭଟ୍ଟ ଷାଠେୟା
Sibabhaṭṭa sāmanta rāo ( ଦେଖ )—Sibabhaṭṭa (ଶିବଭଟ୍ଟ ସାମନ୍ତର[ସାଅନ୍ତର]—ଅନ୍ୟରୂପ) shāṭheyā ( See )

**ଶିବ ମନ୍ଦିର**—ସଂ. ବ ( ଶିବାଧିଷ୍ଠିତ ମନ୍ଦିର; ମ. ପ. ଲୋ )—ଯେଉଁ
Siba mandira ଦେଉଳରେ ମହାଦେବଙ୍କ ପ୍ରତିମା ପ୍ରତିଷ୍ଠିତ ହୋଇ ପୂଜିତ ହୁଅନ୍ତି—A temple in which the idol Siba is set up and worshipped.

**ଶିବ ମଲ୍ଲକ**—ସଂ. ବ—ଅର୍ଜୁନ ବୃକ୍ଷ ( ହୁ. ଶ )—
Siba mallaka The Arjuna tree.

**ଶିବ ମଲ୍ଲୀ** (ମଲ୍ଲିକା)—ସ. ବ—୧ । ବକ ବା ବଗଫୁଲ ଗଛ (ଏଗଛ ଗଛପରି); କସ୍ତୁ ବୃକ୍ଷ—1. Sesbania
Siba malli (mallikā Grandiflora. (tree) [ ବ୍ର—
ପଦ୍ମବକ ଏହା କଫ,ପିତ୍ତ,ବିଷଦୋଷ,ଯୋନିଶୂଳ,
ବାସନା; ବଗଫୁଲୀ ପିପାସା, ଦାହ, କୁଷ୍ଠ, ଶୋଥ ଓ ରକ୍ତ
୨. ଅଗସ୍ତ୍ୟ; ଯୋରବକୁଲ ଦୋଷନାଶକ । ] ୨ । ବକୁଳ ବୃକ୍ଷ
୩. ଅବନି (ହୁ. ଶ)—2. The Bakula
୪. ପାଶୁପତ, ଏକାଷ୍ଠୀଳା, tree. ୩ । ଅର୍କଗଛ (ହୁ. ଶ)—
ବକ, ବସ୍ତୁ, ସୁରେଷ୍ଟ । 3. Calotropis Gigantea(plant). ୪। ଶିବଲିଙ୍ଗିନୀ (ଦେଖ) (ହୁ. ଶ) —4. Sibaliṅginī. (creeper) (See) ୫ । ବାସଙ୍ଗ ଗଛ (ଶବ୍ଦକୋଷ)—5. Adhatoda Vasica tree. ୬ । ଶ୍ରୀବଲ୍ଲୀ ନାମକ କଣ୍ଟକୀବୃକ୍ଷ (ହୁ.ଶ) —6, Name of a thorny plant. [ ବ୍ର—ମତାନ୍ତରରେ ଶିବଲ୍ଲୀ ଓ ଶିବଲିଙ୍ଗିନୀ ଏକ ଅଟେ ।]

**ଶିବ ରସ**—ସ. ବ—ତିନି ଦିନରୁ ବେଶି ପର୍ଯ୍ୟୁଷିତ ଅନ୍ନୋଦକଜାତ
Siba rasa ରସ; କାଞ୍ଜି (ଶବ୍ଦକୋଷ)—Stale rice-water more than 3 days old. [ ବ୍ର—ବୈଦ୍ୟଶାସ୍ତ୍ର ମତରେ ଏହା ପାଚକ, ମଟର, ଅମ୍ଳ, ଅସ୍ରଗ୍‌ଦାହପ୍ରଦ, ଲଘୁ ଓ ତର୍ପଣ—ଶବ୍ଦକୋଷ ।]

**ଶିବଯୋଗ**—ସ. ବ—ଶିବରାତ୍ରି (ମାଘ କୃଷ୍ଣ ଚତୁର୍ଦ୍ଦଶୀ) ରବିବାର ବା
Sibajoga ମଙ୍ଗଳବାର ଦିନ ପଡ଼ିବା ଯୋଗ (ଶବ୍ଦକୋଷ) —The Sibarātri falling on a Sunday or Tuesday

**ଶିବରାଜ**—ଦେ. ବ (ନାମ)—ଓଡ଼ିଶାର ଜଣେ ପ୍ରାଚୀନ ରାଜା—
Sibarāja An ancient king of Orissa. [ବ୍ର—ଶିବରାଜ ଶୈଳୋଦ୍ଭବ ବଂଶୀୟ ବୋଲି ଐତିହାସିକମାନେ

ସ୍ଥିତ କରିଅଛନ୍ତି । ତାଙ୍କର ପ୍ରସିଦ୍ଧ ପଟ୍ଟଅ ଶକ୍ତି ତାମ୍ରଶାସନ ୭୦୦ ଖ୍ରୀଷ୍ଟାବ୍ଦରେ ଲିଖିତ ହୋଇଥିଲା । ଏଥିରୁ ଜଣାଯାଏ ଯେ—ସେ ମାନବଂଶୀୟ ମହାରାଜ 'ଶଶାଙ୍କମାନ'ଙ୍କ ଅଧୀନ ସାମନ୍ତ ନୃପତି ଥିଲେ । କେଦାରନାଥ. ମହାପାତ୍ର । ]

**ଶିବରାତ୍ରି**—ସଂ. ବି—ଶିବ ଚତୁର୍ଦ୍ଦଶୀ; ଫାଲ୍ଗୁନ କୃଷ୍ଣ ଚତୁର୍ଦ୍ଦଶୀ; ଜାଗର
Śibarātri ଯାତ୍ରା—The festival observed on the night of 14th day of the dark lunar fortnight of Phālguna. [ଦ୍ର—ଏହା ମହାଦେବଙ୍କର ଗୋଟିଏ ପ୍ରଧାନ ଯାତ୍ରା । ଭୁବନେଶ୍ୱର ଲିଙ୍ଗରାଜ ମହାପ୍ରଭୁଙ୍କର ୧୪ଟି ଯାତ୍ରା ମଧ୍ୟରେ ଏହା ସର୍ବପ୍ରଧାନ । ଏ ଦିନ ଅଶୃଦ୍ରାଳି ବ୍ରାହ୍ମଣ ହିନ୍ଦୁଙ୍କର ଉପବାସ ଓ ବ୍ରତ କର୍ତ୍ତବ୍ୟ । ଏହି ରାତ୍ରରେ ଭକ୍ତ ଜାଗର ରହେ ଓ ରାତିରେ ଦେଉଳର ବେଢ଼ା ପରିକ୍ରମା ହେବା ପରେ ମନ୍ଦିରର ଚୂଡ଼ାକୁ 'ମହାଦୀପ' ଉଠାଯାଏ । ଏହି ରାତ୍ରିର ୪ ପ୍ରହରରେ ଶିବଙ୍କୁ ଯଥାକ୍ରମେ ଦୁଗ୍ଧ, ଦଧି, ଘୃତ ଓ ମଦ୍ଧୁରେ ୪ଥର ପୂଜା କରାଯାଏ ।] ଦେ. ବି—ମଙ୍ଗଳମୟୀ ରାତ୍ରି—An auspicious night (ଯଥା—ବଣ ମଧୁପ କାନ୍ତି ଲଭିବ, ଦୃଷ୍ଟି ଶିବରାତ୍ରି ସମ୍ଭବ । ଉପ. ବୈଦେହୀଶବିଳାସ ।)

**ଶିବରାମ**—ସଂ. ବି—ମହାଦେବ ଓ ବିଷ୍ଣୁ—Mahādeba and
Śiba rāma Bishṇu. ଦେ. ବି. ପୁଂ—ଲୋକଙ୍କର ନାମ—
शिवराम **शिवराम** A name given to males.

**ଶିବରାମ ଜଣାଣ**—ଦେ. ବି-ଗଞ୍ଜାମ ବ୍ରହ୍ମପୁରର ସ୍ୱର୍ଗୀୟ କବି ଭୁବନେଶ୍ୱର
Śibarāma jaṇāṇa କବିଚନ୍ଦ୍ର (୧୮୪୬-୧୮୯୬)ଙ୍କ ରଚିତ ମହାଦେବ ଓ ବିଷ୍ଣୁଙ୍କ ସ୍ତବ ପୁସ୍ତିକା—Name of a booklet of prayer addressed to Śiba and Bishṇu by poet Bhubaneśwara Kabichandra of Ganjām.

**ଶିବରୋହିଣୀ**—ସଂ. ବି. ସ୍ତ୍ରୀ (ଶିବ+ରୁହ୍ ଧାତୁ+କର୍ତ୍ତୃ. ଇନ୍+ସ୍ତ୍ରୀ. ଈ;
Śibarohiṇī ଯେ ମହାଦେବଙ୍କ ଉପରେ ଆରୋହଣ କରିଅଛନ୍ତି)—କାଳୀ—Goddess Kāḷi.

**ଶିବଲିଙ୍ଗ**—ସଂ. ବି—ଲିଙ୍ଗରୂପେ ପୂଜିତ ଶିବମୂର୍ତ୍ତି; [ସ୍ତ୍ରୀଜନନେନ୍ଦ୍ରିୟ
Śiba liṅga (ଶକ୍ତି) ମଧ୍ୟସ୍ଥ ଛିଦ୍ରରେ ପ୍ରୋଥିତ ପୁଂଜନନେନ୍ଦ୍ରିୟ (ଲିଙ୍ଗ)ରୂପେ ପୂଜିତ] ମହାଦେବଙ୍କ ପ୍ରତିମା—The phallic emblem of God Śiba. [ଦ୍ର—ଏହା ମଣି (ପ୍ରସ୍ତର), ଧାତୁ, ମୃତ୍ତିକା ଆଦି ନାନା ଉପାଦାନରେ ପ୍ରସ୍ତୁତ ହୁଏ ।] ଦେ. ବି—ଶିବଲିଙ୍ଗିନୀ (ଦେଖ)—Śibaliṅgini (See).

**ଶିବଲିଙ୍ଗୀ(ଙ୍ଗା)**—ଦେ. ବି—ଶିବଲିଙ୍ଗିନୀ (ଦେଖ)
Śiba liṅgi(ṅgā) Śiba liṅginī (See)

**ଶିବଲିଙ୍ଗିନୀ**—ସଂ. ବି—ଶକ୍ତି ସମନ୍ୱିତ ଶିବଲିଙ୍ଗ ଆକୃତି ବିଶିଷ୍ଟ କ୍ଷୁଦ୍ର
Śiba liṅginī କୃଷ୍ଣବର୍ଣ୍ଣ ଅଣ୍ଡାକାର ବୀଜ ଯୁକ୍ତ ଅରଣ୍ୟ ଜାତ ଲତା
ପ. ଶିବବଲ୍ଲୀ, ଶୈବଲୀ, ଶିବଲିଙ୍ଗୀ, ଈଶ୍ୱରଲିଙ୍ଗୀ, ଚିତ୍ରଫଳା, ବହୁପତ୍ରା, ଅମ୍ଳା, ଦୁରବେହା, ଶିବବଲ୍ଲିକା, କଣ୍ଟଫଳା, ଈଶଲିଙ୍ଗୀ, ଲିଙ୍ଗିନୀ ।
शिवलिङ्गी
**सिबलिङ्गी, पचगुरिआ, बिजगुरिआ**
ବିଶେଷ—A wild tree the berries of which resemble the phallic emblem in shape. [ଦ୍ର—ଏ ଲତା ଜଙ୍ଗଲରେ ଓଡ଼ୁମିଷ୍ଟାରେ ଅଧିକ ଜନ୍ମେ । ଏହାର ଡାଙ୍ଗ ସରୁ ଓ ପତ୍ରର କଲିସ୍ତ ପଞ୍ଚ ପତ୍ର, ୩—୫ ଇଞ୍ଚ ପରିଧି ବିଶିଷ୍ଟ, ଦନ୍ତୁରିତ ଓ ପତ୍ରର ଅଗ ଟାଣିଆ ବାହାରି ଥାଏ । ପତ୍ର-ଦଣ୍ଡର ମୂଳରେ ଛୋଟ ଫୁଲର ଛୋଟ ଗୁଚ୍ଛ ଲାଗିଥାଏ । ପୁଲ ହଳଦିଆ । ଏହା ଔଷଧରେ ଲାଗେ । ବୈଦ୍ୟକ ମତରେ ଏହା ଗରମ, ଦୁର୍ଗନ୍ଧଯୁକ୍ତ, ପୌଷ୍ଟିକ, ଶୋଧକ, ଗର୍ଭଧାରକ ଓ କୁଷ୍ଠାଦିନାଶକ । ଏହା କଟୁ, ଅମ୍ଳ ଓ ବାତ ଶୋଥ କଫାପହ । ଏ ଲତା ଫଳବତୀ ହେଲେ ଏଥିର ସର୍ବାଙ୍ଗ ଔଷଧପାଇଁ ସଂଗୃହୀତ ହୁଏ (ହି. ଶ) । ଏହାର ବୀଜ ଶିବଲିଙ୍ଗାକୃତିବିଶିଷ୍ଟ, କନ୍ଦ ଛଦ, କୃଷ୍ଣବର୍ଣ୍ଣ ଓ ଅଣ୍ଡାକାର (ଯୋଗେଶ୍ୱର) ] ।

**ଶିବଲୋକ**—ସଂ ବି—୧ । ମହାଦେବଙ୍କ ଅଧିଷ୍ଠିତ ସ୍ୱର୍ଗୋଦ୍ଦେଶ,
Śiba loka (ଦ୍ର—ଏଠାରେ ଶିବଭକ୍ତମାନେ ପରକାଳରେ ବାସ କରନ୍ତି ବୋଲି ସେମାନଙ୍କର ବିଶ୍ୱାସ)—1. A mythological region set apart for the abode of the devotees of Śiba after death. ୨ । କୈଳାସପର୍ବତ—2. Kailāsa mountain.

**ଶିବଶୟନ**—ସଂ. ବି—ଆଷାଢ଼ ଶୁକ୍ଳ ଚତୁର୍ଦ୍ଦଶୀ (ଦ୍ର-ଏହା ଲିଙ୍ଗରାଜଙ୍କର
Śiba śayana ୧୪ ଯାତ୍ରା ମଧ୍ୟରୁ ଏକତମ)—The
(ଶିବଶୟନ ଚତୁର୍ଦ୍ଦଶୀ—ଅନ୍ୟରୂପ) festival observed on the 14th day of the bright lunar fortnight of Ashāṛdha [ଦ୍ର—ଶିବ ଏ ଦିନ ଶୁଅନ୍ତି ଓ କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଉଠନ୍ତି ।]

**ଶିବଶେଖର**—ସଂ. ବି—୧ । ବକବୃକ୍ଷ (ହି. ଶ)—1. Sesbania
Śiba śekhara Grandiflora. ୨ । ଧତୁରା (ହି. ଶ) 2. Thorn-apple. ୩ । ଶିବଙ୍କ ମସ୍ତକ (ହି. ଶ) 3. The head of Śiba. ୪ । ଧଳା ଅରଖ ଗୁଳ୍ମ (ହି. ଶ)—4. Calotropis Gigante (plant) (white flowered variety).

**ଶିବଶୈଳ**—ସଂ. ବି—କୈଳାସ ପର୍ବତ (ହି. ଶ)—
Śiba śaila The Kailāsa mountain.

**ଶିବ(ବା) ସାଆନ୍ତର**—ଦେ. ବି—ଶିବାଇ ସାଆନ୍ତର (ଦେଖ)
Śiba(bā)sā-āntarā Sibāi sā-āntarā (See)

**ଶିବସାଗର**—ଦେ. ବି (ନାମ)—ଆସାମ ପ୍ରଦେଶର ଗୋଟିଏ ଜିଲ୍ଲା ଓ
Śibasāgara ତହିଁର ପ୍ରଧାନ ନଗର—Name of a
शिवसागर **शिवसागर** district and town in Assam.

**ଶିବ ସାଯୁଜ୍ୟ**—ସଂ. ବି—୧ । ଶିବ ପଦ—1. The position of
Śiba sājujya Śiba. ୨ । ମୃତ୍ୟୁ ପରେ ଶିବ-

ଲୋକରେ ଅବସ୍ଥାନ—2. The abode of a mortal in the region of God Śiba after death. ୩ । ଏକପ୍ରକାର ମୋକ୍ଷ, ଯହିଁରେ ମନୁଷ୍ୟ ଶିବଙ୍କଠାରେ ଲୀନ ହୁଏ ( ହି. ଶ )—3. A final beatitude in which man is absorbed into the body of Śiba. ୪ । ମୃତ୍ୟୁ (ହି. ଶ)—4. Death.

**ଶିବା**—ସଂ. ବି. ସ୍ତ୍ରୀ. (ଶିବ+ଆ)—୧ । ଦୁର୍ଗା; ପାର୍ବତୀ; ଶିବାଣୀ—
Śibā 1. Pārbati; the wife of God Śiba. (ଉ—ସକଳ ସମ୍ପଦ ଶିବାଙ୍କୁ ଦେଇ, ଶିବ ଯଲେଗଲେ ଲଙ୍ଗଳା ହୋଇ—ଡଗ ।) ୨ । ଶୃଗାଳୀ—2. A she-jackal. (ଉ—ଶୁଣିଛୁ ଭ ଶିବା ଯବ ସ୍ୱେ ବୋବାଉଛଲେ—କୃଷ୍ଣସିଂହ ମହାଭାରତ ସଭା ।) ୩ । ମୋକ୍ଷ; ମୁକ୍ତି—3. Salvation; final beatitude. ୪ । ହରଡକା; ହରଡ଼ା—4. Myrobalan. ୫ । ଭୁଇଁଅଁଳା—5. Phyllanthus Niruri. ୬ । ମେଥି—6. Fenugreek. ୭ । ଆମଳକୀ; ଅଁଳା-7. Phyllanthus Emblica. ୮ । ହଳଦୀ; ହଳଦି-8. Turmeric. ୯ । ଶମୀ; ଶାଇଁ ଗଛ—9. The spung tree; Prosopis Spicigera. ୧୦ । ଶ୍ୟାମାଲତା; ଶୁଅଁ ଲଇ ବା ଡେମ୍ବିଡ଼ି ଲଇ—10. A creeper; Indian Sarsaparila. ୧୧ । ଅମ୍ବଡ଼ା—11. Hogplum ୧୨ । ଗୋରୋଚନା-12. A yellow pigment obtained from dead kine. ୧୩ । ନୀଳ ଦୁର୍ବା—13. The blue creeping grass. ୧୪ । ନଦୀବିଶେଷ—14. Name of a river. ୧୫ । ଧବଗଛ (ହି. ଶ) 15. Conocarpus Latifolia. ୧୬ । ବୁଦ୍ଧିଶକ୍ତି-ବିଶେଷ (ହି. ଶ) - 16. A kind of intelligence. ୧୭ । ସୌଭାଗ୍ୟବତୀ ସ୍ତ୍ରୀ—17. A fortunate woman (Apte). ୧୮ । ( ପୁଂ ) ଶୃଗାଳ—18. Jackal (in general) (Apte). ଦେ. ବି—୧ । ମହାଦେବଙ୍କୁ ଅନାଦରରେ ଡାକିବା ନାମ—

ଶିବବୁ ଶିବା 1. A name by which God Śiba is called by unbelievers. (ଶିବା ପଥର ଜଗା କାଠ, ଅନ୍ତ ସମସ୍ତେ ମାଠ ମାଠ—ଡଗ ।) ୨ । ଶିବଚରଣ ଆଦି ନାମଧାରୀ ବ୍ୟକ୍ତିର ଅନାଦରାର୍ଥ ଡାକନାମ—2. Name by which persons named Śiba Charaṇa etc are called.

**ଶିବା(ବେ)ଇ ସାଅନ୍ତ୍ରା**—ଦେ. ବି—କୋଣାର୍କ ଦେଉଳ ନିର୍ମାଣ
Śibā(be) Sā-antarā କରିବାରେ ଓଡ଼ିଶାର ରାଜା [ଶିବା(ବେ)ଇ ସାନ୍ତ୍ରା—ଅନ୍ତରୂପ] ଲାଙ୍ଗୁଳା ନରସିଂହଦେବଙ୍କଦ୍ୱାରା ନିଯୁକ୍ତ ଜନୈକ ମନ୍ତ୍ରୀ—The name of a minister of the Orissa king Lāngulā Narasimha Deb who was entrusted with the supervision of the construction of the Konārka temple. [ ଦ୍ର—ଏହି ଦେଉଳ ନିର୍ମାଣରେ ୧୨ ଶତ (ମତାନ୍ତରରେ ୧୨ ହଜାର) ବଢେଇ ବା କାରିଗର ନିଯୁକ୍ତ ରହିଥିଲେ । ଏତେଗୁଡ଼ାଏ କାରିଗର ବହୁକାଳ ଚେଷ୍ଟା କରି ଏ ଦେଉଳଟି ସମାପ୍ତ କରି ପାରିଲେ ନାହିଁ । କାରଣ, ଦେଉଳ ତୋଳା ହେବା ସ୍ଥାନ ସମୁଦ୍ରର ଉପକୂଳବର୍ତ୍ତୀ ଥିବାରୁ ସେଠାରେ ଅଥଳ ପାଣି ଥିଲା, ତେଣୁ ଅର୍ଦ୍ଧନିର୍ମିତ ଦେଉଳଟି କଅଁଳ ଦୋଷରୁ ମୁଣ୍ଡି ମରି ପାରିଲା ନାହିଁ । କାରିଗରମାନେ କୂଳରୁ ପଥରକୁ କଅଁ ନ କରାଇ ଗଣ୍ଡଅଧୁ ପଥର କରାଇ ଆଣିବାକୁ ଚେଷ୍ଟା କରିବାରୁ କଅଁର ଅସ୍ଥିରତା ଯୋଗୁ ୧୨ ବର୍ଷ ବିତିଗଲା, ତଥାପି ଦେଉଳର ମୁଣ୍ଡି ମରି ପାରିଲା ନାହିଁ । ( ଏହି ଉପଲକ୍ଷେ ଗୋଟିଏ ପ୍ରବାଦ ଅଛି ଯେ "ଶିବେଇ ସାଅନ୍ତ୍ରା ଦେଉଳ ତୋଲେଇବା ନ୍ୟାୟ"—ଅର୍ଥାତ୍ କୂଳ-ଅଧୁ ପଥର ନ ଗୋଡ଼ି ଗଣ୍ଡ ପାଣିଅଧୁ ପଥରଯୋଗି କଅଁ ବସାଇବାରୂପ ବୃଥା ଚେଷ୍ଟା) । ଏହି ବିଳମ୍ବ ଯୋଗୁଁ ରାଜା ଅତି କ୍ରୁଦ୍ଧ ହେଲେ ଓ ଆଦେଶ ଦେଲେ ଯେ, ଦେଉଳର ନିରୂପିତ ସମୟ ମଧ୍ୟରେ ମୁଣ୍ଡି ମାରି ନ ପାରିଲେ ବାରଶହ ବଢ଼େଇଙ୍କର ମୁଣ୍ଡ କାଟି ହେବ । ଏହି ଆଦେଶରେ କାରିଗରମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଜୀବନର ଆଶା ପରିତ୍ୟାଗ କରି ବସିଲେ । ଇତିମଧ୍ୟରେ ଉକ୍ତ ଦେଉଳରେ କାମ କରିବାକୁ ଆସିଥିବା କାରିଗରମାନେ ୧୨ ବର୍ଷ ହେଲା ଘରଦ୍ୱାର ଛାଡ଼ି ଆସି କର୍ମସ୍ଥଳରେ ପଡ଼ି ରହିଥିଲେ । ତହିଁ ମଧ୍ୟରୁ ଗୋଟିଏ ବଢ଼େଇ ଘରୁ ଆସିବା ସମୟରେ ତାର ସ୍ତ୍ରୀ ଗର୍ଭବତୀ ହୋଇଥିଲା ଓ ଇତିମଧ୍ୟରେ ପୁଅଟିଏ ଜନ୍ମ ହେଲା—ସେ ପୁଅଟିର ନାମ 'ଧର୍ମପଦ' ବା 'ଧରମୁ ।'

ସେ ପୁଅଟି ୧୨ ବର୍ଷ ବୟଃକ୍ରମ ହୋଇ ପିତାର ସମ୍ବାଦ ଜାଣିବା ପାଇଁ ବ୍ୟସ୍ତ ହୋଇ କର୍ମସ୍ଥଳକୁ ଆସିଲା । ଆସିବା ପୂର୍ବରୁ ବାଟରେ ଗୋଟିଏ ବୁଢ଼ୀ ଘାଟରେ ଦେଖା ହେବାରୁ ବୁଢ଼ୀ ସେ ପିଲାକୁ 'ଶିବେଇସାଅନ୍ତ୍ରା ଦେଉଳ ତୋଳାଇବା ନ୍ୟାୟ' ପ୍ରବଚନ ବୋଲି ଏ ଦେଉଳ ଉପରେ ମୁଣ୍ଡି ମରାଯାଇବ ଏହାର ସୂଚନା ଦେଲା । ବାଳକଟି ବୁଢ଼ୀଠାରୁ ଏ ସୂଚନା ପାଇ କର୍ମସ୍ଥଳରେ ଉପସ୍ଥିତ ହୋଇ ବାରଶହ ବଢ଼େଇଙ୍କର ମରଣାପନ୍ନ ଦଶା ଦେଖି ନିଜେ ସେ ଦେଉଳଟିକୁ ମୁଣ୍ଡି ମାରିବାର ଭାର ଗ୍ରହଣ କରି କଅଁ ଯକାଇବାର ଏପରି କୌଶଳ କଲା ଯେ, ନିର୍ଦ୍ଦିଷ୍ଟ କାଳ ମଧ୍ୟରେ ଦେଉଳର ମୁଣ୍ଡି ମରିଗଲା । କିନ୍ତୁ ରାଜା ଯଦି ଜାଣିବେ ଯେ, ବାରଶହ ବଢ଼େଇ ଯାହା କରିପାରିଲେ ନାହିଁ, ତାହା ଗୋଟିଏ ବାଳକ ଅକ୍ଲେଶରେ କରିଦେଲା, ତାହାହେଲେ ବାରଶହ ବଢ଼େଇଙ୍କର ମୁଣ୍ଡକାଟି କରିବେ, ଏହି ଆଶଙ୍କାରେ ବଢ଼େଇମାନେ ସଭା କରି ଉକ୍ତ ବାଳକର

ପିତାକୁ ପଚାରିଲେ "ତୋର ବାରଣକୁ ବଢ଼େଇଙ୍କଠାରେ ରଖିଛ ? ନାଁ ! ପୁଅରେ ରଖିଛ ?" ବଢ଼େଇ ଅଗତ୍ୟା ପୁଅର ଆଶା ଛାଡ଼ିଲା ଓ ସମସ୍ତେ ବସ୍ତୁର କରି ସେ ବାଳକଟିକୁ ପାଣିକୁ ଫୋପାଡ଼ି ଦେଇ ମାରି ପକାଇଲେ ଓ ଦେଉଳର ମୁଣ୍ଡି ମାରବାର ବାହାଦୁରୀ ଏ ୧୨୦୦ ବଢ଼େଇ ଓ ଶିବେଇ ସାଆନ୍ତ ନେଲେ ।

ଏ କମ୍ବଦନ୍ତୀକୁ ସ୍ୱର୍ଗୀୟ ଗୋପବନ୍ଧୁ ଦାସ ତାଙ୍କ 'ଧର୍ମପଦ' ପୁସ୍ତିକାରେ ଛନ୍ଦୋବଦ୍ଧ କରିଅଛନ୍ତି ।]

**ଶିବାଉ(ଓ)ତ୍(ତି)**—ଦେ. ବି (ସଂ. ଶିବଭକ୍ତ; ତୁଳ. ସ୍ୱାମୀଜି ତି)—
Śibāu(o)t(ti) ଶିବଭକ୍ତ; ଶୈବ; ଶିବୋପାସକ—
शिवायत सिवायत A devotee of Śiba.

**ଶିବାକ୍ଷ**—ସଂ. ବି (ବହୁବ୍ରୀହି; ଶିବଙ୍କ ଅକ୍ଷି ପରି ଅକ୍ଷି ଯାହାର)—
Śibāksha ରୁଦ୍ରାକ୍ଷ ଗୋଟି—The seeds of the Rudraksha tree (used as beads).

**ଶିବା ଗଣ**—ସଂ. ବି—୧ । ଦୁର୍ଗାଙ୍କ ଅନୁଚରୀ ଯୋଗିନୀଗଣ—
Śibā gaṇa 1. The female attendants of Durgā.
୨ । ଶୃଗାଳୀମାନେ—2. A number of she-jackals.

**ଶିବାଗମ**—ସଂ. ବି—ଶିବପୂଜାବିଷୟକ ଶାସ୍ତ୍ରବିଶେଷ—Name of,
Śibāgama a treatise on the worship of Siba.

**ଶିବାଗୌରୀ**—ସଂ. ବି—ପାର୍ବତୀ—
Śibāgaurī Goddess Pārbatī.

**ଶିବାଗୌରୀ ଯାତ୍ରା**—ଦେ ବି—ଜ୍ୟୋତିଷ ମତରେ ଯାତ୍ରାପାଇଁ ଶୁଭଦିନ
Śibāgaurī jātrā ନ ମିଳିଲେ ଜ୍ୟୋତିଃସାର ସଂଗ୍ରହ ଗ୍ରନ୍ଥ
यात्राय शिवज्ञान मतरे ଶିବଜ୍ଞାନ ଅନୁସାରେ କରାଯିବା ଯାତ୍ରା—
The making of a journey by following the Śibājñāna as prescribed in Jyotihsāra Samgraha in case no auspicious day is available according to astrology.
शिवज्ञान यात्रा

ଶିବାଗୌରୀ ଯାତ୍ରା ।

[ଦ୍ର—ଜ୍ୟୋତିଷ ମତରେ ଶୁଭଦିନ ନ ମିଳିଲେ । ଏଣୁ ଶିବଜ୍ଞାନ ମତରେ ଯାତ୍ରା କରିବ । ମହେନ୍ଦ୍ର, ଚକ୍ର ଅମୃତ ଶୂନ୍ୟ ଉପଯୋଗ । ମାସଭେଦେ ସାତବାରେ ଦଣ୍ଡବିଭାଗ ଭୋଗ । ମାହେନ୍ଦ୍ର ସର୍ବମଙ୍ଗଳ ଅମୃତରେ ଜୟ । ଚକ୍ରଯୋଗେ କାର୍ଯ୍ୟନାଶ ଶୂନ୍ୟେ ମୃତ୍ୟୁଭୟ ॥ ମାଘ ଫାଲ୍ଗୁନ ଚୈତ୍ର ବୈଶାଖ ଶ୍ରାବଣ । ଭାଦ୍ରମାସ ସୋଡ଼ଶ ଏକସଙ୍ଗ ଜାଣ । ଆଶ୍ୱିନ କାର୍ତ୍ତିକ ମାର୍ଗଶିର ପୌଷ ଏକ । ଶେଷ ପୁଣି ଜ୍ୟେଷ୍ଠ ଆଷାଢ଼ର ସମ ଲେଖ । ପ୍ରକାରରେ ଲେଖା ଥାଇ ଜନ୍ମେ ତାର ଲାଭ । ଦୁଇ ସୁଜନେ ଯାତ୍ରା କର ତେଜି ଲୋଭ ॥

ଜ୍ୟୋତିଃସାରସଂଗ୍ରହ ।

ମାଘ ଫାଲ୍ଗୁନ ଚୈତ୍ର ବୈଶାଖ ଶ୍ରାବଣ ଭାଦ୍ର ଦିବାଦଣ୍ଡଃ—

ରବିବାର ମାହେନ୍ଦ୍ର ଦ ୨ ଅମୃତ ଦ ୮ ଶୂନ୍ୟ ଦ ୮
ମାହେନ୍ଦ୍ର ଦ ୨ ଚକ୍ର ଦ ୧୦ ଶ
ସୋମବାର ଅ ଦ ୪ ନ ଦ ୮ ଅ ଦ ୬ ଚ ଦ ୬ ମା ଦ ୪
ଶୂ ଦ ୨
ମଙ୍ଗଳବାର ଚ ଦ ୪ ଶୂ ଦ ୨ ଅ ଦ ୬ ଚ ଦ ୪ ଶୂ ଦ ୨
ଅ ଦ ୪ ଶୂ ଦ ୨
ବୁଧବାର ଅ ଦ ୪ ଚ ଦ ୬ ଅ ଦ ୪ ଶୂ ଦ ୨
ଚ ଦ ୪ ମା ଦ ୪ ଅ ଦ ୪ ଶୂ ଦ ୨
ଗୁରୁବାର ମା ଦ ୪ ଶୂ ଦ ୨ ଚ ଦ ୬ ମା ଦ ୬
ଶୂ ଦ ୪ ଚ ଦ ୪ ଶୂ ଦ ୪
ଶୁକ୍ରବାର ଅ ଦ ୫ ଚ ଦ ୨ ଅ ଦ ୬ ଚ ଦ ୬ ଅ ଦ ୪
ଶ ଦ ୪ ଅ ଦ ୪
ଶନିବାର ଶୂ ଦ ୪ ଚ ଦ ୨ ଶୂ ଦ ୪ ଅ ଦ ୮
ଶୂ ଦ ୪ ଚ ଦ ୪ ଶୂ ଦ ୪

ରାତ୍ରିଦଣ୍ଡଃ—

ରବିବାର ଶୂ ୨ ମା ୨ ଅ ୪ ଚ ୮ ମା ୮ ଶୂ ୬
ସୋମବାର ଚ ୨ ଅ ୬ ଚ ୬ ଅ ୮ ଶୂ ୮
ମଙ୍ଗଳବାର ଅ ୨ ଚ ୫ ଶୂ ୨ ଅ ୬ ଚ ୬ ଅ ୫ ଚ ୪
ଶୂ ୨
ବୁଧବାର ଶୂ ୨ ଅ ୬ ମା ୪ ଚ ୫ ଶୂ ୪ ଅ ୧୦
ଗୁରୁବାର ଚ ୧୪ ଶୂ ୫ ଚ ୪ ଅ ୨ ଶୂ ୪
ଶୁକ୍ରବାର ଚ ୫ ଅ ୪ ମା ୨ ଚ ୬ ଶୂ ୫ ଅ ୨
ମା ୨ ଶୂ ୨
ଶନିବାର ଶୂ ୨ ଚ ୪ ଅ ୬ ଚ ୪ ଅ ୫ ଚ ୨
ଅ ୫ ଶୂ ୪

ଆଶ୍ୱିନ କାର୍ତ୍ତିକ ମାର୍ଗଶିର ପୌଷ ଦିବାଦଣ୍ଡଃ—

ରବିବାର ଶୂ ୨ ଅ ୬ ଚ ୮ ଅ ୮ ଶୂ ୨ ମା ୨ ଶୂ ୨
ସୋମବାର ଅ ୪ ଶୂ ୪ ଅ ୬ ଚ ୧୬
ମଙ୍ଗଳବାର ଅ ୨ ଚ ୨ ଅ ୧୦ ଚ ୬ ଶୂ ୬ ଚ ୪
ବୁଧବାର ଅ ୨ ମା ୨ ଅ ୨ ଚ ୬ ଅ ୬ ଶୂ ୨
ମା ୬ ଚ ୪
ଗୁରୁବାର ଅ ୪ ଚ ୪ ଶୂ ୪ ଚ ୬ ଶୂ ୨ ଅ ୪
ଶୁକ୍ରବାର ଅ ୨ ଚ ୨ ଅ ୬ ଚ ୬ ଅ ୮ ଶୂ ୨ ଅ ୪
ଶନିବାର ଅ ୨ ଚ ୨ ଅ ୬ ଚ ୬ ଅ ୮ ଶୂ ୨ ଅ ୪

ରାତ୍ରିଦଣ୍ଡଃ—

ରବିବାର ଶୂ ୨ ଚ ୪ ଅ ୪ ଚ ୬ ଅ ୪ ଶୂ ୨ ଅ ୮
ସୋମବାର ଚ ୬ ଅ ୮ ଚ ୮ ଅ ୨ ଚ ୬
ମଙ୍ଗଳବାର ମା ୬ ଅ ୨ ଶୂ ୨ ଅ ୬ ଚ ୪ ମା ୪
ଶୂ ୨ ଅ ୪
ବୁଧବାର ଚ ୨ ଅ ୨ ଚ ୪ ଅ ୧୬ ଚ ୨ ଅ ୪
ଗୁରୁବାର ଶୂ ୨ ଅ ୮ ଚ ୬ ଅ ୮ ଶୂ ୨ ଅ ୪
ଶୁକ୍ରବାର ଚ ୨ ଅ ୮ ଚ ୬ ଅ ୪ ଶୂ ୨ ଅ ୪ ଶୂ ୪
ଶନିବାର ଚ ୧୪ ଶୂ ୪ ଚ ୪ ଅ ୨ ଶୂ ୬

ଜ୍ୟେଷ୍ଠ ଆଷାଢ଼ ଦିବାଦଣ୍ଡ ।

ରବିବାର ଶୂ ୪ ଅ ୬ ବ ୭ ଅ ୬ ବ ୪ ମା ୨ ଶୂ ୨
ସୋମବାର ବ ୮ ଅ ୪ ଶୂ ୭ ବ ୮ ଶୂ ୪
ମଙ୍ଗଳବାର ଅ ୭ ଶୂ ୪ ଅ ୭ ବ ୭ ମା ୨ ଅ ୨ ମା ୨ ଶୂ ୭
ବୁଧବାର ଶୂ ୨ ବ ୪ ଅ ୮ ବ ୭ ଅ ୮ ଶୂ ୨
ଗୁରୁବାର ମା ୨ ଶୂ ୨ ବ ୭ ମା ୪ ଶୂ ୪ ବ ୬ ଅ ୬
ଶୁକ୍ରବାର ଶୂ ୨ ମା ୨ ବ ୭ ମା ୨ ଶୂ ୪ ଅ ୭ ୪ ବ ୪ ଶୂ ୪
ଶନିବାର ମା ୨ ଶୂ ୨ ବ ୭ ମା ୭ ଶୂ ୪ ବ ୪ ଅ ୭

ରାତ୍ରିଦଣ୍ଡ ।

ରବିବାର ଅ ୪ ଶୂ ୪ ଅ ୭ ବ ୮ ଶୂ ୪
ସୋମବାର ବ ୮ ଅ ୮ ଶୂ ୪ ଅ ୪ ଶୂ ୨ ମା ୨ ଶୂ ୨
ମଙ୍ଗଳବାର ଅ ୨ ବ ୪ ମା ୪ ଶୂ ୪ ବ ୨ ଅ ୬ ଶୂ ୨ ବ ୭
ବୁଧବାର ଅ ୧୦ ଶୂ ୨ ବ ୪ ଅ ୪ ଶୂ ୧୦
ଗୁରୁବାର ଶୂ ୨ ଅ ୭ ଶୂ ୨ ବ ୪ ଶୂ ୨ ଅ ୬ ଶୂ ୪ ଅ ୪
ଶୁକ୍ରବାର ଅ ୭ ଶୂ ୨ ବ ୪ ଶୂ ୭ ଅ ୬ ଶୂ ୨ ଅ ୪
ଶନିବାର ଶୂ ୨ ଅ ୨ ବ ୮ ଶୂ ୨ ଅ ୭ ଶୂ ୪ ଅ ୭

ବାରଛତି ଯୋଗ ଅଦ ନକ୍ଷତ୍ର ବିଶୂରେ । ଯାତ୍ରା ଯେବେ ଶୁଭ ନୋହେ ଶୁଣ ସବୁ ନରେ ॥ ରବିବାରେ ଯାତ୍ରାକାଳେ ଶିରେ ଦେବ କର । ସୋମେ ମୁଖେ ମଙ୍ଗଳରେ ଗଳାର ଉପର ॥ ବୁଧରେ ଉଦରେ ଗୁରୁବାରେ ପାର୍ଶ୍ୱ ଭାଗେ । ଶୁକ୍ରବାରେ କର୍ଣ୍ଣେ ଶନିବାରେ ପୃଷ୍ଠଯୋଗେ । ଏ ବିଧିରେ କର ଦେଇ କରନ୍ତେ ଗମନ । ଦୁର୍ଯୋଗ ସୁଯୋଗ ହୋଇ କରେ ସନମାନ । ଯାତ୍ରା କାଳେ ତୈଳଭଣ୍ଡ ସର୍ପାଦ ଅଶୁଭ । ଦେଖାଗଲେ ଏହି ପ୍ରତିକାର ଯେ କରିବ । ବାମପାଦ ତିନିଥର ଭୂମିରେ ପ୍ରହାର । କରି ଯାତ୍ରା କଲେ ସର୍ବଶୁଭ ହୋଇ ତାର । ନୁହଇ ସେ ଅମଙ୍ଗଳ ମଙ୍ଗଳ ହୁଅଇ । ବଶିଷ୍ଠ ମୁନିଙ୍କ ବାଣୀ ଏ ସିଦ୍ଧ ଅଟଇ । ଅରୁଣୋଦୟ ପଞ୍ଜିକା ।

**ଶିବାଜୀ**—ଦେ. ବି—ମରହଟ୍ଟା ରାଜ୍ୟର ସ୍ଥାପୟିତା; ଅହାମ୍ମଦ ନଗର **Sibāji** शिवाजी **शिवाजी** ରାଜାଙ୍କର ସେନାପତି ଶାହାଜୀଙ୍କ ପୁତ୍ର—Sibāji, [ଦ୍ର—ଏହାଙ୍କର ମାତା ଜୀଜୀବାଈ ଅନ୍ୟ ଜଣେ ସେନାପତିଙ୍କର କନ୍ୟା; ଏହାଙ୍କ ଜନ୍ମ ୧୬୨୭ ଖ୍ରୀଷ୍ଟାବ୍ଦ । 'ପୁନା' ଶାହାଜୀଙ୍କର ପୈତୃକ ଜାଗିର ଥିଲା । ଅହାମ୍ମଦ ନଗର ରାଜ୍ୟର ପତନ ପରେ ବିଜାପୁରର ସୁଲତାନଙ୍କ ଅଧୀନ ଶାହାଜୀ ସେନାପତି କର୍ମ କରି ତତ୍ପରେ ଦାକ୍ଷିଣାତ୍ୟରେ ବିଜାପୁର ରାଜ୍ୟ ଅଧୀନ ଗୋଷ୍ଠବେ ନ୍ଦ୍ରେ ରାଜ୍ୟ ସ୍ଥାପନ କଲେ । ଶିବାଜୀ ବାଲ୍ୟକାଳରେ ବେଶି ଲେଖା ପଢ଼ା ଶିଖି ନ ଥିଲେ, କିନ୍ତୁ ସମର ବିଦ୍ୟାର ଅସ୍ତ୍ରଚାଳନ, ଅଶ୍ୱଚାଳନାଦିରେ ପାରଙ୍ଗମ ଥିଲେ । ଏ ରାମାୟଣ ଓ ମହାଭାରତ ଶୁଣି ମୁସଲମାନଙ୍କ ଅତ୍ୟାଚାରରୁ ଦେବମୂର୍ତ୍ତି ଓ ଗୋବ୍ରାହ୍ମଣାଦିଙ୍କ ରକ୍ଷା କରିବାକୁ ପ୍ରତିଜ୍ଞାବଦ୍ଧ ହେଲେ । ପୁନାର ନିକଟସ୍ଥ ପାର୍ବତ୍ୟ 'ମାଓଯାଲ' ନାମକ ଅସଭ୍ୟ ଜାତିଙ୍କୁ ସମର କୌଶଳ ଶିଖାଇ ସେହିମାନଙ୍କ ଦ୍ୱାରା ସୈନ୍ୟ ଦଳ ଗଢ଼ି ଶିବାଜୀ ମୁସଲମାନ ରାଜ୍ୟ ଆକ୍ରମଣ ଓ ଲୁଟତରାଜ କରି ଅନେକଗୁଡ଼ିଏ ଦୁର୍ଗମ ଗିରି ଦୁର୍ଗ ଅଧିକାର କଲେ । ସେତେବେଳେ ଶିବାଜୀଙ୍କ ବୟସ ୨୦ ବର୍ଷ । ସେତେବେଳେ ଶାହାଜୀ ବିଜାପୁରର ସୁଲତାନଙ୍କ ଅଧୀନ କର୍ମ କରୁଥିଲେ । ବିଜାପୁରର ରାଜକୋଷକୁ ପ୍ରେରିତ ଅର୍ଥ ଶିବାଜୀ ବାଟରେ ଲୁଟି ନେବାରୁ ବିଜାପୁର ସୁଲତାନ ଶାହାଜୀଙ୍କୁ କାରାବଦ୍ଧ କଲେ । କିନ୍ତୁ ଶିବାଜୀ ଦିଲ୍ଲୀଶ୍ୱର ମୋଗଲ ସମ୍ରାଟଙ୍କ ସଙ୍ଗେ ବନ୍ଧୁତା କରିବାର ଧମକ ବିଜାପୁର ସୁଲତାନକୁ ଦେଇ ପିତାଙ୍କୁ କୌଶଳରେ କାରାମୁକ୍ତ କରାଇଲେ । ତତ୍ପରେ ଶିବାଜୀ ମୋଗଲ ରାଜ୍ୟରେ ପ୍ରବେଶ କରି ଧନରତ୍ନ ଓ ଯୁଦ୍ଧଘୋଟକମାନ ଲୁଣ୍ଠନ କଲେ ଓ ଆପଣାର ଶିକ୍ଷିତ ସୈନ୍ୟମାନଙ୍କୁ ଅଶ୍ୱାରୋହୀ 'ବର୍ଗୀ'ରୂପେ ସୁଶିକ୍ଷିତ କରି ସେହିମାନଙ୍କ ସହାୟତାରେ ବିଜାପୁର ରାଜାଙ୍କ କଙ୍କଣ ପ୍ରଦେଶ ଜୟ କଲେ । ବିଜାପୁରର ରାଜାଙ୍କ ପ୍ରେରିତ ସେନାପତିଙ୍କୁ ଶିବାଜୀ କୌଶଳକ୍ରମେ ହତ୍ୟା କଲେ । ଶିବାଜୀ କିଛି କାଳ ପରେ ରାୟଗଡ଼ ନାମକ ଅଭେଦ୍ୟ ଦୁର୍ଗରେ ଆପଣା ରାଜଧାନୀ ସ୍ଥାପନ କଲେ ଓ ସୁଶିକ୍ଷିତ ୫୦ହଜାର ପଦାତି ଓ ୭ ହଜାର ଅଶ୍ୱାରୋହୀଙ୍କ ଦ୍ୱାରା ସେନା ଗଢ଼ି ମୋଗଲ ରାଜ୍ୟ ଆକ୍ରମଣ ଓ ଲୁଣ୍ଠନ କଲେ ।

ଅରଙ୍ଗଜେବଙ୍କ ସେନାପତି ଶାଇସ୍ତାଖାଁ ଏହାଙ୍କୁ ଦମନ କରିବାକୁ ପ୍ରେରିତ ହେଲେ, କିନ୍ତୁ ସେ ଲାଞ୍ଛିତ ହୋଇ ଜୀବନ ବିକଳରେ ପଳାଇ ଗଲେ । ଅତଃପର ଶିବାଜୀ ରଣତରୀ ଓ ନୌବଳର ସୃଷ୍ଟି କଲେ । ୧୬୬୪ ସାଲରେ ସେ ରାଜା ଉପାଧି ଗ୍ରହଣ କରି ଆପଣା ନାମରେ ମୁଦ୍ରା ଚଳାଇଲେ । ମୋଗଲ ରାଜ୍ୟ ଆକ୍ରମଣ କରି ସେଥିର ରାଜସ୍ୱରୁ ଚୌଥ ଗ୍ରହଣ କରିବାକୁ ଶିବାଜୀ ଦାବି କଲେ ଓ କେତେକ ସ୍ଥଳରୁ ଏହା ସଂଗ୍ରହ କଲେ ।

ତତ୍ପରେ ମୋଗଲ ସମ୍ରାଟ ଅରଙ୍ଗଜେବଙ୍କ ସଙ୍ଗେ 'ପୁରନ୍ଦର' ନାମକ ସ୍ଥାନରେ ୧୬୬୬ ସାଲରେ ସନ୍ଧିପତ୍ର ସ୍ୱାକ୍ଷର କଲେ । ଉକ୍ତ ସନ୍ଧିଦ୍ୱାରା ଶିବାଜୀ ମୋଗଲ ସୈନ୍ୟଙ୍କ ସଙ୍ଗେ ଯୋଗ ଦେଇ ବିଜାପୁର ରାଜ୍ୟର ଧ୍ୱଂସରେ ମୋଗଲ ସମ୍ରାଟଙ୍କୁ ସାହାଯ୍ୟ କଲେ । ଇତି ମଧ୍ୟରେ କପଟୀ ଅରଙ୍ଗଜେବ ଶିବାଜୀଙ୍କୁ ଓ ତାଙ୍କ ପୁତ୍ର ଶମ୍ଭୁଜୀଙ୍କ ଦିଲ୍ଲୀକୁ ନିମନ୍ତ୍ରଣ କରି ନେଇ ସେଠାରେ ତାଙ୍କୁ ଅଳ୍ପ ସଂଖ୍ୟକ ସୈନ୍ୟ ସମାବୃତ ଓ ନିରସ୍ତ୍ର ଦେଖି ଅପମାନିତ କଲେ ଓ ପିତା ପୁତ୍ର ଦୁହିଁଙ୍କୁ ବନ୍ଦୀ କଲେ । ଶିବାଜୀ ଅରଙ୍ଗଜେବଙ୍କଠାରୁ ବହୁଗୁଣରେ ଧୂର୍ତ୍ତ ଥିଲେ । 'ଶଠେ ଶାଠ୍ୟଂ ସମାଚରେତ୍' ମତ ଆଚରଣ ପୂର୍ବକ କୌଶଳ ଅବଲମ୍ବନ

ପୁତ୍ରଙ୍କ ଗୋଟିଏ ମିଷ୍ଟାନ୍ନ ଟୋକେଇ ମଧ୍ୟରେ ଅପେ ଲୁଚି ଓ ଅନ୍ୟ ଗୋଟିଏ ମିଷ୍ଟାନ୍ନ ଟୋକେଇରେ ଆପଣା ପୁଅକୁ ଲୁଚାଇ ବାହାର ବାହୁଅଙ୍ଗକୁ ଗୋଟିଏ ଦେବାଳୟକୁ ଆସି ସେଠାରୁ ଗୋଟିଏ ଘୋଡ଼ାରେ ଅପେ ଚଢ଼ି ଓ ପୁଅଙ୍କୁ ବସାଇ ଗତାଗତ ୫୦ କ୍ରୋଶ ଦୂରବର୍ତ୍ତୀ ମଥୁରାକୁ ଆସିଲେ । ସେଠାରେ ଆପଣା ପୁଅକୁ ଜଣେ ବିଶ୍ୱାସୀ ବ୍ରାହ୍ମଣଙ୍କ ଜିମା ଦେଇ ଆପଣା ମସ୍ତକ ମୁଣ୍ଡନକରି ସନ୍ନ୍ୟାସୀ ବେଶଧରି ମୋଗଲ ସୈନ୍ୟଙ୍କ ଦୃଷ୍ଟିରୁ ରକ୍ଷା ପାଇବା ପାଇଁ ପଦବ୍ରଜରେ ପ୍ରୟାଗ, କାଶୀ, ଗୟା, ପାଟଣା, କଟକ ଓ ହାଇଦ୍ରାବାଦ ଦେଇ ୧ ବର୍ଷ ପରେ ଆପଣା ରାଜଧାନୀ ରାୟଗଡରେ ପହଞ୍ଚିଲେ । ବିଶ୍ୱାସଘାତକ ଆରଙ୍ଗଜେବଙ୍କ ପ୍ରତି ଶିବାଜୀ ଅତି କ୍ରୁଦ୍ଧ ହୋଇ ମୋଗଲ ରାଜ୍ୟରେ ଉପଦ୍ରବ ଓ ଲୁଣ୍ଠନ ଆରମ୍ଭ କଲେ । ଆରଙ୍ଗଜେବ ଏହାଙ୍କ ଦମନାର୍ଥ ସୈନ୍ୟ ପ୍ରେରଣ କରି ଅକୃତକାର୍ଯ୍ୟ ହୋଇ ଶେଷରେ ୧୬୬୯ ସାଲରେ ଏହାଙ୍କ ସଙ୍ଗେ ସନ୍ଧି ସ୍ଥାପନ କରି ଏହାଙ୍କୁ ରାଜା ଉପାଧି ଦେଲେ । ଏହି ସମୟରେ ବିଜାପୁର ଓ ଗୋଲ-କୁଣ୍ଡାର ସୁଲତାନମାନେ ନିଜ ନିଜ ରାଜ୍ୟରେ ଚୌଥ ଶିବାଜୀଙ୍କୁ ଦେଲେ ।

ଶିବାଜୀ ଅବଃପର ରାଜ୍ୟର ଉନ୍ନତି କଲେ । ଅନ୍ୟ ରାଜାମାନଙ୍କ ରାଜ୍ୟରୁ ସୈନ୍ୟମାନେ ଯାହା ଲୁଣ୍ଠନ କରି ଆଣୁଥିଲେ ତାହା ରାଜକୋଷରେ ଅର୍ପିତ ହେଉଥିଲା ଓ ସୈନ୍ୟମାନେ ନିୟମିତରୂପେ ମାସିକ ବେତନ ପାଉଥିଲେ । ଶିବାଜୀ ପ୍ରାଚୀନ ହିନ୍ଦୁ ପ୍ରଥା ଅନୁସାରେ ପ୍ରଜାମାନଙ୍କଠାରୁ ନିୟମିତରୂପେ ରାଜସ୍ୱ ଆଦାୟ କରୁଥିଲେ । ଏହାଙ୍କ ସଭାରେ ୮ଜଣ ମନ୍ତ୍ରୀ ଥିଲେ । ପ୍ରଧାନ ମନ୍ତ୍ରୀଙ୍କ ଉପାଧି 'ପେଶ୍‌ବା' ।

ତତ୍ପରେ ପୁଣି ମୋଗଲ ବାଦସାହାଙ୍କ ସଙ୍ଗେ ଏହାଙ୍କର ବିବାଦ ହେଲା, କିନ୍ତୁ ଆରଙ୍ଗଜେବ ଏହାଙ୍କୁ ପରାସ୍ତ କରିପାରିଲେ ନାହିଁ । ୧୬୭୪ ସାଲରେ ଶିବାଜୀଙ୍କ ପିତା ଶାହାଜୀଙ୍କର ମୃତ୍ୟୁ ହେଲା । ତତ୍‌ପରେ ଶିବାଜୀ 'ମହାରାଜ' ଉପାଧି ଗ୍ରହଣ କରି ରାୟଗଡ଼ ସିଂହାସନରେ ବସି 'ତୁଳା ପୁରୁଷ ଦାନ' ବ୍ରତ ଉଦ୍‌ଯାପନ କଲେ । ତତ୍‌ପରେ ମୋଗଲସେନା ବିଜାପୁର ନଗର ଅବରୋଧ କରିବାରୁ ବିଜାପୁର ସୁଲତାନ ଶିବାଜୀଙ୍କ ସାହାଯ୍ୟ ପ୍ରାର୍ଥୀ ହେଲେ ଓ ଶିବାଜୀ ଅବରୋଧକାରୀ ସୈନ୍ୟମାନଙ୍କ ପୃଷ୍ଠ-ଭାଗସ୍ଥ ମୋଗଲରାଜ୍ୟକୁ ଲୁଣ୍ଠନ କରି ଏପରି ଉପଦ୍ରବ ଆରମ୍ଭ କଲେ ଯେ, ମୋଗଲମାନେ ବିଜାପୁର ଅବରୋଧ ପରିତ୍ୟାଗ କଲେ । କୃତଜ୍ଞତା ସ୍ୱରୂପ ବିଜାପୁରର ସୁଲତାନ ଶିବାଜୀଙ୍କୁ ତାଞ୍ଜୋରର ସ୍ୱାଧୀନ ରାଜା ବୋଲି ସ୍ୱୀକାର କଲେ ।

ଶିବାଜୀ ୧୬୮୦ ସାଲରେ ୫୩ ବର୍ଷ ବୟସରେ ପରଲୋକ ଗମନ କଲେ ।]

ଶିବାଟିକା—ସଂ. ବି—୧ । ବଂଶପତ୍ରୀ ତୃଣ—(ହି. ଶ)—1. A kind
Śibāṭikā of grass. ୨ । ଶ୍ୱେତ ପୁନର୍ନବା (ହି. ଶ)—
2. The white variety of hogweed. ୩ । ରକ୍ତ ପୁନର୍ନବା (ହି. ଶ)—3. The red variety of hogweed. ୪ । ହିଙ୍ଗୁପତ୍ରୀ (ହି. ଶ)—4. A kind of grass. ୫ । ଜଙ୍ଗଲି ଡିମିରି (ହି. ଶ)
5. Wild fig.

ଶିବାତ୍ମକ—ସଂ. ବି—ସୈନ୍ଧବ ଲବଣ (ହି. ଶ)—
Śibātmaka A kind of salt.

ଶିବାନନ୍ଦ—ଦେ. ବି—ନନ୍ଦବଂଶର ଜନୈକ ରାଜା—A king of
Śibānanda the Nanda dynasty [ଦ୍ର—ଓଡ଼ିଶାର ନନ୍ଦବଂଶ ନାମକ ଗୋଟିଏ ରାଜବଂଶ ଐରାବତ ମଣ୍ଡଳ ନାମକ ରାଜ୍ୟ ( ଅଧୁନା ବାଙ୍କି, ଉମପଡା, ଆଠଗଡ଼, ନରସିଂହ ପୁର) ଶାସନ କରୁଥିଲେ । ଶିବାନନ୍ଦ ସେହି ରାଜବଂଶର ଜଣେ ପ୍ରଧାନ ରାଜା ଥିଲେ ।
କେଦାରନାଥ ମହାପାତ୍ର ।]

ଶିବାନୀ—ସଂ. ବି. ସ୍ତ୍ରୀ—(ଶିବ+ସ୍ତ୍ରୀ ଈ. ନିପାତନ; ନୀ ଆଗମ; ବା ଶିବ
Śibānī + ଆନୀ. ତୁଳନା କର—ରୁଦ୍ରାଣୀ, ଇନ୍ଦ୍ରାଣୀ)—ଭବାନୀ; ଦୁର୍ଗା; ଶଙ୍କରୀ; ପାର୍ବତୀ—Goddess Durgā, the
consort of Śiba.

ଶିବାପିଣ୍ଡ—ସଂ. ବି—ବକବୃକ୍ଷ (ହି. ଶ)—Sesbania Grandi-
Śibāpirḍa floria tree.

ଶିବାପ୍ରିୟ—ସଂ. ବି—(ଶିବା+ପ୍ରିୟ; ଏହା ଦୁର୍ଗାଙ୍କ ନିକଟରେ ବଳି
Śibāpriya ଦିଆଯାଉ ଥିବାରୁ) ଛାଗ—Goat.

ଶିବାଫଳା—ସଂ. ବିଣ—ଶମୀବୃକ୍ଷ (ହି: ଶ)—
Śibāphaḷā The spung tree.

ଶିବାବଳି—ସଂ. ବି—ତାନ୍ତ୍ରିକ ମତରେ ଦେବୀଙ୍କ ଆଗରେ ରାତିରେ
Śibābaḷi ରଖାଯିବା ମାଂସପ୍ରଧାନ ନୈବେଦ୍ୟ ( ହି. ଶ )—
An offering consisting mainly of meat offered to the Goddess, during night.

ଶିବାୟତନ—ସଂ. ବି (୬ଷ୍ଠୀ ତତ୍)—ଶିବମନ୍ଦିର, ଶିବାଳୟ—
Śibāyatana A temple of Śiba.

ଶିବାରାତି—ସଂ. ବି (୬ଷ୍ଠୀ ତତ୍; ଶିବା+ଅରାତି)—କୁକ୍କୁର (ହି.ଶ)
Śibārāti The dog.

ଶିବାରାଧନ(ନା)—ସଂ. ବି—ଶିବ ପୂଜା
Śibārādhana(nā) Worship of God Śiba

ଶିବା ରୁତ—ସଂ. ବି—(୬ଷ୍ଠୀତତ୍; ଶିବା+ରୁତ)-ବିଲୁଅଙ୍କ ବୋବାଳି
Śibā ruta The yelling of jackals.

ଶିବାଳ—ଗ୍ରା. ବି. (ପ୍ରାଚୀନ ପଦ୍ୟ) (ସ ଶିବାଳୟ)—ଶିବାଳୟ (ଦେଖ)
Śibāḷa Śibāḷaya (See) [ ଉ—ଶିବାଳ କୋଟିଏ ଅଛନ୍ତି
शिवालय शिवाला ତହିଁ । ପ୍ରାଚୀ—ପରଭେଗୀତା ।]

ଶିବାଳୟ—ସ ବି. (୬ଷ୍ଠୀତତ୍; ଶିବ+ଆଳୟ)—୧ । ଶିବ ମନ୍ଦିର—
Śibāḷaya 1. Temple of Śiba. ୨ । (ଶିବା+ଆଳୟ)

ନ୍ଥାନ—2. Cremation ground (literally abode of Śibā-jackals) ୩ । ରକ୍ତ; ତୁଳସୀ—3. The red variety of basil plant.

ଶିବାଲୁ—ସ. ବ—ଶୃଗାଳ; ବିଲୁଅ (ହି. ଶ)
Śibālu Jackal.

ଶିବାହ୍ଲାଦ—ସ. ବ—ଅଗସ୍ତିଗଛ (ହି. ଶ)
Śibāhlāda Sesbania Grandiflora.

ଶିବାହ୍ୱୟ—ସ. ବ—୧ । ପାରଦ (ହି. ଶ)—1. Quicksilver.
Śibāhwaya ୨ । ବରଗଛ (ହି. ଶ)—2. Banian tree.
୩ । ଅରକଗଛ (ହି. ଶ)—3. Calotropis Gigantea.

ଶିବି(ଧାତୁ)—ସ. ନାମଧାତୁ ( ଶିବ ଶବ୍ଦରୁ )—ସୁଖଦାନ କରିବା
Śibi(root) To give pleasure.

ଶିବି—ସ. ବ (ଶି ଧାତୁ=ଶାସନ କରିବା+କର୍ତ୍ତି ବି)—୧ । ହିଂସ୍ର ଜନ୍ତୁ
Śibi 1. Wild animals; beast of prey. ୨ । ଭୂର୍ଜପତ୍ର
2. The bark of birch tree. ୩ । ଦେଶ ବିଶେଷ—
3. Name of a tract of country. ୪ । ନୃପତି ବିଶେଷ; ଉଶୀନର ରାଜାଙ୍କ ପୁତ୍ର ଓ ଯଯାତିଙ୍କ ଦୌହିତ୍ର—
4. Name of a king who was son of king Uśinara and famous for his devotion and charity. [ବି—ଏ ସାତ୍ତ୍ୱିକ, ଦୟାଳୁ, ଦାତା, ଧାର୍ମିକ ଓ ଭକ୍ତ ଥିଲେ । ଏକଦା ବ୍ରହ୍ମା ଏହାଙ୍କ ସତ୍ୟ ପାଳନ ପରୀକ୍ଷା କରିବା ପାଇଁ ବ୍ରାହ୍ମଣ ବେଶରେ ଏହାଙ୍କ ନିକଟରେ ପହଞ୍ଚି ଏହାଙ୍କୁ ପୂର୍ବରୁ ସତ୍ୟ କରାଇ, ଏହାଙ୍କ ପୁତ୍ରର ମାଂସ ଭୋଜନାର୍ଥ ପ୍ରାର୍ଥନା କଲେ । ଏ ଅକୁଣ୍ଠିତ ଚିତ୍ତରେ ସତ୍ୟ ପାଳନ କଲେ ଓ ବ୍ରହ୍ମାଙ୍କ ଅନୁରୋଧରେ ସ୍ୱହସ୍ତରେ ପୁତ୍ର ମାଂସକୁ ପାକ କଲେ । ବ୍ରହ୍ମା କହିଲେ ତୁମେ ମୋ ସଙ୍ଗେ ନ ଖାଇଲେ ମୁଁ ଭୋଜନ କରିବି ନାହିଁ । ଶିବି ତହିଁରେ ମଧ୍ୟ ରାଜି ହେଲେ । ବ୍ରହ୍ମା ଏହା ଦେଖି ବିସ୍ମିତ ହୋଇ ନିଜରୂପ ଧାରଣ କରି ଏହାଙ୍କ ମୃତ ପୁତ୍ରକୁ ଜିଆଇ ଦେଲେ । ସୁବଳଚନ୍ଦ୍ର ବଙ୍ଗଳା ଅଭିଧାନ]

ପରେ ଦେବତାମାନେ ଏହାଙ୍କୁ ଅନ୍ୟ ଭାବରେ ମଧ୍ୟ ପରୀକ୍ଷା କରିଥିଲେ । ଅଗ୍ନି କପୋତରୂପ ଧାରଣ କଲେ ଓ ଇନ୍ଦ୍ର ଶ୍ୟେନ ରୂପ ଧରି କପୋତକୁ ଗୋଡ଼ାଇଲେ । କପୋତ ଯାଇ ଶିବିଙ୍କ କୋଳରେ ପଶିଲା ଓ ଶରଣ ପ୍ରାର୍ଥନା କଲା । ତତ୍ପରେ ଶ୍ୟେନ ଆସି ପହଞ୍ଚି ରାଜାଙ୍କୁ କହିଲା, 'ଏ ମୋର ଭକ୍ଷ୍ୟ, ଏହାକୁ ଛାଡ଼ିଦିଅ'—ଶିବି ଅନ୍ୟ ମାଂସଦ୍ୱାରା ଶ୍ୟେନକୁ ସନ୍ତୁଷ୍ଟ କରିବାକୁ କହିବାରୁ ଶ୍ୟେନ ରାଜି ହେଲା ନାହିଁ । ଶେଷରେ ଏ କପୋତ ପକ୍ଷୀର ଓଜନରେ ଆପଣା ଦେହରୁ ମାଂସ କାଟି ଶ୍ୟେନକୁ ଦେଲେ ଶ୍ୟେନ ସନ୍ତୁଷ୍ଟ ହେବ ବୋଲି କହିବାରୁ ରାଜା ତୁଳାଦଣ୍ଡ ଅଣାଇ ତରାଜୁର ଏକ ପାଖରେ କପୋତକୁ ରଖି ଅନ୍ୟ ପାଖରେ ଆପଣାର ଦେହରୁ ମାଂସ କାଟିକରି ପକାଇଲେ; କିନ୍ତୁ ଦୈବମାୟାରୁ କପୋତ ଭାରି ହେଲା ଓ ରାଜାଙ୍କ ଦେହରୁ ଅନେକ ମାଂସ କଟାଯାଇ ତରାଜୁରେ ପକା ଯିବାରେ ତାହା କପୋତର ଓଜନ ସଙ୍ଗେ ସମାନ ହେଲା ନାହିଁ । ଶେଷରେ ରାଜା ସ୍ୱୟଂ ତରାଜୁରେ ବସିଗଲେ । ଏଥିରେ ଶ୍ୟେନ ସନ୍ତୁଷ୍ଟ ହୋଇ କପୋତକୁ ଛାଡ଼ିଦେଲା ଓ ଦୁହେଁ ନିଜ ନିଜର ରୂପ ଦେଖାଇଲେ । ସେହି ଦିନ ଠାରୁ ଶିବି ରାଜା ଧର୍ମାତ୍ମାରୂପେ ପ୍ରସିଦ୍ଧ । (ହି. ଶ) ]

ଶିବିକା—ସ. ବ—( ଶିବ ଶବ୍ଦରୁ ଶିବି ନାମ ଧାତୁ=ସୁଖଦେବା+କର୍ତ୍ତି କ+ସ୍ତ୍ରୀ. ଆ)—ନରବାହ୍ୟ ଯାନବିଶେଷ; ପାଲିକି;
Śibikā ସବାରି; ଡୋଲି—A palki; a chair carried on men's shoulders with poles.

ଶିବିକା ବାହକ—ସ.ବ ଓ ବିଣ ପୁଂ (୬ଷ୍ଠୀ ତତ୍)—ପାଲିକି କାନ୍ଧିଆ ଲୋକ
Śibikā bāhaka —Palki-bearer.
(ଶିବିକାବାହୀ—ଅନ୍ୟରୂପ)
(ଶିବିକାବାହିକା, ଶିବିକାବାହିନୀ—ସ୍ତ୍ରୀ)

ଶିବିକାରୋହଣ—ସଂ. ବ—ପାଲିକିରେ ଚଢ଼ିବା
Śibikārohaṇa Riding on a palki.

ଶିବିକାରୋହୀ—ସଂ. ବିଣ. ପୁଂ—ଯେ ପାଲିକିରେ ଚଢ଼ି ସ୍ଥାନାନ୍ତରକୁ
Śibikārohi ଯାଉଥାଏ—Going to a place by riding on a palki.
[ଶିବିକା ରୋହିଣୀ—ସ୍ତ୍ରୀ]

ଶିବିପିଷ୍ଟ—ସଂ ବ.—ମହାଦେବ (ହି.ଶ)
Śibipishṭa Śiba.

ଶିବିର—ସଂ ବ. (ଶୀ ଧାତୁ=ଶୟନ କରିବା, ବିଶ୍ରାମ କରିବା+ଅଧି-
Śibira କରଣେ ଇର)—୧ । ପଟ୍ଟବାସ; ତମ୍ବୁ—1. Tent.
୨ । ସେନା ନିବାସ; ଛାଉଣି—2. Cantonment; camp of an army; barracks. ୩ । କିଲ୍ଲା; ଗଡ଼ (ହି.ଶ)—3. Fort. ୪ । ତରକମତରେ ଏକପ୍ରକାର ତୃଣ ଧାନ୍ୟ (ହି.ଶ)—4. A kind of grain.

ଶିବିର ସନ୍ନିବେଶ—ସ. ବ ( ୬ଷ୍ଠୀ ତତ୍ )—ତମ୍ବୁ ପକାଇବା—
Śibira sannibeśa Pitching of a camp; encamping
[ ଶିବିରସ୍ଥାପନ—ଅନ୍ୟରୂପ ]

ଶିବି ରଥ—ସ: ବ—ପାଲିକି; ଶିବିକା ( ହି. ଶ )—
Śibi ratha Palki.

ଶିବେତର—ସ. ବିଣ ( ଶିବ=ମଙ୍ଗଳର ଇତର=ଅନ୍ୟ; ୬ଷ୍ଠୀ
Śibetara ତତ୍ )—ଅଶୁଭ; ଅମଙ୍ଗଳ—Evil; adversity.

ଶିବେଶ—ସ. ବ ପୁଂ ( ଶିବା+ଈଶ )—ଶୃଗାଳ ( ହି. ଶ )—
Śibeśa Jackal.

ଶିବେଷ୍ଟ—ସ. ବ ( ୬ଷ୍ଠୀ ତତ୍; ଶିବ+ଇଷ୍ଟ )—୧ । ଅଗସ୍ତି ବୃକ୍ଷ—
Śibeshṭa 1. Sesbania Grandifloria. ୨ । ଶ୍ରୀଫଳ; ବେଲ—2. Eaglos Marmelos.

ଶିବେଷ୍ଟା—ସ. ବ ( ଶିବେଷ୍ଟ+ଆ )—ଦୂବ—
Śibeshṭā Creeping grass.

ଶିବୋତ୍ତର—ସ. ବିଣ (ଶିବ=ଶିବ ପୂଜାର୍ଥେ+ଉତ୍ତର=ଯୋଗ୍ୟ)—
Śibottara ଶିବ ପୂଜା ନିମନ୍ତେ ଦତ୍ତ ( ଜମି )—( lands )
( ଶିବତ୍ର—ଅନ୍ୟରୂପ ) Endowed for the worship of Śiba.

ଶିବୋପନିଷଦ୍—ସଂ. ବି—ଉପନିଷଦ୍ ବିଶେଷ—
Śibopanishad  Name of an upanishad.

ଶିମ—ଦେ. ବି ( ସଂ. ଶିମ୍ବ )—ଶିମ୍ବ ( ଦେଖ )—Śimba (See)
Śima  শিম  सेम

ଶିମ ସ୍ଥା(ନ୍ଥା)ନ—ଦେ. ବି ( ସଂ. ଶିରଃ ବା ସୀମନ୍ତ ଓ ସ୍ଥାନ )—
Śima sthā(nthā)na  ୧ । ଶିରୋଦେଶ; ମୁଣ୍ଡ—1. Head.
শিথান  ୨ । ମୁଣ୍ଡତଳେ ରଖାଯିବା ତକିଆ—2. A pillow for the head. ୩ । ଶଯ୍ୟାର ଯେଉଁ ପାଖରେ ଶୋଇବା ବ୍ୟକ୍ତି ମୁଣ୍ଡ ଦେଇ ଶୁଅନ୍ତି—3. The part of the bed where the sleeper lays the head.
ପ୍ରାଦେ. ( ଗଞ୍ଜାମ ) ବି—ଶିମସ୍ଥାନମ୍ ( ଦେଖ )—
Śimasthānam ( See )

ଶିମସ୍ଥାନମ୍—ପ୍ରାଦେ. ( ଗଞ୍ଜାମ ) ବି ( ସ. ସୀମନ୍ତ )—ରାଜା ଅବଶ୍ଥିତର
Śimasthānam  ରାଜଧାନୀ—The headquarters or capital of a Rājā. [ ଦ୍ର—ଗଞ୍ଜାମରେ ରାଜା ବା ଜମିଦାରମାନଙ୍କ ରାଜଧାନୀସ୍ଥ ସଦର କଚେରୀକୁ 'ଶିମସ୍ଥାନମ୍' ବୋଲଯାଏ । ]

ଶିମାକୟାଁ—ପ୍ରାଦେ. ( ଗଞ୍ଜାମ ) ବି—ବିଦେଶାଗତ କଣ୍ଟକଯୁକ୍ତ ଏକପ୍ରକାର ଗଛ—
Śimakayā̃  ଗଛ—A kind of thorny plant imported from foreign country. [ ଦ୍ର- ଏହାର
জিলেপি গাছ  जिलेबीका पेड  ଫଳ ଉତ୍ପନ୍ନ ପରେ ଓ ମଞ୍ଜି ଉତ୍ପନ୍ନ ମଞ୍ଜି ଦିଏ, କିନ୍ତୁ ଫୁଟି ଧଳା ଓ ତାହାର ସ୍ୱାଦ ଈଷତ୍ ମଧୁର । ]

ଶିମା କାଉ(ଉଁ)ରିଆ—ପ୍ରାଦେ. ( ଗଞ୍ଜାମ ) ବି—ବନ୍ୟ କାଉଁରିଆ—
Śimā kāu(ũ)riā  A red variety of wild jute plant.

ଶିମାଶିମ୍ବ—ପ୍ରାଦେ. ( ଗଡଜାତ ) ବି—ଶିମଜାତୀୟ ଏକପ୍ରକାର ଲତା
Śimāśimba  ଫଳ—A kind of bean.

ଶିମି—ପ୍ରାଦେ. (ପାଠଣା ଷ୍ଟେଟ୍ର କନ୍ଧାନ୍ ପ୍ରଚଳିତ ଭାଷା ) ବି—ଶିମ୍ବ—
Śimi  Bean.

ଶିମି(ମୁ)ଳି—ଦେ. ବି ( ସଂ. ଶାଲ୍ମଳି )—ଶାଲ୍ମଳି ( ଦେଖ )—
Śimi(mu)li  Śālmali ( See )  [ ଉ—ଚମ୍ପେଲି ଅଶୋକ
শিমুল  सेमर(ल)  ତାଳ ଶିମୁଳି—ପ୍ରାଚୀ. ଶଶିସେଣା । ]

ଶିମିଳି ଅଠା—ଦେ. ବି—ଶାଲ୍ମଳି ବେଷ୍ଟ ( ଦେଖ )
Śimili aṭha  Śālmali beshṭa ( See )
শিমুল আঠা  सेमरका गोंद

ଶିମିଳି ଖା(କ୍ଷା)ର—ଦେ. ବି ( ସଂ. ଶ ଙ୍ଖିକା; ଶଙ୍ଖ ବିଷ )—ଶଙ୍ଖ
Śimili khā(kshā)ra  ବିଷ; ସେଙ୍କୁଅ—White arsenic.
শেঁকো  सिखिया

ଶିମିଳି ଗଛରେ ଗାଣ୍ଡି (ପିଚ୍ଛ) ଘିଷିବା—ଦେ. ପ୍ରବଚନ (ଲକ୍ଷଣାର୍ଥ)—
Śimili gachhare gāṇḍi (pichā) ghashibā ( କଣ୍ଟକ-
শিমুল গাছে গা ঘষা  ମୟ ଶାଲ୍ମଳୀ ବୃକ୍ଷରେ ପିଚ୍ଛ ଘଷିଲେ
ताडके पेडमे गाँड रगडना  ଦେହ କ୍ଷତ ହୁଏ)--ଜାଣି ଜାଣି ଶୁଣି [ଶିମିଳି ଗଛରେ ଗାଣ୍ଡି (ପିଚ୍ଛା) ଘଷି ହେବା—ଅନ୍ୟରୂପ]  କଷ୍ଟଜନକ କାର୍ଯ୍ୟ କିଣିବା, ବିପଦକୁ ଡାକି ଆଣିବା—(figurative) To invite danger; to cortt danger.

ଶିମିଳି ତୁଳା—ଦେ. ବି—ଶିମିଳି ଫଳର କୋଷ ବା ଭଣ୍ଡା ମଧ୍ୟରେ ଥିବା
Śimili tulā  ତୁଳା—Silk-cotton.
শিমুলতুলো(লা)  सेमरकी रुइ

ଶିମିଳି ପାଲ—ଦେ. ବି—ମୟୂରଭଞ୍ଜରୁ ପର୍ବତମାଳା—The name of
Śimili pala  a monntain range in the Mayurbhanj State.
শিমিলিপাল

ଶିମିଳି ଫୁଲ—ଦେ. ବି—ଶାଲ୍ମଳି ଗଛର ଉଜ୍ଜ୍ୱଳ ଲାଲ ଫୁଲ—The
Śimili phula  bright red flower of silk-cotton
শিমুল ফুল  सेमरके फुल  tree (which has no smell.)
[ ଦ୍ର—ଏହା ଦୂରରୁ ରଙ୍ଗ ଟହଟହ ଦେଖାଯାଏ, କିନ୍ତୁ ଗନ୍ଧ ହୀନ ଥିବାରୁ ଓ ଅଳ୍ପ ଦିନେ ଝଡ଼ି ପଡ଼ିବାରୁ ଅଳ୍ପକାଳ ସ୍ଥାୟୀ ସୌନ୍ଦର୍ଯ୍ୟ ବା ନିର୍ଗୁଣ ସୌନ୍ଦର୍ଯ୍ୟକୁ ଲୋକେ ରଙ୍ଗ ଟହଟହ ଶିମିଳି ଫୁଲ ସଙ୍ଗେ ତୁଳନା କରନ୍ତି, ଯଥା—ରଙ୍ଗ ଟହ ଟହ ଶିମିଳି ଫୁଲ, ଏହି ସବୁଦିନେ ରହିବ ?—ଚଗ ।

ସଂସ୍କୃତରେ ମଧ୍ୟ ଉଭଟ ଶ୍ଳୋକ ଅଛି—
ହଂସାଃ ପଦ୍ମବନାଶୟା ମଧୁଲିହଃ ସୌରଭ୍ୟଲୋଭାଶୟା
ପାନ୍ଥାଃ ସ୍ୱାଦୁଫଳାଶୟା ବଳଭୁଜଃ ଗୃଧ୍ରାଶ୍ଚ ମାଂସାଶୟା
ଦୂରାଦୁନ୍ନତ ପୁଷ୍ପରାଗକଳିତୈଃ କୀରାଶ୍ଚ ମିଥ୍ୟୋଦ୍ଭବୈଃ
ରେ ରେ ଶାଲ୍ମଳିପାଦପ ! ପ୍ରଣୟିନଂ କେ ବଞ୍ଚିତା ନ କୃତାଃ ।

ଏଥିର ମର୍ମ—ହେ ଶିମିଳି ଗଛ ! ଦୂରରୁ ତୋର କୀରାଶ୍ଚ, ମିଥ୍ୟା ଓ ଉନ୍ନତ ପୁଷ୍ପରାଗ ଦେଖି ହଂସ ( ପଦ୍ମବନ ବୋଲି ଭାବି ), ଭ୍ରମର ( ସୌରଭ ଲାଭ ଆଶାରେ ), ପଥିକ ( ସ୍ୱାଦୁଫଳ ଆଶାରେ ), କାକ ଓ ଗୃଧ୍ରମାନେ (ମାଂସ-ଖଣ୍ଡ ଆଶାରେ ବଞ୍ଚିତ ହେଉଅଛନ୍ତି; ଅତଏବ ତୁ କେତେ ପ୍ରାଣୀଙ୍କୁ ବଞ୍ଚିତ ନ କରୁଛୁ ?

ଯେଉଁମାନେ ବାହାରେ ଭଲ ବୋଲି ଦେଖାଇ ହୁଅନ୍ତି, କିନ୍ତୁ କାର୍ଯ୍ୟରେ ଲୋକଙ୍କୁ ପ୍ରତାରଣା କରନ୍ତି, ସେମାନଙ୍କ ସମ୍ବନ୍ଧରେ ଏହି ଶ୍ଳୋକଟି ମଧ୍ୟ ଉଦାହରଣରୂପେ ଲୁହା-ଯାଏ । ଏହା ଅପ୍ରସ୍ତୁତ ପ୍ରଶଂସା ନାମକ ଅଳଙ୍କାରର ଉଦାହରଣ । ]

ଶିମିଳି ଭଣ୍ଡା—ଦେ. ବି—ଶିମିଳିତୁଳା ଓ ମଞ୍ଜିଥିବା କୋଷ—
Śimili bhaṇḍā  The sheathes of pods contain-
শিমুলগাছের শুঁটি  सेमरकाकोसा  ing silk cotton.
(ଶିମିଳି ଭ[ଖା]ଣ୍ଡ—ଅନ୍ୟରୂପ)

ଶିମିଳିମୁଷଳି—ଦେ. ବି—ଶିମିଳିଗଛର ମୂଳ (ଔଷଧରେ ଲାଗେ)—
Śimili mushali  The root of silk-cotton tree.
শিমুলগাছের মূল  सेमरका जड  (ଶିମିଳିମୂଳ—ଅନରୂପ)

ଶିମୁଳି ଲତା—ପ୍ରାଦେ ( ଗଞ୍ଜାମ ) ବି—ଗଞ୍ଜାମର କରଣ ବଂଶବିଶେଷର
Śimuli latā  କୁଳପ୍ରଥା ବିଶେଷ (ବୋଧହୁଏ ଶିମିଳିଗଛର ଭଣ୍ଡାପରି ଏଥିରେ ଚିହ୍ନ ଅଙ୍କିତ ହେଉଥିବାରୁ ); ନବବଧୂ ପ୍ରଥମେ ଶାଶୁ ଘରକୁ ଆସିବା ଉପଲକ୍ଷରେ ବହିର୍ଦ୍ୱାରଠାରୁ

ଈଶାଣ ବା ପାକଶାଳା ପର୍ଯ୍ୟନ୍ତ ପିଠଉରେ ଅଙ୍କିତ ଲତାକାର ରେଖା (କଟକ)—Lines (resembling a creeper) drawn with rice-paste on the ground from the outer door of the house to the cook-room on the daughter-in-law's first visit to her husband's house

**ଶିମ୍ବ(ମ୍ବା,ମ୍ବି,ମ୍ବୀ)**—ସଂ. ବ (ଶମ୍ ଧାତୁ=ଶାନ୍ତ ହେବା+କର୍ତ୍ତୃ. ଇମ୍; +ଅ;+ଇ;+ଈ; ଫଳ ପାଚଲେ ଯାହା ପରୁଯାଏ)—୧। କୃଷିଜାତ ଲତା ଓ ତାହାର ଛୁଇଁ—1. Bean; kidney bean; Dolichos Lablab; Canavalia Ensiformis. [ବୃ—ଏହି ଲତାର ଛୁଇଁ ଚେପଟା ଓ ବଙ୍କା, ପତ୍ର ତ୍ରିପର୍ଣ୍ଣ; ମଞ୍ଜି ଚେପ୍ଟା ଓ ବଙ୍କା। ଏହା ଅନେକ ପ୍ରକାର ଦେଖାଯାଏ; ଯଥା—ଧଳାଶିମ୍ବ, ରଙ୍ଗ ବା ନାଲି ଶିମ୍ବ, କଳାଶିମ୍ବ, ବିଅଶିମ୍ବ, ଗୋଡ଼ି ଶିମ (ଏଥିର ମଞ୍ଜି ଗୋଡ଼ିପରି ଶକ୍ତ ଓ ଗୋଲ), ଛୋଟ ଶିମ୍ବ (ଛୁଇଁ ଛୋଟ ମାଛପରି ଲମ୍ବ ଓ ସରୁ), ଖଣ୍ଡିକେଶର ଶିମ୍ବ, ପଟା ଶିମ୍ବ (ଛୁଇଁ ପଟାଳିଆ ବା ଚେପଟା), ପଦ୍ମାସବନ୍, ମହରଜା ମୋଗଲାଇ ଶିମ୍ବ। ଶ୍ୱେତ ଶିମ୍ବକୁ ସଂସ୍କୃତରେ ଶିମ୍ବୀ ଓ ମୋଗଲାଇ ଶିମ୍ବକୁ ପୃଥୁଶିମ୍ବୀ ବା ସ୍ଥୂଳ ଶିମ୍ବିକା ବୋଲାଯାଏ। ବୈଦ୍ୟଶାସ୍ତ୍ର ଅନୁସାରେ ଏହା ମଧୁରରସ, ଶୀତବୀର୍ଯ୍ୟ, ଗୁରୁ, ବଳକାରକ, ଦାହ ଓ ଶ୍ଳେଷ୍ମ ବର୍ଦ୍ଧକ, ବାତପିତ୍ତନାଶକ।] ୨। ଛୁଇଁ—2. Pod; legume (Apte).

Śimba(mbā,mbi,mbī)
ଅନ୍ୟ ସଂ. ନାମ—ପୃଥୁଶିମ୍ବୀ, ସ୍ଥୂଳକ, ଶିମ୍ବିକା, ଶିମ୍ବିକା।
ଶିମ୍
सेम, सेम
ଅ. ଗଲ୍‌ଫ୍ଲୁଟଗୋଲ୍
ତେ. ଚାରୁଚକନ୍ନୁ
ମ. ଖଡ୍ଗସାଂବଲ; ଅବହରୀ, ଘେଂଗ
ଗୁ. ଫଲ ବୋଲସ୍ମୀ, ଚରବାରଡ଼ୀ

**ଶିମ୍ବି**—ସଂ. ବି. ସ୍ତ୍ରୀ—୧। ଶିମ୍ବ (ଦେଖ)—1. Śimba (See) ୨। ଛୁଇଁ—2. Pod. ୩। କପିକଚ୍ଛୁ; ବାଇଡଙ୍କ—3. Cowhage. ୪। ବନ୍ୟ ମୁଦ୍ଗ—4. Wild mung grain.
Śimbi

**ଶିମ୍ବିକ**—ସଂ. ବ—(ଶିମ୍ବି+କ)—ମୁଗଫଳ (ହ. ଶ)—Groundnut.
Śimbika

**ଶିମ୍ବିକା**—ସ. ବ—(ଶିମ୍ବିକ+ଆ)—୧। ଛୁଇଁ—1. Pod. ୨। ଶିମ୍ବ (ଦେଖ)—2. Śimba (See)
Śimbikā

**ଶିମ୍ବି(ମ୍ବୀ)ଜ(ଜା)**—ସ.ବ—(ଶିମ୍ବି+ଜନ ଧାତୁ+କର୍ତ୍ତୃ. ଅ;+ଆ)—ଶିମ୍ବ ଜାତୀୟ ଉଦ୍ଭିଦର ଛୁଇଁ; ଦ୍ୱିଦଳକ (ଶିମ୍ବିଧାନ୍ୟ, ଶିମ୍ବୀଦଳ—ଅନ୍ୟରୂପ) ଶିମ୍ବ; ମୁଗ, ଶିମ୍ବ ଓ ମଟର ଆଦିର ଛୁଇଁ; ଦ୍ୱିଦଳ ଅନ୍ନ—The pod of beans and leguiminous plants. [ବୃ—ଏହା ମଧୁର କଷାୟ ରସ, କଟୁ ବିପାକ, ବାତଜନକ, କଫପିତ୍ତ ନାଶକ, ମଳମୂତ୍ରରୋଧକ ଓ ଶୀତବୀର୍ଯ୍ୟ। ମୁଗ, ବିରି, କୋଳଥ, ମସୁର, ବରଗଡ଼ି, ଶିମ୍ବ, ମଟର ଓ ହରଡ଼ ଆଦି ଛୁଇଁର ସାଧାରଣ ନାମ ଶିମ୍ବିଜ।]
Śimbi(mbī)ja (jā)
ସ. ସୂର୍ଯ୍ୟ, ବୈଦଲ

**ଶିମ୍ବିନୀ**—ସ. ବ—୧। ଶ୍ୟାମା ପକ୍ଷୀ; କୃଷ୍ଣଚଟକ (ହ. ଶ)—1. The dark sparrow. ୨। ବଡ଼ ଶିମ୍ବ—2. The big species of bean.
Śimbini

**ଶିମ୍ବି(ମ୍ବୀ)ପର୍ଣ୍ଣିକା**—ସ. ବ—ବନ୍ୟମୁଦ୍ଗ; ମୁଦ୍ଗପର୍ଣ୍ଣୀ (ହ. ଶ)—A wild variety of Mung grain. [ଶିମ୍ବି(ମ୍ବୀ)ପର୍ଣ୍ଣୀ—ଅନ୍ୟରୂପ]
Śimbi(mbī)parṇikā

**ଶିୟ(ୟା)ର**—ବୈଦେ. ବ (ଇଂ. ଶେୟାର୍)—ସମ୍ମିଳିତ ବା ବ୍ୟବସାୟରେ ଅଂଶ—Share.
Śiya(yā)r
শিয়ার शियर

**ଶିୟ(ୟା)ରଦାର୍**—ବୈଦେ. ବ (ଇଂ. ଶେୟାର୍+ଫା. ଦାର୍)—ଅଂଶୀଦାର୍—Shareholder.
Śiya(yā)rdār
শিআবদাব शियरदार

**ଶିୟ(ୟା)ର୍ ବସିବା**—ଦେ. କ୍ରି (ଇଂ. ଶେୟାର୍)—ସେଥିର ବସିବା; କୌଣସି ବ୍ୟବସାୟରେ ବା କାର୍ଯ୍ୟରେ ଅନ୍ୟ ବ୍ୟକ୍ତିଙ୍କ ସଙ୍ଗେ ଭାଗଦାରରେ କାର୍ଯ୍ୟ କରିବା—To go into shares with another; to take partners in a business.
Śiya(yā)r basibā
শিআরবসা शियरकरना

**ଶିୟର**—ଦେ ବ (ସ ଶିଖର)—୧। ଶୋଇବାବେଳେ ମନୁଷ୍ୟର ମୁଣ୍ଡ ଯେଉଁ ଦିଗକୁ ରହେ—1. The direction towards which a sleeping person lays down his head on the bed. ୨। ଶଯ୍ୟାର ମୁଣ୍ଡପାଖ—2. The side of the bed on which lies the head. ୩। (ସଂ. ଶିରୋପଧାନ)—ମୁଣ୍ଡ ତକିଆ—3. The pillow on which a sleeper rests his head.
Śiyara
শিয়র सिर
শিথান बालिस

**ଶିର୍‌କସ୍ତ (ଇତ୍ୟାଦି)**—ବୈଦେ.ବ (ଫା)—ସିର୍‌କସ୍ତ (ଇତ୍ୟାଦି)(ଦେଖ)—Śirkast etc (See)
Śir-kast(etc)

**ଶିର**—ସଂ. ବ (ଶ୍ରି ଧାତୁ=ସେବା କରିବା+କର୍ମ. ଅ; ଉଲ. ଫା. ସର୍=ମୁଣ୍ଡ)—୧। ଶିରଃ; ମସ୍ତକ; ମୁଣ୍ଡ—1. Head. ୨। ସର୍ବୋଚ୍ଚଭାଗ; ଶିଖର—2. Top; summit; acme; pinnacle. ୩। ବୃକ୍ଷାଗ୍ର—3. Top of a tree. ୪। ସୈନ୍ୟର ଅଗ୍ରବର୍ତ୍ତୀ ଦଳ—4. The advance-guard of an army. ୫। ପିପ୍ପଳୀମୂଳ—5. The root of long pepper. ୬। ପ୍ରଧାନ; ଅଧ୍ୟକ୍ଷ—6. The head of an institution. ୭। ଅଜଗର—7. Boa constrictor; a huge species of serpent. ୮। ଶଯ୍ୟା; ବିଛଣା—8. Bed; bedding. ୯। ମୁଣ୍ଡର ଖପୁରି (ହ. ଶ)—9. Skull. ୧୦। ପଦ୍ୟର ଚରଣର ଆରମ୍ଭ (ହ. ଶ)—10. The beginning of a line of a poem. ୧୧। ମୁଖ୍ୟ ବ୍ୟକ୍ତି (ହ. ଶ)—11. Headman. ୧୨। ନେତା (ହ. ଶ)—12. Leader. ୧୩। ପର୍ବତାଗ୍ର—13. The peak or summit of a mountain (Apte). ୧୪। ସମ୍ମୁଖଭାଗ—14. Front; forepart (Apte). ଦେ.ବ (ସଂ.ଶିରା)
Śira

শিরা —୧। ଶିରା; ରକ୍ତବାହକ ନାଳୀ—1. Vein; artery.
सीर, नस [ ଉ—ସବୁ ଶିରଯାକ ବେକରେ ନୋଗୃ—ଛଗ । ]
শির ୨। ପାନ ଆଦ ପତ୍ରର ପିଠିପାଖର ମଝି ଅଂଶ ବା ହୃତ—
शीर 2. The chord-like ridge on the back of
শির of a leaf. ଦେ ବଣ—ଶ୍ରେଷ୍ଠ—Best; eminent.
शिर [ ଉ—ସେ ସର୍ବ ରାଜାଙ୍କର ଶିର, ପାଣ୍ଡବ ବଂଶେ କୀର୍ତ୍ତିକର
—ଜଗନ୍ନାଥ. ଭାଗବତ । ] ପ୍ରାଦେ ( ମେଦନୀପୁର )
ବ—ନଡ଼ିଆ ଖଡ଼ିକା—The slender hard rib of
a cocoanut leaf.

**ଶିର ଉଣ୍ଡି (ଜାଣି, ଦେଖି) ଚଢ଼ୁ (ଛଆଁ) ଦେବା**—ଦେ. ବାକ୍ୟ (ଲକ୍ଷ
Śira undi (jani, dekhi) chardu (chiañ) debā ଣାର୍ଥ)—
শির দেখে ছেঁকা দেওয়া କୌଣସି କାର୍ଯ୍ୟ ସାଧନାର୍ଥ ଯଥୋ-
सिर देखकर दागना ପଯୁକ୍ତ ଉପାୟ ବା ପ୍ରଣାଳୀ ଅବଲମ୍ବନ
କରିବା—( figurative ) To take proper
steps for accomplishing a thing. [ ଦ୍ର—
ମୁଣ୍ଡ ଓ ଗୋଡ଼ ଆଦ ବନ୍ଧ୍ ଥିଲେ ଯେବେ ବନ୍ଧ୍ ଥିବା ସ୍ଥାନ
ସଙ୍ଗେ ସମ୍ପର୍କଯୁକ୍ତ ଶିରକୁ ଉଣ୍ଡି ବା ଠିକଣା କରି ଉକ୍ତ
ଶିରରେ ଚଢ଼ୁ ଦିଆଯାଏ ତାହାହେଲେ ବନ୍ଧା ଭଲ
ହୋଇଯାଏ । ଉପଯୁକ୍ତ ଶିରରେ ଚଢ଼ୁ ନ ଦେଲେ ବନ୍ଧା
କମେ ନାହିଁ । ଏହି ଉଦାହରଣରୁ ଏ ବାକ୍ୟ ବ୍ୟବହୃତ
ହୁଏ ।

**ଶିରଃ**—ସଂ. ବ ( ଶିରସ୍ ଶବ୍ଦ ୧ମା. ୧ବ, ଶ୍ରି ଧାତୁ=ସେବା
Śirah କରିବା+କର୍ମ. ଅସ୍ )—ଶିରସ୍ ( ଦେଖ )—
Śiras (See)

**ଶିରଃ କପାଳୀ**—ସଂ. ବି. ପୁଂ (ଶିରସ୍+କପାଳ+ଇନ୍; ୧ମା. ୧ବ)—
Śirahkapāli ନରମୁଣ୍ଡଧାରୀ ସନ୍ୟାସୀ; କାପାଳିକ ସନ୍ନ୍ୟାସୀ—
An anchorite carrying about a human
skull.

**ଶିରଃଖଣ୍ଡ**—ସଂ. ବ—ମୁଣ୍ଡର ହାଡ଼; କପାଳାସ୍ଥି—
Śirah khanda Bone of the head.

**ଶିରଃପୀଡ଼ା**—ସଂ. ବ ( ୬ଷ୍ଠୀ ତତ୍ )—ମୁଣ୍ଡବଥା; ମୁଣ୍ଡ ବନ୍ଧା—
Śirahpirdā Headache. [ ଦ୍ର—ମୁଣ୍ଡରୁଜା,
ମୁଣ୍ଡବନ୍ଧା ପ୍ରଭୃତି ସବୁପ୍ରକାରର ପୀଡ଼ାକୁ ଶିରଃପୀଡ଼ା
କୁହାଯାଏ, କିନ୍ତୁ ମୁଣ୍ଡବନ୍ଧା ଓ ଅଧାକପାଳୀ ବଥାକୁ
ଶିରଃଶୂଳ କୁହାଯାଏ । ଆୟୁର୍ବେଦରେ ୧୧ ପ୍ରକାର ଓ
ସୁଶ୍ରୁତରେ ୧୧ ପ୍ରକାର ଶିରଃପୀଡ଼ାର ବର୍ଣ୍ଣନା ଅଛି ।
ପରନ୍ତୁ କେହି କେହି ୨୧ ପ୍ରକାର କହନ୍ତି । ଆୟୁର୍ବେଦ
ମତରେ ବାତଜ, ପିତ୍ତଜ, କଫଜ, ସନ୍ନିପାତଜ, ରକ୍ତଜ,
କ୍ଷୟଜ, କୃମିଜ, ସୂର୍ଯ୍ୟାବର୍ତ୍ତ, ଅନନ୍ତବାତ, ଅର୍ଦ୍ଧାବ
ଭେଦକ ଓ ଶଙ୍ଖକ, ଏହି ୧୧ ପ୍ରକାର ଶିରଃପୀଡ଼ା
ଅଟେ । ]

**ଶିରଃଫଳ**—ସଂ. ବ (ବହୁବ୍ରୀହି)—ନାରିକେଳ ବୃକ୍ଷ (ହି. ଶ)
Śirahphala The cocoanut tree.

**ଶିରଃଶୂଳ**—ସଂ. ବ—ମୁଣ୍ଡବନ୍ଧା—
Śirahśūla Headache.

**ଶିରଃସ୍ଥ**—ସଂ. ବଣ ( ଶିରସ୍+ସ୍ଥା ଧାତୁ+କର୍ତ୍ତୃ. ଅ )—ଅଗ୍ରରେ
Śirahstha ଅବସ୍ଥିତ—Situate on the top.
ସଂ. ବି. ପୁଂ—ନେତା—Leader (Apte)

**ଶିର କମଳ**—ସଂ. ବ ( ରୂପକ କର୍ମଧାରୟ; ମୁଣ୍ଡରୂପ ପଦ୍ମ )—
Śira kamala ୧। ଆପଣାର ମସ୍ତକ—1. One's
सिर own head (compared to a lotus flower).
মাথা ( ଉ—ଶିରକମଳ ମାଗିଲେ ଭୁ ଦେବୁ, ବ୍ରହ୍ମଜ୍ଞାନକୁ
କେବେ ନ କହିବୁ—ପ୍ରାଚୀ ପରଗେଗୀତା । ) ୨।
( ଲକ୍ଷଣାର୍ଥ ) ଆପଣାର ଜୀବନ—2. (figurative)
One's own life. ( ଯଥା—ମୁଁ ଆପଣଙ୍କ
ଚରଣ ତଳେ ମୋ ଶିରକମଳ ସମର୍ପିଦେଉଛି, ଆପଣ ରଖନ୍ତୁ
ବା ମାରନ୍ତୁ । )

**ଶିରକଟ**—ଦେ. ବ (ସଂ. ଶିରକର୍ତ୍ତନ)—ମୁଣ୍ଡକାଟ; ଶିରଚ୍ଛେଦ—
Śirakāta Beheading. ଦେ. ବଣ—
মুণ্ডকাটা सिरकटजाना ଛିନ୍ନମସ୍ତକ; ଯାହାର ମୁଣ୍ଡ କାଟ
কাটামুণ্ড, মাথাকাটা ହୋଇଅଛି—Beheaded.
सिरकटाहुआ

**ଶିରକା(କ)ପଡ଼ା**—ଦେ. ବ ( ସଂ. ଶ୍ରୀ ଓ କର୍ପଟ )—ପୁରୀ ଜଗନ୍ନାଥଙ୍କ
Śira kā(ka)pardā ଅଙ୍ଗଲଗ୍ନ ବସ୍ତ୍ର—The cloth
শ্রীকাপড় देवकपडा worn by the Deity
Jagannātha of Puri.

**ଶିରଖିସ୍ତ**—ବୈଦେ. ବ (ଫା)—ବୃକ୍ଷବିଶେଷର ଅପୀତ ବା ଶ୍ୱେତ
Śirakhist ନିର୍ଯ୍ୟାସ—Manna. [ ଦ୍ର—ନାନା
শিরখিস্ত शिरखिसत ବୃକ୍ଷରୁ ଏହା ମିଳେ । ବିଶେଷତଃ
ପଶ୍ଚିମ ହିମାଳୟର ବୃକ୍ଷବିଶେଷ (The common Ash,
Fraxinus Excelsior or Floribunda )
ରୁ ମିଳେ । କୌଣସି କୌଣସି ବାଉଁଶରୁ ଓ
ଦେବଦାରୁ ଗଛର ଡାଳରୁ ଏହା ମିଳେ । ଏ ଗଛରୁ
ଲୋକମାନେ କଣା କରିବାରୁ ସେହି କଣାବାଟେ ଏ
ରସ ବାହାରେ; ଏହା ଔଷଧରେ ବ୍ୟବହୃତ ହୁଏ ।

**ଶିର ଖୁଞ୍ଚ(ଞ୍ଚା, ଞ୍ଚି)**—ଦେ. ବ—ଗୋଡ଼ହାତ ଆଦିର ଶିରା ମୋଡ଼ିହୋଇ
Śira khuñcha(ñchā; ñchi) ଯାଇଥିବା ଯୋଗୁ ଜନ୍ମିବା
শিরখাঁচা शिरमुडेजाओया ବ୍ୟଥା—Pain due to spr-
सिरमुडजाना ain of a limb.
(ଶିର ମୁଣ୍ଡିହେବା—ଅନ୍ୟରୂପ)

**ଶିରଙ୍ଗ**—ଗ୍ରା. ବ ୧। (ସଂ. ଶ୍ରୀରଙ୍ଗମ୍) ଶ୍ରୀରଙ୍ଗ (ଦେଖ)—Śriranga
Śiranga (See) ୨। (ସଂ. ଶ୍ରୀଅଙ୍ଗ) ଶ୍ରୀଅଙ୍ଗ (ଦେଖ)-Śrianga
শ্রীরঙ্গ, শ্রীঅঙ্গ श्रीरंग, श्रीअंग (See)

**ଶିରଙ୍ଗ(ଙ୍ଗା)ପଟଣ(ଣା)**—ଗ୍ରା. ବ (ନାମ) ଶ୍ରୀରଙ୍ଗପତ୍ତନ (ଦେଖ)—
Śiranga(ngā)patana(nā) Śriranga pattana
শীরঙ্গপটন श्रीरंगपटना (See)

**ଶିରଚ୍ଛେଦନ**—ସଂ. ବ—(ଶିର+ଛେଦନ)-ମୁଣ୍ଡକାଟ—Beheading.
Śirachchhedana [ଉ—ପତିତ ଯୁବତୀ ବଚ୍ଛେଦରୁ ଭଲ
ଶିରଚ୍ଛେଦ—ଅନ୍ୟରୂପ) ଶିରଚ୍ଛେଦନ ହେବାର—ଭଞ୍ଜ—
ପ୍ରେମ ସୁଧାନିଧି ।]

ଶିରଜ—ସଂ. ବ—(ଶିର+ଜନ୍ ଧାତୁ+କର୍ତ୍ତୃ ଅ. ଯାହା ମୁଣ୍ଡରେ
Śiraja ଜନ୍ମେ)—ମୂର୍ଦ୍ଧଜ; ମୁଣ୍ଡର କେଶ; ମୁଣ୍ଡବାଳ—The hair of the head. ସଂ. ବିଣ—ମସ୍ତକୋତ୍ପନ୍ନ—Growing on the head.

ଶିର ଟା/(ଝୁ)ଣିବା—ଦେ. କ୍ରି—( ଲକ୍ଷଣାର୍ଥ )ଅସ୍ଫାଳନ କରିବା—To
Śira ṭā(jhu)ṇibā raise one's head in token of
মাথানড়ান सिरमाड़ना boasting; to brag. [ଭୁ—
ଗନ୍ଧର୍ବ ଅଛ ମୂର୍ଖ ଏବରଜ ଶୁଣି;
ଧାଇଁଲେ ଯୁଦ୍ଧକୁ ଗନ୍ଧର୍ବେ ଶିର ଟାଣି
କୃଷ୍ଣସିଂହ—ମହାଭାରତ—ବନ]

ଶିରଣି(ନି)—ଦେ. ବ—(ଫା.ଶୀର୍ନୀ)—ଶିରଣି (ଦେଖ)—
Śiraṇi (ni) Śiriṇi (See).

ଶିର(ରି)ଦଉଡ଼ି(ଡ଼ା)—ଦେ.ବିଣ—(ସଂ.ଶୀର୍ଣ୍ଣ+ଡୋରକ)—ଦଉଡ଼ି ପରି
Śira(ri)daüḍi(ḍā) ଶୀର୍ଣ୍ଣ ଶରୀର ବିଶିଷ୍ଟ—Emaciat-
রোগাপটকা दुबलापतला ed (like a rope). (ଯଥା—
ସେ ଜଣାଇ ନ ପଡ଼ି ଶିର ଦଉଡ଼ି ହୋଇ ଗଲାଣି]

ଶିରନାମା—ଦେ. ବ—(ସଂ. ଶିର ଓ ନାମନ୍ )—୧ । ଶିରୋନାମା;
Śiranāmā ଯେଉଁ ବାକ୍ୟର ବକ୍ତବ୍ୟ ଉଠି ଲେଖା ହୋଇଥାଏ,
শিরোনামা सिरनामा ଚଠିର ଅଗ୍ରରେ ଲେଖାଯିବା ଲୋକ ନାମ ଅର୍ଥ—1. The heading or headline of a letter. [ଦ୍ର—ଶିରନାମାର ଉଦାହରଣ—ପତ୍ରରେ ବିଷୟ ଲେଖିବା ପୂର୍ବରୁ ପତ୍ରର ଅଗ୍ରରେ ଲେଖାଯିବା—"ପରମପୂଜନୀୟ ଶ୍ରୀଲ ଶ୍ରୀଯୁକ୍ତ ଅମୁକ ମହୋଦୟ ଶ୍ରୀ ଚରଣ କମଳେଷୁ" ।) ୨ । ଚିଠିର ଲଫାଫା ଉପରେ ଲେଖାଯିବା ଗ୍ରାହକଙ୍କ ନାମ ଧାମ ଅର୍ଥ— 2. The address
ঠিকানা ठिकाना or superscription on the cover of a letter.

ଶିରପଞ୍ଚ—ଦେ. ବ—(ସଂ. ଶ୍ରୀ ବା ଶିର; ଭୁଲ ଫା.—ସର୍=ମସ୍ତକ;
Śira pañch +ସ ପଞ୍ଚ=ପଞ୍ଚଜଣଙ୍କ ମଧ୍ୟରେ ନେତା) ୧ । ଶର-
শ্রীপঞ্চ सरपंच ପଞ୍ଚ; ଗ୍ରାମର ପ୍ରଧାନ ବ୍ୟକ୍ତି—1. The head man of the village ୨ । ଚୌକିଦାରୀ ଇଉନିଅନ୍‌ର ପଞ୍ଚାୟତମାନଙ୍କ ମଧ୍ୟରେ ପ୍ରେସିଡେଣ୍ଟ—2. The President of the Panchayats of a Chowkidari village-union. ୩ । ଗ୍ରାମର ସହଯୋଗ ସମିତିର ସଭାପତି—3. The President of the village Cooperative Society.

ଶିରପଡ଼ୁଆ—ଦେ. ବ—ବଡଗୃହ; ଶ୍ରେଣୀର ପ୍ରଥମ ଛାତ୍ର—
Śirapaḍhuā The head boy of the class, a dux.
শিরপড়ুয়া मुखिया

ଶିର(ରି)ପା—ଦେ. ବ.—(ସଂ. ଶିରଃ ଓ ପାଦ, ଭୁଲ ବୈଦିକ ଶିପ୍ରା=
Śira(ri)pā ଉଷ୍ଣୀଷ)—୧ । ପାରିତୋଷିକ ରୂପେ ଦିଆଯିବା ବସ୍ତ୍ର-
শিরোপা 1. A cloth awarded as a prize to a
पगड़ी; सिरोपव person. [ଉ - ଶତ୍ରୁ ମିତ୍ରୁଆ ଲୋକେ ଶିରପା ପାଇବେ । ପ୍ରାଚୀ—ଗ୍ରାମ୍ୟଭୁ ଭକ୍ତି ଗୀତା ] ୨ । ମୁଣ୍ଡରେ ବନ୍ଧାଯିବା ପାଗ—2. Turban for the head. ୩ । ମୁକୁଟ—3. Crown. ୪ । ପାରିତୋଷିକ; ପୁରସ୍କାର—4. Reward. ୫ । ଉପହାର—5. Present ୬ । ରାଜାମାନେ କୌଣସି ବ୍ୟକ୍ତିଙ୍କୁ ଉପାଧି ଦେବା କିମ୍ବା କୌଣସି ପ୍ରକାର ପୋଷ୍ୟ ପୁତ୍ରକୁ ମଞ୍ଜୁର କରିବା କିମ୍ବା ମୃତ ବ୍ୟକ୍ତିର ଉତ୍ତରାଧିକାରୀ ଉତ୍ତରାଧିକାରୀ ସ୍ୱୀକାର କରିବା ଉପଲକ୍ଷରେ ଉକ୍ତ ବ୍ୟକ୍ତିର ମୁଣ୍ଡରେ ବାନ୍ଧ ଦେବା ବସ୍ତ୍ର—6. A piece of cloth tied round the head of a person on whom a Raja bestows a title or whom a Raja recognises as the adopted son or heir apparent or successor to a person. [ଦ୍ର—ଉକ୍ତ ବ୍ୟକ୍ତିକୁ ସନନ୍ଦ ଦିଆଯାଏ ଓ ତା ମୁଣ୍ଡରେ ଶିରପା ବନ୍ଧାଯାଏ । ଶିରପା ବନ୍ଧାହେବା ପରେ ସେ ରାଜାମାନେ ବାଦ୍ୟାଦି ସମ୍ମାନବ୍ୟବହାରରେ ବ୍ୟବହୃତ ହୁଅନ୍ତି । ] ୭ । ଦେବତାଙ୍କ ଭଣ୍ଡାରରୁ ବିଶିଷ୍ଟ ଯାତ୍ରୀମାନଙ୍କୁ ଉପହାର ଦିଆଯିବା ବସ୍ତ୍ର—7. A piece of cloth presented to a distinguished visitor to a shrine. ୮ । ଅଶ୍ୱର ଅଗ୍ରପଦ ଉତ୍ତୋଳନ—8. The lifting of the fore legs by a restive horse; the pawings of a restive horse. ୯ । ଖିଲତ;"ମୁଣ୍ଡରୁ ଗୋଡ଼ଯାକେ ଅବୃତ କରିବା ପୋଷାକ, ଯାହା ରାଜଦରବାରରୁ ସମ୍ମାନସୂଚକ ଚିହ୍ନରୂପେ ବ୍ୟକ୍ତି-ବିଶେଷଙ୍କୁ ଦିଆଯାଏ—9. Full dress given to persons honoured by the Rajaj.

ଶିରପା ବନ୍ଧା(ନ୍ଧେ)ଇବା -ଦେ. କ୍ରି—୧ । (କୌଣସି ବ୍ୟକ୍ତି) ରାଜାଙ୍କ-
Śirapā bandhā(ndhe)ibā ଠାରୁ ଉପାଧି ଅର୍ଥ ପାଇବା—
শিরোপা বাঁধান 1. To get a title of honour from
पगडी बंधवाना a Rājā. ୨। (ଲକ୍ଷଣାର୍ଥ) ବାହାବୁଦ୍ଧି ବା ପ୍ରଶଂସା ପାଇବା—2. (figurative) To be praised; to
(ଶିରପା ବନ୍ଧା—ବିଶେଷ୍ୟରୂପ) begiven credit.

ଶିରପା ବାନ୍ଧିବା—ଦେ. କ୍ରି—୧। ଉପାଧି ପ୍ରାପ୍ତ ବା ଉତ୍ତରାଧିକାରୀ ରୂପେ
Śirapā bāndhibā ରାଜାଙ୍କଦ୍ୱାରା ସ୍ୱୀକୃତ ବା ପୋଷ୍ୟପୁତ୍ରରୂପେ
শিরোপা বাঁধা ସ୍ୱୀକୃତ ବ୍ୟକ୍ତିର ମୁଣ୍ଡରେ 'ଶିରପା' ବାନ୍ଧିବା—
पगडी बांधना To tie a turban round the head of a person on whom a king bestows a title or whom the Raja recognises as an heir or heir apparent to a person. ୨ । (ଲକ୍ଷଣାର୍ଥ) ପୁରସ୍କାର ଦେବା—2. (figurative) To reward.

ଶିରପାଳିଆ—ଦେ. ବ—ପାଲାବାଲାଙ୍କ ଦଳ ମଧ୍ୟରୁ ଗାୟକ ଦଳରେ
Śira pāliā ଯେଉଁ ବ୍ୟକ୍ତି ଗାୟକ ସଙ୍ଗେ ଗୀତ ଅର୍ଥ ବୋଲେ ଓ ତାଳ ଧରେ—A person who seconds the singer in a party of pālā chanters.

[ଦ୍ର—ଯାନବାନ୍ତ ୨ ଦଳରେ ବାହାରୁ ହୁଅନ୍ତି । ୧ । ଗାୟକ ଦଳ ଓ ୨ । ବାଦକ ଦଳ । ଗାୟକ ଦଳରେ ୨ ଜଣ, ଯଥା ଗାୟକ ଓ ଶିରପାଳିଆ ଓ ବାଦକ ଦଳରେ ଜଣେ ମୃଦଙ୍ଗ ବଜାଏ ଓ ୨ ଜଣ ଝାଞ୍ଜ ବଜାନ୍ତି ଏବଂ ଗାୟକଙ୍କ ବୋଲିବା ପଦମାନଙ୍କ ଶିରପାଳିଆ ପୁନରାବୃତ୍ତି କରେ ।]

**ଶିରପେଚ(ଞ୍ଚ)**—ଦେଶ. ବି (ଫା॰ ସରପେଚ୍)—୧ । ଶିରୋବେଷ୍ଟନ; Sirapecha'ncha) ପଗଡ଼ି; ଉଷ୍ଣୀଷ—1. Turban. शिरपेंच २ । ପଗଡ଼ିର ସମ୍ମୁଖରେ ବନ୍ଧାଯିବା ମଣି ମୁକ୍ତା ଖଚିତ शिरपेंच ଅଳଙ୍କାର ବିଶେଷ—2. An ornament atta- शिरपेंच ched to the front of a turban. [ଦ୍ର—ଶିର-ପେଞ୍ଚ ଯାହା ବହୁ ଧନ ଅଛେ, ତଉଲେ କରବା ପ୍ରାୟେ କାଳ ଦଲେ । ରାଧାନାଥ—ଦରବାର ।]

**ଶିରପେଚ କଳି**—ଦେ॰ ବି. (ବହୁଶବ୍ଦ)—ପୁରୁଷମାନେ ମୁଣ୍ଡରେ ପଗଡ଼ି Sirapecha kali ବାନ୍ଧି ପଗଡ଼ିର ଅଗ ପାଖରେ ଲଗାଇଥିବା शिरपेंचेर चूड़ा ପ୍ରସ୍ତର ଖଚିତ ଅଳଙ୍କାର—An ornament शिरपेंचकी कल्गी consisting of gems worn on the turban on its front.

**ଶିର ବିକିବା**—ଦେ॰ କ୍ରି—(ସ॰ ଶିର+ବିକ୍ରୟ) (ଲକ୍ଷଣାର୍ଥ)—ଦାସ୍ୟ Sir bikiba ସ୍ୱୀକାର କରିବା—(figurative) To sell- माथाबिकेदेओया शिरबेचना one's head; to accept service or slavery under another. [ଦ୍ର—ଏମନ୍ତ ଗୁରୁ ଚରଣେ ଶିରକୁ ବିକି—ପ୍ରାଚୀ. ଶ୍ରୀ ସ୍ୱାମୀଭକ୍ତି (ଶିର ବିକିଦେବା—ଅନ୍ୟରୂପ) ଗୀତା]

**ଶିରବ୍ୟଥା**—ସ॰ ବି—ଶିରୋବ୍ୟଥା (ଦେଖ)— Sira byatha Sirobyatha (See)

**ଶିର ମକଚ**—ଦେ. ବି—ଶିରଖୁଞ୍ଚ (ଦେଖ)— Sira makacha Sirakhuncha (See)

**ଶିରଶ୍ଚନ୍ଦ୍ର**—ସ. ବି(ବହୁବ୍ରୀହି; ଶିରରେ ଚନ୍ଦ୍ର ଯାହାଙ୍କର)—ମହାଦେବ; Siraschandra ଶିବ—Siba.

**ଶିରଶ୍ଚା(ଚ୍ଛା)ଳନ**—ସ॰ ବି(୬ଷ୍ଠୀ ତତ୍)—ମୁଣ୍ଡକୁ ଇତସ୍ତତଃ ହଲାଇବା— Sirascha(chha)lana Wagging of the head.

**ଶିରଶ୍ଚାଳିଦେବା**—ଦେ. କ୍ରି—(ସ. ଶିରଶ୍ଚାଳନ) ଇତସ୍ତତଃ ମୁଣ୍ଡ Sirashchali deba ହଲାଇବା—To shake one's head; (ଶିରଶ୍ଚାଳିବା—ଅନ୍ୟରୂପ) to wag the head. [ଦ୍ର— माथानाडा सिरहलाना ବୋଲି ଚତୁରୀ ନାଗାପୁଡ଼ା ଫୁଲରେ ଶିର ଶ୍ଚାଳିଦେଲେ ବହୁ ଉପେ. ବୈଦେହୀଶବିଳାସ ।]

**ଶିରଶ୍ଚୁମ୍ବନ**—ସ॰ ବି—(୬ଷ୍ଠୀ ତତ୍; ଶିରସ୍+ଚୁମ୍ବନ)—ସ୍ନେହର Siraschumbana ନିଦର୍ଶନ ସ୍ୱରୂପ ମାତାପିତା ସନ୍ତାନର ଓ ଗୁରୁ ଶିଷ୍ୟର ମୁଣ୍ଡକୁ ଚୁମ୍ବନ କରିବା—Kissing of the forehead by an elder.

**ଶିରଶ୍ଛେଦ**—ସ. ବି—(୬ଷ୍ଠୀ ତତ୍; ଶିରସ+ଛେଦ) ୧ । ମୁଣ୍ଡକାଟ Sirashchheda 1. Beheading. ୨ । ମୁଣ୍ଡକୁ ଗଣ୍ଡିରୁ କାଟି- (ଶିରଚ୍ଛେଦନ—ଅନ୍ୟରୂପ) ଦେବା—2. Decapitation. ୩ । ମୁଣ୍ଡକାଟ ରୂପ ରାଜଦଣ୍ଡ—3. Capital punishment.

**ଶିରସ୍**—ସ॰ ଶବ୍ଦ (ଶ୍ରି ଧାତୁ+ସେବା କରିବା+କର୍ମ ଅସ୍, ଉଣାଦିକ) Siras ଶିର; ଶିରଃ (ଦେଖ) ମସ୍ତକ; ମୁଣ୍ଡ—Head-

**ଶିରସ**—ଦେ. (ପଦ୍ୟ)ବି.—(ସ. ଶିରସ୍; ଶୀର୍ଷ)—ମସ୍ତକ; ମୁଣ୍ଡ— Sirasa Head. [ଦ୍ର—ବାସୁକୀ ଶିରସେ ଯଥା ଧରଣୀ शिरस शिरस ଧରଣୀ, ତଥା ଗିରି ସେ ବହୁ ଅକାଶେ ଅଛେ —ଉପେ. ବୈଦେହୀଶବିଳାସ ]

**ଶିରସି**—ସ. (ଶିରସ୍ ଶବ୍ଦର ୭ମୀ)—(ସ. ଶିରସ୍ ଶବ୍ଦର ୭ମୀ ବିଭକ୍ତି Sirasi ଏକ ବଚନ ରୂପ) ମସ୍ତକରେ—On the head. [ଦ୍ର—ବସିବ ଶିବ ଶିରସି ଋଷି ଲଳାଟର ଦେଶ । ] ଉପେ. ବୈଦେହୀଶବିଳାସ ।] ଗ୍ରା. (ପଦ୍ୟ)ବି (ସ. ଶିରସ୍) ମସ୍ତକ—Head. [ଦ୍ର—ଦାସୀର ପ୍ରଭୁର ଭୁଜ, ମଧ୍ୟେ ପ୍ରବେଶିବ ଭାବ, ତୁମ୍ଭେ ମୋ ମଣ୍ଡନ ଶିରସିର—ଉପେ. शिरस शिरहा ପ୍ରେମସୁଧାନିଧି ]

**ଶିରସିଜ**—ସ. ବି—(ଅଲୁକ୍ ସମାସ, ସ॰ ଶିରସି=ମୁଣ୍ଡରେ+ଜନ୍ Sirasija ଧାତୁ+କର୍ତ୍ତୃ ଅ)—କେଶ; ମୁଣ୍ଡବାଳ—The hair. [ଶିରୋଜ—ଅନ୍ୟରୂପ] of the head.

**ଶିରସ୍କ**—ସଂ. ବି—(ଶିରସ୍+କୈ ଧାତୁ=ଶବ୍ଦ କରିବା+କର୍ତ୍ତୃ ଅ Siraska ଶିରସ୍ତ୍ର (ଦେଖ)—Sirastra (See) ସଂ.ବିଣ.ପୁଂ (ବହୁବ୍ରୀହି ସମାସରେ 'ଶିରସ' ଶବ୍ଦ ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହେଲେ 'କ' ଆଗମ ହୁଏ । ଯଥା—ଉନ୍ନତ ଶିରସ୍କ) (ଶିରସ୍କା—ସ୍ତ୍ରୀ) ମସ୍ତକ ଯୁକ୍ତ—(in compounds)—Headed. (as in big-headed)

**ଶିରସ୍କା**—ସଂ. ବି—ପାଲିଙ୍କି— Siraska A palanquin (Apte)

**ଶିରସ୍ତ୍ର**—ସଂ. ବି (ଶିରସ୍+ତ୍ରୈ ଧାତୁ=ରକ୍ଷାକରିବା+କର୍ତ୍ତୃ ଅ)— Sirastra ୧ । ଉଷ୍ଣୀଷ; ପଗଡ଼ି—1. Turban. ୨ । ଟୋପି— (ଶିରସ୍ତ୍ରାଣ—ଅନ୍ୟରୂପ) 2. Head dress; cap; helmet.

**ଶିରସ୍ୟ**—ସଂ. ବିଣ—(ଶିରସ୍+ସମ୍ବନ୍ଧାର୍ଥେ ଯ)—୧ । ଶିରଃ ବା Sirasya ମସ୍ତକ ସମ୍ବନ୍ଧୀୟ—1. Relating to the head ୨ । ଶିରୋଜ; ମସ୍ତକଜାତ—2. Produced from the head. ବି—୧ । କେଶ; ମୁଣ୍ଡବାଳ—1. The hair of the head ୨ । ନିର୍ମଳ କେଶ; କୁଞ୍ଚିତ କେଶ—2. Clean hair; combed hair. ୩ । ସୁନ୍ଦର ଜୁଡ଼ା—3. A graceful chignon.

**ଶିରା**—ସଂ. ବି—( ଶୃ ଧାତୁ ଗତି କରିବା+ଅଧିକରଣ ଅ+ଆ, Sira ଯହିଁ ମଧ୍ୟଦେଇ ରକ୍ତ ଗତି କରେ) ୧ । ରକ୍ତବାହୀ ନାଡ଼ୀ; ଧମନୀ—1. Artery; vein; pulse, blood-vessel (Apte) ୨ । ପାଣିର ସ୍ରୋତ ବା ଧାର (ହି. ଶ)— 2. A current of water. ୩ । ଜାଲପରି ଛନ୍ଦା- ହୋଇଥିବା ରେଖାମାନ (ହି. ଶ)—3. Lines intertwined like a net. ୪ । ପାଣି ଉଠାଇବା ବାଲ୍ଟି—

ବୃ. ଶ)—4. Water bucket ୫ । ପୃଥିବୀର ଅନ୍ତଃସ୍ଥଳରେ ଥିବା ଜଳସ୍ରୋତ. (ବୃ. ଶ)—5. Underground current of water.

ପ୍ରାଦେ.—(ଗଞ୍ଜାମ) ବୈଦେ. (ତେ.)—ବି.—୧ । କାଳୀ; ଲେଖିବା ମସୀ—1. Writing ink. [ଦ୍ର—ଗଞ୍ଜାମରେ ଓଡ଼ିଆମାନେ କାଳୀକୁ ଶିରା ଓ କାଳୀଘଣ୍ଟକୁ ଶିରାବୁଡ଼ୀ କହନ୍ତି ।] ୨ । (ବାଲେଶ୍ୱର)—ଝାଡ଼ୁଣି—2. Broomstick. ୩ । (ଯାଜପୁର)—ପାଛିଆ; ଚଙ୍ଗୁଡ଼ି ବା ଡ଼ସିଆ—3. Basket. ବୈଦେ. (ଫା.)—ସୀରା=ଗୁଡ଼ ଓ ଅମ୍ଳ ରସ ମିଶ୍ରିତ କାଫି; ଉନେଗାର୍; ତୁଳନା କର ଇଂ. ସିରପ୍; ଫ୍ରେ. ସରୋ)—କନ୍ଦରେ ବା ଚିନିରେ ପାଣି ଦେଇ ନିଆଁରେ ଫୁଟାଇଲେ ଯେଉଁ ରସ ପ୍ରସ୍ତୁତ ହୁଏ—Syrup [ଦ୍ର—ନିଆଁ ଉପରେ ବସା ଯାଇଥିବା ଶିରା କ୍ରମଶଃ ଗାଢ଼ ହେଲେ ତାକୁ ହାଣ୍ଡିରୁ ବା କରେଇରୁ ଡଡ଼ୁଦ୍ୱାରା ଉପରକୁ ଉଠାଇଲେ ତହିଁରୁ ପ୍ରଥମେ ୩ 'ତାର' ବା ଧାର, ଗାଢ଼ତର ହେଲେ ୨ ଧାର ଓ ଗାଢ଼ତମ ହେଲେ ଏକ ଧାର ବୋଧ ପଡ଼େ । ଏହାକୁ ଯଥାକ୍ରମେ ୩ ତାରୀ ବା ୩ ତାର ବନ୍ଦ, ଦୋତାରୀ ବା ଦୁଇ ତାର ବନ୍ଦ, ଏକତାରୀ ବା ଏକତାର ବନ୍ଦ ଶିରା ବୋଲାଯାଏ ।] ଦେ. ବି—(ସଂ. ଶିରା)—ପତ୍ର, ଫଳ, ଶସ୍ୟାଦି ଉପରେ ଥିବା ସରୁ ଉଚ୍ଚ ରେଖା—(ଯଥା—ଜଙ୍ଘରୁ ଶିରା କାଢ଼ିବା; ପାନରୁ ଶିରା କାଢ଼ିବା)—Slender ridges or ribs running on the back of some leaves, fruits and grains [ଦ୍ର—ଶିରାର ୧ମ ସଂସ୍କୃତ ଅର୍ଥ ସମ୍ବନ୍ଧେ ଟୀକା—ଶରୀରସ୍ଥ ଶିରା ୩ ପ୍ରକାର ଯଥା—ବିଶୁଦ୍ଧ ରକ୍ତବାହିନୀ (Artery), ଦୂଷିତରକ୍ତବାହିନୀ (Vein), ଓ ରସବାହିନୀ (Lymphatic) । ହୃତ୍‌ପିଣ୍ଡରୁ ଯେଉଁ ନଳୀ ବାଟେ ରକ୍ତ ବାହାରେ ତାହାକୁ ବିଶୁଦ୍ଧ ରକ୍ତବାହିନୀ ଶିରା ବା ଧମନୀ କହନ୍ତି । ଶରୀରର ବିଭିନ୍ନ ସ୍ଥାନରୁ ଆସିଥିବା ଦୂଷିତ ରକ୍ତ ଫୁସ୍‌ଫୁସରେ ପରିଷ୍କୃତ ହୋଇସାରି ହୃତ୍‌ପିଣ୍ଡକୁ ଯାଏ । ହୃତ୍‌ପିଣ୍ଡରୁ ଏହି ପରିଷ୍କୃତ ରକ୍ତ ଶରୀରର ବିଭିନ୍ନ ଅଂଶକୁ ଧମନୀଦ୍ୱାରା ପ୍ରେରିତ ହୁଏ । ଫୁସ୍‌ଫୁସ୍ ବ୍ୟତୀତ ଶରୀରର ବିଭିନ୍ନ ସ୍ଥାନରେ ଥିବା ଧମନୀମାନଙ୍କରେ ଅମ୍ଳଜାନପୂର୍ଣ୍ଣ ବିଶୁଦ୍ଧ ନାଲିଆ ରକ୍ତ ପ୍ରବାହିତ ହୁଏ । ଧମନୀର ନଳ ୩ ଗୋଟି ମୋଟା ପ୍ରସ୍ତରେ ପ୍ରସ୍ତୁତ—(୧) ବହିଃଲ ବାହ୍ୟାବରଣ, (୨) ମାଂସପେଶୀ, (୩) ଭିତର ପର ସଂଯୋଜକ ତନ୍ତୁ । ଧମନୀର ନଳର ଭିତରଟି ଖୁବ୍ ଚିକ୍କଣ । ଧମନୀର ନଳଟି ଏହିପରି ୩ଟି ପ୍ରସ୍ତରେ ନିର୍ମିତ ହୋଇଥିବାରୁ ରକ୍ତପ୍ରବାହ ସମୟରେ, ତାହାର କାନ୍ଥ ଯଥାକ୍ରମେ ସଙ୍କୁଚିତ ପ୍ରସାରିତ ହେଉଥାଏ । ଏଣୁ ମଣିବନ୍ଧ ଇତ୍ୟାଦି ସ୍ଥାନର ଧମନୀକୁ ହାତରେ ଚିପିବାଦ୍ୱାରା ତାହା ଧକ୍ ଧକ୍ ହେବା ଜଣାଯାଏ ଓ ତଦ୍ୱାରା ରକ୍ତର ଗତି ଜଣା ପଡ଼େ । ମଣିବନ୍ଧସ୍ଥ ଧମନୀକୁ 'ନାଡ଼ୀ' (pulse) କହନ୍ତି । ତେଣୁ ଚିକିତ୍ସକମାନେ ହୃତ୍‌ପିଣ୍ଡର ଅବସ୍ଥା ଜାଣିବାକୁ ରୋଗୀର ମଣିବନ୍ଧସ୍ଥ ଧମନୀକୁ ବା ନାଡ଼ୀକୁ ଅଙ୍ଗୁଳିରେ ଚିପି ପରୀକ୍ଷା କରନ୍ତି ।

ଶରୀରର ବିଭିନ୍ନ ସ୍ଥାନରୁ ହୃତ୍‌ପିଣ୍ଡକୁ ଅପରିଷ୍କୃତ ରକ୍ତକୁ ବୋହି ଆଣିବା ଶିରାକୁ ଦୂଷିତରକ୍ତବାହିନୀ ଶିରା (vein) କହନ୍ତି । ଏହି ନଳୀର କାନ୍ଥ ଧମନୀର କାନ୍ଥଠାରୁ ପତଳା । ଫୁସ୍‌ଫୁସ୍‌ରେ ପ୍ରବାହିତ ଏ ଶ୍ରେଣୀର ଶିରାମାନଙ୍କରେ ଅଙ୍ଗାରକାମ୍ଳ ପୂର୍ଣ୍ଣ ଅଶୁଦ୍ଧ ନୀଳ ରକ୍ତ ପ୍ରବାହିତ ହୁଏ ନାହିଁ । ମାତ୍ର ଶରୀରର ଅନ୍ୟ ସବୁ ଅଂଶରେ ଥିବା ଶିରାଗୁଡ଼ିକ ଅଙ୍ଗାରକାମ୍ଳ ସଂଯୁକ୍ତ ଅବିଶୁଦ୍ଧ ନୀଳରକ୍ତ ବହନ କରନ୍ତି ।

ରସବାହିନୀ ଶିରା ବା ଲିମ୍ଫାଟିକ୍ (lymphatic) ଶିରାଗୁଡ଼ିକ ରସ ବହନ କରନ୍ତି ଏବଂ ଶେଷରେ ଏମାନେ ସ୍କନ୍ଧ ନିକଟରେ ଗୋଟିଏ ଦୂଷିତରକ୍ତବାହିନୀ ଶିରାରେ ଯାଇ ମିଳିତ ହୋଇ ଅଛନ୍ତି । ନଖ, ଦନ୍ତ, କେଶ ପ୍ରଭୃତିରେ ପୂର୍ବୋକ୍ତ ଦୁଇ ପ୍ରକାର ଶିରା (ଦୂଷିତ ରକ୍ତବାହିନୀ ଶିରା ଓ ରସବାହିନୀ ଶିରା) ନ ଥାଏ । ତେଣୁ ନଖ, ଦନ୍ତ ଓ କେଶକୁ କାଟିଲେ ତହିଁରୁ ରକ୍ତ ବାହାରେ ନାହିଁ । ଏହି ତିନି ପ୍ରକାର ଶିରା ଶାଖାପ୍ରଶାଖାରେ ବିଭକ୍ତ ହୋଇ ଶରୀରର ସକଳ ତନ୍ତୁରେ ପ୍ରବେଶ କରି ଥାଆନ୍ତି ।

ସୁଶ୍ରୁତରେ ବର୍ଣ୍ଣିତ ଅଛି ଯେ, ଶରୀରର ଶିରାଗୁଡ଼ିକ ନାଭି ମୂଳରେ ମିଳିତ ହୋଇଅଛି ଓ ଏମାନ ଶରୀରର ସନ୍ଧି ସମୂହର ବନ୍ଧନକାରିଣୀ ଓ ଏହିମାନଙ୍କଦ୍ୱାରା ବାତାଦି ଦୋଷ ଓ ରସାଦି ଧାତୁ ପ୍ରବାହିତ ହୋଇ ଶରୀରରେ ପରିବ୍ୟାପ୍ତ ହୁଏ । ଦେହର ମୌଳିକ ଶିରା ୪୦ ଗୋଟି ଯଥା—

୧ । ବାତବାହିନୀ ଶିରା—୧୦

୨ । ପିତ୍ତବାହିନୀ—୧୦

୩ । ଶ୍ଳେଷ୍ମବାହିନୀ—୧୦

୪ । ରକ୍ତବାହିନୀ—୧୦

ଏହି ଶିରାମାନଙ୍କର ପ୍ରତ୍ୟେକର ଶାଖା ବା ପ୍ରଶିରା ଅଛି । ମନୁଷ୍ୟ ଦେହରେ ଶିରା ଓ ପ୍ରଶିରା ମିଶି ୭ ଶହ । ଶିରା ମଧ୍ୟସ୍ଥ ବାତ, ପିତ୍ତ, ଶ୍ଳେଷ୍ମା ଓ ରକ୍ତ ପ୍ରକୁପିତ ହେଲେ ନାନା ପ୍ରକାର ରୋଗ ଜନ୍ମେ; ମୂଳ ଶିରାର ଶାଖା ବା କୈଶିକ ଶିରାକୁ ପ୍ରଶିରା ବୋଲାଯାଏ ଓ ମେରୁଦଣ୍ଡୀ ପ୍ରାଣୀମାନଙ୍କ ମେରୁ ଦଣ୍ଡ ମଧ୍ୟରେ ଥିବା ସ୍ନାୟୁ ବା ଶିରାକୁ ବେଁ ଶିରା କହନ୍ତି ।]

ଶିରାଃ—ସଂ. ବିଣ—(ବହୁବ୍ରୀହି ସମାସରେ ଅନ୍ୟ ଶବ୍ଦ ସଙ୍ଗେ ଶିରସ୍ ଶବ୍ଦ
**Śirāh** ଯୁକ୍ତ ହୋଇ ଧାରଣ କରିବା ଆକାର ଯଥା—ତ୍ରିଶିରାଃ)—ଶିରୋଯୁକ୍ତ—Headed (used in compounds, as 'in three-headed').

ଶିରା(ରେ)ଇ—ଦେ. ବି—ପୁରୀ ଜିଲ୍ଲାର ଗୋଟିଏ ପରଗଣାର ଓ ଗୋଟିଏ
**Śirā(re)i** ଗ୍ରାମର ନାମ—Name of a Pergunna and village in Puri district.

ଶିରାଇ ଅଣ୍ଟା—ଦେ. ବି—ସୂର୍ଯ୍ୟମୁଖୀ (ଦେଖ)
Śirāi antā Sūjryamūkhī (See)

ଶିରାଏ ଶିରାଏ ଭେଦିବା (ପଶି ଯିବା)—ଦେ. କ୍ରି—ଶିରାରେ ଶିରାରେ ଭେଦିବା (ଦେଖ)—
Śirae śirāe bhedibā (pasi jibā) Śirāre śirāre bhedibā (See)

ଶିରାଜ(ଜି) (ଇତ୍ୟାଦି)—ବୈଦେ. ବି.-ସିରାଜ(ଜି) (ଇତ୍ୟାଦି) (ଦେଖ)
Śirāja(ji)etc Śirāja (ji) etc (See)

ଶିରା ଜାଳ—ସଂ. ବି—(୬ଷ୍ଠୀ ତତ୍)—୧ । ଶ୍ରେଣୀ ନାଡ଼ୀମାନଙ୍କ ସମୂହ—
Śirā jāla A number of veins.
୨ । ଚକ୍ଷୁର ଶ୍ୱେତବର୍ଣ୍ଣ, ଯହିଁଯୋଗୁଁ ଆଖିର ଧଳା ଅଂଶରେ ନାଲି ମେଞ୍ଚ ଶୋଣିତମାନ ପଡ଼ିଯାଏ (ହି. ଶ)—
2. A kind of eye-disease.

ଶିରାଧ (ଇତ୍ୟାଦି)—ଗ୍ରା. ବି (ସଂ. ଶ୍ରାଦ୍ଧ)—ଶ୍ରାଦ୍ଧ ଇତ୍ୟାଦି (ଦେଖ)—
Śirādha (etc) Śrāddha etc (See) (ଉ—ରଖିଥିଲି ଛାଣ୍ଡ ସବାଘ ଭୂଇ ପାଖ ମାଣ୍ଡିଥି ବଢ଼ାଇ, ତାହାର ଶିରାଧ ହେବେ ଦେଇ ଅଛ ଜାଣ—ଉକାସ. କଣ୍ଠକଳ୍ପ । ]

ଶିରା(ର)ନା - ଦେ. ବି (ଶିରଃସ୍ଥାନ; ଶିରଃ + ଆଧାନ)—ଶିରଥାନା;
Śirā(ra)nā ପଲଙ୍କର ମୁଣ୍ଡଆଡ଼େ ଲଗିଥିବା କାରୁକାର୍ଯ୍ୟଯୁକ୍ତ କାଠ—
शिराना शिरहन, सिरहाना A peice of artistically wrought frame or raised bar attached to the head of a bedstead.
(ଶିରାନା ପଟା—ଅନ୍ୟରୂପ)

ଶିରା ପତ୍ର—ସଂ. ବି (ବୈଦ୍ୟକ)—୧ । ହିନ୍ତାଳ (ଦେଖ)—
Śirā patra 1. Hintāla (See). ୨ । ଅଶ୍ୱତ୍ଥ ଗଛ (ହି. ଶ)—2. The religious fig tree. ୩ । କଇଥ ଗଛ—3. Elephant apple.

ଶିରା ପୀଡ଼ିକା—ସଂ. ବି—ଆଖିର ରୋଗ, ଯହିଁରେ ପିଡ଼ୁକା ପାଖରେ
Śira pirdikā ଗୋଟିଏ ବଥ ବାହାରେ (ହି. ଶ)—A kind of eye-disease.

ଶିରା ପ୍ରଶିରା—ସଂ. ବି (ସଦ୍ୱନ୍ଦ)—ଦେହସ୍ଥ ବଡ଼ ଓ ସାନ ସମସ୍ତ ଶିରା—
Śirā praśirā All the veins and arteries of the body, big and minute.

ଶିରା ପ୍ରହର୍ଷ—ସଂ. ବି—ଏକପ୍ରକାର ନେତ୍ରରୋଗ (ହି. ଶ)—
Śira praharsha A kind of eye-disease.

ଶିରା ଫଳ—ସ. ବି (ବହୁବ୍ରୀହି)—୧ । ନଡ଼ିଆ (ହି. ଶ)—
Śira phala 1. Cocoanut. ୨ । ଏକପ୍ରକାର ଡିମ୍ବିରି; ଅଞ୍ଜୀର (ହି. ଶ)—2. Ficus Carica (tree and fruit).

ଶିରାବଣ—ଗ୍ରା. ବି (ସଂ. ଶ୍ରାବଣ)—ଶ୍ରାବଣ ମାସ—The month
Śirābana of Śrābana. (ଉ—ଅକାଳେ ମାଇଲି
श्रावण शावन, सरावन ଯାଏ, ତଥି ଟିକିବଣ ଯାଏ—ଡାକ ।)

ଶିରାବଣା—ଗ୍ରା. ବି (ସଂ. ଶ୍ରବଣା)—ଶ୍ରବଣା (ଦେଖ)
Śirābanā Śrabanā (See)
श्रवणा सरवना

ଶିରାବୁର୍ଦ୍ଦି—ଗ୍ରାଦେ. (ଗଞ୍ଜାମ) ବି—(ତେଲଗୁ) ବୁଡ଼ୁଅଡ଼; କାଳିପାତ୍ର—
Śirāburdi Inkpot.

ଶିରାମ (ଇତ୍ୟାଦି)—ଗ୍ରା. ବି (ସଂ. ଶ୍ରୀରାମ)—୧ । ଶ୍ରୀରାମର ଅଶୁଦ୍ଧ
Śirāma (etc) ଉଚ୍ଚାରଣ—1. Incorrect pronuncia-
छिराम tion of Śrirāma. ୨ । ଶ୍ରୀରାମର ଡାକନାମ—
सिराम 2. Name for calling Śrirāma. ୩ । ଶ୍ରୀରାମ ଇତ୍ୟାଦି (ଦେଖ)—3. Śrirāma etc (See)

ଶିରାମଇ—ଦେ. ବି (ସଂ. ଶିରା ଓ ଅମୟ=ରୋଗ)—ଓଲାଉଠା
Śirāmai ରୋଗୀର ଝାଡ଼ାବାନ୍ତି ସମୟରେ ଯେଉଁ ଖିଞ୍ଚଣ ଗୋଡ଼
खींच ହାତ ହୁଏ—Cramp in a cholera patient.
मडोड़, बघा

ଶିରାମଚନ୍ଦ୍ରପୁର—ଗ୍ରା. ବି (ଅଶୁଦ୍ଧ)—ଶ୍ରୀରାମଚନ୍ଦ୍ରପୁର (ଦେଖ)—
Sirāmachandrapura Śrīrāmachandrapura (See)

ଶିରାମଚନ୍ଦ୍ରପୁରୀ—ଗ୍ରା. ବିଣ—ଶ୍ରୀରାମଚନ୍ଦ୍ରପୁର ଗ୍ରାମବାସୀ—Resid-
Śiramachandrapuri ing in or belonging to the village Srirama-chandrapur.
(ଶିରାମଚନ୍ଦ୍ରପୁରିଆ—ଅନ୍ୟରୂପ)

ଶିରାମପୁର—ଦେ. ବି (ଅଶୁଦ୍ଧ)—ଶ୍ରୀରାମପୁର—Śrirāmapura.
Śirāmapura [ ଦ୍ର—ଏହା ବଙ୍ଗଦେଶର ହୁଗୁଳି ଜିଲ୍ଲାର ହୁଗୁଳି
शिरामपुर ନଦୀର ପଶ୍ଚିମ କୂଳରେ ଥିବା ଗୋଟିଏ ନଗର ।
सिरामपुर ଏଠାରେ ଧଳା କାଗଜ ତିଆରି ହେବାର ଗୋଟିଏ କଳ, ଖ୍ରୀଷ୍ଟିଆନ୍ ପାଦ୍ରୀମାନଙ୍କ ଉପନିବେଶ ଓ ସରକାରୀ ବିଜ୍ଞାନ ବିଦ୍ୟାଳୟ ଓ କଲେଜ ଅଛି । ଶ୍ରୀରାମପୁରର ଅଶୁଦ୍ଧ ଗ୍ରାମ୍ୟ ଉଚ୍ଚାରଣ ଇଂରାଜିରେ ମଧ୍ୟ ଅନୁକୃତ ହୋଇ ଇଂରାଜି ଭାଷାରେ ଏଥିର ନାମ Serampore (ଶିରାମ-ପୁର) ହୋଇଅଛି । କଲିକତା ହୁଗୁଳି ନଦୀର ପୂର୍ବ କୂଳରେ ଓ ଶିରାମପୁର ପଶ୍ଚିମ କୂଳରେ ଅବସ୍ଥିତ । ଏହା କଲିକତାର ଉତ୍ତରରେ ୧୦ ମାଇଲ ଦୂରରେ ଅବସ୍ଥିତ । ]

ଶିରାମପୁରୀ—ଦେ. ବିଣ—ଶ୍ରୀରାମପୁରରେ ପ୍ରସ୍ତୁତ (ଧଳା କାଗଜ)—
Śirāmapuri (paper) Manufactured in Śerampore.
शिरामपुरी [ ଦ୍ର—କଲିକତା ଲାଲବଜାରର ଉତ୍ତରପଡ଼ା
सिरामपुरी 'ବାଲି'ଠାରେ ଥିବା କଳରେ ମୋଟା କାଗଜ ବା ବାଲି କାଗଜ ଓ ଶ୍ରୀରାମପୁର କଳରେ ଧଳା କାଗଜ ତିଆରି ହୁଏ । ] ଦେ. ବି—ବଙ୍ଗର ଶ୍ରୀରାମପୁରରେ ପ୍ରସ୍ତୁତ କଳ କାଗଜ—Mill-made paper of Serampore.

ଶିରାରେ ଶିରାରେ ଭେଦିବା—ଦେ. କ୍ରି—୧ । ଦେହର ଶିରା ପ୍ରଶିରା
Śirare sirare bhedibā ଦେଇ ଦେହସାରା ବ୍ୟାପ୍ତ ହେବା—
शिराय शिराय भेद करा 1. To be suffused in the
शिरा शिरमे भेदना whole body through the blood-vessels. ୨ । (ଲକ୍ଷଣାର୍ଥ) ମର୍ମରେ ଭେଦିବା—
2. (figurative) To pierce into the vital parts; to cut to the quick. [ଉ—ଯେପରି କୌଣସି ଔଷଧ ବା ବିଷ ଜୀବର ଶିରାରେ

ଶିରରେ ଭେଦଲେ ତହିଁର ଫଳ ପୂର୍ଣ୍ଣରୂପେ ପ୍ରକାଶ ପାଏ, ସେହିପରି କୌଣସି କଥା କୌଣସି ବ୍ୟକ୍ତିର ମନକୁ ବିଶେଷ ବାଧିଲେ ଏ ବାକ୍ୟ ପ୍ରୟୋଗ କରାଯାଏ । ]

**ଶିରଳ**—ସଂ. ବିଣ ( ଶିରା+ବହୁଳାର୍ଥରେ. ଲ )—୧ । ଶିରାଯୁକ୍ତ—
Śirāla 1. Having blood vessels or ridges. ୨ । ଶିରାବହୁଳ—2. Abounding in blood vessels. ୩ । ଯହିଁରେ ଶିରାମାନ ବାହାରକୁ ଦେଖାଯାଏ—3. Whose blood vessels or ridges are visible or conspicuous. ( ଭି— ଶିରଳ ଜଙ୍ଘ । ) ବି—କର୍ମରଙ୍ଗା; କରମଙ୍ଗା ଫଳ—A fruit; Averrhoa Carambola.

**ଶିରଳିଆ**—ଦେ. ବିଣ. ପୁଂ(ସଂ. ଶିରାଳ)—ଶିରଳ(ଦେଖ)—Śirāla
Śirāliā শিরাবালা सिरवाला (See)
( ଶିରଳୀ, ଶିରଲେଇ— ସ୍ତ୍ରୀ )

**ଶିରଳୀ**—ଦେ. ବିଣ. ସ୍ତ୍ରୀ ( ସଂ. ଶିରାଳ )—ଶିରଳ ( ଦେଖ )
Śirāli Śirāla ( See )

**ଶିରିଶିରି**—ଦେ କ୍ରି. ବିଣ—ଶିରେ ଶିରେ ( ଦେଖ )
Śiri śirā Śire śire ( See )

**ଶିରି**—ସଂ. ବି( ଶୃ ଧାତୁ=ହିଂସା କରିବା+କର୍ତ୍ତୃ ଇ )—୧ । ହିଂସକ ବ୍ୟକ୍ତି—1. A malicious person. ୨ । ଖଡ୍ଗ—2. Sword. ୩ । ବାଣ—3. Arrow. ୪ । ଶଲଭ; ଝିଣ୍ଟିକା—4. Grasshopper; locust.
Śiri

**ଶିରି(ରୀ)**—ଗ୍ରା. ବି. (ସଂ. ଶ୍ରୀ)—୧ । ଶ୍ରୀ; ଶୋଭା, ସୌନ୍ଦର୍ଯ୍ୟ—1.
Śiri(ri) Beauty; grace. [ଭି—କି କୋହଳ ଲାଳଧର ଛିବୀ सिरी କୋଟି କଳାକର ଶିରୀ ସୁରଛି ସେ ଶ୍ୟାମ ମୂରତିରେ । କବିସୂର୍ଯ୍ୟ—ଇଶୋଣ ଚମ୍ପୂ, କ ଗୀତ ।] ୨ । ଭାଗ୍ୟୋଦୟ—2. The dawning of good fortune. [ଭି—ଭୁବା ଅର୍କିଲୁ ଦେଖେ ଶିରୀ, ଅମ୍ଭକୁ ଏବେ ଦୂର ଦେଇ । ଭୂପତି—ପ୍ରେମପଞ୍ଚାମୃତ । ] ୩ । ଲକ୍ଷ୍ମୀ; ସମ୍ପତ୍ତି; ବିଭବ—3. Prosperity; riches. [ଭି—ହେଲେ ଦେଲେ ଇନ୍ଦ୍ରକୁ ତ୍ରିଭୁବନ ଶିରୀ । କୃଷ୍ଣସିଂହ ମହାଭାରତ ] ୪ । ସୌଭାଗ୍ୟ—4 Good fortune. [ଭି—ମନୋରଥ ପଥେ ନ ଥିବା ଶିରୀ, ହେଲେ ଦଧରେ କରଗତ କରି । କବିସୂର୍ଯ୍ୟ—କବିତା ।] ୫ । ସାମାଜିକ ବୈଷ୍ଣବ ଓ ଦକ୍ଷିଣୀମାନେ ମୁଣ୍ଡରେ ସିନ୍ଦୂର ଯେଉଁ ଗୁଣ୍ଡିକୁ ଘର୍ଷିତେ ଦେଇ ଟୀକା କରନ୍ତି—5. A kind of red powder used for painting the forehead by the Baishnabas and Madrasis. ୬ । (ସ୍ତ୍ରୀ) ଶ୍ରୀମତୀ ନାମ୍ନୀ ସ୍ତ୍ରୀର ଡାକ ନାମ—6. Name calling Srimati. ଗ୍ରା. ବିଣ. (ପୂଜ୍ୟ ବସ୍ତୁ ବା ବ୍ୟକ୍ତିଙ୍କ ନାମ ପୂର୍ବରେ ଯୁକ୍ତ ସୌଭାଗ୍ୟ ଓ ସମ୍ମାନ ବାଚକ ଶବ୍ଦ)-ଶ୍ରୀ; ଶ୍ରୀଯୁକ୍ତ; ଶ୍ରୀମାନ୍—The word used before the name of a respected person or adored thing. [ଭି—ଶୁଣ ହେ ଧର୍ମ ଏକ ଚିତ୍ତେ, ସୁବର୍ଣ୍ଣ ଶିରୀ ଭାଗବତେ । ଭୂପତି—ପ୍ରେମପଞ୍ଚାମୃତ ]
ছিবী सिरी
লালগুঁড়ী सिरी
শ্রীমতী सिरिमती
শ্রী सिरि

**ଶିରିଆ**—ଦେ. ବି—(ସଂ. ଶ୍ରୀ) ୧ । (ପୁଂ) (ଆଳାପାର୍ଥକ) ଶ୍ରୀକର, ଶ୍ରୀଧର ଆଦି ବ୍ୟକ୍ତିଙ୍କ ଡାକ ନାମ—Names for calling persons named Śrikara Śridhara etc. ୨ । (ସ୍ତ୍ରୀ)—ଶ୍ରୀମତୀର ଡାକନାମ—2. Name for calling Śrimati. ବୈଦେ. ବି. (ନାମ) ସିରିଆ; ଏସିଆ ମହାଦେଶସ୍ଥ ତୁରସ୍କ ଦେଶର ଗୋଟିଏ ବଳାୟତ ବା ପ୍ରଦେଶର ନାମ—Syria; name of a province of Asiatic Turkey. [ଦ୍ର—ପୂର୍ବେ ଏହା ଏସିଆ ମାଇନର୍ ବା ଆସିୟାଟିକ ତୁରସ୍କର ଗୋଟିଏ ବଳାୟତ ଥିଲା, ବର୍ତ୍ତମାନ ଏହା ତୁରସ୍କ ୪ଟି ରାଜ୍ୟରେ ବିଭକ୍ତ ଯଥା; ଆନାଟୋଲିଆ, ଇରାକ, ସିରିଆ, ଟ୍ରାନ୍ସ କର୍ଡାନ । ଆଲେପୋ ଓ ଦାମସ୍କସ୍ ସିରିଆର ପ୍ରଧାନ ନଗର ।
Śiriā
সিরিয়া
सिरिया

**ଶିରି ଉଠିଯିବା**—ଗ୍ରା. କ୍ରି.—୧ । ସୌନ୍ଦର୍ଯ୍ୟ ନାଶ ହେବା—1. Becoming ugly; loss of grace. ୨ । ଲକ୍ଷ୍ମୀ ନାଶ ହେବା -2. State of becoming poor; loss of prosperity or affluence. ୩ । ସମ୍ପତ୍ତି ନାଶ ହେବା—3. The failing of fortune.
Śiri uṭhijibā
শ্রীছাড়া
सिरीउठाना

ଶିରି ଉଞ୍ଚା(ଞ୍ଚେ)ଯିବା, ଶିରି ଭୁଟିବା,
ଶିରି ଭୁଟିଯିବା, ଶିରି ଦୂରହେବା, } ଅନ୍ୟରୂପ
ଶିରି ଛାଡ଼ିବା, ଶିରି ଛାଡ଼ିଯିବା

**ଶିରି କପୂ(ର୍ପୂ)ର**—ଗ୍ରା. ବି.—(ସଂ ଶ୍ରୀକର୍ପୂର)—ଶ୍ରୀକର୍ପୂର (ଦେଖ)
Śiri kapū(rpū)ra Śrikarpūra (See)
শ্রীকপুর सिरीकरपूर

**ଶିରିକର**—ଗ୍ରା. ବି.—( ସଂ. ଶ୍ରୀକର )—ଶ୍ରୀକରର ଅଶୁଦ୍ଧ ଉଚ୍ଚାରଣ—
Śirikara Incorrect pronunciation of Śrikara.
শ্রীকর सिरीकर [ଦ୍ର—ଏହିପରି ଶ୍ରୀଧର, ଶ୍ରୀକୃଷ୍ଣ, ଶ୍ରୀରାମ ଆଦି ସ୍ଥଳରେ 'ଶ୍ରୀ' ସ୍ଥାନରେ ଗ୍ରାମ୍ୟ ଲୋକେ ଉଚ୍ଚାରଣ କରନ୍ତି ]

**ଶିରିକା**—ଦେ. ବି. (ଫା. ଶିର୍କା)—ମଦର କାଞ୍ଜି—
Śirikā Vinegar.
শির্কা शीर्का

**ଶିରି(ରୀ)କା(କ)ପଡ଼ା**—ଗ୍ରା. ବି.—ଶ୍ରୀକାପଡ଼ା (ଦେଖ)
Śiri (ri)kā(k)paṛdā Śrikāpaṛdā (See)
শ্রীকাপড় देवकपडा

**ଶିରି(ରୀ)କୁଣ୍ଡ**—ସଂ ବି.—ହିନ୍ଦୁମାନଙ୍କର ତୀର୍ଥ ବିଶେଷ—Name of
Śiri(ri)kuṇḍa a sacred bathing place of the Hindus. [ଭି—ଶିରିକୁଣ୍ଡେ ଯାଇଣ ବ୍ରହ୍ମାଙ୍କୁ ସ୍ମରି, ଗାଧୋଇଲେ ହୁଅଇ ପୁଣ୍ୟ ଅଧିକାରୀ । କୃଷ୍ଣସିଂହ ମହାଭାରତ ।]

**ଶିରି(ରୀ)କୃ(କୁ)ଷ୍ଣ**—ଗ୍ରା. ବି. [ଅଶୁଦ୍ଧ ଉଚ୍ଚାରଣ]—ଶ୍ରୀକୃଷ୍ଣ (ଦେଖ)
Śiri(ri)kru(ku)shṭan Śrikṛushṇa (See)

**ଶିରଣି(ନି)**—ଦେ. ବି.—(ଫା. ଶୀର୍ନୀ); (ଭୂଳନାକର ସଂ. ଶିଖରଣୀ= ଦୁଧ ଘିଅରେ ପ୍ରସ୍ତୁତ ମିଷ୍ଟାନ୍ନ ବିଶେଷ).—୧ । ମୁସଲ୍-
Śirṇi(ni)

**सिन्नी, शिरनी** ମାନଙ୍କ ପୂଜିତ ପୀରଙ୍କ ଦେୟ ନୈବେଦ୍ୟ—1.
**सिरनी** Offerings made to departed Mahomedan saints. ୨ । ମୁସଲମାନଙ୍କ 'ପୀର'ଙ୍କୁ 'ସତ୍ୟ-ପୀର, ବା ସତ୍ୟନାରାୟଣ, ରୂପେ ପୂଜା କରି ପାଲ (ଚିଅ-ପାଲ ଓ ପୋଥି ପୂଜା) କରିବା ଉପଲକ୍ଷରେ ହିନ୍ଦୁମାନେ ତାଙ୍କୁ ଯେଉଁ ମିଷ୍ଟାନ୍ନ ନୈବେଦ୍ୟରୂପେ ଅର୍ପଣ କରନ୍ତି—2. Offering of sweetmeat made to 'Satyapir' Deity worshipped by the Hindus. ୩ । ସତ୍ୟନାରାୟଣଙ୍କୁ ଭୋଗ ହୋଇଥିବା ପାଚିଲା କଦଳୀ, ଦୁଧ, ଗୁଡ଼ ବା ଚିନି, ମଇଦା, ଘିଅ ଓ ଅଟା ବା ଗୁଣ୍ଡ ଚୂନା ମିଶାଯାଇ ଚକଟା ହୋଇଥିବା ନୈବେଦ୍ୟ; ଅମୃତ କୁଣ୍ଡ (ଦେଖ) 3. Amruta kunda (See). [ ଦ୍ର—ସାଧାରଣତଃ 'ଗୁଡ଼ଧା' ମିଷ୍ଟାନ୍ନ ଜମ୍ମା ପାଚିଲା କଦଳୀକୁ ଦୁଧ, ଶର୍କରା ଓ ଅଟା ସଙ୍ଗେ ଚକଟି ତିଆରି କରାଯିବା କଦଳୀଚକଟାକୁ ହିନ୍ଦୁମାନେ ଶିରଣି କହୁଥାଆନ୍ତି । ହିନ୍ଦୁମାନେ 'ମାନସିକ' କରି ସତ୍ୟପୀରଙ୍କୁ ଶିରଣି ଯାଚନ୍ତି ଓ ମନୋବାଞ୍ଛା ପୂର୍ଣ୍ଣ ହେଲେ (ଯଥା—ପୁତ୍ରାଦି ଲାଭ ହେଲେ ବା ମକଦ୍ଦମା ଡିଗ୍ରୀ ହେଲେ) ପୀରଙ୍କୁ ଶିରଣି ଭୋଗ ଲଗାନ୍ତି ଓ ପାଲି କରାନ୍ତି । ମୁସଲମାନ୍‌ମାନେ କୋରାନ୍‌ଗ୍ରନ୍ଥରୁ ମନ୍ତ୍ର ପଢ଼ି ପୀରଙ୍କ 'ଫିରନି' ଶ୍ରାଦ୍ଧ କରନ୍ତି ବା ନୈବେଦ୍ୟ ଅର୍ପଣ କରନ୍ତି ଓ ହିନ୍ଦୁମାନେ ନାରାୟଣ ମନ୍ତ୍ର ପାଠ କରି ସତ୍ୟପୀରଙ୍କୁ ଶିରଣି ଭୋଗ ଲଗାନ୍ତି ଓ ପୂଜା ସରିବା ପରେ ଉକ୍ତ ଶିରଣିକୁ ନିମନ୍ତ୍ରିତ ବ୍ୟକ୍ତିଙ୍କୁ ଓ ଗ୍ରାମବାସୀଙ୍କୁ ଓ ଉପସ୍ଥିତ ବାଳକ ବାଳିକାଙ୍କୁ ବିତରଣ କରନ୍ତି । ୪ । (ଆଦରାର୍ଥକ) ଶ୍ରୀନିବାସର ଡାକନାମ—4. Name for fondly calling Śrinibāsa.

**ଶିରଣି ଯାଚିବା**—ଦେ. କ୍ରି—ମନୋବାଞ୍ଛା ସିଦ୍ଧ ହେଲେ ସତ୍ୟପୀର ବା Śirini jāchibā ସତ୍ୟନାରାୟଣଙ୍କୁ ଶିରଣି ଭୋଗ ଦେବା **सीन्नीमानत्करा** **सिरनीमन्नतकरना** ପାଇଁ ବା ପାଲି କରିବା ପାଇଁ ମନାସିବା—To vow to offer Śirini to Satyapira Deity on the fulfilment of one's wish.

**ଶିରି ଦେଖି ନ ପାରିବା**—ଦେ. କ୍ରି—କୌଣସି ବ୍ୟକ୍ତିର ଭାଗ୍ୟୋଦୟ Śiri dekhi na pāribā ବା ବିଭବ ଦେଖି ମନରେ শিরি দেখতে নাপারা **सिरी नही देख सकना** ହିଂସାକରିବା; ପରଶ୍ରୀ ଦେଖି କାତର ହେବା—To envy a person's good fortune; to be pained at another's prosperity.

**ଶିରି(ରୀ)ଧର**—ଗ୍ରା. ବି. (ସଂ. ଶ୍ରୀଧର)—ଶ୍ରୀଧରର ଡାକ ନାମ—Śiri(ri)dhara The name for calling Śridhara. শ্রীধর **सीरीधर** ( ଉ—ହିନେକ ସାମ ଶିରିଧର, ( ଶିରିଧରଆ—ଅନାଦରାର୍ଥକ ଆକାର ) ମିଳିରୁ ହୋଇଲେ ବାହାର ଭାଗବତ ୧୦ମ । ]

**ଶିରି(ରୀ)ପଞ୍ଚମୀ**—ଗ୍ରା. ବି (ସଂ. ଶ୍ରୀପଞ୍ଚମୀର ଅଶୁଦ୍ଧ ଉଚ୍ଚାରଣ)—ଶ୍ରୀପଞ୍ଚମୀ; Śiri(ri)panchami ମାଘ ଶୁକ୍ଳ ପଞ୍ଚମୀ—The 5th শ্রীপঞ্চমী **सीरीपँचमी** day of the bright lunar fortnight of Māgha. ( ଉ—ପଞ୍ଚମୀ ହିନ ସିନ୍ଧ ଶିରି ହେଲେ ଯୁକ୍ତ, ଏଣୁ ଶିରିପଞ୍ଚମୀ ବୋଲନ୍ତି ସମସ୍ତ—କୃଷ୍ଣସିଂହ. ମହାଭାରତ ବନ । )

**ଶିରି(ରୀ)ପତି**—ଗ୍ରା. ବି (ସଂ. ଶ୍ରୀପତି)—ବିଷ୍ଣୁ—Bishnu ( ଉ—Śiri(ri)pati ତହିଁ ମଲେ ସ୍ୱର୍ଗେ ଭେଟନ୍ତି ଶିରିପତି—କୃଷ୍ଣସିଂହ শ্রীপতি **सीरीपति** ମହାଭାରତ । )

**ଶିରିପା** (ଇତ୍ୟାଦି)—ଦେ. ବି—ଶିରପା ଇତ୍ୟାଦି (ଦେଖ) Śiripā (etc) Śirapā etc (See)

**ଶିରି ପାଲିଆ**—ଦେ. ବି—ଶିରପାଲିଆ (ଦେଖ) Śiri pālia Śirapālia (See)

**ଶିରି(ରୀ)ଫଳ**—ଗ୍ରା. ବି (ସଂ. ଶ୍ରୀଫଳ)—ଶ୍ରୀଫଳ (ଦେଖ) Śiri(ri)phala Śriphala (See) (ଉ—ବେଲ କରେ শিরিফল **सिरीफल** ଧରି ଧରଣୀମଣ୍ଡଳଶିରୀ, ଶିରିଫଳ ଉରଜ ମକରୀ ତରି କରି—ଭଞ୍ଜ. ପ୍ରେମସୁଧାନିଧି । )

**ଶିରିବ(ମ)ନ୍ତ**—(ପୁଂ)—ଗ୍ରା. ବି (ସଂ. ଶ୍ରୀମତ୍)—ଶ୍ରୀମାନ୍ (ଦେଖ) Śiriba(ma)nta Śrimān (See) শিরিমন্ত **सिरीवन्त**

**ଶିରିବ(ମ)ନ୍ତୀ** (ସ୍ତ୍ରୀ)—ଗ୍ରା. ବିଣ (ସଂ. ଶ୍ରୀମତୀ)—ଲକ୍ଷ୍ମୀବତୀ—Beautiful; Śiriba(ma)nti graceful. (ଉ—ଶ୍ରେଷ୍ଠୀ କ ଶିରିବନ୍ତୀ শ্রীমতী **सिरीवन्ती** କହୁଲେ ସେ ଗୋଡ଼ି ବୁଲେଇବୁଲେଇ ଗଲେ—ଭୂତ । )

**ଶିରି(ରୀ)ମତୀ**—ଗ୍ରା. ବି (ଅଶୁଦ୍ଧ)—(ସଂ. ଶ୍ରୀମତୀ)—୧ । ଶ୍ରୀମତୀର ଡାକ Śiri(ri)mati ନାମ—1. The name calling for শ্রীমতী **सिरीमती** Śriamati. ୨ । ରାଧିକା—2. Rādhikā. ଗ୍ରା. ବିଣ (ସ୍ତ୍ରୀ)—୧ । ଶ୍ରୀଯୁକ୍ତା; ସୁନ୍ଦରୀ; ଶୋଭାଯୁକ୍ତା—1. Graceful; beautiful. ୨ । ସୌଭାଗ୍ୟବତୀ—2. Lucky (woman). ( ଉ—ଗ୍ରାମୀକର ଗୁରୁଣି ସିମତୀ ସେ କେଉଁ ଅମତୀ—କବିସୂର୍ଯ୍ୟ ବଳଦେବ ରଥ. ଚମ୍ପୂ, ଗୀତ । ) ୩ । ଲକ୍ଷ୍ମୀମତୀ (ସ୍ତ୍ରୀ) 3. Affluent (woman).

**ଶିରିବତ୍ସ(ଛ,ତ୍ସି,ଚ୍ଛି)**—ଗ୍ରା. ବି (ସଂ. ଶ୍ରୀବତ୍ସ; ଶ୍ରୀକୃଷ୍ଣ—Sribatsa; Śiribatsa(chchha,tsi,chchhi) Śirkrushna. শ্রীবৎস **सिरीबछ** [ଉ—ଏଣୁ ସେ ପୁର ଲୋକେ କର ଶିରିବଚ୍ଛି-କୃଷ୍ଣସିଂହ. ମହାଭାରତ । ]

**ଶିରିମତୀ ମ(ମା)ହାରାଣୀ**—(ସ୍ତ୍ରୀ) ଗ୍ରା. ବି—(ସଂ. ଶ୍ରୀମତୀ ଓ ମହାରାଜ୍ଞୀ) Śirimatima(mā)hārāni ସ୍ୱର୍ଗୀୟା ମହାରାଣୀ ଭିକ୍ଟୋରିଆଙ୍କର শ্রীমতীমহারাণী **सिरिमतीमहारानि** ଓଡ଼ିଶା ଡାକ ନାମ—The name by which the late Queen Victoria wa called in Orissa.

ଶିରିମଲ୍ଲିକା—ଗ୍ରା. ବି—ଏକ ପ୍ରକାର ମଲ୍ଲୀ ଜାତୀୟ ବୃକ୍ଷ ଓ ଫୁଲ—
Śiri malikā A kind of jasmine.
শ্রীমল্লিকা বেলি सिरीमाल्लिका

ଶିରିରଙ୍ଗ—ଗ୍ରା ବି—ଶ୍ରୀକୃଷ୍ଣ—Śrikrushṇa. [ଉ—
Śiriraṅga କୁଚ ଉପରେ ସୁନ୍ଦର ଶିରିରଙ୍ଗ; କଳାମେଘ ଖଣ୍ଡେ ଯେହ୍ନେ ମେରୁଦଣ୍ଡ]
শ্রীবঙ্গ सिरिरंग ଉପେନ୍ଦ୍ରଭଞ୍ଜ।

ଶିରିଶ ଦେ· ବି—୧। (ସଂ. ଶିରୀଷ)—ଶିରୀଷ (ଦେଖ)—1.
Śiriśa Śirisha (See) ୨। (ସଂ. ଶୀର୍ଷ) ପର୍ବତର ଶିଖର;
শিরিষ शिरीष ଶୀର୍ଷ—2. Summit of a moun-
শেখর शिर tain. [ଉ—କଲନ୍ତି କଡ଼ କରି ନିର୍ଘୋଷ ଟେକିଲି ଗିରି ବରି ଶିରିଶ]
ରସକଲ୍ଲୋଳ।
শিবীশ सिरिश ୩। (ସଂ. ଶ୍ରୀଶ) ଶ୍ରୀଶଚନ୍ଦ୍ର ନାମକ ବ୍ୟକ୍ତିଙ୍କ ଡାକ ନାମ—3. The name for calling Śriśachandra. ବୈଦେ. ବି—ଶିରିଶ ଇତ୍ୟାଦି (ଦେଖ)—Siriśa etc (See)

ଶିରିଶିରା(ରେ)ଇ ଉଠିବା—ଦେ· କ୍ରି—୧। (ଦେହ) ସିର୍ ସିର୍ ହେବା;
Śiriśirā(re)i uṭhibā ଲୋମାଞ୍ଚିତ ହେବା—1. To bristle.
শিবিশিবেউঠা सिरसिराना ୨। (ଦେହ) ଜ୍ୱରଜ୍ୱର ବୋଧ ହେବା—2. To feel feverish. ଦେ· କ୍ରି·
ଶିହରାଇବା (ଦେଖ)—Śiharāibā (See).

ଶିରିଶିରି ହେବା
ଶିରିଶିରି(ରେ)ଇବା —ଅନ୍ୟରୂପ
ଶିରିଶିରି(ରେ)ଇହେବା

ଶିରୀଷ—ସଂ. ବି—(ଶୃ ଧାତୁ=ହିଂସିତ ହେବା, ଶୀର୍ଣ୍ଣ ହେବା+ଈଷ୍
Śirīsha ଇଷ୍; ଏହା ଅତି ସୁକୁମାର ଥିବାରୁ ଶୀଘ୍ର ଶୀର୍ଣ୍ଣ ହୋଇ-
ଅନ୍ୟ ସଂ ନାମ—ମୃଦୁପୁଷ୍ପ, ଯାଏ ବୋଲି ଏହି ନାମ)—
ଶୁକପୁଷ୍ପ, ବିଷହନ୍ତ୍ରୀ ନାତିବୃହତ ବନ୍ୟ ତରୁ ବିଶେଷ
ଭଣ୍ଡିର, ଭଣ୍ଡୀ, ଭଣ୍ଡୀର, Acacia Lebbek; Albezzia
କପୀତନ, ଶୁକପୁଷ୍ପ, ଶୁକତରୁ, Lebbek.
ମୃଦୁପୁଷ୍ପ, ଶୁକପ୍ରିୟ, ଶଙ୍ଖିନୀଫଳ [ଦ୍ର—ଏହା ବବ୍ବୁଲାଦି ବର୍ଗର ବୃକ୍ଷ;
ବଙ୍ଗ—ଦଉଶ, ହେଜକ୍ରିଯ୍ଯା ପତ୍ର ଦ୍ୱିଧାପର୍ଣ୍ଣୀ; ପର୍ଣ୍ଣୀ ବଡ଼ବଡ଼;
ଅ—ସୁଲଡାନ୍ଦିଲ୍ ଅଶଯାର୍ ପ୍ରତିବର୍ଷ ପୁରୁଣା ପତ୍ର ଝଡ଼ିଯାଇ ନୂଆ
ତେଁ—ଢଉସନ୍; ଢଢସନ୍ ପତ୍ର ଜନ୍ମେ; ଫୁଲ ଧଳା ଓ ସୁଗନ୍ଧ; ଶରତ୍‌କାଳେ ଫୁଟେ। ପୁଷ୍ପର ଚତୁର୍ଦ୍ଦିଗରେ ସରୁ କେଶରମାନ ଲାଗିଥାଏ। ଏହି କେଶରମାନ ଅତି ମୃଦୁ ଓ ଶୀଘ୍ର ମଉଳି ପଡ଼େ ବୋଲି କବିମାନେ ସୁକୁମାରୀ ନାରୀମାନଙ୍କ ଅଙ୍ଗକୁ ଏହି ପୁଷ୍ପ ସଙ୍ଗେ କୋମଳତା ବିଷୟରେ ତୁଳନା କରି ଥାଆନ୍ତି ଓ ସୁକୁମାରୀମାନଙ୍କୁ 'ଶିରୀଷ କୋମଳାଙ୍ଗୀ' ବିଶେଷଣରେ ସମ୍ମାନିତ କରନ୍ତି। ଏହି ଗଛ ଭାରତର ସର୍ବତ୍ର ଜନ୍ମେ ଏବଂ ଏହି ଗଛରୁ ଏକପ୍ରକାର ଅଠାଳିଆ ରସ ବାହାରେ (କିନ୍ତୁ ତାହା ଶିରୀଷ ଅଠା ନୁହେ।)

ବୈଦ୍ୟଶାସ୍ତ୍ର ଅନୁସାରେ ଏହା ମଧୁର-କଷାୟ-ତିକ୍ତରସ, ଈଷଦୁଷ୍ଣବୀର୍ଯ୍ୟ ଓ ଲଘୁପାକ ଓ ଶୋଥ, ବିସର୍ପ, କାସ, ବ୍ରଣ ଓ ବିଷନାଶକ ଅଟେ। ଏହାର ବୀଜ ଅଞ୍ଜନ ରୂପେ ପ୍ରଯୁକ୍ତ ହେଲେ ଚକ୍ଷୁରୋଗର ଉପକାର କରେ।
କଣ୍ଟାଯୁକ୍ତ ଏକ ପ୍ରକାର ଶିରୀଷଗଛ ଅଛି। ଏହାକୁ ଓଡ଼ିଶାରେ କଡ଼ି କଣ୍ଟାକୁସୁମ ବୋଲାଯାଏ। ଏହା ସ୍ୱେଦ, ତ୍ୱଗ୍‌ଦୋଷ, ଶୋଥ, ବିସର୍ପ ଓ ବିଷ ଦୋଷରେ ଉପକାରକ।]

ଶିରୀଷ କୋମଳ—ସଂ· ବିଣ—ଶିରୀଷ ଫୁଲ ପରି ଅତି କୋମଳ—Very
Śirīsha komaḷa delicate like the Śirisha flower.

ଶିରୀଷ କୋମଳାଙ୍ଗୀ—ସଂ· ବି—(ସ୍ତ୍ରୀ) (ବହୁବ୍ରୀହି—ଶିରୀଷ ପରି
Śirisha komaḷāṅgi ଅଙ୍ଗ ଯାହାର) ଶିରୀଷଫୁଲ ପରି ସୁକୁମାରୀ—With the body as delicate as
(ଶିରୀଷ କୋମଳାଙ୍ଗ—ପୁଂ) the Śirisha flower. [ଦ୍ର—ଏଥିର ପୁଲିଙ୍ଗ 'ଶିରୀଷ କୋମଳାଙ୍ଗ'; କିନ୍ତୁ ଏ ବିଶେଷଣକୁ କବିମାନେ ପୁରୁଷଙ୍କ ପ୍ରତି ଲଗାଇଥିବା ଶୁଣାନାହିଁ।]

ଶିରୀଷ ମାଳା—ସଂ· ବି·—ଶିରୀଷ ଫୁଲର ମାଳ ବା ହାର
Śirisha māḷā A garland of Śirisha flowers.
[ଉ—ଶିରୀଷ ମାଳା ଦଳଦେଇ କଣ୍ଠରେ। କବିସୂର୍ଯ୍ୟ—ବଶୋଧିରମ୍ଭ. ଷ-ଗୀତ।]

ଶିରୀ ହସ୍ତ—ଗ୍ରା. ବି· (ସଂ· ଶ୍ରୀହସ୍ତ)—ଶ୍ରୀହସ୍ତ (ଦେଖ)
Śiri hasta Śrihasta (See)
শ্রীহস্ত श्रीहस्त

ଶିରୀହତା(ସ୍ତା)—ଗ୍ରା. ବିଣ (ପୁଂ)—(ସଂ· ଶ୍ରୀ ଓ ହସ୍ତ)—ଯେଉଁ ପୁରୁଷର
Śiri hatā (stā) ହାତ ଏପରି ଶ୍ରୀବନ୍ତ ଯେ, ତାହା ହାତ ଯେଉଁ
অমৃত হস্ত ଠାରେ ଲାଗେ ସେଠାରେ ଶୁଭ ଘଟେ—(a man)
श्रीहस्त Having an auspicious hand.
(ଶିରୀହାତିଆ—ଅନ୍ୟରୂପ) [ବିପରୀତ (ସ୍ତା)—ବିପରୀତ]

ଶିରୀହାତୀ—ଦେ· ବିଣ. (ସ୍ତ୍ରୀ)—ଯେଉଁ ସ୍ତ୍ରୀର ହାତ ଏପରି ଶ୍ରୀବନ୍ତ ଯେ,
Śirihāti ତାହା ହାତ ଯେଉଁଠାରେ ଲାଗେ ସେଠାରେ ଶୁଭ ଘଟେ
অমৃতহস্ত —(woman) Having an auspicious hand.
श्रीहस्ता (ଶିରୀହାତେଇ—ଅନ୍ୟରୂପ)

ଶିରୁ(ରୁଁ)ପା—ଦେ· ବି—ଶିରପା (ଦେଖ)
Śiru(ruñ)pā. Śirapā (See)
মাথাথেকে পা পর্য্যন্ত ଦେ. ଅ.—ମସ୍ତକରୁ ପାଦଯାଏ—From
शिरसे पाँवतक head to foot. [ଉ—ତୋର ମୋତେ ଅନୁକମ୍ପା ହୋଇ ଶିରୁପାରେ, ନ ହସି ମୋ ଲଗାଇବ ସତ୍ତ୍ୱରୁ କପାରେ। କବିସୂର୍ଯ୍ୟ—ସଙ୍ଗୀତ।]

ଶିରେଇ—ଦେ· ବି·—ଶିରାଇ (ଦେଖ)
Śirei Śirāi (See)
ପ୍ରାଦେ· (ଗଞ୍ଜାମ) ବି·—ଜଙ୍ଘିଆ; ଅଧା ପାଇଜାମା—Drawers; half pant.

**ଶିରେ ଘେନିବା**—ଦେ. କ୍ରି.—(କଥା) ମାନିବା; (ଆଦେଶ) ପାଳିବା; Sire ghenibā ଶିରୋଧାର୍ଯ୍ୟ କରିବା—To obey (an মাথায় লওয়া order); to bow down to (an order). सिरचढ़ाना [ଦ୍ର—ଅବେ ଯୁଧିଷ୍ଠିର ଏରୂପେ ଦମୟନ୍ତୀ, ବଚନ ଘେନି ଶିରେ କେଶିଣୀ ଯୁବତୀ । କୃଷ୍ଣସିଂହ—ମହାଭାରତ ]

**ଶିରେ ଧରିବା(ବହିବା)**—ଦେ. କ୍ରି.—ଶିରୋଧାର୍ଯ୍ୟ କରିବା; ପାଳନ Sire dharibā (bahibā) କରିବା—To obey. মাথায় লওয়া सिर चढ़ाना [ଦ୍ର—ତାହାଙ୍କ ଆଜ୍ଞା ଧରି ଶିରେ, ଚନ୍ତି ଶ୍ରୀକୃଷ୍ଣ ଚରଣରେ । ଭୂପତି—ପ୍ରେମ ପଞ୍ଚାମୃତ ।]

**ଶିରେଞ୍ଚାଇବା**—ଦେ. କ୍ରି.—(କୌଣସି ବସ୍ତୁକୁ) ସମ୍ମାନପୂର୍ବକ ମୁଣ୍ଡରେ Sirenchāibā ଲଗାଇବା—To touch a thing on মাথায় লাগান one's forehead as a mark of respect सरमे लगाना or reverence. [ଦ୍ର—ଦେଉ ଯେ ବଦନ ଦୋଳକରି ଧାନ ଛିଡ଼ା ଅଗଣାରୁ ଖୁଣ୍ଟି, ଶିରେଞ୍ଚାଇ ତାହା ହାତାରି କରଣ ଥୋଇଛନ୍ତି ଅଚଳା ଅଞ୍ଚି—ଧର୍ମ ପୁରାଣ ]

**ଶିରେ ଶିରେ ଭେଦିବା**—ଦେ. କ୍ରି.—ଶିରାରେ ଶିରାରେ ଭେଦିବା (ଦେଖ) Sire sire bhedibā Sirāre sirar· bhedibā (See)

**ଶିରୋଗର୍ଭକ**—ସଂ. ବି—କେଶ—Hair. [ଦ୍ର—ଶିରୋଗର୍ଭକରୁ Sirogarbhaka ଶୋଣ ବନ୍ଧନର ଚରଣ ଯାଏ ଉନ୍ମିଳ ଧରି—ଅବସ୍ଥାଂ କବିତା । ]

**ଶିରୋଗୃହ(ଗେହ)**—ସଂ. ବି (ଶିରଃ+ଗୃହ; ଶିର=ପ୍ରାସାଦର ଶିରୋ- Sirogṛu(ge)ha ଭାଗରେ ଥିବା ଗୃହ) · ଚନ୍ଦ୍ରଶାଳା; ଅଟ୍ଟାଳିକା ଉପରସ୍ଥ ଗୃହ—A room at the top of a house; attic.

**ଶିରୋଗ୍ରହ**—ସଂ. ବି (ଶିରସ୍+ଗ୍ରହ ଧାତୁ+କର୍ତ୍ତୃ. ଅ)—ମୁଣ୍ଡର Sirograha ଏକ ବାତରୋଗ (ହ୍ର. ଶ) A disease of the head.

**ଶିରୋଘୂର୍ଣ୍ଣନ**—ସଂ. ବି (୬ଷ୍ଠୀ ତତ୍)—ମୁଣ୍ଡ ବୁଲାଇବା—Siroghūrṇṇana Dizziness.

**ଶିରୋଜ**—ସଂ ବି (ଶିରସ୍+ଜନ୍ ଧାତୁ+କର୍ତ୍ତୃ. ଅ)—ବାଳ; କେଶ Siroja (ହ୍ର. ଶ)—Hair.

**ଶିରୋଦାମ**—ସଂ. ବି (ଶିରଃ+ଦାମନ୍; ମ୍ୟା. ତତ୍)—ପଗଡ଼ି (ହ୍ର. Sirodāma ଶ)—Turban.

**ଶିରୋଦେଶ**—ସଂ. ବି—ମସ୍ତକର ଦେଶ; ଅଗ୍ରଭାଗ—Sirodesa The top.

**ଶିରୋଧର(ରା)**—ସଂ. ବି (ଶିରଃ+ଧୃ ଧାତୁ+କର୍ତ୍ତୃ. ଅ; +ଆ)—Sirodhara(ra) ବେକ; ଗ୍ରୀବା—The neck. [ଦ୍ର—କୁଟିଳଭାବେ ଶିରୋଧରା, ପୃଷ୍ଠ କୁଟିଳ କଲେବର—ଜଗନ୍ନାଥ. ଭାଗବତ । ]

**ଶିରୋଧାନ**—ସଂ. ବି (ଶିରସ୍+ଧା ଧାତୁ+ଅଧିକରଣ ଅନ) ୧ । ଖଟର Sirodhāna ବା ପଲଙ୍କର ମୁଣ୍ଡ ରଖିବା ସ୍ଥାନ—The part of the bedstead where the head rests. ୨ । ଶିରଣା (ଦେଖ)—2. Sirāṇā (See)

**ଶିରୋଧାର(ରି)ଜ**—ଗ୍ରା. ବିଣ (ଅଶୁଦ୍ଧ)—ଶିରୋଧାର୍ଯ୍ୟ (ଦେଖ) Sirodhāra(ri)ja Sirodhārjya (See) শিরোধার্য্য शिरोधारज

**ଶିରୋଧାର୍ଯ୍ୟ**—ସଂ. ବିଣ (୭ମୀ ତତ୍; ଶିରଃ+ଧାର୍ଯ୍ୟ)—୧ । ମସ୍ତ- Siro dhārjya କରେ ଧାରଣ କରିବା ଯୋଗ୍ୟ—1. Fit to be worn on the head. ୨ । ଅବଶ୍ୟ ପାଳନୀୟ—2. Fit to be obeyed. ୩ । ଅତିଶୟ ମାନ୍ୟ—3. Much respected. ୪ । ସାଦର ଅଙ୍ଗୀକରଣୀୟ—4. Fit to be respectfully agreed to.

**ଶିରୋଧାର୍ଯ୍ୟ କରିବା**—ଦେ. କ୍ରି—୧ । ସମ୍ମାନ ସହିତ ଗ୍ରହଣ କରିବା— Sirodhārjya karibā 1. To accept or submit to শিরোধার্য্য করা with respect. ୨ । (ଆଦେଶାଦି) शिरोधारज करना ପାଳନ କରିବା—2. To obey or carry out (an order). [ଦ୍ର—ଆପଣଙ୍କ ହୁକୁମ ମୁଁ ଶିରୋଧାର୍ଯ୍ୟ କଲି । ] ୩ । ସମ୍ମାନ ବା କୃତଜ୍ଞତାର ନିଦର୍ଶନ ସ୍ୱରୂପ (କୌଣସି ବସ୍ତୁକୁ) ନତମସ୍ତକରେ ଗ୍ରହଣ କରିବା—3. To accept any thing with the head bowed down (as a token of respect or gratitude).

**ଶିରୋଧି**—ସଂ. ବି (ଶିରସ୍+ଧା ଧାତୁ+କର୍ତ୍ତୃ. ଇ)—ଗ୍ରୀବା; ବେକ Sirodhi [ହ୍ର. ଶ]—The neck.

**ଶିରୋଧିଜା**—ସଂ. ବି (ଶିରୋଧି+ଜନ୍ ଧାତୁ+କର୍ତ୍ତୃ. ଅ+ଆ)— Sirodhijā ଶିରା; ନାଡ଼ୀ—Veins. [ଭୁଲ. ଓଡ଼ିଆ ଉଗ—ଧରୁ ଶିରସାକ ବେକରେ ନୋଖୁ । ]

**ଶିରୋନାମ(ମା)**—ଦେ. ବି—ଶିରନାମା (ଦେଖ)— Sironāma(mā) Siranāmā (See) শিরোনাম, শিরোনামা सिरनामा

**ଶିରୋପା**—ଦେ. ବି (ବୈଦେଶିକ ସ. ଶିପ୍ରା)—ଶିରପା (ଦେଖ) Siropā सिर[रो]पा पगडी, शिरोपाव Sirapā (See)

**ଶିରୋବଲ୍ଲୀ**—ସଂ. ବି (ଶିରସ୍+ବଲ୍ଲୀ; ଶିରରେ ଅବସ୍ଥିତ ବଲ୍ଲୀ; Siroballi ମ. ପ. ଲୋ)—ମୟୂରର ବା କୁକୁଡ଼ାର ଚୂଳ [ହ୍ର. ଶ]—The tuft of feathers on the head of a peacock or cock.

**ଶିରୋବସ୍ତି**—ସଂ. ବି—ବାତଜ ଶିରୋବ୍ୟଥାର ଉପଶମ ବିଶେଷ [ହ୍ର Sirobasti ଶ]—A kind of fomentation for head diseases. [ଦ୍ର—ବିଦ୍ୱାନଙ୍କ ଦ୍ୱାରା ମୁଣ୍ଡ ଉପରେ ଆଠ ବା ଷୋଳ ଅଙ୍ଗୁଳର ଗୋଲାକାର ବନ୍ଧ ବାନ୍ଧି ତହିଁ ମଧ୍ୟରେ ଗରମ ତେଲ ରଖି ୪ ଘଡ଼ିରେ ବାହାର କରିବା ଶିରୋବସ୍ତି; ଏଥିରେ ବାତଜ ଶିରୋରୋଗ, କର୍ଣ୍ଣରୋଗ, ଗ୍ରୀବାରୋଗ, ଥୋଡ଼ିରୋଗ ଆଦି ଭଲ ହୁଏ । ]

**ଶିରୋବୃତ୍ତ**—ସଂ. ବି—(ବହୁବ୍ରୀହି)—ଗୋଲମରିଚ (ହ୍ର. ଶ)— Sirobṛutta Black pepper.

ଶିରୋବୃତ୍ତ ଫଳ—ସଂ. ବି—ରକ୍ତ ଅପାମାର୍ଗ (ହି. ଶ)—
Śirobrutta phaḻa The red variety of Achyranthes.

ଶିରୋବେଷ୍ଟ—ସଂ. ବି—ଶିରସ୍ତ୍ର; ଉଷ୍ଣୀଷ; ପଗଡ଼ି—
Śirobeshṭa [ଶିରୋବେଷ୍ଟନ—ଅପଭ୍ରଂଶ] Turban.

ଶିରୋବ୍ୟଥା—ସଂ. ବି—(୬ଷ୍ଠୀ ତତ୍, ଶିରସ୍+ବ୍ୟଥା)—ମୁଣ୍ଡବିନ୍ଧା—
Śirobyathā Headache.

ଶିରୋଭାଗ—ସଂ. ବି (ଶିରସ୍+ଭାଗ)—ଅଗ୍ରଭାଗ—
Śirobhāga Top; summit.

ଶିରୋଭୂଷଣ—ସଂ. ବି— (୬ଷ୍ଠୀ ତତ୍)—୧। ମୁଣ୍ଡରେ ପିନ୍ଧା ଯିବା
Śirobhūshaṇa ଅଳଙ୍କାରବିଶେଷ—1. Ornaments for the head. ୨। ଉଷ୍ଣୀଷ; ପଗଡ଼ି; ମୁକୁଟ —
2. Turban; cap; crown. ୩। ଶିରୋମଣି—ଶ୍ରେଷ୍ଠ ବ୍ୟକ୍ତି (ହି. ଶ)—3. Eminent person.

ଶିରୋଽଭ୍ୟଙ୍ଗ—ସଂ. ବି—(୭ମୀ ତତ୍)—ମୁଣ୍ଡରେ ତୈଳମର୍ଦ୍ଦନ—
Śiro-bhyaṅga Anointing of oil on the head.

ଶିରୋମଣି—ସଂ. ବି (ଶିରଃ+ମଣି; ମ. ପ. ଲୋ. କର୍ମଧା; ଶିରରେ ପିନ୍ଧା
Śiro maṇi ଯିବା ମଣି)—୧। ଶିରୋରତ୍ନ; ମସ୍ତକରେ ପିନ୍ଧାଯିବା ରତ୍ନ ଭୂଷଣ—1. A gem worn on the head.
୨। ମୁକୁଟସ୍ଥ ରତ୍ନ—2. A gem on the crown; a crest jewel. ୩। ବିଶିଷ୍ଟ ପଣ୍ଡିତମାନଙ୍କୁ ଦିଆଯିବା ଉପାଧି—3. A title given to Pandits.
୪। ଶ୍ରେଷ୍ଠ ବ୍ୟକ୍ତି—4. An eminent person.
୫। ମାଳାର ମେରୁ (ହି. ଶ)—5. The head bead of a rosary. ଦେ. ବି. ପୁଂ. ଓ ସ୍ତ୍ରୀ—୧। ଦଳର ବା ଶ୍ରେଣୀର ଶ୍ରେଷ୍ଠ ବ୍ୟକ୍ତି—1. Chief amongst a class of persons. ୨। ଅଗ୍ରଣୀ; ଅଗ୍ରଗଣ୍ୟ ବ୍ୟକ୍ତି-2. Headman; leader. [ଯଥା—ଦୁର୍ବୃତ୍ତ ଶିରୋମଣି, ଚତୁର ଶିରୋମଣି, ନାଗରୀ ଶିରୋମଣି।]

ଶିରୋମର୍ମା—ସଂ. ବି—(ବହୁବ୍ରୀହି; ଶିରସ+ମର୍ମନ୍; ୧ମା. ୧ବ)—
Śiromarmā ୧। ବରାହ—1. Boar. ୨। ଶୂକର—2. Hog.

ଶିରୋମାଳା—ସଂ. ବି (ମ. ପ ଲୋ; ଶିରସ୍+ମାଳା)—୧। ଶିରରେ
Śiromāḻā ପିନ୍ଧା ଯିବା ମାଳା—1. A chaplet worn round the head. ୨। ନରମୁଣ୍ଡମାନଙ୍କରେ ଗୁନ୍ଥା ହୋଇଥିବା ମାଳା—2. A garland made of skulls strung together. [ଦ୍ର—ମହାଦେବ ଓ କାଳୀ ଶିରୋମାଳା ପରିଧାନ କରନ୍ତି।]

ଶିରୋମାଳିନୀ—ସଂ. ବିଣ. (ସ୍ତ୍ରୀ)—(ଶିରୋମାଳା+ଇନ୍+ସ୍ତ୍ରୀ. ଈ)—
Śiromāḻinī ୧। ନୃମୁଣ୍ଡ ମାଳାଧାରିଣୀ; ନୃମୁଣ୍ଡମାଳିନୀ—1. Wearing a garland of skulls. ୨। ମୁଣ୍ଡରେ ଯେ ମାଳା ପିନ୍ଧିଥାଏ—2. Wearing a chaplet round the head. ବି. ସ୍ତ୍ରୀ—କାଳୀ—Goddess Kāḻi.

ଶିରୋମାଳୀ—ସଂ. ବିଣ. (ପୁଂ)—ଶିରୋମାଳିନୀ (ଦେଖ)
Śiromāḻī Śiro māḻini (See) ବି. ପୁଂ—ମହାଦେବ—God Śiva.

ଶିରୋମୁକୁଟ—ସଂ. ବି—ମସ୍ତକରେ ପିନ୍ଧା ଯାଇଥିବା ମୁକୁଟ—
Śiromukuṭa A crown put on the head.

ଶିରୋମୌଳି—ସଂ. ବି—ଶିରୋମଣି (ଦେଖ)
Śiromauḻi Śiromaṇi (See)

ଶିରୋରକ୍ଷୀ—ସଂ. ବି. ପୁଂ.—ରାଜାଙ୍କ ସଙ୍ଗେ ସର୍ବଦା ଲାଗି ରହୁଥିବା
Śirorakshī ଦେହ ରକ୍ଷକ—Bodyguard.

ଶିରୋରତ୍ନ—ସଂ. ବି—ଶିରୋମଣି (ଦେଖ)—
Śiroratna Śiromaṇi (See).

ଶିରୋରୁଜା—ସଂ ବି—ସପ୍ତପର୍ଣ୍ଣ ବୃକ୍ଷ; ଛତିଅନା ଗଛ (ହି. ଶ)—
Śirorujā Echites Scholaris tree.

ଶିରୋରୁହ—ସଂ. ବି—(ଶିରଃ+ରୁହ୍ ଧାତୁ+କର୍ତ୍ତୃ ଅ)—କେଶ; ମୁଣ୍ଡର ବାଳ—
Śiroruha The hair of the head.

ଶିରୋରୋଗ—ସଂ. ବି (୬ଷ୍ଠୀ ତତ୍; ଶିରସ୍+ରୋଗ)—ମୁଣ୍ଡବୁଲା,
Śiroroga ମୁଣ୍ଡବିନ୍ଧା ଆଦି ମୁଣ୍ଡର ନାନାପ୍ରକାର ରୋଗ—Diseases of the head.

ଶିରୋସ୍ଥି—ସଂ. ବି—(୬ଷ୍ଠୀ ତତ୍; ଶିରସ୍+ଅସ୍ଥି)—ମୁଣ୍ଡର ହାଡ଼;
Śirosthi ଖପୁରି; କରୋଟି—The skull.

ଶିର୍କା—ଦେ. ବି (ଫା. ଶିର୍କା)—୧। ମଦର କାଞ୍ଜି—1. Vinegar.
Śirkā ୨। ସଢ଼ା ଗୁଡ଼ରୁ ବା ଅନ୍ୟ ମିଷ୍ଟରସରୁ ଉତ୍ପନ୍ନ ଅମ୍ଳ—
शिर्का सिर्का 2. Acid from fermented sugar or other sweet juice.

ଶିର୍କାସ୍ତ୍—ଦେ. ବି (ଫା. କଚରଥ)—ଜମିଦାରଙ୍କ ଖାସ ଦଖଲରେଥିବା
Śirkāst ଚାଷ ଜମି; ଜମିଦାରଙ୍କ ନିଜ ଯୋତ—
সিবকস্ত सरकासत A Zamidar's Nijjote; land cultivated by the Zamindar himself.
[ପାଇକାସ୍ତ୍—ବିପରୀତ]

ଶିର୍କାସ୍ତ୍ ପାଇକାସ୍ତ୍—ବୈଦେ. ବି (ଫା. ବିପରୀତ ଷଦଚବ; କଚରଥ)—
Śirkāst pāikāst ଜମିଦାରଙ୍କ ନିଜଚାଷ ଜମି ଓ ପ୍ରଜାଦଖଲ ଜମି—Nijchas and rayati lands of an estate.

ଶିର୍ଖୁଞ୍ଚ(ଞ୍ଚା)—ଦେ. ବି—ଶିରଖୁଞ୍ଚ (ଦେଖ)
Śirkhuñcha(ñchā) Śirakhuñcha (See)

ଶିର୍ଣ୍ଣି(ର୍ନି)—ବୈଦେ. ବି (ଫା. ଶିର୍ନୀ)—ଶିରଣି (ଦେଖ)
Śirṇṇi(rni) Śiriṇi (See)

ଶିର୍ପଞ୍ଚ—ଦେ. ବି—ଶିରପଞ୍ଚ (ଦେଖ)
Śirpañcha Śirapañcha (see)

ଶିର୍ପା—ଦେ. ବି—ଶିରପା (ଦେଖ)
Śirpā Śirapā (see)

ଶିର୍ପାଲିଆ—ଦେ. ବି—ଶିରପାଲିଆ [ଦେଖ]
Śirpāḻiā Śirapāḻiā [see]

ଶିର୍ପେଞ୍ଚ[ଚ]—ବୈଦେ. ବି—ଶିରପେଞ୍ଚ [ଦେଖ]
Śirpeñcha[cha] Śirapeñcha [see]

ଶିଲ୍(ଧାତୁ)—ସ—୧ । ଉଞ୍ଛବୃତ୍ତି କରିବା; କୃଷକଦ୍ୱାରା କ୍ଷେତରୁ ଶସ୍ୟ
Śil (root) କଟା ହୋଇ ନିଆ ହେବା ପରେ କ୍ଷେତରେ ପଡ଼ିଥିବା ଶସ୍ୟାଦିକୁ ( ଅନ୍ୟ ବ୍ୟକ୍ତି ) ଗୋଟାଇ ନେଇ ନେବା—1. To pick up the corn left in the field after harvesting. ୨। ନିପୁଣ ହେବା—2.To be able; to be an expert.

ଶିଲ୍—ପ୍ରାଦେ [ସମ୍ବଲପୁର— ବି— ଶିଳ [ଦେଖ]
Śil Śila [see]

ଶିଲ୍ପା—ପ୍ରାଦେ (ସମ୍ବଲପୁର) ବି.—ଶିଳପଟା (ଦେଖ)
Śilpā Śilapatā (See)

ଶିଳ—ସଂ. ବି [ଶିଲ୍ ଧାତୁ+ଭାବ. ଅ —୧ । କ୍ଷେତରେ ପଡ଼ିଥିବା
Śila ଧାନ୍ୟାକେଣ୍ଡାଦିକୁ ଗୋଟାଇନେବା—1. The collecting of the grains left strewn in the field after harvesting [ଦ୍ର—ଉଞ୍ଛବୃତ୍ତି ଓ ଶିଳବୃତ୍ତି ମଧ୍ୟରେ ପ୍ରଭେଦ ଅଛି । କୃଷକମାନେ କ୍ଷେତରୁ ଫସଲ କାଟିନେବା ପରେ ଭୂଇଁରେ ଯେଉଁ ଧାନଆଦି ପଡ଼ିଥାଏ ତାହାକୁ ଗୋଟାଇକରି ଜୀବିକାନିର୍ବାହ କରିବାକୁ 'ଉଞ୍ଛବୃତ୍ତି' ଓ କ୍ଷେତରେ କୃଷକମାନେ ଧାନ କାଟି ଘେନି ଯାଇଥିବା ପରେ ମୂଳଖୁଣ୍ଟାରେ ଲାଗିରହିଥିବା ଧାନ୍ୟ ମଞ୍ଜସବୁ ବା କେଣ୍ଡାକୁ ସଂଗ୍ରହ କରି ଜୀବିକାନିର୍ବାହ କରିବାର ନାମ "ଶିଳବୃତ୍ତି" । ] ୨ । ( ନାମ ) ପାରିପାତ୍ରଙ୍କର ଏକ ପୁତ୍ର (ହ୍ରି. ଶ)—2, Name of a son of Pāripātra.

ଦେ. ବି (ସଂ. ଶିଳା)—୧ । ଶିଳାପଟ୍ଟ; ହଳଦୀ ଆଦି ବାଟିବା ନିମନ୍ତେ ଭୂମିରେ ପଡ଼ିଥିବା ଶିଳାଖଣ୍ଡ—
শিল সীল A flat stone slab on which turmeric and other condiments are ground into paste. [ ଦ୍ର—ଯେଉଁ ଚଟକା ପଥରଖଣ୍ଡ ଭୂମିରେ ପଡ଼ିଥାଏ ତାକୁ ଶିଳ ବୋଲାଯାଏ ଓ ଯେଉଁ ଗୋଲ ଓ ଲମ୍ବ ଛୋଟ ପଥରଦ୍ୱାରା ଶିଳ ଉପରେ ରଖା ଯାଇଥିବା ପଦାର୍ଥକୁ ବାଟିବାକୁ ହୁଏ ତାକୁ 'ଶିଳପୁଅ' ବୋଲାଯାଏ ।]
୨ । ଭଣ୍ଡାରୀମାନେ ଖୁର ଧାର କରିବା ପାଇଁ ବ୍ୟବହାର କରିବା ଶିଳାଖଣ୍ଡ; ଭଣ୍ଡାରୀର ଶିଳ—2, A whetstone used by barbers.
শিল সিলা ୩ । ପଥର—3. Stone. [ଉ—
ମୋତେ କ୍ରୋଧରେ ବଧାଏ ମାଇଲା
ତହିଁ ବଳେ ଶିଳ ହେଲୁ ବୋଇଲା
ବିଜାହେବା ଦେଖି ସୁମନ୍ତ୍ର ସଙ୍ଗତେ ବାହାର କରଣ ଦେଲା
ବିଶ୍ୱନାଥ—ବିଚିତ୍ର ରାମାୟଣ]
ईंट সিল ୪ । ବଣିଆମାନଙ୍କ ଦୋକାନରେ ବିକାଯିବା ପାଇଁ ରଖାଯାଇଥିବା ଖଣ୍ଡ ଖଣ୍ଡ ରୁପା; ମୁଣ୍ଡା ରୁପା—4. Bar of Silver. ପ୍ରାଦେ. (ଗଡ଼ଜାତ)—ଅଟୁଣ୍ଡି (ଦେଖ)—Ātund of Silver (See.

ଶିଲ—ପ୍ରା. ଦେ—[ଗଞ୍ଜାମ ଓ ଗଡ଼ଜାତ] ଦେଁଦେ. ବି—[ତେଲୁଗୁ—
Śila ସେଲ୍ଭୁ] ୧ । ଅନୁମତି—1. Permission. ୨ । ବିଦାୟର ଅନୁମତି—2. Permission to go or depart. ୩ । ବିଦାୟ; ମେଲାଣି—3. Good-bye; farewell. ୪ । କାର୍ଯ୍ୟରୁ ଛୁଟି ବା ଅବସର—4. Leave from work or business. ୫ । କୌଣସି ପଦାର୍ଥ ବ୍ୟବହାର କରିବାପାଇଁ ବ୍ୟକ୍ତିବିଶେଷକୁ ରାଜାଙ୍କଠାରୁ ମିଳିବା ସ୍ୱତ୍ୱ—5 Grant of privilege or license; privilege or permission granted by the king to a person for the use of a particular article. [ଦ୍ର—ଗଡ଼ଜାତ ଓ ରାଜୁତା ମୁଲକରେ ବିବାହ ସମୟରେ ବରଯାତ୍ରା ଉପଲକ୍ଷରେ ବରର ଗମନରେ ହାତୀ, ଛତି, କାହାଳ, ପାଲିଙ୍କି, ପାଟ ଛତା ଇତ୍ୟାଦି ନେବା ସକାଶେ ରାଜାଙ୍କଠାରୁ ବ୍ୟକ୍ତିବିଶେଷଙ୍କୁ 'ଶିଲ' ମିଳେ] ଦେ. ବି.
ভাল सरेय (ସ. ଶ୍ରେୟଃ)—୧ । ହିତ; ମଙ୍ଗଳ; ଉପକାର—
हितकामना सरेयकामना 1. Welfare; benefit. ୨ । ହିତକାମନା—2. Wish for a person's welfare good wishes,

ଶିଲ କରିବା—ପ୍ରାଦେ. କ୍ରି—୧ । (ଗଡ଼ଜାତ)—କୌଣସି ବ୍ୟକ୍ତିର
Śila karibā ଉପକାର ବା ହିତ ସାଧନ କରିବା—1. To
मंगलकरा सरेयकरना benifit a person. ୧ । (ବାକି) କାମ କରିବା ଦ୍ୱାରା କୌଣସି ବ୍ୟକ୍ତିର ପରିଶ୍ରମକୁ ଲାଘବ କରିବା—2. To lighten one's labour.

ଶିଳଗର୍ଭଜ—ସ ବି—ପାଷାଣଭେଦୀ (ହୁ.ଶ) (ଦେଖ)—
Śilagarbhaja Pāshānabhedī (See)

ଶିଲଙ୍ଗ—ଦେ. ବି. (ନାମ)—ଆସାମର ଗୋଟିଏ ନଗର—A town
Śilang in Assam; Shillong. (ଏହା 'ଖାସୀ ଓ ଜୟନ୍ତିଆ
শিলং शिलिंग ପାହାଡ଼' ରାଜ୍ୟର ଗୋଟିଏ ପାର୍ବତ୍ୟ ନଗର
(ଶିଲଂ—ଅଶୁଦ୍ଧରୂପ) ଓ ଆସାମସରକାରଙ୍କ ଗ୍ରୀଷ୍ମ ନିବାସ)

ଶିଲ ଦେବା—ପ୍ରାଦେ (ଗଡ଼ଜାତ,ଗଞ୍ଜାମ) କ୍ରି—୧। ଅନୁମତି ଦେବା—
Śila debā 1. To give permission; to grant license ୨ । ବିଦାୟ ଦେବା—2. To bid farewell, to permit a person to depart. (ଏହିପରି ଶିଲ ଦେବା, ଶିଲ ମାଗିବା, ଶିଲ ପାଇବା, ଶିଲ ମିଳିବା ଆଦି ଶବ୍ଦର ବ୍ୟବହାର ହୁଏ]

ଶିଳନ୍ଦ(ନ୍ଧ)—ସ. ବି ଶିଲିନ୍ଦ (ଦେଖ)
Śilanda(ndha) Śilinda (see)

ଶିଳ (ଳି) ପ (ପୁ) ତା—ଦେ.ବି [ସ. ଶିଳାପୁତ୍ର]—ଯେଉଁ କ୍ଷୁଦ୍ର ଗୋଲ
Śila li pa pu ta ଓ ଲମ୍ବ ପ୍ରସ୍ତର ଖଣ୍ଡ ଧରି ଶିଳ ଉପରେ ପଦାର୍ଥକୁ ବାଟିବାକୁ ହୁଏ । The small stone by

ଶିଳପୁଅ, ଶିଳଗା
ଶିଳପୁଅ, ଶିଳୁଗା
ଶିଳୁପୁଅ } ଅନ୍ୟରୂପ
ଶଳପୁତା(ମେଦନୀପୁର)
ନୋଡ଼ା ନୋଡା

which articles are pounded or pestled on a slab of stone; Pestle-stone [ଉ—ଉଟିଲେ ଭକ ସୁଖ ଦାଢା ଘରୁ ଅଣିଲେ ଶିଳପୁତା ଜଗନ୍ନାଥ—ଭାଗବତ

ଉ—ଶିଳଶିଳପଟା ସଙ୍ଗେ ଉଡ଼ୁଛନ୍ତି, ଶିମିଳ ଭୂଲା କହୁଛି ମୋତେ ଉଣ୍—ଇଗ] [ଦ୍ର—ବହୁକାଳ ବ୍ୟବହାର ହେବା ପରେ ସୋଉ ହୋଇ ମୁଣ୍ଡିଟ ମାତ୍ର ଅବଶିଷ୍ଟ ରହିଥିବା ଶିଳଗା ଖଣ୍ଡକୁ 'ମୁଣ୍ଡି ଶିଳପୁଅ' କହନ୍ତି]

**ଶିଳପଟା ବିଭା**(ବାହା)-ଦେ. ବ-(ଷ ଶିଳପୁତ୍ର+ବିବାହ)-ବେଶ୍ୟାମାନଙ୍କ
Śilapatā bibhā(bāhā) ସମାଜରେ ପ୍ରଚଳିତ ନାମ ମାତ୍ର ବିବାହ
ନୋଡ଼ার সঙ্গে বিবাহ ପଦ୍ଧତି—A nominal form of marriage amongst the prostitutes in which a matured girl goes through the marriage rites by setting up a pestle stone as the bridegroom. [ଦ୍ର—ବେଶ୍ୟା ସମାଜରେ ବେଶ୍ୟା ବୃତ୍ତି କରିବା ପାଇଁ ଅଭିପ୍ରେତା ବେଶ୍ୟା ବାଳିକାମାନେ ପ୍ରାପ୍ତବୟସ୍କା ହେଲେ ସାମାଜିକ ଗୁହସ୍ଥର ବିବାହବନ୍ଧ ରକ୍ଷାର୍ଥ ଗୋଟିଏ ଶିଳପୁଅକୁ ବରରୂପେ କଳ୍ପନା କରି ବେଦୀରେ ଉପସ୍ଥାପିତ କରି ତା ସଙ୍ଗେ ଉକ୍ତ କନ୍ୟାର ବିବାହ ବିଧି ନାମମାତ୍ର ସମ୍ପନ୍ନ କରାଯାଏ ।]

**ଶିଲ ପାଇବା**—ପ୍ରାଦେ (ଗଡଜାତ) କ୍ରି—୧ । ବିଦାୟ ହେବାପାଇଁ
Śila pāibā ଅନୁମତି ପ୍ରାପ୍ତ ହେବା-1. To get permision (ଶିଲ ମିଳିବା—ବିଶେଷ୍ୟରୂପ) to depart. ୨ । ଛୁଟି ପାଇବା—2. To get leave. ୩ । କୌଣସି ଦ୍ରବ୍ୟର ବ୍ୟବହାର ପାଇଁ ରାଜାନୁମତି ପ୍ରାପ୍ତ ହେବା—3. To get a license for the use of a particular thing.

**ଶିଲବୃତ୍ତି**—ସଂ ବ କ୍ଷେତ୍ରରୁ ଧାନକଟାଳିମାନେ ଧାନ କାଟି ନେବା
Śila brutti ପରେ ଧାନ ଚଷାରେ ଲାଗି ରହିଥିବା କେଣ୍ଡା ମାନଙ୍କୁ ସଂଗ୍ରହ କରି ତଦ୍ଦ୍ୱାରା ଜୀବିକା ନିର୍ବାହ—Eking out of one's livelihood by plucking the ears of corn left on the stumps of the plants after harvesting. ସଂ ବିଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି) ଶିଲରତି—Śila rati (see)

**ଶିଲ ରତି**—ସଂ. ବିଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି)—ଶିଲବୃତ୍ତିଦ୍ୱାରା ଜୀବିକା
Śila rati ନିର୍ବାହକାରୀ—Eking out one's livelihood by plucking the ears left on the stumps after harvesting.

**ଶିଲ ଶିଲ(ଳ) ପୁଅ**—ଦେ. ବ.—(ଷ. ଶିଳା+ଶିଳାପୁତ୍ର)—୧ ।
Śilā śila(li)puā ଦଳା ହେବା କ୍ରମରେ ବ୍ୟବହୃତ ଭୂମିରେ
শিল নোড়া ପାତିତ ଶିଳାଖଣ୍ଡ ଓ ବାଟିବା କ୍ରମରେ ବ୍ୟବହୃତ ଲମ୍ବ
शिलाजोड़ा ଶୋଟ ଶିଳା ଖଣ୍ଡ—1. The pestling slab and the pestling stone. ୨ । (ଲକ୍ଷଣାର୍ଥ)—ଭାରି ବସ୍ତୁ ସମୂହ—2. (figurative) Heavy things. [ଉ—ଶିଳ ଶିଳପୁଅ ସଙ୍ଗେ ଉଡ଼ୁଛନ୍ତି, ଶିମିଳ ଭୂଲା କହୁଛି ମୋତେ ଉଣ୍—ଇଗ ।]

**ଶିଲ ହେବା**—ପ୍ରାଦେ (ଗଡଜାତ) କ୍ରି—ବିଦାୟ ଗ୍ରହଣ କରିବା; ବିଦାୟ
Śila hebā ହେବା; ଯିବାପାଇଁ ଅନୁମତି ପାଇବା—To take leave; to bid farewell; to get permission to depart.

**ଶିଳା**—ସଂ ବ—(ଶିଲ୍ ଧାତୁ+ସଜ୍ଞାର୍ଥେ; କରଣ+ଅ+ସ୍ତ୍ରୀ ଆ)—
Śilā ୧ । ପାଷାଣ; ପଥର—1. Stone. ୨ । ମନଃଶିଳା—2. Red arsenic. ୩ । କରକା; କୁଅପଥର—3. Hail stone. [ଉ—ଜଳର ସଙ୍ଗେ ଶିଳାପଡ଼ୁ, ଶବଦ ମେଘ ଗଡ଼ୁ ଘଡ଼ି । ଜଗନ୍ନାଥ. ଭାଗବତ । ] ୪ । ଦ୍ୱାରବନ୍ଧର ନିମ୍ନସ୍ଥ କାଠ; ଭିତ୍ତି ବନ୍ଧ—4. The lowest piece of wood in the door frame; the door-sill. ୫ । ସ୍ତମ୍ଭଶୀର୍ଷ (ଶବ୍ଦକୋଷ)—5. The capital of a column or a pillar. ୬ । ପଥରର ବଡ଼ ଖଣ୍ଡ—6. A block or slab of stone. ୭ । କର୍ପୂର (ହି. ଶ.)—7. Camphor. ୮ । ଶିଳାଜତୁ [ହି. ଶ]—8. Asphalt. ୯ । ଗେରୁ (ହି. ଶ)—9. Red ochre. ୧୦ । ନୀଳ ଗୁଳ୍ମ [ହି. ଶ]—10. Indigo plant. ୧୧ । ହରିତକୀ [ହି. ଶ]—11. Myrobalan. ୧୨ । ଗୋରୋଚନା [ହି. ଶ]—12. Yellow pigment obtained from dead cows. ୧୩ । ଦୁବ [ହି. ଶ]—13. The creeping grass. ୧୪ । ପଥରର ଡିମା [ହି. ଶ]—14. Peeble. ୧୫ । ଶିଳ ବୃତ୍ତି [ହି. ଶ] (ଦେଖ)—15. Śilābrutti (See). ଦେ. ବ—ଏକପ୍ରକାର ବନ୍ୟ କ୍ଷୁପ—A kind of wild plant. [ଦ୍ର—ଏହାର ପତ୍ରର ରସ ଓ ତେଲର କ୍ୱାଥ ତିକ୍ତମଧୁର, କଷାୟ ଓ ଶୀତଳ । ଏହା କଫ, ପିତ୍ତ, ଅତିସାର, ରକ୍ତପିତ୍ତ ଓ ବ୍ରଣ ହରଣ କରେ; ଧାତୁ ପୁଷ୍ଟି କରେ, କୁଷ୍ଠ, ରକ୍ତ ଦୋଷ, ବାତ ଓ ଅର୍ଶ ପ୍ରଶମନ କରେ । ଏହାର କ୍ଷାର ଲଗାଇଲେ ମୁହଁର ବ୍ରଣ ଭଲ ହୁଏ—ଦ୍ରବ୍ୟଗୁଣ କଳ୍ପଦ୍ରୁମ ।] ପ୍ରାଦେ—(ବାଲେଶ୍ୱର) ବ—ବୃହତ୍‌କାୟ ସାମୁଦ୍ରିକ ମତ୍ସ୍ୟ ବିଶେଷ-A kind of big sea fish.

**ଶିଳା'(ଲେ)ଇବା**—ଦେ. କ୍ରି—(ସଂ. ଶିଳରୁ ଉତ୍ପନ୍ନ ନାମ ଧାତୁ)-ଖୁର
Śilā(le)ibā ଆଦିର ଧାର କରିବା ପାଇଁ ଶିଳରେ ଘଷିବା;
শিলেঘষা पिजाना ପଜାଇବା—To whet razor etc on a whetstone.

**ଶିଳା କର୍ଣ୍ଣୀ**—ସ. ବ—ଶଲ୍ଲକୀ ବୃକ୍ଷ—
Śilākarṇṇi Boswellia Serrata (tree).

**ଶିଳା କୁଟ୍ଟକ**—ସ. ବ—(ଶିଳା+କୁଟ୍ଟ ଧାତୁ+କରଣ. ଅକ)—
Śilā kuṭṭaka ପାଷାଣଭେଦକ ଅସ୍ତ୍ର—An instrument for cutting stone.

ଶିଳା କୁସୁମ—ସଂ. ବି.—ଶିଳାଜତ୍ [ହି. ଶ]—
Śilākusuma Asphalt.

ଶିଳା କ୍ଷେପଣ—ସଂ.ବି—(୬ଷ୍ଠୀ ତତ୍) – ପଥର ଫୋପାଡ଼ିବା—
Śilā kshepana Throwing of stones.

ଶିଳା ଖଣ୍ଡ—ସ ବି—ପ୍ରସ୍ତର ଖଣ୍ଡ—
Śilā khanda A slab or piece of stone.

ଶିଳା ଘଷା ଦେ. ବିଣ – ପଥରରେ ଘଷା ହୋଇଥିବା (ବାଣ); ଶାଣିତ–
Śilāghashā ধাৰ কৰা; শানদেওয়া Whetted.
शिलमे घषाहुआ (ଦ୍ର—ଉଲ୍ଲ ଉର କଣ୍ଠୁଁ ଶିଳାଘଷା ବାଣ,
ବାହାଲେ ଖୁଣ୍ଟ ରଥୁଁ ପଡ଼ିଲେ ଋଷି ପ୍ରାଣ ।
କୃଷ୍ଣସିଂ. ମହାଭାରତ ।)

ଶିଳା ଚୟ – ସଂ. ବି—(୬ଷ୍ଠୀ ତତ୍)—ପର୍ବତ—
Śilāchaya Mountain.

ଶିଳା ଜଉ—ଦେ. ବି— (ସ ଶିଳ ଜତୁ) ଶିଳାଜତୁ (ଦେଖ)
Śilā jau शिलजित शिलाजित Śilājatu (See)

ଶିଳା ଜତୁ – ସଂ. ବି—ପାର୍ବତ୍ୟ ତରଳ ଉପଧାତୁ ବିଶେଷ—
Śilā jatu A medicinal gum got from stone; mummy. [ଦ୍ର—କେହି କେହି କହନ୍ତି ଯେ ଗ୍ରୀଷ୍ମ କାଳରେ ଉତ୍ତପ୍ତ ପାର୍ବତ୍ୟ ଧାତୁ ସମୂହରୁ ନିର୍ଯ୍ୟାସ ପରି ବାହାରେ । ହିମାଳୟର ପଥରମାନଙ୍କରୁ ଏହା ଝରେ ବୋଲି ଶୁଣାଯାଏ । କେହି କେହି କହନ୍ତି ଯେ, ଏହା ଜାନ୍ତବ ତୈଳ-ବିଶେଷ, ଚନ୍ଦ୍ର ଏହାର ଉତ୍ପତ୍ତି ଅଜ୍ଞାତ । ଶିଳାଜତୁ ଚାରିପ୍ରକାର ଯଥା—ସୌବର୍ଣ୍ଣ, ରାଜତ, ତାମ୍ରକ ଓ ଲୌହକ । ପ୍ରଥମ ଦେଖିବାକୁ ଜବା ଫୁଲ ପରି ଲାଲ, ଦ୍ୱିତୀୟ ପାଣ୍ଡୁର ବର୍ଣ୍ଣ, ତୃତୀୟ ମୟୂରକଣ୍ଠାଭ ଓ ଚତୁର୍ଥ ଶାଗୁଣା ପକ୍ଷୀ ପରି ଗାଢ଼ କୃଷ୍ଣ-ବର୍ଣ୍ଣ । ଏହା କଟୁ ଓ ତିକ୍ତ ରସ ବିଶିଷ୍ଟ, ଉଷ୍ଣ ବୀର୍ଯ୍ୟ, କଟୁ ବିପାକ, ରସାୟନ, ଯୋଗବାହୀ, କଫ, ମେଦକୃଚ୍ଛ୍ର, କ୍ଷୟ କାଶ, ଅର୍ଶଃ, ବାତ, ଉନ୍ମାଦ, କୁଷ୍ଠ ପ୍ରଭୃତି ରୋଗ ନିବାରକ । ସବୁଠାରୁ କୃଷ୍ଣ ଶିଳାଜତୁ ଉତ୍କୃଷ୍ଟ । ଏହା ବୈଦ୍ୟଶାସ୍ତ୍ରୋକ୍ତ ବିଧି ଅନୁସାରେ ଶୋଧନ କରି ଔଷଧରେ ବ୍ୟବହାର କରାଯାଏ—ଉତ୍କୃଷ୍ଟ ଦ୍ରବ୍ୟଗୁଣ ।

ଅନ୍ୟ ସଂ. ନାମ—ଶୈଳନିର୍ଯ୍ୟାସ, ଅଦ୍ରିଜ, ଗୈରେୟ, ଶୀତପୁଷ୍ପକ, ଦୈତ୍ୟଜ, ଅଶ୍ମଜ, ଅଶ୍ମଲାକ୍ଷା, ଶୈଳ ଧାତୁଜ, ଜତୁଅଶ୍ମକ, ଅଦ୍ରିଜତୁ, ଅର୍ଘ୍ୟ, ଶିଳାବ୍ୟାଧି, ଶିଳୋତ୍ଥ, ଶିଳାସ୍ୱେଦ, ଶୈଳ, ଗିରିଜ, ଶୈଳେୟ, ଶିଳାହ୍ୱ(ଜ) ଅଶ୍ମୋତ୍ଥ, ଶିଳାପଥ୍ୟକ, ଶିଳୋଦ୍ଭବ, ଶିଳେୟ, ଶୈଳଜ
ଫା. ମମ୍ଯାଇ
ସ ଶିଳାଜତ୍
शिलजातु शिलाजित

'ନାସ୍ତି ସୋ ରୋଗୋ ଭୁବି ମାନବାନାଂ
ଶିଳାଜତୁର୍ଯଂ ନ ଜୟେତ୍ ପ୍ରସହ୍ୟ' ଚରକ ।
'ନ ସୋଽସ୍ତି ରୋଗୋ ଯସ୍ମାପି ବଳବାନ୍ ଶିଳାଜତୁ—ସୁଶ୍ରୁତ ।
ଚରକ ଓ ସୁଶ୍ରୁତରେ ଲେଖା ଅଛି ଯେ, ପୃଥିବୀରେ ଏପରି କୌଣସି ରୋଗ ନାହିଁ, ଯାହା ଶିଳାଜତୁଦ୍ୱାରା ଭଲ ନ ହେବ । ଅନୁପାନ ବିଶେଷରେ ଏହା ଅଶ୍ମରୀ, ଜୀର୍ଣ୍ଣଜ୍ୱର, ମୂତ୍ର, ସ୍ନାୟବିକ ଦୌର୍ବଲ୍ୟ, ଅର୍ଶଃ, ଧାତୁକ୍ଷୟ, ଆମବାତ, ଗଣ୍ଠିବାତ, କୁଷ୍ଠ, ଅଗ୍ନିମାନ୍ଦ୍ୟ, ବାତାର୍ଶ, ଉତ୍କ ଶିର, କାଶ, ଯକ୍ଷ୍ମା, କୃମି, ଅପସ୍ମାର, ଗ୍ରହଣୀ, ପକ୍ଷାଘାତ, ପ୍ରଦର, ଶୋଥ, ପ୍ରଭୃତି ରୋଗରେ ଉପକାରୀ । ଏହା ଗୋଟିଏ ବିଶିଷ୍ଟ ରସାୟନ ଅଟେ । ଅଶ୍ମରୀ (ପଥୁରୀ; stone in the bladder) ରୋଗୀକୁ ଏହା ସେବନ କରାଇ ଦେଖାଯାଇ ଅଛି ଯେ, ମୂତ୍ରାଶୟରେ ଥିବା ପଥରର ରେଣୁମାନ ପ୍ରସ୍ରାବ ବାଟେ ବାହାରି ପଡ଼େ ଓ ଶ୍ଳେଷକୁ ପଥରର ଆକାର ସାନ ହୋଇ ଗଲେ ତାହା ମୂତ୍ରଦ୍ୱାର ବାଟେ ମଧ୍ୟ ବାହାରି ପଡ଼େ ।]

ଶିଳାଜିତ(ତ)—ଦେ. ବି— (ସ. ଶିଳାଜତୁ)—ଶିଳାଜତୁ (ଦେଖ)
Śilā jit(ta) Śilā jatu (See)

ଶିଳାଟକ—ସ ବି—(ଶିଳା+ଅଟ୍‌ଧାତୁ=ଗମନ କରିବା+କର୍ମ. ଅକ)
Śilātaka ୧। ଚନ୍ଦ୍ରଶାଳା—1. A room on the top of a house. ୨। ଗର୍ତ୍ତ—2. Hole. ୩। ଅଟ୍ଟାଳିକା—3 Building; palatial building. ୪। କୋଠା ଗୃହପାଖେ ଛାଡ଼ିଥିବା ପାଚେରି; ଉଚ୍ଚ ଦେବାଲ (ହି. ଶ)—4 Compound wall.

ଶିଳାଟିକା—ସ. ବି. (ବୈଦ୍ୟକ) – ରକ୍ତପୁନର୍ନବା; ଲାଲପୁରୁଣୀଶାଗ—
Śilātikā A sort of potherb; the red species of hogweed.
ଅନ୍ୟ ସ. ନାମ —ରକ୍ତପୁଷ୍ପା, ଶୋଥ ଘ୍ନୀ, ମଣ୍ଡଳପତ୍ରିକା, ବୃଷକେତୁ, କଠିଲ୍ଲକ ।

ଶିଳା ତଳ ସଂ ବି. (୬ଷ୍ଠୀ ତତ୍)—ପଥରର ଉପରଭାଗ
Śilā tala The surface of a stone.

ଶିଳାତ୍ମଜ—ସଂ ବି—(୬ଷ୍ଠୀ ତତ୍)—(ଯାହା ଶିଳାରୁ ଜନ୍ମେ) ଲୌହ—
Śilatmaja Iron.

ଶିଳାତ୍ମିକା - ସଂ ବି—ସୁନା ବା ରୂପା ତରଳାଇବା ପାଇଁ ବ୍ୟବହୃତ ପାତ୍ର; ମୂଷା
Śilātmikā କୋଇ (ହି ଶ)—Crucible; melting pot.

ଶିଳାଦ – ସଂ ବି. (ନାମ)—(ଶିଳା+ଅଦଧାତୁ=ଭକ୍ଷଣ କରିବା+କର୍ତ୍ତୃ ଅ; ଯେ ଶିଳାକୁ ଖାଉଥିଲେ)—୧ । ଶିବାନୁଚର ନନ୍ଦୀଙ୍କ ପିତା—1.The name of the father of Nandi, attendant of Śiba. ୨। ଜଣେ ପ୍ରାଚୀନ ଋଷି (ହି.ଶ)—2. Name of an ancient sage.

ଶିଳା ଦଦ୍ରୁ—ସଂ ବି.—ଶିଳାଜତୁ (ହି.ଶ)
Śilā dadru Asphalt.
[ଶିଳା ନିର୍ଯ୍ୟାସ, ଶିଳାହ୍ୱୟ—ଅନ୍ୟରୂପ]

ଶିଳାଦିତ୍ୟ – ସଂ ବି. (ନାମ)—ରାଜା ହର୍ଷବର୍ଦ୍ଧନ ବା ଶ୍ରୀହର୍ଷ । [ଦ୍ର—
Śilāditya ଏ ଉତ୍ତର ଭାରତରେ ଖ୍ରୀଷ୍ଟୀୟ ୭ମ ଶତାବ୍ଦୀର ପ୍ରଥମାର୍ଦ୍ଧ (୬୦୬-୬୪୭ ଖ୍ରୀଷ୍ଟାବ୍ଦ)ରେ ରାଜତ୍ୱ କରୁଥିଲେ । ସୁପ୍ରସିଦ୍ଧ କବି ବାଣଭଟ୍ଟ ଏହାଙ୍କ ଜୀବନର ଘଟନାସମୂହ ଅବଲମ୍ବନ କରି 'ହର୍ଷ ଚରିତ' ରଚନା କରିଥିଲେ । ଏ ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇଥିଲେ । ଏ ପ୍ରଜାଙ୍କର

ବର୍ଦ୍ଧନ ନାମକ ରାଜାଙ୍କର ଦ୍ୱିତୀୟ ପୁତ୍ର । ଏ ବିଦ୍ୱାନ୍ ଓ ବଦାନ୍ୟଶ୍ରେଷ୍ଠ ଥିଲେ । ଏହାଙ୍କ ପ୍ରସିଦ୍ଧ ନାଟକଦ୍ୱୟ ନାଗାନନ୍ଦ ଓ ରତ୍ନାବଳୀ । ଏହାଙ୍କ ରାଜତ୍ୱ କାଳରେ ପ୍ରସିଦ୍ଧ ଚୀନ୍ ପର୍ଯ୍ୟଟକ ହୁଏନ୍‌ସାଂ ଭାରତକୁ ଆସିଥିଲେ । ଏ ବୌଦ୍ଧ ଥିଲେ ମଧ୍ୟ ବ୍ରାହ୍ମଣମାନଙ୍କୁ ଓ ହିନ୍ଦୁ ଧର୍ମକୁ ସମ୍ମାନ କରୁଥିଲେ । ବୌଦ୍ଧଧର୍ମ ବିସ୍ତାର ପାଇଁ ଏ ପ୍ରଭୂତ ଅର୍ଥ ବ୍ୟୟ କରିଥିଲେ ଓ ପ୍ରତି ପଞ୍ଚମବର୍ଷରେ ରାଜକୋଷରେ ସଞ୍ଚିତ ଧନକୁ ସ୍ୱଧର୍ମୀ ଓ ବିଧର୍ମୀମାନଙ୍କୁ ଦାନ କରୁଥିଲେ । ଏ ୬୩୪ ଖ୍ରୀଷ୍ଟାବ୍ଦରେ ଗୋଟିଏ ବୌଦ୍ଧଧର୍ମସଭା ଆହ୍ୱାନ କରି ସଭାରେ ବୁଦ୍ଧଦେବ, ସୂର୍ଯ୍ୟଦେବ ଓ ଶିବଙ୍କ ମୂର୍ତ୍ତି ସ୍ଥାପନ କରିଥିଲେ ।]—The name of a king of Northern India in the 1st half of the 7th century. A. D.

ଶିଳା ଧାତୁ—ସଂ.ବି.—୧। ଖଡ଼ି; ପୀତ ଗୈରିକ—1. Yellow chalk.
Śilādhātu ୨। ସ୍ୱର୍ଣ୍ଣ ଗୈରିକ; ହଳଦିଆ ଗେରୁ—2. Yellow ochre. ୩। ଚିନି—3. White sugar.

ଶିଳା ନୀଡ଼—ସଂ ବି—(ବହୁବ୍ରୀହି)—ଗରୁଡ଼ (ହି.ଶ)
Śilā nīrda Garurda

ଶିଳା ପଟ୍ଟ—ସଂ ବି—୧। ମସଲା ଆଦି ବାଟିବା ଶିଳ—1. A slab of
Śilā patta stone on which articles are pounded into paste. ୨। ପଥର ଚଟାଣ—2. Stone pavement.

ଶିଳା ପୁତ୍ର—ସଂ ବି.—ଶିଳପୁଆ ଦେଖ
Śilā putra Śilapuā (See)

ଶିଳାପୁଷ୍ପ—ସଂ ବି.—୧। ଔଷଧ ବିଶେଷ। [ଦ୍ର—ଏହା ଶୀତଗୁଣଯୁକ୍ତ,
Śilā pushpa ହୃଦୟଗ୍ରାହୀ ଓ ଲଘୁ; ଏହା କଫ, ପିତ୍ତ, କଣ୍ଡୁ,
ଅନ୍ୟ ସଂ ନାମ—ଶୈଳେୟ, କୁଷ୍ଠ, ଅଶ୍ମରୀ, ଦାହ, ବିଷଦୋଷ
ବୃଦ୍ଧକାଳାନୁସାରୀୟକ । ଓ ଶୁକ୍ର ଦେଶରୁ ରକ୍ତସ୍ରାବ
[ଶିଳାପୁଷ୍ପକ—ଅନ୍ୟରୂପ] ନିବାରଣ କରେ ।]
1. A herb; Permalia Perlata; Permalia Perforatus. ୨। ଶିଳାଜତୁ (ହି.ଶ)—2 Mummy.

ଶିଲ୍(ଲେ)ବସ୍—ଦେ. ବି ( ଇଂ )—ପାଠ୍ୟ ନିର୍ଘଣ୍ଟ; ବିଦ୍ୟା ଯୁଗ
Śila(le)bas ବିଭିନ୍ନ ଶ୍ରେଣୀରେ ପଢ଼ାଇବା ପାଇଁ ଶିକ୍ଷା-
ସିଲାବସ ବିଭାଗର କର୍ତ୍ତୃପକ୍ଷଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ ପାଠ ସମ୍ବନ୍ଧୀୟ
ସିଲାବସ ସୂଚନା—Syllabus.

ଶିଳାବନ୍ଧ—ସଂ ବି—ପଥରରେ ତିଆରି ପଚରି ବା କୋଠା (ହି.ଶ)—
Śilābandha Stone masonry structure.

ଶିଳା ବୃଷ୍ଟି—ସଂ ବି—୧। କରକାବୃଷ୍ଟି; କରକାପାତ—1. Hailing;
Śilā brushti hail-storm. ୨। ଶତ୍ରୁ ଉପରକୁ ପଥର ଫିଙ୍ଗିବା [ହି. ଶ]—2. Flinging of stones on the yneme.

ଶିଳା ବେଶ୍ମ—ସଂ. ବି (ଶିଳାବେଶ୍ମନ୍; ୬ଷ୍ଠୀ. ତତ୍) —୧ । କନ୍ଦର,
Śilā beśma ଗୁମ୍ଫା—1. Cave. ୨। ପଥର କୋଠା—2. Stone building.

ଶିଳା ବ୍ୟାଧି—ସଂ. ବି—ଶିଳାଜତୁ—
Śilā byādhi Muminy (gum).
[ ଶିଳାସ୍ୱେଦ—ଅନ୍ୟରୂପ ]

ଶିଳାଭଞ୍ଜ ଦେବ—ଦେ. ବି (ନାମ)—ପ୍ରାଚୀନ ଭଞ୍ଜବଂଶର ପ୍ରଖ୍ୟାତ
Śilābhañja deba ରାଜା—A famous king of the ancient Bhañja dynasty. [ଦ୍ର—ଏ ପର୍ଯ୍ୟନ୍ତ ତିନି ଜଣ ଶିଳାଭଞ୍ଜ ଥିବାର ପ୍ରାଚୀନ ଲେଖମାନଙ୍କରୁ ପ୍ରମାଣ ମିଳଇଛି । ପ୍ରଥମ ଶିଳାଭଞ୍ଜ ଶତ୍ରୁଭଞ୍ଜଙ୍କ ପିତା ଓ ରଣଭଞ୍ଜଙ୍କର ପିତାମହ ଥିଲେ । ସେ ଖ୍ରୀ. ସପ୍ତମ ଶତାବ୍ଦୀର ଶେଷ ଭାଗରେ ଉଭୟ ଖିଞ୍ଜିଳମଣ୍ଡଳ ( ବା ବୌଦ, ଦଶପଲ୍ଲା, ଗମ୍ଭସର)କୁ ଶାସନ କରୁଥିଲେ । ଦ୍ୱିତୀୟ ଶିଳାଭଞ୍ଜ ବା ସେତ୍ତା ସତ୍ରଭଞ୍ଜଙ୍କର ପୁତ୍ର ଓ ବିଦ୍ୟାଧର ଭଞ୍ଜଙ୍କ ପୌତ୍ର ଥିଲେ । ସେ ମଧ୍ୟ ଉଭୟ ଖିଞ୍ଜିଳିର ଅଧୀଶ୍ୱର ଥିଲେ । ତୃତୀୟ ଶିଳାଭଞ୍ଜ, ବୌଦ ରାଜବଂଶର ପ୍ରଥମ ରାଜା ଥିବା ଜଣାଯାଏ । କେଦାରନାଥ ମହାପାତ୍ର ]

ଶିଳାଭବ—ସଂ. ବି—ଶୈଳେୟ (ଦେଖ)
Śilābhaba Śaileya. (See)

ଶିଳାମୟ—ସଂ ବି—ପ୍ରସ୍ତରମୟ; ପ୍ରସ୍ତରନିର୍ମିତ—
Śilāmaya Stony; made of stone.
ସଂ. ବି (ଶିଳା+ଅମୟ)—ଶିଳାଜତୁ—Mummy(gum).

ଶିଳା ମଳ—ସଂ. ବି—ଶିଳାଜତୁ [ହି. ଶ]
Śilā mala Mummy (gum).
(ଶିଳାଉଷ୍ଣୀନ—ଅନ୍ୟରୂପ)

ଶିଳାମୁଣ୍ଡି—ପ୍ରାଦେ (ବାଲେଶ୍ୱର) ବି—ଛୋଟ ଛୋଟ ଶିଳାମାଛ—
Śilāmundi Small Śilā fish.

ଶିଳାୟୁ—ସଂ. ବି—ଗଳରୋଗ ବିଶେଷ—A kind of neck
Śilāyu disease. [ଦ୍ର—ଏଥିରେ କଫ ଓ ରକ୍ତ କୁପିତ ହେବାରୁ ଗଳାରେ ଅଁଳା କୋଳପରି ପୀଡ଼ାଦାୟକ ଗଣ୍ଠି ଉତ୍ପନ୍ନ ହୁଏ । ଏଥିପୋଇଁ ଅନ୍ନ ଗଳାରେ ଅଟକେ । ହି. ଶ]

ଶିଳା ରମ୍ଭା—ସଂ. ବି (ଶିଳାପରି କଠିନ ରମ୍ଭା)—କାଷ୍ଠ କଦଳୀ—
Śilā rambhā A species of hard plantain.

ଶିଳାରସ—ଦେ. ବି (ସଂ. ଶିହ୍ଳକ; ଫା. ସଲାରସ) —ବିଦେଶାଗତ ଗନ୍ଧ
Śilārasa ଦ୍ରବ୍ୟ ବିଶେଷ; ଶିହ୍ଳକ—Liquid amber;
ଅନ୍ୟ ସଂ. ନାମ—ତୁରୁଷ୍କ, କପିତୈଳ, liquid; storax;
କପିନାଚକ ଓ ଯାବକ । 'ଶିଳାରସ benzoin [ ଦ୍ର—ଏହା
ଫା. ସଲାରସ ଶିଳାରସ ଏକପ୍ରକାର ବୃକ୍ଷ ନିର୍ଯ୍ୟାସ
ଅ. ଉସାର କମିସ୍ୱା, ମୋଅଇଏ ସାଇଲା] ଓ ମହାଭୂତରେ ଖନିଜ ଦ୍ରବ୍ୟ; କେହି କେହି ଏହାକୁ ଲୋବାନ [Olibanum] ବୋଲି କହନ୍ତି । ଏହା କଟୁମଧୁର ରସ, ଉଷ୍ଣବୀର୍ଯ୍ୟ, ସ୍ନିଗ୍ଧ, କାନ୍ତିବର୍ଦ୍ଧକ, ପୁଷ୍ଟିକାରକ, ଶୁକ୍ରଜନକ, କଣ୍ଠଶୋଧକ ଓ କୁଷ୍ଠ, ଦାହ, ଘର୍ମ, କୁଷ୍ଠ ଓ ଗ୍ରହଦୋଷନାଶକ । ଏହା ମଦ୍ୟ ସହିତ ଭକ୍ଷିତ ହେଲେ ଶୁଦ୍ଧ ହୁଏ ।

ଏହା ଆସାମ, ବ୍ରହ୍ମଦେଶ, ଯବଦ୍ୱୀପ ପ୍ରଭୃତିର ବୃକ୍ଷବିଶେଷ [Altinga Excelsia] ର ସୁଗନ୍ଧ ତେଲତର ନିର୍ଯ୍ୟାସ

Burmese storax; ପ୍ରକୃତ ଶିଳାରସ ଭୁରସ୍କ ଦେଶରୁ ଅସେ Liquid storax or liquid amber. ବ୍ରହ୍ମ ଦେଶରେ ଏହାର ନାମ ନନ-ଡ-ୟୋକ; ଯବ ଦ୍ୱୀପରେ ନାମ ରସମାଲା; ଏ ବୃକ୍ଷ ୬୦ ଠାରୁ ୧୦୦ ଫୁଟ ପର୍ଯ୍ୟନ୍ତ ଉଚ୍ଚ ହୁଏ; ଏହାର ପତ୍ର ୪/୫ ଇଞ୍ଚ ଲମ୍ବା, ଗୋଲ, । ଶାଖା ମୂଳରେ ଫୁଲ ପେନ୍ଥା ପେନ୍ଥା ହୋଇ ଫୁଟେ । ଫଳ ଗୋଲାକାର ଓ ଶଙ୍କାଧିକ ।]

ଶିଲା(ଲ)ଳ—ସଂ. ବି—୧ । ନୃତ୍ୟଗୀତାଦି ଶାସ୍ତ୍ର—1. The science
Śila(lā)la of music and dancing. ୨ । ନୃତ୍ୟାଦି ଶାସ୍ତ୍ର ପ୍ରଣେତା ମୁନିବିଶେଷ—Name of a sage, the author of a treatise on dancing and music.

ଶିଳା ଲିପି(ଲେଖ)—ସଂ. ବି (ମ. ପ. ଲୋ; ଶିଳାରେ ଖୋଦିତ ଲିପି) -
Śilā lipi(lekha) ପଥରରେ ଖୋଳା ହୋଇଥିବା ଅକ୍ଷରମାଳା- Stone inscriptions; inscription on stone.

ଶିଳା ଶସ୍ତ୍ର—ସଂ. ବି—ପଥରନିର୍ମିତ ହତିଆର—
Śilā śastra Stone implements,

ଶିଳାସନ—ସଂ. ବି—୧ । ଶୈଳେୟ (ଦେଖ)—Saileya (See).
Śilāsana ୨ । ଶିଳାଜତୁ—2. Asphalt. ୩ । ପଥର-ନିର୍ମିତ ଆସନ—3. A seat made of stone.

ଶିଳା ସାର—ସଂ. ବି (୬ଷ୍ଠୀ ତତ୍ )—ଲୌହ—
Śilā sāra Iron.

ଶିଲାସ୍ଥି -ସଂ: ବି—ମସ୍ତକଧାରକ ଅସ୍ଥି; ଯେଉଁ ଅସ୍ଥିଖଣ୍ଡ ଉପରେ
Śilāsthi ମସ୍ତକ ଅବସ୍ଥିତ—The bone supporting the head; petrous bone; cervical bone; cervical vertebrae; the upermost or the 1st cervical vertibra; atlas.

ଶିଳା ହରି—ସଂ. ବି—ଶାଳଗ୍ରାମ (ଦେଖ)
Śilā hari Śālagrāma (See)

ଶିଳାହାରୀ—ସଂ. ବିଣ. ପୁଂ—ଶିଳ ରତି (ଦେଖ)
Śilahārī Śila rati [See]

ଶିଳାହ୍ୱ—ସଂ. ବି—ଶିଳାଜତୁ (ହି. ଶ)
Śilāhwa Mummy.

ଶିଳି(ଲୀ)—ସଂ. ବି ( ଶିଳ+କର୍ମ. ଇ, ଈ )—୧ । ଛତ୍ରକ ପୁଷ୍ପ—
Śili[lī] 1. Mushroom. ୨ । ଶଲ୍ୟ—2. Arrow head. ୩ । ଚୌକାଠର ନିମ୍ନସ୍ଥ କାଠ- 3. Door sill. ୪ । ଭୂର୍ଜ ବୃକ୍ଷ— 4. The bireh tree. ୫ । ଭୂର୍ଜପତ୍ର (ହି. ଶ) 5. The leaves of the birch tree. ଗ୍ରାଦେ (ସମ୍ବଲପୁର) ବି—୧ । ଶଗଡ଼ ଚକ—1. Cart wheel ଗ୍ରାଦେ ( ବୌଦ୍ଧ ) ବି—ଚକ—Wheel.

ଶିଲିଙ୍ଗ୍—ବୈଦେ. ବି ( ଇଂ. ଶିଲିଙ୍ଗ୍ )—ଇଂରାଜଦେଶ ପ୍ରଚଳିତ
Śiling ରୌପ୍ୟମୁଦ୍ରା ବିଶେଷ—Shilling. ( ଏହାର ମୂଲ୍ୟ
शिलिंग ଭାରତରେ ବର୍ତ୍ତମାନ ପ୍ରାୟ ବାରଅଣା ) [ ଦ୍ର—୧
শিলিং ଶିଲିଙ୍ଗ୍—୧୨ ପେନ୍ସ୍ (ପେନନୀର ବହୁବଚନ ପେନ୍ସ୍) (ଶିଲ୍ —ଅଶୁଦ୍ଧରୂପ) ୨୦ ଶିଲିଙ୍ଗ୍—୧ ପାଉଣ୍ଡ, ୨୧ ଶିଲିଙ୍ଗ୍—୧ ଗିନି ( ସୁନା ମୋହର ) ।]

ଶିଲିକ୍ ( ଇତ୍ୟାଦି )—ବୈଦେ ବି ଓ ବିଣ ( ଇଂ. ଶିଲ୍କ )—ଶିଲ୍କ
Śilik ( etc ) ଇତ୍ୟାଦି ( ଦେଖ)—Śilk etc ( See ) ( ଶିଲ୍କ—ଅନ୍ୟରୂପ )

ଶିଲିନ୍ଦ (ନ୍ଧ)—ସଂ. ବି—ମତ୍ସ୍ୟ ବିଶେଷ; ଜଳଙ୍ଗ ମାଛ—A species
Śilinda(ndha) of fish; Silundia Gangetica. [ ଦ୍ର—ଏହା ଅଶଳ୍କ, ଶ୍ମଶ୍ରୁବିଶିଷ୍ଟ ବର୍ଦ୍ଧମଠ ମାଛ । ଏହା ଅଳ୍ପ ମାଛ ପରି ନଈରେ ଥାଏ; ଲମ୍ବରେ ୩/୪ ହାତ ବଢ଼େ; ଆଖି ଛୋଟ; ପାଣିରୁ ବାହାରକୁ ଆଣିଲେ ଶୀଘ୍ର ମରେ ନାହିଁ । ଏହା ଶ୍ଳେଷ୍ମକର, ମଧୁର ବିପାକ, ମଧୁର ରସ, ବଳବର୍ଦ୍ଧକ, ଗୁରୁ, ବାତ ପିତ୍ତନାଶକ, ହୃଦ୍ୟ ଓ ଆମବାତ ଅତି ବୃଦ୍ଧିକାରକ । ]

ଶିଲିନ୍ଧା —ଦେ. ବି—ପାତାଳ ଗରୁଡ଼ ଗଛ—A plant; Celulus
Śilindā Villosus. [ ଦ୍ର—ଏହା ଶୁକ୍ର ବର୍ଦ୍ଧକ ଏବଂ କଫ ଓ ବାୟୁନାଶକ । ]

ଶିଲିନ୍ଧ୍ର —ସ.ବି (ଶିଳ ଭେକ; ବେଙ୍ଗ+ଧୃ ଧାତୁ+କର୍ମ ଅ)—ଶିଲୀନ୍ଧ୍ର
Śilindhra ( ଦେଖ )—Śilindhra (See)

ଶିଲିପ୍—ବୈଦେ. ବି ( ଇଂ. ସ୍ଲିପ୍ )—ସ୍ଲିପ୍ (ଦେଖ)—
Śilip स्लिप শ্লিপ Slip (See)

ଶିଲିପ (ଇତ୍ୟାଦି)—ଗ୍ରା. ବି ( ସ. ଶିଳ୍ପର ଅଶୁଦ୍ଧ ଉଚ୍ଚାରଣ ) - ଶିଳ୍ପ
Śilipa (etc) ଇତ୍ୟାଦି ( ଦେଖ )—Śilpa etc ( See )
शिल्प শিল্প [ ଉ—ମୁକୁତା ଦାମେ ଚନ୍ଦ୍ରାତପ, ଯେ ବିଶ୍ୱକର୍ମାର ଶିଲିପ- ଜଗନ୍ନାଥ. ଭାଗବତ ।]

ଶିଲିପଟ୍—ବୈଦେ. ବି ( ଇଂ. ସ୍ଲିପର୍ )—ସ୍ଲିପଟ୍ ( ଦେଖ )—
Śilipaṭ Śilipaṭ (See)
[ଶିଲିପଟା(ଟୀ), ଶିଲିପଟିଆ—ବିଣ]

ଶିଲିପର୍—ବୈଦେ· ବି ( ଇଂ. ସ୍ଲିପର )—ସ୍ଲିପର୍ ( ଦେଖ )
Śilipar Silipar (See)

ଶିଲିପା —ଦେ· ବି (ସଂ. ଶିଳାପୁତ୍ର)—ହଳଦି ଆଦି ବାଟିବାର ପ୍ରସ୍ତର —
Śilipā The pestle of stone with which tur-
নোড়ী लोढ़ा meric etc are pestled.

ଶିଲିପି—ଗ୍ରା· ବି ( ସଂ. ଶିଳ୍ପୀ )—ଶିଳ୍ପୀ ( ଦେଖ )—Śilpī (See)
Śilipi · शिल्पी সিল্পী [ ଉ—ଶିଲିପିକୁ ଗୃହ ମଣ୍ଡପ ଭାର ଦେଇ—କୃଷ୍ଣସିଂହ. ମହାଭାରତ । ]

ଶିଳୀ—ସଂ- ବି ( ଶିଳ+ଈ )—୧ । ଛତ୍ରକପୁଷ୍ପ; ଛତୁ—1. Mushroom; toadstool. ୨ । ଶଲ୍ୟ—2 Arrow-
Śilī head. ୩ । ଚଉକାଠ—3. Door sill. ୪ । କେଞ୍ଚୁଆ— 4. Earthworm. ୫ । ବେଙ୍ଗୁଲି—5. Female frog. ୬ । ଭୂର୍ଜପତ୍ର—6. Birch leaf. ୭ । ବାଣ ( ହି· ଶ )—7. Arrow. ୮ । ଭାଲ; ବର୍ଚ୍ଛା (ହି ଶ) —8. Speer.

ଶିଲୀନ୍ଦ୍ର—ଦେ. ବି ( ସ. ଶିଲୀନ୍ଧ୍ର )—ଛତୁ—Mushroom; toad
Śilindra stool. ( ଯଥା—ତାଙ୍କ ତୁଳନାରେ ଅନ ଭବ ଛନ୍ଦ ପାଶେ ଶିଲୀନ୍ଦ୍ର ସମାନ—ଚନ୍ଦ୍ରାମଣି. ବନମାଳତୀ )

ଶିଲୀନ୍ଧ—ସଂ. ବି ( ଅଲୁକ୍ ସମାସ=ଶିଲୀଂ+ଧୃ ଧାତୁ+ଅ )—
Śilindhra ୧ । ଶିଲନ୍ଦ ( ଦେଖ )—1. Śilinda (See) ( ଶିଲୀନ୍ଧ୍ରକ—ଅନ୍ୟରୂପ ) ୨ । କଦଳୀ ଗୁଳ୍ମ; ଭୂମି କଦଳୀ—2. A sort of arum; Arum Campanulatam. ୩ । କଦଳୀ ପୁଷ୍ପ; ଭଣ୍ଡା—3. The flowers of plantain. ୪ । ଛତ୍ରାକ; ଛତୁ; ପାଳଛତୁ ବା ଭୂଇଁ ଛତୁ—4. Mushroom; fungus; Agaricus Compestris. ୫ । ଗୋବର ଛତୁ—5. Mushroom coming out of cowdung pit. (ଯଥା—ସ୍ଥାବକ, କଟକ ଛାଟେଙ୍କ ଅଟନ୍ତ ନ ଗନ୍ତୁ କର୍ଣ୍ଣିରୁ ଗଳ, ଅବନୀରେ ପଡ଼ ଶିଲୀନ୍ଧ୍ର କୁସୁମ ଫୁଟିଲ ପଦ୍ମଏ ଝଳ—ଉପେନ୍ଦ୍ରଭଞ୍ଜ. ସଙ୍ଗୀତ) [ଦ୍ର—ଏହାର ଅନ୍ୟ ନାମ ଭୂମିଛତ୍ର, ଭୂଛତ୍ରାକ, ଛତ୍ରିକା । କ୍ଷେତ୍ରଭୂମି, ଗୋମୟ, ସଢ଼ା କାଠ, ସଢ଼ା ପାଳ, ଉଇ ହୁଙ୍କା ଇତ୍ୟାଦରେ ନାନା ପ୍ରକାରର ଓ ବର୍ଣ୍ଣର ଓ ଆକୃତିର ଛତୁ ହୁଏ । କେତେକ ପ୍ରକାରର ଛତୁ (ହୁଙ୍କା ଛତୁ, ଭୂଇଁ ଛତୁ)କୁ ଲୋକେ ରାନ୍ଧି କରି ଖାଆନ୍ତି । ଅନ୍ୟ ପ୍ରକାର ଛତୁ ( ଗୋବର ଛତୁ )ମାନ ବିଷାକ୍ତ । ] ୬ । କରକା—6. Hailstone. ୭ । କାଷ୍ଠ କଦଳୀ ( ପ୍ର. ଶ )—7. A kind of hard plantain.

ଶିଲୀନ୍ଧ୍ରା—ସଂ. ବି ( ଶିଲୀନ୍ଧ୍ର+ଆ )—୧ । ପକ୍ଷୀ ବିଶେଷ—
Śilindhrā 1. A sort of famale bird. ୨ । କଦଳୀ; ଖାଦ୍ୟକନ୍ଦ ବିଶେଷ—2. A species of arum. ୩ । ମୃତ୍ତିକା—3. Earth; soil. ୪ । ବେଙ୍ଗୀ—4. The female frog.

ଶିଲୀନ୍ଧ୍ରୀ—ସ. ବି—୧ । ଗଣ୍ଡୂପଦ; ଜିଅନାଡ଼; କେଞ୍ଚୁଅ (ପ୍ର. ଶ.)—
Śilindhri 1. Earth worm. ୨ । ମାଟି (ପ୍ର. ଶ)—2. Soil. ୩ । ଏକ ପ୍ରକାର ପକ୍ଷୀ (ପ୍ର. ଶ)—3. A kind of bird. ୪ । ବେଙ୍ଗୀ—4. A female frog.

ଶିଲୀ ପଦ—ସ. ବି—(ଶିଲୀ+ପଦ)—ପାଦସ୍ଫୀତି; ଗୋଦର; ଶ୍ଳୀପଦ—
Śilipada Elephantiasis of the legs. (ଅନ୍ୟ—ସ. ନାମ—ପଦ ବଲ୍ମୀକ, ପାଦବଲ୍ମୀକ, ଶ୍ଳୀପଦ)

ଶିଲୀ ମୁଖ—ସ.ବି[ବହୁବ୍ରୀହି; ଶିଲୀ (ଶଲ୍ୟ) ଅଛି ମୁଖରେ ଯାହାର]—
Śili mukha ୧ । ବାଣ; ଶର—1. Arrow; dart. ୨ । ଭ୍ରମର—2. Black bee. [ ଯଥା—ଶିଲୀମୁଖ ଗୁଣେ ଶିଲୀମୁଖ ଥୋଇଲା, ଭଜନ୍ତି ଅଳକ ସେ ଭ୍ରମର ହୋଇଲା ଉପେନ୍ଦ୍ର. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।] ୩ । ଯୁଦ୍ଧ (ପ୍ର. ଶ)—3. Fight. ୪ । ମୂର୍ଖ ବ୍ୟକ୍ତି; ବେକୁବ୍ (ପ୍ର. ଶ)—4. Foolish person; dunce.

ଶିଲୁ—ସ. ବି—୧ । ଗରଭଣା; ଶ୍ଳେଷ୍ମାନ୍ତକ; ବହୁବାର ବୃକ୍ଷ—
Śilu 1. Cordia Myxa tree. ୨ । ଓଉ—2. Dillenia Speciosa. (tree)

ଶିଳୁ(ଳୂ)ଷ—ସ. ବି—(ଶିଲ୍ ଧାତୁ=ଅଭ୍ୟାସ କରିବା+କର୍ତ୍ତୃ. ଉଷ)
Śilu(lū)sha ୧ । ଗନ୍ଧର୍ବ ସ୍ଥାନ ଶୈଳୂଷଙ୍କ ପିତା, ନାଟ୍ୟାଚାର୍ଯ୍ୟ ଋଷିବିଶେଷ—1. Name of a celebrated music master, said to be a Gandharba. ୨ । ବେଲଗଛ (ପ୍ର ଶ)—2. Marmalos tree. ୩ । ଶୈଳୂଷ (ଦେଖ)—3. Sailusha (See)

ଶିଳେୟ—ସ. ବିଣ—(ଶିଳା+ଏୟ)—୧ । ଶିଳା ସମ୍ବନ୍ଧୀୟ—
Śileya 1. Relating to stone. ୨ । ଶିଳା ପରି ଟାଣୁଆ—2. Hard as stone. ସ. ବି—ଶିଳାଜତୁ—Mummy (gum).

ଶିଳୋଚ୍ଚୟ—ସ. ବି—(ଷଷ୍ଠୀ ତତ୍; ଶିଳାର ଉଚ୍ଚୟ=ରାଶି)—୧ ।
Śilochchaya ପର୍ବତ—1. Mountain ୨ । ଗିରିଶୃଙ୍ଗ; ପର୍ବତ ଚୂଡ଼ା—2. The summit of a mountain.

ଶିଳୋଞ୍ଛ—ସ. ବି—(ଶିଳ+ଉଞ୍ଛ)—ଶିଳବୃତ୍ତି ଓ ଉଞ୍ଛବୃତ୍ତି; କ୍ଷେତରୁ
Śilonchha ଶସ୍ୟ ସଂଗୃହୀତ ହେବା ପରେ ତହିଁରୁ ଶସ୍ୟର ଅବଶିଷ୍ଟ ଓ ଶସ୍ୟ କେଣାର ଆହରଣ—The collecting of the grains and the ears of corn left in field after harvesting. [ଯଥା—ଧାନ୍ୟ ଯାଉଛି ପ୍ରତିଦିନ, ସେ ଅବା ବୃତ୍ତି ଶିଳୋଞ୍ଛନ । ଜଗନ୍ନାଥ. ଭାଗବତ ।]

ଶିଳୋତ୍ଥ—ସ. ବି—(ଶିଳା=ପ୍ରସ୍ତର+ଉତ୍+ସ୍ଥା ଧାତୁ+କର୍ତ୍ତୃ. ଅ)
Śilottha ୧ । ଶିଳାଜତୁ (ଦେଖ)—1. Mummy (gum). ୨ । ଶୈଳେୟ (ଦେଖ)—2. Saileya (See)

ଶିଳୌକାଃ—ସ. ବି—(ଶିଳୌକସ୍ ଶବ୍ଦ ୧ମା ୧ବ; ବହୁବ୍ରୀହି; ଶିଳା
Śilaukāḥ ପର୍ବତ ହୋଇଅଛି ଓକଃ=ବାସସ୍ଥାନ ଯାହାର)—ପକ୍ଷୀରାଜ ଗରୁଡ଼—Garurda, the mythological king of birds. ସଂ. ବିଣ—ପାର୍ବତ୍ୟ; ପର୍ବତବାସୀ—Living in the mountain.

ଶିଲ୍ଡ—ବୈଦେ. ବି—(ଇଂ. ଶିଲ୍ଡ)—ସିଲ୍ଡ୍ (ଦେଖ)
Sild Sil-d (see)

ଶିଳ୍ପ—ସଂ. ବି (ଶିଲ୍ ଧାତୁ=ନିପୁଣ ହେବା+ଉଣା. ପ)—୧ । ବସ୍ତୁ-
Śilpa ନିର୍ମାଣ କାର୍ଯ୍ୟ; କାରୁକର୍ମ; କାରିଗରୀ—1. Arts; technique. [ ଯଥା—ଗୃହ ନିର୍ମାଣ, ବସ୍ତ୍ରବୟନ, ଅଲଙ୍କାର ଗଢ଼ିବା, ପଥର ଓ କାଠ ଆଦିରେ ଖୋଦିବା, ମୂର୍ତ୍ତିଗଠନ ।] ୨ । ବେଣୁ ବୀଣାଦି ବାଦ୍ୟ; ନୃତ୍ୟ ଗୀତ ବାଦ୍ୟାଦି—2. Dancing, singing etc; music. ୩ । ଚିତ୍ରବିଦ୍ୟାଦି; କଳାବିଦ୍ୟାର ବ୍ୟବସାୟ—3. Fine arts such as, painting, drawing. ୪ । ଶିଳ୍ପକାରୀ

ଦ୍ରବ୍ୟ—4 The product of arts or manufacture or industy.

[ଦ୍ର—ଶିଳ୍ପ କଳାବିଦ୍ୟାର ଅନ୍ତର୍ଗତ । ଶିଳ୍ପ ନାନାପ୍ରକାର ଯଥା—ବସ୍ତ୍ରଶିଳ୍ପ, ଗୃହଶିଳ୍ପ, ସ୍ଥାପତ୍ୟଶିଳ୍ପ ଇତ୍ୟାଦି । କଳାବିଦ୍ୟା ୬୪ ପ୍ରକାର । ଶ୍ରୀମଦ୍ ଭଗବଦ୍‌ଗୀତାର ଟୀକାକାର ଶ୍ରୀଧର ସ୍ୱାମୀ ଶୈବତନ୍ତ୍ରୋକ୍ତ ୬୪ କଳାର ନାମ ଦେଇଛନ୍ତି; କଳା ବିଦ୍ୟା ଶିକ୍ଷା କଲେ ରାଜା ଅମର ଶକ୍ତି ଲାଭ କରନ୍ତି । 'ସକଳ କଳା ପାରଂଗତେ ହେମନ୍ତଶକ୍ତିର୍ନାମ ରାଜା ।' ୬୪କଳାର ନାମ—୧ । ଗୀତ, ୨ । ବାଦ୍ୟ, ୩ । ନୃତ୍ୟନାଟ୍ୟ, ୪ । ଆଲେଖ୍ୟ, ୫ । ବିଶେଷକଚ୍ଛେଦ୍ୟ, (ତିଳକଲେଖା) ୬ । ତଣ୍ଡୁଳ କୁସୁମବଳି ବିକାର, ୭ । ପୁଷ୍ପାସ୍ତରଣ, ୮ । ଦଶନବସନାଙ୍ଗରାଗ, ୯ । ମଣିଭୂମିକା କର୍ମ, ୧୦ । ଶୟନ ରଚନ, ୧୧ । ଉଦକ ବାଦ୍ୟ, ୧୨ । ଉଦକ ଘାତ, ୧୩ । ଚିତ୍ରଯୋଗ, ୧୪ । ମାଲ୍ୟ ଗ୍ରଥନ ବିକଳ୍ପ, ୧୫ । କେଶଶେଖରାପୀଡ଼ ଯୋଜନ, ୧୬ । ନେପଥ୍ୟ ଯୋଗ, ୧୭ । କର୍ଣ୍ଣପତ୍ର ଭଙ୍ଗ ୧୮ । ଗନ୍ଧଯୋଜନ, ୧୯ । ଭୂଷଣ ଯୋଜନ, ୨୦ । ଇନ୍ଦ୍ରଜାଲ, ୨୧ । କୌଚୁମାର ଯୋଗ, ୨୨ । ହସ୍ତ ଲାଘବ, ୨୩ । ଶାକବ୍ୟଞ୍ଜନ ଭକ୍ଷ୍ୟ ବିକାର କ୍ରିୟା, ୨୪ । ପ୍ରପାନକରସ ରାଗାସବ ଯୋଜନ, ୨୫ । ସୂଚୀକର୍ମ, ୨୬ । ସୂତ୍ରକ୍ରୀଡ଼ା, ୨୭ । ପ୍ରହେଳିକା, ୨୮ । ପ୍ରତିମାଳା ବା ଶ୍ଳୋକାନ୍ତ, ୨୯ । ଦୁର୍ବାଚକ ଯୋଗ, ୩୦ । ପୁସ୍ତକବାଚନ, ୩୧ । ନାଟକାଖ୍ୟାୟିକା ଦର୍ଶନ, ୩୨ । କାବ୍ୟ ସମସ୍ୟା ପୂରଣ, ୩୩ । ପଟ୍ଟିକା ବେତ୍ରବାନ ବିକଳ୍ପ, ୩୪ । ତର୍କୁକର୍ମ, ୩୫ । ତକ୍ଷଣ ବା ବଢ଼େଇକାମ, ୩୬ । ବାସ୍ତୁବିଦ୍ୟା ୩୭ । ରୂପ୍ୟରତ୍ନ ପରୀକ୍ଷା, ୩୮ । ଧାତୁବାଦ; ୩୯ । ମଣିରାଗ, ଜ୍ଞାନ, ୪୦ । ଆକର ଜ୍ଞାନ, ୪୧ । ବୃକ୍ଷାୟୁର୍ବେଦ ଯୋଗ, ୪୨ । ମେଷ କୁକ୍କୁଟ ଲାବକ ଯୁଦ୍ଧ ବିଧି, ୪୩ । ଶୁକ ସାରିକାପାଳନ, ୪୪ । ଉତ୍ସାଦନ, ୪୫ । କେଶମାର୍ଜନ କୌଶଳ, ୪୬ । ଅକ୍ଷର ମୁଷ୍ଟିକା କଥନ, ୪୭ । ମ୍ଳେଚ୍ଛ ଭାଷାଜ୍ଞାନ, ୪୮ । ଦେଶଭାଷା ଜ୍ଞାନ, ୪୯ । ପୁଷ୍ପ ଶାକଟିକା ନିର୍ମାଣ ଜ୍ଞାନ, ୫୦ । ଯନ୍ତ୍ରମାତୃକା, ୫୧ । ମାନସୀ କାବ୍ୟକ୍ରିୟା, ୫୨ । କ୍ରିୟାବିକଳ୍ପ, ୫୩ । ଛଳିତକ ଯୋଗ, ୫୪ । ଅଭିଧାନ କୋଷ ଛନ୍ଦୋଜ୍ଞାନ, ୫୫ । ବସ୍ତ୍ର ଗୋପନ, ୫୬ । ଦ୍ୟୂତ, ୫୭ । ଆକର୍ଷ କ୍ରୀଡ଼ା, ୫୮ । ବାଳ କ୍ରୀଡ଼ନକ, ୫୯ । ଶୃଙ୍ଗାର ରଚନ, ୬୦ । ବୈଜୟିକୀ ବିଦ୍ୟାଜ୍ଞାନ, ୬୧ । ବୈତାଳିକ ବିଦ୍ୟା, ୬୨ । ଯନ୍ତ୍ର ନିର୍ମାଣ, ୬୩ । ଶକୁନଜ୍ଞାନ, ୬୪ । ଧାରଣା ଶକ୍ତି । ପ୍ରତ୍ୟେକ କଳାର ସମ୍ୟକ୍ ଆଲୋଚନା ଏଠାରେ କରିବା ସମ୍ଭବ ନୁହେ । ନାନା ଗ୍ରନ୍ଥୋକ୍ତ କେତେକ କଳା ବିଦ୍ୟାର ଏ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ପରିଚୟ ମଧ୍ୟ ମିଳିନାହିଁ । ଶିଳ୍ପ ଶବ୍ଦର ବ୍ୟୁତ୍ପତ୍ତି —ଶିଲ୍ ଧାତୁ—ନିପୁଣ ହେବା + ଭାବ. ପ; ଏଥିର ଅର୍ଥ ବସ୍ତୁ ନିର୍ମାଣାଦି କର୍ମ, କାରିଗରି ଇତ୍ୟାଦି । କଳାବିଦ୍ୟାରେ ପ୍ରାଚୀନ ଭାରତ ଉନ୍ନତିର ଚରମ ସୀମାରେ ପହଞ୍ଚିଥିଲା । ଉତ୍କଳ ମଧ୍ୟ କଳା ବିଦ୍ୟାରେ ଶ୍ରେଷ୍ଠତା ଲାଭ କରିଥିଲା । କଳାବିଦ୍ୟାରେ ଉତ୍କର୍ଷ ହେତୁ ଓଡ଼ିଶାର ଅନ୍ୟନାମ ଉତ୍କଳ ( ଉତ୍ + କଳା ) ହୋଇଥିବାର କେହି୍ କେହି କହନ୍ତି । ଉତ୍କଳର ସ୍ଥାପତ୍ୟ ଓ ଭାସ୍କର ଶିଳ୍ପର ଯାହା ଧ୍ୱଂସାବଶେଷ ଅଛି ତାକୁ ଦେଖିବାକୁ ବର୍ତ୍ତମାନ ଦେଶ ବିଦେଶରୁ ମନୀଷୀଗଣ ଆସୁଅଛନ୍ତି । କୋଣାର୍କ ଶିଳ୍ପ ଆଜି ମଧ୍ୟ ଜଗତରେ ଅତୁଳନୀୟ । ଓଡ଼ିଶାର ବସ୍ତ୍ରଶିଳ୍ପ ଏକସମୟରେ ଚୂଡ଼ାନ୍ତ ଲାଭ କରିଥିଲା । ବୈଦେଶିକମାନେ ଓଡ଼ିଶାରୁ ସୂକ୍ଷ୍ମ ଲୁଗା ନେଇ ପାଶ୍ଚାତ୍ୟ ଦେଶମାନଙ୍କରେ ବ୍ୟବସାୟ କରୁଥିଲେ । ଓଡ଼ିଶାରେ ଏପରି ସରୁ ସୂକ୍ଷ୍ମ ଲୁଗା ବୁଣା ଯାଇ ପାରୁଥିଲା ଯେ, ହାତେ ଲମ୍ବ ୨ଇଞ୍ଚ ବ୍ୟାସବିଶିଷ୍ଟ ବାଉଁଶ ନଳ ଭିତରେ ୧୨ ହାତ ଲମ୍ବ ଲୁଗା ରଖାଯାଇ ପାରୁଥିଲା । ଘାସ ଉପରେ ରାତିରେ ଲୁଗା ପାରିଦେଲେ ସକାଳକୁ ତହିଁରେ କାକର ପଡ଼ି, ତାହା ଲୁଗା କି ଘାସ, ବାରି ହେଉ ନ ଥିଲା ।

ଧାତୁ, ପାଷାଣ, କାଠ ପ୍ରଭୃତିରେ ଅତି ଉତ୍କୃଷ୍ଟ ଧରଣର କାରିଗରି ମଧ୍ୟ ଉତ୍କଳରେ ହେଉଥିଲା । ପାନ ଭାଙ୍ଗିବା ଲୁଗା ଭୁଷିବା, ଠାଆ ଲେଖିବା, ମୁରୁଜ ଦେବା, ଚିତା ପକାଇବା, ପିଠା ପଣା କରିବା ଇତ୍ୟାଦି ସକଳ ଦୈନନ୍ଦିନ କାର୍ଯ୍ୟରେ ଶିଳ୍ପର ବିକାଶ ହେଉଥିଲା । ମାତ୍ର କ୍ରମେ ସେସବୁ ବିଦ୍ୟା ଲୋପ ହୋଇ ଯାଉଛି । ଦେଉଳ ଅଟ୍ଟାଳି ପ୍ରଭୃତି ବଡ଼ ବଡ଼ ଶିଳ୍ପ ଭାସ୍କର କାର୍ଯ୍ୟ ତ ଆଉ ନାହିଁ । ଆଜିକାଲି ସବୁ କାମ ସାଧାସିଧା କରାଯାଉଅଛି । ବ୍ୟୟାଧିକ୍ୟ ହେତୁ ଲୋକେ ଆଉ ଶିଳ୍ପକାର୍ଯ୍ୟ କରିବାକୁ ମନ ବଳାଉ ନାହାନ୍ତି । ଆଜି ଜାପାନ ଶିଳ୍ପ ବିଦ୍ୟାରେ ଅଗ୍ରଣୀ । କାଗଜ ଶିଳ୍ପ ଜାପାନରେ ଅତି ଉତ୍କୃଷ୍ଟ ମନୋହର ଆକାର ଧାରଣ କରିଅଛି । ତହିଁର ବୈଚିତ୍ର୍ୟ ଦେଖିଲେ ଆଖି ଝଲସି ଯିବ ।

ବାସ୍ତୁ ବିଦ୍ୟା ବା ସ୍ଥାପତ୍ୟରେ ପ୍ରାଚୀନ ଭାରତବର୍ଷର ଉନ୍ନତି ଅବିସମ୍ବାଦିତ । ସହସ୍ର ସ୍ତମ୍ଭଯୁକ୍ତ ଅଟ୍ଟାଳିକା ଭାରତରେ ଥିଲା ( ଋଗ୍‌ବେଦ ୧ । ୪୧ । ୫ମ ); ଇନ୍ଦ୍ର ଦିବୋଦାସଙ୍କୁ ପାଷାଣ ନିର୍ମିତ ଶତ ସଂଖ୍ୟକ ପୁରୀ ଦାନ କରିଥିଲେ । ( ଋଗ୍‌ବେଦ ୪ । ୩୦ । ୨୦ ); ରାମାୟଣରେ ଅଯୋଧ୍ୟାର ଓ ଲଙ୍କାର ଯେଉଁ ବର୍ଣ୍ଣନା ଅଛି ତହିଁରୁ ପ୍ରାଚୀନ ଭାରତର ସ୍ଥାପତ୍ୟ ବିଦ୍ୟାର ଚରମୋତ୍କର୍ଷର ସ୍ପଷ୍ଟ ପରିଚୟ ମିଳେ । ମହାଭାରତରେ ପାଣ୍ଡବାଦିଙ୍କ ରାଜଧାନୀ, ମଗଧାଦି ରାଜଧାନୀ ଓ ରାଜସୂୟ ଯଜ୍ଞମଣ୍ଡପର ଯେଉଁ ସବୁ ବର୍ଣ୍ଣନା ଅଛି ତାହା ଅତୁଳନୀୟ । ସେ ସବୁର ବିସ୍ତୃତ ବର୍ଣ୍ଣନା-ପାଇଁ ଏଠାରେ ସ୍ଥାନାଭାବ । ପାଠକମାନେ ମହାଭାରତ ରାମାୟଣ ପାଠ କଲେ ଆପଣାର କୌତୂହଳ ଚରିତାର୍ଥ କରିପାରିବେ । ଇଷ୍ଟକ ନିର୍ମିତ ସୋପାନ, ଶିଳାପଟ୍ଟାବଦ୍ଧ ବେଦିକା ପ୍ରଭୃତି ସ୍ଥାପତ୍ୟ ଓ ଶିଳ୍ପ ପ୍ରାଚୁର୍ଯ୍ୟର ପୂର୍ଣ୍ଣ ନିଦର୍ଶନ ଉକ୍ତ ଗ୍ରନ୍ଥମାନଙ୍କରେ ଅଛି । ପୁରାଣ ମତରେ ମୟଦାନବ ପ୍ରଧାନ ଶିଳ୍ପୀ ଥିଲା । ଗରୁଡ଼ପୁରାଣର ପୂର୍ବ ଖଣ୍ଡରେ ବାସ୍ତୁ ନିର୍ଣ୍ଣୟ ଓ

ପ୍ରାସାଦ ଲକ୍ଷଣ ସମ୍ବନ୍ଧେ ୨୭ ଅଧ୍ୟାୟ ଅଛି । ପ୍ରଥମ ଅଧ୍ୟାୟରେ ଅଛି, କପରି ସ୍ଥାନରେ, କେଉଁ ତିଥି ନକ୍ଷତ୍ରରେ, କପରି ପୂଜା ପଦ୍ଧତି କରି ବାସ୍ତୁ ନିର୍ମାଣ କରିବାକୁ ହେବ । ୨ୟ ଅଧ୍ୟାୟରେ ଦେବ ପ୍ରାସାଦ ନିର୍ମାଣ ପ୍ରଣାଳୀର ବର୍ଣ୍ଣନା ଅଛି । ବାସଗୃହ, ପୁର, ଗ୍ରାମ, ବାଣିଜ୍ୟାଳୟ, ପ୍ରାସାଦ, ଉପବନ, ଦୁର୍ଗ, ଦେବାଳୟ ଓ ମଠ ନିର୍ମାଣ ଆରମ୍ଭବେଳେ ବାସ୍ତୁଯଜ୍ଞ କରିବ । ବାସ୍ତୁ-ସମ୍ମୁଖରେ ଦେବାଳୟ, ଅଗ୍ନି-କୋଣରେ ପାକଶାଳା, ପୂର୍ବଦିଗରେ ପ୍ରବେଶ ଓ ନିର୍ଗମ ମାର୍ଗ ଓ ଯାଗମଣ୍ଡପ, ଈଶାନ କୋଣରେ ପଞ୍ଚବସ୍ତୁଯୁକ୍ତ ଗନ୍ଧପୁଷ୍ପାଳୟ, ଉତ୍ତରରେ ଭଣ୍ଡାର, ପଶ୍ଚିମରେ ବାତାୟନଯୁକ୍ତ ଜଳାଗାର, ନୈଋତ ଦିଗରେ ସମିଧ କୁଶ କାଷ୍ଠାଦିଗୃହ, ଅଶ୍ୱଶାଳା, ଦକ୍ଷିଣଦିଗରେ ମନୋରମ ଅତିଥିଶାଳା ପ୍ରସ୍ତୁତ କରିବ; ଗୃହ-ଦ୍ୱାର ଯେତେ ଦୀର୍ଘ ହେବ ତାର ଓସାର ତହିଁର ଅର୍ଦ୍ଧେକ ହେବ, ଇତ୍ୟାଦି ବିଷୟ ବିଶେଷ ଭାବରେ ବର୍ଣ୍ଣିତ ଅଛି । ଦେବପ୍ରାସାଦ ଓ ଦେବାୟତନ ପ୍ରଭୃତିର ନିର୍ମାଣ ବିଷୟରେ ବିଶେଷ ନିୟମମାନଙ୍କ ଉଲ୍ଲେଖ ଅଛି । ଦେବମନ୍ଦିର ୫ ପ୍ରକାର:—ବୈରାଜ, ପୁଷ୍ପକ, ମାଳବ, କୈଳାସ, ତ୍ରିପିଷ୍ଟକ । ବୈରାଜ—ସମଚତୁରସ୍ର, ପୁଷ୍ପକ—ଆୟତାକାର, କୈଳାସ—ବୃତ୍ତାକାର, ମାଳବ—ଡିମ୍ବାକାର, ତ୍ରିପିଷ୍ଟକ—ଅଷ୍ଟାସ୍ର । ଏହି ପାଞ୍ଚ ପ୍ରକାରରୁ ଚତ୍ୱାରିଂଶ ପ୍ରକାର ମନୋରମ ପ୍ରାସାଦ ଉତ୍ପନ୍ନ । ମେରୁ, ମନ୍ଦର, ବିଶାଳ, ଭଦ୍ରକ, ସର୍ବତୋଭଦ୍ର, ରୁଚକ, ନନ୍ଦନ, ନନ୍ଦିବର୍ଦ୍ଧନ, ଶ୍ରୀବତ୍ସ; ଏମାନ ଚତୁରସ୍ର ଓ ବୈରାଜ ଶ୍ରେଣୀୟ । ବଲଭୀ, ଗୃହରାଜ, ଶାଳାଗୃହ, ମନ୍ଦିର, ବିମାନ, ବ୍ରହ୍ମମନ୍ଦିର, ଭବନ, ଉତ୍ତମ, ଶିବିକାବେଶ୍ମ, ଏମାନ ପୁଷ୍ପକଶ୍ରେଣୀୟ । ବଳୟ, ଦୁନ୍ଦୁଭି, ପଦ୍ମ, ମହାପଦ୍ମ, ମୁକୁଳୀ, ଶଙ୍ଖ, କଳସ, ଗୁବାକାକ୍ଷ, ମନ୍ଦିରମାନ ବୃତ୍ତାକାର ଏବଂ କୈଳାସ ଶ୍ରେଣୀୟ । ମାଳବମନ୍ଦିରରୁ ନଅ ପ୍ରକାର ଉତ୍ପନ୍ନ ଏବଂ ସେମାନ ବୃତ୍ତାୟତ (ଡିମ୍ବାକାର) ଯଥା—ଗଜ, ବୃଷଭ, ହଂସ, ଗରୁଡ, ସିଂହ, ଭୂମୁଖ, ଭୂଧର, ଶ୍ରୀଜୟ, ଓ ପୃଥ୍ୱୀଧର । ବଜ୍ର, ମାଳଚନ୍ଦ, ମୁଷ୍ଟିକ, ବଭ୍ରୁ, ବକ୍ରସ୍ୱସ୍ତିକ, ଖଡ୍ଗ, ଗଦା, ଶ୍ରୀବୃକ୍ଷ, ବିଜୟ, ଶ୍ୱେତ, ଏମାନେ ତ୍ରିପିଷ୍ଟକ । ଏମାନଙ୍କ ଆକାର ନାନାପ୍ରକାର; କ୍ୱ ତ୍ରିକୋଣ, କ୍ୱ ପଦ୍ମମଧ୍ୟ, କ୍ୱ ଅର୍ଦ୍ଧଚନ୍ଦ୍ର, କ୍ୱ ଚତୁଷ୍କୋଣ, କ୍ୱ ଅଷ୍ଟକୋଣ, କ୍ୱ ଷୋଡଶ କୋଣ ଇତ୍ୟାଦି । ମନ୍ଦିରଗାତ୍ରରେ ନାନା ବୃକ୍ଷ ପ୍ରଭୃତି ଚିତ୍ରିତ ହେଉଥିଲା । କୌଣସି ମନ୍ଦିର ଆଧାରଯୁକ୍ତ ଅର୍ଥାତ୍ କାଠ ଓ ଚର୍ମଯୁକ୍ତ, କୌଣସି ମନ୍ଦିର ଆଧାରହୀନ ଅର୍ଥାତ୍ କେବଳ ଶିଳାଖଣ୍ଡ ଦ୍ୱାରା ନିର୍ମିତ । ଦେବପ୍ରାସାଦ ଅଗ୍ରରେ ଦଶ ହସ୍ତ ବା ଦ୍ୱାଦଶ ହସ୍ତ ପରିମିତ, ୧୬ ସ୍ତମ୍ଭଯୁକ୍ତ ଓ ଅଷ୍ଟଧ୍ୱଜୋପଶୋଭିତ ମଣ୍ଡପ ପ୍ରସ୍ତୁତ ହୋଇ ତହିଁ ମଧ୍ୟରେ ଯଜ୍ଞବେଦୀ ପ୍ରଭୃତି ନିର୍ମାଣ କରା ଯାଉଥିଲା । ଅଗ୍ନିପୁରାଣରେ ବାସ୍ତୁଲକ୍ଷଣ ବର୍ଣ୍ଣିତ ହୋଇଅଛି । ମତ୍ସ୍ୟପୁରାଣରେ ମଧ୍ୟ ଏ ବିଷୟ ବର୍ଣ୍ଣିତ ହୋଇଅଛି । ଏଥିରୁ ଜଣାଯାଏ, ବାସ୍ତୁବିଦ୍ୟା ସମ୍ବନ୍ଧେ ପ୍ରାଚୀନଭାରତରେ ଅନେକ ଗ୍ରନ୍ଥ ଥିଲା ଏବଂ ସେହିସବୁର ବିଧାନ ପ୍ରଭୃତି ନିୟମାନୁସାରେ ଅଟ୍ଟାଳିକା ପ୍ରଭୃତି ନିର୍ମିତ ହେଉଥିଲା । ମତ୍ସ୍ୟରୂପ ବିଷ୍ଣୁଙ୍କଠାରୁ ମହର୍ଷି ମନୁ ପ୍ରଥମେ ବାସ୍ତୁ ଶାସ୍ତ୍ର ପ୍ରାପ୍ତ ହୋଇଥିଲେ । ପରେ ଭୃଗୁ, ଅତ୍ରି, ବଶିଷ୍ଠ, ବିଶ୍ୱକର୍ମା, ମୟ, ନାରଦ, ନଗ୍ନଜିତ୍, ବିଶାଳାକ୍ଷ, ପୁରନ୍ଦର, ବ୍ରହ୍ମା, କାର୍ତ୍ତିକେୟ, ନନ୍ଦୀଶ୍ୱର, ଶୌନକ, ଗର୍ଗ, ବାସୁଦେବ, ଅନିରୁଦ୍ଧ, ଶୁକ୍ର ଏବଂ ବୃହସ୍ପତି ବାସ୍ତୁଶାସ୍ତ୍ରୋପଦେଷ୍ଟା ହୋଇଥିଲେ । ମତ୍ସ୍ୟପୁରାଣରେ ରାଜଭବନର ବର୍ଣ୍ଣନା ଅଛି । ସେଥିରୁ ଜଣାଯାଏ, ରାଜଭବନ ପାଞ୍ଚପ୍ରକାର—୧୦୮ ହାତ ବିସ୍ତୃତ ଭବନ ଉତ୍ତମ । ଅନ୍ୟ ଚାରିପ୍ରକାର ଯଥାକ୍ରମେ ଆଠ ହାତ ପରିମାଣରେ ଊଣା । ରାଜଭବନର ବିସ୍ତାର ଯେତେ, ଦୈର୍ଘ୍ୟ ତାର ଚତୁର୍ଗୁଣ; ଯୁବରାଜ, ସେନାପତି, ମନ୍ତ୍ରୀ, ଶିଳ୍ପୀ, କଞ୍ଚୁକୀ, ଗଣିକା, ଦୈବଜ୍ଞ, ଗୁରୁ, ବୈଦ୍ୟ, ସଭାସ୍ତାର, ପୁରୋହିତ, ଏ ପ୍ରତ୍ୟେକଙ୍କର ବାସଭବନର ଦୈର୍ଘ୍ୟ ଓ ପ୍ରସ୍ଥ ବର୍ଣ୍ଣିତ ଅଛି । ସ୍ତମ୍ଭର ଉଚ୍ଚତାକୁ ସାତଗୁଣ କରି ୮୦ରେ ହରିଲେ ସ୍ତମ୍ଭର ସ୍ଥୂଳତା ସ୍ଥିର ହେବ । ହିନ୍ଦୁମାନଙ୍କ ସ୍ଥାପତ୍ୟ ବିଦ୍ୟା ଅତି ପ୍ରାଚୀନ । କାଳକ୍ରମେ ତହିଁର ଅଧିକାଂଶ ଲୋପ ହୋଇଗଲାଣି । ଇଲୋରାର ଗୁହା ମନ୍ଦିର, ଏଲିଫାଣ୍ଟା ଗୁହା ମନ୍ଦିର, ଖଣ୍ଡଗିରିର ଗୁହା ମନ୍ଦିର, କୋଣାର୍କର ସୂର୍ଯ୍ୟମନ୍ଦିର, ଭୁବନେଶ୍ୱରର ରାଣୀ ନେଉଳ ଆଦି, ତାଞ୍ଜୋରର ମନ୍ଦିର, ସୌବିକ୍ରୀୟ ମନ୍ଦିରପ୍ରଭୃତି ପ୍ରାଚୀନ ଶିଳ୍ପର ନିଦର୍ଶନ ଅଦ୍ୟାପି ରହିଅଛି । ପାଶ୍ଚାତ୍ୟ ପଣ୍ଡିତମାନେ ପ୍ରାଚୀନ ସ୍ଥାପତ୍ୟକୁ ୩ ପ୍ରଣାଳୀରେ ବିଭକ୍ତ କରିଅଛନ୍ତି । ୧ମ ଦ୍ରାବିଡ଼ୀ ବା ଦାକ୍ଷିଣାତ୍ୟଦେଶୀୟ, ୨ୟ ଉଡ଼ିଆ ବା ଉତ୍ତରଭାରତୀୟ, ୩ୟ ଚୌଲୁକ୍ୟ; କୃଷ୍ଣା ନଦୀର ଦକ୍ଷିଣସ୍ଥ ଦେଶର ମନ୍ଦିରମାନ ଦ୍ରାବିଡ଼ୀଜାତୀୟ; ରାମେଶ୍ୱରରେ ଏ ପ୍ରଣାଳୀ ପୂର୍ଣ୍ଣ ପ୍ରକଟିତ । ଭୁବନେଶ୍ୱର ଓ ପୁରୀଧାମର ସ୍ଥାପତ୍ୟ ଦ୍ୱିତୀୟଶ୍ରେଣୀର । କୃଷ୍ଣାନଦୀର ଉତ୍ତରସ୍ଥିତ ବିନ୍ଧ୍ୟପର୍ବତ-ଶ୍ରେଣୀର ଦକ୍ଷିଣବର୍ତ୍ତୀ ପ୍ରଦେଶରେ ୩ୟ ପ୍ରଣାଳୀ ପ୍ରକଟିତ । ବୌଦ୍ଧମାନେ ଗୁହା ଅଭ୍ୟନ୍ତରରେ ମନ୍ଦିର ଖୋଳୁଥିଲେ ଏବଂ ହିନ୍ଦୁମାନେ ଗୁହା ବାହାରରେ ମନ୍ଦିର ନିର୍ମାଣ କରୁଥିଲେ । ଭାରତବର୍ଷରେ ଶିଳ୍ପ ଓ ସ୍ଥାପତ୍ୟର ଆଦର୍ଶ ନାନାପ୍ରକାରର ଅଛି । ତାହାସବୁ ବର୍ଣ୍ଣନା କରିବା ସହଜ ନୁହେ । ପାଶ୍ଚାତ୍ୟ ପଣ୍ଡିତମାନେ ଭାରତୀୟ ଶିଳ୍ପର ଭୂୟସୀ ପ୍ରଶଂସା କରିଅଛନ୍ତି ଏବଂ ତାହା ଦେଖି ବିସ୍ମୟ-ବିମୁଗ୍ଧ ହୋଇଅଛନ୍ତି । ସେମାନେ କହନ୍ତି, ଭାରତୀୟ ଶିଳ୍ପର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାପାଇଁ ସେମାନଙ୍କ ଭାଷା ଅକ୍ଷମ ଓ ଭାରତୀୟମାନଙ୍କ ଶିଳ୍ପର ସୌନ୍ଦର୍ଯ୍ୟ ଜଗତରେ ଅତୁଲନୀୟ ।

ଅଧ୍ୟାପକ ହର୍ଣ୍ଣେଲ୍ ସାହେବ କହନ୍ତି, ହିନ୍ଦୁମାନଙ୍କ ଶିଳ୍ପର କାର୍ଯ୍ୟ ସଙ୍ଗେ ଗ୍ରୀସ ଓ ମିସରର ସ୍ଥାପତ୍ୟ ତୁଳନା

କରାଯାଇ ନ ପାରେ; ହିନ୍ଦୁ ସ୍ଥାପତ୍ୟ ସେ ସବୁକୁ ପରାଭୂତ କରିଛି । ଏ ପ୍ରକାର ମନ୍ଦିରଗୁଡ଼ିକର ଖୋଦନ କାର୍ଯ୍ୟ ବିଶେଷତଃ ତନ୍ମଧ୍ୟସ୍ଥ ବୃହତ୍ ଲତାର ସମାବେଶ ପରିପାଟୀରେ ଯେଉଁ ଉଚ୍ଚ ଦରର ସୌନ୍ଦର୍ଯ୍ୟ ବିକାଶ ପାଇଛି, ଅନ୍ୟ କୌଣସି ଦେଶରେ ତହିଁର ତୁଳନା ନାହିଁ । ବୌଦ୍ଧମାନଙ୍କର ସ୍ତୂପ ଆଦର୍ଶରେ ପାଶ୍ଚାତ୍ୟଦେଶର ଗୀର୍ଜାର ଚୂଡ଼ାସମୂହ ନିର୍ମିତ ହୋଇଅଛି (ଅଧ୍ୟାପକ ବେବର୍) । ହାଭେଲ ସାହେବ କହନ୍ତି; ଅଦ୍ୟପର୍ଯ୍ୟନ୍ତ ଇଂରେଜଜାତି ମଧ୍ୟରେ ଯେଉଁ ସବୁ ଆଲଙ୍କାରିକ ଶିଳ୍ପସ୍ଥାପତ୍ୟ ବିଦ୍ୟମାନ ତହିଁର ଅଧିକାଂଶ ଭାରତବର୍ଷର ଆଦର୍ଶରୁ ପରିଗୃହୀତ । ଏହିପରି ପାଶ୍ଚାତ୍ୟ ପଣ୍ଡିତମାନେ ଭାରତୀୟ ଶିଳ୍ପର ଭୂୟସୀ ପ୍ରଶଂସା କରି ଯାଇଅଛନ୍ତି ।

ଆଲେଖ୍ୟ ବା ଚିତ୍ର ଶିଳ୍ପରେ ହିନ୍ଦୁମାନେ ପ୍ରଭୂତ ଉନ୍ନତି କରିଥିଲେ । ସ୍ଥାପତ୍ୟର ଉନ୍ନତିରୁ ଚିତ୍ର ଶିଳ୍ପର ଅବସ୍ଥା ସମ୍ବନ୍ଧରେ ଅନୁମାନ କରାଯାଇ ପାରିବ । ସଂହିତା ଶାସ୍ତ୍ରରେ ଚିତ୍ର ବ୍ୟବସାୟୀ ଜାତିର ଉଲ୍ଲେଖ ଅଛି । ବୈଶ୍ୟମାନଙ୍କ ମଧ୍ୟରୁ କେହି କେହି ଚିତ୍ର କାର୍ଯ୍ୟ କରୁଥିଲେ । ଶୁକ୍ଳ ଯଜୁର୍ବେଦର ୩୦ ଅଧ୍ୟାୟରେ ଚିତ୍ରକର ଏବଂ ଖୋଦନକାରୀ ଜାତିର ଉଲ୍ଲେଖ ଅଛି । ରାମାୟଣ, ମହାଭାରତ ଓ ପୁରାଣାଦି ଗ୍ରନ୍ଥରେ ଚିତ୍ର ଶିଳ୍ପର ଉନ୍ନତି ବିଷୟ ଉଲ୍ଲେଖ ଅଛି । ଚିତ୍ରପଟଶୋଭିତ ଗୃହର ବର୍ଣ୍ଣନା ରାମାୟଣରେ ଅଛି । ରାବଣର ଗୃହ ଚିତ୍ରପଟ୍ଟ ଶୋଭିତ ଥିଲା । ରାମଚନ୍ଦ୍ରଙ୍କ ବନ ଗମନ ସମୟରେ ଯେତେ ଲୋକ ତାଙ୍କ ସହିତ ଅଯୋଧ୍ୟାରୁ ଯାଇଥିଲେ ସେମାନଙ୍କ ମଧ୍ୟରେ ଅନେକ ଚିତ୍ରକର ମଧ୍ୟ ଥିଲେ । ଭାଗବତ ଓ ହରିବଂଶରେ ଚିତ୍ରବିଦ୍ୟାର ପରିଚୟ ମିଳେ । ବିଶ୍ୱକର୍ମା ପ୍ରବର୍ତ୍ତିତ ଶିଳ୍ପ ଶାସ୍ତ୍ରରେ ଚିତ୍ର ଶିଳ୍ପ ବିଷୟର ଉଲ୍ଲେଖ ଅଛି । ଅଜନ୍ତାରେ ବହୁ ଅଙ୍କିତ ଚିତ୍ର ଅଛି । ଚିତ୍ରରେ ଭାବର ଅଭିବ୍ୟକ୍ତି ଦେବା ବିଶେଷ ଆବଶ୍ୟକ । ଉତ୍କଳରେ ଚିତ୍ରବିଦ୍ୟା ପ୍ରଭୂତ ଉନ୍ନତି ଲାଭ କରିଥିଲା । ଏଥିରେ ସ୍ତ୍ରୀଲୋକମାନେ ବିଶେଷ ପାରଦର୍ଶିତା ଲାଭ କରିଥିଲେ । କାର୍ତ୍ତିକ ମାସରେ ଚଉରାମୂଳେ ଚିତା ଲେଖିବା, ମାଣବସା ଗୁରୁବାରରେ କାନ୍ଥବାଡ଼ରେ ଚିତା ଅଙ୍କିବା, ବିବାହ ପ୍ରଭୃତି ଉତ୍ସବକାର୍ଯ୍ୟରେ କାନ୍ଥବାଡ଼ରେ ନାନା ପ୍ରକାର ଚିତ୍ର ଓ ଚିତ୍ରବିଚିତ୍ର ନକ୍ସା ଅଙ୍କନ ଅଦ୍ୟାବଧି ପ୍ରଚଳିତ ଅଛି । ହିନ୍ଦୁ ତଥା ଉତ୍କଳୀୟର ପ୍ରତ୍ୟେକ କାର୍ଯ୍ୟରେ ଶିଳ୍ପବିକାଶ ପାଉଥିଲା କୋଣାର୍କ ମନ୍ଦିରର ଖୋଦିତ ଶିଳ୍ପ ଜଗତରେ ଅତୁଳନୀୟ । ଏହି ଶିଳ୍ପ ପ୍ରକଟ କରିବା ପାଇଁ ଓଡ଼ିଶାର ବାର ବର୍ଷର ରାଜସ୍ୱ ବ୍ୟୟ କରାଯାଇଥିଲା ।

ଚିତ୍ରଦ୍ୱାରା ମନୁଷ୍ୟ ତାହାର ମନୋଭାବ ବ୍ୟକ୍ତ କରିପାରୁଥିଲା । ମୌର୍ତ୍ତିକ ଅକ୍ଷର ଏହି କାରଣରୁ ଜନ୍ମିଥିଲା । ବସ୍ତ୍ର-ଶିଳ୍ପ ଭାରତରେ ଏତେ ଉନ୍ନତ ହୋଇଥିଲା ଯେ, ତାହା ଜଗତରେ ଶୀର୍ଷସ୍ଥାନ ଅଧିକାର କରିଥିଲା । ଭାରତର ସବୁ ସୂକ୍ଷ୍ମ ଲୁଗା ଉପରେ ପ୍ରକଟିତ କାରୁକାର୍ଯ୍ୟର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ଜଗତରେ ଅତୁଳନୀୟ । ଆଜି କଳ ସାହାଯ୍ୟରେ ନାନା ପ୍ରକାର ଶିଳ୍ପ କାର୍ଯ୍ୟ କରାଯାଉଛି । ମାତ୍ର ଭାରତୀୟ ଶିଳ୍ପୀ ଏପରି ଦକ୍ଷତା ଲାଭ କରିଥିଲା ଯେ ହସ୍ତଜାତ ଶିଳ୍ପ ଦ୍ରବ୍ୟ ସଙ୍ଗେ କଳଜାତ ଶିଳ୍ପ ଦ୍ରବ୍ୟର ତୁଳନା ହୋଇ ନ ପାରେ । ଆଜି ମଧ୍ୟ ଅନେକ ସ୍ଥାନରେ ଏହି ହସ୍ତ ପ୍ରସ୍ତୁତ ତନ୍ତ୍ର ଶିଳ୍ପ ବିଦ୍ୟମାନ ଅଛି । ବର୍ତ୍ତମାନ ମଧ୍ୟ ସେ ଶିଳ୍ପ ନିପୁଣ ହସ୍ତ ଲୁପ୍ତହୋଇ ନାହିଁ । ତନ୍ତି, ଦରଜି ପ୍ରଭୃତି ଜାତି ଏକାବେଳେକେ ଲୋପ ପାଇ ନାହାନ୍ତି । ପିପିଲିରେ ଦରଜି ଜାତି ଅଛନ୍ତି, ଯେଉଁମାନେ ବର୍ତ୍ତମାନ ପର୍ଯ୍ୟନ୍ତ ଛତ୍ରଆଖୋଳ, ବଟୁଆ, ଚାନ୍ଦୁଆ ପ୍ରଭୃତି ଉପରେ ଅତି ଉତ୍କୃଷ୍ଟ କାରୁକାର୍ଯ୍ୟ ସିଲାଇଦ୍ୱାରା କରି ପାରନ୍ତି । ଅନେକ ସ୍ଥଳରେ ଉତ୍କୃଷ୍ଟ ତନ୍ତି ଅଛନ୍ତି । କାରିଗରଙ୍କ ବଂଶ ଏକାବେଳକେ ଲୋପ ପାଇ ନାହିଁ ସତ୍ୟ, ମାତ୍ର ସେମାନଙ୍କ ପ୍ରତି ଆଦର କ୍ରମେ କମି ଯାଉଛି । କଳ ଆସି ସେମାନଙ୍କ ସ୍ଥାନ ଅଧିକାର କରୁଛି । କାଶ୍ମୀରର ସାଲ ଜଗଦ୍ବିଖ୍ୟାତ । ତାହା ଏ ପର୍ଯ୍ୟନ୍ତ ବଞ୍ଚିଛି, ମାତ୍ର ବିଦେଶାଗତ କଳ ପ୍ରସ୍ତୁତ ସାଲମାନ ଏତେ ସସ୍ତାଦରରେ କିଣିବାକୁ ମିଳୁଅଛି ଯେ, ତଦ୍ୱାରା ଦେଶୀୟ ଶିଳ୍ପ ମୁଣ୍ଡ ଟେକି ପାରିବା ଅସମ୍ଭବ । ଏହି ଭାରତରେ ଥରେ ୨୪ ଛଟାଙ୍କି ଓଜନର ୩୧ ବର୍ଗଫୁଟ ଲମ୍ବ ଓସାରର ଲୁଗା ବୁଣା ଯାଉଥିଲା । ଢାକାର ମସ୍‌ଲିନ୍ ବା ଝୀନବସନ ପରି ସରୁ ସୂକ୍ଷ୍ମ ଲୁଗା ଏ ପର୍ଯ୍ୟନ୍ତ ପୃଥିବୀରେ କେହି ବୁଣି ପାରି ନାହିଁ । ଉପର୍ଯ୍ୟୁପରି ସାତପରସ୍ତ ଲୁଗା ପିନ୍ଧି ମଧ୍ୟ ଆରଙ୍ଗଜେବଙ୍କ କନ୍ୟାର ଦେହ ଫୁଟି ଉଠୁଥିବାରୁ ସେ କନ୍ୟା ଥରେ କନ୍ୟା ତାପାଇଁ ଗାଳି ଖାଇଥିଲା । ଏଥିରୁ ଲୁଗାର ସୂକ୍ଷ୍ମତା ପାଠକେ ବୁଝି ପାରିବେ । ଏ ଅଧୁନିକ, କି ପ୍ରାଚୀନ, କୌଣସି ଜାତିର ସୂକ୍ଷ୍ମ ବସ୍ତ୍ରର ସୌନ୍ଦର୍ଯ୍ୟ ଭାରତୀୟ ବୟନ କାର୍ଯ୍ୟର ସୌନ୍ଦର୍ଯ୍ୟର ସମକକ୍ଷ ହୋଇପାରି ନାହିଁ ।

ସୁବର୍ଣ୍ଣ ଓ ରୌପ୍ୟ ନିର୍ମିତ ଅଲଙ୍କାର ଉପରେ କାରୁ-କାର୍ଯ୍ୟ ଏବଂ ଅନ୍ୟାନ୍ୟ ପଦାର୍ଥ ଉପରେ ସ୍ଥାୟୀ ମନୋହର ରଙ୍ଗର ସମାବେଶ ଭାରତବର୍ଷର ଅଶେଷ କୃତିତ୍ୱର ବିଷୟ । ବର୍ଡ଼ଉଡ଼ଙ୍କର ତାରକସି କାମ ପୃଥିବୀ ପ୍ରସିଦ୍ଧ ଏଲଫିନ୍‌ଷ୍ଟୋନ୍, ୱେବର୍, ମିଲ, ପ୍ରଭୃତି ପଣ୍ଡିତମାନେ ଏଥିର ଭୂୟସୀ ପ୍ରଶଂସା କରି ଯାଇ ଅଛନ୍ତି । ସେମାନେ କହନ୍ତି, ଅନେକ ରଙ୍ଗର ଔଜ୍ଜ୍ୱଲ୍ୟ ଏବଂ ସ୍ଥାୟିତ୍ୱ ବିଷୟରେ ଇଉରୋପ ଆଜି ପର୍ଯ୍ୟନ୍ତ ଭାରତର ସମକକ୍ଷ ହୋଇ ପାରି ନାହିଁ । ଲୁହାକୁ ତରଳାଇବା ଓ ଢାଳିବା କାର୍ଯ୍ୟରେ ଇଉରୋପ ଆଜି ପ୍ରସିଦ୍ଧି ଲାଭ କରିଛି । କିନ୍ତୁ ଭାରତ ବହୁକାଳ ପୂର୍ବେ ଏଥିରେ ଅଗ୍ରଣୀ ଥିଲା । ମିଲ୍ ସାହେବ ଏ ବିଷୟ ଲେଖି ଯାଇଛନ୍ତି । ଏହିପରି ଯେ କୌଣସି ଦିଗରୁ ଦେଖିଲେ ଶିଳ୍ପ ବିଦ୍ୟାରେ ଭାରତ ଜଗତରେ ଶୀର୍ଷ ସ୍ଥାନ ଅଧିକାର କରିଥିଲା ।

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ୍ | ଉଅ | ଜ୍ଝ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ୟ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଘ | ସ | ଗ୍ୟ | ଇଅ | ଙ୍ଖ | ନ୍ଲ |

ବିଧାତା ଶିଳ୍ପବିଶାରଦ । ବର୍ଣ୍ଣବୈଷମ୍ୟ ଶିଳ୍ପର ମୂଳଭିତ୍ତି । ମାନବ ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖି ତାକୁ ଅନୁକରଣ କରିବାକୁ ଚେଷ୍ଟା କରେ । ପ୍ରାକୃତିକ ଶିଳ୍ପ ସଜୀବ, ମାନବର ଶିଳ୍ପ ନିର୍ଜୀବ । ମାନବ ଶିଳ୍ପୀ ନିଜ ବୁଦ୍ଧିବିଦ୍ୟା ବଳରେ ଏବଂ କଳ୍ପନା କଳ୍ପିତ ଅନୁକରଣ ସାହାଯ୍ୟରେ ଆକାଶରେ ଉଡ଼ିପାରୁଛି, ରେଲ୍ ମଟର୍ ପ୍ରଭୃତି ନିର୍ମାଣ କରି ଦୂରତାକୁ ପରାଜୟ କରିପାରୁଛି ।

ଶିଳ୍ପ କଅଣ ? ପ୍ରକୃତିଦତ୍ତ ପଦାର୍ଥକୁ ବିଭିନ୍ନ ଆକାରପ୍ରକାରରେ ସଜାଡ଼ିବା ଓ ସୁଦୃଶ୍ୟ କରିବା କାର୍ଯ୍ୟକୁ ଶିଳ୍ପ କୁହାଯାଏ । ମନୁଷ୍ୟ କାହିଁକି ଏପରି କରେ ? ମାନବ ସର୍ବଦା ସୁଖ ଓ ସୌନ୍ଦର୍ଯ୍ୟ ଭୋଗ କରିବାକୁ ଇଚ୍ଛା କରେ । ସୌନ୍ଦର୍ଯ୍ୟାନୁଭବ ହେଲେ ମନରେ ସୁଖ ଜାତ ହୁଏ । ଏହି ଇଚ୍ଛା ମାନବମନରେ ଯେତେ ବଳବତୀ ହୁଏ, ମାନବ ସେତେ ଶିଳ୍ପ ଆଡ଼କୁ ମନ ଦିଏ । ମାନବ ଏ ସଂସାରରେ ଜୀବନ ଯାପନ କରିବା ପାଇଁ ଅନେକଗୁଡ଼ିଏ ପଦାର୍ଥର ଆବଶ୍ୟକତା ବୋଧ କରେ । ଅଶନ, ବସନ, ବାସନ, ଆସନ ପ୍ରଭୃତି ବହୁତ ପଦାର୍ଥର ଆବଶ୍ୟକତା କ୍ରମେ ବଢ଼ି ଯାଏ । କେଉଁ ପଦାର୍ଥକୁ କିପରି ନିର୍ମାଣ କଲେ ତାହା ମନର ଓ ନୟନର ତୃପ୍ତିକର ହେବ, ମାନବ ଏହି ଚିନ୍ତାରେ ଲିପ୍ତ ରହେ । ଶିଳ୍ପ ଏହି ଚିନ୍ତାର ଫଳ । ଏହି ଚିନ୍ତାପ୍ରସୂତ ଶିଳ୍ପଦ୍ୱାରା ଶିଳ୍ପୀ ନିଜେ ସୁଖାନୁଭବ କରେ ଏବଂ ଅନ୍ୟକୁ ତଦ୍ୱାରା ସୁଖାନୁଭବ କରାଏ । ଯେଉଁମାନେ ନିଜେ ନିର୍ମାଣ କରି ନ ପାରନ୍ତି ସେମାନେ ମୂଲ୍ୟ ଦେଇ ସେହି ଶିଳ୍ପଜାତ ପଦାର୍ଥ କିଣନ୍ତି ଏବଂ ନୟନର ତୃପ୍ତି ସାଧନ କରନ୍ତି । ଏକ ଦେଶର ଶିଳ୍ପଜାତ ପଦାର୍ଥ ଅନ୍ୟ ଦେଶକୁ ନେଇ ବିକ୍ରୟ କଲେ ତାକୁ ବାଣିଜ୍ୟ କହନ୍ତି । ଶିଳ୍ପ ବୃଦ୍ଧି ସଙ୍ଗେ ସଙ୍ଗେ ବାଣିଜ୍ୟର ଶ୍ରୀବୃଦ୍ଧି ଅବଶ୍ୟମ୍ଭାବୀ । ଏତ ଗଲା ଶିଳ୍ପର ସାଧାରଣ କଥା ।

ଉତ୍କଳରେ ପ୍ରାଚୀନ ସାହିତ୍ୟରେ ଶିଳ୍ପର ନିଦର୍ଶନ ମଧ୍ୟ ଦେଖାଯାଏ । କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କୁ ସାହିତ୍ୟ ଶିଳ୍ପୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଆ ଭାଷା ଉପରେ ସେ ନାନା ପ୍ରକାର କାରୁକାର୍ଯ୍ୟ ଦେଖାଇ ଯାଇଅଛନ୍ତି । ପ୍ରତ୍ୟେକ ଛନ୍ଦର ଆଦ୍ୟରେ 'ବ' ଅକ୍ଷରାଦ୍ୟ ଶବ୍ଦ ପ୍ରୟୋଗ କରି ସେ ବୈଦେହୀଶ ବିଳାସ କାବ୍ୟ ଲେଖିଯାଇ ଅଛନ୍ତି । ଅବନା ରସ ତରଙ୍ଗ, କଳାକୌତୁକ, ଚିତ୍ରକାବ୍ୟ ବନ୍ଧୋଦୟ ପ୍ରଭୃତି ଗ୍ରନ୍ଥମାନଙ୍କରେ ସେ ବହୁତ ଶିଳ୍ପଛଟା ଦେଖାଇ ଯାଇଅଛନ୍ତି । ଛନ୍ଦ, ବନ୍ଧ, ଅଳଙ୍କାର ପ୍ରଭୃତିରେ ଭଞ୍ଜଯୁଗର କାବ୍ୟଗୁଡ଼ିକ ପରିପୂର୍ଣ୍ଣ ।

ସନ୍ଦର୍ଭ ଲେଖକ—ଶ୍ରୀ ଜଗବନ୍ଧୁ ସିଂହ ]

**ଶିଳ୍ପକ**—ସଂ. ବି—ନାଟକ ଭେଦ (ଦେଖ)
Śilpaka A kind of drama.

**ଶିଳ୍ପକ(କା)ର**—ସଂ. ବି—୧ । ଶିଳ୍ପୀ; କାରିଗର—
Śilpaka(kā)ra 1. A mechanic; an artisan; an artificer.
[ଶିଳ୍ପକାରୀ, ଶିଳ୍ପକାରକ—ଅନ୍ୟରୂପ]
୨ । ରାଜ; ମିସ୍ତ୍ରୀ—2. Mason.

**ଶିଳ୍ପ କର୍ମ**—ସଂ. ବି—(ଶିଳ୍ପରୂପ କର୍ମ)—୧ । ଚିତ୍ରାଦି ଅଙ୍କନ ବା ନିର୍ମାଣାଦି କାର୍ଯ୍ୟ—1. Technique; handicraft; architecture; mechanism.
Śilpa karma
୨ । ଶିଳ୍ପ ବ୍ୟବସାୟ—2. Artisanship.

**ଶିଳ୍ପ କଳା**—ସଂ. ବି—୧ । ସୂକ୍ଷ୍ମ ଶିଳ୍ପ—1. Fine art. ୨ । ଶିଳ୍ପ ଚାତୁରୀ; କାରିଗରୀ—2. Artistic skill.
Śilpa kalā

**ଶିଳ୍ପ କୁଶଳ**—ସଂ ବିଣ (ପୁଂ)—(୭ମୀ ତତ୍)—ଶିଳ୍ପ କାର୍ଯ୍ୟରେ ନିପୁଣ ବା ପାରଙ୍ଗମ—Skilled in art.
Śilpa kuśala
[ଶିଳ୍ପଚତୁର ଶିଳ୍ପ ନିପୁଣ—ଅନ୍ୟରୂପ]
[ଶିଳ୍ପକୁଶଳା, ଶିଳ୍ପ ନିପୁଣା, ଶିଳ୍ପ ଚତୁରା—ସ୍ତ୍ରୀ]

**ଶିଳ୍ପ କୌଶଳ**—ସଂ. ବି—(୭ମୀ ତତ୍)—ଶିଳ୍ପ କାର୍ଯ୍ୟରେ ଦକ୍ଷତା; ଶିଳ୍ପ ଚାତୁରୀ—Artistic skill; skilful architecture.
Śilpa kauśala

**ଶିଳ୍ପ ଗୃ(ଗେ)ହ**—ସଂ. ବି (ମ. ପ. ଲୋ)—ଶିଳ୍ପୀମାନଙ୍କ କାରଖାନା—
Śilpa gṛu(ge)ha Workshop of artisans.

**ଶିଳ୍ପ ଚାତୁରୀ(ର୍ଯ୍ୟ)**—ସଂ. ବି (୭ମୀ ତତ)—ଶିଳ୍ପ କାର୍ଯ୍ୟରେ ଦକ୍ଷତା—
Śilpa chāturī(rjya) Skill in art; artistic skill.
[ଶିଳ୍ପନୈପୁଣ୍ୟ—ଅନ୍ୟରୂପ]

**ଶିଳ୍ପଜ**—ସଂ. ବି (ଶିଳ୍ପ+ଜନ୍ ଧାତୁ+କର୍ତ୍ତୃ ଅ)=ଶିଳ୍ପକର୍ମଦ୍ୱାରା ଉତ୍ପନ୍ନ—Produced by art.
Śilpaja

**ଶିଳ୍ପଜାତ ଦ୍ରବ୍ୟ**—ସଂ.ବି. (୫ମୀ ତତ୍,କର୍ମଧା)-ଶିଳ୍ପକର୍ମଦ୍ୱାରା ପ୍ରସ୍ତୁତ ବସ୍ତୁ-
Śilpajata drabya - Products of art.

**ଶିଳ୍ପ ଜୀବିକା** ସଂ. ବି ଶିଳ୍ପଦ୍ୱାରା ପେଟପୋଷା—
Śilpa jibikā The profession of art.

**ଶିଳ୍ପଜୀବୀ**—ସଂ. ବିଣ ଓ ବି. ପୁଂ-(ଶିଳ୍ପ+ଜୀବ ଧାତୁ+କର୍ତ୍ତୃ.ଇନ୍=ଶିଳ୍ପଜୀବିନ୍; ୧ମା ୧ବ)—ଯେ ଶିଳ୍ପଦ୍ୱାରା ଜୀବିକା ନିର୍ବାହ କରେ; କାରିଗର; ବ୍ୟବସାୟୀ—Artisan; professional artist.
Śilpajibi
(ଶିଳ୍ପୋପଜୀବୀ—ଅନ୍ୟରୂପ)
ଶିଳ୍ପଜୀବିନୀ, ଶିଳ୍ପୋପଜୀବିନୀ —ସ୍ତ୍ରୀ

**ଶିଳ୍ପ ବାଣିଜ୍ୟ**—ସଂ. ବି ୧ । (ସମାହାର; ଦ୍ୱନ୍ଦ୍ୱ)—ଶିଳ୍ପ ଓ ବାଣିଜ୍ୟ—1. Arts and trade. ୨ ।(ରୂପକ) ଶିଳ୍ପରୂପ ପେଶା—2. The profession of an artisan.
Śilpa bāṅijya
(ଶିଳ୍ପ ବ୍ୟବସାୟ—ଅନ୍ୟରୂପ)

**ଶିଳ୍ପ ବିଜ୍ଞାନ**—ସଂ. ବି—(ଆଧୁନିକ)—୧ । (ସମାହାର, ଦ୍ୱନ୍ଦ୍ୱ—ଶିଳ୍ପ+ବିଜ୍ଞାନ) ଶିଳ୍ପ ଓ ବିଜ୍ଞାନ—1. Art and
Śilpa bijñāna

ଧାରଣ ଲେକେ ଅପର ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ'ଖୋଜିବେ; 'ମୁତ' ନ ମିଳିଲେ 'ମୂତ'ଖୋଜିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଗ୍ୟା' ନ ପାଇଲେ'ଅର୍ଘ୍ୟ' ଦେଖିବେ;'ଅଲବତ'ନ ପାଇଲେ 'ଅଲବତ୍'ଦେଖିବେ

science. ୨ । (ରୂପକ)—ଶିଳ୍ପବିଦ୍ୟା—2. Mechanics; the science of art.

ଶିଳ୍ପ ବିଦ୍ୟା—ସଂ. ବି (ଅଧୁନିକ)—(ଶିଳ୍ପ ବିଷୟିଣୀ ବିଦ୍ୟା)—ଶିଳ୍ପ
Śilpa bidyā ବିଷୟକ ବିଦ୍ୟା; ଚିତ୍ରାଦି ଅଙ୍କନ ଓ ଶିଳ୍ପବସ୍ତୁ ନିର୍ମାଣ ବିଦ୍ୟା— Mechanics.

ଶିଳ୍ପ ବିଦ୍ୟାଳୟ—ସଂ. ବି (ଆଧୁନିକ)—ଯେଉଁ ସ୍କୁଲରେ ଶିଳ୍ପକର୍ମ
Śilpa bidyālaya ଶିକ୍ଷା ଦିଆଯାଏ—School of art; art school; a technical school.

ଶିଳ୍ପ ଯନ୍ତ୍ର—ସଂ. ବି—(ମ. ପ. ଲୋ) ୧ । କଳ—1. Machine. ୨ ।
Śilpa jantra ଶିଳ୍ପୀର ହତିଆର—2. The implements of a mechanic

ଶିଳ୍ପ ଲବ୍ଧ—ସଂ. ବି (ଓ୍ୟା ତତ୍)—ଶିଳ୍ପକାର୍ଯ୍ୟଦ୍ୱାରା ପ୍ରାପ୍ତ; ଶିଳ୍ପଜାତ-
Śilpa labdha Produced by art.

ଶିଳ୍ପ ଲିପି—ସଂ. ବି—(ଶିଳ୍ପଜନିତଲିପି; ମ. ପ. ଲୋ)—ପ୍ରସ୍ତରାଦିରେ
Śilpa lipi ଖୋଦିତ ବା ଉତ୍କୀର୍ଣ୍ଣ ଲେଖ; ଯେଉଁ ଲେଖାରେ କାରିଗରି ଥାଏ—Artistic writing.

ଶିଳ୍ପ ଶାଳ(ଳା)—ସଂ. ବି—୧ । ଶିଳ୍ପାଗାର; କାରଖାନା—1. Work-
Śilpa śāla(lā) shop of a mechanic. ୨ । ଯେଉଁ (ଶିଳ୍ପଶାଳା—ଅନ୍ୟରୂପ) ଠାରେ ଶିଳ୍ପକାର୍ଯ୍ୟର ନମୁନାମାନ ସଂଗୃହୀତ ହୋଇଥାଏ ।—2. A museum of art; an art-gallery.

ଶିଳ୍ପ ଶାସ୍ତ୍ର—ସଂ. ବି—୧। (ମ. ପ. ଲୋ)ଶିଳ୍ପବିଦ୍ୟା-1. Mechaincs;
Śilpa śāstra the science of art. ୨ । (ମ. ପ. ଲୋ) ଯେଉଁ ପୁସ୍ତକରେ ଶିଳ୍ପସମ୍ବନ୍ଧୀୟ ଉପଦେଶମାନ ଥାଏ— 2. A manual of arts.

ଶିଳ୍ପ ଶିକ୍ଷା—ସଂ. ବି—(୭ମୀ ତତ୍) ଶିଳ୍ପକର୍ମ ଶିଖିବା—
Śilpa sikshā Learning the arts.

ଶିଳ୍ପ ସମ୍ପଦ୍(ତ୍ତି)—ସଂ. ବି—(ରୂପକ)—ଶିଳ୍ପରୂପ ଅମୂଲ୍ୟ ଧନ—Art
Śilpa sampad(tti)compared to riches, treasures of art- [ଯଥା—ଭାରତବର୍ଷ ଶିଳ୍ପସମ୍ପଦରେ ପୂର୍ଣ୍ଣ] (ଶିଳ୍ପସୌଭାଗ୍ୟ—ଅନ୍ୟରୂପ) (ଶିଳ୍ପସମ୍ପଦ—ଦେ. ରୂପ) .

ଶିଳ୍ପ ସାହିତ୍ୟ—୧ । (ଦ୍ୱନ୍ଦ୍ୱ, ଶିଳ୍ପ ଓ ସାହିତ୍ୟ—1. Arts and
Śilpa sāhitya literature. ୨। (ମ, ପ.ଲୋ) ଶିଳ୍ପ ସମ୍ବନ୍ଧୀୟ ସାହିତ୍ୟ—2. Literature on arts.

ଶିଳ୍ପାଗାର—ସଂ. ବି (ଶିଳ୍ପ+ଅଗାର; ମ. ପ. ଲୋ)—ଶିଳ୍ପଶାଳା—
Śilpāgāra Workshop of a mechanic.

ଶିଳ୍ପାନୁରାଗ—ସଂ. ବି—(୭ମୀ ତତ୍)—ଶିଳ୍ପକାର୍ଯ୍ୟ ପ୍ରତି ଆସକ୍ତି—
Śilpānurāga Attachment to arts.

ଶିଳ୍ପିକ—ସଂ. ବି.(ଶିଳ୍ପ+ଇକ)—୧ । (ପୁଂ) ଶିଳ୍ପୀ (ଦେଖ)—Silpi
Śilpika (See) (ଶିଳ୍ପିକା—ସ୍ତ୍ରୀ) ୨ । ନାଟକ ଭେଦ (ହି. ଶ)—2.A kind drama.

ଶିଳ୍ପିକା—ସଂ. ବି—୧। (ବୈଦ୍ୟକ)—ମହାରାଷ୍ଟ୍ର ଦେଶୀୟ ତୃଣ ବିଶେଷ
Śilpikā [ଦ୍ର—ଏହା ମଧୁର ରସ, ଉଷ୍ଣ ବୀର୍ଯ୍ୟ ଓ ବଳ ବୀର୍ଯ୍ୟ କାରକ)-1.A species of grass
ଅନ୍ୟ ସଂ. ନାମ—ଶିଳ୍ପିନୀ,]
ଶୀତ, ଖେଲକା, ମୃଦୁଛଦ used in medicine. [ଦ୍ର—
ହି. ଲହଲଶେଷୀ ଏହା ମୂତ୍ରରୋଧ, ଅଶ୍ମରୀ, ଶୂଳ, ଜ୍ୱର
ମ, ଲହନ ଶିଳ୍ପୀ ଓ ପିତ୍ତ ନାଶକ—ବିଶ୍ୱକୋଷ]
୨ । ଶିଳ୍ପିକର ସ୍ତ୍ରୀଲିଙ୍ଗ—2. Feminine of Śilpīka

ଶିଳ୍ପୀ—ସଂ. ବି. ପୁଂ—(ଶିଳ୍ପ+ଇନ୍,)—ଶିଳ୍ପ କର୍ମକାରୀ; କାରିଗର—
Śilpī 1. Artisan; mechanic. ୨ । ଶିଳ୍ପ କାର୍ଯ୍ୟର ନିର୍ମାଣ (ସ୍ତ୍ରୀ—ଶିଳ୍ପିନୀ) କର୍ତ୍ତା—2. Architect. ୩ । ରାଜମିସ୍ତ୍ରୀ; ସ୍ଥପତି (ହି. ଶ)—3. Artisan. ୪ । ଚିତ୍ରକର—4. Painter. ୫ । ନଖି ନାମକ ଗନ୍ଧଦ୍ରବ୍ୟ—5. Shell.

ଶିଳ୍ପୋନ୍ନତି—ସଂ. ବି ୧ । (୭ମୀ ତତ୍) ଶିଳ୍ପକର୍ମ ସମ୍ବନ୍ଧେ ଉତ୍କର୍ଷ—
Śilponnati 1. Excellence in architecture ୨ । (୬ଷ୍ଠୀ ତତ୍) ଶିଳ୍ପର ଶ୍ରୀବୃଦ୍ଧି—2. Improvement of arts.

ଶିଲ୍ହ—ସଂ. ବି—ଶିଳାରସ (ଦେଖ)
Śil-ha Śilārasa (See)
(ଶିହ୍ଲକ, ଶିଲ୍ହକ—ଅନ୍ୟରୂପ)

ଶିଲ୍ହନ—ସଂ. ବି—ଶିହ୍ଲନ (ଦେଖ)
Śil-hana Śi-hlana (See)

ଶିଶ୍(ଧାତୁ)—ସଂ.—ଗମନ କରିବା—
Śiś (Root) To walk;to go.

ଶିଶ—ଦେ. ବି ୧ । (ଧ୍ୱନ୍ୟାନୁକରଣ) ଶିସ୍; ଶୁଶ୍ କାର; ଜିଭ ଓ ଓଠ
Śiś ଦ୍ୱାରା କରାଯିବା 'ଶି' 'ଶି' ଧ୍ୱନି ବା ବଂଶୀବତ୍ ଧ୍ୱନି-Whis-
ଶିଶ ସିଟି ସୁସକାରି tling sound made by blowing air through the lips and the tongue.
ବୈଦେ. ବି—(ଫା ଶିଶା)—କାଚର ଫଳକ--A pane
ଶୀଶା of glass.

ଶିଶ୍ ଦେବା—ଦେ. କି.—ମୁହଁ ଦ୍ୱାରା ସିଟ୍ ମାରିବା—To make
Śiś debā whistling sound with the lips and
ଶିଶ ଦେଓୟା ସିଟୀଦେନା, ସୁସକାରୀ देना the tongue; to
(ଅନ୍ୟରୂପ—ଶିଷ ମାରିବା) whistle.

ଶିଶ(ଷ)—ଗ୍ରା. ବି—(ସଂ. ଶିଷ୍ୟ)—ପୁଅ—Son. [ଦ୍ର—ଦ୍ୱାପର ଯୁଗ
Śisa(sha) ହେବ ଶେଷ, ଅମ୍ଭେ ହୋଇବୁ ତୋର ଶିଶ—ଭୂପତି. ପ୍ରେମପଞ୍ଚାମୃତ ।]
ଶିଶୁ ସିଶୁ

ଶିଶପା—ଦେ. ବି.—(ସଂ. ଶିଂଶପା)—୧ । ଶିଶୁଗଛ—1 A timber
Śiśapā tree; Dalbergia Sissoo. ୨ । ଅଶୋକଗଛ—
ଶିଶୁ शीशम 2. The Aśoka tree [ଦ୍ର—ସେ ବନର ଶିଶପା ବୃକ୍ଷର ମୂଳରେ, ସୀତା ବସି ଅଛନ୍ତି ଅଧ ବଦନରେ କୃଷ୍ଣସିଂହ—ମହାଭାରତ ।

**ଶିଶୟିଷା**—ସଂ. ବି—( ଶୀ ଧାତୁ=ଶୋଇବା+ଇଚ୍ଛାର୍ଥେ ସନ୍=ଶିଶୟି
**Śiśayishā** ଧାତୁ+ଭାବ ଅ+ଆ )—ଶୋଇବାର ଇଚ୍ଛା—
Desire to sleep; sleepiness.

**ଶିଶୟିଷୁ**—ସଂ. ବିଣ (ପୁଂ ଓ ସ୍ତ୍ରୀ)—(ଶୀ ଧାତୁ+ଇଚ୍ଛାର୍ଥେ ସନ୍+ଭାବ
**Śiśayishu** +ଅ+ଉ)—ଶୋଇବାକୁ ଇଚ୍ଛୁକ ( ବ୍ୟକ୍ତି )—
Desiring sleep; sleepy.

**ଶି(ଶିଂ,ଶିଁ)ଶା**—ବୈଦେ.ବି. (ଫା ଶିଶା)—କାଚ ଫଳକ—A pane
**Śi(Śiṁ,śiṅ)śā** of glass. ଦେ. ବି.—୧ । (ସଂ. ସୀସକ)—
शिशा काँच ସୀସକ ଧାତୁ—1. Lead ୨ । (ସଂ ଶସ୍ୟ)—ଧାନ
सीसा সীসা ଅଡ଼ା ଅମଳ କରିବା ପରେ ଅଳିଆ ଧାନକୁ ପବନରେ
शिष ଉଡ଼ାଇବା ଦ୍ୱାରା ଅଗାଡ଼ି ଓ ପମ୍ପା ଧାନଠାରୁ ଭଲ
सीसा धान ଧାନକୁ ପୃଥକ୍ ହୋଇ ଉଡ଼ିଗଲେ ଯେଉଁ ନିର୍ମଳ
ଧାନସ୍ତୂପ ଜମା ହୋଇ ଭୂମିରେ ପଡ଼ି ରହିଥାଏ—2. The
solid grains of paddy left on the ground
after the chaffs are blown away
and separated from the sound grains
when they are strewn on the ground
in the face of wind. ୩ । (ସଂ ଶୀର୍ଷ)
ଧାନ ଗଛରୁ ବାହାରି ପଡ଼ିବା କେଣ୍ଡା; ଧାନ ଅଗର ମଞ୍ଜରୀ—
शिष 3. The ear of corn coming out of the
সীস stalk of paddy plant. [ଉ—ହାତେ ଲମ୍ବରେ
କାଢ଼ିବ ଶିଶା, ଦେଖି ମରୁଥିବେ ଯାଇ ପଡ଼ଶା । କୃଷି
ବଚନ ] ୪ । ( ସଂ. ଶିଖା )—ଦୀପଶିଖା—4. The
शिष flame of a burning lamp. ୫ ।(ସଂ. ଶୀର୍ଷ)—
दीपशिखा ଫୁଲର କେଣ୍ଡା—5. A flower spike. ଗ୍ରାଦେ.—
शिष गुच्छा (ସମ୍ବଲପୁର) ବି—ପେନ୍‌ସିଲ—Lead pencil.

**ଶି(ଶିଁ)ଶା ପକା(କେ)ଇବା**—ଦେ. କ୍ରି.—ବହୁଥିବା ପବନ ସାହାଯ୍ୟରେ
**Śi(śiṅ)śā pakā(ke)ibā** ବା କୁଲାର ବାଆଦ୍ୱାରା ଅଗାଡ଼ିମିଶା
धान साबान ଧାନକୁ ଉଡ଼ାଇ ଭଲ ଧାନଠାରୁ ଅଗାଡ଼ିକୁ ପୃଥକ୍ କରିବା—
धान उड़ाना To cause the sound grains of paddy
( after granering ) to be separated from
the chaff by the help of wind. [ଦ୍ର—
ଧାନକୁ ବେଙ୍ଗଲା ପକାଇ ଅମଳ କରିବା ପରେ ଅଗାଡ଼ିମିଶା
ଧାନକୁ ପବନ ବୋହୁଥିବା ଯାଗାରେ ଉର୍ଦ୍ଧ୍ୱରୁ ବିଞ୍ଚିଦେଲେ
ପବନଦ୍ୱାରା ସେ ଧାନରୁ ଅଗାଡ଼ିସବୁ ଉଡ଼ିଯାଏ ଓ ଭଲ
ଧାନସବୁ ଭୂଇଁରେ ଜମା ହୋଇ ରହିଥାଏ । ପବନ ବୋହୁ
ନ ଥିଲେ କୁଲାରେ ଅଗାଡ଼ି ମିଶା ଧାନକୁ ଉଠାଇ ଭୂଇଁରେ
ପଡ଼ିଲା କରି ଲମ୍ବ ଭାବରେ ବୃଣି ଦେବାକୁ ହୁଏ ଓ ବୃଣା
ହୋଇଥିବା ଧାନକୁ କୁଲା ଦ୍ୱାରା ବିଞ୍ଚିଲେ ଧୂଳି ଓ ଅଗାଡ଼ିସବୁ
କୁଲାବାଆ (କୁଲାର ପବନ) ଦ୍ୱାରା ଉଡ଼ିଯାଏ ଓ ଭଲ ଧାନସବୁ
ଭୂଇଁରେ ପଡ଼ିରହେ । ଉପର୍ଯ୍ୟୁପରି ଏହିପରି ପରସ୍ତ ପରସ୍ତ
କରି ଧାନକୁ ବିଞ୍ଚିଦେଲେ ଭଲ ଧାନସବୁ ଅଗାଡ଼ି ଠାରୁ
ପୃଥକ୍ ହୋଇ ଲମ୍ବ ସ୍ତୂପ ହୋଇ ଜମା ହୁଏ । ଏହି
ପ୍ରଣାଳୀକୁ ଶିଶା ପକାଇବା ବୋଲାଯାଏ ।]
[ଶି(ଶିଁ)ଶା ପଡ଼ିବା—କର୍ମବାଚ୍ୟରୂପ]

**ଶି(ଶିଂ,ଶିଁ)ଶା ଢାଳିବା**—ଦେ. କ୍ରି.—ସୀସକ ଧାତୁକୁ ତରଳାଇ ତାହାକୁ
**Śi(śiṁ,śiṅ)śā ḍhāḷibā** ଢାଳି କୌଣସି ଛିଦ୍ରକୁ ପୂର୍ଣ୍ଣ କରିବା
सीसा ढाला To fill up a hole with molten lead.
সীসা ঢালা [ଦ୍ର—ପୂର୍ବେ ରାଜଦ୍ୱାରରେ ଦଣ୍ଡିତ ବ୍ୟକ୍ତିର କାନରେ
ଶିଶା ଢାଳି ତାକୁ ମାରି ପକାଉଥିଲେ ।]

**ଶି(ଶିଂ,ଶିଁ)ଶି**—ବୈଦେ. ବି.—୧ । ( ଫା. ଶିଶୀ )—କାଚର କ୍ଷୁଦ୍ର
**Śi(śiṁ, śiṅ)śi** ବୋତଲ—Glass phial. [ଦ୍ର—ଶିଶିରେ
शिशि শিশি ରଖାଯିବା ପଦାର୍ଥର ନାମ ଶିଶି ପୂର୍ବରେ ଯୁକ୍ତହେଲେ
ତତ୍ ପଦାର୍ଥ ରଖିଥିବା ଶିଶି ବୋଲି ଜଣାଯାଏ । ଯଥା—
ଅତର ଶିଶି, ଲେଭେଣ୍ଡର ଶିଶି, ତେଲ ଶିଶି, ଔଷଧ
ଶିଶି । ଶିଶିରେ ରହିବା ପଦାର୍ଥର ପରିମାଣ ଅନୁସାରେ
ଶିଶିର ନାମ ମଧ୍ୟ ଦିଆଯାଏ । ଯଥା—ଅଧଆଉନ୍‌ସିଆ
ଶିଶି, ଦୁଇ ଆଉନ୍‌ସିଆ ଶିଶି, ଡ୍ରାମ ଶିଶି ଇତ୍ୟାଦି ।]
ଦେ. ବି. (ସଂ, ଶିଶୁ)—ଶିଶୁ—Child; infant.
୨ । ପୁତ୍ର—2. son. ୩ । ଶିଷ୍ୟ—3. Disciple.

**ଶିଶିର**—ସଂ. ବି—(ଶିଶ୍ ଧାତୁ=ପ୍ଲୁତ ଗମନ କରିବା+କରଣ. ଇର।
**Śiśira** ନିପାତନ; ଯାହାଦ୍ୱାରା ବୃକ୍ଷାଦିର ଶୋଭା ଶୀଘ୍ର ନଷ୍ଟ ହୁଏ)
୧ । କୁହୁଡ଼ିଜଳ; ହିମ; ନୀହାର; ତୁଷାର—1. Dew.
୨ । ଶୀତଋତୁ; ପୌଷ ଓ ମାଘ ମାସ (ମତାନ୍ତରରେ ମାଘ
ଓ ଫାଲ୍‌ଗୁନ)—2. The 2 winter months,
Pausha & Māgha. ୩ । ରାମାୟଣବର୍ଣ୍ଣିତ ପର୍ବତବିଶେଷ
(ଏହାର ଶୃଙ୍ଗ ଗଗନ ସ୍ପର୍ଶୀ ଓ ଏହା ଦେବ ଦାନବଙ୍କ
ଆବାସ ସ୍ଥାନ)—3. Name of a high moun-
tain described in Rāmāyaṇa. ବିଣ.—୧ ।
ଶୀତଳ; ଥଣ୍ଡା—1 Cold; frigid. ୨ । ଜଡ଼—2
Inert. (ଉ—ବହେ ଶିଶିର ଚନ୍ଦ୍ରମା ମରଣ ଇଚ୍ଛଇ
କାହୁଁ ପଢ଼ଇ ମଦନବାଣ ବିଳାପ କରେ । ପ୍ରାର୍ଥୀ
ଉପକାରିଧି ।)

**ଶିଶିର କର**—ସ. ବି ( ଶିଶିର=ଶୀତଳ+କର=କିରଣ ଯାହାର,
**Śiśira kara** ବହୁବ୍ରୀହି)—୧ । ଚନ୍ଦ୍ର—1. The moon.
ଶିଶିର କିରଣ, ଶିଶିର ଦୀଧିତି }
ଶିଶିର ମୟୂଖ, ଶିଶିରାଂଶୁ } ଅନ୍ୟରୂପ ୨ । କର୍ପୂର—2. Camphor.
ଶିଶିରଗୁ, ଶିଶିର ଗଭସ୍ତି } ୩ । (କର୍ମଧାରୟ)
ଚନ୍ଦ୍ର କିରଣ—3. The cool rays of the moon.
[ଉ—ବାହୁ ଶ୍ରମି ହେବୁ ଉଷୀର, ବାଞ୍ଛିବ ସରବ ବେଳ
ଶିଶିର କର (୨ୟ ଓ ୩ୟ ଅର୍ଥ) । ଭଞ୍ଜ. ବୈଦେହୀଶ-
ବିଳାସ । ]

**ଶିଶିରକୁମାର ଘୋଷ**—ଦେ. ବି (ନାମ)—ବଙ୍ଗଦେଶୀୟ ପ୍ରସିଦ୍ଧ ସ୍ୱର୍ଗୀୟ
**Śiśirakumāra ghosha** ଜନହିତୈଷୀ (ଦ୍ର—ଖ୍ରୀ ୧୮୪୨—
शिशिरकुमार घोष ୧୯୧୧; ଏ ଗୌରଭକ୍ତ ବୈଷ୍ଣବ ଓ କଲିକତାର
শিশিরকুমার ঘোষ ପ୍ରଖ୍ୟାତ 'ଅମୃତବଜାର ପତ୍ରିକା' ନାମକ ସମ୍ବାଦ

ପତ୍ରର ସମ୍ପାଦକ ଥିଲେ । ମାଲକର ସାହେବମାନଙ୍କ ଅତ୍ୟାଚାରରୁ ବଙ୍ଗଦେଶର ମାଲଗୁଜାରୀମାନଙ୍କୁ ରକ୍ଷା କରିବାପାଇଁ ଏ ଘୋର ଆନ୍ଦୋଳନ ଚଳାଇଥିଲେ । ଏ ବଙ୍ଗ ଭାଷାରେ ଅମିୟ ନିମାଇ ଚରିତ ଓ ଇଂରାଜୀରେ Lord Gauranga (ପ୍ରଭୁ ଗୌରାଙ୍ଗ) ନାମକ ଶ୍ରୀଚୈତନ୍ୟ ବିଷୟକ ଗ୍ରନ୍ଥ ରଚନା କରି ଚୈତନ୍ୟଙ୍କ ବିଷୟ ପାଶ୍ଚାତ୍ୟ ଜଗତରେ ପ୍ରଖ୍ୟାତ କରି ଯାଇଅଛନ୍ତି)—Name of a Bengalee publicist, author and devotee, follower of Chaitanya.

**ଶିଶିର ଧୌତ**—ସଂ. ବି (ଶିଶିର ଦ୍ୱାରା ଧୌତ)—ଶିଶିରରେ ଧୋଇ ହୋଇ ଯାଇଥିବା ବା ଓଦା ହୋଇଥିବା—Moistened or wet with dew.
Śiśira dhauta
ଶିଶିର ବିଧୌତ, ଶିଶିରସିକ୍ତ, ଶିଶିର ସ୍ନାତ } ଅନ୍ୟରୂପ

**ଶିଶିର ପଡ଼ିବା**—ଦେ. କ୍ରି—ଶିଶିର ପଡ଼ିବା; ଘାସ ଆଦି ଉପରେ ଶିଶିର ଜମା ହେବା—The deposit of dew on exposed articles. [ଦ୍ର—ଲୋକେ କହନ୍ତି 'ଶିଶିର ପଡ଼ିବା', କିନ୍ତୁ ପ୍ରକୃତରେ ଶିଶିର ଆକାଶରୁ ପଡ଼େ ନାହିଁ । ଯେଉଁ ସମସ୍ତ ପଦାର୍ଥ ରାତିରେ ମୁକ୍ତବାୟୁରେ ରଖାଯାଇଥାଏ, ତାହା ଦେହରୁ ତାପ ବାହାରି ଯିବାରୁ ସେମାନ ଶୀତଳ ହୋଇଯାଏ ଓ ତତ୍ସନ୍ନିହିତ ବାୟୁରେ ଥିବା ଜଳୀୟବାଷ୍ପ ଏହି ଶୀତଳ ବସ୍ତୁମାନଙ୍କ ସଂସ୍ପର୍ଶରେ ଘନୀଭୂତ ହୋଇ କ୍ଷୁଦ୍ର କ୍ଷୁଦ୍ର ଜଳବିନ୍ଦୁରେ ପରିଣତ ହୁଏ ଓ ସେହି ବସ୍ତୁମାନଙ୍କ ଦେହରେ ଲାଗି ରହେ । ମେଘାଚ୍ଛନ୍ନ ରାତିରେ ପଦାର୍ଥମାନଙ୍କ ଦେହରୁ ରାତିରେ ତାପ ନ ବାହାରିବାରୁ ତହିଁ ଉପରେ ଶିଶିର ପଡ଼େ ନାହିଁ । ଗଛ ତଳେ ଥିବା ପଦାର୍ଥରେ ମଧ୍ୟ ଶିଶିର ଲାଗେ ନାହିଁ ।]
Śiśira paṛibā
ଶିଶିର ପଡ଼ା, ଓସ ପଡ଼ନା

**ଶିଶୁ**—ସଂ. ବି (ଶିଶ୍ ଧାତୁ=ଗମନ କରିବା+କର୍ତ୍ତୃ.ଉ)—୧ । ଜୀବଶାବକ; ଜନ୍ତୁଙ୍କର ଛୁଆ;—1. The young of animals. [ଦ୍ର—ବ୍ରହ୍ମପୁରାଣ ଓ ମନୁସଂହିତା ମତରେ ଜନ୍ମଠାରୁ ୮ବର୍ଷ ବୟସ୍କ ବାଳକକୁ ଶିଶୁ ବୋଲାଯାଏ । ଏମାନଙ୍କର ଭକ୍ଷ୍ୟାଭକ୍ଷ୍ୟ ବାଚ୍ୟାବାଚ୍ୟ ପ୍ରଭୃତି ଜ୍ଞାନ ନାହିଁ । ଅବର୍ଷଠାରୁ ୮ବର୍ଷ ବୟସ ପର୍ଯ୍ୟନ୍ତ ଶିଶୁର ପ୍ରଜନନଶକ୍ତିରୂପେ ମାତାପିତା ପ୍ରଭୃତି ଗୁରୁଜନ ତା ପାଇଁ ବ୍ରତାଦି ପାଳନ କରିବେ । ମନୁରେ ଅଛି ଯେ, ଜାତଶିଶୁ ଅମାବ ପର୍ଯ୍ୟନ୍ତ ସୂତିକାଗୃହରେ ରହିବ ୪ ମାସ ପୂରିଲେ ସୂର୍ଯ୍ୟଦର୍ଶନ ପାଇଁ ସୂତିକାଗାରରୁ ଏହାର ନିଷ୍କ୍ରାମଣ କରିବ । ମହାଭାରତାଶ୍ୱମେଧରେ ଅଛି ଯେ, ଶିଶୁକୁ ତ୍ୟାଗ କରି ପ୍ରବ୍ରଜ୍ୟା ଅବଲମ୍ବନ କରିବ ନାହିଁ—(ବିଶ୍ୱକୋଷ) । ] ୨ । ଆଠ (ମତାନ୍ତରରେ ୧୬) ବର୍ଷରୁ କମ୍ ବୟସ୍କ ବାଳକବାଳିକା—2. Child below 8 years. ୩ । ଦୁଧକ୍ଷିଆ ପିଲା, ଯାହାର ଅନ୍ନପ୍ରାଶନ ହୋଇ ନ ଥାଏ—3. A child not yet weaned from its mother; infant. ୪ । କୁମାର; କାର୍ତ୍ତିକେୟ (ବିଶ୍ୱକୋଷ)—4. Kārttikeya. ୫ । ଡିମ୍ବ; ଅଣ୍ଡା—5. Egg. ବିଣ. ଅଳ୍ପ ଅଳ୍ପବୟସ୍କ—Of tender age. ଦେ. ବି—
Śiśu
ପ୍ରଥମ ଅର୍ଥରେ ଅନ୍ୟ ସଂ.ନାମ—ପୋତ, ପାକ, ଅର୍ଭକ, ଡିମ୍ବ, ପୃଥୁକ, ଶାବକ, ଶାବ, ଅର୍ଭ, ଶିଶୁକ, ପୋତକ, ଉଷ୍ଣକ, ଗର୍ଭ ।
ଅନ୍ୟ ସଂ. ନାମ—

**ଶିଂଶପା**, ପିଚ୍ଛିଳା, ଶ୍ୟାମା, ୧ । (ସଂ.ଶିଂଶପା)—ସାରବାନ୍ କଠିନ କୃଷ୍ଣସାର, ଅଗୁରୁ, କପିଳା କାଷ୍ଠବିଶିଷ୍ଟ ପାର୍ବତ୍ୟ ବୃକ୍ଷବିଶେଷ—
ଭସ୍ମଗର୍ଭା, ଶୀଷପା 1. A timber tree; the black wood; Sissoo tree; Dalbergia Sissoo. [ଦ୍ର—ବୈଦ୍ୟଶାସ୍ତ୍ର ଅନୁସାରେ ଏହା କଟୁ ତିକ୍ତ କଷାୟ ରସ, ଉଷ୍ଣବୀର୍ଯ୍ୟ, ଅଗ୍ନିବର୍ଦ୍ଧକ ଓ ଗର୍ଭପାତକ, ଓ ଶୋଷ ମେଦ, କୁଷ୍ଠ, ଶ୍ୱିତ୍ର, ବ୍ରଣ, କୃମି, ବସ୍ତିବେଦନା, ବ୍ରଣ, ଦାହ, ରକ୍ତଦୋଷ ଓ କଫନାଶକ । ଶ୍ୱେତ, ପୀତ, କୃଷ୍ଣଭେଦରେ ଶିଶୁଗଛ ୩ ପ୍ରକାର । ସମସ୍ତଙ୍କ ଗୁଣ ପ୍ରାୟ ସମାନ । ଦ୍ରବ୍ୟଗୁଣ କଳ୍ପଦ୍ରୁମର ବର୍ଣ୍ଣନାନୁସାରେ ଶ୍ୱେତ, ଶ୍ୟାମଳ ଓ କପିଳବର୍ଣ୍ଣଭେଦରେ ଶିଶୁ ଗଛ ୩ ପ୍ରକାର ।

ଏହି ଶିମ୍ବାଦିବର୍ଗର ଉଚ୍ଚ ତରୁବିଶେଷ; ପତ୍ର ଏକୋତ୍ତର; ପତ୍ର ଅଣ୍ଡାକାର; ବର୍ଷକୁ ବର୍ଷ ଗଛରୁ ପୁରୁଣା ପତ୍ର ଝଡ଼ି ପୁଣି ନୂଆ ପତ୍ର ବାହାରେ; ଶରତକାଳେ ଫୁଲ ଧରେ; ଏହାର ଛୁଇଁ ଲମ୍ବ ଓ ପ୍ରତ୍ୟେକ ଛୁଇଁରେ ୧ଠାରୁ ୩ ପର୍ଯ୍ୟନ୍ତ ମଞ୍ଜି ଥାଏ । ଗଡ଼ଜାତର ପାର୍ବତ୍ୟପ୍ରଦେଶରେ ଶିଶୁ ଗଛ ପ୍ରଚୁର ପରିମାଣରେ ଜନ୍ମେ । ମୃତ୍ତିକାବହୁଳ ପ୍ରଦେଶରେ ଯେଉଁ ଶିଶୁ ଗଛ ଜନ୍ମେ ତାହା ଯାହାଡ଼ୁଅ ଶିଶୁ କାଠ ପରି ଝାଉଁଆ ହୁଏ । ସାଧାରଣତଃ ଶିଶୁକାଠ କଳା ଓ ନାଲି ରଙ୍ଗର ଦେଖାଯାଏ । ଏ କାଠ ଏପରି ଭାରି ଯେ, ପାଣିରେ ବୁଡ଼ିଯାଏ । ସବୁ କାଠ ମଧ୍ୟରେ ଏହା ଖୁବ୍ କଠିନ । ଏଥିରେ ଖଟ, ପଲଙ୍କ, ଆଲମାରୀ ଆଦି ତିଆରି ହୁଏ । ଏ କାଠରୁ ଏକପ୍ରକାର ତେଲ ବାହାରେ । ଏହା ଜଳାଯାଏ ଏବଂ ଔଷଧରେ ବ୍ୟବହୃତ ହୁଏ । ଶିଶୁ ଗଛ ବଢ଼ିବା ସମୟରେ ଭୂମିରୁ ମାଟି ଓ ପଥର ଇତ୍ୟାଦି ଟାଣି ନେଇଥାଏ । ଓ ତାହା କାଠ ହେବା ସମୟରେ କାଠ ଭିତରୁ ବାହାରେ । କପିଳ ବର୍ଣ୍ଣର ଶିଶୁକାଠ ତିକ୍ତରସ, ଶୀତବୀର୍ଯ୍ୟ, ଶାନ୍ତିକାରକ ଓ ବାତ, ପିତ୍ତ, ଜ୍ୱର, ହିକ୍କା ଓ ବମନ ରୋଗରେ ଉପକାରକ ।]

୨ । କରଣ ବୈଷ୍ଣବମାନଙ୍କର ବଂଶୋପାଧିବିଶେଷ—2. A family title of Karaṇa Baishṇabas [ଦ୍ର—ପୁରୀ ଜିଲ୍ଲାର ବାଲିପାଟଣା ଗ୍ରାମରେ ଏହି ଉପାଧିଧାରୀ କରଣ ବୈଷ୍ଣବ ଅଛନ୍ତି ।]

**ଶିଶୁଅ**—ଦେ. ବି (ସ. ଶିଂଶପା)—ଶିଶୁ ଗଛ (ଶିଶୁ ୫ ଦେଖ)—
Śisuā Sissoo tree (Śisu 5 see)
শিশু शीशम

**ଶିଶୁକ**—ସ. ବି (ଶିଶୁ+ସ୍ୱାର୍ଥେ ବା ଭୂଲ୍ୟାର୍ଥେ କ)—୧। ଶାବକ—
Śiśuka 1. Young of animals. ୨।
[ଅନ୍ୟ ସ. ନାମ—ଉଲୂପୀ, ଶିଶୁମାର; ଶୂଶୂକ, ଜଳଜନ୍ତୁ-ଗୁଳପୀ, ଚଳଙ୍କୀ] ମତ୍ସ୍ୟବିଶେଷ—2. Gangetic dolphin; porpoise; Delphinos Delphis. ୩। ଶିଶୁ ଗଛ—3. Dalbergia Sissoo tree. ୪। କୁଣ୍ଡଳ ସର୍ପବିଶେଷ (ଶବ୍ଦକୋଷ)—4. A kind of coiled serpent ୫। ବାଳକ—5. Boy; male child.

**ଶିଶୁ କାଳ**—ସ. ବି—ବାଲ୍ୟକାଳ—
Śiśu kāḷa Childhood.

**ଶିଶୁ କ୍ରନ୍ଦନ**—ସ. ବି (୬ଷ୍ଠୀ ତତ୍)—ଶିଶୁର ରୋଦନ—
Śiśu kranda The crying of a child.

**ଶିଶୁ କ୍ରୀଡ଼ା**—ସ. ବି—ପିଲାମାନଙ୍କ ଖେଳ—
Śiśu krirdā A child's play.
(ଶିଶୁଖେଳା—ଅନ୍ୟରୂପ)

**ଶିଶୁ କ୍ଲାସ୍**—ଦେ. ବି (ଅଧୁନାତନ)—ଶିଶୁ ଶ୍ରେଣୀ (ଦେଖ)
Śiśu klās Śiśu śreṇī (See)
শিশুক্লাস बच्चावर्ग (ଶିଶୁଶ୍ରେଣୀ—ଅନ୍ୟରୂପ)

**ଶିଶୁ ଗୀତ**—ସଂ. ବି—୧। ନାନାବାୟା ଗୀତ; ଶିଶୁମାନଙ୍କ ବୋଲିବା ଗୀତ
Śiśu gīta 1. Nursery songs. ୨। ଶିଶୁ-ରଞ୍ଜନ ଗୀତ—2. Songs for pleasing children; cradle songs.

**ଶିଶୁ ଚର୍ଯ୍ୟା**—ସଂ. ବି—ଶିଶୁପାଳନ (ଦେଖ)
Śiśu Charjyā Śiśupāḷana (See)

**ଶିଶୁ ଚାନ୍ଦ୍ରାୟଣ(କୃଚ୍ଛ୍ର)**—ସଂ. ବି—ସ୍ୱଳ୍ପ ଚାନ୍ଦ୍ରାୟଣ; ସହଜସାଧ ଚାନ୍ଦ୍ରାୟଣ
Śiśu chāndrāyaṇa(kruchchhra) ବ୍ରତବିଶେଷ-
A kind of easily accomplishable religious penance. [ବି—ଏ ବ୍ରତରେ କଠୋରତା ଅଳ୍ପ। ବ୍ରାହ୍ମଣ ସଂଯତଚିତ୍ତ ହୋଇ ପ୍ରାତଃକାଳରେ ଚାରି ଗ୍ରାସ (ଗ୍ରାସ) ମାତ୍ର ଅନ୍ନ ଓ ସୂର୍ଯ୍ୟାସ୍ତ ପରେ ଚାରି ଗ୍ରାସମାତ୍ର ଅନ୍ନଭୋଜନ କରି ଏ ବ୍ରତ ପାଳନ କରିବେ। ତନ୍ତ୍ରର ଦ୍ରାସବୃଦ୍ଧି ନିର୍ବିଶେଷରେ ଏହି ନିୟମରେ ଆହାର କରିବାକୁ ହୁଏ—ଶବ୍ଦକୋଷ।]

**ଶିଶୁ ତେଲ**—ଦେ. ବି—ଶିଶୁ କାଠରୁ ଅଗ୍ନି ସାହାଯ୍ୟରେ ବାହାର କରା-
Śiśu tela ଯିବା ତେଲ—Oil extracted from the
শিশুকাঠেরতেল सिसमकातेल Sissoo wood. [ବି—
ଏହା ଗର୍ମି ରୋଗରେ ବ୍ୟବହୃତ ହୁଏ।]

**ଶିଶୁତ୍ୱ**—ସ. ବି—(ଶିଶୁ+ଭାବ. ତ୍ୱ)—ଶିଶୁଭାବ; ଶୈଶବ—
Śiśutwa Childhood.

**ଶିଶୁ ଦାମ ଦାସ**—ଦେ. ବି—ଭଞ୍ଜୀୟ ଯୁଗର (ଖ୍ରୀ ୧୭୦୦-୧୮୫୦ର)
Śiśu dāma dāsa ଶେଷ ଭାଗର ଓଡ଼ିଆ କବି—Name of an Oriya poet of the later Bhanja period. [ବି—ସେ ପୁରୀର ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି ବିଷୟରେ 'ଦାରୁ ବ୍ରହ୍ମଗୀତା' ନାମକ ଗୋଟିଏ ପଦ୍ୟଗ୍ରନ୍ଥ ଏ ରଚନା କରିଥିଲେ।

**ଶିଂଶୁପା**—ଦେ. ବି—(ସ. ଶିଂଶପା) (ଦେଖ)
Śiśupā Simsapa (See)
শিশু सीसम (ଉ—ଶିଂଶୁପା ବୃକ୍ଷର ଛାଳେ ବନ୍ଦୁ ମନେ ମନେ ଭାଳେ
ରଘୁନାଥ. ବଡ଼ଜ ରାମାୟଣ)

**ଶିଶୁ ପାଠ**—ସ. ବି. (୬ଷ୍ଠୀତତ୍)—୧। ଶିଶୁମାନଙ୍କ ପଢ଼ିବା ଲାଗନ୍ତ୍ରେ
Śiśu pāṭha ଅଭିପ୍ରେତ ପୁସ୍ତକ—A book readable by children. ୨। ଯେଉଁ ପାଠକୁ ଶିଶୁମାନେ ଘୋଷି କରି ପଢ଼ନ୍ତି—A lesson to be got by heart by children. (ଉ—ବନ୍ଧନ ଗନ୍ଧନ ଗାମୀ ହେଉ ସାମ, ଶିଶୁପାଠ ପରି ଘୋଷେ। ଭଞ୍ଜ—ବୈଦେହୀଶବିଳାସ)

**ଶିଶୁ ପାଠ୍ୟ**—ସ. ବିଣ (ଷଷ୍ଠୀତତ୍)-ଶିଶୁମାନଙ୍କର ପଢ଼ିବା ଉପଯୋଗୀ--
Śiśu pāṭhya Fit to be read by children; intended to be read by children.

**ଶିଶୁପାଳ**—ସ. ବି.—(ନାମ)—ଚେଦିରାଜ ଦମଘୋଷଙ୍କ ଔରସରେ
Śiśupāḷa ବସୁଦେବଙ୍କ ଭଗ୍ନୀ ଶ୍ରୁତଶ୍ରବାଙ୍କ ଗର୍ଭଜାତ ପୁତ୍ର—
Name of the son of Damaghosha, the king of Chedi, who was killed by Śri-krushṇa. [ବି—ଶ୍ରୀକୃଷ୍ଣଙ୍କ ହାତରେ ଏହାଙ୍କ ମୃତ୍ୟୁ ଘଟିବାର ଭବିଷ୍ୟଦ୍ ବାଣୀ ପୂର୍ବରୁ ଅବଗତ ହୋଇ ଏହାଙ୍କର ଶତ ଅପରାଧ ମାର୍ଜ୍ଜନା କରିବା ପାଇଁ ଶ୍ରୁତଶ୍ରବା ଆପଣା ଭ୍ରାତୃଷ୍ପୁତ୍ର ଶ୍ରୀକୃଷ୍ଣଙ୍କୁ କହିଥିଲେ ଓ ଶ୍ରୀକୃଷ୍ଣ ଏଥିରେ ସମ୍ମତ ହୋଇ ଥିଲେ। ଦମଘୋଷ ଓ ତାହାଙ୍କ ପୁତ୍ରମାନେ ଶ୍ରୀକୃଷ୍ଣ ବିଦ୍ୱେଷୀ ଜରାସନ୍ଧର ଅନୁଗତ ଥିଲେ। ଭୀଷ୍ମକରାଜ କନ୍ୟା ରୁକ୍ମିଣୀ ଶ୍ରୀକୃଷ୍ଣଙ୍କୁ ମନେ ମନେ ସ୍ୱାମୀରୂପେ ବରଣ କରିଥିଲେ। କିନ୍ତୁ ଜରାସନ୍ଧଙ୍କ ଅନୁରୋଧରେ ଭୀଷ୍ମକରାଜ ରୁକ୍ମିଣୀଙ୍କ ଶିଶୁପାଳଙ୍କୁ ବିବାହ ଦେବାପାଇଁ ସ୍ୱୀକୃତ ହେଲେ। ରୁକ୍ମିଣୀ ଏହା ଜାଣି ଶ୍ରୀକୃଷ୍ଣଙ୍କୁ ଆପଣାର ପ୍ରେମ ଜଣାଇ ଗୋପନରେ ସମ୍ବାଦ ପଠାଇଲେ। ଶିଶୁପାଳ ବରବେଶରେ ଯାଇ ଭୀଷ୍ମକ ରାଜଧାନୀ ବିଦର୍ଭରେ ଉପସ୍ଥିତ ହେଲେ। ରୁକ୍ମିଣୀଙ୍କର ତାଙ୍କ ପ୍ରତି ପ୍ରେମ ଓ ଆସକ୍ତି ଥିବା ଜାଣି ଶ୍ରୀକୃଷ୍ଣ ସେଠାରେ ଉପସ୍ଥିତ ହୋଇ ରୁକ୍ମିଣୀଙ୍କୁ ନିଜେ ବିବାହ କରିବା ପାଇଁ ହରଣ କଲେ ଓ ବାଧ୍ୟହୋଇ ଶିଶୁପାଳ ଅପମାନିତ, ବିମର୍ଷ ଓ ବିଫଳମନୋରଥ ହୋଇ ବିବାହ ବେଶରୁ ଫେରି ଆସିଲେ। (କୌଣସି ବ୍ୟକ୍ତି ବ୍ୟର୍ଥମନୋରଥ ହୋଇ ଫେରି ଆସିଲେ ଏହି ଘଟଣାକୁ ଲକ୍ଷ୍ୟ କରି ଲୋକେ କହନ୍ତି ଉକ୍ତବ୍ୟକ୍ତି 'ଶିଶୁପାଳ ବା ଶିଶୁପାଳଆ' ହୋଇଗଲା; କିମ୍ବା ଅମୁକ ବ୍ୟକ୍ତି ଉକ୍ତ ବ୍ୟକ୍ତିଙ୍କୁ ଶିଶୁପାଳଆ କରାଇ ଦେଲା।]

ପାଣ୍ଡବମାନଙ୍କର ରାଜସୂୟ ଯଜ୍ଞକାଳରେ ଶିଶୁପାଳ ଶ୍ରୀକୃଷ୍ଣଙ୍କ ବିରୁଦ୍ଧରେ ଠିଆ ହେବାରୁ ସେ ସମୟରୁ ତାହାର ଅପରାଧ ଶହ ହେବାରୁ ବଳ ଯାଇଥିବାରୁ ଶ୍ରୀକୃଷ୍ଣ ଏହାର ପ୍ରାଣ ସଂହାର କଲେ । ] ଦେ. ବି (ନାମ)—୧ । କେଶରୀ ବଂଶର ଜଣେ ରାଜା ( ଖ୍ରୀଷ୍ଟୀୟ ଅଷ୍ଟମ ବା ନବମ ଶତାବ୍ଦୀ; ଏ ଶିଶୁପାଳ ଗଡ଼ ନିର୍ମାଣ କରିଥିଲେ )—1. Name of a king of the Kesarī dynasty who erected the Śiśupāla garh. ୨ । ଭୁବନେଶ୍ୱର ନିକଟବର୍ତ୍ତୀ ଗ୍ରାମବିଶେଷ—2. Name of a village near Bhubaneśwara in the district of Puri. [ଦ୍ର—ଏହା ପୁରୀ ଜିଲ୍ଲା ଭୁବନେଶ୍ୱରର ଦକ୍ଷିଣ ପୂର୍ବରେ ଗଙ୍ଗୁଆ ନଦୀକୂଳରେ ଥିବା ଗୋଟିଏ ଗ୍ରାମ । ଏଠାରେ ପ୍ରାଚୀନ ଗଡ଼ର ପ୍ରାଚୀର ଓ ଭଗ୍ନାବଶେଷ ଅଛି । କେଶରୀ ବଂଶୀୟ ରାଜା ଶିଶୁପାଳ କେଶରୀ ଏ ଦୁର୍ଗ ନିର୍ମାଣ କରିଥିଲେ—ଭୂଗୋଳସିନ୍ଧୁ, ଉତ୍କଳ ଇତିହାସ ।

ପରେ ଓଡ଼ିଶାରେ ଗଙ୍ଗ ବଂଶୀୟ ରାଜାମାନେ ରାଜା ହେବାରୁ କେଶରୀ ବଂଶୀୟ ରାଜା ଓଡ଼ିଶା ରାଜାଙ୍କ ଅଧୀନ ଜଣେ ସାମନ୍ତ ରାଜାରୂପେ ଏଠାରେ ରହିଲେ । ଅନଙ୍ଗଭୀମ ଦେବଙ୍କ ପୁତ୍ର ଲାଙ୍ଗୁଲା ନରସିଂହ ଦେବ ଯୁବରାଜ ହୋଇ ଶିଶୁପାଳ ଅଞ୍ଚଳକୁ ଯାଇଥିବା ବେଳେ ଏହି ସାମନ୍ତ ରାଜାଙ୍କ କନ୍ୟା ମାୟାଦେବୀଙ୍କର ଯୁବରାଜଙ୍କ ସଙ୍ଗେ ପ୍ରଣୟ ହୋଇଥିଲା । ଦୁହେଁ ବିବାହ ବନ୍ଧନରେ ଯୁକ୍ତ ହେବେ ବୋଲି ମାୟାଦେବୀ ଆଶା କରିଥିଲେ । କିନ୍ତୁ ନରସିଂହ ଦେବ ରାଜା ହୋଇ ଜମ୍ମୁ ରାଜ୍ୟର ରାଜକୁମାରୀଙ୍କୁ ବିବାହ କଲେ । ପଣ୍ଡିତ ଗୋଦାବରୀଶ ମିଶ୍ର ଏହି ଘଟଣାକୁ ଲକ୍ଷ୍ୟ କରି ତାଙ୍କ 'କୋଣାର୍କ' କାବ୍ୟର ୨ୟ ଭାଗ ରଚନା କରିଅଛନ୍ତି । ]

**ଶିଶୁ ପାଳକ**—ସ. ବି—୧ । ( ଶିଶୁପାଳ+ସ୍ୱାର୍ଥେ କ )—ଶିଶୁପାଳ
Śiśu pālaka ( ଦେଖ )—1. Śiśupāla ( See )
(ଶିଶୁପାଳକା—ସ୍ତ୍ରୀ) ୨ । ( ସ. ୬ଷ୍ଠୀ ତତ୍; ଶିଶୁ+ପାଳକ ) ଶିଶୁ ପାଳନକର୍ତ୍ତା—2. One who brings up a child.

**ଶିଶୁପାଳ କରିବା**—ଦେ. କ୍ରି—ଶିଶୁ ପାଳିଆ କରିବା ( ଦେଖ )
Śiśupāla kariba Śiśu pāliā kariba ( See )
ଅପ୍ରସ୍ତୁତ କରା सरमिंदा करना
(ଶିଶୁପାଳ କରା[କେ]ଇବା, ଶିଶୁପାଳ କରି ଛାଡ଼ିବା—ଅନ୍ୟରୂପ)

**ଶିଶୁ ପାଳନ**—ସ. ବି ( ୬ଷ୍ଠୀ ତତ୍ )—ପିଲାମାନଙ୍କର ଖାଦ୍ୟ ଓ ସ୍ୱାସ୍ଥ୍ୟ
Śiśu pālana ପ୍ରତି ଯତ୍ନ ନେଇ ପିଲାଙ୍କୁ ବଢ଼ାଇବା—Rearing up of children; bringing up of infants.

**ଶିଶୁପାଳ ବଧ**—ସ. ବି ( ୬ଷ୍ଠୀ ତତ୍ )—୧ । ଶ୍ରୀକୃଷ୍ଣଙ୍କଦ୍ୱାରା ପାଣ୍ଡବ-
Śiśupāla badha ମାନଙ୍କ ରାଜସୂୟ ଯଜ୍ଞରେ ଶିଶୁପାଳର ବିନାଶ—1. The murder of Śiśupāla by Śrīkṛushṇa. ୨ । ମାଘ କବିଙ୍କ ରଚିତ ବିଖ୍ୟାତ ସଂସ୍କୃତ କାବ୍ୟ—2. Title of an epic poem in Sanskrit by poet Māgha.

**ଶିଶୁପାଳ ବନିବା**—ଦେ. କ୍ରି—ଶିଶୁପାଳିଆ ବନିବା ( ଦେଖ )
Śiśupāla banibā Śiśupāliā banibā (See)
ଅପ୍ରସ୍ତୁତ ହେଓ୍ୱା सरमिंदा बनना
( ଶିଶୁପାଳ ହେବା—ଅନ୍ୟରୂପ )

**ଶିଶୁପାଳିଆ**—ଦେ. ବି—ଶିଶୁପାଳ ପରି ଅପମାନିତ, ଲଜ୍ଜିତ ଓ ବ୍ୟର୍ଥ-
Śiśupāliā ମନୋରଥ—Crest fallen; insulted and
ଅପ୍ରସ୍ତୁତ सरमिंदा disappointed (like Śiśupāla).

**ଶିଶୁପାଳିଆ କରିବା**—ଦେ. କ୍ରି ( ଲକ୍ଷଣାର୍ଥ )—(ଶ୍ରୀକୃଷ୍ଣ ରୁକ୍ମିଣୀଙ୍କୁ
Śiśupāliā kariba ହରଣ କରିବା ସମୟରେ ବରବେଶରେ
ଶିଶୁପାଳିଆ କରି ଛାଡ଼ିବା } ଅନ୍ୟରୂପ ବିଦର୍ଭରେ ଉପସ୍ଥିତ
ଶିଶୁପାଳିଆ କରା(କେ)ଇବା } ଶିଶୁପାଳ ପରି)
शिशुपाल करना କୌଣସି ବ୍ୟକ୍ତିଙ୍କୁ ଅପମାନିତ ଓ ବ୍ୟର୍ଥମନୋରଥ
सरमिंदा करना କରିବା—To insult and frustrate the wishes of a person (as was done by Śrīkṛushṇa by taking away Rukmiṇī, to marry whom Śiśupala had come to Bidarbha as the bridegroom-elect.

**ଶିଶୁପାଳିଆ ବନିବା**—ଦେ. କ୍ରି—(ଲକ୍ଷଣାର୍ଥ)—ଶିଶୁପାଳ ପରି ଅପଦସ୍ତ
Śiśupāliā banibā ଓ ଲଜ୍ଜିତ ହେବା—To be insulted, frustrated and crest-fallen
शिशुपाल होना
सरमिंदा बनना (होना) (like Śiśupāla.)
[ଶିଶୁପାଳିଆ ହେବା—ଅନ୍ୟରୂପ]

**ଶିଶୁ ପ୍ରକୃତି**—ସ. ବି ଓ ବିଣ—(୬ଷ୍ଠୀ ତତ୍ ଓ ବହୁବ୍ରୀହି)—ଶିଶୁ ସ୍ୱଭାବ
Śiśu prakṛuti (ଦେଖ) Śiśu swabhāba (See)

**ଶିଶୁ ବାଳକ**—ଦେ. ବି—(ପୁଂ)—ଅଳ୍ପ ବୟସ ପିଲା—
Śiśu bālaka Male child.
ছোট ছেলে छोटा लड़का [ଶିଶୁ ବାଳିକା—ସ୍ତ୍ରୀ]

**ଶିଶୁ ବାଳିକା**—ଦେ. ବି (ସ୍ତ୍ରୀ)—ସାନ ପିଲା; ଅଳ୍ପବୟସ୍କା କନ୍ୟା—
Śiśu bālikā Female child; infant-girl
কচি মেয়ে छोटी लड़की

**ଶିଶୁ ବୁଦ୍ଧି**—ସ. ବି—(୬ଷ୍ଠୀ ତତ୍; ମ. ପ. ଲୋ)—୧ । ପିଲାର ବୁଦ୍ଧି—
Śiśu budhi 1. The intelligence or understand-
[ଶିଶୁ ମତି—ଅନ୍ୟରୂପ] ing of a child. ୨ । (ଗୌଣାର୍ଥ) ପିଲାଳିଆ ବୁଦ୍ଧି—2. Childshness; puerility. ବିଣ ପୁଂ ଓ ସ୍ତ୍ରୀ—(ବହୁବ୍ରୀହି)—୧ । ଶିଶୁ ପରି ଅପରି-ପକ୍ୱ ବୁଦ୍ଧିବିଶିଷ୍ଟ; ସ୍ଥୂଳମାର ମତି—1. Of slender or raw understanding. ୨ । (ଗୌଣାର୍ଥ)—ପିଲାଳିଆ—2. Childish; puerile.

**ଶିଶୁ ବେଦ**—ଦେ. ବି—(ଗଣ୍ଡାର ଭେଦ)—୧ । ଅଣାକାର ମତାବଲମ୍ବୀ
Śiśu beda ମାନଙ୍କର ପଞ୍ଚମ ବେଦ; ଶୂନ୍ୟ ପୁରାଣ ବା ବ୍ରହ୍ମବେଦ—1. The fifth Beda of the holders of the Aṇākāra tenets. ୨ । ସୁଷୁମ୍ନା (ଦେଖ)—

Sushumna (See) [ଢ଼—ଭୁ ଥିବୁ ଶିଶୁବେଦ ଘରେ, ମୁଁ ଥିବ ତାଙ୍କର ଗୋଡରେ—ପ୍ରାଚୀ. ଜଗୁଁଶମାହାତ୍ମ୍ୟ ।]

ଶିଶୁ ବୋଧ—ଦେ. ବି—ଶିଶୁମାନଙ୍କର ବୁଝିପାରିବାଭଳ ବିଷୟ ତା
Śiśu bodha ପାଠ୍ୟବସ୍ତୁ—A matter, lesson or book
শিশুবোধ शिशुबोध which is fit for children.

ଶିଶୁ ବୋଧ୍ୟ—ସ. ବି—(କର୍ମ୍ମ ତତ୍)—ପିଲାମାନେ ଯାହା ସହଜରେ
Śiśu bodhya ବୁଝି ପାରବେ—Which can be easily understood by children.

ଶିଶୁ ମଙ୍ଗଳ—ସ. ବି (ଅଧୁନିକ ପ୍ରୟୋଗ)—ଶିଶୁ ଜୀବନର ସର୍ବାଙ୍ଗୀଣ
Śiśu mangala ଉନ୍ନତି ବିଧାନୋପାୟ—
শিশুমঙ্গল शिशुमङ्गल Child-welfare.

ଶିଶୁମାର—ସ. ବି (ଶିଶୁ+ମୃ ଧାତୁ ଣିଚ୍=ମାର ଧାତୁ+ କର୍ତ୍ତୃ. ଅ)—
Śiśumāra ୧ । ଶୁଶୁକ; ଶିଶୁକ; ଭୁଅସୁଣୀ ମାଛ—
1. Porpoise; the Gangetic dolphin; Plantanista Gangetica. (ଢ଼—ଶିଶୁମାର ଖେଳେ ତରଙ୍ଗେ ଉଲଟ. ଉଠି ବୁଡ଼ଇ ନ ଯଦ୍ଧ ନେକ୍ରେ ଯଷ୍ଠୀ । ରାଧାନାଥ. ଚିଲିକା ।) [ଦ୍ର—ଏ ଜୀବର ମୁହଁ ପାଖରେ ସିନ୍ଦୂର ଭଳି ଲାଲ ଚିହ୍ନ ଦେଖା ଯିବାରୁ ଭୁଅସୁଣୀ (କୁଳବଧୂଙ୍କ କପାଳରେ ସିନ୍ଦୂରକୁ ଲକ୍ଷ୍ୟ କରି ଲୋକେ ଏ ନାମ ଦେଇଛନ୍ତି; ଏହା ଜଳଚର ସ୍ତନ୍ୟପାୟୀ ଆକୃଷ୍ଟ ଜୀବ ବିଶେଷ; ଗଙ୍ଗା, ବ୍ରହ୍ମପୁତ୍ର ଓ ସିନ୍ଧୁନଦୀରେ ଦେଖାଯାଏ । ଏହାର ଦେହ ଧୂସରୁ ଉପର କଳା ବା ଧୂସର ବର୍ଣ୍ଣ । ଏ ନିଶ୍ୱାସ ମାରିବାକୁ ମଝିରେ ମଝିରେ ପାଣିଉପରକୁ ଉପରକୁ ଉଠି, ତାପରେ ଲେଉଟି ପୁଣି ବୁଡ଼ିଯାଏ । ଏ ହିଂସ୍ର ନୁହେଁ ଓ ଏହାକୁ ଆକ୍ରମଣ କଲେ ମୁହଁ ଦ୍ୱାରା 'ଶୁ, ଶୁଁ' ଶବ୍ଦ କରି ଆକ୍ରମଣକାରୀ ଆଡ଼କୁ ପାଣି ପିଙ୍ଗେ ।] ୨ । ଜନୈକ ପ୍ରଜାପତି—2. Name of a mythological progenitor of mankind, (ଢ଼—ସେ ଶିଶୁମାର ପ୍ରଜାପତି, ତା କନ୍ୟା ଭୂମି ଗୁଣବତୀ; ରୂପେ କମଳା ସମସରି, ବିବାହେ କନ୍ୟା ଧ୍ରୁବେ ବରି । ଜଗନ୍ନାଥ. ଭାଗବତ ।) [ଦ୍ର—ଏହାଙ୍କ କନ୍ୟାଙ୍କ ନାମ ଭୂମି । ଏହି କନ୍ୟା ଧ୍ରୁବଙ୍କୁ ବିବାହ କରିଥିଲେ । ଭୂମିଙ୍କ ଗର୍ଭରୁ କଳ୍ପ ଓ ବତ୍ସର ନାମକ ଦୁଇ ସନ୍ତାନ ଜନ୍ମିଥିଲେ ।] ୩ । ଶିଶୁମାର ପୁଞ୍ଜ (ଦେଖ)—3. The Lesser Bear constellation. ୪ । ଫଳିତ ଜ୍ୟୋତିଷୋକ୍ତ ତାରକା ଚକ୍ର ବିଶେଷ—4. Name of a circular figure of the stars in Hindu astrology. [ଦ୍ର—ଏହା ଶିଶୁମାରଙ୍କର ଅନୁରୂପକର ।]

ଶିଶୁମାର ଚକ୍ର—ସ. ବି—୧ । ଶିଶୁମାର ପୁଞ୍ଜ (ଦେଖ)—
Śiśumāra chakra 1. Śiśumāra puñja. (See)
(ଢ଼—ସେ ଶିଶୁମାର ଚକ୍ରତଳେ, ଚନ୍ଦ୍ର ଅଦିତ୍ୟ ତାରା ମେଳେ, କଡ଼ିବେ ଭ୍ରମନ୍ତି ପ୍ରଦକ୍ଷିଣେ, ସେମାନଙ୍କ ବିନ୍ଦୁ ଅବସରେ । ଜଗନ୍ନାଥ. ଭାଗବତ । ବାମ ଭାଗରୁ ଯେ ଭ୍ରମନ୍ତି, ସେ ଶିଶୁମାର ଚକ୍ରେ ପୁଚ୍ଛ । ଯଶୋବନ୍ତ. ଚୈତନ୍ୟ ଭକ୍ତି ବ୍ରହ୍ମଗୀତା ।) ୨ । ଶିଶୁମାର ୪ (ଦେଖ)—
2. Śiśumāra 4. (See)

ଶିଶୁମାର ପୁଞ୍ଜ(ମଣ୍ଡଳ)—ସ. ବି (ଜ୍ୟୋତିଷ)—ଧ୍ରୁବମଣ୍ଡଳ ନକ୍ଷତ୍ର
Śiśumāra puñja(maṇḍala—The Lesser Bear constellation. [ଦ୍ର—ଏହି ମଣ୍ଡଳର ପୁଚ୍ଛରେ ଧ୍ରୁବ ନକ୍ଷତ୍ର ଅଛି । ଏହି ପୁଞ୍ଜ ଉତ୍ତରାକାଶରେ ଅବସ୍ଥିତ । ଏଥିରେ ସାତୋଟି ତାରା ଅଛି । ଏହି ସାତୋଟି ତାରାବିଶିଷ୍ଟ ପୁଞ୍ଜ ସପ୍ତର୍ଷି ମଣ୍ଡଳର ଆକୃତି ବିଶିଷ୍ଟ । ଏ ପୁଞ୍ଜର ଧ୍ରୁବ ତାରା ସର୍ବଦା ନିଶ୍ଚଳ । ଏହି ଧ୍ରୁବଙ୍କୁ ମେରୁଦଣ୍ଡ କରି ଯାବତୀୟ ତାରା ଆକାଶରେ ପୂର୍ବରୁ ପଶ୍ଚିମକୁ ବୁଲୁଛନ୍ତି । ଭାଗବତ ୪ର୍ଥ ସ୍କନ୍ଧ ୧ମ ଓ ୫ମ ସ୍କନ୍ଧ ୨୩ଶ ଅଧ୍ୟାୟରେ ଶିଶୁମାରପୁଞ୍ଜ ଓ ଅନ୍ୟ ନକ୍ଷତ୍ରମାନଙ୍କ ବିଷୟ ବର୍ଣ୍ଣିତ ହୋଇ ଅଛି । ଏହା ସପ୍ତର୍ଷି ମଣ୍ଡଳର ବିପରୀତ ଅବସ୍ଥିତିରେ ଅବସ୍ଥିତ ଓ ସପ୍ତର୍ଷି ମଣ୍ଡଳର ଆକୃତିବିଶିଷ୍ଟ । ନକ୍ଷତ୍ର ଗୁଡ଼ିକ ଛୋଟ ଦେଖା ।] (ଢ଼—ସପ୍ତଋଷିଙ୍କ ଊର୍ଦ୍ଧ୍ୱପଥେ, ଜନମ ସଙ୍ଗେ ଧ୍ରୁବ ଅଥେ, ବସିକୁ ଶିଶୁମାର ପଛେ, ଉତ୍ତର ବଗେ ଭୁ ପ୍ରତ୍ୟକ୍ଷେ । ଜଗନ୍ନାଥ. ଭାଗବତ ।)

ଶିଶୁମଣା(ନା)—ଦେ. ବି—(ସଂ, ସୁଷୁମ୍ନା) ସୁଷୁମ୍ନା (ଦେଖ)—
Śiśumaṇā(nā) Sushumnā (See) (ଢ଼—ଶଷ୍ଠାନାଦରେ
সুষুম্না सुषुम्ना ଶିଶୁମୁନାରେ ଛନ୍ଦିବ—ପ୍ରାଚୀ ଗୁରୁଭକ୍ତି ଗୀତା ।)

ଶିଶୁମ୍ନା—ଦେ. ବି—ସୁଷୁମ୍ନା (ଦେଖ)—Sushumnā. (See)
Śiśumnā (ଢ଼—କ ଅବା ଶିଶୁମ୍ନା ଚକ୍ର ସୁଷୁପ୍ତି ଚକ୍ରରେ ।
সুষুম্না सुषुम्ना ପ୍ରାଚୀ. ବ୍ରହ୍ମନିରୂପଣ ଗୀତା ।)

ଶିଶୁର୍—ପ୍ରାଦେ. (ମେଦନୀପୁର) ବି—ଶିଶି—
Śiśur Phial.

ଶିଶୁ ରଞ୍ଜନ—ସଂ. ବି—ଶିଶୁମାନଙ୍କର ମନକୁ ଆନନ୍ଦିତ କରିବା—
Śiśu rañjana Pleasing children; attracting the mind of children. ବିଣ—ଶିଶୁମାନଙ୍କ ଚିତ୍ତାକର୍ଷକ—Attractive to children.
(ଯଥା—ଶିଶୁରଞ୍ଜନ ଗୀତ । ଏ ଭାଷାକୋଷରେ ଅନେକ ଶିଶୁରଞ୍ଜନ ଗୀତ ଉଦ୍ଧୃତ ହୋଇଅଛି ।)

ଶିଶୁରନ୍ଧ୍ର—ଦେ. ବି—ସୁଷୁମ୍ନା ନାଡ଼ୀମଧ୍ୟରେ ଥିବା ଛିଦ୍ର—A hole
Śiśu randhra in the vein running over and
सुषुम्नाच्छिद्र along the backbone between Idā and Pingalā.
[ଢ଼—ଶିଶୁରନ୍ଧ୍ରେ ରନ୍ଧ୍ର ବାଟ ଅଛି ସେ ଠାବକୁ—ପ୍ରାଚୀ
সুষুম্নার ছাঁদা ବ୍ରହ୍ମନିରୂପଣଗୀତା ।]

ଶିଶୁ ଶଙ୍କର ଦାସ—ଓଦ. ବି (ନାମ)—(ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର
Śiśu śankara dāsa ମଧ୍ୟଭାଗରେ) ଉପେନ୍ଦ୍ର ଭଞ୍ଜଙ୍କ ପୂର୍ବ ଯୁଗର ଓଡ଼ିଆ କବି । (ଏ ଉଷାଅଭିଳାଷ କାବ୍ୟର ରଚୟିତା)
An Oriā poet of the 16th century.
[ଦ୍ର—ଏହାଙ୍କ ଉଷାଅଭିଳାଷ କାବ୍ୟକୁ ସମ୍ବଲପୁରର ପ୍ରୋଫେସର

ଅନ୍ତିବହୁର ମହାନ୍ତ ପ୍ରାଚୀନ ଭାଗବତ ପୋଥିମାନଙ୍କରୁ ସଂଗ୍ରହ କର ଟୀକା ସହିତ ପ୍ରାଚୀସମିତି ପକ୍ଷରୁ ପ୍ରକାଶ କରିଅଛନ୍ତି ।]

**ଶିଶୁ ଶବଦ**—ଦେ. ବି—ଅନାହତ ଧ୍ୱନି—Unobstructed sound
Sisu sabada or voice. (ଦ୍ର—ଶିଶୁ ଶବଦେ
ଅନାହତ शब्द ଦେଇ କର୍ଣ୍ଣ, ଚେତନେ ଠାବ କଲେ ବ୍ରହ୍ମ—ପ୍ରାଚୀ କୃଷ୍ଣ ମହାସ୍ୟ ।)

**ଶିଶୁ ଶ୍ରେଣୀ**—ସଂ. ବି (ଅଧୁନକ)—ପ୍ରାଥମିକ ବିଦ୍ୟାଳୟମାନଙ୍କରେ
Sisu sreṇi ଆଧୁନିକ କିଣ୍ଡରଗାର୍ଟେନ୍ ପଦ୍ଧତି ଅନୁସାରେ ଗଠିତ
शिशुश्रेणी शिशुवर्ग शिशुश्रेणी ଶିଶୁମାନଙ୍କ ମନକୁ ଚିତ୍ର କ୍ରୀଡ଼ା, ଗୀତ, କଥା ଓ ଉଦ୍ୟାନ ଆଦି ନାନା ଉପାୟରେ ମୋହିତ କରି ଶିକ୍ଷା ଦେବା ଉଦ୍ଦେଶ୍ୟରେ ଗଠିତଶ୍ରେଣୀମାନ
Infant classes formed in primary schools according to the modern Kindergarten system.

**ଶିଶୁ ସୁଲଭ**—ସଂ. ବି—(୬ଷ୍ଠୀ ତତ୍)—୧ । ଯାହା ଶିଶୁଠାରେ ଦେଖା
Sisu sulabha ଯାଏ—1. Found in children.
୨ । ଶିଶୁ ପକ୍ଷରେ ସହଜ—2. Easy for children

**ଶିଶୁ ସ୍ୱଭାବ**—ସଂ. ବି—(୬ଷ୍ଠୀ ତତ୍)—୧ । ଶିଶୁର ସ୍ୱଭାବ—1. The
Sisu swabhāba nature of infants. ୨ । (ଲକ୍ଷ ଅର୍ଥ) ଶିଶୁ ପରି ସରଳ ପ୍ରକୃତି ବା ସାରଲ୍ୟ—2. Child-like nature; childlike frankness or simplicity. ୩ । (ମନ୍ଦାର୍ଥ) ପିଲାଳିଆ ଚପଳ ପ୍ରକୃତି 3. Childish nature. ୪ । କୋମଳ ସ୍ୱଭାବ—4. Tenderness found in children. ବିଂ. ସୁ (ବହୁବ୍ରୀହି) ଶିଶୁର ସ୍ୱଭାବ ବିଶିଷ୍ଟ—avHing the nature of child of childish or childlike nature.

**ଶିଶୁ ହତ୍ୟା**—ସଂ. ବି—(୬ଷ୍ଠୀ ତତ୍)—ଶିଶୁମାନଙ୍କୁ ମାର ପକାଇବା—
Sisu hatyā Infanticide; killing of children.

**ଶିଶୁ ହୃଦୟ**—ସଂ. ବି—(୬ଷ୍ଠୀ ତତ୍)—୧ । ଶିଶୁର କୋମଳ ମନ—
Sisu hrudaya 1. A child's simple mind. ୨ (ଶିଶୁପରି) କୋମଳ ଓ ସରଳମନ—2. Frank and simple mind; childlike heart.

**ଶିଶୋଦିୟ**—ସଂ. ବି—ରାଜପୁତମାନଙ୍କର ଶାଖା ବିଶେଷ—
Sisodiya A class or clan of the Rājputs [ଦ୍ର—ଶୈବାନ ପ୍ରତାପ ଶିଶୋଦୀୟ ଯଶ ଗାଇ କରୁଥିଲେ ପୀୟୁଷପାନ । ନନ୍ଦକିଶୋର. କୃଷ୍ଣକୁମାରୀ ।]

**ଶିଶ୍ନ**—ସଂ. ବି—(ଶିଶ୍ ଧାତୁ=ସ୍ଖଳିତ ଗମନ କରିବା+କର୍ତ୍ତୃ ନ)—
Sisna ପୁରୁଷୋପସ୍ଥ; ଲିଙ୍ଗ; ମେଢ୍ର; ପୁରୁଷାଙ୍ଗ—Penis, male organ of generation.

**ଶିଶ୍ନୋଦର ପରାୟଣ**—ସଂ. ବିଣ ପୁଂ—ଆହାର ଓ ମୈଥୁନାସକ୍ତ—
Sisnodara parāyana Lascivious and epicurean greedy and voluptuous. [ଦ୍ର—ଯେ ଶିଶ୍ନୋଦର ପରାୟଣ, ଅସାଧୁଙ୍କ ସେ ଦୁର୍ଜନ । ଜଗନ୍ନାଥ. ଭାଗବତ ।]

**ଶିଶ୍ୱଦାନ**—ଦୃ ବିଣ—(ଶ୍ୱିତ୍ ଧାତୁ=ଶୁକ୍ଳ ବର୍ଣ୍ଣ ହେବା+ଅନ, ନିପାତ, ତ
Siswadāna =ଦ)—୧ । ନିର୍ଦ୍ଦୋଷ—1. Faultless.
୨ । ଧାର୍ମିକ—2. Pious. ୩ । ପାପକର୍ମକାରୀ—3. Doing sinful acts.

**ଶିଷ୍ (ଧାତୁ)**—ସଂ.—ଶେଷ ହେବା—
Sish (root) To be exhausted; to end.

**ଶିଷ(ଷି)**—ଦେ. ବି. ପୁଂ—(ସଂ. ଶିଷ୍ୟ)—୧ । ଶିଷ୍ୟ; ଛାତ୍ର—
Sisha(shi) 1. Pupil. [ଦ୍ର—ସେ ରୂପେ ସେ ଗଦାହେ
शिष्य शिष ଇନ୍ଦ୍ରଙ୍କର ଶିଷେ । କୃଷ୍ଣସିଂହ. ମହାଭାରତ ବନ ।].
୨ । ପୁତ୍ର—2. Son. ୩ । ଶିଶୁ—3 Infant. [ଦ୍ର—ପୁତ୍ର ଉଦରେ ଥିଲା ଉଦ୍ଭଙ୍ଗଶିଷ—ପ୍ରତାପ. ଶଶିସେଣା ।] ୪ । ସାଥୀ; ସହଚର; ସାଙ୍ଗ ପିଲା—4. Companion. [ଦ୍ର—ଏଣେ ଯେ ସଙ୍ଗର ଶିଷେ, ଘେନିଗଲେ ସେ ଉଦ୍ଦ୍ୟାନେ । ପ୍ରତାପ. ଶଶିସେଣା ।]
୫ । ବାଳକ—5. Boy. [ଦ୍ର—କଥା କହନ୍ତି କୌଶଲ୍ୟା ଶିଷ, ଭାଲ ମାରବାକୁ ଦଶାଇଷ । ବଳରାମ ରାମାୟଣ ।] ୬ । ଗୁରୁଙ୍କଠାରୁ ମନ୍ତ୍ର ଗ୍ରହଣ କରିଥିବା ବ୍ୟକ୍ତି—6. Disciple.

**ଶିଷର**—ଦେ. ବି—(ସଂ. ଶୁଷିର)—ସିଟି ମାରିବା ନଳ ଯନ୍ତ୍ର—
Sishara सिटी सीटी A whistle.

**ଶିଷୀ**—ଦେ. ବି ସ୍ତ୍ରୀ—୧ । ଶିଷ୍ୟା—1. A girl pupil. ୨ ।
Sishi ୨ । କନ୍ୟା; ଝିଅ—2. Daughter. ୩ । ବାଳିକା-
शिष्या शिष्या 3. Girl. ୪ । ଗୁରୁମନ୍ତ୍ରଦୀକ୍ଷିତା ସ୍ତ୍ରୀ—4. A female disciple.

**ଶିଷ୍ଟ**—ସଂ. ବିଣ—(ଶାସ୍ ଧାତୁ=ଶାସନ କରିବା+କର୍ମ. ତ)—୧ ।
Sishṭa ଶାନ୍ତ; ଧୀର; ସୁଶୀଳ—1. Gentle; well behaved.
[ଶିଷ୍ଟତା—ବି] [ଶିଷ୍ଟା—ସ୍ତ୍ରୀ] ୨ । ଭଦ୍ର—2. Noble; polite; urbane. ୩ । ନମ୍ର; ବିନୀତ—3. Humble. ୪ । ଶିକ୍ଷିତ; ବିଦ୍ୱାନ—4. Educated; learned; trained. ୫ । ସଭ୍ୟ—5. Civilized; polished; refined. ୬ । ଶିକ୍ଷାପ୍ରାପ୍ତ—6. Trained; educated. ୭ । ଆତ୍ମମାନ—7. Moral; well principled; regulated. ୮ । ବଶୀଭୂତ—8. Controlled. ୯ । ଅଜ୍ଞାଧୀନ—9. Obedient. ୧୦ । ପ୍ରଧାନ—10. Principal; chief. ୧୧ । (ଶିଷ୍ ଧାତୁ=ଶେଷ ହେବା+କର୍ତ୍ତୃ. ତ) ଅବଶିଷ୍ଟ—11. Remaining. ସଂ. ବି—୧ ।(ଶାସ ଧାତୁ+କର୍ତ୍ତୃ. ତ) ମନ୍ତ୍ରୀ—1. Minister. ୨ । ସର୍ଦ୍ଦାର—2. Headman; leader; a chief.

**ଶିଷ୍ଟ(ଷ୍ଠ,ଷ୍ଟି)କରଣ**—ଦେ. ବି—ଶେଠ କରଣ (ଦେଖ)
Sishṭa(shṭha,shṭi) karaṇa Seṭha karaṇa (See)

**ଶିଷ୍ଟତା(ତ୍ୱ)**—ସଂ. ବି—(ଶିଷ୍ଟ+ତା,ତ୍ୱ)—୧ । ଭଦ୍ରତା—
Sishṭatā(twa) 1. Gentleness; nobility; urbanity; politeness. ୨ । ଭଦ୍ର ସମାଜରେ ପ୍ରଚଳିତ

ଭଦ୍ରମ; ଅଦବ କାଏଦା—2. Etiquette. ୩ । ସଭ୍ୟ ସମାଜରେ ପ୍ରଚଳିତ ଆଚାର—3. The urbane manners; manners or usages obtaining in reformed society.

ଶିଷ୍ଟାଚାରନୁମତ—ସଂ. ବିଣ—(ତତ୍ପୁରୁଷ)—ଭଦ୍ରତା ଦ୍ୱାରା ଅନୁମୋଦିତ; Śishṭatānumata ଭଦ୍ରୋଚିତ—Approved in polished society.
[ଶିଷ୍ଟାଚାରନୁମୋଦିତ, ଶିଷ୍ଟତା ସଙ୍ଗତ, ଶିଷ୍ଟାଚାରସମ୍ମତ—ଅନ୍ୟରୂପ]

ଶିଷ୍ଟତା ବହିର୍ଭୂତ—ସଂ. ବିଣ—୧ । ଭଦ୍ରତା ବିରୁଦ୍ଧ—1. Opposed to good manners. ୨ । Śishṭatā bahirbhūta
[ଶିଷ୍ଟତା ବହିର୍ଗତ, ଶିଷ୍ଟତାବିରୁଦ୍ଧ—ଅନ୍ୟରୂପ] ଅଶିଷ୍ଟ—2. Rude.

ଶିଷ୍ଟ ପ୍ରୟୋଗ—ସଂ. ବି—(ଶିଷ୍ଟମାନଙ୍କଦ୍ୱାରା ବ୍ୟବହୃତ ପ୍ରୟୋଗ, ମ. ପ. Śishṭa prayoga ଲୋ)—୧ । ଭଦ୍ର ବା ସଭ୍ୟ ବା ଶିକ୍ଷିତ ବ୍ୟକ୍ତିମାନଙ୍କଦ୍ୱାରା ବ୍ୟବହୃତ ଶବ୍ଦ ବା ବାକ୍ୟାଦି—1. Authoritative usage of expressions. ୨ । ଭାଷାର ରୀତିସଙ୍ଗତ ବାକ୍ୟାଦି—2. Idiomatic expressions. ୩ । ବିଖ୍ୟାତ ବା ପ୍ରସିଦ୍ଧ ଲେଖକମାନଙ୍କ ଦ୍ୱାରା ବ୍ୟବହୃତ ବାକ୍ୟାଦି—3. Particular use of words and expressions by standard authors.

ଶିଷ୍ଟ ବାକ୍ୟ—ସଂ. ବି—(କର୍ମଧା)—ଶିଷ୍ଟାଲାପ; ଭଦ୍ରତାପୂର୍ଣ୍ଣ କଥୋପକଥନ—Gentle talk; polite talk. Śishṭa bākya
[ଶିଷ୍ଟ ସମ୍ଭାଷଣ—ଅନ୍ୟରୂପ]

ଶିଷ୍ଟ ଶାନ୍ତ—ଦେ. ବିଣ (ସମାର୍ଥକ ଯୁଗ୍ମଶବ୍ଦ)—ଭଦ୍ର ଓ ନମ୍ର—Śishṭa śānta Polite and gentle.
शिष्टशान्त **शिष्टशांत**

ଶିଷ୍ଟ ସମ୍ବୋଧନ—ସଂ. ବି (କର୍ମଧା—ଭଦ୍ରବ୍ୟକ୍ତିଙ୍କ ଦ୍ୱାରା ବ୍ୟବହୃତ ସମ୍ବୋଧନ—Polite address. Śishṭa sambodhana

ଶିଷ୍ଟାଚରଣ—ସଂ. ବି (କର୍ମଧା)—ସଦାଚାର; ଭଦ୍ରବ୍ୟବହାର; ଭଦ୍ରତା—Śishṭācharaṇa Politeness; polished manners; (ଶିଷ୍ଟାଚାର—ଅନ୍ୟରୂପ) good manners; approved conduct. [ଉ—ବୋଲିଲ ବ୍ୟାଧ ଯୋଗ ତପସ୍ୱୀବାଳ ଶିଷ୍ଟାଚାର ଏହା ବୋଲନ୍ତି ସର୍ବଜନ—କୃଷ୍ଣସିଂହ ମହାଭାରତ । ]
ସଂ. ବିଣ. ପୁଂ (ବହୁବ୍ରୀହି)—ଶିଷ୍ଟାଚାରୀ (ଦେଖ)—(ଶିଷ୍ଟାଚାରିଣୀ, ଶିଷ୍ଟାଚାରୀ—ସ୍ତ୍ରୀ,ବିଣ) Śishṭāchāri (See).

ଶିଷ୍ଟାଚାର ବହିର୍ଭୂତ—ସଂ. ବିଣ—ଶିଷ୍ଟତା ବହିର୍ଭୂତ (ଦେଖ)—Śishṭāchāra bahirbhūta Śishṭatā bahirbhūta (See)
ଶିଷ୍ଟାଚାର ବହିର୍ଗତ }
ଶିଷ୍ଟାଚାର ବିରୁଦ୍ଧ } ଅନ୍ୟରୂପ

ଶିଷ୍ଟାଚାରଯୁକ୍ତ—ସଂ. ବିଣ (ତତ୍ପୁରୁଷ)—ଭଦ୍ରତା ବିଶିଷ୍ଟ—Gentle; Śishṭāchāra jukta consisting of gentility or (ଶିଷ୍ଟାଚାର ସମ୍ପନ୍ନ—ଅନ୍ୟରୂପ) nobility.

ଶିଷ୍ଟାଚାର ସଙ୍ଗ(ମ୍ମ)ତ—ସଂ. ବିଣ—ଶିଷ୍ଟତାନୁଗତ (ଦେଖ)—Śishṭāchāra sanga(mma)ta Śishṭatānugata (See)

ଶିଷ୍ଟାଚାରୀ—ସଂ. ବିଣ. ପୁଂ (ଶିଷ୍ଟାଚାର ଶବ୍ଦର ୧ମା. ୧ବଚନ)—Śishṭāchāri ସଦାଚାରପରାୟଣ; ଭଦ୍ର—Polite; gentle; (ଶିଷ୍ଟାଚାରିଣୀ—ସ୍ତ୍ରୀ well behaved; of good manners.

ଶିଷ୍ଟି—ସଂ. ବି—(ଶାସ୍‌ଧାତୁ+ଭାବ.ତି, ନପାତନ) ୧ । ଦମନ; ଶାସନ; Śishṭi ଚାଳନ—1. Controlling; regulating; ruling. ୨ । (+କରଣ.ତି) ଆଜ୍ଞା; ଆଦେଶ—2. Order. ୩ । ଶୋଧନ—3. Rectification. ୪ । ବିନ୍ୟାସ—4. Arrangement.

ଶିଷ୍ଟି(ଷ୍ଠି)କରଣ—ଦେ. ବି.—ଶେଠ କରଣ (ଦେଖ)
Śishṭi (shṭhi) karaṇa Śeṭha karaṇa (See)

ଶିଷ୍ୟ—ସଂ. ବି—୧ । (ଶାସ୍‌ଧାତୁ=ଶାସନ କରିବା+କର୍ମ ଯ)—ଯେ Sishya ଗୁରୁଙ୍କ ନିକଟରେ କୌଣସି ବିଦ୍ୟା ଶିକ୍ଷା କରେ; ଅନ୍ତେ-(ଶିଷ୍ୟା—ସ୍ତ୍ରୀ) ବାସୀ; ଛାତ୍ର—1. Apprentice; pupil; disci-(ଗୁରୁ—ଆପେକ୍ଷିକ ବାଚକ ଶବ୍ଦ) ple. [ଦ୍ର—ସ୍ମୃତି ଅନୁସାରେ ଯେ କାୟମନୋବାକ୍ୟ ଦ୍ୱାରା ଦେବତା, ଅଗ୍ନି ଓ ଗୁରୁଙ୍କର ଶୁଶ୍ରୂଷା କରନ୍ତି ଏବଂ ଯେ ନମ୍ରଚିତ୍ତ, ଶ୍ରମଶୀଳ ଓ ବୁଦ୍ଧିମାନ୍ ସେ ଶିଷ୍ୟ ପଦବାଚ୍ୟ ] ୨ । ଯାହାଙ୍କୁ କୌଣସି ଆଧ୍ୟାତ୍ମିକ ବିଦ୍ୟାଶିକ୍ଷା ଦିଆଯାଏ; ମନ୍ତ୍ରଶିଷ୍ୟ—2. Spiritual disciple. ୩ । ବାବାଜୀଙ୍କ ଚେଲା-3. The disciple of an anchorite. ବିଣ(ପୁଂ)—୧। ଶାସନଯୋଗ୍ୟ 1. Fit to be governed. ୨। ଶିକ୍ଷା ପାଇବାର ଉପଯୋଗୀ—2. Fit to be trained. ୩ । ଶିକ୍ଷଣୀୟ—3. Teachable. ୪ । ଉପଦେଶ୍ୟ—4. Fit to be instructed or imparted. ଦେ. ବି.—ପୁତ୍ର; ପୁଅ—Son [ଉ—ଲୋମଶ ବୋଇଲେ ଦେବ ପାଣ୍ଡୁ ଜ୍ୟେଷ୍ଠ ଶିଷ୍ୟ—କୃଷ୍ଣସିଂହ, ମହାଭାରତ ।]

ଶିଷ୍ୟ କରିବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ମନ୍ତ୍ରଦାନ ବା ବିଦ୍ୟାଦାନ Sishya kariba କରିବା ପାଇଁ ଶିଷ୍ୟରୂପେ ଗ୍ରହଣ କରିବା—शिष्यकबा **शिष्यत्करना(बनाना)** To take a person as a disciple; to initiate a person into the mysteries of any branch of science or religion.

ଶିଷ୍ୟାନୁଶିଷ୍ୟ—ସଂ. ବି. ପୁଂ (ଦ୍ୱନ୍ଦ୍ୱ)—ଶିଷ୍ୟ ଓ ଶିଷ୍ୟର ଶିଷ୍ୟ—Śishyānuśishya A disciple and disciple's dis-(ଶିଷ୍ୟାନୁଶିଷ୍ୟା—ସ୍ତ୍ରୀ) ciple. [ଉ—ଏ ମଠରେ ରାମାନନ୍ଦୀ ବୈଷ୍ଣବମାନେ ଶିଷ୍ୟାନୁଶିଷ୍ୟ କ୍ରମେ ମହନ୍ତ ହୋଇ ଆସୁ ଅଛନ୍ତି ]

ଶିଷ୍ଟୁ—ପ୍ରାଦେ. ବି (ଗଞ୍ଜାମ)—(ଇଂ. ସେସ୍)—କର; ଖଜଣା—Sistu Tax; cess.

ଶିହର(ରେ)ଇବା—ଦେ. କ୍ରି—ଶିହରାଇବା (ଦେଖ)—Śihara(re)ibā Sihirāibā (See)
(ଶିହରିବା—ଅନ୍ୟରୂପ)

ଶିହଳ—ଦେ. ବ—ଶିଅଳ (ଦେଖ)—
Sihala Sihala (see)

ଶିହା ( ଇତ୍ୟାଦ )—ବୈଦେ. ବ—ସିହା ଇତ୍ୟାଦ (ଦେଖ)
Siha ( etc ) Siha etc (See)

ଶିହାଇ ( ଇତ୍ୟାଦ )—ବୈଦେ. ବ—ସିହାଇ ଇତ୍ୟାଦ (ଦେଖ)
Sihai (etc) Sihai etc (See)

ଶିହର(ରେ)ଇବା—ଦେ. କି.—(ସ. ଶୀତଳରୁ କମ୍ପା ଶୀକର=ଜଳ-
Sihira(re)iba କଣା=ଗ୍ରା. ସୀହର; ହଠାତ୍ ଦେହରେ
ଶିହରଣ ଉଠିବା } ଅନ୍ୟରୂପ
ଶିହର ଉଠିବା
ଶିହରେଇବା
ଶୀତଳପାଣି ଛୁଇଁଦେଲେ ଦେହରେ ରୋମୋଦ୍‌ଗମ ହେବା ଯୋଗୁ )— (ଦେହ) ଶିର ଶିର ହେବା; ଥର ଉଠିବା; ଲୁମ ଟାଙ୍କୁରିବା; ଭୟ ବା ହର୍ଷାଦିରେ ଦେହରେ ରୋମୋଦ୍ଗମ ବା କମ୍ପାଦ ହେବା; (ଦେହ)
ମ. ଚହଲ; ଚପାଲ
ଅସାମୀ—ଶିସୁର
ଶିଉରେଉଠା ଶିହରା
ରोमटेखडाहेना, सोहरजाना
ଶୀତାଇବା—To have one's hairs stand on ends; to have horripilation; to shiver as if through extreme cold. [ଦ୍ର—ଏ କ୍ରିୟା ଦେହ ବା ମନୁଷ୍ୟ କର୍ତ୍ତା ସଙ୍ଗେ ବ୍ୟବହୃତ ହୁଏ । ଯଥା—ମୋ ଦେହ ଶିହରୁଛି, ଅମୁକ ଲୋକ ଶିହରୁଛି । ]

ଶିହ୍ଲ—ସ. ବ ( ବୈଦ୍ୟକ )—୧ । ଶିଲାରସ ( ଦେଖ )—1. Sila-
Sihla rasa ( See ) ୨ । ତରଳ ଧୂଣା—
( ଶିହ୍ଲକ—ଅନ୍ୟରୂପ ) 2. Liquid amber.

ଶିହ୍ଲା—ଦେ. ବ ( ସ. ଶିହ୍ଲ )—ଶିହ୍ଲ (ଦେଖ)—Sihla ( See )
Sihla शिलारस शिलारस

ଶୀ—'ଶୀ' ଅସଂଯୁକ୍ତ ଦେଶଜ ଶବ୍ଦମାନଙ୍କ ପାଇଁ 'ଶି' ତଳେ ଦେଖିବାକୁ
Si ହେବ—See under Si.

ଶୀ ( ଧାତୁ )—ସ—୧ । ଶୋଇବା—1. To sleep. ୨ । ବିଶ୍ରାମ
Si ( root ) କରିବା—2. To rest.

ଶୀ—ସ. ବ—(ଶୀ ଧାତୁ+ଭାବ. କ୍ୱିପ୍)—୧ । ଶୟନ—1. Sleep.
Si ୨ । ଶାନ୍ତି—2. Peace.

ଶୀକ୍ ( ଧାତୁ )—ସ.—ସେକ କରିବା;ସେକିବା —
Sik (root) To foment; to warm; to heat.

ଶୀକର—ସ. ବ ( ଶୀକ୍ ଧାତୁ+କର୍ତ୍ତୃ. ଅର )—୧ । ବାୟୁଚାଳିତ କ୍ଷୁଦ୍ର
Sikara ଜଳକଣା—1. Small particles of water blown about by the wind; spray. ୨ । ସୂକ୍ଷ୍ମ ବୃଷ୍ଟି—2. Rain in fine drops; dribble. ୩ । ବାୟୁ (ଶବ୍ଦକୋଷ)—3. Wind; air.
ଶ୍ରୀକର ଗ୍ରା. ବ ( ସ. ଶ୍ରୀକର )—ଶ୍ରୀକର ନାମକ ବ୍ୟକ୍ତିର ଡାକ
सिरकर ନାମ—The name for calling Srikara.

ଶୀକରଶୀତ ବାୟୁ—ସ. (ବହୁବ୍ରୀ ତତ୍; କର୍ମଧା=ଶୀକର ହେତୁ ବା
Sikara Sita bayu ଦ୍ୱାରା ଶୀତ ଅର୍ଥାତ୍ ଶୀତଳ ହୋଇଥିବା ବାୟୁ )—ଜଳକଣା ସିଞ୍ଚିଥିବାରୁ ଥଣ୍ଡା ହୋଇଥିବା ପବନ —Air cooled by the sprays of water blown by it.

ଶୀଖ—ଦେ. ବ ( ସ. ଶିଖା )—ଶିଖ ( ଦେଖ )
Sikha Sikha ( See )

ଶୀଗଲ—ଦେ. ବ ( ଇଂ. ଶୀଗଲ )—ସମୁଦ୍ରକୂଳେ ବସା କରି ରହୁଥିବା
Sigal କ୍ଷୁଦ୍ର ପକ୍ଷିବିଶେଷ, (ଦ୍ର—ଏମାନେ ସମୁଦ୍ର ବନ୍ଦରରେ ବିଶେଷତଃ
सीगल सीगल ଜାହାଜ ଉପରେ ଉଡୁଥାଆନ୍ତି)—Seagull.

ଶୀଘ—ସ. କ୍ରି. ବିଣ—(ଶିଙ୍ଘ ଧାତୁ=ଆଘ୍ରାଣ କରିବା+ଅଧିକରଣ ର)
Sighra ବେଗରେ; ତରତରରେ; ଚଞ୍ଚଳ; ଶୀଘ୍ର; ଅବିଳମ୍ବେ—
Quickly; soon; shortly; hastily. ବିଣ—ତ୍ୱରାନ୍ୱିତ; ସତ୍ୱର; ତ୍ୱରିତ; କ୍ଷିପ୍ର; ଦ୍ରୁତ—Speedy; quick; rapid; hasty.

ଶୀଘ୍ର କାରୀ—ସ. ବିଣ. ପୁଂ ( ଶୀଘ୍ରକାରିନ୍ ଶବ୍ଦର ୧ମା. ୧ବ=ଶୀଘ୍ର+
Sighra kari କୃ ଧାତୁ+କର୍ତ୍ତୃ. ଇନ୍ )—କ୍ଷିପ୍ରକର୍ମ ସମ୍ପାଦକ;
[ ଶୀଘ୍ରକାରିଣୀ—ସ୍ତ୍ରୀ ] ଯେ ଚଞ୍ଚଳ କାମ ସାରେ; ପୁର୍ତ୍ତିବାଜ୍—
Doing work speedily, prompt.

ଶୀଘ୍ରଗ—ସ. ବିଣ. ପୁଂ ( ଶୀଘ୍ର+ଗମ୍ ଧାତୁ+କର୍ତ୍ତୃ. ଅ )—କ୍ଷିପ୍ରଗାମୀ;
Sighraga ତ୍ୱରିତ ଗତି ବିଶିଷ୍ଟ—Fleet of foot; swift-
( ଶୀଘ୍ରଗା—ସ୍ତ୍ରୀ ) going, fast-going.

ଶୀଘ୍ର ଗତି—ସ. ବ (କର୍ମଧା)—କ୍ଷିପ୍ର ଗତି; ବେଗ—Swift motion.
Sighra gati ବିଣ—( ବହୁବ୍ରୀହି ) ପୁଂ ଓ ସ୍ତ୍ରୀ—କ୍ଷିପ୍ରଗାମୀ—
Fast going; fleet of foot.

ଶୀଘ୍ର ଚେତନ—ସ. ବିଣ. ପୁଂ ( ବହୁବ୍ରୀହି; ଶୀଘ୍ର+ଚେତନା+ଅ )—
Sighra chetana ଯେ ଶୀଘ୍ର ଚେତନା ଲାଭ କରେ ବା ଚେଇଁ
( ଶୀଘ୍ର ଚେତନା—ସ୍ତ୍ରୀ ) ଉଠେ—1. One who wakes up easily. ସ ବ.—କୁକୁର—Dog.

ଶୀଘ୍ରତା—ସ. ବ ( ଶୀଘ୍ର+ଭାବ. ତା )—ତ୍ୱରା; ଦ୍ରୁତତା; ସତ୍ୱରତା—
Sighrata Haste; speed.

ଶୀଘ୍ର ବେଧୀ—ସ. ବିଣ. ପୁଂ ( ଶୀଘ୍ର+ବିଧ୍ ଧାତୁ=ବିଦ୍ଧ କରିବା+
Sighra bedhi କର୍ତ୍ତୃ. ଇନ୍; ୧ମା. ୧ବ )—୧ । ଦ୍ରୁତବେଧ-
( ଶୀଘ୍ରବେଧିନୀ—ସ୍ତ୍ରୀ ) କାରୀ; ଯାହା କୌଣସି ବସ୍ତୁକୁ ଶୀଘ୍ର ବିଦ୍ଧ କରେ ( ଯଥା—ବାଣ, ଶର, ମୁନିଆ ବା ଦାରୁଆ ଅସ୍ତ୍ର ବା ଶସ୍ତ୍ର )—1. Piercing swiftly. ୨ । କ୍ଷିପ୍ରକାରୀ; ଲଘୁହସ୍ତ—2. Deft-handed; prompt; quick.

ଶୀଘ୍ର ଶୀଘ୍ର—ଦେ. କି. ବିଣ(ସ. ଶୀଘ୍ରଂ ଶୀଘ୍ରଂ)—ତରତରରେ; ଚଞ୍ଚଳ—
Sighra sighra शीघिव शिघिव जल्दी जल्दी Very
(ଶୀଘ୍ରେ ଶୀଘ୍ରେ—ଅନ୍ୟରୂପ) swiftly.

ଶୀଘ୍ରା—ସଂ. ବ ( ବୈଦ୍ୟକ )—ଦନ୍ତୀ ନାମକ ଔଷଧ ବୃକ୍ଷବିଶେଷ—
Sighra Croton Polyandrum tree.

ଶୀଘ୍ରାୟମାନ—ସଂ. ବିଣ. ପୁଂ ( ଶୀଘ୍ର+ଅୟ=ଶୀଘ୍ରାୟ ନାମ ଧାତୁ+
Sighrayamana କର୍ତ୍ତୃ. ଅନ, ମ ଆଗମ )—ସତ୍ୱରଗାମୀ—
( ଶୀଘ୍ରାୟମାନା—ସ୍ତ୍ରୀ ) Fleet; swift.

ଶୀଘ୍ରେ—ଦେ. କି. ବିଣ—କ୍ଷିପ୍ରତା ସହକାରେ; ଅତି ଚଞ୍ଚଳ; ଅବିଳମ୍ବେ—
Sighre Very soon; hastily; shortly; immedia-

शिगिर tely; without delay. [ ଉ—ଯେଣୁ ତୋ
जल्दी ସଙ୍ଗ ଘଟେ ବାସ, ଭକ୍ତ ଡାକିଲେ ଶୀଘ୍ରେ ଆସ—ଜଗନ୍ନାଥ.
( ଶୀଘ୍ରେ ଶୀଘ୍ରେ—ଅନ୍ୟରୂପ ) ଭାଗବତ । ]

ଶୀଘ୍ରେଣ—ଦେ. କ୍ରି. ବଣ ( ପ୍ରାଚୀନ ପଦ୍ୟ )—ଶୀଘ୍ରେ ( ଦେଖ )—
Śighreṇa Śighre ( See ) [ଉ—ସଜନ ! ଶୀଘ୍ରେଣ କର
शिगिर जल्दीसे ଭୁ ଗମନ—ପ୍ରାଚୀ. ରସବାରିଧି । ]

ଶୀଟି(ଇତ୍ୟାଦି)—ଦେ. ବ—ସିଟି ଇତ୍ୟାଦି ( ଦେଖ )
Śiṭi(etc) Siṭi etc ee)

ଶୀତ୍କାର—ସଂ. ବ ( ଶୀତ୍=ଅନୁକରଣ ଶବ୍ଦ+କୃ ଧାତୁ+ଭାବ ଅ)
Śit-kāra —୧ । ଶୁ ଶୁ ଶବ୍ଦ; ଶୀତ୍ ଏହିପରି ଶବ୍ଦ; ଇସ୍
( ସୀତ୍କାର—ଅନ୍ୟରୂପ ) ଇସ୍ ଶବ୍ଦ—1. Hissing sound.
୨ । ସୁରସିକା ଓ ଶ୍ରଷ୍ଟା ସ୍ତ୍ରୀମାନଙ୍କର ରତିକାଳୀନ ମଧୁର
ଧ୍ୱନି—2. Sweet hissing sound emitted by
an amorous lady during orgasm on or
glee at the time of copulation.

ଶୀତ୍କୃତ—ସଂ. ବଣ—ଶୀତ୍କାର ଧ୍ୱନିଯୁକ୍ତ—Making a sweet
Śit-kṛuta (ସୀତ୍କୃତ—ଅନ୍ୟରୂପ) hissing sound.

ଶୀତ୍କୃତି—ସଂ. ବ ( ଶୀତ୍+କୃ ଧାତୁ+ଭାବ. ତି )—ଶୀତ୍କାର
Śit-kṛuti ( ଦେଖ )—Śit-kāra ( See )
( ସୀତ୍କୃତି—ଅନ୍ୟରୂପ )

ଶୀତ—ସଂ. ବଣ ( ଶ୍ୟୈ ଧାତୁ=ଗମନ କରିବା+କର୍ତ୍ତୃ. ତ )—୧ ।
Śita ଶୀତଳ; ଥଣ୍ଡା—1. Cold; cool; frigid; chilly.
୨ । ଜଡ଼—2. Inert. ସଂ. ବ.—ହେମନ୍ତ ଋତୁ; ପୌଷ
ଓ ମାଘ ମାସ; ଶିଶିର ଋତୁ—1 Winter season,
cold season. ୨ । ଜଳ—2. Water. ୩ ।
କର୍ପୂର—3. Camphor. ୪ । ବହୁବାର; ଗନ୍ଧଭଣା—
4. Cordia Myxa tree. ୫ । ବେତଲତା—
5. Cane creeeper; Calamus Rotung;
ratan. ୬ । ଏକ ପ୍ରକାର ଚନ୍ଦନ—6. A species
of sandal wood. ୭ । ଶୀତଳତା; ଶୈତ୍ୟ; ଥଣ୍ଡା-
ଗୁଣ—7. Coolness; coldness; chill. ଦେ.ବ—
शीत ଦେହରେ ଥଣ୍ଡା ଲାଗିବା ଯୋଗୁ ଅନୁଭୂତି; ଜାଡ଼—
शीत Sensation of cold.

ଶୀତଋତୁ - ସଂ. ବ—ଶିଶିର କାଳ; ପୌଷ ଓ ମାଘ ମାସ ଦ୍ୱୟ—
Śitaṛutu Cold season; winter season;
Pausha and Māgha months.

ଶୀତକ—ସଂ. ବ (ଶୀତ+ସ୍ୱାର୍ଥେ କ)—୧ । ଶୀତକାଳ—1. The
Śitaka winter. ୨ । ସୁଖୀ ମନୁଷ୍ୟ—2. A happy
person. ୩ । ବୃଶ୍ଚିକ—3. Scorpion. ୪ । ଅଶନ
ପର୍ଣ୍ଣୀ—4. A kind of plant. ସଂ. ବଣ—
୧ । ଦୀର୍ଘସୂତ୍ରୀ—1. Dilatory. ୨ । ଜଡ଼ଶ୍ରେଷ୍ଠ—
2. Effortless.

ଶୀତ କଟା(ଟେ)ଇବା—ଦେ. କ୍ରି—୧ । ଶୀତକାଳ ବିତାଇ ଦେବା; ଶୀତ
Śita kaṭā(ṭe)ibā ଋତୁ ଭୋଗ କରିବା ବା ଯାପନ କରିବା—
(ଶୀତ କଟା[ଟେ]ଇବା—ଅନ୍ୟରୂପ) 1. To pass the cold
শীত কাটান season. (ଉ—ଏ ବର୍ଷ କେତେ ଭୁଲୁଚା ମୁ
शीत काटना(बिताना) ଶୀତ କଟାଇଲି । ) ୨ । ଶୀତ କଷ୍ଟକୁ
ସମ୍ଭାଳିବା; ଶୀତର ଦାଉରୁ ରକ୍ଷା ପାଇବା—2. To
overcome the pangs of cold.

ଶୀତ କଟିବନ୍ଧ—ସଂ. ବ (ଅଧୁନିକ ଭୌଗୋଳିକ ପରିଭାଷା)—ଭୂମଣ୍ଡଳର
Śita kaṭibandha ମେରୁମାନଙ୍କୁ ଲାଗିଥିବା ଶୀତପ୍ରଧାନ
କଟିବନ୍ଧ—The frigid Zones of the globe.
[ଦ୍ର—ଏହା ଦୁଇଟି; ଯଥା—ଉତ୍ତର ଓ ଦକ୍ଷିଣ ଶୀତକଟି
ବନ୍ଧ । ]

ଶୀତ କଟିବା—ଦେ. ବ—ଶୀତଋତୁ ଗତ ହେବା; ଶୀତକଷ୍ଟକୁ
Śita kaṭibā ସମ୍ଭାଳିବା—The passing away of
শীত কেটেযাওয়া winter; the overcoming of the
शीत कटना pangs of cold during winter.
(ଶୀତ କଟିଯିବା—ଅନ୍ୟରୂପ)

ଶୀତ କମ୍ପ—ସଂ. ବ (୭ମୀ ତତ୍ପୁରୁଷ; ଶୀତ ହେତୁ କମ୍ପ)—
Śita kampa ଶୀତ ପ୍ରକୋପରୁ ଦେହ ଥରିବା—Shivering
of the body due to cold.

ଶୀତକର—ସଂ. ବ (ବହୁବ୍ରୀହି; ଶୀତ=ଥଣ୍ଡା ଅଟେ କର=କିରଣ
Śitakara ଯାହାର)—୧ । ଶୀତରଶ୍ମି; ଚନ୍ଦ୍ର; ହିମକର—
1. The moon. ୨ । କର୍ପୂର—2. Camphor.

ଶୀତ କରିବା—ଦେ. ବ—ଶୀତ ବୋଧହେବା; ଜାଡ଼ କରିବା—
Śita karibā The feeling of cold. (ଉ—ଶୀତ କଲା
(ଶୀତ ହେବା—ଅନ୍ୟରୂପ) ବଡ ଚାଣ, ବଡ ବୋଝକୁ ବନ୍ଧା
শীতকরা शीत लगना ପକାଇ ଚୁଡ଼ା ଗୁରମାଣ ଆଣ ।
ଶୀଗୁରଞ୍ଜକ ଗୀତ । )

ଶୀତ କଲା—ଦେ. ବଣ—ଥଣ୍ଡା(ଦ୍ରବ୍ୟ); ଶୀତଳ(ପଦାର୍ଥ)—Cold.
Śita kalā (ଉ—ଗ୍ରନ୍ଥ ପ୍ରାୟେ ମଣିଣ ଚନ୍ଦ୍ର ମାତାପ କହେ, କିବା
শীতল शीतल ଅବା ଶୀତ କଲା ମାନ୍ଦକେ କ ସହେ । ପ୍ରାଚୀ.
ରସବାରିଧି । )

ଶୀତକଷାୟ—ସଂ. ବ (କର୍ମଧା; ବୈଦ୍ୟକ)—ଏକ ତୋଳା କୁଟା
Śita kashāya ଦ୍ରବ୍ୟକୁ ୬ ତୋଳା ଉଷ୍ଣଜଳରେ ଏକରାତ୍ର
ବତୁରାଇ ସକାଳେ ଛାଣି ନେଲେ ଯେଉଁ ପାନୀୟ ପ୍ରସ୍ତୁତ
ହୁଏ—Liquid medicine prepared by
moistening 1 tola of pounded herbs in
6 tolas of warm water and leaving
them in the night and sifting the
liquid in the morning.

ଶୀତକଷ୍ଟ—ସଂ. ବ (ଶୀତ ହେତୁ କଷ୍ଟ; ୭ମୀ ତତ୍)—ଶୀତଯୋଗୁଁ
Śita kashṭa ଦୁଃଖାନୁଭୂତି—Pangs of cold; the
biting of cold.

ଶୀତ କାଟିବା—ଦେ. କ୍ରି—୧ । ଶୀତଋତୁକୁ ଅତିକ୍ରମ କରିବା—1. To
Śita kāṭibā pass the winter. ୨ । ଶୀତ ଅନୁଭୂତିକୁ
শীত কাটান ଦୂରୀଭୂତ କରିବା—2. To overcome cold.
शीत काटना

**ଶୀତ କାତର**—ସଂ. ବଣ. ପୁଂ (ଜଣ୍ଡା ତତ୍) ୧ । ଶୀତକ୍ଲିଷ୍ଟ; ଶୀତାର୍ତ୍ତ—
**Śīta kātara** 1. Suffering from the pangs of
(ଶୀତକାତର—ସ୍ତ୍ରୀ) cold. ୨ । ଶୀତ ଭୀତ—2. Afraid of
(ଶୀତ କାତରତା—ବ) cold.

**ଶୀତ କାତରିଆ**—ଦେ. ବଣ (ସଂ. ଶୀତକାତର)—ଶୀତକାତର (ଦେଖ)
**Śīta kātariā** Śīta kātara. (See)
शीत कातुरे शीतकायर

**ଶୀତ କାଳ**—ସଂ: ବ—ଶୀତ ଋତୁ—
**Śīta kāla** Winter season.

**ଶୀତକାଳୀନ**—ସଂ. ବଣ (ଶୀତକାଳ+ଭବାର୍ଥେ. ଈନ)—୧ । ଶୀତ ଦିନଅ; ଯାହା ଶୀତଦିନରେ ଘଟେ—1. Hap-
**Śītakālīna** pening in winter. ୨ । ଶୀତକାଳରେ ଜନ୍ମିବା—
2. Produced in winter. ୩ । ଶୀତକାଳ ସମ୍ବନ୍ଧୀୟ—3; Relating to the winter; wintry.

**ଶୀତଗୁ**—ସଂ. ବ (ଶୀତ+ଗୋ=କିରଣ; ବହୁବ୍ରୀହି)—୧ । ଚନ୍ଦ୍ର—
**Śītagu** 1. The moon. ୨ । କର୍ପୂର—2. Camphor.

**ଶୀତ ଚା(ଚ)ଦର**—ଦେ. ବ—ଶୀତ ଦିନେ ଘୋଡ଼ି ହେବା ଲୁଗାପଟା—
**Śīta chā(cha)dara** Wrapper; winter cloth or
শীতের চাদর शीत चद्दर dress.

**ଶୀତ ଡରୁଆ**—ଦେ. ବ. ପୁଂ—ଶୀତକାତର (ଦେଖ)
**Śīta ḍaruā** Śītakātara. (See)
(ଶୀତ ଡରେ(ରୋ)ଇ—ସ୍ତ୍ରୀ)
शीत कातुरे शीत कायर

**ଶୀତ ଦିନ**—ଦେ. ବ—୧। ଶୀତଋତୁ—1. Winter. ୨। ଶୀତକାଳୀନ ଦିବସ—2. Winter-day; a day of the
**Śīta dina**
শীতের দিন शीतका दिन winter season; wintry day.

**ଶୀତ ପଡ଼ିବା**—ଦେ. କ୍ରି.—୧ । ଶୀତ ଋତୁର ଆବିର୍ଭାବ—1. The
**Śīta paṛibā** coming or appearance of winter;
शीतपड़ा approach of winter. ୨। ଶୀତର ବା ଶୈତ୍ୟର
शीतपड़ना ପ୍ରକୋପ ବୃଦ୍ଧି ହେବା—2. The wintering of cold or chill.

**ଶୀତ(ତି) ପାଛୁ(ଛୁ,ଛୋ) ଡ଼ା(ଡ଼ି)**—ଦେ.ବ (ସ. ଶୀତ+ପ୍ରଚ୍ଛଦ ପଟ)—
**Śīta(ti) pāchha(chhu, chho)ṛdā(ṛdi)** ଶୀତ ଚଦର
শীতের চাদর शित चद्दर ( ଦେଖ )—Śīta chādara ( See )

**ଶୀତ ପିତ**—ସ. ବ—ଚର୍ମରୋଗ ବିଶେଷ; ଦେହରେ ବହୁତ ଲଗିଲେ
**Śīta pita** ବଣା ଫୋଡ଼ା ପରି ଫଳିବା ରୋଗବିଶେଷ—
(ଶୀତ୍ ପିତ୍—ଦେ. ରୂପ) Nettlerash; urticaria. [ଦ୍ର—ଏହା ହଠାତ ଜନ୍ମେ ଏବଂ ହଠାତ୍ ଛାଡ଼େ । ଦେହ ଖରତାପ ଅବା ଗୋଟାଏ ଗରମ ହୋଇଥିବା ଅବସ୍ଥାରେ ହଠାତ୍ ପାଣି ପିଇଲେ ଏ ରୋଗ ଜନ୍ମେ । ]

**ଶୀତ ପ୍ରକୋପ**—ସ. ବ ( ୬ଷ୍ଠୀ ତତ୍ )—୧ । ଶୀତର ଆଧିକ୍ୟ—
**Śīta prakopa** 1. Excess of cold. ୨ । ଶୀତଜନିତ କଷ୍ଟ—2. Pangs due to cold or chill.

**ଶୀତ ପ୍ରଧାନ**—ସ. ବଣ (ବହୁବ୍ରୀହି, ଶୀତ ଅଟେ ପ୍ରଧାନ ଯହିଁରେ)—
**Śīta pradhāna** ୧ । ଅଧିକ ଶୈତ୍ୟ ବିଶିଷ୍ଟ; ଅତ୍ୟନ୍ତ ଶୀତଳ—
1. Excessively chill; frigid; very cold.
୨ । ଯେଉଁ ଦେଶରେ ବା ଅଞ୍ଚଳରେ ଶୀତଋତୁ ଅଧିକକାଳ-ସ୍ଥାୟୀ ହୁଏ—2. ( a place ) Where winter or cold season predominates or lasts longer than elsewhere.

**ଶୀତ ପ୍ରଧାନ କଟିବନ୍ଧ**—ଦେ. ବ ( ଭୌଗୋଳିକ ପରିଭାଷା )—ପୃଥିବୀର
**Śīta pradhāna kaṭibandha** ଗୋଲକର ମେରୁଦ୍ୱୟର
शीत कटीबन्ध ଚତୁର୍ଦ୍ଦିଗରେ ବେଢ଼ିଥିବା ଶୀତ ପ୍ରଧାନ ଅଞ୍ଚଳ, ଶୀତ
शीत कटिबन्ध ମଣ୍ଡଳ—The frigid zones of the globe. [ଦ୍ର—ଏହା ଦକ୍ଷିଣ ମେରୁ ଓ ଉତ୍ତର ମେରୁକୁ ଲାଗିଅଛି ।]

**ଶୀତ ଫଳ**—ସ. ବ ( ବୈଦ୍ୟକ )—ପୀଲୁ; ଗୁଡ଼ଫଳ ବୃକ୍ଷ—Tooth-
**Śīta phala** brush tree; Salvadora Persica.

**ଶୀତ ବସ୍ତ୍ର**—ସଂ. ବ (ମ. ପ. ଲୋ; ଶୀତ ନିବାରଣାର୍ଥ ବ୍ୟବହୃତ ବସ୍ତ୍ର)—
**Śīta bastra** ଶୀତ ଲୁଗା; ଯେଉଁ ଲୁଗାକୁ ଦେହରେ ଘୋଡ଼ା-ଇବାଦ୍ୱାରା ଶୀତକଷ୍ଟ ଦୂର ହୁଏ—Winter dress.

**ଶୀତ ବାତ(ୟୁ)**—ସଂ. ବ ( କର୍ମଧା )—ଥଣ୍ଡା ପବନ—
**Śīta bāta(yu)** Cold wind; chill wind.

**ଶୀତ ବୀଜ**—ସଂ. ବ ( ବୈଦ୍ୟକ, ବହୁବ୍ରୀହି, ଶୀତ ଅଟେ ବୀଜ ଯାହାର)
**Śīta bīja** —ଇସବଗୁଲ ( ଦେଖ )—Isabagula (See)
ইসবগুল असफागुल

**ଶୀତବୀର୍ଯ୍ୟ**—ସଂ. ବଣ ( ବୈଦ୍ୟକ, ବହୁବ୍ରୀହି )—ସ୍ୱାଭାବିକ ଶୀତଳ
**Śītabīrjya** ଗୁଣବିଶିଷ୍ଟ ( ଦ୍ରବ୍ୟ ); ଯାହାକୁ ସେବନ କରିବା ଦ୍ୱାରା ଦେହ ଶୀତଳ ହୁଏ—Having the quality of cooling the system; cooling. [ ଦ୍ର—ମଧୁର ରସବିଶିଷ୍ଟ ପ୍ରାୟ ସକଳ ପଦାର୍ଥହିଁ ଶୀତବୀର୍ଯ୍ୟ । ଶୀତ-ବୀର୍ଯ୍ୟ ଦ୍ରବ୍ୟ ଗୁରୁପାକ, ବାତଶ୍ଳେଷ୍ମଜନକ, ପିତ୍ତନାଶକ, ବାତଳ ଓ କଫଜ ରୋଗରେ ଉପକାରକ । ]

**ଶୀତ ଭୀତ**—ସଂ. ବଣ (ପୁଂ) ( ୫ମୀ ତତ୍ )—ଯେ ଶୀତକୁ ଡରେ—
**Śīta bhīta** (ଶୀତଭୀତା—ସ୍ତ୍ରୀ) Afraid of cold.

**ଶୀତ ଭୀରୁ**—ସଂ. ବ ( ବୈଦ୍ୟକ )—୧। ମଲ୍ଲିକା; ଶତଦଳମଲ୍ଲୀ; ମୁଗୁରା
**Śīta bhīru** ମଲ୍ଲୀ; କାଠମଲ୍ଲୀ—1. Jasminum Sambac.
୨ । ଉଦ୍ବଲ୍ଲୀ ନାମକ ମଲ୍ଲୀକାଜାତୀୟ ପୁଷ୍ପ ଓ ତହିଁର ଲତା-ଜାତ ଗୁଳ୍ମ—2. Vallaris Heynei. [ ଦ୍ର—ଏହା ବ୍ରଣ, କୁଷ୍ଠରୋଗ, ନାଡ଼ୀବ୍ରଣ ବିନାଶକ । ]

**ଶୀତ ମଞ୍ଜରୀ**—ସଂ. ବ—ବିଶେଷ ଫାଳିକା; ରାଗଶିଉଳୀ; ଗଙ୍ଗାଶିଉଳୀ ( ଫୁଲ
**Śīta mañjarī** ଓ ଗଛ )—Night jasmine, ( flower and tree )

ଶୀତ ମାଡ଼ି ଆସିବା—ଦେ. କ୍ରି—କ୍ରମଶଃ ଶୀତର ପ୍ରକୋପ ବୃଦ୍ଧି ପାଇବା; Ṡita mārdi āsibā ଜାଡ଼ ମାଡ଼ିଆସିବା—The gradual শীত বাড়া शीत बढ़ना approach of intense cold.

ଶୀତ ରଶ୍ମି—ସଂ. ବିଶ (ବହୁବ୍ରୀହି)—ଶୀତକର; ଚନ୍ଦ୍ର—Ṡita raṡmi The moon

ଶୀତ ରସ—ସଂ. ବି (ବୈଦ୍ୟକ)—ଅପକ୍ୱ ଇକ୍ଷୁରସଜାତ ମଦ୍ୟ—Ṡita rasa Spirit or wine obtained from unfermented or unboiled sugarcane juice [ଦ୍ର—ଏହା ପକ୍ୱରସଜାତ ସୀଧୁ ଅପେକ୍ଷା ଗୁଣ ହୀନ କିନ୍ତୁ ପୁଷ୍ଟିକର ଓ ମଳବର୍ଦ୍ଧକ ।]

ଶୀତର୍ତ୍ତୁ—ସ. ବି—(୬ଷ୍ଠୀ ତତ୍, ଶୀତ+ଋତୁ)—ଶୀତ ଋତୁ; ଶିଶିର କାଳ—Ṡitarttu Cold season; winter.

ଶୀତଳ—ସ. ବିଣ—(ଶୀତ+ଲା ଧାତୁ=ଦାନ କରିବା+ଅ; ଶୀତ+ Ṡitaḷa ଅସ୍ତ୍ୟ ଅର୍ଥରେ ଲ)—୧ । ଶୈତ୍ୟଗୁଣ ବିଶିଷ୍ଟ; ଥଣ୍ଡା—1. Cool; cold; chilly. ୨ । ଧୀର; ଶାନ୍ତ—2. Meek; mild. ୩ । ଉଦ୍ବେଗଶୂନ୍ୟ—3. Serene. ସ. ବି—୧ । ଚନ୍ଦନ—1. Sandal. ୨ । ମୌକ୍ତିକ; ମୁକ୍ତା—2. Pearl. ୩ । ଚନ୍ଦ୍ର—3. Moon. ୪ । ବେଣାମୂଳ—4. The root of Benā grass. ୫ । ଶୈଳ ପୁଷ୍ପ; ଶୈଳେୟ; ଔଷଧ ଦ୍ରବ୍ୟ ବିଶେଷ—5. Liquid amber; Parmalia. ୬ । ଅଚଳପର୍ଣ୍ଣୀ ନାମକ ଗୁଳ୍ମ—6. A herbarious plant. ଦେ. ବି—୧ । ମୃତକର ୪ର୍ଥ, ୭ମ, ଓ ୯ମ ଦିନ କର୍ମ, ଜ୍ଞାତି ଓ କୁଟୁମ୍ବମାନଙ୍କୁ ଖାଇବାକୁ ଦିଅଯିବା ଜଳଖିଆ ସାମଗ୍ରୀ 1. Tiffin with which the kinsmen and relatives of a deceased are fed on the 4th, 7th and 9th days during the obsequies. ୨ । ମୃତାହର ୪ର୍ଥ, ୭ମ ଓ ନବମ ଦିନ—2. The 4th, 7th and 9th days of the funerals. ୩ । ଜଳଖିଆ ସାମଗ୍ରୀ; କଷଣ୍ଟୁଭ୍ର-ପଦାର୍ଥ—3. Tiffin; refreshment; light food. জলপান (except rice and curry); sweetmeats. शीतलभोग ୪ । ସକାଳେ ଓ ସନ୍ଧ୍ୟାବେଳେ ଠାକୁରଙ୍କୁ ଦିଅଯିବା ଜଳଖିଆ ଭୋଗ—4. Light refreshments offered to a Deity in the morning and evening. ୫ । ଶୀତଳତା—5. Coldness. [ଦ୍ର—ବଚରଣ ବ ହୁମ ଶୀତଳ । ପ୍ରାଚୀ. ରସବାସ୍ଥ ।]

ଶୀତଳ ଉପହାର—ଦେ. ବି—ଜଳଖିଆ—Ṡitaḷa upahāra Light refreshment; tiffin. জলখাবার [ଦ୍ର—ଶୀତଳ ଉପହାର ଦେଇ,ଅମୃତ ଭୋଜନ କରାଇ । जलपान ରୂପଚି. ପ୍ରେମ ପଞ୍ଚାମୃତ ।]

ଶୀତଳ କରିବା—ଦେ. କ୍ରି—ଥଣ୍ଡା କରିବା—Ṡitaḷa karibā To cool.

ଶୀତଳ ଗୁ(ଗୁ)ଣ୍ଡି—ପ୍ରାଦେ. (ଗଞ୍ଜାମ)—ବି—ବିବାହ ପରେ ବିବାହ Ṡitaḷa gu(tu)ṇḍi ବେଦୀରୁ ବରକନ୍ୟା କନ୍ୟାର ଗୃହଦ୍ୱାରକୁ ଯିବା ପରେ ସ୍ତ୍ରୀମାନଙ୍କ ବନ୍ଦାପନା ପରେ ବର କନ୍ୟା ଦୁହିଙ୍କର ଏକତ୍ର ଜଳଯୋଗ—Light refreshment served to the newly married couple after they go home from the marriage alter. [ଦ୍ର—ଏକ ଆସନରେ ବସାଇ କନ୍ୟାବର, ବନ୍ଦାଇଲେ ଶୀତଳ ଗୁଣ୍ଡିକୁ ଦୁହେଁ କର । କୃଷ୍ଣସିଂ. ମହାଭାରତ ।]

ଶୀତଳ ଜଳ—ସ. ବି—ଥଣ୍ଡା ପାଣି—Cold water. [ଦ୍ର—Ṡitaḷa jaḷa ଜଳର ସାଧାରଣ ପ୍ରକୃତି ଶୀତଳତା । ଶୀତଳ ଜଳପାନ ମୂର୍ଚ୍ଛା, ପିତ୍ତ, ଉଷ୍ଣତା, ଦାହ, ବିଷଦୋଷ, ରକ୍ତଦୋଷ, ମଦାତ୍ୟୟ, ଶ୍ରମ, ଭ୍ରମ, ଅଜୀର୍ଣ୍ଣ, ତମକଶ୍ୱାସ (ଧଇଁ), ବାନ୍ତି ଓ ଊର୍ଦ୍ଧ୍ୱଗ ପିତ୍ତ ରୋଗ ପକ୍ଷରେ ହିତକାରୀ । ପାର୍ଶ୍ୱଶୂଳ ପ୍ରତିଶ୍ୟାୟ, ବାତ, ଗଳଗ୍ରହ, ଶରଦ, ନବଜ୍ୱର, ଅରୁଚି, ଗ୍ରହଣୀ, ଗୁଳ୍ମ, ଶ୍ୱାସ, କାଶ, ଗାତ୍ରପାତ୍ର ଧରା, ହିକ୍କା ପ୍ରଭୃତିରେ ଓ ସଦ୍ୟ ବମନ ବିରେଚନାଦି ଶୋଧନକ୍ରିୟା ପରେ ଓ ଘୃତାଦି ପାନ ପରେ ଜଳପାନ ଅପକାରୀ । ଅତ୍ୟଧିକ ଜଳପାନ କରିବା ଅନିଷ୍ଟକର ।]

ଶୀତଳତା(ତ୍ୱ)—ସ. ବି—(ଶୀତଳ+ଭାବାର୍ଥେ. ତା, ତ୍ୱ)—ଶୈତ୍ୟ; Ṡitaḷatā(twa) ଥଣ୍ଡା ଭାବ—Coolness; cold.

ଶୀତଳ ପ(ପା)ଟି—ଦେ. ବି—(ସଂ. ଶୀତଳ ଓ ପଟ୍ଟିକା)—୧ । ବେତ Ṡitaḷa pa(pā)ṭi ଗଛ ପରି ଗୁଳ୍ମ ଜଳଜାତ ପତ୍ରମୟ ଗୁଳ୍ମ- শীতল পাটি ବିଶେଷ—1. Clinogyne Dichotoma शीतल पटी (plant) [ଦ୍ର—ଏହା ପୂର୍ବବଙ୍ଗ (ଢାକା, ସିଲହଟ [ଶୀତଳ ପାଟ—ଅନ୍ୟରୂପ]) ଅଞ୍ଚଳରେ ଜନ୍ମେ । ଏହି ଗଛର ଛାଲର ସରୁପାଳିଅରେ ମସିଣାପରି ଶଯ୍ୟା ବୁଣାଯାଏ ।] ୨ । ଉକ୍ତ ଗଛର ଛାଲ୍ବାଡ଼ି ବୁଣା ହୋଇଥିବା ପାତଳା ବିଛଣା—2. A mat made of the strip of the above bark. [ଦ୍ର—ବଙ୍ଗ ଦେଶର କେଉଁ କେଉଁ ସ୍ଥାନରେ ଏହାକୁ ମୁକ୍ତା ପାଟ ବା ମୁକ୍ତା ପାଟି ବୋଲାଯାଏ । ଏହାକୁ ଖରାଦିନେ ଶେଯ ଉପରେ ବିଛାଇ ଶୋଇଲେ ଦେହ ଖୁବ୍ ଶୀତଳ ଲାଗେ ।]

ଶୀତଳ ପ୍ରକୃତିକ—ସ. ବିଣ. ପୁଂ—(ବହୁବ୍ରୀହି; ଶୀତଳ+ପ୍ରକୃତି+କ) Ṡitaḷa prakṛutika ଶାନ୍ତସ୍ୱଭାବବିଶିଷ୍ଟ—Mild. (ଶୀତଳ ପ୍ରକୃତିକା—ସ୍ତ୍ରୀ)

ଶୀତଳ ଭୋଗ—ଦେ. ବି—ଦେବତାଙ୍କୁ ଭୋଗ ଦିଅଯିବା ଜଳଖିଆ Ṡitaḷa bhoga (ଏଥିରେ ଜଳଖିଆ ସହିତ କର୍ପୂରପଣା ରହିବାର শীতল ভোগ ବିଧି ଅଛି)—Light refreshment शीतल भोग accompanied with sweetened water as drink to a Deity.

ଶୀତଳ ମ(ମୁ)ଣୁ(ଣୋ)ଇ(ଇଁ,ହି,ହିଁ)—ଦେ. ବି—୧ । ଜଳଖିଆ—Ṡitaḷa ma(mu)ṇu(ṇo)i(iñ, hi, hiñ) 1. Light রাজার জলখাবার राजाका जलपान refreshment. ୨ । ରାଜାଙ୍କର ଜଳଯୋଗ—2. Taking tiffin by a Rājā. [ଦ୍ର—ଶୀତଳ ମଣୋହି ସାରିଲେ, ସୁଖେ ଅଛନ୍ତେ ବସେ କଲି । ଜଗନ୍ନାଥ. ଭାଗବତ ।]

ଶୀତଳ ମରିଚ—ଦେ. ବ—କବାବ ଚିନି (ଦେଖ)
Sitala maricha Kababachini (See)
কাবাবচিনি শীতল मरिच

ଶୀତଳ ଷଷ୍ଠୀ—ସ. ବ—ଜ୍ୟୈଷ୍ଠ ଶୁକ୍ଳ ଷଷ୍ଠୀ—The 6th day of
Sitala shasthi the bright lunar fortnight of the month Jyaistha. [ବି—ଏ ଦିନ ଶିବପାର୍ବତୀଙ୍କ ବିବାହ ଉତ୍ସବ ସମ୍ପାଦନ ହୁଏ । ଏହି ଉପଲକ୍ଷରେ ପୁରୀ ଜିଲ୍ଲାର କେତେକ ବ୍ରାହ୍ମଣ ଶାସନରେ ଉତ୍ସବ ହୁଏ । ନାନା ପ୍ରକାର ବାଣ (ଭୁଇଁଚମ୍ପୀ, ହାଉଇ, ତୁବ୍ଡ଼ି, ଚମ୍ପା, ଚକ) ଗ୍ରାମବାସୀମାନେ ଉଭୟ କରି ମାରନ୍ତି ।]

ଶୀତଳ ସଞ୍ଚା—ଦେ. ବ—ଦେବତାଙ୍କୁ ଭୋଗ ଦିଆଯିବା ଜଳଖିଆ ଭୋଗ
Sitala sancha Light refreshment offered to
শীতল ভোগ शीतल भोग a Deity. [ଉ—ଶୀତଳ ସଞ୍ଚା କରିବ ନାନା ବିଧାନ ।—ପ୍ରାଚୀ. ଶ୍ରୀ ଗୁଣ୍ଡିଚା ଗୀତା ।]

ଶୀତଳ ସାମଗ୍ରୀ—ଦେ. ବ—୧ । ଜଳଖିଆ ଜିନିଷ—1. Materials
Sitala samagri জলখাবার or articles for tiffen.
जलपान ୨ । ମୃତାହର ୪ର୍ଥ, ୭ମ ଓ ୯ମ ଦିନ ବନ୍ଧୁ ଆଦିଙ୍କୁ ଦିଆ ଯିବା ଜଳଖିଆ ଜିନିଷ—2. Tiffin served to relatives on the 4th, 7th and 9th days of the funeral. (ଉ—ଏବେ ବୋଲି କେତେ ଗଲ ଶୀତଳ ସାମଗ୍ରୀ ଦେଇ । ବୈଶି, ଦରବ ଗ୍ରମାପୁଣ ।)

ଶୀତଳ ସ୍ୱଭାବ—ସ. ବ—(କର୍ମଧା)-ଶାନ୍ତ ପ୍ରକୃତି—Mild temper.
Sitala swabhaba ବିଣ. ପୁଂ—(ବହୁବ୍ରୀହି)—ଶାନ୍ତ ପ୍ରକୃତି-
(ଶୀତଳ ସ୍ୱଭାବା—ବିଣ. ସ୍ତ୍ରୀ) ବିଶିଷ୍ଟ—Mild tempered.

ଶୀତଳା—ସଂ. ବ. ସ୍ତ୍ରୀ—(ଶୀତଳ+ଆ)—୧ । ବସନ୍ତ ବସ୍ଫୋଟକାଦି
Sitala ରୋଗର ଅଧିଷ୍ଠାତ୍ରୀ ଦେବତା; ଦୁର୍ଗାଙ୍କର ମୂର୍ତ୍ତି ବିଶେଷ; ବସନ୍ତରୋଗ ଠାକୁରାଣୀ [ବି—ବଡ଼ ଦେଉଳର ବାହାର ବେଢ଼ା ମଧ୍ୟରେ ଉତ୍ତର ଦ୍ୱାରର ପଶ୍ଚିମପାଖେ କୋଇଲି ବୈକୁଣ୍ଠ ଓ ସୁନାକୂଅ ନିକଟରେ ଏ ଠାକୁରାଣୀଙ୍କ ମନ୍ଦିର ଅଛି ।)—
1. The Goddess presiding over small pox, chicken pox or other diseases of eruption. ୨ । ବାଲୁକା; ବାଲି—2. Sand; silica. ସ. ବିଣ. ସ୍ତ୍ରୀ—ଶୀତଳର ସ୍ତ୍ରୀଲିଙ୍ଗ—
Feminine of Sitala.

ଶୀତଳା(ଳେ)ଇ—ଦେ. ବ. ସ୍ତ୍ରୀ—(ସଂ. ଶୀତଳା)—
Sitala(le)i ଶୀତଳା (ଦେଖ)—Sitala (See)
মা শীতলা शीतला, चेचला

ଶୀତଳାଇବା—ଦେ. କି—ଶୀତଳେଇବା (ଦେଖ)
Sitalaiba শীতল করা Sitaleiba (See)
शीतल करना

ଶୀତ ଲଗିବା—ଦେ. ବ—ଶୀତ କରିବା; ଜାଡ଼ କରିବା—
Sita lagiba শীত লাগা Feeling of cold; feeling
शीत लगना chilly.

ଶୀତଳାଷ୍ଟକ—ସଂ. ବ—ଅଠ ଶ୍ଳୋକ ସମନ୍ୱିତ ଶୀତଳା ଦେବୀଙ୍କର
Sitalashtaka ସ୍ତୋତ୍ର—A hymn to the Goddess Sitala consisting of 8 slokas.

ଶୀତଳୀ—ସଂ. ବ—(ଶୀତଳ+ଈ; ଏହା ବ୍ରଣାଦି ରୋଗମାନଙ୍କୁ
Sitali ଶୀତଳ କରିବା ଯୋଗୁଁ ଏହି ନାମ)—ପାଣିଶିଉଳୀ—
[ବି—ଏହା ଉଦ୍ଭିଦ ପରିସ୍ରାବକ ବଳକର ଓ ବିଷଦୋଷ ନାଶକ)—An aquatic plant; Limnanthemum Indicum or Cristatum. [ବି,—ଏହାର ପତ୍ର ପଦ୍ମ ପତ୍ରର ଆକାର ବିଶିଷ୍ଟ, ମାଟ ପତଳା, ସ୍ନିଗ୍ଧ, ମସୃଣତର ଓ ଦନ୍ତୁର । ବୃନ୍ତ, ଶାଖା, ଫୁଲ ଆଦି ଉପରେ ଏହାକୁ ଘଷାଗଲେ ଉପକାର ହୁଏ । ]

ଶୀତଳେଇବା—ଦେ. କି—୧ । ଗରମ ବସ୍ତୁକୁ ଥଣ୍ଡା କରିବା—
Sitaleiba ঠাণ্ডা করা 1. To cool a hot thing.
शीतल करना [ଉ—ଉଦ୍ଭ ଉଦ୍ଭ ଜାଉ, ଶୀତଳେଇ ଖାଉ; ଜାଉ
শীতলান निकालना ଶୀତଳେଇବ ? କ ମାଛୁ ତୁରୁତେଇବ ?
ଚଗ] ୨ । (ଶୁଭବାଚକ)—ଦେହରୁ ଅଳଙ୍କାର କାଢ଼ିବା ବା ଓହ୍ଲାଇବା—2. (Euphimism) To put off ornaments from the body. [ବି,—ଦେହରେ ଥିବା ହୋଇଥିବା ଅଳଙ୍କାରମାନ ଦେହ ସଙ୍ଗେ ଲାଗିବାରୁ ଦେହର ଉତ୍ତାପ ଯୋଗୁଁ ଗରମ ଥାଏ ଓ ତାହା ଦେହରୁ କାଢ଼ି ପକାଇଲେ ଶୀତଳ ହୋଇଯାଏ । ଅଧିକ ସ୍ତ୍ରୀଲୋକମାନେ ଦେହରୁ ଅଳଙ୍କାର 'କାଢ଼ିବା' (ବୈଧବ୍ୟ ସୂଚକଭାବ ସଙ୍ଗେ ଏ ଶବ୍ଦର ସମ୍ବନ୍ଧ ଥିବାରୁ) ନ କହି ଦେହରୁ ଅଳଙ୍କାର 'ଶୀତଳେଇବା' କହନ୍ତି ।]

ଶୀତ ଲୁଗା—ଦେ. ବ—ଶୀତ ବସ୍ତ୍ର—Winter cloth.
Sita luga শীতের কাপড় शीतका कपडा

ଶୀତ ଶିବ—ସ. ବ (ଶୀତ=ଥଣ୍ଡା+ଶିବ=ଉପକାରକ ବା ମଙ୍ଗଳ-
Sita siba କର)—୧ । ଶୈଳେୟ; ଶିଳାରସ—1. Liquid amber; Parmalia Perlata. ୨ । ସୈନ୍ଧବ ଲବଣ—2. Chloride of sodium. ୩ । ପାନ-
ମହୁରୀ—3. Aniseed.

ଶୀତ ସିଲ୍—ପ୍ରାଦେ (ଗଞ୍ଜାମ) ବ—ବଡ଼ ଦିନ ବା ଖ୍ରୀଷ୍ଟମସ୍ ଛୁଟି—
Sita sila Christmas holidays.

ଶୀତା—ସ. ବ (ସୈଁ ଧାତୁ=ଗମନ କରିବା+କର୍ତ୍ତୃ. ତ+ଆ)—
Sita ୧ । ଲଙ୍ଗଳଦ୍ୱାରା କ୍ଷେତରେ ଖୋଳ ହୋଇଯିବା ଅଳ୍ପ ଗଭୀର (ସୀତା—ଅନ୍ୟରୂପ) ଗାର; ଲଙ୍ଗଳ ପଦ୍ଧତି; ଲଙ୍ଗଳ ଶିଅର; ଅଗ—
1. Furrow. ୨ । ଶ୍ରୀରାମଙ୍କ ପତ୍ନୀ ଓ ଜନକ ଦୁହିତା, ସୀତା—2. Sita, the wife of Ramachandra and the daughter of Janaka, [ବି—ଜନକ ଯଜ୍ଞଭୂମିକୁ ଚଷ କରିବା ବେଳେ ଲଙ୍ଗଳ ଶିଅରରୁ ଏହି ଶିଶୁ ମିଳିଥିବାରୁ ଏହି ନାମ । ] ୩ । ଚେଙ୍କ-ବଣୀ ବା ଚେଙ୍କବଳ ନାମକ ଔଷଧ ବୃକ୍ଷ—3. Tooth-ache tree, Cardiospermum Halicacabum.

ଶୀତାଂଶୁ—ସ. ବ (ବହୁବ୍ରୀହି; ଶୀତ=ଶୀତଳ ଅଟେ ଅଂଶୁ=କିରଣ
Sitamsu ଯାହାର)—୧ । ଚନ୍ଦ୍ର—1. The moon (literally cool-rayed). ୨ । କର୍ପୂର—2. Camphor.

ଶୀତାଂଶୁ ତୈଳ—ସଂ. ବ ( ବୈଦ୍ୟକ )—ଆୟୁର୍ବେଦୋକ୍ତ ବୃକ୍ଷରେ ଏକ ପ୍ରକାର ପତ୍ରକୁ ସିଝାଇ ସେଥିରୁ ବାହାର କରାଯିବା ତୈଳବିଶେଷ—A volatile inflamable stimulating oil; oil of cajuput, (distilled from the leaves of Malabarica Cajuput tree ); cajuputene.
Sītāmsu taila
[ଦ୍ର—ଏହି ତୈଳରୁ କର୍ପୂର ଓ ବଡ଼ ଅଳେଇଚ ପରି ଗନ୍ଧ ବାହାରେ। ଏହା ବାହ୍ୟ। ଏହା ଈଷତ୍ ଶାଗୁଆ ବର୍ଣ୍ଣ। ଏହା କଟୁ ଓ ତୀବ୍ର ସୁଗନ୍ଧଯୁକ୍ତ; ମାଲିସ କଲେ ବାୟୁ, ଆକ୍ଷେପ, ଶୂଳ, କ୍ଲମ, ବେଦନା ବା ବଥା, ଆମବାତ, ଶିରଃପୀଡ଼ା, ଆଧ୍ମାନ, ଦନ୍ତଶୂଳ ଓ ଉଦ୍ଗାର ରୋଗରେ ବିଶେଷ ଉପକାର ହୁଏ। ଅନେକ ଲୋକ ଏହାକୁ ଭୁର୍ଜପତ୍ରର ତୈଳ ବୋଲି କହନ୍ତି, କାରଣ ଏହା ସ୍ୱେଦଜନକ ଓ ମାଳୟ ଓ ଅଷ୍ଟ୍ରେଲିଆ ଦ୍ୱୀପଜାତ ପାର୍ବତ୍ୟ ବିଶେଷର ପତ୍ରରୁ ବାହାରେ। ]

ଶୀତାଂଶୁ ବଦନା(ମୁଖୀ)—ସଂ. ବଣ. ସ୍ତ୍ରୀ ( ବହୁବ୍ରୀହି, ଶୀତାଂଶୁ + ବଦନ + ସ୍ତ୍ରୀ ଆ )—ଚନ୍ଦ୍ରବଦନା; ଚନ୍ଦ୍ରମୁଖୀ—(a woman) Having the face as graceful as the moon.
Sītāmsu badanā(mukhi)
[ ଦ୍ର—ବୋଇଲେ ସୀତା ଶୀତାଂଶୁମୁଖୀ, ଏକ ସ୍ଥଳେ ଅଛ ସ୍ଥାନ ହୋଇ—ଉପେ. ବୈଦେହୀଶବିଳାସ। ]

ଶୀତା(ତେ)ଇବା—ଦେ. କ୍ରି—( ଦେହ ) ଶୀତ ବୋଧ କରିବା—( the body ) To feel a cold sensation.
Sītā(te)ibā
[ଗା] শীত শীত বোধ করা
शीत मालूम करना
[ଶୀତା(ତେ)ଇ ଉଠିବା—ଅନ୍ୟରୂପ]
[ ଦ୍ର—ମନରେ ହଠାତ୍ ଭୟ ଉତ୍ପାଦକ ହେଲେ କମ୍ପ ଉତ୍ପନ୍ନକର ଘଟଣା ଦେଖିଲେ ବା ଶୁଣିଲେ ଦେହ ଶୀତାଇ ଉଠେ ଓ ତତ୍କାଳ ଲୋମହର୍ଷଣ ହୁଏ ବା ଲୋମ ଠାକୁରି ଉଠେ। ]

ଶୀତାଗମ—ସଂ. ବ ( ୬ଷ୍ଠୀ ତତ୍ )—ହେମନ୍ତଋତୁର ଆବିର୍ଭାବ—The approach or appearance of the winter.
Sītāgama

ଶୀତାତପ—ସଂ. ବ ( ଦ୍ୱନ୍ଦ୍ୱ; ଶୀତ+ଆତପ )—୧। ଶୀତଳତା ଓ ଉଷ୍ଣତା—1. Cold and heat. ୨। ଶୀତ ଓ ଖରା—2. Cold and sunshine.
Sītātapa

ଶୀତାତପ ସହ—ସଂ. ବଣ. ପୁଂ—ଯେ ଶୀତ ଓ ଖରା ସହିପାରେ—One who can bear a good deal of chill and sunshine.
Sītātapa saha
[ଶୀତାତପ ସହିଷ୍ଣୁ—ଅନ୍ୟରୂପ] (ଶୀତାତପସହା—ସ୍ତ୍ରୀ)

ଶୀତାଦ୍ରି—ସଂ. ବ ( କର୍ମଧା, ଶୀତ + ଅଦ୍ରି )—ହିମାଦ୍ରି; ହିମାଳୟପର୍ବତ—The Himalayan mountains.
Sītādri

ଶୀତାର୍ତ୍ତ—ସଂ. ବଣ. ପୁଂ (୩ୟା ତତ୍, ଶୀତ + ଋତ କର୍ମ୍ମ ଅର୍ତ୍ତ)—ଶୀତ ପୀଡ଼ିତ; ଶୀତ ଯୋଗୁଁ କାତର—Pinched with cold; chilled; badly affected by chill.
Sītārtta
(ଶୀତାର୍ତ୍ତା—ସ୍ତ୍ରୀ)

ଶୀତାର୍ତ୍ତି—ସଂ. ବ—ଶୀତ ଯୋଗୁଁ ଉତ୍ପନ୍ନ କଷ୍ଟ—suffering or pangs brought about by cold.
Sītārtti

ଶୀତାଳୁ—ସଂ. ବଣ ( ଶୀତ+ସହ୍ୟାର୍ଥେ ଆଳୁ; ତୁଳ. ଦୟାଳୁ, ଦୟାଳୁ, ଶ୍ରଦ୍ଧାଳୁ )—୧। ଶୀତାର୍ତ୍ତ—1. Pinched with cold. ୨। ଯେ ଶୀତକୁ ଭାରି ଡରେ—2. Afraid of cold.
Sitālu

ଶୀତାଶ୍ମା—ସଂ. ବ ( କର୍ମଧା; ଶୀତାଶ୍ମନ୍ ଶବ୍ଦ, ୧ମା. ୧ବ, ଶୀତ= ଶୀତଳ+ଅଶ୍ମନ୍=ପଥର )—ଚନ୍ଦ୍ରକାନ୍ତ ମଣି—A kind of gem; the moon-stone.
Sitasmā

ଶୀତୁଳା(ଲେ)ଇବା—ଦେ. କ୍ରି—ଶୀତଳେଇବା ( ଦେଖ )
Sītulā(le)ibā
Sītaleibā ( See )

ଶୀତୁଳି—ଦେ. ବ (ସଂ ଶୀତ)—ଗ୍ରୀଷ୍ମଋତୁର ଦ୍ୱିପ୍ରହରର ପ୍ରଚଣ୍ଡ ରୌଦ୍ର କମିଯିବା ପରେ ଅପରାହ୍ଣରେ ଅନୁଭୂତ ଅପେକ୍ଷିତ ଶୈତ୍ୟ—Lower temperature in th afternoon of summer,
Sītuli
ଠାଣ୍ଡା ठण्डा

ଶୀତୋତ୍ତମ—ସଂ. ବ (୭ମୀ ତତ୍, ଶୀତଳ ପଦାର୍ଥମାନଙ୍କ ମଧ୍ୟରେ ଉତ୍ତମ, ତୁଳ. ନରୋତ୍ତମ, ପୁରୁଷୋତ୍ତମ)—ଜଳ; ପାଣି—Water.
Sītottama

ଶୀତୋତ୍ଥ—ସଂ. ବ—ଶ୍ୱେତ ମରିଚ; ଧଳା ମରିଚ; ସଜନା ମଞ୍ଜି—A species of white pepper; seeds of Hyperanthera Moringa.
Sītottha
ଅନ୍ୟ ସଂ—ସିତ ମରିଚ, ସିତବଲ୍ଲୀଜ, ବାଳକ, ବତ୍ତୁଳ, ଧବଳଚନ୍ଦ୍ରକ।
ଶ୍ୱେତ মরিচ
सादा मरिच
ମ. ପାଂଢାରେ ମିରଘେ
ତେ. ତେଲ୍ଲମିରିୟାଲୁ
[ ଦ୍ର—ଏହା କଟୁ ରସ, ଉଷ୍ଣବୀର୍ଯ୍ୟ, ଭୂତନାଶକ, ଅଚକ୍ଷୁଷ୍ୟ, ଓ ଅନ୍ୟ ଦ୍ରବ୍ୟ ସହିତ ମିଶ୍ରିତ ହୋଇ ରସାୟନରୂପେ ବ୍ୟବହୃତ ହୁଏ। ଏହା ବିଷରୋଗ ଓ ନେତ୍ରରୋଗ ନାଶକ। ଶିରୋରୋଗରେ ଏହାର ନସ୍ୟ ବିଶେଷ ଉପକାରୀ। ]

ଶୀତୋଦକ—ସଂ. ବ ( କର୍ମଧା )—ଥଣ୍ଡା ପାଣି—Cold water.
Sītodaka

ଶୀତୋଷ୍ଣ—ସଂ. ବଣ ( ଦ୍ୱନ୍ଦ୍ୱ, ଶୀତ+ଉଷ୍ଣ )—ଥଣ୍ଡା ଓ ଗରମ—Cold and warm.
Sitoshna

ଶୀତୋଷ୍ଣତା(ତ୍ୱ)—ସଂ. ବ(ଶୀତୋଷ୍ଣ+ତା, ତ୍ୱ)—ଥଣ୍ଡା ଓ ଗରମଭାବ—Coldness and warmth; cold and heat.
Sitoshnatā(twa)

ଶୀତ୍କାର—ସଂ. ବ (ଶୀତ୍+କୃ ଧାତୁ+ଘଞ. ଅ)—ଶୀତ୍କାର (ଦେଖ)
Sitkāra
Sit-kāra (See)

ଶୀତ୍କୃତ(ତି)—ସଂ. ବଣ. ଓ ବ—ଶୀତକାର ( ଦେଖ )
Sitkruta(ti)
Sitkara (See)

ଶୀତ୍ୟ—ସଂ ବ (ଶୀତା=ଲାଙ୍ଗଳପଦ୍ଧତି+ଯ)-କୃଷ୍ଟ; ଚଷାହୋଇଥିବା—Ploughed up; cultivated.
Sitya

ଶୀଧୁ(ଧୂ)—ସଂ. ବ ( ଶୀ ଧାତୁ=ଶୟନକରିବା+କରଣ ଧୁ ଯାହା ପାନକଲେ ଲୋକେ ଶୋଇପଡ଼ନ୍ତି )—୧। ମଦିରା; ମଦ୍ୟ; ମଦ—1. Wine. ୨। ପକ୍ୱଇକ୍ଷୁରସରୁ ପ୍ରସ୍ତୁତ ମଦ—2. Spirituous liquor distilled from sugarcane juice. ୩। ଅରକ୍ଷୀ—3. Spirit; rum.
Sidhu(dhu)
[ଶୀଧୁ(ଧ)—ଅନ୍ୟରୂପ]
[ ଦ୍ର—ପକ୍ୱ ଓ ଅପକ୍ୱ ଇକ୍ଷୁରସରୁ ପ୍ରସ୍ତୁତ ମଦକୁ ଶୀଧୁ ବୋଲାଯାଏ।

କିନ୍ତୁ ଖର୍ଜୁରସଜାତ ମଦ୍ୟର ଉଲ୍ଲେଖ । ଏହା କଷାୟାମ୍ଳ— ମଧୁରରସ, ସ୍ନିଗ୍ଧ, ଗୁରୁକର, ମଳଭେଦକ, ଅଗ୍ନିବର୍ଦ୍ଧକ ଓ ବଳବର୍ଣ୍ଣବର୍ଦ୍ଧକ, ବାତପିତ୍ତଜନକ, କଫନାଶକ, କୋଷ୍ଠ-ବଦ୍ଧତା, ମେହଦୋଷ, ଗ୍ରହଣୀ, ଶୋଥ, ଅର୍ଶ, ପ୍ରମେହ ଓ କଫ ରୋଗରେ ଉପକାରୀ । ଅଧିକନ୍ତୁ ଇକ୍ଷୁରସଜାତ ମଦ୍ୟର ନାମାନ୍ତର ଶୀଧୁରସ ।)

**ଶୀଧୁ ଗନ୍ଧ**—ସଂ. ବି (ଶୀଧୁ=ମଦ୍ୟ ବିଶେଷ+ଗନ୍ଧ=ଅଘ୍ରାଣ; Śidhu gandha ବହୁବ୍ରୀହି)—ବଉଳ ଗଛ—The Bakula tree.

**ଶୀନ୍**—ଦେ. ବି (ଇଂ. ସୀନ)—ସିନ୍ (ଦେଖ) Śin Sin (See) सीन सिन

**ଶୀନ**—ସଂ. ବିଣ (ଶ୍ୟୈ ଧାତୁ=ଗମନ କରିବା+କର୍ତ୍ତୃ. କ)— Śina ୧ । ଘନୀଭୂତ; ଜମିଯାଇ ଶକ୍ତ ହୋଇଥିବା (ଜଳୀୟବସ୍ତୁ)— 1. Hardned; solidified; condensed; thickened; coagulated. ୨ । ମୂର୍ଖ—2. Illiterate; dunce. ପୁ. ବି (ଶୀ ଧାତୁ=ଶୋଇବା+କର୍ତ୍ତୃ. ନ)—ଅଜଗର—Python; boa constrictor,

**ଶୀ ପାଛ(ଛୁ)ଡ଼ା**—ପ୍ରାଦେ (ସମ୍ବଲ) ବି—ଶୀତ ଚଦର— Śi pāchha(chhu)ṛā Wrapper for the winter season.

**ଶୀଫର**—ସଂ. ବିଣ—୧ । ସ୍ଫୀତ—1. Swollen. ୨ । ମନୋରମ— Śiphara 2. Beautiful; charming.

**ଶୀବା**—ସଂ. ବି (ଶୀ ଧାତୁ=ଶୟନ କରିବା+କର୍ତ୍ତୃ. ବନ୍; ଶୀବନ୍ ଶବ୍ଦ Śibā ୧ମା. ୧ବ)—୧ । ଅଜଗର ସାପ—1, Python; boa constrictor. ୨ । ବୋଡ଼ା ସାପ—2, Viper.

**ଶୀର**—ସଂ. ବି (ଶୀ ଧାତୁ=ଶୋଇବା +କର୍ତ୍ତୃ. ର)—ବୃହଦାକାର ସାପ, Śira ଅଜଗର—Big boa; python,

**ଶୀରକର**—ଦେ. ବି (ସଂ. ସୀରକର)—ବଳରାମ—Balarāma. Śirakara (ଉ—ଶୀରକର ଶାନ୍ତନୁର ସାରଗର ମୃଦକର ସୁହାସିର । ଅପରକୁମ୍ଭ ବଦନ୍ଧଚନ୍ଦ୍ରମଣି ।)

**ଶୀରଷ**—ଗ୍ରା. ବି (ପଦ୍ୟ) (ସଂ. ଶୀର୍ଷ)—ଶୀର୍ଷ; ମସ୍ତକ; ମୁଣ୍ଡ— Śirasha (ଉ—ଚକ୍ରଙ୍କ ଅପରାଗରେ ଫୁଲ ତୋଳିବାରେ, ମାଡି ଦାଉ शीश सिर ଅଗ ଲଗାନ୍ତି ଶୀରଷରେ । କୃଷ୍ଣସିଂହ. ମହାଭାରତ ।)

**ଶୀର୍ଣ୍ଣ**—ସଂ. ବିଣ (ଶୃ ଧାତୁ=ହିଂସା କରିବା ବା ବଧ କରିବା+କର୍ମ. Śirṇṇa ତ)—୧ । ଅହତ—1, Hurt; injured. ୨ । (ଶୀର୍ଣ୍ଣା—ସ୍ତ୍ରୀ) କ୍ଷୀଣ; କୃଶ—2,Emaciated; weak; feeble; thin; slender. ୩ । ଜୀର୍ଣ୍ଣ—3, Decayed, ୪ । ଶୁଷ୍କ—4. Dried; withered; shrivelled. ୫ । ଛିନ୍ନ—5. Torn. ୬ । କଙ୍କାଳମାତ୍ରାବଶିଷ୍ଟ— 6, Reduced to skeleton. ୭ । ପତିତ— 7. Fallen.

**ଶୀର୍ଣ୍ଣ କାୟ**—ସଂ. ବିଣ. ପୁଂ (ବହୁବ୍ରୀହି)—କ୍ଷୀଣ ଦେହବିଶିଷ୍ଟ; କୃଶଶରୀର Śirṇṇa kāya ବିଶିଷ୍ଟ—Slender-bodied; lean-bodied. (ଶୀର୍ଣ୍ଣ କାୟା—ସ୍ତ୍ରୀ) ବି (କର୍ମଧା)—ସରୁଆ ଦେହ — Lean body.

**ଶୀର୍ଣ୍ଣତା(ତ୍ୱ)**—ସଂ. ବି (ଶୀର୍ଣ୍ଣ+ଭାବ ତା, ତ୍ୱ)—କୃଶତା; କାର୍ଶ୍ୟ— Śirṇṇatā(twa) Leanness; withered or emaciated condition.

**ଶୀର୍ଣ୍ଣ ଦେହ**—ସଂ. ବି ଓ ବିଣ—ଶୀର୍ଣ୍ଣକାୟ (ଦେଖ) Śirṇṇa deha Śirṇṇakāya (See) (ଶୀର୍ଣ୍ଣଦେହା—ସ୍ତ୍ରୀ. ବିଣ)

**ଶୀର୍ଣ୍ଣ ପାଦ**—ସଂ. ବି (ଶୀର୍ଣ୍ଣ+ପାଦ; ବହୁବ୍ରୀହି; ମାଘଙ୍କ ଅଭିଶାପରେ Śirṇṇa pāda ଯାହାଙ୍କର ପାଦ କେଙ୍ଗା ହୋଇଥିଲା)—ଯମ; (ଶୀର୍ଣ୍ଣାଙ୍ଘ୍ରି—ଅନ୍ୟରୂପ ଅନ୍ତକ—Jama.

**ଶୀର୍ଣ୍ଣ ବୃନ୍ତ**—ସଂ. ବି (ବହୁବ୍ରୀହି)—ଫୁଟିକାକୁଡ଼ି (ଦେଖ) Śirṇṇa bṛunta Phuṭikākurḍi. (See)

**ଶୀର୍ଷ**—ସଂ. ବି (ଶିରସ୍ ସ୍ଥାନରେ ଶୀର୍ଷ; ଶିରସ୍ ଶବ୍ଦର ଅନ୍ୟରୂପ)— Śirsha ୧ । ଶିରର; ଶିରଃ; ମୁଣ୍ଡ; ମସ୍ତକ—1. Head; ୨ । ଚୂଡ଼ା; ଅଗ୍ରଭାଗ—2. Top; summit. ୩ । କୃଷ୍ଣ ଅଗୁରୁ—3. Black agalochium.

**ଶୀର୍ଷକ**—ସଂ. ବି (ଶୀର୍ଷ+କ)—୧ । କରୋଟି; ମୁଣ୍ଡର ଖପୁରି— Śirshaka 1. Skull. ୨ । ରାହୁଗ୍ରହ—2. The Dragon's head. ୩ । ମସ୍ତକ; ମୁଣ୍ଡ—3. Head. ୪ । ଜୟପରାଜୟର ନିଦର୍ଶନ ପତ୍ର—4. A testimony indicating victory or defeat. ୫ । ମୁଣ୍ଡରେ ପିନ୍ଧାଯିବା ଅଳଙ୍କାର ବା ମୁକୁଟ ପ୍ରଭୃତି—5. Crown, head dress. ୬।ଶିରସ୍ତ୍ରାଣ; ପଗଡ଼ି; ଟୋପି; ଟୋପର— 6. Turban; helmet; hat; cap. ଦେ. ବି— (ଅନ୍ୟ ଶବ୍ଦ ସଙ୍ଗେ 'ଶୀର୍ଷ' ଶବ୍ଦ ସମାସ ହୋଇ ଯୁକ୍ତ ହେଲେ ଶେଷରେ 'କ' ଆଗମ ହୁଏ । ଯଥା— 'ଅଥବସାଦ୍'-ଶୀର୍ଷକ ପ୍ରବନ୍ଧ) (ଅମୁକ) ଶିରୋନାମାଯୁକ୍ତ; ଯେଉଁ ପ୍ରବନ୍ଧ ଆଦିର ଶିରୋଭାଗରେ କୌଣସି ନାମ ଥାଏ— Having the title of; having the superscription of; under the heading of; entitled.

**ଶୀର୍ଷଚ୍ଛେଦନ**—ସଂ. ବି (ସନ୍ଧି ଯୋଗୁଁ ଦ୍ୱିତ୍ୱ 'ଚ୍')—ଶିରଚ୍ଛେଦ; ମୁଣ୍ଡକାଟ Śirshachchhedana —Beheading; decapitation,

**ଶୀର୍ଷ ଚ୍ଛେଦ୍ୟ**—ସଂ ବିଣ. ପୁଂ (ବହୁବ୍ରୀହି; ଶୀର୍ଷ ଅଟେ ଚ୍ଛେଦ୍ୟ ଯାହାର)- Śirsha chchhedya ଶିରଚ୍ଛେଦନ ଯୋଗ୍ୟ; ବଧ୍ୟ— (ଶୀର୍ଷଚ୍ଛେଦିକ—ଅନ୍ୟରୂପ) Seserving decapitation or capital punish- (ଶୀର୍ଷଚ୍ଛେଦ୍ୟା—ସ୍ତ୍ରୀ ) ment.

**ଶୀର୍ଷଣ୍ୟ**—ସଂ ବିଣ (ଶିରସ୍+ଯ, ଅଭେଦାର୍ଥେ; ଶିରସ୍ ସ୍ଥାନରେ Śirshaṇya ଶୀର୍ଷନ୍)—୧ । ମସ୍ତକରେ ପିନ୍ଧା ଯାଉଥିବା— 1 Worn on the head. ୨ । ମସ୍ତକୋତ୍ତମ—

2. Growing on the head. ୩ । ମୁଣ୍ଡରେ ଅବସ୍ଥିତ 3. Being on the head ବି—୧ । ଶୀର୍ଷ ବା ଶିରସ୍ଥିତ କେଶ—1 Hair neatly made up into a chignon; hair kept neat and clean ୨ । ଶିରସ୍ତ୍ରାଣ; ପଗଡ଼ି—2 Helmet; turban.

**ଶୀର୍ଷ ବର୍ତ୍ତନ**—ସଂ. ବି (ସ୍ମୃତି)—"ଯଦି ଅଭିଯୁକ୍ତ ବ୍ୟକ୍ତିଙ୍କୁ ଅପରାଧୀ ବୋଲି ମୁଁ ପ୍ରମାଣିତ କରି ନ ପାରିବି, ତେବେ ତା ବଦଳରେ ମୁଁ ଦଣ୍ଡ ପାଇବି (ଅର୍ଥାତ୍ ମୋ ମୁଣ୍ଡକାଟ ଦେବି)" ମୁଦେଇର ଏପରି ସ୍ୱୀକାରୋକ୍ତି—(Hindu Law) The undertaking given by a complainant that he will undergo punishment if he be unable to bring home the charge to the accused.
Sirsha barttana

**ଶୀର୍ଷ ସ୍ଥାନ**—ସଂ. ବି—୧ । ମସ୍ତକ—1. Head. ୨ । ଉଚ୍ଚତମ ସ୍ଥାନ—2. Highest place. ୩ । ସବାଗ୍ର ସ୍ଥାନ; ସର୍ବୋପରି ଅବସ୍ଥିତି—3. The topmost place or highest position. ୪ । ତାଲିକାର ସର୍ବୋଚ୍ଚ ସ୍ଥାନ—4. Top of a list.
Sirsha sthāna

**ଶୀର୍ଷ ସ୍ଥାନ ଅଧିକାର କରିବା**—ଦେ. କି—ସର୍ବୋଚ୍ଚ ସ୍ଥାନରେ ବସିବା—To sit at the highest place; to head the list; to occupy the foremost position.
Sirsha sthāna adhikāra karibā
शीर्षस्थानअधिकारकरा उच्चासनपाना

**ଶୀର୍ଷ ସ୍ଥାନୀୟ**—ସ. ବିଣ (ଶୀର୍ଷ ସ୍ଥାନ+ଈୟ)—୧ । ଶୀର୍ଷ ସ୍ଥାନ ଅଧିକାର କରିବାର ଯୋଗ୍ୟ—1. Fit to occupy the highest position. ୨ । ସର୍ବପ୍ରଧାନ (ବ୍ୟକ୍ତି)—2. Most prominent (person).
Sirsha sthāniya
[ଶୀର୍ଷ ସ୍ଥାନୀୟା—ସ୍ତ୍ରୀ]

**ଶୀଲ୍**—ଦେ. ବି—ସିଲ୍ (ଦେଖ)—Sil (See) ବୈଦେ. ବି (ଇଂ. ଶୀଲ୍)—୧ । ସାମୁଦ୍ରିକ ଜୀବବିଶେଷ—1. An aquatic animal; seal. ୨ । (ଇଂ. ସୀଲ୍) ମୁଦ୍ରାଙ୍କନାର୍ଥ ବ୍ୟବହୃତ ମୋହର—2. Seal; stamp. ଦେ. ବି (ସ. ଶୀଳ)—ବଙ୍ଗଦେଶୀୟ କାୟସ୍ଥମାନଙ୍କର ବଂଶୋପାଧି ବିଶେଷ—A family title of the Kāyasthas in Bengal.
Sil
सील सील

**ଶୀଲ୍ (ଧାତୁ)**—ସ.—୧ । ଅଭ୍ୟାସ କରିବା—2. To exercise; to practise. ୨ । ଅଭ୍ୟସ୍ତ ହେବା—2. To be habituated to.
Sil (root)

**ଶୀଳ**—ସ.ବି (ଶୀଲ୍ ଧାତୁ+ଅ)—୧। (+କର୍ମ.ଅ)ଆଚରଣ—1. Conduct. ୨। (+କରଣ.ଅ)ସ୍ୱଭାବ; ପ୍ରକୃତି—2. Nature; disposition. ୩ । (+ଭାବ. ଅ) ଅଭ୍ୟାସ—3. Habit; practice. ୪ । (+କର୍ମ. ଅ) ସାଧୁତା; ସଚ୍ଚରିତ୍ରତା—4. Good conduct. ୫ । ଚରିତ୍ର—5. Character. ବି (ଶୀ ଧାତୁ=ଶୋଇବା +କର୍ତ୍ତୃ. ଳ)—ଅଜଗର—Python; boa. ପୁଂ—୧ । (ସମାସଯୁକ୍ତ ହେଲେ) ପ୍ରକୃତିବିଶିଷ୍ଟ—1 (in compound) Natured. ୨ । ଅଭ୍ୟାସଯୁକ୍ତ—2. Habituated to. ଦେ. ବି—ବଙ୍ଗ ଦେଶର ବଂଶୋପାଧି ବିଶେଷ—A family-title in Bengal.
Sila

**ଶୀଳତା**—ଦେ. ବି—ସଦାଚରଣ; ସୁଶୀଳତା—Good behaviour; good manners. [ଉ—ନୃପ ଶୀଳତା ପ୍ରଶଂସିଲେ, ତକ୍ଷଣେ ଅନ୍ତର୍ଦ୍ଧାନେ ଗଲେ—ଜଗନ୍ନାଥ. ଭାଗବତ ।]
Silatā

**ଶୀଳନ**—ସ. ବି (ଶୀଲ୍ ଧାତୁ+ଭାବ ଅନ)—ଅଭ୍ୟାସ—1. Habit; exercise. ୨ । ଆଲୋଚନା—2. Discussion. ୩ । ପର୍ଯ୍ୟବେକ୍ଷଣ—3. Observation. ୪ । ପ୍ରବର୍ତ୍ତନ—4. Promulgation.
Silana

**ଶୀଳବାନ୍**—ସ. ବିଣ. ପୁଂ (ଶୀଳବତ୍ ଶବ୍ଦ; ୧ମା.୧ବ)—୧ । ସୁଶୀଳ; ସଚ୍ଚରିତ୍ର; ଚରିତ୍ରବାନ୍—1. Of good conduct; virtuous. (ଶୀଳବତୀ—ସ୍ତ୍ରୀ) ୨ । ନୀତିବାନ୍—2. Moral. (ଶୀଳବତ୍ତ—ବି)
Silabān

**ଶୀଳ ବତୀ**—ସ. ବିଣ. ସ୍ତ୍ରୀ—ସାଧ୍ୱୀ; ସତୀ (ସ୍ତ୍ରୀ)—Chaste (woman).
Sila bati

**ଶୀଳବନ୍ତ(ନ୍ତା)**—ଦେ.ବିଣ (ସ. ଶୀଳବାନ୍)—୧। ଚରିତ୍ରବାନ୍—1. Of good character. [ଉ—ଶୀଳବନ୍ତ ଲୋକର ଦୁଃଖର ପ୍ରତିକି । କୃଷ୍ଣସିଂହ. ମହାଭାରତ ।] ୨। ସତ୍—2. Honest. ଦେ. ବି (ସଂ. ଶୀଳବତ୍ତ)—ସାଧୁତା; ଶିଷ୍ଟତା—Honesty. [ଉ—ପ୍ରସନ୍ନ ଚନ୍ଦ୍ରେ (ଶୀଳବନ୍ତୀ—ସ୍ତ୍ରୀ. ବିଣ) ଶୂଳହସ୍ତ, ଦେଖି ତାହାଙ୍କ ଶୀଳବନ୍ତ—ଜଗନ୍ନାଥ. ଭାଗବତ ।]
Silabanta(ntā)
चरित्रवान
शीलवन्त

**ଶୀଳ ବୃକ୍ଷ**—ସ. ବି—କ୍ଷୀର ବୃକ୍ଷ (ଦେଖ)
Sila bruksha Kshira bruksha (see)

**ଶୀଳା**—ଦେ. ବି—ଧୀର ବ୍ୟକ୍ତି; ଧୀର ସ୍ୱଭାବ ବ୍ୟକ୍ତି—A man of mild nature or temperament. [ଉ—ବଦ୍‌ଶାଇ ସେ ଶିଳାଏ, ବନ୍ଧୁ ଶୀଳା ଏ ଦୁହାଏ—ଉଜ୍ଜ. ବୈଦେହୀଶବିଳାସ ।]
Silā
सुशील
शीलवन्त

**ଶୀଳିତ**—ସଂ. ବିଣ (ଶୀଲ୍ ଧାତୁ=ଅଭ୍ୟାସ କରିବା+କର୍ମ. ତ)—୧ । ଅଭ୍ୟସ୍ତ—1. Habituated; practised. ୨ । ପ୍ରବର୍ତ୍ତିତ—2. Promulgated. ୩ । ଶିକ୍ଷିତ—3. Educated; trained. ୪ । ଆଲୋଚିତ—4. Discussed.
Silita

**ଶୁ**—ଦେ. ଅ—(ଧ୍ୱନ୍ୟନୁକରଣ)—୧ । ବେଗରେ ପବନ ବହିବା ଶବ୍ଦ; ସାଇଁ ସାଇଁ—1. The blowing sound of wind. ୨ । ସାପ ଗର୍ଜିବାର ଶବ୍ଦ—2. Hissing sound of serpents. (ଶୁଇ, ଶୁଇଶୁଇ—ଅନ୍ୟରୂପ)
Su
শাঁশাঁ सनसन
ফোসকোস सीसकार

**ଶୁଅ ବସ(ସା)**—ଦେ.ବି—(ସ. ଶୟନ ଓ ଉପବେଶନ)—୧ । ଶୋଇବା ଓ ବସିବା—1. Sleeping and sitting.
Suā basa(sā)

ଶୋଆ ବସା ସোনা বঠনা ୨ । ସହବାସ—2. Intercourse.
୩ । ସ୍ତ୍ରୀପୁରୁଷ ସଙ୍ଗମ—3. Cohabitation.

ଶୁଅର୍—ଦେଓ ବୈଦେ. ବ—(ସ. ଶୂକର; ପା—ଶୁଅର୍)—୧ । ଘୁଷୁରି
Śuar ଶুয়াର সুঅৰ —1. A pig. ୨ । ଘୁଷୁରି ପରି
ଘୃଣ୍ୟ ବ୍ୟକ୍ତି—2. A detestable person (like a pig).

ଶୁଅର୍‌କା(କୀ) ବଚ୍ଚା—ବୈଦେ. ବ—(ଗାଳିରେ ବ୍ୟବହୃତ; ହିନ୍ଦିରୁ ଅନୂ
Śuar-kā(kī) bachchā ଦିତ; ଯାହାର ପିତା ଘୁଷୁରି ପରି ଘୃଣ୍ୟ;
শুয়োরকাবাচা সুঅৰকোবাৱ ଘୁଷୁଡ଼ିଛୁଆ (a term of abuse)
—A pig's son.

ଶୁଆ—ଦେ. ବ—୧ । (ସ. ଶୁକ)—ଶୁକ ପକ୍ଷୀ—
Śuā ଟିয়া সুগা, तोत 1. Parrot.
[ବି—ଶୁଆ ଗ୍ରୀଷ୍ମ ପ୍ରଧାନ ଦେଶରେ ନାନା ବର୍ଣ୍ଣର ଓ ନାନା ଜାତିର ଅଛନ୍ତି । ଖୁବ୍ ଛୋଟ ଶୁଆ ୬ ଇଞ୍ଚ ୮ ବଡ଼ ଶୁଆ ୨ ହାତ ପର୍ଯ୍ୟନ୍ତ ଲମ୍ବ ହୁଅନ୍ତି । ତାହାର ସମସ୍ତ ଦେହର ବର୍ଣ୍ଣ ଶାଗୁଆ, ତାହାର ଦେହ ଶାଗୁଆ ଓ ମୁଣ୍ଡ ନାଲି । ତାହାର ଦେହ ନାଲି, ତାହାର ଦେହ ଧଳା । ଶୁଆମାନେ ନାନା ଜାତିର । ଯଥା—ପାଟଖଲିଆ, ନାହାକା, ଡୁମ୍ବା ବା ଚୋଡ଼ା, ଜାକାଭୁଅ, ପାଗଲାଟ । ଏମାନଙ୍କ ଥଣ୍ଟର ଅଗ ବଙ୍କା ଓ ଥଣ୍ଟ ବାଙ୍କୁଆ ଓ ଏମାନେ ଫଳ ମୂଳ ଖାଇ ପ୍ରାଣ-ଧାରଣ କରନ୍ତି । ସାଧାରଣ ଶୁଆମାନେ ବଡ଼ି ଗଲେ ସେମାନଙ୍କ ବେକ ଚାରି ପାଖରେ ଗୋଟିଏ ଗୋଲପି, କଳା ଓ ନାଲି ଚେମ ବସିଷ୍ଟ ଗାର ହୁଲି ଯାଏ ଓ ବୁଢ଼ା ହୋଇ ଗଲେ କଣ୍ଠ ତଳେ ଗୋଟିଏ ଝାଲୁଆ ମାଂସ ପିଣ୍ଡୁଳା (କଣ୍ଠୀ) ବାହାରି ପଡ଼େ । ଏହି ନାଲି ଗାର ଓ କଣ୍ଠୀ ଦେଖି ଶୁଆମାନଙ୍କ ବୟସ ନିର୍ଣ୍ଣୟ କରି ଯାଏ । ଆମ ଦେଶର ଲୋକଏ ଶୁଆମାନଙ୍କୁ ଲୋକେ ପାଳି କରି ହରି ନାମ ଓ ଗୀତ ଆଦି ପଦ ଅଭ୍ୟାସ କରିବାକୁ ଶିଖାନ୍ତି । ଶୁଆମାନଙ୍କୁ ଶିଖାଇବା କେତେକ ପଦ—କ । "ରାଧା ! କୃଷ୍ଣ ରାଧା ! କୃଷ୍ଣରାଧା ! କୃଷ୍ଣ କୃଷ୍ଣ ! ରାମ୍ ରାମ୍, ପଢ଼ ବାବା ଅପ୍ପା ରାମ୍ ।"
ଖ । "ପତିତପାବନ ଗତି କର କୃଷ୍ଣ ! ଶ୍ରୀ ରାଧାକାନ୍ତ କୃଷ୍ଣ ।"
ଗ । "କୃଷ୍ଣ କଳପତରୁ, କୃଷ୍ଣ ଜଗତଗୁରୁ, କୃଷ୍ଣ ଗୋପରେ ରଜା, କୃଷ୍ଣ ମୁରଲି ବଜା ।"
ଘ । "କୃଷ୍ଣ କଳପତରୁ, କୃଷ୍ଣ ଜଗତ ଗୁରୁ, କର କୃଷ୍ଣ ପରତ୍ରାଣ, କହ କୃଷ୍ଣ, ବୋଲ କୃଷ୍ଣ, କୃଷ୍ଣ କୃଷ୍ଣ ରାମ୍ ରାମ୍ ।"
ଙ । "ଚକ୍ରଧର ! ପକ୍ଷୀ ଜନ୍ମରୁ ଉଦ୍ଧାର କର ।"]
୨ । (ସ. 'ଶୀ' ଧାତୁ)—ଶୋଇବା କ୍ରିୟା—2. Act of sleeping. ବିଣ.—୧ । ନିଦ୍ରାଳୁ (ବ୍ୟକ୍ତି)—
নিদালু সোনৈ বাଲା 1. A person given to much sleeping. ୨ । ଶୋଇ ଶୁଏ—2. Sleeping.

ଶୁଆଇ ଦେବା—ଦେ. କ୍ରି—୧ । (ମାଡ଼ ମାରିବା ପେଷ୍ଟ ଖେଳ) କୌଣସି
Śuāi debā ବ୍ୟକ୍ତିକୁ ତଳେ ପାତିତ କରିବା—To lay a
শোয়ান সুলাদেনা person down on the ground; to fell. ୨ । ଶିଶୁକୁ ବା ରୋଗୀକୁ ଭୂମିରେ ଶାୟିତ କରିବା
2. To cause (a child) to lie down on the ground [ଉ—କଂସ ସଭାରେ ମିଳନ୍ତି, ବାଳକ ତଳେ ଶୁଆଇଲା । ଜଗନ୍ନାଥ. ଭାଗବତ ।]
୩ । ଶୋଇବାପାଇଁ ଉପଯୁକ୍ତ ସୁବିଧା ବା ଗୋଳମାଳଶୂନ୍ୟ ଅବସ୍ଥା ଜାତ କରିବା—3. To let one sleep by not making any noise or by making the sorroundings favourable to sleeping: (ଯଥା—ଗୁଡ଼ିଆକ ବାଜା ବଜେଇ ସିନେମା-ବାଲାମାନେ ପଡ଼ୋଶୀଙ୍କୁ ଶୁଆଇ ଦେଲେ ନାହିଁ ।)

ଶୁଆଇ ପକା(କେ)ଇବା—ଦେ. କ୍ରି—ଶିଶୁ ଅଧକୁ ଦୋଳାଇ ବା ମାତୃ
Śuāi pakā(ke)ibā ସ୍ତନକୁ ତାଙ୍କ ମୁଖରେ ଲଗାଇ ବା ଗୀତ
শুআইবা সুলাদেনা ଶୁଣାଇ ନିଦ୍ରିତ କରାଇବା—To cause a baby to sleep by rocking or fitting the nipple of the mother's breast to its mouth or by singing lullabies.

ଶୁଆଇବା—ଦେ. କ୍ରି (ଶୋଇବାକ୍ରିୟାର ପ୍ରୟୋଜକରୂପ)—୧ । ଅନ୍ୟ
Śuāibā ବ୍ୟକ୍ତିର ନିଦ୍ରିତ ହେବାର ଉପାୟ କରିବା; ଶାୟିତ
শোয়ান, শুয়ান সুলানা କରିବା—1. To cause a person to sleep. (ଯଥା—ନାନାବାଯ୍ୟା ଗୀତ ବୋଲି ଝିଅ କୋଡ଼ରେ ଦୋହୋଲାଇ ଧାଇ ପିଲାକୁ ଶୁଆଇଲାଣି) । ୨ । କୌଣସି ପଦାର୍ଥକୁ ଭୂମିରେ ଲମ୍ବକରି ପକାଇଦେବା—2. To lay anything lengthwise on the ground. (ଯଥା—ଖୁଣ୍ଟକୁ ଓପାଡ଼ି ଭୂମିରେ ଶୁଆଇଦେବା) ୩ । କୌଣସି ବ୍ୟକ୍ତିକୁ ଭୂମିରେ ଲମ୍ବଭାବରେ ଶାୟିତ କରିବା—3. To cause a person to lay prostrate on the ground.
(ଯଥା—ସେ ଅପରାଧୀର ସାଥମାନଙ୍କୁ ମାଡ଼ ମାରି ମାରି
(গ্রাইবা—অন্যরূপ) ଭୂଇଁରେ ଶୁଆଇଲା ।)
୪ । (ସ୍ତ୍ରୀ ପକ୍ଷରେ) ସଙ୍ଗମାର୍ଥୀ ପୁରୁଷକୁ ନିଜ ସହ ସହବାସ କରିବା ପାଇଁ ସମର୍ଥ କରିବା—4. (said of a (female) To cause or let a male to cohabit her. ୫ । ଯୁବତୀର ଉର୍ଦ୍ଧ୍ୱ କୁଚର ଅଧୋମୁଖ ହେବାର ଅବସ୍ଥା ଘଟାଇବା—5. To cause tight breasts to hang down.

ଶୁଆଁ—ଦେ. ବ (ସ. ଶ୍ୟାମା)—୧ । ଶାରିବା; ଶୁଆଁଲଟି (ଦେଶ)—
Śuāṅ 1. Indian sarsaparilla (creeper)
শ্যামালতা শবামা श्यामा সাঁৱাঁ ୨ । (ସଂ. ଶ୍ୟାମାକ) ଶୁଆଁ ଧାନ (ଦେଖ)—ଧାନ୍ୟାକୃତିର ବନ୍ୟଘାସ
2. Śuāṅ dhāna (see) Paincum Frumentaceum. ୩ । (ସ. ଶୁଣ୍ଡ)—ଗଛର ପ୍ରତାନ ଓ ସରୁଆ ଲମ୍ବ ଶିଁଷା—3. Tendrils of plants and trees. ୪ । (ସଂ. ଶୂକ) ଶସ୍ୟଶୂକ—
4. The beard of some grains.

ଶୁଆଁଗୁଳ—ଦେ. ବ—ଶୁଆଁ ଧାନରୁ ବାହାରିଥିବା ଗୁଳ—
Suān chāula Rice or grain obtained
শ্যামা চাল সাঁবা চাবল from Panicum Frumentaceum.

ଶୁଆଁ ଧାନ—ଦେ. ବ. ( ସଂ. ଶ୍ୟାମାକ )—ତୃଣଧାନ୍ୟ ବିଶେଷ—A
Suān dhāna wild foodgrain allied to
শ্যামা Māndiā; Panicum Frumentaceum.
সাঁবাঁধান [ଦ୍ର—ଏହା ଧାନଜାତୀୟବର୍ଗର ବନ୍ୟ ଘାସ; ଏହା ଧାନ ବିଲରେ ଜନ୍ମେ ଓ ଧାନ ଗଛର କେଣ୍ଡା ବାହାରିବା ପୂର୍ବରୁ ଏହା କେଣ୍ଡା ଧରେ । ଏ ଗଛ ଏକ ହାତ ପର୍ଯ୍ୟନ୍ତ ବଢ଼େ; ଅନ୍ୟ ଧାନ ଗଛ ଅପେକ୍ଷା ଡେଉଁରା ଓ ଏହାର କେଣ୍ଡା ଖୁବ୍ ଶକ୍ତ । ଗରିବ ଲୋକମାନେ ଟୋକେଇଦ୍ୱାରା ଧାନ କ୍ଷେତରେ ବଢ଼ିଥିବା କେଣ୍ଡାଯୁକ୍ତ ଶୁଆଁ ଧାନର ଗଛକୁ ବାରମ୍ବାର ଅଘାତ କରିବାଦ୍ୱାରା କେଣ୍ଡାରୁ ଶୁଆଁ ଧାନଗୁଡ଼ିକ ଛିନ୍ନ ହୋଇ ଟୋକେଇ ମଧ୍ୟରେ ପଡ଼େ ଓ ସେଗୁଡ଼ିକ ସଂଗ୍ରହକରି ତାକୁ କୁଟିଲେ ତହିଁରୁ ତୁଷ ବାହାରି ଯାଇ ସରୁ ଧଳା ମାଣ୍ଡିଆ ଗୁଳ ପରି ଦାନା ବାହାରେ । ଏହାକୁ ଶୁଆଁ ଗୁଳ ବୋଲଯାଏ ଓ ଗରିବଲୋକମାନେ ଏହାକୁ ଭାତ ବା ଯାଉ କରି ଖାଆନ୍ତି । ଉତ୍ତର ପଶ୍ଚିମାଞ୍ଚଳରେ ଏହାର କୃଷି ହୁଏ । ବୈଦ୍ୟଶାସ୍ତ୍ର ଅନୁସାରେ ଏହା ଶୋଷଣ, ରୁକ୍ଷ, ବାତଜନକ, କଫପିତ୍ତନାଶକ । ଏହା ମଧୁରକଷାୟରସ, ଶୀତଳ, ଲଘୁପାକ, ମଳରୋଧକ, ଅଗ୍ନିବର୍ଦ୍ଧକ ଓ ବଳକାରକ । ଏହା ଗଳରୋଗ, ମୂତ୍ରକୃଚ୍ଛ୍ର, ମେହ ଓ ବିଷଦୋଷରେ ଉପକାରକ । ବଙ୍ଗଦେଶରେଥିରୁ ଜାତଏ ଶ୍ୟାମାକ ଧାନ ଧାନ କ୍ଷେତରେ ମନରୁ ଜନ୍ମେ ।]

ଶୁଆଁନ(ଲ)ଇ—ଦେ. ବ (ଶ୍ୟାମାଲତା)—କୃଷ୍ଣସାରିବା; ଶ୍ୟାମାଲତା—
Suān na(la)i Indian Sarsaparilla creeper.
( ଶୁଆଁଲତା[ତୀ]—ଅନ୍ୟରୂପ )
শ্যামা লতা श्यामा लता

ଶୁଆଁବାଳ(ଳୁ)ଆ—ଦେ. ବ (ସ. ଶୂକ=ଶୀକ୍ଷ୍ଣଲୋମ ଓ ବାଲ)—ତୀକ୍ଷ୍ଣ
Suānbāli(lu)ā ଲୋମ ବିଶିଷ୍ଟ ନାନାବର୍ଣ୍ଣର କୃମିବିଶେଷ;
শুআ(য়াঁ)পোকা ଶମ୍ବାଳୁଆ ପୋକ—Caterpillar; the
सूआ wooly bear.

ଶୁଆ କଣ୍ଠ(ଣ୍ଠି)—ଦେ. ବ—(ସ. ଶୁକ+କଣ୍ଠ) ଅଧିକବୟସ୍କ ଶୁଆପକ୍ଷୀର
Suā kantha(nthi) କଣ୍ଠେ ଗୁରୁପାଖେ ଦେଖାଯିବା ନାଲ
টিআর গলার লালদাগ ରେଖା—Rose coloured ring
सुग्गा कण्ठ or line appearing round the neck of old parrots.

ଶୁଆକଣ୍ଠ(ଣ୍ଠି) ବୁଲିଯିବା—ଦେ. କ୍ରି—ବୟୋବୃଦ୍ଧି ଯୋଗୁଁ ଶୁଆର
Suā kantha(nthi) bulijibā ବେକ ଗୁରୁପାଖରେ ନାଲ
টিআর গলার লালদাগ হওয়া ରେଖା ସ୍ପଷ୍ଟରୂପେ ଦେଖାଯିବା—
सुग्गाकण्ठ होजाना The appearance of a rosy ri g round the neck of an aged parrot.

ଶୁଆ କଣ୍ଠ—ଦେ. ବ - ବୁଢ଼ାଶୁଆଙ୍କ କଣ୍ଠର ତଳଭାଗରେ ଦେଖାଯିବା
Suā kanthā ଅର୍ବୁଦ ପରି କଠିନ ମାଂସ ଖଣ୍ଡ—A tough
শুককণ্ঠ growth of flesh hanging from the throat
सुग्गा कण्ठ of an aged parrot.
[ଦ୍ର—ଏହି କଣ୍ଠାକୁ ଦେଖି ଶୁଆ ବୁଢ଼ା ହୋଇଥିବା ନିର୍ଣ୍ଣୟ କରାଯାଏ ।]

ଶୁଆ ଘୋଷା—ଦେ. ବ (ଶୁଆମାନେ ପଦର ଅର୍ଥ ନ ବୁଝି ପଦକୁ ଅଭ୍ୟାସ
Suā ghoshā କରିବା ପରି) ଅର୍ଥ ନ ଜାଣି ମୁଖସ୍ଥ କରିବା—
তোতাপাখীর মত মুখস্থকরা Learning a thing by rote
तोताके ऐसे रटना like a parrot. ବଣ—ଯେଉଁ ବ୍ୟକ୍ତି ଅର୍ଥ ନ ଜାଣି ମୁଖସ୍ଥ କରେ—(a person) Who gets a thing by heart without understanding the meaning.

ଶୁଆ ଝିଣ୍ଟିକା—ପ୍ରାଦେ. (ଗଡ଼ଜାତ) ବ—ପକ୍ଷ ଥିବା ନେଳ ବର୍ଣ୍ଣର ଝିଣ୍ଟିକା
Suā jhintikā (ଏମାନେ ବେଶୀ ଲମ୍ଫ ଦିଅନ୍ତି) ପଙ୍ଗପାଳ—
সবুজ বংগের ফড়িঙ্গ टीडा Green locust.

ଶୁଆଥେ(ଥ)ଣ୍ଟ—ଦେ. ବ—ଶୁକନାସା; ଶୁଆର ବକ୍ରାଗ୍ର ଥଣ୍ଟ—
Suā tha(the)nta The hooked beak of a parrot.
টিয়ার ঠোঁট सुग्गाका चोंच

ଶୁଆ ଥ(ଥେ)ଣ୍ଟିଆ—ଦେ. ବ—ଏକ ପ୍ରକାର ବନ୍ୟ ଗୁଳ୍ମ—
Suā tha[the]ntiā A kind of wild plant.

ଶୁଆ ପଖି(କ୍ଷି)ଆ—ଦେ. ବଣ—ଶୁଆର ପକ୍ଷପରି ହରିଦ୍‌ବର୍ଣ୍ଣବିଶିଷ୍ଟ; ଶୁଆ
Suā pakhi[kshi]ā ପକ୍ଷୀପରି ଶାଗୁଆ—Emerald or
টিয়ার বংগ green like the feather of a parrot.
सुग्गाकेऐसारंग, हरारंग [ଦ୍ରି—ବିଲଗୁଡ଼ିକ ଅଗରୁଆ, ଶୁଆପକ୍ଷିଆ ଦିଶୁଥିଲଣି । ଫକୀରମୋହନ. ଛମାଣ ଆଠଗୁଣ୍ଠ ।]

ଶୁଆପଖି(କ୍ଷି)ଆ ବୁଲିଯିବା—ଦେ. କ୍ରି—କ୍ଷେତରେ ଜନ୍ମିଥିବା ଧାନଗଛ
Suāpakhi(kshi ā bulijibā ବଢ଼ିଯାଇ ତହିଁର ପତ୍ରମାନ ଶୁଆପକ୍ଷି
সবুজবর্ণ হওয়া ପରି ଉଜ୍ଜ୍ୱଳ ହରିଦ୍‌ବର୍ଣ୍ଣ ବା ଶାଗୁଆ ବର୍ଣ୍ଣ ଧାରଣ
हरा होना କରିବା—(The blades of paddy plants To turn green in the field.
[ଦ୍ର—ଏହା ଧାନ ଥୋଡ଼ ହେବାର ପୂର୍ବ ଅବସ୍ଥା । ଧାନ ଗଛମାନ ସତେଜ ହୋଇ ଶୁଆପକ୍ଷିଆ ବୁଲିଯିବା ପରେ ସେଥିରୁ ଧାନକେଣ୍ଡାମାନ ବାହାରେ ।]

ଶୁଆ ବଳଦ-ଦେ. ବ.-ଯେଉଁ ବଳଦକୁ ହଳରେ ବା ଗଡ଼ିରେଯୋଚଲେ
Suā balada ସେ ବୁଲିକେ ଶୋଇପଡ଼େ—A bullock which
শুয়া বলদ lies down on the ground (to avoid the
कोढ़ीबैल doing of the work) when yoked to a cart or plough.

ଶୁଆ ବସା—ଦେ. ବ—ଶୁଆବସ (ଦେଖ)
Suā basā Suabasa (See)

ଶୁଆ ରୋଗ—ଦେ. ବ—ଯେଉଁ ରୋଗ ହେତୁ ରୋଗୀ ଅହର୍ନିଶ ଶୋଇ
Suā roga ରହେ—The sleeping sickness.
শুয়ারোগ सोनेका रोग

ଶୁଅ ଶୋଇ—ଗ୍ରା. ବି—୧। ମୈଥୁନ—
Ṡuā ṡoi 1. Copulation.
সঙ্গম संगम
୨। ପୁରୁଷର ଓ ସ୍ତ୍ରୀର ପରସ୍ପର ସ୍ୱଇଚ୍ଛାରେ ମୈଥୁନ—
2. Copulation by mutual consent.

ଶୁଅାସ—ଗ୍ରା. ବି (ସଂ. ଶ୍ୱାସ)—୧। ଶ୍ୱାସ; ନିଶ୍ୱାସ ପ୍ରଶ୍ୱାସ—
Ṡuāsa 1. Breath. ୨। ଶ୍ୱାସ ରୋଗ; ଧଇଁ ରୋଗ; ଦମା କାଶ—
শ্বাস सीआस 2. Asthma.

ଶୁଅାସ ଉଠିବା—ଦେ. କି—ଶ୍ୱାସ ରୋଗ ଯୋଗୁଁ ଉପର୍ଯ୍ୟୁପରି ଶ୍ୱାସପ୍ରଶ୍ୱାସର
Ṡuāsa uṭhibā ପ୍ରାବଲ୍ୟ—Repeated forced
শ্বাস উঠা सीआस उठना breathing due to a paroxysm of asthma.

ଶୁଅାସ ଧ(ଧ)ରିବା—ଦେ.କ୍ରି.—ଶ୍ୱାସ ରୋଗଦ୍ୱାରା ଆକ୍ରାନ୍ତ ହେବା—
Ṡuāsa ka(dha)ribā Being attacked with
শ্বাসধরা सीआसधरना asthma.

ଶୁଆ ଶା(ସା)ରୀ—ଦେ. ବି (ଦ୍ୱନ୍ଦ୍ୱ) (ସଂ. ଶୁକ ଓ ଶାରିକା)—
Ṡuā ṡā(sā)ri ପୁଂସ୍ତ୍ରୀଲିଙ୍ଗ ଶୁକ ଓ ଶାରୀ ପକ୍ଷୀ—Parrot
শুক সারী and mayna. [ଦ୍ର—ଶାରୀପକ୍ଷୀ ଶୁକପକ୍ଷୀର ସ୍ତ୍ରୀ ନୁହେ
शुक सारिका କିନ୍ତୁ ସ୍ୱତନ୍ତ୍ର, ବଙ୍ଗଳା ଓ ଓଡ଼ିଆ କାବ୍ୟ,
କବିତା ଓ ଗଳ୍ପରେ ଶୁଅଶାରୀଙ୍କ କଥୋପକଥନର
ଦୃଷ୍ଟାନ୍ତ ଦେଖାଯାଏ ଓ ଶୁକକୁ ପୁରୁଷରୂପରେ ଓ ଶାରୀକୁ
ସ୍ତ୍ରୀରୂପରେ କଳ୍ପନା କରାଯାଏ ବୋଲି ଯଥାକ୍ରମେ ନାୟକ
ଓ ନାୟିକାର କଥନମାନ ଶିଖାଇବାପାଇଁ ଲୋକେ ଶୁଅ
ଶାରୀ ପୋଷନ୍ତି ବୋଲି କବିମାନେ ଲେଖିଛନ୍ତି ।]

ଶୁଅସିଆ—ଦେ. ବଣ (ପୁଂ ଓ ସ୍ତ୍ରୀ)—ଶ୍ୱାସରୋଗୀ—
Ṡuāsiā (a person) Suffering from asthma;
শ্বাসরোগী स्वासरोगी asthmatic.
(ଶୁଅସୀ, ଶୁଅସେଇ—ସ୍ତ୍ରୀ)

ଶୁଇଁମା—ଗ୍ରାଦେ. (ପାଟନା ଗଡ଼ଜାତ) କି—ଶୋଇବା—
Ṡuiṅmā To sleep.

ଶୁଇ(ଏ)ନ୍—ଗ୍ରାଦେ (ପାଟନା) ବି ଓ ବଣ—ଶୂନ୍ୟ—
Ṡui(e)n Empty; void.

ଶୁଇବା—ଗ୍ରାଦେ (ବାଲେଶ୍ୱର ଓ ସମ୍ବଲପୁର) କ୍ରି. (ସଂ. ଶୀ ଧାତୁ)—
Ṡuibā ଶୋଇବା—To sleep. [ଦ୍ର—ବାଲେଶ୍ୱର ଓ ସମ୍ବଲପୁରବାସୀ ଓଡ଼ିଆମାନେ 'ଓ' ଯୁକ୍ତ ଶବ୍ଦମାନଙ୍କୁ ପ୍ରାୟଶଃ
'ଉ' ଉଚ୍ଚାରଣ କରନ୍ତି; ଯଥା—ଗୋଡ଼=ଗୁଡ଼, ଗୋରୁ
=ଗୁରୁ ଇତ୍ୟାଦି ।]

ଶୁଉବା—ଗ୍ରାଦେ (ପାଟନା ଗଡ଼ଜାତ) କ୍ରି—ଶୋଇବା—To sleep.
Ṡu-ubā (ଯଥା—ସେ ଶୁଉଲା=(ଶୋଇଲା) ।)

ଶୁକ୍—ଦେ. ବଣ—(ସଂ. ଶୁଷ୍କ; ଅନ୍ୟ ଶବ୍ଦ ପୂର୍ବରେ ଯୁକ୍ତ ହୁଏ ଯଥା—
Ṡuk শুকনো सूखा ଶୁକ୍ ନଈ; ଶୁକ୍ ଜାଦୁ)—୧ । ଶୁଷ୍କ;
ଶୁଖିଲା—Dry. ୨ । ନିର୍ଜଳ—2. Waterless.

ଶୁକ୍ ଜା(ଦା)ଦୁ—ଦେ.ବି—(ସଂ. ଶୁଷ୍କ ଓ ଦଦ୍ରୁ)—ଏକ ପ୍ରକାର ଦଦ୍ରୁ-
Ṡuk jā(dā)du ରୋଗ । [ଦ୍ର—ଏହା ଏକ ପ୍ରକାର ଚର୍ମ-
শুকনোজাদ ରୋଗ । ଏହି ଜାଦୁ ସଂକ୍ରାମକ ଅଟେ । ଭଣ୍ଡାରୀ-
सूखादाद ମାନେ ଜାଦୁଥିବା ଲୋକଙ୍କୁ କ୍ଷୌର କରି ଯେଉଁ କ୍ଷୁରଦ୍ୱାରା
ନୀରୋଗ ଲୋକର ମୁଣ୍ଡକୁ କ୍ଷୌର କଲେ ଏ ଜାଦୁ ସଂକ୍ରାମିତ
ହୁଏ । ଏଥିରୁ ନିସ୍ତାର ମିଳେ ନାହିଁ ।]—A sort of ringworm disease; dry ringworm on the scalp; Tinea Tonsuraus.

ଶୁକ୍‌ଟା(ଟି) (ଇତ୍ୟାଦି)—ଦେ. ବଣ—ଶୁକୁଟା(ଟି) ଇତ୍ୟାଦି (ଦେଖ)
Ṡuk-ṭā(ṭi) etc Ṡukuṭā(ṭi) etc (see)

ଶୁକ୍‌ଠୋଠା ଠୋ)—ଦେ. ବଣ—ସମ୍ପୂର୍ଣ୍ଣରୂପେ ଶୁଷ୍କ—Extremely
Ṡuk-ṭhoṭhā(ṭho) dry. (ଦ୍ର—ଖନାବଚନ)
ঠকঠকেশুকনো सूखसूखा ପାନକୁ ପୁଞ୍ଜିବ (ଶୀତ ୪ମାସ);
ଶୁକ୍‌ଠୋଠୋ ପୁଞ୍ଜିବ (ଗ୍ରୀଷ୍ମ ୪ ମାସ), ଖାଲୁରୁ ବାଲୁରୁ
ପୁଞ୍ଜିବ (ବର୍ଷା ୪ ମାସ)—ଗ୍ରାମ୍ୟ ପ୍ରବଚନ ।]

ଶୁକ୍ ତ(ତା)ରା—ଦେ. ବି (ସଂ. ଶୁକ୍ର ଓ ତାରା)—ଯାହାକୁ ତାରା;
Ṡuka ta(tā)rā ପତ୍ରବିଶେଷ ତାରା; ଶୁକ୍ରଗ୍ରହ । [ଦ୍ର—
শুকতারা शुकतारा ଏହା ବର୍ଷର କେତେକ
ସମୟ ରାତ୍ରି ଶେଷରେ ଆଉ ପୂର୍ବାକାଶରେ ଉଦିତ ହୁଏ ଓ
କେତେକ ସମୟ ରାତ୍ରି ପ୍ରଥମଭାଗରେ ପଶ୍ଚିମରେ ଅସ୍ତ ହୁଏ,
ଏହା ତାରା ନୁହେ, ଗୋଟିଏ ଗ୍ରହ ।]—The morning star; the evening star; Venus.

ଶୁକତ(ତା)ଲା(ଳା)—ଦେ. ବି (ସଂ. ଶୁଷ୍କ ଓ ତଳ; ଯାହାଯୋଗୁ ଯୋତା
Ṡuk-ta(tā)lā(ḷā) ମାଡ଼ିବାକୁ ସୁଖ ହୁଏ)—ଜୋତାର ଭିତରେ
শুকতলা सुकताला ତଳରେ ପଡ଼ିବା ପାଦାବୃତ
ଚମଡ଼ା—A slip of leather put inside the sole of a shoe.

ଶୁକ୍‌ଟାନି—ଦେ. ବି—ଶୁକ୍ତାନି (ଦେଖ)
Ṡuk-tāni Ṡuktāni (See)

ଶୁକ୍‌ତି—ଦେ. ବି—ଶୁକୁତି (ଦେଖ)
Ṡuk-ti Ṡukuti (See)

ଶୁକ୍‌ନଈ—ଦେ. ବି (ସଂ. ଶୁଷ୍କ ଓ ନଦୀ)—୧ । ଶୁଷ୍କ ନଦୀ—
Ṡuk-naī 1. A dry river. ୨ । ଯେଉଁ ନଈ
শুকনোনদী सूखीनदी ବର୍ଷାରିତୁ ଛଡ଼ା ଅନ୍ୟଦିନେ
ଶୁଖିଯାଏ—2. A river which dries up in summer. ୩ । କଟକ ଜିଲ୍ଲାର ଗୋଟିଏ
ପରଗଣାର ନାମ—3. The name of a Porguna in the Cuttack district.

ଶୁକ୍‌ପାଇକା—ଦେ. ବି (ନାମ)—ମହାନଦୀର ଗୋଟିଏ କ୍ଷୁଦ୍ର ଉପଶାଖା
Ṡuk-pāikā [ଦ୍ର—ଏହା କଟକ ଜିଲ୍ଲାରେ ମହାନଦୀରୁ ବାହାରି ପୁଣି
କଟକ ଜିଲ୍ଲାରେ ମହାନଦୀରେ ମିଶିଅଛି । ଏହା ବର୍ଷାରିତୁ ଛଡ଼ା ଅନ୍ୟ,
ରିତୁରେ ଶୁଖିଲା ଥାଏ]—The name of a smal branch of the Mahānadi river which remains dry for most part of the yeat (in the district of Cuttack.)

ଶୁକ୍ ମଦରଙ୍ଗା—ଦେ. ବ—ଶୁକୁ ମଦରଙ୍ଗା (ଦେଖ)
Śuk madarangā Śuku madarangā (See)
[ଶୁକ୍ ମଦ୍ର(ର୍)ଙ୍ଗା—ଅନ୍ୟରୂପ]

ଶୁକ ଶୁକ—ଦେ. ବଣ.—(ସଂ ଶୁଷ୍କ)—୧ । ଶୁଷ୍କପ୍ରାୟ—Almost
śuk śuk dry. ୨ । ମୃତ କଳ୍ପ—2. Decadent, mariband. ୩ । ମୁମୂର୍ଷୁ; କଣ୍ଠାଗତ ପ୍ରାଣ; ଜୀବନ ଛାଡ଼ିଯିବାର ଅବସ୍ଥା ପ୍ରାପ୍ତ—3. Dying.

ଶୁକ୍ ଶୁକ୍ ହେବା—ଦେ. କ୍ରି— (ସ. ଶୁଷ୍କ)—୧ । ଶୁଷ୍କପ୍ରାୟ ହେବା;
Śuk śuk hebā ପ୍ରାୟ ଜର୍ଜର ହେବା—1. To almost
শুক শুক হওয়া, শুখা सुक सुक होना dry up.
୨ । (ଧ୍ୱନ୍ୟନୁକରଣ କମା ତାଲୁ ଓ କଣ୍ଠ ଶୁଷ୍କ ହୋଇଯିବାରୁ ମନୁଷ୍ୟ ଯେଉଁ ଶବ୍ଦ କରେ) ମୁମୂର୍ଷୁ ଅବସ୍ଥା ଯୋଗୁଁ କ୍ଷୀଣ ନିଶ୍ୱାସ ଓ କ୍ଷୀଣ ଶବ୍ଦ କରିବା— 2 To be dying; to emit faint sounds and breaths (said of a dying animal). ୩ । କ୍ଷୀଣ ଓ ଅସ୍ପଷ୍ଟ-
ফুম্পে ফুম্পে কাঁদা ଭାବରେ କଇଁ କଇଁ ହୋଇ କାନ୍ଦିବା—3.
सुसुक सुसुक रोना To weep very faintly by emitting śuk śuk sound and restraining sighs.

ଶୁକ୍ ଶୁକା—ଦେ. ବଣ. ପୁଂ—ସଙ୍କ ସଙ୍କା; ଯେଉଁ ବ୍ୟକ୍ତି ଶୁକ୍ ଶୁକ୍
Śuk-śukā ହୋଇ କ୍ଷୀଣ ଭାବରେ କଇଁ କଇଁ ହୋଇ କାନ୍ଦେ—
যে ফুম্পে ফুম্পে কান্দে A person who weeps faintly
सुसुक सुसुक रोनेवाला by restraining sighs.
[ଶୁକ୍ ଶୁକୀ, ଶୁକ୍ ଶୁକେଇ—ସ୍ତ୍ରୀ] [ଶୁକ ଶୁକଅ—ଅନ୍ୟରୂପ]

ଶୁକ—ସ. ବ ପୁଂ—(ଶୁଭ ଧାତୁ=ଶୋଭା ପାଇବା + କର୍ତ୍ତୃ. କ, କିମ୍ବା
Śuka ଶୁକ୍ ଧାତୁ=ଗତି କରିବା + କର୍ତ୍ତୃ. କ)—୧ । ଶୁଆପକ୍ଷୀ;
1. Parrot. [ଦ୍ର—ବୈଦ୍ୟଶାସ୍ତ୍ର ମତରେ ଶୁକପକ୍ଷୀର ମାଂସ ମଧୁର ରସ, ଶୀତବୀର୍ଯ୍ୟ, ଲଘୁପାକ, ଅଗ୍ନିବର୍ଦ୍ଧକ, ମଳରୋଧକ ଓ ଶ୍ୱାସ, କାଶ ଓ କ୍ଷୟରୋଗରେ ଉପକାରକ ।] ୨ । ରାବଣର ମନ୍ତ୍ରୀ (ଦୈତ୍ୟ ବିଶେଷ)—2. Name of a minister of Rābaṇa. [ଦ୍ର—ରାବଣର ଅନ୍ୟ ମନ୍ତ୍ରୀର ନାମ ସାରଣ, ରାବଣର ଆଦେଶରେ ଶୁକ ବାନର ବେଶଧରି ରାମଚନ୍ଦ୍ରଙ୍କ ଶିବିରକୁ ଯାଇଥିଲା ଓ ସେଠାରେ ବିଭୀଷଣ ତାକୁ ଚିହ୍ନି ପାରି ଧଇଲେ । କିନ୍ତୁ ରାମଚନ୍ଦ୍ର ତାହା ପ୍ରତି ସଦ୍‌ବ୍ୟବହାର କରି ତାହାକୁ ଛାଡ଼ି ଦେଲେ ।] [ଉ—ବନ କରେ ମେଘନାଦ ଶୁକଙ୍କ ଯେତୁ ଏ ରମ୍ୟରେ—ଉଞ୍ଜ. ବୈଦେହୀଶ ବିଳାସ ।] ୩ । ବ୍ୟାସଦେବଙ୍କ ପୁତ୍ର । [ଦ୍ର—ଏ ସର୍ପଦଂଶନ ଯୋଗୁଁ ମୃତ୍ୟୁ ନିମନ୍ତେ ପ୍ରସ୍ତୁତ ହୋଇଥିବା ମହାରାଜ ପରୀକ୍ଷିତଙ୍କୁ ଶ୍ରୀମଦ୍‌ଭାଗବତ ଶୁଣାଇଥିଲେ ।] 3. Name of a sage, the son of sage Byāsa, who narrated the Bhāgabata to the dying king Parikshita. [ଦ—ମହାଭାରତରେ କଥିତ ଅଛି ଯେ, ଏକଦା ବ୍ୟାସଦେବ ଘୃତାଚୀ ନାମ୍ନୀ ଅପ୍ସରାକୁ ଦେଖି କାମପୀଡ଼ିତ ହେଲେ । ଘୃତାଚୀ ଏହା ଜାଣି ବ୍ୟାସଙ୍କ ଠାରୁ ରକ୍ଷା ପାଇବା ପାଇଁ ଗୋଟିଏ ଶୁକ ପକ୍ଷିଣୀ ରୂପ ଧାରଣ କଲା । ବ୍ୟାସଦେବ ଘୃତାଚୀକୁ ନ ଦେଖି ନିଜର କାମ ପ୍ରବୃତ୍ତିକୁ ଦମନ କରିବା ପାଇଁ ଅରଣି-ମନ୍ଥନରେ ପ୍ରବୃତ୍ତ ହେଲେ । ଅରଣି ମନ୍ଥନ କରୁ କରୁ ଅରଣି ମଧ୍ୟରେ ବ୍ୟାସଙ୍କ ରେତଃ [ଶୁକ୍ର] ସ୍ଖଳିତ ହେଲା । ବ୍ୟାସ ଏତଦ୍ଦ୍ୱାରା ଶଙ୍କିତ ନ ହୋଇ ପୁନଃ ପୁନଃ ଅରଣି ମନ୍ଥନ କରିବାରୁ ଅରଣି ମଧ୍ୟସ୍ଥ ଶୁକ୍ର ପ୍ରବଳ ବେଗରେ ବହ୍ନେଉଦ୍ଭୂତ ହେଲା ଓ ତେଣୁ ତହିଁ ମଧ୍ୟରୁ ଅମିତତେଜାଃ ବ୍ରହ୍ମର୍ଷି ଶୁକଦେବ ବାହାରି ପଡ଼ିଲେ । ଶୁକ୍ର ବହ୍ନେଉଦ୍ଭୂତ ଦ୍ୱାରା ଏହାଙ୍କ ଜନ୍ମ ହେବାରୁ ଏହାଙ୍କ ନାମ 'ଶୁକ' ହେଲା । ତତ୍ପରେ ଏ ବନକୁ ଯାଇ ତପଶ୍ଚରଣରେ ପ୍ରବୃତ୍ତ ହେଲେ । ଇନ୍ଦ୍ରପ୍ରେରିତା ରମ୍ଭା ଏହାଙ୍କ ତପସ୍ୟାକୁ ଭାଙ୍ଗିବାକୁ ଚେଷ୍ଟା କରି ବିଫଳମନୋରଥା ହେଲା । ବ୍ରହ୍ମ ଶାପରୁ ତକ୍ଷକନାଗ ଦଂଶନରେ ଆସନ୍ନମୃତ୍ୟୁ ରାଜା ପରୀକ୍ଷିତଙ୍କୁ ଶୁକଦେବ ଭାଗବତ ପୁରାଣ ଶୁଣାଇଥିଲେ ।] ୪ । ଗୁମା; କୌଶିମ୍; ଶିରୀଷ ଗଛ—(ହରେକୃଷ୍ଣ ଦ୍ରବ୍ୟଗୁଣ) 4. Acacia Lebbec. ୫ । ବସ୍ତ୍ର—5. Cloth. ୬ । ବସ୍ତ୍ରାଞ୍ଚଳ—6. The end of a cloth. ୭ । ଉଷ୍ଣୀଷ; ପଗଡ଼ି; ଶିରସ୍ତ୍ରାଣ—7. Turban; head-dress. ଦେ. ବ—ଶୁକଦେବ ନାମକ ବ୍ୟକ୍ତିର ଡାକ
শুক सुक ନାମ—The name calling for Sukadeba.

ଶୁକଚ୍ଛଦ—ସ. ବ—(ବୈଦ୍ୟକ)—ଶୁକବର୍ହ (ଦେଖ)
Śukachchhada Śukabarha (See)

ଶୁକ ଜା(ଦା)ଡୁ—ଦେ. ବ—ଶୁକ୍ ଜାଡୁ (ଦେଖ)
Śuka jā(dā)du Śuk-jādu (See)

ଶୁକଟ—ଦେ. ବ—ସୁକଟ (ଦେଖ)
Śukaṭa Śukata (See)
[ଉ—ଯାହାର ଥିବ ଭେଟିକି ଅକଟ, ଦେଖିବ ତୁମେ ତାହାର ଶୁକଟ । କବିସୂର୍ଯ୍ୟ. ବଳଭଦ୍ର ।]

ଶୁକଟା—ଦେ ବ. ଓ ବଣ—ଶୁକୁଟା (ଦେଖ)
Sukaṭā [ଶୁକଟୀ—ସ୍ତ୍ରୀ] Śukuṭā (See)

ଶୁକ ତରୁ—ସଂ ବ—ଶିରୀଷ ବୃକ୍ଷ—
Śuka taru Acacia Lebbec (tree).

ଶୁକତାନି—ଦେ. ବ—ଶୁକୁତାନି (ଦେଖ)
Śukatāni Śukutāni (see)

ଶୁକ ତାରା—ଦେ. ବ—ଶୁକ୍ ତାରା (ଦେଖ)
Śukatārā Śuk-tarā (see)

ଶୁକତି—ଦେ. ବ. ଶୁକୁତି (ଦେଖ)
Śukati Śukuti (see)

ଶୁକ ଦେଈ—ଦେ. ବ—(ନାମ) ସ୍ତ୍ରୀ—ଉତ୍କଳ ରାଜବଂଶୀୟା ଜନୈକ
Śuka dei ବୀରାଙ୍ଗନା—A female hero of an Oriya royal family. [ଦ୍ର—ଏହାଙ୍କର ବାସସ୍ଥାନ ବାଙ୍କୀ,

ଶତ୍ରୁ ଆକ୍ରମଣରୁ ରାଜ୍ୟକୁ ରକ୍ଷା କରିବା ଏ ପାଇଁ ଯୁଦ୍ଧ କରି ଥିଲେ । ସ୍ୱର୍ଗୀୟ ପଣ୍ଡିତ ମୃତ୍ୟୁଞ୍ଜୟ ଏହାଙ୍କର ସଂକ୍ଷିପ୍ତ ଜୀବନଚରିତ ଲେଖି ଅଛନ୍ତି । ଚନ୍ଦ୍ରଶେଖର ଦାସ ।

**ଶୁକ ଦେବ**—ସଂ. ବି—ଶୁକ ୩ ( ଦେଖ )
Śuka deba Śuka 3 ( See )

**ଶୁକଦେବ ଦାସ ବେବର୍ତ୍ତା**—ଦେ. ବି ( ନାମ )—ଓଡ଼ିଶାର ସ୍ୱାଧୀନ
Śukadeba dāsa bebarttā ରାଜାଙ୍କ ଜଣେକ ମନ୍ତ୍ରୀ—
A minister of an independent king of Orissa. [ ଦ୍ର—ଓଡ଼ିଶା ମୁସଲମାନଙ୍କ ଅଧିକାରରେ ଆସିବାରୁ, ଏ ମୁସଲମାନ ସରକାରଙ୍କ ଅଧୀନ ହୋଇ କାର୍ଯ୍ୟ କଲେ । ଯାଜପୁର ଅନ୍ତର୍ଗତ ଶିବଦାସପୁର ଗ୍ରାମରେ ଏ ଜନ୍ମଗ୍ରହଣ କରିଥିଲେ; ଏ ବରଜା ଦେଶାଙ୍କର ପଦସ୍ଥ ଥିଲେ । ଥରେ ହଠାତ୍ ନବାବ ଖଜଣା ସମ୍ବନ୍ଧୀୟ କାଗଜପତ୍ର ତଲବ କରିବାରୁ ସେ ଉତ୍କଣ୍ଠାରେ ଇଷ୍ଟଦେବୀ ବରଜାଙ୍କୁ ସ୍ମରଣ କରି ନବାବଙ୍କ ଦରବାରକୁ ଗଲେ । ବାଟରେ ଯିବା ବେଳେ ଜଣେ କଳା ଶାଢ଼ୀ ପିନ୍ଧିଥିବା ଝିଅଟି ତାଙ୍କ ଦେହରେ ପଡ଼ିଲା । ଏହାକୁ ସେ ଭକ୍ତିପୂର୍ବକ ସବାରିରେ ରଖି ଦେଇ ଦରବାରକୁ ଗଲେ । ସେଠାରେ ନବାବଙ୍କୁ ସମସ୍ତ କାଗଜପତ୍ର ବୁଝାଇ ଦେଇ ସୁରୁଖୁରୁରେ ଫେରି ଆସିଲେ । ଉକ୍ତ କଳା ଶାଢ଼ୀ ଖଣ୍ଡିକ ବରଜା ଦେବୀଙ୍କର ବୋଲି ପରେ ଅନୁସନ୍ଧାନରେ ଜଣାଗଲା—ଚନ୍ଦ୍ରଶେଖର ଦାସ । ]

**ଶୁକାଧର**—ଦେ. ବି( ପ୍ରାଚୀନ ପଦ୍ୟ )( ଶୁକ+ଅଧର )—ଶୁଆ ଥଣ୍ଟ—
Śukadhara The bill or beak of a parrot. [ଦ୍ର—
ଟିଆର ଠୋଁଟ ମଳୟ ସମୀର ମନ୍ଦର ନାଶା ଅଟଇ ତାର । ବସନ୍ତ
तोतेका चोंच ଅଟେ ବସଂହିତ ହୋଏ କ ଶୁକାଧର—ପ୍ରାଚୀ. ପ୍ରଭାପ. ଶଶିଶେଣା । ]

**ଶୁକ ନଈ**—ଦେ. ବି—ଶୁକ୍‌ନଈ ( ଦେଖ )
Śuka nai Śuk-nai ( See )

**ଶୁକ ନାଶ(ସ)**—ସଂ. ବି—୧ । ଶ୍ୟୋନାକ; ଫଣଫଣା (ବୈଦ୍ୟକୋଷ )—
Śuka nāśa(sa) 1. Bignonia Indica. ୨ । ଅଗସ୍ତି
( ଶୁର୍ବନାସିକା—ଅଭୀରୂପ ) ଗଛ ( ବୈଦ୍ୟକୋଷ )—2. Sesbania Grandi flora.

**ଶୁକ ନାଶା**—ସଂ. ବି ( ଆୟୁର୍ବେଦୋକ୍ତ )—୧ । ଶୁଆଥଣ୍ଟିଆ ଗୁଳ୍ମ
Śuka nāsā (ହରେକୃଷ୍ଣ ଦ୍ରବ୍ୟଗୁଣ —A kind of plant.

**ଶୁକନାସ**—ସଂ. ବିଣ. ପୁଂ ( ବହୁବ୍ରୀହି, ଶୁକପକ୍ଷୀର ନାସା ପରି ନାସା
Śukanāsa ଯାହାର )—ଶୁକପକ୍ଷୀର ଉପର ଥଣ୍ଟ ପରି ବଙ୍କା
(ଶୁକନାସା—ସ୍ତ୍ରୀ.ବିଣ) ନାସିକାଯୁକ୍ତ (ବ୍ୟକ୍ତି)—( a person ) Having the nose hooked like the beak of a parrot; having an aquiline nose. ବି. ପୁଂ—୧ । ( ନାମ ) ରାଜା ତାରାପୀଡ଼ଙ୍କ ମନ୍ତ୍ରୀ—1. The name of the minister of king Tārāpirda. ୨ । ( ବୈଦ୍ୟକ ) ଶ୍ୟୋନାକ, ଫଣଫଣା ( ଦେଖ )—2. Phanaphanā ( see ) ୩ । ଚାଇଚଙ୍ଗ ( ବୈଦ୍ୟକୋଷ )—3. Cowage. ୪ । ଗମ୍ଭାରୀ ( ବୈଦ୍ୟକୋଷ ) ( ଦେଖ )—4. Gambhāri ( see )

**ଶୁକ ପକ୍ଷୀ**—ସଂ. ବି—ଶୁଆ ( ଦେଖ )
Śuka pakshai Suā (See)

**ଶୁକ ପୁଷ୍ପ**—ସଂ. ବି (ବୈଦ୍ୟକ)—୧ । ଗ୍ରନ୍ଥିଶେୟକ; ଗଣ୍ଠି ଅନା । (ଦେଖ)
Śuka pushpa 1. Ganthi-anā (see) ୨ । ଶିରୀଷ ( ଦେଖ )—2. Sirisha ( See )

**ଶୁକ ପ୍ରିୟ**—ସଂ. ବି ( ବୈଦ୍ୟକ )—ଶିରୀଷ ( ଦେଖ )
Śuka priya Sirisha ( See )

**ଶୁକ ପ୍ରିୟା**—ସଂ. ବି ( ବୈଦ୍ୟକ )—ଜମ୍ବୁ; ଜାମ୍ବୁ—
Śuka priyā Blackberry; Eugenia Jambolana.

**ଶୁକବର୍ହ**—ସଂ. ବି ( ବୈଦ୍ୟକ )—ସ୍ଥୌଣେୟକ ( ଦେଖ )
Śuka barha Sthauneyaka ( see )

**ଶୁକ ବାବୁ**—ଦେ. ବି—ବ୍ୟାସ—Byāsa. [ଦ୍ର—ଶୁକ ବାବୁ ବଳେ
Śuka bābu ବଳେ ଦେବ ଉପମା—ଉଣ୍ଟ. ଦୋହବ୍ରହ୍ମାଣ୍ଡସୁନ୍ଦରୀ ]
शुकदेवेर बाबा शुकके पिता

**ଶୁକର**—ଗ୍ରା. ବି ( ସଂ. ଶୁକ୍ର )—ଶୁକ୍ର ଗ୍ରହ—1. The planet
Śukara Venus. ୨ । ଶୁକ୍ରବାର—2. Friday.
শুক্র शुक्र

**ଶୁକର ବାର**—ଗ୍ରା. ବି ( ସଂ. ଶୁକ୍ରବାର )—ଶୁକ୍ରବାର—Friday.
Śukarabāra শুক্রুবার शुक्रवार

**ଶୁକରବାର ବଡ଼ା(ଡ଼ି)**—ଗ୍ରା. ବି—୧ । ଶୁକ୍ରବାର ଦିନ କୃଷକ-
Śukarabāra birdā(rdi) ଦ୍ୱାରା ଧାନ କଟା ଆରମ୍ଭରେ
শুক্রবাবের বিড়া କଟା ଯାଇଥିବା ଧାନର ପ୍ରଥମ ବଡ଼ା—1. The
शुक्रवार बिडा bundle of paddy sheaves first cut on friday and preserved by the cultivator for being offered to Lakshmi, the Goddess of plenty. [ ଦ୍ର—ଏହାକୁ କୃଷକ ଅତି ସହ ସହିତ ରଖି, ଧାନକଟା ଶେଷରେ ସେ ଧାନକୁ ଶୁଖାଇ କାଡ଼ି କରି ତହିଁରେ କ୍ଷେତ୍ରେ, କ୍ଷୀର ଆଦି କରି ମହାଲକ୍ଷ୍ମୀଙ୍କ ଭୋଗ କରେ ଓ ନିଜେ ଖାଏ ।] ୨। (ଲକ୍ଷଣାର୍ଥ) ଶୁକ୍ରବାର ବଡ଼ା ପରି ଆଦରଣୀୟ ପଦାର୍ଥ ବା ବ୍ୟକ୍ତି—2. A beloved thing or person. ୩ । (ଲକ୍ଷଣାର୍ଥ) ଶୁକ୍ରବାର ଦିନ ଜନ୍ମଗ୍ରହଣ କରିଥିବା ଶିଶୁ—3. A child born on a Friday. ୪। ପରିବାରର ପ୍ରଥମ ପୁତ୍ର—4. The first-son of a family.

**ଶୁକଳ**—ଗ୍ରା. ବିଣ ( ସଂ. ଶୁକ୍ଳ )—ଶୁକ୍ଳ ( ଦେଖ )
Śukala Śukla ( see )
[ ଦ୍ର—ସ୍ୱଚ୍ଛେଟ ଦାନ୍ତ ତାର ଦିଶଇ ଶୁକଳ—କୃଷ୍ଣସିଂହ
শুকুল ମହାଭାରତ । ] ଦେ. ବି—ବଙ୍ଗଦେଶର ବଂଶୋପାଧି
सुकुल ବିଶେଷ—A family title of Bengal.

**ଶୁକଳପୁର**—ଗ୍ରା. ବି ( ସଂ. ଶୁକ୍ଳପୁର)—ଚନ୍ଦ୍ରଶାଳା—Turret.
Śukalapura [ଦ୍ର—ଶୁକଳପୁରେ ଗିନ୍ଦୁ ଅଂଶୁକ—
চন্দ্রশালা चन्द्रशाला ଉଣ୍ଟ. ପ୍ରେମସୁଧାନିଧି ।]

ଶୁକ୍ଳ ଯଥା — ଗ୍ରା. ବ — ଧଳା ଲୁଗା ଓ ଉତ୍ତରୀୟର ଯୋଡ଼ା —
Śukla jathā A pair of white cloths.
সাদা কাপড়ের জোড়া सफेद कपड़ा जोड़ा

ଶୁକ ସନକ — ସଂ. ବ ( ସତ୍ପୁରୁଷ ) — ନୈମିଷାରଣ୍ୟରେ ପୁରାଣଶ୍ରୋତା ପୁରାଣର ବକ୍ତା ଶୁକ ମୁନି ଓ ଶ୍ରୋତା ସନକ ମୁନି —
Śuka sanaka The sage Śuka ( recitor ) and the sage Sanaka, one of the hearers of the purānas in the forest of Naimisha.

ଶୁକ ସାରଣ — ସ ବ ( ସତ୍ପୁରୁଷ ) — ରାବଣର ମନ୍ତ୍ରିଦ୍ୱୟ — Names
Śuka sārana of the two ministers of Rāban.

ଶୁକ ଶାରୀ — ସଂ. ବ ( ସତ୍ପୁରୁଷ ) — ଶୁଆ ଓ ଶାରୀ ପକ୍ଷୀ — Parrot
Śuka sāri [ଶୁକ ଶାରିକା — ଅନ୍ୟରୂପ] and myna.

ଶୁକା — ଦେ. ବଣ ( ସ. ଶୁଷ୍କ ) — ଶୁଷ୍କ; ଜଳହୀନ — Dry; waterless.
Śukā ଦେ ବ ( ଅନାଦରାର୍ଥକ ) — ଶୁକଦେବ ନାମକ ବ୍ୟକ୍ତିର
শুকনো सूखा ଡାକନାମ — Name for calling Śukadeba.

ଶୁକାଇ — ଦେ. ବ (ଅନାଦରାର୍ଥକ) — ଶୁକଦେବର ଡାକନାମ
Śukāi The name for calling Śukadeva.
(ଶୁକ, ଶୁକୁ, ଶୁକେଇ — ଅନ୍ୟରୂପ)

ଶୁକାଇବା — ଦେ. କ୍ରି — ଶୁଖାଇବା (ଦେଖ) —
Śukāibā Śukhāiba (See)

ଶୁକା ଖଡ଼ଖଡ଼ — ଦେ. ବଣ — ଶୁଖା ଖଡ଼ ଖଡ଼ (ଦେଖ)
Śukā kharda kharda Śukhā kharda kharda (See)

ଶୁକାଦନ — ସ. ବ (୬ଷ୍ଠୀ ତତ୍ପୁରୁଷ = ଶୁଆର ଅଦନ = ଖାଦ୍ୟ) —
Śukādana ଡାଳିମ୍ବ; ଡାଳମ୍ବ — Pomegranate.

ଶୁକା(ଖା)ନ୍(ନି)(ଇତ୍ୟାଦି) — ବୈଦେ. ବ — ଶୁକାନ୍ (ନି) ଇତ୍ୟାଦି
Śukā(khā)n(ni) (etc) (ଦେଖ) — Śukan (ni) etc See

ଶୁକା ନ(ଲ)କଡ଼ — ଶୁଖା ନକଡ଼ (ଦେଖ)
Sukā na(la)karda Śukhā nakarda

ଶୁକାସ୍ୟ — ସ. ବ — ଶୁଆଥଣ୍ଟିଆ (ଦେଖ) (ହରେକୃଷ୍ଣ ଧନ୍ୟଶ୍ରୀ)
Śaukāsya Śuā thantiā (See)

ଶୁକିବା — ଦେ. କ୍ରି — ଶୁଖିବା (ଦେଖ)
Śukibā Śukhibā (See)

ଶୁକିଲ — ଦେ. ବ ଓ ବଣ — ଶୁଖିଲ (ଦେଖ)
Śukilā Śukhilā (See)

ଶୁକୀ — ଦେ. ବଣ. ସ୍ତ୍ରୀ — ଅଗ୍ରଜ଼ିଅଣୀ ବାଳିକାକୁ ଦିଆଯିବା ନାମ —
Śuki A name given to a girl whose elder had died before her birth.
(ଶୁକେଇ — ଅନ୍ୟରୂପ)
সুকী सिकी

ଶୁକୁଆ(ଇତ୍ୟାଦି) — ଶୁଖୁଆ ଇତ୍ୟାଦି ( ଦେଖ ) — Śukhua etc
Śukua (etc) (see). [ଉ — ମଙ୍ଗରାଜେ କହୁଥିଲା ଶୁକୁଆ ଝୁଅ କାହିଁ, ମାଛ ଶୁକୁଆ କଥା ଛାଡ଼ । ଫକୀର ମୋହନ — ଛ ମାଣ ଆଠଗୁଣ୍ଠ]

ଶୁକୁଟ — ଦେ. ବ (ବଙ୍ଗ୍ୟାର୍ଥକ) ୧ । ଜାଲ୍ଲବ; କଳିକଜିଆ; ଅନର୍ଥ;
Śukuṭā ହନ୍ତ — 1. Annoyance; trouble. [ଉ —
মজা मज़ा ସେ ଗାଆଁରୁ ଅସି ଶୁକୁଟ ଲଗେଇଛି ] ୨ । ଅଭିନୟ; ନାଚ; ନୃତ୍ୟ — 2. Dancing [ଉ — ତା ଘରେ ଶୁକୁଟ ଲଗିଛି ] ୩ । ଲାଞ୍ଛନା; ହଇରାଣ — 3. Being in trouble; harassment [ଉ — ମୋର ଶୁକୁଟ ଦେଖନ୍ତୁ]

ଶୁକୁଟ ଦେଖିବା — ଦେ. କ୍ରି — ପରର ଦୁଃଖ ବା ଲାଞ୍ଛନା ଭୋଗକୁ
Śukuṭa dekhibā ଅନାଇ ସନ୍ତୋଷ ଦେଖିବା — To look
মজাদেখা मजादेखना at serenely on another trouble. [ଉ — ଯାହାର ଥିବ ତେଲିକ ଅଳନ୍ଦି ଦେଖିବ ଘୁସେ ତାହାର ଶୁକୁଟ କବିସୂର୍ଯ୍ୟ ବଳଦେବ]

ଶୁକୁଟ ଲଗା (ଗେ)ଇବା — ଦେ. କ୍ରି — ଅନର୍ଥ ବା କଳି ଉଠାଇବା — To
Śukuṭa lagā (ge)ibā foment quarrel; to create
মজালাগান मजालगाना truble.

ଶୁକୁଟା — ଦେ. ବଣ [ସ. ଶୁଷ୍କତା] ୧ । ଶୁଷ୍କ; ଶୁଷ୍କତାଯୁକ୍ତ — 1. Dry.
Śukuta ୨ । ଶୁଷ୍କତାବା ଯୋଗୁଁ କ୍ଷୀଣ [ପଦାର୍ଥ] — 2. Dry or
শুকনো सुखटा emaciated; withered; shrivelled up.
[ଶୁକୁଟିଆ — ଅନ୍ୟରୂପ] ୩ । ପୁଂ ଦୁର୍ବଳ ଓ କ୍ଷୀଣକାୟ [ବ୍ୟକ୍ତି]; ଶୀର୍ଣ୍ଣ — 3. Weak and lean (person); emaciated; thin or weak (boy). ଦେ. ବ — କ୍ଷୀଣକାୟ ବାଳକ — A weakling. [ଉ — ଅଣ୍ଟୁଭୂତା, [ଶୁକନୀ; ଶୁକୁଟେଇ — ସ୍ତ୍ରୀ] ଘରେ ଶୁକୁଟା ଝିଅକ ଲକ୍ଷେ ଟଙ୍କା — ଢଗ]

ଶୁକୁଟା[ଟି]ମୁକୁଟା(ଟି) — ଦେ ବଣ. ପୁଂ (ସ: ଶୁଷ୍କ ଓ ମର୍କଟ) — ଶୁକୁଟୁଟା;
Śukuṭā(ṭi)mukuṭā(ṭi) ଅତି ଶୀର୍ଣ୍ଣକାୟ — Very lean
বোগাপটকা सुखटामुखटा and emaciated. [ଶୁକୁଟିଆ ମୁକୁଟିଆ — ଅନ୍ୟରୂପ]
ଶୁକୁଟୀ ମକୁଟୀ
ଶୁକୁଟେଇ ମୁକୁଟେଇ } — ସ୍ତ୍ରୀ

ଶୁକୁଟା ମୁହଁ — ଦେ. ବ ଶୁଷ୍କମୁଖ; ଶୁଖିଲାମୁହଁ; ବିରସ ମୁଖ, ବିଷଣ୍ଣବଦନ — Gloomy face.
Śukuṭā muhañ
শুকনোমুখ सुखमुहाँ

ଶୁକୁଟାମୁହାଁ — ଦେ. ବଣ. ପୁଂ — ବିରସ ବଦନଯୁକ୍ତ [ବ୍ୟକ୍ତି]; ଯେ ବିଷ-
Śukṭā muhañ ଣ୍ଣ ମୁହାଁ ନୁହେ — Pale faced; sad-
শুকনোমুখো सुखामुहाँ faced, having a gloomy face.
[ଶୁକୁଟା ମୁହାଁ ସ୍ତ୍ରୀ]

ଶୁକୁଟି ଗୁହ — ଦେ. ବ [ସ. ଶୁଷ୍କ ଓ ଗୂଥ] ଶୁଷ୍କବିଷ୍ଠା; ଶୁଖିଲା ଗୁହ —
Śukuṭi guha Dried up dung or night-soil.
শুকনোগু सुखागह

ଶୁକୁଟିବା — ଦେ. କ୍ରି (ସ ଶୁଷ୍କ) — ଶୁଖିଯିବା ହେତୁ ଶୀର୍ଣ୍ଣ ହେବା —
Śukuṭibā To wither and shrivel up.
( ଶୁକୁଟି ଯିବା - ଅନ୍ୟରୂପ )
শুকিএ যাওয়া सुकुच जाना

ଶୁକୁତଲା—ଦେ. ବି—ଶୁକ୍ତଲା (ଦେଖ)
Sukutalā Suk-talā. (See)

ଶୁକୁତାନି—ଦେ: ବି—ଶୁକ୍ତାନି (ଦେଖ)
Śukutāni Śuktāni. (See)

ଶୁକୁତି—ଦେ. ବି ( ସ. ଶୁଷ୍କ )—୧ । ଶୁଖିବା—2. Loss or
Śukuti deficit of weight due to drying up,
শুকতি सुखति dryage; shrinkage. ୨ । (ସ.ଶୁକ୍ତି)
ଶୁକ୍ତି (ଦେଖ)—Sukti. (see)

ଶୁକୁନଇ—ଦେ. ବି—ଶୁକ୍ନଇ (ଦେଖ)
Śukunai Śuk-nai (See)

ଶୁକୁ ମଦରଙ୍ଗା—ଦେ, ବି—୧ । ସେଉଁ ମଦରଙ୍ଗା ଶାଗ ପାଣିକୂଳରେ
Śuku madarangā ଶୁଖିଲା ଜାଗାରେ ଜନ୍ମେ—1. A
(ଶୁକୁମଦରଙ୍ଗା —ଅନ୍ୟରୂପ) kind of aquatic pot-herb
শালিঞ্চ শাক which grows on dry places on the
सालंच साग shore of water. ୨ । ମନୁଷ୍ୟଙ୍କୁ ଶୀର୍ଣ୍ଣ କରି
ମନ୍ତ୍ରଯନ୍ତ୍ର ମାରିଦବାଇବା ପାଇଁ ତାନ୍ତ୍ରିକ ପ୍ରୟୋଗ—2. Employ-
मन्त्रयन्त्र ment of black magic to reduce a person
to skeleton.

ଶୁକୁଲ—ଗ୍ରା. ବିଣ (ସ. ଶୁକ୍ଳ)—ଶୁକ୍ଳ (ଦେଖ)
Śukula Śukla. (See)
শুকুল शुक्ल

ଶୁକୁଲି—ଗ୍ରା. ବି (ସ. ଶୃଙ୍ଖଳ)—ଶିକୁଳି (ଦେଖ)
Śukuli Śikui (See)
শিকল सिकल

ଶୁକୁଲି—ଦେ. ବି (ସ. ଶୁଷ୍କ)—ଶୁଖିଲା—
Śukuli Dry.
শুক্নো सुखाहुआ

ଶୁକୁଲି ମ(ମା)ହାପ୍ରସାଦ—ଦେ. ବି—ଶୁଖିଲି ମହାପ୍ରସାଦ; ଜଗନ୍ନାଥ
Śukuli ma(mā)haprasāda ଅନ୍ୟଙ୍କର ମିଷ୍ଟାନ୍ନ ଭୋଗ
শুকনো মহাপ্রসাদ (ଯାହା ଅନ୍ନ ଓ ବ୍ୟଞ୍ଜନାଦି ପରି ଜଳଯୁକ୍ତ ନ
सूखा महाप्रसाद , ଥିବାରୁ ଶୁଖିଲା ଥାଏ ଓ ଯାହା ଅନେକ ଦିନ
ଅବିକୃତ ଅବସ୍ଥାରେ ଥାଏ)—Sweetmeat offer-
ings made to Lord Jagannātha & other
Deities which keep sweet for a
length of time.

ଶୁକୁ ଶୁକୁ—ଦେ.ଅ.—ଶୁକ୍ ଶୁକ୍ (ଦେଖ)—Suk Suk (See)
Śuku śuku [ ଦୃ—ସେଠ ଶୁକୁ ଶୁକୁ ଅନ୍ତ ଧୁକୁ ଧୁକୁ ଅଙ୍ଗେ
শুষ্ক, শুকশুক ନାହିଁ ଛଳେ ବଳ । ଉକାସ୍ତ. ଚୀତଲହସ୍ତ ।]
सुखुक सुखुक

ଶୁକୁ ଶୁକା—ଦେ. ବିଣ, ପୁଂ—ଶୁକ୍ଶୁକା (ଦେଖ)
Śuku śukā Śukśukā. See
( ଶୁକୁଶୁକିଆ—ଅନ୍ୟରୂପ )
[ ଶୁକୁଶୁକୀ, ଶୁକୁଶୁକେଇ—ସ୍ତ୍ରୀ ]

ଶୁକୁ ଶୁକା(କେ)ଇବା—ଦେ. କ୍ରି—ଶୁକ୍ ଶୁକ୍ ହୋଇ କାନ୍ଦିବା—
Śuku śukā(ke)ibā To cry with suppressed sobs.
ফুঁপিয়ে ফুঁপিয়ে কাঁদা सुखुक सुखुकरोना

ଶୁକେଇ—ଦେ. ବି—ଶୁକା (ଦେଖ)
Śukei Śukā (See)

ଶୁକ୍ତା—ଦେ. ବିଣ. ପୁଂ—ଶୁକୁଟା (ଦେଖ)
Śuktā Śukutā. (See)
( ଶୁକ୍ଟୀ—ସ୍ତ୍ରୀ )

ଶୁକ୍ତ—ସ. ବିଣ (ଶୁଚ୍ ଧାତୁ=ପରିଷ୍କୃତ ହେବା, ପବିତ୍ର ହେବା+
Śukta କର୍ତ୍ତୃ. ତ )—୧ । ପରିଷ୍କୃତ—1. Refined, ୨ ।
ପବିତ୍ରୀକୃତ—2. Purified, ୩ । ପବିତ୍ର—3.Pure.
୪ । ପର୍ଯ୍ୟୁଷିତ ବା ସଢ଼ା ହେବା ଯୋଗୁଁ ବିକୃତ ଓ
ଅମ୍ଳରସ ଯୁକ୍ତ—4. Fermented and so
became sour. ୫ । ନିଷ୍ଠୁର—5. Cruel. ୬ ।
ନିର୍ଜନ—6. Lonely; solitary. ସ. ବି—
୧ । କାଞ୍ଜିକା; କାଞ୍ଜି; ଅମ୍ଳିଳ ତୋରାଣି; ତୁଷ—
1. Fermented rice water or gruel.
୨ । ସିର୍କା; ମଦର କାଞ୍ଜି; ରସାମ୍ଳ—2. Vinegar
made by acetous fermentation of grain.
୩ । ଖଟ୍ଟା ଓ ପିତା ମିଶିତ ବ୍ୟଞ୍ଜନର ସ୍ୱାଦ; ତିକ୍ତାମ୍ଳ
ହୋଇଥିବା ଅମ୍ଳ—3. A sour or acid of
bitter taste. ୪ । ଦୁର୍ବାକ୍ୟ—4. Bad
words. ୫ । ମାଂସ—5. Meat. [ ଦ୍ର—
ବୈଦ୍ୟଶାସ୍ତ୍ର ଅନୁସାରେ ଶୁକ୍ତ ଅମ୍ଳରସଯୁକ୍ତ, ଉଷ୍ଣବୀର୍ଯ୍ୟ,
ଅଗ୍ନିସନ୍ଦୀପକ, ଅଭକ୍ଷ୍ୟ ପାଚକ, ରୁଚିକର ଓ ସାରକ ।
ଏହା ଶୂଳ, ଗୁଳ୍ମ, ବିବନ୍ଧ, ଆମଦୋଷ, ବାୟୁ, କଫ, କୃମି,
ତୃଷ୍ଣା, ମୁଖର ବିରସତା, ହୃଦ୍ରୋଗ ଏବଂ ଅଗ୍ନିମାନ୍ଦ୍ୟ
ବିନାଶକ । ]

ଶୁକ୍ତା—ଦେ. ବି—ଶୁଖିଲା ଜଳଚା ପତ୍ର—
Suktā Dried leaves of Jute plant,
শুকপাতা पटूआकासुखापत्ता

ଶୁକ୍ତାନି—ଦେ. ବି (ସ. ଶୁକ୍ତ)—୧ । ତିକ୍ତାସ୍ୱାଦ ବ୍ୟଞ୍ଜନବିଶେଷ,
Suktāni ପିତା ତିଅଣ—1, A kind of cury
শুকাক্তো तीता seasoned with bitter articles
শুকতী सुखती ୨ । (ସ. ଶୁଷ୍କ)—ଶୁକୁତି; ଦ୍ରବ୍ୟାଦି
ଶୁଖିଯିବା ହେତୁ ଓଜନରେ କମିଯିବା—Shortage
in weight due to a thing being dried up,

ଶୁକ୍ତି—ସ. ବି (ଶୁଚ୍ ଧାତୁ=ପବିତ୍ର ହେବା+କରଣ. ତି)—୧ ।
Sukti ଗେଣ୍ଡା, ଶାମୁକା—1, Oyster shell; cockle.
[ଦ୍ର—ବୈଦ୍ୟଶାସ୍ତ୍ର ମତରେ ଶୁକ୍ତି ବା ଶାମୁକାର ମାଂସ
କଟୁ ମଧୁରରସ, ସ୍ନିଗ୍ଧ, ଅଗ୍ନିବର୍ଦ୍ଧକ, ରୁଚିକରଓ ଶାସ,
ଶୂଳ ଏବଂ ହୃଦ୍ରୋଗରେ ଉପକାରୀ; ଶୁକ୍ତିର କଠିନ
ଆବରଣ ବା ଶାମୁକାକୁ ଜମ୍ବୀର ଲେମ୍ବୁ ରସରେ ଭିଜାଇ
ପରେ ଉଷ୍ଣ ଜଳରେ ଧୋଇ ଅଗ୍ନିରେ ପୋଡ଼ିଲେ ତାହା
ଭସ୍ମରେ ପରିଣତ ହୋଇ ଔଷଧରେ ବ୍ୟବହୃତ ହୁଏ ।
ଏହାର ଭସ୍ମ 'କଲିଚୂନ' ପରି । ଏହି ଭସ୍ମ, ଶୂଳ, ଅମ୍ଳ

ରୋଗ, ଶୂଳ, ପ୍ଲୀହା, ଅଷ୍ଠୀଳା, ଯକୃତ୍, ଅମ୍ଳପିତ୍ତ, ଓ ଅଗ୍ନିମାନ୍ଦ୍ୟ ରୋଗରେ ପ୍ରୟୋଗ କରାଯାଏ।] ୨ । ଶଙ୍ଖ
ଶୁକ୍ତିକା—ଅନ୍ୟରୂପ) 2. Conch. ୩ । କରୋଟି; ମୁଣ୍ଡର ଖପୁରି—3. Skull. ୪ । ଅଶ୍ୱର ବକ୍ଷସ୍ଥଳରେ ରୋମାବଳୀକୃତ ଆବର୍ତ୍ତତ୍ରୟ—4. Three whorls appearing on the breast of a horse. ୫ । ଚକ୍ଷୁ ରୋଗବିଶେଷ; ପରଳ ରୋଗ; ମୋତିଆବିନ୍ଦୁ—5. An eye disease; pearl in the eye. ୬ । (ବୈଦ୍ୟକ) ଚାରିତୋଳା ପରିମିତ ଗନ୍ଧଦ୍ରବ୍ୟବିଶେଷ —6. A quantity of scent weighing 4 tolas. ଦେ. ବ—ଜଳଯୁକ୍ତ ବା କଞ୍ଚା ପଣ୍ୟଦ୍ରବ୍ୟାଦି ଶୁଖିଗଲେ ତହିଁର ଯେଉଁ ଓଜନ ବା ପରିମାଣ କମି ଯାଏ—Shortage in weight or volume or quantity due to an article becoming dried up; shrinkage; decrease in weight due to a thing becoming dry.

**ଶୁକ୍ତିଜ**—ସ. ବଣ (ଶୁକ୍ତି+ଜନ୍ ଧାତୁ+କର୍ତ୍ତୃ ଅ)—ଶୁକ୍ତିରୁ ଜାତ—
Śuktija Produced from oyster shells. ସ. ବ—ମୁକ୍ତା—Pearl.

**ଶୁକ୍ତିବୀଜ**—ସଂ. ବ (୬ଷ୍ଠୀ ତତ୍)—ମୁକ୍ତାଫଳ; ମୁକ୍ତା—
Śukti bija Pearl.

**ଶୁକ୍ର**—ସଂ. ବ (ଶୁଚ୍ ଧାତୁ=ଶୁଚିହେବା, ପବିତ୍ରହେବା+କର୍ତ୍ତୃ ର)=୧ ।
Śukra ଗ୍ରହବିଶେଷ—1 The planet Venus.

[ଦ୍ର—ଏହା ଆକାଶରେ ବର୍ଷମଧ୍ୟରୁ କେତେକ ସମୟ ସୂର୍ଯ୍ୟ ଉଦିତ ହେବା ପୂର୍ବରୁ ପୂର୍ବଦିଗରେ 'ଶୁକ୍ରତାରା' ରୂପେ ଓ କେତେକ କାଳ ସନ୍ଧ୍ୟା ପରେ ପଶ୍ଚିମଦିଗରେ "ସନ୍ଧ୍ୟାତାରା" ରୂପେ ଦେଖାଯାଏ। ଶୁକ୍ର ଗୋଟିଏ ଗ୍ରହ। ଏହା ପୃଥିବୀ ପରି ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗରେ ନିଜ କକ୍ଷରେ ଭ୍ରମଣ କରେ। ଏହା ଅନ୍ୟ ସମସ୍ତ ଗ୍ରହ ଅପେକ୍ଷା ପୃଥିବୀକୁ ବେଶି ଉଜ୍ଜ୍ୱଳ ଦେଖାଯାଏ। ଏହାର ହାରାହାରି ଦୂରତ୍ୱ ସୂର୍ଯ୍ୟଠାରୁ ୬ କୋଟି ୭୦ ଲକ୍ଷ ମାଇଲ୍। ଏହାର ଗତି ଉତ୍ତମାକାର ଥିବାରୁ ଏ ପୃଥିବୀର ଅତି ନିକଟରେ ଥିବା ସମୟରେ ପୃଥିବୀଠାରୁ ୨ କୋଟି ୬୦ ଲକ୍ଷ ମାଇଲ୍ ଓ ଅତି ଦୂରରେ ଥିବା ସମୟରେ ୧୬ କୋଟି ମାଇଲ୍ ଦୂରରେ ଥାଏ। ଏ ଗ୍ରହର ବ୍ୟାସ ୭ ହଜାର ୬୦୦ ମାଇଲ୍। ପୃଥିବୀର ବ୍ୟାସ ପ୍ରାୟ ୭ ହଜାର ୯୦୦ ମାଇଲ୍ ଥିବାରୁ ଏହାର ଆକାର ପ୍ରାୟ ପୃଥିବୀ ସଙ୍ଗେ ସମାନ। ଏହାର ଚନ୍ଦ୍ରଙ୍କ ପରି କଳାର ବୃଦ୍ଧି ଓ ହ୍ରାସ ଅଛି। ପୃଥିବୀ ସୂର୍ଯ୍ୟଙ୍କଠାରୁ ପ୍ରାୟ ୯ କୋଟି ୨୯ ଲକ୍ଷ ମାଇଲ୍ ଦୂରରେ ଥିବାରୁ ଶୁକ୍ରଗ୍ରହ ପୃଥିବୀ ଓ ସୂର୍ଯ୍ୟଙ୍କ ମଧ୍ୟରେ ଅବସ୍ଥିତ। ଏହା ପୃଥିବୀର ନିକଟବର୍ତ୍ତୀ ହେବା ସମୟରେ ଖୁବ୍ ଉଜ୍ଜ୍ୱଳ ଦେଖାଯାଏ ଓ ଦୂରବର୍ତ୍ତୀ ହେବା ସମୟରେ ଗୋଟିଏ ବଡ଼ ନକ୍ଷତ୍ର ପରି ଦେଖାଯାଏ। ପୃଥିବୀ ସୂର୍ଯ୍ୟଙ୍କୁ ୩୬୫ ଦିନରେ ଥରେ ବୁଲିଆସେ ଓ ସୂର୍ଯ୍ୟଙ୍କୁ ଥରେ ପ୍ରଦକ୍ଷିଣ କରିବାକୁ ଶୁକ୍ରକୁ ୨୨୫ ଦିନ ଲାଗେ। ଶାସ୍ତ୍ରରେ ଶୁକ୍ରଙ୍କୁ "ହିମ କୁନ୍ଦେନ୍ଦୁ ସଂକାଶ" ଅର୍ଥାତ୍ ଶୁକ୍ଳବର୍ଣ୍ଣ ବୋଲି ବର୍ଣ୍ଣନ କରା ଯାଇଅଛି। ଶୁକ୍ର ଗ୍ରହର ତ୍ରିସୁରକୁ ସ୍ଥାପକ। ହିନ୍ଦୁ ଜ୍ୟୋତିଃଶାସ୍ତ୍ର ଅନୁସାରେ ଓ କେବଳ ମତରେ ଶୁକ୍ର ମହାଦଶା ୨୦ ବର୍ଷ ଓ ନାକ୍ଷତ୍ରିକ ମତରେ ୨୧ ବର୍ଷ। ଏହି ମହାଦଶା ପ୍ରାୟଶଃ ଶୁଭକର। ଏଥି ମଧ୍ୟରେ ଅନ୍ତର ପ୍ରତ୍ୟନ୍ତର ଦଶାରେ ନାନାପ୍ରକାର ଶୁଭାଶୁଭ ଫଳ ନିର୍ଦ୍ଦିଷ୍ଟ ଅଛି। ଶୁକ୍ର ଦ୍ୱିପାଦ ଶୁଭଯୁକ୍ତ ଗ୍ରହ। ବୃଷ ଓ ତୁଳା ରାଶି ଶୁକ୍ରର ସ୍ୱକ୍ଷେତ୍ର ଅଟେ। ଚନ୍ଦ୍ର ଓ ମଙ୍ଗଳ ଶୁକ୍ରର ଶତ୍ରୁ। ବୁଧ ଓ ଶନି ଶୁକ୍ରର ମିତ୍ର। ବୃହସ୍ପତି ଓ ଶୁକ୍ରର ସମତା ଅଛି। ଜ୍ୟୋତିଃଶାସ୍ତ୍ର ମତରେ ଶୁକ୍ର ଗ୍ରହ ମନୁଷ୍ୟକୁ କଳତ୍ର, କାମସୁଖ, ଗୀତ ଶାସ୍ତ୍ର, କାବ୍ୟ ପୁଷ୍ପ, ଯୌବନ, ଆଭରଣ, ରଜତଯାନ, ମୁକ୍ତାଦି ପ୍ରଦାନ କରେ।

୨ । ଶୁକ୍ରାଚାର୍ଯ୍ୟ (ଦେଖ)—2. Śukrāchārjya (See). ୩ । ଶରୀରସ୍ଥ ଧାତୁବିଶେଷ; ରେତଃ; ପୁରୁଷର ବୀର୍ଯ୍ୟ—3. Semen verile; sperm; seminal fluid.

[ଦ୍ର—ଆୟୁର୍ବେଦ ମତରେ ଆହାର ଉଦରସ୍ଥ ହେଲାରୁ ତହିଁରୁ ରସ ଉତ୍ପନ୍ନ ହୁଏ; ରସରୁ ରକ୍ତ, ରକ୍ତରୁ ମାଂସ, ମାଂସରୁ ମେଦଃ, ମେଦରୁ ଅସ୍ଥି, ଅସ୍ଥିରୁ ମଜ୍ଜା ଓ ମଜ୍ଜାରୁ ଶୁକ୍ର ଉତ୍ପନ୍ନ ହୁଏ। ଅତଏବ ଶୁକ୍ରହିଁ ଜୀବର ପ୍ରଧାନ ଶକ୍ତି। ତାହା କ୍ଷୟ ହେଲେ ବଳ କ୍ଷୟ ଓ ଆୟୁଃକ୍ଷୟ ଘଟେ। ତାହା ଶରୀରରେ ଧାରଣ କଲେ ବଳ ଓ ଆୟୁ ବୃଦ୍ଧି ହୁଏ। ଏଥିପାଇଁ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରିବାଦ୍ୱାରା ଆୟୁର୍ବୃଦ୍ଧି ହୁଏ ବୋଲି ମୁନି ଋଷିମାନେ ଉପଦେଶ ଦେଇଅଛନ୍ତି। ଯୁବକ ଓ ବଳବାନ୍ ବ୍ୟକ୍ତିର ଶୁକ୍ର ଗାଢ଼ ବୃଦ୍ଧ ଓ ଦୁର୍ବଳ ବ୍ୟକ୍ତିର ଶୁକ୍ର ତରଳ ଅଟେ।]

୪ । ତେଜଃ—4. Energy; lustre. ୫ । ଅଗ୍ନି—5. Fire. ୬ । ଚିତ୍ରକ ବୃକ୍ଷ; ଧଳାଚିତା ଗଛ—6. A plant; Plumbago Zeylanica. ୭ । ଜ୍ୟେଷ୍ଠ ମାସ—7. The month of Jyaishtha. ୮ । ଯୋଗବିଶେଷ—8. A sort of exercise in mental abstraction. ୯ । ଚକ୍ଷୁରୋଗବିଶେଷ—9. A sort of eye disease. ୧୦ । (ଲକ୍ଷଣାର୍ଥ, ଶୁକ୍ରାଚାର୍ଯ୍ୟ କଣା ଥିବାରୁ) କଣା ବ୍ୟକ୍ତି—10. An one-eyed person.

**ଶୁକ୍ର ଅନ୍ତର**—ଦେ. ବ (ଜ୍ୟୋତିଷ)—୧ । ଶୁକ୍ରାନ୍ତର (ଦେଖ)—
Śukra antara 1. Śukrāntara (See) ୨ । ମନୁଷ୍ୟ (ଶୁକ୍ର ଅନ୍ତର୍ଦ୍ଦଶା—ଅନ୍ୟରୂପ) ଜୀବନରେ ଗ୍ରହମାନଙ୍କ ମହାଦଶା ଭୋଗକାଳ ମଧ୍ୟରେ ଶୁକ୍ର ଗ୍ରହର ଅନ୍ତର ଦଶା ଭୋଗକାଳ—2. The time when the planet Śukra comes during the Mahādaśā of any other planet.

**ଶୁକ୍ରକର**—ସଂ. ବଣ—ଯେଉଁ ଔଷଧ ବା ଦ୍ରବ୍ୟ ଦ୍ୱାରା ଶରୀରରେ ଶୁକ୍ର Sukrakara ବୃଦ୍ଧି ହୁଏ—Spermatic ( medicine ); (ଶୁକ୍ରକରୀ—ସ୍ତ୍ରୀ ବଣ) spermatogerous.

ସଂ. ବ—ମଜ୍ଜା—Marrow. ( ଏଥିରୁ ଶୁକ୍ର ଜନ୍ମେ ।)

**ଶୁକ୍ର କ୍ଷୟ**—ସଂ. ବ ( ୬ଷ୍ଠୀ ତତ୍ )—ଅଜାଣତରେ ବା ବିନା ଇଚ୍ଛାରେ Sukra kshaya ଶୁକ୍ର ପତନରୂପ ରୋଗ—Spermatorrohea.

**ଶୁକ୍ର କ୍ଷରଣ**—ସଂ. ବ (୬ଷ୍ଠୀ ତତ) —ଲିଙ୍ଗରୁ ବୀର୍ଯ୍ୟ ପତନ— Sukra ksharaṇa Emission of semen.

**ଶୁକ୍ର ଗୋଚର ଫଳ**—ସଂ. ବ (ଜ୍ୟୋତିଷ)— ଶୁକ୍ର ଜନ୍ମରାଶିରୁ ହେଲେ Sukra gochara phala ଶତ୍ରୁ ନାଶ; ୨ୟରେ ଅର୍ଥ ଲାଭ, ୩ୟରେ ଶୁଭକର, ୪ର୍ଥରେ ଧନ ଲାଭ, ୫ମରେ ପୁତ୍ର ଲାଭ, ୬ଷ୍ଠରେ ଶତ୍ରୁବୃଦ୍ଧି, ୭ମରେ ଶୋକ, ୮ମରେ ଅର୍ଥ ଲାଭ, ୯ମରେ ବିବିଧ ବସ୍ତ୍ର ଲାଭ, ୧୦ମରେ ଅଶୁଭକର, ୧୧ଶରେ ବନ୍ଧୁ ଧାନ୍ୟ ଲାଭ, ୧୨ଶରେ ଧନାଗମ ଓ ସୁଖ ହୁଏ— The different results of the planet Venus becoming connected with a man's natal signs.

**ଶୁକ୍ର ତ(ତା)ରା**—ଦେ. ବ ( ସଂ. ଶୁକ୍ର+ତାରକା )—ଶୁକ୍ର— Sukra ta(tā)rā ଗ୍ରହ (ଯାହା ସାହାନ୍ତରେ ବା ପ୍ରଭାତରେ ଶୁକ୍ର(କ୍ର)ତାରା ତାରାରୂପେ ଦେଖା ଯାଏ )—Venus; morning शुक्रतारा star; evening star. [ ଦ୍ର—ଏହା ପ୍ରକୃତରେ ଗୋଟିଏ ଗ୍ରହ,କିନ୍ତୁ ଲୋକେ ଏହାକୁ ଭୁଲରେ ତାରା ବୋଲି କହନ୍ତି । ]

**ଶୁକ୍ର ତାରଲ୍ୟ**—ସଂ. ବ ( ଶୁକ୍ର=ବୀର୍ଯ୍ୟ+ତାରଲ୍ୟ=ତରଳତା, ୬ଷ୍ଠୀ Sukra tāralya ତତ )—ରୋଗ, ଦୁର୍ବଳତା, ବାର୍ଦ୍ଧକ୍ୟ ଯୋଗୁଁ ଶୁକ୍ରର ଅଗାଢ଼ତା—Thinness of semen due to disease, weakness or old age.

**ଶୁକ୍ର ଦଶା**—ସଂ. ବ ( ଜ୍ୟୋତିଷ )—ଶୁକ୍ର ମହାଦଶା ( ଦେଖ ) Sukra dasā Sukra mahādasā (See)

**ଶୁକ୍ର ଧାରଣ**—ସଂ. ବ (୬ଷ୍ଠୀତତ୍)—ରମଣାଦିଦ୍ୱାରା ଦେହରୁ ଶୁକ୍ର ବ୍ୟୟ Sukra dhāraṇa ନ କରିବା; ବ୍ରହ୍ମଚର୍ଯ୍ୟ—The retention of the semen in the system by desisting from sexual intercourse or by strong exercise of will power during copulation.

**ଶୁକ୍ର ନୀତି**—ସଂ. ବ—ଶୁକ୍ରାଚାର୍ଯ୍ୟଙ୍କ ପ୍ରବର୍ତ୍ତିତ ନୀତିଶାସ୍ତ୍ର—Political Sukra niti principles promulgated by Sukrāchārjya.

**ଶୁକ୍ର ପ୍ରତ୍ୟନ୍ତର**—ସଂ. ବ ( ଜ୍ୟୋତିଷ )—ପ୍ରତ୍ୟେକ ଗ୍ରହଙ୍କ ମହାଦଶା Sukra pratyantara ଓ ଅନ୍ତରଦଶା କାଳ ମଧ୍ୟରେ ଶୁକ୍ରଗ୍ରହର ପ୍ରତ୍ୟନ୍ତର ଦଶାର ଭୋଗ କାଳ—The time when the conjunction of Venus takes place during the Antaradasā and Mahādasā of all planets. [ଦ୍ର—ଶୁକ୍ର ମହାଦଶାର ଭୋଗକାଳ ୨୦ ବର୍ଷ ମଧ୍ୟରେ ପ୍ରଥମେ ଶୁକ୍ର ଅନ୍ତର୍ଦ୍ଦଶା ୩ବର୍ଷ ୪ମାସ । ଏଥି ମଧ୍ୟରେ ଅଦ୍ୟ ୬ ମାସ ୨୦ ଦିନ ଶୁଭଫଳପ୍ରଦ ।]

**ଶୁକ୍ର ବର୍ଦ୍ଧକ**—ସଂ. ବଣ (ଉପପଦତତ୍) ଯେଉଁ ଔଷଧ ବା ଖାଦ୍ୟାଦି ଦ୍ୱାରା Sukra barddhaka ଶୁକ୍ର ବୃଦ୍ଧି ହୁଏ— Spermatogenous (medicine or article).

**ଶୁକ୍ର ବାର**—ସଂ. ବ—ଶନିବାରର ପୂର୍ବ ଓ ଗୁରୁବାରର ପର ଦିବସ— Sukra bāra Friday. [ ଦ୍ର—ହିନ୍ଦୁମାନଙ୍କ ମତରେ ଗୃହ- (ଶୁକ୍ରବାର—ଅନ୍ୟରୂପ) ଦର୍ଶନ,ଧାନ୍ୟଚ୍ଛେଦନ,ଧାନ୍ୟସ୍ଥାପନ,ନବବସ୍ତ୍ରାଲଙ୍କାରଧାରଣାଦି କେତେକ କର୍ମ ପାଇଁ ଏ ଦିନ ପ୍ରଶସ୍ତ । ମୁସଲମାନମାନଙ୍କର ଏହା ଦିବସ ସପ୍ତାହର ପବିତ୍ରତମ ଦିବସ ଓ ଏ ଦିନ ମୁସଲମାନ୍‌ମାନେ ମସ୍‌ଜିଦରେ ସମବେତ ହୋଇ ନମାଜ୍ ବା ପ୍ରାର୍ଥନା କରନ୍ତି । ଫାରସୀରେ ଶୁକ୍ରବାରକୁ 'ଜୁମା' ବୋଲାଯାଏ । ମାର୍ଚ୍ଚ ବା ଅପ୍ରେଲ ମାସର ଗୋଟିଏ ଶୁକ୍ରବାର ଖ୍ରୀଷ୍ଟିୟାନମାନଙ୍କର ଗୋଟିଏ ପର୍ବ ଦିବସ (ଗୁଡ୍ ଫ୍ରାଇଡେ) । ପ୍ରଭୁ ଯୀଶୁଖ୍ରୀଷ୍ଟ ଏ ଦିନ କ୍ରୁଶବିଦ୍ଧ ହୋଇଥିଲେ ।

ଶୁକ୍ରବାର ଦିନ ବିଲରେ କୃଷକ କ୍ଷେତ୍ରରୁ ପ୍ରଥମେ କଟା ହୋଇଥିବା ଧାନ ବିଡ଼ା(ଶୁକ୍ରବାର ବିଡ଼ି)କୁ ସାଇତି ରଖି ଦହିର ଗୁରୁବାରରେ ଲକ୍ଷ୍ମୀ ପୂଜା କରେ । ଅଦରର ଓ ସ୍ନେହର ପାତ୍ରକୁ ସାଧାରଣ ଲୋକେ କହନ୍ତି "ସେ ପରା ମୋ ଶୁକ୍ରବାର ବିଡ଼ି' । ଶୁକ୍ରବାର ଦିନ ବାଳିକା ପ୍ରଥମରେ ରଜସ୍ୱଳା ହେଲେ ପୁ ତ୍ରବତୀ ହୁଏ । ଶୁକ୍ରବାରରେ ପଶ୍ଚିମରେ ଦିକ୍‌ଶୂଳ । ସେଥି ପାଇଁ ପଶ୍ଚିମକୁ ଯାତ୍ରା କରିବା ନିଷିଦ୍ଧ । ଶୁକ୍ରବାର ଦିନ ଦିବା ଛଅଘଡ଼ିଠାରୁ ଅଠଘଡ଼ି ପର୍ଯ୍ୟନ୍ତ ବାରବେଳା ଥିବାରୁ ସେ ସମୟରେ ଯାତ୍ରା ଓ ଶୁଭକର୍ମ ନିଷିଦ୍ଧ ।]

**ଶୁକ୍ରବାର ବିଡ଼ା(ଡ଼ି)**—ଦେ. ବ—ଶୁକରବାର ବିଡ଼ା (ଦେଖ) Sukrabāra birdā(rdi; Sukarabāra birdā. (See)

**ଶୁକ୍ର ବ୍ୟୟ**—ସଂ. ବ (୬ଷ୍ଠୀ ତତ୍)-ରମଣାଦିଦ୍ୱାରା ଦେହରୁ ଶୁକ୍ର ପତନ— Sukra byaya Emission of semen by copulation etc.

**ଶୁକ୍ର ବୃଦ୍ଧି**—ସ ବ . (୬ଷ୍ଠୀ ତତ୍)—ଦେହରେ ଶୁକ୍ର ନାମକ ଧାତୁର Sukra bruddhi ଆଧିକ୍ୟ—Increase of semen in the system.

**ଶୁକ୍ର ଭୁକ୍**—ସ. ବଣ (ଉପପଦ ତତ୍; ଶୁକ୍ର+ଭୁଜ୍ ଧାତୁ+କର୍ତ୍ତୃ. କ୍ୱିପ୍; Sukra bhuk ଶୁକ୍ରଭୁଜ୍ ଶବ୍ଦ ୧-।. ୧ବ)- ଶୁକ୍ର ଖାଦକ— Eating semen. ସ. ବ—ମୟୂର - Peacock. [ ଦ୍ର—କଥିତଅଛି ଯେ ମୟୂରୀମାନଙ୍କ ସଙ୍ଗେ ମୟୂରର ସଙ୍ଗମ ହୁଏ ନାହିଁ । ବର୍ଷାଗମରେ ମୟୂର (ଲକ୍ଷ୍ମୀମୟୂର) ମାନେ ନାଚବାବେଳେ ତାଙ୍କଠାରୁ ଭୂମିରେ ରେତଃ ସ୍ଖଳିତ ହୁଏ । ମୟୂରୀ (ଲକ୍ଷ୍ମୀମୟୂରୀ) ଭୂମିରୁ ତାହା ସ୍ଖଳିତ ହେତାରୁ ଥଣ୍ଟଦ୍ୱାରା ଗୋଟାଇ ନେଇ ଖାଆନ୍ତି ଓ ତଦ୍ଦ୍ୱାରା ଗର୍ଭବତୀ ହୁଅନ୍ତି ।]

**ଶୁକ୍ର ମହାଦଶା**—ସଂ. ବି—ଜ୍ୟୋତିଷମତରେ ମନୁଷ୍ୟ ଜୀବନର ପରମାୟୁ
**Śukra mahādaśā** ୧୨୦ ବର୍ଷ ମଧ୍ୟରୁ କେତୁଦଶା ପରେ ଓ
ରବିଦଶା ପୂର୍ବରୁ ପଡ଼ିବା ୨୦ ବର୍ଷ କାଳ—The period of twenty years in a man's life according to astrological calculat ions coming after Ketu daśā and before Rabi daśā.
[ଦ୍ର—ଜ୍ୟୋତିଃ ଶାସ୍ତ୍ରମତରେ ଏହି—
ଶୁକ୍ର ମହାଦଶାରେ ଶୁକ୍ରଙ୍କ ଅନ୍ତର — ୩ ବର୍ଷ ୪ ମାସ
ଶୁକ୍ର ମହାଦଶାରେ ରବି ,, — ୧ ବର୍ଷ
ଶୁକ୍ର ଦଶାରେ ଚନ୍ଦ୍ର ,, — ୧ ବର୍ଷ ୮ ମାସ
ଶୁକ୍ର ଦଶାରେ ମଙ୍ଗଳ ,, — ୧ ବର୍ଷ ୨ ମାସ
ଶୁକ୍ର ଦଶାରେ ରାହୁ ,, — ୩ ବର୍ଷ
ଶୁକ୍ର ଦଶାରେ ଗୁରୁ ,, — ୨ ବର୍ଷ ୮ ମାସ
ଶୁକ୍ର ଦଶାରେ ଶନି ,, — ୩ ବର୍ଷ ୨ ମାସ
ଶୁକ୍ର ଦଶାରେ ବୁଧ ,, — ୨ ବର୍ଷ ୧୦ ମାସ
ଶୁକ୍ର ଦଶାରେ କେତୁ ,, — ୧ ବର୍ଷ ୨ ମାସ
ସର୍ବମୋଟ ୨୦ ବର୍ଷ

**ଶୁକ୍ର ମେହ**—ସଂ. ବି—ଯେଉଁ ମେହ ରୋଗରେ ଶୁକ୍ରମିଶ୍ରିତ ମୂତ୍ର ନିର୍ଗତ
**Śukra meha** ହୁଏ—A kind of gonorrohea.

**ଶୁକ୍ରଳ**—ସଂ. ବିଣ. ପୁଂ (ଶୁକ୍ର+ଯୁକ୍ତାର୍ଥେ. ଲ)—୧ । ଶୁକ୍ରଯୁକ୍ତ—
**Śukraḷa** 1. Mixed with semen. ୨ । ବୀର୍ଯ୍ୟବର୍ଦ୍ଧକ—
(ଶୁକ୍ରଳା—ସ୍ତ୍ରୀ) 2. Increasing semen.

**ଶୁକ୍ରଳା**—ସଂ. ବି—୧ । ଅଗଡ଼ା (ଦେଖ)—1. Agarda. (See)
**Śukraḷā** ୨ । ଗୁଞ୍ଜା; ଧଳା କାଇଁଚ (ବିଶ୍ୱକୋଷ)—2. The white-seeded variety of Abrus Precatorius. ୩ । ଅମଳକୀ ବୃକ୍ଷ (ବିଶ୍ୱକୋଷ)—
3. Embelic Myrobalan.

**ଶୁକ୍ର ଶିଷ୍ୟ**—ସଂ. ବି (୬ଷ୍ଠୀ ତତ୍)—ଦୈତ୍ୟଗଣ; ଅସୁରମାନେ—
**Śukra śishya** The demons.

**ଶୁକ୍ର ସ୍ଖଳନ**—ସଂ. ବି (୬ଷ୍ଠୀ ତତ୍)—ରୋଗ ବା ସ୍ୱପ୍ନଦୋଷରୁ
**Śukra skhaḷana** ଅଜ୍ଞାତସାରେ ଶୁକ୍ର ପତନ—Involuntary emission of semen due to disease or wet dream.

**ଶୁକ୍ର ସ୍ରାବ**—ସଂ. ବି (୬ଷ୍ଠୀ ତତ୍)—ଅଧିକ ମାତ୍ରାରେ ଶୁକ୍ରକ୍ଷରଣ—
**Śukra srāba** Seminal discharge.

**ଶୁକ୍ରା**—ଦେ. ବି—(ପୁଂ) ଲୋକମାନଙ୍କୁ ଡକାଯିବା ନାମ (ବିଶେଷତଃ ଶୁକ୍ରବାର
**Śukrā** ଦିନ ଜନ୍ମ ହୋଇଥିବା ଲୋକମାନଙ୍କୁ ଡକାଯିବା ନାମ)—
शुक्रा A name given to males, specially those
सुकरा born on Friday. ସଂ. ବି—ବଂଶଲୋଚନା (ବିଶ୍ୱ-
[ଶୁକି, ଶୁକ୍ରିଆ, ଶୁକ୍ରୁ—ଅନ୍ୟ ଦେ. ରୂପ] କୋଷ)—Bamboo-manna.

**ଶୁକ୍ରାଚାର୍ଯ୍ୟ**—ସଂ. ବି (କର୍ମଧା=ଶୁକ୍ର+ଆଚାର୍ଯ୍ୟ)—ମୁନିବିଶେଷ; ଦୈତ୍ୟ
**Śukrāchārjya** ଗୁରୁ; ଭାର୍ଗବ; ଉଶନା—Name of a sage; the spiritual preceptor of the demons in the Hindu mythology.
[ଦ୍ର—ଶୁକ୍ର ଭୃଗୁମୁନିଙ୍କ ପୁତ୍ର ବୋଲି କଥିତ । ମତାନ୍ତରରେ ଏ ମହାଦେବଙ୍କ ଉପସ୍ଥ ଦ୍ୱାରରୁ ବହିର୍ଗତ ହୋଇଥିବାରୁ ଏହାଙ୍କ ନାମ 'ଶୁକ୍ର' ହୋଇଅଛି । ଏହାଙ୍କର ଦୁଇ ପୁତ୍ର ଷଣ୍ଡ ଓ ଅମର୍କ ଏବଂ ଦୁଇ କନ୍ୟା ଦେବଯାନୀ ଓ ଅରଜା । ବଳି ରାଜାଙ୍କ ଦାନ ସମୟରେ ଏ ଦାନ ବିଷୟରେ ବ୍ୟାଘାତ ଘଟାଇବାରୁ ଏହାଙ୍କର ଗୋଟିଏ ଆଖି ନଷ୍ଟ ହୋଇଥିଲା । ଏଥିପାଇଁ ଏହାଙ୍କୁ 'କଣା ଶୁକ୍ର' ବୋଲିଯାଏ ଏବଂ କଣା ଲୋକଙ୍କୁ ବ୍ୟଙ୍ଗୋକ୍ତି କରି 'ଶୁକ୍ର' ନାମରେ ଡକାଯାଏ ।

ଏ ମୃତସଞ୍ଜୀବନୀ ମନ୍ତ୍ରଦ୍ୱାରା ଦେବାସୁର ଯୁଦ୍ଧରେ ନିହତ ରାକ୍ଷସମାନଙ୍କୁ ଜୀଆଁଇଥିଲେ । ଏହାଙ୍କଠାରୁ ଏହି ବିଦ୍ୟା ଶିକ୍ଷା କରିବାପାଇଁ ଦେବତାମାନେ ଦେବଗୁରୁ ବୃହସ୍ପତିଙ୍କ ପୁତ୍ର କଚଙ୍କୁ ଏହାଙ୍କ ନିକଟକୁ ପଠାଇଥିଲେ । କଚ ଏହାଙ୍କ ଗୃହରେ ଶିଷ୍ୟରୂପେ ରହିବାବେଳେ ଶୁକ୍ରକନ୍ୟା ଦେବଯାନୀଙ୍କ ଅନୁରାଗଭାଜନ ହୋଇଥିଲେ । କଚ ମୃତସଞ୍ଜୀବନୀ ବିଦ୍ୟା ଶିଖିବାପାଇଁ ଆସିଥିବା କଥା ଜାଣିପାରି ଅସୁରମାନେ କଚଙ୍କୁ ୩ଥର ବଧ କଲେ । କିନ୍ତୁ ଦେବଯାନୀଙ୍କ ଅନୁରୋଧରେ ଶୁକ୍ର କଚଙ୍କୁ ୩ଥର ଯାକ ଜୀଆଁଇଲେ । ଦଣ୍ଡକ ଦେଶର ରାଜା ଶୁକ୍ରଙ୍କର ଅନ୍ୟ କନ୍ୟା ଅରଜାଙ୍କ ପ୍ରତି ବଳପ୍ରକାଶ କରିବାରୁ ଶୁକ୍ରଙ୍କ ଶାପରେ ଉକ୍ତ ରାଜା ଭସ୍ମୀଭୂତ ହେଲେ ଓ ତାଙ୍କ ରାଜ୍ୟ ଦଣ୍ଡକାରଣ୍ୟରେ ପରିଣତ ହେଲା । ରାଜା ଯଯାତି ଶୁକ୍ରଙ୍କ କନ୍ୟା ଦେବଯାନୀଙ୍କୁ ବିବାହ କଲେ । କିନ୍ତୁ ଯଯାତି ତାଙ୍କର ଅନ୍ୟ ପତ୍ନୀ ଶର୍ମିଷ୍ଠାଙ୍କପ୍ରତି ପକ୍ଷପାତ ଆଚରଣ କରିବାରୁ ଶୁକ୍ରଙ୍କ ଅଭିଶାପରେ ଯଯାତି ଅକାଳରେ ଜରାଗ୍ରସ୍ତ ହୋଇଗଲେ । (ଯଯାତି ଦେଖ)

ଶୁକ୍ରମୁନି ମାର୍ଗଶୀର୍ଷରେ ଦ୍ରବେଣତା ଅଟନ୍ତି । ]

**ଶୁକ୍ରାନ୍ତର**—ସଂ. ବି—(ଜ୍ୟୋତିଷ)—ଶୁକ୍ର ଓ ଅନ୍ୟ ମହାଦଶାମାନଙ୍କ
**Śukrāntara** ମଧ୍ୟରେ ଶୁକ୍ର ଗ୍ରହର ଅନ୍ତରଦଶା କାଳ—The
[ଶୁକ୍ରାନ୍ତରଦଶା—ଅନ୍ୟରୂପ] time of conjunction of the planet Venus during the Mahādaśā of all the planets during a man's life.
[ଦ୍ର—ରବି ମହାଦଶା ୬ ବର୍ଷ ମଧ୍ୟରେ ଶୁକ୍ର ଅନ୍ତରଦଶା
୧ ବର୍ଷ;
ଚନ୍ଦ୍ରମହାଦଶା ୧୦ ବର୍ଷ ମଧ୍ୟରେ ଶୁକ୍ର ଅନ୍ତରଦଶା ୧ବର୍ଷ ୮ମାସ
ମଙ୍ଗଳ ମହାଦଶା ୭ ବର୍ଷ ,, ,, ୧ବର୍ଷ ୨ ମାସ
ରାହୁ ,, ୧୮ ବର୍ଷ ,, ,, ୩ ବର୍ଷ
ବୃହସ୍ପତି ,, ୧୬ ବର୍ଷ ,, ,, ୨ବର୍ଷ ୮ ମାସ
ଶନି ,, ୧୯ ବର୍ଷ ,, ,, ୩ବର୍ଷ ୨ ମାସ
ବୁଧ ,, ୧୭ ବର୍ଷ ,, ,, ୨ବର୍ଷ ୧୦ମାସ
କେତୁ ,, ୭ ବର୍ଷ ,, ,, ୧ବର୍ଷ ୮ମାସ
ଶୁକ୍ର ,, ୨୦ ବର୍ଷ ,, ,, ୩ବର୍ଷ ୪ମାସ]

ଶୁକ୍ରୁ—ଦେ. ବି, [ସ୍ତ୍ରୀ°]—ଶୁକ୍ରା (ଦେଖ)
Śukru [ଶୁକ୍ରା—ସ୍ତ୍ରୀ] Śukrā (See)
[ ଦ୍ର—ଶୁକ୍ର ନାମକ ପୁରୁଷର ଆଦରାର୍ଥକ ଡାକନାମ—ଶୁକୁରି, ଶୁକୁରୁ, ଶୁକୁରେଇ, ଶୁକି, ଶୁକୁ, ଶୁକେଇ ।
ଅନାଦରାର୍ଥକ ଡାକନାମ—ଶୁକୁରା; ଶୁକୁରିଆ, ଶୁକିଆ, ଶୁକା ।
ଶୁକ୍ରାନାମ୍ନୀ ସ୍ତ୍ରୀର ଡାକନାମ—ଶୁକୁରି, ଶୁକୁରେଇ, ଶୁକୀ, ଶୁକେଇ ।]

ଶୁକ୍ଳ—ସ. ବିଣ (ଶୁଚ୍ ଧାତୁ=ନିର୍ମଳ ହେବା+କର୍ତ୍ତୃ ଲ) ୧ । ଶ୍ୱେତ ବର୍ଣ୍ଣ ବିଶିଷ୍ଟ; ଧଳା—1. White. ୨ । ପରିଷ୍କୃତ—2. Clean. ୩ । ପବିତ୍ର; ଶୁଦ୍ଧ—3. Pure. ୪ । ନିର୍ଦ୍ଦୋଷ—4. Faultless. ୫ । ଆଲୋକ ବା ଜ୍ୟୋତ୍ସ୍ନାଯୁକ୍ତ—5. Bright; lighted ବି. ୧ । ଶ୍ୱେତବର୍ଣ୍ଣ; ଧଳାରଙ୍ଗ 1. White colour. ୨ । ରୁପା;ରୌପ୍ୟ—2. Silver. ୩ । ନବନୀତ; ନବୁଣୀ—3. Butter. ୪ । ଚକ୍ଷୁରୋଗବିଶେଷ—4. A sort of eye-disease. ୫ । ଯୋଗ ବିଶେଷ—5. A sort of meditative abstraction ୬ । ବିଷ୍ଣୁ 6. Bishṇu [ଦ୍ର—ଶୁକ୍ଳ ବଚନ ମାନ୍ୟ ଯୋବ, ଯେ ଭାବେ ଜନ ଜୁଆରି ଜଗନ୍ନାଥ—ଭାଗବତ]
ଦେ. ବି—ବଙ୍ଗଦେଶର ବଂଶୋପାଧି ବିଶେଷ—A
ଶୁକ୍ଳ ସুকুল family title in Bengal.
Śukla

ଶୁକ୍ଳକ—ସ. ବିଣ. ପୁ°. (ଶୁକ୍ଳ+କ)—ଶ୍ୱେତ; ଧଳା—White
Śuklaka (Apte) ସ. ବିଣ—୧ । ଧଳା ବର୍ଣ୍ଣ—1. White colour (Apte). ୨ । ଶୁକ୍ଳ ପକ୍ଷ—2. The bright half of a lunar month (Apte).

ଶୁକ୍ଳକନିଅରି—ଦେ. ବି—କନିଅରି—White oleander.
Śukla kaniāri সাদাকনের सफेदकनेर.
(ଶୁକ୍ଳ କନିଅର—ଅନ୍ୟରୂପ)

ଶୁକ୍ଳକନ୍ଦା—ସ. ବି ( ବୈଦ୍ୟକ )—ଅତି ବିଷା; ଅତୁଣୀ—
Śukla kandā A very poisonous root; Aconitum Heterophyllum.

ଶୁକ୍ଳକର୍ମା—ସ. ବିଣ—(ଶୁକ୍ଳ=ନିର୍ଦ୍ଦୋଷ ବା ପବିତ୍ର ଅଟେ କର୍ମ
Śuklakarmā ଯାହାର ଶୁକ୍ଳ+କର୍ମନ୍; ଶୁକ୍ଳକର୍ମନ୍ ଶବ୍ଦ ୧ମା ୧ବ)—୧ । ସତ୍କାର୍ଯ୍ୟକାରୀ—1. Performing good or meritorious acts. ୨ । ପବିତ୍ର-ଚରିତ୍ର—2. Of pure character.

ଶୁକ୍ଳ ଜୀରକ—ସଂ. ବି ( ବୈଦ୍ୟକ )—ଜୀରା—
Śukla jīraka Cumin seed.

ଶୁକ୍ଳ ଟାଙ୍କଣା—ସଂ. ବି—ସ୍ଫଟିକ ଖାରି (ହରେକୃଷ୍ଣ. ଦ୍ରବ୍ୟଗୁଣ)—
Śukla ṭāṅgaṇā The ashes of quartz.

ଶୁକ୍ଳତା(ତ୍ୱ)—ସ°. ବି ( ଶୁକ୍ଳ+ଭାବାର୍ଥେ ତା, ତ୍ୱ )—ଶ୍ୱେତ ଅବସ୍ଥା;
Śuklatā(twa) ଶୁକ୍ଳିମା—Whiteness.

ଶୁକ୍ଳ ତିଥି—ସଂ. ବି ( କର୍ମଧା; ଶୁକ୍ଳା ଯେଉଁ ତିଥି )—ଅମାବାସ୍ୟାର
Śukla tithi ପରବର୍ତ୍ତୀ ପ୍ରତିପଦଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ୧୫ଟି ତିଥି—The 15 days of the bright lunar fortnight of a month. [ ଦ୍ର—ତିଥିର ନାମ ପୂର୍ବରେ ଶୁକ୍ଳ ଶବ୍ଦ ଯୋଗ ହେଲେ ଶୁକ୍ଳପକ୍ଷର ସେହି ସେହି ତିଥିକୁ ବୁଝାଏ; ଯଥା—ଶୁକ୍ଳ ପ୍ରତିପଦ, ଶୁକ୍ଳ ଦ୍ୱିତୀୟା, ଶୁକ୍ଳ ତୃତୀୟା ଇତ୍ୟାଦି । ]
ସ. ବି.—ମଜ୍ଜା [ଏଥିରୁ ଶୁକ୍ର ଜନ୍ମେ]—Marrow.

ଶୁକ୍ଳ ଧଡ଼ି—ଦେ. ବି—୧ । ସାଧା ଧଡ଼ି; ଧଳା ଛଡ଼ା ଅନ୍ୟ ବର୍ଣ୍ଣର
Śukla dharḍi ଲୁଗାରେ ଲଗିଥିବା ଧଳା ରଙ୍ଗର ଧଡ଼ି—
সাদা পাড় 1. White hem or border of coloured
सफेद कोर cloth. ୨ । ଧଳା ଲୁଗାରେ ଲାଗିଥିବା ଧଳା ରେଶମର ଧଡ଼ି; ଶ୍ୱେତଧଡ଼ି—2. White silk hem of white cotton cloths.

ଶୁକ୍ଳ ଧଡ଼ିଆ—ଦେ· ବିଣ—ସାଦା ଧଡ଼ି ଥିବା ( ଲୁଗା )—White
Śukla dhardiā hemmed or bordered (cloth).
সাদা পেড়ে सफेद कोरवाला

ଶୁକ୍ଳ ଧାତୁ—ସ. ବି—ଖଡ଼ି
Śukla dhātu Chalk.

ଶୁକ୍ଳ ଧାନ୍ୟ—ସ. ବି—ଧଳା ଧାନ—White paddy. [ ଦ୍ର—
Śukla dhānya ଏହା ଲକ୍ଷ୍ମୀଙ୍କ ପୂଜାରେ ଆବଶ୍ୟକ ହୁଏ । ]

ଶୁକ୍ଳ ପକ୍ଷ—ସ. ବି—ଉଜ୍ଜ୍ୱଳ ପକ୍ଷ—The bright lunar fortnight
Śukla paksha of the month. [ ଦ୍ର—ଏହି ପକ୍ଷରେ ଚନ୍ଦ୍ରଙ୍କ ଜ୍ୟୋତ୍ସ୍ନାଦ୍ୱାରା ଧବଳୀକୃତ ସନ୍ଧ୍ୟା ପରେ ଶୁକ୍ଳ ଦେଖାଯାଏ ବୋଲି ଏହାକୁ ଶୁକ୍ଳପକ୍ଷ ବୋଲାଯାଏ । ]

ଶୁକ୍ଳ ପୁଷ୍ପ—ସ. ବି—୧ । ଜନ୍ତୁ ବୃକ୍ଷ—1. A kind of tree. ୨ ।
Śukla pushpa କୁନ୍ଦପୁଷ୍ପ ଗଛ—2. Jasminum Multiflorum ( plant ). ୩ । ମରୁବକ ( ଦେଖ )—3. Marubaka ( See ) ସ· ବିଣ—ଶ୍ୱେତକୁସୁମ ଯୁକ୍ତ —White flowered.

ଶୁକ୍ଳ ପୁଷ୍ପା(ଷ୍ପୀ)—ସ. ବି—ନାଗଦନ୍ତୀ ( ଦେଖ )
Śukla pushpā(spi) Nāgadantī (See).

ଶୁକ୍ଳ ଫଳ—ସଂ. ବି ( ବୈଦ୍ୟକ )—ଶ୍ୱେତାର୍କ; ଧଳା ଅର୍କଗଛ—
Śukla phala Calotropis Gigantia; the swa-
( ଶୁକ୍ଳାର୍କ—ଅନ୍ୟରୂପ ) llowwort ( white variety ).

ଶୁକ୍ଳ ବଚ—ଦେ. ବି ( ସଂ. ମହାଭୈରଷ ବଚ )—ମହାଭରୀ ବଚ;
Śukla bacha ଘୋଡ଼ା ବଚ ( ହରେକୃଷ୍ଣ ଦ୍ରବ୍ୟଗୁଣ )—
সাদা বচ The white variety of sweet flag;
सफेद वच Acorus Calamus.

ଶୁକ୍ଳ ବର୍ବରୀ—ସ. ବି ( ବୈଦ୍ୟକ )—ଧଳା ତୁଳସୀ—Ocimum
Śukla barbarī Basilicum ( white variety ).
ଅନ୍ୟ ସଂ. ନାମ—ଅର୍ଜ୍ଜକ [ ଦ୍ର—ଏହା କଟୁତିକ୍ତ, ରୁକ୍ଷ, ଲଘୁପାକ, ଅଗ୍ନିବର୍ଦ୍ଧକ, କଫାଗ୍ନି, ରୁଚିକର ଓ ପିତ୍ତବର୍ଦ୍ଧକ । ]

ଶୁକ୍ଳ ଯଜୁଃ—ସଂ. ବି—ଯଜୁର୍ବେଦର ଅଂଶବିଶେଷ—Name of a
Śukla jajuḥ part of the Jajurbeda.
[ ଦ୍ର—ଯାଜ୍ଞବଲ୍କ୍ୟ ତଳେ ନୋଟ ଦେଖ ।]

ଶୁକ୍ଳ ଶାରିବା—ସଂ. ବି ( ବୈଦ୍ୟକ )—ଟେମେଣ୍ଟ ଲଇ ( ଶାରିବା
Śukla śāribā ଦେଖ )—Indian sarsaparilla
( creeper ) Śāribā ( See )

ଶୁକ୍ଳା—ସଂ. ବିଣ ( ସ୍ତ୍ରୀ )—ଶୁକ୍ଳର ସ୍ତ୍ରୀଲିଙ୍ଗ—Feminine of
Śuklā Śukla. ବି—୧ । ( ଶୁକ୍ଳ+ସ୍ତ୍ରୀ. ଆ )—ବାଗ୍-
ଦେବୀ; ସରସ୍ୱତୀ—1. The Goddess of learning
[ ଦ୍ର—ସରସ୍ୱତୀ ଶେତାଗୋସ୍ୱ ଓ ଶୁକ୍ଳାମ୍ବରଧରୀ ରୂପେ
ବର୍ଣ୍ଣିତା ।] ୨ । ଶର୍କରା; ଚିନି—2. Sugar; white
sugar. ୩ । ମିଶ୍ରି—3 Candied sugar (Apte).
୪ । ଗୌରବର୍ଣ୍ଣା ସ୍ତ୍ରୀ—4. A woman having a
white complexion ( Apte ). ୫ । କାକୋଳି
ଗୁଳ୍ମ—5 The Kākoli plant (Apte)

ଶୁକ୍ଳାଙ୍ଗ—ସଂ. ବିଣ. ପୁଂ ( ବହୁବ୍ରୀହି )—ଶୁକ୍ଳ ଅବୟବ ବିଶିଷ୍ଟ—
Śuklāṅga Having white limbs. ବି—ମୟୂର—
( ଶୁକ୍ଳାପାଙ୍ଗ—ଅନ୍ୟରୂପ ) Peacock ( Apte ).
( ଶୁକ୍ଳାଙ୍ଗୀ—ସ୍ତ୍ରୀ )

ଶୁକ୍ଳାଙ୍ଗୀ -ସଂ. ବି ( ବୈଦ୍ୟକ )—ଶେଫାଳିକା; ଗଙ୍ଗାଶିଉଳୀ ଫୁଲ—
Śuklāṅgī Night jasmine.
ସଂ. ବିଣ. ସ୍ତ୍ରୀ—ଶୁକ୍ଳାଙ୍ଗର ସ୍ତ୍ରୀଲିଙ୍ଗ—Feminine of
Śuklāṅga.

ଶୁକ୍ଳାପାଙ୍ଗ—ସଂ. ବି ( ବହୁବ୍ରୀହି; ଶୁକ୍ଳ ଅଟେ ଅପାଙ୍ଗ=ନେତ୍ରପ୍ରାନ୍ତ
Śuklāpāṅga ଯାହାର )—ମୟୂର—Peacock (having
the corners of the eyes white).

ଶୁକ୍ଳାଭିସାରୀ—ଦେ. ବି—ସ୍ତ୍ରୀ—(ସଂ. ଶୁକ୍ଳାଭିସାରିକା)—ନାୟିକାବିଶେଷ
Śuklābhisārī —A class of heroines in fiction
শুক্লাভিসারী शुक्लाभिसारी and love stories.
ଶୁକ୍ଳାଭିସାରଣୀ } —ଅନ୍ୟରୂପ [ଦ୍ର—ଏ ରମଣୀ ଶୁକ୍ଳପକ୍ଷ
ଶୁକ୍ଳାଭିସାରିକା } ରାତ୍ରିରେ ଶୁକ୍ଳ ବସ୍ତ୍ର ପରିଧାନ
କରି ଶୁକ୍ଳ ପୁଷ୍ପ ମଣ୍ଡିତ ହୋଇ ସଙ୍କେତ ସ୍ଥଳକୁ ନାୟକକୁ
ଭେଟିବା ପାଇଁ ଗମନ କରେ ।] [ ଦ୍ର—ବଳେଇ ନଗ୍ନ
ଗୋଡାବନ୍ଧ, ବାମା କି ଶୁକ୍ଳ ଅଭିସାରୀ ।
ଉପେ. ବୈଦେହୀଶବିଳାସ ।]

ଶୁକ୍ଳାମ୍ବର—ସଂ. ବି—(କର୍ମଧା)—ଧଳା ଲୁଗା—
Śuklāmbara [ଶୁକ୍ଳବସ୍ତ୍ର—ଅନ୍ୟରୂପ] White cloth.
ସଂ. ବିଣ. ପୁଂ—(ବହୁବ୍ରୀହି)—ଯେ ଧଳା ଲୁଗା ପିନ୍ଧି ଥାଏ
(ଶୁକ୍ଳାମ୍ବରା—ସ୍ତ୍ରୀ. ବିଣ) Wearing white cloth.

ଶୁକ୍ଳାମ୍ବର ଧର—ସଂ. ବିଣ. ପୁଂ.—(ଉପପଦ ତତ୍ପୁରୁଷ)—ଯେ ଶୁକ୍ଳ
Śuklāmbara dhara ଲୁଗାକୁ ପିନ୍ଧି ଥାଏ (ଶୁକ୍ଳାମ୍ବର+ଧୃ ଧାତୁ
[ଶୁକ୍ଳାମ୍ବର ଧରା—ସ୍ତ୍ରୀ] =ଧାରଣ କରିବା+କର୍ତ୍ତୃ, ଅ)—
Wearing a white cloth.

ଶୁକ୍ଳାର୍କ—ସଂ. ବି—(ବୈଦ୍ୟକ)—ଧଳା ଅରଖ ଗଛ—The white
Śuklārka variety of swallowwort plant.

ଶୁକ୍ଳିମା—ସଂ. ବି—(ଶୁକ୍ଳ+ଭାବେ ଇମନ୍; ଶୁକ୍ଳିମନ୍ ଶବ୍ଦ ୧ମା. ୧ବ.)
Śuklimā ୧ । ଶୁକ୍ଳତ୍ୱ—1. Whiteness. ୨ । ଧଳା ରଙ୍ଗ
2. White colour.

ଶୁଖ୍—ଦେ. ବି—(ସଂ. ଶୁଷ୍ ଧାତୁଜ; ଶୁଷ୍କ)—ଶୁକ୍ (ଦେଖ)
Śukh শুকনো सूखा Śuk (See)
ବିଣ—ଶୁଷ୍କ; ଶୁଖିଲା—Dry.

ଶୁଖଜା(ଦା,ଯା)ଡୁ—ଦେ. ବି—ଶୁକ୍‌ଜାଡୁ (ଦେଖ)
Śukh-jā(dā,jā)du Suk-jādu (See)
শুকনো দাদ सूखादद्‌रु

ଶୁଖ ଠୋ ଠା (ଠୋ)—ଦେ. ବିଣ—ଶୁକ୍ ଠୋ ଠା (ଦେଖ)
Śukh ṭho ṭhā (ṭho) Śuk ṭhoṭhā (See)

ଶୁଖତଳା(ଳା)—ଦେ. ବି—ଶୁକ୍ ତଳା (ଦେଖ)
Śukh-talā (lā) Śuk-talā (See)

ଶୁଖ ଟାନି—ଦେ. ବି—ଶୁକୁଟାନି, ଶୁକୁଟି (ଦେଖ)
Śukh-tāni Sukutāni; sukuti [See]
[ଶୁଖୁଟି—ଅନ୍ୟରୂପ]

ଶୁଖ୍ ନଈ—ଦେ. ବି—ଶୁକ୍ ନଈ (ଦେଖ)
Śukh naī Śuk naī (see)

ଶୁଖ୍ ମଦରଙ୍ଗା—ଦେ. ବି—ଶୁକ୍ ମଦରଙ୍ଗା (ଦେଖ)
Śukh madarangā Śuk madarangā (See)
[ଶୁଖ୍ ମଦ୍ ଙ୍ଗା—ଅନ୍ୟରୂପ]

ଶୁଖ୍ ଶୁଖ୍—ଦେ. ବିଣ—ଶୁକ୍ ଶୁକ୍ (ଦେଖ)
Śukh śukh Śuk śuk (See)

ଶୁଖ—ଦେ. ବିଣ—(ସଂ. ଶୁଷ୍କ; ପ୍ରା. ସୁକ୍କ)—ଶୁଷ୍କ; ଶୁଖିଲା—1. Dry.
Śukha শুকনো सूखा ଦେ. ବି—୧ । ଶୁଷ୍କ ସ୍ଥାନ—1. Dry
place. ୨ । ନିର୍ଜଳ ସ୍ଥାନ—2. Waterless
place. ୩ । ଜଳାଶୟ ଆଦିର କୂଳ ଭୂମି—3. The
bank or land near water. [ଯଥା—କୁମ୍ଭୀର
ପାଣିରୁ ଉଠିଆସି ଶୁଖରେ ପଡ଼ିଛି ।]

ଶୁଖା—ଦେ.ବିଣ—୧।(ସଂ.ଶୁଷ୍କ)—ଶୁଖିଲା—1. Dry. [ଦ୍ର—ଉ. ଶୁଖା
Śukhā শুকনো सूखा କଳଡ଼; ଶ.ଶୁଖାଭୂମି ଓଦା ଯେ ହୋଇବ
କରିଥିଲେ—ବ୍ରଜକିଶୋର ଗୀତା ।] ୨ । ନିର୍ଜଳ—
2. Waterless. ୩ । ପୁଂ—(ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ
ହେଲେ, ଯଥା—ମୁହଁଶୁଖା) ଯେ ଶୁଖାଏ—One
who causes something to dry up. ବି—
୧ । ଶୁଷ୍କ କରିବା କ୍ରିୟା—1. The act of drying
up. ୨ । ଶୁଷ୍କ ପଦାର୍ଥ—2. A dry thing. [ଦ୍ର—
ଶୁଖା ଖଡ଼ଖଡ଼ ଖଡ଼ଖଡ଼, ମିଛ ମାୟାରେ ପଡ଼ି ତୁ ନଡ଼-
ବଡ଼ ନଡ଼ବଡ଼—ଭଜନ ।]
ଦେ. କ୍ରି—(ଓଡ଼ିଆ ସକର୍ମକ ଶୁଖାଇବା ଧାତୁର ଅନାଦରାର୍ଥକ
ଅନଜ୍ଞା ରୂପ)—ଶୁଖାଇବା କ୍ରିୟାର (ତୁ) କର୍ତ୍ତା—Impera-

ଶୁକାଓ सुखाओ tive mood) Do cause a thing to
[ଶୁଖାଅ—ଅବଗ୍ରାର୍ଥକ ରୂପ] dry up. [ଯଥା—ଏ ଧାନ-
[ଶୁଖାଇ ଦେ ଅନ୍ୟରୂପ] ଭର କେଇ ଖରାରେ ଶୁଖା।]

ଷ୍ଟ୍ରୀ ବି. ପୁଂ—ଅଗ୍ରଜ ଜନ୍ମିଲେ ଦିଆଯିବା ନାମ—A name given to a male-child whose elder
ସୁଖ सुख died before he was born.
[ଶୁଖାରୁ ଶୁଟେଇ—ଅନ୍ୟରୂପ]
(ଶୁଖୀ, ଶୁ ଟେଇ—ସ୍ତ୍ରୀ)

ଶୁଖା(ଖୋ)ଇବା— ବ. କ୍ରି—(ସକର୍ମକ) (ସଂ. ଶୁଷ୍ ଧାତୁଜ, ଶୁଷ୍କ)—
Sukhā(k e)ibā ୧। ଜଳଶୂନ୍ୟ କରିବା; ଖରା, ପବନ ଆଦିର
ଶୁଖାନ सुखाना ସାହାଯ୍ୟରେ କୌଣସି ଓଦା ପଦାର୍ଥ (ଯଥା ଲୁଗା)କୁ ଜଳଶୂନ୍ୟ କରିବା—1. To cause the water present in a thing to dry up with the help of sun's rays, wind etc. ୨। ଜଳାଶୟ ଆଦିରୁ ଜଳାଦି ଉତ୍ତୋଳନ କରିବାଦ୍ୱାରା ଜଳାଶୟକୁ ଜଳଶୂନ୍ୟ କରିବା—2. To empty a tank or well of all the water by baling. (ଯଥା—ସ୍ୱରକଣ ମନୁଷ୍ୟ ୩ ଘଣ୍ଟାରେ ଏହି କୂଅକୁ ଶୁଖାଇ ଦେଲେ)। ୩। (ସୂର୍ଯ୍ୟ ବା ଅଗ୍ନିର ଉତ୍ତାପରେ କୌଣସି ପଦାର୍ଥରେ ଥିବା ଜଳକୁ ବାଷ୍ପରେ ପରିଣତ କରି ଉକ୍ତ ପଦାର୍ଥକୁ ନିର୍ଜଳ କରିବା—To cause a thing to dry up by evaporation. [—ଯଥା ଗ୍ରୀଷ୍ମ ଋତୁର କାଳ ହାଣ୍ଡିଏ ପାଣିକୁ ଶୁଖାଇ ଦେବ।] ୪। ଓଦା ବସ୍ତୁକୁ ନିର୍ଜଳ କରିବା ପାଇଁ ବାୟୁରେ ବା ଖରାରେ ତାହାକୁ ମେଲାଇବା—4. To spread a wet or moist thing in the air or in the sun to dry up. [ଯଥା—ଓଦା ଲୁଗାକୁ ବା ମୁଣ୍ଡବାଳକୁ ଶୁଖାଇବା] ୫। ଢିଙ୍କିର ପାହାର ପଡ଼ୁଥିବା ବେଳେ ଢିଙ୍କି ମୁଣ୍ଡରେ ଗଡ଼ା ହୋଇ ଯାଇଥିବା ଧାନ୍ୟ ଆଦି ପଦାର୍ଥକୁ ହାତଦ୍ୱାରା ଉପସ୍ଥିତ ସଞ୍ଚାଳନ କରିବା ବା ପଶିବା—5. To stir up the paddy etc put in the receivung hole to be pounded by the dhinki while it is being plied. [ଉ—ଢିଙ୍କି ପଡୁଛି ପଶେ, ଶୁଖେଇ ଦଉଛି ଜଣେ—ଜାଣ ଉଅ; ୧୬ ବାଲୁ ଓ ୧ଜଣ।] ୬। (ଲକ୍ଷଣାର୍ଥ)—ଶୀର୍ଣ୍ଣ କରିବା; ଅନ୍ନାଭାବ ଶୂନ୍ୟକରିବା—6. (figurative) To cause or reduce to leanness; to emaciate. [ଉ—ବାନପ୍ରସ୍ଥେ ଲୋକେ ବଢ଼ାଇ ଦେଇ ଦାଢ଼ି, ଦେହ ଶୁଖାଅନ୍ତି ସ୍ୱଗରେ ବେଦ ପଢ଼ି। କୃଷ୍ଣସିଂହ. ମହାଭାରତ। ଯଥା-୩ ଦିନ ଉପବାସ ମୋ ଦେହକୁ ଶୁଖାଇ ଦେଲାଣି।] ୭। ଗଛ ଆଦିକୁ ଜଳାଭାବ ବା ରୌଦ୍ରାଧିକ୍ୟଦ୍ୱାରା ଝାଉଁଳାଇବା—7. To cause to wither owing to want of watering or by suns ray's (said of trees and plants.) ୮। (ଲକ୍ଷଣାର୍ଥ)—(ଅପଣା। ମୁହଁକୁ) ବିଷଣ୍ଣ କରିବା; ବିରସ କରିବା—8. (figurative) To sadden (one's face); to cause (one's face) to be dejected. (ଉ— ୟେ ଅମୃତ ଅମୃତ ସମ୍ପତ୍ତି ଦେଖାଇ, ଯାଇ ଦେବା ତାଙ୍କର ବଦନ ଶୁଖାଇ—କୃଷ୍ଣସିଂହ ମହାଭାରତ।) ୯। (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ ଖାଇବାକୁ ନ ଦେବା, (ସେଥିରୁ ଖାଦ୍ୟ ଦ୍ୱାରା ପୂର୍ଣ୍ଣ ନ କରିବା; କୌଣସି ବ୍ୟକ୍ତିକୁ ଉପବାସରେ ରଖାଇବା—9. (figurative) To cause to starve by not giving food. (ଯ—ତାଙ୍କୁ ୪ ଦିନ ହେଲା ଖାଇବାକୁ ନ ଦେଇ ମୋଟେ ଶୁଖାଇ ଦେଲାଣି।) ୧୦। (ଦେହ ଶବ୍ଦ ପରେ ବ୍ୟବହୃତ)—(ନବପ୍ରସୂତା) ଅଗ୍ନିସେକ ଓ ପଥ୍ୟାଦିଦ୍ୱାରା ସ୍ରାବ ଅପହାର ରକ୍ତସ୍ରାବାଦି ବନ୍ଦ କରିବା—10. (said of a newly confined mother) To cause the flow of blood to stop by regulating one's diet or by repeated fomentation.

ଶୁଖାନ୍(ନି)—ବୈଦେ. ବି—ସୁକାନ୍ (ଦେଖ)
Sukhān(ni) Sukān (See)

ଶୁଖା ନ(ଲ)କ(କ୍କ)ଡ଼(ଡ଼ି)—ଦେ. ବି (ହିନ୍ଦୀରୁ ଅନୁକୃତ)—୧। ଶୁଖିଲା
Sukhā na(la)ka(kka)rda(rdi) କାଠ—1. A dry piece
ଶୁକନୋ କାଠ of wood. ୨। (ଲକ୍ଷଣାର୍ଥ) ଅସ୍ଥିକଙ୍କାଳବିଶିଷ୍ଟ
सूखाकाठ, सूखीलकड़ी ବ୍ୟକ୍ତି—2. (figurative) A person reduced to skeleton. ବିଣ—ଅସ୍ଥି-କଙ୍କାଳମାତ୍ରାବଶିଷ୍ଟ—Reduced to skeleton.

ଶୁଖା ରୁଖା—ଦେ. ବିଣ (ସଂ. ଶୁଷ୍କ; ରୁକ୍ଷ)—ଶୁଷ୍କ ଓ ରୁକ୍ଷ; ଶୁଷ୍କ ଓ
Sukhā rukhā ଅସ୍ନିଗ୍ଧ—Dry and rough, dry
ଶୁଖା ରୁଖା and unoiled. ଦେ. ବି—୧। ଶୁଖିଲା ଓ ଅସ୍ନିଗ୍ଧ
सूखा रूखा ଖାଦ୍ୟ ଦ୍ରବ୍ୟ—1. Dry and unoily food; scanty and poor fare. ୨। ଶାକାନ୍ନ—2. Simple vegetable fare

ଶୁଖୀ ଦେ. ବି. ସ୍ତ୍ରୀ—ଅଗ୍ରଜା ଜନ୍ମିଲେ କନ୍ୟାକୁ ଦିଆଯିବା ନାମ —
Sukhi A name given to female children born ofter the death of their elder ones.

ଶୁଖିବା—ଦେ. କ୍ରି (ଅକର୍ମକ; ସଂ. ଶୁଷ୍ ଧାତୁଜ ଶୁଷ୍କରୁ)—୧। ଅଦ୍ର
Sukhibā ବା ଜଳୀୟବସ୍ତୁ ଶୁଷ୍କ ହେବା; ନିର୍ଜଳ ହେବା—
ଶୁକିୟେଯାଓୟା, ଶୁକାନୋ 1. (a wet thing) to
सूखना become dry or water-less. ୨। (ଜଳପୂର୍ଣ୍ଣ
(ଶୁଖିଯିବା—ଅନ୍ୟରୂପ) ପୁଷ୍କରିଣୀ ଆଦି) ରୌଦ୍ର ଯୋଗୁଁ ବା ଜଳ ନିଃଶେଷିତ ହେବା ଯୋଗୁଁ ଶୁଷ୍କ ହେବା—2. To dry up (said of a river or tank from which water has been drained up or has evaporated. (ଉ—ନଦୀ ଶୁଖିଲେ କି କରିବ ନାଥ-ତଗ।) ୩। (ଓଦା ଲୁଗା ଓ ଧାନ ଆଦିରୁ ପାଣି ଶୁଖିଯିବା ପାଇ ତାହା) ଖରାରେ ବା ପବନରେ ମେଲା ହୋଇ ଥିବ

ହେବା—3. To be spread in air or sun to be dried (said of wet cloth etc). (ଉ—ଅସଂଖ୍ୟ ବଥା ଶୁଣି ମାଇଲେ, ଧାନ ଶୁଖୁଥିଲା ବାଲୁଣୀ ଠାବେ । ଛଗ ।) ୪ । (ଲକ୍ଷଣାର୍ଥ) (ମୁଖ) ବିଷଣ୍ଣ ବା ବିମର୍ଷ ହେବା; ମ୍ଳାନ ହେବା-4.(figurative) To look sad or dejected. (ଉ—ଶ୍ରବଣ ଜସ ବର ଧ୍ୟାନ, ଶୁଖିଛି ଭୁବ ବଦନ । ଜଗନ୍ନାଥ. ଭାଗବତ ।) ୫ । (ଘାଆ ଅବଦ୍ଧ) ଘଜ ଘାଣ୍ଟିର ସ୍ରାବ ବନ୍ଦ ହେବା—5. To dry up (said of healing sores which had been running ) ୬ । (ମାତୃ ସ୍ତନରୁ) ଦୁଗ୍ଧ ଶେଷ ଯାଇବା—6. To dry up (said of the mother's breast when a child is weaned) [ଉ—ଦୁଧ ଶୁଖିଲେ କ ଜଣିକ ମାଆ । ଛଗ । ] [ଦ୍ର—ଯେଉଁଠାରେ ଯେଉଁ ପ୍ରକାର ଜଳୀୟବସ୍ତୁ ଥାଏ; ଯଥା—ପାତ୍ରରେ ଜଳ, ଦେହରେ ରକ୍ତ, ଇତ୍ୟାଦି ଜଳୀୟାଂଶ ଶୁଷ୍କ ହେଲେ ବା କମିଗଲେ 'ଶୁଖିବା' ଶବ୍ଦ ବ୍ୟବହାର କରାଯାଏ । ଯଥା—ମୋ ଗଣ୍ଡି ଶୁଖି ଯାଉଛି, ତା ଦେହର ରକ୍ତ ଶୁଖି ଯାଉଛି ।] ୭ । (ଲକ୍ଷଣାର୍ଥ) (ଦେହ) ଶୀର୍ଣ୍ଣ ହେବା —7. (figurative) To become lean or emaciated (said of the body). ୮ । ଗଛ ଅବ ଜଳାଭାବରୁ ବା ରସ ଛେଦନରେ ଶୁଖିଯିବା ବା ଝାଉଁଳି ପଡ଼ିବା —8. To wither (said of plants),

**ଶୁଖିଲା**—ଦେ. ବିଣ (ସଂ. ଶୁଷ୍କ)—୧ । ଶୁଷ୍କ—1. Dry. [ଯଥା—Śukhilā ଶୁଖିଲା ଧାନ] ୨ । ଶୁଷ୍କୀକୃତ—2. Dried up. শুকনো [ଯଥା—ଶୁଖିଲା ଲୁଗା] ୩ । ଜଳଶୂନ୍ୟ; ଜଳହୀନ—**सूखाहुआ** 3. Waterless. [ଯଥା—ଶୁଖିଲା କୂଅ] ୪ । ନୀରସ; ରସହୀନ—4. Juice less; sapless. [ଯଥା—ଶୁଖିଲା ଡାଳ] ୫ । ସରସତା ବା ରସିକତା ହୀନ—5. Devoid of wit or humour. [ଯଥା—ଶୁଖିଲା କଥା] ୬ । ବିରସ; ବିଷଣ୍ଣ— 6. Sad; dejected; depressed. [ଯଥା—ଶୁଖିଲା ମୁହଁ] ୭ । ସ୍ନେହହୀନ—7. Devoid of love or affection. [ଯଥା— ଶୁଖିଲା ସ୍ୱଭାବ] ୮ । ନିଷ୍ଫଳ—8. Fruitless. [ ଯଥା—ଶୁଖିଲା ମିହନ୍ତ ] ୯ । ଯେଉଁ ଘଉ, ବ୍ରଣ, କାଛୁ ଆଦିରୁ ପୂଜ ବା ରସ ବହୁ ନାହିଁ [ ଯଥା— ଶୁଖିଲା କୁଣ୍ଡିଆ ]—9 (a sore itches) Which is not running; having no pus. ୧୦ । (ନବ ପ୍ରସୂତିର ଦେହ) ଯହିଁରୁ ପ୍ରସବାନ୍ତେ ରକ୍ତ ଓ ଜଳାଦିର କ୍ଷରଣ ବନ୍ଦ ହୋଇଅଛି—10. (The body of a recently confined woman) From which the flow of blood et c has ceased. ୧୧ । (ଲକ୍ଷଣାର୍ଥ ) ଆନ୍ତରିକତାହୀନ [ଯଥା—ଶୁଖିଲା ଭକତି]—11. (figurative) Insincere. ୧୨ । ଅତି କ୍ଷୀଣ—12 Very emaciated [ଯଥା - ଶୁଖିଲା ଦେହ] ୧୩ । ଅଶ୍ରୁହୀନ—13 Tearless. [ଯଥା—ଶୁଖିଲା ଆଖି] ୧୪ । ରୁକ୍ଷ; ଲୁକ୍ଷ; ଅସ୍ନିଗ୍ଧ—14. Unoiled. [ ଯଥା —ଶୁଖିଲା ଦେହ] ୧୫ । ଜଳ ମିଶାଯାଇ ନ ଥିବା; ଅନାର୍ଦ୍ର—15.Not mixed with water;not wet. ୧୬ । ଅଭୁକ୍ତ; କ୍ଷୁଧାବକ୍ଲିଷ୍ଟ—16 Hungry; empty (stomach). [ଯଥା—ଶୁଖିଲା ପେଟ] ବି—୧ । ଶୁଷ୍କ ସ୍ଥାନ—1. Dry place. ୨ । ସ୍ଥଳଭାଗ—2. Land.

**ଶୁଖିଲା କଥା**—୧ । ରସିକତାବର୍ଜିତ ବାକ୍ୟ—1. Words devoid Śukhilā kathā of wit and humour. ୨ । ନିଷ୍ଫଳ শুকনো কথা କଥା; ମୂଲ୍ୟହୀନ କଥା—2. Worthless **सूखीबात** matter; fruitless matter. ୩ । ସ୍ନେହହୀନ ବଚନ—3. Words devoid of love or affection.

**ଶୁଖିଲା କାଠରୁ ବୋହୁଛି ପାଣି | ଚେମିଣି ଚଢ଼େଇ ଧରିଛି ଟାଣି**—ଦେ.[ନାଁଅ ଢଗ] ପ୍ରହେଳିକା]—ତେଲି ଘଣା—A riddle meaning—Oilman's oilmill.
Śukhilā katharu bohuchhi pāṇi Chemiṇi chaḍhei dharichhi ṭāṇi

[ଦ୍ର—ଏଥିର ପୂର୍ଣ୍ଣ ବାକ୍ୟ
ଟେକି ଭଉଟ, ଯୋଖସ୍ତୁ ଘରରେ କରୁଛି ନାଟ
ଶୁଖିଲା କାଠରୁ ବୋହୁଛି ପାଣି,
ଚେମିଣି[ଗୁରୁଆ] ଚଢ଼େଇ ଧରିଛି ଟାଣି ।]

**ଶୁଖିଲା କାନ୍ଦ**—ଦେ. ବି—କପଟ କ୍ରନ୍ଦନ; ଯେଉଁ କାନ୍ଦରେ ଆଖିରୁ ଲୁହ Śukhilā kānda ପଡ଼େ ନାହିଁ; ଅନ୍ୟକୁ ଦେଖାଇବା (ଶୁଖିଲା କାନ୍ଦଣା—ଅନ୍ୟରୂପ) ପାଇଁ କରାଯିବା କ୍ରନ୍ଦନ— শুকনো কান্দণা **सूखारोना** The shedding of crocodile tears; stimulated weeping. (ଉ—ବଦନେ ମଧୁର ହସିତ ଶୁଖିଲା କାନ୍ଦ—କବିସୂର୍ଯ୍ୟ. ସଙ୍ଗୀତ । )

**ଶୁଖିଲା କୁଣ୍ଡିଆ** —ଦେ. ବି—ଦେହରେ ଫଟା ଯାଇଥିବା ଚର୍ମରୋଗ-Sukhilā kuṇḍiā ବିଶେଷ, ଯହିଁରୁ କାଛୁ ପର ପୂଜ ବା শুক নোচুলকুনি **सुखीफूनसी** ପାଣି ବହେ ନାହିଁ—Dry itches; scabies; scurvy.

**ଶୁଖିଲାଖାଇ**—ଦେ. ବିଣ. ସ୍ତ୍ରୀ—ଡାହାଣୀ ବିଶେଷ—A class of Sukhilā khāi witches. [ ଦ୍ର—ଏମାନେ ଶୁଖିଲା ବସା ଓ ମାଂସ ଖାଆନ୍ତି । ]

**ଶୁଖିଲା ଜା(ଡା)ଡୁ**—ଦେ. ବି—ଶୁକ୍ ଜାଡୁ (ଦେଖ) Śukhilā jā(ḍā)ḍu Suk-jāḍu (See).

**ଶୁଖିଲା ନଈ**—ଦେ. ବି—ଯେଉଁ ନଦୀର ଗର୍ଭରୁ ଜଳ ଶୁଖି ଯାଇଅଛି—Śukhilā nai A dried up river. শুকনো নদী **सूखी नदी**

**ଶୁଖିଲା ନଡ଼ିଆ** —ଦେ. ବି—ପକ୍ୱ ହେବା ପରେ ଯେଉଁ ନଡ଼ିଆର ଜଳ Śukhilā naḍiā ଶୁଖି ଯାଇଥାଏ—Ripe cocoanut

শুকনো নারকেল সুখানারিয়ল whose rind has become dry.

**ଶୁଖିଲା ପାକ(କେ,ଚି,ଚେ)ଲା**—ଦେ. ବଣ (ଅର୍ଥସ୍ଥଳ ଦ୍ଵିତୀୟ ସହଚର ଶବ୍ଦ)—ଶୁଷ୍କ—Dry.
Śukhilā pāka(ke,chi,che)lā
শুকনো সুখাসুখা (ଉ—ଖରାଦିନେ ମଫସଲର ଗଛର ଡାଳ କାଠ ସବୁ ଶୁଖିଲା ପାଚଲା ହୋଇଥାଏ ।)

**ଶୁଖିଲା ପେଟ**—ଦେ. ବ—ଯେଉଁ ଉଦରରେ ଖାଦ୍ୟ ପଡ଼ି ନାହିଁ; ଖାଦ୍ୟ ଶୂନ୍ୟ ଉଦର; କ୍ଷୁଧିତ ଉଦର—
Śukhilā peṭa
শুকনোপেট সুখাপেট, খালিপেট An empty stomach; a hungry stomach.

**ଶୁଖିଲା ମୁହଁ**—ଦେ. ବ—୧। ବିପର୍ଯ୍ୟସ୍ତବଦନ, ବିରସମୁଖ—1 Dejected.
Śukhilā muhaṅ countenance; sad face.
শুকনোমুখ সুখামুহঁ ୨। ମଳିନ ମୁଖ—2. Pale face.
୩। ଶଯ୍ୟାରୁ ଉଠି ଧୂଆ ହୋଇ ନ ଥିବା ମୁଖ—3. Face which has not been washed after a person has got up from bed or sleep.

**ଶୁଖିଲାମୁହାଁ**—ଦେ. ବଣ. ପୁଂ—ବିରସବଦନବିଶିଷ୍ଟ—
Śukhilāmuhāṅ Sad-faced; pale-faced.
(ଶୁଖିଲାମୁହାଁ – ସ୍ତ୍ରୀ) শুকনোমুখো সুখামুহাঁ

**ଶୁଖିଲା ରୁଖିଲା**—ଦେ. ବଣ. ଓ ବ—(ସ. ଶୁଷ୍କ ଓ ରୁକ୍ଷ)—ଶୁଖା ରୁଖା
Śukhilā rukhilā (ଦେଖ)—Śukhā rukhā (See)

**ଶୁଖିଲାରେ**—ଦେ. କ୍ରି. ବଣ—ବୃଥା—
Śukhilāre বৃথায় নাহক In vain.
ନିଷ୍ଫଳ ଭାବରେ—Fruitlessly.

**ଶୁଖିଲାରେ ନାଆ(ହା) ଚଳା(ଲେ)ଇବା ନ୍ୟାୟ**—ଦେ. ପ୍ରବଚନ—
Śukhilāre nā-ā(hā) chalā(le)ibā nyāya ବିନା ମୂଳ
শুকনোডাঙ্গা (নৌকো) চালান ଧନରେ ବ୍ୟବସାୟ କରିବା ଓ
सूखेमे नाव चलाना କୌଶଳ ଅବଲମ୍ବନ ପୂର୍ବକ ଜୀବିକା ନିର୍ବାହ କରିବା; ବିନା ପୁଞ୍ଜିରେ ହାଟ କରିବା—(A proverb meaning) To live on one's wits (literally; to ply a boat on dry land).

**ଶୁଖିଲାରେ ଫାଳ ଘାଆ (ଦଣ୍ଡ)**—ଦେ. ପ୍ରବଚନ—ବିନା କାରଣରେ
Śukhilāre phāla ghā-ā (taṇḍa) କୌଣସି ଅଂଶ ନଷ୍ଟ
বৃথায় বিপত্তি, শুকনো বিপদ ଯାଇ ସତ ହେବା (ବିନା ଦୋଷରେ
सूखी विपद ଦଣ୍ଡ ବା କଷ୍ଟ ଭୋଗ କରିବା ସ୍ଥଳରେ ଏ ବଚନ ପ୍ରୟୋଗ କରାଯାଏ)—A proverb used when a person undergoes suffering which he has not merited.

**ଶୁଖିଲା ସି(ସେ)ନି(ନେ)ହ**—ଗ୍ରା. ବ—ଅନ୍ତରବର୍ଜିତାପ୍ରୀତି ବା ବାହ୍ୟ ସ୍ନେହ
Śukhilā si(se)ni(ne) ha Outward love; out-
শুকনো স্নেহ सूखा प्यार ward show of love; semblance of affection.

**ଶୁଖିଲା ସୁଆ(ହା)ଗ**—ଦେ. ବ—ଅନ୍ତରବର୍ଜିତାପ୍ରୀତି ବାହ୍ୟ ସ୍ନେହ—
Śukhilā suā(hā)ga Outward fondling without actual love or affection; show of fondness.
শুকনো আদর
सूखा आदर

**ଶୁଖୀ**—ଦେ. ବ. ସ୍ତ୍ରୀ—ଶୁଖା (ଦେଖ)
Śukhī Śukhā (See)

**ଶୁଖୁଆ**—ଦେ. ବ—(ସ. ଶୁଷ୍କ ମତ୍ସ୍ୟ)—୧। ମାଛକୁ ଖରାରେ ଶୁଖାଇ
Śukhuā ଓ ସ୍ଥଳ ବିଶେଷରେ ସେଥିରେ ଲୁଣ ମଖାଇ ଖାଦ୍ୟ
শুকটীমাছ सूखी मछली ରୂପେ ବ୍ୟବହାର କରାଯିବା ପାଇଁ ରଖା ଯିବା ମାଛ—1. Fish dried and preserved with salt; salted and dried fish. [ଦ୍ର—ବୈଦ୍ୟଶାସ୍ତ୍ର ଅନୁସାରେ ଏହା ବଳକର, ଦୁର୍ଜ୍ଜର ଓ ମଳବଦ୍ଧତାଜନକ । ଆମ ଦେଶରେ ନାନା ପ୍ରକାରରେ ମାଛକୁ ଶୁଖାଇ ଓ ବଡ଼ ମାଛକୁ ଚିର ଦେଇ ମଧ୍ୟରେ ଲୁଣ ଦେଇ ଶୁଖୁଆ ତିଆର କରାଯାଏ । ଏହାକୁ ଛଅଣ କରି ବା ପୋଡ଼ି କରି ଖାଆନ୍ତି । ବଡ଼ ମାଛର ମଞ୍ଜିକୁ ମଧ୍ୟ ଶୁଖାଇ ମଞ୍ଜି ଶୁଖୁଆ କରନ୍ତି । ଢାଙ୍କିଅଇଁଳା (ମାର୍ଗଶିର ମାସ କୃଷ୍ଣ ନବମୀ) ଦିନ ସନ୍ଧ୍ୟାବେଳେ କାଞ୍ଜି ଓ ଶୁଖୁଆ ଛଅଣ ସ୍ତ୍ରୀଲୋକମାନେ ଦେବତା ବିଶେଷଙ୍କ ଉଦ୍ଦେଶ୍ୟରେ ଅର୍ପଣ କରନ୍ତି । ଓଡ଼ିଶାରେ ଶୁଖୁଆକୁ ବ୍ରାହ୍ମଣ ଓ ବିଧବାମାନେ ଖାଆନ୍ତି ନାହିଁ । କିନ୍ତୁ ଅନ୍ୟ ବ୍ରାହ୍ମଣୀ ଓ ଅବିଭାଜ୍ୟ ପିଲାମାନେ ଖାଆନ୍ତି । ଛୋଟ ମାଛକୁ ଓ ଚିଙ୍ଗୁଡ଼ିକୁ କେବଳ ଖରାରେ ଶୁଖାଇ ଶୁଖୁଆ କରାଯାଏ । ବଡ଼ମାଛର ପିଠି ୨ ଫାଳ କରି ଚିର ତା ମଧ୍ୟରୁ ଅନ୍ତ ଅନ୍ଧ କାଢ଼ି ସେଥିରେ ଲୁଣ ଦେଇ ଶୁଖାଇ ଶୁଖୁଆ କରାଯାଏ । ଅନେକ ପ୍ରକାର ଶୁଖୁଆ ଅଛି—ଯଥା—କୋକଲି ଶୁଖୁଆ, ଚିଙ୍ଗୁଡ଼ି ଶୁଖୁଆ, ଭାଙ୍ଗୁଡ଼ା ଶୁଖୁଆ, ବଡ଼ ଶୁଖୁଆ, ପିତା ଶୁଖୁଆ, କେରାଣ୍ଡି ଶୁଖୁଆ ] ୨। ବିଶେଷଭାବରେ ଶୁଷ୍କ କମ୍ପା ଶୀର୍ଣ୍ଣ ହୋଇଥିବା ପଦାର୍ଥ—2. Any shrivelled or dried up thing. [ଉ—ଅମୂଲ୍ୟଗୁଡ଼ାକ ଖରାରେ ପଡ଼ି ପଡ଼ି ଶୁଖୁଆ ହୋଇ ଗଲଣି ।]

**ଶୁଖୁଆ କଣ୍ଟା**—ଦେ. ବ—୧। ଶୁଖୁଆ ଉପରେ ଥିବା କଣ୍ଟା—
Śukhuā kāṇṭā 1. The bones of Śukhuā. ୨
শুকটী মাছের কাঁটা (ଲକ୍ଷଣାର୍ଥ) ଖୁବ୍ ସୂକ୍ଷ୍ମ ପଦାର୍ଥ—
सूखी मछलीका काँटा 2. (figurative) A pointed article. [ଉ—ତୋ ଅଖିରେ ଶୁଖୁଆ କଣ୍ଟା ଫୋଡ଼ି ଦେଇଅଛି ଯେ ।] ୩। ଅତି ଶୀର୍ଣ୍ଣ ବସ୍ତୁ—3. Very emaciated and shrivelled up thing.

**ଶୁଖୁଆ ଖିଆ**—ଦେ. ବ. ପୁଂ—ଗାଳି ବିଶେଷ—
Śukhuā khiā A term of abuse (literally an
শুকটীমাছ খেগো सूखीमछलीखानेवाला eater of Śukhuā).
(ଶୁଖୁଆଖାଇ—ସ୍ତ୍ରୀ)

**ଶୁଖୁଆ ଚଟ(ଟୁ)ଣି**—ଦେ. ବ—ଶୁଖୁଆକୁ ଭାଜ କିମ୍ବା ପୋଡ଼ି ଚଟକରେ ଛାଇ ବାଟ ଯେଉଁ ଚଟଣି କରାଯାଏ—
Śukhuā chaṭa(ṭu)ṇi
শুকটী মাছের চাটনী Salad or sauce prepared by

ସୁଖୀ ମଛଲୀକୀ चटनी pounding fried or baked salted fish into jelly.

ଶୁଖୁଆ ପୋଡ଼ା—ଦେ. ବ—୧ । ପୋଡ଼ା ହୋଇଥିବା ଶୁଖୁଆ— Sukhuā pordā 1. Baked Sukhuā. ୨ । (ଲକ୍ଷଣାର୍ଥ) শুকা পোডা କୌଣସି କ୍ଷୁଦ୍ର କର୍ମ—2. (figurative) Some जलीहुइ सुखीमछली mean act. [ ଜ୍ଞ—ବାର ବରଷର ତପ ଶୁଖୁଆ ପୋଡ଼ାରେ ଗଲା ।]

ଶୁଗି(ଘି)ବା—ଦେ. କ୍ରି—(ସଂ. ଶ୍ରୁ ଧାତୁ)—ଶ୍ରୁତ ହେବା; ଶୁଭିବା— Sugi(ghi)bā To be heard. শুনা যাওয়া सुना जाना

ଶୁଗୁଡ଼ା(ଡ଼ି)—ଦେ. ବ—ଗୋଟା ବାଉଁଶ କଣିରେ ବୁଣା ଯାଇଥିବା Sugurdā(rdi) ଟୋକେଇ—Basket made of whole टोकरी bamboo twigs.

ଶୁଙ୍କ—ଦେ. ବ (ସଂ. ଶୁଙ୍ଗ)—ବାଲୁଙ୍ଗା ଧାନ, ଯବ, ଗହମ ଆଦିରୁ Sunka ବାହାରିଥିବା ଶୁକ—The awn or beard of শুং सूंग barley, wheat and other grains.

ଶୁଙ୍ଗ—ସଂ. ବ (ଶମ୍ ଧାତୁ=ଶାନ୍ତ ହେବା+ଗ ଲାଘବନ)—୧ । ବଟ Sunga ବୃକ୍ଷ—1. Banyan tree. ୨ । ଆମ୍ବଡ଼ା ଗଛ— 2. Hog plum tree. ଦେ. ବ (ସଂ. ଶୁଙ୍ଗ ବା ଶୂକ) ବାଲୁଙ୍ଗା ଧାନ, ଯବ ବା ଗହମରୁ ବାହାରିବା ଶୁଙ୍ଗ; ଧାନ୍ୟ ଯବାଦିର ଶୂକ—The awn or beard of wheat, শুং सूंघ barley or wild paddy.

ଶୁଙ୍ଗା—ସଂ. ବ (ଶୁଙ୍ଗ+ଆ) ଶୂକ ବା ତୀକ୍ଷ୍ଣ ଲୋମ)—Sharp Sungā pointed fur or wool of caterpillars.

(ଶୁଙ୍ଘା—ସ୍ତ୍ରୀ) ଦେ. ବ (ସଂ. ଶିଙ୍ଘ୍ ଧାତୁ=ଆଘ୍ରାଣ କରିବାରୁ)— শুঁকা ଆଘ୍ରାଣ—Smelling (ଜ୍ଞ—ନାସ ଶୁଙ୍ଘା) ବିଣ— सूघा (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ)—ଯେ ଶୁଙ୍ଘେ— -Smelling. (ଜ୍ଞ—ଘୋକଶୁଙ୍ଘା; ଗେଞ୍ଜାଶୁଙ୍ଘା ।)

ଶୁଙ୍ଗା(ଙ୍ଘା)ଇବା—ଦେ. କ୍ରି (ସଂ. ଶିଂଘ୍ ଧାତୁ. ଶୁଂଘିବାର ପ୍ରଯୋଜକ Sungā(nghā)ibā ରୂପ )—ଅନ୍ୟ ବ୍ୟକ୍ତିକୁ ଆଘ୍ରାଣ (ଶୁଙ୍ଘେଇବା—ଅନ୍ୟରୂପ) କରାଇବା—To cause another to শোঁকান सुंघाना smell.

ଶୁଙ୍ଗି(ଙ୍ଘି)ବା—ଦେ. କ୍ରି (ସଂ. ଶିଂଘ୍ ଧାତୁ)—୧ । ଆଘ୍ରାଣ କରିବା— Sungi(nghi)bā 1. To smell; to scent. [ଜ୍ଞ—ତାହା শুকা ଦେଖି କୁକୁରୀ ପୁଅକୁ କୋଳ କରି ମସ୍ତକରୁ ଶୁଙ୍ଘିଲେ ଅତି सूँघना ସ୍ନେହ କରି ।] ୨ । [ ଲକ୍ଷଣାର୍ଥ ] ସାମାନ୍ୟ ମାତ୍ର ବା ନାମ ମାତ୍ର ଖାଦ୍ୟ ଆହାର କରିବା—2. (figurative) To eat anything in such a small quantity that it can be called smelling rather than eating.

ଶୁଙ୍ଘ—ଦେ. ବ (ସଂ. ଶୂଙ୍ଗ)—ଶୁଙ୍ଗ ଦେ. ବ. (ଦେଖ) Sungh Sunga. (See) শুং सूंग

ଶୁଚ୍ (ଧାତୁ)—ସ—୧ । ନିର୍ମଳ ହେବା; ପବିତ୍ର ହେବା—1. To be Such (root) cleared; to be purified. ୨ । ଶୋକ କରିବା—2. To grieve; to lament.

ଶୁଚ୍—ସଂ. ବ (ସ୍ତ୍ରୀ) (ଶୁଚ୍ ଧାତୁ+ଭାବ. କ୍ୱିପ୍—୧ । ଶୋକ— Such I. Lamentation. ୨ । ମନସ୍ତାପ—2. Grief; sorrow. ୩ । ପଶ୍ଚାତ୍ତାପ; ଅନୁଶୋଚନା— 3. Repentance; regret.

ଶୁଚନା—ଗ୍ରା. ବ (ସଂ. ଶୋଚନା)—ଶୋଚନା (ଦେଖ) Suchanā Suchanā. (See) सोचना

ଶୁଚା—ସଂ. ବ. ସ୍ତ୍ରୀ (ଶୁଚ୍ ଧାତୁ+ଭାବ. କ୍ୱିପ୍+ସ୍ତ୍ରୀ. ଆ)—ଶୋକ; Suchā ମନସ୍ତାପ—Lamentation; sorrow.

ଶୁଚି—ସଂ. ବିଣ (ଶୁଚ୍ ଧାତୁ=ନିର୍ମଳ ହେବା+କର୍ତ୍ତୃ. ଇ)—୧ । ପବିତ୍ର; Suchi ଶୁଦ୍ଧ—1. Pure; holy. ୨ । ନିର୍ମଳ— (ଶୁଚିତ, ଶୁଚିତା ଶୌଚ—ବି) 2. Clean; clear. ୩ । ନିର୍ଦ୍ଦୋଷ—3. Faultless; blameless. ୪ । ଅନୁପହତ; ଅନାହତ—4. Unhurt. ୫ । ଶୁଭ୍ର— 5. Bright. ୬ । ଅନୁକୂଳ—6. Favourable. ୭ । ଶୁକ୍ଳ; ଧଳା—7. White. ସଂ. ବ. ୧ । ଶୁଚିତା; ପବିତ୍ରତା—1. Purity; holiness. ୨ । ନିର୍ମଳତା—2. Cleanness; clearness; lucidity. ୩ । ନିର୍ଦ୍ଦୋଷତା—3. Faultlessness. ୪ । ଶ୍ୱେତ ବର୍ଣ୍ଣ; ଶୁକ୍ଳ ବର୍ଣ୍ଣ— 4. White colour. ୫ । ଶୁକ୍ଳତା—5. Whiteness. ୬ । ସଦାଚାର—6 Good; or approved conduct.. ୭ । ସୂର୍ଯ୍ୟ—7. The sun. ୮ । ଅଗ୍ନି—8. Fire. ୯ । ଚନ୍ଦ୍ର- 9. The moon. ୧୦ । ବୃହସ୍ପତି—10. The Jupiter. ୧୧ । ମହାଦେବ—11. The god Siva. ୧୨ । ବ୍ରାହ୍ମଣ—12. A Brahmin. ୧୩ । ଗ୍ରୀଷ୍ମକାଳ—13. The summer. ୧୪ । ଜ୍ୟେଷ୍ଠ ଓ ଆଷାଢ଼ ମାସ—14. The months of Jyeshtha and Ashārdha. ୧୫ । ଅନ୍ନପ୍ରାଶନକାଳୀନ ହୋମ—15. An offering to fire done on the occasion of a child's taking boiled rice for the first time. ୧୬ । ଶୃଙ୍ଗାର ରସ—16. Love; amorous passion; erotic sentiment. ୧୭ । ସୌରଅଗ୍ନି (ପ୍ରକୃତିବାଦ)— 17. Fire obtained from the sun's rays. ୧୮ । (ନାମ, ସ୍ତ୍ରୀ)—କଶ୍ୟପ ଋଷିଙ୍କ ପତ୍ନୀ-18. The name of the wife of sage Kasyapa.

ଶୁଚିତା(ତ୍ୱ)—ସଂ. ବ (ଶୁଚି+ଭାବ. ତା, ତ୍ୱ)—୧ । ପବିତ୍ରତା— Suchitā(twa) 1- Purity. ୨ । ନିର୍ମଳତା- 2. Clearness. ୩ । ନିର୍ଦ୍ଦୋଷତା—3. Faultlessness.

ଶୁଚି ଦ୍ରୁମ—ସଂ. ବି (କର୍ମଧା)—ଅଶ୍ୱତ୍ଥ ଗଛ—
Šuchi druma The sacred Fig tree.

ଶୁଚି ପ୍ରଣୀ—ସଂ. ବି ( ଶୁଚି=ଶୁଦ୍ଧକରିବା+ପ୍ରଣୀ=ସମ୍ପାଦନ )—
Šuchi prani ଆଚମନ; ଅଁଚାଇବା—Purificatory washing of the mouth.

ଶୁଚିବନ୍ତ—ଦେ. ବିଣ (ସଂ. ଶୁଚି+ବନ୍ତ)—ପବିତ୍ର; ଶୁଦ୍ଧପୂତ—Neat
Šuchibanta and clean. [ଉ—ସକଳ ସାମଗ୍ରୀ
ଶুচিମନ୍ତ शुचिवाला ଦେଲେ ଶୁଚିବନ୍ତ ହୋଇ ହୋମ କରି ବସିଲେ—ବଚିତ୍ରରାମାୟଣ । ]

ଶୁଚିବା—ଦେ. କ୍ରି—୧ । ଶୁଚିବା (ଦେଖ)—1. Šuchibā (See)
Šuchibā ୨ । (ଶୁଚ୍ ଧାତୁରୁ)—ଶୋଚନା କରିବା (ଦେଖ)
শোচনা করা सोच करना 2. Sochanā karibā- (See)

ଶୁଚି ବାଇ—ଦେ. ବି—୧ । ଶାରୀରିକ ପବିତ୍ରତା ରକ୍ଷାକରିବା ନିମନ୍ତେ
Šuchi bāi ଦୃଢ଼ବ୍ରତ—1. A craze to remain
শুচিবাই, শুচিবাতিক नेमटेमिया pure in body; great nicity in remaining immaculate in body. ୨ । ଏକପ୍ରକାର ପାଗଳାମି ବା ବାତୁଳତା—
2. A kind of insanity in which the patient fears that he is polluted and goes on washing and cleansing his body. [ ଦ୍ର—ଏଥିରେ ରୋଗୀ ମନରେ ସବୁବେଳେ ଏହି ଧାରଣା ହୁଏ ଯେ ସେ ଅନ୍ୟ ଲୋକର ବା ବସ୍ତୁର ସ୍ପର୍ଶ ଦ୍ୱାରା ଅଶୁଚି ହୋଇ ଯାଉଅଛି ଓ ଏଥିପାଇଁ ତାହାକୁ ହୁଏ ନାହିଁ ଓ ସବୁବେଳେ ଦେହ ହାତ ଧୋଉ ଥାଏ ଓ ସ୍ନାନ କରୁଥାଏ ।) ବିଣ (ସ୍ତ୍ରୀ ଓ ପୁଂ) ୧ ।
শুচিবাই नेमटेमवाला ଶୁଚିତା ରକ୍ଷା ନିମନ୍ତେ ପାଗଳ ପ୍ରାୟ; ଛୁଆଁଣୀ—1. One who always tries to observe purity; excessively observant of keeping one's body ceremonially pure.
ଦ୍ର—ଆମମାନଙ୍କ ମଧ୍ୟରେ ଏପରି ଲୋକ ଦେଖାଯାଆନ୍ତି ଯେଉଁମାନେ ଶୁଚିତା ବିଶେଷତଃ ଦୈହିକ ଶୁଚିତା ରକ୍ଷା କରିବା ପାଇଁ ପାଗଳପ୍ରାୟ ହୋଇଥାଆନ୍ତି । କାଳେ କେ ଛୁଇଁ ସ୍ଥାନରେ ଚଏ ଛେପ ପକାଇଥିବ, କାଳେ କୌଣସି ବସ୍ତୁକୁ କୌଣସି ଅସ୍ପୃଶ୍ୟ ବ୍ୟକ୍ତି ଛୁଇଁ ପକାଇଥିବ, କାଳେ ବାଟରେ ଯିବାବେଳେ ମଇଳା ଉପରେ ବା ଶେଯ ଉପରେ ଗୋଡ଼ ପଡ଼ିଯିବ ଏହି ଚିନ୍ତାରେ ସେମାନେ ସର୍ବଦା ବ୍ୟସ୍ତ । ସେମାନେ ବାହାରେ କେଉଁଆଡେ ଗଲେ ତେଣୁ ଫେରି ଘରେ ପଶିବା ପୂର୍ବରୁ ସ୍ନାନ କରନ୍ତି । ଅନ୍ୟ ବ୍ୟକ୍ତିକୁ ଛୁଇଁଲେ ସ୍ନାନ କରନ୍ତି । ଏହିପରି ଅଛିରନ୍ତି ପରମାଣରେ ଶୁଚିତା ରକ୍ଷା କରିବାରେ ସର୍ବଦା ବ୍ୟସ୍ତ ଥାଆନ୍ତି ଏହିଭଳି ସ୍ତ୍ରୀମାନଙ୍କ "ଛୁଆଁଣୀ ନାକୀ" ବୋଲି ଅନ୍ୟମାନେ ଡାକନ୍ତି ଓ ବ୍ୟଙ୍ଗ କରନ୍ତି ।) ୨ । ଶୁଚିବାୟୁ (ଦେଖ)—
2. Šuchi bāyā (See)

ଶୁଚି ବାୟୁ—ଦେ. ବି ଓ ବିଣ (ପୁଂ)—ଶୁଚିବାଇ ପାଗଳାମି ରୋଗଗ୍ରସ୍ତ
Šuchi bāyā ବ୍ୟକ୍ତି—A person who is suffer-
শুচিবাতিকবালা नेमटेम ing from a craze or
(ଶୁଚିବାଇ—ସ୍ତ୍ରୀ) madness that he is being. polluted every moment and so washes and cleans himself constantly.

ଶୁଚିମନ୍ତ—ଦେ. ବିଣ—ପବିତ୍ର; ଶୁଦ୍ଧପୂତ—Neat and clean;
Šuchimanta শুচিমন্ত शुचिवाला santified.
[ଉ—ଶୁଚିମନ୍ତ ହୋଇ ନବରୁ ବାହା ଦେଖା ପାଉଛ ଯାଇଁ ମିଳେ । ବଚିତ୍ରରାମାୟଣ ।]

ଶୁଚି ଶ୍ରବାଃ—ସଂ. ବି—( ବହୁବ୍ରୀହି; ଶୁଚି ହୋଇଅଛି ଶ୍ରବସ୍=ଶ୍ରବଣ
Šuchi šrabāḥ ଯାହାଙ୍କର, ଶୁଚିଶ୍ରବସ୍ ଶବ୍ଦର ୧ମା. ୧ବ)—
୧ । ଶ୍ରୀକୃଷ୍ଣ—1. Srikṛushṇa. ୨ । ବିଷ୍ଣୁ—
2. Bishṇu. [ ଦ୍ର—ମହାଭାରତରେ ଭଗବାନ ଶ୍ରୀକୃଷ୍ଣ କହିଅଛନ୍ତି ଯେ ଆମ୍ଭେ ପାପ ସ୍ପର୍ଶ ନ କରି ସର୍ବଦା ପବିତ୍ର ବାକ୍ୟମାନ ଶ୍ରବଣ କରୁ ବୋଲି ଆମ୍ଭ ନାମ "ଶୁଚି ଶ୍ରବାଃ" ହୋଇଅଛି ।]

ଶୁଚି ସ୍ମିତ—ସଂ. ବିଣ. ପୁଂ.—(ବହୁବ୍ରୀହି=ଶୁଚି=ପବିତ୍ର ଅଟେ ସ୍ମିତ= ହାସ୍ୟ ଯାହାର)—ବିଶୁଦ୍ଧ ହାସ୍ୟଯୁକ୍ତ ବ୍ୟକ୍ତି—
Šuchi smita
[ଶୁଚିସ୍ମିତା—ସ୍ତ୍ରୀ] (a person) Having pure smile; smiling on pure occasions.

ଶୁଛନ୍—ଗ୍ରାଦେ. (ସମ୍ଭଲପୁର)—କ୍ରି.—(ସେ ବା ସେମାନେ) ଶୋଇ
Šuchhan ଅଛନ୍ତି—(He) Is sleeping; (they) Are sleeping.

ଶୁଜ୍(ଜ)—ଦେ. ବି—ଶୁଝ୍ (ଦେଖ)
Šuj(ja) Sujh (See)

ଶୁଜଟ—ଶୁଝୋଟ (ଦେଖ)
Šujaṭa Šujhoṭa (See)

ଶୁଜା—ଦେ. ବି—୧ । ଶୁଝା (ଦେଖ)
Šujā पीन सुवाना 1. Šujhā (See)
୨ । (ସଂ. ସୂଚୀ)—ଇଂରେଜ ମାପରେ ବ୍ୟବହାର ହେଉଥିବା ଚେନ ମୁଣ୍ଡରେ ଯୋଡ଼ା ଯିବା ଲୁହା କଣ୍ଟା—
2. Iron pins put at the end of measurement by chains. ୩ । ମୁସଲମାନଙ୍କ ନାମ—
সুজা सुजा 3. Name of Mahomedans.
୪ । (ନାମ) ମୋଗଲ ସମ୍ରାଟ ସାହାଜାହାନଙ୍କ ୨ୟ ପୁତ୍ର—
4. The 2nd son of Sahajahan, the Mogul Emperor. [ଦ୍ର—ଏ ଦିଲ୍ଲୀଶ୍ୱର ସାହାଜାହାନଙ୍କ ୨ୟ ପୁତ୍ର । ଏ ସମରକୁଶଳ ଥିଲେ, କିନ୍ତୁ ଅମିତାଚାର ହୋଇ ନସ୍ତ୍ରେଜ ହୋଇ ପଡ଼ିଲେ । ସାହାଜାହାନ ଏହାଙ୍କୁ ବଙ୍ଗ ବିହାର ଓ ଓଡ଼ିଶାର ଶାସନକର୍ତ୍ତା (ସୁବାଦାର) ନିଯୁକ୍ତ କରିଥିଲେ ଓ ଏ ୨୦ବର୍ଷ କାଳ ଉକ୍ତ କାର୍ଯ୍ୟ ଚଳାଇଥିଲେ । ଏ ଢାକାରୁ ରାଜମହଲକୁ ବଙ୍ଗର ରାଜଧାନୀ ଉଠାଇ ନେଇଥିଲେ । ଏହାଙ୍କ ଶାସନକାଳରେ ଇଷ୍ଟଇଣ୍ଡିଆ କମ୍ପାନୀ

ନାମକ ଜଣେ ଜଣେ ଇଂରେଜ ଡାକ୍ତର ଚକିତ୍ସା ନୈପୁଣ୍ୟରେ ଏହାଙ୍କର ପ୍ରୀତିପାତ୍ର ହୋଇଥିଲେ । ତାହାଙ୍କ ଯୋଗୁଁହିଁ ଇଂରେଜମାନେ ବାଣିଜ୍ୟ କରିବା ପାଇଁ ପ୍ରଥମେ ହୁଗୁଳ, ପରେ ଢାକା ଓ କାଶିମବଜାରରେ ବାଣିଜ୍ୟ କୋଠି ସ୍ଥାପନ କରିଥିଲେ । ସାହାଜାହାନ ରୋଗଗ୍ରସ୍ତ ହେବାରୁ ଅଉରଙ୍ଗଜୀବ ପିତାଙ୍କୁ ବନ୍ଦୀ କରିଥିବାର ଶୁଣି ସୁଜା ସୈନ୍ୟସହ ବଙ୍ଗଳାଠାରୁ ଅଗ୍ରସର ହୋଇ ବାରାଣସୀଠାରେ ବନାରସରେ ପରାସ୍ତ ହେଲେ । ଅଉରଙ୍ଗଜୀବ ସିଂହାସନ ଅଧିକାର କରିବାର ଶୁଣି ପୁଣି ସୁଜା ସୈନ୍ୟ ସହ ଅଗ୍ରସର ହେଲେ । ପ୍ରୟାଗ ଓ ଇଟୁଆ ମଧ୍ୟରେ ଅଉରଙ୍ଗଜେବଙ୍କ ସେନାପତି ମିର୍ ଜୁମଲାଙ୍କ ସଙ୍ଗେ ଯୁଦ୍ଧରେ ପରାସ୍ତ ହୋଇ ବ୍ରହ୍ମଦେଶସ୍ଥ ଆରାକାନ୍‌କୁ ପଳାଇଲେ ଏବଂ ସେଠାରେ ନିରୁଦ୍ଦିଷ୍ଟ ହେଲେ ।]

ଶୁଜା(ଜେ)ଇବା—ଦେ. କି—ଶୁଝା(ଝେ)ଇବା (ଦେଖ)
Śujā(je)ibā Śujhā(jhe)ibā (See)

ଶୁଜି—ପ୍ରାଦେ•—(ସମ୍ବଲପୁର) (ସଂ. ସୂଚୀ)—ଛୁଞ୍ଚ—
Śuji Needle.

ଶୁଜିବା—ଦେ. କି.—ଶୁଝିବା (ଦେଖ)
Śujibā Śujhibā (See)

ଶୁଜେଇବା—ଦେ• କି—ଶୁଝେଇବା (ଦେଖ)
Śujeibā Śujheibā (See)

ଶୁଜୋଟ୍—ଦେ. ବ—ଶୁଝୋଟ୍ (ଦେଖ)
Śujoṭ Śujhoṭ (See)

ଶୁଝ(ଝ)—ଦେ• ବ—(ସଂ. ଶୁଧ୍ ଧାତୁ)—୧ । ଋଣାଦିର ଶୋଧନ—
Śujh(jha) ଶୋଧ ସଧାନା 1. Clearing up of debts. ୨ । ଭ୍ରମ ଶୋଧନ—2. Correcting of mistake's. ୩ । ସଂଶୟ ଛେଦନ—3. Clearing of doubts.

ଶୁଝଟ—ଦେ. ବ—ଶୁଝୋଟ (ଦେଖ)
Śujhata Śujhoṭa (See)
[ଉ—ସାରେଇ ବଳରୁ ଯେ ଧାନ ଅସିବ, ଅଲଗା ଅଲଗା ଖଲା ମୁଣ୍ଡାରେ ବଢ଼ ଦେଇ ଦେଖ ଶୁଝଟ ହେବ । ଫକୀରମୋହନ. ଗଳ୍ପସ୍ୱଳ୍ପ ।]

ଶୁଝ୍ ପାଇବା—ଦେ• କି—ଅପେ ଦେଇଥିବା ଧାନ ଅବା ଫେର ପାଇବା-
Śujha pāibā To be repaid one's dues from ଶୋଧ ପାଓଯା ପରିଶୋଧ ପାନା; ଦେନ ପାନା another.

ଶୁଝ ଯିବା—ଦେ. କି—(ଋଣାଦି) ନିଜାସରୂପେ ପରିଶୋଧିତ ହେବା—
Śujha jibā (Debt)To be cleared of or satisfied; ଶୋଧ ହଓଯା ସଧା ଜାନା; ଚୂକା ଜାନା To be liquidated.

ଶୁଝା—ଦେ• ବ ( ସ. ଶୋଧ ଧାତୁରୁ )—( ଋଣାଦି ) ଶୁଝିବା କ୍ରିୟା—
Śujhā The act of paying of for clearing off ଶୋଧା of debts. ବଣ—ପରିଶୋଧ କରି ଯାଇଥିବା— ସଧାନା; ଚୁକୌତା Paid off. [ ଉ—ସୁଝା ତମସୁକ ।]

ଶୁଝାଇ ଦେବା—ଦେ• କି ( ସ. ଶୁଝିବା କ୍ରିୟାର ଣିଜନ୍ତ ଆକୃତି, ସଂସ୍କୃତ
Śujhāi debā ଶୁଧ୍ ଧାତୁ)—୧ । ଶୁଝିବା କ୍ରିୟାର ଣିଜନ୍ତରୂପ— ଶୋଧା 1. Causative of Śujhibā. ୨ । ଶୁଝେବା ସଧା ଦେନା.; ଚୂକା ଦେନା —2. To pay off. ୩ । ଦେଣାକୁ ନିଃଶେଷରୂପେ ପରିଶୋଧ କରିବା—3. To clear up one's dues fully to liquidate a debt. [ ଉ—ତୁମ୍ଭେ ଦୁର୍ଯ୍ୟୋଧନ ଅନ୍ନ ଅଛ ଖାଇ, ବାପଙ୍କ ପର ତାହା ବଧ ଦେହ ଶୁଝାଇ—କୃଷ୍ଣସିଂହ• ମହାଭାରତ । ]

ଶୁଝା(ଝେ)ଇବା—ଦେ. କିଁ(ସଂ. ଶୁଧ୍ ଧାତୁର ଣିଜନ୍ତ; ଶୁଝିବା କ୍ରିୟାର
Śujhā(jhe)ibā ଣିଜନ୍ତରୂପ )—୧ । ଅନ୍ୟ ବ୍ୟକ୍ତିଦ୍ୱାରା ( ଋଣ ଶୋଧ କବାନ ଆଦ) ଶୁଝାଇବା କ୍ରିୟା କରାଯିବା-1. To cause another person to pay off his debts. ସଧବାନା ୨ । ବୁଝାଇବା କ୍ରିୟାର ସହଚର ଶବ୍ଦ; ତନ୍ମଧ୍ୟରୁ ଭ୍ରମ 'ଶୋଧନ କରିବା' ଭାବରୁ ଏ ଶବ୍ଦର ଏହି ବ୍ୟବହାର ଗୃହୀତ) କୌଣସି ବ୍ୟକ୍ତିକୁ କୌଣସି ବିଷୟ ସମଝାଇବା— 2. To cause another person to comprehend or understand a matter. ୩ । ଶୁଝା ଶୋଧ ହଓଯା ଯିବା, ପରିଶୋଧ ହେବା—3. To be paid up ସଧା ଜାନା or liquidated. ୪ । ( ବର ପାତ୍ର ଓ କନ୍ୟା ମିଲ ହଓଯା ପାତ୍ରଙ୍କ ଜାତକ ) ପରସ୍ପର ସହିତ ମେଳ ହେବା; ମେଲ ହୋନା ସୁଝିବା—4. To tally with each other. (said of the horoscopes of a proposed bride and a bridegroom elect. ୫ । ଶୋଧ ନେଓଯା ପ୍ରତିହିଂସା ନେବା; ବୈରି ଶୋଧ କରିବା—5. To ବଦ୍‌ଲା ଲେନା take revenge. [ ଉ—ମୁହିଁ ଅଟେ ଶଠୀ ଦେବୀଙ୍କର ବର, ଶୁଝାଇଲି ତୁମ୍ଭଙ୍କୁ ଯେ ଥିଲା ବଇର ସୋଜାନ —କୃଷ୍ଣସିଂହ, ମହାଭାରତ ।] ୬ । ବୁଝାଇବା କ୍ରିୟାର ସମ୍ଝାନା; ସହଚରରୂପେ ବ୍ୟବହୃତ ) ଉତ୍ତମରୂପେ ବୁଝାଇ ସୁଝାନା ଦେବା—6. To explain clearly.

ଶୁଝା ଯି(ହେ)ବା—ଦେ. କି—ଶୁଝିବା କ୍ରିୟାର କର୍ମବାଚ୍ୟ ରୂପ; ପରି-
Śujhā ji(he)bā ଶୋଧିତ ହେବା—To be liquidated. ଶୋଧ ହଓଯା [ ଉ—କାରେ ଶ୍ରୀରପାନେ ଜୀବ, ହୋଥିଲୁ, ଏ ସୁଝା ସଧା ଜାନା ଯିବ—ଭଞ୍ଜ• ବୈଦେହୀଶବିଳାସ । ]

ଶୁଝି ଦେବା—ଦେ• କି ( ସ. ଶୁଧ୍ ଧାତୁ )—୧ । ଶୁଝିବା—1. To
Śujhi debā clear off; to repay. ୨ । ଦେଣା ଅବକୁ ଶୋଧ କରା ସମ୍ପୂର୍ଣ୍ଣରୂପେ ପରିଶୋଧ କରିବା—2. To clear ସଧା ଦେନା; off a debt; to liquidate a loan. ୩ । ଅଦା କରନା ପ୍ରତିହିଂସା ନେବାକୁ ସମର୍ଥ ହେବା—3. To succeed in taking revenge.

ଶୁଝିବା—ଦେ• କି ( ସ- ଶୁଧ୍ ଧାତୁରୁ )—୧ । ( ସକର୍ମକ ) ଋଣ
Śujhibā ପରିଶୋଧ କରିବା; ଋଣ ଶୁଝିବା—1.To repay ଶୋଧା or pay off a debt. ୨ । ( ସକର୍ମକ )

ଧାର ପରିଶୋଧ କରିବା; ଧାର ଶୁଝିବା—2. To repay a loan. ୩ । ( ସକର୍ମକ ) ଖେଳରେ ହାରିବା ଦ୍ୱାରା ପ୍ରଥମେ ହାରିବା ବ୍ୟକ୍ତିକୁ ବୋଇ ପରିଶୋଧ କରିବା—3. To retrieve or make up one's loss in a game by winning subseqently. [ ଉ—କଉଡ଼ି ଖେଳରେ ମୋ ଉପରେ ତାଙ୍କର ୩ ବୋଇ ହୋଇଥିଲା । ମୁଁ ସେ ଭଳ ବୋଇ ଶୁଝି ତାଙ୍କ ଉପରେ ଦୁଇ ବୋଇ ଦେଲି । ] ୪ । ( ଅକର୍ମକ ) ( ବର କନ୍ୟାଙ୍କର ଜାତକମାନ ) ମେଳ ବା ଅନୁକୂଳ ଅବସ୍ଥା ଗଣନା ଦ୍ୱାରା ଦେଖାଯିବା—4. To appear after calculation to tally each other (said of the horoscopes of bride and bridegroom elect ). [ ଉ—ପାତ୍ର ପାତ୍ରୀଙ୍କ ଜାତକ ନ ଶୁଝିବାରୁ ବିବାହ ପ୍ରସ୍ତାବ ଭାଙ୍ଗିଗଲା । ] ୫ । ବିବାହ ଆଦି ପାଇଁ ଅନୁକୂଳ ଦିବସ ମିଳିବା—5. To be found out suitably ( said of an auspicious day being found out for some ceremony ). [ ଉ—ଏ ବର୍ଷ ମୋ ନାତିର ବ୍ରତଘର ପାଇଁ ଗୋଟିଏ ଦିନ ଶୁଝିଲା ନାହିଁ । ] ୬ । (ସକର୍ମକ) (ବୁଝିବା କ୍ରିୟାର ସହଚର ରୂପେ ବ୍ୟବହୃତ ) କୌଣସି ବିଷୟ ଉତ୍ତମରୂପେ ବା ହୃଦୟଙ୍ଗମରୂପେ ହୃଦୟଙ୍ଗମ କରିବା—6. To understand or comprehend a thing fully. [ ଉ—ବୁଝି ଶୁଝି କାମ କଲେ ପଛରେ ପ୍ରମାଦରେ ପଡ଼ିବା ହେବ ନାହିଁ । ]

(margin: ଚୁକାନା; ଚୁକାନା — ମିଳ ହଓୟା / मेल होना — ମିଳା / मिलना — ସୁଝା / समजना)

**ଶୁଝୋଟ**—ଦେ. ବି ( ସଂ. ଶୋଧ )—ପରିଶୋଧ—Repayment; Śujhoṭa clearance; liquidation (of debt). ବିଣ—ଶୋଧ ଯେଉଁ ବ୍ୟକ୍ତି ସହଜରେ ବୁଝିଯାଏ—(a person) Amenable to reasoning.

**ଶୁଟ୍** ( ଧାତୁ )—ସ—୧ । ସାହସ ଦେଖାଇବା—1. To show Śuṭ (root) bravery. ୨ । ଗର୍ବ ପ୍ରକାଶ କରିବା—2. To arrogate.

**ଶୁଟୀର**—ସଂ. ବିଣ. ପୁଂ ( ଶୁଟ୍ ଧାତୁ + କର୍ତ୍ତୃ. ଈର )—ବୀର; ପରାକ୍ରମ—Śuṭīra Heroic; valiant; mighty; powerful. ( ଶୁଟୀରା—ସ୍ତ୍ରୀ )

**ଶୁଠ୍** ( ଧାତୁ )—ସ. କ୍ରି—ଅଳସ୍ୟ କରିବା—Śuṭh ( root ) To be lazy or idle.

**ଶୁଣ୍ଡି କଳା ଧାନ**—ପ୍ରାଦେ. ( ଦେଙ୍କାନାଳ ) ବି—ପୁରୁଣା ସର୍ଣ୍ଣ ଧାନ—Śuṛḍi kalā dhāna Old Saañrā paddy.

**ଶୁଣ୍** ( ଧାତୁ )—ସଂ—ଗମନ କରିବା—Śuṇ (root) To go; to move.

**ଶୁଣ୍**—ଦେ. କ୍ରି—ଶୁଣିବା କ୍ରିୟାର ଅନୁଜ୍ଞା ଅନାଦରାର୍ଥକ 'ତୁ' ସଙ୍ଗେ Śuṇ শোন সুনো ବ୍ୟବହୃତ ଆକାର—(thou) Do hear. ( ଶୁଣ—ଆଦରାର୍ଥକ )

**ଶୁଣନ୍ତା**—ଦେ. ବିଣ—ଶୁଣୁଥିବା ( ବ୍ୟକ୍ତି )—Hearing. [ ଉ—Śuṇantā ସେ ଜ୍ଞାନ ତୋତେ ମୁଁ କହିବି, ଶୁଣନ୍ତା ପ୍ରାଣୀ ये शुने सुनने वाला ନିସ୍ତାରିବ—ଜଗନ୍ନାଥ. ଭାଗବତ । ]

**ଶୁଣା**—ଦେ. ବି ( ସଂ. ଶ୍ରୁ ଓ ପ୍ରା. ଶୁଣ୍ ଧାତୁ )—ଶୁଣିବା କର୍ମ—Śuṇā শুনা सुनना Act of hearing. শুনাও ଦେ. କ୍ରି—ଶୁଣାଇବା କ୍ରିୟାର ଅନାଦରାର୍ଥକ ଅନୁଜ୍ଞାରୂପ सुनाओ ( ତୁ ) ଶ୍ରବଣ କର—( thou ) Let me hear. ( ଶୁଣାଅ—ଆଦରାର୍ଥକରୂପ ) [ ଉ—ସରସ ଗୀତ ପଦେ ଶୁଣା শুনা ରେ—କବିସୂର୍ଯ୍ୟ. ସଙ୍ଗୀତ ] ବିଣ—୧ । ଶ୍ରୁତ—सुनाहुआ 1. Heard of. ୨ । ଲୋକ ମୁଖରେ ଶୁଣାଯିବା—2. Rumoured. ( ଜଣା ଶବ୍ଦ ସଙ୍ଗେ ସହଚର ରୂପେ ବ୍ୟବହୃତ ହୁଏ; ଯଥା—ଜଣା ଶୁଣା ଲୋକ । ) ୩ । ଯାହା ବିଷୟ ଉତ୍ତମରୂପେ ଲୋକ ମୁଖରୁ ଜ୍ଞାତ ଓ ଶ୍ରୁତ ହୋଇଥାଏ; ସୁଜ୍ଞାତ—3. Well-known; well-acquainted.

**ଶୁଣାଇ ଦେବା**—ଦେ· କ୍ରି—ଉଚ୍ଚୈଃସ୍ୱରରେ କୌଣସି ବ୍ୟକ୍ତିକୁ Śuṇāi debā କୌଣସି ବିଷୟ ଜଣାଇବା—To speak শুনিয়ে দেওয়া सुना देना anything loudly to a person.

**ଶୁଣା(ଣେ)ଇବା**—ଦେ. କ୍ରି (ସଂ. ଶ୍ରୁ ଧାତୁ ଣିଚ୍)—୧ । କୌଣସି Śuṇā(ṇe)ibā ବ୍ୟକ୍ତିକୁ କୌଣସି କଥା ଶ୍ରବଣ କରାଇବା—শো[শু]নান 1. To cause a person to hear something. सुनाना ୨ । ଅନ୍ୟ ବ୍ୟକ୍ତି ଆଗରେ କୌଣସି କଥା କହିବା—2. To say something in the hearing of a person. ୩ । ଯଶଃ ବା ନିନ୍ଦା ଆଦି ଲୋକମୁଖରୁ ଶୁଣିବାର ଉପାୟ କରିବା—3. To cause a person to hear good or bad things regarding himself. ( ଉ—ଆହା ବଇବରେ କ ଶୁଣାଇଲୁ ମୋତେ । କୃଷ୍ଣସିଂହ. ମହାଭାରତ । )

**ଶୁଣା କଥା**—ଦେ. ବି—୧ । ଅନ୍ୟ ବ୍ୟକ୍ତିଠାରୁ ଶ୍ରୁତ ବିଷୟ; ନିଜେ ନ Śuṇā kathā ଶୁଣିଥିବା ବିଷୟ—1. Anything which শুনা কথা has been heard from others but not सुनीबात seen with one's own eyes. ୨ । ଯେଉଁ ବିଷୟ ଲୋକ ଅନ୍ୟ ବ୍ୟକ୍ତିଠାରୁ ଶୁଣି କହେ—2. Hearsay; hearsay matter. ୩ । ଶୋତାର ଶ୍ରୁତ ବିଷୟର କଥିତ ପ୍ରମାଣ—3. Hearsay evidence.

**ଶୁଣା ଗ(ଗୁ,ଜ)ଣା**—ଦେ. ବି (ସହଚର)—ଜନଶ୍ରୁତି; ଜନରବ—Śuṇā ga(gu,ja)ṇā Rumour; verbal report. জানা শুনা (ଉ—ଆମ ଗ୍ରାମରେ ହିନ୍ଦୁ ମୁସଲମାନ ହିନ୍ଦୁ ଶୁଣାଗୁଣା

ଦନ୍ତ କଥା ନାହିଁ । ) ଦେ. ବଣ—ଅଶ୍ରୁତ ଓ ଅଜ୍ଞାତ—
Unheard of and unknown.

**ଶୁଣାଣି**—ଦେ. ବ (କଚରୀଥ)—ମକଦମାରେ ପକ୍ଷମାନଙ୍କ ଠାରୁ
Śuṇāṇi ପ୍ରମାଣାଦ ବକ୍ତୃତାଉଙ୍କ ଦ୍ୱାରା ଶୁଣାଯିବା ଅବସ୍ଥା;
শুনানি ହାକିମଙ୍କ ଆଗରେ ମକଦମାର ବକ୍ତୃତା—The hearing
सुनाई of a case. (ଉ—ଏ ମକଦମାର ଆଗାମୀ ମାସରେ
ଶୁଣାଣି ହେବ ।)

**ଶୁଣାଣି ତାରିଖ(ଖ)**—ଦେ. ବ (କଚରୀଥ)—ମକଦମା ବିଚାର ହେବାର
Śuṇāṇi tārikha(kha) ନିର୍ଦ୍ଦିଷ୍ଟ ତାରିଖ—The date of
শুনানি তারিখ सुनानेकि तारिख hearing of a case.

**ଶୁଣାଣି ହେବା**—ଦେ. ବ (ମକଦମାର)—ଉଭୟ ପକ୍ଷଙ୍କ ଦ୍ୱାରା ଅଗତ
Śuṇāṇi hebā ପ୍ରମାଣାଦ ବକ୍ତୃତାଉଙ୍କ ଦ୍ୱାରା ଗୃହୀତ ହେବା—
শুনানি হওয়া The hearing of a case; a case being
सुनाइ होना heard.

**ଶୁଣା ପଡ଼ିବା**—ଦେ. କି—୧ । ଶ୍ରୁତିଗୋଚର ହେବା; ଶୁଭିବା;
Śuṇā paṛibā ଶୁଭିବା; ସ୍ପଷ୍ଟରୂପେ ଶ୍ରୁତ ହେବା—1. To
শুনা যাওয়া be heard distinctly. (ଉ—ତା କଥା ୧୪
सुनाई पड़ना ହାତ ଦୂରରେ ଅତଡ଼ୀ ଶୁଣା ପଡ଼ୁ ନାହିଁ)
୨ । ଶୁଣାଯିବା; ଶ୍ରୁତିଗୋଚର ହେବା—
2. To be heard.

**ଶୁଣା ପାଇବା**—ଦେ. କି—କୌଣସି ବିଷୟ ଲୋକମୁଖରୁ ଅବଗତ
Śuṇā pāibā ହେବା—To hear a matter from the
শুনতে পাওয়া सुना पाना report of others.
[ଦ୍ର—ଆଧୁନିକ ଲେଖକମାନେ 'ଶୁଣା ପାଇବା' ସ୍ଥଳରେ
ବଙ୍ଗଳା ବ୍ୟବହାର 'ଶୁଣିବାକୁ ପାଇବା' ବାକ୍ୟ ବ୍ୟବହାର
କରନ୍ତି ।]

**ଶୁଣାବନ୍ତି**—ଦେ. (ପ୍ରାଚୀନ ପଦ୍ୟ) କି—ଶୁଣାଇବା କ୍ରିୟାର ଶୁଣାନ୍ତିର
Śuṇābanti ପ୍ରାଚୀନ ଆକାର; ଶ୍ରବଣ କରାନ୍ତି—(Archaic
শুনান सुनाना form) To cause to hear.

**ଶୁଣା ମଣା(ଣି)**—ଦେ. ବ (ସ. ଶ୍ରୁ ଧାତୁ ଣିଚ୍; ପ୍ରା. ଶୁଣାଓ)—
Śuṇā maṇā (ṇi) ଦେବତା ବା ପ୍ରଭୁଙ୍କୁ ସ୍ତବ ବା ପ୍ରାର୍ଥନାଦ
জানান শো'শু'নান ଶୁଣାଇବା ବା ମୌଖିକ ନିବେଦନ କରିବା—
जनाना सुनाना Recital of a hymn or prayer
before a Deity or the master.

**ଶୁଣା ଯାଏ**—ଦେ. (କର୍ମବାଚ୍ୟ ପ୍ରୟୋଗ)—ଏହା ପ୍ରଚଳିତ ହୋଇଅଛି
Śuṇā jāe ଯେ; ଏହି ଜନରବ ଉଠିଅଛି ଯେ—It is
শুনা যায় rumoured that; the rumour goes that,
सुना जाय it is said that.
(ଶୁଣାଯାଏ ଯେ—ଅନ୍ୟରୂପ)

**ଶୁଣା ଯି(ହେ)ବା**—ଦେ. କି (ଶୁଣିବାର କର୍ମବାଚ୍ୟ ରୂପ)—
Śuṇā ji(he)bā ୧ । କୌଣସି ବିଷୟ କାନକୁ ସ୍ପଷ୍ଟରୂପେ
শুনা যাওয়া ଶୁଭିବା—1. To be heard distinctly.
सुना जाना (ଉ—ମୁଁ କାଲ ହେବା ଦନଠାରୁ ମତେ ଦୂର କଥା
ଶୁଣାଯାଉ ନାହିଁ ।) ୨ । (କୌଣସି ବିଷୟ) ଜନଶ୍ରୁତି
ଦ୍ୱାରା ବିଖ୍ୟାତ ହେବା; ଜନରବଦ୍ୱାରା ପ୍ରକାଶିତ ହେବା—
2. To be rumoured, to be reported.
[ଉ—ନ ଥିଲି କହି ଜଣା, ଏବେ ଯାଉଛି ଶୁଣା ।
ଉଦ୍ଧବଣି. ସଙ୍ଗୀତ ।]

**ଶୁଣା ଶୁଣି**—ଦେ. ବ—୧ । ଜନଶ୍ରୁତି; ଜନରବ—
Śuṇā śuṇi জানা শুনা दन्त कथा 1. Rumour.
ଦେ. ବଣ—୨ । ଶୁଣିବାଦ୍ୱାରା—2. By hearing.
ଦେ. ବଣ—ଶ୍ରୁତ (ବିଷୟ)—Hearsay.
শুনে सुननेसे

**ଶୁଣା ଶୁଣି କଥା**—ଦେ. ବ—ଶ୍ରୁତ ବିଷୟ—
Śuṇā śuṇi kathā Hearsay
শুনা কথা दन्तकथा matter.

**ଶୁଣା ଶୁଣିରେ ଜଣାଯିବା**—ଦେ. କି—(କୌଣସି ବିଷୟ) ଜନରବଦ୍ୱାରା
Śuṇā śuṇire jāṇā jibā ଖ୍ୟାତ ହେବା—(any matter)
শুনা জানা যাওয়া To be rumuored or reported.
दन्त कथासे मालुम हुआ
[ଶୁଣା ଶୁଣି ହେବା—ଅନ୍ୟରୂପ]

**ଶୁଣି ଆସିବା**—ଦେ. କି—କୌଣସି କଥା ସ୍ଥାନାନ୍ତରରୁ ଶୁଣି ସେଠାରୁ
Śuṇi āsibā ଫେରି ଆସିବା—To come back to a place
শুনে আসা सुन आना after hearing a thing
abroad.

**ଶୁଣି ନ ଶୁଣିବା**—ଦେ. କି—କୌଣସି ବିଷୟ ଜାଣି ବା ଶୁଣି ସୁଦ୍ଧା
Śuṇi na śuṇibā ତଦନୁରୂପ କର୍ମ ନ କରିବା; କୌଣସି ବିଷୟ
শুনে ও না শুনা କରିବା ଉଚିତ ମାତ୍ର ଜାଣି ଶୁଣି ନ କରିବା—
अनसुनि करना Not to do knowingly a thing
which one ought to do. [ଉ—ଯଜ୍ଞର ସ୍ୱଭାବ
ଏମନ୍ତ, ଅଛଥି ପଢ଼ିବା ଯୁକତ, ବ୍ରାହ୍ମଣେ ଶୁଣି ନ ଶୁଣିଲେ,
ମନ ଉଷିଲ ଯଜ୍ଞ କାଳେ—ଜଗନ୍ନାଥ. ଭାଗବତ ।

**ଶୁଣି ପାରିବା**—ଦେ. କି.—୧ । କୌଣସି ବିଷୟ ଶ୍ରବଣ କରିବାକୁ
Śuṇi pāribā ଯଥେଷ୍ଟ ଶ୍ରବଣଶକ୍ତି ସମ୍ପନ୍ନ ହେବା—1. To be
able to hear a thing. [ଉ—ବୟସତା ଯୋଗୁ
ମୁଁ ଏବେ ଦୂରରୁ କଥା ଶୁଣିପାରୁ ନାହିଁ ।] ୨ । କୌଣସି
ଗୁପ୍ତ ବା ଆବଶ୍ୟକ ବିଷୟ ଆପଣା ଆଗରେ ପ୍ରକାଶିତ
ହେବା, ଯଥେଷ୍ଟରୂପେ ବିଶ୍ୱାସୀ ବୋଲି କଥକଦ୍ୱାରା
ବିବେଚିତ ହେବା—2. To be considered fit
or trustworthy to be told any impor
tant or secret matter. [ଉ—ଆପଣମାନଙ୍କ
ଗୋପନ ପରାମର୍ଶ ମୁଁ କ ଶୁଣିପାରିବ ନାହିଁ ।] ୩ । ଶୁଣା
ପାଇବା (ଦେଖ)—3. Śuṇā pāibā (See).

**ଶୁଣିବା**—ଦେ. କି.—(ସ. ଶ୍ରୁ ଧାତୁ; ପ୍ରା. ଶୁଣ୍ ଧାତୁ)—୧ । ଶ୍ରବଣ
Śuṇibā କରିବା; କର୍ଣ୍ଣପାତ କରିବା—1. To hear; to
listen. ୨ । ଜନଶ୍ରୁତିରୁ ଅବଗତ ହେବା—2. To
come to know from rumour; to learn
from verbal report. ୩ । (ଲକ୍ଷଣାର୍ଥ) କୌଣସି
ବିଷୟ ମନୋଯୋଗପୂର୍ବକ ଶ୍ରବଣ କରିବା; ମନୋଯୋଗ

ଦେବା—3. To hear a matter attentively; to attend to a matter; to pay attention to. ୪ । (ଲକ୍ଷଣାର୍ଥ) ଆଦେଶ ମାନିବା; ଆଜ୍ଞା ପାଳିବା—4 To obey an order. ୫ । (ଲକ୍ଷଣାର୍ଥ) ଉପଦେଶକୁ ଲଙ୍ଘନ ନ କରିବା ବା ମାନିବା—5. To hear an advice; to have regard for one's advice; to listen to another's words ୬ । (ଲକ୍ଷଣାର୍ଥ) ଜାଣିବା; ଖବର ସହିତର; କୌଣସି ବିଷୟ ଜ୍ଞାତ ହେବା; ଅଭିଜ୍ଞତା ଲାଭ କରିବା—6. To experience. [ଉ—ଭୁ ଜାଣିବା ଶୁଣିବା ଲୋକ ହୋଇ ମୂର୍ଖ ପର କାମ କଲୁ ।] ୭ । (ନିଦ୍ରିତ; ରୋଗୀ; ମୁମୂର୍ଷୁ ବା ମୂର୍ଚ୍ଛିତ ବ୍ୟକ୍ତି) ଅନ୍ୟ ବ୍ୟକ୍ତିର ଡାକକୁ ବାର ଉତ୍ତର ଦେବା—7. To respond to a call (said of a sleeping, sick or dying person) [ଉ—କାଲିଠାରୁ ସନ୍ନିପାତ ମଜ୍ଜ ଆଉ ଡାକ ଶୁଣୁ ନାହିଁ ।]

ଶୁଣି ଯିବା - ଦେ. କି—(ଦୂରସ୍ଥ ବ୍ୟକ୍ତି) କଥକଙ୍କ ନିକଟକୁ କୌଣସି Suni jiba ବିଷୟ ଶୁଣିବା ପାଇଁ ଆସିବା—1. To come to শুনে যাওয়া सुन जाना a person from a distance to hear a thing from him, [ଉ—ତୁମେ ମୋଠାରୁ ୧୦୦ ହାତ ଉପରେ ଅଛ, ମୁଁ କହି ପାରି ନ ପାରୁ ନାହିଁ, ତୁମେ ମୋ ପାଖରୁ ଏ କଥା ଶୁଣି ଯାଅ ।] ୨ । ବହୁତ କାଳ ଲାଗି କୌଣସି ବିଷୟ ଶୁଣିବା-2. To go on hearing for a length of time. [ଉ—ମୁଁ ପଦ୍ୟଟି ମୁଖସ୍ଥ କରିଅଛି, ମୁଁ ସେ ପଦ୍ୟଟି ବୋଲି ଯାଉଛି, ତୁମେ ଶୁଣି ଯାଅ ।]

ଶୁଣି ଯୋଗା(ଗେ)ଇବା—ଦେ. କି—(କୌଣସି ବିଷୟ) ଶ୍ରବଣଯୋଗ୍ୟ Suni joga(ge)iba ହେବା—To be fit for hearing. শুনার যোগ্য হওয়া (ଯଥା—ଅଶ୍ଳୀଳ କଥା କହି ଯୋଗାଏ ନାହିଁ सुनने योग्य କି ଶୁଣି ଯୋଗାଏ ନାହିଁ ।)

ଶୁଣିବାରେ—ଦେ. ଅ—ଜନରବରେ; ଶୁଣାଶୁଣିରେ—So far as Sunibare rumour goes. (ଉ—ଶୁଣିବାରେ ରାମ ଚାନ୍ଦ୍ର শুনতে পাই, শুনা যায় ଲଙ୍କାର ରଜା କରି ସାରିଲେଣି—ମାଳକଣ୍ଠ. सुना जाता ପିଲଙ୍କ ରାମାୟଣ ।)

ଶୁଣିଲ—ଦେ. (ପ୍ରାଚୀନ) ବି—ଶୁଣିବା ବିଷୟ—The act of Sunila hearing. (ଉ—ଶାସ୍ତ୍ର ଶୁଣିଲ ତୁମ୍ଭେ ନାହିଁ । ମୁ শোনা सुनना ତାହା ଅଛନ୍ତି ଜାଣଇ—ଜଗନ୍ନାଥ. ଭାଗବତ । ) শোনা ଦେ. ବିଣ—ଶୁଣିଥିବା; ଯେ ଶୁଣିଥାଏ—One who सुनना has heard

ଶୁଣୁକା—ଦେ. ବିଣ—ଫୁଲା; ଶୋଥଯୁକ୍ତ—Swelling. (ଯଥା—Sunuka ଶରଦ ଯୋଗୁଁ ତୋ ମୁହଁଟି ଶୁଣୁକା ଦିଶୁଛି ।) ফেলা फुलाहुआ

ଶୁଣ୍ଠ (ଧାତୁ)—ସ.—୧ । (ଜଳ) ଶୋଷଣ କରିବା—1. To suck Sunth (root) up water. ୨। ନିର୍ଜ୍ଜଳ ବା ଶୁଷ୍କ କରିବା—2. To cause to dry up.

ଶୁଣ୍ଠା—ଦେ. ବି (ସ. ଶୁଣ୍ଠ୍ ଧାତୁରୁ)—ଖରାରେ ଶୁଖାଯାଇ ନିର୍ଜଳ Suntha କରାଯାଇ ଥିବା ପଦାର୍ଥ—(ଯଥା—ଫଳାଦି)—Any শুঁঠো thing dried up in the sun. ବିଣ—୧ । ଶୁଣ୍ଠିଆ सूखती (ଦେଖ)—1. Sunthia. (See) ୨ । ଶୁଷ୍କୀକୃତ—2. Dried up.

ଶୁଣ୍ଠା ଶିକାର—ପ୍ରାଦେ (ଗଞ୍ଜାମ) ବି. (ସ ଶୁଣ୍ଠ ଧାତୁ ଓ ଫା. ଶିକାର)—Suntha sikara ମାଂସର ଶୁଖୁଆ; ଶୁଷ୍କୀକୃତ ଓ ଆହାରାର୍ଥେ ସଞ୍ଚିତ ମାଂସଖଣ୍ଡ—(ସ. ବଲ୍ଲୁର)—Pieces of meat dried up and preserved for food; preserved meat.

ଶୁଣ୍ଠି (ଣ୍ଠୀ)—ସ. ବି (ସ. ଶୁଣ୍ଠ ଧାତୁ=ଶୋଷଣ କରିବା ଅପାଦାନ. ଇ; Sunthi(nthi) ଶୁଣ୍ଠି+ଈ)—ଶୁଷ୍କ ଆର୍ଦ୍ରକ ବା ଅଦାବିଶେଷ—ଶୁଣ୍ଠି ବା—ଅନ୍ୟ ସ. ନାମ Gingiber Officinale; dry শুঁঠ सूंठ ginger. [ଦ୍ର—ଏହା କଟୁ, ସ୍ନିଗ୍ଧରସ, ଉଷ୍ଣବୀର୍ଯ୍ୟ, ଅନ୍ୟ ସ—ବିଶ୍ୱା, ବିଶ୍ୱ, ନାଗର, ମଧୁରବିପାକ, ସ୍ନିଗ୍ଧ, ଲଘୁପାଚକ; ବିଶ୍ୱଭେଷଜ, ଊଷଣ, କଟୁଭଦ୍ର, ଗ୍ରାହକ, ରୁଚିକର, ବଳକାରକ, ଶୃଙ୍ଗବେର, ମହୌଷଧ, ଶୁକ୍ରବର୍ଦ୍ଧକ, ସ୍ୱରପରିଷ୍କାରକ । ବିଶ୍ୱୌଷଧ । ଏହା କଫ, ଶୋଥ, ଶୂଳ, ମଳ—ବିବନ୍ଧତା, ଅର୍ଶ, ଉଦରରୋଗ, ଆମବାତ, ବମନ, ଶ୍ୱାସ, କାଶ, ହୃଦ୍‌ରୋଗ, ଶ୍ଳୀପଦ ଓ ବାତଶ୍ଳେଷ୍ମଜନ୍ୟ ରୋଗମାନଙ୍କରେ ଉପକାରକ । ବକ୍ଷ ଓ ପାର୍ଶ୍ୱବେଦନାମାନଙ୍କରେ ଶୁଣ୍ଠିଗୁଣ୍ଡା ମାଲିସ କରାଯାଏ ।

ବୈଦ୍ୟଶାସ୍ତ୍ରରେ ଶୁଣ୍ଠି, ପିପ୍ପଳି, ଓ ଗୋଲମରିଚକୁ ତ୍ରିକଟୁ ବୋଲାଯାଏ । ସମପରିମିତ ହରିଡା, ଶୁଣ୍ଠି ଓ ଗୁଳୁଚିକୁ ତ୍ରିସମ ବୋଲାଯାଏ । ଏହା ରୁଚିକର, ଅଗ୍ନିର ଦୀପକର, ବାତପିତ୍ତନାଶକ ।]

ଶୁଣ୍ଠିଆ—ଦେ. ବି—ବିଧବା ସ୍ତ୍ରୀଲୋକମାନଙ୍କ ପିନ୍ଧିବାର ଧଡ଼ି ଓ ମୁହଁ ନ Sunthia ଥିବା ଲୁଗା; ଥାନ—A cloth without hem থান কাপড় and border used by Hindu widows. थान कपडा ବିଣ ପୁଂ ଓ ସ୍ତ୍ରୀ—ଅତି କୃପଣ (ବ୍ୟକ୍ତି)—କ୍ରିପଟେ कंजूस Very miserly person.

ଶୁଣ୍ଠି ଚନା—ଦେ. ବି—ଶୁଣ୍ଠିର ଚୂର୍ଣ୍ଣ—Sunthi chuna Powdered dry ginger. শুঁঠীর গুঁড়ো सूंठका चूर्ण

ଶୁଣ୍ଠି ପିପ(ପ୍ପ,ପୁ)ଳି—ଦେ. ବି (ସହଚର ଶବ୍ଦ ଓ ବସ୍ତୁ)-ଶୁଣ୍ଠି ଓ ପିପ୍ପଳି—Sunthi pipa(ppa,pu)li Dry ginger and long শুঁঠপিপুল सूंठपीपल pepper. (ଶୁଣ୍ଠି ପିପ୍ପଳୀ—ସ. ରୂପ)

ଶୁଣ୍ଠି ପିପ୍ପଳି ମରିଚ—ସ. ବି (ସହଚର)—ଶୁଣ୍ଠି, ପିପ୍ପଳି ଓ ଗୋଲ-Sunthi pippali maricha ମରିଚ—Dry ginger, long (ଶୁଣ୍ଠି ପିପ୍ପଳି ଗୋଲମରିଚ—ଦେ. ରୂପ) pepper and black pepper. [ଦ୍ର—ଏହି ତିନି ଦ୍ରବ୍ୟର ସମାହାରକୁ ବୈଦ୍ୟଶାସ୍ତ୍ରରେ ତ୍ରିକଟୁ ବୋଲାଯାଏ ।]

ନିକଟରୁ ସଂସ୍କୃତ ପର୍ଯ୍ୟାୟ—"ନାଗର, ବେସଜ, କଟୁଭଦ୍ର, କଟୁବିକା", ଏହା ଅଗ୍ନିବର୍ଦ୍ଧକ, ଶ୍ୱାସ, କାଶ, ଚର୍ମରୋଗ, ମେହ, କଫ, ସ୍ଥୂଳତା, ଶ୍ଳୀପଦ, ପାଳସ ଓ ମେଦ ଦୋଷର ଉପକାରକ ।]

ଶୁଣ୍ଡ—ସଂ. ବି (ଶୁଣ ଧାତୁ=ଗମନ କରିବା+କର୍ତ୍ତୃ. ଡ)—ହାତୀର
Śuṇḍa ଶୁଣ୍ଢ; ହାତୀର ଉପର ଓଠରୁ ବାହାରିଥିବା ଲମ୍ବ ନଳରୂପ ନାସିକା—Elephant's trunk.

ଶୁଣ୍ଡଧର—ସଂ. ବି. ପୁଂ (ଶୁଣ୍ଡ+ଧୃ ଧାତୁ+କର୍ତ୍ତୃ. ଅ)—ହସ୍ତୀ; ହାତୀ—
Śuṇḍa dhara Elephant,

ଶୁଣ୍ଡା—ସଂ. ବି. ସ୍ତ୍ରୀ—(ଶୁଣ ଧାତୁ+କର୍ତ୍ତୃ.ଡ+ଆ; ଶୁଣ୍ଡ+ଆ)—୧ ।
Śuṇḍā ହାତୀ ଶୁଣ୍ଢ—1. Elephant's trunk. [ଉ—କେତେ ଉହୁ ସିପାଇ ହାତୀଙ୍କର ଶୁଣ୍ଡା, କାଟି ପକାଇଲେ ପ୍ରହାର କରି ଖଣ୍ଡା । କୃଷ୍ଣସିଂହ. ମହାଭାରତ ।] ୨ । ମଦ୍ୟ; ମଦ—2. Wine. (ଏହା ହସ୍ତି ଶୁଣ୍ଡାକୃତି ନଳ ଯୋଗେ ପାଉଡ କରି ଯାଉଥିବାରୁ) ୩ । କୁଟ୍ଟିନୀ—3. A procuress. ୪ । ବେଶ୍ୟା—4. Harlot. ୫ । ମଦ୍ୟ ଗୃହ; ମଦ ଭାଟି—5. A grogshop;
ଶୁଣ୍ଡା tavern; wine shop. ଦେ. ବିଣ—୧ । ଶୁଣ୍ଢ ସମ୍ବନ୍ଧୀୟ—1. Relating to elephant trunk. ୨ । ଶୁଣ୍ଢ ପରି—2. Like a trunk [ଯଥା—ହାତି-ଶୁଣ୍ଢା] [ଉ—ଗରୁଡ ଚଞ୍ଚୁ ଧଣ୍ଡା, କର୍ମିତ ଗଜମୁଣ୍ଡା, ଦଣ୍ଡକୁ କାନ୍ଦ ଗୃହ ଯାହାକୁ ଗୋ—କବିସୂର୍ଯ୍ୟ. ସଙ୍ଗୀତ ।] ଦେ. ବି—୧ । ଲାଉ, କଖାରୁ ଆଦି ଲତାର ପ୍ରତାନ—1. The tendrils of some creepers such as gourd, pumpkin etc. ୨ । ପ୍ରଜାପତି, ଅସରପା ଆଦିଙ୍କ ଲଷ-2. The feelers of some insects such as butterfly, cookroach etc.

ଶୁଣ୍ଡାର—ସଂ. ବି—(ଶୁଣ୍ଡା+ର)—୧ । ହାତୀଶୁଣ୍ଢ—1. The
Śuṇḍāra trunk of an elephant. ୨ । ନିକୃଷ୍ଟ ମଦ୍ୟ—2. Inferior sort of wine; grog; beer. ୩ । ଶୁଣ୍ଡୀ; ଶୌଣ୍ଡିକ—3. A grog-dealer; a distiller or seller of wine.

ଶୁଣ୍ଡାଲ—ସଂ. ବି—(ଶୁଣ୍ଡା+ଲ, ସ୍ୱାର୍ଥେ)—ହାତୀ—
Śuṇḍāla The elephant.
[ଉ—ଚତୁରମୁଣ୍ଡ କେତେ ଅସନ୍ତି ଶୁଣ୍ଡାଲ । ... ସ୍ୱାଧାନାଥ. ଦରବାର ।]

ଶୁଣ୍ଡି(ଣ୍ଡୀ,ଣ୍ଢି,ଣ୍ଢୀ)—ପ୍ରାଦେ.—(ସମ୍ବଲପୁର) ବି—କଇଁ; କମଳ—
Śuṇḍi (ṇḍī,ṇḍhi,ṇḍhī) Water-lily or white lily.
শুঁড়ী सूंडी ଦେ. ବି. ପୁଂ—(ସଂ. ଶୁଣ୍ଡୀ)—ଶୁଣ୍ଡୀ ଦେଖ)
Śuṇḍī (See)

ଶୁଣ୍ଡିର ସାକ୍ଷୀ ମଦୁଆ—(ପ୍ରବଚନ ବା ନ୍ୟାୟ)—ଏକ ପ୍ରକାର କୁକର୍ମରେ
Śuṇḍira sākshī maduā ଲିପ୍ତ ବା ସଂପୃକ୍ତ ଥିବା ବ୍ୟକ୍ତିଙ୍କ শুঁড়ীর সাক্ষী মাতাল ସାକ୍ଷ୍ୟ ବିଶ୍ୱାସଯୋଗ୍ୟ ନ ଥିବା ବିଷୟରେ सूंडीका गवाही शराबी ପ୍ରବଚନ—A proverb meaning like a wine-seller's client giving evidence for his wine-selle

ଶୁଣ୍ଡିଆ—ଦେ. ବିଣ—୧ । ଶୁଣ୍ଢ; ଶୁଣ୍ଡବିଶିଷ୍ଟ—
Śuṇḍiā শুঁড়ের মত सूँड़वाला 1. Having a trunk.

ଶୁଣ୍ଡିଆଣି(ଣୀ)—ଦେ. ବି. ସ୍ତ୍ରୀ—(ସଂ. ଶୌଣ୍ଡିକୀ; ଶୁଣ୍ଡିନୀ)—ଶୁଣ୍ଡୀର ସ୍ତ୍ରୀ—
Śuṇḍiāṇi(ṇī) The wife of a grogdealer or distiller. [ବି—ଶୁଣ୍ଡିଆଣୀ ହାତେ ଦୁଧ, ଲୋକେ ବୋଲନ୍ତି ମଦ—ପ୍ରବଚନ ବା ନ୍ୟାୟ—ସଂ. "ପଯୋଽପି ଶୌଣ୍ଡିକୀ ହସ୍ତେ, ବାରୁଣୀତ୍ୟଭିଧୀୟତେ" ଶୁଣ୍ଡିଆଣୀ ହାତରେ ଦୁଧ ଦେଖିଲେ ସୁଦ୍ଧା ଲୋକେ ତାହାକୁ ମଦ ବୋଲି ଅନୁମାନ କରିବା ସ୍ୱାଭାବିକ । ସେହିପରି ମନ୍ଦ ଲୋକଙ୍କ ସଙ୍ଗେ କୌଣସି ଭଲଲୋକଙ୍କୁ ଦେଖିଲେ ଭଲ ବ୍ୟକ୍ତିକୁ ମନ୍ଦ ବୋଲି ଲୋକଙ୍କର ଭାବିବା ସ୍ୱାଭାବିକ ।]

ଶୁଣ୍ଡିକା—ସଂ. ବି. ସ୍ତ୍ରୀ (ଶୁଣ୍ଡ+କ+ଆ)—ଅଳଜିହ୍ୱା; ଘଣ୍ଟିକା—
Śuṇḍikā The soft palate; epiglottis.

ଶୁଣ୍ଡିନୀ—ସଂ. ବି. ସ୍ତ୍ରୀ (ଶୁଣ୍ଡିନ୍+ଈ)—ଶୁଣ୍ଡିଆଣୀ (ଦେଖ)
Śuṇḍinī Śuṇḍiāṇi (See)

ଶୁଣ୍ଡୀ—ସଂ. ବି. ପୁଂ (ଶୁଣ୍ଡ+ଇନ୍; ଶୁଣ୍ଡିନ୍ ୧ମା, ୧ ବଚନ)—୧ ।
Śuṇḍī ଶୌଣ୍ଡିକ; ଯେ ମଦ୍ୟ ପ୍ରସ୍ତୁତ ବା ବିକ୍ରୟ କରେ—
( ଶୁଣ୍ଡିନୀ—ସ୍ତ୍ରୀ ) 1. Grog-dealer; wine-seller; distiller. ୨ । ହସ୍ତୀ—2. Elephant. ଦେ. ବି—ମଦ୍ୟ ପ୍ରସ୍ତୁତକାରୀ ବା ବ୍ୟବସାୟୀ ଜାତି-ବିଶେଷ—A caste of wine-dealers or wine-sellers.

ଶୁଣ୍ଢ—ଦେ. ବି—ଶୁଣ୍ଡ (ଦେଖ)
Śuṇḍha Śuṇḍa (See)

ଶୁଣ୍ଢୀ—ଦେ. ବି—ଶୁଣ୍ଡୀ (ଦେଖ)
Śuṇḍhī Śuṇḍī (See)

ଶୁତକ—ବୈଦେ. ବି (ଫା. ଚୁତ୍)—ଛୁତକ; ପରିସ୍ରା—
Śutaka পেচ্ছাপ पेसाब Nrine.

ଶୁତକ ପୋଡ଼ା—ଦେ. ବି—ପରିସ୍ରା ପୋଡ଼ା—Painful micturi-
Śutaka porḍā tion; urination accompanied
পেচ্ছাব পোড়া, প্রস্রাবের যন্ত্রণা with a burning
पेसाबकि ज्वाला sensation.

ଶୁତିବା—ଦେ. (ପ୍ରାଚୀନ ପଦ୍ୟ) କ୍ରି—(ସଂ.ଶୀ ଧାତୁ)-୧ । ଶୋଇବା—
Śutibā 1. To sleep. [ଉ—ପଲଙ୍କେ ଶୁତିଲ
শুয়া सोना ସମା ଏତେକ କହୁ—ପ୍ରାଚୀ. ଶିଶୁଶଙ୍କର. ଉଷାଭିଳାଷ ।] ୨ । ଭୂମିରେ ଲମ୍ବମାନ ହେବା—2. To be flat on the ground.

ଶୁତୁକ (ଇତ୍ୟାଦି)—ବୈଦେ. ବି—ଶୁତକ ଇତ୍ୟାଦି (ଦେଖ)
Śutuka (etc) Śutaka etc. (See)

ଶୁଦ୍ର(ଦ୍ର)—ଦେ. ବି (ସଂ. ଶୂଦ୍ର)—୧ । ଶୂଦ୍ର ଜାତି—1. Śūdra
Śud(da) caste. (ଯଥା—ଶୁଦ୍ର ବସିଲା) ୨ । ଶୂଦ୍ରଜାତି
শুদ্র शूद्र ବିଶେଷ—2. A class of Śūdras. ( ଏମାନେ ମହାନ୍ତି ପ୍ରଭୃତି ସଂଜ୍ଞାରେ ଅଭିହିତ ହୁଅନ୍ତି । ମାଳ ସମାଜରେ

ଏମାନଙ୍କ ସ୍ଥାନ କରଣମାନଙ୍କର ଅନେକ ତଳରେ । )
ଵଣ ( ସ. ଶୂଦ୍ର )—ଶୂଦ୍ର ଜାତୀୟ—Belonging to
Śūdra caste. [ ଯଥା—ଶୂଦ୍ର ଚଷା ] ବୈଦେ·
ଵ—ଶୁଦ୍ଧ (ଦେଖ)—Suda (See) ଦେ. କ୍ରି. ଵଣ (ସ
ଶୁଦ୍ଧ )—୧ । ଵରାବର—1· Wholly. ୨ । କେବଳ—
2, Only. ୩ । ସମ୍ପୂର୍ଣ୍ଣରୂପେ—3. Fully; totally.
[ ଯ—ଶୁଦ୍ ଉତ୍ତର Due north, ଶୁଦ୍ ପୂର୍ବକୁ
wholly or directly to the east. ]

ସିଧା
ସମୁଚା

ଶୁଦ୍(ଦ, ଧ୍, ଧ) କପିଳା—ଦେ. ଵ—କପିଳବର୍ଣ୍ଣ ଶୂଦ୍ର—A brown
Śud(d, dh, dha) kapilā Śūdra; a person of the
Śūdra caste having a brown
complexion. [ ଯ—ବ୍ରାହ୍ମଣ କଳା, ଶୁଦ୍ କପିଳା
ଯାକୁ ଦେଖି ଦୂରୁଁ ପଳା—ଚଗ । ]

କଷାଶୁଦ୍ର କୈଳଶୁଦ୍ର

ଶୁଦ୍(ଦ) ଚ(ତ)ଷା—ଦେ· ଵ ( ସ. ଶୂଦ୍ର ଓ କୃଷକରୁ )—ଚଷା-
Śud(da) cha(ta)shā ମାନଙ୍କର ଶ୍ରେଣୀବିଶେଷ—A class
of Chashās. [ଅନ୍ୟ ଶ୍ରେଣୀମାନଙ୍କୁ
ଓଡ଼ଚଷା ବୋଲାଯାଏ । ]

ଶୂଦ୍ରଚାଷା ଶୂଦ୍ରକିସାନ

ଶୁଦ—ଦେ· ଵ—୧ । ( ସ. ଶୂଦ୍ର )—ଶୂଦ୍ର—1. Śūdra. ୨ ।
Śuda (ସ. କୁଶୀଦ; ପା. ସୁଦ୍ ) ସୁଦ; ସୁଧ; କରଜ ଵଅଥିବା
ଟଙ୍କା ଉପରେ ମହାଜନଙ୍କୁ ଖାତକର ଦେୟ ଧନ; ବୃଦ୍ଧି
ଵଳନ୍ତର—2. Interest. ୩ । ( ସ. ଶୁଦ୍ଧ )—
ମୃତ ବ୍ୟକ୍ତିର ଶୁଦ୍ଧକ୍ରିୟା—3. The funeral;
obsequies.

ଶୂଦ୍ର ଶୂଦ୍ର
ସୁଦ
ଶୁଦ୍ଧ

ଶୁଦ ଅସଲ—ଦେ. ଵ ( ସହତର )—ସୁଧ ଓ ମୂଳ; କଳନ୍ତର ଓ ମୂଳ
Śuda asala ଟଙ୍କା—Interst and capital of a loan
ସୁদ আসল ସୁଦ ମୂଲ

ଶୁଦ ଖାଇବା—ଦେ. କ୍ରି—ଶୁଧ ଖାଇବା ( ଦେଖ )
Śuda khāibā Śudha khāibā ( See )

ଶୁଦ ଘର—ଦେ. ଵ—ଶୁଦ୍ଧ ଘର ( ଦେଖ )—Śuddha ghara
Śuda ghara ଶୁଦ୍ଧିକ୍ରିୟା ଶୁଦ୍ଧିକ୍ରିୟା ( See ).

ଶୁଦ ବିଆଜ—ଦେ· ଵ ( ପା. ଶୁଦ୍ ଓ ସ. ବ୍ୟାଜ )—( ଏକାର୍ଥକ
Śuda biāja ସହତର )—ସୁଦ; ସୁଧ—Interest
ସুদবেয়াজ ସୁଦବ୍ୟାଜ

ଶୁଦ(ଦୁ)ର—ଗ୍ରାମ୍ୟ. ଵ. ପୁଂ (ସ. ଶୂଦ୍ର)—ଶୂଦ୍ର (ଦେଖ)
Śuda(du)ra Śūdra (See)
(ଶୁଦୁରଣୀ, ଶୁଦୁଣୀ, ଶୁଦୁରୁଣୀ, ଶୁଦୁରଣୀ—ସ୍ତ୍ରୀ)

ଶୂଦୁର—ପ୍ରାଦେ (ପାଠଣା) ଵ—ଶୂଦ୍ର (ଦେଖ)
Śūdura Śūdra (See)

ଶୁଦ(ଧ) ଶିରାଦ(ଧ)—ଦେ. ଵ—ଶୁଦ୍ଧଶ୍ରାଦ୍ଧ (ଦେଖ)
Śuda(dha) śirāda(dha) Śnddha śrāddha (See)
ଶুদ্ধি শ্রাদ্ধ ଶୁଦ୍ଧ ଶ୍ରାଦ୍ଧ

ଶୁଦ ହେବା—ଦେ. କ୍ରି—ଶୁଦ୍ଧ ହେବା (ଦେଖ)
Śuda hebā Suddha hebā (See)
ଶুদ্ধি হওয়া ଶୁଦ୍ଧି ହୋନା

ଶୁଦି(ଦୀ,ଦ୍ଦି,ଦ୍ଦୀ)—ଦେ. ଵଣ—ଶୁଦ୍ଧ (ଦେଖ)
Śudi(dī,ddi,ddī) Sudi (See)

ଶୁଦ୍ଧ—ସ. ଵଣ ( ଶୁଧ୍ ଧାତୁ=ଶୋଧନ କରିବା; ପବିତ୍ର କରିବା+କର୍ତ୍ତୃ.
Śuddha ତ )—୧ । ନିର୍ଦ୍ଦୋଷ—1. Faultless. ୨ ।
(ଶୁଦ୍ଧତା[ତ୍ୱ]—ସ୍ତ୍ରୀ) ନିଷ୍ପାପ—2. Sinless. ୩ । ଅକଳଙ୍କ—
3. Blameless. ୪ । ନିଷ୍କଳଙ୍କ—4. Stainless.
୫ । ନିରଞ୍ଜନ; ନିର୍ମଳ—5. Clean. ୬ ।
ପରିଷ୍କୃତ—6. cleaned. ୭ । ପୂତ; ପବିତ୍ର—
7. Pure; holy. ୮ । ପବିତ୍ରୀକୃତ—8. Purified.
୯ । ଶୁଭ୍ର; ଶୁକ୍ଳ—9. White. ୧୦ । ପବିତ୍ରକାରୀ—
10. Purifying. ୧୧ । ଉଜ୍ଜ୍ୱଳ—11.Bright.
୧୨ । ସ୍ୱଚ୍ଛ—12. Transparent; pellucid. ୧୩ ।
ଅମିଶ୍ରିତ; ଖାଣ୍ଟି—13. Unadulterated; unmixed.
୧୪ । ଭ୍ରମଶୂନ୍ୟ—14. Free from
imstake, correct. ୧୫ । କେବଳ—15. Mere;
only, simple. ଦେ. ଵ ( ସ. ଶୁଦ୍ଧି )—୧ ।
ଅଶୌଚାନ୍ତେ କର୍ତ୍ତବ୍ୟ ଶୁଦ୍ଧିକ୍ରିୟା—1. Purificatory
ceremony after funerals. ୨ । ନିର୍ମଳତା;
ପବିତ୍ରତା—2. Cleanliness; purity. [ଯ—ଯମ
ମୋହର କେମନ୍ତ ଭଲ, ତାହାଙ୍କ ଚତ୍ତେ ଶୁଦ୍ଧ ନାହିଁ—
ଜଗନ୍ନାଥ· ଭାଗବତ । ] ପ୍ରାଦେ ( ଗଞ୍ଜାମ ) ଵ—ଗଞ୍ଜାମ
ଜିଲ୍ଲାର ଗାଟକ ଜାତି ଵଶେଷ—A Sudra caste of
the district of Gañjām.

ଶুদ্ধ
ଶୁଦ୍ଧ

ଶୁଦ୍ଧ ଅଶୁଦ୍ଧ ପୁରାଇ ଗାଇବ, ଲେଖନକାର ଦୋଷ ନ ଧରିବ—ଦେ. ପ୍ରବଚନ ( କ୍ୟଙ୍ଗୋକ୍ତି )—
Śuddha aśuddha purāi gāiba, lekhanakāra dosha na dhariba (ପୁସ୍ତକ ବା ଗ୍ରନ୍ଥାଦି ଲେଖିବା ବ୍ୟକ୍ତିର
ପାଠକଙ୍କ ଏଥିର ପ୍ରାର୍ଥନା; ଏଥିର
ଅର୍ଥ ) ଲେଖକର ଦୋଷକୁ ଗ୍ରନ୍ଥରେ
ରହି ଯାଇଥିବା ଅଶୁଦ୍ଧିମାନଙ୍କୁ ଶୁଦ୍ଧ
କରି ପାଠ କରିବ ଓ ଲେଖକକୁ
ଦୋଷ ନ ଦେବ—A couplet used bywriters
of manuscripts and intended as a request
to the readers ) please read
the teut iwthout minding the scribe's
mistakes.

ଶୁଦ୍ଧ ଚାରିଣୀ—ସ. ଵଣ. ସ୍ତ୍ରୀ ( ଶୁଦ୍ଧଚାରିନ୍+ସ୍ତ୍ରୀ.ଈ )—ନିଷ୍କଳଙ୍କଚରିତ୍ର-
Śuddha chāriṇī ବିଶିଷ୍ଟା ( ସ୍ତ୍ରୀ )—(woman ) Of
pure charactar or conduct.

ଶୁଦ୍ଧ ଚାରିତା—ସ. ଵ ( ଶୁଦ୍ଧଚାରିନ୍+ତା )—ପବିତ୍ରାଚରଣ—
Śuddha charitā Pure conduct.

ଶୁଦ୍ଧଚାରୀ—ସ. ଵଣ. ପୁଂ (ଶୁଦ୍ଧ+ଚର୍ ଧାତୁ+କର୍ତ୍ତୃ. ଇନ୍, ଶୁଦ୍ଧଚାରିନ୍;
Śuddhachāri ୧ମା· ୧ଵ )—ନିଷ୍କଳଙ୍କ ଚରିତ୍ରବିଶିଷ୍ଟ—
(ଶୁଦ୍ଧାଚାରିଣୀ—ସ୍ତ୍ରୀ) Of faultless or pure conduct.

ଶୁଦ୍ଧତା(ତ୍ୱ)—ସ. ଵ ( ଶୁଦ୍ଧ+ଭାବ· ତା, ତ୍ୱ )—୧ । ପବିତ୍ରତା—
Śuddhatā(twa) 1. Purity. ୨ । ଅନ୍ୟାନ୍ୟ ଅର୍ଥ ପାଇଁ

'ଶୁଦ୍ଧ' ତଳେ ନୋଟ୍ ଦେଖ—2. See the note under Śuddha for other meanings.

ଶୁଦ୍ଧଦତ୍—ସ. ବି. ପୁଂ ( ବହୁବ୍ରୀହି=ଶୁଦ୍ଧଦନ୍ତ ଯାହାର; ଦନ୍ତ ସ୍ଥାନରେ Śuddhadat ଦତ୍ ଆଦେଶ )—ଶୁଭ୍ରଦନ୍ତବିଶିଷ୍ଟ—Having (ଶୁଦ୍ଧଦତୀ—ସ୍ତ୍ରୀ) bright teeth.

ଶୁଦ୍ଧ ପୂତ—ସ. ବିଣ ( ଏକାର୍ଥକ ସହଚର )—ଶୁଦ୍ଧ ଓ ପବିତ୍ର—Suddha pūta Pure; pure and holy; clean and (ଶୁଦ୍ଧପୂତା—ସ୍ତ୍ରୀ) pure.

ଶୁଦ୍ଧ ପ୍ରେମରୂପା—ସ. ବି—କାବ୍ୟୋକ୍ତ ନାୟିକା ବିଶେଷ—A class Śuddh premarūpā of heroines in fiction. (ନାୟିକା ତଳେ ନୋଟ୍ ଦେଖ )—(See the notes under Nāyikā)

ଶୁଦ୍ଧ ପ୍ରେମା—ସଂ. ବି—ଶୁଦ୍ଧ ପ୍ରେମରୂପା ( ଦେଖ )
Śuddha premā Śuddha premarūpā (See )

ଶୁଦ୍ଧ ବୁଦ୍ଧ—ସଂ. ବିଣ. ପୁଂ—୧ । ମାୟାବିରହିତ—1. Free from Śuddha buddha illusion. ୨ । ସର୍ବଜ୍ଞତା—2. All-knowing.

ଶୁଦ୍ଧ ମତି—ସଂ ବି ( କର୍ମଧା=ଶୁଦ୍ଧ+ମତି )—୧ । ପବିତ୍ର ଚିତ୍ତ—Śuddha mati 1. Pure heart. ୨ । ପବିତ୍ର ମନ—2. Pure mind. ବିଣ ( ପୁଂ ଓ ସ୍ତ୍ରୀ ) ( ବହୁବ୍ରୀହି; ଶୁଦ୍ଧ ଅଟେ ମତି ଯାହାର )—ପବିତ୍ରଚେତାଃ—Pure-minded.

ଶୁଦ୍ଧ ମାଂସ—ସଂ (ବୈଦ୍ୟକ)—(ଶୁଦ୍ଧ=ଅସ୍ଥି ଅବମିଶ୍ରିତ+ମାଂସ)—Śuddha māṁsa ୧ । ଅସ୍ଥିହୀନ ଚର୍ବିଯୁକ୍ତ ଛାଗଳାଦିର ମାଂସ—1. Boneless meat stewed in ghee and boiled and flavoured with spice paste. [ବି—ପାକ ପାତ୍ରରେ ତେଲ ବା ଘୃତ ଦେଇ ସେଥିରେ ପ୍ରଥମେ ହେଙ୍ଗୁ ଓ ହଳଦୀ ଭାଜି ଛାଗାଦିଙ୍କ ଅସ୍ଥିରହିତ ମାଂସକୁ ଖଣ୍ଡ ଖଣ୍ଡ କରି ଧୋଇ ଜଳାଂଶ ଛାଡ଼ି ଘୃତ ବା ତେଲରେ ମୃଦୁ ଅଗ୍ନିରେ ଭାଜି ସାରି, ପରେ ପାଣି ଦେଇ ସିଦ୍ଧ କରିବ ଓ ଲବଣ ଦେବ । ପାକ ସିଦ୍ଧ ହେଲେ ବଟା ମସଲା ପାଣିରେ ଗୋଳାଇ ଦେଇଥିଲେ ଯୋଗ କରିବ । ଏହାକୁ ଶୁଦ୍ଧ ମାଂସ ବୋଲାଯାଏ । ଏହା ଅତ୍ୟନ୍ତ ଶୁକ୍ର-ବର୍ଦ୍ଧକ, ବଳକାରକ, ରୁଚିକର, ତ୍ରିଦୋଷନାଶକ, ଅଗ୍ନିପ୍ରସାଦକ ଓ ଧାତୁବର୍ଦ୍ଧକ ।] ୨ । ଦେବଦେବୀଙ୍କ ଉଦ୍ଦେଶ୍ୟରେ ଯଜ୍ଞ ଓ ବଳଦାନ ପ୍ରଭୃତିରେ ଉତ୍ସୃଷ୍ଟ ମାଂସ —2. Meat offered to Deities in Vedic sacrifice.

ଶୁଦ୍ଧ ମୁଖ—ସ. ବି—୧ । ସୁଖାସୃତ୍ ( ଦେଖ ) ( ଶବ୍ଦମାଳା )—Śuddha mukha 1. Sukhāyat (See) ୨ । ସୁଶିକ୍ଷିତ ଅଶ୍ୱ—2. A well-trained horse.

ଶୁଦ୍ଧ ଶିରାଧ—ଗ୍ରା. ବି ( ସ. ଶୁଦ୍ଧି ଓ ଶ୍ରାଦ୍ଧ )—ଶୁଦ୍ଧ ଶ୍ରାଦ୍ଧ ( ଦେଖ )
Śuddha śirādha Śuddha śrāddha ( See )

ଶୁଦ୍ଧ ଶ୍ରାଦ୍ଧ—ଦେ. ବି ( ସହଚର )—ହିନ୍ଦୁ ସମାଜରେ ଅନୁଷ୍ଠାନ ମୃତ୍ୟୁ Śuddha śrāddha ପରେ ପିଣ୍ଡଦାନାଦି ଓ ବ୍ରାହ୍ମଣମାନଙ୍କ ଶୌଚାନ୍ତ
ଶୁଦ୍ଧି ଶ୍ରାଦ୍ଧ ରୂପ କର୍ମ—Oblations of rice offered to
ଶୁଦ୍ଧ ଶ୍ରାଦ୍ଧ the departed spirits of men and purificatory rites in connection with obsequies.

ଶୁଦ୍ଧ ସତ୍ତ୍ୱ—ସ. ବିଣ. ପୁଂ ( ବହୁବ୍ରୀହି; ଶୁଦ୍ଧ ଅଟେ ସତ୍ତ୍ୱ ଯାହାର )—Śuddha satwa ପବିତ୍ରାତ୍ମା, ପବିତ୍ରଚେତାଃ—Righteous; ( ଶୁଦ୍ଧ ସତ୍ତ୍ୱା—ସ୍ତ୍ରୀ ) pure-souled; pure-minded.

ଶୁଦ୍ଧ ସୁବର୍ଣ୍ଣ—ସ. ବି ( କର୍ମଧା )—୧ । ଖାଣ୍ଟି ବା ଅନ୍ୟ ଧାତୁ ଅମିଶ୍ରିତ Śuddha subarṇa ସ୍ୱର୍ଣ୍ଣ—1. Pure or unalloyed gold. ୨ । ( ଲକ୍ଷଣାର୍ଥ ) ପବିତ୍ରାତ୍ମା—2. (figurative) Pure-minded.

ଶୁଦ୍ଧ ସ୍ନାତ—ସ. ବିଣ. ପୁଂ—ଶୁଦ୍ଧି ସ୍ନାତ ( ଦେଖ )
Śuddha snāta Śuddhi snāta ( See )
( ଶୁଦ୍ଧ ସ୍ନାତା—ସ୍ତ୍ରୀ )

ଶୁଦ୍ଧ ସ୍ନାନ—ସଂ. ବି—ଶୁଦ୍ଧି ସ୍ନାନ ( ଦେଖ )
Śuddha snāna Śuddhi snāna (See )

ଶୁଦ୍ଧ ସ୍ଫଟିକ—ସଂ. ବି ( କର୍ମଧା )—ସ୍ୱଚ୍ଛ ବା ଶୁଭ୍ର ସ୍ଫଟିକ—Bright Śuddha sphaṭika crystal; transparent quartz.

ଶୁଦ୍ଧାଚରଣ—ସଂ. ବି (କର୍ମଧା)—ପବିତ୍ର ଆଚରଣ—Pure conduct. Śuddhācharaṇa ବିଣ. ପୁଂ—ପବିତ୍ର ଆଚରଣ ବିଶିଷ୍ଟ—( ଶୁଦ୍ଧାଚରଣା—ସ୍ତ୍ରୀ ) Of pure character or conduct.

ଶୁଦ୍ଧାଚାର—ସଂ. ବି ( କର୍ମଧା )—ପବିତ୍ର ଆଚାର—Pure conduct. Śuddhāchāra ବିଣ. ପୁଂ ( ବହୁବ୍ରୀହି )—ଶୁଦ୍ଧାଚାରସ୍ପୃ; ପବିତ୍ରା-(ଶୁଦ୍ଧାଚାରା—ସ୍ତ୍ରୀ) ଚାରଯୁକ୍ତ—Of pure conduct.

ଶୁଦ୍ଧାଚାରୀ—ସଂ. ବିଣ. ପୁଂ ( ଶୁଦ୍ଧ+ଆଚାର+ଇନ୍; ଶୁଦ୍ଧାଚାରିନ୍, Śuddhāchāri ୧ମା. ୧ବ )—ପବିତ୍ରାଚାରଯୁକ୍ତ—Of pure ( ଶୁଦ୍ଧାଚାରିଣୀ—ସ୍ତ୍ରୀ ) actions.

ଶୁଦ୍ଧାନ୍ତ—ସଂ. ବି ( ବହୁବ୍ରୀହି; ଶୁଦ୍ଧ=ପବିତ୍ର ହୋଇଅଛି ଅନ୍ତ=ଶେଷ Śuddhānta ଯାହାର )—୧ । ଅନ୍ତଃପୁର; ଅନ୍ଦର ମହଲ; ଭିତର—1. Harem: the female apartment. ୨ । ଅନ୍ତଃପୁରର ସ୍ତ୍ରୀ—2. A house-wife. ୩ । ପରଦାନଶୀନ ସ୍ତ୍ରୀ—3. A woman observing the purdah system. ୪ । ଅଶୌଚାନ୍ତ—4. The final oblations at the end of the funerals.

ଶୁଦ୍ଧାନ୍ତଚର—ସଂ ବିଣ ଓ ବି ପୁଂ—ଅନ୍ତଃପୁରରେ ଚଳପ୍ରଚଳ ହେବା Śuddhāntachara ଭୃତ୍ୟ—An attendant in the [ ଶୁଦ୍ଧାନ୍ତରକ୍ଷ—ଅନ୍ୟରୂପ ] harem; (a male servant) having access to a harem.

ଶୁଦ୍ଧାନ୍ତ ବାସିନୀ—ସଂ. ବିଣ ( ଉପପଦ ତତ୍ପୁରୁଷ )—ପରଦାନଶୀନ୍ ସ୍ତ୍ରୀ; Śuddhānta bāsini ଅନ୍ତଃପୁରବାସିନୀ—( a woman ) Observing the privacy of the harem; pardānashin (woman).

ଶୁଦ୍ଧାନ୍ତ ରକ୍ଷକ—ସଂ. ବି. ପୁଂ —ଅନ୍ତଃପୁର ଜଗିବା ଭୃତ୍ୟ—
Śuddhānta rakshaka A servant who guards [ଶୁଦ୍ଧାନ୍ତ ରକ୍ଷିକା—ସ୍ତ୍ରୀ] the harem.

ଶୁଦ୍ଧାନ୍ତା—ସ. ବି. ସ୍ତ୍ରୀ ( ଶୁଦ୍ଧାନ୍ତ+ସ୍ତ୍ରୀ. ଅ ) —୧ । ରାଣୀ; ରାଜପତ୍ନୀ—
Śuddhāntā 1. A queen. ୨ । ରାଜାଙ୍କ ରକ୍ଷିତା ସ୍ତ୍ରୀ—2. A king's mistress or concubine. ୩ । ରାଜାଙ୍କ ଭୋଗଲ ବା ଘର ଝିଅ—3. A maid of the king's harem.

ଶୁଦ୍ଧାନ୍ତଃ କରଣ—ସଂ. ବି ( କର୍ମଧା )—ପବିତ୍ର ବା ନିର୍ମଳ ହୃଦୟ—
Śuddhāntah karaṇa Pure heart. ସଂ. ବିଣ. ପୁଂ (ଶୁଦ୍ଧାନ୍ତଃକରଣା—ସ୍ତ୍ରୀ) (ବହୁବ୍ରୀହି)—ପବିତ୍ର ହୃଦୟ (ବ୍ୟକ୍ତି)—Pure minded (person).

ଶୁଦ୍ଧା ଭକ୍ତି—ଫଳକାମନା ରହିତ ବା ନିଷ୍କାମ ଭକ୍ତି—
Śuddhā bhakti Selfless devotion.

ଶୁଦ୍ଧା ଶୁଦ୍ଧ—ସଂ. ବିଣ ଶୁଦ୍ଧ+ଅଶୁଦ୍ଧ)—ଶୁଦ୍ଧ ଓ ଅଶୁଦ୍ଧ—Correct
Śuddhā śuddha and incorrect; pure and impure; pure and mixed.

ଶୁଦ୍ଧି—ସ. ବି ( ଶୁଦ୍ ଧାତୁ+ଭାବ. ତି )—୧ । ଶୋଧନ—1. Purification. ୨ । ମାର୍ଜନା—2. Scouring; cleansing. ୩ । ସଂସ୍କାର—3. Purificatory rites. ୪ । ଶୁଦ୍ଧତା—4. Cleanness. ୫ । ପବିତ୍ରତା—5. Purity. ୬ । ନିର୍ମଳତା, ସ୍ୱଚ୍ଛତା—6. Clearness; transparency. ୭ । ଭ୍ରମଶୂନ୍ୟତା—7. Correcness. ୮ । ଭୁଲ ସଂଶୋଧନ—8. Correction. ୯ । ସଂସ୍କାର ବିଶେଷ; ପ୍ରାୟଶ୍ଚିତ୍ତ—9. Expiatory rites after pollution. ୧୦ । ଅଶୌଚାନ୍ତ ପ୍ରାୟଶ୍ଚିତ୍ତ—10. Expiatory or purificatory rites after funerals. ୧୧ । ଦୁର୍ଗା—11. The Goddess Durgā.
Śuddhi

ଶୁଦ୍ଧିକର—ସଂ. ବିଣ—ପବିତ୍ରତାବିଧାୟକ—
Śuddhikara Purifying.

ଶୁଦ୍ଧି କର୍ମ—ସଂ. ବି—୧ । ମୃତାହରେ କର୍ତ୍ତବ୍ୟ ଶୁଦ୍ଧିକ୍ରିୟା—1. Puri-
Śuddhi karma ficatory rites in funerals. ୨ । ପ୍ରାୟଶ୍ଚିତ୍ତ—2. Expiation; purificatory rites.

ଶୁଦ୍ଧି ପତ୍ର—ସଂ. ବି ( ଅଧୁନିକ )—ଛପା ପୁସ୍ତକରେ ଥିବା ଅଶୁଦ୍ଧ ବର୍ଣ୍ଣ
Śuddhi patra ଓ ସେ ସବୁ ପରିବର୍ତ୍ତରେ ପଠନୀୟ ଶୁଦ୍ଧବର୍ଣ୍ଣ ମାନଙ୍କର ତାଲିକା—A list of errors which appear in a printed book and their correction ( attached to the book ); corrigenda; errata.

ଶୁଦ୍ଧି ଶ୍ରାଦ୍ଧ—ସ. ବି ( ବୃଦ୍ଧ )—ଶୁଦ୍ଧ ଶ୍ରାଦ୍ଧ ( ଦେଖ )
Śuddhi śrāddha Śuddha śrāddha ( See )

ଶୁଦ୍ଧି ସ୍ନାତ—ସଂ. ବିଣ. ପୁଂ ( ଶୁଦ୍ଧି+ସ୍ନାତ; ମ. ପ. ଲୋ )—ଅଶୌ-
Śuddhi snāta ଚାନ୍ତେ ଯେ ସ୍ନାନ କରିଥାଏ—Having [ଶୁଦ୍ଧି ସ୍ନାତା—ସ୍ତ୍ରୀ ] taken a purificatory bath.

ଶୁଦ୍ଧି ସ୍ନାତା—ସଂ. ବିଣ. ସ୍ତ୍ରୀ—ରଜୋଦର୍ଶନ ପରେ ଋତୁସ୍ନାତା—
Śuddhi snātā ( a woman ) Who has taken a purificatory bath after menses.

ଶୁଦ୍ଧି ସ୍ନାନ—ସଂ. ବି ( ମ. ପ. ଲୋ; ଶୁଦ୍ଧି ଉପଲକ୍ଷରେ ସ୍ନାନ )—
Śuddhi snāna ୧ । ଅଶୌଚାନ୍ତ ସ୍ନାନ—1. Purificatory bath after funerals; expiatory bath. ୨ । ସ୍ତ୍ରୀମାନଙ୍କର ଋତୁସ୍ନାନ—2. The purificatory bath after the menses.

ଶୁଦ୍ଧୀକୃତ—ସଂ. ବିଣ (ଶୁଦ୍ଧ+ଅଭୂତତଦ୍‌ଭାବେ ଚ୍ୱି [ଈ]+କୃତ)—
Śuddhīkṛuta ବିଶୁଦ୍ଧୀକୃତ; ଯେଉଁ ଅଶୁଦ୍ଧ ବସ୍ତୁାଦିକୁ ଶୁଦ୍ଧ କରାଯାଇଥାଏ—Purified; consecrated.

ଶୁଦ୍ଧୋଦନ—ସ. ବି—(ନାମ)—ଶାକ୍ୟସିଂହ ବୁଦ୍ଧଙ୍କର ପିତା ଓ ମତା-
Śuddhodana ନ୍ତରରେ ପିତାମହ—The name of the father and (according to some the grand-father) of the Buddha. [ଦ୍ର—ହିମାଳୟର ପାଦଦେଶରେ ଓ ଅଯୋଧ୍ୟାର ଉତ୍ତରରେ ଅବସ୍ଥିତ କପିଳବାସ୍ତୁ ରାଜ୍ୟର ରାଜା । ଏ ରାଜା ଦଣ୍ଡପାଣିଙ୍କ ୨ ଟି କନ୍ୟା ମହାମାୟା ଓ ଗୌତମୀଙ୍କୁ ବିବାହ କରିଥିଲେ, ମହାମାୟାଙ୍କ ଗର୍ଭରେ ବୁଦ୍ଧଦେବ ଜନ୍ମଗ୍ରହଣ କରିଥିଲେ । ମତାନ୍ତରରେ ଶୁଦ୍ଧୋଦନ ବୁଦ୍ଧଦେବଙ୍କ ପିତାମହ ଓ ବୁଦ୍ଧଦେବଙ୍କ ପିତାଙ୍କ ନାମ ଶୁଦ୍ଧୋଦନ ।]

ଶୁଦ୍ର—ଗ୍ରା. ବି· ପୁଂ—(ସ. ଶୂଦ୍ର)—ଶୂଦ୍ର (ଦେଖ)
Śudra ଶୁଦ୍, ଶୁଦ୍ର Śūdra (See)
[ଶୁଦ୍ରାଣୀ—ସ୍ତ୍ରୀ]

ଶୁଧ୍ (ଧାତୁ)—ସ.—୧ । ଶୋଧନ କରିବା—1. To purify; to
Śudh (root) refine. ୨ । ପବିତ୍ର କରିବା—2. To hallow. ୩ । ଭ୍ରମ ସଂଶୋଧନ କରିବା—3. To rectify; to correct. ୪ । ପବିତ୍ରୀଭୂତ ହେବା—4. To become purified (Apte). ୫ । ସଫା କରିବା—5. To cleanse (Apte) ୬ । ଅନୁକୂଳ ବା ଶୁଭ ହେବା—6. To be auspicious or favourable (Apte). ୭ । (ଋଣ ଆଦି) ଶୁଝିବା—7. To clear off; to pay off; to liquidate (Apte). ୮ । ତଦନ୍ତ କରିବା—8. To investigate; to enquire [Apte] ୯ । (ମନ) ସନ୍ଦେହମୁକ୍ତ ହେବା—9. To have the doubts removed. [Apte].

ଶୁଧ୍—ଦେ. ବିଣ—( ସ. ଶୂଦ୍ର ଜାତୀୟ—1. Belonging to
Śudh ଶୁଦ୍, ଶୁଦ୍ର Śūdra caste. ୨ । (ସ. ଶୁଦ୍ଧ)—
ନିପାତ[ଦା] ସମୁଚ୍ଚୟ (ବିଶେଷ ବାଚକ ଶବ୍ଦ ସଙ୍ଗେ ଯୁକ୍ତ) କେବଳ—2. Mere; only. (ଯଥା—ଶୁଧ୍ ହାତର, ଶୁଧ୍ ମୁହଁ)

୩ । ଅମିଶ୍ରିତ—3. Unmixed. ବି.—(ସଂ. ଶୂଦ୍ର)-
୧ । ଶୂଦ୍ର—1. A śūdra. ୨ । ଏକଜାତୀୟ ଶୂଦ୍ର—
2. A class of Śūdras. କଣର ବିଣ.—(ସଂ.
ଶୁଧ୍[ଧ୍] ବିଲକୁଲ ଶୁଦ୍ଧ)—୧ । କେବଳ ମାତ୍ର—1. Merely.
୨ । ସମ୍ପୂର୍ଣ୍ଣରୂପେ—2. Fully; entirely;
directly. [ଯଥା—ଶୁଧ୍ ମିଛୁଆ ।] ଦେଶଜ. ବି—
সুদ सूद (ଫା· ସୁଦ)—ସୁଧ; କଲନ୍ତର—Interest.

ଶୁଧ ଉତ୍ତର —ଦେ. ବି—ଠିକ୍ ଉତ୍ତର ଦିଗ—Duenorth.
Śudh uttara সিদা[ধা] উত্তর सीधा उत्तर
[ଦ୍ର—ଏହିପରି ଶୁଧ୍ ପୂର୍ବ, ଶୁଧ୍ ପଶ୍ଚିମ, ଶୁଧ୍ ଦକ୍ଷିଣ ଆଦି ପ୍ରୟୋଗ ହୁଏ ।]

ଶୁଧ୍ କପିଳା —ଦେ. ବି—କପିଳବର୍ଣ୍ଣ ବିଶିଷ୍ଟ ଶୂଦ୍ର ବ୍ୟକ୍ତି—
Śudh kapilā A śūdra of tawny colour. কটা শুদ্র् कैल शूद्र
[ଦ୍ର—ବ୍ରାହ୍ମଣ କଳା, ଶୁଧ୍ କପିଳା ଯାହାକୁ ଦେଖି ଦୂରୁଁ ପଳା—ଢଗ ।]

ଶୁଧ୍ ଖୋର୍—ଦେଶଜ. ବିଣ. ଓ ବି—(ଫା· ସୁଦ୍‌ଖୋର)—୧ । କୁସୀଦ-
Śudh khor ଜୀବୀ—1. One who lives on the
সুধখোর सूदखोर interest on loans advanced by
[ସୁଧଖୋର, ଶୁଧ୍ ଖୋରଅ—ଅନ୍ୟରୂପ] him. ୨ । ଯେଉଁ
ବ୍ୟକ୍ତି ଖାତକମାନଙ୍କଠାରୁ ଅତ୍ୟଧିକ ସୁଧ ନିଏ—
2. An usurer.

ଶୁଧ୍ ଖୋରି—ଦେ. ବି—କୁସୀଦ ବ୍ୟବସାୟ—
Śudh khori সুধখোরি सूदखोरी Usury.

ଶୁଧ୍ ଚ(ଚ)ଷା—ଦେ. ବି—ଏକ ଜାତୀୟ ଚଷା—A class of
Śudh cha[ta]shā cultivators of the Śūdra
শূদ্রচাষা caste. [ଦ୍ର—ଚଷାମାନଙ୍କର ଅନ୍ୟ ଶ୍ରେଣୀକୁ ଓଡ଼ ଚଷା କୋହାଯାଏ ।]
शूद्रकिसान

ଶୁଧ୍ ପଗଳା(ଲା)—ଦେ. ବିଣ.—(ସଂ. ଶୁଦ୍ଧ ଓ ଫା. ପଗଲ୍)-ବଦ୍ଧ ପାଗଳ
Śudh pagalā [lā] বদ্ধ পাগল Stark mad.
बिलकुल पागल [ଶୁଧ୍ ପାଗଲ(ଳ)—ଅନ୍ୟରୂପ]

ଶୁଧ୍ ବଗୁ(ବୁ)ଲିଆ—ଦେ. ବି—ଅତ୍ୟନ୍ତ ବଗୁଲିଆ—
Śudh bagu[bu]liā Very wicked or wanton.
[ଶୁଧ୍ ବଗୁଲିଆ, ଶୁଧ୍ ବଦ(ଦ୍ମ)ଲିଆ—ଅନ୍ୟରୂପ]
পাকা দুষ্ট, পাকা বজ্জাত पक्का बदमाश

ଶୁଧ ମିଛ—ଦେ. ବି—(ସଂ. ଶୁଦ୍ଧ ଓ ମିଥ୍ୟାରୁ) ଯହିଁରେ ଲେଶ ମାତ୍ର ସତ୍ୟ ନାହିଁ—A totaly false thing; unmixed falsehood.
Śudh michha
ডাহা মিথ্যা
सरासर झूठ

ଶୁଧ୍ ମିଛୁଆ—ଦେ. ବିଣ ଓ ବି. ପୁଂ—ଅତ୍ୟନ୍ତ ମିଥ୍ୟାବାଦୀ—
Śudh michhuā An inveterate liar; a conformed liar.
ডাহা মিথ্যাবাদী सरासर झूठा
[ଶୁଧ୍ ମିଛେଇ—ସ୍ତ୍ରୀ] [ଦ୍ର—ଏହିପରି ଅନ୍ୟ ବିଶେଷ ଶବ୍ଦ ପୂର୍ବରେ ଅଧିକ୍ୟ ବା ଅତିଶୟାର୍ଥେ ଶୁଧ୍ ବ୍ୟବହାର ହୁଏ ।]

ଶୁଧ—ଦେ. ବି—(ସଂ. ଶୁଦ୍ଧ)—୧ । ଅଶୌଚାନ୍ତ, ଅନ୍ତ୍ୟେଷ୍ଟିକ୍ରିୟାର
Śudha শুদ্ধি शुद्ध ଶେଷରେ କର୍ତ୍ତବ୍ୟ କର୍ମ; ଶୁଦ୍ଧକ୍ରିୟା—
শুদ্ধ शुद्ध 1. Purificatory rites after the funerals.
୨ । ଶୂଦ୍ର—2. A śūdra. ୩ । ଚଷାମାନଙ୍କର
ଶ୍ରେଣୀଭେଦ—3. A caste of cultivators.
সুদ सूद ଦେଶଜ ବି.—(ଫା. ସୁଦ)—ସୁଧ; କୁସୀଦ—
4. Interest. ଦେ. ବିଣ —(ସଂ. ଶୂଦ୍ର)—୧ ।
ଶୂଦ୍ର ଜାତୀୟ—1. Belonging to śūdra caste. ୨ । (ସଂ. ଶୁଦ୍ଧ) ଅମିଶ୍ର—2. Unmixed
୩ । ଶୁଦ୍ଧ—3. Pure. ୪ । ଶୁଦ୍ଧ; କେବଳ—
4. Only; sole

ଶୁଧ କପିଳା—ଦେ. ବି—ଶୁଧ୍ କପିଳା (ଦେଖ)
Śudha kapilā Śudh kapilā [See]

ଶୁଧଖୋର—ଶୁଧ ଖୋର୍ (ଦେଖ)
Śudha khora Sudh khor [See]

ଶୁଧ ଘର—ଦେ. ବି ୧ । ମୃତବ୍ୟକ୍ତିର ଶୁଦ୍ଧିକ୍ରିୟା—1. Obsequies
Śudha ghara or funeral ceremony and puri-
শুদ্ধিশ্রাদ্ধ ficatory rites observed in the family
शुद्धश्राद्ध of a deceased ୨ । ମୃତବ୍ୟକ୍ତିର ଦଶାହ କ୍ରିୟା
(ଯେଉଁ ଦିନ କୁଟୁମ୍ବମାନେ ଖୌର ଓ ସ୍ନାନ କରି ଶୁଦ୍ଧ ହୁଅନ୍ତି)—2. The purificatory rites done on the 10th day of a man's death.

ଶୁଧବାଦ—ଗ୍ରା. ବି (ଜାରଥିକ ସହଚରି) ଶୁଦ୍ଧକ୍ରିୟା—
Śudhabādā Purificatory rites.

ଶୁଧ(ଧ୍ୟା) ବ୍ରାହ୍ମଣ—ଗ୍ରା· ବି ଯେଉଁ ବ୍ରାହ୍ମଣ ଦଶାହ କ୍ରିୟାରେ
Śudha [dhya] brāhmūṇa ପୌରୋହିତ୍ୟ କରେ; ଜଳଣ୍ଡ
শ্রাদ্ধব্রাহ্মণ ବ୍ରାହ୍ମଣ—A Brahmaṇa who officiates
श्राद्धब्राह्मण at the funeral obltiaons that are performed before the 11th day of one's death.

ଶୁଧ ବିଆଜ—ଦେ. ବି ଶୁଦ ବିଆଜ (ଦେଖ)—
Śudha biāja Suda biāja [See]

ଶୁଧମୂଳ—ଦେ. ବି ସୁଧ ବା କଲନ୍ତର ଓ ମୂଳ—Interest and
Śudha mūla cāpital of a loan.
(ସୁଧ ଅସଲ—ଅନ୍ୟରୂପ)
সুদআসল सुदमूल

ଶୁଧର(ରେ)ଇବା—ଦେ. କ୍ରି·ଶୁଧୁରାଇବା [ଦେଖ]
Śudharā (re) ibā Śudhurāibā [See]

ଶୁଧରାଣ—ଗ୍ରାଦେ·(ମେଦନୀପୁର) ବି—(ବଙ୍ଗଳାରୁ ଅନୁକୃତ) ଶୁଧୁରାଇବା
Śudharāṇa [ଦେଖ]—Śudhurāibā [See]
সুধরান सुधराना

ଶୁଧ[ଧ୍ୟ]ଶିରାଧ—ଗ୍ରା ଦେ.ବି [ସଂ· ଶୁଦ୍ଧି ଓ ଶ୍ରାଦ୍ଧ) ୧ । ଶୁଦ୍ଧଶ୍ରାଦ୍ଧ (ଦେଖ)
Śudha (dhya) śiraḍha 1. Suddha sraddha (See)
[ଶୁଧ ଶ୍ରାଧ(ଦ୍ଧ)—ଅନ୍ୟରୂପ] ୨ । ସହଚର—ମୃତବ୍ୟକ୍ତିର ଶୁଦ୍ଧିକ୍ରିୟା
শুদ্ধশ্রাদ্ধ शुद्धश्राद्ध ଓ ଶ୍ରାଦ୍ଧ—2. Offerings made

to the spirit of a deceased during the funerals and purificatory rites thereof.

**ଶୁଧ(ଧ୍ୟ)ସୁଆର**—ଦେ. ବି (ସଂ. ଶୁଦ୍ର ଓ ସୂପକାରରୁ) ପୁରୀ ଜଗନ୍ନାଥ **Śudha(dhya)suāra** ମହାପ୍ରଭୁଙ୍କ ଶୂଦ୍ର ସେବକ ବିଶେଷ— **शूद्र साइया** A class of Śūdra Sebakas of the Deity Jagannātha at Puri. [ଦ୍ର—ଜଗନ୍ନାଥଙ୍କୁ ପ୍ରଥମେ ଜଙ୍ଗଲରୁ ଆଣିଥିବା ବିଦ୍ୟାପତି ବ୍ରାହ୍ମଣ ଓ ତତ୍ପୂର୍ବେ ଜଗନ୍ନାଥଙ୍କୁ ଜଙ୍ଗଲରେ ପୂଜା କରିଥିବା ଶବର କନ୍ୟାର ଏମାନେ ବଂଶଧର ଅଟନ୍ତି। ଏମାନେ ସ୍ନାନ ପୂର୍ଣ୍ଣିମା ପରେ ଜଗନ୍ନାଥଙ୍କ ଦେହରେ ଲେପ ଲଗାଇବା ପାଇଁ ଗୁଣ୍ଡୁଚର ଖଳ ବାଟନ୍ତି । ଖଳ ବାଟିବା ଯୋଗୁଁ ଏମାନେ 'ସୂପକାର' ବା 'ସୁଆର' ଓ ବ୍ରାହ୍ମଣ ଔରସରେ ଶବରୁଣୀ ଗର୍ଭରୁ ଜାତ ହୋଇ ଥିବାରୁ 'ଶୂଦ୍ର' ନାମରେ ଅଭିହିତ]

**ଶୁଧ(ଧ୍ୟ) ହେବା**—ଦେ. କ୍ରି—ମୃତବ୍ୟକ୍ତିର କୁଟୁମ୍ବଗଣ ନିର୍ଦ୍ଦିଷ୍ଟ ଶୌଚ **Śudha(dhya)hebā** ଦିବସ ପରେ ସ୍ନାନାଦି କରି ପାକ ଯାହାଦି **শুদ্ধ হওয়া** **शुद्ध होना** ପରିବର୍ତ୍ତନ ପୂର୍ବକ ଶୁଦ୍ଧିଲାଭ କରିବା To undergo purificatory rites after a person's death. (Said of the kinsmen of a deceased)

**ଶୁଧାଇବା**—ଦେ. କ୍ରି (ସଂ. ଶୁଧ୍ ଧାତୁରୁ) ୧ । ସୁଝାଇବା; **Śudhāibā** ପରିଶୋଧ କରାଇବା—1. To cause to **শোধ করান** **परिशोध करवाना** repay. ୨ । (ସଂ. ଶୁଦ୍ଧ) **শোধন করা** **शुद्ध करना** ପରିଷ୍କାର କରିବା—2. To cleanse; **ব্যাখ্যান** **सुलझाना** to purify. ୩ । ସୁଧାଇବା, ଶୁଧୁରାଇବା (ଦେଖ)—3. Śudhāibā, śudhurāibā (See)

**ଶୁଧାର**—ଦେ. ବିଣ (ସଂ. ଶୁଦ୍ଧକୃତ କିମ୍ବା ସୁଧାର)—୧ । ରୋଗମୁକ୍ତ **Śudhāra** [ଦେହ]—1. Cured (body) ୨ । ନିୟମିତ— **সুস্থ** **सुस्थ** 2. Regular. [ଦ୍ର—ମୋ ଦେହ ଅବଧି ସୁଧାର ହୋଇ ନାହିଁ] ୩ । ସୁସ୍ଥ ଭାବାପନ୍ନ—3. Restored to health ୪ ।—୪ । (ସଂ. ଶୁଦ୍ଧ) ଶାନ୍ତ; ଯେ ଦୁଷ୍ଟ ନୁହେ— (ଶୁଧାରି, ଶୁଧାରେଇ—ସ୍ତ୍ରୀ) 4. Calm and quiet. ୫ । **শান্ত** ଦୋଷଶୂନ୍ୟ—5. Faultless. ୬ । ଯାହାର ଦୋଷମାନ **शान्त** ସଂଶୋଧିତ ହୋଇ ଯାଇଅଛି—6. Corrected; made faultless. ( ଦ୍ର—ଶୁଧାର ଘୋଡ଼ା; ଶୁଧାରଥା ନାହିଁ । )

**ଶୁଧାରିବା**—ଦେ. କ୍ରି—ଶୁଧୁରାଇବା (ଦେଖ) **Śudhāribā** Śudhurāibā. (See)

**ଶୁଧି**—ଗ୍ରା. ବି (ସଂ. ଶୁଦ୍ଧି)—ଶୁଦ୍ଧି (ଦେଖ) **Śudhi** Śudhi. (See)

**ଶୁଧିଆ**—ଗ୍ରା. ବିଣ (ସଂ. ଶୁଦ୍ଧ)—ଶୁଦ୍ଧ (ଦେଖ)— **Śudhia** **শুদ্ধ** **शुद्ध** Śuddha, (See) **শুদ্ধি** **शुद्धि** ବି—ଶୁଦ୍ଧ (ଦେଖ)—Śuddha (See)

**ଶୁଧିଆ ଘର**—ଗ୍ରା. ବି—ଶୁଦ୍ଧ ଘର (ଦେଖ) **Śudhia ghara** Śuddha ghara (See)

**ଶୁଧିଆ ହେବା**—ଗ୍ରା. କ୍ରି—ଶୁଧ ହେବା (ଦେଖ) **Śudhia hebā** Śudha hebā (See)

**ଶୁଧିଆ**—ଦେ. ବିଣ—୧ । ଶୁଦ୍ଧକ୍ରିୟା ସମ୍ବନ୍ଧୀୟ—1. Relating to **Śudhiā** purificatory and funeral rites. ୨ । ଯେ **যে শুদ্ধ হয়েছে** ବୌଣସି ମୃତବ୍ୟକ୍ତିଙ୍କ ଶୁଧ ହୋଇଅଛି— **जे शुद्ध हुआहै** 2. A kinsman who has performed the funerals of a deceased.

**ଶୁଧୁରା(ରେ)ଇବା**—ଦେ. କ୍ରି (ସଂ. ଶୁଧ୍ ଧାତୁ କିମ୍ବା ସୁଧାରରୁ; ଶୁଧୁରିବା **Śudhurā(re)ibā** କ୍ରିୟାର ଣିଜନ୍ତରୂପ )—୧ । କୌଣସି **সুধরান** ବ୍ୟକ୍ତିର ବା ବସ୍ତୁର ଦୋଷାଦିକୁ ସଂସ୍କୃତ କରାଇବା; **सुधराना** ସୁଧାରିବା—1. To correct the faults of a person or a thing. ୨ । ଅଶୁଦ୍ଧି ସଂଶୋଧନ କରିବା—2. To rectify a mistake; to amend. ୩ । କୌଣସି ବ୍ୟକ୍ତିର ଦୁଷ୍ଟାମି ବା ମନ୍ଦ ଆଚରଣକୁ ସଂଶୋଧନ କରିବା—3. To corrot or cure a person of his wickedness or bad character; to reform a person; to remove the blemishes of a person. ୪ । କୌଣସି ବିଷୟର ଅସୁବିଧାକୁ ଦୂର କରି ତାକୁ ସୁବିଧାଜନକ କରିବା—4. To bring order or regularity out of confusion; to improve a matter. ୫ । ରୁଗ୍ଣ ଶରୀରକୁ ଆରୋଗ୍ୟ କରିବା—5. To cure a person of illness. ୬ । ନିୟମାଧୀନ କରାଇବା— 6. To regulate. ୭ । ବେଧାରୁ ଧାରାକୁ ଆଣିବା— 7. To bring out method from chaos. ୮ । ମରାମତ କରିବା—8. To repair. ୯ । ନିୟମାଧୀନ କରିବା—9. To regulate.

**ଶୁଧୁରାଣ**—ପ୍ରାଦେ (ମେଦିନୀପୁର) ବି. ( ବଙ୍ଗଳାରୁ ଅନୁକୃତ )— **Śudhurāṇa** ଶୁଧୁରାଇବା କର୍ମ ( ଦେଖ )—The act of **সুধরান** correcting or regulating.

**ଶୁଧୁରିବା**—ଦେ. କ୍ରି (ଅକର୍ମକ; ସଂ. ଶୁଧ ଧାତୁ କ=ଶୁଦ୍ଧ କରଣରୁ **Śudhuribā** କିମ୍ବା ସୁଧାରରୁ)—୧ । ସଂସ୍କୃତ ବା ଶୋଧିତ **সুধর** ହେବା—1. To be corrected or reformed or **सुधरना** amended. ୨ । ଅନିୟମରୁ ନିୟମକୁ ଆସିବା— 2. To become regular; to be regulated. ୩ । ନିର୍ଦ୍ଦୋଷ ହେବା—3. To be faultless. ୪ । ରୋଗମୁକ୍ତ ହେବା—4. To be cured. ୫ । ଉନ୍ନତ କରିବା—5. To improve. ୬ । ଉନ୍ନତ ହେବା— 6. To be improved. (ଯଥା—ତା ମନ୍ଦ ଅଭ୍ୟାସ ଶୁଧୁରିଲା ନାହିଁ) ୭। ନିଜର ଚରିତ୍ର ସଂଶୋଧନ କରିବା— 7. To reform one's self. ୮ । ମରାମତ କରାଯିବା- 8. To be repaired.

ଶୁଧ୍ୟ—ଗ୍ରା. ବଣ (ସଂ. ଶୁଦ୍ଧ)—ଶୁଦ୍ଧ (ଦେଖ)—Śudha (See)
Śudhya ବ—ପିଠା ମଧ୍ୟରେ ଥିବା ପୂର—The contents
পূর ব୍ଦ put inside sandwich cakes.
(ଉ—ବାହାଣୀର କଥାରେ,
"କ ବାହ୍ମଣ ?—ଶୁଧ୍ୟ ବାହ୍ମଣ
କ ଶୁଧ ?—ପିଠା ମଧ୍ୟ ।")

ଶୁଧ୍ୟ ଘର—ଗ୍ରା. ବ—ଶୁଧ ଘର (ଦେଖ)
Śudhya ghara Śudhaghara, [See]

ଶୁନ୍(ଧାତୁ)—ସ—ଗମନକରିବା; ଗତିକରିବା—
Śun (root) To go; to move (Apte).

ଶୁନ୍—ଦେ. ବଣ (ସଂ ଶୂନ୍ୟ; ପ୍ରା ସୁଣ୍ଣ)—ଶୂନ୍ୟ (ଦେଖ)
Śun শুন্য शुन Śūnya (See)
ବ—ଶୁନ (ଦେଖ)—Śuna (See)

ଶୁନ୍ କରିବା—ପ୍ରାଦେ (କଟକ, ପୁରୀ) କ୍ରି—(ଶୃଙ୍ଖଳାର୍ଥ ଭାଷା)—
Śun karibā ପ୍ରସ୍ରାବ କରିବା—To make water.
বাহিরে যাওয়া पेसाब करना

ଶୁନ୍(ନ,ନୁ)ଗରବ(ଭ)—ଦେ. ବ.(ସଂ ଶୂନ୍ୟଗର୍ଭ)—ମୂର୍ଦ୍ଧଗର୍ଭ (ଦେଖ)
Śun(na,nu)garaba(bha) Mūrdha garbha (See)
শুন্যগবভ शून्यगर्भ

ଶୁନ୍[ନ,ନୁ]ଗାଡ଼ି—ଦେ. ବ [ଯେଉଁ ଗାଡ଼ି ଶୂନ୍ୟରେ ଅର୍ଥାତ୍ ମନୁଷ୍ୟ
Śun(na,nu)gārḍi ପଶୁ ଆଦିଙ୍କ ବଳପ୍ରୟୋଗ ବ୍ୟତିରେକେ
কলের গাড়ি कलकी गाडी ଚାଲେ]—୧ । କଳଗାଡ଼ି
[ଯଥା—ବୈଦ୍ୟୁତିକ ଗାଡ଼ି, ବାଇସାଇକଲ, ମଟର, ରେଳ
ଗାଡ଼ି ଆଦି)—1. A conveyance or vehicle
propelled by machine, electricity etc.
୨ । ବାଇସାଇକଲ୍—2. Bicycle.

ଶୁନ୍(ନ,ନୁ)ଚିତ—ଦେ. ବ—ଶୂନ୍ୟଚିତ (ଦେଖ)
Sun(na,nu) chiti Śunyachiti (See)

ଶୁନ୍[ନ,ନ]ଚିରା—ଦେ. ବ—ଶୂନ୍ୟଚିରା [ଦେଖ]
Śun(na,nu)chirā Śunyachirā (See)

ଶୁନ୍ ଦେବା—ଦେ. କ୍ରି [ଶୃଙ୍ଖଳାର୍ଥ ଭାଷା]—ଶୁନ ଦେବା [ଦେଖ]
Śun debā Suna debā (See).
[ଶୁନ୍ ପାଇବା, ଶୁନ୍ ନେବା—ବ ପର୍ଯ୍ୟାୟରୂପ]

ଶୁନ୍ ଚକର—ଦେ. ବ [ସଂ ଶୂନ୍ୟ + ଚକ୍ର]—ଶୂନ୍ୟଚକର [ଦେଖ]
Śun-chakara Śūnyachakara (see)
[ଶୁନ୍‌ଚକ୍ର—ଅନ୍ୟରୂପ]

ଶୁନ୍(ନ,ନୁ)ପ[ଫ,ଫୁ,ଫୋ]ଟ୍[ଟ,ଟା,ଟୁ]କା(କି)—ଦେ. ବ—୧। (ସଂ
Śun(na,nū) pa(pha,phu,pho)ṭ-(ṭa,ṭā,ṭu)kā(ki)
ফটকা शूनफटाका ଶୂନ୍ୟ ଓ ଫା. ଫଟାକା)—୧ । ଯେଉଁ ଫଟକା
ବନାଅଗ୍ନିରେ, ଅର୍ଥାତ୍ ଜଳେ ଅଘାତ କଲେ, ଫୁଟେ—
ফোসকা फफोला 1. Crackers. ୨ । (ସଂ
ଶୂନ୍ୟ ଓ ସ୍ଫୋଟକ)—ବିନା ଅଗ୍ନିରେ ଦେହରେ ଜନ୍ମିବା
ବିସ୍ଫୋଟକ; ବସିଫୋଟକା—2. Blisters appear-
ing in the body (without the body bein
scorched by fire).

ଶୁନ୍(ନ,ନୁ)ଫୁଲା—ଦେ. ବ (ସଂ ଶୂନ୍ୟ ଓ ଫୁଲ୍ଲ ଧାତୁଜ)—କିଛି ସ୍ପଷ୍ଟ
Śun(na,nu)phulā କାରଣ ନ ଥାଇ ଦେହର କୌଣସି ଅଂଶ
ফুলা फूला ଫୁଲିଯିବା—A swelling of any
part of the body without any assignable
cause or disease.

ଶୁନ୍(ନୁ)ବୟାନ୍—ଦେ. ବ [ସଂ ଶୂନ୍ୟ ଓ ବଚନ]—[ଶିଶୁରଞ୍ଜନ
Śun-(nu)bayān ପଦ]—ଯେଉଁ ଶିଶୁ ପ୍ରଥମେ ଚାଟଶାଳୀରେ
কথাশুন शूनयबाद् ପହଞ୍ଚି ଅବଧାନଙ୍କଠାରୁ ଶୁନ୍ ପାଏ ତାହାର
ଉଚ୍ଚାରଣ କରିବା ପଦ—A couple of words
used by the pupil who is the first to
arrive at the village-school and who
gets a light stroke with the teacher's
cane as a mark of appreciation.
[ଉ—ମା ମାରେ ! ଶୁନ୍‌ବୟାନ୍ ! ପାଠପଢ଼ା ବଡ଼ ଭୁଲଗ୍,
ହାତ ଗୋଡ଼ ଦୁଇ ଲାଗଇ ରେ, ପଶ୍ଚାତେ ବଡ଼ ସୁଖ—
ଶିଶୁରଞ୍ଜନ ଗୀତ ।]

ଶୁନ୍‌ବା—ପ୍ରାଦେ (ସମ୍ବଲପୁର) କ୍ରି—ଶୁଣିବା—
Śun-bā To hear.

ଶୁନ୍ ଶବଦ—ଦେ. ବ (ସଂ ଶୂନ୍ୟ ଶବ୍ଦ]—ଶୂନ୍ୟଶବଦ [ଦେଖ]
Śun-śabada Śūnyaśabada (See)
[ଶୁନ୍ ଶବ୍ଦ—ଅନ୍ୟରୂପ]
শুন্য শবদ शून शबद्

ଶୁନ୍‌ନ୍,(ନୁ)ଶାନ୍—ଦେ. ବଣ[ସଂ ଶୂନ୍ୟ+ଧ୍ୱନିମୂଳକ ସହଚର ଶବ୍ଦ]-
Śun(n,nu)śān ୧ । ନିର୍ଜନ—1. Lonely; solitary.
চুপচাপ चुपचाप ୨ । ନିସ୍ତବ୍ଧ—2. Still;
calm; quiet. ୩ । ନିଃଶବ୍ଦ—3. Soundless.
ବ—୧ । ନିସ୍ତବ୍ଧତା—1. Calmness. ୨ । ନିର୍ଜନତା-
2. Loneliness.

ଶୁନ—ସଂ ବ [ପୁଂ]—(ଶୁନ ଧାତୁ+କର୍ତ୍ତୃ ଅ)—କୁକୁର—Dog.
Śuna (ଶୁନୀ—ସ୍ତ୍ରୀ) ଦେ. ବଣ [ସଂ ଶୂନ୍ୟ]—୧ । ଶୂନ୍ୟ
শুন্য सून (ଦେଖ)—1. Śūnya (see) ୨ । ନିର୍ଜନ-
2. Lonely. ୩ । ନିଃଶବ୍ଦ—3. Soundless.
୪ । ନିସ୍ତବ୍ଧ—4. Still ୫ । ଫମ୍ପା; ଖାଲି—
5. Empty. ୬ । ଯହିଁର କାରଣ ଲକ୍ଷିତ ନ ହୁଏ—
6. Having no assignable cause to
account for. ୭ । ଆକାଶରୁ ବା ଶୂନ୍ୟରୁ ଜାତ-
7. Born of or produced from the sky.
୮ । ନିଷ୍ଫଳ—8. Fruitless; vain. ଦେ. ବ—
শূন্য शूनी ୧। ଶୂନ୍ୟ; ଆକାଶ—1. The sky; the
void. ୨ । ଶୂନ୍ୟ ସଂଖ୍ୟା—2. Zero. ୩ । ଚାଟଶାଳୀରେ
ସର୍ବପ୍ରଥମେ ଆସି ପହଞ୍ଚିବା ବାଳକ ଅବଧାନଙ୍କଠାରୁ
ପୁରସ୍କାରସ୍ୱରୂପ ପାଇବା କୋମଳ ବେତ୍ରାଘାତ—A light

stroke with the cane inflicted on the student who is the first to come to the village school.

**ଶୁନଃଶେଫ**—ସଂ ବି (ନାମ) ( ବହୁବ୍ରୀହି ଓ ଅଲୁକ୍ ସମାସ; ଶୁନଃ=ଶ୍ୱାନର+ଶେଫ=ଲିଙ୍ଗ ବା ଲାଙ୍ଗୁଡ଼ ଯାହାର )—ଜଣେ ଋଷିଙ୍କ ନାମ—
**Śunaḥśepha** The name of a sage. [ଦ୍ର—ସେ ପୁର ଶୁନଃଶେଫ ନାମ; ସକଳ ଗୁଣେ ଗୁଣଧାମ—ଜଗନ୍ନାଥଭାଗବତ] [ବି—ଏ ବିଶ୍ୱାମିତ୍ରଙ୍କ ଭଣଜା, ଋଚୀକ ଋଷିଙ୍କ ମଧ୍ୟମପୁତ୍ର; ଏହାଙ୍କ ମାତାଙ୍କ ନାମ ସତ୍ୟବତୀ । ଇକ୍ଷ୍ୱାକୁ ଅଯୋଧ୍ୟାର ରାଜା ଅମ୍ବରୀଷଙ୍କ ଯଜ୍ଞୀୟ ପଶୁ ହରଣ କରବାରୁ ରାଜା ଯଜ୍ଞବେଦୀର ପ୍ରାୟଶ୍ଚିତ୍ତସ୍ୱରୂପ ନରବଳ ଦେବାପାଇଁ ଏହାଙ୍କୁ କିଣିଲେ ଓ ଅଯୋଧ୍ୟା ଯାଉଁ ଯାଉଁ ବାଟରେ ବିଶ୍ୱାମିତ୍ରଙ୍କ ଆଶ୍ରମରେ ରହିଲେ । ଶୁନଃଶେଫ ବିଶ୍ୱାମିତ୍ରଙ୍କର ଶରଣାର୍ଥୀ ହେବାରୁ ବିଶ୍ୱାମିତ୍ର ତାହାଙ୍କୁ ଅଗ୍ନିସ୍ତବ ଶିଖାଇଦେଲେ ଏବଂ ସେହି ସ୍ତବ ବଳରେ ସେ ରାଜାଙ୍କ ଯଜ୍ଞାଗ୍ନିରୁ ଅକ୍ଷତ ହୋଇ ରକ୍ଷା ପାଇଲେ । ପରେ ବିଶ୍ୱାମିତ୍ର ଏହାଙ୍କୁ ପୋଷ୍ୟପୁତ୍ରରୂପେ ଗ୍ରହଣ କରି ଏହାଙ୍କୁ ଦେବରାତ ନାମ ଦେଲେ । ମତାନ୍ତରରେ ଐତରେୟ ବ୍ରାହ୍ମଣରେ ଲେଖା ଅଛି ଯେ, ଏ ଅଜୀଗର୍ତ୍ତ ମୁନିଙ୍କ ମଧ୍ୟମପୁତ୍ର । ରାଜା ହରିଶ୍ଚନ୍ଦ୍ର ଅପୁତ୍ରକ ଥିବାରୁ ଅଙ୍ଗୀକାର କରିଥିଲେ ଯେ, ସେ ପୁତ୍ରଲାଭ କଲେ ପୁତ୍ରକୁ ବରୁଣଙ୍କ ଠାରେ ବଳି ଦେବେ; କିନ୍ତୁ ପୁତ୍ରପ୍ରାପ୍ତି ପରେ ସେ ତାଙ୍କୁ ଅଙ୍ଗୀକାର ରକ୍ଷା ନ କରି ଟାଳୁ ଥାଆନ୍ତି । ତାଙ୍କ ପୁତ୍ର ରୋହିତ ଆପଣା ବଦଳରେ ବରୁଣଙ୍କ ଠାରେ ବଳି ଦେବାକୁ ଅଜୀଗର୍ତ୍ତ ମୁନିଙ୍କୁ ୧୦୦ ଟି ଗାଈ ଦେଇ ତାଙ୍କ ଠାରୁ ଶୁନଃଶେଫଙ୍କୁ କିଣିଲେ; କିନ୍ତୁ ଶୁନଃଶେଫ ବିଷ୍ଣୁ, ଇନ୍ଦ୍ର ଓ ଅନ୍ୟ ଦେବତାମାନଙ୍କୁ ସ୍ତବରେ ସନ୍ତୁଷ୍ଟ କରି ମୃତ୍ୟୁରୁ ରକ୍ଷା ପାଇଲେ । ତତ୍ପରେ ତାଙ୍କୁ ବିଶ୍ୱାମିତ୍ର ମୁନି ପୋଷ୍ୟପୁତ୍ରରୂପେ ଗ୍ରହଣ କଲେ । (ଆପ୍ଟେ) ।] ଦେ· ବି—(ସଂ. ଶୁନଃ=ଶ୍ୱାନର+ଶେଫ=ଲାଙ୍ଗୁଡ଼) କୁକୁରର ଲାଙ୍ଗୁଡ଼
The tail of a dog. [ଦ୍ର—ଶୁନଃଶେଫର ପ୍ରାୟେ ଭବେ, କି ଅର୍ଥ କରିବ ଉପାୟେ—ଜଗନ୍ନାଥ· ଭାଗବତ ।]

**ଶୁନକ**—ସଂ ବି (ପୁଂ)—(ଶୁନ+ସ୍ୱାର୍ଥେ· କ)—୧ । ଶ୍ୱାନ; କୁକୁର—
**Śunaka** 1. Dog. ୨ । କୁକୁର ଛୁଆ—2. A young dog (Apte). ୩ । (ନାମ) ଭୃଗୁ ବଂଶୀୟ ମୁନିବିଶେଷ; ଶୌନକ ଋଷିଙ୍କ ପିତା—3. The name of a sage; the father of sage Śaunaka. [ବି—ମହର୍ଷି ଶୁନକ କ୍ଷତ୍ରିୟ ଥିଲେ, ପରେ ବ୍ରାହ୍ମଣତ୍ୱ ଲାଭ କରିଥିଲେ ।]

**ଶୁନକ ଚିଲିକା**—ସଂ· ବି—ଚିଲିକା ୧ (ଦେଖ)
**Śunaka chilikā** Chilikā 1 (See)

**ଶୁନକ ଚିଲ୍ଲୀ**—ସଂ· ବି—ବଥୁଆ ଶାଗ ପରି ଏକ ପ୍ରକାର ଶାଗ—
**Śunaka chillī** A sort of pot-herb.

[ବି—ଏହା କଟୁ ରସ, ତୀକ୍ଷ୍ଣ ଏବଂ କଣ୍ଡୁ ଓ ବ୍ରଣ ରୋଗରେ ଉପକାରକ ।]

**ଶୁନ ଦେବା**—ଦେ. କ୍ରି—(ଅବଧାନ) ଚାଟଶାଳୀରେ ପ୍ରଥମେ ଉପସ୍ଥିତ
**Śuna debā** ଛାତ୍ରକୁ ପୁରସ୍କାରସ୍ୱରୂପ ନାମମାତ୍ର ବେତ ପ୍ରହାର
শূন দেওয়া କରିବା—(The teacher) To give a nomi-
शून देना nal stroke with the cane to the student who comes to the school first.

**ଶୁନ ନେବା**—ଦେ· କ୍ରି—( ଚାଟଶାଳୀରେ ପ୍ରଥମ ଉପସ୍ଥିତ ବାଳକ )
**Śuna nebā** ପୁରସ୍କାରସ୍ୱରୂପ ଅବଧାନଙ୍କ ଠାରୁ ନାମମାତ୍ର ବେତ
शूनलेना ପ୍ରହାର ଗ୍ରହଣ କରିବା—(a student) To get a [ଶୁନ ପାଇବା—ଅନ୍ୟରୂପ] nominal stroke with the cane from the teacher for his being the
শূন লওয়া first boy to come to the school.

**ଶୁନ(ନୁ)ବଳା**—ପ୍ରାଦେ. (ଶୋରୋ). ବି.—ଶଗଡ ଚକର ତୁମ୍ବର ଉପର
**Śuna(nu)baḷā** ମଝିରେ ବସା ଯାଇଥିବା ଲୁହାର ବଳୟ ବା ପାଟିଆ—The iron ring put round the navel of a cart wheel.

**ଶୁନଭ୍** (ଧାତୁ)—ସଂ.—ଶୋଭା ପାଇବା—
**Śunabh** (root) To shine.

**ଶୁନ(ନ,ନୁ) ଭଦ୍ରା**—ଦେ. ବି—(ସଂ. ଶୋଣଭଦ୍ର) —ଶୋଣ ନଦୀ—
**Śun(na,nu) bhadrā** Soṇa nadī (See)
শোনভদ্রা सोनभद्रा

**ଶୁନ(ନୁ)ହଟ**—ଦେ. ବି—(ନାମ)—( ସଂ. ଶୋଣିତ ପୁର )—ବାଲେଶ୍ୱର
**Śuna(nu)haṭa** ସହରର ଗୋଟିଏ ସାହିର ନାମ—The name of a lane in the Balasore town. [ବି—ଏହା ବାଲେଶ୍ୱରର ପ୍ରସିଦ୍ଧ ସାମନ୍ତ (ଦାସ) ବଂଶୀୟ ଜମିଦାର ମାନଙ୍କର ଅଧ୍ୟୁଷିତ ଅଂଶ; ଏହା ବାଣାସୁରର ରାଜଧାନୀ ପ୍ରାଚୀନ ଶୋଣିତପୁର ଥିଲା ବୋଲି କିମ୍ବଦନ୍ତୀ ଅଛି ।]

**ଶୁନାଏବା**—ପ୍ରାଦେ. (ସମ୍ବଲପୁର) କ୍ରି—ଶୁଣାଇବା—
**Śunāebā** To make one hear.

**ଶୁନାଶୀ(ସୀ)ର**—ସଂ. ବି—୧ । ଇନ୍ଦ୍ର; ଦେବରାଜ—
**Śunā śi(sī)ra** 1. Indra; the king of the Gods. [ଶୁନାସୀର—ଅନ୍ୟରୂପ] ୨ । ପେଚକ—2. The owl

**ଶୁନି**—ସଂ. ବି. (ପୁଂ)—(ଶୁନ ଧାତୁ+କର୍ତ୍ତୃ. ଇ)—ଶ୍ୱାନ; କୁକୁର—
**Śuni** The dog.

**ଶୁନିଆ**—ଗ୍ରା. ବି. ଓ ବିଣ—(ସଂ. ଶୂନ୍ୟ) → ଶୂନ୍ୟ (ଦେଖ)
**Śuniā** Sūnya (See)

**ଶୁନୀ**—ସଂ. ବି.ସ୍ତ୍ରୀ—(ଶ୍ୱନ+ଈ, ନିପାତନ; ଅଥବା ଶୁନ+ଈ)—କୁକୁରୀ;
**Śunī** କୁତ୍ତୀ—Bitch.

**ଶୁନୀର**—ସଂ. ବି - (ବହୁବଚନ)—୧ । କୁକୁର ପଲ—1. A pack
**Śunīra** of dogs. ୨ । କୁକୁରୀ ସମୂହ—(ପ୍ରକୃତିବାଦ)—2. A number of bitches (Apte).

ଶୁନୁ—ଗ୍ରା. ବ.—(ସଂ. ଶୂନ୍ୟ)—୧ । ଶୂନ୍ୟ ସଂଖ୍ୟା—1. Zero.
Śunu शून्य शून्य ୨ । ଶୁନ (ଦେଖ)—2. Śuna (See) ବିଣ.—ଶୂନ୍ୟ (ଦେଖ)=Śūnya (See)

ଶୁନ୍‌ଗରବ(ଭ)—ଦେ. ବ—ଶୁନ୍‌ ଗରବ (ଦେଖ)
Śunu garaba(bha) Sun-garaba (See)

ଶୁନେ ଶୁନେ—ଦେ. କ୍ରି. ବିଣ—ଶୂନ୍ୟେ ଶୂନ୍ୟେ; ଭୂମି ସ୍ପର୍ଶ ନ କରି—
Śune śune शून्ये शून्ये Without touching the शून्यशून्यमें ground. [ ଉ—ତାକୁ ୩ ଜଣ ମଣିଷ ଶୁନେ ଶୁନେ ଟେକି ନେଇଗଲେ ।]

ଶୁନ୍ଧ୍ (ଧାତୁ)—ସଂ.—ଶୁଦ୍ଧ କରିବା—
Śundh (root) To purify.

ଶୁନ୍ଧ୍ୟୁ—ସଂ. ବ—(ଶୁନ୍ଧ୍ ଧାତୁ+କର୍ତ୍ତୃ. ଯୁ)—୧ । ଅଗ୍ନି—
Śundhyu 1. Fire. ୨ । ବାୟୁ—2. Wind; air (Apte) ୩ । ଘୋଟକୀ—3. Mare (Apte).

ଶୁନ୍ୟ (ଇତ୍ୟାଦି)—ଗ୍ରା. ବ. ଓ ବିଣ—ଶୂନ୍ୟ ଇତ୍ୟାଦି (ଦେଖ)
Śunya (etc) Śūnya etc. (See)

ଶୁପ୍—ଟଙ୍କିଦେ. ବ—(ଇଂ. ସୁପ୍)—ମାଂସର ଝୋଳ—
Śup सूप सूप Soup.

ଶୁପଣ(ନ,ଲ,ନେ,ଲେ,(ଖା)ଖୀ)—ଗ୍ରା. ବ. ସ୍ତ୍ରୀ—(ସଂ. ଶୂର୍ପଣଖା)—
Śupana(na,le; ne,la)khā(khī) ଶୂର୍ପଣଖା (ଦେଖ) शूर्पनखा सूर्पनखा Sūrpaṇakhā (See)

ଶୁବ (ଇତ୍ୟାଦି)—ଗ୍ରା. ବ ଓ ବିଣ—(ସଂ. ଶୁଭ)—ଶୁଭ (ଦେଖ)
Śuba (etc) शुभ शुभ Śubha etc (See) ବ.—(ସଂ. ସ୍ରୁବ) ସ୍ରୁବ [ଦେଖ]—Śruba [See]

ଶୁବ ଖବର—ଗ୍ରା. ବ—ଶୁଭ ଖବର (ଦେଖ)
Śuba khabara शुभ खबर Śubha khabara [See] शुभ खबर

ଶୁବଚନୀ—ଗ୍ରା. ବ—[ସଂ. ଶୁଭଚଣ୍ଡୀ] ଶୁଭଚଣ୍ଡୀ (ଦେଖ)
Śubachani सुवचनी शुभचण्डी Śubha chaṇḍī [See]

ଶୁବିବା—ଦେ. କ୍ରି—ଶୁଭିବା (ଦେଖ)
Śubibā Śubhibā (See)

ଶୁଭ୍ (ଧାତୁ)—ସଂ. ୧ । ଦୀପ୍ତି ପାଇବା—1. To shine. ୨ । ଶୋଭା
Śubh (root) ପାଇବା—2. To look splendid. ୩ । ସୁଖୀ ହେବା—3. To be happy (Apte). ୪ । ଜୟଯୁକ୍ତ ହେବା—4. To be victorious (Apte).

ଶୁଭ—ସଂ. ବ ( ଶୁଭ୍ ଧାତୁ+କର୍ତ୍ତୃ. ଅ )—୧ । କଲ୍ୟାଣ; ମଙ୍ଗଳ—
Śubha 1. Blessing; welfare; bliss. ୨ । ସୁଖ—2. Happiness. ୩ । ଯୋଗ ବିଶେଷ—3. A sort of abstraction or meditation. ୪ । ସୌଭାଗ୍ୟ—4. Good fortune or luck ୫ । ପଦ୍ମ କାଷ୍ଠ—5. A kind of fragrant wood. ୬ । ଅଳଙ୍କାର—6. An ornament (Apte). ୭ । ଜଳ—7. Water ( Apte ) ସଂ. ବିଣ—୧ । ଅମଙ୍ଗଳନାଶକ; ମଙ୍ଗଳମୟ—1. Auspicious. ୨ । ମନୋରମ—2. Pleasing. ୩ । ସୁନ୍ଦର—3. Beautiful; graceful; handsome. ୪ । ସୁଖୀ—4. Happy. ୫ । ସୌଭାଗ୍ୟଯୁକ୍ତ; ଭାଗ୍ୟବାନ୍—5. Fortunate; lucky. ୬ । ବିଦ୍ୱାନ୍—6. Learned

ବାଡ଼ିର ପତ୍ତନ ଦେଓୟା (Apte). ଦେ. ବ—ଗୃହର ଭିତ୍ତି ସ୍ଥାପନ शुभमनीव ରୂପ ମାଙ୍ଗଲ୍ୟ କର୍ମ—1. The religious ceremony of laying the foundation of a new house or building. ୨ । ନୂଆ ଘର ତୋଳା ହେବା ଆରମ୍ଭରେ ମଙ୍ଗଳକର୍ମ ସହିତ ପୋତା ଯିବା ପ୍ରଥମ ଖୁଣ୍ଟ—2. The first pillar put on the ground, at the beginning of a new house, with certain ceremonies.

ଶୁଭଂକର—ସ. ବିଣ ( ଶୁଭଂ=ଶୁଭକୁ କରେ ଯେ, ଶୁଭ+କୃ ଧାତୁ
Śubhaṁkara +କର୍ତ୍ତୃ. ଅ )—ମଙ୍ଗଳକର; ଶୁଭଜନକ—
(ଶୁଭଙ୍କର—ଅନ୍ୟରୂପ) Auspicious; lucky. ଦେ. ବ—ସୁନାମଖ୍ୟାତ ମାନସାଙ୍କ ସୂତ୍ର ପ୍ରଣେତା—Name of a Hindu mathematician. [ ଦ୍ର—ଶୁଭଂକର ବାଙ୍କୁଡ଼ାର ଭୁସନପୁରରେ ଅତି ପ୍ରତିଭାଶାଳୀ ମହାପୁରୁଷ ରୂପେ ଜନ୍ମଗ୍ରହଣ କରିଥିଲେ । ଏ ଗଣିତ ଶାସ୍ତ୍ରରେ ଧୁରନ୍ଧର ଥିଲେ । ଏ Leonarda-de-Vinciଙ୍କ ପରି ବିଦ୍ୱାନ ଥିଲେ । ସୂତ୍ର ସାହାଯ୍ୟରେ ଅତି ସହଜରେ ଗଣିତର ଜଟିଳ ସମସ୍ୟାମାନ ସମାଧାନ କରିବାରେ ସଯତ୍ନ ଜ୍ଞାନ ବଙ୍ଗଳାକୁ ଓ ଓଡ଼ିଶାକୁ ଏ ଦେଇଥିଲେ । ଏହାଙ୍କ ରଚିତ ସୂତ୍ର ପ୍ରାଚୀନକାଳରେ ବାଳକମାନଙ୍କୁ ଉତ୍ତମ ଗୃହିଣୀ କରିଥିଲା ଏବଂ ବୟଃସ୍ଥମାନେ ଏହି ସୂତ୍ରମାନଙ୍କ ସାହାଯ୍ୟରେ ହିସାବ ରଖି ପାରୁଥିଲେ । (୧୯।୯।୬୮ ଷ୍ଟେଟ୍‌ସ୍‌ମାନ୍ ଖବର କାଗଜର ସନ୍ଧ୍ୟାଦଶାଯୁ ସନ୍ଦର୍ଭ ।)

ଶୁଭଂକର ଦାସ ଜାତିରେ କାୟସ୍ଥ ଥିଲେ । ଏ ପ୍ରାୟ ୨୦୦ ବର୍ଷ ପୂର୍ବେ ବଙ୍ଗଦେଶରେ ଜନ୍ମଗ୍ରହଣ କରିଥିଲେ । ବଙ୍ଗଳାରେ ତାଙ୍କ ରଚିତ ସୁନ୍ଦର ମାନସାଙ୍କ ସୂତ୍ର କବିତା ଅଛି । ତହିଁର ଗୋଟିଏ ଉଦାହରଣ ଓଡ଼ିଆ ଅନୁକରଣ—

ଟଙ୍କା ପ୍ରତି ମହଣକୁ ହୋଇବ ଯେ ଦର
ତଙ୍କା ପ୍ରତି ଆଠ ଗଣ୍ଡା ସେର ପ୍ରତି ଧର ।
ଅଣା ପ୍ରତି ଦୁଇ କଡ଼ା, ଗଣ୍ଡା ଆଠ ତିଳ
ଶୁଭଙ୍କର ଦାସ କହେ ବଜାରର ମୂଲ ।(ବିଶ୍ୱକୋଷ)

ଏ କବିତାମାନଙ୍କୁ ବଙ୍ଗଦେଶରେ ଆର୍ଯ୍ୟା କହନ୍ତି । ଓଡ଼ିଶାରେ ମଧ୍ୟ ଜମିର କାଳି ଖୁଜିବା ପାଇଁ ଏହିପରି ସୁନ୍ଦର କବିତା ବା ସୂତ୍ର ଅଛି, କିନ୍ତୁ ସେସବୁ କିଏ ରଚନା କରିଥିଲେ, ତହିଁର ପ୍ରମାଣ ମିଳି ନାହିଁ ।]

ଶୁଭଂକର ଗଣିତ ସୂତ୍ର—ଦେ. ବ—ଶୁଭଙ୍କରଙ୍କ ପ୍ରବର୍ତ୍ତିତ ଅଙ୍କ ସୂତ୍ର—
Śubhaṁkara gaṇita sūtra The aphorisms for

solution of arithmetical calculation composed by Śubhaṁkara.

**ଶୁଭଂକରୀ**—ସ. ବି. ସ୍ତ୍ରୀ—ପାର୍ବତୀ; ଦୁର୍ଗା—Goddess Durgā.
Śubhaṁkarī ଦେ. ବି—ଶୁଭଂକରଙ୍କ ପ୍ରଦର୍ଶିତ ସୂତ୍ର ଅନୁସାରେ
ଶୁଭଙ୍କରୀ କଷା ଯାଉଥିବା ଏକପ୍ରକାର ଗାଣିତିକ ସମସ୍ୟା—Arithmetical problems solved with the help of Śubhṁkar's aphorisms.

**ଶୁଭଂକରୀ ଧାରା (ରୀତି, ସୂତ୍ର)**—ଦେ. ବି—ବସ୍ତୁର ମୂଲ୍ୟ ବା ପରିମାଣ
Śubhaṁkarī dhārā (rīti, sūtra) ବାହାର କରିବା
ଶୁଭଂକରୀ ରୀତି ପାଇଁ ବ୍ୟବହୃତ ସଂକ୍ଷେପଣବୋଧ ଗଣିତର ମାତ୍ର-
शुभंकरी नियम ସାଙ୍କ ସୂତ୍ର—Simple aphorisms for
[ଶୁଭଙ୍କର ବିଧି—ଅନ୍ୟରୂପ] calculating the price of commodities when wholesale rates are given [ଯଥା—ଘିଅ ମହଣକୁ ୪୫ ଟଙ୍କା ହେଲେ ୩ ସେର ଘିଅର ଦାମ କେତେ ? ଏ ପ୍ରଶ୍ନର ମୀମାଂସା କରିବାକୁ ଶୁଭଂକରୀ ସୂତ୍ର ଅଛି—
ଟଙ୍କା ପ୍ରତି ମହଣକୁ ହୋଇବ ଯେ ଦର
ଟଙ୍କା ପ୍ରତି ଅଠ ଗଣ୍ଡା ସେର ପ୍ରତି ଧର ।
ଅତଏବ ସେରେ ଘିଅର ଦାମ ୪୫×୮ ଗଣ୍ଡା=
୩୬୦ ଗଣ୍ଡା=ଅଠର ଅଣା=ଏକ ଟଙ୍କା ଦୁଇ ଅଣା;
୩ ସେର ଘିଅର ଦାମ ହେଲା ତିନି ଟଙ୍କା ଛଅ ଅଣା । ]

**ଶୁଭଂୟୁ**—ସ. ବିଣ (ଶୁଭଂ=ମଙ୍ଗଳ+ଅସ୍ତି ଅର୍ଥରେ ୟୁ)—୧ । ଶୁଭ-
Śubhaṁyu ଯୁକ୍ତ—1. Auspicious. ୨ । କୁଶଳୀ; ସୁଖୀ—2. Blessed; happy

**ଶୁଭକର**—ସ. ବିଣ. ପୁଂ (ଶୁଭ+କୃ ଧାତୁ+କର୍ତ୍ତୃ. ଅ)—୧ । ଶୁଭଦ;
Śubhakara ମଙ୍ଗଳକର—1. Auspicious. ୨ । ସୁଖ-
(ଶୁଭକାରକ, ଶୁଭକାରୀ—ଅନ୍ୟରୂପ) ପ୍ରଦ; ସୁଖକର—2. Causing happiness; pleasant.
ଶୁଭକରୀ, ଶୁଭକାରିକା, ଶୁଭକାରିଣୀ }—ସ୍ତ୍ରୀ

**ଶୁଭକର ଦେବ**—ଦେ ବି—ଶୁଭାକର ଦେବ (ଦେଖ)
Śubhakara deba Śubhākara deba (See)

**ଶୁଭକର କେଶରୀ**—ଦେ. ବି (ନାମ)—ଓଡ଼ିଶାର କେଶରୀବଂଶୀୟ
Śubhakara keśarī ଜଣେକ ରାଜା—The name of a king of the Keśarī dynasty of ancient Orissa. [ଦ୍ର—ଯାଜପୁର ସବଡିଭିଜନର ନେଉଳପୁରରେ ଅବସ୍ଥିତ ତାମ୍ରଶାସନ ଅନୁସାରେ ଏ ରାଜାଙ୍କୁ 'ବୌଦ୍ଧ ଅବତଂସକ ସୂତ୍ର' ନାମକ ଗୋଟିଏ ବୌଦ୍ଧ ଗ୍ରନ୍ଥ ଉପହାର ଦେଇଥିଲେ—ଚନ୍ଦ୍ରଶେଖର ଦାସ । ]

**ଶୁଭ କର୍ମ(କାର୍ଯ୍ୟ)**—ସ. ବି (କର୍ମଧା)—ମଙ୍ଗଳକାର୍ଯ୍ୟ—Auspicious
Śubha karma(kārjya) ceremony; festival.

**ଶୁଭ କାମନା**—ସ. ବି (ଶୁଭ+କାମନା; କର୍ମଧାରୟ ବା ୪ର୍ଥୀ ତତ୍)—
Śubha kāmanā ମଙ୍ଗଳ କାମନା; ଶୁଭେଚ୍ଛା; ଅନ୍ୟର ମଙ୍ଗଳ ପାଇଁ ଇଚ୍ଛା-Wish for good; good wishes.
ଶୁଭକାମ, ଶୁଭକାମୀ—ପୁଂ } ବିଣ
ଶୁଭକାମା, ଶୁଭକାମିନୀ—ସ୍ତ୍ରୀ }

**ଶୁଭ କ୍ଷଣ**—ସ. ବି (କର୍ମଧା)—ଶୁଭ ମୁହୂର୍ତ୍ତ (ଦେଖ)—
Śubha kshaṇa Śubha muhūrtta (See)

**ଶୁଭ ଖବର**—ଦେ. ବି—୧ । ଶୁଭ ସମ୍ବାଦ (ଦେଖ)—1. Śubha-
Śubha khabara sambāda (See) ୨ । କାହାର ବାଳ-
শুভখবর शुभखबर ବିବାହିତା ସ୍ତ୍ରୀଙ୍କର ପ୍ରଥମ ରଜୋଦର୍ଶନର ସମ୍ବାଦ—2. The news of a person's girl wife's attaining puberty.

**ଶୁଭ ଗ୍ରହ**—ସ. ବି—ସୌମ୍ୟ ଗ୍ରହ; ଶୁଭକାରକ ବା ଶୁଭଫଳଜନକ ଗ୍ରହ-
Śubha graha Auspicious planet. [ଦ୍ର—ଗୁରୁ, ଶୁକ୍ର, ଅର୍ଦ୍ଧାଧିକ ଚନ୍ଦ୍ର ଓ ପାପଗ୍ରହଯୁକ୍ତ ବୁଧ ଶୁଭଦାୟକ ଗ୍ରହ ଅଟନ୍ତି ]

**ଶୁଭଙ୍କର**—ସ. ବି ଓ ବିଣ—ଶୁଭଂକର (ଦେଖ)
Śubhaṅkara Śubhaṁkara (See)

**ଶୁଭଙ୍କରୀ**—ସ. ବି ଓ ବିଣ—ଶୁଭଂକରୀ (ଦେଖ)—
Śubhaṅkarī Śubhaṁkarī (See)

**ଶୁଭଚଣ୍ଡୀ**—ଦେ. ବି. ସ୍ତ୍ରୀ (ସ. ଶୁଭ ସୂଚନୀ)—ମଙ୍ଗଳ ଚଣ୍ଡୀ; ମଙ୍ଗଳା-
Śubha chaṇḍī ଠାକୁରାଣୀ—Name of a popular Goddess.
সুবচনি শুভচণ্ডী शुभचण्डी

**ଶୁଭ ଚନ୍ଦ୍ର**—ସ. ବି (ଜ୍ୟୋତିଷ)—କଲ୍ୟାଣୀ ଚନ୍ଦ୍ର; ଶୁକ୍ଳପକ୍ଷ ଓ କୃଷ୍ଣ-
Śubha chandra ପକ୍ଷରେ ଜନ୍ମ ଲଗ୍ନ ବ୍ୟକ୍ତିଙ୍କ ଜନ୍ମ ରାଶିଠାରୁ କେତେକ ଗୃହରେ ଥିବା ଚନ୍ଦ୍ରଗ୍ରହର ଶୁଭଫଳଦାୟୀ ଅବସ୍ଥାନ—Auspicious position of the moon in respect of person's horocope. [ଦ୍ର—'ତୃତୀୟେ ଦ୍ୱାଦଶେ କୃଷ୍ଣେ, ଶୁକ୍ଳେ ଦ୍ୱିନ୍ଦ୍ୱ ନବ ପଞ୍ଚକେ' ବଚନରୁ ଶୁକ୍ଳପକ୍ଷରେ ୪ର୍ଥ ଓ ୨ୟ ଚନ୍ଦ୍ର ଓ କୃଷ୍ଣ ପକ୍ଷରେ ୨ୟ, ୯ମ ଓ ୫ମ ଚନ୍ଦ୍ର ଶୁଭକର । ]

**ଶୁଭ ଚିନ୍ତକ**—ସଂ. ବିଣ ପୁଂ—ଯେ ଅନ୍ୟ ବ୍ୟକ୍ତିର ମଙ୍ଗଳ ଚିନ୍ତା ବା
Śubha chintaka ବାଞ୍ଛା କରେ—Wishing good to another; wishing another's welfare.
(ଶୁଭ ଚିନ୍ତିକା—ସ୍ତ୍ରୀ)

**ଶୁଭ ଚିନ୍ତନ**—ସଂ. ବି—ମଙ୍ଗଳ ବିଷୟ ଚିନ୍ତା କରିବା—Thinking
Śubha chintana about the welfare or good.

**ଶୁଭଚିନ୍ତା (ଭାବନା)**—ସଂ. ବି କୌଣସି ବ୍ୟକ୍ତିର ମଙ୍ଗଳ ପାଇଁ
Śubha chintā(bhābanā) ଚିନ୍ତା—Wish or thought for the welfare; good wishes for a person.

**ଶୁଭ ଚେଷ୍ଟକ**—ସଂ. ବିଣ ପୁଂ—ଅନ୍ୟର ମଙ୍ଗଳ ପାଇଁ ଚେଷ୍ଟାକାରୀ—
Śubha cheshṭaka Endeavouring to do good to a person.
(ଶୁଭଚେଷ୍ଟିକା—ସ୍ତ୍ରୀ)

**ଶୁଭ ଚେଷ୍ଟା**—ସଂ. ବି—୧ । ଅନ୍ୟର ମଙ୍ଗଳ କରିବାକୁ ଯତ୍ନ—1.
Śubha cheshṭā Endeavour to do good to a person. ୨ । ମଙ୍ଗଳମୟ ଯତ୍ନ—2. Good or noble endeavour.

ଶୁଭ ଜନକ—ସଂ. ବଣ. ପୁଂ—ଶୁଭଦ (ଦେଖ)
Śubha janaka Śubhada (See)
(ଶୁଭ ଜନକା—ସ୍ତ୍ରୀ)

ଶୁଭଦ—ସଂ. ବଣ ପୁଂ (ଶୁଭ+ଦା ଧାତୁ+କର୍ତ୍ତୃ ଅ)—ଯାହା ଶୁଭ-
Śubhada ପ୍ରଦାନ କରେ; ସୌଭାଗ୍ୟପ୍ରଦ—Auspicious; bringing about good luck.
ଶୁଭପ୍ରଦ, ଶୁଭପ୍ରଦାୟକ, ଶୁଭଦାତା, ଶୁଭଦାୟୀ }—ଅନ୍ୟରୂପ—
ବି:—ଅଶ୍ୱତ୍ଥ ବୃକ୍ଷ—Ficus Religiosa tree.
ଶୁଭଦା, ଶୁଭପ୍ରଦା, ଶୁଭପ୍ରଦାୟିକା, ଶୁଭଦାତ୍ରୀ, ଶୁଭଦାୟିନୀ }—ସ୍ତ୍ରୀ

ଶୁଭ ଦଣ୍ଡ—ସଂ: ବି—ଶୁଭ ମୁହୂର୍ତ୍ତ (ଦେଖ)
Śubha daṇḍa Śubha muhūrtta (See)

ଶୁଭ ଦନ୍ତ—ସଂ ବଣ ପୁଂ-(ବହୁବ୍ରୀହି)-ସୁନ୍ଦର ଦନ୍ତ ବିଶିଷ୍ଟ (a perron)
Śubha danta Having a beautiful set of teeth.
(ଶୁଭଦନ୍ତୀ—ସ୍ତ୍ରୀ)

ଶୁଭ ଦର୍ଶନ—ସଂ. ବଣ. ପୁଂ [ବହୁବ୍ରୀହି]—୧ । ଯାହାର ମୁହଁ ଦେଖିଲେ
Śubha darśana ଦର୍ଶକର ଶୁଭ ଘଟେ—1. (a person) The
(ଶୁଭଦର୍ଶନା-ସ୍ତ୍ରୀ) sight of whose face is auspicious.
[ଦ୍ର—ସକାଳୁ ଉଠି ବ୍ୟକ୍ତିବିଶେଷଙ୍କ ମୁହଁ ପ୍ରଥମେ ଦେଖିଲେ ଦେଖିବା ବ୍ୟକ୍ତିର ଶୁଭ ଘଟେ ଓ ବ୍ୟକ୍ତିବିଶେଷଙ୍କ ମୁହଁ ଦେଖିଲେ ଅଶୁଭ ଘଟେ ବୋଲି ଲୋକ ବିଶ୍ୱାସ ଅଛି ।]
୨ । ସୁନ୍ଦର; ସୁଶ୍ରୀ [ବିଶ୍ୱକୋଷ] 2. Beautiful; graceful.

ଶୁଭଦୃଷ୍ଟ—ଗ୍ରା. ବି—ସଂ. ଶୁଭଦୃଷ୍ଟିର ଅଶୁଦ୍ଧ ବ୍ୟବହାର—
Śubhadṛushṭa The incorrect spelling of
শুভাদৃষ্ট शुभादृष्ट Śubhādṛushṭa.

ଶୁଭ ଦୃଷ୍ଟି—ସଂ. ବି (କର୍ମଧା)—୧ । ମଙ୍ଗଳଜନକ ଦୃଷ୍ଟି—1. Aus-
Śubha dṛushṭi picious look. ୨ । ଦୟାକୃପାପୂର୍ଣ୍ଣ ଦୃଷ୍ଟି—2. Kind look. ୩ । ଅନୁକୂଳ ଦୃଷ୍ଟି—3. Favourable look. ୪ । ବିବାହକାଳରେ ବର ଓ କନ୍ୟାଙ୍କର ଶୁଭଲଗ୍ନରେ ପରସ୍ପର ପ୍ରତି ପ୍ରଥମ ଦୃଷ୍ଟି—4. The first ceremonial interview between the bride and the bridegroom at the marriage in an auspicious moment.

ଶୁଭ ଦେବା—ଦେ. କି—ନୂଆ ଘରର ମୂଳଖୁଣ୍ଟ ସ୍ଥାପନ ବା ପ୍ରଥମ ଖୁଣ୍ଟ
Śubha debā ପୋତିବା—To lay the foundation
बाड़ीबपत्तनकरा stone or the first pillar of a house
शुभ[नीव] देना to be newly constructed.
(ଶୁଭ ପକା[ଦେ]ଇବା—ଅନ୍ୟରୂପ)

ଶୁଭ ଦ୍ୱେଷ—ସଂ. ବି (୬ଷ୍ଠୀ ତତ୍ )—ଅପରର ମଙ୍ଗଳ ବିଷୟରେ ହିଂସା,
Śubha dwesha ପରଶ୍ରୀକାତରତା—Envy at another's welfare.

ଶୁଭ ଦ୍ୱେଷକ—ସଂ. ବଣ. ପୁଂ—ଯେ ପରର ଉନ୍ନତି ସମ୍ବନ୍ଧରେ ହିଂସା
Śubha dweshaka କରେ—Envious of another's welfare.
(ଶୁଭଦ୍ୱେଷୀ—ଅନ୍ୟରୂପ)
[ଶୁଭଦ୍ୱେଷିକା, ଶୁଭଦ୍ୱେଷିଣୀ—ସ୍ତ୍ରୀ]

ଶୁଭ ଧ୍ୟାନ—ସଂ. ବି(୬ଷ୍ଠୀତତ୍ ବା ୭ମୀତତ୍)—ଶୁଭ ଚିନ୍ତା (ଦେଖ)
Śubha dhyāna Śubha chintā. (See)

ଶୁଭଧ୍ୟାୟୀ(ତା)—ସଂ. ବଣ. ପୁଂ (ଶୁଭ+ଧ୍ୟୈ ଧାତୁ+କର୍ତ୍ତୃ. ଣିନ୍+
Śubhadhyāyī(tā) ତୃ; ୧ମା. ୧ବ)—ଶୁଭଚିନ୍ତକ (ଦେଖ)
[ଶୁଭଧ୍ୟାୟିନୀ, ଶୁଭଧ୍ୟାତ୍ରୀ—ସ୍ତ୍ରୀ] Śubha chintaka. (See)

ଶୁଭନା—ଗ୍ରା. ବି. ପୁଂ (ସଂ. ଶୋଭନ)—ଲୋକଙ୍କ ନାମ—
Śubhanā A name given to a male.
(ଶୁଭନୀ—ସ୍ତ୍ରୀ)

ଶୁଭନାମା—ସଂ. ବି—ଶୁକ୍ଳପକ୍ଷର ପଞ୍ଚମୀ, ଦଶମୀ ଓ ପୂର୍ଣ୍ଣିମାତିଥି (ବିଶ୍ୱ-
Śubhanāmā କୋଷ)—The 5th and 10th days of the bright lunar fortnight and the full-moon day.

ଶୁଭ ପଡ଼ିବା—ଦେ. ଅ. କ୍ରି—ଗୃହର ପ୍ରଥମ ଖୁଣ୍ଟ ବା ମୂଳଖୁଣ୍ଟ ଆଦିର
Śubha paṛibā ପ୍ରଥମ ସ୍ଥାପନ—The laying of the
পত্তনপড়া foundation stone or the first pillar of
शुभ(नीव) पड़ना a new house.
[ଶୁଭ ପଡ଼ା(ଡେ)ଇବା—ପ୍ରେରଣାର୍ଥ]

ଶୁଭ ପତ୍ରିକା—ସଂ. ବି (ବୈଦ୍ୟକ)—ଶାଳପର୍ଣ୍ଣୀ (ଦେଖ)
Śubha patrikā Śālaparṇṇī. (See)

ଶୁଭ ବଧେଇ—ଦେ. ବି—ପୁତ୍ରଜନ୍ମ, ସ୍ତ୍ରୀର ପ୍ରଥମ ଗର୍ଭୋଦର୍ଶନ ଆଦି
Śubha badhei ଶୁଭ ସଂବାଦ ଆଣିଥିବା ବ୍ୟକ୍ତିକୁ ଦିଆଯିବା
শুভ সংবাদের পুরস্কার ପୁରସ୍କାର—Reward given to a
शुभबधाई messenger of happy news.

ଶୁଭ ବାଚକ—ସଂ. ବଣ (ଅଦ୍ଭୁତ)—ଅଶୁଭ ବା ଅମଙ୍ଗଳସୂଚକ ଶବ୍ଦ ବା
Śubha bāchaka ବାକ୍ୟଦ୍ୱାରା ପ୍ରକାଶିତ ନ ହୋଇ ଶୁଭସୂଚକ ବାକ୍ୟଦ୍ୱାରା କୌଣସି ବିଷୟର ପ୍ରକାଶକ (ବାକ୍ୟ ବା ଭାଷା)—Euphemistic (language or expression)

ଶୁଭ ବାଚନ—ସଂ. ବି (ଅଧିକର)—ଅଶୁଭସୂଚକ, କର୍କଶ ବା ଅପ୍ରୀତିକର
Śubha bāchana ଶବ୍ଦ ପ୍ରୟୋଗ ନ କରି, ତହିଁ ପରିବର୍ତ୍ତେ ଶୁଭସୂଚକ, ଶ୍ରୁତିମଧୁର ଓ ପ୍ରୀତିକର ବାକ୍ୟର ବା ଶବ୍ଦର ପ୍ରୟୋଗ; କଠୋର ବା ଅଶୁଭ ବିଷୟର କୋମଳ ବା ଶୁଭସୂଚକ ବାକ୍ୟଦ୍ୱାରା ପ୍ରକାଶ—Euphemism.
[ଦ୍ର—ସବୁ ଦେଶରେ କଠୋର, ଅପ୍ରିୟ ବା ଅଶୁଭ ବିଷୟକୁ କୋମଳ, ମଧୁର ବା ଶୁଭସୂଚକ ଶବ୍ଦ ବା ବାକ୍ୟଦ୍ୱାରା ପ୍ରକାଶ କରିବା ରୀତି ଅଛି । ଇଂରାଜୀରେ ଏହାକୁ Euphemism ବୋଲାଯାଏ । ଓଡ଼ିଆ ଭାଷାରେ ଏଥିର କୌଣସି ପ୍ରତିଶବ୍ଦ ନ ଥିବାରୁ ଶୁଭବାଚକ (Euphemistic) ଓ ଶୁଭବାଚନ (Euphemism) ଶବ୍ଦଦ୍ୱୟ ଏ ଗ୍ରନ୍ଥରେ ଯଥାସ୍ଥାନରେ ବ୍ୟବହୃତ ହୋଇଅଛି । ଶୁଭବାଚନର ଉଦାହରଣ—

ତାକୁ ସାପ କାମୁଡ଼ିଲା ବୋଲି ନ କହି "ତାକୁ ଦାଠି ବା ଲଥ ଛୁଇଁଲା", ସଧବା ସ୍ତ୍ରୀ ହାତରୁ ଖଡ଼ୁ କାଢ଼ିଲି ବୋଲି ନ କହି "ଖଡ଼ୁ ଶୀତଳେଇଲା", ହାଟ ମରଗଲା ବୋଲି ନ କହି 'ହାଟ ବସିଗଲା', ସନ୍ତାନଟି ମରଗଲା ନ କହି ପିଲାଟି 'ବାହୁଡ଼ିଗଲା', ଖାଇବା ଜିନିଷ ବନ୍ଦୁଦନ ଉଡ଼ିଯିବା ଯୋଗୁଁ ଶରାଇଲାଣି ବୋଲି ନ କହି 'ବାସିଗଲାଣି', ବାପା ମରଗଲେ ବୋଲି ନ କହି 'ବୈକୁଣ୍ଠଗାମୀ ହେଲେ' ବୋଲି ବୋଲାଯାଏ । ଏ ଭଳିକୁ 'ଶୁଭବାଚନ' ବୋଲାଯାଏ ଓ ଏ ଓ ଶବ୍ଦ ବାକ୍ୟମାନଙ୍କୁ ଶୁଭବାଚକ ବୋଲାଯାଏ । ]

ଶୁଭ ବାସନ—ସଂ.ବି—ସୁଗନ୍ଧବାସନ; ମୁଖବାସନ ଗନ୍ଧଦ୍ରବ୍ୟ (ଶବ୍ଦରତ୍ନାବଳି)
Śubha bāsana Scented spices for chewing.

ଶୁଭ ମଙ୍ଗଳ—ଦେ ଶ ଓ ବିଣ (ଏକାର୍ଥକ ସହଚର)—ମଙ୍ଗଳ; ଶୁଭ—
Śubha maṅgala Good fortune; bliss.

ଶୁଭ ମୁହୂର୍ତ୍ତ(ଲଗ୍ନ)—ସଂ. ବି (କର୍ମଧା)—୧ । ଶୁଭକ୍ଷଣ; ମଙ୍ଗଳସୂଚକ
Śubha muhūrtta(lagna) ଅତ୍ୟଳ୍ପମାତ୍ର ସମୟ—
1. Auspicious moment. ୨ । ଯେଉଁ ମୁହୂର୍ତ୍ତରେ କାହାରି କଲେ ଭବିଷ୍ୟତରେ ମଙ୍ଗଳ ଘଟେ—
2. A moment which crowns any work done therein with success and bliss.

ଶୁଭ ଯୁକ୍ତ(ତ)—ସଂ. ବିଣ (ତୃତୀ ତତ୍)—ମଙ୍ଗଳମୟ—
Śubha jukta(ta) Lucky; auspicious.
(ଶୁଭସଂଯୁତ—ଅନ୍ୟରୂପ)

ଶୁଭ ଯୋଗ—ସଂ. ବି (କର୍ମଧା)—ମଙ୍ଗଳମୟ ଯୋଗ ବା ସୁଯୋଗ—
Śubha joga Auspicious combination or opportunity,

ଶୁଭ ଲକ୍ଷଣ—ସଂ.ବି (କର୍ମଧା)-ମଙ୍ଗଳମୟ ଚିହ୍ନ—Auspicious sign.
Śubha lakshaṇa ବିଣ. ପୁଂ (ବହୁବ୍ରୀହି) ଶୁଭଲକ୍ଷଣଯୁକ୍ତ; ସୁଲକ୍ଷଣ—Having auspicious signs.
(ଶୁଭଲକ୍ଷଣା—ବିଣ.ସ୍ତ୍ରୀ)
[ଦ୍ର—ଶୁଭଲକ୍ଷଣା ଲକ୍ଷ୍ମୀ ତାହାଙ୍କ ଭର୍ତ୍ତ୍ରୀ ଥିଲେ— କୃଷ୍ଣସିଂହ ମହାଭାରତ । ]

ଶୁଭଶଂସୀ—ସଂ. ବିଣ. ପୁଂ (ଶୁଭ+ଶନ୍ସ୍ ଧାତୁ=କହିବା+କର୍ତ୍ତୃ ଇନ୍
Śubha śaṁsī ୧ମା, ୧ବ)—ଯାହା ମଙ୍ଗଳର ସୂଚନା କରେ-
( ଶୁଭଶଂସିନୀ—ସ୍ତ୍ରୀ ) Which indicates bliss or good luck.

ଶୁଭ ସଂକଳ୍ପ—ସଂ ବି (କର୍ମଧା)—ମଙ୍ଗଳମୟ ସଂକଳ୍ପ; ଶୁଭେଚ୍ଛା—
Śubha saṁkalpa Benificial resolution; good wish,

ଶୁଭ ସମ୍ବାଦ—ସଂ. ବି (କର୍ମଧା) ମଙ୍ଗଳମୟ ବା ସୁଖକର ଖବର; ସୁସମ୍ବାଦ—Happy or lucky
Śubha sambāda news; glad tidings,

ଶୁଭ ସୂଚକ—ସଂ. ବିଣ—ମଙ୍ଗଳଜ୍ଞାପକ—
Śubha sūchaka Indicating good; auspicious.
(ଶୁଭସୂଚିକା—ସ୍ତ୍ରୀ)

ଶୁଭ ସୂଚନ(ନା)—ସଂ ବି— ମଙ୍ଗଳଜ୍ଞାପନ—
Śubha sūchana(nā) Indication of luck or good,

ଶୁଭସୂଚନୀ—ସଂ ବି. ସ୍ତ୍ରୀ—ଦୁର୍ଗା; ଶୁଭଚଣ୍ଡୀ; ଦେବୀବିଶେଷ; ମଙ୍ଗଳା—
Śubha sūchanī A popular Goddess.
ଶୁବଚନୀ সুবচনী [ ଦ୍ର—କୌଣସି କାର୍ଯ୍ୟର ଶୁଭ ବା ମଙ୍ଗଳମୟ ଫଳର ଆଶାରେ ସ୍ତ୍ରୀଲୋକମାନେ ଏ ଦେବୀଙ୍କୁ ପୂଜା ମନାସନ୍ତି ଓ କାର୍ଯ୍ୟସିଦ୍ଧିପରେ ପୂଜା କରନ୍ତି; ସ୍ତ୍ରୀଲୋକମାନେ ଏହାଙ୍କୁ ପୂଜା କରନ୍ତି ଓ ଏହାଙ୍କ ବ୍ରତ କଥା ଶୁଣନ୍ତି । ଏହାଙ୍କ ଧ୍ୟାନ—
ରକ୍ତା ପଦ୍ମଭୂମିର୍ଣ୍ଣୀ ତ୍ରିନୟନା ସ୍ୱର୍ଣ୍ଣାଦିଭୂଷା‌ଲଂକୃତା
ପୀନୋତ୍ତୁଙ୍ଗକୁଚଦ୍ୱୟା ନବବଧୂ ହଂସାଧିରୂଢ଼ାପରା ।
ବ୍ୟାଖ୍ୟାନଦନ୍ତୀ କମଣ୍ଡଳୁକରା ଖାଡ୍ଗିକହସ୍ତା ଶିବା
ଧ୍ୟେୟା ସା ଶୁଭସୂଚନୀ ତ୍ରିଜଗତାମାପଦ୍ଧାରିଣୀ—
ଶବ୍ଦକୋଷ । ]

ଶୁଭସ୍ୟ ଶୀଘ୍ରଂ—ସଂ. ପ୍ରବଚନ—ଶୁଭକାର୍ଯ୍ୟ ଶୀଘ୍ର କରିବା କର୍ତ୍ତବ୍ୟ—
Śubhasya śīghram (a proverb) An auspicious work should be undertaken early.
[ ଦ୍ର—ଏଥିର ସମ୍ପୂର୍ଣ୍ଣ ବାକ୍ୟ—
ଶୁଭସ୍ୟ ଶୀଘ୍ରଂ
ଅଶୁଭସ୍ୟ କାଳହରଣଂ । ]

ଶୁଭ ସ୍ତମ୍ଭ—ସଂ ବି—୧ । ଯାଜପୁରର ବିରଜାଦେବୀ ଓ ବରାହନାଥଙ୍କ
Śubha stambha ଦେଉଳର ମଧ୍ୟବର୍ତ୍ତୀ ସ୍ଥାନରେ ସ୍ଥାପିତ ସ୍ତମ୍ଭ—A stone pillar found in Jajpur between the temples of Birajā and Barāhanātha. [ ଦ୍ର—କଥିତ ଅଛି—ରାଜା ଯାଜପୁରରେ ଯଜ୍ଞ କଲା ସମୟରେ ଏହିଠାରେ ଶୁଭ ଦେଇ ଏ ସ୍ତମ୍ଭ ପୋତିଥିଲେ ।

ଇତିହାସ ମତରେ—ଯଯାତିକେଶରୀ ଯେତେବେଳେ ଦଶାଶ୍ୱମେଧ ଯଜ୍ଞ ସମ୍ପାଦନ କରି ଏହି ଯାଜପୁର ନଗର ବସାଇ ଥିଲେ, ସେତେବେଳେ ଏହିଠାରେ ଶୁଭ ଦେଇଥିଲେ । ଏହି ସ୍ତମ୍ଭ ୩୭ ଫୁଟ ଉଚ୍ଚ । ପୂର୍ବେ ବିଷ୍ଣୁଙ୍କ ବାହନ ଗରୁଡ଼ର ମୂର୍ତ୍ତି ଏହାର ଶିଖରରେ ଥିଲା । କଳାପାହାଡ଼ ସେହି ମୂର୍ତ୍ତିକୁ ସ୍ତମ୍ଭ ଉପରୁ ତଳକୁ ଖସାଇ ପକାଇଥିଲା । ଯାଜପୁରଠାରୁ ଏକ ମାଇଲ ଦୂରବର୍ତ୍ତୀ ମାଧପୁରରେ ଗୋଟିଏ ମନ୍ଦିର ତୋଳା ହୋଇ ସେଠାରେ ଏହି ଗରୁଡ଼ ମୂର୍ତ୍ତି ରଖା ଯାଇଥିଲା—(ଚନ୍ଦ୍ରଶେଖର ଦାସ) ।

କିମ୍ବଦନ୍ତୀ ଅଛି ଯେ, ଏ ସ୍ତମ୍ଭର ଯେତେ ଅଂଶ ଭୂମିର ଉପରକୁ ଦେଖା ଯାଉଅଛି, ମାଟି ତଳେ ତହିଁର ସେତିକି ଅଂଶ ପୋତା ହୋଇଅଛି ।] ୨ । ନୂଆ ଘର ତୋଳା ଯିବା ପୂର୍ବରୁ ବାସ୍ତୁ ପୂଜା ଆଦି କରାଯାଇ ଓ ମୂଳ ଖୋଳାଯାଇ ମୂଳଦୁଆରେ ଯେଉଁ ପ୍ରଥମ ଖୁଣ୍ଟ ପୋତାଯାଏ—
2. The first pillar which is put when the foundation is laid with certain rites for building a new house. ୩ । କୌଣସି ଶୁଭକାର୍ଯ୍ୟ ଉପଲକ୍ଷରେ ପୋତାଯିବା ଖୁଣ୍ଟ—3 A pillar put on some auspicious occasion,

ଶୁଭା—ସଂ. ବିଣ.(ସ୍ତ୍ରୀ)—ଶୁଭର ସ୍ତ୍ରୀଲିଙ୍ଗ—Feminine of Subha,
Śubhā ବି (ସ୍ତ୍ରୀ)—୧ । କାନ୍ତି—1 Brightness; brilliance. ୨ । ଇଚ୍ଛା—2. Wish; desire. ୩ । ଶୋଭା—3. Splendour; beauty. ୪ । ଦେବସଭା—4. The assemblage or meeting of the Gods ୫ । ପାର୍ବତୀଙ୍କ ସଖୀବିଶେଷ—5. Name of a female companion of Pārbatī. ୬ । ଅଙ୍ଗିରସଋଷିଙ୍କ ସ୍ତ୍ରୀ—6. The wife of sage Aṅgirā. (ଉ—ବ୍ରହ୍ମାଙ୍କର ପୁଅ ତ ଅଙ୍ଗିରା ହୋଇଲେ, ଶୁଭା ନାମେ ଭାରଯା ଗୋଟିଏ ସେ କଲେ—କୃଷ୍ଣସିଂହ ମହାଭାରତ ।) ୭ । ବଂଶଲୋଚନା—7. A secretion found in Bamboo; manna of bamboo. ୮ । ଗୋରୋଚନା—8. A yellow pigment obtained from dead cows. ୯ । ଶମୀବୃକ୍ଷ—9 A tree; Acacia cuma. ୧୦ । ପ୍ରିୟଙ୍ଗୁ—10. A fragrant creeper; Agalia Roxbughiana. ୧୧ । ଶ୍ୱେତ ଦୁବ—11. A species of white creeping grass. ୧୨ । ମିଠିଙ୍ଗ ଶାଗ (ବିଶ୍ୱକୋଷ)—12. Trigonella Corniculata (pot herb). ୧୩ । ଶ୍ୱେତ ବଚ (ବିଶ୍ୱକୋଷ)—13. The white variety of Acorus Calamus. ୧୪ । ପାଠା; ଅକାନବିନ୍ଧ (ବିଶ୍ୱକୋଷ)—14. Stephania Hernandifolia (creeper). ୧୫ । ଶତାବ୍ଦୀ; ଶତପୁଷ୍ପ (ବିଶ୍ୱକୋଷ)—15. Dill seed.

ଶୁଭା(ଭେ)ଇବା—ଦେ. କ୍ରି (ଶୁ ଧାତୁ)—୧ । ଶୁଭବା କ୍ରିୟାର ଣିଜନ୍ତରୂପ—1. The causa-
Śubhā[bhe]ibā tive form of the verb Śubhibā ୨ । ଶୁଣାଇବା (ଦେଖ)—2. Śuṇāibā (See) ୩ । ଅନ୍ୟକୁ ଶୁଭିବା ପରି କଥା କହିବା—3. To speak loudly so as to be heard by another. (ଉ—୧ । ଧୃତରାଷ୍ଟ୍ର ରାଜାଙ୍କୁ ଶୁଭାଇ ସେ ଭୀମ, ବାହୁ ଶବ୍ଦ କରି କରନ୍ତି ଗର୍ଜନ—କୃଷ୍ଣସିଂହ ମହାଭାରତ । ୨ । ବାଲେ ଶୁଣିବା ପଦ ଶୁଭାଇ—ଭଞ୍ଜ ବୈଦେହୀଶ-ବିଳାସ ।)

ଶୁଭାକର ଗୁପ୍ତ—ଦେ. ବି (ନାମ)—ଜଣେ ବୌଦ୍ଧାଚାର୍ଯ୍ୟ ଓ ବୌଦ୍ଧ-
Śubhākara gupta ଗ୍ରନ୍ଥକାର (ବିଶ୍ୱକୋଷ)—Name of a Buddhist preceptor and author.

ଶୁଭାକର ଦେବ—ଦେ. ବି (ନାମ)—ଭୌମ ବଂଶର ଜଣେକ ରାଜା—
Śubhākara deba The name of a king of the Bhauma dynasty. [ବି—ଏ ପର୍ଯ୍ୟନ୍ତ ଭୌମ ବଂଶରେ ଷୋଳଜଣ ଶୁଭାକର ଦେବ ଥିବା ଜଣା ଯାଇଛି । ପ୍ରଥମ ଶୁଭାକର ଦେବ ପରମସୌଗତ (ବୌଦ୍ଧ) ଥିଲେ । ତାଙ୍କ ପରବର୍ତ୍ତୀ ଶୁଭାକରମାନେ ପରମମାହେଶ୍ୱର, ପରମଭଟ୍ଟାରକ, ମହାରାଜାଧିରାଜ, ପରମେଶ୍ୱର ପ୍ରଭୃତି ଚକ୍ରବର୍ତ୍ତୀ ଲକ୍ଷଣୋପେତ ବିରୁଦ ମାନ ଧାରଣ କରୁଥିଲେ । କେଦାରନାଥ ମହାପାତ୍ର ।]

ଶୁଭାକାଙ୍କ୍ଷା—ସଂ. ବି (କର୍ମଧା ଶୁଭ+ଆକାଙ୍କ୍ଷା)—କଲ୍ୟାଣକାମନା—
Śubhākāṅkshā Good wishes; wishes for welfare.

ଶୁଭାକାଙ୍କ୍ଷୀ—ସଂ. ବିଣ. ପୁଂ (ଉପପଦ ତତ୍ପୁରୁଷ, ଶୁଭ ଆକାଙ୍କ୍ଷା କରେ
Śubhākāṅkshī ଯେ)—ଯେ ଶୁଭ କାମନା କରେ—
(ଶୁଭାକାଙ୍କ୍ଷିଣୀ ଶୁଭାର୍ଥିନୀ—ସ୍ତ୍ରୀ) One who wishes good.
(ଶୁଭାର୍ଥୀ—ଅନ୍ୟରୂପ)

ଶୁଭାଗମନ—ସ. ବି(କର୍ମଧା)—ମଙ୍ଗଳଜନକ ଆଗମନ—Auspicious
Śubhāgamana arrival. [ବି—ମାନ୍ୟବ୍ୟକ୍ତିଙ୍କ ଆଗମନକୁ ଶୁଭାଗମନ ବୋଲାଯାଏ ।]

ଶୁଭାଙ୍ଗ—ସ ବି (କର୍ମଧା)—ସୁନ୍ଦର ଅବୟବ—Graceful limb.
Śubhāṅga ପୁଂ. ବିଣ (ବହୁବ୍ରୀହି)—ସୁନ୍ଦର ଅବୟବବିଶିଷ୍ଟ (ବ୍ୟକ୍ତି)—(a person) Having symmetrical limbs.
(ଶୁଭାଙ୍ଗୀ—ସ୍ତ୍ରୀ-ବିଣ)

ଶୁଭାଙ୍ଗୀ—ସ. ବି. ଓ ବିଣ. ସ୍ତ୍ରୀ—୧ । (ବହୁବ୍ରୀହି) କୁବେର ପତ୍ନୀ—
Śubhāṅgī 1. The wife of the God of wealth. ୨ । ସୁନ୍ଦରୀ ସ୍ତ୍ରୀ—2. A graceful lady. [ଉ—ନ ଭାଙ୍ଗ ରେ ଶୁଭାଙ୍ଗୀ ଭାବନା ତୁଅ ସାହା—କବିସୂର୍ଯ୍ୟ. କିଶୋରଚନ୍ଦ୍ରାନନ୍ଦ ଗୀତ ।] ୩ । କାମଦେବଙ୍କ ପତ୍ନୀ; ରତି ଦେବୀ—3. The wife of God Cupid.

ଶୁଭାଞ୍ଜନ—ସ. ବି—୧ । ଶୋଭାଞ୍ଜନ; ସଜନାଗଛ (ବିଶ୍ୱକୋଷ)—
Śubhāñjana 1. Moringa tree. ୨ । ରକ୍ତଶିଗ୍ରୁ (ବିଶ୍ୱକୋଷ)—2. The red-flowered variety of moringa tree.

ଶୁଭାଦୃଷ୍ଟ - ସ. ବି (କର୍ମଧା)—ସୌଭାଗ୍ୟ—
Śubhādrushṭa Good luck or fortune.
ସ. ବିଣ. ପୁଂ (ବହୁବ୍ରୀହି)—ଭାଗ୍ୟବାନ୍—Lucky.
(ଶୁଭାଦୃଷ୍ଟା—ସ୍ତ୍ରୀ-ବିଣ)

ଶୁଭାନୁଧ୍ୟାନ—ଦେ. ବି—ଶୁଭ ଚିନ୍ତନ (ଦେଖ)
Śubhānudhyāna Śubha chintana (See)

ଶୁଭାନୁଧ୍ୟାୟୀ(ତା)—ସ. ବିଣ. ପୁଂ (ଶୁଭ+ଅନୁ+ଧ୍ୟୈ+କର୍ତ୍ତୃ
Śubhānudhyāyī(tā) ଇନ୍; ତ)—ଯେ ଶୁଭ ଚିନ୍ତା କରେ—
(ଶୁଭାନୁଧ୍ୟାୟିନୀ—ସ୍ତ୍ରୀ) One who wishes good.

ଶୁଭାନୁଷ୍ଠାନ—ସ. ବି (କର୍ମଧା)—କଲ୍ୟାଣକର କାର୍ଯ୍ୟ—
Śubhānushṭhāna Auspicious or beneficial work.

ଶୁଭାନ୍ୱିତ—ସ. ବିଣ (ତୃତ୍ୟା ତତ୍)—ମଙ୍ଗଳଯୁକ୍ତ—Auspicious;
Śubhānwita lucky; fortunate.

ଶୁଭ୍ର ପାଇବା—ଦେ. କ୍ରି (ସଂ. ଶୁଭ୍ର=ଶୋଭା)—ଶୋଭା ପାଇବା—
Śubhā pāibā To shine; to look beautiful. [ଉ—ଶୋଭା ପାଓୟା ଅପେ ଶୁଭ୍ର ପାଉଥାଇ ଅପେ ଇନ୍ଦ୍ରଚ୍ଛନ୍ଦ—ପ୍ରାଚୀ
शोभा पाना ବୃନ୍ଦାବନ ଗୁଣଗୀତା ।]

ଶୁଭାଶୀର୍ବାଦ—ସଂ. ବି ( କର୍ମଧା )—କଲ୍ୟାଣକର ଆଶିଷ ବାକ୍ୟ—
Subhāśīrbāda ( ଶୁଭାଶିଷ—ଦେ. ରୂପ ) Blessing.
( ଶୁଭାଶିସ୍—ଅନ୍ୟରୂପ )

ଶୁଭାଶୁଭ—ସଂ. ବିଣ ( ବିପରୀତାର୍ଥକ ଶବ୍ଦଦ୍ୱୟ )—ଶୁଭ ଓ ଅଶୁଭ—
Subhāśubha Good and evil. ବି—ମଙ୍ଗଳ ଓ ଅମଙ୍ଗଳ—
Good and evil; bliss and woe.

ଶୁଭିତା(ଧା)—ଗ୍ରା. ବି ( ସଂ. ସୁବିଧା )—ସୁବିଧା (ଦେଖ)—Subidhā
Subhitā(dhā) সুবিধা सुबिधा ( See )

ଶୁଭିବା—ଦେ. କ୍ରି ( ସଂ. ଶ୍ରୁ ଧାତୁ; ପ୍ରା. ସୁଣ ଧାତୁ )—ଶ୍ରୁତ ହେବା;
Subhibā ଶ୍ରବଣଗୋଚର ହେବା; ଶୁଣାଯିବା—To be heard;
শুনা যাওয়া to be audible. [ ଉ—ସେହିକାଳେ ଅବାଣୀ
सुनना ବଚନ ଶୁଭଇ—କୃଷ୍ଣସିଂହ. ମହାଭାରତ । ]

ଶୁଭୁ ଅଛି—ଦେ. କ୍ରି—ଶୁଣା ଯାଉଅଛି—Is being heard. [ଉ-
Subhu achhi ଜଗନ୍ନାଥନାଥ, ତାତ ଧର ଅନାଥ କି ଶୁଭୁଅଛି
শুনা যাচ্ছে सुना जाता है ଜଗତେ—ଉପେ. ବୈଦେହୀଶବିଳାସ ।]

ଶୁଭେଚ୍ଛା—ସଂ. ବି ( କର୍ମଧାରୟ; ଶୁଭ+ଇଚ୍ଛା )—ଶୁଭ କାମନା—
Subhechchhā Good wish; wish for welfare.

ଶୁଭ୍ର—ସଂ. ବିଣ (ଶୁଭ୍ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ର)—୧ । ଦୀପ୍ତ;
Subhra ଉଜ୍ଜ୍ୱଳ—1. Bright; shining. ୨ । ଶ୍ୱେତ;
(ଶୁଭ୍ରତା[ତ୍ୱ]—ବି) ଧଳା—2. White. ସଂ. ବି—୧। ଶ୍ୱେତବର୍ଣ୍ଣ
( ଶୁଭ୍ରା—ସ୍ତ୍ରୀ ) —1. White colour. ୨ । ରୌପ୍ୟ—
2. Silver. ୩ । ଶ୍ୱେତଚନ୍ଦନ—3 Sandal; Santalum Album). ୪ । ଅଭ୍ରକ; ମେଘନାଦ—4. Mica; talc ୫ । ଗଡ଼ଲବଣ; ସାମ୍ବର ଲବଣ (ଶବ୍ଦକୋଷ)—
5. A kind of salt. ୬ । କାଶୀଶ; ପୁଷ୍ପକସ—
6. Green vitriol, copperas. ୭ । ଚନ୍ଦନାଖ୍ୟ
( ଶବ୍ଦକୋଷ )—7. A kind of fragrant wood.
୮ । ରୌପ୍ୟମାକ୍ଷିକ [ଶବ୍ଦକୋଷ]—8. Iron pyrites;
Ferri sulphuretum. ୯ । ମେଦୋ ଧାତୁ [ଶବ୍ଦକୋଷ]—9. Fat. ୧୦ । ସୈନ୍ଧବ ଲବଣ (ଶବ୍ଦକୋଷ)—10. Chloride of sodium.

ଶୁଭ୍ର କାନ୍ତି—ସଂ. ବି ( କର୍ମଧା )—୧ । ଶ୍ୱେତବର୍ଣ୍ଣ ଦୀପ୍ତି—1. Dazz-
Śubhra kānti ling whiteness. ୨ । ଉଜ୍ଜ୍ୱଳଦୀପ୍ତି—
2. Brightness. ବିଣ ( ବହୁବ୍ରୀହି )—ଶୁଭ୍ରକାନ୍ତି
ବିଶିଷ୍ଟ—Dazzlingly white; very bright.

ଶୁଭ୍ର କାୟ—ସଂ. ବି ( କର୍ମଧା )—୧ । ଶ୍ୱେତ ଶରୀର—1. White
Subhra kāya body. ୨ । ଉଜ୍ଜ୍ୱଳ ଦେହ—2. Shining
[ଶୁଭ୍ରକାୟା—ବିଣ. ସ୍ତ୍ରୀ] body. ବିଣ. ପୁଂ ( ବହୁବ୍ରୀହି )—୧ ।
ଉଜ୍ଜ୍ୱଳ ଦେହବିଶିଷ୍ଟ—1. Having a shining
body. ୨ । ଶ୍ୱେତ ଶରୀରବିଶିଷ୍ଟ—2. White-bodied.

ଶୁଭ୍ର କେଶ—ସଂ. ବି ( କର୍ମଧା )—୧ । ଧଳା କେଶ; ପାଚିଲା ବାଳ—
Subhra keśa 1. Grey hair. ୨ । ଉଜ୍ଜ୍ୱଳ କେଶ—
2. Bright hair. ବିଣ. ପୁଂ (ବହୁବ୍ରୀହି)
ଶୁଭ୍ରକେଶା } ସ୍ତ୍ରୀ
ଶୁଭ୍ରକେଶୀ }
—ଶୁଭ୍ରକେଶଯୁକ୍ତ—Having grey or bright hair.

ଶୁଭ୍ର ତରୁ—ସଂ. ବି—ଶିରିଷ ବୃକ୍ଷ ( ଶବ୍ଦକୋଷ )—
Śubhra taru Acacia Lebbec.

ଶୁଭ୍ରତା(ତ୍ୱ)—ସଂ. ବି ( ଶୁଭ୍ର+ତା )—୧ । ଉଜ୍ଜ୍ୱଳତା—1. Bright-
Subhratā(twa) ness; splendour. ୨ । ଶ୍ୱେତବର୍ଣ୍ଣ—
2. Whiteness.

ଶୁଭ୍ର ଦନ୍ତୀ—ସଂ. ବିଣ. ସ୍ତ୍ରୀ—ଶୁଭ୍ରଦନ୍ତବିଶିଷ୍ଟା (ସ୍ତ୍ରୀ)—(a woman)
Subhra dantī Having a fine set of teeth. ବି. ସ୍ତ୍ରୀ
(ଶୁଭ୍ରଦନ୍ତ—ବିଣ. ପୁଂ) —ବାୟୁକୋଣର ଦିଗ୍‌ଗଜ ପୁଷ୍ପଦନ୍ତର ସ୍ତ୍ରୀ—
The name of the female of the tusker which guards the N W. quarter of the universe.

ଶୁଭ୍ର ପୁଷ୍ପ—ସଂ. ବି (ବହୁବ୍ରୀହି)—ବେଣା (ଶବ୍ଦକୋଷ)—
Subhra pushpa The Beṇā grass.

ଶୁଭ୍ର ରଶ୍ମି(ଭାନୁ)—ସଂ. ବି ( ବହୁବ୍ରୀହି; ଶୁଭ୍ର ଅଟେ ରଶ୍ମି, ଭାନୁ
Subhra raśmi(bhānu) ଯାହାର )—୧ । ଚନ୍ଦ୍ର—
1. The moon. ୨ । କର୍ପୂର—2. Camphor.
୩ । (କର୍ମଧା) ଉଜ୍ଜ୍ୱଳ କିରଣ—3. Bright rays.
୪ । ଧଳା କିରଣ—4. White rays.

ଶୁଭ୍ର ବସନ—ସଂ. ବି ( କର୍ମଧା )—ଧଳା ଲୁଗା—White cloth.
Subhra basana ବିଣ. ପୁଂ—ଶୁଭ୍ରବସ୍ତ୍ର ପରିହିତ—Wearing
[ଶୁଭ୍ର ବସନା—ସ୍ତ୍ରୀ. ବିଣ] white cloth; clad white.

ଶୁଭ୍ର ଶରୀର—ସଂ. ବି ଓ ବିଣ(କର୍ମଧା ଓ ବହୁବ୍ରୀହି)—ଶୁଭ୍ରକାୟ (ଦେଖ)
Subhra śarīra Śubhrakāya (See)
[ ଶୁଭ୍ର ଶରୀରା—ସ୍ତ୍ରୀ. ବିଣ ]

ଶୁଭ୍ର ଶ୍ମଶ୍ରୁ—ସଂ. ବି (କର୍ମଧାରୟ)—ପାଚିଲା ଦାଢ଼ି—
Subhra śmaśru Grey beard.
ବିଣ—ଧଳା ଦାଢ଼ିବାଲା—Greybearded.

ଶୁଭ୍ରା—ସଂ. ବିଣ ( ସ୍ତ୍ରୀ )—ଶୁଭ୍ର ସ୍ତ୍ରୀ ଲିଙ୍ଗ—The feminine
Subhrā of Śubhra. ବି. ସ୍ତ୍ରୀ—୧ । ବଂଶରୋଚନା
( ଦେଖ )—1. Bamsarochanā (See) ୨ ।
ଫଟିକିରି—2. Alum. ୩ । ଗୋରୋଚନା—
3. Gorochanā (see). ୪ । ଚିନି [ଶବ୍ଦକୋଷ]—
4. White sugar. ୫ । ଶ୍ୱେତ ଗମ୍ଭାରୀ [ଶବ୍ଦକୋଷ]—5. The white variety of Gmelina Asiatica.

ଶୁଭ୍ରାଂଶୁ—ସଂ. ବି ଓ ବିଣ—ଶୁଭ୍ରରଶ୍ମି ( ଦେଖ )
Subhrāmśu Śubhrarasmi ( See )

ଶୁଭ୍ରାଳୁ—ସଂ. ବି ( ବୈଦ୍ୟକ )—ମହୁଆଳୁ; ଧଳା ଆଳୁ—
Subhrālu A kind of bulbous root; yam.

ଶମ୍ବ(ମ୍ଭ)—ପ୍ରାଦେ. ( ଗଞ୍ଜାମ ) ବି—କାଶତୃଣ ( ଦେଖ )
Śumba(mbha) Kāśatruṇa (See)

ଶୁମ୍ଭ—ସଂ. ବି ( ଶୁନ୍ଭ୍ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ଅ )—ଅତି
Śumbha ପରାକ୍ରାନ୍ତ ଅସୁର ବିଶେଷ—Name of a powerful demon. [ ବି—ଏ ଓ ଏହାର କନିଷ୍ଠ ଭାଇ ନିଶୁମ୍ଭ ପ୍ରବଳ ପରାକ୍ରାନ୍ତ ହୋଇ ଦେବତାମାନଙ୍କ ଶ୍ରୀ ହରଣ କରି ଦେବଲୋକ ଅଧିକାର କରିଥିଲେ । ଦେବତାମାନେ ଭୟରେ ଦୁର୍ଗାଙ୍କର ଶରଣ ପଶିବାରୁ ଦୁର୍ଗା ଧୂମ୍ରଲୋଚନ, ଚଣ୍ଡ ମୁଣ୍ଡ, ରକ୍ତବୀଜ ନାମକ ଏହାର ସେନାପତିମାନଙ୍କୁ, ଏହାର ସାନ ଭାଇ ନିଶୁମ୍ଭକୁ ଓ ଶେଷରେ ଏହାକୁ ବଧ କଲେ । ଶୁମ୍ଭ ଦୁର୍ଗାଙ୍କ ନିକଟକୁ ସୁଗ୍ରୀବ ନାମକ ଦୂତ ପଠାଇ ସମ୍ବାଦ ଦେଇଥିଲା ଯେ, ତୁମ୍ଭେ ମୋତେ ବା ମୋ ଭାଇକୁ ବିବାହ କର । ଦୁର୍ଗା କହିଲେ, ମୁଁ ପ୍ରତିଜ୍ଞା କରିଛି ଯେ, ମୋତେ ଯେ ଯୁଦ୍ଧରେ ପରାଜିତ କରିବ ସେ ମୋତେ ବିବାହ କରିବ । ଏହି ସମସ୍ତ ବିଷୟ 'ଚଣ୍ଡୀ' ବା ଦେବୀ ମହାତ୍ମ୍ୟରେ ବର୍ଣ୍ଣିତ ହୋଇଅଛି ।

ବାମନପୁରାଣ ମତରେ କଶ୍ୟପଙ୍କର ଦନୁ ନାମ୍ନୀ ଏକ ଭାର୍ଯ୍ୟା ଗର୍ଭରୁ ଜାତ ଜ୍ୟେଷ୍ଠ ପୁତ୍ରର ନାମ ଶୁମ୍ଭ ଓ କନିଷ୍ଠର ନାମ ନିଶୁମ୍ଭ । ପୁରାଣାନ୍ତର ମତରେ ଶୁମ୍ଭ ପ୍ରହ୍ଲାଦର ପୌତ୍ର ଓ ଗବେଷ୍ଠୀର ପୁତ୍ର—ବିଶ୍ୱକୋଷ । ]

ଶୁମ୍ଭ ନିଶୁମ୍ଭ—ସଂ. ବି ( ଦ୍ୱନ୍ଦ୍ୱ )—ଶୁମ୍ଭ ଓ ନିଶୁମ୍ଭ ନାମକ ଅସୁର ଭାଇ
Śumbha niśumbha ଦ୍ୱୟ—The two demon brothers Śumbha and Niśumbha.

ଶୁମ୍ଭ ଘାତିନୀ (ମର୍ଦ୍ଦିନୀ, ମଥିନୀ)—ସଂ. ବି ( ଉପପଦ ସମାସ=ଶୁମ୍ଭ
Śumbha ghātinī (marddinī, mathinī) ଘାତିନ୍+ସ୍ତ୍ରୀ. ଈ )—ଚଣ୍ଡୀ; ଦୁର୍ଗା—Goddess Durgā.

ଶୁମ୍ଭ ପୁର—ସଂ. ବି—୧ । ଶୁମ୍ଭ ଦୈତ୍ୟର ରାଜଧାନୀ; ଏକନଗର—
Śumbha pura 1. Name of the capital of Śumbha. ୨ । ପ୍ରାଚୀନ ସମ୍ବଲପୁର [ବିଶ୍ୱକୋଷ]—2. The ancient name of Sambalpur.

ଶୁର୍‌କୁଟା—ଦେ. ବିଣ. ପୁଂ ( ସଂ. ଶୁଷ୍କ )—୧ । ଶୁଷ୍କ; କ୍ଷୀଣ—
Śur-kuṭā 1. Dried up; withered. ୨ । ଅତି କ୍ଷୀଣ-
ସୂଖକୁଟେ ଦୁବଲା ଦାଯ଼—2. Very lean; slender.
[ଶୁର୍‌କୁଟିଆ, ଶୁର୍‌ଖଡ଼ା, ଶୁର୍‌ଖଡ଼ିଆ—ଅନ୍ୟରୂପ]
[ଶୁର୍‌କୁଟୀ, ଶୁର୍‌କୁଟେଇ, ଶୁର୍‌ଖଡ଼ୀ, ଶୁରଖଡ଼େଇ—ସ୍ତ୍ରୀ]

ଶୁର୍‌କୁଟା ମୁର୍‌କୁଟା—ଦେ. ବିଣ. ପୁଂ—୧ । ଶୁଷ୍କ ଓ ମୃତ ପ୍ରାୟ—
Śur-kuṭā mur-kuṭā 1. Withered and dying.
ବୋଗା ପଟକା ୨ । ଅତି କ୍ଷୀଣ—2. Lean and thin;
ଦୁବଲା ପତଲା withered.
[ ଶୁରୁକୁଟିଆ ମୁରୁକୁଟିଆ—ଅନ୍ୟରୂପ ]
[ଶୁରୁକୁଟୀ ମୁରୁକୁଟୀ, ଶୁରୁକୁଟେଇ ମୁରୁକୁଟେଇ—ସ୍ତ୍ରୀ]

ଶୁର୍‌ତା ହେବା—ପ୍ରାଦେ. ( ସମ୍ବଲପୁର ) କ୍ରି ( ସଂ. ସ୍ମୃତ )—ମନେ
Śur-tā hebā ପଡ଼ିବା—To come to mind; to be recollected or remembered.

ଶୁରି ପୋକ—ପ୍ରାଦେ ( ସମ୍ବଲପୁର ) ବି—ଉଈଁଶିଆ ପୋକ—
Śuri poka Weevil.

ଶୁରୁବ—ଗ୍ରା. ବି ( ଦେଶ୍ୟ )—ଶ୍ରୁବ ( ଦେଖ )—Śruba ( See )
Śuruba [ ଉ—ଶୁରୁବ କରିବ ନଯ଼ନ, ଜାଳିବ ଘୃତ କରି ମନ—ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ । ]

ଶୁରୁପ(ପା)—ଗ୍ରା. ବି ( ସଂ. ଶୂର୍ପ )—ଶୂର୍ପ; କୁଲା—Winnow;
Surūpa(pā) winnowing fan. [ ଉ—ଶୁରୁପା
କୁଲା ସୂପ ପ୍ରାଯ଼େକ ସନ୍ତୁଳିବର ଅଟଇ, ସେ ଯେଉଁଠେ ସୁଦୃକ୍, ଉଶି କୁ-ଦ୍ରବ୍ୟ ଫେଳଇ—ପ୍ରାଚୀ. ଉଦ୍ଧବମଙ୍ଗଳ । ]

ଶୁରୁତା—ଗ୍ରା. ବି—(ସଂ. ଶ୍ରୋତା)—ଶ୍ରୋତା (ଦେଖ)
Śurutā Śrotā (See) [ଉ—ସଭ ଅଷରଙ୍କ ଉର୍ଦ୍ଧ୍ୱେ ଶୁରୁତା, ବକତା—ପ୍ରାଚୀ. ବ୍ରହ୍ମ ନିରୂପଣ ଗୀତା ।]

ଶୁର୍ପଣ(ନ,ନେ,ଲ,ଲେ)ଖା(ଖୀ)——ଦେ. ବି. ସ୍ତ୍ରୀ—(ସଂ. ଶୂର୍ପଣଖା)—
Śurpaṇa(na, ne,la,le)khā (khī) ଶୂର୍ପଣଖା (ଦେଖ)
शूर्पनखा सूपनखा Śūrpaṇakhā (See)

ଶୁଲ୍ (ଧାତୁ)—ସଂ.—ଗତି କରିବା—
Śul (root) To move.

ଶୁଳ (ଇତ୍ୟାଦି)—ଗ୍ରା. ବି—ଶୂଳ ଇତ୍ୟାଦି (ଦେଖ)
Śuḷa (etc) Śūḷa etc (See)

ଶୁଳା (ଇତ୍ୟାଦି)—ଗ୍ରା. ବି—ଶୂଳା ଇତ୍ୟାଦି (ଦେଖ)
Śuḷā (etc) Śūḷā etc (See)

ଶୁଳି(ଇତ୍ୟାଦି)—ଦେ. ବି—୧ । ଶୂଳି [ଇତ୍ୟାଦି] (ଦେଖ)—
Śuḷi(etc) शुला सूली 1. Śuḷi etc (See)
୨ । ତନ୍ତୀମାନଙ୍କ ତନ୍ତର ମଝି ଦଣ୍ଡ—
2.The middle pole of the weaver's loom.

ଶୁଳିଆ[ଇତ୍ୟାଦି]—ଦେ. ବି—୧ । ଶୂଳିଆ [ଇତ୍ୟାଦି] (ଦେଖ)—
Śuḷiā (etc) I. Śūḷiā (etc) (See)
୨ । ବାଣପୁର ଅଞ୍ଚଳର ଗୋଟିଏ ପାହାଡ଼—
2. Name of a hill in Bāṇapura.

ଶୁଳୁ—ଦେ. ବି: ପୁଂ—ଲୋକଙ୍କ ନାମ—
Śuḷu A name of males.
[ଶୁଳିଆ—ଅନ୍ୟରୂପ] [ଶୁଳୀ, ଶୁଳେଇ—ସ୍ତ୍ରୀ]

ଶୁଳୀ—ପ୍ରାଦେ. (ବାଲେଶ୍ୱର) ବି—ବିଲରୁ ଧାନ କଳେଇ ବୋହି
Śuḷi ଆଣିବାର ବାହାଙ୍ଗ—A pole used for carrying on the shoulder paddy sheafs put on its both ends.

ଶୁଳୁଣୀ—ପ୍ରାଦେ. (ବାଲେଶ୍ୱର) ବି ସ୍ତ୍ରୀ.—ଯେ ଶୂଳ ଧରେ—
Śuḷuṇī A nurse who attends a woman in travail; an accoucheuse.

ଶୁଲ୍କ (ଧାତୁ)—ସଂ. କ୍ରି—୧ । ସୃଷ୍ଟି କରିବା—1. To create; to
Śulk (root) build. ୨ । ତ୍ୟାଗ କରିବା; ବର୍ଜନ କରିବ (ବିଶ୍ୱକୋଷ)—2. To give up.

ଶୁଲ୍କ—ସଂ. ବି—(ଶୁଲ୍ ଧାତୁ=ଗମନ କରିବା+କ; ବା ଶୁଲ୍କ ଧାତୁ+
Śulka କର୍ମ. ଅ )—୧ । ରାଜକର ବିଶେଷ; ମାସୁଲ; ଟିକସ—
1. Cess; fees; tax. ୨ । ଦ୍ରବ୍ୟାଦିର ଅମଦାନି

ଉତ୍ପାଦ ଉପରେ ସରକାରଙ୍କୁ ଦେୟ କର—2. Toll or duty levied on goods or merchandise; customs duty. ୩ । ଘାଟ ପାର ମାସୁଲ [ଶବ୍ଦକୋଷ] Ferry-toll. [ବ୍ୟୁ—ଘାଟରୁ, ବାଟରୁ ଓ ବ୍ୟାପାରର ବସ୍ତୁ ବକ୍ରୟ ସ୍ଥାନରୁ, ଜଳପଥରୁ, ସ୍ଥଳପଥରୁ ସରକାରଦେଶରେ ଯେଉଁ କର ଅଦାୟ ହୁଏ ତାକୁ ଶୁଳ୍କ ବୋଲାଯାଏ । ଶବ୍ଦକୋଷ ।] ୪ । ବବାହାବରେ ପଣ; କନ୍ୟାକୁ ବବାହ କରବା ପାଇଁ ବରପକ୍ଷରୁ କନ୍ୟାକର୍ତ୍ତାଙ୍କୁ ଦଆଯିବା ଧନ—4. Money given to the parents of a bride as the price of the bride. ୫ । ଯୌତୁକ—5. Matrimonial presents. ୬ । ବକି କରାଯିବା ବସ୍ତୁର ମୂଲ୍ୟ—6. Sale price or consideration money. ୭ । ପଣ; ବାଜି—7. Wager.

ଶୁଲ୍କ ଗୃହ(ଶାଳା)—ସ. ବ—(ମ. ପ. ଲେ)—ଶୁଲ୍କାଳୟ (ଦେଖ) Śulka gṛuha (śālā) Śulkālaya (See)

ଶୁଲ୍କ ଗ୍ରାହକ—ସ. ବ. ପୁଂ—(ଶୁଲ୍କ+ଗ୍ରହ୍ ଧାତୁ+ କର୍ତ୍ତୃ. ଅକ) Śulka grāhaka ଯେ ଶୁଲ୍କ ଅଦାୟ କରେ—Tax collector; customs-collector.

ଶୁଲ୍କ ଗ୍ରାହୀ—ସ. ବଣ. ପୁଂ—(ଶୁଲ୍କ+ଗ୍ରହ୍ ଧାତୁ+କର୍ତ୍ତୃ.ଇନ, ୧ମା. ୧ବ)—ଶୁଲ୍କଗ୍ରହଣକାରୀ (କନ୍ୟା ପିତା)— Śulka grāhī Receiver of bride-pric

ଶୁଲ୍କ ସ୍ଥାନ—ସ. ବ—(ମ. ପ. ଲୋ)—ଯେଉଁ ସ୍ଥାନରେ ସରକାରୀୟ ଶୁଳ୍କ ଅଦାୟ ହୁଏ—Tollgate; a place where customs duty is realised. Śulka sthāna

ଶୁଲ୍କାଳୟ—ବେ. ବ—ଯେଉଁ ଘରେ ଶୁଳ୍କ ଅଦାୟ କରାଯାଏ— Śulkālaya Toll house; a house where customs duty is collected; custom house.

ଶୁଲ୍କି—ଦେ. ବ—(ନାମ)—ଉତ୍କଳର ପ୍ରାଚୀନ ରାଜବଂଶ ବଶେଷ— Śulki An ancient dynasty of kings of Orissa. [ବ୍ୟୁ—'ଶୁଲ୍କି' ନାମକ ଗୋଟିଏ ପ୍ରାଚୀନ ରାଜବଂଶ—ଉତ୍କଳ ଦେଶସ୍ଥ କୋଦାଳକ ମଣ୍ଡଳରେ ଖ୍ରୀଷ୍ଟୀୟ ୫ମ ଶତାବ୍ଦୀଠାରୁ ରାଜତ୍ୱ କରୁଥିଲେ । କୋଦାଳକ ମଣ୍ଡଳ ବ୍ରାହ୍ମଣୀ ନଦୀର ଉଭୟ କୂଳରେ ଅବସ୍ଥିତ ଥିଲା। ଅଧୁନାତ ଢେଙ୍କାନାଳ, ତାଳଚେର, ହିନ୍ଦୋଳ, ବଣାଇ, ଗାଙ୍ଗପୁର ପ୍ରଭୃତ ଏହାର ଅନ୍ତର୍ଗତ ଥିଲା । ଏହି ବଂଶର କୌଣସି ରାଜାଙ୍କୁ ମଗଧର ମୌଖରୀ ବଂଶଭୂଷଣ, ଇଶାନ ବର୍ମନ୍ ୬୧୧ ସମ୍ବତ୍ ବା ୫୫୪ ଖ୍ରୀଷ୍ଟାବ୍ଦ ପୂର୍ବରୁ ପରାସ୍ତ କରଥିଲେ । ଏହି ବଂଶୀୟ ଭୂଲସମ୍ଭବ ବଶେଷ ପରାକ୍ରମଶାଳୀ ଥିଲେ ଓ ସେ ଚକ୍ରମାଦତ୍ୟ ଉପାଧି ଧାରଣ କରଥିଲେ । ଜେଦାରନାଥ ମହାପାତ୍ର ।]

ଶୁଲ୍ବ (ଧାତୁ)—ସଂ.—ପରମାଣ କରବା— Śulwa (root) To measure.

ଶୁଲ୍ବ—ସଂ. ବ—(ଶୁଲ୍ବ ଧାତୁ+କରଣ ଅ; କମ୍ବା ଶୁଧ୍ ଧାତୁ+କରଣ ବ; Śulwa କପାଳକ) କମ୍ବା ଶୁଚ ଧାତୁ+ବ)—୧ । ରଜ୍ଜୁ—1. Chord. ୨ । ତାମ୍ର—2. Copper. ୩ । ଯଜ୍ଞକର୍ମ—3. A vedic sacrifice. ୪ । ଅଚାର—4. Rule of conduct. ୫ । ପ୍ରଥା—5. Usage. ୬ । ଜଳ ସନ୍ନିଧି; ଜଳାଶୟର କୂଳ—6. Nearness to water; brink of water.

ଶୁଲ୍ବାରି—ସଂ. ବ—(ତମ୍ବା ଶତ୍ରୁ, ତାମ୍ରର ଶତ୍ରୁ)—ଗନ୍ଧକ— Śulwāri Sulphur (literally enemy of copper.)

ଶୁଲ୍ଲ—ସଂ. ବ—(ଶୁଲ୍ ଧାତୁ+କରଣେ. ଲ)—୧ । ଦଉଡ଼ି; ରଜ୍ଜୁ— Śulla 1. Rope; chord; string. ୨ । ତାମ୍ର; ତମ୍ବା—2. Copper.

ଶୁଶମ୍ବର—ଦେ. ବ—(ସ ଶୁଶୁକ)—ଶୁଶୁକ (ଦେଖ)—Śuśuka Śusambara (See) ଶିଶୁମାର (ଦେଖ) Śiśumāra ଶିଶୁକ (See)

ଶୁଶି—ଦେ. ବ (ସ. ଶୁଷି=ଛଦ୍ର)—କାଠ ମଧ୍ୟରେ ଥିବା ଲମ୍ବା ପୋଲ Śuśi A hollow inside a log of wood.

ଶୁଶିର(ରି)—ଦେ.ବ (ସ.ଶୁଷି=ଛଦ୍ର)—ଛଦ୍ରଯୁକ୍ତ ବାଦ୍ୟଯନ୍ତ୍ର ବଶେଷ; Śusira(ri) (ମୁଖବାୟୁ ସାହାଯ୍ୟରେ ଏହା ବାଜେ)—A wind ଶିଟି सीटी instrument of music; a whistle.

ଶୁଶୁକ—ସ. ବ—(ଶୁଶୁ=ଧ୍ୱନ୍ୟନୁକାରୀ ଶବ୍ଦ+କ)—ଶିଶୁକ— Śuśuka Gangetic porpoise.

ଶୁଶୁମା—ସ. ବ. ସ୍ତ୍ରୀ—ମାଈ ଶୁଶୁକ (ଶବ୍ଦକୋଷ)— Śuśumā A female porpoise.

ଶୁଶୁମାର—ଦେ. ବ—ବନ୍ୟ ବୃକ୍ଷ ବଶେଷ—A kind of tree. Śuśumāra Ylocarpus Obovatus. [ବ୍ୟୁ—ଏହା ନଦୀ ମୁହାଣ ପଠାରେ ଥିବା ଗଛ । ଏହା ଉଚ୍ଚତାରେ ପ୍ରାୟ ୧୮ ଫୁଟ ପର୍ଯ୍ୟନ୍ତ ବଢ଼େ ।]

ଶୁଶୁରି—ଦେ. ବ—ଶୁଷିର (ଦେଖ)— Śuśuri Śuśira (See)

ଶୁଶୋ—ଦେ. ବ (ସ. ଶୁଶୁକ)—ଶୁଶୁକ (ଦେଖ) Śuśo Śuśuka (See)

ଶୁଶ୍ରୁବାନ—ସ. ବଣ. ପୁଂ.—(ଶ୍ରୁ ଧାତୁ+କର୍ତ୍ତୃ ବସୁ=ଶୁଶ୍ରୁବସ୍; ୧ମା ୧ବ)—ଯେ ଶୁଣିଅଛି—One who has heard. Śuśrubān (ଶୁଶ୍ରୁଷୀ—ସ୍ତ୍ରୀ)

ଶୁଶ୍ରୂ—ସଂ. ବ. ସ୍ତ୍ରୀ—(ଶ୍ରୁ ଧାତୁ ଇଚ୍ଛାର୍ଥେ ସନ୍+କର୍ତ୍ତୃ, ଉପ୍; ଶିଶୁର ଶୁଶ୍ରୂଷା କରୁଥିବାରୁ )—ମାତା; ଜନନୀ— Śuśrū Mother.

ଶୁଶ୍ରୂଷକ—ସଂ. ବଣ ପୁଂ (ଶ୍ରୁ ଧାତୁ ଇଚ୍ଛାର୍ଥେ ସନ୍ ବା ଣ୍ବୁଲ୍+ କର୍ତ୍ତୃ ଅକ) ୧ । ଶୁଶ୍ରୂଷାକାରୀ—ସେବାକାରୀ—1. Serving; tending, nursing; looking after the comforts of a person. ୨ । ଅଜ୍ଞା ପାଳକ—2. Obedient Śuśrūshaka (ଶୁଶ୍ରୂଷିକା—ସ୍ତ୍ରୀ)

୩ । ମନୋଯୋଗକାରୀ—3. Attentive (Apte).
ସଂ. ବି. ପୁଂ—ସେବକ—Servant; attendant.

ଶୁଶ୍ରୂଷଣ(ଣା)—ସଂ. ବି—(ଶ୍ରୁ ଧାତୁ ଇଚ୍ଛାର୍ଥେ ସନ୍ ବା ଦ୍ୱିତ୍ୱ+ଭାବ ଅନ;+ଆ)—ସେବା; ପରିଚର୍ଯ୍ୟା—
Susrūshaṇa(ṇā) Service; tending; attendance.

ଶୁଶ୍ରୂଷା—ସଂ. ବି—(ଶ୍ରୁ ଧାତୁ ଇଚ୍ଛାର୍ଥେ ସନ ବା ଦ୍ୱିତ୍ୱ+ଭାବ ଅ+ଆ.
Susrūshā ୧ । ଶ୍ରବଣେଚ୍ଛା—1 Desire to hear.
୨ । ପରିଚର୍ଯ୍ୟା; ସେବା—2.Service; attendance; nursing. ୩ । କଥନ—3. Speaking.

ଶୁଶ୍ରୂଷିତ—ସଂ. ବଣ. ପୁଂ—(ଶ୍ରୁ ଧାତୁ ଇଚ୍ଛାର୍ଥେ ସନ୍+କର୍ମ ତ)—
Susrūshita ପରିଚର୍ଯ୍ୟା ପ୍ରାପ୍ତ; ସେବିତ—Served; tended;
(ଶୁଶ୍ରୂଷିତା—ସ୍ତ୍ରୀ) looked after; nursed; cared for.

ଶୁଶ୍ରୂଷିତବ୍ୟ—ସଂ. ବଣ. ପୁଂ—(ଶ୍ରୁ ଧାତୁ ଇଚ୍ଛାର୍ଥେ ସନ୍+କର୍ମ ତବ୍ୟ)
Susrūshitabya ଶୁଶ୍ରୂଷା ଯୋଗ୍ୟ—Fit to be served
(ଶୁଶ୍ରୂଷିତବ୍ୟା—ସ୍ତ୍ରୀ) or taken care of.

ଶୁଶ୍ରୂଷିତା—ସଂ. ବଣ. ସ୍ତ୍ରୀ—(ଶୁଶ୍ରୂଷିତ+ଆ) ଶୁଶ୍ରୂଷିତର ସ୍ତ୍ରୀଲିଙ୍ଗ—
Susrūshitā Feminine of Sushrūshita. ସଂ. ବଣ ଓ ବି.ପୁଂ(ଶ୍ରୁ ଧାତୁ ଇଚ୍ଛାର୍ଥେ ସନ୍+କର୍ତ୍ତୃ ତୃ=ଶୁଶ୍ରୂଷିତୃ, ୧ମା ୧ବ) ଶୁଶ୍ରୂଷକ; ସେବାକାରୀ—Serving; tending;
(ଶୁଶ୍ରୂଷିତ୍ରୀ—ସ୍ତ୍ରୀ] nursing.

ଶୁଶ୍ରୂଷୀ—ସଂ. ବଣ: ପୁଂ—[ଶ୍ରୁ ଧାତୁ ଇଚ୍ଛାର୍ଥେ ସନ୍+କର୍ତ୍ତୃ ଇନ୍
Susrūshī ୧ମା ୧ବ]—ଶୁଶ୍ରୂଷକ—Serving; tending;
[ଶୁଶ୍ରୂଷିଣୀ—ସ୍ତ୍ରୀ] nursing.

ଶୁଶ୍ରୂଷୁ—ସଂ. ବଣ.—[ଶ୍ରୁ ଧାତୁ ଇଚ୍ଛାର୍ଥେ ସନ୍=ଶୁଶ୍ରୂଷ୍ ଧାତୁ+
Susrūshū କର୍ତ୍ତୃ. ଉ] ୧ । ଶୁଣିବାକୁ ଇଚ୍ଛୁକ—1. Desirous to hear. ୨ । ଶୁଶ୍ରୂଷା ବା ସେବା କରିବାକୁ ଇଚ୍ଛୁକ—2. Desirous to serve or nurse. ୩ । ଆଜ୍ଞା ପାଳକ—3. Obedient; attentive (Apte).

ଶୁଶ୍ରୂଷେଣ୍ୟ—ସ. ବଣ—୧ । ଶୁଶ୍ରୂଷାର୍ହ (ବିଶ୍ୱକୋଷ)—1 Deserv-
Susrūsheṇya ing to be served or nursed or tended. ୨ । ମନୁଷ୍ୟ ଯାହା ଆଦର ସହିତ ଶୁଣେ (ବିଶ୍ୱକୋଷ)—2. Heard with fondness.

ଶୁଶ୍ରୂଷ୍ୟ—ସ.ବଣ. ପୁ—(ଶ୍ରୁଧାତୁ ଇଚ୍ଛାର୍ଥେ ସନ୍+କର୍ମ ଯ) ସେବିତବ୍ୟ;
Susrūshya ଶୁଶ୍ରୂଷାଯୋଗ୍ୟ—Deserving to be look-
(ଶୁଶ୍ରୂଷଣୀୟ—ଅନ୍ୟରୂପ) ed after or tended.
[ଶୁଶ୍ରୂଷ୍ୟା, ଶୁଶ୍ରୂଷଣୀୟା—ସ୍ତ୍ରୀ]

ଶୁଷ୍ (ଧାତୁ)—ସଂ ୧ । ଶୁଷ୍କ ହେବା—1. To become dry; to
Sush (root) be dried up; to be parched up
୨ । ମଉଳି ଯିବା—2. To be withered. ୩ । କ୍ଷୀଣହେବା-3. To languish; to become lean
୪ । ଅର୍ତ୍ତହେବା—4. To be afflicted or distressed. ୬ । ଶୋଷିବା; ଶୁଷ୍କକରିବା—6. To dry; to drain up; to suck up.

ଶୁଷ—ପ୍ରାଦେ. (ବାଲେଶ୍ୱର) ବି—ଶୋଷ; ତୃଷା
Susha Thirst.

ଶୁଷ(ଷୀ) ସଂ ବି, (ଶୁଷ୍ଧାତୁ+ଭାବ ଅ;+ଈ) ୧ । ଶୋଷଣ—1.
Susha (shī) Sucking up. ୨ । [+କର୍ତ୍ତୃ. ଅ; ଈ] ଗର୍ତ୍ତ; ଛିଦ୍ର—2. Hole. ୩ । ଗହ୍ୱର; ଗୁହା—3 Chasm. ୪ । ଶୁଖିଯିବା—4. Drying up.

ଶୁଷାଇବା—ପ୍ରାଦେ (ବାଲେଶ୍ୱର) କ୍ରି—ଶୋଷାଇବା (ଦେଖ)
Sushāibā Soshāibā (see)

ଶୁଷି—ସଂ ବି—( ଶୁଷଧାତୁ+କର୍ତ୍ତୃ ଇ )—୧ । ଶୁଷ—1. Sush ī
Sushi (See) ୨ । ଦନ୍ତମଧ୍ୟରେ ଥିବାଛିଦ୍ର ବା ଦନ୍ତ-ସ୍ଥାନ—2. The hollow inside the teeth or fangs. ଦେ. ବି.—ମୁଣ୍ଡିକାଠ ମଝିରେ ଥିବା ଲମ୍ବା ଛିଦ୍ର—A hole or hollow running through the middle of a log of wood along its length.

ଶୁଷିବା—ପ୍ରାଦେ (ବାଲେଶ୍ୱର) କ୍ରି—ଶୋଷିବା [ଦେଖ]
Sushibā Soshibā (See)

ଶୁଷିର—ସଂ ବି (ଶୁଷ ଧାତୁ+କର୍ତ୍ତୃ ଇର, କିମ୍ବା ଶୁଷି+ରର)—୧ ।
Sushira ବିବର; ଛିଦ୍ର; ରନ୍ଧ୍ର—1. Hole. ୨ । ଅଗ୍ନି-2. Fire. ୩ । ଫୁଙ୍କିକରି ବଜାଇବାପାଇଁ ବ୍ୟବହୃତ ଛିଦ୍ରଯୁକ୍ତ ବାଦ୍ୟଯନ୍ତ୍ର (ଯଥା—ବଂଶୀ)—3. A wind. pipe; flute; a musical instrument with regulated holes to be blown by the mouth, a wind instrument. ୪ । ମୂଷିକ; ଇନ୍ଦୁର—4. Rat; mouse. ୫ । ବାୟୁ—5. The atmosphere. ବଣ—ଛିଦ୍ରଯୁକ୍ତ—Full of holes; perforated.

ଶୁଷିରା—ସ. ବଣ. ସ୍ତ୍ରୀ—ଶୁଷିରର ସ୍ତ୍ରୀଲିଙ୍ଗ—Feminine of
Sushirā Sushira. ସ. ବି—୧ । ନଦୀ ବିଶେଷ—1. Name of a river. ୨ । ଗନ୍ଧଦ୍ରବ୍ୟ ବିଶେଷ—2. Name of a scent or perfume.

ଶୁଷି(ଷୁ)ରି—ଦେ. ବି (ସ. ଶୁଷିର)—ବଂଶୀ ଆଦି ବାୟୁପୂରିତ ଛିଦ୍ରମୟ
Sushi(shu)ri ବାଦ୍ୟଯନ୍ତ୍ର ( ଯଥା—ବଂଶୀ, ମହୁରୀ )—Flute
বাংশী or other perforated reed instrument.
বংশী ( e.g. lute, pipe, clarionet.)

ଶୁଷିଳ—ସ. ବି (ଶୁଷ୍ ଧାତୁ=ଶୋଷିବା+କର୍ତ୍ତୃ. ଇଳ; ଯାହା
Sushiḷa ପଦାର୍ଥରୁ ଜଳାଦ ଶୋଷେ)—ବାୟୁ; ପବନ—Wind; air.

ଶୁଷ୍କ—ସ. ବଣ (ଶୁଷ୍ ଧାତୁ=ଶୁଖିଯିବା+କର୍ତ୍ତୃ. ତ; 'ତ' ସ୍ଥାନରେ
Sushka 'କ' ଆଦେଶ)—୧ । ନିର୍ଜ୍ଜଳ; ଜଳହୀନ; ଶୁଖିଲା—1. Dry; waterless. ୨ । ଯହିଁରୁ ଜଳ ବା ରସ ଶୁଖି ଯାଇଅଛି—2. Parched up. ୩ । ନୀରସ—3. Juiceless; sapless. ୪ । ଶୀର୍ଣ୍ଣ—4. Emaciated; withered; thin; shrivelled; shrunk up. ୫ । ରୂକ୍ଷ—5. Rude; rough.

୬ । (ଲକ୍ଷଣାର୍ଥ) ଅହେତୁକ—6 (figurative) Groundless. ୭ । (ଲକ୍ଷଣାର୍ଥ) ନିଷ୍ଫଳ—7. (figurative) Fruitless; barren. ୮ । (ଲକ୍ଷଣାର୍ଥ) ନିରର୍ଥକ—8. (figurative) Vain. [ ଉ—ଶୁଷ୍କ (ଶୁଷ୍କା—ସ୍ତ୍ରୀ) ବାକ୍ୟ] ୯ । (ଲକ୍ଷଣାର୍ଥ) ନୀରସ; ନିରାନନ୍ଦମୟ; ବିଷଣ୍ଣ; ବିମର୍ଷ—9. (figurative) Sorrowful; sad; pale (ଉ—ଶୁଷ୍କମୁଖ) ୧୦ । ବାହାନା କରାଯାଇ ଥିବା—10 Feigned, pretended. ୧୧ । ଅପ୍ରୟୋଜନୀୟ—11. Useless. ୧୨ । କଠୋର (ବାକ୍ୟ)—12. Offensive; harsh.

**ଶୁଷ୍କ କଣ୍ଠ**—ସଂ. ବି (କର୍ମଧା)—(ତୃଷ୍ଣା, ଭୟ, ରୋଗ ଆଦି ଯୋଗୁଁ)
Śushka kaṇṭha ଯେଉଁ କଣ୍ଠରୁ ବା ଗଳାରୁ ଲାଳ ଆଦି ଶୁଖି ଯାଇଥାଏ—A dry throat; a parched throat.
(ଶୁଷ୍କକଣ୍ଠା—ସ୍ତ୍ରୀ) ବିଣ. ପୁଂ (ବହୁବ୍ରୀହି)—ଯାହାର କଣ୍ଠ ବା ଗଳା ଶୁଖି ଯାଇଅଛି—Having one's throat parched up

**ଶୁଷ୍କ କରିବା**—ଦେ. କ୍ରି—ଶୁଖାଇବା; ନିର୍ଜଳ କରିବା—
Śushka karibā To dry up.
শুষ্ক করা সুখানা

**ଶୁଷ୍କ କଳହ (ବିବାଦ)**—ସଂ. ବି (କର୍ମଧା)—ବୃଥା ବା ଅହେତୁକ କଳହ
Śushka kalaha (bibāda) ବା ବିବାଦ—Groundless quarrel or dispute.

**ଶୁଷ୍କ ତର୍କ**—ସ ବି (କର୍ମଧା)—ବୃଥା ବିତଣ୍ଡା—
Śushka tarka Barren discussion.

**ଶୁଷ୍କତା(ତ୍ୱ)**—ସଂ. ବି (ଶୁଷ୍କ+ଭାବାର୍ଥେ. ତା, ତ୍ୱ)—ଶୁଷ୍କଭାବ; ଶୁଷ୍କା-
Śushkatā(twa) ବସ୍ଥା—Dryness; aridity.

**ଶୁଷ୍କ ପ୍ରାୟ**—ସଂ. ବିଣ—ପ୍ରାୟଶୁଷ୍କ; ପ୍ରାୟ ନୀରସ—
Śushka prāya Almost dry or sapless.

**ଶୁଷ୍କ ବୈର**—ସଂ. ବି—୧ । ଉଦ୍ଦେଶ୍ୟଶୂନ୍ୟ କଳହ—1. Aimless
Śushka baira quarrel. ୨ । ଅହେତୁକ ଶତ୍ରୁତା—2. Groundless or unprovoked enmity.

**ଶୁଷ୍କଳ**—ସଂ. ବି (ଶୁଷ୍କ+ଲ)—୧ । ମାଂସ, ଆମିଷ—1. Meat;
Śushkala flesh. ୨ । ଶୁଖିଲା ମାଂସ—2. Dried meat.
(ଶୁଷ୍କଳା—ସ୍ତ୍ରୀ) ବିଣ. ପୁଂ—ଆମିଷ ଭୋଜୀ—Meat-eating; carnivorous.

**ଶୁଷ୍କଲୀ**—ସଂ. ବି (ଶୁଷ୍କଲ+ଈ)—ଶୁଷ୍କମାଂସ; ଶୁଖୁଆ ଶିକାର—
Śushkalī Dried meat.

**ଶୁଷ୍କାଙ୍ଗୀ**—ସଂ. ବି. ସ୍ତ୍ରୀ (ଶୁଷ୍କ+ଅଙ୍ଗ+ସ୍ତ୍ରୀ. ଈ; ବହୁବ୍ରୀହି)—
Śushkāṅgī ଗୋଧିକା; ଗୋଧିସାପ—The iguana; Varanus Salvator.

**ଶୁଷ୍କାର୍ଦ୍ର**—ସଂ. ବି (ଶୁଷ୍କ=ଶୁଖିଲା+ଆର୍ଦ୍ର=ଅଦା)—ଶୁଣ୍ଠି—
Śushkārdra Dried ginger. ସଂ. ବିଣ—ଶୁଖିଲା ଓ ଓଦା—Dry and moist.

**ଶୁଷ୍କିବା**—ଦେ. (ପ୍ରାଚୀନ ପଦ୍ୟ) କ୍ରି. (ସଂ ଶୁଷ୍କ)—ଶୁଖିବା;
Śushkibā ଶୁଖାଯିବା—To be dried up; to be spread out for being dried.

**ଶୁଷ୍କୀକୃତ**—ସଂ ବିଣ (ଶୁଷ୍କ+ଅଭୂତତଦ୍ଭାବେ ଚ୍ୱି+କୃତ)—ଶୁଖା ଯାଇ-
Śushkīkruta ଥିବା (ଓଦା ବସ୍ତୁ)—(a moist thing) Which has become dry; dried up.

**ଶୁଷ୍ଣ**—ସଂ. ବି [ଶୁଷ୍ ଧାତୁ+କର୍ତ୍ତୃ ନ; ଯାହା ପଦାର୍ଥମାନଙ୍କୁ ଶୁଷ୍କ କରେ ।
Śushṇa ୧ । ସୂର୍ଯ୍ୟ—1 The sun ୨ । ଅଗ୍ନି—2 Fire.

**ଶୁଷ୍ମ(ଷ୍ମା)**—ସ ବି. କ୍ଲୀ ଓ ପୁଂ (ଶୁଷ୍ ଧାତୁ କର୍ତ୍ତୃ ମ ଓ ମନ୍=ଶୁଷ୍ମନ୍
Śushma(shmā) ଶବ୍ଦ ୧ମା, ୧ ବଚନ)—୧। ଅଗ୍ନି—1. Fire ୨ । ସୂର୍ଯ୍ୟ—2. The sun. ୩ । ବାୟୁ—3. Wind air. ୪ । ବଳ; ସାମର୍ଥ୍ୟ—4. Might; strength ୫ । ତେଜଃ; ଦୀପ୍ତି—5. Lustre: glow, glory, splendour ୬ । ପକ୍ଷୀ—6. Bird. ୭ । ଚିତ୍ରକ ବୃକ୍ଷ—7. Plumbago Zeylanica (plant)

**ଶୁସ**—ପ୍ରାଦେ (ବାଲେଶ୍ୱର) ବି—୧। (ସ ଶୁଷ)—ଜଳା; ଫାଟ, ଜଣା-
Śusa 1. Crack. ୨ । (ସ ଶୋଷ) ଶୋଷ; ତୃଷ୍ଣା—2. Thurst.

**ଶୂଆ(ଆଁ)ବାଳ(ଳୁ)ଆ**—ଦେ. ବି (ସ ଶୂକ=ଶସ୍ୟାଗ୍ର+ବାଳ=
Śūa(āṅ)bāli(lu)ā କେଶ)—୧ । ଶୂକକୀଟ (ଦେଖ)—
সোআঁপোকা সুঁআ 1. Śūkakīṭa (see)
[ ଶୂଆ(ଅଁ)ବାଳ—ଅନ୍ୟରୂପ ] ୨ । ଶୁଅବାଳ (ଦେଖ)—2. Śuabāli [see].

**ଶୂକ**—ସଂ. ବି—(ଶୋ ଧାତୁ=ତୀକ୍ଷ୍ଣ କରିବା+କର୍ତ୍ତୃ. କକ୍; ନିପାତନ)
Śūka ୧ । ଶସ୍ୟାଦିର ସୂକ୍ଷ୍ମ ଅଗ୍ରଭାଗ; ଶୁଅଁ; ଶୁଙ୍ଗ—1. The sharp point of grains. ୨ । ତୀକ୍ଷ୍ଣାଗ୍ର; ସୂକ୍ଷ୍ମ ଅଗ୍ର—2. A sharp point. ୩ । ଯବ, କାଙ୍ଗୁନୀ, ଗହମ ଆଦିର ଅଗ୍ରର ସୂକ୍ଷ୍ମ ଚୋପା—3. The fine beards of wheat, barley and wild paddy. ୪ । ଦୟା—4. Kindness. ୫ । ଶିଖା—5. Crest; point; summit: ୬ । କେଶ ଶିଖା; ମୁଣ୍ଡ ମଝିରେ ଥିବା କେଶଗୁଚ୍ଛ—6. A tuft of hair left on the crown of head after tonsure; pig tail

**ଶୂକକ**—ସଂ ବି (ଶୂକ+ସ୍ୱାର୍ଥେ କ)—୧ । ଯବ; ଯଅ ଧାନ—
Śūkaka 1. Barley. ୨ । ପ୍ରାବୃଟ୍; ବର୍ଷାଋତୁ—2. Rainy season. ୩ । ରସ—3. Juice; liquid. ୪ । ଶରୀରସ୍ଥ ଜଳୀୟପଦାର୍ଥବିଶେଷ ରସଧାତୁ—The primary fluid from which blood is formed.

**ଶୂକ କୀଟ**—ସ. ବି [ଶୂକ=ତୀକ୍ଷ୍ଣାଗ୍ରଯୁକ୍ତ କୀଟ; ଶୂକକୀଟ+ସ୍ୱାର୍ଥେ ଚ
Śūkakīṭa ମଧ୍ୟପଦଲୋପୀ କର୍ମଧା]—ଶୁଅଁବାଳ; ଶମ୍ବାଳୁଅ ଓ ଶୂକକୀଟକ—ଅନ୍ୟରୂପ ] Hairy caterpillar;

woolly bear; Pilsoma Acraea. [ଦ୍ର—ଏମାନେ ପ୍ରଜାପତି ଅବସ୍ଥାର ପୂର୍ବତନ ଅବସ୍ଥା । ପ୍ରଜାପତିଙ୍କ ଡିମ୍ବରୁ ଏମାନେ ଉତ୍ପନ୍ନ ହୁଅନ୍ତି ଓ ପରେ ପକ୍ଷି ଲାଗିଲେ ଉଡ଼ି ପାରନ୍ତି । ଏ କୀଟ କେତେକ ଲୋମହୀନ, କେତେକ ଲୋମଶ । ଏମାନଙ୍କର ଲୋମ ଏପରି ତୀକ୍ଷ୍ଣ ଯେ, ତାହା ମନୁଷ୍ୟର ଦେହର ଲୋମକୂପ ମଧ୍ୟରେ ବିଦ୍ଧ ହେଲେ ବଡ଼ ଯନ୍ତ୍ରଣାପ୍ରଦ ହୁଏ । ଆମ ଦେଶରେ ବିଶେଷତଃ ଶଜନା ଓ ଶବ ଗଛରେ ଏମାନେ ଜନ୍ମନ୍ତି ଓ ଗଛର ପତ୍ରାଦିକୁ ଖାଇ ଗଛମାନଙ୍କୁ ଲଣ୍ଡ଼ କରି ଦିଅନ୍ତି । ]

ଶୂକ ଧାନ୍ୟ—ସଂ ବ [ମ. ପ. ଲୋ—ଶୂକଯୁକ୍ତ ଧାନ୍ୟ]—ତୀକ୍ଷ୍ଣାଂଶୁକ
Śūka dhānya ଶସ୍ୟ; ଯେଉଁ ଶସ୍ୟର ଅଗ୍ରଭାଗରେ ତୀକ୍ଷ୍ଣ କେଶବତ୍ ଅଂଶୁ ଥାଏ—Bearded grain; bearded corn; awned rice. [ଦ୍ର—ବୈଦ୍ୟଶାସ୍ତ୍ର ମତରେ ସାଧାରଣତଃ ସକଳ ଶୂକ ଧାନ୍ୟ ଲଘୁପାକ, ତ୍ରିଦୋଷ ଶାନ୍ତିକାରକ ଓ ବଳବୀର୍ଯ୍ୟତେଜୋବୃଦ୍ଧିକର । ନୂତନ ଶୂକ ଧାନ୍ୟ ଗୁରୁପାକ । ଏକ ବର୍ଷରୁ ଅଧିକ ପୁରାତନ ଶୂକ ଧାନ୍ୟ ଆହାର ପାଇଁ ପ୍ରଶସ୍ତ ।]

ଶୂକର—ସଂ ବି. ପୁଂ [ଶୂ=ଧ୍ୱନ୍ୟନୁକାରୀ ଶବ୍ଦ+କୃ ଧାତୁ+କର୍ତ୍ତୃ ଅ, କିମ୍ବା ଶୂକ=ତୀକ୍ଷ୍ଣ ଲୋମ+ଧାରୀ ଅର୍ଥରେ ର]—
Śūkara [ସୂକର—ଅନ୍ୟ ଆକାର] ୧ । ଘୁଷୁରି—1 Hog; pig.
[ଶୂକରୀ—ସ୍ତ୍ରୀ] ୨ । ବରାହ—2. Boar. [ଦ୍ର—ଏମାନେ ଦୁଇ ଶ୍ରେଣୀର ଯଥା—ଗୃହପାଳିତ ଶୂକର—Domestic pig ଓ ବନ୍ୟ ଶୂକର ବା ବରାହ wild boar । ଏମାନଙ୍କ ମାଂସ ମୁସଲମାନମାନଙ୍କ ଦୃଷ୍ଟିରେ ଅତି ଅପବିତ୍ର । ହିନ୍ଦୁସମାଜରେ ଅସ୍ପୃଶ୍ୟ ଜାତି (ବାଉରି, ହାଡ଼ି, କନ୍ଧ ଆଦି) ଶୂକର ମାଂସ ଖାଆନ୍ତି; ସାହେବମାନଙ୍କର ଏହା ପ୍ରିୟ ଖାଦ୍ୟ ।]

ଶୂକର ଦଂଷ୍ଟ୍ରକ—ସଂ ବି [ ବୈଦ୍ୟକ ]—କ୍ଷୁଦ୍ରରୋଗବିଶେଷ; ଚର୍ମ-
Śūkara damshtraka ରୋଗବିଶେଷ—A sort of skin disease.

ଶୂକ(କୁ)ରା(ରି)—ଦେ. ବି ପୁଂ—(ଶୂକର ପରି ଘୃଣ୍ୟ ବା ନୀଚ ଅର୍ଥରେ)
Śūka(ku)rā(ri) —ଅଗ୍ରଜମାନଙ୍କୁ ହରାଇଥିବା ନାମ—
ଶୂକା, କେି, ଶୂକିସ୍ତା, ଶୂକୁରିଆ, ଶୂକୁରୁ } ଅନ୍ୟରୂପ A name given to the children
শুক সুকরা whose elders had died before
(ଶୂକରୀ, ଶୁକୁରୀ, ଶୂକୀ—ସ୍ତ୍ରୀ) the formers' brith.

ଶୂକରେଷ୍ଟ—ସଂ ବି (୬ଷ୍ଠୀ ତତ୍; ଶୂକରର ପ୍ରିୟ ଖାଦ୍ୟ]—ମୁଥା—
Śūkareshṭa Bulbous grass root.

ଶୂକଶିମ୍ବୀ—ସଂ ବି [ଶୂକଯୁକ୍ତା ଶିମ୍ବୀ ମ. ପ. ଲୋ ]—ବାଇଡଙ୍କ; ଶିମ୍ବ
Śūka śimbi ଜାତୀୟ ଶୂକମୟ ବନ୍ୟ ଲତା
আলকুশী ଫଳ ବିଶେଷ—Cowhage,
ହି ବଙ୍ଗ. ଶୂକ୍ଷ୍ମାଶମ୍ବୁ Macuna Pruriens.
गोंचा, किवाच कौंच [ ଦ୍ର—ଏହାର ଛୁଇଁଯାକ ତୀକ୍ଷ୍ଣ
ତା. ପୂନାଇକ୍, କାଲି ଲୋମରେ ଆବୃତ । ଗ୍ରୀଷ୍ମ
ତେ. ଦୋଳଅଡ଼ୁଗୁ, ଦୁଲଗୁଣ୍ଡି କାଳରେ ଏହି ଫଳ ପୋଖତ
ମ. ଢଳଚ, କୁହଲୀ ହେଲେ ଏହି ବୃନ୍ତଦେହରୁ ତୀକ୍ଷ୍ଣ
ଏହାର ସଂ ପର୍ଯ୍ୟାୟ— ଲୋମଗୁଡ଼ିକ ଉଡ଼ିଆସି ମନୁଷ୍ୟ
କପିକଚ୍ଛୁ, ଆତ୍ମଗୁପ୍ତା, ବୃଷ୍ୟା, ଦେହରେ ଲାଗେ ଓ ଲୋମ-
ମର୍କଟୀ, ଅଜରା, କଣ୍ଡୁରା, ବ୍ୟଙ୍ଗା, କୂପରେ ପ୍ରବେଶ କରି ବିଶେଷ
ଦୁଃସ୍ପର୍ଶା, ପ୍ରାବୃଷାୟଣୀ, ଲାଙ୍ଗଲୀ] କଣ୍ଡୁ, ଫୁଲା ଓ ବ୍ୟଥା ଜନ୍ମାଏ । କିନ୍ତୁ ଏଥିର ବୀଜ ଅତ୍ୟନ୍ତ ଶୁକ୍ରବର୍ଦ୍ଧକ ଓ ରତିଶକ୍ତି-ବର୍ଦ୍ଧକ । ଏହା ମଧୁରତିକ୍ତରସ, ବଳକର, ମାଂସବର୍ଦ୍ଧକ, ଶୁକ୍ରଜନକ ଓ ତ୍ରିଦୋଷନାଶକ, ବାୟୁର ଶାନ୍ତିକାରକ ଓ ରକ୍ତଦୋଷନିବାରକ ।]

ଶୂକଳ—ସଂ ବି—ଦୁଷ୍ଟ ଅଶ୍ୱ—
Śūkaḷa A wicked or restive horse; a vicious horse.

ଶୂକ୍ଷ୍ମ—ସଂ ବିଣ [ସୂଚ୍ ଧାତୁ=ଜ୍ଞାପନ କରିବା+ମ]—୧ । ସୂକ୍ଷ୍ମ—1.
Śūkshma Śūkshma (See). ୨ । ଅତି କ୍ଷୁଦ୍ର; ସରୁ;
(ସୂକ୍ଷ୍ମ—ଅନ୍ୟ ଆକାର) ମିହି—2. Minute; very small. ୩ । ଅତି ଅଳ୍ପ—3. Very little. ୪ । ପତଳା—4. Thin; slender; delicate. ୫ । କୃତ୍ରିମ—5. Artificial. ୬ । ପାରମାର୍ଥିକ—6. Spiritual. ୭ । ତନ୍ନ ତନ୍ନ ପୂର୍ବକ ବିଚାର—7. Thorough investigation or enquiry.

ଶୂତିପର୍ଣ୍ଣ—ସଂ ବି—ଆରଗ୍ୱଧ ଗଛ; ସୁନାରି ଗଛ—
Śūtiparṇṇa Cassia Fistula ( tree ).

ଶୂଦ୍ର—ସଂ ବି ପୁଂ (ଶୁଚ୍ ଧାତୁ=ପବିତ୍ର ହେବା+କର୍ତ୍ତୃ ର, ନିପାତନ)
Śūdra ହିନ୍ଦୁମାନଙ୍କ ମଧ୍ୟରେ ନୀଚତମ ବା ୪ର୍ଥ ବର୍ଣ୍ଣ—
[ଶୂଦ୍ରାଣୀ, ଶୂଦ୍ରା, ଶୂଦ୍ରୀ—ସ୍ତ୍ରୀ] The Śūdras or the lowest of the castes amongst the Hindus. [ଦ୍ର—ହିନ୍ଦୁଧର୍ମଶାସ୍ତ୍ର ମତରେ ଏମାନଙ୍କର କାର୍ଯ୍ୟ ଅନ୍ୟ ୩ ଜାତିର ଅର୍ଥାତ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଙ୍କର ସେବା ଓ ଏମାନେ ଶାସ୍ତ୍ର ଓ ବେଦାଧ୍ୟୟନରେ ଅଧିକାରୀ ନୁହନ୍ତି । ଏମାନେ ବ୍ରହ୍ମାଙ୍କର ପାଦରୁ ଜାତ । ଭଗବଦ୍ ଗୀତାରେ ଅଛି "ପରିଚର୍ଯ୍ୟାତ୍ମକଂ କର୍ମ ଶୂଦ୍ରସ୍ୟାପି ସ୍ୱଭାବଜମ୍" ଅର୍ଥାତ୍ ଏମାନେ ଉଚ୍ଚ ବର୍ଣ୍ଣର ସେବା କରିବେ । ବେଦାଧ୍ୟୟନ, ତପସ୍ୟା, ଯୁଦ୍ଧ, ବାଣିଜ୍ୟ ଓ କୃଷି କରିବାରେ ଏମାନେ ଅଧିକାରୀ ନୁହନ୍ତି । ଅନ୍ୟ ୩ ଉଚ୍ଚତର ବର୍ଣ୍ଣର ଲୋକେ ଶୂଦ୍ରାକୁ ବିବାହ କରିପାରିବେ, ମାତ୍ର ଶୂଦ୍ର ଉଚ୍ଚବର୍ଣ୍ଣର ସ୍ତ୍ରୀକୁ ବିବାହ କରି ପାରିବେ ନାହିଁ । ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତମାନଙ୍କ ମତରେ ବ୍ରାହ୍ମଣ, କ୍ଷତ୍ରିୟ ବୈଶ୍ୟ ଏ ତିନି ଜାତି ବୈଦିକଯୁଗରେ ଉତ୍ତରଦିଗରୁ ଭାରତକୁ ଆସି ଉପନିବେଶ ସ୍ଥାପନ କରିଥିବା ଆର୍ଯ୍ୟମାନଙ୍କ ବଂଶଧର ଓ ଶୂଦ୍ରମାନେ ଭାରତର ଆଦିମନିବାସୀ ଅନାର୍ଯ୍ୟମାନଙ୍କ ବଂଶଧର । ଆର୍ଯ୍ୟମାନେ ଏମାନଙ୍କୁ ଆର୍ଯ୍ୟାବର୍ତ୍ତରୁ ଦାକ୍ଷିଣାତ୍ୟକୁ ତଡ଼ିଦେଲେ ଓ ଏମାନଙ୍କ ମଧ୍ୟରୁ କେତେକଙ୍କୁ

ହିନ୍ଦୁସମାଜର ନିମ୍ନତମ ସ୍ତରରେ ଗ୍ରହଣ କରି ଭୃତ୍ୟ, ସେବକ ଓ ଦାସରୂପେ ନିଯୋଜିତ କଲେ । ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କ ଛଡ଼ା ଅଧୁନିକ ଭାରତର ପ୍ରାୟ ଅନ୍ୟ ସମସ୍ତ ଜାତିର ପୂର୍ବପୁରୁଷମାନେ ଦ୍ୱିଜାତି ପିତା ଓ ଶୂଦ୍ରା ମାତାଙ୍କ ଔରସରୁ ଜାତ ହୋଇଥିଲେ । ପୂର୍ବେ ହିନ୍ଦୁ ସମାଜରେ ୪ ବର୍ଣ୍ଣଙ୍କ ମଧ୍ୟରୁ ପ୍ରତ୍ୟେକଙ୍କର ସ୍ୱତନ୍ତ୍ର ଗୁଣ ଓ କର୍ମବିଭାଗ ନିର୍ଦ୍ଦିଷ୍ଟ ହୋଇଥିଲା । କିନ୍ତୁ ପାଶ୍ଚାତ୍ୟ ସଭ୍ୟତାର ପ୍ରବେଶ ସଙ୍ଗେ ସଙ୍ଗେ ତାହା ଲୋପ ପାଇଅଛି ।]

ଦେ. ବି—ଚଷାମାନଙ୍କର ଶ୍ରେଣୀଭେଦ; ଶୁଦ ଚଷା—A class of cultivator caste.

**ଶୂଦ୍ରକ**—ଦେ ବି—ରାମଚନ୍ଦ୍ରଙ୍କଦ୍ୱାରା ନିହତ ଜଣେ ଶୂଦ୍ର ମୁନି; ଶମ୍ବୁକ—
Śūdraka Name of a Śūdra sage who was killed by Rāmachandra. [ଦ୍ର—ଏ ଶାସ୍ତ୍ରବିରୁଦ୍ଧ ତପସ୍ୟାରେ ରତ ହେବାରୁ ଜଣେ ବ୍ରାହ୍ମଣ ପୁତ୍ରର ଅକାଳ ମୃତ୍ୟୁ ଘଟିଲା; ରାମଚନ୍ଦ୍ର ଅନୁସନ୍ଧାନପୂର୍ବକ ତାହାର ମସ୍ତକ ଛେଦନ କରି ଯୁଗଧର୍ମ ରକ୍ଷା କରିଥିଲେ ।] ସଂ ବି. (ନାମ) ମୃଚ୍ଛକଟିକ ନାମକ ସଂସ୍କୃତ ନାଟକର ପ୍ରଣେତା ରାଜାଙ୍କ ନାମ—The name of a king, the author of a Sanskrit Drama Mṛuchha katika. [ଦ୍ର—ଉକ୍ତ ଗ୍ରନ୍ଥରେ ଲେଖା ଅଛି ଯେ, ଏ ଅତିଶୟ ବୁଦ୍ଧିମାନ୍, ରୂପବାନ୍ ଓ ଦ୍ୱିଜବଂଶୋତ୍ପନ୍ନ ରାଜା ଥିଲେ ଓ ସାମବେଦ, ଋକ୍‌ବେଦ, ଗଣିତ, କଳା ବିଦ୍ୟା, ହସ୍ତିଶାସ୍ତ୍ରରେ ବିଶେଷ ପାରଦର୍ଶୀ ଥିଲେ । ଏ ନିଜର ପୁତ୍ରଙ୍କୁ ରାଜସିଂହାସନରେ ବସାଇ ଅଶ୍ୱମେଧ ଯଜ୍ଞ କଲେ । ଏ ଶ. ବର୍ଷ ଜୀବିତ ଥାଇ ଅଗ୍ନିପ୍ରବିଷ୍ଟ ହୋଇ ଦେହ ତ୍ୟାଗ କଲେ ।] ୨ । ବାଣଭଟ୍ଟଙ୍କର କାଦମ୍ବରୀ ନାମକ ଉପନ୍ୟାସରେ ବର୍ଣ୍ଣିତ ଉଜ୍ଜୟିନୀର ରାଜା—2 Name of a king of Ujjaini mentioned in the Sanskrit novel Kādambarī. [ଦ୍ର—କେହି କେହି ଅନୁମାନ କରନ୍ତି ଯେ ଉକ୍ତ ଦୁଇ ଶୂଦ୍ରକ ଏକ ବ୍ୟକ୍ତି ଥିଲେ ।]

**ଶୂଦ୍ରକଣ୍ଟକ**—ସ. ବି ( ଜ୍ୟୋତିଷ ) ( ୬ଷ୍ଠୀ ତତ୍ )—ଶନିଗ୍ରହ—
Śūdra kaṇṭaka The planet Saturn. [ଦ୍ର—ଶନିସମ୍ବନ୍ଧୀ ଦଶା ଶୂଦ୍ରମାନଙ୍କ ପକ୍ଷରେ ବିଶେଷ କଷ୍ଟପ୍ରଦ ହୁଏ ।]

**ଶୂଦ୍ରକ(ଧ)ର୍ମ**—ସ. ବି ( ୬ଷ୍ଠୀ ତତ୍ )—ଶାସ୍ତ୍ରନିର୍ଦ୍ଦିଷ୍ଟ ଶୂଦ୍ରର କର୍ତ୍ତବ୍ୟ କାର୍ଯ୍ୟ ( ଯଥା—ବ୍ରାହ୍ମଣାଦି ଦ୍ୱିଜାତିଙ୍କ ସେବା )—
Śūdra ka(dha)rma The duties enjoined on Śūdra (namely, serving the 3 higher classes).

**ଶୂଦ୍ରଚ(ତ)ଷା**—ଦେ. ବି—ଶୁଦ୍ ଚଷା ( ଦେଖ )
Śūdra cha(ta)shā Śud chashā (See)
चाषा शूद्रकिसान

**ଶୂଦ୍ରପ୍ରିୟ**—ସ. ବି ( ୬ଷ୍ଠୀ ତତ୍ )—ପିଆଜ—
Śūdra priya Onion (Apte)

**ଶୂଦ୍ରଭୂୟିଷ୍ଠ**—ସ. ବିଣ ( ବହୁବ୍ରୀହି )—ଯହିଁରେ ଅଧିକାଂଶ ଶୂଦ୍ର ଥାଆନ୍ତି—
Sūdra bhūyishṭha Consisting mostly of Śūdras.
(ଶୂଦ୍ର ବହୁଳ—ଅନ୍ୟରୂପ)

**ଶୂଦ୍ରମୁନି**—ସଂ ବି—୧ । ତପସ୍ୟାରେ ନିରତ ଶୂଦ୍ର—1. A Śūdra
Sūdra muni engaged in performing religious austerities. ୨ । ମୁନିବତ୍ ତପୋନିରତ ଶୂଦ୍ର—2. A Śūdra as pious as a sage. [ଦ୍ର—ରାମଚନ୍ଦ୍ରଙ୍କ ରାଜତ୍ୱକାଳରେ ଜଣେ ଶୂଦ୍ରମୁନି ତପସ୍ୟା କରୁଥିବାରୁ ଦେଶରେ ନାନା ଉପଦ୍ରବ ଘଟିଲା ଓ ରାମଚନ୍ଦ୍ର ଉକ୍ତ ଶୂଦ୍ରମୁନିଙ୍କୁ ହତ କରିବାରୁ ରାଜ୍ୟ ନିରୁପଦ୍ରବ ହେଲା ।] ଦେ. ବି—ସାରଳା ଦାସ ( ଦେଖ )—Sāraḷā dāsa ( See ) [ଦ୍ର—କଥିତ ଅଛି ଯେ ଏହି ଶୂଦ୍ରମୁନି ସାରଳା ଦାସଙ୍କର ପ୍ରଥମ ନାମ ଥିଲା ବୋଲି ପରିଚିତ ।]

**ଶୂଦ୍ରଯାଜକ**—ସ ବି. ପୁଂ ( ୬ଷ୍ଠୀ ତତ୍ )—ଯେଉଁ ବ୍ରାହ୍ମଣ ଶୂଦ୍ରର ପୌରୋହିତ୍ୟ କରେ—A Brāhmaṇa
Śūdra jājaka who conducts a sacrifice for a Sūdra.

**ଶୂଦ୍ରସେବନ**—ସଂ ବି ( ୬ଷ୍ଠୀ ତତ୍ )—ଶୂଦ୍ରର ଚାକିରି କରିବା—
Śūdra sebana Serving a Śūdra.

**ଶୂଦ୍ରା**—ସଂ. ବି. ସ୍ତ୍ରୀ ( ଶୂଦ୍ର+ସ୍ତ୍ରୀ. ଆ )—ଶୂଦ୍ରଜାତୀୟ ସ୍ତ୍ରୀ—
Śūdrā A woman of the Śūdra class; a female Śūdra.

**ଶୂଦ୍ରାଣୀ**—ସଂ. ବି. ସ୍ତ୍ରୀ ( ଶୂଦ୍ର+ସ୍ତ୍ରୀ, ଆନୀ; ତୁଳ. ଯଥା—ଇନ୍ଦ୍ରାଣୀ, ଭବାନୀ, ରୁଦ୍ରାଣୀ, ସର୍ବାଣୀ )—ଶୂଦ୍ର ପତ୍ନୀ—
Śūdrāṇī The wife of a Śūdra. [ ଦ୍ର—କାହାର କାହାର ମତରେ ଏ ଶବ୍ଦ ସଂସ୍କୃତ ନୁହେ ।]

**ଶୂଦ୍ରାବେଦନ**—ସଂ. ବି (ଶୁଦ୍ରା+ଅବେଦନ)—ଶୂଦ୍ରାକୁ ବିବାହ କରିବା
Śūdrābedana —Marrying a Sūdra woman.

**ଶୂଦ୍ରାବେଦୀ**—ସଂ. ବିଣ. ପୁଂ ( ଶୂଦ୍ରାବେଦନ୍, ଶୂଦ୍ରା+
Śūdrā bedī ଅ+ବିଦ୍ ଧାତୁ=ବିବାହ କରିବା+କର୍ତ୍ତୃ. ଇନ୍, [ଶୂଦ୍ରାଭାର୍ଯ୍ୟ—ଅନ୍ୟରୂପ] ୧ମା. ୧ବ )—ଶୂଦ୍ରାର ପାଣିଗ୍ରହଣକାରୀ [ଦ୍ୱିଜାତି ପୁରୁଷ]—( a person of the 3 higher castes ) Marrying a Śūdra woman.

**ଶୂଦ୍ରିୟ**—ଗ୍ରା. ବି (ପ୍ରାଚୀନ ପଦ୍ୟ)—ଶୁଦ୍ର—A Śūdra. [ଦ୍ର—ମନ୍ଦିରେ
Śūdriya शूद्र ପାକ କରିବେ ବ୍ରାହ୍ମଣ କ୍ଷତ୍ରିୟ, ଦେବୀ ପୂଜା ଶୂଦ୍ରୁ ବୋଲିଣ ସେ ମିଳିବେ ଶୂଦ୍ରିୟ—ପ୍ରାଚୀନ ଗୁରୁଭକ୍ତିଗୀତା ।]

**ଶୂଦ୍ରୀ**—ସଂ. ବି. ସ୍ତ୍ରୀ ( ଶୂଦ୍ର+ସ୍ତ୍ରୀ. ଈ )—ଶୂଦ୍ର ପତ୍ନୀ—
Śūdrī Wife of a Śūdra.

**ଶୂନ୍**—ଦେ. ବିଣ ( ସଂ. ଶୂନ୍ୟ )—୧ । ଶୂନ୍ୟ—1. Empty.
Śūn ୨ । ଫମ୍ପା; ଫମ୍ପା—2. Hollow. ୩ । କାରଣରହିତ; शून्य सून ଅହେତୁକ—3. Causeless. ୪ । ନିଷ୍ଫଳ—4. Fruitless. ୫ । ମିଥ୍ୟା—5. False. [ ଯଥା—ଶୂନ୍ୟ

ଗର୍ଭ, ଶୂନ୍ୟବଥା । ] ୬ । ଯହିଁରେ କୌଣସି କାରଣ ନିର୍ଦ୍ଦେଶ କରାଯାଇ ନ ପାରେ—6. Having no assignable cause to account for it. [ଉ—ଶୂନ୍ ଫୁଲ, ଶୂନ୍ ଫୋଟକା । ] ୭ । ଯାହା କୌଣସି ସାଧାରଣ ବା ଦୃଶ୍ୟମାନ କାରଣଦ୍ୱାରା ଘଟେ ବା ଉଠେ ନାହିଁ 7. Having no visible cause. [ଯଥା- ଶୂନ ଗାଣ୍ଠି] ୮। ନିର୍ଜନ--8. Lonely. ୯ । ନିସ୍ତବ୍ଧ—9. Still. ୧୦ । ଆକାଶରୁ ଜାତ—10. Produced from the sky. [ଉ—ଶୂନ୍ ଶବଦ ।] ବି—୧ । ଶୂନ୍ୟ ରାଶି ବା ସଂଖ୍ୟା—1. Zero. ୨ । ଶୂନ୍ୟ; ଆକାଶ—2. The sky; the void. ୩ । ନିର୍ଜନତା; ନିସ୍ତବ୍ଧତା 3. Loneliness; stillness. ୪ । ଭିତରେ କିଛି ନ ଥିବା ଅବସ୍ଥା—4. Emptiness. ୫ । ଚାଟଶାଳୀରେ ସର୍ବ ପ୍ରଥମେ ଉପସ୍ଥିତ ହେବା ଛାତ୍ରକୁ ଅବଧାନଙ୍କର ପୁରସ୍କାର ଦେବା ନାମମାତ୍ର ବେତ୍ରାଘାତ କରିବା—5. A nominal stroke with the cane given by the teacher to the boy who is the first to come to the village school on a particular day.

ଶୂନ—ଦେ. ବିଣ ଓ ବି—(ସଂ. ଶୂନ୍ୟ)—ଶୂନ୍ୟ ଓ ଶୂନ୍—(ଦେଖ) Śūna Śūnya and śūn (See). [ଉ—ଅନେକ ସେସବନେ ଦେଲେ ଶୂନ, ବେଲକୁ ବେଲ ଦଶଗୁଣ । ଭୂପତି ପ୍ରେମପଞ୍ଚାମୃତ ।] ସଂ. ବିଣ—(ଶ୍ୱି ଧାତୁ=ଫୁଲିବା+କର୍ତ୍ତୃ. ତ)—୧ । ଫୁଲିଥିବା—1. Swollen (Apte). ୨ । ବୃଦ୍ଧିପ୍ରାପ୍ତ—2. Increased.

ଶୂନ(ନା)—ସଂ. ବି (ଶ୍ୱି ଧାତୁ=ବୃଦ୍ଧି ପାଇବା+କର୍ତ୍ତୃ. ବା ଅଧିକରଣ. Śūna[nā] ତ; ଶୂନ+ଆ)—୧ । ମାଂସର ବାଟ—1. Meat-(ବା—ଅନ୍ୟରୂପ) market. ୨ । କଂସେଇ ଦୋକାନ—2. Butcher's shop. ୩ । ପ୍ରାଣିବଧ—3. Slaughter of animal. ୪ । ପ୍ରାଣିବଧ କରିବା ସ୍ଥାନ; ବଧଭୂମି; କଂସେଇ ଶାଳା—4. Slaughter house; shambles. ୫ । ଘଣ୍ଟିକା—5. The uvula; soft palate. [Apte]. ୬ । ଯେଉଁ ବସ୍ତୁଦ୍ୱାରା ଜୀବହତ୍ୟାର ସମ୍ଭାବନା ଥାଏ; ଜୀବହିଂସା ସ୍ଥାନ—6. Anything [such as a piece of household furniture] whereby life is likely to be destroyed. [ଦ୍ର—ଶାସ୍ତ୍ର ଅନୁସାରେ ଶନା ପଞ୍ଚ; ଯଥା—ଚୁଲ୍ଲୀ, ଶିଳ, ଚକି, ଝାଡ଼ୁଣି, ଚିକି ଓ ଜଳକୁମ୍ଭ । ଏହି ପଞ୍ଚକୁ ପଞ୍ଚଶୂନା ବୋଲଯାଏ । ଗୃହସ୍ଥର ଏହି ପାଞ୍ଚ ପଦାର୍ଥର ବ୍ୟବହାର ଉପଲକ୍ଷରେ କେତେ ଜୀବ (ଯଥା—ଅଦୃଶ୍ୟ କ୍ଷୁଦ୍ର କୀଟାଦି) ପ୍ରତିଦିନ ବଧ ହେଉଅଛନ୍ତି । ଏହି ପଞ୍ଚଶୂନାଜନିତ ପାପର ପ୍ରାୟଶ୍ଚିତ୍ତ ନିମନ୍ତେ ଗୃହସ୍ଥର ପଞ୍ଚ ମହାଯଜ୍ଞର ବ୍ୟବସ୍ଥା ହୋଇଅଛି । [Apte]. ଏଥିର ବାକ୍ୟ:—ପଞ୍ଚଶୂନା ଗୃହସ୍ଥସ୍ୟ ଚୁଲ୍ଲୀ ପେଷଣ୍ୟୁପସ୍କରଃ । କଣ୍ଡନୀ ଚୋଦକୁମ୍ଭଶ୍ଚ ବଧ୍ୟତେ ଯାସ୍ତୁ ବାହୟନ୍—ମନୁ ୩।୬୮]

ଶୂନ ଗରବ(ଭ) -ଦେ. ବି—ଶୂନ୍ ଗରବ ( ଦେଖ ) Śūna garaba(bha) Śun garaba ( See )

ଶୂନଚିତି—ଦେ. ବି—ଏକ ପ୍ରକାର ପହଁରା— Śūnachiti One kind of swimming. চিতসাঁতাৰ चित्तैरना

ଶୂନ ବଥା—ଦେ. ବି—ଯେଉଁ ବଥାର କାରଣ ସ୍ଥିର କରାଯାଇ ପାରେ Śūna batha ନାହିଁ—Aching for which there is শূন্য বেদনা शूल वेदना no apparent cause.

ଶୂନଭାଗୀ—ଦେ. ବି—ଟଙ୍କା ନ ଦେଇଥିବା ଅଂଶୀଦାର— Śūnabhāgi A partner who had not made cash মাগনা ভাগদাৰ contribution to the joint stock. शूनभागी [ଉ—ମହାପାତ୍ରେ ଏବେ ବଲଙ୍କର ଘରର କର୍ତ୍ତା, (ଶୂନ ଭାଗଦାର—ଅନ୍ୟରୂପ) ଜାତରେ ଗୁରୁପଣି ଶୂନଭାଗୀ—ଫକୀରମୋହନ—ଗଳ୍ପସ୍ୱଳ୍ପ ।]

ଶୂନାବାନ୍—ସଂ. ବି ପୁଂ (ଶୂନା=ମାଂସ ବିକ୍ରୟ ସ୍ଥାନ+ବତ= Śūnābān ଶୂନାବତ୍; ୧ମା. ୧ବ)—କଂସେଇ—A butcher.

ଶୂନ୍ୟ—ସଂ. ବି (ଶ୍ୱି=ଅବୃଦ୍ଧସ୍ତ୍ୱ+ଉନ=ନ୍ୟନ+ଯ, ନିପାତନ ସିଦ୍ଧ Śūnya ଶୂନା=ପ୍ରାଣିବଧ+ହିତାର୍ଥେ. ଯ)—୧ । ଆକାଶ—1. The sky, the void. ୨ । ବାୟୁ ବା ଅନ୍ୟବସ୍ତୁ ରହିତ ରିକ୍ତ ସ୍ଥାନ—2. Empty space; vacuum; vacant space. ୩ । ରିକ୍ତତାସୂଚକ ବିନ୍ଦୁ 'O'; ସଂଖ୍ୟା ନ ଥିବାର ପରିଚାୟକ ମଣ୍ଡଳ—3. Zero; a dot; a cypher. ୪ । ଅଭାବ—4. Want. ୫ । ରିକ୍ତତା—5. Emptiness: ୬ । ନିର୍ଜନ ସ୍ଥାନ—6. Lonely place. ୭ । ବ୍ରହ୍ମା—7. The Brahmā. (Apte). ୮ । ଅନସ୍ତିତ୍ୱ—8. Nonexistence; nonentity. (Apte). ବିଣ—(ଶୂନ୍ୟା—ସ୍ତ୍ରୀ) ୧ । ରିକ୍ତ; ଖାଲି—1. Empty; vacant. [ଶୂନ୍ୟତା—ବି] ୨ । ଫମ୍ପା—2. Hollow. ୩ । ନିର୍ଜନ—3. Lonety; desolate. ୪ । ନିସ୍ତବ୍ଧ—4. Still. ୫ । ତୁଚ୍ଛ—5. Trifling. ୬ । (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ; ଯଥା—ଧନଶୂନ୍ୟ; ପ୍ରାଣଶୂନ୍ୟ ) (ଅମୁକରେ) ହୀନ—6. (in compounds) Devoid of; not having; deprived of. ୭ । ଅନସ୍ତିତ୍ୱ; ସ୍ଥିତିରହିତ—7. Non existent. (Apte) ୮। ବିଷଣ୍ଣ—8. Dejected; downcast; dispirited. ୯ । ଅପକ୍ଷପାତ—9. Indifferent [Apte]. ୧୦ । କପଟତା ହୀନ—10. Guileless [Apte]. ୧୧ । ନିରର୍ଥକ—11. Nonsensical; unmeaning. ଦେ. ବି—ବିନ୍ଦୁ—Point. (ଉ—ତୋ ବର୍ଣ୍ଣି ହେବକୁ କାହାର, ଠୁଳ ଶୂନ୍ୟରୁ ଅଦ୍ୟାନ୍ତର । ଭୂପତି. ପ୍ରେମ

ମୂଳ ।) ଦେ. ବଣ—୧ । ଯହିଁର କୌଣସି କାରଣ ନିର୍ଣ୍ଣୟ କରାଯାଇ ନ ପାରେ—1. Of which no palpable cause can be assigned. (ଯଥା—ଶୂନ୍ୟଫୋଟକା, ଶୂନ୍ୟଫୁଲି ।) ୨ । ଆକାଶରୁ ଶୁଣାଯିବା—2 Heard form the space. (ଯଥା—ଶୂନ୍ୟ ଶବ୍ଦ ।) ୩ । ଯନ୍ତ୍ର ପରିଚାଳିତ; ଯାହା ଦୃଶ୍ୟମାନ ଜୀବଜନ୍ତୁଙ୍କଦ୍ୱାରା ଚାଳିତ ନୁହେଁ—3. Driven by invisible power. (ଯଥା—ଶୂନ୍ୟ ଗାଡ଼ି)

ଶୂନ୍ୟକୁମ୍ଭ—ସଂ. ବି (କର୍ମଧା)—ଜଳଶୂନ୍ୟ କଳଶ—
Śūnyakumbha An empty jug.

ଶୂନ୍ୟ ଗର୍ଭ—ସଂ. ବଣ (ବହୁବ୍ରୀହି=ଶୂନ୍ୟ ଅଟେ ଗର୍ଭ ଯାହାର)—
Śūnya garbha ୧ । ଯାହାର ଭିତର ଫମ୍ପା—1. Having (ଶୂନ୍ୟଗର୍ଭା—ବଣ. ସ୍ତ୍ରୀ) the inside empty. ୨ । ଫମ୍ପା; [ ଶୂନ୍ୟଗର୍ଭତା—ବି ] ଫମ୍ପା—2. Hollow; empty. ଦେ. ବି—ମିଛ ଗର୍ଭ—A false conception.

ଶୂନ୍ୟ ଗାଡ଼ି—ଦେ. ବି—ଶୁନ୍ ଗାଡ଼ି (ଦେଖ)
Śūnya gārdi Śun-gārdi, [See]

ଶୂନ୍ୟ ଗୃହ—ସଂ. ବି (କର୍ମଧା)—୧ । ଲୋକ ନ ଥିବା ଘର—1. An empty
Śūnya gruha house. ୨ । ସ୍ୱଜନ ବା ପରିବାରଶୂନ୍ୟ ଗୃହ—2. A house without its family members.

ଶୂନ୍ୟ ଚକର—ଦେ. ବି (ସଂ. ଶୂନ୍ୟ+ଚକ୍ର)—ଏକପ୍ରକାର ବାଣ—
Śūnya chakara A kind of fireworks, [ ଦ୍ର—ଏହା, ( ଶୂନ୍ୟଚକ୍ର—ଅନ୍ୟରୂପ ) ଚକାକାର ଏବଂ ଭୂମିରେ ଯୋଡ଼ା ହୋଇଥିବା ବାଉଁଶ ଅଗରେ ଏହା ବନ୍ଧା ଯାଇ ଥାଏ; ନିଆଁ ଲଗା ହେଲେ ଏଥିରୁ ଅଗ୍ନି କଣାମାନ ବାହାରେ ଓ ଏ ଚକ୍ର ଘୂରୁଥାଏ ।] (ଭି—ଅନ୍ୟେଷୁକର୍ଣ୍ଣିକା ବାଣ ଉଡ଼ୁଛପରେ ଘୁରନ୍ତି ଶୂନ୍ୟ ଚକର—ଉପେନ୍ଦ୍ରଭଞ୍ଜ ।)

ଶୂନ୍ୟଚର—ସଂ. ବଣ. ପୁଂ (ଶୂନ୍ୟ+ଚର ଧାତୁ+କର୍ତ୍ତୃ. ଅ)—ଶୂନ୍ୟଚାରୀ
Śūnyachara (ଦେଖ)—Śūnyachārī. (See)
(ଶୂନ୍ୟଚରୀ—ସ୍ତ୍ରୀ)

ଶୂନ୍ୟଚାରୀ—ସଂ. ବଣ. ପୁଂ (ଶୂନ୍ୟଚାରିନ୍ ଶବ୍ଦ; ଶୂନ୍ୟ+ଚର୍ ଧାତୁ+
Śūnyachārī ଇନ୍)—ଶୂନ୍ୟବିହାରୀ; ଯେ ଆକାଶରେ ବିଚରଣ
(ଶୂନ୍ୟଚାରିଣୀ—ସ୍ତ୍ରୀ) କରେ; ଆକାଶବିହାରୀ—Moving in the sky. ବି—୧ । ପକ୍ଷୀ—1. Bird. ୨ । ଦେବତା ଗଣ—2. Deities. ୩ । ରାକ୍ଷସ—3. Demon.

ଶୂନ୍ୟଚିତି—ଦେ. ବି (ସଂ. ଶୂନ୍ୟ ଓ ଫା. ଚିତ୍)—ମଲ୍ଲମାନଙ୍କର
Śūnyachiti ବ୍ୟାୟାମ ବିଶେଷ ମାଲଚିତି; କାହାକୁ ଅଣ୍ଟୁ ନ
डिगवाज़ी. ଧରି ଲେଉଟ ପଡ଼ ଦେଇ ଘୁରିବା—Somersault;
शून्यचित्त cutting capers in the air,

ଶୂନ୍ୟଚିରା—ଦେ. ବି—ଶୂନ୍ୟକୁ ବା ଉପରକୁ ଡେଇଁବା—
Śūnyachirā Aerial jump; leap into the air,
शून्योल्लाफ शून्यमे कुदना

ଶୂନ୍ୟ ଡ୍ରିଲ୍—ଦେ. ବି—ବାଳକଙ୍କ ଅକ୍ଷର ବା ଚିତ୍ର; ଶୂନ୍ୟରେ ଅଙ୍କିବା
Śūnyardril ରୂପ ଶିଶୁଶିକ୍ଷା—Aerial drill; the
शून्यड्रिल practice of infants drawing figures in
शून्य ड्रिल the air,

ଶୂନ୍ୟତା(ତ୍ୱ)—ସଂ. ବି (ଶୂନ୍ୟ+ଭାବ ତା, ତ୍ୱ)—ଶୂନ୍ୟ ହେବା
Śūnyatā(twa) ଅବସ୍ଥା; ରିକ୍ତତା—Emptines, vacuity,

ଶୂନ୍ୟ ଦୃଷ୍ଟି—ସଂ. ବି (ମ, ପ. ଲୋ; ଶୂନ୍ୟରେ ସ୍ଥାପିତ ଦୃଷ୍ଟି)—
Śūnya drushti ୧ । ଉଦ୍ଦେଶ୍ୟହୀନ ଦୃଷ୍ଟି; ଉଦାସ ଦୃଷ୍ଟି—1, A vacant gaze. ୨ । ଆକାଶରେ ସ୍ଥାପିତ ଦୃଷ୍ଟି—2, Gazing at the sky,

ଶୂନ୍ୟ ପଥ—ସଂ. ବି—ଆକାଶ ମାର୍ଗ—
Śūnya patha The aerial path; the sky,

ଶୂନ୍ୟ ଫ(ଫୁ,ଫୋ)ଟକା—ଦେ. ବି—ଶୁନ୍ ଫଟକା (ଦେଖ)
Śūnya pha(fhu fho)ṭakā Śun phaṭakā, (See)

ଶୂନ୍ୟବାଦ—ସଂ. ବି (ନ୍ୟାୟ ୧ । ଏ ଜଗତ ଶୂନ୍ୟ ଅଟେ, ଅର୍ଥାତ
Śūnyabāda ଏଥିରେ କିଛିମାତ୍ର ସତ୍ତା ନାହିଁ, ଏବଂବିଧମତ—1, The theory that the Universe is mere void and that nothing has any substance in this world,i.e. Things "are not what they seem"; Philosophical nihilism. [ଦ୍ର—ଏ ବୌଦ୍ଧମାନଙ୍କ ଧର୍ମବାଦ ଅଟେ ।] ୨ । ନାସ୍ତିକତା—2, A stheism.

ଶୂନ୍ୟବାଦୀ—ସଂ. ବି. ପୁଂ (ଶୂନ୍ୟବାଦ+ଅସ୍ତି ଅର୍ଥରେ ଇନ୍; ୧ମା.
Śūnyabāda ଏକ)—୧ । ନାସ୍ତିକ ବିଶେଷ—1, A clas (ଶୂନ୍ୟବାଦିନୀ—ସ୍ତ୍ରୀ) of atheists. ୨ । ବୌଦ୍ଧ ମତାବଲମ୍ବୀ—2, A Buddhist,

ଶୂନ୍ୟ ବିମାନ—ସଂ. ବି—ଆକାଶଯାନ; ବ୍ୟୋମଯାନ—
Śūnya bimāna Balloon; aeroplane.

ଶୂନ୍ୟ ବିହାର—ସଂ. ବି—ଆକାଶ ବା ବାୟୁମାର୍ଗରେ ଭ୍ରମଣ—Aerial
Śūnya bihāra flight; a flight accross the sky, (ବଣ—ଶୂନ୍ୟ ବିହାରୀ)

ଶୂନ୍ୟ ମଣ୍ଡଳ—ସଂ. ବି—ଆକାଶ ମଣ୍ଡଳ—
Śūnya maṇdala The empty space,

ଶୂନ୍ୟ ମଧ୍ୟ—ସଂ. ବଣ—ଶୂନ୍ୟଗର୍ଭ (ଦେଖ)—Śūnyagarbha,
Śūnya madhya (See) ସଂ. ବି—ନଳ ତୃଣ—A sort of (ଶୂନ୍ୟମଧ୍ୟା—ବଣ. ସ୍ତ୍ରୀ) hollow reed,
[ଶୂନ୍ୟମଧ୍ୟତା—ବି]

ଶୂନ୍ୟ ମନସ୍କ—ସଂ. ବଣ. ପୁଂ—ଅମନୋଯୋଗୀ—
Śūnyamanaska Absent-minded; listless,
(ଶୂନ୍ୟମନସ୍କା—ସ୍ତ୍ରୀ)
[ଶୂନ୍ୟମନାଃ—ଅନ୍ୟରୂପ, ପୁଂ ଓ ସ୍ତ୍ରୀ]

ଶୂନ୍ୟମୟ—ଦେ. ବଣ—୧ । ଏକବାରକେ ଶୂନ୍ୟ—
Śūnyamaya 1, Absolutely empty,
୨ । ସଂପୂର୍ଣ୍ଣରୂପେ ନିର୍ଜନ—2, Very lonely.

ଶୂନ୍ୟ ମାର୍ଗ—ସଂ. ବି—ଶୂନ୍ୟ ପଥ—
Śūnya mārga Śūnya patha, (See)

ଶୂନ୍ୟ ମୁଖ (ବଦନ)—ସଂ. ବି (କର୍ମଧା)—ବିଷଣ୍ଣ ବଦନ—
Śūnya mukha (badana) Downcast face,
(ଶୂନ୍ୟମୁଖୀ, ଶୂନ୍ୟବଦନା—ବିଣ. ସ୍ତ୍ରୀ) ସଂ. ବିଣ. ପୁଂ(ବହୁବ୍ରୀହି)—ବିଷଣ୍ଣ ବଦନ ବିଶିଷ୍ଟ—Having a downcast or dejected face,

ଶୂନ୍ୟ ରାସ—ଦେ. ବି (ଶାସ୍ତ୍ର ଭେଦ)—ଯୋଗସାଧକର ଭ୍ରୂ ମଧ୍ୟରେ
Śūnya rāsa କଳ୍ପିତ ନୃତ୍ୟ—Imaginary dance
(ଶୂନ୍ୟ ବିହାର—ଅନ୍ୟରୂପ) taking place between the eyebrows. [ ଉ—ଶୂନ୍ୟରାସ କୋଟ୍ୟତମ ମୂର୍ତ୍ତି ବିକୁଣ୍ଠ ପରେ—ପ୍ରାଚୀ. ଶ୍ରୀଗୁରୁଭକ୍ତି ଗୀତା ।]

ଶୂନ୍ୟ ଶବଦ—ଦେ. ବି—ଶୂନ୍ ଶବଦ (ଦେଖ)
Śūnya śabada Śun-śabada (See)

ଶୂନ୍ୟ ଶବ୍ଦ—ସଂ. ବି—ଆକାଶରୁ ଜାତ ଶବ୍ଦ ବା ଧ୍ୱନି—
Śūnya śabda A sound from the sky.

ଶୂନ୍ୟ ସ୍ଥାନ—ସଂ. ବି (କର୍ମଧା)—ଖାଲି ବା ରିକ୍ତ ସ୍ଥାନ—
Śūnya sthāna Empty place,

ଶୂନ୍ୟ ହସ୍ତ—ସଂ. ବି (କର୍ମଧା)-ରିକ୍ତହସ୍ତ—Empty hand. ବିଣ. ପୁଂ
Śūnya hasta [ବହୁବ୍ରୀହି] ରିକ୍ତହସ୍ତ; ନିର୍ଦ୍ଧନ—
(ଶୂନ୍ୟହସ୍ତା—ସ୍ତ୍ରୀ) Empty-handed; pennyless·
( ଶୂନ୍ୟହସ୍ତତା—ବି )

ଶୂନ୍ୟ ହୃଦୟ—ସଂ ବି (କର୍ମଧା)—୧ । ଅମନୋଯୋଗ—1. Absent
Śūnya hṛudaya mindedness. ୨ । ବିଷଣ୍ଣ
(ଶୂନ୍ୟହୃଦୟା—ସ୍ତ୍ରୀ ଶବ୍ଦ) ମନ—2. Dejected mind. ସଂ. ବିଣ. ପୁଂ (ବହୁବ୍ରୀହି)—୧ । ଅମନୋଯୋଗୀ—1. Absent-minded (Apte). ୨ । ଅତି ଦୁଃଖାତୁର—2. Very sorry. ୩ । ଅସନ୍ଦିଗ୍ଧ—3. Unsuspecting (Apte). ୪ । ନିଷ୍କପଟ—4. Open-hearted (Apte).

ଶୂନ୍ୟା—ସଂ. ବିଣ. ସ୍ତ୍ରୀ—(ଶୂନ୍ୟ+ଆ)—୧ । ଶୂନ୍ୟର ସ୍ତ୍ରୀଲିଙ୍ଗ—1.
Śūnyā Feminine of Śūnya. ୨ । ବନ୍ଧ୍ୟା—2. Barren (woman). ବି—୧ । ନଳତୃଣ—1. A hollow reed. ୨ । ବନ୍ଧ୍ୟା ସ୍ତ୍ରୀ—2. A barren woman. ୩ । ଫଣୀ ମନସା; ନାଗଫେଣିଆ ଗଛ—3. Opuntia Dillenia; prickly pear; a species of cactus. [ଦ୍ର—ଏଥିରେ ଫଳ ଫୁଲ ନ ଥିବାରୁ ଏହି ନାମ]

ଶୂନ୍ୟେ ଶୂନ୍ୟେ—ଦେ. କି. ବିଣ—୧ । ବିନା କୌଣସି ବା ପରିଦୃଶ୍ୟ-
Śūnye śūnye ମାନ କାରଣରେ—1. Without any
शून्ये शून्ये शून्यउत्सर्गे patent or assignable cause. ୨ । ଭୂମି ସ୍ପର୍ଶ ନ କରି; ଭୂମିରେ କୌଣସି ଅଂଶ ନ ଲଗି; ଆକାଶ ମାର୍ଗରେ—2. Without touching the ground.[ଉ(୧)—ଉଡ଼ୁଥାଏ ଶୂନ୍ୟେ ଶୂନ୍ୟେ କେଉଁସ୍ଥାନେ, ବାହୋଡ଼ିବା ଅଛେ କେହି ତା ନ ଜାଣେ । ରାଧିକା, ରାଧାନାଥ] [ଉ(୨)—ଶୂଦ୍ରଭକ୍ଷ କୋଚ ତାଙ୍କୁ ଶୂନ୍ୟେ ଶୂନ୍ୟେ ଟେକି ନେଇଗଲେ]

ଶୂପ—ସଂ. ବି—ସୂପ (ଦେଖ)—Śūpa (See) ୧ । ଡାଲି—
Śūpa 2. Soup of peas.

ଶୂପକାର—ସଂ. ବି ପୁଂ (ଶୂପ+କାର)—୧ । ଶୂଦ୍ରର ପାଚକ—1. A
Śūpakāra cook of a Śūdra. ୨ । ପାଚକ; ସୁଆର 2. A cook.

ଶୂୟମାନ—ସଂ. ବିଣ (ଶ୍ୱି ଧାତୁ=ବୃଦ୍ଧି ପାଇବା+କର୍ତ୍ତୃ. ମାନ)
Śuyamāna —ଯାହା ସ୍ଫୀତ ହୋଇଅଛି—
(ଶୂୟମାନା—ସ୍ତ୍ରୀ) Swollen.

ଶୂର୍ (ଧାତୁ)—ସଂ.—୧ । ସାହାସୀ ହେବା—1. To be brave.
Śūr(root) ୨ । ବଧ କରିବା—2. To kill.

ଶୂର—ସଂ. ବି—(ଶୂର୍ ଧାତୁ+କର୍ତ୍ତୃ, ଅ) ୧ । ସୂର୍ଯ୍ୟ—1. The
Śūra sun ୨ । ଶ୍ରୀକୃଷ୍ଣଙ୍କ ପିତାମହ ଓ ବସୁଦେବଙ୍କ ପିତା; ଶୂରସେନ—2 The paternal grandfather of Śrīkṛushṇa. ୩ । ସାହାସିକ ବ୍ୟକ୍ତି; ବୀର—3. Hero; a brave person ୪ । ସିଂହ—4. Lion. ୫ । ଶୂକର—5. Hog; pig. ୬ । ଚିତକ; ଧଳାଚିତା ଗୁଳ୍ମ—6. Plumbago Zeylanica. ୭ । ଶାଳ ବୃକ୍ଷ—7. Shorea Robusta tree. ୮ । କେଣ୍ଡୁ; ଲକୁଚ—8. A fruit tree; Autocarpus Locoocha ୯ । ମସୁର—9. A leguminous creeper; Ervum Horsutum ବିଣ. ପୁଂ—୧ । ବୀର—1 Heroic. ୨ । ସାହସିକ 2. Bold; brave; courageous ୩ । ବଳବାନ୍
(ଶୂରା—ସ୍ତ୍ରୀ) 3 Mighty; powerful ଦେ. ବି- ବଙ୍ଗୀୟ ବଂଶୋପାଧି ବିଶେଷ—A family title in Bengal.

ଶୂରଣ—ସଂ. ବି—(ଶୂର ଧାତୁ=ବଧ କରିବା+କର୍ତ୍ତୃ, ଅନ; ଏହା
Śūraṇa ଅର୍ଶ ରୋଗକୁ ନାଶ କରେ) ୧ । ଓଲୁଅ—1 An esculent bulbous root; Arum Campanulatum ୨ । ଶ୍ୟୋନାକ; ଫଣଫଣା (ଗଛ)—2. A plant; Bignonia Indica.

ଶୂରତା(ତ୍ୱ)—ସଂ. ବି—(ଶୂର+ତା; ତ୍ୱ)—୧ । ବୀରତ୍ୱ—1 Hero-
Śūratā(twa) ism ୨ । ସାହସ—2 Bravery; courage.

ଶୂରତା ପ୍ରକାଶ—ସଂ. ବି (୬ଷ୍ଠୀ ତତ୍)—ବୀରତ୍ୱ ଦେଖାଇବା—
Śūratā prakāśa Display of bravery.

ଶୂର ଦେଓ(ବ)—ଦେ. ବି—( ସଂ. ଶୂର ଓ ଦେବ )—କ୍ଷତ୍ରିୟମାନଙ୍କ
Śūra deo(ba)- ବଂଶୋପାଧି ବିଶେଷ—A family title of Kshatriyas.

ଶୂରପ୍ରତାପ ମହୀନ୍ଦ୍ର ବାହାଦୁର—ଦେ. ବି—ଢେଙ୍କାନାଳରେ ଭୂତପୂର୍ବ
Śūrapratāpa mahindra bāhādura ସାମନ୍ତ ରାଜା—
The name of the late Feudatory Chief of DhenkānālState [ ଦ୍ର—ଏ ଅଲ

ବୟସରେ ଦେହ ତ୍ୟାଗ କରିଥିଲେ । ଏ ଜଣେ ଧର୍ମନିଷ୍ଠ ଓ ଶାନ୍ତସ୍ୱଭାବ ବ୍ୟକ୍ତି ଓ ଦସ୍ୟୁ ଓ ପ୍ରଜାପ୍ରିୟ ଥିଲେ । ]

**ଶୂରବନ୍ତ**—ଦେ. ବିଣ—(ଫ. ଶୌର୍ଯ୍ୟବାନ୍)—ସାହସୀ; ବଳବନ୍ତ—Śūrabanta ବୀର ଶୂରବୀର Strong. [ଦ୍ର—ବଳ ସୁର ପ୍ରଭୃ ଶବରେ ଶୂରବନ୍ତ ଅସୁର ଯନ୍ତୁ ନସୁଇଲ ଜନକଙ୍କୁ । ଭକ୍ତ. ବୈଦେହୀଶବିଳାସ ।]

**ଶୂର ସେନ**—ସଂ.ବି—(ଶୂର=ସାହସୀ+ସେନା ଯାହାଙ୍କର; ବହୁବ୍ରୀହି)—Śūra sena ୧ । ଯଦୁବଂଶୀୟ ରାଜା ଶ୍ରୀକୃଷ୍ଣଙ୍କ ପିତାମହ—1. Name of Śrīkrushna's paternal grand father. [ଦ୍ର—ଏହାଙ୍କର ବସୁଦେବ ନାମକ ପୁତ୍ର ଓ ୨୪ କନ୍ୟା ଜନ୍ମ ହୋଇଥିଲେ, ପ୍ରଥମା କନ୍ୟା ପୃଥା; ପୃଥାଙ୍କୁ ଶୂରସେନ ସ୍ୱୀୟ ପ୍ରତିଜ୍ଞା ରକ୍ଷାର୍ଥ ସ୍ୱୀୟ ପ୍ରିୟ କୁନ୍ତିଭୋଜରାଜାଙ୍କୁ ଦେଇଥିଲେ ଏବଂ ପୃଥା କୁନ୍ତିଭୋଜଙ୍କଦ୍ୱାରା ଲାଳିତା ପାଳିତା ହୋଇ 'କୁନ୍ତୀ' ନାମରେ ପରେ ପରିଚିତା ହେଲେ । ଶୂରସେନଙ୍କର ଅପର କନ୍ୟା ଶ୍ରୁତଶ୍ରବାଙ୍କୁ ଚେଦିରାଜ ବିବାହ କରିଥିଲେ ଏବଂ ଏହାଙ୍କ ଗର୍ଭରୁ ଶିଶୁପାଳ ଜନ୍ମିଥିଲେ । ] ୨ । ମଥୁରାପୁରୀ; ମଥୁରାପୁରୀ ଓ ତତ୍ସନ୍ନିହିତ ଦେଶର ପ୍ରାଚୀନ ନାମ—2. The ancient name of Muttra and its adjoining country.

**ଶୂରୋଚିତ**—ସଂ ବିଣ.—( ୭ମୀ ତତ୍, ଶୂର ପକ୍ଷରେ ଉଚିତ )—ବୀର Śūrochita ଯୋଗ୍ୟ; ବୀରର ଉପଯୁକ୍ତ ( କର୍ମ )—( act ) Befitting a hero; heroic.

**ଶୂର୍ପ** (ଧାତୁ)—ସଂ—ପରିମାଣ କରିବା; ମାପିବା—Śūrp (root) To measure.

**ଶୂର୍ପ**—ସଂ ବି—(ଶୂର୍ପ ଧାତୁ+କରଣ ଅ; କିମ୍ବା ଶୃ ଧାତୁ=ହିଂସା Śūrpa କରିବା, ବର୍ଜନ କରିବା+କର୍ତ୍ତୃ ପ; ଯାହା ଶସ୍ୟାଦିରୁ [ସର୍ପ—ଅପଭ୍ରଂଶ] ତୁଷ ଆଦି ବର୍ଜନ କରେ)—୧ । କୁଲା; ଶସ୍ୟାଦି ପାଛୁଡିବା ପାଇଁ ବ୍ୟବହୃତ ବଉଁଶନିର୍ମିତ ଚଟକା ପାତ୍ର—1. Winnowing fan; a flat tray for winnowing grains. ୨ । ଦ୍ରୋଣଦ୍ୱୟ ପରିମାଣ; ଶସ୍ୟାଦିର ପରିମାଣ ବିଶେଷ (ପ୍ରାୟ ବାଲେଶ୍ୱର ୧୦ ସେର ଓ କଟକ ଅଠସେର)—A unit of measure of corn, about 10 standard seers.

**ଶୂର୍ପକ**—ସ. ବି—(ଶୂର୍ପ+କ)—କନ୍ଦର୍ପର ଶତ୍ରୁ; ଅସୁରବିଶେଷ—Śūrpaka an enemy of God Cupid; the name of a demon.

**ଶୂର୍ପ କର୍ଣ୍ଣ**—ସ. ବି—(ବହୁବ୍ରୀହି; ଶୂର୍ପ ପରି କର୍ଣ୍ଣ ଯାହାର)—୧ ହସ୍ତୀ; Śūrpa karnna ହାତୀ—1, Elephant. ୨ । ଗଣେଶ—[ସର୍ପକର୍ଣ୍ଣ—ଅପଭ୍ରଂଶ]— 2. God Ganeṣa. ବିଣ—କୁଲାକାନିଆ—Having ears as big as the the winnowing fan.

**ଶୂର୍ପଣ(ନା)ଖା(ଖୀ)**—ସ. ବି. ସ୍ତ୍ରୀ—(ବହୁବ୍ରୀହି; ଶୂର୍ପପରି ନଖ ଯାହାର; Śūrpana(na)khā(khī) ଶୂର୍ପ+ନଖ+ଆ; ଈ)—ରାବଣର ଭଗ୍ନୀ Name of the sister of Rābana. [ଦ୍ର—ଏ ମୁନିବର ବିଶ୍ରବାଙ୍କ ଔରସରେ କୈକସୀ ରାକ୍ଷସୀ ଗର୍ଭରୁ ଜନ୍ମିଥିଲା ଓ କାମରୂପିଣୀ ଥିଲା । ଏହାର ଅବୟବ ଜଳନ୍ତା ଅଙ୍ଗାର ପରି ରକ୍ତବର୍ଣ୍ଣ ଦିଶୁ ଥାଏ । କାଳକେୟ ବଂଶୀୟ ଦୈତ୍ୟ ବିଦ୍ୟୁଜ୍ଜିହ୍ୱ ସଙ୍ଗେ ଏହାର ବିବାହ ହୋଇଥିଲା । ରାବଣ ଦିଗ୍‌ବିଜୟ କରିବାକୁ ଯାଇ ଭ୍ରମରେ ବିଦ୍ୟୁଜ୍ଜିହ୍ୱକୁ ବଧ କରିବାରୁ ଶୂର୍ପଣଖା ବିଧବା ହେଲା । ଅତଃପର ରାବଣ ଏହାକୁ ଦଣ୍ଡକାରଣ୍ୟରେ ଯଥେଚ୍ଛ ବିଚରଣ କରିବାକୁ ଅନୁମତି ଦେଇ ସୈନ୍ୟ ସହ ଖର ଓ ଦୂଷଣ ନାମକ ଦୁଇଜଣ ସେନାପତିଙ୍କୁ ଏହାର ରକ୍ଷାର୍ଥ ନିଯୁକ୍ତ କରିଥିଲା । ରାମ ଓ ଲକ୍ଷ୍ମଣ ଖର ଦୂଷଣଙ୍କୁ ପରାଜିତ କଲେ ଓ ଏ ରାମଚନ୍ଦ୍ରଙ୍କୁ ସ୍ୱାମୀରୂପେ ପାଇବାକୁ ପ୍ରାର୍ଥନା କରିବାରୁ ଓ ସୀତାଙ୍କୁ ଖାଇବାକୁ ବସିବାରୁ ରାମଙ୍କ ଆଦେଶକ୍ରମେ ଲକ୍ଷ୍ମଣ ଏହାର ନାକ କାନ କାଟି ପକାଇଲେ ଓ ଏ ଲଙ୍କାକୁ ଫେରି ଆସି ସୀତାଙ୍କୁ ହରଣ କରିବା ପାଇଁ ରାବଣକୁ ପ୍ରବର୍ତ୍ତାଇଲା ।]

**ଶୂର୍ପପର୍ଣ୍ଣୀ**—ସଂ ବି—(ବହୁବ୍ରୀହି, ଶୂର୍ପ ପରି ପର୍ଣ୍ଣ ଯାହାର ଶୂର୍ପ+ପର୍ଣ୍ଣ+Śūrpa parnnī ଈ)—ଶିମ୍ବବିଶେଷ—A kind of bean; kidney bean.

**ଶୂର୍ପବାତ**—ସଂ. ବି—କୁଲା ବିଞ୍ଚାଯିବା ପବନ—Wind produced Śūrpa bāta by waving a winnowing fan. [ଦ୍ର—ଏହା ଦେହରେ ଲଗାଇବା ଅଶୁଭ (ଶବ୍ଦକୋଷ) ।]

**ଶୂର୍ପୀ**—ସଂ. ବି—(ଶୂର୍ପ+ଙ୍,ସ୍ୱାର୍ଥେ+ଈ)—୧ । ଛୋଟ କୁଲା; କୁଲେଇ Śūrpī A small winnowing tray. [ସୁର୍ପୀ—ଅପଭ୍ରଂଶ]

**ଶୂର୍ମ୍ମୀ(ର୍ମୀ)**—ସ. ବି—(ସୁ=ସୁନ୍ଦର+ଊର୍ମି=ତରଙ୍ଗ ଯହିଁରେ)—୧ । Śūrmmī(rmī) ଲୌହ ପ୍ରତିମା—1. An image of iron. ୨ । କର୍ଣ୍ଣଭୂଷଣ ବିଶେଷ—2. A sort of earring.

**ଶୂଳ** (ଧାତୁ)—ସଂ.—୧ । ରୋଗଗ୍ରସ୍ତ ହେବା—1. To ail; to Sūḷ (root) be ill. ୨ । ଶବ୍ଦ କରିବା—2. To emit a sound. ୩ । ସଂଘାତ କରିବା—3. To strike. ୪ । ଫୋଡ଼ିବା; ଶୂଳ ଦେବା—3. To pierce; to impale.

**ଶୂଳ**—ସଂ. ବି—( ଶୂଳ ଧାତୁ+କର୍ତ୍ତୃ. ଅ )—୧ । ଉଦରଜାତ Śūḷa ରୋଗ ବିଶେଷ; ପେଟମରା—1. Colic; griping. ୨ । ଶୂଳରୋଗ (ଦେଖ)—2. Śūḷaroga (See) ୩ । ବ୍ୟଥା; ବଥାଇବା—3. Acute pain. ୪ । ସନ୍ତାନ ପ୍ରସବକାଳୀନ ବେଗ; ଗର୍ଭଯନ୍ତ୍ରଣା; ପ୍ରସବବେଦନା; 4. The pangs of child birth; labour pain; labour; travail. ୫ । ତୀକ୍ଷ୍ଣାଗ୍ର ଶଲାକା ବିଶିଷ୍ଟ ବେଧନାସ୍ତ୍ର ବିଶେଷ—5. A weapon having a sharp pointed stake; dart. ୬ । ପ୍ରାଣଦଣ୍ଡ ଦେବା ପାଇଁ ବ୍ୟବହୃତ ଯନ୍ତ୍ର ବିଶେଷ; ଶୂଳ—6. A stake of iron for impaling criminals. ୭ । ତ୍ରିଶୂଳ—7. A trident; a three-prorged

fork. ୮ ଲୁହାର ଖଲା; ଶିଲ—8. Pike or spit of iron. ୯ ଲୌହଶଲାକା—9. Iron pin or peg. ୧୦ । ବର୍ଚ୍ଛା, ଏକମୁନା ଅସ୍ତ୍ର—10. Spear; harpoon. ୧୧ । ମୃତ୍ୟୁ—11. Death. ୧୨ । (ଜ୍ୟୋତିଷ) ଅଶୁଭକର ଯୋଗ ବିଶେଷ; ଦିକ୍ ଶୂଳ—12. An inauspicious astrological conjuntion for starting on a mission. [ ଦ୍ର—ଯେଉଁ ଦିଗରେ ଯେଉଁ ବାରରେ ଶୂଳ ଯୋଗ ଘଟିଥାଏ ସେ ଦିଗକୁ ଯାତ୍ରା କଲେ ମୃତ୍ୟୁ ଘଟେ ।] ୧୩ । ଦୁର୍ଗା ଓ ଓ ମହାଦେବଙ୍କ ଅସ୍ତ୍ର ବିଶେଷ; ତ୍ରିଶୂଳ—13. Three pronged iron pike held by Śiba and Durgā. ୧୪ । ଧ୍ୱଜା; କେତନ—14. Flag. ୧୫ । ଚିହ୍ନ—15. Sign; badge. ୧୬ । ମୁନିବିଶେଷ—16. Name of a sage. ୧୭ । ଜ୍ୟୋତିଷୋକ୍ତ ବିଷ୍କୁମ୍ଭାଦି ୨୭ ଯୋଗର ଅନ୍ତର୍ଗତ ନବମ ଯୋଗ—17. The ninth of the 27 astrological conjunctions. [ ଦ୍ର—ଏହି ଯୋଗରେ ଜାତ ବ୍ୟକ୍ତି ଖଳ, ଦରିଦ୍ର, ଦସ୍ୟୁଭାବିଷ୍ଟ, ବିଦ୍ୟାହୀନ, ଶୂଳରୋଗୀ, ଲୋକଙ୍କ ଅକଷ୍ଟକାରୀ ଓ ସ୍ୱବଂଶବର୍ଗର ଶୂଳ ସଦୃଶ ହୁଏ—ବିଶ୍ୱକୋଷ ।] ବିଣ—ଅପ୍ରୀତିକର ବା ବାଧାଜନକ—Unpleasant; causing obstacle.

ଶୂଳ ଉଠିବା (ଆସିବା)—ଦେ. କ୍ରି—ପ୍ରସବ ବେଦନାର ଆରମ୍ଭ ଓ **Śūla uṭhibā (āsibā)** ଅନୁଭୂତ ଘଟିବା—The beginning and continuation of the pangs of childbirth or labour pain.
প্রসব বেদনা হওয়া, ব্যথা উঠা
**प्रसव वेदना होना, दुख होना; पीडाहोना, पीर आना [होना]**

ଶୂଳକ—ସ. ବି ( ଶୂଳ+କ )—ଦୁର୍ବୃତ୍ତ ଘୋଡ଼ା; ଦୁଷ୍ଟ ଘୋଡ଼ା—**Śūlaka** A vicious or wicked horse; a restive horse (Apte).

ଶୂଳ ଖାଇବା—ଦେ. କ୍ରି—୧ । (ପ୍ରସୂତି) ପ୍ରସବ କରିବା ପୂର୍ବରୁ ବେଦନା ଅନୁଭବ କରିବା—1. To undergo labour pain; to be in travail; to travail. [ ଦ୍ର—ଏହି ଶୂଳ ଖାଇବା ସମୟରେ ସ୍ତ୍ରୀମାନେ ଶଯ୍ୟା ଜୋରରେ ଧରନ୍ତି କେହି କେହି ଗୋଟିଏ ଦଉଡ଼ିକୁ ଝୁଲାଇ ଧରି ଶୂଳର ବେଗକୁ ସମ୍ଭାଳନ୍ତି । ] ୨ । କୁନ୍ଥାଇବା—2. To strain physically.
**Śūla khāibā**
কোঁত পাড়া, ব্যথা খাওয়া
**दुख पाना, पीडा पाना, पीर पाना**

ଶୂଳ ଘାତନ—ସଂ ବି—ଲୁହା ଚୂନା—
**Śūla ghātana** Iron filings (Apte).

ଶୂଳଘ୍ନ—ସଂ ବିଣ ( ଶୂଳ+ହନ୍ ଧାତୁ+କର୍ତ୍ତୃ. ଅ )—ଶୂଳରୋଗ ନାଶକ; ଶୂଳ ନିବାରକ—Removing colic pain; anodyne; sedative.
**Śūlaghna**
[ ଶୂଳଘ୍ନୀ—ସ୍ତ୍ରୀ ]

ଶୂଳ ଦଣ୍ଡ—ସଂ ବି—ଶୂଳରେ ଚଢ଼ାଇ ମାରିବା ପାଇଁ ଅପରାଧୀକୁ ଦିଆଯିବା ଦଣ୍ଡ—The punishment of being impaled on a stake to death.
**Śūla daṇḍa**

ଶୂଳ ଦ୍ୱିଟ୍—ସଂ. ବି ( ଶୂଳ+ଦ୍ୱିଷ୍ ଧାତୁ+କର୍ତ୍ତୃ. କ୍ୱିପ୍; ଶୂଳଦ୍ୱିଷ୍ **Śūla dwiṭ** ୧ମା. ୧ବ; ଯାହା ଶୂଳରୋଗ ନିବାରଣ କରେ)—ହେଙ୍ଗୁ—Assafaetida.

ଶୂଳ ଦେବା—ଦେ. କ୍ରି—ଶୂଳ ଦେବା—To administer capital punishment by impaling.
**Śūla debā**
শূলি দেওয়া
**सूली देना**
[ ଦ୍ର—ପିଲା ହେଲେ ଉଣୀବା ଭାଙ୍ଗିବ ନେଇ, ଶୂଳ ଦେଲ ବହି ହେଲିକାଟିବ ମୁଣ୍ଡି—କୃଷ୍ଣସିଂହ. ମହାଭାରତ । ]

ଶୂଳଧନ୍ୱା—ସଂ. ବିଣ ଓ ବି ( ଶୂଳ+ଧନ୍ୱନ୍; ୧ମା. ୧ବ )—ଶୂଳପାଣି ( ଦେଖ )—Śūlapāṇi ( See )
**Śūladhanwā**

ଶୂଳଧର—ସଂ. ବିଣ. ଓ ବି. ପୁଂ—ଶୂଳପାଣି ଦେଖ )
**Śūladhara** Śūlapāṇi ( See )
[ ଶୂଳଧରା—ସ୍ତ୍ରୀ ]

ଶୂଳ ଧରିବା—ଦେ. କ୍ରି—ଶୂଳ ଖାଉଥିବା ପ୍ରସୂତିକୁ ସାହାଯ୍ୟ କରିବା ପାଇଁ ତାକୁ କୁଣ୍ଢାଇବା ବା ଲସାହାସ୍ତ ଉଦ୍ଧ ଧରିବା—To help a woman during labour; to help a mother in withstanding the strainings of the pangs of child birth by holding her tightly.
**Śūla dharibā**
প্রসব করান, কোমর ধরা
**कमर धरना**

ଶୂଳଧାରୀ—ସଂ. ବି ଓ ବିଣ ପୁଂ—ଶୂଳପାଣି ( ଦେଖ )—
**Śūla dhārī** Śūlapāṇi ( See )
( ଶୂଳଧାରିଣୀ—ସ୍ତ୍ରୀ )

ଶୂଳ ଧୃକ୍—ସଂ. ବି. ସ୍ତ୍ରୀ—( ଶୂଳ+ଧୃଷ୍ ଧାତୁ=ସାହାସୀ ହେବା+ କର୍ତ୍ତୃ. କ୍ୱିପ୍ )—ଦୁର୍ଗା—Goddess Durgā.
**Śūladhṛuk**
ପୁଂ—ଶିବ—The God Śiba. ସଂ. ବିଣ. ପୁ ଓ ସ୍ତ୍ରୀ—ଶୂଳଧାରୀ (ଦେଖ)—Śūladhārī (See)

ଶୂଳ ନାଶନ—ସଂ. ବି ( ଶୂଳ+ନାଶ ଧାତୁ=ନାଶ କରିବା+କର୍ତ୍ତୃ. ଅନ )—ସୌବର୍ଚ୍ଚ ଲବଣ; ସଚଳ ଲବଣ—White sochal salt (Apte).
**Śūla nāśana**

ଶୂଳପାଣି—ସଂ. ବିଣ. ପୁଂ. ଓ ସ୍ତ୍ରୀ ( ବହୁବ୍ରୀହି; ଶୂଳ ଅଛି ପାଣିରେ ଯାହାର )—ତ୍ରିଶୂଳଧାରୀ—Bearing a trident. ବି—୧ । (ପୁଂ) ମହାଦେବ; ଶିବ—1.Śiba. ୨ । (ସ୍ତ୍ରୀ) ଦୁର୍ଗା—2. Durgā.
**Śūlapāṇi**

ଶୂଳ ଭୃତ୍—ସଂ. ବିଣ. ପୁଂ ଓ ସ୍ତ୍ରୀ ( ଶୂଳ+ଭୃ ଧାତୁ+କର୍ତ୍ତୃ. କ୍ୱିପ୍ )—ଶୂଳଧାରୀ—Bearing or carrying a spike. ବି—୧ । (ପୁଂ)—ଶୂଳପାଣି; ମହାଦେବ—1. Śiba. ୨ । (ସ୍ତ୍ରୀ) ଦୁର୍ଗା—2. The Goddess Durgā.
**Śūla bhṛut**

ଶୂଳ ବିଦ୍ଧ—ସଂ. ବିଣ ( ଶୂଳ ବିଦ୍ଧ )—୧ । ଶୂଳଦ୍ୱାରା ବିଦ୍ଧ—1. Pierced or impaled with a
**Śūla biddha**

stake, ୩ । ଶୂଳାକୃତ—3. Spitted; roasted by means of an iron rod.

**ଶୂଳ ବେଦନା (ବ୍ୟଥା)**—ସଂ. ବି—୧ । ଶୂଳରୋଗ (ଦେଖ)—
Śūla bedanā (byathā) 1. Śūlaroga (See) ୨ । ଗର୍ଭ ବେଦନା—2. Pangs of child-birth.

**ଶୂଳ ମାରିବା**—ଦେ· କ୍ରି—ପେଟରେ ଶୂଳ ରୋଗ ଅବମଣ କରିବା—
Śūla māribā An attack of colic.
পেটে ব্যথা করা, পেট মারা **शूल होना**

**ଶୂଳ ରୋଗ**—ସଂ. ବି—ପେଟରେ; ପେଟରେ ରୋଗ—Colic; griping pain in the stomach.
Śūla roga [ବି—ଏହାଦ୍ୱାରା ଉଦର ମଧ୍ୟରେ ଶୂଳଦ୍ୱାରା ବେଧିଲା ପରି ବେଦନା ଜଣାଯିବାରୁ ଏହାକୁ ଶୂଳରୋଗ କହନ୍ତି । ବୈଦ୍ୟଶାସ୍ତ୍ର ଅନୁସାରେ ଶୂଳରୋଗ ୧୦ ପ୍ରକାର ଯଥା—ବାତଜ, ପୈତ୍ତିକ, ଶ୍ଳେଷ୍ମିକ, ବାତପିତ୍ତିକ, ବାତଶ୍ଳେଷ୍ମିକ, ପିତ୍ତଶ୍ଳେଷ୍ମିକ, ସନ୍ନିପାତଜ, ଆମଦୋଷଜ, ପରିଣାମ ଶୂଳ, ଓ ଅନ୍ନଦ୍ରବଶୂଳ । ସମସ୍ତ ପ୍ରକାର ଶୂଳରୋଗ ଅତ୍ୟନ୍ତ ଯନ୍ତ୍ରଣାଦାୟକ ଓ ଦୁରାରୋଗ୍ୟ । ପରିଣାମ ଶୂଳକୁ ମଧ୍ୟ ବାତପିତ୍ତିକ ଶୂଳ ବୋଲିଯାଇ ପାରେ । ବାତଶୂଳରେ ଛାତି, ପାର୍ଶ୍ୱଦ୍ୱୟ, କଙ୍କାଳ, ପୃଷ୍ଠ, ହୃଦ୍ ଓ ବସ୍ତିଦେଶମାନ ଶୋଷ ହୁଏ ଓ ଛୁଞ୍ଚ ମାରିଲା ପରି ଜଣାପଡ଼େ । ଶୂଳରୋଗରେ ସାଧାରଣତଃ ମଳମୂତ୍ର, ଅଧୋବାୟୁ ଅବରୋଧ ଘଟେ । ଶୁଣ୍ଠି, ହେଙ୍ଗୁ, ସୈନ୍ଧବଲବଣ, ମରିଚ ଶୂଳରୋଗ ପ୍ରତି ଉପକାରକ; ବମନ ଓ ବିରେଚନରେ ମଧ୍ୟ ଏ ରୋଗର ଉପଶମ ହୁଏ ।]

**ଶୂଳ ଶତ୍ରୁ**—ସଂ. ବି (୬ଷ୍ଠୀ ତତ୍)—ଗବଗଛ—
Śūla śatru The castor oil seed plant (Apte).

**ଶୂଳ ହନ୍ତ୍ରୀ**—ସଂ. ବି—ଏକପ୍ରକାର ଯବଧାନ—
Śūla hantrī A kind of barley (Apte).

**ଶୂଳ ହସ୍ତ**—ସଂ. ବିଣ. ପୁଂ (ବହୁବ୍ରୀହି)—ଶୂଳପାଣି (ଦେଖ)—
Śūla hasta Śūlapāṇi (See)
(**ଶୂଳହସ୍ତା—ସ୍ତ୍ରୀ**)

**ଶୂଳା**—ସଂ. ବି. ସ୍ତ୍ରୀ (ଶୂଳ+ଆ.) ୧ । ଶଙ୍କୁ; ଖିଳକ—1. A stake.
Śūlā ୨ । ବାର ଅଙ୍ଗୁଳ ଲମ୍ବର ଅଗ୍ରତୀକ୍ଷ୍ଣ କାଠି 2. A short pointed pin about one foot long. ୩ । ବେଶ୍ୟା—3. A prostitute; a whore. ୪ । ଅପରାଧୀକୁ ଦଣ୍ଡ ଦେବା ନିମନ୍ତେ ବ୍ୟବହୃତ ଶୂଳୀ—4. A stake for impaling criminals
ଚୌଳ **ଖସାଟୋଳା** ଦେ. ବି—୧ । ବଡ଼ବଡ଼ ମାଟିର ଟେଳା; ବୋଲୁଅ—1. Big clods of dry earth. (ଦ୍ରୁ—ଟେକାଠାରୁ ଟେଳା ବଡ଼, ଟେଳାଠାରୁ ବୋଲୁଅ ବଡ଼ ଓ ବୋଲୁଅଠାରୁ ଶୂଳା ବଡ଼; ଶୂଳାଠାରୁ ଢେଳା ଅବସ୍ଥାରେ ବଡ଼, କୋଳବାର ଓ ଅଚଳା) । ୨ । ଶୂଳରୋଗ—2. Colic. ୩ । ଶୂଳା ଝାଡ଼ା (ଦେଖ) 3, Śūlā jhāṛā (see), ୪ । କାଳରକ୍ତ ଝାଡ଼ା—4 Dysentry

**ଶୂଳାଇ**—ଦେ·ବି—ଶୂଳେଇ (ଦେଖ)
Śūlāi Śūlei (see)

**ଶୂଳା(ଲେ)ଇବା**—ଦେ· କ୍ରି—୧ । (ଦେହର କୌଣସି ଅଂଶ) ଶୂଳବେଦନାକ୍ରାନ୍ତ ହେବା—1. To be affected with smarting pain; to smart with pain.
Śūlā(le)ibā
ଶୂଳାଇହେବା } ଅନ୍ୟରୂପ
ଶୂଳେଇହେବା }
ব্যথাকরা **दर्द करना**
୨ । ଶୂଳାକ୍ରାନ୍ତ ରୋଗୀ ପରି ଅସ୍ଥିର ହେବା—2. To become restless like a colic patient.

**ଶୂଳାକୃତ**—ସ. ବିଣ (ଶୂଳ+କୃତ; ନ୍ୟାଦନ)—ଶଳାକାବଦ୍ଧ ହୋଇ
Śūlā kruta ସିଦ୍ଧ ହୋଇଥିବା (ମାଂସ)—(meat) Roasted by being pierce with a rod. ବି—ଶଳାକାବଦ୍ଧ କରି ଅଗ୍ନି ଉପରେ ସିଦ୍ଧକରାଯାଇଥିବା ମାଂସ; ସିକ୍‌କବାବ୍—Meat roasted by means of a thin iron rod put directly over the fire; spitted roast [ବି—କୋମଳ ମାଂସଖଣ୍ଡମାନଙ୍କରେ ଘୃତ ଲବଣାଦି ବୋଳି ସେମାନ ଲୁହା ଶଳାକାରେ ଗୁନ୍ଥି ଧୂମରହିତ ଅଗ୍ନି ଉପରେ ଉକ୍ତ ଶଳାକାକୁ ଦେଖାଇ ଏମାନ ପାକ କରାଯାଏ । ଏହା ରୁଚିଜନକ; ଅଗ୍ନିବର୍ଦ୍ଧକ, ଲଘୁ, ବଳକାରକ, କଫଘ୍ନ, ବାୟୁନାଶକ ଓ ଈଷତ୍ ପିତ୍ତଜନକ ।]

**ଶୂଳାଗ୍ର**—ସ. ବି (୬ଷ୍ଠୀ ତତ୍)—ଶୂଳର ଅଗ୍ରଭାଗ—
Śūlāgra The pointed end of a stake or spike or pike.

**ଶୂଳାଘାତ**—ସ. ବି (୩ୟା ତତ୍; ଶୂଳ+ଆଘାତ)—ଶୂଳଦ୍ୱାରା
Śūlāghāta ଆଘାତ—A thrust with a spear)

**ଶୂଳା ଝାଡ଼ା** (**ହଗା,ବାଡ଼ି,ବାହୁଡ଼ି, ପୋଖରୀ,ବାହାରକୁ**)—ଦେ. ବି
Śūlā jhāṛā(hagā, bāṛiki, pokhari bahāraku
আমাশা **आमाशय शेचिश** କାଳରକ୍ତ ଝାଡ଼ା—Dysentery.

**ଶୂଳାପାଳ**—ସ. ବି. ପୁଂ—ବେଶ୍ୟାପାଳ—A person who lives
Śūlāpāla on the income of prostitution; who re-monger.

**ଶୂଳି**—ଦେ. ବି (ସଂ. ଶୂଳ)—ଅପରାଧୀମାନଙ୍କୁ ତହିଁ ଉପରେ ବସାଇ
Śūli ଗୁହ୍ୟଦ୍ୱାର ବାଟେ ଫୁଟାଇ ବଧ କରିବା ନିମନ୍ତେ ବ୍ୟବହୃତ
শূলী ଭୂମିରେ ପ୍ରୋଥିତ ତୀକ୍ଷ୍ଣାଗ୍ର ଲୌହଶଳାକା ବିଶେଷ—
सूली Iron stakes for impaling offenders to death. ପ୍ରାଦେ (ସମ୍ବଲପୁର) ବି—ବାଉଁଶରୁ ଧାନ ବୋଝ ବୁହାଯିବା ଭାର—Double load of paddy sheaves carried across the shoulder on both ends of a pole.

ଶୂଳିଆ—ଦେ·ବ ଓ ବଣ—୧। ଦଣ୍ଡିତ ବ୍ୟକ୍ତିଙ୍କୁ ଶୂଳରେ ଚଢ଼ାଇବା ପାଇଁ
Śūlia ନିଯୁକ୍ତ ଲୋକ—1. A person who impales
যে শূলে চড়ায় सूलीवाला offenders on stakes.
শূল দণ্ডে দণ্ডিত ୨। ଶୂଳ ଦଣ୍ଡରେ ଦଣ୍ଡିତ ଅପରାଧୀ—2. An
सूली चढ़नेवाला offender adjudged to the stake.

ଶୂଳିଆ ପଦା—ଦେ. ବ—ଶୂଳଦଣ୍ଡରେ ଦଣ୍ଡିତ ବ୍ୟକ୍ତିମାନଙ୍କ ବଧଭୂମି—
Śūlia pada The place or ground where offen-
শূলী দেবার ময়দান ders are impaled on stakes.
सूली मैदान

ଶୂଳିକ—ସଂ. ବ (ଶୂଳ+ଇକ)—୧। ଶୂଳାକୃତ ମାଂସ; ସିକ୍ କବାବ୍—
Śūlika 1. Spitted meat; roasted meat. ୨।
ଠେକୁଆ—2. Hare (Apte). ସଂ. ବଣ—୧। ଲୌହ-
ଶଲାକାବଦ୍ଧ (ମାଂସଖଣ୍ଡ)—1. Roasted on a
spit. ୨। ଶୂଳବିଦ୍ଧ—2. Piked.

ଶୂଳି ଘି(ଘୋ)ନିବା—ଦେ. କ୍ରି—ଶୂଳି ଚଢ଼ିବା (ଦେଖ)
Śūli ghi(gho)nibā Śūli chaṛhibā (See)

ଶୂଳି ଚଢ଼ା(ଢ଼େ)ଇବା—ଦେ· କ୍ରି—କୌଣସି ବ୍ୟକ୍ତିଙ୍କୁ ଶୂଳ ଉପରେ
Śūli chaṛhā(ṛhe)ibā ବସାଇ ବଧ କରିବା—To impale
শূলে চড়ান सूली चढ़ाना a person on a stake
(ଶୂଳରେ ଚଢ଼ା[ଢ଼େ]ଇବା; ଶୂଳ ଦେବା—ଅନ୍ୟରୂପ)

ଶୂଳି ଚଢ଼ିବା (ପାଇବା)—ଦେ·କ୍ରି—(ଅପରାଧୀ ବ୍ୟକ୍ତି) ଶୂଳ ଉପରେ
Śūli chaṛhibā (pāibā) ସ୍ଥାପିତ ବା ବଧ ହେବା—
শূলে চড়া To be executed or impaled on a stake.
सूली चढ़ना (ଶୂଳରେ ଚଢ଼ିବା, ଶୂଳରେ ବସିବା—ଅନ୍ୟରୂପ)

ଶୂଳିନୀ—ସ, ବ. ସ୍ତ୍ରୀ (ଶୂଳ+ଅସ୍ତ୍ର ଅର୍ଥରେ ଇନ୍+ସ୍ତ୍ରୀ. ଈ)—
Śūlinī ଦୁର୍ଗା—Goddess Durgā.
ସଂ. ବଣ. ସ୍ତ୍ରୀ—ଶୂଳୀର ସ୍ତ୍ରୀଲିଙ୍ଗ—Feminine of
Śūlī.

ଶୂଳୀ—ସଂ. ବ—୧। (ବୈଦ୍ୟକ) ଜଳଜ ଶାକ ବା ତୃଣ ବିଶେଷ;
Śūlī ଶୋଲ; ପାଣି ଲଜକୁଳୀ—1. An
ଅନ୍ୟ ସଂ. ନାମ—ଅଲମ୍ବୁଷା aquatic plant; sola plant;
ମ. ଶଲି Aeschymone Aspera. [ଦ୍ର—
ଏହା ପିଚ୍ଛଳ, ଈଷତ୍ କଷ୍ଟାୟ୍ୟ; ଗୁରୁପାକ, ରୁଚିକର,
ବଳକର, ଯୁକ୍ତାବଦ୍ଧକ, ପିତ୍ତ ଓ ଦାହ ରୋଗରେ ଉପ-
କାରକ।] ୨। (ପୁଂ) ଶୂଳରୋଗୀ—2. A person
suffering from colic. ୩। ମହାଦେବ; ଶୀଶୂଳି;
ଶିବ—3. Mohādeba; God Śiba. ୪। ଶଣ;
ଛଣପଟ (କ୍ଷୁଦ୍ରଜାତ)—4. Hemp. ୫। ଠେକୁଆ—
5. A hare (Apte) ୬। ଶୂଳାସ୍ତ୍ରଧାରୀ ବ୍ୟକ୍ତି—
6. A spearman (Apte) ବଣ—୧। ଶୂଳଧାରୀ
1. (a person) Holding a stake or spear;
armed with a spear. ୨। ଶୂଳରୋଗା-
(ଶୂଳିନୀ—ସ୍ତ୍ରୀ) କ୍ରାନ୍ତ—2. Suffering from colic.

ଶୂଳେଇ—ଦେ. ବ—(ସ. ଶୂଳ ପରି କ୍ରମଶଃ ସରୁ ହୋଇଥିବାରୁ)—
Śūlei ଏକପ୍ରକାର ସରୁଆ ଗୁଡ଼ ବଣା—A kind of long
[ଶୂଳେଇ ବଣା—ଅନ୍ୟରୂପ] pot for molasses.

ଶୂଳେଇ ଖଞ୍ଜା—ପ୍ରାଦେ.—(ସାକ୍ଷୀଗୋପାଳ) ବ—ଯେଉଁ ବଡ଼ ଖଞ୍ଜାର ଚାରି
Śūlei khañjā ପାଖ ଘରଦ୍ୱାର ବେଷ୍ଟିତ—A spacious
courtyard with big houses on all its
sides.

ଶୂଳେଇ ବିଜେ—ଦେ. ବ—(ସ. ଶୂଳ; ଝାଡ଼ା ଫେରିବା ସମୟରେ ଶୂଳ
Śūlei bije ଖାଇବା ବା ଲୁଚାଇବା ଯୋଗୁଁ)—ରାଜାଙ୍କର ମଳ-
ତ୍ୟାଗ କର୍ମ—The name by which Raja's
easing himself is called; passing of
stools by a Rājā.

ଶୂଲ୍ୟ—ସ. ବ—(ଶୂଳ+ଯ)—ଶୂଳାକୃତ (ଦେଖ)
Śūlya Śūlākruta (See)
ସ. ବଣ—୧। (ଶୂଳ ଧାତୁ+କର୍ମ. ଯ)—ଶୂଳାକୃତ—
1. Roasted on a spit. ୨। ଶୂଳରେ ଦଣ୍ଡିତ
ବା ବଧ ହେବା ଯୋଗ୍ୟ—2. Deserving
impalement condemned to the stake.

ଶୂଷ (ଧାତୁ)—ସ.—୧। ଜନ୍ମ କରିବା—1. To bring forth;
Sūsh (root) to beget (Apte) ୨। ଉତ୍ପନ୍ନ କରିବା—
2. To produce (Apte.)

ଶୃକା(ଗା)ଳ—ସ. ବ. ପୁଂ· (ଅସୃକ୍=ରକ୍ତମାଂସ+ଆ ଉପସର୍ଗ+ଲା
Śṛukā(gā)la ଧାତୁ=ଗ୍ରହଣ କରିବା+କର୍ତ୍ତୃ. ଅ; ନିପାତନ,
କିମ୍ବା ସୃଜ୍ ଧାତୁ= ସୃଷ୍ଟି କରିବା+କର୍ତ୍ତୃ. ଅ=ଶୃଗ୍ଧୁସ
ସୃଷ୍ଟି କରିବା ହେତୁ; କିମ୍ବା ଶୃଙ୍ଗ+ନଞ (ଅ+ଆ+ଲା
ଧାତୁ=ଗ୍ରହଣ କରିବା+କର୍ତ୍ତୃ ଅ; ଯାହାର ଶୃଙ୍ଗ ନାହିଁ,କିଂବା
ଯେ ଶୃଙ୍ଗ ଗ୍ରହଣ କରେ ନାହିଁ।)—୧। ଶିଆଳ; ବିଲୁଆ;
ଗୋମାୟୁ—1. Jackal. ୨। ନୃପ ବିଶେଷ—2
Name of a king. ୩। ଦୈତ୍ୟ ବିଶେଷ—
3. Name of a demon. ୪। ଚଞ୍ଚଳ ଓ କଟୁଭାଷୀ
ବ୍ୟକ୍ତି—4. A peevish and abusive person;
an ill-natured man. ୫। ପ୍ରତାରକ ବ୍ୟକ୍ତି—
5. A cheat; a swindler (Apte) ୬। ଖଳ—
ବ୍ୟକ୍ତି—6. A rogue (Apte). ୭। ଭୀରୁ ବ୍ୟକ୍ତି-
7. A coward [Apte]. ୮। କୃଷ୍ଣଙ୍କ ନାମ—
8. A name of Krushna [Apte] ବଣ(ପୁଂ)—
୧। ନିଷ୍ଠୁର—1. Cruel. ୨। ଖଳ—2. Wicked;
deceitful. ୩। ଭୀରୁ—3 Timid; coward.
୪। ବୀର—4. Heroic. ୫। କଟୁଭାଷୀ—
(ଶୃଗାଳକ—ଅନ୍ୟରୂପ) 5. Abusive; foul-tongued.

ଶୃଗାଳ କଣ୍ଟକ—ସଂ ବ—୧। ଶିଆଳକଣ୍ଟା (ଦେଖ)—
Śrugāla kanṭaka 1. Śiālakanṭā. (See)
୨। ଓଡ଼ସମାରି (ଦେଖ)—2. Oṛdasamārī. (See)

ଶୃଗାଳ କୋଳି—ସ. ବ—ଶିଆଳ କୋଳି(ଦେଖ)
Śrugāla koli Siāla koli. (See)

**ଶୃଗାଳ ମାଂସ**—ସଂ. ବି—ଶୃଗାଳର ମାଂସ; ବିଲୁଅ ମାଂସ—
Śrugāla māṁsa The meat of jackal.
[ବି—ଏହା ମଧୁରରସ,ମଧୁର ବିପାକ,ଲଘୁପାକ, ଶୀତବୀର୍ଯ୍ୟ, ମେଳମୂତ୍ର ରୋଧକ ଓ ତ୍ରିଦୋଷର ଶାନ୍ତିକାରକ; ଏ ଦେଶରେ ବିଲୁଅ ମାଂସକୁ ଦଗ୍ଧରେ ବହୁକାଳ ବଭୁଦର ରଖି ସେହି ଦହିକୁ ଔଷଧରୂପେ (ବିଲୁଅ ଦହି) ଅମ୍ଳବାତ ରୋଗୀକୁ ଖୁଆନ୍ତି ।]

**ଶୃଗାଳିକା**—ସଂ. ବି (ଶୃଗାଳ+କ+ଆ)—୧ । ଶୃଗାଳୀ—1. She-
Śrugālikā jackal. ୨ । କୋକଶିଆଳ—2. Fox. ୩ । ଭୂମିକୁଷ୍ମାଣ୍ଡ; ଭୂଇଁ କଖାରୁ—3. A kind of pumpkin; Ipomoea Digita. ୪ । ଭୟରେ ପଳାୟନ—4. Flight on account of fear; retreat.

**ଶୃଗାଳୀ**—ସଂ. ବି. ସ୍ତ୍ରୀ (ଶୃଗାଳ+ଈ)—୧ । ମାଈ ବିଲୁଅ—
Śrugālī 1. She-jackal. ୨ । ଖେଙ୍କ—2, Fox.

**ଶୃଗାଲୁଣୀ**—ଦେ. ବି. ସ୍ତ୍ରୀ (ସଂ. ଶୃଗାଳୀ)—ଶୃଗାଳୀ (ଦେଖ)
Śrugāluṇī Śrugālī, (See)

**ଶୃଙ୍ଖଳ**—ସଂ. ବି (ଶୃଙ୍ଗ=ଶିକୁଳିର କଡ଼ା+ଖଳ ଧାତୁ=ଗ୍ରହଣ
Śruṅkhala କରିବା+ଅଣ. ଅ; କିମ୍ବା ଶୃଙ୍ଗ=ପ୍ରଧାନ ମଣି+ଖଳ ଧାତୁ=ଚାଳନ କରିବା+କର୍ତ୍ତୃ. ଅ; କିମ୍ବା ଶୃ ଧାତୁ=ହିଂସା କରିବା+କର୍ତ୍ତୃ.ଖଳ; ଏହ ସଙ୍କୁ ବନ୍ଧନ କରେ ବୋଲି)—୧ । ଶିକୁଳି; ଜଞ୍ଜିର—
1. Chain. ୨ । ଲୌହମୟ ପଦ-ବନ୍ଧନ—2. An iron chain for the leg; fetters. ୩ । ବନ୍ଧନ-3. A bond. ୪ । ପୁରୁଷର କଟିଭୂଷଣ ବା ଅଣ୍ଟା-ସୂତା—4. A waist-chain, worn by males. ୫ । ପୁରୁଷର କଟିବସ୍ତ୍ରବନ୍ଧନ; କଟିବନ୍ଧ—5. A belt for the loins. ୬ । ନିୟମ; ଶୃଙ୍ଖଳା—6. Regulation; rule. ୭ । ହସ୍ତୀର ପଦବନ୍ଧନ ଶିକୁଳି—7. A chain for tying the legs of an elephant (Apte). ୮ । ଜମି ଆଦି ମାପ କରିବା ପାଇଁ ବ୍ୟବହୃତ ଲୁହା ଶିକୁଳି—8. A measuring chain (Apte). ୯ । ପରମ୍ପରା; ଧାରା—
9. Chain; series; succession. [ Apte ].
୧୦ । ଲେଖାରେ ବ୍ୟବହୃତ ବନ୍ଧନୀ ଚିହ୍ନ—10. Brackets used in writings.

**ଶୃଙ୍ଖଳକ**—ସଂ. ବି (ଶୃଙ୍ଖଳ+କ)—୧ । ଛୋଟ ଶିକୁଳି—1. A
Śruṅkhalaka small chain. ୨ । କାଠର ଖଣ୍ଡ ପାଦ-ବନ୍ଧନ ଦ୍ୱାରା ବନ୍ଧ ହସ୍ତୀଶାବକ—2. A young elephant fastened with a wooden clog. ୩ । ଓଟ—3. Camel (in general); (Apte). ୪ । ଗୋଡ଼ରେ କାଠ ଲଗାଯାଇଥିବା ପଶୁ—
4. An animal with clogs on its feet to prevent it from straying, (Apte).

**ଶୃଙ୍ଖଳତା(ତ୍ୱ)**—ସଂ. ବି—୧ । ନିୟମିତତା—1. Regularity. ୨ ।
Śruṅkhalatā[twa] ନିୟମବଦ୍ଧତା—2. Discipline; the state of being regulated. [ ବି—'ଶୃଙ୍ଖଳ' 'ବନ୍ଧନ' ଅର୍ଥରେ ମଧ୍ୟ ବିଶେଷ୍ୟ ପଦ, ତହିଁରୁ 'ତ୍ୱ' ବା 'ତା' ପ୍ରତ୍ୟୟ କରି ପୁଣି ବିଶେଷ୍ୟ ପଦ ସୃଷ୍ଟି କରିବା ବ୍ୟାକରଣ ବିରୁଦ୍ଧ; 'ଶିକୁଳି', 'ଜଞ୍ଜିର' ପ୍ରଭୃତି ଅର୍ଥରେ ତ୍ୱ ଓ ତା ପ୍ରତ୍ୟୟ ବିକଳ ଭାବଦ୍ୟୋତକରୂପେ ସୃଷ୍ଟ ହୋଇପାରେ । ପ୍ରକୃତିବାଦ, ଆପ୍ଟେ, ଶବ୍ଦ କଳ୍ପଦ୍ରୁମ ପ୍ରଭୃତି ଏ ଶବ୍ଦକୁ ଅନୁମୋଦନ କରି ନାହାନ୍ତି, କେବଳ ମନିଅର୍ ଓ୍ୱିଲିଅମ୍ସଙ୍କ ଅଭିଧାନରେ ଏ ଶବ୍ଦ ଦେଖାଯାଏ; ଓ୍ୱିଲ୍ସନ୍ ସାହେବ ଏପରି ଶବ୍ଦ ଲେଖିଥିବା କଥା ସେ ଲେଖିଅଛନ୍ତି ।]

**ଶୃଙ୍ଖଳ ଯମକ**—ସଂ. ବି—ଶୃଙ୍ଖଳା ଯମକ (ଦେଖ)
Śruṅkhala jamaka Śruṅkhalā jamaka. [See]

**ଶୃଙ୍ଖଳା**—ସଂ. ବି (ଶୃଙ୍ଖଳ+ଆ)—୧ । ଶୃଙ୍ଖଳ (ଦେଖ)—
Śruṅkhalā 1. Śruṅkhala. [See] (ଉ—ପଦ ଶୃଙ୍ଖଳା, କଟିମେଖଳା, ଆଦି ଶୃଙ୍ଖଳା ମଣି—ଉଦ୍ଧ. ପ୍ରେମ ସୁଧାନିଧି ।]
୨ । ଶୃଙ୍ଖ; ନିୟମ; ଧାରା—2, Rule; system. ୩ । ଲେଖାରେ ବନ୍ଧନୀ ଚିହ୍ନ; ଯଥା—( ), { }, [ ]—
3. Parenthesis; brackets. ୪ । ହସ୍ତୀର ପଦ-ବନ୍ଧନକାରୀ ଶିକୁଳି—4. chain for chaining the feet of an elephant. ୫ । ଅଳଙ୍କାର ବିଶେଷ—5. A kind of ornament. ୬ । ରଚନାରେ ଅକ୍ଷର ନିୟମରକ୍ଷାବିଶେଷ, ଯହିଁରେ ପୂର୍ବବର୍ତ୍ତୀ ପଦର ଶେଷବର୍ଣ୍ଣଦ୍ୱୟ ସଙ୍ଗେ ପରବର୍ତ୍ତୀ ପଦର ଆଦ୍ୟବର୍ଣ୍ଣଦ୍ୱୟର ସମାନତା ଥାଏ—6. The observance of regular sequence of certain letters in a writing; continuous alliteration (ଯଥା—ଯମକ, ଯୋଡ଼ ଯମକ, ବା ଯୁଗ ଯମକ, ସମସ୍ତ ଯମକ ବା ସର୍ବଯମକ, ଅଦ୍ୟଯମକ, ପ୍ରାନ୍ତଯମକ) [ଉ—ପ୍ରାଚୀନ କବି ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର ଆଦିଙ୍କ ରଚିତ କାବ୍ୟ ଓ ଗ୍ରନ୍ଥମାନଙ୍କରେ 'ଶୃଙ୍ଖଳା'ର ଅନେକ ଉଦାହରଣ ଦେଖାଯାଏ ।

ଉଦାହରଣସ୍ୱରୂପ ଉପେନ୍ଦ୍ରଭଞ୍ଜଙ୍କ ରସିକହାରାବଳୀର ୭ମ ଛାନ୍ଦରେ ପ୍ରାନ୍ତଯମକ ଗୋମୂତ୍ର ଶୃଙ୍ଖଳା—
"ହରିଚରିତ୍ର ହର ଧୀର ପ୍ରଶଂସାର,
ସାର ଅସ୍ୱରଳ ବଳ ଏ ସଂସାର
ସାର ସାରସର ସର ବେଢ଼ କୁମାର
ମାର ଉତ୍ସବର ଅଙ୍ଗ ସୁକୁମାର ।

ଅଭିମନ୍ୟୁ ସାମନ୍ତସିଂହାରଙ୍କର ବିଦଗ୍ଧଚିନ୍ତାମଣିର ୩୩ ଛାନ୍ଦ ଓ ୩୪ ଛାନ୍ଦ ମାନ 'ଶୃଙ୍ଖଳା'ର ଉଦାହରଣ ମାନଙ୍କରେ ପୂର୍ଣ୍ଣ ।

ଯଥା—

ଶୃଙ୍ଖଳା ସିଂହାବଲୋକନ—

"କଞ୍ଜନୟନ ଦରପଣ ବଦନ ରଞ୍ଜନ
ଜନକର ଜନକବର ପରସନ
ସନକମନ ବଶକ ସଦନତ ହସ
ହଂସ ଗମନ ଲଖଲ ଦର୍ଶନ ତରସ ।"

ମଣ୍ଡୂକ ପ୍ଲୁତ ଶୃଙ୍ଖଳା—

"ବନ ବାରଣ ଗମନା ମନାବୃକ୍ଷ ଅଙ୍ଗା
ଅନାସୃତରେ ସୁମୂର୍ତ୍ତି ମୁହଁ ତ ଭ୍ରମନା,
ମନାକ କରୁଣା କର କଲ୍କ ଦଶନା,
ସନାଥ ହେବ ଜରତ ରତ ପାଇ ସିନା ।"

ଗଙ୍ଗା ସ୍ରୋତ ଶୃଙ୍ଖଳା—

"ବର ରସ ଶର ରସା ସାର ରସ ସହ୍ୟ,
ହ୍ରଦର ସେ ସେବକ ଗ୍ରୀ, ଶ୍ରୀ, ବବତ ତହିଁ ।
ସ୍ମାନ ନର ରସ ସଦା ଦାସ ସଦା ଦାହ୍ୟ,
ହୃଦେ ଭେଦେ ବେଶେ ସେବା ଶାର ରସେ ସେହ୍ୟ ।"

ସର୍ବାଙ୍ଗ ପାଦ ଶୃଙ୍ଖଳା—

"ଶାରଙ୍ଗ ରଙ୍ଗ ତ ଗତରୁ ଭରୁଣୀ ବ୍ରଣୀ,
ବ୍ରତପତପକ୍ଷ ପରମ ରମଣୀମଣି,
ଧମାର ହାରତରଥ ରଥର କରକ,
ବହ୍ନିକ ହ୍ରଦହିଁ ତହିଁର ସ୍ମାର କରଙ୍କ ।" ]

**ଶୃଙ୍ଖଳାବଦ୍ଧ**—ସଂ ବଣ. ପୁଂ—(ତୃତୀୟା ତତ୍; ଶୃଙ୍ଖଳା + ଅବଦ୍ଧ)—୧ । ନିଗଡ଼ ବଦ୍ଧ; ଶିକୁଳିଦ୍ୱାରା ବନ୍ଧା—
Śṛuṅkhalābaddha
[ଶୃଙ୍ଖଳାବଦ୍ଧା—ସ୍ତ୍ରୀ] ୨ । Chained. ନିୟମ ବଦ୍ଧ—2. Regulated. [ ଶୃଙ୍ଖଳାବନ୍ଧନ, ଶୃଙ୍ଖଳାବନ୍ଧ—ବିଶେଷ୍ୟ]

**ଶୃଙ୍ଖଳା ଯମକ**—ଦେ. ବି—ଯେଉଁ ରଚନାରେ ଯମକର ଶୃଙ୍ଖଳା
Śṛuṅkhalā jamaka ରକ୍ଷିତ ହୋଇଥାଏ—A poem in which a system, or sequence is observed, alliteration.

[ଉ—ରସଦା ପ୍ରମଦା ସଖୀ ଲେଖି ତୋଷେ ତନ
ସେ ତନ ପୁରକୁ ବରେ ଅଶ୍ୱକେ ବତନ,
ବ-ତନ ଲେଖିଲେ ହଂସ ହଂସୀ ପାଶେ ଯାଇ
ଶେଯାଇ ଶେଯ ଶମ୍ଭୁନେ ଦେ ବାକସୀ ରହି
ବଇସୀ ଭବଇ ତାହିଁ ପ୍ରିୟତମା ରସେ,
ମାର ସେନା ନବେଶେ ସେ ପୁରେ କଲେ ତୋଷେ ।
ଗୋଲୋକ ଚନ୍ଦ୍ରଶେଖ ।]

**ଶୃଙ୍ଖଳିତ**—ସଂ ବଣ (ଶୃଙ୍ଖଳ + ଯୁକ୍ତାର୍ଥେ ଇତ)—୧ । ଶୃଙ୍ଖଳାବଦ୍ଧ-
Śṛuṅkhalita 1. Chained; fettered; chain-bound. ୨ । ବନ୍ଧନଦ୍ୱାରା ଅବଦ୍ଧ ( ବାକ୍ୟ )—2. Bracketed; paranthetical.

**ଶୃଙ୍ଗ**—ସଂ ବି (ଶୃ ଧାତୁ = ହିଂସା କରିବା + କର୍ତ୍ତୃ ଗ, କଥାଭିକ)—
Śṛuṅga ୧ । ପଶୁଙ୍କ ଶିଙ୍ଗ; ବିଷାଣ—1. Horn. ( ଶୃଙ୍ଗକ—ଅନ୍ୟରୂପ ) ୨ । ପର୍ବତର ଅଗ୍ରଭାଗ—2. Mountain-peak; summit. ୩ । ଧନୁର ଅଗ୍ରଭାଗ—3. A point or end of a bow. ୪ । ଚିହ୍ନ—4. Sign; mark. ୫ । ପ୍ରଭୁତ୍ୱ; ପ୍ରଭୁତ୍ୱ; ପ୍ରାଧାନ୍ୟ—5. Mastery; influence. ୬ । ପିଚକାରୀ ଯନ୍ତ୍ର—6. Syringe. ୭ । ଶିଙ୍ଗା; ଶୃଙ୍ଗ ନିର୍ମିତ ବାଦ୍ୟ—7. A horn used for blowing. ୮ । ତୀକ୍ଷ୍ଣ ଅଗ୍ରଭାଗ—8. The sharp end or point ୯ । ପଦ୍ମ—9. Lotus. ୧୦ । କାମୋଦ୍ରେକ; ମନ୍ମଥୋଦ୍ରେକ—10. Amour, lust; cupudity. ୧୧ । କୃତ୍ରିମ ଉତ୍ସ—11. An artificial fountain. ୧୨ । ମୁନିବିଶେଷ—12. Name of a sage. ୧୩ । କୂର୍ଚ୍ଚଶୀର୍ଷ ବୃକ୍ଷ; ନଡ଼ିଆ ଗଛ—13. Cocoanut tree. ୧୪ । ( ବୈଦ୍ୟକ )—ଜୀବକ ନାମକ ଔଷଧ—10. Name of a rare herb (root); Penteptera Tomentosa. ୧୫ । ଶୁକ୍ଳ ପକ୍ଷ ର ଶୃଙ୍ଗ—15. A cusp or horn of the crescent moon (Apte). ୧୬ । ପ୍ରାସାଦର ଚୂଡ଼ା—16. The top of a building; turret (apte) ୧୭ । ଉଚ୍ଚତା—17. Elevation; height (Apte).

**ଶୃଙ୍ଗ କନ୍ଦ**—ସଂ ବି (ବହୁବ୍ରୀହି)—ଶୃଙ୍ଗାଟକ; ଶିଙ୍ଗଡ଼ା (ବିଶ୍ୱକୋଷ)—
Śṛuṇga kanda Water chestnut.
(ଶୃଙ୍ଗରୁହ—ଅନ୍ୟରୂପ)

**ଶୃଙ୍ଗ ଗିରି(ପୁର)**—ସଂ. ବି—ଶୃଙ୍ଗେରୀ (ଦେଖ) (ବିଶ୍ୱକୋଷ)
Śṛuṅga girī (pura) Śṛuṅgeri (Se..)

**ଶୃଙ୍ଗଗ୍ରାହିତା ନ୍ୟାୟ**—ସଂ. ନ୍ୟାୟବିଶେଷ—An analogy a..pli
Śṛuṅgagrāhitā nyāya ed to cases w..re a wicked person is brought und.. control gradually. [ ଉ—ମେଷ୍ଟର ଦୁର୍ଦ୍ଦାନ୍ତ ବୃଷଭକୁ ଆୟତ୍ତ କରିବାପାଇଁ ପ୍ରଥମେ ତାହାର ଶିଙ୍ଗକୁ କୌଶଳକ୍ରମେ ଗ୍ରହଣ କରିସାରି ଅନ୍ୟ ଶିଙ୍ଗକୁ ଧରିଯାଏ, ସେହିପରି କୌଶଳପୂର୍ବକ କ୍ରମେ କ୍ରମେ ଦୁଷ୍ଟ ବ୍ୟକ୍ତିକୁ ଆୟତ୍ତ କରିବା ସ୍ଥଳରେ ଏ ନ୍ୟାୟ ଖଟାଯାଏ । ]

**ଶୃଙ୍ଗଜ**—ସଂ. ବଣ (ଶୃଙ୍ଗ + ଜନ୍ ଧାତୁ + କର୍ତ୍ତୃ. ଅ)—ଶୃଙ୍ଗନିର୍ମିତ;
Śṛuṅgaja ଶୃଙ୍ଗଜାତ—Made of horn: ବି-୧ । ଅଗୁରୁ—1. A gallochum Lignum, aloewood. ୨ । ବାଣ; ଶର—2. Arrow; dart.

**ଶୃଙ୍ଗାହ୍ୱ**—ସଂ. ବି (ଶୃଙ୍ଗ + ମୂଳାର୍ଥେ. ଜାହ)—ଶୃଙ୍ଗର ମୂଳଭାଗ
Śṛuṅgajāha (ବିଶ୍ୱକୋଷ)—The root of a horn.

**ଶୃଙ୍ଗଟ**—ସଂ. ବି—ସିଂଘି ଝାଳ ମାଛ—
Śṛuṅgaṭa A small piked fresh water fish.

**ଶୃଙ୍ଗଧର**—ସଂ. ବି (ଶୃଙ୍ଗ+ଧୃ ଧାତୁ+କର୍ତ୍ତୃ. ଅ)—ପର୍ବତ—
Śṛuṅgadhara Mountain.

**ଶୃଙ୍ଗବାନ୍**—ସଂ. ବିଣ. ପୁଂ (ଶୃଙ୍ଗ+ଅସ୍ତି ଅର୍ଥରେ ମତ୍, ୧ମା. ୧ବ)—
Śṛuṅgabān ଶୃଙ୍ଗବିଶିଷ୍ଟ—Horned; having horns.
(ଶୃଙ୍ଗବତୀ—ବିଣ—ସ୍ତ୍ରୀ) ବି—ପର୍ବତ—Mountain.

**ଶୃଙ୍ଗବେର**—ସଂ. ବି (ଶୃଙ୍ଗ+ବେର—ଶରୀର; ଶୃଙ୍ଗପରି ଶରୀର
Śṛuṅgabera ଯାହାର)—୧ । ଅଦ୍ରକ; ଅଦା—1. Ginger.
୨ । ଶୁଣ୍ଠି—2. Dried ginger. [ ଉ—ବାଟରେ ଦେଖି ଏମନ୍ତ—ଶୃଙ୍ଗବେର ଅତଯାତ, କର ମହାଧମାରେ ବିବାଗ—ଉପେ. ବୈଦେହୀଶବିଳାସ ।] ୩ । ଶୃଙ୍ଗବେର ପୁର (ଦେଖ)—3. Śṛuṅgabera pura (See)

**ଶୃଙ୍ଗବେର ପୁର**—ସଂ. ବି—ଗଙ୍ଗାକୂଳସ୍ଥ ଗୋଟିଏ ନଗର—The
Śṛuṅgabera pura name of a city on the Ganges. [ ଦ୍ର—ଏହା କୋଶଳ ରାଜ୍ୟର ସୀମାର ବାହାରେ ଗଙ୍ଗାର ଉତ୍ତର ତୀରରେ ଅବସ୍ଥିତ ପ୍ରାଚୀନ ନଗରୀ ଓ ନିଷାଦରାଜ ଗୁହକଙ୍କର ପୁରୀ ଥିଲା । ରାମଚନ୍ଦ୍ର ସାଲଥି ସୁମନ୍ତ୍ରକୁ ଏହିଠାରେ ବିଦାୟ ଦେଇ ବନଗମନ କରି ଥିଲେ । ଏହାର ଆଧୁନିକ ନାମ 'ଉଣ୍ଡାଲଗଡ ବା ସିଙ୍ଗ୍ରୋର' । ଆଧୁନିକ ମିର୍ଜାପୁର ନିକଟରେ ଏହା ଅବସ୍ଥିତ ଥିଲା । ରାମାୟଣରେ ଏ ନଗରର ନାମୋଲ୍ଲେଖ ଅଛି । ଏହା ପ୍ରୟାଗଠାରୁ ୨୨ ମାଇଲ ଉତ୍ତର ପଶ୍ଚିମରେ ଅବସ୍ଥିତ । ଏକ ସମୟରେ ଏଠାରେ ବୌଦ୍ଧ ସମ୍ପ୍ରଦାୟର ମନ୍ଦିର ଥିଲା—ବିଶ୍ୱକୋଷ ।]

**ଶୃଙ୍ଗମୋହି**—ସଂ. ବି (ଶୃଙ୍ଗ—କାମୋଦ୍ରେକାର୍ଥ+ମୁହ ଧାତୁ+କର୍ତ୍ତୃ
Śṛuṅgamohi ଇନ୍; ୧ମା. ୧ବ)—ଚମ୍ପକ ବୃକ୍ଷ—
The Champaka tree. (Apte).

**ଶୃଙ୍ଗାଟ**—ସଂ. ବି (ଶୃଙ୍ଗ+ଅଟ୍ ଧାତୁ+କର୍ତ୍ତୃ. ଅ)—୧ । ଜଳ-
Śṛuṅgāṭa କଣ୍ଟକ; ସିଙ୍ଘଡ଼ା—1. Water chestnut, Trapa Bispinosa. ୨ । ଚତୁଷ୍ପଥ; ଚତୁରସ୍ତା; ଦୁଇଟି ରାସ୍ତାର ଛକ—2. The place where two roads cross. ୩ । କାମାଖ୍ୟା (ଆସାମ) ଦେଶସ୍ଥ ପର୍ବତ ବିଶେଷ—3. Name of a mountain in Assam. [ଦ୍ର—କାଳିକା ପୁରାଣରେ ଉକ୍ତ ହୋଇଅଛି ଯେ, ହିମାଳୟରୁ ନିସୃତ ... ନାମକ ନଦୀର ପଶ୍ଚିମରେ ଏ ପର୍ବତ ଅବସ୍ଥିତ; ଏହି ପର୍ବତରେ ମହାଦେବଙ୍କର ଏକ ଲିଙ୍ଗମୂର୍ତ୍ତି ପ୍ରତିଷ୍ଠିତ; ... ନାମରେ ଗୋଟିଏ ଦକ୍ଷିଣସାଗରଗାମିନୀ ନଦୀ ଏ ପର୍ବତକୁ ବାହାରି ଅଛି; ଏ ନଦୀରେ ସ୍ନାନ କରି ସାର ଶୃଙ୍ଗାଟକ ପର୍ବତ ଅବରୋହଣ କରି ତଣ୍ଡ୍ୟା ଲିଙ୍ଗଙ୍କ ପୂଜା କଲେ ... ପ୍ରାପ୍ତି ହୁଏ—ବିଶ୍ୱକୋଷ ।]

**ଶୃଙ୍ଗାଟ(ଟି)କ**—ସଂ. ବି (ଶୃଙ୍ଗାଟ+କ)—୧ । ଚତୁଷ୍ପଥ; ଛକ (ବିଶ୍ୱ-
Śṛuṅgāṭ(ṭi)ka କୋଷ)—1. Cross road. ୨ । ସିଂଘଡ଼ା—
2. Water chestnut; Trapa Bispinosa. ୩ । ଉକ୍ତିତ ପକ୍ୱ ମାଂସଖଣ୍ଡ ପୂର୍ଣ୍ଣ ସିଂଘଡ଼ା ଆକାରର ଖାଦ୍ୟ—3. A kind of Sanduich. ୪ । ମସ୍ତକ ମଧ୍ୟରେ ନାସିକା, କର୍ଣ୍ଣଦ୍ୱୟ, ଚକ୍ଷୁର୍ଦ୍ୱୟ ଓ ଜିହ୍ୱାର ଶିରାମାନଙ୍କ ସଙ୍ଗମସ୍ଥଳ; ଶରୀରର ମର୍ମସ୍ଥଳ ବିଶେଷ (ବିଶ୍ୱକୋଷ)—4. Name of a vital part inside the head. [ଦ୍ର—ଏହି ମର୍ମ ବିଦ୍ଧ ହେଲେ ତତ୍କ୍ଷଣାତ୍ ମୃତ୍ୟୁ ଘଟେ—(ବିଶ୍ୱକୋଷ) । ] ୫ । ଗୋକ୍ଷୁର (ବିଶ୍ୱକୋଷ)—5. Tygophillae; Tribulus Terestris.

**ଶୃଙ୍ଗାର**—ସଂ. ବି—(ଶୃଙ୍ଗ—ପ୍ରାଧାନ୍ୟ; କାମୋଦ୍ରେକ+ଋ ଧାତୁ=
Śṛuṅgāra ପାଇବା+କର୍ତ୍ତୃ. ଅ)—୧ । ସୁରତ; ରତିକ୍ରିୟା, ରମଣ—1. Copulation; coition. [ଦ୍ର—ସାହିତ୍ୟଦର୍ପଣକାର ଲେଖିଅଛନ୍ତି ଯେ ଶୃଙ୍ଗ=କାମୋଦ୍ରେକ ବା ମନ୍ମଥୋଦ୍ଭେଦ+ଆର=ଆଗମ; ଅର୍ଥାତ୍ କାମୋଦ୍ରେକର ଆଗମକୁ ଶୃଙ୍ଗାର ବୋଲଯାଏ ।] ୨ । ଶୃଙ୍ଗାର ରସ; ଆଦ୍ୟ ରସ—2. The sentiment of love as expressed in fiction; amorous pasions. [ଦ୍ର—ରତି ଓ ଅନୁରାଗ ଏଥିର ସ୍ଥାୟୀ ଭାବ, ନାୟକ ନାୟିକା ଆଲମ୍ବନ, ଚନ୍ଦ୍ର ଚନ୍ଦନାଦି ଉଦ୍ଦୀପନ, ଭ୍ରୂକ୍ଷେପ-କଟାକ୍ଷାଦି ଅନୁଭାବ । ଏହା ସମ୍ଭୋଗ ଓ ବିପ୍ରଲମ୍ଭ ଭେଦରେ ଦ୍ୱିବିଧ ।] ୩ । ଗଜଭୂଷଣ; ହସ୍ତୀର ମସ୍ତକରେ ସିନ୍ଦୁରାଦି ରଞ୍ଜନ ରୂପ ସଜ୍ଜା—3. The marking or painting of the head of an elephant with vermillion. ୪ । ଲବଣ—4. salt. ୫ । ସିନ୍ଦୂର—5. Vermilion. ୬ । ସୁଗନ୍ଧ ଚୂର୍ଣ୍ଣ—6. Scented powder. ୭ । ବେଶ ବିନ୍ୟାସାର୍ଥ ବ୍ୟବହୃତ ଚୂର୍ଣ୍ଣ—7. Toilet powder. ୮ । ଅର୍ଦ୍ରକ; ଅଦା—8. Ginger. ୯ । ଲବଙ୍ଗ—9. Cloves; ୧୦ । ନାଟ୍ୟ; ନାଟ୍ୟରସ—10. The art of dancing. ୧୧ । ରାଜମସ୍ତକରେ ସିନ୍ଦୂର ଆଦି ବେଶ ସଜ୍ଜା—11, Toilet of a king. ଦେ. ବି—୧୨ । କୃଷ୍ଣାଗୁରୁ [ବିଶ୍ୱକୋଷ]—12 Eaglewood. ୧୩ । ସୁବର୍ଣ୍ଣ [ବିଶ୍ୱକୋଷ]—13 . Gold. ଦେ. ବି—ଜଗନ୍ନାଥଙ୍କ ବଡ଼ସିଂହାର ବେଶ—Lord Jagannath's last dressing before rest for the right.

**ଶୃଙ୍ଗାରକ**—ସଂ. ବି—(ଶୃଙ୍ଗ+ଆରକ)—ସିନ୍ଦୂର—
Śṛuṅgāraka Vermillion; red lead.
[ଶୃଙ୍ଗାର ଭୂଷଣ—ଅନ୍ୟରୂପ]
ବିଣ.—ଶୃଙ୍ଗବିଶିଷ୍ଟ—Horned.

**ଶୃଙ୍ଗାର ଜନ୍ମା**—ସଂ. ବି—(ବହୁବ୍ରୀହି, ଶୃଙ୍ଗାର+ଜନ୍ମନ୍; ୧ମା.
Śṛuṅgāra janmā ୧ବ)—ମଦନ; କାମଦେବ (ବିଶ୍ୱକୋଷ) Cupid.

ଶୈଳାରୋହଣ—ସଂ. ବି—(୭ମୀ ତତ୍; ଶୈଳ+ଆରୋହଣ)—ପର୍ବତ
Śailārohaṇa ଉପରକୁ ଚଢ଼ିବା—Ascending a mountain.
[ଶୈଳାରୋହୀ—ବିଣ. ପୁ]
[ଶୈଳାରୋହଣୀ—ସ୍ତ୍ରୀ]

ଶୈଳା(ଲା)ଲୀ—ସଂ. ବି. ପୁଂ—(ଶିଲାଳ+ଜାତାର୍ଥେ. ଇନ୍; ୧ମା ୧ବ.
Śailā(lā)lī ଯେ ଶିଲାଳ ବା ନୃତ୍ୟ ଗୀତ ଶାସ୍ତ୍ରଦ୍ୱାରା ଜୀବିକା ନିର୍ବାହ
[ଶୈଳାଳନୀ—ସ୍ତ୍ରୀ] କରେ;ଜଣେ ଶିଲାଳ-ନୃତ୍ୟବିଶାରଦ ମୁନିବିଶେଷ, ତାଙ୍କ ଗ୍ରନ୍ଥ ଅଧ୍ୟୟନକାରୀ)—ନର୍ତ୍ତକ; ନଟ—
A professional dancer.

ଶୈଳାସା—ସଂ. ବି—ପାର୍ବତୀ (ହେମଚନ୍ଦ୍ର)—
Śailāsā Pārbatī.

ଶୈଳିକ୍ୟ—ସଂ. ବିଣ. ପୁଂ—(ଶୀଳ+ଇକ+ଯ)—୧। ଧୂର୍ତ୍ତ; ଚତୁର—
Śailikya 1. Sly; cunning; artful. ୨। ବିଣ ଓ ବି—ସର୍ବଲିଙ୍ଗୀ; ଯେଉଁ ବ୍ୟକ୍ତି ଲୋକଙ୍କୁ ପ୍ରତାରଣା କରିବା ପାଇଁ ନାନାପ୍ରକାର ବେଶ ଧରେ—2. A person who assumes many false garbs to practise deception; a pretender.

ଶୈଳୀ—ସଂ. ବି—(ଶୀଳ+ସ୍ୱାର୍ଥେ. ଈ)—୧। ସ୍ୱଭାବ—1. Nature.
Śailī ୨। ଆଚରଣ—2. Conduct; character. ୩। ପ୍ରଣାଳୀ—3. Mode; manner. ୪। ସଂକ୍ଷିପ୍ତ ପ୍ରଣାଳୀ 4. A simple or short method. ୫। ସଦ୍‌ବ୍ୟବହାର—5. Good treatment. ୬। ସଦ୍ଭାବ—6. Cordial relation. ୭। କୌଶଳ—7. Policy; art; device. ୮। (ଆଧୁନିକ ପ୍ରୟୋଗ) ରଚନା ପରିପାଟୀ ବା ଭଙ୍ଗୀବିଶେଷ—8. Style or diction of a composition. ୯। ସଙ୍କେତ; ପ୍ରଜ୍ଞପ୍ତି (ଶବ୍ଦକୋଷ)—9. Indication. ୧୦। (ଶିଳା+ଅ+ଈ) ଶିଳା ପ୍ରତିମା, ପଥରର ମୂର୍ତ୍ତି (ଶବ୍ଦକୋଷ)—10. Stone image.

ଶୈଳୀଭବନ—ସଂ. ବି (ଶୈଳ+ଅଭୂତତଦ୍ଭାବେ ଈ+ଭୂ ଧାତୁ+ଅନ+
Śailībhabana ଅ)—(କୋମଳ ପଦାର୍ଥର) ପଥର ପାଲଟି ଯିବା
[ଶୈଳୀଭବ—ଅନ୍ୟରୂପ] Petrifaction; (a soft thing) being turned into stone.

ଶୈଳୀଭୂତ—ସଂ. ବିଣ—(ଶୈଳ+ଅଭୂତତଦ୍ଭାବେ ଈ+ଭୂତ)—୧।
Śailībhūta ପ୍ରସ୍ତରୀଭୂତ; ପଥର ପାଲଟି ଯାଇଥିବା; ପ୍ରସ୍ତରରେ ପରିଣତ ହୋଇଥିବା (ପଦାର୍ଥ)—1. Petrified; turned into stone. ୨। ପଥର ପରି ଟାଣ ହୋଇଯିବା—2. Hardened like stone.

ଶୈଳୂଷ—ସଂ. ବି. ପୁଂ (ଶିଳୂଷ+ବଂଶ୍ୟାଦ୍ୟର୍ଥେ. ଅ)—୧। ନଟ;
Śailūsha ନର୍ତ୍ତକ—1. Dancer; actor. [ଦ୍ର—ଶିଳୂଷ ନାମରେ ଜଣେ ନୃତ୍ୟୋପଦେଶକ ଗନ୍ଧର୍ବ ଋଷି ଥିଲେ] ୨। (ଶୈଳ+ବସ୍ ଧାତୁ+ଅ) ଭିଲ ଆଦି ପାର୍ବତ୍ୟ ଜାତି—2.Bheel and other hilly tribs; the hill-men. ୩। (ଶୀଳ+ଇଚ୍ଛାର୍ଥେ+ଉଷ)—ଦୁଷ୍ଟବ୍ୟକ୍ତି; ଠକ—3. A cheat; an imposter. ୪। (ଶୈଳ+ଉଷ; ଏ ଗଛ ପାର୍ବତ୍ୟ ସ୍ଥାନରେ ବେଶୀ ଜନ୍ମୁଥିବାରୁ) ବିଲ୍ୱ ବୃକ୍ଷ—4.The marmalos tree. ୫। (ନାମ; ଶିଳୂଷ+ଅପତ୍ୟାର୍ଥେ ଅ)—ଗନ୍ଧର୍ବରାଜ—5. The name of the chief of Gandharbas. [ଦ୍ର—ଗାନ୍ଧାର ରାଜ୍ୟ (ଆଧୁନିକ କାନ୍ଦାହାର) ଏହାଙ୍କ ରାଜ୍ୟ ଥିଲା। କେକୟରାଜଙ୍କ ପରାମର୍ଶରେ ଭରତଙ୍କ ପୁତ୍ରମାନେ ଶୈଳୂଷଙ୍କ ପୁତ୍ର ଗନ୍ଧର୍ବମାନଙ୍କୁ ଏ ରାଜ୍ୟରୁ ତଡ଼ି ଦେଇ ନିଜେ ଏ ରାଜ୍ୟ ଅଧିକାର କଲେ। ବିଭୀଷଣ ପତ୍ନୀ ସରମା ଶୈଳୂଷଙ୍କ କନ୍ୟା ଥିଲେ।]

ଶୈଳୂଷିକ—ସଂ. ବି. ପୁ (ଶୈଳୂଷ+ଇକ)—୧। ନଟ—
Śailūshika 1. An actor. ବିଣ. ପୁଂ—ନଟ ବୃତ୍ତି ଅନ୍ୱେଷଣକାରୀ (ଶବ୍ଦକୋଷ)—(a person)seeking employment as a dancer or actor.

ଶୈଳେନ୍ଦ୍ର(ଶ)—ସଂ. ବି.—(୬ଷ୍ଠୀ ତତ୍)—ଗିରିରାଜ; ହିମାଳୟ—
Śailendra (śa) The Himalayas.
ଦେ. ବି. ପୁଂ—ଲୋକଙ୍କ ନାମ—
A name given to males.

ଶୈଳେନ୍ଦ୍ରସ୍ଥ—ସଂ. ବି (ଉପପଦ ତତ୍ପୁରୁଷ)—ହିମାଳୟସ୍ଥ—
Śailendrastha Situated in the Himālays.
ବି. ଭୂର୍ଜ ବୃକ୍ଷ—Betula Bhurja (tree).

ଶୈଳେୟ—ସଂ. ବିଣ (ଶୈଳ+ସମ୍ବନ୍ଧାଦି ଅର୍ଥରେ ଏୟ)—୧। ପର୍ବତ
Śaileya ସମ୍ବନ୍ଧୀୟ—1. Mountainous. ୨। ପର୍ବତ ଜାତ—2. Produced from the mountain; growing on hills. ୩। [ଶିଳା+ଏୟ] ଶିଳା ସଦୃଶ (ଶବ୍ଦକୋଷ)—3. Similar to stone. ବି—୧। ଶୈଳଜ; ପାର୍ବତ୍ୟ ଗନ୍ଧ ଦ୍ରବ୍ୟବିଶେଷ—1.Parmalia Perlata. ୨। (ପୁଂ) ସିଂହ—2. Lion. ୩। ସୈନ୍ଧବ ଲବଣ—3. Rock salt. ୪। (ପୁଂ) ମଧୁମାଛି—4. The bee. ୫। (ପୁଂ) ଭ୍ରମର—5.The bumble bee ୬। ଜାଲପର୍ଣ୍ଣୀ (ଶବ୍ଦକୋଷ); ମୁର ମାଂସୀ—6. A kind of spikenard.

ଶୈଳେୟୀ—ସଂ. ବି (ଶୈଳ+ଅପତ୍ୟାର୍ଥେ ଏୟ+ଈ)—ପାର୍ବତୀ—
Śaileyī Goddess Pārbatī.

ଶୈଳୋଦ୍ଭବ—ସଂ. ବିଣ (୫ମୀ ତତ୍)—ପର୍ବତରୁ ଜାତ—Born of
Śailodbhaba or growing in mountains. ଦେ. ବି.—
[ଶୈଳୋଦ୍ଭବା—ସ୍ତ୍ରୀ. ବିଣ] ପ୍ରାଚୀନ ଓଡ଼ିଶାର ଏକ ରାଜବଂଶର ନାମ—The name of a dynasty of kings of ancient Orissa. [ଦ୍ର—ଏହି ବଂଶର ରାଜ୍ୟ କୋଙ୍ଗଦମଣ୍ଡଳ ବା ଆଧୁନିକ ଖୋର୍ଦ୍ଧା ଓ ଋଷିକୁଲ୍ୟା ନଦୀର ଉତ୍ତରକୁ ଥିବା ଗଞ୍ଜାମର ଉତ୍ତରାଂଶକୁ ନେଇ ଗଠିତ ହୋଇଥିଲା। କେଦାରନାଥ ମହାପାତ୍ର]

ଶୈଳୋଦ୍ଭବା—ସଂ. ବି (ଶୈଳୋଦ୍ଭବ+ସ୍ତ୍ରୀ. ଆ)—୧ । କ୍ଷୁଦ୍ର ପାଷାଣ-
Śaiiodbhabā ଭେଦୀଗୁଳ୍ମ—1. A sort of plant. ୨ ।
ଭୁଦୁଷାଦାଭପୋଷ ଗଛ—2. Coleus Aromaticus.
୩ । ହେମସାଗର ଗୁଳ୍ମ—
3. Sela Gimella; a herbarious plant.

ଶୈଲ୍ୟ—ସଂ. ବିଣ (ଶିଳ'+ଯ)—ଶିଳା ସମ୍ବନ୍ଧୀୟ—
Śailya Relating to stone; stony.

ଶୈ ସଙ୍ଗାତ—ଦେ. ବି—ସହି ସଙ୍ଗାତ (ଦେଖ)
Śai saṅgāta Sahi saṅgāta. (See)
সৈ সন্ধী

ଶୈଶବ—ସଂ. ବି (ଶିଶୁ+ଭାବ. ଅ)-ଶିଶୁତ୍ୱ; ବାଲ୍ୟକାଳ;ବାଲ୍ୟାବସ୍ଥା—
Śaiśaba Childhood; infancy.

ଶୈଶବ ଲୀଳା—ସଂ. ବି (ମ. ପ. ଲୋ)—ଶୈଶବ ସମୟରେ ଅଭ୍ୟସ୍ତ
Śaiśaba līlā ଖେଳା)—ବାଲ୍ୟକ୍ରୀଡ଼ା—Child's play.

ଶୈଶବ ସ୍ମୃତି—ସଂ. ବି—ବାଲ୍ୟକାଳର ଘଟଣାମାନ ମନେ ପଡ଼ିବା—
Śaiśaba smṛuti Remembrance or memory of the days of one's childhood.

ଶୈଶବାବଧି—ସଂ. କ୍ରି. ବିଣ—ବାଲ୍ୟକାଳରୁ ଆରମ୍ଭ କରି—
Śaiśabābadhi Since childhood or infancy.

ଶୈଶବାବସ୍ଥା—ସଂ. ବି—ବାଲ୍ୟାବସ୍ଥା—
Śaiśabābasthā Infancy.

ଶୈଶବ୍ୟ—ଦେ. ବି(ଶୁଶୁ+ଯ)-ଶୈଶବ; ବାଲ୍ୟାବସ୍ଥା (ବିଶ୍ୱକୋଷ)—
Śaiśabya Childhood.

ଶୈଶିର—ସଂ. ବିଣ (ଶିଶିର+ଅ)—୧ । ଶିଶିର ସମ୍ବନ୍ଧୀୟ—
Śaiśira 1. Relating to dew; dewy.
୨ । ଶୀତକାଳ ଜ—2. Happening in or appearing in winter. ବି—( ଶୀତକାଳରେ ଏମାନେ ଏ ଦେଶକୁ ଆସୁଥିବାରୁ)—ଶ୍ୟାମବର୍ଣ୍ଣ ଚଟକ ପକ୍ଷୀ—A blueblack species of sparrow; the blue finch bird.

ଶୈଶିରିକ—ସଂ. ବି ( ଶିଶିର+ଇକ; ବେଦ୍ୟକ )—ଇଶବଗୋଲ; ଶୀତଖିଜ
Śaiśirika ଶୀତଖିଜ—Plantago Ovata (seed).
[ଦ୍ର—ଏହା ଶୀତଦିନେ ଫଳେ ।]
ସଂ. ବିଣ. ପୁଂ—ଶିଶିର ଋତୁରେ ଅଧ୍ୟୟନକାରୀ (ବିଶ୍ୱକୋଷ)—Studying during the winter season.

ଶୈଶୁମାର—ସଂ. ବି (ଶିଶୁମାର+ସ୍ୱାର୍ଥେ ଅ)—ଶିଶୁମାରଚକ୍ର (ଦେଖ)
Śaiśumāra The Lesser Bear constellation.

ଶୈଶ୍ନ୍ୟ—ସଂ. ବିଣ. ପୁଂ ( ଶିଶ୍ନ+ଯ )—ଶିଶ୍ନୋଦରପରାୟଣ
Śaiśnya (ବିଶ୍ୱକୋଷ)—Sensual; voluptuous;
[ଶୈଶ୍ନ୍ୟା—ସ୍ତ୍ରୀ] lewd.

ଶୈଷ—ସଂ. ବି ( ଶେଷ+ଅ )—ଦିବସର ଶେଷାଂଶ ( ବିଶ୍ୱକୋଷ )—
Śaisha The last part of the day.

ଶୈଷିକ—ସଂ. ବିଣ ( ଶେଷ+ଇକ )—ଶେଷସମ୍ବନ୍ଧୀୟ (ବିଶ୍ୱକୋଷ)—
Śaishika Relating to the rest or remainder.

ଶୈଷ୍ୟୋପାଧ୍ୟାୟିକା—ସଂ ବି ( ଶିଷ୍ୟ+ଉପାଧ୍ୟାୟ+ଇକ+ଆ; ଶିଷ୍ୟ
Śaishyopādhyāyikā ଓ ଉପାଧ୍ୟାୟଙ୍କ ମଧ୍ୟରେ ଯାହା ଘଟେ)
ଶିଷ୍ୟମାନଙ୍କୁ ପାଠ ପଢ଼ାଇବା; ଅଧ୍ୟାପନା—The act of teaching or instructing pupils or students; teachership; tuition.

ଶୋ—ଦେ. ବି (ଶୀ ଧାତୁ=ଶୋଇବା)—ଶୁଆ; ଶୟନ—Sleeping.
Śo [ଯଥା—ଶୋ ବସ=ଶୋଇବା ବସିବା] । କ୍ରି ( ଶୋଇବା
শোআ সোনা କ୍ରିୟାର ଅନୁଜ୍ଞା, ଅନାଦରାର୍ଥକ 'ତୁ' କର୍ତ୍ତା ପରେ
শুএপড সোজাঔ ବ୍ୟବହୃତ)—ଶୟନକର୍—( imperative) Do thou sleep. [ ଦ୍ର—ସଂସ୍କୃତ ଶୀ ଧାତୁରୁ ଓଡ଼ିଆରେ ଶୋଇବା କ୍ରିୟା ହୋଇଅଛି । ତାହାର ଅର୍ଥ ଭୂମିରେ ଲମ୍ବ ହୋଇ ପଡ଼ିବା ( To lie down ) । ନିଦରେ ଶୋଇବା ଅର୍ଥରେ ସଂସ୍କୃତରେ ସ୍ୱପ୍ ଧାତୁର ପ୍ରୟୋଗ ହୁଏ ( To sleep ) । ]

ଶୋଆଇବା—ଦେ. କ୍ରି—ଶୋଇବା କ୍ରିୟାର ଣିଜନ୍ତରୂପ—The
Śoāibā causative form of the verb Śoibā,
শু(শো)য়ান to cause to sleep; to lay a person
সুলানা down for sleep. [ଉ—ସେବକ ପାଖୁଡ଼ା ବଛାଇ ପଲଙ୍କରେ, ଶୋଆଇଲେ ନ ଶୋଇ ଶୋଇଲୁ ଭୂମିରେ—କୃଷ୍ଣସିଂହ. ମହାଭାରତ । ]

ଶୋଇ—ଦେ. ବି—ରୋହିଜାତୀୟ ଏକପ୍ରକାର ମାଛ—
Śoi A kind of Rohi fish.

ଶୋଇ ଦେବା—ଦେ. କ୍ରି—୧। ଶୁଆଇ ଦେବା; ଶିଶୁ ଆଦିଙ୍କୁ ଶଯ୍ୟାରେ
Śoi debā ଶାୟିତ କରାଇବା—1. To put a child on
শুইয়ে দেওয়া the bed to sleep. ୨ । ନିଦ୍ରିତ ହେବା
সুলা দেনা ପାଇଁ ସୁବିଧା ଦେବା; ନିଦ୍ରିତ ବା ନିଦ୍ରାକ୍ରାନ୍ତ ବ୍ୟକ୍ତିର ନିଦ୍ରାରେ ବ୍ୟାଘାତ ନ ଜନ୍ମାଇବା—2. To let one sleep. [ ଉ—ଅଗଣାରେ ପିଲାମାନେ ଗୋଳମାଳ କରି ମୋତେ ଟିକିଏ ଶୋଇ ଦେଲେ ନାହିଁ । ]

ଶୋଇ ପକା(କେ)ଇବା—ଦେ. କ୍ରି—ଶୁଆଇ ପକାଇବା ( ଦେଖ )—
Śoi pakā(ke)ibā Śuāi pakāibā ( See )
শুইয়ে ফেলা সুলা দেনা

ଶୋଇ ପଡ଼ିବା(ଯିବା)-ଦେ. କ୍ରି (ସଂ. ଶୀ ଧାତୁ)-୧। ନିଦ୍ରାଭିଭୂତ ହେବା-
Śoi paṛdibā(jibā) শুয়েপড়া সো পড়না 1. To fall asleep.
୨ । ( ସ୍ତନ ) ଅଧୋମୁଖ ହେବା—2. (the female breast) To become flabby. ୩ । (ଲିଙ୍ଗ) ଶିଥିଳ ହେବା—3. ( the penis) To become slack.

ଶୋଇ ପିତ(ତ୍ତ)—ଦେ. ବି—ଶୋଇ ମାଛର ପିତ୍ତ—The bile of
Śoi pita(tta) the Śoi fish. [ ଦ୍ର—ସନ୍ନିପାତ ଜ୍ୱରରେ
বড় রুইর পিত্তি রোহুকা পিত্ত ଏହା ଔଷଧରୂପେ ବ୍ୟବହୃତ । ]

ଶୋଇବା—ଦେ. କ୍ରି ( ସଂ. ଶୀ ଧାତୁ )—୧ । ଶୟନ କରିବା; ସନ୍ତୁ-
Śoibā ଡ଼ିବା—1. To sleep. ୨ । ଶୋଇବା ନିମନ୍ତେ
শুয়া ଶଯ୍ୟାରେ ଲମ୍ବିବା—2. To lie down on the bed to

सोना sleep. (ଉ—ଧୋଉରେ ବାୟା ଧୋ, ଯେଉଁ କଅଁଳରେ ଗଢ଼ିଲ ମାଣ୍ଡିଆ ସେହି କଅଁଳରେ ଶୋ—ଶିଶୁରଞ୍ଜନଗୀତ) ୩ । ଭୂପତିତ ହେବା—3. To lay flat on the ground. [ ଉ—ତୁଫାନ ବେଗରେ ଯାତ୍ରୀମାନେ ବାଟ ଘାଟରେ ପଡ଼ିଲେ ପରି ଶୋଇଛନ୍ତି । ] ୪ । ଲମ୍ବ ଭାବରେ ଦଣ୍ଡାୟମାନ ନ ହୋଇ ଏକଦିଗକୁ ଢଳିବା—4. To incline or lean to one side ( said of an erect thing ). [ ଉ—ଏ ଘରର ଖୁଣ୍ଟ ଶୋଇଲାଣି । ] ୫ । ଅଧୋମୁଖ ହେବା; ଓହଳିବା—5. To hang down. [ଉ—ଗ୍ରୀଷ୍ମପ୍ରଧାନ ଦେଶରେ ଯୁବତୀମାନଙ୍କର ସ୍ତନ ଅଳ୍ପ ବୟସରେ ଶୁଏ ] ୬ । (ଲିଙ୍ଗ) ଉତ୍ଥାନ ରହିତ ହେବା—6. To become slack ( said of the penis ). ୭ । (ଣିଜନ୍ତ) ଶୁଆଇବା—7. To cause to sleep. [ ଉ—ପୁଅକୁ ଶୋଇଲ ହୁଡ଼ୁ ମୁଣ୍ଡାରେ, ଝିଅ କାନ୍ଦୁଥିଲେ କାନମୁଣ୍ଡାରେ—ଶିଶୁ ଗୀତ । ] ୮ । କୌଣସି କାର୍ଯ୍ୟରେ ମନ ନ ଦେବା; କାର୍ଯ୍ୟ ନ କରିବା; ପରିଶ୍ରମ ନ କରିବା—8. Not to attend to a work; not to work or labour. ୯ । ଆଳସ୍ୟରେ କାଳ କଟାଇବା—9. To idle away one's time. (ଯଥା--ଖେତକୁ ଆବାଦ ନ କରି ଶୋଇ ରହିଲେ ଭୋକ ମରେ ।) ୧୦ । ରତି କରିବା—10. To cohabit. [ ଉ—ନିଜ ସ୍ତ୍ରୀ ସ୍ୱାମୀଙ୍କ ଉପରେ ଭରସାକୁ, ବନ୍ଧ ବେଳ ଶୁଅନ୍ତି ଅନ୍ୟ ପୁରୁଷକୁ—କୃଷ୍ଣସିଂହ ମହାଭାରତ । ] ବି. ବିଣ—୧ । ଶୋଇଲା; ଶାୟିତ; ନିଦ୍ରିତ; ସୁପ୍ତ—1. Asleep; sleeping. ( ଯଥା—ଶୋଇବା ପିଲା ।) ୨ । ଶୟନାର୍ଥ ବ୍ୟବହୃତ—2. Used for sleeping in. (ଯଥା—ଶୋଇବା ଘର ।) ୩ । ଯାହାର ଶୋଇବା ଉଚିତ ବା କର୍ତ୍ତବ୍ୟ—3. One who ought to sleep. [ ଯଥା—ତୁ ତ ଘରେ ଶୋଇବା ଲୋକ, ତୁ କଅଁ ସ୍ୱତନ୍ତ୍ର ଭାରତୀୟଙ୍କ ବୁଝିବୁ ?] ( ଦ୍ର—ଶୋଇବାବେଳେ ଶରୀରର ଭିନ୍ନ ଭିନ୍ନ ଅବସ୍ଥିତି ପାଇଁ ଭିନ୍ନ ଭିନ୍ନ ଶବ୍ଦ ବ୍ୟବହୃତ ହୁଏ । ଯଥା—ଚିତ ହୋଇ ଶୋଇବା, ଓଲଟାଇ ଶୋଇବା, ଲମ୍ବ ହୋଇ ବା ଗୁଡ଼ାଇ ଲମ୍ବେଇ ଶୋଇବା ।)

ଶୋଇବା(ଲା) ଘର—ଦେ. ବି—ଶୟନାର୍ଥ ବ୍ୟବହୃତ ଘର; ଶୟନାଗାର—
Śoibā(lā) ghara Bed room; sleeping room; dormitory.
শু(শো)বার ঘর सोनेका घर

ଶୋଇବା(ଲା) ପୁଅ—ଦେ. ବି—ଅନୁପସ୍ଥିତ ବାଳକ—An absent child. (ତୁଳ. ଇଂ. Sleeping partner—ବାଣିଜ୍ୟରେ ଯେଉଁ ଅଂଶୀଦାର କେବଳ ମୂଳଧନ ଯୋଗାଏ ମାତ୍ର ନିଜେ କୌଣସି କାର୍ଯ୍ୟଭାର ନିଏ ନାହିଁ ।)
Śoibā(lā) pua
ঘুমন্ত ছেলে सोया लड़का

ଶୋଇବା(ଲା) ପୁଅର ଭାଗ ନାହିଁ—(ପ୍ରବଚନ ବା ନ୍ୟାୟ)—ମିଷ୍ଟାନ୍ନାଦି ପରିବାରସ୍ଥ ଶିଶୁମାନଙ୍କ ମଧ୍ୟରେ ବଣ୍ଟା ହେଲା ବେଳେ ପରିବାରର ଯେଉଁ ସନ୍ତାନ ନିଦ୍ରିତ ଥିବାରୁ ସେ ସ୍ଥାନରେ ଉପସ୍ଥିତ ହୋଇ ନ ପାରେ, ତା ପାଇଁ ମିଷ୍ଟାନ୍ନର ଅଂଶ ରଖା ଯାଏ ନାହିଁ ଓ ଉପସ୍ଥିତ ପିଲାମାନେ ତାକୁ ଖାଇଯାଆନ୍ତି, ଅର୍ଥାତ ସେ ତାର ଭାଗରୁ ବା ଅଂଶରୁ ବଞ୍ଚିତ ହୁଏ । ଏଥିପାଇଁ) ଅନୁପସ୍ଥିତ ବ୍ୟକ୍ତି କୌଣସି ଲାଭରୁ ବଞ୍ଚିତ ହେବା ସ୍ଥଳରେ ଏ ପ୍ରବଚନ ବ୍ୟବହୃତ ହୁଏ—An analogy applied to cases where an absent person is deprived of his share of some gift or benefit which he would have got had he been present at the spot.
Śoibā(lā) puara bhāga nāhiñ
ঘুমন্ত ছেলে খাবার পায়না सोए लड़केका हिस्सा नहिं

ଶୋଇବା ବସିବା—ଦେ. ବି—୧। କୌଣସି କାର୍ଯ୍ୟ ନ କରି ଆଳସ୍ୟରେ କାଳ କାଟିବା—1. Spending one's time without doing anything. ୨ । ଶୟନ କରିବା ଓ ବସିବା ଅବସ୍ଥା—2. Sitting and sleeping postures. ( ଉ—ଶାଳଗ୍ରାମର ଶୋଇବା ବସିବା ସମାନ—ଢଗ ।)
Śoibā basibā
বসাশুয়া सोनाबैठना

ଶୋଇ ରହିବା—ଦେ. କ୍ରି—୧ । ବହୁ ସମୟ ପାଇଁ ନିଦ୍ରା ଯିବା—1. To sleep on; to be asleep for some time; to go on sleeping. (ଯଥା—ଦିନ ପହରେ ହେଲାଣି, ସମସ୍ତେ ଉଠି ମୁହଁ ହାତ ଧୋଇଲେଣି, ବାବୁ ଅବଧି ଶୋଇ ରହିଛନ୍ତି ।) ୨ । ନିଦ୍ରିତ ନ ହୋଇ ସୁଦ୍ଧା ବିଛଣାରେ ପଡ଼ିରହିବା—2. To lie awake in bed.
Śoi rahibā
শুয়েথাকা सोयेरहना

ଶୋଇଲା—ଦେ. କ୍ରି (ଶୀ ଧାତୁରୁ ଶୋଇବା କ୍ରିୟାର ଭୂତକାଳ, ଅନ୍ୟ ପୁରୁଷ ୧ବଚନର ରୂପ; କର୍ତ୍ତା 'ସେ') ଶୟନ କଲା—(he) Slept ବିଣ—୧ । ସୁପ୍ତ; ନିଦ୍ରିତ—Asleep; sleeping. ( ଯଥା—ଶୋଇଲା ପୁଅ) ୨ । ଶୟନାର୍ଥେ ବ୍ୟବହୃତ—2. Used for sleeping. (ଯଥା—ଶୋଇଲା ଘର, ଶୋଇଲା ଶେଯ) [ଉ—ଶୋଇଲା ଶେଯରୁ ଉଠେଇ ନେଇ ପକେଇ ମନ୍ତ୍ର ଧୂଳି—ଢଗ ।]
Śoilā
শুল सोया
ঘুমন্ত सोयाहुआ

ଶୋଇଲା ଘର—ଦେ. ବି—ଶୟନାଗାର—Bedroom; dormitory.
Śoilā ghara
শোবারঘর सोनेकाघर

ଶୋଇଲା ଠଉଁ(ଠାରୁ)ଉଠା(ଠେ)ଇ ଆଣିବା (ନେବା)—ସୁପ୍ତ ବ୍ୟକ୍ତିକୁ ଶଯ୍ୟାରୁ ଉଠାଇ କରି ସଙ୍ଗରେ ଆଣିବା—To rouse and fetch a person directly from the bed.
Śoilā ṭhauñ(ṭhāru) uṭhe (ṭhe)iāṇibā(nebā) ঁ ঠাত্
বিছানাথেকেতুলিয়েআনা सोनेसेउठालाना

ଶୋଇଲା ଦୁଧ—ଗ୍ରା. ବି—ଦୋହଳବା ଶ୍ଲଥ ସ୍ତନ—
Śoilā dudha Hanging female breast.
খসামাই লিবা স্তন

ଶୋଇଲା ଦୁଧୀ—ଗ୍ରା. ବିଣ. ସ୍ତ୍ରୀ—ଶିଥିଳସ୍ତନା; ଶ୍ଲଥସ୍ତନୀ (ସ୍ତ୍ରୀ)—
Śoilā dudhī (a woman) With hanging breasts.
যাব মাই খসেপড়েছে লিবাস্তনবালী

ଶୋଇଲା ପୁଅ—ଦେ. ବି—ଶୋଇବା ପୁଅ (ଦେଖ)
Śoilā pua Śoibā pua (See)

ଶୋଉଳ—ଗ୍ରା. ବି (ସଂ. ଶକୁଳ)—ଶକୁଳ (ଦେଖ)
Śoula Śakula (See)

ଶୋକ—ସଂ. ବି (ଶୁଚ୍ ଧାତୁ=ଖେଦ କରିବା+ଭାବ ଅ)—୧ । ଇଷ୍ଟ
Śoka ବିୟୋଗଜନିତ ମନୋବେଦନା; ପ୍ରିୟ ବ୍ୟକ୍ତିର ମୃତ୍ୟୁ ବା ବିଚ୍ଛେଦ ଯୋଗୁଁ ମନରେ ଜନ୍ମିବା ଦୁଃଖ—1. Mental pain or sorrow due to the death of or separation from one's dear or beloved person. ୨ । ପ୍ରିୟ ବସ୍ତୁର ଅଭାବ ବା ଅପ୍ରାପ୍ତି ବା ମନୋବାଞ୍ଛାର ଅସିଦ୍ଧି ଯୋଗୁଁ ଚିତ୍ତବୈକଲ୍ୟ—2. Sorrow ,due to the nonfulfilment of one's desire or for not getting what one wants; grief. ୩ । ମନର ସନ୍ତାପ—3. Mourning; mental sickness; regret.

ଶୋକ କର—ସଂ. ବିଣ—( ଶୋକ+କୃ ଧାତୁ+କର୍ତ୍ତୃ. ଅ)—ଶୋକ
Śoka kara ଜନକ (ଦେଖ)—Śokajanaka (See)
(ଶୋକକରୀ—ସ୍ତ୍ରୀ)

ଶୋକ କରିବା—ଦେ. କ୍ରି—୧ । ମନୋବେଦନା ଅନୁଭବ କରିବା—
Śoka kariba 1. To grieve; to sorrow. ୨ । ମନୋବେଦନା ଯୋଗୁଁ କାନ୍ଦିବା—2. To weep on account of grief.

ଶୋକ କାତର—ସଂ. ବିଣ. ପୁଂ—(୩ମୀ ତତ୍)—ଶୋକାକୁଳ (ଦେଖ)
Śoka kātara Śokākula (See)
(ଶୋକ କାତରା—ସ୍ତ୍ରୀ) (ଶୋକ କାତରତା—ବି)

ଶୋକକ୍ଲିଷ୍ଟ—ସଂ. ବିଣ. ପୁଂ—(୩ୟା ତତ୍) ଶୋକଦ୍ୱାରା ଅଭିଭୂତ;
Śoka klishta ମନୋଦୁଃଖଦ୍ୱାରା ଆକ୍ରାନ୍ତ—Overtaken with grief; aggreived; afflicted.
[ଶୋକକ୍ଲିଷ୍ଟା—ସ୍ତ୍ରୀ]

ଶୋକ ଗୀତ(ି)—ସଂ. —ଶୋକ ସଂଗୀତ (ଦେଖ)
Śoka gīta(ti) Śoka saṁgīta (See)
(ଶୋକ ଗୀତିକା—ଅନ୍ୟରୂପ)

ଶୋକ ଜନକ—ସଂ. ବିଣ—(ଶୋକ+ଜନ ଧାତୁ ଣିଜନ୍ତ ଜନି ଧାତୁ+
Śokajanaka କର୍ତ୍ତୃ ଅକ)—ଯାହା ବା ଯେ ଶୋକ ଜାତ କରେ—Producing grief; sorrowful.
(ଶୋକଜନୟିତା—ଅନ୍ୟରୂପ) [ଶୋକଜନକା, ଶୋକଜନୟିତ୍ରୀ—ସ୍ତ୍ରୀ]

ଶୋକ ଜନିତ—ସଂ. ବିଣ. ( ୩ୟା ତତ୍ )—ଶୋକରୁ ଜାତ—
Śoka janita Brought about by grie .
( ଶୋକଜନ୍ୟ—ଅନ୍ୟରୂପ,)

ଶୋକ ଜର୍ଜ୍ଜର—ସଂ. ବିଣ. ପୁଂ (୩ୟା ତତ୍)—ଶୋକଦ୍ୱାରା ଅତ୍ୟନ୍ତ
Śoka jarjara ଭାବରେ କାତର—Overcome with grief.
(ଶୋକ ଜର୍ଜ୍ଜରିତ, ଶୋକଜୀର୍ଣ୍ଣ—ଅନ୍ୟରୂପ)
(ଶୋକ ଜର୍ଜ୍ଜରା—ସ୍ତ୍ରୀ)

ଶୋକ ତପ୍ତ—ସଂ. ବିଣ. ପୁଂ—(୩ୟା ତତ୍)—ଶୋକକ୍ଲିଷ୍ଟ (ଦେଖ)—
Śoka tapta (ଶୋକତପ୍ତା—ସ୍ତ୍ରୀ) Śoka klishta (See)
[ଶୋକତପ୍ତି—ବି]

ଶୋକ ତାପ—ସଂ. ବି—୧ । (ମ. ପ. ଲୋ)—ଶୋକଜନିତ ମନଃପୀଡ଼ା
Śoka tāpa 1. Mental uneasiness due to sorrow. ୨ । (ଏକାର୍ଥକ ସହିତର) ମନୋବେଦନା—2. Grief. ୩ । (ଦ୍ୱନ୍ଦ୍ୱ)—ଶୋକ ଓ ଅନ୍ୟ ମନୋବେଦନା—Grief and other mental uneasiness.

ଶୋକ ତାପିତ—ସଂ. ବିଣ. ପୁଂ—(୩ୟା ତତ୍)—ଶୋକକ୍ଲିଷ୍ଟ (ଦେଖ)
Śoka tāpita Śokaklishta (See)
(ଶୋକତାପିତା—ସ୍ତ୍ରୀ)

ଶୋକ ଦାୟକ—ସଂ. ବିଣ. ପୁଂ—ଶୋକଜନକ (ଦେଖ)
Śoka dāyaka Śoka janaka (See)
[ଶୋକଦାୟୀ—ଅନ୍ୟରୂପ] [ଶୋକଦାୟିକା, ଶୋକଦାୟିନୀ—ସ୍ତ୍ରୀ]

ଶୋକ ନଦୀ—ସଂ. ବି—(ରୂପକ)—ନଦୀ ସଙ୍ଗେ ତୁଳନା କରାଯିବା
Śoka nadī ଶୋକ—River of grief; grief compared to a flowing river; overflowing grief.
[ଶୋକସରିତ୍—ଅନ୍ୟରୂପ]

ଶୋକ ନାଶ—ସଂ. ବି—(୬ଷ୍ଠୀ ତତ୍)—୧ । ଶୋକର ନିବୃତ୍ତି—
Śoka nāsa 1. Cessation of grief. ୨ । ଶୋକର ଦୂରୀକରଣ—2. Removal of grief; assuaging of grief. ୩ । (ବହୁବ୍ରୀହି) ଅଶୋକ ବୃକ୍ଷ ( ଶବ୍ଦକୋଷ )—The Aśokatree. ବିଣ.—(ଉପପଦ ତତ୍)—ଶୋକ ନାଶକ—Removing grief.
[ ଶୋକନିବୃତ୍ତି—ଅନ୍ୟରୂପ ]

ଶୋକ ନାଶକ—ସଂ. ବିଣ. ପୁଂ—(ଉପପଦ ତତ୍; ଶୋକ+ନଶ୍ ଧାତୁ
Śoka nāsaka ଣିଚ ନାଶି ଧାତୁ+କର୍ତ୍ତୃ. ଅକ)—ଶୋକ-ଦୂରକାରୀ—Removing grief.
[ଶୋକନାଶିକା—ସ୍ତ୍ରୀ]

ଶୋକ ପାରାବାର—ସଂ. ବି—(ରୂପକ)—ଶୋକସାଗର (ଦେଖ)
Śoka pārābāra Śoka sāgara (See)

ଶୋକ ପ୍ରବାହ—ସଂ. ବି—୧ । (ରୂପକ)—ଶୋକନଦୀ (ଦେଖ)
Śoka prabāha 1. Śokanadī (See).
[ଶୋକବେଗ—ଅନ୍ୟରୂପ] ୨ । (୬ଷ୍ଠୀ ତତ୍) ବହୁକାଳବ୍ୟାପୀ ଶୋକ—2. Grief lasting for a long time.

ଶୋକ ବର୍ଦ୍ଧି—ଦେ.ବି.—ଛନ୍ଦ ବିଶେଷ—A kind of metre.
Śoka barardi [ ଉ—ବନସ୍ତ୍ରିୟଙ୍କୁ ଶିଖାଇ ଗୀତ ଶୋକ ବର୍ଦ୍ଧି ସ୍ୱରେ ଚେ—ଉଛ. ବୈଦେହୀଶବିଳାସ ।]

ଶୋକ ବର୍ଦ୍ଧକ—ସଂ. ବଣ (୬ଷ୍ଠୀ ତତ୍)—ଯାହା ବା ଯେ ଶୋକକୁ ବଢ଼ାଏ
Śoka barddhaka —Aggravating one's sorrow.

ଶୋକ ବର୍ଦ୍ଧନ—ସଂ. ବି—(୬ଷ୍ଠୀ ତତ୍)—ଶୋକର ବେଗ ବଢ଼ିଯିବା;
Śoka barddhana ଶୋକର ଉଦ୍ରେକ—Aggravation of one's grief.
[ଶୋକବୃଦ୍ଧି—ଅନ୍ୟରୂପ]

ଶୋକ ବହ୍ନି—ସଂ. ବି—(ରୂପକ)—୧। ବହ୍ନି ବା ଅଗ୍ନି ପରି ଦାହକ
Śoka bahni ଶୋକ—1. Grief compared to fire.
୨। ଗଭୀର ଶୋକ—2. Great or profound grief.

ଶୋକ ବିହୀନ—ସଂ. ବଣ. ପୁଂ (୩ୟା ତତ୍)—ଶୋକଶୂନ୍ୟ (ଦେଖ).
Śoka bihīna Śokaśūnya (See)
(ଶୋକବିହୀନା—ସ୍ତ୍ରୀ)

ଶୋକ ବ୍ୟଞ୍ଜକ—ସଂ. ବି—(ଉପପଦ ତତ୍)—୧। ଶୋକସୂଚକ; ଯାହା
Śoka byañjaka ଦ୍ୱାରା ଶୋକ ହେବା ବ୍ୟକ୍ତିର ହୃଦୟର ଶୋକ ବ୍ୟକ୍ତିତ ବା ସୂଚିତ ହୁଏ—1. Indicating the grief of one's heart. ୨। ଯାହା ଅନ୍ୟ ବ୍ୟକ୍ତିର ମନରେ ଶୋକର ଭାବ ଉପୁଯାଏ—2 Producing grief in the mind of another.

ଶୋକ ଭାଗୀ—ସଂ. ବଣ. ପୁଂ—ଅନ୍ୟ ବ୍ୟକ୍ତିର ଶୋକର ଅଂଶଗ୍ରହଣ
Śoka bhāgī କାରୀ—Sharing another's grief.
[ଶୋକଭାଗିନୀ—ସ୍ତ୍ରୀ]

ଶୋକ ରହିତ—ସଂ. ବଣ. ପୁଂ—(୩ୟା ତତ୍)—ଗତଶୋକ—
Śoka rahita Freed from grief.
[ଶୋକରହିତା—ସ୍ତ୍ରୀ] [ଶୋକରାହିତ୍ୟ—ବି]

ଶୋକ ରୁଦ୍ଧ—ସଂ. ବଣ—(୩ୟା ତତ୍)—ଶୋକ ଯୋଗୁଁ ବନ୍ଦ ହୋଇ
Śoka ruddha ଥିବା (କଣ୍ଠ ବା ଶ୍ୱାସ ବା ବାକ୍ୟ)—1. (voice or breath or words) Restrained by grief; blocked up by grief. ୨। ଶୋକ ଯୋଗୁଁ ଜଡ଼ୀଭୂତ—(ଯଥା ଶୋକରୁଦ୍ଧ ବଚନ, ଶୋକରୁଦ୍ଧ କଣ୍ଠ)—2. Paralysed or benumbed with grief.

ଶୋକ ରୋଗ—ସଂ. ବି—(ଦ୍ୱନ୍ଦ୍ୱ)—ମାନସିକ ଓ ଶାରୀରିକ ବେଦନା
Śoka roga Mental and bodily suffering; sorrow and sickness.

ଶୋକ ଶୂନ୍ୟ—ସଂ. ବଣ ପୁଂ (୩ୟା ତତ୍)—୧। ଗତଶୋକ—
Śoka śūnya 1. Free from grief. ୨। ଯାହାର
[ଶୋକଶୂନ୍ୟା—ସ୍ତ୍ରୀ] ଶୋକ ନାହିଁ—2. Not affected by grief.
(ଶୋକ ଶୂନ୍ୟତା—ସ୍ତ୍ରୀ)

ଶୋକ ସଙ୍ଗୀ—ସଂ. ବଣ. ପୁଂ—ସମାନ ଭାବରେ ଶୋକକ୍ଲିଷ୍ଟ—
Śoka saṅgī Equally grieved. ବି.—ଶୋକ
[ଶୋକସଙ୍ଗିନୀ—ସ୍ତ୍ରୀ] କରିବା ବେଳେ ଯେ ଶୋକ କରୁଥିବା ବ୍ୟକ୍ତି ପରି ଶୋକ କରେ—A companion in one's grief or sorrow.

ଶୋକ ସଙ୍ଗୀତ—ସଂ. ବି—(ମ. ପ. ଲୋ; ଶୋକସୂଚକ ସଙ୍ଗୀତ)—୧।
Śoka saṅgīta ଶୋକୋଦ୍ଦୀପକ ଗୀତ—1. A song which produces grief in the mind of the hearer. ୨। ଶୋକାର୍ତ୍ତ ବ୍ୟକ୍ତିର ଗୀତ—2. The song of a grieved person.

ଶୋକ ସନ୍ତପ୍ତ—ସଂ. ବଣ—(୩ୟା ତତ୍)—ଶୋକତପ୍ତ (ଦେଖ)
Śoka santapta Śoka tapta (See)
[ଶୋକ ସନ୍ତାପିତ—ଅନ୍ୟରୂପ]
[ଶୋକ ସନ୍ତପ୍ତା, ଶୋକ ସନ୍ତାପିତା—ସ୍ତ୍ରୀ]

ଶୋକ ସନ୍ତାପ—ସଂ. ବି—୧। (ମ. ପ. ଲୋ)—ଶୋକଜନିତ ମନୋ-
Śoka santāpa ବେଦନା—Mental agitation due to grie. ୨। (ଦ୍ୱନ୍ଦ୍ୱ)—ଶୋକ ଓ ମନୋଦୁଃଖ—Grief and regret.

ଶୋକ ସମୁଦ୍ର—ସଂ. ବି (ରୂପକ)—ସମୁଦ୍ର ପରି ଗଭୀର ଓ ଉଚ୍ଛ୍ୱସିତ
Śoka samudra ଶୋକ—Ocean or sea of grief deep and overflowing grief.
ଶୋକସାଗର } ଅନ୍ୟରୂପ—
ଶୋକସିନ୍ଧୁ }

ଶୋକ ସମ୍ବରଣ—ସଂ. ବି (୬ଷ୍ଠୀ ବା ୬ଷ୍ଠୀ ତତ୍)—ଶୋକକୁ ସମ୍ଭାଳିବା,
Śoka sambaraṇa Overcoming tne pangs of grief,

ଶୋକ ସମ୍ବରଣ କରିବା—ଦେ. କ୍ରି—ଶୋକ ଛାଡ଼ିବା; ଶୋକାକୁଳ
Śoka sumbaraṇa karibā ମନକୁ ଥଣ୍ଡା କରିବା—
শোক সম্বরণ করিবা शोकरोकना To onecome the pangs one's greifs to calm ones sorrowiug mind.

ଶୋକହରଣ—ସ. ବି—ଶୋକର ନିବାରଣ—Thereventing
Śokaharaṇa of grief; the redressing ones sorrow; assuaging of ones sorrow

ଶୋକହାରକ—ସ. ବଣ. ପୁଂ (ଉପପଦତତ୍)—ଶୋକର ନିବାରକ
Sokaharaha Prevennting grief,
(ଶୋକହାରୀ—ଅନ୍ୟରୂପ)
(ଶୋକହାରିକା, ଶୋକହାରିଣୀ—ସ୍ତ୍ରୀ)

ଶୋକ କାରୀ—ସ. ବି—ବନବବରିକା; ବଣଜାତ ଏକପ୍ରକାର ତୁଳସୀ;
Sokakārī ଗନ୍ଧତୁଳସୀ—A plant; a sort of wild Basil plant.

ଶୋକହୀନ—ସ. ବଣ ପୁଂ—ଶୋକଶୂନ୍ୟ—Devrid of grief or
Soka hīna sorrow.
(ଶୋକହୀନା—ସ୍ତ୍ରୀ)

ଶୋକାକୁଳ—ସ. ବଣ. ପୁଂ (୩ୟା ତତ୍)—ଶୋକ ଜର୍ଜ୍ଜରିତ—
Śokakula (ଦେଖ) Śoka jarjjarita (See)
ଶୋକାକୁଳିତ, ଶୋକାକ୍ରାନ୍ତ, ଶୋକାକ୍ଲୃତ—ଅନ୍ୟରୂପ)
(ଶୋକାକୁଳା, ଶୋକାକୁଳିତା, ଶୋକାକ୍ରାନ୍ତା, ଶୋକାକ୍ଲୃତା—ସ୍ତ୍ରୀ)

ଶୋକାଗାର—ସ. ବି (ମ. ପ. ଲୋ)—ରାଜପ୍ରାସାଦର ଯେଉଁ ଗୃହରେ
Śokāgāra ରାଜପରିବାରର ବ୍ୟକ୍ତିମାନେ ଶୋକ କରନ୍ତି
(ଶବ୍ଦକୋଷ)—A room where a royal family go to give vent to its grief.

ଶୋକାଗ୍ନି—ସଂ. ବି. (ରୂପକ)—ଶୋକ ବହ୍ନି (ଦେଖ)—
Śokāgni Śoka bahni (See)
(ଶୋକାନଳ—ଅନ୍ୟରୂପ)

ଶୋକାତୁର—ସଂ ବିଣ. ପୁଂ (୭ମୀ ତତ୍ ବା ୩ୟା ତତ୍)-ଶୋକରୋଗ୍ରସ୍ତ
Śokātura କାତର; ଶୋକକ୍ଲିଷ୍ଟ—Afflicted with
(ଶୋକାତୁରା—ସ୍ତ୍ରୀ) (ଶୋକାତୁରତା—ବି) grief.

ଶୋକାପନୟନ—ସଂ ବି (୬ଷ୍ଠୀ ତତ୍)—୧ । ଶୋକର କାରଣକୁ
Śokāpanayana ଦୂର କରିବା—1. The removal of the cause of grief. ୨ । ଶୋକ ସନ୍ତପ୍ତ ବ୍ୟକ୍ତିର ଶୋକକୁ ଶାନ୍ତ କରିବା—2. Assuaging of the sorrow of a grieving person.
(ଶୋକାପନୋଦନ, ଶୋକାପହରଣ—ଅନ୍ୟରୂପ)

ଶୋକାବିଷ୍ଟ—ସଂ. ବିଣ. ପୁଂ (୩ୟା ତତ୍, ଶୋକ+ଆବିଷ୍ଟ)--ଶୋକ
Śokābishsta କାତର—Afflicted with grief; sorrowful; grieved.
(ଶୋକାବିଷ୍ଟା—ସ୍ତ୍ରୀ)

ଶୋକାବେଗ—ସଂ. ବି (୬ଷ୍ଠୀ ତତ୍)—ଶୋକର ପ୍ରତାପ; ଶୋକ-
Śokābega ଜନିତ ପୀଡ଼ା ବା ଶୋକବୈକଲ୍ୟ—The pangs of grief

ଶୋକାର୍ଣ୍ଣବ—ସଂ. ବି (ରୂପକ)—ଶୋକ ସମୁଦ୍ର (ଦେଖ)
Śokārnnaba Śoka samudra (See)

ଶୋକାର୍ତ୍ତ—ସଂ. ବିଣ. ପୁଂ—ଶୋକ କାତର (ଦେଖ)—
Śokārtta Śoka kātara (See)
(ଶୋକାର୍ତ୍ତା—ସ୍ତ୍ରୀ)

ଶୋକିତ—ସଂ. ବିଣ (ଶୋକ+ଇତ)—ଶୋକଯୁକ୍ତ—Sorrowful.
Śokita [ଉ—ବୋଲ ବୋଲି ଏମନ୍ତ, କହନ୍ତେ ସମସ୍ତେ ଶୋକିତ—ଜଗ. ବୈଦେହୀଶବିଳାସ ।]

ଶୋକାରି—ସଂ. ବି (୬ଷ୍ଠୀ ତତ୍)—(ଶୋକ—ଚିତ୍ତ ଚାଞ୍ଚଲ୍ୟକାରକ ଜେବର ଅରି—ଶତ୍ରୁ ବା ନାଶକ)—କଦମ୍ବ ଗଛ—
Śokāri A kind of tree; Neuclea Cadamba.

ଶୋକୋଚ୍ଛ୍ୱାସ—ସଂ. ବି (୬ଷ୍ଠୀ ତତ୍)—୧ । (ରୂପକ) ଶୋକ-
Śokochchhwāsa ପ୍ରବାହ—1. The overflow of grief. ୨ । (ମଧ୍ୟ ପଦଲୋପୀ) ଶୋକଜନିତ ଦୀର୍ଘ-ନିଶ୍ୱାସ—2. Sighs of grief.

ଶୋକୋଚ୍ଛ୍ୱସିତ—ପୁଂ
ଶୋକୋଚ୍ଛ୍ୱସିତା—ସ୍ତ୍ରୀ } —ବିଣ

ଶୋକୋତ୍ପାଦକ—ସଂ.ବିଣ(ଉପପଦ ତତ୍)-ଯାହା ଶୋକ ଜନ୍ମାଏ—
Śokotpādaka Causing sorrow.
(ଶୋକୋତ୍ପାଦିକା—ସ୍ତ୍ରୀ, ଶୋକୋତ୍ପାଦନ—ବି)

ଶୋକୋଦ୍ଦୀପକ—ସଂ ବି (ଉପପଦ ତତ୍)—ଯାହା ଶୋକର ବେଗକୁ
Śokoddīpaka ବଢ଼ାଏ-Increasing grief; adding to sorrow.
(ଶୋକୋଦ୍ଦୀପିକା—ସ୍ତ୍ରୀ)(ଶୋକୋଦ୍ଦୀପକତା—ବି)

ଶୋକୋଦ୍ଦୀପନ(ନା)—ସଂ. ବି [୬ଷ୍ଠୀ ତତ୍]—୧ । ଶୋକବୃଦ୍ଧି;
Śokoddīpana(nā) ଶୋକବର୍ଦ୍ଧନ—1. increase of sorrow. ୨ । ମନରେ ଶୋକ ଜନ୍ମିବା—The coming over of grief in the mind.

ଶୋକୋଦ୍ଦୀପ୍ତ—ସଂ. ବିଣ [୩ୟା ତତ୍]—ଶୋକହେତୁ ଜଳି ଉଠିବା;
Śokoddīpta ଶୋକଜର୍ଜ୍ଜରିତ [ହୃଦୟ]—Overflowing with grief; overcome with grief

ଶୋକୋଦ୍ଭବ—ସଂ.ବିଣ [୭ମୀ ତତ୍]—ମନରେ ଶୋକ ଜନ୍ମିବା—The
Śokodbhaba coming over of grief in the mind.
(ଶୋକୋଦ୍ଭବ—ବିଣ) [illegible]

ଶୋକୋଦ୍ଭୂତ—ସଂ. ବିଣ. [୫ମୀ ତତ୍]—ଶୋକରୁ ଜାତ—
Śokodbhūta Caused by sorrow or grief; due to grief.

ଶୋକୋଲା—ବୈଦେ. ବି. [ଇଂ]—ଚକଲେଟ୍‌ର ଫ୍ରେଞ୍ଚ ଉଚ୍ଚାରଣ—
Śokolā The French pronunciation of chocolate.
শোকোলা शोकोला

ଶୋଗେଇତର—ଗ୍ରାଦେ. ବିଣ.[ଗଡଜାତ]ସ୍ତ୍ରୀ—ସ୍ନେହଶୀଳା; ସେଉଁ ସ୍ତ୍ରୀ-
Śogeitara ସାବତ ପୁଅକୁ ଖୁବ ଘାଏ--Very loving;fond of one's step-son.

ଶୋଙ୍ଗର୍ଦ୍ଦା—ଦେ· ବି—ଏକପ୍ରକାର ଗୋରୁ—
Śongardā A kind of cattle.

ଶୋଚନ—ସଂ. ବି (ଶୁଚ୍ ଧାତୁ=ମନୋଦୁଃଖ କରିବା+ଭାବ. ଅନ)—
Śochana ୧ । ଶୋକ କରିବା; ଶୋକ ପ୍ରକାଶ—1. Sorrowing. ୨ । ଶୋକ—2. Grief; sorrow. ୩ । ଅନୁକମ୍ପା—3. Pity; compasion. ୪ । ଅନୁତାପ—4 Repentance; regret. ସଂ. ବିଣ. ପୁଂ ( +କର୍ତ୍ତୃ· ଅନ )—ଶୋକଶୀଳ ( ଉଦ୍‌ବେଗ )—Ginen to sorrowing.

ଶୋଚନା—ସଂ. ବି ( ଶୁଚ ଧାତୁ+ଭାବ. ଅନ+ଆ )—ଶୋଚନ;
Śochana ଦୁଃଖ—Sorrow. [ ଉ—ଶାଶୁ ନଣନ୍ଦଙ୍କ ଗଞ୍ଜଣା, ଭାଙ୍ଗିବ ମୋ କାହିଁ ଶୋଚନା—ସଙ୍ଗୀତ । ]

ଶୋଚନା କରିବା—ଦେ. କ୍ରି—୧ । ଅବଶୋଷ କରିବା—1. To
Śochanā karibā regret; to repent. ୨ । ମନୋଦୁଃଖ
শোচনা করা शोक करना କରିବା—2. To grieve.

ଶୋଚନୀୟ—ସଂ. ବିଣ(ଶୁଚ୍ ଧାତୁ+କର୍ମ ଅନୀୟ)—୧ । ଶୋଚ୍ୟ; ଯାହା
Śochanīya ପାଇଁ ଶୋକ କରାଯାଏ; ଶୋକର ବିଷୟୀଭୂତ—1. Object of grief; regrettable. ୨ । ଅନୁକମ୍ପନୀୟ—2. Pitiable. ୩ । ଦୟାର ପାତ୍ର—3. Object of pity.

ଶୋଚି ( ଧାତୁ )—ସଂ. ( ଶୁଚ୍ ଧାତୁ ଣିଚ୍ )—୧ । ଶୋକ କରିବା—
Śochi (root) 1. To grieve. ୨ । ଅନ୍ୟକୁ ଶୋକ ସନ୍ତପ୍ତ କରିବା—2. To cause grief to another:

ଶୋଚିଃ—ସଂ. ବି ( ଶୁଚ୍ ଧାତୁ=ଦୀପନ କରିବା+ଇସ୍=ଶୋଚିସ୍,
Śochih ସ୍ତ୍ରୀ. ନ୍ତ. )—୧ । ଶିଖା—1. Flame. ୨ । ଜ୍ୱାଳା—2. Glare. ୩ । ପ୍ରଭା—3. Lustre.

ଶୋଚିତବ୍ୟ—ସଂ. ବିଣ ( ଶୁଚ୍ ଧାତୁ ଶିଚ୍=ଶୋଚ ଧାତୁ+କର୍ମ. ତବ୍ୟ )—ଶୋଚନୀୟ ( ଦେଖ )—
Śochitabya Śochaniya ( See )

ଶୋଚିବା—ଦେ. ( ପଦ୍ୟ ) କ୍ରି ( ସଂ. ଶୁଚ୍ ଧାତୁ )—୧ । ଶୋକ କରିବା—1. Go grieve. ୨ । ଅନୁତାପ କରିବା—2. To regret.
Śochibā
শোচা শোক করনা

ଶୋଚିଷ୍କେଶ—ସଂ. ବି (ଶୋଚିସ୍=ଶିଖା ହୋଇଅଛି କେଶ ଯାହାର)—୧ । ଅଗ୍ନି; ଅଗ୍ନି—1. Fire. ୨ । ଚିତା ଗୁଳ୍ମ; ଚିତ୍ରକ ବୃକ୍ଷ—2. Plumbago Zeylanica ( tree ).
Śochishkeśa

ଶୋଚ୍ୟ—ସଂ. ବିଣ (ଶୁଚ୍ ଧାତୁ+କର୍ମ. ଯ)—ଶୋଚନୀୟ; ଯାହା ଲାଗି ଶୋକ କରାଯାଏ—1. Regrettable. ୨ । ଅନୁକମ୍ପନୀୟ—2. Pitiable.
Śochya
(ଶୋଚ୍ୟା—ସ୍ତ୍ରୀ)

ଶୋଚ୍ୟକ—ସଂ. ବିଣ ( ଶୋଚ୍ୟ+କ )—୧ । କ୍ଷୁଦ୍ର—1. Small. ୨ । ନୀଚ—2 Low; mean. ୩ । କନିଷ୍ଠ—3. Youngest. ୪ । ଅପବିତ୍ର—4. Unholy.
Śochyaka

ଶୋଚ୍ୟ ଦେଶ—ସଂ. ବି—ଅପବିତ୍ର—Unholy.
Śochya deśa

ଶୋଟୀର୍ଯ୍ୟ—ସଂ.ବି (ଶୁଟୀର=ବୀର+ଭାବ.ଯ)—୧ । ବଳ; ପରାକ୍ରମ—1. Might ୨ । ଦମ୍ଭ; ଗର୍ବ—2. Pride, arrogance. ୩ । ସାହସ—3. Bravery.
Śoṭirjya

ଶୋଠ—ସଂ. ବିଣ (ଶୁଠ୍ ଧାତୁ=ଆଳସ୍ୟ କରିବା+କର୍ତ୍ତୃ. ଅ )—୧ । ଅଳସୁଆ—1. Idle; lazy. ୨। ମୂର୍ଖ—2. Dunce; foolish. ୩। ଧୂର୍ତ୍ତ—3. Sly, artful; cunning rogue. ୪ । ନୀଚ—4. Mean; low; abominable. ୫ । ପାପରତ (ଶବ୍ଦକୋଷ )—5. Sinful.
Śoṭha

ଶୋଣ୍ ( ଧାତୁ )—ସଂ—୧ । ରକ୍ତବର୍ଣ୍ଣ କରିବା—1. To redden. ୨ । ରଞ୍ଜିତ କରିବା—2. To dye. ୩ । ରକ୍ତବର୍ଣ୍ଣ ହେବା—3. To become red. ୪ । ଗତି କରିବା (ଶବ୍ଦକୋଷ)—4. To move.
Śoṇ (root)

ଶୋଣ୍—ଦେ. ବି ( ସଂ. ଶୋଣ )—ଶୋଣ ନଦୀ—The river Sone.
Śoṇ শোণ सोन

ଶୋଣ୍ କେନାଲ୍—ଦେ. ବି—କ୍ଷେତ୍ରରେ ଜଳସେଚନାର୍ଥ ଶୋଣନଦୀରୁ ଖୋଲାହୋଇଥିବା କୃତ୍ରିମ ଜଳନାଳ—The Sone canal. ( ଶୋଣ ୬ ତଳେ ନୋଟ ଦେଖ । )
Śoṇ kenāl
শোণ খাল सोनकी नहर

ଶୋଣ—ସଂ. ବିଣ (ଶୋଣ୍ ଧାତୁ+କର୍ମ.ଅ)—ରକ୍ତବର୍ଣ୍ଣବିଶିଷ୍ଟ—Red.
Śoṇa [ ଉ—ଶୋଣପଦ୍ମ ଚରଣ ବେଢ ରତ୍ନମଞ୍ଜୀ ସାଜେ—ପ୍ରଭାସ. ଶଶିସେଣା । ] ବି—୧। (ନାଲିକଇଁ ଭଳି) ରକ୍ତବର୍ଣ୍ଣ—1. Red colour (like that of the red lily ). ୨। ଅଗ୍ନି—2. Fire. ୩। ମଙ୍ଗଳ ଗ୍ରହ—3. The planet Mars. ୪ । ରକ୍ତବର୍ଣ୍ଣ ଘୋଟକ—4. A red horse. ୫ । ସମୁଦ୍ର—5. The sea. ୬ । ଗଙ୍ଗାନଦୀର ଉପନଦୀ ବିଶେଷ—6. The river Sone, a tributary of the Ganges in Bihar. [ ଦ୍ର—ଏହାକୁ ନଦ ବୋଲାଯାଏ । ମଧ୍ୟଭାରତ ଜବଲପୁରର ଅମରକଣ୍ଟକ ଅଧିତ୍ୟକାରୁ ୬୮୭୭ ଫୁଟ୍ ଉଚ୍ଚ ସ୍ଥାନରୁ ବାହାରି ଉତ୍ତରମୁଖ ହୋଇ ମଧ୍ୟ ଭାରତର ବଘେଲଖଣ୍ଡ ନିକଟରେ ମିଶି ସେଠୁ ବାଟେ ଉତ୍ତରପୂର୍ବାଭିମୁଖରେ ଗତି କରି ଯୁକ୍ତ ପ୍ରଦେଶର ମିର୍ଜାପୁର, ବିହାରର ସାହାବାଦ ଓ ଗୟା ଜିଲ୍ଲା ବାଟେ ଯାଇ ପାଟଣା ଜିଲ୍ଲାର ଦାନାପୁରର ୧୦ ମାଇଲ ଉତ୍ତର ପଶ୍ଚିମରେ ଦକ୍ଷିଣଦିଗରୁ ଯାଇ ଗଙ୍ଗାନଦୀରେ ପଡ଼ିଅଛି । ଏହାର ମଧ୍ୟ କେତେଗୁଡ଼ିଏ ଉପନଦୀ ଅଛି । ଏ ନଦୀର ପ୍ରାଚୀନ ନାମ ହିରଣ୍ୟବାହୁ । ଇଷ୍ଟଇଣ୍ଡିଆ ରେଲୱାଇର କୋଇଲୱାର ନାମକ ସ୍ଥାନରେ ରେଲ କମ୍ପାନି ଏ ନଦୀ ଉପରେ ଗୋଟିଏ ପୋଲ ( ୪୧୯୯ ଫୁଟ୍ ଲମ୍ବ ) ତିଆରି କରାଇ ଅଛନ୍ତି । ବିହାର ପ୍ରଦେଶରେ ପାଟଣା, ଗୟା ଓ ସାହାବାଦ ଜିଲ୍ଲାର କ୍ଷେତରେ ପାଣି ମଡ଼ାଇବା ପାଇଁ ଏ ନଦୀରୁ କେନାଲମାନ ଖୋଲା ହୋଇଅଛି । ଡେହରୀ ଗ୍ରାମ ନିକଟରେ ନଦୀର ଜଳସ୍ରୋତକୁ ଅଟକାଇ ଅଣିକଟ୍ଦ୍ୱାରା ସେଠାରେ ଗୋଟିଏ ବୃହତ୍ ଜଳଭଣ୍ଡାର କରି, ସେହି ଜଳଭଣ୍ଡାରରୁ ଏ କେନାଲମାନଙ୍କରେ ସେମାନଙ୍କୁ ପାଣି ଦିଆଯାଉଅଛି—ବିଶ୍ୱକୋଷ ।] ୭ । ରକ୍ତବର୍ଣ୍ଣ ଇକ୍ଷୁ ବିଶେଷ—7. A species of red sugarcane. ୮ । ସ୍ୱର୍ଣ୍ଣପତ୍ରିକା; ସୁନାମକେଇ—8. Cassia Senna, Senna) ୯ । ସିନ୍ଧୁବାର; ବେଗୁନିଆ—Vitex Taifolia ୧୦। ଫଣଫଣିଆ—10 Bignonia Indica ୧୧ । ମାଣିକ୍ୟ—11. Ruby. ୧୨ । ରକ୍ତ—12. Blood. ୧୩ । ସିନ୍ଦୂର—13, Red lead. ୧୪ । ରକ୍ତ ପୁନର୍ନବା ( ଶବ୍ଦକୋଷ )—14 The red variety of hogweed

ଶୋଣ(ଣା)କ—ସ. ବି (ଶୋଣ=ରକ୍ତବର୍ଣ୍ଣ+ ଅକ୍ ଧାତୁ ହେବା+ଅ)-ଫଣଫଣ ( ଦେଖ —Bignonia Indica
Śoṇa(ṇā)ka
ফণফণা सेनासान

ଶୋଣ ଝିଣ୍ଟୀ—ସ. ବି ( ବୈଦ୍ୟକ—ଲୁରୁବକ; ଅଁଳେଇ ଫୁଲ ଓ ଗଛ; ନାଲି ଦାସକେରେଣ୍ଡା ଗୁଳ୍ମ—A red-flowered plant; Barlaria Crestata.
Śoṇa jhiṇṭi

ଶୋଣ ନଦ(ଦୀ)—ଶୋଣ ୬ (ଦେଖ)
Śoṇa nada(di) Śoṇa 6. (See)

ଶୋଣ ପତ୍ର—ସ.ବି (ବୈଦ୍ୟକ)-ରକ୍ତ ପୁନର୍ନବା; ନାଲି ପୁରୁଣି ଶାଗ—The red species of hogweed.
Śoṇa patra

ଶୋଣ ଭଦ୍ର(ଦ୍ରା)—ସ. ବି—ଶୋଣ ୬ (ଦେଖ)
Śoṇa bhadra(drā) Śoṇa 6. (See)

ଶୋଣ ରତ୍ନ(ମଣି)—ସଂ. ବି—ମାଣିକ୍ୟ—Ruby.
Śoṇa ratna(maṇi)

ଶୋଣ— ଗ୍ରା· ବି (ସଂ. ଶୋଣ, ଶୋଣିତ) —ରକ୍ତ—
Śoṇi Blood.

ଶୋଣିତ—ସଂ. ବିଣ ( ଶୋଣ=ରକ୍ତବର୍ଣ୍ଣ+ଣିଚ୍‌+କର୍ତ୍ତ. ତ )—
Śoṇita ଲୋହିତ—Red. ସ. ବି—୧ । ରକ୍ତ; ରୁଧିର—
1. Blood. ୨ । (ବୈଦ୍ୟକ) କୁଙ୍କୁମ; ଜାଫରାନ୍—
2. Saffron. ୩ । ତୃଣ କୁଙ୍କୁମ—3. A sort of
red grass. ୪ । ରକ୍ତଧାସ; ଅଠା (ଶବ୍ଦକୋଷ)—
4. Gum. ୫ । ତାମ୍ର (ଶବ୍ଦକୋଷ)—5. Copper.
୬ । ହିଙ୍ଗୁଳ (ଶବ୍ଦକୋଷ)—6. Vermilion:

ଶୋଣିତ ପାତ—ସଂ. ବି ( ୬ଷ୍ଠୀ ତତ୍ )— ରକ୍ତପାତ (ଦେଖ)
Śoṇita pāta Raktapāta. (See)

ଶୋଣିତ ପାନ—ସଂ. ବି (୬ଷ୍ଠୀ ତତ୍)—ରକ୍ତପାନ (ଦେଖ)
Śoṇita pāna Raktapāna. (See)

ଶୋଣିତ ପାୟୀ—ସଂ.ବିଣ. ପୁଂ (ଶୋଣିତ+ପା ଧାତୁ+କର୍ତ୍ତୃ. ଇନ୍)—
Śoṇita pāyī ରକ୍ତପାନକାରୀ—Drinking blood.
(ଶୋଣିତ ପାୟିନୀ—ସ୍ତ୍ରୀ)

ଶୋଣିତ ପୁର—ସଂ. ବି—ବାଣାସୁରର ରାଜଧାନୀ—Name of the
Śoṇita pura capital of the demon king
Bāṇāsura. [ ଦ୍ର—ଏହା ଅଧୁନାତନ ବାଲେଶ୍ୱରର
ସୁନହଟ ଅଟେ । ସୁନହଟରେ ଅଦ୍ୟ 'ଉଷାମେଢ଼' ନାମକ
ସ୍ଥାନ ଅଛି । ]

ଶୋଣିତ ବର୍ଷୀ—ସଂ. ବିଣ—ଯହିଁରୁ ବର୍ଷାପରି ରୁଧିର ବହୁଥାଏ—
Śoṇita barshī Bleeding profusely.
(ଶୋଣିତ ବର୍ଷିଣୀ—ସ୍ତ୍ରୀ)

ଶୋଣିତ ବିନ୍ଦୁ—ସଂ. ବି (୬ଷ୍ଠୀ ତତ୍)—ରକ୍ତ ବିନ୍ଦୁ—
Śoṇita bindu Drop of blood.

ଶୋଣିତ ରଞ୍ଜିତ—ସଂ. ବି (ତୃତୀୟା ତତ୍; ଶୋଣିତ+ରଞ୍ଜିତ)—
Śoṇita rañjita ରକ୍ତରଞ୍ଜିତ—Dyed with blood.

ଶୋଣିତ ଶୋଧକ—ସଂ. ବିଣ .( ଉପପଦ ତତ୍ )—ରକ୍ତ ପରିଷ୍କାରକ;
Śoṇita śodhaka ଶରୀରର ବଦ୍‌ରକ୍ତକୁ ଯେଉଁ ଔଷଧ
(ଶୋଣିତ ଶୋଧକ—ବି ) ପରିଷ୍କାର କରେ—( medicine )
Which improves or purifies impure
blood.

ଶୋଣିତ ଶୋଷକ—ସଂ. ବିଣ (ଉପପଦ ତତ୍)—୧ । ଯେ ରକ୍ତକୁ
Śoṇita śoshaka ଶୋଷି ନିଏ—1. Sucking blood.
(ଶୋଣିତ ଶୋଷକ—ବି) ୨ । (ଯେଉଁ ଔଷଧ) ରକ୍ତକୁ ଶୁଖାଇ
ଦିଏ—[medicine] Which dries up the
blood

ଶୋଣିତ ସ୍ରାବ—ସଂ. ବି (୬ଷ୍ଠୀ ତତ୍)—ରକ୍ତସ୍ରାବ—Bleeding;
Śoṇita srāba flow of blood; discharge of
(ଶୋଣିତ ସ୍ରାବ—ସ୍ତ୍ରୀ) blood.

ଶୋଣିତାକ୍ତ—ସଂ. ବିଣ (୩ୟା ତତ୍)—ରକ୍ତାକ୍ତ—
Śoṇitākta Besmeared with blood.

ଶୋଣିତାର୍ଦ୍ର—ସଂ. ବିଣ. (୩ୟା ତତ୍ )—ରକ୍ତରେ ବୁଡ଼ି ଯାଇଥିବା—
Śoṇitārdra Blood-soaked.

ଶୋଣିମା—ସଂ. ବି (ଶୋଣ+ଇମନ୍=ଶୋଣିମନ୍‌ର ୧ମା. ୧ବ)—
Śoṇimā ରକ୍ତିମା—Redness.

ଶୋଣୀ—ସଂ. ବି. ସ୍ତ୍ରୀ (ଶୋଣ+ଈ)—୧ । ନାଲିକଇଁ ପରି ବର୍ଣ୍ଣବିଶିଷ୍ଟ
Śoṇī ସୁନ୍ଦରୀ ସ୍ତ୍ରୀ; (ଯାହା ଦେହ ତରତର ଗୋରା ଓ କଅଁଳ
ହୋଇଥିବା ଯେ ତା ଦେହରେ ଟିପ ମାରିଦେଲେ ରକ୍ତ ବାହାରି
ପଡ଼ିବ) —1. A woman of the colour of red
water-lily. ୨ । ବଡ଼ବା (ଶବ୍ଦକୋଷ) (ଦେଖ)—
2. Barḍabā. (See)

ଶୋଥ —ସ. ବି (ଶୁ ଧାତୁ=ବୃଦ୍ଧିପାଇବା+ଭାବ. ଥ)—ଦେହ ମଧ୍ୟରେ
Śotha ଜଳସଞ୍ଚାର ଯୋଗୁଁ ସ୍ଫୀତିରୋଗ; ଦେହଫୁଲା ରୋଗ—
Dropsy; swelling of parts of the body;
(ଶୋଥକ—ଅନ୍ୟରୂପ) plethora; aedima.
[ଦ୍ର—ଭିନ୍ନ ଭିନ୍ନ ସ୍ଥାନର ଶୋଥର ନାମ ଭିନ୍ନ ଭିନ୍ନ ଅଟେ ।
ଯଥା – ଉଦରଶୋଥ, ପାଦଶୋଥ; ବୃଷଣଶୋଥ
ଇତ୍ୟାଦି ।]

ଶୋଥ କୃତ —ସ. ବିଣ—ଯାହା ଶୋଥ ଜନ୍ମାଏ ବା ଦେହ ଫୁଲାଏ—
Śotha krut Producing swelling of the
body. ବି (ବୈଦ୍ୟକ )—ଭଲ୍ଲାତକ; ଭାଲିଆ (ଏହା
ଲାଗିଲେ ଦେହ ଫୁଲିଯାଏ ବୋଲି)—Marking nut;
Semecarpa Sanacardium.

ଶୋଥଘ୍ନ—ସ. ବିଣ —ଯାହା ଶୋଥ ରୋଗକୁ ନାଶ କରେ—
Śothaghna Curing drops.
(ଶୋଥଘ୍ନୀ—ସ୍ତ୍ରୀ)
(ଶୋଥହାରକ, ଶୋଥହୃତ୍—ଅନ୍ୟରୂପ)

ଶୋଥଘ୍ନୀ—ସ. ବି (ବୈଦ୍ୟକ)—୧ । ରକ୍ତପୁନର୍ନବା; ନାଲିପୁରୁଣୀ ଶାଗ
Śothaghnī 1. The red species of hogweed
୨ । ଶ୍ୱେତ ପୁନର୍ନବା; ଶ୍ୱେତପୁରୁଣୀ ଲତା ଶାଗ—
2. The ordinary spreading hogweed
Boerhoveia Diffusa. ୩ । ଶାଳପର୍ଣ୍ଣୀ—
3. Desmodium Gangeticum.

ଶୋଥା—ଦେ. ବିଣ ( ସଂ. ଶୋଥରୁ )—ଶୋଥରୋଗାକ୍ରାନ୍ତ—
Śothā Suffering from dropsy; plethoric.
(ଶୋଥିଆ, ଶୋଥାଳିଆ—ଅନ୍ୟରୂପ)
(ଶୋଥୀ, ଶୋଥେଇ, ଶୋଥାଳେଇ—ସ୍ତ୍ରୀ)
शोथा फूला फूला सूजा

ଶୋଦ୍(ଧ୍)—ଦେ. ବିଣ (ସଂ. ଶୁଦ୍ଧ)—ଶୁଧ୍ (ଦେଖ)—Śudh (See)
Śod(dh) (ଦ୍ର—କଟକରୁ ଶୋଦ୍ ଶୁଦ୍ଧ ଗଲେ ସିଦ୍ଧେଶ୍ୱର-
ଶୁଧ बराबर ପୁରରେ ଦେଖିବ ।)

ଶୋଧ—ସଂ. ବି ( ଶୁଧ୍ ଧାତୁ+ଭାବ. ଅ )—୧ । ଶୁଝ; ଋଣପରିଶୋଧ;
Śodha ଋଣ 'ଶୁଝିବା—1. Satisfaction of a loan;
clearing or liquidation of debt ୩ ।
ଦେୟ ପରିଶୋଧ—3. Aquittance of any due

শোধন [ ଦ୍ର—ଶୋଧ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ଋଣଶୋଧ,
शोधन ପରିଶୋଧ, ମୂଲ୍ୟଅଶୋଧ, ବୈରନିର୍ଯ୍ୟାତନଶୋଧ, ବୋଧଶୋଧ ଅର୍ଥ ରୂପରେ ବ୍ୟବହୃତ ହୁଏ । ଦେ. ବି (ସଂ. ଶୋଧନ) କୌଣସି ସ୍ଥାନରୁ ସମସ୍ତଙ୍କୁ ବାହାର କରିଦେଇ ନିର୍ଜନ କରାଇବା ଅବସ୍ଥା—The state of a place being made lonely by driving out persons.

ଶୋଧକ—ସ, ବିଣ—(ଶୁଧ୍ ଧାତୁ+ଣିଚ୍ ଶୋଧି ଧାତୁ+କର୍ତ୍ତୃ ଅକ)
Sodhaka ୧ । ଶୁଦ୍ଧିକାରକ—1 Corrective. ୨ । ପବିତ୍ରକାରକ—2. Purifying. ବି—(ଅଙ୍କ ଶାସ୍ତ୍ର)—ବୃହତ୍ତର ରାଶିରୁ ଫେଡ଼ାଯିବା କ୍ଷୁଦ୍ରତର ରାଶି—A subtrahend; a smaller number which is to be subtracted from a larger one.

ଶୋଧ କରିବା—ଦେ. କ୍ରି—୧ । (ସଂ. ଶୁଧ୍ ଧାତୁ)—ଶୁଝିବା; ପରି-
Sodha kariba ଶୋଧ କରିବା—1. To pay off or clear off (debts). ୨ । ମନ୍ଦିରର ଅଧିକୁ କୌଣସି ବିଶିଷ୍ଟ ଯାତ୍ରୀ ବା ପରଦାନସିନ ସ୍ତ୍ରୀ ଯିବା ସମୟରେ ସେଠାରୁ ଅନ୍ୟ ସମସ୍ତ ଯାତ୍ରୀଙ୍କୁ ବାହାର କରି ଦେବା—2. Drive away ordinary people from a temple when a particular personge or female visits the god. ୩ । ଘର ତିଆରି କରିବା ପୂର୍ବରୁ ମୂଳଭୂଅର ମାଟିକୁ ଭିତ୍ତିମୂଳପର୍ଯ୍ୟନ୍ତ ଖୋଳିବା ଓ ଶୋଧନରୂପେ ଖୋଳିବା—3. To dig deep the earth before laying the foundation of a house.

ଶୋଧନ(ନା) ଦେବା—ଦେ. କ୍ରି—ଗାଳି ଦେବା; ଭର୍ତ୍ସନା କରିବା—
Sodhana(na) deba To chide; to rebuke.
গালা গালি দেওয়া [କ୍ରି—ଖେଲଗୁ ତାଂ ପତ୍ର ହୋଇ ଶରଧୀ
गाली फजीहत देना ବୋଲିକୁ ଶୋଧନା ଦେଲ—ବୃନ୍ଦାବନଥଭୂଣୀ ।]

ଶୋଧନ—ସ. ବି—ଶୁଧ୍ ଧାତୁ ଣିଚ୍=ଶୋଧି ଧାତୁ+ଭାବ. ଅନ)—
Sodhana ୧ । ସଂଶୋଧନ କରଣ—1. Correction. ୨ । ସଂଶୋଧନ; ସଂସ୍କାର—2. Reforming. ୩ । ଶୁଦ୍ଧିକରଣ—3. Purification. ୪ । ଋଣଶୋଧ—4. Liquidation of debts. ୫ । ଉପକାରର ପ୍ରତିଶୋଧ—5. Requital. ୬ । ଅପକାରର ପ୍ରତିଶୋଧ—6. Taking revenge; retaliation. ୭ । ପରିଷ୍କାର କରଣ—7. Cleansing. ୮ । ହରଣ; ଭାଗକରଣ—8. Division. ୯ । (ବୈଦ୍ୟକ) ଧାତୁ ଆଦିକୁ ନିର୍ଦ୍ଦୋଷକରଣ—9. Purification of metals. ୧୦ । ବିରେଚନ; ଝାଡ଼ା କରାଇବା—10. Opening or clearing of the bowels; pergation. ୧୧ । ଔଷଧରେ ବ୍ୟବହାର କରିବା ପାଇଁ ବିଷ ଆଦିରୁ ଦୋଷଦୂରୀକରଣ—11. Rectification of poisons. ୧୨ । ଅପନୟନ; ଖଣ୍ଡନ—12. Obliteration; blotting out. ୧୩ । ତୁତିଆ; ତୁତିଆ—13. Blue vitriol. ୧୪ । ମଳ; ବିଷ୍ଠା—14. Ordure. ୧୫ । ପ୍ରାୟଶ୍ଚିତ୍ତ—(ବିଶ୍ୱକୋଷ—15. Expiatory rites. ୧୬ । ବ୍ରଣ ଘାଆର ପରିଷ୍କରଣ (ବିଶ୍ୱକୋଷ)—16. Clearing of boils and sores. ୧୭ । ( ସ୍ମୃତି )—ଲିଖିତ ଦଲିଲର ପ୍ରମାଣୀକରଣ (ବିଶ୍ୱକୋଷ)—17. (Hindu law) Proving of a document. ୧୮ । ଅପହୃତ ଦ୍ରବ୍ୟର ସଂଖ୍ୟାନିର୍ଣ୍ଣୟ [ ବିଶ୍ୱକୋଷ ]—19. Ascertaining the number of stolen articles. ୧୯ । କାଶୀଷ [ବିଶ୍ୱକୋଷ]—19. Green sulphate of iron. ୨୦ । ବିହିତାବିହିତ ମାସ ତିଥ୍ୟାଦିର ବିଚାରଣ (ବିଶ୍ୱକୋଷ)—20. Consideration of the suitability or otherwise of a particular month or day for the performance of certain acts. ୨୧ । ଜମ୍ବୁକ [ବିଶ୍ୱକୋଷ]—21. Lemon; lime. ବିଣ—
গালাগালী ଶୁଦ୍ଧିକାରକ—Purifying. ଦେ. ବି—ଗାଳି-
गाली फजीहत ମନ୍ଦ; ଖୋଧ—Rebuke; abuse; calling names.

ଶୋଧନ ଖା(ପା)ଇବା—ଦେ. କ୍ରି—ଭର୍ତ୍ସିତ ହେବା—
Sodhana kha(pa)iba To be abused or rebuked.
গালাগালি খাওয়া गाली फजीहत पाना

ଶୋଧନ ଚଢ଼ା(ଢ଼େ)ଇବା—ଦେ. କ୍ରି-ଗାଳି ମନ୍ଦ କରିବା; ଗାଳିଦେବା—
Sodhana chardha(rdhe)iba To rebuke; to call names.
গালাগালি দেওয়া गाली फजीहत देना
( ଶୋଧନ ଦେବା—ଅନ୍ୟରୂପ )

ଶୋଧନ ମିଳିବା—ଦେ. ବି—ଅନ୍ୟଦ୍ୱାରା ଭର୍ତ୍ସିତ ହେବା—
Sodhana miliba Being abused or rebuked by another.
গালাগালি মিলা गाली फजीहत पाना

ଶୋଧନ ବିଧି—ସ. ବି (ବୈଦ୍ୟକ)—ବୈଦ୍ୟଶାସ୍ତ୍ର ଅନୁସାରେ ଭିନ୍ନ ଭିନ୍ନ
Sodhana bidhi ବସ୍ତୁ ( ଯଥା—ବିଷ; ଉପଧାତୁ ଆଦି)କୁ ଔଷଧର ଉପାଦାନରୂପେ ବ୍ୟବହାର କରିବା ପୂର୍ବରୁ ତାହାର ଦୋଷ ଓ ଦୁର୍ଗୁଣମାନ ଦୂର କରିବା ନିମନ୍ତେ କର୍ତ୍ତବ୍ୟ ବିଧାନ—The rules and processes prescribed for rectifying different ingredients before using them as medicine.

ଶୋଧନ ବୃଷ୍ଟି—ଦେ. ବି—ବିଶେଷ ପରିମାଣରେ ଭର୍ତ୍ସନା—
Sodhana brushti A volley of abuses.
গালাগালি বৃষ্টি गालीकि बर्षा

ଶୋଧନୀ—ସ. ବି (ଶୁଧ୍ ଧାତୁ ଣିଚ୍=ଶୋଧି ଧାତୁ+କରଣ ଅନ+
Sodhani ଈ)—(ଯାହାଦ୍ୱାରା ଗୃହ ଆଦି ପରିଷ୍କୃତ ହୁଏ)—

ସମ୍ମାର୍ଜନୀ; ଝାଡ଼ୁଣୀ; ଝାଡ଼ୁ—Broomstick; sweeping brush.

ଶୋଧନୀୟ—ସଂ. ବିଣ (ଶୁଦ୍ଧ ଧାତୁ+ଅନୀୟ; ଶୁଧ୍ ଧାତୁ ଣିଚ୍=ଶୋଧ୍ ଧାତୁ+ଅନୀୟ)—ଯାହା ସଂଶୋଧନ କରିବା ଯୋଗ୍ୟ—Corrigible; fit or liable to be corrected.
Śodhanīya

ଶୋଧ ବୋଧ—ଦେ. ବି—ବୁଝାଇ ଶୁଝାଇ କମ୍ପା କରୁ କଥା କହି କିର କୌଣସି ବ୍ୟକ୍ତିକୁ ସନ୍ତୁଷ୍ଟ କରିବା—Satisfying a person.
Śodha bodha
বুঝান সুঝান बुझा सुझा

ଶୋଧ ଯି(ହେ)ବା—ଦେ. କ୍ରି—ଶୁଦ୍ଧ ଯିବା; ଶୁଦ୍ଧ ହେବା; ଋଣଶୋଧ ହେବା—(ଋଣ)—To be cleared of (said of debts).
Śodha ji(he)bā
শোধ যাওয়া शोध होना

ଶୋଧୟିତବ୍ୟ—ସଂ. ବି (ଶୁଧ୍ ଧାତୁ ଣିଚ୍+କର୍ମ. ତବ୍ୟ)—ଶୋଧିତ ହେବାର ଯୋଗ୍ୟ—Fit to be purified.
Śodhayitabya

ଶୋଧୟିତା—ସଂ. ବିଣ ଓ ବି (ପୁଂ) (ଶୁଦ୍ଧ ଧାତୁ ଣିଚ୍+କର୍ତ୍ତୃ. ତୃ; ୧ମା ୧ବ)-ଶୋଧନକାରୀ—Purifying; purifier. ( ଶୋଧୟିତ୍ରୀ—ସ୍ତ୍ରୀ )
Śodhayitā

ଶୋଧା—ଦେ. ବି (ସଂ. ଶୋଧ)—୧ । ଶୋଧ (ଦେଖ)—1. Śodha (See) ୨ । ଶୋଧିବା କ୍ରିୟା—2. The act of Śodhibā. ୩ । ଗାଳିମନ୍ଦ; ଶୋଧନ—ଗାଳାଗାଳି 3. Abuse. ୪ । (ସ୍ପୃହା; ଶ୍ରଦ୍ଧା) ସ୍ପୃହା—4. Hankering; longing. [ଉ—ଯାହାର ସହିତ ଶରଧା, ସେ ଅର୍ଥ କରିଥାନ୍ତି ଶୋଧା । ପ୍ରାଚୀ. କବି ସମାହାର୍ୟ । ] ୫ । (ସଂ. ଶୁଦ୍ଧ) ଯଥାର୍ଥ ବିଷୟ—5. True thing. [ଉ—ତୋ ମନେ ହୋଇଲେ ଶରଧା, ତୋତେ ମୁଁ କହୁଅଛି ଶୋଧା । ପ୍ରାଚୀ. କବି ସମାହାର୍ୟ ।]
Śodhā
শোধন গালী
গালাগালি गाली फजीहत
স্পৃহা स्पृहा
সত্য কথা सच्ची बात

ଶୋଧା(ଧେ)ଇବା—ଦେ. କ୍ରି (ଶୋଧିବା କ୍ରିୟାର ଣିଜନ୍ତ)—ଅନ୍ୟ ଦ୍ୱାରା ଶୋଧନ କ୍ରିୟା କରାଇବା—To cause another to do Śodhana.
Śodhā(dhe)ibā
শোধন করান
গালাগালি দেওয়ান गाली दिलाना

ଶୋଧା ଖା(ପା)ଇବା—ଦେ. କ୍ରି—ଶୋଧନ ଖାଇବା (ଦେଖ) Śodhana khāibā (See) (ଶୋଧା ଶୁଣିବା—ଅନ୍ୟରୂପ)
Śodhā khā(pā)ibā

ଶୋଧା ଖିଆ—ଦେ. ବିଣ. ପୁଂ—ଯେଉଁ ବ୍ୟକ୍ତି ସବୁବେଳେ ନିଜର ଦୋଷ ଯୋଗୁଁ ଅନ୍ୟ ବ୍ୟକ୍ତିଠାରୁ ଗାଳି ଖାଏ—Deserving to be rebuked for his faults. ଦେ. ବି—ଭର୍ତ୍ସିତ ହେବା—To be rebuked.
Śodhā khiā (ଶୋଧାଖିଆଣୀ—ସ୍ତ୍ରୀ)
যে গালাগালি খায় गालीखोर

ଶୋଧା ଚଢ଼ା(ଢ଼େ)ଇବା—ଦେ. କ୍ରି—ଶୋଧିବା ୪ (ଦେଖ)
Śodhā chardhā(rdhe)ibā Śodhibā 4. (See)

ଶୋଧା ଚଢ଼ିବା—ଦେ. ବି—ଶୋଧନ ଚଢ଼ିବା (ଦେଖ)
Śodhā chardhibā Śodhana chardhibā. (See)
(ଶୋଧା ମିଳିବା—ଅନ୍ୟରୂପ)

ଶୋଧା ପିଲା—ପ୍ରାଦେ (ଗଡ଼ଜାତ) ବି—ରଜାଙ୍କ ଅନ୍ତଃପୁରରେ ଚଳପ୍ରଚଳ ହେବା ବାଳକଭୃତ୍ୟ—A boy servant who has access to a Rajā's harem.
Śodhā pilā

ଶୋଧା ଶୋଧି—ଦେ. ବି—୧ । ପରସ୍ପର ଗାଳି ଦିଆଦେଇ ହେବା—Mutual recriminations abusing each other. ୨ । ବାରଂବାର ବା ବହୁବାର ଶୋଧନ କର୍ମ—2. Repeated purification.
Śodhā śodhi
গালাগালি गालीफजीहत

ଶୋଧି (ଧାତୁ)—ସଂ.—ଶୁଧ୍ ଧାତୁର ଣିଜନ୍ତ ରୂପ—The causative form of Sudh root.
Śodhi(root)

ଶୋଧି—ଦେ. ବି (ସଂ. ଶୁଦ୍ଧ ଧାତୁ କମ୍ପା ଶ୍ରେଢ଼ୀ)—ଅଙ୍କପାଠବିଶେଷ; ଯେଉଁଥିରେ ବା ବିୟୋଗ ଶିଖିବା ପାଠ; ଶିଶୁମାନେ ୦ ଠାରୁ ୧୦ ପର୍ଯ୍ୟନ୍ତ ଯୋଗ ବିୟୋଗ ଶିକ୍ଷା କରିବାପାଇଁ ମୁଖସ୍ଥ କରିବା ଧାରାବିଶେଷ—A table showing the progressive addition and subtraction of numbers from 0 up to 10. [ଦ୍ର—ଏହା ପଣକଅ ପରେ ପଢ଼ାଯାଏ । ଏହାର ଲେଖିବା ପ୍ରଣାଳୀ ।
Śodhi
শ্রেঢী जोड़घटावसिखानेकिरीति

| ୦ | ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
|---|---|---|---|---|---|---|---|---|---|---|
| ୧୦ | ୯ | ୮ | ୭ | ୬ | ୫ | ୪ | ୩ | ୨ | ୧ | ୦ |

୦ ଶୋଧି ୧୦ ପଡ଼େ—୦+୧୦=୧୦,
ଦଶରୁ ୦ ଗଲେ ୧୦ ।
୧ ଶୋଧି ୯ ପଡ଼େ—୧+୯=୧୦,
ଦଶରୁ ୧ ଗଲେ ୯
୨ ଶୋଧି ୮ ପଡ଼େ—୨+୮=୧୦,
ଦଶରୁ ୨ ଗଲେ ୮ ଇତ୍ୟାଦି ।

ପିଲାଏ ଏହିପରି ଧାଡ଼ି ଧାଡ଼ି ଭୂମିରେ ଲେଖି ଏ ମଣ୍ଡରୁ ସେ ମଣ୍ଡ ଓ ସେ ମଣ୍ଡରୁ ଏ ମଣ୍ଡ ଉପର ତଳ ଅଙ୍କଦ୍ୱୟକୁ ପାଠ କରି ବୋଲନ୍ତି ଓ ପୁଣି ତଳୁ ଉପରକୁ ବୋଲନ୍ତି ; ଯଥା—

ଦୁଇ ଦଶ (=) ଦଶ, ଏକ ନଅ (=) ଦଶ, ଦୁଇ ଅଠ(=) ଦଶ ଇତ୍ୟାଦି ।]

ଶୋଧିତ—ସଂ ବିଣ (ଶୁଧ ଧାତୁ ଣିଚ୍, ଶୋଧି ଧାତୁ+ତ)—୧ । ମାର୍ଜିତ—1. Cleansed; reformed. ୨ । ପରିଷ୍କୃତ—2. Cleansed. ୩ । ଶୁଦ୍ଧୀକୃତ—3. Purified. ୪ । ବୈଦ୍ୟଶାସ୍ତ୍ରୋକ୍ତ ବିଧିଦ୍ୱାରା ପରିଷ୍କୃତ—4. Rectified by the prescribed medical process.
Sodhita

ଶୋଧି ବନିବା (ବୋଲିବା) —ଦେ. କି—ଶୋଧିର ଧାଡମାନ ଭୂମିରେ
Sodhi baniba(boliba) ଲେଖି ଶୋଧି ୧୦ ପଢ଼େ
শ্রেণী পড়া पहाड़ा पढ़ना ଇତ୍ୟାଦ ବୋଲିବା—
To recite the subtraction table.

ଶୋଧିବା—ଦେ. କି (ସ. ଶୁଧ୍ ଧାତୁ)—୧ । ଶୋଧନ କରିବା—
Sodhiba 1.To correct or rectify or purify.
শোধন করা शोधन करना [ଉ—ଏ ମାଗେଁ ପ୍ରାଣଙ୍କୁ ଶୋଧିବ
କଣ୍ଟକଚକ୍ରରେ ଚକ୍ରିବ—ଜଗନ୍ନାଥ· ଭାଗବତ । ] ୨ ।
ମଇଦୁଅଙ୍କୁ ସ୍ୱଭୂମରୂପେ ଶୋଧନ କରିବା ( ଅର୍ଥାତ୍
ଖୋଳି ପାଣି ଦେଇ ଦଳି ଟାଣିବା)—2 To make
the foundation firm by digging and
watering and treading on it ୩ ।ଦେଉଳ
ଶୋଧ କରିବା; ଦେଉଳ ଅଦଙ୍କୁ ବର୍ଜନ କରିବା—3.
To drive out all persons from a temple
গালাগালি দেওয়া गाली फजीहत and make it lonely
୪ । ଗାଳିଦେବା—4 To abuse. ୫ । ସମୂଳେ ବିନାଶ
নাশ করা କରିବା—5.To ruin or destroy utterly. ୬।
जड खोदना ଏକ ଏକ କରି ପରୀକ୍ଷା କରିବା ବା ମଣି ଦେଖିବା;
ଚିହ୍ନି ଚିହ୍ନି କରି ଦେଖିବା—6. To check or
examine things one by one. [ ଉ—
মিলিয়ে দেখা जाँचकर देखना ଶୋଧନ୍ତେ ଦେଖିଲୁଁ ଯେ ଭଣ୍ଡାରେ
ଧନ ନାହିଁ । ସାରଳା· ମହାଭାରତ· ଅଦ ।]

ଶୋଧ୍ୟ—ସ. ବଣ—(ଶୁଧ୍ ଧାତୁ ଣିଚ୍=ଶୋଧି ଧାତୁ+କର୍ମ. ଯ)—
Sodhya ଶୋଧନୀୟ (ଦେଖ)—
Sodhaniya (See)

ଶୋନ୍—ଦେ. ବ—ଶୋଣ୍ (ଦେଖ)
Son শোন सोन Son (See)

ଶୋଫ—ସ· ବ—(ଶ୍ୱି ଧାତୁ=ଉଦ୍ଧ ପାଇବା+ଭାବ. ଫ)—
Sopha ଶୋଥ (ଦେଖ)—Sotha (See)

ଶୋଫକୃତ—ସ. ବଣ— ଶୋଥକୃତ୍ (ଦେଖ)
Sophakrut Sotha-krut (See)

ଶୋଫୀ—ସ. ବଣ. ପୁଂ—(ଶୋଫ+ଇନ୍)— ଶୋଥ ରୋଗୀ—
Sophi [ଶୋଫିନୀ—ସ୍ତ୍ରୀ] Suffering from dropsy.

ଶୋ ବସ—ଦେ. ବ—(ସ. ଶୀ ଧାତୁ ଓ ବସ୍ ଧାତୁ)—୧ । ଶୋଇବା
So basa ଓ ବସିବା; ଶୟନ ଓ ଉପବେଶନ—1. Sleeping
শোয়া বসা सोना बैठना and sitting.
୨ । ସ୍ତ୍ରୀ ପୁରୁଷଙ୍କର ପ୍ରେମ ଓ ସଙ୍ଗମ—2. Love—
making and copulation.

ଶୋବିତା—ଗ୍ରା. ବଣ—(ସ. ଶୋଭିତ)—ଶୋଭିତା (ଦେଖ)—
Sobita শোভিত शोभित Sobhita (See)
ଗ୍ରା. ବ—ସୁବିତା (ଦେଖ)—Subita (See)

ଶୋଭ—ସ. ବଣ—(ଶୁଭ୍ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ· ଅ)—
Sobha ଶୋଭନଶୀଳ—Beautiful; comely. ସ. ବ—
(+ଭାବ. ଅ)—ଶୋଭା (ବିଶ୍ୱକୋଷ)—Grace.

ଶୋଭନ—ସ. ବଣ—(ଶୁଭ୍ ଧାତୁ=ଶୋଭା ପାଇବା+କର୍ତ୍ତୃ· ଅନ)—
Sobhana ୧ । ଶୋଭାଯୁକ୍ତ; ଉଜ୍ଜ୍ୱଳ, ଦୀପ୍ତିଶାଳୀ—1. Shin-
[ଶୋଭନା—ସ୍ତ୍ରୀ] ing; splendid. ୨ । ମନୋହର
ମନୋଜ୍ଞ; ସୁନ୍ଦର—2. Beautiful; charming.
୩ । ଶୋଭନୀୟ—3. Becoming; befitting;
seeming. ୪ । ଶୋଭାଜନକ—4. Causing
beauty. ବ·—ଜ୍ୟୋତିଷୋକ୍ତ ଯୋଗବିଶେଷ—
A sort of astrological conjunction.
[ବ—ଏହା ୨୭ଟି ଯୋଗ ମଧ୍ୟରୁ ୫ମ ଓ ଶୁଭକର ଯୋଗ ।
ଏହି ଯୋଗରେ ଜନ୍ମ ଗ୍ରହଣ କରିଥିବା ବ୍ୟକ୍ତି ଦକ୍ଷ, ଶତ୍ରୁ-
ଦମନକାରୀ, ଧନୀ, ସୁନ୍ଦରଶରୀର, ସୁଧୀର ଓ ପ୍ରସନ୍ନ ହୁଏ—
ବିଶ୍ୱକୋଷ] ୨ । ଗ୍ରହ—2. Planet. ୩ । ପଦ୍ମ—
3. Lotus. ଦେ. ବ· ପୁଂ—ଲୋକଙ୍କ ନାମ—
(ଶୋଭନା—ସ୍ତ୍ରୀ) Name given to males.

ଶୋଭନକ—ସ. ବଣ—(ଶୋଭନ+କ)—୧ । ସୁନ୍ଦର—
Sobhanaka 1. Beautiful; splendid. ୨ । ସାହା
[ଶୋଭନିକା—ସ୍ତ୍ରୀ] ଶୋଭା ଜନ୍ମାଏ—2. Causing
beauty. ବ.—( ବୈଦ୍ୟକ )—ଶୋଭାଞ୍ଜନ ବୃକ୍ଷ;
ଶଜନା ଗଛ—The horse-radish or
moringa tree.

ଶୋଭନତା—ସ· ବ—ସୌନ୍ଦର୍ଯ୍ୟ—Beauty. [ ଉ—ଯେତେବେଳେ
Sobhanata ଯୁଧିଷ୍ଠିର ଧର୍ମ ଦେବତା ସବୁ ପ୍ରକାଶିଲେ ଦେହ
ଶୋଭନତା । କୃଷ୍ଣସିଂ· ମହାଭାରତ. ସଭା ।]

ଶୋଭନ ଦେବ—ଦେ. ବ· (ନାମ)—ପ୍ରାଚୀନ ଉତ୍କଳର ଜଣେ ରାଜା·
Sobhana deba (ବିଶ୍ୱକୋଷ)—Name of a king of
ancient Utkala.

ଶୋଭନା—ସ. ବଣ—(ଶୋଭନ+ଆ)—ଶୋଭନର ସ୍ତ୍ରୀଲିଙ୍ଗ—
Sobhana The feminine of Sobhana. ବ—୧ ।
ଯାହା ଲଗାଇଲେ ଦେହ ଶୋଭାଯୁକ୍ତ ହୁଏ; ହରିଦ୍ରା;
ହଳଦୀ—1. Turmeric. ୨ । ଗୋରୋଚନା—
2. A yellow pigment got from the
body of cows.

ଶୋଭନୀୟ—ସଂ. ବଣ—(ଶୁଭ୍ ଧାତୁ+କର୍ତ୍ତୃ. ଅନୀୟ)—୧ । ଶୋଭା
Sobhaniya ପାଇବାର ଯୋଗ୍ୟ ବା ଉଚିତ—1. Becoming;
befitting. ୨ । ସୁନ୍ଦର—2. Beautiful:
graceful.

ଶୋଭା—ସଂ. ବ—(ଶୁଭ୍ ଧାତୁ+କରଣ. ଅ+ଆ)—୧ । କାନ୍ତି;
Sobha ଦୀପ୍ତି—1. Lustre; rediance; brilliance;
grandeur.
ପ୍ରଥମ ଅର୍ଥରେ ଶୋଭା ଶବ୍ଦର
ପ୍ରତିଶବ୍ଦ—କାନ୍ତି, ଦ୍ୟୁତି,
ଛବି, ଦ୍ୟୁତା, ଅଭିଖ୍ୟା, ଶୁଭ୍ରା,
ଭାଃ, ଭା, ଶ୍ରୀ, ଭାସା, ସୁଷମା,
ଶ୍ଲିଷ୍ଟା, ଦୀପ୍ତି, ଦୁକୂତିଶ୍ରୀ,
ଭାନ, ଭାଭ, ବମା, ଭମା
[ ବ—ରୂପଯୌବନାଦି ଦ୍ୱାରା ଅଙ୍ଗ-
ଭୂଷଣକୁ ଶୋଭା ବୋଲାଯାଏ । ସେ.
ସେ ଭ ମନ୍ମଥୋଦ୍ୟାୟୁନୋଜ୍ଜ୍ୱଳା
( କାମର ପ୍ରୀତିଦ୍ୱାରା ସମୁଜ୍ଜ୍ୱଳ )
ହେଲେ ତାକୁ କାନ୍ତି ବୋଲାଯାଏ

(ଉଜ୍ଜ୍ୱଳ ନୀଳମଣି) । ଶୋଭାନାୟକମାନଙ୍କର ସାତ୍ତ୍ୱିକ ଗୁଣ ଶୋଭା, ବିଳାସ, ମାଧୁର୍ଯ୍ୟ, ଗାମ୍ଭୀର୍ଯ୍ୟ, ଧୈର୍ଯ୍ୟ ଇତ୍ୟାଦି ଗୁଣ ମଧ୍ୟରୁ ଶୋଭାର ଗୁଣ ସାତ୍ତ୍ୱିକ ଅଟେ । ଶୌର୍ଯ୍ୟ, ଦକ୍ଷତା, ସତ୍ୟଭାଷଣ, ମହୋତ୍ସାହ, ଅନୁରାଗିତା, ନୀଚଜନ ପ୍ରତି ଘୃଣା, ଅଧିକ ଜନ ପ୍ରତି ସ୍ପର୍ଦ୍ଧା ବା ଈର୍ଷାଶୀଳ ଏ ସବୁ ଗୁଣ ଶୋଭାରେ ବର୍ତ୍ତମାନ । ରୂପ, ଯୌବନ, ଲାଳିତ୍ୟ ଭୋଗାଦିଦ୍ୱାରା ଅଙ୍ଗ ଭୂଷଣର ନାମ ଶୋଭା । ଅର୍ଥାତ୍ ରୂପ ଯୌବନର ଅନୁଗାମୀ ସୌନ୍ଦର୍ଯ୍ୟବର୍ଦ୍ଧକ ଅଙ୍ଗଭୂଷଣକୁ ଶୋଭା ବୋଲଯାଏ । ଏହି ଶୋଭା କାମଦେବଙ୍କଦ୍ୱାରା ବର୍ଦ୍ଧିତ ହେଲେ ତାକୁ କାନ୍ତି ବୋଲଯାଏ । ସ୍ତ୍ରୀମାନଙ୍କର ଯୌବନଜନିତ ସ୍ୱାଭାବିକ ସୌନ୍ଦର୍ଯ୍ୟର ନାମ ଶୋଭା । ଏହା ବେଶଭୂଷାଦିଦ୍ୱାରା ବର୍ଦ୍ଧିତ ହେଲେ ତାହା କାନ୍ତି ବୋଲାଏ । ବସ୍ତ୍ରୋତ୍ତଦ୍ୱାରା ଉତ୍କୃଷ୍ଟ ସାହିତ୍ୟ ଦର୍ପଣ ।] ୨ । ସୌନ୍ଦର୍ଯ୍ୟ—2. Beauty; grace. ୩ । ହଳଦୀ; ହରିଦ୍ରା—3. Turmeric ୪ । ଗୋରଚନା—4. A yellow pigment obtained from the cows. ୫ । ଧଳା ଜାଇଫୁଲ (ଶବ୍ଦକୋଷ)—5. Jasminum Grandiflorum ୬ । ଗୋପୀବିଶେଷ (ଶବ୍ଦକୋଷ)—6. Name of a Gopi [ବ୍ର—ବ୍ରହ୍ମବୈବର୍ତ୍ତ ପୁରାଣ ମତରେ ଏହି ଶୋଭାନାମ୍ନୀ ଗୋପୀ ଦେହ ପରିତ୍ୟାଗ କରି ଚନ୍ଦ୍ରମଣ୍ଡଳକୁ ଗମନ କଲାବେଳେ ତାଙ୍କ ଶରୀର ସ୍ନିଗ୍ଧ ତେଜୋରୂପରେ ପରିଣତ ହେଲା ଓ ସେ ଏହି ତେଜକୁ ରତ୍ନ, ସ୍ୱର୍ଣ୍ଣ, ସ୍ତ୍ରୀମାନଙ୍କ ମୁଖମଣ୍ଡଳ, ପଦ୍ମ, କଳଲସ୍ଥ ଓ ପୁଷ୍ପ ପ୍ରଭୃତିଙ୍କ ମଧ୍ୟରେ ବାଣ୍ଟିଦେଲେ ଓ ଏହି କାରଣରୁ ଉକ୍ତ ଦ୍ରବ୍ୟମାନ ସ୍ୱାଭାବିକ ଶୋଭା ଧାରଣ କରି ଅଛନ୍ତି—ଶବ୍ଦକୋଷ] ଦେ. ବି. ସ୍ତ୍ରୀ—ସ୍ତ୍ରୀ ଲୋକଙ୍କ ନାମ—Name given to females. ଦ ବିଣ—ଶୋଭାମୟ; ସୁନ୍ଦର—Beautiful; grand; charming [ଉ—ବଡ ଶୋଭା ଲଗୁଅଛି ସମର ସ୍ଥଳେ । ଭକ୍ତ. ବୈଦେହୀଶବିଳାସ ।]

**ଶୋଭା ଅରମ୍ଭା**—ଦେ. ବିଣ. ସ୍ତ୍ରୀ-ଅତି ସୁନ୍ଦରୀ(ସ୍ତ୍ରୀ)—Very beautiful (woman) [ଉ—ବହୁତ
Sobhā ārambhā
ଖୁବ୍ ସୁନ୍ଦରୀ ଖୁବ ସୁନ୍ଦରୀ; ଖୁବସୁରତ ଶୋଭା ଅରମ୍ଭା ରମ୍ଭାଭୂଲେ ତେଜ । ଭକ୍ତ. ବୈଦେହୀଶବିଳାସ ।]

**ଶୋଭାକର**—ସଂ ବିଣ—୧ । (ଉପପଦ ତତ୍, ଶୋଭା+କୃ. ଧାତୁ+ଅ) ଶୋଭାମୟ; ସୁନ୍ଦର—1. Beautiful. ୨ ।ଦୀପ୍ତି-
Sobhākara
(ଶୋଭାକରୀ—ସ୍ତ୍ରୀ) ଶାଳୀ—2. Shining; splendid; smart. ଯାହା ଅନ୍ୟ ବସ୍ତୁରେ ନ୍ୟସ୍ତ ହେଲେ ତହିଁର ଶୋଭା ବଢ଼ାଏ—3. Ehancing the beauty or grace of a thing. ୪ । ଶୋଭା କରିବାର ଉପଯୁକ୍ତ—4. Befitting; becoming. ୫ । (ପୁଂ. ଓ ସ୍ତ୍ରୀ) (ଶୋଭା+ଅକର; ଷଷ୍ଠୀତତ୍) ଶୋଭାମୟ; ଶୋଭାର ଖଣି ଅତି ଶୋଭାଯୁକ୍ତ—5. Very graceful full of charm. ବି—ଶୋଭାମୟ ବସ୍ତୁ—A charming object.

**ଶୋଭାକାର(ରି)**—ଦେ. ବିଣ. ପୁଂ. ଓ ସ୍ତ୍ରୀ—(ସଂ. ଶୋଭାକର)ଶୋଭାକର
Sobhākāra(ri) —Charming; beautiful [ଉ—[ଶୋଭାକାରଅ—ଅନ୍ୟରୂପ] ତୋ ପଦ ତୋଡେ ଶୋଭାକାର । ଅତି ସୁନ୍ଦର ଖୁବ ସୁରତ ସ୍ୱାତୀ କରୁଣମହାସ୍ୟ] [ଦ୍ର—ଏହା ହ୍ରସ୍ୱ ଲିଙ୍ଗରେ ବ୍ୟବହୃତ ହୁଏ । ଯଥା—ତାକୁ ଖୋଜିବ ଶୋଭାକାର କନ୍ୟା ମିଳିଗଲା ।

**ଶୋଭାଙ୍ଗୀ**—ଦେ. ବିଣ. ସ୍ତ୍ରୀ (ସଂ. ଶୋଭନାଙ୍ଗୀ)—ରୂପବତୀ; ସୁଦୃଶ୍ୟା;
Sobhāngi ସୁଷମାଯୁକ୍ତା—Beautiful; graceful; ସୁନ୍ଦରୀ ସୁନ୍ଦରୀ charming (ଉ—କଲ୍ୟାଣ କଲେ୍ ସେ ହୃଷ୍ଟଚିତ୍ତେ ହୁଅ ଭୁ ସୁଣ୍ଠୀ ତାହାର ଶୋଭାଙ୍ଗୀ । ଭକ୍ତ. ଚୌତିଶ ସ୍ତୁତିମୃତ୍ୟୁଞ୍ଜୟ) ।

**ଶୋଭା ଜନକ**—ସ. ବିଣ (ଉପପଦ ତତ୍) ୧ । ଦୀପ୍ତିଉତ୍ପାଦକ
Sobhā janaka 1. Producing lustre. ୨ । ସୌନ୍ଦର୍ଯ୍ୟ-(ଶୋଭା ଜନକା—ସ୍ତ୍ରୀ) ଉତ୍ପାଦକ—2. Producing beauty.

**ଶୋଭା ଜାତ** ସ. ବିଣ—(୫ମୀ ତତ୍) ସୌନ୍ଦର୍ଯ୍ୟରୁ ଉତ୍ପନ୍ନ—Pro
Sobhā jāta ducied from beauty; born of beauty.

**ଶୋଭାଞ୍ଜନ**—ସଂ. ବି (ବୈଦ୍ୟକ)—(ବହୁବ୍ରୀହି, ଶୋଭା ହୋଇଅଛି
Sobhānjana ଅଞ୍ଜନ=ନେତ୍ର ରଞ୍ଜକ କଜ୍ଜ୍ୱଳ ପରି ରଞ୍ଜକ ଯାହାର; ଶୋଭା=ସୁନ୍ଦର ଅଞ୍ଜନ ହୁଏ ଯହିଁରୁ; ଏଗଛର କୋମଳ ପତ୍ରରୁ ନେତ୍ର ହିତକର ଅଞ୍ଜନ ତିଆରି ହୁଏ ।) ଶିଗ୍ରୁ; ଶଜନା ଗଛ—The horse; radish tree-Hyperanthera Moringa. [ଦ୍ର—ଶ୍ୟାମ ବା ନୀଳ ଶ୍ୱେତ ଓ ରକ୍ତ ଭେଦରେ ଏହା ୩ ପ୍ରକାର । ଶଜନା ଗଛ ନୋଡ ଦେଖ ।]

**ଶୋଭାଞ୍ଜନ ପୁଷ୍ପ**—ସଂ. ବି—ସଜନା ଫୁଲ—The flowers of the
Sobhānjana pushpa moringa tree [ଦ୍ର—ବୈଦ୍ୟଶାସ୍ତ୍ର ମତରେ ଏହା କଟୁରସ, ତୀକ୍ଷ୍ଣ, ଉଷ୍ଣବୀର୍ଯ୍ୟ, ସ୍ନାୟୁଶୋଥ କାରକ ଏବଂ କୃମି, କଫ, ବାୟୁ, ବିଦ୍ରଧି, ପ୍ଳୀହା ଓ ଗୁଳ୍ମ ନାଶକ । ରକ୍ତ ଶଜନାଫୁଲ ଚକ୍ଷୁର ହିତକର ଓ ରକ୍ତପିତ୍ତ ପ୍ରସାଦକ ।]

**ଶୋଭାଞ୍ଜନ ଫଳ**—ସ. ବି—ଶଜନା ଛୁଇଁ—The pods of the
Sobhānjana phala moringa tree. [ଦ୍ର—ବୈଦ୍ୟକ ମତରେ ଏହା ମଧୁରକଷାୟରସ; ଅଗ୍ନିଦୀପକ, କଫ, ପିତ୍ତ, ଶୂଳ, କୁଷ୍ଠ, କ୍ଷୟ ଓ ଶ୍ୱାସ ବିନାଶକ ।]

**ଶୋଭାଞ୍ଜନ ବୀଜ**—ସ. ବି—ସଜନା ଛୁଇଁର ମଞ୍ଜି—The seeds of
Sobhānjana bija the pods of the moringa tree. [ଦ୍ର—ଏହାକୁ ଶ୍ୱେତ ମରିଚ କହନ୍ତି । ଏହା ଚକ୍ଷୁ ପକ୍ଷରେ ହିତକର । ଏହା ତୀକ୍ଷ୍ଣ, ଉଷ୍ଣବୀର୍ଯ୍ୟ, ବିଷଘ୍ନ, ଅବୃଷ୍ୟ, କଫ ଓ ବାୟୁନାଶକ । ଏହାର ନସ୍ୟଦ୍ୱାରା ଶିର ବେଦନା କମିଯାଏ ।]

ଶୋଭା ଦ(ଦୁ)ଶିବା(ପାଇବା) — ଦେ॰ କ୍ରି — ୧ । ସୁନ୍ଦର ଦେଖାଯିବା; Śobhā dı(du)śiba(pāiba) ମାନିବା — 1. To look शोभा पाओंआ smart. ୨ । ଝଳ ଝଳ ଦେଖାଯିବା — सुन्दर दिखना 2. To shine.

ଶୋଭାନିଧି — ଦେ॰ ବିଣ. ସ୍ତ୍ରୀ — ସୁନ୍ଦରୀ — Beautiful (woman) Śobhā nidhi [ଦୃ — ମଦ ଦ୍ୱିରଦ ଗଛ ଗଣ୍ଡିରେ, ଶୋଭାନିଧି शोभानिधि ତୋ ଗାତ୍ର ନ ଦୃଷ୍ଟ ଶ୍ୟାମଳେନ୍ଦ୍ର । ଉପେନ୍ଦ୍ରଭଞ୍ଜ । अतिसुन्दरी ଲାବଣ୍ୟବତୀ । ଉ. ଗୀତ ।]

ଶୋଭାନୁଭାବକତା(ତ୍ୱ) — ସଂ. ବି (ଶୋଭା + ଅନୁଭାବକ + ତା, ତ୍ୱ) — ମନର Śobhānubhābakatā(twa) ଯେଉଁ ବୃତ୍ତିଦ୍ୱାରା ସୌନ୍ଦର୍ଯ୍ୟ ଅନୁଭବ କରାଯାଏ — Aesthetic faculty.

ଶୋଭାନ୍ୱିତ — ସଂ. ବିଣ (ଅନ୍ୱିତ ଭତ୍) — ୧ । ସୌନ୍ଦର୍ଯ୍ୟବିଶିଷ୍ଟ — Śobhanwita 1. Beautiful; graceful. (ଶୋଭାନ୍ୱିତା — ସ୍ତ୍ରୀ) ୨ । ସମୁଜ୍ଜ୍ୱଳ — 2. Brilliant.

ଶୋଭାପୁରୀ — ଦେ. ବିଣ (ସ୍ତ୍ରୀ) — ଶୋଭାବଦନ; ସୁନ୍ଦରୀ — Beautiful Śobhāpurī (lady). [ଦୃ — ଦମ୍ଭରୁ କି କହୁ କର ଗଛ ନେତ୍ର सुन्दरी ଥଉ ଥଉ ପୁଲକରେ ଶୋଭାପୁରୀ ପୂରି । ଉଞ୍ଜି. ପ୍ରେମ सुन्दरी ସୁଧାନିଧି ।]

ଶୋଭାବତୀ — ଦେ. ବି. ସ୍ତ୍ରୀ — ୧ । ସ୍ତ୍ରୀ ଲୋକଙ୍କ ନାମ — 1. Name Śobhābatī given to females. ୨ । ଉଞ୍ଜିସ୍ଥ ପୁରର ଶେଷ शोभावती ଭାଗ (ଭଞ୍ଜବଂଶ ଷଡ଼ାବିଂଶ ମଧ୍ୟଭାଗ)ରେ କନକଦୁର୍ଗ शोभावती ସ୍ୱାଙ୍ଗଧ ସ୍ୱଜା କବି ପୁରୁଷୋତ୍ତମ ମାନ୍ଧାତାଙ୍କର ରଚିତ କାବ୍ୟ ଓ ତହିଁର ନାୟିକା — 2. Name of a poem and its heroine by poet Purushottama Māndhātā. ୩ । ଉପେନ୍ଦ୍ର ଭଞ୍ଜଙ୍କର ଅପ୍ରକାଶିତ ପଦ୍ୟ କାବ୍ୟର ନାମ ଓ ତହିଁର ନାୟିକାଙ୍କ ନାମ (ରାଜକନ୍ୟାଙ୍କର ଯୌବନଲୀଳା, ପ୍ରଣୟ ଓ ବିବାହାଦିର ବର୍ଣ୍ଣନା — 3. Name of a poem and its heroine of Upendra Bhanja (unpublished). ସ. ବିଣ (ଶୋଭାବତ୍ + ସ୍ତ୍ରୀ. ଈ) — ଶୋଭାବାନ୍‌ର ସ୍ତ୍ରୀଲିଙ୍ଗ — Feminine of Śobhābān. ସ. ବି — ୧ । ପ୍ରତି ଚରଣରେ ୧୪ ଅକ୍ଷର ଥିବା ସଂସ୍କୃତ ଛନ୍ଦୋବିଶେଷ (ଶବ୍ଦକୋଷ) — 1. Name of a Sanscrit metre of 14 syllables. [ଦୃ — ଏ ଅକ୍ଷରମାନଙ୍କ ମଧ୍ୟରୁ ୧।୨।୪।୮।୧୧।୧୨।୧୩।୧୪ ସ୍ଥାନସ୍ଥ ଅକ୍ଷରମାନ ଗୁରୁ, ଅପର ସମସ୍ତ ଲଘୁ ।] ୨ । ପ୍ରାଚୀନ ନଗର ବିଶେଷ (ବର୍ତ୍ତମାନ ନାମ ଶୁକ୍ତିମତୀ) (ଶବ୍ଦକୋଷ) — 2. Name of an ancient City.

ଶୋଭାବନ — ଦେ. ବିଣ (ସଂ. ଶୋଭାବତ୍; ଅଥବା ଶୋଭା ଓ ବର୍ଣ୍ଣ) — Śobhābana ଶୋଭାବିଶିଷ୍ଟ — Beautiful; grand; (ଶୋଭାବନୀ — ସ୍ତ୍ରୀ) smart. [ଦୃ — ଶ୍ରୀକୃଷ୍ଣଙ୍କ ଅଙ୍ଗକୁ ଦିଶେ शोभन्त सुहावन ଶୋଭାବନ । ବନଭ୍ରମ. କେଶବ-କୋଇଲି ।]

ଶୋଭାବନ୍ତ — ଦେ. ବିଣ (ସଂ. ଶୋଭାବତ) — ଶୋଭାଯୁକ୍ତ — Śobhābanta Beautiful. [ଦୃ — ବନକୁ ବନ ଶୋଭାବନ୍ତ, शोभन्त ବନେ ବୁଲଇ ନନ୍ଦସୁତ । ଜଗନ୍ନାଥ. ଭାଗବତ ।] शोभावाला

ଶୋଭାବର୍ଦ୍ଧକ — ସଂ. ବିଣ (କୃଦନ୍ତ ଭତ୍) — ଯାହା ଅପରିବା ସୌନ୍ଦର୍ଯ୍ୟକୁ Śobhābarddhaka ବୃଦ୍ଧି କରେ — Increasing or (ଶୋଭାବର୍ଦ୍ଧନ, ଶୋଭାବୃଦ୍ଧି — ବିଶେଷ୍ୟ) adding to the lustre, beauty or grace of a thing.

ଶୋଭାବାନ୍ — ସଂ. ବିଣ (ପୁଂ) (ଶୋଭା + ଯୁକ୍ତାର୍ଥେ ବତ୍; ଶୋଭାବତ୍ Śobhāban ଶବ୍ଦ; ୧ମା. ୧ବ) — ୧ । ଶୋଭାଯୁକ୍ତ — (ଶୋଭାବତୀ, ଶୋଭାଶାଳିନୀ — ସ୍ତ୍ରୀ) 1. Beautiful; grace- [ ଶୋଭାଶାଳୀ — ଅନ୍ୟରୂପ ] ful. ୨ । ଦୀପ୍ତିଶାଳୀ — 2. Lustrous.

ଶୋଭାମୟ — ସଂ. ବିଣ (ଶୋଭା + ଯୁକ୍ତାର୍ଥେ ମୟ) - ଶୋଭାବିଶିଷ୍ଟ; Śobhāmaya ସୁନ୍ଦର — Beautiful; bright. (ଶୋଭାମୟୀ, ଶୋଭାଯୁକ୍ତା — ସ୍ତ୍ରୀ) (ଶୋଭାଯୁକ୍ତ — ଅନ୍ୟରୂପ)

ଶୋଭା ଯାତ୍ରା — ସ. ବି (ଅଧୁନାର ପ୍ରୟୋଗ; ମ. ପ. ଲେ; ଶୋଭାର୍ଥେ Śobhā jatrā ଅନୁଷ୍ଠିତ ଯାତ୍ରା) — ସମାରୋହ (ବାଣ, ଜଣାଣ, शोभा यात्रा ବାଜା, ସାଜସଜ୍ଜାଦି) ସହିତ ବହୁ ଲୋକଙ୍କର ଶୃଙ୍ଖଳାजुलूस ବଦ୍ଧ ଗମନ — A grand procession.

ଶୋଭା ସମ୍ପତ୍ତି(ଦ୍) — ସ. ବି (ରୂପକ) — ଶୋଭା ବା ସୌନ୍ଦର୍ଯ୍ୟରୂପ Śobhā sampatti(d) ସମ୍ପଦ — Exuberance of (ଶୋଭା ସମ୍ପଦ — ଅନ୍ୟରୂପ) beauty; beauty compared to wealth.

ଶୋଭା ହୀନ — ସ. ବିଣ — ୧ । ସୌନ୍ଦର୍ଯ୍ୟରହିତ — 1. Ungraceful. Śobhā hīna ୨ । କାନ୍ତିହୀନ — 2. Shorn of splendour. (ଶୋଭାହୀନା — ସ୍ତ୍ରୀ)

ଶୋଭିକ — ସଂ. ବିଣ. ପୁଂ (ଶୋଭା + ଇକ) — ଶୋଭାଯୁକ୍ତ — Beauti- Śobhika ful; grand; shining; smart. (ଶୋଭିକା — ସ୍ତ୍ରୀ)

ଶୋଭିତ — ସ. ବିଣ. ପୁଂ (ଶୋଭା + ଯୁକ୍ତାର୍ଥେ ଇତ) — ୧ । ଶୋଭା- Śobhita ଯୁକ୍ତ — 1. Beautiful; graceful; charm- (ଶୋଭିତା — ସ୍ତ୍ରୀ) ing. ୨ । ଭୂଷିତ; ସଜ୍ଜିତ — 2. Adorned; decked. ୩ । ସୁନ୍ଦରୀକୃତ — 3. Beautified. ବି. (ଶୁଭ ଧାତୁ + ଭାବ. ତ) — ଶୋଭା — Charm; brilliance.

ଶୋଭିତା — ସ. ବିଣ. ସ୍ତ୍ରୀ (ଶୋଭିତ + ଆ) — ଶୋଭାଯୁକ୍ତା; ସୁନ୍ଦରୀ — Śobhitā Beautiful; graceful (female). [ଦୃ — सुविधा ଗର୍ବିକଟା ହୋଇଣ ବସିଲେ ଶୋଭିତା — କୃଷ୍ଣସିଂହ. ମହା- सुबिधा ଭାରତ. ଅଦି ।] ଦେ. ବି (ସଂ ସୁବିଧା) — ସୁବିଧା — Convenience. ଦେ. ବିଣ (ସଂ. ସୁବିଧାଜନକ) — ସୁବିଧାଜନକ; ସୁବିଧାଜନକ — Convenient.

ଶୋଭିବା—ଦେ. କ୍ରି ( ପଦ୍ୟ ) ( ସ. ଶୋଭା; ସ. ଶୁଭ୍ ଧାତୁ )—
Śobhibā ଶୋଭା ପାଇବା—To look grand; to shine.
শোভা পাওয়া शोभा पाना

ଶୋଭିଷ୍ଠ—ସ. ବଣ ( ଶୋଭା+ଅତିଶୟାର୍ଥେ. ଇଷ୍ଠ )—( ବୈଦିକ )
Śobhishṭa ଅତିଶୟ ଶୋଭାଯୁକ୍ତ—Very beautiful.

ଶୋଭୀ—ସଂ. ବଣ ( ଶୋଭନ୍ ଶବ୍ଦ; ଶୋଭା+ଅସ୍ତ୍ୟର୍ଥେ ଇନ୍ )—
Śobhī ୧ । ଶୋଭାଯୁକ୍ତ—1. Brilliant. ୨ । ସୁନ୍ଦର—
( ଶୋଭିନୀ—ସ୍ତ୍ରୀ ) 2. Beautiful.

ଶୋମବାଲି—ଗ୍ରା. ବ—ଶୁଆଁବାଳି ( ଦେଖ )—Śuāñbāli (See)
Śomabāli শুষা শূমা
( ଶୋମବାଳ[ଳି]ଅ—ଅନ୍ୟରୂପ )

ଶୋର୍ ( ଇତ୍ୟାଦି )—ଦେ. ଓ ବୈଦେ. ବ ( ସଂ. ସ୍ୱର; ପା. ଶୋର୍
Śor ( etc ) =ଗୋଳମାଳ, ହୋଲା, ଇତ୍ୟ ଶବ୍ଦ )—ଶୋର୍
ଇତ୍ୟାଦି ( ଦେଖ )—Sor etc ( See )

ଶୋୟନ—ଗ୍ରା. ( ଇତର ) ବ ( ସଂ. ଶୟନ )—ଶୟନ ( ଦେଖ )—
Śoyan শয়ন शयन Śayana ( See )

ଶୋଲ(ହ୍ଳ, ଲ୍ହ)—ଦେ. ବ ( ସଂ. ଅଳମ୍ବୁଷା )—୧ । ଗ୍ରୀଷ୍ମାଦି ବର୍ଷରେ
Śola(hla, lha) ଜଳଜ ଲତାବିଶେଷ—1. An acqua-
শোলা কোঢ়িলা, शोला tic creepingplant; Neptunia Oleracia Indian cork plant; Aeschynomene Aspera. [ ଦ୍ର—ଏହାର ପତ୍ର ଲଜକୋଳି ପତ୍ର ପରି ଆକୃତିବିଶିଷ୍ଟ ଓ ଏହାକୁ ଧରିଲେ ତା ଏ ଗଛରେ ଅଘାତ କଲେ ଏହାର ପତ୍ରମାନ ବୁଜି ହୋଇଯାଏ । ଏହା ଦେହରେ କଣ୍ଟା ନ ଥାଏ । ଏଥିର ଡାଙ୍ଗର ଉପର ଧଳା, ହାଲୁକା; ଫୁଲ ନାରଙ୍ଗବର୍ଣ୍ଣ । ଏହାକୁ ଶୁଖାଇ ମାଳୀମାନେ ମଉଡ଼, ଫୁଲ ଆଦି କରନ୍ତି ଓ ଚିତ୍ରକରମାନେ ତହିଁ ଉପରେ ଚିତ୍ର ଏଥି ଉପରେ ପକାଇବା ପାଇଁ ଏହା ବ୍ୟବହୃତ ହୁଏ । ଏହା ପାଣିରେ ଭାସେ । କେଉଟମାନେ ଏହାକୁ ଗୋଷ୍ଠ କରି ବାନ୍ଧି ଫସଲ କରନ୍ତି ଓ ଜାଲର ଅଗରେ ଏହାକୁ ବାନ୍ଧିଲେ ଏହା ଜାଲକୁ ପାଣିରେ ଭସାଇ ରଖେ ।

ବୈଦ୍ୟଶାସ୍ତ୍ର ଅନୁସାରେ ଏହା ଲଘୁ, ମଧୁରରସ ଓ କୃମି ଏବଂ ପିତ୍ତନାଶକ । ଶୁଖିଲା ଶୋଲକୁ ଚାପି ଦେଲେ ସଂକୀର୍ଣ୍ଣ ହୋଇଯାଏ ଓ ପାଣିରେ ବତୁରି ଗଲେ ଫୁଲିଯାଏ । ଏଥିପାଇଁ ସ୍ତ୍ରୀଲୋକମାନେ ନାକ କାନର ଛିଦ୍ରକୁ ବଡ଼ କରିବାକୁ ଛିଦ୍ର ମଧ୍ୟରେ ଶୋଲ ଦିଅନ୍ତି ।

ଅନ୍ୟ ଗୋଟିଏ ହାଲୁକା କାଠଯୁକ୍ତ ଜଳଜ ଗୁଳ୍ମକୁ କାଠଶୋଲ କୋହିଯାଏ । ଏହା ଜୟନ୍ତୀ ସଦୃଶ୍ୟ (Sesbania Paludosa, the sponge-wood) । ଫୁଲ ପୀତବର୍ଣ୍ଣ ଓ ମଧ୍ୟରେ ରକ୍ତିମ ଚିହ୍ନ । କାଠଶୋଲ ସହ ଲଘୁ, କିନ୍ତୁ କୋମଳ ନୁହେଁ । କେଉଟମାନେ ଏହାକୁ ଜାଲ ଅଗରେ ବାନ୍ଧନ୍ତି । ] ୨ । ଶୋଲ ପରି ହାଲୁକା ପଦାର୍ଥ—2. A light thing like Śola. [ ଦ୍ର—ଯଥା. ବୋଲି ଭାଇ ଗୋବିନ୍ଦ ବୋଲ, ଭାସିଲା ପଥର ବୁଡ଼ିଲା ଶୋଲ—ପ୍ରବଚନ । କୌଣସି ଅସମ୍ଭବ କଥା ଉପଲକ୍ଷ୍ୟରେ ଲୋକେ ଏ ପ୍ରବଚନ ବୋଲନ୍ତି । ] ୩ । ପୁରୁଣା ସିଜୁଗଛର ଛେଲି—3. The bark of old euphorbia tree. [ ଦ୍ର—ଏହା ଅତ୍ୟନ୍ତ ହାଲୁକା ଥିବାରୁ କେଉଟମାନେ ଜାଲର ଅଗରେ ଲଗାନ୍ତି । ]

ଶୋଲ(ଲୋ)କ ( ଇତ୍ୟାଦି )—ଗ୍ରା. ( ଇତର ) ବ ( ସଂ. ଶ୍ଳୋକ;
Śola(lo)ka( etc ) ଶ୍ଳୋକ ଶବ୍ଦର ଇତରଜନଙ୍କ ବ୍ୟବହୃତ ଅଶୁଦ୍ଧ ଉଚ୍ଚାରଣ )—ଶ୍ଳୋକ ଇତ୍ୟାଦି ( ଦେଖ )—
Śloka etc ( See )

ଶୋଲ(ଲୋ)କ ସୁମୁର୍ତ୍ତି—ଗ୍ରା. ବ ( ସନ୍ଧିତର ଶବ୍ଦ, ସଂ. ଶ୍ଳୋକ ଓ
Śola(lo)ka sumurtti ସ୍ମୃତି)—୧ । ଶ୍ଳୋକ ଓ ସ୍ମୃତି—
স্মৃতিশ্লোক I. Sanscrit ślokas and authoritative
श्लोक स्मृति treatises. ୨ । ନାନା ପ୍ରକାରର ଓ ନାନା ବିଷୟକ ଶ୍ଳୋକମାନ—Many sorts of ślokas.

ଶୋଲ ଟିପା(ପେ)ଇ—ଦେ. ବ—ଦଉଡ଼ିର ଦୁଇ ପାଖରେ ଗୁଡ଼ାଏ ଶୋଲ
Śola ṭipā(pe)i ଏକତ୍ର ବନ୍ଧା ହୋଇଥିବା ଭାସମାନ ପଦାର୍ଥ ବା
সোলাব ভেলা ଭେଳା—A float made of Śola. [ଦ୍ର—
शोलाका बीड़ा ଏହାର ମଝି ଦଉଡ଼ି ଉପରେ ଗୋଡ଼ା ରଖିଲା ପରି ବସିଲେ ମନୁଷ୍ୟ ବୁଡ଼ିଯାଏ ନାହିଁ । ]

ଶୋଲ ଟୋପି—ଦେ. ବ-ଶୋଲର ପତଳା ପାଳିଅନ୍ତୁ ନିର୍ମିତ ସାହେବ-
Śola topi ଙ୍କର ଟୋପି—Śola hat; śola topee. [ଦ୍ର—
সোলাব টুপি ଏହା ଉତ୍ତାପକୁ ଶରୀର ତେଜ ପ୍ରବେଶ ନ କରିବାରୁ
शोलका टोप ସାହେବମାନେ ଭାରତବର୍ଷରେ ଏହା ପିନ୍ଧନ୍ତି ।]

ଶୋଲ ଠିପି—ଦେ. ବ—ବୋତଲ ଆଦିର ମୁଣ୍ଡରେ ବସାଯିବା ଶୋଲର
Śola ṭhipi ଛିପି—A stopper for bottles made
সোলাব ছিপি शोलकी ठेकी (डाट) of 'Śola'.
(ଶୋଲବଣ୍ଡା— ଅନ୍ୟରୂପ) [ ଦ୍ର—କାନରେ ଶୋଲବଣ୍ଡା ମାରିବା, ଅନ୍ୟ ମନସ୍କ ହୋଇ କିଛି କଥା ନ ଶୁଣିବା ଲୋକକୁ ଲୋକେ କହନ୍ତି, 'ତୁ କଣ କାନରେ ଶୋଲବଣ୍ଡା ମାରିଥିଲୁ । ]'

ଶୋ(ଶୁ)ଲପା—ପ୍ରାଦେ. ( ବାଲେଶ୍ୱର ) ବ ( ଭୁଲି, ବ. ଶୁଲଫା )—
Śo(śu)lapā ଛୋଟା ହେଉ ବନ୍ତୁ ଅଂଶରେ ବଢ଼ୁଥିବା ପତ୍ରଯୁକ୍ତ ଶାକ-ବିଶେଷ; ଶତପୁ— Dill seed.

ଶୋଲ ଫୁଲ—ଦେ. ବ—ଶୋଲ ନିର୍ମିତ କୃତ୍ରିମ ଫୁଲ—Artificial
Śola phula flowers made of Śola.
সোলার ফুল शोलाका फुल

ଶୋଲ ମ(ମୁ)କୁଟ—ଦେ. ବ—ଶୋଲ ନିର୍ମିତ ବର କନ୍ୟାଙ୍କ ମଉଡ଼—
Śola ma(mu)kuṭa Crowns of Śola made for
সোলার টোপব the bride and bridegroom.
शोलाका मुकुट

ଶୋଲ୍ଲ ( ଇତ୍ୟାଦି )—ଦେ. ବ—ଶୋଲ ଇତ୍ୟାଦି ( ଦେଖ )
Śolā (etc) Solā etc ( see )

ଶୋଲଙ୍କି—ଦେ. ବ (ସଂ. ଶୁଲୁକ୍ୟ)—(ନାମ) ରାଜପୁତାନାର ଅଣହିଲ—
Solānki ବାଡ଼ର ପ୍ରସିଦ୍ଧ ପ୍ରାଚୀନ ରାଜପୁତ ବଂଶ—Name of a celebrated family of ancient Rajputs of Rajputana. [ଦ୍ର—ଏମାନେ ଶୁଲୁକ୍ୟ ବଂଶୀୟ ଥିଲେ ପରେ ଶୋଲଙ୍କି ନାମରେ ଖ୍ୟାତ ହୋଇଥିଲେ । ପ୍ରତିଷ୍ଠାରେ ଓ ମର୍ଯ୍ୟାଦାରେ ଏ ବଂଶ ରାଜସ୍ଥାନର ପରମାର ଓ ଚୌହାନ ରାଜପୁତମାନଙ୍କ ଅପେକ୍ଷା ନିକୃଷ୍ଟ । କଲ୍ୟାଣନଗରବାସୀ ଜୟସିଂହ ଶୋଲଙ୍କିଙ୍କ ପୁତ୍ର ମୂଳରାଜ ସ୍ୱୀୟ ମାତାମହ ଭୋଜରାଜଙ୍କ ମୃତ୍ୟୁ ପରେ ଅଣହିଲବାଡ଼ ପତ୍ତଣର ସିଂହାସନରେ ଅଭିଷିକ୍ତ ହେଲେ । ଗଜନୀପତି ମାହାମୁଦ୍ ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀର ପ୍ରଥମ ପାଦରେ ଅଣହିଲବାଡ଼ ଲୁଣ୍ଠନ ଓ ଧ୍ୱଂସ କଲେ । ସେତେବେଳେ ମାହାମୁଦ ଗଜନୀ ସୌରାଷ୍ଟ୍ର (ଗୁଜରାଟ)ର ସୋମନାଥ ମନ୍ଦିର ଆକ୍ରମଣ କଲେ, (ଖ୍ରୀ.୧୦୨୪) ସେତେବେଳେ ଏହି ବଂଶୀୟ ରାଜା ଜୟସିଂହ, ସିଦ୍ଧରାଜ ଓ କୁମାରପାଳ ମହାପରାକ୍ରମ, ସ୍ୱବୁଦ୍ଧିକୌଶଳ ସହ ରାଜ୍ୟ ଓ ଧର୍ମ ରକ୍ଷା କରିବାକୁ ଚେଷ୍ଟା କରିଥିଲେ । ଏମାନେ ବୌଦ୍ଧଧର୍ମର ପୃଷ୍ଠପୋଷକ ଥାଇ କେତେକ ବୌଦ୍ଧ କୀର୍ତ୍ତି ଓ ଜୟସ୍ତମ୍ଭ ନିର୍ମାଣ କରାଇଥିଲେ । ଆଲ୍ଲାଉଦ୍ଦିନ ଅଣହିଲବାଡ଼ (ଖ୍ରୀ. ୧୨୯୭ରେ) ଜୟ କରିବା ପରେ ଶୋଲଙ୍କି ରାଜବଂଶର ଗୌରବରବି ଚିରଦିନ ପାଇଁ ଅସ୍ତମିତ ହେଲା । ଏ ଶୋଲଙ୍କି ରାଜକୁଳ ୧୬ଟି ଶାଖାରେ ବିଭକ୍ତ ହୋଇଥିଲା । ଖ୍ରୀଷ୍ଟୀୟ ନବମ ଶତାବ୍ଦୀଠାରୁ ତ୍ରୟୋଦଶ ଶତାବ୍ଦୀ ପର୍ଯ୍ୟନ୍ତ ଏ ବଂଶ ରାଜତ୍ୱ କରିଥିଲେ । ଏ ରାଜବଂଶ ଏକସମୟରେ ଭାରତରେ ସର୍ବତ୍ର ବିସ୍ତୃତ ହୋଇଥିଲେ । ଓଡ଼ିଶାରେ ଏ ବଂଶ ଶୁଲ୍କୀ ନାମରେ ପରିଚିତ ହୋଇଥିଲେ । ତାଳଚେର ରାଜ୍ୟରୁ ଏହି ରାଜବଂଶର ଦ୍ୱାଦଶ ଓ ତ୍ରୟୋଦଶ ଶତାବ୍ଦୀରେ ଉତ୍କୀର୍ଣ୍ଣ ତାମ୍ରଶାସନ ମିଳିଅଛି । ଆଜିକାଲି ମେଦିନୀପୁରରେ ସ୍ଥାନେ ସ୍ଥାନେ ଏହି ବଂଶୀୟମାନେ ଶୁଲ୍କୀ ନାମରେ ପରିଚିତ ହୋଇ ଅତି ହୀନାବସ୍ଥାରେ କାଳଯାପନ କରୁଅଛନ୍ତି । ବିଶ୍ୱକୋଷ ]

ଶୋଲି(ଲୀ)କା—ସଂ. ବି—ବଣହଳଦୀ ( ବିଶ୍ୱକୋଷ )—Wild
Soli (lī)kā turmeric. [ଦ୍ର—ଏହା କଟୁ, ରୁଚିକର, ତିକ୍ତ ଓ ପାଚକ । ]

ଶୋଲେଇ (ଇତ୍ୟାଦି)—ଦେ. ବି—ଶୂଲେଇ ଇତ୍ୟାଦି ( ଦେଖ )
Solei (etc) Sūlei etc (see)

ଶୋଶୁଚ୍ୟମାନ—ସଂ. ବିଣ ( ଶୁଚ୍ ଧାତୁ ଯଙ୍ ଲୁଗନ୍ତ ଅର୍ଥାତ୍ ଅତିଶୟାର୍ଥେ
Sosuchyamāna ଦ୍ୱିତ୍ୱ=ଶୋଶୁଚ ଧାତୁ+କର୍ତ୍ତୃ. ମାନ, ( ଶୋଶୁଚ୍ୟମାନା—ସ୍ତ୍ରୀ ) ଭୁଲ: ଶୋଶୁଦ୍ୟମାନ)—ଅତିଶୟ ଶୋକ କରୁଥିବା; ଅତିଶୟ ବିଳାପକାରୀ—Grieving much; lamenting bitterly.

ଶୋଷ—ସଂ. ବି ( ଶୁଷ୍ ଧାତୁ ଣିଚ୍, ଶୋଷି ଧାତୁ=ଶୁଷ୍କ ହେବା+
Sosha ଭାବ. ଅ )—୧ । ଶୁଷ୍କତା—1. Dryness. ୨ । ନୀରସତା—2. Saplessness. ୩ । ଶୋଷଣ; ରସାକର୍ଷଣ—3. Sucking of juice. ୪ । ତୃଷ୍ଣା; ପିପାସା—4. Thirst. ୫ । (+କରଣ ଅ)—ଯକ୍ଷ୍ମରୋଗ; ଯକ୍ଷ୍ମା—5. Consumption; pthysis. ଦେ. ବି (ଲକ୍ଷଣାର୍ଥ) କୌଣସି ବିଷୟ ପାଇଁ ଅଭିଳାଷ—1. (Figurative) Desire for anything. ୨ । ଲୋଭ—2. Avarice.

ଶୋଷ ଉଠିବା—ଦେ. ବି—ଶୋଷ କରିବା (ଦେଖ)
Sosha uthibā Sosha karibā (See)
[ଦ୍ର—ପ୍ରୟୋଗ :—ମୋର ଶୋଷ ଉଠୁଛି; ମୋତେ ଶୋଷ କରୁଛି ।]

ଶୋଷକ—ସଂ. ବିଣ (ଶୁଷ୍ ଧାତୁ+କର୍ତ୍ତୃ. ଅକ)—୧ । ଶୋଷଣକାରୀ;
Soshaka ଯାହା ପଦାର୍ଥରୁ ଜଳ ବା ରସ ଶୋଷିନିଏ;
(ଶୋଷିକା—ସ୍ତ୍ରୀ) ରସାକର୍ଷକ—1. That which sucks up or draws out water or juice from things. ୨ । ଯାହା ଶୁଷ୍କ କରେ—2. Drying up; withering. ୩ । ଯାହା ଦେହକୁ ଶୀର୍ଣ୍ଣ କରେ—3. (medicine) Which makes the body lean.

ଶୋଷ କରିବା—ଦେ. ବି—ତୃଷାର୍ତ୍ତ ହେବା ଅବସ୍ଥା—Feeling
Sosha karibā thirsty; thirstiness.
[ଶୋଷଦେଖା(ଖେ)ଇବା, ଶୋଷ ମାଲୁମ୍ ହେବା, ଶୋଷ ଲାଗିବା, ଶୋଷହେବା—ଅନ୍ୟରୂପ]
ତେଷ୍ଟାପାଓୟା ପ୍ୟାସ ଲଗନ
(ପ୍ରୟୋଗ—ମତେ ଶୋଷ କରୁଛି)

ଶୋଷଣ—ସଂ. ବି (ଶୁଷ୍ ଧାତୁ+ଭାବ. ଅନ)—୧ । ଶୋଷିବା କ୍ରିୟା—
Soshana 1. Act of sucking up. ୨ । ଶୁଷ୍କ କରିବା—2. Act of drying up. ୩ । ଜଳ ଟାଣିବା କ୍ରିୟା; ରସାକର୍ଷଣ—3. Act of drawing up water or juice; suction. ୪ । ସ୍ନେହହରଣକାରଣ (ବିଶ୍ୱକୋଷ)—4. Act of depriving a thing of oil. ୫ । (+କର୍ତ୍ତୃ. ଅନ) କନ୍ଦର୍ପର ପଞ୍ଚ ବାଣ ମଧ୍ୟରୁ ଏକତମ 5. Name of one of the 5 arrows of the God Cupid. [ଦ୍ର—କନ୍ଦର୍ପର ଏହି ବାଣ ଦ୍ୱାରା ପ୍ରେମିକ ପ୍ରେମିକାଙ୍କ ଦେହ ଶୀର୍ଣ୍ଣ ହୁଏ ।] ୬ । ଶୁଣ୍ଠି ( ବିଶ୍ୱକୋଷ )—6. Dry ginger. ୭ । ପିପ୍ପଳୀ (ବିଶ୍ୱକୋଷ)—7. Long pepper. ୮ । ଶ୍ୟୋଣାକ ବୃକ୍ଷ ( ବିଶ୍ୱକୋଷ ); ଫଣଫଣା—8. Bignonia Indica. ୯ । (+ଅଧିକରଣ ଅନ) ଷୋଡ଼ଶାଂଶାବଶିଷ୍ଟ କଷାୟ; ୧୬ ଭାଗରୁ ଏକ ଭାଗ ଜଳ ଅବଶିଷ୍ଟ ଥାଇ ଥାଇ ନିଆଁ ଉପରୁ ଓହ୍ଲା ଯାଇଥିବା କଷାୟ ବା କ୍ୱାଥ ( ବିଶ୍ୱକୋଷ )—9. Decoction which has

been taken down from the fire when the water thereof has been reduced to one sixteenth. ୧୦ । (ଲକ୍ଷଣାର୍ଥ ) ପରଠାରୁ ବଳପୂର୍ବକ ଅଛଉଲ୍ଲ ଧନ ଗ୍ରହଣ— 10. (figurative) Act of extortion of money. ବଣ—ଶୋଷକ (ଦେଖ) Sohsaka (See)

ଶୋଷଣ ଅସ୍ତ୍ର—ଦେ· ବ (ସ.ଶୋଷଣାସ୍ତ୍ର)—ଯେଉଁ ଅସ୍ତ୍ର ଅନ୍ୟ ଅସ୍ତ୍ରପ୍ରେରିତ Śoshana astra ଜଳଧାରାକୁ ଶୁଖାଇଦିଏ—The শোষণ অস্ত্র शोषण अस्त्र contrary arrow which dries up the water flowing from the adversary's bows [ଉ-ଉକ୍ତ ଦେଇଥିଲେ ଶୋଷଣ ଅସ୍ତ୍ର ମତେ, ଧାରି ନାଗ ପାଇଁ ବା ବଞ୍ଚିଲ ଭୁରଲେ— (ଶୋଷଣାସ୍ତ୍ର—ସ.ରୂପ) କୃଷ୍ଣସିଂହ, ମହାଭାରତ ବନ ।]

ଶୋଷଣ ନୀତି—ସ. ବ (ଅଧୁନିକ ପ୍ରୟୋଗ)—ପ୍ରଜାଙ୍କ ଠାରୁ ଅଛଉଲ୍ଲ Soshana niti କର ଅବାଧ ରୂପରେ ରାଜାଙ୍କ ଧନ ଗ୍ରହଣନୀତି— The policy of drawing or sucking money from the subjects by the ruler.

ଶୋଷଣୀୟ—ସ. ବଣ ( ଶୁଷ ଧାତୁ+କର୍ମ ଅନୀୟ )—୧ । ଶୋଷ୍ୟ Śoshaniya ହେବାର ଉପଯୁକ୍ତ— 1. Fit to be sucked up. ୨ । ଜଳହୀନ ହେବାର ଉପଯୁକ୍ତ— 2. Fit to be dried up.

ଶୋଷ ମରିବା—ଦେ. ବ—ଜଳ ନ ପିଇବାଦ୍ୱାରା ମନରୁ ତୃଷା ଚାଲିଯିବା Sosha maribā ହେବା—The subsidence of (ଶୋଷ ମରିଯିବା—ଅନ୍ୟରୂପ) thirst by not drinking তেষ্টামরেযাওয়া प्यास मरना water when one feels thirsty.

ଶୋଷ ମାରିବା—ଦେ· କ୍ରି—୧ । ଜଳପାନ ଦ୍ୱାରା ଜଳର ତୃଷାନିବୃତ୍ତି Sosha māribā କରିବା—1. To quench thirst তেষ্টাকেমারা प्यासमारना by drinking water ୨ । ଜଳପାନ ନ କରିବା ଦ୍ୱାରା ଜଳର ତୃଷା ନିବୃତ୍ତି କରିବା—2. To let the thirst die out by desisting from drinking water when one feels thirsty.

ଶୋଷୟିତା—ସ. ବଣ (ପୁଂ)—(ଶୁଷ ଧାତୁ ଣିଚ=ଶୋଷି ଧାତୁ+ Soshayitā କର୍ତ୍ତୃ ତୃ, ୧ମା ୧ବ )—୧ । ଯେ ଶୋଷଣ ଶୋଷୟିତ୍ରୀ—ସ୍ତ୍ରୀ ) କରେ— 1. Sucking up. ୨ । ଯେ ଶୁଖାଇଦିଏ—2. Drying up water from any thing.

ଶୋଷ ସମ୍ଭବ—ସଂ. ବ ( ୬ଷ୍ଠୀ ତତ୍, ଶୋଷାୟୁ=ଜଳ ଶୋଷଣାର୍ଥ Sosha sambhaba ସମ୍ଭବ ଯାହାର)—ପିପ୍ପଳୀମୂଳ (ବୈଦ୍ୟକୋଷ) The root of long pepper

ଶୋଷହା—ସଂ. ବଣ ( ଶୋଷ+ହନ୍ ଧାତୁ+କର୍ତ୍ତୃ. କ୍ୱିପ୍ )— Śoshahā ଶୋଷ ନାଶକ (ବୈଦ୍ୟକୋଷ)—Preventing ( ଶୋଷାପହା—ଅନ୍ୟ ବଣ ରୂପ ) suction or drying up. ସଂ. ବ—ଜଳାପାମାର୍ଗ (ବୈଦ୍ୟକୋଷ)— Aquatic Acheranthes Aspera plant.

ଶୋଷା—ଦେ.ବ—୧। ଶୋଷିବା କ୍ରିୟା--1. Act of sucking up. Śoshā শোষণ शोषण ୨ । ଅତ୍ୟଧିକ ଦାହ ଓ ତୃଷ୍ଣା ରୋଗ- তেষ্টারোগ, प्यासकी बीमारी 2. A disease accompanied by a feeling of excessive thirst and burning. ୩ । ଅତ୍ୟଧିକ ତୃଷା—3. Excessive thirst. ୪ । ଗାଈଗୋରୁ ଫୁଲିବା ରୂପ ଗୋରୁମାନଙ୍କର ରୋଗ ବିଶେଷ —4. A cattle disease by which ফোপর खोखला the cow has inflamation of the throat. ୫ । ( ସଂ. ଶୁଷିର ) କାଠମଧ୍ୟରେ (ଶୋଷୀ—ସ୍ତ୍ରୀ) ପୋଲ—5. Hollow in a log of wood. ବଣ. ପୁଂ—୧ । ଅତି ଧନଲୋଭୀ—1. Very avaricious. ୨। ପ୍ରଜା ଅବଶ୍ୟଠାରୁ ଯେ ଅତ୍ୟଧିକରୂପେ ଧନାଦି ବଳପୂର୍ବକ ନିଏ—2. Extorting money.

ଶୋଷା(ଷେ)ଇବା—ଦେ. କ୍ରି—(ସଂ. ଶୋଷି ଧାତୁ)—୧ । ଶୋଷିବା— Śoshā(she)ibā କ୍ରିୟାର ଣିଜନ୍ତ ରୂପ—1. The causa- শোষান सोसाना tive form of śoshibā. ୨ । ତୃଷାର୍ତ୍ତ ହେବା—2. To feel thirsty. তৃষ্ণাতুর হওয়া तिसाना

ଶୋଷା ଯି(ହେ)ବା—ଦେ. କ୍ରି—ଶୋଷିବା କ୍ରିୟାର କର୍ମବାଚ୍ୟ ରୂପ— Śoshā ji(he)bā The passive voice of Śoshibā (to চুষা যাওয়া सोसा जाना suck up).

ଶୋଷି (ଧାତୁ)—ସଂ.—(ଶୁଷ୍ ଧାତୁ ଣିଜନ୍ତ)—ଶୁଷ୍କ ହେବା— Shoshi (root) To be dried up.

ଶୋଷିତ—ସଂ. ବଣ—(ଶୁଷ ଧାତୁ ଣିଚ=ଶୋଷି ଧାତୁ+କର୍ମ. କ୍ତ)— Śoshita ୧ । ନୀରସୀକୃତ—1. Made sapless. ୨ । ଯହିଁରୁ ରକ୍ତ ବା ଜଳଆଦି ଶୋଷା ଯାଇଅଛି; କୃତଶୋଷଣ- 2. That from which blood or water has been sucked up. ୩ । ଶୁଷ୍କୀକୃତ—3. Dried up; from which water has evaporated or been drained away.

ଶୋଷିବା—ଦେ. କ୍ରି.—(ସ. ଶୁଷ୍ ଧାତୁ)—୧ । ପଦାର୍ଥରୁ ଜଳାଦି Soshibā ଶୋଷିବା—1. To draw out water or চুষা शोषना sap or juice. ୨ । (ମୁହଁ ଦ୍ୱାରା)ଚୁଷିବା- 2. To suck with the mouth. ୩ । (ପ୍ରାଣ) କାଢ଼ି ନେବା—3. To draw out (life). [ଉ— ଶୀଘ୍ର ସଙ୍ଗେ ପ୍ରାଣ ଶୋଷିଲେ ନାଶ ଗଲ ଶୋଷନା । তেড়েআসা मारने दौड़ना ବଳାବଳେବର ଉଦ୍ଧରଣ ।] ୪ । ମୁହଁକୁ ଆଗେଇବା; ଅବମର୍ଣ୍ଣାର୍ଥ ଅଗ୍ରସର ହେବା— 4. To advance to attack. [ଉ—ବିଶାଳ ସମ୍ମୁଖକୁ ଆସି; କି ହତ ସଙ୍ଗ ଅଧି, ଶୋମ୍ବ ବନ୍ଦ ଛୁଟି ଶୋଷିଲେମ୍ବ । ଉପ. ବୈଦେହୀଶବିଳାସ ।]

| ୧ | ଇ | ଉ | ଋ,ଌ | ଔ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇୟ୍ | ଉଅ | ଙ୍କ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | କ୍ଷ | ନ୍ଦ |

ଶୋଷୀ—ସଂ. ବଣ. ପୁଂ—( ଶୋଷ୍ ଧାତୁ+ଇନ୍; ୧ମା. ୧ବ )—Śoshī ତୃଷାର୍ତ୍ତ—Thirsty. ଦେ. ବ—୧ । ତୃଷିତ ବ୍ୟକ୍ତି ତୃଷାର୍ତ୍ତ ପିଆସା(ସୀ) 1. Thirsty person. ୨। (ଶୁଷ୍ ଧାତୁ, [ଶୋଷିଣୀ—ସ୍ତ୍ରୀ] ଭୂଳ. ସ. ଶୁଷିର=ଛିଦ୍ର) କାଠ ମଧ୍ୟରେ ଥିବା ଫୋପର ଖୋକଲା ପୋଲ—2. The hollow running lengthwise through the inside of a log of wood.

ଶୋଷ୍ୟ—ସଂ. ବଣ—(ଶୁଷ୍ ଧାତୁ+କର୍ମ. ଯ)—ଶୋଷଣୀୟ—Śoshya Fit to be sucked up or dried up.

ଶୋହା—ଗ୍ରା. ବ—(ସଂ. ଶୋଭା; ପ୍ରା. ସୋହା)—୧ । ସୌନ୍ଦର୍ଯ୍ୟ—Śohā 1. Beauty; grace. ୨ । ଦୀପ୍ତି—2. Brilliance.

ଶୋହି—ଦେ. ବ—ରୋହି ଜାତୀୟ ଏକ ପ୍ରକାର ମାଛ—A kind of Śohi କଇ fish allied to the Rohi fish. [ଦ୍ର—ରୋହି ରୋହି ମାଛର ପିତ୍ତ ପରି ଏ ମାଛର ପିତ୍ତ ସନ୍ନିପାତ ରୋଗରେ ଉପକାରୀ ।]

ଶୋହିବା—ଦେ. (ପଦ୍ୟ) କ୍ରି—(ସଂ. ଶୋଭା; ପ୍ରା. ସୋହା)—୧ । Śohibā ଶୋଭା ପାଇବା; ଦୀପ୍ତି ପାଇବା—1. To shine. ଶୋଭାପାଓୟା [ଦ୍ର—କନକ-ପୁଷ୍ପରାଜି ଶୋହେ ପ୍ରବଳେ । ରାଧାନାଥ. ଶୋଭାପାନା ମେଘଦୂତ ।] ୨ । ଶୋଭାଯୁକ୍ତ ହେବା; ସୁନ୍ଦର ରୂପେ ବର୍ତ୍ତମାନ ହେବା—2. To exist with splendour. ୩ । ମାନିବା; ସାଜିବା—3. To befit; to become; to suit. ଶୋଭିତକରା ଶୋଭାଯୁକ୍ତ କରନା ୪ । ଅଳଙ୍କୃତ କରିବା—4. To adorn.

ଶୌକ—ସଂ. ବ—୧ । (ଶୁକ+ଅ)—ଶୁକ ସମୂହ (ଶବ୍ଦକୋଷ)—Śauka 1. A flight of parrots. ୨ । (ଶୋକ+ଅ) ଶୋକ (ମେଦିନୀ)—Grief.

ଶୌକଡ଼ା—ଦେ. ବଣ ଓ ବ—(ସଂ. ଶତ ଓ କପର୍ଦ୍ଦକ)—୧ । ଶତ Śaukaṛā ସଂଖ୍ୟକ (ବ୍ୟକ୍ତି, ଅର୍ଥ)—1. A hundred. ୨ । ଶତକରା ସୈକଡ଼ା ଶତ ଶତ—2. Hundreds of. ୩ । ପ୍ରାୟ ଏକ ଶତ—3. About a hundred. ୪ । ଶତକେ—4. Percent.

ଶୌକର—ସଂ. ବଣ—(ଶୂକର+ଅ)—ଶୂକର ସମ୍ବନ୍ଧୀୟ—Śaukara Relating to a hog. ବ.—ତୀର୍ଥବିଶେଷ—Name of a sacred place. [ଦ୍ର—ବରାହ ପୁରାଣରେ ଉକ୍ତ ଅଛି ଯେ, ଭଗବାନ୍ ବରାହ ଅବତାରରେ ଏହି ସ୍ଥାନରେ ଥାଇ ପୃଥିବୀକୁ ରସାତଳରୁ ଉପରକୁ ଟେକି ଧରିଥିଲେ । ଉକ୍ତ ପୁରାଣରେ ଏ ତୀର୍ଥର ମାହାତ୍ମ୍ୟ ବର୍ଣ୍ଣିତ ଅଛି—ଶବ୍ଦକୋଷ ।] ।

ଶୌକ୍ତିକ—ସଂ. ବ—(ଶୁକ୍ତି=ଶାମୁକା+ଜାତାର୍ଥେ. ଅ)—ମୋତି; ମୁକ୍ତା Śauktika —Pearl; Margarita.

ଶୌକ୍ତିକା—ସଂ. ବ—( ଶୌକ୍ତିକ+ଅ )—ଯେଉଁ ଶାମୁକାରୁ ମୁକ୍ତା Śauktikā ବାହାରେ—[ଶବ୍ଦକୋଷ]—Pearl oyster.

ଶୌକ୍ତିକେୟ—ସଂ. ବ—(ଶୁକ୍ତିକା+ଜାତାର୍ଥେ. ଏୟ; ବା ଶୁକ୍ତି+ଏୟ; Śauktikeya ତ ଅଗମ—ମୁକ୍ତା—Pearl. ବଣ—୧ । ଶୁକ୍ତିଜାତ—1. Produced from oyster or mother of pearls. ୨ । ଶୁକ୍ତି ସମ୍ବନ୍ଧୀୟ—2. Relating to oyster.

ଶୌକ୍ର—ସଂ. ବଣ—(ଶୁକ୍ର+ଅ)—୧ । ଶୁକ୍ର ଗ୍ରହ ସମ୍ବନ୍ଧୀୟ—Śaukra 1. Relating to the planet venus. ୨ । ରେତଃ ସମ୍ବନ୍ଧୀୟ—2. Relating to semen.

ଶୌକ୍ଲ(କ୍ଲ୍ୟ)—ସଂ. ବ—(ଶୁକ୍ଲ+ଅ,ଯ)—ଶୁକ୍ଲତା—Śaukla(klya) Whiteness.

ଶୌଙ୍ଗେୟ—ସଂ. ବ—(ଶୁଙ୍ଗା+ଏୟ)—ଶିକାରୀ ପକ୍ଷୀ—Śauṅgeya A bird of prey

ଶୌଚ—ସଂ. ବ (ଶୁଚ=ପବିତ୍ର+ଭାବାର୍ଥେ ଅ)—୧ । ଶୁଦ୍ଧି—Śaucha 1. Purification. ୨ । ଯଥାଶାସ୍ତ୍ର ଦେହଶୁଦ୍ଧି—(ଅଶୌଚ—ବିପରୀତ) 2. Purification of the body according to the injunctions of the Śāstras. ୩। ଶୁଚିତା; ପବିତ୍ରତା—3. Purity. ୪ । ଶାସ୍ତ୍ରବିହିତ ଅନୁଷ୍ଠାନ ଦ୍ୱାରା ଦେହକୁ ଓ ମନକୁ ପବିତ୍ର ରଖିବା—4. Keeping the body and the mind clean by following Śāstric injunctions. [ଦ୍ର—ଅଭକ୍ଷ୍ୟ ବସ୍ତୁର ପରିହାର, ଅନିନ୍ଦିତ ବ୍ୟକ୍ତିର ସଂସର୍ଗ ଓ ସ୍ୱଧର୍ମରେ ଅବସ୍ଥାନ କରିବାକୁ ଶୌଚ ବୋଲାଯାଏ (ଏକାଦଶୀ ତତ୍ତ୍ୱ) । ସେତେ ପ୍ରକାର ଶୌଚ ଅଛି, ତନ୍ମଧ୍ୟରେ ଅର୍ଥଶୌଚ ପ୍ରଧାନ । ଅର୍ଥାର୍ଜ୍ଜନ ଉଦ୍ଦେଶ୍ୟରେ ଅଶାସ୍ତ୍ରୀୟ ଉପାୟ ଅବଲମ୍ବନ ନକରି ଶାସ୍ତ୍ରସଙ୍ଗତ ଉପାୟରେ ଯେ ଅର୍ଥାର୍ଜ୍ଜନ କରନ୍ତି ଓ ତାହା ରକ୍ଷା କରନ୍ତି ତାଙ୍କୁ ଅର୍ଥଶୁଚ ବୋଲାଯାଏ । ଶୌଚ ପାଞ୍ଚ ପ୍ରକାର—ସତ୍ୟଶୌଚ, ମନଃଶୌଚ, ଇନ୍ଦ୍ରିୟନିଗ୍ରହ, ସର୍ବଭୂତରେ ଦୟା ଓ ଦେହଶୌଚ । ବିଦ୍ୱାନ୍‌ମାନଙ୍କର କ୍ଷମାହିଁ ଶୌଚ; ଅକାର୍ଯ୍ୟକାରୀମାନେ ଦାନ ଦ୍ୱାରା, ପ୍ରଚ୍ଛନ୍ନପାପୀ ଜପଦ୍ୱାରା, ବେଦବିଦ୍ ବ୍ରାହ୍ମଣ ତପସ୍ୟା ଦ୍ୱାରା, ପରପୁରୁଷାସକ୍ତି ହେତୁ ଦୂଷିତମନାଃ ସ୍ତ୍ରୀ ରଜସ୍ୱଳା ହେବାଦ୍ୱାରା, ମଳବାହୀ ନଦୀ ସ୍ରୋତ ଦ୍ୱାରା, ଦ୍ୱିଜୋତ୍ତମ ପ୍ରବ୍ରଜ୍ୟାଦ୍ୱାରା, ମନଃ ସତ୍ୟ ଦ୍ୱାରା, ଆତ୍ମା ବିଦ୍ୟା ଓ ତପସ୍ୟା ଦ୍ୱାରା ଓ ବୁଦ୍ଧି ଜ୍ଞାନ ଦ୍ୱାରା ଶୌଚ ଲାଭ କରନ୍ତି । ଏମାନଙ୍କ ଶାସ୍ତ୍ରୀୟ ଶୌଚ ବୋଲାଯାଏ । ମୃତ୍ତିକା ଓ ଜଳାଦି ଦ୍ୱାରା ଶରୀରର ଶୁଦ୍ଧିକୁ ବାହ୍ୟ ଶୌଚ ଓ ଇନ୍ଦ୍ରିୟାଦି ସଂଯମ ଦ୍ୱାରା ମନଃଶୁଦ୍ଧିକୁ ଆଭ୍ୟନ୍ତର ଶୌଚ ବୋଲାଯାଏ—(ଶବ୍ଦକୋଷ) ।] ୫ ।

ଧାରଣ ଲେକେ ଅପର ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ'ଖୋଜିବେ; 'ମୂଢ଼' ନ ମିଳିଲେ 'ମୂଢ'ଖୋଜିବେ, 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଗା' ନ ପାଇଲେ'ଅର୍ଗ୍ଳା' ଦେଖିବେ,'ଅଲବଧ''ନ ପାଇଲେ 'ଅନ୍‌ବଧ'ଦେଖିବେ

ନିର୍ମଳତା—5. Cleanliness. ୬। କୁଟୁମ୍ବରେ ମୃତ୍ୟୁ ବା ଜନ୍ମ ଘଟିଲେ ନିର୍ଦ୍ଦିଷ୍ଟ ଦିବସରେ ଶୁଦ୍ଧି କ୍ରିୟା—6. Purificatory rite performed after a death or birth amongst kinsmen. ୭। ଛୁଅଁଷ ହେବା; ଝାଡ଼ା ଫେରିଲା ପରେ ପାଣି ଚାଇବା;ମଳତ୍ୟାଗାନ୍ତ ଜଳଦ୍ୱାରା ଗୁହ୍ୟାଦିର ପ୍ରକ୍ଷାଳନ—7. Cleansing and washing the private parts etc after answering a call of nature; ablution after evacuation.

ଶୌଚ କରିବା—ଦେ· କ୍ରି—ଛୁଅଁଷିବା; ଝାଡ଼ା ଫେରିବା ପରେ ଜଳ Śaucha karibā ଓ ମୃତ୍ତିକା ଦ୍ୱାରା ଅଙ୍ଗାଦିର ଶୁଦ୍ଧି କରିବା; শৌচকরা ପାଣି ନେଇବା—To wash one's body clean शौचकरना after answering a call of nature.

ଶୌଚ କର୍ମ—ସ. ବି—ଦେହଶୁଦ୍ଧିରୂପ କର୍ମ—Act of cleansing Śaucha karma or washing one's body. ଦେ. ବି—ମଳତ୍ୟାଗ (ଏହା ପରେ ଶୌଚକର୍ମ କରାଯାଏ)—Answering call of nature; easing one's self.

ଶୌଚ ବିଧାନ[ବିଧି]—ସଂ· ବି—ଦେହ ଶୁଦ୍ଧି ନିମନ୍ତେ ନିର୍ଦ୍ଦିଷ୍ଟ ଶାସ୍ତ୍ରବିଧି—Śaucha bidhāna[bidhi] The rules enjoined by the sacred books about purifying the body; purificatory rites. [ଦ୍ର—ଝାଡ଼ା ଫେରି ସାରି ଗୁହ୍ୟଦ୍ୱାରରେ ୨ଥର, ଲିଙ୍ଗରେ ୨ଥର, ହାତରେ ୩ଥର, ଗୋଡ଼ରେ ୩ଥର ମାଟି ଲଗାଇ ଧୋଇବ; ୩ ଥର କୁଳୁକୁଞ୍ଚା କରିବ ଓ ୩ ଥର ମୁହଁ ଧୋଇବ ଓ ଆଣ୍ଠୁପାଣି ଚରିବ । ପରିସ୍ରା କରିସାରି ଲିଙ୍ଗକୁ ୩ଥର ଜଳଦ୍ୱାରା ଧୋଇବା ଇତ୍ୟାଦି ।]

ଶୌଚ ହୀନ—ସଂ· ବିଣ ( ପୁଂ )—୧ । ଶୁଦ୍ଧି ରହିତ—1. Devoid Śaucha hīna of purity. ୨ । ମଇଳା; ଅପରିଷ୍କୃତ—(ଶୌଚହୀନା—ସ୍ତ୍ରୀ) 2. Unclean. ୩ । ଯେ ଦେହକୁ ଶୁଦ୍ଧ ଓ ପବିତ୍ର ରଖେ ନାହିଁ—3. Impure in body. (ଯଥା—ଝାଡ଼ା ଫେରିସାରି ପାଣି ନ ନେବା; ଅଇଁଠାମୁହଁ ନ ଧୋଇବା, ଦାନ୍ତ ନ ଘଷିବା, ନ ଗାଧୋଇବା ଲୋକକୁ ଶୌଚହୀନ ବୋଲାଯାଏ । )

ଶୌଚିକ—ସଂ· ବି (ଶୁଚ + ଇକ)—ଶୁଣ୍ଡୀ ଔରସରେ କୈବର୍ତ୍ତ କନ୍ୟାର Śauchika ଓ କୈବର୍ତ୍ତ ଔରସରେ ଗାନ୍ଧିକକନ୍ୟାର ଗର୍ଭଜାତ ଶଙ୍କର ଜାତି ବିଶେଷ—Name of a mixed low caste.

ଶୌଚେୟ—ସ· ବି· ପୁଂ (ଶୁଚ + ଏୟ; ଯେ ବସ୍ତ୍ରାଦିକୁ ପରିଷ୍କୃତ Śaucheya କରେ)— ରଜକ; ଧୋବା—Washerman. (ଶୌଚେୟୀ—ସ୍ତ୍ରୀ)

ଶୌଚୋଦକ—ସ. ବିଣ (ମ. ପ- ଲୋ.)—ଶୌଚ କାର୍ଯ୍ୟ ପାଇଁ Śauchodaka ଅଣ୍ଟୁତ ଜଳ—Water brought for cleaning purposes.

ଶୌଟୀର—ସ. ବିଣ· ପୁଂ. (ଶୁଟୀର=ବୀର + ଅ)—୧ । ବୀର—Śauṭīra 1. Heroic; valiant. ୨ । ଅହଙ୍କାରୀ—(ଶୌଟୀରା—ସ୍ତ୍ରୀ) 2. Proud; arrogant. ୩ । ତ୍ୟାଗୀ—3. Practising renunciation or self denial.

ଶୌଟୀ(ଣ୍ଡୀ)ର୍ଯ୍ୟ—ସ. ବି (ଶୁଟୀର+ଭାବ. ଯ)—୧। ବୀରତ୍ୱ; ବୀର୍ଯ୍ୟ—Śauṭī(ṇḍī)rjya I. Herovism; valour ୨ । ଗର୍ବ; ଅହଙ୍କାର—2. Pride ୩ । ଦମ୍ଭ—3. Arrogance. ୪ । ତ୍ୟାଗ—4. Renunciation; self-denial.

ଶୌଣ୍ଡ—ସ. ବିଣ. ପୁଂ ( ଶୁଣ୍ଡା=ମଦ+ରତ ବା ମତ୍ୱର୍ଥେ ଅ) Śauṇḍa ୧ । ମତ୍ତ; ମଦ୍ୟଖିଆ—1. Drunken; intoxicated. ୨ । ଅଭ୍ୟାସକ୍ତ—2. Addicted. (ଶୌଣ୍ଡା—ସ୍ତ୍ରୀ) ୩ । ବିଖ୍ୟାତ—3. Famous; reputed. (ଶୌଣ୍ଡତା—ବି) ୪ । ପ୍ରଗଲ୍‌ଭ; ପରାଭବସମର୍ଥ (ବିଶ୍ୱକୋଷ)—4. Arrogant. ସ· ବି, ୧ । ଦେବଧାନ୍ୟ (ବିଶ୍ୱକୋଷ)—1. A kind of wild grain. ୨ । କୁକ୍କୁଟ (ବିଶ୍ୱକୋଷ)—2. Cock.

ଶୌଣ୍ଡିକ—ସ. ବି. (ପୁଂ)—(ଶୁଣ୍ଡା=ମଦ୍ୟ + ବିକେତା ଅର୍ଥରେ ଇକ) Śauṇḍika ୧ । ଶୁଣ୍ଡି; ମଦ୍ୟ ପ୍ରସ୍ତୁତକାରୀ—I. Distiller of wine; vintner. ୨ । ମଦ୍ୟ ବିକେତା—2. Seller of wine; wine-dealer. ୩ । ମଦ୍ୟ ପ୍ରସ୍ତୁତକାରୀ ଓ ମଦ୍ୟ ବ୍ୟବସାୟୀ ନୀଚ ଜାତି ବିଶେଷ-3. A low caste mong the Hindus whose profession is to distill and trade in wine.
(ଶୌଣ୍ଡୀ—ଅନ୍ୟରୂପ)
ଶୌଣ୍ଡିକୀ; ଶୌଣ୍ଡିନୀ—ସ୍ତ୍ରୀ
[ଅନ୍ୟ ସଂ· ନାମ—ମଣ୍ଡ ହାରକ; ଶୁଣ୍ଡାର; ଶୌଣ୍ଡୀ, ଶୁଣ୍ଡକ (ଶବ୍ଦରତ୍ନାବଳୀ), ଧ୍ୱଜ, ପାନ, ପଣ (ଜଟାଧର), କଲ୍ୟପାଳ, ସୁରାଜୀବୀ, ବାରିବାସ, ପାନ ବଣିକ, ଧ୍ୱଜୀ, ଅସତୀବଲ (ହେମଚନ୍ଦ୍ର)]
[ଦ୍ର—ପରାଶର ସଂହିତାରେ ଲେଖା ଅଛି ଯେ, କୈବର୍ତ୍ତ ପିତାଠାରୁ ଗାନ୍ଧିକ କନ୍ୟାର ଗର୍ଭରୁ ଏ ଜାତିର ଉତ୍ପତ୍ତି, ଓ ଶୌଣ୍ଡିକ ପିତାଠାରୁ କୈବର୍ତ୍ତ କନ୍ୟାର ଗର୍ଭରୁ ଉତ୍ପନ୍ନ ଜାତି ଶୌଚିକ । ମନୁ (୪।୨୧୬) ଲେଖିଛନ୍ତି ଯେ କୁକୁର ପୋଷା [କୁକୁ ରଅ], ଶୌଣ୍ଡିକ, ରଜକ, ଲୁଗା ରଙ୍ଗେଇବା ଜାତି, ନୃଶଂସ ଓ ଯାହା ଘରେ ଉପପତି ଅଛି [ବ୍ୟଭିଚାରିଣୀ—ସ୍ତ୍ରୀ ବୃଦ୍ଧି ପର ବାରଭକରି] ତାଙ୍କ ଘରେ ଖାଇବ ନାହିଁ । ଯାଜ୍ଞବଲ୍କ୍ୟ ଲେଖି ଅଛନ୍ତି,

[୨୮୯] ଗୋପ, ଶୌଣ୍ଡିକ, ଶୈଲୂଷ, ରଜକ ଓ ବ୍ୟାଧ ଜାତିର ସ୍ତ୍ରୀମାନଙ୍କ ଋଣ ଉପପତିମାନଙ୍କ ପରିଶୋଧ କରିବା ଉଚିତ, କାରଣ ଉକ୍ତ ଜାତିମାନଙ୍କ ଜୀବିକା ସ୍ତ୍ରୀମାନଙ୍କ ଉପରେ ନିର୍ଭର କରେ । ଅର୍ଥାତ୍ ଏମାନେ ହାଟୁଆଜାତି ଓ ଏମାନଙ୍କ ସ୍ତ୍ରୀମାନଙ୍କର ଅବରୋଧ ପ୍ରଥା ନାହିଁ ଓ ସ୍ତ୍ରୀମାନେ ଉଚ୍ଚତ୍ ବ୍ୟବସାୟ ଚଳାନ୍ତି—ବିଶ୍ୱକୋଷ]

ସଂ. ବିଣ [ଶୁଣ୍ଡିକ+ଅ] ଶୁଣ୍ଡିକା ସମ୍ବନ୍ଧୀୟ—Relating to the wine distiller.

**ଶୌଣ୍ଡିକା(ନୀ)**—ସଂ. ବି. ସ୍ତ୍ରୀ [ଶୌଣ୍ଡିକ+ଆ; ଶୌଣ୍ଡିନ୍+ସ୍ତ୍ରୀ ଈ]
Ṡauṇḍikā(nī) ଶୁଣ୍ଡିଅଣୀ—Wife of a vintner.

**ଶୌଣ୍ଡିକାଳୟ**—ସଂ. ବି [୬ଷ୍ଠୀ ତତ୍, ଶୌଣ୍ଡିକ+ଆଳୟ]—୧ ।
Ṡauṇḍikālaya ମଦ୍ୟ ବିକ୍ରୟର ସ୍ଥାନ; ଶୁଣ୍ଡି ଦୋକାନ—1. Grogshop; tavern; dram shop. ୨ । ମଦ ତିଆରି ହେବା ସ୍ଥାନ—2. A distillery.

**ଶୌଣ୍ଡି(ଣ୍ଡୀ)ର**—ସଂ. ବିଣ. ପୁଂ ( ଶୁଣ୍ଡା=ମଦ୍ୟ+ଈର; ଈର )—
Ṡauṇḍi(ṇḍī)ra ୧ । ଅହଙ୍କାରୀ; ଗର୍ବୀ; ଗର୍ବିତ—1. Arrogant; proud; vain. ୨ । ତେଜସ୍ୱୀ—2. Energetic; vigorous.
[ଶୌଣ୍ଡି(ଣ୍ଡୀ)ରା—ସ୍ତ୍ରୀ]

**ଶୌଣ୍ଡୀ**—ସଂ. ବି ( ବୈଦ୍ୟକ ) ( ଶୁଣ୍ଡା+ଈନ୍ )—୧ । ପିପଳୀ—
Ṡauṇḍī 1. Long pepper. ୨ । ଚବ୍ୟ (ବିଶ୍ୱକୋଷ)—2. Piper Chaba. ୩ । କଟୁମାଳ; ଲଙ୍କାମରିଚ [ ବିଶ୍ୱକୋଷ ]—3. Cayenne pepper.

**ଶୌଦ୍ଧୋଦନି**—ସଂ. ବି. ପୁଂ ( ଶୁଦ୍ଧୋଦନ+ଅପତ୍ୟାର୍ଥେ ଇ )
Ṡauddhodani ୧ । ବୁଦ୍ଧଦେବ—1. The Buddha. ୨ । ( ମତାନ୍ତରରେ ) ବୁଦ୍ଧଦେବଙ୍କ ପିତା—2. The father of Buddha.

**ଶୌଦ୍ର**—ସଂ. ବିଣ. ପୁଂ ( ଶୂଦ୍ର+ଅ )—୧ । ଶୂଦ୍ର ସମ୍ବନ୍ଧୀୟ—
Ṡaudra 1. Relating to the Ṡūdra caste. ୨ । ( ଶୂଦ୍ରା+ଅ ) ଶୂଦ୍ରାଗର୍ଭଜାତ—2. Born of a Ṡūdra mother. ବି—ବ୍ରାହ୍ମଣାଦି ଦ୍ୱିଜାତି ଔରସରେ ଶୂଦ୍ରାଗର୍ଭଜାତ ସନ୍ତାନ—A son born of a Ṡūdra mother and a father of the three higher castes. [ ଦ୍ର—ହିନ୍ଦୁ ସ୍ମୃତିରେ ବର୍ଣ୍ଣିତ ଦ୍ୱାଦଶବିଧ—(ଔରସ, କ୍ଷେତ୍ରଜ, ଦତ୍ତ,କୃତ୍ରିମ, ଗୂଢ଼ୋତ୍ପନ୍ନ, ଅପବିଦ୍ଧ, କାନୀନ, ଶୌଦ୍ର, ପୌନର୍ଭବ, ସ୍ୱୟଂଦତ୍ତ, ସହୋଢ଼) ପୁତ୍ର ମଧ୍ୟରୁ ଏ ଏକତମ । ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ପିତାଙ୍କର ସ୍ୱଜାତୀୟା ସ୍ତ୍ରୀ ଗର୍ଭଜ ସନ୍ତାନ ନ ଥିଲେ ଶୂଦ୍ରା ଭାର୍ଯ୍ୟାର ଗର୍ଭଜାତ ସନ୍ତାନମାନେ ପିତୃଧନର ଅଧିକାରୀ ହୁଅନ୍ତି । ]

**ଶୌନ**—ସଂ. ବିଣ ( ଶୂନା+ଅ )—କୁକୁର ସମ୍ବନ୍ଧୀୟ [ବିଶ୍ୱକୋଷ]—
Ṡauna Relating to the dog. ସଂ. ବି—ବିକ୍ରୟାର୍ଥ ରକ୍ଷିତ ମାଂସ [ ବିଶ୍ୱକୋଷ ]—Meat kept for sale.

**ଶୌନକ**—ସଂ. ବି. ପୁଂ ( ଶୁନକ+ଅପତ୍ୟାର୍ଥେ ଅ )—ଶୁକଦେବଙ୍କଠାରୁ
Ṡaunaka ନୈମିଷାରଣ୍ୟରେ ପୁରାଣ ଶୁଣିଥିବା ମୁନିବିଶେଷ—Name of a sage who heard the Purāṇas from Ṡukadeba. [ ଦ୍ର—ଏ ଜଣେ ବୈଦିକ ଅଗ୍ରଗଣ୍ୟ ଥିଲେ । ଅନେକ ବୈଦିକ ଓ ଲୌକିକ ଗ୍ରନ୍ଥର ରଚୟିତାରୂପେ ଏ ପ୍ରସିଦ୍ଧ । ]

**ଶୌ(ସୌ)ନିକ**—ସଂ. ବି. ପୁଂ ( ଶୂନ, ଶୂନା=ପ୍ରାଣିବଧ+ଇକ )—
Ṡau(sau)nika ୧ । ମାଂସ ବିକ୍ରେତା—1. Meat seller. ୨ । ମୃଗୟା—2. Hunting; chase.

**ଶୌନିକ ଶାସ୍ତ୍ର**—ସଂ. ବି ( ମ. ଭା. ଶ୍ଳୋ )—ମୃଗୟା ଓ ଘୋଡ଼ଦୌଡ଼
Ṡaunika ṡāstra ଆଦି ପଶୁକ୍ରୀଡ଼ା ବିବରଣ ବର୍ଣ୍ଣିତ ଗ୍ରନ୍ଥ [ବିଶ୍ୱକୋଷ]—Treatise on the chase, horse-race and other diversions with animals.

**ଶୌପ**—ଦେ. ବି—୧ । ( ସଂ. ଶତପୁଷ୍ପା ) ଶତପୁଷ ( ଦେଖ )—
Ṡaupa शुलफा सौंफ Ṡaupa ( See )
ମାହୁର सफ ୨ । ଶପ ( ଦେଖ )—2. Ṡapa ( See )

**ଶୌବନ**—ସଂ. ବିଣ ( ଶ୍ୱନ୍+ସମ୍ବନ୍ଧାର୍ଥେ ଅ )—କୁକୁର ସମ୍ବନ୍ଧୀୟ—
Ṡaubana Canine. ସଂ. ବି—୧ । ( ଅପତ୍ୟାର୍ଥେ )—କୁକୁର ଛୁଆ—1. Puppy (of a dog). ୨ । କୁକୁର ମାଂସ [ବିଶ୍ୱକୋଷ]—2. Dog-meat. ୩ । କୁକୁର ସମୂହ [ବିଶ୍ୱକୋଷ]—3. A pack of dogs.

**ଶୌବନ ଦନ୍ତ**—ସଂ. ବି—ଶ୍ୱଦନ୍ତ; ଉପର ଓ ତଳ ପାଟିରେ ଥିବା ଚାରିଟି
Ṡaubana danta ଲେଖାଏଁ (ମୋଟରେ ଚାରିଟି) ଲମ୍ବ ଦନ୍ତ—The canine teeth. [ ଦ୍ର—ଏ ଦାନ୍ତ ସମ୍ମୁଖଦାନ୍ତ ଓ କଳଦାନ୍ତ ମଧ୍ୟରେ ଅବସ୍ଥିତ । ଏହାଦ୍ୱାରା ଖାଦ୍ୟାଦି ଛେଦନ ଓ ଧାରଣ କରାଯାଏ । ]

**ଶୌବସ୍ତିକ**—ସଂ. ବିଣ ( ଶ୍ୱଃ=ଆଗାମୀ କାଲି+ଭବାର୍ଥେ. ଇକ)—୧ ।
Ṡaubastika ଖ୍ୱାଦ୍ୟବସ୍ତୁସମ୍ବନ୍ଧୀୟ; ଯାହା ପର ଦିନ ପର୍ଯ୍ୟନ୍ତ ଅବିକୃତ ରହି ପାରେ—1. (a thing or food) Which can be preserved till tomorrow. ୨ । ଆଗାମୀ କାଲି ସମ୍ବନ୍ଧୀୟ—2. Relating to tomorrow.

**ଶୌବାପଦ**—ସଂ. ବିଣ ( ଶ୍ୱାପଦ+ସମ୍ବନ୍ଧାର୍ଥେ ଅ )—ଶ୍ୱାପଦ ବା ହିଂସ୍ର
Ṡaubāpada ଜନ୍ତୁ ସମ୍ବନ୍ଧୀୟ—Relating to beasts of prey.

**ଶୌଭ**—ସଂ. ବି ( ଶୁଭ+ଅ; ଅଥବା ଶୋଭା+ଅ )—୧ । ଦେବତା—
Ṡaubha 1. A Deity. ୨ । ଗୁଆଗଛ—2. The areca-nut plant; Areca Catechu. ୩ । ମହାରାଜ ହରିଶ୍ଚନ୍ଦ୍ରଙ୍କର ଶୂନ୍ୟ ବା ଆକାଶ ମଣ୍ଡଳରେ ନିର୍ମିତ ନଗର (ଏଥିର ଅନ୍ୟ ନାମ ବ୍ୟୋମପୁରପୁର)—3. Name of a city of Rājā Hariṡchandra raised in the sky. [ଦ୍ର—ଭାଗବତ ୧୦ମ ସ୍କନ୍ଧ ୭୭ଶ ଅଧ୍ୟାୟରେ ବର୍ଣ୍ଣିତ ଅଛି ଯେ, ଭଗବାନ୍ ଶ୍ରୀକୃଷ୍ଣ ଏ ପୁରର ଅଧିକାରୀ ଶାଲ୍ୱ ରାଜାକୁ ବଧ କରି ଏହାକୁ ଅଧିକାର କରିଥିଲେ ।]

ଶୌଭିକ—ସଂ. ବଣ. ପୁଂ (ଶୋଭା+ଇକ)—ମାୟାଵୀ—Practising
Śaubhika deception; elusive. ବ—ଐନ୍ଦ୍ରଜାଲିକ,
(ଶୌଭିକୀ—ସ୍ତ୍ରୀ) କୁହୁକୀ—Sorcerer; magician; a conjurer.

ଶୌର—ସଂ ବଣ ( ଶୂର+ ସମ୍ବନ୍ଧାର୍ଥେ ଅ )—୧ । ଶୂରସମ୍ବନ୍ଧୀୟ—
Śaura 1. Heroic. ୨ । ସୂର୍ଯ୍ୟ ସମ୍ବନ୍ଧୀୟ—2 Solar.

ଶୌର ଜଗତ—ସଂ. ବ—ସୌର ଜଗତ୍ ( ଦେଖ )
Śaura jagat Saura jagat (See)

ଶୌରସେନୀ—ସଂ. ବଣ. ସ୍ତ୍ରୀ ( ଶୂରସେନ=ମଥୁରା+ଇଦାର୍ଥେ ଅ+
Śauraseni ସ୍ତ୍ରୀ. ଈ )—ମଥୁରାଦେଶ ସମ୍ବନ୍ଧୀୟ—Relating to the country of Mathurā ( in U. P. ).
ବ—ମଥୁରା ପ୍ରଚଳିତ ଭାଷା ବିଶେଷ; ବ୍ରଜବୋଲି ; ପ୍ରାଚୀନ ପ୍ରାକୃତ ଭାଷା ବିଶେଷ— kind of old spoken dialect of India; the dialect spoken in Mathurā and Bṛundābana

ଶୌରା—ଦେ. ବ (ସଂ. ଶବର)—୧ । ଶବର ୧ (ଦେଖ)—Śabara.
Śaurā 1 (See) ୨ । ଶବର ୨ ( ଦେଖ )—2. Śa-ara 2
सवर सबर ( See )

ଶୌରା ପଲ୍ଲୀ—ଦେ. ବ ( ସଂ. ଶବରପଲ୍ଲୀ )—ଶବରପଲ୍ଲୀ ( ଦେଖ )
Śaurā palli Śabarapalli ( See )

ଶୌରି—ସଂ. ବ ( ଶୂର+ଅପତ୍ୟାର୍ଥେ ଇ )—୧ । ଶୂରସେନଙ୍କ
Śauri ନାତି ଶ୍ରୀକୃଷ୍ଣ—1. Śrikṛushṇa, the grandson of Śūrasena ୨ । ବିଷ୍ଣୁଙ୍କ ନାମାନ୍ତର ( 'ବିଷ୍ଣୁସହସ୍ର ନାମୋକ୍ତ )—2. One of the names of Bishṇu. ୩ । ( ଶୂର=ସୂର୍ଯ୍ୟ+ଅପତ୍ୟାର୍ଥେ. ଇ ) ଶନିଗ୍ରହ—3. The planet Saturn. ୪। ରାମାୟଣ-ବର୍ଣ୍ଣିତ ମର୍କଟ ଯୂଥପତି—4. One of the monkey generals described in the Rāmāyaṇa. ୫। ବଳଦେବ [ବିଶ୍ୱକୋଷ]—5. Baḷadeba. ୬ । ବାସୁଦେବ [ବିଶ୍ୱକୋଷ]—6. Bāsudeba. ଦେ. ବ (ପୁଂ. ଓ ସ୍ତ୍ରୀ )—ଲୋକଙ୍କ ନାମ—A name given to males and females

ଶୌରି ବାର(ବାସର)—ସଂ. ବ—ଶନିବାର—Saturday.
Śauri bāra(bāsara)

ଶୌରୀନ୍ଦ୍ର ମୋହନ ଠାକୁର—ଦେ. ବ (ନାମ)—କଲିକତାର ଜଣେକ
Śaurindra mohana ṭhākura ସୁବିଖ୍ୟାତ ଧନୀ ଜମିଦାର—Name late of a rich Zamindar of Calcutta. [ଦ୍ର—ଏ ହରକୁମାର ଠାକୁରଙ୍କ ପୁତ୍ର ଓ ମହାରାଜ ସର୍ ଯତୀନ୍ଦ୍ରମୋହନ ଠାକୁରଙ୍କ ଭାଇ । ଏ ଇଂରାଜ ସରକାରଙ୍କ ଠାରୁ ରାଜା, ସର୍ ଓ ସି. ଆଇ. ଇ. ଉପାଧି ପାଇଥିଲେ । ଏ ୧୫ ବର୍ଷ ବୟସରୁ ବଙ୍ଗ ଭାଷାରେ ପାଠ୍ୟ-ପୁସ୍ତକ, ଅନୁବାଦ ଓ ସଙ୍ଗୀତ-ବିଷୟରେ ଅନେକ ପୁସ୍ତକ ରଚନା କରି ଓ ହିନ୍ଦୁ ସଙ୍ଗୀତଶିକ୍ଷାକୁ ବୈଜ୍ଞାନିକ ଭିତ୍ତି ଉପରେ ପ୍ରତିଷ୍ଠିତ କରି ଜଗତରେ ଯଶସ୍ୱୀ ହୋଇଅଛନ୍ତି । ସଙ୍ଗୀତ ଓ ବାଦ୍ୟ ବିଦ୍ୟା ଶିକ୍ଷାର୍ଥେ ଏ କଲିକତାର 'ସଙ୍ଗୀତ ବିଦ୍ୟାଳୟ' Academy of music ସ୍ଥାପନ କରିଥିଲେ । ଏହାଙ୍କ ଅମଳରୁ ବଙ୍ଗଦେଶରେ ଲୁପ୍ତପ୍ରାୟ ହିନ୍ଦୁ ସଙ୍ଗୀତର ଧାରାବାହିକତା ଅବ୍ୟାହତ ହେଲା । ଏଥିଯୋଗୁଁ ସଭ୍ୟ ଜଗତର ଅନେକ ରାଜା, ସାହିତ୍ୟସମାଜ ଓ ବିଶ୍ୱବିଦ୍ୟାଳୟ ଏହାଙ୍କୁ ନାନା ଉପାଧି ଓ ପ୍ରଶଂସା ପତ୍ର ଦ୍ୱାରା ସମ୍ମାନିତ କରିଥିଲେ; ଏମନ୍ତ କି, ଆମେରିକାର 'ଫିଲାଡେଲ୍‌ଫିଆ' ବିଶ୍ୱବିଦ୍ୟାଳୟ ଓ ବିଲାତର 'ଅକ୍ସଫୋର୍ଡ଼' ବିଶ୍ୱବିଦ୍ୟାଳୟ ଏହାଙ୍କୁ 'ସଙ୍ଗୀତ ଶାସ୍ତ୍ରଜ୍ଞ' Doctor of music ଉପାଧିଦ୍ୱାରା ଭୂଷିତ କରିଥିଲେ । ଏ ନିଜେ ମଧ୍ୟ ପ୍ରସିଦ୍ଧ ସୁବାଦକ, ନାଟ୍ୟକଳାଜ୍ଞ ଥିଲେ ଓ ବଙ୍ଗୀୟ ଓ ହିନ୍ଦୁସ୍ଥାନୀ ସଙ୍ଗୀତର ଅନେକ 'ଗତ୍' ରଚନା କରିଥିଲେ । ଏହାଙ୍କ ରଚିତ ଓ ପ୍ରକାଶିତ ଗ୍ରନ୍ଥସଂଖ୍ୟା ପଞ୍ଚାଶତ୍ ହେବ । ଏମାନେ 'ମଣିମାଳା' ନାମକ ରତ୍ନ ପରୀକ୍ଷା ବିଷୟରେ ପ୍ରାମାଣିକ ଗ୍ରନ୍ଥ ରଚନା କରିଥିଲେ । ]

ଶୌର୍ପିକ—ସଂ. ବଣ ( ଶୂର୍ପ=କୁଲା+ପରିମାଣାର୍ଥେ ଇକ )—ଏକ କୁଲା
Śaurpika ପରିମିତ; କୁଲାଏ; ଦ୍ରୋଣକିମ୍ବା ପରିମିତ ( ପ୍ରାୟ ବାଲେଶ୍ୱରୀ ୧୦ ସେର )—Of the capacity of one winnowing tray; measuring about 10 standard seers ( i. e. 14 of a maund ).
ଶୌର୍ପ୍ୟ } ଅନ୍ୟରୂପ
ଶୌର୍ପ }

ଶୌର୍ଯ୍ୟ—ସଂ. ବ ( ଶୂର=ବୀର+ଭାବେ ଯ )—୧ । ବୀରତ୍ୱ—
Śaurjya 1. Heroism; valour. ୨ । ସାହସ—2. Bravery. ୩ । ବିକ୍ରମ—3. Might. ୪ । ନାଟକର ନୃତ୍ୟ ବିଶେଷ; ଆରଭଟୀ—4. A kind of dramatic dancing.

ଶୌର୍ଯ୍ୟ ପ୍ରକାଶ—ସଂ. ବ ( ୬ଷ୍ଠୀ ତତ୍ )—ବୀରତ୍ୱ ବା ବିକ୍ରମ ଦେଖା-
Śaurjya prakāśa ଇବା—Exhibition of heroism; display of courage.

ଶୌର୍ଯ୍ୟବାନ୍—ସଂ. ବଣ. ପୁଂ ( ଶୌର୍ଯ୍ୟବତ୍ ଶବ୍ଦ; ଶୌର୍ଯ୍ୟ+ଅସ୍ତି
Śaurjyabān ଅର୍ଥରେ ବତ୍; ୧ମା. ୧ବ )—ଶୌର୍ଯ୍ୟଶାଳୀ;
( ଶୌର୍ଯ୍ୟବତୀ—ସ୍ତ୍ରୀ ) ବୀର; ସାହସିକ—Valiant; brave.

ଶୌର୍ଯ୍ୟ ବିଶିଷ୍ଟ—ସ. ବଣ. ପୁଂ—(୩ୟା ତତ୍ )—ସାହସିକ (ବ୍ୟକ୍ତି ଓ
Śaurjya biśishṭa କର୍ମ )—Courageous; heroic; brave; valiant; full of courage.
[ଶୌର୍ଯ୍ୟଯୁକ୍ତ—ଅନ୍ୟରୂପ]
[ଶୌର୍ଯ୍ୟ ବିଶିଷ୍ଟା, ଶୌର୍ଯ୍ୟଯୁକ୍ତା—ସ୍ତ୍ରୀ]

ଶୌର୍ଯ୍ୟ ବିହୀନ—ସ.ବଣ. (ପୁଂ) (୩ୟା ତତ୍)—୧ । ସାହସ ଶୂନ୍ୟ—
Śauriya bihina 1. Devoid of heroism or courage
ଶୌର୍ଯ୍ୟ ରହିତ }
ଶୌର୍ଯ୍ୟ ଶୂନ୍ୟ } —ଅନ୍ୟରୂପ. ୨ । ଭୀରୁ—
ଶୌର୍ଯ୍ୟହୀନ } 2. Coward; timid.
ଶୌର୍ଯ୍ୟବିହୀନା }
ଶୌର୍ଯ୍ୟ ରହିତା } —ସ୍ତ୍ରୀ
ଶୌର୍ଯ୍ୟହୀନା }

ଶୌର୍ଯ୍ୟ ବୀର୍ଯ୍ୟ —ସଂ. ବି.—(ଏକାର୍ଥ କ ସମାସ)—ସାହସ ଓ ବଳ—
Śaurjya birjya Heroism and might; bravery and strength.

ଶୌର୍ଯ୍ୟ ମୂଳକ—ସଂ. ବିଣ.—(ବହୁବ୍ରୀହି; ଶୌର୍ଯ୍ୟ ଅଟେ ମୂଳ ଯାହାର)—ସାହସରୁ ଉତ୍ପନ୍ନ—Spring-
Śaurjya mūlaka ing or originating from courage or bravery.

ଶୌର୍ଯ୍ୟଲବ୍ଧ—ସଂ. ବିଣ—(ତୃତୀୟା ତତ୍; ଶୌର୍ଯ୍ୟ+ଲବ୍ଧ)—
Śaurjya labdha ସାହସଦ୍ୱାରା ପ୍ରାପ୍ତ—Acquired by bravery; obtained by courage.

ଶୌର୍ଯ୍ୟଶାଳୀ—ସଂ. ବିଣ ପୁଂ (ଶୌର୍ଯ୍ୟଶାଳିନ୍ ଶବ୍ଦ, ୧ମା. ୧ବ.
Śaurjyaśāli ଶୌର୍ଯ୍ୟ+ବିଶିଷ୍ଟାର୍ଥେ ଶାଳିନ୍)—ଶୌର୍ଯ୍ୟସମ୍ପନ୍ନ,
(ଶୌର୍ଯ୍ୟଶାଳିନୀ—ସ୍ତ୍ରୀ) ସାହସିକ—Courageous; brave; valiant.

ଶୌର୍ଯ୍ୟ ସମ୍ପନ୍ନ—ସଂ. ବିଣ. ପୁଂ (ତୃତୀୟା ତତ୍, ଶୌର୍ଯ୍ୟ+ସମ୍ପନ୍ନ)—
Śaurjya sampanna ସାହସଯୁକ୍ତ; ବୀରତ୍ୱ—Courageous; heroic.
(ଶୌର୍ଯ୍ୟାନ୍ୱିତ—ଅନ୍ୟରୂପ)
(ଶୌର୍ଯ୍ୟସମ୍ପନ୍ନା, ଶୌର୍ଯ୍ୟାନ୍ୱିତା—ସ୍ତ୍ରୀ)

ଶୌର୍ଯ୍ୟାର୍ଜିତ—ସଂ. ବିଣ (ତୃତୀୟା ତତ୍; ଶୌର୍ଯ୍ୟ+ଅର୍ଜିତ)—
Śaurjyārjita ବୀରତ୍ୱଲବ୍ଧ; ଶୌର୍ଯ୍ୟଲବ୍ଧ—Acquired by bravery.

ଶୌଲ(ଇତ୍ୟାଦି)—ଗ୍ରା. ବି (ସଂ. ଶକୁଲ)—ଶେଉଳ ମାଛ
Śaula(etc) A kind of scaly fresh water fish.
শোল মাছ सौरी मछली

ଶୌଳ୍କ—ସଂ. ବିଣ (ଶୁଳ୍କ+ଅ)—ଶୁଳ୍କ ସମ୍ବନ୍ଧୀୟ—
Śaulka Relating to toll or tax.
(ଶୌଳ୍କିକ—ଅନ୍ୟରୂପ) ବି (ପୁଂ)—ଶୁଳ୍କ ବା ଟିକସ ଅଦାୟକାରୀ କର୍ମଚାରୀ—Toll collector; tax collector; customs officer.

ଶୌଳ୍କିକେୟ—ସଂ.ବି (ଶୌଳ୍କିକା=ଦେଶବିଶେଷ+ଭବାର୍ଥେ, ଏୟ)—
Śaulkikeya ଏକ ପ୍ରକାର ବିଷ—A kind of poison.

ଶୌଷ୍କ(ଷ୍କୁ)ଲ—ସଂ. ବିଣ. ପୁଂ (ଶୁଷ୍କଲୀ=ଶୁଷ୍କ ମାଂସ+ଅ)—ମତ୍ସ୍ୟ-
Śaushka(shku)la ମାଂସଭୋଜୀ; ମାଂସାଶୀ—Carnivorous; meat-eating. ବି—ଶୁଷ୍କମାଂସ ବା ଶୁଖୁଆର ମୂଲ୍ୟ—Price of dried fish or meat.

ଶୌଷ୍କାସ୍ୟ—ସଂ. ବି (ଶୁଷ୍କ+ଆସ୍ୟ+ଭାବ. ଅ)—ମୁଖର ଶୁଷ୍କତା—
Śaushkāsya Dryness of one's face.

ଶ୍ଚାଣ୍ଡକଫଳା—ସଂ. ବି—ଫଣଫଣା (ଡବେକୃଷ୍ଣ, ଦ୍ରବ୍ୟଗୁଣ) (ଦେଖ)
Śchāṇdakaphalā Bignonia Indica (See)

ଶ୍ଚୁ(ଶ୍ଚ୍ୟୁ)ତ (ଧାତୁ)—ସଂ—କ୍ଷରଣ ହେବା—
Śchu(śchyu)t To ooze,

ଶ୍ଚୋ(ଶ୍ଚ୍ୟୋ)ତ—ସଂ. ବି (ଶ୍ଚୁତ୍ ବା ଶ୍ଚ୍ୟୁତ୍ ଧାତୁ+ଭାବେ ଅ)—
Śchośchyo)ta ୧ । କ୍ଷରଣ; ଝରଣ; ଟୋପା ଟୋପା ହୋଇ ପଡ଼ିବା—1. Oozing; trickling out; dropping. ୨ । ପ୍ରୋକ୍ଷଣ; ଜଳସେଚନ—
2. Sprinkling of water.

ଶ୍ଚୋ(ଶ୍ଚ୍ୟୋ)ତନ—ସଂ. ବିଣ. ପୁଂ [ଶ୍ଚୁତ୍ ବା ଶ୍ଚ୍ୟୁତ୍ ଧାତୁ+କର୍ତ୍ତୃ ଅନ୍
Ścho(śchyo)tan (ଅନ)]—କ୍ଷରଣଶୀଳ; ଝରୁଥିବା—
(ଶ୍ଚୋ[ଶ୍ଚ୍ୟୋ]ତନୀ—ସ୍ତ୍ରୀ) Oozing; leaking.

ଶ୍ୱଃ—ସଂ. ଅ (ଶ୍ୱସ୍=ଆଗାମୀ କାଲି ସ୍ଥାନରେ ଶ୍ୱଃ; ନିପାତନ)—
Śwah ଆଗାମୀ କାଲି—Tomorrow. ବିଣ—(ଶୁ+ଅ; ନିପାତନ, ଶୁ ସ୍ଥାନରେ ଶ୍ୱଆଦେଶ)-୧ । ସୁନ୍ଦର; ଶୋଭନ—
1. Beautiful. ୨ । ଆଗାମୀ—2. Impending; next.

ଶ୍ୱ—[ଦ୍ର—ସଂସ୍କୃତ ବ୍ୟାକରଣର ବର୍ଣ୍ଣମାଳା ଓ ଉଚ୍ଚାରଣ ବିଚାରରୁ ଦୃଷ୍ଟି କଲେ
Św 'ଶ୍ୱ' ଶ୍ର ପରେ ଲେଖାଯିବା ଉଚିତ, କିନ୍ତୁ ଏ ଶବ୍ଦକୋଶରେ ଅବଲମ୍ବିତ ବର୍ଣ୍ଣମାଳାକ୍ରମ ଅନୁସାରେ 'ଫ' ଅକ୍ଷର ପରେ ବର୍ଗୀୟ ଓ ଅବର୍ଗୀୟ 'ବ' ବିଧେୟ ହୋଇଥିବାରୁ 'ଶ୍ୱ' ଶ୍ମ ପରେ ଦିଆ ନ ଯାଇ 'ଶ୍ର' ପରକୁ ଦିଆଗଲା ।]

ଶ୍ୱଃ ଶ୍ରେୟଃ—ସଂ. ବି (କର୍ମଧା, ଶ୍ୱଃ=ଶୋଭନ; ସୁନ୍ଦର+ଶ୍ରେୟସ୍=
Śwah śreyah ମଙ୍ଗଳ; ଶ୍ୱଃଶ୍ରେୟସ୍ ୧ମା. ୧ବ)—୧ । ମଙ୍ଗଳ; ଶୁଭ; କଲ୍ୟାଣ—1. Wellbeing; welfare. ୨ । ସୁଖ—2. Bliss; happiness; pleasure. ୩ । ସୌଭାଗ୍ୟ—3. Prosperity; good fortune. ୪ । ପରମାତ୍ମା—4. The Holy Spirit; the Divine Essence in man, "The God in man and the man in God."

ଶ୍ୱଃ ଶ୍ରେୟସ—ସଂ. ବିଣ (ଶ୍ୱଃ ଶ୍ରେୟସ୍ ଶବ୍ଦ+ଅ)—୧ । କଲ୍ୟାଣୀ;
Śwah śreyasa ସୌଭାଗ୍ୟଯୁକ୍ତ—1. Fortunate;
(ଶ୍ୱଃ ଶ୍ରେୟସୀ—ସ୍ତ୍ରୀ) lucky; prosperous; blissful. ୨ ।
[ଶ୍ୱଃ ଶ୍ରେୟଃ—କ୍ଳୀ] ସୁଖୀ—2. Happy. ସଂ. ବି—ଶ୍ୱଃଶ୍ରେୟସ (ଦେଖ)—Śwah śreys. (See)

ଶ୍ୱକ୍ରୀଡ଼ୀ—ସଂ. ବି. ପୁଂ (ଶ୍ୱନ୍+କ୍ରୀଡ଼ ଧାତୁ+କର୍ତ୍ତୃ. ଇ)—ସେ
Śwakrirdi ଶିକାର ପାଇଁ କୁକୁର ପୋଷେ—A keeper or
(ଶ୍ୱକ୍ରୀଡ଼ନୀ—ସ୍ତ୍ରୀ) breeder of sporting dogs.

ଶ୍ୱଗଣ—ସଂ. ବି (ଷଷ୍ଠୀ ତତ୍; ଶ୍ୱନ୍=କୁକୁର+ଗଣ)—କୁକୁର
Śwagaṇa ସମୂହ; କୁକୁର ଦଳ—A pack of dogs; a number of dogs.

ଶ୍ୱଗଣୀ—ସଂ. ବି. ପୁଂ (ଶ୍ୱଗଣ+ଇନ୍; ୧ମା. ୧ବ)—ବ୍ୟାଧ; ଶିକାରୀ
Swagaṇi (ଅମରକୋଷ)—Hunter.
(ଶ୍ୱଗଣିକ—ଅନ୍ୟରୂପ)

ଶ୍ୱଗ୍ରହ—ସଂ. ବି—ବାଳଗ୍ରହ ବିଶେଷ—A kind of infantile
Śwagraha disease. [ଦ୍ର—ଏ ଗ୍ରହଦ୍ୱାରା ଆକ୍ରାନ୍ତ ହେଲେ ଶିଶୁର କମ୍ପ, ସ୍ୱେଦ, ନିମୀଳିତ ଚକ୍ଷୁ, ଉର୍ଦ୍ଧ୍ୱଶ୍ୱାସ, ଧନୁଷ୍ଟମ୍ଭ, ଓଷ୍ଠାଦଂଶନ, ଅଙ୍ଗ ଓ କର୍ଣ୍ଣ କୁଞ୍ଚନ,

ଅଭକ୍ଷ୍ୟ ଭକ୍ଷଣ, ଗାଢରେ ବସ୍ତ୍ରାଦି ଗନ୍ଧ ଏବଂ କୁକୁରର ଲକ୍ଷଣ ହୁଏ—ବୈଦ୍ୟକୋଷ ।]

**ଶ୍ୱଦଂଷ୍ଟ୍ରକ**—ସଂ. ବି (ବୈଦ୍ୟକ)—ଗୋକ୍ଷୁରକ; ଗୋଖରା ଗୁଳ୍ମ—
Śwadamshtraka A throny plant and fruit; Tygophyllae, Tribulus Terrestris. [ ଦ୍ର—ଏହାର ଫଳ ଓ ଶାଖାର କଣ୍ଟକମୟ ଅଛେ ଓ ଏହା ଭୂମିରେ ମାଡେ ।]

**ଶ୍ୱଦଂଷ୍ଟ୍ରା**—ସଂ. ବି—୧ । ଶ୍ୱଦଂଷ୍ଟ୍ରକ (ଦେଖ)
Śwadamshtra 1. Śwadamstraka, (See)
୨ । ଶ୍ୱଦନ୍ତ (ଦେଖ)—2. Śwadanta. (See)

**ଶ୍ୱଦନ୍ତ**—ସଂ. ବି (ଷଷ୍ଠୀ ତତ୍; ଶ୍ୱନ୍=କୁକୁର+ଦନ୍ତ; ପ୍ରାଣୀମାନଙ୍କର
Śwadanta ଯେଉଁ ଦନ୍ତ କୁକୁର ଦାନ୍ତର ଲକ୍ଷଣ ଓ ମୁଖ୍ୟ)—
ମନୁଷ୍ୟାଦି ପ୍ରାଣୀଙ୍କର ଉପର ଓ ତଳ ପାଟିର ଥିବା ମୁଖ୍ୟ ଦାନ୍ତ; ଶୌଦନ ଦନ୍ତ—Canine teeth; Dentes Canine. [ ଦ୍ର—ଏହି ଦାନ୍ତର ସଂଖ୍ୟା ୪ ଗୋଟି । ଉପର ପାଟିର ଓ ତଳ ପାଟିର ଡାହାଣ ଓ ବାଆଁ ପାଖରେ କ୍ଷମ ଦାନ୍ତ ଓ କଳଦାନ୍ତ ମଝିରେ ଥିବା ଗୋଟିଏ ଲେଖାଏଁ ମୁଖ୍ୟ ଓ ବାହୁଅ ଦାନ୍ତ । ଏହି ଦାନ୍ତଦ୍ୱାରା ଜୀବ ଖାଦ୍ୟବସ୍ତୁକୁ କାଟିପାରେ ଓ ଅଟକାଇ ଧରିପାରେ ।]

**ଶ୍ୱଧୂର୍ତ୍ତ**—ସଂ. ବି. ପୁଂ (ଶ୍ୱନ୍=କୁକୁର+ଧୂର୍ତ୍ତ=ପ୍ରତାରକ)—
Śwadhurtta ଶୃଗାଳ; ବିଲୁଆ—Jackal. [ ଦ୍ର—[ଶ୍ୱଧୂର୍ତ୍ତା—ସ୍ତ୍ରୀ] ବିଲୁଆମାନଙ୍କ ଧୂର୍ତ୍ତତା ସବୁ ଦେଶରେ ପ୍ରବାଦ-ପ୍ରସିଦ୍ଧ ଅଛେ ।]

**ଶ୍ୱନ**—ସଂ. ବି (ପଦ)—(ଶ୍ୱି. ଧାତୁ=ବୃଦ୍ଧି ପାଇବା+ଅନ୍; ଯାହାର
Śwan ଅଙ୍ଗରେ ବହୁ ଶିଶୁ ଜନ୍ମ ହେବାରୁ ବଂଶ ଶୀଘ୍ର ବୃଦ୍ଧି ପାଏ; ଶ୍ୱନ୍ ଶବ୍ଦର ପୁଂଲିଙ୍ଗ ୧ମା. ୧ବ. ପୁଂ. ଶ୍ୱା ଓ ସ୍ତ୍ରୀଲିଙ୍ଗ ଶୁନୀ)—କୁକୁର—The dog.

**ଶ୍ୱନର**—ସଂ. ବି (ପୁଂ) (ଶ୍ୱନ୍+ନର; ଉପମିତ କର୍ମଧାରୟ)—ତଡ଼ିଲି
Śwanara ଲୋକ—A snappish or currish fellow (Apte).

**ଶ୍ୱନିଶ(ଶା)**—ସଂ. ବି (ସ. ପ. ଲୋ; ଶ୍ୱନ୍ ଶବ୍ଦ=କୁକୁର+ନିଶା;
Śwaniśa(śa) କୁକୁରମାନଙ୍କ ଚିତ୍କାରଯୁକ୍ତା ନିଶା)—ଯେଉଁ ରାତିରେ କୁକୁରମାନେ ଭୟଙ୍କର ରାବ ଚିତ୍କାର କରନ୍ତି—A night in which the dogs of the neighbourhood bark furiously. [ଦ୍ର—କେବେ କେବେ ରାତିରେ ସହରରେ ଓ ମଫସଲରେ କୌଣସି କୌଣସି କାରଣରୁ ସାହିର କୁକୁରମାନେ ରାତିରେ ଏଣେ ତେଣେ ଦଉଡ଼ନ୍ତି ଓ ଅଧୀର ହୋଇ ଭୁକନ୍ତି । ତହିଁରୁ ବହୁ ଲୋକେ ଅନୁମାନ କରନ୍ତି ଯେ, ଗତ ରାତିରେ ଚୋର, ବାଘ, କେହି ବା ବିଲୁଆ କେହି ଏ ସ୍ଥାନକୁ ଆସିଥିଲେ ।]

**ଶ୍ୱପଚ(ଚ୍, କ୍)**—ସ. (ଶ୍ୱ+ପଚ୍ ଧାତୁ=ରାନ୍ଧିବା+କର୍ତ୍ତୃ· କ୍ୱିପ୍+
Śwapach(cha,k) ଅ; ଯେଉଁମାନେ କୁକୁର ମାଂସ ପର୍ଯ୍ୟନ୍ତ ରାନ୍ଧି ଖାଆନ୍ତି)—୧ । ହାଡ଼ି; ଚଣ୍ଡାଳ—1. A man of the lowest caste; a member of the sweeper caste. [ ଦ୍ର—ଶ୍ୱପଚ ଚଣ୍ଡାଳଙ୍କଠାରୁ ପୃଥକ; ଶାସ୍ତ୍ରମତରେ ଚଣ୍ଡାଳ, ଶ୍ୱପଚ, କ୍ଷତ୍ତା, ସୂତ, ବୈଦେହକ, ମାଗଧ, ଅଯୋଗବ ଏହି ସାତ ଜାତି ଅନ୍ତ୍ୟାବସାୟୀ ଅଟନ୍ତି । ଶ୍ୱପଚଜାତି ଲକ୍ଷଣ ବିହୀନ; ଗ୍ରାମର ବହିର୍ଭାଗରେ ବାସକାରୀ, କୁକୁର ଓ ଗର୍ଦ୍ଦଭମାନଙ୍କ ଅଧିକାରୀ, ଶବ ଦେହୋତ୍ପନ୍ନ ବସ୍ତ୍ରପରିହିତ, ଏମାନଙ୍କର ପାନ-ଭୋଜନପାତ୍ର ଭଗ୍ନଭାଣ୍ଡାଦି, ଅଳଙ୍କାର କୃଷ୍ଣବର୍ଣ୍ଣ ଲୌହ, ଜୀବିକା ଦେଶ ଦେଶାନ୍ତର ବୁଲି ଭିକ୍ଷା । ରାଜାଦେଶରେ ଏମାନେ ଦିବାଭାଗରେ ଚିହ୍ନିତ ଭାବରେ ଗ୍ରାମା-ନ୍ତରରେ ବିଚରଣ କରି ପାରନ୍ତି, କିନ୍ତୁ ରାତିରେ ଗ୍ରାମରେ ଓ ନଗରରେ ଏମାନଙ୍କ ପ୍ରବେଶ ନିଷିଦ୍ଧ । ରାଜାଜ୍ଞାରେ ଏମାନେ ବଧ୍ୟ ବ୍ୟକ୍ତିକୁ ବଧ କରି ଓ ଜନ୍ତୁ-ବାନ୍ଧବହୀନ ମୃତ ବ୍ୟକ୍ତିର ସତ୍କାର କରି ସେମାନଙ୍କର ବସ୍ତ୍ରାଲଙ୍କାର ଶଯ୍ୟା ଗ୍ରହଣ କରନ୍ତି । ଏମାନଙ୍କ ଅନ୍ନ ପାନୀୟ ଉଚ୍ଚବର୍ଣ୍ଣର ହିନ୍ଦୁଙ୍କ ଅଗ୍ରାହ୍ୟ—ବିଶ୍ୱକୋଷ ।]
୨ । ବ୍ୟାଧ—2. A hunter. ୩ । ଅତି ନୀଚ କୁଳୋଦ୍ଭବ ଓ ଅସ୍ପୃଶ୍ୟ ବ୍ୟକ୍ତି—3. One of the dregs of society; a member of the lowest and most depressed caste; a pariah. ୪ । ଅଜାତିଆ ଲୋକ—4. An out-caste. ୫ । ବ୍ରାହ୍ମଣୀ ଗର୍ଭରୁ ଶୂଦ୍ର ଔରସରେ ଜାତ ସନ୍ତାନ—5. A son of a Śūdra father on a Brahman mother. [ ଦ୍ର—ଗୃହସ୍ଥର ଦୈନିକ କର୍ତ୍ତବ୍ୟ ବୈଶ୍ୱଦେବରେ ଶ୍ୱପଚମାନଙ୍କୁ ଅନ୍ନବଳି ଦେବା ବିଧି ଶାସ୍ତ୍ରରେ ଅଛି ଓ ଅଦ୍ୟାବଧି କଷ୍ଟାବାନ୍ ହିନ୍ଦୁଗୃହସ୍ଥ ପ୍ରତିଦିନ ଅଗ୍ନି, ପିତୃଲୋକ, ଦେବଲୋକ, ଭୂତ, ଋଷି, ଅତିଥି, ବ୍ରାହ୍ମଣଙ୍କ ନାମରେ ବଳି ଦେବାପରେ 'ଓଁ ଶ୍ୱଭ୍ୟୋନମଃ' କହି କୁକୁରମାନଙ୍କ ଉଦ୍ଦେଶ୍ୟରେ 'ଓଁ ଶ୍ୱପଚେଭ୍ୟୋନମଃ' କହି ଚଣ୍ଡାଳମାନଙ୍କ ଉଦ୍ଦେଶ୍ୟରେ ଓ 'ଓଁ ବାୟସେଭ୍ୟୋ ନମଃ' କହି କୁଆମାନଙ୍କ ଉଦ୍ଦେଶ୍ୟରେ ଅନ୍ନବଳି ଦେଇ ଥାଆନ୍ତି ଓ ତତ୍ପରେ ଗୃହସ୍ଥ ନିଜେ ଭୋଜନ କରନ୍ତି । ଏଥିରୁ ଦେଖାଯାଏ ଯେ, ଗୃହସ୍ଥ ନିଜେ ଭୋଜନ କରିବା ପୂର୍ବରୁ ସମାଗତ ଅତିଥି, ବ୍ରାହ୍ମଣ, କୁକୁର, ହାଡ଼ି, କୁଆମାନଙ୍କୁ ଖାଇବାକୁ ଦେଉଥିଲେ ଓ ପୁତ୍ରର ସମସ୍ତଙ୍କ ଭୋଜନ ପରେ ଗୃହିଣୀ ଭୋଜନ କରୁଥିଲେ ।]

**ଶ୍ୱପଚ ବଳି**—ସଂ. ବି—ହିନ୍ଦୁ ଗୃହସ୍ଥର ପ୍ରତିଦିନ କର୍ତ୍ତବ୍ୟ ବୈଶ୍ୱଦେବ
Śwapacha buli ସମୟରେ ଚଣ୍ଡାଳମାନଙ୍କୁ ଦିଆଯିବା ଅନ୍ନବଳି
Daily offering of cooked rice given to

the low caste people by the Hindu householder before taking his own meal.

ଶ୍ୱପ(ପା)ଦ—ସଂ. ବି—(୬ଷ୍ଠୀ ତତ୍)—କୁକୁରର ପାଦ ଆକାରର ଚିହ୍ନ—
Śwapa(pā)da A mark resembilng a dog's foot.
[ଦ୍ର—ମନୁ (୯।୨୩୭)ରେ ଅଛି ଯେ ତପ୍ତ ଲୌହ ଦ୍ୱାରା ଗୁରୁତଳ୍ପଗ ଅପରାଧୀର ଲଲାଟ ଦେଶରେ ଭଗଚିହ୍ନ, ସୁରାପାୟୀର ଲଲାଟରେ ସୁରାପାନ ଚିହ୍ନ, ଚୋରର ଲଲାଟରେ କୁକୁରର ପାଦଚିହ୍ନ ଓ ବ୍ରହ୍ମହାର ଲଲାଟରେ ମସ୍ତକହୀନ ପୁରୁଷର ଚିହ୍ନ ରାଜାଜ୍ଞାରେ ଲଗ୍ନ ହେବ ।]

ଶ୍ୱପାକ—ସଂ. ବି (ଶ୍ୱନ୍+ପାକ; କୁକୁରର ମାଂସ ରନ୍ଧ ଭୋଜନକାରୀ
Śwapāka ଜାତି) ୧ । ଚଣ୍ଡାଳ—1. Lowest sweeper caste. ୨ । ବ୍ୟାଧ—2. Hunter [ଦ୍ର—ମନୁ (୧୦।୧୯)ରେ ଅଛି ଯେ, ଏ ଜାତି ଯତ୍ତା (ଶୂଦ୍ର+କ୍ଷତ୍ରିୟା ଜାତ) ପିତା ଓ ଉଗ୍ରା (କ୍ଷତ୍ରିୟ+ଶୂଦ୍ରା ଜାତା) ମାତାଠାରୁ ଉତ୍ପନ୍ନ ।]

ଶ୍ୱପୁଚ୍ଛ—ସଂ. ବି ୧ । (୬ଷ୍ଠୀ ତତ୍) କୁକୁର ଲାଙ୍ଗୁଡ—1. Dog's
Śwapuchha tail. ୨ । (ବହୁବ୍ରୀହି) ବିଛା—2. Scorpion.

ଶ୍ୱଫଳ—ସଂ. ବି—୧ । କାଗଜି ଲେମ୍ବୁ; ବୀଜପୂର—1. Citron;
Śwaphaḷa lime (Apte). ୨ । ଚୂନ (ଶବ୍ଦକୋଷ)—2. Qucklime.

ଶ୍ୱଫଲ୍କ—ସଂ. ବି(ପୁଂ) (ନାମ)—ଯଦୁବଂଶୀୟ ବୃଷ୍ଣିପୁତ୍ର, ଅକ୍ରୂରଙ୍କ ପିତା—
Śwaphaḷka Name of the father of Akrūra'a devoted and sincere admirer of Śrī kṛushṇa [ଦ୍ର—ଏହାଙ୍କ ସ୍ତ୍ରୀଙ୍କ ନାମ ଗାନ୍ଦିନୀ]

ଶ୍ୱବାନ୍—ସଂ. ବି. ପୁଂ.—(ଶ୍ୱନ୍+ବତ୍)—କ୍ରୀଡ଼ା ପାଇଁ ଯେ କୁକୁର
Śwabān ପୋଷନ୍ତି (ଶବ୍ଦକୋଷ)—Persons rearing dogs for sport. [ଦ୍ର—ମନୁ (୩।୧୬୨) ଲେଖି ଅଛନ୍ତି ଯେ, ଏମାନଙ୍କ ଘରେ ଅନ୍ନଭୋଜନ ବର୍ଜିବ]

ଶ୍ୱବୃତ୍ତି—ସଂ. ବି (୬ଷ୍ଠୀ ତତ୍; ଶ୍ୱନ୍+ବୃତ୍ତି)—୧ । ଶ୍ୱାନବୃତ୍ତି; ପରର
Śwabṛutti ଭୁକ୍ତାବଶେଷ ବା ଅଇଁଠା ଖାଇବା ବୃତ୍ତି—
1. Living on the leavings off of another's meal ୨ । ଦାସବୃତ୍ତି; ଦାସତ୍ୱ; ପରପାଖେ ଚାକର—
2. Servitude; slavery (lit. a dog's life).
୩ । (ବହୁବ୍ରୀହି) ପରାନ୍ନୋପଜୀବୀ—3. A toady; a hanger on.

ଶ୍ୱବ୍ୟାଘ୍ର—ସଂ. ବି (ଶ୍ୱନ୍+ବ୍ୟାଘ୍ର; ଶ୍ୱାନ୍ ପରି ଯେଉଁ ବ୍ୟାଘ୍ର)—
Śwabyāghra ଚିତାବାଘ; ନେପାଳି ବାଘ; ଚେନ୍ଦୁଆ—Leopard.

ଶ୍ୱଭୀରୁ—ସଂ. ବି (୫ମୀ ତତ୍; ଶ୍ୱନ୍+ଭୀରୁ, ଶ୍ୱାନଠାରୁ ଯେ
Śwabhīru ଭୟ ପାଏ]—ଶୃଗାଳ; ବିଲୁଆ—Jackal.

ଶ୍ୱଭୋଜନ—ସଂ. ବି—କୁକୁର ମାଂସ ଭୋଜନ [ଶବ୍ଦକୋଷ]—
Śwabhojana Eating of dog's meat.

ଶ୍ୱଭ୍ର[ଧାତୁ]—ସଂ.—୧ ଗର୍ତ୍ତ କରିବା—1. To make a hole.
Śwabhra(root) ୨ । ଛିଦ୍ର କରିବା—2. To drill; to perforate.

ଶ୍ୱଭ୍ର—ସଂ. ବି [ଶ୍ୱଭ୍ର ଧାତୁ+କର୍ମ ଅ]—୧ । ରନ୍ଧ୍ର; କଣା; ଛିଦ୍ର;
Swabhra ଗର୍ତ୍ତ—1. Hole; bore. ୨ । ଗହ୍ୱର—2. Chasm; ravine.

ଶ୍ୱମାଂସ—ସଂ. ବି—[୬ଷ୍ଠୀ ତତ୍]—ଖାଦ୍ୟରୂପେ ବ୍ୟବହୃତ କୁକୁର
Śwamāṁsa ମାଂସ—Dog's meat. [ଦ୍ର—ଶାସ୍ତ୍ର ଅନୁସାରେ କୁକୁର ମାଂସ ଭୋଜନ ବର୍ଜିବ ହେଲେହେଁ ମନୁ (୧୦।୧୦୮) ରେ ଲେଖା ଅଛି ଯେ, ବାମଦେବ ଋଷି ସାତିଶୟ କ୍ଷୁଧାର୍ତ୍ତ ହୋଇ କୁକୁର ମାଂସ ଖାଇ ପ୍ରାଣ ରକ୍ଷା କରିଥିବାରୁ ପାପଭାଗୀ ହୋଇ ନ ଥିଲେ ।

ଶ୍ୱୟଥୁ—ସଂ. ବି—(ଶ୍ୱି ଧାତୁ=ସ୍ଫୀତ ହେବା+ଭାବ. ଅଥୁ: ତୁଳ;
Śwayathu ବେପଥୁ; ବମଥୁ)—୧ । ଫୀତ; ଫୁଲା; ଫୀତତା—
1. Swelling. ୨ । ଶୋଥ; ଫୀତତା ରୋଗ—
2. Intumescence; a disease accompanied with swelling. ୩ । ଶୋଥ ରୋଗ—3 Plethora; dropsy. ୪ । ପୁରୁଣି (ଶାଗ ଓ ଲତା)
4. Boerhagvia Diffusa; the Hogweed pot herb.

ଶ୍ୱୟୂଥ—ସଂ. ବି—(୬ଷ୍ଠୀ ତତ୍)—କୁକୁର ଦଳ—
Śwajūtha A pack of dogs.

ଶ୍ୱରଣ—ସଂ. ବି—ଓଲୁଅ (ହରେକୃଷ୍ଣ. ଦ୍ରବ୍ୟଗୁଣ)—
Śwaraṇa Amorphophallus Campanulatus.

ଶ୍ୱଶୁର—ସଂ. ବି. ପୁଂ—(ଶୁ=ମାନ୍ୟାର୍ଥକ ଅବ୍ୟୟ+ଅଶ୍ ଧାତୁ=
Śwaśura ବ୍ୟାପିବା+କର୍ତ୍ତୃ, ଉର; ଜଟାଧର; ସର୍ବଥା ସମ୍ମାନ-
[ଶ୍ୱଶ୍ରୂ—ସ୍ତ୍ରୀ] ନୀୟ ବ୍ୟକ୍ତି—ତୁଳନା କର—ଲାଟିନ୍—ସସର)—
୧ । ଆପଣାର ସ୍ୱାମୀଙ୍କର ବା ଆପଣା ସ୍ତ୍ରୀଙ୍କର ପିତା—
1. Father-in-law. ୨ । ମାନ୍ୟ ବା ପୂଜ୍ୟ ବ୍ୟକ୍ତି—2. A respectable person; a person deserving respect.

ଶ୍ୱଶୁରାଳୟ—ସଂ. ବି—(୬ଷ୍ଠୀ ତତ୍; ଶ୍ୱଶୁର+ଆଳୟ)—୧ । (ପୁରୁଷ
Śwaśurāḷaya ପକ୍ଷରେ) ଆପଣା ସ୍ତ୍ରୀଙ୍କ ବାପଘର—1. A man's father-in-law's house. ୨ । (ସ୍ତ୍ରୀ ପକ୍ଷରେ) ଆପଣାର ସ୍ୱାମୀଙ୍କ ଗୃହ; ଶାଶୁଘର—2. (A woman's) Husband's house.

ଶ୍ୱ(ଶ୍ୱା)ଶୁର୍ଯ୍ୟ—ସଂ. ବି. ପୁଂ—(ଶ୍ୱଶୁର+ଅପତ୍ୟାର୍ଥେ. ଯ)—୧ । ପୁରୁଷ
Śwa(śwā)śurjya ପକ୍ଷେ) ଶଳା; ଶ୍ୟାଳକ—1. A man's
[ଶ୍ୱଶୁର୍ଯ୍ୟା—ସ୍ତ୍ରୀ] wife's brother. ୨ । (ସ୍ତ୍ରୀ ପକ୍ଷେ) ଦିଅର ବା ଦେବଶୁର—2. A woman's husband's brother.

ଶ୍ୱଶୁର୍ଯ୍ୟା—ସଂ. ବି. ସ୍ତ୍ରୀ—(ଶ୍ୱଶୁର୍ଯ୍ୟ+ସ୍ତ୍ରୀ. ଆ)—୧ । (ପୁରୁଷ ପକ୍ଷେ)
Śwaśurjyā ଶ୍ୟାଳିକା ବା ଦେଢ଼ଶାଶୁ—1. A man's

wife's sister. ୨ । (ସ୍ତ୍ରୀ ପକ୍ଷେ) ନଣନ୍ଦ—2. A woman's husband's sister.

ଶ୍ୱଶ୍ରୂ—ସଂ. ବି. ସ୍ତ୍ରୀ—( ଶ୍ୱଶୁର+ସ୍ତ୍ରୀ. ଊ, ନିପାତନ—ତୁଳନାକର
Śwaśrū ଲାଟିନ, ସକ୍ରୂ; ଗ୍ରୀକ୍ ହେକୁରା)—ଶାଶୂ; ସ୍ୱାମୀ ବା ସ୍ତ୍ରୀଙ୍କ
[ଶ୍ୱଶୁର—ପୁଂ] ମାତା—Mother-in-law.

ଶ୍ୱଶ୍ର୍ୱାଳୟ—ସଂ. ବି—(୬ଷ୍ଠୀ ତତ୍; ଶ୍ୱଶ୍ରୂ+ଆଳୟ)—(ସ୍ତ୍ରୀ ପକ୍ଷେ)—
Śwaśrwālaya ଶାଶୁଘର—A woman's husband's house.

ଶ୍ୱସ୍ (ଧାତୁ)—ସଂ.—୧ । ନିଶ୍ୱାସ ମାରିବା—
Śwas (root) 1. To breathe.
୨ । ଦୀର୍ଘଶ୍ୱାସ ମାରିବା—2. To sigh; to sob.
୩ । ସୁ ସୁ ଶବ୍ଦ କରିବା—3. To hiss (Apte).
[ଦ୍ର—ନି+ଶ୍ୱସ୍ ଧାତୁ—ବାହାରକୁ ନିଶ୍ୱାସ ନେବା—
To exhale. ପ୍ର+ଶ୍ୱସ୍ ଧାତୁ=ନିଶ୍ୱାସ ଗ୍ରହିବା—
To inhale. ବି+ଶ୍ୱସ୍ ଧାତୁ—ଆସ୍ଥା କରିବା—
To trust; to confide in]

ଶ୍ୱସନ—ସଂ. ବି—(ଶ୍ୱସ୍ ଧାତୁ+ଭାବ. ଅନ)—୧ । ନିଶ୍ୱାସ—1.
Śwasana Breath; respiration. ୨ । ନିଶ୍ୱାସମାରିବା
2. Breathing. ୩ । ଶ୍ୱାସ ଗ୍ରହଣ ଓ ତ୍ୟାଗ—
3 Inhalation and exhalation. ୪ ।
(+କରଣ. ଅନ)—ଜୀବନ—4. Life. ୫ । ପବନ;
ବାୟୁ—5. Air. ୬ । ସ୍ପର୍ଶନ (ଭାଗବତ)—6.
Touching. ୭ । ମଦନ ବୃକ୍ଷ [ବିଦ୍ୱକୋଷ]—
7. The bushy Gardenia (tree)
୮ । (+କରଣ ଅନ) ନାସିକା [ବିଶ୍ୱକୋଷ]—8. Nose.

ଶ୍ୱସନ ସୁତ—ସଂ.ବି—(ଶ୍ୱସନ=ବାୟୁ+ସୁତ; ୬ଷ୍ଠୀ ତତ୍)—ହନୁମାନ—
Śwasana suta Hanumān; the son of the Wind.
[ଉ—ବସନ ସ୍ତ୍ରିତ ଶ୍ୱସନ ସୁତ ନଲ ସୁପ୍ରସନ୍ନ ବଦନ୍ମ ଦେବାରେ ସେ—ଉପେ. ବୈଦେହୀଶବିଳାସ ।]

ଶ୍ୱସନାଶନ—ସଂ. ବିଣ. ପୁଂ—(ବହୁବ୍ରୀହି; ଶ୍ୱସନ=ବାୟୁ+ଅଶନ
Śwasanāśana ଖାଦ୍ୟ ଯାହାର)—ପବନାହାରୀ—Living on air. ବି.—ସର୍ପ—Serpent. [ଦ୍ର—
ସର୍ପମାନେ ପବନ ଖାଇ ଜୀବନ ଧାରଣ କରିବାର ପ୍ରବାଦ ଅଛି ।]

ଶ୍ୱସମାନ—ସଂ. ବିଣ. ପୁଂ—୧।(ଶ୍ୱସ୍ ଧାତୁ+କର୍ତ୍ତୃ. ଅନ)—ଯେ ନିଶ୍ୱାସ
Śwasamāna ମାରୁ ଅଛି—1., Respiring; breathing.
୨ । ଜୀବିତ—2. Living.

ଶ୍ୱସିତ—ସଂ. ବିଣ—[ଶ୍ୱସ ଧାତୁ+କର୍ତ୍ତୃ. ତ]—ଜୀବିତ—
Śwasita Living: respiring. ବି.—୧ । [+
ଭାବ. ତ] ଜୀବନ—1. Life; existence. ୨ ।
ନିଶ୍ୱାସ—2. Breath; respiration.

ଶ୍ୱସୁନ—ସଂ. ବି—[ବୈଦ୍ୟକ]—କୁକୁରଶୁଙ୍କା; ଗନ୍ଧଗୁଳ୍ମ, ପୋକ-
Śwasuna ଶୁଙ୍ଘା—Blumea Odorata (plant).

ଶ୍ୱସ୍ତନ—ସଂ. ବିଣ—[ ଶ୍ୱଃ=ଆଗାମୀ କାଲି+ଭବାର୍ଥେ ତନ]—୧ ।
Śwastana ଯାହା କାଲି ଘଟିବ—1. About to happen to-morrow. ୨ । ଭବିଷ୍ୟତ୍କାଳୀନ—
2. Future

ଶ୍ୱା—ସଂ. ବି. ପୁଂ—[ଶ୍ୱି ଧାତୁ=ବୃଦ୍ଧି ପାଇବା+କର୍ତ୍ତୃ. ଅନ, ନିପାତନ,
Śwā ଶ୍ୱନ୍ ଶବ୍ଦ ୧ମା. ୧ବ]—କୁକୁର—Dog.

ଶ୍ୱାଇବା—ଗ୍ରା. କ୍ରି—[ସଂ. ଶୀ ଧାତୁ ଣିଚ]—ଶୁଆଇବା [ଦେଖ]
Śwāibā Śuāibā (See).

ଶ୍ୱାଗଣିକ—ସଂ. ବି. ପୁଂ—(ଶ୍ୱଗଣ=କୁକ୍କୁର ଦଳ+ଜୀବିକାର୍ଥରେ
Śwāganika ଇକ)—୧ । ବ୍ୟାଧ; ମୃଗୟୁ; ଶିକାରୀ—1. A hunter. ୨ । ଯେଉଁ ବ୍ୟାଧ କୁକୁର ଦଳ ସାହାଯ୍ୟରେ
ଶିକାର କରେ—2. One who hunts with a pack of hounds.

ଶ୍ୱାଦ—ସଂ. ବି—(ଶ୍ୱନ୍+ଅଦ୍ ଧାତୁ=ଖାଇବା+କର୍ତ୍ତୃ.ଅ)—ଶ୍ୱପଚ;
Swāda ଚଣ୍ଡାଳ [ବିଶ୍ୱକୋଷ]—A chaṇḍāḻa.

ଶ୍ୱା ଦନ୍ତ(ଦଂଷ୍ଟ୍ରା)—ସଂ. ବି (୬ଷ୍ଠୀ ତତ୍)—କୁକ୍କୁର ଦାନ୍ତ
Śwā danta(daṁshtrā) A dog's teeth.

ଶ୍ୱାନ—ସଂ. ବି (ଶ୍ୱନ୍+ସ୍ୱାର୍ଥେ. ଅ)—୧ । କୁକୁର—1. Dog. ୨ ।
Śwāna କୁକୁର ସମୂହ—2. A pack of dogs.
(ଶ୍ୱାନୀ—ସ୍ତ୍ରୀ)

ଶ୍ୱାନକୁଣ୍ଡଳୀ ଆସନ—ଦେ. ବି—ଯୋଗାସନ ବିଶେଷ—A posture
Śwānakuṇḍaḻī āsana for sitting in meditation.
[ ଉ—ଶ୍ୱାନକୁଣ୍ଡଳୀ ଆସନ ଯେ କରେ, ଶିବପଞ୍ଚାକ୍ଷର ଜପେ ମୁଖରେ—ସ୍ୱାମୀ. ଅରକ୍ଷିତ ଗୀତ । ]

ଶ୍ୱାନ ଚିଲ୍ଲିକା—ସଂ. ବି—ଚିଲ୍ଲିକା ୪ ( ଦେଖ )
Śwāna chillikā Chillikā 4 ( See )

ଶ୍ୱାପଦ—ସଂ. ବି ( ବହୁବ୍ରୀହି; ଶ୍ୱନ୍+ପଦ, ନିପାତନ; କୁକୁର ପଦ ପରି
Śwāpada ପଦ ଯାହାର)—୧ । ଶିକାରୀ ଜନ୍ତୁ; ହିଂସ୍ରଜନ୍ତୁ;
ଯେଉଁ ସବୁ ଜନ୍ତୁ ମାଂସାହାର କରି ବଞ୍ଚନ୍ତି; ମାଂସାଶୀ ଜନ୍ତୁ-
1. Beasts of prey; carnivorous animals.
[ ଦ୍ର—ବିଲୁଅ, କୁକୁର, ବିରାଡ଼ି, ନେଉଳ, ସିଂହ, ବାଘ, ଭାଲୁ ପ୍ରଭୃତି ଶ୍ୱାପଦ ଶ୍ରେଣୀର ଅନ୍ତର୍ଗତ । ] ୨ । ବ୍ୟାଘ୍ର ( ଶବ୍ଦରତ୍ନମାଳା )—2. Tiger. ବିଣ—ହିଂସ୍ର—Ferocious.

ଶ୍ୱାପଦମୟ—ସଂ. ବିଣ ( ଶ୍ୱାପଦ+ପ୍ରାଚୁର୍ଯ୍ୟାର୍ଥେ ମୟ )—ହିଂସ୍ରଜନ୍ତୁ ପୂର୍ଣ୍ଣ;
Śwāpadamayā ( ଯେଉଁ ଅରଣ୍ୟରେ ) ହିଂସ୍ରଜନ୍ତୁ ଅନେକ ଥାଆନ୍ତି—(forest or place) Full of wild animals; where beasts of prey abound.
ଶ୍ୱାପଦ ସଙ୍କୁଳ, ଶ୍ୱାପଦ ସମାକୀର୍ଣ୍ଣ, ଶ୍ୱାପଦାକୀର୍ଣ୍ଣ } ଅନ୍ୟରୂପ

ଶ୍ୱାବିତ୍(ଧ)—ସଂ. ବି ( ଶ୍ୱନ୍=କୁକୁର+ଆ+ବ୍ୟଧ୍ ଧାତୁ=ବିଦ୍ଧ କରିବା
Śwābit(dha) +କର୍ତ୍ତୃ. କ୍ୱିପ୍;+ଅ, ଯେ କୁକୁରକୁ ଅପଣାର ମୁନିଆ କାଟିହାରେ ବିଦ୍ଧ କରେ, ଏଥିପାଇଁ କୁକୁର ତାକୁ

ଶିକାର କର ପାରେ ନାହିଁ )—ଶଲ୍ଲାରୁ; ଝିଙ୍କ—
Percupine.

ଶ୍ୱାଶୁର—ସଂ. ବିଣ ( ଶ୍ୱଶୁର+ସମ୍ବନ୍ଧାର୍ଥେ. ଅ )—ଶ୍ୱଶୁର ସମ୍ବନ୍ଧୀୟ—
Śwāśura Relating to father-in-law.

ଶ୍ୱାଶୁରି—ସଂ. ବି. ପୁଂ ( ଶ୍ୱଶୁର+ଅପତ୍ୟାର୍ଥେ. ଇ )—୧ । ପୁରୁଷର
Śwāśuri ଶଳା—1. A male's wife's brother.
୨ । ସ୍ତ୍ରୀର ଦେବର—2. A woman's husband's brother.

ଶ୍ୱାଶ୍ୱ—ସଂ.ବି (ଶ୍ୱନ୍=କୁକୁର ଅଟନ୍ତି ଅଶ୍ୱ=ବାହନ ଯାହାର; ବହୁବ୍ରୀହି)
Śwāśwa —ଟୈବାନୁଚର ଭୈରବ—Bhairaba.

ଶ୍ୱାସ—ସଂ. ବି ( ଶ୍ୱସ୍ ଧାତୁ=ନିଶ୍ୱାସ ମାରିବା+ଭାବ. ଅ )—୧ ।
Śwāsa ନିଶ୍ୱାସ ପ୍ରଶ୍ୱାସ; ପ୍ରାଣବାୟୁ—1. Respiration;
[ ଶୁଅ(ହା)ସ—ଗ୍ରାମ୍ୟରୂପ ] breath; inhaled and exhaled breath. [ ଦ୍ର—ସଂ. ଶ୍ୱସ୍ ଧାତୁ=ନିଶ୍ୱାସକୁ ନାକବାଟେ ପେଟ ଭିତରକୁ ନେବା ଓ ପେଟ ଭିତରୁ ବାହାରକୁ ଛାଡ଼ିବା । ଏହି ଧାତୁ ପୂର୍ବରେ 'ନିର୍' ଓ ନି ଉପସର୍ଗ ଲଗାଯାଇ ନିଃଶ୍ୱାସ ଓ ନିଶ୍ୱାସ ଶବ୍ଦ ଓ 'ପ୍ର' ଉପସର୍ଗ ଲଗାଯାଇ ପ୍ରଶ୍ୱାସ ଶବ୍ଦ ହୁଏ । କଥାରେ ଓ ଲେଖା ପ୍ରସଙ୍ଗରେ ଅମ୍ଭେମାନେ 'ଶ୍ୱାସ ପ୍ରଶ୍ୱାସ' ବା 'ନିଶ୍ୱାସ ପ୍ରଶ୍ୱାସ' ଶବ୍ଦ ଦ୍ୱୟକୁ ସହଚର ଶବ୍ଦରୂପେ ବାହାରକୁ ଛଡ଼ାଯିବା ଶ୍ୱାସ ଓ ଭିତରକୁ ନେବା ଶ୍ୱାସ ଏ ଦୁଇ ଅର୍ଥରେ ବ୍ୟବହାର କରୁଁ । ନିଶ୍ୱାସ ଓ ପ୍ରଶ୍ୱାସ ଶବ୍ଦର ଅର୍ଥ ସମ୍ବନ୍ଧରେ ପଣ୍ଡିତ ଓ କୋଷକାରମାନଙ୍କ ମଧ୍ୟରେ ମତଭେଦ ଦେଖା ଯାଏ । (ନିଶ୍ୱାସ ଓ ପ୍ରଶ୍ୱାସ ଶବ୍ଦଦ୍ୱୟ ଦେଖ); କିନ୍ତୁ 'ନିର୍' ଉପସର୍ଗ ଲାଗିଥିବା ନିର୍ଗମନ, ନିର୍ଗତ ଆଦି ଶବ୍ଦରେ 'ନିର୍' ଉପସର୍ଗର ଅର୍ଥ 'ବାହାରକୁ'; ଏପରି ସ୍ଥଳରେ ନିଶ୍ୱାସର ଅର୍ଥ "ଯେଉଁ ଶ୍ୱାସ ବାହାରକୁ ଛଡ଼ାଯାଏ"; ଏହା ଯୁକ୍ତିଯୁକ୍ତ ବୋଧ ହେଉଅଛି ଓ ପ୍ରଶ୍ୱାସର ଅର୍ଥ ଉତ୍କୃଷ୍ଟ ଶ୍ୱାସ ଯେଉଁ ଶ୍ୱାସଦ୍ୱାରା ପ୍ରାଣୀ ବଞ୍ଚେ, ଅର୍ଥାତ୍ ଭିତରକୁ ନିଆଯିବା ଶ୍ୱାସ । ବାହାରକୁ ଛଡ଼ାଯିବା ଶ୍ୱାସ ସ୍ଥଳେ ନିଶ୍ୱାସ ଶବ୍ଦ ବ୍ୟବହୃତ ହେବା କଥା 'ଅମୁକ ଉପରେ ନିଶ୍ୱାସ ପକାଇବା', 'ନିଶ୍ୱାସ ଛାଡ଼ିବା' ଆଦି ଦେଶଜ ବ୍ୟବହାର ଦ୍ୱାରା ସମର୍ଥିତ ହେଉଅଛି । ଆଉ ମଧ୍ୟ ଦେବୀମାହାତ୍ମ୍ୟ ବା ଚଣ୍ଡୀପୁରାଣର ୨ୟ ଅଧ୍ୟାୟ ୫୨ ଶ୍ଳୋକରେ 'ନିଶ୍ୱାସାନ୍ ମୁମୁଚେ ଯାଂଶ୍ଚ ଯୁଧ୍ୟମାନା ରଣେଽମ୍ବିକା, ତ ଏବ ସଦ୍ୟଃ ସମ୍ଭୂତାଃ ଗଣାଃ ଶତସହସ୍ରଶଃ'; ଓ ୩ୟ ଅଧ୍ୟାୟ ୨୩ ଶ୍ଳୋକରେ 'ନିଶ୍ୱାସ ପବନେନାନ୍ୟାନ୍ ପାତୟାମାସ ଭୂତଲେ', ଏହି ଦୁଇ ସ୍ଥଳରେ ନିଶ୍ୱାସର ଅର୍ଥ ବାହାରକୁ ଛଡ଼ାଯିବା ଶ୍ୱାସ, ଏହା ସ୍ପଷ୍ଟ ସମର୍ଥିତ ହେଉଅଛି । ବଙ୍ଗଦେଶର ପଣ୍ଡିତମାନେ ୧୯୧୧ ସାଲରେ ନିଶ୍ୱାସ ଶବ୍ଦର ଅର୍ଥ (ଭିତରକୁ ନିଆଯିବା ଶ୍ୱାସ) ଯାହା କରିଅଛନ୍ତି ତାହା ଉପର୍ଯ୍ୟୁକ୍ତ ଉଦାହରଣଦ୍ୱାରା ଖଣ୍ଡିତ ହେଉଅଛି । ଅତଏବ ଏ ଗ୍ରନ୍ଥର ସଂଗ୍ରାହକର ମତରେ ନିଶ୍ୱାସ ପ୍ରଶ୍ୱାସ ଶବ୍ଦଦ୍ୱୟର ଯଥାକ୍ରମେ ବାହାରକୁ ଛଡ଼ାଯିବା ଶ୍ୱାସ ଓ ଭିତରକୁ ଟଣାଯିବା ଶ୍ୱାସ ଅର୍ଥ ହେବା ଯୁକ୍ତିସଙ୍ଗତ ଅଟେ । ମହାତ୍ମା ରାମକମଲ ବିଦ୍ୟାଲଙ୍କାରଙ୍କ ପ୍ରଣୀତ ବଙ୍ଗଳା ପ୍ରକୃତିବାଦ ଅଭିଧାନରେ ନିଶ୍ୱାସ ଶବ୍ଦ ତଳେ ଉଦ୍ଧୃତ ପ୍ରମାଣ ବାକ୍ୟ (ଶିଶୁପାଳ ବଧ—ନିଶ୍ୱାସ ଧୂମ୍ରମସହ୍ୟରୁଚିର୍ବିମୁଞ୍ଚନ୍ ପୂର୍ବମାତ) ମଧ୍ୟ ନିଶ୍ୱାସର ଏହି ଅର୍ଥବାଦକୁ ସମର୍ଥନ କରୁଅଛି । ] ୨ । (+କରଣ ଅ) ପବନ; ବାୟୁ—2. Air. ୩ । ଶୁଆସ ବା ଧଇଁ ରୋଗ—3. Asthma.

ଶ୍ୱାସ କାଶ(ସ)—ସଂ. ବି ( ମ. ପ. ଲୋ; ଶ୍ୱାସ+କାଶ )—ରୋଗ ବିଶେଷ; ଶ୍ୱାସରୋଗଜନିତ କାଶ; କାଶ
Śwāsa kāśa(sa) ସହିତ ଶ୍ୱାସ ରୋଗ—Asthma attended with cough; asthmatic cough.

ଶ୍ୱାସ କ୍ରିୟା—ସଂ. ବି—୧। ନିଶ୍ୱାସ ମାରିବା କର୍ମ—1. Breathing;
Śwāsa kriyā respiration. ୨ । ନାକବାଟେ ପବନ ଦେହ ଭିତରକୁ ନେବା ଓ ଛାଡ଼ିବା—2. Inhalation and exhalation.

ଶ୍ୱାସକୁଠାର ତୈଳ—ସଂ: ବି ( ବୈଦ୍ୟକ )—ଆୟୁର୍ବେଦୋକ୍ତ ଶ୍ୱାସ
Śwāsakuṭhāra taila ରୋଗର ମହୌଷଧ ତୈଳବିଶେଷ—
A medicinal oil prepared as an antidote against asthma.

ଶ୍ୱାସଘ୍ନ(ଘ୍ନା, ଘ୍ନୀ)—ସଂ. ବିଣ—ଶ୍ୱାସ ରୋଗ ନାଶକାରକ ( ଔଷଧ )—
Śwāsaghna(ghnā, ghnī) ( medicine ) Antidote against asthma.

ଶ୍ୱାସ ଜନକ—ସଂ. ବିଣ—ଯାହା ଶ୍ୱାସ ଜନ୍ମାଏ—
Śwāsa janita Causing respiration.

ଶ୍ୱାସ ନିରୋଧ—ସଂ. ବି (୬ଷ୍ଠୀତତ୍)—ଶ୍ୱାସରୋଧ ( ଦେଖ )
Śwāsa nirodha Śwāsarodha (See)

ଶ୍ୱାସ ପ୍ରଶ୍ୱାସ—ସଂ. ବି ( ସହଚର ଶବ୍ଦ )—ନିଶ୍ୱାସ ଓ ପ୍ରଶ୍ୱାସ—
Śwāsa praśwāsa Breathing; inhalation and exhalation.

ଶ୍ୱାସ ପ୍ରଶ୍ୱାସ ଧାରଣ—ସଂ. ବି—ପ୍ରାଣାୟାମ—Controlling of
Śwāsa praswāsa dhāraṇa the breath by exercise; breath-exercise.

ଶ୍ୱାସ ବର୍ଦ୍ଧକ—ସଂ. ବି—ନିଶ୍ୱାସ ପ୍ରଶ୍ୱାସର ବୃଦ୍ଧିକାରକ—
Śwāsa barddhaka Increasing respiration.

ଶ୍ୱାସ ବାୟୁ—ସଂ. ବି—ପ୍ରାଣବାୟୁ—
Śwāsa bāyu The breath of life.

ଶ୍ୱାସ ବାୟୁ ବହିର୍ଗତ ହେବା—ଦେ. ବି—ମୃତ୍ୟୁ ଘଟିବା—
Śwāsabāyu bahirgata hebā Death; dying.
শ্বাস বায়ু বহির্গত হওয়া श्वास वायु निकल जाना

ଶ୍ୱାସ ରୁଦ୍ଧ—ସଂ. ବିଣ.ପୁଂ (ବହୁବ୍ରୀହି; ଶ୍ୱାସ ହୋଇଅଛି ରୁଦ୍ଧ ଯାହାର)
Śwāsa ruddha —୧ । ଯାହାର ନିଶ୍ୱାସ ବନ୍ଦ ହୋଇଅଛି—
( ଶ୍ୱାସରୁଦ୍ଧା—ସ୍ତ୍ରୀ ) 1, Strangulated. ୨ । ଯାହାର ଦମ ଅଟକି ଯାଇଅଛି—2. Out of breath; breathless.

**ଶ୍ୱାସ ରୋଗ**—ସଂ. ବି—ଘନ ଘନ ନିଶ୍ୱାସ ପକାଇବାରୂପ ରୋଗ; ଧଇଁ ରୋଗ; ଧଇଁ ପେଲିବା—Asthma.
Śwasa roga

**ଶ୍ୱାସ ରୋଧ**—ସଂ. ବି (୬ଷ୍ଠୀ ତତ୍)—୧ । ନିଶ୍ୱାସ ଅଟକିଯିବା ରୋଗ—1. Obstruction of breath; suffocation. ୨ । ଦମ୍ ଅଟକିଯିବା—2. Being out of breath. ୩ । କିଛିସମୟ ପାଇଁ ନିଶ୍ୱାସ ପ୍ରଶ୍ୱାସ ବନ୍ଦ କରିବା—3. Restraining of respiration for a time. ୪ । ସାଧନାଦ୍ୱାରା ଶ୍ୱାସ ପ୍ରଶ୍ୱାସକୁ ସଞ୍ଚିତ କରିବା; ପ୍ରାଣାୟାମ—4. Control and retention of breath by exercise; breath-exercise.
Śwāsa rodha

**ଶ୍ୱାସ ରୋଧିବା (ରୁନ୍ଧିବା)**—ଦେ. କ୍ରି—ପ୍ରାଣାୟାମଦ୍ୱାରା ଶ୍ୱାସକୁ ରୁଦ୍ଧ କରିବା—To restrain one's breath by exercise. ଦେ. ବି—ଶ୍ୱାସ ରୋଧ ହେବା—Suffocation.
Śwāsa rodhibā (rundhibā)
নিশ্বাস বন্দকবা श्वास रोकना

**ଶ୍ୱାସ ରୋଧ(ରୁନ୍ଧ) ହେବା**—ଦେ. ବି—ଶ୍ୱାସ ବନ୍ଦ ହେବା, ଶ୍ୱାସରୋଧ—Suffocation.
Śwāsa rodha(rundhi) heba
নিশ্বাস বন্দ হওয়া श्वास रोकजाना

**ଶ୍ୱାସ ହେତି**—ସଂ. ବି (ବହୁବ୍ରୀହି; ଶ୍ୱାସ=ଶ୍ୱାସ ପ୍ରଶ୍ୱାସ ଅଟେ ହେତି=ଅସ୍ତ୍ର ଅଟେ ଯାହାର, କିମ୍ବା· ଶ୍ୱାସ=ଦୀର୍ଘନିଶ୍ୱାସର ଅସ୍ତ୍ରସ୍ୱରୂପ [୬ଷ୍ଠୀ ତତ୍])—ନିଦ୍ରା—Sleep.
Śwāsa heti

**ଶ୍ୱାସାରି**—ସଂ. ବିଣ—ଶ୍ୱାସଘ୍ନ (ଦେଖ)—Swāsaghna. (See) ବି. (ବୈଦ୍ୟକ)—ପୁଷ୍କରମୂଳ; ଏକ ପ୍ରକାର ଔଷଧମୂଳ—Root of Alpotaris Auriculata.
Śwāsāri

**ଶ୍ୱାସିବା**—ଦେ· (ପଦ୍ୟ) କ୍ରି ( ସଂ. ଶ୍ୱାସ )—ନିଶ୍ୱାସ ପ୍ରଶ୍ୱାସ ନେବା—To inhale and exhale. [ଦ୍ର—ରହିଲ ହଜାରି ଭୁଜଙ୍ଗୀ ଯେସନ ଶ୍ୱାସୁଥାଇ ଘନ ଘନ—ରାଧାନାଥ. ପାର୍ବତୀ ।]
Śwāsibā
শ্বাসা साँसलेना

**ଶ୍ୱାସୀ**—ସଂ. ବିଣ. ପୁଂ ( ଶ୍ୱାସ୍+ଅସ୍ତ୍ୟର୍ଥେ ଇନ୍; ୧ମା, ୧ବ )—୧ । ଶ୍ୱାସରୋଗୀ—Asthmatic. ୨ । ଶ୍ୱାସଯୁକ୍ତ—2. Having breath. ବି. ବାୟୁ; ପବନ—Air.
Śwāsī
(ଶ୍ୱାସିନୀ—ସ୍ତ୍ରୀ ବିଣ)

**ଶ୍ୱି[ଧାତୁ]**—ସ—୧ । ବୃଦ୍ଧି ପାଇବା—1. To increase. ୨ । ଫୁଲିବା—2. To swell. ୩ । ଗତିକରିବା—3. To move.
Świ(root)

**ଶ୍ୱିତ୍(ଧାତୁ)**—ସଂ—ଶୁକ୍ଳବର୍ଣ୍ଣ ହେବା—To turn white.
Świt(root)

**ଶ୍ୱିତ୍ର**—ସଂ. ବି (ଶ୍ୱିତ୍ ଧାତୁ+କରଣ ରକ୍; ଯାହାଦ୍ୱାରା ଶରୀର ଶୁକ୍ଳବର୍ଣ୍ଣ ହୁଏ )—ଶ୍ୱେତ କୁଷ୍ଠ, ଧବଳ ରୋଗ—Vitiligo; Leucoderma, white patches on the body; albino.
Świtra

**ଶ୍ୱିତ୍ରଘ୍ନୀ**—ସଂ ବି ( ବୈଦ୍ୟକ )—ଶୀତପର୍ଣ୍ଣୀ, ବିଛୁଆତି ଲତା—Stinging nettle; Fragia Involucrata.
Świtraghnī

**ଶ୍ୱିତ୍ରାରି**—ସଂ. ବି (ବୈଦ୍ୟକ)—ଏକପ୍ରକାର ବାକୁଚି—A species of Serrata Anthelmintica. [ଦ୍ର—ଏହା କ୍ରିମିଦୋଷ, ବାତରକ୍ତ ଓ ଶ୍ୱିତ୍ରନାଶକ ।]
Świtrāri

**ଶ୍ୱିତ୍ରୀ**—ସଂ. ବି—(ଶ୍ୱିତ୍ରିନ୍ ଶବ୍ଦ, ଶ୍ୱିତ୍ର+ଅସ୍ତ୍ୟର୍ଥରେ ଇନ୍)—ଶ୍ୱିତ୍ରରୋଗଗ୍ରସ୍ତ (ବ୍ୟକ୍ତି)—Albinous (person).
Świtrī
[ଶ୍ୱିତ୍ରିଣୀ—ସ୍ତ୍ରୀ]

**ଶ୍ୱିଦ(ଧାତୁ)**—ସଂ—ଶୁକ୍ଳ ହେବା—To turn white.
Świd (root)

**ଶ୍ୱେତ**—ସଂ ବିଣ [ଶ୍ୱିତ୍ ଧାତୁ=ଶୁକ୍ଳବର୍ଣ୍ଣ ହେବା+ଭାବ ଅ]—ଶୁକ୍ଳ, ଧଳା, ସାଧା—White. ବି—୧ । [+କର୍ତ୍ତୃ ଅ] ଶୁକ୍ଳବର୍ଣ୍ଣ—1. White colour. [ଦ୍ର—ନାନା ପଦାର୍ଥ, ଫଳ, ଫୁଲ, ଘୁଲ୍ ଓ ଜୀବମାନଙ୍କର ଶୁକ୍ଳବର୍ଣ୍ଣବିଶିଷ୍ଟ ଜାତିଙ୍କୁ ସେହି ନାମ ପୂର୍ବରେ ଶ୍ୱେତ ଶବ୍ଦ ଯୁକ୍ତ କରି ବୁଝାଇ ଦିଆଯାଏ ।] ୨ । ଶଙ୍ଖ—2. Conch. ୩ । ଶିବଙ୍କର ଅବତାରବିଶେଷ—3. An incarnation of Śibā. ୪ । ରଜତ, ରୌପ୍ୟ—4. Silver. ୫ । ଧଳା ମେଘ—5. White cloud. ୬ । ମିଶ୍ରି—6. Sugar candy. ୭ । କାଚମଣି; ସ୍ଫଟିକ—7. Quartz ୮ । କପର୍ଦ୍ଦକ; କଉଡ଼ି—8. Sea shell. ୯ । କର୍ପୂର—9. Camphor. ୧୦ । ଶୁକ୍ରଗ୍ରହ—10. The planet Venus. ୧୧ । ଧବଳଗିରି ୨ [ଦେଖ]—11. Dhabalagiri 2 (See) ୧୨ । ଶ୍ୱେତଦ୍ୱୀପ; ଚନ୍ଦ୍ରଦ୍ୱୀପ; ହିନ୍ଦୁପୁରାଣୋକ୍ତ ୧୧ଟି ଉପଦ୍ୱୀପ ବା କ୍ଷୁଦ୍ର ଦ୍ୱୀପ ମଧ୍ୟରୁ ଏକତମ—12 One of the 11 minor islands or penuasulas in Hindu mythology. ୧୩ । ବିଦର୍ଭର ଜଣେ ରାଜା—13. Name of a king of ancient Bidarbha [ଦ୍ର—ଏ ବିଦର୍ଭ ନରପତି ସୁଦେବଙ୍କ ପୁତ୍ର । ଏହାଙ୍କ ଗଳ୍ପ ରାମାୟଣରେ ବର୍ଣ୍ଣିତ ଅଛି । ଏ ବହୁକାଳ ରାଜ୍ୟ ପାଳନ କରି ବୃଦ୍ଧ ହେବାରୁ ଆପଣାର ଭାଇ ସୁରଥଙ୍କଠାରେ ରାଜ୍ୟଭାର ଅର୍ପଣ କରି ତପସ୍ୟାର୍ଥ ବନକୁ ଗଲେ ଓ କଠୋର ତପସ୍ୟା ଫଳରେ ବ୍ରହ୍ମଲୋକ ପ୍ରାପ୍ତ ହେଲେ; କିନ୍ତୁ ସେଠାରେ କ୍ଷୁଧା-ପୀଡ଼ିତ ହୋଇ ପ୍ରଜାପତିଙ୍କୁ ଏଥିର କାରଣ ପଚାରିବାରେ ସେ କହିଲେ 'ତୁମ୍ଭେ ଆହାର କରି ତପସ୍ୟା କରିଥିଲ ଓ କାହାକୁ କିଛି ଦାନ କରିନାହଁ; ଏଥିପାଇଁ ଶାପଗ୍ରସ୍ତ ହୋଇ ବ୍ରହ୍ମଲୋକରେ ତୁମ୍ଭେ କ୍ଷୁଧାର୍ତ୍ତ ହେଉଅଛ । ତୁମ୍ଭର ତପସ୍ୟା କ୍ଷେତ୍ରର ଗୋଟିଏ ସରୋବରରେ ତୁମ୍ଭର ଶବ ଭାସୁଛି, ତାକୁ ଯାଇ ଭକ୍ଷଣ କରୁଥାଅ ଓ ସେହି ଅବସ୍ଥାରେ ଅଗସ୍ତ୍ୟ ଋଷିଙ୍କର ଦର୍ଶନ ମିଳିଲେ ତୁମ୍ଭେ ଶାପମୁକ୍ତ ହୋଇ ପୁଣି ବ୍ରହ୍ମଲୋକକୁ ଆସିବ । ରାଜା ତଦନୁସାରେ ଆସି ଶବ ଭକ୍ଷଣ କରୁ କରୁ କେତେକ ଦିନ ପରେ ଅଗସ୍ତ୍ୟ ଋଷି ସେଠାରେ ପହଞ୍ଚି ରାଜାଙ୍କ ଶବଭକ୍ଷଣର କାରଣ·
Śweta
ସେତ, ସେତା, ଶେତ, ଶେତା } ଗ୍ରାମ୍ୟରୂପ

ପସୁଁରବାରୁ ସ୍ୱର୍ଜା ଦୂତବୋଲ୍ତ ବୟସ୍ତ ମୁକୁନ୍ଦ ନିକଟରେ ବର୍ଣ୍ଣନା କରି ଶାପମୁକ୍ତ ହେଲେ । ଗମନକାଳରେ ସ୍ୱର୍ଜା ମୁନିଙ୍କୁ ସୁନ୍ଦର ଉଜ୍ଜ୍ୱଳ ଅଳଙ୍କାର ଉପହାର ଦେଇଥିଲେ । ଅଗସ୍ତ୍ୟ ମୁନି ରାମଙ୍କୁ ଏହି ଅଳଙ୍କାରଗୁଡ଼ିକ ଉପହାର ଦେଇ ତାଙ୍କ ଆଗରେ ଏହି ଗଳ୍ପଟି କହିଥିଲେ । ]

୧୪ । ଶ୍ୱେତବର୍ଣ୍ଣ ବସ୍ତୁ (ଶବ୍ଦକୋଷ)— 14. Any white thing.

ଶ୍ୱେତ ଅପମାରଙ୍ଗ—ଦେ. ବି—ଶ୍ୱେତାପାମାର୍ଗ (ଦେଖ)
Śweta apamāranga — Śwetāpāmārga (See)
শ্বেত অপাঙ — सफेद चिचड़ा

ଶ୍ୱେତ ଅପରାଜିତା—ଦେ. ବି—(ସଂ.ଶ୍ୱେତାପରାଜିତା (ଦେଖ)
Śweta aparājitā — Śwetāparājitā (See)

ଶ୍ୱେତ ଅରକ(ଖ)—ଦେ. ବି (ସଂ. ଶ୍ୱେତାର୍କ)—ଏକପ୍ରକାର ଧଳା ଅରକ ଗଛ—A species of white swallowort.
Śweta araka(kha)
[ଶ୍ୱେତ ଅର୍କ—ଅନ୍ୟରୂପ]
শ্বেত আকন্দ — सफेद आक

ଶ୍ୱେତ ଆଖୁ—ଦେ. ବି—ଶ୍ୱେତେକ୍ଷୁ (ଦେଖ)
Śweta ākhu — Śwetekshu (See)
সাদা আখ — सफेद ईख

ଶ୍ୱେତକ—ସଂ. ବି (ଶ୍ୱେତ+କ)—୧ । ରଜତ; ରୁପା—1. Silver.
Śwetaka
୨ । ବରାଟକ; କପର୍ଦ୍ଦକ; କଉଡ଼ି— 2. Sea-shell formerly used as money.

ଶ୍ୱେତ କଇଳାସ—ଦେ. ବି—ପର୍ବତ ବିଶେଷ—Name of a mountain. [ଦ୍ର—ମଇଳାବ ପର୍ବତ
Śweta kailāsa
श्वेत कैलास
শ্বেতকৈলাস
ଶ୍ୱେତ କଇଳାସ—କୃଷ୍ଣସିଂହ ମହାଭାରତ ବନ ।]

ଶ୍ୱେତ କଣ୍ଟକାରୀ—ସ ବି—ଯେଉଁ କଣ୍ଟକାରୀର ଫୁଲ ଧଳା; ଯେଉଁ ଭେଙ୍ଗା ବାଇଗଣର ଫୁଲ ଧଳା—The white-flowered species of Solanum Xanthocarpum (plant).
Śweta kantakārī
ଶ୍ୱେତକଣ୍ଟକାରିକା } ଅନ୍ୟରୂପ
ଶ୍ୱେତକଣ୍ଟାରିକା }
ଅନ୍ୟ ସଂ ନାମ—ଶ୍ୱେତା, ଛଦ୍ମା, ଚନ୍ଦ୍ରହାସା, ସିଂହୀ, ବିଶ୍ୱେନ୍ଦ୍ରା, ବାର୍ତ୍ତାକିକା, ଲକ୍ଷ୍ମଣା, କ୍ଷେତ୍ର-ଦୂତିକା, ସିତା, ଗର୍ଦ୍ଦଭୀ ହିଙ୍ଗ୍ରୀ, କ୍ଷେତ୍ରଜା, କଣ୍ଟକେଶ୍ୱରୀ, ବାମା, ଗର୍ଦ୍ଦଭୀ, ଚନ୍ଦ୍ରିକା, ଶୁଭ୍ରୀ, ହିତକର୍ଣ୍ଣା, ମହୌଷଧୀ, ଗର୍ଦ୍ଦଭୀ, ଚନ୍ଦ୍ରିକା, ନାକୁଳୀ, ଦୁର୍ଲଭା, ଦୁଷ୍ପ୍ରା, ଚନ୍ଦ୍ରପୁଷ୍ପା, ପ୍ରିୟଙ୍କରୀ
সাদা কণ্টিকারী
श्वेत रेंगनी, श्वेत भटकटैया
ତେ. ଚଲ୍ଲମୁନେଲଗୁଲୁ
(ଦ୍ର—ଏହା କଟୁତିକ୍ତରସ,ଉଷ୍ଣବୀର୍ଯ୍ୟ, ଲଘୁ, ରୁକ୍ଷ, ଅଗ୍ନିବର୍ଦ୍ଧକ, କଫ-ନାଶକ, ଗର୍ଭବାଧା ନିବାରକ; ଶ୍ୱାସ, କାଶ, ଜ୍ୱର, ପୀନସ, ପାର୍ଶ୍ୱଶୂଳ, କୃମି ଓ ହୃଦ୍ରୋଗର ଉପଶମକାରକ ଓ ଗର୍ଭପ୍ରଦ; ଏହାର ଫଳ କଟୁ-ତିକ୍ତ, ପାଚକ, ଲଘୁ, ଅଗ୍ନିବର୍ଦ୍ଧକ,ଭେଦକ, ପିତ୍ତପ୍ରକୋପକ, ଶୁକ୍ରସ୍ରାବକାରକ, ଫକବାୟୁନାଶକ; ଜ୍ୱର କୃମି କଣ୍ଡୁ ଓ ମେଦ ରୋଗରେ ହିତକର; କଣ୍ଟକାରୀ ଫଳର ଦର୍ଭାତକ୍ରୁ ଗୁଣ ମଧ୍ୟ ଅଛି । )

ଶ୍ୱେତ କଦମ୍ବ—ସଂ. ବି—ଯେଉଁ କଦମ୍ବ ଗଛର ଫୁଲ ଧଳା—White-flowered species of Kadamba; Neuclea Tetrandra.
Śweta kadamba

ଶ୍ୱେତ କମଳ—ସଂ. ବି—ଶ୍ୱେତ ପଦ୍ମ—
Śweta kamala — White lotus.

ଶ୍ୱେତ କରବୀର—ସଂ ବି—ଧଳା କରବୀ ଫୁଲର ଗଛ—The white flowered species of sweet scented oleander; Nerium odorum
Śweta karabīra
(ଶ୍ୱେତପୁଷ୍ପ—ଅନ୍ୟରୂପ)
(ଶ୍ୱେତକରବୀ—ଅନ୍ୟରୂପ)
ଅନ୍ୟ ସଂ ନାମ—କରବୀର, ଶ୍ୱେତପୁଷ୍ପ,ଶତକୁମ୍ଭ, ଅଶ୍ୱମାରକ
শ্বেত করবী
सफेद कनेर
ଫା. ଖରଜହେରା
ଆ. ଦଫଲ
ତେ. ଗନେରୁ
ଦ୍ର—ଶ୍ୱେତ, ରକ୍ତ, ପାଟଳ, କୃଷ୍ଣ, ପୀତ ଭେଦରେ କରବୀର ୫ ପ୍ରକାର । ଏହା କଟୁ-ତିକ୍ତ-କଷାୟରସ, ଉଷ୍ଣ, ଉଷ୍ଣବୀର୍ଯ୍ୟ; ଏହା କୁଷ୍ଠର ଲଘୁତା ସମ୍ପାଦକ ଓ ନେତ୍ରରୋଗ, କୁଷ୍ଠ, ବ୍ରଣ-ଦୋଷ, କଫ, ଅର୍ଶ, କୃମି ଓ କଣ୍ଡୁନାଶକ । ଏହା ଭକ୍ଷଣ କଲେ ଶରୀରରେ ବିଷ ପରି କ୍ରିୟା କରାଏ । ]

ଶ୍ୱେତ କାଞ୍ଚନ—ସଂ ବି.—ଧଳା କାଞ୍ଚନ ଫୁଲର ଗଛ—The white-flowered variety of Bauhenia Variegata. [ଦ୍ର—ଏହା ଲାଲ କାଞ୍ଚନର ସମଗୁଣ-ବିଶିଷ୍ଟ ।]
Śweta kānchana
ସଂ. ନାମ—କୋବିଦାର, ମରକ କୁଦ୍ଦାଳ, ଯୁଗପତ୍ରକ, କୁଣ୍ଡଳ, ଅମ୍ଳକ, ସ୍ୱଳ୍ପକେଶରୀ
বনরাজ, বনরাজি, শ্বেতকাঞ্চন
कचनाल, गुरियाल, आवरा, मानला, सिला मर्तिल, घोरारा
[ଶ୍ୱେତ କାଞ୍ଚନ—ଦେ. ରୂପ]

ଶ୍ୱେତ କାଣ୍ଡା—ସଂ. ବି—(ବୈଦ୍ୟକ)—ଶ୍ୱେତ ଦୁବା (ଦେଖ)
Śweta kāndā — Śweta dūrbā (See)

ଶ୍ୱେତକୀ—ସଂ. ବି—(ନାମ)—ଜଣେ ପୌରାଣିକ ରାଜା—
Śwetakī — Name of a mythological king.
[ଦ୍ର—ଏ ଅତ୍ୟନ୍ତ ଧର୍ମପରାୟଣ ଓ ଯାଜ୍ଞିକ ଥିଲେ । ଏ ଏତେ ଅଧିକ ଯଜ୍ଞ କଲେ ଯେ, ଋତ୍ୱିକ୍‌ମାନେ ଏହାଙ୍କ ଯାଜନ କ୍ରିୟା ସମ୍ପାଦନ କରିବାକୁ ଅସମର୍ଥ ହେବ ଏ ତପସ୍ୟା କରି ମହାଦେବଙ୍କୁ ତାହାଙ୍କର ଋତ୍ୱିକ୍ (ପୁରୋ-ହିତ ) ହେବାକୁ ପ୍ରାର୍ଥନା କଲେ । ମହାଦେବ ଦୁର୍ବାସାଙ୍କୁ ଏହାଙ୍କ ପୌରୋହିତ୍ୟରେ ନିଯୁକ୍ତ କଲେ । କଥିତ ଅଛି ଯେ ଦୁର୍ବାସା ୧୦୦ ବର୍ଷରେ ଏହାଙ୍କ ଯଜ୍ଞ ସମାପନ କଲେ । ଅଗ୍ନିଦେବ ଏହାଙ୍କ ଯଜ୍ଞରେ ଅତ୍ୟଧିକ ଘୃତ ଖାଇ ରୁଗ୍ଣ ହୋଇ ପଡ଼ିଲେ । ]

ଶ୍ୱେତ କୁଞ୍ଜର—ସଂ. ବି—୧ । ଶ୍ୱେତହସ୍ତୀ—1. White-skinned elphant; albinous elephant. [ ଦ୍ର—ଏମାନେ ବ୍ରହ୍ମଦେଶରେ ମିଳନ୍ତି, ବ୍ରହ୍ମଦେଶରେ ଓ ବୌଦ୍ଧମାନେ ଶ୍ୱେତହସ୍ତୀକୁ ମହାସମାରୋହ ସହକାରେ ପୂଜା କରନ୍ତି; ପ୍ରକୃତରେ ଏ ବାଘମାନଙ୍କ
Śweta kunjara

ଚମଡ଼ାରେ ଧଳାଛିଟ୍ ମାଡ଼ି ଥାଏ ।] ୨ । ଐରାବତ ହସ୍ତୀ; ଇନ୍ଦ୍ରଙ୍କ ବାହନ—2. The elephant of Indra.

**ଶ୍ୱେତ କୁମାରୀ**—ଦେ. ବି—ଲତା ବିଶେଷ—
Śweta kumārī Bridal creeper; Porana Paniculata.

**ଶ୍ୱେତ କୁମୁଦ**—ସଂ. ବି—ଧଳାକଇଁ—White water lily;
Śweta kumuda Nymphœa Lotus.
(ଶ୍ୱେତ କହ୍ଲାର—ଅନ୍ୟରୂପ) (ଶ୍ୱେତକଇଁ—ଦେ. ରୂପ)

**ଶ୍ୱେତ କୁରୁଣ୍ଟକ**—ସଂ. ବି—ଧଳା ବାସକେରେଣ୍ଡା; ଧଳାଫୁଲଯୁକ୍ତ
Śweta kuruṇṭaka ବାସକେରେଣ୍ଡା ଗୁଳ୍ମ—The white-flowered variety of Barlaria Crastata.
ଅନ୍ୟ ସଂ. ନାମ—ସୈରେୟକ, ସୈରେୟ, କଟ-ସାରିକା, ସହଚର, ସହାଚର, ସହଚରୀ ।
श्वेतझिंटि
सफेद् कटसरैया
( ଶ୍ୱେତଝିଣ୍ଟି, ଶ୍ୱେତପୁଷ୍ପୀ—ଅନ୍ୟରୂପ )

**ଶ୍ୱେତ କୁଶ**—ସଂ. ବି—ଶୁକ୍ଳ ବା ପାଣ୍ଡୁର ବର୍ଣ୍ଣ କୁଶତୃଣ—
Śweta kuśa The white variety of Kuśa grass; Poa Cynosuroides. [ ଦ୍ର—ଏହାର ମୂଳ ମଧୁରରସ, ଶୀତଳ, ଲଘୁକର, ରକ୍ତପିତ୍ତ ରୋଗରେ ଉପକାରୀ; ଜ୍ୱର, ତୃଷ୍ଣା, ଶ୍ୱାସ ଓ କାମଳ ରୋଗରେ ହିତକର ।]

**ଶ୍ୱେତ କୁଷ୍ଠ**—ସଂ. ବି—ଶ୍ୱିତ୍ର; ଧବଳ କୁଷ୍ଠ—
Śweta kushṭha White leprosy; leucoderma.

**ଶ୍ୱେତ କୃଷ୍ଣ**—ସଂ. ବଣ (ଦ୍ୱନ୍ଦ୍ୱ; ଶ୍ୱେତ+କୃଷ୍ଣ)—ଧଳା କଳା ମିଶା—
Śweta kṛushṇa Mixed white and black.
(ଶ୍ୱେତ କୃଷ୍ଣାଦ୍—ଅନ୍ୟରୂପ)

**ଶ୍ୱେତ କେତୁ**—ସଂ. ବି—୧ । ଉଦ୍ଦାଳକ ମୁନିଙ୍କ ପୁତ୍ର; ଋଷିବିଶେଷ—
Śweta ketu 1. Name of a sage. ୨ । ବୌଦ୍ଧ ମତାବଲମ୍ବୀ ବ୍ୟକ୍ତି—2. A Buddhist. ୩ । (ଜ୍ୟୋତିଷ) କେତୁଗ୍ରହ ବିଶେଷ—3. (Astrology) A kind of come . [ ଦ୍ର—ଏ କେତୁର ପଶ୍ଚିମ ଦିଗରେ ଉଦୟ ହୁଏ ଓ ଏଥିର ଉଦୟ ହେଲେ ପୃଥିବୀରେ ଦୁର୍ଭିକ୍ଷ, ମାରୀଭୟ ବ୍ୟାପେ—୪ । ବୁଦ୍ଧ (ବନ୍ଧୁକୋଷ)—4. The Buddha.

**ଶ୍ୱେତ କେଶ**—ସଂ. ବି (କର୍ମଧା)—୧ । ପାଚିଲା ବାଳ—1. Grey
Śweta keśa hair. ୨ । ଲାଲ ଶଜନା; ରକ୍ତଶିଗ୍ରୁ—2. The red-flowered species of horse radish tree.

(ଶ୍ୱେତକେଶା—ସ୍ତ୍ରୀ) ସଂ. ବଣ. ପୁଂ—ବହୁବ୍ରୀହି)—ଯାହାର ବାଳ ଧଳା—White-haired; grey-haired.

**ଶ୍ୱେତ କୋଳ**—ସଂ. ବି—କେତେଣ୍ଡି ମାଛ—
Śweta koḷa A species of fry; Cyprinus Chysoparis; Barbus Chola.

**ଶ୍ୱେତ ଖଦିର**—ସଂ. ବି—ପାଚଡ଼ା ଖଇର—The whitish
Śweta khadira variety of Catechu; pale catechu; gambier; Uncaria Gambier. [ ଦ୍ର—ଏହାର ବର୍ଣ୍ଣ ପାଣ୍ଡୁର । ଏହା ବର୍ଣ୍ଣପ୍ରସାଦକ; ମୁଖରୋଗ, ରକ୍ତଦୋଷ ଓ କଫନାଶକ । ]
ଅନ୍ୟ ସଂ. ନାମ—କଦର, ସୋମବଲ୍କଳ, ଖଦିର, କାର୍ମୁକ, ଭୂଷ୍ଟକଣ୍ଟକ, ସୋମସାର, ସୋମବୃକ୍ଷ, ସୋମବଲ୍ଲୀ, ପଥ୍ୟଦ୍ରୁମ ।
পাপড়ি খইৰ
पापड़ियाखइर
ମ. ପାଢ଼ରାଖଇରୁ
ତେ. ତେଲ୍ଲଚଣ୍ଡ
(ଶ୍ୱେତସାର—ଅନ୍ୟରୂପ)

**ଶ୍ୱେତ ଗଙ୍ଗା**—ସଂ. ବି—୧ । (ତୀର୍ଥଚିନ୍ତାମଣି ଗ୍ରନ୍ଥ ଲକ୍ଷିତ) ତୀର୍ଥବାପୀ-
Śweta gaṅgā ବିଶେଷ—1. Name of a sacred tank.
୨ । ପୁରୁଷୋତ୍ତମର ତୀର୍ଥ ପୁଷ୍କରିଣୀ ବିଶେଷ—
2. Name of a sacred tank in Puri.
[ଦ୍ର—ଏହାର ଜଳ ଅତ୍ୟନ୍ତ ଅପରିଷ୍କାର ଓ ଦୁର୍ଗନ୍ଧ ହୋଇ ଯାଇଥିଲା, ସମ୍ପ୍ରତି ପୁରୀ ମିଉନିସିପାଲିଟି ଓ ହିନ୍ଦୁସାଧାରଣଙ୍କ ବ୍ୟୟରେ ଏଥିର ସଂସ୍କାର ହୋଇ ଏହା ପରିଷ୍କୃତ ହୋଇ ଅଛି ।]

**ଶ୍ୱେତ ଗବ**—ଦେ. ବି—ଶ୍ୱେତୈରଣ୍ଡ (ଦେଖ)
Śweta gaba Śwetairaṇḍa. (See)
সাদা ভেরেণ্ডা सफेद् रेण्डी

**ଶ୍ୱେତ ଗରୁତ୍**—ସଂ. ବଣ ( ବହୁବ୍ରୀହି; ଶ୍ୱେତ+ଗରୁତ୍=ପକ୍ଷ
Śweta garut ଯାହାର)—ଶ୍ୱେତପକ୍ଷ ବିଶିଷ୍ଟ—
White-feathered. ବି (ଜ । —ଧଳା ହଂସ—
Gander; drake.

**ଶ୍ୱେତ ଗୁଞ୍ଜା**—ସଂ. ବି—ଧଳା ମଞ୍ଜି ବିଶିଷ୍ଟ ଗାଇଞ୍ଚ—The white-
Śweta guñjā seeded variety of beadtree creeper; Abrus Precatorius.
ଅନ୍ୟ ସଂ.ନାମ—ଉଚ୍ଚଟା, କୃଷ୍ଣଳା, ଶ୍ୱେତକାମ୍ବୋଜୀ, କାକାଦନୀ, ଚକ୍ଷୁଷ୍ୟା, ଚୂଡ଼ାଲା ।
[ଦ୍ର—ଏହା ରକ୍ତଗୁଞ୍ଜା ବା ଲାଲ ଗାଇଞ୍ଚର ସମସ୍ତ ଗୁଣଯୁକ୍ତ ।]
श्वेतकुँच सादाघुँघची
ଅ. ହବ୍ବସଫେଦ୍ (ଶ୍ୱେତଗାଇଞ୍ଚ—ଦେ. ରୂପ)

**ଶ୍ୱେତ ଗୋକ୍ଷୁରୀ**—ସଂ. ବି—ଏକପ୍ରକାର ଘାସ—
Śweta gokshurī A species of grass; Kyllingia Monocephala.

**ଶ୍ୱେତ ଗୋ(ଗୁ)ଲାପ**—ଦେ. ବି—୧। ଧଳା ଗୋଲାପ ଫୁଲ—1. White
Śweta go(gu)lāpa rose. ୨। ଧଳା ସେଉତି; ଶତପତ୍ରୀ (ଫୁଲ)-
সাদা গোলাপ 2. The white variety of cabbage
सफेद् गुलाब rose; Rosa Centifolia.

**ଶ୍ୱେତ ଘଣ୍ଟା(ଣ୍ଟୀ)**—ସଂ. ବି—ନାଗଦନ୍ତୀ; ହାତୀଶୁଣ୍ଢା ଗୁଳ୍ମ—
Śweta ghaṇṭā(ṇṭī) Heleotropium Indicum (plant).

ଶ୍ୱେତ ଘୋଷକ(ଘୋଷା)—ସଂ. ବ—ମହା କୋଶାତକୀ; ଘୋଷାତକୀ;
Śweta ghoshaka(ghoshā) ତରଡ଼ା, ତର୍ଭିକାଜାତୀୟ ବନ୍ୟ-
ଅନ୍ୟ ସଂ. ନାମ—ଧାମାର୍ଗବ, ଲତାଫଳ ବିଶେଷ—A species
ଘୋଷକାକୃତି; ଅବାଳ, of white Luffa. [ଦ୍ର—ଏହା
ଦେବଦାଳୀ, ଭୃଙ୍ଗକ, ଛନ୍ଦକରୀ ବଳିଷ୍ଠ, ବମନକାରକ, ସନ୍ତପ୍ତ
ମହାକୋଷାତକୀ, ମହାଫଳା, କଫର ନିର୍ହରଣକାରକ; ଅର୍ଶ, ଶୂଳ,
ହସ୍ତିଘୋଷା, ହସ୍ତିପର୍ଣ୍ଣୀ । ଉଦର ରୋଗ,କାଶ, କଫରୋଗ, କାସ
ଶ୍বেতঘোষাফল ଓ ଶ୍ଳେଷ୍ମଜନିତ ରୋଗରେ ଉପକାରୀ ।
करइ तरइ ଶୁକ୍ଳ ଓ ପୀତଭେଦରେ ଏହା
ଦୁଇ ପ୍ରକାର; ଏହା ମଧୁର ଓ ତିକ୍ତ
ଭେଦରେ ମଧ୍ୟ ଦୁଇ ପ୍ରକାର । ପୀତ
ଘୋଷା=ଝଙ୍ଗୀ; ଶ୍ୱେତଘୋଷା=ତରଡ଼ା ।]

ଶ୍ୱେତ ଚନ୍ଦନ—ସଂ. ବ—ସାଧାରଣ ଚନ୍ଦନ ବୃକ୍ଷ; ଶୁକ୍ଳ ଚନ୍ଦନ—
Śweta chandana Santalum Album (tree).
[ଶେତ ଚନ୍ଦନ—ଗ୍ରାମ୍ୟରୂପ]

ଶ୍ୱେତ ଚମ୍ପକ—ସଂ. ବ—ଶ୍ୱେତପୁଷ୍ପବିଶିଷ୍ଟ ଚମ୍ପକ ବୃକ୍ଷ—
Śweta champaka The white-flowered Champaka tree.
[ଶ୍ୱେତ ଚମ୍ପା—ଦେ. ରୂପ]

ଶ୍ୱେତ ଚିଲ୍ଲିକା—ସଂ. ବ—୧ । ଶ୍ୱେତ ଶିଂଶପା (ଦେଖ)
Śweta chillikā 1. Śweta śimśapā (See)
୨ । ଶ୍ୱେତ ଚିଲ୍ଲୀ (ଦେଖ)—
2. Śweta chillī (See)

ଶ୍ୱେତ ଚିଲ୍ଲୀ—ସଂ. ବ—(ବୈଦ୍ୟକ)—ଭାଗୀରଥୀତୀରସ୍ଥ ଦେଶରେ
Śweta chillī ଜନ୍ମିବା ସାଦା ବା ଧଳା ବଥୁଆ ଶାକବିଶେଷ—
ଅନ୍ୟ ସଂ. ନାମ—ବାସ୍ତୁକା, ସୁପଥ୍ୟା A kind of pot herb;
ସିତ ଚିଲ୍ଲୀ, ଉପଚିଲ୍ଲୀ, Chenopodium Album.
କ୍ଷୁଦ୍ରପତ୍ରୀ, କ୍ଷୁଦ୍ରବାସ୍ତୁକା । [ଦ୍ର—ଏହା ମଧୁର ରସ,
ମ. ବାଶୁକା ଶୀତଳ, କ୍ଷାରଗୁଣଯୁକ୍ତ, ତ୍ରିଦୋଷ-
সাদা বেতো सफेद बथुआ ନାଶକ ଓ ଜ୍ୱର ରୋଗରେ
ହିତକର ।]

ଶ୍ୱେତଚ୍ଛଦ—ସଂ. ବ—(ବହୁବ୍ରୀହି; ଶ୍ୱେତ+ଛଦ=ପକ୍ଷ ଯାହାର)—
Śwetachchhada ୧ । ଶ୍ୱେତ ଗରୁତ୍ (ଦେଖ)—1.
Śweta garut (See). ୨ । ଶ୍ୱେତ ବର୍ବରକ
(ଦେଖ)—2. Śweta barbaraka (See)
ସଂ. ବିଣ. ତ୍ରି (ବହୁବ୍ରୀହି)—୧ । ଧଳା ପକ୍ଷ ବିଶିଷ୍ଟ—
1. White feathered ୨ । ଧଳାପତ୍ର ବିଶିଷ୍ଟ—
(ଶ୍ୱେତଛାଦା—ସ୍ତ୍ରୀ) 2. White leaved. ୩ । ଧଳା ବଳ୍କଲ
ବିଶିଷ୍ଟ—3. White barked.

ଶ୍ୱେତ ଜବା—ସଂ. ବ—ଶ୍ୱେତ ମନ୍ଦାର (ଦେଖ)
Śweta jabā Śweta mandāra (See)

ଶ୍ୱେତ ଜୀରକ—ସଂ. ବ—ଗୌର ଜୀରକ; ସାଧାରଣ ଜୀରା—
Śweta jīraka Cumin seed. [ଦ୍ର—ବର୍ଣ୍ଣଭେଦରେ
[ଶ୍ୱେତଜୀରା—ଦେ. ରୂପ] ଯାହାକୁ କଳାଜୀରା କୋଲଯାଏ ତାହା
সাদা জীরা सफेद जीरा ଜୀରକ ଜାତୀୟ ନୁହେଁ । ଶ୍ୱେତ-
ଜୀରକ ରୁଚିକର, କଟୁ, ମଧୁର, ପାଚକ, କ୍ରିମିନାଶକ,
ଜ୍ୱର ଓ ଜୀର୍ଣ୍ଣନାଶକ ଓ ହୃଦସ୍ୱାସ୍ଥ୍ୟଜନକ-ବିଶ୍ୱକୋଷ ।]

ଶ୍ୱେତ ଝିଣ୍ଟୀ—ସଂ. ବ—ଶ୍ୱେତ କୁରୁଣ୍ଟକ (ଦେଖ)
Śweta jhiṇṭī Śweta kuruṇṭaka (See)

ଶ୍ୱେତ ଟଙ୍କଣ(ଣ)କ—ସଂ. ବ—ସାଦା ସୋହାଗା—
Śweta ṭaṅkaṇa(ṇa)ka Borax.
(ଅନ୍ୟ ସଂ. ନାମ—ଲୋହଦ୍ରାବୀ, ସିନ୍ଧୁକର, ସିକ୍ତ, ମାଳତୀତୀରସମ୍ଭବ, କ୍ଷାର,
ଦ୍ରାବକର, ସିତକ୍ଷାର, ଟଙ୍କଣ ।)

ଶ୍ୱେତ ତଣ୍ଡୁଳ—ସଂ. ବ—ଧଳା ଚାଉଳ; ସଫା ଚାଉଳ—
Śweta taṇḍula White rice.
[ଦ୍ର—ଏହାକୁ ସିଦ୍ଧ କରି ତତ୍କ୍ଷଣ ଲୁଣରେ ଚମ୍ପୁଡ଼ି ଏଥିରୁ
ମଣ୍ଡ ବ୍ୟବହାର କଲେ ତାହା ମଧୁର ରସ, ଶୀତଳ, କାନ୍ତି-
ବର୍ଦ୍ଧକ, କିଞ୍ଚିତ୍ ଶ୍ଳେଷ୍ମଜନକ ହୁଏ । ଏହା ମେହ, ଅଶ୍ମରୀ
ଓ ଶୋଥ ରୋଗରେ ହିତକର ।]

ଶ୍ୱେତ ତାମ୍ବୂଳ—ସଂ. ବ—ଶ୍ୱେତ ପାନ—The white-leaved
Śweta tāmbūla betel. [ଦ୍ର—ଏହା ରୁଚିକର, ପାଚନ-
କାରୀ, ପାଚକ, କଫ ବାତନାଶକ ଅଟେ ।]

ଶ୍ୱେତ ତୁଳସୀ—ସଂ. ବ—ଶୁକ୍ଳ ତୁଳସୀ; ଧଳା ତୁଳସୀ; ଶ୍ୱେତାଭ ପତ୍ର-
Śweta tulasī ବିଶିଷ୍ଟ ତୁଳସୀ ଗୁଳ୍ମ—The white basil
ସଂ.—ଅର୍ଜ୍ଜକ, ଗୌରୀ, Ocimum Album
ଗନ୍ଧପତ୍ର, ଭୂତେଷ୍ଟ [ଦ୍ର—ଶୁକ୍ଳ ଓ କୃଷ୍ଣପତ୍ରଭେଦରେ
সাদা তুলসী ତୁଳସୀ ଦୁଇ ପ୍ରକାର; ବନ୍ୟ ଓ
सफेद तुलसी ଉଦ୍ୟାନ ଜାତ ଭେଦରେ ତୁଳସୀ ମଧ୍ୟ
ଅନେକ ପ୍ରକାର, ଯଥା—ବନ ତୁଳସୀ ।]
[ଶେ(ଶ୍ୱେ)ତ ତୁଳ(ଲ)ସା(ସୀ)—ଗ୍ରାମ୍ୟରୂପ]

ଶ୍ୱେତ ତ୍ରିବୃତ୍—ସଂ. ବ—ଟିକୁଟିଭର ପ୍ରକାର ଭେଦ—The
Śweta tribṛut white rooted Turpeth;
(ଶେତ ତିଉଡ଼ି—ଦେ. ରୂପ) Ipomoea Turpethum.
ସଂ. ନାମ—ତ୍ରିକାକ୍ଷୀ, ସୁବହା, [ଦ୍ର—ଟିକୁଟିଭର ଅନ୍ୟ ପ୍ରକାର
ତ୍ରିଭଣ୍ଡୀ, ତ୍ରିପୁଟା ଭେଦ ଲକ୍ଷ୍ମୀତ୍ରିବୃତ୍ ଓ କୃଷ୍ଣ
সাদা তেউড়ি सादा निसोत, सादा पनिलर ତ୍ରିବୃତ୍ ।]

ଶ୍ୱେତ ଦୁର୍ବା—ସଂ. ବ—ଧଳା ଦୁବ; ଶୁକ୍ଳ ଦୁର୍ବା (ଯାହାର ପତ୍ର
Śweta durbā ଧଳା)—The white-leaved variety
ସଂ. ନାମ—ଅନନ୍ତା, ଗୋଲୋମୀ, of Cynodon Dactylon.
ଶତବୀର୍ଯ୍ୟା, ସିତାଖ୍ୟା, ଚଣ୍ଡା, [ଦ୍ର—ଏହା କଷାୟ ମଧୁର ରସ,
ଭଦ୍ରା, ଭାର୍ଗବୀ, ଦୁର୍ମରା, ରୁଚିକର, କଫ ପିତ୍ତ ନାଶକ;
ଗୌରୀ, ଶ୍ୱେତା, ହରୀ, ଦାହ, ତୃଷ୍ଣା, ବମନ, ଅତିସାର,
ଶ୍ୱେତକାଣ୍ଡା, ପ୍ରଚଣ୍ଡା, ସହସ୍ରବୀର୍ଯ୍ୟା] କାଶ, ଆମଦୋଷ, ବ୍ରଣ, ବିସର୍ପ ଓ
ଶତସ୍ୱକାଣ୍ଡା, ସହସ୍ରପତ୍ରା ରକ୍ତସ୍ରାବରେ ଉପକାରକ ।]
ସୁରବଲ୍ଲରୀ, ଶୁଭ୍ରା, ସୁପତ୍ରା,
ଶିତକ୍ଷୁଦା, ସୂକ୍ଷ୍ମା, ଜନ୍ତୁକାରିକା,

ବଙ୍ଗେଶ୍ୱରକାନ୍ତା ।
ତେ. ଶୁକ୍ଲଦୂର୍ବାଲ୍ଲ ସାଦା ଦୂବ ସଫେଦ୍ ଦୁବ

ଶେ ତ ଦ୍ୱିପ—ସଂ ବି—ଶ୍ୱେତ କୁଞ୍ଜର (ଦେଖ)
Śweta dwipa Śweta kunjara (See)

ଶ୍ୱେତ ଦ୍ୱୀପ—ସଂ ବି—୧ । ହିନ୍ଦୁ ପୁରାଣୋକ୍ତ ୧୧ ଗୋଟି ଉପଦ୍ୱୀପ ମଧ୍ୟରୁ ଏକତମ; ଉପ ଦ୍ୱୀପ—1. Name of one of the 11 peninsulas or small islands of Hindu mythology. ୨ । ବୈକୁଣ୍ଠାଖ୍ୟ ବିଷ୍ଣୁଧାମ 2. The name of an island said to be the Hindus' paradise (the abode of Bishnu) where the souls of devotees of Bishnu live for eternity after death. [ବି-ଭାଗବତ ଦଶମସ୍କନ୍ଧ ୮୭ ଅଧ୍ୟାୟରୁ ଏହା ବୈକୁଣ୍ଠାଖ୍ୟ ବିଷ୍ଣୁଧାମସ୍ଥ ଦ୍ୱୀପବିଶେଷ ବୋଲି ଅନୁମିତ ହୁଏ । ଅଧ୍ୟାତ୍ମ ରାମାୟଣ ଓ ବ୍ରହ୍ମପୁରାଣରେ ଅଛି ଯେ, ଯେଉଁମାନେ ବିଷ୍ଣୁପୂଜାରତ ଓ ବିଷ୍ଣୁଙ୍କ ବିଷୟରେ ଜ୍ଞାନ ଲାଭ କରନ୍ତି ସେହିମାନେ ଦେହାନ୍ତେ ଏହି ଦ୍ୱୀପରେ ଯାଇ ବାସ କରନ୍ତି । ରାବଣ ତ୍ରିଲୋକ ଜୟ କରି ତାଙ୍କର ବନ୍ଧୁତ୍ୱ ଏ ସ୍ଥାନକୁ ଜୟ କରିବା ମାନସରେ ଗଲା । ଏଠାରେ ଥିବା ବ୍ୟକ୍ତିମାନେ ମହାକାୟ, ମହାବଳ ଓ ତେଜସ୍ୱୀ । ଏ ଦ୍ୱୀପର ସୀମାରେ ପହଞ୍ଚିଲା ମାତ୍ରେ ରାବଣର ରଥର ଗତି ବନ୍ଦ ହୋଇଗଲା । ଏଠା ପୁରୁଷଙ୍କ କଥା ଦୂରେ ଥାଉ, ଜଣେ ସ୍ତ୍ରୀ ରାବଣର ହାତକୁ ଧରି ଅଟାଳି ଅଟାଳି ଦେଲେ ଓ ହସି ହସି ପଚାରିଲେ 'ତୁମ୍ଭେ କିଏ ଓ ଏଠାକୁ କାହିଁକି ଆସିଅଛ ?' ରାବଣ ବହୁ ଚେଷ୍ଟାରେ ସେହି ସ୍ତ୍ରୀଙ୍କ ହାତରୁ ଆପଣାକୁ ମୁକ୍ତ କଲା ଓ ଅତ୍ୟନ୍ତ ଲଜ୍ଜିତ ହୋଇ ଏବଂ ମନେ ମନେ ବିଷ୍ଣୁଙ୍କ ମୂର୍ତ୍ତି ଚିନ୍ତା କରି ଭକ୍ତି ଦ୍ୱାରା ବିଷ୍ଣୁଙ୍କୁ ତୁଷିତ କରି ତାଙ୍କ ହାତରେ ହତ ହୋଇ ଏହି ଦ୍ୱୀପକୁ ଆସିବ । ଏହା ଉତ୍ତର ବୈଦେଶିକ ବର୍ଣ୍ଣନାରେ ପ୍ରଯୁକ୍ତ ହେଲା ।] ଦେ. ବି—(ପାଶ୍ଚାତ୍ୟ ପଣ୍ଡିତ-ପ୍ରବର ୱିଲ୍‌ଫୋର୍ଡ ସାହେବଙ୍କଦ୍ୱାରା କଳ୍ପିତ) ଇଂଲଣ୍ଡ ସ୍କଟଲାଣ୍ଡ ଓ ଆୟରଲାଣ୍ଡ ଦ୍ୱୀପ—Great Britain; the British isles; Albania. [ ଦ୍ର—ଶୁକ୍ଳାଳ ସାଗରରେ ଥିବା ଶ୍ୱେତଦ୍ୱୀପ । ପ୍ରଧାନାଥ. ଦଶହରା ।]

ଶ୍ୱେତଦ୍ୱୀପ ବୀଣା—ଦେ· ବି—ବ୍ରିଟେନ୍ ଦେଶୀୟ କେତେକ କବିଙ୍କ ପଦ୍ୟମାନଙ୍କର ଓଡ଼ିଆ ପଦ୍ୟାନୁବାଦ ସମ୍ବଳିତ ପୁସ୍ତକର ନାମ—(ରାୟ ସାହେବ, ଅନନ୍ତଚନ୍ଦ୍ର ଦାସଙ୍କ କୃତ)—Title of a book containing metrical translation of some English poems.
Śweta dwipa binā

ଶ୍ୱେତ ଧସ୍ତୁରା—ସଂ. ବି—ଧଳା ଫୁଲ ବିଶିଷ୍ଟ ଧୋଦୁରା ଗଛ—
Śweta dhastūra The white-flowered species of thorn apple plant; Datura Fastusa.
ସାଦା ଧତୁରା ଫ'. ଟାତୁରା ଅ. ଜୋଜମାସିଲ ଶ୍ୱେତ ଧାତୁରା
[ଶ୍ୱେତଧାତୁର—ଦେ. ରୂପ]

ଶ୍ୱେତଧାତୁ—ସଂ. ବି—୧ । ଖଡ଼ିକା; ଖଡ଼—1. Chalk.
Śweta dhātu ୨ । ଶୁକ୍ଳ ବର୍ଣ୍ଣ ଧାତୁ ଦ୍ରବ୍ୟ—2. White metal.

ଶ୍ୱେତ ଧାନ୍ୟ—ସଂ. ବି—ଶୁକ୍ଳ ଧାନ୍ୟ; ଯେଉଁ ଧାନର ବର୍ଣ୍ଣ ଧଳା—
Śweta dhānya . White paddy.
[ବି—ଏହି ଧାନ୍ୟ ଲକ୍ଷ୍ମୀପୂଜାରେ ବ୍ୟବହୃତ ହୁଏ ।]

ଶ୍ୱେତ ଧାମା—ସ. ବି—(ବହୁବ୍ରୀହି; ଶ୍ୱେତ+ଧାମନ୍=ଅଂଶୁ, ଗୃହ ଯାହାର)—୧ । ଚନ୍ଦ୍ର—1. The moon.
Śweta dhāmā
୨ । କର୍ପୂର—2. Camphor. ୩ । (ଷଷ୍ଠୀ ତତ୍; ଶ୍ୱେତ=ଶ୍ୱେତ ବର୍ଣ୍ଣର+ଧାମନ୍=ଆଶ୍ରୟସ୍ଥଳ)—ସମୁଦ୍ର ଫେଣ—3. Sea-foam.

ଶ୍ୱେତ ଧୂନକ—ସ. ବି—ଧଳା ଝୁଣା—
Śweta dhūnaka White resin.

ଶ୍ୱେତ ନିଷ୍ପାବା—ସ. ବି—ଶ୍ୱେତବର୍ଣ୍ଣର ଶିମ୍ବ ବିଶେଷ—
Śweta nishpābā A species of white bean.
[ବି—ଏହା ଅଳ୍ପ କଷାୟଯୁକ୍ତ ମଧୁର ରସ, ଶୀତଳ; ରୁଚିକର, ପୁଷ୍ଟିଜନକ, ବଳକାରକ, ବାୟୁବର୍ଦ୍ଧକ ଓ ଅଧ୍ମାନ (ପେଟ ଫମ୍ପା) କାରକ ।]

ଶ୍ୱେତ ନୀଳ—ସ. ବଣ—(ଦ୍ୱନ୍ଦ୍ୱ, ଶ୍ୱେତ+ନୀଳ)—ଧଳା ଓ ନେଳୀ ମିଶ୍ରିତ—Mixed white and blue; bluish; azure. ବି.—୧ । ଧଳା ଓ ନେଳୀ ମିଶ୍ରିତ ବର୍ଣ୍ଣ—1. Bluish and azure mixed colour. ୨ । ମେଘ—2. The cloud. [ବି—ଏହିପରି ଶ୍ୱେତ-ପୀତ, ଶ୍ୱେତ ରକ୍ତ, ଶ୍ୱେତ ହରିତ, ଶ୍ୱେତକୃଷ୍ଣ ଆଦି ଶବ୍ଦ ସେହି ସେହି ରଙ୍ଗର ମିଶ୍ରଣ ଜାତ ବର୍ଣ୍ଣକୁ ବୁଝାଏ ।]
Śweta nīla

ଶ୍ୱେତ ପତ୍ର—ସ. ବି ( କର୍ମଧା; ଶ୍ୱେତ+ପତ୍ର )—୧ । ଧଳା ପତ୍ର—
Śweta patra 1. White leaf. ୨ । ଧଳା ପକ୍ଷ—2. White wing or white feather. ୩ । ( ବହୁବ୍ରୀହି; ଶ୍ୱେତ+ପତ୍ର=ପକ୍ଷ ଯାହାର ) ହଂସ—3. The swan. ୪ । ଶ୍ୱେତ ପଦ୍ମ—4. The white lotus. ବଣ—୧ । ଶ୍ୱେତପତ୍ରଯୁକ୍ତ—1. White-leaved. ୨ । ଶ୍ୱେତ ପକ୍ଷବିଶିଷ୍ଟ—2. White-feathered; white-winged.

ଶ୍ୱେତପତ୍ର ବାହନ—ସଂ. ବି ( ବହୁବ୍ରୀହି; ଶ୍ୱେତପତ୍ର=ହଂସ ଅଟେ ବାହାନ ଯାହାର )—ବ୍ରହ୍ମା—
Śwetapatra bāhana The Deity Brahmā.

ଶ୍ୱେତପତ୍ର ରଥ—ସଂ. ବି ( ମ· ପ. ଲୋ; ଶ୍ୱେତପତ୍ର=ହଂସ+ଯୁକ୍ତ ହୋଇଥିବା ରଥ)—ହଂସଯୁକ୍ତ ବିମାନ—
Śwetapatra ratha A car drawn by swans.
ବି· (ବହୁବ୍ରୀହି, ଶ୍ୱେତପତ୍ରଯୁକ୍ତ ଅଟେ ରଥ ଯାହାଙ୍କର)—ହଂସବାହନ; ବ୍ରହ୍ମା—The God Brahmā.

ଶ୍ୱେତପତ୍ରା—ସଂ. ବି—ଶ୍ୱେତ ଶିଂଶପା ( ଦେଖ )
Śwetapatrā Śweta śimsapā (See).

ଶ୍ୱେତ ପଦ୍ମ—ସଂ. ବ—ସିତାମ୍ଭୋଜ; ଧଳା ପାଖୁଡ଼ିଆ ପଦ୍ମଫୁଲ—
Śweta padma — White-petalled lotus; the white variety of Nelumbium Speciosum. [ବ୍ର—ଏହା ଉପରେ ମହାଲକ୍ଷ୍ମୀ ଓ ସରସ୍ୱତୀ ଦେବୀ ଆସୀନା ଥିବା ପୁରାଣ-ବର୍ଣ୍ଣିତ । ଏହା ହିମ, ଲଘୁମଧୁର; ପିତ୍ତଦୋଷ, ଦାହ, ରକ୍ତଦୋଷ, ଭ୍ରମ (ଶ୍ୱେତବାରଜ—ଅନ୍ୟରୂପ) ଓ ପିପାସାନାଶକ । ]
ଅନ୍ୟ ସଂ. ନାମ-ସିତାବ୍ଜ, ସିତାମ୍ଭୋଜ, ପୁଣ୍ଡରୀକ, ହରନେତ୍ର, ଶରତ୍ ପଦ୍ମ, ଶାରଦ, ଶମ୍ଭୁବଲ୍ଲଭ
ସାଦା ପଦ୍ମ, सफेद कमल
(ଶ୍ୱେତ ପଦୁଅ, ଶ୍ୱେତ ପଦ୍ମ—ଗ୍ରାମ୍ୟରୂପ)

ଶ୍ୱେତ ପଦ୍ମାସନା—ସଂ. ବି. ସ୍ତ୍ରୀ ( ବହୁବ୍ରୀହି, ଶ୍ୱେତପଦ୍ମ ଅଟେ ଆସନ
Śweta padmāsanā — ଯାହାଙ୍କର—ଯାହାଙ୍କର ଶ୍ୱେତପଦ୍ମ ଉପରେ ବସିଥିବା ଶାସ୍ତ୍ରରେ ବର୍ଣ୍ଣିତ—Described in the scriptures as seated on a white lotus.) ବି. ସ୍ତ୍ରୀ—ସରସ୍ୱତୀ; ଲକ୍ଷ୍ମୀ—The Goddess of learning and the Goddess of good fortune.
(ଶ୍ୱେତପଦ୍ମାସୀନ—ଅନ୍ୟରୂପ)

ଶ୍ୱେତ ପର୍ଣ୍ଣା—ସଂ. ବ—ବାରପର୍ଣ୍ଣୀ; ବୋଇଲାଙ୍କ ଦଳ—A sort of
Śweta parṇṇā — water weed; Serratophyllum Submersum.
ଅନ୍ୟ ସଂ. ନାମ—ଜଳକୁମ୍ଭୀ, ବାରିପର୍ଣ୍ଣୀ, କୁମ୍ଭିକ । पाना दलकुम्भी
ତେ. ଭୂଚୀକର

ଶ୍ୱେତ ପର୍ଣ୍ଣାସ—ସଂ. ବ—ଶ୍ୱେତ ତୁଳସୀ ( ଦେଖ )
Śweta parṇṇāsa — Śweta tulasī (See)

ଶ୍ୱେତ ପାର—ଦେ. ବ ( ଶ୍ୱେତ+ପାରାବତ )—ଶୁକ୍ଳପକ୍ଷବିଶିଷ୍ଟ ପାର-
Śweta pārā — ପକ୍ଷୀ—White pigeon.
सादापायरा सफेद कबुतर ( ଶ୍ୱେତପାରାବତ—ସଂ. ରୂପ )

ଶ୍ୱେତ ପିଙ୍ଗ—ସଂ. ବ—୧ । ଶୁକ୍ଳ ଓ ପିଙ୍ଗଳବର୍ଣ୍ଣ; ପାଣ୍ଡୁରଙ୍ଗ—
Śweta pinga — 1. White and grey mixed colour.
(ଶ୍ୱେତ ପିଙ୍ଗଳ—ଅନ୍ୟରୂପ ୨ । ନୀଳ ଓ ଶୁକ୍ଳ ମିଶ୍ରିତ ରଙ୍ଗ—2. Bluish white colour. ୩ । (ଦେହ ଶ୍ୱେତ ଓ ଜଟା ପିଙ୍ଗଳ ବର୍ଣ୍ଣବିଶିଷ୍ଟ ) ସିଂହ—3. The lion.
ବଣ—ନୀଳ ଓ ଶୁକ୍ଳ ମିଶ୍ରିତ—Bluish white.

ଶ୍ୱେତ ପିଙ୍ଗଳକ—ସଂ. ବି. ଶ୍ୱେତ ପିଙ୍ଗଳ+ସ୍ୱାର୍ଥେ. କ )—ସିଂହ—
Śweta pingalaka — The lion.

ଶ୍ୱେତ ପିଣ୍ଡାଳୁ—ସଂ. ବ—ଯେଉଁ ଆଳୁଗୋଟିଆ ଅଳୁର ଭିତର
Śweta pinḍālu — ଧଳା—The white-kernelled yam; Batatus Esculatus.
(ଅନ୍ୟ ସଂ.ନାମ—ପିଣ୍ଡାଳୁ, ଶ୍ୱେତପିଣ୍ଡି, ପିଣ୍ଡୀତକ, ରୋମଶକନ୍ଦ, କନ୍ଦଗ୍ରନ୍ଥି, ପିଣ୍ଡଳ, ଗ୍ରାମ୍ୟକନ୍ଦକ)
ପିଣ୍ଡାଳୁ रताल्, पिण्डालु, सादा आलु
ଫା. ଦରଖ୍ତ୍ ଲହୋସା ତେ. ତରଗେଡ୍ଡ ।

ଶ୍ୱେତ ପିଣ୍ଡୀତକ—ସଂ.ବ—୧ ଶ୍ୱେତ ପିଣ୍ଡାଳୁ (ଦେଖ)—1. Śweta
Śweta pinditaka — pinḍālu ( See ) ୨ । ମହାପିଣ୍ଡୀ-
ତକ; ( ଧଳା ଫୁଲ ବିଶିଷ୍ଟ ) ମଦନଫଳ ଗଛ—2. A white-flowered tree; bushy Gardenia; Randia Dumetorum.

ଶ୍ୱେତ ପୁନର୍ନବା—ସଂ. ବ—ଶ୍ୱେତପୁରୁଣି ଶାଗ—The white
Śweta punarnabā — variety of hog weed. [ବ୍ର—ଶ୍ୱେତପୁନ୍ନୀ सादा पुनर्नवा ପୁନର୍ନବା ଶବ୍ଦେ ନୋଟ ଦେଖ । ]
ତା. ମୁକଳ ତ୍ତେଇରେ; ମ. ପାଣ୍ଡରୀ ଘେଣ୍ଟୁଳି; ତେ. ଅଟିକାମମୋଦ
(ଶ୍ୱେତ ପୁର[ରୁ]ଣି, ଶ୍ୱେତପୁର୍ଣ୍ଣି—ଅନ୍ୟରୂପ)

ଶ୍ୱେତ ପୁଷ୍ପ—ସଂ. ବ (କର୍ମଧା; ଶ୍ୱେତ+ପୁଷ୍ପ )—୧ । ଧଳା ଫୁଲ—
Śweta pushpa — 1. White flower. ୨ । ( ବୈଦ୍ୟକ ) ସିନ୍ଦୁବାର; ଧଳା ବେଗୁନିଆ ଗଛ—2. Vitex Trifolia; five-leaved chaste tree. [ ବ୍ର—ସିନ୍ଦୁବାର ଶ୍ୱେତ ଓ ନୀଳପୁଷ୍ପ ଭେଦରେ ଦୁଇପ୍ରକାର । ଏହା କଟୁତିକ୍ତକଷାୟ ରସ, ରୁକ୍ଷ, ଉଷ୍ଣବୀର୍ଯ୍ୟ, ସ୍ମୃତିବର୍ଦ୍ଧକ, ନେତ୍ର ହିତ-କର, କେଶ୍ୟ, ଲଘୁ, ଅଗ୍ନିଦୀପକ, ମେଧା ଓ ବଳବର୍ଦ୍ଧକ । ଏହା ପିତ୍ତ, ଗୁହ୍ୟଦେଶଜ ବାୟୁ, କ୍ଷୟ, ସନ୍ଧିବାତ, ବାତ, ଶୋଥ, ଆମଦୋଷ, କୃମି, କୁଷ୍ଠ, କଫ, ବ୍ରଣ, ଗୁଳ୍ମ, କର୍ଣ୍ଣରୋଗ, ବିଷଦୋଷ, ଶୂଳ, ଅରୁଚି, ଜ୍ୱର, ମେଦୋରୋଗ, ଗୃଧ୍ରସୀ, ପ୍ରଭଞ୍ଜନ, କାଶ ଓ ଶ୍ୱାସରୋଗରେ ହିତକର ।
ଅନ୍ୟ ସଂ. ନାମ—ସିନ୍ଦୁବାର, ସିନ୍ଦୁକ, ସିନ୍ଦୁବାରକ
ସାଦା ନିସିନ୍ଦା
सम्भालु, सिहरु
ଫା. ଫନଦନ୍ କୁସ୍ତ
ଆ. ଅସଲକ
ତେ. ତେଲବାବଲ

ଏହାର ପତ୍ରକୁ ଶୁଖାଇ ମୁଗ ଓ ବିରି ଆଦିର ଭଣ୍ଡାରରେ ରଖିଲେ ସେଥିରେ ପୋକ ଲାଗନ୍ତି ନାହିଁ ।

ବାଲୁମୂଳ ଫୁଲ ଓ ବନ୍ଧାରେ ଏ ପତ୍ରକୁ ମନ୍ଦ ଜଳରେ ଫୁଟାଇ ଏ ପତ୍ରର ପୁଡ଼ା କରି ଗାଲକୁ ସେକିଲେ ଉପକାର ହୁଏ । ] ୩ । ଶ୍ୱେତ କରବୀର—3. The white sweet-scented oleander; Nerium Odorum. ୪ । ଶ୍ୱେତାର୍କ; ଧଳା ଅରଖ ଗଛ—4. The white-flowered swallowwort plant. ୫ । ଧଳା ବାସକେରଣ୍ଡା; ଶ୍ୱେତ କୁରୁଣ୍ଟକ—5. ( white flowered) Barlaria Crastata. ୬ । ବରୁଣ ଗଛ ( ରତ୍ନକୋଷ )—
6. Crateavo Religiosa ( tree )
ବି. ବିଣ ( ବହୁବ୍ରୀହି )—ଶୁକ୍ଳପୁଷ୍ପବିଶିଷ୍ଟ—Having white flowers.
(ଶ୍ୱେତପୁଷ୍ପା—ସ୍ତ୍ରୀ. ବିଣ)

ଶ୍ୱେତ ପୁଷ୍ପକ—ସଂ. ବ (ବୈଦ୍ୟକ)—ଶ୍ୱେତ କରବୀର ( ଦେଖ )
Śweta pushpaka — Śweta karabira (See)

ଶ୍ୱେତପୁଷ୍ପା—ସଂ. ବ (ବୈଦ୍ୟକ)—୧ । ଘୋଷାଲତା; ଧଳା ତରଡ଼ା—
Śwetapushpā — 1. Luffa Aegyptica. ୨ । ନାଗଦନ୍ତୀ ୧ ( ଦେଖ )—2. Nāgadanti 1 ( See ) ୩ । ଇନ୍ଦ୍ରବାରୁଣୀ; ମହାକାଳ ( ଲତା ଓ ଫଳ )—3. Colo

cynth. ୪ । ଶ୍ୱେତ ନିର୍ଗୁଣ୍ଡୀ—4. The white-flowered variety of Vitex Trifolia (tree).

**ଶ୍ୱେତପୁଷ୍ପିକା**—ସଂ. ବି ( ବୈଦ୍ୟକ )—୧ । ମାଳବଦେଶ ପ୍ରସିଦ୍ଧ ଲତା ବିଶେଷ; ପୁତ୍ରଦାତ୍ରୀ ନାମକ ଲତା—1. Name of a South Indian white-flowered creeper. [ଦ୍ର—ଏହା ବନ୍ଧ୍ୟାଦୋଷ ନିବାରକ, ମଧୁର, କଟୁରସ, ଉଷ୍ଣବୀର୍ଯ୍ୟ, ବାତକଫନାଶକ । ] ୨।ମେଦାଶଣପୁଷ୍ପିକା; ଛୋଟ ହରଡ଼; ଶ୍ୱେତ ହରଡ଼; ଶ୍ୱେତାଢ଼କୀ—2. A species of pigeon pea; Cajanus Indicus. [ଦ୍ର—ହରଡ଼ ଶ୍ୱେତ, ପୀତ ଓ ରକ୍ତଭେଦରେ ୩ ପ୍ରକାର । ଏହା ବାତାଦି ଦୋଷବର୍ଦ୍ଧକ ।]

Śweta pushpikā

ଅନ୍ୟ ସଂ. ନାମ—ପୁତ୍ରଦାତ୍ରୀ, ଭାତାର, ଭ୍ରମରୀ, ବୃତ୍ତପତ୍ରା, ଅତି ଗନ୍ଧାଳୁ, ବେଣୀକାତା, ପୁତ୍ରଶ୍ରେଣୀ

**ଶ୍ୱେତ ପୂରିକା**—ସଂ. ବି ( ବୈଦ୍ୟକ )—ଲୁଚି; ମଇଦାରେ ଅଧିକ ପରିମାଣରେ ଘିଅ (ମଯୂାନ) ଦେଇ ତାକୁ ପରେ ଘିଅରେ ଛାଣି ସେଥିରେ ପତଳା ହୋଇ ବେଲା ହୋଇ ବଡ଼ଫଳ୍ପ ଥିବା ପୁର—Thin white cake of flour fried in ghee. ( ଦ୍ର—ବୈଦ୍ୟଶାସ୍ତ୍ରମତେ ଏହା ଧାତୁବର୍ଦ୍ଧକ, ସ୍ନିଗ୍ଧ, ବାତ ଓ ପିତ୍ତନାଶକ—ବିଶ୍ୱକୋଷ)

Śweta pūrikā

**ଶ୍ୱେତ ପ୍ରସୂନକ**—ସଂ. ବି ( ବୈଦ୍ୟକ )—ଶାଗୁଆନ; ଶାଗୁଅନ ଗଛ—Teak tree. ବିଣ—ଶୁକ୍ଳପୁଷ୍ପଯୁକ୍ତ—White-flowered.

Śweta prasūnaka

**ଶ୍ୱେତ ପ୍ରଦର**—ସଂ. ବି ( ବୈଦ୍ୟକ )—ଉତ୍କଟ ସ୍ତ୍ରୀରୋଗ ବିଶେଷ—Leucorrhœa. ( ଦ୍ର—ପ୍ରଦର ଶ୍ୱେତ ରକ୍ତସ୍ରାବ ଭେଦରେ ଦୁଇ ପ୍ରକାର । ଶ୍ୱେତ ପ୍ରଦରରେ ଯୋନି ପଥରେ ଶୁକ୍ଳ ରସ ନିର୍ଗତ ହୁଏ । )

Śweta pradara

**ଶ୍ୱେତ ପ୍ରସ୍ତର**—ସଂ. ବି—ଧଳା ପଥର—White-stone.

Śweta prastara

**ଶ୍ୱେତ ବଚ୍**—ସଂ. ବି—ଧଳା ବଚ; ପାରସ୍ୟଦେଶଜାତ ବୃକ୍ଷର ଚେର—Sweet flag; Acorus Calamus. ( ଶ୍ୱେତ ବଚ—ଦେ. ରୂପ ) [ ଦ୍ର—ବଚ ତଳେ ନୋଟ ଦେଖ ।]

Śweta bachā

**ଶ୍ୱେତ ବନବନା**—ଦେ. ବି (ସଂ. ଶ୍ୱେତବୁହ୍ନା )—ଶ୍ୱେତବୁହ୍ନା (ଦେଖ)—Śwetabuhnā ( See )

Śweta banabanā

**ଶ୍ୱେତ ବରାହ**—ସଂ. ବି—୧ । ଧଳା ବାରିହା—White-skinned boar. ୨ । ସୃଷ୍ଟିର କଳ୍ପମାନଙ୍କ ମଧ୍ୟରୁ ଏକ କଳ୍ପର ନାମ—2. Name of a cycle of the age of creation. [ ଦ୍ର—ଭାଗବତ ତୃତୀୟ ସ୍କନ୍ଧ ୧୧ଶ ଅଧ୍ୟାୟ ୩୭ ଶ୍ଳୋକ ଦ୍ରଷ୍ଟବ୍ୟ । ଏହା ବ୍ରହ୍ମାଙ୍କ ସୃଷ୍ଟିର ଅପରାର୍ଦ୍ଧର ପ୍ରଥମ କଳ୍ପ । ଏଥିର ପରିମାଣ ୪୩୨ କୋଟି ବର୍ଷ । ଏହି କଳ୍ପର ସପ୍ତବିଂଶ ଯୁଗ ଅତୀତ ହୋଇ ଅଷ୍ଟାବିଂଶ ଯୁଗ ବର୍ତ୍ତମାନ ଚାଲୁଅଛି । ଏ କଳ୍ପରେ ସ୍ୱାୟମ୍ଭୁବ, ସ୍ୱାରୋଚିଷ, ଉତ୍ତମ, ତାମସ, ରୈବତ ଓ ଚାକ୍ଷୁଷ ମନୁମାନଙ୍କ ଅଧିକାର ଶେଷ ହୋଇଅଛି, ବର୍ତ୍ତମାନ ବୈବସ୍ୱତ ନାମକ ସପ୍ତମ ମନୁଙ୍କ ଅଧିକାର ଚାଲୁଅଛି । ଶ୍ୱେତ ବରାହ କଳ୍ପର ଆରମ୍ଭ ହେଲାବେଳେ ଏ ପୃଥିବୀ ସୃଷ୍ଟ ହୋଇ ନ ଥିଲା । ଏ କଳ୍ପାରମ୍ଭର ୧ କୋଟି ୭୦ ଲକ୍ଷ ୬୪ ହଜାର ବର୍ଷ ପରେ ଏ ପୃଥିବୀର ସୃଷ୍ଟି ହେଲା ।] ୩ । ବିଷ୍ଣୁଙ୍କର ରୂପ ବିଶେଷ (ବିଶ୍ୱକୋଷ)—3. A form of Bishṇu. ୪ । ତୀର୍ଥ ବିଶେଷ ( ବିଶ୍ୱକୋଷ )—4. Name of a holy place of pilgrimage.

Śweta barāha

**ଶ୍ୱେତ ବର୍ବରକ**—ସଂ. ବି—ବର୍ବର ଚନ୍ଦନ; ଏକ ପ୍ରକାର ଚନ୍ଦନ; ସୁରଭି ଚନ୍ଦନ; ବାସଚନ୍ଦନ—A species of Sandal wood

Śweta barbbaraka

ଅନ୍ୟ ସଂ. ନାମ—ବର୍ବରୋତ୍ଥ, ବର୍ବରକ, ମିଶ୍ରିତ, ବର୍ବର, ଶୀତ, ସୁଗନ୍ଧ, ସୁରଭି ।

**ଶ୍ୱେତ ବର୍ବରିକା**—ସଂ. ବି—ଶ୍ୱେତ ତୁଳସୀ (ଦେଖ)—Śweta tuḷasī. (See)

Śweta barbbarikā

**ଶ୍ୱେତ ବସ୍ତ୍ର**—ସଂ. ବି (କର୍ମଧା)—ଧଳାଲୁଗା—White cloth. ସଂ. ବିଣ. ପୁଂ (ବହୁବ୍ରୀହି)—ଶ୍ୱେତବସ୍ତ୍ରୀ (ଦେଖ)—Śwetabastri. (See)

Śweta bastra

(ଶ୍ୱେତବସ୍ତ୍ରା—ବିଣ. ସ୍ତ୍ରୀ)

**ଶ୍ୱେତବସ୍ତ୍ରୀ**—ସଂ. ବିଣ. ପୁଂ (ଶ୍ୱେତବସ୍ତ୍ର+ଇନ୍; ୧ମା. ୧ବ)—ଯେ ଧଳାଲୁଗା ପିନ୍ଧିଥାଏ—Putting on white cloth.

Śwetabastri

(ଶ୍ୱେତବସ୍ତ୍ରିଣୀ—ସ୍ତ୍ରୀ)

**ଶ୍ୱେତବାଜୀ**—ସଂ. ବି (ଶ୍ୱେତ+ବାଜୀନ୍ ୧ମା. ୧ବ; କର୍ମଧା)—୧ । ଧଳା ଘୋଡ଼ା—1. White horse. ୨ । (ବହୁବ୍ରୀହି; ଶ୍ୱେତବାଜୀ ଅଛି ଯାହାର )—ଚନ୍ଦ୍ର—2. The moon. ୩ । ଅର୍ଜୁନ; ମଧ୍ୟମ ପାଣ୍ଡବ—3. Arjuna.

Śweta bāji

**ଶ୍ୱେତ ବାଡ଼ି ଅଁଲା**—ଦେ. ବି—ମହାବଳା; ବଜ୍ରମୂଳୀ—Sida Rhombifolia (plant)

Śweta bāṛi a-aṅlā

শ্বেত বেড়েলা সহদেঈ

**ଶ୍ୱେତ ବାରାହ କଳ୍ପ**—ସଂ. ବି—ବ୍ରହ୍ମାଙ୍କ ସୃଷ୍ଟିର ଅପରାର୍ଦ୍ଧର ପ୍ରଥମ କଳ୍ପର ନାମ—Name of a cycle of the age of creation of the universe. [ଦ୍ର—ଶ୍ୱେତବରାହ ତଳେ ଟୀକା ଦେଖ]

Śweta bāraha kaḷpa

**ଶ୍ୱେତ ବାରାହ କଳ୍ପାବ୍ଦ**—ସଂ. ବି—ଶ୍ୱେତ ବାରାହ କଳ୍ପର ଗଣନାରେ ବର୍ଷର ପରିମାଣ—Year calculated according to 'Śweta bāraha kaḷpa' [ ଦ୍ର—ଶ୍ୱେତବାରାହ କଳ୍ପାବ୍ଦର ପରିମାଣ ମୋଟରେ ୪୩୨ କୋଟି ବର୍ଷ । ବର୍ତ୍ତମାନ (୧୯୩୨ ସାଲରେ) ଶ୍ୱେତବାରାହ କଳ୍ପାବ୍ଦରେ ୧୯୭ କୋଟି ୨୯ ଲକ୍ଷ ୪୯ ହଜାର ୩୮ ବର୍ଷ ଚାଲୁଅଛି । ଶ୍ୱେତବାରାହ କଳ୍ପାବ୍ଦର ଆରମ୍ଭବେଳେ ଏ ସୃଷ୍ଟି ହୋଇ ନ ଥିଲା । ଆରମ୍ଭରୁ ୧ କୋଟି ୭୦ ଲକ୍ଷ ୬୪ ହଜାର ବର୍ଷ ଗତ ହେବା ପରେ ଏ ସୃଷ୍ଟି ହେଲା । ଅତଏବ ୧୯୭୨୯୪୯୦୩୮ ରୁ ୧୭୦୬୪୦୦୦ ବାଦ୍ ଗଲେ ବାକି ରହିଲା ୧୯୫

Śweta bāraha kaḷpābda

କୋଟି ୭୮ ଲକ୍ଷ ୮୫ ହଜାର ୭୮ ବର୍ଷ ବର୍ତ୍ତମାନ ପୃଥିବୀର ବୟସ ଅଟେ । ]

**ଶ୍ୱେତ ବାର୍ତ୍ତାକୀ(କୁ)**—ସଂ. ବି—ଧଳା ବାଇଗଣ—White species of brinjal; Solanium Melongum.
Śweta bārttāki(ku)
ଶ୍ୱେତ ବୃନ୍ତାକ } ଅନ୍ୟରୂପ
ଶ୍ୱେତ ଭଣ୍ଟାକୀ
[ଦ୍ର—ଶାସ୍ତ୍ର ଅନୁସାରେ ଏ ବାଇଗଣ ଖାଇବା ନିଷିଦ୍ଧ ଅଟେ । ବୈଦ୍ୟକ ନିର୍ଘଣ୍ଟ ]

**ଶ୍ୱେତ ବାସାଃ**—ସଂ. ବିଣ (ପୁଂ ଓ ସ୍ତ୍ରୀ) (ବହୁବ୍ରୀହି; ଶ୍ୱେତବାସସ୍ ଶବ୍ଦ; ୧ମା. ୧ବ)—ଶୁକ୍ଳବସନଧାରୀ—Wearing white dress.
Śweta bāsāh

**ଶ୍ୱେତବାହ**—ସଂ. ବି (ଶ୍ୱେତ=ଧଳା+ବାହ=ଘୋଡ଼ା; ବହୁବ୍ରୀହି)—୧ । ଇନ୍ଦ୍ର—1. Indra. ୨ । ଚନ୍ଦ୍ର—(ଶ୍ୱେତ ବାହନ; ଶ୍ୱେତବାହୀ—ଅନ୍ୟରୂପ) 2. The moon. ୩ । ଅର୍ଜ୍ଜୁନ—3. Arjuna. ୪ । ମକର; ମଗର—4. White shark or probably seal.
Śwetabāha

**ଶ୍ୱେତ ବୁହ୍ନା**—ସଂ. ବି—ଔଷଧିଗୁଳ୍ମ ବିଶେଷ; ବନତିକ୍ତା; ଶ୍ୱେତ ଚିରତା—Andrographis Paniculata. [ଦ୍ର—ଏହା ତିକ୍ତାମ୍ଳରସ, ଅଗ୍ନିଦୀପକ, ରୁଚିକର ଓ ରେଚକ । ଏହା ବିଷଦୋଷ, ରକ୍ତଦୋଷ, କୁମି, କୁଷ୍ଠ ଓ ବାଳଯାବା ରୋଗରେ ଉପକାରୀ ।]
Śweta buhnā
ଅନ୍ୟ ସଂ. ନାମ—ଯବତିକ୍ତା, ଶଙ୍ଖିନୀ, ଶୁକଚଞ୍ଚୁ, ଗିରୁଚା, ଦୃଢପତ୍ରା, କର୍ଣ୍ଣୀକ, ସୂକ୍ଷ୍ମପୁଷ୍ପା, ତିକ୍ତଫଳା, ବନତିକ୍ତା, ଦ୍ୱିଷର୍ପିଣୀ, ଯାବା, ତିକ୍ତା, ଯଶସ୍ୱିନୀ,
ମହାତିକ୍ତା କାଲମେଘ **ବକାୟନ**

**ଶ୍ୱେତ ବୃକ୍ଷ**—ସଂ. ବି—୧ । ବରୁଣ ବୃକ୍ଷ—1. A wild tree; Crataeva Aurifolia.
Śweta bruksha
୨ । ଶୁକ୍ଳବର୍ଣ୍ଣ ଗଛ—
2. A tree of white colour,

**ଶ୍ୱେତ ବୃହତୀ**—ସଂ. ବି—୧ । ଧଳା ବାଇଗଣ—1. White egg-plant or brinjal. ୨ । କଣ୍ଟାକାରୀ ବେଙ୍ଗକୋଳି; ଧଳା ପୁଷ୍ପବିଶିଷ୍ଟ ବେଙ୍ଗକୋଳି—2. A thorny creeper; white-flowered Solanum Indicum. [ଦ୍ର—ଏହା ରୁଚିକର, ବାତଶ୍ଳେଷ୍ମନାଶକ ଓ ଅଞ୍ଜନରୂପେ ନେତ୍ର ରୋଗରେ ହିତକର ।]
Śweta bruhati

**ଶ୍ୱେତ ଭଣ୍ଡା**—ସଂ. ବି (ବୈଦ୍ୟକ)—ଶ୍ୱେତାପରାଜିତା; ଧଳା ଅପରାଜିତା ଫୁଲ ଓ ତାହାର ଲତା—The white variety of Clitoria Ternata.
Śweta bhandā
[ଦ୍ର—ଶ୍ୱେତ ଓ ନୀଳପୁଷ୍ପ ଭେଦରେ ଅପରାଜିତା ଦୁଇ ପ୍ରକାର—
ଶ୍ୱେତ କଟୁତିକ୍ତରସ, ଶୀତବୀର୍ଯ୍ୟ, ଚକ୍ଷୁରୋଗ, ବିଷଦୋଷ ଓ ତ୍ରିଦୋଷଜନିତ ଉପଦ୍ରବର ଶାନ୍ତିକାରକ ।]

**ଶ୍ୱେତ ଭାନୁ(ରଶ୍ମି)**—ସଂ. ବି (ବହୁବ୍ରୀହି; ଶ୍ୱେତ+ଭାନୁ=କିରଣ ଯାହାର)—ଚନ୍ଦ୍ର (ଶବ୍ଦକୋଷ)—The moon.
Śweta bhānu(raśmi)

**ଶ୍ୱେତ ଭୃଙ୍ଗରାଜ**—ସଂ. ବି—କେଶରୁଦୁରୀ; ଶ୍ୱେତ ପୁଷ୍ପଯୁକ୍ତ ଭୃଙ୍ଗରାଜ ଗୁଳ୍ମ—The white-flowered Wedelia Calendulacia; the traling Eclipta. [ଦ୍ର—ଭୃଙ୍ଗରାଜ ଧଳା ଓ ଧଳା ଫୁଲ ଭେଦରେ ଦୁଇ ପ୍ରକାର । ଧଳାକୁ କେଶରୁଦୁରୀ ବୋଲାଯାଏ । କଳାକୁ ଭୃଙ୍ଗରାଜ କହନ୍ତି ।
Śweta bhrungarāja
ଅନ୍ୟ ସଂ. ନାମ—ଭୃଙ୍ଗରଜ, ଭୃଙ୍ଗରାଜ, ମାର୍କବ, ଭୃଙ୍ଗ, ଅଙ୍ଗାରକ, କେଶରାଜ, ଭୃଙ୍ଗାର, କେଶରଞ୍ଜକ ।
ସାଦା ଭୀମରାଜ
**सफेद भंगरा**
ଗୁ· ଭାଙ୍ଗରେ
ଫା. କମଦରି
ମ. ପିବଲମାଂକା
ଅ· ହଜାଜ
ତେ. ଗନ୍ଟଗର ଗରଚେଟ୍ଟୁ
ଶ୍ୱେତ ଭୃଙ୍ଗରାଜ କଟୁତିକ୍ତ, ଉଷ୍ଣବୀର୍ଯ୍ୟ, ରୁକ୍ଷ, ବଳକର, ରସାୟନ, କଫବାତନାଶକ, ଦନ୍ତର ଓ କେଶର ହିତକର । ଏହା ଶ୍ୱାସ, କାଶ, କୃମି, କୁଷ୍ଠ, ପାଣ୍ଡୁ, ଶୋଥ, ଶିରୋରୋଗ ଓ ନେତ୍ର ରୋଗରେ ଉପକାରୀ ।]

**ଶ୍ୱେତ ମନ୍ଦାର**—ସଂ. ବି—୧ । ଧଳାଫୁଲ ଯୁକ୍ତ ମନ୍ଦାର ଗଛ; ଶ୍ୱେତ ଜବା—1. The white variety of Hibiscous; Rosa Sinensis. [ଦ୍ର—ଶ୍ୱେତ, ପିତ, ରକ୍ତ, ଶ୍ୱେତରକ୍ତାଦି ଭେଦରେ ମନ୍ଦାର ଫୁଲ ନାନା ପ୍ରକାରର ହୁଏ ।] ୨ । ଧଳା ଅରଖ ଗଛ (ଶବ୍ଦକୋଷ)—2. The white flowered variety of Calotropis Gigantea plant.
Śweta mandāra

**ଶ୍ୱେତ ମରିଚ**—ସଂ. ବି (ବୈଦ୍ୟକ)—୧ । ଶୋଭାଞ୍ଜନ ବୀଜ; ଶଜନା ମଞ୍ଜି—1. The seeds of Hyperathera Moringa. [ଦ୍ର—ଏହା କଟୁରସ, ଉଷ୍ଣ ବୀର୍ଯ୍ୟ, ତୀକ୍ଷ୍ଣ, ଅରୁଚ୍ୟ, ରସାୟନ । ଏହା ଚକ୍ଷୁରୋଗ, ଭୂତାବେଶ, ବିଷଦୋଷ ଓ ଶିରୋରୋଗରେ ଉପକାରୀ ।) ୨ । ଶୁକ୍ଳ ମରିଚ; ଧଳା ବା ପାଣ୍ଡୁର ରଙ୍ଗର ମରିଚ ବିଶେଷ—2. A brown species of black pepper. ୩ । ଶ୍ୱେତ ଶିଗ୍ରୁ (ଦେଖ)—3. Śweta śigru (See)
Śweta maricha
ଶଜିନାବୀଜ
**सोहिजनकाबीज**
ମ· ଗାଁ।ଡରେ ମିରଘେ
ତେ. ତେଲ୍ଲମିରିୟାଲୁ
**सहिजनबज**

**ଶ୍ୱେତ ମର୍ମର**—ଦେ. ବି—ଧଳା ମାର୍ବଲ ପଥର; ଶ୍ୱେତ ମର୍ମର—White marble
Śweta marmara
ସାଧାମାର୍ବେଲ **सफेदसंगमरमर**

**ଶ୍ୱେତମାଳ**—ସଂ. ବି (ଶ୍ୱେତ=ଶୁକ୍ଳ+ମାଳା; ବହୁବ୍ରୀହି)—୧ । ମେଘ—1. Cloud. ୨ । ଧୂମ—2. Smoke (ଦ୍ର—ମେଘ ଓ ଧୂଆଁ ଦୂରରୁ ଶ୍ୱେତମାଳାଯୁକ୍ତ ହେବା ପରି ପ୍ରତୀୟମାନ ହେଉଥିବାରୁ ଏହି ନାମ ହୋଇଅଛି । ମନିଅର୍ ଉଇଲିୟମ୍ସ୍ ତାଙ୍କ ସ୍ୱକୃତ କୋଷରେ ଲେଖି ଥାଇନ୍ତି ଯେ ଏହି ଶବ୍ଦ ସମ୍ଭବତଃ ଶ୍ୱେତମାଳ (ମେଘ) ଶବ୍ଦର ଅଶୁଦ୍ଧ ଆକାର ଅଟେ ) ।
Śwetamāla

**ଶ୍ୱେତ ମୁରୁଜ**—ଦେ· ବି—ଶୁକ୍ଳବର୍ଣ୍ଣ ଚୂର୍ଣ୍ଣ ; ଭୂମିରେ ଚିତ୍ର କାଟିବାରେ
Śwetā muruja ବ୍ୟବହୃତ ଗୁଣ୍ଡ ଅଧର ଧଳାଗୁଣ୍ଡା—White
ସାଦା ଗୁଁଡା(ଡୀ) powder (used in drawing figur-
सफेद चूरन es on the ground) on ceremonial
and festive occasions.

**ଶ୍ୱେତମୂଳା**—ସ. ବି (ବହୁବ୍ରୀହି)—ଶ୍ୱେତ ପୁନର୍ନବା (ଦେଖ)—
Śwetamūlā Śweta punarnabā (See) ଦେ. ବି·
ସାଦା ମୂଳା(ଳୋ) (କର୍ମଧା)—(ସ. ଶ୍ୱେତ ଓ ମୂଳକ)—ଧଳାମୂଳା;
सादीमूली ସାଧାରଣ ମୂଳା—Radish (white).

**ଶ୍ୱେତ ରକ୍ତ**—ସ. ବି (ଶ୍ୱେତ + ରକ୍ତ)—ଧଳା ଓ ଲାଲ ମିଶା ବର୍ଣ୍ଣ;ପାଟଳ
Śweta rakta ବର୍ଣ୍ଣ; ଗୋଲାପୀ ରଙ୍ଗ; ଫିକାଲାଲ ରଙ୍ଗ—
Rose colour. ବିଣ—ପାଟଳ; ଗୋଲାପୀ; ଫିକା-
ଲାଲ—Rosy; rose coloured; pale pink.

**ଶ୍ୱେତ ରଞ୍ଜନ**—ସ. ବି—ସୀସକ; ସୀସା—
Śweta rañjana Lead (metal).

**ଶ୍ୱେତ ରତ୍ନ(ମଣି)**—ସ. ବି—ସ୍ଫଟିକ (ବିଶ୍ୱକୋଷ)—
Śweta ratna(maṇi) Crystal; quarty.

**ଶ୍ୱେତ ରଥ**—ସ. ବି (କର୍ମଧା)—୧ । ଶୁକ୍ଳବର୍ଣ୍ଣ ରଥ—1. A white
Śweta ratha car. ୨ । (ବହୁବ୍ରୀହି) ଶୁକ୍ରଗ୍ରହ—2.
The planet Venus

**ଶ୍ୱେତ ରସ**—ସଂ. ବି—ନବନୀତ (ବିଶ୍ୱକୋଷ)—
Śweta rasa Butter.

**ଶ୍ୱେତରାଜି(ଜୀ)**—ସ. ବି '(ବୈଦ୍ୟକ)-ଚିଚିଣ୍ଡା; ଛଚିନ୍ଦା—
Śwetarāji(jī) snake gouod.
(ଅନ୍ୟ ସ. ନାମ—ଚିଚେଣ୍ଡା,ଚିଚିଣ୍ଡା; ସ୍ୱାଦୁଳ, ଶ୍ୱେତରାଜିକ, ଚିଚିଣ୍ଡା)

**ଶ୍ୱେତ ରାଜିକା**—ସ. ବି—ଧଳାରାଇ ସୋରିଷ—
Śweta rājikā The white variety of rye seed.

**ଶ୍ୱେତ ରୂପ୍ୟ**—ସ. ବି—ଦସ୍ତା ମିଶ୍ରିତ ଶୁକ୍ଳ ଧାତୁ ବିଶେଷ—
Śweta rūpya Pewter

**ଶ୍ୱେତ ରୋଚିଃ**—ସଂ ବି (ବହୁବ୍ରୀହି; ଶ୍ୱେତ ଅଟେ ରୋଚିଷ୍—ରଶ୍ମି
Śweta rochih ଯାହାର)—ଚନ୍ଦ୍ର—The moon

**ଶ୍ୱେତ ରୋହିତ**—ସ ବି (ବୈଦ୍ୟକ)—ଧଳା ରୋହିନୀ ଗଛ; ରୋହି
Śweta rohita ଗାଛଟି—The white variety
[ଶ୍ୱେତରୋହିତକ—ଅନ୍ୟରୂପ] of Andersonia
ଅନ୍ୟ ସଂ ନାମ—ସିତପୁଷ୍ପ, ସିତାଭ୍ର, . Rohitaka;Tecoma
ସିତାଙ୍ଗ, ଶୁକ୍ଳରୋହିତ,ଲକ୍ଷ୍ମୀବାନ୍, Andulata; a timber
ଚନ୍ଦନରୋହି tree). [ଦ୍ର—
ସୁଷମ କାଠ ଶୁକ୍ଳ ଓ ରକ୍ତ
साहारोहा, साहाररोहना ଭେଦରେ ଦୁଇ ପ୍ରକାର ।
सफेदरोहित ଶ୍ୱେତ ରୋହିତର ଗୁଣ ରକ୍ତ-
ରୋହିତକ ସଙ୍ଗେ ସମାନ । ଏହା କଟୁ, ସ୍ନିଗ୍ଧ, କଷାୟ,
ଶୀତଳ; କୃମି, ବ୍ରଣ, ପ୍ଲୀହା, ରକ୍ତଦୋଷ ଓ ନେତ୍ର ରୋଗ
ଶମନରେ ଉପକାରୀ]

**ଶ୍ୱେତ ଲୋଧ୍ର**—ସ ବି ( ବୈଦ୍ୟକ )—ଧଳା ଲୋଧ ଗଛ—White
Śweta lodhra species of Symplocos
ଅନ୍ୟ ସ ନାମ—ଶୁକ୍ଳ, ଶବରଲୋଧ୍ର Racemosa (tree).
ମହାଲୋଧ୍ର, ଶାବର ( ଦ୍ର—ଏହା ରକ୍ତ
साहालोध लोध्रर गुणविशिष्ट ।
सफेदलोध

**ଶ୍ୱେତ ଶଜନା**—ଦେ. ବି—ଶ୍ୱେତ ଶିଗ୍ରୁ (ଦେଖ)
Śweta śajanā Śweta sigru (See)
খেতসজিনা सफेदसहींजन

**ଶ୍ୱେତ ଶରପୁଙ୍ଖ(ଙ୍ଖା)**—ସ ବି—ଶ୍ୱେତପୁଷ୍ପଯୁକ୍ତ ଶରପୁଙ୍ଖ ଗୁଳ୍ମ—
Śweta śarapuṅkha(ṅkhā) A sort of white-
ଅନ୍ୟ ସଂ ନାମ—ସିତଶରପୁଙ୍ଖ, flowered wild
ସିତପୁଙ୍ଖା, ଶୁଭ୍ରପୁଙ୍ଖା। Tephrosia plant
খেতসবফোঁকা [ଦ୍ର—ଶ୍ୱେତ ଓ ପୀତ
सादासरफोंका ଭେଦରେ ଶରପୁଙ୍ଖ ଦୁଇ
ପ୍ରକାର; ଶ୍ୱେତଶରପୁଙ୍ଖ ଓ ପୀତ ଠାରୁ ଅଧିକ ଗୁଣଶାଳୀ;
ଏହାର ଅକୃତି ଗାଲ ଗୁଳ୍ମ ସଦୃଶ । ଏହା କଟୁ, ଉଷ୍ଣବୀର୍ଯ୍ୟ,
ପ୍ଲୀହା, କୃମି ଓ ବାତ ରୋଗରେ ଉପକାରୀ ।]

**ଶ୍ୱେତ ଶାଲ୍ମଳୀ(ଳି)**—ସଂ ବି—ଏକପ୍ରକାର ଧଳାଫୁଲବିଶିଷ୍ଟ ଶିମିଳି ଗଛ.
Śwetaśālmalī(li) The white flowered silk
[ଶ୍ୱେତଶିମିଳି—ଦେ· ରୂପ] cotton tree.

**ଶ୍ୱେତ ଶିଂଶପା**—ସଂ ବି—ଶ୍ୱେତ ପତ୍ରଯୁକ୍ତ ଶିଶୁ ଗଛ—
Śweta śimśapā The white leaved sissoo tree.
ଅନ୍ୟ ସଂ ନାମ—ଶ୍ୱେତପତ୍ରା, (ଦ୍ର—ଶ୍ୱେତ, ପୀତ, କୃଷ୍ଣ ଓ
ଶ୍ୱେତଚିହ୍ନିକା କପିଳବର୍ଣ୍ଣଭେଦରେ ଶିଶୁ
ଗଛ ୪ ପ୍ରକାର । ଶ୍ୱେତ ଶିଂଶପା ରକ୍ତ, ଶୀତବୀର୍ଯ୍ୟ, ପିତ୍ତ
ଓ ଦାହନାଶକ ଅଟେ ।

**ଶ୍ୱେତ ଶିଗ୍ରୁ**—ସଂ ବି—ଶୁକ୍ଳ ଶୋଭାଞ୍ଜନ; ଶ୍ୱେତ ଶଜନା;ଶୁକ୍ଳବର୍ଣ୍ଣ ପୁଷ୍ପ
Śweta śigru ଯୁକ୍ତ ଶୋଭାଞ୍ଜନ; ସାଧାରଣ ଶଜନ।
ଅନ୍ୟ ସଂ ନାମ—ସୁଗନ୍ଧ ମୁଖଭଙ୍ଗ, (ଗଛ) —The white
ସିତାହ୍ୱୟ, ସୁମୂଳ, ଶ୍ୱେତମରିଚ,ରୋଚନ, flowered horse
ମଧୁଶିଗ୍ରୁ radish tree or
moringa.
খেতসজিনা सफेदसहिंजन [ଦ୍ର—ଶ୍ୱେତ, ପୀତ, ନୀଳ
ଓ ରକ୍ତପୁଷ୍ପ ଭେଦରେ ଶିଗ୍ରୁ ୪ ପ୍ରକାର । ଶ୍ୱେତ ଶିଗ୍ରୁ
ଅନ୍ୟମାନଙ୍କ ଅପେକ୍ଷା ଗୁଣଯୁକ୍ତ ଓ ଦାହଜନକ; ପ୍ଲୀହା,
ବିଦ୍ରଧି, ବ୍ରଣ, ପିତ୍ତ ଓ ରକ୍ତଦୋଷରେ ଉପକାରକ ।]

**ଶ୍ୱେତ ଶିଳା**—ସଂ ବି—୧ । ଶ୍ୱେତ ପ୍ରସ୍ତର ( ଦେଖ )—1. Śweta
Śweta śilā . prastara (See) ୨ । (ବୈଦ୍ୟକ)
খেতপাথরকুচি सफेदपत्थरभेद ହେମସାଗର ଗୁଳ୍ମ
2. Byrophylcum Calyciuum (plant.)
[ଦ୍ର—ଏହାର ପତ୍ର ମୋଟ, ରୋମଶୂନ୍ୟ ଓ ଅମ୍ଳ । ବର୍ଷା
ଦିନେ ଏହାର ପତ୍ରକୁ ଓଦା ସ୍ଥାନରେ ରଖିଲେ ପତ୍ରରୁ ଅଙ୍କୁର

ବାହାର ଅନେକ ଗନ୍ଧ ହୁଏ । ଫୁଲ ଗୁଡ଼ ପାଖୁଡ଼ିଆ, ବଡ଼ ବଡ଼, ବାଇଗଣୀ ଓ ନାଲି ମିଶା । ଏହା ଶୀତ ଋତୁରେ ଫୁଟେ; ଫୁଲରେ ୮ଟି କେଶର ଥାଏ ।]

**ଶ୍ୱେତ ଶୁଙ୍ଗ**—ସଂ. ବି (ଶ୍ୱେତ ଅଟେ ଶୁଙ୍ଗ ଯାହାର)—ଯବ—
Śweta śunga Barley.

**ଶ୍ୱେତ ଶୂରଣ**—ସଂ. ବି—ବନଶୂରଣ; ଓଲୁଅ—A wild esculent
Śweta śūrana root; wild arum. (କର୍ମଧା;

**ଶ୍ୱେତ ସର୍ପ**—ସଂ. ବି ଶୁକ୍ଲ+ସର୍ପ)—୧ । ଶୁକ୍ଲ ଅହି; ଧଳା ସାପ—
Śweta sarpa 1. White serpent. ୨ । (ବୈଦ୍ୟକ) ବରୁଣ ବୃକ୍ଷ—2. A tree; Caparis Trifoliata.

**ଶ୍ୱେତ ସର୍ଷପ**—ସଂ. ବି—ଧଳା ସୋରିଷ—White mustard,
Śweta sarshapa Brassica Juncea. (ଦ୍ର—
(ଶ୍ୱେତ ସୋରିଷ—ଦେ. ରୂପ) ଏହା ଅନ୍ୟ ଜାତୀୟ ବା କୃଷ୍ଣ-
ଅନ୍ୟ ସଂ. ନାମ—ସିଦ୍ଧକା, ସର୍ଷପର ସମଗୁଣ ବିଶିଷ୍ଟ, କିନ୍ତୁ ତହିଁ
ସିଦ୍ଧାର୍ଥ ଅପେକ୍ଷା ସକଳ ଗୁଣରେ ଉତ୍କୃଷ୍ଟ ।
সেতসরিষা, রাইসরিষা ବିଶେଷତଃ ଶ୍ୱେତ ସର୍ଷପ ରୁଚିକର,
राजिका, सफेदसरसों ଗ୍ରହ ଦୋଷ ନାଶକ ଏବଂ ବ୍ରଣ,
ବାତରକ୍ତ, ବିଷଦୋଷ, ଭୂତାବେଶ ନାଶକ ।)

**ଶ୍ୱେତ ସାର**—ସଂ. ବି (ବହୁବ୍ରୀହି, ଶ୍ୱେତ ଅଟେ ସାର=ଗର୍ଭାଂଶ ଯାହାର)
Śweta sāra ଖଇର ବୃକ୍ଷ—Catechue tree. ଦେ. ବି.
শ্বেতসার श्वेतसार (ଅଧୁନିକ; ବିଜ୍ଞାନ)—ଗହୁମ, ଚାଉଳ, ଯବ, ଆଳୁ ଅାଦି ପ୍ରଭୃତି ମଧ୍ୟରେ ଥିବା ଶସ୍ୟର ପୁଷ୍ଟିକର ଧଳା ସାରାଂଶ ବିଶେଷ—Starch.

**ଶ୍ୱେତ ସୁର(ରୁ)ମା**—ଦେ. ବି (ସଂ. ସୌବୀରାଞ୍ଜନ)—ସୌବୀରାଞ୍ଜନ;
Śweta sura(ru)mā ଧାତୁର ଅଞ୍ଜନ—White sulpheret
(ଶ୍ୱେତସୁର୍ମା—ଅନ୍ୟରୂପ) of antimony. (ଦ୍ର—କୃଷ୍ଣ ସୁରୁମାକୁ
সাদাশুর্মা सफेदसुरमा ସ୍ରୋତୋଞ୍ଜନ ବୋଲାଯାଏ । ଶ୍ୱେତ ସୁରୁମା ସ୍ରୋତୋଞ୍ଜନର ଗୁଣ ବିଶିଷ୍ଟ, କିନ୍ତୁ ତହିଁ ଅପେକ୍ଷା ନିକୃଷ୍ଟ ।)

**ଶ୍ୱେତସ୍ପନ୍ଦା**—ସଂ. ବି—ଶ୍ୱେତାପରାଜିତା—
Śweta spandā White Clitoris flower.

**ଶ୍ୱେତ ହୟ**—ସଂ. ବି—୧ । ଶୁକ୍ଲ ଘୋଟକ—1. White horse.
Śweta haya ୨ । ଇନ୍ଦ୍ରଙ୍କ ଅଶ୍ୱ; ଉଚ୍ଚୈଃଶ୍ରବା—2. Indra's horse. ୩ । ଅର୍ଜ୍ଜୁନ ବୃକ୍ଷ—3. Pentaptera Arjuna ୪ । (ବହୁବ୍ରୀହି) ଅର୍ଜ୍ଜୁନ; ମଧ୍ୟମ ପାଣ୍ଡବ—4. Arjuna; the 3rd Pāndaba

**ଶ୍ୱେତ ହସ୍ତୀ**—ସଂ. ବି—ଶ୍ୱେତ କୁଞ୍ଜର (ଦେଖ)
Śweta hasti Śweta kuñjara (See)

**ଶ୍ୱେତା**—ସଂ. ବି (ଶ୍ୱେତ+ଆ)—ଶ୍ୱେତର ସ୍ତ୍ରୀଲିଙ୍ଗ—The
Śwetā feminine of Śweta ବି—୧ । ଶ୍ୱେତ କଣ୍ଟକାରୀ (ଦେଖ)—1. Śweta kantakārī (See). ୨ । ଫଟିକୀ; ଫିଟକିରି—2. Alum. ୩ । ଅତିବିଷା; ଅତୁଷୀ 3. Aconite. ୪ । ଶ୍ୱେତ ଅପରାଜିତା (ଦେଖ)—4. The white flowered clitoris creeper. ୫ । ଶ୍ୱେତ ବୃହତୀ (ଦେଖ)—5. Śweta bruhatī (See) ୬ । ଶ୍ୱେତଦୂର୍ବା (ଦେଖ)—6. Śweta dūrbā (See). ୭ । ପାଷାଣଭେଦୀ; ଗୁଞ୍ଜୁଣୀ ହାତ-ଯୋଗ୍ୟ ଗୁଳ୍ମ—7. Coleus Aromaticus. ୮ । ବଂଶଲୋଚନା—8. Bamboo manna.

**ଶ୍ୱେତାକନ୍ଦ**—ସଂ. ବି—ଶ୍ୱେତପୁଷ୍ପ ବିଶିଷ୍ଟ ଅର୍କ ଗୁଳ୍ମ; ଧଳା ଅରଖ
Swetā kanda ଫୁଲର ଗଛ—The white variety
[ଶ୍ୱେତାର୍କ—ଅନ୍ୟରୂପ] of Calotropis Gigantea

**ଶ୍ୱେତାଙ୍ଗ**—ସଂ. ବିଣ. ପୁଂ—(ବହୁବ୍ରୀହି, ଶ୍ୱେତ+ଅଙ୍ଗ ଯାହାର)—
Śwetānga ଶୁକ୍ଲ ଶରୀର ବିଶିଷ୍ଟ—White bodied.
[ଶ୍ୱେତାଙ୍ଗୀ—ସ୍ତ୍ରୀ] ବି—(କର୍ମଧା) ୧ । ଶୁକ୍ଲ ଶରୀର; ସାଧାଚମଡ଼ା—
শ্বেতাঙ্গ श्वेताङ्ग 1. White skin.
୨ । (ବହୁବ୍ରୀହି) ଶୁକ୍ଲ ଶରୀର ବିଶିଷ୍ଟ ବ୍ୟକ୍ତି—2. A. person having a white body. ୩ । ଶ୍ୱେତ-ଦ୍ୱୀପବାସୀ ସାହେବ; ଗୋରା ଚମଡ଼ା ବାଲା ବ୍ୟକ୍ତି—3. Inhabitant of Great Britain.
୪ । ଇଉରୋପୀୟ ବ୍ୟକ୍ତି—4. An European.
[ଦ୍ର—ସଦାଙ୍କ ଶ୍ୱେତାଙ୍ଗେ ବହବନ୍ତି ରଙ୍ଗେ । ସୁଧାନାଥ-କବିତା ।]

**ଶ୍ୱେତାପରାଜିତା**—ସଂ. ବି—ଶ୍ୱେତଭଣ୍ଡା (ଦେଖ)
Śwetāparājitā Śweta bhandā (See)

**ଶ୍ୱେତାପାମାର୍ଗ**—ସଂ. ବି—ଧଳା ଅପମାରିଙ୍ଗ ଗୁଳ୍ମ—
Śwetāpāmārga The white variety of Achiranthes Aspera.
সাদা আপাঙ सफेद चीचड़ा
[ଦ୍ର—ଶ୍ୱେତ, ରକ୍ତ ଓ କୃଷ୍ଣ ପୁଷ୍ପ ଭେଦରେ ଅପମାର୍ଗ ତିନି ପ୍ରକାର । ସବୁ ଅପମାର୍ଗର ଗୁଣ ସମାନ ।]

**ଶ୍ୱେତାଭ**—ସଂ. ବିଣ—(ବହୁବ୍ରୀହି;ଶ୍ୱେତ+ଆଭା)—ଶ୍ୱେତବର୍ଣ୍ଣ ବିଶିଷ୍ଟ-
Śwetābha 1. White. ୨ । ଈଷତ୍ ଶ୍ୱେତ—
[ଶ୍ୱେତାଭା—ସ୍ତ୍ରୀ] 2. Whitish.

**ଶ୍ୱେତାମ୍ବର**—ସଂ. ବି—(କର୍ମଧା)—୧ । ଧଳା ଲୁଗା—
Śwetāmbara 1. White cloth.
୨ । ଶ୍ୱେତାମ୍ବରୀ (ଦେଖ)—2. Śwetāmbarī (See)

**ଶ୍ୱେତାମ୍ବରୀ**—ସଂ. ବି—(ଶ୍ୱେତାମ୍ବର+ଅଚ୍ଛ ଅର୍ଥରେ ଇନ୍)—ଜୈନ-
Śwetāmbharī ମାନଙ୍କ ସମ୍ପ୍ରଦାୟ ବିଶେଷ—A sect of
শ্বেতাম্বরী श्वेताम्बरी Jainas.

**ଶ୍ୱେତାମ୍ଳୀ**—ସଂ. ବି—ମହାରାଷ୍ଟ୍ର ଦେଶରେ ପୀଡ଼ୋଁଗ୍ରୀ ଓ କର୍ଣ୍ଣାଟରେ
Śwetāmli ହଳସୁ ହୁଲି ନାମରେ ପରିଚିତ ବୃକ୍ଷବିଶେଷ—
Name of a kind of the tree. in W and S India. [ଦ୍ର—ଏହା ମଧୁର ରସ, ବଳକାରକ, ଶୁକ୍ରବର୍ଦ୍ଧକ ଓ ପିତ୍ତନାଶକ ।]

**ଶ୍ୱେତାଳୁ**—ସଂ. ବି—ଶ୍ୱେତ ପିଣ୍ଡାଳୁ (ଦେଖ)
Śwetālu Śweta pindālu (See)

**ଶ୍ୱେତାହ୍ୱା**—ସଂ. ବି—ଶ୍ୱେତପାଟଳ; ଶୁକ୍ଳ ପୁଷ୍ପ ବିଶିଷ୍ଟ ପାଟଳ ଗଛ— Śwetāhwā The white flowered variety of Sterospermum Suaveolens.
ଶ୍ୱେତ পারুল श्वेतपाडर, सादापद

**ଶ୍ୱେତେକ୍ଷୁ**—ସଂ. ବି—ଶ୍ୱେତବର୍ଣ୍ଣ ଇକ୍ଷୁ ବିଶେଷ; ଧଳା ଆଖୁ; ଶଣ୍ଢ ଆଖୁ— Śwetekshu A white variety of sugarcane.
ଅନ୍ୟ ସଂ. ନାମ—ସିତେକ୍ଷୁ, ପୋଣ୍ଡ୍ରକ,
ବଂଶ ଇକ୍ଷୁ, ସୁବେଶ, ପାଣ୍ଡୁରେକ୍ଷୁ
সাদা আখ सफेद ईख

**ଶ୍ୱେତୈରଣ୍ଡ**—ସଂ. ବି—ଧଳା ଜଡ଼—The white variety of Śwetairanda castor seed plant.
সাদা ভেরেণ্ডা सफेद एरण्ड [ବି—ଏହା କଟୁ-ତିକ୍ତ-ମଧୁର ରସ, ଉଷ୍ଣବୀର୍ଯ୍ୟ, ମ. ପାକରେ ଏରଣ୍ଡ ଭଳି, ଗୁରୁପାକ, ସାରକ, ତ୍ରିଦୋଷନାଶକ ଓ ଜ୍ୱର, କାଶ, ଶୋଥ, ଶୂଳ, ଉଦର ରୋଗ, ଉଦାବର୍ତ୍ତ, ଶ୍ୱାସ, ଆନାହ, ଗୁଳ୍ମ, ପ୍ଲୀହା, ଆମଦୋଷ, ପ୍ରମେହ, ଉଷ୍ଣବାତ, ରକ୍ତଦୋଷ, ମେଦୋଦୋଷ, ଅନ୍ତ୍ରବୃଦ୍ଧି, କଟି ବେଦନା, ବସ୍ତି ବେଦନା, ଶିରୋବେଦନାର ଉପକାରକ। ଏହାର ମୂଳ ଚିତ୍ତ ପ୍ରକୋପକ, ଅଗ୍ନିବର୍ଦ୍ଧକ, ଶୁକ୍ରଜନକ, ଶୂଳ ରୋଗରେ ବିଶେଷ ଉପକାରକ; ଏହାର ପତ୍ର ସାଧାରଣ ଏରଣ୍ଡର ଗୁଣ ସଦୃଶ।]

**ଶ୍ୱେତୋଦର**—ସଂ. ବି—(ବହୁବ୍ରୀହି; ଶ୍ୱେତ+ଉଦର)—୧। କୁବେର Śwetodara (ବିକାଶଶେଷ)—1. The God of wealth. ୨। (କର୍ମଧା) ଧଳା ପେଟ। ଯାହାର ଥିବା ପେଟ— 2. White belly.

**ଶ୍ୱେତୋତ୍ପଳ**—ସଂ. ବି—(ଶ୍ୱେତ+ଉତ୍ପଳ)—୧। ଶ୍ୱେତପଦ୍ମ— Śwetotpala 1. White lotus. ୨। ଧଳା କଇଁ— 2. White water lily.

**ଶ୍ୱେତୌହ୍ୱୀ**—ସଂ. ବି.ସ୍ତ୍ରୀ—(ଶ୍ୱେତ ବାହ=ଇନ୍ଦ୍ର+ସ୍ତ୍ରୀ.ଈ; ନିପାତନ)- Śwetauhī ଇନ୍ଦ୍ରାଣୀ; ଶଚୀ—The wife of Indra.

**ଶ୍ୱୈତ୍ୟ**—ସଂ. ବି—(ଶ୍ୱେତ+ଭାବ. ଯ)—ଶୁଭ୍ରତ୍ୱ; ଶୁକ୍ଳତ୍ୱ— Śwaitya Whiteness.

**ଶ୍ୱେତ୍ର**—ସଂ. ବି—(ଶ୍ୱେତ+ର)—ଶ୍ୱିତ୍ର (ଦେଖ) Swetra Świtra (See)

**ଶ୍ୱୋବସୀୟସ**—ସଂ. ବିଣ.—(ଶ୍ୱଃ = ଆଗାମୀ କାଲି+ବସୁ Swobasiyasa ମଙ୍ଗଳ+ଈୟସ୍+ଅ)—୧। ଭବିଷ୍ୟତ ଶୁଭଯୁକ୍ତ; ଆଗାମୀ କାଲି ଘଟିବା ଶୁଭଯୁକ୍ତ (ଘଟଣା)— 1. Which is good and to happen in future. ବି—୧। ଆଗାମୀ କାଲି ଘଟିବା ମଙ୍ଗଳ— 1. Prosperity which will happen tomorrow. ୨। ଭବିଷ୍ୟତ ଶୁଭ— 2. Future bliss.

**ଶ୍ମ**—ସଂ. ବି—(ଶ୍ମା ଧାତୁ=ଶୟନ କରିବା+ମନ୍; ନିପାତନ; ଶୁକ୍ଳ Śma ଶବ ୧ମା. ୧ବ)—୧। ଶବ; ମଡ଼ା—1. Dead body; corpse. ୨। ମୁଖ—2. Face

**ଶ୍ମଶାନ**—ସଂ. ବି—(ଶ୍ମନ୍-ଶବ+ଶୀ ଧାତୁ=ଶୟନ କରିବା+ଅଣ Śmaśāna କରଣ.ଆନ=ଶବ ଶୟନ ସ୍ଥାନ)—୧। ଶବଦାହ ସ୍ଥାନ—1.Cremation ground: crematorium. ୨। କବରଖାନା— 2. Burial ground; sepulchre.

**ଶ୍ମଶାନ କାଳୀ(ଚଣ୍ଡୀ)**—ସଂ. ବି (ମ. ପ. ଲୋ)—ମୁଦ୍ଦାର ଚଣ୍ଡୀ; Śmaśāna kāli(chandi) ମଡ଼ା ଚଣ୍ଡୀ; ଶ୍ମଶାନ ବାସିନୀ ଦେବୀ ବିଶେଷ—A Goddess presiding over a cremation ground

**ଶ୍ମଶାନ କ୍ଷେତ୍ର**—ସଂ. ବି—ଶ୍ମଶାନ ଭୂମି (ଦେଖ) Śmaśāna kshetra Śmaśāna bhūmi (See)

**ଶ୍ମଶାନ ନିବାସ**—ସଂ. ବି (୭ମୀ ତତ୍)—ମଶାଣୀରେ ବାସ କରିବା— Smaśāna nibāsa Residence in a cremation ground
(ଶ୍ମଶାନବାସ—ଅନ୍ୟରୂପ)

**ଶ୍ମଶାନ ନିବାସିନୀ**—ସଂ. ବି. ସ୍ତ୍ରୀ—(ସ୍ତ୍ରୀ) ଚଣ୍ଡୀ; କାଳୀ— Śmaśāna nibāsini Goddess Kāli.
(ଶ୍ମଶାନବାସିନୀ—ଅନ୍ୟରୂପ) ସଂ.ବିଣ. ସ୍ତ୍ରୀ—ଶ୍ମଶାନନିବାସୀର ସ୍ତ୍ରୀଲିଙ୍ଗ— Feminine of Śmaśānanibāsi.

**ଶ୍ମଶାନ ନିବାସୀ**—ସଂ. ବିଣ. ପୁଂ—ଯେ ଶ୍ମଶାନରେ ବାସ କରେ— Śmaśāna nibāsi Residing in a cremation ground
(ଶ୍ମଶାନବାସୀ—ଅନ୍ୟରୂପ) ବି. ପୁଂ—ମହାଦେବ-Siba

**ଶ୍ମଶାନବର୍ତ୍ତୀ**—ସଂ. ବିଣ. ପୁଂ (ଶ୍ମଶାନ ବର୍ତ୍ତିନ୍ ଶବ; ଶ୍ମଶାନ+ Śmaśāna bartti ବୃତ୍ ଧାତୁ+କର୍ତ୍ତୃ.ଇନ୍)—୧। ଶ୍ମଶାନ-
(ଶ୍ମଶାନ ବର୍ତ୍ତିନୀ—ସ୍ତ୍ରୀ) ନିବାସୀ—1.Residing in a cremation ground. ୨। ଶ୍ମଶାନରେ ଥିବା; ଶ୍ମଶାନସ୍ଥ—2. Growing in or found in or situated in a cremation ground.

**ଶ୍ମଶାନବେଶ୍ମା**—ସଂ. ବିଣ. ପୁଂ (ବହୁବ୍ରୀହି, ଶ୍ମଶାନ ହୋଇଅଛି Smasanabesmā ବେଶ୍ମନ୍=ଗୃହ ଯାହାର)—ଶ୍ମଶାନ-ନିବାସୀ (ଦେଖ)—Śmaśānanibāsi (See) ବି. ପୁଂ—ମହାଦେବ—Śiba

**ଶ୍ମଶାନ ବୈରାଗ୍ୟ**—ସଂ. ବି (ମ. ପ. ଲୋ; ଶ୍ମଶାନ+ବୈରାଗ୍ୟ)— Śmaśāna bairāgya କ୍ଷଣିକ ବୈରାଗ୍ୟ; ଶବଦାହ କାଳରେ ବା ଶ୍ମଶାନକୁ ଦେଖି ମନରେ ଜାତ ହେବା କ୍ଷଣସ୍ଥାୟୀ ବୈରାଗ୍ୟ—Temporary indifference to the worldly affairs produced on the sight of a cremation ground. [ବି—ଲୋକେ ମଡ଼ାଗଲେ ବା ଶ୍ମଶାନରେ ଚିତା ଜଳିବାର ଦେଖିଲେ ଦର୍ଶକର ମନରେ ପୃଥିବୀର କ୍ଷଣଭଙ୍ଗୁରତା ଓ ତଜ୍ଜନିତ ବୈରାଗ୍ୟର ଉଦୟ ହୁଏ, କିନ୍ତୁ କିଛି ସମୟ ପରେ ତାହା ମନରୁ ଲୋପପାଏ। ଗୋଟିଏ ଉଦ୍ଭଟ ଶ୍ଳୋକ ଅଛି ପୁରାଣାନ୍ତେ, ସ୍ମଶାନାନ୍ତେ, ଶ୍ମଶାନାନ୍ତେଷୁ ଯା ମତିଃ, ସା ମତିଃ ସର୍ବଦା ଚେତ୍ସ୍ୟାତ୍, କୋନମୁଚ୍ୟେତ ବନ୍ଧନାତ୍)

ଶ୍ମଶାନ ଭସ୍ମ—ସଂ. ବ—ମଶାଣିର ଛାଇ ଭସ୍ମ—The ashes of
Śmaśāna bhasma the cremation ground.

ଶ୍ମଶାନଭୂମି—ସଂ ବ (୬ଷ୍ଠୀ ତତ୍, ଶ୍ମଶାନ+ଭୂମି)—ମଶାଣିଭୂଇଁ;
Śmaśāna bhūmi ଶ୍ମଶାନ କ୍ଷେତ୍ର—Cremation ground.

ଶ୍ମଶ୍ରୁ—ସଂ. ବ (ଶ୍ମନ୍=ମୁଖ+ଶ୍ରି ଧାତୁ=କର୍ତ୍ତୃ ଉ, ଯାହା ମୁଖକୁ
Śmaśru ଆଶ୍ରୟ କରେ)—୧ । ଦାଢ଼ି—1. Beard. ୨ ।
ମୁଖ ଲୋମ; ମୁଞ୍ଚ ଓ ଦାଢ଼ି—2 Mustaches and beard.

ଶ୍ମଶ୍ରୁ ବର୍ଦ୍ଧକ—ସ. ବି. ପୁଂ—(ଶ୍ମଶ୍ରୁ+ବର୍ଦ୍ଧକ=ଛେଦନକାରୀ)—
Śmaśru barddhaka ଭଣ୍ଡାରୀ—Barber.

ଶ୍ମଶ୍ରୁ ବର୍ଦ୍ଧନ—ସ. ବି. (୬ଷ୍ଠୀ ତତ୍)—୧ । ଦାଢ଼ି ବଢ଼ାଇବା—
Śmaśru bardhana 1. Letting the beard grow. ୨ । ଦାଢ଼ି କାଟିବା—2. Cutting or shaving of the beard.

ଶ୍ମଶ୍ରୁ ମଣ୍ଡିତ—ସ. ବଣ. ପୁଂ (ତୃତୀୟା ତତ୍, ଶ୍ମଶ୍ରୁ+ମଣ୍ଡିତ)—୧ ।
Śmaśru maṇḍita ଦାଢ଼ିଦ୍ୱାରା ଶୋଭିତ (ମୁଖ)—1. (Face) Adorned with a beard. ୨ । ଶ୍ମଶ୍ରୁଳ—2. Bearded.

ଶ୍ମଶ୍ରୁ ମୁଖ—ସ. ବଣ ପୁଂ (ବହୁବ୍ରୀହି, ଶ୍ମଶ୍ରୁ ଅଛି ମୁଖରେ ଯାହାର)
Śmaśru mukha ଦାଢ଼ିଆ—Bearded; having
(ଶ୍ମଶ୍ରୁମୁଖୀ—ସ୍ତ୍ରୀ) beard. [ଦ୍ର—ସାଧାରଣତଃପୁରୁଷ ମାନେ ଯୁବାବସ୍ଥାରେ ପଦାର୍ପଣ କଲେ ସେମାନଙ୍କର ଶ୍ମଶ୍ରୁ ଜନ୍ମେ, କିନ୍ତୁ କ୍ୱଚିତ୍ ସ୍ତ୍ରୀମାନଙ୍କ ମୁଖରେ ଶ୍ମଶ୍ରୁ ଦେଖାଯାଏ; ସ୍ତ୍ରୀମାନଙ୍କଠାରେ ଏହା ଅସ୍ୱାଭାବିକ ।]

ଶ୍ମଶ୍ରୁ ରକ୍ଷଣ—ସ. ବ (୬ଷ୍ଠୀ ତତ୍)—ଦାଢ଼ି କ୍ଷୌର ନ କରିବା; ଦାଢ଼ି
Śmaśru rakshaṇa ରଖିବା—Letting the beard grow.

ଶ୍ମଶ୍ରୁ ରାଜି—ସ. ବ (୬ଷ୍ଠୀ ତତ୍; ଶ୍ମଶ୍ରୁ+ରାଜି)—ଦାଢ଼ି ସମୂହ ବା ଗୁଚ୍ଛ
Śmaśru rāji ଦାଢ଼ି—A mass of beard.
(ଶ୍ମଶ୍ରୁଶ୍ରେଣୀ—ଅନ୍ୟରୂପ)

ଶ୍ମଶ୍ରୁଳ—ସଂ. ବଣ. ପୁଂ (ଶ୍ମଶ୍ରୁ+ଯୁକ୍ତାର୍ଥେ. ଲ)—୧ । ଦାଢ଼ିଆ; ଦାଢ଼ି-
Śmaśrula ବିଶିଷ୍ଟ—1. Bearded. ୨ । ଘନ ଓ ଲମ୍ବ
(ଶ୍ମଶ୍ରୁଳା—ସ୍ତ୍ରୀ) ଶ୍ମଶ୍ରୁଯୁକ୍ତ—2. Having a thick and
[ଶ୍ମଶ୍ରୁଳତା—ବ] long beard.

ଶ୍ମଶ୍ରୁ ହୀନ—ସଂ. ବଣ. ପୁଂ (୬ଷ୍ଠୀ ତତ୍)—ଯାହାର ଦାଢ଼ି ନ ଥାଏ;
Śmaśru hīna ମାକୁନ୍ଦା—Beardless (person).

ଶ୍ମୀଲ୍ (ଧାତୁ)—ସଂ—ନୟନ ମୁଦ୍ରିତ କରିବା; ଆଖି ବୁଜିବା—
Śmīl (root) To shut the eyes.

ଶ୍ମୀଲନ—ସଂ. ବ (ଶ୍ମୀଲ୍ ଧାତୁ+ଭାବ. ଅନ)—ଆଖି ବୁଜିବା—
Śmīlana Shutting of one's eyes.

ଶ୍ୟ—ଗ୍ରା ରୂପ—'ଷ'ର ପଣ୍ଡିତୀୟ ଉଚ୍ଚାରଣ—The pronuncia-
Śya tion of the cerebral 'Ṣ' by some Pandits.
(ଯଥା—ଶନ ସ୍ଥଳରେ ଷ୍ୟଣ, ଶାକ ସ୍ଥଳରେ ଶ୍ୟାକ ଇତ୍ୟାଦି । କିନ୍ତୁ 'ଶ'ର ପ୍ରକୃତ ଉଚ୍ଚାରଣ 'ସ' ଓ 'ଷ'ଠାରୁ ସ୍ୱତନ୍ତ୍ର । 'ଶ' କୁ ସ୍ପଷ୍ଟ ଭାବରେ 'ଶ୍ୟ' ବୋଲି ଉଚ୍ଚାରଣ କରିବା ଅନୁଚିତ । ଦନ୍ତ ଦାନ୍ତ ସଙ୍ଗେ ମିଶିଲେ 'ସ'ର ଉଚ୍ଚାରଣ ବାହାରେ, ମୂର୍ଦ୍ଧା ସଙ୍ଗେ ମିଶିଲେ 'ଷ'ର ଉଚ୍ଚାରଣ ହୁଏ ଓ ତାଳୁ ସଙ୍ଗେ ମିଶିଲେ 'ଶ' ଉଚ୍ଚାରିତ ହୁଏ ।)

ଶ୍ୟାନ—ସଂ. ବଣ (ଶ୍ୟୈ. ଧାତୁ=ଗମନ କରିବା+କର୍ତ୍ତୃ. ତ)—
Śyāna ୧ । ପ୍ରାପ୍ତ—1. Got; obtained. ୨ । ଶୁଷ୍କ—2. Dry. ୩ । ଘନୀଭୂତ—3 Hardened; inspissated. ୪ । ଗତ—4. Gone; departed;
ବ—ଧୂମ; ଧୂଆଁ—Smoke.

ଶ୍ୟାନ୍ତି—ଗ୍ରା. ବ—ଶାନ୍ତି (ଦେଖ)—Śyānti. (See) [ଦ୍ର—
Śyānti ନ ହେଲେ ଏ କୋଧ ଶ୍ୟାନ୍ତି କରିବ ନାହିଁ ।
ଶାନ୍ତି शान्ति କୃଷ୍ଣସିଂହ. ମହାଭାରତ. ବନ ।]

ଶ୍ୟାପୁଲୁ—ପ୍ରାଦେ (ଗଞ୍ଜାମ ସୀମା) ବ—ଏକପ୍ରକାର ମାଛ—
Śyāpulu A kind of fish.

ଶ୍ୟାବ—ସଂ. ବଣ (ଶ୍ୟୈ. ଧାତୁ=ଗମନ କରିବା+କର୍ତ୍ତୃ. ବ,
Śyāba ନିପାତନ)—କୃଷ୍ଣପୀତମିଶ୍ରିତ; କଳା ଓ ମାଟିଆ; ଧାଉଁଶିଆ;
କପିଶ—Dark brown; bay coloured; dusky. ବ—କପିଶ ବର୍ଣ୍ଣ—Brown colour.

ଶ୍ୟାବ ତୈଳ—ସଂ. ବ (ବୈଦ୍ୟକ)—ଶୀତାଂଶୁ ତୈଳ (ଦେଖ)
Śyāba taila Śitāmśu taila. (See)

ଶ୍ୟାବ ଦନ୍ତ—ସଂ. ବ (କର୍ମଧା; ଶ୍ୟାବ=କଳା ଓ ମାଟିଆ+ଦନ୍ତ)—
Śyāba danta ଉପର ପାଟିର ଅଗ୍ର ଦାନ୍ତ ମଧ୍ୟରେ ଉଠିବା ଦାନ୍ତ; ବାହାଡ଼ା ଦାନ୍ତ—The tooth coming out between the two front teeth of the upper jaw; redundant tooth. ବଣ (ବହୁବ୍ରୀହି)—ବାହାଡ଼ାଦାନ୍ତିଆ—(A person) Having redundant tooth.
(ଶ୍ୟାବଦନ୍ତୀ—ସ୍ତ୍ରୀ)

ଶ୍ୟାବଦନ୍ତୀ—ସଂ. ବଣ—ଶ୍ୟାବଦନ୍ତ (ଦେଖ)—Śyābadanta
Śyābadantī (See) [ଦ୍ର—କନ୍ୟାମ ଭ୍ରାତୃଂସଜାତାସ ଶ୍ୟାବଦନ୍ତୀ,
ଗୁରୁଜନବଦ୍ୱେଷୀ ଯେ ମାଂସବିକ୍ରୟୀ
× × × ×
ପ୍ରଚାରକ ଅପାକେ ବେଦ ସମର୍ପକ
× × × ×
ଗୃହଦାହୀ ବୃଦ୍ଧଦ୍ୱେଷୀ ଯେ ଅଧ୍ୟାପକ
ପାପୀ ବୋଲନ୍ତି ଏ ଜାଣବେ ନର ଶିଶ ।
କୃଷ୍ଣସିଂହ. ମହାଭାରତ. ଶାନ୍ତି ।]

ଶ୍ୟାମ—ସଂ. ବଣ (ଶ୍ୟୈ ଧାତୁ=ଗମନ କରିବା+କର୍ତ୍ତୃ. ମ)—
Śyāma ୧ । କୃଷ୍ଣବର୍ଣ୍ଣ ବିଶିଷ୍ଟ—1. Black or dark coloured. ୨ । ନୀଳକୃଷ୍ଣ—2. Bluish black;

dark blue. ୩ । ମେଘବର୍ଣ୍ଣ ବର୍ଣ୍ଣିଷ୍ଟ—3. Of azure colour. ୪ । ଶାଦ୍ୱଳ; ଶ୍ୟାମଳ; ହରିତବର୍ଣ୍ଣଯୁକ୍ତ; ହରିତବର୍ଣ୍ଣବିଶିଷ୍ଟ—4. Green; of emeraled colour. ୫ । କଳା ରଙ୍ଗର ଚର୍ମ ବିଶିଷ୍ଟ—5. Dark-skinned.

ବି—୧ । କୃଷ୍ଣବର୍ଣ୍ଣ—1. Black colour. ୨ । ନାଳ କୃଷ୍ଣବର୍ଣ୍ଣ—2. Dark blue colour. ୩ । ଶ୍ୟାମଳ ବର୍ଣ୍ଣ; ଦେହର କଳା ରଙ୍ଗ—3. Dark colour of the skin. ୪ । ଶାଦ୍ୱଳ; ହରିତବର୍ଣ୍ଣ—4. Green. ୫ । ମେଘ—5. Cloud. ୬ । କୋକିଳ—6. Indian cuckoo. ୭ । ଧସ୍ତୁର; ଧାତୁର—7. Thorn apple; Datura plant. ୮ । ଶ୍ୟାମାକ; ତୃଣଧାନ୍ୟ ବିଶେଷ—8. A species of wild corn; Panicum Frumentaceum Roxburghii. ୯ । ଖୁରାସାନି ଯୁଆଣୀ—9. Henbane; Hyocyamus Niger. ୧୦ । ପିଲ୍ଲୁ ବୃକ୍ଷ—10. A tree. ୧୧ । ଦମନକ ଦଅଣା ଗୁଳ୍ମ—11. Artemisia Indica. ୧୨ । ଗନ୍ଧ ତୃଣ—12. Lemon grass; Andropogen Schœnanthus. ୧୩ । ସମୁଦ୍ର ଲବଣ—13. Sea-salt. ୧୪ । (ବୈଦ୍ୟକ) ଗୋଲମରିଚ—14. Black pepper. ୧୫ । (ବୈଦ୍ୟକ) ବୃଦ୍ଧଦାରକ (ଲତା)—15. A creeper; Argyreia Speciosa. ୧୬ । ( ଏହାଙ୍କ ଦେହ ଶ୍ୟାମ ବର୍ଣ୍ଣ ଥିବାରୁ ) ଶ୍ରୀକୃଷ୍ଣ—16. Srikrushna. ଦେ. ବି—

শ্যাম
श्याम

୧ । ଶ୍ୟାମସୁନ୍ଦରଙ୍କ ନାମକ ବ୍ୟକ୍ତିର ଡାକ ନାମ—1. A name for calling Syāmasundara. ୨ । ବ୍ରହ୍ମଦେଶର ପୂର୍ବବର୍ତ୍ତୀ ସ୍ୱାଧୀନ ରାଜ୍ୟ—2. The kingdom of Siam; name of a state (a free state) governed by a Buddhist king. [ ବ୍ର—ଏହାର ରାଜଧାନୀ ବାଙ୍କକ । ]

ଶ୍ୟାମ ଉପସାଗର—ଦେ. ବି—ଶ୍ୟାମ ରାଜ୍ୟର ଦକ୍ଷିଣସ୍ଥ ଉପସାଗର—
Syāma upasāgara The Gulf of Siam.
শ্যাম উপসাগর श्याम उपसागर

ଶ୍ୟାମକ—ସ. ବି ( ଶ୍ୟାମ+ସ୍ୱାର୍ଥେ. କ )—ଶ୍ୟାମାକ; ଶୁଆଁଧାନ; ତୃଣ
Syamaka ଧାନ୍ୟ ବିଶେଷ—A sort of grass or wild
শ্যামাধান corn; Panicum Frumentaceum Rox-
श्यामाधान burghii; Panicum Colonium. [ବ୍ର—ଏହା ଧାନ କିଆରିରେ ଧାନ ଗଛ ସଙ୍ଗେ ମିଶିକି ହୁଏ । ]

ଶ୍ୟାମ କଣ୍ଠ—ସ. ବି ( ବହୁବ୍ରୀହି; ଶ୍ୟାମ+କଣ୍ଠ )—୧ । ମୟୂର—
Syāma kantha 1. Peacock. ୨ । ଶିବ; ମହାଦେବ—2. Siba. ୩ । ପକ୍ଷୀ ବିଶେଷ—3. A species of bird.

ଶ୍ୟାମକନ୍ଦା—ସ. ବି ( ବୈଦ୍ୟକ )—ଅତିବିଷା; ଅଭୁଶୀ—
Syāmakandā Aconite.

ଶ୍ୟାମକାଣ୍ଡା—ସ. ବି( ବୈଦ୍ୟକ )—ଗଣ୍ଡଦୁର୍ବା; ଗଣ୍ଠିଦୁବ; ଏକପ୍ରକାର
Syāmakāndā ଘାସ—Creeping cynoden; Dectylon Cynoden. [ବ୍ର—
ଅନ୍ୟ ସ—ଗ୍ରନ୍ଥିପର୍ଣ୍ଣୀ; ଗଣ୍ଡଦୁର୍ବା, ଗଣ୍ଡଳ, ଗ୍ରନ୍ଥିଳା, ଗ୍ରନ୍ଥି, ଗଣ୍ଡାଳୀ, ମତ୍ସାକ୍ଷୀ, କଳାୟୁ, ଚର୍ବା, ଶକୁଳାକ୍ଷୀ, ଶକୁଳାଦନ, ସୁରଘା, ବାରୁଣୀ, ନୀଳକେଶୀ, ଭଲସ୍ତ୍ରୀ
ଏହା ମଧୁର ତିକ୍ତ କଷାୟରସ, କଟୁପାକ, ଶୀତଳ, ଲଘୁ, ମଳରୋଧକ, ଲୌହଦ୍ରାବକ । ଏହା ବାତ, ପିତ୍ତ, ଜ୍ୱର, ସନ୍ନିପାତ, ଭ୍ରମ, ତୃଷ୍ଣା, ଦାହ, କଫ, ରକ୍ତ ଓ କୁଷ୍ଠ ରୋଗରେ ଉପକାରକ । ]
গেঁটেদূর্বা गाण्डर
( ଶ୍ୟାମଗ୍ରନ୍ଥି—ଅନ୍ୟରୂପ ]

ଶ୍ୟାମ କାନ୍ତି—ସ. ବି ( କର୍ମଧା; ଶ୍ୟାମ+କାନ୍ତି )—ଶ୍ୟାମବର୍ଣ୍ଣ ଶୋଭା;
Syāma kānti ଶ୍ୟାମବର୍ଣ୍ଣ ଆଭା—Dark or blue lustre.
ବଣ (ବହୁବ୍ରୀହି)—ଶ୍ୟାମଳ ଶୋଭାଯୁକ୍ତ—
Having a beautiful blue colour.

ଶ୍ୟାମ କୁଣ୍ଡ—ସ. ବି—ବୃନ୍ଦାବନସ୍ଥ ତୀର୍ଥବିଶେଷ—Name of a
Syāma kunda sacred tank in Brundābana.
[ ଉ—ରାଧା କୁଣ୍ଡ ଶ୍ୟାମ କୁଣ୍ଡ ଯୁଗଳ ଅଭେଦ ପଣ ପ୍ରେମବଳେ ଦ୍ରବିଲ ଦେଉ ସକାଳେ—ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି । ]

ଶ୍ୟାମ ଚିକ୍କଣ—ସ. ବିଣ—ଚିକ୍କଣ କୃଷ୍ଣ ବା ଚିକ୍କଣ ନୀଳବର୍ଣ୍ଣବିଶିଷ୍ଟ—
Syāma chikkana Of a glossy dark or glossy blue colour.

ଶ୍ୟାମତା(ତ୍ୱ)—ସ. ବି ( ଶ୍ୟାମ+ଭାବେ. ତା ଓ ତ୍ୱ )—ଶ୍ୟାମଳତା
Syāmatā(twa) ( ଦେଖ )—Syāmalatā ( See )

ଶ୍ୟାମ ଦେଶ(ରାଜ୍ୟ)—ଦେ.ବି—ଶ୍ୟାମ ଦେ. ୨ (ଦେଖ)—Syāma
Syāma desa(rājya) 2 ( See )
শ্যাম দেশ श्याम देश

ଶ୍ୟାମ ନାଗର—ସ. ବି—ଶ୍ରୀକୃଷ୍ଣଙ୍କ ପ୍ରୀତିସୂଚକ ସମ୍ବୋଧନ—
Syāma nāgara Srikrushna. [ ଉ—ଶ୍ୟାମନାଗର ହେ ! ଏ ବେଶ ହୋଇବ ନାହିଁ—ସଙ୍ଗୀତ । ]

ଶ୍ୟାମ ପତ୍ର—ସ. ବି ( ବହୁବ୍ରୀହି; ଶ୍ୟାମ+ପତ୍ର )—( ବୈଦ୍ୟକ )
Syāma patra ତମାଳ ବୃକ୍ଷ—Dyospyrus Tomentosa.

ଶ୍ୟାମପର୍ଣ୍ଣୀ—ସ. ବି ( ବୈଦ୍ୟକ )—ଗୁଡ଼ା—Tea; Theachensis.
Syāmaparnni [ ବ୍ର—ଏହାର ପତ୍ରର ଫାଣ୍ଟ କଫଘ୍ନ,
ଅନ୍ୟ ସ. ନାମ—ଶ୍ୟେତ୍ପାର, ସ୍ୱେଦଜନକ, ବଳବର୍ଦ୍ଧକ, କ୍ଲମଘ୍ନ, ଚୈତନ୍ୟଦ, ଅରଜନ୍ତ୍ରୀ
ଭୀମଗନ୍ଧକ, କାଶନିବାରକ, ଅଗ୍ନିଦୀପକ, ଜଡ଼ତାନାଶକ । ]

ଶ୍ୟାମ ପୀରତି—ଗ୍ରା. ବି—ଶ୍ରୀକୃଷ୍ଣଙ୍କ ସଙ୍ଗେ ପ୍ରଣୟ—Falling in
Syāma pirati শ্যাম পীরিতি श्यामप्रीति love with Srikrushna.
[ ଶ୍ୟାମ ପ୍ରୀତି—ଦେ. ରୂପ ]

ଶ୍ୟାମବନ୍ଧୁ—ଦେ. ବି. ପୁଂ—୧ । ଶ୍ରୀକୃଷ୍ଣଙ୍କ ନାମ—1. A name of Śyāmabandhu Srikrushna. ୨ । ପୁରୁଷମାନଙ୍କୁ ଦିଆଯିବା ନାମ—2. A name given to males.
শ্যামবন্ধু শ্যামবন্ধু

ଶ୍ୟାମ ବର୍ଣ୍ଣ—ସଂ ବି—୧ । ଶ୍ୟାମଳ ବା କୃଷ୍ଣବର୍ଣ୍ଣ—1. Dark or black colour. ୨ । ଦେହର କଳାବର୍ଣ୍ଣ—2. Dark complexion. ବିଣ. ପୁଂ—୧ । ଶ୍ୟାମଳ—1. Of dark colour. ୨ । କଳା ଚମଡ଼ାବିଶିଷ୍ଟ—2. Dark-skinned
Śyāma barnna
( ଶ୍ୟାମାବର୍ଣ୍ଣା—ସ୍ତ୍ରୀ )

ଶ୍ୟାମ ବୀଜ—ସଂ. ବି ( ବୈଦ୍ୟକ )—କଳାଦାନା; ନୀଳ କଳମ ଲତା; କଳମ୍ବୀ ଜାତି ବର୍ଗର ବିଶେଷ ବର୍ଷାୟୁ ଲତାବିଶେଷ—Ipomoea Hederacea. [ ଦ୍ର—ଏହାର ନୀଳବର୍ଣ୍ଣ ଫୁଲ ପାଇଁ ଶୀତକାଳରେ ଲୋକେ ଏହାକୁ ରୁଅନ୍ତି । ଏହାର ବୀଜ ରେଚକ ଔଷଧ ।
Śyāma bīja
ଅନ୍ୟ ସ. ନାମ—ଶ୍ୟାମଳବୀଜ, ସୁମେଚକ
কালা দানা
ଆଂ ବ୍ଲୁବ୍ଲିକ୍
কালাদানা

ଏହା ରେଚକ, ଶୋଥ, ଜ୍ୱର, ମଳବନ୍ଧତା ଓ ଦାରୁଣ ଶିରୋରୋଗରେ ଉପକାରୀ ।

ଶ୍ୟାମଳ—ସ. ବିଣ (ଶ୍ୟାମ=କୃଷ୍ଣବର୍ଣ୍ଣ+ଅସ୍ତି ଅର୍ଥରେ ଲ)—୧ । ଶ୍ୟାମବର୍ଣ୍ଣବିଶିଷ୍ଟ—1. Of dark colour. ୨ । ଯାହାର ଦେହର ବର୍ଣ୍ଣ କଳା—2. Dark complexioned; dark-skinned. ୩ । କଳା—3. Black. ୪ । ନେଳୀ—4. Blue. ୫ । ଶାଗୁଆ—5. Green. ବି—୧ । କୃଷ୍ଣବର୍ଣ୍ଣ—1. Black colour. ୨ । ଗାଢ଼ ନୀଳବର୍ଣ୍ଣ—2. Deep blue colour. ୩ । ନେଳୀ ରଙ୍ଗ—3. Blue colour. ୪ । ଶାଗୁଆବର୍ଣ୍ଣ—4. Green colour; verdant green. ଦେ. ବି—୧ । ଶୁକ ପକ୍ଷୀ—1. Parrot. ୨ । ଶ୍ୟାମାପକ୍ଷୀ (ଦେଖ)—2. Śyāmāpakshī (See) [ଦ୍ର—ଶୁକ ହେବ ଅଣି ଶ୍ୟାମଳ ଘୋଷ—ଅଭିମନ୍ୟୁ ବିଦଗ୍ଧଚିନ୍ତାମଣି ।] ୨ । କାମଦେବ—2. The God Cupid. [ଦ୍ର—ଉମ ଶ୍ୟାମଳ ଘୋଷଇ ଏ ବର କନକ—ଉଦ୍ଧ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।]
Śyāmala
( ଶ୍ୟାମଳା—ସ୍ତ୍ରୀ )

ଶ୍ୟାମଳତା(ତ୍ୱ)—ସଂ. ବି (ଶ୍ୟାମଳ+ଭାବ ତା, ତ୍ୱ)—୧ । କାଳିମା—1. Blackness. ୨ । ନୀଳିମା—2. Blueness. ୩ । ହରିଦ୍ବର୍ଣ୍ଣ—3. Verdure.
Śyāmalatā (twa)

ଶ୍ୟାମ ଲତା—ସ. ବି (ବୈଦ୍ୟକ)—କୃଷ୍ଣବର୍ଣ୍ଣ ଲତାବିଶେଷ—Ichnocarpus Frutescens (creeper).
Śyāma lata

ଶ୍ୟାମଳ ବର୍ଣ୍ଣ—ସ ବି—ଶ୍ୟାମବର୍ଣ୍ଣ (ଦେଖ)
Śyāmala barnna Śyāma barnna (See)

ଶ୍ୟାମଳ ବୀଜ—ସ ବି—ଶ୍ୟାମବୀଜ (ଦେଖ)
Śyāmala bīja Śyāma bīja (See)

ଶ୍ୟାମଳା—ସ ବିଣ. ସ୍ତ୍ରୀ—ଶ୍ୟାମଳର ସ୍ତ୍ରୀଲିଙ୍ଗ—The feminine of Śyāmala. ବି. ସ୍ତ୍ରୀ—୧ । (ବୈଦ୍ୟକ) ଜମ୍ବୁ; ଜାମୁ—1. Eugenia Jambolina; blackberry. ୨ । ଦୁର୍ଗା; କାଳୀ; ଶ୍ୟାମା—2. Goddess Kālī.
Śyāmalā

ଶ୍ୟାମଳା(ଳେ)ଇବା—ଦେ. କ୍ରି (ସ ଶ୍ୟାମଳ)—୧ । ମସୃଣ କରିବା—1. To smoothen. ୨ । ବାଳକୁ କୁଣ୍ଡାଇ ଚିକ୍କଣ କରିବା—2. To comb and make up the hair glossy and dark. ୩ । କୋମଳ ଓ ମଧୁର କଥାଦ୍ୱାରା ମୁଗ୍ଧ କରିବା; ସାଲୁଳେଇବା—3. To charm a person by oily words and flattery. ୪ । ଗେହ୍ଲା କରିବା—4. To pet a person; to fondle.
Śyāmalā(le)iba
শ্যামলকরা चिकनकरना
ভজান भुलाना

ଶ୍ୟାମଲାଲ୍—ଦେ. ବି ପୁଂ. (ହିନ୍ଦୀ)—୧ । ଶ୍ରୀକୃଷ୍ଣଙ୍କ ନାମ—1. A name of Śrīkrushna. ୨ । ଲୋକଙ୍କୁ ଦିଆଯିବା ନାମ—2. A name given to mlaes [ ଦ୍ର—ଓଡ଼ିଆରେ ଶ୍ୟାମବନ୍ଧୁ ମଧ୍ୟ ଏହି ଅର୍ଥରେ ବ୍ୟବହୃତ ହୁଏ]
Śyāmalāl
শ্যামলাল श्यामलाल

ଶ୍ୟାମଳିଆ—ଦେ. ବିଣ—୧ । ଶ୍ୟାମଳ (ଦେଖ)—1. Śyamala (see) ୨ । ତୋଳା; ଚିକ୍କଣ; ସାଉଁଳା—2. Besmeared and made smooth. [ଦ୍ର—ଚନ୍ଦନେ ଶ୍ୟାମଳିଆ ହୋଇ, ଝୁମ୍ପୁଳ ଶ୍ରୀମୁଖ ବାସଇ—ଜଗନ୍ନାଥ ଭାଗବତ ।] ବି—ଶ୍ରୀକୃଷ୍ଣ—Śrīkrushna. [ ଦ୍ର—ସେନ ସେନ ମନ ଘନ ସମ ଶ୍ୟାମଳିଆକୁ—ଜଦୁମଣି ସଙ୍ଗୀତ ।]
Śyāmalia
মাখান श्यामलिया

ଶ୍ୟାମଳିକା—ସ ବି ( ଶ୍ୟାମଳ+କ+ଆ )—ନୀଳୀ; ନୀଳ ଗୁଳ୍ମ—Indigo plant; Indigofera Tinctoria.
Śyāmalikā

ଶ୍ୟାମଳୀ—ଦେ. ବିଣ. ସ୍ତ୍ରୀ—ଶ୍ୟାମଳର ସ୍ତ୍ରୀଲିଙ୍ଗ—The feminine of Śyamala. ବି. ସ୍ତ୍ରୀ—୧ ।କାଳୀ ସ୍ତ୍ରୀ 1. A woman of dark complexion ୨ । କାଳୀ ଗାଈ—2. A black cow.
Śyāmali

ଶ୍ୟାମ ଶୋଭା—ସଂ ବି—ଶ୍ୟାମବର୍ଣ୍ଣଯୁକ୍ତ ସୌନ୍ଦର୍ଯ୍ୟ—Verdant beauty.
Śyāma sobhā
(ଶ୍ୟାମଶ୍ରୀ—ଅନ୍ୟରୂପ)

ଶ୍ୟାମ ସଲିଳ—ସଂ ବିଣ ପୁ—[ବହୁବ୍ରୀହି]—ଶ୍ୟାମବର୍ଣ୍ଣ ଜଳବିଶିଷ୍ଟ—Having-deep blue water. ବି—[ଶ୍ୟାମସଲିଳା—ସ୍ତ୍ରୀ] ଯମୁନା ନଦୀ—The river Jamunā.
Śyāmas alila

ଶ୍ୟାମ ସୁନ୍ଦର—ସ ବି—ଶ୍ରୀକୃଷ୍ଣଙ୍କ ନାମ—A name of Śrīkrushna ଦେ. ବି. ପୁଂ—ଲୋକଙ୍କ ନାମ—A name given to males.
Śyāma sundara
শ্যামসুন্দর श्यामसुंदर

ଶ୍ୟାମସୁନ୍ଦର ରାଜଗୁରୁ—ଦେ॰ ବି (ନାମ)—ଗଞ୍ଜାମ ପାରଳାଖେମୁଣ୍ଡିର
Śyāmasundara rājaguru ସାହିତ୍ୟିକ ସ୍ୱର୍ଗୀୟ ପଣ୍ଡିତ—A late literary Oriya of Paralakimedi of Ganjam. [ଦ୍ର—ଏ ମହାଶୟ ବି. ଏ, ପାଶ୍ କରିଥିଲେ ଓ ଗମ୍ଭୀର ଗବେଷଣାପୂର୍ବକ ଓଡ଼ିଆ, ଭାଷା ସାହିତ୍ୟ ଓ ଛନ୍ଦ ସମ୍ବନ୍ଧେ ଅନେକ ପ୍ରବନ୍ଧ ରଚନା କରି ଥିଲେ, ପାରଳାଖେମୁଣ୍ଡିର ସାହିତ୍ୟାନୁଷ୍ଟ ସ୍ୱର୍ଗୀୟ ରାଜକୁମାର ପଦ୍ମନାଭ ନାରାୟଣଦେବ (ସେକଣ୍ଡ ପ୍ରିନ୍ସ)ଙ୍କ ଗୃହଶିକ୍ଷକ ଓ ଅଭିଭାବକ ଥିଲେ । ୧୯୦୨ ସାଲରେ ଗଞ୍ଜାମରେ ଉତ୍କଳୀୟମାନଙ୍କ ପ୍ରଥମ ଜାତୀୟ ସମ୍ମେଳନରେ ଏ ସଭାପତି ହୋଇଥିଲେ । ଏ ଜାତିରେ ଓଡ଼ିଆ ବ୍ରାହ୍ମଣ ଥିଲେ ।]

ଶ୍ୟାମା—ସଂ ବିଣ ସ୍ତ୍ରୀ (ଶ୍ୟାମ+ଆ)—ଶ୍ୟାମର ସ୍ତ୍ରୀଲିଙ୍ଗ—
Śyāmā Feminine of Śyama. ବି. ସ୍ତ୍ରୀ— ୧ । କାଳୀ; କାଳିକାଦେବୀ—1. Goddess Kāli [ଦ୍ର—ଏହାଙ୍କ ପୂଜା କାର୍ତ୍ତିକ ଅମାବାସ୍ୟା ଅର୍ଦ୍ଧ ରାତ୍ରରେ ଅନୁଷ୍ଠିତ ହୁଏ । ଏ କୃଷ୍ଣବର୍ଣ୍ଣା, ଚତୁର୍ଭୁଜା, ମୁଣ୍ଡମାଳିନୀ, ଶିବୋପରି ଦଣ୍ଡାୟମାନା ଓ ଲୋଲଜିହ୍ୱା ଅଟନ୍ତି ।] ୨ । ଦୃଷ୍ଟାର୍ତ୍ତବା ମଧ୍ୟମବୟସ୍କା ସ୍ତ୍ରୀ—2. A middle-aged woman who has attained puberty. ୩ । ତପ୍ତକାଞ୍ଚନବର୍ଣ୍ଣାଭା ନାରୀ—3. A woman of the complexion of red hot gold. [ଦ୍ର—ଏ ସ୍ତ୍ରୀମାନଙ୍କ ଅଙ୍ଗ ଶୀତକାଳରେ ସୁକୋଷ୍ଣ ଓ ଗ୍ରୀଷ୍ମ କାଳରେ ସୁଖ ଶୀତଳ ଅଟେ ।]
୪ । କାଳୀ ସ୍ତ୍ରୀ—4. A dark-complexioned woman; a brunette. ୫ । ପ୍ରିୟଙ୍ଗୁ ଲତା—5. Aglaia Roxborghiana (creeper) ୬ । ଶୁକ୍ଳଶାରିବା; ତେଡ଼ିଭ ଲଇ—6. A species of Hemidesmus Indicus. ୭ । କୃଷ୍ଣ ଶାରିବା; ଶୁଅଁଲଇ—7. Hemidesumus Indicus; Indian Sarsaparilla ୮ । କୃଷ୍ଣତ୍ରିବୃତ୍; କଳା ଡିହୁଡ଼ ଲଟା—8. The dark species of Ipomea Turpethum. ୯ । ଗାଲଦୂବା—9. A sort of grass ୧୦ । ଶ୍ୟାମାକ; ଶୁଆଁଧାନ—10. Panicum Frumentaceum and Colonus. ୧୧। ତୁଳସୀ ଗଛ—11. The Holy Basil plant. ୧୨ । ରାତ୍ରି—12. Night. ୧୩ । ହରିଦ୍ରା; ହଳଦୀ—13. Turmeric. ୧୪ । ଯମୁନା ନଦୀ—14. The river Jamuna. ୧୫ । ନୀଳକାଗୁନ୍ଦା—15. The Indigo plant. ୧୬ । ଗୁଗ୍ଗୁଳ—16. Bdellium and Legnum aloes. ୧୭ । ସୋମଲତା—17. Sarcostema Viminalis (creeper) ୧୮ । ପାଣ୍ଡବ ପତ୍ନୀ; କୃଷ୍ଣା; ଦ୍ରୌପଦୀ—18. Draupadi; the wife of the Pāṇdaba brothers. ୧୯ । ଅମ୍ବିକା—One of the names of Goddess Durgā. ୨୦ । ଗୁଳୁଚି—20; Tinospora Cordifolia. ୨୧ । କସ୍ତୁରୀ—21. Musk. ୨୨ । ଗାଳ ପୁନର୍ନବା—22. A species of blue hogweed. ୨୩ । ପିପ୍ପଳୀ—23. Long pepper; Piper Longum. ୨୪ । ପଦ୍ମବୀଜ—24. The seeds of lotus. ୨୫ । ଶିଂଶପା; ଶିଶୁଗଛ—25. Dalbergia Sissoo (a timber-tree). ୨୬ । ଛାୟା—26. Shadow. ୨୭ । ଶ୍ୟାମାପକ୍ଷୀ—27. A species of singing bird; Tardius Macurus. ଦେ. ବି. ସ୍ତ୍ରୀ—(ନାମ)—ବଙ୍ଗଦେଶରେ
শ্যামা श्यामा ସ୍ତ୍ରୀମାନଙ୍କୁ ଦିଆଯିବା ଏକନାମ—A name given to females in Bengal.

ଶ୍ୟାମାକ—ସଂ ବି (ଶ୍ୟାମ+କ; ବିକଳ୍ପେ ଶ୍ୟାମକ)—ଶ୍ୟାମକ
Śyāmāka (ଦେଖ)—Śyāmaka (See)
(ଶ୍ୟାମାକ ଧାନ୍ୟ—ଅନ୍ୟରୂପ)

ଶ୍ୟାମା କାନ୍ତ—ସଂ ବି. ପୁଂ—ମହାଦେବ; ଶିବ—Siba. ଦେ, ବି.
Śyāmā kānta ପୁଂ—ବଙ୍ଗଦେଶରେ ପୁରୁଷଙ୍କ ନାମ—
শ্যামাকান্ত श्यामाकांत A name given to male in Bengal.

ଶ୍ୟାମାକାନ୍ତ ବନ୍ଦୋପାଧ୍ୟାୟ—ଦେ॰ ବି (ନାମ)—ବଙ୍ଗଦେଶର ସ୍ୱର୍ଗୀୟ
Śyāmākānta bandopādhyāya ପ୍ରସିଦ୍ଧ ମଲ୍ଲ—
Name of a famous athlete of Bengal [ଦ୍ର—ଏ ଢାକା ଜିଲ୍ଲାର ବିକ୍ରମପୁରରେ ଖ୍ରୀ ୧୮୫୮ ରେ ଜନ୍ମ ହୋଇଥିଲେ । ଏ ବାଲ୍ୟକାଳରୁ ବ୍ୟାୟାମପ୍ରିୟ ହୋଇ ବନ୍ୟ ହିଂସ୍ର ଜନ୍ତୁ ମାନଙ୍କୁ ମଧ୍ୟ ବଶ କରିପାରୁ ଥିଲେ । ଏ ନିଜେ ସର୍କସ୍ ଦଳ ସୃଷ୍ଟି କରିଥିଲେ ଓ ଏପରି ବଳୁଆ ଥିଲେ ଯେ, ତାଙ୍କ ଛାତି ଉପରେ ୧୦ ମହଣର ପଥରକୁ ହାତୁଡ଼ିରେ କାଡ଼େଇ ଟୁକା କରା ଯାଉଥିଲା । ୫୦ ବର୍ଷ ବୟସରେ ସେ ବ୍ୟାୟାମ ଆଦି ଛାଡ଼ି ତୀର୍ଥ ଭ୍ରମଣ କଲେ । ଜଣେ ପ୍ରସିଦ୍ଧ ସନ୍ନ୍ୟାସୀ (ଭିକଣବାବା, ଫୁଙ୍ଗୀବାବା; ହାକମ ସାହେବ ଆଦି ନାମରେ ଭିନ୍ନ ଭିନ୍ନ ଦେଶରେ ପରିଚିତ) ଏହାଙ୍କୁ ଶିଷ୍ୟରୂପରେ ଗ୍ରହଣ କରି ଏହାଙ୍କୁ 'ସୋଽହଂ ସ୍ୱାମୀ' ନାମ ଦେଲେ । ଏ ବେଦାନ୍ତ ବିଷୟକ ଗ୍ରନ୍ଥେ ବଙ୍ଗଳା ଗ୍ରନ୍ଥ ରଚନା କରିଥିଲେ ଓ ବାନପ୍ରସ୍ଥ ଅବଲମ୍ବନ କରିଥିଲେ ।]

ଶ୍ୟାମାଙ୍ଗ—ସଂ, ବି—(କର୍ମଧା; ଶ୍ୟାମ+ଅଙ୍ଗ)—୧ । ଶ୍ୟାମବର୍ଣ୍ଣ
Śyāmānga ବିଶିଷ୍ଟ ଦେହ—1. Dark complexioned-body. ୨ । (ବହୁବ୍ରୀହି) ବୁଧଗ୍ରହ—2 The planet Mercury. ସଂ. ବିଣ. ପୁଂ.—ଶ୍ୟାମବର୍ଣ୍ଣ (ଶ୍ୟାମାଙ୍ଗୀ—ସ୍ତ୍ରୀ) ଶରୀର ବିଶିଷ୍ଟ—Dark-complexioned.

ଶ୍ୟାମାଚରଣ—ସଂ. ବ (୬ଷ୍ଠୀ ତତ୍, ଶ୍ୟାମା+ଚରଣ)—ଦୁର୍ଗାଙ୍କ
Śyāmācharaṇa ଚରଣ—The feet of Goddess
( ଶ୍ୟାମାପଦ—ଅନ୍ୟରୂପ ) Durga.
শ্যামা চরণ ଦେ. ବ. ପୁଂ—ଲୋକଙ୍କ ନାମ—
श्यामा चरण A name of males.

ଶ୍ୟାମାଚରଣ ସରକାର—ଦେ ବ—ଜନୈକ ସ୍ୱର୍ଗୀୟ ସ୍ମୃତିଶାସ୍ତ୍ର ପ୍ରଣେତା
Śyāmācharaṇa sarakāra —Name of a law-giver
শ্যামাচরণ সরকার श्यामाचरण सरकार of Bengal.
[ଦ୍ର—ଏ ବଙ୍ଗୀୟ ବ୍ରାହ୍ମଣ ଥିଲେ । ଏ ସଂସ୍କୃତ, ଇଂରାଜୀ, ଆରବୀ, ଗ୍ରୀକ୍, ଲାଟିନ୍, ଉର୍ଦ୍ଦୁ ଓ ଫ୍ରେଞ୍ଚ ଭାଷା ଶିଖା କରିଥିଲେ । ଏ ଇଂରାଜୀ, ବଙ୍ଗଳା ଓ ଉର୍ଦ୍ଦୁରେ ଅନେକ ହିନ୍ଦୁ ଓ ମୁସଲମାନ ଧର୍ମଶାସ୍ତ୍ରର ବିଧାନମାନ ଲିପିବଦ୍ଧ କରି ଇଂରାଜୀରେ 'ବ୍ୟବସ୍ଥାସାର ସଂଗ୍ରହ' (ଦାୟଭାଗ) ଓ 'ବ୍ୟବସ୍ଥାଚନ୍ଦ୍ରିକା' (ମିତାକ୍ଷରା) ନାମକ ଗ୍ରନ୍ଥ ସଂକଳନ କରିଥିଲେ । ଏହାହିଁ ବଙ୍ଗ ଦେଶର ପ୍ରଥମ ଆଇନ୍ ପୁସ୍ତକ । ଏ କଲିକତା ସୁପ୍ରିମ୍ କୋର୍ଟରେ ଦ୍ୱିଭାଷୀ (Interpreter ) କାର୍ଯ୍ୟ କରୁଥିଲେ । ଏ ହିନ୍ଦୁ ଓ ମୁସଲମାନମାନଙ୍କ ପାଇଁ ବଙ୍ଗଳା ଭାଷାରେ ପ୍ରଥମ ଆଇନ୍ ପୁସ୍ତକ ସଙ୍କଳନ କରିଥିଲେ । ]

ଶ୍ୟାମାଢ଼କୀ—ସଂ. ବ—ଯେଉଁ ହରଡ଼ର ପୁଷ୍ପ ଶ୍ୟାମବର୍ଣ୍ଣ; କଳାହରଡ଼—
Śyāmāḍhakī (Black variety) Cajanus Indicus
কালাঅরহর काला अरहर (a pulse).

ଶ୍ୟାମା ତ୍ରିବୃତ—ସଂ. ବ—କଳା ତିଉଡ଼ି; କୃଷ୍ଣତ୍ରିବୃତ୍ ଲତା—
Śyāmā tribrut A variety of Ipomoea Turpethum creeper.
ଅନ୍ୟ. ସଂ. ନାମ—ଅର୍ଦ୍ଧଚନ୍ଦ୍ରା, ପାଳନ୍ଦୀ, ସୁଷେଣିକା, ମସୂରବିଦଳା, କାଳା, କୈଶିକା, କାଳମେଷିକା ।
কালতেউড়ি
श्यामपनिलर,
कालानिशोथ
ମ. କାଲେଂନଶେଉର
[ ଦ୍ର—ଏହା ଧଳା ତିଉଡ଼ି ଅପେକ୍ଷା ସ୍ୱଳ୍ପ ଗୁଣବିଶିଷ୍ଟ; କଟୁ ତିକ୍ତ, ବିରେଚକ, ଏବଂ ଦାହ, ମୂର୍ଚ୍ଛା, ମତ୍ତତା, ଭ୍ରାନ୍ତି କଣ୍ଠଶୋଷ ଆଦି ଉପଦ୍ରବକାରକ । କେହି କେହି କହନ୍ତି ରକ୍ତ ତିଉଡ଼ିର ମୂଳକୁ ଶ୍ୟାମାତ୍ରିବୃତ୍ କୁହାଯାଏ । ]

ଶ୍ୟାମାଦି ବର୍ଗ—ସଂ. ବ (ବୈଦ୍ୟକ)—କେତେକ ଗୁଳ୍ମର ସମଷ୍ଟି—
Śyāmādi barga Name of a class of herbs.
[ଦ୍ର—ଶ୍ୟାମା, ମହାଶ୍ୟାମା, ତ୍ରିବୃତ୍, ଦନ୍ତୀ, ଶଙ୍ଖିନୀ, ତିଲ୍ୱକ, କମ୍ପିଲ୍ଲକ, ରମ୍ୟକ, କ୍ରମୁକ, ପୁତଶ୍ରେଣୀ, ଗବାକ୍ଷ, ରାଜବୃକ୍ଷ, କରଞ୍ଜ, କଟୁକରଞ୍ଜ, ଗୁଡ଼ୁଚି, ସପ୍ତଲା, ଛଗଳାଦ୍ରୀ ସୁଧା ଓ ସ୍ୱର୍ଣ୍ଣକ୍ଷୀରୀ ଏହି କେତୋଟି ବୃକ୍ଷ ଶ୍ୟାମାଦିବର୍ଗର ଅନ୍ତର୍ଗତ ।]

ଶ୍ୟାମା ପକ୍ଷୀ—ସଂ. ବ—ଏକପ୍ରକାର ଗାନକାରୀ ପକ୍ଷୀ—
Śyāmā pukhī A species of singing bird;
শ্যামা পাখী Turdus Macarus.
श्यामा पक्षी [ଦ୍ର—ଶାଖାଗୁଡ଼ିକ କୃଷ୍ଣବର୍ଣ୍ଣ ଦୀର୍ଘପୁଚ୍ଛ ପକ୍ଷୀ; ଭଲଗୀତ ଗାଇଥାଏ । ]

ଶ୍ୟାମା ପୂଜା—ସଂ. ବ—କାର୍ତ୍ତିକ ଅମାବାସ୍ୟା ରାତିରେ ଶ୍ୟାମା ବା
Śyāmā pūjā କାଳୀଙ୍କର ଅର୍ଚ୍ଚନା—The worship of Goddess Kāli or Śyāmā on the night the new moon of the month of Kārttika.

ଶ୍ୟାମା ବୀଜ—ସଂ. ବ (ବୈଦ୍ୟକ)—ବୃଦ୍ଧ ଦାରକ ଲତାଫଳର ମଞ୍ଜି—
Śyāma bija The seed of Argyreia Speciosa.

ଶ୍ୟାମାୟମାନ—ସଂ. ବଣ—[ ଶ୍ୟାମ + ଅଭୂତ ତଦ୍ଭାବେ ଯ = ଶ୍ୟାମାୟ
Śyāmāyamāna ନାମ ଧାତୁ + କର୍ତ୍ତୃ ମାନ (ଶାନଚ୍)]—
(ଶ୍ୟାମାୟମାନା—ସ୍ତ୍ରୀ) ଶ୍ୟାମବର୍ଣ୍ଣରେ ପରିଣତ, ହରିତାୟମାନ—
Turned into green or black and blue colour.

ଶ୍ୟାମା ଲତା—ସଂ. ବ—୧ । କୃଷ୍ଣସାରିବା; ଶୁଆଁଲଇ—1 Indian
Śyāmā latā sarsaparilla (creeper) ୨ । ଚେମିଡ଼ି
୧ । ଅନ୍ୟ ସ. ନାମ—ଶାରିବା, ଭୁଜଙ୍ଗଘଣ୍ଟିକା, ଗୋପୀ, କୃଷ୍ଣା, ଗୋପବଧୂ ।
শ্যামা লতা
दुधी, गोपीसर, कालीसर
ଲତା; ଗୁଳ୍ମ
ଦାନ ଲତା—
2. Hemidesmus Indicus (creeper).
ତେ. ପାଲତିଗ
୨ । ଅନ୍ୟ. ସ. ନାମ—ଧବଳା, ଶାରିବା, ଗୋପୀ, ଗୋପକନ୍ୟା, କୃଶୋଦରୀ, ସ୍ଫୋଟା, ଗୋପବଲ୍ଲୀ, ଲତା, ଅସ୍ଫୋଟା, ଚନ୍ଦନା ।
[ଦ୍ର—ଶାରିବା ଦେଖ ]
অনন্ত মূল अनन्त मूल, उपलसरी

ଶ୍ୟାମା ସୁନ୍ଦରୀ—ସ. ବଣ. ସ୍ତ୍ରୀ—ଶ୍ୟାମ ବର୍ଣ୍ଣା ଓ ସୁନ୍ଦରୀ—
Śyāmā sundarī (a woman) Beautiful and dark complexioned; brunette. ଦେ. ବ. ସ୍ତ୍ରୀ—(ବଙ୍ଗଦେଶ) ସ୍ତ୍ରୀଲୋକମାନଙ୍କ ନାମ—A name given to females in Bengal.

ଶ୍ୟାମିକା—ସ. ବ—(ଶ୍ୟାମ+କ+ଆ)—୧ । ଶ୍ୟାମଲତା; ଶ୍ୟାମବର୍ଣ୍ଣ
Śyāmikā 1. Deep blue colour. ୨ । ମାଳିନ୍ୟ—2. Paleness; discoloration; filthiness; dirtiness. [ଉଦା—ଭ୍ରମପର ଶ୍ୟାମିକାର ରେଖା ଏ କଳଙ୍କେ, ପଢ଼ିବାର ଲେଖିନାହିଁ ବିଧି କେଉଁକାଳେ । ରାଧାନାଥ. ମହାଯାତ୍ରା ।] ୩ । କୃଷ୍ଣତ୍ୱ—3. Blackness. ୪ । ଧାତୁ ଆଦିର ଖାଦ—4. The dross of metals. ୫ । ଧାତୁର ମଳ—5. Scorie of metals. ଦେ. ବ—ମେଳ ବା ଖାଦଥିବା ସୁନା—Mixed gold.

ଶ୍ୟାମୀ—ଦେ. ବଣ—ଶ୍ୟାମ ଦେଶୀୟ—Relating to the Siam
Śyāmī country; Siamese.
[ ଯଥା, ଶ୍ୟାମୀ ଭାଷା; ଶ୍ୟାମୀ ଜାତି ।] ବ ପୁଂ ଓ ସ୍ତ୍ରୀ—(ଆଦରାର୍ଥକ)—ଶ୍ୟାମସୁନ୍ଦର ଓ ଶ୍ୟାମାସୁନ୍ଦରୀର ଡାକ ନାମ—Name for calling Śyāmasundara and Śyāmasundari in fondness.

ଶ୍ୟାଳ—ସଂ. ବି. ପୁଂ—(ଶ୍ୟୈ ଧାତୁ=ଗମନ କରିବା+କର୍ତ୍ତୃ. ଅଳ; Śyāla ଯେ ପରିହାସାର୍ଥ ଗମନ କରେ)—ଶଳା; ପତ୍ନୀଙ୍କ ଭାଇ— (ଶ୍ୟାଳକ—ଅନ୍ୟରୂପ) Wife's brother. ୨ । ଭଗିନୀପତି; ଭଣୋଇ; (ବୃଦ୍ଧବୈବର୍ତ୍ତ ପୁରାଣ)— One's sister's husband.

ଶ୍ୟାଳକୀ—ସଂ.ବି ସ୍ତ୍ରୀ (ଶ୍ୟାଳକ+ସ୍ତ୍ରୀ ଈ)—ଶାଳୀ (ଦେଖ) Syālakī Śālī (See)

ଶ୍ୟାଳ ଜାୟା—ସଂ. ବି. ସ୍ତ୍ରୀ—(୬ଷ୍ଠୀ ତତ୍; ଶ୍ୟାଳ+ଜାୟା)—ଶ୍ୟାଳ-Śyāla jāyā କଙ୍କ ସ୍ତ୍ରୀ; ଶଳାଗୃହିଣୀ—The wife of one's wife's brother

ଶ୍ୟାଳକ ଜାୟା<br>ଶ୍ୟାଳକ ପତ୍ନୀ } —ଅନ୍ୟରୂପ

ଶ୍ୟାଳିକା—ସ. ବି. ସ୍ତ୍ରୀ—(ଶ୍ୟାଳ+କ+ଆ)—ପତ୍ନୀଙ୍କ ଭଗ୍ନୀ— Śyālikā Wife's sister. [ଦ୍ର—ଏମ ଦେଶରେ ପତ୍ନୀଙ୍କ ବଡ଼ ଭଉଣୀକୁ ଦେଢ଼ଶାଶୁ ଓ ସାନ ଭଉଣୀକୁ ଶାଳୀ କହନ୍ତି ।]

ଶ୍ୟାଳୀ—ସଂ. ବି. ସ୍ତ୍ରୀ( ଶ୍ୟାଳ+ଈ)—ଶ୍ୟାଳିକା ୧ (ଦେଖ) Śyālī Śyālikā 1 (See)

ଶ୍ୟାଳୀ ପତି—ସଂ. ବି. ପୁଂ (୬ଷ୍ଠୀ ତତ୍)—ସଢ଼ୁ (ଦେଖ) Śyāli pati Sadhu (See)

ଶ୍ୟେତ—ସଂ. ବିଣ—(ଶ୍ୟୈ ଧାତୁ=ଗମନ କରିବା+କର୍ତ୍ତୃ. ଇତ)—

ଶେତ(ତା)<br>ସେତ(ତା) } —ଦେ. ରୂପ

ଧଳା—White. ବି—ଶ୍ୱେତବର୍ଣ୍ଣ— White colour.

ଶ୍ୟେତ କୋଲକ—ସଂ. ବି—(ଶ୍ୟେତ=ଶୁକ୍ଳ+କୋଲ+କ)— Śyeta kolaka କ୍ଷୁଦ୍ର ମତ୍ସ୍ୟ ବିଶେଷ; ସଫରୀ; କେରାଣ୍ଡିମାଛ— A small species of fish; Barbus Chola.

ଶ୍ୟେନ—ସଂ. ବି. ପୁଂ—(ଶ୍ୟୈ ଧାତୁ=ଗମନ କରିବା+କର୍ତ୍ତୃ. ଇନ; Śyena ଯେ ହିଂସାର୍ଥ ଗମନ କରେ)—୧ । ବାଜପକ୍ଷୀ; ଛଞ୍ଚାଣ— [ଶ୍ୟେନୀ—ସ୍ତ୍ରୀ] 1. Hawk; falcon. ୨ । ଯଜ୍ଞ ବିଶେଷ- 2. A sort of vedic sacrifice [ଶ୍ୟେନୀ—ସ୍ତ୍ରୀ] ବିଣ—ପାଣ୍ଡୁର ବର୍ଣ୍ଣ—Brown.

ଶ୍ୟେନ ଘଣ୍ଟା—ସଂ. ବି—(ବୈଦ୍ୟକ)—ଭଦ୍ରଦନ୍ତୀ ନାମକ ଔଷଧ ଦ୍ରବ୍ୟ Śyena ghaṇṭā A herb; croton seed; the seed of the fig-leaved variety of Croton Polyandrum.

ଶ୍ୟେନ ଦୃଷ୍ଟି—ସ. ବି ( ମ· ପ. ଲୋ; ଶ୍ୟେନର ଦୃଷ୍ଟି )—ବାଜପକ୍ଷୀ Śyena drushṭi ପରି ତୀକ୍ଷ୍ଣଦୃଷ୍ଟି—A sharp look-out like that of a falcon. ବିଣ. ପୁଂ. ଓ ସ୍ତ୍ରୀ— ( ବହୁବ୍ରୀହି; ଶ୍ୟେନର ଦୃଷ୍ଟି ଯାହାର )—ଶ୍ୟେନ ପରି ତୀକ୍ଷ୍ଣ ଦୃଷ୍ଟିସମ୍ପନ୍ନ—Hawk-eyed; falcon -eyed.

ଶ୍ୟେନମ୍ପାତ(ତା)—ସଂ. ବି ( ଶ୍ୟେନଂ=ଶ୍ୟେନକୁ+ପାତ=ପତ୍ ଧାତୁ Śyenampāta(tā) +ଅ;+ଆ )—୧ । ଶ୍ୟେନ ବା ଛଞ୍ଚାଣ ଦ୍ୱାରା ପକ୍ଷୀ ଶିକାର—1. Hunting with hawks; falconry. ୨ । ଶିକାର; ମୃଗୟା—2. Hunting.

ଶ୍ୟୈ (ଧାତୁ)—ସଂ—୧ । ଗମନ କରିବା—1. To go. ୨ । ଗତି Śyai (root) କରିବା—2; To move.

ଶ୍ୟୈଣାକ—ସଂ. ବି(ଶ୍ୟୈ ଧାତୁ+କର୍ତ୍ତୃ. ଅକ)—ଶୋଣା; ଫଣଫଣୀ— Śyaiṇāka A medicinal plant; Bignonia Indica.

ଶ୍ରଣ (ଧାତୁ)—ସଂ—ଦତ୍ତ ହେବା— Śraṇ (root) To be given.

ଶ୍ରଣି (ଧାତୁ)—ସଂ ( ଶ୍ରଣ୍ ଧାତୁ ଣିଚ୍ )—ଦାନ କରିବା— Śraṇi (root) To give.

ଶ୍ରତ୍—ସଂ. ଅ ( ଶ୍ରା ଧାତୁ=ପାଳନ କରିବା+କର୍ତ୍ତୃ. ଅତ୍, କ୍ୱାଚିତ Śrat ଏହା ଧାତୁ ସଙ୍ଗେ ଯୁକ୍ତ ହୋଇ 'ଶ୍ରଦ୍ଧା' ପଦାଦି ଗଠିତ ହୁଏ )—୧ । ଭକ୍ତି—1. Devotion; regard reverence. ୨ । ସ୍ନେହ—2. Affection. ୩ । ବିଶ୍ୱାସ—3. Trust; faith; confidence

ଶ୍ରଥ୍ (ଧାତୁ)—ସଂ—୧ । ବଧ କରିବା—1. To kill. ୨ । ଯତ୍ନ Śrath (root) କରିବା; ଚେଷ୍ଟା କରିବା—2, To try; to endeavour; to take care. ୩ । ବନ୍ଧନ କରିବା— 3. To tie. ୪ । ଗ୍ରନ୍ଥନ କରିବା—4. To string together. ୫ । ଢିଲା କରିବା—5. To loosen; to slacken. ୬ । ମୋଚନ କରିବା—4. To 6. To liberate; to untie.

ଶ୍ରଥନ—ସଂ. ବି—(ଶ୍ରଥ୍ ଧାତୁ+ଭାବ. ଅନ)—୧ । ବନ୍ଧନ— Śrathana 1. Tying; binding; fastening. ( ଶ୍ରଥିତ—ବିଣ ) ୨ । କାରାବନ୍ଧନ—2. Confinement, imprisoning a person; bondage. ୩ । ବନ୍ଧନମୋଚନ—3. Liberating or setting free from bondage; emancipation. ୪ । ବିପଦରୁ ଉଦ୍ଧାର କରିବା—4. Delivering from a calamity. ୫ । ଗ୍ରନ୍ଥନ; ଗୁନ୍ଥିବା—5. Stringing together. ୬ । ମୋକ୍ଷ—6. Liberation; beatitude. ୭ । ଶୈଥିଲ୍ୟ—7. Slackness; dilatoriness. ୮ । ବିଳମ୍ବ କରିବା—8. Delaying. ୯ । ବ୍ୟାହନନ—6. Smitig. ୧୦ । ଯତ୍ନ—10. Care. ୧୧ । ଅଧଃକରଣ—11. Bringing down; lowering. ୧୨ । ଚେଷ୍ଟା— 12. Endeavour; effort. ୧୩ । ମାରଣ; ବଧ— 13. Killing; slaughtering. ୧୪ । ପ୍ରାଣଦଣ୍ଡ- ଦଣ୍ଡିତ ଅପରାଧୀର ବଧ—14. Execution of a criminal sentenced to capital punishment. ୧୫ । ପୁନର୍ବାର ଦୃଷ୍ଟିକରଣ—15. Act of looking again.

ଶ୍ରଦ୍ଧାଳ—ସ. ବିଣ. ପୁଂ ( ଶ୍ରତ୍=ଭକ୍ତି+ଧା. ଧାତୁ=ଧାରଣ କରିବା Śraddadhāna +କର୍ତ୍ତୃ. ଅନ [ଶାନଚ୍])—୧ । ଶ୍ରଦ୍ଧାନ୍ୱିତ— ( ଶ୍ରଦ୍ଧାଳା—ସ୍ତ୍ରୀ ) 1. Affectionate. ୨ । ଭକ୍ତିମାନ୍—

2. Full of devotion; respectful. ୩ । ବିଶ୍ୱାସଯୁକ୍ତ—3. Having faith or trust. ୪ । ବିଶ୍ୱାସ କରୁଥିବା—4. Trusting.

**ଶ୍ରଦ୍ଧ**—ଦେ. ବିଣ ( ସଂ ସଶ୍ରଦ୍ଧ )—ଶ୍ରଦ୍ଧାଯୁକ୍ତ—Interested; concerned. [ଦୃ—ଉଦାହରଣରେ ଶଶ୍ଚନ୍ଦ୍ରଦ୍ୟା ବାକ୍ୟଯୁକ୍ତ, ଶିଖାଇଲେ ଗଙ୍ଗାଙ୍କ ଜଳସ୍ପୃ ହୋଇ ଶ୍ରଦ୍ଧ—କୃଷ୍ଣସିଂହ· ମହାଭାରତ· ଆଦ । ]
Sraddha
শ্রদ্ধাযুক্ত
श्रद्धायुक्त

**ଶ୍ରଦ୍ଧା**—ସଂ ବି ( ଶ୍ରତ୍=ଭକ୍ତି+ଧା ଧାତୁ=ଧାରଣ କରିବା+ଭାବ. ଅ+ଆ )—୧ । ଚିତ୍ତ ପ୍ରସନ୍ନତା—1. Peace of mind. ୨ । ମନର ନିର୍ମଳତା—2. Purity of mind. ୩ । ଭକ୍ତି; ସମ୍ମାନ—3. Devotion; respect; homage; reverence. ୪ । ଆସ୍ଥା; ଦୃଢ଼ବିଶ୍ୱାସ—4. Implicit faith; confidence. ୫ । ବିଶ୍ୱାସ; ପ୍ରତ୍ୟୟ—5. Faith; trust. ୬ । ସ୍ନେହ—5. Affection; attachment. ୭ । ଆଦର—7. Fondness. ୮ । ସ୍ପୃହା; ଇଚ୍ଛା—8. Desire; liking; inclination. ୯ । ଗର୍ଭିଣୀର ସଧ; ସାଧ—2. A pregnant woman's hankering after some dainty or food. ୧୦ । ସମାଦର—10. Respectful conduct or treatment. [ ଦ୍ର—ସଂସ୍କୃତରେ ଶ୍ରଦ୍ଧା ଓ ଭକ୍ତି ( devotion ) ଏକାର୍ଥ ବୋଧକ । ପରନ୍ତୁ ଲୋକଙ୍କ ପ୍ରତି ଶ୍ରଦ୍ଧା ଯୋଗୁଁ କରାଯିବା ପିଣ୍ଡଦାନାଦି କ୍ରିୟାକୁ ଶ୍ରାଦ୍ଧ ବୋଲଯାଏ । କିନ୍ତୁ ଭାଷାରେ ଶ୍ରଦ୍ଧା, ଶ୍ରଧା, ଶରଧା ଅପତ୍ୟାଦିଙ୍କ ପ୍ରତି ବାତ୍ସଲ୍ୟ ( Affection ), କୌଣସି ବସ୍ତୁ ପ୍ରତି ଆଦର ( Liking; desire for a thing ) ଓ ଆଦରପୂର୍ଣ୍ଣ ବ୍ୟବହାର (Fond treament) ପ୍ରଭୃତି ଅର୍ଥ ବୁଝାଏ । ] ଦେ. ବି—ସ୍ତ୍ରୀଲୋକଙ୍କ ନାମ—A name given to females.
Sraddhā
ଶ୍ରଧା, ଶରଧା, ଶାଦ୍ଧ, ଶଧ, ଶାଧ } ଦେ—ରୂପମାନ]
( ଅଶ୍ରଦ୍ଧା—ବିପରୀତ )
শ্রদ্ধা
श्रद्धा

**ଶ୍ରଦ୍ଧାକର**—ସଂ ବିଣ ( ଶ୍ରଦ୍ଧା+କୃ ଧାତୁ+କର୍ତ୍ତୃ· ଅ )—ଶ୍ରଦ୍ଧାଜନକ ( ଦେଖ )—Sraddhā janaka (See)
Sraddhākara
( ଶ୍ରଦ୍ଧାକରୀ—ସ୍ତ୍ରୀ )

**ଶ୍ରଦ୍ଧା କରିବା**—ଦେ. କ୍ରି—୧ । ଭକ୍ତି କରିବା; ସମ୍ମାନ କରିବା—1. To revere. ୨ । ଭକ୍ତିପୂର୍ବକ ସମ୍ମାନ ଦେଖାଇବା—2. To pay homage to; to treat with reverence. ୩ । ସୁଖ ପାଇବା—3. To like.
Sraddhā karibā
শ্রদ্ধা করা
श्रद्धा करना

**ଶ୍ରଦ୍ଧାକାରକ**—ସଂ ବିଣ· ପୁଂ (ଶ୍ରଦ୍ଧା+କୃ ଧାତୁ+କର୍ତ୍ତୃ. ଅକ; )—ଯେ ଭକ୍ତି କରେ—Revering; paying homage.
Sraddhākāraka
( ଶ୍ରଦ୍ଧାକାରୀ—ଅନ୍ୟରୂପ )
( ଶ୍ରଦ୍ଧାକାରିକା, ଶ୍ରଦ୍ଧାକାରିଣୀ—ସ୍ତ୍ରୀ )

**ଶ୍ରଦ୍ଧାଜନକ**—ସଂ ବିଣ ( ଶ୍ରଦ୍ଧା+ଜନ ଧାତୁ+କର୍ତ୍ତୃ. ଅକ )—ଶ୍ରଦ୍ଧା ଉତ୍ପାଦକ; ମନରେ ଯାହା ଭକ୍ତି ଜନ୍ମାଏ—Producing or creating reverence in a person's mind.
Sraddhājanaka

**ଶ୍ରଦ୍ଧାଜନ୍ୟ**—ସଂ· ବିଣ—ଶ୍ରଦ୍ଧାରୁ ଉତ୍ପନ୍ନ—Arising from or resulting from reverence; caused by devotion.
Sraddhājanya

**ଶ୍ରଦ୍ଧା ଦେଖା(ଖେ)ଇବା**—ଦେ. କ୍ରି—ଆଦର କରିବା; ସମାଦର କରିବା—To fondle; to show respect.
Sraddhā dekhā(khe)ibā
শ্রদ্ধা দেখান
श्रद्धा दिखाना

**ଶ୍ରଦ୍ଧାନ୍ୱିତ**—ସଂ. ବିଣ. ପୁଂ ( ୩ୟା ତତ୍; ଶ୍ରଦ୍ଧା+ଅନ୍ୱିତ )—୧। ଶ୍ରଦ୍ଧାଯୁକ୍ତ; ଭକ୍ତିମାନ୍—1. Full of devotion or reverence; possessing faith; affectionate; respectful.
Sraddhānwita
( ଶ୍ରଦ୍ଧାନ୍ୱିତା—ସ୍ତ୍ରୀ )

**ଶ୍ରଦ୍ଧାବାନ୍**—ସଂ.ବିଣ.ପୁଂ(ଶ୍ରଦ୍ଧାବତ୍ ଶବ୍ଦ)—୧। ଭକ୍ତିମାନ୍—1. Reverent. ୨ । ବିଶ୍ୱାସପୂର୍ଣ୍ଣ—2. Faithful.
Sraddhāban
( ଶ୍ରଦ୍ଧାବତୀ—ସ୍ତ୍ରୀ )

**ଶ୍ରଦ୍ଧା ବଳା(ଳେ)ଇବା**—ଦେ. କ୍ରି—୧ । କୌଣସି ବିଷୟ ପ୍ରତି ଅତ୍ୟନ୍ତ ସ୍ପୃହାବାନ୍ ହେବା—1. To hanker after a thing. ୨ । ଶ୍ରଦ୍ଧାନ୍ୱିତ ହେବା—2. To have a liking for.
Sraddhā baḷā(ḷe)ibā
সাধ পাওয়া
श्रद्धा बढ़ाना
( ଶ୍ରଦ୍ଧା ବଳିବା—ବି. ରୂପ )

**ଶ୍ରଦ୍ଧା ବିରହିତ**—ସଂ. ବି (୩ୟା ତତ୍; ଶ୍ରଦ୍ଧା+ବିରହିତ)—୧ । ଭକ୍ତିହୀନ ( ବ୍ୟବହାର ବା କାର୍ଯ୍ୟ )—1. Irreverent (act), not actuated by affection. ୨ । ( ପୁଂ ) ଭକ୍ତିହୀନ (ବ୍ୟକ୍ତି)—2. Irreverent (person); devoid of regard.
Sraddhā birahita
( ଶ୍ରଦ୍ଧା ବିହୀନ—ଅନ୍ୟରୂପ )
ଶ୍ରଦ୍ଧାବିରହିତା, ଶ୍ରଦ୍ଧାବିହୀନା } ସ୍ତ୍ରୀ

**ଶ୍ରଦ୍ଧା ଭକ୍ତି**—ସଂ. ବି ( ଏକାର୍ଥ ବୋଧକ ସହଚର ଶବ୍ଦ )—ଶ୍ରଦ୍ଧା ଓ ଭକ୍ତି—Devotion. [ ଦ୍ର—ସଂସ୍କୃତରେ ଶ୍ରଦ୍ଧା ଓ ଭକ୍ତି ଏକାର୍ଥକ; କିନ୍ତୁ ଭାଷାରେ ଶ୍ରଦ୍ଧା=ଅପତ୍ୟାଦିଙ୍କ ପ୍ରତି ସ୍ନେହ ଓ କୌଣସି ବସ୍ତୁ ପ୍ରତି ଆକାଂକ୍ଷା ଏବଂ ଭକ୍ତି=ଦେବତା ଓ ଗୁରୁଜନଙ୍କ ପ୍ରତି ସମ୍ମାନ ଅର୍ଥରେ ବ୍ୟବହୃତ ହୁଏ । ]
Sraddhā bhakti

**ଶ୍ରଦ୍ଧା ଭାଜନ(ପାତ୍ର)** ସଂ.—( ୬ଷ୍ଠୀ ତତ୍; ଶ୍ରଦ୍ଧା+ଭାଜନ ) —ଶ୍ରଦ୍ଧାର୍ହ ( ଦେଖ )—Sraddhāhra ( See )
Sraddhā bhājana(patra)

**ଶ୍ରଦ୍ଧାମୟ**—ସଂ· ବିଣ—ଶ୍ରଦ୍ଧାଯୁକ୍ତ ( ବ୍ୟକ୍ତି ବା କାର୍ଯ୍ୟ )—Full of devotion or reverence.
Sraddhāmaya
( ଶ୍ରଦ୍ଧାମୟୀ—ସ୍ତ୍ରୀ )

**ଶ୍ରଦ୍ଧାମୂଳକ**—ସଂ. ବିଣ ( ବହୁବ୍ରୀହି; ଶ୍ରଦ୍ଧା+ମୂଳ+କ )—ଶ୍ରଦ୍ଧାଜନ୍ୟ ( ଦେଖ )—Sraddhājanya (See)
Sraddhāmūlaka

**ଶ୍ରଦ୍ଧାଯୁକ୍ତ**—ସଂ. ବିଣ ( ୩ୟା ତତ୍; ଶ୍ରଦ୍ଧା+ଯୁକ୍ତ )—ସଶ୍ରଦ୍ଧ; ଭକ୍ତିପୂର୍ଣ୍ଣ ( ବ୍ୟକ୍ତି ଓ କାର୍ଯ୍ୟ )—Full of devotion; revering; reverent.
Sraddhājukta
( ଶ୍ରଦ୍ଧାଯୁକ୍ତା—ସ୍ତ୍ରୀ )

ଶ୍ରଦ୍ଧା ରହିତ—ସଂ. ବଣ—ଶ୍ରଦ୍ଧାବିରହିତ ( ଦେଖ )
Śraddhā rahita Śraddhābirahita ( See )

ଶ୍ରଦ୍ଧାର୍ହ ସଂ. ବଣ. ପୁଂ—ଶ୍ରଦ୍ଧାସ୍ପଦ; ଅନ୍ୟ ବ୍ୟକ୍ତିଠାରୁ ଶ୍ରଦ୍ଧା ବା
Śraddhārha ସମ୍ମାନ ପାଇବାର ଯୋଗ୍ୟ; ଯାହାଙ୍କୁ ଭକ୍ତି କରିବା
(ଶ୍ରଦ୍ଧାର୍ହା—ସ୍ତ୍ରୀ) ଉଚିତ—Reverend; venerable; deserving of regard.

ଶ୍ରଦ୍ଧାଳୁ—ସଂ. ବଣ. ପୁଂ. ଓ ସ୍ତ୍ରୀ ( ଶ୍ରଦ୍ଧା+ଶୀଳାର୍ଥେ. ଅଳୁ; ଭୂଳ.
Śraddhālu କୃପାଳୁ,ଦୟାଳୁ, ଭୟାଳୁ)—ଶ୍ରଦ୍ଧାଯୁକ୍ତ; ଶ୍ରଦ୍ଧାଶୀଳ; ଭକ୍ତିମାନ୍ ( ବ୍ୟକ୍ତି)—Affectionate; respectful; overflowing with devotion; possessing veneration. ବି. ସ୍ତ୍ରୀ—କୌଣସି ଖାଦ୍ୟାଦି ଦ୍ରବ୍ୟରେ ସ୍ପୃହାବତୀ ଗର୍ଭିଣୀ—A pregnant woman having a hankering after some thing.

ଶ୍ରଦ୍ଧା ଶୂନ୍ୟ—ସଂ. ବଣ—ଶ୍ରଦ୍ଧାବିରହିତ ( ଦେଖ )
Śraddhā śunya Śrddhabirahita ( Sea )

ଶ୍ରଦ୍ଧାସ୍ପଦ—ସଂ. ବଣ. ( ୬ଷ୍ଠୀ ତତ୍; ଶ୍ରଦ୍ଧା+ଆସ୍ପଦ=ସ୍ଥାନ )—
Śraddhāspada ୧ । ଶ୍ରଦ୍ଧାର୍ହ ( ଦେଖ )—1. Śraddharha ( See ) ୨ । ଯାହାଙ୍କୁ ଶ୍ରଦ୍ଧା କରାଯାଏ—2. Object of reverence or regard. [ ଦ୍ର—କେହି କେହି ଶ୍ରଦ୍ଧାପାତ୍ର, ଶ୍ରଦ୍ଧାସ୍ପଦ, ଶ୍ରଦ୍ଧାଭାଜନ ଅବ ଶବ୍ଦ ପୁରୁଷ ଓ ସ୍ତ୍ରୀମାନଙ୍କ ପ୍ରତି ବ୍ୟବହାର କରନ୍ତି । ]

ଶ୍ରଦ୍ଧେୟ—ସଂ. ବଣ (ଶ୍ରତ୍+ଧା. ଧାତୁ+କର୍ମ. ଯ)—ଶ୍ରଦ୍ଧା ବା ଭକ୍ତିର
Śraddheya ଯୋଗ୍ୟ; ଯାହାଙ୍କୁ ଶ୍ରଦ୍ଧା କରିବା ଉଚିତ—
(ଶ୍ରଦ୍ଧେୟା—ସ୍ତ୍ରୀ) Deserving to be revered, venerable.

ଶ୍ରଧା ( ଇତ୍ୟାଦି )—ଗ୍ରା. ବ ( ସଂ. ଶ୍ରଦ୍ଧା )—ଶ୍ରଦ୍ଧା ଇତ୍ୟାଦି (ଦେଖ)
Sradhā ( etc ) Śraddhā etc ( See )

ଶ୍ରନ୍ଥ୍ ( ଧାତୁ )—ସଂ—୧ । ବାନ୍ଧିବା—1. To bind; to tie up.
Śranth ( root ) ୨ । ଗ୍ରନ୍ଥନ କରିବା; ଗୁନ୍ଥିବା—2. To tie together; to string together. ୩ । ମୋଚନ କରିବା—3. To liberate. ୪ । ବଧ କରିବା—4. To kill. ୫ । ଶିଥିଳ କରିବା—5. To loosen; to slacken.

ଶ୍ରନ୍ଥ—ସଂ. ବ ( ଶ୍ରନ୍ଥ୍ ଧାତୁ+ଭାବ. ଅ )—୧ । ଗୁମ୍ଫନ; ଗ୍ରନ୍ଥନ—
Śrantha 1. Stringing together ( as of beads, flowers ). ୨ । ମୋଚନ—2. Liberation; deliverance; emancipation. ୩ । ଶିଥିଳୀ କରଣ—3. Slackening; relaxing. ୪ । (+ କର୍ତ୍ତୃ. ଅ ) ବିଷ୍ଣୁ (ମୋକ୍ଷଦାତା ଥିବାରୁ)—4. Bishnu.

ଶ୍ରନ୍ଥନ(ନା)—ସଂ. ବ ( ଶ୍ରନ୍ଥ୍ ଧାତୁ+ଭାବ. ଅନ,+ଆ )—ଶ୍ରଥନ
Śranthana(nā) ( ଦେଖ )—Śrathana ( See )
[ ଶ୍ରନ୍ଥିତ—ବଣ ]

ଶ୍ରପିତ—ସଂ. ବଣ ( ଶ୍ରୈ ବା ଶ୍ରୈ ଧାତୁ ଣିଚ୍=ଶ୍ରପି ଧାତୁ=ପାକ କରିବା
Śrapita +କର୍ମ. ତ )—[ଘୃତ, ଦୁଗ୍ଧ ଓ ଜଳ ଭିନ୍ନ ] ପାକ କରି ଯାଇଥିବା; ପକ୍ୱ—Boiled; cooked.

ଶ୍ରବ(ବଃ)—ସଂ. ବ ( ଶ୍ରୁ ଧାତୁ=ଶୁଣିବା+ଭାବ. ଅ, ଅସ୍ )—୧ ।
Śraba(bah) ଶ୍ରବଣ, ଶୁଣିବା—1. Hearing; listening. ୨। (+କରଣ. ଅ, ଅସ୍ ) ଶ୍ରବଣେନ୍ଦ୍ରିୟ; କର୍ଣ୍ଣ—2. The ear. ୩ । [ +ଭାବ. ଅ, ଅସ୍ ] ସ୍ରାବ; କ୍ଷରଣ—3. Oozing. ୪ । ଖ୍ୟାତି; ପ୍ରସିଦ୍ଧି—4, Notoriety ୫ । ଯଶ, କୀର୍ତ୍ତି—5, Fame.

ଶ୍ରବଣ—ସଂ. ବ—(ଶ୍ରୁ ଧାତୁ=ଶୁଣିବା+ଭାବ. ଅନ)—୧ । ଶୁଣିବା-
Śrabaṇa 1 Hearing; listening. ୨ । (+କରଣ. ଅନ)—ଶ୍ରବଣେନ୍ଦ୍ରିୟ; କର୍ଣ୍ଣ; କାନ—2. The ear. ୩ । (ଜ୍ୟୋତିଷ)—ଶ୍ରବଣା ନକ୍ଷତ୍ର—3. (Astrology) The 22nd asterism. ୪ । ଭକ୍ତିର ନବଲକ୍ଷଣ ବା ନବଧା ଭକ୍ତି ମଧ୍ୟରୁ ଗୋଟିଏ—4. One of the processes (viz. hearing or listening) for attaining devotion. [ ଦ୍ର—ଭକ୍ତିଶାସ୍ତ୍ର ଅନୁସାରେ ଭକ୍ତିର ଲକ୍ଷଣ ୯ ଗୋଟି ଯଥା—ଶ୍ରବଣ (ଦେବତାଙ୍କ ନାମ ଶ୍ରବଣ), କୀର୍ତ୍ତନ, ସ୍ମରଣ, ପାଦସେବା, ପୂଜା ବା ଅର୍ଚ୍ଚନ, ସ୍ତବ ବା ବନ୍ଦନ, ପରିଚର୍ଯ୍ୟା ବା ଦାସ୍ୟ, ସଖ୍ୟ ଭାବରେ ସମ୍ଭାଷଣ ଓ ଅସ୍ତୁ ସମର୍ପଣ ବା ଆତ୍ମ ନିବେଦନ ।]

ଶ୍ରବଣ କରିବା—ଦେ. କ୍ରି—(ସଂ. ଶ୍ରୁ ଧାତୁ)—ଶୁଣିବା—
Śrabaṇa karibā To hear.
শ্রবণকরা श्रवणकरना

ଶ୍ରବଣକର୍ତ୍ତା—ସ. ବଣ. ପୁଂ—ଯେ ଶୁଣେ; ଶ୍ରୋତା—
Śrabaṇakarttā Hearing; listening.
[ଶ୍ରବଣକାରୀ—ଅନ୍ୟରୂପ) ବି.-ଶ୍ରୋତା ବ୍ୟକ୍ତି—
[ଶ୍ରବଣ କର୍ତ୍ତ୍ରୀ, ଶ୍ରବଣକାରିଣୀ—ସ୍ତ୍ରୀ] Hearer; auditor, one of the audience.

ଶ୍ରବଣ-କୁହର (ଗହ୍ୱର)—ସଂ. ବ – (୬ଷ୍ଠୀ ତତ୍)—ଶ୍ରବଣ ବିବର ଦେଖ
Śrabaṇa kuhara (gahwera) Śrabaṇa bibara (See)

ଶ୍ରବଣ ଗୋଚର—ସ. ବଣ—(୬ଷ୍ଠୀ ତତ୍: ଶ୍ରବଣ+ଗୋଚର)—୧ ।
Śrabaṇa gochara (ଶବ୍ଦାଦି) ଯାହା ଶୁଣାଯାଏ; ଶ୍ରୁତ; ଶ୍ରୁତି-ଗୋଚର; ଶୁଣାଯିବା—1. Felt by the organ of hearing; that which is heard. ୨ । ଯାହା ନିକଟବର୍ତ୍ତୀ ଥିବାରୁ ଶୁଣା ଯାଏ—2. Within the hearing; within the range of the ear; within ear-shot.

ଶ୍ରବଣ ଗୋଚର ହେବା —ଦେ. କ୍ରି — ଶୁଣାଯିବା —
Śrabaṇa gochara hebā To be heard.
শ্রবণ গোচর হওয়া श्रवण गोचर होना

ଶ୍ରବଣ ଛତୁ—ପ୍ରାଦେ.—(ଜଯ୍ପୁର) ବ—ଏକ ପ୍ରକାର ଛତୁ—
Śrabaṇa chhatu A species of mushroom.

ଶ୍ରବଣ ଦ୍ୱାଦଶୀ—ପ୍ରାଦେ. (ଯାଜପୁର) ବ—ଶ୍ରବଣା ନକ୍ଷତ୍ର ଯୁକ୍ତ
Śrabaṇa dwādaśi ଦ୍ୱାଦଶୀଦିନ ଜାଉଗଯ୍ପା (ଯାଜପୁର) ଠାରେ ଶ୍ରାଦ୍ଧ କରିବା ଯୋଗ—The auspicious conjunction of the Śrabaṇā asterism falling on the 12th day of a lunar fortnight, when pindas are offered at Jajpur.

ଶ୍ରବଣ ପଥ (ମାର୍ଗ)—ସଂ. ବ—(ରୂଢ଼; ଶ୍ରବଣ ରୂପ ପଥ)—୧ । କର୍ଣ୍ଣ-
Śrabaṇa patha (mārga) ପଥ—1. The ear (compared to a passage for sound.) ୨ । କାନରେ ଛିଦ୍ର ମଧ୍ୟରୁ ଶବ୍ଦ ପ୍ରବେଶ କରିବା ମାର୍ଗ—2. The auditory canal of the ear.

ଶ୍ରବଣ ପଥାରୂଢ଼—ସଂ. ବଣ (୭ମୀ ତତ୍)—ଯାହା ଶୁଣାଗଲା; ଶ୍ରୁତ—
Śrabaṇa pathārūḍha Heard.

ଶ୍ରବଣ ବିବର (ରନ୍ଧ୍ର)—ସଂ. ବ—(୬ଷ୍ଠୀ ତତ୍; ଶ୍ରବଣ+ବିବର)—
Śrabaṇa bibara (randhra) ୧ । କାନର ଛିଦ୍ର; ଯେଉଁ ଛିଦ୍ର ବାଟେ ପ୍ରାଣୀ ବାହାରର ଶବ୍ଦ ଶୁଣିପାରେ)—1. The hole in the ear. ୨ । କାନ ମଧ୍ୟରେ ଥିବା ଗହ୍ୱର—2. The cavity inside the ear; tympanum.

ଶ୍ରବଣ ବେଧ—ସଂ. ବ—(୬ଷ୍ଠୀ ତତ୍)—କର୍ଣ୍ଣ ବେଧ; କାନଫୋଡ଼ା—
Śrabaṇa bedha The drilling of the lobe of the ear.

ଶ୍ରବଣ ମଧୁର—ସଂ. ବଣ—ଶ୍ରୁତି ମଧୁର; ଶୁଣିବାକୁ ମିଠା—
Śrabaṇa madhura Sweet to the ear.
[ଶ୍ରବଣ ମନୋହର—ଅନ୍ୟରୂପ]

ଶ୍ରବଣ ଯୋଗ୍ୟ—ସଂ. ବଣ—ଶୁଣିବାର ଉପଯୁକ୍ତ (ବିଷୟ)—
Śrabaṇa jogya Fit to be heard; deserving attention.

ଶ୍ରବଣରେ ଆସିବା—ଦେ. କ୍ରି—ଶ୍ରୁତି ଗୋଚର ହେବା—
Śrabaṇare āsibā To be heard.
কানে আসা—শ্রবণগামী হওয়া

ଶ୍ରବଣ ଶୀର୍ଷକ—ସଂ. ବ—(ବୈଦ୍ୟକ)—ମୁଣ୍ଡି ବା ମୁଣ୍ଡିକା ଗୁଳ୍ମ—
Śrabaṇa śirshaka Name of a plant; Spaeranthus Indicus

ଶ୍ରବଣ ସର୍ବାବୟବୀ—ଦେ. ବଣ—ଯାହାର ସମସ୍ତ ଅବୟବରେ ଶ୍ରବଣ
Śrabaṇa sarbābayabi ବା କାନ ଆକୃତିର ମଣ୍ଡଳ ଚିହ୍ନ ଦାଗ ବା ଛିତୁ ଥାଏ—(A person) Having circular spots or patches on the whole body. [ଦୃ—ଶ୍ରବଣ ସର୍ବାବୟବୀ ମାନବ, ସଂଦୃଷ୍ଟାନ୍ତ ସାକ୍ଷ୍ୟ ଯେବେ ରୋହିତ । ଦିବସୂର୍ଯ୍ୟ. ଚଉତିଶା । ]

ଶ୍ରବଣା—ସଂ. ବ—(ଶ୍ରବଣ+ଆ)—୧ । (ଜ୍ୟୋତିଷ) ନକ୍ଷତ୍ର ବିଶେଷ;
Śrabaṇā ଦ୍ୱାବିଂଶ ନକ୍ଷତ୍ର—1 (Astrology) The 22nd asterism. ୨ । (ବୈଦ୍ୟକ) ମୁଣ୍ଡିକା ଗୁଳ୍ମ; ଶ୍ରାବଣୀ, ଶ୍ରବଣାହ୍ୱା—2 Name of a plant; Sphaeranthus Indicus.

ଶ୍ରବଣାକାଙ୍କ୍ଷା—ସଂ. ବ—(୪ର୍ଥୀ ତତ୍; ଶ୍ରବଣାର୍ଥ ଆକାଙ୍କ୍ଷା)—ଶୁଣିବାକୁ
Śrabaṇākāṅksha ଇଚ୍ଛା—Desire to hear.
ଶ୍ରବଣାକାଙ୍କ୍ଷୀ (ପୁଂ)
ଶ୍ରବଣାକାଙ୍କ୍ଷିଣୀ (ସ୍ତ୍ରୀ) } —ବଣ ରୂପ

ଶ୍ରବଣାତୀତ—ସଂ. ବଣ—(୫ମୀ ତତ୍; ଶ୍ରବଣ+ଅତୀତ)—ଦୂର ହେତୁ
Śrabaṇatita ଯୋଗୁଁ ଯାହା ଶୁଣା ଯାଇ ପାରେ ନାହିଁ—[ଶ୍ରବଣାତିକାନ୍ତ—ଅନ୍ୟରୂପ] Too far to be heard; inaudible

ଶ୍ରବଣା ନକ୍ଷତ୍ର—ସଂ. ବ—(ଜ୍ୟୋତିଷ)—ଦ୍ୱାବିଂଶ ନକ୍ଷତ୍ର—
Śrabaṇā nakshatra The 22nd asterism.
[ଦୃ—ଶ୍ରାବଣ ମାସର ପୂର୍ଣ୍ଣିମା ଏହି ନକ୍ଷତ୍ରଯୁକ୍ତ ହୋଇଥାଏ, ନକ୍ଷତ୍ର ତଳେ ଚୋଟ (ଦେଖ) ।]

ଶ୍ରବଣାହ୍ୱା—ସଂ. ବ (ବୈଦ୍ୟକ)—ଶ୍ରବଣଶୀର୍ଷ (ଦେଖ)
Śrabaṇāhwā Śrabaṇaśirsha;. (See)

ଶ୍ରବଣୀୟ—ସଂ. ବଣ (ଶ୍ରୁ ଧାତୁ+କର୍ମ ଅନୀୟ)—ଶ୍ରବଣ ଯୋଗ୍ୟ;
Śrabaṇiya ଶ୍ରୋତବ୍ୟ—Fit to be heard.

ଶ୍ରବଣେନ୍ଦ୍ରିୟ—ସଂ. ବ (୬ଷ୍ଠୀ ତତ୍; ଶ୍ରବଣ+ଇନ୍ଦ୍ରିୟ)—କାନ—
Śrabaṇendriya The ear.

ଶ୍ରବାଚ୍ୟ[ଯ୍ୟ]—ସଂ. ବ (ଶ୍ରବ+ଅଚ୍ୟ, +ଅଯ୍ୟ)—ଯଜ୍ଞରେ ବଳି
Śrabāchya(jya) ଦିଆଯିବା ଯୋଗ୍ୟ ପଶୁ—A beast fit to be offered as a victim in a sacrifice.

ଶ୍ରବିବା—ଦେ. କ୍ରି (ସଂ. ସ୍ରୁ ଧାତୁ)—ଝରିବା—
Śrabibā To ooze out; to flow out in drops.
স্রবা চুয়া

ଶ୍ରବିଷ୍ଠା—ସଂ. ବ (ଶ୍ରବବାନ୍=ଖ୍ୟାତିବିଶିଷ୍ଟ, ବିଖ୍ୟାତ+ଇଷ୍ଠ+ଆ;
Śrabishṭhā ଇଷାଦେଶ; ବତ୍‌ଲୋପ)—ଧନିଷ୍ଠା ନକ୍ଷତ୍ର; ବୁଧ ଗ୍ରହଙ୍କ ମାତା; ତ୍ରୟୋବିଂଶ ନକ୍ଷତ୍ର—(Astrology) The 23rd asterism.

ଶ୍ରବିଷ୍ଠାଜ—ସଂ. ବ (ଶ୍ରବିଷ୍ଠା=ଧନିଷ୍ଠା ନକ୍ଷତ୍ରରୁ ଜାତ)—ବୁଧଗ୍ରହ—
Śrabishṭhāja The planet Mercury.

ଶ୍ରବ୍ୟ—ସଂ. ବଣ (ଶ୍ରୁ ଧାତୁ+କର୍ମ. ଯ)—ଶ୍ରାବ୍ୟ; ଶ୍ରବଣୀୟ; ଶୁଣିବା-
Śrabya ଯୋଗ୍ୟ—Fit to be heard.

ଶ୍ରବ୍ୟ କାବ୍ୟ—ସଂ. ବ (କର୍ମଧା; ଶ୍ରବ୍ୟ+କାବ୍ୟ)—ନାଟକ ଭିନ୍ନ ଅନ୍ୟ
Śraby kābya କାବ୍ୟ (ଯେଉଁ କାବ୍ୟ ନାଟ୍ୟ ନୁହେଁ)—
A literary work other than a drama.
[ଦୃ—ଏହା ୩ ପ୍ରକାର, ଯଥା—ପଦ୍ୟମୟ, ଗଦ୍ୟମୟ ଓ ଗଦ୍ୟ ପଦ୍ୟମୟ । ଏମାନେ ପ୍ରତ୍ୟେକ ପୁଣି ୩ ଭାଗରେ ବିଭକ୍ତ ଯଥା—ମହାକାବ୍ୟ, ଖଣ୍ଡକାବ୍ୟ ଓ କୋଷକାବ୍ୟ]

ଶ୍ରମ୍ (ଧାତୁ)—ସଂ—ପରିଶ୍ରମ କରିବା; ମେହନ୍ତ କରିବା
Śram (root) To labour.

ଶ୍ରମ—ସଂ. ବି (ଶ୍ରମ୍ ଧାତୁ+ଭାବ. ଅ)—୧ । ଶାରୀରିକ ଚେଷ୍ଟା; Śrama ପରିଶ୍ରମ; ମିହନ୍ତ—1. Labour; toil; exertion. ୨ । ଚେଷ୍ଟା—3. Effort. ୩ । ଶ୍ରାନ୍ତି; କ୍ଲାନ୍ତି; ପରିଶ୍ରମଜନିତ ଖେଦ—2. Fatigue; weariness. ୪ । ବିରକ୍ତି; ଖେଦ—4. Distress; vexation. ୫ । ଅଭ୍ୟାସ—5. Practice; exercise. ୬ । ଶାସ୍ତ୍ରାଭ୍ୟାସ—6. Studying of the religious books; learning of the scriptures. ୭ । ତପସ୍ୟା—7. Penance; religious austerities. ବୈଦେ. ବି—ସରମ; ଲଜ୍ଜା—Shame. [ଦୃ—ଏତେ କଥାରେ ଏ ଲଘୁ ନ ଥିବେ କି ଶ୍ରମ । ଉଷ. କୋଟବ୍ରହ୍ମାଣ୍ଡ ସୁନ୍ଦରୀ ।] ଦେ. ବି ଶ୍ରମଝାଳ—Perspiration due to labour. [ଦୃ—ଗୋପୀଙ୍କ ମୁଖେ ଶ୍ରମ ଗୁହି, ପୋଛନ୍ତି କରେ ଭାବଗ୍ରାହୀ । ଜଗନ୍ନାଥ-ଭାଗବତ । ]

ଶ୍ରମ ଘର୍ମ—ସଂ. ବି (ମ. ପ. ଲୋ)—ଶ୍ରମଜଳ (ଦେଖ)
Śrama gharma Śrmajala; (See)

ଶ୍ରମଜ—ସଂ. ବିଣ. (ଶ୍ରମ+ଜନ୍ ଧାତୁ+କର୍ତ୍ତୃ. ଅ)—ପରିଶ୍ରମ କରିବା
Śramaja ଯୋଗୁଁ ଜାତ—Due to labour; resulting [ଶ୍ରମଜନ୍ୟ, ଶ୍ରମଜନିତ—ଅନ୍ୟରୂପ] from labour.

ଶ୍ରମଜନକ—ସଂ. ବିଣ—କ୍ଲାନ୍ତି ଉତ୍ପାଦକ—
Śramajanaka Producing weariness; fatiguing.

ଶ୍ରମ ଜଳ (ବାରି)—ସଂ. ବି (ମ. ପ. ଲୋ; ଶ୍ରମଜାତ ଜଳ)—ପରିଶ୍ରମ
Śrama jala(bāri) କରିବା ଯୋଗୁଁ ଦେହରୁ ବୋହୁଥିବା ଝାଳ—Perspiration due to labour;

ଶ୍ରମଜୀବୀ—ସଂ. ବିଣ (ଶ୍ରମଜୀବନ୍ ଶବ୍ଦ; ଶ୍ରମ+ଜୀବ. ଧାତୁ+କର୍ତ୍ତୃ.
Śramajībi ଣିନ୍)—ଶ୍ରମ ବା କାୟିକ ପରିଶ୍ରମଦ୍ୱାରା ଜୀବିକା (ଶ୍ରମଜୀବିନୀ—ସ୍ତ୍ରୀ) ନିର୍ବାହକାରୀ—Living on labour.
ବି. ପୁଂ—ମୂଲିଆ; କୁଲି—
Labourer; cooly; workman.

ଶ୍ରମ ଝାଳ—ଦେ ବି (ସ ଶ୍ରମଜଳ)—ଶ୍ରମଜଳ (ଦେଖ)—Śramajāla
Śrama jhāla (See) [ ହି—ଉକ୍ତ ଦେଲେ ପରିଶ୍ରମେର ଘାମ, କାଳଘାମ मिहनतकापसीना ଶ୍ରମଝାଳ, ଶାଢ଼ୀ ଖେଳେ ପୋଛି ଦେବାର ଦେଢ଼େ ପୀରତ—ଭକ୍ତ ପ୍ରେମସୁଧାନିଧି ।]

ଶ୍ରମଣ—ସଂ ବିଣ. ପୁଂ (ଶ୍ରମ୍ ଧାତୁ+କର୍ତ୍ତୃ ଅନ)—୧ । ସନ୍ନ୍ୟାସୀ—
Śramaṇa 1, A recluse. ୨ । ଭିକ୍ଷୁକ—
(ଶ୍ରମଣା—ସ୍ତ୍ରୀ) 2, A beggar. ୩ । ବୌଦ୍ଧଭିକ୍ଷୁ—
3, A Buddhist monk, ୪ । ଶ୍ରମକାରୀ ବ୍ୟକ୍ତି—
4. A labourer; cooly, ୫ । ନୀଚବ୍ୟବସାୟୀ ବ୍ୟକ୍ତି
5, A person following a low profession. ବିଣ—୧ । ଘୃଣିତ—1, Detested; hateful. ୨। ଅପକୃଷ୍ଟ—2, Inferior. ୩ । ନୀଚ—3, Low; base,

ଶ୍ରମଣା—ସଂ ବି. ସ୍ତ୍ରୀ—୧ । ବୌଦ୍ଧସନ୍ନ୍ୟାସିନୀ—1, A Buddhist
Śramaṇā nun. ୨ । ଭିକ୍ଷୁଣୀ—2. A female beggar. ୩ । ତାପସୀ—3. A female recluse. ୪ । ଶବର ବିଶେଷ—4, Female of a class of hillmen,

ଶ୍ରମ ନିବାରକ—ସଂ ବିଣ—ଶ୍ରମହାରକ (ଦେଖ)
Śrama nibāraka Śramahāraka (See)

ଶ୍ରମ ନିବାରଣ ସଂ ବି—ପରିଶ୍ରମର କ୍ଲାନ୍ତି ହରଣ—
Śrama nibāraṇa The assuaging of fatigue.

ଶ୍ରମ ପୀଡ଼ା—ସଂ ବି (ମ ପ. ଲୋ) ଶ୍ରମଜନିତ କଷ୍ଟ—
Śrama pirdā The rigours of labour.

ଶ୍ରମ ବିନୋଦନ—ସଂ ବି—ପରିଶ୍ରମର କ୍ଲାନ୍ତିକୁ ଭୁଲିଯିବା—
Śrama binodana Forgetting the weariness of labour.

ଶ୍ରମ ବିଭାଗ—ସଂ ବି (ଅଧୁନିକ ବ୍ୟବହାର)—୧ । ସରକାରଙ୍କର ଯେଉଁ
Śramabibhāga ବିଭାଗ ଦେଶର ଶ୍ରମସାଧ୍ୟ ଶିଳ୍ପାଦି ସମ୍ବନ୍ଧେ ଶ୍ରମবিভাগ श्रमविभाग ତଦାରଖ କରନ୍ତି—1, The department of industry of a Government ୨ ଗୋଟିଏ କର୍ମର ଭିନ୍ନ ଅଂଶକୁ ଭିନ୍ନ ଭିନ୍ନ ଶ୍ରମିକମାନଙ୍କଦ୍ୱାରା କରିବାର ପ୍ରଣାଳୀ—2, Division of labour.

ଶ୍ରମ ଲବ୍ଧ—ସଂ ବିଣ (ତୃତୀୟା ତତ୍) ଶ୍ରମଦ୍ୱାରା ପ୍ରାପ୍ତ—
Śramalabdha Obtained by labour

ଶ୍ରମ ଲଭ୍ୟ—ସଂ ବିଣ (ତୃତୀୟା ତତ୍ ଶ୍ରମ+ଲଭ୍ୟ) ଯାହା ପରିଶ୍ରମ କଲେ
Śrama labhya ମିଳିପାରେ—Obtainable by labour.

ଶ୍ରମ ଲାଘବ—ସଂ ବି (ଷଷ୍ଠୀ ତତ୍)—ପରିଶ୍ରମର ପରିମାଣ କମ ହେବା—
Śrama lāghaba Lessening of labour.

ଶ୍ରମଶୀଳ—ସଂ ବିଣ. ପୁଂ (ବହୁବ୍ରୀହି)—୧ । ପରିଶ୍ରମୀ—
Śramaśila 1, Laborious ୨ । ସ୍ୱଭାବତଃ ପରିଶ୍ରମୀ—
(ଶ୍ରମଶୀଳା—ସ୍ତ୍ରୀ) 2, Laborious by nature; industrious,

ଶ୍ରମସହ—ସଂ ବିଣ (ଶ୍ରମ+ସହ ଧାତୁ+କର୍ତ୍ତୃ.ଅ)—ଯେ ପରିଶ୍ରମର କଷ୍ଟ
Śramasaha ସହି ପାରେ—Capable of doing (ଶ୍ରମସହିଷ୍ଣୁ—ଅନ୍ୟରୂପ) much labour.

ଶ୍ରମ ସାଧ୍ୟ—ସ. ବିଣ—(ତୃତୀୟା ତତ୍; ଶ୍ରମ+ସାଧ୍ୟ)—ପରିଶ୍ରମଦ୍ୱାରା
Śrama sādhya କରଣୀୟ—Laboursome; toilsome (work); capable of being accomplished by labour.

ଶ୍ରମ ସିଦ୍ଧ—ସ. ବିଣ—(ତୃତୀୟା ତତ୍; ଶ୍ରମ+ସିଦ୍ଧ)—ପରିଶ୍ରମଦ୍ୱାରା ସମ୍ପାଦିତ
Śrama siddha Accomplished by labour.

ଶ୍ରମ ହାରକ—ସ. ବିଣ—ଯାହା ଶ୍ରମର ପୀଡ଼ା ବା କ୍ଲାନ୍ତି ଦୂର କରେ;
Śrama hāraka ଶାନ୍ତି ଜନକ—Removing fatigue.
[ଶ୍ରମହାରୀ—ଅନ୍ୟରୂପ] [ଶ୍ରମହାରିକା, ଶ୍ରମହାରିଣୀ—ସ୍ତ୍ରୀ]

ଶ୍ରମାଇବା —ଦେ· (ପଦ୍ୟ) କ୍ରି—(ସଂ. ଶ୍ରମ୍ ଧାତୁ ଣିଚ୍)—୧ । ଶ୍ରମିବା କ୍ରିୟାର ଣିଜନ୍ତରୂପ—1. The causative form of Śramibā. ୨ । ପରିଶ୍ରମ କରାଇବା—2. To cause another to work.
Śramāibā

ଶ୍ରମାସକ୍ତ—ସଂ. ବଣ ପୁଂ-(୭ମୀ ତତ୍, ଶ୍ରମ+ଆସକ୍ତ)—ପରିଶ୍ରମୀ (ବ୍ୟକ୍ତି) —Given to labour; laborious; toiling.
Śramāsakta
[ଶ୍ରମାସକ୍ତା—ସ୍ତ୍ରୀ]

ଶ୍ରମାପନୋଦନ—ସଂ. ବି—(୬ଷ୍ଠୀ ତତ୍, ଶ୍ରମ+ଅପନୋଦନ)—ଶ୍ରାନ୍ତି ଦୂରୀକରଣ—Assuaging of fatigue.
Śramāpanodana
[ଶ୍ରମାପନୟନ—ଅନ୍ୟରୂପ]

ଶ୍ରମାପହାରକ—ସଂ. ବଣ ପୁଂ—(ଶ୍ରମ+ଅପହାରକ)—ଶ୍ରମହାରକ (ଦେଖ) Śramahāraka (See)
Śramāpahāraka
[ଶ୍ରମାପହାରୀ—ଅନ୍ୟରୂପ] (ଶ୍ରମାପହାରିକା—ସ୍ତ୍ରୀ)

ଶ୍ରମିକ—ଦେ· ବି—[ସଂ. ଶ୍ରାମିକ]—ଶ୍ରାମିକ (ଦେଖ) Śrāmika (See)
Śramika

ଶ୍ରମିଣୀ—ସଂ. ବଣ. ସ୍ତ୍ରୀ—(ଶ୍ରମିନ୍+ସ୍ତ୍ରୀ. ଈ)-ପରିଶ୍ରମକାରିଣୀ; ଶ୍ରମଶୀଳା—Laborious (female).
Śramiṇī

ଶ୍ରମିତ—ଦେ· ବଣ—ଶ୍ରାନ୍ତ—Tired. [ଭି—ଜାଗ୍ରତ ଶ୍ରମିତ ଶରୀର, ବିଶେଷେ ଗୋବିନ୍ଦ କୋଳର । ଭୂପତି. ପ୍ରେମପଞ୍ଚାମୃତ ।]
Śramita श्रांत
श्रान्त

ଶ୍ରମିବା—ଦେ· (ଦେଶ୍ୟ) କ୍ରି—(ସଂ. ଶ୍ରମ୍ ଧାତୁ)—୧ । ପରିଶ୍ରମ କରିବା-1. To labour. ୨ । କ୍ଳାନ୍ତ ହେବା—2. To become fatigued or spent up.
Śramibā श्रमा मिहनत करना

ଶ୍ରମୋପଜୀବୀ—ସଂ· ବଣ ଓ ବି. ପୁଂ—(ଶ୍ରମୋପଜୀବିନ୍ ଶବ୍ଦ)—ଶ୍ରମଜୀବୀ [ଦେଖ] Śrama jībī (See)
Śramopajībī
[ଶ୍ରମୋପଜୀବିନୀ—ସ୍ତ୍ରୀ]

ଶ୍ରମୋପଲବ୍ଧ—ସଂ. ବଣ—(୩ୟା ତତ୍; ଶ୍ରମ+ଉପଲବ୍ଧ)—ଶ୍ରମଲବ୍ଧ [ଦେଖ]—Śrama labdha (See)
Śramopalabdha

ଶ୍ରମୋପଲଭ୍ୟ—ସଂ· ବଣ—(୩ୟା ତତ୍; ଶ୍ରମ+ଉପଲଭ୍ୟ)—ଶ୍ରମଲଭ୍ୟ (ଦେଖ)—Srama labhya (See)
Śramopalabhya

ଶ୍ରୟ—ସଂ. ବି—[ଶ୍ରି ଧାତୁ=ଆଶ୍ରୟ କରିବା+ଭାବ. ଅ)—୧ । ଆଶ୍ରୟ; ଅବଲମ୍ବନ—1. Refuge; shelter; protection; asylum. ୨ । ବାସ—2. Residence. ୩ । (ସେବରତ୍ତୁ ପାରିଭାଷିକ ଶବ୍ଦ) ସମକୋଣୀ ତ୍ରିଭୁଜର କୋଣ—3. The hypotenuse of a rightangled triangle.
Śraya
[ଶ୍ରୟଣ—ଅନ୍ୟରୂପ]

ଶ୍ରା [ଧାତୁ]—ସଂ·—ପାକ କରିବା—To boil; to cook.
Śrā root

ଶ୍ରାଣ—ସଂ. ବଣ—[ଶ୍ରା ଧାତୁ=ପାକ କରିବା+କର୍ମ. ତ]—୧ । ପକ୍ୱ; ପାକ କରି ଯାଇଥିବା (ଦ୍ରବ୍ୟ)—1. Cooked. ୨ । ଘର୍ମଯୁକ୍ତ—2. Covered with perspiration. ୩ । ସିକ୍ତ; ଓଦା—3. Moistened; damp.
Śrāṇa

ଶ୍ରାଣନ—ସଂ. ବି—(ଶ୍ରଣ୍ ଧାତୁ ଣିଚ୍=ଶ୍ରାଣି ଧାତୁ=ଦାନ କରିବା+ଭାବ. ଅନ)—ଦାନ; ବିତରଣ—Gift; donation; almsgiving.
Śrāṇana

ଶ୍ରାଦ୍ଧ—ସଂ. ବଣ (ଶ୍ରଦ୍ଧା+ଯୁକ୍ତାର୍ଥେ· ଅ)—ଶ୍ରଦ୍ଧାଯୁକ୍ତ—Devotional; reverent. ବି—ପିତୃକୃତ୍ୟ; ମୃତ ବ୍ୟକ୍ତିଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଯୁକ୍ତ ପୁତ୍ରାଦିଙ୍କଦ୍ୱାରା କରାଯିବା ପିଣ୍ଡଦାନାଦି ଅନୁଷ୍ଠାନ—Offering or oblation of rice-cakes made to one's deceased ancestors.
Śrāddha
(ଶ୍ରାଧ—ଦେ. ରୂପ) ଦେ· ବି (ଶ୍ରାଦ୍ଧକାଳରେ ପିତୃଗଣଙ୍କ ପୁନଃ ପୁନଃ ନାମୋଚ୍ଚାରଣ କରାଯାଉଥିବାରୁ)—ପୁନଃ ପୁନଃ ପୂର୍ବପୁରୁଷମାନଙ୍କ ନାମୋଚ୍ଚାରଣପୂର୍ବକ ଗାଳି—Abuse by uttering the names of the ancestors of the abused person.
[ଶ୍ରିଦ୍ଧ—ଗ୍ରା. ରୂପ]
श्राद्ध सराप

ଶ୍ରାଦ୍ଧ କରିବା—ଦେ· କ୍ରି—୧ । ମାତୃପିତୃଗଣଙ୍କୁ ପିଣ୍ଡ ଦାନ କରିବା—1. To offer rice-cakes to one's deceased ancestors. [ଦ୍ର—ପିତୃଙ୍କର ତୋଷ ପାଇଁ ସେ ଶ୍ରାଦ୍ଧ କଲେ । କୃଷ୍ଣସିଂହ, ମହାଭାରତ ଅଦି । ] ୨ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିର ପୂର୍ବପୁରୁଷଙ୍କ ନାମ ଧରି ଗାଳି ଦେବା—2. (figurative) To call names by abusing a person's ancestors. (ଯଥା—ସେ ମୋର ୭ ପୁରୁଷଙ୍କୁ ଶ୍ରାଦ୍ଧ କଲା) ୩ । କୌଣସି ବିଷୟକୁ ଶେଷଥର ପାଇଁ ତ୍ୟାଗ କରିବା; ଜଳାଞ୍ଜଳି ଦେବା—3. (figurative) To make an end of a thing; to bid adieu to a matter. (ଯଥା—ସେ ପଢ଼ାପଢ଼ିର ଶ୍ରାଦ୍ଧ କଲଣି)
Śrāddha karibā
श्राद्ध करा
श्राद्ध करना

ଶ୍ରାଦ୍ଧ କାଳ—ସଂ. ବି—ଦିନ ଦଶଘଡ଼ି ବେଳ—About 1-30 P. M.
Śrāddha kāla

ଶ୍ରାଦ୍ଧ କୃତ—ସଂ· ବଣ ଓ ବି (ଶ୍ରାଦ୍ଧ+କୃ ଧାତୁ+କର୍ତ୍ତୃ. କ୍ୱିପ୍)—ଯେଉଁ ବ୍ୟକ୍ତି ଶ୍ରାଦ୍ଧ କରନ୍ତି—The performer of a funeral rite.
Śrāddha krut

ଶ୍ରାଦ୍ଧ କ୍ରିୟା(କର୍ମ)—ସଂ·. ବି—ପିଣ୍ଡଦାନରୂପ କ୍ରିୟା—Offering of funeral cakes.
Śrāddha kriyā(karma)

ଶ୍ରାଦ୍ଧଖିରିପିଠା—ଦେ. ବି—ଶ୍ରାଦ୍ଧ ଉପଲକ୍ଷରେ ନିମନ୍ତ୍ରିତ ବ୍ୟକ୍ତିମାନଙ୍କୁ ଦିଆଯିବା ଅନ୍ନ ମିଷ୍ଟାନ୍ନାଦି—Rice and sweets served to guests invited on the occasion of a 'Śrāddha'.
Śrāddha khiripiṭhā
শ্রাদ্ধের ভুরীভোজন
श्राद्धका भोजन

ଶ୍ରାଦ୍ଧ ଘର—ଦେ. ବି—କୌଣସି ପରିବାରରେ ଶ୍ରାଦ୍ଧାନୁଷ୍ଠାନ—The observance of 'Śrāddha' in a family.
Śrāddha ghara
শ্রাদ্ধবাড়ী श्राद्ध

ଶ୍ରାଦ୍ଧ ଦିବସ (ଦିନ)—ସଂ. ବି—ଶ୍ରାଦ୍ଧ କରାଯିବାର ତିଥି (ମୃତ ପିତୃ-
Śrāddha dibasa (dina) ପୁରୁଷଙ୍କ ମୃତାହ)—The day on which the anniversary Śrāddha of a deceased is performed.

ଶ୍ରାଦ୍ଧ ଦେବ—ସଂ. ବି—୧ । ଯମ—1. The God or Regent
Śrāddha deba of death. ୨ । ପିତୃଲୋକ—2. One's
(ଶ୍ରାଦ୍ଧ ଦେବତା—ଅନ୍ୟରୂପ) deceased progenitors.
୩ । ବୈବସ୍ୱତ ମନୁ; ସପ୍ତମ ମନୁ—3. The 7th Manu (who is said to preside over the present age). [ଦ୍ର—ବର୍ତ୍ତମାନ ବୈବସ୍ୱତ ମନୁଙ୍କର ଅଷ୍ଟାବିଂଶ ଯୁଗର ୧୦ମ ଭାଗ ଭୋଗ ହେଉଅଛି । ]
୪ । ବିଶ୍ୱଦେବ—4. A biśwadeba (Apte).

ଶ୍ରାଦ୍ଧ ପତ୍ର—ଦେ. ବି—ଯେଉଁ ବଡ଼ କଦଳୀପତ୍ରରେ ଶ୍ରାଦ୍ଧାନ୍ନାଦି
Śrāddha patra ବଢ଼ାଯାଏ—A broad plantain
শ্রাদ্ধের কলাপাতা leaf on which the rice etc are
श्राद्ध पत्र served for Śrāddha.
(ଶ୍ରାଦ୍ଧ ପତର—ଅନ୍ୟରୂପ) [ ଉ—ତୋ ଶ୍ରାଦ୍ଧପତରେ ଗାଈ କାଟ-
ଗାଳ । ]

ଶ୍ରାଦ୍ଧ ବ୍ରାହ୍ମଣ—ସଂ. ବି—ଯେଉଁ ନିମନ୍ତ୍ରିତ ବ୍ରାହ୍ମଣ ଶ୍ରାଦ୍ଧ ପତ୍ରରେ ବସି
Śrāddha brāhmaṇa ଭୋଜନ କରନ୍ତି—
(ଶ୍ରାଦ୍ଧ ବାମ୍ଭୁଣ—ଗ୍ରାମ୍ୟ ରୂପ) A Brāhmaṇa who is
শ্রাদ্ধ বামুন invited to partake of the food
महापात्र ब्राह्मण served on the plantain leaf at a Śrāddha.

ଶ୍ରାଦ୍ଧ ଭୁକ୍ (ଭୋକ୍ତା)—ସଂ. ବି (ଶ୍ରାଦ୍ଧ+ଭୁଜ୍ ଧାତୁ କର୍ତ୍ତୃ କ୍ୱିପ୍;+
Śrāddha bhuk (bhoktā) କର୍ତ୍ତୃ. ତ; ୧ମା. ୧ବ)—
ମୃତ ପୂର୍ବପୁରୁଷ, ଯାହାଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ କରାଯାଏ—
A deceased ancestor to whom funeral cakes are offered.

ଶ୍ରାଦ୍ଧାନ୍ନ—ସଂ. ବି (ମ. ପ. ଲୋ)—ଶ୍ରାଦ୍ଧ ନିମନ୍ତେ ପାକ କରାଯାଇଥିବା
Śrāddhānna ଅନ୍ନ—Rice cooked to be offered in a Śrāddha.

ଶ୍ରାଦ୍ଧିକ—ସଂ. ବିଣ (ଶ୍ରାଦ୍ଧ+ଭୋଜନାର୍ଥେ, ଇକ)—୧ । ଶ୍ରାଦ୍ଧ
Śrāddhika ସମ୍ବନ୍ଧୀୟ—1. Relating to Śrāddha.
(ଶ୍ରାଦ୍ଧିକୀ—ସ୍ତ୍ରୀ) ୨ । (ପୁଂ) ଶ୍ରାଦ୍ଧରେ ଭୋଜନକାରୀ—2- Partaking of the 'Śrāddha' offerings. ବି—
୧ । ଶ୍ରାଦ୍ଧ ବ୍ରାହ୍ମଣ (ଦେଖ)—1. Śrāddha Brāhmaṇa, (See) ୨ । ଶ୍ରାଦ୍ଧରେ ଦେୟ ବସ୍ତୁ—
2, Articles given away on the occasion of a Śrāddha. ୩ । ଯେଉଁ ପିତୃଲୋକଙ୍କ ଉଦ୍ଦେଶ୍ୟରେ ପିଣ୍ଡ ଦିଆଯାଏ—3. The recipient of obsequel offering (Apte).

ଶ୍ରାଦ୍ଧୀୟ—ସଂ. ବିଣ (ଶ୍ରାଦ୍ଧ+ଈୟ)—ଶ୍ରାଦ୍ଧ ସମ୍ବନ୍ଧୀୟ—
Śrāddhīya Relating to Śrāddha,

ଶ୍ରାଧ (ଇତ୍ୟାଦି)—ଗ୍ରା, ବି (ସଂ. ଶ୍ରାଦ୍ଧ)—ଶ୍ରାଦ୍ଧ ଇତ୍ୟାଦି (ଦେଖ)
Śrādha (etc) Śrāddha etc. (See)

ଶ୍ରାନ୍ତ—ସଂ ବିଣ. ପୁଂ (ଶ୍ରମ୍ ଧାତୁ+କର୍ତ୍ତୃ ତ)—୧ । କ୍ଲାନ୍ତ—
Śrānta 1, Fatigued; tired. ୨ । ଶ୍ରମିତ—
(ଶ୍ରାନ୍ତା—ସ୍ତ୍ରୀ) 2. Worn out; wearied; exhausted.
୩ । ନିବୃତ୍ତ—3. Appeased; calmed; at rest. ୪ । ଭୋଗତୃପ୍ତ—4. Satiated; gratified. ସ. ବି. ପୁଂ—ବୈରାଗୀ; ସନ୍ନ୍ୟାସୀ—
An ascetic (Apte).

ଶ୍ରାନ୍ତ କାୟ—ସଂ. ବି (କର୍ମଧା, ଶ୍ରାନ୍ତ+କାୟ)—କ୍ଲାନ୍ତ ଶରୀର—
Śrānta kāya Fatigued body ବିଣ. ପୁଂ
(ଶ୍ରାନ୍ତଦେହ—ଅନ୍ୟରୂପ) (ବହୁବ୍ରୀହି)—ଯାହାର ଶରୀର କ୍ଲାନ୍ତ
(ଶ୍ରାନ୍ତକାୟା, ଶ୍ରାନ୍ତଦେହା—ବିଣ. ସ୍ତ୍ରୀ) ହୋଇଅଛି—Fatigued.

ଶ୍ରାନ୍ତଗତି—ସଂ ବି (କର୍ମଧା) ଧୀରଗମନ—
Śrantagati Slow motion.
ସ. ବିଶେ. ପୁଂ ଓ ସ୍ତ୍ରୀ—ଧୀରଗତିବିଶିଷ୍ଟ—Moving slowly.

ଶ୍ରାନ୍ତ ସମ୍ବାହନ—ସଂ. ବି (୬ଷ୍ଠୀ ତତ୍)—କ୍ଲାନ୍ତ ବ୍ୟକ୍ତିର କ୍ଲାନ୍ତି
Śrānta sambahana ଅପନୋଦନାର୍ଥ ଗୋଡ଼ ଘଷିବା ଓ
(ଶ୍ରାନ୍ତୋପଚାର—ଅନ୍ୟରୂପ) ସେବା—Soothing or relieving the distress of the wearied (Apte).

ଶ୍ରାନ୍ତି—ସଂ. ବି (ଶ୍ରମ୍ ଧାତୁ+ଭାବ. ତି)—୧ । କ୍ଲାନ୍ତି; ପରିଶ୍ରମଜନିତ
Śrānti ଅବସାଦ—1. Fatigue; weariness; exhaustion; lassitude. ୨ । ଶ୍ରମାନ୍ତେ ବିଶ୍ରାମ—
2. Rest after fatigue; refreshment.
୩ । ନିବୃତ୍ତି—3. Cessation. ୪ । ଭୋଗତୃପ୍ତି—
4. Satiation; gratification. ୫ । ଶ୍ରମ—
5. Toil; labour.

ଶ୍ରାନ୍ତିକର—ସଂ. ବିଣ—ଯାହା କ୍ଲାନ୍ତ କରାଏ—Toilsome;
Śrāntikara wearisome; fatiguing.
(ଶ୍ରାନ୍ତିକାରକ, ଶ୍ରାନ୍ତିଜନକ—ଅନ୍ୟରୂପ)

ଶ୍ରାନ୍ତି ଦୂର କରିବା—ଦେ. କ୍ରି—ବିଶ୍ରାମଦ୍ୱାରା ଶ୍ରମର ଖେଦକୁ କମାଇବା-
Śrānti dūra karibā To be refreshed by rest.
শ্রান্তিদূরকরা श्रमदूरकरना

ଶ୍ରାନ୍ତିନାଶକ—ସଂ. ବିଣ—ଯାହା କ୍ଲାନ୍ତିକୁ ଦୂର କରେ—Prevetn-
Śrāntināśaka ing or removing weariness.

ଶ୍ରାବ—ସଂ. ବି (ଶ୍ରୁ ଧାତୁ+ଭାବ. ଅ)—୧ । ଶ୍ରବଣ—1. Hear-
Śrāba ing. ୨ । ସରଣ; ସ୍ରାବ—Oozing.
୩ । ଇକ୍ଷ୍ୱାକୁବଂଶୀୟ ନୃପତିବିଶେଷ—3. Name of a king of the Ikshwāku dynasty.
୪ । ସରଳ ବୃକ୍ଷର ଅଠା (ଶବ୍ଦକୋଷ)—Resin of the pine tree.

ଶ୍ରାବକ—ସଂ. ବିଣ. ପୁଂ (ଶ୍ରୁ ଧାତୁ+କର୍ତ୍ତୃ ଅକ)—ଶ୍ରବଣକାରୀ—
Śrabaka 1. Hearing; listening. ବି—୧ । କାକ;
(ଶ୍ରାବକା—ସ୍ତ୍ରୀ) କୁଆ—1. Crow. ୨ । ଶାକ୍ୟ

ମୁନଙ୍କ ଶିଷ୍ୟ; ବୌଦ୍ଧ—2. A disciple o votary of the Buddha. ୩ । ଶ୍ରୋତା—3. Hearer; listener. ୪ । ଧାରକ—4. A bearer (Apte). ୫ । ଶିଷ୍ୟ; ଛାତ୍ର—5. A pupil; disciple (Apte). ୬ । ବୌଦ୍ଧ ଯତିଙ୍କ ଶ୍ରେଣୀବିଶେଷ—6. A class of Buddhist saints or votaries (Apte). ୭ । ବେଦ ବିରୁଦ୍ଧ ମତବାଦୀ ବ୍ୟକ୍ତି—7. A heretic (Apte)

**ଶ୍ରାବଣ**—ସଂ. ବିଣ—(ଶ୍ରବଣ+ଅ)—୧ । ପାପିଷ୍ଠ—1. Sinful.
**Śrābaṇa** ୨ । ଶ୍ରବଣେନ୍ଦ୍ରିୟଲବ୍ଧ [ଜ୍ଞାନ]—2. (Knowledge) Derived through the sense of hearing. ୩ । କର୍ଣ୍ଣ ସମ୍ବନ୍ଧୀୟ—3. Relating to the ear. ୪ । (ଶ୍ରବଣା+ଅ)-ଶ୍ରବଣାନକ୍ଷତ୍ରସମ୍ବନ୍ଧୀୟ—4. Relating to the Śrabaṇā asterism. ୫ । ଶ୍ରବଣା ନକ୍ଷତ୍ରରେ ଜାତ (ବ୍ୟକ୍ତି)—5. Born under the astorism Śrabaṇā. ୬ । ବେଦ ବିରୁଦ୍ଧ ମତବାଦୀ—6. Heretica . ବି—(ଶ୍ରାବଣୀ=ଶ୍ରାବଣ ପୂର୍ଣ୍ଣିମା+ଅ)—୧ । ଆଷାଢର ପରବର୍ତ୍ତୀ ଚାନ୍ଦ୍ର ମାସ (ବର୍ଷାଋତୁ)—1. The lunar month of Śrābaṇa. (July-August). ୨ । ପାଷଣ୍ଡ—2. A heretic (Apte). ୩ । ଧୂର୍ତ୍ତ ବ୍ୟକ୍ତି; ଶଠ—3. An imposter (Apte). ୪ । (ନାମ) ଦଶରଥଙ୍କ ଦ୍ୱାରା ଅଜାଣତରେ ଶରହତ ଓ ମୃତ ବୈଶ୍ୟ ଯତି, ଯାହାଙ୍କ ବୃଦ୍ଧ ପିତା ଓ ମାତାଙ୍କ ଅଭିଶାପରେ ଦଶରଥ ପୁତ୍ରବିୟୋଗ ଦୁଃଖରେ ମୃତ ହେଲେ—4. Name of a Baiśya ascetic who was unwittingly shotdead by King Daśaratha who was,in consequence, cursed by the old parents of the deceased, that he would die of broken heart for being separated from his sons (Apte) ୫ । ଶ୍ରବଣେନ୍ଦ୍ରିୟଜନିତ ଜ୍ଞାନ—5,Knowledge derived from hearing (Apte).

**ଶ୍ରାବଣିକ**—ସଂ. ବି—(ଶ୍ରାବଣୀ=ଶ୍ରାବଣ ପୂର୍ଣ୍ଣିମା+ଇକ)—ଶ୍ରାବଣମାସ
**Śrābaṇika** The lunar month of Śrābaṇa.
ସଂ. ବିଣ—(ଶ୍ରାବଣ+ଇକ)—ଶ୍ରାବଣ ମାସ ସମ୍ବନ୍ଧୀୟ—Relating to the month of Śrābaṇa (Apte).

**ଶ୍ରାବଣୀ**—ସଂ. ବି. ସ୍ତ୍ରୀ—(ଶ୍ରବଣ+ଅ+ଈ)—୧ । ଶ୍ରାବଣ ମାସର
**Śrābaṇī** ପୂର୍ଣ୍ଣିମା—1. The day of fullmoon of the month of Śrābaṇa. ୨ । ଥାଲକୁଡ଼ି (ପ୍ରକୃତିବାଦ); ମଣ୍ଡୂକପର୍ଣ୍ଣୀ—2. Hydrocotyle Asiatica; the Asiatic pennywort. ୩ । ଓଧାଳି ବୃକ୍ଷ (ପ୍ରକୃତିବାଦ); ଦନ୍ତ ଦନ୍ତିକା ଗୁଳ୍ମ—3. Tinospora Tomentosa (plant). ୪ । ମୁଣ୍ଡିତିକା ବୃକ୍ଷ, (ପ୍ରକୃତିବାଦ); ମୋଡ଼ାଫୁଲ ଗଛ—4. Sphaeranths Indicum.

**ଶ୍ରାବଣୀୟ**—ସଂ. ବିଣ—(ଶ୍ରୁ ଧାତୁ ଣିଚ ଶ୍ରାବି ଧାତୁ+କର୍ମ. ଅନୀୟ)—
**Śrābaṇīya** ଅନ୍ୟକୁ ଶୁଣାଇବା ଯୋଗ୍ୟ—Fit to be [ଶ୍ରାବୟିତବ୍ୟ—ଅନ୍ୟରୂପ] spoken out to another.

**ଶ୍ରାବନ୍ତୀ**—ସଂ. ବି—ରାମାୟଣୋକ୍ତ ନଗରୀ ବିଶେଷ; ଉତ୍ତରକୋଶଳସ୍ଥ
**Śrābantī** ଲବଙ୍କ ରାଜଧାନୀ; ଧର୍ମପତ୍ତନ ନାମକ ନଗରର ନାମାନ୍ତର—Name of an ancient town of the name of Dharmapattana, [ଦ୍ର—କେହି କେହି ଏହାକୁ ଶ୍ରାବସ୍ତୀ ବୋଲି କହନ୍ତି । ବିଶ୍ୱକୋଷ]

**ଶ୍ରାବସ୍ତ**—ସଂ. ବି. ପୁଂ—(ଶ୍ରାବ+ଅପତ୍ୟାର୍ଥେ. ସ୍ତ)—ଶ୍ରାବ ରାଜାଙ୍କ
**Śrābasta** ପୁତ୍ର ଓ ଶ୍ରାବସ୍ତୀ ନଗରର ପ୍ରତିଷ୍ଠାତା [ବିଶ୍ୱକୋଷ]—Name of a king who established the town of śrābasti

**ଶ୍ରାବସ୍ତୀ**—ସଂ. ବି—(ନାମ)—[ଶ୍ରାବସ୍ତ+ପ୍ରତିଷ୍ଠିତାର୍ଥେ. ଈ)—ଗୋଟିଏ
**Śrābastī** ପ୍ରାଚୀନ ଜନପଦ ଓ ତହିଁର ରାଜଧାନୀ, [ଶ୍ରାବସ୍ତୀପୁର—ଅନ୍ୟ ନାମ] [ବିଶ୍ୱକୋଷ]—Name of an ancient kingdom and its capital.
[ଦ୍ର—ଅଯୋଧ୍ୟା ପ୍ରଦେଶର ଗୋଣ୍ଡା ଜିଲ୍ଲାର ରାପ୍ତୀ ନଦୀର ଦକ୍ଷିଣ କୂଳରେ ଅବସ୍ଥିତ 'ସେହେଟମହେଟ' ନାମକ ଗୋଟିଏ ଗଣ୍ଡ ଗ୍ରାମରେ ଶ୍ରାବସ୍ତୀର ଭଗ୍ନାବଶେଷ ଦେଖାଯାଏ । ଏକ ସମୟରେ ବୁଦ୍ଧଦେବ ଏଠାରେ କିଛିଦିନ ଅବସ୍ଥାନ କରିଥିଲେ । ଏହା ବୌଦ୍ଧମାନଙ୍କର ଗୋଟିଏ ପ୍ରସିଦ୍ଧ ତୀର୍ଥ । ପଣ୍ଡିତମାନେ ସ୍ଥିର କରିଅଛନ୍ତି ଯେ ବଲରାମପୁର ରାଜଧାନୀର ୧୦ ମାଇଲ୍ ଦୂରରେ ସେହେଟମହେଟ ନାମକ କ୍ଷୁଦ୍ର ଗ୍ରାମର ଅଦୂରରେ ନଦୀର ଅପର ତୀରରେ ପ୍ରାଚୀନ ଶ୍ରାବସ୍ତୀ ନଗର ବିଦ୍ୟମାନ ଥିଲା । ହରିବଂଶରେ ଲେଖା ଅଛି ଯେ, ସୂର୍ଯ୍ୟବଂଶୀୟ ରାଜା ଯୁବନାଶ୍ୱଙ୍କ ପୌତ୍ର ଓ ଶ୍ରାବରାଜାଙ୍କ ପୁତ୍ର ଶ୍ରାବସ୍ତ ଏ ନଗର ବସାଇଥିଲେ । ବିଷ୍ଣୁପୁରାଣ, ମହାଭାରତ ପାଣିନି ଓ ଭାଗବତରେ ଏ ନଗରର ଉଲ୍ଲେଖ ଅଛି । 'ତ୍ରିକାଣ୍ଡ ଶେଷ' ଗ୍ରନ୍ଥରେ ଶ୍ରାବସ୍ତୀର ଅପର ନାମ ଧର୍ମପତ୍ତନ ଥିବା ଲେଖା ଅଛି । ବାସବଦତ୍ତା ଆଦିରେ ଏ ନଗରର ଓ ଏ ନଗରରେ ପ୍ରବାହିତ ରାପ୍ତୀ ନଦୀର ନାମ ଐରାବତୀ ଥିବା ଲେଖା ଅଛି । ରାମାୟଣରେ ଦେଖାଯାଏ ଯେ, ଏ ନଗର ଉତ୍ତର କୋଶଳର ରାଜଧାନୀ ଥିଲା ଓ ରାମଚନ୍ଦ୍ର ମୃତ୍ୟୁକାଳରେ ଏ ଜନପଦ ଲବଙ୍କୁ ଦେଇ ଯାଇଥିଲେ । ବୁଦ୍ଧଦେବଙ୍କ ସମୟରେ [ଖ୍ରୀଷ୍ଟ ପୂର୍ବ ୬ଷ୍ଠ ଶତାବ୍ଦୀରେ] ଶ୍ରାବସ୍ତୀର ଦକ୍ଷିଣରେ ସାଂକେତ [ଅଯୋଧ୍ୟା], ପୂର୍ବେ ବୈଶାଳୀ (ବନାରସ ଓ ବିହାର) ଥିଲା । ସେ ସମୟରେ ଏ ନଗର ବାଣିଜ୍ୟ ଶୌଧାଦି ଯୋଗୁଁ ଖୁବ୍ ସମୃଦ୍ଧିମନ୍ତ ଥିଲା । ଚୀନପରିବ୍ରାଜକ ଫାହିଅନ୍ ଖ୍ରୀଷ୍ଟୀୟ ୫ମ ଶତାବ୍ଦୀର ପ୍ରାରମ୍ଭରେ ଭାରତକୁ ଆସିଥିଲେ ଓ ସେ ଏଠାରେ ଥିବା ମଠ, ସଙ୍ଘାରାମ ଓ ଅଟ୍ଟାଳିକାମାନ ଧ୍ୱଂସ ମୁଖରେ ପଡ଼ି

ଥିବା ଦେଖିଥିଲେ । କିନ୍ତୁ ୧୫୦ ବର୍ଷ ପରେ ଚୀନପରିବ୍ରାଜକ ହୁଏନ୍‌ସାଙ୍ଗ ଭାରତକୁ ଆସିବା ସମୟରେ ଏ ନଗରର ଅଟ୍ଟାଳିକାମାନ ସମ୍ପୂର୍ଣ୍ଣ ବିଧ୍ୱସ୍ତ ହୋଇଥିଲା । ବହୁକାଳ ପୂର୍ବେ ଏଠାରେ ଜୈନଧର୍ମ ପ୍ରବଳ ଥିଲା; ବୁଦ୍ଧଙ୍କ ଆବିର୍ଭାବ ପରେ ବୌଦ୍ଧ ଧର୍ମର ପ୍ରାଧାନ୍ୟ ସ୍ଥାପିତ ହେଲା ଓ ତତ୍ପରେ ହିନ୍ଦୁଧର୍ମର ପ୍ରାଧାନ୍ୟ ହେଲା । ମହମ୍ମଦଘୋରୀଙ୍କ ଭାରତ ବିଜୟ (ଖ୍ରୀ. ଦ୍ୱାଦଶ ଶତାବ୍ଦୀ) ପରେ ଇତିହାସରେ ଶ୍ରାବସ୍ତୀର କୌଣସି ଉଲ୍ଲେଖ ଦେଖାଯାଏ ନାହିଁ—ବିଶ୍ୱକୋଷ ।]

**ଶ୍ରାବା**—ସଂ. ବି—ଅନ୍ନ ମଣ୍ଡ (ପଙ୍କାଯ୍ୟ ମୁକ୍ତାବଳୀ)—
Srabā Sifted rice-gruel.

**ଶ୍ରାବିତ**—ସଂ. ବିଣ—(ଶ୍ରୁ ଧାତୁ ଣିଚ୍ ଶ୍ରାବି ଧାତୁ+କର୍ମ. ତ)—୧ । ଯାହା କର୍ଣ୍ଣଗୋଚର କରାଯାଇଅଛି; ଜ୍ଞାପିତ—
Srābita 1. Intimated. ୨ । କଥିତ—2. Narrated; related (Apte)

**ଶ୍ରାବୀ**—ସଂ. ବି—[ସଂ. ଶ୍ରାବିନ୍; ୧ମା. ୧ବ]—ସର୍ଜିକାକ୍ଷାର; ସାଜିମାଟି—
Srābi Natron; fuller's earth.

**ଶ୍ରାବ୍ୟ**—ସଂ. ବିଣ- [ଶ୍ରୁ ଧାତୁ ଣିଚ୍, ଶ୍ରାବି ଧାତୁ+କର୍ମ. ଯ]—୧ । ଶ୍ରବଣୀୟ; ଶୁଣିବାର ଉପଯୁକ୍ତ; ଶ୍ରବଣଯୋଗ୍ୟ—
Srābya 1. Fit to be heard; audible.
୨ । ଶୁଣାଇବାର ଉପଯୁକ୍ତ—
2. Fit to be intimated.

**ଶ୍ରାବ୍ୟ କାବ୍ୟ**—ସଂ. ବି—ପଠନ ବା ଶ୍ରବଣଯୋଗ୍ୟ କାବ୍ୟ—An
Srābya kābya epic fit to be read or heard (and not to be acted).

**ଶ୍ରାମ (ଧାତୁ)**—ସଂ.—୧ । ଗୁପ୍ତ ପରାମର୍ଶ କରିବା (ବିଶ୍ୱକୋଷ)
Srām (root) To consult secretly.
୨ । (ଶ୍ରମ୍ ଧାତୁ ଣିଚ୍)—ମିହନ୍ତ କରାଇବା—
2. To cause to labour.

**ଶ୍ରାମ**—ସଂ. ବି—(ଶ୍ରମ୍ ଧାତୁ+ଅଧିକରଣ. ଅ)—୧ । ମାସ—
Srāma 1. Month. ୨ । ମଣ୍ଡପ; ଗୃହ—2. A temple; house. ୩ । କାଳ; ସମୟ—3. Space of time.

**ଶ୍ରାମଣେର**—ସଂ. ବି. ପୁଂ—(ଶ୍ରମଣ+ଏର)—୧ । ପ୍ରବ୍ରଜିତ ଜୈନ-
Srāmaṇera ଭିକ୍ଷୁ—An itinerant Jaina mendicant.
୨ । ଜୈନ ଭିକ୍ଷୁଙ୍କ ଚେଲା—
2. Disciple of a Jaina ascetic

**ଶ୍ରାମିକ**—ଦେ. ବି—(ଶ୍ରମ ଧାତୁ+କର୍ତ୍ତୃ. ଇକ)—ମଜୁରିଆ; ମୂଲିଆ—
Srāmika A labourer.

**ଶ୍ରାମିକ ଦଳ(ଗୋଷ୍ଠୀ)**—ଦେ. ବି (ରାଜନୀତି ସମ୍ପର୍କରେ ବ୍ୟବହୃତ
Sramika dala(goshṭhi) ଶବ୍ଦ)—ମଜୁରିଆଙ୍କ ଦଳ—The
ଶ୍ରମିକଗୋଷ୍ଠୀ ଶ୍ରମିକଦଳ labour party in politics.

**ଶ୍ରାୟ**—ସଂ. ବିଣ (ଶ୍ରୀ+ସମ୍ବନ୍ଧାର୍ଥେ ଅ; ନିପାତନ)—ଲକ୍ଷ୍ମୀ ସମ୍ବନ୍ଧୀୟ
Srāya Relating to the Goddess of wealth. ବି—(ଶ୍ରି ଧାତୁ=ଆଶ୍ରୟ କରିବା+ଭାବ ଅ)—୧ । ଆଶ୍ରୟଣ, ଆଶ୍ରୟ କରିବା—1. Taking shelter. ୨ । (+କର୍ମ ଅ) ଆଶ୍ରୟ; ଅବଲମ୍ବନ; ଯାହାକୁ ଅବଲମ୍ବନ କରାଯାଏ—2. Shelter; refuge; support. ୩ । (+ଅଧିକରଣ ଅ)—ଆଶ୍ରୟ ନେବା ସ୍ଥାନ—3. Place of shelter.

**ଶ୍ରାହି**—ବୈଦେ. ବିଣ (ଫା.ଶର୍ଅ=ମୁସଲମାନଙ୍କ ଧର୍ମଶାସ୍ତ୍ର; ଶ୍ରାହି=
Srāhi ମୁସଲମାନଙ୍କ ଧର୍ମଶାସ୍ତ୍ର ସମ୍ବନ୍ଧୀୟ)—ମୁସଲମାନଙ୍କ ଗଣନାରେ ହିଜରୀ ବର୍ଷର ସଂଖ୍ୟାର ପରେ ଲେଖାଯିବା ଶବ୍ଦ—A word used to denote the number of the Hijri or Mahomedan year. [ଦ୍ର—'ଶ୍ରାହି' ଶବ୍ଦ ବର୍ଷ ସଂଖ୍ୟା ପରେ ଓ ମାସର ନାମ ପୂର୍ବରେ ଲେଖା ଯିବା ଦେଖାଯାଏ । ଯଥା ୧୦୨୩ ଶ୍ରାହି କାର୍ତ୍ତିକ ଶୁକ୍ଳ ସପ୍ତମୀ; ଏଥିରୁ ଅନୁମାନ କରାଯାଏ ଯେ, ଏହା ବର୍ଷ ଗଣନାର୍ଥକ ଶବ୍ଦ; ବର୍ତ୍ତମାନ ଏହି ହିଜରୀ ସନ ଇଂରାଜି ସନଠାରୁ ୫୮୩ ବର୍ଷ କମ୍ ଓ ଏହି ସନର ପ୍ରଥମ ମାସ ମହରମ ଠାରୁ ଆରମ୍ଭ ହୁଏ ।
ଶ୍ରୀ ବିଜୟଚନ୍ଦ୍ର ମଜୁମଦାରଙ୍କ ଓଡ଼ିଆ ସାହିତ୍ୟ-ପରିଚୟର ଶେଷ ଭାଗରେ ଉଦ୍ଧୃତ ୧୩ଶ ଶତାବ୍ଦୀର ଭୁବନେଶ୍ୱରସ୍ଥ ଶିଳାଲିପିରେ ମଧ୍ୟ 'ଶ୍ରାହି' ଶବ୍ଦ ଦେଖାଯାଏ ।
ଜଗନ୍ନାଥ ପାଞ୍ଜିରେ 'ଅ୨୨'ଙ୍କ ଶ୍ରାହି କୁମ୍ଭ ୧୮ଦିନ ଫାଲ୍‌ଗୁନ ପୂର୍ଣ୍ଣିମା ଅଙ୍କ ଲେଖା ଥିବା ମଧ୍ୟ ଦେଖାଯାଏ ।]

**ଶ୍ରି (ଧାତୁ)**—ସଂ.—୧ । ଆଶ୍ରୟ କରିବା; ଆଶ୍ରୟ ନେବା; ଆଶ୍ରୟ
Sri(root) ପାଇବା ପାଇଁ ଅନ୍ୟ ନିକଟରେ ପହଞ୍ଚିବା—
1. To take shelter under; to ta refuge under; to resort to; to depend upon; to approach for protection. ୨ । ସେବା କରିବା—2. To serve; to tend; to attend upon. ୩ । ବାସ କରିବା—3. To dwell in, to inhabit (Apte). ୪ । ଅନ୍ୟଠାରେ ଲାଗି ରହିବା—4. To cling to; to rest on, to depend on (Apte). ୫ । ପୂଜା କରିବା—5. To worship; to honour (Apte). ୬ । ବ୍ୟବହାର କରିବା; ପ୍ରୟୋଗ କରିବା—6 To use; to employ (Apte). ୭ । ଭକ୍ତି ପୂର୍ବକ ଅନୁସରିବା—7. To devote oneself to; to be attached to (Apte). ୮ । ସାହାଯ୍ୟ କରିବା—8. To help; to assist (Apte). [ଦ୍ର—ଆ+ଶ୍ରି ଧାତୁ=ରକ୍ଷାର୍ଥେ ଅବଲମ୍ବନ କରିବା; ଅପ+ଶ୍ରି ଧାତୁ=ତ୍ୟାଗ କରିବା; ଉତ୍+ଶ୍ରି ଧାତୁ=ବୃଦ୍ଧି ପାଇବା)

**ଶ୍ରିଅ(ଇତ୍ୟାଦି)**—ଗ୍ରା. ବି (ସଂ.ଶ୍ରେୟଃ)—ଶ୍ରେୟଃ ଇତ୍ୟାଦି (ଦେଖ)
Sria(etc) Sreyaḥ etc. (See)

[ଦ୍ର—ଆ+ଶ୍ରି ଧାତୁ=ରକ୍ଷାର୍ଥ ଅବଲମ୍ବନ କରିବା; ଅପ୍ +ଶ୍ରି ଧାତୁ=ତ୍ୟାଗକରିବା; ଉତ୍+ଶ୍ରି ଧାତୁ=ଉଚ୍ଚ ଥିବା ।]

ଶ୍ରିଆ—ଦେ. ବି—( ସଂ. ଶ୍ରୀ ଶବ୍ଦର ଷଷ୍ଠୀ ଏକବଚନ ରୂପ ଶ୍ରିୟା )—
Śria ୧ । ଶ୍ରୀ; ମହାଲକ୍ଷ୍ମୀ—1. The Goddess of
ଶ୍ରୀ श्री wealth. [ ଉ—ଶ୍ରୀପତି, ଶ୍ରୀକର, ଶ୍ରୀଧର, ଶ୍ରିୟା ଦେବୀଙ୍କ ମନୋହରକମଳ ଲୋଚନ ଚଞ୍ଚଳ୍ୟ ।]
୨ । ପିଲାମାନେ ଚାଟଶାଳରେ ପ୍ରତିଦିନ ବିଦ୍ୟାରମ୍ଭ କରିବା ପୂର୍ବରୁ ଭୂମିରେ ଖଡ଼ି ଦ୍ୱାରା ବା ତାଳ ପତ୍ରରେ ଲେଖନଦ୍ୱାରା ଲେଖିବା ଅକ୍ଷର; ଶ୍ରୀ—
2. The figure of Śrī written on the floor with chalk or on the palm leaf with iron pen by a student before he begins his day's work in the v llage school. (ଉ—ଖଡ଼ି ହସ୍ତେ ନେଇ ଶ୍ରିୟା ଲେଖିବୁ—କହନ୍ତି ମାଏ ତୋ ଚଞ୍ଚଳା ।) [ଦ୍ର—ଶିଶୁର ପ୍ରଥମ ବିଦ୍ୟାରମ୍ଭ କାଳରେ ଶିଶୁ ଭୂମିରେ ଯେଉଁ ମୁଣ୍ଡୁଳା (୦) କାଟେ ତାହା ଶ୍ରୀ (ଅର୍ଥାତ୍ ଶ୍ରୀ, ଶ୍ରୀ, ୦) ର ରୂପାନ୍ତର ମାତ୍ର ।]

ଶ୍ରିଆ ଦେବୀ—ଦେ. ବି. ସ୍ତ୍ରୀ (ସଂ. ଶ୍ରୀ ଦେବୀ)—ମହାଲକ୍ଷ୍ମୀ—
Śria debi Goddess Lakshmi.
শ্রী দেবী श्री देवी

ଶ୍ରିଓ(ୟୋ) ଲାଭ—ଦେ. ବି (ସଂ. ଶ୍ରେୟୋଲାଭ)—ଶ୍ରେୟୋଲାଭ (ଦେଖ)
Śrio(yo) lābha Śreyolābha. (See)
শ্রেয়োলাভ श्रेयलाभ

ଶ୍ରିତ—ସଂ. ବିଣ (ପୁଂ) (ଶ୍ରି ଧାତୁ=ଆଶ୍ରୟ କରିବା+କର୍ତ୍ତୃ. ତ)—
Śrita ୧ । ଯାହା ଅନ୍ୟକୁ ଆଶ୍ରୟ କରିଥାଏ; ଆଶ୍ରିତ—
(ଶ୍ରିତା—ସ୍ତ୍ରୀ) 1. Dependent on; subservient; one
[ଶ୍ରିତ—ବି] who has taken shelter under (another). ୨ । (+କର୍ମ. ତ) ଶରଣାର୍ଥ ଯାହା ନିକଟରେ କେହି ଆସିଛି—2. Approached for refuge or protection (Apte). ୩ । (+କର୍ମ ତ) ସେବିତ—3. Served by; tended by; resorted to by. ୪ । ଉପଜୀବିତ; ଜୀବିକାନିର୍ବାହାର୍ଥ ଅନ୍ୟ ବ୍ୟକ୍ତି ନିକଟରେ ଅବସ୍ଥିତ—4. Living upon another for livelihood. ୫ । (ଅମୁକ ଉପରେ) ଭର ଦେଇଥିବା—5. Clung to; resting on; sitting on. (Apte). ୬ । (ଅମୁକ ସଙ୍ଗେ) ସଂଯୁକ୍ତ; ସଂଯୋଜିତ—6. United or joined with; connected with. (Apte). ୭ । (ଅମୁକ ଦ୍ୱାରା) ରକ୍ଷିତ—7. Protected. (Apte). ୮ । (ଅମୁକ ଦ୍ୱାରା) ସମ୍ମାନିତ; ପୂଜିତ—8. Honoured. (Apte) ୯ । (ଅମୁକର) ସହାୟକ—9. Auxiliary. (Apte) ୧୦ । (ଅମୁକଦ୍ୱାରା) ଆବୃତ; ଘୋଡ଼ା ଯାଇଥିବା—10. Overspread; covered with (Apte). ୧୧ । ସଂଗୃହୀତ—11. Assembled, collected. (Apte). ୧୨ । ଭିତରେ ରକ୍ଷିତ—12. Contained. (Apte). ୧୩ । ଅଧିକାରୀ—13. Having; possessing. (Apte).

ଶ୍ରିତବାନ୍—ସଂ. ବିଣ (ପୁଂ) (ଶ୍ରିତବତ୍ ଶବ୍ଦ; ଶ୍ରି ଧାତୁ=ଆଶ୍ରୟ
Śritabān କରିବା+କର୍ତ୍ତୃ. ତବତ୍; ୧ମା. ୧ବ)—
(ଶ୍ରିତବତୀ—ସ୍ତ୍ରୀ) ଆଶ୍ରୟକାରୀ; ଶରଣାପନ୍ନ; ଆଶ୍ରିତ—
One who has taken shelter under (another).

ଶ୍ରୀ (ଧାତୁ)—ସଂ.—ପାକ କରିବା; ରାନ୍ଧିବା—
Śrī (root) To cook; to dress; to boil. (Apte)

ଶ୍ରୀ—ସଂ. ବି. ସ୍ତ୍ରୀ (ଶ୍ରି ଧାତୁ=ସେବା କରିବା+କର୍ମ. କ୍ୱିପ୍, ଇ
Śrī ସ୍ଥାନରେ ଈ ଆଗମ; ଯାହାଙ୍କୁ ସମସ୍ତେ ସେବା କରନ୍ତି)—
(ଶିରି—ଅପଭ୍ରଂଶ ଶବ୍ଦ) ୧ । ଲକ୍ଷ୍ମୀ, ଧନ ସମ୍ପତ୍ତିର ଅଧିଷ୍ଠାତ୍ରୀ ଦେବୀ; ବିଷ୍ଣୁଙ୍କ ସ୍ତ୍ରୀ—1. The Goddess presiding over riches or prosperity. ୨ । ବିଭୂତି; ଐଶ୍ୱର୍ଯ୍ୟ—2. Supernatural majesty; divine glory; dignity. ୩ । ସମ୍ପଦ; ସମ୍ପତ୍ତି; ସୌଭାଗ୍ୟ; ବିଭବ—3. Fortune; wealth; plenty; affluence; prosperity. ୪ । ଶୋଭା; ଲାବଣ୍ୟ; ସୌନ୍ଦର୍ଯ୍ୟ—4. Beauty; grace; elegance. ୫ । ଆଲୋକ—5. Light; radiance. ୬ । ଔଜ୍ଜ୍ୱଲ୍ୟ; ଦୀପ୍ତି; ଉଜ୍ଜ୍ୱଳତା—6. Lustre; brightness; splendour; brilliance. ୭ । ଯଶଃ; କୀର୍ତ୍ତି—7. Fame; glory; renown. ୮ । ବୃଦ୍ଧି—8. Increase; growth. ୯ । ସିଦ୍ଧି—9. Accomplishment; success. ୧୦ । ବେଶ ବିନ୍ୟାସ—10. Toilet; harmonious putting on of one's dress. ୧୧ । ସରସ୍ୱତୀ; ବିଦ୍ୟାର ଅଧିଷ୍ଠାତ୍ରୀଦେବୀ (ଲକ୍ଷ୍ମୀଙ୍କ ସପତ୍ନୀ)—11. The Goddess of learning (a wife of Bishṇu). ୧୨। ବୁଦ୍ଧି-12. The understanding; intelligence; intellectl ୧୩ । ତ୍ରିବର୍ଗ; ଧର୍ମ, ଅର୍ଥ ଓ କାମ—13. The three objects of human pursuit (viz, piety; wealth and fulfilment of desire). ୧୪ । ଉପକରଣ—14. Materials; any material. added to a thing to perfect it, [ ଦ୍ର—ଏହା ଯେଉଁ ବସ୍ତୁ ସଙ୍ଗେ ଯୁକ୍ତ ହୁଏ ତାହାକୁ ସର୍ବାଙ୍ଗ ସୁନ୍ଦର କରିଦିଏ । ] ୧୫ । ( ବୈଦ୍ୟକ ) ବିଲ୍ୱ ବୃକ୍ଷ—15 The marmalus tree; Aegle Marmalus. ୧୬ । ଲବଙ୍ଗ ( ଫୁଲ ଓ ଗଛ )—16. Cloves; cloves tree; Eugenia Caryophyllata. ୧୭ । ଲବଙ୍ଗ ଲତା ନାମକ ଲତା

ଗଛ—17. Luvunga Scandens ( creeper ). ୧୮ । ପଦ୍ମ—18. Lotus. ୧୯ । ବୃଦ୍ଧି ନାମକ ଔଷଧ—19. A rare medicininal plant. ୨୦ । ସରଳ ବୃକ୍ଷ; ଦେବଦାରୁ ଗଛ—20. The pine tree; Pinus Longifolia. ୨୧ । ସଙ୍ଗୀତର ୬ ରାଗ ମଧ୍ୟରୁ ଗୋଟିଏ ରାଗ—21. Name of one of the six musical tones in Hindu music. [ ଦ୍ର—ରାଗ ତଳେ ନୋଟ ଦେଖ । ] ୨୨ । ବିଷ—22. Poison; venom. [ ଉ—ବିଷାକ୍ତ ବସ୍ତୁ, କାମୁକ ଶ୍ରୀ ଯେହୁ, ଭୁମ୍ଭେ ମୋହ ଏହ ଭୋଗରେ—ଉଙ୍ଗ. ବୈଦେହୀଶବିଳାସ ।] ୨୩ । ରାଜତ୍ୱ—23. Royalty; royal dignity (Apte). ୨୪ । ବସ୍ତୁର ବର୍ଣ୍ଣ—24. Colour; aspect (Apte). ୨୫ । କୌଣସି ଗୁଣ ବା ଉତ୍କର୍ଷ—25. Any virtue or excellence (Apte). ୨୬ । ଅତିମାନୁଷ ଶକ୍ତି—26. Super humen power (Apte). ୨୭ । ଚନ୍ଦ୍ରର ୧୨ଶ କଳା—27. The twelvth digit of the moon (Apte). ୨୮ । ବାକ୍—28. Speech (Apte). ୨୯ । ଅଳଙ୍କାର—29. Decoration ( Apte ). ୩୦ । ବିଦ୍ୟାରମ୍ଭ କରିବାବେଳେ କିମ୍ବା ଦୈନିକ ପାଠାରମ୍ଭ କରିବା ସମୟରେ ଭୂମିରେ ବା କାଗଜରେ ବିଦ୍ୟାର୍ଥୀ ପ୍ରଥମରେ ଲେଖିବା 'ଶ୍ରୀ' ଅକ୍ଷର ( ଲକ୍ଷ୍ମୀ ); ଲକ୍ଷ୍ମୀଙ୍କ ନାମ ଲେଖିବା ଶୁଭସୂଚକ ଥିବାରୁ )—30. The letter 'Śrī' written by a student while beginning his day's work or formally celebrating the ceremony of Bidyārambha. [ ଦ୍ର—ଶ୍ରୀ ଅକ୍ଷରକୁ ଶୋଭାଯୁକ୍ତ କରିବା ପାଇଁ କେହି କେହି 'ଶ୍ରୀ' ଲେଖନ୍ତି ଓ କରଣି ଲେଖିବା ଲୋକେ 'ସ୍ରୀ' ଲେଖନ୍ତି ଓ ଶିଶୁମାନେ ବିଦ୍ୟାରମ୍ଭ କରିବା ବେଳେ ଯେଉଁ ମୁଣ୍ଡଳା O ଦିଅନ୍ତି ତାହା ଶ୍ରୀଅକ୍ଷରର ରୂପାନ୍ତର ଅଟେ । ] ବିଣ. ପୁଂ—୧ ।

ଶ୍ରୀ ଶ୍ରী ( ଦେବତା ଓ ଜୀବିତ ପୁରୁଷ, ଗୁରୁଜନ, ମାନ୍ୟବ୍ୟକ୍ତି ଓ ପୂଜ୍ୟ ଗ୍ରନ୍ଥାଦିର ନାମ ପୂର୍ବରେ ଯୁକ୍ତ ହେବା ଶବ୍ଦ ) ଶ୍ରୀଳ; ଶ୍ରୀଯୁକ୍ତ—1. A word prefixed to the name of Deities, living males and adored books, corresponding to 'Mr' in English, Monsier in French, meaning glorious, lucky. (ଯଥା—ଦେବତା—ଶ୍ରୀହରି, ଶ୍ରୀକୃଷ୍ଣ । ଜୀବିତ ବ୍ୟକ୍ତି—ଶ୍ରୀ ବିଶ୍ୱନାଥ କର; ଗୁରୁଜନ ଓ ସମ୍ମାନୀୟ ବ୍ୟକ୍ତି—ଶ୍ରୀଗୁରୁ, ଶ୍ରୀ ପିତୃଦେବ; ପୂଜ୍ୟଗ୍ରନ୍ଥ—ଶ୍ରୀଭାଗବତ ] [ ଦ୍ର—ସଧବା ସ୍ତ୍ରୀଲୋକମାନଙ୍କ ନାମ ପୂର୍ବରେ ଶ୍ରୀମତୀ ଓ ଶ୍ରୀମତ୍ୟା ଲେଖା ହୁଏ, କିନ୍ତୁ ସ୍ତ୍ରୀ-ଦେବତାଙ୍କ ନାମ ପୂର୍ବରେ ମଧ୍ୟ ଶ୍ରୀ ଯୋଗ ହୁଏ; ଯଥା—ଶ୍ରୀଦୁର୍ଗା, ଶ୍ରୀରାଧା, ଶ୍ରୀମହାଲକ୍ଷ୍ମୀ; 'ଶ୍ରୀ' ଶବ୍ଦ ମଙ୍ଗଳ ସୂଚକ ଥିବାରୁ କେହି କେହି ସମ୍ମାନାର୍ଥ ରାଜା ଆଦିଙ୍କ ନାମ ପୂର୍ବରେ ୩ଥର ବା ୫ଥର ବା ୧୬ ଥର ଶ୍ରୀ ଶବ୍ଦ ଲଗାନ୍ତି ଓ କେହି ଶତସଂଖ୍ୟୋତ୍ତର (୧୦୮) ଶ୍ରୀ ପ୍ରୟୋଗ ସୂଚକ 'ଶ୍ରୀ୧୦୮' ଲେଖନ୍ତି । ଯଥା—ଶ୍ରୀ ୧୦୮ ଶ୍ରୀ ସଚ୍ଚିଦାନନ୍ଦ ସରସ୍ୱତୀ ସ୍ୱାମୀ ।] ୨ । ରାଜା, ଦେବତା ଓ ଗୁରୁଜନଙ୍କ ଅଙ୍ଗାଦି ପୂର୍ବରେ ଲଗିବା ମାନ୍ୟସୂଚକ ଶବ୍ଦ—2. An euphemistic word prefixed to the body and limbs of Deities, kings and elders. (ଯଥା—ଶ୍ରୀ ଅଙ୍ଗ, ଶ୍ରୀମୁଖ, ଶ୍ରୀହସ୍ତ, ଶ୍ରୀଚରଣ) ଦେ.

ଶ୍ରୀ ଶ୍রী ବି—ପତ୍ରାଦି ଲେଖିବାରୁ ଆରମ୍ଭ କରିବା ପୂର୍ବରୁ ମଙ୍ଗଳାଚରଣ ଉଦ୍ଦେଶ୍ୟରେ ପତ୍ରର ଶିରୋଭାଗରେ ଲେଖାଯିବା ଶବ୍ଦ—The word written on the heading or beginning of any letter or writing. [ ଦ—କେହି କେହି ମଧ୍ୟ ପତ୍ରର ଶିରୋନାମାରେ ଶ୍ରୀଗୁରୁ, ଶ୍ରୀଗୁରୁ ଶରଣଂ, ଶ୍ରୀଗୁରୁ ଦେବ ଶରଣଂ, ଶ୍ରୀ ଇଷ୍ଟଦେବ ଶରଣଂ, ଶ୍ରୀରାମ ଶରଣଂ; ଶ୍ରୀହରି ଶରଣ ଇତ୍ୟାଦି ଲେଖନ୍ତି ।]

ଶ୍ରୀ ଅକ୍ଷର—ଦେ. ବି—ଶ୍ରୀ ୨୯ ( ଦେଖ )
Śr īakshara Śrī 29 ( See )

ଶ୍ରୀ ଅକ୍ଷର ବିବର୍ଜିତ—ଦେ. ବିଣ. ପୁଂ—ଗଜମୂର୍ଖ; ଯେ ଅଦୌ ବିଦ୍ୟାରମ୍ଭ କରି ନାହିଁ—Totally illiterate ( person ). [ଦ୍ର—ପାଠଶାଳାରେ ବିଦ୍ୟାର୍ଥୀ ମାନେ ବିଦ୍ୟାରମ୍ଭ କରିବା ସମୟରେ କିମ୍ବା ପ୍ରତିଦିନ ପାଠାରମ୍ଭ କରିବା ପୂର୍ବରୁ ଭୂମିରେ କିମ୍ବା କାଗଜରେ ବା ତାଳପତ୍ରରେ ପ୍ରଥମେ 'ଶ୍ରୀ' ଅକ୍ଷର ଲେଖୁଥିଲେ । ଏଥିପାଇଁ ଯେ ଶ୍ରୀ ଅକ୍ଷର ଲେଖି ନାହିଁ ସେ ଅଦୌ ପାଠର ନାମଗନ୍ଧ ଜାଣି ନାହିଁ, ଅର୍ଥାତ୍ ସମ୍ପୂର୍ଣ୍ଣ ଅଟେ । ]
Śri akshara bibarjita
কঅক্ষর গোমাংস
সিঅক্ষর বিবর্জিত
[ଶ୍ରୀଅକ୍ଷର ବିବର୍ଜିତା—ସ୍ତ୍ରୀ]

ଶ୍ରୀ ଅଙ୍ଗ—ଦେ. ବି—୧ । ଦେବତା, ରାଜା, ଗୁରୁଜନ ଓ ସମ୍ମାନୀୟ ବ୍ୟକ୍ତିଙ୍କ ଅଙ୍ଗ ବା ଦେହ ବା ଶରୀର—1. (euphemistic ) The boddy of the king or Deity or one's elder. [ ଉ—ନାହିଁ ତ ଶ୍ରୀଅଙ୍ଗ ସ୍ୱଖ—ଉପେନ୍ଦ୍ରଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ-ଗୀତ ।] ୨ । କୋମଳ ବା ସୁକୁମାର ଦେହ—2. Soft or delicate body. [ ଉ—ଶର୍ମ ସ୍ୱର ଝାଳିଲା ଶ୍ରୀଅଙ୍ଗ ପାଇଲୁରେ—ଉପେନ୍ଦ୍ରଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ-ଗୀତ । ]
Śri anga
ଶ୍ରୀଅଙ୍ଗ
শ্রীঅঙ্গ

ଶ୍ରୀଅଙ୍ଗ ଅଳସ ହେବା—ପ୍ରାଦେ. ( ଗଡ଼ଜାତ ) କ୍ରି—୧ । ରାଜା ଆଦିଙ୍କ ଶରୀରରେ ଅସୁସ୍ଥତା ବୋଧ ହେବା—1. A feeling of sickness in a king, ୨ । ରାଜା ଆଦିଙ୍କୁ ନିଦ୍ରା ବା କ୍ଲାନ୍ତି ଅନୁଭବ କରିବା—2. The feeling of sleepiness or weariness.
Śrianga alasa hebā
ଶ୍ରୀଅଙ୍ଗ ଅଳସ ହওয়া
শ্রীঅঙ্গ আন্ত হীনা
[ଶ୍ରୀଅଙ୍ଗ କଥା(ଥେ)ଇବା—ଅନ୍ୟରୂପ]

ଶ୍ରୀଅଙ୍ଗ ଆଳସ୍ୟ—ପ୍ରାଦେ. (ଗଡ଼ଜାତ) ବି—୧ । ରାଜା ଆଦିଙ୍କ ଅସୁସ୍ଥତା, —1. ( euphemism ) Sickness of a Raja. ୨ । ରାଜା ଆଦିଙ୍କୁ ନିଦ୍ରା-
Śrianga ālasya
শ্রীঅঙ্গের আলস্য

श्रीअङ्गमें आलस्य ଭର୍ତ୍ସଣ—2. ( euphemism ) Sleepiness in a Raja.

**ଶ୍ରୀଅଙ୍ଗ ଧୁଆ**—ପ୍ରାଦେ. ( ଗଡ଼ଜାତ ) ବି—ରାଜାମାନଙ୍କର ଅଣ୍ଟାଠାରି Śrī anga dhuā ତଳ—Act of bathing from the waist downwards ( said of a Raja ).

**ଶ୍ରୀଅଙ୍ଗ ପଖଳା**—ଦେ. ବି ( ସଂ. ଶ୍ରୀଅଙ୍ଗ ପ୍ରକ୍ଷାଳନ )—ରାଜା ଓ ଦେବତା Śrī anga pakhaḷā ଅଙ୍ଗର ସ୍ନାନ—Bath of a king ଶ୍ରୀଅঙ্গ স্নান श्रीअङ्ग स्नान or idol.
[ ଶ୍ରୀଅଙ୍ଗ ପଖାଳିବା—କ୍ରିୟାରୂପ ]

**ଶ୍ରୀଅଙ୍ଗ ବଥା**—ଦେ, ବି—( ଶ୍ରୀଅଙ୍ଗ ଓ ବ୍ୟଥା )—ରାଜାଙ୍କ ଶ୍ରୀଅଙ୍ଗରେ Śrī anga bathā ପୀଡ଼ା—Sickness of a Raja. ଶ୍ରୀଅঙ্গে ব্যথা श्रीअङ्ग व्यथा

**ଶ୍ରୀଅଙ୍ଗରେ ଘାଉଡ଼(ଚୋଟ) ଲଗା(ଗେ)ଇବା**—ଦେ. କ୍ରି—(ସମୁନାରେ Śriangare ghāurḍa(choṭa) lagā(ge)ibā କାଳୀୟ ଶ୍ରୀଅঙ্গে চোট দেওয়া ନାଗ ଶ୍ରୀକୃଷ୍ଣଙ୍କ ଶ୍ରୀଅଙ୍ଗକୁ ଦଂଶନ କରିବା श्रीअङ्गमें चोट लगाना ଘଟଣାରୁ )—୧ । ( ଲକ୍ଷଣାର୍ଥ ) ପ୍ରଧାନ ବ୍ୟକ୍ତି ବା ଗୃହର କର୍ତ୍ତା ବା କର୍ତ୍ତ୍ରୀଙ୍କର ଅନିଷ୍ଟ କରିବା—1. ( figurative ) To injure the head of a family or the chief person of a place. ୨ । ଗୃହକର୍ତ୍ତା ବା କର୍ତ୍ତ୍ରୀଙ୍କୁ କଳଙ୍କିତ କରିବା—2. To disgrace the head of a family. ୩ । ରାଜା ବା ପ୍ରଧାନ ବ୍ୟକ୍ତିଙ୍କ ପରିବାରସ୍ଥ ସ୍ତ୍ରୀଲୋକମାନଙ୍କ ସଙ୍ଗେ ପାପାଚରଣାଦି କରିବା—3. To commit sinful acts in respect of the family-members of a Rājā or chief person.

**ଶ୍ରୀଅଙ୍ଗଲାଗି**—ଦେ· ବିଣ—ରାଜାଆଦିଙ୍କ ଦେହରେ ପରିହିତ—Put on Śriangalāgi by a king or Deity. ବି—ରାଜା, রাজারপরবাব श्रीअङ्गलागि ଓ ଦେବତାଙ୍କ ବେଶଭୂଷଣ—ଶ୍ରୀଅঙ্গেরবেশ श्रीअंगकासिंगार Toilet of kings or idols.

**ଶ୍ରୀଅଙ୍ଗ ସଙ୍ଗ**—ସଂ· ବି—ଶ୍ରୀଅଙ୍ଗରେ ମିଶିବା; ଶ୍ରୀଅଙ୍ଗରେ ଲଗ୍ନ ହେବା—Śrianga sanga Merging in the body of a king or a Deity. (ଉ—ଶ୍ରୀଅଙ୍ଗସଙ୍ଗ ମତ ବନା ଅନାଥ ଦୁଃଖ—ବନସ୍ପତି ବଳୋଗ ଚମ୍ପୂ ବ ଗୀତ ।)

**ଶ୍ରୀଆ**—ଦେ· ବି (ସଂ· ଶ୍ରୀୟା)—ଶ୍ରୀ; ମହାଲକ୍ଷ୍ମୀ—The Goddess Śria presiding over wealth and prosperity. ଶ୍ରୀ श्री (ଉ—ଶ୍ରୀପତି ଶ୍ରୀକର ଶ୍ରୀଧର, ଶ୍ରୀଆଦେବୀଙ୍କ ମନୋହର—ବମଳଲୋଚନ ଚଉତିଶା । )

**ଶ୍ରୀ ଏକାଦଶ**—ଦେ· ବି—ଏକାଦଶସ୍କନ୍ଧ ଭାଗବତ—The eleventh Śrī ekādaśa book of the Bhāgabata· ( ଉ—ଶ୍ରীএকাদশস্কন্দ श्रीएकादशस्कन्द ଜଗନ୍ନାଥ ପ୍ରଭୃତି କୋଣାର୍କ ଅଛନ୍ତି ଯେ ପୁଣ, ଶ୍ରୀଏକାଦଶେଣ ଏହୁ ଅଟଇ ପ୍ରମାଣ—ପ୍ରାଚୀ· ଶ୍ରୀଗୁରୁଭକ୍ତିଗୀତା ।)

**ଶ୍ରୀଁ (ଶ୍ରୀଂ)**—ଦେ.ବି—ଓଡ଼ିଶାର ଅଣାକାର ମତାବଲମ୍ବୀମାନଙ୍କର ୩ ବୀଜ Śrīṅ(śrīm) ମନ୍ତ୍ରରୁ ୨ୟ; ରମା,ବିଷ୍ଣୁ, ଶିବ୍ୟ, ସୁଧା ଓ ବଳରାମଙ୍କ ଶ୍ରୀ श्री ଧ୍ୟାନ ମନ୍ତ୍ର—A mystic syllable uttered by the Aṇākāra worshippers of Orissa.

**ଶ୍ରୀ କଣ୍ଠ**—ସଂ ବି [ବହୁବ୍ରୀହି; ଶ୍ରୀ=(ଗରଳ ହେତୁ ନୀଳବର୍ଣ୍ଣ) ଶୋଭା= Śrī kaṇṭha ଶୋଭାଯୁକ୍ତ କଣ୍ଠ ଯାହାର ]—୧ । ଶିବ; ମହାଦେବଙ୍କ ବିଶେଷଣ—1. An epithet of Śiba (who has got marks of poison in His throat) ୨ । ସଂସ୍କୃତ ଉତ୍ତରରାମଚରିତ ଓ ମାଳତୀମାଧବ ନାଟକ ରଚୟିତା କବି ଭବଭୂତିଙ୍କ ଉପନାମ—2. A cognomen of the famous Sanscrit dramatist Bhababhūti. ୩ । ହସ୍ତିନାର ଉତ୍ତର ପଶ୍ଚିମସ୍ଥ କୁରୁଜାଙ୍ଗଲ ଦେଶ—3 Name of an ancient country to the N.W. of Delhi. ଦେ. ବି. ପୁଂ—ପୁରୁଷଙ୍କ ନାମ—A name given to males

**ଶ୍ରୀ କଣ୍ଠ ପଦ ଲାଞ୍ଛନ**—ସଂ. ବି. ପୁଂ ( 'ଶ୍ରୀକଣ୍ଠ'ରୂପ ପଦ=ଉପାଧି ଅଛି, Śrī kaṇṭha pada lāñchhana ଲାଞ୍ଛନ=ଚିହ୍ନ ଯାହାଙ୍କର) ୧ । କବି ଭବଭୂତି—1. Sanscrit poet Bhababhūti. ୨ । ଉତ୍ତର ଭାରତର ପୁରାତନ ଦେଶ-ବିଶେଷ—2. Name of an ancient countr- in N. Indiay

**ଶ୍ରୀକଣ୍ଠସଖା**—ସଂ· ବି· ପୁଂ (ବହୁବ୍ରୀହି; ଶ୍ରୀକଣ୍ଠ+ସଖା ଯାହାଙ୍କର; ଶ୍ରୀକଣ୍ଠ Śrikaṇṭhasakha ଅର୍ଥାତ୍ ମହାଦେବ ଯାହାଙ୍କର ମିତ୍ର ଅଟନ୍ତି)—କୁବେର—The Hindu God guarding the wealth.

**ଶ୍ରୀକନ୍ଦା**—ସଂ· ବି (ବୈଦ୍ୟକ)—ବନ୍ୟ କର୍କୋଟକ; ଅସାଡୁ ଓ ଫଳ—Śrikandā A sort of bitter wild fruit.

**ଶ୍ରୀକର**—ସଂ· ବି (ମ, ପ. ଲୋ; ଶ୍ରୀଯୁକ୍ତକର)—୧ । ଶ୍ରୀହସ୍ତ; ଦେବତା ଓ Śrikara ରାଜାଙ୍କ ହସ୍ତ—1. (euphemism for) A Deity's or king's hand. ୨ । (ବହୁବ୍ରୀହି; ଶ୍ରୀ ଅର୍ଥାତ୍ ଶ୍ରୀଯୁକ୍ତ କର ଯାହାଙ୍କର) ବିଷ୍ଣୁ—2 Bishṇu. ୩ । (ଶ୍ରୀ=ଶୋଭାଯୁକ୍ତ+କର=ଅଗ୍ର ଯାହାର)—କୋକନଦ; ନାଲି କଇଁ—3. Red waterlily; Nymphea Rubra. ସଂ. ବିଣ—୧ । (ଶ୍ରୀ=ଶୋଭା+କୃ ଧାତୁ+କର୍ତ୍ତୃ ଅ )—ଶୋଭାକର—1 Beautiful; graceful. ୨ । ସୌନ୍ଦର୍ଯ୍ୟକାରକ 2. Producing grace, beautifying. ଦେ. ବି. ଶ୍ରীকর श्रीकर ପୁଂ—୧ । ପୁରୁଷଙ୍କ ନାମ—1. A name given to males. ୨ । ସ୍ମୃତି ଗ୍ରନ୍ଥକାର ପଣ୍ଡିତବିଶେଷ—2. Name of an author of a work on Sanscrit jurisprudence.

ଶ୍ରୀ ଗୋପାଳ—ସଂ. ବ (ଗୋପାଳ=ଗଉଡ଼ ଶବ୍ଦ ପୂର୍ବରେ 'ଶ୍ରୀ'ଯୋଗ)—
Śrī gopāla ଶ୍ରୀକୃଷ୍ଣ—Śrikrushṇa. ଦେ. ବ. ପୁଂ—
শ্রীগোপাল ୧ । ଲୋକଙ୍କ ନାମ—1. A name given to
श्रीगोपाल males. ୨ । ପୁରୀଜିଲ୍ଲା ସାକ୍ଷୀଗୋପାଳରେ ପ୍ରତିଷ୍ଠିତ ଶ୍ରୀକୃଷ୍ଣ ବିଗ୍ରହ—2. The idol or image of Śrikṛushṇa at Sākhigopāl in the district of Puri. ୩ । ବାଲେଶ୍ୱର ରେମୁଣାର କ୍ଷୀର ଚୋରା ଗୋପୀନାଥ ମୂର୍ତ୍ତି—3. The image of Srikṛushṇa at Remuṇā in Balasore.

ଶ୍ରୀଗୋପାଳ ଚୂଡ଼ାମଣି—ସଂ. ବ (ଶ୍ରୀ+ଗୋପାଳମାନଙ୍କ ମଧ୍ୟରେ
Śrigopāla chūrḍāmaṇi ଚୂଡ଼ାମଣି=ଶ୍ରେଷ୍ଠ)—
ଶ୍ରୀକୃଷ୍ଣ—Śrikṛrushṇa. ଦେ. ବ—(ବ୍ୟଙ୍ଗ) ଦହି ଚୂଡ଼ା ଓ ଗୁଡ଼ ଖୁଆଇ ବ୍ରାହ୍ମଣମାନଙ୍କୁ ଅର୍ଥଦକ୍ଷିଣା ଦେବା—(Joke) Feasting Brahmans with curds, flattened rice and mollasses and giving them money as Dakshiṇā.

ଶ୍ରୀଗୋପାଳ ତେଲ—ଦେ. ବ—ଏକପ୍ରକାର ଔଷଧ ତେଲ—
Śrigopāla taila A medicated oil.
শ্রীগোপাল তেল श्रीगोपाल तैल

ଶ୍ରୀଗୋପୀନାଥ—ସଂ. ବ—ଶ୍ରୀ ଗୋପାଳ (ଦେଖ)
Śrigopinātha Śrigopāla. (See)
(ଶ୍ରୀ ଗୋପୀନାଥଜୀ—ଦେ. ରୂପ)

ଶ୍ରୀ ଗୌର—ଦେ. ବ (ନାମ)—ଚୈତନ୍ୟ (ଦେଖ)
Śrī gaura Chaitanya (See)
( ଶ୍ରୀ ଗୌରାଙ୍ଗ—ଅନ୍ୟରୂପ )
শ্রীগৌর श्रीगौर

ଶ୍ରୀଗ୍ରହ—ସଂ. ବ (ଶ୍ରୀ=ଶୋଭା+ଗ୍ରହ ଧାତୁ+କର୍ତ୍ତୃ. ଅ; ଯାହା ଶୋଭା
Śrigraha ଗ୍ରହଣ କରେ ବା ଶୋଭାଯୁକ୍ତ ଅଟେ)—ପକ୍ଷୀଙ୍କର ପାନୀୟ ଶାଳା—An aviary where birds drink; a drinking house for birds.
(ଏଥିର ଅନ୍ୟ ନାମ—ଶକୁନ ପ୍ରପା)

ଶ୍ରୀଘନ—ସଂ. ବ (ଶ୍ରୀ=ସୌନ୍ଦର୍ଯ୍ୟ+ଘନ=ମୂର୍ତ୍ତି)—୧ । ବୁଦ୍ଧଦେବ
Śrighana 1. The Buddha. ୨ । ଦହି—2. Curds; curdled milk.

ଶ୍ରୀଘର—ଦେ. ବ (ବ୍ୟଙ୍ଗ)—ଜେଲଖାନା—
Śrighara Jail.
শ্রীঘর बड़ेघर

ଶ୍ରୀଘର ଦେଖା(ଖେ)ଇବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ଜେଲ୍ ଦଣ୍ଡ
Śrighara dekhā(khe)ibā ଭୋଗ କରାଇବା—To
(ଶ୍ରୀଘରକୁ ପଠା(ଠେ)ଇବା—ଅନ୍ୟରୂପ) cause a man to
শ্রীঘরদেখান बड़ाघरदिखाना be sent to jail; to send a man to jail.

ଶ୍ରୀଘର ଦେଖିବା—ଦେ. କ୍ରି—ଜେଲ ଦଣ୍ଡ ଭୋଗ କରିବା—To
Śrighara dekhibā undergo the sentence of
শ্রীঘরদেখা बड़ाघरदेखना confinement; to be imprisoned.

ଶ୍ରୀଚକ୍ର—ସଂ. ବ (ତନ୍ତ୍ର)—ତ୍ରିପୁର ସୁନ୍ଦରୀଙ୍କ ପୂଜାରେ ବ୍ୟବହୃତ ଯନ୍ତ୍ର
Śrichakra ବିଶେଷ—A mystic trifoliate circular figure used in the worship of the Deity 'Tripura sundarī'.

ଶ୍ରୀଚନ୍ଦନ—ସଂ. ବ—୧ । ଶ୍ରୀଖଣ୍ଡ (ଦେଖ)—1. Śrikhaṇḍa
Śrichandana (See) ୨ । ଅଗୁରୁ ଚନ୍ଦନ—2. Aloe wood. ଦେ. ବ. ପୁଂ—୧ । କ୍ଷତ୍ରିୟ, ଖଣ୍ଡାୟତ ଓ ଖଣ୍ଡାୟତମାନଙ୍କ ଉପାଧି ବିଶେଷ—. A title of
শ্রীচন্দন श्रीचंदन Kshatriyas and members of Rāj-families and Khaṇḍāyats. ୨ । ଲୋକଙ୍କ ନାମ—2. Name given to males.

ଶ୍ରୀଚନ୍ଦ୍ର—ସଂ. ବ (ଜ୍ୟୋତିଷ)—(ଶ୍ରୀ ପ୍ରଦ ଚନ୍ଦ୍ର)—୧୨ ଚନ୍ଦ୍ର; ମନୁଷ୍ୟ
Śrichandra ଜୀବନରେ ଯେଉଁ ଯେଉଁ ଦିନ ଚନ୍ଦ୍ର ଜନ୍ମ ରାଶିରେ ଅବସ୍ଥାନ କଲେ; ଜନ୍ମ ଚନ୍ଦ୍ର—The first position of the moon which happens once in 12 days in a person's life. [ଦ୍ର—ଅପରା ରାଶିରେ ଯେଉଁ ଦିନ ଚନ୍ଦ୍ରଙ୍କ ଅବସ୍ଥାନ-ହୁଏ ଏବ ହୋଇଥାଏ ସେହିଦିନ ଶ୍ରୀ ଚନ୍ଦ୍ର ଯୋଗ ଲୁହା ଯାଏ । ଶ୍ରୀ ଚନ୍ଦ୍ର ସବୁକାର୍ଯ୍ୟରେ ଶୁଭ ପ୍ରଦ, ଯାତ୍ରା ଯାବା, ଯୁଦ୍ଧ, ଗୃହାରମ୍ଭ, ଏହି କାର୍ଯ୍ୟ ଶ୍ରୀ ଚନ୍ଦ୍ରରେ କରିବ ଦେ.ବ—ଶିଖ ଉଦାସୀ ବାବାଜୀମାନଙ୍କ ପ୍ରଥମ ଗୁରୁ । ଶିଖ ଉଦାସୀ ଧର୍ମ ସମ୍ପ୍ରଦାୟର ପ୍ରବର୍ତ୍ତକ—Name of the founder of the sect of Udāsis amongst the Sikhs. [ଦ୍ର—ଏ ଶିଖ ମାନଙ୍କ ଆଦିଗୁରୁ ନାନକଙ୍କ ପୁତ୍ର । ଏହାଙ୍କ ମାତାଙ୍କ ନାମ ସୁଲକ୍ଷଣା । ଏ ଯୁବକ ଅବସ୍ଥାରେ ସଂସାର ତ୍ୟାଗ କରି ଉଦାସୀ ହେଲେ ଓ ବହୁ କାଳପରେ ଉଦାସୀନ ସମ୍ପ୍ରଦାୟର ସୃଷ୍ଟି କଲେ ।]

ଶ୍ରୀ ଚରଣ—ସଂ. ବ (ମ. ପ. ଲୋ. ଶ୍ରୀଯୁକ୍ତ ଚରଣ)—୧ । ଦେବତା
Śri charaṇa ଓ ଗୁରୁଜନଙ୍କର ଚରଣ—1.The leg of a Deity or elder. ୨ । ଦେବତା ଓ ଗୁରୁଙ୍କ ସନ୍ନିଧି—2. Nearness or vicinity of a Deity or elder. [ଦ୍ର—'ଗୁରୁ ବା ପୂଜ୍ୟବ୍ୟକ୍ତିଙ୍କ ନିକଟକୁ' ନ କହି ମାନ୍ୟାର୍ଥେ ଶ୍ରୀ ଗୁରୁଦେବ ବା ଶ୍ରୀ ପିତୃଦେବ ବା ଶ୍ରୀ ଅମୁକଙ୍କ 'ଶ୍ରୀ ଚରଣକୁ ବା ଶ୍ରୀ ଚରଣ ତଳକୁ' ନିବେଦନ କରା ବୋଲି ବାକ୍ୟ ବ୍ୟବହୃତ ହୁଏ ।]

ଶ୍ରୀ ଚରଣ କମଳ—ସଂ. ବ—ଦେବତା ଓ ଗୁରୁଜନଙ୍କ ପାଦ ପଦ୍ମ—The
Śri charaṇa kamala feet of the Deity or elder (compared to a lotus)

ଶ୍ରୀଚରଣ ପଙ୍କଜ
ଶ୍ରୀଚରଣ ପଦ୍ମ
ଶ୍ରୀଚରଣ ସରୋଜ
ଶ୍ରୀଚରଣାରବିନ୍ଦ
} ଅନ୍ୟରୂପ

**ଶ୍ରୀଚରଣକମଳେଷୁ**—ସ. ଅ (ସଂସ୍କୃତ ସପ୍ତମୀ ବିଭକ୍ତି, ବହୁବଚନ, **Sricharaṇa kamaleshu** ଶ୍ରୀଚରଣମାନଙ୍କରେ; ମାନ୍ୟାର୍ଥେ (ଶ୍ରୀଚରଣେଷୁ—ଅନ୍ୟରୂପ) ବହୁବଚନ ଅର୍ଥ)—ପତ୍ରାଦିର ଶିରୋନାମାରେ ଯାହାଙ୍କ ନିକଟକୁ ପତ୍ର ଲେଖାଯାଏ ତାଙ୍କ ନାମ ବା ଉପାଧି ପ୍ରଭୃତିର ପରେ ଲେଖାଯିବା ଶବ୍ଦ—A concluding word written at the end of the heading of a letter written to an elder (meaning 'at the revered feet' and purporting to mean 'The following writing is submitted to the before named person') [ଦ୍ର—ଏହାର ଅର୍ଥ 'ଶ୍ରୀଚରଣମାନଙ୍କରେ' ଓ ଏହାର ତାତ୍ପର୍ଯ୍ୟ ଅମୁକଙ୍କ ଶ୍ରୀଚରଣରେ ମୁଁ ନିମ୍ନଲିଖିତ ରୂପେ ନିବେଦନ କରୁଅଛି । ଏହା ନିମ୍ନଲିଖିତ କ୍ରମରେ ଲେଖାଯାଏ—

୧ମ ଧାଡ଼ି—ଶ୍ରୀ ବା ଶ୍ରୀଗୁରୁ ବା ଶ୍ରୀଗୁରୁ ଶରଣଂ ।

୨ୟ ଧାଡ଼ି—ଶ୍ରୀଲ ଶ୍ରୀଯୁକ୍ତ ଶ୍ରୀ ପିତୃଦେବଙ୍କ ଶ୍ରୀଚରଣ କମଳେଷୁ ।

୩ୟ ଧାଡ଼ି—ସବିନୟ ନିବେଦନମିଦଂ ବା ସାଷ୍ଟାଙ୍ଗ ପ୍ରଣିପାତପୂର୍ବକ ନିବେଦନ ମିଦଂ ।

୪ର୍ଥ ଧାଡ଼ି—ଶିବଂ ବା ମଙ୍ଗଳଂ ।

୫ମ ଧାଡ଼ି—ନିବେଦନର କାରଣ ଏହିପରି ଇତ୍ୟାଦି ।

**ଶ୍ରୀଚରଣକୁ**—ଦେ. (ଦ୍ୱିତୀୟା ବିଭକ୍ତି ଯୁକ୍ତ ବାକ୍ୟାଂଶ)—ଶ୍ରୀଚରଣ **Sricharaṇaku** ନିକଟକୁ; ପୂଜ୍ୟବ୍ୟକ୍ତିଙ୍କ ନିକଟକୁ—ଶ୍ରୀଚରଣେ श्रीचरणको To the revered feet of

**ଶ୍ରୀଚରଣତଳ**—ସଂ. ବି—ଗୁରୁଙ୍କ ପାଦର ନିମ୍ନଦେଶ—The ground **Sricharaṇa taḷa** below the feet of a Deity or elder.

**ଶ୍ରୀଚରଣରେ**—ଦେ. ବି (୭ମୀ ବିଭକ୍ତି)—ଗୁରୁଜନଙ୍କ ପାଖରେ—**Sricharaṇare** At or near a revered person. ଶ୍ରୀଚରଣେ श्री चरणमें

**ଶ୍ରୀଚରଣ ସେବକ**—ସ. ବି. ପୁଂ—ଗୁରୁ ଆଦିଙ୍କ ପଦସେବକ ଭୃତ୍ୟ—**Sricharṇa sebaka** (Euphemism) Your (ଶ୍ରୀଚରଣ ସେବିକା; ଶ୍ରୀଚରଣ ସେବକା—ସ୍ତ୍ରୀ) most obedient servant.

**ଶ୍ରୀଚୈତନ୍ୟ**—ଦେ. ବି—ଚୈତନ୍ୟ (ଦେଖ)—**Sri chaitanya** Chaitanya (See)

**ଶ୍ରୀଚ୍ୟୁତ**—ସ. ବଣ—ଶ୍ରୀ ବିଚ୍ୟୁତ (ଦେଖ)—**Srichuta** Sri bichuta (See) (ଶ୍ରୀଚ୍ୟୁତା—ସ୍ତ୍ରୀ) (ଶ୍ରୀ ଚ୍ୟୁତ—ବି)

**ଶ୍ରୀଜ**—ମି. ବି (ଶ୍ରୀ=ଲକ୍ଷ୍ମୀ+ଜନ ଧାତୁ+କର୍ତ୍ତୃ. ଅ)—୧ । କାମଦେବ—**Srija** 1. God Cupid. ୨ । ଶାମ୍ବ—2. Sāmba; son of Kṛushṇa.

**ଶ୍ରୀତାଳ**—ସଂ. ବି (ବୈଦ୍ୟକ)—ମଳୟ ଦେଶ ପ୍ରସିଦ୍ଧ ତାଳ ବୃକ୍ଷ—**Sritāḷa** A plamyra tree of the Malaya peninsula and south India. ଅନ୍ୟ ସ. ନାମ—ମୃଦୁତାଳ, ଲକ୍ଷ୍ମୀ ତାଳ, ମୃଦୁଚ୍ଛଦ, ହିନ୍ତାଳ, ଶଙ୍ଖ, ଲେଖାର୍ହ, ଶିଗ୍ରଲପତ୍ରକ ମସୀଲେଖାଦଳ, ଯାମ୍ୟୋଦ୍ଭବ [ଦ୍ର—ଏହାର ଫଳ ଈଷତ୍ କଷାୟ ମଧୁରରସ, ଶୀତଳ, କଫବର୍ଦ୍ଧକ, ପିତ୍ତନାଶକ ଓ ସାମାନ୍ୟ ବାୟୁପ୍ରକୋପକ ଅଟେ । ]

**ଶ୍ରୀଦ**—ସ. ବଣ ପୁଂ (ଶ୍ରୀ=ଲକ୍ଷ୍ମୀ+ଦା ଧାତୁ=ଦାନ କରିବା+କର୍ତ୍ତୃ. **Srida** ଅ; ଯେ ଶ୍ରୀ ଦାନ କରେ)—୧ । ଧନଦାତା—1. Bestowing wealth. ୨ । ସୌଭାଗ୍ୟଦାତା—2. Conferring good fortune or prosperity. ୩ । ଶୋଭାଦାୟକ—3. Giving grace or beauty. ବି—୧ । କୁବେର 1. The Hindu God guarding riches. ୨ । (ବିଷ୍ଣୁ ସହସ୍ରନାମୋକ୍ତ) ବିଷ୍ଣୁଙ୍କ ନାମ—2. A name of Bishṇu [ଶ୍ରୀଦା—ସ୍ତ୍ରୀ ବଣ]

**ଶ୍ରୀଦାମ**—ସ. ବି—(ଶ୍ରୀଦାମନ୍; ୧ମା. ୧ବ)—ଶ୍ରୀକୃଷ୍ଣଙ୍କ ସହଚର ଗୋପ-**Sri dāma** ବାଳକ—Name of one of the cowherd mates of Srikṛushṇa.

**ଶ୍ରୀଧର**—ସ. ବି. ପୁଂ—(ଶ୍ରୀ=ଲକ୍ଷ୍ମୀ+ଧୃ ଧାତୁ=ଧାରଣ କରିବା+**Sridhara** କର୍ତ୍ତୃ. ଅ; ଯେ ଲକ୍ଷ୍ମୀଙ୍କୁ ଧାରଣ କରିଅଛନ୍ତି)—୧ (ସହସ୍ର ନାମୋକ୍ତ) ବିଷ୍ଣୁ—1. Bishṇu. ୨ । ଶାଳଗ୍ରାମ ଶିଳା ବିଶେଷ (ଅତି ସୂକ୍ଷ୍ମ; ଦ୍ୱିଚକ୍ର, ଓ ବନମାଳା ଚିହ୍ନିତ)—2. Name of a pebble of the Gaṇḍaki river worshiped as Bishṇu. ଦେ. ବି. ପୁଂ—ଲୋକଙ୍କ ନାମ—1. Name given to males. ୨ । ଚିଲିକାରେ ମିଳୁଥିବା ଏକପ୍ରକାର ଚିଙ୍ଗୁଡ଼ି ମାଛ—2. A kind of shrimps (found in the Chilka lake.)

**ଶ୍ରୀଧର କଥକ**—ଦେ.ବି—(ନାମ)—ବଙ୍ଗଦେଶର ଜଣେ ପ୍ରାଚୀନ ପ୍ରସିଦ୍ଧ **Sridhara kathaka** ପୁରାଣକଥକ—Name of a Bengalee Purāṇa speaker (ministrel or bard) of the 13th century. [ଦ୍ର—ଏ ୧୨୭୩ ସାଲରେ ଜନ୍ମ ଗ୍ରହଣ କରିଥିଲେ । ଏ କଥକ ବ୍ୟବସାୟ କରି ପୁରାଣ କଥା ଭାବଭଙ୍ଗୀ ସହ ସର୍ବଜନ ମନୋହର ଭାବରେ କହୁଥିଲେ; ନିଜେ ଶ୍ୟାମା, ରାଧାକୃଷ୍ଣ ଓ ପ୍ରେମ ବିଷୟକ ସଙ୍ଗୀତ ରଚନା କରିଥିଲେ ଏବଂ ସୁଗାୟକ ଥିଲେ ।]

**ଶ୍ରୀଧର ଦାସ**—ଦେ. ବି.—(ନାମ)—ଓଡ଼ିଆ କବି ବିଶେଷ—**Sridhara dāsa** Name of an Oriya poet. [ଦ୍ର—ଏହାଙ୍କ ଘର ବାଙ୍କିରେ । ଏ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ବର୍ଣ୍ଣନା କରି 'କାଞ୍ଚନ ଲତା' ନାମକ ଗ୍ରନ୍ଥ ଏ ଛନ୍ଦ ଲେଖିଥିଲେ । (ଭାରତୀ ଓଡ଼ିଆ ସାହିତ୍ୟ ଇତିହାସ) । ଏ ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗର କବି । (ଜଗବନ୍ଧୁ ପ୍ରାଚୀନ ଓଡ଼ିଆ) ।]

**ଶ୍ରୀଧର ସ୍ୱାମୀ**—ଦେ. ବି—(ନାମ)—ପୁରାଣାଦିର ପ୍ରସିଦ୍ଧ ଟୀକାକାର—**Sridhara swāmi** Name of a famous Sanscrit श्रीधर स्वामी श्रीधर स्वामी annotator of the Purāṇas.

[ଶ୍ରୀଧର ଭଟ୍ଟ—ଅନ୍ୟରୂପ] [ଦ୍ର—ଏ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରେ ଜୀବିତଥିଲେ; ଜନ୍ମ ସ୍ଥାନ ଗୁର୍ଜର ଦେଶର କଳ୍ପଙ୍କ ନଗର । ଏ ପରମାନନ୍ଦ ପୁରୀଙ୍କ ଠାରୁ ନୃସିଂହ ମନ୍ତ୍ର ଦୀକ୍ଷା ନେଇଥିଲେ । ଏଙ୍କ କୃତ ଶ୍ରୀମଦ୍ ଭାଗବତର 'ଭାବାର୍ଥ ଦୀପିକା' ନାମକ ଅତି ସୁନ୍ଦର ଓ ସରଳ ଟୀକା ରଚନା କରି ଏ ଅମର ହୋଇ ଅଛନ୍ତି । ମହିମ୍ନ ସ୍ତବ, ଭଗବଦ୍ଗୀତା, ବିଷ୍ଣୁପୁରାଣାଦିର ମଧ୍ୟ ଟୀକା କରି ଅଛନ୍ତି, କିନ୍ତୁ ଭାବାର୍ଥ-ଦୀପିକା ସର୍ବ ପ୍ରସିଦ୍ଧ ଅଟେ ।

ବ୍ରଜବିହାର ନାମକ ଶ୍ରୀକୃଷ୍ଣ ବିଷୟକ କାବ୍ୟ ମଧ୍ୟ ଏହାଙ୍କ ଦ୍ୱାରା ରଚିତ ହୋଇଅଛି ସୁବଖ୍ୟାତ 'ଭଟ୍ଟି' କାବ୍ୟର କବି 'ଭଟ୍ଟି' ଏହାଙ୍କର ପୁତ୍ର ଅଟନ୍ତି ।

ମତାନ୍ତରରେ—

ଏ ଜଣେ ଓଡ଼ିଆ ଓ ଉତ୍କଳବାସୀ ଥିଲେ । ବାଲେଶ୍ୱର ଜିଲ୍ଲା ରେମୁଣା ଗ୍ରାମ ନିକଟବର୍ତ୍ତୀ ମରେଇ ଗାଁ ଏହାଙ୍କ ଜନ୍ମସ୍ଥାନ, ପୁରୀ ରାଜସଭାରେ ଏହାଙ୍କର ପ୍ରତିପତ୍ତି ଓ ଆଦର ଥିଲା । ଜଗବନ୍ଧୁ. ପ୍ରାଚୀନ ଉତ୍କଳ ।]

ଏ ପୁରୀ ଏମ୍ବାର ମଠର ଜଣେ ମହନ୍ତ ଥିଲେ (ସ୍ୱାମୀ ସଚ୍ଚିଦାନନ୍ଦ ସରସ୍ୱତୀ) ।]

**ଶ୍ରୀନଗର**—ଦେ. ବି—(ନାମ)—କାଶ୍ମୀର ରାଜ୍ୟର ରାଜଧାନୀ—
Śri nagara The capital of the state of
श्रीनगर Kashmere.

[ଦ୍ର—ସମୁଦ୍ର ପୃଷ୍ଠରୁ ୫୨୬୨ ଫୁଟ ଉଚ୍ଚ ପର୍ବତ ବକ୍ଷରେ ଏ ରାଜଧାନୀ ଅବସ୍ଥିତ । ଏ ନଗର ଯେଉଁ ଉପତ୍ୟକାରେ ଅବସ୍ଥିତ ତାକୁ Happy valley (ସୁଖମୟ ଉପତ୍ୟକା) ବୋଲଯାଏ । ଏ ରାଜଧାନୀ ସିନ୍ଧୁ ନଦୀର ଉପନଦୀ ଝେଲମ ନଦୀର ଉଭୟ ତୀରରେ ପ୍ରାୟ ୨ ମାଇଲ ବ୍ୟାପି ଅଛି । ସହରରୁ ଏକ ଅଂଶରୁ ଅନ୍ୟ ଅଂଶକୁ ଯିବା ଆସିବା କରିବା ପାଇଁ ନଦୀ ପାର ହେବାକୁ ଝେଲମ ନଦୀ ଉପରେ ସାତ ଗୋଟି ସେତୁ ଅଛି । ଏଠାରେ ନଦୀ ଗର୍ଭର ବିସ୍ତୃତ ପ୍ରାୟ ୧୭୬ ହାତ ଓ ଶୀତକାଳରେ ନଦୀ ଜଳର ଗଭୀରତା ପ୍ରାୟ ୧୮ ହାତ । ନଦୀର ଉଭୟ ତୀରରେ ଚୂନ-ପଥର ଅଛି । ଏ ନଗରର ଗୁରୁ ଅଟ୍ଟେ ପର୍ବତ ପାଦରେ ଜଳାଭୂମି ଥିବାରୁ ଏ ନଗରର ସ୍ୱାସ୍ଥ୍ୟ ମନ୍ଦ । ଏ ନଗରର ଜନ ସଂଖ୍ୟା ପ୍ରାୟ ଦେଢ଼ ଲକ୍ଷ । ତହିଁ ମଧ୍ୟରେ ହିନ୍ଦୁଙ୍କ ସଂଖ୍ୟା ଅପେକ୍ଷା ମୁସଲମାନଙ୍କ ସଂଖ୍ୟା ୮ ଗୁଣ ବେଶି । ଏଠାରେ କୋଠାମାନ କାଠରେ ବଡ଼ା ଓ ନିଚଳ, ଦଉଥଳ । କୋଠାର ଛାତମାନ ଏକଚଟିଆ ଓ ତହିଁ ଉପରେ ମାଟି ବିଛା ହୋଇଅଛି । ଏଠାରେ କାଶ୍ମୀର ମହାରାଜାଙ୍କ ରାଜ-ପ୍ରାସାଦ, ଦୁର୍ଗ, ତୋପ କାରଖାନା, ଟାଙ୍କଶାଳା, ଡାକ୍ତର-ଖାନା, ଉଦ୍ୟାନଯୁକ୍ତ ଅଛି ଓ ଗୋଟିଏ ପ୍ରାଚୀନ ମନ୍ଦିର, ମସଜିଦ ଓ ସମାଧି ଅଛି । ଏହି ରାଜଧାନୀର ଅଗ୍ନିକୋଣରେ ସମୁଦ୍ର ପୃଷ୍ଠ ଅପେକ୍ଷା ୬୨୫୦ ଫୁଟ ଉଚ୍ଚ ତଖତ୍-ଇ-ସୁଲେମାନ୍ ନାମକ ପର୍ବତ ଉପରେ ଠିଆ ହେଲେ ସମୁଦାୟ ନଗରର ଦୃଶ୍ୟ ଦେଖା ଯାଏ । ଏ ପର୍ବତର ଶିଖରରେ ଗୋଟିଏ ପ୍ରସ୍ତର ନିର୍ମିତ ମନ୍ଦିର ଅଛି । ଏହା ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଅଶୋକଙ୍କ ପୁତ୍ର ଜଲୋକଙ୍କଦ୍ୱାରା ନିର୍ମିତ ହୋଇଥିଲା । କାଳକ୍ରମେ ତାହା ମୁସଲମାନଙ୍କ ମସଜିଦରେ ପରିଣତ ହେଲା । ଏବେ ହିନ୍ଦୁମାନେ ତାକୁ ଶଙ୍କରାଚାର୍ଯ୍ୟଙ୍କ ମନ୍ଦିର ବୋଲି କହନ୍ତି । ସହରର ଉତ୍ତର ପ୍ରାନ୍ତରେ ୨୫୦ ଫୁଟ୍ ଉଚ୍ଚ ହରି ପର୍ବତ ନାମକ ଗୋଟିଏ ସ୍ୱତନ୍ତ୍ର ଗଣ୍ଡ ଶୈଳ ଉପରେ ଶ୍ରୀନଗର ଦୁର୍ଗ ଅଛି । ମୋଗଲ ସମ୍ରାଟ ଆକବରଙ୍କ ଦ୍ୱାରା ଖ୍ରୀଷ୍ଟୀୟ ୧୫୯୦ରେ ଏକ କୋଟି ଟଙ୍କା ବ୍ୟୟରେ ଏ ଦୁର୍ଗ ନିର୍ମିତ ହୋଇଥିଲା । ନଗରର ଉତ୍ତର ପୂର୍ବାଂଶରେ ସୁପ୍ରସିଦ୍ଧ 'ଡାଲ' ହ୍ରଦ ଅଛି । ଏଥିର ଜଳର ଗଭୀରତା ୧୦ ଫୁଟ ଓ ଏଥିର ପୃଷ୍ଠରେ ଅନେକଗୁଡ଼ିଏ ଭାସମାନ ଉଦ୍ୟାନ ଅଛି । କାଶ୍ମୀର ମହାରାଜାଙ୍କର ଜଣେ ରାଜ ପ୍ରତିନିଧି, ରାଜସ୍ୱ କମିସନର, ଚିଫ୍ କୋର୍ଟର ଜଣେ ଜଜ୍, ଜଣେ ଶାଲ ପରିଦର୍ଶକ, ଜଣେ ଦେବାନୀ ଜଜ୍ ଏଠାରେ ଥାଆନ୍ତି । ଦେଶ ବିଦେଶରୁ ସହସ୍ର ସହସ୍ର ଭ୍ରମଣକାରୀ ଏ ନଗରର ଶୋଭା ଦେଖିବାକୁ ଆସନ୍ତି, ଓ ଏଠାରୁ କାଶ୍ମୀର ଜାତ ଶାଲ ଓ ଅନ୍ୟାନ୍ୟ ଦ୍ରବ୍ୟ କିଣି ନିଅନ୍ତି । ମଧ୍ୟ ପ୍ରଦେଶର ନରସିଂହପୁର ଜିଲ୍ଲାରେ, ଅଯୋଧ୍ୟାର ଖେରୀ ଜିଲ୍ଲାରେ, ଯୁକ୍ତ ପ୍ରଦେଶର ଗଡ଼ୱାଲ ଜିଲ୍ଲାରେ ଓ ହାମିରପୁର ଜିଲ୍ଲାରେ ଓ ବାଲିଆ ଜିଲ୍ଲାରେ ଏହି ନାମର ଗ୍ରାମ ଓ ନଗରମାନ ଅଛି । (ବିଶ୍ୱକୋଷ)

**ଶ୍ରୀନନ୍ଦନ**—ସଂ. ବି—(ଷଷ୍ଠୀ ତତ୍, ଶ୍ରୀ + ନନ୍ଦନ)—ଲକ୍ଷ୍ମୀ; ପୁତ୍ର କନ୍ଦର୍ପ; Śrī nandana କାମଦେବ—The God Cupid.

**ଶ୍ରୀ ନନ୍ଦ ନନ୍ଦନ**—ସଂ. ବି—ଶ୍ରୀକୃଷ୍ଣ—
Śrī nanda nandana Śrikrushna.

[ଦ୍ର—ଶ୍ରୀକୃଷ୍ଣ ମଥୁରାର ବସୁଦେବ ଓ ଦେବକୀଙ୍କ ସନ୍ତାନ ଥିଲେହେଁ, ଗୋକୁଳ (ବୃନ୍ଦାବନ)ର ନନ୍ଦ ଓ ଯଶୋଦାଙ୍କ ଦ୍ୱାରା ପୁତ୍ରରୂପେ ପାଳିତ ହୋଇଥିବାରୁ ତାଙ୍କର ଏହି ନାମ ।]

**ଶ୍ରୀନାଥ**—ସଂ. ବି. ପୁଂ—(ଷଷ୍ଠୀ ତତ୍, ଶ୍ରୀ + ନାଥ)—(ବିଷ୍ଣୁ, ସହସ୍ର Śrinātha ନାମୋକ୍ତ) ବିଷ୍ଣୁ—Bishnu. ଦେ. ବି. ପୁଂ— ଲୋକଙ୍କ ନାମ—A name given to males.

**ଶ୍ରୀନାଶ**—ସଂ. ବି—(ଷଷ୍ଠୀ ତତ୍; ଶ୍ରୀ + ନାଶ)—୧ । ସୌଭାଗ୍ୟର ଧ୍ୱଂସ-
Śrināśa 1. The destruction or end of glory.
୨ । ସୌନ୍ଦର୍ଯ୍ୟ ନାଶ—
2. Destruction of beauty.

**ଶ୍ରୀନାଶକ**—ସଂ. ବିଣ. (ପୁଂ) (ଶ୍ରୀ + ନାଶି ଧାତୁ + କର୍ତ୍ତୃ. ଅକ)—
Śrī nāśaka ୧ । ସୌଭାଗ୍ୟନାଶକାରୀ—1. Destructive (ଶ୍ରୀନାଶୀ—ଅନ୍ୟରୂପ) of glory. ୨ । ଶୋଭାଧ୍ୱଂସକାରୀ—
[ଶ୍ରୀନାଶିକା, ଶ୍ରୀନାଶିନୀ—ସ୍ତ୍ରୀ] 2. Ruinous to beauty.

**ଶ୍ରୀ ନିକେତ**—ସଂ. ବି—୧ । ନବଜାତ ଧୂପ; ସରଳ ନିର୍ଯ୍ୟାସ; ତାର୍ପିନ
**Śrī niketa** (ବିଶ୍ୱକୋଷ)—1. Turpentine. ୨ । ରକ୍ତ ପଦ୍ମ (ବିଶ୍ୱକୋଷ)—2. Red lotus ୩ । ସୁବର୍ଣ୍ଣ (ବିଶ୍ୱକୋଷ)—3. Gold.

**ଶ୍ରୀ ନିକେତନ**—ସଂ. ବି (୬ଷ୍ଠୀ ତତ୍; ଶ୍ରୀ=ଲକ୍ଷ୍ମୀ+ନିକେତନ=
**Śrī niketana** ଗୃହ)—୧ । ଲକ୍ଷ୍ମୀଙ୍କ ବାସସ୍ଥାନ; ବୈକୁଣ୍ଠ—1. The residence of Goddess Lakshmī. ୨ । (ବହୁବ୍ରୀହି) ବିଷ୍ଣୁ—2. Bishṇu. ଦେ. ବି (ସଂ. ଶ୍ରୀନିକେତ)—ପଦ୍ମ—Lotus. [ଦ୍ର—ଶ୍ରୀନିକେତନ ଛନ୍ତି ନେଇ, କଣ୍ଟକ ଭୟରେ ପଳାଇ । ଜଗନ୍ନାଥ· ଭାଗବତ]

**ଶ୍ରୀ ନିତମ୍ବା**—ସଂ. ବିଣ. ସ୍ତ୍ରୀ(ବହୁବ୍ରୀହି)—ସୁଶ୍ରୋଣୀ; ସୁନ୍ଦର ନିତମ୍ବବିଶିଷ୍ଟା
**Śrī nitambā** (ସ୍ତ୍ରୀ)—(a woman) Having graceful buttocks. ସଂ. ବି· ସ୍ତ୍ରୀ—ରାଧା (ବିଶ୍ୱକୋଷ)—An epithet of Rādhā.

**ଶ୍ରୀ ନିବାସ**—ସଂ. ବି. ପୁଂ(୬ଷ୍ଠୀ ତତ୍; ଶ୍ରୀ=ଲକ୍ଷ୍ମୀ+ନିବାସ=ଗୃହ)—
**Śrī nibāsa** ୧ । ଲକ୍ଷ୍ମୀଙ୍କର ବାସସ୍ଥାନ; ବୈକୁଣ୍ଠ—1. The residence of Lakshmī. ୨। (ବିଷ୍ଣୁସହସ୍ରନାମୋକ୍ତ) ବିଷ୍ଣୁଙ୍କ ନାମ-2. A name of eishṇu. ଦେ. ବି ପୁଂ
শ্রীনিবাস —୧ ଲୋକଙ୍କ ନାମ—1. A name given to
श्रीनिवास males. ୨। ଚୈତନ୍ୟ ଦେବଙ୍କ ସମସାମୟିକ ନବଦ୍ୱୀପର ଜନୈକ ଗୃହୀ ବୈଷ୍ଣବ—2. Name of a devoted householder; contemporary of Śrīchaitanya. [ ଦ୍ର—ଶ୍ରୀନିବାସନାମଧାରୀ ବହୁପଣ୍ଡିତ, ଗ୍ରନ୍ଥକାର, ଭକ୍ତ ଭାରତରେ ଜନ୍ମଗ୍ରହଣ କରିଥିଲେ । ବିଶ୍ୱକୋଷ ସଂଗ୍ରାହକ ପ୍ରାଚ୍ୟବିଦ୍ୟାମହାର୍ଣ୍ଣବ ନଗେନ୍ଦ୍ରନାଥ ବସୁ ଶ୍ରୀନିବାସ ନାମଧାରୀ ୨୬ ଜଣଙ୍କର, ଶ୍ରୀନିବାସ ଆଚାର୍ଯ୍ୟ ନାମଧାରୀ ୨୪ଜଣଙ୍କର ଓ ଭିନ୍ନ ଭିନ୍ନ ଉପାଧିବିଶିଷ୍ଟ ଶ୍ରୀନିବାସ ନାମଧାରୀ ଅନ୍ୟ ୩୨ ଜଣଙ୍କ ବିଷୟ ଓ ଗ୍ରନ୍ଥମାନ ବର୍ଣ୍ଣନା କରିଅଛନ୍ତି । ତନ୍ମଧ୍ୟରୁ ଶ୍ରୀଚୈତନ୍ୟଦେବଙ୍କ ସମସାମୟିକ ଶ୍ରୀନିବାସାଚାର୍ଯ୍ୟଙ୍କ ବିଷୟରେ ବହୁ ତଥ୍ୟବିଶିଷ୍ଟ ବିବରଣ ଲିପିବଦ୍ଧ କରିଅଛନ୍ତି । ଏ ଶ୍ରୀନିବାସାଚାର୍ଯ୍ୟ ଚୈତନ୍ୟଦେବଙ୍କ ଅପ୍ରକଟ ହେବା ପରେ ନରୋତ୍ତମ ଓ ଶ୍ୟାମାନନ୍ଦଙ୍କ ସଙ୍ଗେ ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରଭାବ ସବୁ ଦେଶରେ ସଂରକ୍ଷଣ ଓ ବିସ୍ତାର କରିଥିଲେ । ଏହା ଛଡ଼ା ବୃନ୍ଦାବନ, କଟକ, ପୁରୀ, ଯାଜପୁର, ବଙ୍ଗଦେଶ, ଗଡ଼ (ମେଦିନୀପୁର) ଆଦି ଭ୍ରମଣ କରି ଏ ନାମଗାନ୍ଧିଙ୍କ ଓ ଶାସ୍ତ୍ରବ୍ୟାଖ୍ୟାଦ୍ୱାରା ସହସ୍ର ସହସ୍ର ପାପୀଙ୍କୁ ଗୌରାଙ୍ଗ ପ୍ରେମରେ ଆର୍ଦ୍ର କରିଥିଲେ ଓ ଦସ୍ୟୁସିଦ୍ଧ ଗାର ହମ୍ମୀର ଏହାଙ୍କ ପ୍ରଭାବରେ ପରମଧାର୍ମିକ ହୋଇଥିଲେ । ଶ୍ରୀନିବାସ ସାବର୍ଣ୍ଣ ଗୋତ୍ରୀୟ ରାଢ଼ୀୟ ଶ୍ରୋତ୍ରିୟ ବ୍ରାହ୍ମଣ ଥିଲେ । (ବିଶ୍ୱକୋଷ) । ]

**ଶ୍ରୀ ନିବାସକ**—ସଂ. ବି—ଭୂଇଁଅଁଳାଗୁଳ୍ମ (ବିଶ୍ୱକୋଷ)
**Śrī nibāsaka** Barlaria Crestata (plant).

**ଶ୍ରୀନିବାସ ଦୀପିକା**—ସଂ. ବି—ଜ୍ୟୋତିଷଗ୍ରନ୍ଥ ବିଶେଷ—
**Śrinibāsa dipikā** The title of a famous Sanscrit astrological work. [ଦ୍ର—ଖ୍ରୀଷ୍ଟୀୟ ୧୧୫୮ ଅବ୍ଦରେ ଗଣିତ ଚୂଡ଼ାମଣି ନାମକ ଆଉ ଗୋଟିଏ ଜ୍ୟୋତିଷଗ୍ରନ୍ଥ ଏ ଶ୍ରୀନିବାସ ରଚନା କରିଥିଲେ । ଶ୍ରୀନିବାସ ଦୀପିକାର ଅନ୍ୟ ନାମ ଶୁଦ୍ଧିଦୀପିକା—ବିଶ୍ୱକୋଷ ।]

**ଶ୍ରୀପଞ୍ଚ**—ଦେ. ବି—ଶିର୍ ପଞ୍ଚ (ଦେଖ)
**Śrīpañcha** Śir pench. (See)

**ଶ୍ରୀ ପଞ୍ଚମୀ**—ସଂ. ବି (ଶ୍ରୀ=ସରସ୍ୱତୀ+ପଞ୍ଚମୀ; ସରସ୍ୱତୀଙ୍କ ପୂଜାର୍ଥ ପ୍ରଶସ୍ତ
**Śrī pañchamī** ପଞ୍ଚମୀ)—୧ । ମାଘ ଶୁକ୍ଳପଞ୍ଚମୀ—1. The 5th day of the bright lunar fortnight of Māgha (in which the Goddess of learning is worshipped). [ଦ୍ର—କେହି କେହି କହନ୍ତି ଏହି ପଞ୍ଚମୀରେ କାର୍ତ୍ତିକେୟ ଲକ୍ଷ୍ମୀଙ୍କ ସହିତ ସମ୍ମିଳିତ ହୋଇଥିଲେ । ତେଣୁ ଏହା ଶ୍ରୀପଞ୍ଚମୀ ନାମରେ ଅଭିହିତ ହେଉଅଛି (ବିଶ୍ୱକୋଷ) । ମାତ୍ର ଆମ ଦେଶରେ ଏ ଦିନ ସରସ୍ୱତୀଙ୍କର ପୂଜା ହୁଏ ଓ ବିଦ୍ୟାଳୟର ଛାତ୍ରମାନେ ସରସ୍ୱତୀଙ୍କୁ ଆବାହନ କରି ମହାସମାରୋହ ସହକାରେ ପୂଜା କରନ୍ତି । ପୁରୁଣାକାଳର ଚାଟଶାଳୀମାନଙ୍କର ଛାତ୍ରମାନେ ଗୋଟିଏ ନଡ଼ିଆକୁ ଚିତ୍ରକରି ସେ ନଡ଼ିଆକୁ ଧରି ଅଭିଭାବକ ଓ ବନ୍ଧୁମାନଙ୍କ ଘରକୁ ଯାଇ ସରସ୍ୱତୀ, ଗଣେଶ ଓ ଶ୍ରୀକୃଷ୍ଣ ଆଦିଙ୍କ ସ୍ତବ, ଗୀତ ଓ ନାନାପ୍ରକାର ଛାନ୍ଦ ଆଦି ବୋଲି ବସ୍ତ୍ର, ଧନାଦି ଭିକ୍ଷା କରି ଆଣି ଅବଧାନଙ୍କୁ ଦେଉଥିଲେ । ଏ ବିଧି ଏବେ ପ୍ରାୟ ଲୋପ ହୋଇ ଗଲାଣି । ସ୍କୁଲମାନଙ୍କରେ ସରସ୍ୱତୀ ପ୍ରତିମା ନିର୍ମିତ ହୋଇ ଆଜିକାଲି ମହାସମାରୋହ-ସହକାରେ ତାହାଙ୍କର ପୂଜା ହେଉଅଛି । ] ୨ । ଭବିଷ୍ୟ ପୁରାଣୋକ୍ତ ସ୍ତ୍ରୀମାନଙ୍କ ଆଚରଣୀୟ ବ୍ରତ ଓ ଲକ୍ଷ୍ମୀନାରାୟଣ ପୂଜା—2. A religious vow observed by females for six years beginning from the 5th day of the bright lunar fortnight of of Māgha. [ଦ୍ର—ଶୁଦ୍ଧ କାଳରେ ମାଘଶୁକ୍ଳ ପଞ୍ଚମୀଠାରୁ ଏହି ବ୍ରତ ଆରମ୍ଭ କରାଯାଏ । ପୂର୍ବଦିନ ସଂଯମ କରି ପର ଦିନ ପଞ୍ଚମୀଠାରୁ ଏ ବ୍ରତର ଅନୁଷ୍ଠାନ ହୁଏ; ଏହି ରୀତିରେ ପ୍ରତିମାସ ଶୁକ୍ଳ ପଞ୍ଚମୀ ଦିନ ବ୍ରତାଚରଣ କର୍ତ୍ତବ୍ୟ; ଏମାନ୍ୟରେ ଛଅବର୍ଷ ପର୍ଯ୍ୟନ୍ତ ଏହି ବ୍ରତ ପାଳିତ ହୁଏ । ପ୍ରଥମ ଦୁଇ ବର୍ଷ ପଞ୍ଚମୀରେ ଲବଣବିହୀନ ଅନ୍ନ ଭୋଜନ କରିବାକୁ ହୁଏ, ଦ୍ୱିତୀୟ ଦୁଇ ବର୍ଷ ହବିଷ୍ୟାନ୍ନ ମାତ୍ର ଗ୍ରହଣ କରାଯାଏ, ପଞ୍ଚମ ବର୍ଷ କେବଳ ଫଳାହାର କରାଯାଏ, ଷଷ୍ଠ ବର୍ଷ ଉପବାସ ରହିବାକୁ ହୁଏ; ଏହା ପରେ ବ୍ରତ ଉଦ୍‌ଯାପନ କରାଯାଏ । ଏହି ବ୍ରତର ପୂଜାବିଧି ପ୍ରଭୃତିର ବିସ୍ତାରିତ ବିବରଣ ଭବିଷ୍ୟ ପୁରାଣରେ ବର୍ଣ୍ଣିତ ହୋଇଅଛି । (ବିଶ୍ୱକୋଷ)

ଶବ୍ଦ କଳ୍ପଦ୍ରୁମ ମତରେ ଗୌଡ଼ାଗ୍ରହଣକ୍ରମେ ଏ ଦିନ ସରସ୍ୱତୀଙ୍କର ପୂଜା ହୁଏ । ମାତ୍ର ଗୌଡ଼ ଦେଶର ଅନ୍ତର୍ଗତ ନ ହେଲେହେଁ ଆମ୍ଭମାନଙ୍କ ଉତ୍କଳଖଣ୍ଡରେ ମଧ୍ୟ ଏ ଦିନ ସରସ୍ୱତୀ ଦେବୀଙ୍କର ପୂଜା ହୁଏ ଏବଂ ବିଦ୍ୟାର୍ଥୀମାନେ ଅଧ୍ୟୟନର ଉପକରଣ, ପୁସ୍ତକ, ଲେଖନୀ, ମସୀଆଧାର ପ୍ରଭୃତିକୁ ପୂଜା କରନ୍ତି ।

ବୃହତ୍ ପୁରାଣମତରେ ଏହି ପଞ୍ଚମୀରେ ଗୌରୀପୂଜା ମଧ୍ୟ ହୁଏ—ଶବ୍ଦକଳ୍ପଦ୍ରୁମ ।]

ଶ୍ରୀ ପତି—ସଂ. ବି (୬ଷ୍ଠୀ ତତ୍; ଶ୍ରୀ=ଲକ୍ଷ୍ମୀଙ୍କର+ପତି=ସ୍ୱାମୀ)—
Śri pati ୧ । ବିଷ୍ଣୁ—1. A name of Bishnu. ୨ ।
श्रीपति श्रीपति ପୃଥିବୀଭୂପତି; ପତି; ରାଜା (ଶବ୍ଦକୋଷ)
2. King. ଦେ. ବି. ପୁଂ—୧ । ଲୋକଙ୍କ ନାମ—
1. A name given to males. ୨ । ଏହି ନାମଧାରୀ ଜଣେ ପ୍ରାଚୀନ କବି, ଜଣେ ବୈୟାକରଣ, ଦୁଇଜଣ ବିଖ୍ୟାତ ଜ୍ୟୋତିର୍ବିଦ୍, ଜଣେ ବେଦାନ୍ତ ଗ୍ରନ୍ଥକାର ଓ ଅନ୍ୟ ଦୁଇ ଜଣ ଗ୍ରନ୍ଥକାର (ଶବ୍ଦକୋଷ)—2. Name of several authors, grammarians; and astrologers.

ଶ୍ରୀପତି ଦାସ—ଦେ. ବି—ଜଣେକ ଉତ୍କଳୀୟ ସଂସ୍କୃତ ଜ୍ୟୋତିଷ ଗ୍ରନ୍ଥ-
Śripati dāsa କାର—An Oriyā compiler of astrology in the Sanscrit language. [ଦ୍ର—ଶ୍ରୀପତି ଜାତକ ନାମକ ଗ୍ରନ୍ଥର ଏ ପ୍ରଣେତା ଅଟନ୍ତି ।]

ଶ୍ରୀ ପଥ—ସଂ. ବି (ଶ୍ରୀ=ଶୋଭାଯୁକ୍ତ+ପଥ)—ରାଜପଥ(ହେମଚନ୍ଦ୍ର)—
Śri patha High way

ଶ୍ରୀ ପଦ—ସଂ. ବି—ଶ୍ରୀଚରଣ (ଦେଖ)—
Śri pada Śricharaṇa (See)

ଶ୍ରୀ ପଦ କମଳ—ସଂ. ବି—ଶ୍ରୀଚରଣ କମଳ (ଦେଖ)—
Śri pada kamaḻa Śricharana kamaḻa (See)

ଶ୍ରୀପଦୀ—ସଂ ବି—ବାର୍ଷିକ ମଲ୍ଲୀଫୁଲ (ଫୁଲ ଓ ଗଛ) (ଭାବପ୍ରକାଶ)
Śripadi A sort of annual Arabian Jasmine; Jasminum Sambac. [ଦ୍ର—ଏହା ଉଦ୍ୟାନ ପାଳିତ ଓ ବନ୍ୟଜାତ ଗୁଳ୍ମ । ଏହାର ଫୁଲ ଧଳା; ବର୍ଷାଦିନେ ଫୁଟେ । ବୈଦ୍ୟକ ମତରେ ଏହା ଶୀତବୀର୍ଯ୍ୟ, ଲଘୁ, ତିକ୍ତରସ, ତ୍ରିଦୋଷନାଶକ । ଏହା କର୍ଣ୍ଣରୋଗ, ଚକ୍ଷୁରୋଗ ଓ ମୁଖରୋଗ ନାଶକ । ଏଥିରେ ତିଳତୈଳ ସୁଗନ୍ଧିତ କରାଯାଏ ।]

ଅନ୍ୟ ସଂ. ନାମ—ଷଟ୍‌ପଦା, ଅନନ୍ଦା, ବାର୍ଷିକୀ, ମୁକ୍ତବନ୍ଧନା; ବେଙ୍ଗ, ବେଲି; ବେଲ; ଦେ. ଭୁଲଜାମାଚେନ୍ତୁ

ଶ୍ରୀ ପଦ୍ମ—ସଂ. ବି—ଶ୍ରୀକୃଷ୍ଣ (ଶବ୍ଦକୋଷ)—
Śripadma Śrikṛushna.

ଶ୍ରୀ ପର୍ଣ୍ଣ—ସଂ. ବି (ବହୁବ୍ରୀହି, ଶ୍ରୀ=ଶୋଭାଯୁକ୍ତ+ପର୍ଣ୍ଣ=ପତ୍ର ବା
Śri parṇṇa ପାଖୁଡ଼ା ଯାହାର)—୧ । ପଦ୍ମ—1. Lotus. ୨ । ଅଗ୍ନିମନ୍ଥ ବୃକ୍ଷ; ଅଗବଥୁ ଗଛ—2. Premna Serratifolia (tree).

ଶ୍ରୀ ପର୍ଣ୍ଣିକା—ସଂ. ବି (ବୈଦ୍ୟକ)—୧ । କଟ୍‌ଫଳ; କାଫଳ—
Śriparṇṇikā 1. Myrica Sapida. ୨ । ଗମ୍ଭାରି (ଶବ୍ଦକୋଷ)—2. Gmelina Arborea (tree). ୩ । ଅଗ୍ନିମନ୍ଥବୃକ୍ଷ (ଶବ୍ଦକୋଷ)—3. Premna Serratifolia ୪ । ଶାଲ୍ମଳୀ (ଶବ୍ଦକୋଷ)—4. Silk cotton tree. ୫ । ପୃଶ୍ନିପର୍ଣ୍ଣୀ—5. Hemionites Cordifolia (plant).

ଶ୍ରୀପର୍ଣ୍ଣୀ—ସଂ. ବି (ବୈଦ୍ୟକ)—୧ । ଗମ୍ଭାରି ଗଛ—1. Gme-
Śri parṇṇi line Arborea (a timber tree). ୨ । କଟ୍‌ଫଳ; କାଫଳ—2. Myrica Sapida, ୩ । ଅଗ୍ନିମନ୍ଥ; ଅଗବଥୁ (ଗଛ)—3. Premna Serratifolia. ୪ । ଶାଲ୍ମଳୀ ବୃକ୍ଷ—4. Silk cotton tree ୫ । ପୃଶ୍ନିପର୍ଣ୍ଣୀ—5 Hemionites Cordifolia (plant).

ଶ୍ରୀ ପାଦ—ସଂ. ବିଣ ପୁଂ (ବହୁବ୍ରୀହି)—୧ । ପୂଜ୍ୟପାଦ; ଅତ୍ୟନ୍ତ
Śripāda ପୂଜନୀୟ—1. Very adorable. ୨ । ଲକ୍ଷ୍ମୀବନ୍ତ (ଶ୍ରୀପାଦା—ସ୍ତ୍ରୀ) (ଶବ୍ଦକୋଷ)—2. Affluent. ୩ । ଭାଗ୍ୟବାନ୍ (ଶବ୍ଦକୋଷ)—3. Lucky.

ଶ୍ରୀପିଷ୍ଟ—ସଂ. ବି (ଶ୍ରୀ=ସରଳ ବୃକ୍ଷ+ପିଷ୍ଟ)—୧ । ସରଳ ଦ୍ରାବ;
Śripishṭa ଟାର୍ପିନ୍—1. Turpentine. [ଏହା ବାୟୁରୋଗ, ଶିରୋରୋଗ, ଚକ୍ଷୁରୋଗ, ସ୍ୱର, ଭେଦ, କଫ, ଘର୍ମ, କଣ୍ଡୁ ଓ ବ୍ରଣ ନାଶକ ।] ୨ । ଗନ୍ଧବିରୋଜା; ଦେବଦାରୁ ଗଛର ଅଠାଳିଆ ରସ । [ଦ୍ର—ଏହା ପ୍ରମେହ, ଅର୍ଶ, କାଶ, କଫ, ଜ୍ୱର, କୃମି ଓ ବେଦନାନାଶକ, ମୂତ୍ରକାରକ । ଏହାର ପ୍ରଲେପ ଶୋଥନାଶକ । ଫଳତଃ ଟାର୍ପିନ ଓ ଗନ୍ଧବିରୋଜା ଏକ ବସ୍ତୁ । ଏହି ହିମାଳୟ ପ୍ରଦେଶର ଦେବଦାରୁ ବୃକ୍ଷ ବିଶେଷ (long-leaved pine) ର ନିର୍ଯ୍ୟାସ । ଏ ଗଛର ତୈଳବତ୍ ତରଳ ନିର୍ଯ୍ୟାସକୁ ଗନ୍ଧବିରଜା ବୋଲିଯାଏ ଓ ଏଥିର ବାଷ୍ପିତ ତିଆରି ହୁଏ । ଗନ୍ଧବିରଜା ନିଆଁରେ ବସାଇ ସେଥିରୁ ରସ କାଢ଼ିଲେ ତାକୁ ଟାର୍ପିନ୍ ବୋଲି ଯାଏ । ଏଥିରୁ ରୋଜନ୍ ମଧ୍ୟ ତିଆରି ହୁଏ ।]

୧ । ଅନ୍ୟ ସଂ. ନାମ—ଶ୍ରୀବେଶ, ଶ୍ରୀବାସ, ଶ୍ରୀବେଷ୍ଟ, ପାୟସ, ବୃକଧୂପ, ତୈଳପର୍ଣ୍ଣୀ, ସରଳଦ୍ରାବ, ବୃକ୍ଷଧୂପକ, ବେଷ୍ଟ, ବେଷ୍ଟକ, ବେଷ୍ଟସାର, ରସାବେଷ୍ଟ, ଚିତାସରଳଦ୍ରବ, ପଦ୍ମଦର୍ଶନ, ଗନ୍ଧ, ରସାୟନ, ଶ୍ରୀରସ, ଲକ୍ଷ୍ମୀବେଷ୍ଟ, କ୍ଷୀରଶୀର୍ଷ, ସୁଧୂପକ, ଧୂପାଙ୍ଗ, ତଇଲପର୍ଣ୍ଣ, ସରଳାଙ୍ଗ । तार्पिन सारलरस; ଗୁ. ତକରସ; ଅ ଓ ଫା ସନରସ

୨ । ଅନ୍ୟ ସଂ. ନାମ—ଶ୍ରୀବାସସାର; गन्धबीरा; गनपविरोजा चद्स सरलकागोन्द्; ଗୁ.—ଗନ୍ଧବରୋଜା; ଫା—ବାରଜଦ, କାଇରୁବା; ଅ—କୁନ୍ଦର୍

ଶ୍ରୀ ପୁତ୍ର—ସଂ. ବି (ଶ୍ରୀ=ଭାଗ୍ୟ ବା ଲକ୍ଷ୍ମୀ+ପୁତ୍ର, ୬ଷ୍ଠୀ ତତ୍)—୧
Śri putra (ଲକ୍ଷ୍ମୀପୁତ୍ର) କାମଦେବ—1. The God Cupid. ୨ । ଅଶ୍ୱ—2. Horses.

ଶ୍ରୀ ପୁଷ୍ପ—ସଂ. ବି—୧ । ଲବଙ୍ଗ—1. Cloves. ୨ । ପଦ୍ମକାଷ୍ଠ—
Śrī pushpa 2. Prunus Padam (wood). ୩ ।
ପ୍ରପୌଣ୍ଡରୀକ ( ଶବ୍ଦକୋଷ )—3. Root stock of Nymphea lotus.

ଶ୍ରୀ ପେଚ—ବୈଦେ.ବି—ଶିରପେଚ (ଦେଖ)—Sirapecha (See)
Śrī pech (ଉ—ସୁସ୍ମଲଗା ଶ୍ରୀପେଚ ମାଳ ପାଗେ ବନ୍ଧା- କୃଷ୍ଣସିଂହ. ମହାଭାରତ. ବନ । )

ଶ୍ରୀପ୍ରଦ—ସଂ. ବିଣ (ଉପପଦ ତତ୍ପୁରୁଷ ସମାସ, ଶ୍ରୀକୁ ପ୍ରଦାନ କରେ
Srī prada ଯେ)—୧ । ସୌଭାଗ୍ୟପ୍ରଦ—1. Bestow-
(ଶ୍ରୀପ୍ରଦା—ସ୍ତ୍ରୀ) ing prosperity. ୨ । ସୌନ୍ଦର୍ଯ୍ୟପ୍ରଦ—
2. Giving beauty.

ଶ୍ରୀ ପ୍ରସୂନକ—ସଂ ବି (ବୈଦ୍ୟକ)—ଲବଙ୍ଗ—
Śrī prasūnaka Cloves.
(ଶ୍ରୀସଞ୍ଜ୍ଞ—ଅନ୍ୟରୂପ)

ଶ୍ରୀ ପ୍ରିୟ—ସ.ବିଣ—ଲକ୍ଷ୍ମୀଙ୍କର ପ୍ରିୟ ଦ୍ରବ୍ୟ—Loved or liked by
Śrī priya Lakshmī ସ. ବି—ହରିତାଳ (ଶବ୍ଦକୋଷ)—
Yellow orpiment.

ଶ୍ରୀଫଳ—ସଂ. ବି (ଶ୍ରୀଯୁକ୍ତ ଫଳ ଯାହାର; ବହୁବ୍ରୀହି)—୧ । ବିଲ୍ୱ; ବେଲ
Śrī phala (ଗଛ ଓ ଫଳ)—1. The Bael (fruit and tree); Aegle Marmelos.
[ବି—ପୁରାଣରେ ଅଛି ଯେ ଲକ୍ଷ୍ମୀ ବିଷ୍ଣୁଙ୍କ ପରାମର୍ଶରେ ଜାଗର ଯାତ୍ରା ବା ଶିବଚତୁର୍ଦ୍ଦଶୀ ଦିନ ୧୦୦୮ ପଦ୍ମ ଫୁଲ ଦ୍ୱାରା ଶିବଙ୍କ ପୂଜା କରିବାକୁ ବସିଲେ । ମହାଦେବ ଲକ୍ଷ୍ମୀଙ୍କ ଭକ୍ତି ପରୀକ୍ଷା କରିବାକୁ ସେଥିରୁ ଦୁଇଟି ଫୁଲ ହରଣକରି ନେଲେ । ଲକ୍ଷ୍ମୀ ପୂଜାରେ ବସି ଦେଖିଲାବେଳକୁ ୨ଟି ଫୁଲ ନଥିବା ଅଛି । ୧୦୦୮ ଫୁଲରେ ପୂଜା ନ କଲେ ସଙ୍କଳ୍ପରେ ବାଧା ପଡ଼ିବ ଓ ପୂଜା ଖଣ୍ଡିତ ହେବ ବୋଲି ଲକ୍ଷ୍ମୀ ଆପଣାର ସ୍ତନ ଯୋଡ଼ିକ କାଟି ୧୦୦ ପଦ୍ମ ଭରଣା କଲେ । ଏହା ଦେଖି ମହାଦେବ ଅବାକ୍ ହୋଇ ସନ୍ତୋଷରେ ନିଜେ ଫୁଲ ଦୁଇଟି ନେଇ ଯାଇଥିବା କଥା ମାନିଲେ ଏବଂ ଲକ୍ଷ୍ମୀଙ୍କୁ ବର ଦେଲେ ଯେ ତୁମ୍ଭେ ବିଷ୍ଣୁଙ୍କ ସର୍ବଶ୍ରେଷ୍ଠ ପ୍ରିୟା ହେବ; ମୋ ବର ପ୍ରଭାବରୁ ତୁମ୍ଭର ସ୍ତନ ଦୁଇଟି ତୁମ୍ଭେ ପ୍ରାପ୍ତ ହୁଅ ଏବଂ ଛେଦିତ ସ୍ତନ ମୂର୍ତ୍ତିମନ୍ତ ବୃକ୍ଷରୂପରେ ଶ୍ରୀଫଳ ନାମରେ ଅବତୀର୍ଣ୍ଣ ହେଉ ଏବଂ ବେଲର ପତ୍ର ମୋର ପ୍ରିୟତମ ପୂଜାସାମଗ୍ରୀ ହେଉ ।]
୨ । ରାଜାଦନୀ; ଖୀରକୋଳି—2. Mimusops Hexandra(tree). ୩ । ଅଁଳା—3. Embelic Myrobalan (a berry). ୪ । କଞ୍ଚା ଗୁଆ—4. Raw betel nut fruit. ୫ । ନଡ଼ିଆ—5. Cocoanut (M. W; ଗରୁଡ଼ପୁରାଣ)

ଶ୍ରୀଫଳ ସଲାଟୁ—ସଂ. ବି—୧ । କଞ୍ଚା ବେଲଫଳ—1. Raw bale
Śriphala salāṭu fruit. ୨ । ବେଲଶୁଣ୍ଠା (ଶବ୍ଦକୋଷ)-
2. Dried bits of raw Bael fruit,

ଶ୍ରୀଫଳା—ସଂ. ବି—୧ । ଅମଳକୀ; ଅଁଳା (ଫଳ ଓ ବୃକ୍ଷ)—
Śriphalā 1. Phyllanthus Emblica; Embellic Myrobalan. ୨ । ନୀଳୀ ଗୁଳ୍ମ—
2. Indigo plant. ୩ । କ୍ଷୁଦ୍ର କାରବେଲ୍ଲ; ଚୁଣୀ କଲରା
3. The tiny species of Memordica Charantica

ଶ୍ରୀଫଳିକା—ସଂ. ବି୧ । ମହାନୀଳୀ ବୃକ୍ଷ—1. The Indigo plant.
Śriphalikā ୨ । କ୍ଷୁଦ୍ର କାରବେଲ୍ଲ; ଚୁଣୀ କଲରା—
2 The small-fruited species of Memordica Charantica.

ଶ୍ରୀଫଳୀ—ସଂ. ବି—୧ । ନୀଳୀ; ନୀଳ ଗୁଳ୍ମ—1. The Indigo
Śriphalī plant; Indigofera Cordifolia.
୨ । ଅମଳକୀ (ଶବ୍ଦକୋଷ)—2. Embellic Myrobalan. ୩ । ମହାଜ୍ୟୋତିଷ୍ମତୀ (ଶବ୍ଦକୋଷ)-
3. The big species of Cardiospermum Halicacabum or Staff tree plant.

ଶ୍ରୀବଚ୍ଛ—ଗ୍ରା. ବି—ଶ୍ରୀବତ୍ସ (ଦେଖ)—Sribatsa (See) (ଉ—
Śrībachchha କୌସ୍ତୁଭମଣି ବନମାଳ, ଶ୍ରୀବଚ୍ଛଚିହ୍ନ ବକ୍ଷସ୍ଥଳ ।
ଶ୍ରীবৎস ଶ୍ରୀବତ୍ସ ଭୂପତିଂ ପ୍ରେମପଞ୍ଚାମୃତ ।)

ଶ୍ରୀବତ୍ସ—ସଂ. ବି (ଷଷ୍ଠୀ ତତ୍; ଶ୍ରୀ=ଲକ୍ଷ୍ମୀ+ବତ୍ସ=ପ୍ରିୟ; ଅଥବା
Śribatsa ଶ୍ରୀଯୁକ୍ତ ବତ୍ସ=ବକ୍ଷ ଯାହାର; ବହୁବ୍ରୀହି)—
୧ । ବିଷ୍ଣୁ—1. Bishṇu. ୨ । ବିଷ୍ଣୁଙ୍କ ବକ୍ଷସ୍ଥଳସ୍ଥ ଦକ୍ଷିଣାବର୍ତ୍ତ ଶୁକ୍ଳ ରୋମାବଳୀ; ଭୃଗୁ ପଦଚିହ୍ନ—
2. A white whorl on the breast of Bishṇu; (which turns to the right) the foot print of Bhrugu. [ବି—ଭୃଗୁପଦ ଲେକୋଟ ଦେଖ] । ୩ । ଗୃହବିଶେଷ—3. A sort of house which has a spiral hole; a labyrinth. ୪ । (ନାମ)—ଜଣେକ ନୃପ—
. Name of a king. [ ବି—ଏ ଅଯୋଧ୍ୟାର ରାଜା (ମତାନ୍ତରରେ ପ୍ରାଗ୍‌ଦେଶର ରାଜା) ଚନ୍ଦ୍ରବଂଶଙ୍କ ପୁତ୍ର ଥିଲେ । ଏହାଙ୍କ ପତ୍ନୀ ଚନ୍ଦ୍ରସେନା, କନ୍ୟା ଚନ୍ଦ୍ରାଦେବୀ । ଏକଦା ଲକ୍ଷ୍ମୀ ଓ ଶନିଗ୍ରହଙ୍କ ମଧ୍ୟରେ କିଏ ବଡ଼, ଏହି ବିବାଦ ଲାଗିବାରୁ ଦୁହେଁ ଶ୍ରୀବତ୍ସଙ୍କୁ ମଧ୍ୟସ୍ଥ ମାନିଲେ । ଶ୍ରୀବତ୍ସ ହଠାତ୍ ଏ ସମସ୍ୟା ସମାଧାନ ନ କରି ଗୋଟିଏ ସୁନାର ଓ ଗୋଟିଏ ରୂପାର ସିଂହାସନ କରାଇ ଉକ୍ତ ସିଂହାସନଦ୍ୱୟକୁ ନିଜ ସିଂହାସନର ଯଥାକ୍ରମେ ଦକ୍ଷିଣ ଓ ବାମଭାଗରେ ପକାଇ ରଖିଲେ । ଅତଃପର ଲକ୍ଷ୍ମୀ ଓ ଶନି ଉପସ୍ଥିତ ହୋଇ ଲକ୍ଷ୍ମୀ ସ୍ୱର୍ଣ୍ଣ ସିଂହାସନରେ ଓ ଶନି ରୌପ୍ୟ ସିଂହାସନରେ ବସିଲେ; ଏହା ଦେଖି ଶ୍ରୀବତ୍ସ ଲକ୍ଷ୍ମୀଙ୍କର ଶ୍ରେଷ୍ଠତ୍ୱ ପ୍ରକାଶ କଲେ । ଏଥିରେ ଶନି କୁପିତ ହୋଇ ଶ୍ରୀବତ୍ସଙ୍କର ସର୍ବନାଶ ଘଟାଇବାକୁ ବସିଲେ, କିନ୍ତୁ ଛିଦ୍ର ନ ପାଇବାରୁ ଶ୍ରୀବତ୍ସଙ୍କର ଶରୀରରେ ପ୍ରବେଶ କରି ପାରିଲେ ନାହିଁ । ବହୁ ଦିନ ପରେ

ଏକଦା ଶ୍ରୀବତ୍ସଙ୍କ ସ୍ନାନ ପରେ ତାଙ୍କ ପାଦପ୍ରକ୍ଷାଳିତ ଜଳକୁ ଗୋଟିଏ କଳା କୁକୁର ଶୁଙ୍ଘିବାରୁ ଶନି ଏହି ଛିଦ୍ର ପାଇ ଶ୍ରୀବତ୍ସଙ୍କ ଦେହରେ ପ୍ରବେଶ କଲେ ଓ ତଜ୍ଜନ୍ୟ ଶ୍ରୀବତ୍ସଙ୍କର ମତିଭ୍ରମ ଘଟିଲା । ସେ ଗୋଟିଏ କନ୍ଥା ମଧ୍ୟରେ ବହୁମୂଲ୍ୟ ରତ୍ନାଦି ପୂରାଇ ତାକୁ ସଙ୍ଗରେ ନେଇ ପତ୍ନୀ ସହ ରାଜ୍ୟ ତ୍ୟାଗ କଲେ । ବାଟରେ ଶନି ଗୋଟିଏ ମାୟା ନଦୀ ସୃଷ୍ଟି କରି ସ୍ୱୟଂ ଗୋଟିଏ ଜୀର୍ଣ୍ଣ ତରୀ ନେଇ ଉପସ୍ଥିତ ହେଲେ । ସେ ଜୀର୍ଣ୍ଣ ତରୀରେ ଥରକେ ଏକାଧିକ ବ୍ୟକ୍ତି ପାର ହୋଇ ପାରିବେ ନାହିଁ, ଶ୍ରୀବତ୍ସ ଏହା ଦେଖି ପ୍ରଥମେ ରତ୍ନପୂର୍ଣ୍ଣ କନ୍ଥାକୁ ଆର ପାରିରେ ରଖି ଦେଇ ଆସିବା ପରେ ପତି ପତ୍ନୀଙ୍କୁ ଆର ପାରିକୁ ନେବା ନିମନ୍ତେ ନାବିକକୁ କହି ତଟ ମଧ୍ୟରେ ଉକ୍ତ କନ୍ଥାକୁ ରଖିଦେଲେ ଓ ଉକ୍ତ ନୌକା କିଛିଦୂର ଅଗ୍ରସର ହୁଅନ୍ତେ ଉକ୍ତ ମାୟାନଦୀ ଓ ନୌକା କେଉଁଆଡ଼େ ଲୁଚିଗଲା ଏବଂ ରାଜଦମ୍ପତି ନିଃସ୍ୱ ହୋଇ ବୁଲିଲେ । ସେ ଶେଷକୁ ଯାଇ ଗୋଟିଏ କାଠୁରିଆ ପଲ୍ଲୀରେ ଆଶ୍ରୟ ନେଇ ବଣରୁ କାଠ ସଂଗ୍ରହ କରି ଆଣି ତାକୁ ବିକି ପତି ପତ୍ନୀଙ୍କର ଜୀବନଯାତ୍ରା ନିର୍ବାହ କରୁଥାଆନ୍ତି । ଏଥିରେ ସୁଦ୍ଧା ଶନି ସନ୍ତୁଷ୍ଟ ନ ହୋଇ 'ଚିନ୍ତା'ଙ୍କୁ ତାଙ୍କଠାରୁ ବିଚ୍ଛିନ୍ନ କରିବା ପାଇଁ କୌଶଳ ପାଞ୍ଚିଲେ । ଚିନ୍ତା ସତୀ ସ୍ତ୍ରୀ ଥିଲେ । ଦିନେ ଶ୍ରୀବତ୍ସ ବସାରେ ଚିନ୍ତାଙ୍କୁ ଛାଡ଼ି କାଠ ଆଣିବା ପାଇଁ ବଣକୁ ଯାଇଥିଲେ, ଏହି ସମୟରେ ଉକ୍ତ ପଲ୍ଲୀ ନିକଟସ୍ଥ ନଦୀର ଗୋଟିଏ ତଟାରେ ଜଣେ ମହାଜନର ଡଙ୍ଗା ଲାଗିଗଲା । ଶନି ଉକ୍ତ ମହାଜନ ନିକଟରେ ଦୈବଜ୍ଞରୂପେ ଉପସ୍ଥିତ ହୋଇ କହିଲେ ଯେ ଏ ପଲ୍ଲୀରେ ଜଣେ ସତୀ ଅଛନ୍ତି, ସେ ଆସି ନୌକାରେ ଗୋଡ଼ ଛୁଇଁଦେଲେ ଡଙ୍ଗା ଚଳିବ । ଏହା ଶୁଣି ମହାଜନ କାଠୁରିଆ ପଲ୍ଲୀକୁ ଯାଇ କାକୁତି ମିନତି ହୋଇ ଆପଣାର ବିପଦ କଥା ଚିନ୍ତାଙ୍କୁ ଜଣାଇବାରୁ ଚିନ୍ତା ଦୟାବିଗଳିତା ହୋଇ ଡଙ୍ଗା ନିକଟକୁ ଯାଇ ଯେଉଁକ୍ଷଣି ନୌକାରେ ପଦସ୍ପର୍ଶ କରିଦେଲେ, ନୌକା ତତ୍‌କ୍ଷଣାତ୍ ଭାସି ଉଠିଲା । ଏହାଦେଖି ମହାଜନ ବିଚାରିଲା, ପୁଣି ଭବିଷ୍ୟତରେ ଯେବେ ନୌକା ତଡ଼ାରେ ଲାଗେ, ତାହାହେଲେ ଏ ସ୍ତ୍ରୀଟିକୁ ସଙ୍ଗରେ ନେଇଗଲେ ମୋର ଆଉ ବିପଦର ଆଶଙ୍କା ରହିବ ନାହିଁ । ଏହା ଭାବି ସେ 'ଚିନ୍ତା'ଙ୍କୁ ବଳପୂର୍ବକ ନେଇ ଡଙ୍ଗାରେ ବସାଇ ଚାଲିଗଲା । ଚିନ୍ତା ଅତ୍ୟନ୍ତ ରୂପବତୀ ଥିଲେ । କାଳେ ମହାଜନ ଏହି ରୂପରେ ମୁଗ୍ଧ ହୋଇ ତାଙ୍କର ଧର୍ମନାଶ କରିବ, ଏହି ଆଶଙ୍କାରେ ଚିନ୍ତା ସୂର୍ଯ୍ୟଙ୍କୁ ସ୍ତବ କରି କୁତ୍ସିତରୂପ ହେବା ପାଇଁ ବର ମାଗିଲେ ଓ ଫଳତଃ ସୂର୍ଯ୍ୟଦେବଙ୍କ କୃପାରୁ ତାଙ୍କ ସୁରୂପ କୁରୂପରେ ପରିଣତ ହେଲା ଓ ଏତଦ୍ୱାରା ତାଙ୍କର ଧର୍ମ ରକ୍ଷା ହେଲା ।

ଏଣେ ଶ୍ରୀବତ୍ସ ବଣରୁ କାଠ ନେଇ ଫେରିଆସି ବସାରେ ଚିନ୍ତାଙ୍କୁ ନ ଦେଖି କାଠୁରିଆ ସ୍ତ୍ରୀମାନଙ୍କଠାରୁ ମହାଜନର ଖବର ବୁଝି ଚିନ୍ତାଙ୍କୁ ଖୋଜିବାକୁ ବାହାରିଲେ ପ୍ରଥମେ ଯାଇ କାମଧେନୁ ସୁରଭୀଙ୍କ ଆଶ୍ରମରେ ପହଞ୍ଚିଲେ । ସୁରଭୀ ତାଙ୍କ ପ୍ରତି ପ୍ରସନ୍ନା ହୋଇ ତାଙ୍କୁ ଆଶ୍ରୟ ଦେଲେ ଓ ତାଙ୍କୁ ସାନ୍ତ୍ୱନା ଦେଲେ ଯେ ସେ ହୃତରାଜ୍ୟ ଓ ହୃତ ଚିନ୍ତାଙ୍କୁ ଫେରି ପାଇବେ । ସେ ଆଶ୍ରମରେ ଥିବା ସୁରଭୀ କନ୍ୟା ନନ୍ଦିନୀଙ୍କ ମୁଖସ୍ରୁତ ଓ ପାନାବଶିଷ୍ଟ ଦୁଗ୍‌ଧଫେନପରିଷିକ୍ତ କାଦୁଅରୁ ଜଳ ଗୋଟିଏ ଲେଖାଏ ଇଟା ତିଆରି କଲେ । ସେ ଇଟା ସୁନା ପାଲଟି ଗଲା । ଏହିପରି ଶହେ ଇଟା ଜମା ହେବାରୁ ସେହି ଆଶ୍ରମ ପାଖ ନଦୀ ବାଟେ ଚିନ୍ତାଙ୍କୁ ନୌକାରେ ବନ୍ଦିନୀ କରିଥିବା ମହାଜନର ଡଙ୍ଗା ଯିବାବେଳେ ଏ ଇଟାତକ ନେଇ ବିକ୍ରି କରିବାପାଇଁ ଶ୍ରୀବତ୍ସ ମହାଜନକୁ ଦେଲେ । ମହାଜନ ସୁନା ଇଟାତକ ଏହାଙ୍କୁ ଡଙ୍ଗାରେ ନେଇ ପରେ ଶ୍ରୀବତ୍ସଙ୍କୁ ନଦୀକୁ ପେଲିଦେଲା । ବନ୍ଦିନୀ ଚିନ୍ତା ସ୍ୱାମୀଙ୍କୁ ଚିହ୍ନିପାରି ନୌକାସ୍ଥ ବନ୍ଦିଶାଳାରୁ ଖଣ୍ଡିଏ ତକିଆ ପାଣିକୁ ଫିଙ୍ଗିଦେଲେ ଓ ସେ ତକିଆକୁ ଆଶ୍ରାକରି ଶ୍ରୀବତ୍ସ ବଞ୍ଚିକରି ଯାଇ ଏକ ରାଜ୍ୟରେ ଲାଗିଲେ ଓ ସେଠାରେ ଗୋଟିଏ ମାଳୁଣୀ ବୁଢ଼ୀର ଘରେ ରହିଲେ । ସେଠାର ରାଜକନ୍ୟା ଭଦ୍ରା ତାଙ୍କୁ ବରମାଲ୍ୟ ପ୍ରଦାନ କଲେ । ଶ୍ରୀବତ୍ସ ରାଜକନ୍ୟାଙ୍କୁ ଅନୁରୋଧ କରି ରାଜାଙ୍କ ଦ୍ୱାରା ନିଜେ ବାଣିଜ୍ୟ ତରୀମାନଙ୍କରୁ ଶୁଳ୍କ-ସଂଗ୍ରାହକ ରୂପ ରାଜକର୍ମରେ ନିଯୁକ୍ତ ହେଲେ ଓ ଏହି ଉପଲକ୍ଷରେ ସେ ସେଠାକୁ ଆସୁଥିବା ସମସ୍ତ ବାଣିଜ୍ୟ ତରୀମାନ ଅନ୍ୱେଷଣ କରି 'ଚିନ୍ତା'ଙ୍କୁ ଖୋଜୁ ଥାଆନ୍ତି । ଏହିପରି ଖୋଜୁ ଖୋଜୁ ଶେଷୋକ୍ତ ମହାଜନ ସେଠାରେ ପହଞ୍ଚିଲା ଓ ଶ୍ରୀବତ୍ସ ମହାଜନର ଜାହାଜରେ ଚିନ୍ତାଙ୍କୁ ଦେଖି ତାଙ୍କୁ ଚିହ୍ନି ସାଦରରେ ଗ୍ରହଣ କଲେ । ଏବେ ସୂର୍ଯ୍ୟଙ୍କ କୃପାରୁ ଚିନ୍ତା ନିଜର ପୂର୍ବରୂପଲାବଣ୍ୟ ଫେରି ପାଇଲେ ଓ ଶନିଙ୍କୁ ସ୍ତବଦ୍ୱାରା ସନ୍ତୁଷ୍ଟ କରି ଶନିଙ୍କ କୋପକୁ ଶାନ୍ତ କରାଇଲେ । ଶ୍ରୀବତ୍ସ ଚିନ୍ତା ଓ ଭଦ୍ରାଙ୍କୁ ଘେନି ସ୍ୱରାଜ୍ୟକୁ ଫେରି ଆସିଲେ ଓ ଲକ୍ଷ୍ମୀଙ୍କ କୃପାରୁ ପୁଣି ରାଜା ହୋଇ ସୁଖସମ୍ପଦରେ ବାସ କଲେ ]

ଦେ· ବି—ଲୋକଙ୍କ ନାମ—A name given to males.

ଶ୍ରୀବତ୍ସକୀ—ସ· ବି.(ପୁଂ) (ଶ୍ରୀବତ୍ସ+ସାଦୃଶାର୍ଥେ କ, ଶ୍ରୀବତ୍ସକ= Śribatsaki ଶ୍ରୀବତ୍ସ ପରି ଚିହ୍ନ+ଅଛି ଅର୍ଥରେ ଇନ୍; ୧ମା, ୧ବ)—ଯେଉଁ ଅଶ୍ୱର ବକ୍ଷୋଦେଶରେ ଦକ୍ଷିଣାବର୍ତ୍ତ ରୋମାବଳୀ ଥାଏ—A horse having a whorl on its breast turning towards the right [ଦ୍ର—ଏହା ଅଶ୍ୱପକ୍ଷରେ ସୁଲକ୍ଷଣ ଅଟେ ।]

ଶ୍ରୀବତ୍ସଭୃତ୍—ସ· ବି. (ପୁଂ) ଶ୍ରୀବତ୍ସ+ଭୃ. ଧାତୁ=ଧାରଣ କରିବା Śribatsabhṛut +କର୍ତ୍ତୃ·କ୍ୱିପ୍; )—ଶ୍ରୀବତ୍ସ ଚିହ୍ନଧାରୀ; ବିଷ୍ଣୁ—Bishṇu

ଶ୍ରୀବତ୍ସ ଲାଞ୍ଛନ—ସଂ. ବି. ପୁ. (ବହୁବ୍ରୀହି; ଶ୍ରୀବତ୍ସ ଅଟେ ଲାଞ୍ଛନ
Śrībatsa lānchhana ଯାହାଙ୍କର)—ବିଷ୍ଣୁ—Bishṇu.

ଶ୍ରୀବତ୍ସାଙ୍କ—ସଂ. ବି. ପୁଂ (ବହୁବ୍ରୀହି, ଶ୍ରୀବତ୍ସ ଅଟେ ଅଙ୍କ=ଚିହ୍ନ
Śrībatsāṅka ଯାହାଙ୍କର)—ବିଷ୍ଣୁ—Bishṇu.

ଶ୍ରୀବଦ—ସଂ. ବିଣ. ଓ ବି (ଶ୍ରୀ=ଶୁଭ+ବଦ୍ ଧାତୁ=କହିବା+
Śrībada କର୍ତ୍ତୃ. ଅ)—ଯେ ଶୁଭଫଳବକ୍ତା (ପକ୍ଷୀ)
(ବିଶ୍ୱକୋଷ)—(A bird) Which augurs good luck.

ଶ୍ରୀବନ୍ତ—ଦେ. ବିଣ (ସଂ. ଶ୍ରୀମତ୍)—୧। ଶ୍ରୀଯୁକ୍ତ—1. Pro-
Śrībanta percus, ୨। ସୁନ୍ଦର—2. Beautiful [ଦ୍ର-
ଶ୍ରୀମନ୍ତ ଶ୍ରୀମତ ଝିଅଟିକୁ ଶ୍ରୀବନ୍ତୀ କହିଲେ ସେ ଗୋଡ
(ଶ୍ରୀବନ୍ତୀ—ସ୍ତ୍ରୀ) ଭୁଲେଇ ଭୁଲେଇ ପକାଏ। ଢଗ]

ଶ୍ରୀ ବରାହ—ସଂ. ବି [ଶ୍ରୀ=ଲକ୍ଷ୍ମୀଯୁକ୍ତ ବରାହ, ମ. ପ. ଲୋ]—ବିଷ୍ଣୁଙ୍କର
Śrī barāha ବରାହ ଅବତାର—The incarnation of Bishṇu in the shape of a boar.

ଶ୍ରୀ ବର୍ଜିତ—ସଂ. ବିଣ—(ତୃତୀୟା ତତ୍; ଶ୍ରୀ+ବର୍ଜିତ)—ଶ୍ରୀଭ୍ରଷ୍ଟ (ଦେଖ)
Śrī barjita Śrībhrashṭa (See).
[ଶ୍ରୀବର୍ଜିତା—ସ୍ତ୍ରୀ]

ଶ୍ରୀ ବଲ୍ଲଭ—ସ. ବି. (ପୁଂ) (ଷଷ୍ଠୀ ତତ୍)—ବିଷ୍ଣୁ—Bishṇu. ଦେ. ବି.
Śrī ballabha ପୁଂ—ପୁରୁଷଙ୍କ ନାମ—
A name given to males.

ଶ୍ରୀବଲ୍ଲୀ—ସଂ. ବି—(ମ. ପ. ଲୋ; ଶ୍ରୀଯୁକ୍ତା ବଲ୍ଲୀ)—ଶିବ ଲିଙ୍ଗିନୀ—
Śrīballī Śiba liṅginī (See)
[ଅନ୍ୟ ସଂ. ନାମ—ଶିବ ବଲ୍ଲୀ, କର୍ଣ୍ଣବଲ୍ଲୀ, ଶିବଲ୍ଲ, ଅମ୍ଳା, କଟୁଫଳା, ଦୁରବେହା ।]

ଶ୍ରୀବାଟୀ—ସଂ. ବି—ଏକ ପ୍ରକାର ନାଗବଲ୍ଲୀ ଲତା; ପାନ ଲତା ବିଶେଷ-
Śrībāṭī A kind of betel creeper.

ଶ୍ରୀବାରକ - ସଂ. ବି—(ବୈଦ୍ୟକ)—(ଶ୍ରୀ+ବୃ ଧାତୁ ଣିଚ୍+କର୍ତ୍ତୃ-ଅକ)
Śrībāraka —ସୁନ ସୁନିଆ ଶାଗ, ସୁନିଷଣ୍ଣକ ଶାଗ ଗୁଳ୍ମ—
Blepharis Edulis (herb)

ଶ୍ରୀ ବାସ—ସ.ବି—(ବହୁବ୍ରୀହି, ଶ୍ରୀ=ଲକ୍ଷ୍ମୀଙ୍କ ଠାରେ ବାସ ବା ଅବସ୍ଥାନ
Śrī bāsa ଯାହାଙ୍କର)—୧ ବିଷ୍ଣୁ, ଶ୍ରୀନିବାସ—1. Bishṇu.
୨। (ଶ୍ରୀ=ଦେବଦାରୁ ଗଛରେ ବାସ ଯାହାର)—ଶ୍ରୀ ପିଷ୍ଟ
(ଦେଖ)—2. Śrī pishṭa (See) ୩। (ଶ୍ରୀ=
ଲକ୍ଷ୍ମୀ ବା ଶୋଭାର ବାସସ୍ଥାନ)—ପଦ୍ମ—3. Lotus.
୪। ଶିବ (ବିଶ୍ୱକୋଷ—4. Śiba. ୫। ଗୁଗ୍ଗୁଳୁ
(ବିଶ୍ୱକୋଷ)—5. Bdelium. ୬। ଦେବଦାରୁ—
(ବିଶ୍ୱକୋଷ)—6. The pine tree. ୭। ଧୂପ—
(ବିଶ୍ୱକୋଷ)—7. Incense; resin. ଦେ. ବି—
ଶ୍ରୀ ଗୌରାଙ୍ଗ ବା ଚୈତନ୍ୟଙ୍କର ପ୍ରିୟ ସହଚର—
Name of a favourite companion of Śrī chaitanya. [ଦ୍ର— ଏ ଜଣେ ପରମ ବୈଷ୍ଣବ ଓ
ସାଧୁ ଥିଲେ ଓ ଶ୍ରୀଚୈତନ୍ୟ ଦେବଙ୍କ ସମସାମୟିକ ଥିଲେ।
ଏହାଙ୍କ ଜନ୍ମସ୍ଥାନ ଶ୍ରୀହଟ୍ଟରେ ଥିଲା। ବିଦ୍ୟା-
ଶିକ୍ଷାର୍ଥ ଏ ଓ ଏହାଙ୍କର ଆଉ ୩ ଭାଇ ନବଦ୍ୱୀପକୁ ଆସି
ଥିଲେ ଓ ସେଠାରେ ଘର ତୋଳି ବାସ କଲେ। ଏ
ବାଲ୍ୟକାଳରେ ହରିଭକ୍ତିପରାୟଣ ଥିଲେ ଓ ସ୍ୱଗୃହରେ
ବସି ଏପରି ଉଚ୍ଚୈଃସ୍ୱରରେ ନାମସଂକୀର୍ତ୍ତନ କରୁଥିଲେ ଯେ
ପ୍ରତିବେଶୀମାନେ ବିରକ୍ତ ହୋଇ ତାଙ୍କ ପ୍ରତି ଅତ୍ୟାଚାର
କରୁଥିଲେ। ତଥାପି ସେ ସଂକୀର୍ତ୍ତନରୁ କ୍ଷାନ୍ତ ହେଉ ନ
ଥିଲେ। ଶ୍ରୀଚୈତନ୍ୟଙ୍କ ଅଧ୍ୟୟନ ସମାପନ ପରେ ଶ୍ରୀବାସଙ୍କ
ଗୃହକୁ ଈଶ୍ୱରପୁରୀ (ଭାରତୀ) ନାମକ ପ୍ରସିଦ୍ଧ ଭାଗବତ ଆସି
ସେଠାରେ ରହିଲେ ଓ ସେଠାରେ ତାଙ୍କୁ ଦେଖା କରିବାକୁ
ଚୈତନ୍ୟ ଦେବ ଆସିଲେ। ଏହି ସୁଯୋଗରେ ଶ୍ରୀବାସ ଓ
ନବଦ୍ୱୀପବାସୀ ଅନ୍ୟ ବୈଷ୍ଣବମାନଙ୍କ ସଙ୍ଗେ ଚୈତନ୍ୟଙ୍କର
ସମ୍ପର୍କ ହେଲା ଓ ଶ୍ରୀବାସଙ୍କ ଗୃହ ଓ ଅଗଣା ପ୍ରତିଦିନ
ନାମସଂକୀର୍ତ୍ତନରେ ମୁଖରିତ ହେଲା। ପ୍ରତିଦିନ ସନ୍ଧ୍ୟା
ସମୟରେ ଚୈତନ୍ୟଦେବ ଶ୍ରୀବାସଙ୍କ ଅଗଣାକୁ ଆସି
ସଂକୀର୍ତ୍ତନରେ ଯୋଗ ଦେଉଥିଲେ। ଶ୍ରୀବାସ ପରେ
ଚୈତନ୍ୟଙ୍କର ଜଣେ ପରମଭକ୍ତ ହେଲେ। ବିଶ୍ୱକୋଷ।]

ଶ୍ରୀବାସ ଅଙ୍ଗନ—ଦେ. ବି—ଚୈତନ୍ୟଦେବଙ୍କର ଜଣେ ପ୍ରିୟ ସଖାଙ୍କ
Śrībāsa aṅgana ଘରର ଅଗଣା—The courtyard of Śrī chaitanya. [ଦ୍ର—ନବଦ୍ୱୀପରେ ଏହି ପ୍ରାଙ୍ଗଣ ଏ
ପର୍ଯ୍ୟନ୍ତ ରହିଅଛି ଓ ଏହା ଗୃହପାଶରେ ପ୍ରାଚୀରବେଷ୍ଟିତ
ହୋଇ ନବଦ୍ୱୀପରେ ବୈଷ୍ଣବମାନଙ୍କର ଗୋଟିଏ ମିଳନ ଓ
ସଂକୀର୍ତ୍ତନ ସ୍ଥଳ ଓ ତୀର୍ଥରୂପେ ପରିଗଣିତ ହେଉଅଛି।]

ଶ୍ରୀ ବାସଃ—ସଂ. ବି—ଶ୍ରୀ ପିଷ୍ଟ (ଦେଖ)
Śrī bāsaḥ Śrī pishṭa (See)

ଶ୍ରୀ ବିଗ୍ରହ—ସଂ. ବି—ଦେବତାଙ୍କ ପ୍ରତିମା—
Śrī bigraha The image of an idol.

ଶ୍ରୀ ବିଚ୍ୟୁତ—ସଂ. ବିଣ—(ପଞ୍ଚମୀ ତତ୍)—ଯାହା ଠାରୁ 'ଶ୍ରୀ' (ଲକ୍ଷ୍ମୀ,
Śrī bichyuta ଶୋଭା, ସମ୍ପଦ) ଚାଲି ଯାଇଅଛି—
(ଶ୍ରୀ ବିଚ୍ୟୁତା—ସ୍ତ୍ରୀ) (ଶ୍ରୀ ବିଚ୍ୟୁତି—ବି) Shorn of glory, splendour, prosperity, grace etc.

ଶ୍ରୀ ବିଦ୍ୟା—ସ.ବି—ତନ୍ତ୍ରୋକ୍ତ ମହାବିଦ୍ୟା ବିଶେଷ, ତ୍ରିପୁରସୁନ୍ଦରୀ ଦେବୀ-
Śrī bidyā An incarnation of Durgā worshipped according to Tantric rites. [ଦ୍ର—ଶ୍ରୀବିଦ୍ୟା
ବା ତ୍ରିପୁର ସୁନ୍ଦରୀଙ୍କ ଉପାସକ ସକଳ ସିଦ୍ଧିଲାଭ କରେ।
ଏହି ବିଦ୍ୟାର ମନ୍ତ୍ର ୩୭ ପ୍ରକାର। ତନ୍ତ୍ରସାର ଗ୍ରନ୍ଥରେ
ଏ ବିଦ୍ୟାର ଭେଦ, ମନ୍ତ୍ର, ପୂଜା, ପୁରଶ୍ଚରଣ, ବର୍ଣ୍ଣିତ
ହୋଇଅଛି। ଏ ବିଦ୍ୟା ସାକ୍ଷାତ୍ ବ୍ରହ୍ମସ୍ୱରୂପିଣୀ।
(ବିଶ୍ୱକୋଷ)

ଶ୍ରୀ ବିବର୍ଜିତ—ସଂ. ବିଣ—ଶ୍ରୀଭ୍ରଷ୍ଟ (ଦେଖ)
Śrī bibarjjita Śrībhrashṭa (See)
(ଶ୍ରୀ ବିହୀନ—ଅନ୍ୟରୂପ)

ଶ୍ରୀ ବିଶିଷ୍ଟ—ସଂ. ବିଣ—୧। ଶୋଭାଯୁକ୍ତ—1. Beautiful.
Śrī bisishṭa ୨। ଲକ୍ଷ୍ମୀଯୁକ୍ତ—2. Prosperous.
(ଶ୍ରୀ ବିଶିଷ୍ଟା—ଅନ୍ୟରୂପ)

ଶ୍ରୀ ଖଜ—ସଂ. ବ—ତାଳ ବୃକ୍ଷ—
Śrī bija Palm tree.

ଶ୍ରୀ ବୃକ୍ଷ(ବୃକ୍ଷକ)—ବ (ଶ୍ରୀପ୍ରିୟ ବୃକ୍ଷ; ମ. ଷ. ଣ୍ଳେ—୧ । ଅଶ୍ବତ୍ଥ ବୃକ୍ଷ-
Śrī bruksha(brukshaka) 1. The religious fig tree; Fcus Religiosa. ୨ । ବିଲ୍ବବୃକ୍ଷ—2. The Bael tree. [ ଦ୍ର—ଶାରଦୀୟ ଦୁର୍ଗାପୂଜା ସମୟରେ ବିଲ୍ବ ବୃକ୍ଷରେ ଦୁର୍ଗାଙ୍କର ବୋଧନ କରି ଦୁର୍ଗାପୂଜା କରାଯାଏ—ଶବ୍ଦକୋଷ ।) ୩ । ଅଶ୍ବର ହୃଦୟାବର୍ତ୍ତିତ ଶ୍ବେତ ରୋମାବର୍ତ୍ତ—3. To whorl of hairs on the breast of a horse. ୪। ବିଷ୍ଣୁଙ୍କ ବକ୍ଷସ୍ଥଳରେ ଥିବା ରୋମାବର୍ତ୍ତ (ଶବ୍ଦକୋଷ)—4. The whorl said to exist on the breast of Bishnu.

ଶ୍ରୀ ବୃକ୍ଷକୀ—ସଂ. ବଣ. (ପୁଂ) (ଶ୍ରୀବୃକ୍ଷକ+ଅସ୍ତ୍ୟର୍ଥରେ ଇନ୍; ୧ମା. ୧ବ)—ଯେଉଁ ଅଶ୍ବର ହୃଦୟ, ମୁଖ ଓ ଗଳଦେଶରେ ଶ୍ବେତ ରୋମାବର୍ତ୍ତ ଥାଏ—(a horse)
Śrī brukshakī Having white whorls in the breast, face and neck. [ ଦ୍ର—ଏହା ଶୁଭସୂଚକ ଅଟେ ।]

ଶ୍ରୀ ବୃଦ୍ଧି—ସଂ. ବ (୬ଷ୍ଠୀ ତତ୍; ଶ୍ରୀ+ବୃଦ୍ଧି)—୧ । ଲକ୍ଷ୍ମୀବୃଦ୍ଧି; ଧନବୃଦ୍ଧି—1. Increase of wealth.
Śrī bruddhi
୨ । ସୌଭାଗ୍ୟବୃଦ୍ଧି—2. Increase of prosperity. ୩ । ଶୋଭା ବା ସୌନ୍ଦର୍ଯ୍ୟ ବୃଦ୍ଧି—3. Increase of beauty or grace.

ଶ୍ରୀ ବେଷ୍ଟ(ଶ)—ସଂ. ବ (ଶ୍ରୀ=ଦେବଦାରୁ ଅଟେ+ବେଷ୍ଟ=ଆବରଣ ଯାହାର)—ଶ୍ରୀ ପିଷ୍ଟ (ଦେଖ)—
Śrī beshṭa(śa) Śrī pishṭa (See)

ଶ୍ରୀ ବୈକୁଣ୍ଠ—ଦେ. ବ—ମାନ୍ଦ୍ରାଜର ତିନେଭେଲୀ ଜିଲ୍ଲାର ହିନ୍ଦୁ ତୀର୍ଥ ଓ ନଗର—Name of a holy town in the Tinnevelly district of Madras.
Śrī baikuṇṭha ଶ୍ରୀ ବୈକୁଂଠ श्रीबैकुण्ठ
[ ଦ୍ର—ଏହା ତିନେଭେଲୀ ସହରର ୧୬ ମାଇଲ ଦକ୍ଷିଣପୂର୍ବରେ ତାମ୍ରପର୍ଣ୍ଣୀ ନଦୀର ଉତ୍ତର କୂଳରେ ଅବସ୍ଥିତ । ଏଠାରେ ସାର୍ଦ୍ଧ ଛଅ ଶତ ବର୍ଷ ପର୍ଯ୍ୟନ୍ତ ୧୦୫ ମନ୍ଦିର ଅଛି । ତହିଁ ମଧ୍ୟରେ ବିଷ୍ଣୁମନ୍ଦିର ଓ କୈଳାସନାଥ ମନ୍ଦିର ପ୍ରସିଦ୍ଧ ଓ ସ୍ଥାପତ୍ୟ ଶିଳ୍ପପୂର୍ଣ୍ଣ । ନଗରପାର୍ଶ୍ବସ୍ଥ ଶୈଳରେ ଗୁହାଏ ଜୈନମୂର୍ତ୍ତି ଓ ପ୍ରାଚୀନ ସମାଧିକ୍ଷେତ୍ର ସାହାଯ୍ୟରେ ଉଦ୍ଦର୍ଶନ ମିଳେ । ଏଠାରେ କୋଟବେଲ୍ଲାଳ ନାମରେ ଏକ କମ୍ପଶ୍ରେଣୀ ଶୂଦ୍ର ଜାତି ବାସ କରନ୍ତି । ଏମାନେ ଯେଉଁ ଦୁର୍ଗରେ ବାସ କରନ୍ତି ସେ ଦୁର୍ଗର ବାହାରକୁ ଯିବାକୁ କେବେ ହେଲେ ସ୍ବାଧୀନ ନୁହନ୍ତି ନାହିଁ । ଏମାନେ ପ୍ରାଚୀନ ରାଜପ୍ରଦତ୍ତ ସନନ୍ଦ ବଳରେ ଏ ଦୁର୍ଗରେ ବାସ କରି ଆସିଥିଲେ । ଏମାନଙ୍କ ଅଦ୍ଭୁତ ବ୍ୟବହାର ମଧ୍ୟ ନାନା ପ୍ରକାରର । ଏହି ତାମ୍ରପର୍ଣ୍ଣୀ ନଦୀର ଉତ୍ତରସ୍ଥ ଅନନ୍ତ (ସେତୁ) ମଧ୍ୟ ଶ୍ରୀ ବୈକୁଣ୍ଠନାମରେ ଅଭିହିତ (ଶବ୍ଦକୋଷ) ।

ଶ୍ରୀ ବୈଷ୍ଣବ—ଦେ. ବ—ବୈଷ୍ଣବସମ୍ପ୍ରଦାୟବିଶେଷ (ଶବ୍ଦକୋଷ)—
Śrī baishṇaba Name of a sect of Baishṇabas
ଶ୍ରୀବୈଷ୍ଣବ श्रीवैष्णव

ଶ୍ରୀ ଭଦ୍ର(ଦ୍ରା)—ସ. ବ—ଭଦ୍ର ମୁସ୍ତକ; ନାଗର ମୁଥା—
Śrībhadra(drā) The root of Mariscus Cyprus (a sort of bulb-rooted grass).

ଶ୍ରୀ ଭାଗବତ—ସ. ବ(ମ. ଷ.ଣ୍ଳେ; ଶ୍ରୀମଦ୍‌ଭାଗବତ) ଭାଗବତ ୪(ଦେଖ)
Śrī bhāgabata Bhāgabata 4 (See)

ଶ୍ରୀ ଭାନୁ—ସଂ ବ (ନାମ)—ସତ୍ୟଭାମାଗର୍ଭଜାତ ଶ୍ରୀକୃଷ୍ଣ ପୁତ୍ର—
Śrī bhānu Name of a son of Śrīkrushna.

ଶ୍ରୀ ଭୁଜ୍—ସ.ବଣ (ପୁଂ ଓ ସ୍ତ୍ରୀ)—(ଶ୍ରୀ+ଭୁଜ୍ ଧାତୁ+କର୍ତ୍ତୃ. କ୍ବିପ୍)—
Śrī bhuj ଲକ୍ଷ୍ମୀବାନ୍ (ଶବ୍ଦକୋଷ)—Prosperous.

ଶ୍ରୀ ଭୁଜ—ସ.ବ (ମ. ଷ. ଣ୍ଳେ. ଶ୍ରୀଯୁକ୍ତ ଭୁଜ; ଦେବତା ଓ ମାନ୍ୟବ୍ୟକ୍ତିମାନଙ୍କଠାରେ ପ୍ରଯୋଜ୍ୟ) ସୌଷ୍ଠବାନ୍ବିତ ବାହୁ—
Śrī bhuja Graceful hand.

ଶ୍ରୀ ଭ୍ରାତା—ସ. ବ. ପୁଂ (୬ଷ୍ଠୀ ତତ୍; ସମୁଦ୍ର ମନ୍ଥନରୁ ଲକ୍ଷ୍ମୀଙ୍କ ସଙ୍ଗେ ଉଠିଥିବାରୁ)—୧ । ଚନ୍ଦ୍ର—1. The moon.
Śrī bhrātā
୨ । ଐରାବତ ହସ୍ତୀ—2. Indra's elephant. ୩ । ଅଶ୍ବ (ଶବ୍ଦକୋଷ)—3. Horse.

ଶ୍ରୀ ଭ୍ରଷ୍ଟ—ସ. ବଣ (୫ମୀ ତତ୍) ୧। ଯାହାର ସୌଭାଗ୍ୟ ନଷ୍ଟ ହୋଇଅଛି-
Śrī bhrashṭa 1. Shorn of fortune ୨। ଶୋଭାଭ୍ରଷ୍ଟ-2. Shorn of glory or splendour or beauty ୩ । ଲକ୍ଷ୍ମୀ ବା ସମ୍ପଦହୀନ—3. Shorn of wealth. ୪ । ମଳିନ—4. Pale; lustreless.

ଶ୍ରୀମଚ୍ଛଙ୍କରାଚାର୍ଯ୍ୟ—ସଂ. ବ (ଶ୍ରୀମତ୍+ଶଙ୍କରାଚାର୍ଯ୍ୟ)ସନ୍ଧିଯୋଗେ ତ୍+ଶ=ଚ୍ଛ) ଶଙ୍କରାଚାର୍ଯ୍ୟ(ଦେଖ)
Śrīmachchhankarāchārjya Śankarāchārjya (See)

ଶ୍ରୀମତ୍କୁମ୍ଭ—ସ. ବ—ସୁନା (ହେମଚନ୍ଦ୍ର)—
Śrīmatkumbha Gold.

ଶ୍ରୀମତୀ—ଦ. ବ. ସ୍ତ୍ରୀ—ରାଧା (ଜାତକପଦ୍ମାବଳୀ)
Śrīmati Rādhā.

ଶ୍ରୀମତୀ—ସଂ ବଣ. (ସ୍ତ୍ରୀ)—(ଶ୍ରୀ+ସ୍ତୁତ୍ୟାର୍ଥେ. ମତ୍=ଶ୍ରୀମତ୍+ସ୍ତ୍ରୀ. ଈ)-
Śrīmati ଶ୍ରୀଯୁକ୍ତା; ଶ୍ରୀମାନ୍‌ର ସ୍ତ୍ରୀଲିଙ୍ଗ—The feminine of Śrīmān. [ଦ୍ର—ଏହା ସ୍ତ୍ରୀଲୋକମାନଙ୍କ ନାମ ପୂର୍ବରେ ବ୍ୟବହୃତ ହୁଏ ।] ବ.—୧ । ରାଧିକା, ରାଧା—1. Rādhā. [ଦ୍ର—ଶ୍ରୀମତୀ ଶ୍ରୀମତୀ ବୃନ୍ଦାବନେ କେଳ ରଚନ୍ତେ । ସଙ୍ଗୀତ ।] ୨ । ଲକ୍ଷ୍ମୀ—2. Lakshmī. ୩ । ମୁଣ୍ଡିରୀ (ଶବ୍ଦକୋଷ)—3. Sphereanthus Indious (plant). ଦେ. ବ. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—
ଶ୍ରୀମତୀ श्रीमती Name given to females.

**ଶ୍ରୀମତୀ ମହାରାଣୀ**—ଦେ. ବି. ସ୍ତ୍ରୀ—(ସଂ. ଶ୍ରୀମତୀ ଓ ମହାରାଣୀ)—ସ୍ୱର୍ଗୀୟା
Srimati mahārāṇi ଭାରତସାମ୍ରାଜ୍ଞୀ ଭିକ୍ଟୋରିଆଙ୍କୁ
[ଶ୍ରୀମତୀ ଭାରତେଶ୍ୱରୀ—ଅନ୍ୟରୂପ] ଭାରତୀୟମାନଙ୍କଦ୍ୱାରା ପ୍ରଦତ୍ତ
श्रीमती भारतेश्वरी ନାମ—A name by which the
**श्रीमती महारानी** late queen Victoria is called by the Indians,

**ଶ୍ରୀମତ୍ତା(ତ୍ତ୍ୱ)**—ସଂ. ବି—(ଶ୍ରୀମତ୍+ଭାବାର୍ଥେ ତା. ତ୍ୱ) ଶ୍ରୀଯୁକ୍ତ ହେବାର
Śrimattā(ttwa) ଅବସ୍ଥା—The state of being prosperous.

**ଶ୍ରୀମତ୍ୟା**—ଗ୍ରା. ବିଣ.—(ସଂ. ଶ୍ରୀମତ୍ୟାଃ=ଶ୍ରୀମତୀଙ୍କର)—ବିଧବା ସ୍ତ୍ରୀଲୋକ-
Śrimatyā श्रीमत्या ମାନଙ୍କ ନାମ ପୂର୍ବରେ ଶ୍ରୀମତୀ ସ୍ଥାନରେ
श्रीमती ଭ୍ରମରେ ଯୋଗ କରାଯିବା ଶବ୍ଦ—A word wrongly prefixed to the names of widows.
[ଦ୍ର—ଶ୍ରୀମତୀ ଶ୍ରୀମାନ୍‌ର ସ୍ତ୍ରୀଲିଙ୍ଗ। ସାଧାରଣତଃ ପୁରୁଷମାନଙ୍କ ନାମ ପୂର୍ବରେ 'ଶ୍ରୀ' ଶବ୍ଦ ସଂସ୍କୃତରେ ଓ ଭାଷାରେ ମଧ୍ୟ ଲେଖାଯାଏ।

ସଂସ୍କୃତରେ ସମ୍ମାନାର୍ଥକରୂପେ ଦେବତା ଓ ମହାପୁରୁଷ ଓ ରାଜା ଆଦିଙ୍କ ନାମ ପୂର୍ବରେ ସମାସାନ୍ତ ଶ୍ରୀମତ୍ ଶବ୍ଦ ବା ଶ୍ରୀମାନ୍ ଯୁକ୍ତ ହୁଏ (ଯଥା—ଶ୍ରୀମଚ୍ଛଙ୍କରାଚାର୍ଯ୍ୟ, ଶ୍ରୀମଦ୍ଗୋବିନ୍ଦ, ଶ୍ରୀମନ୍ନାରାୟଣ, ଶ୍ରୀମନ୍ମହାରାଜ; ଶ୍ରୀମନ୍ମୁକୁନ୍ଦ ଇତ୍ୟାଦି।) କିନ୍ତୁ ଭାଷାରେ କେବଳ ଶ୍ରୀମତ୍ ଶବ୍ଦ ନାରାୟଣ, ମହାରାଜ ଆଦି ଶବ୍ଦ ସଙ୍ଗେ ସମାସାନ୍ତ ସନ୍ଧି ନିଷ୍ପନ୍ନ ସଂସ୍କୃତ ପଦରେ ଦୃଷ୍ଟ ହୁଏ।

ଅନ୍ୟଥା ଭାଷାରେ ଗୁରୁଜନ ଓ ବୟୋବୃଦ୍ଧମାନେ ଶିଷ୍ୟ ଓ ଶିଷ୍ୟସ୍ଥାନୀୟ ବ୍ୟକ୍ତିମାନଙ୍କ ନାମ ପୂର୍ବରେ 'ଶ୍ରୀମାନ୍' ବ୍ୟବହାର କରନ୍ତି। ପତ୍ରରେ ପିତାଙ୍କ ନିକଟକୁ ପୁତ୍ର 'ଶ୍ରୀ ପିତୃଦେବ' ଓ ପିତା ପୁତ୍ର ନିକଟକୁ 'କଲ୍ୟାଣୀୟ ଶ୍ରୀମାନ୍ ଅମୁକ' ବୋଲି ଲେଖନ୍ତି। ସମ୍ମାନାର୍ଥରେ 'ଶ୍ରୀଲ ଶ୍ରୀଯୁକ୍ତ' ବା 'ଶ୍ରୀଯୁକ୍ତ' ନାମ ପୂର୍ବରେ ଲେଖାଯାଏ। ଶ୍ରୀମାନ୍‌ର ସ୍ତ୍ରୀଲିଙ୍ଗ 'ଶ୍ରୀମତୀ' ଶବ୍ଦ ସବୁ ସ୍ତ୍ରୀଲୋକମାନଙ୍କ ନାମ ପୂର୍ବେ ଲେଖା ହେବା ବ୍ୟାକରଣସଙ୍ଗତ, କିନ୍ତୁ ତାହା ନ ହୋଇ ଦଳିଲ ଆଦିରେ କେବଳ ସଧବା ସ୍ତ୍ରୀଲୋକମାନଙ୍କ ନାମ ପୂର୍ବରେ 'ଶ୍ରୀମତୀ' ଲେଖା ହେବାର ଦେଖାଯାଏ। ବିଧବାମାନେ 'ଶ୍ରୀହୀନା' ହେବା ଯୋଗୁଁ ସଧବାମାନଙ୍କ ପରି ମାନ୍ୟାର୍ଥରେ ସେମାନଙ୍କ ନାମ ପୂର୍ବରେ 'ଶ୍ରୀମତୀ' ଲେଖିବାଟା ଠିକ୍ ହେବ ନାହିଁ। ବୋଧହୁଏ ଏହିଭଳି ଯୁକ୍ତିରେ ବିଧବା ସ୍ତ୍ରୀଲୋକମାନଙ୍କ ନାମ ପୂର୍ବରେ ଆଉ ଗୋଟିଏ କିଛି ବିଶିଷ୍ଟ ଶବ୍ଦ ଦିଆଯିବା ଉଚିତ ବୋଲି ଭାବି କେହି କେହି 'ଶ୍ରୀମତ୍ୟା' ଶବ୍ଦଟିକୁ ବିଧବାମାନଙ୍କ ନାମ ପୂର୍ବରେ ପ୍ରୟୋଗ କରିବା ଦେଖାଯାଏ। ଧନବତୀ ଜମିଦାରଣୀ ବିଧବାମାନଙ୍କ ନାମ ପୂର୍ବରେ ଏହିପରି ଗୋଟାଏ ବିଶେଷଣ ଲଗାଇ ସେମାନଙ୍କ ତୁଷ୍ଟି ବିଧାନ କରିବା ବୋଧ ହୁଏ ଏହାର ଅନ୍ୟତର ହେତୁ। ବର୍ତ୍ତମାନ୍ ଏ ଶବ୍ଦର ମୂଳ ଦେଖିବାକୁ ଗଲେ ଅନୁମାନ କରାଯାଏ ଯେ ପୂର୍ବର ପୁରୁଷଙ୍କର ପତ୍ର ଲେଖାଲେଖି ରୀତି ଅନୁସାରେ—

"ଶ୍ରୀ ଅମୁକସ୍ୟ ଚରଣକମଲେଷୁ ନିବେଦନମିଦଂ :—
(ଏହିଠାରେ ପତ୍ରଗତ ବିଷୟ ଲେଖି ସାରି ଶେଷରେ)
ନିବେଦନମିତି
ଅମୁକସ୍ୟ"
(ଅର୍ଥାତ୍ ଶ୍ରୀ ଅମୁକଙ୍କ ଚରଣକମଳରେ ନିବେଦନ ଏହି—
ଏହାହିଁ ନିବେଦନ
ଅମୁକଙ୍କର)

ଲେଖିବାକୁ ହୁଏ। ଏହିପରି ସ୍ତ୍ରୀଲୋକମାନେ ପତ୍ର ଲେଖିଲା ବେଳେ ପତ୍ର ଶେଷରେ ନିବେଦନ ମିତି।
'ଶ୍ରୀମତ୍ୟାଃ ଅମୁକସ୍ୟାଃ'
(ଅର୍ଥାତ୍ ଶ୍ରୀମତୀ ଅମୁକାଙ୍କର)
ଲେଖୁଥିଲେ।
(ଶ୍ରୀମତ୍ୟାଃ ଶବ୍ଦ ଶ୍ରୀମତ୍ ଶବ୍ଦର ସ୍ତ୍ରୀଲିଙ୍ଗରେ ଷଷ୍ଠୀ-ବିଭକ୍ତି=ଶ୍ରୀମତୀଙ୍କର)

ଏହି 'ଶ୍ରୀମତ୍ୟାଃ' ଶବ୍ଦ ପ୍ରୟୋଗରୁ ଅଧୁନା ବ୍ୟବହୃତ ବିଧବାଙ୍କ ନାମ ପୂର୍ବରେ ଯୁକ୍ତ 'ଶ୍ରୀମତ୍ୟା'ର ଉତ୍ପତ୍ତି ହୋଇଥିବା ଅନୁମାନ ହୁଏ; କାରଣ କଚେରିର ଓ ସଂସ୍କୃତାନଭିଜ୍ଞ ଲେଖାଳମାନେ 'ଶ୍ରୀମତ୍ୟା'ର ମୌଳିକ ଅର୍ଥ ଓ ପ୍ରୟୋଗ ଭୁଲିଯାଇ ଏହି ଶ୍ରୀମତ୍ୟାକୁ ଆଣି ବିଧବାମାନଙ୍କ ମୁଣ୍ଡରେ ବାଡ଼ିଆ ଲଗାଇ ଦେଇ ଅଛନ୍ତି। ଏଥିରେ କୁତ୍ରାପି ଶେଷ ନ ହୋଇ ବିଧବାଙ୍କୁ 'ଶ୍ରୀମତ୍ୟା ଅମୁକ ଦେବ୍ୟା' ବୋଲି ମଧ୍ୟ ଲେଖନ୍ତି ଓ କେହି କେହି ଶ୍ରୀମତୀ ଅମୁକ ଦେବ୍ୟା ବୋଲି ଲେଖନ୍ତି। ସାଧାରଣତଃ ଦେଖାଯାଏ ଯେ କଚେରି କାଗଜ ପତ୍ରରେ ଲେଖକମାନେ ବ୍ରାହ୍ମଣ, କ୍ଷତ୍ରିୟ ପ୍ରଭୃତି ଜାତିର ସ୍ତ୍ରୀମାନଙ୍କ ନାମ ପୂର୍ବେ 'ଶ୍ରୀମତୀ ଅମୁକ ଦେବୀ' କରଣ ପ୍ରଭୃତି ସ୍ତ୍ରୀଙ୍କ ନାମ ପୂର୍ବେ 'ଶ୍ରୀମତୀ ଅମୁକ ଦେଈ' ଓ ଅନ୍ୟାନ୍ୟ ଶୂଦ୍ର ଜାତିର ସ୍ତ୍ରୀଙ୍କ ନାମ ପୂର୍ବେ 'ଶ୍ରୀମତୀ ଅମୁକା ଦାସୀ' ବୋଲି ଲେଖନ୍ତି। କିନ୍ତୁ ବିଧବାଙ୍କ ନାମ ପୂର୍ବେ 'ଶ୍ରୀମତୀ' ଲେଖିବା ବ୍ୟାକରଣବିରୁଦ୍ଧ ବା ଶିଷ୍ଟାଚାରବିରୁଦ୍ଧ ନୁହେ।]

**ଶ୍ରୀମଦ୍ଭକ୍ତି ସିଦ୍ଧାନ୍ତ ସରସ୍ୱତୀ ଗୋସ୍ୱାମୀ**—ଦେ. ବି. (ନାମ)—ବଙ୍ଗର
Śrimadbhakti siddhānta ପ୍ରସିଦ୍ଧ ଗୌଡ଼ୀୟ ମଠର ସ୍ୱର୍ଗୀୟ
saraswati goswāmi ଅଧ୍ୟକ୍ଷ—Name of a late celebrated head of the Gaurdiya matha.
[ଦ୍ର—ଏହି ମହାପୁରୁଷ ଶୁଦ୍ଧ ଭାଗବତ ଧର୍ମର ଅକ୍ଳାନ୍ତ ପ୍ରଚାର ଦ୍ୱାରା ଧର୍ମଜଗତରେ ଏକ ଯୁଗାନ୍ତର ଆନୟନ କରିଥିଲେ। ଏହି ମହାପୁରୁଷ ୧୮୭୮ ଖ୍ରୀଷ୍ଟାବ୍ଦରେ ଫେବ୍ରୁୟାରି ୬ ତାରିଖରେ ପୁରୀ ଶ୍ରୀ ଜଗନ୍ନାଥ ମନ୍ଦିର

ନିକଟରେ "ନାରାୟଣ ଛତାର" ସଲଗ୍ନ ବୈଷ୍ଣବଶ୍ରେଷ୍ଠ ଶ୍ରୀମଦ୍ଭକ୍ତିବିନୋଦ ଠାକୁରଙ୍କ ଗୃହରେ ଶ୍ରୀ ଭଗବତୀ ଦେବୀଙ୍କର କୋଡ଼ରେ ଆବିର୍ଭୂତ ହୋଇଥିଲେ । ଠାକୁର ଭକ୍ତିବିନୋଦ ଶ୍ରୀ ଜଗନ୍ନାଥଙ୍କ ପରାଶକ୍ତି ଶ୍ରୀ ବିମଳାଦେବୀଙ୍କ ନାମାନୁସାରେ ଶିଶୁର ନାମ ରଖିଥିଲେ 'ଶ୍ରୀ ବିମଳାପ୍ରସାଦ' । ମାତୃକୋଡ଼ଶାୟିତ ଛଅ ମାସର ଶିଶୁ ରଥସ୍ଥ ଶ୍ରୀ ଜଗନ୍ନାଥ-ଦେବଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ହସ୍ତପ୍ରସାରଣପୂର୍ବକ ଶ୍ରୀ ଜଗନ୍ନାଥଙ୍କର ଚରଣ ଆଲିଙ୍ଗନ ଓ ପ୍ରସାଦୀମାଳା ଗ୍ରହଣ କରିଥିଲେ । ଭକ୍ତିବିନୋଦ ଠାକୁର ମହାପ୍ରସାଦ ଦ୍ୱାରା ଶିଶୁର ଅନ୍ନପ୍ରାଶନ ସମ୍ପନ୍ନ କରାଇଥିଲେ ।

ବାଳକ ଯେତେବେଳେ ବଙ୍ଗଦେଶସ୍ଥ ଶ୍ରୀରାମପୁର ହାଇସ୍କୁଲର ସପ୍ତମ ଶ୍ରେଣୀର ଛାତ୍ର ସେତେବେଳେ ଭକ୍ତି-ବିନୋଦ ଠାକୁର ପୁରୀରୁ ତୁଳସୀ ମାଳିକା ଅଣାଇ ବାଳକକୁ ହରିନାମ ଓ ନୃସିଂହ ମନ୍ତ୍ର ପ୍ରଦାନ କଲେ ଓ ଚୈତନ୍ୟ-ଶିକ୍ଷାମୃତ ଗ୍ରନ୍ଥ ପାଠ କରାଇଲେ । ୧୮୮୧ ସାଲରେ ଠାକୁର ଭକ୍ତିବିନୋଦ ଯେତେବେଳେ କଲିକତା ରାମବାଗାନରେ 'ଭକ୍ତିଭବନ' ନିର୍ମାଣ କରାଉଥିଲେ ସେତେବେଳେ ଗୃହର ଭିତ୍ତି ଖନନ ସମୟରେ କୂର୍ମମୂର୍ତ୍ତି ଆବିଷ୍କୃତ ହୋଇଥିଲେ । ଠାକୁର ଭକ୍ତିବିନୋଦ ବାଳକକୁ କୂର୍ମଦେବଙ୍କ ପୂଜା ଶିକ୍ଷା ଦେଲେ ଏବଂ ବାଳକ ସେହି ଦିନଠାରୁ ନିୟମିତରୂପେ ତିଳକାଦି ଗ୍ରହଣ ଓ ସଦାଚାର ପାଳନ କରୁଥିଲେ । ବାଲ୍ୟ-କାଳରେ ଭକ୍ତିବିନୋଦ ଠାକୁରଙ୍କ ସଙ୍ଗରେ ନାନା ତୀର୍ଥ ଭ୍ରମଣ, ଭକ୍ତିଗ୍ରନ୍ଥପ୍ରକାଶ କାର୍ଯ୍ୟରେ ସହାୟତା ଓ ବୈଷ୍ଣବ-ଧର୍ମର ନାନାପ୍ରକାର ତତ୍ତ୍ୱ ଓ ତଥ୍ୟ ଶ୍ରବଣ ଓ ଦର୍ଶନରେ ଅତିବାହିତ ହୋଇଥିଲା । ଅତି ବାଲ୍ୟକାଳରେ ଗଣିତ ଜ୍ୟୋତିଷ ଶାସ୍ତ୍ରରେ ଏହାଙ୍କର ଅତ୍ୟଦ୍ଭୁତ ପ୍ରତିଭା ଲକ୍ଷିତ ହୋଇଥିଲା । ଏ ନିଜର ବିଦ୍ୟାଳୟରେ ୧୮୯୮ ଖ୍ରୀଷ୍ଟାବ୍ଦରେ ମହେଶଚନ୍ଦ୍ର ଚୂଡ଼ାମଣିଙ୍କର ଟୋଲରୁ 'ସିଦ୍ଧାନ୍ତ ସରସ୍ୱତୀ' ଉପାଧି, ୧୯୦୦ ସାଲରେ ଶ୍ରୀଧାମ ପ୍ରଚାରଣୀ ସଭାରୁ "ଭକ୍ତି-ସିଦ୍ଧାନ୍ତ ସରସ୍ୱତୀ" ଉପାଧି ପ୍ରାପ୍ତ ହେଲେ ଏବଂ ତ୍ରିଦଣ୍ଡି ସନ୍ନ୍ୟାସ ଗ୍ରହଣ କରି ପରିବ୍ରାଜକାଚାର୍ଯ୍ୟ "ତ୍ରିଦଣ୍ଡିସ୍ୱାମୀ ଶ୍ରୀମଦ୍ଭକ୍ତିସିଦ୍ଧାନ୍ତ ସରସ୍ୱତୀ ଗୋସ୍ୱାମୀ" ନାମରେ ଅଭିହିତ ହେଲେ । ୧୯୦୧ ସାଲରେ ଶ୍ରୀଲ ଗୌରକିଶୋର ଦାସ ଗୋସ୍ୱାମୀ ମହାରାଜ ନାମକ ଅବଧୂତ ଭାଗବତ ପରମହଂସଙ୍କ ନିକଟରୁ ଦୀକ୍ଷା ଲାଭ କଲେ । ଏ ୧୯୦୦ ସାଲରେ ଭକ୍ତିବିନୋଦ ଠାକୁରଙ୍କ ସହିତ ଓଡ଼ିଶାର ସମସ୍ତ ତୀର୍ଥ ଭ୍ରମଣ କଲେ ଏବଂ ପୁରୀର ତତ୍କାଳୀନ ସଜ୍ଜନବୃନ୍ଦଙ୍କ ଆଗ୍ରହରେ ସୁପ୍ରାଚୀନ ସାତାସନ ମଠର ଅନ୍ୟତମ ଗିରିଧାରୀ ଆସନର ସେବା ଭାର ଗ୍ରହଣ କରି ପୁରୀରେ ହରି କଥା ପ୍ରଚାର ଏବଂ "ବୈଷ୍ଣବ ମଞ୍ଜୁଷା" ନାମକ ବୈଷ୍ଣବ ଅଭି-ଧାନ କୋଷ ସଙ୍କଳନ ସକାଶେ ପୁରୀରୁ ଓ ବିଭିନ୍ନ ମଠରୁ ତଥ୍ୟାଦି ସଂଗ୍ରହ କରିଥିଲେ । ୧୯୦୨ ସାଲରେ ପୁରୀର ସମୁଦ୍ରୋପ-କୂଳରେ ଭକ୍ତିବିନୋଦ ଠାକୁରଙ୍କର ଭକ୍ତି ଭବନ କୁଟୀରରେ ଠାକୁରଙ୍କର ସମ୍ମୁଖରେ ଶ୍ରୀ ଚୈତନ୍ୟଚରିତାମୃତ ବ୍ୟାଖ୍ୟା କାଳରେ ପୁରୀର ବହୁ ବିଶିଷ୍ଟ ଶ୍ରୋତା ଆସି ସେହି ବ୍ୟାଖ୍ୟା ଶ୍ରବଣ କରୁଥିଲେ । ପୁରୀରେ ଥିବା ସମୟରେ ସରସ୍ୱତୀ ଠାକୁରଙ୍କ ସହିତ ପୁରୀ ଗୋବର୍ଦ୍ଧନ (ଶଙ୍କରାଚାର୍ଯ୍ୟ) ମଠର ମଠାଧୀଶ ମଧୁସୂଦନ ତୀର୍ଥଙ୍କର ଶାସ୍ତ୍ରୀୟ ବିଚାର ହେଉ-ଥିଲା ଏବଂ ସମାଧି ମଠର ଶ୍ରୀ ବାସୁଦେବ ରାମାନୁଜ ଦାସ, ଶ୍ରୀ ଦାମୋଦର ରାମାନୁଜ ଦାସ, ଏମାର ମଠର ଶ୍ରୀ ରଘୁ-ନନ୍ଦନ ରାମାନୁଜ ଦାସ, ଜମାୟେତ୍ ସମ୍ପ୍ରଦାୟର ପାପଡ଼ିଆ ମଠର ଶ୍ରୀ ଜଗନ୍ନାଥ ଦାସ, ସ୍ୱର୍ଗଦ୍ୱାର ଛତାର ଓଁକାର ଗୀ ବ୍ରତାପସ, ଗଙ୍ଗାମାତା ମଠର ଶ୍ରୀ ବିହାରୀ ଦାସ ପୂଜାରୀ, ରାଧାକାନ୍ତ ମଠର ଅଧିକାରୀ ଶ୍ରୀ ନରୋତ୍ତମ ଦାସ, ମହା-ମହୋପାଧ୍ୟାୟ ପଣ୍ଡିତ ସଦାଶିବ ମିଶ୍ର, ପ୍ରଭୃତି ସଜ୍ଜନମାନଙ୍କ ସହିତ ସରସ୍ୱତୀ ଠାକୁରଙ୍କ ଧର୍ମ ପ୍ରସଙ୍ଗ ହେଉଥିଲା । ୧୯୦୪ ସାଲରେ ସରସ୍ୱତୀ ଠାକୁର ସୀତାକୁଣ୍ଡ ଓ ଚନ୍ଦ୍ରନାଥ ପ୍ରଭୃତି ସ୍ଥାନ ଭ୍ରମଣ କଲେ । ତତ୍ପରେ ପୁରୀରୁ ଯାଇ ୧୯୦୫ ସାଲର ଫେବୃୟାରୀ ୨୩ ତାରିଖରେ ଦକ୍ଷିଣ ଭାରତର ତୀର୍ଥ ସମୂହ ପର୍ଯ୍ୟଟନାର୍ଥେ ବହିର୍ଗତ ହେଲେ ।

ଗୋସ୍ୱାମୀ ମହୋଦୟ ନବଦ୍ୱୀପସ୍ଥ—ଶ୍ରୀ ମାୟାପୁରରେ ଅବସ୍ଥାନ କରି ୧୯୦୫ ସାଲରୁ ଶ୍ରୀମନ୍ମହାପ୍ରଭୁ ଚୈତନ୍ୟଙ୍କ ବାଣୀ ପ୍ରଚାର କାର୍ଯ୍ୟ ଆରମ୍ଭ କଲେ ଏବଂ ସ୍ୱର୍ଗୀୟ ଭକ୍ତି-ଚୂଡ଼ାମଣି ହରିଦାସ ଠାକୁରଙ୍କ ପରି ପ୍ରତ୍ୟହ ତିନି ଲକ୍ଷ ମହାମନ୍ତ୍ର କୀର୍ତ୍ତନ କରି ଶତ କୋଟି ମହାମନ୍ତ୍ର କୀର୍ତ୍ତନ ବ୍ରତ ଉଦ୍‌ଯାପନ କଲେ । ୧୯୦୯ ସାଲ ଫେବୃୟାରୀ ମାସରୁ ଶ୍ରୀ ମାୟାପୁରରେ ଭଜନଭବନ ନିର୍ମାଣ କରି ସେଠାରେ ଭଜନ କଲେ । ୧୯୧୧ ସାଲରେ ମେଦିନୀପୁର ବାଲିଘାଇ ନାମକ ସ୍ଥାନରେ ବୈଷ୍ଣବବିଦ୍ୱେଷୀ ସ୍ମାର୍ତ୍ତ ସମ୍ପ୍ରଦାୟର ମତବାଦ ଗୋଟିଏ ମହତୀ ସଭାରେ ଖଣ୍ଡନ କରି ବ୍ରାହ୍ମଣ ଓ ବୈଷ୍ଣବ ମଧ୍ୟରେ ତାରତମ୍ୟ ନିର୍ଦ୍ଦେଶ କଲେ, ୧୯୧୩ ସାଲରୁ କଲିକତା, ଶ୍ରୀ ମାୟାପୁର ଓ କୃଷ୍ଣ ନଗରରେ ଆଶ୍ରମମାନ କରି ସେଠାରେ ଭାଗବତ ଯନ୍ତ୍ର ସ୍ଥାପନ କରି ବିବିଧ ଭକ୍ତି-ଗ୍ରନ୍ଥ ପ୍ରକାଶ ଓ ଶ୍ରୀଚୈତନ୍ୟଚରିତାମୃତର ଅନୁଭାଷ୍ୟ ପ୍ରଚାର କଲେ । ୧୯୧୪ ସାଲରେ ଭକ୍ତିବିନୋଦ ଠାକୁରଙ୍କର ନିତ୍ୟ ଲୀଳା ପ୍ରବେଶ ପରେ ତାହାଙ୍କର ପ୍ରତିଷ୍ଠିତ "ସଜ୍ଜନ ତୋଷଣୀ" ମାସିକ ପତ୍ରିକା ସରସ୍ୱତୀ ଠାକୁରଙ୍କର ସମ୍ପାଦକତାରେ ପୁନର୍ବାର ପ୍ରକାଶିତ ହୋଇଥିଲା ।

ଏ ମହାପୁରୁଷ ୧୯୧୮ ସାଲର ମାର୍ଚ୍ଚ ୭ ତାରିଖରେ ବୈଦିକ ତ୍ରିଦଣ୍ଡସନ୍ନ୍ୟାସ ଗ୍ରହଣ ପୂର୍ବକ ଚନ୍ଦ୍ରଶେଖର ଆଚାର୍ଯ୍ୟଙ୍କ ଭବନରେ ଶ୍ରୀଚୈତନ୍ୟମଠ ପ୍ରତିଷ୍ଠା କଲେ ଏବଂ କୃଷ୍ଣ ନଗରର ସାହିତ୍ୟ ସଭାରେ ବୈଷ୍ଣବ ଦର୍ଶନ ସମ୍ବନ୍ଧେ ବକ୍ତୃତା ଓ ଦୌଲତପୁର ପ୍ରଭୃତି ସ୍ଥାନରେ ହରିକଥା ପ୍ରଚାର କରି ବହୁ ଭକ୍ତଙ୍କ ସହିତ ଓଡ଼ିଶାଅଭିମୁଖରେ ଯାତ୍ରା କଲେ ଏବଂ ଉତ୍କଳର ବିଭିନ୍ନ ସ୍ଥାନରେ ବିଶେଷ ଭାବରେ ପ୍ରଚାର କାର୍ଯ୍ୟ ଆରମ୍ଭ କଲେ । କଲିକତାରେ

ବ୍ୟାପକଭାବରେ ପ୍ରଚାର କାର୍ଯ୍ୟ କରିବା ଉଦ୍ଦେଶ୍ୟରେ ୧୯୧୮ ସାଲ ନଭେମ୍ବର ମାସରେ କଲିକତାରେ 'ଭକ୍ତିବିନୋଦ' ଆଶ୍ରମ ସ୍ଥାପନ ଓ ପରେ ସେଠାରେ ବର୍ଣ୍ଣବୈଷ୍ଣବ ରାଜ-ସଭାରେ ପୁନରୁଦ୍ବୋଧନ କଲେ । ୧୯୨୦ ସାଲର ସେପ୍ଟେମ୍ବର ମାସର ୬ ତାରିଖରେ ଭକ୍ତିବିନୋଦ ଠାକୁରଙ୍କ ଆସନରେ ଗୌଡ଼ୀୟ ମଠ ପ୍ରତିଷ୍ଠା କରି ଗୌଡ଼ ମଣ୍ଡଳ ଓ କ୍ଷେତ୍ରମଣ୍ଡଳର ସବୁ ସ୍ଥାନରେ ପ୍ରଚାର କାର୍ଯ୍ୟ ବିସ୍ତାର କଲେ । ୧୯୨୧ ସାଲରେ ଶ୍ରୀ ନବଦ୍ୱୀପଧାମ ପରିକ୍ରମାର ପୁନଃ ପ୍ରବର୍ତ୍ତନ ଏବଂ ପୂର୍ବ ବଙ୍ଗରେ 'ଶ୍ରୀ ମାଧ୍ୱ' ଗୌଡ଼ୀୟ ମଠ ପ୍ରତିଷ୍ଠା କଲେ । "ଉତ୍କଳରୁ ସମସ୍ତ ପୃଥିବୀରେ ଶୁଦ୍ଧ ବୈଷ୍ଣବ ଧର୍ମ ପ୍ରଚାରିତ ହେବ" ଏହି ବ୍ୟାସ ବାଣୀର ମର୍ଯ୍ୟାଦା ସ୍ଥାପନ ସକାଶେ ୧୯୨୨ ସାଲ ଜୁନ ମାସର ୯ ତାରିଖରେ ପୁରୀରେ ଭକ୍ତିକୁଟୀରରେ 'ଶ୍ରୀପୁରୁଷୋତ୍ତମ' ମଠ ସ୍ଥାପନ କଲେ । ୧୯୨୨ ସାଲର ଅଗଷ୍ଟ ମାସ ୧୯ ତାରିଖରେ ଶ୍ରୀ ଗୌଡ଼ୀୟ ମଠର ପ୍ରଚାରର ମୁଖପତ୍ର ସାପ୍ତାହିକ 'ଗୌଡ଼ୀୟ' ପ୍ରଥମରେ ପ୍ରଚାର କଲେ ଏବଂ ସେପ୍ଟେମ୍ବର ମାସରେ ବ୍ରଜମଣ୍ଡଳର ବହୁ ସ୍ଥାନ ଭ୍ରମଣ କରି ବୈଷ୍ଣବ ଧର୍ମ ସମ୍ବନ୍ଧରେ ବକ୍ତୃତା ପ୍ରଦାନ କଲେ; ୧୯୨୪ ସାଲ ଜୁଲାଇ ମାସ ୭ ତାରିଖରେ ଭୁବନେଶ୍ୱରରେ 'ତ୍ରିଦଣ୍ଡି ମଠ' ପ୍ରତିଷ୍ଠା ଓ ମାଡ୍ରାଜ ପ୍ରେସିଡେନ୍ସିରେ ପ୍ରଚାର କାର୍ଯ୍ୟ ଆରମ୍ଭ କଲେ । ୧୯୨୪ ସାଲର ଡିସେମ୍ବର ମାସ ୧୬ ତାରିଖରେ କାଶୀ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଓ ବିଦ୍ୱନ୍ମଣ୍ଡଳୀମଣ୍ଡିତ ସଭାରେ ଧର୍ମ ଜଗତରେ ବୈଷ୍ଣବ ଦର୍ଶନର ସ୍ଥାନ ସମ୍ବନ୍ଧରେ ଅଭିଭାଷଣ ପ୍ରଦାନ କଲେ ଓ ପ୍ରୟାଗରେ ଦଶାଶ୍ୱମେଧ ଘାଟରେ ଶ୍ରୀରୂପ ଶିକ୍ଷାର ସ୍ଥାନ ନିର୍ଦ୍ଦେଶ ଓ ଗୌରପଦାଙ୍କିତ ଅଡ଼ାଇଲୋ ଗ୍ରାମ ପରିଦର୍ଶନ କଲେ । ୧୯୨୫ ସାଲରେ ଗୌଡ଼ମଣ୍ଡଳ ପରିକ୍ରମା ପ୍ରବର୍ତ୍ତନ କରି ବହୁଭକ୍ତଙ୍କ ସହିତ ଗୌରପାର୍ଷଦମାନଙ୍କର ଆବିର୍ଭାବ ଲୀଳା ସ୍ଥାନସମୂହ ପରିଭ୍ରମଣ ଓ ସେଠାରେ ପୁନରାୟ ଶୁଦ୍ଧ ଭକ୍ତି କଥା ପ୍ରଚାର କଲେ । ନବଦ୍ୱୀପ ପରିକ୍ରମା ସମୟରେ କୋଲଦ୍ୱୀପରେ ଧର୍ମବ୍ୟବସାୟୀ ସମ୍ପ୍ରଦାୟର ପ୍ରତିନିଧି ସ୍ୱରୂପ ଦୁର୍ବୃତ୍ତମାନେ ଶ୍ରୀ ବିଗ୍ରହ, ଆଚାର୍ଯ୍ୟ ଓ ବୈଷ୍ଣବମାନଙ୍କ ଉପରେ ଇଷ୍ଟକ ବୃଷ୍ଟି କରିବାରୁ ସରସ୍ୱତୀ ଠାକୁର ଅଦ୍ଭୁତ କ୍ଷମାନନ୍ଦ ଓ ଧୈର୍ଯ୍ୟ ପ୍ରକାଶ କରି ସମସ୍ତଙ୍କୁ ରକ୍ଷା ଓ ଉପଦ୍ରବୀମାନଙ୍କୁ କ୍ଷମା କଲେ । ପଣ୍ଡିତ ମଦନମୋହନ ମାଲବ୍ୟ ଗୌଡ଼ୀୟ ମଠକୁ ଆସି ସରସ୍ୱତୀ ଠାକୁରଙ୍କ ନିକଟରୁ ଭାଗବତ ବାଣୀ ଓ ଆଗମପ୍ରାମାଣ୍ୟରୁ ଦୈବ-ବର୍ଣ୍ଣାଶ୍ରମ ଧର୍ମର ତତ୍ତ୍ୱ ଶ୍ରବଣ କଲେ । ୧୯୨୬ ସାଲରେ ସରସ୍ୱତୀ ଠାକୁର ଶ୍ରୀ ମାୟାପୁରରେ ନିତ୍ୟାନନ୍ଦ ପ୍ରଭୁଙ୍କର ଜନ୍ମୋତ୍ସବ ଓ ନାମଯଜ୍ଞର ପ୍ରବର୍ତ୍ତନ କଲେ । ଉକ୍ତ ସାଲର ଅକ୍ଟୋବର ମାସର ପ୍ରଥମ ଭାଗରେ ସମସ୍ତ ଭାରତ ପର୍ଯ୍ୟଟନ କରି ଶ୍ରୀ ଚୈତନ୍ୟବାଣୀର ପ୍ରଚାର ଏବଂ ପଣ୍ଡିତମଣ୍ଡଳୀଙ୍କ ସହିତ ଆଲୋଚନା, ବକ୍ତୃତା ଓ କଥୋପକଥନ ସମ୍ପନ୍ନ କଲେ ଶ୍ରୀନାଥଦ୍ୱାରର ମହନ୍ତ ମହାରାଜ, ବୋମ୍ବାଇର ଗୋକୁଳନାଥ ଗୋସ୍ୱାମୀ ମହାରାଜ, ଉଡୁପୀର ମଧ୍ୱାଚାର୍ଯ୍ୟ ମଠର ମଠାଧୀଶ, ଆହମ୍ମଦାବାଦ ଗାଦିର ମଠାଧୀଶ ପ୍ରମୁଖ ବିଭିନ୍ନ ବୈଷ୍ଣବ ସମ୍ପ୍ରଦାୟର ଶ୍ରେଷ୍ଠ ବ୍ୟକ୍ତିଗଣ ସରସ୍ୱତୀ ଠାକୁରଙ୍କୁ ବୈଷ୍ଣବାଚାର୍ଯ୍ୟୋଚିତ ଅଭିନନ୍ଦନ ପ୍ରଦାନ କଲେ । ଏହି ସମୟରେ ସରସ୍ୱତୀ ଠାକୁର ନୈମିଷାରଣ୍ୟରେ 'ପରମହଂସ ମଠ' ପ୍ରତିଷ୍ଠା, ଶ୍ରୀ ମାୟାପୁରରେ 'ପରବିଦ୍ୟା ପୀଠ' ସ୍ଥାପନ ଏବଂ ଶ୍ରୀଚୈତନ୍ୟ ମଠର ନବନିର୍ମିତ ଉନ୍ନତଶୀର୍ଷ ଚୂଡ଼ା-ବିଶିଷ୍ଟ ମନ୍ଦିରରେ ଆଚାର୍ଯ୍ୟମାନଙ୍କର ଶ୍ରୀମୂର୍ତ୍ତି ଓ ବିଗ୍ରହ ଓ ରାଧାଗୋବିନ୍ଦ ବିଗ୍ରହ ପ୍ରତିଷ୍ଠିତ କଲେ ।

ଏ ମହାପୁରୁଷ ୧୯୨୭ ସାଲର ଜୁନ୍ ମାସରୁ ସଂସ୍କୃତ ହିନ୍ଦି ଓ ଇଂରାଜି ଏହି ତିନି ଭାଷାରେ "ସଜ୍ଜନତୋଷଣୀ" ବା "The Harmonist" ପତ୍ରିକା ପ୍ରକାଶ କଲେ ଏବଂ ମାନଭୂମି ଜିଲ୍ଲାରେ 'ଶ୍ରୀଚୈତନ୍ୟ ଗୌଡ଼ୀୟ ମଠ' ପ୍ରତିଷ୍ଠା ଓ ସେପ୍ଟେମ୍ବର ମାସର ଶେଷ ଭାଗରେ କାଶୀ କାନପୁର, ଲକ୍ଷ୍ନୌ, ଜୟପୁର, ଗଲତାପର୍ବତ, ଆହମ୍ମଦାବାଦ, ପୁଷ୍କର, ଅଜମୀର, ଦ୍ୱାରକା, ସୁଦାମାପୁରୀ, ଗିର୍ଣ୍ଣାରପର୍ବତ, ପ୍ରଭାସ, ଅବନ୍ତୀ, ମଥୁରାମଣ୍ଡଳ, ଇନ୍ଦ୍ରପ୍ରସ୍ଥ, କୁରୁକ୍ଷେତ୍ର ଓ ନୈମିଷାରଣ୍ୟ ପ୍ରଭୃତି ସ୍ଥାନରେ ଶ୍ରୀଚୈତନ୍ୟବାଣୀ ପ୍ରଚାର କଲେ ।

୧୯୨୮ ସାଲର ସେପ୍ଟେମ୍ବର ୨୬ ତାରିଖରେ କଲିକତା ବାଗବଜାର ଗଙ୍ଗାତୀରରେ 'ଶ୍ରୀଗୌଡ଼ୀୟ ମଠ'ର ଭିତ୍ତି ସ୍ଥାପନ ଏବଂ ଏହି ସମୟରେ ଶ୍ରୀ ସଚ୍ଚିଦାନନ୍ଦ ମଠ ସ୍ଥାପନ, ନଭେମ୍ବର ମାସରେ କୁରୁକ୍ଷେତ୍ରରେ ସୂର୍ଯ୍ୟୋପରାଗ ସମୟରେ ଲକ୍ଷ ଲକ୍ଷ ଲୋକଙ୍କ ନିକଟରେ ଶ୍ରୀଚୈତନ୍ୟବାଣୀ, ଆଉ ନୂଆ ଶ୍ରୀ ବ୍ୟାସଗୌଡ଼ୀୟ ମଠ ପ୍ରତିଷ୍ଠା ଓ ଭାଗବତ ପ୍ରଦର୍ଶନୀ ଉନ୍ମୋଚନ କଲେ ।

୧୯୨୯ ସାଲର ଜାନୁୟାରୀ ମାସରେ କୃଷ୍ଣ ନଗରରେ 'ଏକାୟନ ମଠ' ପ୍ରତିଷ୍ଠା ଓ ଆମେରିକାର ଯୁକ୍ତ ପ୍ରଦେଶର ଓହିଓ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ମିଃ ଆଲବର୍ଟ, ଇ. ରିଚାର୍ଡ ନାମକ ମନୀଷୀଙ୍କ ନିକଟରେ ଖ୍ରୀଷ୍ଟଧର୍ମଠାରୁ ଗୌଡ଼ୀୟ ଧର୍ମର ବୈଶିଷ୍ଟ୍ୟ କଥା ଆଲୋଚନା କଲେ । ନୂତନ ଦିଲ୍ଲୀରେ 'ଦିଲ୍ଲୀଗୌଡ଼ୀୟ ମଠ' ସ୍ଥାପନ, ନୀଳାଚଳରେ ଗୌରସୁନ୍ଦରଙ୍କର ଚିହ୍ନ ଚଟକ ପର୍ବତ ଏବଂ ଆଲାଲନାଥ ମନ୍ଦିରରେ ସଂସ୍କାର କାର୍ଯ୍ୟ ଆରମ୍ଭ କଲେ । କଲିକତା ଆଲବର୍ଟ ହଲରେ ଗୌଡ଼ୀୟ ଦର୍ଶନ ସମ୍ବନ୍ଧରେ ଅଭିଭାଷଣ, ଶ୍ରୀଚୈତନ୍ୟପଦାଙ୍କିତ ନାନାତୀର୍ଥସ୍ଥଳୀ ଓ ମନ୍ଦିର ନିକଟରେ ଚୈତନ୍ୟପାଦପୀଠ ସ୍ଥାପନ କରି, ରାଜମହଲ, ଭାଗଲପୁର, ନାଲନ୍ଦା, ରାଜଗିରି, କାଶୀ, ଫୈଜାବାଦ, ଅଯୋଧ୍ୟା, ନୈମିଷାରଣ୍ୟ ସୀତାପୁର, ଲକ୍ଷ୍ନୌ ପ୍ରଭୃତି ସ୍ଥାନରେ ବିଜ୍ଞ ସମ୍ଭ୍ରାନ୍ତ ଓ ଶିକ୍ଷିତ ବ୍ୟକ୍ତିଙ୍କ ନିକଟରେ ହରି-କଥା ପ୍ରଚାର ଏବଂ ସନ୍ତାନସନ୍ତତିମାନଙ୍କୁ ଶୁଦ୍ଧଭକ୍ତି ଧର୍ମରେ ଦୀକ୍ଷିତ କଲେ ।

୧୯୩୦ ସାଲରେ ପ୍ରୟାଗ ପୂର୍ଣ୍ଣକୁମ୍ଭ ମେଳା ସମୟରେ ତ୍ରିବେଣୀ ସଙ୍ଗମରେ ଶ୍ରୀ ରାଧାଗୋବିନ୍ଦ ବିଗ୍ରହ ଓ ରୂପ-ଗୌଡ଼ୀୟ ମଠ ପ୍ରତିଷ୍ଠା କଲେ । ଫେବୃୟାରୀ ଠାରୁ ମାର୍ଚ୍ଚ ପର୍ଯ୍ୟନ୍ତ ଶ୍ରୀମାୟାପୁରରେ ଭାଗବତ ପ୍ରଦର୍ଶନୀର ଉଦ୍‌ବୋଧନ, ବାଗବଜାର ନବନିର୍ମିତ ଶ୍ରୀଗୌଡ଼ୀୟ ମଠରେ ପାରମାର୍ଥିକ ପ୍ରଦର୍ଶନୀ ଓ ଗୋଟିଏ ପାରମାର୍ଥିକ ସମ୍ମେଳନୀ ଉଦ୍ଘାଟନ କଲେ । ତତ୍ପରେ ଯାଜପୁର, କୂର୍ମକ୍ଷେତ୍ର, ସୀମାଚଳ, କଭୂର ଓ ମନ୍ଦାରଗିରି ପ୍ରଭୃତି ସ୍ଥାନରେ ଶ୍ରୀଚୈତନ୍ୟ ପାଦପୀଠ ସ୍ଥାପନ ଓ ସେହି ସେହି ସ୍ଥାନମାନଙ୍କରେ ଶ୍ରୀଚୈତନ୍ୟବାଣୀ ପ୍ରଚାର କଲେ ।

୧୯୩୧ ସାଲରେ ଶ୍ରୀଧାମ ମାୟାପୁରରେ ଠାକୁରଭକ୍ତି-ବିନୋଦ ଇନ୍‌ଷ୍ଟିଚ୍ୟୁଟ୍ ଉଦ୍ଘାଟନ, ନିତ୍ୟାନନ୍ଦ ପ୍ରଭୁଙ୍କ ପାର୍ଷଦ ମହେଶପଣ୍ଡିତଙ୍କ ପାଟର ସେବାଗ୍ରହଣ ଓ ଏଲାହାବାଦ ରୂପଗୌଡ଼ୀୟ ମଠରେ ଶ୍ରୀ ଗୌଡ଼ୀୟନାଥ ପ୍ରକାଶ, ମୟୂରଭଞ୍ଜ ମହାରାଜାଙ୍କର ଅନୁକୂଲ୍ୟ ଦ୍ୱାରା ସଂଗୃହୀତ ଭୂମିରେ ଶ୍ରୀପୁରୁଷୋତ୍ତମ ମଠର ଶ୍ରୀମନ୍ଦିରର ଭିତ୍ତି ସ୍ଥାପନ, କଟକରେ ହରିକଥା କୀର୍ତ୍ତନ, କଲିକତା ନଗରୀରେ ବିରାଟ ସତ୍‌ଶିକ୍ଷା ପ୍ରଦର୍ଶନୀର ପ୍ରକାଶ, ପ୍ରାଚ୍ୟ ଓ ପାଶ୍ଚାତ୍ୟ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ନିକଟ ଶ୍ରୀଚୈତନ୍ୟବାଣୀ ପ୍ରଚାର, ସିମ୍ଲା-ଶୈଳ ଓ ଭୋଜ ରାଜ୍ୟରେ ଶ୍ରୀଚୈତନ୍ୟବାଣୀ ପ୍ରଚାର, 'ଭାଗବତ' ନାମକ ହିନ୍ଦି ପାକ୍ଷିକ ପତ୍ରର ପ୍ରଚାରପ୍ରବର୍ତ୍ତନ, ବଡ଼ଲାଟ ଲର୍ଡ ଉଇଲିଙ୍ଗଡନ୍‌ଙ୍କ ନିକଟକୁ ଶ୍ରୀଗୌଡ଼ୀୟ ମଠର ପ୍ରଚାରବାର୍ତ୍ତା ପ୍ରେରଣ, ଦିଲ୍ଲୀରେ ଶ୍ରୀଚୈତନ୍ୟକଥା ପ୍ରଚାର, ମଜଫର ନଗରରେ ଓ ଶୁକଦେବଙ୍କ ଭାଗବତ କଥା କୀର୍ତ୍ତନସ୍ଥଳୀ ଶୁକରତଳରେ ଭାଗବତ କଥାକୀର୍ତ୍ତନ, ଢାକା ଗୌଡ଼ୀୟ ମଠରେ ଶ୍ରୀରାଧାଗୋବିନ୍ଦ ବିଗ୍ରହ ପ୍ରତିଷ୍ଠା ପ୍ରଭୃତି ଶ୍ରୀଚୈତନ୍ୟ ମନୋଽଭୀଷ୍ଟ ସେବାର ଆଦର୍ଶ ପ୍ରକାଶ କଲେ ।

୧୯୩୨ ସାଲରେ ମାନ୍ଦ୍ରାଜର ନାଗରିକଗଣ ସରସ୍ୱତୀ ଠାକୁରଙ୍କ ବିପୁଳ ସମ୍ବର୍ଦ୍ଧନା କରିଥିଲେ । ଠାକୁର ମାନ୍ଦ୍ରାଜ ଗୌଡ଼ୀୟମଠ ମନ୍ଦିରର ଭିତ୍ତି ସ୍ଥାପନ ଏବଂ ସେଠାରେ ହରିକଥା ପ୍ରଚାର କଲେ । ମାନ୍ଦ୍ରାଜ ମହାମାନ୍ୟ ଗଭର୍ଣ୍ଣର ମାନ୍ୟବର ଫ୍ରେଡ଼ରିକ୍ ଷ୍ଟାନ୍‌ଲି, ମାନ୍ଦ୍ରାଜ ଗୌଡ଼ୀୟ ମଠର ଶ୍ରୀକୃଷ୍ଣହଲ୍‌ର ଭିତ୍ତି ସ୍ଥାପନ କରି ସରସ୍ୱତୀ ଠାକୁରଙ୍କ ମୁଖରୁ ଶ୍ରୀଚୈତନ୍ୟବାଣୀ ଶ୍ରବଣ କଲେ । ମାନ୍ଦ୍ରାଜସିଟୀ କରପୋରେଶନ୍ (ମିଉନିସିପାଲିଟି) ସରସ୍ୱତୀ ଠାକୁରଙ୍କୁ ଗୋଟିଏ ଅଭିନନ୍ଦନ ପ୍ରଦାନ କଲେ । ତତ୍ପରେ ଶ୍ରୀଲ ସରସ୍ୱତୀ ଠାକୁର ଅନ୍ଧ୍ର ପ୍ରଦେଶର କୁବ୍ରକ-ମଣ୍ଡଳ (କୁବ୍ରକାମଣ୍ଡ) ଓ ମହୀଶୂରକୁ ଯାଇ ମହୀଶୂର ମହାରାଜାଙ୍କ ନିକଟରେ ହରିକଥା କୀର୍ତ୍ତନ କଲେ । ଉତ୍କଳ-ମଣ୍ଡଳରେ ଅବସ୍ଥାନ ସମୟରେ ଇଂରାଜୀ "ଶ୍ରୀକୃଷ୍ଣ-ଚୈତନ୍ୟ" ଗ୍ରନ୍ଥ 'ବକ୍ତ୍ରସନ୍ଦର୍ଭାର' ଇଂରାଜୀ ଅନୁବାଦ "ରାୟ ରାମାନନ୍ଦ" ନାମକ ଇଂରାଜୀ, ଗ୍ରନ୍ଥ ରଚନା ଓ ଶ୍ରୀଚୈତନ୍ୟ ଭାଗବତର ଗୌଡ଼ୀୟ ଭାଷ୍ୟ ପ୍ରଭୃତି ପ୍ରଣୟନ ଓ ପ୍ରଚାର କଲେ । ଉତ୍କଳର ପ୍ରଚାର କେନ୍ଦ୍ର କଟକରୁ ପାକ୍ଷିକ ପରମାର୍ଥୀ ପ୍ରକାଶିତ କରାଇଲେ ଓ ଆସାମୀ ଭାଷାରେ କୀର୍ତ୍ତନ ନାମକ ପାରମାର୍ଥିକ ମାସିକ ପତ୍ର ପ୍ରଚାର କରାଇଲେ । ତତ୍ପରେ ଊର୍ଜ୍ଜବ୍ରତ ସମୟରେ ବ୍ରଜମଣ୍ଡଳ ପରିକ୍ରମା, ରାଧା-କୁଣ୍ଡ ତଟରେ ଉପଦେଶାମୃତ ବ୍ୟାଖ୍ୟା, ଶ୍ରୀରୂପଗୌଡ଼ୀୟ ମଠର ଭିତ୍ତି ସ୍ଥାପନ ଓ ଢାକାରେ ସତ୍‌ଶିକ୍ଷା ପ୍ରଦର୍ଶନୀ ଉନ୍ମୋଚନ କଲେ ।

୧୯୩୩ ସାଲର ମାର୍ଚ୍ଚ ମାସରେ ୟୁରୋପରେ ଶ୍ରୀଚୈତନ୍ୟବାଣୀ ପ୍ରଚାର କରିବା ସକାଶେ କେତେକ ପ୍ରଚାରକଙ୍କୁ ପ୍ରେରଣ କଲେ ଏବଂ ମେ ମାସର ପ୍ରଥମଭାଗରେ ଲଣ୍ଡନରେ ଶ୍ରୀଗୌଡ଼ୀୟ ମଠ କାର୍ଯ୍ୟାଳୟ ସ୍ଥାପନ କରାଇଲେ । ତତ୍ପରେ ପାଟଣାରେ ସତ୍‌ଶିକ୍ଷା ପ୍ରଦର୍ଶନୀ, ଶ୍ରୀଲଜୀବ ଗୋସ୍ୱାମୀଙ୍କର ଭକ୍ତିସନ୍ଦର୍ଭର ବ୍ୟାଖ୍ୟା ଓ ବିବୃତ୍ତି-ସମାପନ, ଜର୍ମାନୀକୁ ପ୍ରଚାରକ ପ୍ରେରଣ ଓ କାଶୀରେ ପାରମାର୍ଥିକ ପ୍ରଦର୍ଶନୀ ପ୍ରକାଶ କଲେ ।

୧୯୩୪ ସାଲର ଜାନୁଆରୀ ୧୫ ତାରିଖରେ ଶ୍ରୀଗୌଡ଼ୀୟ ମଠକୁ ସ୍ୱାଧୀନ ତ୍ରିପୁରାର ମହାରାଜା ଆସି ଆଚାର୍ଯ୍ୟଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ଜ୍ଞାପନ କଲେ । ଶ୍ରୀଧାମ ମାୟାପୁରସ୍ଥ ଯୋଗ-ପୀଠରେ ନୂତନ ମନ୍ଦିରର ସ୍ଥାପନ । ଛତ୍ରଭୋଗରେ ଯୋଗ ପାଦପୀଠ ପ୍ରତିଷ୍ଠା, ଲର୍ଡ ଜେଟ୍‌ଲାଣ୍ଡଙ୍କର ସଭାପତିତ୍ୱରେ ଲଣ୍ଡନ ଗୌଡ଼ୀୟ ମିଶନ୍ ସୋସାଇଟିର ଉଦ୍ବୋଧନ-ପୁରୀରେ ଅନୁକ୍ଷଣ ହରିକଥା ପ୍ରଚାର, ଶ୍ରୀମାୟାପୁରସ୍ଥ ଯୋଗ-ପୀଠ ମନ୍ଦିରର ଭିତ୍ତିଖନନ ସମୟରେ ଅଧୋକ୍ଷଜ ବିଷ୍ଣୁ-ମୂର୍ତ୍ତିଙ୍କ ଆବିର୍ଭାବ । ଏଲାହାବାଦ ଶ୍ରୀରୂପଗୌଡ଼ୀୟ ମଠରେ ଶ୍ରୀଗୋପୀନାଥ ଜୀଉଙ୍କର ପ୍ରତିଷ୍ଠା ନବନିର୍ମିତ ଶ୍ରୀସଚ୍ଚିଦାନନ୍ଦ-ମଠ ମନ୍ଦିରରେ ବିଗ୍ରହପ୍ରତିଷ୍ଠା କରାଇଲେ । ନବ ପର୍ଯ୍ୟାୟରେ "Harmonist" ପାକ୍ଷିକ ପତ୍ରର ପ୍ରକାଶ, ମଥୁରାରେ କାର୍ତ୍ତିକବ୍ରତ ଉଦ୍‌ଯାପନ, ବ୍ରଜମଣ୍ଡଳର ସ୍ଥାନପରିଭ୍ରମଣ, ନୂଆଦିଲ୍ଲୀରେ ହରିକଥା ପ୍ରଚାର, ତେଲଗୁ ଓ ଇଂରାଜୀ ଭାଷାରେ "ଶ୍ରୀଚୈତନ୍ୟ ଶିକ୍ଷାମୃତ" ଓ "ଜୈବ ଧର୍ମ" ପ୍ରଚାର ପ୍ରଭୃତି ଶ୍ରୀଚୈତନ୍ୟଦେବଙ୍କ ମନୋଽଭୀଷ୍ଟ କର୍ମମାନ ସମ୍ପାଦନ କଲେ ।

୧୯୩୫ ସାଲର ଜାନୁୟାରୀ ୧୫ ତାରିଖରେ ବଙ୍ଗ ଦେଶର ମହାମାନ୍ୟ ଗଭର୍ଣ୍ଣର ସର୍ ଜନ୍ ଆଣ୍ଡରସନ ଗୌର ଜନ୍ମସ୍ଥାନ ଶ୍ରୀଧାମ ମାୟାପୁରକୁ ଆଗମନ କରି ସରସ୍ୱତୀ ଠାକୁରଙ୍କ ନିକଟରୁ ଶ୍ରୀଧାମ ମାୟାପୁରର ତଥ୍ୟଶ୍ରବଣ ଓ ସେଠାରେ ଗୋଟିଏ ଅଭିଭାଷଣ ପ୍ରଦାନ କଲେ । ଫେବୃୟାରୀ ୨୩ ରେ ପୁରୀର ଚଟକ ପର୍ବତରେ ପୁରୀମହାରାଜା ଗଜପତି ଶ୍ରୀଯୁକ୍ତ ରାମଚନ୍ଦ୍ର ଦେବ ମହୋଦୟଙ୍କ ସଭାପତିତ୍ୱରେ ଆଚାର୍ଯ୍ୟଙ୍କର ଏକଷଷ୍ଟିତମ ବର୍ଷ ପୂର୍ତ୍ତି ଉପଲକ୍ଷରେ ଗୋଟିଏ ବିରାଟ ସଭାର ଅଧିବେଶନ ହୋଇଥିଲା । ମହା-ପ୍ରଭୁଙ୍କର ଜନ୍ମୋତ୍ସବ ସମୟରେ ସ୍ୱାଧୀନ ତ୍ରିପୁରାଧିପତି

ଶ୍ରୀଧାମ ମାୟାପୁରକୁ ଆସି ଯୋଗପୀଠରେ ନବନିର୍ମିତ ମନ୍ଦିରର ଦ୍ୱାରୋଦ୍ଘାଟନ କଲେ । ଗୌଡ଼ୀୟ ମଠକୁ ବର୍ଦ୍ଧମାନାଧିପତି ମହାରାଜାଧିରାଜ ସର୍ ବିଜୟଚନ୍ଦ୍ର ମହତାବ୍ ଆସି ଆଚାର୍ଯ୍ୟଙ୍କ ବାଣୀ ଶ୍ରବଣ କରିଥିଲେ । ତତ୍ପରେ ଆଚାର୍ଯ୍ୟ ଢାକାର ଶ୍ରୀ ମାଧ୍ୱଗୌଡ଼ୀୟ ମଠର ନବନିର୍ମିତ ମନ୍ଦିରର ଭିତ୍ତି ସ୍ଥାପନ, ମୈମନ୍ସିଂହ, ଶ୍ରୀଜଗନ୍ନାଥ ଗୌଡ଼ୀୟମଠରେ ଶ୍ରୀବିଗ୍ରହ ପ୍ରତିଷ୍ଠା, ଗୟାରେ ଗୌଡ଼ୀୟମଠ ପ୍ରତିଷ୍ଠା, ବ୍ରହ୍ମ ଦେଶକୁ ପ୍ରଚାରକ ପ୍ରେରଣ, ଦାର୍ଜିଲିଙ୍ଗରେ ହରିକଥା ପ୍ରଚାର, ବୋମ୍ବାଇ ଗୌଡ଼ୀୟମଠରେ ଶ୍ରୀବିଗ୍ରହ ପ୍ରତିଷ୍ଠା, ରେଡ଼ିଓ ଯୋଗେ ସର୍ବତ୍ର ଶ୍ରୀଚୈତନ୍ୟବାଣୀ ପ୍ରଚାର, ଗୌଡ଼ୀୟମଠର ଉତ୍ସବ ସମୟରେ ଶ୍ରୀମଦ୍ଭାଗବତ ବ୍ୟାଖ୍ୟା, ବୃନ୍ଦାବନସ୍ଥ ଶ୍ରୀରାଧାକୁଣ୍ଡରେ ମାସାଧିକ କାଳ ବ୍ରତ ପାଳନ ଏବଂ ସେଠାରେ କୁଞ୍ଜବିହାରୀ ମଠ ଓ ବ୍ରଜସ୍ୱାନନ୍ଦ ସୁଖଦ କୁଞ୍ଜ ପ୍ରତିଷ୍ଠା, ଗୟା ଗୌଡ଼ୀୟ ମଠରେ ଶ୍ରୀବିଗ୍ରହ ପ୍ରତିଷ୍ଠା ଏବଂ ପାଟନା ଓ ପ୍ରୟାଗ ସ୍ଥାନ ପ୍ରଭୃତିରେ ହରିକଥା ପ୍ରଚାର କଲେ । ୧ । ୯ । ୩୫ ରେ ଭାଷାକୋଷ ଆଶ୍ରମ ପରିଦର୍ଶନ କଲେ ।

୧୯୩୬ ସାଲରେ ପ୍ରୟାଗରେ ପାରମାର୍ଥିକ ପ୍ରଦର୍ଶନୀର ଦ୍ୱାରୋଦ୍ଘାଟନ, ଠାକୁର ଭକ୍ତିବିନୋଦ ଇନ୍ସର୍ଟିଚ୍ୟୁଟ୍ ଓ ଦୈବବର୍ଣ୍ଣାଶ୍ରମ ସଙ୍ଘ ପ୍ରତିଷ୍ଠା, ସୁବର୍ଣ୍ଣବିହାର ଗୌଡ଼ୀୟ ମଠ, ସାର୍ବଭୌମ ଗୌଡ଼ୀୟ ମଠ ଓ ରୁଦ୍ରଦ୍ୱୀପ ଗୌଡ଼ୀୟ ମଠ ପ୍ରକାଶ, ରେଙ୍ଗୁନ ଗୌଡ଼ୀୟ ମଠରେ କାର୍ଯ୍ୟାଳୟ ସ୍ଥାପନ, ଲଣ୍ଡନରେ ଗୌରଜନ୍ମୋତ୍ସବ ବିଧାନ ଓ କଟକ ଶ୍ରୀସଚ୍ଚିଦାନନ୍ଦ ମଠରେ ପରମାର୍ଥୀ ଛାପାଖାନା ସ୍ଥାପନ କରିଥିଲେ । ଆସାମସ୍ଥ ସରଭୋଗ ଶ୍ରୀ ଗୌଡ଼ୀୟ ମଠରେ ଶ୍ରୀ ବିଗ୍ରହ ପ୍ରତିଷ୍ଠା, ଉତ୍କଳରେ ଶତାହବ୍ୟାପୀ କାର୍ତ୍ତିକୋତ୍ସବ, ବାଲିୟାଟି ଶ୍ରୀଗଦାଇ ଗୌରାଙ୍ଗ ମଠର ଦ୍ୱାରୋଦ୍ଘାଟନ ଓ ବିଗ୍ରହ ପ୍ରତିଷ୍ଠା, କୁରୁକ୍ଷେତ୍ରରେ ପ୍ରଦର୍ଶନୀ ଉଦ୍ଘାଟନ, ଦାର୍ଜିଲିଙ୍ଗ ଗୌଡ଼ୀୟ ମଠରେ ଶ୍ରୀ ବିଗ୍ରହ ପ୍ରତିଷ୍ଠା, ଉତ୍ତର ବଙ୍ଗରେ ହରିକଥାପ୍ରଚାର ଏବଂ ଶ୍ରୀଧାମ ବୃନ୍ଦାବନରେ ବ୍ରଜମଣ୍ଡଳର ସ୍ଥାନେ ସ୍ଥାନେ ଅନୁକ୍ଷଣ ହରି କଥା କୀର୍ତ୍ତନ ଦ୍ୱାରା ଜଗତରେ ଗୌରମନୋଭୀଷ୍ଟ ସାଧନ କଲେ । ୧୯୩୬ ସାଲର ନଭେମ୍ବର ମାସରେ ଶ୍ରୀନୀଳାଚଳ କ୍ଷେତ୍ରରେ ଶ୍ରୀଚଟକ ପର୍ବତରେ ଅବସ୍ଥାନ କରିଥିଲେ । ନଭେମ୍ବର ୧୯୩୬ରେ ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କର ବିପ୍ରଲମ୍ଭଲୀଳା ଉଦ୍ଦୀପକ ଶ୍ରୀ ଗୋବର୍ଦ୍ଧନାଭିନ୍ନ ଚଟକ ପର୍ବତରେ ଶ୍ରୀ ଗୋବର୍ଦ୍ଧନ ପୂଜା, ଅନ୍ନକୂଟ ମହାମହୋତ୍ସବର ବିପୁଳ ଆୟୋଜନ କଲେ । ଅନନ୍ତର କଲିକତା ଶ୍ରୀ ଗୌଡ଼ୀୟ ମଠରେ ଡିସେମ୍ବର ୧୯୩୬ରେ ଅସୁସ୍ଥ ହୋଇ ପହିଲା ଜାନୁଆରୀ ୧୯୩୭, ଗୌରାବ୍ଦ ୪୫୦ କୃଷ୍ଣ ପଞ୍ଚମୀରେ ଅପ୍ରକଟ ହୋଇଅଛନ୍ତି । ତାଙ୍କର ଚିଦାନନ୍ଦ ଦେହ ନବଦ୍ୱୀପ ଶ୍ରୀ ମାୟାପୁର ଧାମରେ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ଆବିର୍ଭାବ ପୀଠ ସଲଗ୍ନରେ ସମାଧିସ୍ଥ ହୋଇଅଛି ।

ସର୍ବପ୍ରକାର ଦୁଃସଙ୍ଗ, କପଟତା, କୁକର୍ମତା, ଛଳନା ଓ ଅନ୍ୟାଭିଳାଷ ପରିତ୍ୟାଗ କରି ଏକମାତ୍ର କୃଷ୍ଣେନ୍ଦ୍ରିୟ ତର୍ପଣମୟୀ ସେବାର ପରାକାଷ୍ଠାର କଥା ଏହି ଆଚାର୍ଯ୍ୟଙ୍କ ଚରିତ୍ର ନିତ୍ୟକାଳ ଶ୍ରୀଚନ୍ଦ୍ରମୂର୍ତ୍ତିରେ ପ୍ରଚାର କରୁଅଛି । ଯାବତୀୟ ଧର୍ମ ବ୍ୟବସାୟ, ଯାବତୀୟ ଭୋଗ ଓ ନଶ୍ୱର ତ୍ୟାଗବାଦ, ଚତୁର ସମନ୍ୱୟବାଦ, ବହୁରୂପ ମାୟାବାଦ ଏବଂ ପରମାର୍ଥ ରାଜ୍ୟର ଯାବତୀୟ ଛଳନା ଓ କୈତବ ଏହି ଆଚାର୍ଯ୍ୟଙ୍କର ପ୍ରଚାରଦ୍ୱାରା ସମ୍ପୂର୍ଣ୍ଣରୂପେ ଖଣ୍ଡିତ ହୋଇଅଛି । ଏହି ମହାତ୍ମା ସର୍ବପ୍ରଥମେ ପୃଥିବୀର ସର୍ବତ୍ର ଶ୍ରୀ ଚୈତନ୍ୟ ଦେବଙ୍କ ବାଣୀ ଶୁଦ୍ଧ ଓ ନିର୍ମଳରୂପେ ପ୍ରଚାର କରିଅଛନ୍ତି । ବର୍ତ୍ତମାନ ଯୁଗରେ ଏହି ମହାତ୍ମା ଗୌଡ଼ୀୟ ବୈଷ୍ଣବ ସମ୍ପ୍ରଦାୟର ଶୁଦ୍ଧ ରାଗାନୁଗ ଧର୍ମର ଏକମାତ୍ର ରକ୍ଷକରୂପେ ସ୍ୱୀକୃତ ସନ୍ଦର୍ଭ ଲେଖକ ମହାମହୋପଦେଶକ ସୁନ୍ଦରାନନ୍ଦ ବିଦ୍ୟାବିନୋଦ, ବି. ଏ. ସଚ୍ଚିଦାନନ୍ଦ ମଠ, କଟକ । ]

**ଶ୍ରୀମଦ୍ଭାଗବତ**—ସଂ. ବି ( ସମ୍ମାନାର୍ଥରେ 'ଭାଗବତ' ଶବ୍ଦ ପୂର୍ବରେ 'ଶ୍ରୀମତ୍' Śrimadbhāgabata ଶବ୍ଦଯୋଗ ଓ ସନ୍ଧି)—ପୂଜନୀୟ ଭାଗବତ ପୁରାଣ—The revered Purāṇa of Bhāgabata. [ ଦ୍ର—ଏହିପରି ଅନ୍ୟାନ୍ୟ ପୁରାଣ ଓ ଶାସ୍ତ୍ର ଆଦି ପୂର୍ବରେ ଶ୍ରୀମତ୍ ଶବ୍ଦ ଯୁକ୍ତ ହୋଇ ସନ୍ଧି ହୁଏ । ଯଥା—ଶ୍ରୀମଦ୍ରାମାୟଣ, ଶ୍ରୀମଦ୍ଭଗବଦ୍ଗୀତା, ଶ୍ରୀମନ୍ମହାଭାରତ, ଶ୍ରୀମଦଧ୍ୟାତ୍ମ ରାମାୟଣ ଇତ୍ୟାଦି । ]

**ଶ୍ରୀମନ୍ତ**—ଦେ. ବିଣ—ଶ୍ରୀମାନ୍ ୧ ( ଦେଖ )—Śrimān 1 ( See ) Śrimanta [ ଉ—ଶ୍ରୀମନ୍ତ ଲୋକ ଧନ ଦେଇଟି ଧର୍ମକୁ । ଶ୍ରୀମନ୍ତ ଶ୍ରୀମଂତ ଅଟନ୍ତି ନାଶ କରଣ ପାତକକୁ—କୃଷ୍ଣସିଂହ. ମହାଭାରତ. ଶାନ୍ତି । ]

**ଶ୍ରୀମନ୍ତ ସୌଦାଗର**—ଦେ. ବି ( ନାମ )—ବଙ୍ଗୀୟ କବିକଙ୍କଣଙ୍କ Śrimanta saudāgara ଚଣ୍ଡୀରେ ବର୍ଣ୍ଣିତ ମହାଜନ—Name of a merchant whose exploits have been mentioned in a Bengalee book Chandi by Kabikankaṇa. [ ଦ୍ର—ଏ ଧନପତି ସଉଦାଗରଙ୍କ ପୁତ୍ର ଥିଲେ । ଏହାଙ୍କ ପିତା ସିଂହଳ ରାଜାଙ୍କଦ୍ୱାରା କାରାରୁଦ୍ଧ ହୋଇଥିଲେ । ଏ ବାଣିଜ୍ୟ ଯାତ୍ରା କରି ଜାହାଜରେ ସିଂହଳକୁ ଯାଇ ରାଜାଙ୍କୁ ପ୍ରସନ୍ନ କରି ତାଙ୍କୁ ମୁକୁଳାଇ ଆଣିଥିଲେ । ]

**ଶ୍ରୀମନ୍ମନ୍ୟ**—ସଂ. ବିଣ. ପୁଂ ( ଶ୍ରୀମତ୍ + ମନ୍ ଧାତୁ = କର୍ତ୍ତୃ. ଯ )—ଯେ Śrimanmanya ଆପଣାକୁ ଶ୍ରୀମାନ୍ ବୋଲି ମନେ କରେ ( ଶ୍ରୀମନ୍ମନ୍ୟା—ସ୍ତ୍ରୀ ) ( ବିଶ୍ୱକୋଷ )—One who thinks himself blessed with prosperity, luck, grace etc.

**ଶ୍ରୀମନ୍ଦିର**—ସଂ. ବି—୧ । ଦେବ ମନ୍ଦିର—1. The temple of Śri mandira a Deity. ୨ । ତୀର୍ଥରେ ପ୍ରଧାନ ଦେବତାଙ୍କ ମନ୍ଦିର—2. The temple of the chief Deity

of a place. ଦେ. ବି—୧ । ପୁରୀର ଜଗନ୍ନାଥ ମନ୍ଦିର—1. The temple of Jagannātha at Puri. ୨ । କୌଣସି ପ୍ରତିଷ୍ଠିତ ଦେବତାଙ୍କ ଏକଇ ସଲଗ୍ନ ଏକାଧିକ ଘର ଘର ମନ୍ଦିରମାନଙ୍କ ( ମୁକ୍ତିମଣ୍ଡପ, ଜଗମୋହନ, ନାଟମନ୍ଦିର, ଭୋଗ ମଣ୍ଡପ ) ମଧ୍ୟରୁ ମୂଳ ମନ୍ଦିର ( ଯେଉଁ ମନ୍ଦିରରେ ଶ୍ରୀ ବିଗ୍ରହ ପ୍ରତିଷ୍ଠିତ )—2. The main temple of a series of connected temples (in which the idol is placed). ୩ । ( ବ୍ୟଙ୍ଗ୍ୟ ) ଶ୍ରୀଘର; ଜେଲଖାନା—3. Jail.

ଶ୍ରୀମନ୍ଦିର
श्रीमन्दिर

**ଶ୍ରୀ ମଲାପହା**—ସଂ. ବି ( ବୈଦ୍ୟକ )—ଧୂମ୍ରପତ୍ରା; ଧୂଆଁପତ୍ର; ତମାଖୁ ( ଵୈଦ୍ୟକୋଷ )—Tobacco.
Śri malāpahā

**ଶ୍ରୀ ମସ୍ତକ**—ସଂ. ବି (ବୈଦ୍ୟକ)—୧ । ରସୋନ; ରସୁଣ—1.Garlic. ୨ । ଲକ୍ଷ୍ମୀଙ୍କ ମସ୍ତକ—2. The head of Deity Lakshmī.
Śrī mastaka.

**ଶ୍ରୀମାନ୍**—ସଂ. ବିଣ. ପୁଂ ( ଶ୍ରୀ=ସମ୍ପତ୍ତି ସୌନ୍ଦର୍ଯ୍ୟ+ଅସ୍ତ୍ୟର୍ଥେ ମତୁ, ଶ୍ରୀମତ୍ ଏକବଚନର ଅନ୍ତ; ସଂସ୍କୃତ ଶ୍ରୀମତ୍ ଶବ୍ଦର ପୁଂଲିଙ୍ଗ )—୧ । ଭାଗ୍ୟବାନ୍—1. Fortunate. ୨ । ଶ୍ରୀଯୁକ୍ତ—2. Having Śrī; glorious. ୩ । ଐଶ୍ୱର୍ଯ୍ୟଶାଳୀ; ଧନୀ—3. Rich. ୪ । ସୁନ୍ଦର; ସୁଶ୍ରୀ—4. Beautiful. [ଦ୍ର—ଏହା ସମ୍ମାନସୂଚକ ଓ ସ୍ନେହଭାଜନମାନଙ୍କ ନାମ ପୂର୍ବରେ ଯୁକ୍ତ ହୁଏ । ଏହା ଅନ୍ୟ ଶବ୍ଦ ସଙ୍ଗେ ସମାସରେ ଯୁକ୍ତ ହେଲେ 'ଶ୍ରୀମତ୍' ରୂପ ହୁଏ ।
Śrīmān

ଯଥା—ଶ୍ରୀମଦ୍ଭାଗବତ, ଶ୍ରୀମନ୍ନାରାୟଣ, ଶ୍ରୀମଦ୍ଭୁବନ, ଶ୍ରୀମଦ୍ରାଧା, ଶ୍ରୀମଦ୍ରାଧାଗୋବିନ୍ଦ, ଶ୍ରୀମଦ୍ଗୁରୁଦେବ, ଶ୍ରୀମଦ୍ଲୋଚନ, ଶ୍ରୀମଦ୍ଗୀତା ଇତ୍ୟାଦି ।] ୫ । ପୁରୁଷଙ୍କ ନାମ ପୂର୍ବରେ ବ୍ୟବହୃତ ଶବ୍ଦ—5. A word-prefixed to the name of a male. ବି—୧ । ତିଳକବୃକ୍ଷ—1. Name of a tree. ୨ । ବିଷ୍ଣୁ—2. Bishṇu. ୩ । କୁବେର—3. The God guarding the wealth. ୪ । ଅଶ୍ୱତ୍ଥ ବୃକ୍ଷ—4. The religious fig tree. ୫ । ଶିବ—5. Siba. ଦେ. ବି—ଆପଣାର ଶିଷ୍ୟସ୍ଥାନୀୟ ବ୍ୟକ୍ତିର ନାମ ପୂର୍ବରେ ବ୍ୟବହାର କରିବା ଶବ୍ଦ—A word prefixed by elders to the names of youngsters.

ଶ୍ରୀମାନ
श्रीमान

**ଶ୍ରୀ ମୁଖ**—ସଂ. ବି—(ମ. ଗ. ଲୋ; ଶ୍ରୀଯୁକ୍ତ ମୁଖ)—୧ । ଶୋଭାଯୁକ୍ତ ମୁଖ—1. A beautiful face. ୨ । କାଳଚକ୍ରର ୭ମ ବର୍ଷ—2. The 7th year of the cycle of time. ଦେ. ବି—୧ । ରାଜା, ଦେବତା ଆଦିଙ୍କର ମୁଖ—1. The face of a king or Deity. ୨ । ଚିଠି ଲେଖିବା ମୁଦା ଲଫାପା ଉପରେ ଶିରୋଭାଗରେ ବା ଲଫାପା ଉପରେ ଲେଖାଯିବା ଶ୍ରୀ ଶବ୍ଦ—2. The word 'Śrī' written on the envelope of a letter. ୩ । ଚିଠି—3. Letter. [ଦ୍ର—ଏମନ୍ତ କହି ରାଜାଲୋକ । ଲେଖନ୍ତି ଦେଲେ ଶ୍ରୀମୁଖ—ଜଗନ୍ନାଥ. ଭାଗବତ ।] ୪ । ପୁରୀର ଜଗନ୍ନାଥ ମହାପ୍ରଭୁଙ୍କ ମୁଖରେ ଲାଗି ହେବା ପୁଷ୍ପ ରଚିତ ଅଳଙ୍କାର ବିଶେଷ—4. A graceful nosegay of flowers with which the face of the Deity Jagannātha ( at Puri ) is decked. ୫ । ଦୁଇ ବ୍ୟକ୍ତିଙ୍କ ମଧ୍ୟରେ ହେବା ବନ୍ଧୁତା—5. The friendship between two persons. [ଦ୍ର—ପରସ୍ପରକୁ ଜଗନ୍ନାଥଙ୍କର ଲାଗି ଶ୍ରୀମୁଖ ଦିଆ ଦେଇ ହୋଇ ଏ ବନ୍ଧୁତା ବସାଯାଏ ଓ ପରସ୍ପର ପରସ୍ପରକୁ ଶ୍ରୀମୁଖ ଡାକନ୍ତି ।]
Śrī mukha

**ଶ୍ରୀ ମାୟାପୁର**—ଦେ. ବି ( ନାମ )—ବଙ୍ଗଦେଶର ନଦୀୟା ଜିଲ୍ଲାରେ ଗଙ୍ଗାର ପୂର୍ବ ପାରରେ ଶ୍ରୀ ଗୌରାଙ୍ଗ ଦେବଙ୍କ ଜନ୍ମସ୍ଥାନ—Name of the birth place of Chaitanya. [ଦ୍ର—ଏହା ବର୍ତ୍ତମାନ ନବଦ୍ୱୀପ ସହରର ବା ସ୍ଥଳର ଅପର ପାରରେ ଅବସ୍ଥିତ । 'ଊର୍ଦ୍ଧ୍ୱାମ୍ନାୟ ମହାତନ୍ତ୍ର', 'କାପିଳ ତନ୍ତ୍ର', 'ବ୍ରହ୍ମଯାମଳ', 'ଭବିଷ୍ୟ ପୁରାଣ ବ୍ରହ୍ମଖଣ୍ଡ', ଶ୍ରୀଲ ପ୍ରବୋଧାନନ୍ଦ ସରସ୍ୱତୀଙ୍କର ନବଦ୍ୱୀପଶତକ ଏବଂ ଭକ୍ତିରତ୍ନାକର ଗ୍ରନ୍ଥରେ ଶ୍ରୀମାୟାପୁରର କଥା ଉଲ୍ଲିଖିତ ଅଛି । ଯଥା—
Śrī māyāpura
মায়াপুর
मायापुर

ଭୂମିଷ୍ଠ ହେବାଠାରୁ ପ୍ରଥମ ଚବିଶ ବର୍ଷ ଶ୍ରୀଚୈତନ୍ୟ ଶ୍ରୀ ମାୟାପୁରରେ ଅବସ୍ଥାନ କରି ଚବିଶରେ ସନ୍ନ୍ୟାସ ଗ୍ରହଣ କରି ପୁରୀରେ ଆସି ବାସ କଲେ ଓ ଦକ୍ଷିଣ ଦେଶରେ ବୈଷ୍ଣବ ଧର୍ମ ସର୍ବତ୍ର ପ୍ରଚାର କଲେ ।

ବ୍ରଜରେ ଯେପରି ଶ୍ରୀ ଗୋକୁଳ, ନବଦ୍ୱୀପରେ ସେହିପରି ଶ୍ରୀ ମାୟାପୁର । ଶ୍ରୀ ମାୟାପୁର—ଶ୍ରୀ ନବଦ୍ୱୀପ ଧାମର ମହାଯୋଗ ପୀଠ, ଶ୍ରୀ ନବଦ୍ୱୀପ ଧାମର ପରିଧି ଷୋଳ କୋଶ, ଧାମଟି ଅଷ୍ଟଦଳ ପଦ୍ମର ଆକାର । ଅଷ୍ଟଦଳରେ ଅଷ୍ଟଦ୍ୱୀପ ଓ ମଧ୍ୟଭାଗରେ କର୍ଣ୍ଣିକାର । ମଧ୍ୟଭାଗରେ ଅନ୍ତର୍ଦ୍ୱୀପ, ଅନ୍ତର୍ଦ୍ୱୀପର ମଧ୍ୟସ୍ଥଳରେ ଶ୍ରୀ ମାୟାପୁର, ଶ୍ରୀ ମାୟାପୁରର ମଧ୍ୟଭାଗରେ ମହାଯୋଗ ପୀଠ ରୂପ ଶ୍ରୀ ଜଗନ୍ନାଥ ମିଶ୍ରଙ୍କର ମନ୍ଦିର ।

ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କ ସମୟରେ ଏହି ନବଦ୍ୱୀପ ମଧ୍ୟରେ ଅନେକ କ୍ଷୁଦ୍ର କ୍ଷୁଦ୍ର ଉପଗ୍ରାମ ବା ପଲ୍ଲୀ ଅବସ୍ଥିତ ଥିଲା । (୧) ଅନ୍ତର୍ଦ୍ୱୀପ (୨) ସୀମନ୍ତ ଦ୍ୱୀପ (୩) ଗୋଦ୍ରୁମ ଦ୍ୱୀପ ଓ (୪) ମଧ୍ୟ ଦ୍ୱୀପ—ଏହି ଚାରିଗୋଟି ଦ୍ୱୀପ ଭାଗୀରଥୀର ପୂର୍ବ ପାଖରେ, ଆଉ (୧) କୋଲଦ୍ୱୀପ (୨) ଋତୁଦ୍ୱୀପ (୩) ଜହ୍ନୁଦ୍ୱୀପ (୪) ମୋଦଦ୍ରୁମ ଦ୍ୱୀପ ଓ (୫) ରୁଦ୍ରଦ୍ୱୀପ ଏହି ପାଞ୍ଚଗୋଟି ଭାଗୀରଥୀର ପଶ୍ଚିମ ପାଖରେ ଅବସ୍ଥିତ ଥିଲା । [ଭକ୍ତିରତ୍ନାକର ୮ମ ତରଙ୍ଗ ଦ୍ରଷ୍ଟବ୍ୟ ।]

ଶ୍ରୀନବାସାଚାର୍ଯ୍ୟଙ୍କର ପରିକ୍ରମା ସମୟରେ ନବଦ୍ୱୀପରେ ଅନେକ ଗ୍ରାମ ଲୁପ୍ତ ଓ ନାନାଭାବେ ବିକୃତ ହୋଇଥିଲା ।

ଶ୍ରୀ ମାୟାପୁର ଗ୍ରାମର ନାମ ମଧ୍ୟ ସମୟରେ ଅଶିକ୍ଷିତ ବ୍ୟକ୍ତିମାନଙ୍କ ଦ୍ୱାରା ବିକୃତ ଓ ସାଧାରଣଙ୍କର ଅଜ୍ଞାତ ହୋଇ ପଡ଼ିଥିଲା । ପ୍ରାୟ ୨୫୦ ବର୍ଷ ପୂର୍ବେ ଅବିଭକ୍ତ ତଦାନୀନ୍ତନ ବୈଷ୍ଣବ ସମାଜରେ ଅବିସମ୍ବାଦିତରୂପେ 'ସିଦ୍ଧ ମହାଜନ' ବୋଲି ସ୍ୱୀକୃତ ବୈଷ୍ଣବ ସାର୍ବଭୌମ ଶ୍ରୀଲ ଜଗନ୍ନାଥ ଦାସ ବାବାଜୀ ମହାରାଜଙ୍କର ନିର୍ଦ୍ଦେଶମତେ ଶ୍ରୀଲ ଭକ୍ତିବିନୋଦ ଠାକୁର ଶ୍ରୀଚୈତନ୍ୟଦେବଙ୍କର ଲୁପ୍ତ ଜନ୍ମ-ସ୍ଥାନ ଶ୍ରୀଧାମ ମାୟାପୁରକୁ ପୁନରାୟ ଉଦ୍ଧାର ଓ ପ୍ରଚାର କରିଥିଲେ । ବର୍ତ୍ତମାନ ସୁଦ୍ଧା ଶ୍ରୀ ମାୟାପୁରର ଅନତିଦୂରରେ ଭୃଦକାଜର ସମାଧି ଓ ଏହି ସମାଧି ଉପରେ ୪୫୦ ବର୍ଷ ପୂର୍ବର ଗୋଲୋକଗଞ୍ଜା ବୃକ୍ଷ ବିରାଜିତ ଅଛି ।

ହଣ୍ଟର ସାହେବ ଲେଖିଅଛନ୍ତି :—

Nadia (Nabadwipa), the ancient capital of Nadia district and the residence of Laxman Sen. According to local legend the town was founded in 1063 by Laxman Sen. Here in the end of the 15th century was born the Great Reformer Chaitanya (Hunter's Imperial Gazetter 1880). "ନଦୀୟା (ନବଦ୍ୱୀପ) ଜିଲ୍ଲାର ପ୍ରାଚୀନ ରାଜଧାନୀ ଏବଂ ଲକ୍ଷ୍ମଣସେନଙ୍କର ବାସସ୍ଥଳୀ । ସ୍ଥାନୀୟ କିମ୍ବଦନ୍ତୀ ଅନୁସାରେ ୧୦୬୩ ଖ୍ରୀଷ୍ଟାବ୍ଦରେ ସେହି ନଗର ଲକ୍ଷ୍ମଣସେନଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ୧୫ଶ ଶତାବ୍ଦୀର ଶେଷ ଭାଗରେ ଏହି ସ୍ଥାନରେ ସୁପ୍ରସିଦ୍ଧ ଧର୍ମପ୍ରଚାରକ ଶ୍ରୀଚୈତନ୍ୟଦେବ ଜନ୍ମଗ୍ରହଣ କରିଥିଲେ ।"

ଲଣ୍ଡନର 'ବ୍ରିଟିଶ୍ ମିଉଜିୟମ୍' ଏବଂ 'ଆଡ୍‌ମିରାଲ୍‌ଟି ଭବନ'ରେ ସଂରକ୍ଷିତ ଦୁଇଟି ମାନଚିତ୍ର ମଧ୍ୟ ଜଲଙ୍ଗୀ ନଦୀର ଉତ୍ତରାଂଶରେ ଓ ଭାଗୀରଥୀର ପୂର୍ବାଂଶରେ ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ନବଦ୍ୱୀପର ତାତ୍କାଳିକ ସ୍ଥିତି ବିଷୟରେ ସାକ୍ଷ୍ୟ ପ୍ରଦାନ କରୁଅଛି । ୧୯୩୪ ସାଲ ଜୁନ୍ ୧୩ ତାରିଖରେ ଶ୍ରୀଧାମ ମାୟାପୁର ଯୋଗପୀଠର ନବନିର୍ମିତ ମନ୍ଦିରର ଭିତ୍ତି ଖନନ ସମୟରେ ଚତୁର୍ଭୁଜ 'ଅଧୋକ୍ଷଜ' ବିଷ୍ଣୁମୂର୍ତ୍ତି ଓ ତତ୍ସହ କତିପୟ ଭଗ୍ନମୃତ୍ପାତ୍ର ମିଳିଅଛି । ଉକ୍ତ ବିଷ୍ଣୁମୂର୍ତ୍ତି ଶ୍ରୀଜଗନ୍ନାଥ ମିଶ୍ରଙ୍କର ପୂଜିତ ଓ ଗୌରାଙ୍ଗଙ୍କର ଗୃହଦେବତା ।

ତ୍ରିପୁରା ରାଜ୍ୟର ଅଧୀଶ୍ୱର ପଞ୍ଚଶ୍ରୀକ ବୀରଚନ୍ଦ୍ର ଦେବବର୍ମ ମାଣିକ୍ୟ, ତତ୍ପରେ ତାହାଙ୍କର ପୁତ୍ର ମହାରାଜ ରାଧାକିଶୋର ଦେବବର୍ମ ମାଣିକ୍ୟ, ତସ୍ୟ ପୁତ୍ର ମହାରାଜ ବୀରେନ୍ଦ୍ରକିଶୋର ଦେବବର୍ମ ମାଣିକ୍ୟ ଏବଂ ତାହାଙ୍କର ତନୟ ମହାରାଜ ସର୍ ଶ୍ରୀ ବୀରବିକ୍ରମ କିଶୋର ଦେବବର୍ମ ମାଣିକ୍ୟ ବାହାଦୁର K.C.S.I ଶ୍ରୀ ନବଦ୍ୱୀପ ଧାମ ପ୍ରଚାରିଣୀ ସଭାର ସଭାପତିଙ୍କ ଆସନରେ ସମାସୀନ ହୋଇ ଆସିଅଛନ୍ତି । ଏହି ସଭାର କାର୍ଯ୍ୟକାରୀ ସମିତିର ସଭାପତି ଥିଲେ—ପରଲୋକଗତ ଦିନାଜପୁରାଧିପତି ମହାରାଜ ବାହାଦୁର ମାନ୍ୟବର ଗିରିଜାନାଥ ରାୟ ଭକ୍ତ୍ୟର୍ଣ୍ଣବ; ଓ ବଙ୍ଗୀୟ ସାହିତ୍ୟ ପରିଷଦର ରାୟ ଯତୀନ୍ଦ୍ରନାଥ ଚୌଧୁରୀ, ଏମ୍. ଏ., ବି. ଏଲ୍, ଓ ଶ୍ରୀବଣ୍ଡ ଭକ୍ତିଭୂଷଣ ମହାଶୟ ଦ୍ୱୟ ଏହି ସଭାର ସହକାରୀ ସମ୍ପାଦକ ଥିଲେ । ମହାମହୋପାଧ୍ୟାୟ ପଣ୍ଡିତ ଅଜିତନାଥ ନ୍ୟାୟରତ୍ନ ମହାଶୟ, ପଣ୍ଡିତ ଶ୍ରୀ ଶ୍ୟାମଲାଲ ଗୋସ୍ୱାମୀ, ସ୍ୱର୍ଗୀମଗତ ଚ[illegible]ନାଥ ଗୋସ୍ୱାମୀ, ରାଧିକାନାଥ ଗୋସ୍ୱାମୀ, ଜୟଗୋପାଳ ଗୋସ୍ୱାମୀ, ମାନନୀୟ ବିଚାରପତି ସର୍ ଗୁରୁଦାସ ବନ୍ଦ୍ୟୋପାଧ୍ୟାୟ, ସଂସ୍କୃତ କଲେଜର ମହାମହୋପାଧ୍ୟାୟ ସତୀଶଚନ୍ଦ୍ର ବିଦ୍ୟାଭୂଷଣ, ବୃନ୍ଦାବନର ଶ୍ରୀ ମଧୁସୂଦନ ଗୋସ୍ୱାମୀ, ରାଜର୍ଷି ବନମାଳୀ ରାୟ ଭକ୍ତିଭୂଷଣ, ରାୟ ବାହାଦୁର ମହେନ୍ଦ୍ରନାଥ ଭଟ୍ଟାଚାର୍ଯ୍ୟ ବିଦ୍ୟାରଣ୍ୟ, ଏମ୍. ଏ., ବି. ଏଲ୍, ଐତିହାସିକ ରାୟ ମନୋମୋହନ ଚକ୍ରବର୍ତ୍ତୀ ବାହାଦୁର, କୃଷ୍ଣନଗରର ଉକିଲ ତାରାପଦ ବନ୍ଦ୍ୟୋପାଧ୍ୟାୟ, ଶାନ୍ତିପୁର ନିବାସୀ ସୁବିଜ୍ଞ ମୌଲବି ମୋଜାମ୍ମେଲ ହକ୍ ସାହେବ, ଶ୍ରୀଯୁକ୍ତ ରାୟସାହେବ ନଗେନ୍ଦ୍ରନାଥ ବସୁ ପ୍ରାଚ୍ୟବିଦ୍ୟାମହାର୍ଣ୍ଣବ, ରାୟବାହାଦୁର ଶ୍ରୀଯୁକ୍ତ ରମାପ୍ରସାଦ ଚନ୍ଦ, ରାୟ ବାହାଦୁର ଡାକ୍ତର ଶ୍ରୀଯୁକ୍ତ ଦୀନେଶଚନ୍ଦ୍ର ସେନ ପ୍ରଭୃତି ଅସଂଖ୍ୟ ନିରପେକ୍ଷ ବ୍ୟକ୍ତି ଏବଂ ଗୌଡ଼ମଣ୍ଡଳ, କ୍ଷେତ୍ରମଣ୍ଡଳ ଓ ବ୍ରଜ ମଣ୍ଡଳର ତଦାନୀନ୍ତନ ସମସ୍ତ ପ୍ରସିଦ୍ଧ ନିରପେକ୍ଷ ବ୍ୟକ୍ତି ଏହି ସ୍ଥାନକୁହିଁ ଶ୍ରୀଚୈତନ୍ୟଦେବଙ୍କ ଜନ୍ମସ୍ଥାନ ବୋଲି ସ୍ୱୀକାର କରି ଅଛନ୍ତି ଓ କରୁଅଛନ୍ତି ।

## ମାୟାପୁରର ଦ୍ରଷ୍ଟବ୍ୟ ସ୍ଥାନସମୂହ :—

(କ) ଯୋଗପୀଠ ବା ଶ୍ରୀମନ୍ମହାପ୍ରଭୁଙ୍କ ଆବିର୍ଭାବସ୍ଥଳୀ, (ଖ) ଶ୍ରୀ ନୃସିଂହଦେବଙ୍କ ମନ୍ଦିର, (ଗ) ଶ୍ରୀ କ୍ଷେତ୍ରପାଳ ଶିବ, (ଘ) ମାଧାଇର ଘାଟ, (ଙ) ବାରକୋଣା ଘାଟ, (ଚ) ନାଗରିଆ ଘାଟ, (ଛ) ଗଙ୍ଗାନଗର, (ଜ) ଖୋଲଭଙ୍ଗାର ଡଙ୍ଗା, (ଝ) ଶ୍ରୀବାସଅଙ୍ଗନ, (ଞ) ଅଦ୍ୱୈତ ସଭା, (ଟ) ଚନ୍ଦ୍ରଶେଖର ଭବନ, (ଠ) ଶ୍ରୀଚୈତନ୍ୟମଠ (ବିଶ୍ୱବିଶ୍ରୁତ ଶ୍ରୀ ଗୌଡ଼ୀୟମଠର ମୂଳମଠ), (ଡ) ଊନବିଂଶ ଚୂଡ଼ାବିଶିଷ୍ଟ ମନ୍ଦିର, (ଢ) ପରବିଦ୍ୟାତୀର୍ଥ ବା ସାରସ୍ୱତତୀର୍ଥ (ଣ) ପୃଥୁକୁଣ୍ଡ ବା ବଲ୍ଲାଲଦିଘି, (ତ) ବଲ୍ଲାଲ ଢିବି, (ଥ) ଶ୍ରୀଧରଅଙ୍ଗନ, (ଦ) ଶ୍ରୀମୁରାରି ଗୁପ୍ତଙ୍କର ଭବନ, (ଧ) ଠାକୁର ଭକ୍ତିବିନୋଦ ଇନ୍‌ଷ୍ଟିଚ୍ୟୁଟ୍, (ନ) ଭକ୍ତିବିନୋଦ-ଅନୁକୂଳ କୃଷ୍ଣାନୁଶୀଳନାଗାର ପ୍ରଭୃତି ଶ୍ରୀଧାମମାୟାପୁରରେ ବିଦ୍ୟମାନ ।

## ଅନ୍ୟାନ୍ୟ ଜ୍ଞାତବ୍ୟ ବିଷୟ

ଶ୍ରୀଧାମ ମାୟାପୁରର ଦର୍ଶନାର୍ଥୀମାନଙ୍କ ଅବସ୍ଥାନ ସକାଶେ ଶ୍ରୀଧାମ ମାୟାପୁରରେ ଚିନ୍ତାମଣି ଧର୍ମଶାଳା, ଇନ୍ଦ୍ରନାରାୟଣ ଧର୍ମଶାଳା, ଭକ୍ତି ସୁହୃଦ୍ ଭବନ, ଭକ୍ତିବିଜୟ ଭବନ,

ହରପ୍ରସାଦ ଧର୍ମଶାଳା, ତୀର୍ଥକୁଟୀର, ଭାରତୀ କୁଟୀର ପ୍ରଭୃତି ସ୍ଥାନଗୁଡ଼ିକ ପ୍ରତିଷ୍ଠିତ ହୋଇଅଛି । ଏହି ସ୍ଥାନର ଜଳବାୟୁ ଅତ୍ୟନ୍ତ ସ୍ୱାସ୍ଥ୍ୟପ୍ରଦ ଓ ମନୋରମ । ଏଠାରେ ଠାକୁର ଭକ୍ତି ବିନୋଦ ଇନ୍‌ଷ୍ଟିଚ୍ୟୁଟ୍ ନାମକ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପ୍ରାଚୀନ ଆଶ୍ରମ ପରି ଶିକ୍ଷା ଓ ସାଧନା ହୋଇ ଥାଏ । ସତ୍ତ୍ୱ ତ ପରାବିଦ୍ୟାପୀଠରେ ଉକ୍ତ ବିଷୟରେ ନାନାପ୍ରକାର ଉପାଧି ପରୀକ୍ଷା ଗୃହୀତ ହୋଇଥାଏ । ଶ୍ରୀ ମାୟାପୁରରୁ ବଙ୍ଗଭାଷାରେ ୧୧ ବର୍ଷ ହେଲା ଏକମାତ୍ର ପାରମାର୍ଥିକ ଦୈନିକ ପତ୍ରିକା 'ନଦୀୟା ପ୍ରକାଶ' ନିୟମିତ ଭାବେ ପ୍ରକାଶିତ ହେଉଅଛି । ଏହି ସ୍ଥାନରେ କୌଣସି ମଦ୍ୟ, ମାଂସ ବା ଧର୍ମ ବ୍ୟବସାୟୀର ଚେଷ୍ଟା ନାହିଁ । ଶ୍ରୀଚୈତନ୍ୟମହାପ୍ରଭୁଙ୍କର ପ୍ରଚାରିତ ଶୁଦ୍ଧ ଭକ୍ତି ଧର୍ମପ୍ରଚାର ଏବଂ ତତ୍ପରଧରେ ଶ୍ରୀଧାମରେ ଏକାନ୍ତ ସେବା ସଦାଶେଷେ ଏହି ସ୍ଥାନରେ ନିଷ୍କପଟ ସ୍ୱାର୍ଥପର ଲୋକାଭାବ ମହାପୁରୁଷମାନଙ୍କର ଅନୁଗତ୍ୟରେ ଭଗବତ୍ ସେବା କାର୍ଯ୍ୟାଦି ହୋଇଥାଏ । ପ୍ରତିବର୍ଷ ମାଘ ତ୍ରୟୋଦଶୀ ତିଥିରେ ଶ୍ରୀ ନିତ୍ୟାନନ୍ଦ ପ୍ରଭୁଙ୍କର ଜନ୍ମୋତ୍ସବ ଉପଲକ୍ଷରେ ଦଶସହସ୍ରବ୍ୟାପୀ ଅହୋରାତ୍ର ଶ୍ରୀକୃଷ୍ଣ ନାମ ସଙ୍କୀର୍ତ୍ତନଯଜ୍ଞ ହୁଏ ଓ ମହାପ୍ରସାଦ ବିତରଣ ହୁଏ ।

ଫାଲ୍‌ଗୁନ ପୂର୍ଣ୍ଣିମାରେ ଶ୍ରୀଚୈତନ୍ୟମହାପ୍ରଭୁଙ୍କର ଆବିର୍ଭାବ ତିଥିର ୧୦ଦିନ ପୂର୍ବରୁ ଆରମ୍ଭ କରି ନଅଦିନ କାଳ ଶ୍ରୀ ଚୈତନ୍ୟ ମଠର ସେବକ ସମ୍ପ୍ରଦାୟର ଆନୁଗତ୍ୟରେ ବହୁ ଲୋକ ବିରାଟ ସଙ୍କୀର୍ତ୍ତନ ଶୋଭାଯାତ୍ରା ସହିତ ନବଦ୍ୱୀପର ନଅଟି ଭିନ୍ନ ଦ୍ୱୀପ ପରିକ୍ରମା କରନ୍ତି । ଫାଲ୍‌ଗୁନ ପୂର୍ଣ୍ଣିମାଠାରୁ ପ୍ରାୟ ୧୨।୧୩ ଦିନ ସମାଗତ ଯାତ୍ରୀମାନଙ୍କୁ ମହାପ୍ରସାଦ ବିତରିତ ହୋଇଥାଏ । ସନ୍ଦର୍ଭ ଲେଖକ ପଣ୍ଡିତ ଶ୍ରୀ କୃଷ୍ଣକାନ୍ତ ଭକ୍ତିଶାସ୍ତ୍ରୀ ସଚ୍ଚିଦାନନ୍ଦ ମଠ—କଟକ । ]

**ଶ୍ରୀମୁଖ** - ସଂ. ବି.—(ମ. ପ. ବ୍ରୀ; ଶ୍ରୀଯୁକ୍ତ ମୁଖ )—ପ୍ରତିମା ଦେବ ପ୍ରତିମା Srimukha ବା ରାଜାଙ୍କ ମୁହଁ—The face of an idol or king.
ଶ୍ରୀମୁଖ ଶ୍ରୀମୁଖ

**ଶ୍ରୀମୁଖ ପଖଳା**—ଦେ. ବି—ରାଜା ଓ ଦେବତାମାନଙ୍କର ସକାଳୁ ଶଯ୍ୟାରୁ Śrimukha pakhalā ଉଠିବା ପରେ ମୁହଁ ଧୋଇବା କାର୍ଯ୍ୟ— The dailyrite of washing of the face after rising from sleep in the morning (said of kings and Deities).
ଶ୍ରୀମୁଖ ଧୋନା ଶ୍ରୀମାନକା ମୁଁହ ଧୋନା

**ଶ୍ରୀମୁଖ ସିଂହା(ଶୃଙ୍ଗା)ରୀ ସେବକ**—ଦେ. ବି—ଶ୍ରୀ ଜଗନ୍ନାଥଙ୍କ ସେବାକାର୍ଯ୍ୟ Śrimukha simha(ghā)ri sebaka ବିଶେଷ—A class of attendants of the Deity Jagannātha at Puri who attend to the toilet of the idols. [ଦ୍ର—ଏ ଶ୍ରୀମୁଖ ଧୋଇବେ, ଖଡ଼ିଲାଗି କରିବେ, ବନକଲାଗି କରିବେ ଏବଂ ନେତ୍ରୋତ୍ସବ ଯାତ୍ରା ବେଳେ କଳା ଡୋଳା ଦେବେ ଇତ୍ୟାଦି—ଭଗବାନ୍ ପ୍ରାଚୀନ ଉତ୍କଳ । ]
ଶ୍ରୀମୁଖ ବେଶକାରୀ ସେବକ ଶ୍ରୀମୁଖ ବେଶକାରୀ ସେବକ

**ଶ୍ରୀ ମୂର୍ତ୍ତି**—ସ. ବି (ମ. ପ. ବ୍ରୀ, ଶ୍ରୀଯୁକ୍ତ ମୂର୍ତ୍ତି)—୧ । ଦେବ ବିଗ୍ରହ— Śri murtti 1. The image of a Deity. [ଦ୍ର—ଭାଗବତ ୧୧ଶ ସ୍କନ୍ଧରେ ଅଷ୍ଟବିଧ ଶ୍ରୀମୂର୍ତ୍ତିର ଉଦ୍ଦେଶ ଅଛି, ଯଥା—ଶୈଳୀ, ଦାରୁମୟୀ, ଲୌହୀ, ଲେପ୍ୟା, ଲେଖ୍ୟା, ସୈକତା, ମନୋମୟୀ ଓ ମଣିମୟୀ । ] ୨ । ବିଷ୍ଣୁ ପ୍ରତିମା —2. The image of Bishnu. ୩ । (ସ୍ତ୍ରୀ ତତ୍) ଲକ୍ଷ୍ମୀଙ୍କ ପ୍ରତିମା—3. An image of Goddess Lakshmi.

**ଶ୍ରୀମୂର୍ତ୍ତି ଦର୍ଶନ**—ସ. ବି ( ଷଷ୍ଠୀ ତତ୍ )—ତୀର୍ଥସ୍ଥ ଦେବବିଗ୍ରହଙ୍କୁ ଭକ୍ତି- Śrimurtti darśana ପୂର୍ବକ ଦେଖିବା—Paying visit to the image of a Deity.

**ଶ୍ରୀଯୁକ୍ତ(ତ)**—ସ. ବିଣ ( କର୍ମ୍ମ ତତ୍; ଶ୍ରୀ ଦ୍ୱାରା ଯୁକ୍ତ, ଯୁତ )—୧ । Śrijukta(ta) ଶ୍ରୀମାନ୍; ଲକ୍ଷ୍ମୀବାନ୍; ଭାଗ୍ୟବାନ୍—1. Possessed of Śri; glorious; beautiful; prosperous; fortunate. ୨ । ଶୋଭାସମ୍ପନ୍ନ— 2 Graceful; beautiful. ଦେ. ବି—ମାନାର୍ହ ଜୀବିତ ବ୍ୟକ୍ତିମାନଙ୍କ ନାମ ପୂର୍ବରେ ବ୍ୟବହୃତ ବିଶେଷଣ— An epithet prefixed to the name of a living respectable person. [ଦ୍ର—ରାଜା ଓ ଗୁରୁଜନଙ୍କ ନାମ ପୂର୍ବରେ ଶ୍ରୀଯୁକ୍ତ ବସେ । ପ୍ରଜା ଓ ଶିଷ୍ୟାଦିଙ୍କ ନାମ ପୂର୍ବରେ ଶ୍ରୀମାନ୍ ବସେ । ]
(ଶ୍ରୀଯୁକ୍ତା[ତା]—ସ୍ତ୍ରୀ)
ଶ୍ରୀଯୁକ୍ତ ଶ୍ରୀଯୁକ୍ତ

**ଶ୍ରୀରଙ୍ଗ**—ସ. ବି ( ଶ୍ରୀ=ଲକ୍ଷ୍ମୀ+ରନ୍ଜ୍ ଧାତୁ=ମୁଗ୍ଧ କରିବା; Śriranga ରଞ୍ଜିତ କରିବା+କର୍ତ୍ତୃ. ଅ; ଯେ ଲକ୍ଷ୍ମୀଙ୍କୁ ମୋହିତ କରନ୍ତି ବା ବଶ କରନ୍ତି )—ବିଷ୍ଣୁ —Bishnu. ଦେ. ବି—୧ । ଶ୍ରୀ ରଙ୍ଗନାଥ ( ଦେଖ )—1. Śri ranganatha ( See ) ୨ । ଶ୍ରୀରଙ୍ଗ ପତ୍ତନ ( ଦେଖ )— 2. Śriranga pattana ( See )
ଶ୍ରୀରଙ୍ଗ ଶ୍ରୀରଙ୍ଗ

**ଶ୍ରୀ ରଙ୍ଗ ନାଥ(ସ୍ୱାମୀ)**—ଦେ.ବି—ଦାକ୍ଷିଣାତ୍ୟର ଶ୍ରୀରଙ୍ଗପତ୍ତନ ନଗରରେ Śri ranga nātha(swāmi) ପ୍ରତିଷ୍ଠିତ ବିଷ୍ଣୁ ବିଗ୍ରହଙ୍କ ନାମ—Name of the image of Bishnu in Seringāpaṭam in South India.
ଶ୍ରୀ ରଙ୍ଗନାଥ ଶ୍ରୀ ରଙ୍ଗନାଥ

**ଶ୍ରୀରଙ୍ଗ ପଟ୍ଟଣ(ଣା)**—ଦେ. ବି ( ନାମ )—( ଶ୍ରୀରଙ୍ଗ ଓ ପତ୍ତନ ଶବ୍ଦ Śriranga paṭaṇa(ṇā) ଶ୍ରୀରଙ୍ଗପତ୍ତନ) ଶ୍ରୀରଙ୍ଗମ୍ (ଦେଖ)— Śrirangam ( See )
ଶ୍ରୀରଙ୍ଗପଟନ ଶ୍ରୀରଙ୍ଗ ପଟନ
( ଶ୍ରୀରଙ୍ଗ ପାଟ୍ଟନ—ଅନ୍ୟରୂପ )

**ଶ୍ରୀରଙ୍ଗ ପତ୍ତନ**—ସ.ବି (ନାମ)-(ଶ୍ରୀରଙ୍ଗ ବା ବିଷ୍ଣୁ ବିଗ୍ରହଙ୍କ ଅଧିଷ୍ଠିତ ନଗର)- Śriranga pattana ଶ୍ରୀରଙ୍ଗମ୍ (ଦେଖ) Śriraingam (See)

**ଶ୍ରୀରଙ୍ଗମ୍**—ଦେ. ବି ( ନାମ ) ( ଇଂ. ନାମ ସେରିଙ୍ଗା ପଟ୍ଟାମ୍ )—ଦକ୍ଷିଣ Śrirangam ଭାରତର ଶ୍ରୀରଙ୍ଗ ପଟ୍ଟଣା ନାମକ ନଗର—The town of Seringapatam in South India.
ଶ୍ରୀରଙ୍ଗମ

**ଶ୍ରୀରଙ୍ଗମ** [ ନ୍ତ୍ର—ଏହା ମାନ୍ଦ୍ରାଜ ପ୍ରଦେଶର ତ୍ରିଚିନାପଲ୍ଲୀ ଜିଲ୍ଲାର ପ୍ରଧାନ ନଗର ଓ ମହୀଶୂରରେ 'ରାଜ୍ୟର ପ୍ରାଚୀନ ରାଜଧାନୀ । ଏହା କାବେରୀ ଓ ତହିଁର ଶାଖା କୋଲରୁଣା ମଧ୍ୟସ୍ଥ ଦ୍ୱୀପ । ଏହା ତ୍ରିଚିନାପଲ୍ଲିଠାରୁ ୨ ମାଇଲ ଦୂର । ଏହିଠାରେ ବିସ୍ତୃତ ସ୍ଥାନବ୍ୟାପୀ, ସପ୍ତାବରଣ ବେଷ୍ଟିତ, ଶିଳ୍ପକଳାପୂର୍ଣ୍ଣ, ଭାରତର ବୃହତ୍ତମ ବିଷ୍ଣୁମନ୍ଦିର ଅଛି । ଏହାର ଆୟତନ ୨୮୦ × ୧୮ ଫୁଟ ଏବଂ ବାହାରର ବେଢ଼ ୧୩୦୦ × ୮୫୦ ଫୁଟ । ବେଢ଼ା ଗୃହପାଖେ ଥିବା ପାଚେରିମାନଙ୍କ ମଧ୍ୟରୁ ୨ ଫୁଟ ମୋଟ ୩ ଗୋଟି ମଗୁନିପଥରର ପାଚେରି ଅଛି । ସପ୍ତ ପ୍ରାଚୀର ଅତିକ୍ରମ କରି ମନ୍ଦିର ମଧ୍ୟରେ ପ୍ରବେଶ କରିବାକୁ ହୁଏ । ପ୍ରତ୍ୟେକ ପାଚୀରରେ 'ଗୋପୁରମ୍' ଦ୍ୱାର ଉପରେ ଦୁଇ ପାଖରେ କବାଟ ଲାଗିଥିବା ଉଚ୍ଚ ମନ୍ଦିର ଅଛି । ଏହି ପ୍ରାକାରମାନଙ୍କ ସୀମା ମଧ୍ୟରେ ସହସ୍ରାଧିକ ବ୍ରାହ୍ମଣ, ବ୍ୟବସାୟୀ, ଦେବତାଙ୍କ ବ୍ରାହ୍ମଣ ସେବକ ନିବାସ ଓ ଦୋକାନ ଘର କରି ରହିଅଛନ୍ତି ।

ଶ୍ରୀମନ୍ଦିର ମଧ୍ୟସ୍ଥ ସିଂହାସନରେ ନାନା ରତ୍ନାଲଙ୍କାର ଭୂଷିତ, ସୁବର୍ଣ୍ଣମେଖଳାଯୁକ୍ତ, ଅନନ୍ତଶାୟୀ, ପ୍ରକାଣ୍ଡ ପ୍ରସ୍ତରମୟ ବିଷ୍ଣୁମୂର୍ତ୍ତି ପ୍ରତିଷ୍ଠିତ । ଏହାଙ୍କ ଦୁଇ ପାର୍ଶ୍ୱରେ ଲକ୍ଷ୍ମୀ ଓ ସରସ୍ୱତୀ ବିରାଜିତା । ସମ୍ମୁଖରେ ଶ୍ୱେତପ୍ରସ୍ତର ନିର୍ମିତ ଗରୁଡ଼ ବଦ୍ଧାଞ୍ଜଳି ହୋଇ ଭକ୍ତରୂପେ ଦଣ୍ଡାୟମାନ । ଶ୍ରୀମନ୍ଦିରର 'ଦେବାର୍ଚ୍ଚନ' (ଜଗମୋହନ)ର ଶିଖରରେ ସୁନାର କଳସ ଅଛି । 'ଦେବାର୍ଚ୍ଚନ'କୁ ଲାଗି 'ନାଟମନ୍ଦିର'ର ସ୍ତମ୍ଭରାଜି ସୂକ୍ଷ୍ମକଳାମଣ୍ଡିତ ।

ଚତୁର୍ଥ ପ୍ରାକାର ମଧ୍ୟସ୍ଥ ବେଢ଼ାରେ ଗୋଟିଏ ସହସ୍ର ସ୍ତମ୍ଭଯୁକ୍ତ ମଣ୍ଡପ ଅଛି । ଏଠାକୁ ଶ୍ରୀରଙ୍ଗନାଥଙ୍କ ବିଜେ-ପ୍ରତିମା ମାଘ ଶୁକ୍ଳ ଏକାଦଶୀ ଦିନ ମହାସମାରୋହ ଓ ଉତ୍ସବ ସହ ଆଣୀତ ହୁଅନ୍ତି । ତୃତୀୟ ପ୍ରାଚୀରଠାରୁ ଭିତରକୁ ହିନ୍ଦୁଙ୍କ ଛଡ଼ା ଅନ୍ୟ ଜାତିଙ୍କ ପ୍ରବେଶ ନିଷେଧ । ମନ୍ଦିର ସଂଲଗ୍ନ ଦେବାର୍ଚ୍ଚନ (ବା ଜଗମୋହନ) ମଧ୍ୟକୁ ଦ୍ରାବିଡ଼ୀୟ ବ୍ରାହ୍ମଣଙ୍କ ଛଡ଼ା ଅନ୍ୟ କେହି ପ୍ରବେଶ କରି ପାରନ୍ତି ନାହିଁ ।

ଶ୍ରୀମନ୍ଦିରର ଏକପାର୍ଶ୍ୱରେ ଅଷ୍ଟରତ୍ନାଲଙ୍କାର ବିମଣ୍ଡିତ ଲକ୍ଷ୍ମୀଦେବୀଙ୍କ ମନ୍ଦିର ଅଛି । ଏହି ମନ୍ଦିର ନିକଟରେ 'ଚନ୍ଦ୍ରପୁଷ୍କରଣୀ' ନାମରେ ଗୋଟିଏ ଜଳାଶୟ ଅଛି ।

ଏହି ଶ୍ରୀରଙ୍ଗମ୍ ମନ୍ଦିର ବେଢ଼ା ମଧ୍ୟରେ ଭାରତ ବିଖ୍ୟାତ ବୈଷ୍ଣବ ଧର୍ମ ସଂସ୍କାରକ ରାମାନୁଜଙ୍କ ବାସସ୍ଥାନ ଥିଲା ଏବଂ ମନ୍ଦିର ପ୍ରାଙ୍ଗଣରେ ରାମାନୁଜଙ୍କ ବସିଥିବା ପୀଠ ଅଦ୍ୟାବଧି ରହିଅଛି । ଏକ ସମୟରେ ମୁସଲମାନମାନେ ମନ୍ଦିରକୁ ଆକ୍ରମଣ କରିବାରୁ ସେବକମାନେ ଶ୍ରୀରଙ୍ଗନାଥଙ୍କୁ ନେଇ ତିରୁପତି ପର୍ବତରେ ଲୁଚାଇ ରଖା କରିଥିଲେ । ପରେ ବିଜୟନଗର ରାଜ୍ୟସ୍ଥ ଜିଞ୍ଜି ଅଞ୍ଚଳର ଶାସନକର୍ତ୍ତା ଗୋପଣାର୍ଯ୍ୟ ରଙ୍ଗନାଥଙ୍କୁ ସେଠାରୁ ନେଇ କିଛିଦିନ ଅପଣା ରାଜଧାନୀରେ ରଖି ୧୨୯୩ ସାଲରେ ଆଣି ଶ୍ରୀରଙ୍ଗମ୍‌ଠାରେ ଏହି ମନ୍ଦିର ତୋଳାଇ ତହିଁରେ ରଖାଇଲେ । ପରେ ଜଣେ ବାବାଜୀ ଓ ତାଙ୍କ ଶିଷ୍ୟାନୁଶିଷ୍ୟମାନେ ଭିକ୍ଷା ଲବ୍ଧ ଧନରେ ମନ୍ଦିରର ଜୀର୍ଣ୍ଣ ସଂସ୍କାର କରାଇଥିଲେ ।

ଏହି ଶ୍ରୀରଙ୍ଗମ୍‌ମନ୍ଦିରର ଚତୁର୍ଥ ପ୍ରାକାର ମଧ୍ୟରେ ଗୋଟିଏ ପ୍ରକାଣ୍ଡ ହସ୍ତିଶାଳା ଅଛି ଓ ତହିଁର ସମ୍ମୁଖସ୍ଥ ୪ ଗୋଟି ଖୁଣ୍ଟରେ ସୁନ୍ଦର ଦୃଶ୍ୟ ପଥରରେ ଖୋଦିତ ହୋଇ ଜୀବନ୍ତ ମୂର୍ତ୍ତିପରି ଦେଖା ଯାଉଅଛି ଓ ଏହି କାରୁକାର୍ଯ୍ୟ ଭୁବନ-ବିଖ୍ୟାତ ଅଟେ ।

ଶ୍ରୀରଙ୍ଗନାଥଙ୍କ ମନ୍ଦିରରୁ ଏକ ମାଇଲ ଦୂରରେ ଶ୍ରୀ ଜମ୍ବୁକେଶ୍ୱର ନାମକ (ମହାଦେବଙ୍କ ଜଳମୂର୍ତ୍ତି) ମହାଦେବ ଅଛନ୍ତି । ଏ ଶିବ ମନ୍ଦିର ୪ ଗୋଟି ପ୍ରାକାରବେଷ୍ଟିତ । ଏ ମହାଦେବଙ୍କ ଲିଙ୍ଗକୁ ନିକଟବର୍ତ୍ତୀ ଏକ ଗଭୀର କୂପର ଜଳ ଆଭ୍ୟନ୍ତରିକ ପୟଃପ୍ରଣାଳୀଦ୍ୱାରା ଆସି ନିୟତ ଅଭିଷିକ୍ତ କରୁଅଛି । ଏ ମନ୍ଦିରର କାରୁକାର୍ଯ୍ୟ ଶ୍ରୀରଙ୍ଗନାଥଙ୍କ ମନ୍ଦିର ଅପେକ୍ଷା ଉତ୍କୃଷ୍ଟ, କିନ୍ତୁ ଜୀର୍ଣ୍ଣ ହୋଇଅଛି ।

[ମଦନମୋହନ ତୀର୍ଥଦର୍ଶନ]

ଭାରତବର୍ଷର ଆଧୁନିକ ଇତିହାସରେ ମଧ୍ୟ ଶ୍ରୀରଙ୍ଗପତ୍ତନ ଖ୍ୟାତି ଲାଭ କରିଅଛି । ମହୀଶୂର ପ୍ରଥମେ ହିନ୍ଦୁ ରାଜ୍ୟ ଥିଲା । ହାଇଦର ଅଲ୍ଲୀ ହିନ୍ଦୁରାଜାଙ୍କୁ ତଡ଼ି ଦେଇ ମହୀଶୂରର ସୁଲତାନ୍ ହେଲେ ଓ ଶ୍ରୀରଙ୍ଗପତ୍ତନ ଏହି ମହୀଶୂର ସୁଲତାନଙ୍କ ରାଜଧାନୀ ହେଲା । ମହୀଶୂରର ସୁଲତାନ୍ ହାଇଦର ଅଲ୍ଲୀ ଓ ତାଙ୍କ ପୁତ୍ର ଟିପୁ ସୁଲତାନଙ୍କ ସଙ୍ଗେ ଇଂରେଜମାନଙ୍କର ଏହିଠାରେ ଏକାଧିକ ଥର ଯୁଦ୍ଧ ହୋଇଥିଲା । ଇଂରାଜ ଓ ଟିପୁଙ୍କ ମଧ୍ୟରେ ତୃତୀୟ ମହୀଶୂର ଯୁଦ୍ଧ ୧୭୯୦ ସାଲରେ ଆରମ୍ଭ ହୋଇଥିଲା । ୧୭୯୨ରେ ଗଭର୍ଣ୍ଣର୍ ଜେନେରାଲ୍ ଲର୍ଡ଼ କର୍ଣ୍ଣୱାଲିସ୍ ଟିପୁଙ୍କୁ ପରାସ୍ତ କରି ଶ୍ରୀରଙ୍ଗପତ୍ତନକୁ ଆକ୍ରମଣ କରିବାରୁ ଏହିଠାରେ ଟିପୁଙ୍କ ସଙ୍ଗେ ଇଂରାଜଙ୍କର ସନ୍ଧି ହୋଇଥିଲା । ଏହି ସନ୍ଧିର ଫଳରେ ଟିପୁ ଇଂରାଜଙ୍କୁ ଯୁଦ୍ଧର ବ୍ୟୟ ଦେବାକୁ ବାଧ୍ୟ ହେଲେ ଓ ଇଂରାଜମାନେ 'ମାଲବାର' ଓ 'କର୍ଣ୍ଣାଟ' (ସାଲେମ ଓ ମଦୁରା ଜିଲ୍ଲା) ପାଇଲେ ।

ପୁନର୍ବାର ୪ର୍ଥ ମହୀଶୂର ଯୁଦ୍ଧରେ ୧୭୯୯ ସାଲରେ ଟିପୁ ସୁଲତାନ ପରାଜିତ ହୋଇ ଶ୍ରୀରଙ୍ଗପତ୍ତନକୁ ପଳାଇ ଆସିଲେ । ଇଂରାଜ ସେନା ଏହି ରାଜଧାନୀକୁ ଅବରୋଧ କରି ଏହାକୁ ଅଧିକାର କଲେ ଓ ଟିପୁ ସୁଲତାନ ଏହି ଦୁର୍ଗର ତୋରଣକୁ ରକ୍ଷା କରୁ କରୁ ଏହିଠାରେ ନିହତ ହେଲେ । ଗଭର୍ଣ୍ଣର୍ ଜେନେରାଲ ମାର୍କୁଇସ୍ ଅଫ୍ ୱେଲେସ୍ଲି ମହୀଶୂର ରାଜ୍ୟରେ ଟିପୁଙ୍କ ପିତା ହାଇଦର ଅଲ୍ଲୀଙ୍କଦ୍ୱାରା ବିତାଡ଼ିତ ହିନ୍ଦୁ ରାଜାଙ୍କର ୫ ବର୍ଷ ବୟସ୍କ ପୁତ୍ର 'କୃଷ୍ଣରାଜା'ଙ୍କୁ ରାଜା କଲେ ଓ ଟିପୁ ସୁଲତାନଙ୍କ ପୁତ୍ରମାନଙ୍କୁ ନେଇ ଭେଲୋର ନଗରରେ ରଖାଇ ସେଠାରେ ତାଙ୍କ ଦାଇବୃତ୍ତି (ପେନ୍‌ସନ) ଧାର୍ଯ୍ୟ କରି ଦେଲେ । ତଦବଧି ମହୀଶୂର ହିନ୍ଦୁ ଶାସିତ ରାଜ୍ୟ ହୋଇଅଛି ।]

**ଶ୍ରୀରଙ୍ଗା**—ଦେ. ବଣ—ମନୋହର ନାଲି ରଙ୍ଗ ବିଶିଷ୍ଟ—
Śrīraṅgā Of nice red colour.
[ଦ୍ର—କଲା ଶ୍ରୀମୁଖ ଶ୍ରୀରଙ୍ଗା ଅଧର । ପ୍ରାଚୀ. ଜଳଚରିତ ।]

**ଶ୍ରୀରମଣ**—ସ. ବି—(ସଙ୍ଗୀତ)—ହିନ୍ଦୁ ସଙ୍ଗୀତରେ ମିଶ୍ରସ୍ୱର ବା ସ୍ୱଚିଣ
Śrīramaṇa ବିଶେଷ—Name of a mixed tune in Hindu music.

**ଶ୍ରୀରସ**—ସ. ବି—(ବୈଦ୍ୟକ)—ଶ୍ରୀପିଷ୍ଟ (ଦେଖ)
Śrī rasa Śrīpishṭa (See)

**ଶ୍ରୀ ରହିତ**—ସ. ବିଣ.—(ତୃତୀୟା ତତ୍; ଶ୍ରୀ+ରହିତ)—୧ । ଶ୍ରୀଭ୍ରଷ୍ଟ
Śrīrahita (ଦେଖ)—1. Śrībhrashṭa (See)
୨ । ଶ୍ରୀହୀନ (ଦେଖ)—2. Śrīhīna (See)

**ଶ୍ରୀ ରାଗ**—ସ. ବି—(ହିନ୍ଦୁ ସଙ୍ଗୀତ)—ହିନ୍ଦୁ ସଙ୍ଗୀତର ୬ ଗୋଟି ରାଗ
Śrī rāga ମଧ୍ୟରୁ ଏକତମ—One of the 6 principal or main tunes of Hindu music. [ଦ୍ର—ରାଗ ତଳେ ନୋଟ୍ ଦେଖ ।]

**ଶ୍ରୀ ରାମ**—ସ. ବି—୧। ଅଯୋଧ୍ୟାର ରାଜା ଦଶରଥଙ୍କ ଜ୍ୟେଷ୍ଠପୁତ୍ର ରାମଚନ୍ଦ୍ର-
Śrī rāma 1. Rāmachandra, the eldest son of Daśaratha, king of Ajodhyā ୨ ।
ବିଷ୍ଣୁ—2 Bishṇu. ଦେ. ବି. ପୁଂ—ଲୋକଙ୍କ ନାମ—
A name given to males.

**ଶ୍ରୀରାମଚନ୍ଦ୍ରପୁର**—ଦେ. ବି—(ନାମ)—ପୁରୀ ଜିଲ୍ଲା ସ୍ୱାଡ଼ାଙ୍ଗ ପ୍ରଗଣା
Śrīrāmachandra pura ଅନ୍ତର୍ଗତ ସତ୍ୟବାଦୀ(ସାକ୍ଷୀଗୋପାଳ)ଠାରୁ ଏକ ମାଇଲ୍ ପଶ୍ଚିମରେ ଅବସ୍ଥିତ ଗୋଟିଏ ବ୍ରାହ୍ମଣ ଶାସନ —Name of a Brahman village, one mile to the west of Satyabadi in district Puri. [ଦ୍ର—ପୁରୀ ଜିଲ୍ଲାର ସ୍ୱାଡ଼ାଙ୍ଗ ବ୍ରାହ୍ମଣ ଶାସନମାନଙ୍କ ମଧ୍ୟରେ ଏ ଶାସନ ଅନେକଗୁଡ଼ିଏ ଅଧୁନିକ ଓ ପ୍ରାଚୀନ କୃତବିଦ୍ୟ, ଗୁଣୀ, ଦେଶହିତୈଷୀଙ୍କ ଜନ୍ମସ୍ଥାନରୂପେ ବିଖ୍ୟାତ ।

ସ୍ୱର୍ଗୀୟ ପଣ୍ଡିତ ଦୟାକର ଦାସ (ପୁରୀ ସଂସ୍କୃତ କଲେଜର ପ୍ରଥମ ଅଧ୍ୟକ୍ଷ), ସ୍ୱର୍ଗୀୟ ସିଦ୍ଧେଶ୍ୱର ତ୍ରିପାଠୀ (ଦାର୍ଶନିକ ପଣ୍ଡିତ ଓ ଗ୍ରନ୍ଥକାର), ଶ୍ରୀ ନୀଳକଣ୍ଠ ଦାସ ଏମ୍. ଏ., ଶ୍ରୀ ଲିଙ୍ଗରାଜ ମିଶ୍ର ଏମ୍. ଏ, ଅଧ୍ୟକ୍ଷ ଦୟାକର ଦାସ, ଓ ଶ୍ରୀଯୁକ୍ତ ଗୋବିନ୍ଦ ତ୍ରିପାଠୀ ଏମ୍. ଏ, ଓ ଲେଖକ, ଡେପୁଟି କଲେକ୍ଟର, ସମାଜ ସଂସ୍କାରକ, ଦେଶ ହିତୈଷୀ, ନବ ଶିକ୍ଷା ପ୍ରବର୍ତ୍ତକ ଓ ଶିକ୍ଷା ସଂସ୍କାରକ ବହୁ କର୍ମୀଙ୍କର ଓ ବହୁ ମାନ୍ୟଗଣ୍ୟ ସରକାରୀ ଉଚ୍ଚକର୍ମଚାରୀଙ୍କର ଏହା ଜନ୍ମସ୍ଥାନ ଅଟେ ]

**ଶ୍ରୀରାମଚନ୍ଦ୍ରପୁରୀ**—ଦେ. ବିଣ.—(ପୁଂ ଓ ସ୍ତ୍ରୀ)—ପୁରୀ ଜିଲ୍ଲାର ଶ୍ରୀରାମଚନ୍ଦ୍ର
Śrīrāmachandra purī ପୁର ଗ୍ରାମବାସୀ ବା ଗ୍ରାମ ସମ୍ବନ୍ଧୀୟ—
ଶ୍ରୀରାମଚନ୍ଦ୍ରପୁରିଆ—ପୁଂ } ଅନାଦରାର୍ଥକ ରୂପ
ଶ୍ରୀରାମଚନ୍ଦ୍ରପୁରିଆଣୀ—ସ୍ତ୍ରୀ }
Inhabitant of or belonging to Śrīrāma chandra pura.

**ଶ୍ରୀରାମ ନବମୀ**—ସ. ବି—ରାମ ନବମୀ; ରାମଚନ୍ଦ୍ରଙ୍କ ଜନ୍ମ ଦିବସ ଦିନ
Śrīrāma nabamī ଅନୁଷ୍ଠେୟ ଉତ୍ସବ; ଚୈତ୍ର ଶୁକ୍ଳ ନବମୀ—The festival held on the birthday of Ramachandra; the 9th day of the bright fortnight of Chaitra.

**ଶ୍ରୀରାମପୁର**—ଦେ. ବି (ନାମ)—ବଙ୍ଗଦେଶର ନଗରବିଶେଷ—
Śrīrāmapura Serampore, a town in Bengal.
শি(শ্রী)রামপুর श्रीरामपुर [ଦ୍ର—ଏହା ହୁଗୁଳି ଜିଲ୍ଲାର ଗୋଟିଏ ସବ୍‌ଡିଭିଜନ୍ ଓ ନଗର । ଏଠାରେ ପାଦ୍ରୀମାନଙ୍କର ଗୋଟିଏ କାର୍ଯ୍ୟ କେନ୍ଦ୍ର ଅଛି ଓ ଏଠାରେ ଧଳା କାଗଜ ତିଆରି ହେବାର କଳ କାରଖାନା ଅଛି । ଏଠାରେ ସରକାରଙ୍କର ମଧ୍ୟ ଗୋଟିଏ କର୍ପୂର ବିଦ୍ୟାଳୟ ଅଛି । ଶିରାମପୁର ତଳେ ନୋଟ୍ ଦେଖ ।]

**ଶ୍ରୀରାମପୁରୀ କାଗଜ**—ଶ୍ରୀରାମପୁରରେ ସ୍ଥାପିତ କଳଦ୍ୱାରା ନିର୍ମିତ ଧଳା
Śrīrāmapurī kāgaja କାଗଜ—White paper
শিরামপুরীকাগজ सिरामपुरीकागज manufactured in the paper mill at Serāmpur in Hoogly and measuring 22×18″ roughly, styled as demy. [ଦ୍ର—ଏହାର ଆକାର 'ଫୁଲ୍‌ସ୍କାପ୍' କାଗଜର ଆକାରଠାରୁ ବଡ଼ ଓ 'ବାଲି କାଗଜର ଆକାର ସଦୃଶ (୨୨ ଇଞ୍ଚ× ୧୮ ଇଞ୍ଚ) । ଏହାକୁ ଛାପାଖାନାବାଲାମାନେ ଡେମି ବା ଡିମାଇ (Demy) କାଗଜ ବୋଲି କହନ୍ତି ।
ଡିମାଇର ଇଂଲଣ୍ଡ ବ୍ୟବହୃତ ଆକାର ଯଥା—
ଛାପା ଡିମାଇ—୨୨½″×୧୭½″
ଲେଖା ଡିମାଇ—୨୦″×୧୬″
ଡ୍ରଇଙ୍ଗ୍ ଡିମାଇ—୨୦″×୧୫″ ।]

**ଶ୍ରୀରୂପା**—ସ. ବି ସ୍ତ୍ରୀ—ରାଧା (ଶବ୍ଦକୋଷ)
Śrīrūpā Rādhā

**ଶ୍ରୀଳ(ଲ)**—ସ. ବିଣ. ପୁଂ (ଶ୍ରୀ=ଶୋଭା, ଭାଗ୍ୟ, ଲକ୍ଷ୍ମୀ+ଲା
Śrīḷa(la) ଧାତୁ=ଗ୍ରହଣ କରିବା+କର୍ତ୍ତୃ ଅ) ୧ । ଶ୍ରୀଯୁକ୍ତ
[ ଶ୍ରୀଳା(ଲା)—ସ୍ତ୍ରୀ ] (ଦେଖ)—1. Śrījukta (See) ୨ ।
(ଲେଖାଦ୍ୱାରା ସୂଚିତ ସମ୍ମାନକୁ ଅଧିକ ଦୃଢ଼ କରିବା ଉଦ୍ଦେଶ୍ୟରେ) ନାମ ପୂର୍ବରେ ବ୍ୟବହୃତ 'ଶ୍ରୀଯୁକ୍ତ' ଶବ୍ଦ ପୂର୍ବରେ ପୁଣି ଲେଖାଯିବା ଶବ୍ଦ—A word prefixed to the prefix Śrījukta before a person's name. (ଯଥା—ଶ୍ରୀଲଶ୍ରୀଯୁକ୍ତ ଶ୍ରୀ ଅମୁକ) ।

**ଶ୍ରୀ ଲତା**—ସ. ବି (ବୈଦ୍ୟକ)—(ଶ୍ରୀ=ଔଜ୍ଜ୍ୱଲ୍ୟଯୁକ୍ତା+ଲତା)—ମହା
Śrīlatā ଜ୍ୟୋତିଷ୍ମତୀଲତା; ଫୁଟଫୁଟିକା ଗୁଳ୍ମ—The staff tree; Cardiospermum Halicacbum.
[ଦ୍ର—ଫୁଟୁଫୁଟିକା ତଳେ ନୋଟ୍ ଦେଖ]

**ଶ୍ରୀ ଲାଭ**—ସ. ବି (୬ଷ୍ଠୀ ତତ୍)—ସୌଭାଗ୍ୟଲାଭ—
Śrīlābha Attainment of prosperity.

**ଶ୍ରୀଶ**—ଷ. ବି. ପୁଂ (୬ଷ୍ଠୀ ତତ୍; ଶ୍ରୀ=ମହାଲକ୍ଷ୍ମୀଙ୍କର ଈଶ=ସ୍ୱାମୀ)—
Śrīśa ୧। (ବିଷ୍ଣୁସହସ୍ରନାମୋକ୍ତ) ବିଷ୍ଣୁଙ୍କର ଏକନାମ; ଶ୍ରୀପତି—
1. A name of Bishnu. ୨। ଶ୍ରୀରାମ (ବିଶ୍ୱକୋଷ)
2. Śrīrām'a.

**ଶ୍ରୀ ଶୂନ୍ୟ**—ଷ. ବିଣ—(ତୃତୀୟା ତତ୍; ଶ୍ରୀ+ଶୂନ୍ୟ)—ଶ୍ରୀହୀନ (ଦେଖ)
Śrī sūnya Śrī hīna (See)
(ଶ୍ରୀଶୂନ୍ୟା—ସ୍ତ୍ରୀ)

**ଶ୍ରୀଶ୍ରୀ**—ଦେ. ବିଣ—ମାନ୍ୟ ବ୍ୟକ୍ତିଙ୍କ ନାମ ପୂର୍ବେ ସମ୍ମାନାର୍ଥ ଯୁକ୍ତ ଶ୍ରୀ
Śrī Śrī ଶବ୍ଦର ଦ୍ୱିରୁକ୍ତି ବା ବହୁରୁକ୍ତି—Repetition of the word Śri before the name of a respectable personage.
ଶ୍ରୀଶ୍ରୀଶ୍ରୀ, ଶ୍ରୀ୧୦୮ } ଅନ୍ୟରୂପ—
ଶ্ৰୀଶ୍ରୀ ଶ୍ରীশ্রী

**ଶ୍ରୀସଂଜ୍ଞ**—ଷ. ବି (ବୈଦ୍ୟକ)—(ବହୁବ୍ରୀହି; ଶ୍ରୀ ଅର୍ଥାତ ଲକ୍ଷ୍ମୀ ଅର୍ଥ-
Śrīsamjña ବୋଧକ ସମସ୍ତ ଶବ୍ଦ ସଂଜ୍ଞା ବା ନାମ ଯାହାର)
ଲବଙ୍ଗ—Cloves.

**ଶ୍ରୀ ସମ୍ପ୍ରଦାୟ**—ଦେ. ବି—ରାମାନୁଜମତାବଲମ୍ବୀ ବୈଷ୍ଣବସମ୍ପ୍ରଦାୟ—
Śrī sampradaya A sect of Baishnabas.

**ଶ୍ରୀ ସହୋଦର**—ଷ. ବି (୬ଷ୍ଠୀ ତତ୍; ଶ୍ରୀ=ଲକ୍ଷ୍ମୀ+ସହୋଦର=ଭାଇ)
Śrī sahodara ଚନ୍ଦ୍ର—The moon. [ଦ୍ର—ଏ ସମୁଦ୍ର ମନ୍ଥନକାଳରେ ଲକ୍ଷ୍ମୀଙ୍କ ସଙ୍ଗେ କ୍ଷୀରସମୁଦ୍ରରୁ ବାହାରିଥିଲେ।]

**ଶ୍ରୀ ସୁନ୍ଦରୀ**—ସଂ. ବି. ସ୍ତ୍ରୀ—ତନ୍ତ୍ରୋକ୍ତ ଦେବୀବିଶେଷ—Name of a
Śrī sundarī Goddess worshipped according to Tāntric rites of later day Hinduism. [ଦ୍ର—ତନ୍ତ୍ରୋକ୍ତ ଶ୍ରୀସୁନ୍ଦରୀଙ୍କ ପୂଜାରେ ମଦ୍ୟ, ମାଂସ, ମତ୍ସ୍ୟ, ମୈଥୁନ ଓ ମୁଦ୍ରା, ଏହି ପଞ୍ଚ ମକାର ପ୍ରକ୍ରିୟା ଅବଲମ୍ବିତ ହୁଏ। ]

**ଶ୍ରୀ ସୈନ୍ୟଭୀତ**—ଦେ. ବି—ଜଣେକ ରାଜା—The name of a
Śrīsainyabhīta king. [ଦ୍ର—ସୈନ୍ୟଭୀତମାନଙ୍କ ମଧ୍ୟରୁ ହୁଇ ଜଣକଣ ରାଜା ତୈଳୋଦ୍ଭବ ରାଜବଂଶରେ ରାଜତ୍ୱ କରୁଥିଲେ। ତନ୍ମଧ୍ୟରୁ ଜଣେ ସୈନ୍ୟ ଭୀତ ବା ମାଧବ ବର୍ମନ୍ ବିଶେଷ ପରାକ୍ରମଶାଳୀ ଥିଲେ—କେଦାରନାଥ ମହାପାତ୍ର।]

**ଶ୍ରୀହଟ ପାଟଣା**—ଦେ. ବି.—ଶାକ୍ତାର ମତବାଦୀଙ୍କ ମତରେ ଦେହ
Śrīhaṭa pāṭaṇā ମଧ୍ୟରେ କାର୍ଣ୍ଣିକ ମଣ୍ଡଳ ଉପରେ ଥିବା ସ୍ଥାନ; ବ୍ରହ୍ମର ଅବସ୍ଥିତି ସ୍ଥାନ—The imaginary seat of The Supreme Being or Brahman inside the human body.
[ଉ—ଚକ୍ର ଉପରେ ଶ୍ରୀହଟ ପାଟଣା, ଅବ ପୁରୁଷର ତହିଁରେ ଠଣା—ପ୍ରାଚୀ. ପରଚେଗୀତା।]

**ଶ୍ରୀହଟ୍ଟ**—ଷ. ବି (ନାମ)—ଆସାମପ୍ରଦେଶସ୍ଥ ଜିଲ୍ଲା ଓ ନଗରବିଶେଷ,
Śrīhatta ସିଲଟ—Sribatta; Sylhet. [ଦ୍ର—ଏହିସ୍ଥାନ ମିଠା କମଳା ଲେମ୍ବୁ ପାଇଁ ପ୍ରସିଦ୍ଧ। ଏଠା କମଳାକୁ ଲୋକେ ସିଲହଟ କମଳା କହନ୍ତି। ଏ ଜିଲ୍ଲାର ଉତ୍ତରରେ ଖାସିଆ ଓ. ଜୟନ୍ତୀ ପାହାଡ଼, ଦକ୍ଷିଣରେ ତିପୁରା, ପୂର୍ବରେ କାଛାଡ଼ ଜିଲ୍ଲା ଓ ପଶ୍ଚିମରେ ମୈମନସିଂହ ଜିଲ୍ଲା। ଶ୍ରୀହଟ୍ଟ ନଗର ସୁର୍ମା ଓ କୁଶିଆର ନଦୀଦ୍ୱୟର ସଙ୍ଗମସ୍ଥଳରେ ଅବସ୍ଥିତ। ଏ ନଦୀଦ୍ୱୟ ମିଳିତ ହୋଇ ବରାକ ଓ ମେଘନା ନାମ ଧାରଣ କରି ପଦ୍ମା ସଙ୍ଗେ ମିଳିଅଛି।]

**ଶ୍ରୀ ହରି**—ସଂ. ବି—ବିଷ୍ଣୁ; ଭଗବାନ; ନାରାୟଣ—
Śrīhari Bishnu.

**ଶ୍ରୀ ହରିଦାସ**—ଦେ. ବି—ସପ୍ତଦଶ ଶତାବ୍ଦୀର ଜଣେକ ଓଡ଼ିଆ ଭକ୍ତ
Śrī haridāsa କବି—Name of a religious Oriya
ଶ୍ରীহরিদাস ଶ୍ରीहरिदास poet of the 17th century.
[ଦ୍ର—ଏ ଜାତିରେ ଗଉଡ଼ ଥିଲେ। ଏହାଙ୍କ ପିତାଙ୍କ ନାମ ରାମକୃଷ୍ଣ। ଏ 'ମଥୁର ଚନ୍ଦ୍ରିକା' ନାମକ ଗ୍ରନ୍ଥ ରଚନା କରିଥିଲେ। ବିନାୟକ ଓଡ଼ିଆ ସାହିତ୍ୟ ଇତିହାସ।]

**ଶ୍ରୀହର୍ଷ**—ଦେ. ବି—(ନାମ)—୧। ସଂସ୍କୃତ କାବ୍ୟ ନୈଷଧଚରିତ
Śrī harsha ପ୍ରଣେତା କବି—1. The name of the poet of the Sanscrit poem Naishadha charita. [ଦ୍ର—ବଙ୍ଗାଧିପତି ଆଦିଶୂର ଯଜ୍ଞ କରିବା ପାଇଁ ୫ ଜଣ ବ୍ରାହ୍ମଣଙ୍କୁ କାନ୍ୟକୁବ୍ଜରୁ ଆଣିଥିଲେ, ଶ୍ରୀହର୍ଷ ତାଙ୍କ ମଧ୍ୟରୁ ଜଣେ।] ୨। କାନ୍ୟକୁବ୍ଜର ରାଜା ଓ ନାଗାନନ୍ଦ, ପ୍ରିୟଦର୍ଶିକା ଓ ରତ୍ନାବଳୀ ନାମକ ନାଟକ ମାନଙ୍କ ପ୍ରଣେତା ହର୍ଷବର୍ଦ୍ଧନ ରାଜାଙ୍କର ଛଦ୍ମନାମ—2. An alias (nom de-plume) of the King Harshabarddhana. [ଦ୍ର—ହର୍ଷବର୍ଦ୍ଧନ ତଳେ ନୋଟ ଦେଖ।]

**ଶ୍ରୀହସ୍ତ**—ସଂ. ବି—(ମଂ. ପ. ଲୋ, ଶ୍ରୀଯୁକ୍ତ ହସ୍ତ)—ଦେବତା ଓ ରାଜା
Śrīhasta ଆଦିଙ୍କ ହସ୍ତ, ମାନ୍ୟ ବ୍ୟକ୍ତିଙ୍କ ହସ୍ତ—(Euphemism) The hand of an idol or of a king or of a high personage. ଦେ. ବି - (ବ୍ୟଙ୍ଗ୍ୟ) ସ୍ୱହସ୍ତ—One's own hand. [ଯଥା—ଶ୍ରୀହସ୍ତରେ ଏ ପାନଖଣ୍ଡ ଭାଙ୍ଗି ଆପଣଙ୍କ ପାଇଁ ଆଣିଛି। ]

**ଶ୍ରୀହସ୍ତ ପତ୍ର**—ସଂ. ବି—୧। ଭୂର୍ଜପତ୍ର ( ଦେଖ )
Śrīhasta patra 1. Bhujapatra (See)
୨। ଶ୍ରୀହସ୍ତ ଲିପି (ଦେଖ)—2. Śrīhasta lipi (See).

**ଶ୍ରୀହସ୍ତ ବାକ୍ସ**—ଦେ. ବି—ରାଜାଙ୍କ ନିଜ ଖରଚ ଓ ନିତ୍ୟ ବ୍ୟକ୍ତିଗତ
Śrīshasta bāksa ଧନାଦି ଯେଉଁ ବାକ୍ସରେ ରଖାଯାଏ—
হাতবাক্স A box in which a Rājā's private
हातका बाक्स money and that for daily expenses is kept.

**ଶ୍ରୀହସ୍ତ ମୁଦ୍ରିକା**—ଷ. ବି—ରାଜା ଆଦିଙ୍କ ହସ୍ତରେ ପିନ୍ଧା ଯାଇଥିବା
Śrīhasta mudrik ମୁଦି—A ring worn on the
(ଶ୍ରୀହସ୍ତ ମୁଦି—ଦେ ରୂପ) finger of a Rājā's hand.

ଶ୍ରୀହସ୍ତ ମୁଦ୍ରିତ—ସ. ବଣ ( ୩ୟା ତତ୍; ଶ୍ରୀହସ୍ତ+ମୁଦ୍ରିତ=ମୁଦ୍ରା ଯାଇଥିବା )—ସ୍ୱକା ଆଦର ସ୍ୱହସ୍ତଦ୍ୱାରା ମୁଦ୍ରା ଯାଇଥିବା ( ଚିଠି ଆଦି )—
Srihasta mudrita ( letters ) Sealed by the hand of a high personage.

ଶ୍ରୀହସ୍ତ ଲିପି (ଲେଖା)—ସଂ. ବ—ସମ୍ମାନିତ ବ୍ୟକ୍ତିଙ୍କ ସ୍ୱହସ୍ତାକ୍ଷର—
Śrihasta lipi (lekha) The handwriting or letter of a distinguished person age.

ଶ୍ରୀହସ୍ତାଙ୍କିତ ସଂ. ବଣ ( ୩ୟା ତତ୍; ଶ୍ରୀହସ୍ତ+ଅଙ୍କିତ )—ମାନ୍ୟ-ବ୍ୟକ୍ତିଙ୍କ ହସ୍ତଦ୍ୱାରା ଅଙ୍କିତ ( ଲେଖା ବା ପତ୍ର )—
Śrihastāṅkita ( a writing) In the handwriting of a respected person.

ଶ୍ରୀହସ୍ତିନୀ—ସଂ. ବ ( ବୈଦ୍ୟକ ) ( ଶ୍ରୀଯୁକ୍ତା ହସ୍ତିନୀ ଯହିଁ )—ଗୁଳ୍ମବିଶେଷ; ହାତୀଶୁଣ୍ଢ ଗଛ—
Śrihastini A Plant; Heliotropium Indicum.

ଅନ୍ୟ ସଂ. ନାମ—ଭୂରୁଣ୍ଡୀ, ବଶଲ୍ୟା, ଯବପୁଷ୍ପୀ, ବର୍ଷୌଷଧି, ଶୁକ୍ଳପୁଷ୍ପା, ଇନ୍ଦ୍ରବଲ୍ଲୀ, କାଣ୍ଡେରା, କାମରୂପକା, ଶ୍ୱେତପୁଷ୍ପା, ମଧୁପୁଷ୍ପା, କୃଷ୍ଣୋଷକା, ନାଗଝୋଟା, ଜଳାଶୀ, ଶୁଣ୍ଡପୁଷ୍ପୀ, ସ୍ୱାଦୁକା, ଘଣ୍ଟକର୍ଣ୍ଣା, ସିତପୁଷ୍ପୀ, ସର୍ପଦନ୍ତୀ, ନାଗିନୀ, ନାଗଦନ୍ତୀ, ଗ୍ରାମଦୂଷିକା, ନାଗଜିହ୍ୱା, ବୃଚଷଣା, ସର୍ପଗନ୍ଧା ହାତୀଶୁଣ୍ଢ
[ ବି—ଏହା ବନ୍ୟ, କ୍ଷେତ୍ର, ଶରକାଳୋଦ୍ଭବ, ବର୍ଷାୟୁଃ ଶାକ-ବିଶେଷ । ଫୁଲ ନୀଳ; ମଞ୍ଜରୀରେ ଦୁଇ ଧାଡ଼ି ଫୁଲ ଧରେ । ମଞ୍ଜରୀ ହାତୀଶୁଣ୍ଢ ପରି ବଙ୍କେଇ ହୋଇ ଓହଳି ପଡ଼େ । ଏହା ତିକ୍ତ, ଉଷ୍ଣବୀର୍ଯ୍ୟ, ତୀକ୍ଷ୍ଣ ଓ କଫ, ପିତ୍ତ, ବ୍ରଣ, ଶୂଳ, ଯୋନି ଦୋଷ, ବମନ ଓ କୃମିନାଶକ । ]

ଶ୍ରୀହାନି—ସଂ. ବ ( ୬ଷ୍ଠୀ ତତ୍; ଶ୍ରୀ+ହାନି )—୧ । ଲକ୍ଷ୍ମୀହାନି—
Śrihāni 1. The loss of good-fortune. ୨। ଶୋଭାହାନି—2. Deterioration of grace or glory.

ଶ୍ରୀ ହୀନ—ସ. ବଣ. ପୁଂ (ତୃତୀୟା ତତ୍; ଶ୍ରୀ+ହୀନ)—୧ । ଶୋଭାହୀନ; ଅସୁନ୍ଦର—1. Devoid of beauty or grace.
Śri hina
(ଶ୍ରୀହୀନା—ସ୍ତ୍ରୀ) ୨ । ଶ୍ରୀଭ୍ରଷ୍ଟ; ଯାହାକୁ ଶୋଭାରହିତ କରାଯାଇଅଛି—2. Shorn of beauty. ୩ । ଲକ୍ଷ୍ମୀହୀନ; ଧନହୀନ—3. Indigennt; poor. ୪। ଭାଗ୍ୟହୀନ—4. Unlucky.
[ଶ୍ରୀହୀନତା—ବି]

ଶ୍ରୁ (ଧାତୁ)—ସ.—୧ । ଗତି କରିବା—1. To go; to move.
Śru (root) ୨ । ଶୁଣିବା—2. To hear.

ଶ୍ରୁକ୍(ଗ୍,ଚ୍)—ସ. ବ—ସ୍ରୁକ୍ (ଦେଖ)
Śruk(g,ch) Sruk. (See)
(ଶ୍ରୁଚ—ବୈଷୟିକ ରୂପ)

ଶ୍ରୁଗ୍ଦାରୁ—ସଂ. ବ (ବୈଦ୍ୟକ)—କଣ୍ଟକିତ ବୃକ୍ଷ; ଭଇଞ୍ଚ ଗଛ—
Srugdāru A throny plant with berries sweet when ripe; Flacaourtia Sapida.

ଶ୍ରୁତ—ସ. ବଣ (ଶ୍ରୁ ଧାତୁ+କର୍ମ. ତ)—୧। ଆକର୍ଣ୍ଣିତ; ଯାହା ଶୁଣାଯାଇ ଅଛି; ଶ୍ରବଣ ଗୋଚର—1. Heard. ୨ । ଜ୍ଞାତ—
Śruta
(ଶ୍ରୁତା—ସ୍ତ୍ରୀ) 2. Known. ୩ । ଖ୍ୟାତ; ପ୍ରସିଦ୍ଧ; ବିଖ୍ୟାତ—3, Famous; renowned. ବି—(ଯାହା ଗୁରୁଙ୍କଠାରୁ ଶୁଣାଯାଇ ଅଛି)—୧ ଶ୍ରୁତି; ବେଦ—1. The Hindu scriptures. ୨ । ଶାସ୍ତ୍ର—2. Religious books. ୩ । ଶାସ୍ତ୍ରଜ୍ଞାନ—3. Knowledge of the religious books. ୪ । ଅଧ୍ୟୟନ—4. Studying; study. ୫ । (ନାମ) କାଳନ୍ଦୀ ଗର୍ଭଜାତ ଶ୍ରୀକୃଷ୍ଣଙ୍କ ପୁତ୍ର (ବିଶ୍ୱକୋଷ)—5. Name of a son of Śrikrushna.

ଶ୍ରୁତକର୍ମା—ସ. ବ (ନାମ) (ବହୁବ୍ରୀହି; ଶ୍ରୁତ ହୋଇଅଛି କର୍ମନ୍ ଯାହାର, ଶ୍ରୁତକର୍ମନ୍, ୧ମା. ୧ବ)—
Śrutakarmā
୧ । ସହଦେବଙ୍କ ପୁତ୍ର (ବିଶ୍ୱକୋଷ)—1. Son of Sahadeba. ୨ । ଅର୍ଜ୍ଜୁନଙ୍କ ପୁତ୍ର (ବିଶ୍ୱକୋଷ)—2, Son of Arjjuna;
୩ । ବସ୍ତ୍ରପ୍ରସ୍ରଶୋକି ସୋମାପିଙ୍କ ପୁତ୍ର (ବିଶ୍ୱକୋଷ)—3, Son of Somāpi.

ଶ୍ରୁତକୀର୍ତ୍ତି—ସ. ବଣ. ପୁଂ. ଓ ସ୍ତ୍ରୀ—(ବହୁବ୍ରୀହି; ଶ୍ରୁତ=ବିଖ୍ୟାତ ହୋଇଅଛି କୀର୍ତ୍ତି ଯାହାର)—ପ୍ରଥିତ ଯଶାଃ; କୀର୍ତ୍ତିଶାଳୀ—Renowned; famed; famous.
Śruta kirtti
ବି. ପୁଂ-୧। ଦେବର୍ଷି ବିଶେଷ-1.Name of a divine sage. ୨ । (ସ୍ତ୍ରୀ) ଜନକଙ୍କ ଭ୍ରାତା କୁଶଧ୍ୱଜ ରାଜାଙ୍କର କନିଷ୍ଠା କନ୍ୟା ଓ ଶତ୍ରୁଘ୍ନଙ୍କ ସ୍ତ୍ରୀ—2. Name of the wife of Śatrughana. [ବି—ଏହାଙ୍କ ଗର୍ଭରେ ବାହୁ ଓ ଶତ୍ରୁଘାତୀ ନାମକ ଦୁଇ ପୁତ୍ର ଜନ୍ମିଥିଲେ ।] ୩। (ପୁଂ)—ଦ୍ରୌପଦୀ ଗର୍ଭଜାତ ଅର୍ଜ୍ଜୁନଙ୍କ ପୁତ୍ର (ବିଶ୍ୱକୋଷ) 3. Name of the son of Arjuna throügh Draupadi. ୪ । (ସ୍ତ୍ରୀ) ବସୁଦେବଙ୍କ ଭଗିନୀ ଓ ଦନ୍ତବକ୍ରଙ୍କ ପତ୍ନୀ (ବିଶ୍ୱକୋଷ)—4. Name of the sister of Basudeaa.

ଶ୍ରୁତ ଦେବୀ—ସ. ବ. ସ୍ତ୍ରୀ—(ମ. ପ. ଲୋ; ବେଦକୁ ପ୍ରଥମେ ଗାନ କରିଥିବା ଦେବୀ)—ବାଗ୍ଦେବୀ; ସରସ୍ୱତୀ—The Goddess of learning.
Sruta debi

ଶ୍ରୁତ ଧର—ସ. ବି. ଓ ବଣ ପୁଂ—(ଶ୍ରୁତ=ଶ୍ରୁତ ଶବ୍ଦ+ଧୃ ଧାତୁ+କର୍ତ୍ତୃ. ଅ)—ଶ୍ରୁତିଧର (ଦେଖ)—Śruti-dhara (See) ବି.—(ନାମ)—ଜୟଦେବଙ୍କ ଗୀତଗୋବିନ୍ଦରେ ଉଲ୍ଲିଖିତ ସଂସ୍କୃତ ଜଣେ କବି—Name of a Sanscrit poet mentioned by Jayadeba.
Śruta dhara
[ଶ୍ରୁତଧରା—ସ୍ତ୍ରୀ]

ଶ୍ରୁତବାନ୍—ସ. ବଣ.ପୁଂ—(ଶ୍ରୁତବତ୍ ଶବ୍ଦ; ଶ୍ରୁ ଧାତୁ+କର୍ତ୍ତୃ.ତବତ୍)-୧। ଯେ ଶୁଣି ଅଛି—1,One who has heard.
Śrutabān
[ଶ୍ରୁତବତୀ—ସ୍ତ୍ରୀ] ୨ । (ପୁଂ. ୧ମା. ୧ବ)—ବିଦ୍ୱାନ୍—2. Learned. ୩ । ଶାସ୍ତ୍ରଜ୍ଞ—3 Versed in religious lore. ୪ । ବେଦଜ୍ଞ—4. Versed in the Bedas.

**ଶ୍ରୁତ ବୋଧ**—ସଂ. ବି—(ନାମ)—(ଯେଉଁ ଗ୍ରନ୍ଥକୁ ଶୁଣିବା ମାତ୍ରକେ
Śruta bodha ପାଠକ ଛନ୍ଦମାନଙ୍କର ଲକ୍ଷଣ ଜାଣି ପାରିବେ)
ମହାକବି କାଳିଦାସ କୃତ ସଂସ୍କୃତ ଛନ୍ଦୋଗ୍ରନ୍ଥ ବିଶେଷ—
A Sanscrit work on metre by poet Kālidāsa.

**ଶ୍ରୁତର୍ଷି**—ସଂ.ବି—(ଶ୍ରୁତ-ବିଖ୍ୟାତ+ଋଷି)—ଋଷିବିଶେଷ; ସୁଶ୍ରୁତାଦିଋଷି
Śrutarshi A name given to some famous sages, e.g. Suśruta.

**ଶ୍ରୁତ ଲି(ଲେ)ଖନ**—ଦେ· ବି—ଶୁଣି କରି ଲେଖାଯିବା ବିଷୟ—
Śruta li(le)khana Writing out of any passage to dictation.

**ଶ୍ରୁତଶାଳୀ**—ସଂ. ବି· ପୁଂ—(ଶ୍ରୁତଶାଳିନ ଶବ୍ଦ; ୧ମା· ୧ବ; ଶ୍ରୁତ=
Śruta sāli ବେଦ, ଶାସ୍ତ୍ର+ଶାଳିନ୍)—ପଣ୍ଡିତ; ବୁଧ—A
[ଶ୍ରୁତଶାଳିନୀ—ସ୍ତ୍ରୀ] learned man. ବିଣ. ପୁଂ—ବିଦ୍ୱାନ୍—
Learned.

**ଶ୍ରୁତଶୀଳ**—ସଂ. ବି—(ଦ୍ୱନ୍ଦ୍ୱ; ଶ୍ରୁତ+ଶୀଳ)—ଶାସ୍ତ୍ରଜ୍ଞାନ ଓ ସ୍ୱଭାବ—
Śrutaśila Learning and nature.
[ଶ୍ରୁତଶୀଳବାନ୍—ପୁଂ, ଶ୍ରୁତଶୀଳବତୀ—ସ୍ତ୍ରୀ—ବିଣ]

**ଶ୍ରୁତଶ୍ରବାଃ**—ସଂ. ବି—(ଶ୍ରୁତ+ଶ୍ରବସ୍=କୀର୍ତ୍ତି; ବହୁବ୍ରୀହି, ଶ୍ରୁତଶ୍ରବସ
Śrutaśrabāh ୧ମାଃ ୧ବ,ପୁଂ)—୧ । (ନାମ) ଚେଦିରାଜ ଶିଶୁ-
ପାଳଙ୍କ ପିତା—1. Name of the father of Śiśupāla. ୨ । ସୂର୍ଯ୍ୟ ପୁତ୍ର—2. A son of the sun God. ସଂ· ବି· ସ୍ତ୍ରୀ—ଶିଶୁପାଳଙ୍କ ମାତା—
Mother of Śiśupāla.

**ଶ୍ରୁତଶ୍ରବୋଽନୁଜ**—ସଂ. ବି—(୭ମୀ ତତ୍; ଶ୍ରୁତଶ୍ରବସ୍=ସୂର୍ଯ୍ୟଙ୍କ ପୁତ୍ର
Śrutaśrabonuja +ଅନୁଜ=କନିଷ୍ଠ, ସୂର୍ଯ୍ୟ ପୁତ୍ରଙ୍କ
ମଧ୍ୟରେ କନିଷ୍ଠ)—ଶନି ଗ୍ରହ—The planet saturn.

**ଶ୍ରୁତ ଶ୍ରେଣୀ**—ସଂ· ବି—(ବୈଦ୍ୟକ)—ଦ୍ରବନ୍ତୀ; ବୃହଦନ୍ତୀ ନାମକ
Śruta śroni ଔଷଧ ବୀଜ ଓ ତହିଁର ଗୁଳ୍ମ—Croton seed tree; Croton Polyandrum.

**ଶ୍ରୁତସଦ୍**—ସଂ· ବି—ବକ୍ତୃତା ଗୃହ ଓ ତତ୍ରତ୍ୟ ଶ୍ରୋତୃମଣ୍ଡଳୀ (ବିଶ୍ୱକୋଷ)·
Śrutasad The lecture-hall and the audience present there.

**ଶ୍ରୁତାଦାନ**—ସଂ ବି—(ଶ୍ରୁତ=ବେଦ+ଆଦାନ)—ବ୍ରହ୍ମବାଦ—
Śrutādāna Discussion on metaphysics; vedic discourse.

**ଶ୍ରୁତାଧ୍ୟୟନ**—ସଂ. ବି—(ଶ୍ରୁତ=ବେଦ, ଶାସ୍ତ୍ର+ଅଧ୍ୟୟନ, ୬ଷ୍ଠୀତତ୍)
Śrutādhyana ୧ । ବେଦାଧ୍ୟୟନ—1. Studying of the Bedas. ୨ । ଶାସ୍ତ୍ରାଧ୍ୟୟନ—
2. Studying of the scriptures.

**ଶ୍ରୁତାନ୍ୱିତ**—ସଂ. ବିଣ. ପୁଂ—(୩ୟା ତତ୍; ଶ୍ରୁତ=ବେଦ, ଶାସ୍ତ୍ରଦ୍ୱାରା
Śrutāniwita ଅନ୍ୱିତ=ଯୁକ୍ତ)—୧ । ବେଦଜ୍ଞ—1. Versed in the Bedas. ୨ । ଶାସ୍ତ୍ରଜ୍ଞ—2. Versed in religious lore. ୩ । ପଣ୍ଡିତ; ବିଦ୍ୱାନ୍—
(ଶ୍ରୁତାନ୍ୱିତା—ସ୍ତ୍ରୀ) 3. Learned.

**ଶ୍ରୁତାୟୁ**—ସଂ· ବି· ପୁଂ—(ନାମ)—ସୂର୍ଯ୍ୟ ବଂଶୀୟ ଜଣେ ରାଜା; କୁଶଙ୍କ
Śrutāyu ପରବର୍ତ୍ତୀ ଚତୁର୍ଦ୍ଦଶ ପୁରୁଷର ବଂଶଧର—Name of
[ଶ୍ରୁତାୟୁଧ—ଅନ୍ୟରୂପ] a descendant of Kuśa of the solar dynasty.

**ଶ୍ରୁତାର୍ଥ**—ସଂ.ବିଣ—(ବହୁବ୍ରୀହି; ଶ୍ରୁତ+ଅର୍ଥ)—ଶୁଣିବା ମାତ୍ରେ ଯହିଁର
Śrutārtha ଅର୍ଥ ବୁଝାଯାଏ—Easily understood; of which the meaning is understood as soon as it is heard. ସଂ· ବି—(କର୍ମଧା)—
ଶୁଣିବା ମାତ୍ରକେ ବୁଝାଯିବା ଅର୍ଥ—The meaning which is understood immediately on hearing a word.

**ଶ୍ରୁତି**—ସଂ. ବି—(ଶ୍ରୁ ଧାତୁ+କର୍ମ. ତି)—୧ । ବେଦ—
Śruti 1. The Bedas. [ଦ୍ର—ଲିଖନ ପଦ୍ଧତି ସୃଷ୍ଟିହେବା-
ପୂର୍ବରୁ ବେଦ ଶିଷ୍ୟାନୁଶିଷ୍ୟ କ୍ରମେ ଶ୍ରୁତିପରମ୍ପରାରେ
ପ୍ରଚରିତ ହେଉଥିଲା ବୋଲି ବେଦର ଗୋଟିଏ ନାମ ଶ୍ରୁତି]
୨ । କିଂବଦନ୍ତୀ; ପୁରୁଷାନୁକ୍ରମେ ମୁଖେ ମୁଖେ ଚଳି
ଆସୁଥିବା ପ୍ରବାଦ; ବାର୍ତ୍ତା; ପୁରୁଷ ପରମ୍ପରାଗତ ପ୍ରବଚନ-
2. Tradition; story which has been handed down from generation to generation.
୩ । ଶ୍ରବଣେନ୍ଦ୍ରିୟ ଗ୍ରାହ୍ୟ ଶବ୍ଦ; ବାଚକ ଶବ୍ଦ ବା ଧ୍ୱନି; ଶ୍ରବଣ-
ଯୋଗ୍ୟ ନାଦ—3. An audible sound; an expressive or significant sound; an expression which can be heard. ୪ ।
(ସଙ୍ଗୀତ) ସୂକ୍ଷ୍ମସ୍ୱର; ସ୍ୱରର ଅବୟବ ବିଶେଷ—
4. (Music) A delicate tone; a constituent part of a musical note. [ଦ୍ର—ସଙ୍ଗୀତରେ
ଏକ ସ୍ୱରରୁ ସ୍ୱରାନ୍ତର ପ୍ରକାଶ କରିବା ସମୟରେ ଦୁଇ
ଗୋଟି ସ୍ୱର ମଧ୍ୟରେ ଯେଉଁ ସୂକ୍ଷ୍ମ ସ୍ୱରାଂଶ ସକଳ ଶ୍ରୁତ
ହୁଏ ତାହାକୁ ଶ୍ରୁତି ବୋଲାଯାଏ । ସଙ୍ଗୀତ ଶାସ୍ତ୍ର ମତରେ
ଏହା ୨୨ ଗୋଟି । (ବଙ୍ଗଳାରେ ଏହାକୁ 'ସୁରତ୍' ବା
'ସୋରତ୍' ବୋଲାଯାଏ ।) ଯଥା—ନାନ୍ଦୀ, ବିଶାଳକା, ଉଷା,
ସୁମୁଖୀ, ଚିତ୍ରା, ବିଚିତ୍ରା, ଘନା, ମାତଙ୍ଗୀ, ସରସା, ଅମୃତା,
ମଧୁକରୀ, ମୈତ୍ରୀ, ଶିବା, ମାଧବୀ, ବାଳା, ଶାର୍ଙ୍ଗରବୀ,
କଳା, କଳରବା, ମାଳା, ବିଶାଳା, ଜୟା, ମାନ୍ଦା ।

ସଙ୍ଗୀତରେ ସ୍ୱର ୭ ଗୋଟି; ଯଥା—ସାରିଗାମାପାଧାନି;
ଏହି ପ୍ରତ୍ୟେକ ସ୍ୱରର ଭିନ୍ନ ଭିନ୍ନ ଶ୍ରୁତି ନିର୍ଦ୍ଦିଷ୍ଟ ହୋଇଅଛି;
(ଅର୍ଥାତ୍ ଭିନ୍ନ ଭିନ୍ନ ଶ୍ରୁତି ସଂଯୋଗରୁ ଭିନ୍ନ ଭିନ୍ନ ସ୍ୱର ଉତ୍ପନ୍ନ
ହୋଇଅଛି ।)

'ସା' ବା ଷଡ୍ଜର ଶ୍ରୁତି—ନାନ୍ଦୀ, ବିଶାଳା, ସୁମୁଖୀ,
ବିଚିତ୍ରା ।

'ସ' ବା ଋଷଭର—ଦଶା, ସନ୍ନା, ଶୂଲକା ।
'ଗା' ବା ଗାନ୍ଧାରର—ରୌଦ୍ରୀ, ରାଳା, ସରସା ।
'ମା' ବା ମଧ୍ୟମର—ମାର୍ଜନୀ, ମାଧବୀ, ଗର୍ଜନୀ, କ୍ଷିତି ।
'ପା' ବା ପଞ୍ଚମର—ରକ୍ତା, ରଞ୍ଜନା, ମାଳା, ଶାର୍ଦ୍ଦିନୀ ।
'ଧା' ବା ଧୈବତର—ଲଜ୍ଜା, ଅମୃତା, ରସା ।
'ନି' ବା ନିଷାଦର—ମାତ୍ରା, ମଧୁକରୀ ।]

୫ । (+କରଣ ତି) ଶ୍ରବଣେନ୍ଦ୍ରିୟ; କର୍ଣ୍ଣ; କାନ—5. Ear. (ଉ—କୋମଳତର ମୋହନ, କୁଞ୍ଜକୁଞ୍ଜିରୁ ଲାସ୍ୟନ ଅଛି ଚୁମ୍ବିଦେଇ ମୋ ଶ୍ରୁତିରେ । କବିସୂର୍ଯ୍ୟ. ବଳଦେବ. ନ. ଗୀତ । ) ୬ । (+ଭାବ. ତି) ଶ୍ରବଣ; ଶୁଣିବା—5. Act of hearing. ୭ । (+କର୍ମ. ତି) ଉଡ଼ା ଖବର; ବାର୍ତ୍ତା—7. Rumour; a verbal report; a report carried by word of mouth from one person to another. ୮ । ଶ୍ରବଣା ନକ୍ଷତ୍ର—8. The 22nd asterism. ଦେଶଜ ବି—୧ । ସୁରୁତି ୨ (ଦେଖ)—1. Suruti 2. (See) ୨ । ଶ୍ରୁତି ଖେଳ (ଦେଖ)—2. Śrutikheḷa. (See)

**ଶ୍ରୁତିକଟ**—ସଂ. ବି (ଶ୍ରୁତି=ବର୍ଣ୍ଣ, ବେଦ+କଟ୍ ଧାତୁ=ଗତି କରିବା +କରଣ. ଅ)—୧ । ପ୍ରାୟଶ୍ଚିତ୍ତ; ପାପ ଶୋଧନ—
Śrutikaṭa 1. Atonement, expiation. ୨ । (+କର୍ତ୍ତୃ. ଅ) ସର୍ପ—2. Serpent.

**ଶ୍ରୁତି କଟୁ**—ସଂ. ବିଣ (୭ମୀ ତତ୍; ଶ୍ରୁତିରେ କଟୁ ବା ଅପ୍ରିୟ)—
Śruti kaṭu କଠୋର ଶବ୍ଦବିଶିଷ୍ଟ; ଦୁଃଶ୍ରବ; ଶୁଣିବାକୁ ଅପ୍ରିୟ ବା କର୍କଶ; ଦୁଃଶ୍ରାବ୍ୟ—Unpalatable to the ear; jarring to the ear; harsh to hear; cacophonous.

**ଶ୍ରୁତିକଟୁତା**—ସଂ. ବି—ରଚନାଦୋଷ ଦୁଃଶ୍ରାବ୍ୟତା ଦୋଷ; କର୍କଶ ଶବ୍ଦ
Śrutikaṭutā ପ୍ରୟୋଗରୂପ ଦୋଷ—A cacophony; a (ଶ୍ରୁତିକଟୁ ଦୋଷ—ଅନ୍ୟରୂପ) defect in a composition, use of words viz, jarring to the ear.

[ଦ୍ର—ଶ୍ରୁତିକଟୁତା ଦୋଷର ଉଦାହରଣ—

"ଦୁର୍ଯୋଧନଃ—ଏହି ଅରଣ୍ୟ ଭୂମି ସ୍ଥାନେ ସ୍ଥାନେ, ନବତୃଣଖଣ୍ଡ ମୃଗୀଗଣ ରୁଧିରଲୋହିତା, ମୃଗନାଭିଗନ୍ଧମୁଗ୍ଧ, ବଳ୍ମୀକଳମ୍ବିତଭୁଜଙ୍ଗମା, ମଧ୍ୟାହ୍ନ ସୂର୍ଯ୍ୟସନ୍ତପ୍ତ ବାଲୁକଣା, ପଲ୍ଲବୋଦ୍ଭିନ୍ନପାଂଶୁଳା, ଭୂଷ୍କଣ୍ଠୀ ପଦଦୂଷ୍ଟ ଦାବାଗ୍ନି ଝଷାଳଦନ୍ତୁ-ନଖଚିହ୍ନିତଶାର୍ଦ୍ଦୂଳା, ଖଦ୍ୟୋତଚୁମ୍ବିତଶିଳା, ମରକତ ଶୃଙ୍ଖଳ-ବଳା ହୋଇ କ ରମଣୀୟତର ଦିଶୁଅଛି ।"

ରାଧାମୋହନ. ବିଦୁରେଦେବ ପାଣ୍ଡବ ବନବାସ ।]

**ଶ୍ରୁତି କଠୋର**—ସଂ. ବିଣ—ଶ୍ରୁତିକଟୁ (ଦେଖ)
Śruti kaṭhora Śrutikaṭu. (See)
(ଶ୍ରୁତିକଠୋରତା—ବି)

**ଶ୍ରୁତି କଥିତ**—ସଂ. ବିଣ (୭ମୀ ତତ୍)—ବେଦୋକ୍ତ—
Śruti kathita Mentioned in the Bedas.

**ଶ୍ରୁତିକଳା**—ସଂ. ବି (ସଙ୍ଗୀତ)—ଶ୍ରୁତି ୪ (ଦେଖ)
Śruti kaḷā Śruti 4. (See)

**ଶ୍ରୁତି କୁଶଳ**—ସଂ. ବିଣ. ପୁଂ (ଶ୍ରୁତି=ଶାସ୍ତ୍ର=କୁଶଳ; ୭ମୀ ତତ୍)—
Śruti kuśaḷa ଶାସ୍ତ୍ରଜ୍ଞ; ବେଦଜ୍ଞ—Versed in the Scriptures.
(ଶ୍ରୁତିକୁଶଳା—ସ୍ତ୍ରୀ)

**ଶ୍ରୁତି କୁହର(ବିବର)**—ସଂ. ବି (୬ଷ୍ଠୀ ତତ୍)—କର୍ଣ୍ଣର ଗର୍ତ୍ତ—
Śruti kuhara(bibara) The hole of the ear.

**ଶ୍ରୁତି ଖେଳ**—ଦେ. ବି (ପର୍ତ୍ତୁଗୀଜ-ସୋର୍ତ୍ତି Sorte+ସଂ. ଖେଳ)—
Śruti kheḷa ଯେଉଁ କୌଶଳ ଖେଳରେ କଣେ ଲୋକ ନିର୍ଦ୍ଦିଷ୍ଟ ଧନ ବା ବସ୍ତୁ ପାଇବାର ସ୍ଥିର ହୋଇଥାଏ—
ସୁର୍ତିଖেলা ਸੁਰਤਿਖੇਲ Lottery.

**ଶ୍ରୁତି ଗମ୍ୟ**—ସଂ. ବି (ତୃତୀୟା ତତ୍; ଶ୍ରୁତିଦ୍ୱାରା ଗମ୍ୟ)—୧ । ଶ୍ରାବ୍ୟ—
Śruti gamya 1. Audible; cognisable by the ear.
୨ । ଶ୍ରୁତିଗୋଚର (ଦେଖ)—
2 Śrutigochara. (See)

**ଶ୍ରୁତି ଗୋଚର**—ସଂ. ବିଣ (୬ଷ୍ଠୀ ତତ୍)—ଶୁଣାଯିବା; ଶ୍ରବଣର
Śruti gochara ବିଷୟୀଭୂତ; ଯାହା ଶୁଣାଗଲା, ଶ୍ରୁତ; ଶ୍ରୁତି ପଥାରୂଢ଼; କର୍ଣ୍ଣଗୋଚର—Heard; coming to the ear; falling into one's ear; brought to the ears (of some body).

**ଶ୍ରୁତିଗୋଚର ହେବା**—ଦେ. କ୍ରି—ଶୁଣାଯିବା; ଶ୍ରୁତ ହେବା—
Śrutigochara hebā To be heard.
শ্রুতিগোচর হওয়া श्रुतिगोचर होना

**ଶ୍ରୁତିଜ୍ଞ**—ସଂ. ବିଣ. ପୁଂ—ଶ୍ରୁତିକୁଶଳ (ଦେଖ)—
Śrutijña Śrutikuśaḷa. (See)
( ଶ୍ରୁତିଜ୍ଞା—ସ୍ତ୍ରୀ )

**ଶ୍ରୁତିଧର**—ସଂ. ବିଣ. ପୁଂ (ଶ୍ରୁତି=ଶ୍ରବଣ+ଧୃ ଧାତୁ+କର୍ତ୍ତୃ. ଅ;
Śrutidhara ଶ୍ରବଣ ମାତ୍ରକେ କୌଣସି କଥାକୁ ଯେ ସ୍ମୃତିରେ (ଶ୍ରୁତିଧରା—ସ୍ତ୍ରୀ) ବା ହୃଦୟରେ ଧାରଣ କରିପାରେ)—ଅତି ମେଧାବୀ; ଯେ କୌଣସି କଥାକୁ ଶୁଣିଲାମାତ୍ରେ ସ୍ମରଣ ରଖିପାରେ—Having a very sharp or acute memory. ବି. ପୁଂ—ଯେଉଁ ବ୍ୟକ୍ତି କୌଣସି କଥାକୁ ଶୁଣିଲାମାତ୍ରେ ମନେରଖି ତାହା ଅବିକଳ କହିପାରେ—One who retains whatever he hears and reproduces the same afterwards exactly.

**ଶ୍ରୁତି ପଥ (ମାର୍ଗ)**—ସଂ. ବି.—(ରୂପକ)—କର୍ଣ୍ଣପଥ—
Śruti patha (mārga) The auditory canal.

**ଶ୍ରୁତିପଥ ଗୋଚର**—ସଂ. ବିଣ—ଶ୍ରୁତି ଗୋଚର; କାନକୁ ଶୁଭିବା—
Śrutipatha gochara Heard; coming to the ears; perceived by the organ of hearing.
(ଶ୍ରୁତିପଥାରୂଢ଼—ଅନ୍ୟରୂପ)

ଶ୍ରୁତି ପାଠ—ସଂ. ବି—(୬ଷ୍ଠୀତତ୍)—ବେଦାଧ୍ୟୟନ
Śruti pāṭha Learning of the Bedas.

ଶ୍ରୁତି ପାନ—ଦେ. ବି (ଶ୍ରୁତିଦ୍ୱାରା ପାନ)-ପିଇବାପରି କାନରେ ଶ୍ରବଣ—
Śruti pāna Hearing with the ears with equal
श्रुतिपान avidity as in drinking.
[ଉ—ଅମୃତଁ ଅଧିକ ଏ ବ୍ୟାନ, ସୁଜନେ ପିଅ ଶ୍ରୁତିପାନ ।
ଯଶୋବନ୍ତ—ପ୍ରାଚୀ. ପ୍ରେମଭକ୍ତି ବ୍ରହ୍ମଗୀତା ।]

ଶ୍ରୁତି ପାଶ—ସ. ବି (ଶ୍ରୁତି=କର୍ଣ୍ଣ+ସୁନ୍ଦର ଅର୍ଥରେ ପାଶ)—ସୁନ୍ଦରକର୍ଣ୍ଣ
Śruti pāśa Beautiful ear.

ଶ୍ରୁତି ପାଶୀ—ସଂ. ବିଣ—(ଶ୍ରୁତିପାଶ=କର୍ଣ୍ଣପାଶ ବା ସୁନ୍ଦର କର୍ଣ୍ଣ+ଅସ୍ତି
Śruti pāśi ଅର୍ଥରେ ଇନ୍, ୧ମା, ୧ବଚନ) ଶ୍ରବଣାର୍ଥ ଉତ୍କର୍ଣ୍ଣ—
Expectant to hear. [ଉ—ଅଷ୍ଟଭୁଜନାଥ କହେ
ହୋଇ ଅଭିଳାଷୀ, ମିଳଣୀ କଥିତ ବନନରେ ଶ୍ରୁତିପାଶୀ
କବିସୂର୍ଯ୍ୟ—ସଙ୍ଗୀତ ।]

ଶ୍ରୁତିମାନ୍—ସଂ. ବିଣ. ପୁଂ—୧ । ଶାସ୍ତ୍ରଜ୍ଞ—1. Versed in the
Śrutimān Śāstras. ୨ । କର୍ଣ୍ଣ ବିଶିଷ୍ଟ—2. Having
(ଶ୍ରୁତିମତୀ—ସ୍ତ୍ରୀ) ears.

ଶ୍ରୁତି ମୁଖ—ଦେ. ବି—କର୍ଣ୍ଣକୁହର; କର୍ଣ୍ଣ ମୂଳ—Ear; organ of
Śruti mukha hearing. [ଉ—ବାର୍ତ୍ତା ଔଷଧ ଶ୍ରୁତି-
ମୁଖରେ ପିଇ । ଉଜ୍ଜ—ବୈଦେହୀଶବିଳାସ ।]

ଶ୍ରୁତିବିତ୍—ସଂ. ବିଣ—ଶ୍ରୁତି କୁଶଳ (ଦେଖ)
Śrutibit Śruti kuśala (See)

ଶ୍ରୁତି ବିହିତ—ସଂ. ବିଣ—(୭ମୀ ବା ୩ୟାତତ୍) ବେଦବିହିତ; ଶାସ୍ତ୍ରସମ୍ମତ
Śruti bihita —Approved by the Bedas.

ଶ୍ରୁତି ବିରୁଦ୍ଧ—ସଂ. ବିଣ—ଶାସ୍ତ୍ରବିରୁଦ୍ଧ—Opposed to the
Śruti biruddha Vedic precepts.

ଶ୍ରୁତି ବେଧ—ସଂ. ବି (୬ଷ୍ଠୀ ତତ୍)—କର୍ଣ୍ଣବେଧ; କାନ ଫୋଡ଼ା—
Śruti bedha Drilling of the lobes of the ear.

ଶ୍ରୁତି ମଧୁର—ସଂ. ବିଣ—ଶୁଣିବାକୁ ମିଷ୍ଟ—Sweet to the ear;
Śruti madhura pleasing to hear,
(ଶ୍ରୁତି ମନୋହର—ଅନ୍ୟରୂପ)

ଶ୍ରୁତି ମୂଳ—ସ. ବି—(୬ଷ୍ଠୀତତ୍)—୧ । କାନମୂଳ; କର୍ଣ୍ଣମୂଳ—1.
Śruti mūla The root of the ear. ୨ । ବହୁବ୍ରୀହି;
ଶ୍ରୁତି=ବେଦ ଅଟେ ମୂଳ ଯାହାର)—ଯଜ୍ଞ—2. Vedic
oblations to fire.

ଶ୍ରୁତିମୂଳକ—ସଂ ବିଣ—ବେଦାତ୍ମକ; ବେଦ ଉପରେ ପ୍ରତିଷ୍ଠିତ—
Śruti mūlaka Based on the Bedas.

ଶ୍ରୁତି ସଙ୍ଗ(ମ୍ମ)ତ—ସଂ ବିଣ.—ଶାସ୍ତ୍ରସଙ୍ଗତ—Conformatory to
Śruti saṅga(mma)ta the precepts of the
(ଶ୍ରୁତିସିଦ୍ଧ—ଅନ୍ୟରୂପ) scriptures.

ଶ୍ରୁତିସୁଖ—ସଂ. ବି—(୬ଷ୍ଠୀତତ୍; ଶ୍ରୁତି=କର୍ଣ୍ଣ+ସୁଖ)କର୍ଣ୍ଣତୃପ୍ତି—
Śruti sukha Satisfaction to or of the sense of
hearing.

ଶ୍ରୁତି ସୁଖକର—ସଂ. ବିଣ—ଶ୍ରୁତି ମଧୁର—Sweet to hear;
Śruti sukhakara pleasing to the ear.

ଶ୍ରୁତି ସ୍ମୃତି—ସଂ. ବି—(ଦ୍ୱନ୍ଦ୍ୱ ସମାସ)—ବେଦ ଓ ମନ୍ୱାଦି ପ୍ରଣୀତ ସ୍ମୃତି
Śruti smṛuti ବା ଧର୍ମଶାସ୍ତ୍ର—The Bedas and the
Smṛutis of the Hindus. [ଦ୍ର—ହିନ୍ଦୁ ଧର୍ମଶାସ୍ତ୍ର
* ଭାଗରେ ବିଭକ୍ତ ଯଥା—ଶ୍ରୁତି (ବେଦ), ସ୍ମୃତି (ମନୁ,
ପରାଶର, ଯାଜ୍ଞବଲ୍କ୍ୟ ଆଦିଙ୍କ ରଚିତ ସଂହିତା), ପୁରାଣ
(ଅଷ୍ଟାଦଶ ମହାପୁରାଣ ଓ ଉପପୁରାଣମାନ) ।
ଏହି * ଜାତୀୟ ଶାସ୍ତ୍ରରେ ହିନ୍ଦୁଙ୍କ ଜ୍ଞାତବ୍ୟ ସାଂସାରିକ,
ସାମାଜିକ, ବ୍ୟକ୍ତିଗତ ଓ ଆଧ୍ୟାତ୍ମିକ ବିଷୟମାନ ଲିଖିତ
ଅଛି । ଶ୍ରୁତି, ସ୍ମୃତି, ପୁରାଣ ମଧ୍ୟରେ କୌଣସି ଗୋଟିଏ
ବିଷୟରେ ପ୍ରଭେଦ ବା ଅସାମଞ୍ଜସ୍ୟ ଦେଖାଗଲେ, ପୁରାଣ
ଠାରୁ ସ୍ମୃତି ଓ ସ୍ମୃତିଠାରୁ ଶ୍ରୁତି ଅଧିକ ପ୍ରାମାଣିକ ବା
ଆଦରଣୀୟ ବୋଲି ପଣ୍ଡିତମାନେ କହିଅଛନ୍ତି ।]

ଶ୍ରୁତିହାରୀ—ସ. ବିଣ (ଶ୍ରୁତିହାରିନ୍ ଶବ୍ଦ; ଶ୍ରୁତି=କର୍ଣ୍ଣ+ହୃ ଧାତୁ=
Śrutihāri ହରଣକରିବା+କର୍ତ୍ତୃ ଇନ୍)—ଯାହା ଶୁଣିଲେ
(ଶ୍ରୁତିହାରିଣୀ—ସ୍ତ୍ରୀ) ମନ ମୁଗ୍ଧ ହୁଏ; ଶ୍ରବଣ ମନୋଜ୍ଞ—
Very sweet to hear.

ଶ୍ରୁତି—ସ. ବି—ବେଦ (ମନୁ ୧୧।୩୩)—
Śruti The Bedas.

ଶ୍ରୁତ୍ୟନୁପ୍ରାସ—ସଂ. ବି—ଏକପ୍ରକାର ଅନୁପ୍ରାସ—A kind of
Śrutyanuprāsa alliteration. [ଦ—
ଯେଉଁ ରଚନାରେ ତାଲବ୍ୟ ଓ ଦନ୍ତ୍ୟାଦି ବର୍ଣ୍ଣମାନଙ୍କ
ଉଚ୍ଚାରଣ ସ୍ଥାନରେ ଏକକ ଉଚ୍ଚାର୍ଯ୍ୟ ହେତୁକ ବ୍ୟଞ୍ଜନର
ସାଦୃଶ୍ୟ ହୁଏ ତାକୁ ଶ୍ରୁତ୍ୟନୁପ୍ରାସ ବୋଲିଯାଏ—
ଶବ୍ଦକୋଷ ।]

ଶ୍ରୁବ—ସ. ବି. କ୍ଲୀ (ଶ୍ରୁ ଧାତୁ=କ୍ଷରିତ ହେବା+ଅଧିକରଣ. ଅ)—
Śruba ୧ । ଯଜ୍ଞ; ଯାଗ—1. Vedic sacrifice or
oblation of ghee offered unto the fire.
୨ । (+ଅପାଦାନ. ଅ) ଯଜ୍ଞରେ ଅଗ୍ନି ମଧ୍ୟକୁ ଘୃତ
କ୍ଷେପଣ କରିବାର ପାତ୍ରବିଶେଷ; ସ୍ରୁକ୍—2. A sort
of ladle or spoon with the help of
which ghee is poured into the sacrificial
fire.

ଶ୍ରୂୟମାଣ(ନ)—ସ. ବିଣ(ଶ୍ରୁ ଧାତୁ+କର୍ମ. ଆନ)—ଯାହା ଶୁଣାଯାଉଅଛି
Śrūyamāṇa(na) —Which is being heard.

ଶ୍ରେଢ଼ୀ—ସ. ବି (ଅଙ୍କଶାସ୍ତ୍ର; ଲୀଲାବତୀ ସୂତ୍ର; ଶ୍ରେଣୀ+ଢୌକ ଧାତୁ=
Śreḍhi ଗମନ କରିବା+କର୍ତ୍ତୃ. ଅ+ଈ)—ଅଙ୍କଶାସ୍ତ୍ରରେ ଗଣନାର
ପ୍ରକାର ବା ଧାରାବିଶେଷ—Progression; regular
proportionate advance or decrease in a
series of arithmetical progression.
[ଦ୍ର—କେତେଗୁଡ଼ିଏ ରାଶି ଯେବେ ଏପରି ବିନ୍ୟସ୍ତ
ହୋଇଥାଏ ଯେ, ପ୍ରତ୍ୟେକେ ସ୍ୱ ସ୍ୱ ପରବର୍ତ୍ତୀ ରାଶି ଅପେକ୍ଷା
ସମାନ ପରିମାଣରେ ଗୁରୁ ବା ଲଘୁ ହୋଇଥାଆନ୍ତି ତେବେ
ତାହାକୁ ଶ୍ରେଢ଼ୀ କୁହାଯାଏ ।]

ଶ୍ରେଣି(ଣୀ)—ସ. ବି (ଶ୍ରି ଧାତୁ=ସେବା କରିବା; ଆଶ୍ରୟ କରିବା+
Śreṇi(ṇi) କର୍ତ୍ତୃ. ନି)—୧ । ପଂକ୍ତି; ଧାଡ଼ି; ମାଳା;

ରାଜି—1. Row; line; range. ୨ । ସଂସ୍ଥିତ; ପଦ—2. Rank. ୩ । ସମୂହ—3. A collection. ୪ । ସବ୍ୟବସାୟୀଙ୍କ ସମ୍ପ୍ରଦାୟ—4. A company formed by many people of the same business. ୫ । ସମଶିଳ୍ପି ସଙ୍ଗତି—5. A trade-guild. ୬ । ସମଧର୍ମୀଙ୍କ ସମ୍ପ୍ରଦାୟ—6. A caste or sect of coreligionists. ୭ । ସମକର୍ମୀଙ୍କ ସମ୍ପ୍ରଦାୟ—7. A society of co-workers. ୮ । କ୍ଲାସ; ବିଦ୍ୟାଳୟରେ ସହପାଠୀଙ୍କ ଦଳ—8. A class of students. [ଦ୍ର—ଅଧୁନିକ ବିଦ୍ୟାଳୟମାନଙ୍କରେ ପାଠୋନ୍ନତିର କ୍ରମ ଅନୁସାରେ ଶ୍ରେଣୀମାନ ଗଢ଼ା ହୁଏ । ଯଥା—ପ୍ରଥମ ଶ୍ରେଣୀ, ୨ୟ ଶ୍ରେଣୀ ।

ପାଠ୍ୟ ବିଷୟ ଅନୁସାରେ ଶ୍ରେଣୀର ନାମ—

ଡ୍ରଇଙ୍ଗ୍, ବିଜ୍ଞାନ, ସଂସ୍କୃତ ।

ପଠନକ୍ରମ ଅନୁସାରେ ଶ୍ରେଣୀର ନାମ—

୧ମ ବର୍ଷୀୟ, ୨ୟ ବର୍ଷୀୟ, ୩ୟ ବର୍ଷୀୟ, ୪ର୍ଥ ବର୍ଷୀୟ । ପଢ଼ୁଥିବା ବାଳକଙ୍କ ଅବସ୍ଥା ଅନୁସାରେ । ଯଥା—ଶିଶୁଶ୍ରେଣୀ ।] ୯ । ଜଳସେଚନ ପାତ୍ର; ସେଚନୀ; ଶେଣା—9. A bag or basket for baling out water. ୧୦ । ଖୁଲ ଘରର ଶେଣି—10. Pole-plates or wall-plates of thatched houses. ୧୧ । ଏକବର୍ଣ୍ଣ ବା ଏକ ଜାତି (ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର) ମଧ୍ୟରେ ଥିବା ଭିନ୍ନ ଭିନ୍ନ ସମ୍ପ୍ରଦାୟ—11. Subsect; subcaste.

**ଶ୍ରେଣିକ**—ସ. ବି. ପୁଂ—୧ । (ନାମ)—ମଗଧଦେଶୀୟ ନୃପବିଶେଷ—
**Śreṇika** 2. Name of a king of Behar.
[ଦ୍ର—ଏ ବୁଦ୍ଧଙ୍କ ସମସାମୟିକ ଥିଲେ । ଏ ବିମ୍ବିସାର ନାମରେ ପ୍ରସିଦ୍ଧ—ବିଶ୍ୱକୋଷ ] ୨ । ଶ୍ରେଣି (ଦେଖ)—2. Śreṇi (See) ୩ । ଛନ୍ଦୋଭେଦ—3. Name of a Sanscrit metre. (ଦ୍ର—ଏଥିରେ ୧।୩।୫।୭।୯ ଓ ୧୧ ବର୍ଣ୍ଣ ଲଘୁ ଓ ୨।୪।୬।୮।୧୦ ବର୍ଣ୍ଣ ଗୁରୁ—ବିଶ୍ୱକୋଷ ।)

**ଶ୍ରେଣିକା**—ସ. ବି (ଶ୍ରେଣି+କ+ଆ)—ପଟ୍ଟବାସ; ତମ୍ବୁ—
**Śreṇikā** Tent.

**ଶ୍ରେଣି(ଣୀ) ବଦ୍ଧ(କୃତ)**—ସ. ବିଣ—୧ । ଶ୍ରେଣୀରୂପେ ସଜ୍ଜିତ; ପଂକ୍ତି
**Śreṇi(ṇī) baddha(kṛuta)** ବନ୍ଧା ହୋଇଥିବା;
[ଶ୍ରେଣି(ଣୀ)ଭୂତ—ଅନ୍ୟରୂପ) ଧାଡ଼ି ଧାଡ଼ି—1. Formed or arranged in rows. ୨ । ବିଭିନ୍ନ ଶ୍ରେଣୀ ଅନୁସାରେ ସଜ୍ଜିତ—2. Classified.

**ଶ୍ରେଣି(ଣୀ) ବନ୍ଧନ**—ସ. ବି—ଧାଡ଼ି ବାନ୍ଧିବା—
**Śreṇi(ṇi) bāndhana** Arrangement into rows.

**ଶ୍ରେଣି(ଣୀ) ବାନ୍ଧିବା**—ଦେ. କ୍ରି—ପଂକ୍ତି ରଚନା କରିବା—
**Śreṇi(ṇi)bāndhibā** To arrange into rows.
श्रेणीबाँधा , श्रेणीबाँधना,

**ଶ୍ରେଣି(ଣୀ) ବିଭାଗ**—ସ. ବି—ବିଭିନ୍ନ ବସ୍ତୁକୁ ଭିନ୍ନ ଭିନ୍ନ ଶ୍ରେଣୀରେ
**Śreṇi(ṇī) bibhāga** ପୃଥକ୍ କରିବା—Classification; division into classes.

**ଶ୍ରେଣି(ଣୀ)ଭୁକ୍ତ**—ସ. ବିଣ—୧ । ଭିନ୍ନ ଭିନ୍ନ ଶ୍ରେଣୀରେ ବିଭକ୍ତ—
**Śreṇi(ṇī)bhukta** 1. Divided into classes
୨ । କୌଣସି ଶ୍ରେଣୀର ଅନ୍ତର୍ଗତ—2. Included in any one class.

**ଶ୍ରେଣି(ଣୀ)ମାନ୍**—ସ. ବି. ପୁଂ (ଶ୍ରେଣୀ+ମତ୍; ୧ମା. ୧ବ)—୧ ।
**Śreṇi(ṇī)mān** ସେନାପତି—(ବିଶ୍ୱକୋଷ)—
1. Commander. ୨ । ଦଳପତି (ବିଶ୍ୱକୋଷ)—
2. Leader. ୩ । ବଣିକ୍ ଦଳପତି (ବିଶ୍ୱକୋଷ)—
3. A leader of a company of traders.

**ଶ୍ରେଢ଼ି**—ସଂ. ବି (ଶ୍ରେଣୀ+ଢୌକ ଧାତୁ+କର୍ତ୍ତୃ. ଅ+ଇ)—ଶ୍ରେଢ଼ୀ
**Średhi** (ଦେଖ)—Śrerḏhi (See)

**ଶ୍ରେୟଃ**—ସଂ. ବିଣ. କ୍ଳୀ (ପ୍ରଶସ୍ୟ+ଅତ୍ୟର୍ଥେ ଈୟସ୍=ଶ୍ରେୟସ୍;
**Śreyah** ପ୍ରଶସ୍ୟ ସ୍ଥାନରେ 'ଶ୍ର' ଆଗମ)—
(ଶ୍ରେୟସ୍—ଅନ୍ୟରୂପ) ୧ ।—ଉତ୍ତମ—1. Good.
(ଶ୍ରେୟ—ଦେ. ରୂପ) ୨ । ଶ୍ରେଷ୍ଠ—2. Excellent.
(ଶ୍ରେୟାନ୍—ପୁଂଲିଙ୍ଗ) ୩ । ସଙ୍ଗତ; ଉପଯୁକ୍ତ; ପ୍ରଶସ୍ତ—
(ଶ୍ରେୟସୀ—ସ୍ତ୍ରୀଲିଙ୍ଗ) 3. Suitable; preferable.
୪ । ଶୁଭକର; ହିତକର—4. Beneficial; auspicious.
ବି - ୧ । ଧର୍ମ—1. Righteousness. ୨ । ମୁକ୍ତି; ଅପବର୍ଗ—2. Salvation; final beautitude. ୩ । ଧର୍ମଲବ୍ଧ; ପୁଣ୍ୟ—3. Religious merit. ୪ । ସୁଖ; ମଙ୍ଗଳ—4. Good; blessing ୫ । ସୌଭାଗ୍ୟ—5. Good fortune. ୬ । ଉପକାର—6. Benefit. [ଦ୍ର—ଶାସ୍ତ୍ରକାରମାନେ ଶ୍ରେୟଃ=ହିତକର ଓ ପ୍ରେୟଃ=ପ୍ରିୟବସ୍ତୁ ମଧ୍ୟରେ ପ୍ରଭେଦ ଦେଖାଇ ଅଛନ୍ତି । ପ୍ରେୟଃ ନହୋଇ ପଣ୍ଡିତେ ସର୍ବଦା ଶ୍ରେୟଃର ଅନୁସରଣ କରିବ ।]

**ଶ୍ରେୟଃକଳ୍ପ**—ସ. ବିଣ (ଶ୍ରେୟଃ+ଈଷଦୂନାର୍ଥେ ବା ସଦୃଶାର୍ଥେ କଳ୍ପ)
**Śreyahkalpa** ଅପେକ୍ଷାକୃତ ଶ୍ରେୟଃ; ଶ୍ରେୟସ୍ତୁଲ୍ୟ—As
(ଶ୍ରେୟସ୍କଳ୍ପ—ଅନ୍ୟରୂପ) good though not more excellent.

**ଶ୍ରେୟକାଳ**—ଦେ. ବି—(ସଂ. ଶ୍ରେୟଃକାଳ)—୧ । ଶୁଭ ସମୟ—
**Śreya kāla** 1. Auspicious time. ୨ । ଲାଭର ସମୟ—लाभेर बेला 2. The time of gain. [ଦ୍ର—ଶ୍ରେୟକାଳ लाभका समय ଜାଣିଛେ ଭୂମିର ପ୍ରାପତ—କୃଷ୍ଣସିଂହ. ମହାଭାରତ. ବନ ।]

**ଶ୍ରେୟସୀ**—ସ. ବିଣ. ସ୍ତ୍ରୀ (ଶ୍ରେୟସ୍+ସ୍ତ୍ରୀ. ଈ)—ମଙ୍ଗଳକରୀ; ଶୁଭକରୀ;
**Śreyasī** ହିତକରୀ—Beneficial. ବି—୧ । ହରିତକୀ; ହରିଡ଼ା—1. Myrobalan. ୨ । ଗଜପିପ୍ପଳୀ—2. Pathos Officialis. ୩ । ରାସ୍ନା—3. Vanda Roxburghi.

ଶ୍ରେୟସ୍କର—ସଂ. ବିଣ.ପୁଂ (ଶ୍ରେୟସ୍+କୃ ଧାତୁ+କର୍ତ୍ତୃ. ଅ)—ମଙ୍ଗଳ-
Śreyaskara କର; ଶୁଭଦାୟକ—Beneficial; bringing
(ଶ୍ରେୟସ୍କୃତ୍—ଅନ୍ୟରୂପ) good fortune.

ଶ୍ରେୟସ୍କାମ—ସଂ. ବିଣ. ପୁଂ (ଶ୍ରେୟଃ ଅଟେ କାମ ଯାହାର; ବହୁବ୍ରୀହି)
Śreyaskāma —ମଙ୍ଗଳକାମୀ—Wishing good.
[ ଶ୍ରେୟସ୍କାମା, ଶ୍ରେୟସ୍କାମିନୀ—ସ୍ତ୍ରୀ ]

ଶ୍ରେୟାନ୍—ସଂ. ବି. ପୁଂ (ଶ୍ରେୟସ୍ ଶବ୍ଦ; ପୁଂ. ୧ମା. ୧ବ)—୧ । ଧର୍ମ;
Śreyān ପୁଣ୍ୟ—1. Righteousness; religious merit; piety. ୨ । ମୋକ୍ଷ; ମୁକ୍ତି; ଅପବର୍ଗ—2. Salvation; beatitude. ୩ । ମଙ୍ଗଳ; ଶୁଭ—3. Wellbeing; welfare. ୪ । ସୁଖ—4. Happiness; pleasure. ୫ । ସୌଭାଗ୍ୟ—5. Prosperity; good fortune. ୬ । ହିତ—6. Benefit.
[ ଶ୍ରେୟସୀ—ସ୍ତ୍ରୀ. ବିଣ ] ବିଣ. ପୁଂ—୧ । ଶ୍ରେଷ୍ଠ—1. Prominent; superior. ୨ । ମଙ୍ଗଳକର; ଶୁଭକର; ଶୁଭଯୁକ୍ତ—2. Auspicious; fortunate. ୩ । ହିତକର—3. Beneficial. ୪ । ଅତି ପ୍ରଶସ୍ତ—4. Very suitable. ୫ । ପ୍ରଶଂସ୍ୟ—5. Praiseworthy.

ଶ୍ରେୟୋଜନକ—ସଂ. ବିଣ (ଉପପଦତତ୍; ଶ୍ରେୟଃ+ଜନ୍ ଧାତୁ+କର୍ତ୍ତୃ.
Śreyojanaka ଣକ)—୧ । ମଙ୍ଗଳକର—1. Auspicious.
୨ । ହିତକର—2. Beneficial.

ଶ୍ରେୟୋବୃଦ୍ଧି—ସଂ. ବି (୬ଷ୍ଠୀ ତତ୍; ଶ୍ରେୟଃ+ବୃଦ୍ଧି)—ମଙ୍ଗଳ ବା
Śreyobṛuddhi ଶୁଭର ବୃଦ୍ଧି—Increase of prosperity.

ଶ୍ରେୟୋମୟ—ସଂ. ବିଣ (ଶ୍ରେୟଃ+ମୟ)—ମଙ୍ଗଳମୟ—
Śreyomaya Full of bliss.
[ ଶ୍ରେୟୋମୟୀ—ସ୍ତ୍ରୀ ]

ଶ୍ରେୟୋଲାଭ—ସଂ. ବି (୬ଷ୍ଠୀ ତତ୍, ଶ୍ରେୟଃ+ଲାଭ)—ମଙ୍ଗଳଲାଭ—
Śreyolābha The attainment of bliss

ଶ୍ରେଷ୍ଟ (ଇତ୍ୟାଦି)—ଗ୍ରା. ବିଣ—ଶ୍ରେଷ୍ଠ ଇତ୍ୟାଦି (ଦେଖ)
Śreshṭa (etc) Śreshṭha etc (see)

ଶ୍ରେଷ୍ଠ—ସଂ. ବିଣ ('ପ୍ରଶସ୍ୟ+ଅତ୍ୟର୍ଥେ ଇଷ୍ଠ; ପ୍ରଶସ୍ୟ ସ୍ଥାନରେ ଶ୍ର)—
Śreshṭha ୧। ପ୍ରଧାନ—1 Prominent; chief; superior. ୨ । ଉତ୍କୃଷ୍ଟ—2. Excellent. ୩ । ଅତ୍ୟୁତ୍ତମ—3. Best. ୪ । ସର୍ବୋତ୍ତମ—4 Highest. ୫ । ବୃଦ୍ଧ; ଜ୍ୟେଷ୍ଠ—5. Eldest. ବି—୧ । କୁବେର—1. The God presiding over wealth. ୨। ରାଜା—2. King. ୩। ବ୍ରାହ୍ମଣ—3. Brāhmaṇa. ୪ । (ସବୁଠାରୁ ଶ୍ରେଷ୍ଠ ନାମୋକ୍ତ) ବିଷ୍ଣୁ—4. Bishṇu. ୫ । ଗୋଦୁଗ୍ଧ—5. Cow's milk. ୬ । ମହାଦେବ (ଶବ୍ଦକୋଷ)—6. Śiba.

ଶ୍ରେଷ୍ଠ(ଷ୍ଠି)କରଣ—ଦେ. ବି—ଶେଠକରଣ (ଦେଖ)
Śresṭha(shṭhi)karaṇa Seṭha karaṇa (See)

ଶ୍ରେଷ୍ଠ କାଷ୍ଠ—ସଂ. ବି—ଶାଳ ବୃକ୍ଷ; ଶାଗୁଆନ—
Śresṭha kāshṭha Teak tree.

ଶ୍ରେଷ୍ଠତମ—ସଂ. ବିଣ (ଶ୍ରେଷ୍ଠ+ବହୁ ମଧ୍ୟରେ, ଏହି ଅର୍ଥରେ ତମ)—
Śreshṭhatama ଅନେକଙ୍କ ମଧ୍ୟରେ ଉତ୍କୃଷ୍ଟ (ପ୍ରାଣୀକ)—
(ଶ୍ରେଷ୍ଠତମା—ସ୍ତ୍ରୀ) Excellent or best amongst many.

ଶ୍ରେଷ୍ଠତର—ସଂ. ବିଣ (ଶ୍ରେଷ୍ଠ+ଦୁଇ ମଧ୍ୟରେ, ଏହି ଅର୍ଥରେ ତର)—
Śreshṭhatara ଦୁହିଙ୍କ ମଧ୍ୟରେ ଉତ୍କୃଷ୍ଟ—Better of the two.
[ ଶ୍ରେଷ୍ଠତରା—ସ୍ତ୍ରୀ ]

ଶ୍ରେଷ୍ଠତା(ତ୍ୱ)—ସଂ. ବି (ଶ୍ରେଷ୍ଠ+ଭାବାର୍ଥେ. ତା, ତ୍ୱ)—ଉତ୍କର୍ଷ—
Śreshṭhatā (twa) Excellence; superiority.

ଶ୍ରେଷ୍ଠ ମଲ୍ଲିକା—ସଂ. ବି—ଶତଦଳ ମଲ୍ଲି (ଶବ୍ଦକୋଷ)—
Śreshṭha mallikā Many-petalled jasmine.

ଶ୍ରେଷ୍ଠା ସଂ. ବି. ସ୍ତ୍ରୀ—୧ । ସ୍ଥଳପଦ୍ମ; ସ୍ଥଳକମଳ—1. Ionidinam
Śreshṭhā Suffruticosum (a flower-tree). ୨। ମେଦା—2. A medicinal root. ୩ । ଉତ୍ତମା ନାରୀ—3. An excellent woman. ୪ । ତ୍ରିଫଳା (ଶବ୍ଦକୋଷ)—4. The 3 myrobalans. ସଂ. ବିଣ. ସ୍ତ୍ରୀ—ଶ୍ରେଷ୍ଠର ସ୍ତ୍ରୀଲିଙ୍ଗ—Feminine of Śreshṭha

ଶ୍ରେଷ୍ଠାମ୍ବୁ—ସଂ. ବି—୧ । ଉତ୍କୃଷ୍ଟ ଜଳ—1. Excellent water.
Śreshṭhāmbu ୨ । ଚାଉଳଧୁଆ ପାଣି (ଶବ୍ଦକୋଷ)—
2. Water obtained by washing rice.

ଶ୍ରେଷ୍ଠାମ୍ଳ—ସଂ. ବି—ବୃକ୍ଷାମ୍ଳ; ବୃକ୍ଷବିଶେଷ—Kokam Butter
Śreshṭhāmla tree; Gracina Purpuria.

ଶ୍ରେଷ୍ଠାଶ୍ରମ—ସଂ. ବି (କର୍ମଧା, ଶ୍ରେଷ୍ଠ+ଆଶ୍ରମ; ଚାରିଗୋଟି ଆଶ୍ରମ
Śreshṭhāśrama ମଧ୍ୟରେ ପ୍ରଧାନ ଆଶ୍ରମ)—ଗୃହସ୍ଥାଶ୍ରମ—
The condition or state of a householder.
[ ଦ୍ର—କାରଣ, ଏ ଆଶ୍ରମୀ ବ୍ୟକ୍ତିମାନେ ଅନ୍ୟ ତିନ ଆଶ୍ରମର ବ୍ୟକ୍ତିମାନଙ୍କୁ ପାଳନ କରନ୍ତି । ]

ଶ୍ରେଷ୍ଠୀ—ସଂ. ବି. ପୁଂ (ଶ୍ରେଷ୍ଠ+ଇନ୍; ଶ୍ରେଷ୍ଠିନ୍; ୧ମା. ୧ବ. ଶିଳ୍ପି-
Śreshṭhī କୁଳର ଶ୍ରେଷ୍ଠ ବ୍ୟକ୍ତି)—୧ । କୁଳୋତ୍ତମ ବ୍ୟକ୍ତି—
(ଶେଠ—ଅପଭ୍ରଂଶ ଶବ୍ଦ) 1. An artison of a high caste. ୨ । ବଣିକ—2. A merchant. ୩ । ଶେଠ; ମହାଧନୀ ବଣିକ—4. A millionaire; a merchant prince.

ଶ୍ରୈ (ଧାତୁ)—ସଂ—୧ । ସ୍ୱେଦାକ୍ତ ହେବା—1. To perspire.
Śrai (root) ୨ । ପାକ କରିବା—2. To cook.

ଶ୍ରୋଣ୍ (ଧାତୁ)—ସଂ—୧ । ସ୍ଥୂଳ ହେବା—1. To become fat.
Śroṇ (root) ୨ । ରାଶି କରିବା—2. To heap up; to gather together.

ଶ୍ରୋଣ—ସଂ. ବି. ପୁଂ (ଶ୍ରୋଣ୍ ଧାତୁ+କର୍ତ୍ତୃ. ଅ)—ପଙ୍ଗୁ—
Śroṇa (ଶ୍ରୋଣା—ସ୍ତ୍ରୀ) A leper; a maimed person.

**ଶ୍ରୋଣା**—ସଂ. ବି ( ଶ୍ରୋଣ୍ ଧାତୁ+କର୍ତ୍ତୃ ଅ+ଆ )—୧ । ଦ୍ୱାବିଂଶ ନକ୍ଷତ୍ର—1, The 22nd asterism. ୨ । କାଞ୍ଜି—
Śroṇā 2. Fermented rice-gruel; sour rice-water. ୩ । ଶ୍ରୋଣର ସ୍ତ୍ରୀଲିଙ୍ଗ—3. A maimed woman. ସଂ. ବିଣ—ପକ୍ୱ (ଶବ୍ଦକୋଷ)—Ripe.

**ଶ୍ରୋଣି(ଣୀ)**—ସଂ. ବି (ଶ୍ରୋଣ୍ ଧାତୁ=ସ୍ଥୂଳ ହେବା+କର୍ତ୍ତୃ. ଇ; ଈ; Śroṇi(ṇī) ଯେଉଁଠାରେ ମାଂସ ସ୍ଥୂଳ ହୁଏ )—୧ । ଜଘନଦେଶ, (ଶ୍ରୋଣି[ଣୀ]କା—ଅଳ୍ପାର୍ଥ) ନିତମ୍ବ—1. The hips; buttocks. ୨ । କଟିଦେଶ—2. The loins. ୩ । ପଥ; ରାସ୍ତା—3. Road. ଗ୍ରା. ବି (ସଂ. ଶୋଣିତ)—ଶୋଣିତ; ରକ୍ତ—Blood. [ଦ୍ର—ଶିବ ଶିରେ ଶ୍ରୋଣି ଉଡ଼ୁଅଛି ଝରଝର—ପ୍ରାଚୀ କୃଷ୍ଣଲୀଳାମୃତ ଗୀତା ]

**ଶ୍ରୋଣି(ଣୀ)କପାଳ**—ସଂ. ବି ( ୬ଷ୍ଠୀ ତତ୍, ଶ୍ରୋଣି+କପାଳ )—
Śroṇi(ṇī)kapāla ଜଙ୍ଘାସ୍ଥି—Thigh-bone.

**ଶ୍ରୋଣିତ**—ଗ୍ରା. ବି (ସ ଶୋଣିତ )—ରକ୍ତ—Blood. [ଦ୍ର -ପାପ୍—
Śroṇita ଭର ପରଣ୍ଡ ଧୃଷ୍ଟଦ୍ୟୁମ୍ନ ଅଶ୍ୱ, ଦ୍ରୋଣଙ୍କର ଅଶ୍ୱତ ଶୋଣିତ ଶୋଣିତ ଗୋଷ୍ଠ ସଦୃଶ—କୃଷ୍ଣସିଂହ. ମହାଭାରତ. ଦ୍ରୋଣ । ]

**ଶ୍ରୋଣି(ଣୀ)ଫଳ**—ସଂ. ବି—କଟିଦେଶ ( ଶବ୍ଦକୋଷ )—
Śroṇi(ṇī) phala The loins; waist

**ଶ୍ରୋଣି ଫଳକ**—ସଂ. ବି—୧ । କଟି ଦେଶର ନିମ୍ନଭାଗ; ନିତମ୍ବ—
Śroṇi phalaka The lower part of the loins; buttocks. ୨ । କଟି ହାଡ଼—2. The hip bone.

**ଶ୍ରୋଣି(ଣୀ) ବିମ୍ବ**—ସଂ. ବି—କଟିସୂତ୍ର ଅଣ୍ଟା ସୂତା—
Śroṇi(ṇi)bimba Waist-chain.

**ଶ୍ରୋଣି(ଣୀ) ସୂତ୍ର**—ସଂ. ବି—୧ । କଟିସୂତ୍ର; ଅଣ୍ଟାସୂତା— 1. Waist_
Śroṇi(ṇi) sūtra chain. ୨ । ମେଖଳା—2, A girdle ୩ । ଖଡ୍ଗ ଗ ବନ୍ଧନ ସୂତ୍ର—3, A string to hang down the sword from the waist.

**ଶ୍ରୋଣେହା**—ଗ୍ରା. ବି ( ସଂ, ସ୍ପୃହା; ଶ୍ରିହା )—୧ । କାମୁକ ବ୍ୟକ୍ତି—
Śroṇehā 1. Lecherous person. ( ଦ୍ର—ଶ୍ରୋଣେହା କାମୁକ ଭଲ ଅଟଇ ଶ୍ରୋଣେହାର ଲୋଡ଼େ—ପ୍ରାଚୀ. ରହସ୍ୟ କାମୁକ ସ୍ପୃହା ମଞ୍ଜରୀ ।) ୨ । ସ୍ପୃହା—2. Eagerness. ସ୍ପୃହା ବି. ବିଣ—ସ୍ପୃହାଯୁକ୍ତ—Eager; hankering. (ଶ୍ରୋଣେହୀ—ସ୍ତ୍ରୀ )

**ଶ୍ରୋତ(ତା)**—ସଂ. ବି—(ସ୍ରୁ ଧାତୁ=ଗମନ ହେବା+କର୍ତ୍ତୃ. ଅସ୍, ତ
Śrota(taḥ) ଆଗମ; ଶ୍ରୋତସ୍ ଶବ୍ଦ)—୧ । ସ୍ରୋତ; ନଦ୍ୟାଦିର ବେଗ—1. Current of a river or of any watercourse. ୨ । (+କରଣ. ଅସ୍) ଜ୍ଞାନେନ୍ଦ୍ରିୟ 2. The organ of perception or sense. ୩ । ଜ୍ଞାନ—3. Knowledge. ୪ । ଶ୍ରବଣ; କର୍ଣ୍ଣ—[ ଶବ୍ଦକୋଷ ]—4. Ear. [ଦ୍ର—ବଶୋଉଁ ଏ କଥା ଶ୍ରୋତ ଦେଇ ସରସୀ ଭଣିତ ନବରୂପୀ ଧରନ୍ତେ ପଶୁର । ଉପ. ବୈଦେହୀଶବିଳାସ ।]

**ଶ୍ରୋତବ୍ୟ**—ସଂ. ବିଣ —[ଶ୍ରୁ ଧାତୁ=ଶୁଣିବା+କର୍ମ ତବ୍ୟ]—ଶ୍ରବଣ-
Śrotabya ଯୋଗ୍ୟ; ଶ୍ରବଣୀୟ—Fit to be heard or attended to; audible.

**ଶ୍ରୋତରେ**—ଦେ. କି— ପ୍ରାଚୀନ ପଦ୍ୟ; ଅସମାପିକା କ୍ରିୟାସ୍ଥଳରେ
Śrotare ବ୍ୟବହୃତ] ଶୁଣନ୍ତେ; ଶୁଣିବାରୁ—On hearing; [ଶ୍ରୋତେ—ଅନ୍ୟରୂପ] hearing. [ ଦ୍ର—ଶ୍ରୋତରେ ସେ ସୁଖ-ସମ୍ବାଦ ହୋଇଲେ ସବୁରେ ଚିତ୍ତ ମଜ୍ଜାଇଲେ । ଉପ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।]

**ଶ୍ରୋତା**—ସଂ. ବିଣ. ପୁଂ—[ଶ୍ରୁ ଧାତୁ=ଶୁଣିବା+କର୍ତ୍ତୃ. ତୃ, ଶ୍ରୋତୃ
Śrotā ଶବ୍ଦ ୧ମା. ୧ବ]—ଶ୍ରବଣକାରୀ—Hearing; listen-
[ଶ୍ରୋତ୍ରୀ—ସ୍ତ୍ରୀ] ing. ବି.—ଯେ ଶାସ୍ତ୍ରାଦି ଶୁଣେ—A hear-
[ବକ୍ତା—ବିପରୀତ] er; audience. ଦେ. ବି—୧ । ସ୍ପୃହା—1. Interest; curiousity; avidity. [ଦ୍ର—ଶୁଣିବା ମନେ ଧର ଶ୍ରୋତା । ଯଶୋବନ୍ତ. ପ୍ରେମଭକ୍ତି ଗୀତା ।] ୨ । ସ୍ନେହ—2. Affection. [ଦ୍ର—ସତ୍ୟଭାମା ମୁଖ ଦର୍ପ ହୁଣ୍ଡିଲେ କେସନ, ଥିବ ଶ୍ରୋତା ଯାର ଦେଖି ଧରେ କେତେ ଧନ । ପ୍ରାଚୀ ରହସ୍ୟମଞ୍ଜରୀ ।]

**ଶ୍ରୋତାଞ୍ଜନ**—ସଂ. ବି—ବୈଦ୍ୟଶାସ୍ତ୍ରୋକ୍ତ ବା ଆୟୁର୍ବେଦୋକ୍ତ ଚାରି
Śrotāñjana ପ୍ରକାର ଅଞ୍ଜନ ମଧ୍ୟରୁ ଏକ ପ୍ରକାର—One of the four ointments for the eye as prescribed in the Ayurbeda.

**ଶ୍ରୋତ୍ର**—ସଂ. ବି.—[ଶ୍ରୁ ଧାତୁ+କରଣ. ତ୍ର]—୧ । [ଯାହାଦ୍ୱାରା ଶୁଣା
Śrotra ଯାଏ]—କାନ; କର୍ଣ୍ଣ—1. The ear. ୨ । [+ କର୍ମ ତ୍ର; ଯାହାକୁ ଶୁଣା ଯାଏ କର୍ମ+କରଣ. ତ୍ର; ଯାହା ଦ୍ୱାରା ଧର୍ମ ଧର୍ମ ଶୁଣା ଯାଏ]—ଶ୍ରୁତି; ବେଦ—2, The Bedas.

**ଶ୍ରୋତ୍ରପଟୁ**—ସଂ. ବିଣ—( ୭ମୀ ତତ୍ )—ଶୁଣିବା ବିଷୟରେ ପଟୁ
Śrotrapaṭu Skilful in hearing

**ଶ୍ରୋତ୍ର ପେୟ**—ସଂ.ବିଣ (କର୍ମ୍ମଧାରୟ) ୧। ଆଦର, ସମ୍ମାନ ବା ମନୋଯୋଗ
Śrotra peya ସହିତ ଶୁଣାଯିବାର ଯୋଗ୍ୟ—1. Deserving to be heard with respect and attention. ୨ । କର୍ଣ୍ଣ ମଧୁର—2. Sweet to hear.

**ଶ୍ରୋତ୍ର ମାର୍ଗ (ପଥ, ପଦବୀ)**—ସଂ. ବି. (ରୂପକ)—କର୍ଣ୍ଣମାର୍ଗ
Śrotra mārga (patha, padabi) The ear as a vehicle for carrying the sound.

**ଶ୍ରୋତ୍ର ହୀନ** ( ବିହୀନ, ରହିତ )—ସଂ. ବିଣ. ପୁଂ (କର୍ମ୍ମଧାରୟ)—୧ ।
Śrotra hīna (bihīna, rahita) ଯାହାର କାନ ନାହିଁ—
[ଶ୍ରୋତ୍ରହୀନା (ବିହୀନା, ରହିତା]—ସ୍ତ୍ରୀ) 1.Earless. ୨। ଶ୍ରବଣ
[ଶ୍ରୋତ୍ରହୀନତା (ବିହୀନତା, ରହିତ୍ୟ)—ବି] ଶକ୍ତି ରହିତ—2 Devoid of the power of hearing

**ଶ୍ରୋତ୍ରିୟ**—ସଂ. ବିଣ. ପୁଂ - ( ଶ୍ରୋତ୍ର=ବେଦ+ଜ୍ଞାନ ବା ଅଧ୍ୟୟନ
Śrotriya ଅର୍ଥେ ଇୟ)—୧ । ବେଦଜ୍ଞ—1. Versed in Bedas. ୨ । ବେଦାଧ୍ୟାୟୀ—2. Studying the

Bedas. ୩ । କୁଳଶୀଳ ସମ୍ପନ୍ନ—3. Of good lineage and conduct. ବି.—ବେଦଜ୍ଞ ଓ କୁଳଶୀଳ ସମ୍ପନ୍ନ ବ୍ରାହ୍ମଣ—A Brahman versed in the Bedas and of approved conduct, [ ଦ୍ର—ସଦ୍‌ପୁରାଣ ଉଦ୍ଧୃତଶ୍ଳୋକରେ ଅଛି—ଜନ୍ମନା ବ୍ରାହ୍ମଣୋଜ୍ଞେୟଃ, ସଂସ୍କାରୈ ର୍ଦ୍ୱିଜଉଚ୍ୟତେ, ବେଦାଭ୍ୟାସୀ ଭବେଦ୍ ବିପ୍ରଃ, ଶ୍ରୋତ୍ରିୟ ସ୍ତ୍ରିଭିରେବହି । ଅର୍ଥାତ୍, ଯେ ବ୍ରାହ୍ମଣ କୁଳରେ ଜାତ ହୋଇ, ଉପନୟନ ଦ୍ୱାରା ସଂସ୍କୃତ ହୋଇ ବେଦାଭ୍ୟାସ କରଥିବେ ତାଙ୍କୁହିଁ ଶୋତ୍ରିୟ ବୋଲି ଯିବ । ବିଶ୍ୱକୋଷ ।] ଦେ. ବି—ବ୍ରାହ୍ମଣଙ୍କ ଶାଖା ବିଶେଷ; ବୈଦିକ ପନ୍ଥାର ବ୍ରାହ୍ମଣ; ଶାସନୀ ବ୍ରାହ୍ମଣ—A generic name for high caste Brahmans. [ଦ୍ର—ଓଡ଼ିଶାରେ ଏମାନେ କୁଳୀନ ବା ସାଆନ୍ତ ବାହ୍ମଣଙ୍କ ଠାରୁ ପୃଥକ ଓ ଏମାନଙ୍କ ସାମାଜିକ ସ୍ଥାନ ସାଆନ୍ତମାନଙ୍କ ନିମ୍ନରେ ଅଛି । ଗୌଡ଼ (ବଙ୍ଗ) ଦେଶରେ ମଧ୍ୟ ଶ୍ରୋତ୍ରିୟ ବ୍ରାହ୍ମଣ ଅଛନ୍ତି । ଏମାନେ କୁଳୀନ ବଂଶୀୟ ବରକୁ ଅପଣାର କନ୍ୟାକୁ ଦାନ କରି ପାରନ୍ତି, କିନ୍ତୁ କୁଳୀନଙ୍କ ଘରୁ କନ୍ୟା ଆଣି ବିବାହ କରି ପାରନ୍ତି ନାହିଁ । ]

ଶ୍ରୋତ୍ରିୟସାତ୍—ସଂ ବିଣ—(ଶ୍ରୋତ୍ରିୟ+ଦେୟ ବା ଦତ୍ତାର୍ଥେ ସାତ୍)—Śrotriyasāt ଶ୍ରୋତ୍ରିୟ ବ୍ରାହ୍ମଣଙ୍କୁ ଦେୟ ବା ଦତ୍ତ (ବିଶ୍ୱକୋଷ) —(any thing) Dedicated or given away to a Śrotriya Brahmana.

ଶ୍ରୋତେନ୍ଦ୍ରିୟ—ସଂ. ବି.—ଶ୍ରବଣେନ୍ଦ୍ରିୟ, କାନ—The organ of Śrotendriya hearing; the ear.

ଶ୍ରୋହା—ଗ୍ରା. ବି—(ସଂ ସ୍ପୃହା)—ସ୍ପୃହା (ଦେଖ) Śrohā Spruhā (See) स्पृहा स्पृहा

ଶ୍ରୋହୀ—ଗ୍ରା. ବିଣ. (ପୁଂ ଓ ସ୍ତ୍ରୀ)—(ସଂ. ସ୍ପୃହାବାନ୍)—ସ୍ପୃହାବିଶିଷ୍ଟ—Śrohī Eager for; hankering after.

ଶ୍ରୌତ—ସଂ ବିଣ—( ଶ୍ରୁତି+କୃତାର୍ଥେ ଅ )—ଶ୍ରୁତି-ବିହିତ; ବେଦ-Śrauta ବିହିତ—Enjoined by the Bedas. ବି—୧ ଯଜ୍ଞାଗ୍ନିତ୍ରୟ ( ଗାର୍ହପତ୍ୟ, ଅହବନୀୟ ଓ ଦକ୍ଷିଣ )—1. Three of the sacrificial fires. ୨ । ବେଦ-ବିହିତ ଧର୍ମାଦି (ବିଶ୍ୱକୋଷ)—2. Action or conduct enjoined by the Bedas. [ଦ୍ର—ଧର୍ମ ଦୁଇ ପ୍ରକାର—ଶ୍ରୌତ (ଶ୍ରୁତିବିହିତ) ଓ ସ୍ମାର୍ତ୍ତ (ସ୍ମୃତିବିହିତ), ଦାନ, ଅଗ୍ନିହୋତ୍ର, ଯଜ୍ଞ ଶୌଚ; ବର୍ଣ୍ଣାଶ୍ରମ ଆଚାର, ଯମ, ନିୟମ ସ୍ମାର୍ତ୍ତ ।

ଶ୍ରୌତ୍ର—ସଂ ବି (ଶ୍ରୋତ୍ର+ ସ୍ୱାର୍ଥେ ଅ)—୧ । କର୍ଣ୍ଣ—1. The ear Śrautra ୨ । ବୈଦିକ କର୍ମ—2. Vedic rites. ୩ । ଶ୍ରୋତ୍ର ସମୂହ (ବିଶ୍ୱକୋଷ)—3. A number of Śrotras.

ଶ୍ଲକ୍ (ଧାତୁ)—ସଂ —ଗତି କରିବା । (ବିଶ୍ୱକୋଷ)— Ślak (root) To move.

ଶ୍ଲକ୍ଷ୍ଣ—ସ. ବି (ଶ୍ଲିଷ୍ ଧାତୁ=ଅଲିଙ୍ଗନ କରିବା+କର୍ମ. କ୍ସ୍ନ)—Ślakshṇa ୧ । ଅଳ୍ପ—1. Little; meagre. ୨ (ଶ୍ଲକ୍ଷ୍ଣା—ସ୍ତ୍ରୀ) ସୂକ୍ଷ୍ମ—2. Minute; fine. ୩ । ମନୋହର—[ଶ୍ଲକ୍ଷ୍ଣତା—ବି] 3. Graceful; pleasing. ୪ । ସ୍ନିଗ୍ଧ—4. Oily. ୫ । କୃଶ—5. Weak; lean; emaciated. ୬ । ଚିକ୍କଣ—6. Smooth; slippery. ୭ । ମଧୁର (ବାକ୍ୟ)—7. Sweet (word)

ଶ୍ଲକ୍ଷ୍ଣକ—ସଂ. ବି (ବୈଦ୍ୟକ)—ପୁଗଫଳ; ଗୁଆ (ଫଳ ଓ ବୃକ୍ଷ) — Ślakshṇaka Areca nut (tree and fruit). ସଂ. ବିଣ—ଶ୍ଲକ୍ଷ୍ଣ (ଦେଖ)—Ślakshṇa (See)

ଶ୍ଲକ୍ଷ୍ଣତ୍ୱକ—ସଂ. ବି (କର୍ମଧା; ଶ୍ଲକ୍ଷ୍ଣ+ତ୍ୱଚ୍, ୧ମା. ୧ବ)—୧ । ସୁନ୍ଦର Ślakshṇa twak ବଲ୍କଲ—1. Beautiful bark. ୨ । (ବହୁବ୍ରୀହି) ଅଶ୍ମନ୍ତକ ଶାକ (ବିଶ୍ୱକୋଷ)—2. A kind of potherb. [ଦ୍ର—ଏହା ରୁକୁଣା ହୋଇ ପାରେ କି? ]

ଶ୍ଲଗ୍ (ଧାତୁ)—ସଂ.—ଗମନ କରିବା— Ślag (root) To go; to move.

ଶ୍ଲଥ୍ (ଧାତୁ)—ଶିଥିଳ ବା ଢ଼ିଲା ହେବା—To become slack Ślath (root) or loose.

ଶ୍ଲଥ—ବୈଦେ. ବି (ଇଂ ସ୍ଲଥ୍=ଆଳସ୍ୟ)—ଆମେରିକା ଦେଶୀୟ Ślath ଏକ ପ୍ରକାର ବନ ମାର୍ଜ୍ଜାର—Sloth ( a श्लथ स्लथ feline animal of America)

ଶ୍ଲଥ—ସ. ବିଣ (ଶ୍ଲଥ. ଧାତୁ+କର୍ତ୍ତୃ ଅ) ୧ । ଶିଥିଳ; ଢିଲା. Ślatha ଢ଼ିଲା—1, Slackened; loosened; slack; [ଶ୍ଲଥତା(ତ୍ୱ)—ବି] loose ୨ । ଦୁର୍ବଳ (ବିଶ୍ୱକୋଷ)— 2, Weak,

ଶ୍ଲଥକୁଚା—ସ. ବିଣ. ସ୍ତ୍ରୀ (ଶ୍ଲଥକୁଚ+ଆ; ବହୁବ୍ରୀହି ଶିଥିଳ ସ୍ତନ—Ślathakuchā (woman) With flaccid or hang- (ଦ୍ର ହିମଳୁଗ୍—ଦ୍ରୁପଦର) ing breasts,

ଶ୍ଲଥଚର୍ମ—ସ. ବି (କର୍ମଧା)—(ବାର୍ଦ୍ଧକ୍ୟାଦି ଯୋଗୁଁ)—ଲମ୍ବିତ ଚର୍ମ—Ślathacharma Skin which has become loose owing to old age,

ଶ୍ଲଥଚର୍ମା—ସ. ବିଣ (ପୁଂ ଓ ସ୍ତ୍ରୀ) (ବହୁବ୍ରୀହି; ଶ୍ଲଥ+ଚର୍ମନ୍; ୧ମା Ślathcharmā ୧ବ)—ଯେଉଁ ବୃଦ୍ଧବ୍ୟକ୍ତିର ଚମଡ଼ା ଓହୋଳ ପଡ଼ିଅଛି—(an old person) With hanging folds of skin.

ଶ୍ଲଥତା(ତ୍ୱ)—ସ. ବି—(ଶ୍ଲଥ+ଭାବ. ତା, ତ୍ୱ)—ଶୈଥିଲ୍ୟ; ଶିଥିଳତା, Ślathatā(twa) Looseness; flaccidity.

ଶ୍ଲଥ ବନ୍ଧନ—ସ. ବିଣ ପୁଂ—(ବହୁବ୍ରୀହି)—ଯାହାର ଗଣ୍ଠି ବା ବନ୍ଧନ Ślatha bandhana ଢ଼ିଲା ଯାଇଅଛି—Having the [ଶ୍ଲଥବନ୍ଧନା—ସ୍ତ୍ରୀ] knots loosened.

ଶ୍ଳଥ ଭାବେ—ବେ. ବ—ଢ଼ିଲା କରି—
Ślatha bhābe Loosely; weak. [ଉ—ଶ୍ଳଥଭାବେ ଆଲିଙ୍ଗନ କରି ଚୁମ୍ବନ ଯେ। ପ୍ରାଚୀ. ରସବାରିଧି।]

ଶ୍ଳାଘ୍ (ଧାତୁ)—ସଂ—ପ୍ରଶଂସା କରିବା—
Ślāgh (root) To praise.

ଶ୍ଳାଘ—ଦେ. ବି—[ସଂ ଶ୍ଳାଘା]—ଆତ୍ମ ପ୍ରଶଂସା—
Ślāgha Self-praise.
[ଉ—ବୋଲନ୍ତି ଶ୍ଳାଘ, କାଳେ ମିଳ ଦେଲେ ଅର୍ଥ୍ୟ। ଉଞ୍ଜ. ବୈଦେହୀଶବିଳାସ।]

ଶ୍ଳାଘନ—ସ. ବଣ. ପୁଂ—(ଶ୍ଳାଘ୍ ଧାତୁ+କର୍ତ୍ତୃ. ଅନ)—ଆତ୍ମପ୍ରଶଂସା-କାରୀ—(ଶବ୍ଦକୋଷ)—Self-praising.
Ślāghana
ସ. ବି—(+ଭାବ. ଅନ) ଶ୍ଳାଘା; ଆତ୍ମପ୍ରଶଂସା—Self-praise.

ଶ୍ଳାଘନୀୟ—ସ. ବଣ—(ଶ୍ଳାଘ୍ ଧାତୁ+କର୍ମ. ଅନୀୟ)—ଶ୍ଳାଘ୍ୟ (ଦେଖ)
Ślāghanīya Ślāghya (See)
[ଶ୍ଳାଘନୀୟା—ସ୍ତ୍ରୀ] [ଶ୍ଳାଘନୀୟତା—ବି]

ଶ୍ଳାଘା—ସ. ବି—(ଶ୍ଳାଘ୍ ଧାତୁ+ଭାବ. ଅ+ଆ)—୧। ପ୍ରଶଂସା—
Ślāghā 1. Praise; eulogy. ୨। ଅଭିଳାଷ; ଇଚ୍ଛା-2. Inclination; desire. ୩। ପରିଚର୍ଯ୍ୟା; ସେବା-3. Service; attendance. ୪। ନିଜଗୁଣ-ଖ୍ୟାପନ—4. Act of proclaiming one's own excellence or good qualities; self-adulation.

ଶ୍ଳାଘା ରହିତ—ସ. ବଣ ପୁଂ—(ଅସ୍ଥା ଭତ୍)—ଆତ୍ମ ପ୍ରଶଂସା ଶୂନ୍ୟ—
Ślāghā rahita Free from self praise.
[ଶ୍ଳାଘାରହିତା—ସ୍ତ୍ରୀ] [ଶ୍ଳାଘାରହିତ୍ୟ—ବି]

ଶ୍ଳାଘୀ—ସ. ବଣ—(ଶ୍ଳାଘିନ୍ ଶବ୍ଦ, ଶ୍ଳାଘା+ଅସ୍ତ୍ୟ ଅର୍ଥରେ. ଇନ୍)—
Ślāghī ୧। ପ୍ରଶଂସାକାରୀ—1. Praising.
[ଶ୍ଳାଘିନୀ—ସ୍ତ୍ରୀ] ୨। ଆତ୍ମପ୍ରଶଂସାକାରୀ—2. Self-eulogising.

ଶ୍ଳାଘ୍ୟ—ସ. ବଣ—(ଶ୍ଳାଘ୍ ଧାତୁ+କର୍ମ. ଯ)—୧। ପ୍ରଶଂସନୀୟ; ପ୍ରଶଂସାର୍ହ—1. Deserving praise; praisworthy; commendable.
Ślāghya
(ଶ୍ଳାଘ୍ୟା—ସ୍ତ୍ରୀ)
୨। ପ୍ରଶସ୍ତ—2. Excellent. ୩। ବରଣୀୟ—3. Desirable. ୪। କାଙ୍କ୍ଷିତ—4. Wished for.

ଶ୍ଳିକୁ—ସ. ବି—(ଶ୍ଳିଶ୍ ଧାତୁ+କର୍ତ୍ତୃ. କୁ, ଶ ସ୍ଥାନରେ କ ଆଗମ)—
Śliku ୧। ଭୃତ୍ୟ—1. A servant. ୨। ଲମ୍ପଟ—2. Libertine; a lewd person. ୩। (+କର୍ମ. କୁ)—ଜ୍ୟୋତିଷଶାସ୍ତ୍ର—3. Astronomy and astrology.

ଶ୍ଳିପ୍—ବୈଦେ. ବି. (ଇଂ)—ସ୍ଲିପ୍ (ଦେଖ)
Ślip Slip (See)

ଶ୍ଳିଷ (ଧାତୁ)—ସ.—୧। ଆଲିଙ୍ଗନ କରିବା—
Ślish (root) 1. To embrace; to hug.
୨। ଦାହ କରିବା (ଶବ୍ଦକୋଷ)—2. To burn.

ଶ୍ଳିଷା—ସ. ବି—(ଶ୍ଳିଷ୍ ଧାତୁ+ଭାବ. ଅ+ଆ)—ଆଲିଙ୍ଗନ—
Ślishā Embrace

ଶ୍ଳିଷ୍ଟ—ସ, ବଣ—(ଶ୍ଳିଷ୍ ଧାତୁ+କର୍ମ. ତ)—୧। ଆଲିଙ୍ଗିତ—
Ślishṭa 1. Embraced. ୨। (+କର୍ତ୍ତୃ. ତ; ଶ୍ଳେଷ-(ଶ୍ଳିଷ୍ଟା—ସ୍ତ୍ରୀ) (ଶ୍ଳିଷ୍ଟି—ସ୍ତ୍ରୀ) ଯୁକ୍ତ; ଅନେକାର୍ଥ ବାଚକ—2. Conveying many meanings; containing a pun. ୩। ସଂଶ୍ଳିଷ୍ଟ; ସଂଯୁକ୍ତ—3. Joined with; conjoined; connected with; adhering to. ସଂ. ବି—୧। (+ଭାବ. ତ) ଆଲିଙ୍ଗନ (ଶବ୍ଦକୋଷ)—1. Embraced. ୨। ଶ୍ଳେଷଯୁକ୍ତ ବାକ୍ୟ; ଅନେକାର୍ଥକ ଏକରୂପାକୃତ ବାକ୍ୟ (ଶବ୍ଦକୋଷ) 2. Expression having different meaning or meanings other than the apparent one

ଶ୍ଳିଷ୍ଟ ବର୍ତ୍ମ—ସଂ ବି—(କର୍ମଧା; ଶ୍ଳିଷ୍ଟ+ବର୍ତ୍ମନ୍)—ଅକ୍ଳିନ୍ନ ବର୍ତ୍ମ, ପରିଷ୍କାର ପଥ (ଶବ୍ଦକୋଷ)—
Ślishṭa barttma Clean road

ଶ୍ଳିଷ୍ଟ ରୂପକ—ସଂ. ବି—ରୂପକାଲଙ୍କାର ଭେଦ—
Ślishṭa rūpaka A kind of covert simile.
[ଦ୍ର—ଯେଉଁ ସ୍ଥଳରେ ଶ୍ଳିଷ୍ଟ ଶବ୍ଦଦ୍ୱାରା ରୂପକାଲଙ୍କାର ହୁଏ ସେହି ସ୍ଥଳରେ ଏହି ଅଲଙ୍କାର ହୁଏ—ଶବ୍ଦକୋଷ]

ଶ୍ଳିଷ୍ଟାକ୍ଷେପ—ସଂ. ବି—(କର୍ମଧା)—ଆକ୍ଷେପାଲଙ୍କାର ବିଶେଷ—
Ślishṭākshepa A kind of covert figure of speech. [ଦ୍ର—ଶ୍ଳିଷ୍ଟ ପଦ ପ୍ରୟୋଗ ଦ୍ୱାରା ଯେଉଁଠାରେ ଆକ୍ଷେପୋକ୍ତି ହୁଏ ସେଠାରେ ଏ ଅଲଙ୍କାର ହୁଏ]

ଶ୍ଳିଷ୍ଟାର୍ଥ—ସଂ. ବି—ଶ୍ଳେଷାର୍ଥ (ଦେଖ)
Ślishṭārtha Śleshārtha (See)
[ଦ୍ର—ଅପରିଚିତ, ଅଥଚ ଅବ୍ୟକ୍ତ ଏକରୂପାକୃତ ବାକ୍ୟକୁ ଶ୍ଳିଷ୍ଟ ବୋଲଯାଏ। ଉଦାହରଣ ସ୍ୱରୂପ,ଜଣକୁ ଶ୍ଳିଷ୍ଟଦ୍ୱାରା ନିନ୍ଦା କରିବାକୁ ହେବ, ଏପରି ସ୍ଥଳରେ ଏରୂପ ବାକ୍ୟରେ ନିନ୍ଦାର ବିଷୟ ଅବ୍ୟକ୍ତ ଭାବରେ ନିହିତ ଥିବ, ଅଥଚ ପ୍ରଥମେ ଶୁଣିବା ଲୋକକୁ ତାହା ନିନ୍ଦା ବୋଲି ଜଣାଯିବ ନାହିଁ; କିନ୍ତୁ ସେ ବାକ୍ୟକୁ ଚିନ୍ତାକରି ବିଚାର ବୁଝିଲେ ସେଥିରେ ବାକ୍ୟ ପ୍ରୟୋଗକାରୀର ଉଦ୍ଦିଷ୍ଟ ନିନ୍ଦା ବୁଝାଯିବ (ଶବ୍ଦକୋଷ।) ଶ୍ଳେଷ ତଳେ ଦେଖ।]

ଶ୍ଳୀଁ—ଦେ. ବି—ଶ୍ରୀଁ (ଦେଖ)
Ślīṅ Śrīṅ (See)

ଶ୍ଳୀପଦ—ସ. ବି—(ମ. ପ. ଲୋ; ଶ୍ରୀଯୁକ୍ତ ବା ବୃଦ୍ଧିଯୁକ୍ତ+ପଦ—
Ślīpada କର୍ମଧାରୟ)—ଗୋଦର ରୋଗ; ପାଦଶୋଥ ରୋଗ; ପାଦବଲ୍ମୀକ; ହାତ ଗୋଡ଼କୁ ବହୁତ ବଢ଼ାଇବା ରୋଗ—

Elephantiasis (of the legs, hands, female breasts, scrotum and penis

[ଦ୍ର—ଯେଉଁ ଦେଶର ଜମି ଅତ୍ୟନ୍ତ ନମ୍ର, ଏଥିଯୋଗୁଁ ଓ ସୂର୍ଯ୍ୟକିରଣର ଅଳ୍ପତା ବଶତଃ ଭୂମିରୁ ଜଳ ଶୁଷ୍କ ହୁଏ ନାହିଁ ଏବଂ ଉକ୍ତ ଦେଶ ସବୁ ଋତୁରେ ସନ୍ତସନ୍ତିଆ ରହେ, ସେହି ସବୁ ସ୍ଥାନରେ ଏ ରୋଗ ବେଶୀ ଧରେ । ଏଥିରେ ପ୍ରଥମେ କୋଷବୃଦ୍ଧି ହୁଏ ଓ ତତ୍ପରେ ଜ୍ୱର ହୋଇ କାଶସଜ୍ୱର, ବେଳର ବା କୋଳଭଇ ଗିଲ୍ଟି ଫୁଲି ଦରଜ ହୁଏ ଓ ତତ୍ପରେ ଗୋଡ଼, ହାତ, ପୁରୁଷଙ୍କ ଲିଙ୍ଗ, କୋଷ, ସ୍ତ୍ରୀମାନଙ୍କ ସ୍ତନ ଆଦି ଶରୀରର ଝୁଲୁଥିବା ବା ତଳକୁ ଲମ୍ବି ଥିବା ଅଙ୍ଗ ଦରଜ ହୋଇ ଫୁଲିଯାଏ । ଏହି ଫୁଲିଯିବାକୁ 'ଭଲୁ ଗଡ଼ିବା' କହନ୍ତି । ବୈଦ୍ୟଶାସ୍ତ୍ର ମତରେ ଶ୍ଳୀପଦ ୩ ପ୍ରକାର, ବାତିକ,ଶ୍ଳୈଷ୍ମିକ ଓ ପୈତ୍ତିକ । ଏ ତ୍ରିବିଧ ଶ୍ଳୀପଦ କଫର ଆଧିକ୍ୟରୁ ହୁଏ ବୋଲି ବୈଦ୍ୟଶାସ୍ତ୍ରର ମତ ଅଛି । ଯେଉଁ ଶ୍ଳୀପଦ ଉଇହୁଙ୍କା ପରି ବହୁ ଶିଖାବିଶିଷ୍ଟ ଓ ଗ୍ରନ୍ଥିଯୁକ୍ତ ହୁଏ ଓ ଯେଉଁ ଶ୍ଳୀପଦର ଫୁଲା ଏକ ବର୍ଷରୁ ଅଧିକ ରହେ ତାହା ଅସାଧ୍ୟ । ଏହି ଜ୍ୱରକୁ ବାତଜ୍ୱର ବୋଲି-ଯାଏ । ଏ ଜ୍ୱର ଅନ୍ତେଇ ଦିନ ରହେ ଓ ଜ୍ୱର ସଙ୍ଗେ ସଙ୍ଗେ ଗିଲ୍ଟି ଦରଜ ହୋଇ କୌଣସି ଅଙ୍ଗ ଫୁଲିଯାଏ । ତା ପରେ ଜ୍ୱର ଛାଡ଼ିଯାଏ, କିନ୍ତୁ ଉକ୍ତ ଅଙ୍ଗରେ ଫୁଲା ରହିଯାଏ; କିନ୍ତୁ ଦରଜ ଛାଡ଼ିଯାଏ । ପୁଣି ମାସେ ପନ୍ଦର ଦିନ ପରେ ଜ୍ୱର ହୁଏ ଓ ଉକ୍ତ ଫୁଲିବା ଅଙ୍ଗ ଅଧିକ ଫୁଲିଯାଏ । ପୂର୍ଣ୍ଣିମା ଆଦି ତିଥିରେ ଅଙ୍ଗରେ ରସାଧିକ୍ୟ ହୁଏ ଓ ସେହି ସମୟରେ ବାତଜ୍ୱର ଆକ୍ରମଣ କରେ । ବୈଦ୍ୟଶାସ୍ତ୍ରରେ ଶ୍ଳୀପଦ ପାଇଁ ଅନେକ ପ୍ରକାର ଔଷଧର ଓ ଲେପର ବ୍ୟବସ୍ଥା ଅଛି । ବର୍ତ୍ତମାନ ଯୁଗର ଡାକ୍ତରମାନେ ସ୍ଥିର କରିଅଛନ୍ତି ଯେ Filaria (ଫାଇଲେରିଆ) ନାମକ କୀଟାଣୁ ଏ ରୋଗ ଜନ୍ମାନ୍ତି ଓ ସୂଚୀପ୍ରୟୋଗଦ୍ୱାରା ଏ କୀଟାଣୁଙ୍କୁ ଦେହରୁ ବିନଷ୍ଟ କରି ଶ୍ଳୀପଦ ରୋଗ ଭଲ କରିବା ପାଇଁ ଉଦ୍ୟମ ଲାଗିଅଛି । ଯେଉଁ ଯେଉଁ ଅଙ୍ଗରେ ଶ୍ଳୀପଦ ହୁଏ ସେ ଅଙ୍ଗରେ ମାଂସ ବୃଦ୍ଧି ହୁଏ । କାହାର କାହାର ଏକ ପାଖର ହାତ ବା ଏକ ପାଖର ଗୋଡ଼ ବା ଏକ ପାଖର କୋଷ ବା ସ୍ତନ ସ୍ଫୀତ ହୁଏ; କାହାର ଦୁଇ ପାଖର ଅଙ୍ଗ ସ୍ଫୀତ ହୁଏ । ସୂର୍ଯ୍ୟାସ୍ତଠାରୁ ଅପର ଦିବସର ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଉପବାସ ବା ଜଳାଦି ପାନତ୍ୟାଗହିଁ ଏ ରୋଗର ପ୍ରଧାନ ନିରୋଧକ ବୋଲି ପରୀକ୍ଷା ଦ୍ୱାରା ଦେଖାଯାଇଅଛି । ଗୋଡହାତର ଶ୍ଳୀପଦକୁ ଗୋଦର, କୋଷର ଶ୍ଳୀପଦକୁ କୁରୁଣ୍ଡ, ଲିଙ୍ଗର ଶ୍ଳୀପଦକୁ କାଛଶୁଣ୍ଢିଆ ଓ ସ୍ତନର ଶ୍ଳୀପଦକୁ ଥନହସ୍ତ ବୋଲିଯାଏ । ଶ୍ଳୀପଦଯୁକ୍ତ କୋଷକୁ ଡାକ୍ତର-ମାନେ ଅପରେସନ୍ କରନ୍ତି । ଅପରେସନ୍ ଫଳରେ ଗୋଟିଏ ଗୋଟିଏ ଶ୍ଳୀପଦଯୁକ୍ତ କୋଷରୁ ଏକ ମହଣ ମାଂସ ବାହାରିବା ଦେଖାଯାଇଅଛି । କୋଷ୍ଠବଦ୍ଧତା ଶ୍ଳୀପଦ ରୋଗାକ୍ରମଣର ଗୋଟିଏ ଆନୁପୂର୍ବିକ ଲକ୍ଷଣ । କେତେକ ରୋଗୀଙ୍କ ସ୍ଫୀତ ଅଙ୍ଗରେ ଅକ୍ରିୟାତିଶ୍ୟ ଉଲ ଅନୁମାନ କାହାରେ । ]

**ଶ୍ଳୀପଦ ପ୍ରଭବ**—ସଂ. ବି (ଶ୍ଳୀପଦ+ପ୍ରଭବ; ଶ୍ଳୀପଦ ଯହିଁ ଯେ ବୃକ୍ଷ Ṡlipada prabhaba ପାଏ)—ଆମ୍ବ ଗଛ (ଏଥିରେ ଗୋଦର ଗୋଡପରି ଅବୁ ବାହାରି ଥିବାରୁ)—Mango tree.

**ଶ୍ଳୀପଦାପହ**—ସଂ. ବି—ପୁତ୍ରଞ୍ଜୀବ ବୃକ୍ଷ; ପୋଇଗୁଣ୍ଡିଆ ଗଛ—Ṡlipadāpaha Putranjiba Roxburghii (tree).

**ଶ୍ଳୀପଦୀ**—ସଂ. ବିଣ. ପୁଂ (ଶ୍ଳୀପଦ+ଇନ୍; ୧ମା. ୧ବ)—ଗୋଦରା ବା Ṡlipadi କୁରୁଣ୍ଡା; ଶ୍ଳୀପଦରୋଗଗ୍ରସ୍ତ—Suffering from elephantiasis. [ଶ୍ଳୀପଦିନୀ—ସ୍ତ୍ରୀ]

**ଶ୍ଳୀଳ**—ସଂ. ବିଣ. (ପୁଂ)—(ଶ୍ରୀ+ଯୁକ୍ତାର୍ଥେ. ଲ; ଶ୍ରୀ=ଶ୍ଳୀ)—Ṡlīla ୧ । ଶ୍ରୀଯୁକ୍ତ—1. Glorious; beautiful. ୨ । (ଶ୍ଳୀଳା—ସ୍ତ୍ରୀ) ସୌଭାଗ୍ୟବାନ୍—2. Fortunate. ୩ । ସୁଖୀ—[ଅଶ୍ଳୀଳ—ବିପରୀତ] 3. Happy. ୪ । ଶିଷ୍ଟ; ଭଦ୍ର—[ଶ୍ଳୀଳତା—ବି] 4. Gentlemanly; decent.

**ଶ୍ଳୁଇଶ**—ବୈଦେ. ବି (ଇଂ)—ପାଣି ବୋହିଯିବା ପାଇଁ ପୋଲତଳେ Ṡluiṡ ତିଆରି ହେବା ଫୁକାର ବା ନଳା—স্লুইস স্লুইস Sluice. [ଶ୍ଳୁଶ—ଅନ୍ୟରୂପ ]

**ଶ୍ଳୁଇଶ୍ ଗେଟ୍**—ବୈଦେ. ବି (ଇଂ)—ଫୁକାରର କବାଟ—Ṡluiṡ get Sluice gate. স্লুইস গেট স্লুইস গেট (ଶ୍ଳୁଶ୍ ଗେଟ୍—ଅନ୍ୟରୂପ )

**ଶ୍ଳେଷ**—ସଂ. ବି—(ଶ୍ଳିଷ୍ ଧାତୁ+ଭାବ ଅ)—୧ । ଆଶ୍ଳେଷ; ଆଲିଙ୍ଗନ Ṡlesha —1. Embrace. ୨ । ସଂଶ୍ରବ; ସଂଯୋଗ; ସମ୍ବନ୍ଧ—2. Union; conjunction; connection ୩ । ଶବ୍ଦର ଅନେକାର୍ଥରେ ପ୍ରୟୋଗ—3. A pun on words. ୪ । ଏକଶବ୍ଦର ଦ୍ୱିବିଧାର୍ଥରେ ପ୍ରୟୋଗ—4 Double meaning of a word. ୫ । ସନ୍ଦିଗ୍ଧାର୍ଥତା—5, Ambiguity. ୬ । ପ୍ରହେଳିକା—6 Riddle; conondrum; word puzzle ୭ । ଶବ୍ଦାଳଙ୍କାର ବିଶେଷ; ଏକ ଶବ୍ଦର ଅନେକାର୍ଥରେ ପ୍ରୟୋଗ ରୂପ ଅଳଙ୍କାର—7 A figure in rhetoric; a pun. [ ଦ୍ର—ସଂସ୍କୃତ ଅଳଙ୍କାର ଶାସ୍ତ୍ରରେ ଆଠ ପ୍ରକାର ଶ୍ଳେଷାଳଂକାର ବର୍ଣ୍ଣିତ ହୋଇ-ଅଛି । ଯଥା—ବର୍ଣ୍ଣଶ୍ଳେଷ, ପ୍ରତ୍ୟୟଶ୍ଳେଷ, ଲିଙ୍ଗଶ୍ଳେଷ, ପ୍ରକୃତିଶ୍ଳେଷ, ପଦଶ୍ଳେଷ, ବିଭକ୍ତିଶ୍ଳେଷ, ବଚନଶ୍ଳେଷ ଓ ଭାଷାଶ୍ଳେଷ । (କିନ୍ତୁ ଓଡ଼ିଆ ଭାଷାରେ ପ୍ରତ୍ୟେକର ଉଦା-ହରଣ ମିଳିବା ଦୁଷ୍କର) । ବର୍ଣ୍ଣ, ପଦ, ଲିଙ୍ଗ, ଭାଷା, ପ୍ରକୃତି ପ୍ରତ୍ୟୟ, ବିଭକ୍ତି, ବଚନ ଭେଦରେ ଶ୍ଳେଷ ଆଠ ପ୍ରକାର

ହୁଏ । ଅମ ଓଡଆରେ ପ୍ରାୟଶଃ ତିନି ପ୍ରକାର ଶ୍ଳେଷ ଦେଖାଯାଏ । ଯଥା ୫—ଅଭଙ୍ଗଶ୍ଳେଷ, ସଭଙ୍ଗଶ୍ଳେଷ, ଭଙ୍ଗାଭଙ୍ଗଶ୍ଳେଷ ।

ଅଭଙ୍ଗଶ୍ଳେଷ—ଯେଉଁ ରଚନାରେ ପଦମାନଙ୍କୁ ନ ଭାଙ୍ଗି ପ୍ରତ୍ୟେକ ବାକ୍ୟର ଦୁଇଟି ବା ତତୋଽଧିକ ଅର୍ଥ ହୋଇପାରେ ।

ଯଥା ୫—ବାରୁ ନାକ ଶିଖ ଦାନ ଯୋଗ୍ୟ ଯୋଷାଲୁ ।
ଭଞ୍ଜ—ବୈଦେହୀଶବିଳାସ ।

ସଭଙ୍ଗଶ୍ଳେଷ—ଯେଉଁ ରଚନାରେ ଵ୍ୟସ୍ତ ପଦମାନଙ୍କର ଗୋଟିଏ ଅର୍ଥ ହୁଏ, କିନ୍ତୁ ସେ ପଦମାନଙ୍କ ଅକ୍ଷରଭୁ ଭାଙ୍ଗିଦେଲେ ନୂତନ ଶବ୍ଦ ଓ ନୂତନ ଅର୍ଥ ହୁଏ ।

ଯଥା—ବହର ଵାନଜର ଅଲଙ୍ଗନଲୁ । ଭଞ୍ଜ—ବେଦେହୀଶବିଳାସ ।

ଭଙ୍ଗାଭଙ୍ଗଶ୍ଳେଷ—ଯେଉଁ ରଚନାରେ ଅଭଙ୍ଗଶ୍ଳେଷ ଓ ସଭଙ୍ଗଶ୍ଳେଷଦ୍ୱାରା ଦ୍ୱିବିଧ ଅର୍ଥ ପ୍ରକାଶ ପାଏ ।

ଯଥା—ସାନତାପ ବିନାଶନ ପାଇବ ସେ ହର, ଉତ୍ପଳତ ହୋଇଛି ଅଛତ ଵାଲ୍ୟବସ୍ଥା । ଅଭିମନ୍ୟୁ—ବିଦଗ୍ଧଚିନ୍ତାମଣି ।
ଦେ. ବ. ପରିହାସ—Joke.

**ଶ୍ଳେଷକ**—ସଂ. ବଣ—(ଶ୍ଲିଷଧାତୁ+କର୍ତ୍ତୃ ଅକ)-ସଂଲଗ୍ନ (ଵିଶ୍ବକୋଷ)—
Sleshaka Attached to,

**ଶ୍ଳେଷ କଟୁ**—ସଂ ବଣ—(ମ.ପ. ଲୋ; ଶ୍ଳେଷଯୁକ୍ତ ହେବା ଯୋଗୁଁ କଟୁ)—
Slesha katu ପରିହାସାତ୍ମକ ଓ ମର୍ମଭେଦୀ ବା କର୍କଶ (ବାକ୍ୟ)-ସ୍ୱର ଅବ)—( Word or tone ) Made harsh by irony; ironical and harsh,

**ଶ୍ଳେଷଣ**—ସଂ. ବ—(ଶ୍ଲିଷଧାତୁ+ଭାବ ଅନ)—ମିଳନ
Sleshana Union

**ଶ୍ଳେଷ ବଚନ**—ସଂ ବ—(ମ. ପ.ଲୋ; ଶ୍ଳେଷଯୁକ୍ତ ବଚନ )—ଦ୍ୱିବିଧାର୍ଥ-
Slesha bachana ବୋଧକ ବାକ୍ୟ—Pun; equivocal
(ଶ୍ଳେଷ ବାକ୍ୟ—ଅନ୍ୟରୂପ) expression. ଦେ. ବ.—୧ । ଶ୍ଲେଷ ବଚନ ବ୍ୟଙ୍ଗୋକ୍ତି; ପରିହାସାତ୍ମକ ଉକ୍ତି; ଭୃଗାଣ—1, Irony; inuendo. ୨ । ଥଟ୍ଟା; ପରିହାସ—2, Joke.

**ଶ୍ଳେଷ ବକ୍ରୋକ୍ତି**—ସଂ. ବ.—ବକ୍ରୋକ୍ତି ୪ (ଦେଖ)
Slesha bakrokti Bakrokti 4 (See)

**ଶ୍ଳେଷମ**—ଗ୍ରା ବ—(ସଂ ଶ୍ଳେଷ୍ମନ୍)—ଶରଦ
Sleshama Catarrh; catching cold; chill
ଶ୍ଲେଷ୍ମା ଶ୍ଲେଷ୍ମା

**ଶ୍ଳେଷମା**—ଦେ. ବଣ—୧। ଶ୍ଳେଷ୍ମପ୍ରକୃତିକ; ଯାହାର କଫଧାତୁ—1 Of
Sleshamā phlegmatic temperament ୨ । ଲେସମା
(ଶ୍ଳେଷମୀ—ସ୍ତ୍ରୀ) ଅଳସ; ଜଡ଼—2 Idle; inert.
ଶ୍ଲେଷ୍ମା ଶ୍ଲେଷ୍ମା

**ଶ୍ଳେଷୋକ୍ତି**—ସଂ. ବ—(ମ ପ ଲୋ)—ଶ୍ଳେଷ ବଚନ (ଦେଖ)
Sleshokti Slesha bachana (See)

**ଶ୍ଳେଷ୍ମକ**—ସଂ ବ—(ଶ୍ଳେଷ୍ମନ୍ +ସ୍ୱାର୍ଥେ କ)—ଶ୍ଳେଷ୍ମା (ଦେଖ)
Sleshmaka Sleshmā (See)

**ଶ୍ଳେଷ୍ମଘ୍ନ**—ସଂ ବଣ—(ଶ୍ଳେଷ୍ମନ୍+ହନ ଧାତୁ+କର୍ତ୍ତୃ ଅ)--ଯେଉଁ ଦ୍ରବ୍ୟ
Sleshmaghna ଶରଦ ବା କଫକୁ କମାଏ—That which destroys or removes the phlegm of the system.
(ଶ୍ଳେଷ୍ମନାଶକ, ଶ୍ଳେଷ୍ମନାଶୀ, ଶ୍ଳେଷ୍ମହା—ଅନ୍ୟରୂପ)
[ଶ୍ଳେଷ୍ମଘ୍ନୀ, ଶ୍ଳେଷ୍ମନାଶିକା, ଶ୍ଳେଷ୍ମନାଶିନୀ, ଶ୍ଳେଷହନ୍ତ୍ରୀ—ସ୍ତ୍ରୀ]

**ଶ୍ଳେଷ୍ମଘ୍ନା**—ସଂ. ବ. ସ୍ତ୍ରୀ--୧ । ମଲ୍ଲିକା—1 Jasmine; Jasminum
Sleshmaghnā Zambac. ୨ । କେତକୀ - 2 Pandanus Odoratissimus; screwpine plant.

**ଶ୍ଳେଷ୍ମଘ୍ନୀ**—ସଂ ବ. ସ୍ତ୍ରୀ—୧ । ଜ୍ୟୋତିଷ୍ମତୀ; ମୃଷ୍ଟିପୁଷ୍ପିକା—1 The
Sleshmaghni staff tree. ୨ । ମଲ୍ଲିକା—2 Jasmine.
୩ । ତ୍ରିକଟୁ; ଶୁଣ୍ଠି, ପିପଳୀ, ଗୋଲମରିଚ—3 A dose of 3 pungent things (viz, dried ginger, long pepper and black pepper.

**ଶ୍ଳେଷ୍ମଜ୍ୱର**—ସଂ. ବ—(ମ. ପ. ଲୋ; ଶ୍ଳେଷ୍ମନ୍+ଜ୍ୱର) କଫ ଜନିତଜ୍ୱର
Sleshma jwara Fever due to cold
(ଶ୍ଳେଷ୍ମା ଜର—ଦେଶଜରୂପ)

**ଶ୍ଳେଷ୍ମଣ**—ସଂ. ବଣ. ପୁଂ ( ଶ୍ଳେଷ୍ମନ୍+ଅସ୍ତି ଅର୍ଥରେ ଅ)—କଫଯୁକ୍ତ.
Sleshmaṇa ବଶିଷ୍ଟ; କଫଯୁକ୍ତ—Phlegmatic. ସଂ.
[ଶ୍ଳେଷ୍ମଣା—ସ୍ତ୍ରୀ] ବ—କଫ ( ଵିଶ୍ବକୋଷ )—Phlegm.

**ଶ୍ଳେଷ୍ମ ପ୍ରକୃତି**—ସଂ. ବଣ ( ଶ୍ଳେଷ୍ମପ୍ରଧାନା ପ୍ରକୃତି ଯାହାର; ବହୁବ୍ରୀହି )
Sleshma prakruti —ଯେଉଁ ମନୁଷ୍ୟର ଦେହରେ କଫ ଧାତୁର ଆଧିକ୍ୟ ଥାଏ—A person of phlegmatic temperament. [ କୃ—ଏ ବ୍ୟକ୍ତି ସୁସ୍ନିଗ୍ଧ ବର୍ଣ୍ଣ, ଶୁଭ୍ରନେତ୍ର, ଶ୍ୟାମବର୍ଣ୍ଣ, କୁଞ୍ଚିତ କେଶଯୁକ୍ତ, ଦୀର୍ଘ ନଖ ଓ ରୋମଯୁକ୍ତ, ଗମ୍ଭୀର ଶବ୍ଦବିଶିଷ୍ଟ, ଶାନ୍ତାମୋଦୀ, ନିଦ୍ରା ଓ ତନ୍ଦ୍ରାପ୍ରିୟ, ତିକ୍ତକଟୁଭୋଜୀ, ମାଂସଳ, ସ୍ନିଗ୍ଧରସପ୍ରିୟ, ଗୀତ ବାଦ୍ୟପ୍ରିୟ, ସହିଷ୍ଣୁ, ବ୍ୟାୟାମଶୀଳ ଓ ଉତ୍ସାହଲସାନ୍ୱିତ—ଅଗ୍ନି ସଂହିତା । ]

**ଶ୍ଳେଷ୍ମ ପ୍ରଧାନ**—ସଂ.ବଣ ପୁଂ (ବହୁବ୍ରୀହି)—କଫ ଯେଉଁ ଲୋକର ପ୍ରଧାନ
Sleshma pradhāna ଦୈହିକ ଧାତୁ ବା ଉପାଦାନ—Of phlegmatic temperament.

**ଶ୍ଳେଷ୍ମ ବର୍ଦ୍ଧକ**—ସଂ. ବଣ—ଯେଉଁ ଦ୍ରବ୍ୟ ଶରୀରରେ କଫକୁ ବଢ଼ାଏ—
Sleshma barddhaka Increasing phlegm in the system

**ଶ୍ଳେଷ୍ମଳ**—ସଂ. ବଣ. ପୁଂ (ଶ୍ଳେଷ୍ମନ୍+ଯୁକ୍ତାର୍ଥେ ଲ)—ଶ୍ଳେଷ୍ମା ଯୁକ୍ତ;
Eleshmala କଫଯୁକ୍ତ; ଶ୍ଳେଷ୍ମ ପ୍ରଧାନ—Phlegmatic.
(ଶ୍ଳେଷ୍ମଳା—ସ୍ତ୍ରୀ) ସଂ. ବ—ଶ୍ଳେଷ୍ମାତକ (ଦେଖ) (ଵିଶ୍ବକୋଷ)-- Cordia Myxa.

**ଶ୍ଳେଷ୍ମହ**—ସଂ. ବ ( ବୈଦ୍ୟକ )—କଟ୍‌ଫଳ; କାଫଳ—Myrica
Sleshmaha Sapida ( tree ). ବଣ—ଶ୍ଳେଷ୍ମଘ୍ନ (ଦେଖ).
Sleshmaghna ( See ).

ଶ୍ଳେଷ୍ମା—ସଂ. ବ ( ଶ୍ଳିଷ୍ ଧାତୁ=ଆଲିଙ୍ଗନ କରିବା+କର୍ତ୍ତୃ ମନ୍, ଶ୍ଳେଷ୍ମନ୍ ଶବ୍ଦ, ୧ମା ୧ବ )—୧ । କଫ—
Sleshmā 1. Phlegm. [ ଦ୍ର—ବୈଦ୍ୟଶାସ୍ତ୍ର ମତରେ କଫ, ଶୁଭ୍ର, ଗୁରୁ, ସ୍ନିଗ୍ଧ, ପିଚ୍ଛିଳ, ଶୀତଳ ଓ ତମୋଗୁଣର ଅଧିକ୍ୟଯୁକ୍ତ, ମଧୁର ରସାତ୍ମକ । ଏହା ବିଦଗ୍ଧ ହେଲେ ଲବଣସ୍ୱାଦ ହୁଏ । ଜଠରାଗ୍ନିର ତେଜରେ ଏହା ଫେନିଳ ହୁଏ । ଏହା ଶରୀରସ୍ଥ 'ରସ', ନାମକ ଧାତୁର ମଳ । ବକ୍ଷୋଦେଶର କଣ୍ଠଦେଶରେ ଶ୍ଳେଷ୍ମାଶୟ ଅବସ୍ଥିତ । ୨ । ସିଂଘାଣି 2. Mucus inside the nose. ୩ । ଶରଦ—3. Cold; chill.

ଶ୍ଳେଷ୍ମାନ(ନ୍ତ)କ—ସଂ. ବଣ ( ୬ଷ୍ଠୀ ତତ୍ )-ଶ୍ଳେଷ୍ମଘ୍ନ ( ଦେଖ )—
Sleshmāna(nta)ka Sleshmaghna ( See ). ବ (ଶ୍ଳେଷ୍ମାତ [ଟ]—ଅନ୍ୟରୂପ) ( ବୈଦ୍ୟକ ) ( ଶ୍ଳେଷ୍ମନ୍+ଅତ୍ ଧାତୁ+ଅକ, ଯାହା କଫ ନାଶ କରେ )—୧ । ବହୁବାର; ଗନ୍ଧେଣା(ଗଛ); ଲସୋଡ଼ା ବୋଲ (ଗଛ)—1. Cordia Latifolia; Cordia Myxa. ୨ । ଔଉ—2. Dillena Speciosa. [ ଦ୍ର—ମନୁସଂହିତାର ୬।୧୪ରେ ଅଛି, ଯେ ବ୍ରାହ୍ମଣ ମଦ୍ୟ, ମାଂସ, ଭୂମିଛତ୍ର, ଭୂସ୍ତୃଣ, ଶଜନା ଓ ଶ୍ଳେଷ୍ମାତକ ଫଳ ଖାଇବ ନାହିଁ । ଯଦି ଶ୍ଳେଷ୍ମାତକର ଅର୍ଥ ଔଉ ହୁଏ, ତେବେ ଉତ୍କଳରେ ବ୍ରାହ୍ମଣମାନଙ୍କ ସଙ୍ଗେ ବିଧବାମାନେ ମଧ୍ୟ ଔଉ ରାନ୍ଧି ଖାଇବା ଦେଖାଯାଏ; ଏଥିରୁ ଅନୁମାନ ହୁଏ ଏହା ଗନ୍ଧେଣା । ]

ଶ୍ଳେଷ୍ମାଭିଷ୍ୟନ୍ଦ—ସଂ. ବ—ଆଖି ଫୁଲି ଭିତରୁ ପିଚ୍ଛିଳ ରସ ବୋହିବା
Sleshmābhishyanda ରୋଗବିଶେଷ—A kind of eye-disease with running eyes.

ଶ୍ଳେଷ୍ମାରି—ସଂ. ବ ( ବୈଦ୍ୟକ )—ଶ୍ଳେଷ୍ମାତକ ( ଦେଖ )
Sleshmāri Sleshmātaka ( See )

ଶ୍ଳେଷ୍ମୋତ୍ପାଦକ—ସଂ. ବ—ଯାହା କଫ ଜନ୍ମାଏ; କଫକାରକ—
Sleshmotpādaka Producing phlegm in the system.

ଶ୍ଳୈଷ୍ମିକ—ସଂ. ବଣ ( ଶ୍ଳେଷ୍ମନ୍+ଇକ )—୧ । ଶ୍ଳେଷ୍ମସମ୍ବନ୍ଧୀୟ—
Slaishmika 1. Relating to phlegm. ୨ । କଫବର୍ଦ୍ଧକ ( ଶବ୍ଦକୋଷ )—2. Increasing phlegm. ୩ । କଫନାଶକ ( ଶବ୍ଦକୋଷ )—3. Destroying phlegm.

ଶ୍ଳୈଷ୍ମିକ ଅନ୍ତସ୍ତ୍ୱକ୍—ସଂ. ବ ( ଆଧୁନିକ ଚିକିତ୍ସା ଶାସ୍ତ୍ରର ପାରିଭାଷିକ
Slaishmika-antastwak ଶବ୍ଦ; ସଂସ୍କୃତ ଶବ୍ଦ ଦ୍ୱାରା ଗଢ଼ା) କଫର ସ୍ରାବକାରକ ଚମଡ଼ାର ପତଳା ପଟି —Mucuous membrane.

ଶ୍ଳୋକ୍ ( ଧାତୁ )—ସଂ—୧ । ପଦ୍ୟ ରଚନା କରିବା—1. To
Slok(root) compose a poem. ୨ । ଗ୍ରନ୍ଥନ କରିବା—2. To string together; to arrange. ୩ । ଗ୍ରଥିତ ହେବା—3. To be strung together or arranged. ୪ । ବର୍ଜନ କରିବା (ଶବ୍ଦକୋଷ)—4. To give up. ୫ । ସର୍ଜନ କରିବା (ଶବ୍ଦକୋଷ)—5. To create.

ଶ୍ଳୋକ—ସଂ. ବ (ଶ୍ଳୋକ୍ ଧାତୁ=ପଦ୍ୟ ରଚନା କରିବା+କର୍ମ ଅ)—
Sloka ୧ । ଛନ୍ଦୋବଦ୍ଧ ରଚନା—1. Metrical composition. ୨ । ପଦ୍ୟ; କବିତା—2. Poem. ୩ । ଦୁଇ ବା ଚାରି ପାଦ ବିଶିଷ୍ଟ ପଦ୍ୟ—3. Couplet or quartet; a poetical stanza of 4 lines; a distich. [ ଦ୍ର—ଶ୍ଳୋକର ନାନାବିଧ ଛନ୍ଦ ଅଛି । କୌଣସି କୌଣସି ଶ୍ଳୋକର ଦୁଇଟି ପାଦ ଓ କୌଣସି କୌଣସି ଶ୍ଳୋକର ଚାରିଗୋଟି ପାଦ ଅଛି । କଥିତ ଅଛି ଯେ,ଏକଦା ବାଲ୍ମୀକି ଋଷି ଅରଣ୍ୟ ମଧ୍ୟରେ ବୁଲୁ ବୁଲୁ ଦେଖିଲେ ଯେ, ଜଣେ ନିଷାଦ [ ବ୍ୟାଧ ] ମିଥୁନଧର୍ମରେ ନିଯୁକ୍ତ ଯୋଡ଼ାଏ କ୍ରୌଞ୍ଚ [ ବଗ ] ମଧ୍ୟରୁ ଅନ୍ୟଟିର କ୍ରୌଞ୍ଚଟିକୁ ମାରିପକାଇଲା ଓ ମାଈ ପକ୍ଷୀଟି ଶୋକାର୍ତ୍ତ ହୋଇ କାନ୍ଦିଲା । ଏହି ଦୃଶ୍ୟ ମହର୍ଷି ଶୁଣି ଶୋକସନ୍ତପ୍ତ ଓ ବ୍ୟାଧ ପ୍ରତି କୁପିତ ହୋଇ ହଠାତ୍ ବ୍ୟାଧକୁ ଅଭିଶାପ ଦେଲେ—

"ମା ନିଷାଦ ! ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀଃ ସମାଃ
ଯତ୍ କ୍ରୌଞ୍ଚ ମିଥୁନାଦେକ ମବଧୀଃ କାମମୋହିତଂ"

( ଅର୍ଥାତ୍ ହେ ନିଷାଦ ! ତୁ ଚିରକାଳ ଜଗତମାନଙ୍କରେ ପ୍ରତିଷ୍ଠାଲାଭ ନ କର୍, କାରଣ, କାମମୋହିତ କ୍ରୌଞ୍ଚ ମିଥୁନର ଗୋଟିକୁ ତୁ ବଧ କଲୁ ) । ଏହି ଶାପ ବାଣୀ ମହର୍ଷିଙ୍କ ମୁଖରୁ ସ୍ୱାଭାବିକ ଭାବରେ ସମାକ୍ଷର-ବିଶିଷ୍ଟ ହୋଇ କବିତା ଛନ୍ଦରେ ନିଃସୃତ ହେଲା ଓ ସେହି ଦିନଠାରୁ ଶ୍ଳୋକର ସୃଷ୍ଟି ହେଲା । ମହର୍ଷିଙ୍କ ମୁଖରୁ ଏ ପଦ ଶୋକ ଯୋଗୁଁ ବାହାରିବାରୁ ଛନ୍ଦୋବଦ୍ଧ ରଚନାର ନାମ ଶ୍ଳୋକ ହେଲା । ବାଲ୍ମୀକି ଭାରତର ଉପସର୍ଗିଙ୍କୁ ଶ୍ଳୋକ ଅନୁଷ୍ଟୁପ୍ ଛନ୍ଦୋବଦ୍ଧ । ] ୪ । ( ଶ୍ଳୋକ୍ ଧାତୁ=ଗ୍ରଥିତ ହେବା+କର୍ତ୍ତୃ ଅ )—ସୁଖ୍ୟାତି; ପ୍ରଶଂସା—4. Praise; eulogy. ୫ । ପ୍ରସିଦ୍ଧି—5. Fame; celebrity. ୬ । ଯଶ; କୀର୍ତ୍ତି—6 Renown. ୭ । ବାକ୍ୟ (ଋଗ୍ବେଦ)—7 Speech.

ଶ୍ଳୋକ ଆଉଡ଼ା(ଡ଼େ)ଇବା—ଦେ. କ୍ରି—ଶ୍ଳୋକ ଆବୃତ୍ତି କରିବା—
Sloka aurdā(rde)iba To recite Slokas.
শ্লোক আউড়ান श्लोक आवृत्ति करना

ଶ୍ଳୋକ କରିବା—ଦେ. କ୍ରି—ଶ୍ଳୋକ ରଚନା କରିବା—
Sloka karibā To compose Sanskrit couplets.
শ্লোক বচনাকবা श्लोक बनाना

ଶ୍ଳୋକ ଚୋ(ଚୌ)ର—ସ. ବ.ପୁଂ—୧ । ଅନ୍ୟ ଦ୍ୱାରା ରଚିତ ଶ୍ଳୋକକୁ
Slokacho(chau)ra ଆପଣାର ରଚନା ବୋଲି ଲୋକଙ୍କୁ ଭଣ୍ଡାଇବା ବ୍ୟକ୍ତି—1. Plagiary; plagiarist. ୨। ସାମାନ୍ୟ ବା କ୍ଷୁଦ୍ର କବି—2. Poetaster.

**ଶ୍ଳୋକ ଚୌର୍ଯ୍ୟ**—ସଂ. ବି—ଅନ୍ୟ ବ୍ୟକ୍ତିଙ୍କ ରଚିତ ଶ୍ଳୋକକୁ ଆପଣାର
Ṡloka chaurjya ରଚନାରୂପେ ବ୍ୟବହାର କରିବା—
(ଶ୍ଳୋକଚୋର—ବି. ରୂ) Plagiarism in poetry; using another's composition with a view to pass it off as one's own.

**ଶ୍ଳୋକ ବୋଲିବା**—ଦେ. କ୍ରି—ଶ୍ଳୋକ ଆବୃତ୍ତି କରିବା—
Ṡloka bolibā To recite a Ṡloka.
শ্লোক বলা श्लोक बोलना

**ଶ୍ଳୋକମୟ** ସଂ. ବିଣ. (ଶ୍ଳୋକ+ସ୍ୱରୂପାର୍ଥେ ମୟ)—୧ । ଯାହା
Ṡlokamaya ଶ୍ଳୋକ ଦ୍ୱାରା ରଚିତ ବା ପ୍ରକାଶିତ;
(ଶ୍ଳୋକମୟୀ ସ୍ତ୍ରୀ) ଛନ୍ଦୋବଦ୍ଧ—1. Composed in metre; metrical ୨ । ଶ୍ଳୋକବିଶିଷ୍ଟ; ଶ୍ଳୋକ-ଯୁକ୍ତ—2. Consisting of Ṡlokas. [ଯଥା—ଶ୍ଳୋକମୟ ଗ୍ରନ୍ଥ]

**ଶ୍ଳୋକ ଯୁଗ୍ମକ**—ସଂ. ବି (ଶ୍ଳୋକ+ଯୁଗ୍ମ+କ)—ଏକତ୍ର ଅନ୍ୱୟ
Ṡloka jugmaka ଦ୍ୱାରା ସଂବଦ୍ଧ ଦୁଇଟି ଶ୍ଳୋକ—
A couple of slokas connected by construction.

**ଶ୍ଳୋକ ଯୋଡ଼ିବା**—ଦେ. କ୍ରି—ଶ୍ଳୋକ ରଚନା କରିବା—
Ṡloka jordibā To compose Sanskrit poems.
শ্লোক জুড়া श्लोक जोड़ना

**ଶ୍ଳୋକ ରଚକ**—ସଂ. ବି. ଓ ବିଣ ପୁଂ (ଶ୍ଳୋକ+ରଚ ଧାତୁ+କର୍ତ୍ତୃ
Ṡloka rachaka ଅକ)-୧ । ଯେଉଁ ବ୍ୟକ୍ତି ଶ୍ଳୋକ ଯୋଡ଼ି
(ଶ୍ଳୋକରଚୟିତା—ଅନ୍ୟରୂପ) ପାରନ୍ତି—1.Composer of poems.
ଶ୍ଳୋକରଚକା } —ସ୍ତ୍ରୀ ୨ । କବି—
ଶ୍ଳୋକ ରଚୟିତ୍ରୀ } 2, Poet.

**ଶ୍ଳୋକ ରଚନା**—ସ.ବି (୬ଷ୍ଠୀ ତତ୍)—ଶ୍ଳୋକରେ କବିତା ରଚନା
Ṡloka rachana(nā) —Composing of Ṡlokas,

**ଶ୍ଳୋକାତ୍ମକ**—ସଂ. ବି (ବହୁବ୍ରୀହି ; ଶ୍ଳୋକ+ଆତ୍ମନ+କ; ଶ୍ଳୋକ
Ṡlokatmaka ହୋଇଅଛି ଆତ୍ମା ଯାହାର)—ଶ୍ଳୋକମୟ ଦେଖ.
(ଶ୍ଳୋକାତ୍ମିକା—ସ୍ତ୍ରୀ) Ṡlokamaya (See)

**ଶ୍ଳୋକାନ୍ତ**—ସଂ ବି—ଏକାଧିକ ଛାତ୍ର ବା ବ୍ୟକ୍ତିଙ୍କ ମଧ୍ୟରେ ଶ୍ଳୋକ
Ṡlokānta ବୋଲିବାରେ ପ୍ରତିଯୋଗିତା (ଯହିଁରେ ପ୍ରଥମ ବ୍ୟକ୍ତି ବୋଲିବା ଶ୍ଳୋକର ଶେଷ ଅକ୍ଷର ଯାହା ହୁଏ, ଦ୍ୱିତୀୟ ବ୍ୟକ୍ତି ସେହି ଅକ୍ଷର ଆଦ୍ୟରେ ଥିବା ଶ୍ଳୋକ ବୋଲି ପ୍ରତିଯୋଗିତା କରେ )—
Competition in the recitation of Sanskrit Ṡlokas in which the last letter of one ṡloka when recited by one should be the initial of another to be recited by his follower.

**ଶ୍ଳୋକାନ୍ୱୟ**—ସଂ ବି(୬ଷ୍ଠୀ ତତ୍)—ଶ୍ଳୋକସ୍ଥ ପଦମାନଙ୍କୁ ବ୍ୟାକରଣ
Ṡlokānwaya ନିୟମବଦ୍ଧ ବାକ୍ୟରେ ପରିବର୍ତ୍ତିତ କରିବା—
The reduction of a Ṡloka into a grammatical construction.

**ଶ୍ଳୋକାନ୍ୱିତ**—ସ ବଣ. ପୁଂ [ଶ୍ଳୋକ+ଅନ୍ୱିତ ; ଶ୍ଳୋକ+ଅନ୍ୱିତ)—ଯଶସ୍ୱୀ-
Ṡlokānwita Celebrated; famed.

**ଶ୍ଳୋକାବୃତ୍ତି**—ସଂ ବି ( ୬ଷ୍ଠୀ ତତ, ଶ୍ଳୋକ+ଆବୃତ୍ତି)—ଶ୍ଳୋକ
Ṡlokābrutti ବୋଲିବା—Recital of Ṡlokas, recitation of poems.

**ଶ୍ଳୋକୋଚ୍ଚାରଣ**—ସଂ. ବି.—( ୬ଷ୍ଠୀ ତତ୍; ଶ୍ଳୋକ+ଉଚ୍ଚାରଣ )—
Ṡlokochchārana ଶ୍ଳୋକକୁ ଛନ୍ଦ ଅନୁସାରେ ବୋଲିବା—
The scanning or proper modulation of a poem or couplet.

**ଶ୍ଳୋପା**—ବୈଦେ. ବି—(ଇଂ-ସ୍ଲୁପ୍)—କ୍ଷୁଦ୍ର ଜାହାଜ—
Ṡlopā Sloop.
স্লুপ स्लुप [ଦ୍ର—ଏକମୁକ୍ତିଆ ସାନ ଜାହାଜର ନାମ ଶ୍ଳୋପା । ଫକୀରମୋହନ ଗଳ୍ପସ୍ୱଳ୍ପ ।]

[ବିଶେଷ ଦ୍ରଷ୍ଟବ୍ୟ—ଅନ୍ୟାନ୍ୟ ଶବ୍ଦ କୋଷରେ 'ଶ୍ଳ' ପରେ 'ଶ୍ୱ' ଦିଆଯାଇ ଅଛି, କିନ୍ତୁ ଏହି ଗ୍ରନ୍ଥରେ ବର୍ଗ୍ୟ ବ ଓ ଅନ୍ତଃସ୍ଥ ବ ର ପ୍ରଭେଦ ରଖା ନ ଯାଇ ପ ବର୍ଗର ଅନ୍ତର୍ଭୁକ୍ତ ବର୍ଗ୍ୟ ବ ତଳେ ସବୁ 'ବ' ବିଶିଷ୍ଟ ଶବ୍ଦମାନ ସନ୍ନିବେଶିତ ହୋଇଥିବାରୁ 'ଶ୍ୱ' ପରେ 'ଶ୍ୱ' ଆଦ୍ୟରେ ଥିବା ଶବ୍ଦମାନ ସନ୍ନିବେଶିତ ହୋଇଅଛି । ]

# ଷ

**ଷ**—ସଂ.—ଏକତ୍ରିଂଶ ବ୍ୟଞ୍ଜନବର୍ଣ୍ଣ (ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା ବା
Sha ମସ୍ତକ)—The 31st consonant (it is cere-
ଷ ଷ bral corresponding to 'sh' in English).
[ଦ୍ର—ଭାଷାରେ ଶ, ଷ ଓ ସ ର ଉଚ୍ଚାରଣ ଭେଦ ରକ୍ଷା କରା ଯାଏ ନାହିଁ । କିନ୍ତୁ ଭାଷାରେ ସଂସ୍କୃତ ଓ ସଂସ୍କୃତମୂଳକ ଶବ୍ଦରେ ଥିବା 'ଷ' ଛଡ଼ା ଅନ୍ୟତ୍ର 'ଶ' ଓ 'ସ' ର କେବଳ ବ୍ୟବହାର ଦେଖାଯାଏ । ବିଦେଶାଗତ ଶବ୍ଦମାନଙ୍କରେ ଟ ଓ ଠ ପୂର୍ବରେ ଯୁକ୍ତ 'ସ' ଥିଲେ 'ଷ୍ଟ'ରୂପେ ସତତ ଲେଖାଯାଏ, ଯଥା—ଷ୍ଟାମ୍ପ୍, ଷ୍ଟାର୍, ଷ୍ଟୋଭ୍, ଷ୍ଟେସନ୍, ମାଷ୍ଟର୍, ଷ୍ଟିମର୍ । କିନ୍ତୁ କେହି କେହି ବୈଦେଶିକ ଶବ୍ଦ ମାନଙ୍କର ଓଡ଼ିଆରେ ଅଯଥାନୁକରଣରେ ମାସ୍ଟର, ଷ୍ଟୀମ୍ ଲେଖୁଅଛନ୍ତି । ଧ୍ୱନି ବିଜ୍ଞାନ ଦିଗରୁ ଦେଖିଲେ 'ସ' ଧ୍ୱନି ତ, ଛ ପୂର୍ବରେ ମିଶିଲେ ଷ୍ଟ, ଷ୍ଠ; ଟ, ଠ ପୂର୍ବରେ ମିଶିଲେ ଷ୍ଟ, ଷ୍ଠ, ଓ ତ, ଥ ପୂର୍ବେ ମିଶିଲେ ସ୍ତ, ସ୍ଥ ହେବା ଉଚିତ । ଇଂରାଜୀରେ Master ମାସ୍ଟର ଲେଖା ଯାଉଥିଲେ ମଧ୍ୟ ଧ୍ୱନି ଦୃଷ୍ଟିରେ ଏହା ମାଷ୍ଟରରୂପେ ଉଚ୍ଚାରିତ ହେଉଥିବା କଥା ସ୍ପଷ୍ଟ ଲକ୍ଷ୍ୟ କରା ଯାଇ ପାରିବ । ସାଧାରଣତଃ ଦେଖାଯାଏ ଯେ, ହିନ୍ଦୁସ୍ଥାନୀମାନେ 'ଷ' କୁ 'ଖ' ରୂପେ ଉଚ୍ଚାରଣକରନ୍ତି । ଯଥା ପାଷାଣ୍, ସହସ୍ର ଶୀର୍ଷା; 'ଷ'ର ଏହି 'ଖ' ଉଚ୍ଚାରଣର ସୂଚନା ଓଡ଼ିଆରେ ମଧ୍ୟ କେତେକ ସ୍ଥଳରେ ଅଛି । ଯଥା—ପାଷଣ୍ଡୀ, ଭାଷା ।
ବି—(ଷୋ ଧାତୁ=ନାଶ କରିବା+କର୍ତ୍ତୃ. ଅ)—୧ । (ଯେ ବିଘ୍ନ ନାଶ କରନ୍ତି; ବିଘ୍ନ ବିନାଶକ) ଗଣେଶ; ଲମ୍ବୋଦର—1. The elephant-headed God of learning. (who removes all obstruction) ୨। (+ଭାବ ଅ) ନାଶ—2. Destruction; loss. ୩ । ଧ୍ୱଂସ-3. Ruin. ୪ । କ୍ଷତି—4. Injury. ୫ । ଶେଷ—5 End. ୬ । ଅବଶେଷ—6. Remainder; remnant. ୭। (+ଅଧି ଅ; ଯହିଁରେ ଚେତନାର ନାଶ ହୁଏ) ସୁପ୍ତି; ନିଦ୍ରା—7. Sleep. ୮ । ମୋକ୍ଷ; ମୁକ୍ତି 8. Beatitude; liberation. ୯ । (+କର୍ତ୍ତୃ ଅ; ଯାହା ପାପ ବିନାଶ କରେ) ସ୍ୱର୍ଗ—9. Heaven. ୧୦। କେଶ—10. Hair. ୧୧ । ଅଙ୍କୁର—11. Germ. ୧୨ । ଶିକ୍ଷକ—12. Teacher. ୧୩ । ଧୈର୍ଯ୍ୟ—13. Patience. ୧୪। ମାନବ—14. Man. ୧୫। ଶିରଃ-15. Head. ୧୬ । ଗର୍ଭମୋଚନ—16. Child-delivery. ୧୭ । ଚୂଚୁକ—17. A teat; nipple (Apte). ବିଣ.—୧ । ଶ୍ରେଷ୍ଠ—1. Excellent; superior. ୨ । ବିଜ୍ଞ; ଜ୍ଞାନୀ—2 Wise. ୩ । ସୁନ୍ଦର; ଶୋଭନ, ସୁନ୍ଦର—3 Graceful, ୪ । ପଣ୍ଡିତ—4. Learned (Apte).

**ଷଟ୍(ଷ୍)**—ସଂ. ବି ଓ ବିଣ (ସଂଖ୍ୟାବାଚକ)—(ଷୋ ଧାତୁ=ନାଶକରିବା
Shat(sh) +କର୍ତ୍ତୃ କ୍ୱିପ୍; ସଂ ଷଷ୍ ଶବ୍ଦର ୧ମା ୧ ବଚନ)—ଛଅ—Six. (ଦ୍ର—ଅନ୍ୟାନ୍ୟ ଭାଷାରେ ଏହାର ସାଦୃଶ୍ୟ ଯଥା—ସଂସ୍କୃତ—ଷଷ୍; ପାରସି—ଶଶ୍, ଗ୍ରୀକ—ହେକ୍ସ୍, ଲାଟିନ—ସେକ୍ସ୍, ଜର୍ମାନ—ସେକ୍ସ୍, ଇଂରାଜୀ—ସିକ୍ସ୍)

**ଷଟ୍କ**—ସଂ. ବିଣ (ଷଟ୍+ସ୍ୱାର୍ଥେ କ)—ଛଅ ପରସ୍ତିଆ; ଛଅଗୁଣିଆ—
Shat-ka Sixfold (Apte). ସଂ. ବି—୧ । ଛଅ ସଂଖ୍ୟା-1. The number six. ୨। (ବୈଦ୍ୟକ) ଶୁଣ୍ଠି, ପିପ୍ପଳି, ମରିଚ, ଚଇକାଠ, ଚିତାମୂଳ ଓ ପିପ୍ପଳୀମୂଳର ମିଶ୍ରଣ—2. A mixture of six bitter herbs. ୩ । ଛଅବସ୍ତୁର ସମାହାର—3. An aggregate of six things.

**ଷଟ୍କର୍ଣ୍ଣ**—ସଂ. ବି (ସମାହାର ଦ୍ୱିଗୁ)—ଛଅକାନ; ୬ଟି କାନ (ଅର୍ଥାତ
Shat-karnna ୩ ଜଣଙ୍କ କାନ)—The (six) ears of of 3 persons [ଦ୍ର—ଯେକୌଣସି ମନ୍ତ୍ରର ବା ଗୁପ୍ତ ବିଷୟର ବକ୍ତା ଓ ଶ୍ରୋତା ଏବଂ ଅନ୍ୟ ତୃତୀୟ ବ୍ୟକ୍ତି ଏପରି ୩ ଜଣଙ୍କର ଛଅଟି କାନ ।] ସଂ: ବିଣ (ବହୁବ୍ରୀହି) ଯେଉଁ ବିଷୟ ବକ୍ତା ଓ ଶ୍ରୋତା ଛଡ଼ା ଅନ୍ୟ ତୃତୀୟ ବ୍ୟକ୍ତିଙ୍କ କର୍ଣ୍ଣଗୋଚର ହୋଇଅଛି—Heard by a third man other than the speaker and the person spoken to, (a secret) told to more than one listener (Apte) [ଉ—ଶାସ୍ତ୍ରେ ଲେଖିଅଛି ଷଟ୍କର୍ଣ୍ଣ ହେଲେ, ବିଚାର ଦାଣ୍ଡେ ପଡ଼ି ନାଶ ଯାଏ ଭଲେ—କୃଷ୍ଣସିଂହ-ମହାଭାରତ ସଭା ।]

**ଷଟ୍କର୍ଣ୍ଣଭେଦ**—ସଂ. ବି—କୌଣସି ଗୁପ୍ତ ବିଷୟର ଶ୍ରୋତା ଓ ବକ୍ତାଙ୍କ
Shat-karnna bheda ଛଡ଼ା ଅନ୍ୟ ତୃତୀୟ ବ୍ୟକ୍ତିଙ୍କ କର୍ଣ୍ଣ ଗୋଚର ହେବା ଅବସ୍ଥା—The state of a secret reaching six ears, i. e. the ears of 3 persons; a secret matter being divulged to a 3rd person other than the speaker and the person spoken to. [ଦ୍ର—ଗୁପ୍ତମନ୍ତ୍ରର ଷଟ୍କର୍ଣ୍ଣ ଭେଦ ହେଲେ ତାହା ନିଷ୍ଫଳ ହୁଏ । ]

**ଷଟ୍କର୍ମ**—ସଂ. ବି (ଦ୍ୱିଗୁ ସମାସ, ଷଟ୍କର୍ମନ୍ ଶବ୍ଦ)—୧ । ବ୍ରାହ୍ମଣଙ୍କ
Shat-karma କର୍ତ୍ତବ୍ୟ ଛଅଗୋଟି କର୍ମ; ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ ଓ ପ୍ରତିଗ୍ରହ—1, The six duties enjoined on a Brāhmaṇa, viz performing Vedic sacrifice, officiating at a sacrifice, study or learning, teaching, giving & accepting of gift.

୨ । (ତନ୍ତ୍ର) ଶାନ୍ତିକରଣ, ବଶୀକରଣ, ସ୍ତମ୍ଭନ, ବିଦ୍ୱେଷଣ, ଉଚ୍ଚାଟନ ଓ ମାରଣ ରୂପ ୬ ଗୋଟି ତନ୍ତ୍ରୋକ୍ତ ପ୍ରୟୋଗ ବା ଅଭିଚାର—2. Six mystic rites employed in Tantric performances. ୩ । ଜୀବିକା ନିର୍ବାହାର୍ଥ ଅନନ୍ୟୋପାୟ ବ୍ରାହ୍ମଣ ଯେଉଁ ଛଅଟି କର୍ମ କରି ପାରିବେ ବୋଲି ଶାସ୍ତ୍ରରେ ଅନୁମତି ଦିଆ ଯାଇଅଛି; ଯଥା, ଉଞ୍ଛ, ପ୍ରତିଗ୍ରହ, ଭିକ୍ଷା, ବାଣିଜ୍ୟ, ପଶୁପାଳନ ଓ କୃଷି—3. The 6 acts (e. g. gathering of fallen grains of corn from the paddy field after harvesting, acceptance of gift, begging, trade, rearing of beasts and agriculture) allowable to a Brāhmaṇa in want (Apte) ୪ । ଯୋଗ ସାଧନ ପ୍ରସଙ୍ଗରେ ଅନୁଷ୍ଠେୟ ଛଅଟି କର୍ମ; ଯଥା—ଧୌତି, ବସ୍ତି, ନେତି, ନୌଳିକ, ତ୍ରାଟକ, କପାଳଭାତି—4. The six acts of cleansing the inside of the body, appertaining to the practice of Jo·a (Apte).

**ଷଟ୍‌କର୍ମ ନିରତ**—ସଂ. ବିଣ. ପୁଂ—(୭ମୀ ତତ୍)—ବ୍ରାହ୍ମଣର କର୍ତ୍ତବ୍ୟ
Shaṭ-karma nirata ୬ଟି କର୍ମରେ ରତ (ବ୍ରାହ୍ମଣ) — (a Brahman) Engaged in performing the six duties enjoined by the śāstras.

ଷଟ୍‌କର୍ମରତ, ଷଟ୍‌କର୍ମଶାଳୀ, ଷଟ୍‌କର୍ମଶୀଳ —ଅନ୍ୟରୂପ

**ଷଟ୍‌କର୍ମା**—ସଂ. ବିଣ—(ଷଟ୍ କର୍ମନ୍ ଯାର; ବହୁବ୍ରୀହି)—୧ । ଷଟ୍‌କର୍ମରତ
Shaṭ-karmā (ବ୍ରାହ୍ମଣ)—1. (a Brāhmaṇa) Engaged in the six duties enjoined by the śāstras. ୨ । ଷଟ୍‌କର୍ମ ପାରଗ ବ୍ୟକ୍ତି—2 (a person) Skilled or well versed in the six rituals, acts or tantric rites enjoined in the śāstras.

**ଷଟ୍‌କୂଟା**—ସଂ. ବି. ସ୍ତ୍ରୀ—(ତନ୍ତ୍ର)—ଭୈରବୀ ବିଶେଷ—
Shaṭ-kuṭā Name of a tantrik Goddess.

**ଷଟ୍‌କୋଣ**—ସଂ. ବିଣ (ବହୁବ୍ରୀହି, ଷଟ୍=ଛଅ+କୋଣ ଯାହାର)—
Shaṭ-koṇa ଛଅଟି କୋଣବିଶିଷ୍ଟ; ଷଡ଼ସ୍ର—Hexangular.
ସଂ. ବି—୧ । ବଜ୍ର—1. Indra's thunderbolt. ୨ । ହୀରକ—2. Diamond. ୩ । (ଜ୍ୟୋତିଷ) ଲଗ୍ନଠାରୁ ଷଷ୍ଠ ସ୍ଥାନ—3. (astrology) The 6th place from the Lagna. [ଦ୍ର—ଏହା ରିପୁ ସ୍ଥାନ ଅଟେ ।] ୪ । ଛଅଟି କୋଣ (ବା ବାହୁ) ବିଶିଷ୍ଟ କ୍ଷେତ୍ର—4. Hexagon. ୫ । ତନ୍ତ୍ରୋକ୍ତ ଯନ୍ତ୍ର ବିଶେଷ (ବିଶ୍ୱକୋଷ)-5. Name of a Tantric figure drawn for worshiping Gaṇeśa [ଦ୍ର—ପ୍ରଥମରେ ଗୋଟିଏ ଉର୍ଦ୍ଧ୍ୱମୁଖ ତ୍ରିକୋଣ ଲେଖି ତହିଁରେ ଗୋଟିଏ ଅଧୋମୁଖ ତ୍ରିକୋଣ ଲେଖିଲେ ଯେଉଁ ଷଟ୍‌କୋଣ ହେବ, ତହିଁର କେନ୍ଦ୍ରରେ ଗଂ- (ଗଣେଶଙ୍କ ବୀଜ) ଲେଖି ତହିଁର ଚତୁଃପାର୍ଶ୍ୱେ ୬ କୋଣରେ ଓଁ, ଶ୍ରୀଂ, ହ୍ରୀଂ, କ୍ଲୀଂ, ଗ୍ଲୌଂ, ଗଂ, ଏହି ୬ଟି ବୀଜ ଲେଖି ଏହି ଯନ୍ତ୍ରଦ୍ୱାରା ଗଣେଶଙ୍କୁ ପୂଜା କରିବାକୁ ହୁଏ । ବିଶ୍ୱକୋଷ]

**ଷଟ୍‌କୋଣୀ**—ସଂ. ବିଣ୍ (ଷଟ୍‌କୋଣ+ଇନ୍; ୧ମା.୧ବ)—ଛଅଟି କୋଣ
Shaṭ-koṇī ଯୁକ୍ତ (କ୍ଷେତ୍ର)—Hexangular (figure).

**ଷଟ୍‌ଚକ୍ର**—ସଂ. ବି (ଦ୍ୱିଗୁ)—(ତନ୍ତ୍ର) ଶରୀର ମଧ୍ୟସ୍ଥ ପଦ୍ମାକାର ଛଅଟି
Shaṭ-chakra କଳ୍ପିତ ଚକ୍ର (ଏହା ଶରୀରସ୍ଥ ସୁଷୁମ୍ନା ନାଡ଼ୀ ମଧ୍ୟରେ ଅବସ୍ଥିତ)—The 6 lotus-like mystical circles which are said by the Tantras to exist inside the different parts of the body.
[ଦ୍ର—ତନ୍ତ୍ରୋକ୍ତ ଛଅ ଚକ୍ରର ନାମ ଯଥା—
୧ । ମୂଳାଧାର ଚକ୍ର ବା ଆଧାର ଚକ୍ର—ଗୁହ୍ୟଦ୍ୱାରର କିଛି ଊର୍ଦ୍ଧ୍ୱରେ ଅବସ୍ଥିତ ।
୨ । ସ୍ୱାଧିଷ୍ଠାନ ଚକ୍ର ବା ଲିଙ୍ଗ ଚକ୍ର—ଲିଙ୍ଗମୂଳରେ ।
୩ । ମଣିପୂରକ ଚକ୍ର ବା ନାଭିଚକ୍ର—ନାଭିମୂଳରେ ।
୪ । ଅନାହତ ଚକ୍ର ବା ହୃଦୟ ଚକ୍ର—ହୃଦୟରେ ।
୫ । ବିଶୁଦ୍ଧ ଚକ୍ର ବା କଣ୍ଠ ଚକ୍ର—କଣ୍ଠ ଦେଶରେ ।
୬ । ଆଜ୍ଞାଚକ୍ର ବା ଭ୍ରୂଚକ୍ର ବା ବ୍ରହ୍ମଚକ୍ର ଚକ୍ର—ଭ୍ରୂମଧ୍ୟରେ ।
ଏ ଛଅ ଚକ୍ରର ଉପରେ ତାଳୁର ବ୍ରହ୍ମରନ୍ଧ୍ରରେ ସହସ୍ର-ଦଳପଦ୍ମ ଅବସ୍ଥିତ ।
[ଦ୍ର—ଷଟ୍‌ଚକ୍ର ନିରୂପଣ ଗ୍ରନ୍ଥରେ ତାନ୍ତ୍ରିକ ଯୋଗିଗଣଙ୍କର ଶରୀର ବିଜ୍ଞାନ ଶାସ୍ତ୍ରର ସୂକ୍ଷ୍ମଜ୍ଞାନବାହକ ନାଡ଼ୀମାନଙ୍କର କ୍ରିୟା ତତ୍ତ୍ୱ (psychological physiology of the nervous system) ସମ୍ବନ୍ଧେ ଅତି ସୂକ୍ଷ୍ମ ଆଲୋଚନା ଦୃଷ୍ଟ ହୁଏ । ମେରୁଦଣ୍ଡ (spinal chord) ମଧ୍ୟରେ ତିନିଟି ନାଡ଼ୀ ଅଛି,—ଇଡ଼ା, ସୁଷୁମ୍ନା ଓ ପିଙ୍ଗଳା । ବାମରେ ଇଡ଼ା, ଦକ୍ଷିଣରେ ପିଙ୍ଗଳା ଓ ମଧ୍ୟରେ ସୁଷୁମ୍ନା ଅବସ୍ଥିତ । ଏହି ଶେଷୋକ୍ତ ନାଡ଼ୀ ମସ୍ତକ ଆଡ଼କୁ ଅଗ୍ରସର ହୋଇ ପ୍ରସ୍ଫୁଟିତ ଧୁସ୍ତୁର ପୁଷ୍ପର ଆକାର (Medulla Oblongata) ଆକାର ଧାରଣ କରିଅଛି । ସୁଷୁମ୍ନାନାଡ଼ୀର ମଧ୍ୟରେ ବଜ୍ରନାଡ଼ୀ । ଷଟ୍‌ଚକ୍ର ସହିତ ସୁଷୁମ୍ନାନାଡ଼ୀର ଘନିଷ୍ଠ ସମ୍ବନ୍ଧ । ଏହି ନାଡ଼ୀରେ ୭ଟି ପଦ୍ମ ପ୍ରକଟିତ । ଏଥିର କ୍ରମରେ ୬ଟି ଷଟ୍‌ଚକ୍ର ଓ ଊର୍ଦ୍ଧ୍ୱରେ ସହସ୍ରଦଳପଦ୍ମ । (୧) ଆଧାର ଚକ୍ରସ୍ଥ ପଦ୍ମ ମଧ୍ୟରେ ଲିଙ୍ଗରୂପୀ ମହାଦେବ ଅବସ୍ଥିତ ଓ ତହିଁର ଅମୃତ କ୍ଷରଣମନ ସ୍ଥାନରେ ମୁହଁ ଲଗାଇ ସର୍ପରୂପା କୁଣ୍ଡଳିନୀ ଶକ୍ତି ସାର୍ଦ୍ଧ ତ୍ରିବେଷ୍ଟନରେ ପରିବେଷ୍ଟିତା ହୋଇ ରହିଅଛନ୍ତି । (୨) ସ୍ୱାଧିଷ୍ଠାନ ଚକ୍ରସ୍ଥ ପଦ୍ମରେ ବାରୁଣୀଶକ୍ତି । (୩) ମଣିପୂର ଚକ୍ରରେ ଅଗ୍ନିମଣ୍ଡଳ । (୪) ଅନାହତ ଚକ୍ରରେ ବାୟୁମଣ୍ଡଳ । (୫) ବିଶୁଦ୍ଧ ଚକ୍ରରେ ଚନ୍ଦ୍ରମଣ୍ଡଳ । (୬) ଭ୍ରୂମଧ୍ୟରେ , ଆଜ୍ଞାଚକ୍ରରେ ଶିବ ଅବସ୍ଥିତ । ଏଥିର କିଛି ଊର୍ଦ୍ଧ୍ୱରେ

ପ୍ରଣବାଭୂତ ପରମାତ୍ମା ଅଧିଷ୍ଠିତ ଏବଂ ସହସ୍ରଦଳ ପଦ୍ମ । ଏହି ପଦ୍ମ ମଧ୍ୟରେ ଚନ୍ଦ୍ରମଣ୍ଡଳ, ତନ୍ମଧ୍ୟରେ ତ୍ରିକୋଣ ଯନ୍ତ୍ର ଓ ସେହି ମଧ୍ୟରେ ଶିବ ସ୍ଥାନରେ ପରମ ଶିବ ଅବସ୍ଥିତ । ସୁଷୁମ୍ନା ନାଡ଼ୀ ମଧ୍ୟରେ ବଜ୍ର ନାଡ଼ୀ, ବଜ୍ର ନାଡ଼ୀ ମଧ୍ୟରେ ଚିତ୍ରିଣୀ ନାଡ଼ୀ ଓ ଚିତ୍ରିଣୀ ନାଡ଼ୀ ମଧ୍ୟରେ ସୂକ୍ଷ୍ମାତିସୂକ୍ଷ୍ମ ବ୍ରହ୍ମ ନାଡ଼ୀ ଅଛି । ବ୍ରହ୍ମ ନାଡ଼ୀ କନ୍ଦର୍ପନାଳାବିଳାସ । ଏହି ନାଡ଼ୀ ଗୁହ୍ୟସ୍ଥ ମୂଳାଧାରସ୍ଥ ଶିବଙ୍କ ମୁଖଗହ୍ୱରରୁ ବାହାରି ଶୀର୍ଷସ୍ଥ ସହସ୍ରଦଳାଧିଷ୍ଠିତ ଆଦିଦେବ ପରମାତ୍ମାଙ୍କୁ ସ୍ପର୍ଶ କରୁଅଛି । ସାଧକ ଯମନିୟମାଦି ସମ୍ୟକ୍ ଶିକ୍ଷା କରି ବିଶୁଦ୍ଧ ଜ୍ଞାନଲାଭପୂର୍ବକ ଗୁରୁଙ୍କଠାରୁ ଷଟ୍‌ଚକ୍ରଭେଦନ, ଷଟ୍‌ପଦ୍ମଭେଦ ପ୍ରକ୍ରିୟା ଜାଣିବେ । ଗୁରୁପଦେଶ ଭିନ୍ନ ଏ ସାଧନା କିମ୍ବା ଏ ସମ୍ବନ୍ଧରେ ଜ୍ଞାନଲାଭ ଅସମ୍ଭବ । ଏହା ମୋକ୍ଷ ଲାଭର ଅଧ୍ୟାତ୍ମ ଅଧିଭୌତିକ ସାଧନ (Physio psycho-logical process) ଅଟେ । (ବିଶ୍ୱକୋଷ)

**ଷଟ୍‌ଚତ୍ୱାରିଂଶ**—ସଂ ବଣ ( ଷଟ୍‌ଚତ୍ୱାରିଂଶତ୍+ପୂରଣାର୍ଥେ ଅ )—
Shat-chatwārimsa ୪୬ ସଂଖ୍ୟାର ପୂରକ—46th.

**ଷଟ୍‌ଚତ୍ୱାରିଂଶତ୍**—ସଂ ବ [ ଷଟ୍=ଛଅ ଅଧିକ ଚତ୍ୱାରିଂଶତ୍=୪୦; ମ. ପ. ଲୋ. କର୍ମଧା]—
Shat-chatwārimsat
ଛୟାଳିଶି; ୪୬ ସଂଖ୍ୟା—46; Forty six. ସ. ବଣ—୪୬ସଂଖ୍ୟକ—Numbering 46.

**ଷଟ୍‌ଚରଣ**—ସଂ ବ (ଷଟ୍=ଛଅ ଅଟେ ଚରଣ ଯାହାର ବହୁବ୍ରୀହି)
Shat-charana ୧ । ମଧୁକର—1 Bee. ୨ । ଭ୍ରମର—2. Black-bee. ୩ । ଋଚପୋକ—3. Bug. ୪ । ଉକୁଣୀ—4 Louse. ୫ । ଟିଙ୍ଗିକା—5. Locust (Apte). ୬ । (ବିଶ୍ୱ) ଛଅ ଗୋଟି ଗୋଡ଼—6. Six legs. ସ. ବଣ ପୁଂ—ଷଟ୍‌ପଦବିଶିଷ୍ଟ—Having six legs.

**ଷଟ୍** (ଧାତୁ)—ସ.—୧ । ହିଂସା କରିବା; ବଧ କରିବା—
Shatt (root) 1. To hurt; to kill ୨ । ଦାନ କରିବା—2. To give. ୩ । ବଳବାନ ହେବା—3. To be strong.

**ଷଟ୍‌ତ୍ରିଂଶ**—ସ. ବଣ—ଛତିଶ ସଂଖ୍ୟାର ପୂରକ—
Shat-trimsa Thirtysixth (Apte).

**ଷଟ୍‌ତ୍ରିଂଶତ୍**—ସ. ବ—(ଷଟ୍ ଅଧିକ+ତ୍ରିଂଶତ୍; ମ. ପ. ଲୋ)—
Shat-trimsat ଛତିଶ; ଛତିଶ; ୩୬—36; thirty six. ସ. ବଣ—୩୬ ସଂଖ୍ୟକ—Numbering 36.

**ଷଟ୍‌ତ୍ରିଂଶତ୍ତମ**—ସ. ବଣ—ଷଟ୍‌ତ୍ରିଂଶ; ୩୬ ସଂଖ୍ୟାର ପୂରକ; ୩୬
Shat-trimsattama ସଂଖ୍ୟା ସ୍ଥାନୀୟ—Thirtysixth.

**ଷଟ୍ ପଞ୍ଚାଶତ୍**—ସ.ବ.ଓ ବଣ—(ମ. ପ. ଲୋ; ଷଟ୍ ଅଧିକ+ପଞ୍ଚାଶତ୍—
Shat-panchāsat ଛପନ; ୫୬—Fifty six; 56.

**ଷଟ୍ ପଞ୍ଚାଶତ୍ତମ**—ସଂ ବଣ—ଛପନ ସଂଖ୍ୟାର ପୂରକ—Fifty sixth.
Shat-panchāsattama
[ଷଟ୍‌ପଞ୍ଚାଶ—ଅନ୍ୟରୂପ]

**ଷଟ୍‌ପଦ**—ସ. ବଣ—(ଷଟ୍=ଛଅ ଅଟେ ପଦ ଯାହାର; ବହୁବ୍ରୀହି)—
Shat-pada ଛଅ ପଦ ବିଶିଷ୍ଟ—Having six legs or feet.
[ଷଟ୍‌ପଦା, ଷଟ୍‌ପଦୀ—ସ୍ତ୍ରୀ] ବ. ପୁ.—୧ । ଭ୍ରମର—1. Black bee. ୨ । ଉକୁଣୀ—2. Louse; (Apte). ୩ । ଛଅ ପାଦ ବା ଚରଣ ବିଶିଷ୍ଟ କବିତା; ଛଅଗୋଡ଼—3. A verse consisting of six feet or lines in a stanza.

**ଷଟ୍‌ପଦଜ୍ୟ**—ସ. ବଣ. ପୁଂ—(ବହୁବ୍ରୀହି; ଷଟ୍‌ପଦ=ଭ୍ରମର ଅଟେ
Shat-padajya ଜ୍ୟା=ଧନୁର୍ଗୁଣ ଯାହାର; ଭ୍ରମରମାନେ ଯେଉଁ ଧନୁର ଗୁଣ ରୂପେ କଳ୍ପିତ) କାମଦେବଙ୍କ ଧନୁ—( The bow of Cupid) having black bees for its bowstring; Apte).

**ଷଟ୍‌ପଦ ପ୍ରିୟ**—ସ. ବ—(ଷଷ୍ଠୀ ତତ୍)—ନାଗକେଶର (ବୃକ୍ଷ)—
Shat-pada priya Mesua Ferra (tree.)

**ଷଟ୍‌ପଦା**—ସ. ବ ( ଷଟ୍‌ପଦ+ଅ )—୧ । ଟିଙ୍ଗିକା—1. Grass-
Shat-padā hopper. ୨ । ( ବୈଦ୍ୟକ ) ମଲ୍ଲି ଫୁଲ—2. Jasmine; Jasminum Sambac. ୩ (ବୈଦ୍ୟକ) ବବୁର ଗଛ—3. The Acacia Arabica tree. ୪ । ମାଈ ଭ୍ରମର—4. A female black bee. ୫ । ଯକା; ଉକୁଣି; (ବିଶ୍ୱକୋଷ)—5. Louse.

**ଷଟ୍‌ପଦାତିଥି**—ସ. ବ—( ବହୁବ୍ରୀହି; ଷଟ୍‌ପଦ=ଭ୍ରମର ହୁଏ ଅତିଥି
Shat-padātithi ଯାହାର) —୧ । ଆମ୍ବ ବୃକ୍ଷ—1. Mango tree. ୨ । ଚମ୍ପକ ବୃକ୍ଷ—2. The Champaka tree.

**ଷଟ୍‌ପଦାନନ୍ଦ ବର୍ଦ୍ଧନ**—ସ. ବ—(ବହୁବ୍ରୀହି)—ଅଶୋକ ବୃକ୍ଷ—
Shat-padānanda barddhana The Asoka tree.

**ଷଟ୍‌ପଦାନନ୍ଦା**—ସ. ବ—(ବହୁବ୍ରୀହି)—ମଲ୍ଲିକା—
Shat-padānandā Jasmine.

**ଷଟ୍‌ପଦୀ**—ସଂ. ବ. ସ୍ତ୍ରୀ—(ଷଟ୍‌ପଦ+ଈ)—୧ । ଭ୍ରମରୀ—
Shat-padi 1. A female bee. ୨ । ଛଅ ଚରଣବିଶିଷ୍ଟ ଶ୍ଳୋକ; ଛଅ ଗୋଡ଼—2. Hexametre; a stanza consisting of six lines. ୩ । ଉକୁଣୀ—3. Louse (Apte). ୪ । ଟିଙ୍ଗିକା (ବିଶ୍ୱକୋଷ)—4. Grasshopper.

**ଷଟ୍‌ପାଦ**—ସଂ. ବ—୧ । ଟିଙ୍ଗିକା (ଶବ୍ଦକୋଷ)—
Shat-pāda 1, Grasshopper; locust; mantis,
[ଷଟ୍‌ପାଦା(ଦୀ)—ସ୍ତ୍ରୀ] [ ଦ୍ର—ଏହି କୀଟ ଋପତ୍ତ ପାଣ୍ଡୁବର୍ଣ୍ଣଯୁକ୍ତ କପିଳ ବା ହରିଦ୍ବର୍ଣ୍ଣ, ଛଅଟି ପଦ ସମ୍ପନ୍ନ, ଏହାର ମସ୍ତକ କ୍ଷୁଦ୍ର ଓ ବକ୍ଷ ସୂକ୍ଷ୍ମ—ବିଶ୍ୱକୋଷ ।]

**ଷଟ୍‌ପ୍ର(ପ୍ରା)ଜ୍ଞ**—ସଂ. ବ. ପୁଂ—( ଷଟ୍+ପ୍ରଜ୍ଞ; ବହୁବ୍ରୀହି )—୧ ।
Shat-pra (prā)jna ଚତୁର ପୁରୁଷାର୍ଥ ( ଯଥା—ଧର୍ମ, ଅର୍ଥ, କାମ, ମୋକ୍ଷ) ଓ ଲୋକତତ୍ତ୍ୱ ବା ଲୋକାସୁର ଓ ତତ୍ତ୍ୱଜ୍ଞାନ ଏହି ଛଅ ବିଷୟରେ ଅଭିଜ୍ଞ ବ୍ୟକ୍ତି—1. A person

acquainted with the 4 objects of human pursuit (viz piety, riches, love, salvation), popular usage and metaphysical truth. ୨ । ବୌଦ୍ଧ—2. A Buddhist. ୩ । ଜାର ପୁରୁଷ—3. Paramour; gallant. ୪ । ଲମ୍ପଟ—4. Lecher; libertine. ୫ । କାମୁକ ବ୍ୟକ୍ତି—5, A lustful or licentious person; a lewd person.

ଷଟ୍‌ଲବଣ—ସଂ. ବି—କାଚ, ସୈନ୍ଧବ, ସାମୁଦ୍ର, ବିଟ ଓ ସୌବର୍ଚ୍ଚଳ, Shat-labana ଏହି ଛଅ ଲବଣ ସହିତ ମୃତ୍ତିକା—Six kinds of salt.

ଷଟ୍‌ଶାସ୍ତ୍ରୀ—ସଂ. ବିଣ ପୁଂ (ଷଟ୍+ଶାସ୍ତ୍ର+ଇନ୍; ୧ମା. ୧ବ)—Shat-śāstri ଛଅଟି ଶାସ୍ତ୍ର ବା ଷଡ୍ ଦର୍ଶନରେ ପ୍ରବୀଣ (ବ୍ୟକ୍ତି) Conversant with the six Śāstras or Darśanas (Apte).

ଷଟ୍‌ଷଷ୍ଟି—ସଂ. ବି ଓ ବିଣ (ମ. ପ. ଲୋ; ଷଟ୍ ଅଧିକ ଷଷ୍ଟି)—Shat-shashti ଛଅଷଠି; ୬୬—Sixty-six; 66.

ଷଟ୍‌ଷଷ୍ଟିତମ—ସଂ. ବିଣ(ଷଟ୍ ଷଷ୍ଟି+ପୂରଣାର୍ଥେ ତମ)—ଛଅଷଠି ସଂଖ୍ୟା Shat-shashtitama ର ପୂରକ—Sixty-sixth. (ଷଟ୍ ଷଷ୍ଟି—ଅବ୍ୟୟୁତ)

ଷଟ୍‌ସପ୍ତତି—ସଂ. ବି ଓ ବିଣ (ସଂଖ୍ୟା ବାଚକ; ମ. ପ. ଲୋ; ଷଟ୍ ଅଧିକ Shat-saptati ସପ୍ତତି)—ଛଅସ୍ତରି; ସତୁରିଠାରୁ ଛଅ ଅଧିକ ସଂଖ୍ୟା—Seventy six.

ଷଟ୍‌ସପ୍ତତିତମ—ସଂ. ବିଣ (ଷଟ୍ ସପ୍ତତି+ପୂରଣାର୍ଥେ ତମ)—Shat-saptatitama ଛଅସ୍ତରି ସଂଖ୍ୟାର ପୂରକ—Seventy-sixth. (ଷଟ୍ ସପ୍ତତି; ଷଟ୍‌ସପ୍ତ—ଅବ୍ୟୟୁତ)

ଷଟ୍‌ସହସ୍ର—ସଂ. ବି ଓ ବିଣ (ସଂଖ୍ୟାବାଚକ)—ଛଅ ହଜାର—Shat-sahasra Six thousand.

ଷଟ୍‌ସହସ୍ର ଶତ—ସଂ. ବି ଓ ବିଣ (ସଂଖ୍ୟା ବାଚକ)—ଛଅ ଲକ୍ଷ—Shat sahasra śata Six hundred thousand.

ଷଟ୍—ଦେ. ବି. (ସଂ. ଷଟ୍)—ଛଅ—Six. [ଦ୍ର—ମୂଳର ପ୍ରଥମ Shaṭu ଅଧ୍ୟାୟରେ, ସୂତ୍ରେ ଷଟ ପ୍ରଶ୍ନ କଲେ । ଜଗନ୍ନାଥ—ଛୟ ଛ ଭାଗବତ ।]

ଷଟ୍‌ଦଶ—ଦେ. ବି (ସଂ. ଷୋଡଶ)—ଷୋଳ—Sixteen. [ଦ୍ର—Shṭaadaśa ବର୍ଷ ବୟସ ଷଟ ଦଶ, କିଶୋର ଏ ଷଟ ବର୍ଷ ସାଜ ସଜ ପ୍ରାଚୀ. ପୂର୍ଣ୍ଣିମ ଚନ୍ଦ୍ରୋଦୟ ।]

ଷଟ୍‌ବିଂଶ—ଦେ. ବି (ସଂ ଷଡ୍‌ବିଂଶ)—ଛବିଶ—Twentysix. Shaṭa bimśa [ଦ୍ର—ଷଟବିଂଶରେ ସେ ଗମ୍ଭୀର—ପ୍ରାଚୀ. ଛାବିଶ ଛବିସ ପୂର୍ଣ୍ଣିମ ଚନ୍ଦ୍ରୋଦୟ]

ଷଟଶକ୍ତି ଦେ. ବି (ସଂ: ଷଟ୍+ଶକ୍ତି)—ବୈଷ୍ଣବ ସାହିତ୍ୟରେ ଶ୍ରୀ Shataśakti କୃଷ୍ଣଙ୍କର ତଥା ରାଧାଙ୍କ ଶକ୍ତିରୂପ ଧାରଣୀ ষটশক্তি षटशक्ति ଛଅଟି ଦେବୀ—Six Deities supposed to have the Śakti of Bhishṇu and Rādhā (in the Baishnaba literature).

[ଦ୍ର—ଶ୍ରୀ ବୃନ୍ଦାବତୀ, ରଙ୍ଗଦେବୀ, ଶୁଭଦା, ପ୍ରେମମୟୀ ଦେବୀ, ଇନ୍ଦୁରେଖା, ଚନ୍ଦ୍ରାୟୁବତୀ ଏ ଜାଣ ଅଟେ ଷଟ ଶକ୍ତି । ପ୍ରାଚୀ. ପୂର୍ଣ୍ଣିମଚନ୍ଦ୍ରୋଦୟ ।]

ଷଟାମ୍ପୁ—ଗ୍ରା. ପ୍ରାଦେ (ଗଞ୍ଜାମ) ବୈ ଦେ. ବି—(ଇଂ: ଷ୍ଟାମ୍ପ)—Shaṭampu ଷ୍ଟାମ୍ପ—Stamp.

ଷଠା—ଦେ. ବି (ସଂ. ଷଷ୍ଟି)—ଷାଠିଏ—Shaṭhā Sixty. বাট साठ [ଯଥା—ଷଠାଣଡ଼େ; କଳଷଠା]

ଷଠାଶଏ ହେ—ଦେ: ବି ଓ ବିଣ (ସଂଖ୍ୟାବାଚକ; ଷଷ୍ଟ୍ୟୁତ୍ତର ଶତ) Shaṭhāśae(he) ଏକଶ ଷାଠିଏ—160. একশষাট एकसौसाठ

ଷଠୀ—ଦେ. ବି—(ସଂ. ଷଷ୍ଠୀ)—୧ । ଶିଶୁର ଜନ୍ମ ହେବାର ୬ଷ୍ଠ Shaṭhi'thi ଦିବସରେ କର୍ତ୍ତବ୍ୟ ଉତ୍ସବାଦି ଓ ଷଷ୍ଠୀ ଦେବୀଙ୍କ ষেটেবা छठियार; छठि ପୂଜା—1. Festival and worship of the 'Shashthī debī' done on the 6th day of a child's birth. ୨। ଷଷ୍ଠ ମଙ୍ଗଳା—2. The 6th day of marriage. ୩ । ଷଷ୍ଠୀ (୨) (ଦେଖ)—3. Shashthī (2) (see) ୪ (ସଂ. ଷଷ୍ଟି) ଷାଠିଏ, ୬୦—4. Sixty; 60। [ଦ୍ର—ଷଷ୍ଟି ଶବ୍ଦର ଅପଭ୍ରଂଶ ଷଠି ଶବ୍ଦ ଅଣଷଠି ଓ ଏକଷଠି ଆଦିରେ ବ୍ୟବହୃତ ହୁଏ ।] ୫ । ଷଠିଓଷା (ଦେଖ)—5. Shaṭhi Oshā (see)

ଷଠିଆ—ଦେ. ବି (ସଂ. ଷଷ୍ଠିକ)—ଷଷ୍ଠିକ (ଦେଖ)—Shashṭika Shaṭhiā ষেটে छाठिया (See)

ଷଠି ଉଠିଆରି—ଦେ:ବି—ଶିଶୁର ଜନ୍ମ ହେବାର ୬ଷ୍ଠ ଦିନ ଓ ଦ୍ୱାଦଶ ଦିନ Shaṭhi uthiāri ମାତା ସ୍ନାନ କରି ଅଶୁଚ ଉଠିବା ଦିନକୃତ୍ୟର ষেটেরাপূজা ଉତ୍ସବ—The ceremonies done on the 6th and 12th day of a birth.

ଷଠି ଓଷା—ଦେ. ବି—(ସଂ.ଷଷ୍ଠୀ ଓ ଉତ୍ସବ)—ଭାଦ୍ର ଶୁକ୍ଳ ଷଷ୍ଠୀଦିଅରେ Shaṭhi oshā ହେଉଥିବା ଷଷ୍ଠୀ ଦେବୀଙ୍କ ପୂଜା—The worবষ্ঠিপূজা षष्ठीपूजा ship of Shashṭhī debi on the 6th of the bright fortnight of Bhādraba. [ଦ୍ର—ଏ ଦିନ ଶିଶୁମାନଙ୍କ ପିଠିରେ ମାଆ ଆଦି ବର୍ଷୀୟସୀମାନେ କନ୍ଦମୂଳି, ଶାରୁ ନଡ଼ା, କାଉଁଶ ପତ୍ର, ଧାନ ପଲର ବଡ଼ା ବାନ୍ଧ ଧୀରେ ଧୀରେ ଆଘାତ କରନ୍ତି । ଏହାକୁ ଷଠି ବାଡ଼ିଆ କହନ୍ତି । ଏତଦ୍ୱାରା ଶିଶୁମାନଙ୍କର ସମସ୍ତ ବାଲାବସ୍ଥା ଖଣ୍ଡିତ ହୁଏ ବୋଲି ବିଶ୍ୱାସ । ଏହାର କାହିଁକ 'ଦୁକ୍‌ଟୀ' ବା 'ଲଳିତା ସପ୍ତମୀ' ବ୍ରତ (ପଣ୍ଡିତସଙ୍କସ୍ତ ନୂତନ ଅଠମଲ୍ଲିକ ସ୍ମରଣ ୧୧୬ ପୃଷ୍ଠା) । ଷଠି ଓଷାକୁ ଯାଜପୁର ଅଞ୍ଚଳରେ କେନ୍ଦୁଡ଼ିଆ ଷଠି ବୋଲି କହନ୍ତି । ସ୍କନ୍ଦ ପୁରାଣରେ ଏ ଷଷ୍ଠୀର ନାମ ଚପେଟୀ ଷଷ୍ଠୀ, ଓ ଭବିଷ୍ୟ ପୁରାଣରେ ଏ ଷଷ୍ଠୀର ନାମ ଅକ୍ଷୟାଷଷ୍ଠୀ । ଚପେଟୀର ଅର୍ଥ ଚାପୁଡ଼ା । 'ଚପେଟୀଷଷ୍ଠୀ' ନାମରୁ ଅନୁମିତ ହୁଏ ଯେ, ବର୍ଷୀୟସୀମାନେ

ପତ୍ନୀମାନଙ୍କ ପିଠିରେ ଯେଉଁ 'ଷଠୀ ବାଡ଼ିଆ' କରନ୍ତି ତହିଁ ସଙ୍ଗେ ଏ ନାମର କିଛି ସମ୍ପର୍କ ଅଛି ।]

ଷଠି କୁକୁ(କ,କ୍କୁ)ଟ—ଦେ. ବି.—(ସଂସ୍କୃତ, ସଂ. ଷଷ୍ଠୀ ଓ କୁକ୍କୁଟୀ) Shathi kuku(ka, kku)ṭa ଷଷ୍ଠୀ ପୂଜା ଓ କୁକ୍କୁଟୀ ବ୍ରତ; [ଷଠ କୋକଟ(ଟୀ)—ଅନ୍ୟରୂପ] ଭାଦ୍ର ଶୁକ୍ଳ ଷଷ୍ଠୀ ଓ ସପ୍ତମୀ ଦିନ ଅନୁଷ୍ଠିତ ବ୍ରତ ଦ୍ୱୟ—The Shaṭhi & Kukkuṭi vows of the Hindus.

ଷଠି ଘର(ରା)—ଦେ. ବି.—(ସଂ. ଷଷ୍ଠୀ ଓ ଗୃହ)—୧ । ଶିଶୁର ଜନ୍ମର Shaṭhi ghara(rā) ଷଷ୍ଠଦିନ ଅନୁଷ୍ଠିତ ଉତ୍ସବ—1. The ଷେଟେବା **ছটিয়ার** festival observed on the 6th day of a child's birth. [ଉ—ପଞ୍ଚୁଆତି ଷଠିଘର ଉତ୍ସବ ଗଲା, ଏକବିଂଶ ଦିବସ ପ୍ରବେଶ ହୋଇଲା । ବିଶ୍ୱନାଥ—ବିଚିତ୍ର ରାମାୟଣ ।] [ଦ୍ର—ଏ ଦିନ ଘରେ ପିଠା ଆଦି ପ୍ରସ୍ତୁତ ହୋଇ ୭ଜଣ ଅବିଧବା ମାଇପଙ୍କ ଦ୍ୱାରା ଷଷ୍ଠୀ ଦେବୀଙ୍କୁ ନୈବେଦ୍ୟ ଦିଆଯାଏ ଓ ବଣ୍ଟାଯାଏ ।] ୨ । ଗୃହର ଏକ କୋଠରୀରେ (ଅର୍ଥାତ୍ ସୂତିକାଗାରରେ) କାନ୍ଥର ଦେହରେ କାଦୁଅ ଦ୍ୱାରା ଗୋଟିଏ ଚତୁଷ୍କୋଣ ବିଶିଷ୍ଟ ରେଖ ବା ଦେବୀ ପ୍ରତୁଳିକା ଛିଟାହୋଇ ତହିଁରେ କଉଡ଼ି ମଡ଼ାଯାଇ ଷଷ୍ଠୀ ଦେବୀଙ୍କ ପୂଜା କରାଯାଏ—2. The room (the lying-in-room) in which a quadrilateral figure or the figure of a Goddess of clay is daubed on the wall and worshipped as the image of Shashṭhi debī.

ଷଠି ଚଉଠୀ—ଦେ. ବି.—(ସଂ ଷଷ୍ଠୀ+ଚତୁର୍ଥୀ)—୧ । ବିବାହର ଷଷ୍ଠ Shaṭhi chauṭhī ଓ ଚତୁର୍ଥ ଦିନର ଉତ୍ସବ—1. Cere- ষষ্ঠী চতুথী **ষষ্ঠী চতুর্থী** monies on the 6th and 4th days of marriage. ୨ । ଜନ୍ମର ଷଠି ଉତ୍ସବ ଓ ବିବାହର ଚଉଠି ଉତ୍ସବ—2. The 6th day ceremony after a birth and the 4th day celebration aftera marriage.

ଷଠି ଚଉଠୀ ମଙ୍ଗଳବାର—ଦେ. ବି. (ସଂସ୍କୃତ)—ସ୍ତ୍ରୀମାନଙ୍କ ଅନୁଷ୍ଠିତ Shaṭhi chauṭhī maṅgaḷabāra ଛୋଟ ଛୋଟ **ଓଷା** ଉତ୍ସବ (ଯଥା—ଶିଶୁର ଷଠୀ, ବିବାହର ଚଉଠି ଓ ଚଇତ୍ର ମାସ ମଙ୍ଗଳବାର)—Various petty ceremonies and festivals observed by women. [ଉ—ତା'ଘରେ ଷଠୀ ଚଉଠୀ ମଙ୍ଗଳବାର ନାହିଁ—ଅର୍ଥାତ୍, ତା ଘରେ ଛୋଟ ଉତ୍ସବସବୁ ହୁଏ ନାହିଁ ]

ଷଠି ଦିଉଛେଇ(ଇଁ)—ଦେ. ବି.—(ସଂ ଷଷ୍ଠୀ ଓ ଦେବୀ)—ଷଷ୍ଠୀ (୨) Sathi diuchhei (iṅ) (ଦେଖ)—Shashṭhi (2) (see). ষাইঠ, ষাট **ষষ্ঠীদেবী** [ଉ—ଷଠିଦିଉଛୀ ଭୂତ ହେବୁ, ଅନେକ ପୂଜା ତୁ ପାଇବୁ । ଯଶୋବନ୍ତ—ପ୍ରେମଭକ୍ତି ଗୀତା । ]

ଷଠି ଦେଈ, ଷଠି ଦିଉଛେଇଁ }
ଷଠି ଦୋଛେ(ଶେ)ଇଁ, ଷଠି ଦିଉଛୀ } ଅନ୍ୟରୂପ

ଷଠ ଧାନ—ଦେ. ବି.—(ସଂ. ଷଷ୍ଟିକା)—ଷାଠିକା (ଦେଖ) Shathi dhāna Shāṭhikā (See) ষাটিয়া, ষেটো **সাঠীধান**

ଷଠ ପଞ୍ଚୁଆତି—ଦେ. ବି—ଷଠୀ ଓ ପଞ୍ଚୁଆତି— Shaṭhi pañchuāti The ceremonies done on সেটেবা পূজা the 6th and 5th days after a **ছাটিয়ার পুজা** birth.

ଷଠି ପୂଜା—ଦେ. ବି (ସଂ. ଷଷ୍ଠୀପୂଜା)—୧ । ଶିଶୁର ଜନ୍ମର ଷଷ୍ଠ Shaṭhi pūjā ଦିନରେ କର୍ତ୍ତବ୍ୟ ଉତ୍ସବ—1. The সেটেবা festival done on the 6th day of the birth **ষষ্ঠী পুজা** of a child. ୨ । ଷଠି ଓଷା (ଦେଖ)—2. Shaṭhi oshā. (See)

ଷଠି ବାଡ଼ିଆ—ଦେ. ବି—ଷଠ ଓଷା ବା ଭାଦ୍ର ଶୁକ୍ଳଷଷ୍ଠୀ ଦିନ ବାଳକ-Shaṭhi bāṛdiā ବାଳିକାମାନଙ୍କର ରକ୍ଷାବିଧାନାର୍ଥ ତାଙ୍କ ପିଠିରେ ମାଆ ଆଦି କର୍ତ୍ତ୍ରୀସ୍ତ୍ରୀମାନଙ୍କ ଦ୍ୱାରା ସାରୂକଣ୍ଡା, ଧାନକେଣ୍ଡା, କଙ୍କୁମୂଳୀ, କାଉଁଶ ପତ୍ର ଏକତ୍ର ବନ୍ଧା ହୋଇ ଥିବା ଗୋଛାରେ ଆଘାତ କରିବାରୂପ କାର୍ଯ୍ୟ—The ceremony of patting on the backs of boys and girls on the 'Shaṭhi oshā' day with a sheaf of paddy and other plants to protect them from evil.

[ଦ୍ର—ଏହି ସମୟରେ ଆଘାତ କରୁଥିବା ଲୋକର ବୋଲିବା ପଦ ଯଥା—

ଓଳିଅ ପର ବଢ଼ିଯା, ବଣସାରୁ ପରି ମାଡ଼ିଯା
ଗାଁ ଗାଁ—ବଞ୍ଚ୍ ହୋ ! ବଞ୍ଚ୍ ହୋ !

ଷଠି ଦୁଇଛେଇଙ୍କ ପୂଜା ବାକ୍ୟ—

ଯସ୍ୟା ଭାଦ୍ରସ୍ୟ ଶୁକ୍ଳାୟାଂ ଷଷ୍ଠ୍ୟାଂ ଷଷ୍ଠୀ ପ୍ରପୂଜିତା
ଶ୍ରାବତ୍ପ୍ରଭାତ ସୌଭାଗ୍ୟ-ଧନଧାନ୍ୟଯୁତା ଭବେତ୍ ।

ପ୍ରାର୍ଥନା—

ଷଷ୍ଠୀ ଦେବୀ ନମସ୍ତୁଭ୍ୟଂ ସୂତିକାଗୃହ ଶାୟିନି
ପୂଜିତା ପରୟା ଭକ୍ତ୍ୟା ଦୀର୍ଘମାୟୁଃ ପ୍ରଯଚ୍ଛମେ ।

ସ୍କନ୍ଦ ପୁରାଣରେ ଏ ଷଷ୍ଠୀର ନାମ ଚପେଟୀ ଷଷ୍ଠୀ, ଅତଏବ ପିଲାଙ୍କ ପିଠିରେ ଆଘାତ କରାଯିବା ପ୍ରଥାର ପୌରାଣିକ ଭିତ୍ତି ଥିବା ଅନୁମିତ ହୁଏ ।]

ଷଡ଼ ଋତୁ—ସଂ. ବି (ଷଟ୍+ଋତୁ)—ବର୍ଷର ଛଅଟି ଋତୁ— Shaṛd-ṛutu The six seasons of the year. (ଷଡ଼୍ଋତୁ—ଅନ୍ୟରୂପ) [ଦ୍ର—ଋତୁମାନଙ୍କର ନାମ ଯଥା— [ଷଡ଼ଋତୁ—ଦେଶଜ ରୂପ] ଗ୍ରୀଷ୍ମ ଋତୁ=ବୈଶାଖ ଓ ଜ୍ୟେଷ୍ଠ ମାସ,
ବର୍ଷା ଋତୁ=ଆଷାଢ଼ ଓ ଶ୍ରାବଣ,
ଶରତ୍ ଋତୁ=ଭାଦ୍ର ଓ ଆଶ୍ୱିନ,
ହେମନ୍ତ ବା ହିମ ଋତୁ=କାର୍ତ୍ତିକ ଓ ମାର୍ଗଶିର,
ଶିଶିର ବା ଶୀତ ଋତୁ=ପୌଷ ଓ ମାଘ,
ବସନ୍ତ ଋତୁ=ଫାଲ୍ଗୁନ ଓ ଚୈତ୍ର ।]

**ଷଡ଼୍‌ଗବ**—ସଂ. ବି (ଷଟ୍ + ଗୋ; ସମାହାର ଦ୍ୱିଗୁ)—ଛଅଟି ଗୋରୁ—
Shard-gaba Six heads of cattle. ସଂ. ବିଣ—
(ଷଡ଼୍‌ଗବୀୟ—ବିଣ) (ବହୁବ୍ରୀହି)—୧ । ଛଅଟି ଗୋରୁ ଦ୍ୱାରା
(ଷଡ୍ଗବ—ଅନ୍ୟରୂପ) ଆକୃଷ୍ଟ (ହଳ, ଶକଟାଦି)—1. Drawn
(ଷଡ଼ଗବ—ଦେଶଜରୂପ) by six oxen. ୨ । ଛଅଟି ବଳଦ
ଦ୍ୱାରା ଆକୃଷ୍ଟ (ଭୂମି)—2. Ploughed by Six oxen.

**ଷଡ଼୍‌ଗୟା**—ସଂ. ବି (ଷଟ୍ + ଗୟା)—ଗୟା ତୀର୍ଥରେ ଥିବା ଛଅ ଗୋଟି
Shard-gayā ଦର୍ଶନ ଓ ପିଣ୍ଡ କର୍ମ କରିବା ଯୋଗ୍ୟ ପ୍ରଧାନ
(ଷଡ୍ଗୟା—ଅନ୍ୟରୂପ) ସ୍ଥାନ—Six very sacred shrines
or places in Gaya. (ଯଥା—ଗୟାଗଜ, ଗୟାଦିତ୍ୟ, ଗାୟତ୍ରୀ, ଗଦାଧର, ଗୟାଧାମ ଓ ଗୟାସୁର । ଗୟା ତୀର୍ଥକୁ ଗଲେ ଏ ଷଡ଼୍‌ଗୟା ଦର୍ଶନ କରିବା ବିଧେୟ । )

**ଷଡ଼୍‌ଗୁଣ**—ସଂ. ବିଣ. (ଷଟ୍ + ଗୁଣ)—୧ । ଛଅ ଥର—1. Six
Shard-guṇa times. ୨ । ଛଅ ଗୁଣିଆ—2 Sixfold.
(ଷଡ୍ଗୁଣ—ଅନ୍ୟରୂପ) ୩ । ଛଅ ସଂଖ୍ୟା ଦ୍ୱାରା ଗୁଣିତ—
(ଷଡ଼ଗୁଣ—ଦେଶଜରୂପ) 3. Multiplied by the
number six. ସଂ. ବି—୧ । ଛଅ ଦ୍ୱାରା ଗୁଣିଲେ ଯେତେ ହୁଏ ତେତେ—1. As much as six times a quantity; which is six times as much as the original thing. ୨ । ଛଅ ଗୋଟି ରାଜଗୁଣ; ଯେଉଁ ଉପାୟ ଛଅଟି ରାଜାଙ୍କ ଦ୍ୱାରା ପାଳିତ ହେବା ଉଚିତ—2. Six expedients which a king should pursue in order to succeed. (ଯଥା—ସନ୍ଧି, ବିଗ୍ରହ, ଯାନ, ଆସନ, ଦ୍ୱୈଧ ଓ ଆଶ୍ରୟ) ୩ । ମନୁଷ୍ୟର ଈପ୍ସିତ ଛଅଟି ଉତ୍ତମ ବା ଉତ୍କୃଷ୍ଟ ଗୁଣ—3. Six good qualities which a man should aspire for. (ଯଥା—ଐଶ୍ୱର୍ଯ୍ୟ, ଜ୍ଞାନ, ଯଶ, ଶ୍ରୀ, ବୈରାଗ୍ୟ ଓ ଧର୍ମ—ବିଶ୍ୱକୋଷ)

**ଷଡ଼୍‌ଗୁଣ ବଳି ଜାରିତ ସିଦ୍ଧ ମକରଧ୍ୱଜ**—ସଂ. ବି (ବୈଦ୍ୟକ)—
Shard-guṇa bali jārita siddha (ଷଡ୍ ଗୁଣ = ଛଅଗୁଣ
makara dhwaja + ବଳି = ଗନ୍ଧକ ଦ୍ୱାରା ଜାରିତ ସିଦ୍ଧ ମକରଧ୍ୱଜ)—ପାରଦର ଛଅଗୁଣ ଗନ୍ଧକ ଦ୍ୱାରା ଜାରିତ ହୋଇ ପ୍ରସ୍ତୁତ ହୋଇଥିବା ମକରଧ୍ୱଜ ନାମକ ରସାୟନ—A very efficacious Ayurvedic preparation made by sublimating mercury with six times its quantity of sulphur pounded together.

**ଷଡ଼୍‌ଗ୍ରନ୍ଥା**—ସଂ. ବି (ବୈଦ୍ୟକ)—୧ । ଶ୍ୱେତବଚ; ବଚ—1. Swet
Shard-granthā flag; Acorus calamus. ୨ । ଶଟୀ; ପାଳୁଅ—2. A sort of Indian arrowroot. ୩ । ଏକ ପ୍ରକାର ଗନ୍ଧମୂଳି—3. A sort of sweet scented root. ୪ । ଡହର କରଞ୍ଜ ମହାକରଞ୍ଜ; ବଡ଼ କରଞ୍ଜ ଗଛ—4. A tree; Pongamia Indica. ୫ । କଟଙ୍ଗୀ; ଗିଲ ବା କରଞ୍ଜୋଳ (କଣ୍ଟକୀ ଗୁଳ୍ମ)—5. A thorny plant; Cisalpina Bonducella.

**ଷଡ଼୍‌ଗ୍ରନ୍ଥି**—ସଂ. ବି—ପିପ୍ପଳୀ ମୂଳ—
Shard-granthi The root of long pepper.

**ଷଡ଼୍‌ଗ୍ରନ୍ଥିକା**—ସଂ. ବି—ଶଟୀ; ପାଳୁଅ—
Sard-granthikā Indian arrowroot.

**ଷଡ଼୍‌ଗ୍ରନ୍ଥୀ**—ସଂ. ବି—ବଚ—
Sard-granthi Sweet flag.

**ଷଡ଼୍‌ଗ୍ରହ**—ସଂ. ବି—ଛଅ ଗ୍ରହ—
Sard-graha Six planets.
(ଷଡ଼ଗ୍ରହ—ଦେଶଜରୂପ)

**ଷଡ଼୍‌ଗ୍ରହକୂଟ**—ସଂ.ବି (ଜ୍ୟୋତିଷ)—ଛଅଟି ଗ୍ରହଙ୍କର ଏକ ରାଶିରେ ସ୍ଥିତି—
Shard-graha kuṭa The conjuction of six planets in one sign. [ ଦ୍ର—ଏହା ହେଲେ ରାଜ୍ୟ ପ୍ରତି ଅତି ଅଶୁଭ,
ଷଡ଼ଗ୍ରହ—ଦେଶଜ ରୂପ ରାଷ୍ଟ୍ରଭଙ୍ଗ, ନୃପ ନାଶ ଓ ମୃତ୍ୟୁ ଆଦି ଘଟେ । ]

**ଷଡ଼୍‌ଜ(ଗ)**—ସଂ. ବି ( ଷଟ୍ = ଛଅ + ଜନ୍ ଧାତୁ = ଜାତ ହେବା +
Shard-ja(ga) କର୍ତ୍ତୃ. ଅ; ଷଟ୍ + ଗମ୍ ଧାତୁ + କର୍ତ୍ତୃ. ଅ;
[ଷଡ଼ଜ—ଦେଶଜରୂପ] ଏହା ଛଅ ସ୍ଥାନରୁ ଉତ୍ପନ୍ନ ହୁଏ ବୋଲି ଏହି ନାମ; ଯଥା—କଣ୍ଠ, ତାଳୁ, ଜିହ୍ୱା, ଦନ୍ତ, ନାସା, ଓ ଉରଃ )—୧ । ମୟୂରର କେକା; ମୟୂରର କଣ୍ଠ ଧ୍ୱନି—1.The sound or crowing of the peacock ୨ । ତନ୍ତ୍ରୀ ଓ କଣ୍ଠାଦିରୁ ଉତ୍ଥିତ ପ୍ରଥମ ସ୍ୱର; ହିନ୍ଦୁ ସଙ୍ଗୀତର ସ୍ୱରଗ୍ରାମର ଆଦ୍ୟ ସ୍ୱର (ଏହା ମୟୂର କଣ୍ଠ-ନିଃସୃତ ସ୍ୱର ତୁଲ୍ୟ, ଏହାର ସଙ୍କେତ 'ସା' ]—2 The 1st tone of the Hindu gamut. [ ଦ୍ର—ଏହା ସଙ୍ଗୀତର ମୂଳସ୍ୱର ( keynote ) ଅଟେ । ଏଥିରୁ ଅନ୍ୟ ଛଅଟି ସ୍ୱର ( ବା ସୁର, ଯଥା—ଋଷଭ = ରି, ଗାନ୍ଧାର = ଗା, ମଧ୍ୟମ = ମା, ପଞ୍ଚମ = ପା, ଧୈବତ = ଧା ଓ ନିଷାଦ = ନି ) ଉତ୍ପନ୍ନ ହୁଏ । 'ଷଡ଼ଜ' ସ୍ୱରକୁ ଛନ୍ଦରେ 'ଖଡ଼ଜ' 'ଖରଜ' ବୋଲାଯାଏ । ]

**ଷଡ଼୍‌ଜୟନ୍ତୀ**—ସଂ. ବି—ବର୍ଷ ମଧ୍ୟରେ ଛଅଟି ନିର୍ଦ୍ଦିଷ୍ଟ ଉପବାସ ବ୍ରତ—
Shard-jayanti Six particular fasts observed during the year. [ ଦ୍ର—
(ଷଡ଼ଜୟନ୍ତୀ—ଦେଶଜରୂପ) ଶିବରାତ୍ରି, ଜନ୍ମାଷ୍ଟମୀ, ବାମନଜନ୍ମ, ନୃସିଂହଜନ୍ମ, ରାମ ନବମୀ ଓ ମହାଷ୍ଟମୀକୁ ଷଡ଼୍‌ଜୟନ୍ତୀ ବୋଲାଯାଏ । ଯେଉଁମାନେ ୨୪ ଏକାଦଶୀ କରନ୍ତି ସେମାନେ ଷଡ଼୍‌ଜୟନ୍ତୀ ବ୍ରତ କଲେ ବର୍ଷକେ ଏକ ମାସ ଉପବାସ ପୂର୍ଣ୍ଣ ହୁଏ । ବାକ୍ୟ ଅଛି; ଯଥା—
ମାସୋପବାସୀ ଭବୁଣାଗ୍ନିହୋତ୍ରୀ

ବେଦାନ୍ତ ଗୋଚନ୍ତ୍ ସହସ୍ରଦର୍ଶୀ
ମିଷ୍ଟାନ୍ନଦାତା ଚ ପତିବ୍ରତା ଚ
ଷଡ଼୍‌ଜୀବ ଲୋକେ ମମ ବନ୍ଦନୀୟାଃ ।
ଭଗବାନଙ୍କ ପ୍ରତି ନାରଦଙ୍କ ଉକ୍ତି । ]

**ଷଡ଼୍‌ଦର୍ଶନ**—ସଂ. ବି—ହିନ୍ଦୁମାନଙ୍କର ଛଅ ସଂଖ୍ୟକ ଦର୍ଶନ ଶାସ୍ତ୍ର—
Sarḍ-darśana The six philosophical systems
(ଷଡ଼୍‌ଦର୍ଶନ—ଅନ୍ୟରୂପ) of the Hindus; the six
(ଷଡ୍ଡଦର୍ଶନ—ଦେଶଜରୂପ) schools of Hindu poiloso-
phy. [ ଦ୍ର—ଏହି ଛଅଟି ଦର୍ଶନ ଶାସ୍ତ୍ରକୁ ଛଅଜଣ
ଋଷି ପ୍ରବର୍ତ୍ତନ କରିଅଛନ୍ତି; ଯଥା—
ପୂର୍ବ ମୀମାଂସା—ଜୈମିନି ଋଷି,
ଉତ୍ତରମୀମାଂସା ବା ବେଦାନ୍ତ—ବ୍ୟାସ ଦେବ
ନ୍ୟାୟ ବା ତର୍କଶାସ୍ତ୍ର—(Logic) ଗୌତମ ମୁନି
ସାଂଖ୍ୟ—କପିଳ ମୁନି
ପାତଞ୍ଜଳ ବା ଯୋଗ—ପତଞ୍ଜଳି ଋଷି
ବୈଶେଷିକ—କଣାଦ ମୁନି । ]

**ଷଡ଼୍‌ଦର୍ଶୀ**—ସଂ. ବିଣ—ଷଡ଼ଦର୍ଶୀ ( ଦେଖ )—
Sharḍ-darśi Sharḍadraśi (See)
( ଷଡ୍ଦର୍ଶୀ—ଅନ୍ୟରୂପ )

**ଷଡ଼୍‌ଦିନ**—ସଂ. ବି ( ଦ୍ୱିଗୁ )—ଛଅ ଦିନ—
Sharḍ-dina Six days.

**ଷଡ଼୍‌ଦୁର୍ଗ**—ସଂ. ବି—ହିନ୍ଦୁଶାସ୍ତ୍ରରେ ବର୍ଣ୍ଣିତ ଛଅ ପ୍ରକାର ଦୁର୍ଗ ବା କୋଟ
Sharḍ-durga —Six classes or kinds of forti-
fications described in the Hindu books.
[ ଦ୍ର—ମନୁସଂହିତା ୭ମ ଅଧ୍ୟାୟ ୭୦ ଶ୍ଳୋକରେ ଛଅଟି
ଦୁର୍ଗର ଉଲ୍ଲେଖ ଅଛି—୧ । ଧନ୍ୱଦୁର୍ଗ ( ନିର୍ଜଳ ମରୁ-
ବେଷ୍ଟିତ ଦୁର୍ଗ ), ୨ । ମହୀଦୁର୍ଗ ବା ମୃଦ୍ଦୁର୍ଗ ( ମାଟି,
ପାଷାଣ ଓ ଇଷ୍ଟକାଦି ନିର୍ମିତ ଦୁର୍ଗ ), ୩ । ଅବ୍‌ଦୁର୍ଗ ବା
ଜଳଦୁର୍ଗ ( ଜଳକୁଲ୍ୟାଦି ପରିବେଷ୍ଟିତ ଦୁର୍ଗ ), ୪ । ବାର୍କ୍ଷ୍ୟ
ଦୁର୍ଗ ବା ବନ ଦୁର୍ଗ ( ମହାବୃକ୍ଷ, କଣ୍ଟକ, ଗୁଳ୍ମ ଲତାଦି
ବ୍ୟାପ୍ତ ଦୁର୍ଗ ), ୫ । ନୃଦୁର୍ଗ ବା ମନୁଷ୍ୟ ଦୁର୍ଗ ( ଗୃହ-
ଅଟ୍ଟାଳି ହସ୍ତ୍ୟଶ୍ୱ ରଥ ସୈନ୍ୟାଦି ପରିବୃତ ଦୁର୍ଗ ), ୬ । ଗିରି
ଦୁର୍ଗ ( ପର୍ବତରେ ଅବସ୍ଥିତ ଦୁର୍ଗମ ଓ ଦୁରାକ୍ରମଣୀୟ
ଦୁର୍ଗ ) । ଏହି ସବୁ ଦୁର୍ଗରେ ରାଜା ବାସ କରିବେ ।
ମହାଭାରତ ଶାନ୍ତି ପର୍ବରେ ରାଜଧର୍ମ ପର୍ବାଧ୍ୟାୟରେ
ମଧ୍ୟ ଏହି ଛଅଟି ଦୁର୍ଗର ଉଲ୍ଲେଖ ଅଛି ।

**ଷଡ଼୍‌ଧା**—ସଂ. ବି ( ଷଟ୍ + ପ୍ରକାରାର୍ଥେ ଧା )—ଛଅ ପ୍ରକାର—Six
Sharḍ-dhā kinds or six sorts. ସଂ. ବିଣ—ଛଅ
ପ୍ରକାରର—Of six sorts.
( ଷଡ଼ଧା—ଦେଶଜରୂପ ) ସଂ. କ୍ରି. ବିଣ—୧ । ଛଅ ପ୍ରକାରେ—
1. In six kinds; in six ways. ୨ । ଛଅ
ଭାଗରେ—2. Into six parts.

**ଷଡ଼୍‌ବକ୍ତ୍ର**—ସଂ. ବି (କର୍ମଧା )—୧ । ଛଅଟି ମୁଣ୍ଡ—1. Six faces
Sharḍ-baktra or heads. ୨ । (ବହୁବ୍ରୀହି ) ଷଡ଼ାନନ;
କାର୍ତ୍ତିକେୟ— 2. The eldest son of Śiba. ସଂ.
ବିଣ. ପୁଂ—ଛଅଟି ମୁଣ୍ଡଯୁକ୍ତ—Having 6 heads or
faces.

**ଷଡ଼୍‌ବର୍ଗ**—ସଂ. ବି ( ଷଟ୍ + ବର୍ଗ )—୧ । ଷଡରିପୁ ( ଦେଖ )—
Sharḍ-barga 1. Sharḍ-ripu (See) ୨ । ଧର୍ମ, ଅର୍ଥ,
କାମ, ମୋକ୍ଷ, ଲୋକାଚାର ଓ ତତ୍ତ୍ୱଜ୍ଞାନରୂପ ମନୁଷ୍ୟର
ଛଅଟି ଉଦ୍ଦେଶ୍ୟ—2. The six aims of a man
in this world. ୩ । ଜ୍ୟୋତିଷୋକ୍ତ ରାଶିର ଛଅ
ପ୍ରକାର ଭାଗ—3. Six different parts of the
Zodiacal signs according to astrology.
[ଯଥା—୧। କ୍ଷେତ୍ର (ମେଷ ଓ ବୃଶ୍ଚିକ ମଙ୍ଗଳର କ୍ଷେତ୍ର, ବୃଷ
ଓ ତୁଳା ଶୁକ୍ରର କ୍ଷେତ୍ର, ମିଥୁନ ଓ କନ୍ୟା ବୁଧର କ୍ଷେତ୍ର,
କର୍କଟ ଚନ୍ଦ୍ରର କ୍ଷେତ୍ର, ଧନୁ ଓ ମୀନ ବୃହସ୍ପତିର କ୍ଷେତ୍ର ଓ
ମକର ଓ କୁମ୍ଭ ଶନିର ଓ ସିଂହ ରବିର କ୍ଷେତ୍ର ଅଟେ); ୨ ।
ହୋରା (ରାଶିର ଅର୍ଦ୍ଧାଂଶ); ୩ । ଦ୍ରେକ୍କାଣ (ରାଶିର ଏକ
ତୃତୀୟାଂଶ); ୪ । ନବାଂଶ ( ରାଶିର ଏକ ନବମାଂଶ );
୫ । ଦ୍ୱାଦଶାଂଶ ( ରାଶିର ଏକ ଦ୍ୱାଦଶାଂଶ ), ୬ ।
ତ୍ରିଂଶାଂଶ (ରାଶିର ଏକତ୍ରିଂଶାଂଶ) ଷଡ଼୍‌ବର୍ଗ ଅଟେ ।

୧ । କ୍ଷେତ୍ର :—ମେଷ ଓ ବୃଶ୍ଚିକ ମଙ୍ଗଳର, ବୃଷ
ଓ ତୁଳା ଶୁକ୍ରର, ମିଥୁନ ଓ କନ୍ୟା ବୁଧର, କର୍କଟ ଚନ୍ଦ୍ରର,
ସିଂହ ରବିର, ଧନୁ ଓ ମୀନ ବୃହସ୍ପତିର ଏବଂ ମକର ଓ କୁମ୍ଭ
ଶନିର କ୍ଷେତ୍ର ବା ଗୃହ ଅଟେ । ଯେଉଁ ଲଗ୍ନରେ ଜାତକ
ଜନ୍ମ ହୋଇଥାଏ ତାହାର ଅଧିପତି ଗ୍ରହର କ୍ଷେତ୍ରରେ ତାହାର
ଜନ୍ମ ହୋଇଅଛି ବୋଲି ସ୍ଥିର ହେବ; ଯଥା, କାହାର ମେଷ
ଲଗ୍ନରେ ଜନ୍ମ ହେଲେ ତାହାର ମଙ୍ଗଳର କ୍ଷେତ୍ରରେ ଜନ୍ମ
ହୋଇଛି ବୋଲି ଧରାଯିବ ।

୨ । ହୋରା—ରାଶିର ଅର୍ଦ୍ଧାଂଶ ବା ୧୫ ଅଂଶ;
ବିଷମ ରାଶିର ଆଦ୍ୟ ହୋରାର ଅଧିପତି ରବି ଓ ଶେଷ
ହୋରାର ଅଧିପତି ଚନ୍ଦ୍ର ଅଟନ୍ତି । ସମ ରାଶିର
ଆଦ୍ୟ ହୋରାଧିପତି ଚନ୍ଦ୍ର ଓ ଶେଷ ହୋରାଧିପତି ରବି
ଅଟନ୍ତି ।

୩ । ଦ୍ରେକ୍କାଣ—ରାଶିର ଏକ ତୃତୀୟାଂଶ ବା ୧୦
ଅଂଶ । ପ୍ରଥମ ଦଶାଂଶର ଅଧିପତି ସେହି ରାଶିର
ଅଧିପତି; ଦ୍ୱିତୀୟ ଦଶାଂଶର ଅଧିପତି ସେହି ରାଶିର
ପଞ୍ଚମ ରାଶିର ଅଧିପତି, ତୃତୀୟ ଦଶାଂଶର ଅଧିପତି ସେହି
ରାଶିର ନବମ ରାଶିର ଅଧିପତି ଅଟନ୍ତି ।

୪। ନବାଂଶ—ରାଶିର ଏକନବମାଂଶ ବା ୩ଅଂଶ ୨୦);
ଚରରାଶିମାନଙ୍କର ସେହିମାନଙ୍କଠାରୁ, ସ୍ଥିରରାଶିମାନଙ୍କର
ନବମରୁ ଓ ଦ୍ୱାତ୍ମିକ ରାଶିମାନଙ୍କର ପଞ୍ଚମରୁ ନବାଂଶାଧିପତି
ଗଣିବାକୁ ହୁଏ ।

୫ । ଦ୍ୱାଦଶାଂଶ—ରାଶିର ଦ୍ୱାଦଶ ଭାଗରୁ ଏକ ଭାଗ ବା ୨ ଅଂଶ ୩୦, ରାଶିର ଅଧିପତି ପ୍ରଥମ ଦ୍ୱାଦଶାଂଶର ଅଧିପତି ଅଟନ୍ତି, ଏହି କ୍ରମରେ ଗଣିବାକୁ ହୁଏ ।

୬ । ତ୍ରିଂଶାଂଶ—ରାଶିର ତ୍ରିଂଶ ଭାଗରୁ ଭାଗେ ବା ୧ ଅଂଶ । ବିଷମ ରାଶିର ପ୍ରଥମ ୫ ଅଂଶରେ ମଙ୍ଗଳର, ତା ପରେ ୫ ଅଂଶରେ ଶନିର, ତା ପରେ ୮ ଅଂଶରେ ବୃହସ୍ପତିର, ତା ପରେ ୭ ଅଂଶରେ ବୁଧର ଓ ଶେଷ ୫ ଅଂଶରେ ଶୁକ୍ରର ଅଧିକାର । ସମ ରାଶିରେ ପ୍ରଥମ ୫ ଅଂଶରେ ଶୁକ୍ରର, ତା ପରେ ୭ ଅଂଶରେ ବୁଧର, ତା ପରେ ୮ ଅଂଶରେ ବୃହସ୍ପତିର, ତା ପରେ ୫ ଅଂଶରେ ଶନିର ଓ ଶେଷ ୫ ଅଂଶରେ ମଙ୍ଗଳର ଅଧିକାର ।

ଷଡ଼୍‌ବର୍ଗଫଳ—ଷଡ଼୍‌ବର୍ଗର ଅଧିପତିମାନଙ୍କୁ ନେଇ ବିଚାର ଶୁଭାଶୁଭ ନିର୍ଣ୍ଣୟ କରାଯାଏ । ଶୁଭ ଗ୍ରହର ଷଡ଼୍‌ବର୍ଗରେ ଜନ୍ମ ହେଲେ ଜାତକ ସୁନ୍ଦର, ଖ୍ୟାତିମାନ୍ ଓ ଧନଯୁକ୍ତ ହୁଏ । ଅଶୁଭ ଗ୍ରହର ଷଡ଼୍‌ବର୍ଗରେ ଜନ୍ମ ହେଲେ ଜାତକ କୁତ୍ସିତ ଓ ଅଳ୍ପ ଧନଯୁକ୍ତ ହୁଏ ।

ସ୍ଥିର ରାଶି—ବୃଷ, ସିଂହ, ବୃଶ୍ଚିକ ଓ କୁମ୍ଭ ।

(ଜ୍ୟୋତିଷଶାସ୍ତ୍ରବିଦ ଶ୍ରୀ ନୀଳକଣ୍ଠ ମହାପାତ୍ରଙ୍କ ଲିଖିତ)

**ଷଡ଼୍‌ବାହୁ**—ସଂ ବି (କର୍ମଧା)—୧ । ଛଅଟି ହାତ—1. Six hands or arms. Shard-bāhu ୨ । (କ୍ଷେତ୍ର) ଛଅଟି ପାର୍ଶ୍ୱ ବା ସୀମା ରେଖା—(ଷଡ଼ ବାହୁ—ଦେଶଜ ରୂପ) 2. Six sides of a geometrical figure. ୩ । (ବହୁବ୍ରୀହି) ଛଅଟି ବାହୁବେଷ୍ଟିତ କ୍ଷେତ୍ର—3. A hexagon. ସଂ ବିଣ (ବହୁବ୍ରୀହି)—ଛଅବାହୁବିଶିଷ୍ଟ—Having six (ଷଡ଼ଭୁଜା—ବିଣ· ସ୍ତ୍ରୀ) hands or arms. ଦେ. ବି—ଶ୍ରୀଚୈତନ୍ୟଦେବ—Srī Chaitanya. [ ଦ୍ର—ଶ୍ରୀଚୈତନ୍ୟଦେବ ପୁରୀରେ ରାଜା ପ୍ରତାପରୁଦ୍ର ଦେବଙ୍କୁ ନିଜର ଷଡ଼୍‌ଭୁଜ ମୂର୍ତ୍ତି ଦେଖାଇଥିଲେ । ଏହି ଷଡ଼ଭୁଜ ମଧ୍ୟରୁ ୪ ଭୁଜରେ ବିଷ୍ଣୁଙ୍କ ପରି ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଓ ଅନ୍ୟ ଦୁଇ ଭୁଜରେ ଦଣ୍ଡ ଓ କମଣ୍ଡଳୁ ଧରିଥିଲେ । କଥିତ ଅଛି ଯେ, ଏହି ଷଡ଼୍‌ଭୁଜ ରୂପ ଧାରଣ କରି ଶ୍ରୀଚୈତନ୍ୟ ଜଗନ୍ନାଥଙ୍କ ବିଗ୍ରହରେ ଲୀନ ହେଲେ ।]

**ଷଡ଼୍‌ବିଂଶ**—ସଂ ବିଣ—ଛବିଶ ସଂଖ୍ୟାର ପୂରକ—Shard-bimsa Twentysixth. (ଷଡ଼୍‌ବିଂଶତିତ, ଷଡ଼୍‌ବିଂଶତିତମ—ଅନ୍ୟରୂପ)

**ଷଡ଼୍‌ବିଂଶତି**—ସଂ ବି· ଓ ବିଣ (ମଧ୍ୟପଦଲୋପୀ କର୍ମଧାରୟ ସଂଖ୍ୟାବାଚକ)—ଛବିଶ—Shard-bimsati Twentysix.

**ଷଡ଼୍‌ବିଧ**—ସଂ ବିଣ (ଷଟ୍‌+ବିଧା=ପ୍ରକାର; ବହୁବ୍ରୀହି)-ଛଅ ପ୍ରକାରର Shard-bidha Of six kinds or sorts. (ଷଡ଼୍‌ବିଧା—ସ୍ତ୍ରୀ) (ଯଥା—ରସ ଷଡ଼୍‌ବିଧ ଓ ଗନ୍ଧ ଦ୍ୱିବିଧ ଅଟେ ।) (ଷଡ଼୍‌ବିଧ—ଦେଶଜରୂପ)

**ଷଡ଼୍‌ବିନ୍ଦୁ**—ସଂ ବି—(ଷଟ୍‌+ବିନ୍ଦୁ)—୧ । ଛଅଟି ବିନ୍ଦୁ—Shard-bindu 1. Six points. ୨ । ଛଅ ଟୋପା—[ଷଡ଼୍‌ବିନ୍ଦୁ—ଅନ୍ୟରୂପ] 2. Six drops. ୩ । ବିଷ୍ଣୁ—[ଷଡ଼ ବିନ୍ଦୁ—ଦେଶଜରୂପ] 3. A name of Bishnu. ୪ । କୀଟ ବିଶେଷ (ବିଶ୍ୱକୋଷ)—4. A kind of insect.

**ଷଡ଼୍‌ବିନ୍ଦୁ ତୈଳ**—ସଂ. ବି (ବୈଦ୍ୟକ)—୧ । ଶିରୋରୋଗରେ Shard-bindu taila ହିତକର କବିରାଜି ତୈଳବିଶେଷ—(ଷଡବିନ୍ଦୁ ତୈଳ—ଦେଶଜ ରୂପ) 1. Name of medicated oil. [ଦ୍ର—ଏହି ତୈଳକୁ ଲଲାଟ, ଶଙ୍ଖ ଓ ବ୍ରହ୍ମରନ୍ଧ୍ରରେ ମାଲିସ୍ ଓ ନାସିକାଦ୍ୱାରା ନସ୍ୟ ଗ୍ରହଣ କଲେ ଯାବତୀୟ ଶିରୋରୋଗ ପ୍ରଶମିତ ହୁଏ; କେଶ, ଦନ୍ତ ଦୃଢ଼ ହୁଏ, ଦୃଷ୍ଟିଶକ୍ତି ବଢ଼େ ।]

**ଷଡ଼୍‌ଭାଗ**—ସଂ ବି (ଷଟ୍‌+ଭାଗ)—୧ । ଛଅ ଭାଗ –1. Six parts. Shard-bhāga ୨ । ଛଅ ଭାଗରୁ ଏକ ଭାଗ—(ଷଡ଼ଭାଗ—ଦେଶଜରୂପ) 2. One sixth.

**ଷଡ଼୍‌ଭୁଜ**—ସଂ. ବି. —୧ । ଷଡ଼ବାହୁ (ଦେଖ)—Shard-bhuja -1. Shard-bāhu (See) ୨ । ଜ୍ୱରର (ଷଡ଼ଭୁଜ—ଅନ୍ୟରୂପ) କଳ୍ପିତ ମୂର୍ତ୍ତି (ବିଶ୍ୱକୋଷ)—2. Fever personified. (ଦ୍ର—ହରିବଂଶରେ ଜ୍ୱରର ୩ଟି ପଦ ଓ ମସ୍ତକ ଓ ଛଅ ହାତ ଥିବା ବର୍ଣ୍ଣିତ । ଏ ଭସ୍ମାସ୍ତ୍ରଧାରୀ ପ୍ରଚଣ୍ଡ ଓ କାଳାନ୍ତକ ଯମ ସଦୃଶ—(ବିଶ୍ୱକୋଷ) ।

ସ· ବିଣ. ପୁଂ—ଷଡ଼୍‌ବାହୁ (ଦେଖ)—Shard-bāhu (See)

**ଷଡ଼୍‌ଭୁଜା**—ସଂ. ବିଣ· ସ୍ତ୍ରୀ—ଷଡ଼୍‌ଭୁଜର ସ୍ତ୍ରୀଲିଙ୍ଗ—Feminine of Shard-bhujā Shard-bhujā ସଂ· ବି—୧ । ଚଣ୍ଡିକା (ଷଡଭୁଜା—ଦେଶଜରୂପ) ଦେବୀ—1. Goddess Chandī. (ଦ୍ର—ବୃହନ୍ନନ୍ଦିକେଶ୍ୱର ପୁରାଣରେ ଦୁର୍ଗାପୂଜାପଦ୍ଧତିରେ ଚଣ୍ଡିକା, ରୁଦ୍ରଚଣ୍ଡୀ ଓ ଚଣ୍ଡବତୀ, ଦୁର୍ଗାଙ୍କର ଏହି ମୂର୍ତ୍ତିତ୍ରୟ ଷଡ଼୍‌ଭୁଜା ଥିବା ନିର୍ଦ୍ଦିଷ୍ଟ ହୋଇଅଛି । ବିଶ୍ୱକୋଷ ।]

ସ· ମଧୁଫଳା, ଷଡ଼ରେଖା, ବୃତ୍ତକର୍କଟୀ, ଭିକ୍ତା, ଭିକ୍ତଫଳା, ମଧୁପାକା, ବୃତ୍ତେର୍ବାରୁ, ଖଣ୍ଡଖା । ୨ । (ବୈଦ୍ୟକ) ଖରଭୁଜ ବା ତରଭୁଜ; ଫଳଲତା ବିଶେଷ—2. Cucumis Melo; water melon. [ଦ୍ର—ଏହା କୃଷିଜାତ ଲତାଫଳ । ଏହି ଫଳ ଅପକ୍ୱାବସ୍ଥାରେ ତିକ୍ତ, କିନ୍ତୁ ପକ୍ୱ ହେଲେ ମଧୁରରସ, ଅମ୍ଳ-ବିପାକ, ତର୍ପିକର, ପୁଷ୍ଟିବର୍ଦ୍ଧକ, ଶୁକ୍ରଜନକ, ବଳକର, ମୂତ୍ରଶୋଧକ, କଫବର୍ଦ୍ଧକ, ପିତ୍ତନାଶକ, ଦାହ ତୃଷା ଓ ଶ୍ରାନ୍ତିନିବାରକ ଏବଂ ଉନ୍ମାଦରୋଗରେ ଉପକାରକ । ଏ ଫଳ ଖରସ୍ୱଦନେ ପାଚେ । ଏହାର ପତ୍ର ୬ଟି ଅଙ୍ଗୁଠି ପରି ୬ ଶାଖାବିଶିଷ୍ଟ ଥିବାରୁ ଏହି ନାମ ।]

ଷଡ଼୍(ଡ଼)ଯନ୍ତ୍ର—ଦେ. ବି—ଚକ୍ରାନ୍ତ—
Shard(rda)jantra Conspiracy.
ষড়যন্ত্র [ଦ୍ର—ଉଚ୍ଚାଟନ ମାରଣ, ବଶୀକରଣ ପ୍ରଭୃତି ୬ ଗୋଟି
षडयन्त्र ଅଭିଚାରିକ କର୍ମ ସାଧନରୁ ସମ୍ଭବତଃ ଏହି ଷଡ଼୍ଯନ୍ତ୍ର ଶବ୍ଦର ଉତ୍ପତ୍ତି ହୋଇଅଛି ।]

ଷଡ଼୍ରସ—ସଂ. ବି (ଷଟ୍+ରସ; ଦ୍ୱିଗୁ)—ଜିହ୍ୱାଦ୍ୱାରା ଆସ୍ୱାଦନୀୟ ୬ଟି
Shard-rasa ରସ ବା ସ୍ୱାଦ; ଛଅରସ—The six kinds of
(ଷଡ଼୍ରସ—ଅନ୍ୟରୂପ) tastes of things. [ଦ୍ର—ଯଥା—
(ଷଡରସ—ଦେଶଜରୂପ) ଲବଣ ବା ଲୁଣିଆ, ଅମ୍ଳ ବା ଆମ୍ବିଳା, କଟୁ ବା ରାଗ, ମଧୁର ବା ମିଠା, ତିକ୍ତ ବା ପିତା, କଷାୟ ବା କଷା ।]
ସଂ. ବିଣ—ଷଡ଼୍ରସଯୁକ୍ତ (ଖାଦ୍ୟ)—
(food) Consisting of all the six different tastes. (ଯଥା—ଷଡ଼୍ରସ ବ୍ୟଞ୍ଜନ)

ଷଡ଼୍ରିପୁ—ସଂ. ବି (ଷଟ୍+ରିପୁ)—ମନୁଷ୍ୟର ମନ ମଧ୍ୟରେ ଥିବା କାମ
Shard-ripu କ୍ରୋଧାଦି ୬ଟି ଅନ୍ତଃଶତ୍ରୁ—The 6 passions
(ଷଡ଼୍ରିପୁ—ଅନ୍ୟରୂପ) (enemies) which reside in
(ଷଡ଼ରିପୁ—ଦେଶଜରୂପ) man.
[ଦ୍ର—ଯଥା—କାମ—Cupid. କ୍ରୋଧ—Anger. ଲୋଭ—Avarice. ମୋହ—Delusion. ମଦ—Pride. ମାତ୍ସର୍ଯ୍ୟ—Envy.

ଷଡ଼୍ରାତ୍ର—ସଂ. ବି (ସମାହାର ଦ୍ୱିଗୁ; ଷଟ୍+ରାତ୍ରି) ୧ । ୬ଟି ରାତି
Shard-rātra 1. Six nights. ୨ । ଛଅ ଦିବାରାତ୍ର
(ଷଡ଼୍ରାତ୍ର—ଅନ୍ୟରୂପ) (ବିଶ୍ୱକୋଷ)—2. Six consecutive
(ଷଡ଼୍ରାତ୍ର—ଦେଶଜରୂପ) nights & days. [ଦ୍ର—ପରିବାରର କୌଣସି ସ୍ତ୍ରୀର ଗର୍ଭସ୍ରାବ ହେଲେ ବ୍ରାହ୍ମଣ ଅହୋରାତ୍ର, କ୍ଷତ୍ରିୟ ତିନି ଦିନ୍ୟ, ବୈଶ୍ୟ ଷଡ଼୍ରାତ୍ର ଓ ଶୂଦ୍ର ଦ୍ୱାଦଶାହ ପରେ ଶୁଦ୍ଧି ଲାଭ କରିବା ସ୍ମୃତିରେ ବିଧାନ ଅଛି ।]

ଷଡ଼୍ରେଖା—ସଂ. ବି (ସମାହାର ଦ୍ୱିଗୁ)—୧ । ଛଅ ରେଖାର
Shard-rekhā ସମବାୟ—1. Six lines ୨ ।(ବହୁବ୍ରୀହି)
(ଷଡ୍ରେଖା—ଅନ୍ୟରୂପ) ଷଡଭୁଜା ବା ତରଭୁଜ ଫଳ ଓ ଲତା—
(ଷଡରେଖା—ଦେଶଜରୂପ) 2. Water melon.

ଷଡ଼୍ଲବଣ—ସଂ. ବି (ବୈଦ୍ୟକ)—ବୈଦ୍ୟଶାସ୍ତ୍ରୋକ୍ତ ୬ ପ୍ରକାରର
Shard labana ଲୁଣ—Six kinds of salts
(ଷଡଲବଣ—ଦେଶଜରୂପ) mentioned in the Hindu books on medicine. [ଯଥା—ସୈନ୍ଧବ ଲବଣ—Rock salt; Sodi chloridum, ସାମୁଦ୍ର (କରକଚ ବା ଗଡ଼ା)—Sea salt common salt, ବିଟ—Foetid salt. ସୌବର୍ଚ୍ଚଳ (ସଚଳ ଲବଣ)—Unaqua; Sodium chloride. ମୁଣ୍ଡ ବା ଔଷର; ସାଜିମାଟି—Carbonate of soda, କାଚ—Black salt. ବୈଦ୍ୟଶାସ୍ତ୍ରୋକ୍ତ ପଞ୍ଚ ଲବଣ ସଙ୍ଗେ 'ମୁଣ୍ଡ' ବା ମୁଣ୍ଡିକା କାଚ ଲବଣ ମିଶି ଷଡ଼୍ଲବଣ ନାମରେ ବ୍ୟବହୃତ ହୁଏ ।]

ଷଡ଼୍ଲୋହ—ସଂ. ବି—ଛଅଟି ଧାତୁ—
Sharda-loha Six metals.

ଷଡ଼—ଦେ. ବିଣ (ସଂ. ଷଷ୍ ବା ଷଟ୍; ସନ୍ଧିଦ୍ୱାରା ଜାତ ଷଡ଼୍)—
Sharda ୧ । ଷଟ୍; ଛଅସଂଖ୍ୟକ—1. Numbering
ছয় षड six. [ଦ୍ର—ଷଡ଼ ଦୁହିତା କଲ ଜାତ ଏ ରୂପେ ବଂଶ ଅପ୍ରମିତ, ଭୂପତି ପ୍ରେମ ପଞ୍ଚାମୃତ] ୨ । ଛଅ ପ୍ରକାରର—2. Of six kinds. [ଦ୍ର—ଷଡ଼୍ ପଦ ପରେ ଯୁକ୍ତ ହୋଇଥିବା ଅଧିକାଂଶ ସଂସ୍କୃତ ଶବ୍ଦ ସନ୍ଧି ନିୟମରେ ଷଡ଼୍ (ଭାଷାରେ 'ଷଡ଼') ହୋଇଯାଇ ଥାଏ ଯଥା—ଷଡ଼ ରିପୁ, ଷଡରସ ଓ ଷଡ଼ଗୁଣ ଇତ୍ୟାଦି ।

ଷଡ଼ ଅରି—ଦେ. ବି (ସଂ. ଷଟ୍+ଅରି) ଷଡ଼୍ରିପୁ—Six pass-
Sharda airi ions. [ଦ୍ର—ଷଡ଼ ଅରିର ନ ଜିଣି,
ছায়অরি षडअरि ସ୍ୱର୍ଗରୁ ବିମୁକ୍ତ ନୁହଇ । ଜଗନ୍ନାଥ-ଭାଗବତ ।]

ଷଡ଼ ଅକ୍ଷର—ଦେ. ବି (ବୈଷ୍ଣବଙ୍କ ବ୍ୟବହୃତ)—ହରେ ରାମକୃଷ୍ଣ—
Sharda akshara The Mantra uttered by
ছয়অক্ষর Baishnabas, consisting of 6 letters.

ଷଡ଼ଂଶ—ସଂ. ବି (ଷଟ୍+ଅଂଶ)—୧ । ଛଅ ଅଂଶ—1. Six
Shardamsa parts; six shares. ୨ । ଛଅ ଭାଗରୁ ଏକ ଭାଗ—2. One sixth.

ଷଡ଼କର୍ଣ୍ଣ(କାନ)—ଦେ. ବିଣ (ସଂ. ଷଟ୍କର୍ଣ୍ଣ)—୧ । ଶ୍ରୋତା ଓ
Shardā karnna(kāna) ବକ୍ତାଙ୍କ ଛଡ଼ା ତୃତୀୟ ବ୍ୟକ୍ତିର
(ଷଟ୍କର୍ଣ୍ଣ—ଅନ୍ୟରୂପ) କାନକୁ ଯିବା (କୌଣସି ଗୁପ୍ତ ବିଷୟ
ছায়কান षड्कान ବା ରହସ୍ୟ)—1. Divulged to the ears of a third person (other than the original speaker and the hearer). ୨ । ସାଧାରଣରେ ପ୍ରକଟୀକୃତ (ଗୁପ୍ତକଥା)—2. Divulged (secret). ଦେ. ବି—କୌଣସି ଗୁପ୍ତ ବିଷୟର ତୃତୀୟ ବା ଅତି ଅଧିକ ବ୍ୟକ୍ତିଙ୍କ ନିକଟରେ ପ୍ରକାଶ ହେବା ଅବସ୍ଥା—The divulgence or leak ing out of a secret. (ଦ୍ର—ଷଡ଼ କାନ ମନ୍ତ୍ରଭେଦ—ପ୍ରବଚନ)-

ଷଡ଼କାନ କରିବା—ଦେ. କ୍ରି. (ସକର୍ମକ)—କୌଣସି ଗୁପ୍ତ ବିଷୟକୁ ଅନ୍ୟ
Shardakāna karibā ବ୍ୟକ୍ତି ନିକଟରେ ବା ବାହାରେ ପ୍ରକାଶ
ষড়কানে করা କରିବା—To divulge a secret (to a
षड्कान करना 3rd person or to the public).

ଷଡ଼କାନ ମନ୍ତ୍ରଭେଦ—ଦେ. ପ୍ରବଚନ (ସଂ. ଷଟ୍କର୍ଣ୍ଣଂ ଭିଦ୍ୟତେ ମନ୍ତ୍ରଃ) ।
Shardakāna mantraveda ଦୁଇଜଣଙ୍କ ମଧ୍ୟରେ ରହିଥିବା
ষড়কানে মন্ত্রভেদ କୌଣସି ଗୁପ୍ତ ବିଷୟ ତୃତୀୟ ବ୍ୟକ୍ତିଠାରେ
षड्कानमें मन्त्रभेद ପ୍ରକାଶିତ ହେଲେ ତାହା ଆଉ ଗୁପ୍ତହୋଇ

ଲକ୍ଷ୍ୟପାରେ ନାହିଁ (ଅର୍ଥାତ୍ ତାହା କ୍ରମଶଃ ସର୍ବସାଧାରଣରେ ପ୍ରକଟ ହୁଏ)—A proverb meaning—A secret becomes public if it is divulged to the ears of a 3rd person.

ଷଡ଼କାନ ହେବା—ଦେ. କ୍ରି.—(ଅକର୍ମକ) (ଗୁପ୍ତରହସ୍ୟ) ସାଧାରଣରେ Shardakāna hebā ପ୍ରକାଶିତ ବା ସ୍ପଷ୍ଟ ହେବା—(a षड़कान होना secret) To be divulged or made public.

ଷଡ଼କ୍ଷର—ସ. ବି. (ଷଟ୍+ଅକ୍ଷର)—୬ଟି ଅକ୍ଷର—Six letters. Shardakshara ସ. ବିଣ—୬ଟି ଅକ୍ଷର ବିଶିଷ୍ଟ—(ଷଡ଼କ୍ଷରା—ସ୍ତ୍ରୀ) Consisting of 6 letters.

ଷଡ଼କ୍ଷର ମନ୍ତ୍ର—ଦେ. ବି—୬ଟି ଅକ୍ଷର ବିଶିଷ୍ଟ ମନ୍ତ୍ର—An incanta Shardakshara mantra tion or formula of six letters. [ ଦ୍ର—ଷଡ଼କ୍ଷର ମନ୍ତ୍ର ଜପ, କରଥିଲେ ତ ଅନନ୍ତ । କବିସୂର୍ଯ୍ୟ—ହରିହର ଚଉତିଶା ।] [ଦ୍ର—ଷଡ଼କ୍ଷର ମନ୍ତ୍ର—୧ । ବିଷ୍ଣୁଙ୍କର—ହରେ ରାମକୃଷ୍ଣ; ୨ । ଶିବଙ୍କର—ଓଁ ନମଃ ଶିବାୟ । ୩ । ଗଣେଶଙ୍କର—ନମୋ ଗଣେଶାୟଃ । ୪ । ଷଡ଼କ୍ଷର ତାରକ ବ୍ରହ୍ମ—ଓଁ ଶ୍ରୀ ରାମ ରାମ ବା ରାଂରାମାୟ ନମଃ ।]

ଷଡ଼କ୍ଷୀଣ—ସ. ବି. (ଷଟ୍=ଛଅ+ଅକ୍ଷି+ଅ+ଈନ; ୬ଟି ଚକ୍ଷୁଯୁକ୍ତ) Shardakshīna ମତ୍ସ୍ୟ; ମାଛ—Fish,

ଷଡ଼ଙ୍ଗ—ସ. ବି—(ଦ୍ୱନ୍ଦ୍ୱ)—୧ । (ଶରୀରର) ଛଅଟି ଅଙ୍ଗ—1. Six Shardanga limbs. [ ଦ୍ର—ଯଥା; ହସ୍ତଦ୍ୱୟ, ପଦଦ୍ୱୟ, ମସ୍ତକ ଓ କଟି ।] ୨ । (ବେଦର) ୬ଟି ଅଙ୍ଗ; ବେଦାଙ୍ଗ; ବେଦର ଅଙ୍ଗୀଭୂତ ଛଅଟି ଶାସ୍ତ୍ର—2. Six branches of the Bedas. [ଦ୍ର—ଯଥା—ଶିକ୍ଷା ବା ଶବ୍ଦାର୍ଥ ବିଦ୍ୟା—Treatise on instruction or learning the meaning of words; lexicon. କଳ୍ପ ବା କର୍ମକାଣ୍ଡ—Treatise on the ceremonial or sacred rites of the Bedas. ବ୍ୟାକରଣ—Grammar. (ସୂତ୍ରମୂଳକ ପ୍ରଣୀତ) । ନିରୁକ୍ତ—A treatise on obsolete and obscure words occuring in the Bedas, by Yaska. ଛନ୍ଦଃ—Metre; poetry; prosody. ଜ୍ୟୋତିଷ Astronomy and astrology]. ୩ । ଗବ୍ୟ ବା ଗୋରୁଙ୍କ ଠାରୁ ପ୍ରାପ୍ତ ୬ ପ୍ରକାର ପବିତ୍ର ବସ୍ତୁ—3 Six sacred things obtained from the cow. [ଯଥା—ଗୋମୂତ୍ର—Urine of the cow. ଗୋମୟ—Cow-dung. କ୍ଷୀର—Milk. ଘୃତ ବା ସର୍ପିଃ—Ghee. ଦଧି—Curds. ରୋଚନା ବା ଗୋରୋଚନା—A yellow pigment obtained from the body of cows.] ୪ । ତାନ୍ତ୍ରିକ ଦେବପୂଜାରେ ମନ୍ତ୍ରଜପ ପୂର୍ବରୁ ଅଙ୍ଗନ୍ୟାସ କରିବା ହୃଦୟାଦି ୬ଟି ଅବୟବ—4. The 6 parts of the body which are touched while performing the worship of Deities according to the Tantras. [ଦ୍ର—ଷଡ଼ଙ୍ଗଯଥା—ହୃଦୟ, ଶିରଃ, ଶିଖା, କବଚ, ନେତ୍ରତ୍ରୟ ଓ କରତଳ-କରପୃଷ୍ଠ । ସାଧକମାନେ ମନ୍ତ୍ରର ନିର୍ଦ୍ଦିଷ୍ଟ ଅଂଶମାନ ପାଠକରି ଯଥାକ୍ରମେ ହୃଦୟାୟ ନମଃ, ଶିରସେ ସ୍ୱାହା, ଶିଖାୟୈ ବଷଟ୍, କବଚାୟ ହୁଂ, ନେତ୍ରତ୍ରୟାୟ ବଷଟ୍ ଉଚ୍ଚାରଣ ପୂର୍ବକ ମନ୍ତ୍ରସାଧକ ନିଜର ତତ୍ତତ୍ ଅଙ୍ଗକୁ (କେବଳ କବଚାୟହୁଂ ବୋଲିଲା ବେଳେ ନିଜର ଦୁଇ କାନ୍ଧକୁ ବା ବାହୁମୂଳକୁ) ସ୍ପର୍ଶ କରି ଶେଷରେ ଯୁଗପତ୍ କରତଳ ଓ କରପୃଷ୍ଠକୁ ପରସ୍ପର ସ୍ପର୍ଶ କରି କରତଳ କରପୃଷ୍ଠାଭ୍ୟାଂ ଅସ୍ତ୍ରାୟଫଟ୍ ବୋଲି ଗୋଟିଏ ତାଳି ମାରନ୍ତି । ଏହାକୁ ଅଙ୍ଗନ୍ୟାସ ବା ଷଡଙ୍ଗନ୍ୟାସ ବୋଲାଯାଏ । ଏଥିପୂର୍ବରୁ ନିଜର ଦୁଇହାତର ପାଞ୍ଚ ଆଙ୍ଗୁଠିକୁ ସ୍ପର୍ଶ କରି ଯଥାକ୍ରମେ ଅଙ୍ଗୁଷ୍ଠାଭ୍ୟାଂ ନମଃ, ତର୍ଜ୍ଜନୀଭ୍ୟାଂ ସ୍ୱାହା, ମଧ୍ୟମାଭ୍ୟାଂ ବଷଟ୍ ଅନାମିକାଭ୍ୟାଂ ହୁଂ, କନିଷ୍ଠାଭ୍ୟାଂ ବଷଟ୍ ଉଚ୍ଚାରଣ କରି ଶେଷରେ କରତଳ କରପୃଷ୍ଠାଭ୍ୟାଂ ଅସ୍ତ୍ରାୟଫଟ୍ କହି ତାଳି ମାରନ୍ତି । ଏହାକୁ କରନ୍ୟାସ ବୋଲାଯାଏ । ପ୍ରଥମେ କରନ୍ୟାସ କରି ତତ୍ପରେ ଅଙ୍ଗନ୍ୟାସ କରି ତତ୍ପରେ ଧ୍ୟେୟ ଦେବତାଙ୍କ 'ଧ୍ୟାନ' କରି ଶେଷରେ ମନ୍ତ୍ର ଜପ କରାଯାଏ ।] ୫ । ରାଜ୍ୟାଙ୍ଗ ବା ସେନାଙ୍ଗ; ରାଜ୍ୟର ବା ସେନାର ଆବଶ୍ୟକ ୬ ଗୋଟି ଅଙ୍ଗ—5. Six component parts of a kingdom or army. [ ଦ୍ର—ଯଥା—୧ । ମୌଳ—1. Head or sovereign. ୨ । ଭୃତ୍ୟ—2. Servant. ୩ । ସୁହୃତ୍—Ally or friend. ୪ । ଶ୍ରେଣୀ—Army. ୫ । ଦ୍ୱିଷତ—Enemy. ୬ । ଆଟବିକ ବା ଅରଣ୍ୟବାସୀ ସେନା—Wild war-lire tribes । ୬ । ଛଅ ପ୍ରକାର ଯୋଗାଙ୍ଗ ବା ଯୋଗ ସାଧନର ସୋପାନ ( ଯଥା—ପ୍ରତ୍ୟାହାର, ଧ୍ୟାନ, ପ୍ରାଣାୟାମ, ଧାରଣା, ତର୍କ, ସମାଧି )—6. The six steps in the practice of Joga. ୭ । ଆଦ୍ୟ ଶ୍ରାଦ୍ଧକାଳରେ ପ୍ରେତ ଉଦ୍ଦେଶ୍ୟରେ ଦିଆଯିବା ଛଅଟି ବସ୍ତୁ ( ଯଥା—ଆସନ, ଛତ୍ର, ଉପାନତ୍, ଶଯ୍ୟା, ଅନ୍ନ ଓ ଜଳ—ଶବ୍ଦକୋଷ )—7. Six articles given away to Brahmanas as offering to the departed spirit during obsequies. [ ଦ୍ର—ଶାସ୍ତ୍ରରେ ଏଥିର ପ୍ରମାଣ ମିଳେ ନାହିଁ । ପ୍ରେତର ସ୍ୱର୍ଗଲାଭାର୍ଥ ଷୋଡ଼ଶ ଦାନ କରାଯିବା ଶାସ୍ତ୍ରରେ ଅଛି; କିନ୍ତୁ ଲୋକବ୍ୟବହାରରେ ଷଡ଼ଙ୍ଗ ଦାନ କରାଯାଏ—ଶବ୍ଦକୋଷ । ]

୯ । ( ବୈଦ୍ୟକ ) ଗୋକ୍ଷୁର; ଗୋଖରୁ—8. A thorny bush and fruit; Tygophyllæa Tribulus Terestris. ୧୦ । (ବହୁବ୍ରୀହି) ବେଦ

( ବିଶ୍ୱକୋଷ )—9. The Bedas. ବି· ବିଣ. (ବହୁବ୍ରୀହି )— ଛଅଟି ଅଙ୍ଗ ବିଶିଷ୍ଟ—Having six limbs or parts or branches.

**ଷଡ଼ଙ୍ଗକ**—ସଂ. ବି (ଷଡ଼ଙ୍ଗ+ସ୍ୱାର୍ଥେ. କ ) -୧ । ଚିତ୍ରର ଛଅଗୋଟି Sardangaka ସୌନ୍ଦର୍ଯ୍ୟ ଦାୟକ ଅଙ୍ଗ—1. Six elements which contribute to the grace of a painting or picture. [ ବି—ବାତ୍ସାୟନ ମୁନି ଙ୍କ ରଚିତ 'କାମସୂତ୍ର' ନାମକ ଗ୍ରନ୍ଥର ପ୍ରଥମ ଅଧିକରଣ ବା ଅଧ୍ୟାୟରେ ଓ ତହିଁର ଟୀକାକାର ଯଶୋଧର ପଣ୍ଡିତ ଆୟୁ ଅଧ୍ୟାୟର ଟୀକାରେ ଆଲେଖ୍ୟର ଏହି ଛଅଗୋଟି ଅଙ୍ଗ ବର୍ଣ୍ଣନା କରିଅଛନ୍ତି । ଯଥା; ରୂପ ବା ଭେଦ, ପ୍ରମାଣ, ଭାବ, ଲାବଣ୍ୟଯୋଜନ, ସାଦୃଶ୍ୟ ଏବଂ ବର୍ଣ୍ଣିକାଭଙ୍ଗ— ବଙ୍ଗୀୟଧାନକାର ଶ୍ରୀ ଶ୍ରୀନେନ୍ଦ୍ର ମୋହନ ଦାସଙ୍କ ଅଭିଧାନରୁ ଉଦ୍ଧୃତ—ଅବନୀନ୍ଦ୍ରନାଥ ଠାକୁର । ] ୨ । ଷଡ଼ବୟବ ବିଶିଷ୍ଟ ଦେହ (ବିଶ୍ୱକୋଷ)—2.The body consisting of six limbs.

**ଷଡ଼ଙ୍ଗଜିତ୍**—ସ. ବିଣ ( ବହୁବ୍ରୀହି; ଯେ ଶରୀରର ଅଙ୍ଗମାନଙ୍କୁ ବା Shardangajit ବେଦାଙ୍ଗମାନଙ୍କୁ ଜୟ କରିଅଛନ୍ତି ) ସ. ବି— ବିଷ୍ଣୁ—Bishnu.

**ଷଡ଼ଙ୍ଗ ନ୍ୟାସ**—ସଂ. ବି—ଦେବପୂଜାରେ ଛଅଗୋଟି ଅଙ୍ଗକୁ ଛୁଇଁ Shardanga nyāsa କରିଯିବା ନ୍ୟାସ ବା ଅଙ୍ଗୁଳି ସ୍ପର୍ଶନ; ଷଡଙ୍ଗ ୪ (ଦେଖ)—The rite of touching 6 specified parts of the worshipper's body while performing the worship of a Deity.

**ଷଡ଼ଙ୍ଗୀ**—ସ. ବିଣ. ସୁଂ. ( ଷଡ଼ଙ୍ଗ+ସ୍ୱାର୍ଥେ ଇନ୍; ୧ମା. ୧ବ )— Shardangi ଷଡ଼ଙ୍ଗଯୁକ୍ତ—Having Shardnga; [ଷଡ଼ଙ୍ଗିନୀ—ସ୍ତ୍ରୀ] versed in Shardanga. ସଂ. ବି— ବେଦର ଷଡ଼ଙ୍ଗାଧ୍ୟାୟୀ ବ୍ରାହ୍ମଣ—A Brāhmana versed in the six branches of vedic lore.

[ଷଡ଼ଙ୍ଗିଥ(ସ୍ତ୍ରୀ)ଣୀ—ଦେ.ସ୍ତ୍ରୀ] ଦେ.ବି—ବ୍ରାହ୍ମଣଙ୍କ ବଂଶୋପାଧି ବିଶେଷ —A family-title of Brāhmanas.

**ଷଡ଼ଙ୍ଗୁଳ(ଳି)**—ସ. ବି ( ଷଟ୍+ଅଙ୍ଗୁଳି )—ଛଅ ଅଙ୍ଗୁଳି ପରିମାଣ— Shardangula(li) Measure of six fingers. ସ.ବିଣ— ୧ । ଛଅ ଅଙ୍ଗୁଳି ପରିମିତ—1 Measuring six digits ( 3 inches )· ୨ । ଛଅ ଅଙ୍ଗୁଠିଥ ବ୍ୟକ୍ତି; ଯେଉଁ ବ୍ୟକ୍ତିର ହାତରେ ବା ଗୋଡ଼ରେ ସାଧାରଣ ପାଞ୍ଚ ଅଙ୍ଗୁଳରୁ ଅଧିକା ଗୋଟିଏ ଅଙ୍ଗୁଠି ଥାଏ—2. ( a person) Having 6 instead of 5 fingers in each or any of his hands or legs.

**ଷଡ଼ଙ୍ଘ୍ରି**—ସଂ. ବି ( ଷଟ୍=ଛଅ=ଅଙ୍ଘ୍ରି=ଚରଣ ଯାହାର )—ଷଟ୍ପଦ; Shardanghri ଭ୍ରମର—The black bee.

**ଷଡ଼ଦଶ**—ଦେ. ବି ଓ ବିଣ ( ସଂଖ୍ୟାବାଚକ; ସଂ. ଷଡ଼ଧିକଦଶନ; ଷଟ୍ Shardadaśa +ଦଶନ୍ )—ଷୋଳ; ଷୋଡ଼ଶ—Sixteen. ଷୋଳ ଷୋଡଶ [ ଉ—ବଳା ବଡ଼ଇ ଷଡ଼ଦଶ । ଅନାଦି ପରମ ପୁରୁଷ—ଜଗନ୍ନାଥ. ଭାଗବତ । ]

**ଷଡ଼ଦର୍ଶୀ**—ଦେ. ବିଣ ( ସଂ. ଷଡ଼ଦର୍ଶୀ )—ଦର୍ଶନଶାସ୍ତ୍ରଜ୍ଞ—Well Shardadarśi versed in philosophy. [ ଉ—ଜିତ ଯେ ଷଡ଼ଦର୍ଶନ ଜାନେ ମୁଁ ବୋଲି ନ ଜନ୍ମି ଭେଦେ । ଷଡ଼ଦର୍ଶୀ ଭୁଲେ ଷଡଦର୍ଶୀ କଲେ ବିବାଦ—କବିସୂର୍ଯ୍ୟ. କବିତା । ]

**ଷଡ଼ଧିକ**—ସଂ. ବିଣ ( ବହୁବ୍ରୀହି; ଛଅ ହୋଇଅଛି ଅଧିକ ଯହିଁରେ )— Shardadhika ଯେଉଁ ସଂଖ୍ୟାରେ ଛଅ ସଂଖ୍ୟା ଅଧିକ ଯୁକ୍ତ ହୋଇଅଛି—( any number ) Increased by six. ( ଯଥା—ଷଡ଼ଧିକ ଦଶନ୍=୧୬ । )

**ଷଡ଼ବିକାର**—ଦେ. ବି ( ସଂ. ଷଟ୍+ବିକାର ) -ଜନ୍ମ, ସ୍ଥିତି, ବୃଦ୍ଧି, Shardabikāra ପରିଣାମ; କ୍ଷୟ ଓ ବିନାଶ, ଏହିରୂପ ପ୍ରାଣୀର ଛଅବିକାର ଷଡ୍‌ବିକାର ଛଅଟି ପରିବର୍ତ୍ତନ ବା ଅବସ୍ଥା—Six transformations which an animate being undergoes during its earthly existence. [ ଉ—ସ୍ୱଭାବେ ମନୁଷ୍ୟ ଶରୀରେ । ଜନ୍ମିଲ ଏ ଷଡ଼ବିକାରେ (ଷଡ଼ବିକାର—ସଂ ରୂପ) ଜଗନ୍ନାଥ ଭାଗବତ । ]

**ଷଡ଼ବିଧା**—ଦେ· ବିଣ. ସ୍ତ୍ରୀ ( ସଂ. ଷଡ଼ବିଧା )—ଷଡ଼ବିଧ ( ଦେଖ )— Shardabidhā Shardbidha ( See ) [ ଉ—ଉପାୟ ଷଡ଼ବିଧ ଷଡବିଧା ଦଣ୍ଡ ଚର୍ଚ୍ଚି ବିଦ୍ୟା, ସାଜାର ଶାଢ ଷଡ଼ବିଧା— ଜଗନ୍ନାଥ. ଭାଗବତ । ]

**ଷଡ଼ବିନ୍ଦୁ** (ଇତ୍ୟାଦି)—ଦେ ବି—ଷଡ୍‌ବିନ୍ଦୁ ଇତ୍ୟାଦି (ଦେଖ) Shardabindu (etc) Shard-bindu etc (See )

**ଷଡ଼ଭିଜ୍ଞ**—ସଂ. ବିଣ. ପୁଂ (ଷଟ୍=ଛଅଟି ବିଷୟରେ+ଅଭିଜ୍ଞ ୭ମୀ ତତ୍) Shardabhijña ୧ । ଛଅଟି ବିଦ୍ୟାରେ ପାରଦର୍ଶୀ (ବ୍ୟକ୍ତି)— (ଷଡ଼ଭିଜ୍ଞତା--ବିଶେଷ୍ୟ) 1.(a person) Versed in the six ( ଷଡ଼ଭିଜ୍ଞା - ସ୍ତ୍ରୀ ) sciences or superhuman powers. [ବି—ଯଥା—ଅତ୍ମଜ୍ଞାନ (ଆପଣାର ସମ୍ବନ୍ଧେ ପ୍ରକୃତ ଜ୍ଞାନ ବା ଆଧ୍ୟାତ୍ମିକ ଜ୍ଞାନ)—Self-knowledge; spiritual knowledge. ଜାତିସ୍ମରତା ( ନିଜର ପୂର୍ବଜନ୍ମ ସମ୍ବନ୍ଧେ ସ୍ମରଣାତ୍ମକ ଜ୍ଞାନ)—Knowledge or power of remembering one's past birth. ପରଚିତ୍ତ ଜ୍ଞାନ (ପରର ମନର ଭାବ ଜାଣିବା)—Divining into the minds of others· ଦିବ୍ୟ ଦୃଷ୍ଟି— Spiritual or astral vision. ଦିବ୍ୟ ଶ୍ରୋତ— Hearing of inaudible things. ବାୟୁଗମନ (ଆକାଶଗତି) —Aerial movement·] ୨ । ଧର୍ମ, ଅର୍ଥ, କାମ, ମୋକ୍ଷ, ଲୋକାର୍ଥ ଓ ତତ୍ତ୍ୱାର୍ଥ ଏହି ଛଅଟି ବିଷୟରେ ଅଭିଜ୍ଞ—2. Versed in the six branches of knowledge desirable in this world. ସ· ବି—ବୁଦ୍ଧଦେବ—The Buddha. [ବି—ଧର୍ମ, ଅର୍ଥ, କାମ, ମୋକ୍ଷ, ଲୋକାର୍ଥ ଓ ତତ୍ତ୍ୱାର୍ଥ, ଏ ଛଅଟି ବିଷୟରେ ତାଙ୍କର ଅଭିଜ୍ଞତା ଥିବାରୁ ତାଙ୍କର ଏ ନାମ—ବିଶ୍ୱକୋଷ ।]

**ଷଡ଼ରଙ୍ଗ**—ବି. ବିଣ—ବହୁରଙ୍ଗୀ, ଚିତ୍ରବିଚିତ୍ର—
Shardaranga Picturesque; multi-coloured.
নানারঙ্গের हरंगी ଷଡରଙ୍ଗି, ଷଡରଙ୍ଗିଆ—ଅନ୍ୟରୂପ)

**ଷଡ଼ରତ୍ନି** ପୁଂ ବିଣ (ଷଟ୍+ଅରତ୍ନି)—ଛଅ ହାତ ପରିମିତ (ବିଶ୍ୱକୋଷ)
Shardaratni —Measuring six cubits in length.

**ଷଡ଼ରସ**—ବି. ବି (ସଂ. ଷଡ଼ରସ)—୧ । ଷଡ୍‌ରସ [ଦେଖ]—
Shardarasa 1. Shard-rasa (See) ୨ । (ଛଅ
ছয়রস षडरस ପ୍ରକାର ରସ) ରସିକତା—2. Wit humour.

**ଷଡ଼ରସ ବ୍ୟଞ୍ଜନ**—ବି. ବି (ସଂ. ଷଡ୍‌ରସ+ବ୍ୟଞ୍ଜନ)—ସର୍ବପ୍ରକାରର
Shardarasa byanjana ସ୍ୱାଦଯୁକ୍ତ ତିଅଣ—
ষড়রসব্যঞ্জন षड्रसतरकारी Curry of all the six kinds of tastes.

**ଷଡ଼ରସଭୋଜନ**—ବି. ବି (ସଂ. ଷଡ଼ରସ+ଭୋଜନ) ଛଅରସଯୁକ୍ତ
Shardarasa bhojana ଖାଦ୍ୟ ଖାଇବା—
ষড়রসভোজন षड्रसभोजन Partaking of food having of the 6 tastes

**ଷଡ଼ରସରେ ମନୁଷ୍ୟ**—ବି. ବି—ରସିକ ବ୍ୟକ୍ତି—A man of wit;
Shardarasemanushya a man of humour.
ষড়রসেতেমানুষ बड़ारसिकआदमी

**ଷଡ଼ରି**—ସଂ ବି (ଷଟ୍+ଅରି=ଶତ୍ରୁ)—କାମକ୍ରୋଧାଦି ଷଡ଼୍ ରିପୁ—
Shardari The 6 passions.

**ଷଡ଼ଶୀତି**—ସଂ. ବି. ଓ ବିଣ (ସଂଖ୍ୟାବାଚକ; ମଧ୍ୟପଦଲୋପୀକର୍ମଧାରୟ;
Shardasiti ଷଟ୍=ଛଅ ଅଧିକ ଅଶୀତି)—ଛୟାଅଶି—
Eighty six. ସଂ. ବି—ଷଡ଼ଶୀତି ସଂକ୍ରାନ୍ତି;
ଷଡଶୀତି ସଂକ୍ରାନ୍ତି; ମିଥୁନ (ଅଷାଢ଼), କନ୍ୟା (ଅଶ୍ୱିନ)
ଧନୁ (ପୌଷ) ଓ ମୀନ (ଚୈତ୍ର) ସଂକ୍ରାନ୍ତି—
The passage of the sun—
1. From the sign of Taurus to Gemini, 2. From. Leo to Virgo. 3. From Cancer eo Sagitarius. 5. From Aquarius to Pisces.

**ଷଡ଼ଶୀତିଚକ୍ର**—ସଂ. ବି (ଜ୍ୟୋତିଷ)—ମିଥୁନ; କନ୍ୟା ମୀନ ଓ ଧନୁ
Shardasiti chakra ରାଶିରେ ରବିଙ୍କର ଅବସ୍ଥିତି-
କାଳୀନ ଶୁଭାଶୁଭଫଳଜ୍ଞାନାର୍ଥ ଲିଖିତ ନକ୍ଷତ୍ରମାନଙ୍କର
ଅବସ୍ଥିତିସୂଚକ ଚକ୍ର ବା ସଂକ୍ରାନ୍ତିପୁରୁଷ—(astrology)
The astrological circle or figure drawn in the 4 Shardasiti samkrantis showing the position of each of the asterisms on different parts of it indicating good or bad results. [ ଦ୍ର—ଏହି ଚକ୍ର ବା
ସଂକ୍ରାନ୍ତି ପୁରୁଷର ଭିନ୍ନ ଭିନ୍ନ ଅଙ୍ଗରେ ( ଅର୍ଥାତ ମୁଖ,
କର, ପାଦ, କୋଡ଼, ନେତ୍ର, ମସ୍ତକ ଓ ଗୁହ୍ୟାଦିରେ)
ବିଦିଷ୍ଟ ନକ୍ଷତ୍ରମାନଙ୍କୁ ବସାଇଦେଇ ତଦନୁସାରେ ଶୁଭାଶୁଭ
ଫଳ ବୁଝାଯାଏ । ଯୋଡ଼ିଏ ନରରୂପ (ସଂକ୍ରାନ୍ତିପୁରୁଷ)
ଅଙ୍କନ କରି ତାହାର ଅଙ୍ଗବିଶେଷରେ ନକ୍ଷତ୍ରମାନଙ୍କ
ବିନ୍ୟସ୍ତ କରାଯାଏ । ସୂର୍ଯ୍ୟ ଯେଉଁ ନକ୍ଷତ୍ରରେ ଅବସ୍ଥିତ
ହୋଇ ସଂକ୍ରମିତ ହୁଅନ୍ତି ସେହି ନକ୍ଷତ୍ରରୁ ଆରମ୍ଭ କରି
ଏ ନରଚକ୍ରର ଯଥାକ୍ରମେ ମୁଖରେ ୧, ଦକ୍ଷିଣ ହସ୍ତରେ
୪, ଦକ୍ଷିଣ ପାଦରେ ୬, ବାମ ପାଦରେ ୨, ହୃଦୟ ବା
କୋଡ଼ରେ ୫, ବାମ ହସ୍ତରେ ୪, ବାମ ନେତ୍ରରେ ୨,
ଦକ୍ଷିଣ ନେତ୍ରରେ ୨, ମସ୍ତକରେ ୩, ଗୁହ୍ୟରେ ୨ଟି
ନକ୍ଷତ୍ର ବସାଇବାକୁ ହୁଏ । ଯେଉଁ ବ୍ୟକ୍ତିର ଜନ୍ମ ନକ୍ଷତ୍ର
ଉକ୍ତ ନରଚକ୍ରର ଯେଉଁ ଅଙ୍ଗରେ ନ୍ୟସ୍ତ ହେବାର
ଦେଖାଯାଏ, ସେ ବ୍ୟକ୍ତିର ନିମ୍ନଲିଖିତମତେ ଆଗାମୀସୌର
ମାସରେ ଶୁଭାଶୁଭ ଘଟେ—
ମୁଖରେ ଦୁଃଖ, ଦକ୍ଷିଣ ହସ୍ତରେ ଲାଭ, ପାଦଦ୍ୱୟରେ
ଭ୍ରମଣ, ହୃଦୟ ବା କୋଡ଼ରେ କାନ୍ତାଲାଭ, ବାମହସ୍ତେ
ବନ୍ଧନ; ନେତ୍ରଦ୍ୱୟରେ ସମ୍ମାନ, ମସ୍ତକରେ ଅପମାନ,
ଗୁହ୍ୟରେ ମୃତ୍ୟୁ । ଯଦି କାହାର ସଂକ୍ରାନ୍ତିର ଫଳ ଅଶୁଭ ହୁଏ,
ତାହାହେଲେ କନକଧୁତୁରର ମାଳ ଓ ସର୍ବୌଷଧି ଜଳେ
ସ୍ନାନ ଓ ବିଷ୍ଣୁ ମନ୍ତ୍ର ଜପ କଲେ ଶୁଭ ଫଳ ହୁଏ—
(ବିଶ୍ୱକୋଷ) ]

**ଷଡ଼ଶୀତିତମ**—ସଂ ବିଣ—ଛୟାଅଶି ସଂଖ୍ୟାର ପୂରକ—
Shardasititama Eighty-sixth.

**ଷଡ଼ଶୀତି ସଂକ୍ରମଣ(ସଂକ୍ରାନ୍ତି)**—ସଂ ବି—ଷଡଶୀତି (୨) (ଦେଖ)
Shardasiti samkramana(samkranti)
Shardasiti (2) (See)

**ଷଡ଼ଶ୍ୱ**—ସଂ ବିଣ—(ବହୁବ୍ରୀହି)—ଯହିଁରେ ଛଅଟି ଘୋଡ଼ା ଲଗିଥାଅନ୍ତି
Shardaswa To which six horses have been yoked. ସଂ ବି.—ଛଅଘୋଡ଼ା ଲଗିଥିବା ଗାଡ଼ି
(ବିଶ୍ୱକୋଷ)—A carriage drawn by six horses.

**ଷଡ଼ଷ୍ଟକ**—ସଂ. ବି.—( ଜ୍ୟୋତିଷ ) ( ଷଟ୍+ଅଷ୍ଟ+କ )—ବର,
Shardashtaka କନ୍ୟାଙ୍କର ଜାତକ ଗଣନା ଦ୍ୱାରା ବୁଝାଯିବା ଯୋଗ
ବିଶେଷ; ବରର ଓ କନ୍ୟାର ସ୍ୱ ସ୍ୱ ରାଶିରୁ ପରସ୍ପର ଷଷ୍ଠ ଓ
ଅଷ୍ଟମ ରାଶି ସମ୍ବନ୍ଧ—(astrology) Astrological corelation found out by calculating the horoscopes of the bride and bride-groom elect from the 6th and the 8th positions of their respective zodiacal signs. [ଦ୍ର—ବରର ରାଶିଠାରୁ କନ୍ୟାର ରାଶି ଷଷ୍ଠ
ସ୍ଥାନୀୟ ଓ କନ୍ୟାର ରାଶିଠାରୁ ବରର ରାଶି ଅଷ୍ଟମ
ହେଲେ ଏହି ଯୋଗ ଘଟେ । ବିବାହ ପ୍ରସ୍ତାବରେ ବରର ଓ
କନ୍ୟାର ରାଶିର ପରସ୍ପର ଷଷ୍ଠ ଓ ଅଷ୍ଟମ ସମ୍ବନ୍ଧ ହେଲେ
ତାହାକୁ 'ଷଡ଼ଷ୍ଟକ' ବୋଲାଯାଏ । ଏ ଷଡ଼ଷ୍ଟକ ଯୋଗକୁ
ପରୀକ୍ଷା କରି ବିବାହ ସ୍ଥିର କରିବା ବିଧେୟ । ଶାସ୍ତ୍ରରେ
ଷଡ଼ଷ୍ଟକ ନିନ୍ଦିତ ହୋଇଅଛି । ଏହା ଅଶୁଭ ଷଡ଼ଷ୍ଟକ ଓ ମିତ୍ର
ଷଡ଼ଷ୍ଟକ ଭେଦରେ ଦୁଇ ପ୍ରକାର । ଯଦି କନ୍ୟାର ରାଶିର

ଅଷ୍ଟମରେ ଭର୍ତ୍ତାର ଓ ଭର୍ତ୍ତାର ରାଶିର ଅଷ୍ଟମରେ କନ୍ୟାର ରାଶି ହୁଏ, ତାହାହେଲେ ଅରି ଷଡ଼ଷ୍ଟକ ହୁଏ ଯଥା—

| କନ୍ୟାର ରାଶି | ବରର ରାଶି |
|---|---|
| ମକର | ସିଂହ |
| କନ୍ୟା | ମେଷ |
| ମୀନ | ତୁଳା |
| କର୍କଟ | କୁମ୍ଭ |
| ବୃଷ | ମିଥୁନ |

ଅରି ଷଡ଼ଷ୍ଟକ ହେଲେ ଏ ବିବାହ ସର୍ବଥା ନିଷିଦ୍ଧ ।
ମିତ୍ରଷଡ଼ଷ୍ଟକ ଯଥା—

| କନ୍ୟାର ରାଶି | ବରର ରାଶି |
|---|---|
| ମକର | ମିଥୁନ |
| କନ୍ୟା | କୁମ୍ଭ |
| ସିଂହ | ମୀନ |
| ବୃଷ | ତୁଳା |
| ବିଛା | ମେଷ |
| କର୍କଟ | ଧନୁ, |

ମିତ୍ର ଷଡ଼ଷ୍ଟକ ହେଲେ ମଧ୍ୟ ବିବାହ ନିନ୍ଦନୀୟ । ଷଡ଼ଷ୍ଟକ ମାତ୍ରେହିଁ ଦୋଷାବହ; ତଥାପି ମିତ୍ର ଷଡ଼ଷ୍ଟକରେ ଏ ସକଳ ରାଶ୍ୟଧିପତି ଗ୍ରହଙ୍କର ପରସ୍ପର ମିତ୍ରତା ଥିବାରୁ ଏହା ଅଶୁଭ ହେଲେ ମଧ୍ୟ କିଞ୍ଚିତ୍ ଶୁଭପ୍ରଦ ହୁଏ । ଗରୁଡ଼ପୁରାଣ ମତରେ ମିତ୍ର ଷଡ଼ଷ୍ଟକ ଯଥା—

| କନ୍ୟାର—ସିଂହ | ବରର—ମକର |
|---|---|
| କନ୍ୟା | ମେଷ |
| ତୁଳା | ମୀନ |
| କୁମ୍ଭ | କର୍କଟ |
| ଧନୁ | ବୃଷ |
| ମିଥୁନ | ବିଛା |

ପିତା ପୁତ୍ରଙ୍କର ମଧ୍ୟ ଷଡ଼ଷ୍ଟକ ରାଶି ସମ୍ବନ୍ଧ ଥିଲେ ଦୁହିଙ୍କ ମଧ୍ୟରେ ମନର ଅମେଳ ହୁଏ ଓ ମିତ୍ର ଷଡ଼ଷ୍ଟକ ଥିଲେ କିଞ୍ଚିତ୍ ଶୁଭ ହୁଏ । (ବିଶ୍ୱକୋଷ)

**ଷଡ଼ାନନ**—ସଂ. ବି. ପୁଂ (ବହୁବ୍ରୀହି; ଷଟ୍=ଛଅଟି ଆନନ=ମୁଖ ଯାହାଙ୍କର)—କାର୍ତ୍ତିକେୟ; ଗଣ୍ଡାଭୁର—The God Kārttikeya; the elder son of Śiba.
Shardānana
[ଦ୍ର—ଏହାଙ୍କୁ କୃତ୍ତିକା ପ୍ରଭୃତି ଛଅ ଭଗ୍ନୀ ସ୍ତନ୍ୟପାନ କରାଇଥିବାରୁ ଏହାଙ୍କର ଛଅଟି ମୁହଁ ହୋଇଥିଲା ।]

**ଷଡ଼ାମ୍ନାୟ**—ସଂ. ବି (ଷଟ୍+ଆମ୍ନାୟ=ଉଚ୍ଚାରିତ ବିଷୟର କ୍ରମ)-ଶିବଙ୍କର ୬ଟି ମୁଖ (ଅର୍ଥାତ୍ ସାଧାରଣତଃ ୫ମୁଖ ଓ ଏହି ଉଦ୍ଦେଶ୍ୟରେ ଊର୍ଦ୍ଧ୍ୱରୁ ବାହାର କରିଥିବା ଆଉ ଗୋଟିଏ ମୁଖ)ରୁ ଉଚ୍ଚାରିତ ତନ୍ତ୍ରଶାସ୍ତ୍ର—A set of six Tantra Śāstras issuing from 6 mouths of Mahādeba. [ଦ୍ର—ଯଥା—ପୂର୍ବାମ୍ନାୟ, ଦକ୍ଷିଣାମ୍ନାୟ, ପଶ୍ଚିମାମ୍ନାୟ, ଉତ୍ତରାମ୍ନାୟ, ଊର୍ଦ୍ଧ୍ୱାମ୍ନାୟ ଓ ଅଧ ଆମ୍ନାୟ ।]
Shardāmnāya

**ଷଡ଼ାୟତନ**—ସଂ. ବି (ଦ୍ୱିଗୁ)—ଚକ୍ଷୁ କର୍ଣ୍ଣ, ନାସିକା, ଜିହ୍ୱା, ତ୍ୱକ୍ ଓ ମନ (ବିଶ୍ୱକୋଷ)—The sense organs and the mind.
Shardāyatana

**ଷଡ଼ାସ୍ୟ**—ସଂ. ବି. ପୁଂ (ବହୁବ୍ରୀହି; ଷଟ୍+ଆସ୍ୟ)—କାର୍ତ୍ତିକେୟ—Kārttikeya.
Shardāsya

**ଷଡ଼ାସ୍ୟ ଜନକାହିତ**—ସଂ. ବି (ଷଡ଼ାସ୍ୟ+ଜନକ+ଅହିତ=ଶତ୍ରୁ)—କାମଦେବ; କନ୍ଦର୍ପ—God Cupid; Kāmadeba.
Shardāsya janakāhita

**ଷଡ଼ିଙ୍ଗି**—ଦେ ବି. ପୁଂ—ଷଡ଼ଙ୍ଗୀ (ଦେଖ)—Shardaṅgī (See)
Shardiṅgi
ପ୍ରାଦେ (ଗଡ଼ଜାତ) ବି—ଶାଳୁଆ ଗଛ—The 'Śāḷa' tree. [ଦ୍ର—ଏଥିର ଫଳ ରାନ୍ଧି ତେଲ ବାହାର କରନ୍ତି ।]
ସାଲ
ସାଳ [ଷଡିଙ୍ଗିଥଣୀ—ଦେ· ସ୍ତ୍ରୀ]

**ଷଡ଼ୁପାୟ**—ସଂ. ବି (ଷଟ୍+ଉପାୟ)—(ତନ୍ତ୍ର) ସ୍ତମ୍ଭନ, ମୋହନ, ବଶୀକରଣ, ଉଚ୍ଚାଟନ, ଆକର୍ଷଣ ଓ କ୍ଷୋଭଣରୂପକ ଛଅଟି ତାନ୍ତ୍ରିକ ପ୍ରୟୋଗ—(tantra) The application of six tantric means, such as Stambhana, Mohana; Baśīkaraṇa, Uchchāṭana, Ākarshaṇa and Kshobhaṇa.
Shardupāya

**ଷଡ଼ୂର୍ମି**—ସଂ. ବି (ଷଟ୍+ଊର୍ମି)—ଷଡ଼୍ରିପୁ (ଦେଖ)—Shard-ripu. (See)
Shardūrmi

**ଷଡ଼ୂଷଣ**-ସଂ, ବି (ବୈଦ୍ୟକ) (ଷଟ୍=ଛଅ+ଊଷଣ=କଟୁଦ୍ରବ୍ୟ)—ଏକତ୍ର ମିଶ୍ରିତ ଛଅଟି କଟୁଦ୍ରବ୍ୟ; ପିପ୍ପଳୀ, ପିପ୍ପଳୀ ମୂଳ, ଚବ୍ୟ, ଶୁଣ୍ଠି, ଚିତାମୂଳ ଓ ମରିଚମିଶ୍ରିତ ଔଷଧ—An aggregate for concoction of six bitter articles (viz long pepper, pepper root; piper chaba; dried ginger; plumbago root and black pepper) used as medicine. [ଦ୍ର—ଏହା ପୀହା, ଗୁଲ୍ମ, ଉଦରାମୟ ଓ ଶୂଳରୋଗନାଶକ, ଅଗ୍ନିପ୍ରଦୀପକ; କଫ ଓ ବାୟୁନାଶକ ।
Shardūshaṇa
ପଞ୍ଚ କୋଲ ସଙ୍ଗେ ମରିଚ ମିଶିଲେ ଷଡ଼ୂଷଣ ହୁଏ । ]

**ଷଡ଼ୈରି**—ଦେ. ବି (ସଂ. ଷଡ଼ରି)—ଷଡ଼ ରିପୁ (ଦେଖ)—Shard-ripu. (See)
Shardairi

**ଷଡ଼ୈଶ୍ୱର୍ଯ୍ୟ**—ସଂ. ବି (ଷଟ୍+ଐଶ୍ୱର୍ଯ୍ୟ)—ଛଅ ପ୍ରକାରର ସମ୍ପଦ ବା ପ୍ରଭୁତ୍ୱ; ସର୍ବବିଧ ସମ୍ପଦ ବା ରାଜଭୋଗ—All sorts of prosperity or enjoyment or bliss. [ଦ୍ର—ପ୍ରକୃତରେ ଶାସ୍ତ୍ରରେ ବର୍ଣ୍ଣିତ ଐଶ୍ୱର୍ଯ୍ୟ ଅଷ୍ଟବିଧ; ଷଡ଼୍ବିଧ ନୁହେଁ; ସାଂସାରିକ ସୁଖଭୋଗ ବା ବିଳାସ ବା ସମ୍ପଦ ପ୍ରତି ଲୋକେ ଷଡ଼ୈଶ୍ୱର୍ଯ୍ୟ, ଶବ୍ଦ ବ୍ୟବହାର କରନ୍ତି ।]
Shardaiśwarjya

ଷଣ୍ (ଧାତୁ)—୧ । ଦାନ କରିବା—1. To give.
Shan (root) ୨ । ବିତରଣ କରିବା—2. To distribute.

**ଷଣ୍ଡ**—ସଂ. ବି ( ଷଣ ଧାତୁ + କର୍ତ୍ତୃ. ଡ ) —୧ । ବୃଷ; ବୃଷଭ; ବୃଷଭ—
Shanda 1. A Brāhmaṇī bull. ୨ । ସ୍ୱାଧୀନ ବୃଷ-
( ଷଣ୍ଢ—ଅନ୍ୟରୂପ ) 2. A bull set at liberty.
୩ । ନପୁଂସକ ବ୍ୟକ୍ତି (ଷଣ୍ ଦେଖ)—3. A eunoch.
[ଦୃ—ଅବଶ୍ୟ ଷଣ୍ଡ ବୃକ ତା ଭୁଲେ, ଅବିବେକବଶୁ ହବାସ ହେଲେ— କବିସୂର୍ଯ୍ୟ ବଳଦେବ ।] ୪ । ସମୂହ—
4. A collection, assemblage ୫ । ପଦ୍ମ ବା କୁମୁଦସମୂହ—5. A collection or bunch of lotus flowers or water lilies. ୬। ବୃକ୍ଷ —
6. Tree. ୭ । ଯୋନିରୋଗବିଶେଷ —7. A sort of disease of the female organ. ୮। ଦୈତ୍ୟ-
ଗୁରୁ ଶୁକ୍ରାଚାର୍ଯ୍ୟଙ୍କ ପୁତ୍ର; ଭକ୍ତପ୍ରଧାନ ପ୍ରହ୍ଲାଦଙ୍କ ଗୁରୁ —
8. The son of Sukrāchārjya and the tutor of Prahlāda. ୯ । ( ଛାଗଳ ଆଦି ପଶୁ ଆଦିଙ୍କ) ଦଳ—9. A flock (of goats etc) ( Apte ). ୧୦ । ଚିହ୍ନ ( ଶବ୍ଦକୋଷ )—
10. Sign.

**ଷଣ୍ଡ(ଣ୍ଢ)ତିଳ**—ସଂ ବି—ଯେଉଁ ତିଳରୁ ତେଲ ବାହାରେ ନାହିଁ (ବୃ.ଶ)
Shanda(ndha)tila Sesamum seed producing no oil. ଦେ. ବି. ( ଲକ୍ଷଣାରେ )—ନପୁଂସକ —
A eunoch. [ଦୃ—ତୁମ୍ଭଙ୍କୁ ଯାହା ଷଣ୍ଡ ତିଳ ବୋଲୁଥିଲେ, ବସ୍ତୁତଃ ନଗରେ ତା ସତ କଲେ—
କୃଷ୍ଣସିଂହ ମହାଭାରତ ଉଦ୍ୟୋଗ ।]

**ଷଣ୍ଡା(ଣ୍ଢା)**—ଦେ. ବି—୧ । ଷଣ୍ଡାମାର୍କା ( ଦେଖ )—1. Shandā
Shandā(ndhā) mārkā (See) ୨ । ଶଣ୍ଡା ( ଦେଖ )—
Sandā (See). ୩ । ଷଣ୍ଡାସୁର—3. A demon
(ଦୃ—ଯେତେ ଗୋ ହୋଇଲେ ବଳସ, ଷଣ୍ଡା କରନ୍ତି ନର ମାଡ଼—ସ୍ୱାତୀ. ବୃନ୍ଦାବନ ଭୂଷଣଗୀତା । ) ଦେ. ବିଣ—
षण्डा मोटाताजा ୧। ଷଣ୍ଡାମାର୍କା (ଦେଖ)—1. Shndāmārkā
(See) ୨ । ଉଚ୍ଚାଭିବୃଦ୍ଧିରୁ ଫଳହୀନ (ବୃକ୍ଷାଦି); ବଢ଼ା
2. Over-luxuriant in growth (said of trees and plants) ଯ ଥା—ଅଣ୍ଡିର ଡାଳ ଗଛଟି । ଷଣ୍ଡା ହୋଇ ବଢ଼ୁଛି ।)

**ଷଣ୍ଡା(ଣ୍ଡେ)ଇବା**—ଦେ. କ୍ରି. —ଷଣ୍ଢାଇବା (ଦେଖ)
Shandā(nde)ibā Shandhāibā (See)

**ଷଣ୍ଡାମା(ମ)ର୍କ**—ସ. ବି —ଷଣ୍ଡ ଓ ଅମର୍କ ନାମକ ଶୁକ୍ରଙ୍କର ପୁତ୍ର ଦ୍ୱୟ—
Shandamā(ma)rka Shanda and Amarka who were the two sons of Sukra and who were tutors to Prahlāda. [ଦୃ—ଏମାନେ ପ୍ରହ୍ଲାଦଙ୍କ ଶିକ୍ଷାଗୁରୁ ରୂପେ ହିରଣ୍ୟକଶିପୁଙ୍କ ଦ୍ୱାରା ନିଯୁକ୍ତ ହୋଇଥିଲେ । ଏମାନେ ବଳିଷ୍ଠ, ପୃଥୁଳକାୟ ଓ ରୁକ୍ଷ ଥିଲେ ।] ଦେ ବି. ଓ ବିଣ—ଷଣ୍ଡା ମାର୍କା (ଦେଖ)
[ଷଣ୍ଡାମାର୍କ—ଅନ୍ୟରୂପ] Shandāmārkā (See)

**ଷଣ୍ଡା(ଣ୍ଢା)ମାର୍କା**—ଦେ. ବି.—( ସଂ ଷଣ୍ଡ=ବୃଷ; ଅର୍ଥାତ୍ ବୃଷ ପରି
Shandā(ndhā)mārkā ବଳବାନ୍; ଷଣ୍ଡାମାର୍କ ବା ବିଶାଳକାୟ, ଭୂଲ, ତା-ସଙ୍ଗେ=ଯୁକ୍ତ, ଲକ୍ଷଣ ।) —
षण्डामार्का ୧ । ବଳବାନ୍ ଓ ପୃଥୁଳକାୟ୍ୟ—1. A strong
मोटाताजा आदमी and fat man; a stout, strong and tall man. ୨ । ଉଦ୍ଧତ ଓ ଦୁର୍ଦ୍ଦାନ୍ତ ବ୍ୟକ୍ତି;ଦୁଷ୍ଟ ଓ ବଳୁଆ ଲୋକ—2. A strong and wicked man. ୩ । ବଳୀ; ମଲ୍ଲ—3 An athlete.
ଦେ. ବିଣ—ବଳୁଆ ଓ ପୃଥୁଳ—Stout and strong.

**ଷଣ୍ଡାଳୀ**—ସଂ ବି. ( ଷଣ୍ଡ + ଅଳ ଧାତୁ=ପାରଗହେବା + ଅ + ଈ ) —
Shandālī ୧ । ତେଲ ଘିଆଦିର ପରିମାଣ ବିଶେଷ; ଛଟାକି—
(ଷଣ୍ଢାଳୀ—ଅନ୍ୟରୂପ) ( ଶବ୍ଦକୋଷ ) 1. $\frac{1}{16}$ of a seer of liquid. ୨ । ସରସୀ, ସରୋବର—2. A pond. ୩ ।
କାମୁକୀ; ସ୍ତ୍ରୀ—3 A libidinous woman.

**ଷଣ୍ଡା ଷଣ୍ଡା**—ଦେ. ବି. (ବହୁ ବଚନ)—ଅନେକଗୁଡ଼ିଏ ଷଣ୍ଡା ବ୍ୟକ୍ତି—
Shandā shandā Many stout and strong
षण्डा षण्डा मोटाताजा आदमीऒं persons.

**ଷଣ୍ଡି(ଣ୍ଢି)ଆ**—ଦେ. ବିଣ. (ସଂ ଷଣ୍=ନ ପୁଂସକ)—୧ । ନପୁଂସକ—
Shandi(ndhi)ā 1. Impotent. ୨ । ଷଣ୍ ସମ୍ବନ୍ଧୀୟ—2.
नपुंसक हीजड़ा Relating to a bull. [ ଦୃ—ଏହା (ଷେଣ୍ଡିଆ, ଷେଣ୍ଢିଆ—ଅନ୍ୟରୂପ) ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ, ଯଥା; କଣିଷଣ୍ଡିଆ, କାଣ୍ଡଷଣ୍ଡିଆ, ବଡ଼ଷଣ୍ଡିଆ ।

**ଷଣ୍ଡୁ(ଣ୍ଢୁ)ଣୀ**—ଦେ. ବି. ସ୍ତ୍ରୀ (ସଂ ଷଣ୍ଡ ପୁଂଲିଙ୍ଗ)—ବନ୍ଧ୍ୟା ଗାଈ—A
Shandu(ndhu)ṇī barren cow.
बन्ध्यागाभी वन्ध्यागाय [ଷେଣ୍ଡୁ(ଣ୍ଢୁ)ଣୀ—ଅନ୍ୟରୂପ)

**ଷଣ୍ଢ**—ସଂ. ବି.—( ସଂ ଷଣ ଧାତୁ + କର୍ତ୍ତୃ. ଢ) ୧ । ବୃଷ—1. Bull.
Shandha ୨ । ସ୍ୱାଧୀନ ବୃଷ; ଯେଉଁ ବୃଷଭକୁ ଲୋକେ ଶିବଙ୍କ
(ଷଣ୍ଢ—ଅନ୍ୟରୂପ) ଉଦ୍ଦେଶ୍ୟରେ ଛାଡ଼ି ଦେଇଥାଅନ୍ତି—2. A bull dedicated to Siba and set free to roam wherever he likes. [ଦୃ—ଗାଈ ସହଦେବଙ୍କର, ଷଣ୍ଢ ମହାଦେବଙ୍କର; ବଳଦ ବାପୁଡ଼ା କାହାର ନୁହେଁ—ଢଗ ।] ୩ । (ସନ୍ ଧାତୁ=ସେବା କରିବା + କର୍ତ୍ତୃ. ଢ)
ନପୁଂସକ; କ୍ଲୀବ—3 A eunoch; an impotent person.
[ଦୃ—କ୍ଲୀବଙ୍କୁ ଭୁଲିଲେ ପ୍ରାୟଶ୍ଚିତ୍ତ କରିବା ବିଧି ଶାସ୍ତ୍ରରେ ଅଛି । ସ୍ମୃତ୍ୟାଦି ଶାସ୍ତ୍ରରେ ୧୪ ପ୍ରକାର, ମତାନ୍ତରରେ ୨୦ ପ୍ରକାର, ଷଣ୍ଢର ନାମ ଉଲ୍ଲେଖ ଅଛି ଯଥା –
ନିସର୍ଗ ଷଣ୍—ଜନ୍ମରୁ ନପୁଂସକ ବା ଅଣ୍ଡହୀନ ।
ବଦ୍ଧ ଷଣ୍—ଗଳଭାଣ୍ଡ ବା ଅଣ୍ଡଭ୍ରଷ୍ଟ ନପୁଂସକ ।
ପକ୍ଷ ଷଣ୍-ପକ୍ଷାନ୍ତରରେ(ରମଣଶକ୍ତି ଲାଭ କରିବା ବ୍ୟକ୍ତି ।
ଈର୍ଷକ ଷଣ୍—ଯେ କ୍ଲୀବତ୍ୱ ଯୋଗୁଁ ଆପଣା ସ୍ତ୍ରୀକୁ ଅନ୍ୟ ବ୍ୟକ୍ତିଠାରେ ନିଯୋଗ କରି ପରେ ସ୍ତ୍ରୀ ସେବା କରେ ।
ଶାପାଦ୍ଷଣ୍—ଗୁରୁଜନଙ୍କ ଶାପ ଫଳରୁ କ୍ଲୀବତା ପ୍ରାପ୍ତ ବ୍ୟକ୍ତି ।

ଋତ୍ୱସ୍ତବ୍ଧ ଷଣ୍ଢ—ସ୍ତମ୍ଭିତରେତାଃ; ଯାହାର ଅତେୌ ରେତଃ ପତନ ହୁଏ ନାହିଁ ।

ଈର୍ଷକ ଷଣ୍ଢ—ଅନ୍ୟ ବ୍ୟକ୍ତିର ରତିକ୍ରିୟା ଦେଖିଲେ ଯାହାର କାମପ୍ରବୃତ୍ତିର ଉଦ୍ରେକ ହୁଏ ।

ସେବ୍ୟକ ଷଣ୍ଢ—ବହୁସ୍ତ୍ରୀ ସମ୍ଭୋଗ ଜନିତ ଧ୍ୱଜଭଙ୍ଗ ରୋଗଗ୍ରସ୍ତ ବ୍ୟକ୍ତି ।

ଆକ୍ଷିପ୍ତ ଷଣ୍ଢ—ମୈଥୁନ ଧର୍ମିବସ୍ଥାନକାଳରେ ସ୍ତ୍ରୀର ରଜଃସ୍ରାବ ପୂର୍ବରୁ ଯାହାର ରେତଃ ସ୍ଖଳିତ ହୁଏ ।

ମୋଘଶୀଳ ଷଣ୍ଢ, ଶାଳୀନ ଷଣ୍ଢ—ଦୃଷ୍ଟା ବା ଅସଙ୍ଗ ସ୍ତ୍ରୀ ସନ୍ନିଧାନରେ ପତିତଧ୍ୱଜ ବ୍ୟକ୍ତି, ବା ଯାହାର ରେତଃପାତ ହୁଏ ।

ଅନ୍ୟାପତି ଷଣ୍ଢ—ସ୍ୱସ୍ତ୍ରୀ ଛଡ଼ା ଅନ୍ୟ ସ୍ତ୍ରୀଠାରେ ଯାହାର ପୁଂସ୍ତ୍ୱର ଉଦ୍ରେକ ହୁଏ ।

ମୁଖେଭଗ ଷଣ୍ଢ—ସ୍ତ୍ରୀର ବା ପୁରୁଷର ମୁଖ ବିବରରେ ଗ୍ରାମ୍ୟଧର୍ମ ସମ୍ପାଦନକାରୀ ବ୍ୟକ୍ତି ।

ବାତରେତାଃ ଷଣ୍ଢ—ରେତଃପାତ ସମୟରେ ଯାହାର ଲିଙ୍ଗ ବାଟେ ରେତଃ ସଙ୍ଗେ ବାଳ ବା ବାୟୁ ନିର୍ଗତ ହୁଏ ।

କୁମ୍ଭୀକ ଷଣ୍ଢ—ନଖର ବା ନାସାର ହସ୍ତ ଦ୍ୱାରା ମୈଥୁନରେ ଅଭ୍ୟସ୍ତ ବ୍ୟକ୍ତି ।

ଷଣ୍ଢଷଣ୍ଢ—ଯାହାର ମେଢ୍ର କୌଣସିରୂପେ ବିକୃତ ପ୍ରାପ୍ତ ନ ହୋଇ ସୁଦ୍ଧା ସେ ପୁଂସ୍ତ୍ୱହୀନ ।

ନଷ୍ଟକ ବା ନଷ୍ଟ ଷଣ୍ଢ—ରୋଗାଦି ଯୋଗୁଁ ଯାହାର ଧ୍ୱଜୋତ୍ଥାନ ହୁଏ ନାହିଁ

ଆସେବ୍ୟ ଷଣ୍ଢ—ଧ୍ୱଜୋତ୍ଥାନ ହେବା ସଙ୍ଗେ ସଙ୍ଗେ ଯାହାର ରେତଃସ୍ଖଳନ ଘଟେ ।

ସୁଗନ୍ଧକ ଷଣ୍ଢ—ଯୋନିର ବା ଶେଫର ଗନ୍ଧ ଆଘ୍ରାଣ କଲେ ଯେ ରତି ଶକ୍ତି ଲାଭ କରେ ।

ସ୍ତ୍ରୀ ଧର୍ମୀ ଷଣ୍ଢ—ସ୍ତ୍ରୀ ତୁଲ୍ୟ ବାକ୍‌ଚେଷ୍ଟା (ମାଇଚିଆ) ।

ଛିନ୍ନ ଲିଙ୍ଗକ ଷଣ୍ଢ—ଯାହାର ଲିଙ୍ଗକୁ ଛେଦନ କରାଯାଇ ତାକୁ ରମଣାସମର୍ଥ କରାଯାଇ ଥାଏ ।]

୪ । (ଲକ୍ଷଣାର୍ଥ) ଷଣ୍ଢପରି ଯେ ପରିଶ୍ରମ ନ କରି ସବୁଆଡ଼େ ଅବାଧଗତି ହୋଇ ବୁଲିକରି ଖାଏ—4 (figurative) A person who idles away his time and feeds on others (like a bull set at large). ୫ । (ଲକ୍ଷଣାର୍ଥ) ବହୁ ନାରୀଙ୍କ ମଧ୍ୟରେ ଏକମାତ୍ର ନାୟକ ରୂପେ ବିରାଜିତ ପୁରୁଷ—5. (figurative) A male or husband of many women. [ଉ—ତାର ଗୋଷ୍ଠେ ଷଣ୍ଢ ଅଖଣ୍ଡ ଚନ୍ଦ୍ରମା ସୁରଧୁନୀ ପୁଣ୍ୟସୀକ । ରାଧାନାଥ—ଯଯାତି ]

[ବି—ଆମ ଦେଶରେ ହଳ ଓ ଶକଟାଦି ଟାଣିବା ପାଇଁ ବାଛୁରୀମାନଙ୍କର ମୁଷ୍କ ଛେଦନ କରି ସେମାନଙ୍କୁ ବଳଦ କରନ୍ତି । ପକ୍ଷେ ଗାଈଙ୍କ ପାଇଁ କମ୍ପା ଗୋଟିଏ ଗ୍ରାମର ବା ଗୋଟିଏ ଅଞ୍ଚଳର ଶତଶତ ଗାଈଙ୍କ ପାଇଁ ଗୋଟିଏ ମାତ୍ର ଷଣ୍ଢ ସାଧାରଣ ସମ୍ପତ୍ତି ହୋଇ ରଖାଯାଇଥାଏ ଓ ସେ ଅବାଧଗତି ହୋଇ ଗ୍ରାମଆଡ଼େ ବୁଲି ଖାଉଥାଏ; ସେ ଅଞ୍ଚଳର ଗାଈମାନେ ଋତୁର ପଡ଼ିଲେ (ଋତୁମତୀ ହେଲେ) ସେହି ଏକ ମାତ୍ର ଷଣ୍ଢଦ୍ୱାରା ଗୋ ଜାତିର ବଂଶ ରକ୍ଷା ହୁଏ । ଏହି ଅର୍ଥରୁ ଏହି ବ୍ୟବହାର ।] ୬ । ବାଚୋପଚାରିତ ଯୋନିରେ କୃପୁଳ ନରଦ୍ୱେଷିଣୀ ସ୍ତନରହିତା ସ୍ତ୍ରୀ; କ୍ଲୀବ ବିଶେଷ (ହିନ୍ଦିକୋଷ)—6. A hermaphrodite woman. [ବି—ଏମାନେ ମୈଥୁନ ଧର୍ମର ଅନୁପଯୁକ୍ତା—ହିନ୍ଦିକୋଷ] ଦେ· ବି—୧ । ବୀର—1. A hero; a valiant person. [ଉ—ସେ ଦୁଇ ଷଣ୍ଢ କଲେ ରଣ, ଯହିଁ ଅଟନ୍ତି ତିନ ଜଣ । ବିଶ୍ୱନାଥ—ବିଚିତ୍ର ରାମାୟଣ ।] ୨ । (ଔଡ଼ଶାର ଅଧୁନା ଲୁପ୍ତ ପ୍ରାୟ) କୁଜଙ୍ଗ ରାଜ ବଂଶର ଉପାଧି—2. The family-tile of the Kujanga Raj family (now almost extinct). [ଉ—ରାଜା ହେଲ୍ ବାଇ କି ? କଲିଙ୍ଗା ଗାଈ ବଡର ପଡ଼ିଲେ କୁଜଙ୍ଗ ଷଣ୍ଢକୁ ପାଇ କି ? ଢଗ] ଦେ· ବିଣ—ଶ୍ରେଷ୍ଠ—Best. [ଉ—ପଡ଼େ ପେ ଥିଲେ ମାରକଣ୍ଡ ମୁନି କୁଳରେ ଅତି ଷଣ୍ଢ । ପ୍ରାଚୀ—ଜଗନ୍ନାଥ ମାହାତ୍ମ୍ୟ ।]

ଷଣ୍ଢ ଗୋବର—ଦେ· ବି—୧ । ବୃଷଭୋତ୍ସୃଷ୍ଟ ଗୋମୟ—1. Dung Shandha gobara of a bull. ୨ । (ଲକ୍ଷଣାର୍ଥ) ସାଁଢେବଗୋବର ସାଁଢ଼କାଗାବର (ଏହାଦ୍ୱାରା ଯଜ୍ଞ ଭୂମିଆଦି ଲିପିବା ନିଷିଦ୍ଧ ଥିବାରୁ) ଅବ୍ୟବହାର୍ଯ୍ୟ ପଦାର୍ଥ—2. A useless thing

ଷଣ୍ଢ ତିଳ—ସଂ·ବି—ଷଣ୍ଢତିଳ (ଦେଖ)—Shanda tila (See). Shandha tila ଦେ· ବି—ନପୁଂସକ—An eunoch. [ଉ—ଏ ବାହାରେ ବଚନେ ପାଣ୍ଡବଙ୍କୁ ଗାଳି, ଦେଲ ବାହି ହୋଇଣ ଷଣ୍ଢ ତିଳ ବୋଲି । କୃଷ୍ଣସିଂହ· ମହାଭାରତ· ଦ୍ରୋଣ

ଷଣ୍ଢ ପଛଆଡ଼ୁ ପାଇବା—ଦେ· ପ୍ରବଚନ—(ଲକ୍ଷଣାର୍ଥ) ଲାଭ ଆଶାରେ Sandha pachha ardu paiba କୌଣସି କାର୍ଯ୍ୟରେ କଚୁପୋଡାପାଓଯା ଗୋଲାୱୀ ନକାଆଇଁଦ ନା ଲଗିବା ପରେ ଆଶାଲୁବ୍ଧ ବ୍ୟକ୍ତି) ନିଷ୍ଫଳ ହେବା—To be baffled in one's hope of gain or success. [ବି—ବକାଶ୍ରପଡ଼ଂ୍ୟାଶା ନ୍ୟାୟ ଦେଖ ।]

ଷଣ୍ଢ ବନିବା (ହେବା)—ଦେ· କ୍ରି—(ଗାଈ ଦଳ ମଧ୍ୟରେ ଏକ ମାତ୍ର Shandha banibā(hebā) ଷଣ୍ଢ ଭଳି) କୌଣସି ସ୍ଥାନରେ ଷାଁଡହଓୟା ସାଙବନନା ଏକାଧିପତି ହେବା ବା ଏକାଧିପତ୍ୟ କରିବା—To lord over many peopl.

ଷଣ୍ଢା(ଣ୍ଢେ)ଇବା—ଦେ· କ୍ରି (ସଂ: ଷଣ୍ଢ=ବୃଷ ଶବ୍ଦରୁ)—୧ । (ସକର୍ମକ) Shandhā(ndhe)ibā (ଋତୁମତୀ ଗାଈକୁ ନେଇ ବଳଷାଁଡ଼ା ସାଁଡିୟାନା ପବାକ ଷଣ୍ଢ ନିକଟରେ ଯୁଟାଇବା ଅର୍ଥରୁ) କୌଣସି ବ୍ୟକ୍ତିକୁ ତାର ଇଚ୍ଛା ବିରୁଦ୍ଧରେ କୌଣସିଠାରେ ବା କୌଣସି କାର୍ଯ୍ୟରେ ଯୁଟାଇବା—1. To

force a person into some place to work against his wish. ୨ । (ଅକର୍ମକ॰ ଷଣ୍ଢ୍=ନପୁଂସକ)—(ବୃକ୍ଷାଦି) ବନ୍ଧ୍ୟା ହୋଇ ହୃଷ୍ଟ-ପୁଷ୍ଟ ହେବା—3. To grow iistily or over luxuriantly (said of barren trees.)

ଷଣ୍ଢିଆ—ଦେ. ବିଣ—ଷଣ୍ଡିଆ (ଦେଖ)—
Shandhiā Shandiā (See)

ଷଣ୍ଢିତା—ସଂ. ବି—ଯୋନି ରୋଗ ବିଶେଷ (ବିଶ୍ୱକୋଷ)—A
Shandhitā kind of vaginal disease. [ଦ୍ର—ଏ ରୋଗରେ ସ୍ତ୍ରୀମାନଙ୍କର ଋତୁରୋଧ ଓ ସ୍ତନ କ୍ଷୁଦ୍ର ହୁଏ ଓ ମୈଥୁନ କାଳେ ଯୋନି ଖରସ୍ପର୍ଶ ବୋଧ ହୁଏ-ଥାଏ।]

ଷଣ୍ଣବତ—ସଂ. ବିଣ—(ଷଟ୍+ନବତି+ଅ)—ଷଣ୍ଣବତି ସଂଖ୍ୟାର
Shannabata ପୂରଣ—Sixtyninth.
(ଷଣ୍ଣବତିତମ—ଅନ୍ୟରୂପ)

ଷଣ୍ଣବତି—ସଂ. ବି ଓ ବିଣ (ଷଟ୍ ଅଧିକ ନବତି)—ଷଣ୍ଣବତି—
Shannabati Sixtynine.

ଷଣ୍ମନୁ—ସଂ. ବି (ଷଟ୍+ମନୁ)—ସୃଷ୍ଟିର ଆଦ୍ୟରୁ ଏକାଦିକ୍ରମେ
Shanmanu ରାଜତ୍ୱ କରୁଥିବା ୬ ଜଣ ମନୁ—Six successive progenitors of the mankind. [ଦ୍ର—ସୃଷ୍ଟିର ପ୍ରତି କଳ୍ପରୁ ୧୪ ଜଣ ମନୁ ଭୋଗ କରନ୍ତି । ବର୍ତ୍ତମାନ ୭ମ ମନୁ ବା ବୈବସ୍ୱତ ମନୁଙ୍କର ଅଷ୍ଟାବିଂଶ ଯୁଗର ଦଶମ ଭାଗ ଭୋଗ ହେଉଅଛି । ଷଣ୍ମନ୍ୱତୀତ ତଳେ ଟୀକା ଦେଖ)

ଷଣ୍ମନ୍ୱତୀତ—ସଂ. ବିଣ (ଷଟ୍+ମନୁ+ଅତୀତ)—ଛଅ ଜଣ ମନୁଙ୍କ
Shanmanwatita ରାଜତ୍ୱ ଅତୀତ ବା ଶେଷ ହୋଇଥିବା (କାଳ ବା କଳ୍ପାଂଶ)—(The time) After the life time of six Manus. [ଦ୍ର—ଯେଉଁ ମନୁ ୬ ଜଣ ଏଥି ପୂର୍ବରୁ ଭୋଗ କରି ଅଛନ୍ତି, ସେମାନଙ୍କ ନାମ—୧ । ସ୍ୱାୟମ୍ଭୁବ, ୨ । ସ୍ୱାରୋଚିଷ, ୩ । ଉତ୍ତମ ୪ । ତାମସ; ୫ । ରୈବତ ଓ ୬ । ଚାକ୍ଷୁଷ । ବର୍ତ୍ତମାନ ୭ମ ବୈବସ୍ୱତ ମନୁ ଭୋଗ କରୁ ଅଛନ୍ତି ।]

ଷଣ୍ମାସ—ସଂ. ବି (ଷଟ୍+ମାସ)—ଛଅ ମାସ—
Shanmāsa six months.

ଷଣ୍ମାସ୍ୟ—ସଂ. ବିଣ—(ଷଣ୍ମାସ+ଯ)—ଯାହା ଛଅ ମାସରେ ସାଧ୍ୟ—
Shanmāsya Performable in six months.
(ଷଣ୍ମାସିକ—ଅନ୍ୟରୂପ)

ଷଣ୍ମୁଖ—ସଂ. ବି (ଷଟ୍=ଛଅ+ମୁଖ ଯାହାର; ବହୁବ୍ରୀହି)—ଷଡ଼ାନନ
Shanmukha (ଦେଖ)—Shardānana (See)

ଷତ୍ୱ ବିଧାନ(ବିଧି)—ସଂ.ବି (ବ୍ୟାକରଣ)—ବ୍ୟାକରଣର ନିୟମବିଶେଷ;
Shatwa bidhāna(bidhi) ଯେଉଁ ନିୟମଦ୍ୱାରା 'ସ' ସ୍ଥାନରେ 'ଷ' ହୁଏ—The rule of Sanskrit Grammar by which the dental 'S' becomes cerebral 'Sh'. [ଦ୍ର—ଷତ୍ୱବିଧିବିଷୟରେ ଅନେକ ସୂତ୍ର ଅଛି, ସ୍ଥୂଳରେ ୩ ଗୋଟି ସୂତ୍ର ଏଠାରେ ଲେଖାଯାଉଅଛି:—

୧—ଅ, ଆ ଭିନ୍ନ ସ୍ୱର ବର୍ଣ୍ଣ,କ ଓ ର ପରସ୍ଥିତ ପଦ-ମଧ୍ୟଗତ ପ୍ରତ୍ୟୟ, ଆଦେଶ, ଆଗମ ପ୍ରଭୃତିର ସକାର ଓ ବିସର୍ଗଜାତ 'ସ'କାରର 'ସ' ସ୍ଥାନରେ 'ଷ' ହୁଏ, (ଯଥା—ନି+ସିଧ୍ ଧାତୁ+ଅ=ନିଷେଧ; ନି+ସ୍ଥା ଧାତୁ+ଉର=ନିଷ୍ଠୁର) ।

୨—ଟ ଓ ଠ ପୂର୍ବରେ ଯୁକ୍ତ 'ଶ' ଓ 'ସ' 'ଷ' ହୁଏ—(ଯଥା—ପ୍ର+ବିଶ୍ ଧାତୁ+ତ=ପ୍ରବିଷ୍ଟ) ।

୩—ଉପସର୍ଗ, ଇ ଓ ଉକାର ପରସ୍ଥିତ 'ସ୍ଥା' ଧାତୁର 'ସ' ଓ ସୂପ ଓ ସମ୍ ଧାତୁର 'ସ' 'ଷ' ହୁଏ ।]

ଷର୍ଷପୀ—ସଂ. ବି—ଖଞ୍ଜନାକୃତି ପକ୍ଷୀ ବିଶେଷ—
Sharshapi A species of bird.

ଷଷ—ସଂ. ବି ଓ ବିଣ (ସଂଖ୍ୟାବାଚକ ଶବ୍ଦ)—ଷଟ୍ (ଦେଖ)
Shash Shat. (See)

ଷଷ୍ଟ—ସଂ. ବିଣ—ଷଷ୍ଟି ସଂଖ୍ୟା ସମ୍ବନ୍ଧୀୟ (ବିଶ୍ୱକୋଷ)—Relating
Shashta to the number sixty. ସଂ. ବି-ଷଷ୍ଟି ସଂଖ୍ୟା—The number sixty.

ଷଷ୍ଠ(ଷ୍ଟ)ମ—ଗ୍ରା. ବିଣ (ପ୍ରାଚୀନ ପଦ୍ୟ)—ଷଷ୍ଠ (ଦେଖ)—
Shasht(shtha)ma Shashtha. (See) [ଉ—ଷଷ୍ଟମ ଷଷ୍ଠ ଗ୍ରନ୍ଥ ବର୍ଣ୍ଣିଲେ, କେବଳ କେବଳ ଗ୍ୟାନ । ପ୍ରାଚୀ. ଉତ୍ତରସପ୍ତମ ମଞ୍ଜରୀ; ଷଷ୍ଠମ ପାବଛ ଗୋଟା ଜାଗୁଣ ତା ଭବି । ପ୍ରାଚୀ. ବ୍ରହ୍ମନିରୂପଣ. ଗୀତା । ]

ଷଷ୍ଟି । ସଂ. ବି ଓ ବିଣ (ଷଷ୍+ଦଶନ୍+ତି-ନିପାତନ)—ଷାଠିଏ—
Shashti Sixty. ଦେ. ବି—ଷଷ୍ଠୀ ତିଥି—The 6 th day
ଷଷ୍ଟି ଛଠୀ of a lunar fort night.

ଷଷ୍ଟିକ—ସଂ. ବିଣ (ଷଷ୍ଟି=୬୦+କ)—୧ । ଷଷ୍ଟି ସଂଖ୍ୟକ—
Shashtika 1. Numbering sixty. ୨ । ଷଷ୍ଟି ସଂଖ୍ୟା-ଦ୍ୱାରା କୀତ—2. Purchased at the price of 60 (coins etc). ସଂ. ବି—୬୦ ଦିନରେ ପାଚିବା ଧାନ; ଷାଠିଏ ଧାନ—A kind of paddy which ripens in 60 days after sowing.

ଷଷ୍ଟିକ ଧାନ୍ୟ—ସଂ. ବି (୬୦ ଦିନ ବା ୬୦ ରାତିରେ ପକ୍ୱ ହୁଏ
Shashtika dhānya ବୋଲି ଏହି ନାମ)—ଶାରଦ ଧାନ୍ୟ-
ସଂ.—ଷଷ୍ଟିକ, ଷଷ୍ଟିଶାଳି, ବିଶେଷ—A sort of autum-
ସ୍ନିଗ୍ଧତଣ୍ଡୁଳ, ଷଷ୍ଟିକା, nal paddy ripening in 60
ଷଷ୍ଟିବାସରଜ(କ) days. [ଦ୍ର—ଗର୍ଭସ୍ଥ ଅବସ୍ଥାରେ
ষେଠେଧାନ, ଯେଉଁ ଧାନ୍ୟ ୬୦ ଦିନରେ ପାଚେ ତାହାକୁ ଷଷ୍ଟିକ ଧାନ୍ୟ କହନ୍ତି ।

ଷାଠିଅ(କା)ଧାନ
ଷଠିକା(ଆ)ଧାନ } —ଦେ. ରୂପ

ଏହା ଗୌର (ଧଳା) ଓ କାଳ (କଳା) ଭେଦରେ ଦୁଇ ପ୍ରକାର । ଏହା ରୁଚିକର, ଶୀତଳ, ଲଘୁପାକ, ମଳରୋଧକ, ବାତ ପିତ୍ତନାଶକ ଓ ଶାଳିଧାନ୍ୟ ପରି ଗୁଣବିଶିଷ୍ଟ । ଶ୍ୱେତ ଧାନ୍ୟ କାଳଧାନ୍ୟ ଅପେକ୍ଷା ଅଧିକ ଗୁଣବିଶିଷ୍ଟ । ଏହି ଦୁଇ

ପ୍ରକାର ଧାନ୍ୟର ନାନା ଜାତି ମଧ୍ୟ ଅଛି । ଏହି ଧାନର ଚାଉଳରୁ ଶରତ୍କାଳୀନ ପାର୍ବଣ ଦ୍ବାରେ ନୈବେଦ୍ୟ ପ୍ରସ୍ତୁତ ହେବା ଉଚିତ ବୋଲି ଶାସ୍ତ୍ରରେ ଉପଦେଶ ଅଛି । ଭାବ-ପ୍ରକାଶରେ ଲେଖାଅଛି ଯେ, ଯେଉଁ ଅନ୍ନ ଉଦରସ୍ଥ ହେବା ମାତ୍ରେ ପରିପାକ ହୁଏ ତାକୁ ଷଷ୍ଟିକଧାନ କହନ୍ତି । ଏ ଧାନ ଷଷ୍ଟିକ, ଶତପୁଷ୍ପ, ପ୍ରମୋଦକ, ମୁକୁନ୍ଦକ ଓ ମହା-ଷଷ୍ଟୀକ ନାମ ଭେଦରେ ଅନେକପ୍ରକାର । ଏହାକୁ ବ୍ରୀହି-ଧାନ୍ୟ ମଧ୍ୟ ବୋଲାଯାଏ । କାରଣ ବ୍ରୀହିଧାନ୍ୟର ସମସ୍ତ ଲକ୍ଷଣ ଏଥିରେ ଲକ୍ଷିତ ହୁଏ । ବିଶ୍ୱକୋଷ ।]

ଷଷ୍ଟିକା—ସଂ. ବି. ସ୍ତ୍ରୀ (ଷଷ୍ଟିକ+ଆ)—୧ । ଷଷ୍ଠୀ (ଦେଖ)—
Shashṭikā 1. Shashṭhī (See) ୨ । ଷଷ୍ଟିକ ଧାନ୍ୟ ମଧ୍ୟରୁ ଉତ୍କୃଷ୍ଟ ଧାନ୍ୟ ବିଶେଷ—2. A sort of excellent Shashṭika paddy. [ଦ୍ର—ଷଷ୍ଟିକ ଧାନ୍ୟମାନଙ୍କ ମଧ୍ୟରେ ଷଷ୍ଟିକା ଶ୍ରେଷ୍ଠ । ଏହା ଲଘୁ, ସ୍ନିଗ୍ଧ, ତ୍ରିଦୋଷ-ନାଶକ, ମଧୁର ରସ, ମୃଦୁସ୍ପର୍ଶ୍ୟ, ଧାରକ, ବଳକର, ଜ୍ୱର-ନାଶକ ଏବଂ ରକ୍ତଶାଳ ପରି ଗୁଣଯୁକ୍ତ—ବିଶ୍ୱକୋଷ ।]

ଷଷ୍ଟିକାନ୍ନ—ସଂ. ବି—ଷଷ୍ଟିକ ଧାନ୍ୟର ଚାଉଳରୁ ପକ୍ୱ ଅନ୍ନ—
Shashṭikānna Boiled rice from Shashṭika paddy. [ଦ୍ର—ଏହା ଅଗ୍ନିବର୍ଦ୍ଧକ, ପାଚକ, ବଳ-କାରକ, ତ୍ରିଦୋଷନାଶକ ଏବଂ କଫ, ନେତ୍ରରୋଗ, କ୍ଷୟ ରୋଗ ଓ ବିଷଦୋଷରେ ପଥ୍ୟ ।]

ଷଷ୍ଟିକୀ—ସଂ. ବି. ସ୍ତ୍ରୀ—ଷଷ୍ଟିକ ଧାନ୍ୟ (ଦେଖ)
Shashṭikī Shshṭika dhānya. (See)

ଷଷ୍ଟିକ୍ୟ—ସଂ. ବି (ଷଷ୍ଟିକ+ଯ)—ଷଷ୍ଟିକ ଧାନ୍ୟ ଉତ୍ପନ୍ନ ହେବାର
Shastikya ଉପଯୁକ୍ତ କ୍ଷେତ୍ର—A field fit for growing the shastika paddy.

ଷଷ୍ଟିଜ(କା)—ସଂ. ବି (ଷଷ୍ଟି+ଜନ୍ ଧାତୁ+କର୍ତ୍ତୃ. ଅ)—ଷଷ୍ଟିକଧାନ୍ୟ
Shashṭija(kā) (ଦେଖ)—Shastika dhānya. (See)
(ଷଷ୍ଟିବାସରଜ [ବି], ଷଷ୍ଟିଶାଳ—ଅନ୍ୟରୂପ)

ଷଷ୍ଟିତନ୍ତ୍ର (ବିଦ୍ୟା)—ସଂ. ବି—ସାଂଖ୍ୟ ଦର୍ଶନ ଶାସ୍ତ୍ର (ବିଶ୍ୱକୋଷ)
Shashṭi tantra (bidyā) The sāmkhya philosophy.

ଷଷ୍ଟିତମ—ସଂ. ବିଣ (ଷଷ୍ଟି+ପୂରଣାର୍ଥେ ତମ)—୬୦ ସଂଖ୍ୟାର
Shashṭitama ପୂରକ—Sixtieth.
(ଷଷ୍ଟିତମା—ସ୍ତ୍ରୀ)

ଷଷ୍ଟିଧା—ସଂ, କ୍ରି. ବିଣ (ଷଷ୍ଟି+ପ୍ରକାରାର୍ଥେ. ଧା)—ଷାଠିଏ ପ୍ରକାରେ—
Shashṭidhā In sixty ways.

ଷଷ୍ଟିବର୍ଷୀ—ସଂ. ବିଣ. ପୁଂ (ଷଷ୍ଟିବର୍ଷ+ଇନ୍; ୧ମା. ୧ବ)—ଷାଠିଏ
Shashṭibarshī ବର୍ଷ ବୟସ୍କ (ବିଶ୍ୱକୋଷ)—
(ଷଷ୍ଟିବର୍ଷିଣୀ—ସ୍ତ୍ରୀ) Aged sixty years.

ଷଷ୍ଟିମତ୍ତ—ସଂ. ବି (ଷଷ୍ଟି=୬୦+ମତ୍ତ=ମଦମତ୍ତ; ଯେ ୬୦ ବର୍ଷ
Shashṭimatta ବୟସରେ ମତ୍ତ ବା ଜୀବନର ପୂର୍ଣ୍ଣାବସ୍ଥା ପ୍ରାପ୍ତ ହୁଏ)—ହସ୍ତୀ; ଗଜ; ହାତୀ—Elephant.

ଷଷ୍ଟିଲତା—ସଂ. ବି—ଭ୍ରମରମାରୀ (ଦେଖ)
Shasti latā Bhramaramārī. (See)

ଷଷ୍ଟି ସହସ୍ର—ସ. ବି. ଓ ବିଣ—୬୦ ହଜାର—
Shashṭi sahasra Sixty thousand.

ଷଷ୍ଟି ହାୟନ—ସ ବି (ଷଷ୍ଟି=୬୦+ହାୟନ=ବର୍ଷ)—୧ । ୬୦ ବର୍ଷ—
Shashṭi hāyaka 1. Sixty years. ୨ । ଗଜ; ହସ୍ତୀ (ଏ ୬୦ ବର୍ଷରେ ଅର୍ଦ୍ଧ ଜୀବନ ଭୋଗ କରିବାରୁ ବା ପୂର୍ଣ୍ଣବୟସ୍କ ହେବାରୁ)—2. Elephant. ୩ । ଧାନ୍ୟ ବିଶେଷ—3. A species of paddy ସ. ବିଣ.
[ଷଷ୍ଟିହାୟନା—ସ୍ତ୍ରୀ] ପୁଂ—୬୦ ସଂଖ୍ୟକ ବର୍ଷ ବୟସ୍କ—
Aged 60 years.

ଷଷ୍ଟ୍ୟୁତ୍ତର ଶତ—ସ. ବି. ଓ ବିଣ—ଏକଶତ ଷାଠିଏ; ଷଠାଏହେ—
Shashtyuttara śata One hundred and sixty.
[ଦ୍ର—ଏହାପରି ଷଷ୍ଟ୍ୟୁତ୍ତର ଦ୍ୱିଶତ, ଷଷ୍ଟ୍ୟୁତ୍ତରତ୍ରିଂଶତ ଆଦି ଶବ୍ଦ ହୁଏ । ]

ଷଷ୍ଠ—ସ. ବିଣ ( ଷଷ୍=୬+ପୂରଣାର୍ଥେ ଥ, 'ଥ' ସ୍ଥାନରେ ସନ୍ଧିରେ
Shashtha 'ଠ' ହୁଏ)—ଛଅ ସଂଖ୍ୟାର ପୂରକ—Sixth.
( ଷଷ୍ଠକ—ଅନ୍ୟରୂପ ) [ ଦ୍ର—ଏହାର ସଂକ୍ଷିପ୍ତ ଆକାର '୬ଷ୍ଠ' । ]
[ ଷଷ୍ଠୀ, ଷଷ୍ଠୀକା—ସ୍ତ୍ରୀ ]

ଷଷ୍ଠ କାଳ—ସ. ବି—୧ । ଛଅ ସଂଖ୍ୟାର ପୂରକ ସମୟ (ବିଶ୍ୱକୋଷ)—
Shashṭha kāla The 6th period. ଦେ. ବି ( ସ. ଷଷ୍ଠାନ୍ନକାଳ )—ଷଷ୍ଠାନ୍ନକାଳ ( ଦେଖ )—Shashṭhā-nnakāla ( See ) [ ଉ—ନିତି ଶାବକୀ ମନେ ଲକ୍ଷେ ହୋମ କର । ଷଷ୍ଠକାଳେ ଭୋଜନ କରନ୍ତି ଦଣ୍ଡଧାରୀ —କୃଷ୍ଣସିଂହ. ମହାଭାରତ. ବନ । ]

ଷଷ୍ଠାନ୍ନ କାଳ—ସଂ. ବିଣ ( ଷଷ୍ଠ+ଅନ୍ନ+କାଳ )—ଯେଉଁ ବ୍ୟକ୍ତି
Shashṭhānna kāla ବା ପ୍ରାଣୀ ଦୁଇ ଦିନ ଅନାହାର ରହି (ଷଷ୍ଠାନ୍ନ କାଳକାଳକ—ଅନ୍ୟ ବିଣ, ରୂପ) ତୃତୀୟ ଦିନ ସାୟଂ-(ଷଷ୍ଠାନ୍ନ କାଳକ—ଅନ୍ୟ ବିଶେଷ୍ୟରୂପ) କାଳରେ ଥରେ ଖାଏ—
(a person or animal) Fasting for 2 days and breaking his fast on the third evening. ସ. ବି—ଦୁଇ ଦିନ ଅନାହାରରେ ରହି ତୃତୀୟ ଦିନ ସାୟଂକାଳରେ ଥରେ ଭୋଜନ ( ବିଶ୍ୱକୋଷ )—
Taking food on the 3rd evening after fasting for 2 whole days.

ଷଷ୍ଠାନ୍ନ କାଳକ—ସଂ. ବିଣ ( ଷଷ୍ଠାନ୍ନ କାଳ+ଯୁକ୍ତାର୍ଥେ ଇକ )—ଦୁଇ
Shashṭhānna kālika ଦିନ ଉପବାସ ପରେ ତୃତୀୟ ଦିନ
[ ଷଷ୍ଠାନ୍ନ କାଳକା—ସ୍ତ୍ରୀ ] ସନ୍ଧ୍ୟାରେ ଏକମାତ୍ର ଭୋଜନକାରୀ (ବିଶ୍ୱକୋଷ)—Eating on the 3rd evening after fasting for 2 days.

ଷଷ୍ଠାଲ କାଳକ—ସଂ. ବିଣ. ପୁଂ—ଯେଉଁ ବ୍ୟକ୍ତି ଦୁଇ ବା ତିନି ଦିନ
Shashṭhāli kālaka ପରେ ଥରେ ଖାଏ ( ବିଶ୍ୱକୋଷ )—
Taking food at intervals of 2 or 3 days.

**ଷଷ୍ଠାଷ୍ଟମ**—ସଂ. ବିଣ—ଛଅ ସ୍ଥାନୀୟ ଓ ଅଠ ସ୍ଥାନୀୟ—Sixth and
**Shashṭhāshṭama** eighth. [ ଦ୍ର—ଜ୍ୟୋତିଷ ଗଣନା ମତେ ବର୍ଷଫଳର ରାଶିମାନଙ୍କର ପରସ୍ପରଠାରୁ ଷଷ୍ଠ ଓ ଅଷ୍ଟମ ସ୍ଥାନରେ ସ୍ଥିତି ଜନିତ ଅଶୁଭ ଯୋଗକୁ ଅନ୍ୟୋନ୍ୟ-ଷଷ୍ଠାଷ୍ଟମ କହନ୍ତି । ମହାଦଶା ଓ ଅନ୍ତର୍ଦ୍ଦଶାରେ ଗ୍ରହମାନଙ୍କର ଅବସ୍ଥାନରେ ମଧ୍ୟ ଷଷ୍ଠାଷ୍ଟମ ଯୋଗ ହୁଏ । ]

**ଷଷ୍ଠିକା**—ସଂ. ବି. ସ୍ତ୍ରୀ ( ଷଷ୍ଠ+କ+ଆ )—ଷଷ୍ଠୀ ୨ ( ଦେଖ )
**Shashṭhikā** Shashṭhī 2. ( See )

**ଷଷ୍ଠି ମତ୍ତ**—ସଂ. ବି [ଷଷ୍ଟିନ୍=ଛଅ କର୍ଣ୍ଣ+ମତ୍ତ=ବି. ବି; ଛଅ ବର୍ଷ
**Shasṭhi matta** ବୟସରେ ଯାହାର ମଦ ଧାର ସରତି ହୁଏ )—ହାତୀ; ଗଜ—Elephant (ପ୍ରକୃତିବାଦ).

**ଷଷ୍ଟିହାୟନ**—ସଂ. ବି (ଷଷ୍ଟିନ୍=ଛଅ+ହାୟନ; ବର୍ଷ=ସେତେବେଳେ
**Shasṭhi hāyana** ହାତୀ ସମ୍ପୂର୍ଣ୍ଣ ବୟଃସ୍ଥ ହେବାରୁ)—୧। ହାତୀ
1. Elephant. ୨ । ଏକପ୍ରକାର ଧାନ—
2. A kind of paddy. ୩ । ଛଅ ବର୍ଷ—
Six years (ପ୍ରକୃତିବାଦ)

**ଷଷ୍ଠୀ**—ସଂ. ବି. ସ୍ତ୍ରୀ ( ଷଷ୍ଠ+ଈ )—୧ । କାତ୍ୟାୟନୀ; ଦୁର୍ଗା—
**Shashṭhī** 1. Goddess Durgā. ୨ । ( ପ୍ରକୃତି ବା
ଷାଠି, ଷଷ୍ଠି, ଷଷ୍ଠୀ ବୁଢ଼ୀ ଦୁର୍ଗାଙ୍କର ଷଷ୍ଠାଂଶରୂପା ଥିବାରୁ ଏହି ନାମ )
ଷଷ୍ଠୀ ଷୋଡ଼ଶ ମାତୃକାନ୍ତର୍ଗତ ମାତୃକା ବିଶେଷ; ଷଠି ବୁଢ଼ୀ; ଷଷ୍ଠୀ ଦେବୀ—2. The Goddess protecting infants. [ ଦ୍ର—ଏ ଦୁର୍ଗା ବା ପ୍ରକୃତିଙ୍କ ଷଷ୍ଠୀ କଳା ଓ ସ୍କନ୍ଦ ଭାର୍ଯ୍ୟା; ଏ ଷୋଡଶ ମାତୃକାଙ୍କ ମଧ୍ୟରେ ପ୍ରଧାନ ଦେବୀ ଅଟନ୍ତି । ଏହାଙ୍କର ଅନ୍ୟ ନାମ ଦେବସେନା । ଏହାଙ୍କ ପ୍ରସାଦରେ ପୁତ୍ରପୌତ୍ରାଦି ଲାଭ ହୁଏ । ଏ ଜଗତର ଶିଶୁମାନଙ୍କର ପାଳିକା ଓ ରକ୍ଷାକାରିଣୀ । ପିଲା ଜନ୍ମର 'ଷଠି' ଓ 'ଏକୋଇଶା' ଦିନ ଏହାଙ୍କ ପୂଜା କରାଯାଏ । ଅପୁତ୍ର ବ୍ୟକ୍ତି ଏକବର୍ଷ ଷଷ୍ଠୀଦେବୀଙ୍କ ସ୍ତବ ଶ୍ରବଣ କଲେ ପୁତ୍ରଲାଭ କରେ ଓ ରୁଗ୍ଣ ସନ୍ତାନ ନୀରୋଗ ହୁଏ । ସନ୍ତାନବତୀ ରମଣୀମାନଙ୍କର ପ୍ରତିମାସର ଶୁକ୍ଳ ଷଷ୍ଠୀରେ ନିଜ ନିଜର ସନ୍ତାନଙ୍କ ମଙ୍ଗଳାର୍ଥ ଷଷ୍ଠୀ ବ୍ରତ କରିବା ବିଧେୟ । (ଷଷ୍ଠୀ ୨ୟ ଅର୍ଥ ତଳେ ଟୀକା ଦେଖ ।)

ଶାସ୍ତ୍ରରେ ବର୍ଣ୍ଣିତ ଅଛି ଯେ, ଏ ଭଗବତୀଙ୍କ ଚକ୍ଷୁରେ ସୁନ୍ଦରୀ ଓ ଯୁବତୀ ରୂପ ଧାରଣ କରନ୍ତି ଏବଂ ଶିଶୁମାନଙ୍କ ରକ୍ଷିକାରୂପେ ମାତୃରୂପା, ଦୟାରୂପା, ରକ୍ଷଣରୂପା, ବୃଦ୍ଧ-ରୂପା ଓ ଯୋଗିନୀରୂପା ହୁଅନ୍ତି ।

ସୂତିକାଗାରରେ ଶିଶୁଜନ୍ମର ଷଷ୍ଠ ଦିବସରେ କାନ୍ଥରେ ଏହାଙ୍କର ରୂପ ଗଢ଼ାଯାଇ ବା ପିତୁଳା ସ୍ଥାପିତ ହୋଇ ପୂଜା କରାଯାଏ । ଏ ସୁସ୍ଥପ୍ରଦା, ସୁଖଦା । କଥିତ ଅଛି ଯେ, ଶିଶୁ-ମାନଙ୍କୁ ସର୍ବଦା ଏ ଜଗିଥାଆନ୍ତି ଓ ଶିଶୁ ଶୋଇ ପଡ଼ିଲେ ତାକୁ ଉଠାଇ ଦିଅନ୍ତି ଓ ଶିଶୁ ଶୋଇଲା ବେଳେ ତାକୁ ସ୍ୱପ୍ନ ଦେଖାଇ ହସାନ୍ତି ଓ କନ୍ଦାନ୍ତି । ପ୍ରତି ଶୁକ୍ଳ ଷଷ୍ଠୀରେ ଓ ବିଶେଷତଃ ଭାଦ୍ର ଶୁକ୍ଳ ଷଷ୍ଠୀ ଦିନ ( ଷଠୀ ଓଷାରେ ) ଏହାଙ୍କର ପୂଜା ହୁଏ । ଏହାଙ୍କୁ ଶାଳଗ୍ରାମ ଶିଳାରେ, ଘଟରେ, ବଟମୂଳରେ ପୂଜା କରାଯାଏ ଓ କାନ୍ଥରେ ମାଟିରେ ପିତୁଳା ସ୍ଥାପନ କରି ପୂଜା କରାଯାଏ । ଏହାଙ୍କ ଧ୍ୟାନରେ ଏ 'ଶ୍ୱେତଚମ୍ପକବର୍ଣ୍ଣାଭା, ରତ୍ନଭୂଷଣ ଭୂଷିତା ଓ ପବିତ୍ର ରୂପା' ବୋଲି ବର୍ଣ୍ଣିତ ହୋଇଅଛନ୍ତି ।

ତିଥିକୃତ୍ୟତତ୍ତ୍ୱରେ ଜ୍ୟେଷ୍ଠ ମାସ ଶୁକ୍ଳ ଷଷ୍ଠୀ ବା ଅରଣ୍ୟ ଷଷ୍ଠୀରେ ବର୍ଣ୍ଣିତ ଧ୍ୟାନରେ ଏହାଙ୍କୁ ଦ୍ୱିଭୁଜା, ଯୁବତୀ, ବରାଭୟହସ୍ତା, ଗୌରବର୍ଣ୍ଣା, ବିନ୍ଧ୍ୟବାସିନୀ, ଦିବ୍ୟ ବସ୍ତ୍ର ପରିହିତା, ପୀନୋନ୍ନତପୟୋଧରା ରୂପେ କଳ୍ପନା କରାଯାଇ ଅଛି । ଏ ଦିନ ସ୍ତ୍ରୀମାନେ ତାଳବୃନ୍ତ ଓ ଅନ୍ୟାନ୍ୟ ପୂଜା ଦ୍ରବ୍ୟ ସହ ବନକୁ ଯାଇ ସେଠାରେ ଅରଣ୍ୟ ଷଷ୍ଠୀ ଦେବୀଙ୍କ ପୂଜା, ତଦୁପାଖ୍ୟାନ ଶ୍ରବଣ ଓ ଫଳ ମୂଳାଦି ସେବନ କରିବେ । ଏ ବ୍ରତ କଲେ ସନ୍ତାନ ସନ୍ତତି ଦୀର୍ଘାୟୁଃ ଓ ଐଶ୍ୱର୍ଯ୍ୟଶାଳୀ ହୁଅନ୍ତି । ପୁତ୍ରର ବା କନ୍ୟାର ଜନ୍ମର ୬ଷ୍ଠ ଦିନ ରାତ୍ରିରେ ସୂତିକା ଗୃହରେ ଷଷ୍ଠୀଦେବୀଙ୍କର ଯେଉଁ ପୂଜା ହୁଏ ତାକୁ ସୂତିକା ଷଷ୍ଠୀ ପୂଜା ବୋଲାଯାଏ । ସେ ଦିନ ସନ୍ତାନକୁ ଗୋଟିଏ ବ୍ୟଜନ ଉପରେ ବିଛାଯାଇ ଥିବା ଲୁଗା ଉପରେ ଶୁଆଇ ଷଷ୍ଠୀଦେବୀଙ୍କ ଚରଣରେ ପିଲାକୁ ସମର୍ପଣ କରାଯାଏ । ଷଷ୍ଠୀଦେବୀଙ୍କ ବାହନ କୃଷ୍ଣ ମାର୍ଜାର ଓ ଆବାସ ଅଶ୍ୱତ୍ଥ ବୃକ୍ଷ—ବିଶ୍ୱକୋଷ ।

ଏହାଙ୍କର ଅଷ୍ଟାକ୍ଷର ମନ୍ତ୍ର 'ଓଁ ହ୍ରୀଂ ଷଷ୍ଠୀଦେବ୍ୟୈ ସ୍ୱାହା ।' ବ୍ରହ୍ମବୈବର୍ତ୍ତ ପୁରାଣ ପ୍ରକୃତିଖଣ୍ଡ ୧ମ ଓ ୪୦ଶ ଅଧ୍ୟାୟରେ ଏହାଙ୍କର ପୂଜା, ବିଧି ଓ ସ୍ତୋତ୍ର ଆଦି ବର୍ଣ୍ଣିତ ହୋଇଅଛି । ] ୩ । ( ବ୍ୟାକରଣ ) ବିଶେଷ୍ୟ ଓ ବିଶେଷଣର ବିଭକ୍ତି ବିଶେଷ, ସମ୍ବନ୍ଧ ପଦ ଯୁକ୍ତ ବିଭକ୍ତି—3. (grammar) The 6th case (genitive) of a noun or adjective. [ ଦ୍ର—ଏହାର ଚିହ୍ନ 'ର' । ବ୍ୟାକରଣରେ ଷଷ୍ଠୀ ନାନା ପ୍ରକାର, ତନ୍ମଧ୍ୟରୁ କେତେ ଗୋଟି ଉଦାହରଣ ଏଠାରେ ଦିଆ ଯାଉଅଛି ।

କ । ସମ୍ବନ୍ଧେ ଷଷ୍ଠୀ—ଯଥା—ମୋ ପୁସ୍ତକ; କିଏ କହୁଥାଏ କାହାର କଥା, କାଣିକି ଲାଗିଛି ବିଅର ଚିନ୍ତା ।

ଖ । କର୍ତ୍ତା ସ୍ଥଳରେ ଷଷ୍ଠୀ, ଯଥା—ମୋ ଖାଇବା, ମୋ କାନ୍ଦଣା, ପଲ୍ଲବ ଚଳନ ।

ଗ । ଉଭୟ ପ୍ରାପ୍ତିରେ କର୍ମରେ ଷଷ୍ଠୀ ( ଯେଉଁଠାରେ କର୍ତ୍ତା ଓ କର୍ମ ଉଭୟ ସ୍ଥାନରେ ଷଷ୍ଠୀ ହୋଇ ପାରେ, ଯଥା—ଶିଶୁର ଦୁଗ୍ଧପାନ କିମ୍ବା ଶିଶୁଦ୍ୱାରା ଦୁଗ୍ଧର ପାନକ୍ରିୟା ।

ଘ । ବର୍ତ୍ତମାନ କାଳ ବିହିତ କ୍ତ, କ୍ତ ଆଦି ପ୍ରତ୍ୟୟ ପ୍ରୟୋଗେ କର୍ତ୍ତା ସ୍ଥଳରେ ଷଷ୍ଠୀ, ଯଥା—ମହାତ୍ମା ଗାନ୍ଧୀ ବର୍ତ୍ତମାନ ସର୍ବ୍ୱଜଗତରେ ସମସ୍ତଙ୍କର ବିଦିତ ଅଟନ୍ତି; ଏ ପୁସ୍ତକ ମୋର ପାଠ୍ୟ ।

ଙ । କର୍ମ ସ୍ଥଳରେ ଷଷ୍ଠୀ; ଯଥା—ଗୁରୁଙ୍କ ସେବା; ବୈରୀରତର୍ଯ୍ୟା ।

ଚ । ନିମିତ୍ତାର୍ଥ ଶବ୍ଦ ଯୋଗେ ଷଷ୍ଠୀ, ଯଥା—ତାହାଙ୍କ ଲାଗି ମୁଁ ଯୋଗୀ ହୋଇଯିବ; ତାଙ୍କ ପାଇଁ ସିନା ମୁଁ ଏଠାକୁ ଆସିଛି ।

ଛ । ହେତ୍ୱର୍ଥ ଶବ୍ଦ ଯୋଗେ ଷଷ୍ଠୀ, ଯଥା—ତାଙ୍କ ହେତୁ ମୁଁ ଜଗତରେ ବିଖ୍ୟାତ ହେଲି ।

ଜ । ତୁଲ୍ୟାର୍ଥ ଶବ୍ଦ ଯୋଗେ ଷଷ୍ଠୀ, ଯଥା—ସେ ତାଙ୍କ ତୁଲ୍ୟ ବଳବାନ୍ ।

ଝ । ଦିଗ ବା ଅବସ୍ଥିତିବାଚକ ଆଗ ପଛ ଆଦି ପ୍ରୟୋଗ ସ୍ଥଳରେ, ଯଥା—ମନ୍ଦିରର ଭିତରରେ, ତାଙ୍କ ସମ୍ମୁଖରେ, ରଜାଙ୍କ ପଛରେ ଲୋକେ ଯାଉଛନ୍ତି ।

ଞ । କବିତାରେ ଷଷ୍ଠୀ ( କର୍ତ୍ତାର ବୋଲିବା ଇଚ୍ଛାନୁସାରେ ଅନ୍ୟ ବିଭକ୍ତି ସ୍ଥଳରେ ମଧ୍ୟ ଷଷ୍ଠୀ ହୁଏ ) ଯଥା—ତାର ମୋର ଏକାଠେଇଁ ଗଲୁଁ; ମୁରଲି ! ତୋର ଶରଣ ଗଲି ରେ (ସଙ୍ଗୀତ);ସେ ଦିନର ଭିକାରୀ ଖାଉଛି; ମେଘ ମନ୍ଦ୍ର ଥିବର ଧ୍ୱନିଲି ଆକାଶର—ମଧୁସୂଦନ. ନଦୀ ପ୍ରତି ।

ଟ । ଅଭେଦେ ଷଷ୍ଠୀ, ଯଥା—ଫେଣ୍ଟ ଚନ୍ଦ୍ରାର ଲୋଚନ କର କର ନିରୀକ୍ଷଣ;ଧଳର ଏ ମର କଳେବର—ମଧୁସୂଦନ ଜୀବନଚନ୍ଦ୍ରା ।

ଠ । ବିଶେଷଣ ଷଷ୍ଠୀ, ଯଥା—ସନ୍ତାପର ସିଂହାସନ ହେଲା ସିନା ଲଭ—ରାଧାନାଥ. ମହାଯାତ୍ରା ।

୪ । ଚନ୍ଦ୍ରଙ୍କର ହ୍ରାସ ଓ ବୃଦ୍ଧିଜନିତ ଷଷ୍ଠ କଳାଯୁକ୍ତ ତିଥି—4. The 6th day of a lunar fortnight. [ଦ୍ର—ଏହା ଶୁକ୍ଳ ଓ କୃଷ୍ଣ ଭେଦରେ ଦୁଇ ପ୍ରକାର । ଶୁକ୍ଳପକ୍ଷରେ ଶୁକ୍ଳା ଷଷ୍ଠୀ ବା ଶୁକ୍ଳ ଷଷ୍ଠୀ ଓ କୃଷ୍ଣ ପକ୍ଷରେ କୃଷ୍ଣା ଷଷ୍ଠୀ ବା କୃଷ୍ଣ ଷଷ୍ଠୀ ।

ସାଧାରଣତଃ କୃଷ୍ଣପକ୍ଷର ତିଥିମାନଙ୍କରେ ବ୍ରତ ଓ ପୂଜା ଆଦିର ବିଧାନ ନାହିଁ । ଶୁକ୍ଳ ଷଷ୍ଠୀରେ ବ୍ରତ, ପୂଜା ଓ ଉପବାସାଦି ବିଧେୟ ।

ସ୍କନ୍ଦପୁରାଣରେ ପ୍ରତି ମାସର ଶୁକ୍ଳପକ୍ଷର ଷଷ୍ଠୀମାନଙ୍କର ଭିନ୍ନ ଭିନ୍ନ ନାମ ଅଛି । ଯଥା—

ବୈଶାଖ ମାସର (ଶୁକ୍ଳ)—ଚନ୍ଦନୀ ଷଷ୍ଠୀ ।

ଜ୍ୟେଷ୍ଠ (ଶୁକ୍ଳ)—ଅରଣ୍ୟ ଷଷ୍ଠ ବା ଶ ତଳ ଷଷ୍ଠୀ (ଶିବପାର୍ବତୀଙ୍କ ବିବାହ ଉତ୍ସବ ବା ଦେବ ବିଭା); ବଙ୍ଗଦେଶରେ ଏ ଷଷ୍ଠୀର ନାମ 'ଜାମାଇ ଷଷ୍ଠୀ' ।

ଆଷାଢ଼ (ଶୁକ୍ଳ)—କାର୍ଦ୍ଦମୀ ଷଷ୍ଠୀ ।

ଶ୍ରାବଣ (ଶୁକ୍ଳ)—ଲୁଣ୍ଠନା ଷଷ୍ଠୀ ।

ଭାଦ୍ର (ଶୁକ୍ଳ)—ଚପେଟା ଷଷ୍ଠୀ, ମନ୍ଥନ ଷଷ୍ଠୀ, ଷଷ୍ଠୀ ଦେବୀଙ୍କ ପୂଜା (ଷଠୀ ଓଷା) ।

ଆଶ୍ୱିନ—(କୃଷ୍ଣ)—ଘାଃ ଷଷ୍ଠୀ (ଗଜ ପୂଜା) ।

ଆଶ୍ୱିନ (ଶୁକ୍ଳ)—ଦୁର୍ଗା ଷଷ୍ଠୀ ( ଦୁର୍ଗାଙ୍କର ଶାରଦୀୟା ମହାପୂଜାର ଅଧିବାସ) ।

କାର୍ତ୍ତିକ (ଶୁକ୍ଳ)—ନାଡ଼ୀ ଷଷ୍ଠୀ (ସ୍କନ୍ଦ ପୂଜା)

ମାର୍ଗଶିର (ଶୁକ୍ଳ)—ମୂଳକ ଷଷ୍ଠୀ; ପ୍ରାବରଣ ବା ଓଢ଼ଣୀ ଷଷ୍ଠୀ; ଗୁହ ଷଷ୍ଠୀ ।

ପୁଷ [ଶୁକ୍ଳ]—ଅନ୍ନ ଷଷ୍ଠୀ [ଲକ୍ଷ୍ମୀ ପୂଜା] ।

ମାଘ [ଶୁକ୍ଳ]—ଶୀତଳା ଷଷ୍ଠୀ ।

ଫଗୁଣ [ଶୁକ୍ଳ]—ଗୋ ଷଷ୍ଠୀ ।

ଚୈତ୍ର (ଶୁକ୍ଳ)—ଅଶୋକ ଷଷ୍ଠୀ, ବାସନ୍ତୀ ଷଷ୍ଠୀ ବା ସ୍କନ୍ଦ ଷଷ୍ଠୀ ( କାର୍ତ୍ତିକେୟ ପୂଜା ଓ ଉପବାସ ।)

ମତାନ୍ତରେ ଫାଲ୍‌ଗୁନ କୃଷ୍ଣ ଷଷ୍ଠୀକୁ ସ୍କନ୍ଦ ଷଷ୍ଠୀ ବୋଲାଯାଏ । ଷଷ୍ଠରେ ଦେହରେ ତେଲ ଲଗାଇବା ନିଷିଦ୍ଧ; ଷଷ୍ଠୀରେ ଯାତ୍ରା କଲେ ଲୋକ ବ୍ୟାଧିଯୁକ୍ତ ହୁଏ । ଷଷ୍ଠୀ ତିଥିରେ ଜାତ ବ୍ୟକ୍ତି ବିଦ୍ୱାନ୍, ବଳିଷ୍ଠ, ଚତୁର, ସୁକୀର୍ତ୍ତି, ପ୍ରଲମ୍ବବାହୁ, ବ୍ରଣାଙ୍କିତ ଗାତ୍ର, ସତ୍ୟପ୍ରତିଷ୍ଠ, ଧନ-ପୁତ୍ରଯୁକ୍ତ ଓ ଚିରାୟୁ ହୁଅନ୍ତି ।

ଷଷ୍ଠୀ ତତ୍‌ପୁରୁଷ—ସଂ. ବି (ବ୍ୟାକରଣ)—ସମାସ ବିଶେଷ; ଯେଉଁ
Shasṭhhi tatpurusha ସମାସରେ ପୂର୍ବପଦ ଷଷ୍ଠୀବିଭକ୍ତି-ବିଶିଷ୍ଟ ଥାଇ ଉତ୍ତର ପଦ ସଙ୍ଗେ ଯୁକ୍ତ ହୋଇଥାଏ—[ଯଥା--ନଦୀତୀର, ବୃକ୍ଷମୂଳ ] A compound formed, of 2 words, the 1st word being in genitive in reference to the 2nd word.

ଷଷ୍ଠୀ ଦେବୀ—ସଂ ବି—ଷଷ୍ଠୀ ୨ (ଦେଖ)
Shashṭhī debī Sashthī 2 (See) ]

ଷଷ୍ଠୀ ପୂଜା—ସଂ. ବି—୧ । ଶିଶୁର ଜନ୍ମର ଷଷ୍ଠ ଦିନ କର୍ତ୍ତବ୍ୟ ଷଷ୍ଠୀ
Shashṭhī pūjā ଦେବୀ ପୂଜା ଓ ଉତ୍ସବ—ceremouy of worshipping the Shashṭhī Goddess on the 6th day of a child's birth. ୨ । ସନ୍ତାନ ଜନ୍ମ ହେବାର ଏକବିଂଶ ବା ଏକୋଇଶା ଦିନ କରାଯିବା ଷଷ୍ଠୀ ଦେବୀଙ୍କ ପୂଜା—2. Worship of Shashṭhī Debī done on the 21st day of a child's birth. ୩ । ଭାଦ୍ର ଶୁକ୍ଳ ଷଷ୍ଠୀରେ କର୍ତ୍ତବ୍ୟ ଷଷ୍ଠୀଦେବୀଙ୍କ ପୂଜା; ଷଠି ଓଷା—3. The worship of Shasṭhhī Debī on the 6th of the bright lunar fort night of Bhādra.

ଷଷ୍ଠୀ ବିଭକ୍ତି—ସଂ. ବି—ଷଷ୍ଠୀ ୩ (ଦେଖ)
Shasṭhī bibhakti Shashṭhī 3 [See]

ଷାଠ ଘର—ଦେ. ବି—ଷାଠୁଆ ବ୍ୟକ୍ତିର ବଂଶ—The family of
Shāṭha ghara an intelligent person. ( ଦ୍ର—ବୁଦ୍ଧିମାନ ବଂଶ ଷାଠ ଘର ପୁଅ ଷାଠୁଆ । ଷାଠ ଘର ପୁଅ ଷାଠୁଆ ବୁଧିଆର କୁଳ, ( ଷାଠୁଆ ଘର—ଅନ୍ୟରୂପ ) —ଢଗ ।)

ଷାଠି—ଦେ. ବି (ସଂ. ଷଷ୍ଟି)—ଷଷ୍ଟି; ୬୦—Sixty. ଦେ. ବିଣ—
Shāṭhi ଷଷ୍ଟି ସଂଖ୍ୟକ—Numbering sixty. (ଜ୍ଞ—
षाट, षाठ, षाटि, षाठी ଷାଠୀ ସହସ୍ର ଏକବାର । ମଇଲେ ସଗର
साठ ଭୁମର—ଜଗନ୍ନାଥ. ଭାଗବତ ।)

ଷାଠିଆ—ଦେ. ବିଣ ସଂ. ଷଷ୍ଟିକ )—ଷାଠିଏ ସଂଖ୍ୟା ସମ୍ବନ୍ଧୀୟ —
Shāṭhiā Relating to the number sixty. ଦେ.
षाठ सम्बन्धीय ବି—୧ । ଷାଠିକା ( ଦେଖ )—Shāṭhikā(See)
साठिया ୨ । ମରହଟ୍ଟୀ ବଂଶୋପାଧିବିଶେଷ—
2. A family title amongst the Marhattas.
[ଶିବଭଟ୍ଟ ତଳେ ଟୀକା ଦେଖ ।]

ଷାଠିୟା ଭଗୀରଥି—ଦେ. ବି (ନାମ)—ଉତ୍କଳରେ ଅଧିବାସ କରିଥିବା
Shāṭhiyā Bhāgirathi ଜନୈକ ସ୍ୱର୍ଗୀୟ ମରହଟ୍ଟା ବ୍ରାହ୍ମଣ—
Name of a late Marhatta Brahman domiciled in Orissa.

[ଦ୍ର—ଭଗୀରଥି ଷାଠିୟା ଓଡ଼ିଶାର ମହାରାଷ୍ଟ୍ରଶାସକ ସୁବାଦାର ଶିବଭଟ୍ଟ ଷାଠିୟା ( ସାମନ୍ତରାଓ )ଙ୍କ ବଂଶଧର । ଏହି ବଂଶର ପଞ୍ଚମ ପୁରୁଷରେ ସନ ୧୮୪୪ ଖ୍ରୀଷ୍ଟାବ୍ଦରେ ଏ ଜନ୍ମଗ୍ରହଣ କରିଥିଲେ । ଏହାଙ୍କର ଅଢ଼େଇ ବର୍ଷ ବୟସ ସମୟରେ ଏହାଙ୍କ ପିତା ପଣ୍ଡିତ ରାମଚନ୍ଦ୍ର ଷାଠିୟା ସନ୍ନ୍ୟାସ ଧର୍ମରେ ଅନୁରକ୍ତ ହୋଇ ତାଙ୍କର କନିଷ୍ଠ ଭ୍ରାତା ଓ ଏକମାତ୍ର ଶିଶୁ ପୁତ୍ର ଭଗୀରଥିଙ୍କୁ ମହାରାଷ୍ଟ୍ରରାଜାଙ୍କ ପ୍ରଦତ୍ତ ପ୍ରଭୂତ ସମ୍ପତ୍ତିର ଅଧିକାରୀ କରି ଗୃହତ୍ୟାଗ କରିଥିଲେ । ରାମଚନ୍ଦ୍ର ଷାଠିୟା ସାତଗୋଟି ଭାଷାରେ ବିଶେଷ ବ୍ୟୁତ୍ପତ୍ତି ଲାଭ କରିଥିଲେ ଏବଂ ତଦାନୀନ୍ତନ ବିଶେଷ ଅଦୃତ ଓ ପ୍ରଚଳିତ ପାରସୀ ଓ ଆରବୀ ଭାଷାରେ ଅନେକ ଗ୍ରନ୍ଥ ମଧ୍ୟ ରଚନା କରିଥିଲେ । ଅତି ଶୈଶବରେ ହଠାତ୍ ଅଭିଭାବକଶୂନ୍ୟ ହେବାରୁ ଭଗୀରଥିଙ୍କ ପାରିବାରିକ ଅବନତି ସଙ୍ଗେ ସଙ୍ଗେ ଉଚ୍ଚଶିକ୍ଷାର ପ୍ରତିବନ୍ଧକ ମଧ୍ୟ ଉପସ୍ଥିତ ହୋଇଥିଲା । ଏକମାତ୍ର ଅଭିଭାବକ ବୃଦ୍ଧା ଖୁଡ଼ୀମାଆଙ୍କ ଯତ୍ନରେ ସେ ତଦାନୀନ୍ତନ ପ୍ରତିଷ୍ଠିତ କଟକର ବଙ୍ଗଳା ସ୍କୁଲରେ ମଧ୍ୟବର୍ତ୍ତୀବୃତ୍ତିର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଅଳ୍ପକାଳ ଉଚ୍ଚ ବିଦ୍ୟାଳୟରେ ଅଧ୍ୟୟନର ସୁଯୋଗ ପାଇବା ପରେ କଲିକତାରେ ଡାକ୍ତରୀ ପଢ଼ିବା ନିମନ୍ତେ ଏ ଗୋଟିଏ ବୃତ୍ତି ପାଇଥିଲେ, କିନ୍ତୁ ସେ ସମୟରେ କଲିକତା ଯିବା କଷ୍ଟସାଧ୍ୟ ଓ ବ୍ୟୟସାପେକ୍ଷ ଥିବାରୁ ଅଗତ୍ୟା ସେ ଏ ସଙ୍କଳ୍ପ ତ୍ୟାଗ କରି କଟକରେ ସରକାରୀ ଚାକିରି ଅନ୍ୱେଷଣରେ ପ୍ରବୃତ୍ତ ହୋଇଥିଲେ । ତାଙ୍କ ପିତାଙ୍କର ପ୍ରିୟ ବାଲ୍ୟବନ୍ଧୁ ଓ ଦେଶହିତୈଷୀ ଡେପୁଟୀ ମାଜିଷ୍ଟ୍ରେଟ ସ୍ୱର୍ଗତ ଜଗନ୍ମୋହନ ରାୟ ତାଙ୍କ ଅବସ୍ଥାର ପରିଚୟ ପାଇ କଟକ କଲେକ୍ଟରୀ ଅଫିସରେ ତାଙ୍କୁ ଗୋଟିଏ କିରାଣୀ କାର୍ଯ୍ୟରେ ଲଗାଇ ଦେଇଥିଲେ । ସେ ଛଅ ସାତ ବର୍ଷକାଳ କାର୍ଯ୍ୟ ମଧ୍ୟରେ ହର୍ଷିଲେ (ମଦଦଗାର) କିରାଣୀ ଓ ହେଡ଼ ପେସ୍କାର ପ୍ରଭୃତି ସରକାରୀ କାର୍ଯ୍ୟ ଦକ୍ଷତାସହ ସମ୍ପାଦନକର ଉପରିସ୍ଥ ହାକିମମାନଙ୍କର ପ୍ରଶଂସାଭାଜନ ହୋଇଥିଲେ ।

ଏହି ସମୟରେ ଓଡ଼ିଆ ଭାଷାର ଉନ୍ନତିକଳ୍ପେ ୧୮୬୨ ଖ୍ରୀଷ୍ଟାବ୍ଦରେ କଟକ ପ୍ରିଣ୍ଟିଙ୍ଗ୍‌କମ୍ପାନୀ ପ୍ରତିଷ୍ଠା ପାଇଁ ଜଗନ୍ମୋହନ, ଗୌରୀଶଙ୍କର ପ୍ରଭୃତି ଉତ୍କଳହିତୈଷୀ ମନୀଷିବର୍ଗ ପ୍ରାଣପଣ ଉଦ୍ୟମ କରୁଥିଲେ । ପ୍ରେସ୍ ପାଇଁ ଜଣେ ସତ୍, ପରିଶ୍ରମୀ, ସାହିତ୍ୟଜ୍ଞ ଓ ସୁନ୍ଦର ଲେଖକର ନିତାନ୍ତ ଲୋଡ଼ା ହେବାରୁ ଜଗନ୍ମୋହନ ରାୟ [କମ୍ପାନୀର ଅଂଶୀଦାର] ଭଗୀରଥିଙ୍କୁ ସେହି କାର୍ଯ୍ୟ ପାଇଁ ଉପଯୁକ୍ତ ବିବେଚନା କରି କଟକ ପ୍ରିଣ୍ଟିଙ୍ଗ୍‌କମ୍ପାନୀରେ ନିଯୁକ୍ତ କରାଇଲେ ।

ସେ କାଳରେ ମୁଦ୍ରଣ କାର୍ଯ୍ୟ ପାଇଁ ସୀସା ଅକ୍ଷର (Type) ବିଦ୍ୟାରେ ପ୍ରଚଳିତ ହୋଇ ନ ଥିଲା । ଖଣ୍ଡିଏ ପ୍ରସ୍ତରଫଳକ ଉପରେ ଅକ୍ଷର ଲେଖି ତହିଁ ଉପରେ କାଳି ମଡ଼ାଇ ଛପା କାର୍ଯ୍ୟ (Lithography) ହେଉଥିଲା । ଭଗୀରଥିଙ୍କର ହସ୍ତଲିପି ସୁନ୍ଦର ସ୍ପଷ୍ଟ ଓ ନିର୍ଭୁଲ ଥିବାରୁ ତାଙ୍କ ହାତଲେଖାଦ୍ୱାରା ଓଡ଼ିଆ ପୁସ୍ତକ, ପଞ୍ଜିକା ପ୍ରଭୃତି ଛପା ହେଉଥିଲା । ତାଙ୍କ ହସ୍ତଲିପିର ନିଦର୍ଶନସ୍ୱରୂପ ପ୍ରିଣ୍ଟିଙ୍ଗ୍‌କମ୍ପାନୀକର୍ତ୍ତୃକ ପ୍ରକାଶିତ ପୁରାତନ ପଞ୍ଜିକାର ପ୍ରତିକୃତି ଏ ସନ୍ଦର୍ଭ ତଳେ ପ୍ରକାଶ କରାଗଲା । କ୍ରମେ ସୀସା ଅକ୍ଷର ପ୍ରଚଳିତ ହେବାରୁ ସେ ଏହି କଠିନ କାର୍ଯ୍ୟରୁ ଅବ୍ୟାହତି ପାଇ ନିଜର କାର୍ଯ୍ୟଦକ୍ଷତା ଓ ନ୍ୟାୟପରାୟଣତା ଯୋଗୁଁ କମ୍ପାନୀର କାର୍ଯ୍ୟରେ କ୍ରମୋନ୍ନତି ଲାଭକରି ପ୍ରିଣ୍ଟର୍ କାର୍ଯ୍ୟ ପାଇଥିଲେ ଓ ଏକାଦିକ୍ରମେ ଉକ୍ତ କମ୍ପାନୀରେ ଅଣଚାଳିଶ ବର୍ଷ କାର୍ଯ୍ୟ କରିଥିଲେ । ଏ କମ୍ପାନୀର ବ୍ୟୟରେ ସାମୟିକ କଲିକତା ଯାଇ ଗଭର୍ଣ୍ଣମେଣ୍ଟ ପ୍ରିଣ୍ଟିଙ୍ଗ୍ ୱାର୍କସ୍‌ରେ ନୂତନ ପ୍ରଣାଳୀର ଛପା କାର୍ଯ୍ୟମାନ ଶିଖିଆସି କର୍ମଚାରୀମାନଙ୍କୁ ଶିକ୍ଷା ଦେଉଥିଲେ ଓ କମ୍ପାନୀର କାର୍ଯ୍ୟକୁ ସମୟୋପଯୋଗୀ ଓ ଲାଭଜନକ କରୁଥିଲେ ।

ସେ ଅବସର ସମୟରେ ସାହିତ୍ୟ ଚର୍ଚ୍ଚା ସହିତ ବିବିଧ ଶିଳ୍ପ କାର୍ଯ୍ୟରେ ମଧ୍ୟ ବ୍ୟାପୃତ ରହୁଥିଲେ । ନାନାବିଧ ଶିଳ୍ପ ବିଷୟକ କାର୍ଯ୍ୟ ସେ ନିଜେ ଶିକ୍ଷା କରି କଟକର ଶିଳ୍ପୀ ଓ କାରିଗରମାନଙ୍କୁ ଶିଖାଉଥିଲେ । ତନ୍ମଧ୍ୟରୁ କେତୋଟି ମାତ୍ର ଏଠାରେ ଉଲ୍ଲେଖ କରାଗଲା; ଯଥା— ବହି ବାନ୍ଧିବା, ରବର ଷ୍ଟାମ୍ପ୍ ପ୍ରସ୍ତୁତ କରିବା, ସୀସା ଟାଇପ୍ (ଅକ୍ଷର) ପ୍ରସ୍ତୁତ ହେବା ପାଇଁ ଛାଞ୍ଚ (Mould) କରିବା, ଲୁଗା ଛାପିବା, ସିଲାଇ ମେସିନ୍ ଆଣି ଦର୍ଜୀମାନଙ୍କୁ ମେସିନ୍‌ଦ୍ୱାରା ସିଲାଇ ଶିଖାଇବା, ଘଣ୍ଟା ମରାମତି, ହାର୍ମୋନିୟମ୍, ବ୍ଲକ୍, ପ୍ରୋସେସ୍, କାଠ, ଲୁହା, ସୁନା, ରୁପା ପ୍ରଭୃତି ଧାତୁରେ ନାନା କାରୁକାର୍ଯ୍ୟ, Electro plating (ମୁଲମ୍ବା) ଓ guilding (ଗିଲ୍ଟି କରିବା) ପ୍ରଭୃତି କାର୍ଯ୍ୟ ନିଜର ଅଦମ୍ୟ ଅଧ୍ୟବସାୟଦ୍ୱାରା ଶିକ୍ଷା କରି ଅନ୍ୟ ଲୋକମାନଙ୍କୁ ସେ ଶିକ୍ଷା ଦେଉଥିଲେ ।

ଉପର୍ଯ୍ୟୁକ୍ତ କାର୍ଯ୍ୟମାନ ଅଧୁନା ଅତି ପ୍ରଚଳିତ ହେଲେ ମଧ୍ୟ ଭାଗୀରଥି କଟକରେ ପ୍ରଥମେ ଏହିର ଅଙ୍କୁର ରୋପଣ କରିଥିଲେ । ସେ ସୁଦୂର ପଲ୍ଲୀ ଗ୍ରାମମାନଙ୍କରୁ ସାହିତ୍ୟ, ପୁରାଣ ଓ ଅନ୍ୟାନ୍ୟ ବହୁମୂଲ୍ୟ ଓଡ଼ିଆ ପୋଥିମାନ ସଂଗ୍ରହ କରି ପ୍ରକାଶିତ କରାଇଥିଲେ । ସେ ନିଜେ ମଧ୍ୟ ଅନେକ ଗ୍ରନ୍ଥ ରଚନା କରି ଯାଇଥିଲେ । ବସ୍ତୁତଃ କହିବାକୁ ଗଲେ ଭାଗୀରଥି ପ୍ରମୁଖ କେତେଜଣ ଉଦ୍‌ଯୋଗୀ ବ୍ୟକ୍ତିଙ୍କର ସେ ସମୟରେ ଆବିର୍ଭାବ ହୋଇ ନ ଥିଲେ ଉତ୍କଳ ସାହିତ୍ୟ ଭଣ୍ଡାରରୁ ଅନେକ ବହୁମୂଲ୍ୟ ଗ୍ରନ୍ଥ ଲୋପ ପାଇ ଯାଇଥାଆନ୍ତା । 'ଉତ୍କଳ ସାହିତ୍ୟ'ର ସୁଯୋଗ୍ୟ ସମ୍ପାଦକ ୰ବିଶ୍ୱନାଥ କର ତାଙ୍କର ବିଭିନ୍ନମୁଖୀ ପ୍ରତିଭା ଓ ସତ୍ୟନିଷ୍ଠା ସହିତ ବିଶେଷ ଭାବରେ ସଂପୃକ୍ତ ଥିଲେ । ସେ ଭାଗୀରଥିଙ୍କ ବିଷୟରେ ମନ୍ତବ୍ୟ ପ୍ରକାଶ କରି ଲେଖିଥିଲେ "Bıbu Bhagirathi Sathia in one of the pioneers in the field of Modern Oriya Literatnre" ଭାଗୀରଥି ନିଜେ ନୀରବ ସାଧକ ଥିଲେ; ଯଶୋଲିପ୍ସା ତାଙ୍କର ନ ଥିଲା । ବଙ୍ଗଳା ଭାଷାର କବଳରୁ ଓଡ଼ିଆ ଭାଷାର ଉଦ୍ଧାର ସାଧନ ପାଇଁ ସେ ସମୟରେ ଉତ୍କଳରେ ଯେଉଁ ତୁମୁଳ ସଂଗ୍ରାମର ସୂତ୍ରପାତ ହୋଇଥିଲା ସେଥିରେ ସେ ଜଣେ ନିର୍ଭୀକ ବୀର ପୁରୁଷ ସଦୃଶ କର୍ତ୍ତବ୍ୟ ସାଧନ କରି ମାତୃଭାଷାର ମର୍ଯ୍ୟାଦା ରକ୍ଷା କରିଥିଲେ । ଉତ୍କଳସାହିତ୍ୟଠାରୁ ଆରମ୍ଭ କରି ନବ୍ୟ ଚୌତିଶା, ତଗଛମାଳ ତ୍ରୁଟିତ ପୁସ୍ତକ (ଯାହାର ଅଙ୍କ-ଜାଲି ସର୍ବତ୍ର ପ୍ରଚୁର ପରିମାଣରେ ଦେଖାଯାଏ ତାହା) ଭାଗୀରଥି ଓ ତଦୀୟ କତିପୟ ବନ୍ଧୁ ଓ ପୃଷ୍ଠପୋଷକଙ୍କ ଉଦ୍ୟମରେ ପ୍ରଥମ ପ୍ରକାଶ ଲାଭ କରିଥିଲା । ସେ ପ୍ରିଣ୍ଟିଙ୍ଗ୍ କମ୍ପାନୀଙ୍କର କାର୍ଯ୍ୟରୁ ଅବସର ନେବା ପରେ ୧୯୨୨ ମସିହା ମାଘ (ହିବେଣୀ) ଅମାବାସ୍ୟା ଦିନ ପରଲୋକ ଗମନ କରିଥିଲେ । ବର୍ତ୍ତମାନ ତାଙ୍କର ବୃହତ୍ ପରିବାର କଟକସ୍ଥ ଆଲମଚାନ୍ଦ ବଜାରରେ ବାସ କରୁଅଛନ୍ତି ।

ସନ୍ଦର୍ଭ ଲେଖକ
ଶ୍ରୀ ନାରାୟଣ ପ୍ରସାଦ ଷାଠିଆ, ବି. ଏ

ଏହି ପରିବାରର ଶ୍ରୀ ଶ୍ୟାମସୁନ୍ଦର ଷାଠିଆ, ବେଦାନ୍ତଭୂଷଣ, କବିରାଜ, ଜ୍ୟୋତିଷ ଓ ଫଟୋଗ୍ରାଫୀରେ ଧୁରନ୍ଧର ଅଟନ୍ତି, ବାବୁ ନାରାୟଣ ପ୍ରସାଦ ଷାଠିଆ ବି. ଏ., ଓଡ଼ିଶା ଗଭର୍ଣ୍ଣମେଣ୍ଟ ପ୍ରେସରେ କାର୍ଯ୍ୟ କରନ୍ତି ଓ ଡାକ୍ତର କୃଷ୍ଣଚନ୍ଦ୍ର ଷାଠିଆ ଓ ଡାକ୍ତର କୈଳାସଚନ୍ଦ୍ର ଗୁପ୍ତ ସରକାରୀ ସବ୍ ଆସିଷ୍ଟାଣ୍ଟ ସର୍ଜନ ଅଟନ୍ତି । ଶ୍ରୀ ବସନ୍ତକୁମାର ଷାଠିଆ ଓ ହରିଶ୍ଚନ୍ଦ୍ର ଷାଠିଆ କଟକ ମ୍ୟୁନିସିପାଲିଟିରେ କାର୍ଯ୍ୟ କରନ୍ତି । ]

ଷାଠିଏ ବର୍ଷ ତଳର କଟକରେ ଓଡ଼ିଆ ପଥର ଛପାର ନମୁନା



ଷାଠିଏ—ଦେ. ବି ଓ ବିଣ (ସଂଖ୍ୟାବାଚକ) (ସଂ. ଷଷ୍ଟି)—ଷଷ୍ଟି; ଛଅ
Shāṭhie ଗୁଣିତ ଦଶ—Sixty. ଦେ. ବି—ଷାଠିଏ ମାତ୍ର ବସ୍ତୁ-
षाठषाठि साठ Sixty only. [ଯଥା—କଳି କାଳରେ ସାଧାରଣତଃ ମନୁଷ୍ୟର ଷାଠିଏ ପରମାୟୁ ]
ଦେ. ବିଣ—ବହୁ ସଂଖ୍ୟକ—Numbering many. [ଲୂ—ଷାଠିଏ ଘଣ୍ଟୁ ତଣ୍ଡୁଳ ଖାଇ ପଖା ଗରୁଘର; ମିଲ—ଛଗ.]

ଷାଠିଏ କାହାଣ—ଦେ. ବି (ଅର୍ଥାତ୍ ଷାଠିଏ କାହାଣ ପରିମିତ କଉଡ଼ି; Shāṭhie kāhāṇa ପୂର୍ବେ ଟଙ୍କା ପଇସା ପରି କଉଡ଼ି षाटकाहान साटकाहान ବ୍ୟବହୃତ ହେଉଥିବାରୁ)—ବହୁତ ଧନ—A large sum of money. [ଉ—ଷାଠିଏ କାହାଣ ତଣ୍ଡୁଳ ଅଛି, ହର ଭଗଛଳ କଢ଼ାଏ ନାହିଁ । ଛଗ]

ଷାଠିଏ ବାଟି ନାହାକାଣୀ—ଦେ. ବି ସ୍ତ୍ରୀ—ବହୁତ ଭୂସମ୍ପତ୍ତିର ଅଧିକାରିଣୀ Shāṭhie bāṭi nāhākāṇi —A lady who is the राजराजेश्वरी सैकडा बिघाको मालिकिनी owner of (ଷାଠିଏବାଟି ନାହାକଥାଣୀ—ଅନ୍ୟରୂପ hundreds of acres of land. (ଉ—ଷାଠିଏ ବାଟି ନାହାକଥାଣୀ ପରର ବାଡ଼ି ପଦାଡ଼ରେ ମାଗି ଖାଉଛି । ଛଗ)

ଷାଠିକ—ଦେ. ବି ଓ ବିଣ(ସଂ.ଷଷ୍ଟିକ)—ଷାଠିଏ ମାତ୍ର—Sixty only. Shāṭhika [ଉ—ଷାଠିଏକ ଅସ୍ଥାୟୀ ଗଣ, ଅକର୍ଷ ଶକ୍ତି षाठ साठ ଭଗବାନ । ପ୍ରାଚୀ ଦୁର୍ଣ୍ଣିତମ ତଦ୍ବେଦାସ୍ତୁ ।]

ଷାଠିକା—ଦେ. ବ (ସଂ. ଷଷ୍ଟିକା)—ଷଷ୍ଟିକ ଧାନ୍ୟ (ଦେଖ)
shāṭhikā Shashṭika dhānya (See) [ଦ୍ରୁ—ଷାଠିକା !
ସେଠେ ଷାଠିଏ ହେଲେ କାହିଁ ଆ । ଉତକଳ ।]

ଷାଠିକଆ—ଦେ. ବ (ସଂ. ଷଷ୍ଟିକା)—ଷାଠିଏ ସମ୍ବନ୍ଧୀୟ—
Shāṭhikiā Relating to sixty.
ষাটের (ଯଥା—ଷାଠିକଆ ସୂତା=
साठिया yarn of sixty counts).

ଷାଡ୍ରବ—ସଂ. ବ (ଷଟ୍=ଛଅ+ଅବ)—୧ । ଗୀତ, ଗାନ—
Shārdaba 1. Song. ୨ । ରସ—2. Sentiment. ୩ ।
ସ୍ୱାଦ; ରସ—3. Taste. ୪ । ଛଅ ସ୍ୱରର ମିଳିତ ରାଗ ବା
ରାଗିଣୀ—4. Name of tunes consisting of 6
notes; name of a mixed tune. [ଉ—
ଷାଡ୍ରବେ ଗାଏ ଗୀତ ଶରଧାବଳୀ । ଗୋଲୋକ. ଉନ୍-
ଦେଖ ।] [ଦ୍ରୁ—ସଙ୍ଗୀତ ଦର୍ପଣ ମତରେ ୫ ସ୍ୱର ମିଳିତ
ରାଗକୁ ଔଡ଼ବ, ୬ସ୍ୱର ମିଳିତ ରାଗକୁ ଷାଡ୍ରବ ଓ ସପ୍ତସ୍ୱର
ମିଳିତ ରାଗକୁ ସମ୍ପୂର୍ଣ୍ଣ ବୋଲଯାଏ ।] ୫ । (ବୈଦ୍ୟକ)
ଅମ୍ଳ ମଧୁର ଲବଣାଦି ଛଅ ସ୍ୱାଦଯୁକ୍ତ ସୁଗନ୍ଧଯୁକ୍ତ
ଦ୍ରବ୍ୟ ବିଶେଷ—5. Name of a sweet scented
mixture of ingredients having all the
6 tastes.

ଷାଡ୍ଗୁଣ୍ୟ—ସଂ. ବ (ଷଡ଼ ଗୁଣ+ସ୍ୱାର୍ଥେ. ଯ)—୧ । ଷଡ଼ଗୁଣ
Shārdguṇya (ଦେଖ)—1. Shardguṇa. (See) ୨ ।
ରାଜ୍ୟ ରକ୍ଷଣାର୍ଥ ରାଜାମାନଙ୍କ ଅନୁଷ୍ଠିତ ୬ଟି ଉପାୟ—
2. The six means adopted by kings
for protection of a kingdom.
[ଯଥା—ସନ୍ଧାନ—ସନ୍ଧିସ୍ଥାପନ ପୂର୍ବକ ଅବସ୍ଥାନ—
Treaty. ଯାନ—ଯୁଦ୍ଧାର୍ଥ ଅଭିଯାନ—Ex-
pedition. ଆସନ—ଶତ୍ରୁ ଦେଶରେ ଅବସ୍ଥାନ
Staying on the enemy's country after
oppressive acts ଯାନାସନ—
ଶତ୍ରୁକୁ ଭୟ ଦେଖାଇବା ପାଇଁ ଯାନାଦି ଦେଖାଇ ସ୍ୱ
ସ୍ଥାନରେ ଅବସ୍ଥାନ—Mobilisation. ଦ୍ୱୈଧୀଭାବ—
ଉଭୟ ଶତ୍ରୁ ଓ ମିତ୍ର ପକ୍ଷଙ୍କ ସଙ୍ଗେ ମିତ୍ରତା ସ୍ଥାପନ—
Neutrality. ଅନ୍ୟ ସଂଶ୍ରୟ—ଅନ୍ୟ ରାଜାଙ୍କ ଆଶ୍ରୟ—
Forming alliance.]

ଷାଣ୍ଡ—ଗ୍ରାଦେ. (କଟକ) ବ.—ଷଣ୍ଢ
Shāṇḍ A bull.

ଷାଣ୍ମାତୁର—ସ. ବ. ପୁ.—(ଷଟ୍+ମାତୃ+ଅପତ୍ୟାର୍ଥେ ଅ; ଛଅଗୋଟି
Shāṇmātura ମାତାଙ୍କର ସନ୍ତାନ) ଷଡ଼ାନନ; କାର୍ତ୍ତିକେୟ—
God Kārttikeya; Mahādeba's elder son.
[ଦ୍ରୁ—ଏହାଙ୍କର ୬ ଗୋଟି ମାତାଙ୍କର ନାମ, ଯଥା—
କୃତ୍ତିକାଦୟ, ଦୁର୍ଗା, ଗଙ୍ଗା ଓ ପୃଥିବୀ; ମତାନ୍ତରେ ୬ଟି
କୃତ୍ତିକା ନକ୍ଷତ୍ର । ନକ୍ଷତ୍ର ଦେଖ ଲୋଡ଼ ଦେଖ ।]

ଷାଣ୍ମାସିକ—ସ. ବଣ. (ଷଣ୍ମାସ+ଭବାର୍ଥେ ଇକ)—୧ । ଯାହା ଛଅ
Shāṇmāsika ମାସରେ ଥରେ ଘଟେ (ଯଥା—ପରୀକ୍ଷା) 1.
(a examination) Half-yearly; happening
or taking place once in every six
months. ୨ । ଛଅ ମାସ ସମ୍ବନ୍ଧୀୟ—2. Relating
to six months. ୩ । ଛଅମାସରେ ଥରେ ଦେୟ—
3. Payable once in six months. ୪ । ଛଅ
ମାସ ଅନ୍ତରରେ କର୍ତ୍ତବ୍ୟ (ଶ୍ରାଦ୍ଧ)—4. (Cere-
monies) Performable at intervals of 6
months. ୫ । ପ୍ରତି ୬ ମାସରେ ଥରେ ପ୍ରକାଶିତ—
5 (reports; periodicals) Published six
monthly

ଷାଣ୍ମାସ୍ୟ—ସ. ବଣ—(ଷଣ୍ମାସ+ଯ—ଷଣ୍ମାସ୍ୟ (ଦେଖ)
Shāṇmāsya Shaṇmāsya (See)

ଷାତ୍ୱଣତ୍ୱିକ—ସ. ବଣ. (ଷତ୍ୱଣତ୍ୱ+ଇକ)—ସଂସ୍କୃତ ବ୍ୟାକରଣର ଷତ୍ୱ
Shātwaṇatwika ବିଧାନ ଓ ଣତ୍ୱ ବିଧାନ ପ୍ରତିପାଦକ
ବ୍ୟାକରଣ ଶାସ୍ତ୍ର—A grammatical treatise
dealing with the rules about Dental
S (ସ) becoming cerebral S (ଷ) and dental
n becoming cerebral n (ṇ).

ଷିଟ୍(ଟି)କା(କେ)ଇବା—ଦେ. କ୍ରି (ସ ଷିଟ୍ଧାତୁ=ଘୃଣା କରିବା)—
Shiṭ(ṭi)kā(ke)ibā ଘୃଣାରେ ନାସିକା କୁଞ୍ଚନ କରିବା—To
নাক সিটকান contract the nose through disgust
नाक सिकोड़ना or hatred.

ଷିଟା(ଠା)ମ—ବୈଦେ. ବ. (ଇଂ ଷ୍ଟାମ୍ପ)—ଷ୍ଟାମ୍ପ (ଦେଖ)
Shiṭā(ṭhā)m Shṭāmp (See)
ষ্টাম্প स्टांप

ଷିଟାମ୍ ଫରୋ(ରା)ସ୍—ବୈଦେ. ବ.—(ଇଂ. ଷ୍ଟାମ୍ପ ଓ ଫା. ଫରୋଶ୍=
Shiṭām pharo(rā)s ବିକେତା)—ଷ୍ଟାମ୍ପ ଭେଣ୍ଡର୍ (ଦେଖ)
ষ্টাম্প বিক্রেতা स्टाम्प फ़रोश Shṭāmp bhendar (See)
[ଷିଟାମ୍ ଫୁରୁସ୍ ଷିଟାମ୍ ଭେଣ୍ଡର୍—ଅନ୍ୟରୂପ]

ଷିଡ୍ଗ—ସ. ବଣ. ପୁଂ-(ଷିଡ୍ଧାତୁ=ଘୃଣା କରିବା+କର୍ମ ଗ)-୧ । କାମୁକ-
Shirḍ-ga 1. Amorous; lustful; lecherous.
[ଷିଡ୍ଗ—ଅନ୍ୟରୂପ] ୨ । ଲମ୍ପଟ; ଲୋଚା—2. Adulterous;
ଅନ୍ୟ ସ, ନାମ—ଭଦ୍ରଗ୍ରଧ, lewd. ୩ । ରସିକ—3.
ନାଗର, ବଲ୍ଲଭ, ଛଦୁର, ଭଟ, Gallant. ସଂ. ବ.—୧ ।
ବାଲଭ, ଷଡ୍ଗ୍ରାଙ୍ଗ, କାମକେଳି, ଜାର ପୁରୁଷ; ଉପପତି—1.
କଟୁଷବ, ପୀଠକେଳି, Paramour. ୨ । ଲମ୍ପଟବ୍ୟକ୍ତି
ପୀଠମର୍ଦ୍ଦ, ଷଣ୍ଡକ ।] 2. Lewd person. ୩ ।
ନାଗର; ରସିକ ବ୍ୟକ୍ତି—3. A gallant.

ଷିବିନୀ—ଦେ. ବ.-କାଚ ବାଡ଼; କାଚର କାନ୍ଥ—Glass wall or,
Shibini partition. [ଦ୍ରୁ—ବଙ୍ଗ ଦେଶରେ ବ୍ୟବହୃତ ଏହାର
काँचकी दीवार ଭିତରେ ଦେଖିଲେ ବାହାର ବସ୍ତୁ ଦେଖାଯାଏ । ଦ୍ରୁ ଦେଖ—
ଷିତ—ଦିଦେଶିଅଗତ ।]

**ଷେଣ**—ଦେ. ବି—(ବ ସେନ)—ଉତ୍କଳବାସୀ ବଙ୍ଗାଳ ତନ୍ତୀଙ୍କ ବଂଶୋ-
Shena ପାଧି ବିଶେଷ—A family title of Bengalee
সেন सेन weavers, long settled in Orissa.

**ଷେଣ୍ଡ (ଣ୍ଢ)**—ଦେ' ବି. ( ସଂ ଷଣ୍ଡ, ଷଣ୍ଢ )—୧ । ବୃଷ—1. Bull. ୨ ।
Shenda (ndha) (ଗାଈଗୋରୁଙ୍କ ମଧ୍ୟରେ ଗୋଟିଏ ବୃଷ ପ୍ରଧାନ
ষাঁড় साँढ़ ଥିବାରୁ) ଦଳର ପ୍ରଧାନ ବ୍ୟକ୍ତି—2. The head
of a number of men. ୩ । ଷେଣ (ଦେଖ)—3.
Shena (See)

**ଷୋଅ(ଓ)ଳ**—ଦେ. ବି. ଓ ବିଣ (ସଂ ଷୋଡ଼ଶ)—ଷୋଳ (ଦେଖ)
Sho-a(o)la Shola (See)
ষোল सोलह

**ଷୋଡ଼ନ୍**—ସଂ ବି. ପୁଂ [ଷଟ୍+ଦନ୍ତ ( ଦନ୍ତଶବ୍ଦର )=ଷୋଡ଼ ତ ଶବ୍ଦ
Shordan ୧ମା. ୧ବ) —ଷଡ଼ଦନ୍ତ ଯୁକ୍ତ ବୃଷ; ଯେଉଁ ବଳଦ ବା
ଷଣ୍ଢ ୬ଟି ଦାନ୍ତ ଛି—A bull or bullock which has
already grown 6 teeth. [ଦ୍ର—ବଳଦଙ୍କ ତଳ
ପାଟିରେ କଳ ଦାନ୍ତ ଅଛି କିନ୍ତୁ ସେ ଦାନ୍ତମାନ ବାହାରକୁ
ଦେଖାଯାଏ ନାହିଁ । ଉପର ପାଟିରେ ଆମ୍ବ ଦାନ୍ତ ନାହିଁ ।
କେବଳ ତଳ ପାଟିରେ ସାମନାରେ ଥିବା ୮ଟି ଦାନ୍ତ
ଦେଖାଯାଏ । ବାଛୁରି କ୍ରମଶଃ ବଢ଼ି ଗଲେ ତାହାର ତଳ-
ପାଟିର ଆମ୍ବଦାନ୍ତ ଗଜାଏ । ଯେଉଁ ବାଛୁରିର ୨ଟି ଦାନ୍ତ
ବାହାର ଥାଏ ତାହାକୁ ଦାମୁଡି କହନ୍ତି ଓ କ୍ରମଶଃ ୬ଟି ଦାନ୍ତ
ବାହାରିଲାବେଳକୁ ସେ ସମ୍ପୂର୍ଣ୍ଣ ରୂପେ ଦାମୁଡ଼ି ହୁଏ ଓ
୮ଟି ଦାନ୍ତ ଦାନ୍ତିଲାବେଳକୁ, ଅର୍ଥାତ୍ ଦାନ୍ତି ପାଇଲାବେଳକୁ,
ତାକୁ ବଳଦ କହନ୍ତି । ଛଅଟି ଦାନ୍ତ ଦାନ୍ତିଥିବା ଦାମୁଡ଼ିକୁ
ମଣ କରାଇ ତାକୁ ଶଗଡ ହଳ ଆଦିରେ ଲଗାଇବାର
ଉପଯୁକ୍ତ କରାଯାଏ । ]

**ଷୋଡ଼ଶ**—ସଂ. ବି (ଷଟ୍+ଦଶନ୍; ଷଟ୍ ଅଧିକ ଦଶ; ମ. ପ. ଲୋ.
Shordaśa—କର୍ମଧା; ନିପାତନ; ଷୋଡ଼ଶନ୍ ଶବ୍ଦର ୧ମା. ୧ବ)—
୧ । ଷୋଳ—1. Sixteen. ୨ । ଷୋଳ ଭାଗରୁ
ଏକ ଭାଗ—2. One sixteenth. ୩ । ଷୋଡଶର
ଶ୍ରାଦ୍ଧର ୧୬ଟି ବିଶେଷ ଉପକରଣ—3. 16 Specified materials necessary for a śrāddha.
ସଂ ବିଣ—୧ । ଷୋଳ ସଂଖ୍ୟକ—1. Numbering
sixteen. ୨ । (ଷୋଡଶନ୍+ଅ) ଷୋଳସଂଖ୍ୟାର
[ଷୋଡ଼ଷୀ—ସ୍ତ୍ରୀ. ବିଣ] ପୂରକ—2. Sixteenth.

**ଷୋଡ଼ଶ ଉପଚାର**—ଦେ. ବି—ଷୋଡ଼ଶୋପଚାର (ଦେଖ)
Shordaśa upachāra Shordaśopachāra (See)

**ଷୋଡ଼ଶକ**—ସଂ. ବି (ଷୋଡଶନ୍+ସ୍ୱାର୍ଥେ କ)—୧ । ମୃତାହ
Shordaśaka ଶ୍ରାଦ୍ଧ କାଳରେ ପ୍ରେତ ଉଦ୍ଦେଶ୍ୟରେ ଦେୟ ଷୋଳଟି
ବସ୍ତୁ—1. Sixteen articles given away
to Brāhmanas after being dedicated to
the ghost or departed soul of the deceased, during the funeral rites.
[ଦ୍ର—ଯଥା. ଭୂମି, ଆସନ, ଜଳ, ବସ୍ତ୍ର, ଦୀପ, ଅନ୍ନ,
ତାମ୍ବୂଳ, ଛତ୍ର, ଗନ୍ଧ, ମାଲ୍ୟ, ଫଳ, ଶଯ୍ୟା,
ପାଦୁକା, ଗୋ, କାଞ୍ଚନ ଓ ରଜତ । ୨ । ଷୋଳ
ସଂଖ୍ୟା—2. The number sixteen.
(ଶୁଦ୍ଧିତତ୍ତ୍ୱ)

**ଷୋଡ଼ଶ କଳା**—ସଂ. ବି—ଚନ୍ଦ୍ର ମଣ୍ଡଳର ୧୬ ଭାଗ ମଧ୍ୟରୁ ପ୍ରତ୍ୟେକ
Shordaśa kalā ଭାଗ—The sixteen digits of
the moon. [ଦ୍ର—ପୂର୍ଣ୍ଣିମା ଦିନ ଚନ୍ଦ୍ର ଷୋଡଶ
କଳା ବିଶିଷ୍ଟ ହୋଇ ଥାଆନ୍ତି ଓ ତତ୍ପରେ ପ୍ରତିଦିନ
ଗୋଟିଏ ଲେଖାଏଁ କଳା ଊଣା ହୋଇ ଅମାବାସ୍ୟା ଦିନ
ଚନ୍ଦ୍ରଙ୍କର ଏକମାତ୍ର କଳା ବାକି ଥାଏ; ପୁଣି ପ୍ରତିପଦ୍‌ଠାରୁ
ଗୋଟିଏ ଲେଖାଏଁ କଳା ବଢ଼େ ।
ଏହି କଳାମାନଙ୍କର ନାମ ଯଥା—ଅମୃତା, ମାନଦା,
ପୂଷା, ତୁଷ୍ଟି, ପୁଷ୍ଟି, ରତି, ଧୃତି, ଶଶି, ଚନ୍ଦ୍ରିକା,
କାନ୍ତି, ଜ୍ୟୋତ୍ସ୍ନା, ଶ୍ରୀ, ପ୍ରୀତି, ଅଙ୍ଗଦା, ପୂର୍ଣ୍ଣା
ଓ ପୂର୍ଣ୍ଣାମୃତା ।]
ষোলকলা सोलहकला ଦେ. ବି (ଲକ୍ଷଣାର୍ଥ)—କୌଣସି
ବିଷୟର ସମସ୍ତ ଅଙ୍ଗ ପୂର୍ଣ୍ଣହେବା ଅବସ୍ଥା; ଷୋଳଅଣା—
(figurative) The state of full-ness of
any matter

**ଷୋଡ଼ଶ ଦଳ**—ସଂ. ବି—ଷୋଳଟି ପାଖୁଡ଼ା—Sixteen petals.
Shordaśa dala ସଂ. ବିଣ—ଷୋଳ ପାଖୁଡ଼ା ଯୁକ୍ତ—
Sixteen-petalled.

**ଷୋଡଶଦଳ ପଦ୍ମ**—ସଂ. ବି—ଷୋଡଶାର (ଦେଖ)—
Shordaśadala padma Shordaśāra (See)

**ଷୋଡ଼ଶ ଦାନ**—ସଂ. ବି—୧ । ଆଦ୍ୟଶ୍ରାଦ୍ଧରେ ପ୍ରେତୋ-
Shordaśa dāna ଦ୍ଦେଶ୍ୟରେ ଦିଆଯିବା ୧୬ଟି
ବସ୍ତୁର ଦାନ—1. The gift of 16 articles to
Brahmins in honour of the deceased
during obsequial rites. [ଦ୍ର—ଏହି ଷୋଡଶ
ଦାନ ୧୬ଥର ବା ୧୬ ଗୁଣ କରି ଦିଆଗଲେ ଏହା
'ଦାନ ସାଗର' ନାମରେ ଖ୍ୟାତ ହୁଏ । ଗଯାଶ୍ରାଦ୍ଧ-
ପଦ୍ଧତିରେ ବର୍ଣ୍ଣିତ ଉକ୍ତ ଷୋଡଶ ଦାନ, ଯଥା—
ସ୍ୱର୍ଣ୍ଣ, ରୌପ୍ୟ, ତାମ୍ର, କାଂସ୍ୟ, ଗୋ, ଅଶ୍ୱ, ହସ୍ତୀ,
ଗୃହ, ଭୂମି, ବୃଷ, ବସ୍ତ୍ର, ଶଯ୍ୟା, ଉପାନହ, ଦାସୀ,
ଅନ୍ନ ଓ ଜଳ (ବାୟୁ ପୁରାଣ-ଗୟାମାହାତ୍ମ୍ୟ) । ଏହା
ଷୋଡଶକଠାରୁ ପୃଥକ୍ । ୨ । ଷୋଡଶକ (ଦେଖ)—
2. Shordaśaka (See) ୩ । ମତ୍ସ୍ୟପୁରାଣୋକ୍ତ-
ଲିଖିତ ତୁଳାପୁରୁଷାଦି ୧୬ ପ୍ରକାର ବହୁ ପୁଣ୍ୟପ୍ରଦ
ମହାଦାନ—3. 16 kinds of great gifts prescribed in the Hindu Śāstras. [ଦ୍ର—
୧ । ତୁଳା ପୁରୁଷ. ୨ । ହିରଣ୍ୟ ଗର୍ଭ, ୩ ।
ବ୍ରହ୍ମାଣ୍ଡ, ୪ । କଳ୍ପ ପାଦପ, ୫ । ଗୋ ସହସ୍ର, ୬ ।
ହିରଣ୍ୟ କାମଧେନୁ, ୭ । ହିରଣ୍ୟାଶ୍ୱ, ୮ । ପଞ୍ଚ
ଲାଙ୍ଗଳକ, ୯ । ଧରା, ୧୦ । ହିରଣ୍ୟାଶ୍ୱରଥ, ୧୧ ।

ହେମହସ୍ତି ରଥ, ୧୨ । ବିଷ୍ଣୁଚକ୍ର, ୧୩ । କଳ୍ପଲତା, ୧୪ । ସପ୍ତ ସାଗର; ୧୫ । ରତ୍ନ ଧେନୁ ଓ ୧୬ । ମହାଭୂତ ଘଟ ।]

**ଷୋଡ଼ଶଧା**—ସଂ. ଅବ୍ୟୟ (ଷୋଡ଼ଶ+ପ୍ରକାରାର୍ଥେ ଧା)—ଷୋଳ ପ୍ରକାର—In sixteen ways
Shor**d**aśadhā

**ଷୋଡ଼ଶ ପିଣ୍ଡ**—ସଂ. ବି—ପିତୃପକ୍ଷ ଅମାବାସ୍ୟା (ମହାଳୟା)ରେ ଓ ତୀର୍ଥ ସ୍ଥଳରେ କରାଯିବା ଶ୍ରାଦ୍ଧ ଉପଲକ୍ଷେ ଓ ପାର୍ବଣ ଶ୍ରାଦ୍ଧରେ ପ୍ରଦତ୍ତ ଉଣେଇଶି ଗୋଟି ପିଣ୍ଡ (ଶବ୍ଦକୋଷ)—A technical term for 19 rice-balls offered to the deceased ancestors in the Mahālayā śrāddha & śrāddha performed at secred shrines. [ଦ୍ର—ପ୍ରକୃତରେ ଏହି ପିଣ୍ଡମାନଙ୍କ ସଂଖ୍ୟା ୧୯ଟି ଓ ୧୯ଟି ପିଣ୍ଡ ଦାନପାଇଁ ୧୯ଟି ସ୍ୱତନ୍ତ୍ର ମନ୍ତ୍ର ଅଛି । ଗୟାରେ ପ୍ରେତ-ଶିଳାରେ ଯେଉଁ ସ୍ଥଳରେ ପିତୃଷୋଡ଼ଶୀ ଓ ମାତୃ-ଷୋଡ଼ଶୀ ମନ୍ତ୍ରଦ୍ୱାରା ପିଣ୍ଡ ଦାନ କରାଯାଏ ସେହି ପ୍ରଣାଳୀରେ ଏ ପିଣ୍ଡଦାନ କର୍ତ୍ତବ୍ୟ । 'ଷୋଡ଼ଶପିଣ୍ଡ' ପାରିଭାଷିକ ଶବ୍ଦ । ଯେଉଁପରି 'ପଞ୍ଚାମୃ' ଶବ୍ଦଦ୍ୱାରା ଛଅ ପ୍ରକାର ୬ଟି ବୃକ୍ଷ ବୁଝାଯାଏ, ଷୋଡ଼ଶ ଦାନଦ୍ୱାରା ୧୯ଟି ପିଣ୍ଡ ବୁଝାଯାଏ- (ଶବ୍ଦକୋଷ)]
Shor**d**aśa pin**d**a

**ଷୋଡ଼ଶ ବୟସୀ**—ଦେ. ବିଣ. ସ୍ତ୍ରୀ—ଷୋଳ ବରଷୀ; ଯେଉଁ ବାଳିକାର ବୟସ ୧୬ ବର୍ଷ—(a girl) Aged 16 years.
Shor**d**aśa bayasī
ଉଠতীବয়সের,ষোমষ सोलहबरषी

**ଷୋଡ଼ଶ ବିଧ**—ସଂ. ବି—୧୬ ପ୍ରକାର—Sixteen sorts.
Shor**d**aśa bidha ସଂ. ବିଣ—୧୬ ପ୍ରକାରର—
(ଷୋଡ଼ଶ ବିଧା—ସ୍ତ୍ରୀ) Of sixteen kinds.

**ଷୋଡ଼ଶବ୍ଦା**—ଦେ. ବିଣ. ସ୍ତ୍ରୀ (ସଂ. ଷୋଡ଼ଶାବ୍ଦା)—ଯେଉଁ ସ୍ତ୍ରୀର ବୟସ ୧୬ ବରଷ—( a girl ) Aged 16 years. [ଦ୍ର—ଘନ ଶୀଣ କୋହିଲପରି, ଷୋଡ଼ଶବ୍ଦାଏ ମିଳିଲେ ମୋତେ ହେବଇ । କବିସୂର୍ଯ୍ୟ ରହ୍ଲାକର ଚମ୍ପୂ । ]
Shor**d**aśabdā

**ଷୋଡ଼ଶ ଭୁଜା**—ସଂ. ବିଣ. ସ୍ତ୍ରୀ (ବହୁବ୍ରୀହି)—ଯେଉଁ ସ୍ତ୍ରୀର ୧୬ଟି ହାତ—(a woman) Having 16 hands. ସଂ.ବି.ସ୍ତ୍ରୀ—ଦାଳକା ପ୍ରସିଦ୍ଧ ୧୬ ହସ୍ତଯୁକ୍ତା ଦୁର୍ଗା—Sixteen-armed Durgā. [ଦ୍ର—ଆଶ୍ୱିନ ମାସର କୃଷ୍ଣ ଏକାଦଶୀରେ ଉପବାସୀ ରହି ପରଦିନ ଦ୍ୱାଦଶୀରେ ଦିନମାନ ଉପବାସ କରି ସନ୍ଧ୍ୟାରେ ହବିଷ୍ୟାନ୍ନ ଭୋଜନ କରିବ । ତତ୍ପର ଚତୁର୍ଦ୍ଦଶୀ ଦିନ ମହାମାୟାଙ୍କୁ ବୋଧନ କରି ନୈବେଦ୍ୟାଦି ଉପକରଣ ଦ୍ୱାରା ଷୋଡ଼ଶ-ଭୁଜାଙ୍କ ପୂଜା କରିବ । ପରଦିନ ଅମାବାସ୍ୟାଠାରୁ ଶୁକ୍ଳା-ନବମୀ ପର୍ଯ୍ୟନ୍ତ ଦିନମାନ ଉପବାସୀ ରହି ରାତ୍ରିରେ ହବିଷ୍ୟାନ୍ନ ଗ୍ରହଣ କରିବ । ଏ ପୂଜା ଜ୍ୟେଷ୍ଠା ନକ୍ଷତ୍ରରେ ଆରମ୍ଭ କରି ଉତ୍ତରଷାଢ଼ାରେ ସମାପନ କରି ଶ୍ରବଣାରେ
Shor**d**aśa bhujā
(ଷୋଡ଼ଶଭୁଜ—ବିଣ. ପୁଂ)

ଦେବୀଙ୍କୁ ବିସର୍ଜନ କରିବ—ଶବ୍ଦକୋଷ ଧୃତ କାଳିକା-ପୁରାଣ । ]

**ଷୋଡ଼ଶମ**—ସଂ. ବିଣ (ଷୋଡ଼ଶ+ପୂରଣାର୍ଥେ ମ)—ଷୋଳ ସଂଖ୍ୟାର ପୂରକ (ଶବ୍ଦକୋଷ)—Sixteenth.
Shor**d**aśama

**ଷୋଡ଼ଶ ମାତୃକା**—ସଂ. ବି (ଷୋଡ଼ଶୀ+ମାତୃକା)—ଶ୍ରାଦ୍ଧ ଓ ମଙ୍ଗଳ କର୍ମରେ ପୂଜିତା ୧୬ଟି ଦେବୀ—Sixteen Goddesses worshipped before the beginning of Śrādhas and other ceremonies. [ଦ୍ର—ଏମାନେ ଲୋକମାତା ବା ଜଗତର ମାତୃରୂପା ଦୁର୍ଗା ବା ଭଗବତୀଙ୍କ କଳାଧାରିଣୀ ।
Shor**d**aśa mātrukā

ଏମାନଙ୍କର ନାମ; ଯଥା—ଗୌରୀ, ପଦ୍ମା, ଶଚୀ, ମେଧା, ସାବିତ୍ରୀ, ବିଜୟା, ଜୟା, ଦେବସେନା (ଷଷ୍ଠୀ), ସ୍ୱଧା, ସ୍ୱାହା, ଶାନ୍ତି, ପୁଷ୍ଟି, ଧୃତି, ତୁଷ୍ଟି, ଆତ୍ମଦେବତା ଓ କୁଳଦେବତା ।

ଏମାନଙ୍କୁ ପ୍ରଥମେ ପୂଜା କରାଯିବା ପରେ ଶ୍ରାଦ୍ଧ କାର୍ଯ୍ୟ ଆରମ୍ଭ କରାଯାଏ । ୧୬ଟି ମାତୃକାଙ୍କୁ ପୂଜା କରି ସାତ ବିନାୟକଙ୍କୁ ପୂଜା କରିବ, ତା ପରେ ଷୋଡ଼ଶ ମାତୃକା (କୁଳଦେବତା)ଙ୍କୁ ପୂଜା କରିବ ।]

**ଷୋଡ଼ଶାଂଘ୍ରି**—ସଂ. ବି (ବହୁବ୍ରୀହି; ଷୋଡ଼ଶ+ଅଂଘ୍ରି=ଚରଣ ଯାହାର )—କର୍କଟ ( କେମଡ଼ା )—(ଷୋଡ଼ଶାଙ୍ଘ୍ରି—ଅନ୍ୟରୂପ) Crab. ସଂ. ବିଣ—୧୬ଟି ପଦ ବିଶିଷ୍ଟ—Having sixteen legs.
Shor**d**aśāmghri

**ଷୋଡ଼ଶାଂଶ**—ସଂ. ବି—୧ । ୧୬ ଭାଗ—1, 16 parts.
Shor**d**aśāmśa ୨ । ୧୬ ଭାଗରୁ ଏକ ଭାଗ—
2. One sixteenth.

**ଷୋଡ଼ଶାଂଶୁ**—ସଂ. ବି (ବହୁବ୍ରୀହି; ଷୋଡ଼ଶ=୧୬ ସଂଖ୍ୟକ+ଅଂଶୁ=କିରଣ ଯାହାର)—ଶୁକ୍ର ଗ୍ରହ—The planet Venus.
Shor**d**aśāmśu

**ଷୋଡ଼ଶାଙ୍ଗ**—ସଂ. ବି. (ବହୁବ୍ରୀହି)—୧୬ ଟି ସୁଗନ୍ଧ ଦ୍ରବ୍ୟ ମିଶ୍ରିତ ଧୂପ—
Shor**d**aśānga Fumigating mixture or incense consisting of 16 scented ingredients.
[ଦ୍ର—ଏହା ଦେବପୂଜା ଓ ଶ୍ରାଦ୍ଧରେ ବ୍ୟବହୃତ ହୁଏ । ଏଥିର ଉପାଦାନ ଯଥା—ଗୁଗ୍ଗୁଳ, ସରଳ (ଏକ ପ୍ରକାର ଦେବଦାରୁ କାଠ), ଦାରୁ ( ଦେବଦାରୁ କାଠ ), ପତ୍ର (ତେଜପତ୍ର), ମଳୟ ସମ୍ଭବ (ଶ୍ୱେତ ଚନ୍ଦନ କାଠ), ହ୍ରୀବେର (ବାଳୁବେଣା), ଅଗୁରୁ (ଅଗୁରୁ ଚନ୍ଦନ), କୁଷ୍ଠ (କୁଡ଼), ଗୁଡ଼, ସର୍ଜରସ (ଝୁଣା), ଘନ, (ମୁଥା, ମତାନ୍ତରରେ କର୍ପୂର), ହରୀତକୀ—(ହରିଡ଼ା), ନଖୀ—(ସୁଗନ୍ଧ ଦ୍ରବ୍ୟ ବିଶେଷ),ଲାକ୍ଷା—(ଲାଖ ବା ଜଉ), ଜଟାମାଂସୀ, ଶୈଳଜ—(ଶୈଳେୟ); ଏଥିରେ ଘିଅ ମିଶାଇ ଧୂପ ଦେବ—ଶବ୍ଦକୋଷ । ]

**ଷୋଡଶାବର୍ତ୍ତ**—ସଂ. ବଣ (ବହୁବ୍ରୀହି; ଷୋଡ଼ଶ+ଆବର୍ତ୍ତ ଯାହାର)—
Shor͟daśābartta ୧୬ଟି ଆବର୍ତ୍ତ ବା ଭଉଁରିବିଶିଷ୍ଟ—
Having 16 spirals. ସଂ. ବି—ଶଙ୍ଖ—
Conch shell.

**ଷୋଡଶାବ୍ଦ**—ସଂ. ବି—୧ । ଷୋଳ ବରଷ—1. Sixteen years.
Shor͟daśābda ୨ । ଷୋଳବରଷର ପୂରକ ବର୍ଷ—
2 Sixteenth year. ୩ । (ବହୁବ୍ରୀହି ପୁଂ) ୧୬
(ଷୋଡଶାବ୍ଦା—ବିଣ. ସ୍ତ୍ରୀ) ବର୍ଷ ବୟସ୍କ—3. Aged sixteen years.

**ଷୋଡଶାର**—ସଂ. ବଣ (ବହୁବ୍ରୀହି, ଷୋଡ଼ଶ+ଅର=କୋଣ ବା
Shor͟daśāra ଅର, ଚକ୍ରର ବ୍ୟାସାର୍ଦ୍ଧ ପତ୍ର ଦଳ ଯାହାର;
ବହୁବ୍ରୀହି)—୧ । ଷୋଡ଼ଶ ଦଳ ପଦ୍ମ; ୧୬ ପାଖୁଡ଼ିଆ ପଦ୍ମ; ଦେହୀଙ୍କ ଶରୀରସ୍ଥ ମଧ୍ୟସ୍ଥ ପଦ୍ମ—1. A sixteen-petalled lotus said to exist inside the body. ୨ । ଜଳାଶୟ ପ୍ରତିଷ୍ଠା ଉପଲକ୍ଷରେ ବେଦୀ ଉପରେ ଅଙ୍କିତ ଷୋଳପାଖୁଡ଼ିଆ ପଦ୍ମର ଚିତ୍ର ବିଶେଷ—2. A sixteen-petalled figure of a lotus drawn on the altar on the occasion of the consecration of tanks. [ ଦ୍ର—ଜଳାଶୟ ପ୍ରତିଷ୍ଠା ଉପଲକ୍ଷରେ ପଞ୍ଚବର୍ଣ୍ଣ ଗୁଣ୍ଡ (ଚୂର୍ଣ୍ଣ) ଦ୍ୱାରା ବେଦୀ ଉପରେ ଗୋଟିଏ ଛୋଟ ମଣ୍ଡଳ କାଟି ପ୍ରଥମେ ତାର ୪ ଦିଗରେ ୪ଟି ଚେପଟା ପାଖୁଡ଼ା ଅଙ୍କିବ ଓ ପୁଣି ପାଖୁଡ଼ା ଉପରେ ପୁଣି ୪ଟି ଲେଖାଏଁ ପାଖୁଡ଼ାର ଚିତ୍ର ଅଙ୍କିବ । ଏ ଚିତ୍ରରେ ୪ଟି ଦ୍ୱାର ରଖିବ । ପରେ ଯଥାଯଥ ମନ୍ତ୍ର ବୋଲି ଲୋକପାଳଙ୍କ ଓ ଗ୍ରହମାନଙ୍କ ଭିନ୍ନ ଭିନ୍ନ ଦିଗରେ ବିନ୍ୟାସ କରିବ—ବିଶ୍ୱକୋଷ ।] ୩ । ଷୋଡ଼ଶ ଅବୟବ ସଂସାର ଚକ୍ର—3. The cycle of existence having 16 organs. (ଉ—ସଂସାରଚକ୍ର ଷୋଡ଼ଶାରେ, କର୍ମେ ଭ୍ରମଇ ଅତି ଖରେ । ଜଗନ୍ନାଥ. ଭାଗବତ ।) [ଦ୍ର—ସଂସାର ଚକ୍ରର ଅର ୧୬ ଗୋଟି ଯଥା—ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ଜ୍ଞାନେନ୍ଦ୍ରିୟ, ମନ ଓ ପଞ୍ଚତନ୍ମାତ୍ର । ] ସଂ. ବିଣ—
୧ । (ବହୁବ୍ରୀହି; ଷୋଡ଼ଶ+ଅର) ଷୋଳ କୋଣବିଶିଷ୍ଟ (କ୍ଷେତ୍ର)—1. Having sixteen angles. ୨ ।
(ଷୋଡ଼ଶ+ଅର) ଷୋଳଟି ଅର ବା ବ୍ୟାସାର୍ଦ୍ଧ ଦଣ୍ଡବିଶିଷ୍ଟ (ଚକ୍ର)—2. (a wheel) Having 16 spokes.
୩ । ଷୋଳ ପାଖୁଡ଼ିଆ (ପଦ୍ମ)—
3. Sixteen-petalled (lotus)

**ଷୋଡଶାର୍ଚ୍ଚିଃ**—ସଂ. ବି (ବହୁବ୍ରୀହି; ଷୋଡ଼ଶ+ଅର୍ଚ୍ଚିସ୍, ୧ମା. ୧ବ)—
Shor͟daśārchchiḥ ( ଷୋଡ଼ଶ ରଶ୍ମିବିଶିଷ୍ଟ ) ଶୁକ୍ରଗ୍ରହ—
The planet Venus. ସଂ. ବିଣ-୧୬ ରଶ୍ମିବିଶିଷ୍ଟ—
Having 16 flames or rays.

**ଷୋଡଶିକା**—ସଂ. ବି (ଷୋଡଶ+ଇକ+ଆ)—୧ । ଏକ ପଲ
Shor͟daśikā ପରିମାଣ; ଅଠତୋଳା ( ଓଜନ )—1. A standard weight of 8 Tolās. ୨ । ତୋଳକ ଦ୍ରବ୍ୟ ପରିମାଣ; ଦୁଇ ତୋଳା (ପରଭାଷା ପ୍ରୟୋଗ)—
2. A standard of weight of 2 Tolās.

**ଷୋଡ଼ଶୀ**—ସଂ. ବି—୧ । (ଷୋଡଶନ୍+ଇନ୍; ୧ମା. ୧ବ)—ଯଜ୍ଞ
Shor͟daśī ପାତ୍ର ବିଶେଷ; ସୋମରସ ପାତ୍ର—(ଯହିଁରେ ସୋମ ରସ ସ୍ଥାପିତ ହୁଏ)—1. A kind of sacrificial pot or vessel for keeping the juice of soma plant. ୨ ।ସଂ. ବି. ସ୍ତ୍ରୀ—(ଷୋଡ଼ଶ+ଈ)—(ଏହାଙ୍କର ଦେହ ଷୋଡ଼ଶାକ୍ଷରଯୁକ୍ତ ଥିବାରୁ) ତନ୍ତ୍ରୋକ୍ତ ଦେବୀବିଶେଷ; ଦଶ ମହାବିଦ୍ୟା (ମତାନ୍ତରରେ ଦ୍ୱାଦଶ ମହାବିଦ୍ୟା) ମଧ୍ୟରୁ ଏକତମା—2 One of the 10 or 12 Goddesses worshipped according to Tāntric rites. ୩ । ଗୟାର ପ୍ରେତଶିଳାଠାରେ ଦିଆଯିବା ପିଣ୍ଡ ବିଶେଷ—3. Oblations and offerings made at Gayā to the departed souls of almost all conceivable ancestors, relatives, friends, animals, ghosts, servants, born and unborn beings. [ଦ୍ର—ଏହି ପିଣ୍ଡର ସଂଖ୍ୟା ୧୯ ହେଲେ ମଧ୍ୟ ପାରିଭାଷିକ ଶବ୍ଦ ରୂପେ 'ଷୋଡ଼ଶୀ' ବ୍ୟବହୃତ ହୋଇଅଛି । ଷୋଡ଼ଶ-ପିଣ୍ଡ ଦେଖ ।] ୪ । (ଷୋଡ଼ଶ+ଇନ)—ଅଗ୍ନିଷ୍ଟୋମ ଯାଗର ପ୍ରକାର ଭେଦ—4. A modification of the Agnshtoma sacrifice (Apte). ଦେ. ବି ସ୍ତ୍ରୀ—ଷୋଡ଼ଶ ବର୍ଷୀୟା ଯୁବତୀ—A young woman of sixteen springs. [ ଷୋଡ଼ଶୀ ରସ ପସରା ଧରି ଗୁଣଧର ପରି—ସମଶଙ୍କର. ଭୂଲାକର ।]

**ଷୋଡ଼ଶୋପଚାର**—ସଂ. ବି.—(କର୍ମଧା)—ଦେବ ପୂଜାର ୧୬ ପ୍ରକାର
Shor͟daśopachāra ଉପକରଣ—Sixteen different ingredients of a Deity's worship. [ଦ୍ର—ଯଥା—ଆସନ, ସ୍ୱାଗତ, ପାଦ୍ୟ, ଅର୍ଘ୍ୟ,ଆଚମନୀୟ, ମଧୁପର୍କ, ପୁନରାଚମନୀୟ, ସ୍ନାନ, ବସନ, ଆଭରଣ, ଗନ୍ଧ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟ, ମୁଖବାସ ମତାନ୍ତରରେ ବନ୍ଦନ । ଶକ୍ତି ପୂଜାରେ ଷୋଡଶୋପଚାର, ଯଥା-ପାଦ୍ୟ, ଅର୍ଘ୍ୟ, ଆଚମନୀୟ, ସ୍ନାନ, ବସନ, ଭୂଷଣ, ଗନ୍ଧ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟ, ପୁନରାଚମନୀୟ, ସୁରା, ତାମ୍ବୁଳ, ତର୍ପଣ ଓ ନତି (ବିଶ୍ୱକୋଷ), ପୂଜା ଦେଲେ ନୋଟ ଦେଖ । ] ଦେ. ବି ( ଲକ୍ଷଣାର୍ଥ )
ষোড়শোপচার ସମାଗତ ଅତିଥି ବା ବନ୍ଧୁଙ୍କ ପୂଜା ବା ସତ୍କାରର
षोडशोपचार ସମୁଦାୟ ଅଙ୍ଗର ପୂର୍ଣ୍ଣତା—Completeness in the arrangements for entertaining or serving a guest or new comer. [ ଉ—ବହୁଦିନୁ ଲୋକେ ଉପାୟ ଅଭାବେ । ମନୁଷ୍ୟର ପୂଜା ଷୋଡଶୋପଚାରେ—ସ୍ୱଧ ନାଥ. ବଡ଼ବାର । ]

**ଷୋଡ଼ଶୋପଚାର ପୂଜା**—ସଂ. ବି (ଷୋଡ଼ଶୋପଚାର ସମନ୍ୱିତ ପୂଜା; ମ Shordasopachāra pūjā ଶ. ଲେ )—ଷୋଡ଼ଶୋପଚାର ସହିତ ଅନୁଷ୍ଠିତ ହେବା ପୂଜା—A worship performed with the help of 16 ingredients.
ষোড়শোপচার পূজা ଦେ. ବି—ଅତିଥି ବା ବନ୍ଧୁଙ୍କୁ ସାଡ଼ମ୍ବର
षोडशोपचार पूजा ସମ୍ମାନ ପ୍ରଦର୍ଶନ—A gorgeous entertainment of one's friend or guest.

**ଷୋଡ଼ଶୋପଚାରରେ ପୂଜା କରିବା**—ଦେ. କ୍ରି—୧ । (ଲକ୍ଷଣାର୍ଥ) Shordasopachārare pūjā karibā (ଅତିଥି ବା
ষোড়শোপচারে পূজা করা ବନ୍ଧୁଙ୍କୁ ବିଶେଷ ଭାବରେ ଅଭ୍ୟର୍ଥନା
षोडशोपचार पूजा करना କରିବା—1. To entertain a (ଷୋଡ଼ଶୋପଚାରରେ ପୂଜା ଦେବା—ଅନ୍ୟରୂପ) person in a grand style. ୨ । (ବ୍ୟଙ୍ଗାର୍ଥ) ଅଭିମାନରେ ଦଣ୍ଡଦେବା—2. To give a person a sound shower of rebuke.

**ଷୋଢ଼ା**—ସଂ. ବି (ଷଷ୍—ଛଅ+ପ୍ରକାରାର୍ଥେ ଧା )—୧ । ଛଅ ପ୍ରକାରେ; Shordhā ଷଡ଼୍ବିଧ—1. In six ways. ୨ । ଛଅ ଥର—2. Six times.

**ଷୋଢ଼ା ନ୍ୟାସ**—ସଂ. ବି—(ତନ୍ତ୍ର) ଦେବତାଙ୍କୁ ପୂଜା କରିବା ସମୟରେ Shordhā nyāsa ଛଅ ବିଧିଦ୍ୱାରା ପୂଜକର ଶରୀରରେ ଏକନ୍ୟାସ—The consecration of the worshipper's own body by purifying it with the prescribed application of mystic formulae before wroshipping a Deity.

**ଷୋଢ଼ାସିଦ୍ଧ**—ସଂ. ବିଣ. ପୁଂ—ଯେଉଁ ବ୍ୟକ୍ତି ଷୋଢ଼ାନ୍ୟାସ ସାଧନ କରି Shordhāsiddha ସିଦ୍ଧିଲାଭ କରିଅଛନ୍ତି—( a person , Who has attained success or perfection by the performance of Shordhānyāsa.

**ଷୋଢ଼**—ସଂ. ବି. ପୁଂ—ଯେଉଁ ବାଛୁରି ଛଅଟି ଦାନ୍ତ ଦାନ୍ତିଛି; ଷୋଡ଼ନ୍— Shoda A young ox which has six teeth out (Apte). (ପ୍ରୟୋଗ ନାହିଁ ବୋଲି ଜଣା ପଡ଼େ ।)

**ଷୋଳ**—ଦେ. ବି. ଓ ବିଣ ( ସଂ. ଷୋଡ଼ଶ; ପ୍ରା. ଷୋଳହ )— Shola ଷୋଡ଼ଶ ( ଦେଖ )—Shordasa ( See )
ষোল सोलह

**ଷୋଳ ଅଣା**—ଦେ. ବି—୧ । ୬୪ ପଇସା; ଏକ ଟଙ୍କାର ଅଂଶର Shola anā ସମଷ୍ଟି—1. 16 annas or 64 pice
ষোল আনা equal to one rupee. ୨ । କୌଣସି
सोलह आना ବିଷୟର ବା ପଦାର୍ଥର ପୂର୍ଣ୍ଣ ଅବସ୍ଥା—2. The complete or full condition of any thing or matter. ୩ । ସମ୍ପୂର୍ଣ୍ଣ ପଦାର୍ଥ—3. A whole thing; the whole. ଦେ. ବିଣ—ସମ୍ପୂର୍ଣ୍ଣ—Full; whole. [ ପ୍ର—ଧୀରଜ ଲକ୍ଷଣ ବାହାର ପ୍ରଣମି ପ୍ରିୟତମେ ଷୋଳ ଅଣା—ଜନକଶୋକ, ଶର୍ମିଷ୍ଠା ]

**ଷୋଳ ଉତ୍ତର ଶଏ(ହେ)**—ଦେ: ବି ଓ ବିଣ ( ସଂ. ଷୋଡ଼ଶୋତ୍ତର Shola uttara sae(he) ଶତ )—ଏକ ଶହ ଷୋଳ—
একশো ষোল One hundred and sixteen. [ ପ୍ର—
एकसौ सोलह ଏତଥର ଷୋଳ ଉତ୍ତର ଦୁଇ ଶହ, ଷୋଳ ଉତ୍ତର ତିନି ଶହ ଛନ୍ଦମାନ ହୁଏ । ]

**ଷୋଳକ ପଣ(ଣି)କିଆ**—ଦେ. ବି—ଗଣକିଆର ଷୋଳକେ (୧୬ × ୧) Sholaka pana(ni)kiā ଠାରୁ ଷୋଳ ଦଶୀ (୧୬×୧୦)
ষোলের নামতা ପର୍ଯ୍ୟନ୍ତ ଘଣିତ ଧାରାମାନ—The series or
सोलहका पाहाड़ा columns of arithmetical tables of the number 16 ( beginning from the multiplication of 16 by; up to that of 16 by 10 ).

**ଷୋଳ କଳା**—ଦେ. ବି ( ସଂ. ଷୋଡ଼ଶ କଳା )—୧ । ଷୋଡ଼ଶ କଳା Shola kalā (ଦେଖ)—1. Shordasa kalā (See)
ষোল কলা ୨ । (ଲକ୍ଷଣାର୍ଥ) କୌଣସି ବିଷୟର ସମ୍ପୂର୍ଣ୍ଣ ଅବସ୍ଥା—
सोलह कला 2. (figurative) The full or completed state of a thing. [ ପ୍ର—ଧନ ଥିଲେ ଯେ ସୁଖ କଳାଟିଏ ଥାଏ, ଧର୍ମ କରିଲେ ଷୋଳ କଳା ଭୋଗ ପାଏ—କୃଷ୍ଣସିଂହ, ମହାଭାରତ, ଶାନ୍ତି । ] ଦେ. କ୍ରି. ବିଣ ଓ ବିଣର ବିଣ—ପୂର୍ଣ୍ଣରୂପେ—Completely; wholly.

**ଷୋଳ କଳାରେ ପୂର୍ଣ୍ଣ**—ଦେ. ବିଣ—ପୂର୍ଣ୍ଣାଙ୍ଗ ପ୍ରାପ୍ତ; ପୂର୍ଣ୍ଣ— Shola kalāre pūrnna Complete or full in all
ষোল কলাতে পূর্ণ सोलह कलासे पूर्णा respects.

**ଷୋଳ ଖଣ୍ଡିଆ**—ପ୍ରାଦେ. (ଜୟପୁର) ବି—ଗଉଡ଼ଙ୍କ ଶ୍ରେଣୀବିଶେଷ— Shola khandiā A sect of the cowherd caste in Jeypore. [ ପ୍ର—ଏମାନେ ମଦ୍ୟପ ହୁଅନ୍ତି; ଏ ଅଞ୍ଚଳର ଅନ୍ୟ କେତେକ ଶ୍ରେଣୀର ଗଉଡ଼ ମଦ ପିଅନ୍ତି ।]

**ଷୋଳ ଗୁଣ**—ଦେ. ବି ( ସଂ. ଷୋଡ଼ଶ ଗୁଣ )—ଷୋଳଥର; ଷୋଳ Shola guna ଥର ଗୁଣିତ ହେଲେ ଯେତିକି ପରିମାଣ—
ষোল গুণ 16 times; sixteen times as much.
सोलह गुना ଦେ. ବିଣ—ଷୋଳଦ୍ୱାରା ଗୁଣିତ—16 times as much as; multiplied by sixteen.

**ଷୋଳଙ୍ଗପୁର**—ଦେ ବି (ନାମ) ( ସଂ. ଷୋଡ଼ଶାଙ୍ଗ+ପୁର )— Sholangapura ବୈତରଣୀ ନଦୀକୂଳରେ ଥିବା ଗ୍ରାମବିଶେଷ— The name of a village on the Baitarani river. [ ପ୍ର—କପିଳେନ୍ଦ୍ର ଦେବ ଏହି ଗ୍ରାମରେ ଷୋଳ ପୁର ବଶିଷ୍ଠ ଗୋତ୍ରଏ ନଅର ତୋଳାଇଥିଲେ । କଳାପାହାଡ଼ ଓଡ଼ିଶା ଆକ୍ରମଣ କଲାବେଳେ ଏହି ନଅରକୁ ଭାଙ୍ଗି ପକାଇଥିଲେ । ଏହି ସ୍ଥାନକୁ କେତେକ ବୌଦ୍ଧମୂର୍ତ୍ତି ଅବସ୍ଥିତ ହୋଇଅଛି—ଚନ୍ଦ୍ରଶେଖର ଦାସ । ]

**ଷୋଳ ଡମ୍ବରୁ**—ଦେ. ବି—ମେରୁଦଣ୍ଡ ମଧ୍ୟରେ ସୁଷୁମ୍ନା ନାଡ଼ିରେ ଥିବା Shola dambaru ୧୬ଟି ଗଣ୍ଠି—Sixteen knots sup-

ষোল গাইঁঠ posed to exist in the Sushumṇā vein
सोलह गाँठ running inside the backbone.
[ଉ—ଷୋଳ ଗ୍ରନ୍ଥିକୁ ଭେଦି । ନିଶ୍ଚଳେ ବେନି ଡୋଳା ରଖି—ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ । ]

**ଷୋଳ ନାମ**—ଦେ. ବି—ଭଗବାନଙ୍କର ଷୋଳଟି ନାମ (ଯଥା—ହରେ
Shoḷa nāma ରାମ ହରେ ରାମ, ରାମ ରାମ ହରେ ହରେ;
ষোল নাম ହରେ କୃଷ୍ଣ ହରେ କୃଷ୍ଣ, କୃଷ୍ଣ କୃଷ୍ଣ ହରେ ହରେ)—
सोलह नाम The formula in which the name of God is uttered sixteen times. [ ଦ୍ର— ଏହାକୁ ମଧ୍ୟ ଷୋଳ ନାମ ବତିଶ (ବତିଶି) ଅକ୍ଷର କହନ୍ତି ।

**ଷୋଳ ପଣ**—ଦେ. ବି—୧ । ଏକ କାହାଣ ବା ୩୨୦ଗଣ୍ଡା ବା ୧୨୮୦]
Shoḷa paṇa କଉଡ଼ି—1. 1280 pieces of cowrie
ষোল আনা or shell money ( formerly passing as
सोलह आना currency ). ୨ । କୌଣସି ବିଷୟର ସାଙ୍ଗୋପାଙ୍ଗ ବା ସମ୍ପୂର୍ଣ୍ଣ ଅବସ୍ଥା—2. A full or complete condition of anything or matter. ୩ । କୌଣସି କାର୍ଯ୍ୟର ପୂର୍ଣ୍ଣତା—3. Completion of any work. ୪ । ବସ୍ତୁର ସମସ୍ତତା—4. The whole. ୫ । ପୂର୍ଣ୍ଣମାତ୍ରା—5. Complete measure. ଦେ. ବିଣ—୧ । ସମ୍ପୂର୍ଣ୍ଣ (ପଦାର୍ଥ)—1. Full; complete. ୨ । ଗୋଟାକଯାକ—2. Whole. [ ଉ—ସେ କହେ ଯଯାତି ଷୋଳପଣ ଭାର ତର ସମ୍ଭୋଗ୍ୟ ସେ ଭାର—ନନ୍ଦକିଶୋର. ଶର୍ମିଷ୍ଠା ] ୩ । ପୂର୍ଣ୍ଣମାତ୍ରାଯୁକ୍ତ; ପୂର୍ଣ୍ଣାଙ୍ଗ—3. Of full measure or outturn; bumper. ( ଯଥା—ଏ ବର୍ଷ ଷୋଳପଣ ଫସଲ ହୋଇଥିଲା । ) ଦେ. କ୍ରି. ବିଣ—୧ । ସମ୍ପୂର୍ଣ୍ଣରୂପେ—1. Fully; completely. ( ଯଥା—ତମ କଥା ଷୋଳପଣ ବୁଝିଗଲିଣି । ) ୨ । ଗୋଟାକଯାକ; ଗୋଟାପଣେ—2. Wholly. ୩ । ପୂର୍ଣ୍ଣମାତ୍ରାରେ—3. In full measure. [ଦ୍ର—ଗୋଟିଏ ପୂର୍ଣ୍ଣ ପଦାର୍ଥ ବା ବିଷୟକୁ ୧ କାହାଣ ବା ୧୬ ପଣ ଧରି ପଣ ଅନୁସାରେ ତାହାର ଭଗ୍ନାଂଶ ବୁଝାଇବାକୁ ହୁଏ ଯଥା—ଚାରିପଣ $=\frac{୧}{୪}$; ଛଅପଣ$=\frac{୩}{୮}$; ଦଶପଣ $=\frac{୫}{୮}$; ଅଠପଣ $=\frac{୧}{୨}$; ପାଞ୍ଚପଣ$=\frac{୫}{୧୬}$ ।) (ଷୋଳଣା—ଗ୍ରାମ୍ୟରୂପ)

**ଷୋଳପଣି**—ଦେ. ବି—ବର୍ଷକ ମଧ୍ୟରେ ପ୍ରଜାଙ୍କ ଦେୟ ରାଜସ୍ୱର ସମ୍ପୂର୍ଣ୍ଣ
Sholapaṇi ପରିମାଣ—Full quantity of
ষোলআনা सोलहआनी the annual rent payable by a tenant.—ଦେ. ବିଣ—ଷୋଳପଣିଆ (ଦେଖ) Sholapaniā (See)

**ଷୋଳପଣି ଅଧିକାର**—କୌଣସି ବିଷୟରେ କୌଣସି ବ୍ୟକ୍ତିର ସମ୍ପୂର୍ଣ୍ଣ
Sholapaṇi adhikāra ଅଧିକାର—Sole right
ষোলআনা অধিকার सोलहआनाअधिकार over something (of a person.

**ଷୋଳପଣିଆ(ଆଁ)**—ଦେ. ବିଣ—ଷୋଳପଣସମ୍ବନ୍ଧୀୟ—Relating
Sholapaṇiā(āṅ) to the full amount.
ষোলআনার सोलहआनाका ଦେ. ବି—କୌଣସି ସମ୍ପତ୍ତିର ବା ବିଷୟର ପୂର୍ଣ୍ଣ ଅଧିକାରପ୍ରାପ୍ତ ବ୍ୟକ୍ତି—A full proprietor of a property. (ଯଥା—ଏ ମହାଲର ମୁଁ ଷୋଳପଣିଆ ଜମିଦାର ଅଟେ ।)

**ଷୋଳପଣି କିସ୍ତି**—ଦେ. ବି—ଯେଉଁ କିସ୍ତିରେ ବାର୍ଷିକ
Shoḷa paṇi kisti ରାଜସ୍ୱର ସମ୍ପୂର୍ଣ୍ଣ ଅଂଶ ଦିଆଯାଏ—
ষোলআনাকিস্তি सोलहआनेकिस्त The instalment in which the whole of the annual revenue becomes payable. [ଦ୍ର—ବଙ୍ଗରେ କେଉଁ କେଉଁ ଅଞ୍ଚଳରେ ପ୍ରଜା ଚାରିପଣ (ଅର୍ଥାତ୍ $\frac{୧}{୪}$) ଲେଖାଏଁ ୪ ଥରରେ ଆପଣା ଦେୟ ରାଜସ୍ୱକୁ ଜମିଦାରଙ୍କୁ ଦିଅନ୍ତି ।

ପ୍ରଥମ କିସ୍ତି=ଚାରିପଣି କିସ୍ତି
ଦ୍ୱିତୀୟ କିସ୍ତି=ଅଠପଣି କିସ୍ତି
ତୃତୀୟ କିସ୍ତି=ବାରପଣି କିସ୍ତି
ଶେଷ ବା ଚତୁର୍ଥ କିସ୍ତି=ଷୋଳପଣି କିସ୍ତି ।

କେଉଁ କେଉଁ ଅଞ୍ଚଳରେ ବାର୍ଷିକ ଖଜଣା ୨ କିସ୍ତିରେ ଅଠପଣି (ବା $\frac{୧}{୨}$) ଲେଖାଏଁ ଦିଆଯାଏ ।

ପ୍ରଥମ କିସ୍ତି=ଅଠପଣି କିସ୍ତି
ଦ୍ୱିତୀୟ ବା ଶେଷ କିସ୍ତି=ଷୋଳପଣି କିସ୍ତି ।

ଓଡ଼ିଶାରେ ଜମିଦାରମାନେ ବାର୍ଷିକ ରାଜସ୍ୱକୁ ଦୁଇ କିସ୍ତିରେ, ପ୍ରାୟ ଅର୍ଦ୍ଧେକ ଲେଖାଏଁ, ଗଭର୍ଣ୍ଣମେଣ୍ଟକୁ ଦିଅନ୍ତି ।

ବୈଶାଖ ବା ପ୍ରଥମ କିସ୍ତି=ଅଠପଣି କିସ୍ତି
କାର୍ତ୍ତିକ ବା ଦ୍ୱିତୀୟ କିସ୍ତି ॥ ଷୋଳପଣି କିସ୍ତି ।]

**ଷୋଳ ପାଲା(ପୂଜା)**—ଦେ. ବି (ସଂ. ଷୋଡ଼ଶ ଓ ପୂଜା)—ମୁସଲମାନ
Shoḷa pālā(pūjā) ମନୋବାଞ୍ଛା ସିଦ୍ଧି ହେଲେ ସତ୍ୟନାରାୟଣ
ষোলপালাগান सतयनारायणपूजा ବା ସତ୍ୟପୀରଙ୍କ (ହିନ୍ଦୁମାନଙ୍କ) ମନାସିବା ୧୬ ଗୋଟି ପାଲା ବା ପୂଜା—Sixteen Pujās offered to the Satyapir Deity on the fulfilment of one's wish.
[ଦ୍ର—ସତ୍ୟନାରାୟଣ ତଳେ ନୋଟ ଦେଖ ।]

**ଷୋଳ ପାଲା (ପୂଜା) ଯାଚିବା**—ଦେ. କ୍ରି—ମୁସଲମାନ କାମନାର ସିଦ୍ଧି
Shoḷa pālā(pūjā) jāchibā ହେଲେ ୧୬ଟି ସତ୍ୟନାରାୟଣ
ষোলপালামানা सतयनारायनपूजामनतंकरना ପୂଜା [ଷୋଳ ପାଲା(ପୂଜା) ମନାସିବା—ଅନ୍ୟରୂପ] କରିବାକୁ ମନାସିବା—To vow to perform 16 offerings to Satyapir on the fulfilment of one's particular wish.

**ଷୋଳବୟା**—ଦେ. ବିଣ. ସ୍ତ୍ରୀ (ସଂ. ଷୋଡ଼ଶ+ବୟଃ)—ଷୋଳ
Sholabayā ବର୍ଷ ବୟସ୍କ—Aged 16 years. [ଉ—
সোমত্ত षोलहबरषकी ଅଟଇ ଷୋଳ ବୟା ! ଷଷ୍ଠିଦଣ୍ଡ

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଈ' ନ ମିଳିଲେ 'ଗାଇ'ଖୋଜିବେ; 'ମୂଢ଼' ନ ମିଳିଲେ 'ମୂଢ' ଖୋଜିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ'ଅର୍ଘ୍ୟ' ଦେଖିବେ;'ଅଲବତ'ନ ପାଇଲେ 'ଅଲ୍‌ବତ୍'ଦେଖିବେ

ହୋଇବ ତୋ ଲକ୍ଷଣଜ୍ଞାସ୍ୱା—କବିସୂର୍ଯ୍ୟ ବଳଦେବ।]

ଷୋ'ଳ ବରଷ—ଦେ· ବି (ସଂ. ଷୋଡ଼ଶ ବର୍ଷ)—ଷୋଡ଼ଶ ବର୍ଷ—
Shola barasha Sixteen years.
ষোলবচ্ছর सोलह बरष

ଷୋଳ ବର(ଷ)ସିଆ—ଦେ. ବଣ. ପୁଂ—୧ । ଷୋଡ଼ଶବର୍ଷୀୟ—
Shola bara(ya)sia 1. Aged 16 years.
[ଷୋଳବର(ଷ)ସୀ—ସ୍ତ୍ରୀ] ୨ । ପୂର୍ଣ୍ଣ ଯୁବା (ଅଳ୍ପ ଦେଶରେ)—
ষোলবছরের सोलहबरषका . Youthful; in the prime of youth.
(ଭୂ—ତାହାଙ୍କର ବାରୁ ବୁଢ଼ା ହୋଇଲଠାରେ, ଷୋଳ ବରଷିଆ ସେ ଅଟନ୍ତି ଯୁବରେ—କୃଷ୍ଣସିଂହ ମହାଭାରତ ଉଦ୍‌ଯୋଗ ।]

ଷୋଳଶା—ଦେ· ବଣ. ପୁଂ ଓ ସ୍ତ୍ରୀ [ ସଂ ଷୋଡ଼ଶା ]—ଷୋଡ଼ଶ
Sholasa ବର୍ଷୀୟା—Aged sixteen years. (ଭୂ—
ষোড়শী सोलहबरषका ଷୋଳଶାବାଳୀ ରୂପବନ୍ତୀ—ପ୍ରାଚୀ ନବ୍ୟ ସମାହାସ୍ୟ ।)

ଷୋଳ୍ହ(ହ୍ଳ)—ଦେ· ବି· ଓ ବଣ—ଷୋହଳ—Sixteen. (ଭୂ—
Sholha(hla) ଷୋଳ୍ହ ନାମ ବରଷ ବଳେ—ଯଶୋବନ୍ତ.
ষোল सोलह ପ୍ରେମବକ୍ତ୍ରଚନ୍ଦ୍ରଗୀତା ।)

ଷୋଲ୍‌ହ(ହ୍ଲ) (ଇତ୍ୟାଦି)—ଦେ.ବି (ସଂ. ଅଲମ୍ବୁଷା)—ଶୋଲ୍ ଇତ୍ୟାଦି
Sholha(hla) (etc) (ଦେଖ)—Sola etc ( See )
সোলা सोला

ଷୋହ(ହୋ)ଲ—ଦେ· ବି· ଓ ବଣ(ସଂ. ଷୋଡ଼ଶ; ପ୍ରା. ସୋଲହ)—୧ ।
Shoha(ho)la ଷୋଡ଼ଶ—1. Sixteen. ୨ ।
ষোল सोलह ଦୁଇ ପାଖରେ ଥିବା ଉଚ୍ଚ ଜମିର
খাল नीचीजमीन ମଧ୍ୟବର୍ତ୍ତୀ ଖାଲୁଆ ଅଂଶ ବା ପଟୀ—
2. A strip of low land separating two high lands.

ସ୍କାଇ ଲାଇଟ୍—ବୈଦେ· ବି[ଇଂ]—ବଡ଼ ଅନ୍ଧାରୁଆ କୋଠା ଘରକୁ
Shkai-lait ଆଲୁଅ ଦେବାପାଇଁ କାନ୍ଥରେ ଖୁବ ଉଚ୍ଚ ହୋଇ
স্কাইলাইট स्काईलाइट ଲାଗିଥିବା ଝରକା—Skylight.

ସ୍କିମ—ବୈଦେ. ବି (ଇଂ)—କୌଣସି କାର୍ଯ୍ୟର ଉଦ୍ଦିଷ୍ଟକ୍ରମ—
Shkim Scheme.
স্কীম स्कीम

ସ୍କୁଲ୍ (ଇତ୍ୟାଦି)—ବୈଦେ. ବି (ଇଂ)—ସ୍କୁଲ୍ ଇତ୍ୟାଦି (ଦେଖ)
Shkul (etc) Skul etc [See]
স্কুল स्कूल ବିଦ୍ୟାଳୟ—School, [ ଦ୍ର—ଏହି ଶବ୍ଦ ପୂର୍ବେ ଓ ପରେ ଅନେକଗୁଡ଼ିଏ ଅନ୍ୟ ଅନ୍ୟ ପ୍ରକାରବାଚକ ଇଂରାଜୀ ଶବ୍ଦ ଯୋଗ ହୁଏ । ଯଥା—ସଣ୍ଡେ ସ୍କୁଲ୍—ଖ୍ରୀଷ୍ଟାନମାନଙ୍କ ଧର୍ମସମ୍ବନ୍ଧୀୟ ଶିକ୍ଷା ପାଇଁ ରବିବାର ବସୁଥିବା ବିଦ୍ୟାଳୟ—Sunday school.

ଅପର୍ ପ୍ରାଇମେରୀ—Upper Primary School.
ଲୋଅର୍ ପ୍ରାଇମେରୀ—Lower Primary School.
ଭର୍ଣ୍ଣାକୁଲାର୍—Vernacular school.
ମାଇନର୍ ବା ମିଡ଼ିଲ୍ ଇଂଲିସ୍—Minor or Middle English school.
ଟ୍ରେନିଙ୍ଗ୍—Training school.
ମଡେଲ୍—Model school,
ହାଇ—High school.
ସର୍ଭେ—Survey school.
ଲୋ କାଷ୍ଟ୍—Lowcaste school.
ଗେର୍ଲ୍ ସ୍କୁଲ୍—Girl school.
କଲେଜିଏଟ୍ ସ୍କୁଲ୍—Collegiate school.
ନାଇଟ୍—Night school.
ବୋର୍ଡ୍—Board school.
ମେଡ଼ିକାଲ୍—Medical school
ଇଞ୍ଜିନିଅରଙ୍ଗ୍—Engineering school.
ସ୍କୁଲର ଅଶୁଦ୍ଧ ଉଚ୍ଚାରଣ ଇସ୍କୁଲ, ଇସ୍କୁଇଲ, ଇସିକୁଲ ।]

ସ୍କୁଲ୍‌କମି(ମେ)ଟି—ବୈ.ଦେ.ବି· (ଇଂ)-ବିଦ୍ୟାଳୟର ପରିଚାଳକ ସମିତି—
Shkul kami(me)ti School Committee; the managing committee of a school.
স্কুল কমিটী स्कूल कमिटी

ସ୍କୁଲ୍ ଫାଇନ(ନା)ଲ୍—ବୈଦେ·ବି· (ଇଂ) (ଅଚଳିତ ପ୍ରୟୋଗ)-ଯେଉଁ
Shkul phaina(na)l ଛାତ୍ରମାନେ ବଡ଼ ବିଦ୍ୟାଳୟର ଉଚ୍ଚତର
স্কুল ফাইনাল ଶିକ୍ଷା ସୋପାନକୁ ନ ଯିବେ,ସେମାନଙ୍କ ପାଇଁ ଉଦ୍ଦିଷ୍ଟ
स्कूल फाइनल ହାଇସ୍କୁଲର ଶେଷ ପରୀକ୍ଷା—School final examination.

ସ୍କୁଲ୍ ବୁକ୍ ସୋସାଇଟି—ବୈଦେ. ବି· ( ଇଂ )—ସ୍କୁଲ-ପାଠ୍ୟ ପୁସ୍ତକ
Shkul buk sosaiti ସମ୍ବନ୍ଧୀୟ ସମିତି—School book
স্কুল বুক সোসাইটী स्कूल बुक सोसाइटी Society.

ସ୍କୁଲ୍ ମାଷ୍ଟର୍—ବୈଦେ· ବି. ପୁଂ ( ଇଂ )—ବିଦ୍ୟାଳୟର ଶିକ୍ଷକ—
Shkul mashtar School master
স্কুল মাষ্টর स्कूल मास्टर

ସ୍କୁଲ ମାଷ୍ଟରୀ—ଦେ· ବି.—(ଇଂ ସ୍କୁଲ୍‌ମାଷ୍ଟର୍ ଶବ୍ଦସଙ୍ଗେ ଦେଶୀୟ ଇ
Shkul mashtari ପ୍ରତ୍ୟୟ)-ସ୍କୁଲ ମାଷ୍ଟରଙ୍କ କର୍ମ ବା ପଦ—
স্কুলমাষ্টারী Post of a schoolmaster; the state of
स्कूल मास्टरी being a schoolmaster; school mastership. ଦେ. ବଣ·—ସ୍କୁଲ ମାଷ୍ଟର ସମ୍ବନ୍ଧୀୟ—Pertaining to a schoolmaster.

| ୧ | ଇ | ଉ | ଋ,ଋ | ଡ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ଼ | ଉଅ | ୠ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗାଁ | ଇଅ | ଙ୍କ | ନ୍ମ |

**ସ୍କୁଲ୍ ମାଷ୍ଟରଣୀ**—ବୈଦେ. ବି. ସ୍ତ୍ରୀ (ଇଂ. ସ୍କୁଲ୍ ମାଷ୍ଟର ଶବ୍ଦ ସଙ୍ଗେ ଓଡ଼ିଆ Shkul mashtarani ସ୍ତ୍ରୀ ବାଚକ ଅଣୀ ପ୍ରତ୍ୟୟ)—୧ । ସ୍କୁଲ ସ୍कूलमाष्टराणी ମାଷ୍ଟରଙ୍କ ସ୍ତ୍ରୀ—1 School master's wife. स्कूलमाष्टरनी ୨ । ସ୍କୁଲ ମିଷ୍ଟ୍ରେସ୍—2. School mistress.

**ସ୍କୁଲ୍ ମିଷ୍ଟ୍ରେସ୍**—ବୈଦେ. ବି. ସ୍ତ୍ରୀ (ଇଂ)—ବିଦ୍ୟାଳୟର ଶିକ୍ଷୟିତ୍ରୀ—Shkul mishtres School mistress.

**ସ୍କେଲ**—ବୈଦେ. ବି. (ଇଂ)—ଭୂମିର ମାପର ଯେଉଁ ଅନୁପାତ ଅନୁ- Shkel ସାରେ ନକସା ଅଙ୍କିତ ହୋଇଥାଏ—The scale of स्केल a map.

**ସ୍କ୍ରୁ**—ବୈଦେ. ବି—(ଇଂ)—ପେଚ କଣ୍ଟା—Shkru Screw. स्क्रू स्क्रू

**ସ୍କ୍ରୁ ଡ୍ରାଇଭର୍**—ବୈଦେ. ବି (ଇଂ)—ପେଚ କଣ୍ଟାକୁ ଭୂମିରେ ଛିଦ୍ରରେ Shkru draibhar ଭରଣ କରିବା ଯନ୍ତ୍ର—Screw- स्क्रूड्राइभर स्क्रूड्राइभर driver.

**ଷ୍ଟକ୍**—ବୈଦେ. ବି (ଇଂ)—୧ । ଚଳିତ ଥିବା ମାଲ; ମହଜୁଦ Shtak ପଦାର୍ଥ—1. Stock of articles. ୨ । କମ୍ପାନି ष्टक ष्टक କାଗଜ—2. Government stock. [ଦ୍ର—ଷ୍ଟାକ୍ ଓ ଇଷ୍ଟାକ୍ ଏହାର ଅଶୁଦ୍ଧ ଉଚ୍ଚାରଣ]

**ଷ୍ଟକ୍ ଏକ୍ସଚେଞ୍ଜ୍**—ବୈଦେ. ବି (ଇଂ)—ଯେଉଁଠାରେ କମ୍ପାନି Shtak eks-chenj କାଗଜ କିଣାବିକା ହୁଏ—Stock- ष्टकएक्सचेंज ष्टकएक्सचेंज exchange.

**ଷ୍ଟକ୍ ବୁକ୍**—ବୈଦେ. ବି (ଇଂ)—ଯେଉଁ ପୁସ୍ତକରେ ମହଜୁଦ ଥିବା Shtak buk ଜିନିଷମାନଙ୍କ ତାଲିକା ଲେଖା ହୋଇଥାଏ—ष्टकबुक ष्टकबुक Stock book. (ଷ୍ଟକ୍ ବହି—ଦେଶଜରୂପ)

**ଷ୍ଟକ୍ ବ୍ରୋକର୍**—ବୈଦେ. ବି (ଇଂ)—କମ୍ପାନି କାଗଜ କିଣାବିକାର ଦଲାଲ—Shtak brokar Stock-broker. ष्टकब्रोकार ष्टकब्रोकार

**ଷ୍ଟକ୍ ହଲ୍ମ୍**—ଦେ. ବି (ନାମ)—ସ୍ୱିଡେନ୍ ଦେଶର ରାଜଧାନୀ—Shtak-hal-m Stockholm (town). ष्टकहलम ष्टकहलम

**ଷ୍ଟକିଙ୍ଗ(ନ୍)**—ବୈଦେ. ବି (ଇଂ)—ମୋଜା—Stocking. [ଦ୍ର- Shtaking(n) ଇଷ୍ଟକିନ୍ (ଙ୍); ଷ୍ଟାକିନ୍ ଓ ଇଷ୍ଟାକିନ୍ ଆଦି ष्टकिंङ्ग ष्टकिङ्ग ଏଥିର ଅଶୁଦ୍ଧ ଉଚ୍ଚାରଣ ]

**ଷ୍ଟୁଡିଓ**—ବୈଦେ. ବି (ଇଂ. ଉଚ୍ଚାରଣ—ଷ୍ଟୁଡିଓ)—ଚିତ୍ରକର ଆଦିଙ୍କ Shtadio ଚିତ୍ରଶାଳା—Studio of an artist. ष्टुडिओ ष्टुडिओ

**ଷ୍ଟଡୀ ଲିଭ୍**—ବୈଦେ. ବି. (ଇଂ)—ସ୍ୱଦେଶରେ ବା ଅନ୍ୟତ୍ର Shtadi libh କୌଣସି ବିଦ୍ୟା ଶିଖିବା ପାଇଁ ଶିକ୍ଷକଙ୍କୁ ବା ष्टडीलीभ ष्टडिलिभ ଅନ୍ୟ କର୍ମଚାରୀଙ୍କୁ ଦିଆଯିବା ଛୁଟି—Study-leave.

**ଷ୍ଟପର୍**—ବୈଦେ. ବି (ଇଂ)—ବୋତଲର ଠିପି Shtapar Stopper of a bottle. ष्टपार ष्टपर

**ଷ୍ଟାଇପେଣ୍ଡ୍**—ବୈଦେ. ବି (ଇଂ)—ଛାତ୍ରଙ୍କୁ ବା ଶିକ୍ଷକଙ୍କୁ ସରକାରରୁ Shtaipend ମିଳୁଥିବା ବୃତ୍ତି—Stipend. ष्टाइपेण्ड ष्टाइपेण्ड

**ଷ୍ଟାଇପେଣ୍ଡିଆରି**—ବୈଦେ. ବିଣ (ଇଂ)—ସରକାରରୁ ବୃତ୍ତି ପାଉଥିବା Shtaipendiari (ଶିକ୍ଷକ ବା ଛାତ୍ର ବା ସ୍କୁଲ)—Stipendiary ष्टाइपेण्डिआरी ष्टाइपेण्डिआरी

**ଷ୍ଟାଇଲୋ**—ବୈଦେ. ବି (ଇଂ)—ଯେଉଁ ଫାଉଣ୍ଟେନ କଲମ ମଧ୍ୟରେ ସଞ୍ଚିତ ଥିବା Shtailo କାଳି ଲେଖିଲାବେଳେ ମୁନର ଭିତରୁ ବାହାରେ ବାହାରେ—(ଷ୍ଟାଇଲୋପେନ୍—ଅନ୍ୟରୂପ) ष्टाइलो ष्टाइलो Stylo pen.

**ଷ୍ଟାଇଲୋଗ୍ରାଫ୍**—ବୈଦେ. ବି (ଇଂ)—କାଳି ମଡ଼ାଇ ଲେଖା ଅକ୍ଷରକୁ Shtailo graph ଅନ୍ୟ କାଗଜରେ ଉଠାଇବାର ଯନ୍ତ୍ର—ष्टाइलोग्राफ् ष्टाइलोग्राफ Stylograph.

**ଷ୍ଟାର୍ଟ(ର୍ଟ) ଦେବା(କରିବା)**—ଦେ. କ୍ରି—କଳ ଚଳାଇ (ମଟର ଗାଡ଼ିର) Shtat(rt) deba(kariba) ଗତିବିଶିଷ୍ଟ କରାଇବା—ष्टार्टकरा ष्टार्टकरना To start (a motor car).

**ଷ୍ଟାର୍ଟିଂ(ର୍ଟିଙ୍ଗ) ପଏଣ୍ଟ**—ବୈଦେ. ବି (ଇଂ)—ଯେଉଁ ଜାଗାରୁ Shtati(rti)ng paent ବା ଶଙ୍କୁରୁ ମାପ ବା ଦୌଡ଼ ଆଦି ଆରମ୍ଭ ष्टार्टिंगपएन्ट ष्टार्टिंगपएन्ट ହୁଏ—Starting point in a survey or horse-race.

**ଷ୍ଟାଣ୍ଡ୍**—ବୈଦେ. ବି (ଇଂ)—ଭଡ଼ାରେ ବାହୁଥିବା ପାଲିଙ୍କି, ଘୋଡ଼ା, ଗାଡ଼ି Stand ଆଦି ଯାନମାନଙ୍କ ଅପେକ୍ଷା କରି ରହିବା ପାଇଁ ମିଉନିସି-ष्टाण्ड ପାଲିଟି ଦ୍ୱାରା ନିର୍ଦ୍ଦିଷ୍ଟ ସ୍ଥାନ; ଶଗଡ଼, ଗାଡ଼ି ଆଦିର ଅଡ୍ଡା—स्टेंड A stand for hackney carriages etc. [ ଦ୍ର—ଏ ଶବ୍ଦ ପୂର୍ବେ ଅନ୍ୟ ଇଂରାଜି ଶବ୍ଦମାନ ଲାଗେ; ଯଥା—ମଟର ଷ୍ଟାଣ୍ଡ, ଗାରେଜ୍ ଷ୍ଟାଣ୍ଡ, ପାଲ୍କି ଷ୍ଟାଣ୍ଡ, ଘଡ଼ା ଷ୍ଟାଣ୍ଡ; ଇଷ୍ଟାଣ୍ଡ ଅଶୁଦ୍ଧ ଉଚ୍ଚାରଣ ।]

**ଷ୍ଟାଣ୍ଡାର୍ଡ(ଡ୍)**—ବୈଦେ. ବି (ଇଂ)—ସ୍କୁଲରେ ଅଧିକାଂଶ ଧରଣରେ ତଳ Shtandard(rd) ଅଙ୍କରୁ ଗଣାଯିବା ଶ୍ରେଣୀ ସଂଖ୍ୟା—Standard ष्टाण्डार्ड or number of a class reckoned from the स्टैण्डार्ड lowest class of a school. [ଦ୍ର—ଶିଶୁଶ୍ରେଣୀ ୧ମ ଷ୍ଟାଣ୍ଡାର୍ଡ, ତାହାର ଉପର ଶ୍ରେଣୀ ୨ୟ ଷ୍ଟାଣ୍ଡାର୍ଡ ଓ

ତହିଁର ଉପର ଶ୍ରେଣୀ ୬ଷ୍ଠ ଷ୍ଟାଣ୍ଡାର୍ଡ । ନିମ୍ନ ପ୍ରାଇମେରୀରେ ୨ୟ ଓ ୩ୟ ଏବଂ ୨ୟ ଷ୍ଟାଣ୍ଡାର୍ଡ । ଉଚ୍ଚ ପ୍ରାଇମେରୀରେ ୪ର୍ଥ ଓ ୫ମ ଷ୍ଟାଣ୍ଡାର୍ଡ । ମାଇନର୍ ବା ଉର୍ଣ୍ଣାକୁଲର୍‌ରେ ୬ଷ୍ଠ ଓ ୭ମ ଷ୍ଟାଣ୍ଡାର୍ଡ । ମାଟ୍ରିକ୍ୟୁଲେଶନ୍‌ରେ ୮ମ, ୯ମ, ୧୦ମ, ୧୧ଶ ଷ୍ଟାଣ୍ଡାର୍ଡ ।]

**ଷ୍ଟାଣ୍ଡାର୍ଡ ଟାଇମ**—ବୈଦେ. ବ (ଇଂ)—ସରକାରଙ୍କ ଆଇନ୍ ଅନୁସାରେ Shtāndārd tāim ଭାରତରେ ସର୍ବତ୍ର ଚଳୁଥିବା ଏକ ষ্টাণ্ডার্ড টাইম स्टैण्डार्ड टाइम ସର୍ବଗ୍ରାହ୍ୟ ସମୟ—Standard time currently used throughout India (except Calcutta). [ଦ୍ର—କେବଳ କଲିକତାରେ ଷ୍ଟାଣ୍ଡାର୍ଡ ଟାଇମ୍ ଚଳେ ନାହିଁ । ଷ୍ଟାଣ୍ଡାର୍ଡ ଟାଇମ୍ ମାନ୍ଦ୍ରାଜର ସମୟ ଅଟେ । କଲିକତାର ସ୍ଥାନୀୟ ସମୟ ଷ୍ଟାଣ୍ଡାର୍ଡ ଟାଇମ୍ ଅପେକ୍ଷା ୨୪ ମିନିଟ ଅଧିକ । ଭାରତର ଷ୍ଟାଣ୍ଡାର୍ଡ ଟାଇମ୍ ଗ୍ରୀନ୍‌ୱିଚର ସମୟଠାରୁ ୫½ ଘଣ୍ଟା ଅଧିକ ଅଟେ । ଇଂଲଣ୍ଡର ଷ୍ଟାଣ୍ଡାର୍ଡ ଟାଇମ୍ ଗ୍ରୀନ୍‌ୱିଚର ସମୟ ଅପେକ୍ଷା ୧ ଘଣ୍ଟା ଅଧିକ ।]

**ଷ୍ଟାମ୍ପ**—ବୈଦେ. ବ (ଇଂ)—୧ । ସିଟାମ୍; ଗଭର୍ଣ୍ଣମେଣ୍ଟଙ୍କ ମୋହରମାରି Shtāmp କାଗଜ, ଯହିଁରେ ଦଲିଲ ଆଦି ଲେଖାଯାଏ— ষ্টাম্প स्टैम्प 1. Government stamped paper. ୨ । ଡାକ ଘରର ଡାକ ଟିକଟ; ପୋଷ୍ଟେଜ୍ ଷ୍ଟାମ୍ପ—2. Postage stamp. ୩ । ରବର୍ ଆଦିରେ ଅକ୍ଷରାଦି ଅଙ୍କିତ ବା ଖୋଦିତ ମୋହର—3. Rubber stamp. [ଦ୍ର—ଇଷ୍ଟାମ୍ପ, ଷିଟାମ୍(ମୁ), ଶିଠାମ୍ (ମୁ) ଏହାର ଅଶୁଦ୍ଧ ଉଚ୍ଚାରଣ ।]

**ଷ୍ଟାମ୍ପ ଆକ୍ଟ (ଆଇନ)**—ବୈଦେ. ବ—(ଇଂ.ଷ୍ଟାମ୍ପ ଅକ୍ଟ ଓ ଫା. ଅଏନ.) Shtāmp ākt(āin) —ଯେଉଁ ମକଦମାରେ ବା ଦଲିଲରେ ষ্টাম্পআক্ট स्टैम्पकानून କେତେ ପରିମିତ ବା ମୂଲ୍ୟର ଷ୍ଟାମ୍ପ ଦରକାର ଏହା ଯେଉଁ ଆଇନରେ ଲେଖାଥାଏ—Stamp law; the stamp Act

**ଷ୍ଟାମ୍ପ ବିକ୍ରେତା**—ଦେ. ବ (ଇଂ. ଷ୍ଟାମ୍ପ+ସ. ବିକ୍ରେତା)—ଷ୍ଟାମ୍ପ Shtāmp bikretā ଭେଣ୍ଡର୍ (ଦେଖ) Shtāmp bhendar (See)

**ଷ୍ଟାମ୍ପ ଭେଣ୍ଡର**—ବୈଦେ. ବ (ଇଂ)—ଶିଠାମ୍ ଫରୋସ୍; ସାଧାରଣଙ୍କୁ Shtāmp-bhendar ଷ୍ଟାମ୍ପ ବିକି କରିବା ପାଇଁ କର୍ତ୍ତୃପକ୍ଷଙ୍କ ষ্টাম্পভেণ্ডার स्टैम्पवेंडर ଦ୍ୱାରା ମନୋନୀତ ବ୍ୟକ୍ତି—A licensed [ଷ୍ଟାମ୍ପ ଫ(ଫ)ରୁ(ରୋ)ଷ—ଅନ୍ୟରୂପ] stamp vendor.

**ଷ୍ଟାର ଅଫ ଇଣ୍ଡିଆ**—ବୈଦେ. ବ (ଇଂ)—ଇଂଲଣ୍ଡେଶ୍ୱରଙ୍କ ପ୍ରଦତ୍ତ Shtār aph indiā ଉପାଧି ବିଶେଷ—Star of India স্টার অফ ইণ্ডিয়া स्टारआफइंडिया (a title given by the Emperor of India).

**ଷ୍ଟାର ଅଫ ଉତ୍କଳ**—ଦେ. ବ (ନାମ)—ପ୍ରଥମେ ସ୍ୱର୍ଗୀୟ ଗୌରୀଶଙ୍କର ରାୟ, Shtār aph utkala ପରେ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ষ্টার অফ উৎকল स्टारआफउत्कल ଓ ତତ୍ପରେ ବାବୁ ଗୋପବନ୍ଧୁ ରାଜକୃଷ୍ଣ ବୋଷଙ୍କଦ୍ୱାରା ସମ୍ପାଦିତ କଟକର ଇଂରାଜୀ ସାପ୍ତାହିକ ସମ୍ବାଦପତ୍ର—The star of Utkal-an English weekly of Cuttack now defunct. [ଦ୍ର—ଏହା ବର୍ତ୍ତମାନ ପ୍ରକାଶିତ ହେଉନାହିଁ]

**ଷ୍ଟିମ୍**—ବୈଦେ. ବ (ଇଂ)—ଜଳୀୟ ବାଷ୍ପ—Steam. [ଦ୍ର—Shtim ଏହାର ଅଶୁଦ୍ଧ ଉଚ୍ଚାରଣ ଇଷ୍ଟିମ୍] ষ্টীম स्टीम

**ଷ୍ଟିମ୍ ଇ(ଏ)ଞ୍ଜି(ଞ୍ଜ)ନ**—ବୈଦେ. ବ (ଇଂ)—ବାଷ୍ପଚାଳିତ କଳ—Shtim ienji(nj)n Steam engine. ষ্টীমইঞ্জিন स्टीमइंजिन

**ଷ୍ଟିମ ଟ୍ରାମ୍**—ବୈଦେ. ବ (ଇଂ)—ବାଷ୍ପଚାଳିତ ଟ୍ରାମ୍ ଗାଡ଼ି—Shtim trām Steam tram-car. ষ্টিমট্রাম स्टिमट्राम

**ଷ୍ଟିମ୍ ଲଞ୍ଚ**—ବୈଦେ. ବ (ଇଂ)—ବାଷ୍ପଚାଳିତ ଛୋଟ ଡଙ୍ଗା—Shtim lānch Steam launch. ষ্টিমলঞ্চ स्टिमलञ्च

**ଷ୍ଟିମ୍(ମା)ର୍**—ବୈଦେ. (ଇଂ)—ବାଷ୍ପଚାଳିତ ବଡ଼ ଡଙ୍ଗା—Shtim(mā)r Steamer. [ଦ୍ର—ଏହାର ଅଶୁଦ୍ଧ ষ্টিমার स्टिमार ଉଚ୍ଚାରଣ ଇଷ୍ଟିମ(ମା)ର୍, ଇଷ୍ଟିମ୍ବର]

**ଷ୍ଟିମର୍ ଘାଟ**—ଦେ. ବ (ଇଂ. ଷ୍ଟିମର+ଦ. ଘାଟ)—ଯେଉଁ ଘାଟରେ Shtimar ghāta ଷ୍ଟିମର୍ ଲାଗେ—Steamer ষ্টিমারঘাট स्टीमरघाट ghat

**ଷ୍ଟିଲ୍**—ବୈଦେ. ବ ଇଂ—ଟାଣୁଆ ଲୁହା Shtil Steel ষ্টিল स्टील

**ଷ୍ଟିଲ୍ ଟ୍ରଙ୍କ**—ବୈଦେ. ବ ଇଂ—ଇସ୍ପାତ ଲୁହା ପତ୍ରରେ ତିଆରି ବାକ୍ସ Shtil trānk Steel trunk ষ্টিলট্রাঙ্ক स्टीलट्रांक

**ଷ୍ଟିଲ୍ ପେନ**—ବୈଦେ. ବ ଇଂ—ଇସ୍ପାତ ଲୁହାର କଲମ ବା ନିବ୍ Shtil pen Steel pen or nib ষ্টিলপেন स्टीलपेन

**ଷ୍ଟୁଡିଓ**—ବୈଦେ. ବ (ଇଂ)—ଷ୍ଟୁଡିଓ (ଦେଖ) Shtudio Shtādio (See)

**ଷ୍ଟୁଡେଣ୍ଟ**—ବୈଦେ. ବ ଇଂ—ଛାତ୍ର Shtudent Student ষ্টুডেন্ট स्टुडेंट

**ଷ୍ଟୁଡେଣ୍ଟ ସିପ**—ବୈଦେ. ବ ଇଂ—୧ । ଛାତ୍ରବୃତ୍ତି—Studentship ୨ । କଲିକତା ବିଶ୍ୱବିଦ୍ୟାଳୟର Shtudent sip ষ্টুডেন্টসীপ स्टुडेनटशिप ସର୍ବୋଚ୍ଚ ପରୀକ୍ଷା; ପ୍ରେମଚାନ୍ଦ ରାୟଚାନ୍ଦ ପରୀକ୍ଷା—2 Studentship examination of the Calcutta University

**ଷ୍ଟୁଲ**—ବୈଦେ. ବ (ଇଂ)—ଟୁଲ୍; କାଠରେ ୪ ଗୋଡ଼ଥିବା ଛୋଟ ଆସନ ବିଶେଷ—A Stool
Shṭul
ষ্টুল स्टूल

**ଷ୍ଟେଟ**—ବୈଦେ. ବ (ଇଂ)—୧ । ରାଜ୍ୟ—1. State. ୨ । ଏଷ୍ଟେଟ୍; ଜମିଦାରୀ; ଭୂସମ୍ପତ୍ତି—2. Estate. (ଦ୍ର—ଏହାର ଅଶୁଦ୍ଧ ଉଚ୍ଚାରଣ ଇଷ୍ଟେଟ୍-ଏଷ୍ଟେଟ୍ ।)
Shṭeṭ
ষ্টেট स्टेट

**ଷ୍ଟେଟ୍‌ମେଣ୍ଟ୍**—ବୈଦେ. ବ. (ଇଂ)—୧ । ଫର୍ଦ୍ଦ ବା ତାଲିକା—1. Statement. ୨ । ବର୍ଣ୍ଣନାପତ୍ର—2. Written statement. ୩ । ହାକିମଙ୍କ ଦ୍ୱାରା ଲିପିବଦ୍ଧ ହୋଇଥିବା ଇଜାହାର—3. Oral statement reduced to writing.
Shṭeṭ-meṇt
ষ্টেটমেণ্ট स्टेमेंट

**ଷ୍ଟେଟ୍ ସେକ୍ରେଟେରି**—ବୈଦେ. ବ. (ଇଂ) ବିଲାତ ପାର୍ଲିଅମେଣ୍ଟରେ ଥିବା ଭାରତୀୟ ସଚିବ—Secretary of State for India.
Shṭeṭ sekreṭe ri
ষ্টেট সেক্রেটারী स्टेटसेक्रेटरी

**ଷ୍ଟେଟ୍ ସ୍କଲ(ଲା)ର୍**—ବୈଦେ. ବ. (ଇଂ)— ସରକାରୀ ବୃତ୍ତିଧାରୀ ଛାତ୍ର—State scholar.
Shṭeṭ skala(lā)r
ষ্টেটস্কলার स्टेटस्कलर

**ଷ୍ଟେଟ୍ ସ୍କଲ(ଲା)ର୍‌ସିପ୍**—ବୈଦେ. ବ (ଇଂ)—ଛାତ୍ରମାନଙ୍କୁ ଦିଆଯିବା ସରକାରୀ ବୃତ୍ତି—State scholarship.
Shṭeṭ skala(lā)r sip
ষ্টেটস্কলারসিপ स्टेटस्कलरशीप

**ଷ୍ଟେନୋ**—ବୈଦେ. ବ. (ଇଂ)—୧ । ଷ୍ଟେନୋଗ୍ରାଫ୍ (ଦେଖ)—1. Shṭenogrāph (See) ୨ । ଷ୍ଟେନୋଗ୍ରାଫର୍—2. Shṭenogrāphar (See)
Shṭeno

**ଷ୍ଟେନୋ ଗ୍ରାଫ୍**—ବୈଦେ. ବ. (ଇଂ)—ଶୁଣିବା ବିଷୟକୁ ସଙ୍କେତରେ ଲେଖିବା ପ୍ରଣାଳୀ ବିଶେଷ—Stenograph.
Shṭenogrāph
ষ্টেনোগ্রাফ स्टेनोग्राफ

**ଷ୍ଟେନୋ ଗ୍ରାଫର**—ବୈଦେ. ବ. (ଇଂ)—ଯେଉଁ ବ୍ୟକ୍ତି କୌଣସି ବିଷୟ ଶୁଣି ତାହାକୁ ସଙ୍କେତ ଦ୍ୱାରା ଲେଖି ରଖି ପରେ ପୂର୍ଣ୍ଣ ଭାବରେ ଲେଖେ ବା ଟାଇପ୍ କରେ—Stenographer.
Shṭeno grāphar
ষ্টেনোগ্রাফর स्टेनोग्राफर

**ଷ୍ଟେରିଓ ଟାଇପ୍**—ବୈଦେ. ବ. (ଇଂ)—ଛାପାଖାନାରେ ବହୁ ଛାପିବା ପାଇଁ ଟାଇପ୍ ଯୋଡ଼ା ସରିବାପରେ ଛାଞ୍ଚରେ ସୀସା ଢାଳି ତାହା ସ୍ଥାୟୀ କରିବା ପ୍ରଣାଳୀ ବା ଯନ୍ତ୍ର—Stereotype.
Shṭeriotāip
ষ্টেরিওটাইপ स्टिरिओटाइप

**ଷ୍ଟେସନ୍**—ବୈଦେ. ବ. (ଇଂ)—୧ । ଜାହାଜ, ରେଲ, ଷ୍ଟିମର ଆଦିର ବାଟରେ ଯାତ୍ରୀମାନଙ୍କୁ ଉଠାଇ ନେବାପାଇଁ ଓ ଓହ୍ଲାଇ ଦେବା ପାଇଁ ଅଟକିବାର ନିର୍ଦ୍ଦିଷ୍ଟ ସ୍ଥାନ—1 A station of a railway or of a steamer or ship. ୨ । ସର୍ଭେ ମାପ କରିବା ନିମନ୍ତେ ସର୍ଭେଅର୍‌ମାନଙ୍କ ଦ୍ୱାରା ସ୍ଥିରୀକୃତ ବିନ୍ଦୁମାନ—2. A surveying station. ୩ । ପୁଲିସ୍ ଅଫିସରଙ୍କ ରହିବା ଘର; ଥାନା—3. Police-station. [ଦ୍ର—ଏହାର ଅଶୁଦ୍ଧ ଉଚ୍ଚାରଣ ଇଷ୍ଟିସନ, ଇଷ୍ଟିସନ, ଇଷ୍ଟେସନ ଓ ଟେସନ୍ ।]
Shṭesan
ষ্টেসন स्टेसन

**ଷ୍ଟେସନ୍ ଡାଇ(ଏ)ରି**—ବୈଦେ. ବ. (ଇଂ)—ପୁଲିସ୍ ଷ୍ଟେସନର ଭାରପ୍ରାପ୍ତ କର୍ମଚାରୀଙ୍କଦ୍ୱାରା ଲିଖିତ ଦୈନିକ ଘଟଣାବଳି ଯେଉଁ ଖାତାରେ ଲେଖାଥାଏ—(Police) Station diary.
Shṭesan dāi(e)ri
ষ্টেসন্ ডাইরী स्टेसनडाइरी

**ଷ୍ଟେସନ୍ ବାବୁ**—ଦେ. ବ.—ରେଲ ଷ୍ଟେସନର ସର୍ବୋଚ୍ଚ ଦେଶୀୟ ହିନ୍ଦୁ କର୍ମଚାରୀ—A Hindu station-master.
Shṭesan bābu
ষ্টেসনবাবু स्टेसनबाबु

**ଷ୍ଟେସନ୍ ମାଷ୍ଟର**—ବୈଦେ. ବ. (ଇଂ)—ରେଲ ଷ୍ଟେସନର ସର୍ବୋଚ୍ଚ କର୍ମଚାରୀ—Station master.
Shṭesan māshṭara
ষ্টেসনমাষ্টার स्टेसनमाष्टर

**ଷ୍ଟେସନା(ନ, ନେ)ରି**—ବୈଦେ. ବ (ଇଂ)—କାଗଜ କଲମ ଆଦି ଲେଖା ପଢ଼ାର ଉପକରଣ—Stationary.
Shṭesanā(na, ne)ri
ষ্টেসনারী स्टेसनरी

**ଷ୍ଟୋଭ୍**—ବୈଦେ. ବ (ଇଂ)—ବିଲାତି ଚୁଲି ବା କଳଚୁଲି—Stove.
Shṭobha ষ্টোভ स्टोभ

**ଷ୍ଟୋର୍**—ବୈଦେ. ବ (ଇଂ)—ଭଣ୍ଡାରଘର; ସରଘର—Store.
Shṭor ষ্টোর स्टोर

**ଷ୍ଟୋର୍ କିପର୍**—ବୈଦେ. ବ (ଇଂ)—ଭଣ୍ଡାର ଘରର ରକ୍ଷକ—Store-keeper.
Shṭor kipar
ষ্টোর কিপার स्टोर किपर

**ଷ୍ଟ୍ରପ୍**—ବୈଦେ. ବ (ଇଂ)—ଖୁର ଘଷିବାର ଚମଡ଼ା ପଟି—Razor strop.
Shṭrap ষ্ট্রপ स्ट्रप

**ଷ୍ଟ୍ରିଟ**—ବୈଦେ. ବ (ଇଂ)—ସହରର ବଡ଼ ଗଳି—Street.
Shṭrit ষ্ট্রীট स्ट्रीट

**ଷ୍ଠି(ଷ୍ଠୀ)ବ** ( ଧାତୁ )—ପ—୧ । ଛେପ ପକାଇବା—1. To spit. ୨ । ନିରସନ କରିବା—2. To refute; to contradict.
Shṭhi(shṭhī)b (root)

**ଷ୍ଠୀ(ଷ୍ଠେ)ବନ**—ସଂ. ବ (ଷ୍ଠିବ୍ ଧାତୁ+ଭାବ.ଅ)—୧ । ଛେପ ପକାଇବା—1. Spitting. ୨। (+କର୍ମ. ଅନ)—ଥୁକ; ଛେପ; ଖଙ୍କାର—2, Spittle.
Shṭhī(shṭhe)bana

**ଷ୍ଠୀବୀ**—ସଂ. ବଣ. ପୁଂ ( ଷ୍ଠୀବ ଧାତୁ+କର୍ତ୍ତୃ. ଇନ୍ )—୧ । ନିଷ୍ଠୀବନ-ଯୁକ୍ତ ( ବିଶ୍ୱକୋଷ )—1. Full of spittle. ୨ । ଯେ ଛେପ ପକାଏ ( ବିଶ୍ୱକୋଷ )—2. Spitting

**ଷ୍ଠ୍ୟୂତ**—ସଂ. ବଣ ( ଷ୍ଠିବ୍ ଧାତୁ+କର୍ମ. ତ )—୧ । ଉଦ୍‌ଗୀର୍ଣ୍ଣ; ଯାହା ବାନ୍ତି କରି ଯାଇଅଛି; ବମିତ; ବାନ୍ତ—1. Vomitted forth. ୨ । ଛେପରୂପେ କଢ଼ା ଯାଇଥିବା—2. Spit ( past participle ). ୩ । ନିରସ୍ତ—3. Caused to desist; assuaged.
Shthyūta

Printed by Mahananda Kar, at the Utkal Sahitya Press, Cuttack.